# ପ୍ରମୋଦ-ଅଭିଧାନ

ଶ୍ରୀ ପ୍ରମୋଦଚନ୍ଦ୍ର ଦେବ ପଟ୍ଟାୟତଙ୍କ କର୍ତ୍ତୃକ

**ସଂକଳିତ ଓ ପ୍ରକାଶିତ**

ତା ଳ ଚେ ର

( ପ୍ରଥମ—ମୁଦ୍ରଣ )



# PRAMODA AVIDHANA

**Complied and Published**

By

***Sri PRAMODACHANDRA DEB. Pattayat***

TALCHER



PRINTED BY

**C. S. Mishra B. A.**

**AMBIKA PRESS**

**CUTTACK**

***1942***

ମୂଲ୍ୟ ୫ ୧୨ ମାତ୍ର



ପଞ୍ଚାୟୁତ ଶ୍ରୀ ପ୍ରମୋଦଚନ୍ଦ୍ର ଦେବ ବର୍ମା, ତାଳଚେର



ପଣ୍ଡିତ ଶ୍ରୀ ଦାମୋଦର୍ ମିଶ୍ର, ସାହିତ୍ୟାଗ୍ରଣୀ, ତାଳଚେର

Saraswata Press. Cuttack.

# ଭୂମିକା



ଶବ୍ଦମାନଙ୍କର ସୃଷ୍ଟି ଓ ସେମାନଙ୍କର ବର୍ଦ୍ଧନଶୀଳତାରେ ଭାଷାର ସୌଷ୍ଠବ ସାଧାରଣତଃ ପରିଲକ୍ଷିତ ହୋଇଥାଏ । କେବଳ ପ୍ରାଚୀନତ୍ୱ ଦୃଷ୍ଟିରେ ଏହାର ସ୍ୱଚ୍ଛନ୍ଦ ଗତିକୁ ସୀମାବଦ୍ଧ କରିଦେଲେ ଏହାର ବହୁମୁଖୀ ବିକାଶ ସଙ୍କୁଚିତ ହୋଇଥାଏ । ତେଣୁ ପୃଥିବୀର ଆଧୁନିକ ଉନ୍ନତ ଭାଷାମାନଙ୍କର ଶବ୍ଦ ସଂଖ୍ୟାବୃଦ୍ଧିକୁ କୌଣସି ପ୍ରାଚୀନ ବେଷ୍ଟନୀରେ ଆବଦ୍ଧ ରଖାଯାଇ ପାରୁ ନାହିଁ, ଏହାବୋଲି ଶବ୍ଦର ବ୍ୟୁତ୍ପତ୍ତିକୁ ଲକ୍ଷ୍ୟ ନ ରଖି ଯଦୃଚ୍ଛାକ୍ରମେ ନୂତନ ଶବ୍ଦ ସଂଗଠନରେ ଭାଷାର ପ୍ରସାରକୁ ଏକମାତ୍ର ବିଚାର୍ଯ୍ୟ ବସ୍ତୁ କରିବା ଯଥାର୍ଥ ନୁହେଁ । ଅନେକ ସମୟରେ କଥିତ ଓ ଲିଖିତ ଏକ ଭାଷା ମଧ୍ୟରେ ଯେଉଁ ଅସାମଞ୍ଜସ୍ୟ ଦେଖାଯାଏ, ତାହା ଏକଦେଶବାସୀ ଭିନ୍ନ ଜାତି ବା ଗୋଷ୍ଠୀମାନଙ୍କର ବ୍ୟବହୃତ କାଳପରମ୍ପରା ଶବ୍ଦମାନଙ୍କ ଦ୍ୱାରା ସୃଷ୍ଟି ହୋଇଥାଏ । ଏହି ଶବ୍ଦଗୁଡ଼ିକ କେବଳ ପ୍ରୟୋଗସିଦ୍ଧ ବୋଲି ଭାଷା ବିସ୍ତୃତରେ ଏମାନଙ୍କୁ ବାଦ୍ ଦିଆଯାଇ ପାରେ ନାହିଁ । ଶବ୍ଦକୋଷ-ପ୍ରଣେତାମାନେ ଶବ୍ଦ ସଂଗ୍ରହ କଲାବେଳେ ଭାଷାରେ ବ୍ୟବହୃତ ହେଉଥିବା ପ୍ରତ୍ୟେକ ଶବ୍ଦକୁ ସମ୍ୟକ୍ ବିଚାର କରିବା ଉଚିତ । ଭାଷାର ବିସ୍ତୀର୍ଣ୍ଣତାରେ ଶବ୍ଦକୋଷର ଉପଯୋଗିତା ପ୍ରତ୍ୟେକ ଭାଷାବିତ୍ ଓ ସାହିତ୍ୟିକ ନିଶ୍ଚୟ ଅନୁଭବ କରିପାରିବେ । ପୃଥିବୀର ଉନ୍ନତ ଭାଷାମାନଙ୍କର ବିଶାଳତା ସାଧାରଣ ଦୃଷ୍ଟିରେ ଏହି ଶବ୍ଦ ବା ଭାଷାମାନଙ୍କ ଦ୍ୱାରା ଅବଧାରିତ ହୋଇଥାଏ । ଇଂରେଜି ଭାଷାରେ ବିଭିନ୍ନ ସଂଗ୍ରାହକମାନଙ୍କ ଦ୍ୱାରା ସଂକଳିତ **Encyclopedia** ବା ବିଶ୍ୱକୋଷ ତୁଳନାରେ ଆମ୍ଭମାନଙ୍କ ଓଡ଼ିଆ ଭାଷାରେ ଆଜିପର୍ଯ୍ୟନ୍ତ ପ୍ରକାଶିତ ହୋଇଥିବା ବିଭିନ୍ନ ଶବ୍ଦକୋଷମାନ ଅତି ନଗଣ୍ୟ କହିଲେ ଚଳେ, କିନ୍ତୁ ଯା' ବୋଲି ଆମ୍ଭେମାନେ ଓଡ଼ିଆ ସାହିତ୍ୟ ବା ଭାଷାକୁ ନିକୃଷ୍ଟ କହି ନ ପାରୁ । ଜାତୀୟ ଅଭ୍ୟୁଦୟରେ ଓଡ଼ିଆ ଭାଷା ଓ ସାହିତ୍ୟର ପ୍ରସାର ଘଟିବା ଆଦୌ ବିଚିତ୍ର ନୁହେଁ ।

ଓଡ଼ିଆ ସାହିତ୍ୟର ପ୍ରଗତି ସଙ୍ଗେ ଉତ୍କୃଷ୍ଟ ଓଡ଼ିଆ ଶବ୍ଦକୋଷମାନଙ୍କର ସମ୍ପର୍କ ଚିରଦିନ ନିହିତ । ସାଧାରଣ ଓଡ଼ିଆ ପାଠକମାନଙ୍କର ରୁଚି ଓ ଉତ୍ସାହ ଦ୍ୱାରା ଓଡ଼ିଆ ସାହିତ୍ୟର ବିକାଶଧାରା ନିୟନ୍ତ୍ରିତ ନ ହେବାଯାଏ ଉପର୍ଯ୍ୟୁକ୍ତ ସମ୍ପର୍କ ଉପଲବ୍ଧ ହେବା ସମ୍ଭବ ନୁହେ ।

ପଠଦ୍ଦଶାରେ ଓଡ଼ିଆ ସାହିତ୍ୟର ଆଲୋଚନା କଲାବେଳେ ମୁଁ ଅନେକ ସମୟରେ ଖଣ୍ଡିଏ ଉପଯୁକ୍ତ ଓଡ଼ିଆ ଅଭିଧାନର ଅଭାବ ଅନୁଭବ କରିଥିଲି, ସେହି ଅଭାବ ମୋର କାହିଁକି—ପାଠକ ସାଧାରଣଙ୍କର ମଧ୍ୟ ଥିଲା । ନିଜ ମାତୃଭାଷାର ଉନ୍ନତିକଳ୍ପେ ଓ ପୂର୍ବ ସଙ୍ଗୀତ-ସାହିତ୍ୟ-ସେବା-ଆକାଙ୍କ୍ଷା ଦ୍ୱାରା ପ୍ରଣୋଦିତ ହୋଇ ମୁଁ ୧୯୩୬ ମସିହାରେ ଏହି ଅଭିଧାନର ସଂକଳନ କାର୍ଯ୍ୟରେ ଅଗ୍ରସର ହେଲି । ଏଥିରେ ସହକର୍ମୀରୂପେ ତାଳଚେରବାସୀ **ପଣ୍ଡିତ ଶ୍ରୀ ଦାମୋଦର ମିଶ୍ର ସାହିତ୍ୟାଚାର୍ଯ୍ୟ** ମୋତେ ସାହାଯ୍ୟ କରିଥିବାରୁ ମୁଁ ତାଙ୍କୁ ହୃଦୟର କୃତଜ୍ଞତା ଜଣାଉଅଛି । ଏହି ଅଭିଧାନରେ ୧୫୦,୦୦୦ ଶବ୍ଦ ସଂଗୃହୀତ ହୋଇଅଛି । ଉତ୍କଳର ବିଭିନ୍ନ-ସ୍ଥାନରେ ପ୍ରଚଳିତ ଦେଶଜ, ପ୍ରାଚୀନ ସାହିତ୍ୟରେ ବ୍ୟବହୃତ ହେଉଥିବା ଓ ଆଧୁନିକ ପ୍ରଚଳିତ ଶବ୍ଦମାନ ଯଥାର୍ଥଭାବରେ ସନ୍ନିବେଶିତ ହୋଇଅଛି । ମୋର ଆଶା ଓଡ଼ିଶାର ସାହିତ୍ୟିକ ଓ ପାଠକମାନେ ଏହି ଅଭିଧାନ ବ୍ୟବହାର କରି ଆବଶ୍ୟକ ସାହାଯ୍ୟ ପାଇ ପାରିବେ ।

**ଶ୍ରୀ ପ୍ରମୋଦଚନ୍ଦ୍ର ଦେବ**

# ସାଙ୍କେତିକ ଶବ୍ଦ



| | | | | |
|---|---|---|---|---|
| ବି. | ... | ... | | ବିଶେଷ୍ୟ |
| ବିଂ. | ... | ... | | ବିଶେଷଣ |
| କ୍ରି. | ... | ... | | କ୍ରିୟା |
| କ୍ରି. ବିଂ. | ... | ... | | କ୍ରିୟାବିଶେଷଣ |
| ସର୍ବ. | ... | ... | | ସର୍ବନାମ |
| ପୁଂ. | ... | ... | | ପୁଂଲିଙ୍ଗ |
| ସ୍ତ୍ରୀ. | ... | ... | | ସ୍ତ୍ରୀଲିଙ୍ଗ |
| କ୍ଲୀ. | ... | ... | | କ୍ଲୀବଲିଙ୍ଗ |
| ଅ. | ... | ... | | ଅବ୍ୟୟ |
| ତତ୍. | ... | ... | | ତତ୍ପୁରୁଷ |
| କ.ଧା | ... | ... | | କର୍ମଧାରୟ |
| ବ.ବ୍ରୀ. | ... | ... | | ବହୁବ୍ରୀହି |
| ମଧ୍ୟ-କ.ଧା | ... | ... | | ମଧ୍ୟପଦଲୋପୀ କର୍ମଧାରୟ |
| ଲ.ଅର୍ଥ | ... | ... | | ଲକ୍ଷଣାର୍ଥ |
| ଯା. | ... | ... | | ଯାବନିକ |
| ଗ୍ରା. | ... | ... | | ଗ୍ରାମ୍ୟ |
| ପ୍ରା.କ. | ... | ... | | ପ୍ରାଚୀନ କବିପ୍ରୟୋଗ |
| ସଂ. | ... | ... | | ସଂସ୍କୃତ |
| ବିପ. | ... | ... | | ବିପରୀତାର୍ଥ |
| ପ୍ରା. ସମ୍ବ | ... | ... | ପ୍ରାଦେଶିକ | ସମ୍ବଲପୁର |
| ପ୍ରା. ଖଡ଼. | ... | ... | " | ଖଡ଼ିଆଳ |
| ପ୍ରା. ମେଦି. | ... | ... | " | ମେଦିନୀପୁର |
| ପ୍ରା. ସିଂହ. | ... | ... | " | ସିଂହଭୂମ |
| ପ୍ରା. ଯାଜ | ... | ... | " | ଯାଜପୁର |
| ପ୍ରା. ବାଲେ. | ... | ... | " | ବାଲେଶ୍ୱର |
| ପ୍ରା. କଳା. | ... | ... | " | କଳାହାଣ୍ଡି |
| ପ୍ରା. ଗଞ୍ଜା. | ... | ... | " | ଗଞ୍ଜାମ |
| ପ୍ରା. ଲ. | ... | ... | " | ଲରିଆ |
| ହି.ଶ. | ... | ... | " | ହିନ୍ଦିଶବ୍ଦସାଗର |



| | | | | | |
|---|---|---|---|---|---|
| ପ୍ରା. ଜୟ. | ... | ... | ... | ... | ପ୍ରାଦେଶିକ ଜୟପୁର |
| ପ୍ରା. ଛତଶ. | ... | ... | ... | ... | „ ଛତିଶଗଡ଼ |
| ପ୍ରା. ନାଗ. | ... | ... | ... | ... | „ ନାଗପୁର |
| ପ୍ରା. ବଲ. | ... | ... | ... | ... | „ ବଲାଙ୍ଗିର |
| ପ୍ରା. ଗଡ଼. | ... | ... | ... | ... | „ ଗଡ଼ଜାତ |
| ବୈ—ଇଂ. | ... | ... | ... | ... | ବୈଦେଶିକ ଇଂରେଜୀ |
| ପ୍ରା. ପ. | ... | ... | ... | ... | ପ୍ରାଚୀନ ପଦ୍ୟ |
| କ. | ... | ... | ... | ... | କର୍ତ୍ତୃବାଚ୍ୟ |
| ର୍ମ. | ... | ... | ... | ... | କର୍ମବାଚ୍ୟ |
| ଣ. | ... | ... | ... | ... | କରଣବାଚ୍ୟ |
| ସମ୍ପ୍ର. | ... | ... | ... | ... | ସମ୍ପ୍ରଦାନବାଚ୍ୟ |
| ଅପା. | ... | ... | ... | ... | ଅପାଦାନବାଚ୍ୟ |
| ଅଧି. | ... | ... | ... | ... | ଅଧିକରଣବାଚ୍ୟ |
| ଭା. | ... | ... | ... | ... | ଭାବବାଚ୍ୟ |
| ୨ତତ୍. | ... | ... | ... | ... | ଦ୍ୱିତୀୟା ତତ୍ପୁରୁଷ |
| ୩ତତ୍. | ... | ... | ... | ... | ତୃତୀୟା „ |
| ୪ତତ୍. | ... | ... | ... | ... | ଚତୁର୍ଥୀ „ |
| ୫ତତ୍. | ... | ... | ... | ... | ପଞ୍ଚମୀ „ |
| ୬ତତ୍. | ... | ... | ... | ... | ଷଷ୍ଠୀ „ |
| ୭ତତ୍. | ... | ... | ... | ... | ସପ୍ତମୀ „ |
| ନ.ତତ୍. | ... | ... | ... | ... | ନଞ୍ „ |
| କ୍ଲୀ. | ... | ... | ... | ... | କ୍ଲୀବଲିଙ୍ଗ |



# ପ୍ରମୋଦ-ଅଭିଧାନ

## ଅ

ଅ—ସଂସ୍କୃତ ଓ ଓଡ଼ିଆ ବର୍ଣ୍ଣମାଳାର ଏବଂ ସ୍ୱରବର୍ଣ୍ଣର ଆଦ୍ୟ ଅକ୍ଷର । ଏହାର ଉଚ୍ଚାରଣ ସ୍ଥାନ କଣ୍ଠ ।

ଅ—ପୁଂ. ବି. ପରଂବ୍ରହ୍ମସୂଚକ ଏକାକ୍ଷର, ବିଷ୍ଣୁ, ମହେଶ୍ୱର, ଶିବ, ପ୍ରଣବ ବା ଓଙ୍କାରର ଆଦ୍ୟ ଅଙ୍ଗ ।

ଅଅ—ଗ୍ରା. ଅ. ବମନ କରିବାର ବା ବମନ ଉପକ୍ରମହେବା ବେଳର ଶବ୍ଦ ।

ଅଅଁଳା—ଗ୍ରା. ବି. ( ଆମଳକଶବ୍ଦଜ ) ଆମଳକୀ, ଧାତ୍ରୀଫଳ, ବୈଦ୍ୟକଔଷଧି-ଫଳ ବିଶେଷ ।

ଅଅଁଳାଇ—ଗ୍ରା. ବି. ହଳଦିଆ ଫୁଲ-ଗଛ, ସ୍ୱନାମ ପ୍ରସିଦ୍ଧ ହରିଦ୍ରାବର୍ଣ୍ଣ ପୁଷ୍ପ-ବୃକ୍ଷବିଶେଷ ।

ଅଅଁଳା ନବମୀ—ଗ୍ରା. ବି.ଧାତ୍ରୀନବମୀ, କାର୍ତ୍ତିକ ଶୁକ୍ଳ ନବମୀ, (ଏହିଦିନ ଅଅଁଳା ଗଛମୂଳେ ବିଷ୍ଣୁପୂଜା କରାଯାଏ) ।

ଅଅଁଳେଇ—ଗ୍ରା. ବି. ଅଅଁଳାଇ ପୁଷ୍ପ-ବୃକ୍ଷବିଶେଷ ।

ଅଇ—ଗ୍ରା. ବି. ବାନ୍ତି, ହାକୁଟି( ଅବ୍ୟ ) ଗ୍ରା. ସ୍ତ୍ରୀସମ୍ବୋଧନ, ହେ ଲୋ !, ଆ ଲୋ ! ଆଗୋ !

ଅଇଁଠା ( ଅଇଣ୍ଠା )—ଗ୍ରା. ବି. (ଉଚ୍ଛିଷ୍ଟ ଶବ୍ଦଜ ) ଭୋଜନାବଶେଷ (ଗ୍ରା-ବିଂ-ଉଚ୍ଛିଷ୍ଟ) ।

ଅଇକା (ଅଇଛଣି, ଏଇକ୍ଷଣି)—ଗ୍ରା. ଅ. ଏହିକ୍ଷଣି, ବର୍ତ୍ତମାନ ।

ଅଇଘରା—ଗ୍ରା. ବି. ଅଗ୍ନ୍ୟସ୍ତ୍ରବିଶେଷ, ଅଇଘିରା, ଅଇଘେରା, ଅଘିରା,

ଅଇଁଗଦା—ଏହି ଉତ୍ସବ ମାଘପୂର୍ଣ୍ଣିମା ରାତ୍ରିରେ ଓ ଦୋଳପୂର୍ଣ୍ଣିମାର ପୂର୍ବ ରାତ୍ରିରେ ହୁଏ ।

ଅଇଣ୍ଠାଚଣ୍ଡ—ଗ୍ରା. ବି. ପ୍ରେତ ବିଶେଷ, (ସ୍ତ୍ରୀ)—ଅଇଣ୍ଠାଚଣ୍ଡୀ ।

ଅଇଠାଦାଦୁ—ଗ୍ରା. ବି. ( ଉଚ୍ଛିଷ୍ଟ ଦଦ୍ରୁଶବ୍ଦଜ ) ଅଇଣ୍ଠାଦାଦୁ, ଚର୍ମ-ରୋଗ ବିଶେଷ ।

ଅଇଣ୍ଡି—ଗ୍ରା. ବି. ପୁଂ-ସ୍ତ୍ରୀ- ଏକଶିଶୁ ମାତାଠାରୁ ଦୁଗ୍ଧପାନ ଛାଡ଼ିବା ପୂର୍ବରୁ ଅନ୍ୟ ଶିଶୁ ଜନ୍ମହେବା ବା ମାତା ପୁନରାୟ ଗର୍ଭ ହେବା ।

ଅଇଣ୍ଡିଆ—ଗ୍ରା. ବି. ବାଳରୋଗବିଶେଷ, ପଦ୍ମିଗଭଁକ, ମାତାର ଦୁଗ୍ଧ ଦୋଷରୁ ଶିଶୁର ଅଜୀର୍ଣ୍ଣ ପୀଡ଼ା ଓ ଦୁର୍ବଳତା ।

ଅଇଦ୍ରିଶି—ଗ୍ରା. ବିଂ. ଶୀଘ୍ରପ୍ରସବାପନ୍ନ, ବିରୋଧୀ ।

ଅଇନ୍—ଗ୍ରା. ବିଂ. ଅତିଉତ୍ତମ, ଅତି ସୁନ୍ଦର, ଅପୂର୍ବ, ଅତିଉତ୍କୃଷ୍ଟ ।

ଅଇନଗାଡ଼୍—ଗ୍ରା.ଅ. ଏହିକ୍ଷଣି,ବର୍ତ୍ତମାନ, ଅତି ସତ୍ୱର ।

ଅଇ-ନଗଦ—ଗ୍ରା.ଅ.ଏହିକ୍ଷଣି,ବର୍ତ୍ତମାନ ।

ଅଇନା—ଯା. ବି. ଆଇନା, ଦର୍ପଣ, ଆରସି, କାଚ ।

ଅଇନ—(ଯ) ବି. ଆଇନ୍, ହଠ, ସୁନ୍ଦର, ଛଳ, ବୃଥା ଆପତ୍ତି, ଜିଦ, ହୁକୁମ ।

ଅଇନ୍ଦ୍ର—ଗ୍ରା.ବି (ପ୍ରା-ପ) ଇନ୍ଦ୍ରସମ୍ବନ୍ଧୀୟ ।

ଅଇବ୍—(ଯ) ବି.ଘୋଡ଼ା ଆଦି ପଶୁଙ୍କ ଠାରେ ଦେଖାଯିବା ଦୁର୍ଗୁଣ ବା ଦୁର୍ଲକ୍ଷଣ ।

ଅଇବୃତ—ଗ୍ରା. ବି. (ପ୍ରାଚୀନ ସଂଖ୍ୟା-ବାଚକ) ଅଯୁତ, ଦଶହଜାର;ଗ୍ରା. ବିଂ. ଅଯୁତସଂଖ୍ୟକ, ଅସଂଖ୍ୟ ।

ଅଇରଣି—ଗ୍ରା. ବିଂ. ( ଅରି+ଦୃଶ୍ ) ଶୀଘ୍ରପ୍ରସବାପନ୍ନ, ବିରୋଧୀ ।

ଅଇରା—ଗ୍ରା. ବି. ହାଣ୍ଡି ମାଠିଆ ପ୍ରଭୃତି ରଖିବାର ମଞ୍ଚା, ଚମଲା, ବଇଠକି, ଅଡ଼ୁଆ ।

ଅଇରାବତ—ଗ୍ରା. ବି. ଇନ୍ଦ୍ରଙ୍କ ହସ୍ତୀ, ଐରାବତ, ସୁରଗଜ, ନାରଙ୍ଗୀଲେମ୍ବୁ

ଅଇରି—ଗ୍ରା. ବି. ଅରି, ଶତ୍ରୁ; ଗୋପାଳ ଜାତିବିଶେଷ ।

ଅଇଲ୍—ପ୍ରା, ( ଗଞ୍ଜାମ ) ବି. ତେଲ, ତୈଳ ।

ଅଇଲା—ଗ୍ରା. ବିଂ. ଆସିଥିବା, ଆସୁଥିବା (ବ୍ୟକ୍ତି) କ୍ରି. ଆସିବା ଧାତୁର ଅତୀତ କାଳ, ଆସିଲା ।

ଅଇଶାନ୍ୟ—ଗ୍ରା. ବି. ଐଶାନ୍ୟକୋଣ, ଉତ୍ତର ପୂର୍ବ ମଧ୍ୟ କୋଣ ।

ଅଇଶୁର୍ଯ୍ୟ, ଅଇଶ୍ୱର୍ଯ୍ୟ—ଗ୍ରା. ବି. (ସଂ—ଐଶ୍ୱର୍ଯ୍ୟ) ଧନସମ୍ପତ୍ତି, ସମ୍ପଦ ।

ଅଇସୁଲକ୍ଷଣୀ—ଗ୍ରା. ବିଂ. ସ୍ତ୍ରୀ-ଐଶ୍ୱର୍ଯ୍ୟ-ଶାଳିନୀ, ସୌଭାଗ୍ୟବତୀ, ସୁଭଗା ।

ଅଉଁଠି—ପ୍ରା.(ଲ) ବି. ( ଅଙ୍ଗୁଳି-ଶବ୍ଦଜ ) ଆଙ୍ଗୁଠି ।

ଅଉଁଳା—ପ୍ରା. (ସମ୍ବ). ବି. ଅଅଁଳା ।

ଅଉଁଶ—ଗ୍ରା. ବି. (ଅଂଶଶବ୍ଦଜ)ଅଂଶ ।

ଅଉଁଶବଉଁଶ—ଗ୍ରା. ବ. ( ଅଂଶ ବଂଶ ) ଅଂଶ ବଂଶ ।

ଅଉଗୃ—ଗ୍ରା. ବ. ଗୃଷହେବା ଷେତ୍ରରେ ଖଣ୍ଡ ଖଣ୍ଡକର ଗୃଷକରିବା ଚିହ୍ନ ।

ଅଉଡ଼ା—ଗ୍ରା. ବ. ଦିବସର ଅଷ୍ଟଭାଗ, ଓଳି ।

ଅଉରଥ୍ — ଯା.ବ. ସ୍ତ୍ରୀ. ଭାର୍ଯ୍ୟା,ସ୍ତ୍ରୀଲୋକ ନାରୀ ।

ଅଉରସ—ଗ୍ରା. ବି. ( ଔରସଶବ୍ଦଜ ) ସପିଣ୍ଡଗୋତ୍ର, କୁଟୁମ୍ବୀ, ନିକଟସମ୍ପର୍କୀୟ

ଅଭ୍ୱଲ୍—ଯ .ବିଂ. ପ୍ରଥମଶ୍ରେଣୀୟ,ଶ୍ରେଷ୍ଠ, ସର୍ବୋତ୍ତମ, ଖାଣ୍ଟି, (ବି) ଆରମ୍ଭ ।

ଅଉଲାଦ୍ (ଅଉଲାଦ୍) – ଯା. ବି. ସନ୍ତାନ, ପୁତ୍ର ।

ଅଉଶା—ପ୍ରା. (ସମ୍ବ) ବି. ଅଙ୍କୁଶ, ହାତୀ ଚଲାଇବାର ବ୍ୟବହାର୍ଯ୍ୟ ଅସ୍ତ୍ରବିଶେଷ ।

ଅଉଷଧ; ଅଉଷଧ୍—ଗ୍ରା. ବ. ଔଷଧ ।

ଅଋଣୀ—ପୁଂ. ବିଂ. (ଅ+ଋଣ+ଇନ୍) ଯେ କରଜଗ୍ରସ୍ତ ନୁହେ, (ସ୍ତ୍ରୀ) ଅଋଣିନୀ

ଅଏଧିକା—ପ୍ରା (ସମ୍ବ), ବିଂ. ଅଧିକା, ବଳିପଡ଼ିଥିବା, ଅବଶିଷ୍ଟ ।

ଅଏନ୍—ପ୍ରା. ( ସମ୍ବ ) ବିଂ. ଅତିଉତ୍ତମ ଅପୂର୍ବ. ଅତିସୁନ୍ଦର ।

ଅଏର୍ଗଣ—ପ୍ରା.(ସମ୍ବ) ବି. ଆରଗାପିଠା ।

ଅଏରି—ପ୍ରା. (ସମ୍ବ). ବି. ଅରି, ଶତ୍ରୁ ।

ଅଏସ୍—ଯା. ବ. ସୁଖ, ମଉଜ,ସଉକତ, (ବିଂ) ଅଏସୀ ।

ଅଂକ—ବି. ସଂଖ୍ୟାଚିହ୍ନ,ଲକ୍ଷଣ, କଳଙ୍କ, କୋଡ଼, ଗଣିତ ଶାସ୍ତ୍ର ।

ଅଂଶ—ବି. ( ଅନ୍‌ଶ+ମଂ. ଅ ) ବିଭାଗ, ବଣ୍ଟନ, ଭାଗ, ସ୍ଥାନ, ଖଣ୍ଡ, ଅବତାର-ବିଷୟ, ଭୂ-ପରିଧିର ୩୬୦ ଭାଗରୁ ଏକଭାଗ, ରାଶିଚକ୍ରର ତ୍ରିଂଶତ୍ ଭାଗରୁ-ଏକଭାଗ, ଅକ୍ଷାଂଶ, ଭଗ୍ନାଂଶ, ସ୍କନ୍ଧ, କାନ୍ଧ, ବଇନା, ପକ୍ଷ, ଦଳ, ଧନ । ଗ୍ରା. ବି. ଦେବତାଙ୍କର କଳା, ଅପତ୍ୟ, ପିତୃତ୍ୱ, ରକ୍ତସମ୍ପର୍କୀୟ ।

ଅଂଶକ—ପୁଂ. ବ. (ଅନ୍‌ଶ+କ. ଅକ) ଜ୍ଞାତି, ଦାୟାଦ, ଦିବସ, ଦିନ, ଅଲଂଶଭାଗ ସ୍ତ୍ରୀ. ( ଅଂଶିକା )—ଭାଗଦାର, ହିଁସା-ଦାର, ( ବିଂ ) ଅଂଶଗ୍ରାହୀ, ଭାଗ ପାଇବାର ଅଧିକାରୀ

ଅଂଶକୂଟ, ଅଂସକୂଟ—ସ୍ତ୍ରୀ.ବି. (୬ ତତ୍) କକୁଦ, ଷଣ୍ଢର ଚୂଳ

ଅଂଶଗତ—ତ୍ରି. ବିଂ. ( ୨ତତ୍ ) ବିଭାଗ-ସମ୍ବନ୍ଧୀୟ, (ସ୍ତ୍ରୀ) ଅଂଶଗତା ।

ଅଂଶତଃ—ଅ. ( ଅଂଶ+ତସ୍ ) କିୟଦଂଶରେ,କେତେକ ପରିମାଣରେ

ଅଂଶନ—କ୍ଲୀ. ବ. ( ଅନ୍‌ଶ+ଭା. ଅନ ) ବିଭଜନ, ବଣ୍ଟନ ।

ଅଂଶନୀୟ—ତ୍ରି. ବିଂ. ( ଅନଶ୍+ମ. ଅନୀୟ ) ବିଭାଜ୍ୟ,ଭାଗକରିବାର ଯୋଗ୍ୟ [ ସ୍ତ୍ରୀ. ନୀୟା ]

ଅଂଶଭାକ୍—ପୁଂ ଓ ସ୍ତ୍ରୀ. ବିଂ. ( ଅଂଶ+ଭଜ+କ. କ୍ୱିପ୍ ) ଯାହାର କୌଣସି ପଦାର୍ଥରେ ଭାଗ ଅଛି, ଉତ୍ତରାଧିକାରୀ ।

ଅଂଶମାନ—ପୁଂ. ବିଂ. ( ଅଂଶ+କ+ଆନ )ଯେ ନିଜର ଭାଗ ନେଇଅଛି (ସ୍ତ୍ରୀ) ଅଂଶମାନୀ ।

ଅଂଶଲ—ପୁଂ. ବିଂ. (ଅଂଶ+ଲା+କ,ଅ) ଅଂଶଗ୍ରାହୀ, ଭାଗଗ୍ରାହୀ ( ଅଂଶ+ଲ ) ବିଶାଳ ସ୍କନ୍ଧବିଶିଷ୍ଟ, ବଳବାନ୍, (ସ୍ତ୍ରୀ) ଅଂଶଲା ।

ଅଂଶହର—ପୁଂ. ବିଂ. (ଅଂଶ+ହୃ+କ.ଅ)-ଅଂଶଗ୍ରାହୀ, ( ବି ) ଦାୟାଦ (ସ୍ତ୍ରୀ) ଅଂଶହରୀ

ଅଂଶା—ଗ୍ରା. ବି. ତାଳ ପ୍ରଭୃତି ଗଛର ବକଳାରେ ବା ଭିତରେ ଥିବା କର୍କଶ ସୂକ୍ଷ୍ମ ତନ୍ତୁ ।

ଅଂଶାଇ—ଗ୍ରା.ବି. ପକ୍ୱ ଦ୍ରବ୍ୟ ଓ ଘାରେ ଉପୁଜିବା କ୍ଷୁଦ୍ର ଧଳା କୃମି, ପୋକ

ଅଂଶାଂଶ—ପୁଂ. ବି. ପୃଥକ୍ ପୃଥକ୍ ଭାଗ, ଦ୍ୱନ୍ଦ୍ୱ, କଳା, ଭାଗଭାଗ ।

ଅଂଶାବତାର—ପୁଂ. ବି. ( ୬ତତ୍ ) ଈଶ୍ୱରଙ୍କର ଆଂଶିକ ଅବତାର— ମତ୍ସ୍ୟ, କୂର୍ମାଦି ।

ଅଂଶିତ—ତ୍ରି.ବିଂ.(ଅଂଶ+ମଂ-ତ)ବିଭକ୍ତ, ଯାହା ଭାଗହୋଇଅଛି (ସ୍ତ୍ରୀ) ଅଂଶିତା

ଅଂଶୀ—ପୁଂ. ବିଂ (ଅଂଶ+ଇନ୍) ଅଂଶ ପାଇବାର ହକ୍‌ଦାର, ଅଂଶବିଶିଷ୍ଟ । ଅଂଶଭାଗୀ, ଅଂଶୀଦାର, (ସ୍ତ୍ରୀ) ଅଂଶିନୀ

ଅଂଶୀଦାର୍—ଗ୍ରା.ବି. ଭାଗଦାର,କୌଣସି ପଦାର୍ଥରେ ଯାହାର ଭାଗ ଥାଏ ।

ଅଂଶୁ—ପୁଂ. ବି. (ଅନ୍‌ଶ+ଉ) କିରଣ, ସୂତ୍ର ଦର ସୂକ୍ଷ୍ମାଂଶ, ଆଁଶ, ବସ୍ତ୍ର, ଦୀପ୍ତି, ପ୍ରଭା, ସୂର୍ଯ୍ୟ, ପ୍ରଭା, ବିଚକ୍ଷଣତା, ବେଗ ।

ଅଂଶୁକ—କ୍ଲୀ. ବି. (ଅଂଶୁ+କ) କିରଣ, ସରୁ ଲୁଗା, ଶୁକ୍ଳବସ୍ତ୍ର, ଗୁଦର, ତେଜ-ପତ୍ର, ଦୀପ୍ତି, ତେଜ ।

ଅଂଶୁକାୟ—ପୁଂ. ବିଂ. (ଅଂଶୁ+କାୟ) ( ବି. ସ୍ତ୍ରୀ ) ଯେଉଁ ଜୀବମାନଙ୍କର ଦେହରୁ ଦୀପ୍ତି ବା ତେଜ ବାହାରେ (ଯଥା:- ଜୁଳୁଜୁଳିଆ, ପ୍ରବାଳକୀଟ, ତାମ୍ରମତ୍ସ୍ୟ), (ସ୍ତ୍ରୀ) ଅଂଶୁକାୟା)

ଅଂଶୁଧର—ପୁଂ. ବିଂ. (ଅଂଶୁ+ଧୃ+କ-ଅ) ସୂର୍ଯ୍ୟ, ସୂର୍ଯ୍ୟବଂଶୀୟ ଅସମଞ୍ଜ ରାଜା ( ବିଂ ) ଯେ କିରଣକୁ ଧାରଣ କରେ ବା ବହେ, (ସ୍ତ୍ରୀ)-ଅଂଶୁଧରା ।

ଅଂଶୁପଟ୍ଟ—କ୍ଲୀ. ବି. ( ମଧ୍ୟ. କର୍ମ ଧା. ) ପାଟଲୁଗା, ରେଶମୀକପଡ଼ା

ଅଂଶୁପତି—ପୁଂ. ବି. (ଅଂଶୁ+ପତି) ୬ତତ୍—ସୂର୍ଯ୍ୟ

ଅଂଶୁମତ୍‌ଫଳା—ସ୍ତ୍ରୀ. ବି. (ଅଂଶୁମତ୍+ଫଳ+ସ୍ତ୍ରୀ. ଆ) କଦଳୀ ଗଛ ।

ଅଂଶୁମତୀ—ସ୍ତ୍ରୀ. ବି. (ଅଂଶୁମତ୍+ସ୍ତ୍ରୀ.ଈ) ଶାଳପର୍ଣ୍ଣୀ, ଯମୁନା ନଦୀ ।

ଅଂଶୁମାନ୍—ପୁଂ. ବିଂ. ( ଅଂଶୁ+ମତ୍ ) ଦୀପ୍ତିମାନ୍, ପ୍ରଭାଶାଳୀ, ବି. ସୂର୍ଯ୍ୟ ।

ଅଂଶୁମାଳା—ସ୍ତ୍ରୀ. ବି (୬ ତତ) କିରଣ-ରାଶି, ଜ୍ୟୋତିଃ ସମୂହ ।

ଅଂଶୁମାଳୀ—ସଂ. ପୁଂ. ( ଅଂଶୁ+ମାଳା+ଅସ୍ତ୍ୟର୍ଥରେ ଇନ୍ ) କିରଣମାଳା ବିଭୂଷିତ, କିରଣ ମାଳୀ, ପୁଂ. ବି. ସୂର୍ଯ୍ୟ ଦ୍ୱାଦଶସଂଖ୍ୟା(ସ୍ତ୍ରୀ)ଅଂଶୁମାଳିନୀ ।

ଅଂଶୁଲ—ପୁଂ. ବି. (ଅଂଶୁ+ଲା+କ.ଅ.) ଦୀପ୍ତିଯୁକ୍ତ, ଉଜ୍ଜ୍ୱଳ (ସ୍ତ୍ରୀ) ଅଂଶୁଲା

ଅଂଶୁବାଣ—ପୁଂ. ବି.(ବ. ବ୍ରୀ.) ସୂର୍ଯ୍ୟ ।

ଅଂଶୁଶିରାଲଦେହ—ଗ୍ରା.ବି. ଏକକେନ୍ଦ୍ରରୁ ବାହାରିଥିବା ଶିରା ବିଶିଷ୍ଟ ପ୍ରାଣୀ ।

ଅଂଶୁହସ୍ତ—ପୁଂ. ବି. (ବ. ବ୍ରୀ) ସୂର୍ଯ୍ୟ ।

ଅଂଶୂଦକ—ପୁଂ. ବି. (ଅଂଶୁ+ଉଦକ) ଯେଉଁ ଜଳାଶୟରେ ଦିନରେ ସୂର୍ଯ୍ୟକିରଣ ଓ ରାତିରେ ଚନ୍ଦ୍ରକିରଣ ପଡ଼େ, ନିର୍ମଳ ଜଳ ।

ଅଂଶ୍ୟମାନ—ବି. ବି. (ଅନ୍ଶ+ମ-ଆନ) ଯାହାକୁ ଖଣ୍ଡ କରି ଯାଉଅଛି, (ସ୍ତ୍ରୀ) ଅଂଶ୍ୟମାନା ।

ଅଂସ—ପୁଂ. ବା କ୍ଲୀ. ବି. (ଅମ୍+ସ) ସ୍କନ୍ଧ, କାନ୍ଧ (ଅନ୍ସ+ମ+ଅ) ଭାଗ, ହିଂସା, ବଣ୍ଟନ ।

ଅଂସକୂଟ—ସ୍ତ୍ରୀ. ବି. ଅଂଶ କୂଟ (ଦେଖ)

ଅଂସତ୍ର—କ୍ଲୀ.ବି.(ଅଂସ+ତ୍ରୈ+କ.ଅ) ସ୍କନ୍ଧାବରକ, କବଚ ।

ଅଂସଫଳକ—କ୍ଲୀ. ବି. (୭ ତତ୍) କାନ୍ଧର ହାଡ଼, ସ୍କନ୍ଧରଅସ୍ଥି ।

ଅଂସଳ—ପୁଂ. ବି. (ଅଂସ+ଅସ୍ତ୍ୟ. ଲ) ବିଶାଳସ୍କନ୍ଧ, ବଳିଷ୍ଠ; (ସ୍ତ୍ରୀ) ଅଂସଳା ।

ଅଂସ୍ୱରୂପା—ସ୍ତ୍ରୀ. ବି. ସୂକ୍ଷ୍ମସ୍ୱରୂପ ବିଶିଷ୍ଟା, ବିନ୍ଦୁରୂପା ।

ଅଂସେଇ—ଗ୍ରା. ବି. ପଚା ପଦାର୍ଥରେ ଉତ୍ପନ୍ନ କ୍ଷୁଦ୍ର କୀଟ ।

ଅଂହଃ—କ୍ଲୀ. ବି. ଅନ୍ହ+ଣ- ଅସ୍) ପାପ, ସ୍ୱଧର୍ମପରିତ୍ୟାଗ, କ୍ଲେଶ, ଅଧର୍ମ

ଅଂହତି, ଅଂହ୍ରତି—ସ୍ତ୍ରୀ. ବି. (ଅନ୍ହ+ଣିଚ୍+ଭା. ଅତି) ରୋଗ, ବ୍ୟାଧି-ପରିତ୍ୟାଗ, ଦାନ,

ଅଂହ୍ରି—ବି. (ଅନ୍ହ+ଣ. ରି) ପାଦ, ଚରଣ, ଗୋଡ଼, ଚତୁର୍ଥାଂଶ, ଗଛର ଚେର ।

ଅଂହ୍ରିପ—ବି. (ଅଂହ୍ରି+ପା+କ.ଅ) ପାଦପ, ବୃକ୍ଷଲତାଦି ।

ଅଂହ୍ରିସ୍କନ୍ଧ—ବି.(୬ତତ୍)ଗୁଲ୍ଫ, ଗୋଇଠି

ଅଃ—ଗ୍ରା. ଅ. ଓଃ, ଆହା, ହା, ହାଇ, ହାୟ ।

ଅଁ—ଗ୍ରା. ଅ. (ସମ୍ମତିସୂଚକ) ହଁ, ଏଁ

ଅଁଚିଁ—ଗ୍ରା. ଅ. ଉଁ ଚୁଁ, ଅମଙ୍ଗହେବା, ଦ୍ୱିଧା କରିବା ।

ଅଁଟଁ—ଗ୍ରା. ଅ. ସମ୍ପୂର୍ଣ୍ଣରୂପେ ଯୋଗ୍ୟ, ଦନ୍ତୁସ୍ଥ ।

ଅଁଟ—ଗ୍ରା. (ସମ୍ପ) ବି. ଓଠ, ଓଷ୍ଠ,

ଅଁତର—(ପ୍ରା-କ). ବି. ମନ, ଅନ୍ତଃକରଣ ।

ଅଁଧାର—ଗ୍ରା. ବି. ଅନ୍ଧକାର, ଅନ୍ଧାର (ବି°)ତମସାଚ୍ଛନ୍ନ, ଅନ୍ଧକାରମୟ ।

ଅକ୍ଲିସ୍ତା—ଗ୍ରା.ବି. ନୂଆଶିଖାଳୀ,ଅକାଳିକ, ଅସାମୟିକ ।

ଅକ୍ସର୍— (ଯ.) ଅ. ସାଧାରଣତଃ, ସର୍ବଦା, ସଦା, (ସ). ପ୍ରତ୍ୟେକ, ସମସ୍ତ

ଅକ୍—ଧାତୁ. ବକ୍ର ଗମନ କରିବା

ଅକ—ପୁଂ.ବି. (ଅକ+ଭା. ଅ)ବକ୍ରଗତି; ଦୁଃଖ, ପାପ ।

ଅକଇଲକ୍ଷଣ—ଗ୍ରା. ବି. ଅମଙ୍ଗଳ, ଅଶୁଭ, ଅଭିଶାପ ।

ଅକଉଡ଼ିଆ—ଗ୍ରା. ବି°.ମୂଲ୍ୟହୀନ,ମାଗଣା, ଧନହୀନ, ନିଃସ୍ୱ ।

ଅକକର୍ଥନ—ଗ୍ରା. ବି. ଦୁଃଖ, ବାହୁନି-କାନ୍ଦିବା, ବି. ବାହୁନିକରିକାନ୍ଦୁଥିବା ।

ଅକଚ—ପୁଂ. ବି. (ଅ+କଚ) ବ.ବ୍ରୀ. କେଶହୀନ, ଟାଙ୍ଗରା, ବି. କେତୁଗ୍ରହ (ସ୍ତ୍ରୀ)-ଅକଚା ।

ଅକଚ୍ଛା—ସ୍ତ୍ରୀ. ବି. ଅକଚର ସ୍ତ୍ରୀ ଲିଙ୍ଗ ଗ୍ରା. ବି. ଯେଉଁ ଲୁଗା କଚ୍ଛା ହୋଇ-ନାହିଁ ।

ଅକଟ—ଗ୍ରା. ବି. ଅଟକ,ଗତିବନ୍ଦହେବା ଅଟକିଯିବା ।

ଅକଟବିକଟ—ଗ୍ରା. ବି. ଭୟରେ ବିକୃତ ମୂର୍ତ୍ତି ବା ଅଙ୍ଗଭଙ୍ଗି ।

ଅକଟା—ଗ୍ରା. ବି°, ଅକର୍ତ୍ତିତ, ଯାହା କଟା ହୋଇ ନାହିଁ ।

ଅକଟାଇବା—ଗ୍ରା. କ୍ରି. ଅଟକାଇବା, ଅନ୍ୟର ଗତି ବିରୋଧ କରିବା ।

ଅକଟୁ—ବି. ବି°. (ଅ+କଟୁ.) ନ. ତତ୍ ସ୍ୱାଦୁ, ମିଷ୍ଟ, ଯାହା କଡ଼ା ନୁହେଁ ।

ଅକଠିନ—ବି. ବି°. ( ଅ+କଠିନ ) ନ. ତତ୍ କାଠିନ୍ୟଶୂନ୍ୟ, ସୁକୁମାର, କୋମଳ, ସରଳ ।

ଅକଡ଼—ଗ୍ରା. ବି, ଅସୁବିଧା, ଅଖାଡ଼ୁ, ଅକଳ ।

ଅକଡ଼ନାଗିଆ—ଗ୍ରା. ବି°, ଏକଜିଦିଆ, ଅଖାଡ଼ୁଆ, ଅକଡ଼ବାଗୀ ।

ଅକଡ଼ମଚକ୍ର—ବି. ( ଜ୍ୟୋତିଷ ) ଭାଗ୍ୟ-ଗଣନା ଚକ୍ରବିଶେଷ, ଅଲେଖ ଧର୍ମାବଲମ୍ବୀମାନଙ୍କର ଶରୀରଭେଦ ଚକ୍ରବିଶେଷ ।

ଅକଡ଼ାଅକଡ଼ି—ଗ୍ରା. ବି. ଦୁଇଜଣ ପରସ୍ପର ଜିଦିଧରି ରାଜି ନ ହେବା ।

ଅକଡ଼ୁଆ—ଗ୍ରା. ବି°. ଯାହା କହି ବା କଡ଼ା ନୁହେଁ ( ଦୋକଡ଼ା, ଗୁହାଳ ଇତ୍ୟାଦି । )

ଅକଣେଶ୍ୱର—ଗ୍ରା. ବି. ନାମ. ଅକରେଶ୍ୱର ।

ଅକଣ୍ଟ—ଗ୍ରା. ବି°. ଅକଳନ, ଅମାପ, ଯାହା ପୂର୍ବରୁ କଣ୍ଟ ହୋଇନାହିଁ ।

ଅକଣ୍ଟକ—ବି. ବି°. ( ଅ+କଣ୍ଟକ ) ବ. ବ୍ରୀ. ଯହିଁରେ କଣ୍ଟା ନାହିଁ, ଶତ୍ରୁଶୂନ୍ୟ, ନିର୍ବିଘ୍ନ ।

ଅକଣ୍ଡା—ଗ୍ରା. ବି°. ଢେଙ୍କିରେ ଯେଉଁ ଖାଦ୍ୟଦ୍ରବ୍ୟ କୁଟାହୋଇ ପରିଷ୍କାର ହୋଇନାହିଁ ।

ଅକ୍ତଆର—ଯା.ବି. ଅଧିକାର, ଆୟତ, ଅକତ୍ୟାର ।

ଅକଥନ—କ୍ଲୀ. ବ. (ନ. ତତ୍) କୁକଥା, ଅନୁକ୍ତି, ମୂକତା (ବିଂ) ଅକଥନୀୟ ।

ଅକଥନୀୟ—ବିଂ. ଅକଥ୍ୟ, ଅବକ୍ତବ୍ୟ, ଅନିର୍ବଚନୀୟ ।

ଅକଥା—ସ୍ତ୍ରୀ. ବ. (ନ. ତତ୍) କୁଭାଷା, ଅଶ୍ଳୀଳବାକ୍ୟ, ଗ୍ରା. ବ. ଅନୁଚିତକର୍ମ।

ଅକଥିତ—ବିଂ. ଅନୁଚ୍ଚାରିତ, ଯା ଦ୍ୱାରା କୁହାଯାଇ ନାହିଁ, ଯାହା ବର୍ଣ୍ଣିତହୋଇ ନାହିଁ ।

ଅକଥ୍ୟ—ତ୍ରି. ବ. (ନ. ତତ୍) କହିବାର ଅଯୋଗ୍ୟ, ଅବର୍ଣ୍ଣନୀୟ, ଅଶ୍ଳୀଳ (ସ୍ତ୍ରୀ) ଅକଥ୍ୟା, (କ୍ଲୀ) ବ. ଦୁର୍ବାକ୍ୟ, ଅଶ୍ଳୀଳବାକ୍ୟ ।

ଅକନିଷ୍ଠ—ପୁଂ. ବିଂ. ବ. ବ୍ରୀ. କନିଷ୍ଠରହିତ, ଯାହାର ସାନଭାଇ ବା ଭଉଣୀ ନାହିଁ । (ସ୍ତ୍ରୀ) ଅକନିଷ୍ଠା, ପୁଂ. ବ. (ଅକ+ନିଷ୍ଠ) ବୁଦ୍ଧଦେବ ।

ଅକପଟ—ପୁଂ. ବିଂ (ଅ+କପଟ); ବ. ବ୍ରୀ. ନିଷ୍କପଟ; (ସ୍ତ୍ରୀ) ଅକପଟା ।

ଅକପଟତା—ସ୍ତ୍ରୀ. ବ. (ଅକପଟ+ଷ. ତା)—ହୃଦୟର ସରଳତା, ବିଂ. ଅକପଟ ।

ଅକପଟିଆ, ଅକପଟୀ—ଗ୍ରା. ବିଂ. ନିଷ୍କପଟ, ଯାହାର ଛନ୍ଦ କପଟ ନାହିଁ ।

ଅକବଜ୍—ଗ୍ରା. ବିଂ. ଆୟତ୍ତବହିର୍ଭୂତ ।

ଅକବା—ଗ୍ରା. ବିଂ. ଅବର୍ଣ୍ଣନୀୟ, ବର୍ଣ୍ଣିତ ହେବାର ଅଯୋଗ୍ୟ ।

ଅକବି—ପୁଂ. ସ୍ତ୍ରୀ. ବ. (ନ. ତତ୍)କୁତ୍ସିତ କବି, କବିତ୍ୱରହିତ, ରସବୋଧହୀନ ।

ଅକବୁଲ୍—ଗ୍ରା. ବ. ଅସମ୍ମତି, ଅସ୍ୱୀକାର ।

ଅକମଡ଼ିଆ—ଗ୍ରା. ବିଂ. ଅକଡ଼ିବାଗିଆ, ଅକାମୋଡ଼ିଆ ।

ଅକମାବେ—ଗ୍ରା. ବ. ଅକାମାବେ (ଦେଖ)

ଅକମ୍ପ—ପୁଂ. ବିଂ. (ବ.ବ୍ରୀ.) ନିଶ୍ଚଳ, କମ୍ପଶୂନ୍ୟ, ଗତିରହିତ (ସ୍ତ୍ରୀ) ଅକମ୍ପା ।

ଅକମ୍ପନ—ପୁଂ. ବ. ରାବଣର ସେନାପତି ବିଶେଷ ।

ଅକମ୍ପିତ—ପୁଂ. ବ. (ଅ+କମ୍ପିତ) କମ୍ପନଶୂନ୍ୟ, ଧୀର, ସ୍ଥିର, (ସ୍ତ୍ରୀ) ଅକମ୍ପିତା ।

ଅକମ୍ପ୍ର—ପୁଂ. ବିଂ. (ନ. ତତ୍) ସ୍ଥିର, ଅଚଳ, ଅକମ୍ପିତ (ସ୍ତ୍ରୀ) ଅକମ୍ପ୍ରା ।

ଅକର—ପୁଂ. ବିଂ. (ଅ+କର) ବ.ବ୍ରୀ. ହସ୍ତହୀନ, ନିଷ୍କର, ରାଜସ୍ୱହୀନ (ସ୍ତ୍ରୀ) ଅକରା ।

ଅକରକରା—ଗ୍ରା. ବ. ବନ୍ୟ ଗୁଳ୍ମଜାତୀୟ ବୃକ୍ଷ ଓ ଫଳବିଶେଷ ।

ଅକରଜିଆ—ଗ୍ରା. ବିଂ. ପୁଂ. ଅଋଣୀ, ଯେ କରଜଗ୍ରସ୍ତ ନୁହେ ।

ଅକରଟା—ଗ୍ରା. ସ୍ତ୍ରୀ. ବିଂ. ଯେଉଁ ଗାଈ ଶୀଘ୍ର ଗର୍ଭଧାରଣ କରେ, ଅକରଟିଆ ।

ଅକରଣ—ପୁଂ. ବ. ପରମାତ୍ମା, କ୍ରିୟାର ଅଭାବ, ଅକାର୍ଯ୍ୟ ବିଂ. ଇନ୍ଦ୍ରିୟଶୂନ୍ୟ ।

ଅକରଣି—ସ୍ତ୍ରୀ.ବ. (ଅ+କୃ+ଭା.ଅନି) ବିଫଳତା, ଆକ୍ରୋଶ, ଶାପ, କାର୍ଯ୍ୟାସିଦ୍ଧି ।

ଅକରଣୀ—ସ୍ତ୍ରୀ. ବ. ଯେଉଁ ରାଶିକୁ କୌଣସି ରାଶିଦ୍ୱାରା ଭାଗକଲେ ଭାଗଶେଷ ରହେନାହିଁ ।

ଅକରଣୀୟ—ତ୍ରି. ବିଂ. (ନ. ତତ୍) କରଣ କାରଣର ଅଯୋଗ୍ୟ, ଅକର୍ତ୍ତବ୍ୟ, ଅନୁଚିତ ।

ଅକରତପ୍—ଗ୍ରା.ବ.ଅସାମର୍ଥ୍ୟ,ଦୁର୍ବଳତା, ଧନହୀନତା, ବିଂ. ଅକ୍ଷମ ବଳହୀନ ।

ଅକରତବ୍ୟ—ଗ୍ରା. ବ. ଓ ବିଂ. ଶକ୍ତିହୀନତା, ଅସମର୍ଥ, ବଳହୀନତା ।

ଅକରତା—ଗ୍ରା. ବ. ଯେ କାର୍ଯ୍ୟର ଓ ଗୃହର ମାଲିକ ନୁହେ, ବିଂ. ଯାହା କରତା ହୋଇନାହିଁ, କାଠ ଇତ୍ୟାଦି ।

ଅକରମ—ଗ୍ରା. ବ. ମନ୍ଦକର୍ମ, ଗର୍ହିତକର୍ମ, ମନ୍ଦଭାଗ୍ୟ ।

ଅକରମଣିଆ—ଗ୍ରା. ପୁଂ. ବିଂ. ଯେଉଁ ବ୍ରାହ୍ମଣ ବୈଦିକ କର୍ମକାଣ୍ଡ ଜାଣେନାହିଁ, ଅକର୍ମଣ୍ୟ,ଅକାମିକା,କର୍ମକୁଶଳ ନୁହେ ।

ଅକରମା—ଗ୍ରା. ପୁଂ. ବିଂ. ହତଭାଗ୍ୟ, ମନ୍ଦଭାଗ୍ୟ, ନିଷ୍କର୍ମା, ଅଳସୁଆ ।

ଅକରମୀ—ଗ୍ରା. ସ୍ତ୍ରୀ. ବିଂ. ହତଭାଗ୍ୟ ;(ସ୍ତ୍ରୀ) ପ୍ରା-କ. (କୃଷ୍ଣସିଂହମହାଭାରତ) ।

ଅକରାନ୍ତ—ଗ୍ରା. ବ. (ଫ. ଅକ୍ରାନ୍ତ) ଅଙ୍କରାନ୍ତ ।

ଅକରୁଣ—ପୁଂ. ବିଂ. (ଅ+କରୁଣା;(ବ. ବ୍ରୀ.)ନିର୍ଦ୍ଦୟ, ନିଷ୍ଠୁର, (ସ୍ତ୍ରୀ) ଅକରୁଣା ବ. ଅକାରୁଣ୍ୟ ।

ଅକରୋଟୀ—ପୁଂ. ସ୍ତ୍ରୀ. ବିଂ. (ଅ+କରୋଟୀ) ବ. ବ୍ରୀ. ଯେଉଁ ଜନ୍ତୁର ମୁଣ୍ଡର ଖପୁରି ଏକେବାରେ ନାହିଁ ବା ଅଳ୍ପ ମାତ୍ର ଅଛି ।

ଅକର୍କରା—ବ. ଅକରକରା, ବନ୍ୟ ଗୁଳ୍ମଜାତୀୟ ବୃକ୍ଷ ଓ ଫଳ ।

ଅକର୍ଣ୍ଣ—ପୁଂ. ବିଂ, (ଅ+କର୍ଣ୍ଣ) ବ.ବ୍ରୀ. ବଧିର, କାଲ, ଯେଉଁ ଲୋକର ମଙ୍ଗଧରା ନାହିଁ; (ସ୍ତ୍ରୀ) ଅକର୍ଣ୍ଣା, (ପୁଂ ବ.) ସର୍ପ, ସାପ ।

ଅକର୍ତ୍ତନ—ପୁଂ. ବିଂ. (ଅ+କର୍ତ୍ତନ) ବ. ବ୍ରୀ ଖର୍ବ, ବାମନ, ଟୁରା, ଅକାଟ (ସ୍ତ୍ରୀ) ଅକର୍ତ୍ତନା ।

ଅକର୍ତ୍ତୃତ୍ୱ—କ୍ଲୀ. ବ. (ଅ+କର୍ତ୍ତୃତ୍ୱ) କର୍ତ୍ତାର ଶକ୍ତିର ଅଭାବ, ଧରପାଟୀର ଅଭାବ ।

ଅକର୍ତ୍ତବ୍ୟ—ତ୍ରି.ବିଂ.(ଅ+କର୍ତ୍ତବ୍ୟ) ନ. ତତ୍, ଅନୁଚିତ, ଅବିଧେୟ, ବ. ଅକର୍ତ୍ତବ୍ୟତା ।

ଅକର୍ତ୍ତା—ପୁଂ.ବିଂ.ବ (ଅ+କର୍ତ୍ତୃ) ଯେ କର୍ତ୍ତା ନୁହେ, ନିଷ୍କ୍ରିୟ, ପରମେଶ୍ୱର ।

ଅକର୍ତ୍ତୃତ୍ୱ—କ୍ଲୀ. ବ. (ଅ+କର୍ତ୍ତୃତ୍ୱ) ନ. ତତ୍. ଅପ୍ରଭୁତ୍ୱ, କର୍ତ୍ତୃତ୍ୱର ଅଭାବ, ନିଷ୍କ୍ରିୟତା ।

ଅକର୍ଦ୍ଦମ—ତ୍ରି. ବିଂ. (ଅ+କର୍ଦ୍ଦମ)ବ.ବ୍ରୀ. କାଦୁଅ ହୋଇନଥିବା, କର୍ଦ୍ଦମଶୂନ୍ୟ ।

ଅକର୍ମ—କ୍ଲୀ. ବ. (ଅ+କର୍ମ) ନ. ତତ୍. ଅପକର୍ମ, ଦୁଷ୍କର୍ମ, ଅନୁଚିତକାର୍ଯ୍ୟ,

ନିନ୍ଦନୀୟ କାର୍ଯ୍ୟ, ବେକାର ଅବସ୍ଥା, (ଗ୍ରା) ବିଂ. ଅକର୍ମଣ୍ୟ ।

ଅକର୍ମକ—କ୍ରି.ବିଂ. (ଅ+କର୍ମ) ବ. ବ୍ରୀ. କର୍ମର ଅନୁପଯୁକ୍ତ, ନିଷ୍କ୍ରିୟ, ନିକମା, କର୍ମହୀନ (ବି) ସକର୍ମକ; ବେକାର, ଯେଉଁ କ୍ରିୟା କର୍ମପଦକୁ ଅପେକ୍ଷା କରେ ନାହିଁ ।

ଅକର୍ମକର୍ମଦାତା—ବିଂ. ପୁଂ. (ଅକର୍ମ) କର୍ମନ୍+ଦାତୃ) ଯେ ନିକମା ଲୋକକୁ କାମ ଦିଏ,_ଯେ ସୌଭାଗ୍ୟ ଦେଇ ପାରେ, (ପୁଂ; ବ)-ଶିବ, (ସ୍ତ୍ରୀ) ଅକର୍ମ-କର୍ମଦାତ୍ରୀ ।

ଅକର୍ମକୃତ୍—କ୍ରି. ବିଂ. (ଅକର୍ମ+କୃ-+କ୍ୱିପ୍) କର୍ମହୀନ, ଅଳସୁଆ, ମନ୍ଦ-କାର୍ଯ୍ୟକାରୀ ।

ଅକର୍ମଜ—କ୍ରି. ବିଂ. (ଅକର୍ମ+ଜନ୍+କ.ଅ) ମନ୍ଦଭାଗ୍ୟରୁ ଘଟିଥିବା, ଦୁର୍ଭାଗ୍ୟ-ଜନିତ ।

ଅକର୍ମଣ୍ୟ—ପୁଂ. ବିଂ. ( ଅ+କର୍ମଣ୍ୟ ) (ନ.ତତ୍)କାର୍ଯ୍ୟାକ୍ଷମ,କାର୍ଯ୍ୟରଅଯୋଗ୍ୟ. ( ବ ) ଅକର୍ମଣ୍ୟତା ଯେଉଁ ପଦାର୍ଥ କୌଣସି କର୍ମରେ ଲାଗି ନପରେ । (ସ୍ତ୍ରୀ) ଅକର୍ମଣ୍ୟା ।

ଅକର୍ମଶିଳା—ଗ୍ରା. ବ. (ସଂ.ଅକର୍ମଣ୍ୟ+ଶିଳା) ଏକ ପ୍ରକାର ଅତି ଟଣୁଆ ପଥର ।

ଅକର୍ମା—ପୁଂ. ସ୍ତ୍ରୀ. ବିଂ. (ଅ+କର୍ମନ୍) ନିକମା, ନିଷ୍କର୍ମା, ଯେ କୌଣସି କାର୍ଯ୍ୟ ସାଧନ କରି ନ ପାରେ ।

ଅକଲ୍—(ଯା) ବ. ବୁଦ୍ଧି, ଜ୍ଞାନ, ବିବେକ ବୋଧଶକ୍ତି, ବିଦ୍ୟା, ଚାଲାକି ।

ଅକଲସଲାମୀ—(ଯା) ବ. ଚୁଟୁଦକ୍ଷିଣା, ପୁରସ୍କାର ଦେଇ ବୁଦ୍ଧି ଶିଖିବା ।

ଅକଳ—ଗ୍ରା.ବ. ଅସୁବିଧା, ଅଙ୍କଟ. (ବିଂ) ଅସୁବିଧ ଜନକ, ଅଙ୍କଟିଆ ।

ଅକଳଙ୍କ—କ୍ରି. ବିଂ. ( ଅ+କଳଙ୍କ ) (ବ.ବ୍ରୀ) ନିଷ୍କଳଙ୍କ, ନିର୍ଦ୍ଦୋଷ, ନିର୍ମଳ, ସୁନ୍ଦର, ଅନିନ୍ଦ୍ୟ, ଦାଗ ନଥିବା (ସ୍ତ୍ରୀ) ଅକଳଙ୍କା ।

ଅକଳଙ୍କିତ—କ୍ରି. ବିଂ. (ଅ+କଳଙ୍କିତ) ନ. ତତ୍, ଯେ କଳଙ୍କଯୁକ୍ତ ନୁହେ, ବେଦାଗ (ସ୍ତ୍ରୀ) ଅକଳଙ୍କିତା ।

ଅକଳଙ୍କୀ—ଗ୍ରା. ବିଂ. ଯେଉଁ ଧାତୁମୟ ପଦାର୍ଥରେ କଳଙ୍କ ବା ଜଙ୍ଗ୍ ଲାଗି-ନାହିଁ ସଂ.ପୁଂ.ବିଂ. (ଅ+କଳଙ୍କ+ଇନ୍) ନ. ତତ୍. ଅକଳଙ୍କୀ (ସ୍ତ୍ରୀ) ଅକଳଙ୍କିନୀ ।

ଅକଳଣ—ଗ୍ର. ବିଂ. ଅକଳନ ( ଦେଖ )

ଅକଳଥାନ—ଗ୍ରା. ବ. ଅସୁବିଧାଜନକ ସ୍ଥାନ, ଦେହର ଗୁପ୍ତ ଅଙ୍ଗ, ଅଙ୍କଟିଆ ଜାଗା

ଅକଳନ—କ୍ରି. ବିଂ. ( ଅ+କଳନ ) (ବ.ବ୍ରୀ,) ଅକଳଣ , ଅସଂଖ୍ୟ, ଅସୀମ, ଅତ୍ୟଧିକ

ଅକଳନ୍ତ —ଅକଳନ୍ତ—ବିଂ. ଯାହାର କଳନା କରିଯାଇ ନପାରେ

ଅକଳମ—ଗ୍ର. ବି. ଅକର୍ମଶିଳା; ବ୍ୟାଘ୍ର-ମାଥ ଗୋଲାକୃତି ଓଜନ ପଥର ।

ଅକଳିଆ—ଗ୍ର. ବି. ଓ ବିଂ. ଅକଳ (ଦେଖ) ।

ଅକଳିପ୍ର—ଗ୍ର. ପୁଂ. ବିଂ. ( ଅ+କଳହପ୍ରିୟ ) ଯେ କଳହପ୍ରିୟ ନୁହେ, ଶାନ୍ତିପ୍ରିୟ ।

ଅକଳୁଷ—ବିଂ. ପୁଂ. ( ଅ+କଳୁଷ ) (ବି. ବ୍ରୀ,) ନିଷ୍ପାପ, ନିର୍ଦ୍ଦୋଷ, ବିମଳ ( ସ୍ତ୍ରୀ ) ଅକଳୁଷା

ଅକଳେ—ଗ୍ର. କ୍ରି. ବିଂ. ଅକଳ (ଦେଖ) ଅଚିନ୍ତ୍ୟ, ଅନନ୍ୟୋପାୟ ହୋଇ, ଅସୁବିଧ ଜନକ ଅବସ୍ଥାରେ ପଡ଼ିବାରୁ

ଅକଳ୍କ—କ୍ରି. ବିଂ (ଅ+କଳ୍କ) ବ.ବ୍ରୀ, ଦମ୍ଭରହିତ, କଳ୍କଶୂନ୍ୟ, ବିମଳ, ନିଷ୍ପାପ, (ସ୍ତ୍ରୀ) ଅକଳ୍କା

ଅକଳ୍କା—ସ୍ତ୍ରୀ.ବ.(ଅକଳ୍କ+ଆ)ଜ୍ୟୋତ୍ସ୍ନା

ଅକଳ୍ପଣା—ଗ୍ରା. ବ. (ସଂ.ଅ+କାର୍ପଣ୍ୟ) ମନରେ ସନ୍ଦେହ,କୁଣ୍ଠା ବା ଅସନ୍ତୋଷ ନ ଥିବା ଅବସ୍ଥା ।

ଅକଳ୍ପନା—ବ.(ଅ+କଳ୍ପନା) ନ.ତତ୍, କଳ୍ପନାଶକ୍ତିର ଅଭାବ, ଅନୁଚିତଚିନ୍ତା ।

ଅକଳ୍ପିତ—କ୍ରି. ବିଂ. ( ଅ+କଳ୍ପିତ ) ନ. ତତ୍, ଯାହା କଳ୍ପିତ ବା ମନଗଢ଼ା ନୁହେ, ଅକୃତ୍ରିମ, ପ୍ରକୃତ, ଯଥାର୍ଥ, ବାସ୍ତବ, (ସ୍ତ୍ରୀ) ଅକଳ୍ପିତା ।

ଅକଳ୍ମଷ—ପୁଂ. ବିଂ. (ଅ+କଳ୍ମଷ,) ବ. ବ୍ରୀ, ନିଷ୍ପାପ, ବିଶୁଦ୍ଧ, ସାଧୁ, (ସ୍ତ୍ରୀ) ଅକଳ୍ମଷା ।

ଅକଳ୍ୟ—ପୁଂ. ବିଂ. ( ଅ+କଳ୍ୟ ) ନ. ତତ୍. ଅସୁସ୍ଥ,ରୁଗ୍ଣ, ପୀଡ଼ିତ (ସ୍ତ୍ରୀ) ଅକଳ୍ୟା ।

ଅକଲ୍ୟାଣ—କ୍ଳୀ. ବ. (ଅ+କଲ୍ୟାଣ) ନ.ତତ୍, ଅଶୁଭ, ଅମଙ୍ଗଳ,(ପୁଂ.ବିଂ.) ହତଭାଗ୍ୟ, ଅଶୁଭଗ୍ରସ୍ତ, (ଗ୍ରା. ବ.) ଅଭିସମ୍ପାତ (ସ୍ତ୍ରୀ) ଅକଲ୍ୟାଣା ।

ଅକଶ—ଯା. ବ. ଅବଉଡ, ପ୍ରତିବିମ୍ବ.. ଆକ୍ରୋଶ, ଶତ୍ରୁତା ।

ଅକଶର—ଯ. ଅ. ସାଧାରଣତଃ, ସବୁ-ପ୍ରକାରେ,ସର୍ବଦା,ସଦା,(ସ) ପ୍ରତ୍ୟେକ, ସମସ୍ତ ।

ଅକଶରନାମା—ଯା.ବ.ଖାସ୍ କ୍ଷମତାପତ୍ର, ଯାହାବଳରେ ପ୍ରତିନିଧି କେତେକ କାର୍ଯ୍ୟ ଚଳାଏ ।

ଅକଶ—ଗ୍ରା. ବିଂ. ଜିନ୍ କଶାଯାଇ ନ ଥିବା ଘୋଡ଼ା, ଅଙ୍ଗ କଶା ହୋଇ ନଥିବା,ଟାଣକରି ବନ୍ଧାହୋଇ ନଥିବା, ତାଳପତ୍ର କଶାହୋଇ ନଥିବା, ପରିବା ତେଲ ବା ଘିଅରେ କଶି ନଥିବା ।

ଅକଷ୍ଟ—କ୍ରି. ବିଂ. (ଅ+କଷ୍ଟ) ବ.ବ୍ରୀ. କଷ୍ଟଶୂନ୍ୟ,କ୍ଳେଶହୀନ, ସହଜ,ନୈସର୍ଗିକ। (ସ୍ତ୍ରୀ) ଅକଷ୍ଟା.କ୍ଳୀ.ବ.(ନ. ତତ୍) ସ୍ୱାଚ୍ଛନ୍ଦ୍ୟ ।

ଅକଷ୍ଟକଳନା—ସ୍ତ୍ରୀ. ବ. (କର୍ମ.ଧା.) ସ୍ୱାଭାବିକ କଳ୍ପନା,ନୈସର୍ଗିକରଚନା ।

ଅକଷ୍ଟବଦ୍ଧ—କ୍ଳୀ.ବ.ଅଦୃଢ଼କାର୍ଯ୍ୟବିପଦ, ପେଞ୍ଚ, ପୁଂ. ବିଂ. ( ନ+କଷ୍ଟ+

ବନ୍ଧ)ବ.ବ୍ରୀ.ଅତିଶୟ କଷ୍ଟରେ ପତିତ, ଅପ୍ରତିକାର୍ଯ୍ୟ, (ସ୍ତ୍ରୀ) ଅକଷ୍ଟବନ୍ଧା ।

ଅକଷ୍ଟଲବ୍ଧ—ବିଂ. (ଅ+କଷ୍ଟଲବ୍ଧ) ନ. ତତ୍. ବିନାକଷ୍ଟରେ ମିଳିଥିବା, ଅନାୟାସ ଲଭ୍ୟ ।

ଅକସ୍ମାତ୍—ଅ.(ଅ+କସ୍ମାତ୍,) ହଠାତ୍, ସହସା, ଅସମ୍ଭାବିତ ରୂପେ, ବିନା-କାରଣେ ! ଯାହା କେଉଁଠାରୁ ଆସିଲ ବୋଲି ସ୍ଥିର କରାଯାଇ ନ ପାରେ। (ଏହା ବ୍ୟୁତ୍ପତ୍ତିଗତ ଅର୍ଥ।)

ଅକା—ଗ୍ରା. (ପୁଂ. ସ୍ତ୍ରୀ.) ବିଂ. ନିର୍ବୋଧ, ବୋକା, ଓଲୁ, କିଂ କର୍ତ୍ତବ୍ୟବିମୂଢ଼ ।

ଅକାଖେଲ୍—ଗ୍ରା. ବି. ଆଫଗାନିସ୍ଥାନ ନିବାସୀ ମୁସଲମାନ୍ ଜାତିବିଶେଷ

ଅକାଟ,ଅକାଟୁ—ଗ୍ରା. ବି. ଯେଉଁ ଔଷଧ ଖାଇଲେ ବା ଧାରଣ କଲେ ଅସ୍ତ୍ରାଘାତ କାଟେ ନାହିଁ । (ବିଂ) ଅଖଣ୍ଡନୀୟ, ଅପ୍ରମାଦ, ଯାହା କାଟି ହୁଏ ନାହିଁ।

ଅକାଟ୍ୟ—ପୁଂ.ବିଂ.(ଅ+କାଟ୍ୟ)ନ.ତତ. ଯାହା ଯୁକ୍ତିଦ୍ୱାରା ଖଣ୍ଡନ କରାଯାଇ ପାରେ ନାହିଁ, ଅଚ୍ଛେଦ୍ୟ, ଅଖଣ୍ଡନୀୟ, (ସ୍ତ୍ରୀ) ଅକାଟ୍ୟା ।

ଅକାଠକାଠ— ଗ୍ରା. ବିଂ. (ସଂ.କଷ୍ଟ) କୌଣସି କାର୍ଯ୍ୟରେ ପଶ୍ଚାତ୍‌ପଦ, ନିଶ୍ଚେଷ୍ଟ, କାଠକାଠ ।

ଅକାଡ଼ିଆ—ଗ୍ରା.ବିଂ. ଯାହା କଢ଼ା ହୋଇ ନାହିଁ, ଯହିଁରେ କାଢ଼ିବା କାଠି ନ ଥାଏ । ସ୍ତ୍ରୀମାନଙ୍କର କର୍ଣ୍ଣଭୂଷଣରେ ବ୍ୟବହାର୍ଯ୍ୟ, ଅକାଡ଼ିଆ-ମଣ୍ଡା ।

ଅକାଢ଼ୁ(ଆ)—ଗ୍ରା. ବିଂ.ଅକର୍ମା, ଅକୁଶଳ, ବେକରମତ୍ ।

ଅକାଣ୍ଡ— ନି.ବିଂ. (ଅ+କାଣ୍ଡ) ବ. ବ୍ରୀ. ସ୍କନ୍ଧଶୂନ୍ୟ, ଶାଖାହୀନ (ବୃକ୍ଷ) ଆକସ୍ମିକ (କ୍ଳୀ. ବି.) ନ.ତତ୍. ଅକାଳ, ଅସମୟ ଗ୍ରା. କ୍ରି. ବିଂ. ଅକାଣ୍ଡେ, ଅକାଳରେ ହଠାତ୍, ଅପ୍ରତ୍ୟାଶିତରୂପେ, ଅକସ୍ମାତ୍ (ସ୍ତ୍ରୀ) ଅକାଣ୍ଡା ।

ଅକାଣ୍ଡିଆ—ଗ୍ରା. ବିଂ. ଯାହା ଚିକ୍କଣ ହୋଇ ପରିଷ୍କାର ହୋଇନାହିଁ(ଗୃହଲ)

ଅକାତ—ଗ୍ରା.ବିଂ. (ସଂ-ଅଗାଧ) ଅଗାଧ, ଅତିଗମ୍ଭୀର, ଅମାପ,ଗମ୍ଭୀର ।

ଅକାତକାତ—ଗ୍ରା. ବିଂ. ଯେଉଁ ଜଳ କାତ ଦ୍ୱାରା ମପା ଯାଇ ନପାରେ ।

ଅକାତର—ପୁଂ. ବିଂ. (ଅ+କାତର) ନ.ତତ୍. ନିର୍ଭୀକ, ଅବ୍ୟାକୁଳ, ଅକୁଣ୍ଠ (ସ୍ତ୍ରୀ) ଅକାତରା ।

ଅକାତରେ—ଗ୍ରା.(କ୍ରି.ବିଂ)ଧୀରେ ଧୀରେ, ଅବ୍ୟାକୁଳ ଚିତ୍ତେ, ଅନାୟାସରେ

ଅକାନବନ୍ଧି, ଅକାନବନ୍ଧୁ, ଅକାନବନ୍ଧି— ଗ୍ରା. ବି. ( ସଂ. ଅବନ୍ଧକର୍ଣ୍ଣୀ ) ବୈଦ୍ୟକ ଔଷଧରେ ବ୍ୟବହୃତ ଲତା ବିଶେଷ ।

ଅକାବକା—ଗ୍ରା. ବିଂ. ( ପୁଂ-ସ୍ତ୍ରୀ ) ନିର୍ବୋଧ, ବକା, ଓଲୁ, ଘାବରା, ଆଶ୍ଚର୍ଯ୍ୟାନ୍ୱିତ ।

ଅକାବୁ—ଗ୍ରା. ବିଂ. ଅନାୟତ୍ତ,ନିରାଶ୍ରୟ, ଅକ୍ଷମ, ଶକ୍ତିହୀନ ।

ଅକାମ—ପୁଂ. ବିଂ. (ଅ+କାମ) ବ. ବ୍ରୀ, ନିସ୍ପୃହ, ଅନିଚ୍ଛୁକ, ନିଷ୍କାମ ( ସ୍ତ୍ରୀ ) ଅକାମା

ଅକାମକୃତ—ବିଂ. ( ଅ+କାମକୃତ ) ଫଳପ୍ରାପ୍ତିର ଆଶା ନ ରଖି କରାଯିବା ( କାମ )

ଅକାମାବୈ— ଗ୍ରା.ଅ.(ସଂ—ଆ.କା.ମା.ବୈ) ଆଷାଢ଼, କାର୍ତ୍ତିକ, ମାଘ, ବୈଶାଖ, ଏ ଚାରି ଧର୍ମମାସର ଆଦ୍ୟ ଅକ୍ଷର ଦ୍ୱାରା ଗଠିତ ଶବ୍ଦ ( ମତ୍ସ୍ୟପୁରାଣ ) କାର୍ତ୍ତିକ ପୂର୍ଣ୍ଣିମାରେ ସ୍ନାନପରେ ଗଙ୍ଗାମାତାଙ୍କୁ ଖିଲିପାନ ଉପହାର ପ୍ରଦାନପୂର୍ବକ ସ୍ତ୍ରୀ ଓ ବାଳକବାଳିକା ମାନଙ୍କ ବୋଲିବା ପଦର ପ୍ରଥମ ଚରଣ, ଉପରୋକ୍ତ ଚାରିମାସର ପୂର୍ଣ୍ଣିମା,

ଅକାମିକା—ଗ୍ରା.ବି .ଅକର୍ମଣ୍ୟ, ଅଳସୁଆ, କାର୍ଯ୍ୟର ଅନୁପଯୋଗୀ

ଅକାମୀ—ପୁଂ. ବିଂ. ( ଅ+କାମିନ୍ ) ନ. ତତ୍. କାମନାରହିତ, ବାସନା ବର୍ଜିତ, ( ସ୍ତ୍ରୀ ) ଅକାମିନୀ

ଅକାମୁକ—ପୁଂ. ବିଂ. ( ଅ+କାମୁକ ) ନ. ତତ୍. ଅକାମୀ, ଲାଳସାବିହୀନ (ସ୍ତ୍ରୀ ) ଅକାମୁକୀ

ଅକାମ୍ୟ—ପୁଂ. ବିଂ. ( ଅ+କାମ୍ୟ ) ନ.ତତ୍, ଅନଭିଲଷଣୀୟ, ଅବାଞ୍ଛନୀୟ ( ସ୍ତ୍ରୀ ) ଅକାମ୍ୟା

ଅକାୟ—ପୁଂ. ବିଂ. ( ଅ+କାୟା ) ବ. ବ୍ରୀ, ଅଦେହ, ଅବୟବହୀନ, (ସ୍ତ୍ରୀ) ଅକାୟା ପୁଂ. ବି. ପରମାତ୍ମା,ପରବ୍ରହ୍ମ ।

ଅକାର—ପୁଂ.ବି. (ଅ+କାର ସ୍ୱାର୍ଥେ ) 'ଅ' ଏହି ସ୍ୱରବର୍ଣ୍ଣ ମାତ୍ର, (ଗ୍ରା. ବି. ) ବମନ, ବାନ୍ତି

ଅକାରଣ—କ୍ରି. ବିଂ. ( ଅ+କାରଣ ) ବ. ବ୍ରୀ, କାରଣଶୂନ୍ୟ, ଅହେତୁକ, ବୃଥା, ଅନର୍ଥକ ( ସ୍ତ୍ରୀ ) ଅକାରଣା । ଗ୍ରା.( କ୍ରି. ବି.° )-ବିନା କାରଣରେ, ତୁଚ୍ଛାରେ, ବୃଥାରେ

ଅକାରାଦ୍ୟ—ବିଂ. ( ଅକାର+ଆଦ୍ୟ ) ବ. ବ୍ରୀ, ଅଠାରୁ ଆରମ୍ଭକରି, ଯେଉଁ ଶବ୍ଦ ଆଦ୍ୟରେ 'ଅ'ଅଛି

ଅକାରାନ୍ତ—ବିଂ. ( ଅକାର+ଅନ୍ତ ) ବ. ବ୍ରୀ. ଯେଉଁ ଶବ୍ଦଶେଷରେ 'ଅ' ଯୁକ୍ତ ଅଛି

ଅକାରେଶ—ବି. ( ୬ତତ୍ ) ପରମାତ୍ମା

ଅକାର୍ପଣ୍ୟ—କ୍ଳୀ. ବି. ( ଅ+କାର୍ପଣ୍ୟ ) ନ. ତତ୍, କାର୍ପଣ୍ୟ ରାହିତ୍ୟ, ( ବିଂ ) କୃପଣତା ରହିତ

ଅକାର୍ଯ୍ୟ—କ୍ଳୀ. ବି. ( ଅ+କାର୍ଯ୍ୟ ) ନ. ତତ୍. କୁତ୍ସିତକାର୍ଯ୍ୟ, ଦୁଷ୍କର୍ମ, ଅବୈଧ କର୍ମ,ବିଂ (ବ. ବ୍ରୀ) ଅକର୍ତ୍ତବ୍ୟ କାର୍ଯ୍ୟାଭିବଗ୍ରସ୍ତ, କାର୍ଯ୍ୟହୀନ ( ସ୍ତ୍ରୀ ) ଅକାର୍ଯ୍ୟା

ଅକାର୍ଯ୍ୟକର—ପୁଂ. ବିଂ. ( ଅ+କାର୍ଯ୍ୟ +କର ) ନ. ତତ୍, ଅକର୍ମନିର୍ବାହକ

ଯେ କୌଣସି କାର୍ଯ୍ୟ କରେନାହିଁ, ଅଳସୁଆ, (୬ତତ୍) କୁତ୍ସିତ କର୍ମକାରୀ (ସ୍ତ୍ରୀ) ଅକାର୍ଯ୍ୟକାରୀ

ଅକାର୍ଯ୍ୟକାରୀ—ପୁଂ. ବିଂ. (ଅକାର୍ଯ୍ୟ+କାରିନ୍) ଯେ କିଛି କାମ ନ କରେ, କର୍ମଶୂନ୍ୟ, ମନ୍ଦକର୍ମକର୍ତ୍ତା, ଦୁରାଚାର, ଅଳସୁଆ (ସ୍ତ୍ରୀ) ଅକାର୍ଯ୍ୟକାରିଣୀ

ଅକାର୍ଯ୍ୟକ୍ଷମ—ପୁଂ. ବିଂ. (ଅ+କାର୍ଯ୍ୟକ୍ଷମ) ନ. ତତ୍,କାର୍ଯ୍ୟରେ ଅପାରଗ, କର୍ମସମ୍ପାଦନରେ ଅସମର୍ଥ, ଅଯୋଗ୍ୟ, ନିର୍ଗୁଣ (ସ୍ତ୍ରୀ) ଅକାର୍ଯ୍ୟକ୍ଷମା

ଅକାଳ—ପୁଂ. ବି. (ଅ+କାଳ) ନ. ତତ୍, ଅସମୟ, ଅପ୍ରଶସ୍ତକାଳ, ଅଶୁଭ ବା ଅଶୁଦ୍ଧ କାଳ, ଦୁର୍ଭିକ୍ଷ, ଜାବତକାଳ ପୂର୍ଣ୍ଣ ନଥିବା ସମୟ । (ଗ୍ରା.ବି.)ଶିଖମାନଙ୍କର ଉପାସ୍ୟଦେବ, କଶୀପନ୍ଥର ସ୍ୱାମୀମାନଙ୍କ ମଧ୍ୟରୁ ଏକତମ

ଅକାଳକାଣ୍ଡ—ଗ୍ରା. ବି. ଅସମୟରେ ଘଟିବା ଘଟନା, ଅକସ୍ମାତ୍ ପଡ଼ିବା ରେ (ଲ. ଅ) ଅପ୍ରତ୍ୟାଶିତ ରୂପେ ଉପସ୍ଥିତ ହେବା ବିପଦ

ଅକାଳକୁଷ୍ମାଣ୍ଡ—ବି. (ମଧ୍ୟ.କର୍ମଧ.) ଅଋତୁରେ ଫଳିଥିବା ପାଣିକଖାରୁ, କୁଳାଙ୍ଗାର, କୁଳପାଂଶୁଳବ୍ୟକ୍ତି,

ଅକାଳ କୁସୁମ—କ୍ଲୀ. ବି. ଅସମୟଜାତ ଫୁଲ, (ଅକାଳକୁସୁମ ଦେଖେ ଉପଦ୍ରବ ସୂଚକ)

ଅକାଳ ଚଡ଼କ—ଗ୍ରା. ବି. (ଲକ୍ଷଣାର୍ଥ) ଆକସ୍ମିକ ବିପଦ,ଅଋତୁରେ ବଜ୍ରପତନ

ଅକାଳଜ—ବିଂ. ପୁଂ. (ଅକାଳ+ଜନ+କ.ଅ) ଅସମୟରେ ଜାତ, ସମୟ ନ ହେଉଣୁ ଜନ୍ମହେବା, ଅଋତୁଆ, (ସ୍ତ୍ରୀ) ଅକାଳଜା

ଅକାଳଜଳଦୋଦୟ—ପୁଂ.ବି.(୭ତତ୍) ଅସମୟରେ ମେଘର ଆବିର୍ଭାବ, କୁହୁଡ଼ି,

ଅକାଳଜ୍ଞ—ପୁଂ. ବିଂ. (ନ. ତତ୍) ଯେ ଠିକ୍ ସମୟ ଜାଣେନାହିଁ (ସ୍ତ୍ରୀ) ଅକାଳଜ୍ଞା

ଅକାଳପକ୍ୱ—ତ୍ରି. ବିଂ. (୭ତତ୍) ଅସମୟରେ ପାଚିଥିବା (ଫଳ) (ଲକ୍ଷଣାର୍ଥ) ବାଳକ ବା ଯୁବା ସମୟରେ ବୃଦ୍ଧପରି ଆଚରଣକାରୀ (ସ୍ତ୍ରୀ)ଅକାଳପକ୍ୱା (ବି) ଅକାଳପକ୍ୱତା

ଅକାଳପୁରୁଷ—ଗ୍ରା. ବି. ଶିଖମାନଙ୍କ ପୂଜିତ ଆଦିପୁରୁଷ ପରମେଶ୍ୱର ।

ଅକାଳ ଫଳ—ବି. (ମଧ୍ୟ.କର୍ମଧା) ଅଋତୁଆ ଫଳିବା ଫଳ, କୁଳାଙ୍ଗାର,କୁଳପାଂଶୁଳ, (ଲ.ଅର୍ଥ) ଗର୍ଭିଣୀର ଦଶମାସ ନ ହେଉଣୁ ଜନ୍ମିବା ସନ୍ତାନ, ଉପଦ୍ରବସୂଚକ

ଅକାଳ ବୃଷ୍ଟି—ସ୍ତ୍ରୀ. ବି. (ଅକାଳ+ବୃଷ୍ଟି) ୭ ତତ୍. ଅସମୟରେ ଜଳବର୍ଷଣ, ଅଦିନ ବରଷା (ଗ୍ରା.) ପୁଷ,ମାଘ,ଫଗୁଣ ଓ ଚଇତ୍ର ମାସରେ ବଡ଼ ବର୍ଷା ହେବା,

ଅକାଳବୋଧନ—କ୍ଲୀ. ବି. ଅସମୟରେ ଜାଗରଣ,ଯଥାକାଳ ମଧ୍ୟରେ ଦେବତାଙ୍କର ପହଡ଼ ଭଙ୍ଗାଇବା, ଆଶ୍ୱିନମାସରେ ଦୁର୍ଗାଙ୍କ ନିଦ୍ରା ଭଙ୍ଗ କରଣ

ଅକାଳମୃତ୍ୟୁ—ପୁଂ. ବି. (ଅକାଳ+ମୃତ୍ୟୁ) ୭ତତ୍. ଅପମୃତ୍ୟୁ, ଅସୁସ୍ଥକାଳ ପୂର୍ଣ୍ଣ ନ ହେଉଣୁ ମରିବା (ଯଥା—ସର୍ପାଘାତ, ବଜ୍ରପାତାଦିରେ ମୃତ୍ୟୁ) ।

ଅକାଳମେଘୋଦୟ—ପୁ. ବି. (୭ ତତ୍) ଅସମୟରେ ମେଘର ଆବିର୍ଭାବ,କୁହୁଡ଼ି

ଅକାଳସହ—ପୁଂ.ବି.(ଅ+କାଳ+ସହ) ନ.ତତ୍. ଯେଉଁ ଲୋକ କାଳ ବିଳମ୍ବ ସହି ନ ପାରେ, ଅସହିଷ୍ଣୁ, ଅଧୀର; (ସ୍ତ୍ରୀ) ଅକାଳସହା , ଯେଉଁ ବିଷୟ ବା ବସ୍ତୁ ବିଳମ୍ବ ଘଟିଲେ ନଷ୍ଟହୁଏ ।

ଅକାଲ୍ପନିକ—ପୁ. ବିଂ. (ଅ+କାଲ୍ପନିକ ନ.ତତ, ପ୍ରକୃତ, ଯଥାର୍ଥ, (ସ୍ତ୍ରୀ) ଅକାଲ୍ପନିକା

ଅକାଳିଆ—ଗ୍ରା. ବିଂ. ଅକାଳରେଘଟିବା ଅସମୟରେ ଉପସ୍ଥିତ, ଅକାଳେ ।

ଅକିଞ୍ଚନ—ପୁ. ବିଂ. (ଅ+କିଞ୍ଚନ) ବ.ବ୍ରୀ, ନିଃସ୍ୱ, ଯାହାର କିଛି ନାହିଁ, ନଗଣ୍ୟ, ସାମାନ୍ୟ, ଅତି ଦରିଦ୍ର, (ସ୍ତ୍ରୀ) ଅକିଞ୍ଚନା (ବି) ଅକିଞ୍ଚନତା, ଅକିଞ୍ଚନତ୍ୱ ।

ଅକିଞ୍ଚନତା—ସ୍ତ୍ରୀ.ବି. (ଅକିଞ୍ଚନ+ଭାବ.ତା) ଦାରିଦ୍ର୍ୟ, ଦୀନତା, ହୀନତା, (ବିଂ.) ଅକିଞ୍ଚନ ।

ଅକିଞ୍ଚିତ୍—ଅ. (ଅ+କିଞ୍ଚିତ୍) ନ.ତତ୍. ତୁଚ୍ଛ, ଅତିସାମାନ୍ୟ, (ବିଂ.) ଅତିସାମାନ୍ୟ, ଅତିହେୟ, ।

ଅକିଞ୍ଚିତ୍କର—ପୁଂ. ବିଂ. (ନ.ତତ୍) ଯାହା କିଛିମାତ୍ର କରି ନପାରେ, ଅତି ସାମାନ୍ୟ ତୁଚ୍ଛ ଯାହା ଦ୍ୱାରା କିଛି କାମ ହୋଇ ନପାରେ (ସ୍ତ୍ରୀ) ଅକିଞ୍ଚିତ୍କରୀ ।

ଅକିଦା—(ଯା) ବି. ହଲପ୍, ଦ୍ୱାହି, ଦେବତାଙ୍କ ନାମ ଧରି କରାଯିବା ପ୍ରମାଣ

ଅକୀରତି—ଗ୍ରା. (କ.ପ୍ର) ଅକୀର୍ତ୍ତି, ଦୁର୍ନାମ, ଅପବାଦ, ଅଯଶ ।

ଅକୀର୍ତ୍ତି—ସ୍ତ୍ରୀ. ବି. (ଅ+କୀର୍ତ୍ତି) ନ.ତତ୍, ଅପଯଶ, ବଦନାମୀ, ଅଖ୍ୟାତି ।

ଅକୀର୍ତ୍ତିକର—ତ୍ରି. ବିଂ. (ଅକୀର୍ତ୍ତି+କୃ+କ. ଅ) ଅଖ୍ୟାତି ଜନକ, ଅଯଶସ୍କର

ଅକୁ—(ଯା) ବି. ହକୁ, ଅପରାଧାତ୍ମକ ବ୍ୟାପାର, ଘଟନାସ୍ଥଳ,

ଅକୁଣ୍ଠ—ଗ୍ରା. ବିଂ,(ସଂ.ଅକୁଣ୍ଠିତ) ଯାହା ଠିକ୍, କ୍ଷମାମତତ୍ତ୍ୱା ଆଦିରେ କୁଣ୍ଠା ହୋଇନାହିଁ !

ଅକୁଟିଳ—ତ୍ରି. ବିଂ. (ନ.ତତ୍) ସରଳ, ଅବକ୍ର ଯାହା କୁଟିଳ ନୁହେ, ଅକପଟ ଋଜୁ, ନିର୍ମାୟ (ସ୍ତ୍ରୀ) ଅକୁଟିଳା, (ବି) ଅକୌଟିଲ୍ୟ, ଅକୁଟିଳତା ।

ଅକୁଣ୍ଠ—ପୁଂ. ବିଂ. (ଅ+କୁଣ୍ଠ) ନ. ତତ୍. ଅସଙ୍କୁଚିତ, ଅନମିତ, କାର୍ଯ୍ୟକ୍ଷମ ପ୍ରତିଭାଯୁକ୍ତ,ତୀକ୍ଷ୍ଣ,ଅତିବୃଦ୍ଧ, ଅନନ୍ତକାଳସ୍ଥାୟୀ, ଅବ୍ୟାହତ (ସ୍ତ୍ରୀ) ଅକୁଣ୍ଠା ।

ଅକୁଣ୍ଠିତ—ପୁଂ. ବିଂ. (ନ.ତତ୍) ପ୍ରଚଣ୍ଡ, ଅକ୍ଷୁବ୍ଧ, ଅଦୁଃଖିତ, ଅଶଙ୍କିତ (ସ୍ତ୍ରୀ) ଅକୁଣ୍ଠିତା ।

ଅକୁଣ୍ଠିତଚିତ୍ତ—ପୁଂ. ବିଂ (ବ. ବ୍ରୀ) ଅକ୍ଷୁବ୍ଧ, ଅକାତର, ଅସଙ୍କୁଚିତହୃଦୟ, ଦ୍ୱିଧାଶୂନ୍ୟ, ସଙ୍କୋଚରହିତ, ଅଦୀନଚିତ୍ତ, କୁଣ୍ଠଶୂନ୍ୟ (ସ୍ତ୍ରୀ) ଅକୁଣ୍ଠିତଚିତ୍ତା ।

ଅକୁତୋଭୟ—ପୁଂ. ବିଂ (ଅ+କୁତଃ+ଭୟ) ବ. ବ୍ରୀ. ଯାହାର ଅନ୍ୟଠାରୁ ଭୟର ଆଶଙ୍କା ନାହିଁ, ନିର୍ଭୟ, (ସ୍ତ୍ରୀ) ଅକୁତୋଭୟା (ବି) ଅକୁତୋଭୟତା ।

ଅକୁପ୍ୟ—କ୍ଲୀ. ବି. (ଅ+କୁପ୍ୟ) ନ. ତତ୍, ସୁନା ଓ ରୁପା; ସୁନାରୁପାଛଡ଼ା ନିକୃଷ୍ଟଧାତୁ ।

ଅକୁପ—ଯା. ବି. ଜ୍ଞାନ, ବୋଧ, ବୁଦ୍ଧି ।

ଅକୁମାରୀ—(ସ୍ତ୍ରୀ.ବିଂ.)ବିବାହିତା(ବାଳିକା) (ବି.) ଦଶବର୍ଷ ବୟସ୍କା ବାଳିକା ।

ଅକୁର—ଗ୍ରା. ବି. (ସଂ.ଅକ୍ରୂର) ଯାଦବ ବିଶେଷ କୌଣସି ବ୍ୟକ୍ତିର ନାମ ।

ଅକୁଳ—ପୁ. ବିଂ. (ଅ+କୁଳ) ବ. ବ୍ରୀ. ବଂଶମର୍ଯ୍ୟାଦା ଶୂନ୍ୟ ।(ସ୍ତ୍ରୀ)ଅକୁଳା (ବି.) ମହାଦେବ ।

ଅକୁଳନ—କ୍ଲୀ.ବି.(ଅ+କୁଳ+ଭା.ଅନ) ଅଣ୍ଟିବା, ନିଅଣ୍ଟ, ଅପ୍ରତୁଳ, ଅନଟନ ।

ଅକୁଳୀନ—ପୁଂ. ବିଂ. (ଅ+କୁଳୀନ) ନୀଚବଂଶୋତ୍ପନ୍ନ, ଯେ ସତ୍‌କୁଳ ପ୍ରସୂତ ନୁହେ, କୌଳିକତାରହିତ, ମର୍ଯ୍ୟାଦା ଶୂନ୍ୟ, (ସ୍ତ୍ରୀ) ଅକୁଳୀନା ।

ଅକୁଶଳ—କ୍ଲୀ. ବି. (ଅ+କୁଶଳ) ନ. ତତ୍. ଅଶୁଭ, ଅମଙ୍ଗଳ. ଅହିତ, ଦୁର୍ନିମିତ୍ତ ପୁଂ.ବିଂ. (ବ.ବ୍ରୀ) ଅପାରଗ ଅସୁସ୍ଥ, ଅମଙ୍ଗଳକର (ସ୍ତ୍ରୀ) ଅକୁଶଳା

ଅକୁଶଳୀ—ପୁଂ. ବିଂ.(ନ. ତତ୍) ପୀଡ଼ିତ, ଅମଙ୍ଗଳଯୁକ୍ତ,ଅସୁଖୀ (ସ୍ତ୍ରୀ) ଅକୁଶଳିନୀ ।

ଅକୁସ୍ଥଳ—ଗ୍ରା. ବି. ଯେଉଁ ସ୍ଥାନରେ ଚୋରି, ଦଙ୍ଗା ହାଙ୍ଗାମାଦି ଘଟିଅଛି, ସରଜମିନ୍ ।

ଅକୂପାର—ବି. ବିଂ. (ଅ+କୁ+ପାର) ବ. ବ୍ରୀ, ଅସୀମ, ଅକୂଳ; (ପୁଂ ବି.) ସମୁଦ୍ର, କଇଁଛ ।

ଅକୂର୍ଚ୍ଚ—ପୁଂ. ବିଂ.(ଅ+କୂର୍ଚ୍ଚ)ବ. ବ୍ରୀ. ନିଷ୍କପଟ, ସରଳ, (ସ୍ତ୍ରୀ) ଅକୂର୍ଚ୍ଚା (ପୁଂ ବି.) ବୁଦ୍ଧ ।

ଅକୂଳ—ବି. ବିଂ. (ଅ+କୂଳ) ଅପାର, ଅସୀମ,ସୁବିଶାଳ, ଯାହାର କୂଳନାହିଁ ।

ଅକୃତ୍ସ୍ନବିତ୍—ପୁଂଓ ସ୍ତ୍ରୀ. ବିଂ. ଅଳ୍ପଜ୍ଞ, ଅଳ୍ପବୁଦ୍ଧି, ଅଳ୍ପଜାଣିଥିବା ।

ଅକୃତ—ବି. ବିଂ. (ଅ+କୃତ) ନ. ତତ୍. ଯାହା କରା ହୋଇ ନାହିଁ, ଅନନୁଷ୍ଠିତ—ବି. (ଅକାର୍ଯ୍ୟ) ଅସମ୍ପୂର୍ଣ୍ଣ ନିରର୍ଥକ, ଅପରିଣତ, ପ୍ରାକୃତିକ;(ସ୍ତ୍ରୀ) ଅକୃତା ।

ଅକୃତକର୍ମା—ପୁଂ. ସ୍ତ୍ରୀ.ବିଂ. (ଅ+କୃତକର୍ମନ୍) ନ. ତତ୍,-ଅକର୍ମଣ୍ୟ, ଅପଟୁ, ଯେ କାର୍ଯ୍ୟକ୍ଷମ ନୁହେ ।

ଅକୃତକାର୍ଯ୍ୟ—ପୁଂ. ବିଂ. (ଅ+କୃତ+କାର୍ଯ୍ୟ) ବ. ବ୍ରୀ.ଯେ କୌଣସିକାର୍ଯ୍ୟ କରିନାହିଁ, (ନ. ତତ୍) ବିଫଳମନୋରଥ, ବିଫଳଚେଷ୍ଟ, ବ୍ୟର୍ଥକାମ (ସ୍ତ୍ରୀ) ଅକୃତକାର୍ଯ୍ୟା ।

ଅକୃତଘ୍ନ—ପୁଂ. ବିଂ. (ଅ+କୃତଘ୍ନ) ନ. ତତ୍. କୃତଜ୍ଞ; (ସ୍ତ୍ରୀ) ଅକୃତଘ୍ନୀ ।

ଅକୃତଚୂଡ଼—ପୁଂ. ବିଂ.(ବ. ବ୍ରୀ) ଯେଉଁ ଦ୍ୱିଜାତି ବାଳକର ଚୂଡ଼ାକର୍ମ (ବାଳପଡ଼ିବା) ସଂସ୍କାର ହୋଇ ନାହିଁ, (ସ୍ତ୍ରୀ) ଅକୃତଚୂଡ଼ା ।

ଅକୃତଜ୍ଞ—ପୁଂ. ବିଂ. (ଅ+କୃତଜ୍ଞ) ନ. ତତ୍.ଯେ କୃତଜ୍ଞନୁହେ,ଯେ ଉପକାର ମାନେନାହିଁ (ବି.) ଅକୃତଜ୍ଞତା ଯେ ଉପକାରୀ ନିକଟରେ ଅବାଧ୍ୟ, କୃତଘ୍ନ (ସ୍ତ୍ରୀ) ଅକୃତଜ୍ଞା ।

ଅକୃତଦାର—ପୁଂ. ବିଂ. (ଅ+କୃତଦାର) ଅବିବାହିତ, ଯେ ଦାରପରିଗ୍ରହ କରି ନାହିଁ ।

ଅକୃତଧୀ—ପୁଂ. ସ୍ତ୍ରୀ. ବିଂ. (ନ. ତତ୍) ଅମାର୍ଜିତମତି,ମଳିନବୁଦ୍ଧି, ଯେ କୃତଧୀ ନୁହେ । •

ଅକୃତବୁଦ୍ଧି—ପୁଂ. ସ୍ତ୍ରୀ. ବିଂ. (ବ. ବ୍ରୀ) ଅସ୍ଥିରମତି, ଅଜ୍ଞ, ଦୁର୍ବୁଦ୍ଧି, (ବି) ଅକୃତବୁଦ୍ଧିତ୍ୱ ।

ଅକୃତାତ୍ମା—ପୁଂ.ସ୍ତ୍ରୀ.ବିଂ.(ଅ+କୃତାତ୍ମନ୍) ବ. ବ୍ରୀ. ଅସଂସ୍କୃତଚିତ୍ତ, ନଷ୍ଟାତ୍ମା, ଅବିଶୁଦ୍ଧମନାଃ ।

ଅକୃତାଦର—ପୁଂ. ବିଂ. (ବ. ବ୍ରୀ) ଅନାଦୃତ, (ସ୍ତ୍ରୀ)-ଅକୃତାଦରା ।

ଅକୃତାପରାଧ—ପୁଂ. ବିଂ. ନିରପରାଧ ନିର୍ଦ୍ଦୋଷ (ସ୍ତ୍ରୀ) ଅକୃତାପରାଧା ।

ଅକୃତାର୍ଥ—ପୁଂ. ବିଂ. (ଅ+କୃତାର୍ଥ) ନ. ତତ୍. ବିଫଳମନୋରଥ, ଅକୃତକାର୍ଯ୍ୟ (ସ୍ତ୍ରୀ) ଅକୃତାର୍ଥା ।

ଅକୃତି—ସ୍ତ୍ରୀ. ବି. (ନ. ତତ୍) ଅନିର୍ମିତ, ଅକାରଣ, କୃତିର ଅଭାବ ।

ଅକୃତୀ—ପୁଂ. ବିଂ (ଅ+କୃତିନ୍) ଯୋଗ୍ୟତାହୀନ, ଅକ୍ଷମ, ଯେ କର୍ମକୁଶଳ ନୁହେ,ଅନିପୁଣ, ଅପଟୁ, ମୂର୍ଖ, ଅକୃତାର୍ଥ,ଅନାଡ଼ି, (ସ୍ତ୍ରୀ) ଅକୃତିନୀ ।

ଅକୃତୋଦ୍ୱାହ—ପୁଂ. ବିଂ. (ବ. ବ୍ରୀ) ଅପରିଣୀତ, ଅବିବାହିତ, (ସ୍ତ୍ରୀ) ଦ୍ୱାହା

ଅକୃତ୍ତ—ପୁଂ.ବିଂ. (ଅ+କୃତ୍ତ)ନ. ତତ୍. ଅଛିନ୍ନ, ଯାହା କଟାହୋଇ ନାହିଁ (ସ୍ତ୍ରୀ) ଅକୃତ୍ତା ।

ଅକୃତ୍ୟ—କ୍ଲୀ. ବି. (ଅ+କୃତ୍ୟ) ନ. ତତ୍. ଅକାର୍ଯ୍ୟ (ବିଂ) ଯାହା କରିବା ଅନୁଚିତ, କରଣାଯୋଗ୍ୟ, ଅକର୍ତ୍ତବ୍ୟ, (ସ୍ତ୍ରୀ) ଅକୃତ୍ୟା ।

ଅକୃତ୍ରିମ—ବି. ବିଂ. (ଅ+କୃତ୍ରିମ) ନ. ତତ୍, ନୈସର୍ଗିକ, ଖାଣ୍ଟି, ଯଥାର୍ଥ, ସ୍ୱାଭାବିକ, ଈଶ୍ୱରକୃତ, କାଳ୍ପନିକ ନୁହେ, ବିଶୁଦ୍ଧ;(ସ୍ତ୍ରୀ) ଅକୃତ୍ରିମା ।

ଅକୃପ—ପୁଂ. ବିଂ. (ଅ+କୃପା) ବ. ବ୍ରୀ କୃପାଶୂନ୍ୟ, ନିର୍ଦ୍ଦୟ;(ସ୍ତ୍ରୀ) ଅକୃପା ।

ଅକୃଷ୍ଟ—ବି. ବଂ. (ନ. ତତ୍) ଅକର୍ଷିତ, ଚୃଷ କରାଯାଇ ନଥିବା,ଅନନୁଶୀଳିତ ।

ଅକୃଷ୍ଟପଚ୍ୟ—ବଂ. (ଅ+କୃଷ୍ଟ+ପଚ୍ୟ) କର୍ଷଣ ବିନା ଯାହା ସ୍ୱୟଂ ପଡ଼ିଆରେ ଜନ୍ମି ପାଚିଥିବା ( ନୀବାରଧାନ୍ୟାଦ ) (ସ୍ତ୍ରୀ) ଅକୃଷ୍ଟପଚ୍ୟା ।

ଅକୃଷ୍ଣ—ବଂ.(ଅ+କୃଷ୍ଣ) ନ. ତତ୍, ଯାହା କଳା ନୁହେଁ,ନିଷ୍ପାପ,ନିର୍ଦ୍ଦୋଷ ।

ଅକୃଷ୍ଣକର୍ମା—ପୁଂ. ସ୍ତ୍ରୀ. ବଂ (ଅ+କୃଷ୍ଣ+କର୍ମନ୍) ବ.ବ୍ରୀ. ଶୁଦ୍ଧାଚାର,ଶଠତା-ବରହିତ,ନିନ୍ଦିତ କାର୍ଯ୍ୟଶୂନ୍ୟ, ନିଷ୍ପାପ ।

ଅକେଶ—ପୁଂ.ବଂ.(ଅ+କେଶ) ବ.ବ୍ରୀ, କେଶହୀନ, ନାଙ୍ଗରା,ଅଳ୍ପ ବା ଅପ୍ରଶସ୍ତ କେଶଯୁକ୍ତ, ଦୁଃଖୀର ଈଶ୍ୱର (ଅ+କ+ଈଶ) ୬ ତତ୍(ସ୍ତ୍ରୀ) ଅକେଶା ।

ଅକେଶପରାଗକୋଷ—ପୁଂ. କ୍ଲୀ. ବ. (କ .ଧା) କେଶରଶୂନ୍ୟ ପରାଗକୋଷ ।

ଅକୈତବ—ପୁଂ. ବଂ. (ଅ+କୈତବ) ବ.ବ୍ରୀ, ଅକପଟ, ଛଳଶୂନ୍ୟ ଅକୃତ୍ରିମ, ସରଳ, (ସ୍ତ୍ରୀ) ଅକୈତବା (ବ) କୈତବର ଅଭାବ ।

ଅକୋଟ—ପୁଂ. ବ. (ଅ+କୁଟ୍+କ.ଅ) ଗୁଆଗଛ, ଗୁବାକ ।

ଅକୋପନ—ପୁଂ. ବଂ. (ଅ+କୋପନ) ନ.ତତ୍, ଅକ୍ରୋଧନ, କ୍ରୋଧରହିତ (ସ୍ତ୍ରୀ) ଅକୋପନା ।

ଅକୋବଦ—ପୁଂ. ବଂ. (ଅ+କୋବଦ) ନ.ତତ୍. ମୂର୍ଖ, ଅପଣ୍ଡିତ (ସ୍ତ୍ରୀ) ଅକୋବଦା ।

ଅକୌଟିଲ୍ୟ—କ୍ଲୀ.ବ.(ଅ+କୌଟିଲ୍ୟ) ସରଳତା ।

ଅକ୍କା—ସ୍ତ୍ରୀ. ବ. (ଅକ୍+କୈ+ଅ+ଆ) ମାତା, ଜନନୀ ।

ଅକ୍କାବକା—(ଗ୍ରା.)ବଂ. ନିର୍ବୋଧ, ଅବାକ୍, କିଂ କର୍ତ୍ତବ୍ୟବିମୂଢ଼, ଘାବରା, ଓଲୁ, ଆଶ୍ଚର୍ଯ୍ୟାନ୍ୱିତ ।

ଅକ୍ତ—ବି. ବଂ. (ଅଚ୍+କ.ତ) ଗତ, (ଅଜ+ମ୍ପି.ତ) ତାଡ଼ିତ (ଅନକ+ମ୍ପି.ତ) ଲିପ୍ତ, ବଳାହୋଇଥିବା, ମିଶ୍ରିତ (ବ) ତେଲ, ମଲମ ।

ଅକ୍ତକୁଣ୍ଡଳ—ଗ୍ର. ବ. ଯେଉଁ ଅଞ୍ଜନମଣ୍ଡିତ କୁଣ୍ଡଳ ବଳି ପଶୁଙ୍କୁ ଦିଆ ଯାଏ ।

ଅକ୍ତିଆର—ଯ. ବ. କ୍ଷମତା, ଅଧିକାର, (ବଂ) ଅକ୍ତିଆରି, ଆପଣାର ଅଧୀନ ।

ଅକ୍ତୁ—ସ୍ତ୍ରୀ.ବ.ବେଦପ୍ରଚୁରପ୍ରୟୋଗୋପ ।

ଅକ୍ରତୁ—ପୁଂ.ସ୍ତ୍ରୀ.ବଂ.(ଅ+କ୍ରତୁ)ବ.ବ୍ରୀ. ଶକ୍ତିରହିତ, ଯଜ୍ଞହୀନ, ସଂକଳ୍ପରହିତ

ଅକ୍ରମ—ବି. ବଂ—(ଅ+କ୍ରମ) ବ.ବ୍ରୀ. ଅକ୍ରମିତ, ଲେଉଟପାଉଟ, ଗୋଳମାଳିଆ ପାଦରହିତ, ବିଶୃଙ୍ଖଳ, (ବି) ଅକ୍ରମତା, ଅକ୍ରମ, କ୍ରମର ଅଭାବ ।

ଅକ୍ରମଣୀୟ—ବି.ବଂ. (ଅକ୍ରମ+ଅନୀୟ) ଅଲଙ୍ଘନୀୟ, ଅଗମ୍ୟ (ସ୍ତ୍ରୀ) ଅକ୍ରମଣୀୟା ।

ଅକ୍ରମତା—ସ୍ତ୍ରୀ ବ. ( ଅକ୍ରମ+ଭା.ତା) କାବ୍ୟର ବାକ୍ୟଦୋଷବିଶେଷ (ଅଳଙ୍କାରଶାସ୍ତ୍ର)

ଅକ୍ରାନ୍ତ—ବି. ବଂ. (ଅ+କ୍ରାନ୍ତ) ନ. ତତ୍. ଯାହାକୁ କେହି ଅତିକ୍ରମ କରିନାହିଁ, ଅଜିତ, ଯାହାକୁ ପାରହୋଇ ଯାଇ ହୁଏ ନାହିଁ; (ସ୍ତ୍ରୀ) ଅକ୍ରାନ୍ତା (ବ) ଭଇରଣି ।

ଅକ୍ରିୟ—ପୁଂ.ବଂ.( ଅ+କ୍ରିୟା ) ବ.ବ୍ରୀ. କ୍ରିୟାରହିତ, ସର୍ବକର୍ମଶୂନ୍ୟ, ଅସତ୍କର୍ମଶୀଳ, ଦୁଷ୍ଟ ବୁଦ୍ଧିସମ୍ପନ୍ନ (ସ୍ତ୍ରୀ) ଅକ୍ରିୟା (ପୁଂ) ବି. ପରମାତ୍ମା ।

ଅକ୍ରିୟା—ସ୍ତ୍ରୀ.ବି. (ଅ+କ୍ରିୟା ) ନ.ତତ୍. କାର୍ଯ୍ୟର ଅଭାବ, ଅନୁଚିତ କର୍ମ, ଅବିଧିକ୍ରିୟା, ଶାସ୍ତ୍ରବିରୁଦ୍ଧକାର୍ଯ୍ୟ, ବଂ. (ଅକ୍ରିୟ+ଆ) ଅକ୍ରିୟର ସ୍ତ୍ରୀଲିଙ୍ଗ ।

ଅକ୍ରିୟାନ୍ୱିତ—ପୁଂ. ବଂ. (୩ତତ୍) ସତ୍କାର୍ଯ୍ୟ ରହିତ, ନିନ୍ଦିତକର୍ମକାରୀ, (ସ୍ତ୍ରୀ) ଅକ୍ରିୟାନ୍ୱିତା ।

ଅକ୍ରୀତ—ବି.ବଂ.(ଅ+କ୍ରୀତ)ନ.ତତ୍. ଯାହା କିଣାଯାଇନାହିଁ, (ସ୍ତ୍ରୀ) ଅକ୍ରୀତା

ଅକ୍ରୁଦ୍ଧ—ପୁଂ. ବଂ.(ଅ+କ୍ରୁଦ୍ଧ) ନ.ତତ୍. ଅକୁପିତ, କ୍ରୋଧଶୂନ୍ୟ (ସ୍ତ୍ରୀ) ଅକ୍ରୁଦ୍ଧା ।

ଅକ୍ରୂର—ପୁଂ. ବଂ. (ଅ+କ୍ରୂର) ନ.ତତ୍. ଯେ ନିଷ୍ଠୁର ନୁହେଁ, ସରଳ, ଅକପଟ (ପୁଂ.ବି) କଂସର ମନ୍ତ୍ରୀ ଓ ଶ୍ରୀକୃଷ୍ଣଙ୍କର ପିତୃବ୍ୟ, (ସ୍ତ୍ରୀ) ଅକ୍ରୂରା (ବି) ଅକ୍ରୂରତା ।

ଅକ୍ରେୟ—ବି.ବଂ.(ଅ+କ୍ରେୟ) ନ.ତତ୍. ଯାହା କିଣାଯାଇ ନ ହୁଏ, ମହାର୍ଘ. ଦୁର୍ମୂଲ୍ୟ, ଯାହା ପ୍ରକୃତ ନ୍ୟାଯ୍ୟମୂଲ୍ୟ ଅପେକ୍ଷା ବେଶି, ଆକରା (ସ୍ତ୍ରୀ) ଅକ୍ରେୟା (ବି) ଅକ୍ରେୟତା ।

ଅକ୍ରୋଧ—ପୁଂ. ବ. ( ଅ+କ୍ରୋଧ ) ନ.ତତ୍. କ୍ରୋଧାଭାବ, କ୍ରୋଧରାହିତ୍ୟ (ବଂ.ବ.ବ୍ରୀ.) କ୍ରୋଧଶୂନ୍ୟ, ଯାହାର କ୍ରୋଧ ନାହିଁ (ସ୍ତ୍ରୀ) ଅକ୍ରୋଧା, (ବି) ଅକ୍ରୋଧତା ।

ଅକ୍ରୋଧନ—ପୁଂ. ବ. (ଅ+କ୍ରୋଧନ) ବ.ବ୍ରୀ. ଅକୋପ, କ୍ରୋଧର କାରଣ ଉପସ୍ଥିତ ହେଲେ ସୁଦ୍ଧା ଯେ କ୍ରୋଧ ଦମନ କରେ, (ସ୍ତ୍ରୀ) ଅକ୍ରୋଧନା, (ପୁଂ.ବି.) ବିଷ୍ଣୁପୁରାଣୋକ୍ତ କୁରୁବଂଶୀୟ ଅୟୁତ ଶ୍ୱଙ୍କ ପୁତ୍ର ।

ଅକ୍ରୋଧୀ—ପୁଂ. ବଂ. (ଅ+କ୍ରୋଧିନ୍) କ୍ରୋଧଶୂନ୍ୟ,ଅକୋପୀ(ସ୍ତ୍ରୀ)ଅକ୍ରୋଧିନୀ ।

ଅକ୍ଲମ—ପୁଂ. ବଂ. ( ଅ+କ୍ଲମ ) ବ.ବ୍ରୀ. ଯେ ପରିଶ୍ରମ କରି କାତର ହୁଏ ନାହିଁ, ଅକ୍ଲାନ୍ତ, ଅଶ୍ରାନ୍ତ, କ୍ଲାନ୍ତିଶୂନ୍ୟ, (ସ୍ତ୍ରୀ) ଅକ୍ଲମା (ବି) ଅକ୍ଲମତା ।

ଅକ୍ଲାଣ୍ଡ—ବି.୧୮୩୬ସାଲ ଠାରୁ ୧୮୪୨ ସାଲ ପର୍ଯ୍ୟନ୍ତ ଭାରତର ଗଭର୍ଣ୍ଣର-ଜେନେରାଲ ।

ଅକ୍ଲାନ୍ତ—ପୁଂ.ବଂ.(ଅ+କ୍ଲାନ୍ତ) ନ.ତତ୍. କ୍ଲାନ୍ତିରହିତ, ଯାହାକୁ ବାଧା ହୋଇନାହିଁ, ଯେ ଶ୍ରମ ନିବାରଣ ପାଇଁ ବିଶ୍ରାମ ନ ନିଏ (ସ୍ତ୍ରୀ) ଅକ୍ଲାନ୍ତା (ବି) ଅକ୍ଲାନ୍ତି ।

ଅକ୍ଲାନ୍ତି—ସ୍ତ୍ରୀ. ବ. (ଅ+କ୍ଲାନ୍ତି) ନ.ତତ୍. କ୍ଲାନ୍ତିହୀନତା, କ୍ଲମାଭାବ, ଅଶ୍ରମ ।

ଅକ୍ଲିକା—ସ୍ତ୍ରୀ. ବ. ନୀଳବୃକ୍ଷ ।

ଅକ୍ଲିନ୍ନ—ବି. ବଂ. (ଅ+କ୍ଲିନ୍ନ) ନ.ତତ୍. ଓଦା ହୋଇ ନଥିବା, ଅନାର୍ଦ୍ର,ଅଭିଜା, (ସ୍ତ୍ରୀ) ଅକ୍ଲିନ୍ନା ।

ଅକ୍ଲିଷ୍ଟ—ତ୍ରି. ବି°. (ଅ+କ୍ଲିଷ୍ଟ) ଅକ୍ଲେଶକର, ସହଜବୋଧ, ଯାହା ମଉଳେ ନାହିଁ (ପୁଂ.ବି°) ପରିଶ୍ରମରେ ଯାହାର କ୍ଲେଶ ବୋଧ ନ ହୁଏ (ସ୍ତ୍ରୀ) ଅକ୍ଲିଷ୍ଟା (ବି) ଅକ୍ଲିଷ୍ଟତା ।

ଅକ୍ଲିଷ୍ଟକର୍ମା—ପୁଂ. ସ୍ତ୍ରୀ. ବି°. (ଅକ୍ଲିଷ୍ଟ+କର୍ମନ୍) ଯେ ଅକ୍ଲେଶରେ କାର୍ଯ୍ୟ ନିର୍ବାହ କରେ, ଅକ୍ଲାନ୍ତ ପରିଶ୍ରମୀ, କୌଶଳୀ, ଅତି ଶ୍ରମପଟୁ ।

ଅକ୍ଲିଷ୍ଟକାନ୍ତି—ତ୍ରି. ବି°. (ନ.ତତ୍) ଅବିବର୍ଣ୍ଣ, ଯାହାର କାନ୍ତି ମଉଳେ ନାହିଁ ।

ଅକ୍ଲୀବ—ପୁଂ. ବି°. (ନ.ତତ୍) ଧୀର, ବୀର, ସହିଷ୍ଣୁ, ଅବନ୍ଧ୍ୟ, ଜନନ-ଶକ୍ତିଶାଳୀ, ଯାହାର ସନ୍ତାନୋତ୍ପାଦିକା ଶକ୍ତି ଅଛି, (ସ୍ତ୍ରୀ) ଅକ୍ଲୀବା (ବି) ଅକ୍ଲୀବତା ।

ଅକ୍ଲେଦ୍ୟ—ତ୍ରି. ବି°. (ନ.ତତ୍) ଅପଚ୍ୟ, ଯାହା ସଢ଼େ ନାହିଁ, ଯାହା ଓଦା ହୁଏ ନାହିଁ ।

ଅକ୍ଲେଶ—ପୁଂ. ବି°. (ବ.ବ୍ରୀ) କ୍ଲେଶବର୍ଜିତ, ଯାହାର କ୍ଲେଶ ନାହିଁ, (ସ୍ତ୍ରୀ) ଅକ୍ଲେଶା (ବି) କ୍ଲେଶର ଅଭାବ, ଅନାୟାସ, ବିନା ପରିଶ୍ରମ, ଦୁଃଖାଭାବ ।

ଅକ୍ଲେଶେ—କ୍ରି.ବି°. (ଅ+କ୍ଲେଶେ) ଅନାୟାସରେ,ବିନାକ୍ଲେଶରେ,ସହଜେ, କ୍ଲେଶ ବ୍ୟତିରେକେ ।

ଅକ୍ଷ—(ଧାତୁ) ବ୍ୟାପିବା, ଗଦାହେବା, ଜମାଟ ବାନ୍ଧିବା ।

ଅକ୍ଷ—ବି.( ଅକ୍ଷ+କ. ଅ ) ପଶାକାଠି, ପଶାପାଳି, ଗୁଟି, (ବୈଦ୍ୟକ) ଏକଭରି ଷୋହଳ ମାସା ପରିମିତ ଓଜନ, ଗୋଳକ ପୃଷ୍ଠରେ ବିଷୁବ ରେଖାର ଉଭୟ ପାର୍ଶ୍ୱର ଯେ କୌଣସି ସ୍ଥାନର ଦୂରତ୍ୱ, ଗ୍ରହଚଳନ ପଥ, ଆତ୍ମା, ଶଗଡ଼, ରଥ, ଗାଡ଼ିର ଅଖ, ବନ୍ଧୁବାନ୍ଧବ ଚନ୍ତା, ବାହାଡ଼ା ଗଛ, ସର୍ପ, ପାଞ୍ଚଫଖ୍ୟା, ଅମ୍ଳା, ଚକ୍ରର ନାଭି, ନାହିଁଆ, ଗରୁଡ଼, ରୁଦ୍ରାକ୍ଷ ବୃକ୍ଷ ଓ ଫଳ,ସୌବର୍ଚ୍ଚଲବଣ, ଇନ୍ଦ୍ରିୟ, ତୁତିଆ, ରସାଞ୍ଜନ,ତୁଣା, ଚକ୍ଷୁ, ହାଡ଼, ଲଟେଇ, କକଡ଼ାଶୃଙ୍ଗୀ, ପଦ୍ମବୀଜ ଋଷଭକ, ତିନିଶ ବୃକ୍ଷ, ଜନ୍ମାନ୍ଧ, ସଂହତ, ବ୍ୟବହାରଶାସ୍ତ୍ର, ବିବାଦ, ବିଜ୍ଞାନତତ୍ତ୍ୱ, ରାବଣପୁତ୍ର, ଆବର୍ତ୍ତନରେଖା, ଆମୃଜ୍ଞ, ରଥଚକ୍ର ।

ଅକ୍ଷକିତବ—ପୁଂ. ବି. (ଅକ୍ଷ+କିତବ) ୭ ତତ୍. ପଶାଖେଳରେ ନିପୁଣ,ଜୁଆଡ଼ି, ଦ୍ୟୂତକାର ।

ଅକ୍ଷକୂଟ—ପୁଂ. ବି. ( ୬ ତତ୍ ) ଚକ୍ଷୁର ତାରା, କନୀନିକା, ଆଖିର ପିତୁଳା ।

ଅକ୍ଷକୋବିଦ—ପୁଂ. ବି°. ( ୭ ତତ୍ ) ପଶାଖେଳରେ ପାରଦର୍ଶୀ, (ସ୍ତ୍ରୀ) ଅକ୍ଷକୋବିଦା ।

ଅକ୍ଷକ୍ରୀଡ଼ା—ସ୍ତ୍ରୀ. ବି. ( ଅକ୍ଷ+କ୍ରୀଡ଼ା ) ୩ ତତ୍; ପଶାଖେଳ ।

ଅକ୍ଷକ୍ଷେତ୍ର—ବି. ( ୬ତତ୍ ) ପଶାପାଳି, ଗଣନାର୍ଥ ଜ୍ୟୋତିଷିମାନେ ଭୂମିରେ ଯେଉଁ ଛକ ବା ବୃତ୍ତାଦି କାଟନ୍ତି ।

ଅକ୍ଷଚକ୍ର—କ୍ଲୀ.ବି. (ଅକ୍ଷ+ଚକ୍ର) (ଦ୍ୱନ୍ଦ୍ୱ) ଗୁରୁଭାର ଉଠାଇବାର ଯନ୍ତ୍ର ବିଶେଷ ।

ଅକ୍ଷଜ—ପୁଂ. ବି. (ଅକ୍ଷ+ଜନ୍+କ.ଅ) ବଜ୍ର,ଇନ୍ଦ୍ରିୟଜନିତ ଜ୍ଞାନ,ବିଷ୍ଣୁ, ହୀରା ।

ଅକ୍ଷଣ—ପୁଂ. ବି. ଅଭକ୍ଷଣ, ଅପ୍ରଶସ୍ତକାଳ, କୁମୁହୂର୍ତ୍ତ, ( ବି° ) ଅସାମୟିକ

ଅକ୍ଷଣିକ—ପୁଂ. ବି°. ସ୍ଥିର, ଚଞ୍ଚଳ, ଚିରସ୍ଥାୟୀ ( ସ୍ତ୍ରୀ ) ଅକ୍ଷଣିକା ।

ଅକ୍ଷତ—ପୁଂ. ବି°. (ଅ+କ୍ଷତ) ନ.ତତ୍ ଅଖଣ୍ଡିତ,ଅନାହତ,ନିର୍ଦ୍ଦୋଷ, ନିର୍ବ୍ରଣ, ଦାଗ ଲାଗି ନ ଥିବା, ( ସ୍ତ୍ରୀ ) ଅକ୍ଷତା ( ବି ) ଶିବ, ଉଆରୁଆଳ, ସର୍ବଶସ୍ୟ, ଖଇ ।

ଅକ୍ଷତତ୍ତ୍ୱ—କ୍ଲୀ. ବି. ଦ୍ୟୂତବିଦ୍ୟା, ପଶାଖେଳର ରହସ୍ୟ, ଅକ୍ଷଶାସ୍ତ୍ର ।

ଅକ୍ଷତଯୋନି—ସ୍ତ୍ରୀ.ବି. (ଅକ୍ଷତ+ଯୋନି) ବ. ବ୍ରୀ; ଯେଉଁ ସ୍ତ୍ରୀ ପୁରୁଷ ସଙ୍ଗମ କରିନାହିଁ, ( କୁମାରୀ ) ବି°. ପୁରୁଷ ସଙ୍ଗ କରି ନ ଥିବା, ଯାହାର ଆଦ୍ୟ ଋତୁ ହୋଇନାହିଁ ।

ଅକ୍ଷତା—ସ୍ତ୍ରୀ. ବି°. ଅକ୍ଷତର ସ୍ତ୍ରୀଲିଙ୍ଗ; ( ବି ) କକଡ଼ାଶୃଙ୍ଗୀ ।

ଅକ୍ଷଦଣ୍ଡ—ପୁଂ. ବି. ଶଗଡ଼ ଅଖ, ପୃଥିବୀର ମଧ୍ୟଦେଶଭେଦୀ କାଳ୍ପନିକ ସରଳରେଖା ।

ଅକ୍ଷଦର୍ଶକ—ପୁଂ. ବି°. (ଅକ୍ଷ+ଦୃଶ୍+ଅକ ) ବ୍ୟବହାରଦ୍ରଷ୍ଟା,(ବି) ବିଚାରକ, ଜଜ୍ ।

ଅକ୍ଷଦୃକ୍—ପୁଂ. ବି°. ( ଅକ୍ଷ+ଦୃଶ୍+କ. କ୍ୱିପ୍ ) ବ୍ୟବହାର ଦ୍ରଷ୍ଟା, ଯେ ଆଇନ୍ ଜାଣନ୍ତି ।

ଅକ୍ଷଦେବନ—କ୍ଲୀ. ବି. (ଅକ୍ଷ+ଦେବନ) ୩ ତତ୍; ପଶାଖେଳ, ଦ୍ୟୂତକ୍ରୀଡ଼ା ।

ଅକ୍ଷଦେବୀ—ପୁଂ. ବି. ( ଅକ୍ଷ+ଦିବ+କ—ଇନ୍ ) ପଶା ଖେଳାଳି (ସ୍ତ୍ରୀ) ଅକ୍ଷଦେବିନୀ

ଅକ୍ଷଦ୍ୟୂ—ପୁଂ ଓ ସ୍ତ୍ରୀ. ବି. (ଅକ୍ଷ+ଦିବ୍+କ. କ୍ୱିପ୍) ଦ୍ୟୂତକ୍ରୀଡ଼ାକାରୀ ବ୍ୟକ୍ତି ।

ଅକ୍ଷଧର—ପୁଂ. ବି. (ଅକ୍ଷ+ଧୃ+କ. ଅ ) ଚକ୍ର,ଚକ୍ରଧର,ବିଷ୍ଣୁ,ଶାହାଡ଼ା ଗଛ, ( ସ୍ତ୍ରୀ ) ଅକ୍ଷଧରା ।

ଅକ୍ଷଧୂ—ସ୍ତ୍ରୀ. ବି (ଅକ୍ଷ+ଧୁର୍ )ଚକ୍ରାଗ୍ର, ଯୁଆଳି, ଅଖରମୁଣ୍ଡି ।

ଅକ୍ଷଧୂର୍ତ୍ତ—ପୁଂ. ବି. ( ଅକ୍ଷ+ଧୂର୍ତ୍ତ ) ୬ତତ୍; ପଶାଖେଳାଳି, ଯୁଆଡ଼ି ( ସ୍ତ୍ରୀ ) ଅକ୍ଷଧୂର୍ତ୍ତା ।

ଅକ୍ଷଧୂର୍ତ୍ତିଳ—ପୁଂ. ବି. ( ଅକ୍ଷ+ଧୂର୍ତ୍ତି+ଲ+କ. ଅ ) ଶକଟବାହକ ବୃଷ, ଶଗଡ଼ଆ ବଳଦ ।

ଅକ୍ଷପଟଳ—ବି. ( ୬ତତ୍ ) ଚକ୍ଷୁରୋଗବିଶେଷ, ପରଳ ।

ଅକ୍ଷପାଟ—କ୍ଲୀ. ବି. (ଅକ୍ଷ+ପାଟ) ପଶା, ପାଲି, ପଶାକାଠି ଗଡ଼ାଇବା ବା ପକାଇବା ।

ଅକ୍ଷପାଦ—ପୁଂ. ବି. ( ଅକ୍ଷ+ପାଦ ) ବ. ବ୍ରୀ; ନ୍ୟାୟସୂତ୍ରପ୍ରଣେତା ଗୌତମ ମୁନି, ଚକ୍ରାଙ୍ଗ, ଶଗଡ଼ ପୁଟି ବା ପଇ, ଜ୍ଞାନଲୋକ, ତାର୍କିକ ବ୍ୟକ୍ତି ।

ଅକ୍ଷବାଟ—ପୁଂ. ବି. ( ଅକ୍ଷ+ବାଟ ) ୬ ତତ୍; ଦ୍ୟୂତସ୍ଥାନ, ମଲ୍ଲଭୂମି, କୁସ୍ତି ଆଖଡ଼ା, ପଶାଖେଳର ଆଡ୍ଡା ।

ଅକ୍ଷବାନ୍—ପୁଂ. ବିଂ. ( ଅକ୍ଷ+ବତ୍ ) ଅକ୍ଷଯୁକ୍ତ, ଅକ୍ଷବିଶିଷ୍ଟ, ( ସ୍ତ୍ରୀ ) ଅକ୍ଷବତୀ, ପଶାଖେଳ ।

ଅକ୍ଷବିତ୍—ପୁଂ.ବି. (ଅକ୍ଷ+ବିଦ+କ୍ୱିପ୍) ପଶାଖେଳ ଜାଣିବା ଲୋକ, ବ୍ୟବହାର ଶାସ୍ତ୍ରବେତ୍ତା ।

ଅକ୍ଷବୃତ୍ତ—ବି. ନିରକ୍ଷବୃତ୍ତର ସମାନ୍ତରାଳ ଏବଂ ବୃତ୍ତଠାରୁ କ୍ରମଶ ଦଶ ଦଶ ଅଂଶ ଅନ୍ତରରେ କଳ୍ପିତ କ୍ଷୁଦ୍ର କ୍ଷୁଦ୍ର ବୃତ୍ତ ସମୂହ

ଅକ୍ଷଶକ—ପୁଂ.ବି. (ମଃ. କ, ଧ ) ଏକ ଗାଡ଼ିର ମଲ୍, ଶକଟ ପରିମିତ ଭାର ବା ବୋଝେଇ ।

ଅକ୍ଷମ—ପୁଂ. ବିଂ. (ଅ+କ୍ଷମ) ନ. ତତ୍ ଯାହାର କୌଣସି କ୍ଷମତା ନାହିଁ. ଅକ୍ଷମ, ଅଯୋଗ୍ୟ, କ୍ଷମତାହୀନ. ଦୁର୍ବଳ ( ସ୍ତ୍ରୀ) ଅକ୍ଷମା ।

ଅକ୍ଷମତା, ଅକ୍ଷମତ୍ୱ—ସ୍ତ୍ରୀ. କ୍ଳୀ. ବି. (ଅକ୍ଷମ +ତା, ତ୍ୱ) କ୍ଷମତାହୀନତା, ଅସାମର୍ଥ୍ୟ କ୍ଷମତା ବା ଶକ୍ତିର ଅଭାବ ( ଗ୍ରା. ବିଂ.) ଅସମର୍ଥ, ଅକ୍ଷମ, ନିର୍ଧନ ।

ଅକ୍ଷମଦ—ପୁଂ. ବି. ( ୬ ତତ୍ ) ଜୁଆ- ଖେଳର ନିଶା, ପଶା ଖେଳର ମତ୍ତତା.

ଅକ୍ଷମା—ସ୍ତ୍ରୀ. ବିଂ. (ଅକ୍ଷମ+ଆ) ଅକ୍ଷମର ସ୍ତ୍ରୀ ଲିଙ୍ଗ, (ବି) ଈର୍ଷା, କ୍ରୋଧ, ଅଶକ୍ତି ।

ଅକ୍ଷମାଳା—ସ୍ତ୍ରୀ. ବି. (୬ ତତ୍) ଜପମାଳ, ରୁଦ୍ରାକ୍ଷମାଳା, ବଶିଷ୍ଠ ପତ୍ନୀ ଅରୁନ୍ଧତୀ ।

ଅକ୍ଷମାଳୀ—ପୁଂ. ବି. ( ଅକ୍ଷ+ମାଲା+ ଇନ୍ ) ଶିବ, ରୁଦ୍ରାକ୍ଷମାଳାଧାରୀ ( ସ୍ତ୍ରୀ) ଅକ୍ଷମାଳିନୀ ।

ଅକ୍ଷୟ—ତ୍ରି. ବିଂ. (ଅ+କ୍ଷୟ) ନ. ବ୍ରୀ; କ୍ଷୟରହିତ, ଅବିନାଶୀ, ଚିରସ୍ଥାୟୀ ସଦା ବିଦ୍ୟମାନ, ନିତ୍ୟ, ଅପରନ୍ତ, ଅଶେଷ,ଗୁହହୀନ, ଦରିଦ୍ର, ନିରାଶ୍ରୟ, ( ସ୍ତ୍ରୀ ) ଅକ୍ଷୟା (ବି) ପରମାତ୍ମା, ଅକ୍ଷୟବଟ, ରାବଣର ଏକପୁତ୍ର ।

ଅକ୍ଷୟକୀର୍ତ୍ତି—ସ୍ତ୍ରୀ. ବି. (କ. ଧ) ଯେଉଁ କୀର୍ତ୍ତି ଚିରସ୍ଥାୟୀ, ଅବିନଶ୍ୱର ଯଶ ।

ଅକ୍ଷୟତୂଣ—ବି. (ଅକ୍ଷୟ+ତୂଣ)କ. ଧ; ଅପରନ୍ତ ଶରତୂଣ, ଯେଉଁ ତୂଣରୁ ଯେତେ ଇଚ୍ଛା ସେତେ ଶର କାଢ଼ି ମାରୁଥିଲେ ତାହା ସରେ ନାହିଁ ।

ଅକ୍ଷୟ ତୃତୀୟା—ସ୍ତ୍ରୀ. ବି. ବୈଶାଖ ଶୁକ୍ଳ ତୃତୀୟା, ଏ ଦିନ ସତ୍ୟଯୁଗର ଉତ୍ପତ୍ତି

ଅକ୍ଷୟବଟ—ପୁଂ. ବି. (କ. ଧ ) କଳ୍ପ- ବଟ, ପ୍ରଳୟାନ୍ତ ସ୍ଥାୟୀ ବଟବୃକ୍ଷ, ପୁରୀ, ଭୁବନେଶ୍ୱର.ପ୍ରୟାଗ,ଗୟା ଆଦି ତୀର୍ଥ- ସ୍ଥାନମାନଙ୍କରେଥିବା ନିର୍ଦ୍ଦିଷ୍ଟ ବଟବୃକ୍ଷ।

ଅକ୍ଷୟଯଶ—ପୁଂ. କ୍ଳୀ. ବିଂ. (ବ.ବ୍ରୀ) ଯେଉଁ ବ୍ୟକ୍ତିର ଯଶ ଚିରସ୍ଥାୟୀ ।

ଅକ୍ଷୟଲୋକ—ବି. ( ଅକ୍ଷୟ+ଲୋକ ) କ. ଧ, ବୈକୁଣ୍ଠ. ସ୍ୱର୍ଗ ।

ଅକ୍ଷୟା—ସ୍ତ୍ରୀ. ବିଂ. ଅକ୍ଷୟର ସ୍ତ୍ରୀଲିଙ୍ଗ; ( ସ୍ତ୍ରୀ ବି. ) ବାର ଓ ତିଥି ଘଟିତ ଯୋଗ ବିଶେଷ ।

ଅକ୍ଷୟିଣୀ—ସ୍ତ୍ରୀ. ବି. ( ନାମ ) କାଶ୍ମୀରର ରାଜା ନରେନ୍ଦ୍ରାଦିତ୍ୟଙ୍କ ପ୍ରତିଷ୍ଠିତ ଦେବମୂର୍ତ୍ତି ବିଶେଷ ।

ଅକ୍ଷଯ୍ୟ—ତ୍ରି.ବିଂ ( ଅ+କ୍ଷି+ର୍ମ.ଯ ) କ୍ଷୟର ଅଯୋଗ୍ୟ, ଯାହା କେତେ- ବେଳେ ହେଲେହେଁ କ୍ଷୟ ହୁଏନାହିଁ, ଅବିନାଶୀ,(ବି) ଘୃତ ମଧୁମିଶ୍ରିତ ଜଳ ।

ଅକ୍ଷର—ତ୍ରି. ବିଂ. ( ଅ+କ୍ଷର ) ନ. ତତ୍; କ୍ଷରଣଶୂନ୍ୟ, କ୍ରିୟାଶୂନ୍ୟ, ଅନଶ୍ୱର, ସ୍ଥାୟୀ, ସ୍ଥିର, ନିତ୍ୟ,( ସ୍ତ୍ରୀ) ଅକ୍ଷରା, ବି. ( ଅ+କ୍ଷର+କ.ଅ ) ବ୍ରହ୍ମ, ପରମେଶ୍ୱର, ଜୀବାତ୍ମା, ମୋକ୍ଷ, ଜଳକ, ଶିବ, ବିଷ୍ଣୁ, ଗଗନ, ଧର୍ମ, ତପସ୍ୟା, ବେଦ, ଅପାମାର୍ଗ, ଶବ୍ଦର ଯାହାପେକ୍ଷା ସୂକ୍ଷ୍ମ ଓ ଅଖଣ୍ଡ ଅଂଶ, ଏକ ଏକବର୍ଣ୍ଣ,ଭିନ୍ନ ଭାଷାର ଭିନ୍ନ ଭିନ୍ନ ଧ୍ୱନିଜ୍ଞାପକ ଚିହ୍ନ, ପ୍ରକୃତ, ମୁଦ୍ରାଲିପି ପ୍ରଭୃତି ପାଞ୍ଚପ୍ରକାର ଅକ୍ଷର ଲିପି ଯଥା-

"ମୁଦ୍ରାଲିପିଃ ଶିଳାଲିପି
ଲିପି ଲେଖନୀ ସମ୍ଭବା ।
ଗୁଣ୍ଡିକା ଘୁଣ ସମ୍ଭୂତା
ଲିପୟଃ ପଞ୍ଚଧା ସ୍ମୃତା

ଅକ୍ଷରଚଣ ( ଚୁଞ୍ଚୁ )—ପୁଂ. ସ୍ତ୍ରୀ. ବିଂ. ( ଅକ୍ଷର+ଖ୍ୟାତାର୍ଥେ, ଚଣ, ଚୁଞ୍ଚୁ ) ସୁଲେଖକ, ଲିପିକୁଶଳ ।

ଅକ୍ଷରଜନନୀ—ସ୍ତ୍ରୀ. ବି. ( ୬ ତତ୍ ) ଲେଖନୀ, କଲମ, ଲେଖନ ।

ଅକ୍ଷରଜୀବକ—ପୁଂ. ବିଂ. ( ଅକ୍ଷର+ ଜୀବ୍+କ.ଅକ) ଲେଖାଦ୍ୱାରା ଜୀବିକା- ନିର୍ବାହକାରୀ ( ସ୍ତ୍ରୀ ) ଅକ୍ଷରଜୀବିକା । ବି. ଲେଖକ, ନବିସିନ୍ଦା, ମୋହରିର, ନକଲ୍‌ନବିସ୍, ଲିପିକର ।

ଅକ୍ଷରଜୀବକ—ପୁଂ.ବି.ବିଂ. ( ଅକ୍ଷର+ ଜୀବନ୍+ସ୍ୱାର୍ଥେ କ ) କମ୍ପା, ବ. ବ୍ରୀ. ( ଅକ୍ଷରଜୀବକ ( ଦେଖ ) ।

ଅକ୍ଷରଜୀବୀ—ପୁଂ. ବିଂ. ( ଅକ୍ଷର+ଜୀବ +କ.ଇନ୍ ) ଲେଖକ, ଯେ ଲେଖନ- କ୍ରିୟାଦ୍ୱାରା ଜୀବିକା ନିର୍ବାହ କରେ, ମସୀଜୀବୀ ( ସ୍ତ୍ରୀ ) ଅକ୍ଷରଜୀବିନୀ ।

ଅକ୍ଷରଜ୍ଞ—ପୁଂ. ବିଂ, (ଅକ୍ଷର+ଜ୍ଞା+ କ.ଅ) ଅକ୍ଷରମୂର୍ଖ, ଶାସ୍ତ୍ରଜ୍ଞ, ( ସ୍ତ୍ରୀ ) ଅକ୍ଷରଜ୍ଞା ।

ଅକ୍ଷରତୂଲିକା—ସ୍ତ୍ରୀ. ବି. ( ୬ତତ୍ ) ଲେଖନୀ, କଲମ, ଲେଖନ ।

ଅକ୍ଷରନିବଦ୍ଧ,ଅକ୍ଷରବଦ୍ଧ—ବିଂ.(୩ତତ୍ ) ଅକ୍ଷରଦ୍ୱାରା ପ୍ରକାଶ,ଲିଖିତ (ସ୍ତ୍ରୀ)ବଦ୍ଧା ।

ଅକ୍ଷରନ୍ୟାସ, ଅକ୍ଷରବିନ୍ୟାସ—ପୁଂ. ବି. (ବ.ବ୍ରୀ) ଲିପି, ପଞ୍ଜିକା, ଚିଠି,ଦଲିଲ, ଅକ୍ଷରସଂସ୍ଥାନ ।

ଅକ୍ଷରପରିଚୟ—ବି. ( ୬ ତତ୍ ) ବର୍ଣ୍ଣ- ଜ୍ଞାନ, ଅକ୍ଷରଚିହ୍ନିବା,ଭାଷାର ପ୍ରାଥମିକ ଶିକ୍ଷା ।

ଅକ୍ଷରମାଳା—ସ୍ତ୍ରୀ. ବି. ( ୬ ତତ୍ ) ବର୍ଣ୍ଣ- ମାଳା, ଅକାରାଦି ଅକ୍ଷର ସମୂହ ।

ଅକ୍ଷରମୁଖ—ପୁଂ. ବ୍‌ଂ. ( ବ. ବ୍ରୀ. ) ଅକ୍ଷରଜ୍ଞ, ଶାସ୍ତ୍ରଜ୍ଞ, ସାହିତ୍ୟଜ୍ଞ, ( ସ୍ତ୍ରୀ ) ଅକ୍ଷରମୁଖୀ ( ପୁଂ. ବ ) ଶିଷ୍ୟ, ଗ୍ରନ୍ଥ ( ୬ ତତ୍ ) ପ୍ରଥମବର୍ଣ୍ଣ, ବର୍ଣ୍ଣମାଳାର ପ୍ରଥମଅକ୍ଷର 'ଅ'

ଅକ୍ଷରସଂସ୍ଥାନ—ବ. ( ୬ ତତ୍ ) ଅକ୍ଷର ନ୍ୟାସ, ଲିଖନ,ଅକ୍ଷର ବସାଇବା କର୍ମ।

ଅକ୍ଷରାର୍ଥ—ପୁଂ. ବ. ( ଅକ୍ଷର+ଅର୍ଥ ) ୬ତତ୍ ; ଶବ୍ଦାର୍ଥ, ବାକ୍ୟାର୍ଥ ।

ଅକ୍ଷରୁଚକ—ବ. ( ୬ତତ୍ ) (ବୈଦ୍ୟକ) ସୌବର୍ଚ୍ଚ ଲବଣ ।

ଅକ୍ଷରେଅକ୍ଷରେ ସତ୍ୟ—ଗ୍ରା.ବ୍‌ଂ.ସର୍ବାଂଶରେ ସତ୍ୟ, ଯହିଁରେ କୌଣସି ଅଂଶ ମିଥ୍ୟା ନୁହେ ।

ଅକ୍ଷରେଖା—ସ୍ତ୍ରୀ. ବ. ନିରକ୍ଷରେଖାର ଉତ୍ତର ଦକ୍ଷିଣରେ ସମଦୂରବର୍ତ୍ତୀ କେତେଗୁଡ଼ିଏ ରେଖା ।

ଅକ୍ଷଲୀଳା—ସ୍ତ୍ରୀ. ବ. ( ଅକ୍ଷ+ଲୀଳା ) ୬ତତ୍; ପଶାଖେଳ, ଚକ୍ଷୁର ବିଳାସ ।

ଅକ୍ଷସୂତ୍ର—କ୍ଲୀ.ବ.( ଅକ୍ଷ+ସୂତ୍ର) ୬ତତ୍. ଜପମାଳା ।

ଅକ୍ଷହୃଦୟ—କ୍ଲୀ.ବ. (୬ତତ୍) ଅକ୍ଷଶାସ୍ତ୍ର, ପଶାଖେଳିବାରକୌଶଳ,ଦ୍ୟୁତବିଦ୍ୟା ।

ଅକ୍ଷାଂଶ—ପୁଂ.ବ. (ଅକ୍ଷ+ଅଂଶ) ୬ତତ୍. ଭୂଗୋଳ, ଅକ୍ଷବୃତ୍ତର ୩୬୦ ଅଂଶରୁ ଏକଅଂଶ ।

ଅକ୍ଷାଗ୍ରକୀଲକ—ପୁଂ. ବ. ( ଅକ୍ଷ+ଅଗ୍ର +କୀଲକ) ୬ତତ୍; ଅଣୀକୀଳ,କାନକୀଳ

ଅକ୍ଷାନ୍ତ—ବ. ( ଅକ୍ଷ+ଅନ୍ତ ) ୬ ତତ୍; ଅକ୍ଷାଗ୍ର, ଅଖର ମୁଣ୍ଡ, (ସ୍ତ୍ରୀ) ଅକ୍ଷାନ୍ତା (ପୁଂ. ବ୍‌ଂ)ନ.ତତ୍; ଅନବୃତ୍ତ, ଅସହିଷ୍ଣୁ ଈର୍ଷୀ ।

ଅକ୍ଷାନ୍ତି—ସ୍ତ୍ରୀ. ବ. (ଅ+କ୍ଷାନ୍ତି) ନ. ତତ୍ ଅକ୍ଷମା, ଅସହିଷ୍ଣୁତା ।

ଅକ୍ଷାର—ବି. ବ୍‌ଂ. (ଅ+କ୍ଷାର) ବ. ବ୍ରୀ କ୍ଷାରହୀନ, ଅଲବଣ, ଅଲଣା ।

ଅକ୍ଷାରଲବଣ—କ୍ଲୀ. ବ. ( ଅ+କ୍ଷାର +ଲବଣ ) କ. ଧା; ସୈନ୍ଧବାଦ ଲବଣ, ( ସ୍ମୃତି ) ଅଶୌଚ ପାଳିବା ବ୍ୟକ୍ତିର ବ୍ୟବହାର୍ଯ୍ୟ ହବିଷ୍ୟ ସାମଗ୍ରୀ, ଘୃତାଦି, ଯଥା—

"ଗୋକ୍ଷୀରଂ ଗୋଘୃତଂ ଚୈବ ଧାନ୍ୟ ମୁଦ୍ଗ ଯବାସ୍ତିଲାଃ, ସାମୁଦ୍ରସୈନ୍ଧବଂ ଚୈବ ମକ୍ଷାର ଲବଣଂ ସ୍ମୃତଂ"

ଅକ୍ଷି—କ୍ଲୀ. ବ. ( ଅକ୍ଷ+କ. ଇ ) ଚକ୍ଷୁ, ନେତ୍ର,ଆଖି, ଯାହା ଦୃଷ୍ଟିରୂପାଦି ବସ୍ତୁକୁ ବ୍ୟାପିଯାଏ ।

ଅକ୍ଷିକ—ବ. (ଅକ୍ଷ+ଇକ) ଆଚ୍ଛୁ (ଗଛ) ।

ଅକ୍ଷିକୂଟକ—କ୍ଲୀ. ବ. ( ଅକ୍ଷି+କୂଟକ ) ୬ ତତ୍; ଆଖିଡ଼ୋଳା, ଚକ୍ଷୁରତାରକା ।

ଅକ୍ଷିଗତ—ବି. ବ୍‌ଂ. ( ଅକ୍ଷି+ଗତ ) ୨ ତତ୍; ନୟନଗୋଚର, ଘୃଣ୍ୟ, ଶତ୍ରୁ ( ସ୍ତ୍ରୀ ) ଅକ୍ଷିଗତା ।

ଅକ୍ଷିଗୋଳ—( କ ) ପୁଂ. ବ. ( ୬ତତ୍ ) ଆଖିର ସମସ୍ତ ଗୋଲ ଅଂଶ, କଳାଡୋଳା ।

ଅକ୍ଷିପକ୍ଷ୍ମ—କ୍ଲୀ. ବ. ( ଅକ୍ଷି+ପକ୍ଷ୍ମନ୍ ) ଆଖିପତା ଲୋମ ।

ଅକ୍ଷିପଟ—ପୁଂ. ବ. କଳାଡୋଳାର ଅତି ସୂକ୍ଷ୍ମ ଝିଲ୍ ବା ପରଦା ।

ଅକ୍ଷିବ—ପୁଂ. ବ. ( ଅ+କ୍ଷିବ୍+ଣ.ଅ ) ସମୁଦ୍ର ଲବଣ, ସଜନା ।

ଅକ୍ଷିବିକୂଣିତ—କ୍ଲୀ. ବ. (ଅକ୍ଷି+ବିକୂଣିତ) ୬ ତତ୍; ବାଙ୍କଦୃଷ୍ଟି, କଟାକ୍ଷପାତ ।

ଅକ୍ଷିଭେଷଜ—ପୁଂ.ବ. (୬ ତତ୍ ) ଲୋଧ୍ର, ଚକ୍ଷୁ ରୋଗର ଔଷଧ, ଅଞ୍ଜନ, ସୁରମା ।

ଅକ୍ଷିମୁଠି—ଗ୍ରା. ବ. ଅକ୍ଷୟତୃତୀୟା ଦିନ ଅନୁକୂଳ କରି ବୁଣାଯିବା ଧାନ ।

ଅକ୍ଷିକ,ଅକ୍ଷୀକ—ବ. (ଅକ୍ଷ+ଇକ) ଆଚ୍ଛୁ ( ଗଛ )

ଅକ୍ଷୀଣ—ବି. ବ୍‌ଂ.(ଅ+କ୍ଷୀଣ) ନ.ତତ୍; ଅକୃଶ, ସବଳ, ଦୃଢ଼, ସ୍ଥୂଳ ( ସ୍ତ୍ରୀ ) ଅକ୍ଷୀଣା ।

ଅକ୍ଷୀଣବୃତ୍ତ—ପୁଂ. ବ୍‌ଂ. (ବ.ବ୍ରୀ) ବେଦ ବିହିତ ଆଚରଣସ୍ଥ, ଚରିତ୍ରବାନ୍ ( ସ୍ତ୍ରୀ ) ଅକ୍ଷୀଣବୃତ୍ତା ।

ଅକ୍ଷୀବ—କ୍ଲୀ. ବ. (ଅ+କ୍ଷୀବ୍+ଣ. ଅ) ସାମୁଦ୍ରିକ ଲବଣ,ସଜନା(ଗଛ)ପୁଂ.ବ୍‌ଂ. ଅନୁନ୍ମତ, ଗର୍ବଶୂନ୍ୟ (ସ୍ତ୍ରୀ) ଅକ୍ଷୀବା ।

ଅକ୍ଷୀର—କ୍ଲୀ. ବ. ସଜନାଗଛ ।

ଅକ୍ଷୁଣ୍ଣ—ବି. ବ୍‌ଂ. (ଅ+କ୍ଷୁଣ୍ଣ) ନ. ତତ୍ ନିଖୁଣ, ଅକ୍ଷୁବ୍ଧ, ପୂର୍ଣ୍ଣ, ଅଚ୍ଛିନ୍ନ, ଅମ୍ଳାନ, ସୁସ୍ଥ, ଅରୁଦ୍ଧ, ଅକର୍ତ୍ତିତ, ଅକ୍ଷତ, (ସ୍ତ୍ରୀ) ଅକ୍ଷୁଣ୍ଣା ।

ଅକ୍ଷୁଧ—ପୁଂ.ବ୍‌ଂ. ( ଅ+କ୍ଷୁଧା) ବ. ବ୍ରୀ. କ୍ଷୁଧାରହିତ, ଯାହାକୁ ଭୋକ କରେ ନାହିଁ ( ସ୍ତ୍ରୀ ) ଅକ୍ଷୁଧା ।

ଅକ୍ଷୁବ୍ଧ—ବି . ବ୍‌ଂ. (ଅ+କ୍ଷୁବ୍ଧ) ନ.ତତ୍; ଅବ୍ୟାକୁଳ, ଧୀର, କ୍ଷୋଭଶୂନ୍ୟ, ଅଦୁଃଖିତ, ଶାନ୍ତ, ଯେ ଭୟରେ ଓ ବିପଦରେ ବ୍ୟାକୁଳିତ ହୁଏନାହିଁ (ସ୍ତ୍ରୀ) ଅକ୍ଷୁବ୍ଧା ।

ଅକ୍ଷୁଭିତ—ବି. ବ୍‌ଂ. ( ଅ+କ୍ଷୁଭିତ ) ନ.ତତ୍; ଅକ୍ଷୁବ୍ଧ(ଦେଖ) (ସ୍ତ୍ରୀ)ଅକ୍ଷୁଭିତା ।

ଅକ୍ଷେତ୍ର—କ୍ଲୀ. ବ. ( ଅ+କ୍ଷେତ୍ର ) ନ. ତତ୍; ମରୁଭୂମି, ଅପାତ୍ର, ଅଯୋଗ୍ୟ ବ୍ୟକ୍ତି ।

ଅକ୍ଷେମ—କ୍ଲୀ. ବ. ( ଅ+କ୍ଷେମ ) ନ. ତତ୍; ଅଶୁଭ, ଅମଙ୍ଗଳ ।

ଅକ୍ଷୋଟ—ପୁଂ. ବ. ( ଅକ୍ଷ+କ. ଉଟ ) ଆଖରୋଟ, ଫଳବିଶେଷ ଓ ତାହାର ବୃକ୍ଷ ।

ଅକ୍ଷୋଭ—ପୁଂ. ବ. ( ଅ+କ୍ଷୋଭ ) ନ. ତତ୍; କ୍ଷୋଭହୀନତା, କାତରତାର ଅଭାବ, ହସ୍ତୀବନ୍ଧନସ୍ତମ୍ଭ (ସ୍ତ୍ରୀ) ଅକ୍ଷୋଭା (ବ୍‌ଂ) ବ.ବ୍ରୀ. କ୍ଷୋଭରହିତ,ଅକାତର, କ୍ଷୋଭଶୂନ୍ୟ ।

ଅକ୍ଷୋଭଣୀୟ—ବି. ବ୍‌ଂ. ( ନ. ତତ୍ ) ଅବିଚଳନୀୟ, ଅଧୃଷ୍ୟ, (ସ୍ତ୍ରୀ) ଅକ୍ଷୋଭଣୀୟା ।

ଅକ୍ଷୋଭିତ—ବି. ବ୍‌ଂ. ( ନ. ତତ୍ ) ଅବିଚଳିତ, ଅନୁଦ୍ବେଜିତ, ( ସ୍ତ୍ରୀ ) ଅକ୍ଷୋଭିତା ।

ଅକ୍ଷୋଭିନ୍—ପୁଂ. ବିଂ. (ଅ+କ୍ଷୋଭିନ୍) ନ.ତତ୍; ଅକ୍ଷୁବ୍ଧ, ଅବ୍ୟସ୍ତ, (ସ୍ତ୍ରୀ) ଅକ୍ଷୋଭିଣୀ ।

ଅକ୍ଷୋଭ୍ୟ—ବି. ବିଂ. (ଅ+କ୍ଷୁଭ+ଣ୍ୟ.ଯ) ଅବିଚଳନୀୟ, ଅଧୃଷ୍ୟ, (ସ୍ତ୍ରୀ) ଅକ୍ଷୋଭ୍ୟା ।

ଅକ୍ଷୌହିଣି(ଣୀ)—ସ୍ତ୍ରୀ. ବି. (ଅକ୍ଷ+ଊହ+ଣିନ୍—ଇନ୍+ଆ) ଅସଂଖ୍ୟ ସେନା, ଏହାର ପରିମାଣ ଯଥା—୧୦୯୩୫୦ ପଦାତି, ୬୫୬୧୦ ଅଶ୍ୱ, ୨୧୮୭୦ ହସ୍ତୀ, ୨୧୮୭୦ ରଥ ।

ଅଖ୍‌ଟି—ପୁଂ.ବି. (ଅ+ଖଟ୍+ଭା.ତି) ମନ୍ଦାଚରଣ ।

ଅଖ୍‌ନି—(ଯା) ବି. ମାଂସଝୋଳ, ପଲଉ ପାଇଁ ପ୍ରସ୍ତୁତ ମସଲାସିଝା ପାଣି ।

ଅଖ୍‌ରୋଟ—ଗ୍ରା. ବି. ବିଦେଶୀୟ ଫଳ-ବିଶେଷ ।

ଅଖ—ଗ୍ରା. ବି. (ସଂ-ଅକ୍ଷ ଶବ୍ଦଜ) ଶଗଡ଼ ଦୁଇ ଚକ ମଧ୍ୟରେ ଲାଗିଥିବା ଭାରବାହୀ ଦଣ୍ଡ, ଓଖ, ଦୋଷ, ବାହାନା, ଠକାମି ।

ଅଖଉରିଆ—ଗ୍ରା. ବିଂ. ଯେଉଁ ଲୋକ କ୍ଷୌର ହୋଇ ନଥାଏ, ଯାହା ଦେହ କର୍କଶ ନୁହେଁ ।

ଅଖଳାଡ଼ିବା—ଗ୍ରା. କ୍ରି.ବାହାନା କରିବା, ଛଳନା କରିବା ।

ଅଖିଞ୍ଜ—ଗ୍ରା. ବି. ଅସୁବିଧା, ଅସଜ, (ବିଂ.) ଅସୁବିଧାଜନକ, ଅସଜିଆ ।

ଅଖଞ୍ଜା—ଗ୍ରା. ବିଂ. ଅନିର୍ଦ୍ଦିଷ୍ଟ, ଯେଉଁ ଗୃହର ଖଞ୍ଜା ବା ଅଗଣା ନାହିଁ, ଯୋଗ ହୋଇ ନ ଥିବା । [ ଜନକ ।

ଅଖିଞ୍ଜିଆ—ଗ୍ରା.ବିଂ. ଅସଜଆ, ଅସୁବିଧା-

ଅଖଟ—ଗ୍ରା. ବିଂ. (ସଂ-ଅଘଟ) ନଅଣ୍ଟ, ଦୁର୍ଘଟ, କଠିନ, (ବି) ଅଭାବ, ଅନଟନ ।

ଅଖଟଖଟ—ଗ୍ରା. ବି. ଅଣ୍ଟନଅଣ୍ଟ, ଅଣ୍ଟିବା ଓ ନଅଣ୍ଟିବା ଅବସ୍ଥା ।

ଅଖଟୁ—ଗ୍ରା. ପୁଂ. ସ୍ତ୍ରୀ. ବିଂ. ପରିଶ୍ରମ-କାତର, ଅଳସୁଆ, ଅକାରଣ, ଅକାମିକା

ଅଖଠ—ବି. (ଅ+ଖଟ୍+ଟ) ଗୁର କୋଳିଗଛ, ପିଆଳ ବୃକ୍ଷ ।

ଅଖଠି—ବି. (ଅଖଟ୍+ଭା. ତି) ମନ୍ଦ ଆଚରଣ, ଅଭଦ୍ର ବ୍ୟବହାର ।

ଅଖଡ଼—ଗ୍ରା. ବି. ଅକଳ, ଅଖଞ୍ଜ, ଅନିୟମ, ଗୋଳମାଳ, ଓଲଟ ପାଲଟ, (ବିଂ) ଅଖାଡ଼ୁଆ, ଅନିୟମିତ, ଅକଳିଆ, ଅସୁବିଧାଜନକ ।

ଅଖଡ଼ବଖଡ଼—ଗ୍ରା. ବି. ଅଡ଼ୁଆ, କଳିଗୋଳ, ବିବାଦ, ( ବିଂ ) ଅଖଞ୍ଜିଆ, ଅଖାଡ଼ୁଆ ।

ଅଖଡ଼େ—ଗ୍ରା. କ୍ରି. ବିଂ. ଅକାରଣରେ, ବୃଥାରେ, ଅନାୟାସରେ, ଅକଳରେ

ଅଖଣ୍ଡ—ବି. ବିଂ. (ଅ+ଖଣ୍ଡ) ବ.ବ୍ରୀ. ପୂର୍ଣ୍ଣ, ଗୋଟା, ନିଖୁଣ, ଅବିଭକ୍ତ, ଅଖଣ୍ଡିତ, ଯାହା ପରିବର୍ତ୍ତନ ହୋଇ ନ ପାରେ, ଅକାଟ୍ୟ, (ବି.) ଅଖଣ୍ଡନ ।

ଅଖଣ୍ଡଦଣ୍ଡ—ପୁଂ. ବି. ( କ. ଧା ) ଅବ୍ୟାହତ ପ୍ରଭୁତ୍ୱ, ଏକାଧିପତ୍ୟ ।

ଅଖଣ୍ଡ ଦ୍ୱାଦଶୀ—ସ୍ତ୍ରୀ. ବି. ମାର୍ଗଶିର ଶୁକ୍ଳ ଦ୍ୱାଦଶୀ ।

ଅଖଣ୍ଡନ—ପୁଂ. ବି. (ଅ+ଖଣ୍ଡନ) ଅମେଣ୍ଟଣ, ଅଲଙ୍ଘନ, ପରମାତ୍ମା ବ୍ରହ୍ମ (ବ.ବ୍ରୀ.ବିଂ.)ଖଣ୍ଡନାଯୋଗ୍ୟ,ଅବିଭକ୍ତ, ସମ୍ପୂର୍ଣ୍ଣ, ଗୋଟା ।

ଅଖଣ୍ଡନୀୟ—ବି. ବିଂ. (ଅଖଣ୍ଡ+ଅନୀୟ) ଯାହା ଖଣ୍ଡ ବା ଭଙ୍ଗା ଯାଇ ନପାରେ, ଅକାଟ୍ୟ, ଅଲଙ୍ଘନୀୟ, ଅବିଭାଜ୍ୟ (ସ୍ତ୍ରୀ) ଅଖଣ୍ଡନୀୟା ।

ଅଖଣ୍ଡମଣ୍ଡଳ—ବି. (କ. ଧା) ପୂର୍ଣ୍ଣବୃତ୍ତ, (ବ୍ରୀ ) ଯେଉଁ ବୃତ୍ତ ଖଣ୍ଡିତ ହୋଇନାହିଁ

ଅଖଣ୍ଡମଣ୍ଡଳାକାର—ବି. ବିଂ. ସମ୍ପୂର୍ଣ୍ଣ ଗୋଲ, ଗୋଟା ଚକର ଆକୃତିବିଶିଷ୍ଟ ।

ଅଖଣ୍ଡ ରାଜତ୍ୱ—ବି. (କ. ଧା) ଅନବଚ୍ଛିନ୍ନ ରାଜ୍ୟଭୋଗ, ନିଷ୍କଣ୍ଟକ ରାଜପଣ; ପ୍ରତିଦ୍ୱନ୍ଦ୍ୱୀ ରହିତ ରାଜତ୍ୱ ।

ଅଖଣ୍ଡିତ—ବି. ବିଂ. ( ଅ+ଖଣ୍ଡିତ ) ନ. ତତ୍. ଅବିଭକ୍ତ, ଅକର୍ତ୍ତିତ, ଯାହା ଖଣ୍ଡିଆ ନୁହେ, ଧାରାବାହିକ, ( ବି ) ଅଖଣ୍ଡଳ, ଦେବତାଙ୍କ ଆଗରେ ଅହୋରାତ୍ର ଜଳୁଥିବା ଦୀପ ।

ଅଖଣ୍ଡିତର୍ତ୍ତୁ—ବି.ବିଂ.ସଫଳ ବୃକ୍ଷାଦି ।

ଅଖଣ୍ଡ୍ୟ—ବିଂ. ( ଅ+ଖଣ୍ଡ+ଣ୍ୟ. ଯ ) ଅଖଣ୍ଡନୀୟ ( ଦେଖ )

ଅଖଚା—ଗ୍ରା. ପୁଂ. ସ୍ତ୍ରୀ. ବିଂ. ଅସଭ୍ୟ, ହିତାହିତ ଜ୍ଞାନଶୂନ୍ୟ, ଅମାର୍ଜିତ, ଅଖାଡ଼ୁଆ, ଅଭଦ୍ର ।

ଅଖରକା—ଗ୍ରା. ବିଂ. ଗୁଞ୍ଜୁଣି ବା ଝାଡ଼ୁଦ୍ୱାରା ଅମାର୍ଜିତ ( ସ୍ଥାନ ) ।

ଅଖରଚୀ—ପୁଂ. ବିଂ. ଯେଉଁ ଲୋକ ବ୍ୟୟ କରେନାହିଁ, କୃପଣ ।

ଅଖଳ—ପୁଂ. ବିଂ. (ଅ+ଖଳ) ଉତ୍ତମ ପ୍ରକୃତ (ସ୍ତ୍ରୀ) ଅଖଳା(ଗ୍ରା.ବିଂ.) ଅଖଳିଆ

ଅଖା—ଗ୍ରା. ବି. ପାଲ, ଝୋଟ ବା ଛଣ ପଟରେ ତିଆରି ବସ୍ତା, ଥଳୀ, ବୋରା ।

ଅଖାଇ—ଗ୍ରା. ସ୍ତ୍ରୀ. ବିଂ. ଅଖିଆର ସ୍ତ୍ରୀଲିଙ୍ଗ, ଯେଉଁ ସ୍ତ୍ରୀ ଖାଇନାହିଁ, ଅଳପ ଖାଉଥିବା (ବିଂ. ବ୍ୟଙ୍ଗ) ବହ୍ୱାହାରକାରିଣୀ ସ୍ତ୍ରୀ ( ବିଂ. ବ୍ୟଙ୍ଗ ) ବହୁତ ଖାଉଥିବା ।

ଅଖାଉଟିଆ—ଗ୍ରା. ପୁଂ. ବିଂ. ଯେଉଁଲୋକ ନିଜେ ଖାଇବା ପାଇଁ ବଜାରରୁ ଖାଦ୍ୟ ଦ୍ରବ୍ୟ କିଣେନାହିଁ ।

ଅଖାଏଦ୍—(ସମ୍ବ) ଗ୍ରା. ବି. ବିଂ. ଅଖାଦ୍ୟ

ଅଖାଡ଼ୁ—ଗ୍ରା. ପୁଂ. ସ୍ତ୍ରୀ. ବିଂ. ବିବେକଶୂନ୍ୟ, ହିତାହିତଜ୍ଞାନଶୂନ୍ୟ, ଏକଜିଦିଆ, ଅଖାଡ଼ୁଆ ।

ଅଖାଡ଼ୁଆ—ଗ୍ରା. ପୁଂ. ବିଂ. ବିବେଚନାଶୂନ୍ୟ, ( ସ୍ତ୍ରୀ ) ଅଖାଡ଼େଇ ।

ଅଖାତ—କ୍ଳୀ. ବି. (ଅ+ଖାତ) ପ୍ରାକୃତିକ ଜଳାଶୟ, ଉପସାଗର, ହ୍ରଦ, ଦେବଖାତ ।

ଅଖାତର—ଗ୍ରା.ବି.ବେଖାତିର, ଅସମ୍ମାନ, ଅପମାନ ( ବିଂ ) ଅଖାତରିଆ ।

ଅଖାଉରିଆ—ଗ୍ରା. ବିଂ. ଯେ କାହାରିକୁ ଖାତିର ବା ପସନ୍ଦ କରେ ନାହିଁ, ଅମର୍ଯ୍ୟାଦ ।

ଅଖାତିର୍—ଗ୍ରା. ବି. ବେଖାତିର,ଅମାନ୍ୟ, ଅସମ୍ମାନ,(ବିଂ) ଅଖାତିରୀ,ଅଖାତିରିଆ ।

ଅଖାଦ୍—(ବସ୍ତ୍ରର) ଗ୍ରା. ବି. ବିଂ. ଅଖାଦ୍ୟ

ଅଖାଦ—ଗ୍ରା. ବିଂ. ଯେଉଁ ଗହଣାରେ ଭେଳ ମିଶି ନାହିଁ, ବିଶୁଦ୍ଧ, ଅମିଶ୍ରିତ ।

ଅଖାଦିତ—ପୁଂ.ବିଂ.(ନ.ତତ୍)ଅଭୁକ୍ତ,ଯେ ଖାଇନାହିଁ,ଉପବାସୀ,(ସ୍ତ୍ରୀ)ଅଖାଦିତା ।

ଅଖାଦ୍ୟ—ତ୍ରି. ବିଂ. ( ଅ+ଖାଦ୍ୟ ) ଭୋଜନର ଅନୁପଯୁକ୍ତ, ଅଭକ୍ଷ, ଅସ୍ୱାସ୍ଥ୍ୟକର ( ଖାଦ୍ୟ ) ।

ଅଖିଆ—ଗ୍ରା.ବିଂ.ଯେ ଖାଇନାହିଁ, କ୍ଷୁଧାର୍ତ୍ତ, ( ସ୍ତ୍ରୀ ) ଅଖାଇ, ( ବି ) ନ ଖାଇବା ।

ଅଖିନ୍ନ—ପୁଂ. ବିଂ. ଖେଦଶୂନ୍ୟ, କ୍ଳେଶହୀନ, ଅଶ୍ରାନ୍ତ, ଅକ୍ଳାନ୍ତ, ( ସ୍ତ୍ରୀ ) ଅଖିନ୍ନା ।

ଅଖିଳ—ବିଂ. ( ଅ+ଖିଳ ) ବ, ବ୍ରୀ; ସମସ୍ତ, ସମଗ୍ର, ( ବି ) ଅଖିଳ ବ୍ରହ୍ମାଣ୍ଡ, ( ସ୍ତ୍ରୀ ) ଅଖିଳା ।

ଅଖିଳଜନନୀ—ସ୍ତ୍ରୀ.ବି.(ଷତତ୍)ଜଗନ୍ମାତା, ଲକ୍ଷ୍ମୀ,ରାଧିକା,ପୃଥିବୀ, ସମସ୍ତ ଜଗତର ମାତା ।

ଅଖିଳାତ୍ମା—ପୁଂ. ବି. (ଅଖିଳ+ଆତ୍ମନ୍) ପରଂବ୍ରହ୍ମ, ବିଶ୍ୱାତ୍ମା ।

ଅଖୁଆ—ଗ୍ରା. ବିଂ. ଯାହା ଖାଇବେ ଖୁଆ ହୋଇନାହିଁ ( କପା ) ।

ଅଖୁଣ—ଗ୍ରା. ବିଂ. (ସଂ-ଅକ୍ଷୁଣ୍ଣ) ଯହିଁରେ ଖୁଣ, କ୍ଷତ ବା ଦାଗ ନାହିଁ, ନିଖୁଣ ।

ଅଖେଦ—ପୁଂ. ବି. (ନ.ତତ୍) ଖେଦାଭାବ, ଆକ୍ଷେପରାହିତ୍ୟ (ସ୍ତ୍ରୀ) ଅଖେଦା (ବିଂ) ମନୋବେଦନା ଶୂନ୍ୟ ।

ଅଖ୍ୟାତ—ତ୍ରି. ବିଂ. (ଅ+ଖ୍ୟାତ) ଅପ୍ରସିଦ୍ଧ, (ସ୍ତ୍ରୀ) ଅଖ୍ୟାତା (ବି) ନିନ୍ଦା, ଅପବାଦ, କୁଯଶ ।

ଅଖ୍ୟାତନାମା—ପୁଂ. ସ୍ତ୍ରୀ. ବିଂ. (ଅ+ଖ୍ୟାତନାମନ୍) ନ.ତତ୍; ଅପ୍ରସିଦ୍ଧ ନାମବିଶିଷ୍ଟ,ଅଜ୍ଞାତନାମା,ସଂସାରରେ ଯାହାର ନାଆଁ ପଡୁନାହିଁ ।

ଅଖ୍ୟାତି—ସ୍ତ୍ରୀ. ବି. (ଅ+ଖ୍ୟାତି) ନ.ତତ୍; ନିନ୍ଦା, ଅପବାଦ, ଅପ୍ରତିଷ୍ଠା, ଅପଯଶ ।

ଅଗ୍—(ଧାତୁ) ବକ୍ର ଗମନ କରିବା ।

ଅଗ—ପୁଂ. ବି. (ଅ+ଗମ୍+କ, ଅ) ପର୍ବତ, ବୃକ୍ଷ, ସୂର୍ଯ୍ୟ, ସର୍ପ, (ଗ୍ରା) ଅଗ୍ର, ବସ୍ତୁର ଶେଷଭାଗ, ଶୃଙ୍ଗ, ଶିଖର (ବିଂ) ଗମନରହିତ, ଅଚଳ, (ସ୍ତ୍ରୀ) ଅଗା ।

ଅଗଉର୍—ଗ୍ରା. ବି. ( ସଂ-ଅଗୌରବ ) ବେଖାତିର, ଅମାନ୍ୟ, ଅନାଦର, ଅମର୍ଯ୍ୟାଦା ।

ଅଗଉରିଆ—ଗ୍ରା. ବି. ଅଗଉର୍, ଅସମ୍ମାନ ( ବିଂ. ) ଗୌରବହୀନ, ଅନାଦୃତ, ଅସମ୍ମାନିତ ।

ଅଗଙ୍ଗ—ତ୍ରି. ବିଂ. (ଅ+ଗଙ୍ଗା) ବ.ବ୍ରୀ; ଗଙ୍ଗାଶୂନ୍ୟ (ଦେଶ) ଗଙ୍ଗାନଦୀ ଠାରୁ ଦୂରକୋଣରେ ଅବସ୍ଥିତ(ଦେଶ) ନଦୀହୀନ (ଦେଶ) ସ୍ତ୍ରୀ- ଅଗଙ୍ଗା ।

ଅଗଛ—ଗ୍ରା. ବି. ଅକାମିକା ଗଛ, ମୂଲ୍ୟହୀନଗଛ, ଅକର୍ମଣ୍ୟ ଉଦ୍ଭିଦ୍ ।

ଅଗଚ୍ଛ—ଗ୍ରା. ବି. ଅଗଛ (ଦେଖ) ସ୍ତ୍ରୀ. ଅଗଛୀ(ବିଂ.)ଅସୁନ୍ଦର, ଅନୁପଯୋଗୀ ।

ଅଗଛୀ—ଗ୍ରା. ସ୍ତ୍ରୀ.ବିଂ. ଯେଉଁ ସ୍ତ୍ରୀ ଠାରେ ଅନ୍ୟଲୋକ କରିଥିବା କାର୍ଯ୍ୟକୁ ମିଥ୍ୟା-ଆରୋପ କରାଯାଏ ।

ଅଗଛୀ କି ଗଛେଇମା—ଗ୍ରା. ତ୍ରି (ପ୍ରବଚନ)ଜଣକର କଲା କାର୍ଯ୍ୟକୁ ମିଥ୍ୟାରେ ଅନ୍ୟଠାରେ ଆରୋପ କରିବା, ଅସମ୍ଭବ କଥାକୁ ସଜେଇ ସମ୍ଭବ କରି କହିବା ।

ଅଗଜ—ତ୍ରି. ବିଂ. (ଅ+ଗଜ) ବ.ବ୍ରୀ ; ଗଜଶୂନ୍ୟ (ଦେଶ) ବୃକ୍ଷଜାତ, ଶୈଳଜାତ, ( ଅଗ+ଜନ+କ. ଅ ) ବି. ଶିଳାଜତୁ ।

ଅଗଠଣ—ଗ୍ରା. ବିଂ. ଅସୁନ୍ଦର, ଯାହାର ଗଢ଼ଣ ଅସୁନ୍ଦର ।

ଅଗଠନ—ଗ୍ରା. ବି. ଅସୁନ୍ଦର, ।

ଅଗଡ଼ଧଡ଼ା—ଗ୍ରା. ପୁଂ. ବିଂ. ଅବ୍ୟବସ୍ଥିତଚିତ୍ତ, ଅଢଙ୍ଗା, ବୃହତ୍‌କାୟ, ଅଗଡ଼ଧଡ଼, ଅଗଡ଼ଧଡ଼ିଆ, (ସ୍ତ୍ରୀ) ଅଗଡ଼ଧଡ଼େଇ ।

ଅଗଡ଼ବଗଡ଼—ଗ୍ରା. ବିଂ. ବେଠିକଣା, କ୍ରମବିହୀନ, ବିବିଧ ଦ୍ରବ୍ୟ ସମ୍ମିଶ୍ରଣ, ଅସମ୍ବନ୍ଧ, ବ୍ୟର୍ଥ, ଅଲଗ୍ନ, ଅପ୍ରବ୍ୟସ୍ତ, (ବି) ଏଣୁ ତେଣୁ, ଯାଚ୍ଛାତା ।

ଅଗଡ଼ା—ଗ୍ରା. ବି. ନାଲିହିଣି, ନାଲିଆ ଦାସକେରେଣ୍ଡା ଗୁଳ୍ମ ।

ଅଗଣ—ବି. (ଅ+ଗଣ) ନିକୃଷ୍ଟ ଶ୍ରେଣୀ, ନିକୃଷ୍ଟଗଣ (ଗ୍ରା. ବିଂ.) ଅଗଣ୍ୟ ।

ଅଗଣତି—ଗ୍ରା.ବିଂ.(ସଂ-ଅଗଣିତ)ଅଗଣ୍ୟ, ଅସଂଖ୍ୟ,ଯାହା ସୁମାର ହୋଇନାହିଁ ।

ଅଗଣନ—ତ୍ରି.ବିଂ.(ଅ+ଗଣନା)ବ.ବ୍ରୀ; ଅସଂଖ୍ୟ, ଅସୁମାର, (ସ୍ତ୍ରୀ) ଅଗଣନା ।

ଅଗଣନୀୟ—ତ୍ରି,ବିଂ.(ନ.ତତ୍) ଅଗଣ୍ୟ, ଅସଂଖ୍ୟ, ଅଗଣିତ, ଅଗ୍ରାହ୍ୟ, ଯାହା ବିବେଚନା ବା ଗୃହୀତ ଯୋଗ୍ୟ ନୁହେଁ, ସମାଜର ଗଣ୍ୟମାନ୍ୟ ନୁହେଁ, ( ସ୍ତ୍ରୀ ) ଅଗଣନୀୟା ।

ଅଗଣା—ଗ୍ରା. ବି. (ସଂ-ଅଙ୍ଗନ) ପ୍ରାଙ୍ଗଣ, କ୍ଷେତ୍ର, ସ୍ଥାନ, (ବିଂ) ଅଗଣ୍ୟ, ହେୟ ।

ଅଗଣିତ—ତ୍ରି. ବିଂ. (ଅ+ଗଣିତ) ଯାହା ସଂଖ୍ୟା କରାଯାଇ ନ ପାରେ (ସ୍ତ୍ରୀ) ଅଗଣିତା ।

ଅଗଣିତା—ସ୍ତ୍ରୀ. ବିଂ. ଅଗଣିତର ସ୍ତ୍ରୀଲିଙ୍ଗ; (ଗ୍ରା) ଅଗଣ୍ୟ, ଅସଂଖ୍ୟ ।

ଅଗଣ୍ଡ—ଗ୍ରା. ବିଂ. ( ସଂ-ଅଗମ୍ୟ ) ପରିମାଣରେ ଅମାପ, ଅତିଅଧିକ, ଅତଳସ୍ପର୍ଶୀ, ପୂର୍ଣ୍ଣ ( ଭୋଜନ ) ।

ଅଗଣ୍ୟ—ତ୍ରି. ବିଂ, ( ଅ+ଗଣ୍ୟ ) ଅସଂଖ୍ୟ, ନଗଣ୍ୟ, ତୁଚ୍ଛ, ହେୟ, ଅଗ୍ରାହ୍ୟ ( ସ୍ତ୍ରୀ ) ଅଗଣ୍ୟା ।

ଅଗତ୍—ଗ୍ରା. ବି. ହାତୀକୁ ଆଗକୁ ଚଳାଇବାପାଇଁ ମାହୁନ୍ତର ଡାକ ।

ଅଗତ—ବି.ବଂ.(ଅ+ଗତ) ଵିଦ୍ୟମାନ, ବର୍ତ୍ତମାନ, ଅପ୍ରାପ୍ତ (ସ୍ତ୍ରୀ) ଅଗତା ।

ଅଗତି—ବି. ବଂ. ଗତିହୀନ, ଅଚଳ ନିରୁପାୟ, ଅସହାୟ, ଅନାଥ, ବିପନ୍ନ (ଗ୍ରା. ବଂ) ଅସତ୍‌ପଥଗାମୀ, ସ୍ତ୍ରୀ. ବ. (ଅ+ଗତି) ନ-ତତ୍; ଉପାୟର ଅଭାବ,ଗତିରାହିତ୍ୟ, ଚଳନର ଅଭାବ ।

ଅଗତିକ—ପୁଂ.ବଂ.(ବ. ବ୍ରୀ) ନିରୁପାୟ, ନିରାଶ୍ରୟ, ଅଶରଣ, ଗତିହୀନ (ସ୍ତ୍ରୀ) ଅଗତିକା ।

ଅଗତ୍ୟା—କ୍ରି. ବଂ. ନିରୁପାୟ ହୋଇ, ଅନନ୍ୟଗତିକ ହୋଇ, ବାଧ୍ୟହୋଇ, ସୁତରାଂ, ଫଳତଃ ।

ଅଗଦ—ପୁଂ. ବଂ. (ଅ+ଗଦ) ବ.ବ୍ରୀ; ନୀରୋଗ, ସୁସ୍ଥ, (ଅ+ଗଦା )ବ. ବ୍ରୀ; ଗଦାବିହୀନ, ଗଦା ଧର ନଥିବା, (ସ୍ତ୍ରୀ) ଅଗଦା, ପୁଂ. (ବ) ଔଷଧ, ସୁସ୍ଥତା, ନୀରୋଗତା ।

ଅଗଦଙ୍କାର—ପୁଂ. ବ. (ଅଗଦଂ+କୃ+କ.ଅ)ଚିକିତ୍ସକ,ବୈଦ୍ୟ, କବିରାଜ ।

ଅଗଦ୍ୟ—ବ. (ଅ+ଗଦ୍ୟ) ଯେଉଁ ଗଦ୍ୟ ରଚନାରେ ଦୋଷ ଅଛି, (ବଂ) ଅକଥ୍ୟ, ଅକଥନୀୟ ।

ଅଗନାଅଗନ—ଗ୍ରା. ବଂ. ଅତି ଅଗମ୍ୟ, ନିବିଡ଼, ଦୁର୍ଭେଦ୍ୟ, ଅଗନାଗନ, ଅଗନାଗିନ, ଅଗନାଗ୍ନି ।

ଅଗନି—ପୁଂ. ବ. (ପ୍ରା. କ) (ସଂ-ଅଗ୍ନି) ନିଆଁ, ଅଗ୍ନି ।

ଅଗନ୍ତବ୍ୟ—ବି. ବଂ. (ଅ+ଗନ୍ତବ୍ୟ) ଗମନର ଅଯୋଗ୍ୟ, ଦୁର୍ଗମ, ଯେଉଁ ଠାକୁ ଗମନକରିବା ଅନୁଚିତ (ସ୍ତ୍ରୀ) ଅଗନ୍ତବ୍ୟା ।

ଅଗବଥୁ—ଗ୍ରା. ବ. (ସଂ-ଅଗ୍ନିମନ୍ଥ) ଅଗ୍ନି-ମଥନ, ଅଗ୍ନିମନ୍ଥ ବୃକ୍ଷବିଶେଷ ।

ଅଗଭୀର—ବି. ବଂ. (ଅ+ଗଭୀର) ନ. ତତ୍; ଯାହା ଅଧିକ ଗଭୀରନୁହେ, ଅପ୍ରଗାଢ଼ (ସ୍ତ୍ରୀ) ଅଗଭୀରା ।

ଅଗମ—ପୁଂ. ବ (ଅ+ଗମ୍+କ. ଅ) ପର୍ବତ, ଗଛ (ବଂ) ବ. ବ୍ରୀ; ସ୍ଥିର, ଗତିହୀନ (ସ୍ତ୍ରୀ) ଅଗମା ।

ଅଗମତା—ସ୍ତ୍ରୀ, ବ. (ଅଗମ+ଭା. ତା) ଅମର୍ଯ୍ୟାଦା, ସମ୍ମାନ ନ ଦେଖାଇବା, ଅପମାନ ।

ଅଗମନୀୟ—ବି. ବଂ. (ଅ+ଗମନୀୟ) ନ. ତତ୍; ଅଗମ୍ୟ (ଦେଶ) ସ୍ତ୍ରୀ. ଅଗମନୀୟା ।

ଅଗମ୍ୟ—ବି. ବଂ. (ଅ+ଗମ୍ୟ) ନ. ତତ୍; ଗମନର ଅଯୋଗ୍ୟ, ଦୁର୍ଗମ, ଦୁର୍ଭେଦ୍ୟ, ଯେଉଁଠାକୁ ଗତିବଧିର-ଉପାୟ ନାହିଁ, ଦୁଷ୍ପ୍ରବେଶ, ଦୁର୍ବୋଧ, ଅଜ୍ଞେୟ, ଅପ୍ରାପ୍ୟ (ସ୍ତ୍ରୀ) ଅଗମ୍ୟା ।

ଅଗମ୍ୟା—ସ୍ତ୍ରୀ. ବ. (ଅଗମ୍ୟ+ଆ) ଯିବାର ଅଯୋଗ୍ୟ ବା ଅସାଧ୍ୟ, ଯାହା ସହିତ ସଙ୍ଗମ ନିଷିଦ୍ଧ, ଯାହା ସହିତ ସମ୍ଭୋଗକଲେ ନରକରେ ପଡ଼ିବାକୁ ହୁଏ ଏପରି (ସ୍ତ୍ରୀଲୋକ) ।

ଅଗମ୍ୟାଗମନ—କ୍ଲୀ. ବ. (୬ତତ୍ ବା ୭ତତ୍) ଅଗମ୍ୟା ସ୍ତ୍ରୀ ସମ୍ଭୋଗ ।

ଅଗର୍—(ଯା) ଅ. ଯଦି, ଯଦ୍ୟପି, ମାତ୍ର, କିନ୍ତୁ, ପକ୍ଷାନ୍ତରେ, (ଗ୍ରା, ବ) ଅଭ୍ର ମେଘ ।

ଅଗର—(ଯା)-ସୁଗନ୍ଧିକାଷ୍ଠ ବିଶେଷ, ଏକପ୍ରକାର ଚନ୍ଦନ,(ଗ୍ରା) କାଠଫୋଡ଼ା ଯନ୍ତ୍ର, ଅଗରଭଅଁର ।

ଅଗରଜ—ଗ୍ରା.ବ.ଗରଜ ବା ଆବଶ୍ୟକ-ତାର ଅଭାବ ।

ଅଗରଜା—ଗ୍ରା.ବ. କଞ୍ଚା ଦୁଗ୍ଧ, ଯେଉଁ ଦୁଗ୍ଧ ଉଷୁମ କରାଯାଇ ନ ଥାଏ ।

ଅଗରଜାଏ—ଗ୍ରା. ବଂ. କରଜ ଶୁଝିବାକୁ ସମର୍ଥ ।

ଅଗରଜି—ପୁଂ. ଗ୍ରା. ବଂ. ଅଗରଜିଆ, ଯେ ଅଭାବଗ୍ରସ୍ତ ନୁହେ ।

ଅଗରଟିଡ଼ା—ଗ୍ରା.ବ. ଶାକଗୁଳ୍ମ ବିଶେଷ, ଅଗର ଝାଡ଼ିଆ ।

ଅଗରଦାନୀ—ଗ୍ରା. ବ. (ସଂ-ଅଗ୍ରଦାନୀ) ପତିତବ୍ରାହ୍ମଣ,ଯେଉଁ ବ୍ରାହ୍ମଣ ପ୍ରେତୋ-ଦ୍ଦିଷ୍ଟ ଦାନ ଗ୍ରହଣ କରନ୍ତି

ଅଗରବତୀ—ଗ୍ରା.ବ.(ସଂ-ଅଗୁରୁବର୍ତ୍ତିକା) ଧୂପକାଠି । [ ଅଗ୍ରଓ୍ୱାଲା

ଅଗରବାଲା—ଗ୍ରା. ବ. ଅଗ୍ରବଣିକ,

ଅଗରହିତ—ଗ୍ରା.ବଂ. (ସଂ-ଅ+ଗର୍ହିତ) ଅମନ୍ଦ, ଉତ୍ତମ, ଉପଯୋଗୀ (ବ) ଉପକାର, ମଙ୍ଗଳ ।

ଅଗରି—ଗ୍ରା. ବ. ବୃକ୍ଷାଦିର ଅଗ୍ରଭାଗ, ଗଛରୁ କଟାଯାଇଥିବା ଅଗଖଣ୍ଡ, କଣ୍ଟକଯୁକ୍ତ ଗୁଳ୍ମବିଶେଷ, ଗାଁ ଘଉଡ଼ା ।

ଅଗରୀ—ସ୍ତ୍ରୀ. ବ. ଦେବତାଡ଼ବୃକ୍ଷ ।

ଅଗରୁ—ଗ୍ରା. ବ. (ସଂ-ଅଗୁରୁ) ଅଗୁରୁଚନ୍ଦନ,(ବଂ) ଯାହା ଭାରିନୁହେ, ହାଲୁକା, (ଗଞ୍ଜାମ) ହାଣ୍ଟୁଆ,ଶୂଦ୍ରଜାତି-ବିଶେଷ, (ଚର୍ମବୃତ୍ତି), ଅଗ୍ରଭାଗରୁ, ଅଗଠାରୁ, ଅଗରୁ ।

ଅଗର୍ବ—ପୁଂ. ବ. (ଅ+ଗର୍ବ) ନ.ତତ୍ ଗର୍ବାଭାବ, ଅହଙ୍କାରହୀନତା, ବିନୟ, (ବଂ) ଗର୍ବରହିତ (ସ୍ତ୍ରୀ) ଅଗର୍ବା ।

ଅଗର୍ବିତ—ପୁଂ. ବଂ. (ଅ+ଗର୍ବିତ) ନ. ତତ୍; ଅନହଂକୃତ, ଅନୁଦ୍ଧତ, ବିନୀତ, ନିରହଙ୍କାର (ସ୍ତ୍ରୀ) ଅଗର୍ବିତା ।

ଅଗର୍ହ—ବି. ବଂ. (ଅ+ଗର୍ହ) ବ. ବ୍ରୀ; ନିନ୍ଦାହୀନ, ଯାହାର କୌଣସି ନିନ୍ଦା ନାହିଁ, (ସ୍ତ୍ରୀ) ଅଗର୍ହା ।

ଅଗର୍ହିତ—ବି. ବଂ. (ଅ+ଗର୍ହିତ) ନ. ତତ୍; ଅନିନ୍ଦିତ, ପ୍ରଶଂସାଜନକ, (ସ୍ତ୍ରୀ) ଅଗର୍ହିତା ।

ଅଗଲ୍‌ବଗଲ୍—(ଯା) କ୍ରି. ବଂ. ଇତସ୍ତତଃ, ଏଣେତେଣେ, (ବଂ) ଅନିଶ୍ଚିତ, ଦ୍ୱିଧାଯୁକ୍ତ (ବ) ସନ୍ଦେହ ।

ଅଗଲା—ଗ୍ରା. (ସମ୍ମ) ବଂ. ଆଗୁଆ, ଅଗ୍ରସର, ବଳପଡ଼ିଥିବା, ବଢ଼ିକା, ଆଗିଲା, ସମ୍ମୁଖବର୍ତ୍ତୀ ।

ଅଗସ୍ତି—ପୁଂ. ବ. (ଅଗ+ସ୍ତୈ+କ. ଅ) ଋଷିବିଶେଷ, ଅଗସ୍ତ୍ୟ ଋଷି, କୁମ୍ଭଯୋନି, ବକପୁଷ୍ପ, ଦକ୍ଷିଣାକାଶରେ

ଉତ୍କଳ ନକ୍ଷତ୍ର ବିଶେଷ,ବାଲେଶ୍ବର ଓ ମେଦନୀପୁର ଜିଲାର ବ୍ରାହ୍ମଣମାନଙ୍କର ଉପାଧି ।
ଅଗସ୍ତ୍ୟ—ପୁଂ. ବି.(ଅଗ+ସ୍ତୈ+କ.ଯ) ଅଗସ୍ତି ମୁନି, ବକପୁଷ୍ପ ଓ ବୃକ୍ଷବିଶେଷ, ନକ୍ଷତ୍ର ବିଶେଷ ।
ଅଗସ୍ତ୍ୟକୂଟ—ବି. ମାନ୍ଦ୍ରାଜ ପ୍ରଦେଶର ପର୍ବତ ବିଶେଷ, ଯହିଁରୁ ତାମ୍ରପର୍ଣ୍ଣୀ ନଦୀ ବାହାରି ଅଛି ।
ଅଗସ୍ତ୍ୟଯାତ୍ରା—ସ୍ତ୍ରୀ.ବି. ଭାଦ୍ରମାସର ପ୍ରଥମ ଦିନ, ( ଲ. ଅର୍ଥ ) ଯେଉଁ ଯାତ୍ରାରୁ ବାହୁଡ଼ି ଆସନ୍ତି ନାହିଁ ।
ଅଗସ୍ତ୍ୟସଂହିତା—ବି. ( ମଧ୍ୟ- କ.ଧା ) ଅଗସ୍ତିମୁନି ପ୍ରଣୀତ ସ୍ମୃତିଗ୍ରନ୍ଥ ।
ଅଗସ୍ତ୍ୟାଶ୍ରମ—ବି. (୬ ତତ୍) ଦାକ୍ଷିଣାତ୍ୟ ପୂର୍ବପାର୍ଶ୍ବ ମଳୟ ପର୍ବତର ପାଦ-ଦେଶରେ କାବେରୀ କୂଳରେ ଅବସ୍ଥିତ ଅଗସ୍ତି ମୁନିଙ୍କ ଆଶ୍ରମ ।
ଅଗସ୍ତ୍ୟୋଦୟ—ପୁଂ. ବି. (ଅଗସ୍ତ୍ୟ+ଉଦୟ) ଅଗସ୍ତ୍ୟନାମକ ନକ୍ଷତ୍ରର ଉଦୟ ( ଭାଦ୍ରଶୁକ୍ଳ ସପ୍ତମୀରେ ଉଦୟ ହୁଏ ) ।
ଅଗା—(ଗ୍ରା.) ବିଂ. ଓଲୁ,ମୂର୍ଖ, ନିର୍ବୋଧ, ଜଡ଼ବୁଦ୍ଧି, ଖଗା ।
ଅଗାଡ଼—ଗ୍ରା. ବି. ଫମ୍ପାଧାନ, (ଲ.ଅର୍ଥ) ଅଯୋଗ୍ୟବ୍ୟକ୍ତି(ବିଂ)ଅଯୋଗ୍ୟ,ଅଧମ ।
ଅଗାଡ଼ିଆ—ଗ୍ରା. ବିଂ. ଯେଉଁ ଧାନରେ ଅଗାଡ଼ ଥାଏ, ଅଗାଡ଼ପୂର୍ଣ୍ଣ (ଧାନ) ।
ଅଗାଣ୍ଠିଆ—ଗ୍ରା. ବିଂ. ଯେଉଁ ପାତ୍ରତଳେ ଗାଣ୍ଠି ବା ବଇଠି ନ ଥାଏ ।
ଅଗାତ୍ମଜା—ସ୍ତ୍ରୀ. ବି. ( ଅଗ+ଆତ୍ମଜା ) ୬ ତତ୍; ପାର୍ବତୀ ।
ଅଗାଧ—ତ୍ରି. ବିଂ. (ଅ+ଗାଧ+ଭା. ଅ) ଅତିଗଭୀର, ଅତଳସ୍ପର୍ଶ, ପ୍ରଗାଢ଼, ଅସୀମ (ସ୍ତ୍ରୀ) ଅଗାଧା (କ୍ଲୀ) ବି. ଗର୍ତ୍ତ ।
ଅଗାଧିଆ—ଗ୍ରା. ବିଂ. ଯେ ଗାଧୋଇ ନାହିଁ, ଅସ୍ନାତ । [ ଅଖାଡ଼ୁଆ ।
ଅଗାନିଗା—ଗ୍ରା. ବିଂ. ନିର୍ବୋଧ, ଓଲୁ

ଅଗାର—କ୍ଲୀ.ବି.(ଅଗ+ଆ+ଋ+କ.ଅ) ଗୃହ,ଆଗାର,ବାସସ୍ଥାନ,ରାଶି, ସମୂହ ।
ଅଗି—ଗ୍ରା. ବି. ମାଘପୂର୍ଣ୍ଣିମାର ଅଗ୍ନି-ଉତ୍ସବ, ବୃକ୍ଷଲତାଦିର ଅଗ୍ରଭାଗ, ଅଗ ।
ଅଗିଆବାତ—ଗ୍ରା. ବି. ଦେହ କୁଣ୍ଡାଇ ହୋଇ ମନ୍ଦା ମନ୍ଦା ଫୁଲି ଯିବା ରୋଗ ବିଶେଷ, ପିତୁରି ।
ଅଗିଗ୍ବ—ଗ୍ରା. (କଣ୍ଟକ) ବିଂ. ବୃକ୍ଷାଦିର ଅଗ୍ରଭାଗ ସମ୍ବନ୍ଧୀୟ ।
ଅଗିଜଳା—ଗ୍ରା. ବି. ମାଘପୂର୍ଣ୍ଣିମାରାତ୍ରିରେ ଗାଁ ମୁଣ୍ଡରେ ଅନୁଷ୍ଠିତ ଅଗ୍ନ୍ୟୁତ୍ସବ, ଅଘିରି ।
ଅଗିନି—ଗ୍ରା. ବି. ( ପ୍ରା-କ ) ଅଗ୍ନି, ନିଆଁ
ଅଗିର—ପୁଂ. ବି. ( ଅଗ+କ. ଇର ) ସୂର୍ଯ୍ୟ, ଅଗ୍ନି, ସ୍ବର୍ଗ, ରାକ୍ଷସ, ( ବିଂ ) କୌକ୍‌ଶକ୍ତିବିହୀନ, ବୋବା ।
ଅଗିରି—ଗ୍ରା. ବି. ବୃକ୍ଷାଦିର ଅଗ୍ରଭାଗ, ଅଗର, ଅଘିରି, ଅଗି ।
ଅଗୁ—ତ୍ରି. ବିଂ. (ଅ+ଗୋ) ଗୋଶୂନ୍ୟ, କିରଣଶୂନ୍ୟ, ( ପୁଂ. ବି. ) ରାହୁଗ୍ରହ ।
ଅଗୁଆଁର—ଗ୍ରା. ବିଂ. ( ଫ-ଅଙ୍କ ) ଓଲୁ, ନିର୍ବୋଧ, ଗମାର, ଅଚତୁର, ମୂର୍ଖ ।
ଅଗୁଣ—ପୁଂ. ବି. ( ଅ+ଗୁଣ ) ନ.-ତତ୍; ଅନିଷ୍ଟ, ଅହିତ, ଅମଙ୍ଗଳ, ଅପକାର, ଗୁଣରଅଭାବ ( ସ୍ତ୍ରୀ ) ଅଗୁଣା ( ବିଂ ) ନିର୍ଗୁଣ, ଅଯୋଗ୍ୟ, ଗୁଣ-ରହିତ ( ବି ) ଅଗୁଣତା, ଅଗୁଣତ୍ବ ।
ଅଗୁପତ—ଗ୍ରା. ( ପଦ୍ୟ ) ବିଂ. ( ସଂ-ଅଗୁପ୍ତ ) ଯାହା ଗୁପ୍ତ ନୁହେ, ପ୍ରକାଶ୍ୟ
ଅଗୁରୁ—ବି. କୃଷ୍ଣବର୍ଣ୍ଣ ଚନ୍ଦନ, ଗୁଗ୍ଗୁଳ, ( ବିଂ ) ଗୁରୁହୀନ, ଉପଦେଶକହୀନ, ହାଲୁକା, ଲଘୁ ।
ଅଗୁରୁଆ—ଗ୍ରା.ବିଂ. ଯେଉଁ ଲୋକର ଗୁରୁ ବା ଉପଦେଶକ ନାହିଁ, ଅଣଗୁରୁଆ ।
ଅଗୁରୁବିଦ୍ୟା—ସ୍ତ୍ରୀ. ବି. ବିନା ଗୁରୁରେ ଆୟତ୍ତହେବା ବିଦ୍ୟା, ସହଜ ବିଦ୍ୟା ।
ଅଗୁଳି—ଗ୍ରା. ବି. ପ୍ରସ୍ଥ, ଓସାର, ( ବିଂ ) ପ୍ରଶସ୍ତ, ଅଗ୍ରଣୀ ।

ଅଗୁହ୍ୟ—ତ୍ରି.ବିଂ. (ଅ+ଗୁହ୍ୟ) ନ. ତତ୍; ଅଗୋପନୀୟ, ଅଗୂଢ଼, ପ୍ରକାଶ୍ୟ (ସ୍ତ୍ରୀ) ଅଗୁହ୍ୟା ।
ଅଗୂଢ଼—ତ୍ରି. ବିଂ. (ଅ+ଗୂଢ଼) ଅଗୁପ୍ତ, ସ୍ପଷ୍ଟରୂପରେ ପ୍ରକାଶିତ,ବ୍ୟକ୍ତ, ( ସ୍ତ୍ରୀ.) ଅଗୂଢ଼ା ।
ଅଗୂଢ଼ଗନ୍ଧ—କ୍ଲୀ. ବି. ( ଅଗୂଢ଼+ଗନ୍ଧ ) ବି. ବ୍ରୀ; ହିଙ୍ଗୁ, ହେଙ୍ଗୁ ।
ଅଗୂଢ଼ଭାବ—ପୁଂ. ବିଂ. (ଅଗୂଢ଼+ଭାବ) ବି. ବ୍ରୀ; ସରଳହୃଦୟ, ବୁଝିବା ସହଜ ( ସ୍ତ୍ରୀ ) ଅଗୂଢ଼ଭାବା ।
ଅଗୃହ—ତ୍ରି. ବିଂ. ( ଅ+ଗୃହ ) ଗୃହ-ହୀନ, ଘରବାଡ଼ିଶୂନ୍ୟ, ( ସ୍ତ୍ରୀ ) ଅଗୃହା ( ବି ) ଗୃହହୀନଲୋକ, ସନ୍ନ୍ୟାସୀ
ଅଗୋଚର—ତ୍ରି. ବିଂ. (ଅ+ଗୋଚର) ପରୋକ୍ଷ, ଅପ୍ରତ୍ୟକ୍ଷ, ଅପ୍ରକାଶ୍ୟ, ଯାହା ବୁଝି ପାରି ହୁଏନାହିଁ, ଅଜ୍ଞେୟ, ଅଜଣା (କ୍ରି .ବିଂ.)ଅଗୋଚରେ,ଅଜ୍ଞାତସାରେ, ଚୁପ୍‌ଚୁପ୍ କରି ।
ଅଗୌକାଃ—ପୁଂ. ସ୍ତ୍ରୀ. ବିଂ. ( ଅଗ+ଓକସ୍ ) ପର୍ବତବାସୀ, ବୃକ୍ଷବାସୀ (ବି) ଶରଭ, ସିଂହ ।
ଅଗୌଣ—ତ୍ରି .ବିଂ.(ଅ+ଗୌଣ)ମୁଖ୍ୟ, ପ୍ରଧାନ,ବିଳମ୍ବରହିତ( ସ୍ତ୍ରୀ )ଅଗୌଣୀ ।
ଅଗୌର—ତ୍ରି. ବିଂ. ( ଅ+ଗୌର ) ନ. ତତ୍; ଯେ ଗୋରା ନୁହେ,ଶ୍ୟାମଳ-ବର୍ଣ୍ଣବିଶିଷ୍ଟ ( ସ୍ତ୍ରୀ ) ଅଗୌରୀ ।
ଅଗୌରବ—କ୍ଲୀ. ବି. (ଅ+ଗୌରବ) ନ. ତତ୍;ଗୌରବହୀନତା,ଅମର୍ଯ୍ୟାଦା, ଅପମାନ, (ବିଂ) ବି. ବ୍ରୀ; ଅପମାନିତ, ମର୍ଯ୍ୟାଦାହୀନ, ( ସ୍ତ୍ରୀ ) ଅଗୌରବା ।
ଅଗ୍ନାୟୀ—ସ୍ତ୍ରୀ. ବି. (ଅଗ୍ନି+ଈ) ଅଗ୍ନିଙ୍କ ସ୍ତ୍ରୀ, ସ୍ବାହା, ତ୍ରେତାଯୁଗ ।
ଅଗ୍ନି—ପୁଂ. ବି.(ଅଙ୍ଗ୍+ନି)ବା(ଅନ୍‌ଗ+କ. ନି) ନିଆଁ, ବହ୍ନି, ସର୍ବ୍ବ ।
ଅଗ୍ନିକ—ବି. (ଅଗ୍ନି+କ) ଇନ୍ଦ୍ରଗୋପ, ସାଧବାଣୀ ପୋକ,ଭଲିଆ, (ବୈଦ୍ୟକ)

ଅଗ୍ନିକଣ, ଅଗ୍ନିକଣା—ପୁଂ. ସ୍ତ୍ରୀ. ବି. ସ୍ଫୁଲିଙ୍ଗ, ନିଆଁ ଝୁଲ, ଗ୍ରା.ବି.ଅଗ୍ନିକୋଣ ।

ଅଗ୍ନିକରଣ—କ୍ଲୀ. ବି. ( ୬ ତତ୍ ) ବୈଦିକ ହୋମ ବା ଯଜ୍ଞରେ ଅଗ୍ନି ସ୍ଥାପନ କର୍ମ ।

ଅଗ୍ନିକର୍ମ—କ୍ଲୀ. ବି. (୬ତତ୍) ହବର୍ଦ୍ଦାନ, ଅଗ୍ନିଜ୍ୱାଳନ,ମୃତବ୍ୟକ୍ତିର ଦାହକ୍ରିୟା ।

ଅଗ୍ନିକଳା—ସ୍ତ୍ରୀ. ବି. ( ଅଗ୍ନି+କଳା ) ୬ତତ୍; ପୁରାଣୋକ୍ତ ଅଗ୍ନିଦେବଙ୍କର ଦଶଟି ଅଙ୍ଗ ବା ଅବୟବ ଯଥା--(ଧୂମ୍ରା, ଅର୍ଚ୍ଚି, ଉଷ୍ମା, ଜ୍ୱଳିନୀ, ଜ୍ୱାଳିନୀ, ବିସ୍ଫୁ-ଲିଙ୍ଗିନୀ, ସୁଶ୍ରୀ, ସୁରୂପା, କପିଳା, ହବ୍ୟକବ୍ୟ )

ଅଗ୍ନିକଳ୍ପ—ବି. ବିଂ. ( ଅଗ୍ନି+କଳ୍ପ) ବହ୍ନିପ୍ରାୟ, ଅନଳତୁଲ୍ୟ, ଜ୍ୟୋତିଷ୍ମାନ ନିଆଁପରି, ଉଗ୍ର, ପ୍ରଚଣ୍ଡ ।

ଅଗ୍ନିକାଋଷି—ଗ୍ରା. ବି. ( ନାମ ) ଋଷି-ବିଶେଷ ।

ଅଗ୍ନିକାଣ୍ଡ—ପୁଂ.ବିଂ.(୬ତତ୍) ଗୃହଦାହ, ଦହନବ୍ୟାପାର, ଆଗ୍ନେୟାସ୍ତ୍ରପ୍ରୟୋଗ ।

ଅଗ୍ନିକାରକ—ପୁଂ. ବି. ( ୬ତତ୍ ) ବହ୍ନି-ଜନକ, ଅନଳୋତ୍ପାଦକ, ପାଚକ (ସ୍ତ୍ରୀ) ଅଗ୍ନିକାରିକା ।

ଅଗ୍ନିକାର୍ଯ୍ୟ—କ୍ଲୀ. ବି. (ଅଗ୍ନି+କାର୍ଯ୍ୟ) ୬ତତ୍; ଅଗ୍ନିକର୍ମ ( ଦେଖ ) ।

ଅଗ୍ନିକାଷ୍ଠ—ପୁଂ. ବି. ଅଗୁରୁକାଠ, ଯେଉଁ କାଠ ଘର୍ଷଣରେ ନିଆଁ ବାହାରେ ।

ଅଗ୍ନିକୁକ୍କୁଟ—କ୍ଲୀ. ବି. ଜ୍ୱଳନ୍ତ ତୃଣଗୁଚ୍ଛ, ଜ୍ୱଳନ୍ତା ନିଆଁ ଲୁଣ୍ଡା । [ ନିଆଁଗଦା ।

ଅଗ୍ନିକୁଡ଼—ଗ୍ର. ବି. ( ସଂ-ଅଗ୍ନିକୂଟ )

ଅଗ୍ନିକୁଣ୍ଡ—କ୍ଲୀ. ବି. ହୋମକୁଣ୍ଡ, ଅଗ୍ନ୍ୟା-ଧାର, ନିଆଁ ଜଳା ଉହ୍ମେଇ ।

ଅଗ୍ନିକୁମାର—ପୁଂ. ବି.( ୬ ତତ୍) କାର୍ତ୍ତି-କେୟ, ଜୈନମାନଙ୍କର ଦେବଗଣ-ବିଶେଷ, ଔଷଧବିଶେଷ ।

ଅଗ୍ନିକୁମାରୀ—ଗ୍ରା.ବି.ଔଷଧି ଗୁଳ୍ମବିଶେଷ ।

ଅଗ୍ନିକୁଳ—ଗ୍ରା.ବି. ( ନାମ ) ରାଜପୁତ-ଜାତିର ଶାଖାବିଶେଷ ।

ଅଗ୍ନିକେତୁ—ବି. ରାମାୟଣୋକ୍ତ ରାକ୍ଷସ ବିଶେଷ ।

ଅଗ୍ନିକୋଣ—ପୁଂ. ବି. ( ମଧ୍ୟ-କ.ଧା ) ଆଗ୍ନେୟକୋଣ, ଦକ୍ଷିଣ ପୂର୍ବକୋଣ ।

ଅଗ୍ନିକ୍ରିୟା—ସ୍ତ୍ରୀ. ବି. ( ଅଗ୍ନି+କ୍ରିୟା) ବିଧିପୂର୍ବକ ଅଗ୍ନିରେ ମୃତ ଶବର ଦାହ-କାର୍ଯ୍ୟ, ଅନ୍ତ୍ୟେଷ୍ଟି କ୍ରିୟା ।

ଅଗ୍ନିକ୍ରୀଡ଼ା—ସ୍ତ୍ରୀ. ବି. ( ୭ମୀ ତତ୍ ) ଆତସବାଜି, ବାଣପୋଡ଼ିବା, ଅଗିଶ୍ରି, ନିଆଁ ଦ୍ୱାରା ଖେଳ ।

ଅଗ୍ନିଖାଡ଼ି—ବି. ଦିଆସିଲାଇ ।

ଅଗ୍ନିଗର୍ଭ—ପୁଂ. ବି. ( ଅଗ୍ନି+ଗର୍ଭ ) ୬ତତ୍; ଅଗ୍ନିଜାର ବୃକ୍ଷ, ଶମୀ, ମହା-ଜ୍ୟୋତିଷ୍ମତୀ, ଚକମକି ପଥର, ସୂର୍ଯ୍ୟ-କାନ୍ତମଣି, ଜୁଲୁଜୁଲିଆ, (ବିଂ) ବି. ବ୍ରୀ; ଯାହା ଭିତରେ ଅଗ୍ନି ଅଛି, ।

ଅଗ୍ନିଗର୍ଭା—ସ୍ତ୍ରୀ.ବି. ଅଗ୍ନିଗର୍ଭର ସ୍ତ୍ରୀଲିଙ୍ଗ, ମହାଜ୍ୟୋତିଷ୍ମତୀ ଲତା, ଶମୀ ।

ଅଗ୍ନିଗୃହ—କ୍ଲୀ. ବି. (୬ତତ୍) ଗାର୍ହ-ପତ୍ୟାଦି ଅଗ୍ନିତ୍ରୟ ରକ୍ଷାର୍ଥ ଗୃହ, ଅଗ୍ନ୍ୟାଗାର, ହୋମଗୃହ ।

ଅଗ୍ନିଚୟନ—କ୍ଲୀ. ବି. (୬ତତ୍) ବୈଦିକ ବିଧିରେ ଅଗ୍ନିସ୍ଥାପନ,ଅଗ୍ନ୍ୟାଧାନ, ଅଗ୍ନି-ସ୍ଥାପନ ମନ୍ତ୍ର ।

ଅଗ୍ନିଚିତ୍—ପୁଂ. ବି. ( ଅଗ୍ନି+ଚି+ କ.କ୍ୱିପ୍) ସାଗ୍ନିକ ବ୍ରାହ୍ମଣ,ଅଗ୍ନିହୋତ୍ରୀ ।

ଅଗ୍ନିଚିତ୍ୟା—ସ୍ତ୍ରୀ.ବି. ( ଅଗ୍ନି+ଚି+ଭା. ଯ+ଆ) ଅଗ୍ନିସଞ୍ଚୟ, ବୈଦିକ ବିଧିରେ ଅଗ୍ନି ରକ୍ଷାକରିବା ।

ଅଗ୍ନିଚୂଡ଼—ପୁଂ. ବି. ( ଅଗ୍ନି+ଚୂଡ଼ା ) ଅଗ୍ନିଶିଖା ।

ଅଗ୍ନିଚୂର୍ଣ୍ଣ—ପୁଂ. ବି. ( ଅଗ୍ନି+ଚୂର୍ଣ୍ଣ ) (ମଧ୍ୟ. କ. ଧ.) ବାରୁଦ, ଅଗ୍ନିକାରକ ଚୂର୍ଣ୍ଣ ।

ଅଗ୍ନିଜ—ପୁଂ. ବିଂ. (ଅଗ୍ନି+ଜନ୍+ କ. ଅ) ବହ୍ନିଜାତ, ଅଗ୍ନିରୁ ଉତ୍ପନ୍ନ, ଯାହା ଅଗ୍ନି ଉଦ୍ଦୀପନ କରେ; (ସ୍ତ୍ରୀ) ଅଗ୍ନିଜା (ବି) ଅଗ୍ନିଜାର, କାର୍ତ୍ତିକେୟ, ସ୍କନ୍ଦ ।

ଅଗ୍ନିଜନକ—ପୁଂ. ବିଂ. ( ୬ତତ୍ ) ଅନଳୋତ୍ପାଦକ, ପାଚକ, ( ସ୍ତ୍ରୀ ) ଅଗ୍ନିଜନକା ।

ଅଗ୍ନିଜନ୍ମା—ପୁଂ.ବି.(ବ.ବ୍ରୀ) କାର୍ତ୍ତିକେୟ ।

ଅଗ୍ନିଜାଳ—ବି. ଅଗ୍ନିରାଶି, ଅଗ୍ନିଜାର ବୃକ୍ଷ, ( ଗ୍ରା. ବି. ) ଶାକଗୁଳ୍ମବିଶେଷ ।

ଅଗ୍ନିଜିହ୍ୱ—ପୁଂ. ବିଂ. ( ବ. ବ୍ରୀ) ଅଗ୍ନି-ପରି ଜିହ୍ୱା ଯାହାର, (ସ୍ତ୍ରୀ) ଅଗ୍ନିଜିହ୍ୱା, ( ବି ) ବିଷ୍ଣୁ, ଦେବତା ।।

ଅଗ୍ନିଜିହ୍ୱା—ବି. ଅଗ୍ନିଶିଖା, ଅଗ୍ନିଙ୍କର ସାତପ୍ରକାର ଜିହ୍ୱା, ଯଥା;-( କରାଳୀ, ଧୂମିନୀ, ଶ୍ୱେତା, ଲୋହିତା, ନୀଳ-ଲୋହିତା, ପଦ୍ମରାଗା, ସୁବର୍ଣ୍ଣା) ଧାତକୀ ଫୁଲ, ଲଙ୍ଗଳୀ, ଜଳପିପ୍ପଳୀ ।

ଅଗ୍ନିଜ୍ୱାଳା—ସ୍ତ୍ରୀ.ବି. (୬ତତ୍) ଅଗ୍ନିଶିଖା, ଧାତକୀ, ଲଙ୍ଗଳୀ ।

ଅଗ୍ନିତପ୍ତ—ବି. ବିଂ. ନିଆଁରେ ତତା-ଯାଇଥିବା, ନିଆଁପରି ତାତିଲା ।

ଅଗ୍ନିତାପ—ବି. (୬ତତ୍) ନିଆଁର ତାତି, ନିଆଁ ଧାସ ।

ଅଗ୍ନିତୁଲ୍ୟ—ବିଂ. ( ୬ତତ୍ ) ବହ୍ନିସମ, ନିଆଁପରି, ଖୋବ୍ ଆକର, ( ସ୍ତ୍ରୀ )-ଅଗ୍ନିତୁଲ୍ୟା ।

ଅଗ୍ନିତ୍ରୟ—କ୍ଲୀ.ବି. ଗାର୍ହପତ୍ୟ, ଆହବ-ନୀୟ, ଦାକ୍ଷିଣ୍ୟ ନାମକ ତିନିଗୋଟି ଯଜ୍ଞାଗ୍ନି ।

ଅଗ୍ନିଦ—ପୁଂ. ବିଂ. ( ଅଗ୍ନି+ଦା +କ. ଅ ) ଅଗ୍ନିଦାତା, ମୁଖାଗ୍ନି-ଦେବାଲୋକ,ଘରପୋଡ଼ିଆ,ଯେ ଘରେ ନିଆଁ ଲଗାଏ ।

ଅଗ୍ନିଦଗ୍ଧ—ପୁଂ. ବିଂ. ( ୩ ତତ୍ ) ନିଆଁରେ ପୋଡ଼ା ଯାଇଥିବା, ବୈଦିକ ବିଧିରେ ଯାହାର ଶବ ଦଗ୍ଧ କରା-ଯାଇଅଛି ( ବି ) ପିତୃଲୋକ, ପୋଡ଼ାଘା ।

ଅଗ୍ନିଦଗ୍ଧ ପ୍ରସ୍ତର—ପୁଂ. ବି. ଅଗ୍ନ୍ୟୁତ୍ପାତ ଦ୍ୱାରା ଉତ୍ପନ୍ନ ପ୍ରସ୍ତର ବିଶେଷ, ଅକର୍ମ-ଶିଳା ପଥର ।

ଅଗ୍ନିଦମନୀ—ସ୍ତ୍ରୀ. ବ. (ଅଗ୍ନି+ଦମନ+ଈ) କଣ୍ଟକାରି, ଅଙ୍କରାନ୍ତ ।
ଅଗ୍ନିଦାତା—ପୁଂ.ବିଂ.(ଅଗ୍ନି+ଦା+ତୃ) ଅଗ୍ନିଦାନକାରୀ, ମୁଖାଗ୍ନିଦାତା, ଯେ ନିଆଁ ଲଗାଏ (ସ୍ତ୍ରୀ) ଅଗ୍ନିଦାତ୍ରୀ ।
ଅଗ୍ନିଦାହ—ପୁଂ. ବ. ନିଆଁରେ ପୋଡ଼ିହିବା ପଦାର୍ଥ, ଦାହରୋଗ ବିଶେଷ ।
ଅଗ୍ନିଦୀପକ—ବିଂ. (୬ତତ୍) ଅଗ୍ନିବର୍ଦ୍ଧକ, କ୍ଷୁଧା ବୃଦ୍ଧିକାରକ, ବିସ୍ଫୋରକ, ଯହିଁରୁ ସ୍ୱତଃ ନିଆଁ ଜଳେ ।
ଅଗ୍ନିଦୀପନ—ବିଂ. ( ୬ ତତ୍ ) ଅଗ୍ନି ପ୍ରଜ୍ୱଳିତକାରୀ, ଅନଳୋତ୍ତେଜକ, ଜଠରାଗ୍ନି ଉଦ୍ଦୀପକ, ପାଚକ (ବି) ନିଆଁ-ଜଳାଇବା, କ୍ଷୁଧାବୃଦ୍ଧି, ବରୁଣ ଗଛ ।
ଅଗ୍ନିଦୀପ୍ତା—ସ୍ତ୍ରୀ. ବ. ( ଅଗ୍ନି+ଦୀପ୍ତ+ଆ ) ମହାଜ୍ୟୋତିଷ୍ମତୀ ଲତା ।
ଅଗ୍ନିଦେବ—ପୁଂ. ବ. (ମଧ୍ୟ- କ. ଧା) ଅଗ୍ନିଦେବତା, ଅଗ୍ନି ( ବିଂ ) ବ. ବ୍ରୀ; ଅଗ୍ନିପୂଜକ, (ସ୍ତ୍ରୀ) ଅଗ୍ନିଦେବା ।
ଅଗ୍ନିଦେବା—ସ୍ତ୍ରୀ. ବ. ( ଅଗ୍ନି+ଦେବ+ଆ ) ବ. ବ୍ରୀ; କୃତ୍ତିକା ନକ୍ଷତ୍ର-ପୁଞ୍ଜ, (କ୍ରି) ନିଆଁ ଲଗାଇବା ।
ଅଗ୍ନିଧାନ—ବ.(ଅଗ୍ନି+ଧା+ଅଧି-ଅନ ଅଗ୍ନିଶାଳା, ଯଜ୍ଞଗୃହ ।
ଅଗ୍ନିଧ୍ୱଜ—ବ. (୬ ତତ୍) ଧୂମ୍ର, ଧୂଆଁ ।
ଅଗ୍ନିଧ୍ର—ବ. ( ନାମ ) ସ୍ୱାୟମ୍ଭୁବ ମନୁଙ୍କ ନାତି, ପ୍ରିୟବ୍ରତ ରାଜାଙ୍କ ପୁତ୍ର ।
ଅଗ୍ନିନକ୍ଷତ୍ର—ବ. (ମଧ୍ୟ. କ.ଧା.)କୃତ୍ତିକା ନକ୍ଷତ୍ର ।
ଅଗ୍ନିପକ୍ୱ—ବିଂ. (୩ୟା ତତ୍) ନିଆଁରେ ପାକ କରା ହୋଇଥିବା (ସ୍ତ୍ରୀ)ଅଗ୍ନିପକ୍ୱା ।
ଅଗ୍ନିପରୀକ୍ଷା—ସ୍ତ୍ରୀ.ବ.(୭ତତ୍) ଅଗ୍ନିମାନ୍ଦ୍ୟ, ନିଆଁରେ ପ୍ରବେଶ କରାଇ ଶୁଦ୍ଧାଶୁଦ୍ଧର ପରଖ ।
ଅଗ୍ନିପୁରାଣ—ବ. (ମଧ୍ୟ-କ.ଧା)ଅଷ୍ଟାଦଶ ପୁରାଣାନ୍ତର୍ଗତ ପୁରାଣବିଶେଷ ।
ଅଗ୍ନିପୁଚ୍ଛ—ବ. ( ଅଗ୍ନି+ପୁଚ୍ଛ ) ବ.ବ୍ରୀ ଉଲ୍କା ।

ଅଗ୍ନିପ୍ରବେଶ—ପୁଂ. ବ. (୭ତତ୍) ମୃତ ପତିରଅନୁଗମନ ପୂର୍ବକ ଚିତାନଳରେ ସତୀସ୍ତ୍ରୀର ତନୁତ୍ୟାଗ, ସହମରଣ ।
ଅଗ୍ନିପ୍ରୟୋଗ—ପୁଂ. ବ. (୬ତତ୍) ଅଗ୍ନିଦାନ, ରୋଗାଦିରେ ତପ୍ତଲୌହ ପ୍ରୟୋଗାଦି, ଗୃହଦେବା, ବଜ୍ର ।
ଅଗ୍ନିପ୍ରସ୍କନ୍ଦନ—କ୍ଲୀ. ବ. ( ୬ ତତ୍ ) ଅଗ୍ନିସାଧ୍ୟ କର୍ମ ତ୍ୟାଗ, ବେଦ ମାନୁଷ୍ୟାନ ବର୍ଜ୍ଜନ ।
ଅଗ୍ନି ପ୍ରସ୍ତର—ପୁଂ. ବ. (ମଧ୍ୟ-କ. ଧା) ଅଗ୍ନ୍ୟୁତ୍ପାଦକ ପସ୍ତର,ଚକମକି ପଥର ।
ଅଗ୍ନିବଥ—ଗ୍ରା.ବ. ଅଗବଥୁ, ଅଗ୍ନିମନ୍ଥ ।
ଅଗ୍ନିବର୍ଚ୍ଚାଃ—ପୁଂ. ସ୍ତ୍ରୀ. ବିଂ. ( ଅଗ୍ନି+ବର୍ଚ୍ଚସ୍) ବ. ବ୍ରୀ; ଅଗ୍ନିପରି ତେଜସ୍ୱୀ ଅଗ୍ନିତେଜାଃ ।
ଅଗ୍ନିବର୍ଣ୍ଣ—ବ. (୬ତତ୍ ) ନିଆଁରରଙ୍ଗ, ( ବିଂ ) ଯାହାର ରଙ୍ଗ ଅଗ୍ନିବର୍ଣ୍ଣ ପରି ( ସ୍ତ୍ରୀ ) ଅଗ୍ନିବର୍ଣ୍ଣା । [ମଦ୍ୟବିଶେଷ ।
ଅଗ୍ନିବର୍ଣ୍ଣା—ସ୍ତ୍ରୀ.ବ.ଅଗ୍ନିବର୍ଣ୍ଣର ସ୍ତ୍ରୀଲିଙ୍ଗ,
ଅଗ୍ନିବର୍ଦ୍ଧକ—ତ୍ରି. ବିଂ. ( ୬ତତ୍ ) ପରିପାକ ଶକ୍ତିର ବୃଦ୍ଧିକାରକ, ପାଚକ, କ୍ଷୁଧା ବର୍ଦ୍ଧନକାରୀ ।
ଅଗ୍ନିବର୍ଦ୍ଧନ—ତ୍ରି.ବିଂ. (୬ତତ୍ ) ଅଗ୍ନି-ବର୍ଦ୍ଧକ, ପାଚକ ( ସ୍ତ୍ରୀ ) ଅଗ୍ନିବର୍ଦ୍ଧନା, ( ବ ) ଅଗ୍ନିବୃଦ୍ଧି, ପାଚକ ଔଷଧ ।
ଅଗ୍ନିବଲ୍ଲଭ—ପୁଂ.ବ. (୬ତତ୍)ଅଗ୍ନିମିତ୍ର, ଶାଳଗଛ, ଓ ଝୁଣା ।
ଅଗ୍ନିବାଡ଼—ଗ୍ରା. ବ. ଅଗ୍ନିବାରଣ ।
ଅଗ୍ନିବାଣ—ପୁଂ.ବ. (ମଧ୍ୟ-କ.ଧା) ଅନଳ ଉଦ୍‌ଗୀରଣକାରୀ ଶର, ( ଲ.ଅର୍ଥ ) (ବିଂ)କ୍ରୋଧରେ ଗର୍ଜ୍ଜିପରି ପ୍ରଚଣ୍ଡ ।
ଅଗ୍ନିବାରଣ—ଗ୍ରା.ବ.ଘରପୋଡ଼ିରୁ ରକ୍ଷା ପାଇବାପାଇଁ ଆଣ୍ଠୁଘରର ଦୁଆରମୁହଁ-ଉପରେ କରାଯିବା ଛାତ ।
ଅଗ୍ନିବାହ—ପୁଂ. ବ. ( ଅଗ୍ନି+ବହ+କ.ଅ) ଅଗ୍ନିଙ୍କ ବାହନ, ମେଷ, ମେଣ୍ଢା ଧୂଆଁ ।

ଅଗ୍ନିବାହନ—ପୁଂ. ବ. (୬ତତ୍ ) ଛାଗ, ଛେଳି, ମେଣ୍ଢା, ଧୂମ, ଧୂଆଁ ।
ଅଗ୍ନିବାହୁ—ପୁଂ ବ. ( ୬ତତ୍ ) ଧୂମ, ଧୂଆଁ,(ନାମ) ପ୍ରିୟବ୍ରତ ନୃପତିଙ୍କ ପୁତ୍ର ।
ଅଗ୍ନିବୀଜ—କ୍ଲୀ.ବ. (୬ତତ୍)ସ୍ୱର୍ଣ୍ଣ, ସୁନା ।
ଅଗ୍ନିବୀର୍ଯ୍ୟ—କ୍ଲୀ.ବ.(୬ତତ୍) ସ୍ୱର୍ଣ୍ଣ,ସୁନା ।
ଅଗ୍ନିବୃଦ୍ଧି—ସ୍ତ୍ରୀ. ବ. (୬ତତ୍ ) ଲାଗିଥିବା ନିଆଁ ଅଧିକ ଯୋଡ଼ିହିବା, ଜଠରାଗ୍ନି-ବୃଦ୍ଧି ।
ଅଗ୍ନିବୃଷ୍ଟି—ସ୍ତ୍ରୀ. ବ. ( ୬ତତ୍ ) ଅନଳ ବର୍ଷଣ,ଗ୍ରୀଷ୍ମକାଳରେ ଅତ୍ୟନ୍ତ ଉତ୍ତାପ, ଅନୁଭୂତ,
ଅଗ୍ନିବେଶ୍ମ—କ୍ଲୀ.ବ. (ଅଗ୍ନି+ବେଶ୍ମନ୍) ଅଗ୍ନିଗୃହ, ମାସର ଚତୁର୍ଦ୍ଦଶ ଦିବସ, ଆତ୍ରେୟଶିଷ୍ୟ ଜଣେ ଋଷି ।
ଅଗ୍ନିବେଶ୍ୟ—ପୁଂ.ବ. ଧନୁର୍ବିଦ୍ୟା ବିଶାରଦ ଅଗ୍ନିଙ୍କର ପୁତ୍ର, ଦ୍ୱାବିଂଶ ମୁହୂର୍ତ୍ତର ନାମ ।
ଅଗ୍ନିବୋଟ—ଗ୍ରା. ବ. ବାଷ୍ପୀୟ ପୋତ, ସ୍ରୋତ ବାଷ୍ପୀୟ ନୌକା, ଷ୍ଟିମର
ଅଗ୍ନିଭ—ବିଂ. ( ଅଗ୍ନି+ଭା) ବ. ବ୍ରୀ; ଅଗ୍ନିପରି ତେଜୋମୟ (ସ୍ତ୍ରୀ) ଅଗ୍ନିଭା ( ବ ) କୃତ୍ତିକା ନକ୍ଷତ୍ର ।
ଅଗ୍ନିଭାଣ୍ଡ—ବ. ( ଅଗ୍ନି+ଭାଣ୍ଡ) ୬ତତ୍; ଅଗ୍ନିକୁଣ୍ଡ ।
ଅଗ୍ନିଭୁ—ପୁଂ.ସ୍ତ୍ରୀ.ବିଂ. ( ଅଗ୍ନି+ଭୂ+କ. କ୍ୱିପ୍ ) ଅଗ୍ନିରୁଜାତ (ବି) ଜଳ ।
ଅଗ୍ନିଭୂ—ପୁଂ. ବ. ( ଅଗ୍ନି+ଭୂ+କ. କ୍ୱିପ୍ ) କାର୍ତ୍ତିକେୟ, କାଶ୍ୟପଋଷି, ଛଅସଂଖ୍ୟା ।
ଅଗ୍ନିଭୂତ—ବ. ( ଅଗ୍ନି+ଭୂତ ) ଅଗ୍ନି ସମ୍ଭୂତ ପଦାର୍ଥ, ସ୍ୱର୍ଣ୍ଣ ।
ଅଗ୍ନିମଣି—ପୁଂ. ବ. ( ମଧ୍ୟ-କ.ଧା ) ସୂର୍ଯ୍ୟକାନ୍ତମଣି, ଚକମକି ପଥର ।
ଅଗ୍ନିମନ୍ଥ—ପୁଂ. ବ. ( ଅଗ୍ନି+ମନ୍ଥ+ମି. ଅ ) ଅଗବଥୁଗଛ ।
ଅଗ୍ନିମୟ—ତ୍ରି. ବିଂ. ( ଅଗ୍ନି+ମୟଟ୍ ଅଗ୍ନିବ୍ୟାପ୍ତ, ( ସ୍ତ୍ରୀ ) ଅଗ୍ନିମୟୀ ।

ଅଗ୍ନିମାଠର—ପୁଂ.ବି.ଋଗ୍‌ବେଦାଧ୍ୟାପକ ଋଷିବିଶେଷ ।

ଅଗ୍ନିମାନ୍—ପୁଂ. ବିଂ (ଅଗ୍ନି+ମତ୍) ଅଗ୍ନିବିଶିଷ୍ଟ, ଆଗ୍ନିକ, ପ୍ରଦୀପ୍ତ (ସ୍ତ୍ରୀ) ଅଗ୍ନିମତୀ (ବି) ସାଗ୍ନିକବ୍ରାହ୍ମଣ ।

ଅଗ୍ନିମାନ୍ଦ୍ୟ—କ୍ଲୀ. ବି. (୬ତତ୍) ଅଜୀର୍ଣ୍ଣ ରୋଗ,ପରିପାକଶକ୍ତିର ହ୍ରାସ ।

ଅଗ୍ନିମାରୁତ—ପୁଂ. ବି. ଅଗସ୍ତିମୁନି ।

ଅଗ୍ନିମିତ୍ର—କ୍ଲୀ. ବି. (୬ତତ୍) ଅଗ୍ନିଙ୍କ-ବନ୍ଧୁ, ବାୟୁ, ଅନଳସଖା, ମଗଧରାଜ-ପୁଷ୍ପମିତ୍ରଙ୍କ ପୁତ୍ର, ରାଜବିଶେଷ ।

ଅଗ୍ନିମୁଖ—ପୁଂ. ବି. (ଅଗ୍ନି+ମୁଖ) ବ. ବ୍ରୀ; ଦେବତା, ବ୍ରାହ୍ମଣ, ଧଳାଚିତା, ଭଲିଆ, ଅଗ୍ନିବୃଦ୍ଧିର ଔଷଧ ।

ଅଗ୍ନିମୁଖୀ—ସ୍ତ୍ରୀ. ବି. (ଅଗ୍ନିମୁଖ+ଈ) ଭଲିଆ, ଲଙ୍ଗଳୀ, ଗାୟତ୍ରୀମନ୍ତ୍ର ।

ଅଗ୍ନିମୂର୍ତ୍ତି—ବିଂ. (ବ. ବ୍ରୀ) ଅତ୍ୟନ୍ତ କ୍ରୋଧସମ୍ପନ୍ନ, ଅଗ୍ନିପରି ଆକୃତି ବିଶିଷ୍ଟ (ସ୍ତ୍ରୀ) ବି. ଅଗ୍ନିଙ୍କରକାନ୍ତି ।

ଅଗ୍ନିମୂଲ୍ୟ—ତ୍ରି. ବିଂ. (ବ. ବ୍ରୀ) ମହାର୍ଘ, ଦୁର୍ମୂଲ୍ୟ,(ଗ୍ରା. ବି) ଅତି ଚଢ଼ା ଦାମ୍ ।

ଅଗ୍ନିଯନ୍ତ୍ର—ପୁଂ. ବି. (ମଧ୍ୟ କ. ଧା) ଆଗ୍ନେୟାସ୍ତ୍ର, ବନ୍ଧୁକ, ତୋପ ।

ଅଗ୍ନିଯୋଜନ—କ୍ଲୀ. ବି. (୬ତତ୍) ଯଜ୍ଞାଗ୍ନି ଜଳାଇବା ପାଇଁ ଉଖାରିବା ।

ଅଗ୍ନିରକ୍ଷଣ—କ୍ଲୀ. ବି. ଅଗ୍ନ୍ୟାଧାନ, ଅଗ୍ନିସ୍ଥାପନ, ଅଗ୍ନିହୋତ୍ର ଗୃହ ।

ଅଗ୍ନିରଜ—ବି. (ଅଗ୍ନି+ରନ୍ଜ+କ. ଅ) ଇନ୍ଦ୍ରଗୋପ,ସାଧବବୋହୂପୋକ ।

ଅଗ୍ନିରଜାଃ—ପୁଂ.ବି. (ଅଗ୍ନି+ରଜସ୍) ପାଟପୋକ, ସାଧବାଣୀ ପୋକ ।

ଅଗ୍ନିରୁହା—ବି. (ଅଗ୍ନି+ରୁହ+କ.ଅ. +ଆ) ମାଂସରୋହିଣୀ ଗୁଳ୍ମ ।

ଅଗ୍ନିରେତଃ—କ୍ଲୀ.ବି.(ଅଗ୍ନି+ରେତସ୍) ୬ତତ୍; ସ୍ୱର୍ଣ୍ଣ, ସୁନା ।

ଅଗ୍ନିରୋହିଣୀ—ବି. କାଖଗୁଲି ।

ଅଗ୍ନିଲୋକ—ପୁଂ.ବି.ପୁରାଣୋକ୍ତ ସୁମେରୁ ପର୍ବତଶୃଙ୍ଗର ନିମ୍ନଦେଶରେ ଥିବା ଦେଶ ବିଶେଷ ।

ଅଗ୍ନିବଧୂ—ସ୍ତ୍ରୀ. ବି. (୬ତତ୍) ସ୍ୱାହା, ଦକ୍ଷକନ୍ୟା ।

ଅଗ୍ନିବାସ—କ୍ଲୀ.ବି. ଅଗ୍ନିତୁଲ୍ୟ ଶୁଦ୍ଧବସ୍ତ୍ର ।

ଅଗ୍ନିବିଦ୍—ପୁଂ. ବି. (ଅଗ୍ନି+ବିଦ୍+କ୍ୱିପ୍) ସାଗ୍ନିକ ବ୍ରାହ୍ମଣ, ଅଗ୍ନିହୋତ୍ରୀ ।

ଅଗ୍ନିବିନ୍ଦୁ—ପୁଂ. ବି. ସ୍ଫୁଲିଙ୍ଗ,ଅଗ୍ନିକଣା ।

ଅଗ୍ନିଶରଣ—କ୍ଲୀ.ବି.(୬ତତ୍)ଅଗ୍ନିଶାଳା ।

ଅଗ୍ନିଶର୍ମ୍ମା—ପୁଂ. ବିଂ. (ଅଗ୍ନି+ଶର୍ମ୍ମନ୍) ମହାକ୍ରୋଧୀ,କ୍ରୋଧାନ୍ଧ, (ବି) କ୍ରୋଧନ-ସ୍ୱଭାବ ଲୋକ ।

ଅଗ୍ନିଶାଳା—ସ୍ତ୍ରୀ.ବି. ଅଗ୍ନିରହିଥିବାଗୃହ ।

ଅଗ୍ନିଶିଖ—ପୁଂ. ବି. ବିଷଲାଙ୍ଗଲୀବୃକ୍ଷ, କୁସୁମଗଛ, ପ୍ରଦୀପ, ବାଣ, କବି ବର-ରୁଚିଙ୍କ ପିତା, (କ୍ଲୀ.ବି.) ସ୍ୱର୍ଣ୍ଣ, କୁଙ୍କୁମ ।

ଅଗ୍ନିଶିଖା—ସ୍ତ୍ରୀ. ବି. (୬ତତ୍) ଅଗ୍ନି-ଙ୍କରଜ୍ୱାଳା, (ବ. ବ୍ରୀ) ବିଷଲାଙ୍ଗଲୀ ବୃକ୍ଷ, ଫଳିନୀ, ଶତପୁଷ୍ପୀ, ଅନନ୍ତା ।

ଅଗ୍ନିଶୁଦ୍ଧ—ବିଂ. (୩ତତ୍) ଅଗ୍ନିସଂସ୍ପର୍ଶରେ ପବିତ୍ରୀକୃତ, କଠୋର ପ୍ରାୟଶ୍ଚିତ-ଦ୍ୱାରା ବିଶୋଧିତ,(ସ୍ତ୍ରୀ.ବି)ଅଗ୍ନିଶୁଦ୍ଧା !

ଅଗ୍ନିଶୁଦ୍ଧି—ସ୍ତ୍ରୀ. ବି. (୩ତତ୍) ଅଗ୍ନି ସଂସ୍ପର୍ଶରେ ପବିତ୍ର ହେବା,

ଅଗ୍ନିଶୁଶ୍ରୂଷା—ସ୍ତ୍ରୀ. ବିଃ ଯଥାବିଧି ହୋମ କାର୍ଯ୍ୟ ।

ଅଗ୍ନିଶେଖର—କ୍ଲୀ.ବି. କୁଙ୍କୁମ, ଜାଫ୍ରାନ୍, କୁସୁମଫୁଲଗଛ,ଲଙ୍ଗଳୀ(ପୁଂ.ବି.)ଶିବ ।

ଅଗ୍ନିଷ୍ଟୁଭ୍—ପୁଂ. ବି. (ଅଗ୍ନି+ସ୍ତୁଭ+କ୍ୱିପ୍) ଯଜ୍ଞବିଶେଷ, ନଡ୍ୱଳାଗର୍ଭଜାତ ପ୍ରଜାପତିଙ୍କପୁତ୍ର ।

ଅଗ୍ନିଷ୍ଟୋମ—ପୁଂ.ବି.ଯାଗବିଶେଷ,ବାସ-ନ୍ତିକ ପଞ୍ଚଦିନାବଧି ଏହି ଯାଗ ହୁଏ ।

ଅଗ୍ନିଷ୍ଠ—ପୁଂ. ବି. (ଅଗ୍ନି+ସ୍ଥା+ଅ) ନିଆଁରେ ବସାଇ ଭଜିବା ପାତ୍ର-ବିଶେଷ, ତାୱା, ପଲମ, କରେଇପ୍ରଭୃତି ନିଆଁ ଉହ୍ମେଇ ।

ଅଗ୍ନିସଖ—ପୁଂ.ବି.(ବ.ବ୍ରୀ)ପବନ,ଧୂମ ।

ଅଗ୍ନିସଂକାଶ—ପୁଂ. ବି. (ଅଗ୍ନି+ସଂ+କାଶ+ଅ)ଅଗ୍ନିତୁଲ୍ୟ ଦୀପ୍ତି,ଦୀପ୍ତିମାନ୍ ।

ଅଗ୍ନିସତ୍କାର—ପୁଂ.ବି. (୩ତତ୍) ଦାହ-କାର୍ଯ୍ୟ, ଶବଦାହ ।

ଅଗ୍ନିସନ୍ଦୀପକ—ବିଂ. (୬ତତ୍) ଅଗ୍ନି-ଦୀପକ (ଦେଖ) ।

ଅଗ୍ନିସନ୍ଦୀପନ—କ୍ଲୀ.ବି.(ବ.ବ୍ରୀ)ଜଠରାଗ୍ନି-ବର୍ଦ୍ଧକ ଔଷଧବିଶେଷ (୬ତତ୍) ଅଗ୍ନିପ୍ରଜ୍ୱାଳନ ।

ଅଗ୍ନିସଂଦୀପନରସ—ପୁଂ.ବି. କ୍ଷୁଧାମାନ୍ଦ୍ୟ-ରୋଗର ଔଷଧ ।

ଅଗ୍ନିସଂଭବ—ବି. ଅରଣ୍ୟକୁସୁମ୍ଭ, ସ୍ୱର୍ଣ୍ଣ, କାର୍ତ୍ତିକେୟ ।

ଅଗ୍ନିସଂସ୍କାର—ପୁଂ. ବି. ବିଧିପୂର୍ବକ ଅଗ୍ନିଦ୍ୱାରା ସଂସ୍କାର, ଶବଦାହ, (୭ମୀ-ତତ୍) ବୈଦିକ ବିଧିରେ ଅଗ୍ନିସ୍ଥାପନ, ପଞ୍ଚଭୂସଂସ୍କାରାନନ୍ତର ଅଗ୍ନିକୁ ଆଣି ହୋମ ବା ବୈଶ୍ୱଦେବ ସ୍ଥାନରେ ସ୍ଥାପନ ।

ଅଗ୍ନିସହାୟ—ପୁଂ.ବି. (ଅଗ୍ନି+ସହ+ଅୟ+ଅ)ବାୟୁ,ଧୂମ, ବନକପୋତ ।

ଅଗ୍ନିସାକ୍ଷିକ—ବିଂ. (ଅଗ୍ନି+ସାକ୍ଷିନ୍+କ) ଅଗ୍ନିଙ୍କୁ ସାକ୍ଷୀ କରି ଯେଉଁ କାର୍ଯ୍ୟ କରାଯାଏ ।

ଅଗ୍ନିସାକ୍ଷିକମର୍ଯ୍ୟାଦ—ବିଂ. ଯେଉଁ ସ୍ୱାମୀ ଅଗ୍ନି ସାକ୍ଷୀ କରି ଏକପତ୍ନୀବ୍ରତ ଧାରଣ କରିବା ପାଇଁ ଶପଥ କରନ୍ତି, (ସ୍ତ୍ରୀ) ଅଗ୍ନିସାକ୍ଷିକମର୍ଯ୍ୟାଦା ।

ଅଗ୍ନିସାତ୍—ବିଂ. ଯେଉଁ ସମସ୍ତ ପୋଡ଼ି ଯାଇ ଅଛି, ନିଆଁରେ ପକାଯାଇଥିବା ।

ଅଗ୍ନିସାର—କ୍ଲୀ.ବି. ରସାଞ୍ଜନ,ସୁରୁମା ।

ଅଗ୍ନିସୂତ୍ର—କ୍ଲୀ. ବି. ଅଗ୍ନିରେଖା, ଉପନୟନରେ ବ୍ରାହ୍ମଣବାଳକ ପିନ୍ଧିବା କୁଶମେଖଳା ।

ଅଗ୍ନିସେବନ—କ୍ଲୀ. ବି. ନିଆଁ ପୋଇଁବା

ଅଗ୍ନିସେବା—(ସ୍ତ୍ରୀ) ବି. ଅଗ୍ନିସେବନ, ନିଆଁ ପୋଇଁବା ।

ଅଗ୍ନିସ୍ତମ୍ଭ—ପୁ. ବି. ଦାହିକା ଶକ୍ତି ନିବାରକ ମନ୍ତ୍ର ଓ ଔଷଧବିଶେଷ ।

ଅଗ୍ନିସ୍ତମ୍ଭନ—ବି. ଅଗ୍ନିସ୍ତମ୍ଭ (ଦେଖ) ।

ଅଗ୍ନିସ୍ଥାପନ— କ୍ଲୀ. ବ, ବେଦୋକ୍ତ ମନ୍ତ୍ରୋଚ୍ଚାରଣ ପୂର୍ବକ ପାଷାଣର ଭୂମିକୁ ସଂସ୍କାର କରିବା ପରେ ହୋମ ବୈଶ୍ୱଦେବ ସ୍ଥାନରେ ଅଗ୍ନିଙ୍କୁ ରଖିବା ବା ଲଗାଇବା । [ ଝୁଲ ।

ଅଗ୍ନିସ୍ଫୁଲିଙ୍ଗ—ପୁ.ବ.ଅଗ୍ନିକଣ,ନିଆଁ-

ଅଗ୍ନିସ୍ୱାତ୍ତ—ପୁଂ. ବ. ( ଅଗ୍ନି+ସୁ+ଆ+ଦା+ର୍ମ.ତ ) ମରିଚପୁତ୍ର ପିତୃଲୋକ ବିଶେଷ ।

ଅଗ୍ନିହୋତ୍ର—କ୍ଲୀ. ବ. ଯଜ୍ଞବିଶେଷ, ସାଗ୍ନିକ ବ୍ରାହ୍ମଣଙ୍କର ପ୍ରତିଦିନ କୃତହୋମ,ଯଜ୍ଞାଗ୍ନି, ଘୃତ, ଆହୁତ, ହୋମଦ୍ରବ୍ୟ, ଅଗ୍ନିକୁଣ୍ଡ ।

ଅଗ୍ନିହୋତ୍ରୀ—ପୁଂ. ବ. ସାଗ୍ନିକବ୍ରାହ୍ମଣ, ଅଗ୍ନିହୋତ୍ର ଯାଗକାରୀ ।

ଅଗ୍ନୀଧ୍—ପୁଂ. ବ. ( ଅଗ୍ନି+ଇନ୍ଧ+କ୍ୱିପ୍)ଅଗ୍ନି ଉଦ୍ଦୀପନ,ଅଗ୍ନ୍ୟାଧାନକର୍ତ୍ତା ।

ଅଗ୍ନୀଧ୍ର—ପୁଂ. ବ. ( ଅଗ୍ନି+ଧୃ+ଅ ) ଯେଉଁ ବ୍ରାହ୍ମଣ ଅଗ୍ନିରକ୍ଷା କରୁଅଛି, ( ସ୍ତ୍ରୀ) ଅଗ୍ନୀଧ୍ରା ।

ଅଗ୍ନୀନ୍ଧନ—ବ. (ଅଗ୍ନି+ଇନ୍ଧ+ଅନ) ମନ୍ତ୍ରବିଶେଷ, ନିଆଁଜାଳିବା, ଜାଳଣୀକାଠ, ମସାଲ ।

ଅଗ୍ନୀୟ—ବିଂ. (ଅଗ୍ନି+ଈୟ) ଅଗ୍ନିଙ୍କ ନିକଟ (ସ୍ଥାନ) ଅଗ୍ନିସମ୍ବନ୍ଧୀୟ ।

ଅଗ୍ନ୍ୟସ୍ତ୍ର—କ୍ଲୀ. ବ. ଆଗ୍ନେୟାସ୍ତ୍ର, ତୋପ, ବନ୍ଧୁକ ।

ଅଗ୍ନ୍ୟାଗାର—କ୍ଲୀ.ବ. ଯଜ୍ଞୀୟକୁଣ୍ଡ,ଅଗ୍ନିହୋତ୍ରଗୃହ, ଯଜ୍ଞଶାଳା ।

ଅଗ୍ନ୍ୟାଧାନ—କ୍ଲୀ.ବ. (ଅଗ୍ନି+ଆ+ଧା+ଅନ) ବେଦମନ୍ତ୍ର ଦ୍ୱାରା ଅଗ୍ନିସଂସ୍ଥାପନ, ହୋମକୁଣ୍ଡ, ଉହ୍ମେଇ ।

ଅଗ୍ନ୍ୟାଧେୟ—ପୁଂ. ବ. ସାଗ୍ନିକ, ଅଗ୍ନିହୋତ୍ରୀ ।

ଅଗ୍ନ୍ୟାଳୟ—ପୁଂ. ବ. (୬ତତ୍) ଯଜ୍ଞୀୟ ଅଗ୍ନିଗୃହ, ହୋମାଗ୍ନିକୁଣ୍ଡ ।

ଅଗ୍ନ୍ୟାହିତ—ପୁଂ. ବ. (ଅଗ୍ନି+ଆ+ଧା+ତ) ସାଗ୍ନିକଦ୍ୱିଜ, ଆହିତାଗ୍ନି ।

ଅଗ୍ନ୍ୟୁଦ୍ଧନ—ସ୍ତ୍ରୀ.ବି. (୬ତତ୍) ଦେବତାଙ୍କଉଦ୍ଦେଶ୍ୟରେ ଅଗ୍ନିରେ ପ୍ରଦତ୍ତ ଆହୁତ ।

ଅଗ୍ନ୍ୟୁତ୍ପାତ—ପୁଂ.ବ. (ଅଗ୍ନି+ଉତ୍+ପତ+ଅ) ୬ତତ୍; ଆକାଶରେ ଅଗ୍ନି ଉପଦ୍ରବ, ଏହା ପଞ୍ଚବିଧ ;—ଧୂମ୍ର, ଉଲ୍କା, ଅଶନି, ବିଦ୍ୟୁତ୍, ତାରା ।

ଅଗ୍ନ୍ୟୁତ୍ସବ—ବ. (୬ତତ୍) ଅଇଘର, ଅଗିରା ।

ଅଗ୍ନ୍ୟୁଦ୍ଗାର—ପୁଂ.ବ. (ଅଗ୍ନି+ଉଦ୍ଗାର) ଆଗ୍ନେୟଗିରିରୁ ଅଗ୍ନି ନିଃସରଣ ।

ଅଗ୍ନ୍ୟୁଦ୍ଧାର—ପୁଂ.ବ. କାଠରୁ ନିଆଁ ବାହାର କରିବା, ଅରଣି ମନ୍ଥନ ଦ୍ୱାରା ଅଗ୍ନି-ଉତ୍ପାଦନ । [ ଦେଖ ।

ଅଗ୍ନ୍ୟୁପଦ୍ରବ—ବ. (୬ତତ୍) ଅଗ୍ନ୍ୟୁତ୍ପାତ-

ଅଗ୍ନ୍ୟୁପସ୍ଥାନ — ବ. (୬ତତ୍) ଅଗ୍ନିଦେବଙ୍କ ଉପାସନାମନ୍ତ୍ର ।

ଅଗ୍ର—କ୍ଲୀ. ବ. (ଅଗ୍+ର) ଉପରିଭାଗ, ଅଗ, ଶିଖରପ୍ରଦେଶ, ଅବଲମ୍ବନ, ଶେଷମୁଣ୍ଡ, ଆରମ୍ଭ, ଏକପଲ ପରିମାଣ, ସମୂହ, ଗ୍ରାସଚତୁଷ୍ଟୟ, ପୂର୍ବ ସମୟ, ସାମନା, ଆଗ, ପୂର୍ବଭାଗ ଦାଢ଼, ଅନ୍ନଭିକ୍ଷାର ଏକନିର୍ଦ୍ଦିଷ୍ଟ ପରିମାଣ, (ବିଂ) ଶ୍ରେଷ୍ଠ, ପ୍ରଧାନ, ଆଦ୍ୟ, ଅଧିକ, ବଳକା, ଆଗରେଥିବା, (ସ୍ତ୍ରୀ) ଅଗ୍ରା ।

ଅଗ୍ରକର—ବ. କରାଗ୍ର, ଆଙ୍ଗୁଠି,କଅଁଳଖରା, ପ୍ରଥମକିରଣ, ଦକ୍ଷିଣହସ୍ତ ।

ଅଗ୍ରକାୟ—ପୁଂ. ବ. ଦେହରପୂର୍ବଭାଗ, ମସ୍ତକରୁ କଟିପର୍ଯ୍ୟନ୍ତ ଶରୀରର ଅଂଶ ।

ଅଗ୍ରଗ—ପୁଂ.ବିଂ. (ଅଗ୍ର+ଗମ୍+କ. ଅ) ଅଗ୍ରଗାମୀ, ଆଗଚଳା, ଆଗୁଆ ।

ଅଗ୍ରଗଣ୍ୟ—ବିଂ. ପ୍ରଥମସ୍ଥାନୀୟ, ପ୍ରଧାନ, ଶ୍ରେଷ୍ଠ, ଅଗ୍ରଣୀ, ଅଗ୍ରଗଣନୀୟ, (ସ୍ତ୍ରୀ) ଅଗ୍ରଗଣ୍ୟା ।

ଅଗ୍ରଗାମୀ—ପୁଂ.ବିଂ. ( ଅଗ୍ର+ଗମ୍+କ. ଇନ୍) ସର୍ବୋତ୍ତମ, ଯେ ସମସ୍ତଙ୍କ ଆଗରେ ଯାଇଅଛି, ଅଗ୍ରସର, ନେତା, (ସ୍ତ୍ରୀ) ଅଗ୍ରଗାମିନୀ ।

ଅଗ୍ରଜ—ପୁଂ. ବ. (ଅଗ୍ର+ଜନ୍+ଅ) ଜ୍ୟେଷ୍ଠଭ୍ରାତା, ବ୍ରାହ୍ମଣ (ବିଂ) ଜ୍ୟେଷ୍ଠ, ପ୍ରଥମୋତ୍ପନ୍ନ, ଯେ ପୂର୍ବରୁ ଜନ୍ମିଥାଏ, (ସ୍ତ୍ରୀ) ଅଗ୍ରଜା ।

ଅଗ୍ରଜଙ୍ଘା—ବି. (୬ତତ୍) ଜଙ୍ଘର ସାମନା ବା ଉପରିଭାଗ, ଜଙ୍ଘହାଡ଼ ।

ଅଗ୍ରଜନ୍ମା— ପୁଂ. ବିଂ. (ବ.ବ୍ରୀ) ଜ୍ୟେଷ୍ଠ, ଅଗ୍ରଜ (ବ)ବଡ଼ଭାଇ, ବ୍ରାହ୍ମଣ, ବ୍ରହ୍ମା ।

ଅଗ୍ରଜା—ସ୍ତ୍ରୀ.ବିଂ.(ଅଗ୍ରଜ+ଆ)ଜ୍ୟେଷ୍ଠା, ପୂର୍ବଜା ( ବ ) ଜ୍ୟେଷ୍ଠାଭଗିନୀ, ବଡ଼ଭଉଣୀ ।

ଅଗ୍ରଜାତ—ପୁଂ. ବ.(ଅଗ୍ର+ଜନ୍+ତ) ପ୍ରଧାନ ଜାତ, ବ୍ରାହ୍ମଣ ।

ଅଗ୍ରଜିହ୍ୱା—ସ୍ତ୍ରୀ. ବ. (କ. ଧା) ଘଣ୍ଟିକା ।

ଅଗ୍ରଣୀ—ପୁଂ. ବିଂ. ( ଅଗ୍ର+ନୀ+କ. କ୍ୱିପ୍) ପ୍ରଧାନ, ଶ୍ରେଷ୍ଠ, ଦକ୍ଷ, ନେତା, ଆଗୁଣୀ,ସର୍ବୋତ୍ତମ, (ବ)ପ୍ରଭୁ, ସେନାପତି, ଅଗ୍ନି, ବିଷ୍ଣୁଙ୍କର ଗୋଟିଏ ନାମ ।

ଅଗ୍ରତଃ—ଅବ୍ୟ.(ଅଗ୍ର+ତସ୍) ଆଗରେ, ସମ୍ମୁଖରେ, ପ୍ରଥମେ ।

ଅଗ୍ରତେ—ଅବ୍ୟ. ଅଗ୍ରତଃ (ଦେଖ) ।

ଅଗ୍ରଦାନୀ—ପୁଂ. ବ. ପ୍ରେତଉଦ୍ଦେଶ୍ୟରେ ଯାହାକୁ ଆଗେ ଦାନ ଦିଆଯାଏ, ପତିତ ବ୍ରାହ୍ମଣ ।

ଅଗ୍ରଦୂତ—ପୁଂ. ବ. (କ. ଧା) କୌଣସି କର୍ମରେ ବା ଆନ୍ଦୋଳନରେ ଅଗ୍ରଗାମୀ ବ୍ୟକ୍ତି ।

ଅଗ୍ରନଖ—ପୁଂ. ବ. ନଖର ଅଗ୍ରଭାଗ ।

ଅଗ୍ରନ୍ଥ—ଗ୍ରା. ବ. ଶାସ୍ତ୍ର ବିରୁଦ୍ଧ, ଅସଙ୍ଗତ, ଅନୈତିକ,ଲୋକାଚାର ବିରୁଦ୍ଧ,ଅବୋଧ୍ୟ ।

ଅଗ୍ରନ୍ଥିକ—ପୁଂ. ବିଂ. କୌପୀନଧାରୀ, ଆତ୍ମତତ୍ତ୍ୱଜ୍ଞ ।

ଅଗ୍ରପର୍ଣ୍ଣୀ—ସ୍ତ୍ରୀ.ବ.ବାଇଡ଼ଙ୍କ,ଅଜଲୋମା ।

ଅଗ୍ରପଶ୍ଚାତ୍—କ୍ରି. ବିଂ. ପୂର୍ବାପର, ଭୂତଭବିଷ୍ୟତ, ଆଗପଛ, ସବୁଆଡ଼ୁ ।

ଅଗ୍ରପାଣି—ବ.ଦକ୍ଷିଣହସ୍ତ, ଡାହାଣହାତ, (୬ ତତ୍) ହାତର ଅଗ୍ରଭାଗ ।

ଅଗ୍ରପୂଜା—ବ. ପ୍ରଥମ ପୂଜା ।

**ଅଗ୍ରପୂଜ୍ୟ**—ପୁଂ. ବିଂ. ( ଅଗ୍ର+ପୂଜ୍ୟ ) ଯାହାକୁ ପ୍ରଥମେ ପୂଜା କରିବା ଉଚିତ ।

**ଅଗ୍ରଭଟ**—ଗ୍ରା. ବି. ପ୍ରାୟଶ୍ଚିତ୍ତାଦିକର୍ମୀଙ୍କ ବ୍ରାହ୍ମଣଭୋଜନରେ ଯେଉଁ ବ୍ରାହ୍ମଣ ଆଗେ ଖାଆନ୍ତି, ଆଗପଡୁଆ ବ୍ରାହ୍ମଣ ।

**ଅଗ୍ରଭାଗ**—ପୁଂ.ବି.(କ.ଧା) ପ୍ରଥମୋଦ୍ଧୃତ-ଭାଗ, ସାମନା, ଅଗ, ଶିରୋଭାଗ, ପଦାର୍ଥର ପ୍ରଥମାଂଶ. ମୁଣ୍ଡ, ଦାଢ଼, ସୀମା, ଶେଷଭାଗ ।

**ଅଗ୍ରଭୁକ୍**—ପୁଂ.ବି. (ଅଗ୍ର+ଭୁଜ୍+କ୍ୱିପ୍) ସୂର୍ଯ୍ୟ, ( ବିଂ ) ଯାହାଙ୍କୁ ସର୍ବପ୍ରଥମେ ଭୋଜନ ଦିଆଯାଏ ।

**ଅଗ୍ରଭୂ**—ପୁଂ. ବି. ଜ୍ୟେଷ୍ଠଭ୍ରାତା, ବ୍ରାହ୍ମଣ (ବିଂ.) ଅଗ୍ରଜ,ଅଗ୍ରବର୍ତ୍ତୀ ।

**ଅଗ୍ରଭୂମି**—ସ୍ତ୍ରୀ. ବି. (କ. ଧା) ପ୍ରାପ୍ୟସ୍ଥାନ, ପ୍ରଧାନସ୍ଥାନ, ପ୍ରଧାନ ଅଭିପ୍ରାୟ ।

**ଅଗ୍ରମନ୍ଦିର**—ବି. ଭାରତରେ ପ୍ରାଚୀନ କାଳରେ ବ୍ୟବହୃତ ଏକପ୍ରକାର ଅର୍ଣ୍ଣବ ଯାନ ।

**ଅଗ୍ରମହିଷୀ**—ସ୍ତ୍ରୀ.ବି.ରାଜାଙ୍କର ପାଟରାଣୀ, ରାଜାଙ୍କର ପ୍ରଥମ ବିବାହିତା ସ୍ତ୍ରୀ ।

**ଅଗ୍ରମାସ**—ବି, ମାର୍ଗଶିରମାସ ।

**ଅଗ୍ରମାଂସ**—କ୍ଲୀ. ବି. ଫସ୍‌ଫୁସ୍, କଲିଜା ଫୁଲଫୁଲ, ମେଦବୃଦ୍ଧି ରୋଗ,ଯକୃତ୍ ।

**ଅଗ୍ରଯାନ**—କ୍ଲୀ. ବି. ନାସୀର, ସେନାଗ୍ର-ଗମନ,ସେନାପତିର ଅଗ୍ରଗାମୀ ସୈନ୍ୟ ।

**ଅଗ୍ରଯାୟୀ**—ପୁଂ. ବିଂ. ( ଅଗ୍ର+ଯା+ଇନ୍) ଅଗ୍ରଗାମୀ ( ସ୍ତ୍ରୀ ) ଅଗ୍ରଯାୟିନୀ ।

**ଅଗ୍ରଲେଖ(ଖା)**—ବି.ପୁସ୍ତକର ଆରମ୍ଭରେ ପ୍ରକାଶିତ ଲେଖା, ଭୂମିକା ।

**ଅଗ୍ରଲୋହିତା**—ସ୍ତ୍ରୀ. ବି. ଚିଲ୍ଲିଶାକ ।

**ଅଗ୍ରବକ୍ତ୍ର**—ବି.ସୁଶ୍ରୁତରେ ବର୍ଣ୍ଣିତ ଡାକ୍ତରୀ ଅସ୍ତ୍ରବିଶେଷ ।

**ଅଗ୍ରବଣିକ**—ପୁ. ବିଂ. (ଅଗ୍ରବଣ+ଇକ) ଆଗ୍ରାଅଞ୍ଚଳବାସୀ, ଅଗରବାଲା ।

**ଅଗ୍ରବର୍ତ୍ତୀ**—ପୁଂ. ବିଂ. (ଅଗ୍ର+ବୃତ+ଇନ୍) ଆଗରେ ଅବସ୍ଥିତ, ପ୍ରଥମେ ଅବସ୍ଥିତ, ଅଗ୍ରଗାମୀ ।

**ଅଗ୍ରବୀଜ**—ପୁଂ. ବିଂ. ଯେଉଁ ଗଛର ଡାଳ ପୋତିଲେ ବଞ୍ଚେ, କଲମୀ ( ଗଛ ) ( ବି. ) କଲମୀଗଛ ।

ଅଗ୍ରସନ୍ଧାନୀ—ସ୍ତ୍ରୀ. ବି. ଯମପଞ୍ଜିକା, ଚିତ୍ର-ଗୁପ୍ତଙ୍କ ପାଞ୍ଜି, ଜୀବମାନଙ୍କର ଶୁଭାଶୁଭ କର୍ମଲିଖିତ ଯମପାଞ୍ଜି( ବିଂ.ପୁଂ. (ଅଗ୍ର-ସନ୍ଧାନ+ଇନ୍)ପୂର୍ବେ ଅନୁସନ୍ଧାନକାରୀ ।

ଅଗ୍ରସର—ବିଂ. (ଅଗ୍ର+ସୃ+ଅ) ଅଗ୍ର-ଗାମୀ, ଆଗୁସାର, କିଛିଦୂର ପର୍ଯ୍ୟନ୍ତ ସମ୍ପାଦିତ ( କର୍ମ ) ।

ଅଗ୍ରସାମାନ୍ୟ ବନ୍ଧନୀ—ବି. ମେରୁ ହାଡ଼ର ଖଣ୍ଡି ହାଡ଼ମାନଙ୍କୁ ପରସ୍ପର ସଙ୍ଗେ ସଂଲଗ୍ନ କରିଥିବା ବାନ୍ଧୁଣୀ ବା ପ୍ରଶିରା ।

ଅଗ୍ରସାରା—ସ୍ତ୍ରୀ. ବି. ଫଳଶୂନ୍ୟ ଶାଖା, ମଞ୍ଜରୀ ।

ଅଗ୍ରସୂଚନା—ବି. ପୂର୍ବଜ୍ଞାନ, ପୂର୍ବସ୍ୱାଦ, ପୂର୍ବଲକ୍ଷଣ, ଆଗରୁ ଜାଣିବା । [ ପୁତ୍ର ।

ଅଗ୍ରସେନ—ପୁଂ.ବି.ରାଜା ଜନମେଜୟଙ୍କ-

ଅଗ୍ରସ୍ତ୍ରୀ—ସ୍ତ୍ରୀ. ବି. (କ.ଧା) ଆଗ ଭାରିଜା, ପ୍ରଥମ ବିବାହିତା ପତ୍ନୀ ।

ଅଗ୍ରହ—ପୁଂ. ବି. ବିବାହ ନ କରିଥିବା ବ୍ୟକ୍ତି, ବାନପ୍ରସ୍ଥ, ସନ୍ନ୍ୟାସୀ ।

ଅଗ୍ରହାୟଣ—ପୁଂ. ବି. (ଅଗ୍ର+ହାୟନ) ମାର୍ଗଶିର ମାସ ।

ଅଗ୍ରହାର—ପୁଂ. ବି. ବ୍ରାହ୍ମଣକୁ ଆଗେ ଦେବା ଶସ୍ୟାଦି ଓ ଭୂମିଦାନ, ବ୍ରହ୍ମୋତ୍ତର, ଲାଖରାଜ ।

ଅଗ୍ରାଣୀକ—ବି. ଅଗ୍ରଗାମିସୈନ୍ୟ ।

ଅଗ୍ରାଶନ—ବି. ଅନ୍ନର ଯେଉଁ ଅଂଶ ଦେବତାଙ୍କ ଉଦ୍ଦେଶ୍ୟରେ ପହିଲେ କଢ଼ାଯାଇ ରଖା ଯାଇଥାଏ ।

ଅଗ୍ରାସନ—କ୍ଲୀ. ବି. ପ୍ରଥମାସନ ।

ଅଗ୍ରାହ୍ୟ—ତ୍ରି.ବିଂ.(ଅ+ଗ୍ରାହ୍ୟ) ଗ୍ରହଣର ଅଯୋଗ୍ୟ,ଗୃହୀତହେବାର ଅନୁପଯୁକ୍ତ ।

ଅଗ୍ରିମ—ବିଂ. ଆଗତୁରା, ଉତ୍ତମ, ଶ୍ରେଷ୍ଠ, ଜ୍ୟେଷ୍ଠ, ଅଗ୍ରୀୟ, ପ୍ରଥମ, (ସ୍ତ୍ରୀ) ଅଗ୍ରିମା ।

ଅଗ୍ରିମା—ସ୍ତ୍ରୀ. ବି. ଲବଣୀଫଳ, ଆତ, ବଢ଼ିଆଲ ।

ଅଗ୍ରିୟ—ବିଂ.(ଅଗ୍ର+ଇୟ)ଅଗ୍ରିମ, ଆଗ-ସମ୍ବନ୍ଧୀୟ (ସ୍ତ୍ରୀ) ଅଗ୍ରିୟା ।

ଅଗ୍ରିଷ—ତ୍ରି. ବିଂ. ପ୍ରଧାନ (ବି) ଜ୍ୟେଷ୍ଠ-ଭ୍ରାତା, ବଡ଼ଭାଇ ।

ଅଗ୍ରୀୟ—ବିଂ. (ଅଗ୍ର+ଈୟ) ଅଗ୍ରିମ, ଆଗସମ୍ବନ୍ଧୀୟ, ( ବି ) ଜ୍ୟେଷ୍ଠଭ୍ରାତା, ପହିଲଫଳ, ପ୍ରଧାନ, ଶ୍ରେଷ୍ଠ ।

ଅଗ୍ରୁ,ଅଗ୍ରୂ—ବି.ଅଙ୍ଗୁଳି,ନଦୀ, ବେଦପ୍ରଚୁର ପ୍ରୟୋଗ ସମୂହ ।

ଅଗ୍ରେ—କ୍ରି.ବିଂ.ଆଗେ,ପ୍ରଥମେ,ଆଦ୍ୟରେ, ସମ୍ମୁଖରେ, ସର୍ବାଦୌ ।

ଅଗ୍ରେଗ,ଅଗ୍ରେଗୂ—ପୁଂ.ବିଂ. ଅଗ୍ରଗାମୀ ।

ଅଗ୍ରେଦିଧିଷୁ—ପୁଂ. ବି. ( ବ. ବ୍ରୀ ) ପୁନର୍ଭୂ ବିବାହକର୍ତ୍ତା, ଯାହାର ଭାର୍ଯ୍ୟା ପ୍ରଥମେ ଥରେ ବିବାହହୋଇ ବିଧବା ହୋଇଥିଲା, ପ୍ରଥମସ୍ୱାମୀର ମୃତ୍ୟୁ ପରେ ଦ୍ୱିତୀୟ ଥର ବିବାହିତା ସ୍ତ୍ରୀର ସ୍ୱାମୀ ।

ଅଗ୍ରେଦିଧିଷୁ—ସ୍ତ୍ରୀ. ବି. ଅବିବାହିତା ଜ୍ୟେଷ୍ଠା ବିଦ୍ୟମାନେ ବିବାହିତା କନିଷ୍ଠା ସହୋଦରା, ବଡ଼ଭଉଣୀ ବିବାହ ନ ହେଉଣୁ ବିବାହ ହେବା ସାନଭଉଣୀ ।

ଅଗ୍ରେଦିଧିଷୁପତି—ପୁଂ. ବି. (୬ତତ୍) ବଡ଼ଭଉଣୀର ବିବାହ କରିବା ପୂର୍ବରୁ ବିବାହିତା ସାନଭଉଣୀର ସ୍ୱାମୀ, ପୁନର୍ବିବାହିତା ବିଧବାର ସ୍ୱାମୀ ।

ଅଗ୍ରେଦିଧିଷୂପତି—ପୁଂ. ବି. ( ୬ତତ୍ ) ଅଗ୍ରେଦିଧିଷୁପତି (ଦେଖ) ।

ଅଗ୍ରେବଣ—ବି. ବନର ଅଗ୍ରଭାଗ, ବନର ସୀମାନ୍ତଭାଗ, ଆଗ୍ରାନଗର ।

ଅଗ୍ର୍ୟ—ବିଂ.(ଅଗ୍ର+ଯ) ଶ୍ରେଷ୍ଠ, ଉତ୍ତମ, ପ୍ରଧାନ, ଆଦ୍ୟ, (ବି) ବଡ଼ଭାଇ ।

ଅଘ୍—( ଧାତୁ ) ପାପକରିବା, ଅନ୍ୟାୟ କରିବା ।

ଅଘ—କ୍ଲୀ. ବି ( ଅଘ୍+ଭା. ଅ ) ପାପ, କଳଙ୍କ,ଦୋଷ,ଦୁଃଖ,ବ୍ୟସନ,(ଗ୍ରା.ବି.) କଣ୍ଟକ, ଶତ୍ରୁ (ପୁଂ. ବି.) ଅଘ ନାମକ ଅସୁର ।

ଅଘକୃତ୍—ପୁଂ. ବିଂ. ( ଅଘ+କୃ+କ୍ୱିପ୍ ) ପାପାଚାରୀ ।

ଅଘଟଘଟ—ଗ୍ରା.ବି. ଅଣ୍ଟ ନଅଣ୍ଟ, ଅଭାବ ଓ ପ୍ରାଚୁର୍ଯ୍ୟ ।

ଅଘଟଘଟା—ଗ୍ରା. ବି°. ମିଛୁଆ, ଯେ ମିଛରେ ଅଘଟକଥା ଘଟିଲାପରି କହେ ।

ଅଘଟଘଟେଇବା—ଗ୍ରା. କ୍ରି. ମିଛ ଓ ଅସମ୍ଭବ କଥାକୁ ସତବୋଲି କହିବା, ପରର ନାମରେ ମିଥ୍ୟା ଦୁର୍ନାମକରିବା ।

ଅଘଟଣ—ଗ୍ରା. ବି°. ଅସୁନ୍ଦର, କୁତ୍ସିତ, କଦାକାର, ବେଢଙ୍ଗିଆ, ଅସମ୍ଭବ, (ବି) ବଡ଼ମୁଣ୍ଡ, ଅଶ୍ରୁତପୂର୍ବ ଘଟନା, ଅସମ୍ଭବ ବିଷୟ ।

ଅଘଟନ—ବି°. ଅସମ୍ଭବ, ଅସୁନ୍ଦର ।

ଅଘଟନଘଟନା—ବି. (୬ତତ୍) ଅସମ୍ଭବ ଘଟନା ।

ଅଘଟନା—ବି. ବି°. ଦୁର୍ଘଟନା ।

ଅଘଟମାନ୍—ବି°. (ନ.ତତ୍) ଯାହା ଘଟି ପାରେ ନାହିଁ, ଅସମ୍ଭବ ।

ଅଘନ—ବି°. ( ନ. ତତ୍ ) ପତଳା ।

ଅଘନାଶନ—ପୁ°. ବି. (ଅଘ+ନଶ +ଣିଚ୍. ଅନ) ପାପନାଶକ ଜପ ଦାନାଦି ।

ଅଘଭୋଜୀ—ପୁ°. ବି°. (ଅଘ+ଭୁଜ+ ଇନ୍) ଦେବବ୍ରାହ୍ମଣଉଦ୍ଦେଶ୍ୟଭିନ୍ନ ନିଜ ପାଇଁ ପାକ କରିବା (ବ୍ୟକ୍ତି)

ଅଘମର୍ଷଣ—ବି°.ପାପନାଶକ (ପୁ° ବି. ) ଶ୍ରୀକୃଷ୍ଣ, ବିଷ୍ଣୁ, ବେଦମନ୍ତ୍ର ବିଶେଷ, ଋଷିବିଶେଷ ।

ଅଘମର୍ଷଣସୂକ୍ତ—ବି. ଋଗ୍ବେଦୋକ୍ତ ଯଜ୍ଞର ଅବଭୃଥସ୍ନାନମନ୍ତ୍ର ।

ଅଘମାର—ପୁ°. ବି°. (ଅଘ+ମୃ+ଅ) ପାପନାଶକ ବେଦାଦି ।

ଅଘର—ଗ୍ରା. ବି. ହୀନକୁଳ, ନୀଚବଂଶ, (ବି°) ଅପର, ଗୃହଶୂନ୍ୟ ।

ଅଘରଦୁଆରେ—ଗ୍ରା.କ୍ରି.ବି°. ଘରେଘରେ, ପ୍ରତିଘରେ, ପ୍ରତ୍ୟେକ ପରିବାରରେ ।

ଅଘରିଆ—ଗ୍ରା. ବି. ଯାଯାବର ଜାତି-ବିଶେଷ, ଏମାନେ ପ୍ରଥମେ ଆଗ୍ରା ଅଞ୍ଚଳରୁ ସମ୍ବଲପୁର ଅଞ୍ଚଳକୁ ଆସିଥିଲେ, ଅଘ୍ରିଆ ,

ଅଘର୍ମ—ପୁ°.ବି. ଶୀତକାଳ, ସନ୍ତାପଶୂନ୍ୟ କାଳ ।

ଅଘର୍ମଧାମା—ପୁ°. ବି. (ବ. ବ୍ରୀ) ଚନ୍ଦ୍ର ।

ଅଘବାନ୍—ପୁ°. ବି°. (ଅଘ+ବତ୍) ପାପୀ, ଅଘବିଶିଷ୍ଟ, ଦୋଷୀ, ( ସ୍ତ୍ରୀ ) ଅଘବତୀ ।

ଅଘବିଷ—ପୁ°. ବି. ସର୍ପ ।

ଅଘଶଂସ—ପୁ°.ବି.ଅନିଷ୍ଟକାରୀ ପାପକର୍ମୀ ।

ଅଘଷା—ଗ୍ରା.ବି°.(ସଂ. ଅଘର୍ଷିତ) ଅମଜା, ଅଘର୍ଷିତ, ଅମ ଜିତ,(ବି)ଘଷାର ଅଭାବ ।

ଅଘା—ଗ୍ରା.ବି. (ଅନାଦରାର୍ଥକ) ଅଘାସୁର, (ବି°) ଅଘାସୁର ପରି ଦୀର୍ଘ ଓ ସ୍ଥୂଳ, ନିର୍ବୋଧ, ଓଲୁ ।

ଅଘାଚଟା—(ପ୍ରା—ସମ୍ପ)ବି°. କୌଣସି ପଦାର୍ଥ ଖାଇ ଖାଇ ବିରକ୍ତ( ବ୍ୟକ୍ତି ) ।

ଅଘାୟୁ—ପୁ°.ବି°.ପାପାଚରଣଇଚ୍ଛାଶୀଳ, ପାପକାରୀ, ହିଂସାନିରତ ।

ଅଘାରି—ପୁ. ବି°. ଅଘାସୁରର ଶତ୍ରୁ, ଶ୍ରୀକୃଷ୍ଣ, ବିଷ୍ଣୁ ।

ଅଘାରୀ—ପୁ°.ବି°. ( ଅଘ+ଋ+ଇନ୍ ) ବ୍ୟସନଶୀଳ, ଅଘାସୁର, ଅଘନାମକ ଅସୁରବିଶେଷ,(ଗ୍ରା.ବି.)ଅତି ସ୍ଥୂଳକାୟ ବ୍ୟକ୍ତି ।

ଅଘାହ—କ୍ଲୀ.ବି. ଅଶୌଚ ଦିନ, ଦୋଷ-ଯୁକ୍ତ ଦିବସ ।

ଅଘିରି—ଗ୍ରା. ବି. ଅଗ୍ନ୍ୟୁତ୍ସବ, ଅଇଘରି ଇତ୍ୟାଦି (ଦେଖ) ।

ଅଘୃଣ—ପୁ°.ବି°.(ଅ+ଘୃଣା) ଘୃଣାହୀନ, ନିର୍ଘୃଣ, ନିର୍ଦ୍ଦୟ ।

ଅଘୋଡ଼ା—ଗ୍ରା. ବି°. ଅନାବୃତ, ଘୋଡ଼ା ହୋଇନଥିବା, ଅଘୋଡ଼ିଆ ।

ଅଘୋର—ପୁ°.ବି. (ଅ+ଘୋର) ଶିବ, ମହାଦେବ ( ବି° ) ଭୟାନକ, ପ୍ରଚଣ୍ଡ ଗାଢ଼, ଘନିଷ୍ଠ, ( ବି° ) ନ.ତତ୍; ଅଭୟାନକ, ଶାନ୍ତ, ସୁନ୍ଦର, ( ସ୍ତ୍ରୀ ) ଅଘୋରା ।

ଅଘୋରଦୀକ୍ଷା—ସ୍ତ୍ରୀ. ବି. ଅଘୋରୀମାନଙ୍କ ମତ, ଶୈବସନ୍ନ୍ୟାସୀ ସମ୍ପ୍ରଦାୟଙ୍କ ଧର୍ମ ମତ ।

ଅଘୋରପନ୍ଥା—ବି. (୬ ତତ୍) ଅଘୋର-ଦୀକ୍ଷା ( ଦେଖ ) ।

ଅଘୋରପନ୍ଥୀ—ବି°.କୁପଥଗାମୀ,ଅଘୋରୀ (ବି) ଶିବସମ୍ପ୍ରଦାୟବିଶେଷ ।

ଅଘୋରପ୍ରୀତି—ଗ୍ରା. ବି. ଗାଢ଼ପ୍ରେମ ।

ଅଘୋରା—ସ୍ତ୍ରୀ. ବି. ଭାଦ୍ରମାସର କୃଷ୍ଣ-ଚତୁର୍ଦ୍ଦଶୀ, ଏ ଦିନ ଶିବପୂଜା କଲେ ମରକାଳରେ ଶିବ ଲୋକ ପ୍ରାପ୍ତି ହୁଏ, (ବି°.) ଘୋର ହୋଇ ନଥିବା ।

ଅଘୋରି (ରୀ)—ବି. ବି°. ଅଘୋରପନ୍ଥୀ (ଦେଖ) ଅଘୋରପନ୍ଥୀ (ଦେଖ) ।

ଅଘୋଷ—ବି. ବର୍ଣ୍ଣୋଚ୍ଚାରଣାର୍ଥ ପ୍ରଯତ୍ନ ବିଶେଷ, ଗଉଡ଼ଶୂନ୍ୟପ୍ରଦେଶ, (ବି°) ଶବ୍ଦରହିତ, ଆଭୀରଶୂନ୍ୟ ।

ଅଘ୍ନ, ଅଘ୍ନ୍ୟ—ବି°. ପୁ°. ( ଅ+ହନ୍+ ମ. ଅ.-ଯ ) ଅବଧ, (ବି) ବ୍ରହ୍ମା ।

ଅଘ୍ନ୍ୟା—ସ୍ତ୍ରୀ.ବି. ଅଘ୍ନ୍ୟର ସ୍ତ୍ରୀଲିଙ୍ଗ, ଗାଭୀ, ଗାଈ (ବି°) ଅବଧ୍ୟା ।

ଅଘ୍ରେୟ—କ୍ଲୀ. ବି. ଦୁର୍ଗନ୍ଧଦ୍ରବ୍ୟ,ମଦ୍ୟ ।

ଅଙ୍କ—ପୁ°. କ୍ଲୀ. ବି. (ଅଙ୍କ+ଅ) ଅଙ୍କ-ଶାସ୍ତ୍ର, ବର୍ଷ, ପର୍ବତ, ରେଖା, ଦୋଷ, ଯୁଦ୍ଧ, ଦେହ, ସ୍ଥାନ,ଅଳଙ୍କାର,ସଂଖ୍ୟା, ଚିହ୍ନ, କୋଡ଼, ସମୀପ,ପଦାଙ୍କ,ମୃଗାଙ୍କ, ନାଟକର ପରିଚ୍ଛେଦ,ରାଜାଙ୍କର ସିଂହା-ସନାରୋହଣଠାରୁ ଗଣାଯିବା ବର୍ଷ, ସାମୀପ୍ୟ ।

ଅଙ୍କକ—ପୁ°. ବି. (ଅଙ୍କ+ଅ.କ) ଚିହ୍ନ କରିବା ବ୍ୟକ୍ତି, ଗଣନାକଲାବାଲା ।

ଅଙ୍କଗ—ପୁ°.ବି°.(ଅଙ୍କ+ଗମ୍+କ.ଅ) ପିତା ମାତା ବା ପ୍ରେମିକଙ୍କ କୋଡ଼ାଶ୍ରୟ କରିବା (ଶିଶୁ ବା ପ୍ରେମିକା) ।

ଅଙ୍କତନ୍ତ୍ର—କ୍ଲୀ. ବି. ଅଙ୍କଶାସ୍ତ୍ର,ପାଟିଗଣି-ତାଦି ।

ଅଙ୍କତି—ପୁ°. ବି. (ଅଞ୍ଚୁ+ଅତି) ବ୍ରହ୍ମା, ଅଗ୍ନି,ବାୟୁ,ଅଗ୍ନିହୋତ୍ରୀ,(ସ୍ତ୍ରୀ)ଅଙ୍କତି ।

ଅଙ୍କଧାରଣ—କ୍ଲୀ.ବି.(ଅଙ୍କ+ଧୃ+ଣିଚ୍. ଅନ) ଚିହ୍ନଧାରଣ ।

ଅଙ୍କନ—କ୍ଲୀ. ବି. ( ଅଙ୍କ+ଅନ ) ଚିହ୍ନ କରଣ, ଯଦ୍ଦ୍ୱାରା ଚିହ୍ନକରାଯାଏ, ସଂଖ୍ୟା ଲିଖନ ।

**ଅଙ୍କପାତ**—ପୁଂ. ବି. ( ୬ତତ୍ ) ଅଙ୍କ-ବିନ୍ୟାସ, ରାଶିଲିଖନ, ଅଙ୍କକଷା, ଚିହ୍ନିତ କରଣ ।

**ଅଙ୍କପାଲି**—ସ୍ତ୍ରୀ. ବି.(ଅଙ୍କ+ପାଲ+ଇ) କୋଠି, ଆଲିଙ୍ଗନ,କୁଣ୍ଢାଇବା,କୋଳ-ରେବସାଇବା ।

**ଅଙ୍କପାଲିକା**—ସ୍ତ୍ରୀ. ବି. (ଅଙ୍କ+ପାଲ-+ଇକ+ଆ) ଅଙ୍କପାଲି (ଦେଖ) ଧାଈ, ଧାଇମା ।

**ଅଙ୍କପାଶ**—ପୁଂ. ବି. ଅଙ୍କର ସଂସ୍ଥାପନ-ବିଶେଷ, ଅଙ୍କବନ୍ଧନ ।

**ଅଙ୍କପୂରଣ**—କ୍ଲୀ. ବି. ଗୁଣନ କରିବା, ଗୁଣନା ଦ୍ୱାରା କୌଣସି ଅଙ୍କାତ ସଂଖ୍ୟାକୁ ଆଣି ସ୍ଥାପନ କରିବା ।

**ଅଙ୍କବନ୍ଧ**—ପୁଂ. ବି. କୋଡ଼ବନ୍ଧ ।

**ଅଙ୍କବିଦ୍ୟା**—ବି.ଗଣିତଶାସ୍ତ୍ର,ଚିହ୍ନବିଦ୍ୟା ।

**ଅଙ୍କମାଲ**—ବି. ଆଲିଙ୍ଗନ, କୁଣ୍ଢାଇବା ।

**ଅଙ୍କରାନ୍ତ**—ଗ୍ରା. ବି. ଔଷଧିଗୁଳ୍ମବିଶେଷ, କଣ୍ଟକାରି, ବେଜାଙ୍ଗ ।

**ଅଙ୍କରେଖା**—ବି.(ଅଙ୍କ+ରେଖା) ଲୁଗା ଆଦିର ରଙ୍ଗିନ ଧଡ଼ି ।

**ଅଙ୍କଲକ୍ଷ୍ମୀ**—ସ୍ତ୍ରୀ.ବି.(୬ତତ୍) ସ୍ତ୍ରୀ, ଭାର୍ଯ୍ୟା, ପତ୍ନୀ, ଅଙ୍କରଲକ୍ଷ୍ମୀସ୍ୱରୂପା ।

**ଅଙ୍କଲୋଡ଼୍ୟ**—ପୁଂ. ବି. ଚିଞ୍ଚୋଡ଼ବୃକ୍ଷ, ତେନ୍ତୁଳିଗଛ, ଅଦା ।

**ଅଙ୍କଲେପ**—ପୁଂ. ବି. ଫେଡ଼ାଣ, ଅଙ୍କର ବିୟୋଗ ସାଧନ ।

**ଅଙ୍କଶାୟୀ**—ପୁଂ. ବିଂ. (ଅଙ୍କ+ଶୀ+ଇନ୍) କୌଣସି ବ୍ୟକ୍ତିର କୋଡ଼ରେ ଶୋଇଥିବା (ବ୍ୟକ୍ତି) ଅଙ୍କସ୍ଥ,(ସ୍ତ୍ରୀ- ବି ) ଅଙ୍କଶାୟିନୀ ।

**ଅଙ୍କଶାସ୍ତ୍ର**—ବି.ଗଣିତଶାସ୍ତ୍ର, ଯଥା :— ବୀଜଗଣିତ, ପାଟିଗଣିତ, ଜ୍ୟାମିତି ପ୍ରଭୃତି ।

**ଅଙ୍କଶୋଭୀ**—ପୁଂ.ବିଂ. (ଅଙ୍କ+ଶୁଭ+ଇନ୍ ) ଅଙ୍କମଣ୍ଡନକାରୀ ( ସ୍ତ୍ରୀ ) ଅଙ୍କ-ଶୋଭିନୀ ।

**ଅଙ୍କସ**—କ୍ଲୀ. ବି. ଚିହ୍ନ, ଶରୀର ।

**ଅଙ୍କସ**—କ୍ଲୀ.ବିଂ.(ଅଙ୍କସ୍+ଅ)ଚିହ୍ନଯୁକ୍ତ ।

**ଅଙ୍କସ୍ଥ**—ବିଂ.(ଅଙ୍କ+ସ୍ଥା+ଅ)କୋଡ଼ସ୍ଥ, କୋଳରେଥିବା, (ସ୍ତ୍ରୀ) ଅଙ୍କସ୍ଥା ।

**ଅଙ୍କା**—ଗ୍ରା. ବି. (ଅଙ୍କନ) ଆଙ୍କିବା ।

**ଅଙ୍କାଗତ**—ବିଂ(ଅଙ୍କ+ଆ+ଗମ୍+ତ) ୨ତତ୍; ଅଯାଚିତୋପସ୍ଥିତ,ଯାହା ସ୍ୱୟଂ ସ୍ୱୟଂ ଆସି ପହୁଞ୍ଚେ ।

**ଅଙ୍କାଙ୍କ**—କ୍ଲୀ. ବି. ଜଳ ।

**ଅଙ୍କାବତାର**—ବି. ନାଟକର ଗୋଟିଏ ଅଙ୍କ ଶେଷରେ ଆଗାମୀ ଅଙ୍କ ବିଷୟର ସୂଚନା ।

**ଅଙ୍କି**—ଗ୍ରା. ବି. ବାଡ଼ ଘେରା ହୋଇଥିବା ସ୍ଥାନ, ଖୁଆଡ଼, ଘେରବନ୍ଦ ।

**ଅଙ୍କିଆ**—ଗ୍ରା.ବିଂ. ଅମୁକସଂଖ୍ୟାର ଆକୃତି ବିଶିଷ୍ଟ, ଯଥା:—ବିଲଟି ଆଠଅଙ୍କିଆ ।

**ଅଙ୍କିତ**—ବିଂ (ଅନ୍କ+ର୍ମ.ତ) ଚିହ୍ନିତ, ଲାଞ୍ଛିତ, ଚିହ୍ନିତ, ବର୍ଣ୍ଣିତ, ଲକ୍ଷିତ ।

**ଅଙ୍କିନୀ**—ସ୍ତ୍ରୀ. ବି. ଚିହ୍ନସମୂହ ।

**ଅଙ୍କୀ**—ପୁଂ. ବିଂ. (ଅଙ୍କ+ଇନ୍) ଚିହ୍ନ-ବିଶିଷ୍ଟ, କଳଙ୍କିତ, କଳଙ୍କୀ, ( ସ୍ତ୍ରୀ ) ଅଙ୍କିନୀ (ବି) (ଅଙ୍କ+ଈ) ମୃଦଙ୍ଗାଦି ବାଦ୍ୟବିଶେଷ, ଯେ ସମସ୍ତବାଦ୍ୟ କୋଡ଼ରେ ଧରି ବଜାଯାଏ ।

**ଅଙ୍କୁଟ**—ବି. (ଅଙ୍କ+ଉଟ) ଚାବି, କୁଞ୍ଚି ।

**ଅଙ୍କୁଡ଼କ**—ବି,(ଅଙ୍କ+ଉଡ଼+କ) ଚାବି, କଞ୍ଚି ।

**ଅଙ୍କୁଡ଼ି**—ଗ୍ରା. ବି. ଆଙ୍କୁଡ଼ା, ଉଚ୍ଚବୃକ୍ଷରୁ ଫଳାଦି ତୋଳିବାର ବ୍ୟବହୃତ ବକ୍ରାଗ୍ର ଲଗି ।

**ଅଙ୍କୁର**—ପୁଂ.ବି. (ଅଙ୍କ+ଉର) ବୀଜରୁ ଉତ୍ପନ୍ନ ନୂତନଗଜା, କୋରକ, ମକୁଳ, କଢ଼ି, ଲୋମ, ରକ୍ତ,ଜଳ, ପୁଲକ,ଆଲୁ ।

**ଅଙ୍କୁରକ**—ପୁଂ.ବି.ନୀଡ଼, ପକ୍ଷୀର ବସା ।

**ଅଙ୍କୁରରୋପଣ**—ବି. କୌଣସି କାର୍ଯ୍ୟର ସୂତ୍ରପାତ, କାର୍ଯ୍ୟର ଆରମ୍ଭ, ତଳି-ଯୋଗାଇବା ।

**ଅଙ୍କୁରିତ**—ବିଂ.(ଅଙ୍କୁର+ଇତ)ଗଜୁରି-ଥିବା, ଗଜା ହୋଇଥିବା ।

**ଅଙ୍କୁଶ**—ପୁଂ. ବି. (ଅଙ୍କ+ଉଶ) ହସ୍ତୀ ଚାଳନ ନିମନ୍ତେ ଲୌହାସ୍ତ୍ର ବିଶେଷ ।

**ଅଙ୍କୁଶଗ୍ରହ**—ପୁଂ. ବି. (ଅଙ୍କୁଶ+ଗ୍ରହ+ଅ) ହସ୍ତୀପକ,ମାହୁନ୍ତ (ବିଂ) ଅଙ୍କୁଶଧାରୀ ।

**ଅଙ୍କୁଶଦୁର୍ଦ୍ଧର**—ପୁଂ.ବି.(ଅଙ୍କୁଶ+ଦୁ+ଧୃ+ଅ) ଦୁର୍ଦ୍ଦାନ୍ତ ହସ୍ତୀ, କ୍ଷିପ୍ତ ହସ୍ତୀ ।

**ଅଙ୍କୁଶଧାରୀ**—ପୁଂ. ବି. (ଅଙ୍କୁଶ+ଧୃ+ଇନ୍) ହସ୍ତୀପାଳକ,ଅଙ୍କୁଶଧାରୀ ପୁରୁଷ ।

**ଅଙ୍କୁଶମୁଦ୍ରା**—ସ୍ତ୍ରୀ. ବି. ଅଙ୍କୁଶାକାର ମୁଦ୍ରା-ବିଶେଷ, ପୂଜାଙ୍ଗମୁଦ୍ରାବିଶେଷ ।

**ଅଙ୍କୁଶୀ**—ସ୍ତ୍ରୀ. ବି. ଜୈନମାନଙ୍କର ଦେବୀ ବିଶେଷ ।

**ଅଙ୍କୋଟ, ଅଙ୍କୋଠ,ଅଙ୍କୋଲ**—ପୁଂ.ବି. ପୀତସାର, ସୁଗନ୍ଧପୁଷ୍ପ ବିଶେଷ, ରକ୍ତ-ଫଳ, ଆଙ୍କୁଲିଗଛ ।

**ଅଙ୍କୋଲ**— ପୁଂ. ବି. ଅଙ୍କୋଟବୃକ୍ଷ, ଆଙ୍କୁଲି ଗଛ ।

**ଅଙ୍କୋଲସାର**—ପୁଂ. ବି. ( ୬ ତତ୍ ) ଆଙ୍କୁଲି ଗଛର ସାର, ସ୍ଥାବରବିଷ-ପ୍ରଭେଦ ।

**ଅଙ୍କୋଲିକା**—ସ୍ତ୍ରୀ. ବି. (ଅଙ୍କ+ଉଲ+ଇକ+ଆ ) ଆଲିଙ୍ଗନ ।

**ଅଙ୍କୋଲ୍ଲିକା**—ସ୍ତ୍ରୀ. ବି. ଆଙ୍କୁଲି ବୃକ୍ଷ ।

**ଅଙ୍କ୍ୟ**—ପୁଂ.ବି. (ଅଙ୍କ+ଯ) କୋଳରେ ଧରି ବଜାଇବା ଯନ୍ତ୍ରବିଶେଷ, ମୃଦଙ୍ଗ, ପଖାଉଜ ଇତ୍ୟାଦି ( ବିଂ ) ଅଙ୍କନ-କରିବା ଯୋଗ୍ୟ, ଗଣନୀୟ ।

**ଅଙ୍ଗ**—(ଧାତୁ)ସଂ-ଅନ୍ଗ ଧାତୁ)ପାଇବା, ନେବା, ଯିବା, ଚିହ୍ନଦେବା ।

**ଅଙ୍ଗ**—କ୍ଲୀ. ବି.(ଅନ୍ଗ+କ.ଅ) ଶରୀର, ଦେହର ଭିନ୍ନ ଭିନ୍ନ ଅଂଶ, ମନ, ଅଂଶ, ଅବୟବ, କୌଣସି ପଦାର୍ଥର ଅଂଶ ବିଶେଷ, ଜନ୍ମଲଗ୍ନାଦି, ଅଙ୍ଗ-ଦେଶ, ଅପ୍ରଧାନ ବିଷୟ, ଉପାୟ, ଉପାଦାନ, ଆକୃତି, ଜ୍ଞାନ, ବେଦାଙ୍ଗ, ବେଦର ଅବୟବ ଗ୍ରନ୍ଥ, ନିକେ, ସ୍ୱୟଂ (ବିଂ) ଅପ୍ରଧାନ, ଗୌଣ, ଅଧୀନ, (ଅବ୍ୟ) ସମ୍ବୋଧନ, ସ୍ୱୀକାର ।

**ଅଙ୍ଗକ**—ପୁଂ. ବି. (ଅଙ୍ଗ+କ) ଦେହ ଶରୀର, ଗାତ୍ର, ଅବୟବ ।

ଅଙ୍ଗକର୍ମ—କ୍ଲୀ. ବ. ( ୬ତତ୍ ) ଦୈହିକ ପରିଚର୍ଯ୍ୟା. ଅଙ୍ଗସେବା, ହସ୍ତପଦାଦି ମର୍ଦ୍ଦନ, (କ.ଧା) ପ୍ରଧାନ ଯଜ୍ଞର ଅଙ୍ଗୀଭୂତ ଗୌଣ କର୍ମ ।

ଅଙ୍ଗକଷାୟ—ବି. ପୁରୁଷଗାମୀ ।

ଅଙ୍ଗଗ୍ରହ—ପୁଂ. ବ. (ଅଙ୍ଗ+ଗ୍ରହ+କ.ଅ) ଶରୀରବେଦନା,ଗ୍ରନ୍ଥିବେଦନା ।

ଅଙ୍ଗଗ୍ଲାନି—ସ୍ତ୍ରୀ. ବ. (୬ତତ୍) ଶରୀରର କ୍ଲାନ୍ତି ବା ଅବସନ୍ନତା, ଅବସାଦ, ଦେହର କଷ୍ଟ ।

ଅଙ୍ଗଘଷା—ଗ୍ରା. ବିଂ. ଅଙ୍ଗଲଗା, ଯେଉଁ ଭୃତ୍ୟ ପ୍ରଭୁର ଅଙ୍ଗସେବା କରେ, ଯେଉଁ ଦାସୀ ପ୍ରଭୁର ସହବାସ କରେ, ଦେହଘଷିବା ଲୋକ, ଅତଘନିଷ୍ଠ, ଅତିପ୍ରିୟ ।

ଅଙ୍ଗଚାଳନ—ବ. (୬ତତ୍) ଅଙ୍ଗଭଙ୍ଗୀ, ବ୍ୟାୟାମ, ହସ୍ତପଦାଦିର ସଂଚାଳନ ।

ଅଙ୍ଗଚ୍ଛଦ—ବ. (ଅଙ୍ଗ+ଛଦ+କ. ଅ) ଯାହା ଦେହକୁ ଘୋଡ଼ାଏ, ପୋଷାକ ।

ଅଙ୍ଗଛି—ପ୍ରା. (ସମ୍ବ) ବ. ଗାମୁଛା, ଗାତ୍ରମାର୍ଜନୀ ।

ଅଙ୍ଗଚ୍ଛେଦ (ନ)—ପୁଂ. ବ. ( ୬ତତ୍ ) ଶରୀରାବୟବର ଛେଦନ, ଅଙ୍ଗୀଭୂତ ଅଂଶର ବିଚ୍ଛେଦ ।

ଅଙ୍ଗଜ—ବ. (ଅଙ୍ଗ+ଜନ୍+ଅ)ପୁତ୍ର, ଆତ୍ମଜ, ମତ୍ତତା, ନିଶା, କାମ, ରୋଗ, ରକ୍ତ, ଲୋମ ।

ଅଙ୍ଗଜନୁ—ବ. ପୁଂ.ସ୍ତ୍ରୀ. (ଅଙ୍ଗ+ଜନୁ) ବ. କ୍ରୀ; ସନ୍ତାନ, ପୁତ୍ର ବା କନ୍ୟା ।

ଅଙ୍ଗଜା—ସ୍ତ୍ରୀ.ବ. ପୁତ୍ରୀ,ତନୟା, କନ୍ୟା, ଦୁହିତା, ଝିଅ ।

ଅଙ୍ଗଜ୍ୱର—ବ.(୬ତତ)ରାଜଯକ୍ଷ୍ମା ରୋଗ ।

ଅଙ୍ଗଣ—କ୍ଲୀ. ବ. (ଅନ୍‌ଗ+ଅଧି. ଅନ) ଅଗଣା, ଚତ୍ୱର ।

ଅଙ୍ଗତ—ପୁଂ. ବ. (ଅଙ୍ଗ+ଅତ) ବ୍ରହ୍ମା ଅଗ୍ନି, ଅଗ୍ନିହୋତ୍ର, ବିଷ୍ଣୁ, ଯାନ,ବାହନ (ସ୍ତ୍ରୀ) ଅଙ୍ଗତି ।

ଅଙ୍ଗତ୍ର—ବ. ( ଅଙ୍ଗ+ତ୍ରୈ+କ. ଅ ) ଅଙ୍ଗରକ୍ଷକ, ବର୍ମ, ସାଞ୍ଜୁ, କୁରୁତା ।

ଅଙ୍ଗତ୍ରାଣ—ପୁଂ. ବ. (ଅଙ୍ଗ+ତ୍ରୈ+ଅନ ) ବର୍ମ, ସାଞ୍ଜୁ, କବଚ, କୁରୁତା ।

ଅଙ୍ଗଦ—କ୍ଲୀ. ବ. (ଅଙ୍ଗ+ଦା+କ.ଅ) କେୟୁର, ତାଡ଼, ବାଜୁବନ୍ଧ, ଗାମୁଛା, ଗାତ୍ରମାର୍ଜନୀ, (ପୁଂ. ବି.) ବାଲିନାମକ କପିରାଜାର ପୁତ୍ର, ଲକ୍ଷ୍ମଣଙ୍କର ଦୁଇପୁତ୍ର ମଧ୍ୟରୁ ଏକ ।

ଅଙ୍ଗଦନର୍ଯ୍ୟୂହ—ପୁଂ. ବ. (ଅଙ୍ଗଦ+ନର୍+ଯା+ଉ+ବହ+ଅ)କେୟୁର, ଚୂଡ଼ା ।

ଅଙ୍ଗଦା—ସ୍ତ୍ରୀ.ବ. (ଅଙ୍ଗଦ+ଆ) ଦକ୍ଷିଣ ଦିଗ୍ଗଜର ସ୍ତ୍ରୀ ।

ଅଙ୍ଗନ—କ୍ଲୀ. ବ. (ଅନ୍‌ଗ+ଅଧି. ଅନ) ପ୍ରାଙ୍ଗଣ, ଅଜିର, ଚତ୍ୱରଭୂମି (ଭା.ଅନ) ଭ୍ରମଣ ।

ଅଙ୍ଗନା—ସ୍ତ୍ରୀ. ବ. ( ଅଙ୍ଗ+ନ+ଆ ) ସୁନ୍ଦରୀ ସ୍ତ୍ରୀ, ସୁଶ୍ରୀ କାମିନୀ, ରୂପବତୀ ବାଳିକା, (ସ୍ତ୍ରୀ) ଉତ୍ତର ଦିଗର ହସ୍ତିନୀ, (ଜ୍ୟୋତିଷ) କନ୍ୟାରାଶି ।

ଅଙ୍ଗନାପ୍ରିୟ—ପୁଂ.ବ.(୬ତତ୍) ଅଶୋକ ବୃକ୍ଷ ।

ଅଙ୍ଗନିଗ୍ରହ—ପୁଂ. ବ. (୬ତତ୍) ଉପବାସ ଓ ଉପଦ୍ରବାଦି ଦ୍ୱାରା ସ୍ୱେଚ୍ଛାରେ ଶରୀରକୁ କ୍ଳେଶ ପ୍ରଦାନ ।

ଅଙ୍ଗନ୍ୟାସ—ପୁଂ. ବ. (୬ତତ୍) ମନ୍ତ୍ରୋଚ୍ଚାରଣ ପୂର୍ବକ ଶରୀରରେ ନ୍ୟାସକରିବା, (ଓଁ କ୍ରାଂ ହୃଦୟାୟ ନମଃ ଇତ୍ୟାଦି)

ଅଙ୍ଗପାଲି—ପୁଂ. ବ. (ଅଙ୍ଗ+ପାଲ+ଇ) ଆଲିଙ୍ଗନ, କୁଣ୍ଢାଇବା ।

ଅଙ୍ଗପାଳିକା— ସ୍ତ୍ରୀ. ବି. ଦେହପାଳନକର୍ତ୍ତ୍ରୀ ଧାଈମା, (ପୁଂ.) ଅଙ୍ଗପାଳକ ।

ଅଙ୍ଗପ୍ରତ୍ୟଙ୍ଗ—ବି. ( ଦ୍ୱନ୍ଦ୍ୱ ) ପ୍ରତ୍ୟେକ ଅବୟବ,ସର୍ବାଙ୍ଗ, ଶରୀରର ସର୍ବାଂଶ ।

ଅଙ୍ଗପ୍ରାୟଶ୍ଚିତ୍ତ—କ୍ଲୀ. ବ. ( କ. ଧା ) ଦାନବିଶେଷ,ଶରୀରଶୁଦ୍ଧି ପାଇଁ ଅନୁଷ୍ଠିତ ପ୍ରାୟଶ୍ଚିତ୍ତ କର୍ମ ।

ଅଙ୍ଗଭଙ୍ଗ—ବ. ( ୬ତତ୍ ) ଅଙ୍ଗଭଙ୍ଗୀ ( ଦେଖ ) ।

ଅଙ୍ଗଭଙ୍ଗି—ବି. ( ୬ତତ୍ ) ଅଙ୍ଗଭଙ୍ଗୀ ( ଦେଖ ) ।

ଅଙ୍ଗଭଙ୍ଗିମା—ବି. ( ୬ ତତ୍ ) ଅଙ୍ଗଭଙ୍ଗୀ ( ଦେଖ )

ଅଙ୍ଗଭଙ୍ଗୀ—ବି. (୬ତତ୍) ଅଙ୍ଗଚାଳନା ଦ୍ୱାରା ମନୋଭାବର ପ୍ରକାଶ, ନୃତ୍ୟ ସମୟରେ ଅଙ୍ଗ ବିଶେଷର କଳାଯୁକ୍ତ ଚାଳନ, ହାବ ।

ଅଙ୍ଗଭୂ—ପୁଂ.ବି. (ଅଙ୍ଗ+ଭୂ+କ୍ୱିପ୍) ପୁତ୍ର, କାମ, କନ୍ଦର୍ପ, ଅଙ୍ଗଜାତ ।

ଅଙ୍ଗମର୍ଦ୍ଦ—ପୁଂ.ବ. (ଅଙ୍ଗ+ମୃଦ୍+ଅ) ଅଙ୍ଗମର୍ଦ୍ଦନକାରୀ ଭୃତ୍ୟବିଶେଷ ଯେଉଁ ଚାକର ପ୍ରଭୁର ଗୋଡ଼ହାତ ଘଷିଦିଏ ।

ଅଙ୍ଗମର୍ଦ୍ଦକ—ପୁଂ.ବ. ଅଙ୍ଗମର୍ଦ୍ଦ (ଦେଖ) ଗୋଡ଼ଘଷାଚାକର ।

ଅଙ୍ଗମର୍ଦ୍ଦୀ—ପୁଂ.ବ.ଅଙ୍ଗମର୍ଦ୍ଦନକାରକ, ଗୋଡ଼ଘଷା ଚାକର ( ସ୍ତ୍ରୀ )ମର୍ଦ୍ଦିନୀ ।

ଅଙ୍ଗମାର୍ଜନ—ବ. ( ୬ତତ୍ ) ଶରୀରକୁ ପରିଷ୍କାର ପରିଚ୍ଛନ୍ନ ରଖିବା କ୍ରିୟା,ମାଜଣା, ଗାଧୁଆ ।

ଅଙ୍ଗମାର୍ଜନୀ—ବି. ( ଅଙ୍ଗମାର୍ଜନ+ଈ ) ଗାମୁଛା ।

ଅଙ୍ଗଯଜ୍ଞ—ପୁଂ. ବ. ଅପ୍ରଧାନଯଜ୍ଞ, ଗ୍ରହଯାଗାଦି ।

ଅଙ୍ଗଯଷ୍ଟି—ବ. ( ଅଙ୍ଗ+ଯଷ୍ଟି ) ସମସ୍ତ ଅବୟବଯୁକ୍ତ ଶରୀର ।

ଅଙ୍ଗରକ୍ତ—ପୁଂ.ବ.(ଅଙ୍ଗ+ରଞ୍ଜ+ତ) ଗୁଣ୍ଡରୋଚନୀ, କମଳା ଗୁଣ୍ଡି, ପିଙ୍ଗାକ୍ଷ, ଚନ୍ଦ୍ର, କାମ୍ପିଲ୍ଲକ, ରକ୍ତାଙ୍ଗ ।

ଅଙ୍ଗରକ୍ଷକ—ବ. (୬ ତତ୍ ) ଅଙ୍ଗରଖା କୁରୁତା, ସାଞ୍ଜୁ, ବର୍ମ ।

ଅଙ୍ଗରକ୍ଷଣୀ, ଅଙ୍ଗରକ୍ଷିଣୀ—ସ୍ତ୍ରୀ. ବ. ( ଅଙ୍ଗ+ରକ୍ଷ+ଣୀ ) ସାଞ୍ଜୁ, କୁରୁତା ବର୍ମ, ଇତ୍ୟାଦି ।

ଅଙ୍ଗରକ୍ଷୀ—ପୁଂ. ବ.( ଅଙ୍ଗ+ରକ୍ଷ+ଇନ୍) ରାଜା ଆଦିଙ୍କ ଶରୀରକୁ ଜଗିବା-ଭୃତ୍ୟ ବା ସିପାହୀ (ସ୍ତ୍ରୀ) ଅଙ୍ଗରକ୍ଷିଣୀ ।

ଅଙ୍ଗରଖା—ବ. ସାଞ୍ଜୁ, କୁରୁତା, ଜାମା ।

**ଅଙ୍ଗରଞ୍ଜନ**—କ୍ଳୀ. ବି.(୬ତତ୍)ପ୍ରସାଧନ, ବେଶଭୂଷିବା, କୁଙ୍କୁମ ହଳଦିଆଦି ଲେପନ, ଅଙ୍ଗରାଗ, ଦେହସଜ୍ଜାର ଉପକରଣ ।

**ଅଙ୍ଗରାଗ**—ପୁଂ. ବି. (ଅଙ୍ଗ+ରନ୍ଜ+ଭା. ଅ) ଅଙ୍ଗବିଲେପନ, ହଳଦୀ, କୁଙ୍କୁମ ଇତ୍ୟାଦି, (କ. ଅ) ଲେପନ ଦ୍ରବ୍ୟ, ସାଜପୋଷାକ । [ଶ୍ରୀକ ।

**ଅଙ୍ଗରାଜ**—ପୁଂ.ବି.ଅଙ୍ଗଦେଶର ରାଜା

**ଅଙ୍ଗରୁହ**—କ୍ଳୀ. ବି. (ଅଙ୍ଗ+ରୁହ+ଅ)ଲୋମ, ପକ୍ଷ,ବାଳ, କେଶ, ପଶମ ।

**ଅଙ୍ଗଲଗା**—ଗ୍ରା. ବିଂ. (ପୁଂ ଓ ସ୍ତ୍ରୀ) ଅଙ୍ଗସେବାକାରୀ, ଖଟଣୀ( ସେବକ )।

**ଅଙ୍ଗଲତା**—ବି. (କ, ଧା,) ସୁକୁମାର ବା କମନୀୟ ଶରୀର ।

**ଅଙ୍ଗଲେପ**—ପୁଂ. ବି. ୬ତତ୍ ଅଙ୍ଗ+ଲିପ୍+ଅ) ଅଙ୍ଗରାଗଦ୍ରବ୍ୟବିଶେଷ, କୁଙ୍କୁମ ଚନ୍ଦନାଦି ।

**ଅଙ୍ଗଲୋଡ୍ୟ**—ପୁଂ.ବି.ଏକପ୍ରକାର ଶାକ, ଚିଞ୍ଚୋଟକ ତୃଣ, ଆଦ୍ରକ, ଅଦା ।

**ଅଙ୍ଗବ**—କ୍ଳୀ. ବି. (ଅଙ୍ଗ+ବା+ଅ) ଶୁଷ୍କଫଳ ।

**ଅଙ୍ଗବଙ୍ଗକଳିଙ୍ଗ**—ବି. ବଙ୍ଗ ଓ ଉତ୍କଳ ପରସ୍ପର ନିକଟବର୍ତ୍ତୀ ତିନି-ଗୋଟି ଇତିହାସପ୍ରସିଦ୍ଧ ଦେଶ ।

**ଅଙ୍ଗବିକଳ**—ପୁଂ. ବିଂ. (ବି. ତ୍ରି) ଅଙ୍ଗବିକୃତି, ଚ୍ଛୋଟା, ଖଞ୍ଜ, କୋମ୍ପା, ଶରୀରବିକଳତା ଯୁକ୍ତ ।

**ଅଙ୍ଗବିକାର**—ବି. (୬ତତ୍) ରୋଗାଦି ଦ୍ୱାରା ଅଙ୍ଗମାନଙ୍କର କଦାକାର ଅବସ୍ଥା, ବିକଳାଙ୍ଗତା, ରୋଗ, ମୂର୍ଚ୍ଛା,ଅପସ୍ମାର ।

**ଅଙ୍ଗବିକୃତି**—ପୁଂ.ବି. (ବି. ତ୍ରି) ଅପସ୍ମାର ରୋଗ ।

**ଅଙ୍ଗବିକ୍ଷେପ**—ପୁ. ବି. (୬ତତ୍) ଅଙ୍ଗ-ଚାଳନ,ଅଙ୍ଗଭଙ୍ଗୀ,ନୃତ୍ୟାଦିରେ କଳା-ଯୁକ୍ତ ଅଙ୍ଗଭଙ୍ଗୀ, ସଙ୍କେତ, ଇସାରା ।

**ଅଙ୍ଗବିଦ୍ୟା**—ସ୍ତ୍ରୀ.ବି.ଶରୀରବିଜ୍ଞାନ,ଦେହ-ତତ୍ତ୍ୱ, ବ୍ୟାକରଣାଦି ବିଦ୍ୟା,ସାମୁଦ୍ରିକ-ଶାସ୍ତ୍ର ।

ଅଙ୍ଗବିଧି—ପୁଂ. ବି. (୬ ତତ୍) କାର୍ଯ୍ୟର ଅଙ୍ଗଭୂତ ଅପ୍ରଧାନବିଧି ।

ଅଙ୍ଗବିନିଶ୍ଚୟ—ବି. (୬ତତ୍) ହୋରା-ଶାସ୍ତ୍ର, ସାମୁଦ୍ରିକ ଶାସ୍ତ୍ର ।

ଅଙ୍ଗବୈକୃତ—କ୍ଳୀ. ବି. (୬ତତ୍)ଶରୀର ବିକାର, ଅଙ୍ଗଭଙ୍ଗୀ,ସଙ୍କେତ, ଇସାରା ।

ଅଙ୍ଗବୈକ୍ଳବ୍ୟ—ବି. (୬ତତ୍) ଅଙ୍ଗ-ବୈକୃତ ( ଦେଖ ) ।

ଅଙ୍ଗବୈଗୁଣ୍ୟ—କ୍ଳୀ. ବି. (୬ ତତ୍) ଅଙ୍ଗହାନି, ଅଙ୍ଗବିଶେଷର ରୋଗ ।

ଅଙ୍ଗଶୁଦ୍ଧି—ସ୍ତ୍ରୀ. ବି. (୬ତତ୍) ଶରୀର-ଶୋଧନ, ଅଙ୍ଗମାର୍ଜନ, ଦେହ ସଫା କରିବା ।

ଅଙ୍ଗସ୍—କ୍ଳୀ.ବି.(ଅନ୍ଜ+ଅସ୍) ପକ୍ଷୀ ।

**ଅଙ୍ଗସମ୍ବାହକ**—ପୁଂ.ବିଂ. (୬ତତ୍)ଅଙ୍ଗ-ମର୍ଦ୍ଦ (ଦେଖ),ଗୋଡ଼ଘଷା ଚାକର ।

ଅଙ୍ଗସମ୍ବାହନ—କ୍ଳୀ.ବି.(୬ତତ୍)ଅନ୍ୟର ଗୋଡ଼ହାତ ଘଷିବା, ଆଉଁସିବା ।

ଅଙ୍ଗସଂସ୍କାର—ପୁଂ. ବି. (୬ ତତ୍) କୁଙ୍କୁମ ଚନ୍ଦନାଦି ଦ୍ୱାରା ଦେହର ଶୋଭା ସମ୍ପାଦନ, ଶରୀରମାର୍ଜନ ।

ଅଙ୍ଗସଙ୍ଗ—ବି. (ଅଙ୍ଗ+ସଙ୍ଗ) ୬ତତ୍; ଦୁଇ ବ୍ୟକ୍ତିଙ୍କର ମିଳନ, ସହବାସ, ସ୍ତ୍ରୀସଙ୍ଗ, ମୈଥୁନ ।

ଅଙ୍ଗସଙ୍ଗୀ—ପୁଂ. ବିଂ. (ଅଙ୍ଗ+ସଙ୍ଗ+ଇନ) ସହବାସ କାରୀ,କୌଣସି ସ୍ତ୍ରୀଲୁ ମୈଥୁନକାରୀ ।

ଅଙ୍ଗସଞ୍ଚାଳନ—କ୍ଳୀ. ବି. (୬ ତତ୍) ଅଙ୍ଗଚାଳନା, ବ୍ୟାୟାମ ।

ଅଙ୍ଗସେବକ—ପୁଂ. ବିଂ. (୬ ତତ୍) ଅଙ୍ଗଲଗା ( ଦେଖ ); ସ୍ତ୍ରୀ-ସେବକା । ପୁରୀଜଗନ୍ନାଥଙ୍କ ଶ୍ରୀଅଙ୍ଗ ଛୁଇଁବା ସେବକ, ପଶୁପାଳକ ।

ଅଙ୍ଗସେବା—ବି. (୬ ତତ୍) ଶ୍ରୀଅଙ୍ଗ ଛୁଇଁ ଯେଉଁ ସେବା କରାଯାଏ, ଶରୀରର ପାରିପାଟ୍ୟ ବିଧାନ, କୁଙ୍କୁମାଦି ଦ୍ୱାରା ଦେହର ଶୋଭା ସମ୍ପାଦନ ।

ଅଙ୍ଗସୌଷ୍ଠବ—ବି. (୬ ତତ୍) ଦେହର ସୌନ୍ଦର୍ଯ୍ୟ, ଅଙ୍ଗର ସଂଘଟନରେ ତ୍ରୁଟି ହୀନତା ।

ଅଙ୍ଗୁତ୍ରନା—ଗ୍ରା.ବି.ହାତର ବୁଢ଼ାଆଙ୍ଗୁଠି-ରେ ପିନ୍ଧାଯିବା ମୁଦି ।

ଅଙ୍ଗସ୍ପର୍ଶ—ପୁଂ.ବି. (ଅଙ୍ଗ+ସ୍ପୃଶ୍+ଅ) ଦେହ ଛୁଇଁବା ।

ଅଙ୍ଗହାନି—ବି. (୬ତତ୍) ଅଙ୍ଗର ତ୍ରୁଟି, କାର୍ଯ୍ୟର ଅଂଶ ବିଶେଷର ଅନୁଷ୍ଠାନ ।

ଅଙ୍ଗହାର—ପୁଂ.ବି.ଅଙ୍ଗୁଳି ହସ୍ତପଦାଦିର ଭାବଭଙ୍ଗୀ କରଣ,ଅଙ୍ଗଭଙ୍ଗୀ(ଦେଖ) ।

ଅଙ୍ଗହୀନ—ବିଂ. (୩ତତ୍) ଅବୟବ-ରହିତ, ବିସ୍ତାହୀନ,ବଧିହୀନ,ବିକୃତାଙ୍ଗ, ଅପସ୍ପୂର୍ତ୍ତି, ଟେଣ୍ଡିଆ, (ବି) କାମଦେବ, (ସ୍ତ୍ରୀ) ଅଙ୍ଗହୀନା ।

ଅଙ୍ଗା—ଗ୍ରା. ବି. ଜାମା, କୁରୁତା, ଘରର ଏକଅଂଶ, ଘରର ଏକ କୋଣ ।

ଅଙ୍ଗାଙ୍ଗି—ଅବ୍ୟ (ଅଙ୍ଗ+ଅଙ୍ଗ+ଇ) ଅଙ୍ଗ ସହିତ ଅଙ୍ଗୀ ବା ଦେହର ଯେଉଁ ସମ୍ପର୍କ ସେହି ସମ୍ପର୍କରେ ଅନ୍ୟୋନ୍ୟ ସମ୍ବନ୍ଧ ରୂପେ,ସ୍ୱସ୍ଥ ପକ୍ଷୀୟ ବ୍ୟକ୍ତିଙ୍କ ପ୍ରତି ପକ୍ଷପାତ,ଅଙ୍ଗେ ଅଙ୍ଗେ ପ୍ରବୃତ୍ତ ଯୁଦ୍ଧ ।

ଅଙ୍ଗାଙ୍ଗିଭାବ—ପୁଂ.ବି. ଗୌଣ ଓ ମୁଖ୍ୟ-ଭାବ, ଆତ୍ମୀୟତା, ଘନିଷ୍ଠତା ।

ଅଙ୍ଗାଧିପ—ପୁଂ. ବି. (୬ତତ୍)ଅଙ୍ଗରାଜ, କର୍ଣ୍ଣ, ଲଗ୍ନାଧିପ ।

ଅଙ୍ଗାବରଣ—କ୍ଳୀ.ବି.(ଅଙ୍ଗ+ଆବରଣ) ୬ ତତ୍; ଶରୀରର ଅଙ୍ଗ ଯାହା ଦ୍ୱାରା ଆଚ୍ଛାଦନ କରାଯାଏ, ଅଙ୍ଗତ୍ରାଣ, ପୋଷାକ, ସାଞ୍ଜୁ, ଗୁଦର ।

ଅଙ୍ଗାଭରଣ—ବି, (ଅଙ୍ଗ+ଆଭରଣ) ୬ ତତ୍; ଶରୀରର ଶୋଭା ବୃଦ୍ଧ୍ୟର୍ଥ ବ୍ୟବହୃତ ଅଳଂକାର ।

ଅଙ୍ଗାମୀନାଗା—ଗ୍ରା.ବି. ଆସାମର ନାଗା ପାହାଡ଼ରେ ବାସ କରୁଥିବା ବାଣୁଆ ଜାତି ବିଶେଷ ।

ଅଙ୍ଗାର—ପୁଂ. କ୍ଳୀ. ବି. (ଅଙ୍ଗ+ଆର) ଅଗ୍ନିଦଗ୍ଧ କାଷ୍ଠବିଶେଷ, କୃଷ୍ଣବର୍ଣ୍ଣ ।

କାଠର କୋଇଲା, ଦରପୋଡ଼ା କାଠ, ରକ୍ତବର୍ଣ୍ଣ, ମଙ୍ଗଳଗ୍ରହ, ହୃତାବଳୀଗୁଳ୍ମ (ଲ. ଅର୍ଥ) ନଷ୍ଟ ହୋଇଯିବା ପଦାର୍ଥ, ନିନ୍ଦିତ ବା ହୀନ କଳଙ୍କିତ ବ୍ୟକ୍ତି, (ବି°) ରକ୍ତବର୍ଣ୍ଣ ବିଶିଷ୍ଟ, (ସ୍ତ୍ରୀ) ଅଙ୍ଗାରି।

ଅଙ୍ଗାରକ—ପୁଂ. ବି. (ଅଙ୍ଗ+ଆର+କ) ମଙ୍ଗଳଗ୍ରହ, ମଙ୍ଗଳବାର, ଅଙ୍ଗାର, କୁରୁଣ୍ଟକ ଗଛ, ଭୃଙ୍ଗରାଜ, କେଶଦୁଦୁରା, ପ୍ରବାଳ, ପୋହଳା, ରୁଦ୍ର ବିଶେଷ, ରାକ୍ଷସ ବିଶେଷ, ଅଗ୍ନିସ୍ଫୁଲିଙ୍ଗ, ଅଙ୍ଗାରକାମ୍ଳ ବାଷ୍ପ।

ଅଙ୍ଗାରକତୈଳ-ପୁରାତନଜ୍ୱରରେ ବ୍ୟବହୃତ ତୈଳ ବିଶେଷ।

ଅଙ୍ଗାରକମଣି—ପୁଂ. ବି. (ମଧ୍ୟ.କ.ଧା) ପ୍ରବାଳ, ପୋହଳା।

ଅଙ୍ଗାରକାମ୍ଳ, ଅଙ୍ଗାରାମ୍ଳ—ବି. ବାଷ୍ପବିଶେଷ, ଅଙ୍ଗାର ଓ ଅମ୍ଳଜାନ ରାସାୟନିକ ସଂଯୋଗରେ ଉତ୍ପନ୍ନ ବାଷ୍ପବିଶେଷ।

ଅଙ୍ଗାରକୁଷ୍ଟକ—ପୁଂ. ବି. (ଅଙ୍ଗାର+କୁଷ୍ଟ+କ) ହୃତାବଳୀ ନାମକ ଔଷଧ ବିଶେଷ।

ଅଙ୍ଗାରଧାନିକା—ସ୍ତ୍ରୀ. ବି. (ଅଙ୍ଗାର+ଧା+ଅନ+କ+ଆ) ଅଗ୍ନିପାତ୍ର, ଉହ୍ମେଇ।

ଅଙ୍ଗାରଧାନୀ—ସ୍ତ୍ରୀ. ବି. (ଅଙ୍ଗାର+ଧା+ଅନ+ଈ) ଅଗ୍ନିପାତ୍ର, ଉହ୍ମେଇ।

ଅଙ୍ଗାରପର୍ଣ୍ଣ—ପୁଂ. ବି. ଇନ୍ଦ୍ରଙ୍କପୁତ୍ର, ଚିତ୍ରରଥ, ଗନ୍ଧର୍ବ ବିଶେଷ।

ଅଙ୍ଗାରପର୍ଣ୍ଣ—ପୁଂ. ବି. ଜ୍ୱଳନ୍ତ ଅଙ୍ଗାର ପର ବାହନ ଯାହାଙ୍କର, ଚିତ୍ରରଥ, ଗନ୍ଧର୍ବରାଜ।

ଅଙ୍ଗାରପର୍ଣ୍ଣୀ—ଅଙ୍ଗାରବଲ୍ଲୀ (ଦେଖ) (ସ୍ତ୍ରୀ.ବି.) ଭାର୍ଗୀ, ବ୍ରାହ୍ମଣଯଷ୍ଟିକା।

ଅଙ୍ଗାରପୁଷ୍ପ—ପୁଂ. ବି. ଇଙ୍ଗୁଦୀ ବୃକ୍ଷ, ଜିଆପୁତା, ପୁଇଗୃନ୍ଧିଆ ଗଛ।

ଅଙ୍ଗାରମଞ୍ଜରୀ, ଅଙ୍ଗାରମଞ୍ଜୀ—ସ୍ତ୍ରୀ. ବି. ଲତାକରଞ୍ଜ, ଗିଲ।

ଅଙ୍ଗାରବଲ୍ଲରୀ—ସ୍ତ୍ରୀ. ବି. ବାହ୍ମଣଯଷ୍ଟିକା, ଲଟା କରଞ୍ଜ, ଗିଲ, ଗୁଞ୍ଜା, କାଇଞ୍ଚ।

ଅଙ୍ଗାରବଲ୍ଲୀ—ସ୍ତ୍ରୀ. ବି. ଗୁଞ୍ଜାଲତା, ଗୁଞ୍ଜା ଗିଲ, ବ୍ରାହ୍ମଣଯଷ୍ଟିକା, ଭାର୍ଗୀ।

ଅଙ୍ଗାରବେଣୁ—ପୁଂ. ବି. ରକ୍ତବର୍ଣ୍ଣ ବାଉଁଶ।

ଅଙ୍ଗାରଶକଟୀ—ସ୍ତ୍ରୀ. ବି. ନିଆଁ ଉହ୍ମେଇ, ଅଙ୍ଗାରଧାନିକା।

ଅଙ୍ଗାରି—ସ୍ତ୍ରୀ. ବି. ଅଙ୍ଗାରଧାନୀ, ଉହ୍ମେଇ (ଗ୍ରା.ବି.) ପାନଲତାର ରୋଗବିଶେଷ।

ଅଙ୍ଗାରିକା—ସ୍ତ୍ରୀ. ବି. ନିଆଁ ଉହ୍ମେଇ, ଆଖୁଗଛ, ପଳାଶ, କିଂଶୁକ ପୁଷ୍ପ।

ଅଙ୍ଗାରିଣୀ—ସ୍ତ୍ରୀ. ବି. (ଅଙ୍ଗାର+ଇନ୍+ଈ) ନିଆଁଉହ୍ମେଇ, ଅଙ୍ଗାରଧାନିକା, ସୂର୍ଯ୍ୟତ୍ୟକ୍ତ ଦିକ୍।

ଅଙ୍ଗାରିତ—ବି°. (ଅଙ୍ଗାର+ଇତ) ଦଗ୍ଧପ୍ରାୟ, ପୋଡ଼ା ଅଙ୍ଗାରରେ ପରିଣତ ହୋଇଥିବା, (ବି) ପଳାଶକଳିକୋଦ୍ଗମ, ପଳାଶର ନୂଆକଢ଼।

ଅଙ୍ଗାରିତା—ସ୍ତ୍ରୀ.ବି. ନିଆଁଉହ୍ମେଇ, ଉଠା-ଚୁଲ୍ଲି, କଢ଼, ଲତାବିଶେଷ, ନଦୀବିଶେଷ।

ଅଙ୍ଗାର୍ଯ୍ୟ—ବି. (ଅଙ୍ଗାର+ଯ) ଅଙ୍ଗାର ଗଦା।

ଅଙ୍ଗିକା—ସ୍ତ୍ରୀ. ବି. ଅଧାହାତିଆ କୁରୁତା, ଫତେଇ, କାଞ୍ଚୁଲି, ସ୍ତ୍ରୀଲୋକମାନଙ୍କର ଅଧାହାତିଆ ଜାକେଟ।

ଅଙ୍ଗିତ—ଗ୍ରା. ବି°. ସ୍ୱକୀୟ, ନିଜକୃତ, [ନିଜଅମଳର। [ ବାୟୁ।

ଅଙ୍ଗିରସ୍ୱତ୍—ପୁଂ.ବି. (ଅଙ୍ଗିରସ+ବତ୍)

ଅଙ୍ଗିରାଃ—ପୁଂ. ବି. (ଅଙ୍ଗ+ଇରସ୍) ବ୍ରହ୍ମାଙ୍କର ଦ୍ୱିତୀୟପୁତ୍ର, ବୃହସ୍ପତିଙ୍କପିତା।

ଅଙ୍ଗୀ—ପୁଂ.ବି. (ଅଙ୍ଗ+ଇନ୍) ଶରୀର, ଅବୟବବିଶିଷ୍ଟ, ବହୁଉପାଦାନରେ ଗଠିତ, ପ୍ରଧାନ, ମୁଖ୍ୟ, (ସ୍ତ୍ରୀ) ଅଙ୍ଗିନୀ।

ଅଙ୍ଗୀକରଣ—କ୍ଲୀ ବି. (ଅଙ୍ଗ+ଚ୍ୱି+କରଣ) ଅଙ୍ଗୀକାର, ରାଜିହେବା, ମଞ୍ଜୁର, ଗ୍ରହଣ, ଜବାବ, ଚୁକ୍ତି।

ଅଙ୍ଗୀକାର—ପୁଂ. ବି. (ଅଙ୍ଗ+ଚ୍ୱି+କୃ. ଅ) ସ୍ୱୀକାର, ପ୍ରତିଜ୍ଞା, ଗ୍ରହଣ, ଜବାବ, ଚୁକ୍ତି, ମଞ୍ଜୁର।

ଅଙ୍ଗୀକୃତ—ପୁଂ. ବି°. (ଅଙ୍ଗ+ଚ୍ୱି+କୃ+ତ) ସ୍ୱୀକୃତ, ଗୃହୀତ, ମଞ୍ଜୁର କରାଯାଇଥିବା, ପ୍ରତିଶ୍ରୁତ।

ଅଙ୍ଗୀଭୂତ-ବି°.(ଅଙ୍ଗ+ଚ୍ୱି+ଭୂ+ତ) ଅଙ୍ଗରୂପେ ଗୃହୀତ, ଅନ୍ତର୍ଭୁକ୍ତ, ଅଂଶ-ରୂପେ ଗୃହୀତ।

ଅଙ୍ଗୁ—ପୁଂ.ବି.(ଅନ୍‌ଗ+ଉ) ହସ୍ତ, ଅଙ୍ଗ।

ଅଙ୍ଗୁଆ, ଅଙ୍ଗୁଛା—ଗ୍ରା.( ସମ୍ବ )ବି. ଗାମୁଛା, ଗ୍ରେଟ ଗାମୁଛା, ଗାତ୍ରମାର୍ଜନୀ, ଝାଡ଼ଣ, ପୋଛା।

ଅଙ୍ଗୁଟ୍—( ଗ୍ରା.କଣ୍ଟକ.ପୁଷ୍ପ ) ବିରକ୍ତ, ବିରାଗ, (ବି°) ବିରକ୍ତ, ଚିଡ଼ଲ।

ଅଙ୍ଗୁର—ଯା.ବି. ଦ୍ରାକ୍ଷାଲତାର କୋଳି।

ଅଙ୍ଗୁରି, ଅଙ୍ଗୁରୀ—ସ୍ତ୍ରୀ. ବି. (ଅନ୍‌ଗ+ଉର+ଈ) ଅଙ୍ଗୁଳି, ମୁଦି, ଅଙ୍ଗୁଳି-ଭୂଷଣ, ବୁଢ଼ାଆଙ୍ଗୁଠି।

ଅଙ୍ଗୁରୀୟ, ଅଙ୍ଗୁରୀୟକ—ପୁଂ. କ୍ଲୀ. ବି. ଅଙ୍ଗୁଳିଭୂଷଣ, ମୁଦି, ଅଙ୍ଗୁଳୀୟ, ଶଙ୍ଖ-ଗ୍ରନ୍ଥିକୁ ବେଢ଼ିଥିବା ବେଷ୍ଟନୀ ବା ଗୋଲପଟି।

ଅଙ୍ଗୁଳ—ବି. (ଅଙ୍ଗ+ଉଳ) ହସ୍ତପଦର ଶାଖା, ବାତ୍ସ୍ୟାୟନ ମୁନି, ଅଷ୍ଟଯବ ପରିମାଣ, ହାତଗୋଡ଼ର ଆଙ୍ଗୁଳି, ହାତିଶୁଣ୍ଢା ଗଛ।

ଅଙ୍ଗୁଳାଇବା—ଗ୍ରା. କ୍ରି. କୌଣସିବସ୍ତୁ ବା ଛିଦ୍ରମଧ୍ୟରେ ଅଙ୍ଗୁଳି ପ୍ରବିଷ୍ଟକରିବା।

ଅଙ୍ଗୁଳି, ଅଙ୍ଗୁଳୀ—ସ୍ତ୍ରୀ. ବି. (ଅଙ୍ଗ+ଉଳି) ଅଙ୍ଗୁଳି, ହାତିଶୁଣ୍ଢାଗଛ, ଗଜ-କର୍ଣ୍ଣିକା ବୃକ୍ଷ, ହସ୍ତପଦର ଶାଖା, ହସ୍ତିଶୁଣ୍ଢର ଅଗ୍ରଭାଗ।

ଅଙ୍ଗୁଳିଗ—ପୁଂ. ବି. (ଅଙ୍ଗୁଳି+ଗମ୍+ଅ) ଯେ ଅଙ୍ଗୁଳିରେ ଭରଦେଇ ଚାଲେ।

ଅଙ୍ଗୁଳିଚାଳନ—କ୍ଲୀ. ବି. (୬ତତ୍) ହାତ ଆଙ୍ଗୁଠିଦ୍ୱାରା ଠାରିବା, ସଂକେତ କରିବା।

ଅଙ୍ଗୁଳିଠାର—ଗ୍ରା. ବି. ମନୋଭାବ ବ୍ୟକ୍ତ-କରିବାପାଇଁ ଅଙ୍ଗୁଳିର ଭିନ୍ନ ଭିନ୍ନ ପ୍ରକାରରେ ଚାଳନ, ସଙ୍କେତ।

ଅଙ୍ଗୁଳିତୋରଣ—କ୍ଲୀ. ବି. (କ. ଧା) ଲଲାଟର ଅର୍ଦ୍ଧଚନ୍ଦ୍ରାକୃତି ତିଳକବିଶେଷ।

ଅଙ୍ଗୁଳତ୍ର—କ୍ଲୀ.ବି.(ଅଙ୍ଗୁଳି+ତ୍ରୈ+ଅ) ଅଙ୍ଗୁଳିତ୍ରାଣ, ଅଙ୍ଗୁଳିକୁ ଆଘାତରୁ ଯେ ରକ୍ଷାକରେ,ଅଙ୍ଗୁଳି ଆବରକ,ଦସ୍ତାନା ।

ଅଙ୍ଗୁଳତ୍ରାଣ—କ୍ଲୀ. ବି. ( ଅଙ୍ଗୁଳି+ତ୍ରୈ +ଅନ ) ଅଙ୍ଗୁଳତ୍ର (ଦେଖ) ।

ଅଙ୍ଗୁଳିପଞ୍ଚକ—ବି. ( ୬ତତ୍ ) ହାତର ପାଞ୍ଚଗୋଟି ଆଙ୍ଗୁଠି ଓ ଗୋଡ଼ର ପାଞ୍ଚଆଙ୍ଗୁଠି ।

ଅଙ୍ଗୁଳିପର୍ବ—ବି.(୬ତତ୍)ଆଙ୍ଗୁଠିର ପର୍ବ, ଆଙ୍ଗୁଠିର ଗଣ୍ଠି ମଝିରେ ଥିବା ସରଳ ଅଂଶ ।

ଅଙ୍ଗୁଳିମୁଦ୍ରା—ସ୍ତ୍ରୀ.ବି.(୬ତତ୍) ନାମାଙ୍କିତ ମୁଦ୍ରା, ଦେବାରାଧନାକାଳରେ କର୍ତ୍ତବ୍ୟ ଅଙ୍ଗୁଳିର ଏକ ଏକ ପ୍ରକାର ଭଙ୍ଗୀ ।

ଅଙ୍ଗୁଳିମୋଟନ—କ୍ଲୀ. ବି. ଅଙ୍ଗୁଳି ଫୁଟାଇବା କର୍ମ, ଅଙ୍ଗୁଳି ସ୍ଫୋଟନ ।

ଅଙ୍ଗୁଳିସଙ୍କେତ—ବି.ଅଙ୍ଗୁଳିଠାର(ଦେଖ) ।

ଅଙ୍ଗୁଳି ସଞ୍ଜ୍ଞା—ସ୍ତ୍ରୀ. ବି.( ୬ତତ୍ ) ଅଙ୍ଗୁଳି ଦ୍ୱାରା ସଙ୍କେତ, ଇଶାରା ।

ଅଙ୍ଗୁଳିସନ୍ଦେଶ—ପୁଂ. ବି. ଅଙ୍ଗୁଳି ଦ୍ୱାରା ସଂଜ୍ଞାଦାନ, ଅଙ୍ଗୁଳିଠାର ।

ଅଙ୍ଗୁଳିସନ୍ଧି—ବି.(୬ତତ୍) ଦୁଇଆଙ୍ଗୁଠିର ମଝିସ୍ଥାନ, ଆଙ୍ଗୁଠିସନ୍ଧି ।

ଅଙ୍ଗୁଳିସମ୍ଭୂତ—ପୁଂ. ବି. ( ୫ ତତ୍ ) ଅଙ୍ଗୁଳିରୁ ଜାତ ନଖ ।

ଅଙ୍ଗୁଳିସ୍ଫୋଟନ—କ୍ଲୀ.ବି.(୬ତତ୍) ଅଙ୍ଗୁଳି ଫୁଟାଇବା କର୍ମ ।

ଅଙ୍ଗୁଳୀ—ସ୍ତ୍ରୀ.ବି.(ଅଙ୍ଗୁଳି+ଈ)ଆଙ୍ଗୁଳି ।

ଅଙ୍ଗୁଳୀକ—ବି. (ଅଙ୍ଗୁଳି+ଇକ) ମୁଦ୍ରା, ଅଙ୍ଗୁରୀୟ ।

ଅଙ୍ଗୁଳୀୟକ—କ୍ଲୀ. ବି. ( ଅଙ୍ଗୁଳି+ଇୟ +କ ) ଅଙ୍ଗୁଳିଭୂଷଣ, ମୁଦ୍ରା ।

ଅଙ୍ଗୁଷ୍ଠ—ପୁଂ. ବି. (ଅଙ୍ଗୁ+ସ୍ଥା+କ.ଅ) ବୁଢ଼ା ଆଙ୍ଗୁଠି ।

ଅଙ୍ଗୁଷ୍ଠାନା,ଅଙ୍ଗୁସ୍ତନା—ଗ୍ରା. ବି. ଦରଜିମାନେ ସିଲେଇ କଲାବେଳେ ଛୁଞ୍ଚି ଠେଲିବାକୁ ମଝିଆଙ୍ଗୁଠିରେ ପିନ୍ଧିଥିବା ଧାତୁମୟ ଟୋପି, ଅଙ୍ଗୁସ୍ତାନା ।

ଅଙ୍ଗୁଷ୍—ପୁଂ. ବି. (ଅଙ୍ଗ+ଉଷ୍) ନକୁଳ, ଶର, ବାଣ, ଯାହା ଦ୍ରୁତଗତିକରେ ।

ଅଙ୍ଗେଇତ—ପ୍ରା. (ଗଞ୍ଜାମ) ବି. ଇସ୍ପାତ, କାନ୍ତ ଲୌହ, ଟଲା ଲୁହା ।

ଅଙ୍ଗେଇଭେଇବା—ଗ୍ରା. କ୍ରି.ଆପେ ଅନୁଭବ କରିବା ।

ଅଙ୍ଗୋଞ୍ଛ—ବି. ( ଅଙ୍ଗ+ଉଞ୍ଛ+ଅ ) ଯାହାଦ୍ୱାରା ଅଙ୍ଗ ପୋଛିହୁଏ,ଗାମୁଛା ।

ଅଙ୍ଗ୍ରୀୟ—ଯା. ବି. ମହାରାଷ୍ଟ୍ରଦେଶର ସେନାପତି ।

ଅଘ—କ୍ଲୀ.ବି.(ଅନ୍ଘ+ଅ) ପାପ, ମନ୍ଦ, ଅଶୁଭ ।

ଅଘଃ—ବି.(ଅଘ+ଅସ୍)ନୈତିକ ବଅନତି, ପାପ, ମନ୍ଦ, ଅଶୁଭ ।

ଅଙ୍ଘି—ପୁଂ. ବି. ( ଅନ୍ଘ+ଇ ) ବୃକ୍ଷମୂଳ, ଅଙ୍ଘ୍ରି, ପାଦ ।

ଅଙ୍ଘ୍ରି, ଅଙ୍ଘ୍ରୀ—ପୁଂ. ବି. ପାଦ, ଚରଣ, ବୃକ୍ଷରଚେର,ଛନ୍ଦର ଚତୁର୍ଥଭାଗ,ପିଢ଼ାର କଣ୍ଠି ।

ଅଙ୍ଘ୍ରିପ—ପୁଂ. ବି. ( ଅଙ୍ଘ୍ରି+ପା+କ. ଅ ) ପାଦପ, ବୃକ୍ଷ ଲତା ।

ଅଙ୍ଘ୍ରିପର୍ଣ୍ଣୀ, ଅଙ୍ଘ୍ରିପର୍ଣ୍ଣିକା—ସ୍ତ୍ରୀ. ବି. ପୃଶ୍ନି ପର୍ଣ୍ଣୀ, ଅଙ୍ଘ୍ରିବଲ୍ଲିକା ।

ଅଙ୍ଘ୍ରିବଲ୍ଲିକା,ଅଙ୍ଘ୍ରିବଲ୍ଲୀ—ବି.ଶ୍ରୀମଲ୍ଲିକା, ଚକୁଲିଆ, ପୃଶ୍ନିପର୍ଣ୍ଣୀ ।

ଅଚ୍କନ୍—ଗ୍ରା. ବି. ଗୁଡ଼ର ସାମନାରେ ମଝିରେ ବୋତାମ ଲଗିଥିବା ଚପ୍କନ୍ ବା ଲମ୍ବକୁରୁତା ।

ଅଚ୍କିବା—ଗ୍ରା. କ୍ରି. ଦୋହଲିବା, ଝୁଲିବା ।

ଅଚକାରି—ଗ୍ରା. ବି, ବନ୍ଧନା, କିଣାଯିବା ପଦାର୍ଥର ଆଗରୁର ଦଆଯିବାମୂଲ୍ୟାଂଶ ।

ଅଚକିତ—ପୁଂ. ବିଂ. ( ଅ+ଚକିତ ) ନିର୍ନିମେଷ, ସ୍ଥିର, ଅଭୀତ, ଅତୃପ୍ତ, ଅଚଞ୍ଚଳ, ଅବିଚଳିତ,ଯେ ଚମକି ପଡ଼େ ନାହିଁ, (ସ୍ତ୍ରୀ) ଅଚକିତା ) ।

ଅଚକ୍ଷୁ—ପୁଂ. ବିଂ. ( ବ. ବ୍ରୀ ) ନେତ୍ରହୀନ, ମନ୍ଦନେତ୍ର,ଅନ୍ଧ, ( ବି )ନ.ତତ୍; କୁତ୍ସିତଚକ୍ଷୁ ।

ଅଚକ୍ଷୁର୍ବିଷୟ—ବିଂ ( ଅ+ଚକ୍ଷୁର୍ବିଷୟ ) ଅଗୋଚର, ଯାହା ଆଉ ଦେଖାଯାଉ ନାହିଁ ।

ଅଚକ୍ଷୁଷ୍କ—ପୁଂ.ବିଂ. (ଅ+ଚକ୍ଷୁସ୍+କ) ଚକ୍ଷୁହୀନ, ଅନ୍ଧ, (ସ୍ତ୍ରୀ) ଅଚକ୍ଷୁଷ୍କା ।

ଅଚଞ୍ଚଳ—ପୁଂ. ବିଂ. ସ୍ଥିର, ଦୃଢ଼, (ସ୍ତ୍ରୀ) ଅଚଞ୍ଚଳା, ( ବି, ) ଅଚଞ୍ଚଳତା ।

ଅଚଞ୍ଛା—ଗ୍ରା. ବିଂ. ଅଚଞ୍ଛା, ଯାହା ଚଞ୍ଛା ହୋଇନାହିଁ, ଅସାଞ୍ଜୁଆ (ଲୋକ) ।

ଅଚଣ୍ଡ—ପୁଂ. ବିଂ, ଯେ ରାଗୀ ନୁହେ, ଶାନ୍ତସ୍ୱଭାବବିଶିଷ୍ଟ, (ସ୍ତ୍ରୀ) ଅଚଣ୍ଡା ।

ଅଚଣ୍ଡୀ—ସ୍ତ୍ରୀ. ବି. ( ଅଚଣ୍ଡ+ଈ ) ଅକୋପନା ସ୍ତ୍ରୀ,ସୁଶୀଳାସ୍ତ୍ରୀ,ସୁଧର୍ମଗାଈ

ଅଚତୁର—ପୁଂ. ବିଂ. ଅପଟୁ, ଧର୍ମ,ଅର୍ଥ, କାମ,ମୋକ୍ଷ ଏହି ଚାରି ଯାହାର ନାହିଁ, ( ସ୍ତ୍ରୀ ) ଅଚତୁରା ।

ଅଚର—ପୁଂ. ବିଂ. ( ଅ+ଚର୍+ଅ ) ସ୍ଥିର,ଚଳନଶୂନ୍ୟ,ଯେ ଗତିଶୀଳ ନୁହେ, ସ୍ଥାବର, ( ସ୍ତ୍ରୀ ) ଅଚରା,(ବି.)ଅଚରତା, ସ୍ଥାବର ବସ୍ତୁ ।

ଅଚଳ—ପୁଂ. ବି. ( ଅ+ଚଳ ) ବୃକ୍ଷ, ପର୍ବତ, ପାଷାଣ, ପଥର, ଶଙ୍କୁ, ଖୁଣ୍ଟ, ବ୍ରହ୍ମ, ଆତ୍ମା, ଶିବ, ( ବିଂ ) ଗତିରହିତ, ଅକ୍ଷମ, ଅସମର୍ଥ, ଦୃଢ଼, ସ୍ଥିର,ଅପ୍ରଚଳିତ ଦୋଷ ବା ତ୍ରୁଟିଯୁକ୍ତ, (ସ୍ତ୍ରୀ) ଅଚଳା ।

ଅଚଳକନ୍ୟା—ସ୍ତ୍ରୀ. ବି. ( ୬ ତତ୍ ) ପର୍ବତକନ୍ୟା, ପାର୍ବତୀ ।

ଅଚଳକୀଳା—ସ୍ତ୍ରୀ. ବି. ପୃଥିବୀ ।

ଅଚଳଚଳ—ଗ୍ରା. ବି, ( ଅଚଳ+ଚଳ ) ଅସମସ୍ତସମସ୍ତ, ଅଭାବପ୍ରାଚୁର୍ଯ୍ୟ ।

ଅଚଳଜା—ସ୍ତ୍ରୀ. ବି. (ଅଚଳ+ଜନ୍+କ.ଅ+ଆ ) ପାର୍ବତୀ, ଦୁର୍ଗା ।

ଅଚଳଜାତ—ଗ୍ରା.ବି.ଅସ୍ପୃଶ୍ୟଜାତି,ପାଣିଅଛୁଆଁ ଜାତି ।

ଅଚଳତଡ଼ିତ୍—ସ୍ତ୍ରୀ.ବି. ( କ. ଧା )ସ୍ଥିର-ସୌଦାମିନୀ ।

ଅଚଳତ୍ୱିଟ୍—ପୁଂ. ବି. କୋକିଲ, (ବିଂ) ସ୍ଥିରକାନ୍ତିଯୁକ୍ତ ।

ଅଚଳଦ୍ୱିଟ୍—ପୁଂ.ବି.(୬ତତ୍)ପର୍ବତଶତ୍ରୁ, ଇନ୍ଦ୍ର ।

ଅଚଳଧୃତି—ବି.ସଂସ୍କୃତଛନ୍ଦୋବିଶେଷ ।
ଅଚଳନ୍—ପ୍ରା.(ସମ୍ବ)ବି. ଅମାଡ଼,ଅକ୍ରିୟା, ଅସଦାଚାର ।
ଅଚଳନ—ବି. ( ଅ+ଚଳନ) ନ.ତତ୍; ଗତିରାହିତ୍ୟ, ଅସଦାଚାର, ଅକ୍ରିୟା, ଚଳନର, ଅଭାବ । [ସ୍ତ୍ରୀ
ଅଚଳନାଥ—ସ୍ତ୍ରୀ.ବି.ମେନକା, ହିମାଳୟର
ଅଚଳନୀୟ—ବିଂ. ( ନ. ତତ୍ ) ଯାହାର ପ୍ରଚଳନରଅସମ୍ଭବ,ଚାଲିବାରଅଯୋଗ୍ୟ, (ସ୍ତ୍ରୀ) ନୀୟା ।
ଅଚଳନ୍ତ—ଗ୍ରା. ବିଂ. ଅଚଳ, ଯାହା ସ୍ଥାନାନ୍ତରକୁ ଚାଳିତ ହୋଇ ନପାରେ, ସ୍ଥାବର ।
ଅଚଳପକ୍ଷ—ଗ୍ରା. ବି. ଚଳତ୍‌ଶକ୍ତିରହିତ ଅବସ୍ଥା, ଅତିଗନ୍ତି ଅବସ୍ଥା ।
ଅଚଳପତି—ପୁଂ. ବି. (୬ତତ୍)ହିମାଳୟ ପର୍ବତ, ପର୍ବତଶ୍ରେଷ୍ଠ ।
ଅଚଳଭ୍ରାତା—ପୁଂ. ବି. ବୌଦ୍ଧବିଶେଷ, ଜୈନାଚାର୍ଯ୍ୟଙ୍କର ଏକାଦଶଶିଷ୍ୟ ମଧ୍ୟରୁ ଜଣେ ।
ଅଚଳରାଜ—ପୁଂ.ବି. ହିମାଳୟ ପର୍ବତ ।
ଅଚଳା—ସ୍ତ୍ରୀ. ବି. (ଅଚଳ+ଆ)ପୃଥିବୀ, ମେନକା, ଲକ୍ଷ୍ମୀ,( ବିଂ ) ସ୍ଥିର,ଅଟଳା, ଗତିଶକ୍ତିବିହୀନା । [ଅଗଣିତ ।
ଅଚଳାଚଳ—ଗ୍ରା. ବିଂ. ବହୁ, ପ୍ରଭୃତ,
ଅଚଳାଧିପ—ପୁଂ. ବି. (୬ତତ୍) ପର୍ବତ-ଶ୍ରେଷ୍ଠ, ହିମାଳୟ ।
ଅଚା—ଗ୍ରା. ବି.ଚାଷରସୁବିଧାପାଇଁ ଲଙ୍ଗଳ ଦ୍ୱାରା ଚହଳିତଜମିରଅଂଶ, ଅଳ୍ପପରିମିତ (ଭୂଖଣ୍ଡ) ।
ଅଚାନକ—ଗ୍ରା.ବି.ମାଶିଭୟ,ମରୁଡ଼ି,(ବିଂ) ଭୟାନକ,( ଯା. କ୍ରି. ବିଂ.) ଅକସ୍ମାତ୍, ହଠାତ୍, ହଠକର, ଅପ୍ରତ୍ୟାଶିତରୂପେ, ପ୍ରଚୁରରୂପେ, ବହୁତ ।
ଅଚାବୁଆ,ଅଚାଭୂଆ—ଗ୍ରା.ବିଂ.ଭୀତ, କିଂ-କର୍ତ୍ତବ୍ୟବିମୂଢ଼, ତ୍ରସ୍ତ, ବ୍ୟସ୍ତ, ଅକ୍ଷପୂର୍ଣ, ଆଚମ୍ବିତ, ଆଶ୍ଚର୍ଯ୍ୟାନ୍ୱିତ ।
ଅଚାର୍ଗଲ—ଗ୍ରା. ବିଂ, ଅନର୍ଗଳ, ଦୁର୍ଦ୍ଧର୍ଷ, ଅଜେୟ ।
ଅଚାଳ—ଗ୍ରା.ବି.ଦେଶାଳ,ସମାଜବିଗର୍ହିତ ଆଚରଣ, ଅନୟମ,ବେଧାରା,(ଗ୍ରା.ବିଂ) ଅପ୍ରଚଳିତ ।
ଅଚାହିତା—ଗ୍ରା.ବିଂ.ଅପ୍ରୀତିକର,ଅଲୋଡ଼ା, (ବି) ଅପ୍ରୀତିକରତ୍ୱ ।
ଅଚିକିତ୍ସକ—ବି.(ଅ+ଚିକିତ୍ସକ)ଅନାଡ଼ି ବୈଦ୍ୟ,ଅଜ୍ଞବୈଦ୍ୟ,ନିକୃଷ୍ଟ ଚିକିତ୍ସକ ।
ଅଚିକିତ୍ସନୀୟ—ବିଂ.ଅଚିକିତ୍ସ୍ୟ(ଦେଖ) ।
ଅଚିକିତ୍ସା—ବି.ଚିକିତ୍ସାର ଅଭାବ,ଉପଯୁକ୍ତ ଚିକିତ୍ସାର ଅଭାବ ।
ଅଚିକିତ୍ସ୍ୟ—ବିଂ.ଯାହାର ଚିକିତ୍ସାହୋଇ ନପାରେ, ଯାହା ଚିକିତ୍ସା ଦ୍ୱାରା ଉପ-ଶାନ୍ତ ହୋଇ ନପାରେ, ଦୁରାରୋଗ୍ୟ ।
ଅଚିକୀର୍ଷୁ—ବିଂ. (ନ.ତତ୍) ଅନଭିଳାଷୀ, କରିବାକୁ ଅନିଚ୍ଛୁକ ।
ଅଚିକ୍କଣ—ବିଂ.ଖସ୍‌ଖସିଆ,ରୁକ୍ଷ,ଅପରିଷ୍କାର
ଅଚିତ୍—ପୁଂ.ବିଂ.(ବ.ବ୍ରୀ)ଚେତନାଶୂନ୍ୟ, ଅଜ୍ଞାନ, ମୂର୍ଖ, (ବି) ଜଡ଼ବସ୍ତୁ ।
ଅଚିନ୍ତନୀୟ—ପୁଂ.ବିଂ.ଚିନ୍ତାରଅଯୋଗ୍ୟ, ଯାହା ଚିନ୍ତାକରାଯାଇନପାରେ,କଳ୍ପନା-ତୀତ, ଅବୋଧ୍ୟ ।
ଅଚିନ୍ତା—ବି. ଚିନ୍ତାଶୂନ୍ୟତା, ନିଶ୍ଚିନ୍ତତା, ଦାୟିତ୍ୱଜ୍ଞାନଶୂନ୍ୟ, (ଗ୍ରା. ବିଂ.) ନିଶ୍ଚିନ୍ତ, ଚିନ୍ତାରହିତ ।
ଅଚିନ୍ତାପହଣ୍ଡି—( ପ୍ରା. ପୁରା. )ବି. ଯେଉଁ ଆବୃତ ଗଳରାସ୍ତା ବାଟେ ଜଗନ୍ନାଥମହା-ପ୍ରଭୁଙ୍କ ରୋଷରୁ ଭୋଗମଣ୍ଡପକୁ ରନ୍ଧା ହୋଇଥିବା ଅହୁଣିଆ ଅନ୍ନ ବ୍ୟଞ୍ଜନାଦି ବୁହାହୁଏ,ଜଗନ୍ନାଥମନ୍ଦିରରନାଟମନ୍ଦିର ସ୍ଥାନବିଶେଷ ।
ଅଚିନ୍ତିତ—ପୁଂ. ବିଂ.ଅତର୍କିତ,ଅକଳ୍ପିତ, ଚିନ୍ତିତ ହୋଇ ନଥିବା ।
ଅଚିନ୍ତିତପୂର୍ବ—ବିଂ. ( ନ. ତତ୍ ) ଯାହା ପୂର୍ବରେ ଚିନ୍ତାକରାଯାଇ ନଥାଏ ।
ଅଚିନ୍ତ୍ୟ—ବିଂ. (ନ.ତତ) ଯାହା ଚିନ୍ତାର ବିଷୟ ନୁହେ,ଚିନ୍ତାତୀତ,(ବି) ଈଶ୍ୱର ।
ଅଚିର—ବିଂ. (ପୁଂ.କ୍ଲୀ)ଅଳ୍ପକାଳସ୍ଥାୟୀ । ଶୀଘ୍ର, କ୍ଷଣିକ ।
ଅଚିରକାଳ—ପୁଂ.ବି.(କ.ଧା) ସ୍ୱଳ୍ପକାଳ, କିଛି ସମୟ ।
ଅଚିରକ୍ରିୟ—ପୁଂ.ବିଂ.(ନ.ତତ୍) ଅଦୀର୍ଘ-ସୂତ୍ର, କ୍ଷିପ୍ରକାରୀ, ଚଟ୍‌ପଟିଆ ।
ଅଚିରତ୍ୱିଷ—ସ୍ତ୍ରୀ. ବି. (ବ.ବ୍ରୀ) କ୍ଷଣପ୍ରଭା, ବିଦ୍ୟୁତ୍, ଅଚିରଦ୍ୟୁତି, ଅଚିରାଂଶୁ, ଅଚିରାଭା, ଅଚିରରୋଚିସ୍ । [ ବିଜୁଳି ।
ଅଚିରଦ୍ୟୁତି—ସ୍ତ୍ରୀ. ବି.କ୍ଷଣପ୍ରଭା, ବିଦ୍ୟୁତ୍,
ଅଚିରପ୍ରଭା—ସ୍ତ୍ରୀ. ବି.ଅଚିରଦ୍ୟୁତି(ଦେଖ)
ଅଚିରରେ—ପ୍ରା. ଅବ୍ୟ. ଅଳ୍ପକାଳରେ, ଅଚିରାତ୍, ଅତିଶୀଘ୍ର, ତତ୍‌କ୍ଷଣାତ୍ ।
ଅଚିରରୋଚିଃ—ସ୍ତ୍ରୀ.ବି.(ବ.ବ୍ରୀ) ବିଦ୍ୟୁତ୍, ବିଜୁଳି ।
ଅଚିରସ୍ଥାୟୀ—ବିଂ.କ୍ଷଣିକ,ଅଳ୍ପକାଳୀନ, କ୍ଷଣଭଙ୍ଗୁର, କ୍ଷଣସ୍ଥାୟୀ, (ସ୍ତ୍ରୀ) ଅଚିର-ସ୍ଥାୟିନୀ ।
ଅଚିରାଂଶୁ—ବି.(ବ.ବ୍ରୀ) ବିଦ୍ୟୁତ୍,ବିଜୁଳି ।
ଅଚିରାତ୍—ଅବ୍ୟ, ହଠାତ୍, ଅବିଳମ୍ବେ, ଶୀଘ୍ର, ତତ୍‌କ୍ଷଣାତ୍ । [ ବିଜୁଳି ।
ଅଚିରାଭା—ସ୍ତ୍ରୀ. ବି. (ବ. ବ୍ରୀ) ବିଦ୍ୟୁତ୍,
ଅଚିରେ—ଗ୍ରା.ଅବ୍ୟ, ଅଚିରାତ୍(ଦେଖ) ।
ଅଚିଲ୍—ଗ୍ରା. ବି. ଛଳ, ଉପଲକ୍ଷ୍ୟ ।
ଅଚିବଲ—ବି. କଶ୍ମୀରର ଗୋଟିଏ ଜଳାଶୟ । [ ଶୀଳ ।
ଅଚିଷ୍ଟୁ—ପୁଂ. ବିଂ.(ଅଞ୍ଚ+ଇଷ୍ଟୁ ) ଗତି-
ଅଚିହ୍ନାର—ଗ୍ରା.ବିଂ. (ପୁଂ. ସ୍ତ୍ରୀ) ଅଗ୍ରାହକ, ଯେଉଁଲୋକ ଅନ୍ୟର ଗୁଣ ଚିହ୍ନିପାରେ ନାହିଁ, ଅଯୋଗ୍ୟ ।
ଅଚିହ୍ନା—ଗ୍ରା. ବିଂ. ଅପରିଚିତ, ଅଜ୍ଞାତ, ଅଜ୍ଞେୟ, ଯେଉଁ ଲୋକ ଅନ୍ୟକୁ ଚିହ୍ନି ପାରେ ନାହିଁ, ଯେଉଁ ରୋଗକୁ କେହି ଚିହ୍ନି ପାରେ ନାହିଁ ।
ଅଚିହ୍ନିତ—ବିଂ. (ଅ+ଚିହ୍ନିତ) ଯହିଁରେ କୌଣସି ଚିହ୍ନ ବା ମାର୍କା ନ ଥାଏ, ଅପରିଚିତ,ଯାହାକୁ କେହିଚିହ୍ନେନାହିଁ ।
ଅଚୀନ—କ୍ଲି. ସୁମାତ୍ରା ଦ୍ୱୀପର ଉତ୍ତରାଂ-ଶରେ ଗୋଟିଏ ପ୍ରତାପଶାଳୀ ରାଜ୍ୟ ଓ ନଗର ।

ଅଚେତ—ଗ୍ରା. ବି॰. ଚେତନାଶୂନ୍ୟ, ବେହୋସ୍, ବାହ୍ୟଜ୍ଞାନଶୂନ୍ୟ, ଜଡ଼, ଗରଳୁସିଆର, (ସ୍ତ୍ରୀ) ଅଚେତା ।
ଅଚେତନ—ବି॰.(ଅ + ଚେତନ) ବ.ବ୍ରୀ; ଚେତନାଶୂନ୍ୟ, ଜ୍ଞାନଶୂନ୍ୟ, ନିର୍ଜୀବ, ଯାହାର ଚେତା ବୁଡ଼ି ଯାଇଅଛି ।
ଅଚେତାଃ—ପୁଂ. ସ୍ତ୍ରୀ. ବି॰. (ବ.ବ୍ରୀ) ଅଜ୍ଞାନ, ତତ୍ତ୍ୱଜ୍ଞାନରହିତ, ହୃଦୟହୀନ, ନିଷ୍ଠୁର । [ଅଚେତନ ।
ଅଚେତନ—ବି. (ପ୍ରା. ପଦ୍ୟ) ଅଜ୍ଞାନ,
ଅଚେଷ୍ଟ—ପୁଂ. ବି॰. (ବ. ବ୍ରୀ) ଚେଷ୍ଟାରହିତ, ନିଶ୍ଚେଷ୍ଟ, ଜ୍ଞାନଶୂନ୍ୟ, ଅଚଳ, ଜଡ଼,ବାହ୍ୟଜ୍ଞାନଶୂନ୍ୟ, (ସ୍ତ୍ରୀ) ଅଚେଷ୍ଟା. (ବି) ଚେଷ୍ଟାର ଅଭାବ । [ନିଶ୍ଚେଷ୍ଟତା ।
ଅଚେଷ୍ଟତା—ସ୍ତ୍ରୀ. ବି. ଚେଷ୍ଟାରାହିତ୍ୟ,
ଅଚେଷ୍ଟା—ସ୍ତ୍ରୀ. ବି॰. ଅଚେଷ୍ଟାର ସ୍ତ୍ରୀଲିଙ୍ଗ, (ବି) ଚେଷ୍ଟାର ଅଭାବ ।
ଅଚୈତନ୍ୟ—ପୁଂ.ବି॰.(ବ.ବ୍ରୀ.) ଅଜ୍ଞାନ, ଚେତନାଶୂନ୍ୟ, ସଂଜ୍ଞାହୀନ, ମୂର୍ଚ୍ଛିତ, (ବି) ଜ୍ଞାନଶୂନ୍ୟତା ।
ଅଚ୍ଛ—ପୁଂ. ବି॰. (ଅ + ଛୋ + କ.ଅ) ସ୍ୱଚ୍ଛ, ନିର୍ମଳ,(ଗ୍ରା-ବି॰)ଆଚ୍ଛା, ସମ୍ମୁଖରେ ଅବସ୍ଥିତ, (ବି) ସ୍ଫଟିକ, ଭାଲୁ, (ଅବ୍ୟ) ଆଭିମୁଖ୍ୟ, ସମ୍ମୁଖ ।
ଅଚ୍ଛତ୍ର—ପୁଂ. ବି॰. (ବ୍ର.ବ୍ରୀ.) ଅରାଜକ, ଯେଉଁଠାରେ ରାଜା ନାହିଁ, ଛତ୍ରହୀନ, ରାଜହୀନ ।
ଅଚ୍ଛଦ—ବି॰.(ବ.ବ୍ରୀ.) ଆଚ୍ଛାଦନରହିତ ଅନାବୃତ, ପତ୍ରଶୂନ୍ୟ, (ସ୍ତ୍ରୀ) ଅଚ୍ଛଦା ।
ଅଚ୍ଛଦ୍ମ—ବି॰. (ବ. ବ୍ରୀ) ଅକପଟ, ଛଦ୍ମହୀନ, ଛଳନାରହିତ, ଅନାବୃତ ।
ଅଚ୍ଛନ୍ଦସ୍—ବି॰. ଅନୁପନୀତ ବାଳକ, ବେଦାଧ୍ୟୟନଶୂନ୍ୟ, ଅଭିପ୍ରାୟଶୂନ୍ୟ, ଯତିରହିତ, (ପଦ୍ୟ) । [ଭାଲୁ ।
ଅଚ୍ଛଭଲ୍ଲ, ଅଚ୍ଛୋଭଲ୍ଲ—ପୁଂ.ବି. ଭଲ୍ଲୂକ,
ଅଚ୍ଛା—ସ୍ତ୍ରୀ.ବି.ବସ୍ତ୍ରର ଆଚ୍ଛାଦନ,ନିର୍ମଳା ।
ଅଚ୍ଛା—ଯା. ବି॰. ଉତ୍ତମ, ଭଲ ।
ଅଚ୍ଛାସ୍ୟ—ବି॰. (ବ୍ର. ବ୍ରୀ.) ଗୁପ୍ତସ୍ଥାନ, (ସ୍ତ୍ରୀ) ଅଚ୍ଛାସ୍ୟା ।

ଅଚ୍ଛିଦ୍ର—ପୁଂ.ବି॰. (ବ.ବ୍ରୀ.) ରନ୍ଧ୍ରଶୂନ୍ୟ, ଦୋଷଶୂନ୍ୟ, ଭ୍ରାନ୍ତିରହିତ, କଣା ନ ଥିବା, ନିରନ୍ଧ୍ର, ଅଭଗ୍ନ, ସର୍ବବ୍ୟାପୀ, (ସ୍ତ୍ରୀ) ଅଚ୍ଛିଦ୍ରା ।
ଅଚ୍ଛିଦ୍ରକାଣ୍ଡ—ବି. ତୈତ୍ତିରୀୟ ବ୍ରାହ୍ମଣର ଅଧ୍ୟାୟବିଶେଷ ।
ଅଚ୍ଛିଦ୍ରାବଧାରଣ—କ୍ଲୀ. ବି. (ଅଚ୍ଛିଦ୍ର + ଅବ + ଧୃ + ଅନ) ବୈଦିକ କାର୍ଯ୍ୟ-ନିଷ୍ପତ୍ତି, ବୈଦିକ କର୍ମଶେଷରେ ତାହାର ଅଙ୍ଗହାନି ଆଶଙ୍କା ନିବାରଣାର୍ଥ ବିଷ୍ଣୁସ୍ମରଣ ।
ଅଚ୍ଛିନ୍ନ—ପୁଂ. ବି॰. (ନ. ତତ୍ପୁ) ଅଚ୍ଛିନ୍ନା, ହଣା ହୋଇ ନ ଥିବା, ସମସ୍ତ କଟା ହୋଇ ନ ଥିବା, ଅଖଣ୍ଡିତ, ଅବିଭକ୍ତ ।
ଅଚ୍ଛେଦ୍ୟ—ପୁଂ.ବି॰. ଯେ ଛେଦନ ଯୋଗ୍ୟ ନୁହେ, ଅବିଭାଜ୍ୟ, ଯାହା ଅସ୍ତ୍ର ଶସ୍ତ୍ରାଦିଦ୍ୱାରା କଟା ଯାଇ ନ ପାରେ, (ସ୍ତ୍ରୀ) ଅଚ୍ଛେଦ୍ୟା ।
ଅଚ୍ଛୋଦ—କ୍ଲୀ. ବି.(ଅଚ୍ଛ + ଉଦ) ନିର୍ମଳ ଜଳ, କୈଳାସପର୍ବତସ୍ଥ ଗୋଟିଏ ସରୋବର ନାମ,(ସ୍ତ୍ରୀ) ଅଚ୍ଛୋଦା—ନଦୀବିଶେଷର ନାମ ।
ଅଚ୍ୟୁତ—ପୁଂ.ବି.(ଅ + ଚ୍ୟୁତ)ସନାତନ ବ୍ରହ୍ମ, ବିଷ୍ଣୁ, ଈଶ୍ୱର, କୃଷ୍ଣ, (ବି॰) ଅପତିତ, ଅବିନାଶୀ, ସ୍ଥିର, ଚିରସ୍ଥାୟୀ, ବିନାଶରହିତ, (ସ୍ତ୍ରୀ) ଅଚ୍ୟୁତା ।
ଅଚ୍ୟୁତାଗ୍ରଜ—ପୁଂ.ବି ଶ୍ରୀକୃଷ୍ଣଙ୍କର ବଡ଼ଭାଇ, ବଳରାମ, ଇନ୍ଦ୍ର ।
ଅଚ୍ୟୁତାଙ୍ଗଜ—ପୁଂ. ବି. କାମ, ଶ୍ରୀକୃଷ୍ଣପୁତ୍ର, ଅଚ୍ୟୁତାତ୍ମଜ, ପ୍ରଦ୍ୟୁମ୍ନ ।
ଅଚ୍ୟୁତାନନ୍ଦ—ପୁଂ. ବି. ବିଷ୍ଣୁ, ଶ୍ରୀକୃଷ୍ଣ, (ଗ୍ରା. ବି.) ମନୁଷ୍ୟର ନାମବିଶେଷ ।
ଅଚ୍ୟୁତାନନ୍ଦଗୋସାଇଁ—ଗ୍ରା.ବି. ଶ୍ରୀ—ଚୈତନ୍ୟଦେବଙ୍କ ସମସାମୟିକ ଓଡ଼ିଆ ମହାପୁରୁଷ ଓ ଭକ୍ତକବି ।
ଅଚ୍ୟୁତାନନ୍ଦଦାସ—ଗ୍ରା. ବି (ନାମ) ଅଚ୍ୟୁତାନନ୍ଦ ଗୋସାଇଁ (ଦେଖ) ।

ଅଚ୍ୟୁତାନୁଜା—ସ୍ତ୍ରୀ. ବି. ଶ୍ରୀକୃଷ୍ଣଙ୍କର ଭଉଣୀ,ଭଗବତୀ ।
ଅଚ୍ୟୁତାବାସ—ପୁଂ.ବି.(୬ତତ୍.)ଅଚ୍ୟୁତ + ଆବାସ ) ଅଶ୍ୱତ୍ଥବୃକ୍ଷ, ବୈକୁଣ୍ଠ ।
ଅଛ—ଗ୍ର . କ୍ରି. (ଅସ୍ଧାତୁ) ହୁଅ, ଅଟ ।
ଅଛଇ—ଗ୍ରା. କ୍ରି. ଅସ୍ଧାତୁର ବର୍ତ୍ତମାନ କାଳ ମଧ୍ୟମ ପୁରୁଷ ଏକବଚନରେ ବ୍ୟବହୃତ ଆକାର । [ଅଛଉଚଅ ।
ଅଛଉଚ—ଗ୍ରା. ବି. ଅଶୌଚ, (ବି॰)
ଅଛଙ୍କା—ଗ୍ରା.ବି॰. ଛଣା ହୋଇ ନ ଥିବା, ଅବଘର୍ ।
ଅଛଟକେ—ଗ୍ରା. କ୍ରି.ବି. ଦୈବାତ୍, ଅକସ୍ମାତ୍, ହଠାତ୍, ଅଜାଣତରେ, ହେଳା କରି, ଅବଲୀଳାକ୍ରମେ ।
ଅଛଡ଼ା, ଅଛର୍ } ଗ୍ରା. ବି॰. ଯାହା ଦେହକୁ ତ୍ୟାଗ କରି ନ ଥାଏ. ଖୋପା କଟା ହୋଇ ନଥିବା, କାଦୁଅ ବିଲରେ ବିହନକୁ ବତୁରାଇ ବୁଣିବା ପ୍ରଣାଳୀ ।
ଅଛଣା—ଗ୍ରା. ବି॰. ଯେଉଁ ଜଳୀୟ ପଦାର୍ଥ ଛଣା ହୋଇ ନାହିଁ ।
ଅଛପା—ଗ୍ରା. ବି॰. ଅମୁଦ୍ରିତ (ପୁସ୍ତକ), ଜ୍ଞାତ, ଜଣା, ପ୍ରକାଶିତ ।
ଅଛବ—ଗ୍ରା. ବି॰. ଯେଉଁ ଜାତିର ଲୋକଙ୍କୁ ଉଚ୍ଚଜାତୀୟ ହିନ୍ଦୁମାନେ ଛୁଅନ୍ତି ନାହିଁ (ବି) ଅସ୍ପୃଶ୍ୟବ୍ୟକ୍ତି । [ଘର ।
ଅଛୁଆଁଣି—ଗ୍ରା ବି॰. ଛପରହୋଇ ନ ଥିବା
ଅଛୁଡ଼—ଗ୍ରା. ବି॰. ଅବିଶ୍ରାନ୍ତ, ଯାହା ଛାଡ଼ ହୁଏ ନାହିଁ ।
ଅଛୁଡ଼ କରୁଡ଼ହେବା—ଗ୍ରା. କ୍ରି. କ୍ଲାନ୍ତ୍ତିକାନ୍ତ ରୋଗୀ ବେଦନାରେ ଅସ୍ଥିର ଅଙ୍ଗପ୍ରତ୍ୟଙ୍ଗମାନ ଛାଟିପିଟି ହେବା ।
ଅଛୁଡ଼ିବା, ଅଛୁରିବା—ଗ୍ରା. କ୍ରି. (ସଂ-ଉତ୍ସର୍ଜନ) କୂଳରେ ଶସ୍ୟାଦିକୁ ପାଛୁଡ଼ିବା, ଇତସ୍ତତଃ ବୁଣିଦେବା, କାଦୁଆ ଜମିରେ ଗଜେଇ ବା ଖାଲି ଧାନ ବିହନକୁ ବୁଣିଦେବା । [ଦେଖ ।
ଅଛେଡ଼—ଗ୍ରା. (ପ୍ରା-ପଦ୍ୟ) ବି॰.ଅଚ୍ଛେଦ୍ୟ

ଅଛୁଣ୍ଡା—ଗ୍ରା. ବିଂ. ଅବିଭକ୍ତ, ଅଚ୍ଛିନ୍ନ, ଯାହା ଛିଣ୍ଡିନାହିଁ, ଅବିଭାଜ୍ୟ (ରାଶି) ।

ଅଛୁମାଙ୍କୁ ଗଛୁମା—ଗ୍ରା. ( ପ୍ର. ନ୍ୟାୟ ) ଅଛେଇ ମାଙ୍କୁ ଗଛେଇମା, ଜଣକର ଦୋଷ ବା ତ୍ରୁଟିକୁ ଅନ୍ୟ ଜଣକଠାରେ ଆରୋପ କରିବା, ଅନୁପଯୁକ୍ତ ପାତ୍ର ସଙ୍ଗେ କନ୍ୟାର ବିବାହ କରିବା, ଅତୁଳନୀୟ ବସ୍ତୁ ସଙ୍ଗେ କୌଣସି ବସ୍ତୁର ତୁଳନା କରିବା ।

ଅଛୁଆଁ—ଗ୍ରା. ବିଂ. ଅସ୍ପୃଶ୍ୟ, ଅସ୍ପୃଷ୍ଟ, ଛପରବନ୍ଧ ହୋଇ ନଥିବା ( ଘର ), ରଜସ୍ୱଳା ( ସ୍ତ୍ରୀ ) ।

ଅଛୁଆଁଣି—ଗ୍ରା. ବିଂ. ଛପରବନ୍ଧ ହୋଇ ନଥିବା ( ଘର ) ।

ଅଛେଦେରି—ଗ୍ରା.ବିଂ. ହୀନ, ଅଧମ, ଅତି ଅଧମ, (କ୍ଷୁଦ୍ରାତ୍ କ୍ଷୁଦ୍ର ଶବ୍ଦଜ) ହେୟ, ନିନ୍ଦ୍ୟ,ଜଘନ୍ୟ, ମୂଲ୍ୟହୀନ,ପ୍ରୟୋଜନହୀନ ।

ଅଜ—ଯା. ଅବ୍ୟ. ନଗଦ,ନଗଦାନଗଦ, ଅସଲ, ପ୍ରକୃତ, ଶୁଦ୍ଧା, କେବଳମାତ୍ର ।

ଅଜ୍‌ଗବ—ଯା. ଅବ୍ୟ. ଅକସ୍ମାତ୍, ହଠାତ୍ ଅପ୍ରତ୍ୟାଶିତରୂପେ,ଦୈବାତ୍ (ଯା- ବିଂ) ସମ୍ପୂର୍ଣ୍ଣରୂପେ ମିଥ୍ୟା, କାଳ୍ପନିକ(ଗପ), ଆକସ୍ମିକ, ଅପ୍ରତ୍ୟାଶିତ, ଅଦ୍ଭୁତ ।

ଅଜ୍‌ମାଇବା—ଯା.କ୍ରି. ପରଖିବା, ପରୀକ୍ଷାକରିବା, ଅନୁଭବକରିବା ।

ଅଜ୍‌ମାଇଶ୍—ଯା. ବି. ଅନୁଭବ, ପରଖ, ( ବିଂ ) ପରୀକ୍ଷିତ, ଅନୁଭୂତ ।

ଅଜ—ବିଂ. (ଅ+ଜନ+କ.ଅ ) ଜନ୍ମରହିତ, ଜନ୍ମ ହୋଇନଥିବା, ନିତ୍ୟ, ( ପୁଂ. ବି ) ଈଶ୍ୱର, ପରମାତ୍ମା, ବ୍ରହ୍ମା, ଜୀବ, ଶିବ, କାମ, ଚନ୍ଦ୍ର, ସୂର୍ଯ୍ୟବଂଶୀୟ ଜଣେ ରଜା, ଜୀବାତ୍ମା, ଅଣ୍ଡିରାଛେଳି, ମେଣ୍ଢା, ମେଷରାଶି, ଛେଳି ପାଗୁଳିଆ ଔଷଧି ଗୁଳ୍ମ, ଜାରାଶବରର ପୂର୍ବପୁରୁଷ ଜଣେ ଶବର, ମାକ୍ଷିକଧାତୁ (ଜ୍ୟୋତିଷ) ଶୁକ୍ରଗ୍ରହର ଗତି ଅନୁସାରେ ନିରୂପିତ ତିନିଗୋଟି ଲେଖାଏ ନକ୍ଷତ୍ରଯୁକ୍ତ ବୀଥି ମଧ୍ୟରୁ ଏକତମ, ହସ୍ତା,ବିଶାଖା ଓ ଚିତ୍ରା ନକ୍ଷତ୍ରଯୁକ୍ତ ବୀଥି, ନେତା ।

ଅଜକ—ପୁଂ. ବି. ( ଅଜ+କୈ+ଅ ) ପୁରୁରବାବଂଶର ସପ୍ତମ ନୃପତି ।

ଅଜକର୍ଣ୍ଣ-ପୁଂ.ବି.ସାଲଗଛ ଅସନଗଛ,ପିଆସାଲଗଛ, ( ୬ତତ୍ ) ଛେଳିର କାନ ।

ଅଜକର୍ଣ୍ଣକ—ପୁଂ.ବି. ଅଜକର୍ଣ୍ଣ (ଦେଖ) ।

ଅଜକବ—ପୁଂ. କ୍ଲୀ. ବି. ( ଅଜ+କ+ବ ) ଶିବଧନୁ ପିନାକ ।

ଅଜକବା—ବି. ( ଅଜ+କ+ବା+କ. ଅ+ଆ ) ବବୁରଗଛ ।

ଅଜକା—ସ୍ତ୍ରୀ. ବି. ଛେଳିବେକରେ ଥିବା ସ୍ତନାକୃତିମାଂସପିଣ୍ଡ, ଛେଳିଲେଣ୍ଡି, ଶିଶୁଗ୍ରହୀ,

ଅଜକାଜାତ—ପୁଂ. ବି. ରୋଗ ବିଶେଷ ।

ଅଜକାବ—ପୁଂ. କ୍ଲୀ. ବି. ଯଜ୍ଞୀୟପାତ୍ର, ରୋଗବିଶେଷ, ଶିବଧନୁ ।

ଅଜକ୍ଷୀର—କ୍ଲୀ.ବି. (୬ତତ୍) ଛେଳିଦୁଧ ।

ଅଜଗ—କ୍ଲୀ. ବି. ପିନାକ, ଶିବଧନୁ,(ଅଜ+ଗମ+କ.ଅ )ପୁଂ. ବି. ଅଗ୍ନି,ବିଷ୍ଣୁ ।

ଅଜଗନ୍ଧା—ସ୍ତ୍ରୀ.ବି.(ବି. ବ୍ରୀ) ବନଯୁଆଣୀ, ଅଜମୋଦା, ସାବିତ୍ରୀଗୁଳ୍ମ, ବଣତୁଳସୀ, ଲଣ୍ଡାବାଗୁଲି ।

ଅଜଗନ୍ଧିକା—ସ୍ତ୍ରୀ.ବି.ବର୍ବରାଶାକ, ଦୁଲ୍‌ଭା, ବଣତୁଳସୀ, ଲଣ୍ଡାବାଗୁଲି ।

ଅଜଗନ୍ଧିନୀ—ସ୍ତ୍ରୀ. ବି. ଅଜଶୃଙ୍ଗୀ, ମେଣ୍ଢାଶିଙ୍ଗା ବୃକ୍ଷ ।

ଅଜଗର—ପୁଂ. ବି. ( ଅଜ+ଗୃ+ଅ ) ବୃହତ୍‌ସର୍ପ, ବଡ଼ସାପ, ପାହାଡ଼ିଆ କୋଡ଼ା ସାପ ।

ଅଜଗବ—ପୁଂ. କ୍ଲୀ. ବି. ( ଅଜଗ+ବା+ଅ ) ପିନାକଧନୁ, ଶିବଧନୁ ।

ଅଜଗଲ୍ଲିକା—ବି. ( ଅଜ+ଗଲ+କ.ଅ+ଆ ) ଶିଶୁରୋଗ ବିଶେଷ ।

ଅଜଙ୍ଗ—ବି. ଶିବଧନୁ, ପିନାକ ।

ଅଜଙ୍ଗମ—ବିଂ. ଯାହା ଗତିଶୀଳ ନୁହେ, ସ୍ଥିର, ଚିରସ୍ଥାୟୀ ।

ଅଜଗ୍ଗୁ—ଗ୍ରା.ବିଂ.(ସଂ-ଅଯାଚିତ)ଅଯାଚିତ, ଯାହା କେହି ଦେବାକୁ ଯାଚି ନଥାଏ ।

ଅଜଜୀବକ, ଅଜଜୀବକ—ପୁଂ. ବି. ଛାଗମେଷାଦିର ବ୍ୟବସାୟୀ, ମେଷପାଳକ, ଛେଳିରଖୁଆଳ ।

ଅଜଟ—ଗ୍ରା. ବିଂ. ଅଡ଼ୁଆ, ଏକବାଗିଆ, ଅବୁଝା, ଉଦ୍ଭଟ ।

ଅଜଟା—ସ୍ତ୍ରୀ.ବି. ( ବ.ବ୍ରୀ ) ଭୂଇଁଅଁଳା ଗଛ, କାଇଁଚଙ୍କ ।

ଅଜଡ଼—ଗ୍ରା. ବି. ଅଜୀର୍ଣ୍ଣ, ଅପାକ, (ବିଂ. ନ. ତତ୍ ) ଅଚେତନ, ସଜୀବ, ଯେ ନିର୍ବୁଦ୍ଧିଆ ନୁହେ, ଯେ ମାନ୍ଦାନୁହେ ।

ଅଜଡ଼ା—ଗ୍ରା. କ୍ରି. ଅଜାଡ଼ିବା ବା ଢାଳିବା କର୍ମ, (ବିଂ) ଢାଳା, ଶୁଦ୍ଧା ( ସଂ.ବି. ) ବାଇଚଙ୍କ ।

ଅଜଣା—ଗ୍ରା. ବିଂ. ଅଜ୍ଞାତ, ଅପରିଚିତ, ଅଜ୍ଞ, ପ୍ରଦେଶୀ ।

ଅଜଥ୍ୟା—ସ୍ତ୍ରୀ.ବି.ସ୍ୱର୍ଣ୍ଣ ଯୂଥିକା,ଯୁଇଫୁଲ ।

ଅଜଦଣ୍ଡୀ--ସ୍ତ୍ରୀ.ବି.ବ୍ରହ୍ମଦଣ୍ଡୀ,ବ୍ରହ୍ମଣଟଟା ।

ଅଜଦେବତା—ପୁଂ. ବି. (ବି. ବ୍ରୀ ) ଅଜଦେବତାକ ପୂର୍ବଭାଦ୍ରପଦା ନକ୍ଷତ୍ର, (୬ ତତ୍) ଅଗ୍ନି ।

ଅଜନ—ବିଂ. (ବ.ବ୍ରୀ) ଜନଶୂନ୍ୟ, ମରୁ, (ବି) ନଗଣ୍ୟବ୍ୟକ୍ତି ।

ଅଜନକ—ତ୍ରି. ବିଂ. (ଅ+ଜନକ)ଅନୁତ୍ପାଦକ, ଅଜନ୍ମଦ ।

ଅଜନ୍ତ—ବିଂ ( ଅଚ୍+ଅନ୍ତ ) ବ. ବ୍ରୀ; ସ୍ୱରାନ୍ତ, ଯାହାର ଶେଷରେ ସ୍ୱରବର୍ଣ୍ଣ ଅଛି ।

ଅଜନନ—ସ୍ତ୍ରୀ. ବି. (ଅ+ଜନ+ନ) ଜନ୍ମରଅଭାବ,ଜନ୍ମରାହିତ୍ୟ, ଅନୁତ୍ପତ୍ତି ।

ଅଜନୁଟି—ଗ୍ରା.ବିଂ. ଶ୍ୱାସରୋଧ ହେତୁରୁ ବିବ୍ରତ, ରୁଦ୍ଧଶ୍ୱାସ. ଉଜୁନୁରି ।

ଅଜନ୍ମା—ପୁଂ. ବିଂ. (ଅ+ଜନ୍ମନ୍ ) ଜନ୍ମରହିତ,ମୋକ୍ଷ,ଜାରଜ,ନୀଚକୁଳୋଦ୍ଭବ ।

ଅଜନ୍ୟ—ପୁଂ.ବି. (ଅ+ଜନ+ମି. ଯ) ଶୁଭାଶୁଭସୂଚକ ଭୂକମ୍ପାଦି ଉତ୍ପାତବିଶେଷ, (ବିଂ) ଅନୁତ୍ପାଦ୍ୟ ।

ଅଜପ—ପୁଂ. ବିଂ. (ଅ+ଜପ+କ,ଅ)

କୁପାଠକ, ଅଷ୍ଟଷ୍ଟବକ୍ତା, ମେଷପାଳକ, ଯେ ସନ୍ଧ୍ୟା ବନ୍ଦନାଦି କରେନାହିଁ, (ବ) କୁପାଠକ ବ୍ୟକ୍ତି, ଜପରହିତ ହେବାର ଭାବ, ଛାଗରକ୍ଷକ ।

ଅଜପଙ୍କ୍ତୌଦନ—ପୁଂ. ବ. ଛାଗଦାନ ।

ଅଜପତି—ପୁଂ. ବ. (ଅଜ+ପା+ତି) ଛାଗଶ୍ରେଷ୍ଠ,ଅଜରାଶିର ଅଧିପତି, ମଙ୍ଗଳ ଗ୍ରହ, ଅଗ୍ନି ।

ଅଜପଥ—ପୁଂ. ବ. ଛାୟାପଥ,ଯମନଳା।

ଅଜପଥ୍ୟ—ପୁଂ. ବ. ଦେବପଥ, ସଙ୍କୀର୍ଣ୍ଣ ପଥ, ଗମନସେତୁତୁଲ୍ୟ ।

ଅଜପଦ—ପୁଂ. ବ. ( ଅଜ+ପଦ ) ୬ ତତ୍; ଛେଳିର ଗୋଡ଼, ( ବ.ସ୍ତ୍ରୀ ) ରୁଦ୍ରବିଶେଷ ।

ଅଜପା—ସ୍ତ୍ରୀ. ବ. ( ଅ+ଜପ+ଆ ) ହଂସମନ୍ତ୍ର, ପରଂବ୍ରହ୍ମ,ତନ୍ତ୍ରୋକ୍ତ ଦେବୀବିଶେଷ, ବିନାଜପରେ ଈଶ୍ୱର ଭଜନ, ସ୍ୱାଭାବିକ ଶ୍ୱାସ ପ୍ରଶ୍ୱାସ ବହିର୍ଗମନ ଓ ପ୍ରବେଶନ ଦ୍ୱାରା ହଂସ ଇତ୍ୟାକାର ମନ୍ତ୍ର ଜପ ।

ଅଜପାଜପ—ବିଂ. ବିନାଜପରେ ଈଶ୍ୱର-ଭଜନ, ପରଂବ୍ରହ୍ମ, ହଂସମନ୍ତ୍ର ।

ଅଜପାଦ—ପୁଂ.ବ.(ବ.ସ୍ତ୍ରୀ)ରୁଦ୍ରଦେବତା, ପୂର୍ବଭାଦ୍ରପଦ ନକ୍ଷତ୍ର ।

ଅଜପାଳ—ପୁଂ.ବିଂ.(ଅଜ+ପାଳ+ଅ) ମେଷପାଳକ । [ଜନକ ।

ଅଜବ୍—ଯା.ବିଂ.ଅଦ୍ଭୁତ,ବିଚିତ୍ର,ଆଶ୍ଚର୍ଯ୍ୟ-

ଅଜବଜ—ଗ୍ରା.ବିଂ. ଗୋଳମାଳିଆ,ଅଗଡ଼ ବଗଡ଼ । [ ଅଜବଜ ।

ଅଜବଜିଆ—ଗ୍ରା. ବିଂ. ଗୋଳମାଳିଆ,

ଅଜଭକ୍ଷ—ପୁଂ. ବ. (ଅଜ+ଭକ୍ଷ+ଅ) ବରକୋଳିଗଛ, ବବୁରଗଛ ।

ଅଜମାର, ଅଜମାରକ—ପୁଂ.ବ (ଅଜ+ମୃ+କ. ଅ. ( କା ) କଂସେଇ,ମାଂସବିକ୍ରେତା, ଛାଗବଧକାରୀ ବ୍ୟକ୍ତି ।

ଅଜମୀଢ଼—ପୁଂ. ବ. ଦେଶବିଶେଷ, ଆଧୁନିକ ନାମ ଆଜମିର,ହସ୍ତୀରାଜାଙ୍କପୁତ୍ର,ସୁହୋତ୍ରଙ୍କ ପୁତ୍ର, ରାଜା ଯୁଧିଷ୍ଠିର, ଋକ୍‌ବେଦସୂକ୍ତପ୍ରଣେତା ଋଷିବିଶେଷ ।

ଅଜମୀର—ବ. ରାଜପୁତନାନ୍ତର୍ଗତ ଜିଲ୍ଲା ଓ ନଗର ।

ଅଜମୁଖ—ପୁଂ.ବ.(ବ. ସ୍ତ୍ରୀ)ଦକ୍ଷପ୍ରଜାପତି, ( ୬ ତତ୍ ) ଛେଳିମୁହଁ । [ଜୁଆଣି ।

ଅଜମୋଦା—ସ୍ତ୍ରୀ. ବ. ବନଜୁଆଣି, ବଡ଼

ଅଜମୋଦିକା—ସ୍ତ୍ରୀ.ବ.ଅଜମୋଦା(ଦେଖ)

ଅଜମ୍ବର, ଅଜାମ୍ବର—ଗ୍ରା.ବିଂ. ଅକ୍ରମର (ଦେଖ) ।

ଅଜୟ—ପୁଂ.ବ.(ବ.ସ୍ତ୍ରୀ)ବେଙ୍ଗ,ଅଜାତଦନ୍ତ ଶିଶୁ, ସୂର୍ଯ୍ୟ, ଅଗ୍ନି, ( ବିଂ ) ଦନ୍ତହୀନ ।

ଅଜୟ—ପୁଂ. ବ. (ଅ+ଜୟ) ନ. ତତ୍; ଜୟାଭାବ ( ଅଜ+ଯା+ଅ ) ଅଗ୍ନି, ନଦୀବିଶେଷ, ବିଷ୍ଣୁ, ଅଭିଧାନକାର ବିଶେଷ, ( ବିଂ ) ବ. ସ୍ତ୍ରୀ; ଅଜେୟ, ଅଜିତ,ଜୟଶୂନ୍ୟ,ପରାଜିତ,ଅପରାଜିତ ।

ଅଜୟପାଳ—ବ. ( ସଙ୍ଗୀତ ) ଭୈରବ ରାଗର ପୁତ୍ର ।

ଅଜୟା—ସ୍ତ୍ରୀ. ବ. ବିଜୟା, ଭାଙ୍ଗ, ସିଦ୍ଧି, ଗଞ୍ଜେଇ,ମାୟା,ଦୁର୍ଗାଙ୍କ ସଖୀବିଶେଷ ।

ଅଜୟୀ—ପୁଂ. ବିଂ. ( ନ. ତତ୍ ) ଯେ ଜୟକାରୀ ନୁହେ, ଅବିଜେତା, (ସ୍ତ୍ରୀ) ଅଜୟିନୀ ।

ଅଜର୍ଯ୍ୟ—ପୁଂ. ବିଂ. (ଅ+ଜି+ର୍ମି, ଯ) ଦୁର୍ଜୟ,ଜୟରଆବଶ୍ୟକ,ଶତ୍ରୁ,ଅଦମ୍ୟ, (ସ୍ତ୍ରୀ) ଅଜର୍ଯ୍ୟା ।

ଅଜର—ପୁଂ. ବିଂ. (ବ. ସ୍ତ୍ରୀ)ଜରାରହିତ, ବାର୍ଦ୍ଧକ୍ୟଶୂନ୍ୟ, ଯାହା ଜିର୍ଣ୍ଣ ହୋଇନାହିଁ, ଅଦମ୍ୟ, ଅମର, ଅବିନାଶୀ, ଯାହା ଜୀର୍ଣ୍ଣ କରାଯାଇ ନପାରେ, (ସ୍ତ୍ରୀ) ଅଜରା) ବ. -(ଅ+ଜରା) ଦେବତା, ପରଂବ୍ରହ୍ମ, ବୃଦ୍ଧଦାରକବୃକ୍ଷ, ଜୀର୍ଣ୍ଣପତ୍ରୀ ଲତା ।

ଅଜରା—ସ୍ତ୍ରୀ.ବ. ଘିଅକୁଆଁରୀ,ବାଇଡଙ୍କ, କପିକଚ୍ଛୁ, ଦେଶୀ,ଗାଜତାଡ଼କ, ଝିଟିପିଟି, ଜୀର୍ଣ୍ଣପତ୍ରୀ ଲତା ।

ଅଜରାମର—ବିଂ. ( ଅଜର+ଅମର ) (କ. ଧା ) ଜରା ଓ ମୃତ୍ୟୁରହିତ, ଚିରସ୍ଥାୟୀ, ( ସ୍ତ୍ରୀ) ଅଜରାମରୀ ।

ଅଜର୍ଯ୍ୟ—କ୍ଲୀ. ବ. ( ଅ+ଜୃ+କ.ଯ) ସଙ୍ଗତ, ମୈତ୍ରୀ, ସୌହାର୍ଦ୍ଦ, ( ବିଂ. ) ଯାହା ଜୀର୍ଣ୍ଣହେବାର ନୁହେ,ଜରାରହିତ, ଅକ୍ଷୟ, ଅବିନାଶୀ ।

ଅଜଲମ୍ବନ—କ୍ଲୀ. ବ. ରସାଞ୍ଜନ, ସୁର୍ମା, ଧାତୁବିଶେଷ ।

ଅଜଲା—ଗ୍ରା.ବିଂ.ଯହିଁରେ ଜଳା ବା ହ୍ରଦ ନାହିଁ,ଯାହା ଜଳିନାହିଁ, ଯହିଁରେ ନିଆଁ ଲାଗି ନାହିଁ ।

ଅଜଲୋମା—ପୁଂ. ବ. ବ. ସ୍ତ୍ରୀ; (ଅଜ+ଲୋମନ୍) ବାଇଡଙ୍କ ।

ଅଜବୀଥି—ସ୍ତ୍ରୀ.ବ. (୬. ତତ୍ )ଛାୟାପଥ, ଯମନାଳା,ଉତ୍ତରଦକ୍ଷିଣବ୍ୟାପିନୀ ନକ୍ଷତ୍ରମାଳା,ଦେବଯାନ, ଅମରମାର୍ଗ ।

ଅଜଶୃଙ୍ଗିକା—ସ୍ତ୍ରୀ. ବ.(ଅଜଶୃଙ୍ଗି କ+ଆ) ମେଷଶିଙ୍ଘା, ମଧୁରୀ, ବାଇଡଙ୍କ ।

ଅଜଶୃଙ୍ଗୀ—ସ୍ତ୍ରୀ.ବ.ମେଷଶିଙ୍ଘା, ମଧୁରୀ, ବାଇଡଙ୍କ, ଇରୁବୁଢ଼, କକଡ଼ାଶୃଙ୍ଗୀ ।

ଅଜସ୍ର—କ୍ଲୀ. ବିଂ (ଅ+ଜସ୍+କ.ର) ସନ୍ତତ, ଅବିରାମ, ଅବିଶ୍ରାନ୍ତ, ନିରନ୍ତର, (ଗ୍ରା. ବିଂ.) ପ୍ରଚୁର ।

ଅଜହତ୍‌ସ୍ୱାର୍ଥା—ସ୍ତ୍ରୀ.ବ.ଅଳଂକାରବିଶେଷ, ପୂର୍ବବର୍ତ୍ତୀ ଶବ୍ଦର ଅର୍ଥକୁ ସମ୍ବନ୍ଧ ରଖିବାରେ ବ୍ୟବହୃତ ଶବ୍ଦ ।

ଅଜହଲ୍ଲିଙ୍ଗ—ବିଂ. (ଅ+ଜହତ୍+ଲିଙ୍ଗ) ଭିନ୍ନ ଲିଙ୍ଗ ସଙ୍ଗେ ବ୍ୟବହୃତ ହେଲେ ସୁଦ୍ଧା ଯେଉଁ ଶବ୍ଦ ବଦଳେ ନାହିଁ ।

ଅଜହା—ବ. ( ଅଜ+ହା+ଅ+ଆ ) ବାଇଡଙ୍କ, ହୃକଶିମ୍ବି ।

ଅଜା—ସ୍ତ୍ରୀ. ବ. (ଅଜ+ଆ)ମାଈଛେଳି, ମାୟା, ମୂଳପ୍ରକୃତି, ଆଦ୍ୟାଶକ୍ତି,ତ୍ରିଗୁଣାତ୍ମିକା, (ବିଂ)ଜନ୍ମରହିତା (ଗ୍ରା.ପୁଂ. ବ.) ମାତାମହ, ପିତାମହ,(ଗ୍ରା.ବିଂ.)ଶ୍ରେଷ୍ଠ ।

ଅଜାଏ—ଗ୍ରା. ବିଂ. ବେଜାଏ, ଅନୁଚିତ, ବେଆଇନ୍,ଅନ୍ୟାୟ,ଗରଜାଏ, ଯେଉଁ ବାକି ଧନ ଆଦାୟ ହେବାର ସମ୍ଭବ ନାହିଁ, ନିର୍ବନ ।

ଅଜାଏଜାଏ– ଗ୍ରା. ବ୍ୟ. ବେଆଇନ୍ ଓ ଆଇନ୍‌ସଙ୍ଗତ (କର୍ମମାନ) ।
ଅଜାଏ ଜବରଦସ୍ତ—ଗ୍ରା. ବ୍ୟ. ଅନ୍ୟାୟ ଓ ବଳପୂର୍ବକ କୃତ (କାର୍ଯ୍ୟ), ଗ୍ରା. କ୍ରି. ବ୍ୟ. ବେଆଇନ୍ ଓ ବଳପୂର୍ବକ ।
ଅଜାଏଜବରଦସ୍ତି—ଗ୍ରା. ବି. ବେଆଇନ୍, ବଳପ୍ରୟୋଗ ।
ଅଜାଏତ୍—ପ୍ରା. (ସମ୍ବ) ବ୍ୟ, ଅଜାତିଆ, ସମାଜଚ୍ୟୁତ, ପତିତ ।
ଅଜାଗର—ପୁଂ. ବି. (ଅ + ଜାଗୃ + ଅ) ଭୃଙ୍ଗରାଜ, ଭୀମରାଜ, (ବ୍ୟ) ଜାଗରଣରହିତ, ଶୟନନିରତ ।
ଅଜାଗରେ,ଅଜାଗେ—ଗ୍ରା.କ୍ରି.ବ୍ୟ.ଅସାବଧାନଭାବଶତଃ, ଅଜାଣତରେ, ଅଜ୍ଞାତରେ ।
ଅଜାଗଲସ୍ତନ—ବି.(୬ତତ୍.)ଛେଳିବେକଟେ ସ୍ତନପରି ଓହଳିଥିବା ମାଂସପିଣ୍ଡ, ଲ. ଅର୍ଥ ) ଛେଳିବେକସ୍ତନ ପରି ଦେଖାସୁନ୍ଦର ଅଥଚ ବେଦରକାରୀ ପଦାର୍ଥ ।
ଅଜାଘ୍ରାତ—ପୁଂ. ବି. କାଶ୍ୟପେୟ ପ୍ରାୟଶ୍ଚିତ୍ତ ବିଶେଷ ।
ଅଜାଜି, ଅଜାଜୀ—ସ୍ତ୍ରୀ.ବି. କଳା ଓ ଧଳା ଜୀରା, କାକୋଡୁମ୍ବରିକା ।
ଅଜାଜୀବ—ପୁଂ.ବି.୩ତତ୍;(ଅଜ + ଆଜୀବ) ଗ୍ରାମେଷାଦିର ବ୍ୟବସାୟୀ, ଛେଳିଆ ।
ଅଜାଡ଼—ବ୍ୟ,—ଖାଲି, ଶୂନ୍ୟ, ଉଜାଡ଼ (ବି) ଅପବ୍ୟୟ ।
ଅଜାଡ଼ବସ୍ତ—ଗ୍ରା. ବି. ଅପବ୍ୟୟିତ, ଅସ୍ତବ୍ୟସ୍ତ, ବଗୁଲିଆ, ଅତ୍ୟାଗ୍ରହୀ, ହୁରୁକୁରିଆ, ଗୋଲମାଲିଆ ।
ଅଜାଡ଼ିବା—ଗ୍ରା. କ୍ରି—କୌଣସି ବସ୍ତୁକୁ ବହୁପରିମାଣରେ ଢାଳିବା, ଉଡ଼ିବା ।
ଅଜାଡ଼ିବାର—ବି. ଢାଳିବାର, ରଖିବାର, ବର୍ଷାଇବାର ।
ଅଜାଣ—ଗ୍ରା. ବ୍ୟ. ପୁଂ. ମୂର୍ଖ, ଅଜ୍ଞ, ଅନଭିଜ୍ଞ, ନିର୍ବୋଧ, ଅଜ୍ଞାତ ।
ଅଜାଣତ—ଗ୍ରା. ବ୍ୟ, ଯେ ଜାଣିନଥାଏ, ଅଜ୍ଞ,ଅଚହ୍ନା,(ଗ୍ରା.କ୍ରି.ବ୍ୟ.) ନଜାଣିକରି ।
ଅଜାଣିବାର, ଅଜାଣିଲର—ଗ୍ରା.ବ୍ୟ. ଅଜ୍ଞ, ଅନଭିଜ୍ଞ ।

ଅଜାଣ୍ଡ—କ୍ଲୀ.ବି. (୬ତତ୍.) ବ୍ରହ୍ମାଣ୍ଡ,ଭୂଃ, ଭୁବଃ ଓ ସ୍ୱଃ ଏହିତିନିଲୋକ ବା ବିଶ୍ୱ ।
ଅଜାତ—ପୁଂ.ବ୍ୟ.(ଅ + ଜାତ) ନ.ତତ୍; ଅଜ, ଜନ୍ମରହିତ, (ସ୍ତ୍ରୀ) ଅଜାତା ।
ଅଜାତକକୁଦ୍—ପୁଂ. ବି. ( ଅଜାତ କୁକୁଦ୍ ) ବ. ବ୍ରୀ; ଅଧରା ବାଛୁରୀ ।
ଅଜାତଦନ୍ତ—ପୁଂ.ବ୍ୟ. (ବ. ବ୍ରୀ) ଯେଉଁ ବାଳକର ଦନ୍ତ ଉଠିନାହିଁ, ଦନ୍ତହୀନ, (ସ୍ତ୍ରୀ) ଅଜାତଦନ୍ତା । [ଯମପୁରୀ ।
ଅଜାତନଗରୀ—ବି. (ଅଜାତ + ନଗରୀ)
ଅଜାତପକ୍ଷ—ବି. (ବ. ବ୍ରୀ) ପକ୍ଷିଶାବକ, ପକ୍ଷ ହୋଇ ନ ଥିବା ଚଢ଼େଇ ।
ଅଜାତବ୍ୟଞ୍ଜନ—ବ୍ୟ. (ବ. ବ୍ରୀ) ଯାହାର ପୁରୁଷ ଚିହ୍ନ ଶ୍ମଶ୍ରୁ ପ୍ରଭୃତି ହୋଇନାହିଁ ।
ଅଜାତବ୍ୟବହାର—ବ୍ୟ.(ବ.ବ୍ରୀ) ଅପ୍ରାପ୍ତ ବ୍ୟବହାର,ଅପରିଣତ ବୟସ୍କ,ନାବାଳକ, (ସ୍ତ୍ରୀ) ଅଜାତବ୍ୟବହାରା ।
ଅଜାତଶତ୍ରୁ—ପୁଂ. ବି. (ବ.ବ୍ରୀ) କାଶୀର ରାଜା, ଯୁଧିଷ୍ଠିର, ଶିବ, ମହାଦେବ ।
ଅଜାତଶ୍ମଶ୍ରୁ—ପୁଂ.ବ୍ୟ.(ଅଜାତ + ଶ୍ମଶ୍ରୁ) ଯେଉଁ ଯୁବକର ଦାଢ଼ି ଉଠିନାହିଁ, ଶ୍ମଶ୍ରୁହୀନ, ମାଖୁନା ।
ଅଜାତାରି—ପୁଂ. ବି. ( ଅଜାତ + ଅରି ) ଯୁଧିଷ୍ଠିର ରାଜା ।
ଅଜାତି—ସ୍ତ୍ରୀ.ବି.(ଅ + ଜାତି) ନୀଚଜାତି, ସମାଜଚ୍ୟୁତବ୍ୟକ୍ତି, ଅନନୁବୃତ୍ତି, ଅପ୍ରଶସ୍ତଜନ୍ମବାନ୍,ବିକଳାଙ୍ଗ ବା ନପୁଂସକ ଜନ, (ବ୍ୟ) ବ. ବ୍ରୀ, ଅଜ, ଯାହାର ଜନ୍ମନାହିଁ, ଜାତିହୀନ, ଜାତିଭ୍ରଷ୍ଟ, ସମାଜଚ୍ୟୁତ, ହୀନଜାତୀୟ, ପୃଥକ୍‌ଶ୍ରେଣୀୟ ।
ଅଜାତିଆ—ଗ୍ରା. ପୁଂ. ବ୍ୟ. ସମାଜଚ୍ୟୁତ, ବିଜାତୀୟ, ନୀଚଜାତୀୟ ।
ଅଜାତିନଗରୀ—ଗ୍ରା. ବି. ଯେଉଁସ୍ଥାନର ଲୋକେ ଜାତିଭେଦ ମାନନ୍ତି ନାହିଁ, ପୁରୁଷୋତ୍ତମକ୍ଷେତ୍ର ।
ଅଜାତୌଲ୍ୱଲି—ପୁଂ. ବି.ଗ୍ରାମମାଂସୋପଜୀବୀ, ତୁଲ୍ୱଲି ମୁନିଙ୍କ ପୁତ୍ର ।

ଅଜାଦନୀ—ସ୍ତ୍ରୀ. ବି. ( ଅଜ + ଅଦ + ଅନ୍ + ଈ) ଦୁରାଳଭା, ବନ୍ଧୁଆତ ।
ଅଜାନ୍—ଯା. ବି. ଦିନରାତ ମଧ୍ୟରେ ପାଞ୍ଚଥର ମସ୍‌ଜିଦର ଅଜାନଗାରେ (ଗୁମ୍ବଜୁପରର ଚୂଡ଼ା, ମୁଆଜ୍ଜିନ୍ ଉପାଧିଧାରୀ ବ୍ୟକ୍ତିର ପୂର୍ବ ଓ ପଶ୍ଚିମକୁ ମୁହଁ କରି ନମାଜ ( ପ୍ରାର୍ଥନା ) କରିବାପାଇଁ ଚତୁଃପାର୍ଶ୍ୱସ୍ଥ ମୁସଲମାନମାନଙ୍କୁ ଉଚ୍ଚୈଃସ୍ୱରରେ ଆହ୍ୱାନ ।
ଅଜାନଗା—ଯା. ବି. ମସଜିଦର ଗୁମ୍ବଜର ଚୂଡ଼ା—ଯେଉଁସ୍ଥାନରେ ମୁଆଜ୍ଜିନ୍ ଠିଆ ହୋଇ ନମାଜ କରିବାପାଇଁ ଲୋକମାନଙ୍କୁ ଦିନରେ ପାଞ୍ଚଥର ଡାକନ୍ତି ।
ଅଜାନ—ପୁଂ.ବ୍ୟ. (ବ.ବ୍ରୀ ଜାୟାଶୂନ୍ୟ, ଯାହାର ଭାର୍ଯ୍ୟା ନାହିଁ, ପତ୍ନୀହୀନ ।
ଅଜାନିକ—ପୁଂ.ବ୍ୟ. ( ଅଜାନ୍ ଇକ ) ଗ୍ରାଗବ୍ୟବସାୟୀ ।
ଅଜାନେୟ—ପୁଂ.ବି. ଅଜା + ନୀ + ମ୍ର.ଯ୍ୟ) ଉତ୍ତମ ଘୋଡ଼ା, ଜାତିଆଘୋଡ଼ା, (ବ୍ୟ) ( ଅଜ + ଆ + ନୀ + ମ୍ର.ଯ୍ୟ ) କୁଳୀନ, ସୁଜାତ, ଉତ୍କୃଷ୍ଟ,ଭୟରହିତ, ନିର୍ଭୀକ ।
ଅଜାନ୍ତ୍ରୀ—ସ୍ତ୍ରୀ. ବି. ଅତିଲୋମଶ ।
ଅଜାପକ୍ୱ—କ୍ଲୀ. ବି. କାଣ୍ଟରୋଗର ଘୃତବିଶେଷ । [ ଗ୍ରାଗରକ୍ଷକ ।
ଅଜାପାଳକ—ପୁଂ. ବ୍ୟ. ଗ୍ରାଗୋପଜୀବୀ,
ଅଜାମିଳ—ଗ୍ରା. ବି. ପୁରାଣୋକ୍ତ ଜନୈକ ଦୁଷ୍କ୍ରିୟାନ୍ୱିତ ବ୍ରାହ୍ମଣ, କାନ୍ୟକୁବ୍‌ଜବାସୀ ପାପୀବିଶେଷ । [ ମାତାମହ ।
ଅଜାଶୁର—ଗ୍ରା.ବି.ଆପଣା ସ୍ତ୍ରୀ ବା ସ୍ୱାମୀଙ୍କ
ଅଜାହାରି,ଅଜାହିର,ଅଜାହିରା—ଗ୍ରା. ବ୍ୟ. ଅଦମନୀୟ, ଅଦମ୍ୟ, ଅଶାସ୍ୟ, ଅଶାସିତ, ଅପ୍ରକାଶିତ, ଅପ୍ରଗ୍ଲରିତ, ଗୁପ୍ତ, ଅପ୍ରକାଶ୍ୟ, ଗୋପନୀୟ ।
ଅଜି—ପୁଂ. ବ୍ୟ. (ଅଜ୍ + ଇ) ଗତଶୀଳ, (ବି, ତେଜଃ, ପ୍ରଭା, ଔଜ୍ଜ୍ୱଲ୍ୟ ।
ଅଜିଣନ୍ତା—ଗ୍ରା.ବ୍ୟ.ଅଜେତା, ହାରୁଆ,ଯେ ଖେଳରେ ବା ଯୁଦ୍ଧରେ ହାରି ଯାଏ ।
ଅଜିଣା—ଗ୍ରା. ବ୍ୟ. ଅଜେୟ, ଅଜିତ ।

**ଅଜିତ**—ପୁଂ. ବିଂ. ( ଅ + ଜି + ମି.ତ ) ଅଜେୟ, ପରାଜିତ, ଭିନ୍ନ, ଅପରାଜିତ, (ପୁଂ ବି.) ବିଷ୍ଣୁ, ଶିବ, ବୁଦ୍ଧ, ବୁଧଗ୍ରହ, ବିଷାକ୍ତ ମୂଷିକ, ଚତୁର୍ଦ୍ଦଶମନ୍ୱନ୍ତର, ସପ୍ତର୍ଷି ମଧ୍ୟରୁ ଜଣେ, ୨ୟଅର୍ହତ, ମହୌଷଧି ବିଶେଷ । [ ଦେବୀ ।

**ଅଜିତବଲ୍ଲଭା**—ସ୍ତ୍ରୀ. ବି. (୬ତତ୍) ଲକ୍ଷ୍ମୀ-

**ଅଜିତା**—ସ୍ତ୍ରୀ°.ବି°. (ଅଜିତ + ଆ)ଅଜିତର ସ୍ତ୍ରୀଲିଙ୍ଗ (ବି) ଭାଦ୍ରବକୃଷ୍ଣ ଏକାଦଶୀ ।

**ଅଜିତାତ୍ମା**—ପୁଂ.ସ୍ତ୍ରୀ.ବିଂ.(ବ.ବ୍ରୀ. ଓ ନ. ତତ୍) ଅସଂଯତଚିତ୍ତ, ଅଜିତେନ୍ଦ୍ରିୟ ।

**ଅଜିତାପୀଡ଼**—ପୁଂ. ବି. କାଶ୍ମୀରର ଜଣେ ରାଜା ।

**ଅଜିତେନ୍ଦ୍ରିୟ**—ପୁଂ.ବି.(ବ.ବ୍ରୀ)କାମୁକ, ଲମ୍ପଟ, ଇନ୍ଦ୍ରିୟପରତନ୍ତ୍ର ।

**ଅଜିନ**—କ୍ଲୀ.ବି. (ଅଜ + ମି.ଇନ୍)ପଶୁ-ଚର୍ମ, ମୃଗଛାଲ, ଚମଡ଼ା ।

**ଅଜିନପତ୍ରା, ( ପତ୍ରିକା, ପତ୍ରୀ)**—ସ୍ତ୍ରୀ. ବି. ଚେମିଣି, ବାଦୁଡ଼ି ।

**ଅଜିନଯୋନି**—ପୁଂ.ବି. ମୃଗ, ହରିଣ, କୃଷ୍ଣାଜିନମୃଗ, କଲାବାହୁଟିଆ ।

**ଅଜିର**—କ୍ଲୀ. ବି. ( ଅଜ + ଅଧି-ଇର ) ଅଗଣା, ପ୍ରାଙ୍ଗଣ, ଚତ୍ୱର, ବାୟୁ, ବେଙ୍ଗ, ଇନ୍ଦ୍ରିୟଗ୍ରାହ୍ୟ ବିଷୟ, ଶରୀର ।

**ଅଜିରା**—ବି. ଦୁର୍ଗା, ଚଣ୍ଡୀ, ନଦୀବିଶେଷ ।

**ଅଜିହ୍ୱ**—ପୁଂ. ବିଂ. (ବ. ବ୍ରୀ) ଜିହ୍ୱାହୀନ, (ସ୍ତ୍ରୀ) ଅଜିହ୍ୱା (ବି.) ବେଙ୍ଗ ।

**ଅଜିହ୍ମ**—ବିଂ (ନ. ତତ୍) ଅବକ୍ର, ସରଳ, ସିଧା, (ସ୍ତ୍ରୀ) ଅଜିହ୍ମା ।

**ଅଜିହ୍ମଗ**—ବି. (ଅଜିହ୍ମ + ଗମ୍ + କ.ଅ) ବାଣ, ଶର, ପକ୍ଷୀ, (ବିଂ) ସରଳଗାମୀ, ଯେ ସିଧାରେ ଯାଏ ।

**ଅଜୀକବ**—ପୁଂ. ବି. ହର ଧନୁ ।

**ଅଜୀଗର୍ତ୍ତ**—ପୁଂ. ବି. ସର୍ପ, ଋଷିବିଶେଷ, ଶୁନଃଶେଫ ଋଷିଙ୍କ ପିତା ।

**ଅଜୀବ**—ପୁଂ. ବିଂ. ( ଅ + ଜୀବ ) ମୃତ, ଅବସନ୍ନ, (ସ୍ତ୍ରୀ) ଅଜୀବା (ବି.)ଶବ,ମଡ଼ା, (ଗ୍ରା. ବି.) ନିର୍ଜ୍ଜୀବ ବସ୍ତୁ ।

ଅଜୀବନି—ସ୍ତ୍ରୀ. ବି.(ଅଜୀବ + ଅନି) ଶାପ, ଅକରଣି, ମରଣ, ଜୀବନାଭାବ ।

ଅଜୀବା—ଗ୍ରା. ବିଂ. (ପୁଂ. ସ୍ତ୍ରୀ) ନିର୍ଜ୍ଜୀବ, ମୃତପ୍ରାୟ, ଅତି ଦୁର୍ବଳ ଓ ଶୀର୍ଣ୍ଣ ।

ଅଜୀବକ—ବିଂ. (ବ.ବ୍ରୀ)ଜୀବିକାହୀନ,ଜୀବନୋପାୟଶୂନ୍ୟ, ନିଃସ୍ୱ, ଜୀବନଶୂନ୍ୟ ।

ଅଜୀର୍ଣ୍ଣ—କ୍ଲୀ.ବି. (ଅ + ଜୄ + ତ)ଅପକ୍ୱ, ହଜମ ହୋଇ ନ ଥିବା (ଭୁକ୍ତ ଦ୍ରବ୍ୟ), ଯାହା ପୁରୁଣା ନୁହେ, ନୂତନ, ଟଟକା, (ବି) ଅପାକ, ହଜମ ନହେବା, ଖାଦ୍ୟ ଦ୍ରବ୍ୟ ହଜମ ନ ହେବାଜନିତ ରୋଗ ।

ଅଜୀର୍ଣ୍ଣହାକୁଟି—ଗ୍ରା. ବି. ଖଇହାକୁଟି, ଅଜୀର୍ଣ୍ଣ ଯୋଗୁଁ ମୁହଁବାଟେ ଉଠିବା ଆମ୍ବିଳ ହାକୁଟି ।

ଅଜୀର୍ଣ୍ଣୀ—ପୁଂ. ବିଂ.(ଅଜୀର୍ଣ୍ଣ + ଇନ୍)ଅଜୀର୍ଣ୍ଣ-ରୋଗୀ, ଅଜୀର୍ଣ୍ଣରୋଗଗ୍ରସ୍ତ ।

ଅଜୁ ଓଜୁ—ଯା.ବି.ନମାଜ ପୂର୍ବରୁ ଅନୁଷ୍ଠେୟ ହସ୍ତପଦାଦି ପ୍ରକ୍ଷାଳନ ।

ଅଜୁଗୁପ୍ସିତ—ପୁଂ.ବିଂ. ନ.ତତ୍; ଅନିନ୍ଦିତ (ସ୍ତ୍ରୀ) ଅଜୁଗୁପ୍ସିତା ।

ଅଜୁଟ—ଗ୍ରା.ବିଂ.(ଅ + ଯୁଜଧାତୁ) ଯାହା ଯୋଡ଼ା ଯାଇନାହିଁ, ପୂର୍ଣ୍ଣ, ଅଖଣ୍ଡିତ ।

ଅଜୁର—ପୁଂ.ବିଂ. (ଅଜ + ଉର)ବେଗଶୀଳ, ବେଗବାନ୍ ।

ଅଜୁରା—ଯା.ବି.ସବାର ଓ ଭାରବୋହିବା ନିମନ୍ତେ ଗଉଡ଼ମାନଙ୍କୁ ଦିଆଯିବା ମୂଲ୍ୟ ।

ଅଜୁହାତ—ଯା. ବି. ଉଜୁହାତ, ଆପତ୍ତି, କାରଣ, ହେତୁ, ଯୁକ୍ତି, ଆପତ୍ତି ଲେଖାଥିବା ଦରଖାସ୍ତ ।

ଅଜେୟ—ପୁଂ. ବିଂ.(ଅ + ଜେୟ)ଯାହାକୁ ଜୟ କରାଯାଇ ନପାରେ, ଦୁର୍ଜ୍ଜୟ, ଦୁର୍ଦ୍ଦମନୀୟ, (ସ୍ତ୍ରୀ) ଅଜେୟା ।

ଅଜେଶ—ପୁଂ. ବି.(ଅଜ + ଈଶ) ମେଷରାଶିର ଅଧିପତି ମଙ୍ଗଳଗ୍ରହ ।

ଅଜୈକପାଦ୍, ଅଜୈକପାତ୍—ପୁଂ. ବି. ଏକାଦଶ ରୁଦ୍ରାନ୍ତର୍ଗତ ରୁଦ୍ରବିଶେଷ ।

ଅଜୋଡ଼, ଅଜୋଡ଼ା—ଗ୍ରା.ବିଂ. ଅଯୁକ୍ତ, ବିଯୋଡ଼, ଅଯୁଗ୍ମ, ଯାହା ଅନ୍ୟ ସଙ୍ଗେ ଜୋଡ଼ା (ଯୋଡ଼ା) ହୋଇନାହିଁ ।

ଅଜ୍ଜୁକା—ସ୍ତ୍ରୀ. ବି. (ଅର୍ଜ୍ଜ + କ. ଉକ + ଆ) (ନାଟ୍ୟୋକ୍ତି) ବେଶ୍ୟା, ନଟୀ ।

ଅଜ୍ଝଟା—ସ୍ତ୍ରୀ. ବି. ଭୂଇଁ-ଅଁଳା ।

ଅଜ୍ଝଲ—କ୍ଲୀ.ବି. ଢାଲଫଳକ,ଜଳନ୍ତା କୋଇଲା ।

ଅଜ୍ଝୀଲ—ବି. ( ଗ୍ରା ) ଜାହାଜ ଓ ନୌକାରେ ବ୍ୟବହୃତ ପାଲ, (ଗ୍ରା. ବିଂ) ନିବିଡ଼, ବୃହତ୍କାୟ, ଅତିଡେଙ୍ଗା ।

**ଅଜ୍ଞ**—ପୁଂ.ବିଂ. (ଅ + ଜ୍ଞା + କ.ଅ)ମୂର୍ଖ, ଜ୍ଞାନଶୂନ୍ୟ, ଅନନୁଭବୀ,ଯେ କିଛି ଜାଣେ ନାହିଁ, (ପୁଂ. ବି) ଜୀବ, ଅଜ୍ଞତା, ସ୍ତ୍ରୀ) ଅଜ୍ଞା । [ ଅନାଡ଼ିପଣ ।

**ଅଜ୍ଞତା**—ସ୍ତ୍ରୀ. ବି. (ଅଜ୍ଞ + ତା)ମୂର୍ଖପଣ,

**ଅଜ୍ଞାତ**—ପୁଂ. ବିଂ. (ଅ + ଜ୍ଞାତ)ନ.ତତ୍; ଅନବଗତ,ଅପ୍ରକାଶିତ,ଗୁପ୍ତ,ଅପରିଚିତ, ଅବିଦିତ, ଯାହା ଜ୍ଞାନର ବିଷୟୀଭୂତ ନୁହେ, (ସ୍ତ୍ରୀ) ଅଜ୍ଞାତା ।

**ଅଜ୍ଞାତକୁଳଶୀଳ**—ପୁଂ.ବିଂ.(ବ.ବ୍ରୀ)ଯେଉଁ ଲୋକର ବଂଶ ଓ ଆଚରଣ ପୂର୍ବରୁ ଜଣା ନ ଥାଏ, (ସ୍ତ୍ରୀ) ଅଜ୍ଞାତକୁଳଶୀଳା ।

**ଅଜ୍ଞାତଚର୍ଯ୍ୟା**—ସ୍ତ୍ରୀ.ବି.(କ.ଧା)ଅଜ୍ଞାତବାସ, ଅଜ୍ଞାତସ୍ଥାନକୁ ଗମନ ।

**ଅଜ୍ଞାତନାମା**—ପୁଂ. ସ୍ତ୍ରୀ. ବିଂ. (ବ.ବ୍ରୀ) ଯାହାର ନାମ କେହି ଜାଣେ ନାହିଁ, ବେନାମି, ଅପ୍ରସିଦ୍ଧ ।

**ଅଜ୍ଞାତପିତୃକ**—ବିଂ. (ବ.ବ୍ରୀ) ଯାହାର ବାପରେ ଠିକଣା ନାହିଁ, ଜାରଜାତ, (ସ୍ତ୍ରୀ) ଅଜ୍ଞାତପିତୃକା ।

**ଅଜ୍ଞାତପୂର୍ବ**—ବିଂ. (୭ତତ୍)ଯାହା ପୂର୍ବରୁ ଜଣାଯାଇ ନାହିଁ ।

**ଅଜ୍ଞାତବନବାସ**—ବି. (କ.ଧା) ଅନିର୍ଦ୍ଦିଷ୍ଟ ବନବାସ, ଯେଉଁବନବାସୀ ବ୍ୟକ୍ତିର ରହିବା ସ୍ଥାନର ଠିକଣା ଅନ୍ୟଲୋକେ ଜାଣିପାରନ୍ତି ନାହିଁ ।

**ଅଜ୍ଞାତବାସ**—ବି.(କ.ଧା)ଅପ୍ରକାଶିତବାସ, ଲୁଚିକରି ରହିବା, (ବିଂ) ବ.ବ୍ରୀ; ଯେଉଁ ଲୋକର ବାସସ୍ଥାନର ଠିକଣା ଅନ୍ୟ କେହି ଜାଣନ୍ତି ନାହିଁ ।

ଅଜ୍ଞାତଯୌବନା—ସ୍ତ୍ରୀ.ବ. ଯେଉଁ ନାୟିକା ନିଜର ଯୌବନ ଉପସ୍ଥିତହେବା କଥା ଜାଣି ନ ଥାଏ ।

ଅଜ୍ଞାତସାର—ବିଂ. ( ଅ + ଜ୍ଞାତସାର ) ଅଗୋଚର । [ ଚରେ ।

ଅଜ୍ଞାତସାରେ—କ୍ରି. ବିଂ. (ବ.ବ୍ରୀ)ଅଗୋ-

ଅଜ୍ଞାତି—ପୁଂ. ବ. (ନ.ତତ୍ପୁ) ଜ୍ଞାତିସମ୍ପର୍କୀୟ ଭିନ୍ନ ଅନ୍ୟ, ଅସଗୋତ୍ର (ବିଂ) ବ.ବ୍ରୀ; ଜ୍ଞାତିହୀନ ।

ଅଜ୍ଞାନ—କ୍ଲୀ. ବ. (ଅ + ଜ୍ଞାନ)ନ.ତତ୍ପୁ; ଜ୍ଞାନର ଅଭାବ, ନବୋଧପଣ, ଭ୍ରାନ୍ତି, ମାୟା, ଭ୍ରମ, (ବିଂ) ଅଜ୍ଞାନୀ, ଜ୍ଞାନହୀନ, ମୂଢ଼, ସଜ୍ଞାହୀନ, ଅବିବେଚକ, (ସ୍ତ୍ରୀ) ଅଜ୍ଞାନା, ଅବିଦ୍ୟା ।

ଅଜ୍ଞାନକୃତ—କ୍ରି. ବିଂ. (୩ତତ୍ପୁ)ଜ୍ଞାନହୀନ ଜନଦ୍ୱାରା ଅନୁଷ୍ଠିତ, ମୂର୍ଖଲୋକଦ୍ୱାରା କରାଯାଇଥିବା, ଶୈଶବରେ ଅନୁଷ୍ଠିତ, (୫ତତ୍ପୁ) ଅଜ୍ଞାତସାରେ କୃତ, ଜ୍ଞାନ ନ ଥାଇ ଅନୁଷ୍ଠିତ, ନ ଜାଣିକରି ଯାହା କରାଯାଇ ଥାଏ ।

ଅଜ୍ଞାନତଃ—ଅବ୍ୟ.(ଅଜ୍ଞାନ + ତସ୍)ଜ୍ଞାନହୀନତାବଶତଃ, ଅଜ୍ଞତାପ୍ରଯୁକ୍ତ, ମୂର୍ଖତାଜନ୍ୟ, ଅଜାଣତଭାବେ ।

ଅଜ୍ଞାନତା—ସ୍ତ୍ରୀ.ବ.ଜ୍ଞାନହୀନତା,ମୂର୍ଖତା ।

ଅଜ୍ଞାନତମିସ୍ର—କ୍ଲୀ. ବ. (କ.ଧା)ଅଜ୍ଞତାରୂପ ଅନ୍ଧକାର ।

ଅଜ୍ଞାନପୁର (ପୁରୀ)—ଗ୍ରା. ବ. ଅବିବେଚନାର ସ୍ଥାନ,ଯେଉଁ ସ୍ଥାନରେ ଅନ୍ୟାୟର ଅବିଚାର ଓ ଅନ୍ୟାୟର ପ୍ରାବଲ୍ୟ ହୁଏ ।

ଅଜ୍ଞେୟ—ବିଂ. (ଅ + ଜ୍ଞା + ଯ) ଯାହା ବୁଦ୍ଧି ହୁଏ ନାହିଁ, ଜ୍ଞାନାତୀତ, ଅବୋଧ ।

ଅଜ୍ୟେଷ୍ଠ—ବିଂ. (ବ.ବ୍ରୀ) ସର୍ବଜ୍ୟେଷ୍ଠ, ସର୍ବଶ୍ରେଷ୍ଠ (ନ.ତତ୍ପୁ) ଜ୍ୟେଷ୍ଠଭିନ୍ନଅନ୍ୟ ।

ଅଜ୍ରାମର—ଗ୍ରା ବିଂ. ଅଜର ଓ ଅମର, ଅଜାମର, ଅବିନଶ୍ୱର ।

ଅଝଟ,ଅଝଟିଆ—ଗ୍ରା.ବିଂ. ଅଜଟ (ଦେଖ) ।

ଅଝାନ୍—ଗ୍ରା. ବ ଅଜାନ୍ (ଦେଖ) ।

ଅଝାଲ୍—ଗ୍ରା.ବ. ବିଂ. ଅଜାଲ୍(ଦେଖ) ।

ଅଟୁକା—ଗ୍ରା (ସମ୍ବ) ବ.ଅମୋଘ,ଅବ୍ୟର୍ଥ ଅଚୁକ ।

ଅଞ୍ଚ—ପୁଂ. ବ. ଉଦ୍‌ଗମ, ଊର୍ଦ୍ଧ୍ୱଗମନ ।

ଅଞ୍ଚତ—ପୁଂ. ବ. (ଅଞ୍ଚ + ଅତ) ବାୟୁ, ପବନ, (ବିଂ) ଗତିଶୀଳ ।

ଅଞ୍ଚଳ—ବ. (ଅଞ୍ଚ + ଅଳ) କାନି, ବସ୍ତ୍ରର ପ୍ରାନ୍ତଭାଗ, ପଣତ, ପ୍ରାନ୍ତ, ଦେଶାଂଶ, ପ୍ରଦେଶ ।

ଅଞ୍ଚଳନିଧି—ପୁଂ. ବ. (୭ତତ୍ପୁ) ଯାହାକୁ କାନିରେ ଗଣ୍ଠି ପକାଇ ବାନ୍ଧି ରଖାହୁଏ, ଅତି ପ୍ରିୟଜନ, କାନିଗଣ୍ଠିଆ ।

ଅଞ୍ଚଳା—ଗ୍ରା. ବ.ସ୍ତ୍ରୀଲୋକମାନଙ୍କର ପିନ୍ଧା ଶାଢ଼ୀର ସହିତ ମୁଣ୍ଡଣ୍ଡାର ଅଂଶ ।

ଅଞ୍ଚଳଆ—ଗ୍ରା.ବିଂ. ( ଅନ୍ୟ ସ୍ଥାନବାଚକ ଶବ୍ଦ ସଙ୍ଗେ ଯୁକ୍ତ ହୁଏ ) ଅମୁକ ସ୍ଥାନ ବା ଅଞ୍ଚଳ ସମ୍ବନ୍ଧୀୟ; ଯଥା—ପୁରୀଅଞ୍ଚଳଆ ।

ଅଞ୍ଚାଅଞ୍ଚି—ଗ୍ରା. ବିଂ. ପରସ୍ପର ଉପରକୁ ଆକ୍ରମଣ କରିବାରୁ ଉଦ୍ଧୁଙ୍କିବା, ପରସ୍ପରକୁ ଆକ୍ରମଣ । [ ଅଖ ।

ଅଞ୍ଚାଡ଼—ଗ୍ରା. (କଳାହାଣ୍ଡି) ବ. ଶଗଡ଼ର

ଅଞ୍ଚିତ—ବିଂ (ଅଞ୍ଚ + ତ) ପୂଜିତ, ଆକୁଞ୍ଚିତ, ଗ୍ରଥିତ, ଭୂଷିତ, ଉତ୍‌ଥିତ ।

ଅଞ୍ଚିତଭ୍ରୂ—ସ୍ତ୍ରୀ.ବିଂ. (ବ.ବ୍ରୀ ସୁନ୍ଦର ଭ୍ରୂଯୁକ୍ତ (ନାରୀ) ।

ଅଞ୍ଜନ—କ୍ଲୀ.ବ. (ଅଞ୍ଜ + ଣ.ଅନ)ନେତ୍ରପ୍ରସାଧନ,କଜ୍ଜଳ, ରସାଞ୍ଜନ,ସୁର୍ମା, ମସୀ, ପାପ,ମାଳିନ୍ୟ,(ଭା.ଅନ) ଗମନ,ବ୍ୟକ୍ତକରଣ,ମ୍ରକ୍ଷଣ, ପୁଂ.ବ. (ଅନ୍‌ଜ + କ. ଅନ) ପଶ୍ଚିମଦିଗର ହସ୍ତୀ, ପର୍ବତବିଶେଷ, ଝିଟିପିଟି, ଅଗ୍ନି ।

ଅଞ୍ଜନକେଶା—ସ୍ତ୍ରୀ.ବିଂ. (ଅଞ୍ଜନ + କେଶ + ଆ ) ବ.ବ୍ରୀ; କଜ୍ଜଳକୁନ୍ତଳା, କୃଷ୍ଣବର୍ଣ୍ଣ କେଶଯୁକ୍ତା (ସ୍ତ୍ରୀ ।

ଅଞ୍ଜନଗିରି—ପୁଂ. ବ. ( ଅଞ୍ଜନ + ଗିରି ) ନୀଳପର୍ବତ ।

ଅଞ୍ଜନପର୍ବା—ବ. ପାଣ୍ଡବପକ୍ଷୀୟ ଯୋଦ୍ଧାବିଶେଷ ।

ଅଞ୍ଜନବିଦ୍ୟା—ସ୍ତ୍ରୀ. ବ. ( ମଧ୍ୟ. କ.ଧା ) ଯେଉଁ ବିଦ୍ୟାଦ୍ୱାରା ଅଭିମନ୍ତ୍ରିତ ଅଞ୍ଜନ ଆଖିରେ ଲଗାଇଲେ ଅନ୍ଧକାରରେ ପଦାର୍ଥମାନ ଦିଶେ ।

ଅଞ୍ଜନଶଳାକା—ସ୍ତ୍ରୀ. ବ. (କ.ଧା) ଅଞ୍ଜନ ଲଗାଇବାର କାଠି,ଅଞ୍ଜନକାଠି ।

ଅଞ୍ଜନା—ସ୍ତ୍ରୀ.ବ.(ଅନ୍‌ଜ + କ.ଅନ + ଆ) ବାନରୀବିଶେଷ, ହନୁମାନଙ୍କ ମାତା, କେଶରୀନାମକ ବାନରର ସ୍ତ୍ରୀ, ଅଙ୍ଗନା, ବ୍ୟଞ୍ଜନାବୃତ୍ତି, ଉତ୍ତରଦିଗହସ୍ତିନୀ ।

ଅଞ୍ଜନାଦ୍ରି—ପୁଂ. ବ.—ନୀଳପର୍ବତ ।

ଅଞ୍ଜନାଧିକା—ବ.ଏକପ୍ରକାର ଝିଟିପିଟି ।

ଅଞ୍ଜନାନନ୍ଦନ—ପୁଂ.ବ. (୬ତତ୍ପୁ) ହନୁମାନ୍ ।

ଅଞ୍ଜନାବତୀ—ସ୍ତ୍ରୀ. ବ. ପଶ୍ଚିମଦିଗହସ୍ତିନୀ

ଅଞ୍ଜନିକା—ସ୍ତ୍ରୀ. ବ. ( ଅଞ୍ଜନ + କ.ଆ ) ଏକପ୍ରକାର ଝିଟିପିଟି, ଚୁଟିଆମୂଷା, ପ୍ରତୀକନାମକ ଦିଗ୍‌ଗଜର ପତ୍ନୀ ।

ଅଞ୍ଜନୀ—ସ୍ତ୍ରୀ. ବ. କାଳାଞ୍ଜନୀ ବୃକ୍ଷ,କଟୁକୀ, କୁଙ୍କୁମାଦି ଅନୁଲିପ୍ତା ସ୍ତ୍ରୀ ।

ଅଞ୍ଜଳି—ପୁଂ. ବ. ( ଅନ୍‌ଜ + ଅଳି ) କରପୁଟ, ପାତ୍ରାକାରକୃତ, ଦୁଇହାତର ତଳ,ପରିମାଣବିଶେଷ, ଅଞ୍ଜଳି ପରିମିତ ଦ୍ରବ୍ୟ, ଆଞ୍ଜୁଳି ।

ଅଞ୍ଜଳିକ—ପୁଂ. ବ. ( ଅଞ୍ଜଳି + କ ) ଶରବିଶେଷ, ଏହି ଶରରେ ଅର୍ଜୁନ କର୍ଣ୍ଣଙ୍କର ମସ୍ତକ ଛେଦନ କରିଥିଲେ ।

ଅଞ୍ଜଳିକା—ସ୍ତ୍ରୀ. ବ. (ଅଞ୍ଜଳି + କ + ଆ) ବାଳମୂଷିକା, ଚୁଟିଆମୂଷା ।

ଅଞ୍ଜଳିକାରିକା—ସ୍ତ୍ରୀ.ବ.—ଲଜ୍ଜାକୁଳିଲତା, ଲାଜକୁଳିଲତା,ବରାହକାନ୍ତା, ପୁତ୍ତଳିକା, କଣ୍ଢେଇ ।

ଅଞ୍ଜଳିପୁଟ—ପୁଂ. କ୍ଲୀ.ବ.ପାତ୍ରାକାରରେ ହସ୍ତଦ୍ୱୟର ଏକତ୍ରମିଳନ, ଯୋଡ଼ହସ୍ତ, ଅଞ୍ଜଳିରୂପ ପାତ୍ର । [କୃତାଞ୍ଜଳି ।

ଅଞ୍ଜଳିବଦ୍ଧ—ବିଂ. (ବ. ବ୍ରୀ) ବଦ୍ଧାଞ୍ଜଳି,

ଅଞ୍ଜସ—ପୁଂ. ବିଂ. (ଅଞ୍ଜ + ଅସ୍)ସରଳ, ଋଜୁ, ଅବକ୍ର, ସମାନ,ପ୍ରକୃତ, ଯଥାର୍ଥ ।

ଅଞ୍ଜସା—(ଅବ୍ୟ) ଦ୍ରୁତ, ଶୀଘ୍ର, ଯଥାର୍ଥ, ପ୍ରକୃତ ।

ଅଜ୍ଞାମ—ଯା.ବି.କାର୍ଯ୍ୟସମ୍ପାଦନ,କର୍ତ୍ତବ୍ୟ-କର୍ମ-ସାଧନ, କର୍ମର ସମାପ୍ତି, ( ବି° ) ସମ୍ପାଦିତ, ସାଧିତ,ସମାପିତ,ସମାହୃତ ।

ଅଜ୍ଞି—ପୁ.ବି°. (ଅଜ୍ଞ + ଇ) ପ୍ରେରଣିକ, ପ୍ରେରକ, ଚାଳକ ।

ଅଜ୍ଞିଷ୍ଠ—ପୁଂ. ବି. ( ଅଜ୍ଞ + କ.ଇଷ୍ଠ ) ସୂର୍ଯ୍ୟ, ଇଷ୍ଟ ।

ଅଜ୍ଞିଷ୍ଠୁ—ପୁଂ.ବି. (ଅଜ୍ଞ + କ.ଇଷ୍ଠୁ)ସୂର୍ଯ୍ୟ

ଅଜ୍ଞିହିଷା—ସ୍ତ୍ରୀ.ବି.(ଅନ୍ହ + ସନ୍ + ଅ + ଆ) ଯିବାର ଇଚ୍ଛା ।

ଅଜ୍ଞୀ—ସ୍ତ୍ରୀ.ବି. (ଅଜ୍ଞ + କର) ପ୍ରେଷଣ-ଯନ୍ତ୍ର, ମଙ୍ଗଳ ।

ଅଜ୍ଞୀର—ପୁଂ.ବି.(ଅଜ୍ଞ + ଈର)ଟାଭାପରି ଲେମ୍ବୁକାଜାତୀୟ ଖଟା ମିଠା ଫଳବିଶେଷ,

ଅଜ୍ଞୁମନ୍—ଯା. ବି. ସଭା, ସମିତି ।

ଅଜ୍ଞୁଳା,ଅଜ୍ଞୁଳି—ଗ୍ରା.ବି.ଅଞ୍ଜଳି, ପାଣୀ-କୃତ କରତଳଦ୍ୱୟ, ଅଞ୍ଜୁଳି, ଅଞ୍ଜୋଳି ।

ଅଟ୍—(ଧାତୁ) ଗମନ କରିବା, ବୁଲିବା, ପରିଭ୍ରମଣ କରିବା । [ ଦୁଃସାଧ

ଅଟ୍ପଟ୍—ପ୍ରା (ସମ୍ପ) ବି°. କଷ୍ଟସାଧ୍ୟ,

ଅଟ—ଗ୍ରା. ବି. ଆଚ୍ଛାଦନ, ଆଖିରକଜ୍ଜଳ, ଭୂ ଧାତୁର ବର୍ତ୍ତମାନକାଳର ଭିନ୍ନ ଭିନ୍ନ ପୁରୁଷ ଓ ବଚନରେ ( ଅଟ ) ଯୁକ୍ତ ଆକାର;ଯଥା—ମୁଁ ଅଟେ,ଆମ୍ଭେ ଅଟୁଁ, ତୁମ୍ଭେ ଅଟ, ସେ ଅଟଇ ।

ଅଟକ—ବି°. ( ଅଟ + କ. ଅକ ) ପରି-ଭ୍ରମଣକାରୀ, ପରିବ୍ରାଜକ, ( ଯା. ବି. ) ଗତିରୋହିତ୍ୟ, ଅବରୋଧ, ଝୋକ,ବାଡ଼, ମନା, ବିଘ୍ନ, ବାଧା, ବନ୍ଦ, ବାସନ୍ଦ, ସମାଜଚ୍ୟୁତ, ନିଷେଧ, ( ଯା. ବି°, ) ନିଷିଦ୍ଧ, ସମାଜଚ୍ୟୁତ, ଗତିରହିତ ।

ଅଟକଲ—ଗ୍ରା. ବି. ଅନୁମାନ, ଅନ୍ଦାଜ, ପରିମାଣ, କୁତ ।

ଅଟକା—ଗ୍ରା. ବି. ଅଟକାଇବାର କର୍ମ, ଝୋକ,ଅଟକ (ବି°) ଅଟକ ହୋଇଥିବା

ଅଟକାଳି—ଗ୍ରା. ବି. ଯାଉ, ଖିରିଷା, ଏକପ୍ରକାର ଲତାବୃକ୍ଷ, ଏହାର ଫୁଲ ଦୁଦୁରିଫୁଲ ପରି ଆକୃତିରେ ଶ୍ରେଷ୍ଠ ଓ ଏହାର ଅଗପାଖନୀଳବର୍ଣ୍ଣ, ମୂଳପାଖ ଧଳା ।

ଅଟକିବା—ଗ୍ରା.କ୍ରି.ବନ୍ଦହେବା,ରହିଯିବା, ଲାଗିବା, ସ୍ଥଗିତ ହେବା, ନ ଚଳିବା. ଗତି ବନ୍ଦ କରିବା, ଅବଶହେବା, ଅଶକ୍ତହେବା ।

ଅଟଙ୍କା (ଅଟଙ୍ଗା)—ଗ୍ରା.ବି. ଧ ନବଡ଼ାର ପ୍ରାପ୍ତ ଗୃହଭାଗରୁ ଏକଭାଗ, ହାତର ମୁଠାରେ କଟା ଧାନ ଯାହା ଧରେ ।

ଅଟକଟ—ଗ୍ରା.ବି. ଅସମ୍ବନ୍ଧ ବାକ୍ୟ,ପ୍ରଳାପ ଅମୂଳକ, ଅପବାଦ, ଜିଗର ( ବି° ) ଅଜଟ ( ଦେଖ ) ।

ଅଟକଟିଆ—ଗ୍ରା. ବି°. ଅଜଟିଆ, ଏକ-ଜିଦିଆ, ମିଥ୍ୟାପବାଦରଟନକାରୀ, (ସ୍ତ୍ରୀ) ଅଟକଟେଇ ।

ଅଟନ—କ୍ଳୀ.ବି. ଅଟ + ଭା.ଅନ) ଗମନ, ଭ୍ରମଣ, ବିଚରଣ ।

ଅଟନି,ଅଟନୀ—ସ୍ତ୍ରୀ.ବି.(ଅଟ + କ.ଅନି-ନୀ) ଧନୁର ଅଗ୍ରଭାଗ, ଧନୁଷ୍କୋଟି ।

ଅଟପା—ଗ୍ରା. ବି°. ଅଖଞ୍ଜିଆ, ଅସୁବିଧା-ଜନକ, ଅସଙ୍ଗତ, ବେଆଡ଼ା ।

ଅଟବି(ବୀ)—ସ୍ତ୍ରୀ. (ଅଟ + ଅଧି.ଅବି. ବୀ) ଅରଣ୍ୟ, ବନ ।

ଅଟମାନ—ପୁଂ. ବି. (ଅଟ + କ. ଆନ) ଗମନଶୀଳ, ଗତିବିଶିଷ୍ଟ, ଭ୍ରମଣ କରୁ-ଥିବା (ସ୍ତ୍ରୀ) ଅଟମାନା ।

ଅଟରପଟର—ଗ୍ରା. ବି°. ଗୋଳମାଳିଆ, ଅସମ୍ବନ୍ଧ (କଥା ବି. ପ୍ରଳାପ, ଗୋଳ-ମାଳିଆ କଥା ।

ଅଟରି—ଗ୍ରା. ବି. ପୁରୀଜିଲା ଖୋରଧା ସବ୍‌ଡିଭିଜନର ଗୋଟିଏ ଉଷ୍ଣପ୍ରସ୍ରବଣ ।

ଅଟରୁଷ(ରୂଷ)—ପୁଂ.ବି. ବାସଙ୍ଗଗଛ ।

ଅଟଳ—ବି°. (ଅ + ଟଳ + ଅ) ସ୍ଥିର, ଅଚଳ, ଦୃଢ଼ପ୍ରତିଜ୍ଞ, ଚିରସ୍ଥାୟୀ, ଯେ ହଲେନାହିଁ (ସ୍ତ୍ରୀ) ଅଟଳା ।

ଅଟଳଟଳ (ଳିଆ)—ଗ୍ରା.ବି°. ଟଳଟଳିଆ, ଯାହା ଟଳଟଳ ହେଉଥାଏ ।

ଅଟଳପ୍ରତିଜ୍ଞ—ପୁଂ. ବି°. (ବ.ବ୍ରୀ) ଦୃଢ଼-ପ୍ରତିଜ୍ଞ, ଯେ ନିଜର ପ୍ରତିଜ୍ଞା ବଦଳାଏ ନାହିଁ ।

ଅଟଳପ୍ରତିଜ୍ଞା—ସ୍ତ୍ରୀ. ବି°. ଅଟଳପ୍ରତିଜ୍ଞର ସ୍ତ୍ରୀଲିଙ୍ଗ (କ.ଧା) ବି. ଦୃଢ଼ପ୍ରତିଜ୍ଞା ।

ଅଟଳବଚନ—ବି.(କ.ଧା) ଅଲଙ୍ଘ୍ୟବାକ୍ୟ, ଅଙ୍ଗୀକାର, (ପୁଂ,ବି°.) ନିଜର ବାକ୍ୟ ଯେ ନିଜେ ଲଙ୍ଘେ ନାହିଁ (ସ୍ତ୍ରୀ) ନା ।

ଅଟା—ଗ୍ରା. ବି. ଶସ୍ୟର ଚୂର୍ଣ୍ଣ, ଗହମ-ଆଦିର ଚୂନା, ନିଆଁ ବଡ଼ିଆ ।

ଅଟା—ସ୍ତ୍ରୀ. ବି. (ଅଟ + ଅ + ଆ) ପରି-ଭ୍ରମଣ, ମିଥ୍ୟାଭ୍ରମଣ, ପର୍ଯ୍ୟଟନ ।

ଅଟାଇ, ଟେଇ)—ଗ୍ରା.ବି.ଗୋରୁ ରହିବା ଗୁରୁଡ଼ା, ଗୋରଡ଼ା, ଅମାର, ଗୋରଡ଼ି, ଡୋଲି ।

ଅଟାଚଲି—ଗ୍ରା.ବି. ଅଟାକୁ ଛାଣି ତହିଁରୁ ମଇଦା ପ୍ରସ୍ତୁତ କରିବାପାଇଁ ବ୍ୟବହୃତ ଚାଳଣି ।

ଅଟାଟ୍ୟା—ସ୍ତ୍ରୀ, ବି. (ଅଟ + ଯଙ୍ ଲୁକ୍‌.ଅ + ଆ) ପରିଭ୍ରମଣ, ମିଥ୍ୟାଭ୍ରମଣ ।

ଅଟାଳି—ଗ୍ରା. ବି. ଅଟ୍ଟାଳିକା, କୋଠା, ନଦୀବଢ଼ିରେ ଭାସି ଆସିଥିବା ଏକତ୍ରିତ ଟିକଟିକି କଣ୍ଠା କାଠି ଆଦି ।

ଅଟୋ—ଯା. ବି. ଅତର ।

ଅଟ୍ଟ—(ଧାତୁ) ଅନାଦର କରିବା, ଅତି-କ୍ରମ କରିବା, ଉପହାସ କରିବା ।

ଅଟ୍ଟ—ବି. (ଅଟ୍ଟ + ଅ) ହାଟ, ବଜାର, ଅଟ୍ଟାଳିକା, ପ୍ରାସାଦ, ଚନ୍ଦ୍ରଶାଳା,ଗୁମୁଟି-ଘର, ସୈନ୍ୟଗୃହ, ପଟ୍ଟବସ୍ତ୍ର, ଅନ୍ନ, ଭାତ,ଧୃଷ୍ଟତା (ବି°.) ଉଚ୍ଚୈଃସ୍ୱରଯୁକ୍ତ, ନିସୃତ, ଶୁଷ୍କ ।

ଅଟ୍ଟକ—ବି.କୋଠାଉପରେ ଥିବା କୋଠରି, ଚନ୍ଦ୍ରଶାଳା ।

ଅଟ୍ଟଟ୍ଟ—ବି ଓ ବି°. (ଅଟ୍ଟ + କ.ଅ)ଅଟ୍ଟ (ଦେଖ) (ଅବ୍ୟ) ଅତିଉଚ୍ଚ ।

ଅଟ୍ଟନ—କ୍ଳୀ.ବି. ଚନ୍ଦ୍ର ଫଳକାସ୍ତ୍ରବିଶେଷ, ଢାଲ ।

ଅଟ୍ଟସ୍ଥଳୀ—ସ୍ତ୍ରୀ. ବି. ପ୍ରାସାଦବିଶେଷ, ଦେଶବିଶେଷ ।

ଅଟ୍ଟହସିତ—କ୍ଳୀ ବି.(କ.ଧା.)ଉଚ୍ଚହାସ୍ୟ ।

ଅଟ୍ଟହାସ—ପୁଂ. ବି. (କ.ଧା) ଉଚ୍ଚହାସ୍ୟ, ଠୋଠୋ ହସ, ବିକଟହାସ, ଉପହାସ-ବ୍ୟଞ୍ଜକ ହସ ।

ଅଟ୍ଟହାସ୍ୟ—ପୁଂ. ବି. (କ.ଧା) ଅଟ୍ଟହାସ, ଠୋଠୋ ହସ,ବିକଟହାସ୍ୟ, ଉପହାସ-ବ୍ୟଞ୍ଜକ ହସ ।

ଅଟ୍ଟହାସକ—ପୁଂ. ବି. କୁନ୍ଦବୃକ୍ଷ, (ବିଂ) ଉଚ୍ଚହାସ୍ୟକାରୀ ।

ଅଟ୍ଟହାସୀ—ପୁଂ ବିଂ. ( ଅଟ୍ଟ + ହସ + ଇନ୍ ) ବିକଟ ହାସ୍ୟକାରୀ, ଉଚ୍ଚହାସ୍ୟ-କାରୀ (ବି) ଶିବ, ମହାଦେବ ( ସ୍ତ୍ରୀ ) ଅଟ୍ଟହାସିନୀ ।

ଅଟ୍ଟାଟ୍ଟ—ପୁଂ. ବିଂ. (ଅଟ୍ଟ + ଅଟ୍ଟ)ଅତ୍ୟୁଚ୍ଚ, ସର୍ବୋତ୍କର୍ଷ, ଅନାଦରବାକ୍ୟ ।

ଅଟ୍ଟାଲ(କ)—ପୁଂ. ବି. (ଅଟ୍ଟ + ଅଲ + ଅ.କ) ପ୍ରାସାଦ, କୋଠାବାଡ଼ି, କୋଠା ଉପର ଗୃହ, ପ୍ରାକାରଉପରେ ଥିବା ରଣଗୃହ ବା ଉଚ୍ଚସ୍ଥାନ ।

ଅଟ୍ଟାଳିକା—ସ୍ତ୍ରୀ. ବି. (ଅଟ୍ଟାଲକ + ଆ) ପ୍ରାସାଦ, ରାଜଗୃହ, ଇଟାଚୂନର ଘର, ପଥରଚୂନର ଘର ।

ଅଟ୍ଟାଳିକାକାର—ପୁଂ.ବି. ଶୂଦ୍ରା ଗର୍ଭରେ ଚିତ୍ରକାର ଔରସଜାତ ସଙ୍କର ଜାତି ବିଶେଷ, ରାଜମିସ୍ତ୍ରୀ ।

ଅଟ୍ୟା—ସ୍ତ୍ରୀ.ବି. ( ଅଟ୍ଟ + ଭା.ଯ + ଆ ) ପରିଭ୍ରମଣ, ପର୍ଯ୍ୟଟନ ।

ଅଠ୍—(ଧାତୁ) ଗମନ କରିବା ।

ଅଠଚାଳିଶ—ବି. ଅଷ୍ଟଚତ୍ୱାରିଂଶତ୍, ୪୮ ସଂଖ୍ୟା (ବିଂ) ୪୮ ସଂଖ୍ୟକ ।

ଅଠଣ—ଗ୍ରା. ବିଂ. ଅଘଟଣ, ଅସୁନ୍ଦର ।

ଅଠତ୍ରିଂଶ,ଅଠତିରିଶ—ବି. ଅଷ୍ଟତ୍ରିଂଶତ୍, ଅଠତିରିଶ ସଂଖ୍ୟା (ବିଂ) ୩୮ ସଂଖ୍ୟକ ।

ଅଠର—ଗ୍ରା. ବି ଅଷ୍ଟାଦଶସଂଖ୍ୟା (ବିଂ) ଅଷ୍ଟାଦଶ ସଂଖ୍ୟକ ।

ଅଠର ଗଡ଼ଜାତ—ଗ୍ରା. ବି. ପ୍ରାଚୀନ ଉତ୍କଳର ସୀମା ମଧ୍ୟରେ ଥିବା ଅଠର-ଗୋଟି ଗଡ଼ ବା ରାଜ୍ୟର ସମଷ୍ଟି ।

ଅଠରନଳା—ଗ୍ରା.ବିଂ. ଯେଉଁ ପୋଲରେ ୧୮ଗୋଟି ଫୁଙ୍କାର ଥାଏ, ପୁରୀଠାରୁ ୧ମାଇଲଦୂରରେ ଜଗନ୍ନାଥ ସଡ଼କରେ ଥିବା ୧୮ ଗୋଟି ଫଙ୍କାରଯୁକ୍ତ ପୋଲ ।

ଅଠରନଳାସଙ୍ଗେ ସଙ୍ଗାତବସିବା—ଗ୍ରା. (ପ୍ରବଚନ ପ୍ରବାଦ ଅଛି ଯେ ଅଠରଟି ସନ୍ତାନ ପ୍ରସବ କରିବା ସ୍ତ୍ରୀ ପୁରୀ ଯାଇ ଶ୍ରୀଜଗନ୍ନାଥଙ୍କୁ ଦର୍ଶନକରି ଅଠର ନଳାଠାରେ ମହାପ୍ରସାଦ ଦେଇ ଅଠରନଳା ସହିତ ସଙ୍ଗାତ ବସେ ।

ଅଠଷଠି—ଗ୍ରା.ବି. ଅଷ୍ଟଷଷ୍ଟୀ, ୬୮ସଂଖ୍ୟା, (ବିଂ) ଅଠଷଠିସଂଖ୍ୟକ ।

ଅଠସ୍ତରି—ଗ୍ରା.ବି.ଅଷ୍ଟସପ୍ତତି, ୭୮ସଂଖ୍ୟା, (ବିଂ) ଅଠସ୍ତରିସଂଖ୍ୟକ, ୭୮ ।

ଅଠା—ଗ୍ରା.ବି. ଯେଉଁ ନାଳୁଆ ତରଳ-ବସ୍ତୁଦ୍ୱାରା ଦୁଇଟି ପଦାର୍ଥ ଯୋଡ଼ି ହୁଏ, ଲେହ, ଯୋଡ଼ରଖିବାର ବ୍ୟବହୃତ ନିର୍ଯ୍ୟାସ, (ଲ.ଅର୍ଥ) ଅପବାଦ, କଳଙ୍କ, ଦୁର୍ନାମ, ତା'ସର ୮ଟି ବନ୍ଧୁଥିବାସାର ।

ଅଠାଅଠା—ଗ୍ରା.ବିଂ. ଅଠାଳିଆ, ଅଠାପରି ଲାଗିଯାଉଥିବା, ଅଠାଯୁକ୍ତ ।

ଅଠାଅଶୀ—ଗ୍ରା. ବି. ଅଷ୍ଟାଶିତି ସଂଖ୍ୟା, ୮୮ ସଂଖ୍ୟା, (ବିଂ) ଅଠାଅଶିସଂଖ୍ୟକ ।

ଅଠାଇଶ—ଗ୍ରା.ବିଂ.ଅଷ୍ଟାବିଂଶ,ଅଷ୍ଟବିଂଶ, ୨୮ ସଂଖ୍ୟା, (ବିଂ) ୨୮ ସଂଖ୍ୟକ ।

ଅଠାକାଠି ବା ଅଠାକାଣ୍ଡିଆ—ଗ୍ରା.ବି. ଚଢ଼େଇ ଧରିବା ପାଇଁ ଅଗରେ ଅଠା ଲାଗିଥିବା ଏକ ପ୍ରକାର ନଳ, (ଲ.ଅର୍ଥ) ଚକ୍ରାନ୍ତ, ଫାନ୍ଦ, ବିପଦ ।

ଅଠାଠିକ୍—ଗ୍ରା.ବି.ମୁମୂର୍ଷୁ ଅବସ୍ଥା,ଅତ୍ୟନ୍ତ ନିରାଶ୍ରୟ ଅବସ୍ଥା, ଶେଷ ମନ୍ଦ ଅବସ୍ଥା, (ବିଂ) ସମାପ୍ତ, ଅନାସ୍ୱାଦ ।

ଅଠାନବେ—ଗ୍ରା. ବି. ଅଷ୍ଟନବତି ସଂଖ୍ୟା, ୯୮ ସଂଖ୍ୟା, ( ବିଂ ) ୯୮ ସଂଖ୍ୟକ ।

ଅଠାବନ—ଗ୍ରା.ବି. ଅଷ୍ଟପଞ୍ଚାଶତ୍ ସଂଖ୍ୟା, ୫୮, (ବିଂ) ୮ ସଂଖ୍ୟକ ।

ଅଠାବୋଳିବା (ଲଗାଇବା)—ଗ୍ରା. କ୍ରି. କୌଣସି ବସ୍ତୁରେ ଅଠା ଲଗାଇବା, କୌଣସିବ୍ୟକ୍ତିଠାରେ ଦୋଷ ବା କଳଙ୍କ ଆରୋପ କରିବା, ଅପବାଦ ଦେବା ।

ଅଠାଳିଆ—ଗ୍ରା. ବିଂ. ଚଟଚଟିଆ, ଯାହା ହାତ ଆଦିରେ ଅଠାପରି ଲାଗିଯାଏ, ଅଠାଯୁକ୍ତ ।

ଅଠାଶଠା—ଗ୍ରା. ବିଂ. ଉପରଠାଉରିଆ (କାମ),ଯତ୍ନପୂର୍ବକ କରାନଯିବା (କାର୍ଯ୍ୟ) ।

ଅଠିକ୍—ଗ୍ରା. ବିଂ. ଯାହା ଠିକ୍ ନୁହେ, ବେଠିକ୍, ଅଶୁଦ୍ଧ, ଅନୁଚିତ ।

ଅଠିକଣା—ଗ୍ରା. ବିଂ. ଅନିର୍ଦ୍ଦିଷ୍ଟ,ଅନିଶ୍ଚିତ, ଅଡ଼ୁଆ, ଗୋଳମାଳିଆ, ଅସ୍ତବ୍ୟସ୍ତ, ଅସୁନ୍ଦର ।

ଅଠିଲ—ଗ୍ରା. ବି. କାଚର ନାନା ବର୍ଣ୍ଣର ଗ୍ରେଟ ମାଳର ଦାନା (ଗରିବ ସ୍ତ୍ରୀମାନେ ବେକରେ ମାଳିକରିପିନ୍ଧନ୍ତି) କାଠମାଳି ।

ଅଠିଲ୍—ଗ୍ରା.ବିଂ. ଭୂରି,ଯଥେଷ୍ଟ ଅପେକ୍ଷା ବେଶି, ଅତିରିକ୍ତ, ବଳୁଆ, ମଜବୁତ, ସମ୍ପୂର୍ଣ୍ଣରୂପେ ସନ୍ତୁଷ୍ଟ ।

ଅଠୌର—ଗ୍ରା. ବିଂ. ଯାହାର ଠିକଣା ନାହିଁ, ଅସ୍ଥିର ।

ଅଡ଼୍—(ଧାତୁ)ଚେଷ୍ଟାକରିବା,ବ୍ୟାପିବା ।

ଅଡ଼୍ବାଗୀ—ଗ୍ରା.ବିଂ.ଅଡ଼ଭୂଷା,ଅଲମ୍ବୁଷା, ଅଡ଼ମ୍ବାଜ, ଅବାଗିଆ, ଏକବାଗିଆ ।

ଅଡ଼୍ବାଗିଆ—ଗ୍ରା. ବିଂ. ଅଡ଼ମ୍ବାଜ, ଅଲମ୍ବୁଷା, ଅବାଗିଆ, ଏକବାଗିଆ ।

ଅଡ଼୍ବାଜ—ଗ୍ରା.ବିଂ. ଅଡ଼ଭୂଷା, ଅବୁଝା, ଚଗଲ, ଅଖାଡ଼ୁଆ ।

ଅଡ଼ବାଜ (ଆ)—ଗ୍ରା. ବି. ଅଡ଼ଭୂଷା, ଚଗଲପଣ, ଜିଦ୍, ଜିଗିର ।

ଅଡ଼୍ହା—ପ୍ରା. (ବସ୍ତୁର) ବି. ଦାନ୍ତପାଟି ।

ଅଡ଼—ଗ୍ରା. ବି. (ସଂ. ହଠ, ଅଡ଼ଧାତୁ ) ଅଭିମାନ, ରୁଷା, ହଟ, ଜିଦ୍, ଜିଗର, କବାଟର ଅର୍ଗଳ ବା କିଳଣି ।

ଅଡ଼ଉଲ,ଅଡ୍ଡୌଲ—ଗ୍ରା.ବିଂ.ସୌନ୍ଦର୍ଯ୍ୟର ଅଭାବ (ବିଂ) ଅଘଟଣ, ବେଢ଼ଙ୍ଗ (ପ୍ରା. ସମ୍ଭ. ବିଂ.) ଅନୁଚିତ ।

ଅଡ଼କ୍—(ପ୍ରା.ଭଦ୍ରୀ) ଅବ୍ୟ. ଏଡ଼େ ।
ଅଡ଼କଦ୍ଧାଇ—(ପ୍ରା.ଭଦ୍ରୀ) ଅବ୍ୟ, ତତ୍କ୍ଷଣାତ୍, ଏତେ ଶୀଘ୍ର ।
ଅଡ଼କବର୍ତ୍ତୀ—ବି. ମେରୁ ଶିଖରରେ ଥିବା ପୁରାଣୋକ୍ତ ପ୍ରାସାଦବିଶେଷ, ନଗରବିଶେଷ ।
ଅଡ଼କରି—ଗ୍ରା.ବିଂ.ଅନାମନ୍ତ୍ରିତ,ଅନାହୂତ ।
ଅଡ଼କା—ଗ୍ରା. ବିଂ. ଅଡ଼କରି,ଅନାମନ୍ତ୍ରିତ, ଅନାହୂତ ।
ଅଡ଼ଙ୍ଗ—ଗ୍ରା. ବି. ପିଣ୍ଡା, ବାରଣ୍ଡା, ଖନିଜ ଦ୍ରବ୍ୟ ଯେଉଁଠାରୁ ଜନ୍ମେ, ( ଗ୍ରା. ବିଂ ) ଅବାଧ, ଅମାନିଆ, ଅଖାଡ଼ୁଆ, ଏକଜିଦିଆ,(ପ୍ରା.ପୁରୀ) ବି.ଲୁଣ ପ୍ରୋକ୍ଷାନ ହୋଇ ଠୁଳ କରାଯିବା ସ୍ଥାନ ।
ଅଡ଼ଙ୍ଗା—ଗ୍ରା. ବି. ଆମ୍ବ-ଆମ୍ବରବିଶେଷ, କର୍ମରେ ବାଧା,ଅଟକ, (ବିଂ) ରହଣିଆ, ଦୁର୍ଗନ୍ଧଯୁକ୍ତ ଯା. ବି. ) କଳି-କଜିଆ, ତକରାର । [ ଢଳାହୁଡ଼ା ।
ଅଡ଼ଙ୍ଗାବାଜ୍—ଗ୍ରା. ବିଂ. କଜିଆଖୋର,
ଅଡ଼ତ୍—ଯା. ବି. ପେଣ୍ଠ, ପଣ୍ୟ ଦ୍ରବ୍ୟ କ୍ରୟ-ବିକ୍ରୟପାଇଁ ନିର୍ଦ୍ଦିଷ୍ଟ ସ୍ଥାନ ।
ଅଡ଼ତ୍ଦାର—ଯା. ବି. ଅଡ଼ତିଆ, ଦଣ୍ଡିଦାର, ବିକ୍ରେତାଙ୍କଠାରୁ କମିସନ୍‌ନେବାପାଇଁ ନିଯୁକ୍ତ ବ୍ୟକ୍ତି ।
ଅଡ଼ତ୍ଦାରି, ଅଡ଼ତିଆ—ଯା. ବି. ଦଣ୍ଡିଦାରି, ଦଣ୍ଡିଆଗିରି ।
ଅଡ଼ଧସମା—ପ୍ରା.( ବସ୍ତର )ବି. ଅଲଗୁଣି ।
ଅଡ଼ବ—ବି. ( ସଙ୍ଗୀତ ) ଯେଉଁ ରାଗରେ ଷଡ଼ଜ,ଗାନ୍ଧାର,ମଧ୍ୟମ, ଧୈବତ, ନିଷାଦ ଏହି ପାଞ୍ଚ ସ୍ୱର ଥାଏ ।
ଅଡ଼ଭୁଷା—ଗ୍ରା.ପୁଂ.ବିଂ.ଅଲମୁଷା,କାଣ୍ଡଜ୍ଞାନ ଶୂନ୍ୟ, ଅଖାଡ଼ୁଆ,ଅବାଗିଆ,ଜିଦ୍‌ଖୋର, ଏକବାଗୀ, କଳିହୁଡ଼ା,ଅବୁଝା, ଚଗଲ, (ଗ୍ରା. ବି ) ଅଖାଡ଼ୁଆ କଥା ବା ବିଷୟ ।
ଅଡ଼ମ୍ବାଜ୍—ଗ୍ରା. ବିଂ.ଅଡ଼ଭୁଷା (ଦେଖ) ।
ଅଡ଼ମ୍ବାଜି—ଗ୍ରା.ବିଂ. ଅଡ଼ଭୁଷା ( ଦେଖ ) (ଗ୍ରା.ବି.) ଚଗଲପଣ, କଳିହାପଣ, ହଟ, ଜିଦ୍, ଜିଗର ।
ଅଡ଼ମୁଷା—ଗ୍ରା. ପୁଂ. ବି. ବିଂ. ଅଡ଼ଭୁଷା (ଦେଖ ; (ସ୍ତ୍ରୀ) ଅଡ଼ମୁଷୀ ।
ଅଡ଼ର—ଯା. ବି. ଆଦେଶ. ହୁକୁମ ।
ଅଡ଼ରବଡ଼ର—ଗ୍ରା.ବି ପ୍ରଳାପ, ବାଉଳାଗୃହଳ କଥା, ଅସଂଗତ ଓ ଅସମ୍ବଦ୍ଧ ବହୁଜଳ୍ପନା,ଏଣୁତେଣୁ ଗୁଡ଼ାଏ କହିବା, (ଗ୍ରା.ବିଂ)ବାଉଳ ଗୃହଳ,ଗୋଳମାଳିଆ ।
ଅଡ଼ରି—ଗ୍ରା. (ଭଦ୍ରୀ) ବିଂ. ମନ୍ଦ, ଖରାପ ।
ଅଡ଼ରୁଆ—ଗ୍ରା.ପୁଂ.ବିଂ. ନିଃଶଙ୍କ, ନିଡ଼ର, ନିର୍ଭୀକ, ସାହସୀ ।
ଅଡ଼ଲି—ଯା, ବି. ଆଦେଶପାଳନକାରୀ, ଚପ୍ରାସି, ଅର୍ଦ୍ଦଳି ।
ଅଡ଼ା—ଗ୍ରା,ବି,ଅଡ଼ୁଡ଼ା,ଏକତ୍ର ବସିବାସ୍ଥାନ, ଆଖଡ଼ାଘର, ପଞ୍ଜୁରିର ଯେଉଁ କାଠରେ ଶୁଆ ଆଦି ପୋଷାପକ୍ଷୀ ବସନ୍ତି, ଅର୍ଗଲୀ, ଘରର ଶେଣୀ ଅଟକାଇବା ନିମନ୍ତେ ସାଲକରି ହୋଇ ଦିଆଯିବା ଆଡ଼ଶେଣୀ, ବିକିପାଇଁ ପଣ୍ୟଦ୍ରବ୍ୟ ଆଣିଥିବା ଶଗଡ଼ଆଦିର ରହିବାସ୍ଥାନ ,ଅଟେଇ, କବାଟର କଳଣି, ଉଚ୍ଚ କୋଠରି, ଅନିଷ୍ଟ, ଦ୍ୱେଷ, ଅଡ଼ା,ଅଡ଼ିବା କର୍ମ, (ପ୍ରା.ଗଞ୍ଜାମ) ବି. ୭୪ ତୋଲା ଓଜନର ଶସ୍ୟ ବା ଦୁଗ୍ଧାଦିର ପରିମାଣ ଓ ଏହି ଓଜନର ଦ୍ରବ୍ୟର ପରିମାଣ(ମାଟି ବା ପିତ୍ତଳ) ପାତ୍ର, (ପ୍ରା. ସମ୍ବ) ବି. ଅଲଗୁଣି, (ଗ୍ରା.ବି) ବନ୍ୟ ପଶୁମାନେ ଦଳ ବାନ୍ଧି ରହିବା ସ୍ଥାନ, ( ପ୍ରା. ସିଂହ) ବି.ଟସର ପୋକ ବା ପାଟପୋକ ଆବାଦ କରିବାକର୍ମ, (ପ୍ରା. କେନ୍ଦ୍ରାପଡ଼ା) ବି. ଭଡ଼ା, ମୋଟ ବାଉଁଶ, ଯଦ୍ଦ୍ୱାରା ପଥର ଆଦିକୁ ଘୁଞ୍ଚାଇବାକୁ ହୁଏ ।
ଅଡ଼ାଅଡ଼ି—ଗ୍ରା. ବି. ପରସ୍ପର ରୁଚାରୁଚି, ଠେଲାଠେଲି, ରଗାରଗି, ପରସ୍ପର ଠେଲାଠେଲି,ବହୁପଶୁଙ୍କୁ ଅଡ଼ାଇନେବା, (ବିଂ)ପରସ୍ପର ଠେଲାଠେଲି ହେଉଥିବା ।
ଅଡ଼ାଇବା, ଅଡ଼େଇବା—ଗ୍ରା. କ୍ରି.ଶକଟାଦିରେ ଯୋଗ୍ୟ ହୋଇଥିବା ପଶୁଙ୍କୁ ଚଳାଇବା ବା ହୁଙ୍କାଇବା, ପଶୁଆଦିଙ୍କୁ କୌଣସି ସ୍ଥାନରୁ ତଡ଼ିଦେବା, ପଶୁମାନଙ୍କୁ ଚଳାଇ ଠିକ୍‌ଭାବରେ ଯିବାର ସୁବିଧା କରିବା ।
ଅଡ଼ାଳ, ଅଡ଼ାଳିଆ -ଗ୍ରା.ବିଂ.ଗୋଖାସ୍ଥାନ ।
ଅଡ଼ାବନ୍ଧ—ଗ୍ରା. ବି. ପାଞ୍ଚ ବା ସାତ ଶେଣିଆ ଗୃହଘରର ଓଳାର ଯେଉଁ ଅଂଶ ଦୁଇଟି ଗୁଜ ମଧ୍ୟରେ ଥାଏ ।
ଅଡ଼ାଣ—ଗ୍ରା. ବି. ଜଙ୍ଗଲରୁ ବାଉଁଶ କାଟି ଆଣିଲାବେଳେ ଗୋଛା ବନ୍ଧା ହେବା ପରେ ଫିଟିଯିବା ଆଶଙ୍କାରେ ଗୋଛା ମୁଣ୍ଡିରେ ପିଟାଯିବା ଖିଲା ।
ଅଡ଼ାଣି---ଗ୍ରା. ବିଂ. ପୂର୍ଣ୍ଣରୂପେ ହୋଇଥିବା (ଫସଲ)ଯଥା;—ଧାନ ଅଡ଼ାଣି ହୋଇ ରହିଅଛି ।
ଅଡ଼ି—ଗ୍ରା. ବି. ଜିଦ୍,ହଟ,ଜିଗିର, ଏଡ଼ିଙ୍ଗି, ହାକୁଟି, ତକାର ।
ଅଡ଼ିଟ—ଯା.ବି.ହିସାବ ଆଦିର ତନଖି ।
ଅଡ଼ିଟର—ଯା. ବି. ଯେ ହିସାବ ଆଦିର ତନଖୀ କରେ ।
ଅଡ଼ିପଟ—ଗ୍ରା. ବି. ପଶାକାଟିରେ ଯେଉଁ ପଟ ବା ଦାନ ସହଜରେ ପଡ଼େ ନାହିଁ ।
ଅଡ଼ିବା—ଗ୍ରା. କ୍ରି. ହଟ କରିବା, ଏକଜିଦ୍ ଧରିବା, କୃତସଂକଳ୍ପ ହେବା, ରୁଷି ବସିବା, ରୁଷ୍ଟହେବା, ନାରାଜ ହେବା, ବିଗିଡ଼ିବା, ରୁଦ୍ଧହେବା, (ପବନ), ଅଟକିବା, ଅବାଧହେବା, ଅସନ୍ତୁଷ୍ଟ ହେବା, ପ୍ରକାଶ୍ୟରେ ବିରୋଧୀ ହେବା ।
ଅଡ଼ିବାଜି—ଗ୍ରା. ବି. ଅଡ଼ିଭୂଷା (ଦେଖ), ଘୋଡ଼ାର ଅଡ଼ିବା ଅଭ୍ୟାସ ।
ଅଡ଼ୁଆ—ଗ୍ରା.ବିଂ. (ସଂ-ଆଲୁକ) ଅସ୍ତବ୍ୟସ୍ତ, ବିଗିଡ଼ି ଯାଇଥିବା, ଛନ୍ଦଣିମନ୍ଦଣି ହୋଇ ଥିବା (ସୂତା ବା କେଶ), ଜଟିଳ,ଗୋଳମାଳିଆ, ଅସଂଯତ, ଅମୀମାଂସିତ, ଅଝଣ୍ଟିଆ, ବିଷମ ।
ଅଡ଼ୁଆଡଡ଼ୁଆ—ଗ୍ରା.ବିଂ, ବିଶେଷ ଜଟିଳ, (ବି.) ବିଶେଷ ଗୋଳମାଳ, ବିବାଦ, ବିସମ୍ବାଦ, ବିଶେଷ କଳିକଜିଆ ।
ଅଡ଼ୁଆବାଳ—ଗ୍ରା.ବି.ଛନ୍ଦଣିମନ୍ଦଣି ହୋଇଥିବା କେଶ, ମୁଣ୍ଡକୁଣ୍ଡାଇବାରେ ଯେଉଁ

ଛନ୍ଦଣିମନ୍ଦଣି ବାଲ ପାନଆରେ ଲଗି ମୁଣ୍ଡରୁ ଉଠିଆସେ ।

ଅଡ଼ୋଶପଡ଼ୋଶ—ଗ୍ରା. ବି. ପ୍ରତିବେଶୀ-ବର୍ଗ, 'ବିଂ) ଆସପାଶ, ନିକଟବର୍ତ୍ତୀ ।

ଅଡ଼୍‌ଡ଼—(ଧାତୁ)—ଯୋଗକରିବା,ଆକ୍ରମଣ କରିବା,ଅନୁମାନ କରିବ , ତର୍କକରିବା, ଧ୍ୟାନ କରିବା । [ ଚାଲ ।

ଅଡ଼୍‌ଡ଼ନ—ବି. (ଅଡ଼ + ଅନ) ଆଡେଣି,

ଅଡ଼ଙ୍ଗ—ଗ୍ରା. ବିଂ. ବେଢ଼ଙ୍ଗ. ଅଡ଼ୁଢ଼ିଲ, ଧାରାବହୀନ, ଅସୁନ୍ଦର ।

ଅଢ଼ଙ୍ଗା—ଗ୍ରା.ବି. ଅଡ଼ଙ୍ଗା (ଦେଖ), ବିଂ. ଅଢ଼ଙ୍ଗ (ଦେଖ) ।

ଅଢ଼ଙ୍ଗିଆ—ଗ୍ରା. ବିଂ. ବେଢଙ୍ଗିଆ, ଅସୁନ୍ଦରିଆ, ଅଢ଼ଙ୍ଗ ।

ଅଢ଼ପ—ଗ୍ରା. ବି. ଢପ ବା ସୌନ୍ଦର୍ଯ୍ୟର ଅଭାବ, (ବିଂ) ଅଡ଼ୁଢ଼ିଲ ଦେଖ ।

ଅଢ଼ପା—ଗ୍ରା.ବିଂ. ଅସୁନ୍ଦର, ଅଡ଼ୁଢ଼ିଲ ।

ଅଢ଼ା—ଗ୍ରା. ବି. ଧାନ୍ୟାଦି ମାପିବାର କାଷ୍ଠାଦି ନିର୍ମିତ ପାତ୍ରବିଶେଷ, ଅଣକ, ଡଙ୍କା, ଅଢ଼ାଆଙ୍ଗୁଳି ।

ଅଢ଼ାଆଙ୍ଗୁଳି (ଆଙ୍ଗୁଠି) ଗ୍ରା. ବି. ଆଙ୍ଗୁଠିରେ ଉଠିବା ଅତିକଷ୍ଟଦାୟକ ବ୍ରଣ, ବାରିହା ଆଙ୍ଗୁଠି ।

ଅଢ଼ାଇ—ଗ୍ରା. ବି. ଦୁଇ ଓ ଅଧେ ସଂଖ୍ୟା ୨½ (ବିଂ) ୨½ ସଂଖ୍ୟକ ।

ଅଢ଼ାମୁଣ୍ଡି—ଗ୍ରା.ବି.ଅଗ୍ରମୁଣ୍ଡି,ଚିଙ୍କିପାହାରର ଲୁହା-ସମାଯୁକ୍ତ ଅଗ ।

ଅଢ଼ିଆ—ଗ୍ରା.ବି.ସିଧା-ସାମଗ୍ରୀ, ସଞ୍ଚା, (ପ୍ରା. ସମ୍ବ) ବି. ପ୍ରତିଫଳ ।

ଅଢ଼େଇଆ—ଗ୍ରା. ବି. ଦୁଇସେର ଅଧେ ପରିମାଣ, ଏହି ପରିମାଣର ବଟକରା ବା ମାପପାତ୍ର, ଗୋରୁମାନଙ୍କର ଜ୍ୱରବିଶେଷ, (ବିଂ) ଅଢ଼େଇସେର ପରିମିତ ।

ଅଢ଼େଇକାଣ୍ଡିଆ—ଗ୍ରା. ବି. ଅଢ଼େଇଚରଣିଆ (ଦେଖ) ।

ଅଢ଼େଇଚରଣିଆ—ଗ୍ରା. ବି. ଗୁଣିଆମାନେ ପ୍ରୟୋଗକରିବା ଅତି ଅଳ୍ପପଦସଂଖ୍ୟା, ଗାରଡ଼ିମନ୍ତ୍ର ।

ଅଢ଼େଇଦିନ—ଗ୍ରା. ବି. ଦୁଇଦିନ ଅଧେ, ଅଳ୍ପକାଳ ।

ଅଢ଼େଇଦିନିଆ—ଗ୍ରା. ବିଂ. ଅଳ୍ପକାଳସ୍ଥାୟୀ, ଅଚିରସ୍ଥାୟୀ, ଅସ୍ଥାୟୀ ।

ଅଣ୍‌-(ଧାତୁ)-ଶବ୍ଦକରିବା,ନିଶ୍ୱାସମାରିବା ।

ଅଣ—ଗ୍ରା.ବି.ଖୋଲ, ବ୍ୟଞ୍ଜନରେ ଥିବା ଜଳୀୟଅଂଶ, ଅବ୍ୟ. ନ. ନୁହେଁ ।

ଅଣଅକ୍ଷର —ଗ୍ରା. ବି. ପରଂବ୍ରହ୍ମ, ବ୍ରହ୍ମ ।

ଅଣଅକ୍ଷର(ଆ) —ଗ୍ରା.ବିଂ. ଅଶିକ୍ଷିତ, ମୂର୍ଖ, ନିରକ୍ଷର, ଅଜ୍ଞ ।

ଅଣଅଜା—ଗ୍ରା. ବି. ପୁଂ. ଅଜାଙ୍କ ପିତା, ପ୍ରପିତାମହ, ପ୍ରମାତାମହ ।

ଅଣଆଉଟା—ଗ୍ରା.ବିଂ.(ଅନାବର୍ତ୍ତିତ),ଯେଉଁ ଦୁଗ୍ଧ ଆଉଟା ହୋଇନାହିଁ ।

ଅଣଆଖୁଆ—ଗ୍ରା. ବି. ଆଖୁଜାତୀୟ ବନ୍ୟ ତୃଣବିଶେଷ, ଅଣାଖୁଆ । [ ଅମାନ୍ୟ ।

ଅଣଆଦର—ଗ୍ରା. ବି. ଅନାଦର, ଅଯତ୍ନ,

ଅଣଆୟତ୍ତ—ଗ୍ରା. ବି. ବିଂ. ଅନାୟତ୍ତ, ଅଧିକାରବହିର୍ଭୂତ, ଉପାୟାନ୍ତରହୀନ, ଅସହାୟ, ଅଶକ୍ତ, ଗରଜ୍ଜୁ ସିଆର, ପରାଧୀନ, ଅବଶୀଭୂତ,(ବି)ପରାଧୀନତା, ଅସାବଧାନତା, ଅସହାୟଅବସ୍ଥା , ଗୃହ ନ ଥିବା ଅବସ୍ଥା ।

ଅଣଆସ୍ଥାସେ—ଗ୍ରା.କ୍ରି.ବିଂ. ଅନାସ୍ଥାସରେ, ଅକ୍ଲେଶରେ ।

ଅଣଉଦିଆ—ଗ୍ରା.ବିଂ. ସୂର୍ଯ୍ୟୋଦୟ ପୂର୍ବରୁ କରାଯିବା, (ଗ୍ରା.କ୍ରି.ବି.) ସୂର୍ଯ୍ୟୋଦୟ ନ ହେଉଣୁ । [ ଅପକାର ।

ଅଣଉପକାର—ଗ୍ରା.ବି.ଅନୁପକାର, ଅହିତ,

ଅଣଉପରୋଧ—ଗ୍ରା. ବି. ଉପ୍ରୋଧ ବା ଚକ୍ଷୁଲଜ୍ଜାର ଅଭାବ, କରୁଣାର ଅଭାବ, ନିର୍ଦ୍ଦୟତା ।

ଅଣଉପରୋଧୀ—ଗ୍ରା. ପୁଂ. ବିଂ. ନଉପ୍ରୋଧିଆ, ଯାହାର ଚକ୍ଷୁଲଜ୍ଜା ନାହିଁ, ଯାହାର ମୁଲାହିଜା ନାହିଁ,ନିର୍ମମ, ନିଷ୍କରୁଣ ।

ଅଣଉହାଡ଼—ଗ୍ରା. ବିଂ. (ସଂ-ଅନାବୃତ) ଅନାବୃତ, ଆବରଣରହିତ ।

ଅଣଓସାର—ଗ୍ରା. ବିଂ. ଅଳ୍ପଚଉଡ଼ା, ସଙ୍କୀର୍ଣ୍ଣ, ଅପ୍ରସର ।

ଅଣକ—ବିଂ. ( ଅଣ + କ.ଅକ ) ଘୃଣ୍ୟ, ହେୟ, ନୀଚ, ନଗଣ୍ୟ, ମନ୍ଦ, ଅତିକ୍ଷୁଦ୍ର,(ବି.) ପକ୍ଷିବିଶେଷ, ସ୍ତ୍ରୀ। ଅଣକା, (ଗ୍ରା.ବି.) ନଡ଼ିଆ ସଢ଼େଇରେ ଢାଳିବା ଉଦ୍ଦେଶ୍ୟରେ (?) କରିଚୁଲ୍ ବା ଡଙ୍କା ।

ଅଣକଉଡ଼ିଆ—ଗ୍ରା. ବିଂ. ନିର୍ଦ୍ଧନ (ବ୍ୟକ୍ତି), ଅଳ୍ପମୂଲ୍ୟର ପଦାର୍ଥ ।

ଅଣକଦଳୀ ( କଳା —ଗ୍ରା. ବିଂ. ଯେଉଁ କଦଳୀଗଛର ପୁଆମାନ ପ୍ରତିବର୍ଷ ମୂଳରୁ ଉଚ୍ଚା ହୋଇ ଅନ୍ୟ ସ୍ଥାନରେ ପୋତା ନ ହେବାରୁ ପୁଆର ମୂଳ ହାଣ୍ଡିମାନ ଭୂମି ଉପରକୁ ଉଠିଯାଏ ଓ ଗଛମାନ ଶ୍ରେଷ୍ଠ ହୋଇ ଉକ୍ତ ଗଛରେ ଆଉ କଦଳୀ ଫଳେ ନାହିଁ ।

ଅଣକ୍ଲା(ଲା,ଳ,ଲୀ)—ଗ୍ରା.ବି.(ସଂ- ଅନୁକ୍ଲାଲ) ଗାଈଗୋରୁଙ୍କୁ ଅଖରେ ଅଟକାଇବାପାଇଁ ଅଖମୁଣ୍ଡରେ ଫୋଡ଼ା ହୋଇ ଦିଆଯାଇଥିବା କୀଲା ବା ଖିଲ, ଅନକଲ ।

ଅଣଖୁଆ—ଗ୍ରା. ବି. ଆଖୁ ପରି ଦିଶୁଥିବା ଏକପ୍ରକାର ତୃଣ ।

ଅଣଗୁରୁ—ଗ୍ରା. ବି. ବିଦ୍ୟା-ଗୁରୁ ନ ଥାଇ ବିଦ୍ୟା ଶିଖିବା ଅବସ୍ଥା ।

ଅଣଗୁରୁଆ—ଗ୍ରା. ବିଂ. ( ସଂ-ଅ-ଗୁରୁ ) କୌଣସି ଗୁରୁଙ୍କ ବିନା ସାହାଯ୍ୟରେ ବିଦ୍ୟା ଶିଖିଥିବା (ବ୍ୟକ୍ତି), ସହଜ (କର୍ମ), ଯେଉଁ ବ୍ୟକ୍ତି ମନ୍ତ୍ରଗୁରୁଙ୍କଠାରୁ ଦୀକ୍ଷା-ଗ୍ରହଣ କରି ନାହିଁ ।

ଅଣଚତୁର—ଗ୍ରା. ବିଂ. ( ସଂ. ଅଚତୁର ) ଅଚତୁର, ଓଲୁ, ଅସିହାଣ, ନିର୍ବୁଦ୍ଧିଆ ।

ଅଣଚାଳିଶ—ଗ୍ରା.ବି.ତିରିଶରୁ ନଅ ଅଧିକ, ଚାଳିଶରୁ ଏକଊଣା ସଂଖ୍ୟା, ( ବିଂ ) ୩୯ ସଂଖ୍ୟକ ।

ଅଣଚାଶ—ଗ୍ରା.ବି. ଓ. ବି.୦ ଊନପଞ୍ଚାଶତ୍ ସଂଖ୍ୟା,ଚାଳିଶରୁ ନଅ ଅଧିକ ବା ପଚାଶରୁ ଏକଊଣା ୪୯ ସଂଖ୍ୟା, ମୃତ୍ୟୁ ପୂର୍ବରୁ ବୋହିବା ଖରନିଃଶ୍ୱାସ, ପ୍ରବଳପ୍ରଭଞ୍ଜନ ।

ଅଣଚାଶ ଉଠିବା—ଗ୍ରା. ବି. ମୃତ୍ୟୁ ପୂର୍ବରୁ ପ୍ରବଳଭାବରେ ଶ୍ୱାସବାୟୁର ଗମନାଗମନ ।

ଅଣଗୃଣପବନ—ଗ୍ରା. ବି. ମୃତ୍ୟୁର ଅବ୍ୟବହିତ ପୂର୍ବରେ ମନୁଷ୍ୟର ବୋହୁବା ଝଡ଼ ନିଃଶ୍ୱାସ, ପ୍ରବଳ ପ୍ରଭଞ୍ଜନ ।

ଅଣଗୃଣ ବୋହୁବା—ଗ୍ରା. ବି. ଅଣଗୃଣ ଉଠିବା (ଦେଖ) ।

ଅଣଠାବ—ଗ୍ରା. ବି. ଅସ୍ଥାନ, ମନ୍ଦସ୍ଥାନ, ଅନୁପଯୁକ୍ତସ୍ଥାନ, ଅଗମ୍ୟସ୍ଥାନ ।

ଅଣଠାବୁଆ—ଗ୍ରା. ବିଂ. ଅସୁବିଧାଜନକ (ସ୍ଥାନ), ପୁଂ. ଯେଉଁ ବ୍ୟକ୍ତି ଅସ୍ଥାନରେ ବିଚରଣ କରେ ।

ଅଣଡଙ୍କା—ଗ୍ରା.ବିଂ. ଅନାବୃତ,(ପ୍ରା-ପୁଗ୍ରା, ବିଂ.)ଅପରିପକ୍ୱ,ଦରପାଚିଲା, ଅଡ଼କରା ।

ଅଣତଣ, ଅଣତଣିଆଁ—ଗ୍ରା. ବିଂ. ଅଣପରପାଣିଆ, ଉଅଣରେ ଥିବା ଟୋଲ-ଅଂଶ,ଭୋଜନାଭାବରୁ ଅତଶୀର୍ଣ୍ଣ(କାସ୍ତ), ଅନଶନ ଯୋଗୁଁ କଙ୍କାଳବିଶିଷ୍ଟ, ଅସମାନ, ବନ୍ଧୁର, ଅସମତଳ ।

ଅଣତରଣ—ଗ୍ରା. ବି. ଓ ବିଂ. କୋଡ଼ିଏରୁ ନଅ ଅଧିକ ଓ ତରଣିରୁ ଏକ ଊଣା, ୨୯ ସଂଖ୍ୟା ।

ଅଣତୃତ୍ତୀୟା, ଅଣତୃରୁଡଆ—ଗ୍ରା. ବିଂ. ଯେଉଁ ଧାନବହନ କ୍ଷେତରେ ଅକ୍ଷୟ-ତୃତୀୟା ପୂର୍ବରୁ ବୁଣା ହୋଇଥାଏ, (ଗ୍ରା.ବି.) ଅକ୍ଷତୃତୀୟା ପୂର୍ବରୁ ଖାଲ ବିଲରେ ଧାନ ବୁଣିବା କର୍ମ ।

ଅଣନଭ—ଅଣନବେ,ଅଣାନବେ-ଗ୍ରା.ବି. ଓ ବିଂ. ଊନନବତ ସଂଖ୍ୟା ୯, ଅଶିରୁ ନଅ ଅଧିକ ଓ ନବେରୁ ଏକ ଊଣା, ୮୯ ସଂଖ୍ୟା ।

ଅଣନାତ—ଗ୍ରା. ବି. ନାତ ବା ନାତୁଣୀର ପୁଅ, (ସ୍ତ୍ରୀ) ଅଣନାତୁଣୀ ।

ଅଣପାଟ—ଗ୍ରା.ବିଂ. ଯେଉଁ ରାଜବଂଶରେ ପଟ୍ଟମହାଦେବୀ ବା ବିବାହିତାରାଣୀଙ୍କ ଗର୍ଭଜାତ ସନ୍ତାନ କେହିବିଦ୍ୟମାନ ନଥାନ୍ତି, ଅରାଜକ ।

ଅଣପୁରୁଷା—ଗ୍ରା. ବିଂ. ନପୁଂସକ,(ବି.) ନପୁଂସକ ବ୍ୟକ୍ତି, ଅମନୁଷ୍ୟ ।

ଅଣଫୁଟା (ଝିଲା)—ଗ୍ରା.ବିଂ. ଅଫୁଟା,ଯେଉଁ ଉଅଣ ବିଘରିଥ ହୋଇ ନାହିଁ, ଅବଘର ।

ଅଣଫୁଟୀ— ଗ୍ରା.ସ୍ତ୍ରୀ. ବିଂ. ଅଫୁଟୀ, ଅପ୍ରାପ୍ତରଜସ୍କା (ବାଳିକା) ।

ଅଣ(ବଣ)ବଣିଆଁ—ଗ୍ରା. ବିଂ. ରଣଭଣ, ଅସ୍ତବ୍ୟସ୍ତ, ଅସଂସ୍କୃତ, ଅପରିଷ୍କୃତ, ଅସନା, ଅଳିଆ, କୁତ୍ସିତ, କଦର୍ଯ୍ୟ ।

ଅଣ(ବରଭୁଆ) ବ୍ରତୁଆ, ଅଣ( ବରତଆ ) ବ୍ରତଆ—ଗ୍ରା. ପୁଂ. ବିଂ. ଯେଉଁଦ୍ୱିଜବାଳକର ଉପନୟନକର୍ମ ହୋଇନାହିଁ, ଯେ ବ୍ରତଧାରୀ ନୁହେ, ଯେଉଁ ବ୍ୟକ୍ତି ବ୍ରତ ପାଳନ କରନାହିଁ, ଯେଉଁ ଅଣ୍ଡିରି ବାଛୁରି ଧରା ହୋଇନାହିଁ, ଯେଉଁ ବାଛୁରୀ ଦଗା ବା ଲଗ୍ନ ହୋଇନାହିଁ ।

ଅଣବାରୁ ( ପୁ )ଅ—ଗ୍ରା. ବିଂ. ଜାରଜ, ଅନର୍ଦ୍ଦିଷ୍ଟପିତୃକ (ବ୍ୟକ୍ତି), ଯାହାର ବାପରେ ଠିକଣା ନାହିଁ ।

ଅଣବାହୁ(ଡ଼)ଡ଼ା—ଗ୍ରା. ବିଂ. ଅପ୍ରତ୍ୟାବର୍ତ୍ତିତ, ଯାହା ଫେର ଆସେ ନାହିଁ, ଯାହା ଥରେ ବିଗିଡ଼ିଲେ ପୁଣି ସୁଧାର ହୁଏ ନାହିଁ, ଅବ୍ୟର୍ଥ ।

ଅଣବ୍ୟ—କ୍ଲୀ.ବି. ଅଣୁ + ଅଧି.ଯ)ଯେଉଁ ଭୂମିରେ ଚନା ନାମକ ଶସ୍ୟ ଜନ୍ମେ, କ୍ଷେତ୍ର, ଭୂମି ।

ଅଣଭ ଣ)ଣିଆଁ—ଗ୍ରା.ବିଂ.ରଣଭଣ,ଅସ୍ତବ୍ୟସ୍ତ, ଅପରିଷ୍କୃତ, ଅଳିଆ, କୁତ୍ସିତ ।

ଅଣଭଣା—ଗ୍ରା. ବିଂ. ( ସଂ.ଅ + ଭିନ୍ନ ) ଯେଉଁ ତୂଳା ଭଣା ହୋଇନାହିଁ, ଯେଉଁ ମାଟିରୁ ଗୋଡ଼ି ପଥର ଆଦ ବଚ୍ଛା ହୋଇ ନାହିଁ ।

ଅଣମଣଷ, ଅଣମଣିଷ, ଅଣମନଷ, ଅଣମନଷା—ଗ୍ରା. ବିଂ. ଅମନୁଷ୍ୟ, କୁତ୍ସିତ, ମନୁଷ୍ୟତାବିହୀନ, ଭୀରୁ, ଅଯୋଗ୍ୟ, (ବି.) ଭୀରୁବ୍ୟକ୍ତି,ଅଯୋଗ୍ୟ ଲୋକ ।

ଅଣମାତ୍ରା—ଗ୍ରା.ବିଂ. ମାତ୍ରାହୀନ (ଅକ୍ଷର

ଅଣଲେଉଟ—ଗ୍ରା.ବିଂ.ଅଣବାହୁଡ଼(ଦେଖ)

ଅଣଶୁଧିଆ—ଗ୍ରା. ବି. ଅଶୁଦ୍ଧି, ଅଶୌଚ, (ବିଂ) ମୃତାହଉପଲକ୍ଷ୍ୟେ ଶୁଦ୍ଧିକ୍ରିୟା ସମ୍ପାଦନ କରାହୋଇ ନ ଥିବା (ବ୍ୟକ୍ତି), ମୃତକାଶୌଚ ଯୋଗୁଁ ଅଶୁଦ୍ଧ, ଅଶୁଚ ।

ଅଣଶେଷ—ଗ୍ରା. ବିଂ. ଅଶେଷ (ଦେଖ)

ଅଣ (ଷଠି) ଷାଠି—ଗ୍ରା. ବି. ଓ. ବିଂ. ପଚାଶରୁ ନଅ ଅଧିକ ଓ ଷାଠିଏରୁ ଏକ ଊଣା, ୫୯ ସଂଖ୍ୟା ।

ଅଣସଣା—ଗ୍ରା. ବିଂ. ଅସନା,ଅପରିଷ୍କୃତ, ଅଳିଆ, ଆବର୍ଜନାମୟ, କୁତ୍ସିତ ।

ଅଣସଣିଆଁ—ଗ୍ରା.ବିଂ. ଅଣସଣ (ଦେଖ) ।

ଅଣସତୁରିଶହେ— ଗ୍ରା.ବି ଓ ବିଂ. ଏକଶତ ଷାଠିଏରୁ ନଅ ଅଧିକ ଓ ଏକଶତ ସତୁରିରୁ ଏକ ଊଣା ୧୬୯ ସଂଖ୍ୟା ।

ଅଣସନ୍ଧିଆ,ଅଣସନ୍ଧ୍ୟା—ଗ୍ରା.ବି. ମୁହଁସନ୍ଧ୍ୟା, ସନ୍ଧ୍ୟା ବୁଡ଼ିବାର ଅବ୍ୟବହିତ ପୂର୍ବକାଳ, ଗୋଧୂଳି ।

ଅଣସର—ବି. (ଅନବସରଶବ୍ଦଜ) ସ୍ନାନ-ପୂର୍ଣ୍ଣିମା ଓ ଗୁଣ୍ଡିଚାର ମଧ୍ୟବର୍ତ୍ତୀ କାଳ ।

ଅଣସର(ଗୁମୁଟ ଗୁଳୁଗୁଳୁ—ଗ୍ରା.ବି.ଅଣସର ବା ଆଷାଢ଼ କୃଷ୍ଣପକ୍ଷରେ ଅନୁଭୂତ ଦୁଃସହ ଗ୍ରୀଷ୍ମ ।

ଅଣସରଘର—ଗ୍ରା.ବି. ଜଗନ୍ନାଥମନ୍ଦିରର ଜଗମୋହନରେ ଚନ୍ଦନଅର୍ଗଳି ନିକଟରେ ଥିବା ନର୍ଦ୍ଦିଷ୍ଟ ସ୍ଥାନ ।

ଅଣସୋର (ଷ,ଷ ,ଷିଆ—ଗ୍ରା. ବି. ଆମ୍ଭ ଦେଶରେ ପଡ଼ିଆମାନଙ୍କରେ ଯେ ରଷ ପରି ଜନ୍ମିଥିବା ବନ୍ୟଶାକବିଶେଷ, (ସଂ.) ଆଦିତ୍ୟଭକ୍ତା, ଆଦିତ୍ୟପତ୍ରୀ, ସୂର୍ଯ୍ୟାବର୍ତ୍ତୀ ଇତ୍ୟାଦି ) ।

ଅଣସ୍ତରି—ଗ୍ରା. ବି. ବିଂ. ଷାଠିଏରୁ ନଅ ବେଶି,ସତୁରିରୁ ଏକଊଣା,୬୯ ସଂଖ୍ୟା ।

ଅଣହଳଦିଆ—ଗ୍ରା.ବିଂ. ଯେଉଁ ଉଅଣରେ ଆଦୌ ହଳଦି ପଡ଼ିନଥାଏ ବା ଉପଯୁକ୍ତ ପରିମାଣରେ ହଳଦି ପଡ଼ି ନ ଥାଏ ।

ଅଣହିତ—ଗ୍ରା.ବିଂ. ଅହିତ,ଅମଙ୍ଗଳକର, (ବି) ଅଶୁଭ, ମନ୍ଦ ।

ଅଣ(ହୁଡ଼,ହୁଡ଼ା)ହୁଳା—ଗ୍ରା. ବିଂ. ଯେଉଁ ଲୋକପ୍ରକୃତରେ ମରିଯାଇ ନଥାଏ;କିନ୍ତୁ ମୃତ୍ୟୁର କେତେକ ପୂର୍ବଲକ୍ଷଣ ଦେଖି ସ୍ୱଜନମାନେ ମୃତ୍ୟୁ ଆସନ୍ନ ବୋଲି ଆଣିଙ୍କା କରି କୌଣସି ତୀର୍ଥସ୍ଥାନରେ

ମରିବାପାଇଁ ନେଇଯାଆନ୍ତି କିମ୍ବା ଯାହାଠାରେ ମୃତ୍ୟୁର କେତେକେ ଲକ୍ଷଣ ଦେଖି ସ୍ୱଜନମାନେ ମୃତ୍ୟୁ ହୋଇଅଛି ବୋଲି ସ୍ଥିରକରି ଶ୍ମଶାନକୁ ନେଇ ଆଆନ୍ତି; କିନ୍ତୁ ସେ ଲୋକଠାରେ ଜୀବନର ଲକ୍ଷଣ ପ୍ରକାଶିତ ହେବାରୁ ତାହାକୁ ଘରକୁ ଫେରାଇ ଆଣନ୍ତି, (ଗ୍ରା.ବିଂ.)ଅଭ୍ରାନ୍ତ (କ୍ରି.ବିଂ.) ଭ୍ରମପ୍ରମାଦ ବିନା, (ଗ୍ରା ବି.) ଭ୍ରାନ୍ତିଶୂନ୍ୟତା ।

ଅଣହେତୁ—ଗ୍ରା. ବି. ଜ୍ଞାନର ଅଭାବ, ଅଜ୍ଞାନ, ଅଚେତା, ବିସ୍ମୃତି ।

ଅଣହେଳା—ଗ୍ରା. ବି. ଅନାଦର; ଅଯତ୍ନ, ଅଗ୍ରହତା, କାର୍ଯ୍ୟରେ ହେଳା,ଅସମ୍ମାନ ।

ଅଣା—ଗ୍ରା. ବି. ଟଙ୍କାର ଷୋହଳ ଭାଗର ଏକଭାଗ, ପାଣିରେ କ୍ରମଶଃ ଧୋଇ ହୋଇ ଯାଇଥିବା ଭୂମିର କ୍ରମନିମ୍ନ ଖାଲ ଅଂଶ, ନାଳ ବା ପାଣିହାଣ୍ଡି, ( ଗ୍ରା. ବିଂ. ) ଆନୀତ ।

ଅଣାଅଣି—ଗ୍ରା.ବି.ପରସ୍ପର ବା ପ୍ରତ୍ୟେକେ କଡ଼ବାଗରେ ବା ଅଣେଇ ହୋଇ ଶୋଇବା,ଅନେକ ବସ୍ତୁର ଅଣିବା କର୍ମ ।

ଅଣାଅଶୀ—ଗ୍ରା.ବି.ବିଂ. ଊନାଶୀତ, ସତୁରିରୁ ନଅ ବେଶୀ, ଅଶୀରୁ ଏକ ଊଣା, ୭୯ ସଂଖ୍ୟା ।

ଅଣାଇଦେବା—ଗ୍ରା. କ୍ରି. ଅନ୍ୟଦ୍ୱାରା କୌଣସି ପଦାର୍ଥକୁ ଆନୀତ କରିବା, କୌଣସି ପାତ୍ର ବା ବସ୍ତୁକୁ ଏକପାଖକୁ ଆଉଜାଇବା ବା ଢଳାଇବା ।

ଅଣାଇ ଧରିବା—ଗ୍ରା. କ୍ରି. କୌଣସି ପାତ୍ର ବ ବସ୍ତୁକୁ ଏକପାଖକୁ ଆଉଜାଇବା ବା ଢଳାଇକରି ଧରିବା ।

ଅଣାଇବା—ଗ୍ରା. କ୍ରି. ଅନ୍ୟଦ୍ୱାରା ଆଣିବା କ୍ରିୟା କରିବା, ମଗାଇବା, ଡକାଇବା, କୌଣସି ପଦାର୍ଥକୁ ବା ପାତ୍ରକୁ ଏକପାଖକୁ ଢଳାଇବା ବା ତେରେଛାଇବା, କଡ଼େଇହେବା, ଏକପାଖକୁ ଢଳିବା ।

ଅଣାକାର—ଗ୍ରା.ବିଂ. ନିରାକାର,ଆକାରଶୂନ୍ୟ, (ବି.) ପରମେଶ୍ୱର, ପରଂବ୍ରହ୍ମ ।

ଅଣାକାରସ୍ୱରୂପ—ଗ୍ରା. ବି. ନିରାକାର ବ୍ରହ୍ମ, ପରଂବ୍ରହ୍ମ ।

ଅଣାକାରମତ—ଗ୍ରା. ବି. ଓଡ଼ିଶାରେ ପ୍ରଚଳିତ ଧର୍ମମତବିଶେଷ ।

ଅଣାକିଆ—ଗ୍ରା. ବିଂ. ଯେଉଁ ପଦାର୍ଥର ମୂଲ୍ୟ ଏକଅଣା ।

ଅଣାକ୍ଷର—ଗ୍ରା. ବିଂ. ଅକ୍ଷରବହିର୍ଭୂତ, ଯାହା ଅକ୍ଷରରେ ପ୍ରକାଶ ପାଇ ନ ପାରେ, (ଗ୍ରା.ବି.) ଭଗବାନ୍ ।

ଅଣାଚାର—ଗ୍ରା.ବି. ଅନାଚାର, ଆଚାରହୀନତା,ଅଧର୍ମାଚରଣ,କଦାଚାର,କୁପ୍ରଥା ।

ଅଣାଚାରୀ—ଗ୍ରା. ବିଂ. ପୁଂ. ଆଚାରହୀନ, ଭ୍ରଷ୍ଟ ।

ଅଣାବଣା—ଗ୍ରା. ବି. ବିଶୃଙ୍ଖଳା, ଗୋଳମାଳ, ବହୁ ପରିମାଣ, (ବିଂ) ବିଶୃଙ୍ଖଳ, ଗୋଳମାଳିଆ, ଇତସ୍ତତଃବିକ୍ଷିପ୍ତ, ଅପର୍ଯ୍ୟାପ୍ତ, ବହୁ ପରିମିତ, ବହୁ, ଅନେକ, (କ୍ରି. ବିଂ.) ଅପର୍ଯ୍ୟାପ୍ତରୂପେ, ବିଶୃଙ୍ଖଳରୂପେ ।

ଅଣାୟତ୍ତ—ଗ୍ରା.ବିଂ. ପରାଧୀନ, ପରବଶ, ନିରାଶ୍ରୟ, ଅଧିକାର ବହିର୍ଭୂତ, ଉପାୟାନ୍ତର ରହିତ, ନାଚାର, ଅସାଧ (ବି.) ସ୍ୱାତନ୍ତ୍ର୍ୟହୀନତା,ପରାଧୀନତା,ଅଧିକାରର ଅଭାବ ।

ଅଣାଯିବା—ଗ୍ରା.କ୍ରି. କୌଣସି ବ୍ୟକ୍ତିଦ୍ୱାରା ଆନୀତହେବା, ଅନ୍ୟଦ୍ୱାରାଅଣେଇହେବା, ଏକପାଖକୁ ଢଳାଯିବା,ଅଲୁମିତହେବା ।

ଅଣାହେବା—ଗ୍ରା. କ୍ରି. ଅଣାଯିବା (ଦେଖ)

ଅଣି—ପୁଂ. ବି. ( ଅଣ + କ.ଇ ) ସୂଚିର ଅଗ୍ରଭାଗ, ଶୂଳାଗ୍ର, ମୁନ, ପ୍ରାନ୍ତଭାଗ, ଶେଷସୀମା, ଅଣକାଳ, ଗୃହର କୋଣ, ରଥଚକ୍ରାଗ୍ରସ୍ଥିତ କୀଳକ (ଗ୍ରା.ବି) ଏକଅଣା ମୂଲ୍ୟର ମୁଦ୍ରା, ( ଦେ ) ଅଣା ପରିମିତ ମୁଦ୍ରା ।

ଅଣିଏ—ଗ୍ରା. ବି ଓ ବିଂ. ଅଣାଏ, ଏକଅଣାମାନ ।

ଅଣିକାଠି—ଗ୍ରା.ବି.ଯେଉଁ କାଠି ବା ଖିଲଦ୍ୱାରା ଚକର ଅରମାନ ପହିସଙ୍ଗେ ଭିଡ଼ା ହୋଇ କଷା ହୋଇଥାଏ, ଅରକୁ ପହିରେ କରାଯାଇଥିବା ଛିଦ୍ରରେ ପୂରାଇ ତାହା ଢିଲା ନ ହୋଇ ପହିଦେହରେ ଦୃଢ଼ ହୋଇ ବସିଯିବା ଉଦ୍ଦେଶ୍ୟରେ ପହିରଛିଦ୍ରରେ ଅର ସଙ୍ଗେ ଯେଉଁ ଖିଲ ବାଡ଼ିଆ ଯାଇଥାଏ ।

ଅଣିକିଆ—ଗ୍ରା.ବିଂ. ଅଣାକିଆ (ଦେଖ) ।

ଅଣିଟଣି—ଗ୍ରା. ବି. କୌଣସି ବ୍ୟକ୍ତିର ଯାବତୀୟ ଗୁପ୍ତ ଦୋଷ ବା ଛିଦ୍ର ।

ଅଣିଟଣି ଛିଣ୍ଡାଇ ଦେବା—ଗ୍ରା.କ୍ରି.(ଗାଳିଧମକାରୂପେ ବ୍ୟବହୃତ ) ସମସ୍ତ ଗୁପ୍ତ ଛିଦ୍ର ପ୍ରକାଶ କରିଦେବା

ଅଣିଧରିବା—ଗ୍ରା. କ୍ରି. କୌଣସି ପଦାର୍ଥ ବା ବ୍ୟକ୍ତିକୁ ଏକପାଖକୁ ଢଳାଇ କରି ବା ଆଉଜାଇ କରି ଧରିବା ।

ଅଣିବା—ଗ୍ରା. କ୍ରି. ( ଅକର୍ମକ ) କଡ଼କୁ ଢଳିବା,ଏକପାଖକୁ ଢଳିବା,(ସକର୍ମକ) କୌଣସି ପଦାର୍ଥକୁ ଏକପାଖକୁ ଢଳାଇବା ବା ଆଉଜାଇବା ।

ଅଣିମା—ପୁଂ. ବି. ( ଅଣୁ + ଭା,ଇମନ୍ ) ସୂକ୍ଷ୍ମ ପରିମାଣ, ଅଷ୍ଟ ପ୍ରକାର ଐଶ୍ୱର୍ଯ୍ୟ ମଧ୍ୟରୁ ଏକତମ, କ୍ଷୁଦ୍ରତା,ଅଣୁତା, ସ୍ୱକୀୟ ଦେହକୁ ଇଚ୍ଛାନୁସାରେ ସୂକ୍ଷ୍ମ କରିବାର କ୍ଷମତା, ( ଏହି ଶକ୍ତିପ୍ରଭାବରେ ଦେବଗଣ ଓ ସିଦ୍ଧଗଣ ଇଚ୍ଛାମତ ଆପଣାର ଦେହ ସୂକ୍ଷ୍ମ କରି ଅଲକ୍ଷିତଭାବରେ ଯଥେଚ୍ଛ ବିଚରଣ କରିପାରନ୍ତି )

ଅଣିମାଣ୍ଡବ୍ୟ—ପୁଂ. ବି. ମୁନିବିଶେଷ ।

ଅଣିଷ୍ଠ - ପୁଂ. ବି.(ଅଣୁ + ଇଷ୍ଠ) ସୂକ୍ଷ୍ମତମ, ଅତିଶୟ ସୂକ୍ଷ୍ମ (ଅଣି,ଅଣୀୟାନ୍, ଅଣିଷ୍ଠ)

ଅଣୀୟସୀ—ସ୍ତ୍ରୀ. ବିଂ. (ଅଣୀୟସ୍ + ଈ) ଅଣୀୟାନ୍‌ର ସ୍ତ୍ରୀଲିଙ୍ଗ ।

ଅଣୀୟାନ୍—ପୁଂ. ବିଂ. (ଅଣୁ + ଈୟସ୍.ସ୍) ଅତି ସୂକ୍ଷ୍ମ, ସୂକ୍ଷ୍ମତର ।

ଅଣୁ—ବିଂ. (ଅଣ୍ + ଉ) ସୂକ୍ଷ୍ମ, କ୍ଷୁଦ୍ର, (ପୁଂ.ବି.) ଅତିସୂକ୍ଷ୍ମକାଳ,ଶିବ,ଯଥାନ୍ତକ ପୁତ୍ର, ଲେଶ,କଣା, ଲବ, ଅତିସୂକ୍ଷ୍ମାଂଶ ବାୟୁରେ ଭାସମାନ ଅତି ସୂକ୍ଷ୍ମଧୂଳିକଣା, (କ୍ଳୀ ବି.) ଧାନ୍ୟବିଶେଷ, ଚିନାଧାନ ।

ଅଣୁକ—ବିଂ. (ଅଣୁ + କ) କ୍ଷୁଦ୍ର, ପଟୁ, ନିପୁଣ, ଚତୁର, (ବି) ଅଣୁଧାନ୍ୟ ।

**ଅଣୁଚ୍ଛେଦ**—ବି. ଭିନ୍ନ ଭିନ୍ନବିଷୟର କ୍ଷୁଦ୍ର କ୍ଷୁଦ୍ର ପରିଚ୍ଛେଦ, ଭିନ୍ନ ଭିନ୍ନ ବିଷୟ ।

**ଅଣୁତା**—ସ୍ତ୍ରୀ.ବି. ପରମାଣୁର ଭାବ,କଣିକାତ୍ୱ, ସୂକ୍ଷ୍ମତା, କ୍ଷୁଦ୍ରତ୍ୱ ।

**ଅଣୁଦର୍ଶନ**—କ୍ଲୀ. ବି. ( ଅଣୁ + ଦୃଶ୍ + ଣ.ଅନ ) ସୂକ୍ଷ୍ମଦର୍ଶନ, ଅନ୍ତର୍ଦ୍ଦୃଷ୍ଟି, ଅଣୁବୀକ୍ଷଣ ଯନ୍ତ୍ର ।

**ଅଣୁଦେହ**—ବି. ଜଳାଦିପଦାର୍ଥରେ ଥିବା ଅତି କ୍ଷୁଦ୍ର ଜନ୍ତୁ, ଜୀବାଣୁ ।

**ଅଣୁଧାନ୍ୟ**—କ୍ଲୀ.ବି. ସୂକ୍ଷ୍ମଧାନ୍ୟ, ଦେଖିବାକୁ ଅତି ଛୋଟ ଶସ୍ୟ;ଯଥା—ଚଣା, ମାଣ୍ଡିଆ, ସୋରିଷପ୍ରଭୃତି ।

**ଅଣୁପ୍ରମାଣ**—ବିଂ.(ବ.ବ୍ରୀ.)ଅଣୁପରି କ୍ଷୁଦ୍ର, ଅତି ସାମାନ୍ୟ ।

**ଅଣୁବାଦ**—ପୁଂ.ବି.(୬ତତ୍ପୁ) ବା (କ.ଧା.) ବୈଶେଷିକ ମତବାଦ, ଯେଉଁ ମତଦ୍ୱାରା ପୃଥିବୀର ଯାବତୀୟ ବସ୍ତୁ ଅକ୍ଷୟ ଅଣୁମାନଙ୍କର ସମଷ୍ଟି ବୋଲି ବିବେଚିତ ହୁଏ ।

**ଅଣୁବୀକ୍ଷଣ**—ବି. (ଅଣୁ + ବୀକ୍ଷଣ) ବସ୍ତୁର କ୍ଷୁଦ୍ରାଂଶ ପର୍ଯ୍ୟବେକ୍ଷଣ, ଯେଉଁ ଯନ୍ତ୍ର ସାହାଯ୍ୟରେ ଚକ୍ଷୁର ଅଗୋଚର କ୍ଷୁଦ୍ର ବସ୍ତୁସକଳ ଦୃଷ୍ଟିଗୋଚର ହୁଏ ।

**ଅଣୁବେଦାନ୍ତ**—ବି.ବେଦାନ୍ତ ଗ୍ରନ୍ଥବିଶେଷ ।

**ଅଣୁବ୍ରତ**—ବି.ଜୈନମାନଙ୍କର ବାରଗୋଟି ବ୍ରତ ବା ଓଷା ।

**ଅଣୁବ୍ରୀହି**—ପୁଂ.ବି.(କ.ଧା.) ସୂକ୍ଷ୍ମଧାନ୍ୟ, ମାଣ୍ଡିଆ,କାଙ୍ଗୁ, ଶୁଆଁ , ସୋରିଷପ୍ରଭୃତି ।

**ଅଣୁଭା**—ସ୍ତ୍ରୀ. ବି. ( ବ. ବ୍ରୀ ) ବିଦ୍ୟୁତ୍, ବିଜୁଳି ।

**ଅଣୁମାତ୍ର**—ବିଂ. (ବ.ବ୍ରୀ) ଅଣୁପରିମିତ, ଅତିକ୍ଷୁଦ୍ର, କ୍ଷୁଦ୍ରାଦପିକ୍ଷୁଦ୍ର,(ଗ୍ରା.ବି)ଅତି ସାମାନ୍ୟପରିମାଣ (କ୍ରି.ବିଂ) ଅଣୁମାତ୍ରରେ

**ଅଣୁମାତ୍ରକ**—ଗ୍ରା. ବିଂ. ଅଣୁମାତ୍ର(ଦେଖ) (କ୍ରି.ବିଂ.)ଅଣୁମାତ୍ରେ,ଅତିସାମାନ୍ୟ ପରିମାଣରେ,ସାମାନ୍ୟପ୍ରକାରେ,ଟିକିଏମାତ୍ର ।

**ଅଣୁମାତ୍ରିକ**—ବିଂ. କଣିକାମାତ୍ର, ସ୍ୱଳ୍ପ, ଅତିସୂକ୍ଷ୍ମ, ଅତିକ୍ଷୁଦ୍ର ।

**ଅଣୁମାତ୍ରେ**—ଗ୍ରା.କ୍ରି. ବିଂ. ସାମାନ୍ୟ ପରିମାଣରେ,ସାମାନ୍ୟପ୍ରକାରେ,ଟିକିଏମାତ୍ର ।

**ଅଣୁରେଣୁ**—ପୁଂ.ବି. (କ. ଧା) ଅତିସୂକ୍ଷ୍ମଧୂଳି, ଧୂଳିକଣା । [ ଗଛ ।

**ଅଣୁରେବତୀ**—ସ୍ତ୍ରୀ.ବି. ଦନ୍ତୀଗଛ, କନକା

**ଅଣୁଶ୍ରୋତ୍ର**—କ୍ଲୀ. ବି. ସୂକ୍ଷ୍ମଶବ୍ଦ ଶୁଣାଯିବା ଯନ୍ତ୍ରବିଶେଷ ।

**ଅଣେ**—ଗ୍ରା ବି. ଅଣାଏ, ଏକଅଣାମାତ୍ର ।

**ଅଣେଇବା**—ଗ୍ରା.କ୍ରି.ଅଣାଇବା (ଦେଖ) ।

**ଅଣ୍ଟ୍**—(ଧାତୁ)ଗତିକରିବା,ଅଗ୍ରସରହେବା ।

**ଅଣ୍ଟକୁରି**—ପ୍ରା.(ସମ୍ବ.)ବି. ପୁଂ.ଆଣ୍ଠୁକୁଡ଼ା, ଅପତ୍ୟହୀନ, ନିଃସନ୍ତାନ ।

**ଅଣ୍ଟ**—ଗ୍ରା. ବି. ଅଣ୍ଟିବା, କାର୍ଯ୍ୟ ଚଳିବା ପାଇଁ ଯଥେଷ୍ଟ ହେବା ।

**ଅଣ୍ଟ ନଅଣ୍ଟ**—ଗ୍ରା.ବି.ଅଣ୍ଟିବା ଓ ନଅଣ୍ଟିବା ଅବସ୍ଥା, (ବିଂ) କୌଣସି କାର୍ଯ୍ୟପାଇଁ ଯଥେଷ୍ଟ ହେବା ଓ ନଅଣ୍ଟିବା(ପଦାର୍ଥ), ସାମାନ୍ୟରେ ଊଣା, କଣ୍ଟିକାଣ୍ଟି ହୋଇ ଅଣ୍ଟିବା ( ବସ୍ତୁ ) ।

**ଅଣ୍ଟନଅଣ୍ଟ**—ଗ୍ରା.ବି. ଓ ବିଂ. ଅଣ୍ଟ ନଅଣ୍ଟ (ଦେଖ) ।

**ଅଣ୍ଟା**—ଗ୍ରା. ବି. କଟିଦେଶ, ମନୁଷ୍ୟର ଗୋଡ଼ ଓ ପେଟ ପିଠି ମଧ୍ୟରେ ଥିବା ଦେହାଂଶ, ପଶୁର ପିଠି ପେଟ ଓ ପଛ ଗୋଡ଼ର ଫଣ୍ଡିଆ-ମଧ୍ୟସ୍ଥ ଅଂଶ ।

**ଅଣ୍ଟା (ଣ୍ଟେ) ଇବା**—ଗ୍ରା. କ୍ରି. କୌଣସି ବଳସାଧ୍ୟ କାମକୁ ଅଣ୍ଟାଲଗାଇ ସମାଧା କରିବା, (ଶଗଡ଼ଆଦିକୁ) ଅଣ୍ଟାଲଗାଇ ବଳପୂର୍ବକପେଲିବା (ଲ.ଅର୍ଥ) କୌଣସି ବ୍ୟକ୍ତିକୁ ବଳ ବା ସାହାଯ୍ୟ ଦେବା ।

**ଅଣ୍ଟାଉଠିବା**—ଗ୍ରା. ବି. କୌଣସି କାର୍ଯ୍ୟ କରିବାକୁ ବଳ ବା ସାମର୍ଥ୍ୟ ହେବା, ଇତସ୍ତତଃ ପ୍ରଚଳିତ ହେବା ।

**ଅଣ୍ଟାଏ**—ଗ୍ରା.ବିଂ. ଅଣ୍ଟାକ (ଦେଖ), ବି. ଅଣ୍ଟାପର୍ଯ୍ୟନ୍ତ ଉଚ୍ଚତା, ଅଣ୍ଟା ବୁଡ଼ିଯିବା ଭଳି ଗଭୀରତା ।

**ଅଣ୍ଟାକ**—ଗ୍ରା.ବିଂ. ମନୁଷ୍ୟର ଅଣ୍ଟାବୁଡ଼ିଯିବାଭଳି ଗଭୀର, ଅଣ୍ଟେପର୍ଯ୍ୟନ୍ତ ଉଚ୍ଚ ।

**ଅଣ୍ଟାକସା**—ଗ୍ରା.ବି. ଅଣ୍ଟାଭିଡ଼ା (ଦେଖ)।

**ଅଣ୍ଟା ( କସିବା ) ବାନ୍ଧିବା**—ଗ୍ରା. କ୍ରି. କୌଣସି ବଳସାଧ୍ୟ କର୍ମ କରିବାକୁ ଉଦ୍ୟମ କରି ଅଣ୍ଟାରେ ଲୁଗା ଭିଡ଼ିବା, କୌଣସି କାମ କରିବାକୁ ଉଦ୍ୟତହେବା, ଗମନୋଦ୍ୟତହେବା ।

**ଅଣ୍ଟାଖୋସା**,(ଗୁଞ୍ଜା)—ଗ୍ରା.ବି. ଉତ୍କୋଚ, ଲାଞ୍ଚ ।

**ଅଣ୍ଟାଜାଡୁ**—ଗ୍ରା. ବି. ଅଧିକାଂଶ ସମୟରେ ଓଦାଲୁଗା ପିନ୍ଧିବା ଯୋଗୁଁ ଅଣ୍ଟା ଗୁହ୍ୟପାଖରେ ହେବା ଏକପ୍ରକାର ଦୁଶ୍ଚିକିତ୍ସ୍ୟ ଦଦ୍ରୁ ରୋଗ ।

**ଅଣ୍ଟାଦଗିଣ୍ଡିବା**—ଗ୍ରା. କ୍ରି. କୌଣସି ବ୍ୟକ୍ତି ପିନ୍ଧିବାଲୁଗାରେ ଅଣ୍ଟା ଗୁହ୍ୟପାଖରେ କିଛି ଟଙ୍କା ପଇସା ଲୁଗାଇ ରଖିଛି କି ନାହିଁ ଏହା ଦେଖିବାପାଇଁ ଅଣ୍ଟା ଗୁହ୍ୟପାଖରେ ଲୁଗାକୁ ଅଣ୍ଡାଳିବା ।

**ଅଣ୍ଟାଧରା,ଅଣ୍ଟାବଥା**—ଗ୍ରା.ବି. କଟିବାତ, ପାର୍ଶ୍ୱଶୂଳ ।

**ଅଣ୍ଟାପାଣି**—ଗ୍ରା. ବି. ଅଣ୍ଟାଠାରୁ ତଳକୁ ଧୋଇବା, କାପିଲ ସ୍ନାନ ।

**ଅଣ୍ଟାପିଠି**—ଗ୍ରା. ବି. କଟି ଓ ପୃଷ୍ଠ ।

**ଅଣ୍ଟାପିଠିଲାଗିଯିବା**—ଗ୍ରା.ବି. ବହୁକାଳ ଏକସ୍ଥାନରେ ବସିବା, ଠିଆ ହୋଇ ରହିବା ବା ଅତ୍ୟଧିକ ପରିଶ୍ରମ କରିବାଯୋଗୁଁ କଟି ଓ ପୃଷ୍ଠରେ ବେଦନା ବା ଯୋଲା ଅନୁଭୂତ ।

**ଅଣ୍ଟାବସିଯିବା**—ଗ୍ରା. ବି. ବାର୍ଦ୍ଧକ୍ୟ ବା ରୋଗଯୋଗୁଁ ବଳହାନିଘଟିବା,ଅଣ୍ଟାରେ ଜଖମ ଥିବା ଯୋଗୁଁ କଠିନ ପରିଶ୍ରମ କରିବାକୁ ବା ବହୁଦୂର ଚାଲିବାକୁ ଅସମର୍ଥ ହେବା ।

**ଅଣ୍ଟାଭଙ୍ଗିଯିବା**—ଗ୍ରା.ବି. କୌଣସି ଗୁରୁତର ଆଘାତ ଯୋଗୁଁ ଅଣ୍ଟାର ହାଡ଼ ଜଖମ ହେବା, ବାର୍ଦ୍ଧକ୍ୟ ବା ରୋଗ ଯୋଗୁଁ ବଳ କମିଯିବା, କୌଣସି ବିଶିଷ୍ଟବନ୍ଧୁ, ପରିଜନ ବା ସହାୟକଙ୍କ

ବିଚ୍ଛେଦ ବା ମୃତ୍ୟୁଯୋଗୁଁ ମନରେ ଗୁରୁତର ଦୁଃଖ ଜନ୍ମିବା ।

ଅଣ୍ଟାଭିଡ଼ା—ଗ୍ରା.ବି.କୌଣସି ପରିଶ୍ରମସାଧ୍ୟ କର୍ମ କରିବାପାଇଁ ପ୍ରସ୍ତୁତହେବା, ପରିଶ୍ରମସାଧ୍ୟ କର୍ମକରିବା ବା ବହୁଦୂରପଥ ଚାଲିବା ପୂର୍ବରୁ ଅଣ୍ଟାରେ ଭିଡ଼ାଯିବା ବସ୍ତ୍ର,(ଗ୍ରା.ବିଂ)ବହୁପରିଶ୍ରମସାଧ୍ୟ(କର୍ମ)

ଅଣ୍ଟାସଲଖିବା—ଗ୍ରା. କ୍ରି. ଏକାଦିକ୍ରମେ କିଛିକାଳ କୌଣସି ପରିଶ୍ରମସାଧ୍ୟ କାମ କରିବା ଯୋଗୁଁ କିଛିକାଳ ଠିଆହୋଇ ଦେହକୁ ଓ ଅଣ୍ଟାକୁ ସିଧା କରିବା, ଶ୍ରମ ମେଣ୍ଟାଇବାପାଇଁ କିଛି କ୍ଷଣ ବିଶ୍ରାମ ନେବା, (ପ୍ରା.ସମ୍ବ.ବି.) ପଳାଇ ଯାଇଥିବା ଝିଅ କିଛିଦିନ ସ୍ୱାମୀ-ଘରେ ଖଟିବାପରେ କିଛି ଦିନପାଇଁ ବାପ ଘରକୁ ଆସିବା ।

ଅଣ୍ଟାସୂତା—ଗ୍ରା. ବି. କରଧନି, କରସୂତା, ଧାତୁନିର୍ମିତ କଟିସୂତ୍ର, ଅଣ୍ଟାରେ ପିନ୍ଧିବା ଦଉଡ଼ି ।

ଅଣ୍ଠି—ଗ୍ରା.ବି. ପିନ୍ଧିବା ବସ୍ତ୍ରର ପାକ୍ଷୀକୃତ ସମ୍ମୁଖାଂଶ,କୋଳ,ଉତ୍ସଙ୍ଗ,ଅଣ୍ଟା,କଟି ।

ଅଣ୍ଠିକଟା—ଗ୍ରା.ବି.ପକେଟଚୋର,ଦଗାବାଜ, ଅଣ୍ଠିଧନ ଚୋରି କରିବା ଚୋର ।

ଅଣ୍ଠିଧନ—ଅଣ୍ଠିରେ ରକ୍ଷିତ ଧନ, ଗଣ୍ଠି-ଧନ, ଯତ୍ନରକ୍ଷିତ ଧନ, ମନୁଷ୍ୟର ପ୍ରିୟତମ ବସ୍ତୁ ବା ବ୍ୟକ୍ତି ।

ଅଣ୍ଠି ନିଆଁ—ଗ୍ରା. ବି. (ଲ.ଅର୍ଥ) ନିଜର ପରିବାରର କୌଣସି ନିନ୍ଦାଜନକ ବା ଅନିଷ୍ଟକର ଗୁପ୍ତକଥା, ନିଜପରିବାରର କୌଣସି ବ୍ୟକ୍ତିଦ୍ୱାରା କୃତ ଦୁଷ୍କ୍ରିୟା ।

ଅଣ୍ଠି ପତେଇବା—ଗ୍ରା.କ୍ରି.କୌଣସି ଦ୍ରବ୍ୟ ଅଣ୍ଠିରେ ପଡ଼ିବ ପାଇଁ ଅଣ୍ଠିକୁ ପ୍ରସାରଣ କରିବା, ଲ.ଅର୍ଥ କୌଣସି ବସ୍ତୁ ପାଇବା ପାଇଁ ଆଶା କରିବା, ଊର୍ଦ୍ଧ୍ୱଗ୍ରୀବ ହୋଇ ରହିବା ।

ଅଣ୍ଠିବା—ଗ୍ରା. କ୍ରି. ଯଥେଷ୍ଟ ହେବା, ପ୍ରୟୋଜନର ଅନୁରୂପହେବା,ମଣ୍ଟାଇବା ।

ଅଣ୍ଡିର—ପ୍ରା. ସମ୍ବ. ବିଂ. (ସଂ-ଅଣ୍ଡିର) ଅଣ୍ଡିରି, ପୁରୁଷଜାତୀୟ, (ପ୍ରା. ସମ୍ବ. ବି.) ପୁରୁଷ, ପୁରୁଷଜାତୀୟ ପ୍ରାଣୀ, (ନୀଚଭାଷା) ସ୍ୱାମୀ, ପତି ।

ଅଣ୍ଡ—କ୍ଳୀ. ବି. ( ଅମ୍+କ.ଡ଼ ) ଡିମ୍ବ, ମୁଷ୍କ, ଅଣ୍ଡକୋଷ, ମୃଗନାଭି, ଶିବ, ଗୋଲକାର ବସ୍ତୁ, (ଗ୍ରା.ବି.)) ପୁରୁଷର ଲିଙ୍ଗ ।

ଅଣ୍ଡକ—ପୁଂ.ବି.(ଅଣ୍ଡ+କ) ଅଣ୍ଡକୋଷ ଡିମ୍ବ, କ୍ଷୁଦ୍ରଡିମ୍ବ ।

ଅଣ୍ଡକଟାହ—କ୍ଳୀ. ବି. (ଅଣ୍ଡ+କଟାହ) ବ୍ରହ୍ମାଣ୍ଡ, କର୍ମଭୂମି, ଚରାଚର ସୃଷ୍ଟି, ବିଶ୍ୱ, (୬ତତ୍.) ବ୍ରହ୍ମାଣ୍ଡର ଖୋଲପା ।

ଅଣ୍ଡକପାଳ—ଗ୍ରା.ବି. (୬ତତ୍) ଡିମ୍ବ-ଉପରର ଖୋଲପା । [ବୃକ୍ଷ

ଅଣ୍ଡକୋଟରପୁଷ୍ପୀ—ବି.ନୀଳବର୍ଣ୍ଣ ଅଜାନ୍ତ୍ରୀ

ଅଣ୍ଡକୋ(ଶ)ଷ—ପୁଂ.ବି. (୬ତତ୍) ମୁଷ୍କ, ବୃଷଣ, ବୀର୍ଯ୍ୟାଧର, ବ୍ରହ୍ମାଣ୍ଡ, ପେଲ ।

ଅଣ୍ଡକୋଷକ—ପୁଂ. ବି. ମୁଷ୍କ, ବୃଷଣ, ଅଣ୍ଡକୋଷ, ଫଳ, ଫଳର ଖୋଳା ବା କୋଷ, ସୀମା ।

ଅଣ୍ଡଜ—ପୁଂ.ବି. (ଅଣ୍ଡ+ଜନ୍+କ.ଅ) ବ୍ରହ୍ମା, ପକ୍ଷୀ, ସର୍ପପ୍ରଭୃତି ଯେ ଡିମ୍ବରୁ ଜନ୍ମେ (ବିଂ) ଡିମ୍ବଜାତ ।

ଅଣ୍ଡଜା—ସ୍ତ୍ରୀ. ବି. ( ଅଣ୍ଡଜ+ଆ )ମୃଗନାଭି,କସ୍ତୁରୀ (ବିଂ) ଅଣ୍ଡଜର ସ୍ତ୍ରୀଲିଙ୍ଗ ।

ଅଣ୍ଡଜେଶ୍ୱର—ପୁଂ.ବି.(୬ତତ୍)ଖଗେନ୍ଦ୍ର, ଗରୁଡ଼, ପକ୍ଷୀରାଜ ।

ଅଣ୍ଡଦଳ—ବି.(୬ତତ୍)ଡିମ୍ବର ଖୋଲପା ।

ଅଣ୍ଡଦ୍ରବହେବା—ଗ୍ରା. ବି. (ଲ. ଅର୍ଥ) କିଂକର୍ତ୍ତବ୍ୟବିମୂଢ଼ତା ଘଟିବା, ଭୀତ ତ୍ରସ୍ତ ହେବା ।

ଅଣ୍ଡଧର—ପୁଂ. ବି. ଅଣ୍ଡ+ଧୃ+କ.ଅ) ଶିବ, ମହାଦେବ ।

ଅଣ୍ଡପ୍ରସୂ—ସ୍ତ୍ରୀ. ବିଂ. ଅଣ୍ଡ+ପ୍ର+ସୂ+କ୍ୱିପ୍) ଡିମ୍ବପ୍ରସବକାରିଣୀ ।

ଅଣ୍ଡବର୍ଦ୍ଧନ—କ୍ଳୀ.ବି (୬ତତ୍)ଅଣ୍ଡକୋଷର ବୃଦ୍ଧି, ଏକଶିରରୋଗ, କୋଷ ବୃଦ୍ଧି ।

ଅଣ୍ଡବୃଦ୍ଧି—ସ୍ତ୍ରୀ.ବି.(୬ତତ୍) ଅଣ୍ଡକୋଷର ବୃଦ୍ଧି, ଏକଶିରରୋଗ, କୋଷ ବୃଦ୍ଧି ।

ଅଣ୍ଡଭୂ—ବି. (ଅଣ୍ଡ+ଭୂ+କ୍ୱିପ୍ ବ୍ରହ୍ମା, ପକ୍ଷୀ, ସର୍ପ, ମତ୍ସ୍ୟ ପ୍ରଭୃତି ।

ଅଣ୍ଡାଅଣ୍ଡଳ—ଗ୍ରା. ବି. ଅନ୍ଧାରରେ କୌଣସି ବସ୍ତୁକୁ ତନ୍ନ ତନ୍ନ କରି ବହୁ-କାଳ ହାତଦ୍ୱାରା ଅଣ୍ଡାଳିବା ବା ଦରାଣ୍ଡିବା, ଦରଣ୍ଡାଦରଣ୍ଡି ।

ଅଣ୍ଡସଣ୍ଡ—ଗ୍ରା. ବିଂ. ଭଣ୍ଡସଣ୍ଡ,ଧଣ୍ଡସଣ୍ଡ, ଅଶ୍ଳୀଳ (ଭାଷା) ଗ୍ରା. ବି. ଅଶ୍ଳୀଳଭାଷା ।

ଅଣ୍ଡା—ଗ୍ରା.ବି ଅଣ୍ଡ (ଦେଖ) ପକ୍ଷିଶାବକ, ଛୁଆ ବା ଶିଶୁ ।

ଅଣ୍ଡାଉଷୁମେଇବା—ଗ୍ରା.କ୍ରି.(ପକ୍ଷୀ ଆଦି) ଅଣ୍ଡା ଜନ୍ମ କରିବା ପରେ ତହିଁରୁ ଛୁଆ ବାହାରିବା ପୂର୍ବରୁ ତା ଉପରେ ବସିବାଦ୍ୱାରା ତାକୁ ଉଷୁମାଇବା ।

ଅଣ୍ଡାକର୍ଷଣ—କ୍ଳୀ. ବି. (୬ତତ୍) ଖାସି କରିବା, ମୁଷ୍କ ଛେଦନ ।

ଅଣ୍ଡାକାର(କୃତ)-ବିଂ. (ବ.ବ୍ରୀ. ଡିମ୍ବାକୃତ, ଡିମ୍ବପରି ଗୋଲ ଓ ଲମ୍ବୁଡ଼ା (ବି) ଡିମ୍ବ-ପରି ଲମ୍ବ ଓ ଗୋଲ ଆକାର ।

ଅଣ୍ଡାଦେବା—ଗ୍ରା.କ୍ରି.(ପକ୍ଷୀ ଓ ସରୀସୃପାଦି) ଡିମ୍ବ ପ୍ରସବ କରିବା ।

ଅଣ୍ଡାଧାର—ପୁଂ.ବି (୬ତତ୍)ଅଣ୍ଡା ରହିବାର ଗର୍ଭସ୍ଥ ସ୍ଥାନବିଶେଷ, ଅଣ୍ଡକୋଷ, ବୀଜକୋଷ ।

ଅଣ୍ଡାବଳୀ—ଗ୍ରା. ବି. ଅତି କ୍ଷୁଦ୍ର ବହୁ-ସଂଖ୍ୟକ ସନ୍ତାନସନ୍ତତି, ବାଳବଚ୍ଚା ।

ଅଣ୍ଡାର—ପ୍ରା (ବସ୍ତର) ବି. ମହୁମାଛି ।

ଅଣ୍ଡାଳିବା—ଗ୍ରା.କ୍ରି.ଦରାଣ୍ଡିବା,ଅନ୍ଧାରରେ ବା ଆଖିକୁ ଦେଖା ନ ପଡ଼ିବା ସ୍ଥାନରେ କୌଣସି ବସ୍ତୁ ଦରାଣ୍ଡି ଖୋଜିବା,ଅନ୍ଧାରରେ କୌଣସି କାର୍ଯ୍ୟ କରିବା ।

ଅଣ୍ଡାଳହେବା—ଗ୍ରା.କ୍ରି.ଧନ୍ଦହେବା,ଇତସ୍ତତଃ ହେବା, ଅଣ୍ଡାଳିବା (ଦେଖ) ।

ଅଣ୍ଡାଳୁ—ପୁଂ. ବି. ଅଣ୍ଡ+ଆଳୁ) ଡିମ୍ବ ଧରିଥିବା ମାଛ, ବିଂ) ଡିମ୍ବଧରିଥିବା, ବହୁ ଡିମ୍ବଯୁକ୍ତ ।

ଅଣ୍ଡି—ଗ୍ରା. ବି. ପୁରୁଷର ଲିଙ୍ଗ ।

ଅଣ୍ଡିଆ—ଗ୍ରା. ବିଂ. ଯେଉଁ ପଶୁ ଖାସି କରା ଯାଇନାହିଁ, ଅଣ୍ଡିଆ,ମୁଷ୍କଛେଦନ-କାରୀ ବ୍ୟକ୍ତିର ଦୋଷରୁ ଧରାହେବା-ବେଳେ ଯେଉଁ ଅଣ୍ଡିର ବାକିରହି ମୁଷ୍କ

ନିଃଶେଷରୂପେ କଟା ହୋଇ ପାରି ନ ଥାଏ, (ଗ୍ରା) ବି. ଅଣ୍ଡିରି ବାଛୁରି ।

ଅଣ୍ଡିମା—ସ୍ତ୍ରୀ. ବି. (ଅଣ୍ଡ + ଇନ୍ + ଈ) ସ୍ତ୍ରୀମାନଙ୍କର ଯୋନିକନ୍ଦରୋଗବିଶେଷ ।

ଅଣ୍ଡିରି—ଗ୍ରା. ବିଂ. ପୁରୁଷଜାତୀୟ (ଜୀବ) ବାଞ୍ଝଗଛ, ଯେଉଁ ଗଛ ଫଳେ ନାହିଁ, (ଲ. ଅର୍ଥ) ବଳଶାଳୀ, ବଳୁଆ, ବୀର, (ଗ୍ରା ବି.) ପୁରୁଷଜାତୀୟ ଜୀବ, ପୁରୁଷ, ମନୁଷ୍ୟ. ସ୍ୱାମୀ, ପତି, ଦାମୁଡ଼ି. ଯୁବା ଅଣ୍ଡିରି ବାଛୁରି, ମାସ୍ତାନ ବ୍ରାହ୍ମଣ ।

ଅଣ୍ଡିରିଚଣ୍ଡୀ—ଗ୍ରା. ସ୍ତ୍ରୀ. ବି. ଦୁଷ୍ଟା ସ୍ତ୍ରୀ, ଉଗ୍ର ସ୍ୱଭାବା ସ୍ତ୍ରୀ, କଳୁହୀ, ପୁରୁଷପ୍ରକୃତିକା ସ୍ତ୍ରୀ ।

ଅଣ୍ଡିରିବାଇଗଣ—ଗ୍ରା. ବି. ଅସ୍ୱାଦୁ ଓ ଧଳା ବାଇଗଣ ।

ଅଣ୍ଡିରିମାଧିଆ—ଗ୍ରା. ବିଂ. ପୁଂ. ବଣ୍ଡିପୁଅ ଅନନ୍ୟା, ଯେଉଁ ଲୋକ କିଛି କାମ ନ କରି ବୃଥା ବୁଲୁଥାଏ ।

ଅଣ୍ଡିରିପୁଅ—ଗ୍ରା. ବି. ପୁଂ. ବାଳକ, ପୁରୁଷଜାତ (ସ୍ତ୍ରୀ) ମାଈକିନିଆଁଝିଅ ।

ଅଣ୍ଡିରିପୁଅଉଦ୍ଧବ—ଗ୍ରା. ବି. ଲମ୍ବଶାଟପଟାବୃତ, ଦେଖାସୁନ୍ଦର ପୁରୁଷ ।

ଅଣ୍ଡୀର—ପୁଂ. ବି. (ଅଣ୍ଡ + ଈର) ପୁରୁଷ, ବଳବାନ୍ ବ୍ୟକ୍ତି, (ବିଂ) ପୁରୁଷଜାତୀୟ, ବଳୁଆ, ଶକ୍ତ ।

ଅଣ୍ୱୀ—ସ୍ତ୍ରୀ. ବିଂ. (ଅଣୁ + ଈ) ସୂକ୍ଷ୍ମା, କ୍ଷୀଣା, କ୍ଷୁଦ୍ରା (ବି) ଅଙ୍ଗୁଳି ।

ଅତ୍—ଅବ୍ୟ. (ଅତ୍ + କ୍ୱିପ୍) ଆଶ୍ଚର୍ଯ୍ୟ, ଶୀଘ୍ର, ଅତଊର୍ଦ୍ଧ୍ୱ, ଅବ୍ୟ (ଅତଃ + ଊର୍ଦ୍ଧ୍ୱ) ଏହାପରେ, ଏଥିଉତ୍ତାରୁ, ଏଥିରୁ ଟପିଲେ, ଏଥିରୁ ବେଶି ।

ଅତଏବ—ଅବ୍ୟ. (ଇଦମ୍ + ଏବ) ଏହି କାରଣରୁ, ଏଣୁ, ଏନିମିତ୍ତ, ଏଥିଯୋଗୁଁ ।

ଅତଃ—ଅବ୍ୟ. (ଇଦମ୍ + ତସ୍) ଏହିସ୍ଥାନର, ଏହିଠାରୁ, ଏହାଠାରୁ, ଏହେତୁରୁ, ଏହା-ଅପେକ୍ଷା, ଆଜିଠାରୁ ଏହି ସମୟରୁ ।

ଅତକ୍—ପ୍ରା. (ଭତ୍ରୀ) ସବ, ଏହା, ଏତକ, ଏତେକ ।

ଅତକ—ପୁଂ. ବିଂ. (ଅତ + କ. ଅକ) ପଥିକ, ଭ୍ରମଣକାରୀ ।

ଅତଟ—ପୁଂ. ବି. (ଅ + ତଟ) ବି. ତ୍ରୀ; ପର୍ବତର ହଠାତ୍ ଉଠିଥିବା ଶିଖ, ଭୃଗୁ-ଭୂମି, ପ୍ରପାତ, ଭୂମିର ଅଧୋଭାଗ, ନଈର ଅତଡ଼ା, (ବିଂ) ତଟହୀନ, ଅସୀମ, ନିକଦମ୍, ଅତିଉଚ୍ଚ, ଅକୂଳ, ଅପାର, ବିଶାଳ ।

ଅତ (ଡ଼) ଡ଼ା—ଗ୍ରା. ବି. ଲମ୍ବଭାବରେ ଉଠିଥିବା ଅଝୁଚ ତଟଭୂମି, ଉଚ୍ଚନୀଚଭୂମି, ଜଳୁଥିବା ନଆଁ ଗଦା, ବିକଟ ଉଚ୍ଚସ୍ୱରର ଆଘାତ ଯୋଗୁଁ କର୍ଣ୍ଣର ସ୍ତବ୍ଧତା, (ଗ୍ରା. ବିଂ) ସାବଳଆଦିରେ ତଡ଼ା ହୋଇ ନ ଥିବା ଭୂମି ।

ଅତଡ଼ାଖସିବା—ଗ୍ରା. ବି. ନଦୀର ତଟଭୂମିର ବଡ଼ବଡ଼ ଖଣ୍ଡମାନ ଜଳସ୍ରୋତର ପ୍ରବଳ ଆଘାତଦ୍ୱାରା ନଦୀଗର୍ଭସାତ୍ ହେବା ।

ଅତଡ଼ାଖାଇବା—ଗ୍ରା. କ୍ରି. (ନଈ) ସ୍ରୋତର ଆଘାତଦ୍ୱାରା ତଟଭୂମିକୁ ଗର୍ଭସାତ୍ କରିବା ।

ଅତଡ଼ାପଡ଼ିବା—ଗ୍ରା. ବି. ଅତଡ଼ାଖସିବା (ଦେଖ), ଅତିଉତ୍କଟ ଶବ୍ଦଦ୍ୱାରା (କାନ) ବଧିର ବା ସ୍ତବ୍ଧ ହେବା ।

ଅତଣ୍ଡି—ଗ୍ରା. ବି. ଶ୍ୱେତପତ୍ରଲତାବିଶେଷ ।

ଅତଥୋଚିତ—ବିଂ. (ନ. ତତ୍) ଅନୁଚିତ, ଅନ୍ୟାଯ୍ୟ, ଅଯଥାଯୋଗ୍ୟ ।

ଅତଥ୍ୟ—ବିଂ. (ନ. ତତ୍) ଅବାସ୍ତବମିଥ୍ୟା, ଅଳୀକ, ଅସତ୍ୟ, ଅନିଶ୍ଚିତ ।

ଅତଦ୍‌ଗୁଣ—ପୁଂ. ବି. (ବ. ବ୍ରୀ.) ଅର୍ଥାଳଙ୍କାର ବିଶେଷ ।

ଅତନ—ବି. (ଅତ + ଭା. ଅନ) ଗମନ, [ଭ୍ରମଣ ।

ଅତନୁ—ପୁଂ. ବି. (ଅ + ତନୁ) କନ୍ଦର୍ପ, କାମ, ଅନଙ୍ଗ, (ବିଂ) ଶରୀରରହିତ, ଅକୃଶ, ଅକ୍ଷୀଣ, ସ୍ଥୂଳ, ମୋଟା ।

ଅତନ୍ତ୍ର—ପୁଂ. ବିଂ. (ଅ + ତନ୍ତ୍ର) କାରଣ-ଶୂନ୍ୟ ବିବକ୍ଷାରହିତ, ଅବାଧ, ସ୍ୱେଚ୍ଛାଧୀନ

ଅତନ୍ଦ୍ର—ପୁଂ ବିଂ. (ବ. ବ୍ରୀ.) ସାବଧାନ, ସତର୍କ, ନିଦ୍ରାରହିତ, ଅନଳସ ।

ଅତନ୍ଦ୍ରିତ—ପୁଂ. ବିଂ. (ଅତନ୍ଦ୍ର + ଇତ) ଅନଳସ, ଅଜାତନିଦ୍ର, ଅବହିତ, ଅବିଶ୍ରମ (ସ୍ତ୍ରୀ. ଅତନ୍ଦ୍ରିତା) ।

ଅତନ୍ଦ୍ରୀ—ପୁଂ. ବିଂ. (ଅ + ତନ୍ଦ୍ର + ଇନ୍) ଅତନ୍ଦ୍ରିତ (ଦେଖ) ସ୍ତ୍ରୀ. ଅତନ୍ଦ୍ରିଣୀ ।

ଅତପ—ବିଂ. (ଅ + ତପ + ଅ) ଥଣ୍ଡା, ଶୀତଳ, ଅନୁଷ୍ଣ, ଅନୟୁକ୍ତ ।

ଅତପଃ—ପୁଂ. ବିଂ (ବ. ବ୍ରୀ.) ଯେ ତପଶ୍ଚରଣରେ ହେଳାକରେ (ବିଂ) ଅଧାର୍ମିକବ୍ୟକ୍ତି ।

ଅତପସ୍କ—ପୁଂ. ବିଂ. (ଅ + ତପସ୍ + କ) ଅତପଃ (ଦେଖ) ।

ଅତପାଃ—ପୁଂ. ବିଂ. (ବ. ବ୍ରୀ.) ଅତପଶ୍ଚର୍ଯ୍ୟାକାରୀ, ଯେ ତପସ୍ୟା କରେ ନାହିଁ, ତପସ୍ୟାହୀନ ।

ଅତପ୍ତତନୁ—ପୁଂ. ବିଂ. (ଅତପ୍ + ତ + ତନୁ) ବ. ବ୍ରୀ. ବ୍ରତାଦିଦ୍ୱାରା ତାପିତ ହୋଇ ନ ଥିବା (ଶରୀର) ।

ଅତର—ଗ୍ରା. ବି. ଗୋଲାପାଦିଫୁଲରୁ ପ୍ରସ୍ତୁତ ସୁଗନ୍ଧ ତୈଳ ।

ଅତରଣୀୟ—ବିଂ. (ନ. ତତ୍) ଉତ୍ତୀର୍ଣ୍ଣ ହେବାକୁ ଅସମର୍ଥ, ଯାହା ପାରହୋଇ ହୁଏ ନାହିଁ, (ସ୍ତ୍ରୀ. ଅତରଣୀୟା) ।

ଅତରଦାନ୍—ଯା. ବି. ସଭାସମିତିଆଦିରେ ଅତର ସିଞ୍ଚିବାର ପାତ୍ର ।

ଅତରପିତରକରିବା—ଗ୍ରା. କ୍ରି. ବହୁବସ୍ତୁକୁ ଏକତ୍ର କରିବା ।

ଅତରୁ—ବିଂ. (ବ. ବ୍ରୀ) ବୃକ୍ଷଶୂନ୍ୟ, ପାଦପହୀନ, ବନ୍ଧ୍ୟ, ଊଷର ।

ଅତରି—ଗ୍ରା. ବି. କର୍ଣ୍ଣବାଧକଶବ୍ଦ, କାନ ତାବଦା ହେବା ।

ଅତର୍କ—ବିଂ. (ବ. ବ୍ରୀ) ଅହେତୁକ, ତର୍କଶୂନ୍ୟ, ଶୁଷ୍କତର୍କପରାୟଣ, ଅଯୌକ୍ତିକ, (ପୁଂ. ବି. ନ. ତତ୍) ତର୍କହୀନତା, ଅବିବେଚନା, କୁତର୍କ ।

ଅତର୍କଣୀୟ—ବିଂ. (ନ. ତତ୍) ତର୍କଦ୍ୱାରା ଯାହା ନିର୍ଣ୍ଣୟ ହୋଇ ନ ପାରେ, ଅସମ୍ଭାବ୍ୟ, ଅଭାବନୀୟ, (ସ୍ତ୍ରୀ.) ଅତର୍କଣୀୟା ।

ଅତର୍କିତ—ବିଂ. (ଅ + ତର୍କ + ତ) ଯାହା ହଠାତ୍ ଘଟେ, ଅବିବେଚିତ, ଆକସ୍ମିକ, ଅପ୍ରତ୍ୟାଶିତ, ଅନାଲୋଚିତ, ଅନନୁମିତ ।

ଅତର୍କିତଚର—ପୁଂ. ବିଂ. (ଅତର୍କିତ—ଚର+କ. ଅ) ଯେଉଁ ବ୍ୟକ୍ତି ପୂର୍ବରୁ ସମ୍ବାଦ ନଦେଇ ଉପସ୍ଥିତ ହୁଏ(ସ୍ତ୍ରୀ.)ଚରୀ
ଅତର୍କ୍ୟ—ବିଂ. (ନ. ତତ୍) ଅତର୍କଣୀୟ (ଦେଖ) ସ୍ତ୍ରୀ. ଅତର୍କ୍ୟା ।
ଅତର୍ଚ୍ଛ—ଗ୍ରା. ପୁଂ. ବିଂ. (ଅତ · ତର୍ଚ୍ଛ) ଗ୍ଲାନିଆ, ମହାଖାତ, ବିହ୍ୱଳ, ଭୟତ୍ରସ୍ତ, ଘାବରା, ଡରୁଆ, ଯାହା ଡର ସହେ ନାହିଁ,(ବି.) ମହାଭୟ,ତ୍ରାସ, ଉଦ୍‌ବେଗ, କିଂକର୍ତ୍ତବ୍ୟବିମୂଢ଼ତା ।
ଅତର୍ଚ୍ଛିଆ—ଗ୍ରା.ପୁଂ.ବିଂ. (ଅତର୍ଚ୍ଛ ଦେଖ) ହଠାତ୍ ଭୀତିଉତ୍ପାଦନକାରୀ,ଉଦ୍‌ବେଗକର ।
ଅତର୍ପଣୀୟ—ବିଂ.(ନ.ତତ୍)ଅପରିତୋଷଣୀୟ, ସନ୍ତୋଷସାଧନର ଅସାଧ୍ୟ । ଦୁସ୍ତୋଷ୍ୟ,(ସ୍ତ୍ରୀ.) ଣୀୟା ।
ଅତର୍ପିତ—ବିଂ. (ନ.ତତ୍) ଅତୋଷିତ, ଯାହାର ସନ୍ତୋଷସାଧନକରି ହୁଏନାହିଁ ।
ଅତଳ—କ୍ଲୀ.ବି.(ଅ+ତଳ) ପୁରାଣୋକ୍ତ ସପ୍ତପାତାଳ ମଧ୍ୟରୁ ମର୍ତ୍ତ୍ୟର ଅବ୍ୟବହିତ ନିମ୍ନରେ ଥିବା ପାତାଳ, (ବିଂ) ଯାହାର ତଳ ବା ନିମ୍ନଭାଗ ନିର୍ଦ୍ଧାରିତ ହୋଇ ନ ପାରେ, ଅଗାଧ, ଅତିଗଭୀର ।
ଅତଳତଳ—ଗ୍ରା. ବିଂ. ଅତଳ (ଦେଖ) ତଳତଳାନ୍ତ, ଯେଉଁ ପାତ୍ରରୁ ସମସ୍ତ ଜଳୀୟ ପଦାର୍ଥନିଃଶେଷରୂପେ ନିଆଯାଇ ସାରିଥାଏ, ନିଃଶେଷିତ, (ପୁଂ.ସ୍ତ୍ରୀ.ବିଂ.) ସର୍ବସ୍ୱାନ୍ତ, ଯେଉଁ ବ୍ୟକ୍ତିର ସର୍ବସମ୍ପଦ ବିଲୁପ୍ତ ହେଲିଣି ।
ଅତଲସ—ଯା. ବି. ବସ୍ତ୍ରର ଭାଗଂବିଶେଷ, ଏକପ୍ରକାର ଖୁବ୍ ନରମ ରେଶମ ଲୁଗା ।
ଅତଳସ୍ପର୍ଶ—ବିଂ. ବ. ବ୍ରୀ; (ଅତଳ+ସ୍ପୃଶ+ଅ) ଅଗାଧ, ଅତିଗଭୀର ।
ଅତଳସ୍ପର୍ଶୀ—ପୁଂ.ବିଂ.(ବ.ବ୍ରୀ.) ଅଗାଧ, ଅତିଗଭୀର ।
ଅତଳସ୍ପୃକ୍—ବିଂ.(ଅତଳ+ସ୍ପୃଶ୍+କ. କ୍ୱିପ୍) ଅତଳସ୍ପର୍ଶ, ଅଗାଧ,ଅତିଗଭୀର ।
ଅତଲାନ୍ତିକମହାସାଗର—ଗ୍ରା.ବି. ଆଟ୍‌ଲାଣ୍ଟିକ ମହାସାଗର, ଯେଉଁ ମହାସାଗରର ପୂର୍ବପାଖେ ଇୟୁରୋପ ଓ ଆଫ୍ରିକା ଓ ପଶ୍ଚିମ ପାଖେ ଉତ୍ତର ଓ ଦକ୍ଷିଣ ଆମେରିକା ।
ଅତସ—ପୁଂ. ବି. (ଅତ+ଅସ୍) ବାୟୁ, ଆତ୍ମା, ବଲ୍‌କଲନିର୍ମିତ ବସ୍ତ୍ର, ଛଣପଟସୂତାରେ ବୁଣା ଲୁଗା ।
ଅତସୀ—ସ୍ତ୍ରୀ.ବି. (ଅତସ+ଈ ଫେଣୀ,) ଫେଶୁ,ଶଣଗଛ,ମସୀନା,ପୀତବର୍ଣ୍ଣ ପୁଷ୍ପବିଶେଷ, ନୀଳବର୍ଣ୍ଣ ପୁଷ୍ପବୃକ୍ଷବିଶେଷ ।
ଅତସୀଚଣା—ପ୍ରା. (ଗଞ୍ଜା) ବି. ଫେଣୀ, ଫେଶୁ ।
ଅତସୀପୁଷ୍ପବର୍ଣ୍ଣାଭା—ସ୍ତ୍ରୀ. ବିଂ. ଅତସୀଫୁଲପରି ବର୍ଣ୍ଣବିଶିଷ୍ଟ(ସ୍ତ୍ରୀ.ବି.)ଦୁର୍ଗାଦେବୀ
ଅତସ୍ତତଃ—କ୍ରି. ବିଂ. ଇତସ୍ତତଃ, ଏଣେ ତେଣେ,ଚତୁର୍ଦ୍ଦିଗରେ(ବିକ୍ଷିପ୍ତ), ଗୋଳମାଳିଆଭାବରେ ।
ଅତା—ପ୍ରା. (ଗଞ୍ଜା) ଅବ୍ୟ. ମା ଓ ବଡ଼ଭଉଣୀକୁ ସମ୍ବୋଧନ ।
ଅତାଇଚ—ଗ୍ରା. ବି. (ସଂ—ଅତିବିଷା) ମହୁରୀବିଶେଷ, ଅରୁଷୀ ।
ଅତାଇତ—ଗ୍ରା.ବି ଓ ବିଂ ଅତାହୃତ,ଗର ହେପାଦସ୍ତ, ଅଯତ୍ନ, ଅନାଦର, ଅଣହେଲା, (ବିଂ) ଅଯତ୍ନପାଳିତ ।
ଅତାଗମ୍—ଗ୍ରା.ବି. ଆତଯାତ, ଯାଆଆସ, ଚଳପ୍ରଚଳ, ଗମନାଗମନ, ଇସ୍ତୁଖି, ନିର୍ଦ୍ଧାରଣ, ମାପ, ଗଣନା,ପରୀ,ସନ୍ଧାନ, ଚିହ୍ନ, (ବିଂ) ସର୍ବଦା ଯିବା ଆସିବା କରି ଯାଉଥିବା (ସ୍ଥାନ), ନିର୍ଦ୍ଧାରିତ ।
ଅତାରୀ—ଗ୍ରା. ବି. ପଞ୍ଜାବର ଗୋଟିଏ ପ୍ରାଚୀନ ନଗର ।
ଅତାଳଜ୍ଞାନୀ—ଗ୍ରା. ବିଂ. ଯେଉଁ ବ୍ୟକ୍ତିର ତାଳଜ୍ଞାନ ନ ଥାଏ ।
ଅତାଳିଆ—ଗ୍ରା. ବିଂ.ବେତାଳିଆ, ତାଳରହିତ, (ଗୀତ ବାଦ୍ୟାଦି) ତାଳଜ୍ଞାନଶୂନ୍ୟ (ବ୍ୟକ୍ତି)—ଲ.ଅର୍ଥ; ସାମଞ୍ଜସ୍ୟହୀନ ଧାରାହୀନ, ଅଣ୍ଡାଳୁଆ ।
ଅତାବକ—ଯା. ବି. ଶିକ୍ଷକ, ପାରସ୍ୟ ଦେଶର ରାଜବଂଶବିଶେଷ ।
ଅତାହୃତ—ଗ୍ରା. ବି. ଗର ହେପାଦସ୍ତ, ଅଯତ୍ନ, ଅଗ୍ରହିତା, ଅନାଦର, ଅଣହେଲା (ବିଂ) ଅଯତ୍ନପାଳିତ ।
ଅତି—ଅବ୍ୟ.(ଅତ+ଇ)ଅତିଶୟ, ଅତିକ୍ରମ, ଉତ୍କର୍ଷ, ପୂଜନ, ଅସମ୍ଭାବନ, ପ୍ରଶଂସା, ବଂଶର ପୂର୍ବପୁରୁଷ ଗଣନାରେ ପୂର୍ବବର୍ତ୍ତୀ ପୁରୁଷସୂଚକ ।
ଅତିକଥ – କ୍ରି. ବିଂ. (ଅତି+କଥ୍+ଅ) କଥନର ଅଯୋଗ୍ୟ, ଅଶ୍ରଦ୍ଧେୟ, ନଷ୍ଟ, (ସ୍ତ୍ରୀ) ଅତିକଥା ।
ଅତିକଥା—ସ୍ତ୍ରୀ.ବି. ବ୍ୟର୍ଥ ବାକ୍ୟ, ଅତିଉତ୍କଟବର୍ଣ୍ଣନ,ବୃଥାକଥନ, ବାଗାଡ଼ମ୍ବର, ସ୍ତ୍ରୀ. ବିଂ. (ବ.ବ୍ରୀ) ଅଶ୍ରଦ୍ଧେୟା, ନଷ୍ଟା ।
ଅତିକନ୍ଦ (କ)—ବି. (ଅତି+କନ୍ଦ.କ) ହସ୍ତୀକନ୍ଦନାମକ ଗୁଳ୍ମ ।
ଅତିକର୍ଷଣ—ପୁଂ. ବିଂ. (ଅତି+କୃଷ+ଅନ) ଅତ୍ୟନ୍ତ ତାପଦାୟକ, ଅତ୍ୟନ୍ତ ଆକର୍ଷକ । [ ଦୁଷ୍ଟ ଅଶ୍ୱ ।
ଅତିକଶ—ପୁଂ. ବି. (ଅତି+କଶ୍+ଅ)
ଅତିକାୟ—ପୁଂ.ବିଂ.(ବ.ବ୍ରୀ)ବିକଟାକାର ଦେହ,ଯାହାର ଶରୀର ପ୍ରକାଣ୍ଡ (ପୁଂ.ବି. ରାବଣର ପୁତ୍ରବିଶେଷ । [ କୁସମୟ ।
ଅତିକାଳ—ବି. (ଅତି+କାଳ) ବିଳମ୍ବ,
ଅତିକୁଲ୍ୱ—ପୁଂ.ବିଂ. (ଅତି+କୁଲ+ବ) ଅତିଶୟ ଲୋମଯୁକ୍ତ ।
ଅତିକୃଚ୍ଛ୍ର—କ୍ଲୀ. ବି. ଦ୍ୱାଦଶରାତ୍ର ସାଧ୍ୟ ପ୍ରାୟଶ୍ଚିତ୍ତବିଶେଷ, (ବିଂ, ବ.ବ୍ରୀ) ସୁକଠିନ,ଅତ୍ୟନ୍ତ,କଷ୍ଟକର,(ସ୍ତ୍ରୀ)ଅତିକୃଚ୍ଛ୍ରା ।
ଅତିକୃତ—ବିଂ, (ଅତି+କୃତ) ପ୍ରୟୋଜନାତିରିକ୍ତ କରାଯିବା କର୍ମ, ମର୍ଯ୍ୟାଦାତିକ୍ରମକୃତ (ପଦାର୍ଥ), ବି. ଅତ୍ୟାଧିକ୍ୟ ।
ଅତିକୃତି—ସ୍ତ୍ରୀ. ବି. (ଅତି+କୃ+ତି) ପ୍ରୟୋଜନାତିରିକ୍ତ କର୍ମକରଣ ପଚଶ ଅକ୍ଷର ଗଠିତ ଛନ୍ଦବିଶେଷ ।
ଅତିକେଶ—ବିଂ. (ବ.ବ୍ରୀ) କେଶବହୁଳ, ଅତିଶୟ ଦୀର୍ଘ ଓ ପ୍ରଚୁର କେଶବିଶିଷ୍ଟ, (ସ୍ତ୍ରୀ) କେଶା—ଶୀ ।

ଅତିକେଶର—ପୁଂ.ବି. (ବ.ବ୍ରୀ) ଜଳୀଯ଼-ଗୁଳ୍ମବିଶେଷ, **ଶିଙ୍ଗଡ଼ା** ।

**ଅତିକ୍ରମ (ଣ)—ବି.**( ଅତି+କ୍ରମ+ଘ, ଅ.ନ) **ଉଲ୍ଲଙ୍ଘନ,ଅତିପାତ**, ଉପାତ୍ୟଯ଼, **ଦୋଷ, ନିର୍ଦ୍ଦିଷ୍ଟ** ସମଯ଼ ଟପି ଯିବା, **ନିର୍ଦ୍ଦିଷ୍ଟ ସୀମାକୁ** ଟପିଯିବା, ଅନ୍ୟଥା-**ଚରଣ**, ଆଦେଶାଦିଲଙ୍ଘନ, ଶତ୍ରୁକୁ **ଆକ୍ରମଣ**, ଅନାଦର, ଅବମାନନା, ଅବଜ୍ଞା, ବଳାତ୍କାର (ବିଂ) ଅତିକ୍ରାନ୍ତ ।

**ଅତିକ୍ରମଣୀଯ଼**—ବିଂ. ( ଅତିକ୍ରମ+ର୍ମି. ଅନୀଯ଼ ) ଯାହାକୁ ଅତିକ୍ରମ କରାଯାଇ ପାରେ, ଲଙ୍ଘନୀଯ଼, (ସ୍ତ୍ରୀ) ଣୀଯ଼ା ।

ଅତିକ୍ରମୀ—ପୁଂ. ବିଂ. ( ଅତି+କ୍ରମ+ଇନ୍) ଅତିକ୍ରାମକ (ଦେଖ); ସ୍ତ୍ରୀ. ଅତି-କ୍ରମିଣୀ ।

ଅତିକ୍ରାନ୍ତ—ବିଂ. ( ଅତିକ୍ରମ+ର୍ମି.ତ ) ଅତୀତ,ଲଙ୍ଘିତ,ଗତ,ଆକ୍ରାନ୍ତ,ଅନାବୃତ ଅବଜ୍ଞାତ,ବଢ଼ିଥିବା ( ସୀମା ) ଯାହାର ସୀମାକୁ ମନୁଷ୍ୟ ବଳ ଯାଇଥାଏ ।

ଅତିକ୍ରାମକ—ତ୍ରି. ବିଂ ( ଅତି+କ୍ରମ+କ.ଅକ ) ଶ୍ରେଷ୍ଠତାଲାଭକାରୀ, କ୍ରମୋ-ଲ୍ଲଙ୍ଘନ, ଆଧିକ୍ୟପ୍ରାପକ, ଅତିକ୍ରମକର୍ତ୍ତା (ସ୍ତ୍ରୀ) ଅତିକ୍ରାମିକା ।

ଅତିକ୍ରୁଦ୍ଧ—ପୁଂ.ବିଂ.(ଅତି+କ୍ରୁଧ+ତ) ଅତିଶଯ଼ କୋପାନ୍ୱିତ,(ବି.)ଅତିକ୍ରୋଧ, ତନ୍ତ୍ରୋକ୍ତ ମନ୍ତ୍ରବିଶେଷ ।

ଅତିକ୍ରୂର—ପୁଂ ବି. ବକ୍ରଗତିଯୁକ୍ତ ମଙ୍ଗଳ ଏବଂ ଶନିଗ୍ରହ ।

ଅତିକ୍ଷେତ୍ର—କ୍ଲୀ ବି. ଜ୍ୟାମିତିକ ଯନ୍ତ୍ର, ରୈଖିକ କ୍ଷେତ୍ରବିଶେଷ, ଅଧିକ୍ଷେପଣୀ ।

ଅତିଗ—ବିଂ. ( ଅତି+ଗମ୍+କ.ଅ ) ଯେ ଅତିକ୍ରମ କରିଯାଏ, ଉତ୍ତୀର୍ଣ୍ଣ, (ସ୍ତ୍ରୀ) ଅତିଗା ।

ଅତିଗଣ୍ଡ—ପୁଂ.ବିଂ. (ବ.ବ୍ରୀ) ଉଚ୍ଚକପା-ଳିଆ, ଗଳଗଣ୍ଡରୋଗଯୁକ୍ତ, (ବି) ଅତି-ବଡ଼ ଗଣ୍ଡଦେଶ, ବିଷ୍କୁମ୍ଭାଦି ୨୭ଯୋଗ ମଧ୍ୟରୁ ଷଷ୍ଠଯୋଗ ।

**ଅତିଗନ୍ଧ**—ପୁଂ. ବି. ( ଅତି+ଗନ୍ଧ ) **ଚମ୍ପାଗଛ**, ଭୂତ ଅଇର ଗଛ, ଗନ୍ଧରାଜ ଲତା, ମୁଦ୍‌ଗର ବୃକ୍ଷ, ଗନ୍ଧକ, ଧନକ୍ଷୀ, (ବିଂ)ଉଗ୍ରଗନ୍ଧବିଶିଷ୍ଟ (ସ୍ତ୍ରୀ) ଅତିଗନ୍ଧା ।

ଅତିଗନ୍ଧାଳୁ—ପୁଂ.ବି. ( ଅତି+ଗନ୍ଧ+ଆଳୁ) ପୁତ୍ରଦାତ୍ରୀ ଲତା ।

ଅତିଗର୍ବିତ—ପୁଂ. ବିଂ. ( ଅତିଗର୍ବ+ଇତ) ଅତିଶଯ଼ ଗର୍ବଯୁକ୍ତ, ସମୁନ୍ନଦ୍ଧ ।

ଅତିଗବ—ପୁଂ.ବିଂ.(ଅତି+ଗୋ+ଅ) ଇନ୍ଦ୍ରିଯ଼ର ଅଗୋଚର, ଅବର୍ଣ୍ଣନୀଯ଼, ଗମାର, ନିର୍ବୋଧ ।

ଅତିଗହନ—ବିଂ. ବୁଦ୍ଧିର ଅଗୋଚର, ଅତିଗମ୍ଭୀର, (ଗ୍ରା.ବିଂ) ଅଭେଦ୍ୟ, ଅତି-ଘନ, ଅତିକଷ୍ଟସାଧ୍ୟ, ନିବିଡ଼ ।

ଅତିଗହ୍ୱର—ପୁଂ.ବିଂ. ଦୁର୍ବୋଧ, ଅତି-ଗହନ,ଯାହା ଭିତରେ ସହଜେ ପ୍ରବେଶ କରି ହୁଏ ନାହିଁ ।

ଅତିଗୁଣ—ପୁଂ.ବିଂ.(ଅତି+ଗୁଣ) ଉତ୍ତମ ଗୁଣଯୁକ୍ତ, ସଦ୍‌ଗୁଣଯୁକ୍ତ, ଗୁଣହୀନ, (ସ୍ତ୍ରୀ) ଅତିଗୁଣା ।

ଅତିଗୁରୁ—ପୁଂ. ବି. ଅତ୍ୟନ୍ତ ପୂଜନୀଯ଼ ବ୍ୟକ୍ତି, ମାତା, ପିତା ଓ ଆଚାର୍ଯ୍ୟ, (ବିଂ) ଅତିଭାରୀ, ଯାହାର ଆପେକ୍ଷିକ ଗୁରୁତ୍ୱ ଖୁବ୍ ବେଶୀ ।

ଅତିଗୁହ—ପୁଂ.ବିଂ.(୬ତତ୍.)ଯେ ଗୁହା ଅତିକ୍ରମ କରିଅଛି, ଗହ୍ୱରାତିକ୍ରମଣ-କାରୀ (ସ୍ତ୍ରୀ) ଗୁହା ।

ଅତିଗୁହା—ସ୍ତ୍ରୀ. ବି. ପୃଶ୍ନିପର୍ଣ୍ଣୀ ।

ଅତିଗୋ—ସ୍ତ୍ରୀ.ବି. (ଅତି+ଗୋ)ଉତ୍କୃଷ୍ଟ ଗାଈ ।

ଅତିଗ୍ରହ—ପୁଂ. ବି. (ଅତିଗ୍ରହ+ର୍ମି.ଅ) ତତ୍ତ୍ୱଜ୍ଞାନ,(ବିଂ)ଇନ୍ଦ୍ରିଯ଼ଗ୍ରାହ୍ୟ,ଅଚିନ୍ତ୍ୟ ।

ଅତିଗ୍ରାହ୍ୟ—ବି. ( ଅତିଗ୍ରହ+ର୍ମି. ଯ ) ଜ୍ୟୋତିଷ୍ଟୋମ ଯଜ୍ଞର ଆହୁତିତ୍ରଯ଼ ।

ଅତିଘ୍ନୀ—ସ୍ତ୍ରୀ.ବି. ସୁଖର ଅବସ୍ଥାବିଶେଷ ।

ଅତିଚର—ବିଂ. ( ଅତି+ଚର୍+କ.ଅ) ଅତିପରିବର୍ତ୍ତନଶୀଳ, ଅତି ଅଳ୍ପକାଳ-ସ୍ଥାଯ଼ୀ ।

ଅତିଚରଣା—ସ୍ତ୍ରୀ.ବି.ସ୍ତ୍ରୀମାନଙ୍କର **ଯୋନି**-ବିଶେଷ, ଯେଉଁ ଯୋନିରେ ଏକାଧିକ ଥର ମୈଥୁନ ନ କଲେ ଯୋଗିଣୀ ତୃପ୍ତି ଲଭେ ନାହିଁ ।

ଅତିଚରା—ସ୍ତ୍ରୀ. ବି. (ଅତି+ଚର+ଆ) ପଦ୍ମଚାରିଣୀବୃକ୍ଷ,ସ୍ଥଳପଦ୍ମ (ବିଂ.) ଅତି-**କ୍ରମକାରିଣୀ** ।

ଅତିଚାର—ପୁଂ.ବି.(ଅତି+ଚର+ଘ.ଅ) ଅତିକ୍ରମ କରିଯିବା, ନିଯ଼ମ ଲଙ୍ଘନ, ( ଜ୍ୟୋତିଷ ) ଏକରାଶିର ଭୋଗକାଳ ସମାପ୍ତ ନ ହେଉଣୁ ଗ୍ରହର ଅନ୍ୟରାଶିକୁ ଗମନ ।

ଅତିଚାରୀ—ପୁଂ. ବିଂ. ଅତି+ଚର+ଇନ୍ ) ଯେ ଅତିକ୍ରମ କରିଥାଏ, ଅତିକ୍ରମଣଶୀଳ, (ସ୍ତ୍ରୀ) ଚାରିଣୀ ।

ଅତିଛତ୍ର—ପୁଂ. ବି. ଭୂତତୃଣ, କୋଇ-ଲେଖା,କାଠଛତୁ, ପୁଆଳଛତୁପ୍ରଭୃତି ।

ଅତିଛତ୍ରକ—ପୁଂ.ବି.ଏକପ୍ରକାରଝାମ୍ପୁଡ଼ା ଛତୁ ।

ଅତିଛତ୍ରା—ସ୍ତ୍ରୀ. ବି. ( ଅତିଛତ୍ର+ଆ ) ପାନମହୁରୀ, ଶୁଲ୍‌ଫା, ଶତପ ।

ଅତିଛନ୍ଦ—ପୁଂ. ବିଂ. ବେଦାନ୍ତକର୍ମହୀନ, ସଂସାର-କାମନାରୁ ମୁକ୍ତ, ଅତିକ୍ରାନ୍ତା-ଭିପ୍ରାଯ଼ ।

ଅତିଜଗତୀ—ସ୍ତ୍ରୀ. ବି. ତେର ଅକ୍ଷର-ବିଶିଷ୍ଟ ଛନ୍ଦୋବିଶେଷ ।

ଅତିଜବ—ପୁଂ. ବିଂ. (ବ.ବ୍ରୀ.) ଅତ୍ୟନ୍ତ ବେଗବାନ୍,(ଅଶ୍ୱ)ଅତିଶଯ଼ ଦ୍ରୁତଗାମୀ, କଙ୍କାଳ ।

ଅତିଜର—ତ୍ରି.ବିଂ.(୬ତତ୍.)ବାର୍ଦ୍ଧକ୍ୟହୀନ, ଜରାରହିତ, (ସ୍ତ୍ରୀ) ଅତିଜରା ।

ଅତିଜାଗର—ପୁଂ.ବି.ନୀଳବର୍ଣ୍ଣ ବକପକ୍ଷୀ, ଏ ରାତ୍ରିକାଳରେ ରାବ କରି ବୁଲେ, (ବିଂ) ବ.ବ୍ରୀ; ଯେ ସର୍ବଦା ଚେଇଁଥାଏ

ଅତିଜାତ—ପୁଂ. ବିଂ. (ଅତି+ଜନ+କ. ତ ) ପିତା ଅପେକ୍ଷା ଅଧିକତର ଗୁଣଶୀଳ, ଗୁଣରେ ପିତାକୁ ଅତିକ୍ରମ କରି ଯେ ଜନ୍ମିଅଛି ।

ଅତିଡୀନ—କ୍ଲୀ.ବି. ପକ୍ଷୀମାନଙ୍କର ପ୍ରଚଣ୍ଡ ଗମନ ।

ଅତିତର—ତ୍ରି.ବିଂ.(ଅତି+ତର)ଅତ୍ୟନ୍ତ, ଅଧିକତର ।

ଅତିତମାଂ,ଅତିତରାଂ—(ଅବ୍ୟ) ଅତ୍ୟନ୍ତ, ନିତରାଂ, ଅତ୍ୟଧିକ ।

ଅତିତାର—ପୁଂ. ବି. ଅତିଶୟ ଉଚ୍ଚସ୍ୱର, ମୁକ୍ତାଦିର ଅତିଶୟ ଶୁଦ୍ଧି, (ବିଂ) ଉଚ୍ଚସ୍ୱରଯୁକ୍ତ ।

ଅତିତୀକ୍ଷ୍ଣ-ପୁଂ.ବି (ଅତି + ତିଜ୍ + ସ୍ନମ୍) ସଜନା, ମରିଚ ପରି କଟୁ ପଦାର୍ଥ ।

ଅତିତୀବ୍ରା—ସ୍ତ୍ରୀ. ବି. (ଅତିତୀବ୍ର + ଆ) ଗଣ୍ଡଦୂର୍ବା ।

ଅତିଥି—ପୁଂ.ବି. (ଅ + ତିଥି) (ବ.ବ୍ରୀ) ଆଗନ୍ତୁକ, ଆବେଶିକ, ଗୃହାଗତ ଅଭ୍ୟାଗତ, ଅଗ୍ନି ।

ଅତିଥିଅଭ୍ୟାଗତ—ବି. ସତ୍କାର ପ୍ରାର୍ଥୀ ଗୃହାଗତ ବ୍ୟକ୍ତିଗଣ ।

ଅତିଥିକ୍ରିୟା—ବି.(୬ତତ୍)ଆତିଥେୟତା, ଅତିଥିକୁ ଖାଦ୍ୟପାନାଦି ଦେବା ଓ ସେବା କରିବାଦ୍ୱାରା ଆଦର ।

ଅତିଥି (ଚର୍ଚ୍ଚା, ପୂଜା, ଯଜ୍ଞ) ସତ୍କାର—(୬ତତ୍) ଅତିଥିକ୍ରିୟା ( ଦେଖ ) ।

ଅତିଥିସେବକ—ବିଂ. (୬ତତ୍) ଗୃହାଗତ ଜନର ପରିଚର୍ଯ୍ୟାକାରୀ, ଅତିଥିପୂଜକ, ଅତିଥିସତ୍କାରକର୍ତ୍ତା, (ସ୍ତ୍ରୀ) ଅତିଥି-ସେବିକା ।

ଅତିଥି(ସେବନ)ସେବା—କ୍ଲୀ.ବି.(୬ତତ୍) ଅତିଥିସତ୍କାର, ଅତିଥିପୂଜା ।

ଅତିଥ୍ୟ—ପୁଂ. ବି. ସୁହୋତ୍ରରାଜା, କୁଶ-ରାଜାଙ୍କ ପୁତ୍ର ।

ଅତିଦର୍ପ—ପୁଂ.ବି. ଅତ୍ୟଧିକ ଅହଂକାର, ଅତିରିକ୍ତ ଦମ୍ଭ, (ବିଂ)ବ.ବ୍ରୀ; ଗର୍ବିତ ଅତିଦୃପ୍ତ, (ସ୍ତ୍ରୀ) ଅତିଦର୍ପା ।

ଅତିଦର୍ଶୀ—ପୁଂ. ବିଂ. (ଅତି + ଦୃଶ + କ.ଇନ୍ ) ବହୁଦୂରପର୍ଯ୍ୟନ୍ତ ଦର୍ଶନ, ସମର୍ଥ, (ସ୍ତ୍ରୀ) ଦର୍ଶିନୀ ।

ଅତିଦାତା—ପୁଂ. ବିଂ. ( ଅତି + ଦା + ତୃ )ଅତିଦାନୀ,ଶକ୍ତି ବହିର୍ଭୂତଦାନକାରୀ (ସ୍ତ୍ରୀ) ଅତିଦାତ୍ରୀ ।

ଅତିଦାନ—କ୍ଲୀ. ବି. (ଅତି + ଦା + ଭା. ଅନ ) ବହୁଦାନ, ଅପରିମିତ ଦାନ, ଦାନାତିଶଯ୍ୟ, ଆପଣାର ଶକ୍ତି ବହି-ର୍ଭୂତ ଦାନ ।

ଅତିଦାନୀ—ପୁଂ. ବିଂ. ( ଅତି + ଦାନ + ଇନ୍ ) ଶକ୍ତିବହିର୍ଭୂତ ଦାନକାରୀ, ବିଶେଷ ଦାନଶୀଳ ।

ଅତିଦାହ—ବି. (ଅତି + ଦହ + ଭା. ଅ) ଦେହର ଅତ୍ୟନ୍ତ ପୋଡ଼ା-ଜଳା ।

ଅତିଦିଷ୍ଟ—ବିଂ. (ଅତି + ଦିଶ + ର୍ମ.ତ) ଆରୋପିତ, ଅନ୍ୟଆଦିଷ୍ଟ, ପରିଶିଷ୍ଟ ।

ଅତିଦୀପ୍ୟ—ପୁଂ. ବି (ଅତିଦୀପ୍ୟ + ର୍ମ.ଯ) ରକ୍ତଚିତା ଗୁଳ୍ମ ।

ଅତିଦୁର୍ଗତ—ବିଂ. ନିତାନ୍ତ ଦୁରବସ୍ଥାପନ୍ନ; ବିପଦଗ୍ରସ୍ତ (ସ୍ତ୍ରୀ) ଅତିଦୁର୍ଗତା ।

ଅତିଦେବ—ପୁଂ.ବି ରୁଦ୍ର,ସମସ୍ତଦେବତାଙ୍କ ମଧ୍ୟରେ ଶ୍ରେଷ୍ଠ,

ଅତିଦେଶ—ପୁଂ. ବି. ( ଅତି + ଦିଶ + ଭା ଅ) ଅନ୍ୟଧର୍ମ ଅନ୍ୟତ୍ର ଆରୋପ ଯେଉଁ ନିୟମ ଆପଣା ନିର୍ଦ୍ଦିଷ୍ଟ ବିଷୟର ଅତିରିକ୍ତ ଅନ୍ୟ ବିଷୟରେ ମଧ୍ୟ ଖଟି-ଯାଏ ।

ଅତିଦୈବ—ବିଂ. ଅତି + ଦେବ)ଦେବତା ମାନଙ୍କର ଅସାଧ୍ୟ (କର୍ମ) ।

ଅତିଦୋହ—ପୁଂ. ବି. ନିଃଶେଷରୂପେ ଗୋରୁଠାରୁ ଦୁଗ୍ଧ ଦୋହନ ।

ଅତିଦୋହନ—ବି. (ଅତି + ଦୁହ + ଭା. ଅନ) ପ୍ରୟୋଜନାତିରିକ୍ତ ଉପର୍ଯ୍ୟୁପରି ଗାଈଠାରୁ ଦୁହାଁ ।

ଅତିଦ୍ୱୟ—ବିଂ.(ଅତି + ଦ୍ୱୟ)ଅଦ୍ୱିତୀୟ, ଅତୁଳନୀୟ (ସ୍ତ୍ରୀ) ଦ୍ୱୟୀ ।

ଅତିଧନ୍ୱା-ପୁଂ.ବିଂ.(ଅତି + ଧନୁସ୍ )ବ.ବ୍ରୀ; ଉତ୍କୃଷ୍ଟ ଧନୁଦ୍ୱାରା ଶୋଭିତ, ଉତ୍କୃଷ୍ଟ ଧନୁର୍ଦ୍ଧର(ଯୋଦ୍ଧା) ଧନୁର୍ବିଦ୍ୟାରେସିଦ୍ଧହସ୍ତ

ଅତିଧୃତି—ସ୍ତ୍ରୀ.ବି. ଊନବିଂଶ ଅକ୍ଷରବିଶିଷ୍ଟ ଛନ୍ଦୋବିଶେଷ ।

ଅତିନାଭ—ବି. ହିରଣ୍ୟାକ୍ଷ ଦୈତ୍ୟର ନଅ ପୁତ୍ରଙ୍କ ମଧ୍ୟରୁ ଏକତମ ।

ଅତିନାମା—ବି. ଷଷ୍ଠ ମନ୍ୱନ୍ତରରେ ସ୍ଥିତ ସପ୍ତର୍ଷିଙ୍କ ମଧ୍ୟରୁ ଏକତମ ।

ଅତିନିଦ୍ର—ପୁଂ. ବିଂ. (୨ତତ୍)ନିଦ୍ରାହୀନ, ବିନିଦ୍ର,ସଜାଗ,(ବ.ବ୍ରୀ.) ନିତାନ୍ତନିଦ୍ରା-ପ୍ରିୟ (ସ୍ତ୍ରୀ) ନିଦ୍ରା ।

ଅତିନିଦ୍ରା—ସ୍ତ୍ରୀ.ବି.(ଅତି + ନିଦ୍ରା)ଅପରି-ମିତ ନିଦ୍ରା, ବେଶିନିଦ ।

ଅତିନିର୍ହାରୀ—ପୁଂ.ବି (ଅତି + ନିର୍ + ହୃ + କ.ଇନ) ଅତ୍ୟନ୍ତସୁଗନ୍ଧ, ମନୋହର ଗନ୍ଧ, ଆମୋଦ,(ବିଂ)ଅତ୍ୟନ୍ତ ଆକର୍ଷକ, ବହୁଦୂର ବିସାରୀ.(ସ୍ତ୍ରୀ) ଅତି ନିର୍ହାରିଣୀ ।

ଅତିନୁ—ପୁଂ. ସ୍ତ୍ରୀ. ବିଂ. (୨ତତ୍) ଅତୀତ ନୌକ, ଯେ ନୌକାରୁ ଉତ୍ତୁରିଅଛି ।

ଅତିପତନ—କ୍ଲୀ.ବି. (ଅତି + ପତ + ଭା. ଅନ) ପ୍ରତିକୂଳତା,ବାଧା,ବିଘ୍ନ ଅକର୍ତ୍ତବ୍ୟ-ରେ ଆସ୍ଥା,କର୍ତ୍ତବ୍ୟରେ ଅନାସ୍ଥା,ବିରୁଦ୍ଧା-ଚରଣ,ଯାପନ,ହାନି,କ୍ଷତି,ଦୁର୍ବ୍ୟବହାର

ଅତିପତ୍ତି—ସ୍ତ୍ରୀ ବି.(ଅତି + ପଦ୍ + ଭା.ତି) ଅତିକ୍ରମଣ, ଅନିଷ୍ପତ୍ତି ।

ଅତିପତ୍ର—ପୁଂ.ବି.(ବ.ବ୍ରୀ)ହସ୍ତୀକନ୍ଦବୃକ୍ଷ, ଶାଗୁଆନ ଗଛ ।

ଅତିପତ୍ରା—ବି. ( ଅତିପତ୍ର + ଆ ) ବାଡ଼ଅଁଳା ଗୁଳ୍ମ ।

ଅତିପଥ—ପୁଂ.ବି. ଅତୀତ ପଥ, ସନ୍ମାର୍ଗ, ଉତ୍ତମପଥ, ପ୍ରଶସ୍ତପଥ ।

ଅତିପନ୍ଥା—ପୁଂ. ବି. ( ଅତି + ପଥିନ୍) ସତ୍ପଥ, ରାଜପଥ, ପ୍ରଶସ୍ତମାର୍ଗ, ସୁନ୍ଦର-ପଥ ।

ଅତିପଦ—ବିଂ. ବର୍ଣ୍ଣବୃତ୍ତାନୁସାରୀ ଛନ୍ଦର ଚରଣ ଅତିକ୍ରାନ୍ତ । [ଅତିକ୍ରାନ୍ତ ।

ଅତିପର୍ତ୍ତି—ପୁଂ.ବିଂ. (ଅତି + ପଦ୍ + ତି)

ଅତିପର—ପୁଂ. ବିଂ. ( ଅତି + ପର ) ବିଶେଷରୂପେ ଶତ୍ରୁଭାବାପନ୍ନ, ଶତ୍ରୁଜିତ ଶତ୍ରୁଜୟକାରୀ (ବି.) ପରାକ୍ରମୀ ଶତ୍ରୁ, (ଗ୍ରା.ବି.) ସାତପର, ସମ୍ପର୍କହୀନ ବ୍ୟକ୍ତି, ଯେଉଁ ବ୍ୟକ୍ତି ମୋର କେହି ନୁହେ ।

ଅତିପରିଚୟ—ବି. – (ଅତି + ପରି + ଚି + ଅ. ) ବେଜାଏ ଘନିଷ୍ଠତା, ଅତ୍ୟଧିକ ଦେହଦସା ହେବା ଅବସ୍ଥା । ବିଷୟ ।

ଅତିପରୋକ୍ଷ—ତ୍ରି. ବିଂ. ପ୍ରତ୍ୟକ୍ଷ, ଦୃଷ୍ଟିସ୍ପ

ଅତିପାତ—ପୁଂ.ବି. (ଅତି + ପତ + ଭା. ଅ) ଅତି ପତନ (ଦେଖ) ।

ଅତିପାତକ—କ୍ଲୀ.ବି. ମହାପାପବିଶେଷ ।
ଅତିପାତକୀ—ପୁଂ. ବିଂ.( ଅତିପାତକ + ଇନ୍ )ମହାପାପୀ,ଉତ୍କଟପାପାଗ୍ରସ୍ତ (ସ୍ତ୍ରୀ) ପାତକିନୀ ।
ଅତିପାତୀ—ପୁଂ, ବିଂ, ( ଅତିପତ + କ. ଇନ୍ )ଅତିକ୍ରମକାରୀ (ସ୍ତ୍ରୀ)ଅତିପାତିନୀ।
ଅତିପ୍ରକୃତ—ବିଂ. (୬ତତ୍) ଅତିଯଥାର୍ଥ, ଅତିଶୟସତ୍ୟ, ଅସ୍ୱାଭାବିକ, ପ୍ରକୃତି-ବହିର୍ଭୂତ, (ସ୍ତ୍ରୀ) ଅତିପ୍ରକୃତା ।
ଅତିପ୍ରଗେ—ଅବ୍ୟ,(ଅତି + ପ୍ର + ଗୈ + ଅ) ସ୍ୱବିଶେଷକାଳ ବେଦପଠନ ।
ଅତିପ୍ରବନ୍ଧ—ପୁଂ.ବି.(ଅତି + ପ୍ର + ବନ୍ଧ + ଭା.ଅ)ଅତିଶାତତ୍ୟ,ଅତିଶୟଅବିରାମ ।
ଅତିପ୍ରବୃତ୍ତି—ପୁଂ.ବି—ଅତିଶୟ ପ୍ରବର୍ତ୍ତନ ଅତିନିଃସ୍ରବ, ପ୍ରଚୁର କ୍ଷରଣ ।
ଅତିପ୍ରମାଣ—ପୁଂ.ବିଂ.(ବ.ବ୍ରୀ )ଅତିପ୍ରମାଣ ଯୁକ୍ତ, ବିଶାଳ, ମହାକାୟ, ବିରାଟମୂର୍ତ୍ତି, ବିଶ୍ୱରୂପ (ସ୍ତ୍ରୀ) ପ୍ରମାଣା ।
ଅତିପ୍ରବୃଦ୍ଧ—ବି.ବିଂ. ଅତ୍ୟନ୍ତ ବୃଦ୍ଧିଯୁକ୍ତ, ଅତ୍ୟନ୍ତବୃଦ୍ଧ ।
ଅତିପ୍ରଶ୍ନ—ପୁଂ. ବି. (ଅତି + ପ୍ରଶ୍ + ନ) ଅନାବଶ୍ୟକ ଅତିରିକ୍ତ ପ୍ରଶ୍ନ, ଜ୍ଞାନର ଅଗମ୍ୟବିଷୟକ ପ୍ରଶ୍ନ ।
ଅତିପ୍ରସକ୍ତି—ସ୍ତ୍ରୀ.ବି.(ଅତି + ପ୍ର + ସନ୍ଜ୍ + ତି)ଅତ୍ୟନ୍ତଆସକ୍ତି,ପୁନରୁକ୍ତି,ବାହୁଲ୍ୟ, ଅଧିକ୍ତ ଅଲକ୍ଷ୍ୟେ ଲକ୍ଷ୍ୟଗମନ ।
ଅତିପ୍ରସଙ୍ଗ—ପୁଂ. ବିଂ. ( ଅତି + ପ୍ର + ସନ୍ଜ୍ + ଅ ପ୍ରସଙ୍ଗାତିକ୍ରମବିଶିଷ୍ଟ,(ବି.) ଅତିପ୍ରସକ୍ତି (ଦେଖ) ।
ଅତିପ୍ରସିଦ୍ଧ—ପୁଂ.ବିଂ. (ଅତି + ପ୍ର + ସିଧ୍ + ତ)ଅତ୍ୟନ୍ତବିଖ୍ୟାତ, ସୁଭୂଷିତ ।
ଅତିପ୍ରାକୃତ— ବିଂ (୬ତତ୍)ଅତିସ୍ୱାଭାବିକ, ସ୍ୱଭାବାତୀତ,ଅନୈସର୍ଗିକ ସ୍ତ୍ରୀ)ଅତିପ୍ରାକୃତୀ
ଅତିପ୍ରୌଢ଼ା—ସ୍ତ୍ରୀ.ବିଂ. ଅତିବୃଦ୍ଧା ।
ଅତିବଡ଼—ଗ୍ରା. ବି. ଖୁବ୍‌ବଡ଼, ଉତ୍କୃଷ୍ଟ, ମାନ୍ୟାସ୍ପଦ (ବ୍ୟକ୍ତି) ଅତ୍ୟଧିକ, ଅତ୍ୟନ୍ତ ସର୍ବଶ୍ରେଷ୍ଠ ।
ଅତିବଡ଼ୀ—ଗ୍ରା. ବି. ଓଡ଼ିଶାର ଭକ୍ତକବି ଜଗନ୍ନାଥଦାସଙ୍କ ପ୍ରତିଷ୍ଠିତ ବୈଷ୍ଣବ-ସମ୍ପ୍ରଦାୟ ।

ଅତିଭକ୍ତି—ସ୍ତ୍ରୀ.ବି.ପ୍ରୟୋଜନାତିରିକ୍ତ ବା ଅନୁଚିତ ଅଧିକ ଭକ୍ତି ।
ଅତିଭର—ପୁଂ. ବି.ଅତିରିକ୍ତବୋଝ,ଖୁବ୍ ବଡ଼ ବୋଝ ।
ଅତିଭରଗ—ପୁଂ.ବିଂ. (ଅତି + ଭର + ଗମ୍ + କ.ଅ) ଯେ ବେଶି ଭର ବୋହି ପାରେ (ବି.)ଖଚର, ଅଶ୍ୱତର ।
ଅତିଭା—ସ୍ତ୍ରୀ.ବି.(ଅତି + ଭା + କ.କ୍ୱିପ୍ ) ଯେ ଭାଗଭଗ୍ୟଦେଖାଏ,ବିଦ୍ୟୁତ୍,ବିଜୁଳି ।
ଅତିଭୂମି—ସ୍ତ୍ରୀ. ବି. ବିସ୍ତୃତଭୂମି,ସୀମାତି-ରେକ, ଶିଷ୍ଟାଚାର ସୀମାତିକ୍ରମ ।
ଅତିଭୃତ—ବିଂ. (ଅତି + ଭୃ + ର୍ମ.ତ) ଅତିମାତ୍ରରେପୋଷିତ, ଅତ୍ୟନ୍ତ ଆଦର ସହକାରେ ପାଳିତ ।
ଅତିଭୋଜନ—କ୍ଲୀ.ବି.(କ.ଧା)ପେଟପୂରଣ, ଗୁରୁତର ଭୋଜନ, ଅପରିମିତ ଆହାର (ପୁଂ. ବିଂ) ଅତିଭୋଜୀ (ସ୍ତ୍ରୀ. ବି.) ଅତିଭୋଜିନୀ ।
ଅତିମଙ୍ଗଲ୍ୟ—ବିଂ. ଅତିଶୟମଙ୍ଗଲଯୁକ୍ତ, ଅତ୍ୟନ୍ତ ଶୁଭସୂଚକ (ବି.) ଶ୍ରୀଫଳ, ବେଲଗଛ ।
ଅତିମତି—ବି. (ଅତି + ମତି) ଅତ୍ୟଧିକ ଆତ୍ମଗର୍ବ, (ବିଂ.ବ.ବ୍ରୀ) ଅତ୍ୟନ୍ତ ଜ୍ଞାନୀ ।
ଅତିମର୍ତ୍ତ୍ୟ—ବିଂ. (୬ତତ୍) ମାନବାତୀତ, ଲୋକାତୀତ, ଅଲୌକିକ, ଅମାନୁଷିକ, (ସ୍ତ୍ରୀ) ଅତିମର୍ତ୍ତ୍ୟା ।
ଅତିମର୍ଯ୍ୟାଦ—ବିଂ. (୬ତତ୍) ସୀମାତୀତ, ଅପରିସୀମ, ଅଶେଷ, ଅତ୍ୟଧିକ, ଅତିରିକ୍ତ (ସ୍ତ୍ରୀ) ଅତିମର୍ଯ୍ୟାଦା ।
ଅତିମାତ୍ର—ବିଂ.ମାତ୍ରାରୁ ବଳି ପଡ଼ିଥିବ., ଅତ୍ୟଧିକ, ଅସାଧାରଣ, (କ୍ରି.ବି.)ଅତ୍ୟ-ଧିକ ପରିମାଣରେ ।
ଅତିମାତ୍ରା—ସ୍ତ୍ରୀ. ବି. ଅପରିମିତ ମାତ୍ରା, ଅପରିମିତ ପରିମାଣ ।
ଅତିମାନ—ବି. (ଅତି + ମାନ) ଅତ୍ୟନ୍ତ ଆତ୍ମଗର୍ବ, ବିଶେଷ ସମ୍ମାନ,(ବିଂ),ଅମାପ ସୁବିସ୍ତୀର୍ଣ୍ଣ ।

ଅତିମାନୁଷ—ବିଂ.(ଅତି + ମାନୁଷ)ଅଲୌ-କିକ, ଅମାନୁଷିକ, ସ୍ୱର୍ଗୀୟ, ଐଶ୍ୱରିକ, (ପୁଂ.ବି.) ମହାମାନବ,(ସ୍ତ୍ରୀ)ଅତିମାନୁଷୀ,
ଅତିମାନୁଷିକ—ବିଂ.ଅତିମାନୁଷ (ଦେଖ) (ସ୍ତ୍ରୀ) ଅତିମାନୁଷିକୀ ।
ଅତିମାୟ—ବିଂ. ( ୬ତତ୍ ) ମାୟାତୀତ, ମୋକ୍ଷପ୍ରାପ୍ତ, ମାୟାରୁ ମୁକ୍ତ, ।
ଅତିମିତ—ବିଂ.(ନ.ତତ୍)ଅନାର୍ଦ୍ର, ଓଦା ହୋଇ ନ ଥିବା, ଶୁଷ୍କ, ଅସ୍ଥିର,ଚଞ୍ଚଳ, ( ୬ ତତ୍ )ଅପରିମିତ, ଅତ୍ୟଧିକରୂପେ ପରିମିତ ।
ଅତିମିତ୍ର—କ୍ଲୀ. ବି. ପରମସୁହୃତ୍ ।
ଅତିମୁକ୍ତ—ପୁଂ. ବିଂ. – (ଅତି + ମୁଚ୍ ତ ସମ୍ପୂର୍ଣ୍ଣରୂପେ ମୁକ୍ତିପ୍ରାପ୍ତ,ନିର୍ବାଣ ପ୍ରାପ୍ତ, ସଙ୍ଗ ବା ଆସକ୍ତିରହିତ, ବନ୍ଧ୍ୟା, ବୀଜହୀନ, ବାର୍ଦ୍ଧକ୍ୟଯୋଗ୍ୟ ସନ୍ତାନୋତ୍ପାଦିକା ଶକ୍ତିରହିତ, ( ବି. ) ବାନ୍ଧଣଗଛ, ମାଧବୀଲତା ।
ଅତିମୁକ୍ତକ ବି.(ଅତିମୁକ୍ତ + କ)ବାନ୍ଧନ-ଗଛ, ମାଙ୍କଡ଼କେନ୍ଦୁଗଛ, ଅଗବଥୁଗଛ, ମାଧବୀଲତା, କେନ୍ଦୁଗଛ, ହରିମନ୍ଥଗଛ
ଅତିମୁକ୍ତି—ସ୍ତ୍ରୀ. ବି.(ଅତି + ମୁଚ୍ + ତି) ସଂସାରବନ୍ଧନରୁ ମୁକ୍ତି ପାଇବା ।
ଅତିମୃତ୍ୟୁ—(ବିଂ) ୬ତତ୍;ମରଣପାରଗତ, ଅମୃତ, (ପୁଂ. ବି) ମୁକ୍ତି, ନିର୍ବାଣ ।
ଅତିମୋଦ—ବିଂ. (ବ.ବ୍ରୀ ) ଅତିସୁଗନ୍ଧି-ଯୁକ୍ତ, (ସ୍ତ୍ରୀ) ଅତିମୋଦା ।
ଅତିମୋଦା—ସ୍ତ୍ରୀ.ବି.(ଅତି + ମୋଦ + ଆ) ନବମଲ୍ଲିକା, ନଆଳୀଫୁଲ ଓ ଲତା ।
ଅତିଯୋଗ – ପୁଂ, ବି. ଅତିଶୟଯୋଗ, ଅତିନିଃସରଣ, ଆଧିକ୍ୟ, ବାହୁଲ୍ୟ ।
ଅତିରକ୍ତ—ପୁଂ. ବିଂ. (ଅତି + ରନ୍ଜ୍ + ତ) ଅତ୍ୟନ୍ତ ଲୋହିତବର୍ଣ୍ଣ, ଅନୁରକ୍ତ ।
ଅତିରକ୍ତା—ସ୍ତ୍ରୀ.ବି. (ଅତି + ରକ୍ତ + ଆ) ଅଗ୍ନିଙ୍କର ସପ୍ତଜିହ୍ୱା ମଧ୍ୟରୁ ଗୋଟିଏ ।
ଅତିରଞ୍ଜନ—ବି.ଅତିରିକ୍ତଭାବରେ ରଙ୍ଗା-ଇବା,ବାହୁଲ୍ୟଭାବରେ ବର୍ଣ୍ଣନାକରିବା ।
ଅତିରଣ—ବିଂ.(ବ.ବ୍ରୀ.)ଅତିଶୟସମର-ନିପୁଣ ।

ଅତିରଥ—ପୁଂ.ବି.(ବ.ବ୍ରୀ)ମହାଯୋଦ୍ଧା, ମହାବୀର, ଯେ ଅସଂଖ୍ୟ ଶତ୍ରୁ ସହିତ ଯୁଦ୍ଧ କରିବାକୁ ସମର୍ଥ ।

ଅତିରସା—ସ୍ତ୍ରୀ.ବି. (ଅତି + ରସ + ଆ) ମୂର୍ବା, ରାସ୍ନା, କ୍ଲୀତନକବୃକ୍ଷ, ଫୁଟି-ଫୁଟିକାଗଛ, ଶତମୂଳୀ ।

ଅତିରାଜ—ପୁଂ. ବି. ଅତିକ୍ରାନ୍ତନୃପତି, (୨ତତ୍) ବିଂ. ଯେ ରାଜାଙ୍କୁ ଅତିକ୍ରାନ୍ତ କରିଅଛି ।

ଅତିରାତ୍ର—( ଅତି + ରାତ୍ରି ) ଅଧରାତି, ନିଶାରାତି, ଷଷ୍ଠମନୁ ଚକ୍ଷୁଷଙ୍କ ପୁତ୍ର, ଜ୍ୟୋତିଷ୍ଟୋମ ଯଜ୍ଞର ଅଙ୍ଗବିଶେଷ ।

ଅତିରି—ଗ୍ରା. ବି. ଉଦ୍‌ବେଗ, (ଗ୍ରା.ବିଂ.) ଉଦ୍‌ବିଗ୍ନ ।

ଅତିରିକ୍ତ—ବିଂ. (ଅତି + ରିଚ୍ + ର୍ମ.କ୍ତ) ଅତ୍ୟଧିକ ପରିମିତ,ସମଧିକ,ଶ୍ରେଷ୍ଠ,ଭିନ୍ନ, ଅଧିକ, ବଳକା, ନିରୂପିତ ସଂଖ୍ୟାରୁ ଅଧିକ, ଶୂନ୍ୟ, ଖାଲି କରାଯାଇଥିବା, ଉନ୍ନତ (ସ୍ତ୍ରୀ) ଅତିରିକ୍ତା ।

ଅତିରୂପ—ବିଂ.(ବ.ବ୍ରୀ) ସୁଶ୍ରୀ,ଅତିସୁନ୍ଦର, (୨ତତ୍)ଅମୂର୍ତ୍ତି,(କ୍ଲୀ. ବି.) ଅଲୌକିକ ସୌନ୍ଦର୍ଯ୍ୟ ।

ଅତିରେକ—ପୁଂ ବି.(ଅତି + ରିଚ + ଭା. ଅ) ବଳିପଡ଼ିଥିବା ଦ୍ରବ୍ୟ, ଅତିଶୟ ପ୍ରଭେଦ, ପ୍ରାଧାନ୍ୟ, ପ୍ରାଚୁର୍ଯ୍ୟ, (ଗ୍ରା.ବି) ଶେଷ ସୀମାରେ ଉପସ୍ଥିତ ଅବସ୍ଥା, ବିପନ୍ନ ଅବସ୍ଥା, ଶେଷ ଅବସ୍ଥା, (ବିଂ) ଦୁଃସହ, ଅସହ୍ୟ, ଅତ୍ୟନ୍ତ, ଅତ୍ୟଧିକ, କଠୋର ବା ବିପନ୍ନଅବସ୍ଥାଯୁକ୍ତ, (କ୍ରି.ବିଂ.) ଅତ୍ୟନ୍ତ, ସମଧିକ, ଅତିଶୟ, ଅତ୍ୟଧିକରୂପେ ।

ଅତିରେକୀ—ପୁଂ. ବିଂ. ( ଅତିରେକ + ଇନ୍ ) ଅତିକ୍ରମକାରୀ,ଅତିରିକ୍ତ, ଅତ୍ୟ-ଧିକ, ଶ୍ରେଷ୍ଠ, ପ୍ରଧାନ (ସ୍ତ୍ରୀ) ରେକିଣୀ ।

ଅତିରେକେ—ଗ୍ରା. କ୍ରି. ବିଂ. ଅତିଶୟ, ଅତ୍ୟଧିକରୂପେ ।

ଅତିରୋଗ—ପୁଂ.ବି.(ଅତି + ରଞ୍ଜ + ଅ) କ୍ଷୟରୋଗ, ରାଜଯକ୍ଷ୍ମା ।

ଅତି (ଗ୍ରୋ) ଲୋମଶ—ପୁ.ବି. ( ଅତି + ଗ୍ରୋ ଲୋମ + ଶ ) ବଣଛେଳି, ବୃହତ୍ ମାଙ୍କଡ଼,ଭାଲୁ (ବିଂ) ଅତ୍ୟନ୍ତ ଲୋମଯୁକ୍ତ, ଭାରି ବଳୁଆ, ଅବୟବରେ ଲୋମଯୁକ୍ତ, (ସ୍ତ୍ରୀ) ଲୋମଶା ।

ଅତିଲଙ୍ଘନ—କ୍ଲୀ.ବି. (ଅତି + ଲଙ୍ଘ + ଭା. ଅନ) ଅତିକ୍ରମ, ଅତ୍ୟନ୍ତ ବ୍ୟତିକ୍ରମ, ଦୀର୍ଘ ଉପବାସ ।

ଅତିଲେମ୍ବୁ ଚିପୁଡ଼ିଲେ ପିତା—ଗ୍ରା. ବି. (ନ୍ୟାୟପ୍ରବଚନ) ଲେମ୍ବୁ ଚିପୁଡ଼ିଲେ ସେଥିରୁ ଖଟାରସ ବାହାରେ; କିନ୍ତୁ ବେଶିରସ ପାଇବା ଆଶାରେ ଲେମ୍ବୁରୁ ଅତି ଚିପୁଡ଼ିଲେ ଲେମ୍ବୁର ଚୋପାକୁ ବାହାରିବା ରସ ଲେମ୍ବୁରସ ସଙ୍ଗେ ମିଶି ତାକୁ ପିତା କରିପକାଏ । ସେହି-ପରି କୌଣସି କାର୍ଯ୍ୟକୁ ଅତି ନିଠେଇ କରି କଲେ ତାହା ବିଗିଡ଼ିଯାଏ ।

ଅତିଲୋମା—ବିଂ.(ବ.ବ୍ରୀ.) ଲୋମଶ, ଅତି ଲୋମଯୁକ୍ତ (ସ୍ତ୍ରୀ) ଅତିଲୋମୀ ।

ଅତିବକ୍ତା—ପୁଂ. ବି. (ଅତି + ବଚ + ତୃ) ବାବଦୂକ, ଯେ ଖୁବ୍ କହିପାରେ, (ସ୍ତ୍ରୀ) ଅତିବକ୍ତ୍ରୀ ।

ଅତିବକ୍ର—ପୁଂ. ବି. ସୂର୍ଯ୍ୟ ସପ୍ତମ ଅଷ୍ଟମ ଗୃହରେ ବିପରୀତ, ପଶ୍ଚାଦ୍‌ଗାମୀ ମଙ୍ଗଳ, ବୁଧ,ଗୁରୁ, ଶୁକ୍ର, ଶନି ଏହି ପାଞ୍ଚ ଗ୍ରହ, (ବିଂ) ଅତ୍ୟନ୍ତ କୁଟିଳ । [ବୃଦ୍ଧ ।

ଅତିବୟସ୍କା—(ପୁଂ ଓ ସ୍ତ୍ରୀ) ବିଂ (ବ.ବ୍ରୀ.)

ଅତିବର୍ତ୍ତନ—କ୍ଲୀ ବି (ଅତି + ବୃତ୍ + ଅନ) ସାରଥି, ଦଣ୍ଡବାହି ଯାନପ୍ରଭୃତି, ଅତିକ୍ରମ (ଦେଖ) କ୍ଷମାଯୋଗ୍ୟ ଅପରାଧ। ଦଣ୍ଡରୁ ନିଷ୍କୃତି, ଅଗ୍ରଗମନ ( ଦେଖ ) ଅତୀତ ଜୀବନୋପାୟ ।

ଅତିବର୍ତ୍ତନୀୟ—ବିଂ. (ଅତି + ବୃତ୍ + ର୍ମ. ଅନୀୟ) ଅତି ବାହନୀୟ, ଲଙ୍ଘନୀୟ, ଅତିକ୍ରମଣୀୟ, (ସ୍ତ୍ରୀ) ଅତିବର୍ତ୍ତନୀୟା ।

ଅତିବର୍ତ୍ତିତ—କ୍ରି. ବିଂ. (ଅତି + ବର୍ତ୍ତି + ର୍ମ.କ୍ତ) ଅତିବାହିତ, ଲଙ୍ଘିତ, ଅତିକ୍ରାନ୍ତ, (ସ୍ତ୍ରୀ) ବର୍ତ୍ତିତା ।

ଅତିବର୍ତ୍ତୀ—ପୁଂ.ବିଂ. ( ଅତି + ବୃତ୍ + କ.ଇନ୍)ଅତିବାହନକାରୀ,ଅତିକ୍ରମକାରୀ, (ସ୍ତ୍ରୀ ବର୍ତ୍ତିନୀ ।

ଅତିବର୍ତ୍ତୁଳ—ପୁଂ. ବି. ମଟରମଞ୍ଜି ।

ଅତିବଳ—ପୁଂ.ବି. (ବ.ବ୍ରୀ.) ଅତ୍ୟନ୍ତ ବଳଶାଳୀ,ଅତ୍ୟନ୍ତ ବେଗବାନ୍, ପ୍ରବଳ, ସ୍ତ୍ରୀ, ବଳା ।

ଅତିବଳା—ସ୍ତ୍ରୀ.ବିଂ.ଅତିବଳର ସ୍ତ୍ରୀଲିଙ୍ଗ, ପ୍ରବଳା, (ବି.) ଗୁପ୍ତବିଦ୍ୟାବିଶେଷ, ନାଲି ବାଡ଼ି ଅଁଲା, ବଜ୍ରମୂଳ ।

ଅତିବାତ—ପୁଂ.ବି. ପ୍ରବଳ ବାତ୍ୟା,ଝଡ଼, ଝଞ୍ଜା ବାତ ।

ଅତିବାଦ—ପୁଂ.ବି. ଅତି + ବଦ + ଭା.ଅ) ଅପ୍ରିୟ ବାକ୍ୟ, ଅଧିକ ବାକ୍ୟ କଥନ, ବାଗ୍‌ବଳତା,ବକିଣ୍ଡା,ଅତ୍ୟୁକ୍ତି,ନିନ୍ଦାବାଦ, ଝଗଡ଼ା, କଳି, ସମସ୍ତଙ୍କୁ ବଳି କଥା କହିବା, ଅନ୍ୟମାନଙ୍କ ମତ ଖଣ୍ଡନ-ପୂର୍ବକ ଆପଣାର ମତ ପ୍ରତିଷ୍ଠା, (ବିଂ) ଅତି ବାଦୀ ।

ଅତିବାଦୀ—ପୁଂ. ବିଂ. (ଅତି + ବଦ୍ + କ. ଇନ୍) ଅତ୍ୟଧିକ ବାକ୍ୟକଥନଶୀଳ, ବାଗ୍‌ବଳ,ଅତ୍ୟୁକ୍ତିକାରୀ, ପରୁଷଭାଷୀ (ସ୍ତ୍ରୀ) ଅତିବାଦିନୀ ।

ଅତିବାରୁ—ଗ୍ରା.ବି ଅତ୍ୟନ୍ତ ବେଗବାନ୍ ଅଶ୍ୱ, ପକ୍ଷୀରାଜଘୋଡ଼ା ।

ଅତିବାଳା—ସ୍ତ୍ରୀ.ବି.(ଅତି + ବାଳ + ଆ) ଦୁଇବର୍ଷିଆ ଗାଈ ( ଗଡ଼ା ) ।

ଅତିବାସ—ବି. ( ଅତି + ବସ + ଭା.ଅ ) ଶ୍ରାଦ୍ଧ ପୂର୍ବଦିନ କରାଯିବା ଉପବାସ ।

ଅତିବାହ—ପୁଂ.ବି. ଅତି + ବହ + ଭା.ଅ) ସୂକ୍ଷ୍ମଶରୀରବିଶିଷ୍ଟ ଜୀବାତ୍ମାର ଦେହାନ୍ତର ପ୍ରାପ୍ତି, ଅତିଯାପନ, ସ୍ଥାନାନ୍ତରିତକରଣ ।

ଅତିବାହକ—ପୁଂ. ବି. (ଅତି + ବହ + କ. ଅକ) ଈଶ୍ୱର ନିଯୋଜିତ ଅର୍ଚ୍ଚିଆଦି. ଅଭିମାନୀ ଦେବବିଶେଷ, (ବିଂ) ଲିଙ୍ଗ-ଦେହର ଦେହାନ୍ତରପ୍ରାପକ, (ସ୍ତ୍ରୀ) ଅତିବାହିକା ।

ଅତିବାହନ—କ୍ଲୀ. ବି. (ଅତି + ବାହ + ଭା. ଅନ ) ଯାପନ, କାଳକ୍ଷେପଣ, ଅତିରିକ୍ତ ପରିଶ୍ରମ, ଅତିକ୍ରମ ।

ଅତିବାହକ—ବି°.(ଅତି+ବାହ+ଇକ) ଦେହାନ୍ତର ପ୍ରାପଣର ଯୋଗ୍ୟ (ସୂକ୍ଷ୍ମ ଶରୀର) ସ୍ତ୍ରୀ.ଅତିବାହକା ।

ଅତିବାହିତ—ବି°(ଅତି+ବାହ୍+ମି.ତ) ଯାପିତ, ଅତିକ୍ରମିତ, (ବି) ସୂକ୍ଷ୍ମଶରୀର, ପ୍ରେତଦେହ ।

ଅତିବାହୁ—ବି.(ବ.ବ୍ରୀ)ଚତୁର୍ଦ୍ଦଶମନ୍ୱନ୍ତର ଋଷିବିଶେଷ, ମହାଭାରତୋକ୍ତ ଗନ୍ଧର୍ବ-ବିଶେଷ ।

ଅତିବାହ୍ୟ—ବି°. (ଅତି+ବହ+ଯ) ଅତିବାହର ଯୋଗ୍ୟ(କାଳ) ।

ଅତିବିକଟ—ପୁଂ. ବି. (ଅତି+ବିକଟ) ଦୁଷ୍ଟହସ୍ତୀ (ବି°) ଅତିଭୟାନକ (ସ୍ତ୍ରୀ) ଅତିବିକଟା ।

ଅତିବିଷ—ବି°.(୨ତତ୍ର) ବିଷାଘାତ,ବିଷ-ପ୍ରତିଷେଧକ, ବିଷକ୍ରିୟାର ନିବାରକ (ବ.ବ୍ରୀ) ତୀବ୍ରବିଷମୟ,(ସ୍ତ୍ରୀ) ଅତିବିଷା ।

ଅତିବିଷା—ସ୍ତ୍ରୀ.ବି°. ଅତିବିଷର ସ୍ତ୍ରୀଲିଙ୍ଗ, (ବି) ମହୁରା, ଅରୁନ୍ଧତୀଗଛ ।

ଅତିବିଷାଣ—ପୁଂ.ବି. (ବ.ବ୍ରୀ) ମହିଷ ।

ଅତିବିସ୍ତର—ବି. (ଅତି+ବି+ସ୍ତୃ+ଭା. ଅ) ବାକ୍ୟବାହୁଲ୍ୟ, ଅତିଶୟ ବିସ୍ତୃତ ।

ଅତିବିସ୍ରବ୍ଧନବୋଢ଼ା—ସ୍ତ୍ରୀ. ବି.ନାୟିକର ଅତ୍ୟନ୍ତ ପ୍ରଣୟଯୁକ୍ତା ସ୍ତ୍ରୀ ।

ଅତିବୃତ୍ତ—ପୁଂ. ବି°. (ଅତି+ବୃତ୍+ମି.ତ) ଅତିକ୍ରାନ୍ତ, ଉଦ୍‌ବୃତ୍ତ, ବଳି ପଡ଼ିଥିବା. (ସ୍ତ୍ରୀ) ଅତିବୃତ୍ତା ।

ଅତିବୃତ୍ତି—ସ୍ତ୍ରୀ.ବି. (ଅତି+ବୃତ୍+ଭା.ତି) ଅତିକ୍ରମ, ଅତିନିଃସରଣ ।

ଅତିବୃଦ୍ଧ—ବି°.ଅତ୍ୟନ୍ତବର୍ଦ୍ଧିଷ୍ଣୁ ଖୁବ୍‌ ବୁଢ଼ା,ବେଶିବଢ଼ିଥିବା,(ସ୍ତ୍ରୀ.) ଅତିବୃଦ୍ଧା ।

ଅତିବୃଦ୍ଧି—ସ୍ତ୍ରୀ.ବି. ଅତିରିକ୍ତ ବୃଦ୍ଧି, ଖୁବ୍ ବେଶି ବଢ଼ିବା, ଅତ୍ୟନ୍ତ ସମୃଦ୍ଧି, ଅତ୍ୟନ୍ତସ୍ପର୍ଦ୍ଧା ।

ଅତିବୃଷ୍ଟି—ସ୍ତ୍ରୀ. ବି. (ଅତି+ବୃଷ୍+ତି) ଅତ୍ୟନ୍ତବର୍ଷା,ଅତିରିକ୍ତବର୍ଷା,ଇତିବାଧା-ମଧ୍ୟରୁ ଏକତମ ।

ଅତିବେଧ—ପୁଂ. ବି.(ଅତି+ବିଧ+ଅ) ଏକାଦଶୀସହିତଦଶମୀରସମ୍ପର୍କବିଶେଷ ।

ଅତିବେଳ—ପୁଂ.ବି°.(୨ତତ୍ର)ବେଳାଭୂମି ଅତିକ୍ରମକାରୀ, ମର୍ଯ୍ୟାଦାତିକ୍ରାନ୍ତ, ସୀମା-ବହିର୍ଗତ, ଉମାଦହୋଇଥିବା ।

ଅତିବୋଢ଼ା-ପୁଂ.ବି°.(ଅତି+ବହ+ତୃ) ଅତିବହନକର୍ତ୍ତା, ପ୍ରାପକ ।

ଅତିବ୍ୟଥନ—ପୁଂ. ବି. (ଅତି+ବ୍ୟଥ+ ଅନ)ଅତ୍ୟନ୍ତପୀଡ଼ନ,(ବି°)ଅତିବ୍ୟଥିତ ।

ଅତିବ୍ୟଥା—ସ୍ତ୍ରୀ. ବି. ଅତିଶୟ ଯାତନା, ତୀବ୍ରବେଦନା ।

ଅତିବ୍ୟୟ—ପୁଂ.ବି.କ.ଧା;(ଅତି+ବ୍ୟୟ) ଅପରିମିତବ୍ୟୟ,ଅପବ୍ୟୟ,ବାହ୍ୟଖରଚ ।

ଅତିବ୍ୟାପ୍ତ—ବି°. (ଅତି+ବ୍ୟାପ୍ତ) ବହୁ-ଦୂରକୁ ବ୍ୟାପିଥିବା, ନିର୍ଦ୍ଦିଷ୍ଟସୀମା ଅପେକ୍ଷା ଅଧିକଦୂରକୁ ପ୍ରୟୋଗକରାଯିବା (ନିୟମ) ଗୁଣଆଡ଼େ ଘୋଟିବା ।

ଅତିବ୍ୟାପ୍ତି—ସ୍ତ୍ରୀ. ବି. (ଅତି+ବି+ଆପ୍ +ତି) ଅତିଶୟବ୍ୟାପନ, ଅଲକ୍ଷ୍ୟେ ଲକ୍ଷ୍ୟର ଗମନ ।

ଅତିଶକ୍‌କରୀ—ସ୍ତ୍ରୀ. ବି. ପନ୍ଦରଅକ୍ଷର-ବିଶିଷ୍ଟ ଛନ୍ଦୋବିଶେଷ ।

ଅତିଶକ୍ତି—ସ୍ତ୍ରୀ. ବି. (ଅତି+ଶକ୍+ତି) ଅତିଶୟସାମର୍ଥ୍ୟ, (ପୁଂ. ବି°. ବ.ବ୍ରୀ) ଅତ୍ୟନ୍ତଶକ୍ତିସମ୍ପନ୍ନ, ଅତ୍ୟନ୍ତ ବଳବାନ୍, ଅତିଶକ୍ତ, ଅତିଶକ୍ତିମାନ୍ ।

ଅତିଶକ୍ତିତା—ସ୍ତ୍ରୀ. ବି. (ଅତିଶକ୍ତି+ତା) ବିକ୍ରମ, ମହାବଳତ୍ୱ ।

ଅତିଶକ୍ତିଭାକ୍—ପୁଂ. ବି°. ଅତିଶୟ ଶକ୍ତି-ବିଶିଷ୍ଟ, କ୍ଷମତାବାନ୍ ।

ଅତିଶୟ—ପୁଂ.ବି. (ଅତି+ଶୀ+ଭା.ଅ) ଆଧିକ୍ୟ, ଅତିରେକ, ଉତ୍କର୍ଷ, ସଂଖ୍ୟା, ପରିମାଣ ବା ଗୁଣରେ ଆଧିକ୍ୟ, ସୁଫଳ, ପ୍ରାଚୁର୍ଯ୍ୟ,ବାହୁଲ୍ୟ,ମହତ୍ତ୍ୱ, (ବି°) ଉତ୍କୃଷ୍ଟ, ଉତ୍କୃଷ୍ଟତର,ପ୍ରଚୁର,ଅତିରଞ୍ଜିତ,ଯଥେଷ୍ଟ, ଯଥେଷ୍ଟ ଅପେକ୍ଷା ବେଶି, ବଳକା,ବଳି-ପଡ଼ିଥିବା,ଅତ୍ୟଧିକ,(କ୍ରି.ବି°.) ଅତ୍ୟନ୍ତ, ଅତ୍ୟଧିକରୂପେ, ପ୍ରୟୋଜନାତିରିକ୍ତ-ରୂପେ ।

ଅତିଶୟନ—ବି ଓ ବି°. (ଅତି+ଶୀ+ ଅନ) ଅତିଶୟ (ଦେଖ) ।

ଅତିଶୟନୀ—ସ୍ତ୍ରୀ. ବି. (ଅତି+ଶୀ+ଭା. ଅନ+ଈ) ସଂସ୍କୃତ ଛନ୍ଦୋବିଶେଷ, ଏଥିର ଅନ୍ୟନାମ ଚନ୍ଦ୍ରଲେଖା ।

ଅତିଶୟିତ—ବି°. (ଅତି+ଶୀ+ମି.ତ) ଅତିଶୟ(ଦେଖ),ସୀମାତିକ୍ରମ କରିଥିବା, (ସ୍ତ୍ରୀ) ଅତିଶୟିତା ।

ଅତିଶୟୋକ୍ତି—ସ୍ତ୍ରୀ.ବି. (କ.ଧା) ଅତ୍ୟୁକ୍ତି, ବାଗାଡ଼ମ୍ବର, କଥାର ବାଲ୍‌ଙ୍ଗି, କାବ୍ୟର ଅଳଂକାରବିଶେଷ ।

ଅତିଶାୟନ—କ୍ଲୀ. ବି. (ଅତି+ଶାୟି+ ଭା.ଅନ) ଆତିଶଯ୍ୟ, ଆଧିକ୍ୟ, ପ୍ରକର୍ଷ ।

ଅତିଶାୟୀ—ପୁଂ. ବି°.(ଅତି+ଶୀ+କ. ଇନ୍) ଅଧିକ ହୋଇଥିବା, ସମଧିକ, ବ୍ୟତିକ୍ରମକାରୀ, (ସ୍ତ୍ରୀ) ଶାୟିନୀ ।

ଅତିଶେଷ—ପୁଂ ବି°.(ଅତି+ଶିଷ୍+କ. ଅ) ସ୍ୱଳ୍ପବିଶିଷ୍ଟ, ଅଳ୍ପମାତ୍ର ବାକି ରହି-ଯାଇଥିବା,(ସ୍ତ୍ରୀ) ଅତିଶେଷା, (ବି)ବାକି ରହିଥିବା ଅଂଶ ।

ଅତିଶୋଭନ—କ୍ରି. ବି°. ଅତିଶୟଶୋଭା-ଯୁକ୍ତ, ଶ୍ରେଷ୍ଠ, ପ୍ରଶଂସ୍ୟ ।

ଅତିଶ୍ରମ—ପୁଂ.ବି.(ଅତି+ଶ୍ରମ) ଅତିରିକ୍ତ ପରିଶ୍ରମ, କ୍ଳାନ୍ତ, ଖୁବ୍‌ବେଶି ଖାଟୁଣି ।

ଅତିଶ୍ୱା—ପୁ. ବି. ଉତ୍ତମ କୁକ୍‌କୁର ।

ଅତିଷ୍ଠ—ପ୍ରା.(ଗ୍ରାମ୍ୟ).ବି°.ଅସ୍ଥିର,ଅସ୍ତବ୍ୟସ୍ତ ବିବ୍ରତ, ଅସମ୍ଭାଳ, ଅଧୀର ।

ଅତିସହିତ—ବି°.(ଅତି+ସମ୍+ଧା+ ମି.ତ) ବଞ୍ଚିତ, ପ୍ରତାରିତ, ପ୍ରଗୃହୀତ, ପ୍ରକାଶିତ, (ସ୍ତ୍ରୀ) ଅତିସହିତା ।

ଅତିସନ୍ଧାନ—କ୍ଲୀ.ବି. (ଅତି+ସମ୍+ଧା +ଭା.ଅନ) ଧପାଇବା, ଠକିବା,ଚଟା-କାଟିବା, ପ୍ରବଞ୍ଚନା, ଠକାମି ।

ଅତିସନ୍ଧ୍ୟା—ସ୍ତ୍ରୀ.ବି. ସନ୍ଧ୍ୟାର ଅବ୍ୟବହିତ ପୂର୍ବ ଓ ପରବର୍ତ୍ତୀ କାଳ ।

ଅତିସର—ପୁଂ.ବି°.(ଅତି+ସୃ+କ.ଅ) ଅଗ୍ରଗାମୀ, ଅଗ୍ରସର ।

ଅତିସର୍ଗ—ବି. ( ଅତି + ସୃଜ + ଭା.ଅ ) କାମାଗ୍ରହାନୁଜ୍ଞା ନିଃଶେଷଦାନ,ବିସର୍ଜନ, ତ୍ୟାଗ,ଉତ୍ସର୍ଗ,କର୍ମରୁ ବରଖାସ୍ତହେବା (ବିଂ)ସ୍ଥାସ୍ଥୀ,ନିତ୍ୟ,ମୁକ୍ତ, ସୃଷ୍ଟ୍ୟାତିକ୍ରାନ୍ତ, (ସ୍ତ୍ରୀ) ଅତିସର୍ଗା ।
ଅତିସର୍ଜନ—କ୍ଲୀ.ବି. (ଅତି + ସୃଜ + ଭା. ଅନ)ଦାନ,ତ୍ୟାଗ,ନିସ୍ପୋଗ, ବଧ,ଉତ୍ସର୍ଗ, ବିଚ୍ଛେଦ, ବିପ୍ରଲମ୍ଭ (ବିଂ) ଅତିସୃଷ୍ଟ ।
ଅତିସର୍ପଣ—କ୍ଲୀ.ବି. (ଅତି + ସୃପ + ଭା. ଅନ)ଗର୍ଭସ୍ଥଭ୍ରୂଣର ସଞ୍ଚାଳନ ।
ଅତିସର୍ବ—ପୁଂ.ବିଂ. ଅତି + ସର୍ବ)ସମସ୍ତର ଅତୀତ; ସମସ୍ତଙ୍କ ଅପେକ୍ଷା ଉତ୍କୃଷ୍ଟ (ବି.) ପରମେଶ୍ୱର ।
ଅତିସର୍ବତ୍ର—ଗ୍ରା.ବିଂ. ଅତିରିକ୍ତ,ଅତ୍ୟଧିକ, ଅତିଅନୁଚିତ, ଅତିଅସହ୍ୟ,(ବି.) ମାତ୍ରାଧିକ୍ୟ, ଅଧିକପରିମାଣ ।
ଅତିସାନ୍ତପନ— କ୍ଲୀ.ବି.ପ୍ରାୟଶ୍ଚିତ୍ତବିଶେଷ ।
ଅତିସାମ୍ବତ୍ସର—ବିଂ. ଏକବର୍ଷରୁ ଅଧିକକାଳବ୍ୟାପୀ (ସ୍ତ୍ରୀ) ଅତିସାମ୍ବତ୍ସରୀ ।
ଅତିସାମ୍ୟା—ସ୍ତ୍ରୀ.ବି.ଯଷ୍ଟିମଧୁଲତା,ମଞ୍ଜିଷ୍ଠାରମଧୁରରସ(କ୍ଲୀ.ବି)ଅତ୍ୟନ୍ତସାଦୃଶ୍ୟ
ଅତିସାୟଂ—ଅବ୍ୟ. ଅତ୍ୟନ୍ତସାୟଂକାଳ, ଠିକ୍‌ସନ୍ଧ୍ୟାକାଳରେ, ପ୍ରଦୋଷେ ।
ଅତି(ତୀ)ସାର—ପୁଂ. ବି. (ଅତି + ସୃ + ଭା.ଅ)ରୋଗବିଶେଷ,ଉଦରାମୟ, ଅତ୍ୟଧିକ ଝାଡ଼ା ।
ଅତିସାରକ—ବିଂ. ସାତିଶୟ ରେଚକ, ଅତ୍ୟନ୍ତଭେଦଜନକ,(ସ୍ତ୍ରୀ)ଅତିସାରକା ।
ଅତିସାରକୀ—ପୁଂ. ବିଂ. (ଅତିସାର + କ + ଇନ୍ )ଅତିସାରରୋଗଗ୍ରସ୍ତ, ଉଦରାମୟ ରୋଗୀ, (ସ୍ତ୍ରୀ) ମାରକିନୀ ।
ଅତିସାରୀ-ପୁଂ.ବିଂ.(ଅତିସାର + କ.ଇନ୍ ) ଅତିସାରକ, ସାତିଶୟରେଚକ, ଅତ୍ୟନ୍ତ ଭେଦଜନକ, ଅତ୍ୟନ୍ତସାରବାନ୍ (ସ୍ତ୍ରୀ) ଅତିସାରିଣୀ ।
ଅତିସୃଜ୍ୟ—ପୁଂ.ବି. (ଅତି + ସୃଜ + ଯ) ତ୍ୟାଜ୍ୟ,ସର୍ଜନୀୟ, ତ୍ୟାଗଯୋଗ୍ୟ, (ସ୍ତ୍ରୀ) ଅତିସୃଜ୍ୟା ।
ଅତିସୃଷ୍ଟ-ପୁଂ.ବିଂ.(ଅତି + ସୃଜ + ର୍ମି.ତ) ଦତ୍ତ,ପରିତ୍ୟକ୍ତ,ନିଯୁକ୍ତ ।
ଅତିସେବା—ସ୍ତ୍ରୀ.ବି. ଅତିଆସକ୍ତ,ଅତ୍ୟନ୍ତ ଭୋଗ ।
ଅତିସୌରଭ—ବିଂ. (ଅତି + ସୌରଭ) ଅତ୍ୟଧିକ ସୁଗନ୍ଧମୟ,(ପୁଂ.ବି.)ଆମ୍ରଗଛ
ଅତିସୌହିତ୍ୟ--କ୍ଲୀ.ବି.ଅତ୍ୟନ୍ତତୃପ୍ତି, ଅତିଭୋଜନ ।
ଅତିସ୍ତୁତି—ସ୍ତ୍ରୀ.ବି.(ଅତି + ସ୍ତୁ + ତି)ଅତିଶୟସ୍ତବ,ଅଗୁଣକୀର୍ତ୍ତନ, ଅତିପ୍ରଶଂସା ।
ଅତିସ୍ତ୍ରୀ—ସ୍ତ୍ରୀ.ବି. (ଅତି + ସ୍ତ୍ରୀ) ଅତିଶୟ ସୁନ୍ଦରୀ ସ୍ତ୍ରୀ. ( ପୁଂ. ବିଂ. ) ସ୍ତ୍ରୀତ୍ୟାଗୀ, ପରସ୍ତ୍ରୀରେ ଆସକ୍ତ ।
ଅତିସ୍ୱର୍ଣ୍ଣ—ପୁଂ. ବି. ( ଅତି + ସ୍ୱୃଣ୍ + ଅ) ଅତ୍ୟନ୍ତସ୍ୱର୍ଣ୍ଣ,(ବିଂ)ଧନହୀନ,କୃପଣ,ଅଧମ
ଅତିସ୍ଥିର—ବି. ବିଂ.ଅତିଷ୍ଠିରଶାଳୀ,ଅତିବୃଦ୍ଧ, ସ୍ପୃଷ୍ଟ ।
ଅତିହସିତ—କ୍ଲୀ.ବି.ଶ୍ରୀଷହୋସ୍ୟ, ସଶବ୍ଦହାସ୍ୟ, ଠୋ ଠୋ ହସ ।
ଅତିହସ୍ତି—ବିଂ.(ଅତି + ହସ୍ତ + ଇ)ହସ୍ତଦ୍ୱୟ ବିକ୍ଷେପକାରୀ, ହସ୍ତୀଦ୍ୱାରା ଅତିକ୍ରମକାରୀ ।
ଅତୀକ୍ଷ୍ଣ—ବିଂ. ନ.ତତ୍ତ୍ୱ)ଅପ୍ରଖର,ଅତୀବ୍ର, ଅକଟୁ,ଦାଢ଼ୁଆ ହୋଇ ନଥିବା, ଥୁଣ୍ଡା ।
ଅତୀତ—ବିଂ. (ଅତି + ଇ + କ.ତ)ଗତ, ଭୂତ,ଅତିକ୍ରାନ୍ତ, ମୃତ,ଯେ ପାର ହୋଇ ଅଛି,ଅତିରିକ୍ତ, ଯେଉଁସମୟ ଗଲିଯାଇ ଅଛି, ପୂର୍ବେ ଘଟିଥିବା କ୍ରିୟାର କାଳ, (ବ୍ୟାକରଣ) ବି.ଶୈବସମ୍ପ୍ରଦାୟବିଶେଷ, ଅତୀତକାଳ ।
ଅତୀତକାଳ—ବି. (କ.ଧା) ଯେଉଁ ସମୟ ଗତ ହୋଇଅଛି, ପୂର୍ବେ ଘଟିଥିବା କ୍ରିୟାର ସୂଚକ କାଳ (ବ୍ୟାକରଣ) ।
ଅତୀତବେତ୍ତା—ପୁଂ.ବିଂ. (ଅତୀତ + ବିଦ୍ + ତୃ ) ଭୂତଦର୍ଶୀ, ପ୍ରାଚୀନ, ଅଭିଜ୍ଞ, ବୃଦ୍ଧ, ଇତିହାସବେତ୍ତା (ସ୍ତ୍ରୀ) ବେତ୍ରୀ ।
ଅତୀତବେଦୀ—ପୁଂ.ବିଂ. (ଅତୀତ + ବିଦ୍ + କ.ଇନ୍) ଅତୀତ ବେତ୍ତା (ଦେଖ) ।
ଅତୀନ୍ଦ୍ର—ପୁଂ.ବି.ବିଷ୍ଣୁ (ବିଂ. ବି.ବ୍ରୀ) ଯେ ଇନ୍ଦ୍ରଙ୍କୁ ଅତିକ୍ରମ କରିଅଛି ।
ଅତୀନ୍ଦ୍ରିୟ—ପୁଂ. ବିଂ. ଅପ୍ରତ୍ୟକ୍ଷ, ମନଃ, ଚକ୍ଷୁ , କର୍ଣ୍ଣ ହସ୍ତର ଅଗ୍ରାହ୍ୟ,ଇନ୍ଦ୍ରିୟର ଅଗୋଚର,(ବି.)ପରମବ୍ରହ୍ମ,ଆତ୍ମା,ବିଷ୍ଣୁ ।
ଅତୀବ—ବିଂ. ଅତିଶୟ, ଅତି, ଅତ୍ୟନ୍ତ, (ବିଂ ର ବିଂ) ଅତ୍ୟଧିକରୂପେ ।
ଅତୁଙ୍ଗ—ବିଂ. (ନ. ତତ୍ତ୍ୱ) ଅନୁଚ, ଅନୁନ୍ନତ, ନିମ୍ନ, ଖର୍ବାକାର, ବାମନ ।
ଅତୁଟ—ଗ୍ରା.ବିଂ.ଅକ୍ଷତ,ଅଭଗ୍ନ,ଅବିଚ୍ଛିନ୍ନ, ଅନାହତ, ଅବିନାଶୀ, ପୂର୍ଣ୍ଣାଙ୍ଗ, ଖାଣ୍ଟି, ଅଦମ୍ୟ ।
ଅତୁଠ—ଗ୍ରା. ବିଂ. ନଦୀ ବା ଜଳାଶୟରେ ଯେଉଁ ଅଂଶ ଗାଧୁଆତୁଠ ବା ପାଣିଘାଟରୂପେ ବ୍ୟବହୃତ ହୁଏ ନାହିଁ ।
ଅତୁଲ—ବିଂ.(ଅ + ତୁଲ)ବି.ବ୍ରୀ.ଅଦ୍ୱିତୀୟ ଅତୁଳନୀୟ,ଅନୁପମ,ଅପରମେୟ, ତୁଳନାରହିତ, (ଗ୍ରା. ବିଂ.) ଯାହା ଓଜନ କରାଯାଇ ନ ଥାଏ,ଯାହା ତୁଳା ହୋଇନାହିଁ, (ପୁଂ. ବି.) ତିଳଗଛ ।
ଅତୁଲ—ଗ୍ରା.ବି. ସ୍ତ୍ରୀମାନଙ୍କ ହାତଗଣ୍ଠିରେ ପିନ୍ଧିବା ଅଳଂକାରବିଶେଷ, ( ବିଂ ) ଅତୁଲ (ଦେଖ) ଅସମାନ, ଅସମତଳ ।
ଅତୁଲନ— ବିଂ.(ବି.ବ୍ରୀ. ତୁଳନାରହିତ, ଅନୁପମ, (ସ୍ତ୍ରୀ) ଅତୁଲନା ।
ଅତୁଲନୀୟ—ବିଂ. ( ନ.ତତ୍ତ୍ୱ ) ଯାହାର ତୁଳନା ଦିଆଯାଇ ନ ପାରେ, ଅତୁଲ, ଅନୁପମ, (ସ୍ତ୍ରୀ) ନୀୟା ।
ଅତୁଲା—ସ୍ତ୍ରୀ.ବିଂ. ଅତୁଲର ସ୍ତ୍ରୀଲିଙ୍ଗ (ଗ୍ରା. ବିଂ.) ତୌଲ ହୋଇନଥିବା, ଅଦ୍ୱିତୀୟ ।
ଅତୁଲିତ—ବିଂ. (ନ.ତତ୍ତ୍ୱ) ଯାହା ତୌଲ କରାହୋଇ ନାହିଁ, ଅମିତ, ତୁଳନାରହିତ, ଅନୁପମ, (ସ୍ତ୍ରୀ) ଅତୁଳିତା ।
ଅତୁଲ୍ୟ—ବିଂ. (ନ.ତତ୍ତ୍ୱ) ତୁଳନାରହିତ, ଅସମାନ, ଅସଦୃଶ, (ସ୍ତ୍ରୀ) ଅତୁଲ୍ୟା ।
ଅତୁଷ—ବିଂ. (ବି.ବ୍ରୀ) ଚମ୍ପୁ ନ ଥିବା (ଶସ୍ୟାଦି) ।
ଅତୁଷ୍ଟ—ବିଂ.(ନ.ତତ୍ତ୍ୱ) ଅପ୍ରୀତ,ଅତୃପ୍ତ, ଅସନ୍ତୁଷ୍ଟ, ବିରକ୍ତ, (ସ୍ତ୍ରୀ) ଅତୁଷ୍ଟା ।
ଅତୁଷ୍ଟି—(ସ୍ତ୍ରୀ) ବି. ( ନ.ତତ୍ତ୍ୱ ) ଅପ୍ରୀତି, ଅତୃପ୍ତି, ଅସନ୍ତୋଷ ।

**ଅତୁଷ୍ଟିକର**—ବିଂ. (ଅତୁଷ୍ଟି + କୃ + ଅ) ଅସନ୍ତୋଷକର,ଅପ୍ରୀତିକର,ଅରୁଚିକର ।

**ଅତୁହିନରଶ୍ମି**—ପୁଂ. ବି. ( ଅତୁହିନ + ରଶ୍ମି ) ବ.ବ୍ରୀ; ସୂର୍ଯ୍ୟ ।

ଅତୁତୁଜ—ପୁଂ.ବିଂ. (ଅ + ତୁଜ୍ + ଇ) କୃପଣ, ଯେ ଦାତା ନୁହେ ।

ଅତୁଷ୍ଟି—ପୁଂ. ବିଂ. (ଅ + ତୁଷ + ତି) ଅହିଂସିତ ।

ଅତୃଣ—ବିଂ.(ବ.ବ୍ରୀ.)ତୃଣହୀନ(ପ୍ରଦେଶ) ଉଦ୍ଭିଦହୀନ ଦେଶ) ।

**ଅତୃଣାଦ**—ପୁ.ବିଂ. ( ଅ + ତୃଣ + ଅଦ୍ + ଅ ) ଦୁଗ୍ଧପୋଷ୍ୟ, ଯେଉଁ ଜନ୍ତୁ ତୃଣଭୋଜୀ ନୁହେ,(ବି.)କଅଁଳାବାଛୁରି ।

ଅତୃଦିଲ—ପୁଂ.ବି. (ଅ + ତୃଦ + ଇଲ) ନ.ତତ୍; ପର୍ବତ(ବିଂ)ଯେ ବଧ ଯୋଗ୍ୟ ନୁହେ ।

ଅତୃପ୍ତ—ବିଂ. ( ନ.ତତ୍ ) ଅସନ୍ତୁଷ୍ଟ, ଅତୁଷ୍ଟ, ଯାହାର ଆଶା ମିଟେ ନାହିଁ, (ସ୍ତ୍ରୀ) ଅତୃପ୍ତା ।

ଅତୃପ୍ତି—ସ୍ତ୍ରୀ. ବି. ( ଅ + ତୃପ + ତି ) ଅସନ୍ତୋଷ, ତୃପ୍ତିର ଅଭାବ, ( ବିଂ ) ଅତୃପ୍ତ । (ସ୍ତ୍ରୀ) ଅତୃଷ୍ଣା ।

ଅତୃଷ୍ଣ—ପୁଂ. ବିଂ. (ବ.ବ୍ରୀ) ତୃଷ୍ଣାହୀନ,

ଅତେଜଃ—କ୍ଲୀ. ବି. (ନ.ତତ୍) ତେଜର ବିରୋଧୀ, ଯଥା:-ଛାୟା, ଧୂମ, ଅନ୍ଧକାର ଇତ୍ୟାଦି (ବିଂ.) ଅତେଜସ୍କ ।

ଅତୈଳ—କ୍ଲୀ. ବି. ତିଳୋତ୍ପନ୍ନ ସ୍ନେହ-ଦ୍ରବ୍ୟ ସଦୃଶ ଦ୍ରବ୍ୟ, ସର୍ପପାଦର ରସ (ବିଂ) ତୈଳବିହୀନ, ରୁକ୍ଷ ।

ଅତ୍କ—ବିଂ. ପଥବାସୀ,ପାନ୍ଥ,(ବି.) ପଥିକ ଦେହାବୟବ, ଶରୀରର ଅଙ୍ଗ ।

ଅତ୍ତବେ—ଅବ୍ୟ.(ଅଦ୍ + ତବେ)ଭୋଜନ ନିମିତ୍ତ ।

ଅତ୍ତା—ସ୍ତ୍ରୀ.ବି. (ଅତ୍ + ତ + ଆ)ମାତା, ବଡ଼ଭଉଣୀ, ଶାଶୁ, ପିଉସୀ ( ବିଂ ) (ଅଦ୍ + କ.ତୃ ) ଭୋଜନକାରୀ, ପେଟୁ, ଭୋକ୍ତା,(ସ୍ତ୍ରୀ)ଅତ୍ତ୍ରୀ,(ବି.) ପରମେଶ୍ୱର ।

ଅତ୍ନ—ବି. (ଅତ୍ + କ.ନ) ପଥିକ,ବାୟୁ, ସୂର୍ଯ୍ୟ ।

ଅତ୍ନୁ—ପୁଂ.ବି.(ଅତ୍ + ନୁ) ସୂର୍ଯ୍ୟ,ବାୟୁ, ଗମନଶୀଳ ପଥିକ ।

ଅତ୍ୱର—ବିଂ. (ବ.ବ୍ରୀ) ତ୍ୱରାହୀନ,ଅକ୍ଷିପ୍ର, ମନ୍ଥର, ଅଦ୍ରୁତ, (ସ୍ତ୍ରୀ) ଅତ୍ୱରା ।

ଅତ୍ୟ—ପୁଂ.ବି. (ଅତ୍ + କ.ଯ) ଦ୍ରୁତ-ଗାମୀ ଅଶ୍ୱ, ବାରୁ (ଦେ) ।

ଅତ୍ୟଗ୍ନି—ବି. ( ଅତି + ଅଗ୍ନି ) ରୋଗ-ବିଶେଷ, ଖାଦ୍ୟଦ୍ରବ୍ୟ ଅତିଶୀଘ୍ର ଜୀର୍ଣ୍ଣ ହୋଇ ଉପର୍ଯ୍ୟୁପରି କ୍ଷୁଧା ବୋଧ ହେବା ରୋଗ (ବିଂ) ତେଜରେ ଅଗ୍ନିଙ୍କୁ ବଳିଥିବା ।

ଅତ୍ୟଗ୍ନିଷ୍ଟୋମ—ପୁଂ. ବି. ଯଜ୍ଞବିଶେଷ, ଜ୍ୟୋତିଷ୍ଟୋମ ଯଜ୍ଞର ଦ୍ୱିତୀୟ ଅଂଶ ।

ଅତ୍ୟଙ୍କୁଶ—ପୁଂ. ବି. (ଅତି + ଅଙ୍କୁଶ) ଦୁର୍ଦ୍ଦାନ୍ତ ହସ୍ତୀ, (ବିଂ) ଅଶାସ୍ୟ,ଅସାଧ୍ୟ, ନିରଙ୍କୁଶ ।

ଅତ୍ୟଙ୍ଗୁଳ--ବିଂ.(ଅତି + ଅଙ୍ଗୁଳ)ଅଙ୍ଗୁଳ-ପରିମାଣରୁ ଅଧିକ ।

ଅତ୍ୟତ—ବିଂ.(୬ତତ୍) ଅତୀବ,ଅତ୍ୟନ୍ତ, ଯାହାର ପର ନାହିଁ ।

ଅତ୍ୟଧିକ-ବିଂ. (ଅତି + ଅଧିକ) ସଂଖ୍ୟାରେ ଅତି ବେଶି, ପରିମାଣରେ ଅତିବେଶି, (ସ୍ତ୍ରୀ) ଅତ୍ୟଧିକା ।

ଅତ୍ୟଧ୍ୱା—ପୁଂ. ବିଂ. ( ଅତି + ଅଧ୍ୱନ୍ ) ଅତିକ୍ରାନ୍ତ ପଥ, ପଥ ଅତିକ୍ରମକାରୀ ।

ଅତ୍ୟନ୍ତ—କ୍ଲୀ. ବିଂ. ( ଅତି + ଅନ୍ତ ) ପରିଚ୍ଛେଦାତିକ୍ରମ, ଅତିଶୟ, ବହୁତ, ଅସୀମ, ଅଶେଷ, ଅତ୍ୟଧିକ, ଅତିବଡ଼, ବେଜାୟ, ସମ୍ପୂର୍ଣ୍ଣ, ଚିରସ୍ଥାୟୀ, ଅପରି-ମେୟ ।

ଅତ୍ୟନ୍ତକୋପନ—ପୁଂ.ବିଂ. ଅତିକ୍ରୋଧୀ, ପ୍ରଚଣ୍ଡ, ଅତ୍ୟନ୍ତ କୋପାନ୍ୱିତ ।

ଅତ୍ୟନ୍ତଗ—ବିଂ. ( ଅତ୍ୟନ୍ତ + ଗମ୍ + କ ଅ,ଅତିବେଗଗାମୀ, (ସ୍ତ୍ରୀ) ଅତ୍ୟନ୍ତଗା ।

ଅତ୍ୟନ୍ତଗାମୀ—ପୁଂ. ବିଂ. ( ଅତ୍ୟନ୍ତ + ଗମ୍ + କ.ଇନ୍ )ଅତିଶୟ ଗମନଶୀଳ, ଅତିଦ୍ରୁତଗାମୀ, ସାତିଶୟ ଭ୍ରମଣଶୀଳ, (ସ୍ତ୍ରୀ) ଅତ୍ୟନ୍ତଗାମିନୀ ।

ଅତ୍ୟନ୍ତନିବୃତ୍ତି—ସ୍ତ୍ରୀ. ବି. ମୋକ୍ଷାବସ୍ଥା, ଚିରନିବୃତ୍ତି,ସମ୍ପୂର୍ଣ୍ଣ ଅଭାବ ବା ଅନ୍ତର୍ଦ୍ଧାନ

ଅତ୍ୟନ୍ତବାସୀ—ପୁଂ.ବି. (ଅତ୍ୟନ୍ତ + ବସ୍ + କ.ଇନ୍ ) ଚିରକାଳ ଗୁରୁଗୃହରେ ବାସ କରୁଥିବା ଛାତ୍ର ।

ଅତ୍ୟନ୍ତ ସମ୍ପର୍କ—ବି. ( କ.ଧା ) ଅତ୍ୟନ୍ତ ସମ୍ଭୋଗ. ଅତ୍ୟଧିକ ମୈଥୁନ ।

ଅତ୍ୟନ୍ତସମ୍ଭୋଗ—ବି. ( ଅତ୍ୟନ୍ତ + ସମ୍ଭୋଗ) ଅତ୍ୟଧିକ ମୈଥୁନ ।

ଅତ୍ୟନ୍ତ ସଂଯୋଗ—ପୁଂ. ବି. (କ. ଧା.) ନିରବଚ୍ଛିନ୍ନ ସମ୍ବନ୍ଧ, ଅବିଶ୍ରାନ୍ତ ମିଳନ, ଅବିଚ୍ଛେଦ୍ୟ, ଏକତ୍ରାବସ୍ଥାନ, ବ୍ୟାପ୍ତି ।

ଅତ୍ୟନ୍ତସୁକୁମାର—ପୁଂ. ବି. ( କ.ଧା ) କଦଳୀବୃକ୍ଷ, (ବି) ଯେ କଷ୍ଟସହନପାରେ । ସାତିଶୟ ମୃଦୁ ବା ନମ୍ର,ନିତାନ୍ତ ଅଳ୍ପ-ବୟସ୍କ, ଅତିଶିଶୁ ।

ଅତ୍ୟନ୍ତାଭାବ-ପୁଂ.ବି.(ଅତ୍ୟନ୍ତ + ଅଭାବ) ସମ୍ପୂର୍ଣ୍ଣଅଭାବ,ଚିରକାଳଅବର୍ତ୍ତମାନତା ।

ଅତ୍ୟନ୍ତିକ—ପୁଂ. ବି. (ଅତ୍ୟନ୍ତ + ଇକ) ଅତିଶୟ ଭ୍ରମଣକାରୀ, ଅତିନିକଟବର୍ତ୍ତୀ, ( ଅତି + ଅନ୍ତିକ ) ବହୁଦୂରବର୍ତ୍ତୀ, ଦୂରସ୍ଥ, (ସ୍ତ୍ରୀ) ଅତ୍ୟନ୍ତିକା, (ବି) ବହୁ-ଦୂରତ୍ୱ, ଅତିନୈକଟ୍ୟ ।

ଅତ୍ୟନ୍ତୀନ—ପୁଂ.ବିଂ.(ଅତ୍ୟନ୍ତ + ଈନ) ଦୂରଗାମୀ, ଅତିବେଗଗାମୀ ।

ଅତ୍ୟଭିସୃତ—ବି.(ଅତି + ଅଭି + ସୃ + କ.ତ) ଅତିନିକଟକୁ ଆସିଥିବା ।

ଅତ୍ୟମ୍ଳ—ବିଂ. (ଅତି + ଅମ୍ଳ) ଭାରି ଖଟା, (ବି) ଆମ୍ବୁଡ଼ା (ଗଛ ଓ ଫଳ),ତେନ୍ତୁଳି, ଟାଭା, ଲେମ୍ବୁପ୍ରଭୃତି ।

ଅତ୍ୟମ୍ଳପର୍ଣ୍ଣୀ-ବି.(ଅତ୍ୟମ୍ଳ + ପର୍ଣ୍ଣ + ଇନ୍) ବନ୍ୟବୀଜପୂର, ଟାଭାଲେମ୍ବୁ ଗଛ ।

ଅତ୍ୟମ୍ଳା—ବି. (ଅତ୍ୟମ୍ଳ + ଆ)ବନ୍ୟବୀଜ-ପୂର ।

ଅତ୍ୟୟ—ପୁଂ.ବି. (ଅତି + ଇ + ଭା.ଅ) ଅବସାନ, ଅପବ୍ୟବହାର, ବିନାଶ, ଧ୍ୱଂସ, ଦୋଷ, ଦଣ୍ଡ, ଅଭାବ, ମୃତ୍ୟୁ, ଅପଚୟ, ବିଳମ୍ବ,କୃଚ୍ଛ୍ର, ଦୁଃଖ, ଲୋପ ।

ଅତ୍ୟସ୍ମିତ—ବିଂ.(ଅତ୍ୟସ୍ତ + ଇତ) ମୃତ, ପତିତ, ଅତିକ୍ରାନ୍ତ, (ସ୍ତ୍ରୀ) ଅତ୍ୟସ୍ମିତା ।
ଅତ୍ୟର୍ଥ—କ୍ଳୀ. ବ. (୬ତତ୍ପୁ) ଅତ୍ୟଧିକ, ବହୁତର, (ବିଂ) ଅତିମାତ୍ର, ଅତିଶୟ, ତ୍ୟକ୍ତ (ବିଂର ବିଂ) ଅତ୍ୟଧିକରୂପେ ।
ଅତ୍ୟଳ୍ପ—ବିଂ.(ଅତି + ଅଳ୍ପ)ଯତ୍କଂଶ୍ଚିତ୍, ସଂଖ୍ୟାରେ କମ୍,ନିତାନ୍ତକମ୍,ଅତିସୂକ୍ଷ୍ମ ।
ଅତ୍ୟଶନ—କ୍ଳୀ. ବ. ( ଅତ + ଅଶନ ) ଅତି ଭୋଜନ, ଅତିରିକ୍ତ ଭୋଜନ ।
ଅତ୍ୟଷ୍ଟି—ସ୍ତ୍ରୀ. ବ. ସତର ଅକ୍ଷରବିଶିଷ୍ଟ ଛନ୍ଦୋବିଶେଷ ।
ଅତ୍ୟହ୍ନ—ବିଂ. (ଅତି + ଅହନ୍) ଏକଦିନରୁ ଅଧିକକାଳସ୍ଥାୟୀ ।
ଅତ୍ୟାକାର—ପୁଂ.ବିଂ.(ଅତି + ଆକାର) ଅସୁନ୍ଦର,କଦାକାର,(ସ୍ତ୍ରୀ) ଅତ୍ୟାକାରା, (ବି.) ପ୍ରଚଣ୍ଡଶରୀର, ନିନ୍ଦା,ଘୃଣା,ତିରସ୍କାର, ଗାଳି ।
ଅତ୍ୟାଗ—ପୁଂ. ବ. (ଅ + ତ୍ୟଜ + ଅ) ତ୍ୟାଗାଭାବ, ରଖା ।
ଅତ୍ୟାଗସହନ—ବିଂ.(ନ.ତତ୍ପୁ)ବିଚ୍ଛେଦାସହିଷ୍ଣୁ, ଯେ ତ୍ୟାଗ ସହି ନ ପାରେ ।
ଅତ୍ୟାଚାର—ପୁଂ. ବିଂ. ( ଅତ + ଚର + ଅ)ସଦାଚାର ବହିର୍ଭୂତ, ସଦାଚାରବିରୁଦ୍ଧ କର୍ମକାରୀ, (ସ୍ତ୍ରୀ) ଅତ୍ୟାଚାରିଣୀ, (ବି) ଅସଦାଚରଣ, ଅଭଦ୍ରଆଚରଣ, ଦୌରାତ୍ମ୍ୟ, ଅନ୍ୟାଯ୍ୟ ।
ଅତ୍ୟାଚାରିତ—ପୁଂ.ବିଂ. (ଅତ୍ୟାଚାର + ଣିଂ.ଇତ ) ଯାହା ପ୍ରତି ଅତ୍ୟାଚାର କରାଯାଇଥାଏ, ଉତ୍ପୀଡ଼ିତ, (ସ୍ତ୍ରୀ)—ଅତ୍ୟାଚାରିତା ।
ଅତ୍ୟାଚାରୀ—ପୁଂ. ବିଂ. (ଅତି + ଆଚାର + ଇନ୍)ଦୁରାଚାରୀ, ଦୁରାତ୍ମା, ଉତ୍ପୀଡ଼କ (ସ୍ତ୍ରୀ) ଅତ୍ୟାଚାରିଣୀ ।
ଅତ୍ୟାଜ୍ୟ—ବିଂ.(ନ.ତତ୍ପୁ)ଯାହା ତ୍ୟାଗକରିବା ଉଚିତ ନୁହେ, ତ୍ୟାଗାନର୍ହ, ଅତ୍ୟଜନୀୟ (ସ୍ତ୍ରୀ) ଅତ୍ୟାଜ୍ୟା ।
ଅତ୍ୟାଦାନ—ପୁଂ. ବ. (ଅତି + ଆ + ଦାନ + ଅ ) ଅତ୍ୟନ୍ତ ଆଦାନ ।
ଅତ୍ୟାଦିତ୍ୟ—ବିଂ. ( ଅତି + ଆଦିତ୍ୟ) ତେଜରେ ସୂର୍ଯ୍ୟଙ୍କୁ ବଳିଥିବା ।
ଅତ୍ୟାଧାନ—କ୍ଳୀ. ବ. (ଅତ + ଆ + ଧା + ଭା.ଅନ)ଉପରେ ସ୍ଥାପନ, ପ୍ରତାରଣ, ଯଜ୍ଞାଗ୍ନିସ୍ଥାପନ ବା ରକ୍ଷଣରେ ହେଳା, ନିୟମଲଙ୍ଘନ (ବିଂ) ଅତ୍ୟାହୃତ ।
ଅତ୍ୟାନନ୍ଦା—ବିଂ. ( ଅତ + ଆନନ୍ଦ + ଆ) ମୈଥୁନ ସୁଖ ପ୍ରତି ଅଯଥା ବିରାଗ ।
ଅତ୍ୟାୟ—ପୁଂ. ବ. (ଅତ + ଆୟ) ଅତ୍ୟନ୍ତଲାଭ, ( ଅତ + ଇ + ଭା.ଅ ) ସୀମା ଅତିକ୍ରମ, (ସମସ୍ତ) ଅତକ୍ରମଣ, ଲଙ୍ଘନ ।
ଅତ୍ୟାୟତ—ବିଂ. ଅତ + ଆୟତ)ଅତିବିସ୍ତୃତ, (ସ୍ତ୍ରୀ) ଅତ୍ୟାୟତା ।
ଅତ୍ୟାୟୁ—କ୍ଳୀ: ବ. ( ଅତ + ଆ + ଯା. + ଉ) ଯଜ୍ଞୀୟ ପାତ୍ରବିଶେଷ ।
ଅତ୍ୟାରୂଢ଼—ବିଂ.(ଅତ + ଆ + ରୁହ + କ.ତ) ଅତ୍ୟନ୍ତ ବଢ଼ିଥିବା, ଅତଶୟ ବୃଦ୍ଧ, ବି. ( ଭା. ତ ) ଅତଉଚ୍ଚ ସ୍ଥାନ, ଅତଶୟ ବୃଦ୍ଧି, ଅତ୍ୟନ୍ତ ଉଚ୍ଚତା, ଅତ ବୃଦ୍ଧବ୍ୟକ୍ତି ।
ଅତ୍ୟାରୂଢ଼ି—ସ୍ତ୍ରୀ. ବ. (ଅତ + ଆ + ରୁହ + ଭା.ତ ) ଅତ୍ୟନ୍ତ ଉଚ୍ଚତା, ଅତବୃଦ୍ଧି, ଅତଶୟ ଆରୋହଣ, ଅତଶୟ ବିଖ୍ୟାତ, ସାତିଶୟ ଉନ୍ନତ ।
ଅତ୍ୟାଲ—ପୁଂ. ବ. (ଅତ + ଆ + ଅଲ୍ + କ.ଅ )ରକ୍ତଚିତା,ନାଲିଚିତା ଗୁଳ୍ମ ।
ଅତ୍ୟାବଶ୍ୟକ—ବିଂ.ଅତ ପ୍ରୟୋଜନୀୟ, ଅତଶୟ ଦରକାରୀ.(ସ୍ତ୍ରୀ) ଅତ୍ୟାବଶ୍ୟକା
ଅତ୍ୟାଶା—ସ୍ତ୍ରୀ. ବ. ଅତଶୟ ଆଶା, ଅତ୍ୟନ୍ତ ସ୍ପୃହା, ଅନୁଚିତ ପ୍ରତ୍ୟାଶା, ଦୁରାଶା ।
ଅତ୍ୟାଶ୍ଚର୍ଯ୍ୟ—ବିଂ.ଅତଶୟ ବିସ୍ମୟଜନକ, ଅତ୍ୟଦ୍ଭୁତ, (ସ୍ତ୍ରୀ) ଅତ୍ୟାଶ୍ଚର୍ଯ୍ୟା ।
ଅତ୍ୟାଶ୍ରମ—ପୁଂ.ବିଂ. ସନ୍ନ୍ୟାସୀ, ସକଳଆଶ୍ରମତ୍ୟାଗୀ (ବି.) ଉତ୍କୃଷ୍ଟ ଆଶ୍ରମ, ସନ୍ନ୍ୟାସ ।
ଅତ୍ୟାସକ୍ତ—ସ୍ତ୍ରୀ. ବ. ଅତ୍ୟନ୍ତ ଅନୁରକ୍ତ, ନିତାନ୍ତ ଆସକ୍ତ, ଅଭିନିବେଶ ।
ଅତ୍ୟାସନ୍ନ—ବିଂ. (ଅତ + ଆସନ୍ନ) ଅତନିକଟବର୍ତ୍ତୀ ।
ଅତ୍ୟାହାର—ବ. ( ଅତ + ଆହାର ) ଅଧିକ ଭୋଜନ, ପେଟପୂରଣ ।
ଅତ୍ୟାହାରୀ—ପୁଂ. ବ. (ଅତ + ଆ + ହୃ + କ,ଇନ) ଅତଭୋଜୀ, ଯେ ଅପରମିତ ଭୋଜନକରେ,ପେଟୁ,(ସ୍ତ୍ରୀ)ଅତ୍ୟାହାରିଣୀ,
ଅତ୍ୟାହିତ—କ୍ଳୀ. ବ. (ଅତ + ଆ + ଧା + ଭା ତ) ଅତଶୟଭୟ, ଜୀବନଆଶାରହିତ ସାହସିକ କର୍ମ, ଅଶୁଭ,ଅମଙ୍ଗଳ, ଗ୍ରାହ୍ୟସୋଚତ କର୍ମ, (ଣିଂ.ତ) ଉପରେ ସ୍ଥାପିତ, ପ୍ରତାରିତ, ଲଙ୍ଘିତ ।
ଅତ୍ୟୁକ୍ତି—ସ୍ତ୍ରୀ.ବି. (ଅତ + ଉକ୍ତି) ଅସମ୍ଭବ ଉକ୍ତି, ଅନ୍ୟାଯ୍ୟକଥା, ଅତରିକ୍ତବର୍ଣ୍ଣନା ଆରୋପିତ କଥନ. ଅଳଙ୍କାରବିଶେଷ ।
ଅତ୍ୟୁଗ୍ର—ବିଂ.(ଅତ + ଉଗ୍ର)ଅତଭୟଙ୍କର, ଅତତୀବ୍ର, ଅତଅସହ୍ୟ, ଅତରାଗ, (ବି.) ହିଙ୍ଗୁ ।
ଅତ୍ୟୁଚ୍ଚୈଃ—କ୍ରି. ବିଂ. (ଅତ + ଉଚ୍ଚୈଃ) ଖୁବ୍ ପାଟିକରି, ଅତଉଚ୍ଚସ୍ୱରରେ ।
ଅତ୍ୟୁଚ୍ଛ୍ରିତ—ବିଂ. (ଅତ + ଉଚ୍ଛ୍ରିତ) ଅତ୍ୟନ୍ତ ଉନ୍ନତ ।
ଅତ୍ୟୁଜ୍ଜ୍ୱଳ—ବିଂ. ଅତଶୟ ଦୀପ୍ତିମାନ୍, (ସ୍ତ୍ରୀ) ଅତ୍ୟୁଜ୍ଜ୍ୱଳା ।
ଅତ୍ୟୁତ୍କଟ—ପୁଂ. ବ. ଅତଶୟଉଗ୍ର, ଅତଗୁରୁ, ନିଦାରୁଣ, (ସ୍ତ୍ରୀ) ଅତ୍ୟୁତ୍କଟା ।
ଅତ୍ୟୁତ୍କୃଷ୍ଟ—ବିଂ. ( ଅତ + ଉତ୍କୃଷ୍ଟ ) ଅତଉତ୍ତମ, ଖୁବ୍‌ଭଲ, (ସ୍ତ୍ରୀ)ଅତ୍ୟୁତ୍କୃଷ୍ଟା ।
ଅତ୍ୟୁତ୍ତମ—ବିଂ.(ଅତ + ଉତ୍ତମ) ଅତ୍ୟୁତ୍କୃଷ୍ଟ, ଖୁବ୍‌ଭଲ, (ସ୍ତ୍ରୀ) ଅତଉତ୍ତମା ।
ଅତ୍ୟୁଲ୍ବଣ—ବିଂ. ଅତମହାନ୍, ଅତଗୁରୁ, ଅତମାଂସଳ, (ସ୍ତ୍ରୀ) ଅତ୍ୟୁଲ୍ବଣା ।
ଅତ୍ୟୁଷ୍ଣ—ବିଂ. ଅତ୍ୟନ୍ତ ଗରମ, ଅତଶୟ ଉତ୍ତପ୍ତ (ସ୍ତ୍ରୀ) ଅତ୍ୟୁଷ୍ଣା ।
ଅତ୍ୟୁଧ୍ନୀ—ସ୍ତ୍ରୀ. ବିଂ. ( ଅତ + ଉଧସ୍ + ଈ ) କୁଣ୍ଡୋଧ୍ନୀ, ଯେଉଁ ଗାଈର ଅତବଡ଼ ପହ୍ଲା ଥାଏ ।
ଅତ୍ୟୂହ—ପୁଂ. ବ. ( ଅତ + ଉହ + କ.ଅ ) ମୟୂର, ଡାହୁକପକ୍ଷୀ, ଅତଶୟ ଗମ୍ଭୀରତର୍କ, ଅତରିକ୍ତ ବିସ୍ତାର ।

ଅତ୍ୟୂହା—ସ୍ତ୍ରୀ. ବ. ( ଅତ + ଊହ + ଅ + ଆ ) ମାଲୀଗଛ, ଶେଫାଳିକା, ଗଙ୍ଗଶିଉଳି, ଏକପ୍ରକାର ମଲ୍ଲୀଫୁଲ ଗଛ, ବିତର୍କ, ତର୍କାଭାବ ।

ଅତ୍ର—ଅବ୍ୟ, (ଇଦମ୍ + ତ୍ର) ଏଥିରେ, ଏବିଷୟରେ, ଏପ୍ରସଙ୍ଗରେ, ଏହିଠାରେ, ଏହିସମୟରେ ଗ୍ରା-ସର୍ବ(କଟକଆ)ଏହି ।

ଅତ୍ରତତ୍ର—ଅବ୍ୟ. (ଅତ୍ର + ତତ୍ର) ଏଠାରେ ଓ ସେଠାରେ, ( ଗ୍ରା ) ଅବ୍ୟ. ଯେଉଁସ୍ଥାନରେ ଇଚ୍ଛା ସେହିସ୍ଥାନରେ, ସବୁସ୍ଥାନରେ, ପ୍ରତ୍ୟେକ ସ୍ଥାନରେ ।

ଅତ୍ରତ୍ୟ—ବିଂ. (ଅତ୍ର + ତ୍ୟ) ଏ ସ୍ଥାନୀୟ, ଏ ସ୍ଥାନଜାତ, ଏ ଦେଶୀୟ, ଏ ସ୍ଥାନରେ ଥିବା ।

ଅତ୍ରପ—ପୁଂ. ବିଂ. ( ବ.ବ୍ରୀ ) ନିର୍ଲଜ, ଲଜ୍ଜ୍ୟାହୀନ, (ସ୍ତ୍ରୀ) ଅତ୍ରପା ।

ଅତ୍ରପିତରକରିବା—ଗ୍ରା. କ୍ରି. ଅତରପିତର (ଦେଖ) ।

ଅତ୍ରଭବତୀ—ସ୍ତ୍ରୀ. ବ. ( ଅତ୍ର + ଭବତ୍ + ଈ ) ପୂଜ୍ୟା, ମାନନୀୟା (ସ୍ତ୍ରୀ—ସର୍ବନାମ) ସ୍ତ୍ରୀ. ଏ ମହାଶୟା ।

ଅତ୍ରଭବାନ୍—ପୁଂ. ବିଂ. (ଅତ୍ର + ଭବତ୍) ପୂଜ୍ୟ, ଶ୍ଳାଘ୍ୟ, ମାନନୀୟ, (ସ୍ତ୍ରୀ) ଅତ୍ରଭବତୀ ।

ଅତ୍ରସ୍ତ—ପୁଂ. ବିଂ. (ଅ + ତ୍ରସ୍ + ତ) ଭୟରହିତ, ବ୍ୟସ୍ତତାରହିତ, ଅଭୀତ, (ସ୍ତ୍ରୀ) ଅତ୍ରସ୍ତା ।

ଅତ୍ରସ୍ଥ—ବିଂ. ( ଅତ୍ର + ସ୍ଥା + କ.ଅ ) ୭ତତ୍: ଏହିସ୍ଥାନରେ ସ୍ଥିତ, ଏଠାରେ ଥିବା, ଅତ୍ରତ୍ୟ ।

ଅତ୍ରାସ—ପୁଂ. ବିଂ. (ବ.ବ୍ରୀ) ଯାହାର ଭୟନାହିଁ (ବ, ନ. ତତ୍;ଭୟର ଅଭାବ, ନିର୍ଭୟ । [ ଅଶରଣ ।

ଅତ୍ରାହି—ଗ୍ରା. ବିଂ. ଅରକ୍ଷିତ, ନିଃସହାୟ,

ଅତ୍ରି—ପୁଂ. ବ. ( ଅଦ୍ + କ + ତ୍ରି ) ସପ୍ତର୍ଷିମଧ୍ୟରୁ ଜଣେ, ( ବିଂ ) ଗିଳା, ଯେ ବହୁତ ଖାଏ ବା ଗିଳେ ।

ଅତ୍ରିଜ—ପୁଂ.ବିଂ.(ଅତ୍ରି + ଜନ—କ.ଅ) ଚନ୍ଦ୍ର ।

ଅତ୍ରିଜାତ—ପୁଂ.ବ. (ଅତ୍ରି + ଜନ୍ + ତ) ୫ତତ୍; ଚନ୍ଦ୍ର, ( ନ. ତତ୍ ) ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଦ୍ୱିଜାତି ।

ଅତ୍ରିଦୃକ୍—ସ୍ତ୍ରୀ.ବ. (୬ତତ୍) ଅତ୍ରିନେତ୍ର, ଅତ୍ରିଋଷିଙ୍କ ଚକ୍ଷୁ ।

ଅତ୍ରିଦୃଗ୍‌ଜ—ପୁଂ. ବ. (ଅତ୍ରି + ଦୃଶ + ଗ୍‌ଜ = ଦୃଗ୍‌ଜ ଜନ୍ + କ.ଅ ) ଚନ୍ଦ୍ର ।

ଅତ୍ରିନେତ୍ରଜ—ପୁଂ. ବ. ( ଅତ୍ରି + ନେତ୍ର + ଜନ + କ.ଅ) ଚନ୍ଦ୍ର । [ ଚନ୍ଦ୍ର ।

ଅତ୍ରିନେତ୍ରପ୍ରସୂତ—ପୁଂ. ବ. ( ୫ ତତ୍ )

ଅତ୍ରିନେତ୍ରଭୂ—ପୁଂ. ବ. ( ଅତ୍ରି + ନେତ୍ର + ଭୂ + କ.କ୍ୱିପ୍) ଚନ୍ଦ୍ର, ଏକସଂଖ୍ୟା ।

ଅତ୍ରିପ୍ତି—ଗ୍ରା.ବ. (ଅ + ତୃପ୍ତି) ଅତୃପ୍ତି, ଅସନ୍ତୋଷ ।

ଅତ୍ରିପ୍ରଭବ—ପୁଂ. ବ. (ବ.ବ୍ରୀ) ଚନ୍ଦ୍ର ।

ଅତ୍ରିଭବ—ପୁଂ.ବ. (ଅତ୍ରି + ଭୂ + କ.ଅ) ଚନ୍ଦ୍ର ।

ଅତ୍ରିଭରଦ୍ୱାଜିକା—ସ୍ତ୍ରୀ. ବ ଅତ୍ରିଏବଂଭରଦ୍ୱାଜ ବଂଶର ସ୍ତ୍ରୀ ପୁରୁଷଙ୍କର ମିଳନ, ଅତ୍ରିଭରଦ୍ୱାଜ ବିବାହ ।

ଅତ୍ରିସଂହିତା—ସ୍ତ୍ରୀ.ବ. (କ.ଧା) ଅତ୍ରିଋଷିପ୍ରଣୀତ ସ୍ମୃତିଶାସ୍ତ୍ର । [ ଚମସ ।

ଅତ୍ସରୁକ୍—ସ୍ତ୍ରୀ.ବ. ଯଜ୍ଞୀୟ ପାତ୍ରବିଶେଷ

ଅଥ, ଅଥୋ—ଅବ୍ୟ. (ଅର୍ଥ + ଣ.ଅ) ଅନନ୍ତର, ଏଥିଉତ୍ତାରୁ, ପ୍ରଶ୍ନ, ଦୃଢ଼ତା, ଚନ୍ଦ୍ର, ଆରମ୍ଭ, ମଙ୍ଗଳ, ପ୍ରକରଣ, ବାକ୍ୟପ୍ରସ୍ତାବ-ପ୍ରବନ୍ଧ ବା ଗ୍ରନ୍ଥର ଆରମ୍ଭରେ ବ୍ୟବହୃତ ଅବ୍ୟୟ, ବିକଳ୍ପ, ସମୁଚ୍ଚୟ, ସଂଶୟ, ଅନୁଜ୍ଞା, ସାକଲ୍ୟ ।

ଅଥକ୍—ପ୍ରା.ସମ୍ଭୁ.ବିଂ. ଅତିଗଭୀର, ଅଥଳ, ଯେଉଁ ଜଳର ଥଳକୂଳ ପାଇ ହୁଏନାହିଁ

ଅଥକମ୍—ଅବ୍ୟ. ସ୍ୱୀକାରସୂଚକ ଶବ୍ଦ ।

ଅଥଚ—ଅବ୍ୟ, (ଅଥ + ଚ) ତଥାପି, କିନ୍ତୁ, ଆହୁରିମଧ୍ୟ, ପୁନଶ୍ଚ, ପୁଣି, ମଧ୍ୟ, କିନ୍ତୁ ମଧ୍ୟ ।

ଅଥଚେତ୍—ଅବ୍ୟ. (ଅଥ + ଚେତ୍) ଏବଂ ଯଦ୍ୟପି, ଯଦ୍ୟପିମଧ୍ୟ ।

ଅଥବା—ଅବ୍ୟ. (ଅଥ + ବା) କିମ୍ବା, ଅବା, ଅବାସମ୍ଭବତଃ, ନୋଚେତ୍, ପକ୍ଷାନ୍ତରେ, ଏ ଯଦି ନହୁଏ ତେବେ ଏହା ହେଉ ।

ଅଥୟ—ଗ୍ରା°.ବିଂ. (ଅ + ଥୟ) ଅସ୍ଥିର, ଚଞ୍ଚଳ, ଅନବସ୍ଥିତ, ଅବ୍ୟବସ୍ଥିତ, ଚପଳ, ଧୈର୍ଯ୍ୟହୀନ, ଉତ୍କଣ୍ଠିତ, ବ୍ୟାକୁଳିତ ।

ଅଥୟବିଥୟ—ଗ୍ରା.ବିଂ. ଅସ୍ତବ୍ୟସ୍ତ, ଅତ୍ୟନ୍ତ ବ୍ୟତିବ୍ୟସ୍ତ, ଅତ୍ୟନ୍ତଅଧୀର ।

ଅଥୟମନା—ଗ୍ରା.ପୁଂ. ଓ ସ୍ତ୍ରୀ.ବିଂ. ଅସ୍ଥିରମତି, ଚପଳମତି, ଉତ୍କଣ୍ଠିତ, ଅଧୀର, ବ୍ୟାକୁଳିତ ।

ଅଥର—ଗ୍ରା.ବିଂ. ନିଷ୍କମ୍ପ, ସ୍ପନ୍ଦନରହିତ, (ପ୍ରା.ଯାଜପୁର. ଅବ୍ୟ) ଏଥର ବର୍ତ୍ତମାନ

ଅଥରଥ(ଗ୍ରା)ରୁଆ—ଗ୍ରା.ପୁଂ.ବିଂ.ଅଥରପା, କମ୍ପମାନ, ଡରକୁଗ୍ରା, ଯେ ସାମାନ୍ୟ ଭୟ କଥାରେ ଥରେ ।

ଅଥରପା—ଗ୍ରା.ପୁଂ.ବିଂ(ଅସ୍ଥିର + ପାଦ) ଚଞ୍ଚଳ, ଅସ୍ଥିରପଦ, ଆଗପଛବିଗ୍ରହୀନ, ଅଖାଡ଼ୁଆ (ସ୍ତ୍ରୀ) ଅଥରପୀ ।

ଅଥରୁଆ—ଗ୍ରା.ବିଂ.ଯେ ଡରରେ ଥରଥର ହୁଏ ନାହିଁ, ନିର୍ଭୟ ।

ଅଥର୍ପା—ଗ୍ରା.ପୁଂ.ବିଂ.ଅଥରପା(ଦେଖ), ସ୍ତ୍ରୀ. ଅଥର୍ପୀ ।

ଅଥର୍ବ—ବ.(ଅଥ + ଋ + କ.ବନ୍ ) ଅଗ୍ନି ଓ ସୋମପୂଜକ ପୁରୋହିତ, ବ୍ରାହ୍ମଣ, ବ୍ରହ୍ମାଙ୍କ ମୁଖରୁ ଜାତ ଜ୍ୟେଷ୍ଠପ୍ରଜାପତି, ଚତୁର୍ଥବେଦ, ଶିବ, ମହାଦେବ, ବଶିଷ୍ଠ ଋଷି(ଗ୍ରା.ବିଂ)ଜରାଗ୍ରସ୍ତ, ସ୍ଥବିର, ବାର୍ଦ୍ଧକ୍ୟଜନିତଅସମର୍ଥ ବା ଚଳବୁଲକରିବାରେ ଅସମର୍ଥ ।

ଅଥର୍ବଣ—ପୁଂ ବ.(ଅଥର୍ବନ୍ + ଅ) ଶିବ, ଅଥର୍ବବେଦ ଜାଣିଥିବା ବ୍ୟକ୍ତି, ଦଧୀଚ ଋଷି ।

ଅଥର୍ବଣି—ପୁଂ. ବ. ଅଥର୍ବବେଦଜ୍ଞ ବ୍ରାହ୍ମଣ ପୁରୋହିତ, କୌଣସି ବଂଶର ନିର୍ଦ୍ଦିଷ୍ଟ ପୁରୋହିତ ।

ଅଥର୍ବବିତ୍—ପୁଂ. ବିଂ. (ଅଥର୍ବ + ବିଦ୍ + କ.କ୍ୱିପ୍) ଅଥର୍ବବେଦଜ୍ଞ (ବ୍ରାହ୍ମଣ)

ଅଥର୍ବବେଦ—ବ. (ଅଥର୍ବନ୍ + ବେଦ) ଅଥର୍ବବେଦ, ଚତୁର୍ଥବେଦ ।

**ଅଥର୍ବଶିଖା**—ସ୍ତ୍ରୀ.ବି. ଅଥର୍ବବେଦାନ୍ତର୍ଗତ ଉପନିଷଦ୍‌ବିଶେଷ ।

**ଅଥର୍ବଶିରସ୍**—କ୍ଲୀ. ବି. ବ୍ରହ୍ମବିଦ୍ୟାପ୍ରତିପାଦକ ଉପନିଷଦ୍‌ବିଶେଷ ।

**ଅଥର୍ବା**—ପୁଂ.ବି.ଅଥର୍ବନାମକଋଷିବିଶେଷ, ବେଦର ବ୍ରାହ୍ମଣଭାଗ । [ଋଷି ।

**ଅଥର୍ବାଙ୍ଗିରସ**-ପୁଂ.ବି.ଅଥର୍ବ ଓ ଅଙ୍ଗିରସ

**ଅଥର୍ବାଣ**—ବି. (ଅଥର୍ବନ୍ + ଅ) ଅଥର୍ବ ବେଦ, ଅଥର୍ବବେଦୋକ୍ତ କ୍ରିୟାକାଣ୍ଡ ।

**ଅଥର୍ବାଣି**—ପୁଂ. ବି. (ଅଥର୍ବନ୍ + ଇ) ଅଥର୍ବବେଦପାରଗ ବ୍ରାହ୍ମଣ, କୌଣସି ବଂଶର ନିର୍ଦ୍ଦିଷ୍ଟ ପୁରୋହିତ ।

**ଅଥର୍ବାଧିପ**—ପୁଂ.ବି. ( ୬ତତ୍ ) ଅଥର୍ବ ବେଦର ଅଧିପତି ବୁଧଗ୍ରହ ।

**ଅଥର୍ବାଧିପ**—ପୁଂ.ବି. (୬ତତ୍) ଅଥର୍ବବେଦର ଅଧିପତି ବୁଧଗ୍ରହ ।

**ଅଥର୍ବୀ**—ସ୍ତ୍ରୀ.ବିଂ.ଯେ ହିଂସା କରେନାହିଁ ।

**ଅଥଲ(ତ)ଅଳ**—ଗ୍ରା. ବିଂ.ଅଥଲ, ଯେଉଁ ଜଳଭାଗରେ ସ୍ଥାନେ ସ୍ଥାନେ ତଳକୁ ଗୋଡ଼ପାଏ ଓ ସ୍ଥାନେ ସ୍ଥାନେ ଗୋଡ଼ ପାଏ ନାହିଁ ।

**ଅଥା**—ଗ୍ରା.ବିଂ.କ୍ଲାନ୍ତ,ଅବସନ୍ନ,(ବି)କ୍ଲାନ୍ତି, ଅବସାଦ ଯଥା;—ମୁଁ ବୁଲି ବୁଲି ଅଥା ହେଲିଣି ।

**ଅଥାଇ**—ଗ୍ରା ବିଂ.,ଅସ୍ଥାୟୀ,ଅଚିରସ୍ଥାୟୀ ।

**ଅଥାଇତ୍**—ଗ୍ରା. ବିଂ. ଅଥାତା (ଦେଖ) (ବି) ଅସ୍ଥାୟିତ୍ୱ ।

**ଅଥାତା**—ଗ୍ରା.ପୁଂ.ସ୍ତ୍ରୀ.ବିଂ.(ସଂ.ଅସ୍ଥାତା) ନିରାଶ୍ରୟ, ଆଶ୍ରୟବିହୀନ, ଗୃହହୀନ, ଯାହାର ରହିବାର ସ୍ଥାନ ନାହିଁ, ଅରକ୍ଷିତ, ବେମୁରବି଼ଆ, ଯାହାର କେହି ଯତ୍ନ ବା ତତ୍ତ୍ୱ ନେବାକୁ ନାହିଁ, ଯେଉଁଠାରେ କେହି ଜଗୁଆଳ ନାହିଁ ।

**ଅଥାନ**—ଗ୍ରା. ବି. ଅସ୍ଥାନ, ମନ୍ଦସ୍ଥାନ, ଅଯୋଗ୍ୟସ୍ଥାନ, ଦେହର ମର୍ମସ୍ଥାନ ଓ ଗୁପ୍ତସ୍ଥାନ,ଅସୁବିଧାଜନକସ୍ଥାନ,(ଗ୍ରା.ବିଂ) ସ୍ଥାନାନ୍ତରିତ,ଆଶ୍ରୟହୀନ,ଗୃହଶୂନ୍ୟ ।

**ଅଥାନନ୍ତର**—ଅବ୍ୟ. (ଅଥ + ଅନନ୍ତର) ବର୍ତ୍ତମାନ ।

ଅଥାନଫାଙ୍ଗୁଲା—ଗ୍ରା.ପୁଂ.ବି.ଯେଉଁବ୍ୟକ୍ତି ଜିନିସପତ୍ର ଅସ୍ଥାନରେରଖେ ବା ପକାଏ, ଗଚ୍ଛିତିଆର୍ , ଅସାବଧାନ (ବ୍ୟକ୍ତି) ।

ଅଥାନବାଉଳା—ଗ୍ରା.ପୁଂ.ବିଂ.ଯେଉଁ ବ୍ୟକ୍ତି ଥାନକେ ରଖି ଥାନକେ ଖୋଜେ, ବିସ୍ମରଣଶୀଳ, ଭୋଳା, କାର୍ଯ୍ୟକ୍ରମରେ ଶୃଙ୍ଖଳାହୀନ,ଅଥାନଫାଙ୍ଗୁଲା (ଦେଖ) ।

ଅଥା (ନଥା)ନୀ—ଗ୍ରା. ବିଂ. ଯେଉଁ ବ୍ୟକ୍ତି କୌଣସି ସ୍ଥାନର ସ୍ଥାୟୀଅଧିବାସୀନୁହେ, ଅସ୍ଥାନୀୟ, ଯେଉଁ ବ୍ୟକ୍ତି ଏକସ୍ଥାନରେ ଚିରସ୍ଥାୟୀରୂପେ ବାସ କରେ ନାହିଁ, ଯାହାର ସ୍ଥାୟୀ ଘର ନାହିଁ, ଗୃହଶୂନ୍ୟ, ଅଘରିଆ, ଯେ ସତତ ଆପଣା ବାସସ୍ଥାନକୁ ପରିବର୍ତ୍ତନ କରେ, ଯାଯାବର, ମନ୍ଦ ଅଞ୍ଚଳର ଅଧିବାସୀ ।

ଅଥାର—ଗ୍ରା.ବି ନିଆଁ ଉପରେ ବସା ଯାଇଥିବା ପାଣିହାଣ୍ଡି ମୁହଁରେ କନା ବାନ୍ଧି କନାଉପରେ ପିଠଉ ଲଦି ପିଠା ତିଆର କରିବା ପ୍ରଣାଳୀ, ପିଠାକୁ ବାମ୍ପଦ୍ୱାରା ସିଝାଇବାପାଇଁ ମୁହଁରେ କନା ବନ୍ଧା ହୋଇଥିବା,ଅର୍ଦ୍ଧଜଳପୂର୍ଣ୍ଣ ହାଣ୍ଡି ।

**ଅଥାରବସାଇବା**—ଗ୍ରା.କ୍ରି. ଅଥାର ପିଠା କରିବା ପାଇଁ ଜଳଦ୍ୱାରା ଅର୍ଦ୍ଧପୂର୍ଣ୍ଣହାଣ୍ଡି ମୁହଁରେ ଅଥାର କନା ବାନ୍ଧି ହାଣ୍ଡିକୁ ଚୁଲ୍ଲୀ ଉପରେ ସ୍ଥାପନ କରିବା ।

ଅଥାରସିଝା—ଗ୍ରା.ବି.ଅଥାର ପ୍ରଣାଳୀରେ ପିଠା ବା ବଡ଼ମାଛ ବା ମାଂସଆଦି ସିଝାଇବା, (ଗ୍ରା.ବିଂ.) ଅଥାର ପ୍ରଣାଳୀରେ ସିଝା ଯାଇଥିବା (ପିଠା,ମାଛ ଆଦି) ।

ଅଥିତ—ଗ୍ରା.ବିଂ. (ସଂ-ଅ + ସ୍ଥିତ) ଯେ-କୌଣସି ସ୍ଥାନ ଅଧିକାର କରେନାହିଁ ।

ଅଥିର—ଗ୍ରା.ପୁଂ.ବିଂ.(ସଂ-ଅସ୍ଥିର)ଅସ୍ଥିର, ଅଧୀର, ଚପଳ, ଅନିଶ୍ଚିତ, ଉତ୍କଣ୍ଠିତ, ଦୁଃଖିତ ।

ଅଥୁରି—ଗ୍ରା.ବି. ମାଟିର କ୍ଷୁଦ୍ରପାତ୍ର ବା ପତୁଲି, ମାଟିବାସନ, ଗୃହର ସ୍ୱଳ୍ପ ମୂଲ୍ୟର ଚଳନ୍ତି ବସ୍ତୁ ।

ଅଦ୍—(ସଂ-ଧାତୁ) ଖାଇବା, ଗିଳିଦେବା ବିନାଶ କରିବା ।

ଅଦଉତ୍—ଯା.ବି. ବୈର ଶତ୍ରୁତା, ପ୍ରତିହିଂସା, ଶତ୍ରୁ, (ବିଂ) ଶତ୍ରୁଭାପନ୍ନ, ପ୍ରତିହିଂସାପରାୟଣ ।

ଅଦଉତ୍‌ସାଧିବା—ଗ୍ରା.କ୍ରି. ଅକସ୍‌ସାଧିବା, ଦାଉନେବା, ପ୍ରତିହିଂସାଚରିତାର୍ଥକରିବା

ଅଦଉତି—ଯା. ବି. ଓ ବିଂ. **ଅଦଉତ୍**, ଶତ୍ରୁତା, ପ୍ରତିହିଂସା, (ବିଂ) **ମନେ ମନେ** ଅକସରଖିଥିବା, ଶତ୍ରୁଭାପନ୍ନ ।

ଅଦଉତିଆ—ଗ୍ରା. ବିଂ. ପ୍ରତିହିଂସାପରାୟଣ ବ୍ୟକ୍ତି,ପ୍ରତିହିଂସାପୂର୍ଣ୍ଣ (ବିଷୟ) ।

ଅଦଂଷ୍ଟ୍ର—ପୁଂ. ବିଂ. (ବ.ବ୍ରୀ) ଦନ୍ତହୀନ (ବି.)ବିଷଦନ୍ତହୀନ ସର୍ପ,(ସ୍ତ୍ରୀ)ଅଦ୍ରାଂଷ୍ଟ୍ରା ।

ଅଦକ୍ଷ—ବିଂ. ( ନ.ତତ୍ ) ଦକ୍ଷତାହୀନ, ଅପଟୁ, ଅନିପୁଣ, ଅକୁଶଳ, ଅନାଡ଼ି ।

ଅଦକ୍ଷିଣ—ବିଂ. (ନ.ତତ୍)ବାମ, ଉତ୍ତର ସାଦାସିଦା, ନିଷ୍କପଟ, ନିର୍ବୋଧ, ପ୍ରତିକୂଳ, ଅକର୍ମଣ୍ୟ, ଅଚତୁର, (ବ.ବ୍ରୀ) ଦକ୍ଷିଣାଶୂନ୍ୟ (ବୈଦିକ କର୍ମାଦି) ।

ଅଦକ୍ଷିଣୀୟ—ପୁଂ.ବିଂ.(ଅ + ଦକ୍ଷିଣା) + ଈୟ ) ଦକ୍ଷିଣାପାଇବାର ଅଯୋଗ୍ୟ (ବ୍ରାହ୍ମଣ) ।

ଅଦକ୍ଷିଣ୍ୟ—ପୁଂ. ବିଂ.(ଅ + ଦକ୍ଷିଣା + ଯ) ଦକ୍ଷିଣା ପାଇବାର ଅଯୋଗ୍ୟ (ବ୍ରାହ୍ମଣ) ।

ଅଦଗ୍ଧ—ତ୍ରି.ବିଂ.(ଅ + ଦଗ୍ଧ) ନ.ତତ୍; ପୋଡ଼ାଯାଇ ନ ଥିବା, ଶାସ୍ତ୍ରବିଧି ଅନୁସାରେ ଅଗ୍ନିସଂସ୍କାର ହୋଇ ନ ଥିବା ।

ଅଦଛ—ଗ୍ରା.ବି. ( ସଂ-ଅଯଶଃ ) ଅଯଶଃ, ଅକୀର୍ତ୍ତି, ଦୁର୍ନାମ, ନିନ୍ଦା, ଅମଙ୍ଗଳ ।

ଅଦଛିଆ—ଗ୍ରା.ବିଂ. ଅଯଶସ୍କ, ଯଶୋହୀନ, ବିଶେଷ ଦୁର୍ନାମଯୁକ୍ତ (ବ୍ୟକ୍ତି), ଅଯଶସ୍କର (କର୍ମ , ଅମଙ୍ଗୁଳିଆ, ଯେଉଁ ଲୋକ ହାତଦେବାଦ୍ୱାରା କାର୍ଯ୍ୟ ବିଫଳ ହୁଏ ।

ଅଦଢ଼—ଗ୍ରା. ବିଂ. (ସଂ.ଅଦୃଢ଼) ଅଶକ୍ତ, ଅଦୃଢ଼, ନିର୍ବଳ, ଦଦରା, ଭଙ୍ଗା, ଜୀର୍ଣ୍ଣ, ଅନୂତନ, ଠାଣ ନ ଥିବା, (ବିପରୀତ-ଦଢ଼ ) ।

ଅଦଣ୍ଡ—ବିଂ.(ବ.ବ୍ରୀ) ଅଦଣ୍ଡ୍ୟ, ଦଣ୍ଡରୁ-ମୁକ୍ତ, କରରହିତ,ନିଷ୍କର,(ବି.ନ.ତତ୍); ଦଣ୍ଡରୁ ଅବ୍ୟାହତ ।

ଅଦଣ୍ଡନୀୟ—ପୁଂ.ବିଂ (ଅ + ଦଣ୍ଡନୀୟ) ଅଦଣ୍ଡ୍ୟ (ଦେଖ) ।

ଅଦଣ୍ଡ୍ୟ--ପୁଂ.ବିଂ.(ଅ + ଦଣ୍ଡ + ଯ)ଦଣ୍ଡର ଅଯୋଗ୍ୟ, ନିରପରାଧ, ଯାହାକୁ ଦଣ୍ଡରୁ ମୁକ୍ତି ଦିଆଯାଇଅଛି, ଯେ ଦୋଷକଲେ ମଧ୍ୟ ଦଣ୍ଡପାଇବନାହିଁ ବୋଲି ରାଜାଙ୍କର ବା ଶାସ୍ତ୍ରର ଆଦେଶ ଅଛି ।

ଅଦନ୍ତ—ପୁଂ.ବିଂ.(ବ.ବ୍ରୀ.)ଦନ୍ତହୀନ.ଦନ୍ତ ନ ଥିବା, (ଯା.ବି)ନଗଦଧନ,ହାତରେ-ଥିବା ଟଙ୍କା, (ବିଂ) ନଗଦ,ଅଭଙ୍ଗାଟଙ୍କା ଥିବା,(କ୍ରି.ବିଂ.)ନଗଦାନଗଦ, ସେକ୍-ଠୋକ୍ ।

ଅଦତ୍ତ—ପୁଂ. ବିଂ.( ଅ + ଦତ୍ତ ) ଯାହା-ଦିଆଯାଇ ନାହିଁ, ଅନ୍ୟାୟରୂପେ ଦତ୍ତ, ଯାହାକୁ ଅନ୍ୟ ସଙ୍ଗେ ବିବାହ ଦିଆ-ଯାଇନାହିଁ, ଯେ ଦାନ କରି ନାହିଁ, (ବି)ବେଆଇନ୍ ଦାନ୍ ।

ଅଦତ୍ତପୂର୍ବା—ସ୍ତ୍ରୀ. ବିଂ. (ଅ + ଦତ୍ତପୂର୍ବା) ଯେଉଁକନ୍ୟା ବାଗ୍‌ଦତ୍ତା ହୋଇନାହିଁ, ଯେଉଁ କନ୍ୟାର ମହାପ୍ରସାଦନିର୍ବନ୍ଧ ସମ୍ପାଦିତ ହୋଇନାହିଁ ।

ଅଦତ୍ତା—ସ୍ତ୍ରୀ.ବିଂ. ଅବିବାହିତା, ଯେଉଁ କନ୍ୟାକୁ ଦାନକରାହୋଇନାହିଁ,(ସ୍ତ୍ରୀ.ବି) ଅବିବାହିତକନ୍ୟା, ଅଭିଆଡ଼ିଝିଅ ।

ଅଦତ୍ତାଦାୟୀ--ପୁଂ.ବିଂ. ( ଅଦତ୍ତ + ଦା + କ.ଇନ୍ ) ଯେଉଁ ବ୍ୟକ୍ତି ଅସିଦ୍ଧଦାନ ଗ୍ରହଣ କରିଥାଏ (ବି) ଚୋର । [ ନୀୟ ।

ଅଦତ୍ର—ବିଂ.(ଅଦ + ଅତ୍ର)ଖାଦ୍ୟ, ଅଦ-

ଅଦନ—କ୍ଳୀ.ବି.(ଅଦ + ଭା.ଅନ) ଭକ୍ଷଣ, ଭୋଜନ,(ମିଂ.ଅନ)ଭକ୍ଷଣୀୟ ଦ୍ରବ୍ୟ ।

ଅଦନା—ଯା.ବିଂ.ତୁଚ୍ଛ,ହେୟ,ନୀଚ(ବ୍ୟକ୍ତି), ସାଧାରଣ,ମାମୁଲି(କର୍ମ),ଇତର (ବ୍ୟକ୍ତି,

ଅଦନୀୟ—ବିଂ. ( ଅଦ + ମିଂ + ଅନୀୟ ) ଭକ୍ଷଣୀୟ, ଆହାର୍ଯ୍ୟ, (ସ୍ତ୍ରୀ.) ଅଦନୀୟା ।

ଅଦନ୍ତ—ବିଂ.(ଅତ୍ + ଅନ୍ତ)ବ.ବ୍ରୀ;ଯେଉଁ ଶବ୍ଦଶେଷରେ'ଅ'ଥାଏ (ପୁଂ.ବିଂ.)ଦନ୍ତ-ହୀନ,ଯେଉଁ ଶିଶୁର ଦନ୍ତଉଠିନାହିଁ (ବି) ଜୋକ, ଦ୍ୱାଦଶଆଦିତ୍ୟଙ୍କମଧ୍ୟରୁ ଏକତମ ପୂଷା ।

ଅଦନ୍ତ୍ୟ—ବିଂ. (ଅ + ଦନ୍ତ୍ୟ) ଯେଉଁ ବର୍ଣ୍ଣ ଦନ୍ତ୍ୟ ନୁହେ, ଦନ୍ତରଅନିଷ୍ଟକର,ଦନ୍ତର ଅଯୋଗ୍ୟ, (ବି.) ଦନ୍ତହୀନତା ।

ଅଦମ୍ଭ—ପୁଂ. ବିଂ. (ଅ + ଦନ୍‌ଭ + ତ) ଅହିଂସିତ ।

ଅଦନ୍ଧାୟୁ—ପୁଂ.ବିଂ. (ଅ ଦନ୍ଧ + ଆ + ଯା + ଉ) ଅହିଂସାଯୁକ୍ତ । [ ଅଯୋଗ୍ୟ ।

ଅଦଭ—ବିଂ. (ଅ + ଦମ୍ଭ + ଅ) ହିଂସାର

ଅଦଭ୍ର—ବିଂ(ଅ + ଦଭ୍ର)ନ.ତତ୍;ଅନଳ୍ପ, ପ୍ରଚୁର, ବେଶି, ବହୁତ ।

ଅଦଭୁତ—ଗ୍ରା. ( ପଦ୍ୟ ) ବିଂ. ଅଦ୍ଭୁତ, ଆଶ୍ଚର୍ଯ୍ୟଜନକ, ଅପ୍ରତ୍ୟାଶିତ, ହଠାତ୍ ଘଟିବା, (କ୍ରି.ବିଂ) ଆଶ୍ଚର୍ଯ୍ୟଜନକରୂପେ, ଅପ୍ରତ୍ୟାଶିତରୂପେ, ହଠାତ୍ ।

ଅଦମ—ବି.(ଅ + ଦମ) ନ.ତତ୍. ଦମର ଅଭାବ, ଇନ୍ଦ୍ରିୟଦମନର ଅଭାବ ।

ଅଦମନୀୟ—ବିଂ.(ଅ + ଦମ + ମିଂ.ଅନୀୟ) ଅଦମ୍ୟ (ଦେଖ) ।

ଅଦମ୍ଭ—ପୁଂ. ବିଂ. (ଅ + ଦମ୍ଭ) ବ.ବ୍ରୀ; ପ୍ରତାରଣାଶୂନ୍ୟ, ନିଷ୍କପଟ, ଗର୍ବହୀନ, ସରଳ(ସ୍ତ୍ରୀ)ଅଦମ୍ଭା(ବି)ପ୍ରତାରଣାଶୂନ୍ୟତା, ନିଷ୍କପଟତା,ଗର୍ବହୀନତା,ଶିବ, (ଗ୍ରା.ବିଂ.) ଅଦୃଢ଼, ଅଟାଣୁଆ, ନିର୍ବଳ, ଧୈର୍ଯ୍ୟହୀନ, ଅସାହସିକ,(ବି.) ଅଧୈର୍ଯ୍ୟ, ନିର୍ବଳତା, ଅଦୃଢ଼ତା, ସାହସର ଅଭାବ ।

ଅଦମ୍ଭିଲା—ଗ୍ରା.ବିଂ. ଅଦମ୍ଭ (ଦେଖ) ।

ଅଦମ୍ଭୀ--ଗ୍ରା.ପୁଂ.ବିଂ.ସାହସହୀନ, ଭୀତ ।

ଅଦମ୍ୟ—ପୁଂ. ବିଂ. (ଅ + ଦମ + ମିଂ.ଯ) ଯାହା ଦମନ କରାଯାଇ ନ ପାରେ, ଦୁର୍ଦ୍ଦାନ୍ତ,ଅବଶୀଭୂତ, ଅପରାଜେୟ, (ବି) ତିନିବର୍ଷୀୟା ବାଛୁରି ।

ଅଦୟ--ପୁ.ବିଂ.(ବ ବ୍ରୀ )ନିର୍ଦ୍ଦୟ,ନିଷ୍ଠୁର ।

ଅଦରକାରି—ଗ୍ରା. ବିଂ. ଅନାବଶ୍ୟକ, ଅବ୍ୟବହାର୍ଯ୍ୟ ।

ଅଦର୍ବା—ଗ୍ରା. ବିଂ. ଯେଉଁ ବସ୍ତୁ କଞ୍ଚା ବା ଅସମ୍ପୂର୍ଣ୍ଣହୋଇ ତିଆରି ହୋଇଥାଏ, ଅର୍ଦ୍ଧକୃତ ।

ଅଦର୍ଶ—ବି.(ଅ + ଦୃଶ + ଅଧି.ଅ) ଅମା-ବସ୍ୟା,ଆଦର୍ଶ, ଦର୍ପଣ ।

ଅଦର୍ଶନ—କ୍ଳୀ.ବି. (ନ.ତତ୍)ଦର୍ଶନାଭାବ, ଅନ୍ତର୍ଦ୍ଧାନ,ବିନାଶ, ଲୋପ,ଦେଖାଚିହ୍ନ, ଅବହେଳା,(ବିଂ.ବ.ବ୍ରୀ.),ଦୃଷ୍ଟିରବହିର୍ଭୂତ, ଅଜ୍ଞାନ୍ଦ୍ରିୟ, ଗୁପ୍ତ, (ସ୍ତ୍ରୀ) ଅଦର୍ଶନା ।

ଅଦର୍ଶନୀୟ—ବିଂ.(ନ.ତତ୍)ଯାହାଦେଖିବା ଅନୁଚିତ ବା ଅଯୋଗ୍ୟ, ଅଦୃଶ୍ୟ ।

ଅଦଲ୍--ଯା.ବିଂ.ନାମଞ୍ଜୁର ବା ରଦ୍‌କରା-ଯାଇଥିବା (ଆଦେଶ) ଲଙ୍ଘିତ, ଅବଜ୍ଞାତ, (ପ୍ରା. ବାଲେଶ୍ୱର) ବି. ମରାହେବାଲୁଣ ଓଜନହୋଇ ଗୋଲାରେ ରଖାଗଲେ ତା ଉପରେ ମରାଯିବା ଛାପ ବା ଚିହ୍ନ ।

ଅଦଲ୍‌ଦାର୍—ପ୍ରା. (ବାଲେ) ବି. ଓଜନ ହୋଇ ଗୋଲାଜାତ ହେବା ଲୁଣରେ ଚିହ୍ନମାରିବା କର୍ମଚାରୀ ।

ଅଦଲ—ପୁଂ. ବି. ହିଜ୍ଜଳଗଛ ପତ୍ରଶୂନ୍ୟ ବୃକ୍ଷ,,(ବିଂ) ବ.ବ୍ରୀ; ଯାହାର ପତ୍ର ନାହିଁ, ଯାହାର ଅଂଶ ନାହିଁ ।

ଅଦଲବଦଲ--ଗ୍ରା.ବି.ହେର୍‌ଫେର, ପର-ସ୍ପର ପରିବର୍ତ୍ତନ,ବଦଳି,ବିନିମୟ, ଏକ ଦ୍ରବ୍ୟବଦଳରେ ଅନ୍ୟଦ୍ରବ୍ୟର ଦିଆନିଆ, ଓଲଟପାଲଟ,ଲେଉଟପାଉଟ,ବିପର୍ଯ୍ୟସ୍ତ-ହେବା ଅବସ୍ଥା, ପ୍ରତିଶୋଧ, ଯେଣ୍ଡାକୁ ତେଣ୍ଡା,ଯା.ବିଂ. (ଅଦାଲ୍‌ବଦାଲ୍) ପର-ସ୍ପର ସଙ୍ଗେ ବିନିମୟ କରା ଯାଇଥିବା, ବଦଳାଯାଇଥିବା, ବିପର୍ଯ୍ୟସ୍ତ ।

ଅଦଲା—ସ୍ତ୍ରୀ. ବିଂ. ଅଦଲର ସ୍ତ୍ରୀଲିଙ୍ଗ, (ବି)ଘିଅକୁଆଁରୀ(ଗ୍ରା.ବିଂ) ଦଳିତହୋଇ ନ ଥିବା ।

ଅଦଲିଇବା—ପ୍ରା. ସନ୍ଧ. କ୍ରି. ଆଉଜିବା, ଠେସଦେଇ ବସିବା ବା ଠିଆହେବା, (ପିଠି ଅଣ୍ଟା ଆଦି) ଢୋଲହେବା ।

ଅଦହନୀୟ—ବିଂ(ଅ + ଦହ + ମିଂ. ଅନୀୟ) ଦହନର ଅଯୋଗ୍ୟ, ଅଦାହ୍ୟ ।

ଅଦା—ଗ୍ରା.ବି.(ସଂ.ଆଦ୍ରକ) ଗୁଳ୍ମବିଶେଷ, ଏହାଅନେକ ଔଷଧରେ ବ୍ୟବହୃତହୁଏ ।

ଅଦା(ଡ଼ିଁ)ଉ—ଗ୍ରା. ବି. ଅସୁବିଧା, ଅଡ଼ଙ୍ଗା, ଅସୁବିଧାଜନକ ଅବସ୍ଥା, ଅସାମଞ୍ଜସ୍ୟ,

(ବି°) ଅସୁବିଧାଜନକ, ଅଖାଡୁଆ, ଅସାମଞ୍ଜସ୍ୟ, ସୁଯୋଗରହିତ (ଅବସ୍ଥା) ।

**ଅଦ(ଦା)ଉତ**--ଯା.ବି.ଅଦାଉତ୍,ଅହନା, ବେର,ଶତ୍ରୁତା,ଅବସ,ପ୍ରତିହିଂସା,(ବି°) ଶତ୍ରୁଭାପନ୍ନ,ପ୍ରତିହିଂସାପରାୟଣ ।

ଅଦା(ଗ)ଗୀ—ଗ୍ରା.ବି°. ଯାହିଁରେ କୌଣସି ଦାଗ ପଡ଼ିନାହିଁ, ଯେଉଁବ୍ୟକ୍ତି ଅପରାଧ-ପାଇଁ ପୂର୍ବେ କେବେ ସଜା ପାଇନାହିଁ, ନିଷ୍କଳଙ୍କ ।

ଅଦାତବ୍ୟ—ବି° (ଅ+ଦାତବ୍ୟ) ଯାହା ଦାନ କରାଯାଇ ନ ପାରେ, ଯାହା ଦେବାର ଅନୁପଯୁକ୍ତ ।

ଅଦାତା—ପୁଂ.ବି°.(ଅ+ଦା+ତୃ) ଯେ ଧନଦେବାପାଇଁ ଦାୟୀନୁହେଁ, କୃପଣ, ଯେ ଦାତାନୁହେଁ, (ସ୍ତ୍ରୀ) ଅଦାତ୍ରୀ ।

ଅଦାନ—କ୍ଲୀ. ବି. (ନ.ତତ୍) ଅନର୍ପଣ, ଅନ୍ୟାଯ୍ୟଦାନ,ନିକୃଷ୍ଟଦାନ, (ପୁଂ ବି°. ବ.ବ୍ରୀ)ଦାନହୀନ,କୃପଣ, ମଦଜଳଶୂନ୍ୟ (ହସ୍ତୀ) ।

ଅଦାନ୍ତ—ପୁଂ. ବି°. (ଅ+ଦମ୍+ଣିଚ୍ +ତ) ଅବିନୀତ, ଯେ ଇନ୍ଦ୍ରିୟ ଦମନ କରିନାହିଁ,ଅଶାସିତ,ଅଦମ୍ୟ,ତପଃକ୍ଲେଶୀ-ସହିଷ୍ଣୁ, (ସ୍ତ୍ରୀ) ଅଦାନ୍ତା ।

ଅଦାନ୍ତିଆ—ଗ୍ରା. ପୁଂ. ବି°. ଦନ୍ତହୀନ, ଯେଉଁ ଶିଶୁର ଦନ୍ତ ଉଠିନାହିଁ, ଯେଉଁ ଦାମୁଡ଼ି ଦାନ୍ତେଇ ନାହିଁ ।

ଅଦାଭ୍ୟ—ବି°.(ଅ+ଦମ୍ଭ+ଯ)ଅହିଂସ୍ୟ, ଅଦାମିଆଁ,ଅଦାମୀ, (ଗ୍ରା,ବି°)ମୂଲ୍ୟହୀନ ।

ଅଦାୟ—ପୁଂ.ବି°.(ବ.ବ୍ରୀ) ଯେ ପୈତୃକ ଅଂଶ ପାଇବାର ଯୋଗ୍ୟ ନୁହେଁ,ପତିତ ଜ୍ଞାତପ୍ରଭୃତି ।

ଅଦାୟାଦ—ପୁଂ.ବି°. (ବ.ବ୍ରୀ) ଅସପିଣ୍ଡ, ପତିତଜ୍ଞାତ, ଯେଉଁ ବ୍ୟକ୍ତିର କେହି ଉତ୍ତରାଧିକାରୀ ନାହିଁ, (ନ.ତତ୍) ଆଇନ୍ ଅନୁସାରେ ମୃତପିତାଦିବ୍ୟକ୍ତି ସମ୍ପତ୍ତିରେ ଯେଉଁ ବଂଶଧରପୁତ୍ର ଉତ୍ତରାଧିକାରୀ ହେଇ ନ ପାରେ ।

ଅଦାୟିକ---ବି°.(ବ.ବ୍ରୀ)ନାଓ୍ୱାରସୀ(ମାଲ) ଯାହାର କେହି ଉତ୍ତରାଧିକାରୀ ନାହିଁ, (ସ୍ତ୍ରୀ) ଅଦାୟିକା ।

ଅଦାୟୀ—ପୁଂ.ବି°. (ଅ+ଦାୟିନ) ଯେ ଦାୟୀ ନୁହେ ।

ଅଦାର—ପୁଂ.ବି. (ବ.ବ୍ରୀ) ଯାହାର ଭାର୍ଯ୍ୟା ନାହିଁ, ମୃତଦାର, ଅବିବାହିତ, (ଅ+ଦୃ+କ.ଅ)ଯେ ବିଦାରଣ କରେନାହିଁ ।

ଅଦାଲତ୍—ବି.(ଯା)ବିଚାରାଳୟ,କଚେରି, ଧର୍ମାଧିକରଣ, କୋର୍ଟ, ବିଚାରପତି ।

ଅଦାଲତକରିବା---ଗ୍ରା. କ୍ରି. କୌଣସିବ୍ୟକ୍ତି ନାମରେ ମକଦ୍ଦମା ଦାଏର୍ କରିବା ।

ଅଦାଲତିଆ—ଗ୍ରା.ବି°. ଅଦାଲତସମ୍ବନ୍ଧୀୟ ଅଦାଲତରେ ବ୍ୟବହୃତ, ଯେଉଁ ବ୍ୟକ୍ତି, ଅଦାଲତରେ ଚାକିରି ବା କର୍ମ କରେ, ଯେଉଁ ବ୍ୟକ୍ତି ମକଦ୍ଦମା ମାମଲା ଉପଲକ୍ଷ୍ୟରେ ବହୁତସମୟ କଚେରିକୁଯାଏ ।

ଅଦାଲତଭାଷା—ଗ୍ରା.ବି.ରାଜକୀୟ ଆଦେଶରେ କଚେରିର କାଗଜ ପତ୍ରରେ ବ୍ୟବହୃତ ଭାଷା, କଚରିଆଭାଷା, କଚରିଆନବଜ, ଭିନ୍ନ ଭିନ୍ନ ଭାଷାରୁ ଆସିଥିବା ଅନେକ ବୈଦେଶିକ ଶବ୍ଦ, ଯାହା କଚେରିରେ ଅର୍ଥାତ୍ ଦଲିଲ୍ ଦସ୍ତାବିଜ, ଅର୍ଜି, ଜବାବ ଫଇସଲା ନୋଟିସ ଇସ୍ତିହାର ଆଦିରେ ବ୍ୟବହୃତ ହୁଏ ।

ଅଦାସ—ପୁଂ. ବି. (ଅ+ଦାସ) ଯେ ଅନ୍ୟର ଦାସ ନୁହେ, ସ୍ୱାଧୀନ ବ୍ୟକ୍ତି ।

ଅଦାହନ—ବି°. (ବ.ବ୍ରୀ) ଯେଉଁଠାରେ ଶବ ଦାହ ହୁଏ ନାହିଁ ।

ଅଦାହ୍ୟ—ପୁଂ. ବି°. (ନ.ତତ୍) ଯାହା ପୋଡ଼ି ହୁଏନାହିଁ, ଯାହାକୁ ନିଆଁରେ ନାହିଁ, ଯାହାକୁ ଚିତାଗ୍ନିରେ ପୋଡ଼ିବା ଶାସ୍ତ୍ରବିରୁଦ୍ଧ ଅଟେ, (ପୁଂ.ବି) ପରମାତ୍ମା, (ସ୍ତ୍ରୀ) ଅଦାହ୍ୟା ।

ଅଦିଆ—ଗ୍ରା. ବି°. ଅଦାତା (ଦେଖ), ଅଦେୟ, ଅଦତ୍ତ, ବାଜିଗର କେଳାମାନେ ପାଖରେ ରଖିଥିବା କନାର କଣ୍ଢେଇ ।

ଅଦିତି—ବି. (ଅଦ+କ.ଇତି) ମୃତ୍ୟୁ, ପରମେଶ୍ୱର, (ଅ+ଦା+ଭା.ତି) ଦାନ କରିବାର ଶକ୍ତିହୀନତା, ନିଃସ୍ୱତା, (ଅ+ଦୋ+ର୍ମ.ତି) ପୃଥିବୀ (ବୈଦିକ) ଗାଭୀ, ଅନ୍ତରୀକ୍ଷ, ଶୂନ୍ୟ, ଅସୀମତା, ସ୍ୱାଧୀନତା, ନିରାପଦତା, ବିଶାଳତା, ଅପରନ୍ତ, ପ୍ରାଚୁର୍ଯ୍ୟ, । ପୂର୍ଣ୍ଣତା ଅଖଣ୍ଡତା, (ଅ+ଦିତି) ଦେବମାତା (ବୈଦିକ) ଦୁଗ୍ଧ, ବାକ୍ୟ, ସ୍ୱର୍ଗ ଓ ମର୍ତ୍ତ୍ୟ, ପୁନର୍ବସୁ ନକ୍ଷତ୍ର, (ବି°) (ବୈଦିକ) ସ୍ୱାଧୀନ, ଅବନ୍ଧ, ଅସୀମ, ଅଭଗ୍ନ, ପୂର୍ଣ୍ଣ, ସୁଖୀ ।

ଅଦିତିଜ—ପୁଂ. ବି. (ଅଦିତି+ଜନ+କ.ଅ) ଦେବଗଣ, ଅଦିତିଙ୍କ ପୁତ୍ର ।

ଅଦିତିନନ୍ଦନ—ପୁଂ. ବି.(୬ତତ୍) ଦେବଗଣ, ଅଦିତିଙ୍କର ପୁତ୍ର ।

ଅଦିନ—କ୍ଲୀ. ବି. (ନ.ତତ୍) ଅଶୁଭଦିନ, ଅପ୍ରଶସ୍ତ ଦିବସ, ଅଶୁଭକାଳ, ଦୁର୍ବସ୍ଥାର ସମୟ, ସଙ୍କଟକାଳ, ଅସମୟ, ଦୁର୍ଗତି. ଦୁରବସ୍ଥା ।

ଅଦିନିଆଁ—ଗ୍ରା. ବି°. ଅଦିନରେ ଜାତ ବା ପ୍ରକାଶିତ, ଯେଉଁ ବନ୍ଧୁ କେବେ କଦବା ଦେଖାଉଅନ୍ତି ।

ଅଦିମଗ—ଗ୍ରା.ବି. ଚଟ୍ଟଗ୍ରାମପାହାଡ଼ବାସୀ ଅସଭ୍ୟ ଜାତିବିଶେଷ ।

ଅଦିବ୍ୟ—ବି°. (ଅ+ଦିବ୍ୟ) ଯାହା-ସ୍ୱର୍ଗୀୟ ନୁହେ,(ଗ୍ରା.ବି°) ଯାହା ଦେବ-ଭାଷା (ସଂସ୍କୃତ) ନୁହେ, ପ୍ରାକୃତ, ଲୌକିକ ।

ଅଦୀକ୍ଷିତ—ବି°. (ନ.ତତ୍) ଯାହାର ଦୀକ୍ଷା ହୋଇନାହିଁ, ଅଗୃହୀତମନ୍ତ୍ର, ଅନୁପଦିଷ୍ଟ, ଅସଂସ୍କୃତ ନିୟମ ବା ସଂକଳ୍ପପୂର୍ବକ କର୍ମରେ ଅପ୍ରବୃତ୍ତ, (ସ୍ତ୍ରୀ) ଅଦୀକ୍ଷିତା ।

ଅଦୀନ—ପୁଂ.ବି°. (ଅ+ଦୀନ) ନ.ତତ୍; ଧନୀ, ଉଦାର,ମହାନ୍,ଅକାତର, ସୁଖୀ, ଦୀନତାରହିତ. ଅବିନୀତ, ଅଦୁଃଖିତ (ସ୍ତ୍ରୀ)ଅଦୀନା (ପୁଂ.ବି.)ପୁରୁରବାବଂଶୋଦ୍ଭବ ରାଜାବିଶେଷ ।

ଅଘାନନଗର—ପଞ୍ଜାବରେ ଗୋଟିଏ ମନୋହର ପୁର ।

ଅଘାନସତ୍ତ୍ୱ—ବିଂ. (ବ.ବ୍ରୀ) ମହାପ୍ରାଣ, ମହାଶୟ, ବଦାନ୍ୟ, ଧର୍ମଶୀଳ, (ସ୍ତ୍ରୀ) ଅଘାନସତ୍ତ୍ୱା ।

ଅଦାର୍ଘ—ବିଂ.(ନ.ତତ୍ପୁ)ଦୀର୍ଘ ନୁହେ,ଖର୍ବ, ସ୍ୱଳ୍ପ, ବାଙ୍ଗର, ଲମ୍ବା ନୁହେ, (ସ୍ତ୍ରୀ) ଅଦାର୍ଘା ।

ଅଦୁ—ଗ୍ରା. ବି. ହସ୍ତୀପଦ ବନ୍ଧନରଜ୍ଜୁ ବା ଶିଙ୍କୁଳି ।

ଅଦୁଃଖ ନବମୀ—ବି.ଭାଦ୍ର ଶୁକ୍ଳନବମୀ ।

ଅଦୁଷ୍ଟ—ପୁଂ.ବିଂ. (ଅ+ଦୁଷ୍ଟ) ଦୂଷଣରହିତ, ନିର୍ଦ୍ଦୋଷ, ଶୁଦ୍ଧ, ଠିକ୍, ସଜ୍ଜନ (ବ୍ୟକ୍ତି), ବାସ୍ତବିକ, ଯଥାର୍ଥ ।

ଅଦୂର—ବିଂ. (ଅ+ଦୂର) ନିକଟବର୍ତ୍ତୀ (ସ୍ଥାନ ବା ସମୟ), ନିକଟ, (ବି) ନୈକଟ୍ୟ, ପାଖ ।

ଅଦୂରଦର୍ଶୀ—ବିଂ. (ଅ+ଦୂର+ଦର୍ଶିନ୍) ଯେ ଦୂରଦର୍ଶୀ ନୁହେ, ଯେଉଁ ବ୍ୟକ୍ତି ଆଗପଛ ନ ବିଚାରି କାମକରେ, (ସ୍ତ୍ରୀ) ଦର୍ଶିନୀ ।

ଅଦୂରବର୍ତ୍ତୀ—ପୁଂ. ବିଂ. (ଅଦୂର+ବୃତ୍+କ.ଇନ୍)ଅଦୂରସ୍ଥ, ନିକଟବର୍ତ୍ତୀ (ସ୍ତ୍ରୀ) ଅଦୂରବର୍ତ୍ତିନୀ ।

ଅଦୂରଭବିଷ୍ୟତ୍—ବି. (କ.ଧା.) ନିକଟ-ଭବିଷ୍ୟତ୍, ଅଳ୍ପଦିନ ପରେ ଯେଉଁ ସମୟ ଆସିବ ।

ଅଦୂଷଣ—ବିଂ. (ବ.ବ୍ରୀ) ନିର୍ଦ୍ଦୋଷ, ଦୋଷରହିତ, ଶୁଦ୍ଧ ।

ଅଦୂଷିତ—ବିଂ. (ଅ+ଦୂଷିତ) ଯାହା ଦୋଷଯୁକ୍ତ କରାଯାଇନାହିଁ, ଅନିନ୍ଦ୍ୟ, ନିର୍ଦ୍ଦୋଷ ।

ଅଦୃକ୍—ପୁଂ.ବିଂ.(ଅ+ଦୃଶ୍+କ.କ୍ୱିପ୍) ଅନ୍ଧ, ଯାହାର ଚକ୍ଷୁ ନାହିଁ, ଦୃଷ୍ଟିହୀନ ।

ଅଦୃଶ୍ୟ—ବିଂ. (ନ.ତତ୍ପୁ) ଅପ୍ରକାଶିତ, ଯାହା ଦେଖାଯାଏନାହିଁ, ଯାହାଦେଖିବା ଅଯୋଗ୍ୟ (ବି) ଅଦୃଶ୍ୟତା, (ଗ୍ରା. ବିଂ.) ଦୃଷ୍ଟିଶକ୍ତିହୀନ, ଅନ୍ଧ, (ବି) ଦୃଷ୍ଟିଶକ୍ତି-ହୀନତା, ଅନ୍ଧତା ।

ଅଦୃଶ୍ୟକରଣ—ବି. (ଅଦୃଶ୍ୟ+କରଣ) ଭେଳକିବାଜି ଦ୍ୱାରା କୌଣସି ବ୍ୟକ୍ତିକୁ ଅନ୍ୟମାନେ ଦେଖି ନ ପାରିବା ପରି କରିବା, ଯାଦୁ ବିଦ୍ୟାର ଗ୍ରନ୍ଥବିଶେଷ ।

ଅଦୃଶ୍ୟନ୍ତୀ—ସ୍ତ୍ରୀ. ବି. ବଶିଷ୍ଠପୁତ୍ର ଶକ୍ତି ମୁନିଙ୍କ ଭାର୍ଯ୍ୟା ଏବଂ ପରାଶରଙ୍କ ମାତା ।

ଅଦୃଶ୍ୟରୂପ—ବି. (କ.ଧା) ଯେଉଁରୂପ ବା ଆକାର ଆଖି ଦ୍ୱାରା ଦେଖାଯାଏ ନାହିଁ, (ବ.ବ୍ରୀ) ପରମେଶ୍ୱର, (ବିଂ) ଯାହାର ରୂପ କେହି ଦେଖି ପାରନ୍ତି ନାହିଁ, (ସ୍ତ୍ରୀ) ଅଦୃଶ୍ୟରୂପା ।

ଅଦୃଷ୍ଟ—କ୍ଳୀ. ବି. ଭାଗ୍ୟ, ଜନ୍ମାନ୍ତରୀୟ ସଂସ୍କାର, ବିଷଧର କୀଟାଣୁବିଶେଷ, (ବିଂ) ଯାହା ଅବଧି ଦେଖାଯାଇନାହିଁ, ଅଜ୍ଞାତ, ଅପରୀକ୍ଷିତ, ଅଦୃଶ୍ୟ, ଯାହା ଘଟିବ ବୋଲି ଆଗରୁ ହେଜ କରାଯାଇ ପାରି ନଥାଏ ।

ଅଦୃଷ୍ଟକର୍ମୀ—ପୁଂ.ବିଂ. (ଅଦୃଷ୍ଟ+କର୍ମନ୍) ବ.ବ୍ରୀ; ଅନନୁଭବୀ, ଅପ୍ରବୀଣ ।

ଅଦୃଷ୍ଟକାମ—ବି.(୪ତତ୍ପୁ) କେବେ ଦେଖି ନଥିବା ବସ୍ତୁ ବା ବ୍ୟକ୍ତିପାଇଁ କାମନା ।

ଅଦୃଷ୍ଟଚକ୍ର—କ୍ଳୀ. ବିଂ. (କ.ଧା)ଚକ୍ରପରି ପରିବର୍ତ୍ତନଶୀଳ ଭାଗ୍ୟ ।

ଅଦୃଷ୍ଟଚର—ବିଂ. (ଅ+ଦୃଷ୍ଟ+ଚର+ଅ) ଅଦୃଷ୍ଟପୂର୍ବ (ଦେଖ) ।

ଅଦୃଷ୍ଟପୁରୁଷ—ବି.(କ.ଧା)ଭାଗ୍ୟନିୟାମକ ଦେବତା,ଭାଗ୍ୟର ଅଧିଷ୍ଠାତ୍ରୀ ଦେବତା, (ବ.ବ୍ରୀ) ନୀତିଶାସ୍ତ୍ରବର୍ଣ୍ଣିତ କୋଡ଼ିଏ ପ୍ରକାର ସନ୍ଧି ସ୍ଥାପନ ମଧ୍ୟରୁ ଏକତମ, ଯେଉଁ ସନ୍ଧି ସ୍ଥାପନ କର୍ମରେ କେହି ମଧ୍ୟସ୍ଥ ନଥାଏ ।

ଅଦୃଷ୍ଟପୂର୍ବ—ବିଂ(ଅଦୃଷ୍ଟ+ପୂର୍ବ) ଯାହା ପୂର୍ବେ ଦେଖାଯାଇନାହିଁ ଓ ଆଶ୍ଚର୍ଯ୍ୟ-ଜନକ ।

ଅଦୃଷ୍ଟଫଳ—ବି. (କ.ଧା) ଭବିଷ୍ୟତ୍ ଗର୍ଭରେ ନିହିତ ଘଟନାଚୟ (୬ତତ୍ପୁ) କର୍ମଫଳ, ପୂର୍ବଜନ୍ମକୃତ କର୍ମର ଇହ ଜନ୍ମରେ ଭୁକ୍ତ ଫଳ, ଭାଗ୍ୟରେ ଘଟିବା ବିଷୟ, (ବିଂ) ବ.ବ୍ରୀ; ଯେଉଁ କର୍ମର ଫଳ ଅବଧି ଦେଖାଯାଇନାହିଁ ।

ଅଦୃଷ୍ଟବନ୍ତ—ଗ୍ରା. ପୁଂ.ବିଂ. ଅଦୃଷ୍ଟବାନ୍, (ସ୍ତ୍ରୀ) ଅଦୃଷ୍ଟବନ୍ତୀ ।

ଅଦୃଷ୍ଟବାଦ—ବି.(କ.ଧା)ମନୁଷ୍ୟଆପଣାର ଅଦୃଷ୍ଟକୁ ନିଶ୍ଚେ ଭୋଗକରିବ ତାହା କଦାପି ଏଡ଼ାଇପାରିବନାହିଁଏହି ମତବାଦ, (୬ତତ୍ପୁ) ଭାଗ୍ୟରେ ଯାହା ଅଛି ତାହା ନିଶ୍ଚେ ହେବ ଏପରି ଉକ୍ତି ।

ଅଦୃଷ୍ଟବାଦୀ—ପୁଂ. ବିଂ. (ଅଦୃଷ୍ଟ+ବଦ+କ.ଇନ୍) ଅଦୃଷ୍ଟବିଶ୍ୱାସକାରୀ, ଯେ ଅଦୃଷ୍ଟବାଦକୁ ମାନେ ।

ଅଦୃଷ୍ଟବାନ୍—ପୁଂ.ବିଂ. (ଅଦୃଷ୍ଟ+ବତ୍) ଭାଗ୍ୟବାନ୍, କପାଳିଆ,ସୌଭାଗ୍ୟଶାଳୀ, (ସ୍ତ୍ରୀ) ଅଦୃଷ୍ଟବତୀ ।

ଅଦୃଷ୍ଟରଜା—ସ୍ତ୍ରୀ.ବି. (ଅଦୃଷ୍ଟ+ରଜସ୍) କୁମାରୀ, ବାଳିକା, ଋତୁମତୀ ହୋଇ ନ ଥିବା ବାଳିକା, (ବିଂ. ସ୍ତ୍ରୀ) ଅପ୍ରାପ୍ତ ବୟସ୍କା, ଅରଜସ୍କା ।

ଅଦୃଷ୍ଟାକ୍ଷର—ବି. (କ.ଧା) ଏପରି କାଳି (ଯଥା—ପିଆଜରସ, ଲେମ୍ବୁରସ) ରେ ଲେଖା ଅକ୍ଷର,ଯାହା ଶୁଖିଗଲେ ଦେଖା ପଡ଼େନାହିଁ; କିନ୍ତୁ ନିଆଁ ଉପରେ ସେକିଲେ ପଢ଼ାଯାଏ ।

ଅଦୃଷ୍ଟାୟତ୍ତ—ବିଂ.(୬ତତ୍ପୁ) ଭାଗ୍ୟାଧୀନ, ଦୈବବଶ, (ସ୍ତ୍ରୀ) ଅଦୃଷ୍ଟାୟତ୍ତା ।

ଅଦୃଷ୍ଟାର୍ଥ—ବିଂ.(ବ.ବ୍ରୀ)ଇନ୍ଦ୍ରିୟମାନଙ୍କର ଅଗୋଚର ବିଷୟଯୁକ୍ତ,ଆଧ୍ୟାତ୍ମିକ ଅର୍ଥ-ଯୁକ୍ତ (ନ୍ୟାୟଦର୍ଶନ) ଏପରି ଶବ୍ଦ ଯହିଁର ଅର୍ଥ ଏ ସଂସାରରେ ଦେଖା-ଯାଏ ନାହିଁ, ଯଥା—ସ୍ୱର୍ଗ, ପରମାତ୍ମା, ମୋକ୍ଷ, ଈଶ୍ୱର ।

ଅଦୃଷ୍ଟାଶ୍ରୁତପୂର୍ବ—ବିଂ. (ବ.ବ୍ରୀ) ଯାହା ପୂର୍ବେ କେବେ ଦେଖାଯାଇ ନଥିଲା ବା ଶୁଣାଯାଇ ନ ଥିଲା ।

ଅଦୃଷ୍ଟି—ସ୍ତ୍ରୀ.ବି.(ନ.ତତ୍ପୁ) ଦର୍ଶନାଭାବ, କୋପଦୃଷ୍ଟି, କ୍ରୂର ଦୃଷ୍ଟି, ବିରକ୍ତିସୂଚକ ଦୃଷ୍ଟି (ବିଂ) ବ.ବ୍ରୀ; ଦୃଷ୍ଟିହୀନ, ଅନ୍ଧ ।

ଅଦୃଷ୍ଟି(ଆ)—ଗ୍ରା. ବି. ଯେଉଁ ଶିଶୁ ବା ଖାଦ୍ୟାଦି ଉପରେ ଡାହାଣୀମାନଙ୍କର ଲୋଲୁପ ଦୃଷ୍ଟି ପଡ଼ିନାହିଁ ।

ଅଦେଖା—ଗ୍ରା. ବିଂ. ଅଦୃଷ୍ଟ,ଦେଖାଯାଇ ନ ଥିବା, ଅନନୁଭୂତ, ଗୁପ୍ତ, ଅଲକ୍ଷିତ ।

ଅଦେବମାତୃକ—ବିଂ. (ନ.ତତ୍ପୁ) ନଦୀମାତୃକ (ଦେଶ), ଦେବମାତୃକ ଭିନ୍ନ (ଦେଶ),ଅବୃଷ୍ଟିପ୍ଲାବିତ,(ସ୍ତ୍ରୀ) ମାତୃକା ।

ଅଦେୟ—ବିଂ. (ଅ + ଦା + ଯ)ନ.ତତ୍ପୁ; ଦାନରଅଯୋଗ୍ୟ,ଅନର୍ପଣୀୟ, ଦେବାର ଉଚିତ ନୁହେ ଏ ରୂପ, (ସ୍ତ୍ରୀ)ଅଦେୟା ।

ଅଦେଶ—କ୍ଲୀ. ବି. (ଅ + ଦେଶ) ମନ୍ଦଦେଶ, ମ୍ଳେଚ୍ଛଦେଶ, ଅନୁପଯୁକ୍ତ ସ୍ଥାନ ବା ଅଞ୍ଚଳ, ବିଦେଶ ।

ଅଦେଶକାଳ—ବି.( ଅ + ଦେଶକାଳ ) ଅନୁପଯୁକ୍ତଦେଶ ଓ ଅନୁପଯୁକ୍ତସମୟ ।

ଅଦେଶ୍ୟ—ବିଂ(ଅ + ଦିଶ + ଣିଂ.ଯ)ଯାହା ଆଦେଶ ଦେବା ଅନୁଚିତ, ଯାହା ଉପଦେଶ ଦେବାଅନୁଚିତ, (ଅ + ଦେଶ୍ୟ) ଯାହା ସରଜମିନ୍ ବା ନିର୍ଦ୍ଦିଷ୍ଟ ସ୍ଥାନର ନୁହେ, ଯାହା ସ୍ଥାନୀୟ ନୁହେ, ଯାହା ଦେଶୀନୁହେ, ବିଦେଶୀ, ଘଟନା ସମୟରେ ଅନୁପସ୍ଥିତ ।

ଅଦୈବ—ବିଂ.(ନ.ତତ୍ପୁ)ଯହିଁରେ ଦେବମାନଙ୍କର ସମ୍ପର୍କନାହିଁ, ଯାହା ଦେବତା ବା ଭାଗ୍ୟଦ୍ୱାରାପୂର୍ବରୁ ଆଦିଷ୍ଟ ବା ଲିପିବଦ୍ଧହୋଇନାହିଁ, ଯାହା ଐଶ୍ୱରିକନୁହେ, (ବିଂ.ବ.ବ୍ରୀ) ଦୁର୍ଭାଗ୍ୟ, ଅଭାଗା ।

ଅଦୋଷ—ପୁଂ. ବି. ଦୁରଦୃଷ୍ଟ ସାଧନ ଦୋଷର ଅଭାବ, ଦୋଷ ଶୂନ୍ୟତା, ନିଷ୍ପାପତା, ଦୋଷରହିତରଚନା, ଗୁଣ, (ବିଂ. ବ. ବ୍ରୀ ) ନିରପରାଧ, ନିର୍ଦ୍ଦୋଷ, ନିଷ୍ପାପ, ଦୋଷଶୂନ୍ୟ, (ସ୍ତ୍ରୀ) ଅଦୋଷା ।

ଅଦୋଷତା—ବି. ( ଅଦୋଷ + ତା ) ଅଦୋଷର ଭାବ (ଅଳଙ୍କାର ଶାସ୍ତ୍ର)ଅଲଙ୍କାର ଦୃଷ୍ଟିରେ ଲକ୍ଷିତ କୌଣସି ଦୋଷ ସ୍ଥଳବିଶେଷରେ ଗଣ୍ୟ ନହୋଇ ରଚନାର ଗୁଣରୂପେ ଗଣ୍ୟହେବା ଅବସ୍ଥା ।

ଅଦୋଷରେ—ଗ୍ରା.କ୍ରି.ବିଂ. ବିନା ଅପରାଧରେ । [ ନିରପରାଧ ।

ଅଦୋଷୀ—ଗ୍ରା.ପୁଂ ଓ ସ୍ତ୍ରୀ.ବିଂ.ନିର୍ଦ୍ଦୋଷ,

ଅଦୋହ—ବି.(ଅ + ଦୁହ + ଭା.ଅ)ଯେଉଁ ସମୟରେ ଗୋରୁଠାରୁ ଦୁଧ ଦୁହିଁବା ଅସମ୍ଭବ, ଯେଉଁ ସମୟରେ ଗୋରୁ ଦୁହିଁବା ନିଷିଦ୍ଧ, ଯଥା—ଏକାଦଶୀ, (ଅ + ଦୋହ) ଦୁଧଦୁହାଁ ନ ହେବା ।

ଅଦ୍‌ଗ—ପୁଂ.ବି. (ଅଦ୍ + ଗ)ପୁରୋଡ଼ାଶ, ଘୃତ ।

ଅଦ୍ଧା—ଅବ୍ୟ. ( ଅତ୍ + ଧା + କ୍ୱିପ୍ ) ଯାଥାର୍ଥ୍ୟ, ସାକ୍ଷାତ୍କାର, ସ୍ଫୁଟ, ଅବଧାରଣ, ଅବଶ୍ୟ, ତତ୍ତ୍ୱ, ସତ୍ୟ ।

ଅଦ୍ଭୁତ—କ୍ଲୀ. ବି. (ଅତ୍ + ଭୂ + ଭା.ତ) ଆଶ୍ଚର୍ଯ୍ୟ, ବିସ୍ମୟ (ପୁଂ.ବି) ଆଲଂକାରିକ ନବରସ ମଧ୍ୟରୁ ଏକ, ନବମମନ୍ୱନ୍ତର ଇନ୍ଦ୍ରଙ୍କ ନାମ (ବିଂ) ଆଶ୍ଚର୍ଯ୍ୟଜନକ, ଆକସ୍ମିକ,ଅପରୂପ,ଉଦ୍ଭଟ(ସ୍ତ୍ରୀ)ଅଦ୍ଭୁତା ।

ଅଦ୍ଭୁତକର୍ମା—ପୁଂ.ବିଂ. (ବ.ବ୍ରୀ)ଆଶ୍ଚର୍ଯ୍ୟଜନକ କାର୍ଯ୍ୟକାରୀ ।

ଅଦ୍ଭୁତଦର୍ଶନ—ପୁଂ.ବିଂ.(ବ.ବ୍ରୀ)ଯାହାକୁ ଦେଖିଲେ ମନରେ ବିସ୍ମୟ ଜାତହୁଏ ।

ଅଦ୍ଭୁତବ୍ରାହ୍ମଣ—ପୁଂ. ବି. ସାମବେଦର ପରିଶିଷ୍ଟ ବ୍ରାହ୍ମଣଗ୍ରନ୍ଥ ବିଶେଷ ।

ଅଦ୍ଭୁତରସ—ବି. ସାହିତ୍ୟର ନବରସ ମଧ୍ୟରୁ ଏକତମ, ଯେଉଁରସ ଦ୍ୱାରା ମନରେ ବିସ୍ମୟ ଜାତ ହୁଏ ।

ଅଦ୍‌ଭୁତରାମାୟଣ—କ୍ଲୀ. ବି. ବାଲ୍ମୀକିପ୍ରଣୀତ ସହସ୍ରସ୍କନ୍ଧ ରାବଣବଧବର୍ଣ୍ଣନାତ୍ମକ ଗ୍ରନ୍ଥବିଶେଷ ।

ଅଦ୍ଭୁତଶାନ୍ତି—ବି. ଅଥର୍ବବେଦର ସପ୍ତଷଷ୍ଟିତମ ପରିଶିଷ୍ଟ ।

ଅଦ୍ଭୁତସାର—ପୁଂ.ବି.(ବ.ବ୍ରୀ), ଖଦିରସାର, ଖଇରଗଛ ।

ଅଦ୍ଭୁତସ୍ୱନ—ପୁଂ. ବି. (ବ.ବ୍ରୀ.) ଆଶ୍ଚର୍ଯ୍ୟ ଶବ୍ଦ, ଶିବ, ମହାଦେବ ।

ଅଦ୍ଭୁତୋପମ—ବିଂ.(ବ.ବ୍ରୀ)ଯାହାବିସ୍ମୟକର ପଦାର୍ଥ ସଙ୍ଗେ ଉପମେୟ ।

ଅଦ୍ଭୁତୋପମା-ବି.ଉପମାଲଙ୍କାରବିଶେଷ ।

ଅଦ୍ମନ—ପୁଂ.ବି.(ଅଦ୍ + ମନ) ଅଗ୍ନି ।

ଅଦ୍ମର—ପୁଂ ବିଂ.(ଅଦ୍ + ମର) ଭକ୍ଷକ, ଭକ୍ଷଣଶୀଳ, ପେଟୁକ, (ସ୍ତ୍ରୀ)ଅଦ୍ମରୀ ।

ଅଦ୍ୟ—ଅବ୍ୟ.(ଇଦମ୍ + ଦ୍ୟୁ) ଆଜିଦିନ, ଆଜିକାଲି, ବର୍ତ୍ତମାନ, ଏବେ (ବିଂ) ( ଅଦ୍ + ଣିଂ.ଯ ) ଖାଦ୍ୟ, ଖାଇବାର ଉପଯୋଗୀ (ବି) ଖାଦ୍ୟଦ୍ରବ୍ୟ ।

ଅଦ୍ୟକାର-ବିଂ.(ଅନ୍ୟ + କାର)ବର୍ତ୍ତମାନ ଦିବସୀୟ, ଆଜିକାର,ଆଜି ଘଟିଥିବା ।

ଅଦ୍ୟତନ—ବିଂ. (ଅଦ୍ୟ + ତନ) ଆଜି ଘଟିବା ବିଷୟ, ଆଜିକାଲି ପ୍ରଚଳିତ, ଆଧୁନିକ (ବି) ଆଜିଦିନର ସମ୍ପୂର୍ଣ୍ଣ ଦିବସଟି (ଦିନରାତ୍ର ଆଠପହର) ।

ଅଦ୍ୟତନଭୂତକାଳ—ବି. ( ବ୍ୟାକରଣ ) ଆଜି ଘଟିଥିବା କ୍ରିୟାର କାଳ ।

ଅଦ୍ୟତ୍ୱ—କ୍ଲୀ.ବି. ବର୍ତ୍ତମାନତ୍ୱ ।

ଅଦ୍ୟପ୍ରଭୃତି—ଅବ୍ୟ. (ଅଦ୍ୟ + ପ୍ରଭୃତି) ଆଜିଦିନଠାରୁ, ଅଦ୍ୟାବଧି, ବର୍ତ୍ତମାନ ସମୟରୁ ଆରମ୍ଭ କରି ।

ଅଦ୍ୟଭକ୍ଷ—ଗ୍ରା.ବି.ଯାହାର ବାସି ଦିନକୁ ଦାନା ନାହିଁ, ଅତିଗରିବ ।

ଅଦ୍ୟଭକ୍ଷ୍ୟ—ବିଂ. (ଅଦ୍ୟ ଭକ୍ଷ୍ୟ) ଆଜି ଯାହା ଖିଆଯିବ ।

ଅଦ୍ୟଭେକା—ଗ୍ରା.ପୁଂ.ବିଂ.ଯେଉଁବ୍ୟକ୍ତିର ପିନ୍ଧିବା ଲୁଗାଖଣ୍ଡିକ ଛଡ଼ା ଅନ୍ୟଲୁଗା ନାହିଁ ।

ଅଦ୍ୟଶ୍ୱ—ବିଂ. (ଅଦ୍ୟ + ଶ୍ୱ) ଆଜି ଓ କାଲିକୁ ମିଶାଇ ।

ଅଦ୍ୟଶ୍ୱୀନ—ବିଂ. (ଅଦ୍ୟ + ଶ୍ୱ + ଈନ) ଯାହା ଆଜି କିମ୍ବା କାଲି ଘଟିବାର ସମ୍ଭବ ଆସନ୍ନ,ଯାହା ଅବଶ୍ୟ ଆଜି କିମ୍ବା କାଲି ଘଟିବ, ଯଥା,ଅଦ୍ୟଶ୍ୱୀନ ମରଣ ।

ଅଦ୍ୟଶ୍ୱୀନା—ସ୍ତ୍ରୀ.ବିଂ. (ଅଦ୍ୟ + ଶ୍ୱୀନ + ଆ) ଆସନ୍ନପ୍ରସବା (ସ୍ତ୍ରୀ) ଯେ ଆଜିକାଲି ଜନ୍ମ କରିବ ।

ଅଦ୍ୟାପି—ଅବ୍ୟ. ଅଦ୍ୟାବଧି, ଏତେବେଳେ ମଧ୍ୟ, ଏବେଲଗେ, ଆଜିପର୍ଯ୍ୟନ୍ତ, ଆଜିଠାରୁ, ଏବେସୁଦ୍ଧା ।

ଅଦ୍ୟାବଧି—ଅବ୍ୟ (ଅଦ୍ୟ + ଅବଧି) ଆଜି ପର୍ଯ୍ୟନ୍ତ, ଆଜିଠାରୁ, ଏହିସମୟରୁ, ଯାହା ଆଜିଠାରୁ ଆରମ୍ଭ ହେଲା, ଯାହା ଆଜି ଶେଷ ହେଲା ।

ଅଦ୍ୟାଶ୍ୱ—ଅବ୍ୟ.(ଅଦ୍ୟ + ଶ୍ୱ)ଆଜିଓ କାଲି

ଅଦ୍ୟୁତ୍ୟ—ବିଂ.(ଅ + ଦ୍ୟୁତ + ଯ)ଯାହା ଦ୍ୟୁତ ଦ୍ୱାରା ଲବ୍ଧ ନୁହେ, ସଦୁପାୟ-ଲବ୍ଧ, ( ବ ) ଯେଉଁ ଯୁଆ ଖେଳରେ ଖେଳାଳିର ଦୁର୍ଭାଗ୍ୟ ହୁଏ ।

ଅଦ୍ୟୈବ—ଅବ୍ୟ, (ଅଦ୍ୟ + ଏବ) ଆଜି ନିଶ୍ଚେ, ଆଜିହିଁ ।

ଅଦ୍ରବ—ପୁଂ. ବି. (ଅ + ଦ୍ରବ) ଅତରଳ ପଦାର୍ଥ, ଘନବସ୍ତୁ (ବିଂ) ଅତରଳ, ଯାହା ପାଣିଆ ନୁହେ, (ସ୍ତ୍ରୀ) ଅଦ୍ରବା ।

ଅଦ୍ରବ୍ୟ—କ୍ଳୀ.ବି. (ଅ + ଦ୍ରବ୍ୟ)ଅପଦାର୍ଥ, ଅଯୋଗ୍ୟ ବା ନିକୃଷ୍ଟ ଦ୍ରବ୍ୟ, ଅନୁପଯୋଗୀ ବସ୍ତୁ, ଅବ୍ୟବହାର୍ଯ୍ୟ ପଦାର୍ଥ, (ବିଂ) ଦ୍ରବ୍ୟହୀନ, ଅଯୋଗ୍ୟ, ମନ୍ଦ, ନାରଖାର, ଗରିବ ।

ଅଦ୍ରାବଲି—ଗ୍ରା.ବିଂ. (ଏହା ଆର୍ଦ୍ରାନକ୍ଷତ୍ର ପର ନାଲିଆ ଦିଶିବାରୁ) ଏକ ପ୍ରକାର ବାଣ, ଆର୍ଦ୍ରାନକ୍ଷତ୍ର, ଆର୍ଦ୍ରାନକ୍ଷତ୍ର ସମନ୍ୱିତ,କାଳପୁରୁଷନାମକ ନକ୍ଷତ୍ର ପୁଞ୍ଜ ।

ଅଦ୍ରି—ପୁଂ. ବି. (ଅ + ଦ୍ରୀ + କ,ଇ) ପର୍ବତ, ବୃକ୍ଷ, ପଥର, ସୋମଲତା-ଛେଚି ରସ ବାହାର କରିବାରେ ବ୍ୟବହୃତ ଶିଳ ବା ଶିଳପୁଆ, ବଜ୍ର, ମେଘ, ସୂର୍ଯ୍ୟ, ସାତସଂଖ୍ୟା, ପରିମାଣ-ବିଶେଷ, ପୃଥୁରାଜାଙ୍କ ନାତି ।

ଅଦ୍ରିକର୍ଣ୍ଣୀ—ସ୍ତ୍ରୀ.ବି.(ବ.ବ୍ରୀ)ଅପରାଜିତାଲତା

ଅଦ୍ରିକା—ସ୍ତ୍ରୀ. ବି. ( ଅଦ୍ରି + କ + ଆ ) ଜଣେ ଅପ୍ସରା, ଘୋଡ଼ାନିମ୍ବ, ଧନିଆ ।

ଅଦ୍ରିକୀଲ—ପୁଂ.ବି. ବିଳୁମ୍ବ ପର୍ବତ ।

ଅଦ୍ରିକୀଲା—ସ୍ତ୍ରୀ.ବି.(ବ.ବ୍ରୀ)ଭୂମି,ପୃଥିବୀ ।

ଅଦ୍ରିଜ—କ୍ଳୀ.ବି.ଶିଳାଜତୁ, ଗେରୁମାଟି, ପୁଂ.ବି, ପର୍ବତଜାତ ଦାବାନଳ ।

ଅଦ୍ରିଜା—ସ୍ତ୍ରୀ.ବି.(ଅଦ୍ରି + ଜନ୍ + ଅ + ଆ) ପାର୍ବତୀ, ଦୁର୍ଗା, ସୈହଳୀଗୁଳ୍ମ ।

ଅଦ୍ରିଜାତ—ବିଂ. (୫ତତ୍ପୁ) ପର୍ବତରୁ ଉତ୍ପନ୍ନ,(ବି)ଦାବାନଳ,ହଂସ,ପରମାତ୍ମା ।

ଅଦ୍ରିତନୟା—ସ୍ତ୍ରୀ.ବି.(୬.ତତ୍ପୁ)ପାର୍ବତୀ, ଦୁର୍ଗା ।

ଅଦ୍ରିଦ୍ୱିଷ୍—ପୁଂ,ବି. (ଅଦ୍ରି + ଦ୍ୱିଷ୍ + କ. କ୍ୱିପ୍) ଇନ୍ଦ୍ର ।

ଅଦ୍ରିଦୁଗ୍ଧ—ପୁଂ. ବି. ସୋମଲତା ।

ଅଦ୍ରିଦ୍ରୋଣି—ସ୍ତ୍ରୀ. ବି.(୬.ତତ୍ପୁ) ପର୍ବତ-ସମ୍ଭବା ନଦୀ, ପର୍ବତର ଉପତ୍ୟକା ।

ଅଦ୍ରିନନ୍ଦିନୀ—ସ୍ତ୍ରୀ.ବି. (୬ତତ୍ପୁ) ପାର୍ବତୀ, ଦୁର୍ଗା । [ ହିମାଳୟ ।

ଅଦ୍ରିନାଥ—ବି. (୬ତତ୍ପୁ) ପର୍ବତଶ୍ରେଷ୍ଠ

ଅଦ୍ରିପତି-ପୁଂ.ବି.(୬ତତ୍ପୁ)ହିମାଳୟପର୍ବତ

ଅଦ୍ରିବର୍ହିସ୍—ବିଂ.ଅତିସାର,ଅତିକଠିନ ।

ଅଦ୍ରିବୁଧ୍ନ—ବିଂ. ଅତିକଠିନ ।

ଅଦ୍ରିଭିଦ୍—ପୁଂ.ବି.(ଅଦ୍ରି + ଭିଦ୍ + କ କ୍ୱିପ୍) ଇନ୍ଦ୍ର ।

ଅଦ୍ରିଭୂ—ସ୍ତ୍ରୀ. ବି.(ଅଦ୍ରି + ଭୂ + କ୍ୱିପ୍) ଅପରାଜିତା ଲତା, ପାର୍ବତୀ, ମୂଷାକାନୀ ଲତା,(ବିଂ)ଅଦ୍ରିଜ,ପର୍ବତଜାତ,ପର୍ବତରେ ମିଳୁଥିବା ।

ଅଦ୍ରିମାତା—ପୁଂ.ବିଂ.(ଅଦ୍ରି + ମା + ତୃ) ମେଘଜଳ ନିର୍ମାତା ।

ଅଦ୍ରିରାଜ—ପୁଂ. ବି. (୬ତତ୍ପୁ) ହିମାଳୟ ପର୍ବତ, ପର୍ବତଶ୍ରେଷ୍ଠ ।

ଅଦ୍ରିରାଟ୍—ପୁଂ.ବି.(ଅଦ୍ରି + ରାଜ + କ. କ୍ୱିପ୍) ଗିରିରାଜ, ହିମାଳୟ ।

ଅଦ୍ରିଶ—ପୁଂ.ବି.(ଅଦ୍ରି + ଶୀ + କ.ଅ) ଗିରିଶ, ମହାଦେବ, ଶିବ ।

ଅଦ୍ରିଶଯ୍ୟା—ପୁଂ.ବି. (ବ୍ରୀ)(ଅଦ୍ରି + ଶଯ୍ୟା ) ଶିବ, ମହାଦେବ ।

ଅଦ୍ରିଶୃଙ୍ଗ—ବି.(୬ତତ୍ପୁ)ପର୍ବତରଶିଖର ।

ଅଦ୍ରିସୃତ (ସୁତ)—ପୁଂ.ବି. (୩ତତ୍ପୁ) ମୋମ, କଠିନ । [କଠିନ ।

ଅଦ୍ରିସଂହତ—ପୁଂ.ବି.ସୋମ (ବିଂ)ଅତି-

ଅଦ୍ରିସାନୁ—ବି. (୬ତତ୍ପୁ)ପର୍ବତର ତଟ-ଦେଶ ବା ଢାଲୁ ।

ଅଦ୍ରିସାର—ପୁଂ. ବି. (୬ତତ୍ପୁ) ଲୌହ, ( ବିଂ ) ବ.ବ୍ରୀ; ଅତିକଠିନ, ଦୃଢ଼, (ସ୍ତ୍ରୀ) ଅଦ୍ରିସାରା । [ କଠିନ ।

ଅଦ୍ରିସାରମୟ—ବିଂ.ଅଦ୍ରିସାରାତ୍ମକ,ଅତି-

ଅଦ୍ରୀଶ—ପୁଂ. ବି. (୬ତତ୍ପୁ) ହିମାଳୟ, ପର୍ବତରାଜ । [ ଅଦ୍ରୋହକାରକ ।

ଅଦ୍ରୁହନ୍—ପୁଂ.ବିଂ.(ଅ + ଦ୍ରୁହ୍ + ବନ୍)

ଅଦ୍ରୋଘ—ପୁଂ, ବି. (ନ.ତତ୍ପୁ) ଦ୍ରୋହର ଅଭାବ (ବିଂ) ବ.ବ୍ରୀ; ଦ୍ରୋହରହିତ ।

ଅଦ୍ରୋଘାବିତ—ପୁଂ.ବିଂ. ଅଦ୍ରୋହରକ୍ଷକ ।

ଅଦ୍ରୋହ—ପୁଂ. ବି. (ନ.ତତ୍ପୁ) ଈର୍ଷାର ଅଭାବ, ଦ୍ୱେଷହୀନତା, ଅବିରୋଧ,ଶାନ୍ତି, ନିରୀହତ୍ୱ, (ବିଂ) ବ.ବ୍ରୀ, ଦ୍ରୋହଶୂନ୍ୟ, ଦ୍ୱେଷହୀନ, ନିରୀହ, ଅବିରୋଧୀ, ଶାନ୍ତିମୟ, (ସ୍ତ୍ରୀ) ଅଦ୍ରୋହା ।

ଅଦ୍ରୋହୀ—ପୁଂ.ବିଂ.(ଅଦ୍ରୋହ + ଇନ୍) ନ.ତତ୍ପୁ; ଦ୍ୱେଷହୀନ, ଈର୍ଷାଶୂନ୍ୟ, ଅବିରୋଧୀ, ଶାନ୍ତ, ଶାନ୍ତିପ୍ରିୟ, ନିରୀହ, ଅନପକାରୀ, (ସ୍ତ୍ରୀ) ଅଦ୍ରୋହିଣୀ ।

ଅଦ୍ୱୟ—କ୍ଳୀ. ବି.(ଅ + ଦ୍ୱୟ) ଅଭେଦ, ବ୍ରହ୍ମ, (ପୁଂ. ବି.) ବୁଦ୍ଧବିଶେଷ, ଏକତା, ଦ୍ୱିତୀୟ ରୂପ ନ ଥିବା ଅବସ୍ଥା, ବ୍ରହ୍ମ, (ବିଂ) ବ.ବ୍ରୀ; ଦ୍ୱୟହୀନ, ଯାହାର ଦ୍ୱିତୀୟ ନାହିଁ,କେବଳ ଏକ,ଅଦ୍ୱୈତ ।

ଅଦ୍ୱୟାନନ୍ଦ—ପୁଂ.ବି.ବ୍ରହ୍ମାନନ୍ଦ ବିଶିଷ୍ଟ ।

ଅଦ୍ୱୟବାଦ—ପୁଂ.ବି. (୬ତତ୍ପୁ)ଅଦ୍ୱୈତ ବାଦ, ଏକେଶ୍ୱରବାଦ, ବ୍ରହ୍ମାତିରିକ୍ତ, ଆଉ କିଛି ନ ଥିବା ବ୍ରହ୍ମ ଓ ଜୀବ ଏକ ଏପରି ମତ ।

ଅଦ୍ୱୟବାଦୀ—ପୁଂ. ବି. (ଅଦ୍ୱୟ + ବଦ୍ + କ.ଇନ୍)ବୌଦ୍ଧ,(ବିଂ) ଏକେଶ୍ୱରବାଦୀ,ଯେ ଦ୍ୱିତୀୟ ସ୍ୱୀକାର କରେ ନାହିଁ,ବୈଦାନ୍ତିକ,(ସ୍ତ୍ରୀ) ଅଦ୍ୱୟବାଦିନୀ ।

ଅଦ୍ୱୟୁ—ପୁଂ.ବିଂ.(ଅଦ୍ୱୟ + ଉ)ଦ୍ୱିଧା-ରହିତ,ବାହ୍ୟାଭ୍ୟନ୍ତର କପଟତାଶୂନ୍ୟ ( ଏକ ) ।

ଅଦ୍ୱାର—କ୍ଳୀ.ବି.(ଅ + ଦ୍ୱାର)ଗୁପ୍ତଦ୍ୱାର, (ବ.ବ୍ରୀ)ବିଂ, ଯେଉଁ ଘର ବା ସ୍ଥାନରେ ଦ୍ୱାର ନାହିଁ, ଦୁଷ୍ପ୍ରବେଶ, ଅନୁପାୟ ।

ଅଦ୍ୱିତୀୟ—କ୍ଲୀ. ବି. ପରମାତ୍ମା, (ବିଂ) ଅସାଧାରଣ, ଅସାମାନ୍ୟ, ଅତୁଳନୀୟ, ଏକାକୀ, ଏକମାତ୍ର ।

ଅଦ୍ୱିଷେଣ୍ୟ—ବିଂ. (ଅ + ଦ୍ୱିଷ + ଏଣ୍ୟ) ପ୍ରିୟରୂପ, ପ୍ରିୟରସ, ଅଦ୍ୱେଷ୍ୟ ରସ ।

ଅଦ୍ୱେଷ—ପୁଂ.ବି. (ନ.ତତ୍) ଦ୍ୱେଷାଭାବ, (ବିଂ) ବ.ବ୍ରୀ; ଦ୍ୱେଷଶୂନ୍ୟ, ଦ୍ୱେଷରହିତ, ପ୍ରିୟ ।

ଅଦ୍ୱେଷସ୍—ବିଂ, ( ଅଦ୍ୱେଷ + ଅସ୍ ) ଦ୍ୱେଷସ୍ଥାନ, ଅଦ୍ୱେଷ ।

ଅଦ୍ୱେଷ୍ଟା—ପୁଂ. ବିଂ. (ଅ + ଦ୍ୱିଷ + କ. ତୃ )ନ.ତତ୍:ବିଦ୍ୱେଷହୀନ,ଅବିରୋଧୀ, ଈର୍ଷାଶୂନ୍ୟ, (ସ୍ତ୍ରୀ) ଅଦ୍ୱେଷ୍ଟ୍ରୀ ।

ଅଦ୍ୱୈତ—ବିଂ. (ବ.ବ୍ରୀ) ଦ୍ୱିତ୍ୱରହିତ, ଅଦ୍ୱିତୀୟ, ଯାହାର ଯୋଡ଼ା ନାହିଁ, ଏକାକୀ, ଅବିଭକ୍ତ, (ବି) ଦ୍ୱିତ୍ୱରହିତ ଅବସ୍ଥା, ଅତୁଳନୀୟତା, ବିଷ୍ଣୁ, ପରଂବ୍ରହ୍ମ, ବ୍ରହ୍ମାବିଷ୍ଣୁ, ଆତ୍ମା ଓ ପଞ୍ଚଭୂତ ମଧ୍ୟରେ ଅଭେଦ, ପାରମାର୍ଥିକ ସତ୍ୟ, ଉପନିଷଦ୍ ବିଶେଷ, ଅଦ୍ୱୈତ ମହାପ୍ରଭୁ (ଦେଖ) ।

ଅଦ୍ୱୈତବାଦ—ପୁଂ. ବି. (୬ତତ୍)ବ୍ରହ୍ମ ଓ ବ୍ରହ୍ମାଣ୍ଡ ଏକ, ଈଶ୍ୱର ଓ ସୃଷ୍ଟି ଏକ, ଏକମାତ୍ରଈଶ୍ୱର ସର୍ବଭୂତରେ ଓ ସର୍ବତ୍ର ବିରାଜିତ ଏ ରୂପ ମତବାଦ, ପରମାତ୍ମା ଓ ଜୀବାତ୍ମା ଅଭିନ୍ନ ଏହି ଦାର୍ଶନିକମତ, ଏକେଶ୍ୱର ମତ ।

ଅଦ୍ୱୈତବାଦୀ—ପୁଂ. ବି. (ଅଦ୍ୱୈତ + ବଦ୍ + ଇନ୍ ) ଏକେଶ୍ୱରବାଦୀ, ବ୍ରହ୍ମବାଦୀ,ଏକାତ୍ମବାଦୀ, (ସ୍ତ୍ରୀ) ଅଦ୍ୱୈତବାଦିନୀ ।

ଅଦ୍ୱୈତ ମହାପ୍ରଭୁ,ଅଦ୍ୱୈତାଚାର୍ଯ୍ୟ—ଗ୍ରା. ପୁଂ. ବି. ଚୈତନ୍ୟଙ୍କ ସମସାମୟିକ (ପଞ୍ଚଦଶ ଶତାବ୍ଦୀର ଶେଷଭାଗ)ନଦିଆ ନିକଟବାସୀ ଭକ୍ତ ପଣ୍ଡିତ ।

ଅଦ୍ୱୈତସିଦ୍ଧି—ବି. ମଧୁସୂଦନ ସରସ୍ୱତୀଙ୍କ ରଚିତ ଅଦ୍ୱୈତ ସିଦ୍ଧି ନାମକ ବେଦାନ୍ତ ପ୍ରକରଣ ବିଶେଷ ।

ଅଦ୍ୱୈତାନନ୍ଦ—ବିଂ.(କ.ଧା. ଅଦ୍ୱୈତବାଦରେ ବିଶ୍ୱାସଜନିତ ମନରେ ଜାତ ଆନନ୍ଦ,(ଗ୍ରା.ବି.) ଅଦ୍ୱୈତ ମହାପ୍ରଭୁ ।

ଅଦ୍ୱୈଧ—ବିଂ. (ବ.ବ୍ରୀ) ଦୁଇଭାଗରେ ବିଭକ୍ତ ହୋଇ ନ ଥିବା, ଦ୍ୱୈଧରହିତ, ସରଳପ୍ରକୃତିକ, ପୃଥକ୍‌କରାଯାଇନଥିବା

ଅଧ—ଅବ୍ୟ.(ବୈଦିକ) ଅଥ, ଅନନ୍ତର (ଗ୍ରା.ବି.)ଅର୍ଦ୍ଧ,ମଧ୍ୟସ୍ଥଳ,ବିଂ. ଅମୁକର) ମଧ୍ୟସ୍ଥଳ, (ଅମୁକର) ଅର୍ଦ୍ଧ ପରିମିତ, ଯଥା—ଅଧରାତି ।

ଅଧଃ—ଅବ୍ୟ. (ଅଧ + ଅସ୍ ) ନିମ୍ନରେ, ତଳେ, ତଳଆଡ଼କୁ, ତଳଆଡ଼େ, ନରକରେ, ପାତାଳରେ, ଯୋନି ।

ଅଧଃକରଣ—କ୍ଲୀ. ବି. (ଅଧଃ + କୃ + ଭା.ଅନ)ଅପ୍ରଧାନ୍ୟ କରିବା, ନ୍ୟୂନକରଣ, ବଳିଯିବା, ଘୃଣାକରିବା, ତଳକୁ ନେବା, ତଳଆଡ଼କୁ ଠେଲିବା, ତୁଚ୍ଛକରିବା ।

ଅଧଃକାୟ—ପୁଂ. ବି. ନାଭିର ଅଧଃପ୍ରଦେଶ,ଦେହର ନିମ୍ନଭାଗ, ଅଣ୍ଟାତଳକୁ ଦେହର ଅଂଶ । [ କରଣ ।

ଅଧଃକାର—ପୁଂ. ବି. ତିରସ୍କାର, ଅଧଃ-

ଅଧଃକୃତ—ବିଂ. (ଅଧସ୍ + କୃ + କ୍ତ.ତ) ଭକ୍ଷିତ, ଗିଳାଯାଇଥିବା, ନିକ୍ଷିପ୍ତାପରାଭୂତ, ନିରସ୍ତ, ଅଧୋନିହିତ, ତୁଚ୍ଛୀକୃତ (ସ୍ତ୍ରୀ) ଅଧଃକୃତା ।

ଅଧଃକ୍ରିୟା—ବିଂ. ( ଅଧଃ + କ୍ରିୟା ) ଅଧୋଗମନ, ଅବନତି, ଅସମ୍ମାନ ।

ଅଧଃକ୍ଷିପ୍ତ—ବିଂ. (୭ତତ୍) ତଳେପକାଇବା(ପଦାର୍ଥ), ଅବକ୍ଷିପ୍ତ, ଅଧଃପ୍ରୟୁକ୍ତ ।

ଅଧଃଖଳନ (ଅଧଃସ୍ଖଳନ)—କ୍ଲୀ. ବି. (୭ତତ୍) ତଳଆଡ଼କୁ ଖୋଲିଖୋଲିଯିବା, କୌଣସି ବସ୍ତୁର ତଳେ ଗାଡ଼ିକରିବା ।

ଅଧଃପତନ—କ୍ଲୀ.ବି.(୭ତତ୍) ନିମ୍ନଗତ, ଅଧଃପାତ, ଉଚ୍ଛନ୍ନ ହେବା ।

ଅଧଃପତିତ—ବିଂ.(୭ତତ୍)ନିମ୍ନଗତିପ୍ରାପ୍ତ, ଯେ ଉଚ୍ଛନ୍ନ ହୋଇଅଛି (ସ୍ତ୍ରୀ) ଅଧଃପତିତା ।

ଅଧଃପାତ—ପୁଂ. ବି. ( ଅଧଃ + ପାତ ) ଅଧୋଗତି, ସର୍ବନାଶ, ଅବନତି, ନରକରେ ପଡ଼ିବା, ଉଚ୍ଛନ୍ନଦଶା, ତଳକୁ ପଡ଼ିବା ।

ଅଧଃପୁଷ୍ପୀ—ସ୍ତ୍ରୀ.ବି. ବ.ବ୍ରୀ ଅନନ୍ତମୂଳ, ପାନମହୁରି, ଶୁଲ୍ଫା,ଶଙ୍ଖପ,ଗୋଜିହ୍ୱା, କୋବି । [ଭୂଶଯ୍ୟା ।

ଅଧଃପ୍ରସ୍ତର—ପୁଂ. ବି (ଅଧଃ + ପ୍ରସ୍ତର ଅଶୌଚପାଳିବା ବ୍ୟକ୍ତିର ତୃଣ ବା

ଅଧଃଶୟ—ପୁଂ. ବି. ଅଧଃ + ଶୀ + କ ଅ) ଯେ ଭୂମିରେ ଶୁଏ ।

ଅଧଃଶୟନ—କ୍ଲୀ. ବି. (ଅଧଃ + ଶୟନ) ଭୂମିଶୟନ, ଭୂଇଁରେ ଶୋଇବା ।

ଅଧଃଶଯ୍ୟ—ପୁଂ.ବିଂ.(ବ.ବ୍ରୀ) ଅଧଃଶୟ, ଯେ ଭୂଇଁରେ ଶୁଏ, ସ୍ତ୍ରୀ ଅଧଃଶଯ୍ୟା ।

ଅଧଃଶାୟୀ—ପୁଂ.ବିଂ.(ଅଧଃ + ଶୀ + କ, ଇନ୍)ଅଧଃଶୟ,ଯେ ଭୂଇଁରେ ଶୁଏ,ସ୍ତ୍ରୀ) ଅଧଃଶାୟିନୀ ।

ଅଧଃଶିରଃ—ପୁଂ.ସ୍ତ୍ରୀ. ବିଂ.(ବ.ବ୍ରୀ)ଅଧୋମୁଖ, ମୁଣ୍ଡ ତଳକୁ ପୋତିଥିବା, ମୁଣ୍ଡ ତଳଆଡ଼କୁ ଥିବା ।

ଅଧଃଶିରାଃ—ପୁଂ.ସ୍ତ୍ରୀ.ବିଂ.(ବ.ବ୍ରୀ)ଅଧଃଶିରଃ (ଦେଖ) ବି. ନରକବିଶେଷ।

[ଅବସ୍ଥିତ ।

ଅଧଃସ୍ଥିତ—ବିଂ.(ଅଧଃ + ସ୍ଥିତ)ନିମ୍ନରେ

ଅଧଃସ୍ୱସ୍ତିକ—ବିଂ.ଆକାଶର ଯେଉଁ ଅଂଶ ମନୁଷ୍ୟର ଗୋଡ଼ତଳେ ଓ ପୃଥିବୀର ବିପରୀତଦିଗରେ ଥାଏ । [ ମୈଥୁନ ।

ଅଧଉପାସନ—ବିଂ. (ଅଧଃ + ଉପାସନ)

ଅଧକ—ଗ୍ରା.ବି. ଅର୍ଦ୍ଧପରିମାଣ,ଅର୍ଦ୍ଧେକ, ଅର୍ଦ୍ଧାଂଶ,(ଗ୍ରା.ବିଂ.)ଅର୍ଦ୍ଧପରିମିତମାତ୍ର ।

ଅଧକପାଳି—ଗ୍ରା.ବି.କପାଳରଡାହାଣ ବା ବାମପାଖ ବଥାଇବା ସୂର୍ଯ୍ୟାବର୍ତ୍ତରୋଗ ।

ଅଧଡ଼ି—ଗ୍ରା.ବିଂ.(ଅଦଡ଼ି ଦେଖ)ଅତିଶୀର୍ଣ୍ଣ-ଶରୀରବିଶିଷ୍ଟ ।

ଅଧଡ଼କ—ଗ୍ରା.ବିଂ. ନିଧଡ଼କ, ନିର୍ଭୟ, ନିଶ୍ଚିନ୍ତ, (କ୍ରି.ବିଂ.) ନିଶ୍ଚିନ୍ତରେ ।

ଅଦଡ଼ଧଡ଼—ଗ୍ରା. ଅବ୍ୟ, ଯେଉଁବ୍ୟକ୍ତିର ଶରୀରବାର୍ଦ୍ଧକ୍ୟ ବା ରୋଗଯୋଗୁଁ ଅତିଶୀର୍ଣ୍ଣ,ଅଦଡ଼,ହୁଗୁଳା,ଭଙ୍ଗା,ଅଧଡ଼ାଶୀର୍ଣ୍ଣଶୀର୍ଣ୍ଣ

**ଅଧନ**—ପୁଂ.ବିଂ.(ବ.ବ୍ରୀ)ଧନହୀନ,ଦରିଦ୍ର, (ସ୍ମୃତି) ନିଜର ସ୍ୱତନ୍ତ୍ରଧନର ଅଧିକାରୀ ହେବାକୁ ଆଇନ ଅନୁସାରେ ଅସମର୍ଥ, (କ୍ଳୀ. ବି.) ଧନାଭାବ ।

ଅଧନ୍ୟ—ବିଂ.(ନ.ତତ୍ପୁ)ଭାଗ୍ୟହୀନ,ହତଭାଗ୍ୟ, (ସ୍ତ୍ରୀ) ଅଧନ୍ୟା ।

ଅଧପାଆ—ଗ୍ରା. ବି. ଏକପାଆର ଅର୍ଦ୍ଧ, ଏକସେରର ୧/୮ ଅଂଶ, ଦୁଇଛଟାଙ୍କି, ଏକଅଷ୍ଟମାଂଶ, (ଗ୍ରା.ବିଂ.) ଦୁଇଛଟାଙ୍କି ପରିମିତ, ଦୁଇଛଟାଙ୍କି ଓଜନର ।

ଅଧପାଇ—ଗ୍ରା. ବି. ଯେଉଁ ବଟକରାଦ୍ୱାରା ଅଧପାଆ ପରିମିତବସ୍ତୁ ତୌଲିଯାଏ ।

ଅଧମ—ବିଂ. ( ଅ + ଧମ ) ଅତିନିକୃଷ୍ଟ, ଅତିଅଯୋଗ୍ୟ, ନୀଚ, ନୀଚତମ, ହୀନ, ଅତିସାମାନ୍ୟ, ହେୟ, ପାପୀ,ଦୁଷ୍ଟ (ବି) ନାୟକବିଶେଷ, ଭୟ, ଦୟା ଓ ଲଜ୍ଜାହୀନ ଏବଂ କାମକ୍ରୀଡ଼ାରେ କର୍ତ୍ତବ୍ୟାକର୍ତ୍ତବ୍ୟବିଚାରଶୂନ୍ୟ ନାୟକ, (ଜ୍ୟୋତିଷ) ଯୋଗବିଶେଷ, ବୃକ୍ଷବିଶେଷ ।

ଅଧମକବି—ବି. ଯେଉଁକବି ଅନ୍ୟ କବିଙ୍କର ନିନ୍ଦାକରେ ।

ଅଧମକାବ୍ୟ—ବି. ଯେଉଁ କାବ୍ୟରେ ବ୍ୟଙ୍ଗ୍ୟାର୍ଥ ନଥାଏ ।

ଅଧମଭୃତକ—ପୁଂ.ବି. ନୀଚଦାସ, ଭାରବାହକ, ଭାରିଆ, ବୋଝିଆ,ଦ୍ୱାରୀ,କୁଲି ।

ଅଧମରତି—ବି. (କ.ଧା) କାମବିଶପ୍ରୀତି, ସ୍ୱାର୍ଥପୂର୍ଣ୍ଣପ୍ରଣୟ ।

ଅଧମରା—ଗ୍ରା. ବିଂ. ଅର୍ଦ୍ଧମୃତ, ଦରମରା, ମୃତକଳ୍ପ, ଅତ୍ୟନ୍ତକ୍ଲାନ୍ତ ଓ ଅବସନ୍ନ, ମୁମୂର୍ଷୁ, ଶୁଖୁଶୁଖୁ ହେଉଥିବା ।

ଅଧମର୍ଣ୍ଣ—ପୁଂ.ବିଂ.(ବ.ବ୍ରୀ)ଋଣୀ,ଖାତକ, କରଜଦାର, ଦେଣାଦାର ।

ଅଧମର୍ଣ୍ଣିକ—ପୁଂ. ବିଂ. ଅଧମର୍ଣ୍ଣ, ଋଣୀ, ଖାତକ, ଦେଣାଦାର (ସ୍ତ୍ରୀ)ଅଧମର୍ଣ୍ଣିକା ।

ଅଧମା—ସ୍ତ୍ରୀ.ବିଂ. (ଅଧମ ଆ) ଅଧମର ସ୍ତ୍ରୀଲିଙ୍ଗ, (ବି)ଅତିନିକୃଷ୍ଟା ସ୍ତ୍ରୀ, ନୀଚ ବା ମନ୍ଦ ପ୍ରକୃତିବିଶିଷ୍ଟା ସ୍ତ୍ରୀ ।

ଅଧମାଙ୍ଗ—କ୍ଳୀ.ବି.(କ.ଧା)ଚରଣ,ପାଦ, ଶରୀରର ନିମ୍ନାବୟବ ।

ଅଧମାଚାର—ବି. (କ.ଧା) ନୀଚଆଚରଣ, (ବିଂ.ବ.ବ୍ରୀ) ଯାହାର ଆଚରଣ ଅତିମନ୍ଦ ବା ହୀନ ।

ଅଧମାଦୂତୀ—ସ୍ତ୍ରୀ.ବି.ଯେଉଁଦୂତୀକଟୁବାକ୍ୟ କହି ନାୟକ ନାୟିକାଙ୍କ ସନ୍ଦେଶପରସ୍ପରଙ୍କ ନିକଟରେ ପହଞ୍ଚାଏ ।

ଅଧମାଧମ—ପୁଂ.ବିଂ.(ଷ.ତତ୍ପୁ)ଅତିଅଧମ, ନିତାନ୍ତ ଅପକୃଷ୍ଟ,(ସ୍ତ୍ରୀ)ଅଧମାଧମା ।

ଅଧମାନାୟିକା—ସ୍ତ୍ରୀ. ବି. ଯେଉଁନାୟିକା ପ୍ରିୟ ବା ହିତକାରୀ ନାୟକ ପ୍ରତି କୁବ୍ୟବହାର କରେ, ପ୍ରକୃତି ଅନୁସାରେ ତିନଶ୍ରେଣୀର ନାୟିକା ମଧ୍ୟରୁ ନୀଚତମା ।

ଅଧମାର୍ଦ୍ଧ—କ୍ଳୀ.ବି.(କ.ଧା) ନାଭିରଅଧୋଭାଗରେ ଥିବା ଶରୀରର ଅଂଶ ।

ଅଧମାର୍ଦ୍ଧ୍ୟ—ବିଂ.(ଅଧମାର୍ଦ୍ଧ + ଯ)ଦେହର ନିମ୍ନାଂଶ ସମ୍ବନ୍ଧୀୟ ।

ଅଧର—ପୁଂ.ବିଂ.(ଅ + ଧୃ + ମ୍ଭି.ଅ)ନିମ୍ନସ୍ଥ ନିମ୍ନରେଥିବା, ତଳେଥିବା,ନୀଚ, ଅଧମ, ହୀନ,ନିକୃଷ୍ଟ,ପୂର୍ବବର୍ତ୍ତୀ, (ବି)ଅଧରୋଷ୍ଠ, ତଳଓଠ,ଓଠ,ବକ୍ତୃତା,ଯୋନି,ପ୍ରତ୍ୟୁତ୍ତର ଦେହରନିମ୍ନତମ ଅଂଶ । [ଭାଗ ।

ଅଧରକାୟ—ବି.(କ.ଧା) ଦେହର ନିମ୍ନ-

ଅଧରଚୁମ୍ବନ—କ୍ଳୀ.ବି. (ଷତତ୍ପୁ)ଓଠରେ ଚୁମାଦେବା । [ନିମ୍ନରେ ।

ଅଧରତଃ—କ୍ରି.ବିଂ.(ଅଧର + ତସ)ତଳେ,

ଅଧରପଣା—ଗ୍ରା.ବି.ଏପଣାଯେଉଁହାଣ୍ଡିରେ ଭୋଗ ଲାଗେ ସେ ହାଣ୍ଡିପୂଜକର ଓଠ (ଅଧର,ପର୍ଯ୍ୟନ୍ତଉଚ୍ଚଥିବାରୁ ଏହାର ଏପରି ନାମ,(ଅଧର + ପ୍ରପାନକ) ଗୁଣ୍ଡିଚା ଓ ବାହୁଡ଼ା ଯାତ୍ରାସମୟରେ ଜଗନ୍ନାଥ ବଳଭଦ୍ର ଓ ସୁଭଦ୍ରାଙ୍କୁ ରଥରେ ଭୋଗ କରାଯିବା ପଣା ।

ଅଧରପଲ୍ଲବ—ବି. (ରୂପକ.) ( ଅଧର + ପଲ୍ଲବ) କ.ଧା; ନବୋଦ୍‌ଗତ ପତ୍ର ପରି କୋମଳ ଓ ରକ୍ତବର୍ଣ୍ଣ ଅଧର ।

ଅଧରପାନ—ବି.(ଷତତ୍ପୁ)ଓଷ୍ଠରେଚୁମ୍ବନ, ପ୍ରେମିକପ୍ରେମିକାଙ୍କର ଓଷ୍ଠ ଚୁମ୍ବନ ।

ଅଧରବାସ—ବି. (କ. ଧା) ନାଭିତଳକୁ ପିନ୍ଧାଯିବା ଲୁଗା ।

ଅଧରବିନ୍ଦୁ—ବି.(କ.ଧା) ସ୍ତ୍ରୀଲୋକମାନଙ୍କ ତଳ ଓଠରେ ଚିହ୍ନିତକଲା ଟୋପି ବା ଚିତା ।

ଅଧରବିମ୍ବ—ବି. (ଅଧର + ବିମ୍ବ) ପକ୍ୱବିମ୍ବଫଳପରି ନାଲି ଓ ସୁନ୍ଦର ଓଠ ।

ଅଧରମଧୁ—କ୍ଳୀ.ବି.(ଷତତ୍ପୁ) ଅଧରାମୃତ, ବକ୍ତ୍ରାସବ । [ଅଧରାମୃତ ।

ଅଧରରସ—ପୁଂ.ବି.(ଷତତ୍ପୁ) ଅଧରସୁଧା,

ଅଧରସପତ୍ନ—ପୁଂ.ବିଂ. ( ବ.ବ୍ରୀ ) ଯେ ଶତ୍ରୁକୁ ପରାଜିତ କରିଅଛି ।

ଅଧରସୁଧା—ସ୍ତ୍ରୀ.ବି.(ଷତତ୍ପୁ)ଅଧରାମୃତ, ଅଧରମଧୁ ।

ଅଧରସ୍ୱସ୍ତିକ—ବି. (କ.ଧା) ମନୁଷ୍ୟରଗୋଡ଼ତଳେ ପୃଥିବୀର ବିପରୀତଦିଗରେ ଥିବା ଆକାଶର କଳ୍ପିତବିନ୍ଦୁ । [ହାଡ଼

ଅଧରହନୁ—ବି. (କ.ଧା.) ତଳପାଟିର

ଅଧରା—ସ୍ତ୍ରୀ.ବି. (ଅଧର + ଆ)ଦକ୍ଷିଣଦିଗ (ଗ୍ରା.ବିଂ ) ଅଧୃତ, ଧରା ହୋଇ ନଥିବା (ପୁଂ.ବିଂ.)ଯେଉଁ ଅଣ୍ଡିରା ବାଛୁରୀରମୁଷ୍କ ଛେଦନହୋଇ ନଥାଏ ।

ଅଧରାଚ—ପୁଂ. ବିଂ. (ଅଧର + ଅଞ୍ଚ + କ୍ୱିପ୍) ଦକ୍ଷିଣଦିଗଗାମୀ,(ସ୍ତ୍ରୀ ଅଧରାଚୀ ।

ଅଧରାଚୀନ—ପୁଂ.ବିଂ. ଅଧଃପ୍ରଦେଶରେ ଯାହା ଜନ୍ମେ ।

ଅଧରାଚ୍ୟ—ପୁଂ. ବିଂ. ଅଧରାଚ + ଯ) ଦକ୍ଷିଣଦିଗଭବ ।

ଅଧରାତ୍—ଅବ୍ୟ.(ଅଧର + ଆତ୍)ତଳେ, ନିମ୍ନରେ, ଅଧରେଣ, ଅଧରସ୍ତାତ୍ ।

ଅଧରାତି—ଗ୍ରା.ବି.ଅର୍ଦ୍ଧରାତ୍ର, ରାତିର ମଧ୍ୟଭାଗ, ରାତିଅଧ ।

ଅଧରାମୃତ—କ୍ଳୀ.ବି. (ମଧ.କ.ଧା)ଅଧରସୁଧା, ଅଧରମଧୁ, (ଗ୍ରା.ବି) ଗୁରୁଜନ ଓ ଦୀକ୍ଷାଗୁରୁ ଖାଇବା ପତ୍ରରେ ଗ୍ରହଣଯାଇ ଥିବା ଉଚ୍ଛିଷ୍ଟ ।

ଅଧରୀକୃତ—ବିଂ. (ଅଧର + ଚ୍ୱି + କୃ + ମ୍ଭି.ତ) ପରାଜିତ, ଯାହାକୁ ଅନ୍ୟ ଲୋକ ବଳିଯାଏ ।

ଅଧର୍ଷଣ—ପୁଂ. ବିଂ. (ଅଧର + ଇନ) ଧିକ୍‌କୃତ, ନିମ୍ନସ୍ଥ, ନିନ୍ଦିତ, ଭର୍ତ୍ସିତ (ସ୍ତ୍ରୀ) ଅଧର୍ଷଣା ।

ଅଧଶ୍ଚଭୂତ—ବିଂ. ( ଅଧର + ଚ୍ୱି + ଭୂ କ.ତ) ପରାଜିତ, ମକଦ୍ଦମାରେ ହାରିଥିବା, ରଦ୍ଦକରାଯାଇଥିବା (କାର୍ଯ୍ୟ ବା ଆଦେଶ ) ।

ଅଧରେଣ—(ଅବ୍ୟ) ନିକଟରେ ନିମ୍ନଦେଶାଦ୍ଧ, ସନ୍ନିକୃଷ୍ଟ ଦକ୍ଷିଣ ଦିଗ ।

ଅଧରେଦ୍ୟୁଃ—ଅବ୍ୟ. (ଅଧର + ଦିବସ) ଗତପରଦିନ, ଆଜିର କୌଣସି ପୂର୍ବଦିବସରେ ।

ଅଧରୋତ୍ତର—କ୍ଲୀ. ବିଂ. ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ, ତଳର ଓ ଉପରର ନ୍ୟୂନାଧିକ୍ୟଯୁକ୍ତ, ନିମ୍ନୋନ୍ନତ, (ଅବ୍ୟ) ଉପର ପାଖ ତଳଆଡ଼କୁ ଓ ତଳପାଖ ଉପର ଆଡ଼କୁ ଏହିପରି ଭାବରେ, ନିକଟରେ ଓ ଦୂରରେ, ଉପରେ ଓ ତଳେ ।

ଅଧରୋଷ୍ଠ—ବି. (କ.ଧା) ତଳଓଠ(ଦ୍ୱନ୍ଦ୍ୱ) ତଳ ଓ ଉପର ଓଠ ।

ଅଧର୍ମ—ପୁଂ.ବି.(ଅ + ଧୃ + ମ) ନ.ତତ୍. ସ୍ମୃତି ଶ୍ରୁତିବିରୁଦ୍ଧାଚାର, ପାପ, ଦୁଷ୍କୃତ, ଅନ୍ୟାୟ, କର୍ତ୍ତବ୍ୟଲଙ୍ଘନ, ଆଇନ ଲଙ୍ଘନ, ବେଆଇନ କାମ, ଅନ୍ୟାୟ କର୍ମ, ଗୁଣର ଅଭାବ, ସୂର୍ଯ୍ୟଙ୍କ ଅନୁଚର ପ୍ରଜାପତି ବିଶେଷ, (ବିଂ) ଗୁଣରହିତ (ଗ୍ରା.ବିଂ) ପୁଣ୍ୟହୀନ, ପାପୀ, ଅନ୍ୟାୟୀ, (ସ୍ତ୍ରୀ) ଅଧର୍ମା ।

ଅଧର୍ମଚାରୀ—ପୁଂ. ବିଂ. ( ଅଧର୍ମ + ଚର + ଇନ୍ ) ପାପାଚାରୀ, ଯେ ଧର୍ମ କରେ ନାହିଁ, (ସ୍ତ୍ରୀ) ଅଧର୍ମଚାରିଣୀ ।

ଅଧର୍ମତଃ—କ୍ରି. ବିଂ. ( ଅ + ଧର୍ମତଃ ) ଅନ୍ୟାୟକ୍ରମେ ।

ଅଧର୍ମନିଷ୍ଠ—ବିଂ. ( ନ. ତତ୍ ) ଅଧର୍ମପରାୟଣ, ଅଧାର୍ମିକ, ପାପୀ, (ସ୍ତ୍ରୀ) ଅଧର୍ମନିଷ୍ଠା । [ଅଧର୍ମମୟୀ ।

ଅଧର୍ମମୟ—ପୁଂ. ବିଂ. (ଅଧର୍ମ + ମୟ ) ପାପମୟ, ପାପପୂର୍ଣ୍ଣ, ପାପପ୍ରଚୁର (ସ୍ତ୍ରୀ)

ଅଧର୍ମା—ସ୍ତ୍ରୀ. ବି. (ଅଧର୍ମ + ଆ) ଅଧର୍ମରୂପୀ ଦେବତା, ( ଏ ମୃତ୍ୟୁର ସ୍ତ୍ରୀ ରୂପେ କଳ୍ପିତା ) ।

ଅଧର୍ମାଚରଣ—ବି.(୬ତତ୍) ପାପାଚରଣ, (ପୁଂ.ବିଂ.) ଅଧର୍ମାଚାରୀ ।

ଅଧର୍ମାଚାର—ବି. ଓ ବିଂ. ଅଧର୍ମାଚରଣ ଦେଖ) ।

ଅଧର୍ମାଚାରୀ—ପୁଂ. ବିଂ. (ଅଧର୍ମାଚାର + ଇନ୍) ପାପାଚରଣକାରୀ, ପାପାନୁଷ୍ଠାତା, (ସ୍ତ୍ରୀ) ଚାରିଣୀ ।

ଅଧର୍ମାତ୍ମା—ପୁଂ. ବିଂ. (ବ.ବ୍ରୀ) ପାପାତ୍ମା, ପାପପ୍ରକୃତିକ, ଅଧାର୍ମିକ, ପାପୀ ।

ଅଧର୍ମିଷ୍ଠ—ପୁଂ. ବିଂ. ( ଅଧର୍ମ + ଇଷ୍ଠ ) ଅତିଶୟ ପାପଯୁକ୍ତ, ଅଧର୍ମଶୀଳ, ଧର୍ମଭ୍ରଷ୍ଟ, ପାପୀ, (ସ୍ତ୍ରୀ) ଅଧର୍ମିଷ୍ଠା ।

ଅଧର୍ମୀ—ପୁଂ.ବିଂ.(ଅଧର୍ମ + ଇନ୍)ଅତ୍ୟନ୍ତ ଅଧର୍ମାଚାରୀ, ପାପିଷ୍ଠ, ପାପାଚାରୀ, (ସ୍ତ୍ରୀ) ଅଧର୍ମିଣୀ ।

ଅଧର୍ମ୍ୟ—ପୁଂ.ବିଂ. (ଅଧର୍ମ + ଯ)ପାପାପାଦକ, ଧର୍ମବିରୁଦ୍ଧ,ବେଆଇନ୍,ଅନ୍ୟାୟ

ଅଧଲା—ଗ୍ରା. ବି. ଏକ ପଇସାର ଅର୍ଦ୍ଧମୂଲ୍ୟର ମୁଦ୍ରା, ଦେଢ଼ ପାହୁଲା ।

ଅଧବା—ସ୍ତ୍ରୀ. ବିଂ. ( ଅ + ଧବ + ଆ ) ବିଧବା, ମୃତଭର୍ତ୍ତୃକା, ରାଣ୍ଡ ।

ଅଧବାଟ—ଗ୍ରା.ବି.ନିର୍ଦ୍ଦିଷ୍ଟଦୂରତ୍ୱର ଅଧେ ।

ଅଧବାଟିଆ—ଗ୍ରା. ବିଂ. ନିର୍ଦ୍ଦିଷ୍ଟ ଦୂରତ୍ୱ ବା ପଥରୁ ଅଧେ ଯାଇଥିବା (ବ୍ୟକ୍ତି), ଦୁଇଜଣଙ୍କ ଦ୍ୱାରା ଅଧେ ଅଧେ କରାଯିବା (କର୍ମ), ଲ. ଅର୍ଥ; ଅସମ୍ପୂର୍ଣ୍ଣ ।

ଅଧବେଳ—ଗ୍ରା.ବି.ଅର୍ଦ୍ଧଗ୍ରାସ,ଅଧାଭୋଜନ, ଦିନ ମଧ୍ୟରେ ଥରେ ମାତ୍ର ଭୋଜନ ।

ଅଧଶ୍ଚର—ପୁଂ.ବିଂ.(ଅଧଃ + ଚର + କ. ଅ) ସିନ୍ଧିଆ ଚୋର, ଯେ କାନ୍ଥି କାଟି ଘରଭିତରେ ପଶି ଚୋରି କରେ. (ବିଂ) ଅଧୋଗାମୀ ।

ଅଧଶ୍ଚାରୀ—ପୁଂ.ବିଂ. (ଅଧସ୍ + ଚର + କ.ଇନ୍) ଅଧଶ୍ଚର, ଅଧୋଗାମୀ ।

ଅଧଶ୍ଚୋର—ପୁଂ. ବି. ( ଅଧଃ + ଚୋର + ଅ ) କ.ଧା; ସିନ୍ଧିଆ ଚୋର, ଯେ କାନ୍ଥି କାଟି ଘର ଭିତରେ ପଶି ଚୋରି କରେ ।

ଅଧସେ(ସ୍ତ୍ରୋ)ରିଆ—ଗ୍ରା. ବି. ଅର୍ଦ୍ଧ ସେର ଓଜନର ବଟକରା ବା ମାପିବା ପାତ୍ର, ( ବିଂ ) ଅଧସେର ପରିମିତ ( ବସ୍ତୁ ), ଯେଉଁ ହାଣ୍ଡିରେ ଅଧସେର ଚାଉଳ ଫୁଟିବ । [ନିମ୍ନସ୍ଥ ।

ଅଧସ୍ତନ—ବିଂ ଅଧସ୍ + ତନ ) ଏଥିପୂର୍ବେ ଘଟିଥିବା, ପୂର୍ବବର୍ତ୍ତୀ, ଅଧୀନସ୍ଥ,

ଅଧସ୍ତରାଂ, ଅଧସ୍ତମାଂ—(ଅବ୍ୟ) ଅତ୍ୟନ୍ତ ଅଧୋଭାଗ, ସର୍ବାତଳେ ।

ଅଧସ୍ତଳ—ବିଂ. (ଅଧସ୍ + ତଳ) ତଳମହଲା, ସବୁ ଘରର ନିମ୍ନଦେଶରେ ଥିବା କୋଠରୀ ।

ଅଧସ୍ତାତ୍—(ଅବ୍ୟ)ଅଧୋଭାଗ,ପଶ୍ଚାଦ୍ଭାଗ, ଉତ୍ତରଗୃହ, ତଳେ,ନିମ୍ନରେ,ତଳଆଡ଼କୁ ।

ଅଧସ୍ତ୍ୱକ୍—ସ୍ତ୍ରୀ. ବି. (୬ତତ୍) ଉପର ଚମଡ଼ାର ତଳେ ଥିବା ଚମ ।

ଅଧା—ଗ୍ରା. ବି. ଅର୍ଦ୍ଧ, ଅର୍ଦ୍ଧେକ, ଅଧେ ( ଗ୍ରା. ବିଂ) ଅର୍ଦ୍ଧ ପରିମିତ, (ପ୍ରା. ଗଞ୍ଜା.) ବି. ଅଧପାଆ ଓଜନରପରିମାଣବିଶେଷ ।

ଅଧାଅଧା, ଅଧାଅଧି—ଗ୍ରା.କ୍ରି.ବିଂ.ସ୍ଥୂଳତଃ ଅଧେ, ଆଠପଣି, ଅର୍ଦ୍ଧମାତ୍ରା କର୍ମେ, ଅସମ୍ପୂର୍ଣ୍ଣଭାବରେ, (ଗ୍ରା.ବିଂ.)ଅର୍ଦ୍ଧପୂର୍ଣ୍ଣ, ଅର୍ଦ୍ଧନିଃଶେଷିତ, ଦୁଇ ସମାନ ଭାଗରେ ବିଭକ୍ତ, ପ୍ରାୟ ଅଧେ ।

ଅଧାଉମର—ଗ୍ରା. ବି. ଯୁବାବୟସ, ଯୌବନ,ଯୌବନ ଓ ବାର୍ଦ୍ଧକ୍ୟର ସନ୍ଧିସମୟ, ପ୍ରୌଢ଼ାବସ୍ଥା, (ଗ୍ରା.ବିଂ ) ଅଧାବୟସିଆ, ଯେ ଯୁବା ବା ବୁଢ଼ା ନୁହେ ।

ଅଧାକାଣ୍ଡିଆ—ଗ୍ରା. ବିଂ. ଦରପନ୍ତରା, ଅସମ୍ପୂର୍ଣ୍ଣ, ଅସମାପ୍ତ, ଅର୍ଦ୍ଧସମାପ୍ତ, ଆଂଶିକ,ଅର୍ଦ୍ଧକୃତ,(ଗ୍ରା.କ୍ରି.ବିଂ)ଅସମ୍ପୂର୍ଣ୍ଣ ରୂପେ କରାଯାଇଥିବା, ଅଂଶତଃ ।

ଅଧାଟି—ଗ୍ରା. ବି କାଠତାଳିକା ବା ଚମଡାଳି ପରି କାଠର ଦୁଇଫାଳିଆ ଏକପ୍ରକାର ବାଦ୍ୟ ।

ଅଧାଟିଆ—ଗ୍ରା. ବିଂ. ଅଧାଡ଼ୁଆ,ଅର୍ଦ୍ଧପକ୍ୱ (ଫଳ), ଯାହା ସମ୍ପୂର୍ଣ୍ଣରୂପେ ବନ ନାହିଁ, ଅସମ୍ପୂର୍ଣ୍ଣ, ଦରପନ୍ତରା, ଅଣ୍ଡକରା ।

ଅଧାଡ଼—ଗ୍ରା. ବି. ଅଧାଗ୍ର, ଅସାମାଜିକ; ଆଦବ୍ କାଇଦା ବା ଭଦ୍ରତାର ଅଭାବ ।

ଅଧାଡ଼ିଆ—ଗ୍ରା. ବିଂ. ଅଭଦ୍ର,ଅସାମାଜିକ; ଅଶିକ୍ଷିତ, ଅପାଠୁଆ, ମୂର୍ଖ, ଅଖାଡ଼ୁଆ ।

ଅଧାପନ୍ତରା—ଗ୍ରା.ବିଂ. ଦରପନ୍ତରା, ଅସମ୍ପୂର୍ଣ୍ଣ, ଅସମାପ୍ତ, ଅର୍ଦ୍ଧସମାପ୍ତ ।

ଅଧାପାଠୁଆ—ଗ୍ରା. ପୁଂ.ବିଂ. ଅର୍ଦ୍ଧଶିକ୍ଷିତ, ଯେ ପୂର୍ଣ୍ଣ ଶିକ୍ଷିତ ନୁହେ, ଯାହାର ଶିକ୍ଷା ପୂର୍ଣ୍ଣ ହୋଇନାହିଁ, କୌଣସି ଗ୍ରନ୍ଥ ବା ପ୍ରବନ୍ଧର ପାଠକ୍ରିୟା ଶେଷ ନ ହେଉଣୁ ଯେ ବନ୍ଦ କରିଦିଏ ।

ଅଧାପ୍ରାଣ—ଗ୍ରା. ବି. ଅଧମରା, ମୁମୂର୍ଷୁ, ମୃତପ୍ରାୟ, ବେଦମ୍ ।

ଅଧାଫରୀ—ଗ୍ରା. ବି. ଓଡ଼େ ଚାଷ ହୋଇଥିବା ବିଲକୁ ଦୋଅଡ଼ ଚାଷ କରିବା ପାଇଁ ବ୍ୟବହୃତ ଲଙ୍ଗଳ ।

ଅଧାବୟସ—ଗ୍ରା.ବି. ଅଧାଉମର (ଦେଖ) ।

ଅଧାବଧା—ଗ୍ରା. ବିଂ.ଅଧାପନ୍ତରା (ଦେଖ), (ଗ୍ରା.କ୍ରି.ବିଂ) ଅସମ୍ପୂର୍ଣ୍ଣରୂପେ, ଅମନୋଯୋଗୀ ହୋଇ, ମନ ନ ଲଗାଇ ।

ଅଧାମ—ଗ୍ରା. ବି. ଘନୀଭୂତ ଦୁଗ୍ଧ,ରବିଡ଼ି, ମିଷ୍ଟାନ୍ନ ବିଶେଷ ।

ଅଧାମାର୍ଗବ—ବି. (ଅଧା + ମାର୍ଗ + ବା + ଅ) ଅପାମାର୍ଗ ।

ଅଧାର—ଗ୍ରା. ବିଂ. ଅଦାଢ଼ୁଆ ।

ଅଧାରଣିକ—ବିଂ. (ଅ + ଧାରଣ + କ) ଯହିଁରେ ଲାଭ ମିଳେ ନାହିଁ, ଯାହା ଭଲ ଲାଭଜନକ ନୁହେ ।

ଅଧାରୁଆ—ଗ୍ରା.ବିଂ. ଯେଉଁ ବ୍ୟକ୍ତି ଧାରୁଆ ବା ଋଣୀ ନୁହେ, ଅଖାକ୍ଷଣ, ଅଦାଢ଼ୁଆ, ଅପରିଣ, ଅପ୍ରବୀଣ, ପୌଢ଼ାବସ୍ଥା, ଯେଉଁ ବିଲରେ ଧାନ ତଳରୁଆ କାର୍ଯ୍ୟ ଶେଷ ହୋଇନାହିଁ ।

ଅଧାରୀ—ଗ୍ରା. ବିଂ. ଯେଉଁ ବ୍ୟକ୍ତି କାହାଠାରୁ ଧାର କରଜ କରିନାହିଁ, ଅଋଣୀ ।

ଅଧାର୍ମିକ—ପୁଂ. ବିଂ. (ଅଧର୍ମ + ଇକ) ନ.ତତ୍ତ୍ୱ,ଅଧର୍ମୀ,ପାପୀ, (ସ୍ତ୍ରୀ) ଅଧାର୍ମିକା ।

ଅଧାସଇ—ଗ୍ରା. ବିଂ. ଅଧାସର (ଦେଖ) ଅଦ୍ଧପର୍ଯ୍ୟନ୍ତ ଭିତରକୁ ପୂରିଯାଇଥିବା ।

ଅଧାସର—ଗ୍ରା. ବିଂ. ଅର୍ଦ୍ଧସମାପ୍ତ, ଅର୍ଦ୍ଧେକ ପର୍ଯ୍ୟନ୍ତ ଖର୍ବୀକୃତ, ଅର୍ଦ୍ଧ ପର୍ଯ୍ୟନ୍ତ ପୂର୍ଣ୍ଣ, (ଗ୍ରା. କ୍ରି. ବିଂ.) ଅର୍ଦ୍ଧସୀମା ପର୍ଯ୍ୟନ୍ତ, ପ୍ରାୟ ଅଧେ ।

ଅଧାସ୍ୱର୍ଗ—ଗ୍ରା. ବି. ସ୍ୱର୍ଗସୁଖର ଅସମ୍ପୂର୍ଣ୍ଣ ଭୋଗ, ଆକାଶର ଅଧେଦୂର ପର୍ଯ୍ୟନ୍ତ ଉଚ୍ଚତା ।

ଅଧି—(ଅବ୍ୟ.)ଉପସର୍ଗ,ଆଧିକ୍ୟ,ଅଧିକାର, ଐଶ୍ୱର୍ଯ୍ୟ, ଉପରି, ଆଧିପତ୍ୟ, ଅଧୀନତା, କାର ପ୍ରଭୃତି ପଦାର୍ଥରେ ବ୍ୟବହୃତ, ଯଥା—ଅଧିକାର, ଅଧିଶ୍ରୟଣ, ଅଧିରାଜ, (ସ୍ତ୍ରୀ) ବି. ଋତୁମତୀ ସ୍ତ୍ରୀ, ଆଧି, ମନଃପୀଡ଼ା ।

ଅଧିଆ—ଗ୍ରା. ବି. (ସଂ. ଅଧ୍ୟାସ) ଗ୍ରନ୍ଥାଦିର ଅଧ୍ୟାସ, (ସଂ. ଅଧ୍ୟାସ) ଅଭୀଷ୍ଟଫଳପ୍ରାପ୍ତି କାମନା ପୂର୍ବକ ଦେବତାଙ୍କ ନିକଟରେ ଅନୁସରଣ କରି ପଡ଼ି ରହିବା, ଧାରଣା, ଡାଢ଼ିରଖା ଗ୍ରେଷ୍ଟ ମାଟିଆ ।

ଅଧି-ଅଧିଆର—ଗ୍ରା. ବି. ଜଣକର ଛେଳି, ଗୋରୁ, ବାଛୁରିଆଦିକୁ ଆଉ ଜଣେ ପାଳିବାକୁ ନେବାର ରୀତି (ଏଥିରେ ଏହି ସର୍ତ୍ତ ଥାଏ ଯେ କିଛି ଦିନ ପରେ ବଢ଼ିଥିବା ଛେଳି ବା ଗୋରୁର ବିକ୍ରୀଲବ୍ଧ ଧନରୁ ଜମା ଦିଆସିବା ବେଳର ମୂଲ୍ୟ କଟିଯାଇ ବାକି ଧନକୁ ଅଧେ ସ୍ୱାମୀ ଓ ଅଧେ ପାଳିବା ଲୋକ ନେବା ରୀତି ।

ଅଧିକ—ବିଂ. (ଅଧି + କୈ + କ. ଅ) ଅତିରିକ୍ତ,ପ୍ରଧାନ, ଅସାଧାରଣ, ଅନେକବେଶି, ବଳବାନ, ପ୍ରଚୁର (ସ୍ତ୍ରୀ) ଅଧିକା, (ବି.) କାବ୍ୟାଲଙ୍କାର ବିଶେଷ, ଆଧିକ୍ୟ, (ଗ୍ରା.ବି)ଆତିଶର୍ଯ୍ୟ, ପ୍ରାଚୁର୍ଯ୍ୟ, ସୌଭାଗ୍ୟ ଶ୍ରୀବୃଦ୍ଧି, ପ୍ରୟୋଜନାଧିକ୍ୟ, ଅତିରେକ, ମଙ୍ଗଳ, ଶୁଭ, (ବିଂ) ଅପେକ୍ଷାକୃତ ବଡ଼, ଅଧିକତର (କ୍ରି. ବିଂ.) ଅପେକ୍ଷାକୃତ ବଡ଼ ରୂପେ, (ଅବ୍ୟ) ପରନ୍ତୁ, ପକ୍ଷାନ୍ତରେ, ଅଧିକନ୍ତୁ, ଆହୁରି ମଧ୍ୟ, କିନ୍ତୁ, କିନ୍ତୁମଧ୍ୟ, ଏହାଛଡ଼ା ।

ଅଧିକଉଁଅଧିକ—ଗ୍ରା. ବିଂ. ଆହୁରି ଅଧିକ, ଅତିଅଧିକ, ଢେରବେଶି, (ବି) ଐଶ୍ୱର୍ଯ୍ୟ, ଶ୍ରୀବୃଦ୍ଧି, ଅସରନ୍ତି ଧନ, ପ୍ରାଚୁର୍ଯ୍ୟ, (ଅବ୍ୟ) ଅଧିକରୂପେ, ଅପେକ୍ଷା ଅଧିକ, ତହୁଁ ବଳି ତହୁଁ ।

ଅଧିକତର— ବିଂ. (ଅଧିକ + ତର)ଦୁଇମଧ୍ୟରୁ ଗୋଟିଏ ବେଶି, ଅଧିକ ।

ଅଧିକତମ—ପୁଂ. ବିଂ. (ଅଧିକ + ତମ) ଅନେକ ମଧ୍ୟରେ ଗୋଟିଏ ଅଧିକ, ଅତ୍ୟନ୍ତ ଉତ୍କୃଷ୍ଟ ।

ଅଧିକନ୍ତୁ—ଅବ୍ୟ. ଆହୁରିମଧ୍ୟ, ଏବଂ,ଏବଂମଧ୍ୟ, ପରନ୍ତୁ, ପୁନଶ୍ଚ, ବିଶେଷତଃ ।

ଅଧିକପଦତା – ବି. ରଚନାର ଦୋଷବିଶେଷ ।

ଅଧିକବଚନ—ବି. (କ.ଧା) ଅତ୍ୟୁକ୍ତି ।

ଅଧିକମାସ—ପୁଂ. ବିଂ. ମଳମାସ ।

ଅଧିକରଣ—କ୍ଲୀ. ବି. (ଅଧି + କୃ + ଭା. ଅନ) ଆଧାର, ରଖାଯିବା ପାତ୍ରବିଶେଷ, ଅଧିକାରକରିବା କର୍ମ, ଦଖଲ ।

ଅଧିକରଣତା—ସ୍ତ୍ରୀ.ବି. ଅଧିକରଣ + ତ + ଆ) ପ୍ରତୀତସାକ୍ଷିକ ଧର୍ମବିଶେଷ ।

ଅଧିକରଣବିଚଳ — ପୁଂ.ବି. (ଅଧିକରଣ + ବି + ଚଳ + ଅ) ଦ୍ରବ୍ୟର ଅବସ୍ଥାନ୍ତର କରିବା, ସଂଖ୍ୟାନ୍ତର କରିବା ।

ଅଧିକରଣମଣ୍ଡପ—ବି.ବିଚାରାଳୟ, ଅଦାଲତଘର, ଇଜଲାସ, କଚେରି ।

ଅଧିକରଣସିଦ୍ଧାନ୍ତ—ପୁଂ.ବି. ଯେଉଁସିଦ୍ଧାନ୍ତ ସିଦ୍ଧ ହେଲେ ଅନ୍ୟ କେତେକ ସିଦ୍ଧାନ୍ତ ସ୍ୱୟଂ ସ୍ୱୟଂ ସିଦ୍ଧ ହୋଇଯାଏ ।

ଅଧିକରଣିକ—ପୁଂ.ବି. ଅଧିକରଣ + ଇକ) ବିଚାରପତି, ଜଜ୍, ହାକମ. (ସ୍ତ୍ରୀ) ଅଧିକରଣିକା ।

ଅଧିକରଣୀ—ପୁଂ.ବି.(ଅଧିକରଣ + ଇନ୍) ତତ୍ତ୍ୱାବଧାରକ ।

ଅଧିକରୁଅଧିକ—ଗ୍ରା.(ବି ଓ ବିଂ ଓ କ୍ରି.ବିଂ.) ଅଧିକଉଁ ଅଧିକ (ଦେଖ) ।

ଅଧିକର୍ଦ୍ଧି—ସ୍ତ୍ରୀ.ବିଂ.(ବ.ବ୍ରୀ)ସୁଖୀ,ସମୃଦ୍ଧିସମ୍ପନ୍ନ, ଅଧିକଧନଶାଳୀ, ସର୍ବତୋଭାବେ ସୁଖୀ ।

ଅଧିକର୍ମ--କ୍ଲୀ.ବି. (ଅଧି + କର୍ମନ୍) କୌଣସି କାର୍ଯ୍ୟର ତତ୍ତ୍ୱାବଧାନ, ପ୍ରଧାନକର୍ମ, କର୍ତ୍ତୃତ୍ୱ, ଅଧ୍ୟକ୍ଷତା ।

ଅଧିକର୍ମକର --ପୁଂ.ବିଂ. (ଅଧିକର୍ମ + କୃ + ଅ) ଭୃତ୍ୟକର, ସେବକବିଶେଷ ।

ଅଧିକର୍ମକୃତ୍—ପୁଂ.ବି. ଅଧିକର୍ମ + କୃ + କ୍‌.କ୍ୱିପ୍) ସର୍ଦ୍ଦାର, ଜମାଦାର ଯେ ଭୃତ୍ୟକରମାନଙ୍କର କାମ ଦେଖେ ।

ଅଧିକର୍ମିକ—ପୁଂ.ବି. (ଅଧିକର୍ମ + ଇକ) ହାଟ ବଜାର ତତ୍ତ୍ୱାବଧାରକ, ହାଟ-ଦାରୋଗା, ବଜାରଚଉଧୁରୀ, ସର୍ଦ୍ଦାର ।

ଅଧିକା—ଗ୍ରା.ବି. ବଳକା, ନଅଣ୍ଟବେଳେ କାମ ଚଳାଇବାପାଇଁ ପ୍ରସ୍ତୁତ ରଖାଯିବା (ବ୍ୟକ୍ତି ବା ବସ୍ତୁ) ପ୍ରୟୋଜନାତିରିକ୍ତ, ଅବଶିଷ୍ଟ, ଅଧିକ ।

ଅଧିକାଂଶ—ପୁଂ.ବି. (ଅଧିକ + ଅଂଶ) ଅଧିକଭାଗ, ବେଶିଭାଗ, (ବିଂ) ବ.ବ୍ରୀ, ଅଧିକଭାଗଯୁକ୍ତ, ଅନେକ, ବହୁତ (ଗ୍ରା. କ୍ରି.ବିଂ.) ବହୁସ୍ଥଳରେ, ପ୍ରାୟ, ସାଧାରଣତଃ, ଅର୍ଦ୍ଧେ ଅପେକ୍ଷା ବେଶିସ୍ଥଳରେ ।

ଅଧିକାଙ୍ଗ—କ୍ଲୀ.ବି. (କ.ଧା) ଅଙ୍ଗ ଅପେକ୍ଷା ଅଧିକ ଅଙ୍ଗ, ଛଅଆଙ୍ଗୁଳିଆ ପ୍ରଭୃତି, ସାଞ୍ଜୁ, କମର ପେଟି, (ପୁଂ.ବି.) ଅଧିକ, ଅଙ୍ଗଥିବା ବ୍ୟକ୍ତି (ବିଂ.ବ.ବ୍ରୀ) ଅତିରିକ୍ତ ଅଙ୍ଗବିଶିଷ୍ଟ (ବ୍ୟକ୍ତି), ସ୍ତ୍ରୀ, ଅଧିକାଙ୍ଗୀ ।

ଅଧିକାଧିକ—ବିଂ. (ଦ୍ୱିରୁକ୍ତି) ଅଧିକରୁ ଅଧିକ (ଦେଖ) ।

ଅଧିକାର--ପୁଂ. ବି. (ଅଧି + କୃ + ଭା. ଅ) ସ୍ୱାମୀତ୍ୱ, ସ୍ୱତ୍ୱ, ଆଧିପତ୍ୟ, କ୍ଷମତା, ଯୋଗ୍ୟତା, ସମ୍ପର୍କ, କର୍ତ୍ତବ୍ୟକର୍ମ, ପ୍ରବେଶ, ନିୟୋଗ, ଆରମ୍ଭ, ଅନୁଷ୍ଠାନ, ସ୍ୱୀକାର, ଦଖଲ, ଅଭିଜ୍ଞତା, ବ୍ୟୁତ୍ପତ୍ତି, ବ୍ୟାକରଣ ପ୍ରସିଦ୍ଧ ଅନୁବୃତ୍ତି, ରାଜା-ମାନଙ୍କର ରାଜଚିହ୍ନ ଧାରଣ, ବିଷୟ, ଗଣନା, ଗ୍ରନ୍ଥର ପରିଚ୍ଛେଦ, ପ୍ରକରଣ, (ଅଧି + କୃ + ର୍ମ.ଅ) ପଦବୀ, ପଦ, (ଗ୍ରା.ବି.) କ୍ଷମତାପରିଚାଳନା, (ବିଂ) ଅଧିକୃତ, ଅଧିକାରୀ ।

ଅଧିକାରବିଧି—ପୁଂ. ବି. (ଅଧିକାର + ବିଧି) ମୀମାଂସକୋକ୍ତ ବିଧିବିଶେଷ ।

ଅଧିକାରିତା—ସ୍ତ୍ରୀ. ବି. (ଅଧିକାର + ତ + ଆ) ଅଧିକାରିତ୍ୱ, ସ୍ୱାମୀତ୍ୱ ।

ଅଧିକାରୀ—ପୁଂ.ବି. (ଅଧିକାର + ଇନ୍) ସ୍ୱାମୀ. ଅଧ୍ୟକ୍ଷ, ସ୍ୱତ୍ୱବାନ୍, ଅଭିଜ୍ଞ, ଯୋଗ୍ୟ, ମାଲିକସ୍ୱତ୍ୱଥିବା, ଦଖଲ କରୁଥିବା, (ସ୍ତ୍ରୀ) ଅଧିକାରିଣୀ, ବି. (ମନୁଷ୍ୟର) ସ୍ୱାମୀ, ପ୍ରଭୁ, (ଦ୍ରବ୍ୟର) ମାଲିକ, ତତ୍ତ୍ୱାବଧାରକ, (ଗ୍ରା.ବି) ମଠ ପରିଚାଳନ ପାଇଁ ମହନ୍ତଙ୍କ ଅଧୀନସ୍ଥ ତତ୍ତ୍ୱାବଧାରକ ବିଶେଷ, ବଂଶୋପାଧି ବିଶେଷ, ଗ୍ରା. ଗଞ୍ଜାମ ବି. ସରକାରୀ ହାକିମ ।

ଅଧିକାରୁଢ଼ବୈଶିଷ୍ଟ୍ୟରୂପକ--(ବି) ରୂପ-କାଳଂକାରବିଶେଷ ।

ଅଧିକାର୍ଥ—ବିଂ. (ବ.ବ୍ରୀ.) ଯେଉଁ ବାକ୍ୟ ବା ଶବ୍ଦ ବା କୌଣସି ପଦର ଅର୍ଥରେ ବିଶିଷ୍ଟତା ଥାଏ, (ବି) କ.ଧା; ବିଶିଷ୍ଟ ଅର୍ଥ, ଅଧିକା ଅର୍ଥ ।

ଅଧିକାର୍ଥବଚନ—କ୍ଲୀ. ବି. ପ୍ରଶଂସାରୋ-ପିତ ବାକ୍ୟ, ନିନ୍ଦାରୋପିତ ବାକ୍ୟ ।

ଅଧିକାମ—ପୁଂ. ବି. ଅତ୍ୟନ୍ତ ଅଭିଳାଷ, (ବିଂ) ଅଧିକାମଯୁକ୍ତ ।

ଅଧିକେ—ଗ୍ରା.ବିଂ. ଅଧିକ (ଦେଖ) କ୍ରି..ବି. ଅଧିକନ୍ତୁ (ଦେଖ), ଅଧିକରୂପେ, ପ୍ରଚୁର ପରିମାଣରେ, ବିଶେଷରୂପେ ।

ଅଧିକୃଚ୍ଛ୍ର—ପୁଂ.ବି. ଏକମାସସାଧ୍ୟ ବ୍ରତ-ବିଶେଷ (କ୍ଲୀ. ବି.) ଅଧିକ କଷ୍ଟ, (ବିଂ) ଅଧିକୃଚ୍ଛ୍ରଯୁକ୍ତ (ବ୍ୟକ୍ତି) ।

ଅଧିକୃତ—ପୁଂ. ବି. (ଅଧି + କୃ + ର୍ମ. ତ କାର୍ଯ୍ୟନିର୍ବାହକ, ତତ୍ତ୍ୱାବଧାରକ, ଅଧ୍ୟକ୍ଷ, ଅଧିକାରୀ, ଆୟବ୍ୟୟାଦିର ଅବ-ବେକ୍ଷ୍ୟକ, ବିଂ. (କ.ତ) ଯାହା ଅଧିକାର କରାହୋଇଅଛି, ଆୟତ୍ତ, ନିଯୁକ୍ତ, ଅଭିଜ୍ଞତା ବା ଶିକ୍ଷାଦ୍ୱାରା ଲବ୍ଧ ।

ଅଧିକୃତି—ସ୍ତ୍ରୀ. ବି. (ଅଧି + କୃ + ତି) ଅଧିକାର ।

ଅଧିକେ—ଗ୍ରା.କ୍ରି.ବି. ଅଧିକନ୍ତୁ, ପରନ୍ତୁ ।

ଅଧିକ୍ରମ—ପୁଂ. ବିଂ. (ଅଧି + କ୍ରମ + ଭା. ଅ) ଆକ୍ରମଣ, ଚଢ଼ାଉ, ଆରୋହଣ ।

ଅଧିକ୍ରମଣ—ବି. (ଅଧି + କ୍ରମ + ଭା.ଅନ) ଅଧିକ୍ରମ, ଆକ୍ରମଣ, ଚଢ଼ାଉ, ଆରୋ-ହଣ । [ କ୍ଷୟକାରୀ ।

ଅଧିକ୍ଷିତ୍—ପୁଂ.ବିଂ. (ଅଧି + କ୍ଷି + କ୍ୱିପ୍)

ଅଧିକ୍ଷିପ୍ତ—ବିଂ. (ଅଧି + କ୍ଷିପ୍ + ର୍ମ.ତ) ନିନ୍ଦିତ, ତିରସ୍କୃତ, ଅପମାନିତ, କାର୍ଯ୍ୟରୁ ଅନ୍ତରିତ, ବରଖାସ୍ତ, ନିକ୍ଷିପ୍ତ, ଫିଙ୍ଗା ଯାଇଥିବା. ପ୍ରେରିତ, କାର୍ଯ୍ୟର ଭାର-ପ୍ରାପ୍ତ, (ବି) ଅଧିକ୍ଷେପ, ସ୍ତ୍ରୀ) ଅଧିକ୍ଷିପ୍ତା ।

ଅଧିକ୍ଷେପ—ପୁଂ. ବି. (ଅଧି + କ୍ଷିପ + ଭା-ଅ) ନିନ୍ଦା, ତିରସ୍କାର; ଅପମାନ, ବ୍ୟଙ୍ଗ୍ୟ, ସ୍ଥାପନ, ପ୍ରେରଣ, କାର୍ଯ୍ୟଚ୍ୟୁତ, ଫିଙ୍ଗା, କାର୍ଯ୍ୟର ଭାର ପ୍ରଦାନ, (ବିଂ) ଅଧିକ୍ଷିପ୍ତ ।

ଅଧିଗତ—ବିଂ. (ଅଧି + ଗମ + ର୍ମ.ତ) ଜ୍ଞାତ, ସ୍ୱୀକୃତ, ପ୍ରାପ୍ତ, ଲବ୍ଧ, ନିଶ୍ଚିତ, ପରିହୃତ, ଶିକ୍ଷା କରାଯାଇଥିବା, ସଙ୍ଗମ କରାଯାଇଥିବା, ଅର୍ଦ୍ଧିତ, ଅର୍ଜିତ, (ସ୍ତ୍ରୀ) ଅଧିଗତା, (ବି) ଅଧିଗମ ।

ଅଧିଗମ—ପୁଂ.ବି. (ଅଧି + ଗମ + ଭା.ଅ) ଜ୍ଞାନ, ପ୍ରାପ୍ତି, ସ୍ୱୀକାର, ଲାଭ, ଉପାର୍ଜନ, ଶିକ୍ଷା, (ବିଂ) (ଅଧି + ଗମ୍ୟ) ଗତ ।

ଅଧିଗମନ—ବି. (ଅଧି + ଗମ + ଭା.ଅନ) ଅଧିଗମ (ଦେଖ) ।

ଅଧିଗମ୍ୟ—ବିଂ. (ଅଧି + ଗମ + ର୍ମ. ଯ) ପ୍ରାପ୍ୟ, ଜ୍ଞେୟ, ଲଭ୍ୟ, ସ୍ୱୀକାର୍ଯ୍ୟ, ଶିକ୍ଷ-ଣୀୟ ।

ଅଧିଗୁଣ—ପୁଂ. ବି. (ଅଧି + ଗୁଣ) ଶ୍ରେଷ୍ଠ ଗୁଣ, (ବିଂ) ଅଧିଗୁଣଯୁକ୍ତ ।

ଅଧିଗ୍ରାମ—ଗ୍ରା. ବିଂ. ଗ୍ରାମର ସମୀପ ବା ଉପକଣ୍ଠରେ ଅବସ୍ଥିତ ।

ଅଧିଜଙ୍ଗ—ଗ୍ରା. ବି. କ୍ଷତ୍ରିୟ ବୀରମାନଙ୍କୁ ରାଜପ୍ରଦତ୍ତ ଉପାଧିବିଶେଷ ।

ଅଧିଜନନ—କ୍ଲୀ. ବି. (ଅଧି + ଜନ + ଭା. ଅନ) ଜନ୍ମ, ଉତ୍ପାଦନ, ଜନ୍ମଦାନ ।

ଅଧିଜିହ୍ୱ—ପୁଂ. ବି. (୬ତତ୍ପୁ) ଜିହ୍ୱାବ୍ରଣ, ଲୁଣ୍ଠଘା, ସର୍ପ, ଦ୍ୱିଜିହ୍ୱ ।

ଅଧିଜିହ୍ୱା—ବି. (ଅଧି + ଜିହ୍ୱା) ଘଣ୍ଟିକା, ଜିଭ ବା ଘଣ୍ଟିକାବଢ଼ିବା ରୋଗବିଶେଷ ।

ଅଧିଜିହ୍ୱିକା—ସ୍ତ୍ରୀ. ବି. ( ଅଧିଜିହ୍ୱା + କ + ଆ) ଘଣ୍ଟିକା, ଉପଜିହ୍ୱା ।

ଅଧିଜ୍ୟ—ବିଂ.(ବି. ବ୍ରୀ) ଆରୋପିତଗୁଣ-ବିଶିଷ୍ଟ (ଧନୁ), ଗୁଣଚଢ଼ା (ଧନୁ) ।

ଅଧିଜ୍ୟକାର୍ମୁକ—ପୁଂ. ବିଂ. ( ବି.ବ୍ରୀ ) ଯେଉଁ ଲୋକ ଗୁଣ ଚଢ଼ାହୋଇଥିବା ଧନୁ ଧରି ଥାଏ, (ସ୍ତ୍ରୀ) କାର୍ମୁକା ।

ଅଧିଜ୍ୟଧନ୍ୱା—ପୁଂ. ବିଂ. ( ବି. ବ୍ରୀ ) ଅଧିଜ୍ୟକାର୍ମୁକ (ଦେଖ) ।

ଅଧିଜ୍ୟୋତିଷ— ଅବ୍ୟ)ସୂର୍ଯ୍ୟାଦିଜ୍ୟୋତି-ଷ୍କକୁ ଅଧିକାର କରି ।

ଅଧିତ୍ୟକା—ସ୍ତ୍ରୀ.ବି.(ଅଧି + ତ୍ୟକ + ଆ ପର୍ବତର ଉପରିଭାଗ ସମତଳ ଭୂମି, (ବିପରୀତ ଉପତ୍ୟକା ।

ଅଧିତ୍ୟକାରୂଢ଼—ପୁଂ.ବିଂ.(ଅଧିତ୍ୟକା + ଚର + ଇନ୍ ) ଅଧିତ୍ୟକାରେ ଯେଉଁ-ମାନେ ଭ୍ରମଣ କରନ୍ତି । [ଚମଡ଼ା ।

ଅଧିତ୍ୱକ୍—ସ୍ତ୍ରୀ. ବି. ବହିଶ୍ଚର୍ମ, ଉପରର

ଅଧିଦନ୍ତ—ପୁଂ. ବି. ଅଧିକା ଦାନ୍ତ, ବାହାଡ଼ାଦାନ୍ତ, ହାତୀଦାନ୍ତ ।

ଅଧିଦେବ—ପୁଂ.ବି. ପରମେଶ୍ୱର, ସମସ୍ତ-ଦେବାଧିପ, ଇଷ୍ଟଦେବତା ( ଗ୍ରା.ବି.) ଶ୍ରେଷ୍ଠବ୍ୟକ୍ତି । [ଅଧିଦେବ ।

ଅଧିଦେବତା—ସ୍ତ୍ରୀ.ବି.ଅଧିଷ୍ଠାତ୍ରୀଦେବତା,

ଅଧିଦେବନ—ବି. (ଅଧି + ଦିବ + ଭା. ଅନ)ଯୁଆ ଖେଳିବା ପଟା ବା ପାଲି ।

ଅଧିଦୈବ(ତ)—ପୁଂ. ବି. [ଅଧି + ଦୈବ (ତ) ] ଇଷ୍ଟଦେବ, କୌଣସି ସ୍ଥାନ ବିଶେଷ ବା ଗ୍ରାମର ଦେବତା, ( ବିଂ ) ଦେବତାସମ୍ବନ୍ଧୀୟ, ଐଶ୍ୱରିକ, ଆକ-ସ୍ମିକ (ଦୈବୀ ଘଟଣା) ।

ଅଧିନାଥ—ପୁଂ. ବି. ( ଅଧି + ନାଥ ) ଅଧୀଶ୍ୱର. ପତି, ସ୍ୱାମୀ, ସର୍ଦ୍ଦାର, (ଗ୍ରା. ବି) କାଳଯୋଗନାମକ ସଂସ୍କୃତଗ୍ରନ୍ଥର ରଚୟିତାଙ୍କ ନାମ ।

ଅଧିନାସ—ପୁଂ. ବି. (ଅଧି + ନୀ + ଅ) ଗନ୍ଧ, ସୌରଭ ।

ଅଧିନାୟକ—ପୁଂ. ବିଂ. ( ଅଧି + ନ + ଅକ ) ପ୍ରଧାନନେତା, ଅଧ୍ୟକ୍ଷ, ପରି-ଚାଳକ (ସ୍ତ୍ରୀ) ଅଧିନାୟିକା ।

ଅଧିପ—ପୁଂ. ବି. (ଅଧି + ପା + କ.ଅ) ରାଜା, ପ୍ରଭୁ,ଅଧିକାରୀ, ଈଶ୍ୱର, ମୁଖ୍ୟ ବ୍ୟକ୍ତି, ( ଜ୍ୟୋତିଷ ) ରାଶିପ୍ରଭୃତିର ଅଧିପତି ଗ୍ରହ ।

ଅଧିପା – ପୁଂ. ବି. (ଅଧି + ପା + କ୍ୱିପ୍) ଅଧୀଶ୍ୱର, ଅଧିପତି, ଅଧିପାଳକ ।

ଅଧିପାତକ—ବି. ମହାପାପ ।

ଅଧିପୁରୁଷ—ପୁଂ. ବି. (ଅଧି + ପୁରୁଷ) ପରମେଶ୍ୱର, ଶ୍ରେଷ୍ଠପୁରୁଷ, ବିରାଟ-ପୁରୁଷ, ସ୍ୱାୟମ୍ଭୁବ ମନୁ ।

ଅଧିପ୍ରଜ—ପୁଂ.ବିଂ. (ଅଧି + ପ୍ରଜ)ବି.ବ୍ରୀ; ଯାହାର ବହୁ ପୁତ୍ର କନ୍ୟା ଜନ୍ମିଅଛନ୍ତି (ସ୍ତ୍ରୀ) ଅଧିପ୍ରଜା ।

ଅଧିଭୂ—ପୁଂ.ବି. ( ଅଧି + ଭୂ + କ୍ୱିପ୍ ) ରାଜା, ପ୍ରଭୁ, ପରମପୁରୁଷ, ସ୍ୱାମୀ, ଉପରିସ୍ଥ ଲୋକ ।

ଅଧିଭୂତ—ବି.(ଅଧି + ଭୂତ) ପଞ୍ଚଭୂତର ନଶ୍ୱରଦେହ, ଯାବତୀୟ ପ୍ରାଣୀସ୍ଥାନସୃଷ୍ଟ-ବସ୍ତୁ, ପରମାତ୍ମା ଏବଂ ତାଙ୍କର ପ୍ରକାଶ ।

ଅଧିଭୋଜନ—କ୍ଲୀ. ବି. (ଅଧି + ଭୁଜ + ଭା.ଅନ) ଅତ୍ୟନ୍ତ ଭୋଜନ, ବିଂ/ବି.ବ୍ରୀ; ଖୁବ୍ ଦାମୀ, ଅତି ମୂଲ୍ୟବାନ୍ ।

ଅଧିମଥନ—ବି. (ଅଧି + ମନ୍ଥ + ଭା ଅନ) ଅଗ୍ନି ଉତ୍ପାଦନାର୍ଥ ଦୁଇ ବସ୍ତୁକୁ ଘଷିବା ।

ଅଧିମନ୍ଥ—ପୁଂ.ବି. ଅଧି + ମନ୍ଥ + କ.ଅ) ଅରଣିକାଷ୍ଠର ମନ୍ଥନାବଯୁବବିଶେଷ, ଅଭିଷ୍ୟନ୍ଦ ରୋଗର ଏକଅଂଶ, ଭୟଙ୍କର ଚକ୍ଷୁରୋଗବିଶେଷ ।

ଅଧିମାଂସ—କ୍ଲୀ.ବି.(ଅଧି + ମାଂସ)ରୋଗ-ବିଶେଷ, ଚକ୍ଷୁଗୋଲକର ଅର୍ବୁଦ ।

ଅଧିମାଂସକ—ପୁଂ. ବି. (ଅଧିମାଂସ + କୃ + କ.ଅ) ଦନ୍ତରୋଗବିଶେଷ, ଦାନ୍ତ-ପାଟି ଫୁଲା ।

ଅଧିମାତ୍ର—ପୁଂ ବି.(ଅଧି + ମାତ୍ରା)ବି.ବ୍ରୀ; ଅଧିକପ୍ରମାଣ,ଅତିମାତ୍ରାଯୁକ୍ତ, ଅତ୍ୟନ୍ତ ।

ଅଧିମାସ—ପୁଂ.ବି. (ଅଧି + ମାସ) ମଳ-ମାସ । [ମିଳନବିଶେଷ ।

ଅଧିମିତ୍ର—କ୍ଲୀ.ବି.ଗ୍ରହମାନଙ୍କର ପରସ୍ପର-

ଅଧିଯଜ୍ଞ—ପୁଂ.ବି. (ଅଧି + ଯଜ୍ଞ) ଯଜ୍ଞ-ସମ୍ବନ୍ଧୀୟ, ଯଜ୍ଞାଦିକର୍ମ ପ୍ରବର୍ତ୍ତିକ,ଯଜ୍ଞର ଅଧିଷ୍ଠାତା, (କ୍ରି.ବିଂ) ଯଜ୍ଞ ସମ୍ବନ୍ଧରେ, (ବି) ପ୍ରଧାନ ଯଜ୍ଞ, ଯଜ୍ଞର ଅଧିଷ୍ଠାତୃ ଦେବ, କୃଷ୍ଣ, ବିଷ୍ଣୁ, ପରମେଶ୍ୱର ।

ଅଧିଯୋଗ— ପୁଂ.ବି.(ଅଧି + ଯୁଜ + ଅ) ଜ୍ୟୋତିଷମତରେ ଯାତ୍ରାର ଅତ୍ୟନ୍ତ ଶୁଭଯୋଗ ।

ଅଧିଯୋଧ—ପୁଂ.ବି. (ଅଧି + ଯୁଧ୍ + କ. ଅ) ମହାଯୋଦ୍ଧା, ପ୍ରଧାନ ଯୋଦ୍ଧା ।

ଅଧିରଥ—ପୁଂ.ବିଂ. (ଅଧି + ରଥ)ରଥା-ରୂଢ଼, ରଥ ଚଳାଇବାବାଲା, ( ବି ) ସାରଥୀ, ଗାଡ଼ୁଆନ, ବଡ଼ରଥ, ଅଙ୍ଗ-ଦେଶର ରାଜା ଓ କର୍ଣ୍ଣଙ୍କ ପାଳକପିତା ।

ଅଧିରାଜ—ପୁଂ. ବି. (ଅଧି + ରାଜା + ଅ) ଅଧୀଶ୍ୱର,ସମ୍ରାଟ୍,ସାର୍ବଭୌମ,ମହାରାଜ ।

ଅଧିରାଜ୍ୟ—କ୍ଲୀ. ବି. ( ଅଧି + ରାଜ୍ୟ ) ସାମ୍ରାଜ୍ୟ, ସମ୍ରାଟପଣ, ମହାରାଜତ୍ୱ ।

ଅଧିରାଜ୍ୟଭାକ୍—ପୁଂ.ବି. ( ଅଧିରାଜ୍ୟ + ଭଜ + କ୍ୱିପ୍ ) ଅଧିରାଟ୍,ସମ୍ରାଟ୍,ସାର୍ବ-ଭୌମ ।

ଅଧିରାଟ୍—ପୁଂ. ବି. (ଅଧି + ରାଜ + କ. କ୍ୱିପ୍) ସମ୍ରାଟ୍, ଅଧିରାଜ, ସାର୍ବଭୌମ, ମହାରାଜ ।

ଅଧିରାଷ୍ଟ୍ର—କ୍ଲୀ. ବି. ରାଜ୍ୟ ।

ଅଧିରୁକ୍ମ—ପୁଂ ବିଂ. ଆଭରଣ ପ୍ରାପ୍ତ, (ବି) ଅଧିକ ସୁବର୍ଣ୍ଣାଭରଣ ।

ଅଧିରୂଢ଼—ବିଂ. (ଅଧି + ରୁହ + କ.ତ) ଆରୋହୀ,ଯେ ଚଢ଼ିଥାଏ, ଆକ୍ରମଣକାରୀ, (ମି.ତ)ଧନୁରେ ଚଢ଼ାଯାଇଥିବା(ଗୁଣ), (ସ୍ତ୍ରୀ) ଅଧିରୂଢ଼ା, (ବି) ଅଧିରୋହଣ ।

ଅଧିରୋପଣ—କ୍ଲୀ.ବି. ଅଧି + ଣିଚ୍ — ରୁହ + ଭା.ଅନ ) ଆରୋହଣ କରାଇବା, ଚଢ଼ାଇବା, ଧନୁରେ ଗୁଣ ଚଢ଼ାଇବା ।

ଅଧିରୋପିତ—ବିଂ.(ଅଧି+ରୁହ—ଣିଚ୍—ମି.ତ ) ଅତିଶୟ ଆରୋପିତ, କୃତାରୋହଣ, ଯାହା ଚଢ଼ା ହୋଇଅଛି, ଉତ୍ଥାପିତ,ଅଧିଷ୍ଠିତ,(ସ୍ତ୍ରୀ)ଅଧିରୋପିତା ।

ଅଧିରୋହ—ପୁଂ. ବି. ( ଅଧି+ରୁହ+କ.ଅ)ହସ୍ତ୍ୟାରୋହୀ ବ୍ୟକ୍ତି, ଯେ ହାତୀରେ ଚଢ଼ିଥାଏ, (ସ୍ତ୍ରୀ ଅଧିରୋହା ।

ଅଧିରୋହଣ—କ୍ଲୀ. ବି. (ଅଧି+ରୁହ+ଭା.ଅନ ) ସୋପାନ, ସିଢ଼ି, ପାବଚ୍ଛ, ଚଢ଼ିବା,ସବାର ହେବା (ବିଂ)ଅଧିରୂଢ଼ ।

ଅଧିରୋହଣୀ—ସ୍ତ୍ରୀ. ବି. (ଅଧି+ରୁହ+ଣ.ଅନ+ଈ) ସିଢ଼ି, ନିଶୁଣୀ, ଆରୋହଣୀ ।

ଅଧିରୋହଣୀ—ସ୍ତ୍ରୀ.ବିଂ. (ଅଧିରୋହନ୍+ଈ) ଆରୋହଣୀ, ଆରୋହଣକାରିଣୀ, ଚଢ଼ିଥିବା (ସ୍ତ୍ରୀ), ବି. ସିଢ଼ି, ପାହାଚ ।

ଅଧିରୋହୀ—ପୁଂ. ବିଂ. (ଅଧିରୁହ+କ.ଇନ୍) ଆରୋହୀ, ଆରୋହଣକାରୀ, ଯେ ଚଢ଼ିଥାଏ (ସ୍ତ୍ରୀ) ଅଧିରୋହିଣୀ ।

ଅଧିଲୋକ—ପୁଂ. ବି. ସଂସାର, ବ୍ରହ୍ମାଣ୍ଡ, ମର୍ତ୍ତ୍ୟଲୋକ, ବିଶ୍ୱ, ଭୁବନ ।

ଅଧିବକ୍ତା—ପୁଂ.ବିଂ.(ଅଧି+ବଚ୍+ତୃ) ଯେ ପକ୍ଷପାତ କଥା କହେ,ଓକିଲ,(ସ୍ତ୍ରୀ) ଅଧିବକ୍ତ୍ରୀ ।

ଅଧିବକ୍ତୃ—ପୁଂ. ବିଂ. (ଅଧି+ବଚ+କ.ତୃ)ଯେ କୌଣସି ବିଶିଷ୍ଟ ବିଷୟର ପକ୍ଷ ସମର୍ଥନ କରନ୍ତି, ବକ୍ତା, ମୁହଁ ଉପରେ ବନ୍ଧାଯିବା ଶୀତବସ୍ତ୍ର ।

ଅଧିବଚନ—ବି. ଅତ୍ୟୁକ୍ତି, ସଂଜ୍ଞା, ନାମ, ପକ୍ଷସମର୍ଥନପୂର୍ବକ କଥନ ।

ଅଧିବତ୍ସର, ଅଧିବର୍ଷ—ବି. ଅଧିମାସଯୁକ୍ତ ବର୍ଷ,ଯେଉଁ ବର୍ଷରେ ମଳମାସ ପଡ଼ିଥାଏ ।

ଅଧିବଲ—ବି. (ଅଧି+ବଲ) ପରସ୍ପରକୁ ଆହ୍ୱାନପୂର୍ବକ ଯୁଦ୍ଧାର୍ଥ ଉଚ୍ଚୈଃସ୍ୱରରେ ଆହ୍ୱାନ, ଶୋଧାଶୋଧି ।

ଅଧିବସତି—ବି. ( ଅଧି+ବସତି ) ବାସସ୍ଥାନ ।

ଅଧିବସ୍ତ୍ର—ପୁଂ.ବିଂ. (ଅଧି+ବସ୍ତ୍ର) ଯାହା ଦେହରେ ଲୁଗା ଅଛି ।

ଅଧିବାକ—ପୁଂ. ବି. ( ଅଧି+ବଚ+ଭା.ଅ) ପକ୍ଷପାତଯୁକ୍ତ ବାକ୍ୟ, ଅଧିବଚନ ସଂଜ୍ଞା, ନାମ, ଅତ୍ୟୁକ୍ତି । [ ଚନ

ଅଧିବାଚନ—ବି.(ଅଧି+ବାଚନ)ନିନ୍ଦା-

ଅଧିବାସ—ପୁଂ.ବି. ( ଅଧି+ବସ+ଅ) ବାସସ୍ଥାନ, ଘର, ବାସିନ୍ଦା, ପଡ଼ୋଶ, ସୌରଭ, ଅଧିଆ ପଡ଼ିବା, ପରଗୃହବାସ,ବୈବାହିକସ୍ଥିର ପୂର୍ବଦିବସ ସଂସ୍କାରବିଶେଷ, ବିବାହର ଗନ୍ଧାଧିବାସ, ପୋଷାକ ।

ଅଧିବାସନ—କ୍ଲୀ. ବି. ( ଅଧି+ବସ+ଣିଚ୍+ଭା.ଅନ ) ଗନ୍ଧମାଲ୍ୟାଦିଦ୍ୱାରା ସଂସ୍କାରକରଣ, ସୁରଭିକରଣ, ସୁବାସିତକରଣ, ଯଜ୍ଞାରମ୍ଭପୂର୍ବରୁ ଦେବତା ସ୍ଥାପନ, ଜୀବନ୍ୟାସପୂର୍ବକ ଦେବତା ପ୍ରତିଷ୍ଠା ।

ଅଧିବାସିତ—ପୁଂ. ବିଂ ( ଅଧି+ବାସି+ମି.ତ ) ଗନ୍ଧମାଲ୍ୟାଦିଦ୍ୱାରା କୃତସଂସ୍କାର,ସୁରଭିତ,ସୁଗନ୍ଧୀକୃତ, ସ୍ଥାପିତ, (ସ୍ତ୍ରୀ) ବାସିତା ।

ଅଧିବାସୀ—ପୁଂ.ବିଂ. ( ଅଧି+ବସ+ଇନ୍) ନିବାସୀ,ବାସିନ୍ଦା,ଅନ୍ୟଦେହରେ ଗନ୍ଧ ଚନ୍ଦନ ଲେପନକାରୀ, ( ସ୍ତ୍ରୀ ) ବାସିନୀ ।

ଅଧିବାହନ—କ୍ଲୀ. ବି. (ଅଧି+ବହ—ଣିଚ୍.ଅନ)ଉପରେ ଚଢ଼ିବା, ବାହନ ।

ଅଧିବିକର୍ତ୍ତନ—କ୍ଲୀ. ବି. (ଅଧି+ବି+କୃତ+ଅନ) ଅତ୍ୟନ୍ତଚ୍ଛେଦନ ।

ଅଧିବିଦ୍ୟ— ଅବ୍ୟ) ବିଦ୍ୟାକୁ ଅଧିକାର କରି, ବିଂ. ( ଅଧି+ବିଦ୍ୟା ) ବ. ବ୍ରୀ, ସମଧିକ ବିଦ୍ୱାନ୍, ଅତିଶୟ ପଣ୍ଡିତ, (ସ୍ତ୍ରୀ) ଅଧିବିଦ୍ୟା ।

ଅଧିବିଦ୍ୟା—ସ୍ତ୍ରୀ. ବିଂ. ( ବ.ବ୍ରୀ ) ଅତିବିଦୁଷୀ, ଅତିଶୟ ପଣ୍ଡିତା, (ସ୍ତ୍ରୀ) ବି. ବିଦ୍ୟା ଅର୍ଜନର ଉପାୟ ଉଦ୍ଦେଶ୍ୟ ।

ଅଧିବିନ୍ନା—ସ୍ତ୍ରୀ. ବି. ( ଅଧି+ବିଦ+ଣ.ତ+ଆ) ଦୁଇଥର ବିବାହିତ ସ୍ୱାମୀର ପ୍ରଥମା ସ୍ତ୍ରୀ, ଅଧ୍ୟୂଢ଼ା ।

ଅଧିବେତ୍ତା—ପୁଂ. ବି. ( ଅଧି+ବିଦ+କ.ତୃ ) ପ୍ରଥମା ସ୍ତ୍ରୀ ଥାଇଁ ଦ୍ୱିତୀୟା ସ୍ତ୍ରୀ ବିବାହକାରୀ ପୁରୁଷ ।

ଅଧିବେଦ—ପୁଂ.ବି.(ଅଧି+ବିଦ+ଭା.ଅ) ପ୍ରଥମ ବିବାହ ପର ପୁନର୍ବାର ବିବାହ କରିବା,(ବିଂ)ବେଦସମ୍ବନ୍ଧୀୟ,ବୈଦିକ ।

ଅଧିବେଦନ—କ୍ଲୀ.ବି (ଅଧି+ବିଦ+ଭା.ଅନ(ପ୍ରଥମସ୍ତ୍ରୀସତ୍ତ୍ୱେ ଦ୍ୱିତୀୟସ୍ତ୍ରୀଗ୍ରହଣ

ଅଧିବେଦନୀୟ—ପୁଂ. ବିଂ. ( ଅଧି+ବିଦ+ଅନୀୟ) ଏକବାର ବିବାହ ପର ଦ୍ୱିତୀୟବାର ବିବାହଯୋଗ୍ୟ ।

ଅଧିବେଦ୍ୟ—ପୁଂ. ବିଂ. ( ଅଧି+ବିଦ+ଯ) ଅଧିବେଦନୀୟ (ଦେଖ) ।

ଅଧିବେଶନ—ବି.(ଅଧି+ବିଶ୍+ଭା.ଅନ) ସଭାର ବୈଠକ,ସଭାସ୍ଥଳରେ ସଭ୍ୟମାନଙ୍କର ମିଳନ ।

ଅଧିଶୟିତ—ପୁଂ. ବିଂ. (ଅଧି+ଶୟିତ) (ଶଯ୍ୟାଦିର), ଉପରେଶୋଇଥିବା(କୌଣସି ପଦାର୍ଥର) ଉପରକୁ ଆଉଜି ଥିବା ।

ଅଧିଶାୟିତ—ବିଂ.(ଅଧି+ଶୀ—ଣିଚ୍+ମି.ତ ) ଅଧିଷ୍ଠାପିତ, ସମ୍ୟକ୍‌ଶାୟିତ (ସ୍ତ୍ରୀ) ଅଧିଶାୟିତା ।

ଅଧିଶ୍ରପଣ—କ୍ଲୀ.ବି. (ଅଧି+ଶ୍ର+ଭା.ଅନ) ପାଚନ, ଅଧିଶ୍ରୟଣ (ଦେଖ) ।

ଅଧିଶ୍ରୟ—ପୁଂ.ବି. (ଅଧି+ଶ୍ରି+ଭା.ଅ) ପାକାର୍ଥହାଣ୍ଡିଆଦିକୁ ଚୁଲି ଉପରେବସାଇବା,ପାକକରଣ,ରନ୍ଧନ,ଆଧାର, ପାତ୍ର ।

ଅଧିଶ୍ରୟଣ—କ୍ଲୀ.ବି. (ଅଧି+ଶ୍ରି+ଭା.ଅନ)ନିଆଁରେ ହାଣ୍ଡିଆଦି ଚଢ଼ାଇବା, ଚୁଲିଉପରେ ଗରମକରିବା, ନିଆଁ ଉପରେ ଫୁଟାଇବା ।

ଅଧିଶ୍ରୟଣୀ—ସ୍ତ୍ରୀ. ବି. ଅଧି+ଶ୍ରି+ଣ.ଅନ+ଈ ଚୁଲ୍ଲୀ, ନିଶୁଣୀ ।

ଅଧିଶ୍ରୟଣୀୟ—ପୁଂ.ବି.(ଅଧି+ଶ୍ରି+ମି.ଅନୀୟ ) ପାକପାତ୍ର, ହାଣ୍ଡିଆଦି ।

ଅଧିଶ୍ରିତ—ପୁଂ.ବି. (ଅଧି+ଶ୍ରି+ମି.ତ) ଆଶ୍ରିତ, ପ୍ରାପ୍ତ, ସ୍ଥାପିତ, ପାକାର୍ଥ ଚୁଲ୍ଲୀ ଉପରେ ଚଢ଼ାଯାଇଥିବା (ପାତ୍ରାଦି) ।

ଅଧିଶ୍ରୀ—ପୁଂ.ବିଂ. (ଅଧି+ଶ୍ରୀ) ବ.ବ୍ରୀ; ମହାମହିମ, ଖୁବ୍‌ଧନୀ, ଅଧିରାଜ ।

ଅଧିଷବଣ—କ୍ଲୀ ବ.ସୋମରସାଦର ପାନପାତ୍ର ।
ଅଧିଷବଣ୍ୟ—କ୍ଲୀ.ବ.ସୋମଯାଗର ପାତ୍ର ।
ଅଧିଷ୍ଠାତା—ପୁଂ. ବଂ. (ଅଧି + ସ୍ଥା + କ. ତୃ) ନାୟକ, ଅଧ୍ୟକ୍ଷ, ତତ୍ତ୍ୱାବଧାରକ, ଅବସ୍ଥିତିକାରୀ, (ସ୍ତ୍ରୀ) ଅଧିଷ୍ଠାତ୍ରୀ, (ବ) ଶାସନକର୍ତ୍ତା, ମୁରବୀ, ଈଶ୍ୱର, ପୁରୁଷ, ଅଧିପତି ।
ଅଧିଷ୍ଠାତୃଦେବ—ପୁଂ.ବ. (କ.ଧା) ଇଷ୍ଟଦେବ,କୌଣସିଦେଶ,ସ୍ଥାନ,ଗ୍ରହ, ଅନୁଷ୍ଠାନ ଆଦଉପରେ ଅଭିଭାବକ ବା ରକ୍ଷକ, ବା ନାୟାମକରୂପେ କଳ୍ପିତ ଠାକୁର ।
ଅଧିଷ୍ଠାତ୍ରୀ—ସ୍ତ୍ରୀ.ବଂ.(ଅଧି + ସ୍ଥା + ତୃ + ଈ) ସ୍ଥିତିକାରିଣୀ, ଆଶ୍ରୟଦାୟିନୀ, କର୍ତ୍ତ୍ରୀ ।
ଅଧିଷ୍ଠାତ୍ରୀଦେବତା—ସ୍ତ୍ରୀ,ବ.(କ.ଧା)ଇଷ୍ଟ ଦେବତା,ଅଧିଷ୍ଠାତୃଦେବ (ଦେଖ) ।
ଅଧିଷ୍ଠାନ—କ୍ଲୀ.ବ.(ଅଧି + ସ୍ଥା + ଭା.ଅନ) ବାସସ୍ଥାନ, ସ୍ଥିତି, ନଗର, ଆଶ୍ରୟ,ଚକ୍ର, ରଥର ଚକ,ସନ୍ନିଧାନ, ପଦବୀ, ରାଜତ୍ୱ, ପ୍ରଭୁତ୍ୱ,ପ୍ରଭାବ,ସମ୍ପାଦନ,ସ୍ଥାନ, ଦଖଲ, ଆଶୀର୍ବାଦ,ନଜର, ଆରୋହଣ,ମୂଳଦୁଆ, ନିଆଁ,ଭୋକ୍ତା ଓ ଭୋଗ୍ୟବସ୍ତୁର ସଂଯୋଗ, ଯେଉଁ ବସ୍ତୁରେ ଭ୍ରମର ଆରୋପ ହୁଏ ।
ଅଧିଷ୍ଠାନଚକ୍ର—ବ.ଶରୀରମଧ୍ୟରେ କଳ୍ପିତ ତନ୍ତ୍ରୋକ୍ତ ଗୋଟିଏ ଚକ୍ରମଧ୍ୟରୁ ଏକତମ ।
ଅଧିଷ୍ଠାନଶରୀର—ବ.(ଦର୍ଶନ ସ୍ଥୂଳଶରୀର ଓ ସୂକ୍ଷ୍ମଶରୀରର ମଧ୍ୟବର୍ତ୍ତୀଶରୀର, ମୃତ୍ୟୁପରେ ପିତୃଲୋକରେ ଯେଉଁ ସୂକ୍ଷ୍ମ ଶରୀରରେ ଆତ୍ମା ବାସକରେ ।
ଅଧିଷ୍ଠିତ—ବଂ. (ଅଧି + ସ୍ଥା + କ. ତ) ଅବସ୍ଥିତ,ଉପସ୍ଥିତ,ଆବିର୍ଭୂତ, ଆଶ୍ରିତ, ଅଧିକୃତ,ଅଧ୍ୟୁଷିତ, ଯହିଁରେ ବାସକରାଯାଏ,ନିୟନ୍ତ୍ରିତ,ସାହାଯ୍ୟକୃତ, ପ୍ରଚଳିତ, ଆରୂଢ଼,ଚଢ଼ାଯାଇଥିବା,ପ୍ରତିଷ୍ଠିତ,ନିଯୁକ୍ତ, ସ୍ଥାପିତ ।
ଅଧିସ୍ତ୍ରୀ—ସ୍ତ୍ରୀ.ବ.(ଅଧୀ + ସ୍ତ୍ରୀ)ଉତ୍କୃଷ୍ଟାସ୍ତ୍ରୀ, ପ୍ରସିଦ୍ଧା ସ୍ତ୍ରୀ, ( ଅବ୍ୟ ) (ସ୍ତ୍ରୀକୁ ଅଧିକାର କରି) ସ୍ତ୍ରୀ-ସମ୍ବନ୍ଧୀୟ ।
ଅଧିହରି—ଅବ୍ୟ, (ଅଧି + ହରି) ହରିଙ୍କୁ, ଅଧିକାର କରି ।
ଅଧିକାର—ପୁଂ.ବ. (ଅଧି + କୃ + ଭା.ଅ) ଆଧିପତ୍ୟ, ପ୍ରଭୁତ୍ୱ, ଅଧିକାରର ଅନ୍ୟ ଆକାର ।
ଅଧୀତ—କ୍ଲୀ, ବଂ. (ଅଧି + ଇ + ର୍ମ.ତ) ଅଭ୍ୟସ୍ତ, କୃତାଧ୍ୟୟନ, ପଠିତ, ଯାହା ଅଧ୍ୟୟନକରାହୋଇଅଛି, ବ. (ଭା.ତ) ଅଧ୍ୟୟନ, (ସ୍ତ୍ରୀ) ଅଧୀତା ।
ଅଧୀତବିଦ୍ୟ—ପୁଂ.ବଂ.(ବ.ବ୍ରୀ)କୃତବିଦ୍ୟ, ସମାପ୍ତବିଦ୍ୟ, ଯେ ପାଠପଢ଼ା ଶେଷ କରିଅଛି,ଶିକ୍ଷିତ, ଯେ ବେଦ ପଢ଼ିଅଛି ।
ଅଧୀତି—ସ୍ତ୍ରୀ. ବ. (ଅଧି + ଇ + ଭା.ତି) ଅଧ୍ୟୟନ,ସ୍ମରଣ,ଶିକ୍ଷା,ବିଦ୍ୟା,ଅଧ୍ୟାପନ ।
ଅଧୀତୀ—ପୁଂ.ବ. (ଅଧୀତ + ଇନ୍)ଛାତ୍ର, ଶିଷ୍ୟ, ବିଦ୍ୟାର୍ଥୀ, (ବ) ଉତ୍ତମରୂପେ ଶିକ୍ଷିତ, ଅଧ୍ୟୟନକାରୀ, ବିଦ୍ୟାରେ ପାରଦର୍ଶୀ ।
ଅଧୀନ—ପୁଂ.ବଂ. (ଅଧି + ଇନ୍) ବଶବର୍ତ୍ତୀ,ଅଧିକାରଭୁକ୍ତ, ଅନୁଗତ,ଆଶ୍ରିତ, ବାଧ୍ୟ,ଆୟତ୍ତ,(ସ୍ତ୍ରୀ)ଅଧୀନା,(ଗ୍ରା.ବ.)ଦାସ ବା ବନ୍ଦୀତ ଭୃତ୍ୟ, ଅଧୀନସ୍ଥ ବ୍ୟକ୍ତି (ବ) ଅଧୀନତା ।
ଅଧୀନତା—ସ୍ତ୍ରୀ, ବ. (ଅଧୀନ + ଭା ତା) ବଶବର୍ତ୍ତିତା, ଆନୁଗତ୍ୟ,ଆଜ୍ଞାନୁବର୍ତ୍ତିତା, ଦାସ୍ୟ. ଭୃତ୍ୟତା, ହୀନତା, ନମ୍ରରେ ରହିବା ଅବସ୍ଥା ।
ଅଧୀନସ୍ଥ—ଗ୍ରା.ବଂ.ବଶବର୍ତ୍ତୀ, ଅଧିକାରରେ ସ୍ଥିତ, ନିମ୍ନସ୍ଥ ।
ଅଧୀବାସ—ପୁଂ. ବ. (ଅଧି + ବସ୍ + ଅ) ଆବରକ, ମହାକଞ୍ଚୁକ ।
ଅଧୀୟାନ – ପୁଂ.ବଂ. ( ଅଧି + ଇ + କ. ଆନ)ପଠନକାରୀ,ଘୋଷୁଥିବା, ଅଧ୍ୟୟନକାରୀ, ବେଦାଧ୍ୟାୟୀ, (ପୁଂ.ବଂ) ଛାତ୍ର ।
ଅଧୀର—ପୁଂ.ବଂ.(ଅ + ଧୀର) ନ.ତତ୍; ଉଦ୍ବିଗ୍ନ, ଧୈର୍ଯ୍ୟହୀନ, ଅସ୍ଥିର, ଚଞ୍ଚଳ, ଭୀତ, ବ୍ୟାକୁଳ, କାତର ।
ଅଧୀରତା—ସ୍ତ୍ରୀ.ବ.(ଅଧୀର + ତା)ଉଚ୍ଛୃଙ୍ଖଳ, ଅସ୍ଥିରତା, ଧୈର୍ଯ୍ୟହୀନତା,ଅସହିଷ୍ଣୁତା ।
ଅଧୀରା—ସ୍ତ୍ରୀ. ବଂ. (ନ.ତତ୍) ଅସ୍ଥିରା, ଚଞ୍ଚଳା, ଧୈର୍ଯ୍ୟହୀନା, ବ୍ୟାକୁଳା, (ବ) ବିଦ୍ୟୁତ୍,ଚପଳା,ନାୟିକାବିଶେଷ,ଅବ୍ୟବସ୍ଥିତଚିତ୍ତ ଓ କଳହପ୍ରିୟା ନାୟିକା, ଯେଉଁ ନାୟିକା ନାୟକଠାରେ ଅନ୍ୟ ସ୍ତ୍ରୀ ବିଳାସଚିହ୍ନ ଦେଖି ଅଧୀରା ହୋଇ ପ୍ରତ୍ୟକ୍ଷ କୋପ କରେ ।
ଅଧୀଶ—ପୁଂ.ବ. ( ଅଧି + ଈଶ) ଅଧ୍ୟକ୍ଷ, ସରଦାର,ଅଧିପତି,ପ୍ରଭୁ. ମାଲିକ, ସ୍ୱାମୀ, (ସ୍ତ୍ରୀ) ଅଧୀଶା ।
ଅଧୀଶ୍ୱର—ପୁଂ.ବ.(ଅଧି + ଈଶ୍ୱର)ରାଜା, ପ୍ରଭୁ, ସାର୍ବଭୌମ, ଚକ୍ରବର୍ତ୍ତୀ, (ସ୍ତ୍ରୀ) ଅଧୀଶ୍ୱରୀ ।
ଅଧୀଷ୍ଟ—କ୍ଲୀ. ବଂ. (ଅଧି + ଇଷ୍ + ତ) ସତ୍କାରପୂର୍ବକ ନିୟୋଜିତ, ମାଗଣା, ପ୍ରାର୍ଥିତ,ଅବୈତନିକ, (ବ) ଅବୈତନିକ ବା ମାଗଣାକାମ ବା ଗୃହକରି,ସତ୍କାରପୂର୍ବକ କୌଣସିବ୍ୟକ୍ତିକୁ କାମରେ ଲଗାଇବା ।
ଅଧୁଆ—ଗ୍ରା. ବଂ. (ସଂ.ଅଧୌତ) ଯାହା ଧୁଆ ହୋଇନାହିଁ, ଆଗାଧୁଆ, ଅପରିଷ୍କୃତ, ଅଧୌତ ।
ଅଧୁଆମୁହଁ—ଗ୍ରା.ବ.(ସଂ.ଅଧୌତ + ମୁଖ) ଭୋଜନ ପରେ ଧୌତ ହୋଇ ନ ଥିବା ମୁଖ,ଶୟନରୁ ଉଠି ଧୁଆ ହୋଇ ନ ଥିବା ମୁହଁ ।
ଅଧୁଆମୁହାଁ—ଗ୍ରା.ବଂ.ଯେ ଶେଯରୁ ଉଠିଲାକ୍ଷଣି ମୁହଁ ଧୁଏ ନାହିଁ, ଯେ ଖାଇସାରିବା ପରେ ମୁହଁ ଧୋଇ ନ ଥାଏ ।
ଅଧୁଆର—ଗ୍ରା. ବଂ. (ଅର୍ଦ୍ଧ) ଅଧାରୁଆ, ଅଧାଢ଼ୁଆ,ଅର୍ଦ୍ଧପକ୍ୱ,ଅଧାବୟସିଆ ।
ଅଧୁତ,ଅଧୂତ—ପୁଂ. ବଂ. (ଅ + ଧୂ, ଧୁ + ର୍ମ.ତ)ନ.ତତ୍; ଅକମ୍ପିତ ।
ଅଧୁନା—ଅବ୍ୟ,ଇଦାନୀ,ବର୍ତ୍ତମାନ,ଏବେ, ଆଜିକାଲି ।
ଅଧୁନାତନ—ବଂ. ଇଦାନୀନ୍ତନ, ‹ତତ୍କାଳୀନ,ଆଧୁନିକ, ବର୍ତ୍ତମାନ ଘଟୁଥିବା, ପ୍ରଚଳିତ, ଆଜିକାଲିକାର ।
ଅଧୁର—ପୁଂ.ବଂ.(ଅ + ଧୁଃ) ଭାରଶୂନ୍ୟ, ନିଶ୍ଚିନ୍ତ,ବୋଝାଇହୋଇ ନ ଥିବା(ଗାଡ଼ି)

ଅଧୂଲ—ଗ୍ରା.ବି. ଏକେଟଙ୍କାର ଅର୍ଦ୍ଧପରିମିତମୁଦ୍ରା, ଆଠଅଣି ।
ଅଧୂମକ—ପୁଂ. ବିଂ. (ଅ + ଧୂମ + କ) ଯହିଁରୁ ଧୂଆଁ ଉଠୁନାହିଁ, ଧୂମଶୂନ୍ୟ, (ବି) ଜଳନ୍ତା ନିଆଁ ।
ଅଧୃତ—ବିଂ (ଅ + ଧୃତ) ନ.ତତ୍; ଧରାହୋଇ ନ ଥିବା, ଅକୃତଧାରଣ, (ସ୍ତ୍ରୀ) ଅଧୃତା (ପୁଂ.ବି.) ବିଷ୍ଣୁ, ପରମେଶ୍ୱର ।
ଅଧୃତି—ସ୍ତ୍ରୀ. ବି. (ଅ + ଧୃତି) ନ.ତତ୍; ଅସ୍ଥିରତା, ଅଧୈର୍ଯ୍ୟ, ଶୃଙ୍ଖଳା, ଅଧୀରତା, ଶୈଥିଲ୍ୟ, ଅଦାର୍ଢ୍ୟ, ଅସନ୍ତୋଷ ।
ଅଧୃଷ୍ଟ—ପୁଂ.ବିଂ. (ଅ + ଧୃଷ୍ଟ) ଲଜ୍ଜାଶୀଳ ଅପ୍ରଗଲ୍‌ଭ, ଅଧୃଷ୍ୟ, (ସ୍ତ୍ରୀ) ଅଧୃଷ୍ଟା ।
ଅଧୃଷ୍ୟ—ପୁଂ.ବିଂ. (ଅ + ଧୃଷ୍ୟ) ଅଜେୟ, ଅନଭିଭବନୀୟ, ସଲଜ୍ଜ, ଗର୍ବୀ ଦୁର୍ଦ୍ଧର୍ଷ (ସ୍ତ୍ରୀ) ଅଧୃଷ୍ୟା, (ବି) ଅଧୃଷ୍ୟତା ।
ଅଧୃଷ୍ୟତା—ସ୍ତ୍ରୀ. ବି. (ଅଧୃଷ୍ୟ + ଭା.ତ) ଅନଭିଭବନୀୟତା, ଦୁର୍ଦ୍ଧର୍ଷତ୍ୱ ।
ଅଧୃଷ୍ୟା—ସ୍ତ୍ରୀ. ବି. ନଦୀବିଶେଷ (ବିଂ) ଅଧର୍ଷଣୀୟା, ଅନଭିଭବନୀୟା ।
ଅଧେ—ଗ୍ରା.ବି. (ସଂ.ଅର୍ଦ୍ଧ) ପୂର୍ଣ୍ଣବସ୍ତୁରସମାନ ଦୁଇଭାଗରୁ ଏକଭାଗ, (ବିଂ) ଅର୍ଦ୍ଧପରିମିତ, ପ୍ରାୟ ଅର୍ଦ୍ଧେକ (ଗ୍ରା. ସର୍ବ) ଅତ୍ୟଳ୍ପ-ସଂଖ୍ୟକ, ଅତ୍ୟଳ୍ପ, ସାମାନ୍ୟ, କେତେକ, (ଅବ୍ୟ) ଅର୍ଦ୍ଧପରିମାଣ ବା, ସଂଖ୍ୟାମାତ୍ର ।
ଅଧେକ—ଗ୍ରା. ବି. (ସଂ-ଅର୍ଦ୍ଧ) ଅର୍ଦ୍ଧେକ, ଅର୍ଦ୍ଧେକପରିମାଣ ଅଧେ ।
ଅଧେନୁ—ସ୍ତ୍ରୀ.ବି. (ଅ + ଧେନୁ) ଦୁଧ ଦେଉ ନ ଥିବା ଗାଈ ।
ଅଧୈର୍ଯ୍ୟ—କ୍ଲୀ.ବି. (ନ.ତତ୍) ଧୈର୍ଯ୍ୟର ଅଭାବ, ମନର ଅସ୍ଥିରତା, ଅସହିଷ୍ଣୁତା, ଉଦ୍‌ବେଗ, ଅଶାନ୍ତ, ଅସ୍ଥିରତା (ବିଂ.ବ.ବ୍ରୀ) ଧୈର୍ଯ୍ୟହୀନ, ଅଧୀର, ଅସହିଷ୍ଣୁ, ଅସ୍ଥିର, ଚଞ୍ଚଳ, (ସ୍ତ୍ରୀ) ଅଧୈର୍ଯ୍ୟା ।
ଅଧୋଽଂଶୁକ—କ୍ଲୀ.ବି. (ଅଧଃ + ଅଂଶୁକ) ଅଧୋବସ୍ତ୍ର, ପରିଧେୟବସ୍ତ୍ର, ଧୋତି, ଶାଢ଼ୀ, ଘାଗରାପ୍ରଭୃତି ।
ଅଧୋଽକ୍ଷ—କ୍ଲୀ.ବି. (ଅଧଃ + ଅକ୍ଷ) ଇନ୍ଦ୍ରିୟର ଅଗୋଚର, ଶଗଡ଼ର ଅକ୍ଷତଳେ ଥିବା, ଯେ ଇନ୍ଦ୍ରିୟମାନଙ୍କୁ ବଶୀଭୂତ କରିଅଛି, (ବି) ପାଦ, ଗୋଡ଼ ।
ଅଧୋଽକ୍ଷଜ—ପୁଂ. ବି. (ଅଧଃ + ଅକ୍ଷଜ ପାଦରୁ ଜାତ, ବିଷ୍ଣୁଙ୍କରନାମ, ଜିତେନ୍ଦ୍ରିୟ ବ୍ୟକ୍ତିର ଦର୍ଶନୀୟ, ଯେ ଅଗ୍ନିକ୍ଷିତ ଇନ୍ଦ୍ରିୟ ଜ୍ଞାନକୁ ଅଧଃ କରିଅଛି ।
ଅଧୋଖନନ—ବି. (ଅଧଃ + ଖନନ) କୌଣସି ବସ୍ତୁର ମୂଳ ବା ତଳଆଡ଼ୁ ଖୋଳିବା, କୋରଡ଼ କରିବା ।
ଅଧୋଗତ—ପୁଂ. ବିଂ. (ଅଧଃ + ଗତ) ୨ତତ୍ ବା ୭ତତ୍. ତଳକୁ ଯାଇଥିବା, ବୁଡ଼ିଯାଇଥିବା, ଅସ୍ତହୋଇବା, ଅବମାନିତ, ଅପକୃଷ୍ଟ ଦଶାପ୍ରାପ୍ତ, (ସ୍ତ୍ରୀ) ଅଧୋଗତା ।
ଅଧୋଗତି—ସ୍ତ୍ରୀ.ବି. (୭ତତ୍) ମନ୍ଦଗତି, ନରକଗମନ, ଦୁର୍ଗତି, ଅବନତି, ଅବତରଣ, ତଳକୁ ଗତି କରିବା, ଅସ୍ତହେବା ବୁଡ଼ିଯିବା । [(ଦେଖ ।
ଅଧୋଗମନ—କ୍ଲୀ.ବି. (୭ତତ୍) ଅଧୋଗତି
ଅଧୋଗାମୀ—ପୁଂ. ବିଂ. (ଅଧଃ + ଗମ + ଇନ୍) ତଳକୁ ଯାଇଥିବା, ଅସ୍ତହେଉଥିବା, ବୁଡ଼ିଯାଇଥିବା, ଅବତରଣଶୀଳ, ଦୁର୍ଦ୍ଦଶା ଭୋଗ କରୁଥିବା, ନରକଗାମୀ, (ସ୍ତ୍ରୀ) ଅଧୋଗାମିନୀ ।
ଅଧୋଘଣ୍ଟା—ସ୍ତ୍ରୀ. ବି. (ଅଧଃ + ଘଣ୍ଟ + ଆ) ଅପାମାର୍ଗ ।
ଅଧୋଽଙ୍ଗ—ବି. (ଅଧଃ + ଅଙ୍ଗ) ମଧ୍ୟ. କ. ଧା; ଗୁହ୍ୟଦ୍ୱାର, ସ୍ତ୍ରୀମାନଙ୍କର ଜନନେନ୍ଦ୍ରିୟ । [ପ୍ରଦେଶ ।
ଅଧୋଜାନୁ—କ୍ଲୀ. ବି. ଜାନୁର ତଳ-
ଅଧୋଜିହ୍ୱିକା—ସ୍ତ୍ରୀ.ବି. ତାଳୁ-ମୂଳସ୍ଥିତ କ୍ଷୁଦ୍ର ଜିହ୍ୱା, ଘଣ୍ଟିକା ।
ଅଧୋଡ଼ା—ଗ୍ରା. ବିଂ. (ସଂ-ଅର୍ଦ୍ଧ + ବୃଦ୍ଧ) ଦରବୁଢ଼ା, ଅଧାବୟସିଆ । [କ.ଠ ।
ଅଧୋଦାରୁ—କ୍ଲୀ.ବି. ଦ୍ୱାରବନ୍ଧର ତଳ-
ଅଧୋଦିକ୍—ସ୍ତ୍ରୀ. ବି. ଦକ୍ଷିଣଦିଗ ।
ଅଧୋଦୃଷ୍ଟି—ସ୍ତ୍ରୀ.ବି. (ଅଧଃ + ଦୃଷ୍ଟି) ତଳଆଡ଼କୁ ଚାହିଁବା, ଯୋଗ ସାଧନର ଆସନବିଶେଷ (ପୁଂ. ବିଂ) ବ.ବ୍ରୀ-ନିମ୍ନଭାଗେ ଦର୍ଶନକାରୀ, ଯେ ତଳଆଡ଼କୁ ଚାହିଁଥାଏ ।
ଅଧୋଦେଶ—ବି. (ଅଧଃ + ଦେଶ) ତଳପାଖ, ନିମ୍ନ ଅଂଶ, ନିମ୍ନରେ ଥିବା ସ୍ଥାନ ।
ଅଧୋଦ୍ୱାର—ବି. (ଅଧଃ + ଦ୍ୱାର,) ଗୁହ୍ୟଦ୍ୱାର, ସ୍ତ୍ରୀ-ଜନନେନ୍ଦ୍ରିୟ ।
ଅଧୋଽଧଃ—ଅବ୍ୟ. (ଅଧଃ + ଅଧଃ) କ୍ରମଶଃ ନିମ୍ନ, ତଳକୁ ତଳକୁ ।
ଅଧୋପାତ—ପୁଂ. (ଅଧସ୍ + ପତ + ଅ) ଅଧୋଗତି (ଦେଖ) । [ଯିବା ପାଣି ।
ଅଧୋଭକ୍ତ—କ୍ଲୀ.ବି. ଖାଇବାପରେ ପିଆ-
ଅଧୋଭାଗ—ବି. ନାଭିଠାରୁ ତଳକୁ ଥିବା ଦେହର ଅଂଶ, ପାତାଳ, ନିମ୍ନଭାଗ. ସ୍ତ୍ରୀ-ଲୋକମାନଙ୍କର ଯୋନି ।
ଅଧୋଭୁବନ—କ୍ଲୀ ବି. (ମଧ୍ୟ.କ.ଧା) ପାତାଳ
ଅଧୋଭୂଃ—ବି. (ଅଧଃ + ଭୂଃ ଅପେକ୍ଷାକୃତ ଖାଲୁଆ ଜମି, ପର୍ବତର ପାଦଦେଶ ଜମି, ଖାଲୁଆ ଜମି ।
ଅଧୋମର୍ମ—କ୍ଲୀ.ବି. ଗୁହ୍ୟଦ୍ୱାର, ସ୍ତ୍ରୀ-ଜନନେନ୍ଦ୍ରିୟ ।
ଅଧୋମୁଖ—ବିଂ. (ବ.ବ୍ରୀ) ଯେ ଲଜ୍ଜାରେ ମୁହଁ ତଳକୁ ପୋତିଅଛି, ହେଂଟବଦନ, ତଳକୁ ମୁହଁକରି ଗତି କରୁଥିବା, (ବି) ଲଜ୍ଜାବନତମୁଖ, (ବ.ବ୍ରୀ.) ଅନନ୍ତମୂଳ, ଅବାକ୍‌ପୁଷ୍ପୀଗୁଳ୍ମ, ଗୋଜିହ୍ୱାବୃକ୍ଷ, କୋବି, ନରକବିଶେଷ, ଅଧୋମୁଖ-ନକ୍ଷତ୍ରଗଣ ।
ଅଧୋମୁଖଗଣ, ଅଧୋମୁଖନକ୍ଷତ୍ର—ବି. (ଏମାନଙ୍କର ଗତି ନିମ୍ନଦିଗକୁ ହେବାରୁ) (ଜ୍ୟୋତିଷ) ଭରଣୀ, କୃତ୍ତିକା, ଅଶ୍ଳେଷା ମଘା, ପୂର୍ବାଫାଲ୍‌ଗୁନୀ, ବିଶାଖା, ମୂଳା ପୂର୍ବାଷାଢ଼ା, ପୂର୍ବଭାଦ୍ରପଦ, ଏହି ନଅ ଗୋଟି ନକ୍ଷତ୍ର ।
ଅଧୋମୁଖୀ- ସ୍ତ୍ରୀ.ବିଂ.ଅଧୋମୁଖରସ୍ତ୍ରୀଲିଙ୍ଗ, (ବି) କ୍ଷୁଦ୍ରେକ୍ଷୁ ।
ଅଧୋଯନ୍ତ୍ର—(କ.ଧା) ଯନ୍ତ୍ରର ନିମ୍ନଭାଗ, ବକଯନ୍ତ୍ର ।
ଅଧୋଗ୍ରାମ—ପୁଂ.ବି.ଅଧୋଭାଗରେ, ଶୁକ୍ଳବର୍ଣ୍ଣବିଶିଷ୍ଟ ଯଥା ଅଧୋଗ୍ରାମ ଗ୍ରାଗ ।

ଅଧୋଲୋକ--ପୁଂ. ବି. (ମଧ୍ୟ. କ. ଧା) ପାତାଳ, ଅଧୋଭୁବନ ।

ଅଧୋବଦନ--ବି. ଅଧଃ + ବଦନ)ଲଜ୍ଜା-ବନତମୁଖ, (ବ.ବ୍ରୀ) ଅବାକ୍‌ପୁଷ୍ପୀ ଗୁଳ୍ମ, ଗୋଜିହ୍ୱାବୃକ୍ଷ, ବିଷ୍ଟୁ, ପୁଂ. ବିଂ. (ବ.ବ୍ରୀ) ଲଜ୍ଜାବନତମୁଖ, ଯେ ଲଜ୍ଜା ଯୋଗୁଁ ତଳକୁ ମୁହଁ ପୋତିଥାଏ । ପୋତାମୁହାଁ, ତଳମୁହାଁ ହୋଇ ଉଗୁଡ଼ା ଯାଇଥିବା (ପାତ୍ର) ।

ଅଧୋବଦନା—ସ୍ତ୍ରୀ.ବି. ମୁଦ୍ରାବିଶେଷ ।

ଅଧୋବର୍ଚ୍ଚଃ—ବିଂ. ବ.ବ୍ରୀ ) ଯାହାର ଜ୍ୟୋତି ନିମ୍ନଦେଶଗାମୀ ।

ଅଧୋବଶ—ବି.(ଅଧଃ + ବଶ) ସ୍ତ୍ରୀ-ଜନନେନ୍ଦ୍ରିୟ ।

ଅଧୋବସ୍ତ୍ର,ଅଧୋବାସ—ବି. (ମଧ୍ୟ.କ.ଧା) ପିନ୍ଧାଲୁଗା, ପରିଧେୟ ବସ୍ତ୍ର, ଧୋତି, ଶାଢ଼ୀ, ଘାଘରା ଆଦି ।

ଅଧୋବାୟୁ—ପୁଂ.ବି. ଅପାନବାୟୁ,ବାତକର୍ମ, ପାଦ ।

ଅଧୋବର୍ତ୍ତୀ—ବି ବ୍ରାହ୍ମୀଶାକ,ସୁନୁସୁନିଆଁ ଶାଗ ।

ଅଧୋବିନ୍ଦୁ—ପୁଂ. ବି. ଗଗନମଣ୍ଡଳର ଯେଉଁବିନ୍ଦୁ ଠିକ୍ ଆମ୍ଭର ପାଦତଳରେ ଅବସ୍ଥିତ ।

ଅଧୋଶୟ—ପୁଂ.ବିଂ. ( ଅଧଃ + ଶୀ + କ,ଅ ) ଯେ ଭୂମିରେ ଶୁଏ ।

ଅଧୋଶଯ୍ୟ—ପୁଂ. ବିଂ. ( ବ.ବ୍ରୀ ) ଯେ ଭୂମିରେ ଶୁଏ (ସ୍ତ୍ରୀ) ଅଧୋଶଯ୍ୟା ।

ଅଧୋଶଯ୍ୟା—ସ୍ତ୍ରୀ.ବିଂ.(ଅଧୋଶଯ୍ୟ + ଆ) ଭୂମିରେ ଶୋଉଥିବା ( ସ୍ତ୍ରୀ ), ବି.ଭୂମି-ଶୟନ ।

ଅଧ୍ୟକ୍ଷ—ବିଂ. ( ଅଧି + ଅକ୍ଷ ) ବ୍ୟାପକ, ପ୍ରତ୍ୟକ୍ଷ, ଇନ୍ଦ୍ରିୟଗୋଚର, ଦୃଶ୍ୟ, (ବିଂ. ପୁଂ.) ନିୟନ୍ତା, ତଦାରଖକରିବା-ବାଲା, (ପୁଂ. ବି.) ପ୍ରଧାନବ୍ୟକ୍ତି, ପ୍ରଭୁ, ସ୍ୱାମୀ, ଅଧିପତି, ସର୍ଦ୍ଦାର, ଶିକ୍ଷକ, ସଭାପତି, ତତ୍ତ୍ୱାବଧାନର ଭାରପ୍ରାପ୍ତ-ବ୍ୟକ୍ତି, ତଦାରଖକରିବା ହାକିମ, ଫରଗୁଲକ, ଖିରକୋଲଗଛ, ଆଖିରେ ଦେଖିଥିବା ସାକ୍ଷୀ ।

ଅଧ୍ୟକ୍ଷତା—ସ୍ତ୍ରୀ. ବି. ( ଅଧ୍ୟକ୍ଷ + ଭା.ତା ) ପ୍ରଭୁତ୍ୱ, କର୍ତ୍ତୃତ୍ୱ, ତତ୍ତ୍ୱାବଧାନ ।

ଅଧ୍ୟକ୍ଷର—( ଅବ୍ୟ ) ଅକ୍ଷରବିଷୟକ, (କ୍ଳୀ. ବି) ପ୍ରଣବ, ଓଁକାର ମନ୍ତ୍ର ।

ଅଧ୍ୟଗ୍ନି—ଅବ୍ୟ. ଅଗ୍ନିସମୀପରେ, ( କ୍ଳୀ. ବି ) ବିବାହକାଳେ ଅଗ୍ନି ସମୀପରେ କନ୍ୟାକୁ ପ୍ରଦତ୍ତ ଧନ,ଯୌତୁକ ଧନ ।

ଅଧ୍ୟଂଚ—ବିଂ (ଅଧି + ଅଞ୍ଚ + କ.କ୍ୱିପ୍) ଅଗ୍ରସର ହେଉଥିବା, ଉପରକୁ ଉଠୁଥିବା ପ୍ରଧାନ, ଉତ୍କୃଷ୍ଟ, ପୂଜ୍ୟ,ଅଧିଗତ, ଯେ ପାଏ, ଅର୍ଜନକାରୀ ।

ଅଧ୍ୟଣ୍ଡା—ସ୍ତ୍ରୀ. ବି. କପିକଚ୍ଛୁ, ବାଇଡଙ୍କ, ଅଜଶୃଙ୍ଗୀ, ଭୂଇଁଅଁଳା ।

ଅଧ୍ୟଧିକ୍ଷେପ—ପୁଂ. ବି. ଅତ୍ୟନ୍ତ ନିନ୍ଦା, ଅତିଶୟ ତିରସ୍କାର ।

ଅଧ୍ୟଧୀନ—ବିଂ.ଅତ୍ୟନ୍ତ ପରାଧୀନ, (ସ୍ତ୍ରୀ) ଅଧ୍ୟଧୀନା,(ପୁଂ.ବି) ଦାସ, ଦାସପୁତ୍ର ।

ଅଧ୍ୟୟ—ପୁଂ.ବି. ( ଅଧି + ଇ + ଭା.ଅ ) ଅଧ୍ୟୟନ, ସ୍ମରଣ, ଅଧ୍ୟାୟ ।

ଅଧ୍ୟୟନ—ବି. ( ଅଧି + ଇ + ଭା.ଅନ ) ବିଦ୍ୟାଶିକ୍ଷା, ପାଠାଭ୍ୟାସ, ପଠନ, ବେଦପାଠ ।

ଅଧ୍ୟର୍ଦ୍ଧ—ବିଂ.ସାର୍ଦ୍ଧ,ଦେଢ଼,ଅର୍ଦ୍ଧାଧିକଏକ, ପୂର୍ଣ୍ଣ ସଙ୍ଗେ ଆଉ ଅଧେ ମିଶିଥିବା, (ବି) ପବନ, ବାୟୁ ।

ଅଧ୍ୟର୍ଦ୍ଧକ—ବିଂ. (ଅଧ୍ୟର୍ଦ୍ଧ + କ) ଦେଢ଼-ପରିମିତ, ଦେଢ଼ମୂଲ୍ୟର ।

ଅଧ୍ୟବସାନ—ବିଂ. ( ଅଧି + ଅବ + ସୋ + ଭା. ଅନ ) ସଙ୍କଳ୍ପ, ଚେଷ୍ଟା ।

ଅଧ୍ୟବସାୟ — ବି. ( ଅଧି + ଅବ + ସୋ + ଭା.ଅ) ଅବିଶ୍ରାନ୍ତ ଉଦ୍‌ଯୋଗ, କର୍ମ-ସାଧନାର୍ଥ ସଙ୍କଳ୍ପ, ନିଶ୍ଚୟ, ଅବିଚଳିତ ଯତ୍ନ, ମାନସିକ ଚେଷ୍ଟା, ସମ୍ଭାବନା, ଆଶଙ୍କା ।

ଅଧ୍ୟବସାୟିତ—ବି. (ଅଧି + ଅବ + ସୋ + ମିଁ.ତ) ଚେଷ୍ଟିତ ।

ଅଧ୍ୟବସାୟୀ-ପୁଂ.ବିଂ.(ଅଧି + ଅବ + ସୋ + କ.ଇନ୍ ) ଉଦ୍ୟମୀ, ଦୃଢ଼ପ୍ରତିଜ୍ଞ, ଅବିଶ୍ରାନ୍ତ ଯତ୍ନଶୀଳ,(ସ୍ତ୍ରୀ)ଅଧ୍ୟବସାୟିନୀ ।

ଅଧ୍ୟବସିତ— ବିଂ. ( ଅଧି + ଅବ + ସୋ + ମିଁ.ତ)ଚେଷ୍ଟିତ,ସଙ୍କଳିତ, ଆରବ୍ଧ, ଆଶଙ୍କିତ, ନିଶ୍ଚିତୀକୃତ ।

ଅଧ୍ୟବହନନ—କ୍ଳୀ. ବି. ଗୁଣ୍ଡଳକାଣ୍ଡିବା, ଥରେ ଧାନକୁ କୁଟି ଚମ୍ପୁଛଡ଼ାଇ ଆଉ ଥରେ କାଣ୍ଡିବା ।

ଅଧ୍ୟଶନ — କ୍ଳୀ. ବି. ( ଅଧି + ଅଶନ ) ଅଜୀର୍ଣ୍ଣରେ ଭୋଜନ, ଭୋଜନ ଉପରେ ଭୋଜନ, ଖାଦ୍ୟଦ୍ରବ୍ୟ ହଜମ ନ ହେଉଣୁ ପୁଣି ଭୋଜନ ।

ଅଧ୍ୟସ୍ତ—ପୁଂ.ବିଂ. (ଅଧି + ଅସ + ମିଁ.ତ) ଅଧ୍ୟାରୋପିତ, ଭୁଲକ୍ରମେ କଳ୍ପିତ ।

ଅଧ୍ୟସ୍ଥି—ବି. ( ଅଧି + ଅସ୍ଥି ) ହାଡ଼ର ଉପର ଅଂଶ ।

ଅଧ୍ୟସ୍ଥି—ବି. (ଅଧିରୂଢ଼ + ଅସ୍ଥି) ହାଡ଼ର ଉପରେ ଉଠିଥିବା ହାଡ଼ (ସୁଶ୍ରୁତ) ।

ଅଧ୍ୟା—ଗ୍ରା. ବି. (ସଂ. ଅଧ୍ୟାୟ) ଅଧ୍ୟାୟ, ଗ୍ରନ୍ଥରପରିଚ୍ଛେଦ, ଦେବତାଙ୍କ ନିକଟରେ ଅଭୀଷ୍ଟ ସିଦ୍ଧି ପାଇଁ ଉପବାସ କରି ପଡ଼ିରହିବା, ଧାରଣା ।

ଅଧ୍ୟାକ୍ରାନ୍ତ—ବିଂ. (ଅଧି + ଆ + କ୍ରମ୍ + ମିଁ. ତ ) ଅଧିକୃତ, ମନୋନୀତ ।

ଅଧ୍ୟାତ୍ମ—ଅବ୍ୟ. ଆତ୍ମାକୁ ବ୍ୟାପି, ଆତ୍ମ-ବିଷୟକ ବ୍ୟକ୍ତିଗତଭାବରେ, ପର-ମାତ୍ମସମ୍ପର୍କୀୟ, ଦେହବିଷୟକ, ଚିତ୍ତ-ବିଷୟକ, ଐହିକ, ପରଂବ୍ରହ୍ମ ।

ଅଧ୍ୟାତ୍ମିକବାୟୁ—ପୁଂ. ବି. (ନ୍ୟାୟମତେ) ପ୍ରାଣାଖ୍ୟ ବାୟୁ, ପ୍ରାଣବାୟୁ ।

ଅଧ୍ୟାତ୍ମତତ୍ତ୍ୱ—ବି. (କ. ଧା. ) ପରମାତ୍ମ-ସମ୍ବନ୍ଧୀୟ ଗୂଢ଼ରହସ୍ୟ, ଦର୍ଶନଶାସ୍ତ୍ର ।

ଅଧ୍ୟାତ୍ମଦୃକ୍—ବିଂ. ଆତ୍ମଜ୍ଞ, ବିଷୟାଦି ବ୍ୟାପାରଶୂନ୍ୟ ହୋଇ ଯେ କେବଳ ଆତ୍ମାକୁ ଦେଖେ ।

ଅଧ୍ୟାତ୍ମବିତ୍—ବିଂ ( ଅଧ୍ୟାତ୍ମ + ବିଦ + କ୍ୱିପ୍ )ଅଧ୍ୟାତ୍ମବିଦ୍ୟା ବା ଦର୍ଶନଶାସ୍ତ୍ରରେ ପାରଦର୍ଶୀ ।

ଅଧ୍ୟାତ୍ମବିଦ୍ୟା—ସ୍ତ୍ରୀ. ବି. ଅଧ୍ୟାତ୍ମତତ୍ତ୍ୱ, ପରମାତ୍ମସମ୍ବନ୍ଧୀୟ ଗୂଢ଼ରହସ୍ୟ, ଦର୍ଶନ-ଶାସ୍ତ୍ର ।

ଅଧ୍ୟାତ୍ମଯୋଗ—ପୁଂ. ବି. ଇନ୍ଦ୍ରିୟଗ୍ରାହ୍ୟ ବିଷୟମାନଙ୍କରୁ ମନକୁ ନିବୃତ୍ତି କରି ଆତ୍ମାରେ ନିବେଶନରୂପ ସାଧନ ।

ଅଧ୍ୟାତ୍ମରାମାୟଣ—କ୍ଳୀ.ବି.ବ୍ରହ୍ମାଣ୍ଡପୁରାଣା-ନ୍ତର୍ଗତ ବ୍ୟାସଦେବକୃତ ଅଧ୍ୟାତ୍ମ ତତ୍ତ୍ୱ-ପୂର୍ଣ୍ଣ ରାମଚରିତ,ଏଥିରେ ରାମ ପରମାତ୍ମା-ରୂପେ କଳ୍ପିତ ହୋଇଅଛନ୍ତି ।

ଅଧ୍ୟାତ୍ମଶାସ୍ତ୍ର—କ୍ଳୀ. ବି. ଅଧ୍ୟାତ୍ମପ୍ରତିପାଦକ ଶାସ୍ତ୍ରବିଶେଷ ।

ଅଧ୍ୟାତ୍ମା—ପୁଂ.ବି.ଆତ୍ମା,ଜୀବାତ୍ମା,ପରମାତ୍ମା,

ଅଧ୍ୟାତ୍ମିକ—ବିଂ.(ଅଧ୍ୟାତ୍ମା + ଇକ)ଆତ୍ମା-ସମ୍ବନ୍ଧୀୟ, ଅଧ୍ୟାତ୍ମିକ ।

ଅଧ୍ୟାପକ—ପୁଂ.ବି.(ଅଧି + ଇ — ଣିଚ୍ + ଅକ) ଶିକ୍ଷକ, ବିଦ୍ୟାଗୁରୁ, ଉପାଧ୍ୟାୟ, ଆଚାର୍ଯ୍ୟ ।

ଅଧ୍ୟାପନ—କ୍ଳୀ. ବି. (ଅଧି + ଇ.ଣିଚ୍ + ଭା. ଅନ) ଶିକ୍ଷାଦାନ,ପାଠ ପଢ଼ାଇବା, ବେଦ ପଢ଼ାଇବା ।

ଅଧ୍ୟାପନା—ସ୍ତ୍ରୀ. ବି. ( ଅଧ୍ୟାପନ + ଆ ) ଅଧ୍ୟାପନ, ଶିକ୍ଷାଦାନ, ବେଦପଢ଼ାଇବା, ପାଠପଢ଼ାଇବା ।

ଅଧ୍ୟାପୟିତା—ପୁଂ.ବି. ଓ ବିଂ. (ଅଧି + ଇ — ଣିଚ୍ + କ.ତୃ) ଅଧ୍ୟାପକ, ଶିକ୍ଷକ, (ସ୍ତ୍ରୀ) ଅଧ୍ୟାପୟିତ୍ରୀ ।

ଅଧ୍ୟାପିକା—ସ୍ତ୍ରୀ. ବି. ( ଅଧ୍ୟାପକ + ଆ ) ଶିକ୍ଷକଙ୍କ ସ୍ତ୍ରୀ, ଗୁରୁପତ୍ନୀ, ଶିକ୍ଷୟିତ୍ରୀ ।

ଅଧ୍ୟାପିତ—ବିଂ.(ଅଧି — ଣିଚ.ଇ + ର୍ମ.ତ) ପାଠିତ, କୃତାଧ୍ୟାପନ, ଯାହାକୁ ପଢ଼ାହୋଇଅଛି, ଶିକ୍ଷିତ ।

ଅଧ୍ୟାପ୍ୟ—ବିଂ. (ଅଧି + ଇ + ଣିଚ୍.ର୍ମ.ଯ) ପାଠନୀୟ, ଅଧ୍ୟାପନାର ଯୋଗ୍ୟ ।

ଅଧ୍ୟାୟ — ପୁଂ. ବି. (ଅଧି + ଇ + ର୍ମ.ଅ) ଗ୍ରନ୍ଥର ପରିଚ୍ଛେଦ,ସର୍ଗ, ବର୍ଗ,ପର୍ବ,ସ୍କନ୍ଧ, କାଣ୍ଡ,ଅଙ୍କ, ଉଲ୍ଲାସ, ଉଚ୍ଛ୍ୱାସ,ସ୍ତବକ, ପଟଳ, ପ୍ରକରଣ ଇତ୍ୟାଦି ।

ଅଧ୍ୟାୟୀ—ପୁଂ.ବିଂ. (ଅଧି + ଇ + ଇନ) ଅଧ୍ୟୟନକାରୀ, (ସ୍ତ୍ରୀ) ଅଧ୍ୟାୟିନୀ ।

ଅଧ୍ୟାରୂଢ଼—ବିଂ. (ଅଧି + ଆ + ରୁହ୍ + କ.ତ) ଆକ୍ରାନ୍ତ, ଉପରେ ଚଢ଼ିଥିବା, ଅତ୍ୟଧିକ,ଉତ୍କୃଷ୍ଟତର,ବଡ଼କଥା,ଉପରେ, (ବି.)ଅଧ୍ୟାରୋହଣ (ସ୍ତ୍ରୀ) ଅଧ୍ୟାରୂଢ଼ା ।

ଅଧ୍ୟାରୋପ—ପୁଂ. ବି.(ଅଧି + ଆ + ରୁହ — ଣିଚ୍. ଭା.ଅ ) ଉପରକୁ ଉଠାଇବା, ମଞ୍ଜି ବୁଣିବା, ମିଥ୍ୟାଜ୍ଞାନ, ଏକ ପଦା-ର୍ଥରେ ଅନ୍ୟପଦାର୍ଥର କଳ୍ପନା ।

ଅଧ୍ୟାରୋପଣ—କ୍ଳୀ.ବି.ଧାନ୍ୟାଦିର ବପନ, ବୁଣିବା, ଅତିଶୟ ଆରୋପଣ, ସ୍ଥାପନ, ଅଧିଷ୍ଠାନ, ଭ୍ରାନ୍ତି ।

ଅଧ୍ୟାରୋହଣ—ବି. ( ଅଧି + ଆ + ରୁହ୍ + ଭା ଅନ)ଉପରକୁ ଚଢ଼ିବା, ଉନ୍ନତ, ଉତ୍କୃଷ୍ଟତା, ଆଧିକ୍ୟ ।

ଅଧ୍ୟାବପନ—ବି.(ଅଧି + ଆ + ବପ୍ + ଭା. ଅନ) (ଭୂମିଆଦିର) କୌଣସି ବସ୍ତୁକୁ ଇତସ୍ତତଃ ବୁଣିଦେବା ।

ଅଧ୍ୟାବହନ—ବି.(ଅଧି + ଆ + ବହ୍ + ଭା. ଅନ) ଝିଅ ବଢ଼ିଲା ପରେ ପ୍ରଥମେ ଶାଶୁ ଘରକୁ ଯିବା, ଝିଅ ପଢ଼ିଲା ପାଳି ଶାଶୁ-ଘରକୁ ଯିବା ।

ଅଧ୍ୟାବାହନିକ—କ୍ଳୀ. ବି. ( ଅଧି + ଆ — ଣିଚ୍. ବହ + ଭା. ଅନ + ଇକ ) ସ୍ତ୍ରୀ-ଧନବିଶେଷ, ଝିଅ ଶାଶୁଘରକୁ ଗଲାବେଳେ ପିତୃକୁଳରୁ ପାଇଥିବାଧନ ।

ଅଧ୍ୟାସ—ପୁଂ.ବି. (ଅଧି + ଆସ୍ + ଭା.ଅ) ଆରୋପ,ମିଥ୍ୟାଜ୍ଞାନ, ଯଥା—ରଜ୍ଜୁରେ ସର୍ପର ଭ୍ରମ ।

ଅଧ୍ୟାସନ—କ୍ଳୀ. ବି. (ଅଧି + ଆସ + ଭା. ଅନ) ନିବାସ, ଅଧିଷ୍ଠାନ, ଅଧିରୋହଣ, ଆସନ,ଉପସ୍ଥିତ,ଉପବେଶନ,ସମ୍ଭୋଗ ।

ଅଧ୍ୟାସିତ—ବିଂ (ଅଧି + ଆସ + କ.ତ) ଅଧିଷ୍ଠାପିତ, ଅଧିଷ୍ଠିତ, ଉପବିଷ୍ଟ, ଅଧିରୂଢ଼,ନିବେଶିତ (ସ୍ତ୍ରୀ) ଅଧ୍ୟାସିତା ।

ଅଧ୍ୟାସୀ—ପୁଂ ବିଂ. (ଅଧି + ଆସ୍ + କ. ଇନ୍) ଉପରେ ବସିଥିବା, ଉପବେଶନ କରିଥିବା, ଅଧିରୂଢ଼, (ସ୍ତ୍ରୀ)ଅଧ୍ୟାସିନୀ ।

ଅଧ୍ୟାସୀନ—ପୁଂ. ବିଂ. (ଅଧି + ଆସ୍ + ଇନ) ଉପରେ ବସିଥିବା, ଉପବିଷ୍ଟ, ଅଧିଷ୍ଠିତ, (ସ୍ତ୍ରୀ) ଅଧ୍ୟାସୀନା ।

ଅଧ୍ୟାହରଣ—କ୍ଳୀ. ବି. (ଅଧି + ଆ + ହୃ + ଭା. ଅନ ) ଅଧ୍ୟାହାର, ଊହ, ରଚନାରେ କୌଣସି ବାକ୍ୟ ଊହ୍ୟ କରିବା, ଅନୁମାନ, ତର୍କଣା ।

ଅଧ୍ୟାହାର—ପୁଂ. ବି. ( ଅଧି + ଆ + ହୃ + ଭା. ଅ) ଅସମ୍ପୂର୍ଣ୍ଣ ବାକ୍ୟର ପୂରଣାର୍ଥ ପଦାନ୍ତର ଯୋଜନା, ତର୍କଣା, ଊହ୍ୟ କରିବା, ଆକାଙ୍କ୍ଷା, ପୂରକ ।

ଅଧ୍ୟାହାର୍ଯ୍ୟ—ବି.ବିଂ. (ଅଧି + ଆ + ହୃ + ର୍ମ. ଯ ) ଅନୁସନ୍ଧେୟ, ଊହ୍ୟ, ତର୍କ୍ୟ, (ସ୍ତ୍ରୀ) ଅଧ୍ୟାହାର୍ଯ୍ୟା ।

ଅଧ୍ୟାହୃତ—ବି. ବିଂ. (ଅଧି + ଆ + ହୃ + ର୍ମ. ତ ) ତର୍କିତ, ବିସ୍ତୃତ, ଅନୁ-ସନ୍ଧିତ, ଉଦ୍ଧୃତ, ନିବେଶିତ, ଅନୁ-ପୂରିତ, (ସ୍ତ୍ରୀ) ଅଧ୍ୟାହୃତା ।

ଅଧ୍ୟୁଷିତ—ବିଂ. (ଅଧି + ବସ୍ + ର୍ମ.ତ) ଅଧିଷ୍ଠିତ, ଉପନିବିଷ୍ଟ, ଲୋକର ବସ-ବାସଯୁକ୍ତ, ଅଧିକୃତ (ସ୍ଥାନ) ।

ଅଧ୍ୟୁଷ୍ଟ—ବି. ବିଂ. ( ଅଧି + ବସ୍ + ତ ) ପ୍ରସିଦ୍ଧ, ବିଖ୍ୟାତ, ସାର୍ଦ୍ଧକି, ସାଢ଼େତିନ, (ସ୍ତ୍ରୀ) ଅଧ୍ୟୁଷ୍ଟା ।

ଅଧ୍ୟୁଷ୍ଟବଳୟ—ବିଂ. (ବ.ବ୍ରୀ ) ତିନଥର ଅଧେ ଗୁଡ଼େଇ ହୋଇଥିବା ମୁଦିଆ-ପରି ଯଥା—ସାପର କୁଣ୍ଡଳ, (ସ୍ତ୍ରୀ) ସ୍ତ୍ରୀ = କୁଣ୍ଡଳିନୀ ।

ଅଧ୍ୟୁଷ୍ଟ୍ର—ବି. ଅଧି + ଉଷ୍ଟ୍ର) ଓଟଗାଡ଼ି, ଓଟବୁହା ଗାଡ଼ି ।

ଅଧ୍ୟୂଢ଼—ପୁଂ.ବିଂ. (ଅଧି + ବହ୍ + ର୍ମ, ତ) ଉପରେ ଝୁଲୁଥିବା,ସମୃଦ୍ଧ, ପ୍ରଚୁର ବୃଦ୍ଧିଶୀଳ, ଉନ୍ନତ, (ବି. ପୁଂ.) ବିବାହ ପୂର୍ବରୁ ଗର୍ଭହୋଇଥିବା ସ୍ତ୍ରୀର ସନ୍ତାନ ।

ଅଧ୍ୟୂଢ଼ଜ—ପୁଂ.ବି. (ଅଧ୍ୟୂଢ଼ା + ଜନ + ଅ) ବିବାହ ପୂର୍ବରୁ ଗର୍ଭଧାରଣ କରି-ଥିବା ସ୍ତ୍ରୀର ସନ୍ତାନ ।

ଅଧ୍ୟୂଢ଼ା—ସ୍ତ୍ରୀ. ବି. (ଅଧ୍ୟୂଢ଼ + ଆ)ପ୍ରଥମ ବିବାହିତା ସ୍ତ୍ରୀ, ଅଧିବେଦନ ଦୋଷ-ଯୁକ୍ତା ସ୍ତ୍ରୀ, ପ୍ରଥମା ସ୍ତ୍ରୀ ଜୀବିତଥାଉ ଥାଉ ଯାହାର ସ୍ୱାମୀ ପୁନର୍ବାର ବିବାହ କରେ, ଅନେକ ବିବାହକାରୀ ପୁରୁଷର ପ୍ରଥମ ବିବାହିତା ସ୍ତ୍ରୀ, ( ବି. ସ୍ତ୍ରୀ )—

ସମୃଦ୍ଧା, ସମ୍ୟକ୍‌ବର୍ଦ୍ଧିତା, ଅଧିବେଦନ, ଦୋଷଯୁକ୍ତା ।

ଅଧ୍ୟୁଧ୍ନୀ—ସ୍ତ୍ରୀ. ବି. (ଅଧି + ଉଧସ୍ + ବନ୍ + ଈ) ଦୁଗ୍ଧବତୀ ଗାଈ, ବଡ଼ ପହ୍ନା ଥିବା ଗାଈ ।

ଅଧ୍ୟୁଷ୍ଟା—ପୁଂ.ବିଂ. (ଅଧି + ବସ୍ + ବସ୍) ଅଧିଷ୍ଠିତ, ଯେ ଅଧିବାସ କରିଅଛି ।

ଅଧ୍ୟୂହନ—ବି. (ଅଧି + ବହ୍ + ଭା.ଅନ) ଦେହରେ (ପାଉଁଶ) ବୋଳିହେବା ।

ଅଧ୍ୟେତବ୍ୟ—ପୁଂ.ବିଂ (ଅଧି + ଇ + ର୍ମ, ତବ୍ୟ) ପଢ଼ାଯିବା ଯୋଗ୍ୟ, ଅଧ୍ୟୟନ-ଯୋଗ୍ୟ ।

ଅଧ୍ୟେତା—ପୁଂ. (ବି. ବା ବିଂ) (ଅଧି + ଇ + କ. ତୃ) ଅଧ୍ୟୟନକର୍ତ୍ତା, ପାଠକ, ବିଦ୍ୟାର୍ଥୀ (ସ୍ତ୍ରୀ) ଅଧ୍ୟେତ୍ରୀ ।

ଅଧ୍ୟେଷଣ—କ୍ଲୀ. ବି. (ଅଧି + ଇଷ୍ + ଭା. ଅନ) ବିନୟପୂର୍ବକ ଜିଜ୍ଞାସା, ପ୍ରାର୍ଥନା, ଗୁରୁଙ୍କୁ ସନ୍ଥ ମାଗିବା ।

ଅଧ୍ୟେଷଣା—ବି. (ଅଧ୍ୟେଷଣ + ଆ) ଅଧ୍ୟେଷଣ (ଦେଖ) । [ ନର ।

ଅଧ୍ରି—ବିଂ. (ବୈଦିକ) ଅଧୃତଶବ୍ଦର ରୂପା-

ଅଧ୍ରିଗୁ—ବି. (ବ. ବ୍ରୀ) ଅପ୍ରତିହତଗତି, ଅଧିକୃତ ପଶୁବିଶିଷ୍ଟ ମନ୍ତ୍ର, ଅଗ୍ନି, ଇନ୍ଦ୍ର ।

ଅଧ୍ରିଜ—ବିଂ. ଅଧୃତଜନକ, ଅଧୃଷ୍ୟ-ଜନକ ।

ଅଧ୍ରିପ୍ରମାଣ—ବିଂ. (ଅ + ଧୃ + ର୍ମ. ଆନ) ଧରାହୋଇ ନ ଥିବା, ମୁକ୍ତ, ମିଳୁନଥିବା ।

ଅଧ୍ରୁବ—ବିଂ. (ଅ + ଧ୍ରୁବ) ଅନିଶ୍ଚିତ, ଅସ୍ଥାୟୀ, ସନ୍ଦେହଜନକ, ଅସ୍ଥିର ।

ଅଧ୍ରୁଷ—ପୁଂ. ବି. ବିକୃତରକ୍ତଜନିତ ଜ୍ୱର-ଭୁକ୍ତ ଶୋଥରୋଗବିଶେଷ ।

ଅଧ୍ୱ—ପୁଂ. ବି. (ଅତ୍ତ + ବନ୍) ମାର୍ଗ, ଦାଣ୍ଡ, ପଥ, ପଥଭ୍ରମଣ, ବାଟଚାଲିବା, ସମୟ, ଉପାୟ, ଦୂରତ୍ୱ, ଅବୟବ, ବାୟୁ, ପ୍ରଣାଳୀ, ଆକ୍ରମଣ, ପଦ୍ମଭବ, ବେଦର ଶାଖା, ଆକାଶ ।

ଅଧ୍ୱଖେଦ—ବି. (କ. ଧା) ପଥଶ୍ରାନ୍ତ ।

ଅଧ୍ୱଗ—ପୁଂ. ବି. (ଅଧ୍ୱ + ଗମ୍ + କ. ଅ) ଓଷ୍ଟ୍ର, ଓଟ, ସୂର୍ଯ୍ୟ, ଖେଚର, (ବିଂ) ପଥିକ, ବାଟୋଇ, (ସ୍ତ୍ରୀ) ଅଧ୍ୱଗା ।

ଅଧ୍ୱଗନ୍ତୃ—ପୁଂ.ବିଂ. (ଅଧ୍ୱନ୍ + ଗମ୍ + କ୍ୱିପ୍) ପଥିକ ।

ଅଧ୍ୱଗଭୋଜ୍ୟ—ପୁଂ.ବି (ଷତତ୍ପୁ) ଆମ୍ରା-ତକ, ଆମ୍ବଡ଼ାଗଛ ।

ଅଧ୍ୱଗା—ସ୍ତ୍ରୀ. ବି. (ଅଧ୍ୱଗ + ଆ) ଗଙ୍ଗା-ନଦୀ, (ବିଂ) ପଥଗାମିନୀ । [ ଗଛ ।

ଅଧ୍ୱଜା—ସ୍ତ୍ରୀ.ବି. ସ୍ୱର୍ଣ୍ଣପୁଷ୍ପୀବୃକ୍ଷ, ସୁନାରି-

ଅଧ୍ୱନୀନ—ପୁଂ. ବିଂ. (ଅଧ୍ୱନ୍ + ଈନ) ପଥିକ, ଯେ ପଥରେ ପ୍ରଚୁର ବା କୁଶଳରେ ଗମନ କରେ, ପର୍ଯ୍ୟଟକ, (ବି) ସୂର୍ଯ୍ୟ, (ସ୍ତ୍ରୀ) ଅଧ୍ୱନୀନା ।

ଅଧ୍ୱନ୍ୟ—ବିଂ. ପର୍ଯ୍ୟଟକ, ପଥିକ, ଯେ ବେଗି ବାଟ ଚାଲିପାରେ, (ସ୍ତ୍ରୀ) ଅଧ୍ୱନ୍ୟା ।

ଅଧ୍ୱପତି—ପୁଂ.ବି. (ଷତତ୍ପୁ) ମାର୍ଗପାଳକ, ସୂର୍ଯ୍ୟ, ରାସ୍ତାପରିଦର୍ଶକ କର୍ମଚାରୀ ।

ଅଧ୍ୱର—ପୁଂ.ବି. ଅଧ୍ୱନ୍ + ର + କ. ଅ) ଯଜ୍ଞ, ଅଶ୍ୱମେଧ, ଆକାଶ, ବାୟୁ (ବିଂ. ବ. ବ୍ରୀ) କୁଟିଳତାଶୂନ୍ୟ, ସାବଧାନ, ଅବହିତ, (ପୁଂ. ବି) ଅଷ୍ଟବସୁଙ୍କ ମଧ୍ୟରୁ ଏକତମ ।

ଅଧ୍ୱରକର୍ମ—କ୍ଲୀ.ବି. ଯଜ୍ଞରୂପକର୍ମ, ଯାଗ-କର୍ମ ।

ଅଧ୍ୱରଥ—ପୁଂ.ବି. (ବ. ବ୍ରୀ) ମାର୍ଗାଭିଜ୍ଞଦୂତ, (କ. ଧା) ମାର୍ଗରେ ଗମନୋପଯୁକ୍ତ ରଥ ।

ଅଧ୍ୱରମୀମାଂସା—ସ୍ତ୍ରୀ. ବି. ଜୈମିନିକୃତ ଧର୍ମମୀମାଂସାଖ୍ୟ ଶାସ୍ତ୍ରବିଶେଷ ।

ଅଧ୍ୱର୍ଯ୍ୟୁ—ପୁଂ.ବିଂ. (ଅଧ୍ୱର + ଯୁ + କ. କ୍ୱିପ୍) ଯଜୁର୍ବେଦବେତ୍ତା, ଯାଜ୍ଞିକ ଋତ୍ୱିକ୍, ଯଜୁର୍ବେଦ, ଯଜୁର୍ବେଦ ବ୍ରାହ୍ମଣ ।

ଅଧ୍ୱର୍ଯ୍ୟୁକ୍ରତୁ—ପୁଂ.ବି. ଯଜୁର୍ବେଦବିହିତ ଯଜ୍ଞବିଶେଷ । [ ଗଛ ।

ଅଧ୍ୱଶଲ୍ୟ—ପୁଂ.ବି. (ଅଧ୍ୱ + ଶଲ୍ୟ) ଅପାମାର୍ଗ

ଅଧ୍ୱଶ୍ରମ—ବି. (କ. ଧା) ପଥଶ୍ରମ ।

ଅଧ୍ୱଶ୍ରାନ୍ତ—ପୁଂ.ବିଂ. ବାଟ ଚାଲିବାଦ୍ୱାରା କ୍ଲାନ୍ତ ।

ଅଧ୍ୱନନ୍—ବିଂ. ଧ୍ୱଂସରହିତ ।

ଅଧ୍ୱା—ପୁଂ.ବି. ପନ୍ଥା, ମାର୍ଗ, କାଳ, ଅବସ୍ଥାନ, ଶାସ୍ତ୍ର, ସ୍କନ୍ଧ, ଅଙ୍ଗ, ଆକ୍ରମଣ ।

ଅଧ୍ୱାତି—ପୁଂ.ବି. (ଷତତ୍ପୁ) ପଥିକ ।

ଅଧ୍ୱାନ୍ତ—ବି. (ଅ + ଧ୍ୱାନ୍ତ) ସାମାନ୍ୟ ଅନ୍ଧାର, ମାଚ୍ଛଅନ୍ଧାର, କ୍ଷୀଣ ଆଲୋକ, ଗୋଧୂଳି, ମୁହୂର୍ତ-ସନ୍ଧ୍ୟା, (ଅଧ୍ୱ + ଅନ୍ତ) ଯାତ୍ରା ବା ଭ୍ରମଣର ଶେଷ, ମାର୍ଗର ସୀମା ।

ଅଧ୍ୱାନ୍ତଶାତ୍ରବ—ପୁଂ.ବି. (ଅଧ୍ୱାନ୍ତ + ଶତ୍ରୁ + ଅ) ଶ୍ୟୋନାକବୃକ୍ଷ, ଫଣଫଣା ।

ଅଧ୍ୱାୟନ—କ୍ଲୀ.ବି. ଯାତ୍ରା ।

ଅନ୍ (ଧାତୁ)—ନିଃଶ୍ୱାସମାରିବା, ଶବ୍ଦ-କରିବା, ଗତିକରିବା ।

ଅନଖି—ଗ୍ରା. (ସମ୍ବ) ବିଂ. ଅନର୍ଘ, ଅମୂଲ୍ୟ ।

ଅନଭନଆଁ—ଗ୍ରା. (ସମ୍ବ) ବି. ଅନଭିଜ୍ଞ ।

ଅନଗ୍ଭଳ—ଗ୍ରା.ବିଂ. ଅନୁଚ୍ଛିଷ୍ଟ, ଅନ୍ୟଖାଦ୍ୟ (ଦ୍ରବ୍ୟ), ଶୀତଳ (ସାମଗ୍ରୀ), ନିଶଙ୍କୁଡ଼ି, ଅରନ୍ଧା ଖାଦ୍ୟ ।

ଅନଂଶ—ବିଂ. (ବ. ବ୍ରୀ) ଯେ ପୈତୃକବିଷୟରୁ ଅଂଶ ପାଏ ନାହିଁ, ଯେ ହିଂସା-ପାଇବାକୁ ହକଦାର ନୁହେ, (ମନୁ) କ୍ଲୀବ, ପତିତ, ଜନ୍ମାନ୍ଧ, ଜନ୍ମବଧିର, ଉନ୍ମତ୍ତ, ବୋବା, ଏମାନେ ପୈତୃକ ଧନରେ ଅଧିକାରୀ ନୁହନ୍ତି ।

ଅନଂଶୁମତ୍‌ଫଳା—ସ୍ତ୍ରୀ.ବି. କଦଳୀଗଛ ।

ଅନଃ—କ୍ଲୀ. ବି. (ଅନ୍ + ଭା. ଅସ୍) ରଥ, ଶକଟ, ଗାଡ଼ି, ମାତା ପିତା, ଅନ୍ନ, ଜନ୍ମ, ଜୀବନ ।

ଅନକ—ପୁଂ.ବିଂ. (ଅନ୍ + ଅ କ) ଅଧମ କୁତ୍ସିତ, ଅସୁଖ, ନୀଚ, (ସ୍ତ୍ରୀ) ଅନକା ।

ଅନକ ଅବସ୍ଥା—ଗ୍ରା.ବି. ଅଧମାବସ୍ଥା, ନ ନା-ଦୁଃଖ, ବନ୍ଧୁ ସ୍ଥାନଦଶା ।

ଅନକଅବସ୍ତ୍ରୀ—ଗ୍ରା.ସ୍ତ୍ରୀ.ବିଂ. ହତଭାଗିନୀ, ଅଲକ୍ଷଣୀ, ଅମଙ୍ଗଳୀ ।

ଅନକା—ଗ୍ରା. (ସମ୍ବ) ବି. ଅଣକ ।

ଅନକୁଳ—ଗ୍ରା.ବି. ଯାତ୍ରା ଓ ମଙ୍ଗଳକାର୍ଯ୍ୟ ଆରମ୍ଭକରିବାପାଇଁ ଜ୍ୟୋତିଷମତରେ ଶୁଭମୁହୂର୍ତ୍ତ, ଆରମ୍ଭ, ଯାତ୍ରାରମ୍ଭ ।

ଅନକୁଳବର୍ଗୀ—ଗ୍ରା. ବି. ଅମଙ୍ଗଳଆ, ଯାତ୍ରାଦି କଲାବେଳେ ଯାହାର ମୁହଁ

ଅନିମାନ—ବି.ବଂ.(ଅ+ନି+ମା+ଅନ) ବ.ବ୍ରୀ; ଅପରିଚ୍ଛିନ୍ନ, ପରିଚ୍ଛେଦଶୂନ୍ୟ ।

ଅନିମିତ୍ତ—ବି.ବଂ.(ବ.ବ୍ରୀ) ନିମିତ୍ତଶୂନ୍ୟ, ଅହେତୁକ, ଅମୂଳକ, (କ୍ଲୀ. ବି) ନିମିତ୍ତାଭାବ, ଦୁର୍ଲକ୍ଷଣ, ଅକାରଣ, ଅମୂଳକତା ।

ଅନିମିତ୍ତ ଲିଙ୍ଗନାଶ—ବି. ନେତ୍ରରୋଗବିଶେଷ, ଏଥିରେ ପୂର୍ଣ୍ଣ ଅନ୍ଧତା ଜନ୍ମେ ।

ଅନିମିତ୍ତେ—ଗ୍ରା.ବି.ବଂ. ସ୍ପଷ୍ଟ କାରଣ ବିନା, ଅକାରଣରେ, ବୃଥା, ଅନିଷ୍ପ୍ରୟୋଜନରେ ।

ଅନିମିଷ—ପୁଂ, ବି. (ଅ+ନି+ମିଷ+ଅ) ମତ୍ସ୍ୟ, ଦେବତା, ମହାକାଳ ବିଷ୍ଣୁ, ଅତିସୂକ୍ଷ୍ମକାଳପରିମାଣ, ବିଂ. (ବ.ବ୍ରୀ) ନିମେଷଶୂନ୍ୟ, ପଲକହୀନ, ଯାହାର ପଲକ ପଡ଼େ ନାହିଁ, ସ୍ଥିର, ସ୍ପନ୍ଦନଶୂନ୍ୟ, (ସ୍ତ୍ରୀ ଅନିମେଷ ।

ଅନିମିଷାକ୍ଷ—ପୁଂ. ବିଂ. (ବ.ବ୍ରୀ) ଯାହା ଆଖିରେ ପଲକ ପଡ଼େ ନାହିଁ, ପଲକହୀନ, ଏକଦୃଷ୍ଟିରେ ଚାହିଁଥିବା ।

ଅନିମେଷ—ପୁଂ. ବିଂ. (ଅ+ନି+ମିଷ+ଅ)ବ.ବ୍ରୀ; ଅନିମିଷ (ଦେଖ) ।

ଅନିମେଷାଚାର୍ଯ୍ୟ—ପୁଂ. ବି. (ଅନିମେଷ+ଆଚାର୍ଯ୍ୟ) ୬ ତତ୍; ଦେବଗୁରୁ ବୃହସ୍ପତି ।

ଅନିୟତ—ବିଂ. (ଅ+ନିୟତ) ଅନିତ୍ୟ, ଅସ୍ଥାୟୀ, ଅନିଶ୍ଚିତ, ପରିବର୍ତ୍ତନଶୀଳ, ଅବାଧ, ଅସଂଯତ, ଅନିୟନ୍ତ୍ରିତ, ଅନିୟମିତ, ଅସ୍ଥିର, (ସ୍ତ୍ରୀ) ଅନିୟତା ।

ଅନିୟତପୁଂସ୍କା—ସ୍ତ୍ରୀ.ବିଂ. (ଅନିୟତ+ପୁମାନ୍+କ.ଅ) ଅସତୀ (ସ୍ତ୍ରୀ), ବି. ଅନିର୍ଦ୍ଦିଷ୍ଟପତିକା ସ୍ତ୍ରୀ ।

ଅନିୟନ୍ତ୍ରିତ—ବିଂ. ଅପରିଚାଳିତ, ଉଚ୍ଛୃଙ୍ଖଳ, ଅନିୟତ, ଅନିବାରିତ, ଉଦ୍ଦାମ ।

ଅନିୟମ—ପୁଂ.ବି.(ଅ+ନିୟମ ନ.ତତ୍; ନିୟମର ଅଭାବ, ବିଶୃଙ୍ଖଳତା ଅନୁଚିତ ଆଚରଣ, ସନ୍ଦେହ, ବିଂ. (ବ.ବ୍ରୀ) ନିୟମରହିତ, ଅନିୟନ୍ତ୍ରିତ, ଅନିୟମିତ ।

ଅନିୟମିତ—ବିଂ. (ଅ+ନିୟମିତ) ଅନିର୍ଦ୍ଦିଷ୍ଟ, ଯାହା ନିୟମାନୁସାରେ ନୁହେ ।

ଅନିୟମୀ—ପୁଂ.ବିଂ. (ଅ+ନିୟମିନ୍) ଅନିୟମିତ, ଯେ ନିୟମ ପାଳେ ନାହିଁ, ଆଚାରହୀନ, ଅନାଚାରୀ ।

ଅନିୟୁକ୍ତ—ବିଂ.(ଅ+ନିୟୁକ୍ତ) କାର୍ଯ୍ୟରେ ମୁକରର କରାଯାଇ ନ ଥିବା, ଯେ କ୍ଷମତାପ୍ରାପ୍ତ ନୁହେ, ବିଂ (ସ୍ମୃତି) ଧର୍ମାଧିକରଣ ବା ବିଚାରାଳୟରେ ଉପସ୍ଥିତ ଆକଳନକାରୀ ବ୍ୟକ୍ତି, ଯେ ବିଧିମତେ ନିଯୁକ୍ତ ହୋଇ ନ ଥିବାରୁ ଭୋଟଦେବାକୁ ଅପାରଗ ।

ଅନିରା—ସ୍ତ୍ରୀ. ବି. (ନ+ଇରା) ଦାରିଦ୍ର୍ୟ, ବି.ଂ (ବ.ବ୍ରୀ) ଅନ୍ନରହିତ, ପଠାଇବାର ଅଯୋଗ୍ୟ ।

ଅନିରାକରଣ—କ୍ଲୀ.ବି.(ଅ+ନିରାକରଣ) ନ.ତତ୍; ନିରାକରଣର ଅଭାବ, ଦୂରୀକରଣ ନ କରିବା, ଅନିବାରଣ, ଅନିରୂପଣ, ଅନିର୍ଦ୍ଧାରଣ ।

ଅନିରାକରିଷ୍ଣୁ—ପୁଂ.ବିଂ.(ଅ+ନିରାକରିଷ୍ଣୁ) ଯେ ବାଧା ନ ଦିଏ, ଯେ ଦୋଷଦର୍ଶୀ ନୁହେ ।

ଅନିରାକୃତ—ବି. ବିଂ. (ନତତ୍) ଅନିବାରିତ, ଅଦୂରୀଭୂତ ।

ଅନିରୁକ୍ତ—ବିଂ.(ନ.ତତ୍) ବିଶେଷଭାବେ ନିର୍ବାଚନଶୂନ୍ୟ, ଅନିର୍ଦ୍ଦିଷ୍ଟ ।

ଅନିରୁଦ୍ଧ—ପୁଂ.ବି. (ଅ+ନି+ରୁଧ୍+ତ) ଶ୍ରୀକୃଷ୍ଣଙ୍କ ନାତି,ବିଷ୍ଣୁ,ଶିବ, ମହାଦେବ, ଗୁଇନ୍ଦା, ଗୁପ୍ତଚର, ଷଢା, ପଶୁବନ୍ଧନରଜ୍ଜୁ, (ବିଂ) ଅପ୍ରତିହତ, ଅଶାସ୍ୟ, ଏକବାଗିଆ ।

ଅନିରୁଦ୍ଧପଥ—କ୍ଲୀ. ବି. (ବ.ବ୍ରୀ) ବାୟୁମଣ୍ଡଳ, ଆକାଶ, ଶୂନ୍ୟ ବିଂ. (ବ.ବ୍ରୀ) ଯେଉଁପଥ ରୁଦ୍ଧ ନୁହେ, ଯାହାର ବାଟକୁ କେହି ରୁଦ୍ଧ କରି ନାହିଁ ।

ଅନିରୁଦ୍ଧଭାମିନୀ—ସ୍ତ୍ରୀ.ବି. (୬ତତ୍) ଅନିରୁଦ୍ଧଙ୍କ ସ୍ତ୍ରୀ, ଉଷା, ବାଣକନ୍ୟା ।

ଅନିରୂପଣୀୟ—ବିଂ.(ନ.ତତ୍)ଅନିର୍ଣ୍ଣେୟ, ଅନିର୍ଦ୍ଦେଶ୍ୟ, ଅନିର୍ଦ୍ଧାର୍ଯ୍ୟ, (ସ୍ତ୍ରୀ) ଅନିରୂପଣୀୟା ।

ଅନିରୂପିତ—ବିଂ. (ନ.ତତ୍) ଅନିର୍ଣ୍ଣୀତ, ଅନିର୍ଦ୍ଧାରିତ, ଅନିର୍ଦ୍ଦିଷ୍ଟ ।

ଅନିର୍ଗମ(ନ)—ପୁଂ. କ୍ଲୀ.ବି. ଅନିଃସରଣ, ଅବହିର୍ଗମନ ।

ଅନିର୍ଜ୍ଜିତ—(ବି.ବିଂ.)ଅପ୍ରାପ୍ତ,ଅନିଶ୍ଚିତ ।

ଅନିର୍ଣ୍ଣୟ—ପୁଂ.ବି. (ଅ+ନିର୍+ନୀ+ଅ) ମୀମାଂସାର ଅଭାବ, ସନ୍ଦେହ, ଅନିଶ୍ଚୟ, ଅବଧାରଣର ଅଭାବ ।

ଅନିର୍ଣ୍ଣୀତ—ବିଂ. (ଅ+ନିର୍ଣ୍ଣୀତ) ନ.ତତ୍;ଅନିର୍ଦ୍ଧାରିତ,ଅନିରୂପିତ ଅନିଶ୍ଚିତ, (ସ୍ତ୍ରୀ) ଅନିର୍ଣ୍ଣୀତା ।

ଅନିର୍ଣ୍ଣେୟ—ବିଂ. (ନ.ତତ୍) ଯାହାର ନିର୍ଣ୍ଣୟ କରାଯାଇ ନାହିଁ, ଅନିରୂପଣୀୟ, ଅନିର୍ଦ୍ଧାରଣୀୟ, (ସ୍ତ୍ରୀ) ଅନିର୍ଣ୍ଣେୟା ।

ଅନିର୍ଦ୍ଦଶ,ଅନିର୍ଦ୍ଦଶାହ—ବିଂ. ଯାହାର ଦଶଦିନକାଳ ଗତ ହୋଇ ନାହିଁ । ମୃତକ ବା ସୂତକ ଅଶୌଚକାଳ, ଦଶଦିନ କାଳ ଟପିନଥିବା, ମୃତକ ବା ସୂତକାଶୌଚର ଅଶୁଦ୍ଧିକାଳ ଦଶଦିନ ସମ୍ବନ୍ଧୀୟ, (କ୍ରି. ବିଂ) ଅଶୌଚକାଳ ଦଶଦିନ ଟପି ନ ଥିବା ଅବସ୍ଥାରେ, ଦଶଦିନ ଗତ ନ ହେଉଣୁ ।

ଅନିର୍ଦ୍ଦିଷ୍ଟ—ବିଂ. (ନ.ତତ୍) ନିରୂପିତ ହୋଇ ନ ଥିବା, ବ୍ୟାଖ୍ୟାତ ହୋଇ ନ ଥିବା, ଅନିୟମିତ,ଯାହାର ସ୍ଥିରତା ନାହିଁ, ଅପରିମିତ, ଅସୀମ, ସ୍ୱତନ୍ତ୍ରରୂପେ କଥିତ ବା ପ୍ରକାଶିତ ହୋଇ ନ ଥିବା ।

ଅନିର୍ଦ୍ଦେଶ—ପୁଂ.ବି (ନ.ତତ୍) ନିର୍ଦ୍ଦେଶାଭାବ, ନିର୍ଦ୍ଦିଷ୍ଟ ନ କରିବା, ଅନବଧାରଣ, ଅନିଶ୍ଚୟ,ଅନୁଲ୍ଲେଖ ।

ଅନିର୍ଦ୍ଦେଶ୍ୟ—ବିଂ.(ଅ+ନିର୍ଦ୍ଦେଶ୍ୟ) ନ.ତତ୍; ନିରୂପିତ ହୋଇ ନ ଥିବା, ଅନିର୍ଣ୍ଣେୟ, ଅନୁଲ୍ଲେଖ୍ୟ, ଯାହାର ପତା ମିଳେ ନାହିଁ,(ସ୍ତ୍ରୀ)ଅନିର୍ଦ୍ଦେଶ୍ୟା, (ବି)ନିର୍ବିଶେଷ, ନିର୍ଗୁଣ ପରମାତ୍ମା ।

ଅନିର୍ଦ୍ଧାରଣୀୟ—ବିଂ. (ନ. ତତ୍) ନିର୍ଦ୍ଧାରଣର ଅଯୋଗ୍ୟ, ଅନିର୍ଣ୍ଣେୟ, ଅନିର୍ଦ୍ଦେଶ୍ୟ, ଅନିରୂପଣୀୟ ।

ଅନର୍ଦ୍ଧାରିତ—ବିଂ.(ନ.ତତ୍), ଅନିଶ୍ଚିତ, ଯାହା ଅବଧାରିତ କରି ହୋଇ ନାହିଁ, ଅନିରୂପିତ, ଅନିଶ୍ଚିତ ।

ଅନର୍ଭର—ବିଂ.(ବ.ବ୍ରୀ) ହାଲୁକା,ଲଘୁ, (ନ.ତତ୍) ସାମାନ୍ୟ, ଅଳ୍ପ, (ସ୍ତ୍ରୀ) ଅନର୍ଭରା, (ବି) ନିର୍ଭରାଭାବ, ଭର ନ ଦେବା ।

ଅନର୍ଷ—ଗ୍ରା.ବି. (ସଂ.ଅନିର୍ବାହ)ଅନିର୍ବାହ (ଦେଖ),ଗ୍ରା.ବିଂ. ଅସମାହିତ, ଅସମାପ୍ତ, ଅଚଳ,ଯହିଁରେ କାମ ଚଳି ନ ପାରେ, ଦୁଃଖୀ, ନଅଣ୍ଟିଆ, ଅଭାବଗ୍ରସ୍ତ, ଯେ ଅନ୍ୟସଙ୍ଗେ ମିଳମିଶି ଚଳି ନ ପାରେ ।

ଅନିର୍ମଳ—ବିଂ (ଅ + ନିର୍ମଳ)ଅପରିଷ୍କୃତ, ମଳିନ, କ୍ଳୀ. ବିଂ (ନ.ତତ୍) ନିର୍ମଳର ଅଭାବ ।

ଅନିର୍ମାଲ୍ୟ—କ୍ଳୀ. ବି. (ଅ + ନିର୍ମାଲ୍ୟ) ନ. ତତ୍; ଯାହା ନିର୍ମାଲ୍ୟ ନୁହେ, ପୂଜାଦିର ଅବଶିଷ୍ଟ ନୁହେ, ଯାହା ଭୋଗ କରି ହେଇ ନାହିଁ. ଯେଉଁସବୁ ଦ୍ରବ୍ୟ ଦେବୋଦ୍ଦେଶରେ ନିବେଦିତ ନୁହେ ।

ଅନିର୍ଲୋଡ଼ିତ—ବିଂ. (ଅ + ନିର୍ଲୋଡ଼ିତ ଅନାଲୋଚିତ, ଅବିବେଚିତ ।

ଅନିର୍ବଚନୀୟ—ବିଂ. (ନ.ତତ୍) ଯାହା ବାକ୍ୟଦ୍ୱାରା ପ୍ରକାଶକରାଯାଇ ନପାରେ, ଯାହା ଉଲ୍ଲେଖକରିବା ଅନୁଚିତ,ଅବର୍ଣ୍ଣନୀୟ, ଯାହା ବର୍ଣ୍ଣନାକରାଯାଇନପାରେ, (ପୁଂ. ବି.) ପରମାତ୍ମା, (କ୍ଳୀ. ବି) ଅଜ୍ଞାନ, ଜଗତ୍ (ସ୍ତ୍ରୀ) ମାୟା ।

ଅନିର୍ବଚନୀୟସର୍ବସ୍ୱ—କ୍ଳୀ. ବି. ଶ୍ରୀହର୍ଷ-ରଚିତ ଖଣ୍ଡନଖଣ୍ଡଖାଦ୍ୟ ନାମ ପୁସ୍ତକ-ବିଶେଷର ଅପର ନାମ ।

ଅନିର୍ବନ୍ଧ—ବିଂ. (ବ.ବ୍ରୀ) ନିର୍ବନ୍ଧହୀନ, ଅନାଗ୍ରହ ।

ଅନିର୍ବାଚ୍ୟ—ବିଂ.ବଚନାତୀତ,ଅତିଉତ୍ତମ, ଯାହା ବ୍ୟାଖ୍ୟା କରିହୁଏ ନାହିଁ ନପାରେ, ଅକଥ୍ୟ, ଅନିର୍ବଚନୀୟ,ନିର୍ଗୁଣ, ଅନିରୁପଣୀୟ, (ସ୍ତ୍ରୀ) ଅନିର୍ବାଚ୍ୟା ।

ଅନିର୍ବାଣ—ବିଂ.(ବ.ବ୍ରୀ)ଯାହା ଲିଭିନାହିଁ, ଯାହାକୁ ଲିଭାଯାଇ ନ ପାରେ, ଯାହା ଲିଭେ ନାହିଁ,ସର୍ବଦା ଜଳୁଥିବା, ଜ୍ୱଳନ୍ତ, ଅନଶ୍ୱର, ଅପ୍ରଶମିତ, ଅନନ୍ତ, ଅମ୍ଳାନ, ମଙ୍ଗଳରହିତ, ସ୍ତ୍ରୀ) ଅନିର୍ବାଣ ।

ଅନିର୍ବାଦ—ପୁଂ.ବି. (ନ.ତତ୍)ନିର୍ବିବାଦ, ଅବଜ୍ଞା, ବିବାଦର ଅଭାବ ।

ଅନିର୍ବାପିତ—ବିଂ. (ନ.ତତ୍) ଯାହା ଲିଭା ହୋଇ ନାହିଁ, ସ୍ତ୍ରୀ) ଅନିର୍ବାପିତା ।

ଅନିର୍ବାର—ଗ୍ରା. କ୍ରି.ବିଂ. ଅନେକ ଥର, ବହୁ, ବିଶେଷ ।

ଅନିର୍ବାହ—ପୁଂ.ବି. (ନ.ତତ୍) ଅପ୍ରତୁଳ, ଅଭାବ, ଅନିଷ୍ପାଦନ, ଅସମ୍ପାଦନ, ଅକରଣ, ଅସଫଳତା, ଅସଙ୍ଗତି, ଶେଷସିଦ୍ଧାନ୍ତର ଅଭାବ ।

ଅନିର୍ବାହ୍ୟ—ବିଂ. (ଅ + ନିର୍ବାହ୍ୟ) ଯାହା ଚଳାଇବା କଷ୍ଟକର ।

ଅନିର୍ବିଣ୍ଣ—ପୁଂ. ବିଂ. (ଅ + ନିର୍ବିଣ୍ଣ) ଅବିଚ୍ଛିନ୍ନ, ଅକ୍ଳାନ୍ତ,ବିଷାଦରହିତ, ନିଃସ୍ୱ, ଦରିଦ୍ର, ଦୁଃଖୀ, ଭୟଶୋକାଦିରେ ଅକାତର, ଅଖିନ୍ନ ।

*ଅନିର୍ବିଦ—ବିଂ.(ଅ + ନିର୍ + ବିଦ + ଅ ଅକ୍ଳାନ୍ତ, ଅବିଚଳିତ, (ସ୍ତ୍ରୀ) ଅନିର୍ବିଦା ।

ଅନିର୍ବୃତ—ବିଂ. ଅ ନିର୍ବୃତ)ଅସନ୍ତୁଷ୍ଟ, ଉଦ୍‌ବିଗ୍ନ. ଅସୁଖୀ, ଅସମ୍ପନ୍ନ, (ସ୍ତ୍ରୀ) ଅନିର୍ବୃତା ।

ଅନିର୍ବୃତ୍ତି—ସ୍ତ୍ରୀ.ବି. (ଅ + ନିର୍ + ବୃତ୍ତି) ସ୍ୱଚ୍ଛନ୍ଦତାର ଅଭାବ, ଅସମାପ୍ତି,ଦରିଦ୍ରତା, ଉଦ୍‌ବିଗ୍ନତା,ଅଶାନ୍ତି, ଅସନ୍ତୋଷ, ଫଳ ନ ଫଳିବା, ଫଳ ନ ହେବା ।

ଅନିର୍ବେଦ—ପୁଂ. ବି. (ଅ + ନିର୍ବେଦ) ନ.ତତ୍, ବୈରାଗ୍ୟ, ଉତ୍ସାହ, ଅଳସ, ଅସନ୍ତୋଷ, ଆତ୍ମନିଭରତା, ଅବିଷାଦ ।

ଅନିର୍ବେଶ୍ୟ—ବିଂ. (ନ.ତତ୍) ନିର୍ବାଣର ଅଯୋଗ୍ୟ, ଯାହା ଲିଭାଇ ଦିଆଯାଇ ନ ପାରେ, (ସ୍ତ୍ରୀ) ଅନିର୍ବେଶ୍ୟା ।

ଅନିର୍ବେଶ—ବିଂ (ଅ + ନିର୍ବେଶ)ବେକାର ଦୁଃଖୀ,ଦୁର୍ଦ୍ଦଶାଗ୍ରସ୍ତ,(ବ.ବ୍ରୀ) ଯେ ପାପ-ପାଇଁ ପ୍ରାୟଶ୍ଚିତ୍ତ କରିନାହିଁ ।

ଅନିଳ—ପୁଂ ବି. (ଅନ୍ + ଣି.ଇଲ) ବାୟୁ, ପବନ, ଅଣଚାଶ ସଂଖ୍ୟା, ପ୍ରାଣବାୟୁ, ବାୟୁକୋଣ, ବାତରୋଗ, ବିଭାସ, ସ୍ୱାତୀନକ୍ଷତ୍ର, ବିଷ୍ଣୁ, ଅଷ୍ଟବସୁ ମଧ୍ୟରୁ ପଞ୍ଚମ ବସୁ, ବିଂ. (ନ + ଇଲା) ବ.ବ୍ରୀ; ଭୂମିଶୂନ୍ୟ, ଧେନୁବିହୀନ, କଥାରହିତ, (ସ୍ତ୍ରୀ) ଅନିଳା ।

ଅନିଳକା—ବି. (ନାମ) ବିଷ୍ଣୁଭଦ୍ରବଂଶୀୟ ରାଜାବିଶେଷ, ବିଶ୍ୱାମିତ୍ରଋଷି ଏହାଙ୍କ ବଂଶଧର ।

ଅନିଳଘ୍ନ—ବିଂ. (ଅନିଳ + ହନ + କ୍ୱପ୍) ବାୟୁରୋଗନାଶକ (ଔଷଧ) ।

ଅନିଳଘ୍ନକ—ବି. (ଅନିଳଘ୍ନ + କ) ବାତ-ନାଶକ, ବାହାଡ଼ା, ବିଭୀତକବୃକ୍ଷ ।

ଅନିଳପର୍ଯ୍ୟୟ—ବି. ଆଖିପତା ଓ ଆଖିର ବାହାରଆଡ଼ ଫୁଲା ଓ ବିନ୍ଧାରୋଗ-ବିଶେଷ ।

ଅନିଳବନ୍ଧୁ—ପୁଂ. ବି. (୬ତତ୍) ଅଗ୍ନି, କୃତ୍ତିକା ନକ୍ଷତ୍ର ।

ଅନିଳସଖ—ପୁଂ. ବି. (ଅନିଳ + ସଖ) ବ.ବ୍ରୀ; ଅଗ୍ନି, ହୁତାଶନ ।

ଅନିଳସାରଥି—ବି. (ବ.ବ୍ରୀ)ଅଗ୍ନି ।

ଅନିଳାତ୍ମଜ—ପୁଂ. ବି. (୬ତତ୍) ବାୟୁ-ପୁତ୍ର, ହନୁମାନ ।

ଅନିଳାନ୍ତକ—ପୁଂ. ବି. (୬ତତ୍) ବାୟୁ-ନାଶକ ଦ୍ରବ୍ୟ,ଇଙ୍ଗୁଦୀବୃକ୍ଷ,ପୁଳିଗୁନ୍ଦିଆ ।

ଅନିଳାମୟ—ପୁଂ.ବି.(କ.ଧା)ବାତରୋଗ, ପେଟଫମ୍ପା ।

ଅନିଳାଶନ—ପୁଂ. ବି. (ବ.ବ୍ରୀ) ପବନା-ଶନ, ସର୍ପ ।

ଅନିଳାଶୀ—ପୁଂ.ବିଂ. (ଅନିଳ + ଅଶ୍ + କ.ଇନ୍) ବାୟୁଭକ୍ଷକୋରୀ, ବାୟୁଭୁକ୍, ଅନାହାରୀ, ଉପବାସୀ, (ସ୍ତ୍ରୀ) ଅନିଳା-ଶିନୀ, (ବି) ସର୍ପ, ଅହି ।

ଅନିବର୍ତ୍ତି—ଗ୍ରା. ବିଂ. (ସଂ.ଅ + ନିବୃତ୍ତ) ନିବୃତ୍ତିରହିତ, ଅଣବାହୁଡ଼ା (ପଥ), ଅସ୍ଥିରପ୍ରକୃତିକ, ଅଶାନ୍ତ ।

ଅନିବର୍ତ୍ତନ—ବି. (ଅ + ନିବର୍ତ୍ତନ) ଫେରି ନ ଆସିବା, ବିଂ. (ବ.ବ୍ରୀ) ସୁସ୍ଥିର, ଅତ୍ୟାଜ୍ୟ ।

ଅନବର୍ତ୍ତୀ—ପୁଂ. ବିଂ. (ଅନ + ବୃତ୍ + ଇନ୍) କାର୍ଯ୍ୟ ଶେଷ ନ କରି ଯେ ରହି ନ ପାରେ, ଯେ ଫେରେ ନାହିଁ, ସାହସୀ,ଅପରାଙ୍ମୁଖ, ଅପ୍ରତ୍ୟାବର୍ତ୍ତନଶୀଳ (ଯୌବନ),ପୁଂ ବି.ବିଷ୍ଣୁ, ପରମେଶ୍ୱର।

ଅନବଦ୍ଧ—ବିଂ. (ନ.ତତ୍) ବନ୍ଧାହୋଇ ନଥିବା,ଗୁନ୍ଥାହୋଇ ନଥିବା,ଅନାୟତ୍ତ, ଅସଂଯତ, ଅନୟମିତ, (ସ୍ତ୍ରୀ) ବଦ୍ଧା ।

ଅନବାର—ବିଂ (ଅ + ନବାର) ବ.ବ୍ରୀ. ଅନବାର୍ଯ୍ୟ, ଅନବାରଣୀୟ, ପ୍ରବଳ, ଦୁରପନେୟ, ଅପ୍ରହତ, ଅବିରତ, ସତତ, ନିରନ୍ତର (ସ୍ତ୍ରୀ) ଅନବାର ।

ଅନବାରଣ—ଗ୍ରା. ବିଂ. ଅନବାର୍ଯ୍ୟ, ଅବଶ୍ୟମ୍ଭାବୀ ।

ଅନବାରଣୀୟ—ବିଂ.(ଅ + ନବାରଣୀୟ) ଯାହାକୁ ବାରଣ କରିଯାଇ ନ ପାରେ, ଯାହା ବନ୍ଦକରିଯାଇ ନପାରେ,ଅବଶ୍ୟମ୍ଭାବୀ, ଦୁର୍ଦ୍ଧର୍ଷ, ଏକବାଗିଆ, ଯାହା ଏଡ଼ି ଦିଆଯାଇ ନ ପାରେ,ଅଚଣ୍ଡ,(ସ୍ତ୍ରୀ) ଅନବାରଣୀୟା ।

ଅନବାରିତ—ବିଂ. ( ନ.ତତ୍ ) ଯାହାର ନବାରଣ କରି ହୋଇ ନ ପାରେ, ଅପ୍ରତିଷିଦ୍ଧ,ଅନଷିଦ୍ଧ (ସ୍ତ୍ରୀ) ଅନବାରିତା ।

ଅନବାର୍ଯ୍ୟ—ବିଂ. (ଅ + ନବାର୍ଯ୍ୟ) ଅନବାରଣୀୟ (ଦେଖ) ।

ଅନବଶମାନ—ବିଂ. (ଅ + ନ + ବଶ୍ + ଆନ) ସର୍ବଦା ଗମନକାରୀ, ଯେ ଏକ ସ୍ଥାନରେ ରହେ ନାହିଁ, ପରିବ୍ରାଜକ ।

ଅନବୃତ—ବିଂ. (ଅ + ନବୃତ) ଅନବାରିତ (ଦେଖ) ।

ଅନବୃତ୍ତ—ବିଂ. (ଅ + ନବୃତ୍ତ) ଯାହାର ନବୃତ୍ତି ନାହିଁ ଅଣବାହୁଡ଼ା, କାର୍ଯ୍ୟରୁ ରହିତ ନ ହେବା,ଅନବରତ,ଅବିରତ ।

ଅନବେଦିତ—ବିଂ. (ନ.ତତ୍) ଅକଥିତ, ଦେବୋଦ୍ଦେଶରେ ଅନୁତ୍ସର୍ଗୀକୃତ ।

ଅନଶ -- ବିଂ.ବ.ବ୍ରୀ ଓ କ୍ରି.ବିଂ;ଅବିରତ, ନିରନ୍ତର,ସତତ, ସର୍ବଦା ଭୟଜନକ ବସ୍ତୁ, ରାଜବର୍ଜିତ ।

ଅନଶଂ.—ଅବ୍ୟ. ନିତ୍ୟ, ସଦା, ଅଜସ୍ର, ସନ୍ତତ ।

ଅନଶଶସ୍ତ-ବିଂ.(ଅ + ନଶ୍ + ଶନ୍ ସ + ତ) ପ୍ରଶସ୍ତ, ଅନନ୍ଦିତ, ସୁଖୀ । [ଷିଣ ।

ଅନଶା,ଅଦଶା-ଗ୍ରା. ବି. ଅପେକ୍ଷା,ଅପେନ୍ଦ୍ର-

ଅନଶ୍ଚୟ—ପୁଂ. ବି. (ନ.ତତ୍) ନଶ୍ଚୟର ଅଭାବ, ବିଂ. (ବ.ବ୍ରୀ) ଅନଶ୍ଚିତ, ସନ୍ଦେହଯୁକ୍ତ ।

ଅନଶ୍ଚୟତା—ସ୍ତ୍ରୀ. ବି. (ଅନଶ୍ଚୟ + ତା) ନଶ୍ଚୟରାହିତ୍ୟ, ନଶ୍ଚୟାଭାବ ।

ଅନଶ୍ଚିତ—ବିଂ.(ଅ + ନଶ୍ଚିତ) ଅସ୍ଥିର, ସନ୍ଦେହଯୁକ୍ତ, ଅନୟମିତ, ଅନର୍ଣ୍ଣୀତ ।

ଅନଶ୍ଚିନ୍ତ୍ୟ—ବିଂ. ( ନ.ତତ୍ ) ଅଚନ୍ତ୍ୟ, ନର୍ଦ୍ଦେଶ୍ୟ, ଦୁର୍ବୋଧ (ଦୈବକର୍ମ) ।

ଅନଷିଦ୍ଧ—ବିଂ. (ଅ + ନଷିଦ୍ଧ) ଯାହାର ନଷେଧ କରି ହୋଇନାହିଁ,ଅନବାରିତ, ଅବାରିତ, (ସ୍ତ୍ରୀ) ଅନଷିଦ୍ଧା ।

ଅନଷ୍ଟ—କ୍ଲୀ.ବି. (ନ + ଇଷ୍ଟ) ନ.ତତ୍; ଅପକାର,ହାନ,ଅହିତ,ଦୁଃଖ,ଦୁର୍ଦ୍ଦୈବ, ପାପ, (ବିଂ.) ଅବାଞ୍ଛିତ, ଅନଭିଳଷିତ, ଦୁଃଖକର,ନଷିଦ୍ଧ,ନନ୍ଦିତ,ଶାସ୍ତ୍ରବିରୋଧୀ, ଅପକାରକ,ଅଶୁଭ,ଅପୂଜିତ(ଦେବାଦି), (ସ୍ତ୍ରୀ ଅନଷ୍ଟା ।

ଅନଷ୍ଟକର(କାରକ,ଜନକ)-ବିଂ.,(ତତ୍) ଅହିତକର, ଅପକାରୀ, ସ୍ତ୍ରୀ) ଅନଷ୍ଟକରୀ, (କା, ଜନକା) ।

ଅନଷ୍ଟଚନ୍ତା—ସ୍ତ୍ରୀ.ବି. (୬ତତ୍) ଅହିତସାଧନର ଭାବନା, ଅପକାର କରିବାର କଳ୍ପନା ।

ଅନଷ୍ଟପାତ—ପୁଂ. ବି. (ଅନଷ୍ଟ + ପତ୍ + ଅ ଅମଙ୍ଗଳ ଘଟନା, ଅଶୁଭଘଟନା, ମନ୍ଦ ଘଟନା ।

ଅନଷ୍ଟା—ସ୍ତ୍ରୀ.ବି. ନାଗବଳା, (ବିଂ)ଅନଭିଳଷିତା ।

ଅନଷ୍ଟାଚରଣ—କ୍ଲୀ.ବି.(୬ତତ୍) ଅହିତାନୁଷ୍ଠାନ, ଅପକାରସମ୍ପାଦନ ।

ଅନଷ୍ଟାପାତ—ପୁଂ.ବି. (୬ତତ୍)ଅପ୍ରୀତିକର ଘଟନା, ଅଶୁଭଘଟନା, ମଙ୍ଗଳାଗମର ଅଭାବ ।

ଅନଷ୍ଟାଶଙ୍କା—ସ୍ତ୍ରୀ.ବି.(୬ତତ୍)ଅହିତଶଙ୍କା, ଅପକାର ବା ଅମଙ୍ଗଳ ଘଟନାରଭୟ ।

ଅନଷ୍ଠ—ବିଂ. (ବ.ବ୍ରୀ) ନଷ୍ଠାହୀନ,ଆସ୍ଥାଶୂନ୍ୟ, (ସ୍ତ୍ରୀ) ଅନଷ୍ଠା ।

ଅନଷ୍ଠା—ସ୍ତ୍ରୀ.ବି.(ନ.ତତ୍)ନଷ୍ଠାରାହିତ୍ୟ, ଅନାସ୍ଥା, ଅପ୍ରତ୍ୟୟ, ଅନର୍ଭର, ଗୃଙ୍ଖଳା।

ଅନଷ୍ଣାତ—ବିଂ. ( ନ.ତତ୍ ) ଅକୁଶଳ, ଅନଭିଜ୍ଞ, ଅକୃତୀ, ଅନାଡ଼ି, ଅପ୍ରବୀଣ, ଅବିଚକ୍ଷଣ, ଅର୍ବାଚୀନ, ଅପ୍ରାଜ୍ଞ ।

ଅନଷ୍ପତ୍ର—ବିଂ. ( ବ.ବ୍ରୀ ) ଅଖଣ୍ଡଶର, ଯେଉଁ ଶରର ମୂଳପାଖେ ଲାଗିଥିବା ପର ଛୁଡ଼ଯାଏ ନାହିଁ ।

ଅନଷ୍ପନ୍ନ—ବିଂ. (ନ.ତତ୍) ନଷ୍ପତ୍ତିରହିତ, ଅସମାପ୍ତ, ଅସମ୍ପୂର୍ଣ୍ଣ, ଅସିଦ୍ଧ, ଅସମ୍ପନ୍ନ, (ସ୍ତ୍ରୀ) ଅନଷ୍ପନ୍ନା ।

ଅନସର୍ଗ—ବିଂ ( ବ.ବ୍ରୀ ) ଅସ୍ୱାଭାବିକ ଅବସ୍ଥାପନ୍ନ, ସ୍ୱଭାବବହିର୍ଭୂତ ବା ସ୍ୱଭାବବିରୁଦ୍ଧ, ବିକୃତଭାବାପନ୍ନ ।

ଅନସ୍ତବ୍ଧ—ବିଂ.(ନ.ତତ୍)ଅନଭିଭୂତ ।

ଅନସ୍ତୀର୍ଣ୍ଣ—ବିଂ. (ନ.ତତ୍) ଅନୁତ୍ତୀର୍ଣ୍ଣ, ଅନତକ୍ରାନ୍ତ,ଅଖଣ୍ଡିତ, (ସ୍ତ୍ରୀ)ଅନସ୍ତୀର୍ଣ୍ଣା ।

ଅନୀକ—ପୁଂ. ବି. (ଅନ + ଇକ) ସେନା, ଚମୂ, ସୈନ୍ୟ, ଯୁଦ୍ଧ, ସମୂହ, ଅଗ୍ର, ଯୁଦ୍ଧବ୍ୟୂହ ।

ଅନୀକସ୍ଥ—ବି.ବି. (ଅନୀକ + ସ୍ଥା + କ.ଅ) ସେନାଦଳ,ସୈନ୍ୟ, ରାଜରକ୍ଷି-ସୈନ୍ୟ, ହସ୍ତିପକ, ଧ୍ୱଜାଦିଯୁଦ୍ଧଚିହ୍ନ, ରଣବାଦ୍ୟ, ଅକ୍ଷୌହିଣୀର ଦଶମାଂଶ, ( ବିଂ ) ଯୁଦ୍ଧସ୍ଥିତ, (ସ୍ତ୍ରୀ) ଅନୀକସ୍ଥା ।

ଅନୀକନୀ—ସ୍ତ୍ରୀ.ବି. ସେନା,ହସ୍ତୀପ୍ରଭୃତିର ସଂଖ୍ୟାବିଶେଷଯୁକ୍ତ ସେନା, ( ଯଥା— ୬୫୬୧ ଅଶ୍ୱ,୨୧୮୭ ହସ୍ତୀ, ୧୦୯୩୫ ପଦାତି,୨୧୮୭ରଥ,ସମୁଦାୟ୨୧୮୭୦ (ସେନାଦଳ) ଅକ୍ଷୌହିଣୀ ( ଦେଖ ) ।

ଅନୀଚଦର୍ଶୀ—ପୁଂ.ବି. ବୁଦ୍ଧବିଶେଷ ।

ଅନୀତ—ବିଂ. (ନ.ତତ୍) ଯାହା ନିଆ ଯାଇ ନାହିଁ, (ସ୍ତ୍ରୀ) ଅନୀତା ।

ଅନୀତି—ସ୍ତ୍ରୀ. ବି. (ଅ + ନୀତି) କୁନୀତି, ଅତ୍ୟାଚାର,ମନ୍ଦକାର୍ଯ୍ୟ, ଅନ୍ୟାୟ,ପରର

ସ୍ୱତ୍ୱଖଣ୍ଡନ, (ଗ୍ରା.ବିଂ) ଅନୈତିକ, ସଦାଚାରବହିର୍ଭୂତ, ଶାସ୍ତ୍ରବିରୁଦ୍ଧ ।

ଅନୀଦୃକ୍,ଅନୀଦୃଶ—ପୁଂ. ବିଂ. (ନ+ଈଦୃଶ)ଅତୁଳ୍ୟ, ବହୁବିଧ, ଏପରି ନୁହେଁ, ବିସଦୃଶ, ଭିନ୍ନ (ସ୍ତ୍ରୀ)-ଦୃଶୀ ।

ଅନୀପ୍ସିତ—ବିଂ. (ନ.ତତ୍) ଅନଭୀଷ୍ଟ, ଅନିଷ୍ଟ, ଉପେକ୍ଷଣୀୟ, ଦ୍ୱେଷ୍ୟ ।

ଅନୀଶ—ପୁଂ.ବି. ବିଷ୍ଣୁ, ଶିବ, ଦାରିଦ୍ର୍ୟ, ତ୍ରି. ବିଂ. (ବ.ବ୍ରୀ) ପ୍ରଭୁହୀନ, ଅରକ୍ଷ, ସ୍ୱାମୀରହିତ,ଦରିଦ୍ର,ଯେ ଅଧିକାରୀ ନୁହେ ।

ଅନୀଶ୍ୱର—ପୁଂବିଂ.(ବ.ବ୍ରୀ)ଯାହାମତରେ ଈଶ୍ୱର ନାହାନ୍ତି, ନାସ୍ତିକ, ପ୍ରଭୁହୀନ, ଶିବହୀନ, ଈଶ୍ୱରହୀନ(ନ.ତତ୍) ଅକ୍ଷମ, ଅସମର୍ଥ, ଅଧୀନ, (ସ୍ତ୍ରୀ) ଅନୀଶ୍ୱରୀ ।

ଅନୀଶ୍ୱରବାଦ—ପୁଂ.ବି.(କ.ଧା)ଈଶ୍ୱରଙ୍କ ଅସ୍ତିତ୍ୱ ନମାନିବାରୂପ ମତ,ନାସ୍ତିକତା ।

ଅନୀଶ୍ୱରବାଦୀ—ପୁଂ.ବିଂ. (ନ.ତତ୍)ଯେ ଈଶ୍ୱର ସ୍ୱୀକାର କରେ ନାହିଁ, ନାସ୍ତିକ, (ସ୍ତ୍ରୀ) ବାଦିନୀ ।

ଅନୀହ—ବିଂ.(ନ+ଈହା)ବ.ବ୍ରୀ;ଫଳାଶାରହିତ, ନିଷ୍କାମ, ଚେଷ୍ଟାରହିତ, ନିଶ୍ଚେଷ୍ଟ, ନିର୍ବୀର୍ଯ୍ୟ, ଅଳସ, ନିରୁତ୍ସାହ, ନିସ୍ପୃହ, ଉଦାସୀନ,(ସ୍ତ୍ରୀ) ଅନୀହା ।

ଅନୀହା—ସ୍ତ୍ରୀ.ବି. (ନ.ତତ୍) ଚେଷ୍ଟାର ଅଭାବ, ନିଶ୍ଚେଷ୍ଟତା, ଆଳସ୍ୟ, ଯତ୍ନରହିତ୍ୟ, ଅନୁତ୍ସାହ, ସ୍ପୃହାହୀନତା, ଔଦାସୀନ୍ୟ ।

ଅନୁ—ଅବ୍ୟ.(ଉପସର୍ଗ) ପଶ୍ଚାତ୍, ସଦୃଶ, ହୀନ, ବୀପ୍‌ସା, ସହ, ସମୀପ,ଭାଗ,ଚିହ୍ନ, ଅନୁକ୍ରମ, ଇତ୍ଥଂଭାବ, ଆୟାସ, ଅଂଶ (ଶବ୍ଦ ବା ଧାତୁର ଆଦ୍ୟରେ ବ୍ୟବହୃତ) ଯଥା—ଅନୁକ୍ରମଇତ୍ୟାଦି, (ପୁଂ.ବି) ଯଯାତିଙ୍କ ଔରସରେ ଶର୍ମିଷ୍ଠାଙ୍କ ଗର୍ଭଜାତ ପୁତ୍ର ।

ଅନୁକ—ବିଂ. (ଅନୁ+କମ୍+ଅ)କାମୀ, କାମାସକ୍ତ,କାମୁକ,ଲମ୍ପଟ,(ସ୍ତ୍ରୀ)ଅନୁକା ।

ଅନୁକଥନ—କ୍ଳୀ ବି. ପଶ୍ଚାଭାଷଣ,ପୁନରୁଲ୍ଲେଖନ, କଥୋପକଥନ, ଯଥାକ୍ରମେ ବର୍ଣ୍ଣନ ।

ଅନୁକନଖଲ—(ଅବ୍ୟ)କନଖଲ ପର୍ବତର ନିକଟରେ (ଆଧୁନିକ) କଙ୍ଖଲ ।

ଅନୁକମ୍ପକ—ପୁଂ.ବିଂ.(ଅନୁ+କମ୍ପ+କ) ଦୟାଳୁ,(ବି)ଅନୁକମ୍ପା ।

ଅନୁକମ୍ପନ—ତ୍ରି ବି.° (ଅନୁ+କମ୍ପ+ଅନ୍)ଦୟାଶୀଳ,କ୍ଳୀ.ବି.ଦୟା, କୃପା ।

ଅନୁକମ୍ପନୀୟ—ବିଂ.(ଅନୁ+କମ୍ପ+ର୍ମ ଅନୀୟ) ଅନୁକମ୍ପାର ପାତ୍ର, କୃପାର୍ହ ।

ଅନୁକମ୍ପା—ସ୍ତ୍ରୀ ବି. (ଅନୁ+କମ୍ପ+ଭା. ଅ+ଆ) ଦୟା, କୃପା, କରୁଣା, ସହାନୁଭୂତି, ଅନ୍ୟର ଅବସ୍ଥା ଦେଖି ଆପଣାକୁ ତଦବସ୍ଥ ଜ୍ଞାନକରିବା ।

ଅନୁକମ୍ପୀ—ପୁଂ. ବିଂ. (ଅନୁକମ୍ପ+କ. ଇନ୍) ଅନୁକମ୍ପାକାରୀ, ସଦୟ, (ସ୍ତ୍ରୀ) ଅନୁକମ୍ପିନୀ ।

ଅନୁକମ୍ପ୍ୟ—ବିଂ. (ଅନୁକମ୍ପ+ର୍ମ.ଯ) ଦୟାଯୁକ୍ତ,କୃପାର ଯୋଗ୍ୟ,ଅନୁଗ୍ରାହ୍ୟ, (ସ୍ତ୍ରୀ) ଅନୁକମ୍ପ୍ୟା ।

ଅନୁକରଣ—କ୍ଳୀ.ବି. (ଅନୁ+କୃ+ଭା ଅନ) ସଦୃଶୀକରଣ, ନକଲ କରିବା, ଜାଲ, ପ୍ରତିରୂପକରଣ,(ବିଂ)ଅନୁକୃତ ।

ଅନୁକରଣପ୍ରିୟ—ବିଂ. (ବ.ବ୍ରୀ) ସଦୃଶ କର୍ମକରଣାନୁରାଗୀ, ଯେ ନକଲ କରିବାକୁ ଭଲପାଏ, (ସ୍ତ୍ରୀ)ଅନୁକରଣପ୍ରିୟା ।

ଅନୁକରଣବୃତ୍ତି—ସ୍ତ୍ରୀ.ବି.(କ.ଧା) ପ୍ରାଣୀଗଣ ଯେଉଁ ବୃତ୍ତିଦ୍ୱାରା କୌଣସି ବସ୍ତୁ ଦେଖି ବା ଶୁଣି ତଦନୁରୂପ କାର୍ଯ୍ୟ କରିବାକୁ ପ୍ରବୃତ୍ତ ହୁଅନ୍ତି ।

ଅନୁକରଣଶବ୍ଦ—ପୁଂ. ବି. (କ.ଧା)ଅନୁକାରଶବ୍ଦ, ଅନ୍ୟ ଧ୍ୱନିର ତୁଲ୍ୟ ଧ୍ୱନି, କୌଣସି ଶବ୍ଦର ଅନୁରୂପ ଶବ୍ଦ ।

ଅନୁକରଣଶୀଳ—ବିଂ.(ବ.ବ୍ରୀ)ଅନୁକରଣକରିବା ଯାହାର ସ୍ୱଭାବ, (ସ୍ତ୍ରୀ) ଅନୁକରଣଶୀଳା ।

ଅନୁକରଣୀୟ—ବିଂ. (ଅନୁ+କୃ+ର୍ମ. ଅନୀୟ) ଅନୁକରଣକରିବାର ଉପଯୁକ୍ତ, ଯାହାର ଅନୁକରଣ କରିବା ଆବଶ୍ୟକ, (ସ୍ତ୍ରୀ) ଅନୁକରଣୀୟା ।

ଅନୁକର୍ତ୍ତା—ପୁଂ.ବିଂ. (ଅନୁ+କୃ+କ. ତୃ)ଅନୁକରଣକାରୀ,ଅନ୍ୟର ଅଭିନୟକାରୀ, ନକଲଆ, (ସ୍ତ୍ରୀ) ଅନୁକର୍ତ୍ତ୍ରୀ ।

ଅନୁକର୍ମ—କ୍ଳୀ. ବି. ସଦୃଶକାର୍ଯ୍ୟ, ଅନୁକରଣ, ନକଲ, ପଶ୍ଚାଦ୍‌ବର୍ତ୍ତୀ କାର୍ଯ୍ୟ ।

ଅନୁକର୍ଷ—ପୁଂ. ବିଂ. (ଅନୁ+କୃଷ+ଭା. ଅ) ଅଧଃସ୍ଥିତ ଯେଉଁ କାଠଦ୍ୱାରା ଗାଡ଼ି ବା ରଥ ଟଣାଯାଏ । ନିମ୍ନରୁ ଆକର୍ଷଣ, (ନ୍ୟାୟ ଓ ବ୍ୟାକରଣ) ପୂର୍ବ ସୂତ୍ରୋକ୍ତ ବିଧିର ପରସୂତ୍ରରେ ଅନୁବର୍ତ୍ତନ ।

ଅନୁକର୍ଷଣ—କ୍ଳୀ. ବି. (ଅନୁ+କୃଷ+ଭା.ଅନ)ନିମ୍ନରୁ ଆକର୍ଷଣ, (ନ୍ୟାୟ ଓ ବ୍ୟାକରଣ) ଅବକର୍ଷଣ,ମନ୍ତ୍ରୋଚ୍ଚାରଣପୂର୍ବକ ଆବାହନ ।

ଅନୁକଳ୍ପ—ପୁଂ. ବି. ଗୌଣକଳ୍ପ, ମୋକ୍ଷର ସ୍ଥାନପ୍ରାପ୍ତ ପ୍ରତିନିଧି, ଯଥା—ମଧୁ ଅଭାବରେ ଗୁଡ଼ ।

ଅନୁକାମ—ପୁଂ. ବି. ଯୋଗ୍ୟାଭିଳାଷ, (ବିଂ) ଅନୁକାମୀ, ଅତିକାମୁକ, (ଅବ୍ୟ) ଯଥାକାମ, ଯଥେଚ୍ଛ ।

ଅନୁକାମୀନ—ତ୍ରି. ବିଂ. (ଅନୁ+କାମ+ଈନ)ସ୍ୱେଚ୍ଛାଚାରୀ,(ସ୍ତ୍ରୀ)ଅନୁକାମୀନା ।

ଅନୁକାର—ପୁଂ. ବି. (ଅନୁ+କୃ+ଭା.ଅ) ଅନୁକରଣ, ସଦୃଶୀକରଣ, ଅନୁରୂପକରଣ, ସଦୃଶ ବେଶଭୂଷାଦିର ଆଚରଣ,ଐକ୍ୟ(ବିଂ)ଅନୁକାରୀ ।

ଅନୁକାରୀ—ପୁଂ.ବିଂ. ଅନୁ+କୃ+କ. ଇନ୍) ସଦୃଶ, ଯେ ଅନୁକରଣ କରେ, ଯେ ନକଲକରେ (ସ୍ତ୍ରୀ) ଅନୁକାରିଣୀ ।

ଅନୁକାର୍ଯ୍ୟ—ବିଂ. (ଅନୁ+କୃ+ର୍ମ.ଯ) ଅନୁକରଣୀୟ, (କ୍ଳୀ. ବି) ପଶ୍ଚାତ୍‌କରଣୀୟ କର୍ମ, ଗୌଣକର୍ମ ।

ଅନୁକାଲ—(ଅବ୍ୟ) କାଳର ଯୋଗ୍ୟ, ଚିରକାଳ, ତତ୍କାଳେ ।

ଅନୁକୀର୍ଣ୍ଣ—ବିଂ. (ଅନୁ+କୃ+ର୍ମ.ତ) ବିକ୍ଷିପ୍ତ,ବିସ୍ତୃତ,ବ୍ୟାପ୍ତ (ସ୍ତ୍ରୀ) ଅନୁକୀର୍ଣ୍ଣା ।

ଅନୁକୀର୍ତ୍ତନ—କ୍ଳୀ.ବ.(ଅନୁ + କୃତ୍ + ଭା. ଅନ) ପଛରେ କହିବା, ଅନୁବାଦ, କ୍ରମିକ ବର୍ଣ୍ଣନ, ଉଚ୍ଚାରଣ, ବିଘୋଷଣ, ପ୍ରକଟନ ।

ଅନୁକୂଳ—ବିଂ. (ଅନୁ + କୂଳ + କ.ଅ ସହାୟ, ସପକ୍ଷ, ସଦୟ, ପୋଷକ, ଆଶ୍ରୟଦାତା, ଅପ୍ରତିକୂଳ, ଅନୁରକ୍ତ, ଯୋଗ୍ୟ,ଅନୁଗ୍ରହକାରୀ, (ସ୍ତ୍ରୀ)ଅନୁକୂଳା, ( ପୁଂ ବ ) ନାୟକବିଶେଷ, ଯେଉଁ ନାୟକ ବାରାଙ୍ଗନାପରାଙ୍ମୁଖ ହୋଇ ସ୍ୱସ୍ତ୍ରୀଠାରେ ଆସକ୍ତ, ଅର୍ଥାଲଙ୍କାର-ବିଶେଷ. (ଗ୍ରା. ବ.) କାର୍ଯ୍ୟର ଆରମ୍ଭ, ଯାତ୍ରା କରିବାର ଆରମ୍ଭ ।

ଅନୁକୂଳ କରିବା—ଗ୍ରା. କ୍ରି. କୌଣସି ଶୁଭକାର୍ଯ୍ୟର ଆରମ୍ଭକରିବା, ଯେ କୌଣସି କାର୍ଯ୍ୟ ଆରମ୍ଭକରିବା ।

ଅନୁକୂଳଗଳହସ୍ତ—ପୁଂ. ବ. (କ.ଧା) ଯେଉଁ ଧକ୍କା ବା ଗଳହସ୍ତ ବାହାରେ ଶାନ୍ତିପ୍ରୟୋଗ, କାର୍ଯ୍ୟରେ ଅଶ୍ୱାସ୍ତପ୍ରଦ ବା ଶାପରେ ବର ହୁଏ ।

ଅନୁକୂଳତା—ସ୍ତ୍ରୀ. ବ ସହାୟତା, ଆନୁକୂଲ୍ୟ,ପୋଷକତା,ସାହାଯ୍ୟ, ଅନୁଗ୍ରହ ।

ଅନୁକୂଳବିରୁଦ୍ଧ—ଗ୍ରା.ବ. ଅନକୂଳ-ବିରୁଦ୍ଧ ଦେଖ) ।

ଅନୁକୂଳା—ସ୍ତ୍ରୀ. ବ. ଦନ୍ତୀବୃକ୍ଷ, ଛନ୍ଦୋ-ବିଶେଷ,(ସ୍ତ୍ରୀ.ବିଂ)ଅନୁକୂଳର ସ୍ତ୍ରୀଲିଙ୍ଗ ।

ଅନୁକୃତ—ବିଂ. (ଅନୁ + କୃ + ର୍ମ.ତ) ଯାହାର ଅନୁକରଣ କରାହୋଇଅଛି, ସଦୃଶୀକୃତ,ଅନୁସୃତ,(ସ୍ତ୍ରୀ)ଅନୁକୃତା ।

ଅନୁକୃତି—ସ୍ତ୍ରୀ. ବ. (ଅନୁ + କୃ + ତି) ଅନୁକରଣ, ସଦୃଶୀକରଣ ।

ଅନୁକୃଷ୍ଟ—ବିଂ. ( ଅନୁ + କୃଷ୍ + ତ ) ଆକୃଷ୍ଟ, ଅନୁବୃତ୍ତ, ଯାହାର ଆକର୍ଷଣ କରାହୋଇଅଛି ।

ଅନୁକ୍ତ—କ୍ରି. ବିଂ.(ନ + ଉକ୍ତ) ଅକଥିତ, ଅନୁଚ୍ଚାରିତ, ଅପ୍ରଧାନ, (କର୍ତ୍ତୃବା,କର୍ମ) ।

ଅନୁକ୍ଥ—କ୍ରି ବିଂ.(ନ + ଉକ୍ଥ)ବ.ସ୍ତ୍ର; ସ୍ତୋତ୍ରଶୂନ୍ୟ ।

ଅନୁକ୍ଥ୍ୟ—କ୍ରି. ବିଂ, ସ୍ତୁତିର ଅଯୋଗ୍ୟ, ପ୍ରଶଂସ୍ୟ ନୁହେ । [ଭିଲ ଦନ୍ତୁର ।

ଅନୁକଙ୍କଚ—ବିଂ.(ଅନୁ + କଙ୍କଚ)କରତ

ଅନୁକ୍ରମ—ପୁଂ.ବ. (ଅନୁ + କ୍ରମ + ଭା. ଅ) ପର୍ଯ୍ୟାୟ, ଅନୁପୂର୍ବ, କ୍ରମାନୁସାର, ଧାରାବାହିକ ବସ୍ତୁ, ଯଥାକ୍ରମ ।

ଅନୁକ୍ରମଣ—କ୍ଳୀ ବ. ପଶ୍ଚାଦ୍‌ଗମନ, ଅନୁସର, ଅନୁଗମନ, ଅନୁବର୍ତ୍ତନ, କ୍ରମାନୁସାରେ କ୍ରିୟାକରଣ ।

ଅନୁକ୍ରମଣିକା—ସ୍ତ୍ରୀ.ବ. (ଅନୁ + କ୍ରମ + ଭା.କ + ଆ ) ଗ୍ରନ୍ଥର ଅବତରଣିକା, ଭୂମିକା, ନିର୍ଘଣ୍ଟ, ମୁଖବନ୍ଧ, ସୂଚୀ ।

ଅନୁକ୍ରମେ—ଗ୍ରା.କ୍ରି. ବିଂ. କ୍ରମାନୁସାରେ, କ୍ରମଶଃ, ଅନୁସାର । [ କ୍ରିୟା ।

ଅନୁକ୍ରିୟା—ସ୍ତ୍ରୀ.ବ. ଅନୁକର୍ମ, ଅନୁରୂପ

ଅନୁକ୍ରୀ—ପୁଂ. ବ.ସଦ୍ୟସ୍କ ନାମକ ଯଜ୍ଞ-ବିଶେଷ ।

ଅନୁକ୍ରୋଶ—ପୁଂ. ବ. (ଅନୁ + କ୍ରୁଶ + ଭା.ଅ) କରୁଣା,ସହାନୁଭୂତି, ଅନୁକମ୍ପା, କୃପା, ଦୟା ।

ଅନୁକ୍ଷଣ—ଅବ୍ୟ,ଅନବରତ,ମୁହୁର୍ମୁହୁ, ପ୍ରତିକ୍ଷଣ, ସର୍ବଦା, କ୍ଷଣେ କ୍ଷଣେ ।

ଅନୁକ୍ଷେତ୍ର—ବ.ଓଡ଼ିଶାର ଦେବସେବକ-ମାନଙ୍କୁ ଦିଆଯିବା ବୃତ୍ତିବିଶେଷ ।

ଅନୁଗ—ବିଂ. ( ଅନୁ + ଗମ୍ + କ.ଅ ) ଅନୁଚର, ଅନୁସର ଅନୁଯାୟୀ, ପଶ୍ଚାଦ୍‌ଗାମୀ, ପଛରେ ଯାଉଥିବା (ଲୋକ), ପୁଂ. ବ. ପରିଜନ, ସେବକ ।

ଅନୁଗଙ୍ଗ—ଅବ୍ୟ, ଗଙ୍ଗାର ସମୀପରେ, ଗଙ୍ଗାନଦୀର ସମୀପସ୍ଥ (ଦେଶାଦି) ।

ଅନୁଗତ—କ୍ରି, ବିଂ. ( ଅନୁ + ଗମ୍ + କ.ତ ବଶବର୍ତ୍ତୀ, ବଶମ୍ବଦ,ଅନୁସୃତ, ମତାଧୀନ, ଆଶ୍ରିତ, ଅନୁଜ୍ଞାବହ,ଅଧୀନ, (ସ୍ତ୍ରୀ) ଅନୁଗତା ।

ଅନୁଗତାର୍ଥ—ପୁଂ.ବ.(କ.ଧା)ସଙ୍ଗତାର୍ଥ, ଅନାୟାସଲଭ୍ୟ ଅର୍ଥ ।

ଅନୁଗତି—ସ୍ତ୍ରୀ. ବ. (ଅନୁ + ଗମ୍ + ଭା. ତି) ଆନୁଗତ୍ୟ, ଅନୁଗମନ, ସ୍ୱୀକରଣ ।

ଅନୁଗନ୍ତବ୍ୟ—ବିଂ. (ଅନୁ + ଗମ୍ + ର୍ମ. ତବ୍ୟ) ଅନୁସରଣୀୟ, ଅନୁକରଣୀୟ ।

ଅନୁଗମ—ପୁଂ. ବ.(ଅନୁ + ଗମ୍ + ଭା. ଅ) ଅନୁଲୋମ, ଯଥାକ୍ରମେ ଗମନ-କରିବା, ଉପସର୍ପଣ, ସଙ୍ଗତ,ମୀମାଂସା ।

ଅନୁଗମନ—କ୍ଳୀ. ବ. ( ଅନୁ + ଗମ୍ + ଭା.ଅନ ) ପଶ୍ଚାଦ୍‌ଗମନ,ସହଗମନ ବା ଅନୁମରଣ, ସ୍ୱାମୀର ମୃତ୍ୟୁପରେ ସତୀର ମୃତ୍ୟୁକୁ ଆଲିଙ୍ଗନ ।

ଅନୁଗମନୀୟ—ବିଂ. (ଅନୁ + ଗମ୍ + ର୍ମ. ଅନୀୟ) ଅନୁଗମନଯୋଗ୍ୟ, ପଶ୍ଚାଦ୍‌ଗମନସାଧ୍ୟ, ଅନୁକରଣୀୟ, ଅନୁସରଣୀୟ ।

ଅନୁଗର୍ଜିତ—କ୍ଳୀ. ବ. (ଅନୁ + ଗର୍ଜ + ଭା ତ) ଅନୁରୂପଗର୍ଜନ, ପ୍ରତିଧ୍ୱନି ।

ଅନୁଗବ—ବି. ( ଅନୁ + ଗୋ + ଅ ) ଦୈର୍ଘ୍ୟ ।

ଅନୁଗବୀନ—ପୁଂ. ବ. (ଅନୁ + ଗୋ + ଇନ ) ଯେ ଗୋରୁ ପଛରେ ଯାଏ, ଗୋରକ୍ଷକ, ଗାଈରଖୁଆଳ,ଗୋପାଳ ।

ଅନୁଗାଦୀ—ବିଂ. ପୁଂ. (ଅନୁ + ଗଦ + ଇନ୍)ଯେ ଅନୁବାଦକରେ, ଅନୁବାଦୀ ।

ଅନୁଗାମୀ—ପୁଂ. ବିଂ. (ଅନୁ + ଗମ୍ + ଇନ୍)ପଶ୍ଚାଦ୍‌ଗାମୀ,ସହଚର,ମତାନୁବର୍ତ୍ତୀ (ସ୍ତ୍ରୀ) ଅନୁଗାମିନୀ ।

ଅନୁଗୀତ-କ୍ଳୀ.ବ. (ଅନୁ + ଗୈ + ଭା.ତ) ଅନୁରୂପଗୀତ ବା ଗୁଞ୍ଜନ ।

ଅନୁଗୁଣ—ବିଂ. (ଅନୁ + ଗୁଣ)ଅନୁକୂଳ, ଅନୁଗତ, ସହାୟ, ଅନୁରୂପ, (ସ୍ତ୍ରୀ) ଅନୁଗୁଣା । [ଗୋଟିଏ ଅଞ୍ଚଳ ।

ଅନୁଗୁଳ—ଗ୍ରା.ବ. ଓଡ଼ିଶା ପ୍ରଦେଶସ୍ଥିତ

ଅନୁଗୃହୀତ—ବିଂ.(ଅନୁ + ଗ୍ରହ + ର୍ମ.ତ) ଉପକୃତ, ଯାହାର ପ୍ରତି ଅନୁଗ୍ରହ କରାହୋଇଅଛି, ଅନୁଗ୍ରହପ୍ରାପ୍ତ ।

ଅନୁଗ୍ର—ବିଂ. (ନ + ଉଗ୍ର) ଅପ୍ରଚଣ୍ଡ, ଅନୁତ୍କଟ, ଅକ୍ରୋଧୀ, ଅକ୍ରୂର, ଶାନ୍ତ-ସ୍ୱଭାବ, ଅନୁଦ୍ଧତ,ଅତୀବ୍ର, ମୃଦୁ, (ସ୍ତ୍ରୀ) ଅନୁଗ୍ରା ।

ଅନୁଗ୍ରହ—ବି. ( ଅନୁ + ଗ୍ରହ + ଭା.ଅ ) ଅନିଷ୍ଟନିବାରଣପୂର୍ବକ ଇଷ୍ଟସାଧନ, ଆନୁକୂଲ୍ୟ ଉପକାର, ଦୟା, ପ୍ରସାଦ ।

ଅନୁଗ୍ରହପାତ୍ର(ଭାଜନ)—କ୍ଲୀ.ବିଂ.(୬ତତ୍) ଦୟାର ପାତ୍ର, କୃପାଭାଜନ,ଯାହାପ୍ରତି-ଦୟା କରିବା କର୍ତ୍ତବ୍ୟ ।

ଅନୁଗ୍ରାହକ-ବିଂ (ଅନୁ + ଗ୍ରହ + କ.ଅକ) ଅନୁଗ୍ରହକାରୀ,ସଦୟ,(ସ୍ତ୍ରୀ)ଅନୁଗ୍ରାହିକା ।

ଅନୁଗ୍ରାହୀ—ପୁଂ. ବିଂ.(ଅନୁ + ଗ୍ରହ + କ. ଇନ୍) ଅନୁଗ୍ରହକାରୀ, ସହାୟକ, (ସ୍ତ୍ରୀ) ଅନୁଗ୍ରାହିଣୀ।

ଅନୁଗ୍ରାହ୍ୟ—ବିଂ. (ଅନୁ + ଗ୍ରହ + ମି.ଯ ଅନୁଗ୍ରହପାତ୍ର,ଗ୍ରହଣୀୟ,ଗ୍ରହଣଯୋଗ୍ୟ ।

ଅନୁଚର—ବିଂ (ଅନୁ + ଚର + କ.ଅ) ଅନୁଗାମୀ,ପଶ୍ଚାଦ୍‌ଗାମୀ,ସହଚର, ସ୍ତ୍ରୀ) ଅନୁଚରୀ, (ପୁଂ.ବି) ଯେ ସଙ୍ଗେ ସଙ୍ଗେ ଥାଏ, ଭୃତ୍ୟ, ଯେଉଁଲୋକ ଅନ୍ୟ-ଆଦେଶରେ କାମ କରେ ।

ଅନୁଚରିତ—ବିଂ.(ଅନୁ + ଚର + କ.ତ) ଅନୁସୃତ, ଅନୁଗତ ।

ଅନୁଚରୀ—ସ୍ତ୍ରୀ. ବିଂ. ( ଅନୁଚର + ଈ ) ଅନୁଗାମିନୀ,(ସ୍ତ୍ରୀ.ବି)ପରିଚାରିକା,ଦାସୀ ।

ଅନୁଚାରୀ—ପୁଂ. ବିଂ. ଅନୁ + ଚର + କ.ଇନ୍ )ଅନୁଗାମୀ, ଅନୁଚର,(ପୁଂ.ବି) ପରିଚାରକ,ଭୃତ୍ୟ,(ସ୍ତ୍ରୀ) ଅନୁଚାରିଣୀ ।

ଅନୁଚିକୀର୍ଷା—ସ୍ତ୍ରୀ. ବି. ( ଅନୁ + ସନ୍‌କୃ + ଭା.ଅ + ଆ ) ଅନୁକରଣକରିବାର ଇଚ୍ଛା ବା ପ୍ରବୃତ୍ତି ।

ଅନୁଚିକୀର୍ଷିତ—ବିଂ. (ଅନୁ + ସନ୍‌କୃ + ମି.ତ ) ଯେଉଁବିଷୟକୁ ଅନୁକରଣ-କରିବାର ଇଚ୍ଛା ହୋଇଅଛି ।

ଅନୁଚିକୀର୍ଷୁ—ବିଂ. ( ଅନୁ + ସନ୍‌କୃ କ.ଉ) ଅନୁକରଣେଚ୍ଛୁ ।

ଅନୁଚିତ—ବିଂ. ( ନ ତତ୍ ) ଅବିହିତ, ଅନ୍ୟାଯ୍ୟ, ଅବୈଧ, ଅଯୁକ୍ତିଯୁକ୍ତ, ଅନ-ଭ୍ୟସ୍ତ, (ସ୍ତ୍ରୀ) ଅନୁଚିତା ।

ଅନୁଚିତତା—ସ୍ତ୍ରୀ.ବି. ରଚନାରେ ଶବ୍ଦ-ଦୋଷ ବିଶେଷ ।

ଅନୁଚିନ୍ତନ-ବି.(ଅନୁ + ଚିନ୍ତନ) ଅନୁକ୍ଷଣ ଚିନ୍ତନ ବା ଆନ୍ଦୋଳନ, ଅନୁଧ୍ୟାନ, ସ୍ମରଣ, ଗମ୍ଭୀର ଚିନ୍ତା ।

ଅନୁଚିନ୍ତା-ବି.(ଅନୁ + ଚିନ୍ତା)ପଛବିଷୟକୁ ଆଲୋଚନାକରିବା,ପୂର୍ବବିଷୟର ସ୍ମରଣ ବା ଭାଲେଣି ।

ଅନୁଚ୍ଚ-ବିଂ.(ନ.ତତ୍)ଅନୁନ୍ନତ.ଅନୁଚ୍ଛ୍ରିତ ଅଳ୍ପନୀଚ, ନିମ୍ନ ।

ଅନୁଚ୍ଚାରଣୀୟ-ବିଂ.(ନ.ତତ୍) ଉଚ୍ଚାରଣର ଅସାଧ୍ୟ ବା ଅଯୋଗ୍ୟ ।

ଅନୁଚ୍ଚାରିତ—ବିଂ. ( ନ + ଉଚ୍ଚାରିତ ) ଉଚ୍ଚାରିତ ହୋଇ ନ ଥିବା ।

ଅନୁଚ୍ଚାରିତବର୍ଣ୍ଣ – ବି.(ବ୍ୟାକରଣ) ଯେଉଁ ବର୍ଣ୍ଣ ଉଚ୍ଚାରିତହୁଏ ନାହିଁ,କହିଲାବେଳେ ଯେଉଁବର୍ଣ୍ଣଟିର ଉଚ୍ଚାରଣକରାଯାଏନାହିଁ ଲୁପ୍ତବର୍ଣ୍ଣ, ଯଥା—ଅନ୍ୟୋଽନ୍ୟ)

ଅନୁଚ୍ଚାର୍ଯ୍ୟ—ବିଂ. ( ନ + ଉଚ୍ଚାର୍ଯ୍ୟ ) ଉଚ୍ଚାରଣକରିବାର ଅଯୋଗ୍ୟ, ଯାହାକୁ ଉଚ୍ଚାରଣ କରାଯାଇ ନ ପାରେ ।

ଅନୁଚ୍ଛିଷ୍ଟ—ବିଂ. (ନ + ଉଚ୍ଛିଷ୍ଟ)ଅଇଣ୍ଠା ହୋଇନଥିବା (ପଦାର୍ଥ),ଅପବିତ୍ରହୋଇ ନଥିବା (ବସ୍ତୁ), ଅନୁପଭୁକ୍ତ ।

ଅନୁଚ୍ଛେଦ—ବି. (ଅନୁ + ଛେଦ)କୌଣସି ପ୍ରବନ୍ଧରେ ଏକତ୍ର ଲେଖାଥିବାବାକ୍ୟଚୟ ।

ଅନୁଜ—ପୁଂ.ବିଂ. (ଅନୁ + ଜନ୍ + କ.ଅ ଯେ ପଛରେ ଜନ୍ମ ହୋଇଅଛି, କନିଷ୍ଠ (ସ୍ତ୍ରୀ) ଅନୁଜା (ବି.ପୁଂ) କନିଷ୍ଠଭ୍ରାତା, ସାନଭାଇ, ଉଦ୍ଭିଦବିଶେଷ, ତ୍ରାୟମାଣ ଓ ପୌଣ୍ଡ୍ରରୀକ ଗଛ ।

ଅନୁଜନ୍ମା—ପୁଂ. ବିଂ. (ବି.ବ୍ରୀ) ଅନୁଜ (ଦେଖ) ବି. କନିଷ୍ଠଭାଇ, (ସ୍ତ୍ରୀ) ସାନଭଉଣୀ ।

ଅନୁଜା—ସ୍ତ୍ରୀ. ବିଂ. ( ଅନୁଜ + ଆ ) ପଶ୍ଚାଜ୍ଜାତା, କନିଷ୍ଠା, (ବି) କନିଷ୍ଠା-ଭଗିନୀ, ସାନଭଉଣୀ, ଏକପ୍ରକାର ଔଷଧିଗଛ, ପ୍ରସାରଣୀଲତା, ଜନ୍ତି ।

ଅନୁଜାତ—ବିଂ. ( ଅନୁ + ଜନ + ତ ) ଅନୁଜ, ଅନୁରୂପଜାତ, ପିତୃସମ, ପୁନର୍ଜାତ, କୃତୋପନୟନ, (ସ୍ତ୍ରୀ) ଅନୁଜାତା ।

ଅନୁଜାତା—ସ୍ତ୍ରୀ. ବିଂ. ଅନୁଜା,ବି (ସ୍ତ୍ରୀ) କନିଷ୍ଠାଭଗିନୀ, ସାନଭଉଣୀ ।

ଅନୁଜାବର—ବିଂ. ( ୫ତତ୍ ) ଅତ୍ୟନ୍ତ ନିକୃଷ୍ଟ,(୬ ତତ୍) କନିଷ୍ଠାଭଗିନୀର ପତି, ସାନଭଉଣୀକୁଆଁଇ ।

ଅନୁଜିଘୃକ୍ଷା—ସ୍ତ୍ରୀ.ବି. (ଅନୁ + ସନ୍‌ଗ୍ରହ + ଭା.ଅ + ଆ ) ଅନୁଗ୍ରହ କରିବାର ଇଚ୍ଛା ।

ଅନୁଜିଘୃକ୍ଷୁ-ପୁଂ.ବିଂ.(ଅନୁ + ସନ୍‌ଗ୍ରହ + ଉ) ଅନୁଗ୍ରହ ଦେଖାଇବାକୁ ଇଚ୍ଛୁକ ।

ଅନୁଜୀବୀ—ପୁଂ. ବିଂ. (ଅନୁ ଜୀବ୍ + କ.ଇନ୍ ) ଯେ ଅନ୍ୟକୁ ଅବଲମ୍ବନକରି ବଞ୍ଚେ ବା ଜୀବିକାନିର୍ବାହକରେ,ଆଶ୍ରିତ, ଅନୁବର୍ତ୍ତୀ, (ବି) ଭୃତ୍ୟ,ସହଚର,ଗୃହ-ସ୍ୱାମୀଦ୍ୱାରା ପୋଷିତ ବ୍ୟକ୍ତିଗଣ ।

ଅନୁଜୀବ୍ୟ—ବିଂ. (ଅନୁ + ଜୀବ + ମି.ଯ) ଆଶ୍ରୟଣୀୟ, ସେବ୍ୟ, (ସ୍ତ୍ରୀ) ଅନୁଜୀବ୍ୟ ।

ଅନୁଜ୍ଜ୍ୱଳ + ବିଂ. (ନ.ତତ୍)ଯାହାଉଜ୍ଜ୍ୱଳ ନୁହେ, ଅଭାସ୍ୱର, ଦୀପ୍ତିହୀନ, ଜାଲ-ଜାଲୁଆ ଦେଖାଯାଉଥିବା ।

ଅନୁଜ୍ଝିତ—ବିଂ. (ନ.ତତ୍) ଅନୁତ୍ସୃଷ୍ଟ, ଅପରିତ୍ୟକ୍ତ, ଅନପଚିତ, ଅବିକୃତ ।

ଅନୁଜ୍ଞା—ବି. (ଅନୁ + ଜ୍ଞା + ମି.ଆ)ଆଜ୍ଞା, ସମ୍ମତିପ୍ରଦାନ, ଅନୁମତି, ସ୍ୱୀକାର, ମଞ୍ଜୁର, (ବ୍ୟାକରଣ)ଅନ୍ୟକୁ ଆଦେଶ-ଦେବା ବା ଅନୁରୋଧ କରିବାଅର୍ଥକ-କାଳ ବ କ୍ରିୟାର ରୂପ ।

ଅନୁଜ୍ଞାତ—ବିଂ. ( ଅନୁ + ଜ୍ଞା + ମି.ତ ) ଅନୁଜ୍ଞାପ୍ରାପ୍ତ,ଆଜ୍ଞପ୍ତ (ବ୍ୟକ୍ତି), ଯାହାକୁ ଅନୁମତି ଦିଆଯାଇଅଛି,ଯେଉଁବିଷୟରେ ଆଜ୍ଞା ବା ଅନୁମତି ମିଳିଅଛି ।

ଅନୁଜ୍ଞାନ-କ୍ଲୀ.ବି.(ଅନୁ + ଜ୍ଞା + ଭା.ଅନ) ପୂର୍ବାଭାସପ୍ରାପ୍ତି, ଅନୁମାନପୂର୍ବକ ବୋଧ, ଚେତନା ।

ଅନୁଜ୍ୟେଷ୍ଠ-ବିଂ.ଜ୍ୟେଷ୍ଠର ପର,ଜ୍ୟେଷ୍ଠର ଅନୁଗତ, (ଅବ୍ୟ) ଜ୍ୟେଷ୍ଠାନୁକ୍ରମେ ।

ଅନୁତପ୍ତ—ବି°. (ଅନୁ + ତପ + କ.ତ) ଅନୁତାପଗ୍ରସ୍ତ, ଯେ ପଶ୍ଚାତ୍ତାପ କରୁଅଛି, ଦୁଃଖିତ, (ସ୍ତ୍ରୀ) ଅନୁତପ୍ତା ।

ଅନୁତର—କ୍ଲୀ. ବି.(ଅନୁ + ତୄ + ଣ.ଅ) ତରପଣ୍ୟ, ନଦୀଆଦି ପାରହେବାର ମାସୁଲ, ପାରିଆଣି ।

ଅନୁତର୍ଷ—ପୁଂ. ବି. ( ଅନୁ + ତୃଷ + + ଭା.ଅ ) ଅଭିଳାଷ, ତୃଷ୍ଣା, ପିପାସା, (ଅଧି.ଣ) ପାନପାତ୍ର, ମଦ୍ୟପାନପାତ୍ର ।

ଅନୁତର୍ଷଣ—କ୍ଲୀ. ବି. ( ଅନୁ + ତୃଷ୍ + ଅଧି.ଅନ ) ମଦ୍ୟପାନପାତ୍ର, (ଭା.ଅନ) ମଦ୍ୟବିତରଣ ।

ଅନୁତାପ—ପୁଂ. ବି. ( ଅନୁ + ତପ + ଭା.ଅ) ପଶ୍ଚାତ୍ତାପ, ଅନୁଶୋଚନା, ଅବଶେଷ,କାର୍ଯ୍ୟପରେ ଅନୁଭୂତ ଦୁଃଖ ।

ଅନୁତାପୀ—ପୁଂ.ବି°.(ଅନୁତାପ + ଇନ୍) ଅନୁତାପଯୁକ୍ତ, ଅନୁତପ୍ତ,ଅନୁଶୋଚନକାରୀ, ପରିତପ୍ତ (ସ୍ତ୍ରୀ) ତାପିନୀ ।

ଅନୁତଲ—ବି°.ତଳାନୁଗତ, ଆନୁତଲ୍ୟ, ତଳରୁ ଯାହା ଜନ୍ମେ ।

ଅନୁତୂଳନ—କ୍ଲୀ.ବି.ତୂଳଦ୍ୱାରା ତୃଣାଦିର ଅଗ୍ରଭାଗକୁ ଘାଣ୍ଟି ଦେଖିବା ।

ଅନୁତ୍କ—ବି°.(ନ.ତତ୍) ଅନୁନ୍ମନାଃ,ଅନୁଦ୍ବିଗ୍ନ,ଅନୁତ୍ସୁକ,ସ୍ୱସ୍ଥ,(ସ୍ତ୍ରୀ) ଅନୁତ୍କା ।

ଅନୁତ୍କର୍ଷ—ପୁଂ. ବି. (ନ.ତତ୍) ଅପକର୍ଷ, ନିକୃଷ୍ଟତା, ଶ୍ରେଷ୍ଠତାର ଅଭାବ ।

ଅନୁତ୍ତ—ବି°. (ନ + ଉନ୍ଦ + ତ) ଓଦା ହୋଇ ନ ଥିବା ।

ଅନୁତ୍ତମ—ବି°. (ନ.ତତ୍)ଅଧମ,ନିକୃଷ୍ଟ, (ବି.ସ୍ତ୍ରୀ)ଅତ୍ୟୁତ୍ତମ, ସର୍ବୋତ୍କୃଷ୍ଟ, ଯାହା ଅପେକ୍ଷା ଅଧିକ ନାହିଁ ।

ଅନୁତ୍ତର—ପୁଂ.ବି°. ( ନ + ଉତ୍ତର ) ନ.ତତ୍; ଅଶ୍ରେଷ୍ଠ,ଅଧମ,ନିକୃଷ୍ଟ,ଦକ୍ଷିଣ, (ବି.ସ୍ତ୍ରୀ.) ଅନୁତ୍ତମ, ଅତ୍ୟନ୍ତଶ୍ରେଷ୍ଠ, ନିରୁତ୍ତର, ଉତ୍ତର ଦେବାରେ ଅସମର୍ଥ, (ସ୍ତ୍ରୀ) ଅନୁତ୍ତରା,(ବି) ଉତ୍ତର ନ ଦେବା ।

ଅନୁତ୍ତରଙ୍ଗ—ବି°. ( ନ.ତତ୍ ) ଉତ୍ତାଳତରଙ୍ଗହୀନ, ତରଙ୍ଗୋଦ୍‌ଗମହୀନ ।

ଅନୁତ୍ତାନ—ବି°. (ନ.ତତ୍) ଅନୂର୍ଦ୍ଧ୍ୱମୁଖ, ଯାହା ଚିତ୍ ନୁହେଁ, ମୁହଁମାଡ଼ି ଶୋଇଥିବା ବ୍ୟକ୍ତି) ।

ଅନୁତ୍‌ଥାନ—ବି.(ନ.ତତ୍ ଉତ୍‌ଥାନରହିତ୍ୟ ଉଠି ନ ପାରିବା ଅବସ୍ଥା, ଏକସ୍ଥାନରେ ପଡ଼ିରହିବା, ଚେଷ୍ଟାରାହିତ୍ୟ ।

ଅନୁତ୍‌ଥିତ—ପୁଂ. ବି° (ନ + ଉତ୍‌ଥିତ) ଅନୁଦିତ, ସୁପ୍ତ, ଶୋଇଥିବା, ଶଯ୍ୟାରୁ ଉଠିନଥିବା,ଯାହା ଉଦ୍ଯୁକ୍ତ ବା ଉତ୍‌ଥିତ ହୋଇନାହିଁ, ଅଦୃଷ୍ଟ ।

ଅନୁତ୍ପତ୍ତି— ବି. (ନ + ଉତ୍ପତ୍ତି) ନ.ତତ୍. ଉତ୍ପତ୍ତି ବା ଆବିର୍ଭାବର ଅଭାବ.(ବି ସ୍ତ୍ରୀ) ବି°. ଯାହାର ଉତ୍ପତ୍ତି ବା ଜନ୍ମ ହୋଇ ନାହିଁ, ଯାହାର ଜନ୍ମ ବା ଆରମ୍ଭ ଅନିର୍ଦ୍ଦେଶ୍ୟ । [ ରହିତ ।

ଅନୁତ୍ପତ୍ତିକ—ବି°. ଉତ୍ପତ୍ତିଶୂନ୍ୟ, ଜନ୍ମ-

ଅନୁତ୍ପନ୍ନ—ବି°. ( ନ.ତତ୍ ) ଅଜାତ, ଯାହା ଜନ୍ମେ ନାହିଁ, (ସ୍ତ୍ରୀ) ଅନୁତ୍ପନ୍ନା ।

ଅନୁତ୍ପାଦ(ନ)—ପୁଂ ଓ କ୍ଲୀ ବି.(ନ.ତତ୍) ଅଜନନ, ଅନୁତ୍ପତ୍ତି, ଉତ୍ପତ୍ତିର ଅଭାବ ।

ଅନୁତ୍ସାହ—ପୁଂ.ବି.(ନ.ତତ୍) ଅବସାଦର ଅଭାବ, (ବି.ସ୍ତ୍ରୀ) ବି°. ଉଚ୍ଛେଦଶୂନ୍ୟ ।

ଅନୁତ୍ସାହ—ପୁଂ.ବି. (ନ.ତତ୍) ଉତ୍ସାହର ଅଭାବ, ଅନୁଦ୍ୟମ, ବି°. ( ବି.ସ୍ତ୍ରୀ ) ଉତ୍ସାହଶୂନ୍ୟ,ନିରୁତ୍ସାହ, ଉଦ୍ୟମରହିତ ।

ଅନୁତ୍ସାହୀ—ପୁଂ.ବି°.(ନ.ତତ୍) ଉତ୍ସାହରହିତ, ନିରୁତ୍ସାହ, ଉଦ୍ୟମହୀନ, (ସ୍ତ୍ରୀ) ଅନୁତ୍ସାହିନୀ ।

ଅନୁତ୍ସିକ୍ତ—ବି°. ( ନ + ଉତ୍ସିକ୍ତ )ଅଗର୍ବିତ, ଗର୍ବଶୂନ୍ୟ, ଅନୁଦ୍ଧତ ।

ଅନୁତ୍ସୁକ—ବି°(ନ + ଉତ୍ସୁକ) ଉତ୍କଣ୍ଠାଶୂନ୍ୟ, ଅନୁରକ୍ତ ନୁହେଁ, ଅବ୍ୟଗ୍ର ।

ଅନୁତ୍ସୂତ୍ର—ବି°.(ନ.ତତ୍) ସୂତ୍ରର ଅନୁରୂପ, ସୂତ୍ରଯୁକ୍ତ । [ଅନୁତ୍ସେକୀ ।

ଅନୁତ୍ସେକ—ପୁଂ.ବି.(ନ.ତତ୍) ଅଗର୍ବ,ବି°.

ଅନୁତ୍ସୃଷ୍ଟ—ବି°. (ନ + ଉତ୍ସୃଷ୍ଟ ) ଅନିବେଦିତ, ଅଦତ୍ତ ।

ଅନୁଦ—ବି°.(ଅ + ନୁଦ + ଅ) ନ.ତତ୍; ପ୍ରେରକ ନୁହେଁ, ( ଅନୁ + ଦା + ଅ ) ତୁଲ୍ୟରୂପଦାତା ।

ଅନୁଦକ—ବି°.(ବି.ସ୍ତ୍ରୀ) ନିର୍ଜଳ (ମରୁ), ଅଳ୍ପଜଳବିଶିଷ୍ଟ ପଲ୍ୱଲ , ଜଳଦାନଶୂନ୍ୟ ଶ୍ରାଦ୍ଧ ।

ଅନୁଦଗ୍ର—ବି°.(ନ.ତତ୍)ଯାହାର ଅଗ୍ରଭାଗ ଊର୍ଦ୍ଧ୍ୱମୁଖେ ଉଦ୍‌ଗତ ନୁହେଁ,ଅନୁଦ୍‌ଗତ, ଅନୁନ୍ନତ ବି ସ୍ତ୍ରୀ) ଅତ୍ୟୁନ୍ନତ ।

ଅନୁଦୟ—ପୁଂ.ବି.(ନ.ତତ୍)ନ ଉଠିବା, ଅପ୍ରକାଶ, ଅନାବିର୍ଭାବ, ସୂର୍ଯ୍ୟଙ୍କର ଅପ୍ରକାଶ, ସୂର୍ଯ୍ୟୋଦୟର ପୂର୍ବକାଳ ।

ଅନୁଦର—ବି°. ବି.ସ୍ତ୍ରୀ) କ୍ଷୀଣୋଦର, କୃଶ, କ୍ଷୀଣକୋଷ୍ଠ, କ୍ଷୀଣମଧ୍ୟ ।

ଅନୁଦର୍ଶନ—କ୍ଲୀ. ବି. (ଅନୁ + ଦୃଶ୍ + ଭା.ଅନ, ପୁନଃ ପୁନରାଲୋଚନ, ଅନୁସ୍ମରଣ, ଅନୁଚିନ୍ତନ, ପଶ୍ଚାଦ୍ଦର୍ଶନ ।

ଅନୁଦର୍ଶୀ—ପୁଂ.ବି°.(ଅନୁ + ଦୃଶ୍ + କ.ଇନ୍) ଆଲୋଚକ (ଦୋଷ), ଅନ୍ୱେଷୀ, ସ୍ତ୍ରୀ ଅନୁଦର୍ଶିନୀ ।

ଅନୁଦାତ୍ତ—ପୁଂ.ବି. (ନ.ତତ୍) ନିମ୍ନସ୍ୱର, ବୈଦିକମନ୍ତ୍ରବିଶେଷ(ବି°) ଉଦାତ୍ତଭିନ୍ନ ।

ଅନୁଦାତ୍ତସ୍ୱର—ବି°.(ଅନୁଦାତ୍ତ + ସ୍ୱର) ଯାହା ଉଦାତ୍ତ ବା ଉଚ୍ଚସ୍ୱରବିଶିଷ୍ଟ ନୁହେଁ, ନୀଚସ୍ୱରବିଶିଷ୍ଟ, ଜୋରରେ ଉଚ୍ଚାରିତ ନ ହେବା ବର୍ଣ୍ଣ, (ବି) ହ୍ରସ୍ୱ ସ୍ୱର,ଯେଉଁଅକ୍ଷର ବା ବର୍ଣ୍ଣକୁ ଜୋରରେ ଉଚ୍ଚାରଣ କରାଯାଏନାହିଁ,ଗମ୍ଭୀର ଧ୍ୱନି ।

ଅନୁଦାର—ବି°.(ବି.ସ୍ତ୍ରୀ)ଅତିଶୟଦାତା, ଅତିମହାନ୍, (ନ.ତତ୍) ନୀଚ, ଅସାଧୁ, ଅସତ୍,କ୍ଷୁଦ୍ର,ନୀଚାଶୟ, କୃପଣ,ପୁଂ.ବି°. (ବି.ସ୍ତ୍ରୀ) ଯାହାର ସ୍ତ୍ରୀ ଅନୁଗତା, ଅନୁଗତଦାର, ଦାରାନୁଗତ, ଯେ ଭାର୍ଯ୍ୟାର ଅନୁଗତ ।

ଅନୁଦାସ—ପୁଂ. ବି. ( ଅନୁ + ଦାସ ) ଦାସର ଦାସ,ଏକାନ୍ତ ବଶଂବଦ ଦାସ ।

ଅନୁଦିତ—ବି°. (ନ + ଉଦିତ)ଅପ୍ରକାଶିତ, ଅନୁଦ୍‌ଗତ, ଅନୁକ୍ତ, ଅକଥିତ, ଉଚ୍ଚାରିତ ହୋଇ ନ ଥିବା ।

ଅନୁଦିନ—(ଅବ୍ୟ) ପ୍ରତିଦିନ, ସାରାଦିନ, ଦିନେ ଦିନେ ।

ଅନୁଦ୍‌ଗତ—ବିଂ. (ନ ତତ୍) ଊର୍ଦ୍ଧ୍ୱଗତ ନୁହେ, ଯାହା ଉପର ଆଡ଼କୁ ଉଠେ ନାହିଁ, ଅନୁଦଗ୍ର, ଅନୁଦ୍‌ଭିନ୍ନ, ଅବହିତ, ପ୍ରସୃତ, (ସ୍ତ୍ରୀ) ଅନୁଦ୍‌ଗତା ।

ଅନୁଦ୍‌ଘାଟ୍ଟ—ପୁଂ.ବିଂ. (ନ.ତତ୍)ଅନୁଚ୍ଚାବଚ, ସମତଲ, (ସ୍ତ୍ରୀ) ଅନୁଦ୍‌ଘାଟ୍ଟନୀ ।

ଅନୁଦ୍ଦିଷ୍ଟ—ପୁଂ.ବିଂ.(ନ.ତତ୍) ଯାହାର ସମ୍ବାଦ ବା ଗତିବିଧି ବହୁକାଳ ହେଲା ମିଳନାହିଁ, ନିରୁଦ୍ଦେଶ୍ୟ,(ସ୍ତ୍ରୀ)—ଦିଷ୍ଟା ।

ଅନୁଦ୍ଦେଶ—ପୁଂ.ବି.(ନ.ତତ୍ ନିରୁଦ୍ଦେଶ, ସ୍ଥାନତ୍ୟାଗୀ ବ୍ୟକ୍ତିର ବହୁକାଳ ସମ୍ବାଦ ନପାଇବା,କୌଣସି ବିଷୟପ୍ରତି ମନୋଯୋଗର ଅଭାବ,ଅନୁସନ୍ଧାନର ଅଭାବ ।

ଅନୁଦ୍ଧତ—ବିଂ. ( ନ.ତତ୍ ବିନମ୍ର, ବିନୀତ, (ସ୍ତ୍ରୀ) ଅନୁଦ୍ଧତା ।

ଅନୁଦ୍ଧରଣ, ଅନୁଦ୍ଧାର—କ୍ଲୀ. ଓ ପୁଂ.ବି. ଅନୁତ୍ତୋଳନ, ଉଦ୍ଧାରର ଅଭାବ, ଅପରିତ୍ରାଣ, ଅନ୍ୟର ଲେଖା ଅବିକଳ ନ ହେବା ।

ଅନୁଦ୍ଧୃତ—ବିଂ.(ନ.ତତ୍) ଅନୁତ୍ତୋଳିତ, ଯାହା ଉଦ୍ଧାର କରାଯାଇନାହିଁ, ଅମୋଚିତ, ଅପରିତ୍ରାତ, ଅନ୍ୟର ଲେଖା ଅବିକଳ ନକଲ ହୋଇ ନ ଥିବା, ଯାହା ଅନ୍ୟ ପୁସ୍ତକରୁ ଅଣାଯାଇ ଲେଖା ହୋଇନାହିଁ ।

ଅନୁଦ୍‌ବାହ—ପୁଂ.ବି. (ନ.ତତ୍)ଅପରିଣୟ, ବିବାହ ନ କରିବା, କୌମାର୍ଯ୍ୟ, ଅନୂଢ଼ାବସ୍ଥା ।

ଅନୁଦ୍‌ବିଗ୍ନ—ପୁଂ.ବି.(ନ.ତତ୍) ଉଦ୍‌ବେଗରହିତ, ଉତ୍କଣ୍ଠାଶୂନ୍ୟ, ନିଶ୍ଚିନ୍ତ, (ସ୍ତ୍ରୀ) ଅନୁଦ୍‌ବିଗ୍ନା ।

ଅନୁଦ୍‌ବେଗ—ପୁଂ.ବି.(ନ.ତତ୍)ଉଦ୍‌ବେଗାଭାବ, ଉତ୍କଣ୍ଠାରାହିତ୍ୟ, ଦୁଶ୍ଚିନ୍ତାହୀନତା, ଦୁଃଖର ଅଭାବ ।

ଅନୁଦ୍ୟତ—ବି. ବିଂ. ଅନୁଦ୍ୟମଯୁକ୍ତ, ଅନୁଦ୍ୟୁକ୍ତ, ଅପ୍ରସ୍ତୁତ, (ସ୍ତ୍ରୀ)ଅନୁଦ୍ୟତା ।

ଅନୁଦ୍ୟୁକ୍ତ—ବି. ବି. ଅନୁଦ୍ୟତ, ଅନୁଦ୍ୟୋଗୀ, ଅପ୍ରସ୍ତୁତ ।

ଅନୁଦ୍ୟୂତ—କ୍ଲୀ.ବି.ପାଶକକ୍ରୀଡ଼ା, (ଅନୁ + ଦିବ୍ + ଭା.ତ)ପୁନର୍ବାର ପଶାଖେଳ ।

ଅନୁଦ୍ୟୋଗ—ପୁଂ.ବି. ଉଦ୍‌ଯୋଗାଭାବ, ଆଳସ୍ୟ, ଅବହେଳା ।

ଅନୁଦ୍ୟୋଗୀ—ପୁଂ.ବିଂ. ଅନୁଦ୍ୟତ, ଅପ୍ରସ୍ତୁତ, ନିଶ୍ଚେଷ୍ଟ, ଅଳସ ।

ଅନୁଦ୍ରୁତ—ବି.ବିଂ. (ଅନୁ + ଦ୍ରୁ + ତ) ଅନୁଗତ, ପଶ୍ଚାଦ୍‌ଗତ, ମାତ୍ରାର ଚତୁର୍ଥ କାଳବିଶିଷ୍ଟ ତାଳବିଶେଷ ।

ଅନୁଦ୍‌ବାହ—ପୁଂ. ବି. (ନ + ଉଦ୍ + ବହ + ଅ) ବିବାହର ଅଭାବ, ( ବିଂ ) ବିବାହଶୂନ୍ୟ ।

ଅନୁଦ୍‌ବିଗ୍ନ—ବି.ବିଂ.(ନ + ଉଦ୍ + ବିଜ୍ + ତ)ଉଦ୍‌ବିଗ୍ନଭିନ୍ନ, ଅବ୍ୟାକୁଳ, ଚିନ୍ତିତ ନୁହେ ।

ଅନୁଦ୍‌ବେଗ—ପୁଂ. ବି. (ନ + ଉଦ୍ + ବିଜ୍ + ଅ) ଉଦ୍‌ବେଗର ଅଭାବ ।

ଅନୁନ୍ନତ—ବି.ବିଂ. ( ଅନ + ଉନ୍ନତ ) ନମ୍ର, ବିନୀତ ।

ଅନୁଧାବନ—କ୍ଲୀ. ବି. (ଅନୁ + ଧାବ୍ + ଅନ) ପଶ୍ଚାଦ୍‌ଗମନ, ଅନୁସନ୍ଧାନ ।

ଅନୁଧାବିତ—ବି. ବିଂ. ମନୋଯୋଗୀ, ଅଭିନିବିଷ୍ଟ ।

ଅନୁଧା—ସ୍ତ୍ରୀ. ବି. ଶୁଭାନୁଚିନ୍ତନ,ମଙ୍ଗଳଚିନ୍ତାକରି, ଅନୁଗ୍ରହ ।

ଅନୁଧାନ—କ୍ଲୀ.ବି.(ଅନୁ + ଧ୍ୟୈ + ଅନ) ସର୍ବଦା ଚିନ୍ତା, ପଶ୍ଚାଚ୍ଚିନ୍ତା, ମଙ୍ଗଳଚିନ୍ତା, ଇଷ୍ଟଚିନ୍ତା । [ଚିନ୍ତକ ।

ଅନୁଧାୟୀ—ପୁଂ. ବି. ଅଭିଳାଷୀ, ଅନୁ-

ଅନୁଧେୟ—ବି.ବିଂ. (ଅନୁ + ଧ୍ୟୈ + ଯ) ଅନୁଗ୍ରାହ୍ୟ, ପଶ୍ଚାଚ୍ଚିନ୍ତା ।

ଅନୁନୟ—ପୁଂ. ବି. ବିନୟ, ପ୍ରଣିପାତ, ପ୍ରାର୍ଥନା, ସାନ୍ତ୍ୱନା । [ନମ୍ରତା ।

ଅନୁନୟବିନୟ—ପୁଂ. ବି. ବିନୟ,

ଅନୁନୟୀ—ପୁଂ. ବିଂ. ଅନୁନୟଯୁକ୍ତ, ଅନୁନୟକାରୀ, ପ୍ରାର୍ଥୀ ।

ଅନୁନାଦ—ପୁଂ. ବିଂ. (ଅନୁ + ନଦ୍ + ଅ) ପ୍ରତିଧ୍ୱନି, ପ୍ରତିଶବ୍ଦ, ସ୍ୱାହା, (ବିଂ) ଅନୁନାଦିତ ।

ଅନୁନାଦିତ—ବି. ବିଂ. ଅନୁରଣିତ, ସମକାଳେ ଧ୍ୱନିତ ।

ଅନୁନାଦୀ—ବି. ବିଂ. ପ୍ରତିଶବ୍ଦକାରକ, ଯେ ତଦନୁରୂପ ଶବ୍ଦ କରେ ।

ଅନୁନାୟିକା—ସ୍ତ୍ରୀ. ବି. ଦାସୀ ।

ଅନୁନାଶ— ପୁଂ.ବି. ଅନୁ + ନଶ୍ + ଅ) ପଶ୍ଚାନ୍ମରଣ ।

ଅନୁନାସିକ—ବି. ବିଂ. ( ଅନୁ + ନାସା + ଇକ ) ମୁଖ-ନାସିକାରୁ ଉଚ୍ଚାରିତ ବର୍ଣ୍ଣ ବା ଧ୍ୱନି ।

ଅନୁନୀତ—ବି.ବିଂ (ଅନୁ + ନୀ + ତ)ଯାହା ବିନୟ ବାକ୍ୟରେ ପ୍ରାର୍ଥିତ ହୋଇଅଛି ।

ଅନୁନେୟ—ବି.ବିଂ. (ଅନୁ + ନୀ + ଯ) ଅନୁନୟର ଯୋଗ୍ୟ, (ବି) ଅନୁନୟ ।

ଅନୁନ୍ନତ—ବି. ବିଂ. ଅନୁଚ୍ଛ୍ରିତ, ଅନୁଚ୍ଚ, ନିମ୍ନ ।

ଅନୁନ୍ମତ୍ତ—ବି. ବିଂ. ଅନୁନ୍ମାଦଗ୍ରସ୍ତ, ଅକ୍ଷିପ୍ତ, ପାଗଳ ନୁହେ । [ଜ୍ଞାନ ।

ଅନୁପ—ବି.ବିଂ.ଉପମାରହିତ, ସାଦୃଶ୍ୟ-

ଅନୁପକାର—ପୁଂ. ବି. (ନ + ଉପକାର) ଉପକାରର ଅଭାବ, ଅପକାର, କ୍ଷତି, (ବି) ଉପକାର । [ଅନୁପକାରୀ ।

ଅନୁପକାରକ—ବି. ବିଂ. ଅପକାରକ,

ଅନୁପକାରୀ—ପୁଂ. ବିଂ. ଅନିଷ୍ଟକାରୀ, ଅପକାରୀ, (ସ୍ତ୍ରୀ) ଅନୁପକାରିଣୀ ।

ଅନୁପକ୍ଷିତ—ପୁଂ.ବିଂ. (ନ + ଉପ + କ୍ଷି + ତ) ଯେ ବାଞ୍ଛା ବା କାମନା କ୍ଷୀଣ ହୋଇ ନାହିଁ ।

ଅନୁପକ୍ଷୀଣ—ବି. ବିଂ. ଯାହା କ୍ଷୀଣ ହୋଇ ନାହିଁ ।

ଅନୁପଠିତ—ବି.ବିଂ.(ଅନୁ + ପଠ୍ + ତ) ଶିକ୍ଷକଙ୍କ ଉପଦେଶାନୁସାରେ ପଠନ କରୁଥିବା । [ଅଛି ।

ଅନୁପଠିତ୍ତା—ବି. ବିଂ. ଯେ ପାଠ କରି-

ଅନୁପତନ—ବି. ବିଂ. ଅନୁପତନଶୀଳ, ଅନୁକୂଳପତନ, ଅନୁରୂପପତନ ।

ଅନୁପଥ—(ଅବ୍ୟ) ପଥର ସମୀପ ।

**ଅନୁପଥ**—ପୁଂ. ବ. ଅନୁକୂଳ ପନ୍ଥା, ଶୁଭମାର୍ଗ ।

**ଅନୁପଦ**—କ୍ଳୀ. ବ. ପ୍ରତିପଦନଲଭ୍ୟ, ଯାହା ପ୍ରତ୍ୟହ ମିଳେ ।

**ଅନୁପଦ**—କ୍ଳୀ.ବ. ଯୋଗ୍ୟସ୍ଥାନ, (ଅବ୍ୟ) ପଦେପଦେ, ପଛକୁ ପଛ ।

**ଅନୁପଦକ**—ବି.ବଂ. ପଶ୍ଚାଦଗତ ।

**ଅନୁପଦଷ୍ଟ**—ବି. ବଂ. (ନ + ଉପଦଷ୍ଟ) ଯେ ବିଷୟ ଉପଦେଶ କରାହୋଇ ନାହିଁ ।

**ଅନୁପଦୀ**—ବି.ବଂ.ଯେ ଅନ୍ୱେଷଣ କରେ, ଅନ୍ୱେଷ୍ଟା, ଅନୁଗାମୀ । [କଠାଉ

**ଅନୁପଦୀନା**—ସ୍ତ୍ରୀ. ବ. ମୋଜା, ଯୋତା,

**ଅନୁପଧି**—ବି.ବଂ(ବ.ସ୍ତ୍ରୀ) କପଟତାଶୂନ୍ୟ, ସରଳଭାବ ।

**ଅନୁପନୀତ**—ପୁଂ.ବଂ. (ନ + ଉପନୀତ) ଅବରୁଆ, ଯଜ୍ଞୋପବୀତରହିତ ।

**ଅନୁପନ୍ୟାସ**—ପୁଂ.ବ.(ନ + ଉପନ୍ୟାସ) ଗଳ୍ପନୁହେ,ଉପନ୍ୟାସ ନୁହେ,ଅକଥନ ।

**ଅନୁପପତ୍ତି**—ସ୍ତ୍ରୀ.ବ. (ନ + ଉପ + ପଦ + ତି) ଅସଙ୍ଗତି,ଅନୁତ୍ପତ୍ତି, ଅଯୁକ୍ତି ।

**ଅନୁପପନ୍ନ**—ବି. ବଂ. ଅଯୁକ୍ତ, ଅସିଦ୍ଧ, ଯୁକ୍ତିଦ୍ୱାରା ପରାସ୍ତ, ଅପ୍ରମାଣିତ ।

**ଅନୁପବାଧ**—ବି. ବଂ. ବାଧାଶୂନ୍ୟ, ଯେଉଁଠାରେ ପ୍ରତିବନ୍ଧକ ନାହିଁ ।

**ଅନୁପଭୁକ୍ତ**—ବି.ବଂ. (୬ତତ୍ପୁ) ଯାହା ଭୋଗ କରାହୋଇନାହିଁ, ଅବ୍ୟବହୃତ, ଅଭକ୍ଷିତ ।

**ଅନୁପମ**—ବି.ବଂ. (ନ + ଉପମା) ବ.ସ୍ତ୍ରୀ; ଉପମାରହିତ, ଅଦ୍ୱିତୀୟ, ଅତ୍ୟୁତ୍କୃଷ୍ଟ, (ସ୍ତ୍ରୀ) ଅନୁପମା ।

**ଅନୁପମା** – ସ୍ତ୍ରୀ. ବଂ. (ବ.ସ୍ତ୍ରୀ) ଉପମାରହିତା,ଅତୁଲା, ନିରୁପମା,ସର୍ବୋତ୍କୃଷ୍ଟ, (ବଂ) ନୈଋତକୋଣ ଦିଗ୍‌ଗଜର ସ୍ତ୍ରୀ, ଉପମାରାହିତ୍ୟ, ଉପମାର ଅଭାବ ।

**ଅନୁପମିତ**—ବି.ବଂ. ଅତୁଳିତ, ଯାହାର ତୁଳନା କରି ହୁଏ ନାହିଁ, ଅତୁଳନୀୟ, (ସ୍ତ୍ରୀ) ଅନୁପମିତା ।

**ଅନୁପମେୟ**—ବି.ବଂ. (ନ + ଉପମେୟ) ଯାହାର ଉପମା କରାଯାଇ ନ ପାରେ, ସର୍ବୋତ୍କୃଷ୍ଟ, (ସ୍ତ୍ରୀ) ଅନୁପମେୟା ।

**ଅନୁପଯୁକ୍ତ**—ବି.ବଂ. (ନ + ଉପଯୁକ୍ତ) ଅପ୍ରୟୋଜନୀୟ, ଅଶକ୍ତ, ଅଯୋଗ୍ୟ, ଅଯୁକ୍ତ, ଅନୁଚିତ, (ସ୍ତ୍ରୀ) ଅନୁପଯୁକ୍ତା, (ବି) ଅନୁପଯୁକ୍ତତା ।

**ଅନୁପଯୋଗ**—ବି.ପୁଂ.(ନ + ଉପଯୋଗ) ଆନୁକୂଲ୍ୟର ଅଭାବ, ଭୋଜନର ଅଭାବ, ଅଯୋଗ୍ୟତା, (ବି.ବଂ) ଅନୁପଯୁକ୍ତ, ଉପବାସୀ (ବ.ସ୍ତ୍ରୀ)

**ଅନୁପଯୋଗିତା**—ସ୍ତ୍ରୀ.ବ. ଅନୁପଯୁକ୍ତତା, ଅଯୋଗ୍ୟତା ।

**ଅନୁପଯୋଗୀ**—ପୁଂ. ବ. (ଅନୁପ + ଯୋଗିନ୍) ଅନୁପଯୁକ୍ତ, ଅଯୋଗ୍ୟ, (ସ୍ତ୍ରୀ) ଅନୁପଯୋଗିନୀ ।

**ଅନୁପରତ**—ତ୍ରି.ବଂ. (ନ + ଉପ + ରମ + ତ) ଅନିବୃତ୍ତ, ଅନୁପରତ ।

**ଅନୁପରତି**—ପୁଂ. ସ୍ତ୍ରୀ. ବ. ଉପରତିର ଅଭାବ, ଅବିରାମ, ବିଷୟାନୁରକ୍ତ, (ବଂ) ଅନୁପରତ ।

**ଅନୁପଲ**—ପୁଂ. ବ. ଜ୍ୟୋତିର୍ଗଣିତାନୁସାରେ କାଳର କ୍ଷୁଦ୍ରତମ ଅଂଶ ବା ବିଭାଗ ।

**ଅନୁପଲକ୍ଷିତ**—ବି.ବଂ.(ନ + ଉପଲକ୍ଷିତ) ବିଶେଷଭାବେ ନ ଜାଣି, ଅବିବେଚିତ ।

**ଅନୁପଲବ୍ଧ**—ବି.ବଂ. ଅନର୍ଜିତ, ଅନନୁଭୂତ, ଅନବବୁଧ, ଅନୁପଭୁକ୍ତ, (ସ୍ତ୍ରୀ) ଅନୁପଲବ୍ଧି ।

**ଅନୁପଲବ୍ଧି**—ସ୍ତ୍ରୀ.ବ.ଅପ୍ରାପ୍ତି,ଅନନୁଭୂତ, ଧାରଣାର ଅଭାବ, ପ୍ରତ୍ୟକ୍ଷାଭାବ ।

**ଅନୁପବୀତ**—ପୁଂ.ବଂ. ଅବରୁଆ, ଯାହାର ଉପନୟନ ସଂସ୍କାର ହୋଇ ନାହିଁ ।

**ଅନୁପଶମ**—ପୁଂ.ବ.ଶାନ୍ତିର ଅଭାବ,(ବଂ) ଅନୁପଶାନ୍ତ ।

**ଅନୁପସଂହାରୀ**—ବି.ବଂ.ଯେ ଉପସଂହାରକର୍ତ୍ତା ନୁହେଁ, (ନ୍ୟାୟମତେ) ଦୁଷ୍ଟ ହେତୁବିଶେଷ ।

**ଅନୁପସେଚନ**—ବି.ବ. ଦଧ୍ୟାଦି ବ୍ୟଞ୍ଜନଶୂନ୍ୟ ଅନ୍ନ ।

**ଅନୁପସ୍କୃତ**—ବି. ବଂ. ବିକୃତ ନୁହେ, ପାକାଦି ସଂସ୍କାରକରା ନୁହେ, ଅକୃତପାକ, ଅନିନ୍ଦିତ ।

**ଅନୁପସ୍ଥାନ**—କ୍ଳୀ.ବ. (ନ + ଉପସ୍ଥାନ) ଉପସ୍ଥାନଶୂନ୍ୟ, ଉପାସନାରହିତ ।

**ଅନୁପସ୍ଥାପନ**—କ୍ଳୀ.ବ.(ନ + ଉପସ୍ଥାପନ) କୌଣସି ବିଷୟ ଉପସ୍ଥିତ କରାନଯିବା, ପ୍ରସଙ୍ଗ ନ କରିବା ।

**ଅନୁପସ୍ଥାପ୍ୟ**—ବି.ବଂ. (ନ + ଉପ + ସ୍ଥା + ଣିଚ୍ + ଯ) ଯାହା ଖାଇବାର ଯୋଗ୍ୟ ନୁହେ ।

**ଅନୁପସ୍ଥାୟୀ**—ପୁଂ. ବଂ. ଅନୁପସ୍ଥିତ, ଅସମୀପସ୍ଥ, ଦୂରବର୍ତ୍ତୀ, (ସ୍ତ୍ରୀ) ଅନୁପସ୍ଥାୟିନୀ ।

**ଅନୁପସ୍ଥିତ**—ବି.ବଂ (ନ + ଉପସ୍ଥିତ) ଗରହାଜର, ଅବର୍ତ୍ତମାନ, ଅନାଗତ, (ସ୍ତ୍ରୀ) ଅନୁପସ୍ଥିତା ।

**ଅନୁପସ୍ଥିତି**—ସ୍ତ୍ରୀ.ବ. (ନ + ଉପସ୍ଥିତି) ଉପସ୍ଥାନର ଅଭାବ, ସ୍ଥିତିର ଅଭାବ, ଅବିଦ୍ୟମାନତା, ଅସ୍ମରଣ,(ବଂ) ଅନୁପସ୍ଥିତ ।

**ଅନୁପହତ**—ବି.ବଂ. (ନ + ଉପହତ) ଆଘାତଶୂନ୍ୟ, (କ୍ଳୀ.ବ) ନୂତନ ବସ୍ତ୍ର, ଯାହା କେହି ପିନ୍ଧି ନାହିଁ ।

**ଅନୁପାକୃତ**—ବି. ବଂ. ସଂସ୍କାରପୂର୍ବକ ବେଦଗ୍ରହଣରହିତ ।

**ଅନୁପାତକ**—କ୍ଳୀ. ବ. (ଅନୁ + ପତ + ଣିଚ୍ + ଅକ) ମହାପାତକ ସଦୃଶ ପାପବିଶେଷ, ୩୫ ପ୍ରକାର, ଯଥା— ମିଥ୍ୟାବଚନ, ରାଜାଙ୍କପ୍ରତି ଚଳତା, ପିତାଙ୍କର ମିଥ୍ୟାଦୋଷ କଥନ, ବେଦତ୍ୟାଗ, ବେଦନିନ୍ଦା, ମିଥ୍ୟାସାକ୍ଷ୍ୟ, ବନ୍ଧୁବଧ, ଅନ୍ତ୍ୟଜ ଲୋକର ଅନ୍ନଭକ୍ଷଣ, ଅଭକ୍ଷ୍ୟଭକ୍ଷଣ, ନିକ୍ଷେପ ବା ଗଚ୍ଛିତ ଦ୍ରବ୍ୟଗ୍ରହଣ, ମନୁଷ୍ୟହରଣ, ଅଶ୍ୱହରଣ, ରୂପାଚୋରି, ଭୂମିହରଣ, ସୀସଚୋରି, ମଣିହରଣ ଓ ୧୯ ପ୍ରକାର ଅଗମ୍ୟଗମନ ।

ଅନୁପାତକୀ—ବି. ବଂ. ଯେ ଅନୁପାତକ କରିଅଛି ।

ଅନୁପାତ—ପୁଂ.ବି. (ଅନୁ + ପତ + ଅ) ପଶ୍ଚାଦ୍‌ଗମନ, ପଛରେ ପଡ଼ିବା,(ଗଣିତ) ଏକ ରାଶି ସହିତ ଅନ୍ୟ ରାଶିର ସମ୍ବନ୍ଧ ।

ଅନୁପାତସମାନୁପାତ—ବି. (ଗ୍ରା)ଏକରାଶି ସହିତ ଅନ୍ୟରାଶିର ସମ୍ବନ୍ଧକୁ ପରିମାପକ କରି ତାହାର ଅନୁସାରେ ବହୁ ରାଶି- ମଧ୍ୟରେ ପରସ୍ପର ସମ୍ବନ୍ଧ ନିରୂପଣ ।

ଅନୁପାତୀ—ବି ବଂ. (ଅନୁ + ପତ + ଇନ୍ ) ଅନୁଗାମୀ ।

ଅନୁପାନ—କ୍ଲୀ. ବି. ଯାହା ଔଷଧ ସହିତ ପିଆଯାଏ, ଔଷଧର ସହକାରୀ ଦ୍ରବ୍ୟ ।

ଅନୁପାନବୃତ୍ତି—ବି.ବଂ.(ନ + ଉପାନବୃତ୍ତି) ଯେ ଫେରି ଆସେ ନାହିଁ, ନୈଷ୍ଠିକ ବ୍ରହ୍ମଚାରୀ ।

ଅନୁପାର୍ଶ୍ୱ—ବି.ବଂ. ( ଅନୁ + ପାର୍ଶ୍ୱ ) ପାର୍ଶ୍ୱଦେଶତଳରେ ସ୍ଥିତ ।

ଅନୁପାଲ୍ୟ—ବି. ବଂ. ( ଅନୁ + ପାଲ + ର୍ମି.ଯ) ସମଭାବେ ପ୍ରତିପାଲ୍ୟ ପୋଷ୍ୟ ରକ୍ଷଣୀୟ ।

ଅନୁପୁଷ୍ପ—ପୁଂ.ବି. ଏକଜାତୀୟ ତୃଣ, ଫୁଲସର, କାଣ୍ଡସର ।

ଅନୁପୂର୍ବ—ବି.ବଂ. ଠିକ୍ କ୍ରମାନୁସାରେ, ପରପର, ଠିକ୍ କ୍ରମାନୁଯାୟୀ, ଏକପରେ ଏକ, ଧାରାବାହିକ କ୍ରମରେ, (ସ୍ତ୍ରୀ)ଅନୁ- ପୂର୍ବା ।

ଅନୁପୃଷ୍ଠ୍ୟ—ବଂ.ପୃଷ୍ଠଉପରବନ୍ଧା ପାଣାଦ ।

ଅନୁପେତ—ବି. ବଂ. (ନ + ଉପେତ ) ଉପନୟନ ନମିତ୍ତ ଯେ ଗୁରୁନକଟ ଯାଇନାହିଁ (ସ୍ତ୍ରୀ) ଅନୁପେତା ।

ଅନୁପ୍ତ—ବି.ବଂ.(ନ + ବପ୍ + ତ)ଯାହା ବୁଣା ହୁଏ ନାହିଁ ବା ହୋଇ ନାହିଁ ।

ଅନୁପ୍ରଦାନ—କ୍ଲୀ.ବି ( ଅନୁ + ପ୍ର + ଦ + ଅନ) ବର୍ଣ୍ଣୋତ୍ପାଦନ ନମିତ୍ତ ବାହ୍ୟ ପ୍ରଯତ୍ନବିଶେଷ ।

ଅନୁପ୍ରବଚନ କ୍ଲୀ ବି. ଗୁରୁ ଯେପରି ଉଚ୍ଚାରଣ କରି ଶିକ୍ଷା ଦିଅନ୍ତି ସେହିପରି ଉଚ୍ଚାରଣ କରିବା ।

ଅନୁପ୍ରବିଷ୍ଟ—ବି. ବଂ. ( ଅନୁ + ପ୍ର + ବିଶ୍ + କ.ତ) ଅନ୍ତଃପ୍ରବିଷ୍ଟ,ଅନ୍ତର୍ନିବିଷ୍ଟ, ମଧ୍ୟଗତ, ସର୍ବାଙ୍ଗେ ପରିବ୍ୟାପ୍ତ, (ସ୍ତ୍ରୀ) ଅନୁପ୍ରବିଷ୍ଟା ।

ଅନୁପ୍ରବେଶ ପୁଂ. ବି. (ଅନୁ ପ୍ର + ବିଶ + ଭା + ଅ ) ପ୍ରତିବିମ୍ବପତନ, ଭିତରକୁ ଭେଦିବା, ଅନ୍ତଃପ୍ରବେଶ ।

ଅନୁପ୍ରଷ୍ଠ—ବି.ବଂ. ପୃଷ୍ଠାନୁସାରୀ, ଆଡ଼- ବାଗରେ, ଚଉଡ଼ାବାଗ ଦେଇ ।

ଅନୁପ୍ରସୃତ—ବି. ବଂ. (ଅନୁ + ପ୍ର + ଯା + କ.ତ) ଅନୁଗତ, ଅନୁସୃତ ।

ଅନୁପ୍ରାଣନ—କ୍ଲୀ.ବି (ଅନୁ + ପ୍ର + ଣିଚ୍ + ଅନ) ଅନୁପ୍ରାଣନା (ସଜଳାର୍ଥେ ) ।

ଅନୁପ୍ରାଣନା—ସ୍ତ୍ରୀ. ବି. ସଞ୍ଜୀବନ,ଜୀବନୀ- ଶକ୍ତିରଅନୁପ୍ରବେଶ,ପ୍ରତ୍ୟାଦେଶ ପ୍ରଦାନ ।

ଅନୁପ୍ରାଣିତ—ବି. ବଂ. ( ଅନୁ + ପ୍ର + ଣିଚ୍ + ର୍ମି.ତ) ସଞ୍ଜୀବିତ, ପ୍ରୋତ୍ସାହିତ ।

ଅନୁପ୍ରାପ୍ତ—ବି. ବଂ. (ଅନୁ + ପ୍ର + ଆପ୍ + କ.ତ) ଗତ, ଆରବ୍ଧ, ଲବ୍ଧ ।

ଅନୁପ୍ରାସ — ପୁଂ. ବି. ତୁଲ୍ୟବର୍ଣ୍ଣବିନ୍ୟାସ, ( ଅନୁ + ପ୍ରସ୍ + ଭା.ଅ) ଶବ୍ଦାଲଙ୍କାର- ବିଶେଷ ।

ଅନୁପ୍ଲବ—ପୁଂ.ବି. ( ଅନୁ + ପ୍ଲୁ + ଅ) ଯେ ପଛରେ ଗତିକରେ, ଅନୁଚର, ସହଚର, ସହାୟକ।

ଅନୁବନ୍ଧ—ବି. (ଅନୁ + ବନ୍ଧ + ଅ) ବାଧତା,ଦୃଢ଼ବନ୍ଧନ,ଉପକ୍ରମ,ଆରମ୍ଭ ।

ଅନୁବନ୍ଧତ୍ୱ—କ୍ଲୀ. ବି ଅବିଚ୍ଛିନ୍ନ ସମ୍ବନ୍ଧ, ଧାରାବାହିକତା ।

ଅନୁବନ୍ଧୀ —ପୁଂ. ବଂ. ଯେ ସବୁବେଳେ ପାଖରେ ଥାଏ, ଅନୁରୋଧୀ, ସଂପୃକ୍ତ, ସମ୍ବନ୍ଧ, ସମ୍ବନ୍ଧବିଶିଷ୍ଟ, ସ୍ତ୍ରୀ) ଅନୁବନ୍ଧିନୀ. ତୃଷ୍ଣା,ହିକ୍କା ।

ଅନୁବନ୍ଧ୍ୟ—ବଧ କରିବା ନମିତ୍ତ ପଶୁ- ଦିଭୃତ ।

ଅନୁବୋଧ – ଉଦ୍‌ବୋଧନ,ସ୍ମରଣ,ମ୍ଳାନା- ନ୍ତେଗନ୍ଧଦ୍ରବ୍ୟର ପୁନରୁଦ୍ଦୀପନ,ପଶ୍ଚାତ୍- ଜ୍ଞାନ, ପଛବୁଦ୍ଧି ।

ଅନୁବ୍ରାହ୍ମଣ—ବି.ବ୍ରାହ୍ମଣ ସଦୃଶ ଗ୍ରନ୍ଥ ।

ଅନୁଭବ—ବି.(ଅନୁ + ଭୂ + ଭା.ଅ)ପରୀକ୍ଷା- ଦ୍ୱାରା ଅର୍ଜିତ ଜ୍ଞାନ, ବୋଧ, ଉପଲବ୍ଧି, ଜ୍ଞାନ, ଅନୁମାନପ୍ରଭୃତି,(ବଂ) ଅନୁଭୂତ ।

ଅନୁଭବସିଦ୍ଧ—ବଂ. (୬ତତ୍ପୁ) ଅନୁଭବ- ଦ୍ୱାରା ପ୍ରମାଣିତ ବା ସ୍ୱୀକୃତ ।

ଅନୁଭବିତା—ପୁଂ.ବି. (ଅନୁ + ଭୂ କ, ତୃ ) ଅନୁଭବୀ, (ସ୍ତ୍ରୀ) ଅନୁଭବିତ୍ରୀ ।

ଅନୁଭବୀ – ବଂ.(ଅନୁଭବ + ଇନ୍) ଉପ- ଲବ୍ଧିକାରୀ, ବୋଧା, ଯେ ଅଙ୍ଗରେ ଲଗାଇ ଅଛି ।

ଅନୁଭାବ—ପୁଂ.ବି.(ଅନୁ + ଭୂ + (ଭାବ.) + ଅ) ପ୍ରଭାବ, ସାମର୍ଥ୍ୟ, ମହିମା,ତେଜ, ସଙ୍କେତ ।

ଅନୁଭାବକ—ବଂ. ଅନୁବୋଧକ ।

ଅନୁଭାବ୍ୟ—ବି.(ଅନୁ + ଭୂ + ଣିଚ୍ + ର୍ମି. ଯ) ଅନୁଭବର ବିଷୟୀଭୂତ ।

ଅନୁଭାବୀ—ବଂ. ଯେ ସାକ୍ଷାତ୍ କରେ, ଯେ ପରେ ଜନ୍ମଗ୍ରହଣ କରେ ।

ଅନୁଭାଷଣ—ପୂର୍ବକଥାର ସମର୍ଥନ ।

ଅନୁଭୂ—ଅନୁଭବରୂପ ଜ୍ଞାନବିଶେଷ ।

ଅନୁଭୂତ—ବି. ବଂ. (ଅନୁ + ଭୂ + ର୍ମି. ତ) ଅନୁଭବଦ୍ୱାରା ଜ୍ଞାତ, ଉପଲବ୍ଧି, ଜ୍ଞାତ, ବି) ଅନୁଭବ, ଅନୁଭୂତ ।

ଅନୁଭୂତାଦ୍ୟବସ୍ଥିତ—ସ୍ତ୍ରୀ.ବି. ଭାବନାଖ୍ୟ ସଂସ୍କାର, ସଂସ୍କାର ।

ଅନୁଭୂତି—ସ୍ତ୍ରୀ.ବି. (ଅନୁ + ଭୂ + ଭା.ତି) ଅନୁଭବ, ଜ୍ଞାନ, (ବଂ) ଅନୁଭୂତ ।

ଅନୁଭୂତିପ୍ରକାଶ—ମାଧବାଚାର୍ଯ୍ୟ ପ୍ରଣୀତ ଉପନିଷଦ୍ ପ୍ରକରଣବିଶେଷ ।

ଅନୁଭୂତିସ୍ୱରୂପାଚାର୍ଯ୍ୟ—ପୁଂ.ବି. ସାରସ୍ୱତ ବ୍ୟାକରଣପ୍ରଣେତା ।

ଅନୁମଗନ—ବଂ. (ପ୍ରା କ ନିମଗ୍ନ ।

ଅନୁମତ --ବି.ବଂ.(ଅନୁ + ମନ + ର୍ମି.ତ) କ୍ଷମତା,ସ୍ୱୀକୃତ,ଅନୁମୋଦିତ,ଅନୁଜ୍ଞାତ ।

ଅନୁମତ କର୍ମକାରୀ—ବଂ. ଯେ ଅନ୍ୟର ଲେଖାଦ୍ୱାରା କାର୍ଯ୍ୟ କରେ ।

ଅନୁମତ—ସ୍ତ୍ରୀ.ବ. ( ଅନୁ + ମନ + ତି) ସମ୍ମତ,ଅନୁଜ୍ଞା, ଚତୁର୍ଦ୍ଦଶୀଯୁକ୍ତ ପୂର୍ଣ୍ଣିମା; ଆଦେଶ ।

ଅନୁମନ୍ତା—ପୁଂ. ବୀଂ. ( ଅନୁ + ମନ + କ.ତୃ) ଅନୁମତଦାତା, ଯେ ଅନୁମତ ଦଏ, ସ୍ତ୍ରୀ ଅନୁମନ୍ତ୍ରୀ ।

ଅନୁମନ୍ତ୍ରଣ—କ୍ଲୀ.ବ. ମନ୍ତ୍ରୋଚାରଣପୂର୍ବକ ସଂସ୍କାରବିଶେଷ ।

ଅନୁମନ୍ତ୍ରିତ—ବି. ବୀଂ. ( ଅନୁ + ମନ୍ତ୍ର + ମ୍ପ.ତ) ମନ୍ତ୍ରୋଚ୍ଚାରଣସହକାରେ ଯଜ୍ଞରେ ସଂସ୍କୃତ ।

ଅନୁମରଣ—କ୍ଲୀ. ବ. ସ୍ୱାମୀ ମୃତ୍ୟୁପରେ ସ୍ତ୍ରୀର ଚିତାରୋହଣ ବା ପ୍ରାଣବିସର୍ଜନ, ସତୀ ଯିବା ।

ଅନୁମା—ସ୍ତ୍ରୀ. ବ. (ଅନୁ + ମ + ଭାଆ.) ବ୍ୟାପକବସ୍ତୁର ଜ୍ଞାନନିଷ୍ପତ୍ତି, ଯୁକ୍ତି, ଅନୁମତ, ଅନୁମାନ ।

ଅନୁମାତା—ତ୍ରି. ବୀଂ.(ଅନୁ + ମା + କ. ତୃ) ଯେ ଅନୁମାନକରେ,ଅନୁମାନକର୍ତ୍ତା (ସ୍ତ୍ରୀ) ଅନୁମାତ୍ରୀ ।

ଅନୁମାନ—କ୍ଲୀ.ବ. ( ଅନୁ + ମା + ଭା. ଅନ)ବ୍ୟାପ୍ୟ ଜ୍ଞାନଦ୍ୱାରା ବ୍ୟାପକବସ୍ତୁର ନିଶ୍ଚୟ କରିବା ।

ଅନୁମାନଚନ୍ଦ୍ରାମଣି-ପୁଂ.ବ. ନ୍ୟାୟଶାସ୍ତ୍ରର ଅନୁମାନବୋଧକ ପ୍ରକରଣବିଶେଷ ।

ଅନୁମାନଦୀଧିତ—ସ୍ତ୍ରୀ. ବ. ରଘୁନାଥ-ପଣୀତ ଟୀକାଗ୍ରନ୍ଥବିଶେଷ ।

ଅନୁମାନସିଦ୍ଧ—ବି. ବୀଂ. ( ୩ ତତ୍ପୁ ) ଅନୁମାନଦ୍ୱାରା ସାଧିତ, ଅନ୍ଦାଜି ।

ଅନୁମାନୋକ୍ତି—ସ୍ତ୍ରୀ. ବ. ତର୍କ. ଊହ, ଅନ୍ଦାଜି କଥା, ତର୍କାନୁସାରେ ଉକ୍ତି ।

ଅନୁମାପକ —ବି.ବୀଂ. ( ଅନୁ + ମାପି + କ. ଅ. କ ) ଅନୁମାନଜନକ, ନିର୍ଣ୍ଣୟ-କାରକ, (ସ୍ତ୍ରୀ ଅନୁମାପିକା ।

ଅନୁମାର୍ଗ—ମାଗ ନରୂପ । [ କର ।

ଅନୁମାଷ—ବ୍ୟପରିମାଣବିଶେଷ,ବିଘଣ୍ଟି-

ଅନୁମାସ—( ଅବ୍ୟ ) ମାସେ ମାସେ, ପ୍ରତିମାସେ ।

ଅନୁମିତ—ବି. ବୀଂ.(ଅନୁ + ମା + ମ୍ପ.ତ) କଳ୍ପିତ, ଅନୁମାନଦ୍ୱାରା ସ୍ଥିରୀକୃତ, ହେତୁଦ୍ୱାରା ନିଶ୍ଚିତ, ଯାହା ଅନୁମାନ-କରାହୋଇଅଛି ।

ଅନୁମିତି—ସ୍ତ୍ରୀ. ବୀଂ. (ଅନୁ + ମା + ଭା. ତି) ଅନୁମାନହେତୁଜ୍ଞାନ, ବ୍ୟାପ୍ୟବସ୍ତୁ-ଦ୍ୱାରା ବ୍ୟାପକବସ୍ତୁର ନିଶ୍ଚୟକରିବା ।

ଅନୁମିତ୍ସା—ସ୍ତ୍ରୀ. ବ. ଅନୁମାନକରିବାର ଇଚ୍ଛା, କ୍ଷେପଣର ଇଚ୍ଛା ।

ଅନୁମୃତ—ବି.ବୀଂ. (ଅନୁ + ମୃ + ତ) ସ୍ୱାମୀଆଦିର ଶୋକରେ ପଶ୍ଚାତ୍‌ମୃତ,ସହ-ମୃତ ।

ଅନୁମୃତା—ସ୍ତ୍ରୀ. ବ. ଯେ ସ୍ୱାମୀର ମୃତ ଦେହସଙ୍ଗେ ଚିତାନଳରେ ପଡ଼ି ମରେ ।

ଅନୁମେୟ—ବି. ବୀଂ. (ଅନୁ + ମା + ମ୍ପ. ଯ) ଅନୁମାନଯୋଗ୍ୟ, ଅନୁମାନବୋଧ, ଅନୁମାନଦ୍ୱାରା ଯାହା ସାଧିତ ହୁଏ ।

ଅନୁମୋଦ—ବି. (ଅନୁ + ମୁଦ + ଭା.ଅ) ସମ୍ମତିଜନକ ବ୍ୟାପାର,ଆହ୍ଲାଦପ୍ରକାଶ-ପୂର୍ବକ ସମ୍ମତ ।

ଅନୁମୋଦକ—ବି. ବୀଂ. ( ଅନୁ + ଣିଚ୍ + ମୁଦ + ଅ + କ.ଅକ)ଅନୁମୋଦନ-କର୍ତ୍ତା,ଆହ୍ଲାଦପୂର୍ବକ ସମ୍ମତିଦାତା, (ସ୍ତ୍ରୀ) ଅନୁମୋଦିକା ।

ଅନୁମୋଦନ—କ୍ଲୀ.ବ.(ଅନୁ + ଣିଚ୍ + ମୁଦ + ଭା + ଅନ, ଉଚିତବୋଲି ସ୍ୱୀକାର-କରିବା,ସମର୍ଥନ, ପ୍ରବୃତ୍ତିଦାନ, ପ୍ରବର୍ତ୍ତନ ।

ଅନୁମୋଦିତ—ବି.ବୀଂ. ( ଅନୁ ଣିଚ୍ + ମୁଦ୍ + ମ୍ପ.ତ, ଯେଉଁବିଷୟକୁ ଅନୁ-ମୋଦନ କରାଯାଇଅଛି, ସମ୍ମତ, ପ୍ରୋତ୍ସାହିତ ।

ଅନୁଯାଜ—ବୀଂ ଯାଗର ଶେଷ ଅଙ୍ଗ ।

ଅନୁଯାତ—ପୁଂ. ବୀଂ. ( ଅନୁ + ଯା + କ + ତ, ଅନୁଗତ, ଯେ ସଙ୍ଗେ ଗମନ-କରେ, ଅଗ୍ରଗାମୀ ।

ଅନୁଯାତବ୍ୟ—ବି.ବୀଂ,(ଅନୁ + ଯା + ମ୍ପ. ତବ୍ୟ) ଅନୁମନ୍ତବ୍ୟ, ଅନୁସରଣୀୟ, ଅନୁପ୍ରାପ୍ତବ୍ୟ, (ସ୍ତ୍ରୀ)ଅନୁଯାତବ୍ୟା ।

ଅନୁଯାତା—ପୁଂ ବ. (ଅନୁ + ଯା + କ. ତୃ ) ଅନୁଗନ୍ତା, ସହଚର, (ସ୍ତ୍ରୀ) ଅନୁ-ଯାତ୍ରୀ ।

ଅନୁଯାତ୍ର—ବ.(ବ.ବ୍ରୀ) ଭୃତ୍ୟ,ଅନୁଯାୟି-ବର୍ଗ, ଅନୁଚର ।

ଅନୁଯାତ୍ରା-ସ୍ତ୍ରୀ.ବ.(ଅନୁଯାତ୍ର + ଆ)ଅନୁଯା-ୟିନୀ, ଅନୁଗାମିନୀ ।

ଅନୁଯାତ୍ରିକ—ପୁଂ.ବ.(ଅନୁଯାତ୍ରା + ଇକ) ଅନୁଚର, ସହଯାତ୍ରିକ, ଏକସଙ୍ଗରେ ତୀର୍ଥଗମନକାରୀ, (ସ୍ତ୍ରୀ) ଅନୁଯାତ୍ରିକା ।

ଅନୁଯାତ୍ରୀ—ପୁଂ.ବ. (ଅନୁଯାତ୍ର + ଇନ୍) ଅନୁଗାମୀ, ସହଗାମୀ,(ସ୍ତ୍ରୀ) ଅନୁଯାତ୍ରିଣୀ

ଅନୁଯାନ—କ୍ଲୀ.ବ.(ଅନୁ + ଯା + ଭା.ଅନ) ଅନୁଗମନ, ସହଗମନ, (ଗ୍ରା.ବ)ବିଦାୟ, ଯିବାପାଇଁ ଅନୁମତି ।

ଅନୁଯାୟୀ—ବି.ବୀଂ. (ଅନୁ + ଯା + କ. ଇନ୍ ) ଅନୁଗାମୀ, ସେବକ ସଦୃଶ ଯେ ପ୍ରଧାନର ସଙ୍ଗେଯାଏ,(ସ୍ତ୍ରୀ) ଅନୁଯାୟିନୀ ।

ଅନୁଯୁକ୍ତ—ବି.ବୀଂ. ଜିଜ୍ଞାସିତ, ତିରସ୍କୃତ (ସ୍ତ୍ରୀ) ଅନୁଯୁକ୍ତା ।

ଅନୁଯୁଗେ—ଗ୍ରା. ଅବ୍ୟ. ଯୁଗକୁ ଯୁଗ, ଯୁଗେ ଯୁଗେ, ଚିରକାଳ ।

ଅନୁଯୂପ—ଅବ୍ୟ. ଯୂପେ ଯୂପେ ।

ଅନୁଯୋକ୍ତା—ପୁଂ.ବୀଂ.(ଅନୁ + ଯୁଜ୍ + କ. ତୃ ) ଅନୁଯୋଗକାରୀ, ପ୍ରଶ୍ନକାରକ, ବେତନଗ୍ରାହୀ ଅଧ୍ୟାପକ ।

ଅନୁଯୋଗ—ପୁଂ.ବ. (ଅନୁ + ଯୁଜ୍ + ଭା. ଅ) ଜିଜ୍ଞାସା, ପ୍ରଶ୍ନ, ଆକ୍ଷେପ, ସାଧନ, ତିରସ୍କାର ।

ଅନୁଯୋଗକୃତ୍—ପୁଂ.ବ. ଯେ ପଚାରିବା କଥାର ସନ୍ଦେହ ଦୂର କରେ ।

ଅନୁଯୋଗୀ—ପୁଂ.ବୀଂ. (ଅନୁ + ଯୁଜ୍ + କ.ଇନ୍ ) ନିନ୍ଦାକାରୀ, ଯେ ପ୍ରଶ୍ନ କରେ ସମ୍ବନ୍ଧାଧାରଯୁକ୍ତ, (ସ୍ତ୍ରୀ) ଅନୁଯୋଗିନୀ

ଅନୁଯୋଜକ—ବି.ବୀଂ. (ଅନୁ + ଯୁଜ୍ + କ. ଅକ ) ଅନୁଯୋଗକାରୀ,(ସ୍ତ୍ରୀ) ଅନୁ-ଯୋଜିକା ।

ଅନୁଯୋଜନ—କ୍ଳୀ.ବ.ପ୍ରଶ୍ନକରିବା,ଉତ୍ତରସ୍ୱୀକରଣ [ ସ୍ୱୀକାର କରିବା ।

ଅନୁଯୋଜନା—ସ୍ତ୍ରୀ.ବ.ପ୍ରଶ୍ନକରିବା,ଉତ୍ତର-

ଅନୁଯୋଜ୍ୟ—ତ୍ରି. ବି°.(ଅନୁ + ଯୁଜ୍ + ର୍ମି.ଯ) ଭୃତ୍ୟ, ଆଜ୍ଞାର୍ହ, ଆଜ୍ଞାକାରକ, ଦାସ; (ସ୍ତ୍ରୀ) ଅନୁଯୋଜ୍ୟା ।

ଅନୁରକ୍ତ—ତ୍ରି. ବି°.(ଅନୁ + ରନଜ୍ + ତ) ଆସକ୍ତ, ରତ, ପ୍ରୀତ, ଅନୁକୂଳ, (ସ୍ତ୍ରୀ) ଅନୁରକ୍ତା ।

ଅନୁରକ୍ତି—ସ୍ତ୍ରୀ.ବ.(ଅନୁ + ରନଜ୍ + ଭା.ତି) ଆସକ୍ତି, ଅନୁରାଗ ।

ଅନୁରଞ୍ଜକ—ତ୍ରି.ବି°.(ଅନୁ + ରଞ୍ଜ୍ + କ. ଅ) ହର୍ଷଜନକ, ଯେ ସନ୍ତୋଷ ପ୍ରଦାନକରେ, ଯେ ରଙ୍ଗ କରେ, (ସ୍ତ୍ରୀ) ଅନୁରଞ୍ଜିକା ।

ଅନୁରଞ୍ଜନ—କ୍ଳୀ.ବ.(ଅନୁ + ରଞ୍ଜ୍ + ଭା. ଅନ) ଆସକ୍ତକରଣ, (ବି°)ଅନୁରଞ୍ଜିତ ।

ଅନୁରଞ୍ଜିତ—ତ୍ରି.ବି°. (ଅନୁ + ରଞ୍ଜ୍ + କ.ତ) ଅନୁରାଗବିଶିଷ୍ଟ, ବର୍ଣ୍ଣରଞ୍ଜିତ, ରଙ୍ଗଲଗା ହୋଇଥିବା ।

ଅନୁରଣନ—କ୍ଳୀ.ବ. (ଅନୁ + ରଣ + ଭା. ଅନ ) ଶବ୍ଦପରେ ଶବ୍ଦ,ପ୍ରତିଧ୍ୱନି, ଅନୁଗତସ୍ୱର ।

ଅନୁରତ—ତ୍ରି.ବି°. (ଅନୁ + ରମ୍ + ତ) ଅନୁରକ୍ତ, ଆସକ୍ତ, ପ୍ରୀତିମାନ,ଅନୁରାଗବିଶିଷ୍ଟ ।

ଅନୁରତି—ସ୍ତ୍ରୀ.ବ.(ଅନୁ + ରମ + ଭା.ତି) ଆସକ୍ତି, ଅନୁରାଗ । [ ଗତ ।

ଅନୁରସ—ବି°. ମାଧୁର୍ଯ୍ୟାଦି ରସର ଅନୁ-

ଅନୁରଥ୍ୟା—ବି. ( ଅନୁ + ରଥ୍ୟ )କ୍ଷୁଦ୍ର ମାର୍ଗ, ଗଳିରାସ୍ତା ।

ଅନୁରହସ—ତ୍ରି. ବି°. ନିର୍ଜନଦେଶର ଅନୁଗତ, ତତ୍ତ୍ୱପ୍ରାପ୍ତ ।

ଅନୁରାଗ—ପୁ°.ବ. (ଅନୁ + ରନ୍‌ଜ୍ + ଭା. ଅ) ଆଦରଯୁକ୍ତ ସ୍ନେହ, ଆସକ୍ତ ସ୍ନେହ, ପ୍ରୀତି, ଯତ୍ନ, ସୋହାଗ ।

ଅନୁରାଗବାନ୍—ପୁ°. ବି°.(ଅନୁରାଗ + ବତ୍) ପ୍ରେମିକ, ଅନୁରାଗୀ, ପ୍ରୀତିଯୁକ୍ତ, ଅନୁରାଗଯୁକ୍ତ, (ସ୍ତ୍ରୀ) ଅନୁରାଗବତୀ ।

ଅନୁରାଗୀ—ପୁ°.ବି°.(ଅନୁରାଗ + ଇନ୍) ଅନୁରାଗଯୁକ୍ତ, (ସ୍ତ୍ରୀ)ଅନୁରାଗିଣୀ, (ବି) ଅନୁରାଗକାରୀ ।

ଅନୁରାତ୍ର—ରାତ୍ରିର ଅନୁଗତ ।

ଅନୁରାଧାପୁର—ଲଙ୍କାଦ୍ୱୀପରେ ବୌଦ୍ଧମାନଙ୍କର ତୀର୍ଥସ୍ଥାନବିଶେଷ ।

ଅନୁରାଧା—ସ୍ତ୍ରୀ. ବ. ନକ୍ଷତ୍ରବିଶେଷର ନାମ, ସପ୍ତଦଶ ନକ୍ଷତ୍ର ।

ଅନୁରୁଦ୍ଧ—ତ୍ରି. ବି°. (ଅନୁ + ରୁଧ୍ + ର୍ମି. ତ) ଅପେକ୍ଷିତ, ଯାହାକୁ ଅନୁରୋଧ କରାହୋଇଅଛି ।

ଅନୁରୁଧ—ତ୍ରି.ବି°.(ଅନୁ ରୁଧ୍ + କ୍ୱିପ୍) ଯେ ଅନୁରୋଧ କରେ, ଯେ ଅପେକ୍ଷା କରେ ।

ଅନୁରୂପ—ତ୍ରି. ବି°. ସଦୃଶ, ତୁଲ୍ୟ, ଯୋଗ୍ୟ, ଅନୁଯାୟୀ, (ସ୍ତ୍ରୀ) ଅନୁରୂପା ।

ଅନୁରୂପେ—କ୍ରି. ବି°. ଅନୁସାରେ ।

ଅନୁରୂହା—ବି. ତୃଣବିଶେଷ ।

ଅନୁରୋଧ—ବି. ଅଭୀଷ୍ଟସାଧନରେ ଇଚ୍ଛା, ସୁପାରସ୍, ଖାତିର ।

ଅନୁରୋଧ—ପୁ°.ବ. (ଅନୁ + ରୁଧ + ଭା. ଅ) ଉପରୋଧ, ପ୍ରତୀକ୍ଷା ।

ଅନୁରୋଧକ—ତ୍ରି. ବି°. (ଅନୁ + ରୁଧ୍-କ-ଅକ ) ଅନୁରୋଧକର୍ତ୍ତା, ଯେ ସୁପାରସ୍ କରେ, ପ୍ରତିରୋଧକ,(ସ୍ତ୍ରୀ) ଅନୁରୋଧିକା ।

ଅନୁରୋଧରେ—କ୍ରି. ବି. ବି°. ଅନ୍ୟଦ୍ୱାରା ବା ଘଟନାରେ ବାଧ୍ୟ ହୋଇ ।

ଅନୁରୋଧୀ—ତ୍ରି.ବି°. ଅନୁ + ରୁଧ + କ. ଇନ୍ ) ଯେ ଅନୁରୋଧକରେ,ଅନୁସାରୀ ।

ଅନୁଲଗ୍ନ—ତ୍ରି. ବି°.(ଅନୁ + ଲଗ୍ + କ-ତ) ନିବିଷ୍ଟ ।

ଅନୁଲାପ—ବି. ପୁନରୁକ୍ତି, ମୁହୁର୍ଭାଷଣ ।

ଅନୁଲିପ୍ତ—ତ୍ରି. ବି°. (ଅନୁ + ଲିପ୍ + ର୍ମି. ତ ) ଅଙ୍ଗରେ ଗନ୍ଧାଦିଲେପନଯୁକ୍ତ, ରଙ୍ଗ ବୋଳ ହୋଇଥିବା ।

ଅନୁଲେପ—ବି. ଦେହରେ ବୋଳା ହେବା ସୁଗନ୍ଧ ଦ୍ରବ୍ୟବିଶେଷ ।

ଅନୁଲେପକ—ତ୍ରି. ବି°. ( ଅନୁ + ଲିପ୍ + କ,ଅକ) ଯେ ଦେହରେ ସୁଗନ୍ଧ ଲେପନ କରେ, (ସ୍ତ୍ରୀ) ଅନୁଲେପିକା ।

ଅନୁଲେପନ-କ୍ଳୀ. ବ. (ଅନୁ + ଲିପ୍ + ଣ. ଅନ) ସୁଗନ୍ଧଦ୍ରବ୍ୟବିଶେଷ, ଚନ୍ଦନ, କୁଙ୍କୁମପ୍ରଭୃତି ।

ଅନୁଲେପିତ—ତ୍ରି. ବି°. ଅନୁଲିପ୍ତୀକୃତ ।

ଅନୁଲେପୀ—ପୁ°. ବି°. (ଅନୁ + ଲିପ + କ. ଇନ୍ ) ଅନୁଲେପକ,(ସ୍ତ୍ରୀ) ଅନୁଲେପିନୀ ।

ଅନୁଲୋମ—ବି. (ଅନୁ + ଲୋମନ୍ + ଅ) ଅନୁକ୍ରମ, ଯଥାକ୍ରମ, (ବିପ) ପ୍ରତିଲୋମ, (ବି°) ଅନୁକୂଳ, ପ୍ରାକୃତିକ, (କ୍ରି.ବି°) ସହଜଆଡ଼େ, ପ୍ରକୃତ ପ୍ରଣାଳୀରେ, (ଅବ୍ୟ) ପ୍ରତିରୋମରେ, ପ୍ରତିରୋମେ ।

ଅନୁଲୋମଜ—ପୁ°. ବି°. ଉତ୍ତମବର୍ଣ୍ଣ ପୁରୁଷର ଔରସରେ ଅଧମବର୍ଣ୍ଣା ସ୍ତ୍ରୀଗର୍ଭରୁ ଜାତହୋଇଥିବା, ଅନ୍ତର, କ୍ରମାନୁସାରେ ଉତ୍ପନ୍ନ, (ସ୍ତ୍ରୀ) ଅନୁଲୋମଜା [ ଜାତ ।

ଅନୁଲୋମଜନ୍ମା—ପୁ°. ବି°. ଅନୁଲୋମ-

ଅନୁଲୋମବିବାହ—ପୁ° ବ. ଜାତ୍ୟନ୍ତରବିବାହ, ଅସବର୍ଣ୍ଣବିବାହ ।

ଅନୁଲୋମନ୍—କ୍ଳୀ.ବ. ଯେ ଦ୍ରବ୍ୟ ଅପକ୍ୱ ବାତ, ପିତ୍ତ, ଶ୍ଳେଷ୍ମାର ପରିପାକପୂର୍ବକ ମଳ ନିଃସାରଣ କରେ ।

ଅନୁଲ୍ଲଙ୍ଘନ—କ୍ଳୀ. ବି°. ଉଲ୍ଲଙ୍ଘନକରିବା, ଅନତିକ୍ରମ ।

ଅନୁଲଙ୍ଘନୀୟ—ବି°. (ନ + ଉଲ୍ଲଙ୍ଘନୀୟ) ଯାହା ଅତିକ୍ରମ କରି ହୁଏ ନାହିଁ, ଅନତିକ୍ରମଣୀୟ ।

ଅନୁବଂଶ—(ଅବ୍ୟ.) ଶାଖାନୁକ୍ରମେ,ବଂଶରେ (ପୁ°) ଅନୁକ୍ରମିକ ବଂଶ, ଅପତ୍ୟପରମ୍ପରା ।

ଅନୁବକ୍ତା—ବି°.ଗୁରୁ ଯେପରି ଉପଦେଶ ଦିଅନ୍ତି ସେହିପରି ଉଚ୍ଚାରଣକାରୀ ।

ଅନୁବକ୍ର—ବି°. ଅନୁକ୍ରମରେ ବଙ୍କା, ଆଡ଼େ ଆଡ଼େ ବଙ୍କା, ଅତ୍ୟନ୍ତ ବଙ୍କା ।

ଅନୁବଚନ—କ୍ଲୀ, ବ. ଅନୁରୂପକଥନ, ଯଜ୍ଞର ମନ୍ତ୍ରାଦିବିଶେଷ ।

ଅନୁବତ୍ସର—ପୁଂ. ବ. ଅନୁକୂଳ ବତ୍ସର, ଚାନ୍ଦ୍ରବର୍ଷ, ଦ୍ୱାଦଶ ଚାନ୍ଦ୍ରମାସ, ନିତ୍ୟ, ପ୍ରତିବର୍ଷ ।

ଅନୁବର୍ତ୍ତନ—କ୍ଲୀ. ବ. ଅନୁସରଣ, ଅନୁଗମନ, ସେବା,ଅନୁକରଣ,ପାଳନ ।

ଅନୁବର୍ତ୍ତନୀୟ—ତ୍ରି.ବ°. (ଅନୁ + ବୃତ୍ + ର୍ମ. ଅନୀୟ) ଅନୁସରଣୀୟ,କରଣୀୟ,

ଅନୁବର୍ତ୍ତିତା—ସ୍ତ୍ରୀ. ବ. ଅନୁବର୍ତ୍ତିର ଭାବ ବା କାର୍ଯ୍ୟ, ଅନୁବର୍ତ୍ତନ ।

ଅନୁବର୍ତ୍ତୀ—ତ୍ରି. ବ°. ( ଅନୁ + ବୃତ୍ + ଇନ୍ ) ପଶ୍ଚାଦ୍‌ଗାମୀ, ଅନୁଗାମୀ, (ସ୍ତ୍ରୀ) ଅନୁବର୍ତ୍ତିନୀ । [ଅବଧିସ୍ଥାନ ।

ଅନୁବଧି—ତ୍ରି. ବ° ସତତ, ସର୍ବଦା,

ଅନୁବଦ୍ଧ—ତ୍ରି. ବ°. (ଅନୁ + ବନ୍ଧ + ର୍ମ. ତ) ବାଧ, ସମ୍ପର୍କଯୁକ୍ତ, ସଂବନ୍ଧ ।

ଅନୁବନ୍ଧେଣ—ଗ୍ରା. କ୍ରି. ବ°. ସମ୍ପର୍କରେ, ଅନୁବନ୍ଧରେ ।

ଅନୁବରତ—ଗ୍ରା. କ୍ରି. ବ°. ସର୍ବଦା ।

ଅନୁବର୍ଣ୍ଣ—ତ୍ରି. ବ°. ବର୍ଣ୍ଣର ଅନୁରୂପ ।

ଅନୁବଳ—ତ୍ରି. ବ°. କ୍ଷମତାନୁଯାୟୀ, କ୍ଷମତାନୁସାରେ, ବଳକୁ ଯେ ଅନୁଗମନକରେ, (କ୍ଲୀ. ବ) ପୃଷ୍ଠରକ୍ଷକ ସୈନ୍ୟ, ପ୍ରଭାବ, ସାହାଯ୍ୟ, ମାୟାବଳ,ଅନୁଗତବଳ, (ସ୍ତ୍ରୀ) ଅନୁବଳା ।

ଅନୁବଶ—ତ୍ରି. ବ°. ବଶାନୁଗ, (ପୁଂ.ବ) ଅନୁରୋଧ, ଅନୁବର୍ତ୍ତନ ।

ଅନୁବାକ—ପୁଂ. ବ. ଆବୃତ୍ତି, ବେଦର ଅଂଶବିଶେଷ,ଋକ୍‌ବିଶେଷ,ପୁନଃ ପାଠ ।

ଅନୁବାକସଂଖ୍ୟା—ଯଜୁର୍ବେଦର ଗୋଟିଏ ପରିଶିଷ୍ଟନାମବିଶେଷ ।

ଅନୁବାଚ୍—ପୁଂ. ବ. ଅଧ୍ୟାପକ ।

ଅନୁବାଚନ—କ୍ଲୀ. ଅଧ୍ୟାପନ ।

ଅନୁବାଚନୀୟ—ପୁଂ. ବ°. ଅଧ୍ୟାପକ, (ସ୍ତ୍ରୀ) ଅନୁବାଚନୀୟା ।

ଅନୁବାତ—ପୁଂ. ବ. ଅନୁକୂଳ ପବନ ।

ଅନୁବାଦ—ପୁଂ.ବ. (ଅନୁ + ବଦ୍ + ଅ) ନିନ୍ଦା, ଅନୁକରଣ, ଭାଷାନ୍ତରକରଣ, ପଶ୍ଚାତ୍‌କଥନ ।

ଅନୁବାଦକ—ତ୍ରି. ବ°. (ଅନୁ + ବଦ୍ + କ) ଯେ ଅନୁବାଦ କରେ ।

ଅନୁବାଦୀ—ତ୍ରି.ବ°.ଯେ ଅନୁବାଦକରେ, ଅନୁବାଦକାରକ ।

ଅନୁବାଦ୍ୟ—ବ°. (ଅନୁ + ବଦ୍ + ଯ) ଅନୁକଥନୀୟ, ଉଦ୍ଦେଶ୍ୟ । [କରଣ ।

ଅନୁବାସକ—ବ. ଧୂପଦ୍ୱାରା ସୁଗନ୍ଧୀ-

ଅନୁବାର—ଅବ୍ୟ (ଅନୁ + ବାର)ପୁନଃ-ପୁନଃ, ବାରବାର ।

ଅନୁବାସିତ—ତ୍ରି. ବ°. ବସ୍ତିକର୍ମ ଦ୍ୱାରା ଚିକିତ୍ସିତ, ସୁଗନ୍ଧୀକୃତ ।

ଅନୁବାସ୍ୟ—ତ୍ରି. ବ°. ବସ୍ତିକର୍ମଦ୍ୱାରା ଚିକିତ୍ସାଯୋଗ୍ୟ ।

ଅନୁବିଧାୟୀ—ତ୍ରି. ବ°. ଅନୁବିଧାନକର୍ତ୍ତା, ପଶ୍ଚାତ୍କଜନକ, ଅନୁଗତ ।

ଅନୁବିଦ୍ଧ—ତ୍ରି. ବ°. (ଅନୁ + ବିଧ୍ + ତ) ସଂସୃଷ୍ଟ, ସଂଲଗ୍ନ, ତାଡ଼ିତ, ଖଚିତ, ସମୁତ୍କୀର୍ଣ୍ଣ, ଗୁମ୍ଫିତ, ଗ୍ରଥିତ ।

ଅନୁବିନ୍ଦ—ପୁଂ. ବ°. ରାଜାବିଶେଷ ।

ଅନୁବିନ୍ଧ୍ୟ—ବିନ୍ଧ୍ୟପର୍ବତକୁଉଲ୍ଲଙ୍ଘନକରି ।

ଅନୁବୃତ୍ତ—ତ୍ରି ବ°. (ଅନୁ + ବୃତ୍ + କ.ତ) ଅନୁଗତ, ପଶ୍ଚାଦ୍‌ଗତ, ବଶ୍ୟ, (ସ୍ତ୍ରୀ) ଅନୁବୃତ୍ତି ।

ଅନୁବୃତ୍ତି—ବ. (ଅନୁ + ବୃତ୍ + ଭା.ତି) ପଶ୍ଚାଦ୍‌ଗମନ, ସେବା,ଅନୁବନ୍ଧ,ଅଭ୍ୟାସ, ଅନୁରଞ୍ଜନ ।

ଅନୁବେଦନ—କ୍ଲୀ. ବ. ( ଅନୁ + ବିଦ୍ + ଭା. ଅନ ) ଜ୍ଞାପନ, ଜ୍ଞାନଦାନ, ସମବେଦନା । [ସଂସର୍ଗ ।

ଅନୁବେଧ—ପୁଂ.ବ. (ଅନୁ + ବିଧ୍ + ଅ)

ଅନୁବେଳ—ଅବ୍ୟ. ପ୍ରତିକ୍ଷଣ, ସର୍ବଦା, ସମୁଦ୍ର କୂଳେ କୂଳେ, ଉପକୂଳେ ।

ଅନୁବେଲ୍ଲିତ—କ୍ଲୀ. ବ୍ରଣର ଲେପ-ବିଶେଷ ।

ଅନୁବେଶ—ପୁଂ. ବ. (ଅନୁ + ବିଶ + ଅ) ଜ୍ୟେଷ୍ଠକୁ ଅତିକ୍ରମ କରି କନିଷ୍ଠର ବିବାହ,ବଡ଼ ଆଉ ଆଉ ସାନର ବିଭା ।

ଅନୁବେଶ୍ୟ—ତ୍ରି. ବ°. (ଅନୁ + ବିଶ + ଯ) ପ୍ରତିବାସୀର ଅନ୍ୟଗୃହବାସୀ ।

ଅନୁବୈଣେୟ—ଅଯୋଧ୍ୟାର ଗୋଟିଏ ପୁରାତନ ପ୍ରଦେଶ ।

ଅନୁବ୍ୟ—ତ୍ରି.ବ°.ଅନୁଗତ,ପଶ୍ଚାଦ୍‌ଗାମୀ ।

ଅନୁବ୍ୟବସାୟ—ପୁଂ. ବ. ( ଅନୁ + ବି + ଅବ + ସୋ + ଭା.ଅ ) ପ୍ରତ୍ୟକ୍ଷଜ୍ଞାନ (ନ୍ୟାୟ ଶାସ୍ତ୍ର), ବେଦାନ୍ତରେ (ସିଦ୍ଧାନ୍ତଜ୍ଞାନ) ।

ଅନୁବ୍ୟାଖ୍ୟାନ—କ୍ଲୀ.ବ.ପଶ୍ଚାଦ୍‌ବ୍ୟାଖ୍ୟା, ମନ୍ତ୍ରାଦିର ଅବିକଳ ଅର୍ଥପ୍ରକାଶ ।

ଅନୁବ୍ୟାଧ—ପୁଂ. ବ. (ଅନୁ + ବ୍ୟଧ୍ + ଭା.ଅ) ସଂଯୋଗ, ମିଳନ ।

ଅନୁବ୍ୟାହାର—ପୁଂ. ବ. (ଅନୁ + ବି + ଆ + ହୃ + ଅ ) ଅନୁବାଦ, ଅନୁରୂପକଥନ ।

ଅନୁବ୍ରଜ—(ଅନୁ + ବ୍ରଜ୍ + ଭା.ଅ) ପଛରେ ଯିବା, ପ୍ରତ୍ୟୁଦ୍‌ଗମନ ।

ଅନୁବ୍ରଜନ—କ୍ଲୀ.ବ. ପଶ୍ଚାଦ୍‌ଗମନ,ଗୃହାଗତ ଶିଷ୍ଟବନ୍ଧୁଘରୁ ଗଲାବେଳେ ତାହାପଛରେ କିୟଦ୍ଦୂରଯିବାରୂପ ଶିଷ୍ଟାଚାର ।

ଅନବ୍ରଜ୍ୟା—ସ୍ତ୍ରୀ. ବ. ( ଅନୁ + ବ୍ରଜ + ଭା.ଯ + ଆ) ପଶ୍ଚାଦ୍‌ଗମନ, ଗୋବଧର ପ୍ରାୟଶ୍ଚିତ୍ତ କ୍ରିୟାବିଶେଷ ।

ଅନୁବ୍ରତ—ତ୍ରି. ବ°. ଅନୁକୂଳ ନିୟମଯୁକ୍ତ, ସମାନନିୟମକାରୀ, ଭଲକର୍ମୀ ।

ଅନୁଶୟ—ପୁଂ. ବ. (ଅନୁ + ଶୀ + ଭା. ଅ) ଅନୁତାପ, ଦ୍ୱେଷ, ଅହନ୍ତା, ଶତ୍ରୁତା, ଘୃଣା ।

ଅନୁଶୟାନ—ପୁଂ. ବ°. ( ଅନୁ + ଶୀ + କ. ଆନ ) ଯେ ପଶ୍ଚାତ୍ତାପ କରେ, (ସ୍ତ୍ରୀ) ଅନୁଶୟାନା ।

ଅନୁଶୟିତ—ପୁଂ. ବ°. ( ଅନୁଶୟ + ଇତ) ଅନୁତପ୍ତ, ଦୁଃଖିତ, ଯାହାର ଅନୁତାପ ଘଟିଅଛି, (ସ୍ତ୍ରୀ) ଅନୁଶୟିତା ।

ଅନୁଶୟୀ—ପୁଂ.ବ°. (ଅନୁଶୟ + ଇନ୍) ଅନୁତାପକାରୀ, (ସ୍ତ୍ରୀ) ଅନୁଶୟିନୀ, (ବି) ପାଦରୋଗ ବିଶେଷ ।

ଅନୁଶର—ପୁଂ.ବି. (ଅନୁ + ଶୃ + କ.ଅ) ରାକ୍ଷସ ।

ଅନୁଶଲ୍ଲ—ବି. ଜଣେ ପରାକ୍ରମଶାଳୀ ଦେବଦ୍ୱେଷୀ ଦୈତ୍ୟର ନାମ ।

ଅନୁଶସ୍ତ୍ର—କ୍ଳୀ.ବି. ଶସ୍ତ୍ରାର୍ଥେ ପ୍ରଯୋଜ୍ୟତ୍ୱକ୍-ସାର, କାଚ, ଜୋକ, ନଖ-ଇତ୍ୟାଦି, ଆୟୁର୍ବେଦୀୟ ଚତୁର୍ଦ୍ଦଶ ଦ୍ରବ୍ୟ ।

ଅନୁଶାର—ପୁଂ. ବି. ବାୟୁପ୍ରାପ୍ତ, ବର୍ଣ୍ଣ-ପ୍ରାପ୍ତ, ଆବରଣପ୍ରାପ୍ତ ।

ଅନୁଶାସକ—ପୁଂ.ବିଂ. (ଅନୁ + ଶାସ୍ + କ. ଅକ) ଶାସନକର୍ତ୍ତା, ଉପଦେଷ୍ଟା, (ସ୍ତ୍ରୀ) ଅନୁଶାସିକା ।

ଅନୁଶାସନ—କ୍ଳୀ. ବି. (ଅନୁ + ଶାସ୍ + ଭା. ଅନ ) କର୍ତ୍ତବ୍ୟବିଧାନ, ଆଜ୍ଞା, ନିଯୋଗ କାର୍ଯ୍ୟରେ ନିଯୁକ୍ତି, ତିରସ୍କାର, (ସ୍ତ୍ରୀ) ଅନୁଶାସନୀ ।

ଅନୁଶାସୀ—ପୁଂ. ବିଂ. ଦଣ୍ଡବିଧାତା, ନିୟନ୍ତା, କର୍ତ୍ତବ୍ୟର ଉପଦେଷ୍ଟା, (ସ୍ତ୍ରୀ) ଅନୁଶାସିନୀ ।

ଅନୁଶିଷ୍ୟ—ପୁଂ. ବି. ( ଅନୁ + ଶିଷ୍ୟ) ଶିଷ୍ୟର ଶିଷ୍ୟ, ନାତିଶିଷ୍ୟ, ପ୍ରଶିଷ୍ୟ ।

ଅନୁଶିଷ୍ଟ—ତ୍ରି.ବିଂ. (ଅନୁ + ଶାସ + ର୍ମ. ତ) ଯାହାକୁ ଶାସନ କରାହୋଇଅଛି, ଉପଦିଷ୍ଟ, ଅନୁଜ୍ଞାତ, (ସ୍ତ୍ରୀ) ଅନୁଶିଷ୍ଟା ।

ଅନୁଶିଷ୍ଟି—ସ୍ତ୍ରୀ. ବି. (ଅନୁ + ଶାସ୍ + ତି) ଅନୁଶାସନ, ଉପଦେଶ ।

ଅନୁଶୀତ—(ଅବ୍ୟ) ଶୀତରେ ।

ଅନୁଶୀଳନ—କ୍ଳୀ. ବି. (ଅନୁ + ଶୀଳ + ଭା.ଅନ)ଅନ୍ଦୋଳନ,ଆଲୋଚନା, ଚର୍ଚ୍ଚା, ପାଠାଭ୍ୟାସ, ପୁନଃ ପୁନଃ ଅଭ୍ୟାସ ।

ଅନୁଶୀଳନା—ସ୍ତ୍ରୀ.ବି. (ଅନୁ + ଶୀଲ୍ + ଅନ୍ + ଈ)ସମସ୍ୟା ସମାଧାନ, ସାଧନା ।

ଅନୁଶୀଳନୀୟ—ତ୍ରି. ବିଂ. ( ଅନୁ + ଶୀଲ୍ + ଅନୀୟ) ଯେ ବିଷୟର ଅନୁଶୀଳନ କରିବା ଉଚିତ ବା ଆବଶ୍ୟକ ।

ଅନୁଶୀଳିତ—ତ୍ରି. ବିଂ.(ଅନୁ + ଶୀଲ୍ + ର୍ମ.ତ)ଯାହାର ଅନୁଶୀଳନ କରାହୋଇ-ଅଛି, ଅଭ୍ୟସ୍ତ ।

ଅନୁଶୂଚିତ—କ୍ଳୀ. ବି. ପଶ୍ଚାତ୍ତାପଶୋକ, କୃତାନୁଶୋଚନାରମ୍ଭ ।

ଅନୁଶୋକ—ପୁଂ.ବି.(ଅନୁ + ଶୁଚ + ଅ) ପଶ୍ଚାତ୍‌ଶୋକ, ଅନୁତାପ, ପରିତାପ ।

ଅନୁଶୋଚନ—କ୍ଳୀ. ବି. (ଅନୁ + ଶୁଚ୍ + ଭା. ଅନ) ପଶ୍ଚାତ୍ତାପଶୋକ, ଶୋକ, ଅବସୋସ୍ ।

ଅନୁଶୋଚନା—ସ୍ତ୍ରୀ.ବି. (ଅନୁ + ଶୁଚ୍ + ଭା. ଅନ + ଆ) ପଶ୍ଚାତ୍‌ଶୋକ, ପରି-ତାପ, ଅନୁତାପ, ଅବସୋସ୍, ଦୁଃଖ ।

ଅନୁଶୋଚନୀୟ—ତ୍ରି. ବିଂ. ଅନୁଶୋକାର୍ହ, ଯାହାକୁ ମନେ କରି ଶୋକ କରାଯାଏ ।

ଅନୁଶୋଚିତ—କ୍ଳୀ. ବି. ପଶ୍ଚାତ୍ତାପଶୋକ, (ବିଂ) ଯାହାକୁ ମନେକରି ପଛେ ଶୋକ କରିବାକୁ ହୁଏ ।

ଅନୁଶ୍ଳୋକ—ପୁଂ. ବି. ସାମବେଦଗାନ-ବିଶେଷ ।

ଅନୁଷକ୍ତ—ତ୍ରି. ତି. (ଅନୁ + ସଞ୍ଜ + କ. ତ) ଆସକ୍ତ, ସମ୍ବନ୍ଧ,ସଂଲଗ୍ନ, ଅନୁଗତ ।

ଅନୁଷଙ୍ଗ—ପୁଂ. ବି. (ଅନୁ + ସଞ୍ଜ + ଭା. ଅ)ଦୟା, ସମ୍ମତି,ଆସକ୍ତି,ସ୍ନେହ,ପ୍ରଣୟ ।

ଅନୁଷଙ୍ଗିକ—ବିଂ. ( ଅନୁ + ଷଙ୍ଗ୍ + ଇକ) ସମ୍ବନ୍ଧଯୁକ୍ତ, ସମ୍ବନ୍ଧୀୟ, ଏକତ୍ର-ଅନ୍ୱିତ ।

ଅନୁଷଙ୍ଗୀ—ତ୍ରି. ବିଂ. ସର୍ବଦା ପ୍ରସକ୍ତ, ନିଯୁକ୍ତ, ଅବସ୍ଥିତ ।

ଅନୁଷଣ୍ଡ—ପଦ୍ମସମୂହରେ ।

ଅନୁଷିକ୍ତ—ତ୍ରି.ବିଂ. ଯହିଁରେ ଜଳସେଚନ କରାହୋଇଅଛି ।

ଅନୁଷେକ—ବି. (ଅନୁ + ସିଚ୍ + ଭା.ଅ) ପୁଣି ସିଞ୍ଚିବା, ପୁନର୍ବାର ସେଚନ ।

ଅନୁସେଚନ—କ୍ଳୀ.ବି. (ଅନୁ + ସିଚ୍ + ଅନ) ପ୍ରତିକ୍ଷଣସେଚନ ।

ଅନୁଷ୍ଟୁତି—ସ୍ତ୍ରୀ. ବି. (ଅନୁ + ସ୍ତୁ + ତି) ଅନୁକ୍ରମେ ସ୍ତବକରିବା ।

ଅନୁଷ୍ଟୁଭ୍‌ଗର୍ଭା—ଛନ୍ଦୋବିଶେଷ ।

ଅନୁଷ୍ଟୁପ୍—ସ୍ତ୍ରୀ.ବି. (ଅନୁ + ସ୍ତୁଭ + ର୍ମ. କ୍ୱିପ୍) ବାକ୍, ସରସ୍ୱତୀ, ଅଷ୍ଟାକ୍ଷର-ପାଦ ଛନ୍ଦୋବିଶେଷ ।

ଅନୁଷ୍ଠ—ବିଂ (ଅନୁ + ସ୍ଥା + ଅ) ଯଥା-କ୍ରମେ ସ୍ଥିତିଶୀଳ, ଠିକ୍‌ପରେ ସ୍ଥାୟୀ ।

ଅନୁଷ୍ଠାତବ୍ୟ—ତ୍ରି. ବିଂ. ( ଅନୁ + ସ୍ଥା ର୍ମ ତବ୍ୟ) ଆଚରଣୀୟ, ଅନୁଷ୍ଠେୟ, (ସ୍ତ୍ରୀ) ଅନୁଷ୍ଠାତବ୍ୟା ।

ଅନୁଷ୍ଠାତା—ପୁଂ. ବି. (ଅନୁ + ସ୍ଥା + କ. ତୃ ) ଅନୁଷ୍ଠାନକର୍ତ୍ତା, ଯେ ଅନୁଷ୍ଠାନ କରେ, ସମ୍ପାଦକ, (ସ୍ତ୍ରୀ) ଅନୁଷ୍ଠାତ୍ରୀ ।

ଅନୁଷ୍ଠାନ—ବି. (ଅନୁ + ସ୍ଥା + ଭା.ଅନ) ବିହିତ କର୍ମର ଆଚରଣ, କର୍ମାରମ୍ଭ, (ବିଂ) ଅନୁଷ୍ଠିତ ।

ଅନୁଷ୍ଠାନଶରୀର—ବି. ( ଅନୁଷ୍ଠାନ + ଶରୀର ) କର୍ମ ଶରୀର (ଦର୍ଶନ) ।

ଅନୁଷ୍ଠିତ—ତ୍ରି. ବିଂ. ( ଅନୁ + ସ୍ଥା + ର୍ମ.ତ ) ଆଚରିତ, ଯଥାବିଧାନରେ ସମ୍ପାଦିତ, ନିର୍ବାହିତ,(ସ୍ତ୍ରୀ) ଅନୁଷ୍ଠିତା ।

ଅନୁଷ୍ଠୁ—ଅବ୍ୟ. ସମ୍ୟକ୍ ସୁନ୍ଦର ।

ଅନୁଷ୍ୟୂତ—ତ୍ରି. ବିଂ. (ଅନୁ + ଷିବ୍ + ର୍ମ.ତ ) ପରସ୍ପର ସମ୍ବନ୍ଧ, ଅବିଚ୍ଛିନ୍ନ,(ସ୍ତ୍ରୀ) ଅନୁଷ୍ୟୂତା ।

ଅନୁଷ୍ଠେୟ—ତ୍ରି. ବିଂ. ( ଅନୁ + ସ୍ଥା + ର୍ମ.ଯ)ବିଧେୟ, ସମ୍ପାଦନୀୟ,କରଣୀୟ ।

ଅନୁଷ୍ଣ—ତ୍ରି. ବିଂ. (ନ + ଉଷ୍ଣ) ଶୀତଳ ପଦାର୍ଥ, ଅଳସ, ଜଡ଼, ଅଦକ୍ଷ, (ବି) ଉତ୍ପଳ, କଇଁଫୁଲ ।

ଅନୁଷ୍ଣଗୁ—ପୁଂ. ବି. ଚନ୍ଦ୍ର, ହିମାଂଶୁ ।

ଅନୁଷ୍ଣକିରଣ—ପୁଂ. ବି. ଚନ୍ଦ୍ର ।

ଅନୁଷ୍ଣବଲ୍ଲିକା—ସ୍ତ୍ରୀ. ବି. ନୀଳଦୂର୍ବା ।

ଅନୁସନ୍ଧିତ୍ସା—ସ୍ତ୍ରୀ. ବି. (ଅନୁ + ସମ + ଧା + ସନ୍ + ଅ.ଭା.ଅ ) ଅନୁସନ୍ଧାନ କରିବାର ଇଚ୍ଛା ।

ଅନୁସନ୍ଧିତ୍ସୁ—ପୁଂ.ସ୍ତ୍ରୀ.ବି.(ଅନୁ + ସମ୍ + ଧା.ସନ୍.ଉ ) ଅନୁସନ୍ଧାନ କରିବାପାଇଁ ଇଚ୍ଛୁକ, ଅନୁସନ୍ଧାନ କରିବାକୁ ବ୍ୟଗ୍ର ।

ଅନୁସନ୍ଧେୟ—ବିଂ. (ଅନୁ + ସମ୍ + ଧା + ର୍ମ.ଯ) ଯାହା ଖୋଜିବାକୁ ଦରକାର, ଅନ୍ୱେଷଣଯୋଗ୍ୟ ।

ଅନୁସଂବତ୍ସର—ବର୍ଷେ ବର୍ଷେ, ପ୍ରତିବର୍ଷ ।

ଅନୁସଂବରଣ—କ୍ଳୀ. ବି. ଅନୁକ୍ରମେ ଗୋପନ ।

**ଅନୁସଂହିତ**—ତ୍ରି. ବିଂ. ( ଅନୁ + ସମ୍ + ଧା + ର୍ମ. ତ ) ଯାହାର ଅନୁସନ୍ଧାନ କରା ହୋଇଅଛି, କୃତାନୁସନ୍ଧାନ ।

ଅନୁସନ୍ତତ—ସ୍ତ୍ରୀ. ବି. ଧାରାବାହିକ, ଅବିଚ୍ଛେଦ ଧାରା ।

ଅନୁସନ୍ଧାନ—କ୍ଲୀ.ବି. ( ଅନୁ + ସମ୍ + ଧା + ଭା. ଅନ୍) ଅନ୍ୱେଷଣ, ଚର୍ଚ୍ଚା ।

ଅନୁସନ୍ଧାନୀ—ପୁଂ. ସ୍ତ୍ରୀ.ବିଂ. ଅନୁସନ୍ଧାନ କରିବାରେ ପଟୁ, ଯେ ଅନୁସନ୍ଧାନ-କରିଜାଣେ ।

ଅନୁସନ୍ଧାୟୀ—ପୁଂ. ବିଂ. (ଅନୁ + ସମ୍ + ଧା + କ.ଇନ୍ ) ଯେ ଅନୁସନ୍ଧାନ କରେ, (ସ୍ତ୍ରୀ) ଅନୁସନ୍ଧାୟିନୀ ।

ଅନୁସର—ପୁଂ.ବି. ( ଅନୁ + ସୃ + କ. ଅ) ପଶ୍ଚାତ୍ ଗମନ, ଯେ ପ୍ରଭୁ ପଛରେ ଯାଏ, ଚାକର ।

ଅନୁସରଣ—ବି. (ଅନୁ + ସ + ଭା. ଅନ) ଅନୁବୃତ୍ତି, ଅନୁଗମନ, ପଛରେ ଯିବା, (ବିଂ) ଅନୁସୃତ ।

ଅନୁସରଣିଆ—ପୁଂ. ସ୍ତ୍ରୀ. ବିଂ. (ଗ୍ରା) ଆଶ୍ରିତ, ଅନୁସରଣକାରୀ, ଉମେଦୁଆର ।

ଅନୁସରିବା—ଗ୍ରା. କ୍ରି. ଆଶ୍ରିତ ହୋଇ ରହିବା ।

ଅନୁସରଣୀୟ—ତ୍ରି.ବିଂ. ( ଅନୁ + ସୃ + ର୍ମ ଅନୀୟ)ଯାହାର ଅନୁସରଣ କରିବା ଉଚିତ ।

ଅନୁସବନ—ଅବ୍ୟ,ଯଜ୍ଞସ୍ନାନପର, ସୋମର ପଶ୍ଚାତ୍ ।

ଅନୁସାର—ବିଂ. ( ଅନୁ + ସୃ + ଭା. ଅ) ଅନୁସରଣ,ରୀତି, ଅନୁଗମନ,ଅନ୍ୱେଷଣ, ଅନୁକ୍ରମ ।

ଅନୁସାରଣା—ସ୍ତ୍ରୀ. ବି. ଅନୁଧାବନ, ବିବେଚନା, ଅପସାରଣ, ବାହାରକରିଦେବା ।

ଅନୁସାରୀ—ପୁଂ.ବିଂ (ଅନୁ + ସୃ + କ. ଇନ୍) ଅନୁସରଣକରିବା, ଅନୁଯାୟୀ ଅନୁରୂପ,(ସ୍ତ୍ରୀ) ଅନୁସାରିଣୀ ।

ଅନୁସାରେ—କ୍ରିଂ. ବିଂ. (ଗ୍ରା) ଅନୁଯାୟୀ ଲକ୍ଷ୍ୟ କରି ।

ଅନୁସାୟ—ସାୟାହ୍ନେ, ସନ୍ଧ୍ୟାକାଳେ ।

ଅନୁସୂଚକ—ପୁଂ.ବିଂ. (ଅନୁ + ସୂଚ୍ + କ. ଅକ) ଚିହ୍ନମାତ୍ର, ବିଷୟର ଆବଶ୍ୟକ କରୁଥିବା, (ସ୍ତ୍ରୀ) ଅନୁସୂଚିକା ।

ଅନୁସଚନା—ସ୍ତ୍ରୀ ବି. ( ଅନୁ + ସୂଚ୍ + ଅନ୍ + ଆ) ଆନ୍ଦୋଳନ,ପଶ୍ଚାଦ୍ଭାବନା ।

ଅନୁସୂୟା—ସ୍ତ୍ରୀ. ବି. ( ଅନୁ + ସୃ + ଯ + ଆ)ଅତ୍ରିମୁନିଙ୍କ ସ୍ତ୍ରୀ, ଶକୁନ୍ତଳାଙ୍କ ସଖୀବିଶେଷ ।

ଅନୁସ୍ୟୂତ—ବିଂ (ଅନୁ + ସିବ୍ + ର୍ମ.ତ) ସମ୍ବଦ୍ଧ, ଗ୍ରଥିତ, ଗୁନ୍ଥା, ସତତ ସମ୍ବଦ୍ଧ, ଦୃଢ଼ରୂପେ ସିଆଁ ହୋଇଥିବା ।

ଅନୁସ୍ତରଣ—ବି. ( ଅନୁ + ସ୍ତୃ + ଅନ) ମୃତ ବ୍ୟକ୍ତିର ଶୁଦ୍ଧି ଉପଲକ୍ଷେ, ଉତ୍ସର୍ଗ-କରାଯିବା ପଶୁ । [ଅନୁଗମନ ।

ଅନୁସୃତ—ସ୍ତ୍ରୀ. ବି. ( ଅନୁ + ସୃ + ତ)

ଅନୁସ୍ୱର୍ଗ—ବି. (ଅନୁ + ସ୍ୱର୍ଗ ) ତ୍ରିଶଙ୍କୁ ରାଜାଙ୍କପାଇଁ ବିଶ୍ୱାମିତ୍ର-ସୃଷ୍ଟ ସ୍ୱର୍ଗ ।

ଅନୁସ୍ୱର—ପୁଂ. ବି. (ଅନୁ + ସ୍ୱୃ + ଅ) ଅନୁସ୍ୱାର, 'ଂ' ଏହିରୂପ ଚିହ୍ନବିଶେଷ ।

ଅନୁସ୍ୱାର—ବି. ଯେଉଁ ବର୍ଣ୍ଣ ଅନ୍ୟ କୌଣସି ବର୍ଣ୍ଣର ଆଶ୍ରୟବ୍ୟତି-ରେକେ ଉଚ୍ଚାରିତ ହୋଇ ନ ପାରେ । ଅନୁନାସିକ ବିନ୍ଦୁଚିହ୍ନିତ ସ୍ୱର, ଅଂ ଇତ୍ୟାଦି ।

ଅନୁହରଣ—କ୍ଲୀ. ବି. (ଅନୁ + ହୃ + ଭା. ଅନ) କୌଣସି ଧର୍ମର ସବଂଦା ପରି-ଶୀଳନ କରିବା ।

ଅନୁହାର—ପୁଂ. ବି. (ଅନୁ + ହୃ + ଅ) ଅନୁକରଣ, ସଦୃଶୀକରଣ ।

ଅନୁହାର୍ଯ୍ୟ—ତ୍ରି. ବିଂ. ସଦୃଶୀକାର୍ଯ୍ୟ, ସାଦୃଶ୍ୟର ଯୋଗ୍ୟ, (ବି) ହିରଣ୍ୟକଶି-ପୁର ପୁଅ ପ୍ରହ୍ଲାଦର ଭାଇ । [କୃତ ।

ଅନନ୍ହୃତ—ତ୍ରି. ବିଂ. ଅନୁକୃତ, ସଦୃଶୀ-

ଅନୁହୋଡ଼—ହୁଲ ଡଙ୍ଗା ।

ଅନୂକ—ପୁଂ. ବି. (ଅନୁ + ଉଚ + ଅ) ଗତଜନ୍ମ, ଆଚରଣ, ସ୍ୱଭାବ, ବଂଶ ।

ଅନୂକାଶ—ପୁଂ. ବି. (ଅନୁ + କାଶ + ଅ) ବଂଶପ୍ରତ୍ୟାଶୀ, ଶୀଲତାକାଙ୍କ୍ଷୀ ।

ଅନୂଚାନ—ପୁଂ. ବିଂ. (ଅନୁ + ବଚ୍ + କ. ଆନ) ଶିକ୍ଷାଦି ଷଡ଼ଙ୍ଗର ଅଧ୍ୟୟନ-କାରୀ, ସୁବିଦ୍ୱାନ୍ , ବିନୀତ, ସୁସଭ୍ୟ ।

ଅନୂଚ୍ୟ—ବିଂ. ଅନୁବାଚ୍ୟ, ପଶ୍ଚାତ୍-କଥନୀୟ, ପାଠ୍ୟ ।

ଅନୂଢ଼—ପୁଂ.ବିଂ. (ଅନୁ + ବହ + ତ ) ଅବିବାହିତ, ବାଡ଼ୁଅ, (ସ୍ତ୍ରୀ) ଅନୂଢ଼ା ।

ଅନୂଢ଼ା—ସ୍ତ୍ରୀ. ବିଂ. ( ଅନୂଢ଼ + ଆ ) ଅବିବାହିତା ।

ଅନୂତି—ସ୍ତ୍ରୀ. ( ଅନ + ବେ + ତି ) ଗମନର ଅଭାବ ।

ଅନୂଦିତ—ବିଂ. (ଅନୁ + ବଦ + ର୍ମ.ତ) ଭାଷାନ୍ତରିତ, ତର୍ଜମା କରାଯାଇଥିବା ।

ଅନୂଦ୍ୟ—ତ୍ରି. ବିଂ ( ଅନୁ + ବଦ + ର୍ମ,ଯ)ଅନୁବାଦଯୋଗ୍ୟ,ଅବକ୍ତବ୍ୟ,ଭାରି, ଅତିକୃପଣ ।

ଅନୂର୍ଦ୍ଧ୍ୱ—ବିଂ. ଅନୁଚ୍ଚ, ଖର୍ବ ।

ଅନୂନ—ତ୍ରି.ବିଂ.(ନ + ଊନ)ଅଖଣ୍ଡ,ପୂର୍ଣ୍ଣ, ସମଗ୍ର,ହୀନନୁହେଁ, ଯାହା ଶ୍ରେଷ୍ଠ ନୁହେଁ ।

ଅନୂନକ—ବିଂ. ସକଳ, ବିଶ୍ୱ, ଅଶେଷ, ନିଖିଳ, ନିଃଶେଷ ।

ଅନୂପ—ତ୍ରି. ବିଂ. (ଅନୁ + ଅପ୍ + ଅ) ଜଳପ୍ଲାବିତ,ଜଳୀୟ,ଓଦା, (ବି) ମହିଷ ।

ଅନୂପଜ—କ୍ଲୀ. ବିଂ. ଅଦା, ଜଳବହୁଳ-ଦେଶରେ ଯେ ଦ୍ରବ୍ୟ ଜନ୍ମେ ।

ଅନୂପ୍ୟ—ତ୍ରି. ବିଂ. ଜଳବହୁଳଦେଶରେ ଯେ ଦ୍ରବ୍ୟ ଜନ୍ମେ । [ଅଗନ୍ତବ୍ୟ ।

ଅନୂର୍ମି—ତ୍ରି. ବିଂ. ଅଧ୍ୱଂସ୍ୟ, ଶତ୍ରୁର

ଅନୂବନ୍ଧ୍ୟ—ବଧନିମିତ୍ତ ଯଜ୍ଞର ବନ୍ଧନୀୟ ପଶୁ ।

ଅନୂଯାଜ—ପୁଂ.ବି. (ଅନୁ + ଯଜ + ଅ) ଯାଗର ଶେଷ ଅଙ୍ଗ ।

ଅନୂରାଧ—ତ୍ରି.ବିଂ. ( ଅନୁ + ରାଧ + ତ) ଆରାଧନାର ଯୋଗ୍ୟ ।

ଅନୂରୁ—ବି.(ବ.ବ୍ରୀ)ସୂର୍ଯ୍ୟସାରଥି,ଗରୁଡ଼ଙ୍କ ବଡ଼ଭାଇ ଅରୁଣ, (ବିଂ)ଜଙ୍ଘହୀନ ।

ଅନୂରୁସାରଥି—ବି. ସୂର୍ଯ୍ୟ ।

ଅନୂଷର—ତ୍ରି.ବିଂ.(ନ + ରୁଷର)କଣ୍ଟକ-ଶୂନ୍ୟ ।

ଅନୃଚ୍—ପୁଂ. ବି. (ନ + ଋଚ୍ + କ୍ୱିପ୍ + ଅ)ଅନୁପନୀତ ବାଳକ, ଯାହାର ଉପନୟନ ସଂସ୍କାର ହୋଇ ନାହିଁ, (ବିଂ. ପୁଂ.) ଅବ୍ରତୁଆ ।

ଅନୃଜୁ—ତ୍ରି. ବିଂ. (ନ + ଋଜୁ) ଶଠ, ବକ୍ର, କୁଟିଳ ।

ଅନୃଣ—ତ୍ରି.ବିଂ. (ନ + ଋଣ)ଋଣଶୂନ୍ୟ, ଯାହାର କରଜ ନାହିଁ, (ସ୍ତ୍ରୀ) ଅନୃଣା ।

ଅନୃଣୀ—ପୁଂ. ବିଂ.(ନ ଋଣୀ)ଅଋଣୀ, ଋଣମୁକ୍ତ,(ସ୍ତ୍ରୀ)ଅନୃଣିନୀ ।

ଅନୃତ—କ୍ଳୀ. ବିଂ.(ନ + ଋତ) ଅସତ୍ୟ, ମିଥ୍ୟା,(ବି ଅନୃତବାକ୍ୟ,ହିଂସା; କୃଷି-କର୍ମ,ଶସ୍ୟୋତ୍ପାଦନ କ୍ରିୟା ।

ଅନୃତକ—ତ୍ରି. ବିଂ. ଯେ ମିଥ୍ୟା କହି-ବାକୁ ଭଲପାଏ ନାହିଁ ।

ଅନୃତଦେବ—ଯାହାର ଦେବତା ମିଥ୍ୟା ।

ଅନୃତବାଦୀ—ପୁଂ. ବିଂ. ମିଥ୍ୟାବାଦୀ, ମିଛୁଆ,(ସ୍ତ୍ରୀ) ଅନୃତବାଦିନୀ ।

ଅନୃତୁ—ପୁଂ. ବି. ବର୍ଷାଦିଭିନ୍ନ କାଳ ।

ଅନୃଶଂସ—ତ୍ରି. ବିଂ. (ନ + ନୃଶଂସ) ଅହିଂସ୍ର ।

ଅନେକ—ତ୍ରି. ବିଂ. (ନ—ଏକ) ଏକା-ଧିକ,ବହୁତ ।

ଅନେକଜ—ପୁଂ.ବି. ( ଅନ୍ + ଏକ + ଜନ୍ + ଅ) ଏକାଧିକଥରଜାତ, ପକ୍ଷୀ ।

ଅନେକଧା—ଅବ୍ୟ.(ଅନେକ + ଧା)ବହୁ-ପ୍ରକାର,ନାନାପ୍ରକାର, ଅନେକାଂଶରେ ।

ଅନେକପ—ପୁଂ.ବି. (ଅନେକ + ପା + କ + ଅ)ହସ୍ତୀ,ଦ୍ୱିପ,(ସ୍ତ୍ରୀ) ଅନେକପା ।

ଅନେକମୂର୍ତ୍ତି—ପୁଂ. ବି. ପରମେଶ୍ୱର ।

ଅନେକରୂପ—ପୁଂ, ବି. ବହୁରୂପ, ପର-ମେଶ୍ୱର ।

ଅନେକବିଧ—ତ୍ରି.ବିଂ. (ଅନେକ + ବିଧ) ବହୁ ପ୍ରକାର ।

ଅନେକଶଃ—ଅବ୍ୟ. ଅନେକବାର, ବହୁ-ବାର, ବହୁପରିମାଣରେ ।

ଅନେକାଗ୍ର—ତ୍ରି. ବିଂ. ଯେ ଆସକ୍ତ ନୁହେ, ବ୍ୟାକୁଳ ।

ଅନେକାନ୍ତ—ବିଂ. ଅସଙ୍ଗତ, ଅନ୍ୟଥା-ଯୁକ୍ତ, ବ୍ୟଭିଚାରବିଶିଷ୍ଟ ।

ଅନେକାନ୍ତବାଦୀ—ବୌଦ୍ଧବିଶେଷ ।

ଅନେକାର୍ଥ—ତ୍ରି. ବିଂ. ନାନାବୋଧକ ଶବ୍ଦ ।

ଅନେକାଶ୍ରୟ—ବି. ବହୁରକ୍ଷକ ।

ଅନେକାଶ୍ରିତ—ପୁଂ ବିଂ. ସାମାନ୍ୟ, ଅନେକର ଶରଣାପନ୍ନ ।

ଅନେଡ଼ମୂକ—ପୁଂ. ବିଂ. ଅତିଶୟ ବଧିର, ଅତିଶୟ ବୋକା, ଶଠ ।

ଅନେଦ୍ୟ—ବିଂ. ଅନିନ୍ଦନୀୟ, ଅପ୍ରଶସ୍ତ ।

ଅନେନସ୍—ତ୍ରି. ବିଂ. ବ୍ୟସନଶୂନ୍ୟ, ପାପଶୂନ୍ୟ ।

ଅନେନାଃ—ପୁଂ. ବିଂ. ପାପରହିତ, ନିଷ୍ପାପ, ନିଷ୍କଳଙ୍କ, ନିର୍ଦ୍ଦୋଷ, ପବିତ୍ର ।

ଅନେବ—ତ୍ରି. ବିଂ. ଅନ୍ୟବିଧି, କମ୍ବା ।

ଅନେହାଃ—ବି. (ଅନ + ଏହସ୍ + କାଳ, ସମୟ । [ଅଭାବ ।

ଅନୈକାଗ୍ର୍ୟ—କ୍ଳୀ.ବି.ମାନସିକସ୍ଥିରତାର-

ଅନୈକାନ୍ତ—ପୁଂ.ବିଂ. (ନ + ଏକାନ୍ତ) ବ୍ୟଭିଚାରୀ, (ସ୍ତ୍ରୀ) (ଅନୈକାନ୍ତା) ।

ଅନୈକାନ୍ତିକ—ପୁଂ.ବିଂ.ନିତାନ୍ତ, ଅତି-ଶୟ, ଅତିମାତ୍ର ।

ଅନୈକ୍ୟ—ବି. (ନ + ଐକ୍ୟ) ଏକତାର ଅଭାବ, ବିରୋଧ ।

ଅନୈତିହ୍ୟ—ତ୍ରି. ବିଂ. ପରମ୍ପରାଗତ ପ୍ରମାଣଶୂନ୍ୟ ।

ଅନୈପୁଣ—କ୍ଳୀ.ବି.ନିପୁଣତାର ଅଭାବ ।

ଅନୈର୍ଋତ,ଅନର୍ତ୍ତି—ବରାହମିହିର ଭାରତ ବର୍ଷକୁ ନଅଭାଗ କରିଥିଲେ, ତନ୍ମଧ୍ୟରୁ ଏକ ଖଣ୍ଡର ନାମବିଶେଷ ।

ଅନୈଶ୍ୱର୍ଯ୍ୟ—କ୍ଳୀ. ବି. ଅଧୀନତ୍ୱ ।

ଅନୈକ୍ୟ—କ୍ଳୀ.ବିଂ. (ଅନ + ଏକ + ଯ) ଅମିଳନ, ମତଭେଦ ।

ଅନୋ—ଅବ୍ୟ. ଅଭାବ ।

ଅନୋକହ—ପୁଂ. ବି. (ଅନସ୍ + ଅକ. ଅ—ଅନୋକ + ହନ.ଅ) ବୃକ୍ଷ ।

ଅନୋଦନ—ବି. (ବି.ବ୍ରୀ) ଯେ ଖାଦ୍ୟ-ଦ୍ରବ୍ୟ ମଧ୍ୟରେ ଅନ୍ନ ନାହିଁ, ଋତର ଅନ୍ନଭିନ୍ନ ଭକ୍ଷ୍ୟଦ୍ରବ୍ୟ ।

ଅନୌଚିତ୍ୟ—କ୍ଳୀ. ବି. (ଅନୁଚିତ + ଯ) ଅବିଧି, ଅଯୁକ୍ତତା, ଅକର୍ତ୍ତବ୍ୟତା ।

ଅନୌଦ୍ଧତ୍ୟ—କ୍ଳୀ.ବି. ନମ୍ରତା, ବିନୀତ-ଭାବ, ଶାନ୍ତଭାବ ।

ଅନୌପମ୍ୟ—ବିଂ. ( ନ + ଉପମା + ଯ) ଯାହାର ଅନ୍ୟ ଉପମା ନାହିଁ, ଆତ୍ମରୂପ, ଅନୁପମେୟ ।

ଅନୌରସ—ପୁଂ.ବି.ଔରସଭିନ୍ନ,ଔରସ-ପୁତ୍ରଛଡ଼ା ଦତ୍ତକାଦି,(ସ୍ତ୍ରୀ) ଅନୌରସା ।

ଅନଚ୍—(ଧାତୁ)ଗତି ଅର୍ଥରେ ପ୍ରୟୋଗ ।

ଅନଜ—ଏହାର ଅର୍ଥ ଗତି, କାନ୍ତି, ବ୍ୟକ୍ତ କରିବା ଅର୍ଥରେ ପ୍ରୟୋଗ ।

ଅନ୍ତ—(ଧାତୁ) ବନ୍ଧନ କରିବା ।

ଅନ୍ତ—ବି.(ଅମ୍ + ଭା.ତ) ଶେଷ, ସୀମା, ମୃତ୍ୟୁ, ସ୍ୱଭାବ, ନିଶ୍ଚୟ, ଗତିବିଧି, (ଗ୍ରା) ଅନ୍ତନାଡ଼ୀ, ଅନ୍ତବୁଜୁଲା ।

ଅନ୍ତଃ—ବି.(ଅମ୍ + ତରୁ) ହୃଦୟ, ମନଃ, ଭିତର, ମଧ୍ୟ ।

ଅନ୍ତଃକପଟୀ—ପୁଂ. ବିଂ.(ଅନ୍ତଃ + କପଟ + ଇନ୍) ଅନ୍ତଃକୁଟିଳ ।

ଅନ୍ତଃକରଣ—କ୍ଳୀ.ବି.(ଅନ୍ତର୍ + କରଣ) ମନଃ, ହୃଦୟ, ମାନସିକବୃତ୍ତିଚୟ ।

ଅନ୍ତଃକୁଟିଳ—ପୁଂ.ବିଂ. କପଟୀ, ବକ୍ରା-ନ୍ତକରଣ, (ସ୍ତ୍ରୀ) ଅନ୍ତଃକୁଟିଳା ।

ଅନ୍ତଃକ୍ରୁଦ୍ଧ—ତ୍ରି. ବିଂ. ହୃଦୟରେ ରୁଷ୍ଟ, ମନେମନେ କୁପିତ, ଯେ ଭିତରେ ଭିତରେ ରାଗିଯାଏ,(ସ୍ତ୍ରୀ) ଅନ୍ତଃକ୍ରୁଦ୍ଧା ।

ଅନ୍ତଃପାତ—ବି. ସନ୍ଧିସ୍ଥାନ ।

ଅନ୍ତଃପାତୀ—ବିଂ. (ଅନ୍ତଃ + ପତ୍ + ଇନ୍) ମଧ୍ୟଗତ, ଅନ୍ତର୍ଗତ, ଅନ୍ତର୍ବର୍ତ୍ତୀ ।

ଅନ୍ତଃପାତ୍ୟ—ଯାହାର ମଧ୍ୟେ ପାତକରି-ଯାଏ ସେହି ଦେଶ ।

ଅନ୍ତଃପୁଟ—ବି.(ଅନ୍ତଃ + ପୁଟ) ଅନ୍ତପୁଟି, ଉଦରସ୍ଥନାଡ଼ୀପଟଳ ।

ଅନ୍ତଃପୁର—ବି. ଅବରୋଧ, ରାଜବାଟିର ମଧ୍ୟସ୍ଥାନ ।

ଅନ୍ତଃପୁରଚର—ବି. ( ଅନ୍ତଃପୁର + ଚର + କ.ଅ)କଞ୍ଚୁକୀ, ଭିତରିଆ,(ସ୍ତ୍ରୀ)ଅନ୍ତଃ-ପୁରଚାରିକା ।

ଅନ୍ତଃପୁରଗୃହସ୍ଥ—ପୁଂ.ବି. କଞ୍ଚୁକୀ,ଅନ୍ତଃପୁରରକ୍ଷକଭୃତ୍ୟ(ସ୍ତ୍ରୀ)ଅନ୍ତଃପୁରଗୃହିଣୀ ।

ଅନ୍ତଃପୁରରକ୍ଷୀ—ବିଂ.ସ୍ତ୍ରୀରକ୍ଷକ,ଖୋଜା ।

ଅନ୍ତଃପୁରସହାୟ—ପୁଂ. ବି. ବିଦୂଷକ, କଞ୍ଚୁକୀପ୍ରଭୃତି ।

ଅନ୍ତଃପୁରିକ—ପୁଂ. ବି. ଅନ୍ତଃପୁରରକ୍ଷକ ଭୃତ୍ୟବିଶେଷ ।

ଅନ୍ତଃପୁରୀ—ବି. ମଧ୍ୟନଗର, ମଧ୍ୟପୁରୀ, ମଧ୍ୟନଦୀ ।

ଅନ୍ତଃପୁରିକା-ସ୍ତ୍ରୀ.ବି. ( ଅନ୍ତଃପୁର + ଇକ + ଆ ) ଅନ୍ତଃପୁରସ୍ଥା ସ୍ତ୍ରୀଲୋକ ।

ଅନ୍ତଃପୁଷ୍ପ—ଦ୍ୱାଦଶବର୍ଷବୟସ୍କା ସ୍ତ୍ରୀର ଅପ୍ରକାଶିତ ରଜ ।

ଅନ୍ତଃପୂଜା—ବି.ମାନସିକ ଦେବାର୍ଚ୍ଚନା ।

ଅନ୍ତଃପ୍ରକୃତି-ସ୍ତ୍ରୀ.ବି. ଅମାତ୍ୟାଦିରାଜ୍ୟାଙ୍ଗବିଶେଷ । [ ନ୍ତରଗତ ।

ଅନ୍ତଃପ୍ରବିଷ୍ଟ—ତ୍ରି.ବିଂ. ହୃଦ୍‌ଗତ, ଅଭ୍ୟ-

ଅନ୍ତଃଶତ୍ରୁ—ପୁଂ. ବିଂ. (ଅନ୍ତଃ + ଶତ୍ରୁ) ଅନ୍ତରସ୍ଥ ଶତ୍ରୁ, କାମାଦିରିପୁଗଣ ।

ଅନ୍ତଃଶରୀର—କ୍ଲୀ. ବି. ବେଦାନ୍ତପ୍ରସିଦ୍ଧ ସୂକ୍ଷ୍ମ ଶରୀର ।

ଅନ୍ତଃଶଲ୍ୟ—କ୍ଲୀ. ବି. ଅନ୍ତଃକରଣପକ୍ଷେ ଶଲ୍ୟପରି କଷ୍ଟଦାୟକ ।

ଅନ୍ତଃସଜ୍ଞ—ବିଂ ଯାହା ଅନ୍ତଃକରଣରେ ଚୈତନ୍ୟ ବା ଜ୍ଞାନ ନ ଥାଏ ।

ଅନ୍ତଃସତ୍ତ୍ୱା—ସ୍ତ୍ରୀ. ବିଂ. (ଅନ୍ତଃ + ସତ୍ତ୍ୱ + ଆ) ଗର୍ଭିଣୀ,ଗର୍ଭବତୀ,ଗୁର୍ବିଣୀ, (ବି.ସ୍ତ୍ରୀ) ଭଲ୍ଲାତକ, ଭେଲା ।

ଅନ୍ତଃସଲିଲ—କ୍ଲୀ.ବି.ଅଭ୍ୟନ୍ତରସ୍ଥ ବାରି, ଭୂତଳସ୍ଥ ବା ମୃତ୍ତିକାର ନିମ୍ନସ୍ଥ ଜଳ ।

ଅନ୍ତଃସଲିଲବାହିନୀ—ସ୍ତ୍ରୀ. ବିଂ. ଯାହାର ତଳରେ ଜଳଧାରା ବହୁଅଛି ।

ଅନ୍ତଃସଲିଲା—ସ୍ତ୍ରୀ. ବିଂ. ଯେ ନଦୀର ଜଳ ବାଲିଭିତରେ ଥାଏ, ସରସ୍ୱତୀ, ଫଲ୍‌ଗୁ, ତାପ୍ତି, ନିର୍ବିନ୍ଧ୍ୟା ଇତ୍ୟାଦି ।

ଅନ୍ତଃସାର—ପୁଂ. ବି. ଅନ୍ତର୍ନିହିତସାର, ଦୃଢ଼ପଦାର୍ଥ, (ସ୍ତ୍ରୀ) ଅନ୍ତଃସାରା ।

ଅନ୍ତଃସାରଶୂନ୍ୟ—ତ୍ରି. ବିଂ. ଯାହାର ଭିତରେ ସାରାଂଶ ନାହିଁ, ଶକ୍ତିଗର୍ଭ, ପଦାର୍ଥହୀନ, ନିର୍ଗୁଣ,(ସ୍ତ୍ରୀ) ଅନ୍ତଃସାରଶୂନ୍ୟା ।

ଅନ୍ତଃସୁଖ—ବିଂ. ଯେ ଆତ୍ମାକୁ ସୁଖରେ ରଖିଅଛୁ, ଯେ ଆତ୍ମାର ଅନୁସନ୍ଧାନରେ ସୁଖୀ ହୁଏ ।

ଅନ୍ତଃସ୍ଥ—ତ୍ରି.ବିଂ.ମଧ୍ୟସ୍ଥିତ, (ବି) ଯେଉଁ ବର୍ଣ୍ଣ ସ୍ପର୍ଶ ଓ ଅନ୍ତସ୍ଥବର୍ଣ୍ଣ ମଧ୍ୟରେ ଥାଏ, ଯଥା:—ଯ,ର,ଲ,ବ ।

ଅନ୍ତଃସ୍ୱେଦ—ତ୍ରି. ବିଂ. ଯାହାର ଶରୀର ମଧ୍ୟରେ ଝାଳ ଅଛୁ, ବା ତାପ ଅଛୁ ।

ଅନ୍ତକ—ପୁଂ. ବି. ଯମ, ମୃତ୍ୟୁଦେବତା

ଅନ୍ତକର—ତ୍ରି.ବିଂ. ନାଶକାରକ, (ସ୍ତ୍ରୀ) ଅନ୍ତକାରୀ ।

ଅନ୍ତକାରୀ—ତ୍ରି. ବିଂ. ବିନାଶକାରକ, (ସ୍ତ୍ରୀ) ଅନ୍ତକାରିଣୀ ।

ଅନ୍ତକାଲ—ବି. ଜୀବର ମୃତ୍ୟୁସମୟ, ଶେଷକାଳ ।

ଅନ୍ତକୃତ୍—ବିଂ. (ଅନ୍ତ + କୃ + କ୍ୱିପ୍) ବିନାଶକ ।

ଅନ୍ତକୃଦ୍ଦଶା—ଜୈନଧର୍ମ ପୁସ୍ତକବିଶେଷ ।

ଅନ୍ତଗ—ତ୍ରି.ବିଂ. ପାରଗ, ଶେଷଦର୍ଶୀ, ପାରଙ୍ଗମ ।

ଅନ୍ତଚର—ତ୍ରି. ବିଂ. ଯେ କାର୍ଯ୍ୟର ଶେଷ ପର୍ଯ୍ୟନ୍ତ କରେ ।

ଅନ୍ତତଃ—ଗ୍ରା.ତ୍ରି. ବିଂ.ନିତାନ୍ତ ପକ୍ଷରେ, ଶେଷରେ ।

ଅନ୍ତପାଳ—ବି. ଦ୍ୱାରପାଳ, ଦ୍ୱାରୀ ।

ଅନ୍ତବାନ୍—ପୁଂ.ବିଂ. ଅନ୍ତବିଶିଷ୍ଟ,ଶାନ୍ତ, ସସୀମ, (ସ୍ତ୍ରୀ) ଅନ୍ତବତୀ ।

ଅନ୍ତବାସୀ—ପୁଂ. ବି. ( ଅନ୍ତ + ବସ + ଣିନ୍. କ ) ଅନ୍ତେବାସୀ. ଛାତ୍ର, ଶିଷ୍ୟ ।

ଅନ୍ତବୃକ୍‌ଲା—ବି. ଅନ୍ତସମୂହ ।

ଅନ୍ତମ—ତ୍ରି. ବିଂ. ଅନ୍ତିକତମ, ଅତ୍ୟନ୍ତ ନିକଟସ୍ଥ ।

ଅନ୍ତର—ଅବ୍ୟ. (ଅନ୍ତ + ରା) ଅନ୍ତରେ, ମଧ୍ୟରେ, ଶେଷରେ, ମନରେ ।

ଅନ୍ତର—କ୍ଲୀ.ବି.(ଅନ୍ତ + ରା + ଅ) ଭେଦ, ପରମାତ୍ମା, ବ୍ୟବଧାନ, ମଧ୍ୟ, ବିରଳ, ଅବକାଶ, ଅବଧି, ପରିଧାନବସ୍ତ୍ର, ଅନ୍ତର୍ଦ୍ଧାନ, ଛିଦ୍ର. ଆତ୍ମୀୟ, ସଦୃଶ, ପରସ୍ପର ବୈଲକ୍ଷଣରୂପବିଶେଷ ।

ଅନ୍ତରଗ୍ନି—ବି. ଜଠରାନଳ ।

ଅନ୍ତରଙ୍ଗ—ବି. ଆତ୍ମୀୟ ସ୍ୱଜନ, ଅନ୍ତଃକରଣ, (ବିଂ)ଯେଉଁ ବନ୍ଧୁସଙ୍ଗେ ଖୁବ୍ ମନ ମିଳିଥାଏ ।

ଅନ୍ତରଙ୍ଗତା-ବି. ଆତ୍ମୀୟତା,ସୌହାର୍ଦ୍ଦ୍ୟ ।

ଅନ୍ତରଚକ୍ର—ତନ୍ତ୍ରୋକ୍ତ ଶରୀରସ୍ଥ ପଦ୍ମାକାର ଷଟ୍‌ଚକ୍ରବିଶେଷ ।

ଅନ୍ତରଜ୍ଞ—ତ୍ରି ବିଂ. ମର୍ମଜ୍ଞ, ବିଶେଷଜ୍ଞ, ଯେ ଭିତରକଥା ବିଶେଷଭାବେ ଜାଣେ, (ସ୍ତ୍ରୀ) ଅନ୍ତରଜ୍ଞା ।

ଅନ୍ତରଟିପନ—ଗ୍ରା. ବିଂ. ଭିତରେ ଭିତରେ ଟିପିବା ବା ଚିମୁଟି ଦେବା, ଗୁପ୍ତଭାବେ ବ୍ୟଥାପ୍ରଦାନ ।

ଅନ୍ତରଯାମୀ—ପୁଂ. ବିଂ. ଯେ ମନଭାବ ବୁଝିପାରେ, (ସ୍ତ୍ରୀ) ଅନ୍ତରଯାମିନୀ ।

ଅନ୍ତରଣ—କ୍ଲୀ. ବି. ବ୍ୟବଧାନ କରିବା ।

ଅନ୍ତରତମ—ତ୍ରି. ବିଂ. ବିଶେଷ ଆତ୍ମୀୟ ।

ଅନ୍ତରତଃ—(ଅବ୍ୟ)ମଧ୍ୟେ ।

ଅନ୍ତରଦୃଶ—ପୁଂ.ବି. ମର୍ମଜ୍ଞ,ସୂକ୍ଷ୍ମଦର୍ଶୀ, ଭେଦଜ୍ଞ ।

ଅନ୍ତରଦେଶ—ପୁଂ. ବି. ମଧ୍ୟଦେଶ ।

ଅନ୍ତରପୁରୁଷ—ପୁଂ. ବି. ପରମାତ୍ମା, ଯେ ସମସ୍ତଙ୍କର ଅନ୍ତର୍ଯ୍ୟାମୀ ।

ଅନ୍ତରପୂଜା—ସ୍ତ୍ରୀ. ବି. ତନ୍ତ୍ରୋକ୍ତ ମନଃକଳ୍ପିତ ଦ୍ରବ୍ୟଦ୍ୱାରା ପୂଜା ।

ଅନ୍ତରପ୍ରଭବ—ହୀନବର୍ଣ୍ଣପୁରୁଷ ଓ ଉତ୍କୃଷ୍ଟ ବର୍ଣ୍ଣ ସ୍ତ୍ରୀ-ମିଳନରୁ ଉତ୍ପତ୍ତି ପୁତ୍ର ।

ଅନ୍ତରସ୍ଥ—ମଧ୍ୟଗମନ, ବ୍ୟବଧାନ, ହୃଦ୍‌ଗତ, ଆତ୍ମୀୟ, ଅନ୍ତରଙ୍ଗ ।

ଅନ୍ତରସ୍ୱଣ—କ୍ଲୀ. ବି. ମଧ୍ୟେ ଗମନ ।

ଅନ୍ତରରହସ୍ୟ—କ୍ଲୀ.ବି. ମଧ୍ୟର ରହସ୍ୟ, ଚରିଗତ ରହସ୍ୟ ।

ଅନ୍ତରଶାସ୍ତ୍ରୀ—ପୁଂ. ଚଉସ୍ତଙ୍କର ।

ଅନ୍ତରସ୍ଥ—ପୁଂ. ବ. ( ଅନ୍ତର + ସ୍ଥା + ଅ ) ମଧ୍ୟସ୍ଥିତ ।
ଅନ୍ତରା-(ଅବ୍ୟ) ନିକଟରେ, ମଧ୍ୟ, ବିନା ।
ଅନ୍ତରାତ୍ମା—ପୁଂ. ବ. ଜୀବାତ୍ମା । [ପତ୍ନୀ ।
ଅନ୍ତରାପତ୍ୟା—ସ୍ତ୍ରୀ.ବ. ଗର୍ଭବତୀ, ଅନ୍ତଃ-
ଅନ୍ତରାଭବଦେହ—ତ୍ରି. ବଂ. ଗନ୍ଧର୍ବ ।
ଅନ୍ତରାଭବସତ୍ତ୍ୱ—ଗନ୍ଧର୍ବ ।
ଅନ୍ତରାୟ—ପୁଂ.ବ. ବିଘ୍ନ, ପ୍ରତ୍ୟୂହ,ପ୍ରତିବନ୍ଧ, ବାଧା ।
ଅନ୍ତରାରାମ—ପୁଂ.ବ.ଆତ୍ମାବିଷୟେ ଅଭିରତ, ଆତ୍ମାନୁରକ୍ତ ।
ଅନ୍ତରାଳ – (ଅବ୍ୟ)ବ୍ୟବଧାନ, ଆଢୁଆଳ ।
ଅନ୍ତରାଳବର୍ତ୍ତୀ—ପୁଂ. ବଂ. ଆଢୁଆଳସ୍ଥ, ଉପଅନ୍ତରାଳ, (ସ୍ତ୍ରୀ) ଅନ୍ତରାଳବର୍ତ୍ତିନୀ ।
ଅନ୍ତରାଳଦିକ୍—ଦୁଇଦିଗର ମଧ୍ୟସ୍ଥ କୋଣ
ଅନ୍ତରାବେଦୀ—ପୁଂ. ବଂ. ମର୍ମଜ୍ଞ, ଯେ ଭିତର ବିଷୟ ଜାଣେ, (ସ୍ତ୍ରୀ) ଅନ୍ତରାବେଦିନୀ ।
ଅନ୍ତରାବେଦୀ—ସ୍ତ୍ରୀ. ବ.ପରିଷ୍କୃତା ଭୂମି ।
ଅନ୍ତରିକ୍ଷ (ଅନ୍ତରୀକ୍ଷ)—କ୍ଲୀ.ବ. ଆକାଶ ।
ଅନ୍ତରିକ୍ଷପ୍ରା—ତ୍ରି. ବଂ. ଅନ୍ତରିକ୍ଷପୂରକ, ଯେ ନିଜର ତେଜଦ୍ୱାରା ଅନ୍ତରିକ୍ଷ ପୂରଣ କରେ ।
ଅନ୍ତରିକ୍ଷପ୍ରୁତ୍—ତ୍ରି. ବଂ.(ଅନ୍ତରିକ୍ଷ + ପ୍ରୁ + କ୍ୱିପ୍ ) ଅନ୍ତରିକ୍ଷଚର, ଖେଚର ।
ଅନ୍ତରୀକ୍ଷବିଦ୍ୟା—ସ୍ତ୍ରୀ. ବ. ଯେଉଁ ଶାସ୍ତ୍ରରେ ଜ୍ଞାନ ଥିଲେ ଆକାଶର ସମସ୍ତତତ୍ତ୍ୱ ଜଣାଯାଏ ।
ଅନ୍ତରିକ୍ଷସଦ୍—ତ୍ରି. ବଂ. ( ଅନ୍ତରିକ୍ଷ + ସଦ୍ + କ୍ୱିପ୍ ) ଖେଚର,ଆକାଶଚର ।
ଅନ୍ତରୀକ୍ଷସଦ୍ୟ—ତ୍ରି.ବଂ. ଅନ୍ତରୀକ୍ଷସଦନ, ଆକାଶଗମନ ।
ଅନ୍ତରିକ୍ଷ୍ୟ—ତ୍ରି. ବ. (ଅନ୍ତରିକ୍ଷ + ଯ) ଅନ୍ତରୀକ୍ଷଜାତ ।
ଅନ୍ତରିତ—ତ୍ରି. ବଂ. (ଅନ୍ତର + ଇ + ତ)ବ୍ୟବଧାନପ୍ରାପ୍ତ, ଅନ୍ତର୍ହିତ,ଅଦୃଶ୍ୟ ।
ଅନ୍ତରିନ୍ଦ୍ରିୟ—କ୍ଲୀ. ବ. ଅନ୍ତଃକରଣ ।
ଅନ୍ତରୀକ୍ଷ—କ୍ଲୀ. ବ. ଆକାଶ ।

ଅନ୍ତରୀକ୍ଷଜଳ—କ୍ଲୀ ବ. ଆକାଶରୁ ପଡ଼ିବା ଜଳ, ଦିବ୍ୟୋଦକ ।
ଅନ୍ତରୀକ୍ଷଚର—ତ୍ରି. ବଂ. ଆକାଶରେ ଭ୍ରମଣକାରୀ, ଶୂନ୍ୟରେ ବିଚରଣକାରୀ, ଖେଚର ।
ଅନ୍ତରୀକ୍ଷବାସୀ—ପୁଂ. ବ. ( ଅନ୍ତରୀକ୍ଷ + ବସ୍ + ଇନ୍ ) ଆକାଶନିବାସୀ, ଶୂନ୍ୟବାସୀ, (ସ୍ତ୍ରୀ) ଅନ୍ତରୀକ୍ଷବାସିନୀ ।
ଅନ୍ତରୀକ୍ଷମଣ୍ଡଳ—କ୍ଲୀ. ବ. ନକ୍ଷତ୍ରମଣ୍ଡଳ, ଗୋଲାକାର ଆକାଶ । [ରୋଧ ।
ଅନ୍ତରୀଣ—ତ୍ରି.ବଂ.ମଧ୍ୟସ୍ଥ, ଅନ୍ତର୍ବର୍ତ୍ତୀ, ଅବ-
ଅନ୍ତରୀପ—କ୍ଲୀ.ବ. ଯେ ଭୂଭାଗ ଗୋଜିଆ ହୋଇ ବହୁଦୂର ସମୁଦ୍ରଭିତରକୁ ଯାଇଅଛି (ଯଥା:—କୁମାରିକାଅନ୍ତରୀପ)
ଅନ୍ତରୀୟ—କ୍ଲୀ. ବ. ( ଅନ୍ତର + ଈୟ ) ପରିଧାନ ବସ୍ତ୍ର, ଅଧୋବାସ ।
ଅନ୍ତରୀଳ—ରାଜାଜ୍ଞାରେ ସ୍ଥାନବିଶେଷ ଅବରୋଧ କରିବା ।
ଅନ୍ତରୁଦକ—(ଅବ୍ୟ) ଜଳମଧ୍ୟରେ ।
ଅନ୍ତରେ—(ଅବ୍ୟ)ମଧ୍ୟରେ । [ରେକେ
ଅନ୍ତରେଣ—(ଅବ୍ୟ) ବିନା,ମଧ୍ୟ, ବ୍ୟତି-
ଅନ୍ତର୍ଗଡ଼ୁ—ପୁଂ.ବ. ପୃଷ୍ଠମଧ୍ୟସ୍ଥ ମାଂସରୋଗବିଶେଷ, କୁଜ ।
ଅନ୍ତର୍ଗତ—ତ୍ରି.ବଂ. (ଅନ୍ତଃ + ଗମ୍ + ତ) ହୃଦୟସ୍ଥ ( ଭାବ ) ବିସ୍ମୃତ, ମଧ୍ୟବର୍ତ୍ତୀ, ମଧ୍ୟଗତ ।
ଅନ୍ତର୍ଗର୍ଭ—ତ୍ରି.ବଂ. ଗର୍ଭଯୁକ୍ତ, କଦଳୀଗଛ, କୁଶ, (ସ୍ତ୍ରୀ)ଅନ୍ତର୍ଗର୍ଭା-ଗର୍ଭବତୀ ।
ଅନ୍ତର୍ଗର୍ଭୀ—ତ୍ରି. ବଂ. ଗର୍ଭଯୁକ୍ତ,କଦଳୀଗଛ, କୁଶ, (ସ୍ତ୍ରୀ) ଅନ୍ତର୍ଗର୍ଭିଣୀ ।
ଅନ୍ତର୍ଗିରି—(ଅବ୍ୟ)ପର୍ବତ ମଧ୍ୟେ ।
ଅନ୍ତର୍ଗିରି—ପର୍ବତ ମଧ୍ୟେ ।
ଅନ୍ତର୍ଗୂଢ଼—ତ୍ରି.ବଂ. (୭ତତ୍) ମନଗୁପ୍ତ, ବାହାରେ ଅପ୍ରକାଶିତ, ସ୍ତ୍ରୀ ଅନ୍ତର୍ଗୂଢ଼ା ।
ଅନ୍ତର୍ଗୃହ—କ୍ଲୀ.ବ.ଆବରଣଯୁକ୍ତ ଗୃହ ।
ଅନ୍ତର୍ଗେହ—କ୍ଲୀ. ବ. କାଶୀସ୍ଥିତ ସାତଗୋଟି ଆବରଣଯୁକ୍ତ ସ୍ଥାନ ।
ଅନ୍ତର୍ଘଣ—ପୁଂ. ବ. ଦ୍ୱାରର ବାହାରେ ଖୋଲାସ୍ଥାନ ।

ଅନ୍ତର୍ଘନ-ପୁଂ.ବ. ଗ୍ରାମର ବାହାର ସ୍ଥାନ, ଅଭ୍ୟନ୍ତର ପ୍ରଦେଶ, ଗୃହର ଅବକାଶ ପ୍ରଦେଶ ।
ଅନ୍ତର୍ଜଗତ୍—କ୍ଲୀ.ବ. ଅନ୍ତଃସ୍ଥିତ ଜଗତ୍, ମନୋଗତ ଭାବ ସମୂହ, ( ବି ) ଅନ୍ତର୍ଜାଗତିକ ।
ଅନ୍ତର୍ଜଠର—( ଅବ୍ୟ ) ଜଠର ମଧ୍ୟ, ଉଦରସ୍ଥ କୋଷ୍ଠବିଶେଷ, ପାକାଶୟ ।
ଅନ୍ତର୍ଜଳ—କ୍ଲୀ. ବ. ବାକ୍ୟପାଣି, ଜଳମଧ୍ୟରେ ।
ଅନ୍ତର୍ଜଳାଗ୍ରର-ପୁଂ.ବ. ପାଦଠାରୁ ନାଭିପର୍ଯ୍ୟନ୍ତ ଜଳରେ ସ୍ନାନରୂପ ଆଗ୍ରର ।
ଅନ୍ତର୍ଜଳି, ଅନ୍ତର୍ଜଳୀ—ସ୍ତ୍ରୀ.ବ. ମୁମୂର୍ଷୁ ବ୍ୟକ୍ତିକୁ ମୃତ୍ୟୁର ଅବ୍ୟବହିତ ପୂର୍ବେ ଗଙ୍ଗାଜଳରେ ସ୍ନାନ କରାଇବା ।
ଅନ୍ତର୍ଜଲୌଘ—ପୁଂ. ବ. ( ଅନ୍ତଃ + ଜଲୌଘ) ଭୂଗର୍ଭସ୍ଥ ହ୍ରଦ ବା ପ୍ରସ୍ରବଣ, ପୃଥିବୀର ଅଭ୍ୟନ୍ତରରେ ଯେଉଁ ଜଳ ଅଛି ।
ଅନ୍ତର୍ଜାନୁ—(ଅବ୍ୟ)ଜାନୁଦ୍ୱୟର ମଧ୍ୟରେ, ଦୁଇ ଆଣ୍ଠୁର ମଧ୍ୟଭାଗେ ।
ଅନ୍ତର୍ଜାତ—ତ୍ରି. ବଂ (୭ତତ୍) ମନୋମଧ୍ୟଜାତ, ସୁଖ,ଦୁଃଖ, କାମ,କ୍ରୋଧାଦି, (ସ୍ତ୍ରୀ) ଅନ୍ତର୍ଜାତା ।
ଅନ୍ତର୍ଜ୍ୟୋତିଃ—କ୍ଲୀ.ବ.ଅନ୍ତରାତ୍ମା,ଚୈତନ୍ୟସ୍ୱରୂପ, ପରମେଶ୍ୱର, ଜ୍ୟୋତିର୍ମୟ ।
ଅନ୍ତର୍ଜ୍ୱଳନ—କ୍ଲୀ.ବ.ଶରୀରମଧ୍ୟେ ଦାହ, ଚିନ୍ତାଧିକ୍ୟ ।
ଅନ୍ତର୍ଦଧନ—କ୍ଲୀ.ବ.(ଅନ୍ତର୍ + ଦଧ + ଅନ) ମଦ୍ୟବୀଜ, ଯାହା ଖାଇ ଲୋକେ ମନର କଥା ଖୋଲି କହନ୍ତି ।
ଅନ୍ତର୍ଦର୍ଶନ—କ୍ଲୀ. ବ. (୬ତତ୍) ଆତ୍ମପରୀକ୍ଷା, ନିଜ ମନ ବ୍ୟାପାରସମୂହର ଅବଧାରଣା ।
ଅନ୍ତର୍ଦଶା—ସ୍ତ୍ରୀ. ବ.(ମଧ୍ୟ-କ.ଧା) ଗ୍ରହମାନଙ୍କର ଅନ୍ତର୍ଗତ ଆଧିପତ୍ୟ କାଳ, କୌଣସି ଗ୍ରହର ସ୍ଥୂଳଦଶାରେ ଅନ୍ୟ ଗ୍ରହର ଦଶା ।
ଅନ୍ତର୍ଦଶାହ—(ଅବ୍ୟ)ଦଶଦିନ ମଧ୍ୟରେ ।

**ଅନ୍ତର୍ଦ୍ଦହନ**—କ୍ଲୀ.ବି.ଅନ୍ତର୍ଦ୍ଦାହ, ଜ୍ୱରାଦିଜାତ ଦେହମଧ୍ୟସ୍ଥିତ ସନ୍ତାପ ।

**ଅନ୍ତର୍ଦ୍ଦାହ**—ପୁଂ. ବି. (ଅନ୍ତଃ + ଦହ + ଅ ) ମନଃକଷ୍ଟ, ଅଗ୍ନିଦାହପରି ମନର ବିଷମ କ୍ଲେଶ ।

**ଅନ୍ତର୍ଦ୍ଦାହନ**—କ୍ଲୀ. ବି. (୭ତତ୍ପୁ) ମନର ଭସ୍ମୀକରଣ ପରି ଅତି କ୍ଲେଶୋତ୍ପାଦନ ।

**ଅନ୍ତର୍ଦ୍ଦୁଷ୍ଟ**—ତ୍ରି.ବିଂ. (୭ତତ୍ପୁ) କୁଟିଳମନ, ଯାହାର ମନ ଦୋଷଯୁକ୍ତ ।

**ଅନ୍ତର୍ଦ୍ୱାର**—କ୍ଲୀ.ବି. (ମଧ୍ୟ କ.ଧା) ଗୃହର ମଧ୍ୟବର୍ତ୍ତୀ ଗୁପ୍ତଦ୍ୱାର, ଖିଡ଼କୀ, ଦରଜା, ଝରକାଦି ।

**ଅନ୍ତର୍ଦ୍ଦେଶ**—ପୁଂ. ବି. (ଅନ୍ତଃ + ଦେଶ) ଦୁଇ ପର୍ବତମଧ୍ୟବର୍ତ୍ତୀ ସ୍ଥାନ, ଅଭ୍ୟନ୍ତର ପ୍ରଦେଶ ।

**ଅନ୍ତର୍ଦ୍ଧା**—ସ୍ତ୍ରୀ. ବି. (ଅନ୍ତଃ + ଧା + ଭା: ଆ) ଅଦୃଶ୍ୟହେବା, ଲୁଚିରହିବା ।

**ଅନ୍ତର୍ଦ୍ଧାନ**—ବି. (ଅନ୍ତଃ + ଧା + ଭା.ଅନ) ତିରୋଧାନ, ବ୍ୟବଧାନ, ଅଦୃଶ୍ୟହେବା ।

**ଅନ୍ତର୍ଦ୍ଧି**—ପୁଂ.ବି (ଅନ୍ତଃ + ଧା + ଭା.ଇ) ଆଚ୍ଛାଦନ, ବ୍ୟବଧାନ, ଲୁଚିବା ।

**ଅନ୍ତର୍ଦ୍ଧ୍ୟାନ** ବି.ମନମଧ୍ୟରେ ଚିନ୍ତାକରିବା ।

**ଅନ୍ତର୍ନଗର**—ଅବ୍ୟ.ଅନ୍ତଃପୁର, ନଗରମଧ୍ୟରେ ।

**ଅନ୍ତର୍ନିବିଷ୍ଟ**—ପୁଂ.ବିଂ. (୭ତତ୍ପୁ) ମଧ୍ୟରେ ସ୍ଥାପିତ, ମଧ୍ୟଗତ, ଧ୍ୟାନସ୍ଥ, ( ସ୍ତ୍ରୀ ) ଅନ୍ତର୍ନିବିଷ୍ଟା ।

**ଅନ୍ତର୍ନିହିତ**—ତ୍ରି. ବିଂ. (୭ତତ୍ପୁ) ଅନ୍ତଃକରଣ ସ୍ଥାପିତ, ଯାହା କେବଳ ମନ ମଧ୍ୟରେ ଅଛି; କିନ୍ତୁ ବାହାରେ ଅପ୍ରକାଶିତ ।

**ଅନ୍ତର୍ବତ୍ତୁ**—ତ୍ରି. ବିଂ. (ଅନ୍ତର + ବତୁ) ମଧ୍ୟବିଶିଷ୍ଟ, ଅନ୍ତର୍ଗତ ।

**ଅନ୍ତର୍ବଂଶିକ**—ପୁଂ. ବି. (୭ତତ୍ପୁ) ଅନ୍ତଃପୁରାଧ୍ୟକ୍ଷ, ସ୍ତ୍ରୀ. ଗୃହରକ୍ଷକ, ଅନ୍ଦରମହଲର ତତ୍ତ୍ୱାବଧାରକ ।

**ଅନ୍ତର୍ଭବ**—ତ୍ରି. ବିଂ.(୭ତତ୍ପୁ)ଅନ୍ତର୍ଜାତ, ଅଭ୍ୟନ୍ତରରେ ଉତ୍ପନ୍ନ; (ସ୍ତ୍ରୀ) ଅନ୍ତର୍ଭବା ।

**ଅନ୍ତର୍ଭାବ**—ପୁଂ. ବି. ( ୭ତତ୍ପୁ ) ଅନ୍ତର୍ନିବେଶ, ଆନ୍ତରିକଭାବ ।

**ଅନ୍ତର୍ଭାବିତ**—ତ୍ରି. ବିଂ. ଯାହାକୁ ମଧ୍ୟରେ ପ୍ରବେଶ କରି ହୋଇଅଛି, ଚିନ୍ତିତ, ଅନ୍ତଃଶୁଦ୍ଧ ।

**ଅନ୍ତର୍ଭାବ**—କ୍ଲୀ. ବି. ମଧ୍ୟେ ପ୍ରବେଶିତ, (ତ୍ରି) ଯାହାକୁ ମଧ୍ୟରେ ପ୍ରବେଶ କରିବାର ଯୋଗ୍ୟ ।

**ଅନ୍ତର୍ଭୁକ୍ତ**—ବିଂ. (ଅନ୍ତ + ଭୁଜ୍ + ତ) ଅନ୍ତର୍ଗତ, ମଧ୍ୟସ୍ଥିତ ।

**ଅନ୍ତର୍ଭୂତ**—ତ୍ରି. ବିଂ.(ଅନ୍ତର୍ + ଭୂ + କ.ତ) ମଧ୍ୟସ୍ଥିତ,ଅନ୍ତର୍ଗତ, ମଧ୍ୟବର୍ତ୍ତୀ ।

**ଅନ୍ତର୍ମଦାବସ୍ଥ**—ପୁଂ. ବି. ଯେ ହାତୀର ମଦଭିତରେ ଜନ୍ମିଅଛି ।

**ଅନ୍ତର୍ମନାଃ** - ପୁଂ. ବିଂ. ବ୍ୟାକୁଳଚିତ୍ତ, ଦୁର୍ମନା, ସମାହିତଚିତ୍ତ ।

**ଅନ୍ତର୍ମୁଖ**—ବିଂ. ଯେ ଚିତ୍ତ ପରମାତ୍ମାକୁ ଲକ୍ଷ୍ୟ କରି ନିବିଷ୍ଟ ହୋଇଅଛି ।

**ଅନ୍ତର୍ମାତୃକା**—ସ୍ତ୍ରୀ.ବି.ଅନ୍ତର୍ଗତ ଷଟ୍‌ଚକ୍ରସ୍ଥ ମାତୃକା, ଅକାରାଦି ପଞ୍ଚାଶଦ୍‌ବର୍ଣ୍ଣ ।

**ଅନ୍ତର୍ମାତୃକାନ୍ୟାସ**—ପୁଂ. ବି. ଶରୀରମଧ୍ୟସ୍ଥ ମାତୃକାବର୍ଣ୍ଣର ନାମ ଉଚ୍ଚାରଣ ପୂର୍ବକ ଅଙ୍ଗରେ ଅଙ୍ଗୁଳି ନିକ୍ଷେପକରିବା ।

**ଅନ୍ତର୍ମୃତ**—ପୁଂ. ସ୍ତ୍ରୀ. ବି. ଗର୍ଭ ଭିତରେ ମୃତ ବାଳକ ବାଳିକା ।

**ଅନ୍ତର୍ଯ୍ୟ**—ତ୍ରି. ବିଂ. ମଧ୍ୟେଜାତ, ମଧ୍ୟଭବ ।

**ଅନ୍ତର୍ଯ୍ୟଜନ**—କ୍ଲୀ.ବି. ମନେମନେ କଳ୍ପିତ ଦେବତା ଆରାଧନା ।

**ଅନ୍ତର୍ଯ୍ୟାଗ**—ପୁଂ. ବି. ମାନସିକ ପୂଜା ।

**ଅନ୍ତର୍ଯ୍ୟାମ**—ପୁଂ.ବି. ଗ୍ରହରୂପ ଯାମନାମକ ଯଜ୍ଞପାତ୍ରବିଶେଷ, ମଧ୍ୟସ୍ଥପ୍ରହର ।

**ଅନ୍ତର୍ଯ୍ୟାମୀ**—ପୁଂ.ବି. (ଅନ୍ତର୍ + ଯାମ୍ + ଇନ୍) ଜୀବର ପ୍ରବୃତ୍ତି ନିବୃତ୍ତି ନିୟାମକ ପରମେଶ୍ୱର, ଯେ ମନକଥା ଜାଣନ୍ତି ।

**ଅନ୍ତର୍ଯ୍ୟାମିବ୍ରାହ୍ମଣ**—କ୍ଲୀ.ବି.ଈଶ୍ୱର ନିର୍ଣ୍ଣାୟକ ବେଦର ଅଂଶ ବିଶେଷ ।

**ଅନ୍ତର୍ଲିପି**—ବିଂ. (ଅନ୍ତଃ + ଲିପି) ଶବ୍ଦାଲଙ୍କାରବିଶେଷ ।

**ଅନ୍ତର୍ଲୋମ**—ତ୍ରି. ବିଂ. ଯାହାର ଲୋମ ଦେଖାଯାଏ ନାହିଁ ।

**ଅନ୍ତର୍ବତ୍ନୀ**—ସ୍ତ୍ରୀ. ବିଂ. (ଅନ୍ତଃ + ବତୁ + ସ୍ତ୍ରୀ.ଈ) ଗର୍ଭିଣୀ, ଗର୍ଭବତୀ, ଅନ୍ତଃସତ୍ତ୍ୱା ।

**ଅନ୍ତର୍ବମି**—ପୁଂ. ବି. ଉଦ୍‌ଗାର,ହିକ୍‌କା, ଅପାକ, ଅଜୀର୍ଣ୍ଣନାମକ ରୋଗବିଶେଷ ।

**ଅନ୍ତର୍ବର୍ତ୍ତୀ**—ତ୍ରି.ବିଂ. ମଧ୍ୟବର୍ତ୍ତୀ, ମଧ୍ୟସ୍ଥିତ, ଅନ୍ତର୍ଗତ ।

**ଅନ୍ତର୍ବା**—ତ୍ରି.ବିଂ.(ଅନ୍ତର୍ + ବା + ବର) ପୁତ୍ର, ପ୍ରତିପାଳିତ ଗୋରୁପ୍ରଭୃତି ପଶୁ ।

**ଅନ୍ତର୍ବାଣି**—ତ୍ରି.ବିଂ. ( ବ.ବ୍ରୀ ) ବିବିଧଶାସ୍ତ୍ରବିତ୍ ପଣ୍ଡିତ ।

**ଅନ୍ତର୍ବାବତ୍**—ତ୍ରି. ବିଂ. ପୁତ୍ରାଦିବିଶିଷ୍ଟ ।

**ଅନ୍ତର୍ବାଷ୍ପ**—ପୁଂ.ବି. ନେତ୍ରଜଳ, ବାହାରକୁ ଦେଖା ନ ଯିବା ଲୁହ ।

**ଅନ୍ତର୍ବାସ**—କ୍ଲୀ. ବିଂ. ଅନ୍ତଃପରିଧେୟ ବସ୍ତ୍ର, କୌପୀନ, କଣ୍ଢିଆ ।

**ଅନ୍ତର୍ବିଗାହ**—ପୁଂ. ବି.(ଅନ୍ତର + ବି + ଗାହ୍ + ଅ) ମଧ୍ୟେପ୍ରବେଶ ।

**ଅନ୍ତର୍ବିଗ୍ରହ**—ପୁଂ. ବି. ( ମଧ୍ୟ.କ.ଧା ) ଗୃହଯୁଦ୍ଧ, ଘରୋଇବିବାଦ, ଆପଣା ଆପଣା ମଧ୍ୟରେ କଳି ।

**ଅନ୍ତର୍ବିପ୍ଲବ**—ପୁଂ. ବି. ( ମଧ୍ୟ-କ.ଧା ) ଆତ୍ମବିରୋଧ, ପରସ୍ପର କଳହ ।

**ଅନ୍ତର୍ବିବାହ** – ପୁଂ. ବି. (ମଧ୍ୟ-କ.ଧା) ନିଜକୁଳ ବା ଗୋତ୍ରରେ ବିବାହ ।

**ଅନ୍ତର୍ବିଗାହନ**—କ୍ଲୀ.ବି. (ଅନ୍ତର + ବି ଗାହ + ଅନ) ମଧ୍ୟରେ ପ୍ରବେଶ ।

**ଅନ୍ତର୍ବିରୋଧ**—ପୁଂ. ବି. ଗୃହବିବାଦ, ଆତ୍ମକଳହ, ଘରୋଇକଳହ ।

**ଅନ୍ତର୍ବେଦ** – ସ୍ତ୍ରୀ. ବି. ମଧ୍ୟସ୍ଥିତ ପରିଷ୍କୃତ ଭୂମି, ଦୁଇନଦୀର ମଧ୍ୟବର୍ତ୍ତୀ ସ୍ଥାନ ।

**ଅନ୍ତର୍ବେଦନା**—ସ୍ତ୍ରୀ. ବି. (୭ତତ୍ପୁ)ମନର ଯାତନା ବା ଅଶାନ୍ତି ।

**ଅନ୍ତର୍ବେଦୀ**—ସ୍ତ୍ରୀ. ବି. ବ୍ରହ୍ମାବର୍ତ୍ତ, ଗଙ୍ଗା ଓ ଯମୁନାର ମଧ୍ୟବର୍ତ୍ତୀ ଦେଶ ।

**ଅନ୍ତର୍ବେଶିକ**—ତ୍ରି. ବିଂ. ଅନ୍ତଃପୁରରକ୍ଷୀ, ଅନ୍ତଃପୁରରକ୍ଷକ ।

ଅନ୍ତର୍ବେଶ୍ମ—କ୍ଲୀ.ବ.(ଅନ୍ତର + ବେଶ୍ମନ୍) ଅନ୍ତଃପୁର-ସ୍ତ୍ରୀ-ଗୃହ ।

ଅନ୍ତର୍ବେଶ୍ମିକ—ତ୍ରି.ବଂ.(ଅନ୍ତର + ବେଶ୍ମ + ଇକ) ଅନ୍ତଃପୁରରକ୍ଷଣନିମିତ୍ତ ନିଯୁକ୍ତ କଞ୍ଚୁକୀପ୍ରଭୃତି ।

ଅନ୍ତର୍ହତ୍ୟ—ଅବ୍ୟ—. ମଧ୍ୟରେ ହାଣିକରି, ମଧ୍ୟରେ ହନନ କରି ।

ଅନ୍ତର୍ହାସ—ପୁଂ.ବ. (ଅନ୍ତର୍ + ହସ୍ + ଅ) ଗୂଢ଼ହାସ୍ୟ, ଅପ୍ରକାଶିତ ହାସ୍ୟ ।

ଅନ୍ତର୍ହିତ—ତ୍ରି. ବଂ. (ଅନ୍ତର୍ + ଧା + କ୍ତ) ତିରୋହିତ, ଲୁକ୍କାୟିତ ।

ଅନ୍ତବତ୍—ତ୍ରି.ବଂ.ବିନାଶୀ, ନାଶବିଶିଷ୍ଟ, (ସ୍ତ୍ରୀ) ଅନ୍ତବତୀ ।

ଅନ୍ତବାସୀ—ପୁଂ. ବ. (ଅନ୍ତ + ବସ୍ + ଇନ୍) ଶିଷ୍ୟ ।

ଅନ୍ତବେଳା—ସ୍ତ୍ରୀ. ବ.ଶେଷସୀମା,ମରଣକାଳ, ସମୁଦ୍ରତଟ ।

ଅନ୍ତଶଯ୍ୟା—ସ୍ତ୍ରୀ. ବ. ମରଣନିମିତ୍ତ ଭୂମିଶଯ୍ୟା, ଶ୍ମଶାନ ମରଣ, ବାଲିଶଯ୍ୟା ।

ଅନ୍ତସଦ—ତ୍ରି. ବଂ. ଅନ୍ତେବାସୀ, ଶିଷ୍ୟ, ନିକଟଗାମୀ । [ଜଳ ।

ଅନ୍ତସଲିଳ—କ୍ଲୀ.ବ.ପୃଥିବୀର ମଧ୍ୟସ୍ଥିତ

ଅନ୍ତସ୍ଥଳ—କ୍ଲୀ. ବ. ମଧ୍ୟବର୍ତ୍ତୀ ସ୍ଥାନ, ଅନ୍ତଃକରଣ ।

ଅନ୍ତସ୍ତାପ—ପୁଂ. ବ. ଦେହ ମଧ୍ୟସ୍ଥିତ ସନ୍ତାପ, ମନସ୍ତାପ, ମାନସିକ-ଜ୍ୱାଳା ।

ଅନ୍ତସ୍ତୋୟ—ତ୍ରି. ବଂ. ଯାହାର ମଧ୍ୟେ ଜଳ ଥାଏ, ଜଳବିଶିଷ୍ଟ,ମଧ୍ୟସ୍ଥିତ ଜଳ ।

ଅନ୍ତସ୍ଥ—ବଂ. (ଅନ୍ତ + ସ୍ଥା + ଅ) ମଧ୍ୟସ୍ଥ, ଯ-ଠାରୁ ହ ପର୍ଯ୍ୟନ୍ତ ବର୍ଣ୍ଣମାଳା ।

ଅନ୍ତାନଳ—ପୁଂ. ବ. ଚିତାଗ୍ନି ।

ଅନ୍ତାରୁ—ପୁଂ.ବ.(ଅନ୍ତ + ରୁ + ଅ)ପଶୁପାଳକ ।

ଅନ୍ତାବଶାୟୀ—ପୁଂ.ବ.(ଅନ୍ତ + ଅବ + ସୋ + ଇନ୍) କ୍ଷୌରକାର, ଭଣ୍ଡାରୀ, ଚଣ୍ଡାଳ, ପ୍ରାଣୀହିଂସା ଚଣ୍ଡାଳାଦି ନୀଚଜାତି ।

ଅନ୍ତି—ଗ୍ରା.-ବ. ନଟାଚୁମଧ୍ୟସ୍ଥିତ ଅତ୍ୟାଦ୍ୟାଂଶବିଶେଷ, ନାଟ୍ୟୋକ୍ତ ଜ୍ୟେଷ୍ଠା ଭଗିନୀ ।

ଅନ୍ତିକ—ତ୍ରି. ବଂ. (ଅନ୍ତ + ଇକ) ସନ୍ନିହିତ, ନିକଟ,(ବ) ଅନ୍ତିକତା,ସନ୍ନିଧାନ ।

ଅନ୍ତିକତମ—ତ୍ରି. ବଂ. ଅତିନିକଟ ।

ଅନ୍ତିକତା—ସ୍ତ୍ରୀ. ବ. ସାମୀପ୍ୟ,ନୈକଟ୍ୟ ।

ଅନ୍ତିକା—ସ୍ତ୍ରୀ. ବ. (ଅନ୍ତିକ + ଆ)ଚୁଲ୍ଲୀ. ନଟର ଅଭିନୟକାଳେ ଯାହାକୁ ବଡ଼ ଭଉଣୀ ବୋଲି କହେ, ନାଟ୍ୟୋକ୍ତ ଜ୍ୟେଷ୍ଠଭଉଣୀ ।

ଅନ୍ତିକାଶ୍ରୟ—ତ୍ରି. ବଂ. (ଅନ୍ତିକ + ଆ + ଶ୍ରି + ଅ) ନିକଟସ୍ଥ, ଅବଲମ୍ବନ ସ୍ଥାନ ।

ଅନ୍ତିତଃ—ଅବ୍ୟ. ଅନ୍ତିକେ, ନିକଟେ ।

ଅନ୍ତିମ—ତ୍ରି. ବଂ. (ଅନ୍ତ + ଭା. ଇମ) ଚରମ, ଶେଷ, ଶେଷକାଳୀନ ।

ଅନ୍ତିମକାଳ—ବ. (ଅନ୍ତିମ + କାଳ) ଶେଷ ସମୟ, ମୃତ୍ୟୁକାଳ ।

ଅନ୍ତିବାସ—ତ୍ରି. ବଂ. ଯାହା ନିକଟରେ ଧନ ଅଛି ।

ଅନ୍ତୁଡ଼ି—ଗ୍ରା. ବ. ପ୍ରସୂତିର ଗୃହରେ ଜଳିବା ଅଗ୍ନି ।

ଅନ୍ତୁଡ଼ିଶାଳ—ବ. ସୂତିକାଗୃହ ।

ଅନ୍ତେବସତ୍—ପୁଂ. ବଂ. ଅନ୍ତେ + ବସ୍ + ଶତୃ ) ଶିଷ୍ୟ, ଶୂଦ୍ର ।

ଅନ୍ତେବାସୀ—ପୁଂ. ବ. (ଅନ୍ତେ + ବସ୍ + କ. ଇନ) ଶିଷ୍ୟ, ଶୂଦ୍ର, ଚଣ୍ଡାଳ, (ସ୍ତ୍ରୀ) ଅନ୍ତେବାସିନୀ ।

ଅନ୍ତୋଦାତ୍ତ—କ୍ଲୀ. ବ. ଅନ୍ତ, ଉଦାତ୍ତସ୍ୱରଯୁକ୍ତ ପଦ ।

ଅନ୍ତ୍ୟ—ତ୍ରି. ବଂ. (ଅନ୍ତ + ଭା. ଯ) ଚଣ୍ଡାଳ, ମ୍ଳେଚ୍ଛ, ଯେ ଶେଷରୂପେ ପରିଗଣିତ, ଯଥା—ମୀନରାଶି. ଅନ୍ତିମ ଚରମ, ଅବଶିଷ୍ଟ, ନୀଚ, ନୀଚଜାତୀୟ, (ପୁଂ) ଚଣ୍ଡାଳ, (କ୍ଲୀ) ପଦ୍ମର ଶତ ଭାଗସଂଖ୍ୟା । [କର୍ମ ।

ଅନ୍ତ୍ୟକର୍ମ-କ୍ଲୀ.ବ. ମରଣକାଳର କର୍ତ୍ତବ୍ୟ

ଅନ୍ତ୍ୟଜ-ପୁଂ.ସ୍ତ୍ରୀ.ବ.(ଅନ୍ତ୍ୟ + ଜନ୍ + ଡ଼) ଶୂଦ୍ର, ଚଣ୍ଡାଳ ଇତ୍ୟାଦି. (ସ୍ତ୍ରୀ)ଅନ୍ତ୍ୟଜା ।

ଅନ୍ତ୍ୟଜନ୍ମା—ପୁଂ.ବ.(ବ.ବ୍ରୀ) ଶୂଦ୍ରଜାତି, ଅନ୍ତ୍ୟଜାତି ।

ଅନ୍ତ୍ୟଜାତି—ପୁଂ. ସ୍ତ୍ରୀ. ବ. ଶୂଦ୍ରଜାତି ।

ଅନ୍ତ୍ୟଭ—କ୍ଲୀ.ବ. ରେବତୀ ନକ୍ଷତ୍ର,ପୁଂ. ମୀନରାଶି । [ଚଣ୍ଡାଳାଦି ।

ଅନ୍ତ୍ୟଯୋନି—ପୁଂ. ସ୍ତ୍ରୀ. ବ. ଶୂଦ୍ରଜାତି,

ଅନ୍ତ୍ୟବର୍ଣ୍ଣ—ପୁଂ. ସ୍ତ୍ରୀ.ବ. (ଅନ୍ତ୍ୟ + ବର୍ଣ୍ଣ) ଶୂଦ୍ର, ପଦର ଅନ୍ତଃସ୍ଥିତ ବର୍ଣ୍ଣ, ବାକ୍ୟର ଶେଷ ଅକ୍ଷର, ଚତୁର୍ଥ ବର୍ଣ୍ଣ ।

ଅନ୍ତ୍ୟାନୁପ୍ରାସ—ପୁଂ. ବ. ଶବ୍ଦାଲଙ୍କାରବିଶେଷ ।

ଅନ୍ତ୍ୟାବସାୟୀ—ପୁଂ. ବ. (ଅନ୍ତ୍ୟ + ଅବ + ସୋ + ଇନ୍) ଯେ ମୃତବ୍ୟକ୍ତିର ଲୁଗାଦି ଗ୍ରହଣ କରେ, ନିଷାଦ ସ୍ତ୍ରୀଠାରୁ ଚଣ୍ଡାଳଔରସଜାତ ସନ୍ତାନ, (ସ୍ତ୍ରୀ) ଅନ୍ତ୍ୟାବସାୟିନୀ । [ର୍ଥାଶ୍ରମ ।

ଅନ୍ତ୍ୟାଶ୍ରମ—ପୁଂ.କ୍ଲୀ.ବ. ଭିକ୍ଷୁରୂପ ଚତୁ-

ଅନ୍ତ୍ୟାଶ୍ରମୀ—ପୁଂ.ବ. ଭିକ୍ଷୁ ,(ସ୍ତ୍ରୀ)ଅନ୍ତ୍ୟାଶ୍ରମିଣୀ ।

ଅନ୍ତ୍ୟାହୁତି—ସ୍ତ୍ରୀ.ବ. ଅନ୍ତ୍ୟେଷ୍ଟି-କ୍ରିୟା, ସାଗ୍ନିକମାନଙ୍କର ମୃତପର ସଂସ୍କାରବିଶେଷ ।

ଅନ୍ୟୂଢ଼- ସ୍ତ୍ରୀ.ବ ଆଯନ୍ତ୍ରକ୍ଷେଟ, ଶରଣ ।

ଅନ୍ତ୍ୟେଷ୍ଟି - ସ୍ତ୍ରୀ ବ. (ଅନ୍ତ୍ୟ + ଯଜ୍ + ଭା.ତି) ମୃତପର ସାଗ୍ନିକମାନଙ୍କର ଦେହସଂସ୍କାରାଦି କ୍ରିୟା, ଶେଷକ୍ରିୟା, ପ୍ରେତକୃତ୍ୟ ।

ଅନ୍ତ୍ୟେଷ୍ଟି କ୍ରିୟା ସ୍ତ୍ରୀ. ବ. ଶେଷଯଜ୍ଞ, ଶବଦାହାଦି ଓ ପିଣ୍ଡଦାନାଦି କାର୍ଯ୍ୟ ।

ଅନ୍ତ୍ର—କ୍ଲୀ.ବ. (ଅନ୍ତ + ର, ଉଦର ମଧ୍ୟସ୍ଥିତ ନାଡ଼ୀ, ଅନ୍ତ୍ରବୁଜୁଳା ।

ଅନ୍ତ୍ରଜ୍ୱର ବା ଆନ୍ତ୍ରିକଜ୍ୱର—ଗ୍ରା.ବ.ଏକପ୍ରକାର ମାରାତ୍ମକ ଜ୍ୱର ।

ଅନ୍ତ୍ରପ୍ରଦାହ—ବ. (ଡାକ୍ତରୀ) ( ଅନ୍ତ୍ର + ପ୍ରଦାହ ) ଅନ୍ତ୍ରରେ ଜନ୍ମିବା ଉତ୍ତପ୍ତଙ୍କର ପୋଡ଼ା ଜ୍ୱାଳା ।

ଅନ୍ତ୍ରବୃଦ୍ଧି—ବ. (ଡାକ୍ତରୀ) ଅନ୍ତ୍ରକୋଷ ।

ଅନ୍ତ୍ରମୋଡ଼ା—ବ.ଏକପ୍ରକାର ଗୁଳ୍ମ ଗଛ, ମୋଡ଼ା ଫଳ ଗଛ, ଶିଶୁମାନେ ମୋଡ଼ାଭିଡ଼ ହେଲେ ଏହି ଫଳ ତେଲରେ ପକାଇ ଲଗାଇ ଦିଆଯାଏ ।

ଅନ୍ତ୍ରବେଷ୍ଟପ୍ରଦାହ—ଏକପ୍ରକାର ଅନ୍ତ୍ରରୋଗବିଶେଷ । [ ରୋଗ ।

ଅନ୍ତ୍ରାବରୋଧ—ଏକପ୍ରକାରଅନ୍ତ୍ରକୁଞ୍ଚନର

ଅନ୍ଦର—(ଯା)ମଧ୍ୟ,ଭିତର, ଅନ୍ତଃପୁର ।

ଅନ୍ଦର ମହଲ—(ଯା) ବି. ଭିତର ଘର, ଅନ୍ତଃପୁର, ଅବରୋଧ ।

ଅନ୍ଦାଜ—ବି. ଆନୁମାନିକ ଗଣନା, ଅନୁମାନ (ବିଂ) ଆନୁମାନିକ ।

ଅନ୍ଦାଜି—ବିଂ. ଆନୁମାନିକ, ପ୍ରାୟ, ଅନୁମାନସିଦ୍ଧ ।

ଅନ୍ଦାଧୁନ୍ଦ—ଗ୍ରା. ବିଂ. ଅବୋଧ, ଅମୂଳକ, ଗୋଲମାଳିଆ, ଆଗପଛ ବିଚାର ନ କରି କରାଯିବା କର୍ମ ।

ଅନ୍ଦାଧୁନ୍ଦିଆ—ଗ୍ରା. ବି. ଗୋଲମାଳିଆ; ଅନୁମାନଦ୍ୱାରା କରାଯିବା ।

ଅନ୍ଦାମାନ୍—ଦ୍ୱୀପପୁଞ୍ଜବିଶେଷ, ଏହାର ସଂସ୍କୃତ ନାମ 'ଅନ୍ଧ୍ରମଣି' ।

ଅନ୍ଧକା—ସ୍ତ୍ରୀ. ବି. ଚୁଲ୍ଲୀ ।

ଅନ୍ଧସନ୍ଧ—ବି. ପ୍ରତ୍ୟେକ ଗ୍ରେଟ ଗ୍ରେଟ ଛିଦ୍ର ଓ କଣା ।

ଅନ୍ଦୁ, ଅନ୍ଦୂ—ସ୍ତ୍ରୀ.ବି. ହାତୀ ଶିଙ୍କୁଳି, ସ୍ତ୍ରୀ ଲୋକମାନଙ୍କର ପଦାଭରଣବିଶେଷ ।

ଅନ୍ଦୁକ,ଅନ୍ଦୂକ—ପୁଂ. ବି. ହାତୀଶିଙ୍କୁଳି, ସ୍ତ୍ରୀମାନଙ୍କର ପଦାଭରଣବିଶେଷ ।

ଅନ୍ଧ୍—( ଧାତୁ ) ଦୃଷ୍ଟିଶକ୍ତିହୀନହେବା ଅର୍ଥରେ ପ୍ରୟୋଗ ।

ଅନ୍ଧଃ—କ୍ଲୀ.ବି. (ଅବ + ଉ.ଅସ୍ ) ଅନ୍ନ ।

ଅନ୍ଧ—ତ୍ରି.ବିଂ. (ଅନ୍ଧ + ର୍ମି.ଅ) ଚକ୍ଷୁହୀନ, ଯାହାର ଦୁଇଟିଯାକ ଚକ୍ଷୁ ନାହିଁ,ନିବଡ଼, (ବି) ଅନ୍ଧକାର, (ସ୍ତ୍ରୀ) ଅନ୍ଧା ।

ଅନ୍ଧକ—ପୁଂ. ବି (ଅନ୍ଧ + କ ) ଦୈତ୍ୟବିଶେଷ, ଦେଶବିଶେଷ, ମୁନିବିଶେଷ, ଯଦୁବଂଶୀ ନୃପବିଶେଷ । (ବିଷ୍ଣୁ ।

ଅନ୍ଧକକ୍ଷୟକର—ପୁଂ. ବି. ମହାଦେବ,

ଅନ୍ଧକରିପୁ—ପୁଂ. ବି. ମହାଦେବ, ଶିବ, ସୂର୍ଯ୍ୟ ।

ଅନ୍ଧକାନ୍ତକ—ପୁଂ.ବି.(ଅନ୍ଧକ + ଅନ୍ତକ) ଅନ୍ଧକରିପୁ, ତୀର୍ଥବିଶେଷ ।

ଅନ୍ଧକବର୍ତ୍ତି—ପୁଂ. ବି. ପର୍ବତବିଶେଷ ।

ଅନ୍ଧକାର—ପୁଂ.ବି.(ଅନ୍ଧ + କୃ + କ.ଅ) ତିମିର, ଅନ୍ଧାର, ଧ୍ୱାନ୍ତ, ତମ, (ବିଂ) ଅନ୍ଧାରିଆ ।

ଅନ୍ଧକାରକ—ପୁଂ. ବି. କ୍ରୌଞ୍ଚଦ୍ୱୀପାନ୍ତର୍ଗତ ଦେଶବିଶେଷ ।

ଅନ୍ଧକାରମୟ—ତ୍ରି. ବିଂ. (ଅନ୍ଧକାର + ମୟ ) ଅତ୍ୟନ୍ତ ଅନ୍ଧକାରଯୁକ୍ତ ।

ଅନ୍ଧକାସୁର—ପୁଂ.ବି. (ଷତତ୍ର)ମହାଦେବ, ଶିବ ।

ଅନ୍ଧକୂପ—ବି. (ଅନ୍ଧ + କୂପ)ବାୟୁଚଳନ ଶୂନ୍ୟ ଅନ୍ଧାରଘର, ଅନ୍ଧାରମୟ କୂପ ବା ଗର୍ତ୍ତ ।

ଅନ୍ଧକୂପହତ୍ୟା-ବି. ଖ୍ରୀ: ୧୭୫୬ ଖ୍ରୀଷ୍ଟାବ୍ଦରେ ବଙ୍ଗ ନବାବ ସିରାଜଉଦଦୌଲା ଶତାଧିକ ଇଂରାଜ ପୁରୁଷ ଓ ସ୍ତ୍ରୀଙ୍କୁ କଲିକତାରେ ଗୋଟିଏ ଛୋଟ ଘରେ ବନ୍ଦ କରିଥିଲେ, ପରେ ଦେଖିବାରେ ବାୟୁ ଅଭାବରୁ କେତେ ଲୋକ ମରିଥିବାର ଜଣାଗଲା । ଏହାକୁ ଅନ୍ଧକୂପ ହତ୍ୟା କହନ୍ତି ।

ଅନ୍ଧକରଣ—ତ୍ରି. ବିଂ. ଶୋକପ୍ରଭୃତି, ଯାହାଦ୍ୱାରା ମନୁଷ୍ୟ ଅନ୍ଧ ହୁଏ ।

ଅନ୍ଧତମଃ—କ୍ଲୀ. ବି. ( ଅନ୍ଧ + ତମସ୍ ) ଅତିଶୟ ଅନ୍ଧକାର, ଗାଢ଼ ଅନ୍ଧକାର, ଘୋର ଅଜ୍ଞାନତା ।

ଅନ୍ଧତମସ—କ୍ଲୀ. ବି. (ମଧ୍ୟ. କ.ଧା) ଗାଢ଼ ଅନ୍ଧକାର, ଘୋର ଅଜ୍ଞାନତା ।

ଅନ୍ଧତମୋମୟ—ତ୍ରି. ବିଂ. ( ଅନ୍ଧତମସ୍ + ମୟଟ୍ )ଗାଢ଼ ଅନ୍ଧକାରରେ ପୂର୍ଣ୍ଣ ।

ଅନ୍ଧତାମସ—କ୍ଲୀ. ବି. ଅତିଶୟ ଅନ୍ଧାର, ଖୁବ୍ ଅନ୍ଧାର ।

ଅନ୍ଧତାମସୀ—ସ୍ତ୍ରୀ.ବି. (ମଧ୍ୟ.କ.ଧା) ଘନାନ୍ଧକାରମୟୀ ରଜନୀ ।

ଅନ୍ଧତାମିସ୍ର—କ୍ଲୀ. ବି. (ଅନ୍ଧ + ତାମିସ୍ର) ନରକବିଶେଷ ।

ଅନ୍ଧଦେଶ—ଗ୍ରା. ବି. ଯେଉଁ ଦେଶରେ ନ୍ୟାୟବିଚାର ନାହିଁ ।

ଅନ୍ଧନଗରୀ—ଗ୍ରା. ବି. ଅନ୍ଧବୁଝାମଣା, ପଞ୍ଚାୟତମାନଙ୍କର ଅବିଚାର ।

ଅନ୍ଧପଙ୍ଗୁନ୍ୟାୟ—ଉଭୟ ସଂଯୋଗରେ କାର୍ଯ୍ୟସିଦ୍ଧି, ଏହାହିଁ ତାତ୍ପର୍ଯ୍ୟ, ଯଥା—କୌଣସି ଅନ୍ଧ ଓ ପଙ୍ଗୁକୁ ସ୍ଥାନାନ୍ତରକୁ ଯିବାକୁ ହେବ, ଅନ୍ଧ ଦୃଷ୍ଟିହୀନତାବଶତଃ ଏବଂ ପଙ୍ଗୁ ଗମନଶକ୍ତିରହିତହେତୁ ଯାଇ ପାରୁ ନାହାନ୍ତି, ମାତ୍ର ଅନ୍ଧ କାନ୍ଧରେ ପଙ୍ଗୁ ବସିବାରୁ ପଙ୍ଗୁର ଚକ୍ଷୁ ଓ ଅନ୍ଧର ଚରଣ ସାହାଯ୍ୟରେ ଯାଇପାରିବେ ।

ଅନ୍ଧପରମ୍ପରାନ୍ୟାୟ—ଜଣେ ଅନ୍ଧ ଆଉ କେତେଗୁଡ଼ିଏ ଅନ୍ଧଙ୍କୁ ବାଟ କଢ଼ାଇଲେ ଗାତରେ ସମସ୍ତେ ପଡ଼ିବେ ।

ଅନ୍ଧପଟଳ—ବି. (ଅନ୍ଧ + ପଟଳ) କୌଣସି ପଦାର୍ଥ ଆଖିରେ ନ ଦେଖିବାପାଇଁ ବନ୍ଧାଯିବା ପଟି ।

ଅନ୍ଧପୁଟୁଳି—ଆଖିରେ ବନ୍ଧା ପଟି ।

ଅନ୍ଧପୂତନା—ସ୍ତ୍ରୀ. ବି. ବାଳଗ୍ରହବିଶେଷ ।

ଅନ୍ଧବୁଝାମଣା—ଗ୍ରା.ବି. ଅନ୍ୟାୟ ବିଚାର, ଅବିଚାର ।

ଅନ୍ଧମୂଷିକା—ସ୍ତ୍ରୀ. ବି. ଦେବତାଡ଼ ବୃକ୍ଷ ।

ଅନ୍ଧମ୍ଭବିଷ୍ଣୁ—ତ୍ରି. ବିଂ. ଯେ ଅନ୍ଧ ନୁହେ, ସେ ଅନ୍ଧ ହୋଇଅଛି ।

ଅନ୍ଧମ୍ଭାବୁକ—ତ୍ରି. ବିଂ. ଯେ ଅନ୍ଧ ନୁହେ, ସେ ଅନ୍ଧ ହୋଇଅଛି ।

ଅନ୍ଧସ୍—କ୍ଲୀ. ବି. ଅନ୍ନ, ଓଦନ ।

ଅନ୍ଧରଲହଡ଼ି—ଗ୍ରା.ବି. ଏକମାତ୍ର ଆଶ୍ରୟ ।

ଅନ୍ଧରାଇବା—(ସମ୍ବ) କ୍ରୀ. କିଂକର୍ତ୍ତବ୍ୟବିମୂଢ଼ହେବା ।

ଅନ୍ଧବର୍ତ୍ମ—ପୁଂ.ବି. ଅନ୍ଧକାରମୟ ପନ୍ଥା ।

ଅନ୍ଧହାତୀଦେଖିବାନ୍ୟାୟ—ପାଞ୍ଚଜଣ ଅନ୍ଧ ଗୋଟିଏ ହସ୍ତୀକୁ ପାଇ ତାର ଆକାର ନିରୂପଣ କରିବାକୁ ବସିଲେ, ଜଣେ କାନକୁ ଆଉଁସି, ହସ୍ତୀର ଆକାର କାନପରି କହିଲା, ଆଉଜଣେ ଗୋଡ଼କୁ ଆଉଁସି, ଗୋଡ଼ପରି କହିଲା, ଏହିପରି ଯେ ଯେଉଁ ସ୍ଥାନ ଆଉଁସିଲେ ସେ ସେହିପରି ହସ୍ତୀର ଆକାର ନିରୂପଣ କଲେ, ମାତ୍ର କାହାରି ନିରୂପଣ

ଠିକ୍ ହେଲ ନାହିଁ । ଏହି ସମସ୍ୟରେ ଜଣେ ଆସିଥିଲ ଲେକ କହିଲ, ତୁମ୍ଭେ-ମାନେ ଯାହା ନିରୂପଣ କରିଛ, ସେ ସବୁ ଏକୋଠି କଲେ ହାତୀର ଆକାର ହୁଟିବ; ଅତଏବ ଅଜ୍ଞ ବ୍ୟକ୍ତିମାନେ କୌଣସି ବିଷୟର ଏକାଂଶ ଜାଣି ବିଷୟର ସମସ୍ତ ଅଂଶ ଅବଗତ ହୋଇଥିବା କହନ୍ତି ।

ଅନ୍ଧା—(ପ୍ରା-କ) ଅନ୍ଧ, ଦୃଷ୍ଟିହୀନ ।

ଅନ୍ଧାଗେଣ୍ଡା—ପ୍ରା.ପୁଂ.ବି.ମୂର୍ଖ,ନିର୍ବୁଦ୍ଧିଆ (ସ୍ତ୍ରୀ) ଅନ୍ଧାଗେଣ୍ଡେଇ ।

ଅନ୍ଧାଧୂନ୍ଧ—ଗ୍ରା. ବିଂ. ଅନ୍ୟାୟବିଚାର ।

ଅନ୍ଧାର—ବିଂ. ଅନ୍ଧକାରମୟ, (ବି)ଅନ୍ଧକାର, ତମିର । [ ଦିଶେ ନାହିଁ ।

ଅନ୍ଧାରକଣା—ଗ୍ରା.ବିଂ. ରାତିରେ ଯାହାକୁ

ଅନ୍ଧାରପକ୍ଷ—ଗ୍ରା. ବି. କୃଷ୍ଣପକ୍ଷ ।

ଅନ୍ଧାଳିଆ—ସ୍ତ୍ରୀ. ବି. ଯେଉଁ ଫୋଡ଼ାରେ ପୂଜ ବାହାରେ ।

ଅନ୍ଧାରିଆ,ଅନ୍ଧାରୁଆ—ଗ୍ରା.ଅନ୍ଧକାରମୟ ।

ଅନ୍ଧାସିବିଜେ—ଗ୍ରା.ରାଜା ବା ରାଜପୁରୁଷଙ୍କର ଗୋପନ ଅନୁସନ୍ଧାନପାଇଁ ରାତିରେ ଯିବା ।

ଅନ୍ଧାହି—ପୁଂ. ସ୍ତ୍ରୀ. ବି. କୋଚଆ ମାଛ ।

ଅନ୍ଧିକା—ସ୍ତ୍ରୀ. ବି. ଦ୍ୟୁତକ୍ରୀଡ଼ା, ସର୍ଷପୀ, ଛଲ, କୈତବ, ସିନ୍ଧ, ରାତି, ସ୍ତ୍ରୀ-ବିଶେଷ, ଚକ୍ଷୁରୋଗବିଶେଷ ।

ଅନ୍ଧୀକରଣ—କ୍ଲୀ.ବି. ଦୃଷ୍ଟିଶକ୍ତିନାଶନ ।

ଅନ୍ଧୁ—ପୁଂ. ବି. କୂପ, କୂଅ ।

ଅନ୍ଧୁଣୀ—ଗ୍ରା,ବିଂ. ସ୍ତ୍ରୀ ଅନ୍ଧ, ମାଛଧରିବା ଯନ୍ତ୍ରବିଶେଷ । [ ବୃକ୍ଷ ।

ଅନ୍ଧୁଳ—ପୁଂ. ବି. ଶିରୀଷଫୁଲ, ଶିରୀଷ-

ଅନ୍ଧ୍ର—ପୁଂ. ବି. ଆନ୍ଧ୍ରଦେଶବିଶେଷ, କଳିଙ୍ଗ ପଶ୍ଚିମସ୍ଥ ଦେଶ ।

ଅନ୍ନ—କ୍ଲୀ. ବି. ( ଅଦ୍ + ର୍ମ.ତ ) ସିଦ୍ଧ-ତଣ୍ଡୁଳ,ଭାତ,ଖାଦ୍ୟ, (ପୁଂ) ସୂର୍ଯ୍ୟ,ବିଷ୍ଣୁ, (ବିଂ)ଖାଦିତ, ଭକ୍ଷିତ,ଭୁକ୍ତ,(ସ୍ତ୍ରୀ)ଅନ୍ନା ।

ଅନ୍ନକଷ୍ଟ—କ୍ଲୀ. ବି. (ମଧ୍ୟ-କ.ଧା) ଖାଦ୍ୟ ବସ୍ତୁର ଅଭାବ, ଉପବାସ, ଦୁର୍ଭିକ୍ଷ ।

ଅନ୍ନକଠ—କ୍ଲୀ. ବି. ଅନ୍ନମଳ ।

ଅନ୍ନକୂଟ—ପୁଂ.କ୍ଲୀ. ବି. ଅନ୍ନସ୍ତୂପ, ଅନ୍ନକ୍ଷେତ୍ର, ରାଶୀକୃତ ଖାଦ୍ୟଦ୍ରବ୍ୟ ।

ଅନ୍ନକୋଷ୍ଠ—ପୁ. ବିଂ. ଧାନ୍ୟାଦି ଶସ୍ୟ ରଖିବାର ଡୋଲି, ଗୁଳୁଡ଼ିପ୍ରଭୃତି, ।

ଅନ୍ନକ୍ଷେତ୍ର—ବିଂ. ( ଅନ୍ନ + କ୍ଷେତ୍ର ) ଯେଉଁ ସ୍ଥାନରେଭାତଗଦା ହୋଇଥାଏ ।

ଅନ୍ନଗତ—ତ୍ରି.ବିଂ. ଅନ୍ନଉପରେ ନିର୍ଭରଶୀଳ, (ସ୍ତ୍ରୀ) ଅନ୍ନଗତା ।

ଅନ୍ନଗତପ୍ରାଣ—ତ୍ରି. ବିଂ. ( ବ. ବ୍ରୀ ) ଯାହାର ପ୍ରାଣ ଅନ୍ନଗତ ହୋଇଅଛି, ଯେ ଅନ୍ନାଭାବରେ ବଞ୍ଚେନାହିଁ ।

ଅନ୍ନଗନ୍ଧ—ପୁଂ. ବି. ( ଅନ୍ନ + ଗନ୍ଧ ) ଉଦରାମୟ ରୋଗ, ।

ଅନ୍ନଗନ୍ଧି—ବି. ( ଅନ୍ନ + ଗନ୍ଧ + ଇ ) ଉଦରାମୟ ରୋଗ,

ଅନ୍ନଛତ୍ର—ଗ୍ରା. ବି. ଅନ୍ନଦାନ କରାଯିବା ସ୍ଥାନ । [ ଉତ୍ପନ୍ନ ।

ଅନ୍ନଜ—ତ୍ରି.ବିଂ. ଅନ୍ନଜାତ, ଭୁକ୍ତଦ୍ରବ୍ୟରୁ

ଅନ୍ନଜଳ—ବି. ଖାଦ୍ୟପେୟ,ଦାନାପାଣି ।

ଅନ୍ନଦ—ପୁଂ. ବିଂ. ( ଅନ୍ନ + ଦା + ଅ) ଅନ୍ନଦାତା, (ସ୍ତ୍ରୀ) ଅନ୍ନଦା, ଅନ୍ନପୂର୍ଣ୍ଣା ।

ଅନ୍ନଦା—ସ୍ତ୍ରୀ. ବିଂ. (ଅନ୍ନଦ + ଆ) ଅନ୍ନଦାତ୍ରୀ, (ବି) ଭଗବତୀ, ଅନ୍ନପୂର୍ଣ୍ଣା ।

ଅନ୍ନଦାତା—ପୁଂ.ବିଂ.(ଅନ୍ନ + ଦା + ତୃ) ପ୍ରତିପାଳକ, ଯେ ଅନ୍ନଦାନ କରେ,(ସ୍ତ୍ରୀ) ଅନ୍ନଦାତ୍ରୀ । [ଏକାଦଶୀ ।

ଅନ୍ନଦାନ ଏକାଦଶୀ—ଶ୍ରାବଣ କୃଷ୍ଣପକ୍ଷ-

ଅନ୍ନଦାସ—ପୁଂ. ବି. ଗୃକର ।

ଅନ୍ନଦୋଷ—ପୁଂ. ବି. (ମଧ୍ୟ-କ.ଧା ) ଅଭକ୍ଷ୍ୟାନ୍ନ ଭକ୍ଷଣଜାତ ପାପ ।

ଅନ୍ନନାଳୀ—ବି. ଅନ୍ନବହା ନାଡ଼ୀ, ଯେ ନାଡ଼ିଦ୍ୱାରା ଅନ୍ନ ପାକାଶୟକୁ ଯାଏ ।

ଅନ୍ନପାକ—ପୁଂ. ବି. ଭାତରନ୍ଧା ।

ଅନ୍ନପାନ—କ୍ଲୀ. ବି. ଭାତସହିତ ପାଣି, ଖାଦ୍ୟପେୟ, ଦାନାପାଣି ।

ଅନ୍ନପାପ—ବି. ଦୁଷ୍ଟାନ୍ନ ଭୋଜନ ହେତୁ ଅଧର୍ମ ।

ଅନ୍ନପୂର୍ଣ୍ଣା—ସ୍ତ୍ରୀ. ବି. ଭଗବତୀର ମୂର୍ତ୍ତି ବିଶେଷ, ବିଶ୍ୱେଶ୍ୱରୀ ।

ଅନ୍ନପୂର୍ଣ୍ଣେଶ୍ୱରୀ—ସ୍ତ୍ରୀ,ବି. ଶିବପତ୍ନୀ,ଦୁର୍ଗା ।

ଅନ୍ନପ୍ରାଶନ—କ୍ଲୀ.ବି. (ଅନ୍ନ + ପ୍ର + ଅଶ୍ ଧା. ଅନ ) ବିଧାନପୂର୍ବକ ବାଳକର ପ୍ରଥମ ଅନ୍ନଭକ୍ଷଣ, କ୍ଷୀରଚଟା ।

ଅନ୍ନବର୍ଜନ—କ୍ଲୀ. ବି. ଅନ୍ନପରିତ୍ୟାଗ, ଭାତଖିଆଛାଡ଼ିଦେବା ।

ଅନ୍ନବ୍ରହ୍ମ—ବି. (ଅନ୍ନ + ବ୍ରହ୍ମ) ବ୍ରହ୍ମ ବା ଜୀବନରୂପରେ କଳ୍ପିତ ଅନ୍ନ ବା ଖାଦ୍ୟଦ୍ରବ୍ୟ ।

ଅନ୍ନଭକ୍ତ—ତ୍ରି. ବିଂ. ଅନ୍ନଦ୍ୱାରା ପାଳିତ ଦାସ, ସେବକ, ଗୃକର ।

ଅନ୍ନଭେଦୀ—ବି. କାଶୀରାଜ, ସ୍ୱାରକଷ ।

ଅନ୍ନଭୋକ୍ତା—ପୁଂ.ବିଂ. (ଅନ୍ନ + ଭୁଜ୍ + କ.ତୃ) ଯେ ଅନ୍ନ ଭକ୍ଷଣକରେ, ପରାନ୍ନଭୋଜୀ, (ବି) ଘରଲୋକ, (ସ୍ତ୍ରୀ) ଅନ୍ନଭୋକ୍ତ୍ରୀ ।

ଅନ୍ନମୟ—ଅନ୍ନସ୍ୱରୂପ,ଅନ୍ନଦ୍ୱାରା ବର୍ଦ୍ଧିତ ।

ଅନ୍ନମୟ କୋଷ—ପୁଂ.ବି. (ଅନ୍ନ + ମୟ + କୋଷ) ସ୍ଥୂଳଶରୀର ।

ଅନ୍ନମଳ—କ୍ଲୀ.ପୁଂ.ବି. ଫେଣମଳ, ମଦ୍ୟ, କାଞ୍ଜି ।

ଅନ୍ନଯୋଗ—ପୁଂ.ବି.ଅନ୍ନସଂସ୍ଥାନ,ସଙ୍ଗତି, ସମ୍ବଳ, ଉପଜୀବୀ । [ ସାରାଂଶ ।

ଅନ୍ନରସ—ପୁଂ. ବି. (୬ତତ୍) ଭୁକ୍ତାନ୍ନର

ଅନ୍ନବାହନାଳୀ—ସ୍ତ୍ରୀ. ବି. ଗଳନାଳୀ ।

ଅନ୍ନବିକାର—ପୁଂ. ବି. (୬ତତ୍) ରକ୍ତପ୍ରଭୃତି ସପ୍ତଧାତୁ,ରେତଃ, ଶୁକ୍ର,ବିଷ୍ଠା, ମଳ । [ ବ୍ରତ ।

ଅନ୍ନସତ୍ର—କ୍ଲୀ. ବି. ଅନ୍ନଦାନାର୍ଥ ସଦା-

ଅନ୍ନସଂସ୍ଥାନ—ବି. ( ୬ତତ୍ ) ସଙ୍ଗତି, ସମ୍ବଳ, ଉପଜୀବ୍ୟ ।

ଅନ୍ନସିଦ୍ଧି—ସ୍ତ୍ରୀ. ବି. (୬ତତ୍) ଅନ୍ନପାକ, ରୋଷେଇ, ରନ୍ଧନ ।

ଅନ୍ନହୀନ—ତ୍ରି. ବିଂ. ଯାହାର ସଂସ୍ଥାନ ନାହିଁ, ନିରନ୍ନ, (ବି) ଅନ୍ନହୀନତା ।

ଅନ୍ନାର୍ଥୀ—ପୁଂ.ବିଂ (ଅନ୍ନ + ଅର୍ଥ + କ. ଇନ୍) ଯେ ଭାତ ଖାଇବାକୁ ମାଗେ, (ସ୍ତ୍ରୀ) ଅନ୍ନାର୍ଥିନୀ ।

ଅନ୍ନାଦ—ତ୍ରି.ବିଂ. (ଅନ୍ନ + ଅଦ୍ + କ.ଅ) ଅନ୍ନଭୋକ୍ତା, ପରାନ୍ନଭୋଜୀ,(ସ୍ତ୍ରୀ) ଅନ୍ନାଦା, (ପୁଂ) ବିଷ୍ଣୁ ।

ଅନ୍ନାଦୀ—ତ୍ରି. ବିଂ.(ଅନ୍ନ + ଅଦ + ଇନ୍) ଅନ୍ନଭକ୍ଷଣଶୀଳ, ଅନ୍ନଭୋକ୍ତା ।

ଅନ୍ନାଦ୍ୟ—କ୍ଲୀ.ବି:ଅନ୍ନରୂପ ଭକ୍ଷଣଦ୍ରବ୍ୟ ।

ଅନ୍ନାସ୍ତୁ—ତ୍ରି.ବିଂ. ଅନ୍ନ ଖାଇ ଯେ ପ୍ରାଣ ଧାରଣ କରେ ।

ଅନ୍ନାବୃଧ୍—ତ୍ରି.ବିଂ.(ଅନ୍ନ + ବୃଧ୍ + କ୍ୱିପ୍) ଅନ୍ନବର୍ଦ୍ଧକ ।

ଅନ୍ନାଶନ—କ୍ଲୀ. ବିଂ. ଅନ୍ନପ୍ରାଶନ ।

ଅନ୍ନାହାରୀ—ପୁଂ.ବିଂ. (ବି.ସ୍ତ୍ରୀ)(ଅନ୍ନ + ଆ + ହୃ + କ. ଇନ୍) ଯେ ଭାତ ଖାଏ, ଅନ୍ନଭୋକ୍ତା, (ସ୍ତ୍ରୀ) ଅନ୍ନାହାରିଣୀ ।

ଅନ୍ୟ—ତ୍ରି.ବିଂ.(ଅନ୍ + ଯ)ଭିନ୍ନ,ଇତର, ଅସଦୃଶ, ଅପର, (ସ୍ତ୍ରୀ) ଅନ୍ୟା ।

ଅନ୍ୟକାରୁକ—ପୁଂ.ବି.(ଅନ୍ୟ + କୃ + କ) ବିଷ୍ଠାମଳ,ଯେ ଅନ୍ୟପ୍ରକାର କରେ ।

ଅନ୍ୟକୃତ—ତ୍ରି. ବିଂ. (୬ତତ୍ର) ଅପର-ଦ୍ୱାରା ସମ୍ପାଦିତ ବା କରାଯାଇ ଥିବା ।

ଅନ୍ୟଗାମୀ—ବିଂ. (ଅନ୍ୟ + ଗମ୍ + କ. ଇନ୍) ବ୍ୟଭିଚାରୀ, ପାରଦାରିକ, (ସ୍ତ୍ରୀ)-ଅନ୍ୟଗାମିନୀ ।

ଅନ୍ୟଚିତ୍ତ—କ୍ଲୀ. ବି. ବିଷୟାଲୋଚନାର ଅସମର୍ଥଚିତ୍ତ, (ବିଂ) ଅନ୍ୟମନସ୍କ ।

ଅନ୍ୟଚ—ଅବ୍ୟ. ଅପିଚ, ପକ୍ଷାନ୍ତରେ, ଅଧିକନ୍ତୁ । [ ପ୍ରୟୋଗ ।

ଅନ୍ୟତ୍—ଅବ୍ୟ. ଏହା ଅନ୍ୟ:ଅର୍ଥରେ

ଅନ୍ୟତମ—ତ୍ରି. ବିଂ. ଅନେକ ମଧ୍ୟରେ ନିର୍ଦ୍ଧାରିତ ଏକ,ଅନ୍ୟମାନଙ୍କରୁ ପୃଥକ୍ ।

ଅନ୍ୟତର—ବିଂ. (ଅନ୍ୟ + ତର) ଦୁଇ-ଜଣଙ୍କ ମଧ୍ୟରେ ଜଣେ ।

ଅନ୍ୟତରେଦ୍ୟୁଃ—ଅବ୍ୟ. ଅନ୍ୟଦିନେ, ଅନ୍ୟତର ଦିବସରେ ।

ଅନ୍ୟତଃ—ଅବ୍ୟ.(ଅନ୍ୟ + ତସ୍) ଅନ୍ୟ-ପ୍ରକାରେ, ଅନ୍ୟଠାରୁ, ଅନ୍ୟଦ୍ୱାରା ।

ଅନ୍ୟତ୍ୟ—ତ୍ରି. ବି. ଶତ୍ରୁ, ସପତ୍ନ, ସ୍ୱପକ୍ଷଭିନ୍ନଜାତ ।

ଅନ୍ୟତ୍ର—ଅବ୍ୟ. ଅନ୍ୟଠାରେ, ଭିନ୍ନ-ସ୍ଥାନରେ, ଅପର ବିଷୟରେ ।

ଅନ୍ୟଥା—ଅବ୍ୟ, ଅନ୍ୟପ୍ରକାରେ, ପକ୍ଷା-ନ୍ତରେ, ବିପରୀତରୂପେ ।

ଅନ୍ୟଥାକରିବା—ଗ୍ରା.କ୍ରି. ଅଦଳ କରିବା, ପରିବର୍ତ୍ତନ କରିବା, ବିପରୀତାଚରଣ-କରିବା ।

ଅନ୍ୟଥାକାରୀ—ପୁଂ. ବିଂ. (ଅନ୍ୟଥା + କୃ + କ. ଇନ୍) ଅନ୍ୟପ୍ରକାର କାର୍ଯ୍ୟ-କାରୀ, ବିରୁଦ୍ଧାଚାରୀ, (ସ୍ତ୍ରୀ) ଅନ୍ୟଥା-କାରିଣୀ ।

ଅନ୍ୟଥାକୃତ—ବିଂ. ଅନ୍ୟଥା + କୃ + ର୍ମ. ତ)ଅନ୍ୟପ୍ରକାରେ କରାଯାଇଥିବା ।

ଅନ୍ୟଥାଖ୍ୟାତି—ସ୍ତ୍ରୀ.ବି.ଭ୍ରମାତ୍ମକ ଜ୍ଞାନ, ଯଥା:—ଦଉଡ଼ିରେ ସର୍ପର ଜ୍ଞାନ ।

ଅନ୍ୟଥାଚରଣ—କ୍ଲୀ. ବି. ବିପରୀତା-ଚରଣ, ବିରୁଦ୍ଧକାର୍ଯ୍ୟ, ଅବଜ୍ଞାକରଣ ।

ଅନ୍ୟଥାଚାରୀ—ପୁଂ. ବିଂ. (ଅନ୍ୟଥା + ଆ + ଚର୍ + କ. ଇନ୍) ଯେ ନିର୍ଦ୍ଦିଷ୍ଟ ଆଦେଶ ବା ଇଚ୍ଛାବିରୁଦ୍ଧ କାର୍ଯ୍ୟ କରେ, (ସ୍ତ୍ରୀ) ଅନ୍ୟଥାଚାରିଣୀ ।

ଅନ୍ୟଥାନୁପପତ୍ତି—ସ୍ତ୍ରୀ. ବି. ସିଦ୍ଧାନ୍ତର ଅଭାବ ।

ଅନ୍ୟଥାବାଦୀ—ପୁଂ. ବିଂ. (ଅନ୍ୟଥା + ବଦ୍ + କ ଇନ୍) ଯେ ଅନ୍ୟପ୍ରକାର କହେ, ବିରୁଦ୍ଧବାଦୀ, (ସ୍ତ୍ରୀ) ଅନ୍ୟଥା-ବାଦିନୀ ।

ଅନ୍ୟଥାବୃତ୍ତି—ସ୍ତ୍ରୀ.ବି.ଯେ ବସ୍ତୁର ଅନ୍ୟ ପ୍ରକାରରେ ସିଦ୍ଧି ହୁଏ ।

ଅନ୍ୟଥାଭାବ—ପୁଂ.ବି.(କ.ଧା)ଭାବାନ୍ତର ।

ଅନ୍ୟଥାଭୂତ—ତ୍ରି.ବିଂ.ପ୍ରକାରାନ୍ତରପ୍ରାପ୍ତ ।

ଅନ୍ୟଥାସିଦ୍ଧି—ସ୍ତ୍ରୀ. ବି ଅନ୍ୟରୂପେ ପ୍ରମାଣିତ ହେବା ଘଟନା ।

ଅନ୍ୟଦର୍ଥ—ପୁଂ. ବି. ଭିନ୍ନାର୍ଥ ।

ଅନ୍ୟଦା—ଅବ୍ୟ.(ଅନ୍ୟ + ଦା) ଅନ୍ୟ-କାଳେ, ଅନ୍ୟସମୟରେ ।

ଅନ୍ୟଦାଶୀଃ—ଅନ୍ୟର ଆଶୀର୍ବାଦ ।

ଅନ୍ୟଦାସ୍ଥା—ସ୍ତ୍ରୀ. ବି. ଅନ୍ୟ ବିଷୟରେ ଯତ୍ନ ।

ଅନ୍ୟଦାସ୍ଥିତ—ତ୍ରି.ବିଂ. ଅନ୍ୟରୂପପ୍ରାପ୍ତ ।

ଅନ୍ୟଦୀୟ—ତ୍ରି.ବିଂ. (ଅନ୍ୟତ୍ + ଈୟ) ଅନ୍ୟସମ୍ବନ୍ଧୀୟ, ଅପରସଂକ୍ରାନ୍ତ, (ସ୍ତ୍ରୀ) ଅନ୍ୟଦୀୟା ।

ଅନ୍ୟଦୁତ୍ସୁକ—ତ୍ରି.ବିଂ.ଅନ୍ୟ ବିଷୟରେ ଉତ୍ସୁକ, ଉତ୍କଣ୍ଠିତ ।

ଅନ୍ୟଦୃତ—ସ୍ତ୍ରୀ. ବି. ଅନ୍ୟରକ୍ଷା ।

ଅନ୍ୟଦ୍ରାଗ—ପୁଂ. ବି. ଅନ୍ୟବିଷୟରେ ସ୍ନେହ ।

ଅନ୍ୟନିରପେକ୍ଷ—ପୁଂ. ବିଂ. (୭ତତ୍ର) ଅନ୍ୟର ସାହାଯ୍ୟ ଲୋଡ଼ୁ ନଥିବା, (ସ୍ତ୍ରୀ) ଅନ୍ୟନିରପେକ୍ଷା ।

ଅନ୍ୟପୁଷ୍ଟ—ପୁଂ.ସ୍ତ୍ରୀ. ବି.(ଅନ୍ୟ + ପୁଷ୍ଟ) କୋକିଳ, ଅନ୍ୟଦ୍ୱାରା ପାଳିତ, ଅନ୍ୟଭୃତ୍ ।

ଅନ୍ୟପୂର୍ବ—ପୁଂ.ବି. ଅନ୍ୟର ବିବାହିତା ସ୍ତ୍ରୀକୁ ଯେ ପୁଣି ବିବାହ କରେ ।

ଅନ୍ୟପୂର୍ବା—ସ୍ତ୍ରୀ. ବି. ବରପୂର୍ବା, ପୂର୍ବ ପତି ମଲେ ଯେ ଅନ୍ୟପତି ବିବାହକରେ ।

ଅନ୍ୟପୂର୍ବାଗ୍ରାହୀ—ପୁଂ. ବିଂ. (ଅନ୍ୟପୂର୍ବା + ଗ୍ରହ + କ. ଇନ୍) ଯେ ବରପୂର୍ବାକନ୍ୟା ବିବାହ କରେ ।

ଅନ୍ୟବିଧ—ପୁଂ. ବିଂ. (ଅନ୍ୟ + ବିଧା) ଅନ୍ୟପ୍ରକାର, ଅନ୍ୟଶ୍ରେଣୀସ୍ଥ, (ସ୍ତ୍ରୀ) ଅନ୍ୟବିଧା । [ ବ୍ୟତିକ୍ରମ ।

ଅନ୍ୟଭାବ—ପୁଂ. ବି. ପ୍ରକୃତ ଅବସ୍ଥାର

ଅନ୍ୟଭୃତ୍—ପୁଂ.ବିଂ.(ଅନ୍ୟ + ଭୃ + କ. କ୍ୱିପ୍) କାକ, କୁଆ ।

ଅନ୍ୟଭୃତ—ପୁଂ.ବି. (ଅନ୍ୟ + ଭୃ + ର୍ମ. ତ) କୋଇଲି, (ସ୍ତ୍ରୀ) ଅନ୍ୟଭୃତା ।

ଅନ୍ୟମତ—ବି. (କ. ଧା) ଭିନ୍ନମତ, ପୃଥକ୍ମତ, (ବିଂ) ଅନ୍ୟମତାବଲମ୍ବୀ ।

ଅନ୍ୟମନସ୍କ—ତ୍ରି.ବିଂ. (ଅନ୍ୟ + ମନଃ + କ) ଅନ୍ୟବିଷୟରେ ନିବିଷ୍ଟଚିତ୍ତ, ଅନ୍ୟାସକ୍ତ, ଅମନୋଯୋଗୀ, (ସ୍ତ୍ରୀ) ଅନ୍ୟମନସ୍କା ।

ଅନ୍ୟମନାଃ—ପୁଂ.ସ୍ତ୍ରୀ.ବି.(ଅନ୍ୟ + ମନସ୍) ଯାହାର ମନ ଅନ୍ୟସ୍ଥାନରେ ନିବିଷ୍ଟ, ଅନ୍ୟମନସ୍କ । [ଭ୍ରାନ୍ତ ।

ଅନ୍ୟମାତୃଜ—ପୁଂ. ବି. ବୈମାତ୍ରେୟ

ଅନ୍ୟଲିଙ୍ଗ—ଯେ ଶବ୍ଦର କୌଣସି ଲିଙ୍ଗ ନିର୍ଦ୍ଦିଷ୍ଟ ନାହିଁ, ଅନ୍ୟଚିହ୍ନ ।

ଅନ୍ୟଲିଙ୍ଗକ—ବି.ବିଂ. ବିଶେଷ୍ୟର ଲିଙ୍ଗ-ଭାଗୀ, ଶବ୍ଦ, ଅନ୍ୟଚିହ୍ନଯୁକ୍ତ ।

ଅନ୍ୟବାଦୀ—ପୁଂ.ବିଂ. ଅନ୍ୟ + ବଦ + କ ଇନ୍) ସ୍ୱାନୁମତଙ୍କ ପ୍ରତିବାଦୀ, (ସ୍ତ୍ରୀ) ଅନ୍ୟବାଦିନୀ ।

ଅନ୍ୟବର୍ଦ୍ଧିତ—ପୁଂ. ସ୍ତ୍ରୀ. ବି. କୋକିଳ, କୋଇଲି ।

ଅନ୍ୟବ୍ରତ—ବି.ବିଂ.ଯେଉଁମାନେ ଶ୍ରୁତି ଓ ସ୍ମୃତିର ବିରୁଦ୍ଧକର୍ମ କରନ୍ତି,ଅପୁଣ୍ୟ ।

ଅନ୍ୟଶାଖ—ପୁଂ. ବି. ଯାହାର ଯେଉଁ ଶାଖା—ତଦ୍‌ଭିନ୍ନ ଶାଖାପାଠ ।

ଅନ୍ୟସାଧାରଣ—ପୁଂ.ବି.ଅନ୍ୟର ସମାନ, (ବିଂ) ଅନେକର ସ୍ୱତ୍ୱବିଶିଷ୍ଟପଦାର୍ଥ ।

ଅନ୍ୟାଗ୍ୟର—ବି. (ଅନ୍ୟ + ଆଗ୍ୟର) ଅନ୍ୟାୟ୍ୟ ଆଚରଣ ।

ଅନ୍ୟାଗ୍ୟଚାରୀ—ପୁଂ. ବିଂ. (ଅନ୍ୟ + ଆ + ଚର + କ ଇନ୍) ଅନାଗ୍ୟରୀ,ଅନ୍ୟଆ-ଚରଣକାରୀ, (ସ୍ତ୍ରୀ) ଅନ୍ୟାଗ୍ୟାରିଣୀ ।

ଅନ୍ୟାଦୃକ୍—ପୁଂ. ସ୍ତ୍ରୀ. ବିଂ. ( ଅନ୍ୟ + ଦୃଶ୍ + କ୍ୱିପ୍)ଅନ୍ୟପ୍ରକାର,ଭିନ୍ନପ୍ରକାର ।

ଅନ୍ୟାଦୃଶ—ତ୍ରି. ବିଂ. ଅନ୍ୟପ୍ରକାର, ଅନ୍ୟପର, ଯାହା ଅନ୍ୟପ୍ରକାର ଦେଖା-ଯାଏ ।

ଅନ୍ୟାନ୍ୟ—ବିଂ. (ଅନ୍ୟ + ଅନ୍ୟ) ଆଉ ଆଉ, ଅପରାପର ।

ଅନ୍ୟାୟ୍ୟ—ପୁଂ.ବି. ନ୍ୟାୟ୍ୟବିରୁଦ୍ଧାଚରଣ, ଅବିଚାର, ଅନୌଚିତ୍ୟ, ଉତ୍ପୀଡ଼ନ, (ବିଂ) ବେଆଇନ୍, ନ୍ୟାୟ୍ୟବିରୁଦ୍ଧ, ଅନୁଚିତ, ଅସଙ୍ଗତ ।

ଅନ୍ୟାୟ୍ୟୀ—ପୁଂ.ବିଂ. (ଅନ୍ୟାୟ୍ୟ + ଇନ୍) ଅନ୍ୟାୟ୍ୟ ଆଚରଣକାରୀ,ଉତ୍ପୀଡ଼କ,(ସ୍ତ୍ରୀ) ଅନ୍ୟାୟ୍ୟିନୀ ।

ଅନ୍ୟାୟ୍ୟାଚରଣ—କ୍ଳୀ. ବି. (କ. ଧା) ନ୍ୟାୟ୍ୟବିରୁଦ୍ଧ ବ୍ୟବହାର, ଅନ୍ୟାଯ୍ୟ ବ୍ୟବହାର ।

ଅନ୍ୟାଯ୍ୟ—ବି. ବିଂ. ଅନୁଚିତ, ଯାହା ନ୍ୟାୟ୍ୟସଙ୍ଗତ ନୁହେ, ଅଯୋଗ୍ୟ, ବେଆଇନ୍ ।

ଅନ୍ୟାର୍ଥ—ପୁଂ.ବି.ଅନ୍ୟ ବା ଅପର ଅର୍ଥ, ଅନ୍ୟଉଦ୍ଦେଶ୍ୟ, ( ବିଂ ) ଯାହାର ଅନ୍ୟ ଉଦ୍ଦେଶ୍ୟ ବା ଅପର ଅର୍ଥଅଛି ବା ଥାଏ ।

ଅନ୍ୟାଶ—ସ୍ତ୍ରୀ ବି· ଅନ୍ୟର ଆଶା, ବାଞ୍ଛା, ଅନ୍ୟସ୍ତ୍ରୀର ଆଶା ।

ଅନ୍ୟାଶୀଃ—ସ୍ତ୍ରୀ. ଅନ୍ୟର ଆଶୀର୍ବାଦ ।

ଅନ୍ୟାପ୍ରକାରଣରେ—କ୍ରି.ବି. ବିଂ. ଅକା-ରଣରେ, ବିନାକାରଣରେ, ବୃଥା ।

ଅନ୍ୟାସକ୍ତ—ପୁଂ, ବିଂ. (୭ତତ୍) ଅନ୍ୟ-ବ୍ୟକ୍ତିଠାରେ ମୋହିତ ବା ଲିପ୍ତ, (ସ୍ତ୍ରୀ) ଅନ୍ୟାସକ୍ତା ।

ଅନ୍ୟାସେ—କ୍ରି. ବି. ବିଂ.ଅନାୟାସେ ।

ଅନ୍ୟାଶ୍ରିତ—ତ୍ରି. ବିଂ. ଅନ୍ୟ ଯାହାକୁ ରଖିଅଛି ।

ଅନ୍ୟୂନ-ବି.ବିଂ. (ଅ + ନ୍ୟୂନ)କମ୍‌ନୁହେ, ନିନ୍ଦିତ ନୁହେ, ସମଗ୍ର, ନ୍ୟୂନ ନୁହେ, ଅଧିକ, (ସ୍ତ୍ରୀ) ଅନ୍ୟୂନା ।

ଅନ୍ୟୂନାଧିକ—ତ୍ରି.ବିଂ. ନ୍ୟୂନ ଓ ଅଧିକ ନୁହେ, ଠିକ୍ ସମାନ ।

ଅନ୍ୟୂନାତିରିକ୍ତ—ତ୍ରି. ବିଂ. ନ୍ୟୂନ ଓ ଅଧିକ ନୁହେ, ବେଶି କମି ନୁହେ ।

ଅନ୍ୟେଦ୍ୟୁଷ୍କ—ତ୍ରି. ବିଂ ଅନ୍ୟଦିନେଜାତ

ଅନ୍ୟେଦ୍ୟୁଃ—ଅବ୍ୟ.ଅନ୍ୟଦିବସେ, ପର-ଦିନ । [ବିଶେଷ ।

ଅନ୍ୟୋଢା—ସ୍ତ୍ରୀ.ବି. ପରକୀୟା ନାୟିକା-

ଅନ୍ୟୋତ୍କୃଷ୍ଟ—ତ୍ରି. ବିଂ. ଅନ୍ୟକର୍ତ୍ତୃକ ଉତ୍କର୍ଷିତ ।

ଅନ୍ୟୋଦର୍ଯ୍ୟ-ପୁଂ.ବି. ବୈମାତ୍ରେୟଭ୍ରାତା, ସଉତୁଣୀ ମା ପୁଅ, (ସ୍ତ୍ରୀ) ଅନ୍ୟୋଦର୍ଯ୍ୟା

ଅନ୍ୟୋଦର୍ଯ୍ୟ—ବିଂ.(ଅନ୍ୟ + ଉଦର + ଯ ବିମାତା-ପୁତ୍ର, ସଉତୁଣୀ ମା-ପୁଅ, ବୈମାତ୍ରେୟ, (ସ୍ତ୍ରୀ) ଅନ୍ୟୋଦର୍ଯ୍ୟା ।

ଅନ୍ୟୋନ୍ୟ—ତ୍ରି. ବିଂ. (ଅନ୍ୟ + ଅନ୍ୟ) ପରସ୍ପର, (ବି) ଅର୍ଥାଲଙ୍କାରବିଶେଷ ।

ଅନ୍ୟୋନ୍ୟାଧ୍ୟାସ—ପୁଂ. ବି. ବେଦାନ୍ତ-ମତସିଦ୍ଧ, ପରସ୍ପର ଅନ୍ୟ ଭାବାସ୍ୱର ଆରୋପ ।

ଅନ୍ୟୋନ୍ୟାଭାବ—ପୁଂ.ବି.ପରସ୍ପରଅଭାବ, ନ୍ୟାୟମତେ ଭେଦବିଶେଷ ।

ଅନ୍ୟୋନ୍ୟାଶ୍ରୟ—ତ୍ରି.ବିଂ. ତର୍କବିଶେଷ, ଦୋଷବିଶେଷ, ପରସ୍ପର ଜ୍ଞାନସାପେକ୍ଷ, ଜ୍ଞାନାଶ୍ରୟ ।

ଅନ୍ୱକ୍—ପୁଂ.ବିଂ. ( ଅନୁ + ଅନଚ + କ. କ୍ୱିପ୍ ) ଅନୁଗାମୀ, (ସ୍ତ୍ରୀ) ଅନୂଚୀ, (ବି.ବିଂ)ପଶ୍ଚାତ୍,ଅନୁପଦ,ଅନୁସାରେ ।

ଅନ୍ୱକ୍ଷ—ତ୍ରି. ବିଂ. (ବ. ବ୍ରୀ) ପ୍ରତ୍ୟକ୍ଷ, ଅନୁପଦ, ଅନୁଗତ, (ସ୍ତ୍ରୀ) ଅନ୍ୱକ୍ଷା ।

ଅନ୍ୱଗ୍‌ଭାବ—ପୁଂ. ବି. ପଶ୍ଚାଦ୍‌ଗମନ, ପଶ୍ଚାଦ୍‌ଗାମିତ୍ୱ ।

ଅନ୍ୱଚ୍—ତ୍ରି.ବିଂ. (ଅନୁ + ଅଞ୍ଚ + କ୍ୱିପ୍) ଅନୁଗାମୀ, ପଶ୍ଚାଦ୍‌ଗାମୀ ।

ଅନ୍ୱଞ୍ଚ—ପୁଂ. ବିଂ. (ଅନୁ + ଅନଚ + କ. କ୍ୱିପ୍ ) ଅନୁଗାମୀ, (ସ୍ତ୍ରୀ) ଅନୂଚୀ ।

ଅନ୍ୱନ୍—ତ୍ରି. ବିଂ. (ଅନୁ + ବା + କ) ଅନୁଗାମୀ (ସ୍ତ୍ରୀ) ଅନ୍ୱନୀ ।

ଅନ୍ୱୟ—ପୁଂ. ବି. (ଅନୁ + ଇ + ଭା. ଅ) ବଂଶ,ବାକ୍ୟରେ ପଦମାନଙ୍କର ସମ୍ବନ୍ଧ, ପରିବାର, ବିଦ୍ୟମାନତା, ଅର୍ଥ ।

ଅନ୍ୱୟଜ୍ଞ—ପୁଂ. ବିଂ. (ଅନ୍ୱୟ + ଜ୍ଞା + କ. ଅ) କୁଳତତ୍ତ୍ୱବେତ୍ତା, ବଂଶବିତ୍ ।

ଅନ୍ୱୟବୋଧ—ପୁଂ.ବି. (୬ତତ୍) ଶବ୍ଦ-ଜ୍ଞାନ ହେତୁ ଶବ୍ଦବୋଧରୂପ ଅନୁଭବ-ବିଶେଷ ।

ଅନ୍ୱୟୀ—ପୁଂ. ବିଂ. ( ଅନ୍ୱୟ + ଇନ୍ ) ଶାବ୍ଦବୋଧର ଉପଯୁକ୍ତ ସମ୍ବନ୍ଧବିଶିଷ୍ଟ, ଅନ୍ୱୟଯୁକ୍ତ, (ସ୍ତ୍ରୀ) ଅନ୍ୱୟିନୀ ।

ଅନ୍ୱୟଯୋଜନା—ସ୍ତ୍ରୀ. ବି. ( ୬ତତ୍ ) ବାକ୍ୟାନ୍ତର୍ଗତ ପ୍ରତ୍ୟେକପଦର ପରସ୍ପର ସମ୍ବନ୍ଧନିରୂପଣ ।

ଅନ୍ୱର୍ଥ—ତ୍ରି. ବଂ. (ବ.ବ୍ରୀ) ଅର୍ଥଯୁକ୍ତ, ବ୍ୟୁତ୍ପତ୍ତିବିଶିଷ୍ଟ ଶବ୍ଦ, ଯଥାର୍ଥ, ସଙ୍ଗତ, ସାର୍ଥକ ।

ଅନ୍ୱବସର୍ଗ—ପୁଂ. ବ. (ଅନୁ + ଅବ + ସୃଜ୍ + ଅ) ଯାହା ଇଚ୍ଛା ତାହା କର ଏହି ପର ଆଦେଶ, ଯଥେଚ୍ଛାଚାରପ୍ରବୃତ୍ତି ।

ଅନ୍ୱବାୟ—ପୁଂ. ବ. (ଅନୁ + ଅବ + ଇ + ଘ.ଅ) ବଂଶ, ସନ୍ତାନ, କୁଳ, ଗୋତ୍ର ।

ଅନ୍ୱୟବ୍ୟତିରେକ—ପୁଂ. ବ. ତତ୍ସତ୍ତ୍ୱେ-ତତ୍ସତ୍ତା, ଅର୍ଥାତ୍ ତାହା ଥିଲେ ତାହା ଥାଏ ।

ଅନ୍ୱୟବ୍ୟତିରେକୀ—ତ୍ରି. ବଂ. ସାଧ୍ୟର ସାଧକ ହେତୁବିଶେଷ ।

ଅନ୍ୱୟବ୍ୟାପ୍ତି—ସ୍ତ୍ରୀ. ବ. ସର୍ବଦାସ୍ଥିତି ।

ଅନ୍ୱୟାଗତ—ତ୍ରି. ବଂ. ଦାୟପ୍ରାପ୍ତଧନାଦି, (ପୁଂ) ସ୍ୱଦେଶସ୍ଥ ବଂଶରୁ ଆଗତ କୌଣସି ବ୍ୟକ୍ତି । [ ବୋଧ

ଅନ୍ୱବେକ୍ଷା ସ୍ତ୍ରୀ. ବ ଅପେକ୍ଷା, ଅନୁ-

ଅନ୍ୱଷ୍ଟକା—ସ୍ତ୍ରୀ ବ. ଶ୍ରାଦ୍ଧରକାଲବିଶେଷ, ଅଶ୍ୱିନ, ପୌଷ, ମାଘ, ଫାଲ୍ଗୁନ-ମାସର କୃଷ୍ଣାନବମୀ ।

ଅନ୍ୱଷ୍ଟମଦଶ—ଅବ୍ୟ. ପଶ୍ଚିମୋତ୍ତର କୋଣ, ବାୟୁକୋଣ ।

ଅନ୍ୱହ—ଅବ୍ୟ. ( ଅନୁ + ଅହନ୍ ) ପ୍ରତ୍ୟହ, ପ୍ରତିଦିନ ।

ଅନ୍ୱାଖ୍ୟାନ—କ୍ଳୀ ବ. (ଅନୁ + ଆ + ଖ୍ୟା + ଅନ) ଉକ୍ତମରୂପେ ତାତ୍ପର୍ଯ୍ୟବିଶେଷ ।

ଅନ୍ୱାଚୟ—ପୁଂ. ବ. (ଅନୁ ଆ + ଚି + ଘ.ଅ) ଅନୁଷଙ୍ଗ, ସହାବାସ ।

ଅନ୍ୱାଜେ—ଅବ . ବଲହୀନର ବଲପ୍ରାପ୍ତି, ଦୁର୍ବଲର ବଲାଧାନ ।

ଅନ୍ୱାଦେଶ - ପୁଂ. ବ. ( ଅନୁ + ଆଦେଶ) ଅନୁକରଣ ।

ଅନ୍ୱାଧାନ—କ୍ଳୀ. ବ. ହୋମର ଅଗ୍ନି-ସ୍ଥାପନ ପରେ ତାହା ଉପରେ ଦୁଇ-ଖଣ୍ଡ କାଷ୍ଠସ୍ଥାପନ ।

ଅନ୍ୱାଧି—ପୁଂ. ବ. (ଅନୁ + ଆ + ଧା + ଇ) ଗଚ୍ଛିତଧନ ଲୋକଦ୍ୱାରା ତାହାର ସ୍ୱାମୀ ନିକଟ ପ୍ରେରଣ, ପଶ୍ଚାତ୍ପୀଡ଼ା ।

ଅନାଧେୟ—କ୍ଳୀ. ବ. (ଅନୁ + ଆଧେୟ) ବିବାହପରେ ସ୍ତ୍ରୀ ପିତା ଓ ପତିକୁଳରୁ ଯେ ଧନଲାଭ କରେ ।

ଅନ୍ୱାସ୍ୱତନ—ଅବ୍ୟ. ଯଜ୍ଞଗୃହମଧ୍ୟେ, ଯଜ୍ଞଗୃହ ପ୍ରାପ୍ତ ।

ଅନ୍ୱାସ୍ୱତ୍ତ—ତ୍ରି. ବଂ. ଅନୁଗତ, ପ୍ରତି-ଯତ୍ନେ ଅନୁଗତ ।

ଅନ୍ୱାରବ୍ଧ—ତ୍ରି. ବଂ. (ଅନୁ + ଆ + ରଭ + ତ) ପଶ୍ଚାତ୍ ସ୍ପୃଷ୍ଟ, ଯାହା ପରେ ଆରମ୍ଭ କରାଯାଇ ଅଛି ।

ଅନ୍ୱାରଭ୍ୟ—ତ୍ରି. ବଂ. ସ୍ପର୍ଶଯୋଗ୍ୟ, ଏକ-ସଙ୍ଗେ ଆରମ୍ଭଯୋଗ୍ୟ ।

ଅନ୍ୱାରମ୍ଭ—ପୁଂ. ବ. ପଛରେ ଆରମ୍ଭ ।

ଅନ୍ୱାରୂଢ଼—ତ୍ରି. ବଂ (ଅନୁ + ଆ + ରୁହ୍ + ତ) ଅଧିରୂଢ଼, ଯେ ପରେ ଆରୋହଣ କରିଅଛି ।

ଅନ୍ୱାରୋହଣ—କ୍ଳୀ. ବ ପଶ୍ଚାତ୍ଆରୋହଣ, ସହଗମନ, (ସ୍ତ୍ରୀ) ଅନ୍ୱାରୋହଣୀ ।

ଅନ୍ୱାସନ—କ୍ଳୀ. ବ. (ଅନୁ + ଆସ୍ + ଘ. ଅନ) ଅନୁଶୋଚନ, ଶିଲ୍ପାଦି ଗୃହପରେ ବସିବା ।

ଅନ୍ୱାସିତ—ତ୍ରି. ବଂ. (ଅନୁ + ଆସ୍ + ର୍ମ. ତ ସେବିତ, ଆରାଧିତ, ପଶ୍ଚାଦୁପବେଶିତ, ପଛରେ ବସାଯାଇଥିବା ।

ଅନ୍ୱାହାର୍ଯ୍ୟ—କ୍ଳୀ. ବ. (ଅନୁ + ଆ + ହୃ + ର୍ମ. ଯ) ଅମାବାସ୍ୟାଶ୍ରାଦ୍ଧ. ଅନ୍ୱାହାର୍ଯ୍ୟକ, ପିତୃଲୋକଙ୍କ ମାସିକ ଶ୍ରାଦ୍ଧ ।

ଅନ୍ୱାହାର୍ଯ୍ୟପଚନ—ପୁଂ. ବ. ଦକ୍ଷିଣାଗ୍ନି, ଋକ୍‌ବେଦବିଧାନେ ସ୍ଥାପିତାଗ୍ନି ।

ଅନ୍ୱାହିତ—କ୍ଳୀ. ବଂ. ଅଗ୍ନି ସ୍ଥାପନପରେ ସମିଧଦାନ, ପଶ୍ଚାତ୍ଆରୋପିତ, ଗଚ୍ଛିତ-ଧନ ତାହାର ସ୍ୱାମୀକୁ ଦେବାକୁ ଅନ୍ୟ ହସ୍ତରେ ଦେବା ।

ଅନ୍ୱିତ—ତ୍ରି. ବଂ. (ଅନୁ ଇ + କ. ତ) ଅନୁଗତ, ଯୁକ୍ତ, ସମ୍ବନ୍ଧବିଶିଷ୍ଟ, ସମ୍ବଦ୍ଧ ।

ଅନ୍ୱିଷ୍ଟ - ତ୍ରି. ବଂ. (ଅନୁ + ଇଶ୍ + ତ) ଯାହାର ଅନ୍ୱେଷଣ କରା ହୋଇଅଛି, ପୂଜିତ, ଆକାଙ୍କ୍ଷିତ (ଦ୍ର ଅନ୍ୱେଷଣ ।

ଅନ୍ୱୃତ—ସ୍ତ୍ରୀ ବ. ନମସ୍କାର ଦ୍ୱାରା ଅନୁ-କୂଳତାପ୍ରାପ୍ତି ।

ଅନ୍ୱୀକ୍ଷଣ—କ୍ଳୀ. ବ. ( ଅନୁ + ଈକ୍ଷ + ଘ. ଅନ) ପର୍ଯ୍ୟାଲୋଚନା, ଅନୁସନ୍ଧାନ ।

ଅନ୍ୱୀକ୍ଷା—ସ୍ତ୍ରୀ. ବ. (ଅନୁ + ଈକ୍ଷା) ପର୍ଯ୍ୟା-ଲୋଚନା, ଉନ୍ନୟନ, ଅନ୍ୱେଷଣ ।

ଅନ୍ୱୀତ—ତ୍ରି. ବଂ. ( ଅନୁ + ଇ + ତ ) ଅନୁଗତ, ଅନ୍ୱୟପ୍ରାପ୍ତ ।

ଅନ୍ୱୀପ—ତ୍ରି. ବଂ. ଜଳାନୁଗତ ସ୍ଥାନ ।

ଅନ୍ୱେଷ—ପୁଂ. ବ. ଅନ୍ୱେଷଣ, ଅନୁସନ୍ଧାନ ।

ଅନ୍ୱେଷକ - ପୁଂ. ବଂ. (ଅନୁ + ଇଷ + କ. ଅକ) ଯେ ଅନ୍ୱେଷଣ କରେ ବା ଖୋଜେ, (ସ୍ତ୍ରୀ) ଅନ୍ୱେଷିକା ।

ଅନ୍ୱେଷଣା—କ୍ଳୀ. ବ. (ଅନୁ ଇଷ୍ + ଘ. ଅନ) ଅନୁସନ୍ଧାନ, ଗବେଷଣା, (ବଂ. ଅନ୍ୱେଷିତ, ଖୋଜା, ଆକାଙ୍କ୍ଷା ।

ଅନ୍ୱେଷଣ—ସ୍ତ୍ରୀ. ବ. (ଅନୁ + ଇଷ୍ + ଘ. ଅନ + ଆ) ତର୍କାଦିଦ୍ୱାରା କୌଣସି ବିଷୟର ମୂଳକାରଣ ଅନ୍ୱେଷଣକରିବା ।

ଅନ୍ୱେଷଣୀୟ—ତ୍ରି. ବଂ. ( ଅନ୍ୱେଷଣ + ଇୟ) ଅନୁସନ୍ଧେୟ, ଯାହାର ଅନୁ-ସନ୍ଧାନ କରିବା ଉଚିତ ।

ଅନ୍ୱେଷିତ—ତ୍ରି. ବଂ. ଅନୁ + ଣିଚ୍— ଇଷ + କ. ତ ) ଗବେଷିତ, କୃତାନୁ-ସନ୍ଧାନ, (ବା) ଅନ୍ୱେଷଣ, (ସ୍ତ୍ରୀ ଅନ୍ୱେଷିତା ।

ଅନ୍ୱେଷୀ—ପୁଂ. ବି. ଗବେଷକ, ଅନ୍ୱେଷଣ-କର୍ତ୍ତା, (ସ୍ତ୍ରୀ) ଅନ୍ୱେଷିଣୀ ।

ଅନ୍ୱେଷ୍ଟବ୍ୟ—ତ୍ରି ବଂ. (ଅନୁ + ଇଷ୍ + ର୍ମ. ତବ୍ୟ ଅନୁସନ୍ଧାନକରିବାର ଯୋଗ୍ୟ, ଅନୁସନ୍ଧେୟ ।

ଅନ୍ୱେଷିତା—ପୁଂ. ବଂ. ଅନ୍ୱେଷଣକର୍ତ୍ତା, (ସ୍ତ୍ରୀ) ଅନ୍ୱେଷିଣୀ ।

ଅନ୍ୱେଷ୍ଟା—ପୁଂ. ବ. (ଅନୁ + ଇଷ୍ + କ. ତୃ ଅନ୍ୱେଷଣକର୍ତ୍ତା, (ସ୍ତ୍ରୀ) ଅନ୍ୱେଷ୍ଟ୍ରୀ ।

ଅପ୍—ବ. ଅପ୍ + କ୍ୱିପ )ଜଳ, ପାଣି ।

ଅପ—ଅବ୍ୟ (ଅ + ପା + ଡ. ଅ) ଉପସର୍ଗ ବିଶେଷ, ଅନାଦର, ଭ୍ରଂଶ, ତ୍ୟାଗ, ଅପାକଲ୍ୟ, ବୈରୂପ୍ୟ, ଅପକୃଷ୍ଟ, ବର୍ଜନ, ବିୟୋଗ, ବିପର୍ଯ୍ୟୟ, ବିକୃତ, ଚୌର୍ଯ୍ୟ, ନିର୍ଦ୍ଦେଶ, ହର୍ଷ, ଅଧମ, ଲୁଣ୍ଠିତ, ବିରୁଦ୍ଧ ।

ଅପଃ—କ୍ଲୀ.ବି. ଯଜ୍ଞକର୍ମ, ଯାହାଦ୍ୱାରା କାମ୍ୟଫଳ ପାଇବାକୁ ହୁଏ ।
ଅପକର୍ମ—କ୍ଲୀ. ବି. ଦୁଷ୍କର୍ମ, ମନ୍ଦକର୍ମ, (ବିଂ.ପୁଂ.)ଅପକର୍ମା, (ସ୍ତ୍ରୀ)ଅପକର୍ମିଣୀ ।
ଅପକର୍ମା—ପୁଂ.ବିଂ. ଦୁଷ୍କର୍ମକାରୀ, ଅପକର୍ମକାରକ ।
ଅପକର୍ତ୍ତା—ପୁଂ. ବିଂ. (ଅପ + କୃ + କ. ତୃ) ଅନିଷ୍ଟକାରୀ, (ସ୍ତ୍ରୀ) ଅପକର୍ତ୍ତ୍ରୀ ।
ଅପକଳଙ୍କ—ବିଂ.ମିଥ୍ୟା,ଅପବାଦ,ଦୁର୍ନାମ।
ଅପକର୍ଷ—ପୁଂ. ବି. (ଅପ + କୃଷ୍ + ଭା. ଅ) ହୀନତା, ଅପକୃଷ୍ଟତା, ନିକୃଷ୍ଟତା ।
ଅପକର୍ଷକ—ତ୍ରି ବିଂ. ଅପକର୍ଷକାରକ, ଯେ ଅପକର୍ଷ କରଏ ।
ଅପକର୍ଷଣ—ତ୍ରି. ବିଂ. ଅପହାରକ, ଅପହରଣ, ଦୂରୀକରଣ ।
ଅପକାମ—ପୁଂ.ବି. ମନ୍ଦକ ମନା, ଯାହାର କାମନା ନଷ୍ଟ ହୋଇଅଛି ।
ଅପକାର—ପୁଂ. ବି. ( ଅପ + କୃ + ଭା. ଅ) ମନ୍ଦକରଣ, ଅନିଷ୍ଟ, ହାନି, କ୍ଷତି, ଅମଙ୍ଗଳ ।
ଅପକାରକ—ପୁଂ. ବି.(ଅପ + କୃ + କ. ଅକ) କ୍ଷତିକାରକ, (ସ୍ତ୍ରୀ) ଅପକାରିକା ।
ଅପକାରୀ—ପୁଂ.ବିଂ. (ଅପ + କୃ + କ, ଇନ୍) ଅମଙ୍ଗଳକାରକ, ଅନିଷ୍ଟକାରୀ, (ସ୍ତ୍ରୀ) ଅପକାରିଣୀ ।
ଅପକୀର୍ତ୍ତି—ବି. (ଅପ + କୀର୍ତ୍ତି) ଅପଯଶ, ନିନ୍ଦା, ଅଖ୍ୟାତି ।
ଅପକୃତ—ତ୍ରି.ବିଂ.(ଅପ + କୃ + ର୍ମ.ତ ) ଯାହାର ଅନିଷ୍ଟ କରାହୋଇଅଛି, (ବିପ) ଉପକୃତ, (ସ୍ତ୍ରୀ)ଅପକୃତା ।
ଅପକୃତି—ସ୍ତ୍ରୀ.ବି. ( ଅପ + କୃ + ଭା.ତି) ଅପକାର, ଦ୍ୱେଷ, ଅନିଷ୍ଟଚକ୍ରାନ୍ତ ।
ଅପକୃଷ୍ଟ—ତ୍ରି.ବିଂ.(ଅପ + କୃଷ + ର୍ମ.ତ) ନୀଚ, ନିକୃଷ୍ଟ,ଅପନୀତ, ହୀନ, ଜଘନ୍ୟ, (ସ୍ତ୍ରୀ) ଅପକୃଷ୍ଟା ।
ଅପକ୍ତି—ସ୍ତ୍ରୀ.ବି. ( ଅ + ପଚ୍ + ଭା. ତି ପାକର ଅଭାବ, ଅପାକ, ଅଜୀର୍ଣ୍ଣତା ।

ଅପକ୍ରମ—ପୁଂ.ବି. (ଅପ + କ୍ରମ + ଭା.ଅ) ପଳାୟନ, କ୍ରମଶୂନ୍ୟ, ପ୍ରସ୍ଥାନ, (ବିଂ) ଅପକ୍ରାନ୍ତ ।
ଅପକ୍ରମଣ—କ୍ଲୀ. ବି. ( ଅପ + କ୍ରମ୍ + ଭା.ଅନ) ପ୍ରସ୍ଥାନ, ପଳାୟନ, ଅପଗମ ।
ଅପକ୍ରମୀ—ପୁଂ.ବିଂ.(ଅପ + କ୍ରମ୍ + ଇନ୍) ଯେ ପଳାୟନ କରେ ।
ଅପକ୍ରାନ୍ତ—ତ୍ରି.ବିଂ.(ଅପ + କ୍ରମ୍ + କ.ତ) ପଳାୟିତ, ଅପସୃତ, ଅପଗତ ।
ଅପକ୍ରିୟା—ସ୍ତ୍ରୀ.ବି. (ଅପ + କୃ + ଭା.ଯ + ଆ) କୁକର୍ମ, ଅପକାର, ଦ୍ୱେଷ ।
ଅପକ୍ରୋଶ—ପୁଂ.ବି. (ଅପ + କ୍ରୁଶ + ଭା. ଅ) ନିନ୍ଦା, ଭର୍ତ୍ସନା, ତିରସ୍କାର ।
ଅପକ୍ରୋଶନ—କ୍ଲୀ.ବି. (ଅପ + କ୍ରୁଶ୍ + ଅନ) ନିନ୍ଦା ।
ଅପକ୍ୱ—ତ୍ରି.ବିଂ.(ନ + ପକ୍ୱ) ଅପରିଣତ, ଯାହା ପାଚି ନ ଥାଏ, କଞ୍ଚା, ଅସିଝା, ଅରନ୍ଧା ।
ଅପକ୍ୱଅନ୍ନ—ଗ୍ରା.ବି. ଯାହା ସିଝା ହୋଇ ନ ଥାଏ, ନିଃସଙ୍କୁଡ଼ି, ଯେ ପାଣିସିଝା ନୁହେ, ଯହିଁରେ ଲୁଣ ପଡ଼ି ନ ଥାଏ ।
ଅପକ୍ଷ—ତ୍ରି.ବିଂ.ପକ୍ଷହୀନ,ଯାହାର ସହାୟ କେହି ନାହିଁ ।
ଅପକ୍ଷପାତ—ପୁଂ. ବି. ନିରପେକ୍ଷତା, କୌଣସି ପକ୍ଷ ନ ଧରିବା ।
ଅପକ୍ଷପାତୀ—ପୁଂ. ବିଂ. (ଅପକ୍ଷ + ପତ୍ + ଇନ୍ )ସମଦର୍ଶୀ,ନିରପେକ୍ଷବ୍ୟକ୍ତି,(ସ୍ତ୍ରୀ) ଅପକ୍ଷପାତିନୀ ।
ଅପକ୍ଷରା—ଗ୍ରା. ବି (ସ୍ତ୍ରୀ.) ଅପ୍ସରା ।
ଅପକ୍ଷରୀ—ଗ୍ରା. ସ୍ତ୍ରୀ. ବି. ଅପ୍ସରା ।
ଅପକ୍ଷେପଣ—କ୍ଲୀ.ବି ଅଧଃପାତନ ।
ଅପଖା—ଗ୍ରା.ବିଂ. ଯେଉଁ ଚୁଲ୍ଲୀରେ ପଖା ବା ମୁହଁ ନାହିଁ, ଏକମୁହାଁ ଚୁଲ୍ଲୀ ।
ଅପଖ୍ୟାତ—ପୁଂ. ବିଂ. (ଅପ + ଖ୍ୟା + ର୍ମ.ତ) ନିନ୍ଦିତ, ଅପବାଦଗ୍ରସ୍ତ ( ବି ) ଅପଖ୍ୟାତି, (ସ୍ତ୍ରୀ) ଅପଖ୍ୟାତା ।
ଅପଖ୍ୟାତି—ବି. (ଅପ + ଖ୍ୟାତି) ନିନ୍ଦା, ଅପବାଦ ।

ଅପଗଣ୍ଡ—ପୁଂ. ବି. ବିକଳାଙ୍ଗ ।
ଅପଗତ—ତ୍ରି. ବିଂ (ଅପ + ଗମ୍ + କ. ତ) ପ୍ରସ୍ଥିତ,ପଳାୟିତ, ଅପସୃତ, ମୃତ, ଦୂରୀଭୂତ, ରହିତ, (ସ୍ତ୍ରୀ) ଅପଗତା ।
ଅପଗମ—ପୁଂ.ବି.(ଅପ + ଗମ୍ + ଭା.ଅ) ବିନାଶ, ପ୍ରସ୍ଥାନ, ପଳାୟନ, ନିର୍ଗମ, ମୃତ୍ୟୁ, (ବିପ) ଆଗମ, ଉପଗମ ।
ଅପଗମନ—କ୍ଲୀ.ବି ( ଅପ + ଗମ୍ – ଭା. ଅନ ) ନାଶ, ଅପସରଣ, ପ୍ରସ୍ଥାନ, ପଳାୟନ । [ନିନ୍ଦନ ।
ଅପଗର—ପୁଂ. ବି. (ଅପ + ଗୃ + ଅ)
ଅପଗା—ସ୍ତ୍ରୀ. ବି. (ଅପ + ଗମ୍ + ଅ + ସ୍ତ୍ରୀ. ଆ) ନଦୀ, ନିମ୍ନଗା, ସ୍ରୋତସ୍ୱତୀ ।
ଅପଗୋହ—ପୁଂବିଂ.(ଅପ + ଗୁହ୍ + ଅ) ଗୋପନ, ତିରୋଧାନ ।
ଅପଗ୍ରହ—ପୁଂ. ବି. ପ୍ରତିକୂଳଗ୍ରହ ।
ଅପଘନ—ପୁ. ବି. (ଅପ + ହନ + ଅ) ଦେହ, ଶରୀର, ଅଙ୍ଗ, ଶରତ୍କାଳୀନ,ବିଂ.(ବ.ବ୍ରୀ)ମେଘଶୂନ୍ୟ,ନିର୍ମେଘ ।
ଅପଘାତ—ପୁଂ.ବି. (ଅପ + ହନ୍ + ଭା ତ) ଅକାଳ ମୃତ୍ୟୁ ଘଟାଇବା, ହତ୍ୟା, ଅକସ୍ମାତ୍ ମୃତ୍ୟୁ ।
ଅପଘାତକ—ପୁଂ. ବିଂ. ବିନାଶକ, ଅପଘାତକାରୀ, (ସ୍ତ୍ରୀ) ଅପଘାତିକା ।
ଅପଘାତୀ—ପୁଂ. ବିଂ. (ଅପ + ହନ୍ + କ. ଇନ୍ ) ଅପହନନକର୍ତ୍ତା, ( ସ୍ତ୍ରୀ ) ଅପଘାତିନୀ ।
ଅପଘୃଣ—ତ୍ରି. ବିଂ. ( ବ.ବ୍ରୀ ) ନିର୍ଦ୍ଦୟ, ନିର୍ଲଜ, ଘୃଣାଶୂନ୍ୟ, (ସ୍ତ୍ରୀ) ଅପଘୃଣା ।
ଅପଚ—ପୁଂ. ବି. ( ଅ + ପଚ + ଅ) ପାକ କରିବାର ଅସମର୍ଥ ।
ଅପଚୟ—ପୁଂ.ବି(ଅପ + ଚି + ଅ) କ୍ଷତି, ଅପହରଣ, କ୍ଷୟ, ବ୍ୟୟ ।
ଅପଚରିତ—କ୍ଲୀ.ବି.ମନ୍ଦଆଚରଣ, ଦୁଷ୍ଟଚରିତ୍ର ।
ଅପଗୃଧିତ—ତ୍ରି. ବିଂ. (ଅପ + ଗୃଧ୍ + ର୍ମ.ତ) ପୂଜିତ, ଅପବ୍ୟୟିତ, ଶାଣିତ ।

ଅପଚ୍ଚର—ପୁଂ.ବ. ଅପ + ଚର + ଭା. ଅ) ଅହିତ ଆଚରଣ, କୁପଥ୍ୟସେବା, ବିନାଶ, ଅପଥ୍ୟଗ୍ରହଣ, ସ୍ୱଧର୍ମ ବ୍ୟତିକ୍ରମ ।
ଅପଚ୍ଚାରୀ—ପୁଂ. ବିଂ. ଯେ ଅହିତାଚରଣ କରେ, (ସ୍ତ୍ରୀ) ଅପଚାରିଣୀ, ବ୍ୟଭିଚାରିଣୀ ।
ଅପଚକାର୍ଷା—ବି.ବିଂ. (ଅପ + କୃ + ସନ୍ + ଭା.ଅ) ଅପକାର କରିବାର ଇଚ୍ଛା ।
ଅପଚକାର୍ଷୁ—ତ୍ରି,ବିଂ. ଅପ + ସନ୍ + କୃ + ଉ) ପରର ଅପକାର କରିବାକୁ ଇଚ୍ଛୁକ, ହିଂସୁକ ।
ଅପଚିତ—ତ୍ରି. ବିଂ. (ଅପ + ଚି + ର୍ମ.କ୍ତ) କ୍ଷତିବଶିଷ୍ଟ, କ୍ଷୀଣ, ବ୍ୟୟିତ, ଯେଉଁ ପଦାର୍ଥ ହାନି ଘଟିଅଛି ।
ଅପଚିତି—ସ୍ତ୍ରୀ. ବ.(ଅପ + ଚି + ଭା.ତି) କ୍ଷୟ, ବ୍ୟୟ, ପୂଜା, ନଷ୍ଟତି, ନିସ୍କୃତି ।
ଅପଚୀ—ସ୍ତ୍ରୀ. ବ. ଗଣ୍ଡମାଳାର ଉପର ବ୍ରଣବିଶେଷ ।
ଅପଚୀୟମାନ—ବି. ବିଂ. (ଅପ + ଚି + ର୍ମ.ଅନସ) ବିନାଶଶୀଳ, ନଷ୍ଟପ୍ରାପ୍ତ, (ସ୍ତ୍ରୀ) ଅପଚୀୟମାନା ।
ଅପଚ୍ଛାୟ—ପୁଂ.ବିଂ. ଛାୟାବିହୀନ, ନଷ୍ଟଭ, (ଦେବତା) କାନ୍ତିହୀନ ।
ଅପଚ୍ଛାୟା—ସ୍ତ୍ରୀ. ବିଂ. ଛାୟାହୀନା, (ବ) ଅପଶସ୍ତ ଛାୟା, ଛାୟାରୂପ ଭୂତପ୍ରେତାଦି ।
ଅପଚ୍ଛ—ଗ୍ରା. ବିଂ. ଅଚିନ୍ତନୀୟ, ମୂଲ୍ୟହୀନ, ଅଜ୍ଞାନୀତ । [ ଅପକ୍ଷରଣ ।
ଅପଚ୍ୟବନ—ପୁଂ.ବ. ନିର୍ଗମନ, ଅପହରଣ,
ଅପଚ୍ୟୁତ—ପୁଂ ବ. କ୍ଷରିତ, ନଷ୍ଟପ୍ରାପ୍ତ ।
ଅପଞ୍ଚୀକୃତ—ତ୍ରି ବିଂ ସୂକ୍ଷ୍ମକୃତ, ପଞ୍ଚୀକୃତ, ଭିନ୍ନ ଭିନ୍ନ ଆକାଶାଦି ପଞ୍ଚଭୂତ ।
ଅପଜସ୍ୱ—ପୁଂ. ବ. (ଅପ + ଜି + ଅ ) ପରାଜୟ, ହାରିଯିବା ।
ଅପଜାତ—ବି. ବିଂ.(ଅପ + ଜନ୍ + କ. ତ) ପୂର୍ବଗୌରବ ବିହୀନ ।
ଅପଞ୍ଜର—ପୁଂ. ବିଂ. ପଞ୍ଜରରହିତ, ମେରୁଦଣ୍ଡହୀନ, (ସ୍ତ୍ରୀ) ଅପଞ୍ଜରୀ ।
ଅପଟାନ୍ତର—ବି. ବିଂ. ସଂଯୁକ୍ତ, ଅବ୍ୟବହିତ, ପଦାନ୍ତର, ନିରୁପମ ।
ଅପଟୀ—ସ୍ତ୍ରୀ. ବ. ପର୍ଦ୍ଦା, ବସ୍ତ୍ରାବରଣ, ଯବନିକା ।
ଅପଟୀକ—ବି. ବିଂ. ପ୍ରାବରଣଶୂନ୍ୟ, ଟୀକାଶୂନ୍ୟ ପୁସ୍ତକ, ନିଷ୍ଟୀକ ।
ଅପଟୀକ୍ଷେପ—ପୁଂ.ବ. ପର୍ଦ୍ଦାକୁ ଆଡ଼େଇ ରଙ୍ଗମଞ୍ଚରେ ଉପସ୍ଥିତ ।
ଅପଟୁ—ବି. ବିଂ. (ଅ + ପଟୁ) ଅସମର୍ଥ, ଅଶକ୍ତ, ଅକ୍ଷମ, (ସ୍ତ୍ରୀ) ଅପଟ୍ୱୀ, (ବି) ଅପଟୁତା, (ବିପ) ସୁପଟୁ ।
ଅପଟୁତା—ସ୍ତ୍ରୀ.ବ.(ଅପଟୁ + ତା) ଅପଟୁର ଭାବ, ଅନିପୁଣ୍ୟ, ଅକ୍ଷମତା ।
ଅପଠିତ—ବି.ବିଂ.(ଅ + ପଠିତ) ଅନଧୀତ, ଯାହା ପଢ଼ା ହୋଇନାହିଁ ।
ଅପଡ଼—ଗ୍ରା. ବ. ବିରୋଧ, ବିବାଦ, ଶତ୍ରୁତା, (ବିଂ) ବିରୋଧୀ, ସ୍ଥାୟୀ, ଯାହା ପଡ଼ିଯିବାର ସମ୍ଭାବନା ନାହିଁ ।
ଅପଢ଼ୁଆ—ଗ୍ରା.ବ. (ସଂ.ଅପଠିତ) ମୂର୍ଖ, ଅଶିକ୍ଷିତ, ଯେ କିଛି ପଢ଼ିନାହିଁ ।
ଅପଣ୍ୟ—ବି.ବିଂ. ଯାହା ଅବିକ୍ରେୟ, (ସ୍ତ୍ରୀ) ଅପଣ୍ୟା ।
ଅପଣ୍ଡିତ—ପୁଂ. ବିଂ. ଅବିଦ୍ୱାନ୍, ମୂର୍ଖ, ବିଦ୍ୟାଶୂନ୍ୟ ।
ଅପତନ୍ତ୍ରକ—ପୁଂ.ବ. ବାୟୁରୋଗବିଶେଷ, ଧନୁଷ୍ଟଙ୍କାର ବାତରୋଗ ।
ଅପତର୍ପଣ—କ୍ଲୀ.ବ. (ଅପ + ତୃପ୍ + ଭା. ଅନ) ତୃପ୍ତିର ଅଭାବ, ଅତୃପ୍ତି ।
ଅପତାନକ—ପୁଂ.ବ ବାତରୋଗବିଶେଷ ।
ଅପତିକା—ସ୍ତ୍ରୀ.ବ.ଯେ ସ୍ତ୍ରୀର ପତି ନାହିଁ ।
ଅପତ୍ନୀ—ସ୍ତ୍ରୀ. ବ. ପତିହୀନା, ଯାହାର ପତି ନାହିଁ ।
ଅପତ୍ନୀକ—ପୁଂ. ବିଂ. ଯାହାର ଭାର୍ଯ୍ୟା ଗୃହରେ ନାହିଁ, ମୃତପତ୍ନୀକ ।
ଅପତ୍ୟ—କ୍ଲୀ.ବ (ଅ + ପତ୍ + ଣ + ଯ) ପୁତ୍ରକନ୍ୟାପ୍ରଭୃତି ସନ୍ତାନସନ୍ତତି ।
ଅପତ୍ୟଘାତିନୀ—ସ୍ତ୍ରୀ. ବିଂ. ( ଅପତ୍ୟ-ଘାତନ୍ + ଈ ) ପୁତ୍ରକନ୍ୟାନାଶିନୀ, ସନ୍ତାନଧ୍ୱଂସିନୀ ।
ଅପତ୍ୟଘାତୀ—ପୁଂ.ବିଂ. (ଅପତ୍ୟ + ହନ + କ. ଇନ୍ ) ଆତ୍ମସନ୍ତାନନାଶକ, ଆପଣାର ପୁତ୍ରକନ୍ୟା-ବଧକାରୀ ।
ଅପତ୍ୟଦ—ପୁଂ. ବିଂ. ( ଅପତ୍ୟ + ଦା + କ.ଅ ) ସନ୍ତାନଦାୟକ, (ସ୍ତ୍ରୀ) ଅପତ୍ୟଦା ।
ଅପତ୍ୟା—ସ୍ତ୍ରୀ ବ. ( ଅପତ୍ୟଦ + ଆ ) ଯାହା ଖାଇଲେ ଗର୍ଭସଞ୍ଚାର ହୁଏ, ସନ୍ତାନଦାୟିନୀ ।
ଅପତ୍ୟନିର୍ବିଶେଷେ—କ୍ରି.ବିଂ.ପୁତ୍ରକନ୍ୟା-ସହିତ ପ୍ରଭେଦ ନ କରି, ଆପଣାର ସନ୍ତାନତୁଲ୍ୟରୂପେ ।
ଅପତ୍ୟପଥ—ପୁଂ. ବ. ଯୋନି, ଭଗ ।
ଅପତ୍ୟଶତ୍ରୁ—ସ୍ତ୍ରୀ. ବ. କଙ୍କଡ଼ା, କଙ୍କଡ଼ା ଗର୍ଭ ହେଲେ ଗର୍ଭସ୍ଥ ଶିଶୁ ମା'ର ଦେହକୁ ଖାଇ ଜାତ ହୁଅନ୍ତି ।
ଅପତ୍ୟସମ୍ବନ୍ଧ—ପୁଂ.ବିଂ ନାବାଳକ ସନ୍ତାନର କର୍ତ୍ତବ୍ୟ, ଜାତକର୍ମାଦି ଅନୁଷ୍ଠାନର ନିୟମ ।
ଅପତ୍ୟସାତ—ପୁଂ. ସ୍ତ୍ରୀ. ବ. ଅପତ୍ୟ-ସମନ୍ୱିତ, ସନ୍ତାନଯୁକ୍ତ ।
ଅପତ୍ୟସ୍ନେହ—ପୁଂ. ବ. ( ଅପତ୍ୟ + ସ୍ନେହ ) ପୁତ୍ରାଦିଙ୍କ ପ୍ରତି ଯେ ସ୍ୱାଭାବିକ ସ୍ନେହ, ସନ୍ତାନବାତ୍ସଲ୍ୟ ।
ଅପତ୍ର—ପୁଂ. ବ. ବାଉଁଶର କରଡ଼, ପତ୍ର ନ ଥିବା ବୃକ୍ଷ, ପକ୍ଷଶୂନ୍ୟ ପକ୍ଷୀ ।
ଅପତ୍ରପା—ପୁଂ.ବିଂ. (ବ.ବ୍ରୀ) ଲଜ୍ଜାହୀନ, ନିର୍ଲ୍ଲଜ (ସ୍ତ୍ରୀ) ଅପତ୍ରପା ।
ଅପତ୍ରପ—ସ୍ତ୍ରୀ ବିଂ. ଅପତ୍ରପର ସ୍ତ୍ରୀଲିଙ୍ଗ, (ବ) ଅନ୍ୟକୁ ଦେଖି ଲଜ୍ଜା, ଧୃଷ୍ଟତା ।
ଅପତ୍ରପିଷ୍ଣୁ—ବି.ବିଂ. (ଅପ + ତ୍ରପ + ଇଷ୍ଣୁ) ସ୍ୱଭାବତଃ ଲଜ୍ଜାଶୀଳ, (ବ) ଲଜକୁଳି ବୃକ୍ଷ । [ ଭୟଯୁକ୍ତ ।
ଅପତ୍ରସ୍ତ—ବିଂ.(ଅପ + ତ୍ରସ + ତ) ଭୀତ,
ଅପତ୍ୟହୀନ—ପୁଂ. ବିଂ. ସନ୍ତାନରହିତ, ନିଃସନ୍ତାନ, ଅନପତ୍ୟ, (ସ୍ତ୍ରୀ) ଅପତ୍ୟହୀନା ।
ଅପଥ—କ୍ଲୀ. ବ. (ଅ + ପଥ) କୁପଥ, ଅପକ୍ରମାର୍ଗ, ଅବାଟ (ବିଂ) ପଥଶୂନ୍ୟ ।
ଅପଥି ଗ୍ରା. ବ. ଅସ୍ୱାସ୍ଥ୍ୟକର ଖାଦ୍ୟ, (ବିଂ) ଅସ୍ୱାସ୍ଥ୍ୟକର ।
ଅପଥ୍ୟକ୍ଷା—ଗ୍ରା. ବିଂ. ଅନନୁଭବୀ ।

ଅପଥ୍ୟ—କ୍ଲୀ. ବଂ.(ଅ + ପଥ୍ୟ ଅହିତ, ପଥ୍ୟଭିନ୍ନ, ଅସ୍ୱାସ୍ଥ୍ୟକର, ରୋଗୀର ଅଭୋଜ୍ୟ ।
ଅପଦ—ତ୍ରି. ବଂ.(ଅ + ପଦ) ପଦବିହୀନ, ପଦବୀ-ବିହୀନ ।
ଅପଦସ୍ଥ—ପୁଂ. ବଂ. (ଅ + ପଦ + ସ୍ଥା + ଅ) କର୍ମଚ୍ୟୁତ, ଅପମାନିତ, ଅସମ୍ମାନିତ, (ସ୍ତ୍ରୀ) ଅପଦସ୍ଥା ।
ଅପଦସ୍ତ—ଗ୍ରା. ବ. ଅପଯଶ, ଦୁର୍ନାମ ।
ଅପଦାନ—କ୍ଲୀ.ବ. (ଅପ + ଦା + ଅନ) ପ୍ରଶଂସନୀୟ କାର୍ଯ୍ୟ, ମହତ୍ତ୍ୱ କାର୍ଯ୍ୟ ।
ଅପଦାନ୍ତର—ତ୍ରି. ବଂ. ଅବ୍ୟବହିତ, ସଂଯୁକ୍ତ, (ସ୍ତ୍ରୀ) ଅପଦାନ୍ତରା ।
ଅପଦାର୍ଥ—ବଂ.(ବ.ବ୍ରୀ) (ଅ + ପଦ + ଅର୍ଥ) ପଦାର୍ଥହୀନ, ଅଯୋଗ୍ୟ ।
ଅପଦିଶ—ଅବ୍ୟ. ଦୁଇଦିଗର ମଧ୍ୟଦେଶ, ବିଦିକ୍, ଦିକ୍‌କୋଣ ।
ଅପଦିଷ୍ଟ—ତ୍ରି. ବଂ. (ଅପ + ଦିଶ୍ + ତ) କଥିତ, ପ୍ରଯୁକ୍ତ ।
ଅପଦୀ—ପୁଂ. ବଂ. (ଅ + ପଦୀ ) ପାଦରହିତ, (ବି) ପଦହୀନ ପ୍ରାଣୀ, ସରୀସୃପ, (ସ୍ତ୍ରୀ) ଅପଦିନୀ ।
ଅପଦେବତା—ସ୍ତ୍ରୀ.ବ.(ଅପ + ଦେବତା) ପ୍ରେତ-ଭୂତପ୍ରଭୃତି ଦେବଯୋନିବିଶେଷ ।
ଅପଦେଶ ପୁଂ.ବ. (ଅପ + ଦିଶ୍ + ଭା.ଅ) ସ୍ଥାନ, ନିମିତ୍ତ, ଲକ୍ଷ୍ୟ, ଶଠତା, ଛଳ, ଚିହ୍ନ, ମନ୍ଦସ୍ଥାନ । [ ଜାତ ।
ଅପଦେଶ୍ୟ—ତ୍ରି.ବଂ. ଅନୁଚିତ ସ୍ଥାନରେ
ଅପଦ୍ରବ୍ୟ—କ୍ଲୀ. ବ. ଖରାପ ପଦାର୍ଥ ।
ଅପଦ୍ୱାର—କ୍ଲୀ. ବ. ମନ୍ଦଦ୍ୱାର ।
ଅପଧା—ସ୍ତ୍ରୀ. ବ. (ଅପ + ଧା + ଭା.ଅ) ନିଷେଧ ।
ଅପଧ୍ୟାନ-କ୍ଲୀ.ବ.(ଅପ + ଧ୍ୟୈ + ଭା.ଅନ) ଅମଙ୍ଗଳଚିନ୍ତା, ଦୁଷ୍ଟାଭିପ୍ରାୟ ।
ଅପଧ୍ୱଂସ—ପୁଂ.ବ. (ଅପ + ଧ୍ୱଂନ୍‌ସ + ଭା.ଅ) ନାଶ,ଅପମାନ, ଧିକ୍‌କାର, ନିନ୍ଦା, ଅପଘାତ, ତ୍ୟାଗ, (ବଂ) ଅପଧ୍ୱସ୍ତ ।

ଅପଧ୍ୱଂସଜ—ପୁଂ.ସ୍ତ୍ରୀ.ବଂ ସଙ୍କର ଜାତ, ବର୍ଣ୍ଣସଙ୍କର, କରଣାଦି ।
ଅପଧ୍ୱଂସୀ—ପୁଂ. ବଂ. ଯେ ବିନାଶ କରେ, ଯେ ନଷ୍ଟ କରେ, (ସ୍ତ୍ରୀ) ଅପଧ୍ୱଂସିନୀ ।
ଅପଧ୍ୱସ୍ତ—ତ୍ରି. ବଂ.(ଅପ + ଧ୍ୱନ୍‌ସ + ତ) ପରିତ୍ୟକ୍ତ,ନିନ୍ଦିତ ଚୂର୍ଣ୍ଣୀକୃତ,ଧିକ୍‌କୃତ ।
ଅପଧ୍ୱାନ୍ତ—କ୍ଲୀ. ବ. ମନ୍ଦ ଶବ୍ଦ ।
ଅପନୟ—ପୁଂ. ବ (ଅପ + ନୀ + ଭା.ଅ) ଅମାର୍ଜନ, ଦୂରୀକରଣ, ପରିତ୍ୟାଗ, ନିରାକରଣ, ଖଣ୍ଡନ, ଅପହରଣ ।
ଅପନୟନ—କ୍ଲୀ. ବ. ଖଣ୍ଡନ, ଦୂରୀକରଣ, ପରିତ୍ୟାଗ,ନିରାକରଣ,ପ୍ରମାର୍ଜନ
ଅପନସ୍—ତ୍ରି. ବଂ. ଯେ ନାସିକାହୀନ ହୋଇଅଛି, ଯାହାର ନାକ ନାହିଁ ।
ଅପନୀତ—ତ୍ରି.ବଂ. (ଅପ + ନୀ + ର୍ମି.ତ) ବହିଷ୍କୃତ, ଅପସାରିତ, ଖଣ୍ଡିତ, ଦୂରୀକୃତ ।
ଅପନୁତ୍ତି—ସ୍ତ୍ରୀ. ବ. (ଅପ + ନୁଦ୍ + ତି) ଦୂରୀକରଣ, ଖଣ୍ଡନ ।
ଅପନୁଦ—ତ୍ରି.ବଂ. (ଅପ + ନୁଦ୍ + ଅ) ଦୂରୀକାରକ, ଯେ ଖଣ୍ଡନ କରେ ।
ଅପନୁବ—ଗ୍ରା.କ. ଅପରୂପ, ଆଶ୍ଚର୍ଯ୍ୟ ।
ଅପନେୟ—ବଂ. (ଅପ + ନୀ + ର୍ମି.ଯ ) ଅପସାରଣୀୟ,ଦୂରୀକରଣୀୟ,ମୋଚ୍ୟ ।
ଅପନୋଦ—ପୁଂ. ବ. ( ଅପ + ନୁଦ + ଭା.ଅ) ଖଣ୍ଡନ, ଦୂରୀକରଣ, ଉପଶମନ ।
ଅପନୋଦନ—କ୍ଲୀ. ବଂ. (ଅପ ନୁଦ୍ + ଅନ) ଦୂରୀକରଣ, ଖଣ୍ଡନ, ନିରାକରଣ, ଉପଶମନ ।
ଅପନୋଦିତ—ତ୍ରି. ବଂ. (ଅପ + ଣିଚ୍ + ନୁଦ୍ + ର୍ମିତ.)ଦୂରୀକୃତ,ଅପସାରିତ, ମୋଚିତ ।
ଅପନ୍ତର—ଗ୍ରା. ବଂ. ଜନସଞ୍ଚାରଶୂନ୍ୟ, ବିସ୍ତୃତ ସ୍ଥାନ, ମରୁମୟ ପ୍ରଦେଶ ।
ଅପନ୍ଥା—ପୁଂ.ବ. ଅପଥ, କୁପଥ ।
ଅପନ୍ନ—ତ୍ରି. ବଂ. ( ଅ + ପଦ୍ + ତ ) ଅପତିତ ।

ଅପନ୍ୟାୟ—ପୁଂ.ବ. ଅନ୍ୟାୟ କାର୍ଯ୍ୟ, ଅଯଥା କର୍ମ ।
ଅପପାଠ—ପୁଂ. ବ.(ଅପ + ପଠ୍ + ଅ) ଭିନ୍ନାର୍ଥଲିପି, ଅଶୁଦ୍ଧ ପଠନ ।
ଅପପାତ୍ର—କ୍ଲୀ. ବ. ହେୟବ୍ୟକ୍ତି, ନିନ୍ଦିତ ମନୁଷ୍ୟ, (ବଂ) ଚଣ୍ଡାଳାଦି ।
ଅପପାତ୍ରିତ—ପୁଂ. ବଂ. ପତିତ, (ସ୍ତ୍ରୀ) ଅପପାତ୍ରିତା ।
ଅପପ୍ରୟୋଗ—ପୁଂ.ବ. ଅଯଥାବ୍ୟବହାର; ଅଶୁଦ୍ଧପ୍ରୟୋଗ ।
ଅପବର୍ହି—ବର୍ହିର୍ହୋମବହିତ, ଯେଉଁ ଯାଗରେ ବର୍ହିର୍ହୋମ ନାହିଁ ।
ଅପଭୟ—ତ୍ରି. ବଂ. ଯାହାର ଭୟନାହିଁ, ଭୟହୀନ, ଭୟଶୂନ୍ୟ ।
ଅପଭର୍ତ୍ତା—ପୁଂ.ବଂ. ମନ୍ଦଭର୍ତ୍ତା,ନିକୃଷ୍ଟସ୍ୱାମୀ, କୁପତି ।
ଅପଭାଷା—ସ୍ତ୍ରୀ.ବ.(ଅପ + ଭାଷା)ନିନ୍ଦିତଭାଷା, ମନ୍ଦଭାଷା, ଅସାଧୁବାକ୍ୟ ।
ଅପଭାଷିତ—ବଂ. (ଅପ + ଭାଷ୍ + ର୍ମି.ତ) କୁଭାଷିତ, ନୀଚଭାଷାରେ କଥିତ ।
ଅପଭୀ—ତ୍ରି.ବଂ.ଆଶଙ୍କାରହିତ, ନିର୍ଭୟ ।
ଅପଭୀତ-ତ୍ରି.ବଂ. ନିର୍ଭୀକ, ଭୟରହିତ ।
ଅପଭୂତି—ସ୍ତ୍ରୀ.ବ. ମନ୍ଦସମ୍ପତ୍ତି, ଅପକୃଷ୍ଟ ବିଭୂତି ।
ଅପଭ୍ରଂଶ—ପୁଂ.ବ. (ଅପ + ଭ୍ରନ୍‌ଶ୍ + ଭା. ଅ) କ୍ଷରଣ, ତଳପଡ଼ିବା, ବିନାଶ, ସାଧୁଭାଷାର ଅଶୁଦ୍ଧରୂପାନ୍ତର, କୁତ୍ସିତଭାଷା,ଅଚଳିତ,ମୂଳ ଶବ୍ଦର ପରିବର୍ତ୍ତନ ।
ଅପଭ୍ରଷ୍ଟ—ତ୍ରି. ବଂ. (ଅପ + ଭ୍ରନ୍‌ଶ + ର୍ମି. ତ) ବିଚ୍ୟୁତ, ସ୍ଖଳିତ, ପତିତ, ରୂପାନ୍ତରପ୍ରାପ୍ତ, ମୂଳ ଶବ୍ଦରୁ ଆଗତ ।
ଅପମ—ତ୍ରି. ବଂ. (ଅପ + ମା + ଅ) ଅପକୃଷ୍ଟରୂପେ ଜ୍ଞାତ, ନିକୃଷ୍ଟଜାତ, ଭୂଗୋଳର ଉପରସ୍ଥ ସୂର୍ଯ୍ୟମାର୍ଗ ।
ଅପମଜ୍ୟା—ସ୍ତ୍ରୀ.ବ. ଭୂଗୋଳସ୍ଥିତ କ୍ରାନ୍ତିବୃତ୍ତନାମକ ଜ୍ୟା, ଭୂଗୋଳର ଚକ୍ରରେଖା ।

ଅପମନ୍ତବ୍ୟ-ବିଂ.(ଅପ + ମନ୍ + ର୍ତ୍ତବ୍ୟ) ଅନାଦରଣୀୟ, ଅବଜ୍ଞାତ, ହେୟ ।

ଅପମର୍ଦ୍ଦ—ପୁଂ. ବି. (ଅପ + ମୃଦ୍ + ଅ) ବିମର୍ଦ୍ଦନ, ବିଲୋଡ଼ନ ।

ଅପମରଣ—ବି. (ଅପ + ମୃ + ଭା.ଅନ) ଅପମୃତ୍ୟୁ, ଅପଘାତମୃତ୍ୟୁ ।

ଅପମର୍ଶ—ପୁଂ. ବି. (ଅପ + ମୃଶ୍ + ଅ) ନିନ୍ଦା, ଅପହରଣ ସ୍ପର୍ଶ ।

ଅପମାନ-କ୍ଲୀ.ବି.(ଅପ + ମାନ୍ + ଭା.ଅ.) ଅନାଦର,ହତମାନ,ଅବଜ୍ଞା,ହତାଦର ।

ଅପମାନଜନକ—ବି. ବିଂ. (୬ତତ୍ପୁ) ନିନ୍ଦାଦାୟକ,ମାନହାନିକର,ଅମର୍ଯ୍ୟାଦାକର ।

ଅପମାନସୂଚକ—ବି. ବିଂ. (୬ତତ୍ପୁ) ମାନହାନିପ୍ରକାଶକ, ଅପମାନରସୂଚକ ।

ଅପମାନିତ--ପୁଂ.ବିଂ. (ଅପମାନ + ଇତ) ଅନାଦୃତ, ଯାହାର ଅପମାନ ହୋଇଅଛି,(ବି) ଅପମାନ,(ସ୍ତ୍ରୀ) ଅପମାନିତା ।

ଅପମାରଙ୍ଗ—ଗ୍ରା ବି. ଅପାମାର୍ଗ, ଚିରଚିଣ୍ଡା ।

ଅପମାର୍ଗ—ପୁଂ.ବି. କୁତ୍ସିତ ପନ୍ଥା ।

ଅପମାର୍ଜନ—କ୍ଲୀ.ବି.ସଂଶୋଧନ, ଅଧୋଦେଶର ମାର୍ଜ୍ଜନ ।

ଅପମିତ—ବି.ବିଂ. (ଅପ + ମା + ର୍ମ.ତ) ଅବଜ୍ଞାତ, ଅନାଦୃତ, ଯାହାର ଅପମାନ କରାହୋଇଅଛି, (ସ୍ତ୍ରୀ) ଅପମିତା ।

ଅପମିତ୍ୟକ, ଆପମିତ୍ୟକ—ବିନିମୟ, ବଦଳ, ପରିବର୍ତ୍ତନ ।

ଅପମୁଖ—କ୍ଲୀ. ବି. ପରାବୃତ୍ତମୁଖ, ମ୍ଳାନମୁଖ, ପରାଙ୍ମୁଖ ।

ଅପମୂର୍ଦ୍ଧା—ପୁଂ.ବିଂ. ମସ୍ତକରହିତ,କବନ୍ଧ, (ସ୍ତ୍ରୀ) ଅପମୂର୍ଦ୍ଧନୀ ।

ଅପମୃତ୍ୟୁ—ପୁଂ. ବି. ଅସ୍ୱାଭାବିକ ମୃତ୍ୟୁ, ଅପଘାତ ମୃତ୍ୟୁ, ଅକାଲମୃତ୍ୟୁ ।

ଅପମୃଷିତ—କ୍ଲୀ.ବି.ଅସ୍ପଷ୍ଟ ବାକ୍ୟ, (ବିଂ) ଅପମର୍ଷିତ, କ୍ଷାନ୍ତ ।

ଅପଯଶ—ଗ୍ରା.ବି. (ଅପ + ଯଶ) ଅଯଶ, ଅଖ୍ୟାତି, ଦୁର୍ନାମ, କଳଙ୍କ ।

ଅପଯଶଃ—କ୍ଲୀ. ବି. ଅକୀର୍ତ୍ତି, କଳଙ୍କ, (ବିଂ) କୀର୍ତ୍ତିଶୂନ୍ୟ, ନିନ୍ଦିତ, ଅଖ୍ୟାତ ।

ଅପଯଶସ୍କର- ବି.ବିଂ. ଅପକୀର୍ତ୍ତିର ହେତୁ, କଳଙ୍କୀ, ନିନ୍ଦାକାରୀ,ଅଖ୍ୟାତିକର ।

ଅପଯାତ୍ରୀ—ପୁଂ. ବିଂ. (ଅପ + ଯାତ୍ରୀ) ପଳାତକ, ପଳାୟନକାରୀ, (ସ୍ତ୍ରୀ) ଅପଯାତ୍ରିଣୀ ।

ଅପଯାନ—କ୍ଲୀ. ବି. (ଅପ + ଯା + ଭା. ଅନ) ହୀନ ବାହନ, ମନ୍ଦ ଯାନ ।

ଅପର—ବି.ବିଂ. ଅନ୍ୟ, ଭିନ୍ନ, ପ୍ରତିକୂଳ, ବିପରୀତ, (ସ୍ତ୍ରୀ) ଅପରା, (ବି. କ୍ଲୀ) ହସ୍ତିର ପଶ୍ଚାଦ୍ଭାଗ ବା ପଦ ।

ଅପରକ୍ତ—ବି. ବିଂ. (ଅପ + ରଜ୍ଜ୍ + କ. ତ) ବିରକ୍ତ, ଅନୁରାଗଶୂନ୍ୟ, ରକ୍ତଶୂନ୍ୟ (ସ୍ତ୍ରୀ) ଅପରକ୍ତା ।

ଅପରଚ—ଗ୍ରା. ବି. ପରିଚୟର ଅଭାବ, (ବିଂ) ଅପରିଚିତ, ଅଜ୍ଞାତ ।

ଅପରଞ୍ଚ—ଅବ୍ୟ, (ଅପରସ୍ + ଚ) ଆଉ, ଅପିଚ, କିଞ୍ଚିତ ।

ଅପରଛନିଆ—ଗ୍ରା. ବିଂ. କୁତ୍ସିତ, (ସ୍ତ୍ରୀ) ଅପରଛନୀ । [ବିଶେଷ ।

ଅପରଜ—ପୁଂ.ବି.ପରକାଳ ଜାତ,ରୁଦ୍ର-

ଅପରଜସ୍କ—ବି. ବିଂ. ରେଣୁରହିତ, ଧୂଳିଶୂନ୍ୟ, ରଜୋଗୁଣବର୍ଜିତ, ରକ୍ତହୀନ,(ସ୍ତ୍ରୀ)ଅପରଜସ୍କା, ଋତୁରହିତା(ସ୍ତ୍ରୀ)

ଅପରତ—ବି. ବିଂ. ଅନୁରାଗଶୂନ୍ୟ, ମୈଥୁନରହିତ, ବିରତ ।

ଅପରନ୍ତୁ—ଅବ୍ୟ. ଆହୁରି, ମାତ୍ର ।

ଅପରତ୍ର—ଅବ୍ୟ, ଅପରକାଳେ, ଅପରଦେଶରେ ।

ଅପରତ୍ର—ବି. ବିଂ. (ଅପର + ତ୍ର) ଅନ୍ୟତ୍ର, ଅନ୍ୟବିଷୟେ ବା ପକ୍ଷେ, ପରଲୋକେ ବା ପରକାଳେ ।

ଅପରତ୍ୱ—କ୍ଲୀ.ବି. ଅପରର ଭାବ, ଅପରର ଧର୍ମ, ବୈଶେଷିକ ଗୁଣବିଶେଷ ।

ଅପରଦକ୍ଷିଣ—ଅବ୍ୟ. ପଶ୍ଚିମ-ଦକ୍ଷିଣମଧ୍ୟସ୍ଥିତ କୋଣ, ନୈଋତ କୋଣ ।

ଅପରପକ୍ଷ—ପୁଂ.ବି. ପ୍ରେତପକ୍ଷ, ପିତୃପକ୍ଷ, କୃଷ୍ଣପକ୍ଷ ।

ଅପର ରାତ୍ର—ପୁଂ.ବି.ରାତ୍ରିର ଶେଷଭାଗ ।

ଅପରଲୋକ—ପୁଂ.ବି.(ଅପର + ଲୋକ) । ଅନ୍ୟ ସୃଷ୍ଟି, ଅନ୍ୟ ବ୍ୟକ୍ତି ।

ଅପରବ—ପୁଂ. ବି. (ଅପ + ରୁ + ଅ) ଅକୀର୍ତ୍ତି, ଅପଯଶ ।

ଅପରବୈରାଗ୍ୟ—କ୍ଲୀ.ବି. ପତଞ୍ଜଳି ମୁନିକଥିତ ବୈରାଗ୍ୟବିଶେଷ ।

ଅପରସ୍ପର—ବି. ବିଂ. ପରସ୍ପର ନୁହେ, (କ୍ରି.ବିଂ) ସର୍ବଦା, ନିଯୁତ, ଏକାବେଳକେ । [ଶେଷଦରଜ ତ ।

ଅପରହୈମନ—ବି.ବିଂ. ହେମନ୍ତଋତୁର

ଅପରା—ସ୍ତ୍ରୀ. ବି. ଯାହା ଅପେକ୍ଷା ଶୁକ୍ରପ୍ରତିପାଳକା ସ୍ଥାନ ଆଉ ନାହିଁ,ଜରାୟୁ ।

ଅପରାଗ—ପୁଂ. ବି. ବିରାଗ, ଗାନ୍ଧାରାଦି ରାଗରହିତ ।

ଅପରାଗ୍ନି—ପୁଂ. ବି. ଗାର୍ହପତ୍ୟାଗ୍ନି ଓ ଦକ୍ଷିଣାଗ୍ନି ।

ଅପରାଙ୍ଗ—କ୍ଲୀ. ବି. ଗୁଣୀଭୂତ ବ୍ୟଙ୍ଗକାବ୍ୟବିଶେଷ ।

ଅପରାଙ୍ମୁଖ—ବି.ବିଂ. ଅନବୃତ୍ତ,କର୍ତ୍ତବ୍ୟବିଷୟରେ ବିମୁଖ ନୁହେ, (ସ୍ତ୍ରୀ) ଅପରାଙ୍ମୁଖୀ ।

ଅପରାଜିତ—ପୁଂ. ବିଂ. (ଅ + ପରା + ଜି + ତ) ହାରି ନ ଥିବା, ଅପରାଭୂତ, ଯେ ଅନ୍ୟଦ୍ୱାରା ପରାଭୂତ ହୋଇନାହିଁ, (ବି) ଶିବ, ଋଷିବିଶେଷ, ବିଷ୍ଣୁ ।

ଅପରାଜିତା—ସ୍ତ୍ରୀ. ବି. ଲତାବିଶେଷ, ଦୁର୍ଗା, ଗୌରୀ, ଦୁବା, ଅଶନପର୍ଣ୍ଣି ଗୁଳ୍ମ ଜୟନ୍ତୀ ଗଛ ।

ଅପରାଦ୍ଧ—ବି. ବିଂ. (ଅପ + ରାଧ୍ + ତ) ଅପରାଧୀ, ସ୍ୱକାର୍ଯ୍ୟେ ଅକ୍ଷମ, ସ୍ଖଳିତ ।

ଅପରାଦ୍ଧପୃଷତ୍କ—ପୁଂ. ବି. ଯେ ଲକ୍ଷ୍ୟଭେଦ କରି ନ ପାରେ ।

ଅପରାଧ—ପୁଂ. ବି. (ଅପ + ରାଧ୍ + ଅ) ଅନୁଚିତ କାର୍ଯ୍ୟକରଣ, ଦୋଷ, ପାପ, ବାଧ୍ୟବ୍ୟତିକ୍ରମ ।

ଅପରାଧପ୍ରସ୍ତକ—ବି. ବି°. (ବ. ବ୍ରୀ) ଯାହାର ବାଣ ଲକ୍ଷ୍ୟରେ ଲାଗେ ନାହିଁ ।

ଅପରାଧିନୀ—ସ୍ତ୍ରୀ. ବି°. କୃତାପରାଧା,ଅପରାଧକାରିଣୀ, ଅପରାଧବିଶିଷ୍ଟା ।

ଅପରାଧୀ--ପୁଂ.ବି°.ଅପରାଧକାରୀ,ଦୋଷୀ, ଅଭିଯୁକ୍ତ ବ୍ୟକ୍ତି, (ସ୍ତ୍ରୀ) ଅପରାଧିନୀ ।

ଅପରାନ୍ତ—ପୁଂ.ବି. ଭାରତବର୍ଷର ପଶ୍ଚିମପ୍ରାନ୍ତ ।

ଅପରାପର—ବି. ବି°. (ଅପର + ଅପର) ଅନ୍ୟାନ୍ୟ, ଅନ୍ୟାନ୍ୟମାନେ, ଭିନ୍ନଭିନ୍ନ ବସ୍ତୁ ।

ଅପରାପ୍ରକୃତି—ପୁଂ. ବି.(ଅପରା + ପ୍ରକୃତି) ପଞ୍ଚମହାଭୂତ, ବୁଦ୍ଧି,ଅହଙ୍କାର ଓ ମନ ।

ଅପରାବର୍ତ୍ତୀ—ପୁଂ. ବି°. ପ୍ରାଙ୍ମୁଖ ନୁହେ, କାର୍ଯ୍ୟ ସମାପ୍ତି ନ କରି ନିବର୍ତ୍ତ ନୁହେ; (ସ୍ତ୍ରୀ) ଅପରାବର୍ତ୍ତିନୀ ।

ଅପରାଜେୟ—ବି. ବି° (ନ + ପରାଜେୟ) ଅଜେୟ, ଦୁର୍ଜୟ, ଅଦମ୍ୟ, ।

ଅପରାମର୍ଶ—ବି. ଅଯୁକ୍ତି, ପରାମର୍ଶହୀନ ।

ଅପରାର୍ଦ୍ଧ—ପୁଂ. ବି. ଅନ୍ୟ ଅର୍ଦ୍ଧାଂଶ ।

ଅପରାସ୍ତ—ବି. ପଶ୍ଚିମଦିଗରେ ଅସ୍ତ ।

ଅପରାହ୍ଣ—ପୁଂ.ବି. ଦିବସର ଶେଷଭାଗ, ଉପର ବେଳା ।

ଅପରାହ୍ଣିକ—ବି.ବି°.ଦିନର ଶେଷଭାଗଜାତ, ଉପରବେଳାଜାତ ।

ଅପରାହ୍ଣେତନ—ବି.ବି°. ଦିବସର ଶେଷଭାଗରେ ଭବ ବା ଜାତ, ଦିବା ଶେଷରେ କୃତ ।

ଅପରିକଳିତ—ବି. ବି°. ଅଶ୍ରୁତ,ଅଦୃଷ୍ଟ ।

ଅପରିକର୍ମ—ବି. ବି°. ଉଦ୍ୟୋଗରହିତ, ପରିପାଟୀହୀନ ।

ଅପରିକ୍ଳିନ୍ନ-ବି. ବି°. (ନ + ପରି + କ୍ଳିଦ୍ + ତ) ଅକ୍ଳିନ୍ନ, ଅନାର୍ଦ୍ର, ଅଭିଜା ।

ଅପରିକ୍ଳିଷ୍ଟ ବି.ବି°. (ପରି + କ୍ଳିଶ୍ + ତ) ଅନାୟାସସାଧ୍ୟ, କ୍ଳେଶଶୂନ୍ୟ ।

ଅପରିଗତ—ବି. ବି°. ( ଅ + ପରିଗତ ) ଅଜ୍ଞାତ, ଅପ୍ରାପ୍ତ ।

ଅପରିଗୃହୀତ—ବି.ବି°.(ନ + ପରିଗୃହୀତ) ଅସ୍ୱୀକୃତ, ଅଗୃହୀତ, ଅଜ୍ଞାତ, ଅପ୍ରାପ୍ତ ।

ଅପରିଗ୍ରହ—ପୁଂ. ବି. (ନ + ପରି + ଗ୍ରହ୍ + ଅ ) ଜ୍ଞାନର ଅଭାବ, ସ୍ୱୀକାରର ଅଭାବ, ପରିବ୍ରାଜକ ।

ଅପରିଚିତ—ବି. ବି°. ଅଜ୍ଞାତ, ଅଚିହ୍ନା, ଯାହାର ପରିଚୟ ଜଣା ନାହିଁ ।

ଅପରିଚ୍ଛଦ—ବି.ବି°. ଦରିଦ୍ର, କୁବସ୍ତ୍ରଧାରୀ

ଅପରିଚ୍ଛନ୍ନ—ବି.ବି°. (ପରି + ଛଦ୍ + ତ) ଅପରିଷ୍କୃତ, ମଳିନ, ବସ୍ତ୍ରହୀନ ।

ଅପରିଚ୍ଛିନ୍ନ-କ୍ଳୀ.ବି°. (ଅ + ପରି + ଛିଦ୍ + ତ ସୀମାଶୂନ୍ୟ, ଇୟତ୍ତାରହିତ ଅସୀମ ।

ଅପରିଚ୍ଛେଦ—ପୁଂ. ବି. ପରିଚ୍ଛେଦର ଅଭାବ ଇୟତ୍ତାର ଅଭାବ ।

ଅପରିଜ୍ଞାତ—ବି. ବି°. (ଅ + ପରିଜ୍ଞାତ) ଅବିଦିତ, ଯାହା ଜଣା ହୋଇ ନାହିଁ, (ସ୍ତ୍ରୀ) ଅପରିଜ୍ଞାତା । [ ଅଭାବ ।

ଅପରିଜ୍ଞାନ--କ୍ଳୀ.ବି.ମୂର୍ଖତା, ତତ୍ତ୍ୱଜ୍ଞାନର

ଅପରିଜ୍ଞେୟ—ବି. ବି°. ଯାହା ଜଣାପଡ଼ି ନାହିଁ, ଦୁର୍ଜ୍ଞେୟ, ଦୁର୍ବୋଧ ।

ଅପରିଣତ—ବି. ବି°. (ଅ + ପରି + ନମ୍ ତ) ଅପରିପକ୍ୱ,ଅନ୍ୟପ୍ରକାରତା ପ୍ରାପ୍ତ ।

ଅପରିଣତବୟସ୍କ—ବି. ବି°. (ବ. ବ୍ରୀ) ତରୁଣବୟସ୍କ, ଅଳ୍ପବୟସ୍କ, କିଶୋର, ଅପରିଣତବୟାଃ ।

ଅପରିଣୟ—ପୁଂ. ବି. ବିବାହର ଅଭାବ ।

ଅପରିଣାମ—ପୁଂ.ବି. ପରିଣାମର ଅଭାବ, ପରିପକ୍ୱତାର ଅଭାବ ।

ଅପରିଣାମଦର୍ଶୀ—ବି°. ( ଅପରିଣାମ + ଦୃଶ୍ + ଇନ୍) ପରେ କ'ଣ ଘଟିବ ଏହା ନ ବିଚାରି ଯେ କର୍ମକରେ, ଅବିବେକ ।

ଅପରିଣାମଦର୍ଶିତା—ସ୍ତ୍ରୀ.ବି.ପରିଣାମଚିନ୍ତା ନ କରିବା, ପରିଣାମ-ଦୃଷ୍ଟିରହିତା ବିବେଚନାହୀନତା ।

ଅପରିଣୀତ-ବି. ବି°. ବିବାହ-ସଂସ୍କାରହୀନ, କୌମାରାବସ୍ଥାଯୁକ୍ତ, ଅବିବାହିତ ।

ଅପରିତୁଷ୍ଟ—ପୁଂ. ବି°. ଅସନ୍ତୁଷ୍ଟ,ଅତୃପ୍ତ ।

ଅପରିତୋଷ—ପୁଂ. ବି. ଅସନ୍ତୋଷ ।

ଅପରିତୃପ୍ତ—ବି°. ଅତୃପ୍ତ ।

ଅପରିତ୍ୟାଜ୍ୟ—ବି°. (ଅ + ପରିତ୍ୟାଜ୍ୟ) ଅପରିହାର୍ଯ୍ୟ, ଯାହା ତ୍ୟାଗ କରାଯାଇ ନ ପାରେ ।

ଅପରିପକ୍ୱ—ବି.ବି°. କଞ୍ଚା,ସିଝା ନୁହେ, ଅବ୍ୟୁତ୍ପନ୍ନ, କାର୍ଯ୍ୟ କ୍ଷମ ।

ଅପରିପନ୍ଥୀ—ବି. ବି°. ଅବିରୋଧୀ,ଅପ୍ରତିକୂଳ, ଅନୁକୂଳ ।

ଅପରିମାଣ—ବି. ବି°. ଅସୀମ,ଅପରିମିତ, ଅତ୍ୟନ୍ତ. ଅମାପ ।

ଅପରିମ୍ଳାନ—ପୁଂ. ବି. ରକ୍ତବର୍ଣ୍ଣ, ମ୍ଳାନଶୂନ୍ୟ, ଯାହା ମ୍ଳାନ ନୁହେ ।

ଅପରିମିତ—ବି. ବି°. ଅସୀମ, ଇୟତ୍ତାରହିତ, ପରିମାଣଶୂନ୍ୟ, ପ୍ରଚୁର ।

ଅପରିମିତାହାରୀ—ବି°. (ଅ + ପରିମିତ + ଆହାର + ଇନ୍) ଅତ୍ୟାହାରୀ,ଅନାହାରୀ ।

ଅପରିପାକ—ପୁଂ. ବି. ଅପରିଣତି, ଅପକ୍ୱତା, ଅଜୀର୍ଣ୍ଣତା ।

ଅପରିପୂର୍ଣ୍ଣ—ବି. ବି°. ଅସମ୍ପୂର୍ଣ୍ଣ, ଅପାଳିତ, ଅରକ୍ଷିତ ।

ଅପରିମେୟ—ବି. ବି°. ଯାହାର ପରିମାଣ ହୋଇ ନ ପାରେ, ଅସୀମ; ଅତ୍ୟନ୍ତ ।

ଅପରିବର୍ତ୍ତିତ—ବି.ବି°. ଅବିକୃତ,ଅକ୍ଷୁଣ୍ଣ, ଠିକ୍ ସେହିପରି ଥିବା ।

ଅପରିବିଷ୍ଟ—ବି. ବି°. (ଅ + ପରି + ବିଶ୍ + ତ) ବେଷ୍ଟନଶୂନ୍ୟ, ଅବ୍ୟାପ୍ତ ।

ଅପରିବୃତ—ବି. ବି°. ଅବେଷ୍ଟିତ, ଅନାଚ୍ଛାଦିତ, ଅନାବୃତ ।

ଅପରିଶୀଳିତ—ବି. ବି°. ଅନନୁଶୀଳିତ, (ସ୍ତ୍ରୀ) ଅପରିଶୀଳିତା ।

ଅପରିଶେଷ— ପୁଂ. ବି. ପରିଶେଷାଭାବ, ଇୟତ୍ତାରହିତ ।

ଅପରିଶୋଧନୀୟ—ବି. ବି°. ପରିଶୋଧର ଅଯୋଗ୍ୟ, ଯେ ପରିଶୋଧ କରି ନ ପାରେ ।

ଅପରିଷ୍କାର—ପୁଂ. ବି. ( ଅ + ପରି + କୃ + ଅ) ଅନିର୍ମଳତା, (ବି°) ଅପରିଷ୍କୃତ ।

ଅପରିଷ୍କୃତ-ବି°.(ଅ + ପରିଷ୍କୃତ)ଅମାର୍ଜିତ ।

ଅପରିସ୍ଫୁଟ—ବି. ବି°. ଯାହା ପରିସ୍ଫୁଟ ହୋଇନାହିଁ, ଅସ୍ପଷ୍ଟ ।

ଅପରଷ୍ଟି—ସ୍ତ୍ରୀ. ବ (ଅପ + ରଷ୍ଟି)ପୂଜା ।
ଅପରସମାପ୍ତ—ସ୍ତ୍ରୀ.ବ.ସମାପ୍ତିର ଅଭାବ ।
ଅପରସର—ପୁଂ.ବ. (ଅ + ପର + ସୃ + ଅ) ବିସ୍ତାରର ଅଭାବ, ପ୍ରସ୍ଥରର ଅଭାବ, ସଂକୀର୍ଣ୍ଣ ।
ଅପରସୀମ—ବିଂ.(ଅ + ପର + ସୀମା + ଅ) ଅସୀମ, ସୀମାରହିତ ।
ଅପରହରଣୀୟ—ତ୍ରି. ବିଂ. ପରିହାରର ଅଶକ୍ୟ, ତ୍ୟାଗର ଅଯୋଗ୍ୟ ।
ଅପରିହାର୍ଯ୍ୟ—ବିଂ. (ଅ + ପରି + ହୃ + ଯ) ଯାହାକୁ ଛାଡ଼ିବା ଅସାଧ, ଅଲଙ୍ଘ୍ୟ, ଅନିବାର୍ଯ୍ୟ ।
ଅପରୀକ୍ଷିତ—ତ୍ରି.ବିଂ. ଅପ୍ରମାଣିତ,ପରୀକ୍ଷା-କରିଯାଇ ନ ଥିବା ।
ଅପରୀତ—ତ୍ରି. ବିଂ. (ଅ  ପରି + ଇ + ତ) ଅପରିଗତ. ଅପ୍ରାପ୍ତ ।
ଅପରୁଷ୍—ତ୍ରି. ବିଂ.ବିଗତକ୍ରୋଧ,ଯାହାର କ୍ରୋଧ ନାହିଁ ।
ଅପରୁଷ୍ଟ—କ୍ଲୀ. ବ. ଅନସ୍ଥିର, (ବିଂ.) ଗଣ୍ଡିସ୍ଥାନ, ବିଗତକ୍ରୋଧ ।
ଅପରୂପ—କ୍ଲୀ. ବ. ଆଶ୍ଚର୍ଯ୍ୟରୂପ, ସୁନ୍ଦର-ରୂପ, ତୁଳନାରହିତ, ଅପ୍ରତିମ ।
ଅପରେଦ୍ୟୁ—ଅବ୍ୟ.ଅପରଦିନ,ପରଦିନ ।
ଅପରୋକ୍ଷ—ଅବ୍ୟ. ପ୍ରତ୍ୟକ୍ଷ, ସାକ୍ଷାତ୍ ।
ଅପରୋକ୍ଷାନୁଭୂତ—ସ୍ତ୍ରୀ. ବ. ପ୍ରତ୍ୟକ୍ଷରୂପ-ଜ୍ଞାନ ।
ଅପରୋଧ—ପୁଂ.ବ. (ଅପ + ରୁଧ୍ + ଅ) ବନ୍ଦକରିବା, ରୁଦ୍ଧକରିବା ।   [ନିଷ୍ପତ୍ର ।
ଅପର୍ଣ୍ଣ—ତ୍ରି.ବିଂ. ( ବ. ବ୍ରୀ ) ପତ୍ରହୀନ,
ଅପର୍ଣ୍ଣା—ସ୍ତ୍ରୀ. ବ. ପାର୍ବତୀ, ଦୁର୍ଗା ।
ଅପର୍ତ୍ତୁଆଣି—ବି. ବହୁ ସନ୍ତାନ ମଲାପରେ ବଞ୍ଚିଥିବା ସନ୍ତାନ ।
ଅପର୍ତ୍ତୁ—ତ୍ରି. ବିଂ. ଯେଉଁ ଦେଶରେ ବସନ୍ତାଦି ଋତୁମାନ ନାହିଁ, ( ସ୍ତ୍ରୀ ) ଯେଉଁ ସ୍ତ୍ରୀର ଆଉ ରଜଃ ନିଃସରଣ ହେଉ ନାହିଁ ।   [ ରହିତ ।
ଅପର୍ଯ୍ୟନ୍ତ—ତ୍ରି.ବିଂ. ଅସୀମ, ଇୟତ୍ତା-
ଅପର୍ଯ୍ୟାପ୍ତ—ତ୍ରି.ବିଂ.(ଅ + ପରି + ଆପ + ତ) ଅସମ୍ପୂର୍ଣ୍ଣ,ଅଯଥେଷ୍ଟ ମତ,ଅପରିମିତ, ସ୍ୱକାର୍ଯ୍ୟେ ଅକ୍ଷମ, (ସ୍ତ୍ରୀ) ଅପର୍ଯ୍ୟାପ୍ତି ।
ଅପର୍ଯ୍ୟାପ୍ତି—ସ୍ତ୍ରୀ. ବ. ସୁପ୍ରଚୁରତା, ଅସମ୍ପୂର୍ଣ୍ଣତା, ବାହୁଲ୍ୟ ।
ଅପର୍ଯ୍ୟାୟ—ପୁଂ. ବ. ଅନବସର, ପରିପାଟିର ଅଭାବ, ଅନୁକ୍ରମର ଅଭାବ ।
ଅପର୍ଯ୍ୟୁଷିତ—ତ୍ରି.ବିଂ. ଅଭିନବ, ସଦ୍ୟ, ବାସୀନୁହେ, ପେ ଗୃନୁହେ ।
ଅପର୍ବ—ତ୍ରି. ବିଂ. ( ବ. ବ୍ରୀ ) ପର୍ବହୀନ, ପର୍ବରହିତ, ସନ୍ଧିରହିତ ।
ଅପର୍ବଦଣ୍ଡ—ପୁଂ.ବ.ଗଣ୍ଠି ନଥିବା ଶର ।
ଅପର୍ବନ୍—କ୍ଲୀ. ବ. ଅମାବାସ୍ୟା,ପୂର୍ଣ୍ଣିମା ଛଡ଼ା ଅନ୍ୟ ତିଥି ।
ଅପଲ—କ୍ଲୀ. ବ. ପଳାୟନ ନିବାରକ ବାଡ଼ି, ଠେଙ୍ଗା, କୀଳା, ମାଂସଶୂନ୍ୟ,
ଅପଲକ—ଗ୍ରା. ବିଂ. ( ବ. ବ୍ରୀ )ପଲକ ରହିତ, ନିମେଷଶୂନ୍ୟ, ଯାହାର ପଲକ ଖୋଲେ ନାହିଁ ।
ଅପଲପିତ—ତ୍ରି. ବିଂ. ( ଅପ + ଲପ + ଣିଁ. ତ ) ଅପହ୍ନୁତ, ଅସ୍ୱୀକୃତ, ( ସ୍ତ୍ରୀ ) ଅପଲପିତା ।
ଅପଲାପ—ପୁଂ. ବ. (ଅପ + ଲପ + ଅ) ଭଣ୍ଡିବା, ଅସ୍ୱୀକାର, ଅନ୍ୟଥାଚରଣ, ବଡ଼ କଥାକୁ ସାନକରି କହିବା ।
ଅପଲାପୀ—ପୁଂ. ବିଂ. ( ଅପ + ଲପ + ଣିଚ୍ + କ) ଅପଲାପକାରୀ, ଅପହ୍ନୁତ-କାରକ, ଅସ୍ୱୀକାରକାରୀ ।
ଅପଲାଷିକା—ସ୍ତ୍ରୀ. ବ. ଅତିତୃଷ୍ଣା, ଅତି ଲାଳସା ।
ଅପଲାଷୀ—ପୁଂ. ବିଂ. ଅନୁଚିତ ବିଷୟ ଲାଳସାଯୁକ୍ତ, (ସ୍ତ୍ରୀ) ଅପଲାଷିଣୀ ।
ଅପଲକା—ଗ୍ରା. ବିଂ. ଭଙ୍ଗୁର, ଯାହା ବେଶ୍ ମଜଭୁତ ନୁହେ ।
ଅପଲ୍ପୂଲନ—କ୍ଲୀ. ବ. ସ୍ନାନାଦି ସଂସ୍କାର-ଭାବ ।
ଅପବତ୍—ତ୍ରି. ବିଂ. କର୍ମଯୁକ୍ତ ।
ଅପବନ—କ୍ଲୀ.ବ.ଉପବନ,କୃତ୍ରିମ ବନ ।
ଅପବରକ—ପୁଂ.ବ. (ଅପ + ବୃ + କ. ଅ) ଅନ୍ତର୍ଗୃହ, ଗର୍ଭାଗାର, ଶୋଇବା-ଘର ।   [ କରିଯିବା ।
ଅପବରଣ—କ୍ଲୀ. ବ. ଆବରଣ ଦୂର-
ଅପବର୍ଗ—ପୁଂ. ବ. (ଅପ + ବୃଜ୍ + ଅ) ମୋକ୍ଷ, ତ୍ୟାଗ, ଦାନ, ଫଳସିଦ୍ଧି, ନିର୍ବାଣ, ପରିତ୍ୟାଗ ।
ଅପବର୍ଗଗୁରୁ—ପୁଂ. ବ. (୬ତତ୍)ମୋକ୍ଷ-କର୍ତ୍ତା, ହର, ଶିବ ।
ଅପବର୍ଗଦାତା—ପୁଂ. ବ. ( ଅପବର୍ଗ + ଦା + କ. ତୃ ) ମୋକ୍ଷଦାତା, ( ସ୍ତ୍ରୀ ) ଅପବର୍ଗଦାତ୍ରୀ ।
ଅପବର୍ଗଦ—ପୁଂ ବିଂ.(ଅପବର୍ଗ + ଦା + କ.ଅ) ମୋକ୍ଷପ୍ରଦ, ମୁକ୍ତିଦାୟକ ।
ଅପବର୍ଜନ—କ୍ଲୀ. ବ. ( ଅପ + ବୃଜ୍ + ଭା. ଅନ ) ଦାନ, ମୋକ୍ଷ, ତ୍ୟାଗ, ପରିହାର, (ବିଂ) ଅପବର୍ଜିତ ।
ଅପବର୍ଜିତ—ତ୍ରି. ବିଂ. ( ଅପ + ବୃଜ + ଣିଁ. ତ ) ତ୍ୟକ୍ତ, ଦତ୍ତ, ପରିହୃତ, (ସ୍ତ୍ରୀ) ଅପବର୍ଜିତା ।
ଅପବର୍ତ୍ତକ—ତ୍ରି.ବିଂ.(ଅପ + ବୃତ୍ + କ. ଅକ ) ଭାଗଶେଷହୀନ ଭାଜକ, ଯେଉଁ ଭାଜକଦ୍ୱାରା ଭାଗ କଲେ ଭାଗଶେଷ ନ ରହେ ।
ଅପବର୍ତ୍ତନ—କ୍ଲୀ.ବ. (ଅପ + ବୃତ୍ + ଭା. ଅନ)ପରିବର୍ତ୍ତନ, ଆନ୍ଦୋଳନ, ସଂକ୍ଷେପ, ଲାଘବ ।
ଅପବର୍ତ୍ତିତ—ତ୍ରି. ବିଂ. (ଅପ + ଣିଚ୍ + ବୃତ୍ + ତ) ପରିବର୍ତ୍ତିତ, ବିଚଳିତ ।
ଅପବର୍ତ୍ତ୍ୟ—ତ୍ରି.ବିଂ. (ଅପ + ବୃତ୍ + ଯ) ଅନ୍ୟରାଶିଦ୍ୱାରା ଯେଉଁ ରାଶିକୁ ଭାଗ-କଲେ ଭାଗଶେଷ ନ ରହେ,ଶୁଦ୍ଧଭାଜ୍ୟ ।
ଅପବାଦ—ପୁଂ.ବ.(ଅପ + ବଦ୍ + ଭା.ଅ) ନିନ୍ଦା, ଅପଯଶ, କଳଙ୍କ, ଦୁର୍ନାମ ।
ଅପବାଦକ-ତ୍ରି.ବିଂ.(ଅପ + ବଦ୍ + କ + ଅକ)ଯେ ଅପବାଦ ଦିଏ, ନିନ୍ଦୁକ, ନିରା ସକ,ପ୍ରତିରୋଧକ, (ସ୍ତ୍ରୀ)ଅପବାଦିକା ।

ଅପବାଦକାର—ତ୍ରି. ବିଂ. ଅପବାଦ-କାରୀ,ଖଳ ବ୍ୟକ୍ତି ।
ଅପବାଦୀ—ପୁଂ.ବିଂ.(ଅପ + ବଦ୍ + କ. ଇନ୍ ) ଅପବାଦକର୍ତ୍ତା, ନିନ୍ଦୁକ, (ସ୍ତ୍ରୀ) ଅପବାଦିନୀ ।
ଅପବାରଣ—ତ୍ରି.ବି. (ଅପ + ବୃ + ଣିଚ୍ + ଭା.ଅନ ) ବ୍ୟବଧାୟକ, ଯାହାଦ୍ୱାରା ଆଡ଼ କରାହୁଏ, ଅନ୍ତର୍ଦ୍ଧାନ, ବ୍ୟବଧାନ, (ବିଂ) ଅପବାରିତ ।
ଅପବାରିତ—ତ୍ରି. ବିଂ. ( ଅପ + ବୃ + ଣିଚ୍ + ତ ) ଆଚ୍ଛାଦିତ, ବ୍ୟବହିତ, ଅନ୍ତର୍ହିତ,ଗୋପିତ, (ବି) ଅପବାରଣ ।
ଅପବାରିତକ—ପୁଂ. ବି. ଅପ୍ରକାଶକ ।
ଅପବାରୁକ—ପୁଂ. ବି. ପ୍ରସ୍ତର ।
ଅପବାର୍ଯ୍ୟ—ଅବ୍ୟ, ଆଚ୍ଛାଦନକରି, ଗୋପନକରି, (ବିଂ) ଯେଉଁ ବାକ୍ୟକୁ ମଞ୍ଚରେ ଉପସ୍ଥିତ ଅଭିନେତାମାନେ ଶୁଣିପାରନ୍ତି ନାହିଁ ।
ଅପବାସ—ପୁଂ.ବି. ଅପସରଣ ।
ଅପବାହ—ପୁଂ. ବି. ସ୍ଥାନାନ୍ତର ପ୍ରାପଣ, ଅନୁମାନ ।
ଅପବାହନ—ପୁଂ.ବି.ପରଦେଶରୁ ସ୍ୱଦେଶାନୟନ, ଏକ ସ୍ଥାନରୁ ଅନ୍ୟତ୍ର ପ୍ରାପଣ ।
ଅପବାହିତ—ତ୍ରି. ବିଂ. (ଅପ + ବାହି + ତ) ତାଡ଼ିତ, ସ୍ଥାନାନ୍ତରପ୍ରାପିତ, ଅପସାରିତ ।
ଅପବାହ୍ୟ—ତ୍ରି.ବିଂ. (ଅପ + ବହ୍ + ଯ) ଦୂରକରିବାର ଯୋଗ୍ୟ । [ ରହିତ ।
ଅପବିଘ୍ନ—ତ୍ରି. ବିଂ. ବିଘ୍ନଶୂନ୍ୟ, ବାଧା-
ଅପବିତ୍ର—ତ୍ରି. ବିଂ. ଅଶୁଦ୍ଧ, ମାରି, ଅବିଶୁଦ୍ଧ,(ବି)ଅପବିତ୍ରତା, (ସ୍ତ୍ରୀ) ଅପବିତ୍ରା ।
ଅପବିଦ୍ଧ—ତ୍ରି.ବିଂ. (ଅପ + ବ୍ୟଧ୍ + ତ) ପ୍ରକ୍ଷିପ୍ତ, ଚୂର୍ଣ୍ଣିତ, ପରିତ୍ୟକ୍ତ, ପ୍ରେରିତ ।
ଅପବିଦ୍ଧ ପୁତ୍ର—ବି. ଦ୍ୱାଦଶବିଧ ଗୌଣପୁତ୍ରବିଶେଷ, ମାତୃପିତୃତ୍ୟକ୍ତ ପୁତ୍ର ।
ଅପବିଦ୍ୟା-ସ୍ତ୍ରୀ.ବି. (ଅପ + ବିଦ୍ୟା)ନିକୃଷ୍ଟ ବିଦ୍ୟା, ମନ୍ଦବିଦ୍ୟା, ଅବିଦ୍ୟା ।
ଅପବିଷା—ସ୍ତ୍ରୀ.ବି. ନିର୍ବିଷାନାମକ ଏକପ୍ରକାର ଘାସ, ତୃଣବିଶେଷ ।

ଅପବୃତ୍ତ—ତ୍ରି.ବିଂ. ( ଅପ + ବୃତ୍ + କ. ତ)ସମାପ୍ତ,ବିପରୀତ,ପରାଙ୍ମୁଖୀଭୂତ ।
ଅପବେଧ—ପୁଂ. ବି. ବିନ୍ଧା, କୌଣସି-ବସ୍ତୁର ଅଦୃଶ୍ୟ ସ୍ଥାନ ।
ଅପବ୍ୟୟ—ପୁଂ. ବି. (ଅପ + ବ୍ୟୟ + ଅ)କୁକାର୍ଯ୍ୟରେ ଧନବ୍ୟୟ, ବୃଥାବ୍ୟୟ, (ବିଂ) ଅପବ୍ୟୟିତ, (ବିପ) ସଦ୍ବ୍ୟୟ ।
ଅପବ୍ୟୟିତ - ତ୍ରି. ବିଂ. ଅନୁଚିତଭାବେ ବ୍ୟୟିତ, ବୃଥା ଅପଚିତ, (ସ୍ତ୍ରୀ) ଅପବ୍ୟୟିତା ।
ଅପବ୍ୟୟିତା—ସ୍ତ୍ରୀ.ବିଂ. (ଅପବ୍ୟୟିତ + ଆପ୍ ) ଅଯଥା ବ୍ୟୟିତା ।
ଅପବ୍ୟୟୀ—ତ୍ରି. ବିଂ. ଯେ ଅପବ୍ୟୟ କରେ,ବଦ୍ଖରଚୀ (ସ୍ତ୍ରୀ) ଅପବ୍ୟୟିନୀ ।
ଅପବ୍ୟବହାର—ପୁଂ.ବି.ଅନ୍ୟାୟ ବ୍ୟବହାର,ଅଯଥା ପ୍ରୟୋଗ, ଦୁରାଚରଣ ।
ଅପବ୍ରତ—ତ୍ରି.ବିଂ.ଅପଗତ କର୍ମ,ନଷ୍ଟବ୍ରତ, ଅପକୃଷ୍ଟବ୍ରତ ।
ଅପଶଙ୍କ—ତ୍ରି.ବିଂ.ନିର୍ଭୟ, ଶଙ୍କାରହିତ ।
ଅପଶଙ୍କା—ସ୍ତ୍ରୀ.ବିଂ. ବ.ବ୍ରୀ)ଶଙ୍କାରହିତ । (ବି)ଦୁଃଶଙ୍କା,ମନ୍ଦ ଆଶଙ୍କା, ଅପକୃଷ୍ଟାଶଙ୍କା । [ମନୁଷ୍ୟ ।
ଅପଶଦ,ଅପସଦ—ପୁଂ. ବି. ନୀଚ,ଅଧମ
ଅପଶବ୍ଦ—ପୁଂ.ବି. ଅସଂସ୍କୃତ ଶବ୍ଦ, ଗ୍ରାମ୍ୟ ଭାଷା, ଅପଭ୍ରଂଶ ଶବ୍ଦ ।
ଅପଶବ୍ୟ—ତ୍ରି.ବିଂ. (ଅ + ପଶବ୍ୟ)ପଶୁବୃଦ୍ଧିବିଘାତକ ।
ଅପଶୁ—ପୁଂ.ବି.ଗୋ ଅଶ୍ୱଭିନ୍ନ-ପଶୁ,(ବି) ପଶୁହୀନ । [ଆତ୍ମା ।
ଅପଶୁକ୍—ପୁଂ.ବି. (ଅପ + ଶୁଚ୍ + କ୍ୱିପ୍)
ଅପଶୁଚ୍ - ତ୍ରି.ବିଂ. (ଅପ + ଶୁଚ୍)ଅପଗତଶୋକ, ଶୋକହୀନ ।
ଅପଶୋକ—ତ୍ରି. ବିଂ. ଅପଗତଶୋକ, ଶୋକହୀନ ।
ଅପଶ୍ଚାତ୍—ଅବ୍ୟ. ପଛ ନୁହେ ।
ଅପଶ୍ଚିମ—ତ୍ରି, ବିଂ. ଅଗ୍ରିମ ।
ଅପଶ୍ୟ—ତ୍ରି. ବିଂ.(ଅ + ପଶ୍ୟ)ଅଦର୍ଶକ, ଯେ ଦେଖି ନ ପାରେ ।

ଅପଶ୍ରୟ—ପୁଂ. ବି (ଅପ + ଶ୍ରି + ଅ) ଆଶ୍ରୟ, ସ୍ଥାନ, ଉପଶ୍ରୟ ।
ଅପଶ୍ରୀ—ତ୍ରି. ବିଂ. ଶୋଭାବିହୀନ ।
ଅପଶ୍ଳିଷ୍ଟ—ତ୍ରି.ବିଂ.(ଅପ + ଶ୍ଳିଷ୍ + ତ) ସଂସର୍ଗହୀନ, ବିଯୁକ୍ତ, ଶ୍ଳେଷଶୂନ୍ୟ, ।
ଅପଷ୍ଠ—କ୍ଳୀ. ବି. ଅଙ୍କୁଶର ଅଗ୍ରଭାଗ ।
ଅପଷ୍ଠୁ—ତ୍ରି. ବି. ( ଅପ + ସ୍ଥା + ଅ ) ଟିକିଏ ଯାଇ ଛୁଡ଼ା ହେବା ।
ଅପଷ୍ଠୁ—ଅବ୍ୟ, ପ୍ରତିକୂଳ, ବିରୂପ ।
ଅପଷ୍ଠୁର, ଅପଷ୍ଠୁଳ—ତ୍ରି. ବିଂ. ପ୍ରତିକୂଳ, ବିପରୀତ ।
ଅପଃ—କ୍ଳୀ. ବି. ଜଳ ।
ଅପସଦ୍ - ତ୍ରି. ବିଂ (ଅପ + ସଦ୍ + ଅ) ଅଧମ, ନୀଚ, ବର୍ଣ୍ଣସଙ୍କର ।
ଅପସମ—ଅବ୍ୟ. ବର୍ଷକପରେ ।
ଅପସର—ପୁଂ. ବି. ( ଅପ + ସୃ + ଅ ) ଦାନ,ବୟସ, ସ୍ଥାନାନ୍ତର ଗମନ, ବଡ଼ ତକିଆ ।
ଅପସରଣ—କ୍ଳୀ.ବି. (ଅପ + ସୃ + ଅନ) ପଳାୟନ ।
ଅପସର୍ଗ—ପୁଂ. ବି. ତ୍ୟାଗ, ବର୍ଜନ ।
ଅପସର୍ଜ୍ଜନ—କ୍ଳୀ.ବି.ବର୍ଜନ,ଦାନ,ମୋକ୍ଷ ।
ଅପସର୍ପ—ପୁଂ. ବି. (ଅପ + ସୃ + କ.ଅ) ଗୁପ୍ତଚର, ହରକରା, ଦୂତ ।
ଅପସର୍ପଣ-କ୍ଳୀ.ବି.(ଅପ + ସୃପ୍ + ଭା.ଅନ) ଅପଯାନ, ପଳାୟନ, ପଶ୍ଚାଦ୍ଗମନ ।
ଅପସରିବା—କ୍ରି.ଘୁଞ୍ଚିବା,ଅପସୃତ ହେବା ।
ଅପସଲବି—ଅବ୍ୟ, ତର୍ଜନୀ ଓ ଅଙ୍ଗୁଷ୍ଠର ମଧ୍ୟସ୍ଥାନ, ପିତୃତୀର୍ଥ ।
ଅପସବ୍ୟ—କ୍ଳୀ.ବି. ଦେହରଦକ୍ଷିଣଭାଗ ।
ଅପସାର—ପୁଂ.ବି. (ଅପ + ସୃ + ଭା.ଅ) ଦୂରୀକରଣ, ବହିଷ୍କରଣ, ସଞ୍ଚାଳନ, ଅପନୟନ, ପ୍ରସ୍ଥାଣ ପଥ, ଯିବା ରାସ୍ତା ।
ଅପସାରଣ-କ୍ଳୀ.ବି. (ଅପ + ସୃ ଣିଚ୍ + ଭା.ଅନ)ଦୂରୀକରଣ,ବହିଷ୍କରଣ, ବାହାର କରିଦେବା, ଘୁଞ୍ଚାଇବା ।
ଅପସାରିତ-ତ୍ରି.ବିଂ. (ଅପ + ସୃ + ଣିଚ୍ + ର୍ମ.ତ) ଦୂରୀକୃତ, ଚାଳିତ, ବିସ୍ତାରିତ, ବହିର୍ଗତ, ତାଡ଼ିତ, ବିବୃତ, ଖୋଲା ।

ଅପସିଦ୍ଧାନ୍ତ—ପୁଂ.ବି. ସିଦ୍ଧାନ୍ତର ବିପରୀତ, ଦୋଷ, ଅନ୍ୟଥା, ଭ୍ରାନ୍ତିଯୁକ୍ତ ସିଦ୍ଧାନ୍ତ ।

ଅପସୋପାନ—ପୁଂ.ବି. ବାହାରି ଦ୍ୱାରର ସମ୍ମୁଖସ୍ଥ ମାଟିଗଦା ।

ଅପସୃତ—ବିଂ. (ଅପ + ସୃ + କ.ତ) ଅପଗତ, ଅପକ୍ରାନ୍ତ, ପଳାୟିତ (ସ୍ତ୍ରୀ) ଅପସୃତା ।

ଅପସୃତି—ସ୍ତ୍ରୀ. ବି. (ଅପ + ସୃ + ଭା ତି) ଅପସରଣ, ପଳାୟନ, ଘୁଞ୍ଚିଯିବା, ଦୂରକୁ ଯିବା ।

ଅପସ୍କର—ପୁଂ.ବି. (ଅପ + କୃ + ମିଂ.ଅ) ରଥର ସାମଗ୍ରୀ-ଅଖ, ଚକପ୍ରଭୃତି, ଗୁହ୍ୟଦ୍ୱାର, ବିଷ୍ଠା ।

ଅପସ୍ନାତ—ତ୍ରି.ବିଂ.(ଅପ + ସ୍ନା + କ.ତ) ମୃତ ଉଦ୍ଦେଶରେ ସ୍ନାତ, ମୃତଦେହ ଛୁଇଁ ଯେଉଁମାନେ ସ୍ନାନ କରଥାନ୍ତି ।

ଅପସ୍ନାନ—କ୍ଲୀ.ବି.(ଅପ + ସ୍ନା + ଭା.ଅନ) ମୃତ୍ୟୁସ୍ନାନ, ଅଶୌଚାନ୍ତେ ସ୍ନାନ ।

ଅପସ୍ପର୍ଶ—ତ୍ରି.ବିଂ.(ଅପ + ସ୍ପଶ)ଗୁପ୍ତଚର-ଶୂନ୍ୟ, ବ.ବ୍ରୀ; (ସ୍ତ୍ରୀ) ଅପସ୍ପଶା ।

ଅପସ୍ମାର—ପୁଂ-ବି.(ଅପ + ସ୍ମାର)ମୂର୍ଚ୍ଛା-ରୋଗବିଶେଷ ।

ଅପସ୍ମାରୀ—ପୁଂ ବିଂ.ଅପସ୍ମାରରୋଗଯୁକ୍ତ, (ସ୍ତ୍ରୀ) ଅପସ୍ମାରିଣୀ ।

ଅପସ୍ୟ—ତ୍ରି.ବିଂ. ସାଧୁକର୍ମକାରୀ ।

ଅପସ୍ୟୁ—ତ୍ରି.ବିଂ.କର୍ମେଚ୍ଛୁ, ଯେ କର୍ମର ଇଚ୍ଛା କରେ ।

ଅପହ—ତ୍ରି. ବିଂ. (ଅପ + ହନ୍ + ଅ) ଅପଘାତକର୍ତ୍ତା, ଯେ ହାଣେ ।

ଅପହଞ୍ଚ—ଗ୍ରା.ବିଂ.ଦୁଷ୍ପ୍ରବେଶ୍ୟ,ଦୁଷ୍ପ୍ରାପ୍ୟ, ଯାହା ଲକ୍ଷ୍ୟ ସ୍ଥାନରେ ପହଞ୍ଚେ ନାହିଁ ।

ଅପହଡ଼—ଗ୍ରା.ବିଂ.ଉନ୍ନିଦ୍ର,ଅନିଦ୍ରିତ,(ବି) ନିଦ୍ରାରାହିତ୍ୟ, ଉନ୍ନିଦ୍ରତା ।

ଅପହତ—ତ୍ରି.ବିଂ.(ଅପ + ହନ୍ + ମିଂ.ତ) ବିନଷ୍ଟ, ବିନାଶିତ, ନଷ୍ଟ, ମୃତ, (ସ୍ତ୍ରୀ) ଅପହତା ।

ଅପହତି—ସ୍ତ୍ରୀ.ବି. (ଅପ + ହନ୍ + ତି) ଅପହନନ, ବିନାଶ, ନାଶନ ।

ଅପହନ୍ତା—ପୁଂ.ବିଂ.(ଅପ + ହନ୍ + କ.ତୃ) ବିନାଶକାରୀ,ଘାତକ, (ବି)ଘାତକବ୍ୟକ୍ତି, (ସ୍ତ୍ରୀ) ଅପହନ୍ତ୍ରୀ ।

ଅପହନନ—ବି. ଘାତକ ବଧକରଣ ।

ଅପହର—ତ୍ରି.ବିଂ. (ଅପ + ହୃ + ଅ) ଅପହରଣକର୍ତ୍ତା, ବିନାଶକର୍ତ୍ତା ।

ଅପହରଣ—କ୍ଲୀ.ବି.(ଅପ + ହୃ + ଭା.ଅନ) ଚୌର୍ଯ୍ୟ, ଚୋରି,(ବିଂ) ଅପହୃତ ।

ଅପହରଣୀୟ—ତ୍ରି. ବିଂ. (ଅପ + ହୃ + ଅନୀୟ)ଅପହରଣଯୋଗ୍ୟ, ଯାହା ଚୋରି କଲେ ଦୋଷ ନାହିଁ ।

ଅପହର୍ତ୍ତା—ପୁଂ.ବି. (ଅପ + ହୃ + କ.ତୃ) ଅପହାରକ, ଚୋର, (ସ୍ତ୍ରୀ) ଅପହର୍ତ୍ତ୍ରୀ ।

ଅପହସିତ—କ୍ଲୀ.ବି. (ଅପ + ହସିତ) ଅପକୃଷ୍ଟହାସ୍ୟ, ଉଚ୍ଚହାସ୍ୟ, ବିକଟ-ହାସ୍ୟ ।

ଅପହସ୍ତ—ପୁଂ.ବି.(ଅପ + ହସ୍ତ)ଧକ୍କା, ବେକରେ ହାତ,(ବିଂ)ଧକ୍କାଦ୍ୱାରା ଅପ-ସାରିତ, (ସ୍ତ୍ରୀ) ଅପହସ୍ତା ।

ଅପହସ୍ତିତ—ତ୍ରି. ବିଂ. (ଅପ + ହସ୍ତ + ଇତ) ଧକ୍କାଦ୍ୱାରା ତଡ଼ାହୋଇଥିବା ।

ଅପହା—ପୁଂ.ବିଂ.(ଅପ + ହନ୍ + କ୍ୱିପ୍) ହତ୍ୟାକାରୀ, ବିନାଶକ, ଉଚ୍ଛେଦକ ।

ଅପହାର—ପୁଂ.ବି.(ଅପ + ହୃ + ଭା.ଅ) ଚୌର୍ଯ୍ୟ, ଅପହରଣ, ଚୋରି, ଅପଚୟ, କ୍ଷତି, ସଙ୍ଗୋପନ ।

ଅପହାରକ—ତ୍ରି.ବିଂ. (ଅପ + ହୃ + କ. ଅକ) ଅପହରଣଶୀଳ, ଚୋର, କ୍ଷତି-କାରକ, (ସ୍ତ୍ରୀ) ଅପହାରିକା ।

ଅପହାରିତ ତ୍ରି.ବିଂ. (ଅପ + ହୃ + ଣିଚ୍ ମିଂ.ତ) ଚୋରିତ,ନାଶିତ,ଯାହା ହରାଇ-ଅଛି ।

ଅପହାରୀ—ପୁଂ.ବି.(ଅପ + ହୃ + କ.ଇନ୍) ଚୋର, (ସ୍ତ୍ରୀ) ଅପହାରିଣୀ ।

ଅପହାସ—ପୁଂ.ବି. (ଅପ + ହସ୍ + ଅ) ଅକାରଣହାସ୍ୟ, ଉପହାସ,ଉଚ୍ଚହାସ୍ୟ ।

ଅପହୃତ—ତ୍ରି. ବିଂ.(ଅପ + ହୃ + ମିଂ. ତ) ଚୋରିତ,ମୁଷିତ,ଅପଚିତ, ଚୌର୍ଯ୍ୟକୃତ, (ସ୍ତ୍ରୀ) ଅପହୃତା ।

ଅପହ୍ନବ—ପୁଂ.ବି.(ଅପ + ହ୍ନୁ + ଭା.ଅ) କୌଣସି ବିଷୟ ଜାଣି ଲୁଚାଇବା, ଅପ-ଲାପ,ମିଥ୍ୟା,ଅସ୍ୱୀକାର,(ବିଂ)ଅପହ୍ନୁତ ।

ଅପହ୍ନୁତ—ତ୍ରି.ବିଂ (ଅପ + ହ୍ନୁ + ମିଂ.ତ) ଗୋପିତ, ଲୁକ୍କାୟିତ,ଅସ୍ୱୀକୃତ, (ବି) ଅପହ୍ନୁତି, ଅପହ୍ନବ ।

ଅପହ୍ନୁତି—ସ୍ତ୍ରୀ.ବି (ଅପ + ହ୍ନୁ + ଭା.ତି) ଅପହ୍ନବ,ଜାଣିକରି ଲୁଚାଇବା, ଅର୍ଥା-ଲଙ୍କାରବିଶେଷ, ଭଣ୍ଡାଣ, ଅପଲାପ ।

ଅପହ୍ନବାନ—ତ୍ରି. ବିଂ. ଚୌର, ଚୋର, ସଙ୍ଗୋପକ, ଅପଲାପକର୍ତ୍ତା ।

ଅପହ୍ରିୟମାଣ—ତ୍ରି.ବିଂ. (ଅପ + ହୃ + ଆନ) ଚୋରିତଧନ, ସଙ୍ଗୋପ୍ୟମାନ ।

ଅପା—ଗ୍ରା ବିଂ. ସ୍ତ୍ରୀ. ବଡ଼ଭଉଣୀ, (ପୁଂ) ତେଲଙ୍ଗା ଶୂଦ୍ରମାନଙ୍କର ବଂଶୋପାଧି-ବିଶେଷ ।

ଅପାଂକ୍ତେୟ—ବିଂ. (ଅ + ପଙ୍କ୍ତି + ଏୟ) ଏକପଙ୍କ୍ତିଆ ସମାଜଚ୍ୟୁତ, ଅସାମାଜିକ ।

ଅପାଂକ୍ଷୟ—ପୁଂ. ବି. ନେତ୍ର, ଚକ୍ଷୁ ।

ଅପାଂଜ୍ୟୋତିଃ—କ୍ଲୀ.ବି.ବିଦ୍ୟୁତ୍,ବିଜୁଳି ।

ଅପାଂନପାତ୍, ଅପାନ୍ନପାତ୍—ପୁଂ. ବି. ଯଜ୍ଞଦେବତାବିଶେଷ ।

ଅପାଂନପ୍ତ୍ରିୟ—ବିଂ. ଯଜ୍ଞଦେବତାପୂଜକ ।

ଅପାଂନାଥ—ପୁଂ.ବି (ଅପାଂ + ନାଥ) ସମୁଦ୍ର, ବରୁଣ ।

ଅପାଂନିଧି—ପୁଂ. ବି (ଅପାଂ + ନିଧି) ଜଳପତି, ସମୁଦ୍ର, ବିଷ୍ଣୁ ।

ଅପାଂପତି—ପୁଂ. ବି. (ଅପାଂ + ପତି) ବରୁଣ, ସମୁଦ୍ର ।

ଅପାଂପାଥଃ—କ୍ଲୀ. ବି. ଅନ୍ନ, ଗୁଡ଼ଲ ।

ଅପାଂପିତ୍ତ—କ୍ଲୀ. ବି. ଅଗ୍ନି,ଚିତ୍ରକବୃକ୍ଷ, ପିତ୍ତ ।

ଅପାଂପୁଷ୍ପ—କ୍ଲୀ.ବି.ଶିଉଳି,ଶୈବାଳ ।

ଅପାଂଯୋନି—ସ୍ତ୍ରୀ. ବି. ସମୁଦ୍ର ।

ଅପାଂଶୁଳା—ସ୍ତ୍ରୀ.ବି. ପତିବ୍ରତା, ସତୀ ।

ଅପାଂସୂଳା—ସ୍ତ୍ରୀ. ବ. ପତିବ୍ରତା ସ୍ତ୍ରୀ ।
ଅପାଂପତନ—କ୍ଲୀ. ବ. ଆକାଶ, ସ୍ୱର୍ଗ, ସୂର୍ଯ୍ୟ ।
ଅପାଂସଧସ୍ଥ—ପୁଂ.ବ. ଆକାଶ ।
ଅପାଂସଧଃ—କ୍ଲୀ. ବ. ଶ୍ରୋତ୍ର, କର୍ଣ୍ଣ ।
ଅପାଂସମୁଦ୍ର—ପୁଂ. ବ. ମନ, ଚନ୍ଦ୍ର ।
ଅପାକ—ପୁଂ.ବ. (ଅ + ପଚ + ଭା.ଅ) ପାକର ଅଭାବ, ଜୀର୍ଣ୍ଣର ଅଭାବ, ଅରନ୍ଧନ, (ବିଂ) ଅଜୀର୍ଣ୍ଣ, ଅପକ୍ୱ, ଜୀର୍ଣ୍ଣ-ହୋଇ ନ ଥିବା, (ସ୍ତ୍ରୀ) ଅପାକା, (ଗ୍ରା) ଅଶୁଚ, ଅପବିତ୍ର ।
ଅପାକଜ—ତ୍ରି. ବିଂ. ଅତି ଉଷ୍ଣ ନୁହେ, ଅତି ଶୀତଳ ନୁହେ ।
ଅପାକରଣ—କ୍ଲୀ.ବ.(ଅପ + କୃ + ଭା.ଅ) ନିରାକରଣ, ନିଷେଧ, ପ୍ରଶମନ, ବହିଷ୍କୃତ, ପରିଶୋଧ, ତ୍ୟାଗକରଣ, (ବିଂ) ଅପାକୃତ ।
ଅପାକରିଷ୍ଣୁ—ତ୍ରି.ବିଂ., ଦୂରୀକରଣଶୀଳ, ନିରାକରଣଶୀଳ ।
ଅପାକର୍ମ—କ୍ଲୀ. ବ. ନିର୍ଗମ, ନିରାକରଣ ।
ଅପାକୃତ୍ୟ—ଅବ୍ୟ. ନିରାକରଣ କରି ମୋଚନକରି । [ଥିବା ।
ଅପାକଶାକ—କ୍ଲୀ. ବ.(ଅପାକ + ଶାକ)
ଅପାକଳ—ଗ୍ରା ବିଂ.(ସଂ ଅପକ୍ୱ) ସମ୍ପୂର୍ଣ୍ଣରୂପେ ପରିପକ୍ୱ ହୋଇ ନ ଥିବା, ଅପରିପୁଷ୍ଟ ।
ଅପାକଳା—ଗ୍ରା. ବିଂ. ଅପକ୍ୱ, କଞ୍ଚା ।
ଅପାକୀ—ପୁଂ ବିଂ. (ଅପାକ + ଇନ୍) ପାକଶୂନ୍ୟ,(ସ୍ତ୍ରୀ) ଅପାକିନୀ ।
ଅପାକୀର୍ଣ୍ଣ—ତ୍ରି.ବିଂ. (ଅପ + ଅ + କୃ + ମ୍ନି.ତ) ଦୂରୀକୃତ, ତ୍ୟକ୍ତ ।
ଅପାକୃତ—ତ୍ରି.ବିଂ.(ଅପ + ଆ + କୃ + ମ୍ନି.ତ) ନିରାକୃତ, ପ୍ରଶମିତ, ଦୂରୀକୃତ, ପରିଶୋଧିତ ।
ଅପାକୃତି—ସ୍ତ୍ରୀ.ବ. (ଅପ + ଆ + କୃ + ଭା.ତି) ନିରାକରଣ, ଦୂରୀକରଣ ।
ଅପାକ୍ରିୟା—ସ୍ତ୍ରୀ.ବ. ଅପାକରଣ, ଅପସାରଣ ।
ଅପାକ୍ତାନ୍ତ—ଅବ୍ୟ. ଅପରଦିଗଜାତ, ପଶ୍ଚିମଦିଗଜାତ ।
ଅପାଂକ୍ତେୟ—ତ୍ରି.ବିଂ. ଏକଘରିଆ, ସମାଜର ଅଯୋଗ୍ୟ,ଅଗ୍ନିହୋତ୍ରୀ, ସ୍ୱର୍ଣ୍ଣଚୋର ପତିତାଦି,(କ୍ଲୀବ, ନାସ୍ତିକ, ଭଣ୍ଡକଥାଧାରୀ ।
ଅପାଂକ୍ତ୍ୟ—ତ୍ରି.ବିଂ. ସାଧୁର ସହିତ ଏକ ଧାଡ଼ିରେ ବସି ଭୋଜନ କରିବାର ଅଯୋଗ୍ୟ ।
ଅପାକ୍ଷ—ପୁଂ.ବିଂ. (ଅପ + ଅକ୍ଷ)ପ୍ରତ୍ୟକ୍ଷ, ଇନ୍ଦ୍ରିୟଗ୍ରାହ୍ୟ, କୁତ୍ସିତ ଚକ୍ଷୁବିଶିଷ୍ଟ, ନେତ୍ରହୀନ, (ସ୍ତ୍ରୀ) ଅପାକ୍ଷୀ ।
ଅପାଙ୍ଗ—କ୍ଲୀ. ବ.(ଅପ + ଅଙ୍ଗ) ନେତ୍ରପ୍ରାନ୍ତ, ନେତ୍ରଭଙ୍ଗି, ବାଙ୍କଚାହାଣୀ, କଟାକ୍ଷ, ଚକ୍ଷୁର କୋଣ ।
ଅପାଙ୍ଗକ—ପୁଂ. ବ. (ଅପାଙ୍ଗ + କ) ଅପାମାର୍ଗ, ନେତ୍ରପ୍ରାନ୍ତ ।
ଅପାଙ୍ଗଦର୍ଶନ—କ୍ଲୀ.ବ. କଟାକ୍ଷ, ଠାରଦୃଷ୍ଟି, ବାଙ୍କଚାହାଣୀ, ଭ୍ରୂଭଙ୍ଗୀ ।
ଅପାଙ୍ଗଦୃଷ୍ଟି - ସ୍ତ୍ରୀ. ବ. (ଅପାଙ୍ଗ + ଦୃଷ୍ଟି) ଅପାଙ୍ଗଦର୍ଶନ (ସମସ୍ତ ଅର୍ଥରେ ) ।
ଅପାଙ୍ଗନେତ୍ର—କ୍ଲୀ. ବିଂ. ଦୀର୍ଘନେତ୍ର, (ବିଂ) ଦୀର୍ଘନେତ୍ର ଯୁକ୍ତ ।
ଅପାଙ୍ଗୁ—ଗ୍ରା. ବିଂ ବିକଳାଙ୍ଗ, କୁଡ଼ିଆ, (ବ) କୁଷ୍ଠରୋଗ ଓ ତଜ୍ଜନିତ ଅଙ୍ଗବୈକଲ୍ୟ ।
ଅପାଙ୍ଗୁ ବ୍ୟାଧି—ଗ୍ରା.ବ. କୁଷ୍ଠରୋଗ ।
ଅପାଚ୍—ତ୍ରି.ବିଂ. (ଅପ + ଅଞ୍ଚ + କ୍ୱିପ୍) ଅପଗମନକର୍ତ୍ତା, ଅପ୍ରକାଶାର୍ଥ ।
ଅପାଚୀନ—ତ୍ରି ବିଂ. (ଅପାଚ୍ + ଈନ) ଦକ୍ଷିଣଦିଗଜାତ,ଅପ୍ରକାଶମାନ ।
ଅପାଚ୍ୟ—ତ୍ରି.ବିଂ. (ଅ + ପଚ୍ + ମ୍ନି.ଯ) ଦକ୍ଷିଣଦିଗଜାତ, ଯାହା ପାକକରିହୋଇ ନ ପାରେ ।
ଅପାଟପ—ଗ୍ରା. ବିଂ. ଅଯୌକ୍ତିକ, ଅସଙ୍ଗତ, ଅସମ୍ଭବ,ମୂର୍ଖ, ଅଭବ୍ୟ, ଅପଟୁ ।
ଅପାଟବ—ପୁଂ. ବ. (ଅ + ପାଟବ) ରୋଗବିଶେଷ, ଅପଟୁତା, ଜଡ଼ତା, (ବିଂ) ପଟୁତାଶୂନ୍ୟ, ଅଭବ୍ୟ ।
ଅପାଠିଆ—ଗ୍ରା.ପୁଂ. ବିଂ. ମୂର୍ଖ, ବିଦ୍ୟାହୀନ, ଅଶିକ୍ଷିତ, (ସ୍ତ୍ରୀ) ଅପାଠୋଇ ।
ଅପାଠୁଆ—ଗ୍ରା.ପୁଂ.ବିଂ. (ପଠନ ଶବ୍ଦଜ) ମୂର୍ଖ, ଅପାଠିଆ ।
ଅପାଠ୍ୟ—ବିଂ. (ଅ + ପଠ + ମ୍ନି. ଯ ) ଅପଠନୀୟ, ଯାହା ପଢ଼ି ହୁଏ ନାହିଁ, ଅଶ୍ଳୀଳ, ସ୍ତ୍ରୀ) ଅପାଠ୍ୟା ।
ଅପାଣିଆ—ଗ୍ରା. ବିଂ. (ଅ + ପାଣିଆ ) ଯାହାର ମୂଳରେ ପାଣିଦିଆ ଯାଇନାହିଁ, ଜଳବିହୀନ,ନିର୍ଜଳ,ନିପାଣିଆ (ଦେବତା)
ଅପାଣ୍ଡବ—ବିଂ. (ନ + ପାଣ୍ଡବ)ପାଣ୍ଡବଶୂନ୍ୟ, ଯେଉଁ ଦେଶରୁ ପାଣ୍ଡବମାନେ ତାଡ଼ିତ ବା ନିର୍ବାସିତ ।
ଅପାଣ୍ଡବା—ବିଂ. ଗ୍ରା. ଯେଉଁ ଦେଶକୁ ପାଣ୍ଡବମାନେ ଯାଇନାହାନ୍ତି, ଅସଭ୍ୟ ।
ଅପାଣ୍ଡୁ—ଗ୍ରା ପୁଂ. ବିଂ. ଅଯୋଗ୍ୟ, ଅଧମ, ଅସଭ୍ୟ, ଯାହାର ବ୍ୟବହାର ମାର୍ଜିତ ନୁହେ, (ବ) କୁଳାଙ୍ଗାର ।
ଅପାତ୍ତ—କ୍ଲୀ.ବ.(ଅପ ଆ + ଦା + ତ) ପ୍ରାପ୍ତ ।
ଅପାତ୍ର—କ୍ଲୀ. ବ. (ଅ + ପାତ୍ର) ଅସତ୍ଲୋକ, ଅଯୋଗ୍ୟ ପାତ୍ର, ଦାନ ବା ଅନୁଗ୍ରହର ଅଯୋଗ୍ୟ ଲୋକ, ନିକୃଷ୍ଟ ପାତ୍ର ।
ଅପାତ୍ରଦାନ—ବ. (୭ ତତ୍) ଅଯୋଗ୍ୟବ୍ୟକ୍ତିକୁ ଦାନ ।
ଅପାତ୍ରୀକରଣ—କ୍ଲୀ. ବ. (ଅପାତ୍ର + ଚ୍ୱୀ + କୃ + ଭା.ଅନ) ହିନ୍ଦୁ-ସ୍ମୃତି-ବର୍ଣ୍ଣିତ ପାପବିଶେଷ, ନିନ୍ଦିତ ଲୋକଠାରୁ ଧନଗ୍ରହଣ, ମିଥ୍ୟାକଥନ, ଶୂଦ୍ରସେବା ।
ଅପାଦ୍—ତ୍ରି. ବିଂ. (ବ.ବ୍ରୀ) ପାଦଶୂନ୍ୟ, ଯାହାର ପଦ ନାହିଁ, (ସ୍ତ୍ରୀ) ଅପାଦା ।
ଅପାଦପ—ତ୍ରି. ବିଂ. (ବ.ବ୍ରୀ) ବୃକ୍ଷଲତାହୀନ ।
ଅପାଦାନ—କ୍ଲୀ. ବ. (ଅପ + ଆ + ଦା + ଅନ ) ଯାହାଠାରୁ କୌଣସି ବସ୍ତୁ ଗୃହୀତ ହୁଏ, ପଞ୍ଚମୀ ବିଭକ୍ତିର କାରକ ।

ଅପାନ—କ୍ଲୀ. ବ. (ଅପ + ଅନ + ଣ.ଅ) ଶରୀରସ୍ଥ ପଞ୍ଚ ପ୍ରାଣ ବାୟୁର ଏକତମ ।

ଅପାନନ—କ୍ଲୀ. ବ. ମୁଖ ଓ ନାସିକା-ଦ୍ୱାରା ନିଃସାରିତ ବାୟୁ ଭିତରକୁ ଆକର୍ଷଣ ।

ଅପାନବାୟୁ—ବି. ( ଅପାନ + ବାୟୁ ) ଅଧୋବାୟୁ, ପାଦ୍ ।

ଅପାପ—ବି. ବଂ. (ଅ + ପାପ) ନିଷ୍ପାପ, ପାପହୀନ, (ସ୍ତ୍ରୀ) ଅପାପୀ ।

ଅପାପବିଦ୍ଧ—ପୁଂ. ବଂ ( ଅ + ପାପ + ବିଦ୍ଧ ) ଯାହାକୁ ପାପ ଛୁଇଁ ନାହିଁ, (ସ୍ତ୍ରୀ) ଅପପବିଦ୍ଧା ।

ଅପାପୀ—ଗ୍ରା. ପୁଂ. ବଂ. (ଅ + ପାପିନ୍) ନିଷ୍ପାପ, ନିର୍ଦ୍ଦୋଷ, ଅପାପିନୀ ।

ଅପାବରଣ—କ୍ଲୀ. ବ. (ଅପ + ଆ + ବୃ + ଭା. ଅନ) ଅନାଚ୍ଛାଦନ, ସ୍ୱେଚ୍ଛା ପ୍ରବୃତ୍ତି, ଉଦ୍‌ଘାଟନ, ପ୍ରକାଶ, ଉନ୍ମୋଚନ, ଆବରଣ ।

ଅପାମାର୍ଗ—ପୁଂ. ବ. (ଅପ + ଆ + ମୃଜ + ଣ.ଅ.) ଡିବଡିଖଣ୍ଡା, (ଗ୍ରା) ଅପାମାରଗ

ଅପାୟ—ପୁଂ. ବ. (ଅପ + ଇ + ଭା. ଅ) ବିଭାଗଜନକକ୍ରିୟା, ଅପଗମ, କ୍ଷତ, ବିଘ୍ନ, ବିପଦ, ବିନାଶ, ଧ୍ୱଂସ, ମୃତ୍ୟୁ, ସ୍ଥାନତ୍ୟାଗ ।

ଅପାୟନ—(ଅପ + ଅୟ + ଅନ) ପ୍ରସ୍ଥାନ, ପଳାୟନ, ଗତି, ଉପାୟ ।

ଅପାୟୀ—ବି. ବଂ. ( ଅପାୟ + ଇନ୍ ) ବିପନ୍ନ, ଅପାୟଯୁକ୍ତ, ବିନାଶୀ, ବିୟୋଗ-ଶୀଳ, (ସ୍ତ୍ରୀ) ଅପାୟିନୀ ।

ଅପାର—ବି. ବଂ. (ଅ + ପାର) ଅସୀମ, ଅନନ୍ତ, ଅକୂଳ, ଅଗାଧ, ଅତ୍ୟଧିକ, ଅକଳିତ, (କ୍ଲୀ) ଅପର କୂଳ ବା ତୀର ।

ଅପାରକ—ବି. ବଂ. (ନ + ପାରକ) ଅସମର୍ଥ, ଅକ୍ଷମ, କ୍ଷମତାରହିତ, ( ସ୍ତ୍ରୀ ) ଅପାରକା । [ ବହୁଦିନ ।

ଅପାରକାଳ—ବି. ( ଅପାର + କାଳ )

ଅପାରଗ—ବି. ବଂ. ଅସମର୍ଥ, ଅନଭିଜ୍ଞ, ଅଯୋଗ୍ୟ, ଅବ୍ୟୁତ୍ପନ୍ନ, (ସ୍ତ୍ରୀ) ଅପାରଗା ।

ଅପାରଣା—ଗ୍ରା.ବ.(ଅ + ପାରଣା) ଯାହା ପାରଣା ନୁହେ ।

ଅପାରା—ସ୍ତ୍ରୀ ବ. ଅସୀମଶକ୍ତି, ଦୁର୍ଗା, (ଚଣ୍ଡୀ) 'ନ ଜ୍ଞାୟସେ ହରିହରାଦିଭିରପ୍ୟପାରା', ପୃଥିବୀ ।

ଅପାଶ୍ରା—ସ୍ତ୍ରୀ. ବ. ପୁରଭିନ୍ନ, ପାତ୍ରୀଭିନ୍ନ, ପରାଗଭିନ୍ନ ।

ଅପାରୁଅପାର—ଗ୍ରା.ବଂ. ଅସଂଖ୍ୟ, ବହୁତ, ଅନେକାନେକ, ଅତ୍ୟଧିକ ।

ଅପାର୍ଣ୍ଣ—କ୍ଲୀ. ବ. (ଅପ + ଅର୍ଦ୍ଦ + ତ) ଅଭ୍ୟର୍ଥ, ସମୀପ, ନିକଟ ।

ଅପାର୍ଥ—ବି. ବଂ. (ଅପ + ଅର୍ଥ) ନିରର୍ଥକ, ବ୍ୟର୍ଥ, ଅଭିଧେୟ ଶୂନ୍ୟ, ଧନହୀନ ।

ଅପାର୍ଥକରଣ—କ୍ଲୀ. ବ. ମୋକଦ୍ଦମାର ମିଥ୍ୟାହେତୁ ବାଦ କରିଦିବା ।

ଅପାର୍ଥିବ—ବି. ବଂ. ( ଅ + ପାର୍ଥିବ ) ସ୍ୱର୍ଗୀୟ, ଅଜଡ଼, ଯାହା ପୃଥିବୀର ବସ୍ତୁଗତ ନୁହେ ।

ଅପାର୍ଯ୍ୟମାଣ—ବଂ. (ନ + ପାର + ଆନ) ଯାହାପୂରଣ କରିହୋଇନାହିଁ, ଯାହାକୁ ପୋଷଣ ବା ପାଳନ କରାଯାଇ ନାହିଁ ।

ଅପାଳ—ବି. ବଂ. ପାଳକରହିତ, ଅରକ୍ଷକ ।

ଅପାଳକ—ଗ୍ରା. ବ. ( ଅ + ପାଳ + କ ) ଅନାବୃଷ୍ଟି ଯୋଗୁଁ ଦେଶର ଶସ୍ୟହାନି, ମରୁଡ଼ି ।

ଅପାଲଟ—ଗ୍ରା. ବଂ. ଯେ କାର୍ଯ୍ୟସାର ବାହୁଡ଼େ ନାହିଁ, ଅମୋଘ, ଅବ୍ୟର୍ଥ, ଅପରିବର୍ତ୍ତନୀୟ, ଅବଦଳ, ଅପ୍ରତିକାର୍ଯ୍ୟ ।

ଅପାଳଙ୍କ—ଗ୍ରା.ବ. ଗୁଳୁଣ୍ଡାଜାତୀୟ ବୃକ୍ଷ-ବିଶେଷ ।

ଅପାଲଟା—( ଟିଆ ) ଅପାଲଟ, ଯେଉଁ ଲୋକ ପିନ୍ଧିଥିବା ଲୁଗା ପାଲଟି ନାହିଁ ।

ଅପାଳନ—କ୍ଲୀ. ବ. ( ନ + ପାଳନ ) ପାଳନର ଅଭାବ, ଆଦେଶଲଙ୍ଘନ, ବ୍ରତାଦିର ନିୟମଲଙ୍ଘନ, ସତ୍ୟଭଙ୍ଗ ।

ଅପାଲା—ସ୍ତ୍ରୀ.ବ. ବ୍ରହ୍ମବାଦିନୀ, ଅତ୍ରିକନ୍ୟା ।

ଅପାଲମ୍ବ—ପୁଂ. ବ. (ଅପ + ଆ + ଲମ୍ବ + କ, ଅ) ଗାଡ଼ିର ପଛପାଖ, ଶଗଡ଼-ଦଣ୍ଡା ।

ଅପାବର୍ତ୍ତନ—କ୍ଲୀ ବ. (ଅପ + ଆ + ବୃତ + ଅନ) ଓଲଟପାଲଟ, ଗଡ଼ାଗଡ଼ି, ପ୍ରତ୍ୟାବର୍ତ୍ତନ, ଫେରି ଆସିବା ।

ଅପାବୃତ—ବି. ବ. ଅପ + ଆ + ବୃ + ମ.ତ) ଅନାବୃତ, ଅନାଚ୍ଛାଦିତ, ଉଦ୍‌ଘାଟିତ, ସ୍ୱତନ୍ତ୍ର, ସ୍ୱାଧୀନ, ମେଲା, (ସ୍ତ୍ରୀ) ଅପାବୃତା ।

ଅପାବୃତି—ସ୍ତ୍ରୀ. ବ. ( ଅପ + ଆବୃତି ) ଆବରଣ, ନିବାରଣ, ପରିବେଷ୍ଟନ, ପ୍ରତ୍ୟାବର୍ତ୍ତନ ।

ଅପାବୃତ୍ତ—ବି. ବଂ. (ଅପ + ଆ + ବୃତ + କ.ତ) ଅନ୍ତରିତ, ପରିବୃତ୍ତ, ଉଲ୍ଲୁଣ୍ଠିତ, (ସ୍ତ୍ରୀ) ଅପାବୃତ୍ତୀ ।

ଅପାବୃତ୍ତି—ସ୍ତ୍ରୀ ବ. (ଅପ + ଆ + ବୃତ୍ + ଭା. ତି.) ପ୍ରତ୍ୟାବର୍ତ୍ତନ, ଅପାବର୍ତ୍ତନ ।

ଅପାଶ୍ରୟ—ପୁଂ. ବ. ( ଅପ + ଆଶ୍ରୟ ) ଚାନ୍ଦୁଆ, ( ବଂ ) ଆଶ୍ରୟହୀନ, ( ସ୍ତ୍ରୀ ) ଅପାଶ୍ରୟା ।

ଅପାଷ୍ଟ—ବି. ବଂ. ନିରସ୍ତ, ପଳାୟିତ ।

ଅପାଷ୍ଟୁ—ପୁଂ. ବ. ଯେ ଏକସ୍ଥାନରେ ରହେ ନାହିଁ, ବାଳକ, କାଳ ।

ଅପାସଙ୍ଗ—ପୁଂ. ବ. (ଅପ + ଆ + ସଙ୍ଗ) ତୂଣ, ତୂଣୀ, ଶର ରଖିବାର ପାତ୍ର, ବିଷଲିପ୍ତ ଶର ।

ଅପାସନ—କ୍ଲୀ.ବ.(ଅପ + ଅସ + ଭା.ଅନ) ଅପସାରଣ, ମରଣ, ମାରଣ, ଦୂରୀକରଣ, ବଧ, ଅବଜ୍ଞା ।

ଅପାସରଣ—କ୍ଲୀ.ବ.(ଅପ + ଆ + ସୃ + ଭା. ଅନ) ପ୍ରସ୍ଥାନ, ସ୍ଥାନାନ୍ତରଗମନ, (ବଂ) ଅପାସୃତ ।

ଅପାସିତ—ବି. ବଂ. ଅପସାରିତ, ଯାହାକୁ ବାହାରକରି ଦିଆଯାଏ, ଛେଦିତ ।

ଅପାସୃତ—ବି. ବଂ. ଦୂରୀଭୂତ, କ୍ଷରିତ, ଅପଗତ, ପଳାୟିତ, ଯେ ସରି ଯାଇଅଛି ।

ଅପାସ୍ତ—ବି. ବଂ. (ଅପ + ଅସ୍ + ମ.ତ) କ୍ଷିପ୍ତ, ନିରସ୍ତ, ଦୂରୀକୃତ, ଅପସାରିତ ।

ଅପାସ୍ୟ—ଅବ୍ୟ. ( ଅପ + ଅସ୍ + ଯ ) ତ୍ୟାଗକରି ।

ଅପାହରଣ—କ୍ଲୀ. ବି. (ଅପ + ଆ + ହୃ + ଅନ) ଆକର୍ଷଣ, ଅପନୋଦନ ।

ଅପି—ଅବ୍ୟ (ଅ + ପ + କ୍ୱିପ୍) ମଧ୍ୟ,ବି, ଆଦ୍ଦର, ଏବଂ, ପୁନଶ୍ଚ ।

ଅପିଆ—ଗ୍ରା.ବିଂ. ଯେ ପାଣି ବା ତୋରାଣି ପିଇନାହିଁ ।

ଅପିକକ୍ଷ—ତ୍ରି. ବିଂ. କକ୍ଷପ୍ରଦେଶଦ୍ୱାରା ସନ୍ଧାନଯୋଗ୍ୟ, ପ୍ରବର୍ଗବିଦ୍ୟାନାମକ ରହସ୍ୟବିଶେଷ ।

ଅପିକର୍ଣ୍ଣ—କ୍ଲୀ. ବି. ସମୀପ, ନିକଟ, (ବିଂ) ନିକଟବର୍ତ୍ତୀ ।

ଅପିଗୀର୍ଣ୍ଣ—ତ୍ରି.ବିଂ.(ଅପି + ଗୃ + ର୍ମ.ତ) କଥିତ, ବର୍ଣ୍ଣିତ, ପ୍ରଶଂସିତ ।

ଅପିଗୁ—ପୁଂ.ବି.(ଅପି + ଗମ + ଉ)ଜ୍ଞାନ ।

ଅପିଗୃହ୍ୟ—ତ୍ରି.ବିଂ. ପ୍ରତିଗ୍ରହର ଯୋଗ୍ୟ, ଯାହା ଗ୍ରହଣ କରାଯାଏ ।

ଅପିଗ୍ରାହ୍ୟ—ତ୍ରି. ବିଂ. ଯାହା ପ୍ରତିଗ୍ରହ କରାଯାଏ, ପ୍ରତିଗ୍ରହଯୋଗ୍ୟ ।

ଅପିଚ—ଅବ୍ୟ. ଏବଂମଧ୍ୟ, ଆଦ୍ଦରମଧ୍ୟ ।

ଅପିଜ—ବି. ଜ୍ୟେଷ୍ଠମାସ ।

ଅପିତ୍ର—ସ୍ତ୍ରୀ. ବି. ଜଳରହିତା ନଦୀ, (ପୁଂ) ବ୍ୟାକରଣପ୍ରତ୍ୟୟବିଶେଷ ।

ଅପିତୁ—ଅବ୍ୟ. ( ଅପି + ତୁ ) ପରନ୍ତୁ, କିନ୍ତୁ, ଏବଂମଧ୍ୟ, ଯେବେକି, ଯଦି, ଆଦ୍ଦରିବି ।

ଅପିତୃକ—ପୁଂ. ବି. (ବ.ବ୍ରୀ.) ପିତୃହୀନ, (ସ୍ତ୍ରୀ) ଅପିତୃକା ।

ଅପତ୍ତି—କ୍ଲୀ. ବି.୦ ଭାଗ, ଧନବିଭାଗ ।

ଅପିତ୍ତୀ—କ୍ଲୀ. ବି. ଭାଗବିଶିଷ୍ଟ, ଭାଗଯୁକ୍ତ, (ସ୍ତ୍ରୀ) ଅପିତ୍ତିନୀ ।

ଅପିଧାନ—କ୍ଲୀ. ବି. (ଅପି + ଧା + ଅନ) ତିରୋଧାନ, ଆଚ୍ଛାଦନ, ଚାଙ୍କୁଣି, ଘୋଡ଼ଣି ।

ଅପିଧି—ପୁଂ. ବି. ତୃପ୍ତିପର୍ଯ୍ୟନ୍ତ ଦତ୍ତ ।

ଅପିନଦ୍ଧ—ତ୍ରି. ବିଂ. (ଅପି + ନହ୍ + ର୍ମ, ତ) ପରିହିତ, ପିନ୍ଧାଯାଇଥିବା ।

ଅପିପ୍ରାଣ—ତ୍ରି. ବିଂ. ( ଅପି + ପ୍ର + ଅନ + ଆ ) ସର୍ବଦାଚେଷ୍ଟମାନ, ପ୍ରାଣପଣେ ।

ଅପିବା—ଗ୍ରା.ଗ୍ରା.ତ୍ରି.ରାଜିହେବା,ମାଗିବା, ଦୋଷସ୍ୱୀକାରକରିବା ।

ଅପିବ୍ରତ—ତ୍ରି. ବିଂ. ଜ୍ଞାତିର ଅବିଭକ୍ତଧନ, ସାଜ, ସମ୍ପତ୍ତି ।

ଅପିଲ୍—ଯା.ବି.ଉଚ୍ଚବିଚାରାଳୟରେ ପୁନଃ ବିଚାରପ୍ରାର୍ଥନା ।

ଅପିଲ୍ ଅଦାଲତ—ଯା. ଅପିଲବିଚାରକରିବା ହାକିମଙ୍କ କଚେରୀ ।

ଅପିଶର୍ବ୍ବର—ଅବ୍ୟ.ପ୍ରଦୋଷ,ସନ୍ଧ୍ୟାକାଳ ।

ଅପିଶଲ—ପୁଂ. ବି. ମୁନିବିଶେଷ, ଅପିଶଳଙ୍କ ସୂତ୍ର ।

ଅପିଶୁନ—ତ୍ରି.ବିଂ.(ଅ + ପିଶୁନ)ନ.ତତ୍ପୁ; ଅଖଳ, ଅକ୍ରୂର, ଅକପଟ, ଶରଣ, ଉଦାର, ଦକ୍ଷିଣ, (ସ୍ତ୍ରୀ) ଅପିଶୁନା ।

ଅପିହିତ—ତ୍ରି. ବିଂ. ( ଅପି + ଧା + ତ) ଆଚ୍ଛାଦିତ, ଆବୃତ, (ବି) ଅପିଧାନ ।

ଅପୀଚ୍ୟ—ତ୍ରି. ବିଂ. ଅତିସୁନ୍ଦର ।

ଅପୀଜୁ—ତ୍ରି. ବିଂ. (ଅପି + ଜୁ + କ୍ୱିପ୍) ପ୍ରେରକ ।

ଅପୀତ—ତ୍ରି.ବିଂ.(ଅପ + ଇ + ତ)ବିଳୟପ୍ରାପ୍ତ, ବିଲୀନ, ପୀତବର୍ଣ୍ଣଭିନ୍ନ, ଯାହା ହଳଦୀରଙ୍ଗ ନୁହେ । [ଅପ୍ରଳୟ ।

ଅପୀତି—ସ୍ତ୍ରୀ. ବି. ବିଳୟ, ଅପଗମ,

ଅପୀନସ—ପୁଂ.ବି.ପୀନସରୋଗରଅଭାବ, (ବିଂ.ପୁଂ.) ପୀନସରୋଗଶୂନ୍ୟ, (ସ୍ତ୍ରୀ) ଅପୀନସା ।

ଅପୀବ୍ୟ—ଅତିସୁନ୍ଦର ।

ଅପୁଂସ—ପୁଂ. ବି. ନପୁଂସକ, କ୍ଲୀବ ।

ଅପୁଂସ୍କା—ସ୍ତ୍ରୀ.ବି.ପତିରହିତା ସ୍ତ୍ରୀ,ପୁରୁଷହୀନା ସ୍ତ୍ରୀ ।

ଅପୁଚ୍ଛ—ତ୍ରି. ବିଂ. (ବ. ବ୍ରୀ) ପୁଚ୍ଛରହିତ, ଲାଞ୍ଜହୀନ, (ସ୍ତ୍ରୀ) ଅପୁଚ୍ଛା ।

ଅପୁଚ୍ଛକ—ପୁଂ. ବିଂ. (ଅ + ପୁଚ୍ଛ + କ) ବ.ବ୍ରୀ,ଲାଙ୍ଗୁଲହୀନ,(ସ୍ତ୍ରୀ)ଅପୁଚ୍ଛିକା ।

ଅପୁଚ୍ଛା—ସ୍ତ୍ରୀ. ବି. ଶିଶୁପାଗଛ, ଶିଶୁଗଛ, (ପୁଂ.ବିଂ.) ଅପୁଚ୍ଛ, ଲାଙ୍ଗୁଲହୀନ ।

ଅପୁଚ୍ଛାଙ୍କୁର—ପୁଂ.ବି. (୬ତତ୍ପୁ) ବେଙ୍ଗପ୍ରଭୃତି, ଯାହାର ପୁଚ୍ଛ ନାହିଁ, ପୁଚ୍ଛହୀନ ଉଭୟଚର ପ୍ରାଣୀ ।

ଅପୁଚ୍ଛୀ—ପୁଂ.ବି.(ଅ + ପୁଚ୍ଛିନ୍)ନ.ତତ୍ପୁ; ପୁଚ୍ଛହୀନ, ମଣ୍ଡୂକାଦି ପ୍ରାଣୀ, ( ସ୍ତ୍ରୀ ) ଅପୁଚ୍ଛିନୀ ।

ଅପୁଣ୍ୟ—କ୍ଲୀ.ବି. ପାପ,(ପୁଂ.ବିଂ)ପାପୀ, ପୁଣ୍ୟହୀନ, (ସ୍ତ୍ରୀ) ଅପୁଣ୍ୟା ।

ଅପୁଣ୍ୟକୃତ—ତ୍ରି.ବିଂ. (ବ.ବ୍ରୀ)ପାପକାରୀ, ଅପୁଣ୍ୟକୃତା ।

ଅପୁତ୍ର, ଅପୁତ୍ରକ—ପୁଂ.ବିଂ. ପୁତ୍ରହୀନ, (ସ୍ତ୍ରୀ) ଅପୁତ୍ରା,ପୁତ୍ରହୀନା,(ବି)କୁପୁତ୍ର ।

ଅପୁତ୍ରିକ—ଗ୍ରା.ବିଂ.ପୁଂ. ଅପୁତ୍ରକ,ପୁତ୍ରହୀନ, (ସ୍ତ୍ରୀ) ଅପୁତ୍ରିକା, (ଫ. ବିଂ. ପୁଂ.) ଯେଉଁ ବ୍ୟକ୍ତିର ବଂଶରକ୍ଷାକାରୀ ପୁତ୍ର ଜନ୍ମାଇବାର ଉପଯୁକ୍ତ କନ୍ୟା ନାହିଁ ।

ଅପୁତ୍ରୀ—ପୁଂ.ବିଂ.ବ.ବ୍ରୀ,'ଅ + ପୁତ୍ରିନ୍) ଅପୁତ୍ରକ, ପୁତ୍ରହୀନ, (ସ୍ତ୍ରୀ) ଅପୁତ୍ରିଣୀ ।

ଅପୁନରାବୃତ୍ତି—ସ୍ତ୍ରୀ.ବି. (ନ.ତତ୍ପୁ)ନିର୍ବାଣ. ମୁକ୍ତି, (ବିଂ) ଅପୁନରାବୃତ୍ତ ।

ଅପୁନର୍ଭବ—ପୁଂ.ବି. (ଅ + ପୁନର୍ + ଭୂ + ଭା.ଅ) ମୋକ୍ଷ, ପୁନର୍ଜନ୍ମ ନ ହେବା ।

ଅପୁରାଣ—ତ୍ରି.ବିଂ.ନୂତନ,ପୁରାତନଭିନ୍ନ ।

ଅପୁରଦିନ—ଗ୍ରା. ବି. (ଫ-ଅପରେଦ୍ୟୁଃ) ପଅରଦିନର ପରବର୍ତ୍ତୀ ଦିନ, ଆଜିଠାରୁ ଗଣିଲେ ୪ର୍ଥ ଦିବସ ।

ଅପୁରୁବ—ଗ୍ରା. ବିଂ. (ଫ.ଅପୂର୍ବ) ଅପୂର୍ବ ।

ଅପୁରୁଷ—ଗ୍ରା.ବି. ଅମନୁଷ୍ୟ, ଅଯୋଗ୍ୟବ୍ୟକ୍ତି,(ବିଂ)ଅମନୁଷ୍ୟ,ଭୀରୁ, ଅଯୋଗ୍ୟ ।

ଅପୁରୋଦନ୍ତୀ—ତ୍ରି. ବିଂ. ( ଅ + ପୁରୋଦନ୍ତିନ୍ ) ଯେଉଁ ପ୍ରାଣୀର ଛେଦକ ଦନ୍ତ ନାହିଁ, ଛେଦକ ଦନ୍ତହୀନ ପ୍ରାଣୀ, (ସ୍ତ୍ରୀ) ଅପୁରୋଦନ୍ତିନୀ ।

ଅପୁଷ୍ଟ—ତ୍ରି. ବିଂ. ( ଅ + ପୁଷ୍ + ତ ) ନ.ତତ୍ପୁ; ଅକୃତପୋଷଣ, ଦୁର୍ବଳ, ମୋଟାନୁହେଁ, (ସ୍ତ୍ରୀ) ଅପୁଷ୍ଟା ।

ଅପୁଷ୍ଟତା—ସ୍ତ୍ରୀ.ବ.ଅପୁଷ୍ଟର ଧର୍ମ, ଅର୍ଥଦୋଷବିଶେଷ, ମୁଖ୍ୟାର୍ଥର ଅନୁପଯୋଗୀ,କୌଣସି ଶବ୍ଦ ପ୍ରୟୋଗ ହେଲେ ଅପୁଷ୍ଟତା ଦୋଷ ହୁଏ ।

ଅପୁଷ୍ଟତ୍ୱ—କ୍ଳୀ.ବ. କାବ୍ୟର ଅର୍ଥଦୋଷବିଶେଷ ।

ଅପୁଷ୍ପ—ପୁଂ. ବ. ବନସ୍ପତି, ବିନାପୁଷ୍ପରେ ଫଳହେବା, ଡିମିରି ପ୍ରଭୃତି, (ବିଂ) ପୁଷ୍ପହୀନ, ଯେଉଁ ଗଛରେ ଫୁଲ ନ ହୋଇ ଫଳ ଧରେ ।

ଅପୁଷ୍ପଫଳଦ—ପୁଂ. ବିଂ. ବିନାଫୁଲରେ ଫଳଉତ୍ପାଦନକାରୀ,(ସ୍ତ୍ରୀ)ଅପୁଷ୍ପଫଳଦା ।

ଅପୂଜା—ସ୍ତ୍ରୀ.ବ.ପୂଜାରଅଭାବ,ଅନାଦର, ଅସମ୍ମାନ ।

ଅପୂଜକ—ଗ୍ରା.ବିଂ.(ସଂ.ଅପୂଜ୍ୟ)ଅପୂଜିତ, ଅସମ୍ମାନିତ ।

ଅପୂଜିତ—ପୁଂ.ବ. (ଅ+ପୂଜିତ)ଅନାଦୃତ, ଅବଜ୍ଞାତ, (ସ୍ତ୍ରୀ) ଅପୂଜିତା ।

ଅପୂତ—ତ୍ରି. ବିଂ. ପବିତ୍ରଭିନ୍ନ, ସଂସ୍କାରହୀନ, ଅପବିତ୍ର, ଅସଂସ୍କୃତ ।

ଅପୂପ—ପୁଂ. ବ. (ଅପ+ବପ୍+ମଂ.ତ) ପୁର ଦିଆହୋଇ ନ ଥିବାପିଠା, ପୁରୋଡାଶ, ଚୋଟି । [ ସ୍ଵାମୀ ।

ଅପୂପାଷ୍ଟକା—ସ୍ତ୍ରୀ.ବ.ପୂର୍ଣ୍ଣିମା ପର କୃଷ୍ଣା-

ଅପୂପ୍ୟ—ବ (ଅପୂପ+ଯ)ମଇଦା,ଗହମଚୂନା । [ ବୃକ୍ଷ ।

ଅପୂରଣୀ—ସ୍ତ୍ରୀ.ବ. ଶାଲ୍ମଲୀବୃକ୍ଷ, ଶିମୂଳ

ଅପୂର୍ଣ୍ଣ—ତ୍ରି.ବିଂ. (ଅ+ପୂର୍ଣ୍ଣ) ନ.ତତ୍ପୁ; ସମ୍ପୂର୍ଣ୍ଣ ନୁହେ, ଅସମ୍ପୂର୍ଣ୍ଣ, ଆଂଶିକ, ଅସମାପ୍ତ, ଅଚରିତାର୍ଥ ।

ଅପୂର୍ବ—ତ୍ରି. ବିଂ. (ଅ+ପୂର୍ବ) ଅଭୂତପୂର୍ବ, ଅଭିନବ, ନୂତନ, ଆଶ୍ଚର୍ଯ୍ୟଜନକ, (ସ୍ତ୍ରୀ) ଅପୂର୍ବା ।

ଅପୂର୍ବତା—ସ୍ତ୍ରୀ.ବ. ତାତ୍ପର୍ଯ୍ୟାବଧାରଣର ହେତୁବିଶେଷ ।

ଅପୂର୍ବପତି—ସ୍ତ୍ରୀ. ବିଂ. ଅବିବାହିତା ।

ଅପୂର୍ବବାଦ—ପୁଂ. ବ. ତତ୍ତ୍ୱଜ୍ଞାନେଚ୍ଛୁର କଥା ।

ଅପୂର୍ବବିଧି—ପୁଂ.ବ.ଯାହା ଅନ୍ୟ କୌଣସି ପ୍ରମାଣରେ ମିଳେନାହିଁ; ତାହାର ପ୍ରାପକ ବାକ୍ୟ ।

ଅପୃକ୍ତ—ତ୍ରି.ବିଂ.(ଅ+ପୃକ୍ତ) ଅସମ୍ବନ୍ଧ, ଅସଂଯୁକ୍ତ, ଅମିଶ୍ରିତ ।

ଅପୃଥକ୍—ଅବ୍ୟ. ସହଯୋଗ, ସହିତ ।

ଅପୃଷ୍ଟ—ଗ୍ରା.ବିଂ.(ନ.ତତ୍ପୁ) ଅଜିଜ୍ଞାସିତ ।

ଅପୃଷ୍ଠବଂଶୀ—ଗ୍ରା. ବ.(ବିଜ୍ଞାନ ପରିଭାଷା) ମେରୁଦଣ୍ଡହୀନ, (ପ୍ରାଣୀ), (ସ୍ତ୍ରୀ) ଅପୃଷ୍ଠବଂଶିନୀ ।

ଅପେକ୍ଷକ—ପୁଂ. ବିଂ. (ଅପ+ଈକ୍ଷ୍+ଅକ) ଅପେକ୍ଷାକାରୀ, ଯେ ଅପେକ୍ଷା କରେ, (ସ୍ତ୍ରୀ) ଅପେକ୍ଷିକା ।

ଅପେକ୍ଷଣ—କ୍ଳୀ. ବ. ( ଅପ+ଈକ୍ଷ୍+ଭା. ଅନ) ପରିଦର୍ଶନ, ରକ୍ଷଣାବେକ୍ଷଣ ।

ଅପେକ୍ଷଣୀୟ—ତ୍ରି. ବିଂ. (ଅପ+ଈକ୍ଷ୍+ମଂ. ଅନୀୟ ) ଅପେକ୍ଷାର ଯୋଗ୍ୟ, ପ୍ରତିପାଲ୍ୟ, ବାଞ୍ଛନୀୟ ।

ଅପେକ୍ଷିତ—ବିଂ. ( ଅପ+ଈକ୍ଷ୍+ତ ) ଆକାଙ୍କ୍ଷିତ ।

ଅପେକ୍ଷା—ସ୍ତ୍ରୀ. ବ.(ଅପ+ଈକ୍ଷ୍+ଅ+ଆ ) ପ୍ରତୀକ୍ଷା,ବାସନା,ଇଚ୍ଛା,ଆକାଙ୍କ୍ଷା, ଆଶାଭରସା,ଅନୁରୋଧ, ସଂଭ୍ରମ,ସମ୍ମାନ, ଖାତିର,ପ୍ରାର୍ଥନା, ଅନାଇଁରହିବା, ପଞ୍ଚମୀ ବିଭକ୍ତି ଚିହ୍ନ—ଠାରୁ , ଅପେକ୍ଷା ।

ଅପେକ୍ଷାକୃତ—ବିଂ. (ଅପେକ୍ଷା+କୃ+ତ) ତୁଳନାରେ, ସମ୍ୟକ୍ ଦର୍ଶନଦ୍ୱାରା ସମ୍ପାଦିତ ।

ଅପେକ୍ଷାବୁଦ୍ଧି—ଗ୍ରା. ବ. ମନୋବିଜ୍ଞାନ, ପରିଭାଷା, ବୋଧଶକ୍ତିର ନିର୍ମଳତା, ।

ଅପେକ୍ଷିତ—ତ୍ରି.ବିଂ.(ଅପ+ଈକ୍ଷ୍+ମଂ. ତ ) ଅପେକ୍ଷାଯୁକ୍ତ, ଆକାଙ୍କ୍ଷାବିଶିଷ୍ଟ, ତୁଳିତ ।

ଅପେକ୍ଷିତବ୍ୟ—ତ୍ରି. ବିଂ. (ଅପ+ଈକ୍ଷ୍+ମଂ.ତବ୍ୟ) (ଅପେକ୍ଷଣୀୟ ଦେଖ) ।

ଅପେକ୍ଷିତା—ସ୍ତ୍ରୀ.ବ.ଅପେକ୍ଷାକାରୀରଭାବ ।

ଅପେକ୍ଷୀ—ତ୍ରି. ବିଂ. ( ଅପ+ଈକ୍ଷ୍+କ. ଇନ୍) ଆକାଙ୍କ୍ଷାଯୁକ୍ତ,ଅପେକ୍ଷାଯୁକ୍ତ (ସ୍ତ୍ରୀ) ଅପେକ୍ଷିଣୀ ।

ଅପେକ୍ଷ୍ୟ—ତ୍ରି. ବିଂ. (ଅପ+ଈକ୍ଷ୍+ମଂ. ଯ ) ଅପେକ୍ଷାକରିବାର ଯୋଗ୍ୟ, (ସ୍ତ୍ରୀ) ଅପେକ୍ଷ୍ୟା ।

ଅପେତ—ତ୍ରି. ବିଂ. ( ଅପ+ଇ+କ. ତ)ଅପଗତ,ଅପସୃତ, ପଳାୟିତ,ଢଳ ।

ଅପେତଭଗ—ବିଂ. (ବ.ବ୍ରୀ) ଯାହାର ସମସ୍ତ ଐଶ୍ୱର୍ଯ୍ୟ ନଷ୍ଟ ହୋଇଅଛି ।

ଅପେତରାକ୍ଷସୀ—ସ୍ତ୍ରୀ.ବ.(ବ.ବ୍ରୀ) ତୁଳସୀଗୁଳ୍ମ ।

ଅପେୟ—ତ୍ରି.ବିଂ. (ନ.ତତ୍ପୁ) ପିଇବାର ଅଯୋଗ୍ୟ, (ସ୍ତ୍ରୀ) ଅପେୟା ।

ଅପେଲବ—କ୍ଳୀ. ବିଂ. ଅବିରଳ, ଘନ, ଅକୋମଳ ।

ଅପେଶଳ—ତ୍ରି. ବିଂ. (ନ. ତତ୍ପୁ) ଅଦକ୍ଷ, ଅଚତୁର,ଅନିପୁଣ,ଅପଟୁ, ମୃଦୁ ନୁହେ, ସୁନ୍ଦର ନୁହେ ।

ଅପେଶୀ—ସ୍ତ୍ରୀ. ବ. ପକ୍ଷୀର ଡିମ୍ବଭିନ୍ନ ।

ଅପେହକଣ୍ଠା—ସ୍ତ୍ରୀ. ବ. ଆଦିଷ୍ଟ ଶୁଙ୍କର ( ଭୃତ୍ୟ ) ।

ଅପୈଠ—ଗ୍ରା. ବିଂ. ଯେଉଁପାଠ ପଇଟି ନାହିଁ ବା ମୁଖସ୍ଥ କରାଯାଇ ନାହିଁ ।

ଅପୈଠ—ଗ୍ରା.ବ୍ରି.(ସଂ.ଅପ୍ରବିଷ୍ଟ) ଅପଇଠ, ଅପହଞ୍ଚ, ଦୁର୍ଗମ, ଅପ୍ରାପ୍ୟ, ।

ଅପୈଠର-କ୍ଳୀ.ବ.ଛାଲୀପାକସଦ୍‌ଗନ୍ଧଯୁକ୍ତ ବ୍ୟଞ୍ଜନ ନୁହେ ।

ଅପୈତକ—ଗ୍ରା. ବିଂ. ଯାହାର ପଇଠା ହୋଇନାହିଁ ।

ଅପୈତୃକ—ତ୍ରି. ବିଂ. ଯାହା ପିତା ସମ୍ବନ୍ଧୀୟ ନୁହେ ।

ଅପୈଶୁନ୍ୟ—କ୍ଳୀ.ବ. (ଅ+ପୈଶୁନ୍ୟ) ନ.ତତ୍ପୁ; ଖଳତାର ଅଭାବ, ସୂଚନାର ଅଭାବ,ସରଳତା, ଉଦାରତା, ଦାକ୍ଷିଣ୍ୟ ।

ଅପୋଖତ—ଗ୍ରା. ବିଂ. (ସଂ. ଅପକ୍ୱ) ଅପକ୍ୱ, କଞ୍ଚା, ଅପରିପକ୍ୱ ।

ଅପୋଗଣ୍ଡ—ପୁ. ବ. ଯେ ଉତ୍ତମରୂପେ ଗୁଳପାରିନାହିଁ, ଶିଶୁ , ଯେଉଁ ବାଳକର ବୟସ ୧୬ବର୍ଷରୁ କମ୍ ନୁହେ ।

ଅପୋଢ଼—ଗ୍ରା. ବ. ଅସମ୍ପୂର୍ଣ୍ଣ ଦଗ୍ଧ, ଅଧପୋଡ଼ା ।

ଅପୋଡ଼ା—ଗ୍ରା. ବଂ. ( ସ. ଅପୁଟିତ ) ଅଦଗ୍ଧ, ବହୁଦୂରସ୍ଥ ।

ଅପୋଡ଼ାପୁଥିବୀ—ଗ୍ରା. ବ.ଯେଉଁ ସ୍ଥାନରେ ଆଜଯାକେ କେବେହେଲେ କେହ୍ନ ନିଆଁ ଲଗାଇ ନାହିଁ, ଅର୍ଥାତ୍ ଘରକର ରହ୍ନ ନାହିଁ ।

ଅପୋଢ଼—ତ୍ରି. ବଂ. (ଅପ + ଉହ୍ + କ. (ତ) ନିର୍ଣ୍ଣୀତ,ନିରସ୍ତ,ବିତାଡ଼ିତ, କ୍ଷିତ ।

ଅପୋଦକ—ତ୍ରି. ବଂ. ନିର୍ଜଳ, ଯାହା ପାଣିଆ ନୁହେଁ, କାଠୁଆ ।

ଅପୋଦକା—ସ୍ତ୍ରୀ. ବ.ପୋଇଶାଗ, ପୁରୁଁ ।

ଅପୋମୟ—ତ୍ରି, ବଂ. ଜଳମୟ ।

ଅପୋଷା—ଗ୍ରା. ବଂ. (ଅ + ପୋଷିତ) ଅପୁଷ୍ଟ,ଅଭୁକ୍ତ,ଯାହାକୁ ପୋଷା ନ ଯାଏ ।

ଅପୋଷୀ—ଗ୍ରା.ବ. ଅରକ୍ଷିତା, ଅପୁଷ୍ଟା ।

ଅପୋଷ୍ୟ—ତ୍ରି.ବଂ. ପୋଷଣରଅଯୋଗ୍ୟ, କୁପୋଷ୍ୟ ।

ଅପୋହ—ପୁଂ. ବ. (ଅପ + ଉହ୍ + ଅ) ତ୍ୟାଗ, ତାଡ଼ନ, ଉଡ଼ାଇଦେବା, ତର୍କ ।

ଅପୋହନୀୟ—ତ୍ରି.ବଂ. ତର୍କରଯୋଗ୍ୟ ।

ଅପୋହିତ—ବଂ. (ଅପ + ବହ୍ + ମ. ତ) (ତର୍କଦ୍ୱାରା ନିରସିତ ବା ଖଣ୍ଡିତ, ବିତାଡ଼ିତ, ସ୍ଥାନାନ୍ତରିତ ।

ଅପୋହ୍ୟ—ତ୍ରି. ବ. ତ୍ୟାଜ୍ୟ ।

ଅପୌରୁଷ—ତ୍ରି. ବଂ. ଅମନୁଷ୍ୟତା, ବିକ୍ରମଶୂନ୍ୟ ।

ଅପୌରୁଷେୟ—ତ୍ରି. ବଂ. ଅଲୌକିକ, ଅସାଧାରଣ, ଅକୃତ୍ରିମ, ପ୍ରାକୃତିକ ।

ଅପ୍ତ—ପୁଂ.ବ. ଶରୀର, ସୂକ୍ଷ୍ମରୂପସୋମ ।

ଅପ୍ତୁର—ପୁଂ. ବ. ଜଳଦାୟକ ଇନ୍ଦ୍ର, ଜଳଦାୟକ ଅଗ୍ନି ।

ଅପ୍ତୋର୍ଯ୍ୟାମ—ପୁଂ. ବ. ଅଗ୍ନିଷ୍ଟୋମାଙ୍ଗ ଯାଗବିଶେଷ ।

ଅପ୍ନବାଜ—ପୁଂ. ବ. କର୍ମପ୍ରେରକ, ଯେ କାର୍ଯ୍ୟରେ ନିଯୁକ୍ତ କରେ ।

ଅପ୍ନବାନ—ପୁଂ.ବ. ଭୃଗୁବଂଶୀୟ ଋଷି-ବିଶେଷ ।

ଅପ୍ନସ୍—କ୍ଲୀ. ବ. ଜଳ, କର୍ମ, ଅପତ୍ୟ, ରୂପ । [(ସ୍ତ୍ରୀ) ଅପ୍ନସ୍ୱତୀ ।

ଅପ୍ନସ୍ୱତ୍—ତ୍ରି.ବଂ.କର୍ମଯୁକ୍ତ,ଜଳଯୁକ୍ତ,

ଅପ୍ପତି—ପୁଂ. ବ. ( ଅପ୍ + ପତି ) (୬ଷ୍ଠୀ) ସମୁଦ୍ର, ବରୁଣଦେବତା ।

ଅପ୍ପିତ୍ତ—କ୍ଲୀ. ବ. ଅଗ୍ନି, ଚିତାଗଛ ।

ଅପ୍ୟ—ତ୍ରି. ବଂ. ଜଳଦ୍ୱାରା ସଂସ୍କୃତ, ଜଳସମ୍ବନ୍ଧୀୟ ।

ଅପ୍ୟୟ—ପୁଂ ବଂ. ( ଅପ + ଇ + ଅ ) ଅପଗମନ, ନାଶ, ବିଲୟ ।

ଅପ୍ରକଟ—ତ୍ରି. ବଂ. ଗୁପ୍ତ, ପ୍ରକାଶିତ-ଭିନ୍ନ, ଅପ୍ରକାଶିତ, ଅପ୍ରକୃତ, ଅଜ୍ଞାତ ।

ଅପ୍ରକଟିତ—ତ୍ରି.ବଂ.ଅପ୍ରକାଶିତ, ଗୁପ୍ତ ।

ଅପ୍ରକମ୍ପ—ପୁଂ. ବ. ଚଳନର ଅଭାବ, ନ ଥରିବା, ତ୍ରି. ବଂ. (ବ.ବ୍ରୀ)କମ୍ପନ-ରହିତ, ଅକମ୍ପିତ, ଅଚଳ, ଦୃଢ଼, (ସ୍ତ୍ରୀ) ଅପ୍ରକମ୍ପା ।

ଅପ୍ରକର୍ଷ—ପୁଂ. ବ. ଶ୍ରେଷ୍ଠତାର ଅଭାବ, (ବଂ) ପ୍ରକର୍ଷଶୂନ୍ୟ ।

ଅପ୍ରକାଣ୍ଡ—ପୁଂ. ବ. ଶାଖାଭିନ୍ନ ବୃକ୍ଷ, ଝିଣ୍ଟିବୃକ୍ଷ, ସ୍କନ୍ଧଭିନ୍ନ ।

ଅପ୍ରକାର—ଗ୍ରା. ବଂ. ଅସୁନ୍ଦର, କୁତ୍ସିତ, ଅସାଧାରଣ ।

ଅପ୍ରକାଶ—ପୁଂ.ବ. ଗୋପନ, ଅପ୍ରକଟନ, ଅନ୍ଧକାର, ଅନଭିବ୍ୟକ୍ତ ।

ଅପ୍ରକାଶିତ—ତ୍ରି. ବଂ. (ଅ + ପ୍ରକାଶିତ) ଅପ୍ରକଟ, ଅଦୃଶ୍ୟ, ଅପ୍ରସ୍ଫୁଟିତ, ଫୁଟି ନ ଥିବା ।

ଅପ୍ରକାଶ୍ୟ—ତ୍ରି.ବଂ. ପ୍ରକାଶକରିବାର ଅଯୋଗ୍ୟ, ଗୋପନାଯୋଗ୍ୟ ।

ଅପ୍ରକୃତ—ତ୍ରି.ବଂ. ଅପ୍ରସ୍ତାବିତ, ଅସତ୍ୟ, ମିଥ୍ୟା, ବେଠିକ୍ ।

ଅପ୍ରକୃତି—ସ୍ତ୍ରୀ.ବ. ପ୍ରକୃତିଭିନ୍ନ, ବିକୃତି ।

ଅପ୍ରକୃତିସ୍ଥ—ତ୍ରି.ବଂ. ବେଗ ବା ଭୟାଦି ହେତୁ ସ୍ୱଭାବଚ୍ୟୁତ ଅବସ୍ଥାପନ୍ନ, ବିକୃତିପ୍ରାପ୍ତ, ପୀଡ଼ିତ, ଅସୁସ୍ଥ, ରୁଗ୍ଣ, ବିକୃତ, ବିକଳ ।

ଅପ୍ରକୃଷ୍ଟ—ତ୍ରି.ବଂ.ନିକୃଷ୍ଟ,ଅଧମ,ନୀଚ ।

ଅପ୍ରକ୍ଲୃପ୍ତ—ତ୍ରି.ବଂ. ଅ + ପ୍ର + କ୍ଲୃପ୍ + ତ) ଅନୁଚିତ ।

ଅପ୍ରକ୍ଷତ—ତ୍ରି.ବଂ. (ଅ + ପ୍ର + କ୍ଷି + ତ) କ୍ଷୟରହିତ ।

ଅପ୍ରଖର—ତ୍ରି. ବଂ. ଅତୀକ୍ଷ୍ଣ, ମୃଦୁ ।

ଅପ୍ରଗୁଣ—ତ୍ରି. ବଂ. ଅଙ୍ଗଶୂନ୍ୟ କର୍ମ, ଉପକରଣରହିତ, ବ୍ୟାକୁଳ ।

ଅପ୍ରଚଳ—ବଂ.(ଅ + ପ୍ର + ଚଳ + କ.ଅ) ଯାହା ଲୋକସମାଜରେ ଚଳେ ନାହିଁ ।

ଅପ୍ରଚୁର—ତ୍ରି ବଂ.ଅପର୍ଯ୍ୟାପ୍ତ, ଅପ୍ରତୁଳ, ନ୍ୟୂନ, (ସ୍ତ୍ରୀ) ଅପ୍ରଚୁରା । [ ଚେତସୀ ।

ଅପ୍ରଚେତା—ତ୍ରି.ବଂ. ଅଜ୍ଞାନୀ (ସ୍ତ୍ରୀ ଅପ୍ର-

ଅପ୍ରଚ୍ଛନ୍ନ—ଗ୍ରା.ବ.ଅପରିଷ୍କୃତ,ମଳିନ,ମ୍ଳାନ ।

ଅପ୍ରଜ—ତ୍ରି.ବଂ.(ଅ + ପ୍ର + ଜନ୍ + ଅ) ଅଜାତ, ବନ୍ଧ୍ୟା, ନିଃସନ୍ତାନ ।

ଅପ୍ରଜସ୍—ପୁଂ. ସ୍ତ୍ରୀ. ବଂ. ପ୍ରଜାରହିତ, ନିଃସନ୍ତାନ । [ଅପ୍ରଜାତା ।

ଅପ୍ରଜା—ସ୍ତ୍ରୀ. ବଂ. ବନ୍ଧ୍ୟା, ଆଣ୍ଟୁକୁଡ଼ୀ ।

ଅପ୍ରଣୟ—ପୁଂ.ବ. (ଅ + ପ୍ରଣୟ) ଅପ୍ରୀତି, ଶତ୍ରୁତା, ବିରୋଧ, ଅସଦ୍ଭାବ ।

ଅପ୍ରଣୟୀ—ପୁଂ. ବଂ. (ଅ + ପ୍ରଣୟିନ୍) ଅସ୍ନେହୀ, ଯେ ସ୍ନେହଶୀଳ ନୁହେଁ, ଶତ୍ରୁତାପନ୍ନ ।

ଅପ୍ରଣିହିତ—ପୁଂ. ବଂ. (ଅ + ପ୍ରଣିହିତ) ଅମନୋଯୋଗ,ଅନବଧାନ, (ସ୍ତ୍ରୀ)ଅପ୍ରଣି-ହିତା ।

ଅପ୍ରଣୀତ—ତ୍ରି.ବଂ.(ଅ + ପ୍ର + ନୀ + ତ) ଅକୃତ, ଅସମ୍ପନ୍ନ, କ୍ଷିପ୍ତ ।

ଅପ୍ରତର୍କ୍ୟ—ତ୍ରି.ବଂ. ତର୍କଦ୍ୱାରା ଅସିଦ୍ଧ ।

ଅପ୍ରତା—ତ୍ରି.ବଂ. ବିସ୍ତୀର୍ଣ୍ଣ, ଦୀର୍ଘ ।

ଅପ୍ରତି—ତ୍ରି.ବଂ. ଅସଦୃଶ, ଅନୁପମ ।

ଅପ୍ରତକାର—ତ୍ରି. ବ. ଅସଦୃଶକାରୀ, ବିପରୀତକାରୀ ।

ଅପ୍ରତିକରଣୀୟ—ବି°. (ଅ + ପ୍ରତି-କରଣୀୟ)ଯାହାର ପ୍ରତିକାର କରାଯାଇ ନ ପାରେ ।

ଅପ୍ରତିକର୍ମ—ତ୍ରି.ବି°. ପ୍ରତିକାର କରିବାକୁ ଅସମର୍ଥ, ଯାହାର ପ୍ରତିକାର କରାଯାଇ ନାହିଁ । [ ଅଭାବ ।

ଅପ୍ରତିକାର—ପୁଂ.. ବ. ପ୍ରତିବିଧାନର

ଅପ୍ରତିକାର୍ଯ୍ୟ-ବି°.(ଅ + ପ୍ରତି + କୃ + ଯ) ପ୍ରତିକାରଶୂନ୍ୟ, ଅନିବାର୍ଯ୍ୟ ।

ଅପ୍ରତିକୂଳ—ତ୍ରି. ବି°. ଅବିରୋଧୀ ।

ଅପ୍ରତିକ୍ରିୟ—ପୁଂ. ସ୍ତ୍ରୀ.ବି°. ପ୍ରତିବିଧାନ-ଶୂନ୍ୟ, ପ୍ରତିକାରହୀନ ।

ଅପ୍ରତିକ୍ରିୟା—ସ୍ତ୍ରୀ. ବ. ପ୍ରତିକାରାଭାବ ।

ଅପ୍ରତିଗ୍ରହ୍ୟ—ତ୍ରି. ବି°. ପ୍ରତିଗ୍ରହର ଅଯୋଗ୍ୟ ।

ଅପ୍ରତିଘ—ତ୍ରି. ବି°. ପ୍ରତିଘାତଶୂନ୍ୟ, ଯାହାର କ୍ରୋଧ ନାହିଁ ।

ଅପ୍ରତିଦ୍ୱନ୍ଦ୍ୱ—ତ୍ରି. ବି°. ସ୍ପର୍ଦ୍ଧାଯୁକ୍ତ ନୁହେଁ, ବିରୋଧପ୍ରାପ୍ତ ନୁହେଁ ।

ଅପ୍ରତିଦ୍ୱନ୍ଦ୍ୱୀ—ପୁଂ.ବି°. ଅବିରୋଧୀ,(ସ୍ତ୍ରୀ) ଅପ୍ରତିଦ୍ୱନ୍ଦ୍ୱିନୀ ।

ଅପ୍ରତିପକ୍ଷ—ତ୍ରି. ବି°. ବିପକ୍ଷହୀନ,ଅପ୍ରତି-ଯୋଗୀ, ଅସଦୃଶ ।

ଅପ୍ରତିପତ୍ତି—ତ୍ରି.ବି°. ଗୌରବର ଅଭାବ, ଅପ୍ରତ୍ତି, ସ୍ୱୀକାରକରଣର ଅଭାବ ।

ଅପ୍ରତିପନ୍ନ—ତ୍ରି.ବି°. ଅପ୍ରମାଣିତ,ଅଜ୍ଞାତ, ଅପ୍ରାପ୍ତ, ଅନଭିଭୂତ ।

ଅପ୍ରତିବଦ୍ଧ—ତ୍ରି. ବି°. ଉଚ୍ଛୃଙ୍ଖଳ ।

ଅପ୍ରତିବନ୍ଧ—ତ୍ରି.ବି°. (ବ.ବ୍ରୀ) ପ୍ରତିବନ୍ଧ-ରହିତ, ବ୍ୟାଘାତଶୂନ୍ୟ, ଅବାଧ ।

ଅପ୍ରତିବଳ—ତ୍ରି. ବି°. ଅତ୍ୟନ୍ତ ପ୍ରବଳ, ବିପକ୍ଷଶୂନ୍ୟ ।

ଅପ୍ରତିବଧେୟ—ତ୍ରି. ବି°. ଯାହାର ପ୍ରତି-କାର କରିବା ଅସାଧ, ଅପ୍ରତିକାର୍ଯ୍ୟ ।

ଅପ୍ରତିବିହିତ—ତ୍ରି. ବି°. ଯାହାର ପ୍ରତି-ବିଧାନ କରାଯାଇନାହିଁ, ଯାହାର ପ୍ରତି-ଫଳ ଦିଆଯାଇ ନାହିଁ ।

ଅପ୍ରତିଭ—ତ୍ରି.ବି°.ବ.ବ୍ରୀ;(ଅ + ପ୍ରତି + ଭା. ଅ) ପ୍ରତିଭାଶୂନ୍ୟ, ଅପ୍ରତ୍ୟୁତ୍ପନ୍ନମତି. ଅପ୍ରସ୍ତୁତ, ହତବୁଦ୍ଧି, ଲଜ୍ଜିତ, (ସ୍ତ୍ରୀ) ଅପ୍ରତିଭା ।

ଅପ୍ରତିମ—ତ୍ରି. ବି°.(ଅ + ପ୍ରତିମା)ଅତୁଳ୍ୟ, ଅନୁପମ,ଅସଦୃଶ, ପ୍ରତିନିଧିରହିତ,(ସ୍ତ୍ରୀ) ଅପ୍ରତିମା ।

ଅପ୍ରତିମାନ—ତ୍ରି. ବି°. ପ୍ରତିକୃତିରହିତ, ପ୍ରତିବିମ୍ବଶୂନ୍ୟ, (କ୍ଲୀ) ନିମ୍ନଭାଗନୁହେଁ ।

ଅପ୍ରତିଯତ୍ନ—ତ୍ରି. ବି°. ଅକୃତ୍ରିମ, ସ୍ୱାଭାବିକ, ନୈସର୍ଗିକ ।

ଅପ୍ରତିଯୋଗୀ—ପୁଂ.ବି°. ଅନୁପମ, ଅସ-ଦୃଶ, (ସ୍ତ୍ରୀ) ଅପ୍ରତିଯୋଗିନୀ ।

ଅପ୍ରତିରଥ—ପୁଂ. ବି°. (ବ.ବ୍ରୀ) ପ୍ରତି-ଯୋଧଶୂନ୍ୟ, ଯାହାର ବିପକ୍ଷ ନାହିଁ, ଅତୁଳନୀୟ ଯୋଦ୍ଧା, ସାମବେଦକଥିତ ମନ୍ତ୍ରବିଶେଷ, ଯୁଦ୍ଧାର୍ଥ ଯାତ୍ରା, ଯୁଦ୍ଧାର୍ଥ-ଯାତ୍ରାକାଳୀନ ଅନୁଷ୍ଠିତ ମଙ୍ଗଳକାର୍ଯ୍ୟ ।

ଅପ୍ରତିରବ—ତ୍ରି. ବି°. ଅବିରୋଧଭୋଗ, ସ୍ୱେଚ୍ଛାଭୋଗ ।

ଅପ୍ରତିରୁଦ୍ଧ—ବି°.(ଅ + ପ୍ରତିରୁଦ୍ଧ)ଅପ୍ରତି-ହତ, ଅନିବାରିତ, ଅବାଧିତ, (ବି) ଅପ୍ରତିରୋଧ ।

ଅପ୍ରତିରୂପ—ପୁଂ. ବି°. (ବ.ବ୍ରୀ)ଯାହାର ତୁଲ୍ୟ ରୂପ ନାହିଁ, ଅସଦୃଶ, ଅଦ୍ୱିତୀୟ, ଅପ୍ରତିଦ୍ୱନ୍ଦ୍ୱୀ ।

ଅପ୍ରତିରୂପକଥା—ସ୍ତ୍ରୀ. ବ. ଯେଉଁକଥାର ଉତ୍ତର ନାହିଁ ।

ଅପ୍ରତିବୀର୍ଯ୍ୟ—ତ୍ରି. ବି°. ଯାହାର ପରାକ୍ରମ କେହି ରୋଧ କରି ନ ପାରନ୍ତି ।

ଅପ୍ରତିଶାସନ—କ୍ଲୀ. ବ. ଆହ୍ୱାନପୂର୍ବକ ପ୍ରେରଣର ଅଭାବ ।

ଅପ୍ରତିଶ୍ରୟ—ତ୍ରି. ବି°. ନିରାଶ୍ରୟ ।

ଅପ୍ରତିଶ୍ରବ—ପୁଂ. ବ. ଅଙ୍ଗୀକାରର ଅଭାବ, (ବି°) ଅଙ୍ଗୀକାରହୀନ ।

ଅପ୍ରତିଶ୍ରୁତ—ତ୍ରି. ବି°. ଅନଙ୍ଗୀକୃତ, ଅସ୍ୱୀକୃତ ।

ଅପ୍ରତିଷିଦ୍ଧ—ତ୍ରି. ବି°. (ଅ + ପ୍ରତିଷିଦ୍ଧ) ଅନିଷିଦ୍ଧ, ଅନିବାରିତ,(ବି) ଅପ୍ରତିଷେଧ ।

ଅପ୍ରତିଷେଧନୀୟ—ତ୍ରି ବି°. ନିଷେଧର ଅଯୋଗ୍ୟ, ଅନିବାର୍ଯ୍ୟ, (ସ୍ତ୍ରୀ) ଅପ୍ରତି-ଷେଧନୀୟା ।

ଅପ୍ରତିଷ୍କୃତ—ତ୍ରି. ବି°. ଅପ୍ରତିସ୍ଖଳିତ, ଅନ୍ୟଦ୍ୱାରା ଅପ୍ରତିହତ ।

ଅପ୍ରତିଷ୍ଠ—ପୁଂ. ବି°. (ବ.ବ୍ରୀ) ପ୍ରତିପତ୍ତି-ରହିତ, ଯଶୋହୀନ, ଅବିଖ୍ୟାତ, ଅନ-ଶ୍ରୀକ, ଅସ୍ଥାପିତ, ସ୍ଥିତିହୀନ, ଟଳ-ଟଳିଆ, ଅସ୍ଥିର, ଭିତ୍ତିରହିତ, ପ୍ରତିଷ୍ଠା-କରାଯାଇ ନ ଥିବା ।

ଅପ୍ରତିଷ୍ଠା—ସ୍ତ୍ରୀ. ବି°. (ଅପ୍ରତିଷ୍ଠ + ଆ) ଅପ୍ରତିଷ୍ଠର ସ୍ତ୍ରୀଲିଙ୍ଗ, (ବ) ଅସ୍ଥିରତା, (ଗ୍ରା.ବି°.)ଅପବିତ୍ରୀକୃତ,ଅଶୁଚ,ଅପବିତ୍ର ।

ଅପ୍ରତିଷ୍ଠାନ—କ୍ଲୀ,ବି°. (ଅ + ପ୍ରତିଷ୍ଠାନ) ଅସ୍ଥୈର୍ଯ୍ୟ,ଅସ୍ଥିରତା,(ବି°)ଅପ୍ରତିଷ୍ଠିତ ।

ଅପ୍ରତିଷ୍ଠିତ—ତ୍ରି.ବି°. (ନ.ତତ୍ପୁ ଅନଭି-ଷିକ୍ତ, ସ୍ଥିତିଶୂନ୍ୟ ଅନିର୍ଦ୍ଦିଷ୍ଟ, (ପୁଂ. ବ) ବିଷ୍ଣୁ, (ସ୍ତ୍ରୀ) ଅପ୍ରତିଷ୍ଠିତା ।

ଅପ୍ରତିସଂଖ୍ୟ—ତ୍ରି. ବି°. ଗୋଟିଏ ଗୋଟିଏ କରି ଯେଉଁ ପଦାର୍ଥର ସଂଖ୍ୟା ନିଶ୍ଚୟ-କରି ନ ଯାଏ ।

ଅପ୍ରତିହତ—ତ୍ରି. ବି°. (ଅ + ପ୍ରତିହତ) ଅବିନଷ୍ଟ, ଅନଭିଭୂତ, ଅବ୍ୟାହତ,ପ୍ରତି-ବନ୍ଧକରହିତ, (ସ୍ତ୍ରୀ) ଅପ୍ରତିହତା ।

ଅପ୍ରତୀକ—ତ୍ରି.ବି°. (ବ.ବ୍ରୀ) ଏକଦେଶ-ରହିତ, ସମ୍ପୂର୍ଣ୍ଣ, ନିରବୟବ, (କ୍ଲୀ) ନିରବୟବ ବ୍ରହ୍ମ ।

ଅପ୍ରତୀକ୍ଷ—ତ୍ରି. ବି°. (ନ.ତତ୍ପୁ; ବ.ବ୍ରୀ) ଯେ କାହାର ଅପେକ୍ଷା କରେ ନାହିଁ, (ସ୍ତ୍ରୀ) ଅପ୍ରତୀକ୍ଷା, ପ୍ରତୀକ୍ଷାର ଅଭାବ ।

ଅପ୍ରତୀତ—ତ୍ରି.ବି°.(ଅ + ପ୍ରତୀତ) ଯାହା ବିଶ୍ୱାସ କରାଯାଇ ନାହିଁ, ଅସ୍ପଷ୍ଟ, ଅଜ୍ଞାତ, ବିଖ୍ୟାତ ନୁହେ ।

ଅପ୍ରତୀତତ୍ୱ—କ୍ଲୀ ବ. ଅଳଙ୍କାର ଦୋଷ-ବିଶେଷ,ଯାହାର ଅର୍ଥ ସହଜେ ବୁଝା-ଯାଏ ନାହିଁ ।

ଅପ୍ରତୀତି—ସ୍ତ୍ରୀ.ବି.(ଅ + ପ୍ରତୀତି)ଅବିଶ୍ୱାସ, ଜ୍ଞାନର ଅଭାବ,ସନ୍ଦେହ, ମନରେ ଦୃଢ଼-ଧାରଣାର ଅଭାବ ।

ଅପ୍ରତୀଦ—ତ୍ରି.ବିଂ.(ଅ + ପ୍ରତି + ଦା + ତ) ଅପ୍ରତିଦତ୍ତ, ପ୍ରତିଦତ୍ତନୁହେ ।

ଅପ୍ରତୀପ—ତ୍ରି. ବିଂ. (ଅ + ପ୍ରତୀପ) ଯେ ଜିଦିଖୋର ନୁହେ, ଅନୁକୂଳ,ପରସ୍ପର ବିରୋଧଶୂନ୍ୟ, (ବିଂ) ବିଷ୍ଣୁପୁରାଣୋକ୍ତ-ମଗଧର ରାଜ ବିଶେଷ, (ସ୍ତ୍ରୀ) ଅପ୍ରତୀପା ।

ଅପ୍ରତୁଳ—ତ୍ରି. ବିଂ. ବ.ବ୍ରୀ; (ଅ + ପ୍ର + ତୁଳା) ଅପ୍ରଚୁର, ଅନୁପମ, ନଅଣ୍ଟ, ଅପରିମିତ, (ବି) ଅଭାବ, ଅନଟନ, ଅସଙ୍ଗତି, ଓଜନର ଅଭାବ ।

ଅପ୍ରତ୍ତ—ତ୍ରି.ବିଂ. (ଅ + ପ୍ର + ଦା + ତ) ଅପ୍ରଦତ୍ତ, (ସ୍ତ୍ରୀ) ଅପ୍ରତ୍ତା ।

ଅପ୍ରତ୍ୟକ୍ଷ—ବିଂ.(ଅ + ପ୍ରତ୍ୟକ୍ଷ)ଇନ୍ଦ୍ରିୟର ଅଗୋଚର, ଅଦୃଷ୍ଟ, ପରୋକ୍ଷ, ଅଦୃଶ୍ୟ, ଗୁପ୍ତ, (ବି) ପ୍ରତ୍ୟକ୍ଷର ଅଭାବ ।

ଅପ୍ରତ୍ୟକ୍ଷବାଦ—ପୁଂ. ବି. ପରୋକ୍ଷବାଦ, ପରୋକ୍ଷରେ ନାନାପ୍ରକାର କହିବା, ଅତୀନ୍ଦ୍ରିୟବାଦ ।

ଅପ୍ରତ୍ୟକ୍ଷବାଦୀ—ପୁଂ.ବିଂ. (ଅପ୍ରତ୍ୟକ୍ଷ + ବଦ୍ + କ ଇନ୍)ଅପ୍ରତ୍ୟକ୍ଷଭାଷୀ,ପରୋକ୍ଷ ବାଦୀ, (ସ୍ତ୍ରୀ) ଅପ୍ରତ୍ୟକ୍ଷବାଦିନୀ ।

ଅପ୍ରତ୍ୟୟ—ପୁଂ. ବି. (ଅ + ପ୍ରତ୍ୟୟ) ଅବିଶ୍ୱାସ, ସନ୍ଦେହ, ଅନାସ୍ଥା (ବିଂ) ଆସ୍ଥାଶୂନ୍ୟ ।

ଅପ୍ରତ୍ୟୟୀ—ପୁଂ.ବି. (ନ.ତତ୍ପୁ) ପ୍ରତ୍ୟୟ-ରହିତ, ବିଶ୍ୱାସବିହୀନ, ଅବିଶ୍ୱାସୀ, ସନ୍ଦିଗ୍ଧ, (ସ୍ତ୍ରୀ) ଅପ୍ରତ୍ୟୟିନୀ ।

ଅପ୍ରତ୍ୟାଖ୍ୟେୟ—ତ୍ରି. ବିଂ. ନ. ତତ୍ପୁ, (ଅ + ପ୍ରତି + ଆ + ଖ୍ୟା + ଯ) ଅପରି-ହାର୍ଯ୍ୟ, ଅତ୍ୟାଜ୍ୟ ।

ଅପ୍ରତ୍ୟାଶିତ—ତ୍ରି. ବିଂ. (ନ. ତତ୍ପୁ) ଯାହାର ପ୍ରତ୍ୟାଶା କରା ନ ଯାଏ, ଅଭା-ବିତ, (ସ୍ତ୍ରୀ) ଅପ୍ରତ୍ୟାଶିତା ।

ଅପ୍ରଥିତ—ତ୍ରି. ବିଂ. (ନ.ତତ୍ପୁ) ଅପ୍ରସିଦ୍ଧ, ଅବିଖ୍ୟାତ, ଅପ୍ରତିଷ୍ଠ, (ସ୍ତ୍ରୀ) ଅପ୍ରଥିତା ।

ଅପ୍ରଧାନ—କ୍ଲୀ. ବିଂ. (ଅ + ପ୍ରଧାନ) ଗୌଣ, ଯାହା ମୁଖ୍ୟ ନୁହେ, ଅଧୀନସ୍ଥ, ନିକୃଷ୍ଟ, ସାଧାରଣ, (ସ୍ତ୍ରୀ) ଅପ୍ରଧାନା ।

ଅପ୍ରଧୃଷ୍ୟ—ତ୍ରି. ବିଂ. (ଅ + ପ୍ର + ଧୃଷ୍ୟ) ଅପରାଜେୟ, ଅଜେୟ, ଯାହାକୁ କେହି ଜିଣି ପାରେ ନାହିଁ, (ସ୍ତ୍ରୀ) ଅପ୍ରଧୃଷ୍ୟା, (ବି) ଅପ୍ରଧୃଷ୍ୟତା ।

ଅପ୍ରପନ୍ନ—ତ୍ରି.ବିଂ.(ଅ + ପ୍ରପନ୍ନ)ଅପ୍ରାପ୍ତ, ଅନାଗତ, ଅଜ୍ଞାତ ।

ଅପ୍ରଫୁଲ୍ଲ—ତ୍ରି.ବିଂ. (ନ.ତତ୍ପୁ) ଅପ୍ରସନ୍ନ, ବିଷଣ୍ଣ, ମ୍ଲାନ, (ସ୍ତ୍ରୀ) ଅପ୍ରଫୁଲ୍ଲା ।

ଅପ୍ରଭ—ପୁଂ. ବିଂ. ବ.ବ୍ରୀ; (ଅ + ପ୍ରଭା) ଅସ୍ପଷ୍ଟ ପ୍ରଭାଶୂନ୍ୟ, (ସ୍ତ୍ରୀ) ଅପ୍ରଭା ।

ଅପ୍ରମଇ—ଗ୍ରା.ବି. (ସଂ. ପ୍ରମାଦ) ଅଶୁଭ, ଅମଙ୍ଗଳ, ପ୍ରମାଦ, ବିପଦ, ବିନାଶ ।

ଅପ୍ରମତ୍ତ—ପୁଂ.ବିଂ. (ଅ + ପ୍ରମତ୍ତ)ସାବଧାନ, ଅନବଧାନଶୂନ୍ୟ,ବୁଦ୍ଧିସ୍ଥିର, ସ୍ଥିରଚିତ୍ତ, ଶୃଙ୍ଖଳାରହିତ, ମାଦକଦ୍ରବ୍ୟଦ୍ୱାରା ମାତାଲ ନୁହେ, (ସ୍ତ୍ରୀ) ଅପ୍ରମତ୍ତା ।

ଅପ୍ରମୟ—ପୁଂ.ବି. (ଅ + ପ୍ର + ମୀ + ଅ) ଅପ୍ରମେୟ,ଅପରିମିତ, ଅସୀମ, ଅସଂଖ୍ୟ, ଅଗଣ୍ୟ ।

ଅପ୍ରମା—ସ୍ତ୍ରୀ.ବି.(ନ.ତତ୍ପୁ) ନିଶ୍ଚୟ ଜ୍ଞାନର ବିପରୀତ ଜ୍ଞାନ, ଭ୍ରମଜ୍ଞାନ ।

ଅପ୍ରମାଣ—ବିଂ. ଯାହାର ପ୍ରମାଣ ନାହିଁ, ଅବିଶ୍ୱସନୀୟ, ଅପ୍ରମେୟ, ହେୟ, ଯେଉଁ ବିଷୟରେ ନଜିର ନାହିଁ, ଅପ୍ରମାଣିକ, (ସ୍ତ୍ରୀ) ଅପ୍ରମାଣା, ନ.ତତ୍ପୁ;(ଅ + ପ୍ରମାଣ) ପ୍ରମାଣର ଅଭାବ, ଅପ୍ରାମାଣିକ ନିୟମ ।

ଅପ୍ରମାଦ—ପୁଂ. ବି. (ଅ + ପ୍ରମାଦ)ପ୍ରମା-ଦର ଅଭାବ, ଭ୍ରମର ଅଭାବ, (ବିଂ) ଅପ୍ରମତ୍ତମନଯୋଗ, (ସ୍ତ୍ରୀ) ଅପ୍ରମାଦା ।

ଅପ୍ରମାଦୀ—ପୁଂ. ବିଂ. ଅପ୍ରମତ୍ତ,ଅବହିତ, ପ୍ରମାଦୀ ନୁହେ, ଭ୍ରମଶୂନ୍ୟ, ସାବଧାନ, (ସ୍ତ୍ରୀ) ଅପ୍ରମାଦିନୀ ।

ଅପ୍ରମାଦେ—ଗ୍ରା. କ୍ରି. ବିଂ. ଅକ୍ଲେଶରେ, ସହଜରେ, ଅବଲୀଳାକ୍ରମେ, ନିଃ-ସନ୍ଦେହରେ ।

ଅପ୍ରମାୟୁକ—ତ୍ରି.ବିଂ.ଦୀର୍ଘ,ହ୍ରସ୍ୱ ନୁହେ ।

ଅପ୍ରମିତ—ତ୍ରି.ବିଂ. (ଅ + ପ୍ର + ମା + ମିଂ. ତ) ଅସୀମ, ଅମାପ, ଅସଂଖ୍ୟ, ବହୁତ, ଅପ୍ରମାଣିତ, (ସ୍ତ୍ରୀ) ଅପ୍ରମିତା ।

ଅପ୍ରମୀୟ—ତ୍ରି.ବିଂ. ଅପରିମେୟ, ଅପରିଚ୍ଛେଦ୍ୟ ।

ଅପ୍ରମୂଢ଼—ତ୍ରି.ବିଂ. (ଅ + ପ୍ର + ମୁହ୍ + ତ) ଅମୂଢ଼, ଅମୂର୍ଚ୍ଛିତ ।

ଅପ୍ରମୃଷ୍ଟ—ତ୍ରି. ବିଂ. (ଅ + ପ୍ର + ମୃଷ୍ + ତ) ଅକ୍ଷାନ୍ତ,ଯାହା ସହ୍ୟ ହୁଏ ନାହିଁ ।

ଅପ୍ରମୃଷ୍ଟ—ତ୍ରି. ବିଂ. (ଅ + ପ୍ର + ମୃଜ୍ + ତ) ଅଧୃଷ୍ଟ, ଅଶୁଦ୍ଧ, (ଅ + ପ୍ର + ମୃଶ୍ + ତ) ଅଜ୍ଞାତ, ଅବିବେଚିତ ।

ଅପ୍ରମୃଷ୍ୟ—ତ୍ରି.ବିଂ. (ଅ + ପ୍ର + ମୃଷ୍ + ଯ) ଯାହାର ବାଧ କରା ନ ଯାଏ ।

ଅପ୍ରମେୟ—ତ୍ରି.ବିଂ.(ଅ + ପ୍ର + ମା + ମିଂ. ଯ) ଅମାପ, ଅପାର, ଅସୀମ,ଅପର୍ଯ୍ୟାପ୍ତ ଅଜ୍ଞେୟ,ପ୍ରମାଣର ଅତୀତ, ଅତିଗମ୍ଭୀର, (ବି) ପରମେଶ୍ୱର ।

ଅପ୍ରଯତ—ତ୍ରି. ବିଂ. (ଅ + ପ୍ର + ଯମ + ତ) ଅପବିତ୍ର ।

ଅପ୍ରଯତ୍ନ—ପୁଂ.ବି.(ଅ + ପ୍ରଯତ୍ନ)ନ.ତତ୍ପୁ; ପ୍ରକୃଷ୍ଟଯତ୍ନର ଅଭାବ, ଜଡ଼ତା, ନିଶ୍ଚେଷ୍ଟତା. ଉଦ୍ୟମାଭାବ. (ବିଂ) କୌଣସି ବିଷୟରେ ମମତାଶୂନ୍ୟ, ନିଶ୍ଚେଷ୍ଟ, (ସ୍ତ୍ରୀ) ଅପ୍ରଯତ୍ନା ।

ଅପ୍ରଯାଣି—ସ୍ତ୍ରୀ. ବି. (ଅ + ପ୍ର + ଯା + ଅନ) ଅଭିଶାପରେ ପ୍ରଯୁକ୍ତ, ଗମନ-ରହିତ ।

ଅପ୍ରଯୁକ୍ତ—ତ୍ରି. ବିଂ. (ଅ + ପ୍ରଯୁକ୍ତ) ଅଯୋଗ୍ୟ, ଅସଙ୍ଗତ, ଅନ୍ୟାୟ୍ୟ, ନିଯୁକ୍ତ ନୁହେଁ, (ସ୍ତ୍ରୀ) ଅପ୍ରଯୁକ୍ତା ।

ଅପ୍ରଯୁକ୍ତତା—ସ୍ତ୍ରୀ. ବି. ଅପ୍ରଯୁକ୍ତତ୍ୱ କ୍ଲୀ.ବି. ଅଳଙ୍କାରଶାସ୍ତ୍ରର ଦୋଷବିଶେଷ, ଅବ୍ୟବହାର୍ଯ୍ୟ,ଅନାଚରିତ,ଅବ୍ୟବହୃତ, ଅପ୍ରଚଳିତ ।

ଅପ୍ରଯୁତ—ତ୍ରି.ବିଂ.(ଅ + ପ୍ର + ଯୁ + ତ) ନିରବଚ୍ଛିନ୍ନ, ଅପୃଥକ୍‌ରୂପେ ଯୁକ୍ତ ।

ଅପ୍ରୟୋଜକ—ବିଂ. (ଅ + ପ୍ରୟୋଜକ) ଯାହାଘଟାଏନାହିଁ (ସ୍ତ୍ରୀ) ଅପ୍ରୟୋଜକା । ଅନିସିଦ୍ଧ,ଅନିବାରିତ,(ବି)ଅପ୍ରତିଷେଧ ।

ଅପ୍ରୟୋଗ—ପୁଂ.ବି.(ଅ + ପ୍ର + ଯୁଜ୍ + ଅ) ପ୍ରୟୋଗର ଅଭାବ, ବ୍ୟବହାରର ଅଭାବ, (ବିଂ) ଅପ୍ରଯୁକ୍ତ ।

ଅପ୍ରୟୋଜନ—କ୍ଲୀ.ବି. ନ.ତତ୍; (ଅ + ପ୍ରୟୋଜନ) ଅନାବଶ୍ୟକତା, (ବିଂ) ଅପ୍ରୟୋଜନୀୟ, ଅହେତୁକ ।

ଅପ୍ରୟୋଜନୀୟ—ବି. ବିଂ. ( ନ ତତ୍ ) ଅନାବଶ୍ୟକ, ଅଦରକାରି, (ସ୍ତ୍ରୀ) ଅପ୍ରୟୋଜନୀୟା, ଅଲୋଡ଼ା ।

ଅପ୍ରଲଘୁ—ବିଂ. ( ଅ + ପ୍ରଲଘୁ ) ଯାହା ଅତି ଲଘୁ ନୁହେ, ଅଧିକ, ଶୀଘ୍ର ।

ଅପ୍ରଲମ୍ବ—କ୍ଲୀ.ବି.(ଅ + ପ୍ରଲମ୍ବ)ନ.ତତ୍; ବିଲମ୍ବାଭାବ, ଶୀଘ୍ରତା, ତ୍ୱରିତ, ଶୀଘ୍ର, (ବିଂ) ବିଲମ୍ବଶୂନ୍ୟ, ତ୍ୱରିତ, ( ସ୍ତ୍ରୀ ) ଅପ୍ରଲମ୍ବା ।

ଅପ୍ରବର୍ତ୍ତକ—ପୁଂ. ବିଂ. କାର୍ଯ୍ୟରୁ ନିବୃତ୍ତ, ମାନ୍ଦା, ଅଳସୁଆ, (ସ୍ତ୍ରୀ) ଅପ୍ରବର୍ତ୍ତିକା ।

ଅପ୍ରବର୍ତ୍ତନ—କ୍ଲୀ. ବି ( ଅ + ପ୍ରବର୍ତ୍ତନ ) ନିବୃତ୍ତି, କୌଣସି କାର୍ଯ୍ୟରେ ଲଗିବା ପାଇଁ ନ ମତାଇବା, (ବିଂ)ଅପ୍ରବୃତ୍ତ ।

ଅପ୍ରବର୍ତ୍ତିତ—ବିଂ. ( ଅ + ପ୍ରବର୍ତ୍ତିତ ) କାର୍ଯ୍ୟରେ ଲଗିବା ପାଇଁ ଅନ୍ୟଦ୍ୱାରା ପ୍ରବର୍ତ୍ତିତ ହୋଇ ନ ଥିବା, କାର୍ଯ୍ୟରୁ ନିବର୍ତ୍ତିଥିବା ।

ଅପ୍ରବର୍ତ୍ତୀ—ପୁଂ.ବିଂ.ପ୍ରବୃତ୍ତିଶୀଳ ନୁହେ, ସନ୍ତତ, ବିଚ୍ଛେଦରହିତ, (ସ୍ତ୍ରୀ) ଅପ୍ରବର୍ତ୍ତିନୀ ।

ଅପ୍ରବୀଣ—ପୁଂ.ବିଂ.(ଅ + ପ୍ରବୀଣ)ଯାହାର ପ୍ରବୀଣତା ଜନ୍ମି ନାହିଁ,ଅର୍ବାଚୀନ,ଅନନୁଭବୀ, ଅପଟୁ, ଯେ ବୋଧା ନୁହେ,(ସ୍ତ୍ରୀ) ଅପ୍ରବୀଣା ।

ଅପ୍ରବୀତ—ବି. ବିଂ.(ଅ + ପ୍ର + ବୀ + ତ) ଅଜାତ, (ସ୍ତ୍ରୀ) ଗର୍ଭଧାରଣ ହେତୁ ଯେ ସ୍ତ୍ରୀର ସାର ବିଗତହୋଇ ନାହିଁ, ଅକାମିକା ସ୍ତ୍ରୀ, ନବୀନା ସ୍ତ୍ରୀ । [ସ୍ୱଦେଶ ।

ଅପ୍ରବାସ—ପୁଂ.ବି. (ନ.ତତ୍)ନିଜବାସ,

ଅପ୍ରବାସୀ—ପୁଂ.ବିଂ. ( ନ.ତତ୍) ନିଜଘରେ ବାସକାରି, (ସ୍ତ୍ରୀ) ଅପ୍ରବାସିନୀ ।

ଅପ୍ରବାହ—ବିଂ. ବି.ସ୍ତ୍ରୀ (ଅ + ପ୍ରବାହ ) ସ୍ରୋତହୀନ,ଯହିଁରେ ସ୍ରୋତ ନ ଥାଏ, (ବି) ସ୍ରୋତ ନ ଥିବା ଅବସ୍ଥା ।

ଅପ୍ରବେଦ—ବି. ବିଂ. ଦୁର୍ଲ୍ଲଭ ।

ଅପ୍ରବୃତ୍ତ—ତ୍ରି.ବିଂ. (ଅ + ପ୍ରବୃତ୍ତ) ଅନାରବ୍ଧ, ଅନିଯୁକ୍ତ,କାର୍ଯ୍ୟ କରୁ ନ ଥିବା, ଯାହାକୁ କେହି ପ୍ରବର୍ତ୍ତାଇ ନ ଥାଏ, (ସ୍ତ୍ରୀ) ଅପ୍ରବୃତ୍ତା ।

ଅପ୍ରବୃତ୍ତି—ସ୍ତ୍ରୀ. ବି. (ଅ + ପ୍ରବୃତ୍ତି) ପ୍ରବୃତ୍ତିର ଅଭାବ, କୌଣସି ବିଷୟ ପ୍ରତି ମନ ଆକୃଷ୍ଟ ନ ହେବା, ନିବୃତ୍ତି, ମାତିବାର ଅଭାବ ।

ଅପ୍ରଂଶନୀୟ—ବି. ବିଂ. ( ନ.ତତ୍ ) ପ୍ରଶଂସାର ଅଯୋଗ୍ୟ, ଅଶ୍ଳାଘ୍ୟ, (ସ୍ତ୍ରୀ) ଅପ୍ରଶଂସନୀୟା ।

ଅପ୍ରଶଂସା—ସ୍ତ୍ରୀ. ବି. (ନ.ତତ୍)ପ୍ରଶଂସାର ଅଭାବ, ନିନ୍ଦା, ଅଶ୍ଳାଘା, ଅସୁଖ୍ୟାତି ।

ଅପ୍ରଶଂସିତ—ପୁଂ.ବିଂ (ନ.ତତ୍)ନିନ୍ଦିତ, ଗର୍ହିତ, (ସ୍ତ୍ରୀ) ଅପ୍ରଶଂସିତା ।

ଅପ୍ରଶଂସ୍ୟ—ପୁଂ. ବିଂ. (ଅ + ପ୍ରଶଂସ୍ୟ) ପ୍ରଶଂସା ପାଇବାର ଅଯୋଗ୍ୟ, ନିନ୍ଦ୍ୟ, ନିନ୍ଦାର୍ହ, (ସ୍ତ୍ରୀ) ଅପ୍ରଶଂସ୍ୟା ।

ଅପ୍ରଶସ୍ତ—ବି.ବିଂ.ନ.ତତ୍;(ଅ + ପ୍ରଶସ୍ତ) ଅସତ, ଅଶ୍ରେଷ୍ଠ, ଅବହିତ, ଖରାପ, ନିନ୍ଦିତ, ନିକମା, ଅଳ୍ପଚୌଡ଼ା,ସଙ୍କୀର୍ଣ୍ଣ, ଅପ୍ରକୃଷ୍ଟ, (ସ୍ତ୍ରୀ) ଅପ୍ରଶସ୍ତା ।

ଅପ୍ରସକ୍ତ—ବି.ବିଂ.(ଅ + ପ୍ର + ସନଜ୍ + ତ ) ମନଯୋଗରହିତ, ଆଗ୍ରହବର୍ଜ୍ଜିତ, ପ୍ରସଙ୍ଗରହିତ, ଅନାସକ୍ତ, ଅସମ୍ବନ୍ଧ ।

ଅପ୍ରସକ୍ତି—ସ୍ତ୍ରୀ.ବି.(ଅ + ପ୍ର + ସଞ୍ଜ୍ + ତି) ପ୍ରସଙ୍ଗର ଅଭାବ ।

ଅପ୍ରସଙ୍ଗ—ପୁଂ.ବି.(ଅ + ପ୍ର + ସନ୍ଜ + ଅ) ସମ୍ବନ୍ଧର ଅଭାବ, (ବିଂ) ଅପ୍ରାସଙ୍ଗିକ ।

ଅପ୍ରସନ୍ନ—ପୁଂ.ବିଂ.(ଅ + ପ୍ରସନ୍ନ)ଆବିଳ, ଅସନ୍ତୁଷ୍ଟ,ବିରକ୍ତ,ବିରସ,(ବି)ଅପ୍ରସନ୍ନତା, (ସ୍ତ୍ରୀ) ଅପ୍ରସନ୍ନା ।

ଅପ୍ରସନ୍ନତା—ସ୍ତ୍ରୀ.ବି.(ଅପ୍ରସନ୍ନ + ଭା + ତା) ନ.ତତ୍;ଅସନ୍ତୋଷ, ବିଷାଦ, ବିରକ୍ତି, ଦୁଃଖ, କ୍ଷୋଭ, ମ୍ଳାନତା ।

ଅପ୍ରସହ୍ୟ—ବିଂ.(ଅ + ପ୍ରସହ୍ୟ)ଅତିସହ୍ୟ, ଅବ୍ୟାହତ ।

ଅପ୍ରସାଦ—ବି.(ଅ + ପ୍ରସାଦ) ଅନୁଗ୍ରହର ଅଭାବ, ଅସନ୍ତୋଷ ।

ଅପ୍ରସାଦୀ—ପୁଂ. ବିଂ. ( ଅ + ପ୍ର + ସଦ୍ + ଇନ୍) ଯେ ଅନୁଗ୍ରହ ବା ପ୍ରସାଦ ପ୍ରତ୍ୟାଶୀ ନୁହେ, (ସ୍ତ୍ରୀ) ଅପ୍ରସାଦିନୀ ।

ଅପ୍ରସାଦ୍ୟ—ବି.ବିଂ. (ଅ + ପ୍ର + ସଦ୍ + ଣିଚ୍ + ର୍ମ.ଯ ) ପ୍ରସନ୍ନ କରାଇବାର ଅଯୋଗ୍ୟ ।

ଅପ୍ରସାହ—ପୁଂ.ବି. (ଅ + ପ୍ର + ସହ୍ + ଅ) ଅନିଷ୍ଟ କଲେ ମଧ୍ୟ ଯେ ଅଭିଭୂତ ହୁଏ ନାହିଁ ।

ଅପ୍ରସିଦ୍ଧ—ବି.ବିଂ.(ଅ + ପ୍ର + ସିଧ୍ + ତ) ଅନିଷ୍ପନ୍ନ, ଅପ୍ରତିଷ୍ଠ, ଅବିଖ୍ୟାତ ।

ଅପ୍ରସିଦ୍ଧି—ସ୍ତ୍ରୀ.ବି. ( ଅ + ପ୍ରସିଦ୍ଧି ) ପ୍ରସିଦ୍ଧି ବା ଯଶର ଅଭାବ, ମନ୍ଦଯଶ ।

ଅପ୍ରସୂତ—ପୁଂ.ବିଂ.(ନ.ତତ୍)ନିଃସନ୍ତାନ, (ସ୍ତ୍ରୀ) ଅପ୍ରସୂତା, ବାଞ୍ଝ, ବନ୍ଧ୍ୟା ।

ଅପ୍ରସୃତ—ବି.ବିଂ.(ଅ + ପ୍ରସୃତ) ପ୍ରସାରଶୂନ୍ୟ,ବିସ୍ତାରଶୂନ୍ୟ,ଅଗିକ୍ଷିତ, ଅର୍ଦ୍ଧାଞ୍ଜଳି ଭିନ୍ନ ।

ଅପ୍ରସ୍ତାବ—ବି'(ଅ + ପ୍ରସ୍ତାବ)ପ୍ରସ୍ତାବ ବା ପ୍ରାର୍ଥନାର ଅଭାବ, ମନ୍ଦ ପ୍ରସ୍ତାବ ।

ଅପ୍ରସ୍ତାବପ୍ରତିଗ୍ରହ—ବି. ବିନା ପ୍ରାର୍ଥନାରେ ଅନ୍ୟ ଲୋକଠାରୁ କୌଣସି ପଦାର୍ଥ ମିଳିବା ବା ଗ୍ରହଣ ।

ଅପ୍ରସ୍ତାବିତ—ଯାହା ପ୍ରସ୍ତାବର ଅଯୋଗ୍ୟ, ଯାହା ପ୍ରସ୍ତାବିତ ହୋଇ ନାହିଁ ।

ଅପ୍ରସ୍ତୁତ —ପୁଂ. ବିଂ. (ଅ + ପ୍ରସ୍ତୁତ) ଅତତ୍ପର,ଅପ୍ରତିଭ,ଅନିଷ୍ପନ୍ନ,ଆରମ୍ଭଶୂନ୍ୟ, ଲଜ୍ଜିତ, (ସ୍ତ୍ରୀ) ଅପ୍ରସ୍ତୁତା ।

ଅପ୍ରସ୍ତୁତପ୍ରଶଂସା —ସ୍ତ୍ରୀ. ବି. ଅର୍ଥାଲଙ୍କାରବିଶେଷ ।

ଅପ୍ରହତ—ବି.ବିଂ.(ଅ + ପ୍ରହତ) ଅକ୍ଷୁଣ୍ଣ, ଅନାହତ, ଆକର୍ଷିତ, ଅସ୍ପୃଷ୍ଟ ପଦରେ ଦଳା ହୋଇ ନ ଥିବା,(ସ୍ତ୍ରୀ) ଅପ୍ରହତା ।

ଅପ୍ରାକରଣିକ—ବି.ବଂ. (ଅ + ପ୍ରାକରଣିକ) ଅପ୍ରାସଙ୍ଗିକ, ଆଲୋଚିତ ବିଷୟସଙ୍ଗେ ସମ୍ବନ୍ଧହୀନ, ଅପ୍ରାସ୍ତାବିକ, ଅସଙ୍ଗତ, (ସ୍ତ୍ରୀ) ଅପ୍ରାକରଣିକା ।

ଅପ୍ରାକୃତ—ବି. ବଂ. (ଅ + ପ୍ରାକୃତ) ଅନୈସର୍ଗିକ, ଅସ୍ୱାଭାବିକ, ଅବାସ୍ତବ, ଅପ୍ରକୃତ, ଅସାଧାରଣ, ଅଲୋକସାମାନ୍ୟ, ଆଶ୍ଚର୍ଯ୍ୟ, (ସ୍ତ୍ରୀ) ଅପ୍ରାକୃତା ।

ଅପ୍ରାଗ୍ର୍ୟ—ବି.ବଂ.(ଅ + ପ୍ରାଗ୍ର୍ୟ)ଅପ୍ରଧାନ, ଅଧମ, ଗୌଣ ।

ଅପ୍ରାଧ—ଗ୍ରା.ପୁଂ.ବ. ଅପରାଧ, ଦୋଷ ।

ଅପ୍ରାପ୍ତ—ବି.ବଂ. ଅଲବ୍ଧ, ଯାହା ମିଳିନାହିଁ, ଅଲଭ୍ୟ, ଅନଧିଗତ ।

ଅପ୍ରାପତ—ଅପ୍ରାପ୍ତ ଦେଖ ।

ଅପ୍ରାପ୍ତକାଲ—ବି.ବଂ.(ବ.ବ୍ରୀ)ଆକାଳିକ, ଅସମୟୋଚିତ, ନାବାଳକ, (ସ୍ତ୍ରୀ) ଅପ୍ରାପ୍ତକାଲା ।

ଅପ୍ରାପ୍ତପ୍ରାପକ—ପୁଂ. ବଂ. ପ୍ରମାଣାନ୍ତରଦ୍ୱାରା ନ ମିଳିବା ଲଙ୍ଗାଦି ଶବ୍ଦ ।

ଅପ୍ରାପ୍ତବୟସ୍କ—ପୁଂ. ବଂ. (ନ.ତତ୍ପୁ) ବ.ବ୍ରୀ; ନାବାଳକ, ଯେ ଦାୟାଧିକାରାଦି ବିଷୟରେ ଉପଯୁକ୍ତ ବୟସ ପ୍ରାପ୍ତ ହୋଇ ନାହିଁ, (ସ୍ତ୍ରୀ) ଅପ୍ରାପ୍ତବୟସ୍କା ।

ଅପ୍ରାପ୍ତବ୍ୟବହାର—ବି. ବଂ. ବ୍ୟବହାର ଶାସ୍ତ୍ର ବା ଆଇନାନୁସାରେ ନିଜବିଷୟ ନିଜେ ବୁଝିବାଭଳି ଜ୍ଞାନ ବା ଅଧିକାର ଯେ ପାଇନାହିଁ, ନାବାଳକ ।

ଅପ୍ରାପ୍ତଯୌବନ—ପୁଂ. ବଂ. (ଅପ୍ରାପ୍ତ + ଯୌବନ) ନ ତତ୍ପୁ; ବ.ବ୍ରୀ; କିଶୋର, ଯେ ଅବଧି ଯୁବା ହୋଇ ନାହିଁ, (ସ୍ତ୍ରୀ) ଅପ୍ରାପ୍ତଯୌବନା ।

ଅପ୍ରାପ୍ତଲକ୍ଷଣ—ବି.ବଂ. ବ.ବ୍ରୀ; ଅପ୍ରାପ୍ତ + ଲକ୍ଷଣ) ଯାହାର କୌଣସି ଲକ୍ଷଣ ବା ଚିହ୍ନ ମିଳିନାହିଁ ।

ଅପ୍ରାପ୍ତା—ସ୍ତ୍ରୀ.ବ.କୁମାରୀ,ଯେଉଁବାଳିକାର ବିବାହକାଳ ଉପସ୍ଥିତ ହୋଇ ନାହିଁ ।

ଅପ୍ରାପ୍ତି—ସ୍ତ୍ରୀ. ବ. (ଅ + ପ୍ରାପ୍ତି) ଅଲାଭ, ଯାହା ମିଳେ ନାହିଁ ।

ଅପ୍ରାପ୍ୟ—ବି. ବଂ. ଦୁଷ୍ପ୍ରାପ୍ୟ, ଅପ୍ରାପଣୀୟ, ଯାହା ପାଇବାର ଅଯୋଗ୍ୟ ।

ଅପ୍ରାପ୍ୟତା—କ୍ଲୀ.ବ. (ଅପ୍ରାପ୍ୟ + ଭା.ତା) ଅଲଭ୍ୟତା, ଦୁର୍ଲଭତା ।

ଅପ୍ରାମାଣିକ—ବି. ବଂ. ପ୍ରମାଣରହିତ, ମିଥ୍ୟା, ଅପୌରୁଷକ ।

ଅପ୍ରାମାଣ୍ୟ—କ୍ଲୀ.ବ. ପ୍ରମାଣର ଅଭାବ, ଯଥାର୍ଥର ଅଭାବ ।

ଅପ୍ରାମି—ବି. ବଂ. (ଅ + ପ୍ର + ଅମ + ଣିଚ୍ ଇନ୍) ଅଦ୍ୱଂସିତ ।

ଅପ୍ରାୟୁ—ତ୍ରି,ବଂ. ଅପ୍ରଗଲ୍ଭମନସ୍କ, ଅପ୍ରମାଦ, ଯେ ଯାଏ ନାହିଁ ।

ଅପ୍ରାୟୁସ—ବି. ବଂ. ଗତାୟୁ ନୁହେ ।

ଅପ୍ରାସଙ୍ଗିକ—ବି.ବଂ. (ଅ + ପ୍ରାସଙ୍ଗିକ) ପ୍ରସଙ୍ଗବହିର୍ଭୂତ, ଆଲୋଚିତ ପ୍ରସଙ୍ଗସଙ୍ଗେ ଯେଉଁ କଥାର ସମ୍ବନ୍ଧ ନାହିଁ ।

ଅପ୍ରିୟ—ତ୍ରି.ବଂ. (ନ ତତ୍ପୁ)ଅପ୍ରୀତିକର, ଅନଭୀଷ୍ଟ, ଅନପ୍ସିତ, ଅପ୍ରହୃଷ୍ଟ, ମନ୍ଦ ।

ଅପ୍ରିୟକାରୀ—ପୁଂ.ବଂ.(ଅପ୍ରିୟ + କୃ + କ. ଇନ୍) ଅନିଷ୍ଟକାରୀ, କ୍ଷତିକାରକ, ବୈରୀ ।

ଅପ୍ରିୟବାଦୀ—ବଂ.(ଅ + ପ୍ରିୟ + ବଦ୍ + ଇନ୍) କଟୁଭାଷୀ ।

ଅପ୍ରିୟଭାଷ—ପୁଂ. ବ (କ.ଧା)ଅପ୍ରୀତିକରବାକ୍ୟ, କଟୁକଥା ।

ଅପ୍ରୀୟଭାଷିଣୀ—ସ୍ତ୍ରୀ.ବଂ. (ଅପ୍ରିୟଭାଷିନ୍ + ଈ) ଅପ୍ରିୟବାଦିନୀ, ଯେ କଠୋର ବାକ୍ୟ କହେ ।

ଅପ୍ରିୟଭାଷୀ—ପୁଂ.ବଂ. (ଅପ୍ରିୟ + ଭାଷ୍ + କ.ଇନ୍)ଯେଅପ୍ରୀତିକର କଥାକହେ, କର୍କଶବାଦୀ, କଟୁଭାଷୀ, (ସ୍ତ୍ରୀ) ଅପ୍ରିୟଭାଷିଣୀ ।

ଅପ୍ରିୟା—ସ୍ତ୍ରୀ.ବ ଶୃଙ୍ଗୀମତ୍ସ୍ୟ, ଶିଙ୍ଗୀମାଛ, (ବଂ) ଅପ୍ରିୟର ସ୍ତ୍ରୀଲିଙ୍ଗ ।

ଅପ୍ରୀତ—ପୁଂ.ବଂ.(ଅ + ପ୍ରୀତ) ନ.ତତ୍ପୁ; ଅସନ୍ତୁଷ୍ଟ, ବିରକ୍ତ, (ସ୍ତ୍ରୀ) ଅପ୍ରୀତା ।

ଅପ୍ରୀତି—ସ୍ତ୍ରୀ. ବ. (ନ.ତତ୍ପୁ) ପ୍ରୀତିର ଅଭାବ, ଅପ୍ରଣୟ, ବିବାଦ, ବିରୋଧ, ଅସନ୍ତୋଷ, ବିରକ୍ତି, ଘୃଣା ।

ଅପ୍ରୀତିକର—ବି.ବଂ. (ଅ + ପ୍ରୀତିକର) ନ.ତତ୍ପୁ; ଅସନ୍ତୋଷଜନକ, କର୍କଶ, ଘୃଣାଜନକ ।

ଅପ୍ରୀତିଭାଜନ—ପୁଂ. ବଂ. (୬ତତ୍ପୁ) ଅସନ୍ତୋଷର ପାତ୍ର, ଯାହାପ୍ରତି ଅସନ୍ତୋଷ ଜନ୍ମିଅଛି, (ସ୍ତ୍ରୀ) ଅପ୍ରୀତିଭାଜନା ।

ଅପ୍ରେତ—ବି.ବଂ. (ନ.ତତ୍ପୁ) ଅପ୍ରସ୍ଥିତ, ଅମୃତ, ଯେ ମରେ ନାହିଁ ।

ଅପ୍ରେତରାକ୍ଷସୀ—ସ୍ତ୍ରୀ.ବ. ତୁଳସୀବୃକ୍ଷ ।

ଅପ୍ୱ—ତ୍ରି. ବଂ. ଭୟ, ବ୍ୟାଧି, (ସ୍ତ୍ରୀ) ଅପ୍ୱା, ବାୟୁ, ବ୍ୟାଧି, ଭୟ ।

ଅପ୍ସ—କ୍ଲୀ. ବ. ରୂପ, ରସ ।

ଅପ୍ସରଃପତି—ପୁଂ. ବ. ସ୍ୱର୍ଗବେଶ୍ୟାମାନଙ୍କର ପତି, ଇନ୍ଦ୍ର ।

ଅପ୍ସରା—ସ୍ତ୍ରୀ.ବ. (ଅପ + ସ + ଅସ୍) ସ୍ୱର୍ଗବେଶ୍ୟା, ବିଦ୍ୟାଧରୀ ।

ଅପ୍ସରାତୀର୍ଥ—ପୁଂ.କ୍ଲୀ. ବ. ଗଙ୍ଗାଜଲାବତାରତୀର୍ଥବିଶେଷ ।

ଅପ୍ସରାୟମାଣା—ସ୍ତ୍ରୀ. ଯେ ଅପ୍ସରାପରି ଆଚରକେତରେ, ସୁନ୍ଦରୀ ।

ଅପ୍ସରିବା—ଗ୍ରା. କି. (ସଂ + ଅପସରଣ) ଅପସରିବା, ଘୁଞ୍ଚିବା ।

ଅପ୍ସରୀ—ଗ୍ରା.ବ. ସ୍ତ୍ରୀ. (ସଂ + ଅପ୍ସରସ୍) ଅପ୍ସରା, ସ୍ୱବେଶ୍ୟା ।

ଅପ୍ସରୋଗଣ—ସ୍ତ୍ରୀ.ବ.(ଅପ୍ସରଃ + ଗଣ) ଅପ୍ସରାମାନେ ।

ଅପ୍ସରୋନନ୍ଦିତ—ତ୍ରି. ବଂ. (ବ.ବ୍ରୀ) ଅପ୍ସରା ଅପେକ୍ଷା ପ୍ରଶଂସିତ ।

ଅପ୍ସବ—ତ୍ରି.ବଂ.ଜଳରହିତଶୂନ୍ୟସମୁଦ୍ର ।

ଅପ୍ସବ୍ୟ—ପୁଂ ବ. ଜଳଜ, ଜଳଜାତ, ଜଳଭବ ।

ଅପ୍ସସ୍—ତ୍ରି.ବଂ. ରୂପ । [ଦିତା ।

ଅପ୍ସା—ତ୍ରି. ବଂ. (ଅପ୍ + ସନ + ବଟ)

ଅପ୍ସୁ—ତ୍ରି. ବଂ. ରୂପହୀନ ।

ଅପ୍ସୁକ୍ଷିତ୍—ତ୍ରି. ବଂ. (ଅପ୍ସୁ + କ୍ଷି + କ୍ୱିପ୍) ଅନ୍ତରୀକ୍ଷବାସୀ, ଦେବତାଦି ।

ଅପ୍ସୁଚର—ତ୍ରି. ବଂ. ଜଳଚର ।

ଅପ୍ସୁଜ—ତ୍ରି.ବଂ. ଜଳଜାତ, ଅନ୍ତରୀକ୍ଷଜାତ, ଅଶ୍ୱ,(ସ୍ତ୍ରୀ)ଅପ୍ସୁଜା,ବେତସଲତା ।

ଅପ୍ସୁଜିତ୍—ପୁଂ. ବଂ. ଅସୁରଜେତା, ଦେବତାଦି ।

ଅପ୍ସୁମତ୍—ତ୍ରି. ବଂ. ଯଥେଷ୍ଟ ଜଳଲାଭକର୍ତ୍ତା,ଜଳସଂଯୁକ୍ତ ଆଧାର ଆଜ୍ୟଭାଗ ।

ଅପ୍ସୁଯୋଗ—ପୁଂ.ବ. ଜଳରେ ଯୋଗ ।

ଅପ୍ସୁଯୋନି—ତ୍ରି.ବଂ. ଜଳଜାତ, ଅଶ୍ୱ ।

ଅପ୍ସୁଷଦ୍—ପୁଂ.ବ. ଅଗ୍ନି,ଜଳସ୍ଥ ନିଆଁ ।

ଅପ୍ସୁସୋମ—ପୁଂ.ବ. ଜଳପୂର୍ଣ୍ଣ ଚମସବିଶେଷ ।

ଅପ୍ସୁସଂଶିତ—ପୁଂ. ବ. ଜଳନିମିତ୍ତୀଭୂତ ବିଷ୍ଣୁଙ୍କ ବିଚରଣସ୍ଥାନ, ଅନ୍ତରୀକ୍ଷ ।

ଅଫଟା—ଗ୍ରା. ବଂ. (ଅ + ସ୍ଫୁଟ) ଯାହା ଫଟା ବା ଚିରା ନୁହେ, ଯହିଁରେ ଫାଟ ନାହିଁ ।

ଅଫଡ଼ା—ଗ୍ରା. ବଂ. (ଅ + ସ୍ଫୁଟ) ଯାହା ଫଡ଼ା ହୋଇନାହିଁ, ଅବିଭକ୍ତ, ଚିରା ହୋଇ ନ ଥିବା ।

ଅଫନ୍ଦା—ଗ୍ରା.ବଂ.ଜୀବିକାହୀନ,ବେକାର, ଯାହା ଫାନ୍ଦରେ ଛନ୍ଦା ହୋଇନାହିଁ ।

ଅଫଳ—ତ୍ରି.ବଂ. ବ.ବ୍ରୀ; (ଅ + ଫଳ) ଫଳଶୂନ୍ୟ, ନିଷ୍ଫଳ, ଯେଉଁ ବୃକ୍ଷରେ ଫଳ ହୁଏ ନାହିଁ, ବିଫଳ,ବନ୍ଧ୍ୟା, (ସ୍ତ୍ରୀ) ଅଫଳା, (ବ) ଅଫଳତା, ଝାଉଁଗଛ ।

ଅଫଳନ୍ତୀ—ଗ୍ରା.ବଂ. (ସଂ.ଅଫଳ) ଯେଉଁ ଗଛରେ ଫଳ ଧରେନାହିଁ, ବାଂଝ (ସ୍ତ୍ରୀ) ବନ୍ଧ୍ୟା, ବାଂଝୀ ।

ଅଫଳଦର୍ଶୀ—ପୁଂ. ବଂ. (ନ.ତତ୍) ଅଫଳ କାଙ୍କ୍ଷୀ, (ସ୍ତ୍ରୀ) ଅଫଳଦର୍ଶିନୀ ।

ଅଫଳା—ସ୍ତ୍ରୀ. ବ. ଭୁଇଁଅଁଳା, ଘିଅକୁଆଁରି ।

ଅଫଲ୍—ଗ୍ରା. ବଂ. ପୁଂ. ସ୍ତ୍ରୀ. ଉଦାସିଆ ।

ଅଫଳାକାଙ୍କ୍ଷୀ—ପୁଂ.ବଂ. ନିଷ୍କାମ, ଯେ କାର୍ଯ୍ୟକର ଫଳାଶା ନ କରେ, ଉଦାସୀନ, (ସ୍ତ୍ରୀ) ଅଫଳାକାଙ୍କ୍ଷିଣୀ ।

ଅଫାଲ୍ଗୁ—ତ୍ରି.ବଂ. ଫଲ୍ଗୁନୁହେ,ଉର୍ଦ୍ଧାଗ୍ର ।

ଅଫିକର—ଗ୍ରା.ବଂ. ସୁବିଧାର ଅଭାବ, (ବଂ) ବେକାର ।

ଅଫିମ—ବ. (ସଂ. ଅହିଫେନ) ଆପୁ ।

ଅଫିମଖୋର—ଗ୍ରା. ବଂ. ପ୍ରତିଦିନ ଅଫିମ ଖାଇବାରେ ଅଭ୍ୟସ୍ତ ।

ଅଫିସ୍—ପୁଂ.ବ.(ଅଫଫିସ) କାର୍ଯ୍ୟାଳୟ, ମହକୁମା ।

ଅଫୁଟ—ପୁଂ. ବଂ. ଅପରିସ୍ଫୁଟ, ଅବ୍ୟକ୍ତ, ଅପ୍ରକାଶିତ, ଅବିକଶିତ ।

ଅଫୁଟା—ଗ୍ରା. ବଂ. (ଅପ୍ରସ୍ଫୁଟିତ) ଫୁଟି ନ ଥିବା, ଯାହା ପ୍ରକାଶିତ ବା ବ୍ୟକ୍ତ ହୋଇ ନାହିଁ,ବଦସ୍ତ ବା ଫୁଟା ହୋଇ ନ ଥିବା ଡଅଣ ପ୍ରଭୃତି !

ଅଫୁଟୀ—ଗ୍ରା. ସ୍ତ୍ରୀ. ବଂ. ଅଦୃଷ୍ଟରଜା, ଅରଜସ୍କା, ଅପୁଷ୍ପୀ, ଅପୁଷ୍ପବତୀ (ନାରୀ) ।

ଅଫୁରନ୍ତ—ପୁଂ.ବଂ. ଅକ୍ଷୟ, ଅଶେଷ ।

ଅଫୁଲ୍ଲ—ତ୍ରି.ବଂ.ମୁକୁଳିତ,ପ୍ରଫୁଲ୍ଲ ନୁହେ ।

ଅଫେଣା—ଗ୍ରା. ବଂ. (ଅ + ଫେଣା) ଫେଣା ହୋଇ ନ ଥିବା, ହାତରେ ମର୍ଦ୍ଦିତ ହୋଇ ନ ଥିବା (ବିରିପ୍ରଭୃତି) ।

ଅଫେନ—କ୍ଳୀ. ବ. ଅଫିମ, ଅହିଫେନ, (ବଂ.) ଫେନଶୂନ୍ୟ ।

ଅବଂଶ—ପୁଂ.ବ. (ନ.ତତ୍) ଅପ୍ରଶସ୍ତବଂଶ, ନୀଚକୁଳ ।

ଅବ୍‌ଉଆବ—(ଯା.) ବ. (ଅବର୍ଓ୍ୟାବ) ଏହା ଯା,ବାକ୍‌ଶବ୍ଦର ବହୁବଚନ,ଏହା ଇଂରାଜୀରେ, ଗୃହୀତ ହୋଇଅଛି, ଅତିରିକ୍ତ କର ।

ଅବ୍‌ଜରଭେଟରି—ଯା. ବ. ମାନମନ୍ଦିର, ଯେଉଁ କାର୍ଯ୍ୟାଳୟରେ ବା ଗୃହରେ ଗ୍ରହ ଓ ତାରାଆଦିଙ୍କ ସମ୍ବନ୍ଧୀୟ ଖ-ଗୋଳ ଘଟନାମାନ ନିରୀକ୍ଷଣ କରାଯାଏ ।

ଅବ୍‌ତକ୍—ଯା. ଅବ୍ୟ (ତ + ଅ + ଯା + ତକ) ଆଜପର୍ଯ୍ୟନ୍ତ ।

ଅବ୍‌ଭି—ଯ.ଅବ୍ୟ-ବର୍ତ୍ତମାନ,ଏହିକ୍ଷଣି ।

ଅବ୍‌ଭିକା—ଯା. ଅବ୍ୟ, ଏହିକ୍ଷଣି, ଏହିଲଗେ ।

ଅବ୍‌ଲଖା—ଗ୍ରା. ବଂ. (ସଂ. ଅବଲକ୍ଷ) ଦୋରଙ୍ଗା, ସଫେଦ ଓ କଳା କାମ୍ବା ଧଳା ଓ ନାଲରଙ୍ଗ ମିଶା (ଘୋଡ଼ା) ।

ଅବ୍‌ଲବଠୁ, ଅବ୍‌ଲ—(ସମ୍ବଲପୁର) ବଂ. ବଗୁଲିଆ, ଦୁଷ୍ଟ ।

ଅବ୍‌ଲୁସ୍—ଯା. ବ. ମାଙ୍କଡ଼କେନ୍ଦୁ ଗଛ, କଳାବର୍ଣ୍ଣ ଓଜନର କାଠବିଶେଷ ।

ଅବ୍‌ସୁସ୍,ଅବ୍‌ସୋସ୍—ଯା. ବ. ଶୋକ, ପରିତାପ, ମନସ୍ତାପ, ଅନୁତାପ, (ବଂ) ମନସ୍ତାପଜନକ, ଦୁଃଖଜନକ,ଦୁଃଖିତ ।

ଅବ୍‌ହାଉଆ—ଯା. ବ. ଜଳବାୟୁ, କୌଣସି ସ୍ଥାନର ଜଳବାୟୁଜନିତ ଶୀତ ଓ ତାପାଦିର ଅବସ୍ଥା ।

ଅବଦ୍ଧ—ତ୍ରି. ବଂ. (ଅ + ବଧ + ସଂ.ତ) ଅସମ୍ବଦ୍ଧ, ନିରର୍ଥକ, (ବ) ଅନର୍ଥକକଥା, ଅସଂଯତ, ସ୍ୱାଧୀନ, ମୁକ୍ତ, ବୃଥା ।

ଅବଦ୍ଧମୁଖ—ପୁଂ. ବଂ. (ବ.ବ୍ରୀ) ମୁଖର, ଅପ୍ରିୟଭାଷୀ, ଦୁର୍ମୁଖ, ଅସ୍ପଷ୍ଟବକ୍ତା, ଯେ ସାବଧାନ ହୋଇ କଥା ନ କହେ ।

ଅବାଧା, ଆବାଧା—ସ୍ତ୍ରୀ. ବ. ତ୍ରିଭୁଜମଧ୍ୟରେ ଲମ୍ବ ଟାଣିଲେ ତାହାର ଉଭୟ ପାର୍ଶ୍ୱସ୍ଥ ଭୂମି ।

ଅବଧ୍ୟ—ତ୍ରି. ବଂ. (ଅ + ବଧ୍ + ଯ) ପ୍ରାଣଦଣ୍ଡର ଅଯୋଗ୍ୟ,ବଧରଅଯୋଗ୍ୟ ।

ଅବନ୍ଧକ—ପୁଂ. ବ. (ବ.ବ୍ରୀ) ଯେ କରଜ ଦେଇ ବନ୍ଧା ରଖେ ନାହିଁ, (ସ୍ତ୍ରୀ) ଅବନ୍ଧକା ।

ଅବନ୍ଧୁର—ତ୍ରି. ବଂ. ଉଚ୍ଚ-ନୀଚ ନୁହେ, ନମ୍ର ନୁହେ, ସୁନ୍ଦର ନୁହେ ସମତଳ, ମସୃଣ, ଅପ୍ରୀତିକର, (ବ) ଅବନ୍ଧୁରତା ।

ଅବନ୍ଧ୍ୟ—ତ୍ରି. ବଂ. ବାଞ୍ଝନୁହେ, ସଫଳ, ଅମୋଘଫଳୋଦୟ, ଫଳନ୍ତ, ବନ୍ଧନଅଯୋଗ୍ୟ (ସ୍ତ୍ରୀ) ଅବନ୍ଧ୍ୟା ।

ଅବଳ—କ୍ଳୀ. ବ. ବଳର ଅଭାବ,ଦୁର୍ବଳ, (ପୁଂ.) ବରୁଣବୃକ୍ଷ, (ସ୍ତ୍ରୀ) ଅବଳା ।

ଅବାଳ—ତ୍ରି. ବ୍ୟଂ. ବାଳ ନୁହେ, ତରୁଣ ।
ଅବାନ୍ଧନ—ପୁଂ. ବ. (ବ.ବ୍ରୀ) ବାଡ଼ବାନଳ, ବାଡ଼ବାଗ୍ନି, ବଜ୍ରାଗ୍ନି ।
ଅବୁଦ୍ଧ—ତ୍ରି. ବ୍ୟଂ. (ନ.ତତ୍ପୁ) (ଅ + ବୁଧ୍ + ତ) ଅଜ୍ଞ, ଅଜ୍ଞାତ, ଅବୁଝ, ବୋଧର ଅବିଷୟୀଭୂତ ।
ଅବୁଦ୍ଧି—ସ୍ତ୍ରୀ. ବ. (ନ. ତତ୍ପୁ) ଜ୍ଞାନର ଅଭାବ, ଅବୋଧତ୍ୱ, ନିର୍ବୁଦ୍ଧିତା, (ବ୍ୟ) ବୁଦ୍ଧିହୀନ, ନିର୍ବୋଧ, ଅବୋଧ ।
ଅବୁଦ୍ଧିମାନ୍—ପୁଂ. ବ୍ୟଂ. (ନ. ତତ୍ପୁ) ବୁଦ୍ଧିହୀନ, ନିର୍ବୋଧ, (ସ୍ତ୍ରୀ) ଅବୁଦ୍ଧିମତୀ ।
ଅବୁଧ—ପୁଂ. ବ. (ନ. ତତ୍ପୁ) ପଣ୍ଡିତ ନୁହେ, ମୂର୍ଖ, ଅଜ୍ଞାନ ।
ଅବୁଧ—, ଅବୋଧ—ତ୍ରି. ବ୍ୟଂ. ଜାଣିବାର ଅସମର୍ଥ । [ଶୂନ୍ୟ ।
ଅବୁଧ୍ନ—କ୍ଳୀ. ବ. ଅନ୍ତରୀକ୍ଷ, (ବ୍ୟ) ମୂଳ-
ଅବ୍ଜ—କ୍ଳୀ. ବ. (ଅପ୍ + ଜନ୍ + ଅ) ପଦ୍ମ, କମଳ, ସଂଖ୍ୟାବିଶେଷ, ଶତକୋଟି ସଂଖ୍ୟା, (ପୁଂ) ଶଙ୍ଖ, ଚନ୍ଦ୍ର, ଧନ୍ୱନ୍ତରି ।
ଅବ୍ଜକର୍ଣ୍ଣିକା—ସ୍ତ୍ରୀ ପଦ୍ମଫୁଲର ମଧ୍ୟସ୍ଥିତ ବୀଜକୋଷ ।
ଅବ୍ଜଜ—ପୁଂ. ବ. ବ୍ରହ୍ମା, ବ୍ୟଂ. (ଅବ୍ଜ + ଜନ୍ + କ. ଅ) ପଦ୍ମଜାତ, ଯେ ପଦ୍ମରୁ ଜାତ ହୁଏ ।
ଅବ୍ଜଜାତ—ପୁଂ. ବ. (୫ତତ୍ପୁ) ବ୍ରହ୍ମା ।
ଅବ୍ଜନୟନ—ତ୍ରି. ବ୍ୟଂ. (ବ.ବ୍ରୀ) ପଦ୍ମଲୋଚନ ।
ଅବ୍ଜବାନ୍ଧବ—ପୁଂ. ବ. ସୂର୍ଯ୍ୟ ।
ଅବ୍ଜବାହନ—ପୁଂ. ବ. (୬ତତ୍ପୁ) ଚନ୍ଦ୍ରଚୂଡ଼, ଶିବ, (ସ୍ତ୍ରୀ) ଅବ୍ଜବାହନା, ଲକ୍ଷ୍ମୀ ।
ଅବ୍ଜଭୋଗ—ପୁଂ. ବ. (୬ତତ୍ପୁ) ପଦ୍ମବିସ୍ତାରକ ।
ଅବ୍ଜଯୋନି—ପୁଂ. ବ. (ବ.ବ୍ରୀ) ବ୍ରହ୍ମା ।
ଅବ୍ଜଲୋଚନ—ତ୍ରି. ବ୍ୟଂ. (ବ.ବ୍ରୀ) କମଳଲୋଚନ, ଯାହାର ଚକ୍ଷୁ ପଦ୍ମ ପରି, ଆନନ୍ଦଦାୟକ (ସ୍ତ୍ରୀ) ଅବ୍ଜଲୋଚନା ।
ଅବ୍ଜସ୍ଥିତ—ପୁଂ. ବ. ବ୍ରହ୍ମା ।
ଅବ୍ଜହସ୍ତ—ପୁଂ. ବ. (ବ.ବ୍ରୀ) ସୂର୍ଯ୍ୟ ।

ଅବ୍ଜା—ତ୍ରି. ବ. ଜଳଜାତ ।
ଅବ୍ଜାକବ୍ଜା—ଗ୍ରା. ବ. ଜଳ ବା ପଥର ଭିନ୍ନ ଭିନ୍ନ କ୍ଷୁଦ୍ର ଅଂଶମାନ ।
ଅବ୍ଜିନୀ—ସ୍ତ୍ରୀ. ବ. (ଅବ୍ଜ + ଇନ୍ + ଈ) ପଦ୍ମସମୂହ, ପଦ୍ମଲତା, ପଦ୍ମିନୀ, କମଳିନୀ ।
ଅବ୍ଜିନୀପତି—ପୁଂ. ବ. (୬ତତ୍ପୁ) ସୂର୍ଯ୍ୟ, କମଳିନୀନାଥ ।
ଅବ୍ଦ—ପୁଂ. ବ. (ଅପ୍ + ଦା + କ. ଅ) ମେଘ, ବର୍ଷ, ପର୍ବତବିଶେଷ, ମୁସ୍ତକ, ମୁଥା, ସମ୍ବତ୍ସର, ବର୍ଷା ।
ଅବ୍ଦପ—ପୁଂ. ବ. ବର୍ଷାଧିପ, ସମ୍ବତ୍ସରାଧିପ ।
ଅବ୍ଦପର୍ଯ୍ୟାୟ—ବ. (୬ତତ୍ପୁ) ବର୍ଷମାନଙ୍କର ଧାରାବାହିକ କ୍ରମ । [ଶତ ବର୍ଷ ।
ଅବ୍ଦଶତ—ବ. (୬ତତ୍ପୁ) ଶତାବ୍ଦୀ, ଏକ-
ଅବ୍ଦସାର—ପୁଂ. ବ. (ବ.ବ୍ରୀ) କର୍ପୂରବିଶେଷ ।
ଅବ୍ଦବାହନ—ପୁଂ. ବ. ଇନ୍ଦ୍ର । [ଦୁର୍ଗ ।
ଅବ୍ଦୁର୍ଗ—କ୍ଳୀ. ବ. (କ.ଧା) ଜଳବେଷ୍ଟିତ
ଅବ୍ଦିକ—ବ୍ୟଂ. (ଅବ୍ଦ + ଇକ, ଅବ୍ଦ ବା ସନସମ୍ବନ୍ଧୀୟ, ବାର୍ଷିକ ।
ଅବ୍ଧି—ପୁଂ. ବ. (ଅପ୍ + ଧା + ଇ) ସମୁଦ୍ର, ସରୋବର, ଜଳଧି, ଜଳରାଶି, ସାତ ସଂଖ୍ୟାର ବାଚକ ଶବ୍ଦ । [ଫେନ ।
ଅବ୍ଧିକଫ—ପୁଂ. ବ. (୬ତତ୍ପୁ) ସମୁଦ୍ର-
ଅବ୍ଧିଜ—ପୁଂ. ବ. (ଅପ୍ + ଧା + କ. ଇ) ଚନ୍ଦ୍ର, ଶଙ୍ଖ, ଅଶ୍ୱିନୀକୁମାର, (ବ୍ୟ) ସମୁଦ୍ରରୁ ଜାତ, (ସ୍ତ୍ରୀ) ଅବ୍ଧିଜା, ଲକ୍ଷ୍ମୀ ।
ଅବ୍ଧିଜା—ସ୍ତ୍ରୀ. ବ. (ଅବ୍ଧିଜ + ଆ) ମଦିରା, ସୁରା, ମଦ ।
ଅବ୍ଧିଦ୍ୱୀପା—ସ୍ତ୍ରୀ. ବ. (ଅବ୍ଧି + ଦ୍ୱୀପ + ଆ) ପୃଥିବୀ, ସପ୍ତଦ୍ୱୀପା ପୃଥ୍ୱୀ (ବ୍ୟ) ଯାହାର ଆଡ଼େ ସମୁଦ୍ର ବେଢ଼ିଥିବା ।
ଅବ୍ଧିନଗରୀ—ସ୍ତ୍ରୀ. ବ. (ମଧ୍ୟ-କ.ଧା) ଦ୍ୱାରକା, ଶ୍ରୀକୃଷ୍ଣଙ୍କର ରାଜଧାନୀ ।
ଅବ୍ଧିନବନୀତକ—ପୁଂ. ବ. (ଅବ୍ଧି + ନବନୀତ + କ) ଚନ୍ଦ୍ର ।
ଅବ୍ଧିଫେନ—ପୁଂ. ବ. (୬ତତ୍ପୁ) ସମୁଦ୍ରଫେନ, ଏହା ଏକ ପ୍ରକାର ସମୁଦ୍ରକ ଜୀବର ହାଡ଼ ।

ଅବ୍ଧିମଣ୍ଡୂକୀ—ସ୍ତ୍ରୀ. ବ. (୬ତତ୍ପୁ) ଶୁକ୍ତି, ଯାହିଁରୁ ମୁକ୍ତା ଜାତ ହୁଏ, ଶାମୁକା ।
ଅବ୍ଧିଶୟ—ପୁଂ. ବ. ବିଷ୍ଣୁ ।
ଅବ୍ଧିସାର—ପୁଂ. ବ. (୬ତତ୍ପୁ) ରତ୍ନ ।
ଅବ୍ଧ୍ୟଗ୍ନି—ପୁଂ. ବ. ବାଡ଼ବାନଳ, ସମୁଦ୍ରାଗ୍ନି ।
ଅବ୍ବାସ—ଏ ମୁସଲମାନ ଧର୍ମ-ପ୍ରବର୍ତ୍ତକ ।
ଅବ୍ଭକ୍ଷ—ପୁଂ. ବ. (ଅପ୍ + ଭକ୍ଷ) ସର୍ପବିଶେଷ, (ବ୍ୟ) ଯେ କେବଳ ଜଳ ଭକ୍ଷଣ କରେ । [ଧିକ ।
ଅବ୍ରହ୍ମକୃତ—କ୍ଳୀ. ବ୍ୟଂ. ବାକ୍ୟପ୍ରତିଷେ-
ଅବ୍ରେଥା—ଗ୍ରା. ବ୍ୟଂ. ଅନର୍ଥକ, ବୃଥା ।
ଅବ୍ଲିଙ୍ଗ—ତ୍ରି. ବ୍ୟଂ. ଜଳରୂପାର୍ଥ, ପ୍ରକାଶକ ମନ୍ତ୍ରବିଶେଷ ।
ଅଭ—ଗ୍ରା. ବ. ମେଘନାଳ ।
ଅଭଏ—ଗ୍ରା. ବ. ଅଭୟ ।
ଅଭଏବର—ଗ୍ରା. ବ. ଅଭୟବର ।
ଅଭକତ—ଗ୍ରା. ବ୍ୟଂ. ଅଭକ୍ତ, ଭକ୍ତିହୀନ ।
ଅଭକ୍ତ—ତ୍ରି. ବ୍ୟଂ. (ନ.ତତ୍ପୁ) ସେବକ ନୁହେ, ଭକ୍ତନୁହେ, ଭକ୍ତିହୀନ, ଅନନୁରକ୍ତ, ପୃଥକ୍‌କୃତ, ଅନୁରାଗବିହୀନ, ବିରାଗୀ, ବିତୃଷ୍ଣ, (ସ୍ତ୍ରୀ) ଅଭକ୍ତା ।
ଅଭକ୍ତଛନ୍ଦ—ବ. ଅକ୍ଷୁଧା, କ୍ଷୁଧାର ଅଭାବ ।
ଅଭକ୍ତରୁଚି—ବ. ଅକ୍ଷୁଧା ।
ଅଭକ୍ତି—ସ୍ତ୍ରୀ. ବ. (ଅ + ଭକ୍ତି) (ନ.ତତ୍ପୁ) ଭକ୍ତିର ଅଭାବ, ଅନାସ୍ଥା, ଅପ୍ରତେ, ଅନାଦର, ଅସମ୍ମାନ, ଅବିଶ୍ୱାସ, ଘୃଣା, ଅଶ୍ରଦ୍ଧା, (ବ୍ୟ) ଅଭକ୍ତ, ଭକ୍ତିହୀନ ।
ଅଭକ୍ତିଆ—ଗ୍ରା. ବ. ଅଭକ୍ତ, ଭକ୍ତିହୀନ ।
ଅଭକ୍ଷ—ବ୍ୟଂ. (ଅ + ଭକ୍ଷ ଭା.ଅ. ଅଭୋଜନ, ଅନଶନ, ଉପବାସ, (ବ) ଅଖାଦ୍ୟ, ନିଷିଦ୍ଧ ଖାଦ୍ୟ ।
ଅଭକ୍ଷଣ—କ୍ଳୀ. ବ୍ୟଂ. (ନ.ତତ୍ପୁ) ଖାଇବାର ଅଭାବ, ଉପବାସ, ଅନାହାର ।
ଅଭକ୍ଷଣୀୟ—ତ୍ରି. ବ୍ୟଂ. (ନ.ତତ୍ପୁ) ଅଭକ୍ଷ୍ୟ, ଅଖାଦ୍ୟ ।

ଅଭକ୍ଷ୍ୟଭକ୍ଷ—ଗ୍ରା. ବି. ଅଭକ୍ଷଭକ୍ଷଣ, ନିଷିଦ୍ଧ ଖାଦ୍ୟ ଖାଇବା, (ବିଂ) ନିଷିଦ୍ଧ-ଖାଦ୍ୟଭୋଜନକାରୀ ।

ଅଭକ୍ଷିତ—ତ୍ରି.ବିଂ.(ନ.ତତ୍ପୁ) ଅଖାଦିତ, ଅଭୁକ୍ତ, (ସ୍ତ୍ରୀ) ଅଭକ୍ଷିତା ।

ଅଭକ୍ଷ୍ୟ—ତ୍ରି. ବିଂ. ( ନ.ତତ୍ପୁ ) (ଅ + ଭକ୍ଷ + ର୍ମି.ଯ) ଶାସ୍ତ୍ରନିଷିଦ୍ଧଭୋଜନଦ୍ରବ୍ୟ, ପିଆଜ ରସୁଣାଦି, ଅଖାଦ୍ୟ, ନିଷିଦ୍ଧ-ଭୋଜ୍ୟ ।

ଅଭକ୍ଷ୍ୟଭକ୍ଷକ—ପୁଂ.ବିଂ.(୬ତତ୍ପୁ) ନିଷିଦ୍ଧ ଖାଦ୍ୟଭୋଜନକାରୀ, (ସ୍ତ୍ରୀ)ଅଭକ୍ଷଭକ୍ଷିକା ।

ଅଭକ୍ଷ୍ୟଭକ୍ଷଣ—କ୍ଲୀ. ବି. (୬ତତ୍ପୁ) ନିଷିଦ୍ଧ ଦ୍ରବ୍ୟଭୋଜନ-ଅଖାଦ୍ୟଭୋଜନ ।

ଅଭକ୍ଷ୍ୟଭକ୍ଷୀ—ପୁଂ.ବିଂ. (ଅଭକ୍ଷ୍ୟ + ଭକ୍ଷ୍ + କ. ଇନ୍ ) ନିଷିଦ୍ଧ ଖାଦ୍ୟ ଖାଇବା ବ୍ୟକ୍ତି, (ସ୍ତ୍ରୀ) ଅଭକ୍ଷ୍ୟଭକ୍ଷିଣୀ । [ଭାଗ୍ୟ ।

ଅଭଗ—ବିଂ.(ବ.ବ୍ରୀ)(ଅ + ଭଗ) ହତ-

ଅଭଗ୍ନ—ତ୍ରିଂ ବି. (ନ.ତତ୍ପୁ) ଯାହା ଭଗ୍ନ ନୁହେ, ଅଖଣ୍ଡିତ, ପୂର୍ଣ୍ଣାଙ୍ଗ, ଅବିକଳାଙ୍ଗ, ଅବିଚ୍ଛିନ୍ନ, ଯାହା ଭାଙ୍ଗିଯାଇ ନାହିଁ ।

ଅଭଙ୍ଗ—ପୁଂ. ବି. ଭଙ୍ଗର ଅଭାବ, ପଳାୟନର ଅଭାବ, ଅଭଙ୍ଗଶ୍ଳେଷ (ବିଂ) ( ଅ + ଭନଜ୍ + ର୍ମି.ଅ ) ଭଙ୍ଗରହିତ, ଅଭଗ୍ନ, ଅରୁଗ୍ଣ, ସମ୍ପୂର୍ଣ୍ଣ ।

ଅଭଙ୍ଗପ୍ରବଣ—ବିଂ. (ଅ + ଭଙ୍ଗପ୍ରବଣ) ଯାହା ଭଙ୍ଗପ୍ରବଣ ନୁହେ, ଚେମଡ଼ା ।

ଅଭଙ୍ଗଶ୍ଳେଷ—ବି. (କ ଧା)ଅର୍ଥାଳଙ୍କାର-ବିଶେଷ ।

ଅଭଙ୍ଗୁର—ତ୍ରି. ବିଂ. (ନ.ତତ୍ପୁ) (ଅ—ଭଙ୍ଗୁର ) ଯାହା ଭାଙ୍ଗେ ନାହିଁ, ସ୍ଥିର, ଦୃଢ଼,ଚେମଡ଼, ଚିରସ୍ଥାୟୀ.ଅନୁପଦ୍ରୁତ ।

ଅଭଦ୍ର—କ୍ଲୀ. ବି. ଦୁଃଖ, (ବିଂ.) ଅମାର୍ଜିତ,ବର୍ବର, ଅସଭ୍ୟ, ସୁରୁଚିହୀନ, (ସ୍ତ୍ରୀ) ଅଭଦ୍ରା ।

ଅଭଦ୍ରତା—ସ୍ତ୍ରୀ. ବି. ( ଅଭଦ୍ର + ଭା.ତା ) ଅସଭ୍ୟତା, ରୁଢ଼ତା, କୁରୁଚି, ବର୍ବରତା, ଅସାଧୁତା, ଅଶିଷ୍ଟତା ।

ଅଭୟ—କ୍ଲୀ.ବି. (ନ.ତତ୍ପୁ) (ଅ + ଭି + ଅ) ଭୟର ଅଭାବ, ଭୟଶୂନ୍ୟତା, ସାହସ, ବେଣାମୂଳ, ଶିବ, ଭରସା, (ସ୍ତ୍ରୀ) ଅଭୟା ।

ଅଭୟଙ୍କୃତ—ତ୍ରି.ବିଂ.ପ୍ରାଣକର୍ତ୍ତା, ଅଭୟ-ଦାତା, ଭୟଙ୍କର ନୁହେ, ସୌମ୍ୟ ।

ଅଭୟଙ୍କର—ତ୍ରି. ବି. ଭୟଙ୍କର ନୁହେ, ସୌମ୍ୟ ।

ଅଭୟଡିଣ୍ଡିମ—ପୁଂ. ବି. (କ.ଧା) ଅଭୟ ପ୍ରଦାନାର୍ଥ ବାଦିତ ଡିଣ୍ଡିମ, ଜୟଢକ୍କା, ଯୁଦ୍ଧବାଦ୍ୟବିଶେଷ ।

ଅଭୟଦ—ତ୍ରି.ବିଂ. (ଅଭୟ + ଦା + କ. ଅ) ତ୍ରାଣକର୍ତ୍ତା, ବିଷ୍ଣୁ, ଆଶ୍ୱାସଦାୟକ, ଅଭୟପ୍ରଦ, (ସ୍ତ୍ରୀ) ଅଭୟଦା ।

ଅଭୟଦକ୍ଷିଣା—ସ୍ତ୍ରୀ. ବି. (କ.ଧା) ଭୟରୁ ରକ୍ଷାପାଇବା ପାଇଁ ବ୍ରାହ୍ମଣଙ୍କୁ ଧନାଦି-ଦାନ ।

ଅଭୟଦାତା—ପୁଂ.ବିଂ. (୬ତତ୍ପୁ)ଅଭୟ ପ୍ରଦ, ଆଶ୍ୱାସପ୍ରଦାନକାରୀ, (ସ୍ତ୍ରୀ) ଅଭୟଦାତ୍ରୀ ।

ଅଭୟଦାନ—କ୍ଲୀ. ବି. (୬ତତ୍ପୁ) ଅଭୟ-ପ୍ରଦାନ, ସାହସଦେବା,ଆଶ୍ୱାସଦେବା ।

ଅଭୟପଦ—ଅଭୟ ପ ଦପଦ୍ମ (ଦେଖ) ।

ଅଭୟପାଦପଦ୍ମ--ଯେଉଁପାଦର ଶରଣରେ ଭୟ ନ ଥାଏ ।

ଅଭୟପ୍ରଦ—ଅଭୟଦାତା (ଦେଖ) ।

ଅଭୟବଚନ—ଭୀତିଶୂନ୍ୟ ବାକ୍ୟ ।

ଅଭୟବର—ଭୟଶୂନ୍ୟ ଆଦେଶ ବା ଅନୁଗ୍ରହ ।

ଅଭୟମୁଦ୍ରା—ଯେଉଁ ମୁଦ୍ରା ପିନ୍ଧିଲେ ଭୟର ଆଶଂକା ନଥାଏ ।

ଅଭୟବାଣୀ—ସାହସପ୍ରଦ ବଚନ ।

ଅଭୟା—ସ୍ତ୍ରୀ.ବି ଦୁର୍ଗା,ହରଡ଼ା,ଗୁଇଁକାଠ, ଯାହାକୁ ସେବା କଲେ ଭୟ ରହେନାହିଁ (ବିଂ) ଅଭୀତା ।

ଅଭୟାଲବଣ—କ୍ଲୀ.ବି. ବୈଦ୍ୟଶାସ୍ତ୍ରୋକ୍ତ ଲବଣଘଟିତ ଔଷଧବିଶେଷ ।

ଅଭବ—ପୁଂ.ବି. ନ.ତତ୍ପୁ; (ଅ + ଭୂ + ଅ) ଜନ୍ମର ଅଭାବ, ବିନାଶ, ମୋକ୍ଷ, ନିର୍ବାଣ, ଜନ୍ମନିବୃତ୍ତି ।

ଅଭରସା—ଗ୍ରା. ବି. ( ଅ + ଭରସା ) ନୈରାଶ୍ୟ, ଅନାସ୍ଥା, ନିର୍ଭରଶୀଳତାର ଅଭାବ, (ବିଂ) ନିରାଶ, ହତାଶ, ନିରାଶ୍ରୟ, ଅନିର୍ଭରଶୀଳ ।

ଅଭର୍ତ୍ତୃକା—ସ୍ତ୍ରୀ.ବିଂ. ବ.ବ୍ରୀ; (ଅ + ଭର୍ତ୍ତୃ + କ.ଆ ) ବିଧବା, ସ୍ୱାମୀବିହୀନା, ଅବିବାହିତା ।

ଅଭଲ—ଗ୍ରା.ବିଂ. ମନ୍ଦ, ଅନୁତ୍ତମ,ହେୟ, (ବି) ମନ୍ଦକଥା, ଦୁର୍ନାମ, ଅଶୁଭ ।

ଅଭବ୍ୟ—କ୍ଲୀ.ବି.(ନ ତତ୍ପୁ) (ଅ + ଭୂ + ଯ ) ଅମଙ୍ଗଳ, ଦୁର୍ଭାଗ୍ୟ, ଅସଭ୍ୟ, ବେଢଙ୍ଗୀ, ଅସୁଖ, ଅଶୁଭ, ( ବିଂ ) ଦୁର୍ଭାଗ୍ୟ, ଅକର୍ତ୍ତବ୍ୟ, ଅସାଧୁ ।

ଅଭବ୍ୟତା—ସ୍ତ୍ରୀ. ବି. ( ଅ + ଭବ୍ୟତା ) ଅଭଦ୍ରତା, ଅସଭ୍ୟତା ।

ଅଭାଗ—ପୁଂ. ବି. ବ. ବ୍ରୀ; (ଅ + ଭଜ୍ + ଅ ) ଅଂଶର ଅଭାବ, ବଣ୍ଟାର ଅଭାବ ।

ଅଭାଗା—ପୁଂ. ବିଂ. ଗ୍ରା. ହତଭାଗ୍ୟ, ଦୁରଦୃଷ୍ଟ, ପୋଡ଼ାକପାଳିଆ, ଦୀନ, ଦୁଃଖୀ, (ସ୍ତ୍ରୀ) ଅଭାଗୀ ।

ଅଭାଗିନୀ—ସ୍ତ୍ରୀ. ବିଂ. ହତଭାଗିନୀ, ହତ-ଭାଗ୍ୟା, ପୋଡ଼ାକପାଳୀ ।

ଅଭାଗୀ—ପୁଂ. ବିଂ. (ଅ + ଭାଗିନ୍)ମନ୍ଦ-ଭାଗ୍ୟ, ଭାଗ୍ୟହୀନ, ଭାଗ୍ୟବିହୀନ, ଅଂଶ-ରହିତ, (ସ୍ତ୍ରୀ) ଅଭାଗିନୀ ।

ଅଭାଗୀ—ଗ୍ରା. ସ୍ତ୍ରୀ. ବିଂ. ଅଭାଗିନୀ, ହତ-ଭାଗ୍ୟ, ପୋଡ଼ାକପାଳୀ ।

ଅଭାଗ୍ୟ—କ୍ଲୀ. ବି. ମନ୍ଦଭାଗ୍ୟ ଅଶୁଭା-ଦୃଷ୍ଟ, (ଗ୍ରା. ବିଂ.) ଅଭାଗା, ହତଭାଗା, ଦୁର୍ଭାଗ୍ୟ, ହତଭାଗ୍ୟ (ସ୍ତ୍ରୀ ଅଭାଗ୍ୟା ।

ଅଭାଗ୍ୟବନ୍ତ—ଗ୍ରା. ପୁଂ.ସ୍ତ୍ରୀ.ବିଂ. ଅଭାଗ୍ୟ-ବାନ୍, ମନ୍ଦଭାଗ୍ୟ ।

ଅଭାଜନ—କ୍ଲୀ.ବି. (ନ.ତତ୍ପୁ) ମନ୍ଦପାତ୍ର, ଅସତ୍‌ପାତ୍ର, ମୂଢ଼,ଅଯୋଗ୍ୟବ୍ୟକ୍ତି, (ତ୍ରି. ବିଂ)ଆଧାରରହିତ, ନିରାଶ୍ରୟ, ହୀନ ।

ଅଭାବଗ୍ରସ୍ତ—ତ୍ରି. ବିଂ. ( ୬ତତ୍ପୁ ) ଅଭାବରେ ପଡ଼ିଥିବା ।

ଅଭାବନା—ସ୍ତ୍ରୀ. ବି. (ନ.ତତ୍) ଭାବନାର ଅଭାବ, ଭାବନାହୀନତା, ଚିନ୍ତାରାହିତ୍ୟ ।

ଅଭାବପକ୍ଷେ—କ୍ରି. ବିଂ. ଏକାନ୍ତ ପକ୍ଷେ, ନ୍ୟୁନକଳ୍ପେ ।

ଅଭାବମୋଚନ—କ୍ଲୀ.ବି. (୬ତତ୍ )ଅଭାବର ଦୂରୀକରଣ, ଅଭାବଶୂନ୍ୟତା ସାଧନା

ଅଭାବିତ—ତ୍ରି. ବିଂ. (ନ.ତତ୍)ଅଚିନ୍ତିତ, ଅସମ୍ଭାବିତ, (ସ୍ତ୍ରୀ) ଅଭାବିତା ।

ଅଭାର୍ଯ୍ୟ—ପୁଂ.ବିଂ. ବି.ସ୍ତ୍ରୀ; (ଅ + ଭାର୍ଯ୍ୟା) ସ୍ତ୍ରୀହୀନ;ଅବିବାହିତ, ମୃତଦାର ।

ଅଭାବ—ପୁଂ.ବି. (ନ.ତତ୍) ଅ + ଭୂ + ଅ) ଅର୍ଥକୃଚ୍ଛ୍ର, ଅସତ୍ତା, ଅବିଦ୍ୟମାନତା, ନଥିବାଅବସ୍ଥା, ଅନୁପସ୍ଥିତି,ବିଉହୀନତା, ଅମେଳ, ଅସମ୍ଭବ, ମୃତ୍ୟୁ, ବିନାଶ, ସଂସର୍ଗାଭାବ, (ଗ୍ରା. ବିଂ) ସ୍ନେହବିହୀନ ।

ଅଭାବନୀୟ—ତ୍ରି. ବିଂ. (ନ.ତତ୍)(ଅ + ଭୂ + ଅନୀୟ ) ଅଚିନ୍ତନୀୟ, ଅଚିନ୍ତ୍ୟ, ଅସମ୍ଭାବନୀୟ, ଅନନୁମେୟ, ଅବୋଧ, ଅପ୍ରତ୍ୟାଶିତ, ଦୁର୍ବୋଧ, ଅକଳନୀୟ; (ସ୍ତ୍ରୀ) ଅଭାବନୀୟା ।

ଅଭାଷଣ—କ୍ଲୀ. ବି. ( ଅ + ଭାଷଣ ) ମୌନ, କଥା ନ କହିବା ।

ଅଭାଷା—ଗ୍ରା.ବି. (ଅ + ଭାଷା) କୁବାକ୍ୟ; ଅଶ୍ଳୀଳ ବାକ୍ୟ, ଗାଳି ।

ଅଭି—( ଅବ୍ୟ ) ସମନ୍ତାତ୍, ଚତୁର୍ଦ୍ଦିଗ, ଉଭୟାର୍ଥ ଲକ୍ଷଣ, ଧର୍ଷଣ, ପୂଜା,ଇଚ୍ଛା, ଚିହ୍ନସାଦୃଶ୍ୟ, ନିକଟଅଭିଳାଷ, ସୌମ୍ୟ, ସାମ୍ମୁଖ୍ୟ; ସ୍ୱରୂପତା, ଆଭିମୁଖ୍ୟ, (ଗ୍ରା) ଏହିକ୍ଷଣି, ବର୍ତ୍ତିମାନ ।

ଅଭିଆଡ଼ି ସୂତା— ଗ୍ରା. ବି. ଯେଉଁସୂତାକୁ ଅବିବାହିତା କନ୍ୟାମାନେ କାଟନ୍ତି ବା ବଳନ୍ତି । [ମନ୍ଦକାର୍ଯ୍ୟ ।

ଅଭିଆଣି—ଗ୍ରା.ବି.ବଧି ବା ଶିଡିବନ୍ଧିଭୂର୍ତ

ଅଭିକ—ତ୍ରି.ବିଂ. (ଅଭି + କମ୍ + ଦକ କାମୁକ, ମୈଥୁନେଚ୍ଛା ବିଶିଷ୍ଟ, ଲମ୍ପଟ, (ସ୍ତ୍ରୀ) ଅଭିକା ।

ଅଭିକାଙ୍କ୍ଷା-ସ୍ତ୍ରୀ.ବି. (ଅଭି + କାଙ୍କ୍ଷ + ଆ) ଅଭିଳାଷ,ବାଞ୍ଛା,ଇଚ୍ଛା,ଆକାଙ୍କ୍ଷା, (ବିଂ) ଅଭିକାଙ୍କ୍ଷିତ ।

ଅଭିକାଙ୍କ୍ଷୀ—ପୁଂ. ବିଂ. ଅଭିଳାଷଯୁକ୍ତ, (ସ୍ତ୍ରୀ) ଅଭିକାଙ୍କ୍ଷିଣୀ ।

ଅଭିକାମ—ତ୍ରି. ବିଂ. ( ଅଭି + କମ୍ + ଣିଚ୍ + ଅ) କାମମାନ, ଇଚ୍ଛୁକ, (ସ୍ତ୍ରୀ) ଅଭିକାମା ।

ଅଭିକୃଷ୍ଟ—ତ୍ରି.ବିଂ.(ଅଭି + କୃଷ୍ + ତ) ସମ୍ପନ୍ନ, ନିଯୁକ୍ତ, ସର୍ବଥାପ୍ରକାଶିତ ।

ଅଭିକ୍ରତୁ—ପୁଂ. ବି. ବଳବାନ୍, ଯେଉଁମାନେ ଯୁଦ୍ଧକର୍ମରେ ସମର୍ଥ ।

ଅଭିକ୍ରମ—ପୁଂ. ବି. (ଅଭି + କ୍ରମ୍ + ଭା. ଅ ) ଯୁଦ୍ଧାର୍ଥ ଶତ୍ରୁ ସମ୍ମୁଖକୁ ଗମନ, ଆରୋହଣ, ଆକ୍ରମଣ, ଆରମ୍ଭ, ଯୁଦ୍ଧଯାତ୍ରା, (ବିଂ) ଅଭିକ୍ରାନ୍ତ ।

ଅଭିକ୍ରାନ୍ତି—ସ୍ତ୍ରୀ.ବି. (ଅଭି + କ୍ରମ୍ + ତି) ଅଭିକ୍ରମ, ଉପକ୍ରମ ।

ଅଭିକ୍ରାନ୍ତୀ—ସ୍ତ୍ରୀ. ବିଂ. ଉପକ୍ରମକର୍ତ୍ତ୍ରୀ, ଉଦ୍‌ଯୋଗକର୍ତ୍ତ୍ରୀ ।

ଅଭିକ୍ରମଣ—ବି. କ୍ଲୀ. ସ୍ତ୍ରୀ ( ଅଭି + କ୍ରମ୍ + ଅନ)ଯୁଦ୍ଧାର୍ଥଶତ୍ରୁସମ୍ମୁଖକୁ ଗମନ ।

ଅଭିକ୍ରୋଶ—ପୁଂ.ବି.(ଅଭି + କ୍ରୁଶ୍ + ଅ) ଆକ୍ରୋଶ, ନିନ୍ଦା, (ବିଂ) ଅଭିକ୍ରୋଶକ ।

ଅଭିକ୍ଷତା—ପୁଂ. ବିଂ. (ଅଭି + କ୍ଷଦ୍ + କ. ତୃ ) ହିଂସୁକ, ଯେ ହିଂସା କରେ, (ସ୍ତ୍ରୀ) ଅଭିକ୍ଷତ୍ରୀ ।

ଅଭିକ୍ଷଦ—ତ୍ରି. ବିଂ. (ଅଭି + କ୍ଷଦ୍ + ଅ) ହିଂସୁକ, ଯେ ହିଂସା କରେ, ( ସ୍ତ୍ରୀ ) ଅଭିକ୍ଷଦା ।

ଅଭିକ୍ଷେପ—ପୁଂ. ବି. ( ଅଭି + କ୍ଷିପ୍ + ଭା. ଅ ) ପରାଜୟ, ଅଭିଭବ ।

ଅଭିଖ୍ୟା—ସ୍ତ୍ରୀ. ବି. ( ଅଭି + ଖ୍ୟା + ଅ. ଆ) ଖ୍ୟାତି, ଅଭିଧାନ, ଶୋଭା, କୀର୍ତ୍ତି, ନାମ, ମାହାତ୍ମ୍ୟ ପ୍ରଜ୍ଞା ।

ଅଭିଖ୍ୟାତା—ତ୍ରି.ବିଂ. ଯେ ଗମନ କରେ ଯେ ଦେଖେ, ଯେ କହେ, ( ସ୍ତ୍ରୀ ) ଅଭିଖ୍ୟାତ୍ରୀ ।

ଅଭିଗତ—ତ୍ରି. ବିଂ. (ଅଭି + ଗମ + ତ) ଆନୁକୂଲ୍ୟପ୍ରାପ୍ତ, ସେବିତ, ଅଭିମୁଖେ ଗତ, ସନ୍ନିହିତ, ସନ୍ନିକୃଷ୍ଟ ।

ଅଭିଗନ୍ତବ୍ୟ—ତ୍ରି ବିଂ. ଯାହା ନିକଟକୁ ଯିବାକୁ ହୁଏ, ଯାହାର୍ ସେବା କରିବାକୁ ହୁଏ ।

ଅଭିଗନ୍ତା—ପୁଂ.ବିଂ.ଯେ ଯୁଦ୍ଧଅଭିମୁଖେ ଗମନ କରେ, (ସ୍ତ୍ରୀ) ଅଭିଗନ୍ତ୍ରୀ ।

ଅଭିଗମ—ପୁଂ. ବି. (ଅଭି + ଗମ୍ + ଅ) ଆଶ୍ରୟ, ପ୍ରାପ୍ତି, ସେବା, ପାଖ୍ରେଚିଯିବା, ସଙ୍ଗମ,ନିକଟକୁଯିବା, (ବିଂ) ଅଭିଗତ ।

ଅଭିଗମନ—କ୍ଲୀ ବି. ଅଭିମୁଖେ ଗମନ, ଆନୁକୂଲ୍ୟେ ଗମନ, ପ୍ରାପ୍ତି, ଆଶ୍ରୟ, ସେବା (ବିଂ) ଅଭିଗମ୍ୟ ।

ଅଭିଗର—ପୁଂ. ବି. (ଅଭି + ଗୃ + ଅ) ସମୀପେ ସ୍ତବ (ବିଂ) ଅଭିଗୀତ ।

ଅଭିଗାମୀ—ପୁଂ.ବିଂ. ଅଭିଗମନକର୍ତ୍ତା, ଯେ ସ୍ତ୍ରୀ ସଂସର୍ଗ କରେ,ନିକଟଗମନକାରୀ (ସ୍ତ୍ରୀ) ଅଭିଗାମିନୀ,

ଅଭିଗୁପ୍ତି—ସ୍ତ୍ରୀ. ବି. (ଅଭି + ଗୁପ୍ + ତି) ଅଭିରକ୍ଷଣ ।

ଅଭିଗୂର୍ତ୍ତ—ତ୍ରି.ବିଂ. ଅଭି + ଗୁର୍ + ତ) ଉକ୍ତ, ଅଭ୍ୟୁଦ୍ୟତ ।

ଅଭିଗୂର୍ତ୍ତି—ତ୍ରି.ବିଂ.(ଅଭି + ଗୁର୍ + ତ) ହିଂସିତ, ଉଦ୍ୟତ, କଥିତ ।

ଅଭିଗୂର୍ତ୍ତି— ସ୍ତ୍ରୀ.ବି. (ଅଭି + ଗୁର୍ + ତି) ସଙ୍କଳ୍ପ, ଉଦ୍ୟମ ।

ଅଭିଗୃହୀତ—ତ୍ରି.ବିଂ.(ଅଭି + ଗ୍ରହ୍ + ମି. ତ) ଯୋଜିତ, ପୁଟୀକୃତ, ଲୁଣ୍ଠିତ ।

ଅଭିଗୃହୀତପାଣି—ବିଂ.ଆନୁକୂଲ୍ୟ ପାଇବାପାଇଁ ଯେ କୃତାଞ୍ଜଳି ହୋଇଥାଏ ।

ଅଭିଗେଷ୍ଟୁ—ତ୍ରି. ବିଂ. (ଅଭି + ଗୈ + ଇଷ୍ଟୁ ) ସମୀପେ ଗାୟକ, ଯେ ଭଲ ଗାଏ ।

ଅଭିଗୋପ୍ତା-ପୁଂ.ବିଂ.(ଅଭି + ଗୁପ୍ + ତୃ) ସକଳପ୍ରକାରରକ୍ଷକ,(ସ୍ତ୍ରୀ)ଅଭିଗୋପ୍ତ୍ରୀ ।

ଅଭିଗ୍ରସ୍ତ—ତ୍ରି. ବିଂ. (ଅଭି + ଗ୍ରସ୍ + ମିଂ ତ) ଆକ୍ରାନ୍ତ, କବଳୀକୃତ ।

ଅଭିଗ୍ରହ--ପୁଂ.ବି.(ଅଭି + ଗ୍ରହ୍ + ଭା.ଅ) ଆକ୍ରମଣ, ଯୁଦ୍ଧାର୍ଥ ଶତ୍ରୁନିକଟ ଗମନ, ନାଲିସ୍, ସ୍ପର୍ଦ୍ଧା, ଲୁଣ୍ଠନ, ଗୌରବ ।

ଅଭିଗ୍ରହଣ—କ୍ଲୀ.ବି.(ଅଭି + ଗ୍ରହ୍ + ଭା, ଅନ) ଲୁଟିକରିବା, ନାଲିସ୍, ଗୌରବ, ଯୁଦ୍ଧ, ଚୌର୍ଯ୍ୟ, ଲୁଣ୍ଠନ ।

ଅଭିଘର୍ଷଣ—କ୍ଲୀ ବି. (ଅଭି + ଘୃଷ୍ + ଅନ) ଦୁଇଟି ପଦାର୍ଥ ପରସ୍ପର ମର୍ଦ୍ଦନ, ଘଷିବା ।

ଅଭିଘାତ—ପୁଂ.ବି. (ଅଭି + ହନ୍ + ଭା. ଅ) ସମୂଳନାଶ,ଆକ୍ରମଣ,ପ୍ରହାର, ହତ୍ୟା, ଯାତନା, ଆଘାତ, ତାଡ଼ନା, ବିନାଶ ।

ଅଭିଘାତୀ—ପୁଂ.ବିଂ.ଆଘାତକାରୀ, ଆକ୍ରମଣକାରୀ, ନାଶକ, ହନ୍ତା, ଶତ୍ରୁତାପନ୍ନ, (ସ୍ତ୍ରୀ) ଅଭିଘାତିନୀ,(ବି) ଶତ୍ରୁ, ହତ୍ୟାକାରୀ ବ୍ୟକ୍ତି । [ ଶତ୍ରୁ ।

ଅଭିଘାତ୍ୟ—ପୁଂ. ବିଂ. ଆଘାତକାରୀ,

ଅଭିଘାର –ପୁଂ.ବି.(ଅଭି + ଘୃ + ଣି.ଅ) ହୋମ ଘୃତର ସଂସ୍କାରବିଶେଷ, ସିଚ୍ୟମାନ ଘୃତ, ହବନୀୟଦ୍ରବ୍ୟ ।

ଅଭିଚକ୍ଷଣ—ସ୍ତ୍ରୀ.ପୁଂ. ବିଂ. ଅତିବିଚକ୍ଷଣ, କର୍ମ୍ମକୁଶଳ, (ସ୍ତ୍ରୀ) ଅଭିଚକ୍ଷଣା ।

ଅଭିଚର--ପୁଂ.ବି.(ଅଭି + ଚର୍ + କ.ଅ) ଭୃତ୍ୟ, ଅନୁଚର, ସହାୟକ, ଗୃହକର, (ସ୍ତ୍ରୀ) ଅଭିଚାରୀ ।

ଅଭିଚରଣ—କ୍ଲୀ. ବି. ମାରଣାଦିକ୍ରିୟା, (ଗ୍ରା) ପ୍ରାଙ୍ଗଣ ।

ଅଭିଚାର—ପୁଂ.ବି. (ଅଭି + ଚର + ଭା. ଅ) ଧ୍ୱଂସ କର୍ମ୍ମ, ପରର ଅନିଷ୍ଟପାଇଁ ଅନୁଷ୍ଠିତ ତାନ୍ତ୍ରିକକର୍ମ୍ମବିଶେଷ,ମାରଣ, ମୋହନ, ବଶ, ଉଚାଟନ, ସ୍ତମ୍ଭନ, ବିଦ୍ୱେଷଣାଦି ।

ଅଭିଚାରକ-ପୁଂ.ବିଂ. (ଅଭି + ଚର + କ. ଅକ,)ଅଭିଚାରୀ,ଯେ ଅଭିଚାରକର୍ମ୍ମ କରେ, (ସ୍ତ୍ରୀ) ଅଭିଚାରିକା, (ସ୍ତ୍ରୀ) ।

ଅଭିଚାରକଳ୍ପ—ଅଥର୍ବବେଦୀୟ ଗ୍ରନ୍ଥବିଶେଷ ।

ଅଭିଚାରିତ- ପୁଂ.ବିଂ (ଅଭିଚାର + ଇତ) ଯାହାପ୍ରତି ଅଭିଚାରକର୍ମ୍ମ (ଗୁଣି,ଗାରଡ଼ି) କରା ହୋଇଅଛି (ସ୍ତ୍ରୀ) ଅଭିଚାରିତା ।

ଅଭିଚାରୀ—ପୁଂ.ବିଂ.(ଅଭି + ଚର୍ + କ. ଇନ୍) ଯେ ଅଭିଚାର କର୍ମ୍ମ କରେ (ବି ଗୁଣିଆ ବ୍ୟକ୍ତି (ସ୍ତ୍ରୀ) ଅଭିଚାରଣୀ ।

ଅଭିଜନ—ପୁଂ ବି.(ଅଭି + ଜନ୍ + ଣି + ଅ)କୁଳ,ବଂଶଧରଗଣ, ପୂର୍ବପୁରୁଷଗଣ, ଆଭିଜାତ୍ୟ, ଉଚ୍ଚବଂଶରେ ଜନ୍ମ, କୁଳଶ୍ରେଷ୍ଠ ବ୍ୟକ୍ତି, ଜନ୍ମଭୂମି, ପ୍ରସିଦ୍ଧି, ଖ୍ୟାତି, ବଦ୍‌ନାମ, ପରିଜନବର୍ଗ ।

ଅଭିଜନବାନ୍—ପୁଂ.ବିଂ. (ଅଭିଜନ + ବତ୍) ଉଚ୍ଚକୁଳୋଦ୍ଭବ, (ସ୍ତ୍ରୀ)ଅଭିଜନବତୀ ।

ଅଭିଜାତ—ତ୍ରି.ବିଂ(ବି.ସ୍ତ୍ରୀ) (ଅଭିଜନ + କ.ତ) କୁଳୀନ, ପଣ୍ଡିତ, ବୁଧ, ନ୍ୟାଯ୍ୟ, ଶ୍ରେଷ୍ଠ, ମନୋହର, ମଧୁର, ସୁଶ୍ରୀ; (ସ୍ତ୍ରୀ) ଅଭିଜାତା ।

ଅଭିଜୟ—ପୁଂ.ବି. (ଅଭି + ଜୟ)ସମ୍ପୂର୍ଣ୍ଣ ଜୟ, ଦେଶଜୟ ।

ଅଭିଜାତତନ୍ତ୍ର—କ୍ଲୀ. ବି. ପ୍ରଧାନ ବ୍ୟକ୍ତିମାନଙ୍କ ହସ୍ତଗତରାଜ୍ୟଶାସନ ।

ଅଭିଜାତତ୍ୱ—କ୍ଲୀ. ବି. (ଅଭିଜାତ + ଭା. ତ୍ୱ) ଅଭିଜାତର ଭାବ ବା ଧର୍ମ୍ମ; ଆଭିଜାତ୍ୟ,କୌଳିନ୍ୟ, ପାଣ୍ଡିତ୍ୟ ।

ଅଭିଜାତି—ସ୍ତ୍ରୀ. ବି. ପ୍ରଶସ୍ତବଂଶଜନ୍ମ, (ବିଂ) ଉତ୍କୃଷ୍ଟଜନ୍ମା, ସ ର୍ଥକଜନ୍ମା ।

ଅଭିଜିତ୍—ସ୍ତ୍ରୀ. ବି. ଉତ୍ତରଷାଢ଼ା ଶ୍ରବଣାର ମଧ୍ୟ ନକ୍ଷତ୍ରବିଶେଷ, (ପୁଂ. ବି.) ଯଦୁବଂଶୀୟ ଭବଙ୍କର ପୁତ୍ର ।

ଅଭିଜିତ—ବି.ଅର୍ଦ୍ଧରାତ୍ରସମ୍ବନ୍ଧୀୟମୁହୂର୍ତ୍ତ ।

ଅଭିଜିତି—ସ୍ତ୍ରୀ. ବି.(ଅଭି + ଜି + ଭା.ତି) ଅଭିଜୟ, ସର୍ବପ୍ରକାର ଜୟ ।

ଅଭିଜ୍ଞ—ପୁଂ.ବିଂ. (ଅଭି + ଜ୍ଞା + କ.ଅ) ଚତୁର, ପଣ୍ଡିତ, ଜ୍ଞାନୀ, ନିପୁଣ, କୌଣସି ବିଷୟରେ ପାରଙ୍ଗମ, ଅନୁଭବୀ, ବହୁଦର୍ଶୀ (ସ୍ତ୍ରୀ) ଅଭିଜ୍ଞା ।

ଅଭିଜ୍ଞତା—ସ୍ତ୍ରୀ.ବି. (ଅଭିଜ୍ଞ + ଭା. ତା) ନିପୁଣତା, ବହୁଦର୍ଶିତା, ଜ୍ଞାନପଣ ।

ଅଭିଜ୍ଞା—ସ୍ତ୍ରୀ.ବି.(ଅଭିଜ୍ଞ + ଆ)ପ୍ରଥମଜ୍ଞାନ, ଆଦ୍ୟଜ୍ଞାନ, ସ୍ମରଣ, (ବିଂ) ଜ୍ଞାନବତୀ, ପ୍ରବୀଣା ।

ଅଭିଜ୍ଞାତ—ତ୍ରି.ବିଂ.(ଅଭି + ଜ୍ଞା + କ୍ମ,ତ) ପ୍ରତୀତ,ଯେଉଁ ବିଷୟରେ ପୂର୍ବରୁ ସଂସ୍କାର ଜନ୍ମିଅଛି, ଅନୁସନ୍ଧାନଲବ୍ଧ ଅନୁଭୂତ ।

ଅଭିଜ୍ଞାତା—ପୁଂ.ବିଂ. (ଅଭି + ଜ୍ଞା + କ, ତୃ ) ଅଭିଜ୍ଞ, (ସ୍ତ୍ରୀ) ଅଭିଜ୍ଞାତ୍ରୀ ।

ଅଭିଜ୍ଞାନ—ବି. (ଅଭି + ଜ୍ଞା + ଭା. ଅନ) ଚିହ୍ନ, ସ୍ମାରକ ବସ୍ତୁ, ସନ୍ତକ ।

ଅଭିଜ୍ଞାନପତ୍ର—କ୍ଲୀ.ବି.(ଅଭିଜ୍ଞାନ + ପତ୍ର) ଯେଉଁ ପତ୍ରରୁ ଲୋକଙ୍କୁ ବିଶେଷଭାବେ ଜଣାଯାଏ, ସାର୍ଟିଫିକେଟ ।

ଅଭିଜ୍ଞାନଶକୁନ୍ତଳ—କ୍ଲୀ. ବି. (ବି. ସ୍ତ୍ରୀ) କାଳିଦାସକୃତ ନାଟକଗ୍ରନ୍ଥବିଶେଷ ।

ଅଭିଜ୍ଞାନଗ୍ରନ୍ଥ—ବି. ଯେଉଁ ଗ୍ରନ୍ଥରୁ ଲୋକ ଖୋଜିବା ବିଷୟ ପାଏ ( ଅଭିଧାନ ) ।

ଅଭିଜ୍ଞାପକ—ପୁଂ. ବିଂ. (ଅଭି + ଜ୍ଞା + ଣିଚ୍ କ. ଅକ) ବୋଧକ, ସ୍ମାରକ, ଯେ ବୋଧ କରାଏ, (ସ୍ତ୍ରୀ) ଅଭିଜ୍ଞାପିକା ।

ଅଭିଜ୍ଞାପନ—କ୍ଲୀ.ବି (ଅଭି + ଜ୍ଞା + ଣିଚ୍ + ଭା. ଅନ ) ସ୍ମରଣ କରାଇବା ।

ଅଭିଜ୍ଞାପିତ—ତ୍ରି. ବିଂ. (ଅଭି + ଜ୍ଞାପିତ) ଯେଉଁ ବିଷୟ କୌଣସି ଲୋକଦ୍ୱାରା ଅନ୍ୟର ସ୍ମରଣ ପଥକୁ ଅଣାଯାଏ ।

ଅଭିଜ୍ଞୁ—ତ୍ରି. ବିଂ. (ଅଭି + ଜ୍ଞୁ) ଯେ ସମ୍ମୁଖରେ ଆଣ୍ଠୁ ରଖି ବସିଥାଏ ।

ଅଭିଜ୍ଞେୟ—ତ୍ରି. ବିଂ (ଅଭି + ଜ୍ଞେୟ) ଯାହା ଚେତାଇ ଦିଆଯିବା ଯୋଗ୍ୟ ।

ଅଭିତରାଂ—(ଅବ୍ୟ) ଅତ୍ୟନ୍ତ ସମ୍ମୁଖୀନ ହୋଇ,ଅଳ୍ପ ଅଳ୍ପ ସମ୍ମୁଖୀନ ହୋଇ ।

ଅଭିତଃ—(ଅବ୍ୟ) ସାମୀପ୍ୟ, ସମ୍ମୁଖରେ ନିକଟରେ,ଆଭିମୁଖ୍ୟ, ଶୀଘ୍ରତା,ସାକଲ୍ୟ, ଉଭୟତଃ, ସମସ୍ତ ପ୍ରକାରରେ ।

ଅଭିତପ୍ତ—ତ୍ରି.ବିଂ (ଅଭି + ତପ୍ + କ. ତ ) ଅଗ୍ନିସନ୍ତପ୍ତ, ବିମର୍ଷ, ଦୁଃଖିତ (ସ୍ତ୍ରୀ) ଅଭିତପ୍ତା ।

ଅଭିତାପ—ପୁଂ.ବ. (ଅଭି + ତପ୍ + ଘ.ଅ) ଅତିଶୟସନ୍ତାପ, ପ୍ରବଳ ଉତ୍ତାପ, ମନସ୍ତାପ, ଦୁଃଖ, ଶୋକ, ଉଦ୍‌ବେଗ ।

ଅଭିତାମ୍ର—ପୁଂ.ବ. (ଅଭି + ତମ୍ + ର) ଅତ୍ୟନ୍ତ ତାମ୍ରବର୍ଣ୍ଣ (ବିଂ) ଅତିଶୟ ତାମ୍ରବର୍ଣ୍ଣବିଶିଷ୍ଟ ।

ଅଭିତୋମୁଖ—ତ୍ରି. ବିଂ. ଚତୁର୍ଦ୍ଦିଗରେ ଯାହାର ମୁଣ୍ଡ, ଯେପରି ବ୍ରହ୍ମା ।

ଅଭିଦର୍ଶନ—କ୍ଲୀ.ବ. (ଅଭି + ଦୃଶ + ଘ. ଅନ) ଆଭିମୁଖ୍ୟରେ ଦର୍ଶନ, ସମ୍ମୁଖରେ ଦର୍ଶନ ।

ଅଭିଦ୍ୟୋତିତ—ତ୍ରି. ବିଂ. (ଅଭି + ଦ୍ୟୁତ + କ. ତ) ପ୍ରକାଶିତ, ଉଲ୍ଲସିତ, ଶୋଭିତ, (ସ୍ତ୍ରୀ) ଅଭିଦ୍ୟୋତିତା ।

ଅଭିଦ୍ରବ—ପୁଂ. ବ. (ଅଭି + ଦ୍ରୁ + ଅ) ଶୀଘ୍ର ଗମନ, ବେଗରେ ଯିବା ।

ଅଭିଦ୍ରବଣ—କ୍ଲୀ. ବ. (ଅଭି + ଦ୍ରୁ + ଘ. ଅନ) ବେଗଗମନ, ଦ୍ରୁତରେ ଯିବା ।

ଅଭିଦ୍ରା—ସ୍ତ୍ରୀ. ବ. (ଅଭି + ଦ୍ରା + ଅ) ପଳାୟନ, ଅଭିଧାରୂପ ସ୍ମୃତି ।

ଅଭିଦମ୍ଭୁ, ଅଭିଧିପ୍ସୁ—ତ୍ରି.ବିଂ.(ଅଭି + ଦମ୍ଭ + ସନ୍.ଉ) ପରାଭବର ଇଚ୍ଛାଯୁକ୍ତ ।

ଅଭିଦ୍ରୁତ—ତ୍ରି.ବିଂ.(ଅଭି + ଦ୍ରୁ + କ ତ) ବେଗେ ପଳାୟିତ ।

ଅଭିଦ୍ରୁହ—ତ୍ରି. ବ. (ଅଭି + ଦ୍ରୁହ୍ + କ୍ୱିପ୍) ଅପକାରକ ।

ଅଭିଦ୍ରୋହ—ବ. (ଅଭି + ଦ୍ରୁହ + ଘ ଅ) ଅନିଷ୍ଟଚିନ୍ତା, ମନ୍ଦକାମନା, ଆକ୍ରୋଶ, ଅପକାର ।

ଅଭିଧର୍ମପିଟକ—ବ. ବୌଦ୍ଧଧର୍ମର ଗ୍ରନ୍ଥବିଶେଷ ।

ଅଭିଧର୍ଷଣ—କ୍ଲୀ.ବ. (ଅଭି + ଧୃଷ୍ + ଘ, ଅନ) ନିଷ୍ପୀଡ଼ନ, ଆସ୍ଫାଳନ, ଅଯଥା ଅତ୍ୟାଚାର, ଭୂତାଦିର ଆବେଶ (ପୁଂ) ରାକ୍ଷସ ।

ଅଭିଧା—ସ୍ତ୍ରୀ.ବ.(ଅଭି + ଧା + ଘ.ଅ + ଆ) କଥନ, ଶବ୍ଦନିଷ୍ଠ ଅର୍ଥବୋଧକ ଶକ୍ତିବିଶେଷ, ନାମ, ସଂଜ୍ଞା ।

ଅଭିଧାନ—କ୍ଲୀ. ବ. (ଅଭି + ଧା + ଘ. ଅନ) କଥନ, ଶବ୍ଦର ଅର୍ଥପ୍ରକାଶକ ଗ୍ରନ୍ଥବିଶେଷ ।

ଅଭିଧାନଚିନ୍ତାମଣି—ଜୈନାଚାର୍ଯ୍ୟ ହେମଚନ୍ଦ୍ରସଙ୍କଳିତ ଶବ୍ଦାର୍ଥବୋଧକ ଗ୍ରନ୍ଥବିଶେଷ ।

ଅଭିଧାନରତ୍ନମାଳା—ବ. ହଳାୟୁଧକୃତ ଶବ୍ଦକୋଷ ।

ଅଭିଧାମା—ସ୍ତ୍ରୀ.ବ. ରଜ୍ଜୁ, ଦଉଡ଼ି, ଦଉଡ଼ି ବାନ୍ଧି ସମସ୍ତ ପଦାର୍ଥ ସମ୍ମୁଖରେ ରଖାଯାଏ ବୋଲି ଏହାର ନାମ ଅଭିଧାମା ।

ଅଭିଧାବନ—କ୍ଲୀ.ବ.(ଅଭି + ଧାବ୍ + ଘ. ଅନ) ପଶ୍ଚାଦ୍ଧାବନ, ଅନୁସରଣ ।

ଅଭିଧାମୂଳା—ସ୍ତ୍ରୀ. ବ. ଅଳଙ୍କାରମତେ ବ୍ୟଞ୍ଜନାବୃତ୍ତିବିଶେଷ ।

ଅଭିଧାୟକ—ତ୍ରି. ବିଂ. ବାଚକ ଶବ୍ଦ, ଶବ୍ଦର ଉଚ୍ଚାରକ ।

ଅଭିଧାୟୀ—ପୁଂ. ବିଂ. ଶବ୍ଦପ୍ରୟୋଗକର୍ତ୍ତା, (ସ୍ତ୍ରୀ) ଅଭିଧାୟିନୀ ।

ଅଭିଧାବକ—ପୁଂ. ବିଂ. ସମ୍ମୁଖଦେଇ ବେଗେ ଯିବା ଲୋକ, (ସ୍ତ୍ରୀ) ଅଭିଧାବକା ।

ଅଭିଧିତ୍ସା—ସ୍ତ୍ରୀ.ବ. (ଅଭି + ଧା + ସନ୍ + ଅ + ଆ) କହିବା ନିମିତ୍ତଇଚ୍ଛା, ବିବକ୍ଷା

ଅଭିଧୃଷ୍ଣୁ—ତ୍ରି. ବିଂ. ନିଷ୍ପୀଡ଼ନକାରୀ, ଆସ୍ଫାଳନକର୍ତ୍ତା ।

ଅଭିଧେୟ—କ୍ଲୀ. ବ. (ଅଭି + ଧା + ଣ, ଯ) ନାମ, ଶବ୍ଦର ଅର୍ଥ, ସଂଜ୍ଞା, (ବିଂ) (ଅଭି + ଧା + ର୍ମ, ଯ) ବକ୍ତବ୍ୟ, ପ୍ରତିପାଦ୍ୟ, ବାଚ୍ୟ, (ସ୍ତ୍ରୀ) ଅଭିଧେୟା ।

ଅଭିଧ୍ୟା—ସ୍ତ୍ରୀ.ବ (ଅଭି + ଧ୍ୟୈ + ଘ.ଅ + ଆ) ଇଚ୍ଛା, ଅନ୍ୟର ପଦାର୍ଥ ପ୍ରତି ଲୋଭ, ଲାଳସା, ଚିନ୍ତା, ପରଧନରେ ଇଚ୍ଛା ।

ଅଭିଧ୍ୟାତବ୍ୟ—ତ୍ରି. ବିଂ. (ଅଭି + ଧ୍ୟୈ + ତବ୍ୟ) ସର୍ବଦାଚିନ୍ତନୀୟ ।

ଅଭିଧ୍ୟାନ—କ୍ଲୀ.ବ. (ଅଭି + ଧ୍ୟୈ + ଘ. ଅନ) ପ୍ରଗାଢ଼ଚିନ୍ତା, ଅଭିନିବେଶ, ବିଷୟପ୍ରାର୍ଥନା, ଅଭିଲାଷ ।

ଅଭିନ—ଗ୍ରା.ବ. (ନାମ) ଅଭିନ୍ନର ଡାକନାମ, (ବିଂ) ଅଭିନ୍ନ ।

ଅଭିନନ୍ଦ—ତ୍ରି.ବିଂ. (ଅଭି + ନନ୍ଦ୍ + ର୍ମ, ତ) ଆନନ୍ଦ, ସର୍ବଆନନ୍ଦ, ବନ୍ଦିତ ।

ଅଭିନନ୍ଦ—ପୁଂ. ବ.(ଅଭି + ନନ୍ଦ୍ + ଘ, ଅ) ସନ୍ତୋଷ, ଆନନ୍ଦ, ପ୍ରଶଂସା ।

ଅଭିନନ୍ଦନ—କ୍ଲୀ.ବ. ଅଭି + ନନ୍ଦ୍ + ଘ, ଅନ) ସନ୍ତୋଷ, ଅନୁମୋଦନ, ଆହ୍ଲାଦ, ପ୍ରକାଶ, ସ୍ତବ, ଅଭିନନ୍ଦନପତ୍ର, (ବିଂ) ସର୍ବତୋଭାବ ଆନନ୍ଦଜନକ, (ସ୍ତ୍ରୀ) ଅଭିନନ୍ଦନା ।

ଅଭିନନ୍ଦନପତ୍ର—କ୍ଲୀ. ବ. (କ. ଧା) ସନ୍ତୋଷସହକାରେ ଗୁଣକୀର୍ତ୍ତିନାଦିସମ୍ବଳିତ ପତ୍ର ।

ଅଭିନନ୍ଦା—ବ. (ଅଭି + ନନ୍ଦ୍ + ଘ. ଅ + ଆ) ଇଚ୍ଛା, ଆଶା ।

ଅଭିନନ୍ଦନୀୟ—ତ୍ରି. ବିଂ. (ଅଭି + ନନ୍ଦ୍ + ଣିଚ୍. ଅନୀୟ) ପ୍ରଶଂସନୀୟ, ଉତ୍ସାହଦ୍ୱାରା ପ୍ରବର୍ତ୍ତନୀୟ ।

ଅଭିନନ୍ଦିତ—ତ୍ରି.ବିଂ. (ଅଭି + ନନ୍ଦ୍ + ଣିଚ୍ + ର୍ମ. ତ) ସମ୍ୟକ୍‌ତୋଷିତ, ଯାହାର ଅଭିନନ୍ଦନ କରାହୋଇଅଛି, (ସ୍ତ୍ରୀ) ଅଭିନନ୍ଦିତା ।

ଅଭିନନ୍ଦୀ—ପୁଂ.ବିଂ. (ଅଭି + ନନ୍ଦ୍ + ଇନ୍) ସନ୍ତୋଷଶୀଳ, ଅନୁମୋଦନଦ୍ୱାରା ଉତ୍ସାହବର୍ଦ୍ଧକ, (ସ୍ତ୍ରୀ) ଅଭିନନ୍ଦିନୀ ।

ଅଭିନନ୍ଦ୍ୟ—ସ୍ତ୍ରୀ. ବିଂ. (ଅଭିନନ୍ଦ୍ + ଯ) ପ୍ରଶଂସନୀୟ. (ଅବ୍ୟ) ପ୍ରଶଂସା କରି ।

ଅଭିନମ୍ର—ତ୍ରି.ବିଂ. (ଅଭି + ନମ୍ର) ଅଭିମୁଖରେ ନତ ।

ଅଭିନୟ—ପୁଂ.ବ. (ଅଭି + ନୀ + ଘ.ଅ) ନାଟକପ୍ରଦର୍ଶନ (ବିଂ) ଅଭିନୀତ, ଅଙ୍ଗଚାଳନାଦ୍ୱାରା ମନୋଭାବ ବ୍ୟକ୍ତକରିବା, ରସଭାବାଦିବ୍ୟଞ୍ଜକ ଚେଷ୍ଟାବିଶେଷ ।

ଅଭିନବ—ତ୍ରି. ବିଂ. (ଅଭି + ନୁ + ର୍ମ, ଅ) ଅଦୃଷ୍ଟପୂର୍ବ, ତାଟକା, ବିସ୍ମୟଜନକ, ନବ, ନୂତନ, ନବୀନ, (ସ୍ତ୍ରୀ) ଅଭିନବା, ପୁଂ. ବ. (ଅଭି + ନୁ + ଘ. ଅ) ସ୍ତବ ।

ଅଭିନବଚିନ୍ତାମଣି—କ୍ଲୀ. ବି. ବୈଦ୍ୟକ-ଗ୍ରନ୍ଥବିଶେଷ ।

ଅଭିନବତାମରସ—କ୍ଲୀ.ବି.ବାରଅକ୍ଷରର ବୃତ୍ତବିଶେଷ, ନୂତନ ପଦ୍ମ ।

ଅଭିନବାଭିନବ—ବି°. ଅତ୍ୟନ୍ତ ନୂତନ, ଅତ୍ୟାଶ୍ଚର୍ଯ୍ୟ ।

ଅଭିନହନ—କ୍ଲୀ.ବି.(ଅଭି + ନହ + ଭା. ଅନ) ସମୀପେ ବନ୍ଧନ, ଦୃଢ଼ବନ୍ଧନ ।

ଅଭିନିଧନ—ବି. ବି°. ନାଶୋନ୍ମୁଖ, ମରଣୋନ୍ମୁଖ ।

ଅଭିନିଧାନ—କ୍ଲୀ. ବି. (ଅଭି + ନି + ଧା + ଅନ) ମୁହଁକରି ରଖିବା ।

ଅଭିନିର୍ମୁକ୍ତ—ପୁଂ.ବି°.(ଅଭି + ନିର + ମୁଚ୍ + ତ)ପରିତ୍ୟକ୍ତ,ମୁକ୍ତ.ସାୟଂକାଳ-ପର୍ଯ୍ୟନ୍ତଶୟନକାରୀ,(ସ୍ତ୍ରୀ) ଅଭିନିର୍ମୁକ୍ତା ।

ଅଭିନିର୍ଯ୍ୟାଣ—କ୍ଲୀ.ବି.(ଅଭି + ନିର୍ + ଯା + ଭା, ଅନ) ଯୁଦ୍ଧାର୍ଥ ଅନୁକୂଳ, ଯୁଦ୍ଧଯାତ୍ରା, ସୈନ୍ୟଯାତ୍ରା ।

ଅଭିନିର୍ବୃତ୍ତ—ବି. ବି°. (ଅଭି + ନିର୍ + ବୃତ୍ + ତ) ନିଷ୍ପନ୍ନ, ସିଦ୍ଧ, (ସ୍ତ୍ରୀ) ଅଭି-ନିର୍ବୃତ୍ତି ।

ଅଭିନିବର୍ତ୍ତି – ପୁଂ. ବି. ସମ୍ମୁଖେ ନିବୃତ୍ତି ।

ଅଭିନିବିଷ୍ଟ—ବି ବି°. (ଅଭି + ନି + ବିଶ୍ + କ,ତ) ଅନ୍ତର୍ଭାବିତ, ମନୋଯୋଗୀ, ପ୍ରବିଷ୍ଟ, ଆଗ୍ରହଯୁକ୍ତ, ଚିନ୍ତାରେ ବ୍ୟଗ୍ର, (ବି) ଅଭିନିବେଶ ।

ଅଭିନିବେଶ—ପୁଂ.ବି.(ଅଭି + ନି + ବିଶ୍ + ଭା,ଅ) ଆସକ୍ତି, ଶାସ୍ତ୍ରାଦିରେ ପ୍ରବେଶ, ନିବନ୍ଧ, ପ୍ରଣିଧାନ,ମନୋଯୋଗ,ଆଗ୍ରହ, ଆବେଗ, (ସ୍ତ୍ରୀ) ଅଭିନିବେଶା ।

ଅଭିନିବେଶୀ—ପୁଂ. ବି°. ( ଅଭିନିବେଶ + ଇନ୍ ) ଆସକ୍ତିଯୁକ୍ତ, ମନୋଯୋଗୀ, ଅନୁରାଗୀ ।

ଅଭିନିଷ୍କାରୀ – ପୁଂ.ବି°,ସମ୍ମୁଖେ ନିଃଶେଷ-ରୂପେ କାର୍ଯ୍ୟକାରୀ,(ସ୍ତ୍ରୀ)ଅଭିନିଷ୍କାରିଣୀ ।

ଅଭିନିଷ୍କ୍ରମ—ପୁଂ. ବି. (ଅଭି + ନିସ୍ + କ୍ରମ୍ + ଅ) ଅଭିମୁଖେ ଗମନ, (ବି°) ଅଭିନିଷ୍କ୍ରାନ୍ତ ।

ଅଭିନିଷ୍କ୍ରମଣ—କ୍ଲୀ. ବି. ନିଷ୍କ୍ରମଣ, ବହିର୍ଗମନ, ସବେଗେ ନିର୍ଗମନ ।

ଅଭିନିଷ୍କ୍ରାନ୍ତ—ବି.ବି°. ନିଷ୍କ୍ରାନ୍ତ,ନିର୍ଗତ, ଶୀଘ୍ରରେ ବାହାରକୁ ଯାଇଥିବା, (ସ୍ତ୍ରୀ) ଅଭିନିଷ୍କ୍ରାନ୍ତା ।

ଅଭିନିଷ୍ଠାନ, ଅଭିନିସ୍ତାନ—ପୁଂ.ବି. (ଅଭି + ନିସ୍ + ସ୍ତନ + ଅ)ବିସର୍ଜନୀୟ,ବିସର୍ଗ, ବର୍ଣ୍ଣ ।

ଅଭିନିଷ୍ପତନ—କ୍ଲୀ.ବି. (ଅଭି + ନିସ୍ + ପତ୍ + ଭା,ଅନ) ଅଭିମୁଖେ ନିର୍ଗମନ, ସମ୍ମୁଖେ ଗମନ, ଅଭିପତନ, ଯୁଦ୍ଧାର୍ଥେ ସବେଗେ ବାହାରିବା ।

ଅଭିନିଷ୍ପତ୍ତି—ସ୍ତ୍ରୀ.ବି.(ଅଭି + ନିସ୍ + ପଦ + ଭା.ତି) ସିଦ୍ଧି, ସମାପ୍ତି, ଉତ୍ପତ୍ତି, (ବି°)ଅଭିନିଷ୍ପନ୍ନ, ସମ୍ପନ୍ନ, ସିଦ୍ଧ, ନିଷ୍ପନ୍ନ ।

ଅଭିନୀତ—ବି.ବି°. (ଅଭି + ନୀ + ର୍ମ.ତ) ଭୂଷିତ, ସଜ୍ଜିତ, ନ୍ୟାୟଯୁକ୍ତ, ବିନୀତ, ଅଭିନୀତ, କଷ୍ଟସହିଷ୍ଣୁ ।

ଅଭିନୀତି—ସ୍ତ୍ରୀ.ବି. (ଅଭି + ନୀ + ଭା.ତି) ଅଭିନୟ, ପ୍ରିୟବାକ୍ୟାଦିପ୍ରୟୁକ୍ତ ଯୁକ୍ତି, ଅନୁକରଣ ।

ଅଭିନେତବ୍ୟ—ବି.ବି°.(ଅଭି + ନୀ + ତବ୍ୟ) ଦେହଚେଷ୍ଟାଦିଦ୍ୱାରା ଅନୁକରଣୀୟ, ସମ୍ମୁଖେ ପ୍ରାପଣୀୟ ।

ଅଭିନେତା—ପୁଂ. ବି. (ଅଭି + ନୀ + କ. ତୃ) ଅଭିନୟକାରୀ, ଯାତ୍ରାକାରୀ, (ସ୍ତ୍ରୀ) ଅଭିନେତ୍ରୀ, ପୁଂ.ବି ନଟ । [ ମାନେ ।

ଅଭିନେତୃବର୍ଗ—ବି. ୬ତତ୍)ଅଭିନେତା·

ଅଭିନେତ୍ରୀ—ସ୍ତ୍ରୀ. ବି° (ଅଭିନେତୃ + ଈ) ଅଭିନୟକାରିଣୀ, (ବି) ଅଭିନୟକାରିଣୀ ନଟୀ ।

ଅଭିନେୟ—ବି.ବି°(ଅଭି + ନୀ + ର୍ମ.ଯ) ଦେହାଦିଚେଷ୍ଟାଦ୍ୱାରା, ଅନୁକାର୍ଯ୍ୟ, ଅଭି-ମୁଖେ ପ୍ରାପଣୀୟ, ନାଟ୍ୟ, ( ସ୍ତ୍ରୀ ) ଅଭିନେୟା ।

ଅଭିନ୍ନ—ବି. ବି° ( ଅ + ଭିନ୍ନ ) ଅଚ୍ଛିନ୍ନ, ପ୍ରଭେଦରହିତ, ଅବିଦଳିତ, ଅପୃଥକ୍, ଏକୀଭୂତ (ସ୍ତ୍ରୀ) ଅଭିନ୍ନା ।

ଅଭିନ୍ନପୁଟ—ପୁଂ. ବି. ନବପଲ୍ଲବ,ମଧୁକ-ପୁଷ୍ପ, ମୁକୁଳ, ପଦ୍ମ ।

ଅଭିନ୍ନହୃଦୟ—କ୍ଲୀ. ବି. ଏକରୂପ ଚିତ୍ତ, ବି° ( ବି. ସ୍ତ୍ରୀ. ) ଏକଚିତ୍ତ, ସମପ୍ରାଣ, ସହୃଦୟ, ( ସ୍ତ୍ରୀ ) ଅଭିନ୍ନହୃଦୟା ।

ଅଭିନ୍ୟାସ—ପୁଂ. ବି (ଅଭି + ନି + ଅସ + ଅ)ସନ୍ନିପାତଜ୍ୱର,ମୂର୍ଚ୍ଛାଦିଯୁକ୍ତ ଜ୍ୱର ।

ଅଭିପତ୍ତି—ସ୍ତ୍ରୀ. ବି (ଅଭି + ପଦ୍ + ତି) ନିଷ୍ପତ୍ତି ।

ଅଭିପନ୍ନ—ବି. ବି° ( ଅଭି + ପଦ୍ + ର୍ମ.ତ ) ଅପରାଧଯୁକ୍ତ, ବିପଦ୍‌ଗ୍ରସ୍ତ, ସ୍ୱୀକୃତ, ପୀଡ଼ିତ, ପଳାୟିତ, ସମ୍ମୁଖେ ଗତ,ଅଭିଭୂତ,ବିପନ୍ନ,(ସ୍ତ୍ରୀ) ଅଭିପନ୍ନା ।

ଅଭିପିତ୍ୱ—କ୍ଲୀ. ବି ଅଭିପତନ, ସମ୍ମୁଖେ ପତନ, ଆଗମନକାଳ, ଅଭିମତପ୍ରାପ୍ତି ।

ଅଭିପୁଷ୍ପ—ପୁଂ. ବି. ଚତୁର୍ଦ୍ଦିଗରେ ପୁଷ୍ପ-ବିଶିଷ୍ଟ ବୃକ୍ଷ ।

ଅଭିପୂଜିତ—ବି. ବି° ( ଅଭି + ପୂଜ୍ + ର୍ମ.ତ )ସମ୍ୟକ୍ ପୂଜିତ ।

ଅଭିପୂରଣ—କ୍ଲୀ. ବି ( ଅଭି + ପୂର୍ + ଅନ) ଚତୁର୍ଦ୍ଦିଗରେ ପୂରଣ ।

ଅଭିପ୍ରଜ୍ଞା—ସ୍ତ୍ରୀ.ବି. ସର୍ବଦା ଚିନ୍ତାକରିବା ।

ଅଭିପ୍ରଣୟ—ବି (ଅଭି + ପ୍ରଣୟ) ସ୍ନେହ, ଅନୁଗ୍ରହ ।

ଅଭିପ୍ରଣୟନ—କ୍ଲୀ. ବି ( ଅଭି + ପ୍ର + ନୀ + ଅନ ) ବେଦବିଧିରେ ଅଗ୍ନି-ସଂସ୍କାର ।

ଅଭିପ୍ରଣୀତ—ବି.ବି° (ଅଭି + ପ୍ର + ନୀ + ର୍ମ.ତ ) ସର୍ବଦାସଂସ୍କୃତ, ଯଥାବିଧିରେ ସଂସ୍କାର କରାଯାଇଥିବା, ଆରାଧିତ, (ସ୍ତ୍ରୀ) ଅଭିପ୍ରଣୀତା ।

ଅଭିପ୍ରୟାଣ—କ୍ଲୀ. ବି (ଅଭି + ପ୍ର + ଯା ଭା.ଅନ ) ଅଭିମୁଖରେ ଗମନ, ଅଭି-ପ୍ରସ୍ଥାନ ।

ଅଭିପ୍ରବର୍ତ୍ତିନ—କ୍ଲୀ. ବି. ଘରଆଡ଼େ ମନ, ଘରଆଡ଼େ ମନ ଲାଗିବା ।

ଅଭିପ୍ରାତର୍—ଅବ୍ୟ. ଅତିପ୍ରଭାତ, ବଡ଼ସକାଳ ।

ଅଭିପ୍ରାପ୍ତି—ସ୍ତ୍ରୀ. ବ. ଅଭିମୁଖେ ପ୍ରାପ୍ତି ।

ଅଭିପ୍ରାୟ—ପୁଂ.ବ.(ଅଭି + ପ୍ର + ଇ + ଭା.ଅ) ଛନ୍ଦ, ଆଶୟ, ଭାବ, ଆକୂତ-ତାତ୍ପର୍ଯ୍ୟ, ମତ, ମନୋଗତଭାବ, ଇଚ୍ଛା, ମାନସ, ଉଦ୍ଦେଶ୍ୟ ।

ଅଭିପ୍ରାୟଣ—ଗ୍ରା.ବ.ଉଦ୍ଦେଶ୍ୟକୁ କାର୍ଯ୍ୟରେ ଲଗାଇବାର ଇଚ୍ଛା ।

ଅଭିପ୍ରାୟସିଦ୍ଧି—ସ୍ତ୍ରୀ ବ. (୬ତତ୍)ଉଦ୍ଦେଶ୍ୟ ସାଧନ, ଇଚ୍ଛାର ପୂର୍ଣ୍ଣତା ।

ଅଭିପ୍ରୀ – ତ୍ରି. ବଂ (ଅଭି + ପ୍ରୀ + କ୍ୱିପ୍) ଯେ ସମସ୍ତ ପ୍ରକାର ତର୍ପଣ କରେ ।

ଅଭିପ୍ରେତ—ତ୍ରି.ବଂ.(ଅଭି + ପ୍ର + ଇ + ମ.ତ) ବାଞ୍ଛିତ, ଅଭିଲଷିତ, ଅଭୀଷ୍ଟ, ଉଦ୍ଦିଷ୍ଟ, ସମ୍ମତ, ( କ୍ଲୀ. ବ ) ଅଭିପ୍ରାୟ, ଅଭୀଷ୍ଟ ବିଷୟ ।

ଅଭିପ୍ରେତାର୍ଥ—ବ ( ଅଭିପ୍ରେତ + ଅର୍ଥ ) ବାଞ୍ଛିତ ଉଦ୍ଦେଶ୍ୟ,କଥକ ବା ଲେଖକର ଉଦ୍ଦେଶ୍ୟ ।

ଅଭିପ୍ରେତାର୍ଥସିଦ୍ଧି—ବ ( ଅଭିପ୍ରେତ + ଅର୍ଥ + ସିଦ୍ଧି ) ବାଞ୍ଛାସିଦ୍ଧି, ମନୋବାଞ୍ଛା ପୂରଣ, ଇପ୍ସିତପଦାର୍ଥ ପ୍ରାପ୍ତି ।

ଅଭିପ୍ରେତ—ତ୍ରି. ବଂ. ଅଭିପ୍ରେତବ୍ୟ, ଅଭିପ୍ରାୟଣୀୟ, ଅଭିଲାଷଣୀୟ ।

ଅଭିପ୍ରେପ୍ସୁ—ତ୍ରି. ବଂ. (ଅଭି + ପ୍ର + ଆପ୍ + ସନ୍.ଉ) ପାଇବାପାଇଁ ଇଚ୍ଛୁକ, ଲପ୍ସୁ, ଲଭ କରିବାକୁ ଇଚ୍ଛୁକ ।

ଅଭିପ୍ରୋକ୍ଷଣ—କ୍ଲୀ. ବ. ଜଳାଦିଦ୍ୱାରା ବୈଧ ସଂସ୍କାର ।

ଅଭିପୃଷ୍ଟ—ତ୍ରି. ବଂ. (ଅଭି + ପ୍ରଚ୍ଛ + ମ. ତ) ଜିଜ୍ଞାସିତ ।

ଅଭିପ୍ଲବ—ପୁଂ. ବ. (ଅଭି + ପ୍ଲୁ + ଅ ) ପ୍ରାଜାପତ୍ୟନାମକ ଆଦିତ୍ୟସକଳ, ଉପପ୍ଲବ, ଉପଦ୍ରବ, ଗୃହଆଡ଼େ ଡେଇଁବା, ଗୃହଆଡ଼େ ସିଞ୍ଚା ।

ଅଭିପ୍ଲୁତ—ତ୍ରି.ବ.(ଅଭି + ପ୍ଲୁ + ମ.ତ) ଗୃହଆଡ଼େ ବ୍ୟାପ୍ତ, ଜଳସେକ ଯୁକ୍ତ, ପ୍ଲାବିତ, ଜଳାଦିଦ୍ୱାରା ସମାଚ୍ଛାଦିତ, ଉଚ୍ଛଳିତ, ଅବିଭୂତ, (ସ୍ତ୍ରୀ) ଅଭିପ୍ଲୁତା ।

ଅଭିପ୍ସିତ—ବ (ଅଭି + ଅପ୍ + ସ.ତ) ବାଞ୍ଛିତ, ଅଭିଲଷିତ ।

ଅଭିଭଙ୍ଗ—ତ୍ରି. ବଂ. ଭଙ୍ଗର କାରଣ, ଭଙ୍ଗଶୀଳ, ( ବ ) ସମସ୍ତ ପ୍ରକାରରେ ଭଙ୍ଗ ।

ଅଭିଭବ—ପୁଂ. ବ. ( ଅଭି + ଭୂ + ଭା. ଅ ) ପରାଜୟ, ତିରସ୍କାର, ଅନାଦର, ପରାଭବ, ଅପମାନ, ଖର୍ବକରିବା, (ବଂ) ଅଭିଭବ ।

ଅଭିଭବନ—କ୍ଲୀ. ବ. ( ଅଭି + ଭୂ + ଭା, ଅନ) ଅଭିଭବ, ପରାଜୟ, ରୋଗାଦିଦ୍ୱାରା ଜ୍ଞାନରୋଧ ।

ଅଭିଭବନୀୟ—ତ୍ରି. ବଂ. ( ଅଭି + ଭୂ + ମ,ଅନୀୟ) ପରାଭବନୀୟ, ଦମନୀୟ, (ସ୍ତ୍ରୀ) ଅଭିଭବନୀୟା ।

ଅଭିଭାବ – ପୁଂ. ବ. (ଅଭି + ଭାବ ଅଭିଭବଭାବ, ପରାଜୟ, ଅପମାନ, ପରାଭବ ।

ଅଭିଭା—ସ୍ତ୍ରୀ.ବ. (ଅଭି + ଭା + ଅ)ଅଭିଭବ, ପରାଜୟ, ସକଳଦିଗରେ ଦୀପ୍ତି ।

ଅଭିଭାର—ପୁଂ. ବ. (ଅଭି + ଭୃ + ଅ) ଅଭିଭାର, (ବଂ) ଅତିଶୟ ଭାରଯୁକ୍ତ ।

ଅଭିଭାବକ—ପୁଂ. ବଂ. ( ଅଭି + ଭୂ + କ. ଅକ ) ଅଭିଭବକାରୀ, ପରାଜୟକାରୀ, ତିରସ୍କାରକାରୀ, ଜଡ଼ୀଭାବକାରୀ, ରକ୍ଷକ, ଆଶ୍ରୟଦାତା, (ଗ୍ରା) ଆତ୍ମୀୟ, ସ୍ୱଜନ, ତତ୍ତ୍ୱାବଧାରକ,ମୁରବ୍ବିପ୍ରଭୃତି ।

ଅଭିଭାବନୀୟ—ପୁଂ. ବଂ.(ଅଭି + ଭୂ + ଣିଚ୍ + ମ. ଅନୀୟ) ପରାଭବନୀୟ, (ସ୍ତ୍ରୀ) ଅଭିଭାବନୀୟା ।

ଅଭିଭାବିକା—ସ୍ତ୍ରୀ.ବ. (ଅଭିଭାବକ + ଆ) ଅଭିଭାବକର ସ୍ତ୍ରୀଲିଙ୍ଗ ।

ଅଭିଭାବିତା—ପୁଂ. ବଂ. (ଅଭି + ଭୂ + ତୃ ) ଯେ ତିରସ୍କାର କରେ, ଯେ ପରାଜୟ କରେ, (ସ୍ତ୍ରୀ) ଅଭିଭାବୟିତ୍ରୀ ।

ଅଭିଭାବୀ—ପୁଂ. ବଂ. ଯେ ତିରସ୍କାର କରେ, (ସ୍ତ୍ରୀ) ଅଭିଭାବିନୀ ।

ଅଭିଭାବୁକ—ତ୍ରି. ବଂ. ( ଅଭି + ଭୂ + ଉକ ) ଯେ ତିରସ୍କାର କରେ, ଯେ ଜଡ଼ପରି କରିଦିଏ ।

ଅଭିଭାଷଣ—କ୍ଲୀ. ବ. ( ଅଭି + ଭାଷ୍ + ଭା, ଅନ ) ଆଭିମୁଖ୍ୟେ କଥନ, ସାମନାରେ କହିବା, ସମ୍ଭାଷଣ, ସାଧାରଣ ବକ୍ତୃତା ।

ଅଭିଭାଷୀ—ପୁଂ.ବଂ.ଆଭିମୁଖ୍ୟେ କଥନ, (ସ୍ତ୍ରୀ) ଅଭିଭାଷିଣୀ ।

ଅଭିଭୂ—ତ୍ରି. ବଂ. (ଅଭି + ଭୂ + କ୍ୱିପ୍) ଅଭିଭାବକ,ପରାଜୟକାରୀ,ତିରସ୍କାରକ ।

ଅଭିଭୂତ—ତ୍ରି. ବଂ. ( ଅଭି + ଭୂ + କ ତ ) କିଂକର୍ତ୍ତବ୍ୟବିମୂଢ଼, ପରାଭୂତ, ବ୍ୟାକୁଳ, ଅଜ୍ଞାନ, ବିହ୍ୱଳ, ଅଚୈତନ୍ୟ, ଅବଶ, ବେହୋସ୍, (ସ୍ତ୍ରୀ) ଅଭିଭୂତା ।

ଅଭିଭୂତି—ସ୍ତ୍ରୀ.ବ. (ଅଭି + ଭୂ ଭା.ତି) ପରାଭବ, ପରାଜୟ, ଅବଜ୍ଞା, ଭାବାବେଶ, ଅନାଦର ।

ଅଭିଭୂୟ—କ୍ଲୀ. ବ. ଗୃହଆଡ଼େ ହୋଇ, ତିରସ୍କାର କର ।

ଅଭିଭୂବନ୍—ପୁଂ. ବଂ. ଅଭିଭାବକ, ତିରସ୍କାରକ, ପରାଜୟକାରକ, (ସ୍ତ୍ରୀ) ଅଭିଭୂବନୀ ।

ଅଭିମତ—ତ୍ରି. ବଂ. ( ଅଭି ମନ୍ + ମ.ତ ) ଅଭିମାନର ବିଷୟୀଭୂତ,ସମ୍ମତ, ଆଦୃତ, ପ୍ରିୟ, ଇଷ୍ଟ, ଅଭିପ୍ରେତ, ଅନୁମୋଦିତ, ଇଚ୍ଛା, ମତ, ସମ୍ମତି, ନିର୍ଦ୍ଧିଷ୍ଟମନ, (ବ) ଅଭିମତି ।

ଅଭିମତାନୁଗାମୀ—ପୁଂ. ବଂ. (୬.ତତ୍) ( ଅଭିମତ + ଅନୁଗାମିନ୍ ) ଇଚ୍ଛାନୁସାରେ କାର୍ଯ୍ୟକାରୀ, (ସ୍ତ୍ରୀ) ଅଭିମତାନୁଗାମିନୀ ।

ଅଭିମତି—ସ୍ତ୍ରୀ.ବ.(ଅଭି + ମନ + ଭା.ତି) ଅଭିମାନ, ମିଥ୍ୟାଜ୍ଞାନ, ଆଦର,ସମ୍ମାନ, ଅଭିଲାଷ ।

ଅଭିମନାସ୍—ତ୍ରି.ବଂ. (ବ.ବ୍ରୀ )କାର୍ଯ୍ୟରେ ଉନ୍ମୁଖ, କାର୍ଯ୍ୟରେ ଉଦ୍ୟତ, ତୃପ୍ତ,ତୁଷ୍ଟ,

ଅଭିମନ୍ତବ୍ୟ—ତ୍ରି.ବିଂ. ବୋଦ୍ଧବ୍ୟ,ଜ୍ଞେୟ, ଗଣନୀୟ ।

ଅଭିମନ୍ତା—ପୁଂ.ବିଂ.(ଅଭି + ମନ୍ + କ. ତୃ) ଯେ ଅଭିମାନ କରେ, ଯେ ସମ୍ଭାବନ କରେ,ମନ୍ତ୍ରଣାଦାତା(ସ୍ତ୍ରୀ)ଅଭିମନ୍ତ୍ରୀ ।

ଅଭିମନ୍ତ୍ର—କ୍ଲୀ.ବି.ମନ୍ତ୍ରପାଠପୂର୍ବକ ସଂସ୍କାର-ବିଶେଷ ।

ଅଭିମନ୍ତ୍ରଣ—କ୍ଲୀ.ବି. (ଅଭି + ମନ୍ତ୍ର + ଭା. ଅନ) ମନ୍ତ୍ରଦ୍ୱାରା ପବିତ୍ରୀକରଣ, ଆମନ୍ତ୍ରଣ, ସମ୍ବୋଧନ, ଆହ୍ୱାନ (ବିଂ) ଅଭିମନ୍ତ୍ରିତ ।

ଅଭିମନ୍ତ୍ରିତ—ବିଂ (ଅଭି + ମନ୍ତ୍ର + ମଂ.ତ) ଆହୂତ, ଯାହାକୁ ଡକା ହୋଇଅଛି, ମନ୍ତ୍ରପୂତ, ସମ୍ବୋଧିତ ।

ଅଭିମନ୍ତ୍ର୍ୟ—ତ୍ରି. ବିଂ. ଗୋପନରେ ପରାମର୍ଶନୀୟ, ମନ୍ତ୍ରଣା କର, ମନ୍ତ୍ରପାଠ କର ।

ଅଭିମନ୍ଥ,ଅଧିମନ୍ଥ—ପୁଂ.ବି.( ଅଭି + ମନ୍ଥ + ଣ. ଅ. ) ନେତ୍ରରୋଗବିଶେଷ, ବିଶେଷଭାବେ ମନ୍ଥନ, ଆଖିଧରା ।

ଅଭିମନ୍ଥନ—କ୍ଲୀ.ବି. (ଅଭି · ମନ୍ଥ + ଣ. ଅନ) ଅରଣି ।

ଅଭିମନ୍ୟୁ—ପୁଂ. ବି. ଶ୍ରୀକୃଷ୍ଣଙ୍କ ଭଣଜା, ଅର୍ଜୁନଙ୍କର ପୁଅ,(ଗ୍ରା.) ନାମବିଶେଷ ।

ଅଭିମନ୍ୟୁସାମନ୍ତସିଂହାର—ଗ୍ରା.ପୁଂ. ବିଂ. ଉତ୍କଳର ଜଣେ ପ୍ରସିଦ୍ଧ କବି, ଏହାଙ୍କ-ରଚିତ ବିଦଗ୍ଧଚିନ୍ତାମଣି ସର୍ବତ୍ର ଆଦୃତ ।

ଅଭିମର—ପୁଂ.ବିଂ.(ଅଭି + ମୃ + ଭା.ଅ) ଯୁଦ୍ଧ, ଯୁଦ୍ଧସ୍ଥାନ, ରଣକ୍ଷେତ୍ର, ଭୟ, ବଧ,ମରଣବ୍ୟାପାର,ବନ୍ଧନ, ପ୍ରତାରଣା, ଅଣବିଶ୍ୱାସ, ବିଶ୍ୱାସଘାତକତା, ମୃତ୍ୟୁକୁ ଭ୍ରୂକ୍ଷେପ ନ କରି ଯୁଦ୍ଧରେ ଉତ୍ସାହ ।

ଅଭିମର୍ଦ୍ଦ—ପୁଂ. ବି. ( ଅଭି + ମୃଦ୍ + ଭା.ଅ) ଚୂର୍ଣ୍ଣ କରାଯିବା, ଦଳନ, ନିଷ୍ପୀଡ଼ନ,ଉତ୍ପୀଡ଼ନ,ଯୁଦ୍ଧ, (ବିଂ)ଅଭିମର୍ଦ୍ଦିତ ।

ଅଭିମର୍ଦ୍ଦନ—କ୍ଲୀ.ବି. (ଅଭି + ମୃଦ୍ + ଭା. ଅନ) ପୀଡ଼ନ, ଚୂର୍ଣ୍ଣନ ।

ଅଭିମର୍ଦ୍ଦୀ—ପୁଂ.ବିଂ.(ଅଭି + ମୃଦ୍ + କ. ଇନ) ମର୍ଦ୍ଦନକାରୀ, ବିନାଶକାରୀ, ନିଷ୍ପୀଡ଼କ, ଚପୁଡ଼ୁଥିବା,ବାନ୍ଧୁଥିବା, (ସ୍ତ୍ରୀ) ଅଭିମର୍ଦ୍ଦିନୀ ।

ଅଭିମର୍ଶ—ପୁଂ. ବି. (ଅଭି + ମୃଶ୍ + ଅ) ଛୁଇଁବା, ପରାଭବ, ଧର୍ଷଣ ।

ଅଭିମର୍ଶକ—ତ୍ରି.ବିଂ.ଯେ ସ୍ପର୍ଶ କରେ, ଯେ ଛୁଏଁ, ଯେ ପରାଭବ କରେ ।

ଅଭିମର୍ଶନ—କ୍ଲୀ.ବି. (ଅଭି + ମୃଶ୍ + ଭା. ଅନ ସ୍ପର୍ଶ, ଛୁଇଁବା, ଧର୍ଷଣ, ପରାଭବ ।

ଅଭିମାତ—ତ୍ରି. ବିଂ. (ଅଭି + ମନ୍ + ତ) ଘାତକ ପୁଂ.ବି) ଶତ୍ରୁ, ପାପ୍ମା, ପାପ ।

ଅଭିମାତଷାହ—ପୁଂ. ବି. ଶତ୍ରୁଜିତ୍, ଯେ ଶତ୍ରୁ ଜୟ କରିପାରେ ।

ଅଭିମାନ—ପୁଂ. ବି. (ଅଭି + ମନ୍ · ଭା. ଅ ) ଗର୍ବ, ଦର୍ପ, ବଡ଼େଇ, ଗରିମା. ଅହଂଭାବ, ପ୍ରଣୟ,ସ୍ନେହ,ଇଚ୍ଛା, ପ୍ରଗାଢ଼ ଜ୍ଞାନ, ଅସନ୍ତୋଷ, ସାମାନ୍ୟ କଥାରେ ମନୋଦୁଃଖ, ମନୋମାଳିନ୍ୟ, ଗୁପ୍ତ-ବିରକ୍ତି. ସମ୍ମାନ, ମର୍ଯ୍ୟାଦା, ଆକ୍ଷେପ ।

ଅଭିମାନିତ—ତ୍ରି. ବିଂ. (ଅଭିମାନ + ଇତ) ଜାତଗର୍ବ, ଜାତାଭିମାନ, (ବି) ସୁରତ, ରତକ୍ରୀଡ଼ା ।

ଅଭିମାନିତା—ସ୍ତ୍ରୀ.ବି. (ଅଭିମାନିତ + ଆ) ଜାତାଭିମାନା ।

ଅଭିମାନୀ—ପୁଂ. ବିଂ. ( ଅଭି + ମନ୍ + ଇନ୍) ଗର୍ବଯୁକ୍ତ, ଦୃପ୍ତ, ଅଭିମାନବିଶିଷ୍ଟ, ପ୍ରଣୟକୋପଯୁକ୍ତ, ମିଥ୍ୟାଜ୍ଞାନଯୁକ୍ତ, (ସ୍ତ୍ରୀ) ଅଭିମାନିନୀ ।

ଅଭିମାନୁକ—ତ୍ରି. ବିଂ. ( ଅଭି + ମନ୍ + ଉକ) ଅଭିମାନବିଶିଷ୍ଟ ।

ଅଭିମାରୁତ—ତ୍ରି. ବିଂ. (ଅଭି + ମରୁତ) ପବନବିରୁଦ୍ଧ.ବାୟୁର ବିପରୀତ ଦିଗରେ ପବନ ଗତିର ଉକାର୍ଶି ।

ଅଭିମାସ୍ୟ—ତ୍ରି.ବିଂ.(ବ.ବ୍ରୀ) ଅଜ୍ଞାତ ହେତୁ କିଂକର୍ତ୍ତବ୍ୟବିମୂଢ଼, ଅଭିଭୂତ, ବିହ୍ୱଳ, ହତବୁଦ୍ଧି (ସ୍ତ୍ରୀ) ଅଭିମାସ୍ୟା ।

ଅଭିମିହ୍ୟ,ଅଭିମେହ୍ୟ—ତ୍ରି.ବିଂ. ଯାହାର ସମ୍ମୁଖରେ ମଳମୂତ୍ରାଦି ତ୍ୟାଗ କରାଯାଏ ।

ଅଭିମୁଖ—ତ୍ରି. ବିଂ. ସମୀପବର୍ତ୍ତୀ ଆସନ୍ନ, ସମ୍ମୁଖବର୍ତ୍ତୀ, କୌଣସି ଆଡ଼କୁ ମୁହିଁ-ବୁଲାଇଥିବା, ସମ୍ମୁଖ, ସମକ୍ଷ, (ସ୍ତ୍ରୀ) ଅଭିମୁଖୀ ।

ଅଭିମୁଖତା—ବି. (ଅଭିମୁଖ + ଭା. ତା) ଉପସ୍ଥିତି, ସାମୀପ୍ୟ ।

ଅଭିମୁଖରେ—ଗ୍ରା. କ୍ରି. ବିଂ. ସମ୍ମୁଖରେ, ଆଡ଼କୁ, ଦିଗକୁ, ନିକଟକୁ ।

ଅଭିମୁଖୀ—ପୁଂ.ବିଂ. (ଅଭିମୁଖ + ଇନ୍) ସମ୍ମୁଖୀନ, (ଅମୁକ) ଆଡ଼କୁ, ଅଗ୍ରସର, ସମୀପବର୍ତ୍ତୀ ହେଉଥିବା, (ସ୍ତ୍ରୀ) ଅଭି-ମୁଖିନୀ ।

ଅଭିମୁଖୀକରଣ—କ୍ଲୀ. ବି. ସମ୍ବୋଧନ, କେହି ଡାକିଲେ ଶ୍ରୋତା ତା ଆଡ଼କୁ ଘୁରିବା ।

ଅଭିମୁଖୀନ—ପୁଂ.ବିଂ. (ଅଭି + ମୁଖ + ଈନ) ସମ୍ମୁଖସ୍ଥ, ସାମନା ସାମନି ଥିବା, ସମ୍ମୁଖବର୍ତ୍ତୀ, (ସ୍ତ୍ରୀ) ଅଭିମୁଖୀନା ।

ଅଭିମୁଖୀଭାବ—ପୁଂ.ବି. କାର୍ଯ୍ୟର ଅନୁକୂଳତା, ଆଭିମୁଖ୍ୟଭାବ ।

ଅଭିମୂର୍ଚ୍ଛିତ—ବିଂ. ( ଅଭି + ମୂର୍ଚ୍ଛିତ ) ବର୍ଦ୍ଧିତ, ଉତ୍ତେଜିତ ।

ଅଭିମୃଷ୍ଟ—ତ୍ରି. ବିଂ. (ଅଭି + ମୃଶ୍ + ମଂ. ତ) ଯାହାକୁ ଛୁଆଁ ହୋଇଅଛି,ପରାଜିତ ମିଳିତ, ଧୃତ, ସ୍ପୃଷ୍ଟ, ସମ୍ବଦ୍ଧ, ସଂସୃଷ୍ଟ, ଆହତ, (ସ୍ତ୍ରୀ) ଅଭିମୃଷ୍ଟା ।

ଅଭିମୃଷ୍ଟଜ—ପୁଂ. ବି. ପରପୁରୁଷ ଦ୍ୱାରା ସ୍ପୃଷ୍ଟା ସ୍ତ୍ରୀଠାରୁ ଉତ୍ପନ୍ନ ସନ୍ତାନ,ଜାରଜ, (ସ୍ତ୍ରୀ) ଅଭିମୃଷ୍ଟଜା ।

ଅଭିମେଥକ—ତ୍ରି. ବିଂ. ସର୍ବପ୍ରାପ୍ତିସାଧନ-ବାକ୍ୟବିଶେଷ, (ସ୍ତ୍ରୀ) ଅଭିମେଥିକା ।

ଅଭିମ୍ଳାନ—ତ୍ରି.ବିଂ. (ଅଭି + ମ୍ଳୈ + ତ) ଅତିମଳିନ, ଅପ୍ରସନ୍ନ, ବିଶୀର୍ଣ୍ଣ ।

ଅଭିଯାଚନ—କ୍ଲୀ.ବି. ( ଅଭି + ଯାଚ୍ + ଭା.ଅନ) ଅଭିମୁଖରେ ପ୍ରାର୍ଥନା,ମାଗିବା, ଅନୁରୋଧ, (ବିଂ) ଅଭିଯାଚିତ ।

ଅଭିଯାଚିତ—ବିଂ. (ଅଭି + ଯାଚ୍ + ତ) ସମ୍ମୁଖରେ ପ୍ରାର୍ଥିତ, ଅନୁରୁଦ୍ଧ ।

ଅଭିଯାତ—ତ୍ରି. ବିଂ. (ଅଭି + ଯା + ମଂ. ତ) ଆକ୍ରାନ୍ତ, ଗତ, ଉପସ୍ଥିତ, ପ୍ରବିଷ୍ଟ,

ଆବଦ୍ଧ, ସ୍ୱୟଂପ୍ରାପ୍ତ, ଅଭ୍ୟୁକ୍ତ, (ବ) ଅଭ୍ୟାନ ।
ଅଭ୍ୟାତା—ପୁଂ.ବଂ.(ଅଭି + ଯା + ତୃ) ଅଭିମୁଖଗମନକାରୀ, (ସ୍ତ୍ରୀ) ଅଭ୍ୟାତ୍ରୀ ।
ଅଭ୍ୟାତ—ପୁଂ.ବ. (ଅଭି + ଯ + କ୍ତ) ଶତ୍ରୁ. ଶତ୍ରୁ, ଯୁଦ୍ଧାର୍ଥ ଗମନ ।
ଅଭ୍ୟାଗୀ—ପୁଂ. ବଂ. ଶତ୍ରୁ ।
ଅଭ୍ୟାନ—କ୍ଲୀ. ବ. (ଅଭି + ଯା + ଘ. ଅନ) ଯୁଦ୍ଧାର୍ଥ ଯାତ୍ରା, ଆକ୍ରମଣ, ନିକଟକୁ ଯିବା, ଯାତ୍ରାକରଣ, ଅଭିଗମନ, (ବଂ) ଅଭ୍ୟାତ ।
ଅଭ୍ୟାୟୀ—ପୁଂ. ବଂ. (ଅଭି + ଯ + କ + ଇନ) ଆକ୍ରମଣକାରୀ, ନିକଟକୁ ଅଗ୍ରସର ହେଉଥିବା, (ସ୍ତ୍ରୀ)ଅଭ୍ୟାୟିନୀ ।
ଅଭ୍ୟୁକ୍ତ—ତ୍ରି. ବଂ. (ଅଭି + ଯୁଜ୍ + ର୍ମ. ତ) ଅନ୍ୟକର୍ତ୍ତୃକରୁଦ୍ଧ, ତତ୍ପର, ଆସକ୍ତ, ବ୍ରତବାଦୀ, କୃତସଙ୍କଳ୍ପ, କଥିତ,ଆବଦ୍ଧ, ଆସାମୀ, ପ୍ରତ୍ୟର୍ଥୀ ଆକ୍ରାନ୍ତ, (ବ) ଅଭିଯୋଗ. (ସ୍ତ୍ରୀ) ଅଭ୍ୟୁକ୍ତା ।
ଅଭ୍ୟୁକ୍ତବ୍ୟକ୍ତି—ପୁଂ ବ. ମୁଦାଲା, ପ୍ରତିବାଦୀ ।
ଅଭ୍ୟୁଗ୍ରନ୍,ଅଭ୍ୟୁଜ୍ୱନ୍—ପୁଂ.ବ. ଅଭିଯୋକ୍ତା,ନାଲିଶକାରକ,(ସ୍ତ୍ରୀ)ଅଭ୍ୟୁଜ୍ୱରୀ
ଅଭ୍ୟୁକ୍—ପୁଂ. ବଂ. (ଅଭି + ଯୁଜ୍ + କ୍ୱିପ୍) ଯେ ନାଲିଶ କରେ ।
ଅଭିଯୋକ୍ତବ୍ୟ—ତ୍ରି.ବଂ. ଯାହା ନାମରେ ନାଲିଶ କରାଯାଇପାରେ, ନିଷେଧ୍ୟ, ଯାହାକୁ ନିଷେଧକରିବା ଉଚିତ ।
ଅଭିଯୋକ୍ତା—ପୁଂ. ବ. (ଅଭି + ଯୁଜ୍ + କ. ତୃ) ଅଭିଯୋଗକର୍ତ୍ତା, ଅପରିକାଂକ୍ଷୀ, ବାଦୀ, ମୁଦେ, (ସ୍ତ୍ରୀ) ଅଭିଯୋକ୍ତ୍ରୀ ।
ଅଭିଯୋଗ—ପୁଂ. ବ. (ଅଭି + ଯୁଜ୍ + ଭା.ଅ ) ନାଲିଶ, ଯୁଦ୍ଧାର୍ଥ ଆକ୍ରମଣ, ଶପଥ,ଉଦ୍ୟୋଗ,ଅଧ୍ୟବସାୟ,ଭର୍ତ୍ସନା, ଅଭିନିବେଶ, ଦୋଷାରୋପ, ଆଗ୍ରହ, ଆବେଦନ, (ବଂ, ଅଭିଯୁକ୍ତ ।
ଅଭିଯୋଗୀ—ପୁଂ. ବଂ. (ଅଭିଯୋଗ + ଇନ୍)ଅପରିକାଂକ୍ଷୀ, ବାଦୀ,ଆକ୍ରମଣକାରୀ, ନିବିଷ୍ଟମନା, (ସ୍ତ୍ରୀ) ଅଭିଯୋଗିନୀ ।
ଅଭିଯୋଜନ—କ୍ଲୀ.ବ. (ଅଭି + ଯୁଜ୍ + ଭା ଅନ)ଭଲକରି ଯୋଡ଼ିବା, ଉଦ୍ଦେଶ୍ୟସିଦ୍ଧିର ଯୋଗ୍ୟ କରଣ ।
ଅଭିଯୋଜିତ—ତ୍ରି. ବଂ. (ଅଭି + ଯୋଜ + ର୍ମ, ତ) ପ୍ରୟୋଜନାନୁରୂପ କୃତ ବା ସଂଗଠିତ ।
ଅଭିଯୋଜ୍ୟ—ତ୍ରି. ବଂ.(ଅଭି + ଯୁଜ + ର୍ମ,ଯ ) ଉଦ୍ଦେଶ୍ୟସାଧନର ଉପଯୋଗୀ, କରଣୀୟ ।
ଅଭିରକ୍ତ—ତ୍ରି.ବଂ. (ଅଭି + ରଞ୍ଜ୍ + କ, ତ) ଅନୁରକ୍ତ, ଆସକ୍ତ ।
ଅଭିରକ୍ଷଣ—କ୍ଲୀ. ବ. ( ଅଭି + ରକ୍ଷ୍ + ଭା, ଅନ) ଚତୁର୍ଦ୍ଦିଗରକ୍ଷା, ମନ୍ତ୍ରାଦିଦ୍ୱାରା ସୋଗତରେ ଚତୁର୍ଦ୍ଦିଗ ରକ୍ଷା, ସୁରକ୍ଷଣ ।
ଅଭିରକ୍ଷା—ସ୍ତ୍ରୀ. ବ. ( ଅଭି + ରକ୍ଷା ) ସର୍ବତୋଭାବରେ କୌଣସି ବ୍ୟକ୍ତିକୁ ବିପଦରୁ ରକ୍ଷାକରିବା,(ବଂ)ଅଭିରକ୍ଷିତ ।
ଅଭିରକ୍ଷିତ—ତ୍ରି. ବଂ. (ଅଭି + ରକ୍ଷ୍ + ର୍ମ.ତ) ଚତୁର୍ଦ୍ଦିଗରେ ରକ୍ଷିତ, ସମ୍ୟକ୍ ରକ୍ଷିତ, ସୁରକ୍ଷିତ, (ସ୍ତ୍ରୀ) ଅଭିରକ୍ଷିତା ।
ଅଭିରକ୍ଷିତା—ପୁଂ.ବଂ. (ଅଭି ରକ୍ଷ + କ, ତୃ) ସମସ୍ତ ପ୍ରକାରରେ ରକ୍ଷାକର୍ତ୍ତା, ସ୍ତ୍ରୀ) ଅଭିରକ୍ଷିତ୍ରୀ ।
ଅଭିରଙ୍ଗୀ—ଗ୍ରା.ବଂ. ସ୍ତ୍ରୀ. (ଅଭି + ରଙ୍ଗ + ଈ)ନାୟକପ୍ରତିଅନୁରକ୍ତା,ସ୍ନେହମୟୀ
ଅଭିରତ—ତ୍ରି. ବଂ. (ଅଭି + ରମ୍ + କ, ତ) ଆସକ୍ତ, ପ୍ରୀତିଯୁକ୍ତ, ନିଯୁକ୍ତ, ମଗ୍ନ, ପ୍ରୀତ, ନିରତ, ବିଶ୍ରାନ୍ତ, ଦତ୍ତମନାଃ(ସ୍ତ୍ରୀ ଅଭିରତା ।
ଅଭିରତି—ସ୍ତ୍ରୀ. ବ. (ଅଭି + ରମ୍ + ଭା ତି) ଅତିଶୟ ଆସକ୍ତି, ଅନୁରାଗ, ପ୍ରୀତି, ସନ୍ତୋଷ ।
ଅଭିରମ୍ୟ—ତ୍ରି. ବଂ. (ଅଭି + ରମ୍ + ଯ) ମନୋରମ, ରମଣୀୟ, ଅତିସୁନ୍ଦର ।
ଅଭିରାଜ୍—ବି. ( ଅଭି ରାଜ୍ + କ୍ୱିପ୍) ଅଧୀଶ୍ୱର, ରାଜା,(ବଂ)ଅଧିକଦୀପ୍ତିଶାଳୀ ।
ଅଭିରାଦ୍ଧ—ତ୍ରି. ବଂ. (ଅଭି + ରାଧ୍ + ର୍ମ. ତ) ସମସ୍ତପ୍ରକାରେ ନିଷ୍ପନ୍ନ,ସିଦ୍ଧ,ସେବିତ, ଆରାଧିତ ।
ଅଭିରାମ—ପୁଂ.ବଂ.(ଅଭି + ରମ୍ + ଅଧି. ଘ) ସୁନ୍ଦର, ପ୍ରିୟ, ମନୋଜ୍ଞ, ରମ୍ୟ, ମନୋହର, (ସ୍ତ୍ରୀ) ଅଭିରାମା, ।
ଅଭିରୁଚି (ଚୀ)—ସ୍ତ୍ରୀ.ବ.(ଅଭି + ରୁଚ୍ + ଭା,ଇ ଅତିଶୟ ରୁଚି, ଅଭିଳାଷ, ସ୍ପୃହା, ଇଚ୍ଛା, ପ୍ରୀତି ।
ଅଭିରୂପ—ପୁଂ.ବ. ( ଅଭି + ରୂପ + ଅ) କାମ, ବିଷ୍ଣୁ, ଚନ୍ଦ୍ର, ମହାଦେବ, (ବଂ) ମନୋହର, ପ୍ରିୟ, ଅନୁରୂପ, ବିଦ୍ୱାନ୍ ।
ଅଭିରୋଷ—ପୁଂ. ବଂ. ସମ୍ୟକ୍‌କୋପ, ଅତିଶୟକ୍ରୋଧ,ଅଭିମାନଜନିତ କୋପ ।
ଅଭିଲକ୍ଷିତ—ତ୍ରି. ବ. (ଅଭି ଲକ୍ଷ୍ + ର୍ମ ତ) ଉଦ୍ଦିଷ୍ଟ, ଜ୍ଞାତ, ଦୃଷ୍ଟ, ଲକ୍ଷ୍ୟିତ ।
ଅଭିଲକ୍ଷ୍ୟ—ତ୍ରି.ବଂ. ଯାହାକୁ ବାଣ,ଶରଭେଦ୍ୟମାରିବାକୁ ହୁଏ,ଶରବ୍ୟ,ଉଦ୍ଦେଶ୍ୟ ।
ଅଭିଲଙ୍ଘନ—କ୍ଲୀ. ବ. ( ଅଭି + ଲଙ୍ଘ୍ + ଅନ) ଉଲ୍ଲଙ୍ଘନ ।
ଅଭିଲଷଣୀୟ—ତ୍ରି ବଂ. (ଅଭି + ଲଷ୍ + ର୍ମ, ଅନୀୟ) ବାଞ୍ଛନୀୟ, ଆକାଂକ୍ଷଣୀୟ, ସ୍ପୃହଣୀୟ ।
ଅଭିଲଷିତ—ତ୍ରି.୦ ବଂ. (ଅଭି + ଲଷ୍ + ର୍ମ, ତ ) ଇଷ୍ଟ, ବାଞ୍ଛିତ, ସଙ୍କଳ୍ପିତ, ଇପ୍ସିତ, କ୍ଲୀ. ବ) ଇଚ୍ଛା, ବାଞ୍ଛା, (ସ୍ତ୍ରୀ) ଅଭିଲଷିତା ।
ଅଭିଲଷିତବ୍ୟ—ତ୍ରି.ବଂ.(ଅଭି + ଲଷ୍ + ତବ୍ୟ) କାମ୍ୟ, ଅଭିଲଷଣୀୟ ।
ଅଭିଲା—ଗ୍ରା ବ. ଚଇ, ବାହାର ଢଙ୍ଗ, ତାମସା, ବାଲବିଧବା ସ୍ତ୍ରୀ, ( ପୁଂ. ସ୍ତ୍ରୀ. ବଂ) ନିର୍ଲ୍ଲଜ, ବେହେଲ, ବେଲିଆ, ନିଷ୍କର୍ମୀ (ବ) ଅପମାନ, ଅସମ୍ଭ୍ରମ ।
ଅଭିଲାପ—ପୁଂ.ବ.(ଅଭି + ଲପ୍ + ଭା.ଅ) ସଂକଳ୍ପ ବାକ୍ୟ, ସଂକଳ୍ପର ଅଙ୍ଗୀଭୂତବାକ୍ୟ, ଶବ୍ଦ ।
ଅଭିଲାବ—ପୁଂ. ବ. (ଅଭି + ଲୂ + ଭା,ଅ) ଛେଦନ, ଧ୍ୱଂସ, ବିନାଶ ।
ଅଭିଳାଭିଲା—ଗ୍ରା. ବଂ. (ପୁଂ. ସ୍ତ୍ରୀ.)ଅତି ନିର୍ଲ୍ଲଜ, ଉପହାସ୍ୟାସ୍ପଦ ।
ଅଭିଳାଷ—ପୁଂ.ବ. ଅଭି + ଲଷ୍ + ଭା.ଅ) ବାଞ୍ଛା, ଇଚ୍ଛା, ସ୍ପୃହା, ଲୋଭ, ଅନୁରାଗ, ଆଗ୍ରହ ।

ଅଭିଲାଷକ-ବି.ବଂ.(ଅଭି + ଲଷ୍ + ଅକ) ଅଭିଲାଷକାରୀ, ଇଚ୍ଛୁକ,(ସ୍ତ୍ରୀ) ଅଭିଲାଷିକା ।

ଅଭିଲାଷୀ-ପୁଂ.ବଂ.(ଅଭିଲଷ୍ + କ,ଇନ୍) ଇଚ୍ଛୁକ,ସସ୍ପୃହ,ଲୋଭୀ, ଅନୁରାଗୀ (ସ୍ତ୍ରୀ) ଅଭିଲାଷିଣୀ ।

ଅଭିଲାଷୁକ—ପୁଂ. ବଂ. (ଅଭିଲଷ + କ, ଉକ) ଅଭିଲାଷୀ, (ସ୍ତ୍ରୀ) ଅଭିଲାଷୁକା ।

ଅଭିଲିଖିତ—ବି.ବଂ. ଲିଖିତ, ଲିପିବଦ୍ଧ, ଲିପିମଧ୍ୟରେ ସନ୍ନିବେଶିତ ।

ଅଭିଲୀନ—ବି. ବଂ. ( ଅଭି + ଲୀ + ଣି, ତ ) ଅଭିବ୍ୟାପ୍ତ ।

ଅଭିବଦନ—କ୍ଲୀ. ବ. ଅନୁକୂଳ ବାକ୍ୟ, ପୋଷକ ବାକ୍ୟ,(ବଂ)ଅନୁକୂଳବାଦୀ ।

ଅଭିବନ୍ଦନ—କ୍ଲୀ. ବ. (ଅଭି + ବନ୍ଦ୍ + ଘ୍ଞ, ଅନ) ସମ୍ମୁଖେ ପ୍ରଣାମ, ଆରାଧନା, ପୂଜା, ଉପାସନା, ଅଭିବାଦନ ।

ଅଭିବୟସ୍ଃ—ଅଭିମତ ବୟସ ।

ଅଭିବର୍ତ୍ତୀ—ପୁଂ. ବଂ. (ଅଭି + ବୃତ୍ + ଇନ୍ ) ସମ୍ମୁଖବର୍ତ୍ତୀ,(ସ୍ତ୍ରୀ)ଅଭିବର୍ତ୍ତିନୀ ।

ଅଭିବର୍ଷଣ—କ୍ଲୀ. ବ. ( ଅଭି + ବୃଷ୍ + ଘ୍ଞ, ଅନ ) ଚାରିଆଡ଼େ ବର୍ଷା, ପ୍ରଚୁର ବୃଷ୍ଟିପାତ ।

ଅଭିବର୍ଷୀ-ପୁଂ.ବଂ. (ଅଭି + ବୃଷ୍ + ଇନ୍) ଚତୁର୍ଦ୍ଦିଗରେ ବର୍ଷଣକାରୀ, (ସ୍ତ୍ରୀ) ଅଭିବର୍ଷିଣୀ ।

ଅଭିବାତ୍ତ—ବି. ବଂ. ଭୃତ୍ୟ, ଦାସ ।

ଅଭିବାଦ—ପୁଂ. ବ.(ଅଭି + ବଦ୍ + ଘ୍ଞ, ଅ ) ସମ୍ମୁଖେ ପ୍ରଣାମ, ପରୁଷବାକ୍ୟ, ଅପବାଦ, ଅଖ୍ୟାତ, ବନ୍ଦନା ।

ଅଭିବାଦକ—ବି. ବଂ. (ଅଭି + ବଦ୍ + କ,ଅକ,ସମ୍ମୁଖେପ୍ରଣତକାରୀ,ଅପବାଦକ, ବନ୍ଦାରୁ, ବନ୍ଦନଶୀଳ,ନନ୍ଦକ, ଅପ୍ରିୟବାଦୀ(ସ୍ତ୍ରୀ)ଅଭିବାଦକା ।

ଅଭିବାଦନ—କ୍ଲୀ. ବ. (ଅଭି + ବଦ୍ + ଣିଚ୍ + ଘ୍ଞ,ଅନ) ପୂଜାର୍ଥବାକ୍ୟ,ଗୌରବାର୍ହବାକ୍ୟ,ସ୍ତୋତ୍ର,ବନ୍ଦନା,ନମସ୍କାର । ଅଭ୍ୟର୍ଥନା, ଅଭିନନ୍ଦନ ।

ଅଭିବାଦନୀୟ—ପୁଂ.ବଂ.(ଅଭି + ବାଦ + ଣି, ଅନୀୟ ) ଯାହାକୁ ନମସ୍କାରକରିବା ଉଚିତ, ଅଭିବାଦନଯୋଗ୍ୟ, ( ସ୍ତ୍ରୀ ) ଅଭିବାଦନୀୟା ।

ଅଭିବାଦ୍ୟ—ବି. ବଂ. (ଅଭି + ବଦ୍ + ଣିଚ୍. ଣି. ଯ)ଅଭିବାଦନର ଯୋଗ୍ୟ, ଯାହାକୁ ପ୍ରଣାମକରିବା କର୍ତ୍ତବ୍ୟ,ନମସ୍ୟ (ସ୍ତ୍ରୀ) ଅଭିବାଦ୍ୟା ।

ଅଭିବାନ୍ୟ—ବି. ବ. ( ଅଭି + ବନ + ଯ) ସମ୍ଭକ୍ତନୀୟ,ସମ୍ୟକ୍‌ଭଜନରଯୋଗ୍ୟ ।

ଅଭିବାସ—ଅବ୍ୟ. ବସ୍ତ୍ରର ଉପରିଭାଗ ।

ଅଭିବାହ୍ୟ—ବି.ବଂ. (ଅଭି + ବହ୍ + ଣି ଯ) ସମସ୍ତ ପ୍ରକାରେ ବହନୀୟ, ବହନଶୀଳ ।

ଅଭିବିଦ୍ରୁତ—ବି. ବଂ.(ଅଭି + ବି + ଦ୍ରୁ + କ,ତ) ଅପଘାତ, ପଳାୟିତ ।

ଅଭିବିଧି—ପୁଂ.ବ.(ଅଭି + ବି + ଧା + ଘ୍ଞ. ଇ) ବ୍ୟାପ୍ତି, ସର୍ବତୋଭାବରେ ବ୍ୟାପ୍ତି ।

ଅଭିବିନୀତ—ବି. ବଂ.(ଅଭି + ବି + ନୀ + କ,ତ ) ସର୍ବତୋଭାବରେ ଶିକ୍ଷିତ,ଭକ୍ତ, ସୁଶିକ୍ଷିତ, ଅତ୍ୟନ୍ତ ବିନୟୀ,(ସ୍ତ୍ରୀ) ଅଭିବିନୀତା ।

ଅଭିବିମାନ—ପୁଂ. ବ. ପରମାତ୍ମା ।

ଅଭିବିଶ୍ରୁତ—ବି.ବ (ଅଭି + ବି + ଶ୍ରୁ + ଣି, ତ) ସର୍ବତ୍ର ବିଖ୍ୟାତ ।

ଅଭିବୀକ୍ଷଣ—କ୍ଲୀ. ବ. ( ଅଭି + ବୀକ୍ଷଣ) ସମ୍ୟକ୍‌ରୂପେ ଅବଲୋକନ ।

ଅଭିବୃତ୍ତି—ସ୍ତ୍ରୀ. ବ. (ଅଭି + ବୃତ୍ + ତି) ସର୍ବଆଗମନ ।

ଅଭିବୃଦ୍ଧି—ସ୍ତ୍ରୀ.ବ. (ଅଭି + ବୃଧ୍ + ଘ୍ଞ,ତି) ବୃଦ୍ଧି, ବିସ୍ତାର ।

ଅଭିବ୍ୟକ୍ତ—ବି. ବଂ. ( ଅଭି + ବ୍ୟକ୍ତ ) ସୁପ୍ରକାଶିତ, ସୁପ୍ରକଟିତ, ସୁସ୍ପଷ୍ଟ, ସୁପ୍ରମାଣିତ,ଫଳୋନ୍ମୁଖୀଭୂତ,ପ୍ରସ୍ଫୁରିତ ।

ଅଭିବ୍ୟକ୍ତି—ସ୍ତ୍ରୀ.ବ. (ଅଭି + ବି + ଅଞ୍ଜ୍ ଘ୍ଞ.ତି) ପ୍ରକାଶ, ପ୍ରତ୍ୟକ୍ଷଜ୍ଞାନ, ବାହାରେ ପ୍ରକାଶ, ନିବର୍ତ୍ତନ, ଘୋଷଣା, କ୍ରମବିକାଶ ।

ଅଭିବ୍ୟଞ୍ଜକ—ବି. ବଂ. ( ଅଭି + ବି + ଅଞ୍ଜ୍ + କ.ଅକ) ପ୍ରକାଶକ,ଅଲଙ୍କାରଶାସ୍ତ୍ରମତେ ବ୍ୟଞ୍ଜନା ବୃତ୍ତିଦ୍ୱାରା ପ୍ରକାଶକ ।

ଅଭିବ୍ୟଞ୍ଜନ—କ୍ଲୀ. ବ. ( ଅଭି + ବି + ଅଞ୍ଜ୍ + ଘ୍ଞ,ଅନ) ସମ୍ୟକ୍‌ରୂପେ ପ୍ରକାଶ ।

ଅଭିବ୍ୟାପକ—ବି. ବଂ. ( ଅଭି + ବି + ଆପ୍ + କ, ଅକ ) ସର୍ବତୋଭାବେ ବ୍ୟାପକ, ସବୁଆଡ଼େ ବ୍ୟାପିଥିବା ।

ଅଭିବ୍ୟାପ୍ତ—ବି. ବଂ. (ଅଭି + ବ୍ୟାପ୍ତ) ସବୁଆଡ଼େ ବ୍ୟାପିଥିବା, ସର୍ବତୋଭାବେ ବ୍ୟାପ୍ତ, (ସ୍ତ୍ରୀ) ଅଭିବ୍ୟାପ୍ତା ।

ଅଭିବ୍ୟାପ୍ତି—ସ୍ତ୍ରୀ.ବ. (ଅଭି + ବି + ଆପ୍ + ଘ୍ଞ. ତି) ସର୍ବତ୍ର ଅବସ୍ଥାନ, ଅଭିବିଧି, (ବଂ) ଅଭିବ୍ୟାପ୍ତ ।

ଅଭିବ୍ୟାପ୍ୟ—ବି. ବଂ. ସବୁଆଡ଼େ ବ୍ୟାପନୀୟ, (ଅବ୍ୟ) ସବୁଆଡ଼େ ବ୍ୟାପିକରି ।

ଅଭିବ୍ୟାହାର—ପୁଂ. ବ. (ଅଭି + ବି + ଆ + ହୃ + ଅ) ପ୍ରଶସ୍ତ,ଭକ୍ତ,ଭକ୍ତକଥା ।

ଅଭିଶଂସନ—କ୍ଲୀ.ବ. (ଅଭି + ଶଂସ୍ + ଘ୍ଞ.ଅନ) ଅପବାଦ, ଆକ୍ରୋଶ, କଠିନ ବାକ୍ୟପ୍ରୟୋଗ, ଅଯଥା କୁତ୍ସା ।

ଅଭିଶପନ—କ୍ଲୀ. ବ. ( ଅଭି + ଶପ୍ + ଘ୍ଞ, ଅନ) ଅଭିଶାପ, ଅଭିଶାପଦେବା ।

ଅଭିଶଙ୍କା—ସ୍ତ୍ରୀ. ବ. (ଅଭି + ଶଙ୍କ + ଆ) ସଂଶୟ, ଭ୍ରମ,ସକଳପ୍ରକାରରେଆଶଙ୍କା ।

ଅଭିଶଙ୍କିତ—ବି.ବଂ.(ଅଭିଶଙ୍କା + ଇତ) ଅତିଶୟ ଶଙ୍କାଯୁକ୍ତ, ସନ୍ତ୍ରସ୍ତ, ଭୀତ, ସନ୍ଦେହଯୁକ୍ତ, ସନ୍ଦିଗ୍ଧ ।

ଅଭିଶଙ୍କୀ—ପୁଂ.ବଂ.(ଅଭିଶଙ୍କା + ଇନ୍) ସଂଶୟୀ, ଅଭିଶଙ୍କାଯୁକ୍ତ, (ସ୍ତ୍ରୀ) ଅଭିଶଙ୍କିନୀ ।

ଅଭିଶପ୍ତ—ବି.ବଂ. ( ଅଭି + ଶପ୍ + ତ) ଅଭିଶାପଗ୍ରସ୍ତ, ଶାପପ୍ରାପ୍ତ ।

ଅଭିଶବ୍ଦିତ—ବି. ବଂ. ସମ୍ମୁଖେ କଥିତ, ଆଗରେ ଡକାଯାଇଥିବା, ବିଘୋଷିତ ।

ଅଭିଶସ୍—ବି. ବଂ. ( ଅଭି + ଶଂସ୍ + କ୍ୱିପ୍ ) ସର୍ବଥା ଆକ୍ରୋଶକାରୀ, ଅପବାଦକାରୀ ।

ଅଭିଶସ୍ତ—ବି. ବଂ. (ଅଭି + ଶଂସ୍ + ଣି.ତ)ମିଥ୍ୟାପବାଦିତ,ହିଂସିତ,ଆକ୍ରାନ୍ତ, କଳଙ୍କିତ ।

ଅଭିଶସ୍ତକ—ବି. ବଂ. ଦେବତା କମ୍ବା ବ୍ରାହ୍ମଣାଦିର ଅଭିଶାପହେତୁ ଜ୍ୱରବିଦ୍ଧ।

ଅଭିଶସ୍ତି—ସ୍ତ୍ରୀ. ବ. (ଅଭି+ଶଂସ+ଭା.ତି) ଅଭିଶାପ, ଅପବାଦ, ହିଂସା. ହିଂସାର ହେତୁ, ଯାଚଞ୍ଚା, ପ୍ରାର୍ଥନା, ମିଥ୍ୟାପବାଦ, କଳଙ୍କ।

ଅଭିଶସ୍ୟ—ବି.ବଂ.ଅଭିଶାପାର୍ହ,ହିଂସାର ଯୋଗ୍ୟ।

ଅଭିଶାପ,ଅଭୀଶାପ—ପୁଂ. ବ. (ଅଭିଶପ୍+ଅ, ଅଭିସମ୍ପାତ, ଆକ୍ରୋଶ ବାକ୍ୟ, ଶାପ, ମିଥ୍ୟାପବାଦ, ଅନ୍ୟର ଅମଙ୍ଗଳ ଇଚ୍ଛା।

ଅଭିଶାପକରିବା—କ୍ରୀ.ବି. ଅନ୍ୟର ଅମଙ୍ଗଳ ଇଚ୍ଛା ପ୍ରକାଶକରିବା, ସର୍ପିବା।

ଅଭିଶାପଗ୍ରସ୍ତ—ପୁଂ. ବଂ. (ଅଭିଶାପ+ଗ୍ରସ୍ତ) ୩ତତ୍ପୁ: ଅଭିଶାପକର୍ତ୍ତୃକଗ୍ରସ୍ତ, ଶାପଦ୍ୱାରା ଅଭିଭୂତ।

ଅଭିଶିରୋଗ୍ର—ବି. ବଂ. ଊର୍ଦ୍ଧ୍ୱମୂଳ,ତଳମୁହାଁ ବୃକ୍ଷାଦି।

ଅଭିଶୋକ—ପୁଂ. ବ. ଅଭିଶୋଚନା, କୌଣସି ଲୋକ ଉଦ୍ଦେଶ୍ୟରେ କୃତ ଶୋକ।

ଅଭିଶ୍ରବ, ଅଭିଶ୍ରାବ—ପୁଂ. ବ. (ଅଭି+ଶ୍ରୁ+ଅ) ସର୍ବଥା ଶ୍ରବଣ, ସର୍ବତୋଭାବେ ଶ୍ରବଣ।

ଅଭିଶୈ୍ୱତ୍ୟ—ବି. ବଂ. ଶୁଦ୍ଧଚରିତ୍ର, ଯାହାର ପବିତ୍ର ସ୍ୱଭାବ।

ଅଭିଷଙ୍ଗ, ଅଭୀଷଙ୍ଗ—ପୁଂ. ବ. (ଅଭି+ସଞ୍ଜ୍+ଭା.ଅ)ବ୍ୟସନ,ହିଂସା,ଅପବାଦ, ସମ୍ପର୍କ, ଘୃଣ, ଶପଥ, ଆକ୍ରୋଶ, ପରାଭବ, ଆସକ୍ତି, ଆଲିଙ୍ଗନ, କୋଲାକୋଲି।

ଅଭିଷକ୍ତ—ବଂ. (ଅଭି+ସନଜ+ତ) ପରାଜିତ, ଅଭିଭୂତ, ପିଶାଚଗ୍ରସ୍ତ।

ଅଭିଷବ—ପୁଂ. ବ. (ଅଭି+ସୁ+ଅ) ଯଜ୍ଞସ୍ନାନ, ନିଷ୍ପୀଡ଼ନ, ମଦ୍ୟଶୋଧନ, କାଞ୍ଜୀ, ଯଜ୍ଞ, ମଦ ପ୍ରସ୍ତୁତକରିବା।

ଅଭିଷବଣ—କ୍ଲୀ. ବ. (ଅଭି+ସୁ+ଭା. ଅନ) ଯଜ୍ଞାଙ୍ଗସ୍ନାନ,ସୋମରସାଦି ପାନ, ମଦ୍ୟପ୍ରସ୍ତୁତ କ୍ରିୟାବିଶେଷ।

ଅଭିଷହ୍ୟ—ବି.ବଂ. ଅଭି+ସହ୍+ଯ) ଯାହା ସହ୍ୟ ହୁଏ।

ଅଭିଷଚ—ବି. ବଂ. (ଅଭି+ସଚ୍+ଣିଚ୍, କ୍ୱିପ) ଅଭିଗମୃକ,ସମ୍ମୁଖରେଇ ବନ୍ଧନକରିବାକୁ ସମର୍ଥ।

ଅଭିଷାହ, ଅଭୀଷାହ—ବି.ବଂ. (ଅଭି+ସହ୍+କ୍ୱିପ୍) ଶତ୍ରୁଜୟକାରୀ, ସହନକାରୀ।

ଅଭିଷିକ୍ତ—ବି. ବ୍ଲଂ. (ଅଭି+ସିଚ୍+ମି. ତ) ବିଧିପୂର୍ବକ ସ୍ନାପିତ, କୌଣସି କାର୍ଯ୍ୟରେ ନିଯୁକ୍ତ, କୃତାଭିଷେକ, ସ୍ନାତ, କୌଣସି ପଦରେ ଆରୂଢ଼, (ସ୍ତ୍ରୀ) ଅଭିଷିକ୍ତା।

ଅଭିଷୁତ—ବି. ବଂ. (ଅଭି+ସୁ+ତ) ନିଷ୍ପୀଡ଼ିତ, (ବ) ସୋମରସ, କାଞ୍ଜୀ, କାଞ୍ଜୀକ।

ଅଭିଷେକ—ପୁଂ. ବ. (ଅଭି+ସିଚ୍+ଣିଚ୍+ଭା.ଅ) ମନ୍ତ୍ରପୂତଜଳରେ ସ୍ନାନ, ଜଳସେଚନ, ରାଜପଦରେ ଆରୋହଣକ୍ରିୟା।

ଅଭିଷେକକୁମ୍ଭ—ପୁଂ. ବ. (ଅଭିଷେକ+କୁମ୍ଭ) ମନ୍ତ୍ରପୂତ ଜଳପାତ୍ର।

ଅଭିଷେକୀ—ଗ୍ରା. ବଂ. ରାଜାରୂପେ ଅଭିଷିକ୍ତ, ବରଣକାରୀ।

ଅଭିଷେକ୍ତା—ପୁଂ.ବଂ. (ଅଭି+ସିଚ୍+ତୃ ଅଭିଷେକକର୍ତ୍ତା,(ସ୍ତ୍ରୀ)ଅଭିଷେକ୍ତ୍ରୀ।

ଅଭିଷେକ୍ୟ—ବି.ବଂ. ଅଭିଷେକରଯୋଗ୍ୟ

ଅଭିଷେଚନ—କ୍ଲୀ. ବ. (ଅଭି+ସିଚ୍+ଅନ) ମନ୍ତ୍ରପୂତଜଳରେ ସ୍ନାନ, ଜଳସେଚନ, ଅଭିଷେକ।

ଅଭିଷେଚନୀୟ—ବି. ବଂ. (ଅଭି+ସିଚ୍+ଅନୀୟ) ଅଭିଷେକର ଯୋଗ୍ୟ, ଯାହାକୁ ଅଭିଷେକ କରାହେବ।

ଅଭିଷେଣନ—କ୍ଲୀ. ବ. (ଅଭି+ସେନ+ଭା, ଅନ) ଶତ୍ରୁସମୀପକୁ ସେନାସହ ଗମନ, ଯୁଦ୍ଧଯାତ୍ରା।

ଅଭିଷ୍ଟକ—ଗ୍ରା. ବ. ଅଭ୍ୟାସ।

ଅଭିଷ୍ଟନ—ପୁଂ. ବ. (ଅଭି+ସ୍ତନ୍+ଅ) ସିଂହନାଦ।

ଅଭିଷ୍ଟି,ଅଭୀଷ୍ଟି—ବି. ବଂ. ଯାହାର ଯଜ୍ଞକରିବା କର୍ତ୍ତବ୍ୟ, ଅଭିଷ୍ଟବ୍ୟ।

ଅଭିଷ୍ଟୁତ—ବି. ବଂ. (ଅଭି+ସ୍ତୁ+ମି.ତ) ପ୍ରଶସ୍ତ, ପ୍ରଶଂସିତ, ବର୍ଣ୍ଣିତ, ସ୍ତୁତ, (କ୍ଲୀ. ବ.) ସ୍ତୁତି, ସ୍ତବ।

ଅଭିଷ୍ୟନ୍ଦ,ଅଭିସ୍ୟନ୍ଦ—ପୁଂ. ବ. (ଅଭି+ସ୍ୟନ୍ଦ+ଭା,ଅ) ଅତିବୃଦ୍ଧି,ଅଧିକସ୍ଫୀତତା, ସ୍ରବଣ, ଝରିବା. ସ୍ଫୁରଣ,ଜଳାଦି କ୍ଷରଣ, ଚକ୍ଷୁଫୁଲାରୋଗବିଶେଷ, (ବଂ) ଉଦ୍‌ବୃତ୍ତ, ଅଧିକ।

ଅଭିଷ୍ୟନ୍ଦନଗର—କ୍ଲୀ. ବ. ଶାଖାନଗର, ନଗରରେ ବେଶିଲୋକ ହେଲେ ଉଦ୍‌ବୃତ୍ତଲୋକଦ୍ୱାରା ସ୍ଥାପିତ ନୂତନ ନଗର।

ଅଭିଷ୍ୟନ୍ଦରମଣ—କ୍ଲୀ. ବ. (୬ତତ୍ପୁ) ରତିସ୍ଥାନ।

ଅଭିଷ୍ୟନ୍ଦବମନ—କ୍ଲୀ. ବ. (୬ତତ୍ପୁ) ନଗରର ଅତିରିକ୍ତ ଲୋକମାନଙ୍କର ନିଃସାରଣ।

ଅଭିଷ୍ୟନ୍ଦୀ—ପୁଂ. ବଂ. (ଅଭି+ସ୍ୟନ୍ଦ+କ, ଇନ୍) ଯେ ଗୃହଆଡ଼େ କ୍ଷରଅଛୁ, କ୍ଷରଣଶୀଳ (ପୁଂ.ବ) ଜଳବାହୁଲ୍ୟ।

ଅଭିଷ୍ୱଙ୍ଗ—ପୁଂ. ବ. (ଅଭି+ସ୍ୱଞ୍ଜ୍+ଭା, ଅ) ଉତ୍କଟରାଗ, ଅହଂବୁଦ୍ଧି, ଅତିଶୟ ଅନୁରାଗ, ଆସକ୍ତି, ଆଲିଙ୍ଗନ।

ଅଭିସଂରବ୍ଧ—ବି. ବଂ. (ଅଭି+ସମ+ରଭ୍+ତ) କ୍ରୁଦ୍ଧ।

ଅଭିସଂବୃତ୍ତି—ସ୍ତ୍ରୀ. ବ. (ଅଭି+ସମ୍+ବୃତ୍+ତି) ବ୍ୟବହାର, ଅଭିନିଷ୍ପତ୍ତି।

ଅଭିସଂଶ୍ରୟ—ପୁଂ. ବ. (ଅଭି+ସମ୍+ଶ୍ରି+ଅ) ସକଳପ୍ରକାରରେ ଆଶ୍ରୟ।

ଅଭିସଂସାର—ପୁଂ. ବ. (ଅଭ+ସମ୍+ସୃ+ଅ) ଜଗତ୍ (ଅବ୍ୟ) ସଂସାରର ଅଭିମୁଖ।

ଅଭିସନ୍ଧିତ—ବି. ବଂ. (ଅଭି+ସମ୍+ଧା+ମି.ତ) ଅଭିସନ୍ଧିର ବିଷୟ, ଅଭି-

ସନ୍ଧିକର୍ତ୍ତା, କୌଣସି ଫଳ ଉଦ୍ଦେଶ୍ୟ କୃତ, (ସ୍ତ୍ରୀ) ଅଭିସନ୍ଧିତା ।

ଅଭିସନ୍ତାପ—ପୁଂ. ବ. (ଅଭି+ସମ୍+ତପ+ଘ.ଅ)ଅତିସନ୍ତାପ, ଯୁଦ୍ଧ, ଅଭିଶାପ, ତାପ ।

ଅଭିସନ୍ଧକ—ତ୍ରି. ବଂ. (ଅଭି+ସମ୍+ଧା+କ)ପରଗୁଣ ଅସହିଷ୍ଣୁ, ମତ୍ସରୀ ।

ଅଭିସନ୍ଧା—ସ୍ତ୍ରୀ. ବ. ଅଭିସନ୍ଧି, ଫଳୋଦ୍ଦେଶ୍ୟ, ବଞ୍ଚନା ।

ଅଭିସନ୍ଧାନ—କ୍ଲୀ. ବ. (ଅଭି+ସମ୍+ଧା+ଘ.ଅନ)ଅଭିପ୍ରାୟ, ଗୂଢ଼ଉଦ୍ଦେଶ୍ୟ ଅଭିସନ୍ଧି, ପ୍ରବଞ୍ଚନା, ସମ୍ମିଳନ, ସନ୍ଧି, ସମ୍ପ୍ରଯୋଗ ।

ଅଭିସନ୍ଧାୟ—ପୁଂ.ବ. ଅଭିସନ୍ଧି, ଫଳାଦିର ଉଦ୍ଦେଶ୍ୟ, ଉଦ୍ଦେଶ୍ୟ କରି ।

ଅଭିସନ୍ଧି—ପୁଂ. ବ. (ଅଭି+ସମ୍+ଧା+ଇ) ଅଭିପ୍ରାୟ, ଗୂଢ଼ ଉଦ୍ଦେଶ୍ୟ, ବଞ୍ଚନା, ମନସ୍ଥ, ତାତ୍ପର୍ଯ୍ୟ, ପ୍ରତାରଣା, ସମ୍ପ୍ରଯୋଗ,ସନ୍ଧି,ଅବସ୍ଥା, ଆଗତପାଞ୍ଚ, ମତଲବ, ଫଳାଦିର ଉଦ୍ଦେଶ୍ୟ ।

ଅଭିସନ୍ଧିତ—ତ୍ରି. ବ. ଅଭିସନ୍ଧିର ବିଷୟ, ଉଦ୍ଦେଶ୍ୟବିଶିଷ୍ଟ ।

ଅଭିସମ୍ପତ୍ତି—ସ୍ତ୍ରୀ. ବ. (ଅଭି+ସମ୍+ପଦ+ତି) ସବୁଆଡ଼େ ଧନ,ଏକ ରୂପ-ଧନର ନାନାପ୍ରକାର ହେବା ।

ଅଭିସମ୍ପଦ୍—ସ୍ତ୍ରୀ. ବ. ଅଧିକଧନ, ଅଧିକସମ୍ପତ୍ତି । [କରି ।

ଅଭିସମ୍ପଦ—(ଅବ୍ୟ)ସମ୍ପଦକୁ ଅଭିଲକ୍ଷ୍ୟ

ଅଭିସମ୍ପାତ—ପୁଂ. ବ. (ଅଭି+ସମ+ପତ୍+ଘ,ଅ)ଯୁଦ୍ଧ, ପତନ, ଅଭିଶାପ, ଅନିଷ୍ଟକାମନା, ପରର ଅନିଷ୍ଟପ୍ରାର୍ଥନା ।

ଅଭିସମ୍ବନ୍ଧ-ପୁଂ.ବ. (ଅଭି+ସମ୍+ବନ୍ଧ+ଅ)ଅଧିକସମ୍ବନ୍ଧ,ବିଶିଷ୍ଟ ବୁଦ୍ଧି ହେତୁ ।

ଅଭିସର—ପୁଂ.ବ. (ଅଭି+ସୃ+କ,ଅ) ସହାୟ, ଅନୁଚର, ପାର୍ଶ୍ୱଚର, ଭୃତ୍ୟ, ସହଚର ।

ଅଭିସରଣ—କ୍ଲୀ. ବ. (ଅଭି+ସୃ+ଘ, ଅନ) ଅଭିଗମନ, ଅନୁସରଣ, ଅଭିସାର, ଉମେଦାରି ।

ଅଭିସର୍ଜ୍ଜନ—କ୍ଲୀ.ବ.(ଅଭି+ସୃଜ୍+ଘ, ଅନ) ଦାନ, ତ୍ୟାଗ, ବଧ, ଉତ୍ସର୍ଗ, ବିସର୍ଜ୍ଜନ ।

ଅଭିସାର—ପୁଂ.ବ.(ଅଭି+ସୃ+ଘ,ଅ) ସଂଭୋଗ,ସମ୍ଭୋଗଅଭିଳାଷରେ ନାୟକ ନାୟିକାଙ୍କର ପରସ୍ପର ସଙ୍କେତ ସ୍ଥାନକୁ ଗମନ,ଯୁଦ୍ଧ, ବଳ, ଅନୁଚର, ସହାୟ, ସଙ୍କେତ ସ୍ଥାନ ।

ଅଭିସାରକ—ପୁଂ.ବଂ.(ଅଭି+ସୃ+କ, ଅକ) ନାୟିକାର ଉଦ୍ଦେଶ୍ୟ ସଙ୍କେତ ସ୍ଥାନକୁ ଗମନକାରୀ, (ସ୍ତ୍ରୀ) ଅଭିସାରିକା ।

ଅଭିସାରିକା—ସ୍ତ୍ରୀ. ବ. ନାୟକର ସହିତ ପରାମର୍ଶ କରି ଯେଉଁ ନାୟିକା ସଙ୍କେତ ସ୍ଥାନକୁ ଯାଏ, ନାୟିକାବିଶେଷ ।

ଅଭିସାରିଣୀ—ସ୍ତ୍ରୀ. ବ. (ଅଭି+ସୃ+କ, ଇନ୍+ଈ)ଅଭିସାରିକା ନାୟିକା ।

ଅଭିସାରୀ—ପୁଂ. ସ୍ତ୍ରୀ. ବଂ. କାନ୍ତା ସଙ୍ଗେ ମିଳିବାପାଇଁ ସଙ୍କେତ ସ୍ଥାନକୁ ଯିବା ଲୋକ, (ସ୍ତ୍ରୀ) ଅଭିସାରିଣୀ ।

ଅଭିସୃଷ୍ଟ—ତ୍ରି. ବଂ. (ଅଭି+ସୃଜ୍+ମ୍ପ, ତ)ଦତ୍ତ,ଉତ୍ସୃଷ୍ଟ, ପରିତ୍ୟକ୍ତ, ବିସୃଷ୍ଟ ।

ଅଭିସ୍ୱର—କ୍ଲୀ. ବ. ଅତିଶୟ ସ୍ୱରଯୁକ୍ତ ସ୍ତୋତ୍ରବିଶେଷ,ଅଧିକଶବ୍ଦଯୁକ୍ତ ସ୍ତବ ।

ଅଭିସ୍ୱର—ପୁଂ.ବ.(ଅଭି+ସ୍ୱର+ଅପ୍) ସମ୍ମୁଖେ ପଢ଼ା, ସାମନାରେ ପଢ଼ିବା, ପଢ଼ାଯିବା ।

ଅଭିହତ—ତ୍ରି ବଂ.(ଅଭି+ହନ୍+ମ୍ପ,ତ) ଅଭିଘାତ, ଆହତ, ପତିତ, ପରାଜିତ, ନଷ୍ଟ ଭଗ୍ନ, ଅପମାନିତ, ଗୁଣିତ (ସ୍ତ୍ରୀ) ଅଭିହତା ।

ଅଭିହର—ପୁଂ. ବ. (ଅଭି+ହୃ+ଅ) ଲୁଟି, ଆକ୍ରମଣ, ବଳାତ୍ଧାରଣ ।

ଅଭିହରଣ—କ୍ଲୀ. ବ. (ଅଭି+ହୃ+ଘ, ଅନ) ସମ୍ମୁଖେ ଆହରଣ, ଆନୟନ, ଅପହରଣ, ଚୌର୍ଯ୍ୟ, ବିବାହକାଳୀନ ଯୌତୁକପ୍ରଦାନ ।

ଅଭିହବ—ପୁଂ. ବ. ସମ୍ମୁଖେ ଆହ୍ୱାନ ।

ଅଭିହସ୍ୟ—ତ୍ରି.ବ. (ଅଭି+ହସ୍+ଯ) ଉପହସନୀୟ, ଉପହାସର ବିଷୟ, (ଅବ୍ୟ) ଉପହାସ କରି ।

ଅଭିହାର—ପୁଂ.ବ.(ଅଭି+ହୃ+ଘ.ଅ) ଚୋର, ଲୁଟି, ଆକ୍ରମଣ, ଆଲିଙ୍ଗନ, ମିଳନ, ବନ୍ଧନ, ଡକାଏତି, ଅଭିଯୋଗ, ବର୍ମଧାରଣ ।

ଅଭିହିତ—ତ୍ରି.ବଂ.(ଅଭି+ଧା+ମ୍ପ,ତ) ଭାଷିତ,କଥିତ,ନିର୍ଦ୍ଦିଷ୍ଟ, ଉଲ୍ଲିଖିତ,ଉକ୍ତ ।

ଅଭିହିତାନ୍ୱୟ—ପୁଂ.ବଂ. ପୂର୍ବପର ଅଭିଧାଲକ୍ଷଣା ଶବ୍ଦମାନଙ୍କର ଅର୍ଥବୋଧକ ସମ୍ବନ୍ଧବିଶେଷ ।

ଅଭିହୂତି—ସ୍ତ୍ରୀ. ବ. (ଅଭି+ହ୍ୱେ+ତି) ଆଭିମୁଖ୍ୟେ ଆହ୍ୱାନ, ସମ୍ମୁଖରେ ଡକାହେବା ।

ଅଭିହୃତ—ତ୍ରି. ବଂ. (ଅଭି+ହୃ+ତ) ସମ୍ମୁଖଦେଇ ଯାହାକୁ ହରଣକରାଯାଏ ।

ଅଭିହ୍ୱର—ତ୍ରି. ବଂ. (ଅଭି+ହୃ+ବଚ) କୁଟିଳଗମନକାରୀ, ଗନ୍ତବ୍ୟ ଦେଶାଦି ।

ଅଭୀ—ତ୍ରି.ବଂ.(ଅ+ଭୀ)ନିର୍ଭୟ, ଭୟଶୂନ୍ୟ, ଯାହାର ଭୟ ନାହିଁ, ନିର୍ଭର, ଭରସା, ସାହସୀ, (ସ୍ତ୍ରୀ) ବ. ଭୟାଭାବ, ନିର୍ଭୀକତା ।

ଅଭୀକ—ତ୍ରି. ବଂ. (ଅଭି+କମ୍+କ, ଅ) କାମୁକ, ଲମ୍ପଟ, ନିର୍ଭୟ, କ୍ରୂର, ଇଚ୍ଛୁକ, (ବ) ସ୍ୱାମୀ, କବି, ପତି, ନାୟକ, (ସ୍ତ୍ରୀ) ଅଭୀକା ।

ଅଭୀକ୍ଷ୍ଣ—ତ୍ରି. ବଂ. (ଅଭି+କ୍ଷଣ+କ.ଅ) ଭୃଶ, ଅତିଶୟ, (କ୍ରି. ବଂ) ପୁନଃପୁନଃ,ସତତ, (ସ୍ତ୍ରୀ) ଅଭୀକ୍ଷ୍ଣା ।

ଅଭୀତ—ତ୍ରି. ବଂ (ଅ+ଭୀତ)ଭୟହୀନ, ନିର୍ଭୟ, (ସ୍ତ୍ରୀ) ଅଭୀତା ।

ଅଭୀତି—ସ୍ତ୍ରୀ.ବ. (ନ.ତତ୍ପୁ)ଭୟଶୂନ୍ୟତା, ଅଭୟଦାୟକ ମୁଦ୍ରାବିଶେଷ ।

ଅଭୀପତ୍—ତ୍ରି.ବଂ.(ଅଭି+ପତ୍+କ୍ୱିପ୍) ଅଭିଗମନକର୍ତ୍ତା,ଯେ ଅଭିଗମନ କରେ ।

ଅଭୀପ୍ସା—ସ୍ତ୍ରୀ.ବ. (ଅଭି+ସନ୍‌ଆପ୍+ଅ+ଆ)ପାଇବାର ଇଚ୍ଛା, କାମନା ।

ଅଭୀପ୍‌ସିତ –ତ୍ରି.ବଂ ଅଭି + ସନ୍ + ଆପ୍ + ର୍ମ,ତ) ଅଭିଲଷିତ, ବାଞ୍ଛିତ, ଇଷ୍ଟ, ଆକାଙ୍‌କ୍ଷିତ ।

ଅଭୀପ୍‌ସୁ—ତ୍ରି.ବଂ.(ଅଭି + ଆପ୍ + ସନ୍ + କ,ଉ)ଅଭିଳାଷୀ,ପାଇବାକୁ ଇଚ୍ଛୁକ

ଅଭୀମ—ତ୍ରି.ବଂ. (ଅ + ଭୀମ) ଅର୍ଜ୍ଜୁନଙ୍କ ଅଗ୍ରଜ ନୁହେ, ଭୟାନକ ନୁହେ, ଭୟଙ୍କର ନୁହେ ।

ଅଭୀମାନ—ପୁଂ.ବ. (ଅଭି + ମନ୍ + ଅ) ଆତ୍ମଗରିମା,ବଡ଼େଇ,ଗର୍ବ,ସ୍ନେହ,ଇଚ୍ଛା ।

ଅଭୀର—ପୁଂ. ବ. (ଅଭି + ଈର୍ + କ, ଅ) ଗଉଡ଼, ଆଭୀର, ଗଉଡ଼ ଜାତ ।

ଅଭୀରୁ—ତ୍ରି.ବଂ. (ନ.ତତ୍ପୁ)(ଅ + ଭୀରୁ) ଭୟଶୂନ୍ୟ,ଭୀରୁ ନୁହେ, (ବ) ଛତୁଆରି, ଭୈରବ । [ସମ୍ମୁଖ ।

ଅଭୀରୁଣ—ତ୍ରି. ବଂ (ଅଭି + ରୁ + ଉନ)

ଅଭୀରୁପତ୍ରୀ—ସ୍ତ୍ରୀ.ବ. (ଅଭୀରୁ + ପତ୍ର + ଈ) ବ.ବ୍ରୀ, ଶତ ବରୀ, ଛତୁଆରି ।

ଅଭୀଳ—କ୍ଲୀ. ବ. (ଅଭି + ଈର୍ + ଅ) କଷ୍ଟ, ଭୟଙ୍କର, (ବଂ) କ୍ଳେଶଯୁକ୍ତ, ଭୟଯୁକ୍ତ ।

ଅଭୀଳାପ—ପୁଂ.ବ. (ଅଭି + ଲପ୍ + ଅ) ଅଭିମୁଖେ କଥନରୂପ ଶବ୍ଦ ।

ଅଭୀବର୍ଗ—ପୁଂ. ବ. (ଅଭି + ବୃଜ୍ + ଅ) ଅଭିମୁଖ ବହୁବ୍ୟକ୍ତି, ସାମନା ସମସ୍ତ ।

ଅଭୀବର୍ତ୍ତ—ପୁଂ.ବ. (ଅଭି + ବୃତ୍ + ଅ) ବ୍ରହ୍ମସ୍ତୋତ୍ରବିଶେଷ ।

ଅଭୀଶୁ—ପୁଂ.ବ.(ଅଭି + ଅଶ + କ.ଉ) ରଶ୍ମି, ବାହୁ, ବଲ୍‌ଗା, ବାଗ, ଆଙ୍ଗୁଳି, ଭୂସ୍ଥାନଦେବତା ।

ଅଭୀଶୁମାନ—ପୁଂ.ବ. ସୂର୍ଯ୍ୟ,(ସ୍ତ୍ରୀ)ଅଭୀଶୁମତୀ, ପୁଂ. ବଂ. ଦୀପ୍ତିଶାଳୀ,କାମୁକ ।

ଅଭୀଷଙ୍ଗ—ପୁଂ. ବ. (ଅଭି + ସଞ୍ଜ + ଅ) ପରାଭବ, ଶପଥ, ଦ୍ରବ୍ୟ, ବ୍ୟସନ, ଆସକ୍ତି, ଆକ୍ରୋଶ ।

ଅଭୀଷୁ—ପୁଂ.ବ. (ଅଭି + ଇଷ୍ + ର୍ମ.ଉ) କିରଣ, ଅଶ୍ୱରଜ୍ଜୁ, ଲଗାମ, ବାଗ, ଅନୁରାଗ, କାମ ।

ଅଭୀଷ୍ଟ—ତ୍ରି.ବଂ.(ଅଭି + ଇଷ + ର୍ମ.ତ) ବାଞ୍ଛିତ, ବଲ୍ଲଭ, ହୃଦ୍ୟ, ପ୍ରିୟ, ଅଭୀପ୍‌ସିତ, (ସ୍ତ୍ରୀ) ଅଭୀଷ୍ଟା, (ବ) ଅଭ୍ୟାସ ।

ଅଭୀଷ୍ଟଦେବତା— ବ. ଇଷ୍ଟଦେବତା, ଆରାଧ୍ୟ ଦେବ ।

ଅଭୀଷ୍ଟପ୍ରଦ—ତ୍ରି. ବଂ. (ଅଭୀଷ୍ଟ + ପ୍ର + ଦା + କ.ଅ) ଅଭିଲଷିତ ଫଳ ପ୍ରଦାନକାରୀ, (ସ୍ତ୍ରୀ) ଅଭୀଷ୍ଟପ୍ରଦା ।

ଅଭୀଷ୍ଟଲାଭ—ପୁଂ.ବ. (୬ତତ୍ପୁ) ଇଷ୍ଟଲାଭ, ଅଭିଲଷିତପ୍ରାପ୍ତି, ଇଷ୍ଟସିଦ୍ଧି ।

ଅଭୀଷ୍ଟା—ସ୍ତ୍ରୀ. ବଂ. ( ଅଭୀଷ୍ଟ + ଆପ୍ ) ଅଭିଲଷିତା, ବାଞ୍ଛିତା, ପ୍ରିୟା, ବ. (ସ୍ତ୍ରୀ) ରେଣୁକାନାମକ ଗନ୍ଧଦ୍ରବ୍ୟ ।

ଅଭୁକ୍ତ—ତ୍ରି. ବଂ. (ନ.ତତ୍ପୁ) ( ଅ + ଭୁଜ୍ + ତ ) ଅଭକ୍ଷିତ ବସ୍ତୁ, ଯାହା ଭୋଜନ କରାଯାଇ ନାହିଁ, ଅନାହାରୀ, ଉପବାସୀ, (ସ୍ତ୍ରୀ) ଅଭୁକ୍ତା ।

ଅଭୁକ୍ତମୂଳ—କ୍ଲୀ. ବ. ଜ୍ୟେଷ୍ଠାନକ୍ଷତ୍ରର ଶେଷ ଗୃଣଦଣ୍ଡ ଓ ମୂଳାର ଆଦ୍ୟ ଗୃଣଦଣ୍ଡ, ଏହି ସମୟରେ ବାଳକ ଜନ୍ମ ହେଲେ ପିତୃଧନ ଭୋଗ କରିପାରେ ନାହିଁ, ମରିଯାଏ ନାହିଁ ।

ଅଭୁଗ୍ନ—ତ୍ରି. ବଂ. (ନ.ତତ୍ପୁ) ଅକୁବ୍ଜୀକୃତ, ଅନବରତ, ଅକୁଟିଳ, ଅବକ୍ର, ସରଳ, ସିଧା, ଅରୁଗ୍‌ଣ, କୁଜା ନୁହେ, (ସ୍ତ୍ରୀ) ଅଭୁଗ୍ନା ।

ଅଭୁଜ୍—ତ୍ରି. ବଂ. (ଅ + ଭୁଜ୍ + କ୍ୱିପ୍) ଅଭକ୍ଷକ ।

ଅଭୁଜ—ତ୍ରି.ବଂ. (ବ.ବ୍ରୀ) ଭୁଜ ରହିତ, ବାହୁହୀନ, ହସ୍ତଶୂନ୍ୟ, (ସ୍ତ୍ରୀ) ଅଭୁଜା ।

ଅଭୁତ—ଗ୍ରା.ବଂ. ଅଭୂତ, ଅଭୂତପୂର୍ବ ।

ଅଭୂତ—ତ୍ରି.ବଂ. (ଅ + ଭୂତ ନ.ତତ୍ପୁ;) ଅତୀତକାଳ ନୁହେ,ଅତୀତ ହୋଇନାହିଁ, କ୍ଷିତ୍ୟାଦି ପଞ୍ଚଭୂତ ନୁହେ, ପିଶାଚାଦି ନୁହେ, ଜନ୍ତୁ ନୁହେ, ମିଥ୍ୟାଭୂତ ।

ଅଭୂତତଦ୍‌ଭାବ—ପୁଂ.ବ.(୬ତତ୍ପୁ)ପଦାର୍ଥର ପରମୁହୂର୍ତ୍ତରେ ଅନ୍ୟରୂପଧାରଣ,ଯଥା- ଦୁଧ ଓ ଦହି, ପୂର୍ବେ ଯାହା ଘଟି ନଥିଲା ତାହା ବର୍ତ୍ତମାନ ଘଟିବା ।

ଅଭୂତପୂର୍ବ—ତ୍ରି. ବଂ. ଯାହା ପୂର୍ବେ ହୋଇ ନାହିଁ, (ସ୍ତ୍ରୀ) ଅଭୂତପୂର୍ବା ।

ଅଭୂତବିଗ୍ରହ—ପୁଂ.ବଂ(ଅଭୂତ + ବିଗ୍ରହ) ବ.ବ୍ରୀ, ଯାହାସଙ୍ଗେ କେହି ଯୁଦ୍ଧକରିବାକୁ ଅଗ୍ରସର ହୁଏ ନାହିଁ ।

ଅଭୂତଭାବ—ପୁଂ ବ.(ଅ + ଭୂତ + ଭାବ) ଯାହା ପୂର୍ବେ ହୋଇ ନ ଥିଲା, ଏବେ ତାହା ହେବା ।

ଅଭୂତାଭିନିବେଶ—ପୁଂ.ବ.ମିଥ୍ୟାବସ୍ତୁରେ ସତ୍ୟବସ୍ତୁର କଳ୍ପନା ବା ଆରୋପ ।

ଅଭୂତି—ସ୍ତ୍ରୀ.ବ(ଅ + ଭୂ + ତି) ଉତ୍ପତ୍ତିର ଅଭାବ, ସମ୍ପତ୍ତିର ଅଭାବ । [ ଅଳ୍ପ ।

ଅଭୂମନ୍—ପୁଂ.ବ.ଅଧିକ ନୁହେ, ଊଣା,

ଅଭୂମି—ସ୍ତ୍ରୀ. ବ. (ନ.ତତ୍ପୁ) ମନ୍ଦଭୂମି, ସ୍ଥାନାଭାବ, ଅଭାଜନ, ଆଧାରାଭାବ, ଅନାଶ୍ରୟ,ଅନୁପଯୋଗୀ ସ୍ଥାନ,ଅବିଷୟ, ଅପାତ୍ର ।

ଅଭୂମିଜ—ତ୍ରି. ବଂ. ଯାହା ଭୂଇଁରେ ହୁଏ ନାହିଁ, ଜଳାଦି ।

ଅଭୂଇଷ୍ଠ—ତ୍ରି.ବଂ.ଅଧିକ ନୁହେ,ଅଳ୍ପ ।

ଅଭେଇବର—ଗ୍ରା. ବ. ଆଶ୍ରିତ ଲୋକଙ୍କୁ ରକ୍ଷାକରିବା ନିମିତ୍ତ ଅଭୟଦାନ, ଆଶ୍ରିତ, ବାତ୍ସଲ୍ୟ ।

ଅଭେକ—ଗ୍ରା.ବଂ (ପୁଂ.ସ୍ତ୍ରୀ) ଭେକହୀନ, ବସ୍ତ୍ରହୀନ, ଦରିଦ୍ର, ନିଷ୍କର୍ମୀ । [ନିଷ୍କର୍ମୀ ।

ଅଭେକା—ଗ୍ରା. ବଂ. ଦରିଦ୍ର, ବସ୍ତ୍ରହୀନ,

ଅଭେଖ(ଖା)—ଗ୍ରା.ବଂ.ଅଭେକ(ଦେଖ) ।

ଅଭେଦ—ପୁଂ.ବ (ନ.ତତ୍ପୁ)ଐକ୍ୟ,ସାମ୍ୟ, ଏକତା, ଦୃଢ଼ସମ୍ବନ୍ଧ, ସମାନ, ଏକ, ଅବିଶେଷ, ଭେଦର ଅଭାବ ।

ଅଭେଦକବଚ—ଗ୍ରା.ବ. ଯେଉଁ କବଚଧାରଣ କଲେ ଦେହରେ ଅସ୍ତ୍ର କାଟେ ନାହିଁ ।

ଅଭେଦାତ୍ମା—ପୁଂ. ସ୍ତ୍ରୀ. ବଂ (ଅଭେଦ + ଆତ୍ମନ୍ ) ଅଭିନ୍ନହୃଦୟ, ଏକବିଧମନୋଭାବବିଶିଷ୍ଟ, ସମପ୍ରାଣ, ଘନିଷ୍ଠ ବା ଅବିଚ୍ଛେଦ୍ୟ ପ୍ରୀତି ।

ଅଭେଦୀ—ପୁଂ. ବିଂ (ଅଭେଦ+ଇନ୍) ଭେଦବରହିତ, ନିର୍ବିଶେଷ, (ସ୍ତ୍ରୀ) ଅଭେଦିନୀ ।

ଅଭେଦେ—କ୍ରି.ବିଂ. ଭିନ୍ନଭାବ ବ୍ୟତିରେକେ, ଭିନ୍ନଜ୍ଞାନ ନ କରି, ନିର୍ବିଶେଷରେ ।

ଅଭେଦ୍ୟ—ବି. ବିଂ (ଅ+ଭେଦ୍ୟ) ନ.ତତ୍; ଯହିଁରେ ବିଚ୍ଛେଦ ନାହିଁ, ଯାହାକୁ ଭାଙ୍ଗି ହୁଏ ନାହିଁ, (ବି) ସ୍ଥିର, ଦୃଢ଼, କଠିନ, ଅକାଟ, ଅତିଘନ ।

ଅଭେଦ୍ୟପ୍ରୀତି—ବି (କ.ଧା) ଘନିଷ୍ଠପ୍ରେମ, ଯେଉଁ ପ୍ରୀତିରେ ବିଚ୍ଛେଦ ଘଟି ନ ପାରେ ।

ଅଭୋକ—ସ୍ତ୍ରୀ.ବି. ଅକ୍ଷୁଧା, କ୍ଷୁଧା ନ ଥିବା ଅବସ୍ଥା, କ୍ଷୁଧାର ଅଭାବ ।

ଅଭୋକ୍ତା—ପୁଂ. ବିଂ. ଅଭୋଜନକାରୀ, ଅନାହାରୀ, ଉପବାସୀ (ସ୍ତ୍ରୀ) ଅଭୋକ୍ତ୍ରୀ ।

ଅଭୋଗ—ପୁଂ. ବି (ନ.ତତ୍) ଭୋଗାଭାବ, ଅବ୍ୟବହାର, ଅପ୍ରାପ୍ତି, ବେଦଖଲ, (ବିଂ) ଅଭୁକ୍ତ, ଭୋଗକରି ଯାଇନଥିବା, ଅପ୍ରାପ୍ତ, ଅନନୁଭୂତ ।

ଅଭୋଗଲିଙ୍ଗ—ବିଂ (ବ.ବ୍ରୀ) ଅପୁମାନ, କ୍ଳୀବ, ସ୍ତ୍ରୀ. ବା ପୁଂ. ଚିହ୍ନରହିତ ।

ଅଭୋଗ୍ୟ—ପୁଂ.ବିଂ. ଯାହା ଭୋଗ ଯୋଗ୍ୟ ନୁହେ, (ସ୍ତ୍ରୀ) ଅଭୋଗ୍ୟା, ଅଗମ୍ୟା ।

ଅଭୋଜନ—ବି.(ଅ+ଭୋଜନ) ଭୋଜନର ଅଭାବ, ଉପବାସ, ଖାଦ୍ୟାଭାବ, ଭୋଜନରୁ ନିବୃତ୍ତି, (ବିଂ) ଅଭୁକ୍ତ, ଅଖିଆ, ଉପବାସୀ ।

ଅଭୋଜ୍ୟ—ତ୍ରି. ବିଂ. (ନ.ତତ୍) ଅଭକ୍ଷ୍ୟ, ନିଷିଦ୍ଧ ଖାଦ୍ୟ, ଅଶୁଦ୍ଧଖାଦ୍ୟ, ଅଖାଦ୍ୟ, ଅଭକ୍ଷଣୀୟ, (ସ୍ତ୍ରୀ) ଅଭୋଜ୍ୟା ।

ଅଭୌମ—କ୍ଳୀ. ବିଂ. ଭୂମିଜାତ ନୁହେ, ଆକାଶାଦିରେ ଜାତ ଜଳାଦି ।

ଅଭ୍ୟକ୍ତ—ତ୍ରି.ବିଂ.(ଅଭି+ଅଞ୍ଜ+କ.ତ) ଆପାଦମସ୍ତକ ତୈଳାକ୍ତ, ଯେ ସର୍ବାଙ୍ଗରେ ତେଲ ଲଗାଉଅଛି, (ସ୍ତ୍ରୀ) ଅଭ୍ୟକ୍ତା, (ବି) ଅଭ୍ୟଙ୍ଗ ।

ଅଭ୍ୟକ୍ଷ—କ୍ଳୀ.ବି.(ଅଭି+ଅନ୍‌ଚ+ଅଧି+ସ) ସର୍ବଥା ଅଖଣ୍ଡ, ଛଳକଲ୍‌କ, ସଗିପିଣ୍ଡିଆ ।

ଅଭ୍ୟଗ୍ର—ତ୍ରି. ବିଂ. (୬ ତତ୍) ଆସନ୍ନ, ଅଭିନବ, ନିକଟ, ଅନ୍ତିକ, ସମୀପ, ଅଭ୍ୟର୍ଣ୍ଣ, ଅଗ୍ରବର୍ତ୍ତୀ ।

ଅଭ୍ୟଙ୍ଗ—ପୁଂ.ବି. (ଅଭି+ଅନ୍‌ଜ+ଅ) ଆପାଦମସ୍ତକ ତେଲ ଲଗାଇବା, ଆଖିରେ କଜ୍ଜ୍ୱଳ ଲଗାଇବା ତୈଳ ।

ଅଭ୍ୟଞ୍ଜନ—କ୍ଳୀ.ବି.(ଅଭି+ଅଞ୍ଜ୍+ଅନ) ତୈଳମର୍ଦ୍ଦନ ।

ଅଭ୍ୟଞ୍ଜନୀୟ—ତ୍ରି. ବିଂ. ଦେହରେ ଲଗାଇବା ତୈଳାଦି ।

ଅଭ୍ୟଧିକ—ତ୍ରି. ବିଂ. (ଅଭି+ଅଧିକ) ଅତ୍ୟଧିକ, ସର୍ବୋତ୍କୃଷ୍ଟ, ଅତିଉତ୍ତମ ।

ଅଭ୍ୟଧ୍ୱ—(ଅବ୍ୟ) ପଥର ଅଭିମୁଖେ, ବାଟେ ବାଟେ ।

ଅଭ୍ୟନୁଜ୍ଞା—ସ୍ତ୍ରୀ. ବି. (ଅଭି+ଅନୁ+ଜ୍ଞା+ଭା.ଅ+ଆ) ଆଦେଶ, ହୁକୁମ, ଆଜ୍ଞା, (ବିଂ) ଅଭ୍ୟନୁଜ୍ଞାତ ।

ଅଭ୍ୟନୁଜ୍ଞାତ—ତ୍ରି. ବିଂ.(ଅଭି+ଅନୁ+ଜ୍ଞା+ର୍ମ.ତ) ଆଦିଷ୍ଟ, ଅନୁଜ୍ଞାତ, କୌଣସି କାର୍ଯ୍ୟରେ ନିଯୁକ୍ତ, (ସ୍ତ୍ରୀ) ଅଭ୍ୟନୁଜ୍ଞାତା ।

ଅଭ୍ୟନୁଜ୍ଞାନ—କ୍ଳୀ. ବି. (ଅଭି+ଅନୁ+ଜ୍ଞା+ଅନ) ଅନୁଜ୍ଞା, ଅନୁମତି, ଆଦେଶ ।

ଅଭ୍ୟନୁକ୍ତ—ତ୍ରି. ବିଂ. (ଅଭି+ଅନୁ+ବଚ୍+ତ) ପ୍ରକାଶ୍ୟରୂପେ କଥିତନୁହେ ।

ଅଭ୍ୟନ୍ତର—କ୍ଳୀ. ବି. (ଅଭି+ଅନ୍ତର) ମଧ୍ୟ, ମଝି, ଅନ୍ତରାଳ, ଭିତର, ପ୍ରଭେଦ, ପରିବର୍ତ୍ତନ, ଅନ୍ତରୀୟ, ବାଧା, (ବିଂ) ମଧ୍ୟବର୍ତ୍ତୀ, ଅନ୍ତର୍ଗତ, (ସ୍ତ୍ରୀ) ଅଭ୍ୟନ୍ତରା ।

ଅଭ୍ୟନ୍ତରାମ—ବିଂ. ଆତ୍ମାରାମ, ଆତ୍ମଜ୍ଞ, ଯୋଗୀ ।

ଅଭ୍ୟନ୍ତରୀଣ—ତ୍ରି. ବିଂ. (ଅଭ୍ୟନ୍ତର+ଭା.ଇନ୍) ଅନ୍ତର୍ବର୍ତ୍ତୀ, ମଧ୍ୟବର୍ତ୍ତୀ, ମଝିରେ ଥିବା ।

ଅଭ୍ୟନ୍ତରୀଣବିବାଦ—ପୁଂ.ବି. (କ.ଧା) ଗୃହବିବାଦ, ଘରୋଇ କଳହ ।

ଅଭ୍ୟମନ—କ୍ଳୀ. ବି. ଅଭିଗମନ ।

ଅଭ୍ୟମିତ—ତ୍ରି' ବିଂ. (ଅଭି+ଅମ୍+କ.ତ) ରୁଗ୍‌ଣ, ପୀଡ଼ିତ, ଆତୁର, ଅଭିଗତ, ଆଶ୍ରିତ ।

ଅଭ୍ୟମିତ୍ର—ଅବ୍ୟ. ଶତ୍ରୁର ଆଗରେ ।

ଅଭ୍ୟମିତ୍ରୀଣ, ଅଭ୍ୟମିତ୍ରୀୟ—ପୁଂ. ବି. ସମ୍ମୁଖୀନ ଯୋଦ୍ଧା, (ବିଂ) ଶତ୍ରୁର ସମ୍ମୁଖବର୍ତ୍ତୀ ।

ଅଭ୍ୟମୀ—ପୁଂ.ବିଂ.(ଅଭି+ଅମ୍+ଇନ୍) ରୋଗଯୁକ୍ତ, (ସ୍ତ୍ରୀ) ଅଭ୍ୟମିନୀ ।

ଅଭ୍ୟୟ—ପୁଂ. ବି. (ଅଭି+ଇ+ଅ) ଅସ୍ତମୟ, ଅସ୍ତଯିବା ।

ଅଭ୍ୟର୍ଚ୍ଚନ—କ୍ଳୀ.ବି.(ଅଭି+ଅର୍ଚ୍ଚ+ଅନ) ସମସ୍ତପ୍ରକାର ପୂଜା ।

ଅଭ୍ୟର୍ଚ୍ଚ୍ୟ—ତ୍ରି. ବିଂ. ସର୍ବତୋଭାବେ ପୂଜନୀୟ, (ଅବ୍ୟ) ପୂଜାକରି ।

ଅଭ୍ୟର୍ଣ୍ଣ—ତ୍ରି.ବିଂ. (ଅଭ୍ୟ+ଅର୍ଦ୍ଦ+କ.ତ) ସମୀପ, ନିକଟ, ଅନ୍ତିକ, ଯାହାପାଖକୁ ଗମନକରିଯାଇ ଥାଏ ।

ଅଭ୍ୟର୍ଥନ—କ୍ଳୀ.ବି. (ଅଭି+ଅର୍ଥ+ଭା.ଅନ) ଯାଚଞ୍ଜା, ପ୍ରାର୍ଥନା, ସମ୍ଭାଷଣ, ସମ୍ବର୍ଦ୍ଧନା, ଅଭ୍ୟାଗତ ବ୍ୟକ୍ତିର ସତ୍କାର ଓ ସମାଦର ।

ଅଭ୍ୟର୍ଥନା—ସ୍ତ୍ରୀ. ବି (ଅଭି+ଅର୍ଥ+ଭା.ଅନ+ଆ) ସର୍ବଦା ପ୍ରାର୍ଥନା, (ଗ୍ରା) ସମାଦର ସମ୍ବର୍ଦ୍ଧନା, ସମ୍ଭାଷ, ନିବେଦନପତ୍ର, ଦରଖାସ୍ତ ।

ଅଭ୍ୟର୍ଥନାସମିତି—ସ୍ତ୍ରୀ. ବି. ଅଭ୍ୟାଗତବ୍ୟକ୍ତିର ସମ୍ବର୍ଦ୍ଧନ ଓ ସତ୍କାର ନିମିତ୍ତ ସଭା ।

ଅଭ୍ୟର୍ଥନୀୟ—ତ୍ରି.ବିଂ. (ଅଭି+ଅର୍ଥ୍+ର୍ମ.ଅନୀୟ) ସର୍ବଦା ପ୍ରାର୍ଥନୀୟ, ଯାଚନୀୟ, ସମ୍ବର୍ଦ୍ଧନୀୟ ।

ଅଭ୍ୟର୍ଥିତ—ତ୍ରି. ବିଂ. (ଅଭି+ଅର୍ଥ୍+ର୍ମ.ତ) ପ୍ରାର୍ଥିତ, ଯାଚିତ, ପୂଜିତ, ସତ୍କୃତ, ସମ୍ମାନିତ, ସମ୍ବର୍ଦ୍ଧିତ ।

ଅଭ୍ୟର୍ଥ୍ୟ—ତ୍ରି. ବିଂ. ପ୍ରାର୍ଥନୀୟ, (ଅବ୍ୟ) ଅଭ୍ୟର୍ଥନା କରି ।

ଅଭ୍ୟର୍ଦ୍ଦିତ—ତ୍ରି. ବିଂ. (ଅଭି+ଅର୍ଦ୍ଦ୍+ତ) ଅତିଶୟ ପୀଡ଼ିତ ।

ଅଭ୍ୟର୍ଦ୍ଧ—ତ୍ରି.ବାଂ. (ଅଭି+ଋଦ୍ଧ+ଣିଚ୍ ଅ) ସମ୍ୟକ୍‌ପ୍ରକାରେ ବର୍ଦ୍ଧନ ।

ଅଭ୍ୟର୍ଦ୍ଧଯଜ୍ୱନ୍—ତ୍ରି.ବାଂ. ଯେ ରସ ଆହରଣକର ବର୍ଷା କରେ ।

ଅଭ୍ୟର୍ଷ—ପୁଂ. ବ. (ଅଭି+ଋଷ୍+ଣ) ଅନ୍ୱେଷଣ ।

ଅଭ୍ୟର୍ହଣ—କ୍ଲୀ.ବ.(ଅଭି+ଅର୍ହ୍+ଅନ) ସର୍ବଆପୂଜା, (ସ୍ତ୍ରୀ) ଅଭ୍ୟର୍ହଣା, ପୂଜା ।

ଅଭ୍ୟର୍ହଣୀୟ—ତ୍ରି. ବାଂ. (ଅଭି+ଅର୍ହ+ଅନୀୟ) ପୂଜନୀୟ ।

ଅଭ୍ୟର୍ହିତ—ତ୍ରି.ବାଂ. (ଅଭି+ଅର୍ହ+କ. ତ) ପୂଜିତ,ଉଚିତ, ସମାଦୃତ, ଶ୍ରେଷ୍ଠ, (ସ୍ତ୍ରୀ) ଅଭ୍ୟର୍ହିତା ।

ଅଭ୍ୟବକର୍ଷଣ—କ୍ଲୀ.ବ. (ଅଭି+ଅବ+କୃଷ୍+ଭା.ଅନ) ନିର୍ହାର, ଶଲ୍ୟାଦିର ଉଦ୍ଧାର, ଆକର୍ଷଣ, ବିଦ୍ଧ ବାଣାଦିର ଉତ୍ପାଟନ ।

ଅଭ୍ୟବସ୍କନ୍ଦ—ପୁଂ.ବ. (ଅଭି+ଅବ+ସ୍କନ୍ଦ+ଭା ଅ)ଶତ୍ରୁର ଆକ୍ରମଣ, ପ୍ରହାରମାତ୍ର, ପ୍ରପାତ, ଅବରୋଧ ।

ଅଭ୍ୟବହରଣ—କ୍ଲୀ. ବ. (ଅଭି+ଅବ+ହୃ+ଭା.ଅନ) ଭୋଜନ, ଭକ୍ଷଣ, ଆହାର ।

ଅଭ୍ୟବହାର—ପୁଂ.ବ. (ଅଭି+ଅବ+ହୃ+ଭା.ଅ) ଭୋଜନ, ଆହାର, ଭକ୍ଷଣ ।

ଅଭ୍ୟବହାର୍ଯ୍ୟ—ତ୍ରି.ବାଂ. (ଅଭି+ଅବ+ହୃ+ର୍ମ.ଯ) ଭୋଜନର ଯୋଗ୍ୟ, ଭୋଜନୀୟ, ଆହାର୍ଯ୍ୟ ।

ଅଭ୍ୟବହୃତ—ତ୍ରି. ବାଂ. (ଅଭି+ଅବ+ହୃ+ର୍ମ.ତ) ଭକ୍ଷିତ, ଭୁକ୍ତ, ଖାଦିତ ।

ଅଭ୍ୟବାୟନ—କ୍ଲୀ. ବ. (ଅଭି+ଅବ+ଇ+ଅ+ଅନ)ସାମନାରେ ଅପଗମନ, ପଳାୟନ ।

ଅଭ୍ୟସନ—କ୍ଲୀ.ବ. (ଅଭି+ଅସ୍+ଭା. ଅନ) ଅଭ୍ୟାସ, ପୁନଃପୁନଃ ଏକରୂପ କାର୍ଯ୍ୟକରିବା, ବାରମ୍ବାର ଆବୃତ୍ତି ।

ଅଭ୍ୟସନୀୟ—ତ୍ରି. ବାଂ. (ଅଭି+ଅସ୍+ର୍ମ.ଅନୀୟ) ଯାହା ଅଭ୍ୟାସ ବା ମୁଖସ୍ଥକରିବା ଉଚିତ ।

ଅଭ୍ୟସୂୟ—ତ୍ରି. ବାଂ. (ବ.ବ୍ରୀ) ଅସୂୟାଯୁକ୍ତ, ଈର୍ଷାନ୍ୱିତ, (ସ୍ତ୍ରୀ) ଅଭ୍ୟସୂୟା ।

ଅଭ୍ୟସୂୟକ—ତ୍ରି. ବାଂ. ଅତ୍ୟନ୍ତ ଈର୍ଷାକାରୀ, ଈର୍ଷୀ, ସାଧୁର ଗୁଣରେ ଦୋଷଦାତା ।

ଅଭ୍ୟସୂୟା—ସ୍ତ୍ରୀ. ବ. ଗୁଣରେ ଦୋଷାରୋପ, ଈର୍ଷା, ଦ୍ୱେଷ, ନିନ୍ଦା ।

ଅଭ୍ୟସ୍ତ—ତ୍ରି. ବାଂ. (ଅଭି+ଅସ୍+ର୍ମ. ତ) ବାରମ୍ବାର କାର୍ଯ୍ୟର ଆବୃତ୍ତିଯୁକ୍ତ, ଯାହା ଅଭ୍ୟାସ କରାଯାଇଥାଏ, ଶିକ୍ଷା କରାଯାଇଥିବା, ଆୟତ୍ତ କରିବା, ଶିକ୍ଷିତ, ଘୋଷାଯାଇଥିବା, (ବି) ଅଭ୍ୟସନ ।

ଅଭ୍ୟସ୍ତବିଦ୍ୟ—ପୁଂ. ବାଂ. (ବ.ବ୍ରୀ)ଯେଉଁ ବ୍ୟକ୍ତି କୌଣସି ବିଦ୍ୟାକୁ ଅଭ୍ୟାସଦ୍ୱାରା ସିଦ୍ଧ କରିଥାଏ (ସ୍ତ୍ରୀ) ଅଭ୍ୟସ୍ତବିଦ୍ୟା ।

ଅଭ୍ୟସ୍ୟ - ତ୍ରି. ବାଂ. (ଅଭି+ଅସ+ର୍ମ. ଯ) ଅଭ୍ୟାସଯୋଗ୍ୟ, ପୁନଃପୁନଃ ଆଲୋଚନୀୟ ।

ଅଭ୍ୟାକାଙ୍କ୍ଷିତ-ତ୍ରି.ବାଂ.ଇପ୍‌ସିତ,ବାଞ୍ଛିତ, ଅଭିଲଷିତ, ଇଷ୍ଟ, (ସ୍ତ୍ରୀ)ଅଭ୍ୟାକାଙ୍କ୍ଷିତା

ଅଭ୍ୟାଖ୍ୟାତ—ପୁଂ.ବାଂ. (ଅଭି+ଆ+ଖ୍ୟା+ର୍ମ.ତ) ମିଥ୍ୟାରେ ଅଭିଯୁକ୍ତ. ମିଥ୍ୟାପବାଦଗ୍ରସ୍ତ,(ସ୍ତ୍ରୀ) ଅଭ୍ୟାଖ୍ୟାତା ।

ଅଭ୍ୟାଖ୍ୟାନ—କ୍ଲୀ.ବ.(ଅଭି+ଆ+ଖ୍ୟା+ଅନ) ମିଥ୍ୟା ଅଭିଯୋଗ, ମିଥ୍ୟାପବାଦ ।

ଅଭ୍ୟାଗତ—ପୁଂ. ବ.(ଅଭି+ଆ+ଗମ୍+ତ) ଅତିଥି, (ବାଂ) ସମ୍ମୁଖାଗତ, ହଠାତ୍ ଉପସ୍ଥିତ, ଆଗନ୍ତୁକ (ସ୍ତ୍ରୀ) ଅଭ୍ୟାଗତା ।

ଅଭ୍ୟାଗମ—ପୁଂ.ବ. (ଅଭି+ଆ+ଗମ+ଅ) ପହଞ୍ଚିବା, ଉପସ୍ଥିତି, ସମ୍ମୁଖକୁ ଆସିବା, ଦର୍ଶନ, ମୁଲାକାତ୍, ନୈକଟ୍ୟ, ଅତିଥି ସମ୍ବର୍ଦ୍ଧନା,ଯୁଦ୍ଧ,ଆଘାତ,ମାରଣ, ବଧ, ବିରୋଧ, ହାବୁଡ଼ିବା, ସାମନାରେ ପଡ଼ିବା, ସ୍ୱୀକାର ।

ଅଭ୍ୟାଗମନ—କ୍ଲୀ. ବି. ସମ୍ମୁଖାଗମନ, ଅଭ୍ୟୁତ୍ଥାନ ।

ଅଭ୍ୟାଗାରିକ—ପୁଂ.ବାଂ.(ଅଭି+ଆଗାର+ଇକ)ପରିବାର ପୋଷଣରେ ମନୋଯୋଗୀ, ପରିଜନବ୍ୟାପୃତ, (ସ୍ତ୍ରୀ) ଅଭ୍ୟାଗାରିକା ।

ଅଭ୍ୟାଘାତ—ପୁଂ.ବ. (ଅଭି+ଆଘାତ) ଆକ୍ରମଣ, ଚଢ଼ାଉ, ତାଡ଼ନ ।

ଅଭ୍ୟାଘାତ—ପୁଂ.ବ.(ଅଭି+ଆ+ହନ୍+ଇନ୍) ହିଂସାଶୀଳ, ଆଘାତକାରୀ, (ସ୍ତ୍ରୀ) ଅଭ୍ୟାଘାତିନୀ ।

ଅଭ୍ୟାଚାର—ପୁଂ.ବ. ଅଭି+ଆ+ଚର+ଅ) ସର୍ବତୋଭାବେ ଆଚରଣ ।

ଅଭ୍ୟାଞ୍ଜନ—ପୁଂ.ବ.(ଅଭି+ଆ+ଅଞ୍ଜ+ଅ+ଯୁକ୍) ଅଭ୍ୟଞ୍ଜନ, ଅନୁରୂପଞ୍ଜନ ।

ଅଭ୍ୟାତାନ—ପୁଂ.ବ.(ଅଭି+ଆ+ତନ+ଅ) ଅତ୍ୟନ୍ତବିସ୍ତାର ।

ଅଭ୍ୟାତ୍ତ—ପୁଂ.ବ.ସର୍ବବ୍ୟାପକ,ପରମେଶ୍ୱର, (ବାଂ) ଗୃହୀତ, ଯାହା ଗ୍ରହଣକରାହୋଇଅଛି ।

ଅଭ୍ୟାଦାନ—କ୍ଲୀ. ବ. (ଅଭି+ଆଦାନ) ପ୍ରାରମ୍ଭ, ଗ୍ରହଣ, ସାମନାରେ ପଦାର୍ଥଗ୍ରହଣ ।

ଅଭ୍ୟାଧାନ—କ୍ଲୀ. ବ. (ଅଭି+ଆଧାନ) ଯଥାବିଧିରେ ଅଗ୍ନିସ୍ଥାପନ ।

ଅଭ୍ୟାନ୍ତ—ପୁଂ. ବ. (ଅଭି+ଅମ୍+ତ) ରୋଗଯୁକ୍ତ, ନିଷ୍ପୀଡ଼ିତ, ବ. ପୁଂ. ମନୁ, ରୋଗୀବ୍ୟକ୍ତି, (ସ୍ତ୍ରୀ) ଅଭ୍ୟାନ୍ତା ।

ଅଭ୍ୟାପତ୍ତି—ସ୍ତ୍ରୀ. ବ. (ଅଭି+ଆ+ପଦ୍+ତି)ଅଭିମୁଖାଗମନ,ସମ୍ମୁଖକୁଯିବା ।

ଅଭ୍ୟାପାତ—ପୁଂ. ବ. (ଅଭି+ଆପାତ) ବିପଦ, ଦୁର୍ଘଟଣା, ଦୁର୍ଭାଗ୍ୟ, ଦୁର୍ଦ୍ଦଶା, ସର୍ବନାଶ, ଆଶାଲୋପ ।

ଅଭ୍ୟାମର୍ଦ୍ଦ—ପୁଂ.ବାଂ.(ଅଭି+ଆ+ମୃଦ୍+ଅ) ଯୁଦ୍ଧ, ରଣ, ନିଷ୍ପୀଡ଼ନ, ସଂଗ୍ରାମ, ଲଢ଼େଇ । [ଯୋଗ୍ୟ ।

ଅଭ୍ୟାୟଂସେନ୍ୟ—ବାଂ. ସର୍ବଥା,ନୟନର

ଅଭ୍ୟାରମ୍ଭ—ପୁଂ. ବ (ଅଭି+ଆରମ୍ଭ) ପ୍ରଥମାରମ୍ଭ, ପରେ ଆରବ୍ଧ କର୍ମର ପୁନରାରମ୍ଭ ।

ଅଭ୍ୟାରୁଢ଼—ତ୍ରି.ବିଂ.(ଅଭି + ଆ + ରୁହ୍ + ତ) ଅତି ଆରୂଢ଼, ଯେ ଅଧିକ ଦୂର ଚଢ଼ିଅଛୁ ।

ଅଭ୍ୟାରୋହ—ପୁଂ.ବି.(ଅଭି + ଆରୋହ) ଅଭିମୁଖାରୋହଣ, ମନ୍ତ୍ରଜପବିଶେଷ ।

ଅଭ୍ୟାରୋହଣୀୟ—ତ୍ରି. ବିଂ. ଆରୋହଣର ଯୋଗ୍ୟ ।

ଅଭ୍ୟାବର୍ତ୍ତ—ତ୍ରି.ବିଂ.ପୁନଃପୁନଃ ଫେରିବା, (ବି) ଅତିଶୟ ଆବୃତ୍ତି ।

ଅଭ୍ୟାବର୍ତ୍ତିନ୍—ତ୍ରି. ବିଂ. ସର୍ବଦା ଛିତି-ଶୀଳ, (ବି)ପ୍ରମାଣର ଅଭାବ । [କୁଭାବ ।

ଅଭ୍ୟାବୃତ୍ତି—ସ୍ତ୍ରୀ.ବି. ପୌନଃପୁନ୍ୟ, ସସ-

ଅଭ୍ୟାଶ—ପୁଂ. ବି. (ଅଭି + ଅଶ୍ + ଭା.ଅ) ଆବୃତ୍ତି, ନିକଟ ।

ଅଭ୍ୟାସ—ପୁଂ.ବି.(ଅଭି + ଅସ୍ + ଭା.ଅ) ପୁନଃପୁନଃ ଅନୁଶୀଳନ, ଶିକ୍ଷା, ଆବୃତ୍ତି, (ବିଂ.) ନିକଟ, ସମୀପ ।

ଅଭ୍ୟାସଗତ—ତ୍ରି.ବିଂ. (୨ତତ୍) ଅଭ୍ୟସ୍ତ, ସ୍ୱାଭାବିକ, (ସ୍ତ୍ରୀ) ଅଭ୍ୟାସଗତା ।

ଅଭ୍ୟାସାଦନ—କ୍ଲୀ. ବି. (ଅଭି + ଆ + ସଦ୍. ଣିଚ୍ + ଭା.ଅନ) ପ୍ରହାର,ଆକ୍ରମଣ, ଶତ୍ରୁ ସମ୍ମୁଖେ ଗମନ ।

ଅଭ୍ୟାସସିଦ୍ଧ—ବିଂ. ୩ ତତ୍; (ଅଭ୍ୟାସ + ସିଦ୍ଧ) ଅଭ୍ୟାସ ବା ସାଧନା ଦ୍ୱାରା ଆୟତ୍ତ, ମୁଖସ୍ଥ କରାଯାଇଥିବା ।

ଅଭ୍ୟାସୀ—ପୁଂ. ବିଂ. (ଅଭ୍ୟାସ + ଇନ୍) ଅଭ୍ୟାସକାରୀ, ଅଭ୍ୟାସଶକ୍ତିସମ୍ପନ୍ନ, ଯେ କୌଣସି ବିଷୟକୁ ଅଭ୍ୟାସ କରିଥାଏ, (ସ୍ତ୍ରୀ) ଅଭ୍ୟାସିନୀ ।

ଅଭ୍ୟାହତ—ବି.(ଅଭି + ଆ + ହନ୍ + ତ) ଆହତ, ଆକ୍ରାନ୍ତ, ବାଧାପ୍ରାପ୍ତ ।

ଅଭ୍ୟାହାର—ପୁଂ. ବି. (ଅଭି + ଆ + ହୃ + ଭା.ଅ) ଦସ୍ୟୁତା, ଅପହରଣ, ଡକାୟତି,ଆକ୍ରମଣ. (ବିଦ୍ରୋହ) ।

ଅଭ୍ୟୁକ୍ଷଣ—କ୍ଲୀ.ବି. (ଅଭି + ଉକ୍ଷ୍ + ଭା. ଅନ)ଜଳସେଚନ,ପ୍ରୋକ୍ଷଣ, ପାଣିସିଞ୍ଚା ।

ଅଭ୍ୟୁକ୍ଷଣୀୟ—ତ୍ରି.ବିଂ. (ଅଭି + ଉକ୍ଷ + ମିଂ.ଅନୀୟ) ପ୍ରୋକ୍ଷଣଯୋଗ୍ୟ, ଯହିଁରେ ଜଳସେଚନ କରିବା ଉଚିତ, (ସ୍ତ୍ରୀ) ଅଭ୍ୟୁକ୍ଷଣୀୟା ।

ଅଭ୍ୟୁକ୍ଷିତ—ତ୍ରି.ବିଂ (ଅଭି + ଉକ୍ଷ୍ + ମିଂ. ତ) ପ୍ରୋକ୍ଷିତ, ଯାହା ଉପରେ ଜଳ ସିଞ୍ଚାହୋଇଅଛି, (ସ୍ତ୍ରୀ) ଅଭ୍ୟୁକ୍ଷିତା ।

ଅଭ୍ୟୁଚ୍ଚ—ବିଂ. (ଅଭି + ଉଚ୍ଚ) ଅତ୍ୟୁଚ୍ଚ, ବେଶି ଉଚ୍ଚା ।

ଅଭ୍ୟୁଚ୍ଚଗାମୀ—ପୁଂ.ବିଂ. ଯେ ଖୁବ୍ ଉପରକୁ ଉଠେ, (ପୁଂ.ବି) ବୃକ୍ଷ ବିଶେଷ, (ସ୍ତ୍ରୀ) ଅଭ୍ୟୁଚ୍ଚଗାମିନୀ ।

ଅଭ୍ୟୁଚ୍ଚୟ—ପୁଂ.ବି. (ଅଭି + ଉତ୍ + ଚି + ଭା.ଅ) ସମୁଚ୍ଚୟ, ପୁଞ୍ଜ,ରାଶି, ଗଦା, ସଂଗ୍ରହ,(ବିଂ) ଅଭ୍ୟୁଚ୍ଚିତ ।

ଅଭ୍ୟୁଚ୍ଛ୍ରିତ—ତ୍ରି.ବିଂ.(ଅଭି + ଉତ୍ + ଶ୍ରି + କ,ତ) ଅତିଶୟ ଉନ୍ନତ, ସମର୍ଥ, ପାରଗ,(ବି) ଅଭ୍ୟୁଚ୍ଛ୍ରୟ, (ସ୍ତ୍ରୀ) ଅଭ୍ୟୁଚ୍ଛ୍ରିତା ।

ଅଭ୍ୟୁତ୍କ୍ରୋଶନ—କ୍ଲୀ.ବି. (ଅଭି + ଉତ୍ + କ୍ରୁଶ୍ + ଭା, ଅନ) ଉଚ୍ଚୈଃସ୍ୱରରେ ପ୍ରଶଂସା,କେଳେଙ୍କାର,(ବିଂ) ଅଗ୍ରୋତ୍କୃଷ୍ଟ ।

ଅଭ୍ୟୁତ୍ଥାନ—କ୍ଲୀ.ବି.(ଅଭି + ଉତ୍ + ସ୍ଥା + ଭା,ଅନ) ଉତ୍ଥାନ, ଅଭ୍ୟୁଦୟ, ଉନ୍ନତି, ଉଦ୍ୟମ, ସମ୍ବର୍ଦ୍ଧନା, ଉଦୟ, ସୁଖ୍ୟାତି, ବିଦ୍ରୋହ ।

ଅଭ୍ୟୁତ୍ଥାୟୀ—ପୁଂ.ବିଂ.(ଅଭି + ଉତ୍ + ସ୍ଥା + କ.ଇନ୍) ଅଭ୍ୟୁତ୍ଥାନକାରୀ, ପ୍ରତ୍ୟୁଦ୍ଗାମୀ, (ସ୍ତ୍ରୀ) ଅଭ୍ୟୁତ୍ଥାୟିନୀ ।

ଅଭ୍ୟୁଦୟ—ବିଂ.(ଅଭି + ଉତ୍ + ଇ + ଭା,ଅ) ମଙ୍ଗଳ, ଉନ୍ନତି,ଉତ୍ଥାନ, ବୃଦ୍ଧି, ସମୃଦ୍ଧି,ଉତ୍ସବ,ବୃଦ୍ଧିଶ୍ରାଦ୍ଧ, ଧର୍ମ୍ମ,ସୂର୍ଯ୍ୟୋଦୟ, ସୁଖ ।

ଅଭ୍ୟୁଦୟହେତୁ—ପୁଂ. ବିଂ. ସମୃଦ୍ଧିର କାରଣ, ଯଜ୍ଞାଦିର ଅନୁଷ୍ଠାନଦ୍ୱାରା ଯେ ଧର୍ମ୍ମସଞ୍ଚୟ ହୁଏ । [ସ୍ୱିଷ୍ଟିଗ୍ରର୍ଥ ଯଜ୍ଞ ।

ଅଭ୍ୟୁଦୟେଷ୍ଟି—ବି. (ମଧ୍ୟ-କ.ଧା) ପ୍ରାୟ-

ଅଭ୍ୟୁଦାହରଣ—କ୍ଲୀ.ବି.ପ୍ରତିକୂଳ ଉଦାହରଣ, ବିପରୀତ ଦୃଷ୍ଟାନ୍ତ ।

ଅଭ୍ୟୁଦିତ—ତ୍ରି.ବିଂ. (ଅଭି + ଉତ୍ + ଇ + କ,ତ)ଉଦିତ,ଉତ୍ଥିତ,ସୂର୍ଯ୍ୟ ଉଦୟ କାଳପର୍ଯ୍ୟନ୍ତ ଯେ ଶୋଇଥାଏ, ଉନ୍ନତ, ସମୃଦ୍ଧ, ପ୍ରକାଶିତ, ମଙ୍ଗଳାର୍ଥ ପ୍ରବୃତ୍ତ ।

ଅଭ୍ୟୁଦୀରିତ—ତ୍ରି.ବିଂ. (ଅଭି + ଉତ୍ + ଈର + ମିଂ,ତ) କଥିତ, ଉକ୍ତ, ବିକ୍ଷିପ୍ତ, ବର୍ଣ୍ଣିତ, ଆକ୍ଷିପ୍ତ, (ସ୍ତ୍ରୀ) ଅଭ୍ୟୁଦୀରିତା ।

ଅଭ୍ୟୁଦ୍ୟତ—ତ୍ରି. ବିଂ (ଅଭି + ଉଦ୍ୟତ) ଉତ୍ତୋଳିତ,ସମର୍ପିତ,ଉଦିତ,ଆଦରସହିତ ସତ୍କୃତ,ଉତ୍ଥିତ, (ସ୍ତ୍ରୀ) ଅଭ୍ୟୁଦ୍ୟତା ।

ଅଭ୍ୟୁଦ୍ଧୃତ—ତ୍ରି.ବିଂ. (ଅଭି + ଉଦ୍ଧୃତ) ସମ୍ୟକ୍‌ରୂପେ ଉଦ୍ଧୃତ,(ସ୍ତ୍ରୀ) ଅଭ୍ୟୁଦ୍ଧୃତା ।

ଅଭ୍ୟୁପଗତ—ତ୍ରି. ବିଂ. (ଅଭି + ଉପ + ଗମ + କ, ତ) ନିକଟାଗତ, ଆସନ୍ନ, ନିର୍ଣ୍ଣୀତ, ପ୍ରତିଜ୍ଞାତ, ପ୍ରତିଶ୍ରୁତ, ସ୍ୱୀକୃତ, ପ୍ରାପ୍ତ, (ସ୍ତ୍ରୀ) ଅଭ୍ୟୁପଗତା ।

ଅଭ୍ୟୁପଗମ—ପୁଂ. ବି. (ଅଭି + ଉପ + ଗମ୍ + ଭା,ଅ) ନିକଟକୁ ଗମନ, ନିର୍ଣ୍ଣୟ, ପ୍ରତିଜ୍ଞା, ସ୍ୱୀକାର, ଚୁକ୍ତି, କଳ୍ପନା, ମତ, ଆସକ୍ତି ।

ଅଭ୍ୟୁପଗମସିଦ୍ଧାନ୍ତ—ବି. (ମଧ୍ୟ. କ. ଧା) ସ୍ୱୀକୃତ, ପ୍ରତିଜ୍ଞା, (ନ୍ୟାୟମତେ) ପ୍ରଥମେ ସତ୍ୟ ବୋଲି ପ୍ରମାଣ କରି ପରେ ମିଥ୍ୟା ପ୍ରତିପାଦନ କରିବା ।

ଅଭ୍ୟୁପପତ୍ତି—ସ୍ତ୍ରୀ. ବି. (ଅଭି + ଉପ + ପଦ + ଭା, ତି) ଅନୁଗ୍ରହ, ଉପକାର, ରକ୍ଷଣ, ସ୍ୱୀକାର, ଅଙ୍ଗୀକାର, ସାନ୍ତ୍ୱନା, ସଫେଇ ।

ଅଭ୍ୟୁପପନ୍ନ—ତ୍ରି.ବି. (ଅଭି + ଉପ + ପଦ + ମିଂ,ତ) ସ୍ୱୀକୃତ, ଅଙ୍ଗୀକୃତ, ଶରଣାର୍ଥୀ, ରକ୍ଷିତ, (ସ୍ତ୍ରୀ)ଅଭ୍ୟୁପପନ୍ନା ।

ଅଭ୍ୟୁପାୟ—ପୁଂ.ବି. (ଅଭି + ଉପ + ଇ + ଣ,ଅ)ସଦୁପାୟ, ପ୍ରତିଜ୍ଞା,ଅଙ୍ଗୀକାର ।

ଅଭ୍ୟୁପାୟନ—କ୍ଲୀ. ବି. (ଅଭି + ଉପାୟନ) ଉପହାର, ଉପଢୌକନ, ଭେଟି, ଦର୍ଶନୀ ।

ଅଭ୍ୟୁପାବୃତ—ତ୍ରି.ବିଂ.(ଅଭି + ଉପ + ଆ + ବୃ + କ,ତ) ପ୍ରତିନିବୃତ୍ତ ।

ଅଭ୍ୟୁପେତ—ତ୍ରି. ବିଂ. (ଅଭି + ଉପ + ଇ + କ, ତ) ଉପଗତ, ପ୍ରାପ୍ତ, ଅଙ୍ଗୀକୃତ, ପ୍ରତିଜ୍ଞାତ, ସ୍ୱୀକୃତ ।

ଅଭ୍ୟୁପେତ୍ୟଶୁଶ୍ରୂଷା—ବିଂ.(ଅଭ୍ୟୁପେତ୍ୟ + ଶୁଶ୍ରୂଷା) ଗୁରୁକରି କରିବାର ଚୁକ୍ତି, ଗୁରୁକରିକରିବାର ଚୁକ୍ତିଭଙ୍ଗ ।

ଅଭ୍ୟଷ—ପୁଂ.ବି.(ଅଭି + ଉଷ୍ + କ.ଅ) ଈଷତ୍‌ଭ୍ରଷ୍ଟ ଶସ୍ୟାଦ, ଅଳ୍ପଭଜାହୋଇଥିବା (ମୁଗପ୍ରଭୃତି), ବେଟି ।

ଅଭୂ୍ୟଷ—ପୁଂ.ବି.(ଅଭି + ଉଷ୍ + ମଁ,ଅ) ଈଷତ୍‌ଭ୍ରଷ୍ଟ (ଅଭ୍ୟଷଦେଖ) ।

ଅଭ୍ୟେଷ—ପୁଂ.ବିଂ. (ଅଭି + ଉଷ୍ + ମଁ ଅ) (ଅଭ୍ୟଷ ଦେଖ) ।

ଅଭ୍ର—ଧାତୁ,ଗମନକରିବା, ଗତିକରିବା ।

ଅଭ୍ର—ପୁଂ. ବି. ( ଅପ + ଭୃ + କ,ଅ ) ଆକାଶ, ମେଘ, ମେଘନାଲ, ମୁଥା, ସ୍ୱର୍ଣ୍ଣ, ଅଭ୍ରଧାତୁ ।

ଅଭ୍ରଂକଷ—ବିଂ.(ଅଭ୍ରଂ + କଷ୍ + କ,ଅ) ଗଗନସ୍ପର୍ଶୀ, (ବି) ବାୟୁ ।

ଅଭ୍ରଂଲିହ—ବି.ବିଂ.(ଅଭ୍ରଂ + ଲିହ୍ + କ ଅ)ଗଗନସ୍ପର୍ଶୀ, ଅତ୍ୟୁଚ୍ଚ (ବି) ମେଘ,ବାୟୁ (ସ୍ତ୍ରୀ) ଅଭ୍ରଂଲିହା ।

ଅଭ୍ରକ—କ୍ଲୀ. ବି. (ଅଭ୍ର + କ) ଅଭ୍ର-ଧାତୁ, ଅଭ୍ର ।

ଅଭ୍ରପିଶାଚ—ପୁ.ବି. କ.ଧା, ( ଅଭ୍ର + ପିଶାଚ) ରାହୁଗ୍ରହ ।

ଅଭ୍ରପିଶାଚକ—ପୁଂ.ବି. (ଅଭ୍ରପିଶାଚ + କ) ରାହୁଗ୍ରହ ।

ଅଭ୍ରପୁଷ୍ପ—କ୍ଲୀ.ବି.(୬ତତ୍)ଆକାଶକୁସୁମ, ବର୍ଷାଜଳ,(ପୁଂ)ବେତଗଛ, କଦମ୍ବଗଛ ।

ଅଭ୍ରବାଟିକ—ପୁଂ.ବି. (ବ.ବ୍ରୀ) ଆମ୍ରାତକ, ଆମ୍ବଡ଼ା ।

ଅଭ୍ରଭସ୍ମ – ବି.(୬ତତ୍) ବୈଦ୍ୟକ ବିଧିରେ ମାରିତ ଅଭ୍ର ।

ଅଭ୍ରଭେଦୀ—ପୁଂ.ବି.(ଅଭ୍ର + ଭିଦ. + କ. ଇନ୍) ଅଭ୍ରଂକଷ, ଆକାଶଚୁମ୍ବୀ,ଗଗନସ୍ପର୍ଶୀ ଅତ୍ୟୁଚ୍ଚ, ଅତିଷ୍ଫୀତ, ଉଚ୍ଚସ୍ୱରରେ ଗୀତ, (ସ୍ତ୍ରୀ) ଅଭ୍ରଭେଦିନୀ ।

ଅଭ୍ରମ—ପୁଂ.ବି.(ନ.ତତ୍)ଭ୍ରମର ଅଭାବ, ଅପ୍ରମାଦ, ଭୁଲ ନହେବା, (ବିଂ) ଭ୍ରମଶୂନ୍ୟ,ପ୍ରମାଦବିହୀନ,ଭୁଲରହିତ,(ସଭ୍ରମହୀନ), (ସ୍ତ୍ରୀ) ଅଭ୍ରମା ।

ଅଭ୍ରମାଂସୀ—ସ୍ତ୍ରୀ.ବି.(ବ.ବ୍ରୀ) ଜଟାମାଂସୀ ଲତାବିଶେଷ ।

ଅଭ୍ରମାତଙ୍ଗ—ପୁଂ. ବି. (ମଧ୍ଯ + କ.ଧା) ଐରାବତ, ଇନ୍ଦ୍ରଙ୍କ ହସ୍ତୀ ।

ଅଭ୍ରମୁ—ସ୍ତ୍ରୀ.ବି.(ଅ + ଭ୍ରମ + କ + ଉ) ପୂର୍ବଦିଗର ହସ୍ତିନୀ, ଐରାବତ ହସ୍ତୀର ସ୍ତ୍ରୀ ।

ଅଭ୍ରମୁପତି—ପୁଂ. ବି. (ଅଭ୍ରମୁ + ପତି) (୬ତତ୍) ଐରାବତହସ୍ତୀ । [ହସ୍ତୀ ।

ଅଭ୍ରମୁପ୍ରିୟ—ପୁଂ.ବି.(୬ତତ୍)ଐରାବତ

ଅଭ୍ରମୁବଲ୍ଲଭ—ପୁଂ. ବି. (୬ତତ୍) ଐରାବତହସ୍ତୀ । [ମଣି ।

ଅଭ୍ରରୋହ—ପୁଂ.ବି. (ବ.ବ୍ରୀ) ବୈଦୂର୍ଯ୍ୟ-

ଅଭ୍ରାତୃକ—ବି.ବିଂ.(ବ.ବ୍ରୀ) ଭ୍ରାତୃହୀନ, ଯାହାର ଭାଇ ନାହିଁ ।

ଅଭ୍ରାନ୍ତ—ବି.ବିଂ.(ଅ + ଭ୍ରାନ୍ତ)ନ.ତତ୍) ଭ୍ରାନ୍ତିଶୂନ୍ୟ, ଭ୍ରମହୀନ, ସ୍ଥିର ।

ଅଭ୍ରାନ୍ତଲକ୍ଷ୍ୟ—ବି.ବିଂ.(ବ.ବ୍ରୀ)ଯେଲକ୍ଷ୍ୟଭେଦ ବିଷୟରେ ଭ୍ରମରେ ପଡ଼ିନାହିଁ, ଅଭ୍ରାନ୍ତ, (ସ୍ତ୍ରୀ) ଅଭ୍ରାନ୍ତଲକ୍ଷ୍ୟା ।

ଅଭ୍ରାନ୍ତି—ସ୍ତ୍ରୀ.ବି. (ନ.ତତ୍.) ଅପ୍ରମାଦ, ଅଭ୍ରମ ।

ଅଭ୍ରାବକାଶ—ପୁଂ.ବି.(ବ.ବ୍ରୀ) ଆକାଶରୂପ ଅବକାଶ, ଫାଙ୍କ ଜାଗା, ଆକାଶ ଛଡ଼ା ଅନ୍ୟ ଆବରଣ ନୁହେ, ମେଘଜଳବର୍ଷଣ, ବୃଷ୍ଟି ।

ଅଭ୍ରାବକାଶିକ, ଅଭ୍ରବକାଶୀ—କେବଳ ଆକାଶ ଆବରଣଯୁକ୍ତ ।

ଅଭ୍ରି,ଅଭ୍ରୀ—ସ୍ତ୍ରୀ.ବି.(ଅଭ୍ର + କ,ଇ(ଈ) ନୌକାରୁ ପାଣି ସେଞ୍ଚିବାର କାଠରେ ତିଆରି ପାତ୍ରବିଶେଷ, ବେଣ୍ଟୁଆ, ମଳପରିଷ୍କାରକ କାଠକୋଦାଳ ।

ଅଭ୍ରିତ—ବି.ବିଂ.(ଅଭ୍ର + ଇତ) ସଜାତାଭ୍ର, ମେଘାଚ୍ଛନ୍ନ, ଆକାଶରେ ମେଘ ବାହାରିଥିବା ।

ଅଭ୍ରିୟ—ବି.ବିଂ. (ଅଭ୍ର + ଇୟ)ମେଘଜାତ ମେଘସମ୍ବନ୍ଧୀୟ, ଆକାଶସମ୍ବନ୍ଧୀୟ ।

ଅଭ୍ରେଷ୍ଯ—ବି.ବିଂ. (ବ.ବ୍ରୀ) ଗତିଶୂନ୍ୟ, ଅଚଳ,ସ୍ଥିର,ପୁଂ.ବି. (ଅ + ଭ୍ରେଷ + ଘ.ଅ)ନ୍ୟାଯ୍ୟ,ଔଚିତ୍ୟ, ପକ୍ଷପାତରହିତ୍ୟ

ଅଭ୍ରେଷ—ବି.(ଅ + ଭ୍ରେଷ + ଅ)ଔଚିତ୍ୟ ନ୍ୟାଯ୍ୟ, (ବିଂ) ଗମନଶୂନ୍ୟ, ଗତିଶୂନ୍ୟ, ଉଚିତ, ନ୍ୟାଯ୍ୟ ।

ଅମ୍ଭ୍ରୋତ୍ଥ—କ୍ଲୀ.ବି. (୫ତତ୍) ଯେ ମେଘରୁ ବାହାରେ, ବଜ୍ର,ବିଦ୍ୟୁତ୍ ।

ଅଭ୍ୱ—ବି. ବିଂ, (ଅ + ଭୂ + ଅ)ମହତ୍, (କ୍ଲୀ) ଜଳ ।

ଅମ୍—(ଧାତୁ) ରୁଗ୍‌ଣହେବା, ଗତି, ଶବ୍ଦ, ଭୋଜନକରିବା, ସେବାର୍ଥେ ପ୍ରୟୋଗ ।

ଅମ—ପୁଂ.ବି(ଅମ୍ + ଅ) ରୋଗ, ପୀଡ଼ା, ଆମୟ, (ବି.ବିଂ) କଞ୍ଚା, ଅପକ୍ୱ ।

ଅମଗ୍ନ—ପୁଂ. ବି. ଗୋଟିଏ ସାଗରବିଶେଷର ନାମ ।

ଅମଙ୍ଗ—ଗ୍ରା. ପୁଂ. ସ୍ତ୍ରୀ. ବିଂ. ଅନିଚ୍ଛୁକ, ଅସମ୍ମତ, ନାରାଜ, ନାମଙ୍ଗ ।

ଅମଙ୍ଗଳ—ପୁଂ.ବି.(ଅ + ମଙ୍ଗଳ) ଅଶୁଭ, ଦୁର୍ଘଟନା,ଦୁର୍ଭାଗ୍ୟ, ଏରଣ୍ଡବୃକ୍ଷ, ବିପଦ, ଦୁର୍ଲକ୍ଷଣ, ଅକଲ୍ୟାଣ ।

ଅମଙ୍ଗଳକର—ବିଂ. (ଅମଙ୍ଗଳ + କର ) ଯାହା ଅଶୁଭ ଘଟାଏ ।

ଅମଙ୍ଗଳପତକା—ଗ୍ରା. ବିଂ. ( ପୁଂ.ସ୍ତ୍ରୀ. ) ଅଶୁଭଦର୍ଶନ, ଯାହାର ଦର୍ଶନରେ ଅମଙ୍ଗଳ ଘଟେ ।

ଅମଙ୍ଗଳଜନକ—ବି. ବିଂ. ( ନ. ତତ୍ ) ଅଶୁଭକର, ଅନିଷ୍ଟକାରକ, ( ସ୍ତ୍ରୀ ) ଅମଙ୍ଗଳଜନକା ।

ଅମଙ୍ଗଳସୂଚକ--ବି.ବିଂ(୬ତତ୍)ଅକଲ୍ୟାଣଜ୍ଞାପକ, ଶୁଭଫଘଟନର ଲକ୍ଷଣପ୍ରକାଶକ, (ସ୍ତ୍ରୀ) ଅମଙ୍ଗଳସୂଚକା ।

ଅମଙ୍ଗଳିଆ—ଗ୍ରା ପୁଂ ବିଂ. ଅଶୁଭଦର୍ଶନ, ଯାହାକୁ ଦେଖିଲେ ଶୁଭ ହୁଏ ନାହିଁ, (ସ୍ତ୍ରୀ) ଅମଙ୍ଗଳୀ ।

ଅମଙ୍ଗଳ୍ୟ—ବି. ବି. (ନ ତତ୍) ଅମଙ୍ଗଳଜନକ. ଅଲକ୍ଷଣଯୁକ୍ତ, ଲକ୍ଷ୍ମୀଛଡ଼ା ।

ଅମଙ୍ଗୁଳା—ଗ୍ରା. ବିଂ. (ପୁଂ ସ୍ତ୍ରୀ) ବିବାହର ପୂର୍ବଦିନ ଯେଉଁ ବରକନ୍ୟାଙ୍କର ମଙ୍ଗଳ ବା ଅଧିବାସବିଧି ହୋଇ ନ ଥାଏ ।

ଅମଚ୍ଛା ଗ୍ରା.ବି (ଅ + ମଚ୍ଛ)ଅଖାଦ୍ୟମତ୍ସ୍ୟବିଶେଷ, କଣମଚ୍ଛ, ନିକୃଷ୍ଟ ମତ୍ସ୍ୟ, ନିକୃଷ୍ଟ ଜାତି ।

ଅମଜା—ଗ୍ରା. ବିଂ. ଯାହା ମଜା ହୋଇ ନାହିଁ, ଅମାର୍ଜିତ, ଅପରିଷ୍କୃତ ।
ଅମଟାଳ—ଗ୍ରା.ବିଂ.ବାଲିଆମାଟି,ଫପସା-ମାଟି ।
ଅମଠ—ଗ୍ରା. ବିଂ. କର୍ମପଟୁ, ଯେ ମଠୁଆ ବା ଅଲସୁଆ ନୁହେ ।
ଅମଠୁଆ—ଗ୍ରା. ପୁଂ. ବିଂ. ନିରଳସ, ଯେ କାର୍ଯ୍ୟରେ ହେଲା ବା ବିଲମ୍ବ କରେ-ନାହିଁ, (ସ୍ତ୍ରୀ) ଅମଠେଇ ।
ଅମଡ଼ା—ଗ୍ରା. ବି. ଯେଉଁ ବାଟରେ କେହି ଯାଆନ୍ତି ନାହିଁ, ଅବାଟ, ଅମର୍ଦ୍ଦିତ ।
ଅମଣ—ଗ୍ରା.ବିଂ. ଯେଉଁ ପଶୁ ମଣ ହୋଇ ନ ଥାଏ, ଅଶିକ୍ଷିତ, ଅବାଧ ।
ଅମଣଖମଣ—ଗ୍ରା.ବିଂ.ଉଚ୍ଚନୀଚ,ଅସମାନ, ଅସମତଳଭୂମି । [ଅଶିକ୍ଷିତ ।
ଅମଣା—ଗ୍ରା.ବିଂ. ଅମଣିଆଁ ପଶୁ,ଅବାଧ,
ଅମଣିଆଁ—ଗ୍ରା. ବି. ଦେବତାପାଇଁ ଅଭି-ପ୍ରେତ, ଭୋଗଲାଗି ନ ଥିବା ଦ୍ରବ୍ୟ ।
ଅମଣିଷ—ଗ୍ରା.ବି. ବିଂ (ଫ-ଅମନୁଷ୍ୟ) । ଅମନୁଷ୍ୟ (ଦେଖ)
ଅମଣ୍ଡ—କ୍ରି. ବିଂ. ଯାହାର ମଣ୍ଡ ନାହିଁ, ଭୂଷଣଶୂନ୍ୟ, (ବି) ଏରଣ୍ଡବୃକ୍ଷ ।
ଅମତ—ପୁଂ. ବି. ରୋଗ, ମୃତ୍ୟୁ, କାଳ, ଅସମ୍ମତ, ଅନଭିପ୍ରେତ, (ବିଂ) ଅଫମତ, ବେରାଜି,ଅଜ୍ଞାତ,ଅନଭୀଷ୍ଟ,(ସ୍ତ୍ରୀ)ଅମତା ।
ଅମତି—ପୁଂ. ବି. କାଳ, ଚନ୍ଦ୍ର ସମସ୍ତ, ଦଣ୍ଡ,(ସ୍ତ୍ରୀ.ବି)ଦୀପ୍ତି, ରୂପ,ଆତ୍ମସ୍ଥୀମତି, ଦୁଷ୍ଟବୁଦ୍ଧି, ଅଜ୍ଞାନତା, ଅରୁଚ, ବିତୃଷ୍ଣା ।
ଅମତିବାନ୍—ବିଂ. ଅପ୍ରଶସ୍ତବୁଦ୍ଧିଯୁକ୍ତ ।
ଅମତ୍ର—କ୍ଲୀ.ବି (ଅମ୍+ଅତ୍ରନ୍)ଭୋଜନ-ପାତ୍ର, ଭାଜନ, ଜଳପାତ୍ର, (ବିଂ) ଶତ୍ରୁର ଅଭିଭାବକ, ଗମନଶୀଳ ।
ଅମତ୍ତ—କ୍ରି. ବିଂ. (ନ+ମତ୍ତ) ନ. ତତ୍ପୁ; ମତ୍ତ ନୁହେ, ଅମାତାଲ,ଅଭିପ୍ରାୟନୁହେ, ଅପ୍ରମତ୍ତ, (ସ୍ତ୍ରୀ) ଅମତ୍ତା ।
ଅମତ୍ସର-ପୁଂ.ବିଂ.ନ.ତତ୍ପୁ; (ନ+ମତ୍ସର) ଅନ୍ୟପ୍ରତିଦ୍ୱେଷଶୂନ୍ୟ,ଅହିଂସକ,ମାତ୍ସର୍ଯ୍ୟ-ରହିତ, (ବି) ଦ୍ୱେଷାଭାବ,(ସ୍ତ୍ରୀ)ଅମତ୍ସରା ।
ଅମଦାନୀ—ଗ୍ରା. ବି. ଆସୁ, ଆଦାୟ,ପ୍ରାପ୍ତି, ବିଦେଶାଗତ ପଣ୍ୟଦ୍ରବ୍ୟ ।

ଅମଧ—ଗ୍ରା.ବିଂ.ମନ୍ଦ, ଅସଙ୍ଗତ,ଅନୁଚିତ, ଅମେଧ ।
ଅମନସ୍—ବିଂ. କାର୍ଯ୍ୟାକ୍ଷମମନୋସ୍ଥାନ, ମନୋବୃତ୍ତିଶୂନ୍ୟ, ଅନ୍ୟମନସ୍କ ।
ଅମନ—ଗ୍ରା.ବିଂ. ଯେଉଁଠାକୁ ମନପ୍ରବେଶ କରି ପାରେ ନାହିଁ, ଅଚିନ୍ତନୀୟ ।
ଅମନସ୍କ—କ୍ରି. ବିଂ. (ବ.ବ୍ରୀ) କାର୍ଯ୍ୟାକ୍ଷମ-ମନୋରହିତ, ମନୋବୃତ୍ତିହୀନ, ନିର୍ବୁଦ୍ଧି-ଚିତ୍ତବୃତ୍ତି ।
ଅମନୁଷ୍ୟ—ପୁଂ. ବି. ବିଂ. ମନୁଷ୍ୟତା-ହୀନବ୍ୟକ୍ତି, ପଶୁପର ଲୋକ,ଅସୁର,ପଶୁ, ଦେବତା, ବୃକ୍ଷାଦି, (ବିଂ) ମନୁଷ୍ୟହୀନ, ବିଜନ, ନିର୍ବୋଧ, ନୀଚ, ହୀନ,ନିଷ୍ଠୁର, ମନୁଷ୍ୟତାହୀନ ।
ଅମନୁଷ୍ୟତା—ସ୍ତ୍ରୀ.ବି. (ଅ+ମନୁଷ୍ୟତା) ଅମଣିଷପଣ, ନିଷ୍ଠୁରତା, ନିର୍ବୋଧତା, ପାଶବିକ ।
ଅମନୋଗତ—କ୍ରି. ବିଂ. ଅନଭିପ୍ରେତ ।
ଅମନୋନୀତ—କ୍ରି.ବିଂ. (ନ+ମନୋ—ନୀତ) ନ. ତତ୍ପୁ; ଅନଭିପ୍ରେତ, ଅପସନ୍ଦ, ମନାନୁସାରେ ନୁହେ ।
ଅମନୋଯୋଗ—ପୁଂ. ବି. ( ନ. ତତ୍ପୁ ) ମନଯୋଗର ଅଭାବ, ଅନ୍ୟମନସ୍କ, ଅପ୍ରଣିଧାନ ।
ଅମନୋଯୋଗୀ—ପୁଂ. ବିଂ. (ନ.ତତ୍ପୁ) ଯାହାର ମନୋଯୋଗ ନାହିଁ,ଅନ୍ୟମନସ୍କ, (ସ୍ତ୍ରୀ) ଅମନୋଯୋଗିନୀ ।
ଅମନି—ସ୍ତ୍ରୀ. ବି. ବର୍ତ୍ମ, ମାର୍ଗ, ପନ୍ଥା ।
ଅମନ୍ତୁ—କ୍ରି. ବିଂ. ଯେ ଜାଣେ ନାହିଁ, ନିରପରାଧ ।
ଅମନ୍ତ୍ର—କ୍ରି.ବିଂ.(ବ.ବ୍ରୀ)ବେଦପାଠଶୂନ୍ୟ ମନ୍ତ୍ରଶୂନ୍ୟକର୍ମାଦି, (ସ୍ତ୍ରୀ) ଅମନ୍ତ୍ରା ।
ଅମନ୍ତ୍ରକ—କ୍ରି. ବିଂ. (ବ.ବ୍ରୀ) ଅଦୀକ୍ଷିତ, ଯେ ଗୁରୁ କରି ନାହିଁ (ସ୍ତ୍ରୀ) ଅମନ୍ତ୍ରକା ।
ଅମନ୍ତ୍ରା—ସ୍ତ୍ରୀ. ବିଂ. (ବ.ବ୍ରୀ) ମନ୍ତ୍ରହୀନା, (ବି) ଗ୍ରାମଚତୁଷ୍ଟୟପରିମିତ ଭୂଖଣ୍ଡ ।
ଅମନ୍ଥର—କ୍ରି. ବିଂ. ଅମୃଦୁ,କ୍ଷିପ୍ର,ସତ୍ୱର ।
ଅମନ୍ଦ—କ୍ରି. ବିଂ. (ଅ+ମନ୍ଦ) ନ.ତତ୍ପୁ; ପଟୁ, ଉତ୍କୃଷ୍ଟ,ମଧ୍ୟବିଧ, ଅଗୂଢ଼, ପଣ୍ଡିତ, ପ୍ରବଳ, ତ୍ୱରିତ, (ସ୍ତ୍ରୀ) ଅମନ୍ଦା ।

ଅମପା—ଗ୍ରା. ବିଂ. (ଅ+ମପା) ଯାହାର ମାପ ହୋଇ ନ ଥାଏ ।
ଅମମ—ବିଂ. କ୍ରି. (ବ.ବ୍ରୀ) ମମତାଶୂନ୍ୟ ଉଦାସୀନ, ନିର୍ମମ, ନିଷ୍ଠୁର, ନୃଶଂସ, ଅନାସକ୍ତ, (ସ୍ତ୍ରୀ) ଅମମା ।
ଅମର—ପୁଂ.ବି.(ନ+ମୃ+ଅ)ଦେବତା, ପାରଦ, କୁଳିଶବୃକ୍ଷ, ସିଜୁଗଛ ଜରାୟୁ, ବିବାହର ଯୋଟକ ନକ୍ଷତ୍ରବିଶେଷ, ହାଡ଼କଙ୍କାଳୀ,ଅମରକୋଷ ଅଭିଧାନର ରଚୟିତା,(ବିଂ) ମରଣଶୂନ୍ୟ, ଚିରଜୀବୀ, ଅକ୍ଷୟ, ଅବିନଶ୍ୱର (ସ୍ତ୍ରୀ), ଅମରୀ ।
ଅମରଅଶନ—ଗ୍ରା.ବି. (୬ତତ୍ପୁ) ଅମୃତ, ସୁଧା ।
ଅମରକଣ୍ଟକ—ଛତିଶଗଡ଼ର ଉତ୍ତରରେ ରତ୍ନପୁରର ଅନ୍ତର୍ଗତ ପର୍ବତବିଶେଷ ।
ଅମରକୋଟ—ସିନ୍ଧୁନଦୀର ଅପରପାର୍ଶ୍ୱସ୍ଥ ପ୍ରସିଦ୍ଧ ନଗରର ନାମ ।
ଅମରକୋଷ—ଅମରସିଂହକୃତ ଅଭିଧାନ-ବିଶେଷ ।
ଅମରଗୁରୁ—ପୁଂ. ବି. (ଅମର+ଗୁରୁ) ୬.ତତ୍ପୁ; ଦେବଗୁରୁ, ବୃହସ୍ପତି ।
ଅମରଜ—ପୁଂ.ବି.(ଅମର+ଜନ୍+ଅ) କାଳସ୍କନ୍ଧ ଖଦିର, ଦୁଷ୍ଖଦିର ବୃକ୍ଷ ।
ଅମରଜଡ଼ା—ବି. ବାଇଗଣ ।
ଅମରତଟିନୀ—ସ୍ତ୍ରୀ.ବି. ସୁରସରିତ୍,ଗଙ୍ଗା ।
ଅମରତରୁ—ପୁଂ. ବି. ପାରିଜାତାଦି ପଞ୍ଚଦେବ ତରୁ, ଦେବଦାରୁ ।
ଅମରତା—ସ୍ତ୍ରୀ.ବି. (ଅମର+ତା)ମରଣ-ହୀନତା, ଦେବତ୍ୱ, ସତ୍କାର୍ଯ୍ୟାଦିଦ୍ୱାରା ଚିରସ୍ମରଣୀୟତ୍ୱ ।
ଅମରଦାରୁ—ପୁଂ.ବି. (କ.ଧା)ଦେବପୂଜକ ବ୍ରାହ୍ମଣ, ପୂଜାରୀ ବ୍ରାହ୍ମଣ ।
ଅମରଦୃଷ୍ଟି—ସ୍ତ୍ରୀ.ବି(ଅମର+ଦୃଷ୍ଟି)ପଲକ-ହୀନଦୃଷ୍ଟି, ଅନିମେଷଦୃଷ୍ଟି ।
ଅମରଧୁନୀ—ସ୍ତ୍ରୀ. ବି. ( ଅମର+ଧୁନୀ ) ଦେବନଦୀ, ଗଙ୍ଗା । [ସ୍ୱର୍ଗ ।
ଅମରନଗର—ପୁଂ.ବି.(୬.ତତ୍ପୁ)ସୁରପୁର,
ଅମରନାଥ—ପୁଂ. ବି (୬ତତ୍ପୁ) ସୁରରାଜ-ଇନ୍ଦ୍ର, କାଶ୍ମୀରର ଅନ୍ତର୍ଗତ ପ୍ରସିଦ୍ଧତୀର୍ଥ-ବିଶେଷ ।

ଅମରପତି—ପୁଂ. ବି. (୬ତତ୍) ଇନ୍ଦ୍ର, ଦେବରାଜ, ସୁରରାଜ ।

ଅମରପାଡନା—ବି. ପ୍ରସବପରେ ପ୍ରସୂତାର ଫୁଲ ନ ପଡ଼ିବା । [ଧାମ ।

ଅମରପୁର—ବ୍ରହ୍ମଦେଶର ପ୍ରାଚୀନରାଜ

ଅମରପୁଷ୍ପକ—ପୁଂ.ବି.(ବ.ବ୍ରୀ); କଳ୍ପବୃକ୍ଷ, କାଶତୃଣ, (ସ୍ତ୍ରୀ)ଅମରପୁଷ୍ପିକା,ଇକ୍ଷୁଗନ୍ଧା

ଅମରପୁଷ୍ପିକା—ସ୍ତ୍ରୀ. ବି. (ବ.ବ୍ରୀ) ଅଧଃପୁଷ୍ପୀବୃକ୍ଷ ।

ଅମରପୁଷ୍ପୀ—ସ୍ତ୍ରୀ. ବି. ଅଧଃପୁଷ୍ପୀ ବୃକ୍ଷ ।

ଅମରରତ୍ନ—କ୍ଲୀ.ବି. (କ.ଧା)ସ୍ଫଟିକ,କାଚ, ଅମରପ୍ରିୟ ରତ୍ନ ।

ଅମରରାଜ—ପୁଂ.ବି. ଦେବରାଜ, ଇନ୍ଦ୍ର ।

ଅମରଲୋକ—ପୁଂ. ବି. (୬ତତ୍) ସ୍ୱର୍ଗ, ଦେବଲୋକ ବ୍ରହ୍ମଲୋକ ।

ଅମରବଲ୍ଲୀ—ସ୍ତ୍ରୀ.ବି. ଆକାଶବଲ୍ଲୀ, ଆଲ ।

ଅମରବାଞ୍ଛିତ-ସ୍ତ୍ରୀ.ବି. (୬ତତ୍)ଦେବାଭୀଷ୍ଟ ସୁରଗଣପ୍ରାର୍ଥିତ, (ସ୍ତ୍ରୀ) ଅମରବାଞ୍ଛିତା ।

ଅମରସରତ୍—ସ୍ତ୍ରୀ.ବି. ମନ୍ଦାକିନୀ, ସ୍ୱର୍ଣ୍ଣଦୀ, ଗଙ୍ଗା ।

ଅମରସିଂହ—ପୁଂ. ବି. ଜଣେ ପ୍ରସିଦ୍ଧ ପଣ୍ଡିତ ଓ କବି, ଅମରକୋଷାଭିଧାନ-ରଚୟିତା ।

ଅମରସେବିତ—ତ୍ରି.ବିଂ.(୬.ତତ୍)ଦେବଗଣ କର୍ତ୍ତୃକ ଆରାଧିତ ବା ଉପାସିତ, ଦେବତାମାନଙ୍କ ଉପଭୁକ୍ତ ।

ଅମରସ୍ତ୍ରୀ – ସ୍ତ୍ରୀ.ବି.(୬.ତତ୍) ଦିବ୍ୟାଙ୍ଗନା, ସ୍ୱର୍ବେଶ୍ୟା, ଅପ୍ସରା ।

ଅମରା—ସ୍ତ୍ରୀ. ବି. ଘିଅକୁଆଁରି, ଦୂବ, ଗୃହକନ୍ୟା, ଗୁଳୁଚୀ, ଇନ୍ଦ୍ରପୁରୀ,ଜରାୟୁ, ବଛୁଆଡ଼, ବରଗଛ, ଇନ୍ଦ୍ରବାରୁଣୀବୃକ୍ଷ, ମହାନୀଳୀବୃକ୍ଷ, (ବିଂ) ମରଣଶୂନ୍ୟା ।

ଅମରାଙ୍ଗନା—ସ୍ତ୍ରୀ.ବି. (୬.ତତ୍) ଅପ୍ସରା, ଦେବ-ସ୍ତ୍ରୀ । [ପର୍ବତ ।

ଅମରାଦ୍ରି-ପୁଂ.ବି(ଅମର + ଅଦ୍ରି)ସୁମେରୁ

ଅମରାଧିପ—ପୁଂ. ବି. (୬ତତ୍) ସୁରପତି, ଇନ୍ଦ୍ର, ଶିବ । [ଇନ୍ଦ୍ର ।

ଅମରାଧୀଶ—ପୁଂ.ବି.(୬ତତ୍)ଦେବାଧିପତି,

ଅମରାପଗା—ସ୍ତ୍ରୀ.ବି.(କ.ଧା)ସୁରତରଙ୍ଗିଣୀ, ଗଙ୍ଗା ।

ଅମରାତ୍ମା—ପୁଂ.ବିଂ.ଯଶସ୍ୱୀ,ଧାର୍ମିକ,(ବି) ଅବିନଶ୍ୱର ଆତ୍ମା ।

ଅମରାଳୟ—ପୁଂ. ବି. ସ୍ୱର୍ଗ, ଇନ୍ଦ୍ରପୁରୀ, ସୁମେରୁପର୍ବତ, ଅମରାଦ୍ରି ।

ଅମରାବତୀ—ସ୍ତ୍ରୀ.ବି (ଅମର + ବତ୍ + ଈ) ଇନ୍ଦ୍ରାଳୟ, ଦେବତାମାନଙ୍କର ପୁରୀ ।

ଅମରାବତୀ (କଟକ)—ଗ୍ରା.ବି.କଟକଜିଲାର ଦର୍ପଣିକିଲାନ୍ତର୍ଗତ ଛତିଆ ଗ୍ରାମନିକଟ-ବର୍ତ୍ତୀ ପାହାଡ଼ ।

ଅମରି—ଯା. ହାଉଦା, ହାତୀ ଉପରେ ବସିବାର ଆସନ ।

ଅମରିଷ—ଗ୍ରା. ବି. କ୍ରୋଧ, ଅଧୈର୍ଯ୍ୟ, ପରଶ୍ରୀକାତରତା, ଅଦୌତି, ଈର୍ଷା, (ବିଂ) କ୍ରୋଧ, ଅସହିଷ୍ଣୁ, ଅଧୀର, ପରଶ୍ରୀକାତର, ଈର୍ଷାପର ।

ଅମରିଷ୍ଣୁ—ତ୍ରି.ବିଂ.ମରଣଧର୍ମଶୀଳ ନୁହେଁ ।

ଅମରୀ—ସ୍ତ୍ରୀ.ବି.(ଅମର + ଈ) ଦେବସ୍ତ୍ରୀ, ଅପ୍ସରା, ସ୍ୱର୍ଗବେଶ୍ୟା, ଦେବତା ।

ଅମରୁ—ପୁଂ. ବି. ଜଣେ ପ୍ରସିଦ୍ଧ କବି ।

ଅମରୁଶତକ—ଖଣ୍ଡିଏ କାବ୍ୟଗ୍ରନ୍ଥ ।

ଅମରେନ୍ଦ୍ର—ବି.(ଅମର + ଇନ୍ଦ୍ର)୬.ତତ୍; ଦେବରାଜ, ଇନ୍ଦ୍ର, ପୁରୁଷଙ୍କ ନାମ-ବିଶେଷ ।

ଅମରେଶ—ପୁଂ. ବି. ( ଅମର + ଈଶ ) ଇନ୍ଦ୍ର, ଦେବରାଜ, ଶିବ, (ଗ୍ରା.ବି) ଶିବ-ବିଗ୍ରହବିଶେଷ ।

ଅମର୍କ—ପୁଂ. ବି. ଶୁକ୍ରାଚାର୍ଯ୍ୟଙ୍କ ପୁତ୍ର ।

ଅମର୍ତ୍ତ—ତ୍ରି. ବି. ମରଣଧର୍ମଶୀଳଶୂନ୍ୟ, ମନୁଷ୍ୟ ନୁହେ ।

ଅମର୍ତ୍ତ୍ୟ—ତ୍ରି.ବିଂ.ମରଣଶୂନ୍ୟ,ସ୍ୱର୍ଗଲୋକ, ଅମର, ଦିବ୍ୟ, ଅକ୍ଷୟ, (ବି) ଅମର, ଦେବତା ।

ଅମର୍ତ୍ତ୍ୟନଦୀ—ସ୍ତ୍ରୀ. ବି. ଗଙ୍ଗା ।

ଅମର୍ତ୍ତ୍ୟବଧୂ—ସ୍ତ୍ରୀ.ବି. (୬ତତ୍)ଅପ୍ସରା ।

ଅମର୍ତ୍ତ୍ୟଭାବ—ସ୍ତ୍ରୀ.ବି.(୬ତତ୍) ଦେବତ୍ୱ ।

ଅମର୍ତ୍ତ୍ୟଭୁବନ—କ୍ଲୀ.ବି. (୬ତତ୍)ଦେବ-ଲୋକ, ସ୍ୱର୍ଗ ।

ଅମର୍ଦ୍ଦିତ—ତ୍ରି. ବିଂ, (ନ.ତତ୍) ଅଦଳିତ ଅନିଷ୍ପୀଡ଼ିତ, ଅଜିତ, ଅଦମିତ, ( ସ୍ତ୍ରୀ ) ଅମର୍ଦ୍ଦିତା ।

ଅମର୍ଯ୍ୟାଦ—ତ୍ରି.ବିଂ.(ବ.ବ୍ରୀ)ସୀମାରହିତ, ସମ୍ମାନରହିତ, ଅପ୍ରକୃତିସ୍ଥ, ଅସୀମ, ସମ୍ଭ୍ରମହୀନ, (ସ୍ତ୍ରୀ) ଅମର୍ଯ୍ୟାଦା ।

ଅମର୍ଯ୍ୟାଦା—ସ୍ତ୍ରୀ. ବି. ( ଅ + ମର୍ଯ୍ୟାଦା ) ଅନାଦର, ଅପମାନ, ଅସମ୍ମାନ, ଅବ-ମାନନା ।

ଅମର୍ଯ୍ୟାଦକ—ତ୍ରି. ବିଂ.(ନ.ତତ୍)ଲୋକର ଅବମାନନାକାରୀ, (ସ୍ତ୍ରୀ) ଅମର୍ଯ୍ୟାଦିକା ।

ଅମର୍ଷ—ପୁଂ.ବି.(ଅ + ମୃଷ୍ + ଭା.ଅ)କ୍ରୋଧ, ଅକ୍ଷମା, ଅଲଙ୍କାରଶାସ୍ତ୍ରମତେ ବ୍ୟଭି-ଚାରୀଭାବବିଶେଷ, ବିଂ. (ସ୍ତ୍ରୀ) ଅମର୍ଷା, ଅସହିଷ୍ଣୁ ।

ଅମର୍ଷଣ—ତ୍ରି.ବିଂ.(ବ.ବ୍ରୀ)କ୍ରୋଧୀ,ଅସହନ ଅକ୍ଷମାପରାୟଣ,ରୋଗୀ, (ସ୍ତ୍ରୀ) ଅମର୍ଷଣା, (ବି) ଅମର୍ଷ, କ୍ରୋଧ ।

ଅମର୍ଷପରାୟଣ--ପୁଂ.ବିଂ.(ବ.ବ୍ରୀ)କୋପନ ସ୍ୱଭାବ, (ସ୍ତ୍ରୀ) ଅମର୍ଷପରାୟଣୀ

ଅମର୍ଷବାନ୍—ପୁଂ.ବିଂ.ଅମର୍ଷଯୁକ୍ତ,କ୍ରୋଧୀ, କୋପନସ୍ୱଭାବ, ଅଧୀର, ଅକ୍ଷମୀ, (ସ୍ତ୍ରୀ) ଅମର୍ଷବତୀ ।

ଅମର୍ଷିତ—ତ୍ରି.ବିଂ.(ଅ + ମୃଷ୍ + ତ)କ୍ରୁଦ୍ଧ, କ୍ଷମାବାନ୍ ନୁହେ, ଅମର୍ଷଯୁକ୍ତ, କ୍ରୋଧା-ନ୍ୱିତ, (ସ୍ତ୍ରୀ) ଅମର୍ଷିତା ।

ଅମର୍ଷୀ—ପୁଂ.ବିଂ.(ଅମର୍ଷ + ଇନ୍)ଅମର୍ଷ-ଯୁକ୍ତ, କ୍ରୋଧୀ, ରାଗୀ, (ସ୍ତ୍ରୀ)ଅମର୍ଷିଣୀ ।

ଅମଳ—କ୍ଲୀ. ବି. ଅଭ୍ର,ମେଘମାଳ, (ସ୍ତ୍ରୀ) ଅମଳା, ( ବିଂ ) ନିର୍ମଳ, ପରିଷ୍କୃତ, ନିଷ୍କଳଙ୍କ ।

ଅମଳ—ଯା. ଜୀବିତକାଳ, ରାଜତ୍ୱ-କାଳ, ଅଭ୍ୟାସ, ଅଧିକାର, ଆଧିପତ୍ୟ-ସମୟ, ଧାନ୍ୟାଦି ଆଦାୟ କରିବା, ଅଧିକାରକାଳ, ମାଦକ ଦ୍ରବ୍ୟ,ଦଖଲ ।

ଅମଳକ—ପୁଂ. ବିଂ. ଅଧିତ୍ୟକାସ୍ଥିତ ବାସଭୂମି, ଆମଳକୀ ।

ଅମଳକରବା—ଗ୍ରା. କ୍ରି. କ୍ଷେତରୁ କଟା-ହୋଇ ଆସିଥିବା ଧାନହଳାରୁ ବେଙ୍ଗଲା

ପକାଇବା ବା ଗୋଡ଼ରେ ମର୍ଦ୍ଦିବାଦ୍ୱାରା ଶସ୍ୟ ପୃଥକ୍ କରିବା, ଭୋଗ କରିବା, ରାଜତ୍ୱକାଳରେ ବଞ୍ଚିବା, ଅଙ୍ଗେ ନିଭାଇବା, ନିଶାକୁ ଅଭ୍ୟାସରେ ପରିଣତ କରିବା ।

ଅମଳଖିଆ—ଗ୍ରା.ବି. ନିଶାଖାଇବା,(ବିଂ) ଯେ ନିଶାଖାଏ, ନିଶାଖୋର ।

ଅମଳଣ—ଗ୍ରା. ବିଂ. (ସଂ.ଅମ୍ଳାନ)ଅମ୍ଳାନ, ଅମଳିନ, ସର୍ବଦା ଶୁଦ୍ଧ, ନିଷ୍ପାପ, ଯେ ମଉଳେ ନାହିଁ ।

ଅମଳଦାମଳ—ଗ୍ରା. ବି. (ସହଚର)ଧାନଆଦି ଅମଳ କରିବାର ବିବିଧପ୍ରକ୍ରିୟା ।

ଅମଳଦାରୀ—ଯା. ରାଜତ୍ୱକାଳ, ଜୀବିତକାଳ, ସମୟ, ଅଧିକାରସମୟ ।

ଅମଳପାଣି—ଗ୍ରା.ବି.(ସହଚର) ନିଶାପାଣି ।

ଅମଳପିତ—ଗ୍ରା. ବି. (ସଂ.ଅମ୍ଳପିତ୍ତ)ଚର୍ମରୋଗବିଶେଷ, ଗରମିରୋଗର ମଧ୍ୟମାବସ୍ଥା ।

ଅମଳା—ସ୍ତ୍ରୀ. ବି. (ଅମଳ+ଆ) ଲକ୍ଷ୍ମୀ, ଭୂଇଁ ଅଁଳା, ନାଭିନାଳ, (ବିଂ)ମଳରହିତା ।

ଅମଲ୍ଲ—ଯା. ବି. ନିମ୍ନଶ୍ରେଣୀସ୍ଥ କର୍ମଚାରୀ, (ବିଂ) ଯେ ମରେ ନାହିଁ, ଅମୃତ ।

ଅମଳାତ୍ମା—ପୁଂ. ବି. ବିଶୁଦ୍ଧାନ୍ତଃକରଣ, ଯୋଗୀ ।

ଅମଲ୍ଲକମଲ୍ଲ—ଗ୍ରା. ବି. ଘରର ଯାବତୀୟ ଚଳନ୍ତି ସମ୍ପତ୍ତି,(ବିଂ) ନିଶାବାଜ୍, ନିଶାଖୋର ।

ଅମବନ୍ତ—ହି. ବିଂ. ରୋଗବାନ୍, ଯନ୍ତ୍ରବାନ୍, ସସହାୟ ।

ଅମସ—ପୁଂ.ବି. କାଳ,ନିର୍ବୋଧ,ରୋଗ ।

ଅମସ୍ତକ—ହି.ବିଂ. (ବ.ବ୍ରୀ) ମସ୍ତକହୀନ, ନିର୍ମୁଣ୍ଡ, (ସ୍ତ୍ରୀ) ଅମସ୍ତକା ।

ଅମା—(ଅବ୍ୟ)ସହ, ନିକଟ, ଅମାବାସ୍ୟା, (ବିଂ) ପରିମାଣଶୂନ୍ୟ, (ବି) ଚନ୍ଦ୍ରର କଳାବିଶେଷ, ଅମାବାସ୍ୟା ।

ଅମାଂସ—ହି. ବିଂ. (ବ.ବ୍ରୀ.) ଦୁର୍ବଳ, ମାଂସହୀନ, ଅମାଂସଳ, ଅତିକ୍ଷୀଣ, (ବି) ମାଂସ ଛଡ଼ା ଅନ୍ୟ ବସ୍ତୁ ।

ଅମାଂସଳ—ହି. ବିଂ. (ନ.ତତ୍ପୁ) ମାଂସହୀନ, କୃଶ, କ୍ଷୀଣ, ଦୁର୍ବଳ ।

ଅମାତ୍ୟ—ପୁଂ. ବି. ମନ୍ତ୍ରୀ, ସଚିବ, ବନ୍ଧୁ, ସହଚର ।

ଅମାତୃକ—ପୁଂ.ବି. (ବ.ବ୍ରୀ.) ମାତୃହୀନ, (ସ୍ତ୍ରୀ) ଅମାତୃକା ।

ଅମାତ୍ର—ହି. ବିଂ. ଅପରିମିତ, ଇୟତ୍ତାଶୂନ୍ୟ, (ବି) ପରମାତ୍ମା, ଭୂମାସ୍ୱ ବ୍ରହ୍ମ ।

ଅମାନତ—(ଯା) ବି. କିଛିକାଳପାଇଁ ଗଚ୍ଛିତ ଧନ,ବସ୍ତୁ,ନ୍ୟାସ(ବିଂ) ଅସ୍ଥାୟୀଭାବରେ ଗଚ୍ଛିତ ।

ଅମାନନା—ସ୍ତ୍ରୀ. ବି. ଆଦରର ଅଭାବ, ସମ୍ମାନର ଅଭାବ, ଅପମାନ,ଅବମାନନା

ଅମାପ—ବିଂ.(ଅ+ମାପ)ଅଧିକ, ଅପରିମିତ ।

ଅମାନବ—ହି.ବିଂ.(ନ.ତତ୍ପୁ)ଅମାନୁଷିକ, ପାଶବ, ଅଲୌକିକ,(ସ୍ତ୍ରୀ)ଅମାନବୀ ।

ଅମାନସ୍ୟ—କ୍ଲୀ.ବି. (ଅ.+ମନସ୍+ଯ) ଯାହା ମନକୁ ଭଲ ଲାଗେ ନାହିଁ, ଦୁଃଖ, ମନଃପୀଡ଼ା ।

ଅମାନିଆଁ—ଗ୍ରା. ବିଂ. ଯେ ମାନେ ନାହିଁ, ନିର୍ଲଜ୍ଜ, ଅବାଧ, ସ୍ୱେଚ୍ଛାଚାରୀ,( ଗ୍ରା. ବି) ଅମର୍ଯ୍ୟାଦା, ଅଗୌରବ, ଅସମ୍ମାନ ।

ଅମାନିତା—ବି.(ଅମାନିନ୍+ଭା.ତା)ଗର୍ବହୀନତା, ନମ୍ରତା, ବିନୟ ।

ଅମାନିନୀ—ସ୍ତ୍ରୀ. ବିଂ. (ଅମାନିନ୍+ଈ) ଅମାନୀର ସ୍ତ୍ରୀଲିଙ୍ଗ, ଅଭିମାନରହିତା, ଗର୍ବହୀନା ।

ଅମାନିଶା—ସ୍ତ୍ରୀ.ବି.(୬ତତ୍ପୁ) ଅମାବାସ୍ୟାରଜନୀ, ଘୋର ଅନ୍ଧକାର ।

ଅମାନୀ—ପୁଂ.ବିଂ. (ଅ+ମାନିନ୍) ଅଗର୍ବିତ, ଅହଂକାରଶୂନ୍ୟ, ଅଭିମାନହୀନ, ନମ୍ର, ବିନୀତ, (ସ୍ତ୍ରୀ) ଅମାନିନୀ, (ବି) ଅମାନିତା ।

ଅମାନୁଷ—ପୁଂ.ବି.(ନ.ତତ୍ପୁ)ମାନୁଷଭିନ୍ନ ଅନ୍ୟ ଜନ୍ତୁ, ମନ୍ଦଲୋକ, ଦୁର୍ଜନ, (ବିଂ) ଅମାନୁଷିକ, ସ୍ୱର୍ଗୀୟ,ପଶୁବତ୍,ଅଲୌକିକ, ଅସାମାନ୍ୟ, (ସ୍ତ୍ରୀ) ଅମାନୁଷୀ ।

ଅମାନୁଷିକ—ହି. ବିଂ.(ନ.ତତ୍ପୁ)ମାନୁଷାତୀତ, ଅଲୌକିକ, ଅସାମାନ୍ୟ, ଅମନୁଷ୍ୟୋଚିତ, ପାଶବ, ନିଷ୍ଠୁର, (ସ୍ତ୍ରୀ) ଅମାନୁଷିକୀ ।

ଅମାନ୍ୟ—ପୁଂ.ବିଂ. (ବ.ବ୍ରୀ) ଯେ ପୂଜ୍ୟ ନୁହେଁ,ଅପାଳନୀୟ, ଅମାନନୀୟ, ଅନାଦରଣୀୟ, ( ବି )ଅପମାନ, ଅସମ୍ମାନ, ଅନାଦର, (ସ୍ତ୍ରୀ) ଅମାନ୍ୟା ।

ଅମାମସୀ, ଅମାମାସୀ—ସ୍ତ୍ରୀ.ବି. (ଅମା+ମସ୍+ଅ+ଈ) ଯେଉଁ ତିଥିରେ ସୂର୍ଯ୍ୟସହିତ ଚନ୍ଦ୍ର ଏକତ୍ରଥାଆନ୍ତି, ଅମାବାସ୍ୟା ।

ଅମାୟ—ହି. ବିଂ. (ବ.ବ୍ରୀ) ମାୟାଶୂନ୍ୟ, କୃପାହୀନ, କପଟତାରହିତ, ଅବିଦ୍ୟାହୀନ, ବ୍ରହ୍ମଶାମ୍ବରୀବିଦ୍ୟାରହିତ, ଐନ୍ଦ୍ରଜାଲ ବିଦ୍ୟାଶୂନ୍ୟ, ପୀତାମ୍ବରଶୂନ୍ୟ, ବ୍ରହ୍ମଶୂନ୍ୟ,ଇୟତ୍ତାଶୂନ୍ୟ (ସ୍ତ୍ରୀ) ଅମାୟା ।

ଅମାୟୁତ—ହି. ବିଂ. ଯାହାର ପରିମାଣ ନାହିଁ, ଅପରିମିତ ।

ଅମାୟିକ—ହି.ବି. (ଅ+ମାୟା+ଇକ) ଅକପଟ, ସରଳ, ସ୍ନେହଶୀଳ ।

ଅମାୟିକତା—ସ୍ତ୍ରୀ. ବି. (ଅମାୟିକ+ଭା, ତା) ଅମାୟିକ ଆଚରଣ, ନିଷ୍କପଟତା ।

ଅମାର—ଗ୍ରା.ବି.(ଅ+ମାର)ଶସ୍ୟାଗାର, ଧାନକୋଠି ।

ଅମାରଶତ୍ରୁ—ଗ୍ରା. ବି.(ଅମାର+ଶତ୍ରୁ) ଯାହାକୁ ମାରିବାକୁ କେହି ଶତ୍ରୁନାହାନ୍ତି ।

ଅମାର୍ଗ—ହି. ବିଂ. (ବ.ବ୍ରୀ) ମାର୍ଗରହିତ, ପଥହୀନ, (ସ୍ତ୍ରୀ) ଅମାର୍ଗା,(ପୁଂ.ବି)ମାର୍ଗର ଅଭାବ,ପଥହୀନତା,ଗର୍ହିତଉପାୟ,କୁପଥ ।

ଅମାର୍ଗିତ—ହି. ବିଂ (ନ.ତତ୍ପୁ) ଯାହାର ଅନ୍ୱେଷଣକରାହୋଇନାହିଁ,ଅନନୁସନ୍ଧିତ ।

ଅମାର୍ଜିତ-ହି.ବିଂ.(ଅ+ମୃଜ୍+ତ)ଅଶୁଦ୍ଧ ଅପରିଷ୍କୃତ,ବେମଜା, (ସ୍ତ୍ରୀ) ଅମାର୍ଜିତା ।

ଅମାରି,ଅମାରୀ, ଅମିରୀ—(ବି) ହାଉଦା ।

ଅମାଲୁ—ଗ୍ରା. ବି. ସୁମିଷ୍ଟ ଖାଦ୍ୟଦ୍ରବ୍ୟବିଶେଷ, ମାଲପୁଆ ।

ଅମାବସୀ,ଅମାବାସୀ—ସ୍ତ୍ରୀ.ବି. (ଅମା+ବସ୍+କ.ଅ+ଈ) ଅମାବାସ୍ୟା, କୃଷ୍ଣପକ୍ଷର ଶେଷ ତିଥି ।

ଅମାବସୁ—ପୁଂ. ବ. ଉର୍ବଶୀର ଗର୍ଭଜାତ ପୁରୁରବାଙ୍କ ପୁତ୍ର ।

ଅମାବାସ୍ୟ—ବି.ବଂ. (ଅମାବାସ୍ୟା+ଯ) ଅମାବାସ୍ୟାଜାତ ।

ଅମାବାସ୍ୟା, ଅମାବସ୍ୟା—ସ୍ତ୍ରୀ. ବ. କୃଷ୍ଣପକ୍ଷୀୟ ପଞ୍ଚଦଶ ତିଥି, ଉଆଁସ ।

ଅମାସ୍ୟା—ଗ୍ରା. ବ. ଅମାବାସ୍ୟା ।

ଅମିୟ—ଗ୍ରା. ବଂ.ଅମିୟ,ଅମୃତମୟ,(ବ) ଅମୃତ ।

ଅମିତ—ବି.ବଂ.(ନ.ତତ୍ପୁ) ପରିମିତନୁହେ ଅପରିମିତ,ଅପରିଚ୍ଛନ୍ନ, ଅଜ୍ଞାତ, ଅସୀମ, ପର୍ଯ୍ୟାପ୍ତ, ପୀଡ଼ିତ, ରୁଗଣ ।

ଅମିତତେଜାଃ—ବଂ.ପୁଂ.ଓ ସ୍ତ୍ରୀ.(ବ.ବ୍ରୀ) ଅପରିମିତ ଶକ୍ତିଶାଳୀ, ଅତ୍ୟନ୍ତ ଦୀପ୍ତିଶୀଳ, ଅସୀମପ୍ରଭାବସମ୍ପନ୍ନ, ଅମିତବଳ ।

ଅମିତଧ୍ୱଜ—ପୁଂ.ବ. ଚନ୍ଦ୍ରବଂଶୀୟ ଧର୍ମଧ୍ୱଜଙ୍କ ପୁତ୍ର ।

ଅମିତବଳ—ବି.ବଂ. (ବ.ବ୍ରୀ) ଅପରିମିତ ଶକ୍ତିଶାଳୀ, ସର୍ବଶକ୍ତିମାନ୍, (ସ୍ତ୍ରୀ) ଅମିତବଳା, (ବ) ଅପରିମିତଶକ୍ତି, ସମଧିକସାମର୍ଥ୍ୟ ।

ଅମିତବିକ୍ରମ—ପୁଂ.ବ.(କ.ଧା)ବିଷ୍ଣୁ,(ବଂ) ବହୁବିକ୍ରମଶାଳୀ, ଅଧିକଶୌର୍ଯ୍ୟସମ୍ପନ୍ନ, (ସ୍ତ୍ରୀ) ଅମିତବିକ୍ରମା ।

ଅମିତବ୍ୟୟ—ପୁଂ. ବ. (କ. ଧା) ଅଯଥା ଅତିରିକ୍ତ ଖରଚ ।

ଅମିତବ୍ୟୟୀ—ପୁଂ. ବଂ. ( ଅମିତବ୍ୟୟ +ଇନ୍ ) ଅପବ୍ୟୟୀ, ଆୟ ଅପେକ୍ଷା ଯେ ଅଧିକ ବ୍ୟୟ କରେ ।

ଅମିତହସ୍ତ—ବି.ବଂ. (ବ.ବ୍ରୀ) ପରିମାଣାଧିକ ହସ୍ତବିଶିଷ୍ଟ, (ସ୍ତ୍ରୀ) ଅମିତହସ୍ତା ।

ଅମିତାଚାର—ପୁଂ. ବ. (କ.ଧା) ଅଯଥା ଆଚରଣ ବା ଅନୁଚିତ ବ୍ୟବହାର,(ସ୍ତ୍ରୀ) ଅମିତାଚାରା ।

ଅମିତାଚାରୀ—ପୁଂ.ବଂ. (ଅମିତ+ଆ+ଚର୍+କ.ଇନ୍) ଅପରିମିତଭାବରେ ବ୍ୟବହାରକାରୀ, (ସ୍ତ୍ରୀ) ଅମିତାଚାରିଣୀ ।

ଅମିତାଭ—ପୁଂ. ବ. ସାବର୍ଣ୍ଣିମନ୍ୱନ୍ତରର ଦ୍ୱିତୀୟ ରୈବତମନ୍ୱନ୍ତରର,ପ୍ରଥମଶ୍ରେଣୀର ଦେବତା, ବୁଦ୍ଧଦେବ,(ବଂ) ମହାପ୍ରଭୁ ।

ଅମିତାଶନ—ପୁଂ.ବ.(ବ.ବ୍ରୀ)ସର୍ବଭକ୍ଷକ, ପରମେଶ୍ୱର, (ବଂ) ଅପରିମିତଭୋଜୀ ।

ଅମିତୌଜାଃ—ବି.ବଂ. ଅପରିମିତ ବଳଶାଳୀ, ଅତିଶୟ ବଳବାନ୍ ।

ଅମିତ୍ର—ପୁଂ.ବ. (ନ.ତତ୍ପୁ) ମିତ୍ର ନୁହେ, ଶତ୍ରୁ, ବୈରୀ, (ବଂ) ବନ୍ଧୁହୀନ, ଶତ୍ରୁଭାବାପନ୍ନ ।

ଅମିତ୍ରଜିତ୍—ପୁଂ. ବ. ଇକ୍ଷ୍ୱାକୁବଂଶୀୟ ସୁବର୍ଣ୍ଣରାଜାଙ୍କ ପୁତ୍ର, (ବଂ) ଶତ୍ରୁଜୟୀ, ଅରିନ୍ଦମ । [ବଳବାନ୍ ।

ଅମିତ୍ରସହ—ବି. ବଂ. ଶତ୍ରୁଜୟଶୀଳ,

ଅମିତ୍ରସାହ—ପୁଂ. ବଂ. ଶତ୍ରୁଜେତା, ବଳବାନ୍ ।

ଅମିତ୍ରହା—ପୁଂ. ବଂ. ( ଅମିତ୍ର+ହନ୍ +କ. କ୍ୱିପ୍ ) ଶତ୍ରୁନାଶକ ।

ଅମିତ୍ରାକ୍ଷର—ବ. ( ଅ+ମିତ୍ରାକ୍ଷର ) ପଦ୍ୟରେ ପ୍ରଥମଧାଡ଼ିର ଶେଷାକ୍ଷରସଙ୍ଗେ, ପରବର୍ତ୍ତୀ ଧାଡ଼ିର ଶେଷାକ୍ଷର ନ ମିଳିବା, (ବଂ) ମିତ୍ରାକ୍ଷର ବର୍ଜିତ ।

ଅମିତ୍ରାକ୍ଷରଛନ୍ଦ—ବ. ମିତ୍ରାକ୍ଷରବର୍ଜିତ ପଦ୍ୟ ।

ଅମିନ—ବି.ବଂ. (ଅମ+ଇନ୍) ଗମନଶୀଳ, ରୋଗୀ, ପୀଡ଼ିତ । [ମୟ ।

ଅମିୟ—ବ. ଅମୃତ, ସୁଧା,(ବଂ) ଅମୃତ-

ଅମିର୍—ଯା. ବ. ଧନୀ,ଧନୀଲୋକ, ଉଚ୍ଚକୁଳୋଦ୍ଭବ ବ୍ୟକ୍ତି, ଆଫଗାନିସ୍ଥାନର ରାଜାଙ୍କ ଉପାଧି,ମୁସଲମାନମାନଙ୍କ ନାମ ।

ଅମିରମିଜାଜ୍—ଯା. ବ. ( ଅମିର+ ମିଜାଜ୍ ) ବଡ଼ଲୋକିଆ ମନ, ଉଦାରପ୍ରକୃତି, ଦାନଶୀଳପ୍ରକୃତି ।

ଅମିରମିଜାଜୀ—ଯା. ବଂ. ଯାହାର ମନ ଅମିର୍‌ଙ୍କ ମନପରି ଉଦାର,ବେଖାତିର୍ ବ୍ୟୟଶୀଳ ।

ଅମିରୀ—ଯା. ବ. ଅମିରପଣ ।

ଅମିଲ୍—ଯା. ବ. ସୁବାଦାର ।

ଅମିଶା—ଗ୍ରା. ବଂ. ଅମିଶ୍ରିତ, ବିଶୁଦ୍ଧ, ଯାହା ମିଶା ହୋଇନାହିଁ ।

ଅମିଶ୍ର—ବି. ବଂ. (ଅ+ମିଶ୍ର) ନିର୍ଭେଳ, ବିଶୁଦ୍ଧ, ଖାଣ୍ଟି, ଯାହା ମିଶା ନୁହେ ।

ଅମିଶ୍ରଣୀୟ—ବି.ବଂ. (ନ.ତତ୍ପୁ)ମିଶ୍ରଣର ଅଯୋଗ୍ୟ ।

ଅମିଶ୍ରରାଶି—ବ. (କ.ଧା) ଯେଉଁ ରାଶିରେ ଅନ୍ୟ ଭଗ୍ନଜନକ ରାଶି ମିଶି ନ ଥାଏ, ପୂର୍ଣ୍ଣସଂଖ୍ୟା ।

ଅମିଶ୍ରିତ—ବି. ବଂ. (ନ. ତତ୍ପୁ) ଯାହା ମିଶ୍ରିତ ନୁହେ, ବିଶୁଦ୍ଧ, ପୃଥକ୍ ।

ଅମିଷ—କ୍ଳୀ.ବ. ଲୌକିକ ସୁଖ,ଭୋଗ୍ୟବସ୍ତୁ, (ବଂ) ଛଳଶୂନ୍ୟ ।

ଅମୀ—ବି. ବଂ. (ଅମ+ଇନ୍) ରୋଗଯୁକ୍ତ, ରୋଗୀ । [ସିତ ।

ଅମୀତ—ବି.ବଂ. (ଅ+ମୀ+ତ)ଅହିଂ-

ଅମୀମାଂସା—ସ୍ତ୍ରୀ.ବ.(ନ.ତତ୍ପୁ)ଅସିଦ୍ଧାନ୍ତ, ଅନିଷ୍ପତ୍ତି ।

ଅମୀମାଂସିତ—ବି.ବଂ.(ନ.ତତ୍ପୁ)ଯାହାର ନିଷ୍ପତ୍ତି ହୋଇନାହିଁ, ଅନିଷ୍ପନ୍ନ, ଅସ୍ଥିରୀକୃତ ।

ଅମୀମାଂସ୍ୟ—ବି.ବ(ନ.ତତ୍ପୁ)ମୀମାଂସାର ଅଯୋଗ୍ୟ,ପ୍ରତିକୂଳତର୍କଦ୍ୱାରା ଅବଚାର୍ଯ୍ୟ ।

ଅମୀବ—ବି. ବଂ. ରୋଗ, ପାପ, ଦୁଃଖ, ପାତକ ।

ଅମୀବଚାତନ—ବି. ବଂ. ରୋଗନାଶକ, ଶତ୍ରୁଘାତକ, (ସ୍ତ୍ରୀ) ଅମୀବଚାତନୀ ।

ଅମୁକ—ବି. ବଂ. ଅଦସ୍ ଶବ୍ଦର ଅର୍ଥ, ଚଳିତଭାଷା, ବ୍ୟକ୍ତି ବା ବସ୍ତୁର ପରିବର୍ତ୍ତେ ବ୍ୟବହାର ହୁଏ, ଫଲଣା, (ଯା) ଫଲାନା ।

ଅମୁକତମୁକ—ଗ୍ରା. ( ସହଚର ) ସେ ଏବଂ ସେ, ଅମୁକ ଓ ଅମୁକ ଲୋକ ବା ବସ୍ତୁଗଣ ।

ଅମୁକ୍ତ—ବି.ବଂ.ଅପରିତ୍ୟକ୍ତ,ମୁକ୍ତନୁହେ, ଆବଦ୍ଧ, ଅନୁଦ୍‌ଘାଟିତ, (ସ୍ତ୍ରୀ) ଅମୁକ୍ତା, (ବ) ଛୁରୀ ପ୍ରଭୃତି ଅସ୍ତ୍ର ।

ଅମୁକ୍ତହସ୍ତ-ପୁଂ.ବିଂ. (ବ.ବ୍ରୀ)ମିତବ୍ୟୟୀ, (ସ୍ତ୍ରୀ) ଅମୁକ୍ତହସ୍ତା ।
ଅମୁଖ୍ୟ—ତ୍ରି. ବିଂ. (ନ.ତତ୍ପୁ) ଅପ୍ରଧାନ, ଅଶ୍ରେଷ୍ଠ, ସାମାନ୍ୟ, ଗୌଣ, ଅପ୍ରତ୍ୟକ୍ଷ, ପରୋକ୍ଷ, (ସ୍ତ୍ରୀ) ଅମୁଖ୍ୟା ।
ଅମୁତଃ—(ଅବ୍ୟ) ଏହିଠାରୁ ।
ଅମୁତ୍ର—(ଅବ୍ୟ) ପରକାଳରେ, ପରଲୋକ, ଜନ୍ମାନ୍ତର ।
ଅମୁତ୍ରଭୂୟ—ପରକାଳର ଧର୍ମ ।
ଅମୁଦ—ବିଂ (ଅ + ମୁଦ)ଆମୋଦଶୂନ୍ୟ, ଖୋଲା, ହର୍ଷରହିତ ।
ଅମୁଦା—ଗ୍ରା.ବିଂ. ଖୋଲା, ଅମୁଦ୍ରିତ, ମୁଦ ଦିଆଯାଇ ନ ଥିବା, ବନ୍ଦକରା ଯାଇ ନ ଥିବା,ଯହିଁରେ କୌଣସି ସଙ୍କେତ ବା ଜ୍ଞାପକ ଚିହ୍ନ ନାହିଁ ।
ଅମୁଦ୍ରା—ଗ୍ରା.ବିଂ. (ଅ + ମୁଦ୍ରା) ଯେଉଁ ଦ୍ରବ୍ୟରେ କୌଣସି ଚିହ୍ନ ବା ସଙ୍କେତ ନାହିଁ, ଯେଉଁ ଟଙ୍କାରେ ସନ ବା ମୋହର ନାହିଁ ।
ଅମୁଷ୍ୟକୁଳ—ପ୍ରସିଦ୍ଧ କୁଳ, କୁଳୀନବଂଶ ।
ଅମୁଷ୍ୟପୁତ୍ର—ପୁଂ. ବି. ପ୍ରସିଦ୍ଧ ବଂଶ, କୁଳୀନ, (ସ୍ତ୍ରୀ) ଅମୁଷ୍ୟପୁତ୍ରୀ ।
ଅମୁଷ୍ୟାୟଣ—ପୁଂ. ବିଂ. ସଦ୍‌ବଂଶଜାତ, ପ୍ରସିଦ୍ଧବଂଶୋଦ୍ଭବ, ଏହାର ପୁଅ ।
ଅମୂଦୃକ୍—ତ୍ରି. ବିଂ. (ଅଦସ୍ + ଦୃଶ୍ + ମଁ. କ୍ୱିପ୍) ଏହିରୂପ, ଏହିପରି, ଏହିପ୍ରକାର, ଏତଦ୍ରୂପ ।
ଅମୂଦୃଶ—ତ୍ରି.ବିଂ. ( ଅଦସ୍ + ଦୃଶ୍ + ମଁ.ଅ ) ଏହିରୂପ, ଏବଂପ୍ରକାର, (ସ୍ତ୍ରୀ) ଅମୂଦୃଶୀ । [ଶୂନ୍ୟ ।
ଅମୂଢ଼—ତ୍ରି. ବିଂ. ମୂଢ଼ ନୁହେ, ମୋହ-
ଅମୂର୍ତ୍ତି—ତ୍ରି. ବିଂ. (ନ.ତତ୍ପୁ) ଅବୟବଶୂନ୍ୟ, ନିରାକାର, ଅପରିଚ୍ଛିନ୍ନ, ପରିମାଣଶୂନ୍ୟ, ଅନନ୍ତ, (ବି) ଶିବଙ୍କର ନାମ, (ସ୍ତ୍ରୀ) ଅମୂର୍ତ୍ତି ।
ଅମୂର୍ତ୍ତିଗୁଣ—ପୁଂ. ବି. ଆକାଶାଦି ଗୁଣବିଶେଷ,ଆତ୍ମାର ବୃଦ୍ଧି ଓ ସୁଖ ଦୁଃଖାଦି ଗୁଣ ।

ଅମୂର୍ତ୍ତି—ତ୍ରି.ବିଂ. ମୂର୍ତ୍ତିଶୂନ୍ୟ,ଆକୃତିହୀନ, ଗଗନାଦି, (ବିଂ) ଆକାଶ, ଆକାରର ଅଭାବ ।
ଅମୂର୍ତ୍ତିମାନ୍—ପୁଂ.ବିଂ. (ଅମୂର୍ତ୍ତି + ମତୁ) ଗଗନାଦି, ଯାହାର ମୂର୍ତ୍ତି ନାହିଁ, (ବି) ବିଷ୍ଣୁ ।
ଅମୂଳ—ତ୍ରି.ବିଂ.( ବ.ବ୍ରୀ ) ଆଦିକାରଣଶୂନ୍ୟ, ନିର୍ମୂଳ, ପ୍ରମାଣାଦିରହିତ, ମୂଳଶୂନ୍ୟ, କଳ୍ପିତ, ଅନାଦି,ଭିତ୍ତିହୀନ, ମିଥ୍ୟା, (ସ୍ତ୍ରୀ) ଅମୂଳା ।
ଅମୂଳକ—ତ୍ରି. ବିଂ. (ଅ + ମୂଳକ)ଆଦିକାରଣଶୂନ୍ୟ, ନିର୍ମୂଳ, ମିଥ୍ୟା, କାଳ୍ପନିକ, ଅପ୍ରାମାଣିକ, (ସ୍ତ୍ରୀ) ଅମୂଳକା ।
ଅମୂଳା—ସ୍ତ୍ରୀ. ବିଂ. (ବ.ବ୍ରୀ)ମୂଳରହିତା, (ସ୍ତ୍ରୀ.ବି) ଅଗ୍ନିଶିଖା ବୃକ୍ଷ ।
ଅମୂଲ୍ୟ—ବିଂ. ମୂଲ୍ୟହୀନ, ବେଦାମୀ, ଯାହାର ମୂଲ୍ୟ ନିରୂପଣ କରାଯାଇ ନପାରେ, ବହୁମୂଲ୍ୟ, ମହାର୍ଘ, ( ସ୍ତ୍ରୀ ) ଅମୂଲ୍ୟା ।
ଅମୂଲମୂଲ—ଗ୍ରା. ବି. ମହର୍ଘ ।
ଅମୃକ୍ତ—ତ୍ରି.ବିଂ.ଅଶୋଧିତ,ଅପ୍ରକ୍ଷାଳିତ ।
ଅମୃଣାଳ—କ୍ଲୀ.ବି. (ବ.ବ୍ରୀ) ବେଣାମୂଳ, ଯହିଁରେ ମୃଣାଳ ନାହିଁ ।
ଅମୃତ—ତ୍ରି.ବିଂ. (ଅ + ମୃ + ତ) ମରଣଶୂନ୍ୟ,ଜୀବିତ,ଦେବତା,ଅଯାଚିତ ଦ୍ରବ୍ୟ, (ସ୍ତ୍ରୀ) ଅମୃତା,(ବି)ସୁଧା, ଜଳ, ନବନୀ, ଦୁଧ, ପୀୟୂଷ, ଜଳ, ଘୃତ, ମୁକ୍ତି,ବିଷ, ସୁସ୍ୱାଦୁଦ୍ରବ୍ୟ ।
ଅମୃତକର—ପୁଂ. ବି. (ଅମୃତ + କର) ଚନ୍ଦ୍ର, ସୁଧାକର ।
ଅମୃତକୁଣ୍ଡ—କ୍ଲୀ. ବିଂ. (ଅମୃତ + କୁଣ୍ଡ) ସୁଧାକଳସ, କଦଳୀରେ ଦିଆର ଖାଦ୍ୟଦ୍ରବ୍ୟବିଶେଷ । କ୍ଷୀର ଓ ଚନ୍ଦ ମିଶ୍ରିତ କଦଳୀ ଚକଟା ।
ଅମୃତଗର୍ଭ—ପୁଂ. ବି. ଜୀବ, ବ୍ରହ୍ମା ।
ଅମୃତଜଟା—ସ୍ତ୍ରୀ.ବି. ଜଟାମାଂସୀ ।
ଅମୃତତ୍ୱ—କ୍ଲୀ. ବି. (ଅମୃତ + ଭା, ତ୍ୱ) ମୁକ୍ତି । [ଚନ୍ଦ୍ରକିରଣ ।
ଅମୃତତରଙ୍ଗିଣୀ—ସ୍ତ୍ରୀ ବି.(କ.ଧା)ଜ୍ୟୋତ୍ସ୍ନା,

ଅମୃତଦୀଧିତି—ପୁଂ.ବି. (ବ.ବ୍ରୀ) ଚନ୍ଦ୍ର, ଶଶାଙ୍କ, ଶଶଧର ।
ଅମୃତଦ୍ୟୁତି—ପୁଂ. ବି. ଚନ୍ଦ୍ର ।
ଅମୃତଦ୍ରବ—ପୁଂ.ବି.(୬ତତ୍ପୁ)ସୁଧାଧାରା ।
ଅମୃତଧାରା—ସ୍ତ୍ରୀ. ବି. ଅମୃତବିସ୍ତାର, ଛନ୍ଦୋବିଶେଷ, ସୁଧାସ୍ରୋତ ।
ଅମୃତଧାରୀ—ପୁଂ.ବିଂ. (ଅମୃତ + ଧୃ + କ, ଇନ୍) ଯେ ଅମୃତ ଧରିଥାଏ, (ବି) ମେଘ, ଚନ୍ଦ୍ର ।
ଅମୃତନାଦ—ପୁଂ. ବି. କୃଷ୍ଣ, ଯଜୁର୍ବେଦାନ୍ତର୍ଗତ ଉପନିଷଦ୍‌ବିଶେଷ ।
ଅମୃତନାଳିକା—ସ୍ତ୍ରୀ.ବି. କର୍ପୂରନାଳିକାବିଶେଷ, ପକ୍ୱାନ୍ନବିଶେଷ । [ଭିନ୍ନ ।
ଅମୃତନିର୍ଝର—ବି. ପୁଂ. (୬ତତ୍ପୁ)ସୁଧାର
ଅମୃତପ—ପୁଂ. ବି. (ଅମୃତ + ପା + କ, ଅ) ବିଷ୍ଣୁ, ଦେବତା, (ବିଂ) ଅମୃତପାନକାରୀ, (ସ୍ତ୍ରୀ) ଅମୃତପା ।
ଅମୃତପକ୍ଷ—ବି. ପୁଂ. ଅଗ୍ନି, ସ୍ୱର୍ଣ୍ଣପର ପକ୍ଷଯୁକ୍ତ, (ଯାହାର ଏହିପରି) ପକ୍ଷୀ ।
ଅମୃତପ୍ରାଶ—( ଔଷଧ ) ବୈଦ୍ୟଘୃତବିଶେଷ,କାଶରୋଗନାଶକ ଘୃତବିଶେଷ ।
ଅମୃତଫଳ—କ୍ଲୀ. ବି. ଅମୃତପରି ସ୍ୱାଦୁଫଳ (ନାସପାତି),(ପୁଂ) ପଟୋଳବୃକ୍ଷ ।
ଅମୃତଫେଣୀ—ଗ୍ରା. ବି. ମଧୁ ମିଶ୍ରିତ ଓ ଚିନିସହିତ ପାକ କରାହୋଇଥିବା ଆମ୍ବ ଓ ପଣସର ସୁସ୍ୱାଦୁ ଲଡୁବିଶେଷ ।
ଅମୃତବନ୍ଧୁ—ପୁଂ.ବି.ଚନ୍ଦ୍ର(ଏକସମୁଦ୍ରୋତ୍ପନ୍ନ ହେତୁ) । [ସୁଧାବୃଷ୍ଟି ।
ଅମୃତବର୍ଷ (ଣ)—ପୁଂ. ବି. ଓ କ୍ଲୀ,
ଅମୃତବର୍ଷୀ—ପୁଂ. ବିଂ. (ଅମୃତ + ବୃଷ୍ + କ,ଇନ୍)ଅମୃତବର୍ଷଣକାରୀ, ସୁମିଷ୍ଟ, (ସ୍ତ୍ରୀ) ଅମୃତବର୍ଷିଣୀ । [ବିଶେଷ ।
ଅମୃତଭଣ୍ଡା—ଗ୍ରା.ବି. ପପସ୍ତା, ଫଳବୃକ୍ଷ-
ଅମୃତଭଲ୍ଲାତକ—ଅମୃତଭଲ୍ଲାତକୀ, ଭାଲିଆ ପ୍ରଭୃତିଦ୍ୱାରା ପ୍ରସ୍ତୁତ ଔଷଧବିଶେଷ ।
ଅମୃତଭାଷୀ—ପୁଂ.ବିଂ. (ଅମୃତ + ଭାଷ୍ + କ. ଇନ୍) ଯାହାର କଥା ଅତିସୁମିଷ୍ଟ, ମଧୁରଭାଷୀ, (ସ୍ତ୍ରୀ) ଅମୃତଭାଷିଣୀ ।

ଅମୃତଭୂକ—ପୁଂ. ବି. ଦେବତା, (ବିଂ) ଯଜ୍ଞର ଶେଷାନ୍ନଭୋକ୍ତା ।

ଅମୃତମଣି—ପୁଂ. ବି. ଅମୃତସ୍ରାବୀ, ମୃତ-ସଞ୍ଜୀବନମଣିବିଶେଷ ।

ଅମୃତମଣୋହି—ଗ୍ରା. ବି. ( ଅମୃତ + ମଣୋହି ) ଦେବଦେବୀଙ୍କ ଭୋଗ, ପୁରୀ-ଜଗନ୍ନାଥ ମହାପ୍ରଭୁଙ୍କ ଭୋଗ ।

ଅମୃତମଣ୍ଡା—ଗ୍ରା. ବି. ପପସ୍ୟା, ସୁମିଷ୍ଟ-ଫଳବିଶେଷ । [ ମଦ୍ୟ ।

ଅମୃତମଦିରା—ସ୍ତ୍ରୀ.ବି. (କ.ଧା) ସୁଧାତୁଲ୍ୟ

ଅମୃତମଧୁର—ତ୍ରି.ବିଂ. (କ.ଧା,)ସୁଧାପରି ସୁମିଷ୍ଟ, (ସ୍ତ୍ରୀ) ଅମୃତମଧୁରା ।

ଅମୃତମୂର୍ତ୍ତି—ପୁଂ. ବି. (ବ୍ରୀ) ଯାହାର ମୂର୍ତ୍ତି ଅମୃତପରି ସ୍ନିଗ୍ଧ, ଚନ୍ଦ୍ର ।

ଅମୃତଯୋଗ—ପୁଂ.ବି.(କ.ଧା)ଜ୍ୟୋତିଷ-ମତେ ଶୁଭଯୋଗବିଶେଷ ।

ଅମୃତଯୌବନୀ—ଗ୍ରା. ସ୍ତ୍ରୀ. ବିଂ. ଚିର-ଯୁବତୀ, ଅମୃତଯୌବନା, ଯେଉଁ ସ୍ତ୍ରୀର ଯୌବନ ଚିରକାଳ ଥାଏ ।

ଅମୃତରସ—ବି.ପୁଂ. (କ ଧା) ସୁଧାରସ, ଅମୃତପରି ସୁସ୍ୱାଦୁ ପଦାର୍ଥ, ପରମାତ୍ମା ।

ଅମୃତରସା—ସ୍ତ୍ରୀ.ବି.(ବ.ବ୍ରୀ)କପିଳା,ଦ୍ରାକ୍ଷା

ଅମୃତରସାବଳି—ବି.ଅମୃତ ବା ସୁମଧୁର ରସସମୂହ,(ଗ୍ରା.ବି)ଏକପ୍ରକାର ମିଷ୍ଟାନ୍ନ ।

ଅମୃତଲତା—ସ୍ତ୍ରୀ,ବି.ଗୁଳୁଚୀ-ଲଇ ।

ଅମୃତଲୋକ—ପୁଂ. ବି. (୬ତତ୍)ଦେବ-ଲୋକ, ସ୍ୱର୍ଗ ।

ଅମୃତବପୁ—ପୁଂ. ବି. ଚନ୍ଦ୍ର ।

ଅମୃତବଲ୍ଲୀ—ସ୍ତ୍ରୀ.ବି (କ.ଧା)ଗୁଳୁଚୀଲତା, ଗୁଳୁଚୀ ।

ଅମୃତସଂଯାବ—କ୍ଲୀ.ବି.ଘୃତପକ୍ୱଯବଚୂର୍ଣ୍ଣ-ପ୍ରସ୍ତୁତ ପକ୍ୱାନ୍ନବିଶେଷ ।

ଅମୃତସର—ପଞ୍ଜାବର ଅନ୍ତର୍ଗତ ନଗର-ବିଶେଷ । [ବିଶେଷ ।

ଅମୃତସାର—ପୁଂ.ବି. ଘୃତ, ଲେହ୍ୟପାକ-

ଅମୃତସାରକ—ପୁଂ.ବି. (୬ତତ୍) ଗୁଡ଼ ।

ଅମୃତସୂ—ପୁଂ. ବି. (ଅମୃତ + ସୂ + କ, କ୍ୱିପ୍)ଚନ୍ଦ୍ର, (ସ୍ତ୍ରୀ) ଦେବମାତା,ଅଦିତି ।

ଅମୃତସୋଦର—ପୁଂ. ବି. ଉଚ୍ଚୈଃଶ୍ରବା ଅଶ୍ୱ ।

ଅମୃତସ୍ରବା—ସ୍ତ୍ରୀ. ବି. ରୁଦନ୍ତୀ ଲତା ।

ଅମୃତସ୍ରାବୀ—ପୁଂ.ବିଂ.(ଅମୃତ + ସ୍ରୁ + କ, ଇନ୍) ସୁଧାକ୍ଷରଣକାରୀ, ଅମୃତନିଷ୍ୟନ୍ଦୀ, (ସ୍ତ୍ରୀ) ଅମୃତସ୍ରାବିଣୀ ।

ଅମୃତହସ୍ତା—ଗ୍ରା. ବିଂ. ପୁଂ. ଓ ସ୍ତ୍ରୀ, ସିଦ୍ଧହସ୍ତ, ଯଶସ୍ୱୀ, ଯେଉଁ ଲୋକ କୌଣସି କାର୍ଯ୍ୟ କଲେ ସଫଳ ହୁଏ ।

ଅମୃତା—ସ୍ତ୍ରୀ.ବି. ଦୂବ, ତୁଳସୀ,ଗୁଳୁଚୀ, ଅଁଳା, ହରଡ଼ା, ସୁରା, ପିପ୍ପଳୀ, ଅତସୀ, ତିହୁଡ଼ି, ସୂର୍ଯ୍ୟରଶ୍ମି, ମହୁରି, ମଦିରା, ଇନ୍ଦ୍ରବାରୁଣୀ ।

ଅମୃତାକ୍ଷ—ବି. (ବ.ବ୍ରୀ) ହସ୍ତିର ନାମ-ବିଶେଷ, ପୁଷ୍ପଦନ୍ତ ହସ୍ତୀର ପୁତ୍ର,କାଳ-ଦେବତାଙ୍କ ନାମବିଶେଷ ।

ଅମୃତାଂଶୁ—ପୁଂ. ବି. ଚନ୍ଦ୍ର ।

ଅମୃତାଂଶଭବ—ପୁଂ.ବି. ବିଷ୍ଣୁ,ସମୁଦ୍ର, ଅତ୍ରିନେତ୍ର ।

ଅମୃତାନ୍ଧାଃ—ପୁଂ.ବି. ବ.ବ୍ରୀ;(ଅମୃତ + ଅନ୍ଧସ୍) ସମସ୍ତ ଦେବତା ।

ଅମୃତାଫଳ—କ୍ଲୀ. ବି. ପଟୋଳ ।

ଅମୃତାୟମାନ—ତ୍ରି.ବିଂ.(ଅମୃତ + ନାମ-ଧାତୁ + କ,ଆନ) ଅମୃତତୁଲ୍ୟ,ସୁଧୋପମ (ସ୍ତ୍ରୀ) ଅମୃତାୟମାନା ।

ଅମୃତାଶ—ପୁଂ. ବି. (ଅମୃତ ଆ + ଶୀ + ଅ) ବିଷ୍ଣୁ, ଦେବତା ।

ଅମୃତାଶନ—ପୁଂ.ବି.(ବ.ବ୍ରୀ)ଦେବତା ।

ଅମୃତାଶ୍ମା—ପୁଂ. ବି. ପ୍ରସ୍ତରବିଶେଷ, ଜଳରେ ଭାସିବା ପଥରବିଶେଷ ।

ଅମୃତାଷ୍ଟକ—କ୍ଲୀ.ବି.(୬ତତ୍)ଆୟୁର୍ବେଦୀୟ ପାଚନବିଶେଷ ।

ଅମୃତାସଙ୍ଗ—କ୍ଲୀ. ବି. ଅଞ୍ଜନବିଶେଷ ।

ଅମୃତାସୁ—ତ୍ରି.ବିଂ.ଯାହାର ପ୍ରାଣବିୟୋଗ ହୁଏ ନାହିଁ, ଦୀର୍ଘଜୀବୀ ।

ଅମୃତାହରଣ—ପୁଂ.ବି.(ଅମୃତ + ହୃ + କ ଅନ) ଗରୁଡ଼, (କ୍ଲୀ.ବି) ସୁଧାସଂଗ୍ରହ ।

ଅମୃତାହ୍ୱ—କ୍ଲୀ.ବି. (ବ.ବ୍ରୀ) ଅମୃତପରି, ନାସପାତିବୃକ୍ଷ ।

ଅମୃତି(ତୀ)—ଗ୍ରା.ବି.ଏକପ୍ରକାର ବହୁପାକ-ବିଶିଷ୍ଟ ଜିଲାପ,ସ୍ୱରବାଦ୍ୟବିଶେଷ, ଶ୍ରେଷ୍ଠ ଢାଲ ବା ଜଳପାତ୍ର ।

ଅମୃତେଶୟ—ପୁଂ. ବି. ବିଷ୍ଣୁ ।

ଅମୃତୋତ୍ପନ୍ନ—କ୍ଲୀ.ବି. ତୁତ୍ଥ,ତୁତିଆ, (ବିଂ) ସୁଧାଜାତ,(ସ୍ତ୍ରୀ) ଅମୃତୋତ୍ପନ୍ନା ।

ଅମୃତୋତ୍ପନ୍ନା— ସ୍ତ୍ରୀ.ବି.ମଧୁମକ୍ଷିକା, ମହୁ-ମାଛି ।

ଅମୃତୋଦ୍ଭବ—କ୍ଲୀ.ବି. ତୁତ୍ଥ, ତୁତିଆ, (ପୁଂ.) ବେଲଗଛ ।

ଅମୃତୋପମ—ତ୍ରି.ବି. (ବ.ବ୍ରୀ)ଅମୃତ ପରି ମଧୁର ଓ ସୁସ୍ୱାଦ, ସୁଧା ସଦୃଶ,( ସ୍ତ୍ରୀ ) ଅମୃତୋପମା ।

ଅମୃଧ୍ର—ତ୍ରି. ବି. ଯାହାକୁ କେହି ହିଂସା-କରନ୍ତି ନାହିଁ ।

ଅମୃଷା—(ଅବ୍ୟ) ମିଥ୍ୟା ନୁହେ, ସତ୍ୟ ।

ଅମୃଷ୍ଟ—ତ୍ରି.ବିଂ. (ନ.ତତ୍) ଅପରିଷ୍କୃତ, ଅସଂସ୍କୃତ, (କ୍ଲୀ.ବି) ଅପରିଷ୍କୃତ ଦ୍ରବ୍ୟ ।

ଅମେଣ୍ଟ—ଗ୍ରା. ବିଂ. ଅମୋଘ, ଅକାଟ, ଅଲଙ୍ଘ୍ୟ,ଅପ୍ରତିକାର୍ଯ୍ୟ, ଅବାଧ, ଅଖଣ୍ଡ-ନୀୟ ।

ଅମେଧ—ଗ୍ରା. ବିଂ. ଅମେଧ୍ୟ, ଅପବିତ୍ର, ନିଷିଦ୍ଧ, (ବି) ଅପବିତ୍ର ସ୍ଥାନ ।

ଅମେଧାଃ— ପୁଂ ଓ ସ୍ତ୍ରୀ. ବିଂ. ମେଧାହୀନ, ନିର୍ବୋଧ, ମୂର୍ଖ, ଯାହାର ଧାରଣାଶକ୍ତି ଅଳ୍ପ,ଯାହାର କିଛି ସ୍ମରଣ ରହେନାହିଁ ।

ଅମେଧାବୀ—ପୁଂ.ବିଂ. (ଅ + ମେଧାବିନ୍) ବୁଦ୍ଧିଶକ୍ତିରହିତ,ଗଧା,ଗମାର(ସ୍ତ୍ରୀ)ଅମେ-ଧାବିନୀ ।

ଅମେଧ୍ୟ—ତ୍ରି.ବିଂ. (ଅ + ମେଧ୍ୟ) ଅପବିତ୍ର, ଅଶୁଦ୍ଧ, (କ୍ଲୀ.ବି)ବିଷ୍ଠା,ଅଶୁଚିସ୍ଥାନ,ଦୁଷ୍ଟ, (ସ୍ତ୍ରୀ) ଅମେଧ୍ୟା ।

ଅମେନ—ତ୍ରି. ବିଂ. ପରିଚ୍ଛେଦରହିତ, ଇୟତ୍ତାଶୂନ୍ୟ ।

ଅମେୟ—ତ୍ରି.ବି. (ଅ + ମେୟ) ନ.ତତ୍; ଜ୍ଞାନର ଅସମର୍ଥ, ଅପରିମେୟ, ଅଧିକ, ଅସୀମ, ଅମାପ, (ସ୍ତ୍ରୀ) ଅମେୟା ।

ଅମେୟାତ୍ମା—ପୁଂ. ବି. (କ. ଧା) ଅପରି-ଚ୍ଛେଦ୍ୟସ୍ୱରୂପ,ପରମାଣାତୀତ ବୁଦ୍ଧି(ପୁଂ.ଓ

ସ୍ତ୍ରୀ· ବିଂ· ଅମିତମାନସିକ, ଶକ୍ତିସମ୍ପନ୍ନ, ଅତିଶୟ ବୁଦ୍ଧିମାନ୍, ମହାନୁଭବ, ବିଷ୍ଣୁ ।

ଅମେଗ୍ରୀ—ଗ୍ରା·ବି·ଆମ୍ବୃଡ଼ା (ଫଳ ଓ ଗଛ)

ଅମେଳ—ଗ୍ରା·ବି·ପ୍ରଭେଦ,ମିଳନରଅଭାବ, ବିବାଦ, ଅପଡ଼, ଶତ୍ରୁତା, ବିରୋଧ, ଅଘଟଣପଣ, ଅସମତା (ଗ୍ରା·ବିଂ) ପରସ୍ପର ସଙ୍ଗେ ମେଳ ଖାଉ ନ ଥିବା,ଅସମାନ, ଅଘଟଣ, ବେଯୋଡ଼ ।

ଅମେଳକ—ଗ୍ରା·ବିଂ·(ଅ + ମେଳକ)ପରସ୍ପର ବିରୋଧୀ, (ବି) ଜ୍ୟୋତିଷଶାସ୍ତ୍ରାନୁସାରେ ବରପାତ୍ର ଓ କନ୍ୟାପାତ୍ରର କୋଷ୍ଠୀଗତମିଳନର ଅଭାବ ।

ଅମୋକ୍ଷ—ବି. ନ. ତତ୍ରୁ; (ଅ + ମୋକ୍ଷ) ମୁକ୍ତିର ଅଭାବ,ପୁନର୍ଜନ୍ମରୁ ଅମୁକ୍ତି,ବନ୍ଧନ ସଂସାରବନ୍ଧନରୁ ଅମୁକ୍ତି ବିଂ· (ବ·ବ୍ରୀ) ଅମୁକ୍ତ,ମୁକ୍ତ ବା ମୋକ୍ଷରହିତ, ବନ୍ଧନରୁ ଅମୁକ୍ତ ।

ଅମୋଘ—ତ୍ରି·ବିଂ·(ଅ + ମୋଘ)ନ·ତତ୍ରୁ; ସଫଳ,ଅବ୍ୟର୍ଥ,ଅବନ୍ଧ୍ୟ,ସାର୍ଥକ,ନିଷ୍ଫଳ, ଅଭ୍ରାନ୍ତ (ସ୍ତ୍ରୀ) ଅମୋଘା (ପୁଂ) ନଦବିଶେଷ, ବିଷ୍ଣୁ, ଶିବ, କାର୍ତ୍ତିକେୟ (ସ୍ତ୍ରୀ) ପଟୋଳଲତା, ହରଡ଼ା, ବିଡ଼ଙ୍ଗ ।

ଅମୋଘା—ସ୍ତ୍ରୀ·ବି·ପଟୋଳଲତା,ପଲତା, ହରିତକୀ, ବୀଜାଘରକ୍ଷ, ଶକ୍ତିବିଶେଷ, ଦୁର୍ଗା, ଦେବମାତା, ରାତ୍ରି, ପୁଷ୍ପବିଶେଷ, ନଦୀବିଶେଷ (ବିଂ) ଅବ୍ୟର୍ଥ ।

ଅମୋଚ୍ୟ—ତ୍ରି·ବିଂ· (ନ· ତତ୍ରୁ) ମୋଚନ କରିବାର ଅସାଧ୍ୟ, ଦୁର୍ମୋଚ୍ୟ, ଅତ୍ୟାଜ୍ୟ, ଅବିଲୋପନୀୟ (ସ୍ତ୍ରୀ) ଅମୋଚ୍ୟା ।

ଅମୋତ—କ୍ଲୀ· ଅଚ୍ଛିନ୍ନ, ବସ୍ତ୍ରପୁଚ୍ଛ ।

ଅମୋହ—ବି· (ଅ + ମୋହ) ନ·ତତ୍ରୁ, ମୋହର ଅଭାବ, ଭ୍ରାନ୍ତିର ଅଭାବ, ବିଂ· (ବ·ବ୍ରୀ)ମୋହଶୂନ୍ୟ, ଭ୍ରାନ୍ତିଶୂନ୍ୟ ।

ଅମୋହଶକ୍ତି—ଗ୍ରା·ବି· (ଅମୋଘ + ଶକ୍ତି) ଶକ୍ତିବିଶେଷ, ଦେବଶସ୍ତ୍ରବିଶେଷ ।

ଅମୌନ—ବି· (ଅ + ମୁନ + ଅ) ମୁନିବ୍ରତପାଳନ ନ କରିବା ଅବସ୍ଥା, ମୁନି ନ ହେବା ଅବସ୍ଥା ।

ଅମ୍ବ—(ଅବ୍ୟ) ସମ୍ବୋଧନ,ଗମନ,ଆହ୍ୱାନ (ବି·ପୁଂ·) ପିତା, ଶବ୍ଦ, ଦେବ (ବି·ସ୍ତ୍ରୀ) ହେ ମାତଃ, (କ୍ଲୀ·ବି·) ଜଳ, ଚକ୍ଷୁ ।

ଅମ୍ବକ—କ୍ଲୀ· ବି· ଦୂରସ୍ଥବସ୍ତୁର ପ୍ରାପ୍ତି, ନେତ୍ର, ତାମ୍ର, (ବି) ପିତା ।

ଅମ୍ବର—କ୍ଲୀ·ବି· ଆକାଶ, ଅଭ୍ରକ, ବସ୍ତ୍ର, ଅଭ୍ରଧାତୁ, କାର୍ପାସ, ଓଷ୍ଠ,ପାପ, ମେଘ, ଅମ୍ବୁରିନାମକ ଗନ୍ଧଦ୍ରବ୍ୟ ।

ଅମ୍ବର—ଜୟପୁରର ପ୍ରାଚୀନ ରାଜଧାନୀ ।

ଅମ୍ବରଚର—ତ୍ରି· ବି· ( ଅମ୍ବର + ଚର୍ + କ ନଭଶ୍ଚର, ଗଗନବିହାରୀ, (ସ୍ତ୍ରୀ) ଅମ୍ବରଚରୀ ।

ଅମ୍ବରଚାରୀ—ପୁଂ·ବିଂ· ( ଅମ୍ବର + ଚର୍ + ଣ,ଇନ୍) ନଭଶ୍ଚର, ଆକାଶବିହାରୀ, (ସ୍ତ୍ରୀ) ଅମ୍ବରଚାରିଣୀ । [ କୁସୁମ ।

ଅମ୍ବରପୁଷ୍ପ—କ୍ଲୀ· ବି· (୬ତତ୍ରୁ) ଆକାଶ-

ଅମ୍ବରବିହାରୀ—ପୁଂ·ବିଂ·(୭ତତ୍ରୁ)ଗଗନବିହାରୀ, ଆକାଶଭ୍ରମଣକାରୀ(ସ୍ତ୍ରୀ)ଅମ୍ବରବିହାରିଣୀ ।

ଅମ୍ବରମଣି—ପୁଂ· ବି· (୭ତତ୍ରୁ) ସୂର୍ଯ୍ୟ ।

ଅମ୍ବରଯୁଗ—କ୍ଲୀ·ବି·(୬ତତ୍ରୁ)ବସ୍ତ୍ରଯୁଗଳ- ଏକଯୋଡ଼ା ଲୁଗା, ପିନ୍ଧା ଚଦର ।

ଅମ୍ବରଲେଖୀ—ପୁଂ·ବିଂ (ଅମ୍ବର + ଲିଖ୍ + କ,ଇନ୍ ) ଗଗନସ୍ପର୍ଶୀ, ଅଭ୍ରଂକଷ, (ସ୍ତ୍ରୀ) ଲେଖିନୀ ।

ଅମ୍ବରାନ୍ତ—ପୁଂ·ବି·(୬ତତ୍ରୁ) ଗଗନପ୍ରାନ୍ତ, ଚକ୍ରବାଳ, ଦିଗ୍‌ବଳୟ, ଅଞ୍ଚଳ, ବସ୍ତ୍ରପ୍ରାନ୍ତ ।

ଅମ୍ବରି(ରୀ)ଷ—ପୁଂ·କ୍ଲୀ·ବି· ସୂର୍ଯ୍ୟ, ବିଷ୍ଣୁ, ଶିବ,ଯୁଦ୍ଧ, କିଶୋର, ଅନୁତାପ,ନରକବିଶେଷ, ରାଜର୍ଷିବିଶେଷ, ନୃପବିଶେଷ, ଭଜାହାଣ୍ଡି, ବାଳକ, ଆକାଶ, ଆମ୍ବୁଡ଼ାଗଛ, ଗଣେଶ, ପୁଲହଙ୍କ ପୁତ୍ରବିଶେଷ ।

ଅମ୍ବରୌକାଃ—ପୁଂ·ବି·ଦେବତା,ଆକାଶ, ବଡ଼ ଉଚ୍ଚ, ମେରୁଶିଖରବାସୀ ।

ଅମ୍ବଷ୍ଠ—ପୁଂ·ବି· ବୈଶ୍ୟକନ୍ୟାର ଗର୍ଭେ ବ୍ରାହ୍ମଣଔରସଜାତ ସଙ୍କୀର୍ଣ୍ଣ ବର୍ଣ୍ଣବିଶେଷ, ବୈଦ୍ୟ, ମାହୁନ୍ତ, ଆମ୍ଳିତ ଶାଗ, ଯୂଇଗଛ, ଅକାନବିନ୍ଧ ।

ଅମ୍ବଷ୍ଠକୀ—ସ୍ତ୍ରୀ· ବି· ରୋଗବିନାଶିକା ଲତାବିଶେଷ ।

ଅମ୍ବଷ୍ଠା—ସ୍ତ୍ରୀ· ବି· ଆମ୍ବୃଡ଼ା, ଯୂଇଗଛ, ଅକାନବିନ୍ଧ ।

ଅମ୍ବଷ୍ଠିକା—ସ୍ତ୍ରୀ· ବି· ବ୍ରାହ୍ମଣଝୋଟ ।

ଅମ୍ବଷ୍ଠୀ—ସ୍ତ୍ରୀ· ବି· (ଅମ୍ବଷ୍ଠ + ଈ)ଅମ୍ବଷ୍ଠଜାତୀୟ ସ୍ତ୍ରୀ ।

ଅମ୍ବା—ସ୍ତ୍ରୀ· ବି· ( ଅମ୍ବ + ଆ ) ମାତା, ଦୁର୍ଗା, ଅପ୍‌ସରାବିଶେଷ ।

ଅମ୍ବାଲା—ସ୍ତ୍ରୀ· ବି· (ଅମ୍ବା + ଲା + ଅ) ମାତା, ପଞ୍ଜାବର ଅନ୍ତର୍ଗତ ଦେଶବିଶେଷ ।

ଅମ୍ବାଲିକା—ସ୍ତ୍ରୀ·ବି·(ଅମ୍ବାଲା + କ + ଆ) ବିଚିତ୍ରବୀର୍ଯ୍ୟଙ୍କ ସ୍ତ୍ରୀଙ୍କ ନାମ, ଦୁର୍ଗା, ଗୁଳୁଚୀ ଲତା ।

ଅମ୍ବିକା—ସ୍ତ୍ରୀ· ବି· ମାତା, ଦୁର୍ଗା, ଚିତ୍ରବୀର୍ଯ୍ୟଙ୍କ ସ୍ତ୍ରୀ, ଜୈନଦେବୀବିଶେଷ ।

ଅମ୍ବିକାନାଥ—ପୁଂ·ବି·(ଅମ୍ବିକା + ନାଥ) ଶିବ ।

ଅମ୍ବିକେୟ(ସ୍ତ୍ରୀ)—ପୁଂ· ବି· ଗଣେଶ, ଧୃତରାଷ୍ଟ୍ର, କାର୍ତ୍ତିକ, ଅମ୍ବିକାପୁତ୍ର ।

ଅମ୍ବୁ—କ୍ଲୀ·ବି·(ଅମ୍ବ + ଉ) ଜଳ, ବାଲାନାମକ ଔଷଧ, ଚାରିସଂଖ୍ୟା, ଲଗ୍ନର ଚତୁର୍ଥ ସ୍ଥାନ, ରସ, ପଙ୍କ ।

ଅମ୍ବୁକଣ(ଣା)—ପୁଂ·ବି·ଜଳକଣା,ଶୀକର, ମେଘ ଅସାର । [ସିଙ୍ଗଡ଼ା ।

ଅମ୍ବୁକଣ୍ଟକ—ପୁଂ· ବି· (୬ତତ୍ରୁ) କୁମ୍ଭୀର,

ଅମ୍ବୁକିରାତ—ପୁଂ·ବି· (୬ତତ୍ରୁ) କୁମ୍ଭୀର ।

ଅମ୍ବୁକୀଶ—ପୁଂ·ବି· (୬ତତ୍ରୁ) ଶିଶୁମାର, ଶୁଶୁକ, ଜଳଜନ୍ତୁବିଶେଷ ।

ଅମ୍ବୁକୂର୍ମ—ପୁଂ· ବି· ଶୁଶୁକ, ଶିଶୁମାର ।

ଅମ୍ବୁକେଶର—ପୁଂ· ବି· ଟାଭା, ଲେମ୍ବୁ ।

ଅମ୍ବୁକ୍ରିୟା—ସ୍ତ୍ରୀ· ବି· ତର୍ପଣ ।

ଅମ୍ବୁଘନ—ପୁଂ· ବି· ଜଳର କଠିନରୂପ, କୁଆପଥର, କରକା ।

ଅମ୍ବୁଚର—ତ୍ରି·ବିଂ· (ଅମ୍ବୁ + ଚର୍ + କ· ଅ) ଜଳଚର ।

ଅମ୍ବୁଭ୍ରମର—କ୍ଲୀ·ବି· (୬ତତ୍ରୁ) ଶୈବାଳ, ଶିଉଳି, ବୁରୁଝାଞ୍ଜି, ଚଙ୍ଗୁଡ଼ି ଦଳାଦ ।

ଅମ୍ବୁଚାରୀ—ପୁଂ.ବିଂ. ( ଅମ୍ବୁ + ଚର୍ + କ.ଇନ୍) ଜଳଚର, (ସ୍ତ୍ରୀ) ଅମ୍ବୁଚାରିଣୀ ।

ଅମ୍ବୁଜ—କ୍ଲୀ. ବି. ପଦ୍ମ, ସାରସ ପକ୍ଷୀ, ଚନ୍ଦ୍ର, କର୍ପୂର, ହିଜ୍ଜଳ ବୃକ୍ଷ, (ପୁଂ) ଶଙ୍ଖ, ବଜ୍ର, (ବିଂ) ଜଳଜାତ, (ସ୍ତ୍ରୀ) ଅମ୍ବୁଜା ।

ଅମ୍ବୁଜନ୍ମା—ପୁଂ. ବି.ଶଙ୍ଖ, ସାରସ ପକ୍ଷୀ, (କ୍ଲୀ) ପଦ୍ମ । [ବିଷ୍ଣୁ ।

ଅମ୍ବୁଜନାଭ—ପୁଂ,ବି.(ବ.ବ୍ରୀ)ପଦ୍ମନାଭ,

ଅମ୍ବୁଜନିଧି—ବି. (କ.ଧା) ପଦ୍ମରାଗମଣି ।

ଅମ୍ବୁଜନେତ୍ର—ବିଂ.ପୁଂ.(ବ.ବ୍ରୀ) ଅମ୍ବୁଜ, ପଦ୍ମପରି ସୁନ୍ଦର ଚକ୍ଷୁବିଶିଷ୍ଟ. (ସ୍ତ୍ରୀ) ଅମ୍ବୁଜନେତ୍ରା, ( ବି ) ବିଷ୍ଣୁଙ୍କର ନାମବିଶେଷ ।

ଅମ୍ବୁଜାକ୍ଷ—ପୁଂ.ବିଂ.(ବ.ବ୍ରୀ)ଅମ୍ବୁଜନେତ୍ର, (ସ୍ତ୍ରୀ) ଅମ୍ବୁଜାକ୍ଷୀ ।

ଅମ୍ବୁଜାସନ—ପୁଂ.ବି. (ବ.ବ୍ରୀ)ବ୍ରହ୍ମା,ସୂର୍ଯ୍ୟ, ପଦ୍ମାସନ, ଯୋଗାସନବିଶେଷ ।

ଅମ୍ବୁଜାସନା—ସ୍ତ୍ରୀ. ବି. ଲକ୍ଷ୍ମୀ ।

ଅମ୍ବୁଜିନୀ—ସ୍ତ୍ରୀ.ବି.(ଅମ୍ବୁଜ + ଇନ୍ + ଈ) ପଦ୍ମିନୀ ।

ଅମ୍ବୁତସ୍କର—ପୁଂ.ବି. (୬ତତ୍) ସୂର୍ଯ୍ୟ ।

ଅମ୍ବୁତାଳ—ପୁଂ.ବି. ଶୈବାଳ, ଶିଉଳି ।

ଅମ୍ବୁଦ—ପୁଂ. ବି. ( ଅମ୍ବୁ + ଦା + ଅ ) ମେଘ, ମୁଥା, ବାଦଲ, ମୁସ୍ତା, (ବିଂ) ଜଳଦାନକାରୀ, (ସ୍ତ୍ରୀ) ଅମ୍ବୁଦା ।

ଅମ୍ବୁଦାଗମ—ପୁଂ. ବି. (ବ.ବ୍ରୀ) ଜଳଦାଗମ, ବର୍ଷାକାଳ ।

ଅମ୍ବୁଦାନୀକ—ପୁଂ. ବି. କ୍ଲୀ. ( ୬ତତ୍. ) ମେଘସମୂହ, କାଦମ୍ବିନୀ ।

ଅମ୍ବୁଧର—ପୁଂ. ବି. ( ଅମ୍ବୁ + ଧୃ + ଅ ) ମେଘ, ମୁଥା, ଜଳଧର, ଅଭ୍ରଧାତୁ, ଜଳାଶୟ ।

ଅମ୍ବୁଧି—ପୁଂ. ବି. (ଅମ୍ବୁ + ଧା + କ.ଇ) ସମୁଦ୍ର,ଜଳପାତ୍ର, ଚାରିସଂଖ୍ୟା, ସାଗର ।

ଅମ୍ବୁଧିପ୍ରସବା—ସ୍ତ୍ରୀ. ବି. ଘିଅକୁଆଁରି ।

ଅମ୍ବୁଧିସ୍ରବା—ସ୍ତ୍ରୀ. ବି. ( ଅମ୍ବୁଧି + ସ୍ରୁ + କ,ଅ + ଆ) ଗୃହକନ୍ୟା, ଘୃତକୁମାରୀ ।

ଅମ୍ବୁନିଧି(ନାଥ)—ପୁଂ.ବି.ସମୁଦ୍ର,ଜଳଧି, ସାଗର ।

ଅମ୍ବୁପ—ପୁ.ବି.(ଅମ୍ବୁ + ପା + ଅ)ଜଳାଧିପ ବରୁଣ, ଚକ୍ରମର୍ଦ୍ଦ, ଶତଭିଷା ନକ୍ଷତ୍ର, (ବିଂ) ଯେ ଜଳପାନ କରେ, ( ସ୍ତ୍ରୀ ) ଅମ୍ବୁପା ।

ଅମ୍ବୁପତି—ପୁଂ.ବି.(୬ତତ୍) (ଅମ୍ବୁ + ପତି) ସମୁଦ୍ର, ବରୁଣ ।

ଅମ୍ବୁପତ୍ରା—ସ୍ତ୍ରୀ. ବି. ଉଚ୍ଚଟା ବୃକ୍ଷ ।

ଅମ୍ବୁପଦ୍ଧତି—ସ୍ତ୍ରୀ. ବି. ( ୬ତତ୍ ) ଜଳପ୍ରଣାଳୀ, ଜଳପ୍ରବାହ, ଜଳସୋତ ।

ଅମ୍ବୁପ୍ରସାଦ—କ୍ଲୀ.ବି. (ଅମ୍ବୁ + ପ୍ର + ସଦ + ଣିଚ୍.ଅ ) କତକ ଗଛ, ନିର୍ମଳୀ ଫଳ ।

ଅମ୍ବୁପାୟୀ—ପୁଂ.ବିଂ. (ଅମ୍ବୁ + ପା + କ. ଇନ୍) ଜଳପାନଶୀଳ(ସ୍ତ୍ରୀ) ଅମ୍ବୁପାୟିନୀ ।

ଅମ୍ବୁଭୃତ୍—ପୁଂ. ବି. ( ଅମ୍ବୁ + ଭୃ + କ. କ୍ୱିପ୍ ) ମେଘ, ମୁଥା, ସମୁଦ୍ର, ଘଟାଦି ଜଳପାତ୍ର, ଅଭ୍ର ।

ଅମ୍ବୁମାନ୍—ତ୍ରି.ବିଂ (ଅମ୍ବୁ + ମତ୍) ବହୁଜଳଯୁକ୍ତ ସ୍ଥାନ, (ସ୍ତ୍ରୀ) ଅମ୍ବୁମତୀ, ନଦୀବିଶେଷ ।

ଅମ୍ବୁମାତ୍ରଜ—ପୁଂ.ବି. (ଅମ୍ବୁମାତ୍ର + ଜନ୍ + କ.ଅ) ଶାମ୍ବୁକ, ଶାମୁକା ।

ଅମ୍ବୁମୁକ୍—ପୁଂ.ବି. (ଅମ୍ବୁ + ମୁଚ୍ + କ. କ୍ୱିପ୍ ) ମେଘ, ମୁଥା ।

ଅମ୍ବୁର—ପୁଂ. ବି. (ଅମ୍ବୁ + ରା + କ.ଅ) ଚଉକାଠର ତଳଖଣ୍ଡ ।

ଅମ୍ବୁରାଶି—ପୁଂ. ବି. (ବ.ବ୍ରୀ) ସମୁଦ୍ର, ଜଳରାଶି, ଜଳଧି ।

ଅମ୍ବୁରାଶିରସନା – ସ୍ତ୍ରୀ.ବି.(ବ.ବ୍ରୀ)ସମୁଦ୍ରମେଖଳା (ପୃଥ୍ୱୀ) ।

ଅମ୍ବୁରୁହ—କ୍ଲୀ.ବି. (ଅମ୍ବୁ + ରୁହ୍ + କ, ଅ)ପଦ୍ମ, ଯେ ଜଳରେ ଜନ୍ମେ, ଜଳଜ ।

ଅମ୍ବୁରୁହା—ସ୍ତ୍ରୀ. ବି. ( ଅମ୍ବୁ + ରୁହ୍ + କ.ଅ + ଆ) ସ୍ଥଳପଦ୍ମିନୀ ।

ଅମ୍ବୁରୁହିଣୀ—ସ୍ତ୍ରୀ.ବି. (ଅମ୍ବୁରୁହ୍ + ଇନ୍ + ଈ) ପଦ୍ମଲତା, ପଦ୍ମସମୂହ ।

ଅମ୍ବୁରୋହିଣୀ—ସ୍ତ୍ରୀ.ବି. (ଅମ୍ବୁ + ରୁହ୍ + କ.ଇନ୍ + ଈ) ନଳିନୀ, ପଦ୍ମ ।

ଅମ୍ବୁରୋହନ୍—କ୍ଲୀ.ବି.ସାରସପକ୍ଷୀ, ପଦ୍ମ ।

ଅମ୍ବୁବାଚୀ—ସ୍ତ୍ରୀ. ବି. ସୂର୍ଯ୍ୟ ବୃଷରାଶିର ପର ମିଥୁନରାଶିର ଆଦ୍ୟରେ ମୃଗଶିରାନକ୍ଷତ୍ରରେ ରହିବାର ଦଶଦିନର ନାମ, ତିଥିଘଟିତ ଯୋଗ ।

ଅମ୍ବୁବାଚି—ସ୍ତ୍ରୀ. ବି. ( ଅମ୍ବୁ + ବଚ୍ ) ବର୍ଷାକାଳବୋଧକ, ରଜସଂକ୍ରାନ୍ତି ।

ଅମ୍ବୁବାସୀ—ପୁଂ. ବି. ( ଅମ୍ବୁ + ବସ୍ + କ, ଇନ୍)ପାଟଳିବୃକ୍ଷ,(ବିଂ) ଜଳବାସୀମାତ୍ର, (ସ୍ତ୍ରୀ) ଅମ୍ବୁବାସିନୀ ।

ଅମ୍ବୁବାହ—ପୁଂ.ବି. (ଅମ୍ବୁ + ବହ୍ + କ, ଅ) ମେଘ, ମୁଥା, ଅଭ୍ରଧାତୁ, (ବିଂ) ଜଳବହନକାରୀ, (ସ୍ତ୍ରୀ) ଅମ୍ବୁବାହୀ ।

ଅମ୍ବୁବାହୀ—ପୁଂ.ବି. ମେଘ, ମୁଥା, (ବିଂ) ଜଳପାତ୍ର, ଜଳବହନକାରୀ ।

ଅମ୍ବୁବାହିନୀ—ସ୍ତ୍ରୀ. ବି. ଦ୍ରୋଣୀ, ଶସ୍ୟକ୍ଷେତ୍ରରେ ଜଳଦେବାର ପାତ୍ରବିଶେଷ, ଜଳସେଚନୀ, ସେଣା (ବିଂ) ଜଳବହନକାରିଣୀ, ପାଣିବୁହାଳୀ । [ସନ୍ତରଣାଦି ।

ଅମ୍ବୁବିହାର—ପୁଂ. ବି. ଜଳକ୍ରୀଡ଼ା,

ଅମ୍ବୁବିସ୍ରବା—ସ୍ତ୍ରୀ.ବି. (ଅମ୍ବୁ + ବି + ସ୍ରୁ + ଅ) ଘୃତକୁମାରୀ,ଘିଅକୁଆଁରି ।

ଅମ୍ବୁବେତସ—ପୁଂ. ବି. (କ.ଧା) ଜଳବେତସ, ପାଣିବେଙ୍ଗୁନିଆ, ପାଣିବେତ ।

ଅମ୍ବୁଶାୟୀ—ପୁଂ.ବି. ( ଅମ୍ବୁ + ଶୀ + କ, ଇନ୍) ଜଳଶାୟୀ, ବିଷ୍ଣୁ ।

ଅମ୍ବୁଶିରୀଷିକା—ସ୍ତ୍ରୀ. ବି. ଜଳଶିରୀଷ ।

ଅମ୍ବୁସଂରୋଧ—ପୁଂ.ବି. ସମୁଦ୍ର ।

ଅମ୍ବୁସରଣ—କ୍ଲୀ. ବି. (ଅମ୍ବୁ + ସୃ + ଣ, ଅନ) ଜଳପ୍ରବାହ ।

ଅମ୍ବୁସର୍ପିଣୀ—ସ୍ତ୍ରୀ.ବି (ଅମ୍ବୁ + ସୃପ୍ + କ, ଇନ୍ + ଈ) ଜଳୌକା, ଜୋକ ।

ଅମ୍ବୁସେଚନୀ—ସ୍ତ୍ରୀ. ବି. ଡଙ୍ଗାରୁ ପାଣି ଛେଚିଦେଇବାର କାଷ୍ଠମୟ ପାତ୍ରବିଶେଷ, ସେଣା ।

ଅମ୍ବୁକୃତ—କ୍ଲୀ. ବିଂ. (ଅମ୍ବୁ + କୃ + ର୍ତ୍ତ, ତ) ନିଷ୍ଠୀବନଯୁକ୍ତ ( ବାକ୍ୟ ), କହୁକହୁ ଛେପ ବାହାର ପଡୁଥିବା ।

ଅମ୍ବୃଣ—ପୁଂ ବି. ମହତ୍, ଭୟଙ୍କର ଶବ୍ଦକାରକ ।

ଅମ୍ବ୍ଳ—ପୁଂ.ବି.(ଅମ୍ବ + ଲ)ଅମ୍ଳରସ,ଟକ୍ ।

ଅମ୍ବୁ—କ୍ଲୀ. ବି. ଜଳ ।
ଅମ୍ଭଃ—(ଅମ୍ + ଭସ୍ + କ, କ୍ୱିପ୍)ଜଳ, ଗୁରୁସଂଖ୍ୟା, ବେଦ, ମେଘ, ଆକାଶ, ପିତୃଲୋକ, ଅସୁର ।
ଅମ୍ଭଃପତି—ପୁଂ.ବି. (୬ତତ୍ପୁ) ବରୁଣ ।
ଅମ୍ଭଃସରଣ—କ୍ଲୀ.ବି.(୬ତତ୍ପୁ) ଜଳସ୍ରୋତ, ଜଳପ୍ରବାହ । [ମୋତି ।
ଅମ୍ଭଃସର—କ୍ଲୀ. ବି. (୬ତତ୍ପୁ) ମୁକ୍ତା,
ଅମ୍ଭଃସୂ—ପୁଂବି.(ଅମ୍ଭସ୍ + ସୂ + କ.କ୍ୱିପ୍) ଧୂଆଁ, ଜଳୀୟବାଷ୍ପ, ବାମ୍ପ ।
ଅମ୍ଭାଳି—ଗ୍ରା. ପୁଂ. ବି. (ଅମ୍ଭ + ଆଳି) ଜଳରାଶି, ସମୁଦ୍ର ।
ଅମ୍ଭୋଜନ୍ମ—କ୍ଲୀ. ବି. ପଦ୍ମ, କମଳ ।
ଅମ୍ଭୋଜ—କ୍ଲୀ.ବି.(ଅମ୍ଭଃ + ଜନ୍ + କ.ଅ) ପଦ୍ମ, ସାରସପକ୍ଷୀ(ପୁଂ) କର୍ପୂର, ଶଙ୍ଖ, ଚନ୍ଦ୍ର, ବକବିଶେଷ ।
ଅମ୍ଭୋଜଜନ୍ମା—ପୁଂ. ବି. ବ୍ରହ୍ମା ।
ଅମ୍ଭୋଜନ୍ମଜନି—ପୁଂ.ବି. (ବ.ବ୍ରୀ)ବ୍ରହ୍ମା ।
ଅମ୍ଭୋଜଯୋନି—ପୁଂ.ବି.(ବ.ବ୍ରୀ) ବ୍ରହ୍ମା, ପଦ୍ମଯୋନି ।
ଅମ୍ଭୋଜିନୀ—ସ୍ତ୍ରୀ.ବି. (ଅମ୍ଭୋଜ + ଇନ୍ + ଈ)ପଦ୍ମସମୂହ, ପଦ୍ମଲତା, କମଳିନୀ ।
ଅମ୍ଭୋଦ—ପୁଂ.ବି.(ଅମ୍ଭସ୍ + ଦା + କ.ଅ) ମେଘ, ମୁଥା, ଅଭ୍ର(ବିଂ)ଜଳଦାନକର୍ତ୍ତା
ଅମ୍ଭୋଦାମିନୀ—ଗ୍ରା. ବିଂ. ବଡ଼ ଦାଡ଼ା ।
ଅମ୍ଭୋଧର—ପୁଂ. ବି. (୬ତତ୍ପୁ) ମେଘ, ମୁଥା, ସମୁଦ୍ର ।
ଅମ୍ଭୋଧି—ପୁଂ.ବି.(ଅମ୍ଭସ୍ + ଧା + କ.ଇ) ସମୁଦ୍ର, ଜଳନିଧି ।
ଅମ୍ଭୋଧିବଲ୍ଲଭ—ପୁଂ.ବି.(ବ.ବ୍ରୀ)ପ୍ରବାଳ, ପୋହଳା ।
ଅମ୍ଭୋନିଧି—ପୁଂ.ବି.(୬ତତ୍ପୁ)ସମୁଦ୍ର ।
ଅମ୍ଭୋରାଶି—ପୁଂ.ବି.(୬ତତ୍ପୁ)ସମୁଦ୍ର ।
ଅମ୍ଭୋରୁହ—କ୍ଲୀ.ବି.(ଅମ୍ଭସ୍ + ରୁହ୍ + କ, ଅ) ପଦ୍ମ,ସାରସପକ୍ଷୀ, (ବିଂ) ଜଳଜାତ ମାତ୍ର, (ସ୍ତ୍ରୀ) ଅମ୍ଭୋରୁହା ।
ଅମ୍ବରସ—ଗ୍ରା. ବି. ଦେହତମାମ ଧଳା ଓ କଣ୍ଠ କଳାହୋଇଥିବା ପାରା ।

ଅମ୍ୟକ୍—(ଅବ୍ୟ) ସହଭୂତା ।
ଅମ୍ର—ପୁଂ.ବି.ଆମ୍ରବୃକ୍ଷ, ଆମ୍ବଗଛ, ଆମ୍ବ, (କ୍ଲୀ) ଆମ୍ବଫଳ । [ଗଛ ।
ଅମ୍ରାତ(କ),ଅମ୍ଳାତ—ପୁଂ. ବି. ଆମ୍ବଡ଼ା-
ଅମ୍ଳ—କ୍ଲୀ.ବି. ତକ୍ର, ଘୋଳଦହି, ଆମ୍ବିଳ, (ବିଂ) ଅମ୍ଳରସଯୁକ୍ତ । [ଲକୁଚ ।
ଅମ୍ଳକ—ପୁଂ. ବି. ମନ୍ଦାରବୃକ୍ଷ, କେଉଁଠ,
ଅମ୍ଳକାଣ୍ଡ—କ୍ଲୀ. ବି. (କ.ଧା)ଲବଣତୃଣ, ଅମ୍ଳନାଶକ କାଣ୍ଡ ।
ଅମ୍ଳକେଶର—ପୁଂ.ବି. (ବ.ବ୍ରୀ)ବୀଜପୂର, ମାରୁଲୁଙ୍ଗ, ଟଭା, ଲେମ୍ବୁ ।
ଅମ୍ଳଗୋରସ—ପୁଂ. ବି. (କ.ଧା) ତକ୍ର, ଘୋଳ ।
ଅମ୍ଳଚୂକ୍ରିକା—ସ୍ତ୍ରୀ. ବି.(କ.ଧା) ଅମ୍ଳଶାକ, ଖଟା ପାଳଙ୍ଗ ।
ଅମ୍ଳଚୂଡ଼—ପୁଂ.ବି. (ବ.ବ୍ରୀ) ଅମ୍ଳଶାକ, ଖଟାପାଳଙ୍ଗ ।
ଅମ୍ଳଜନକ—ତ୍ରି. ବିଂ. ଅମ୍ଳୋତ୍ପାଦକ, (ସ୍ତ୍ରୀ) ଅମ୍ଳଜନକା (ବି) ଅମ୍ଳଜାନ-ବାଷ୍ପ । [ଜମ୍ବିଲ ।
ଅମ୍ଳଜମ୍ବୀର—ପୁଂ. ବି. ଜମ୍ବିଲ ବୃକ୍ଷ,
ଅମ୍ଳଜାନ—ବର୍ଣ୍ଣ ଓ ଆକାରହୀନ ବାଷ୍ପ-ବିଶେଷ ।
ଅମ୍ଳନାୟକ—ପୁଂ.ବି. ଅମ୍ଳବେତସ ।
ଅମ୍ଳନିଶା—ସ୍ତ୍ରୀ. ବି. ଶୁଣ୍ଠିଗଛ, ଅମ୍ଳ-ହରିଦ୍ରା, ଅମ୍ଳ ହଳଦୀ ।
ଅମ୍ଳପଞ୍ଚଫଳ—କ୍ଲୀ. ବି. (କ.ଧା.) ପଞ୍ଚ-ପ୍ରକାର ଅମ୍ଳଫଳବିଶେଷ, ଯଥା— ଡାଳିମ୍ବ, ତେନ୍ତୁଳୀ, ଜମ୍ବୀର, ଲେମ୍ବୁ, ଟଭା, ଖଟାପାଳଙ୍ଗ, ଅମ୍ଳବେତସ ।
ଅମ୍ଳପତ୍ର—ପୁଂ.ବି. ଅଶ୍ମାନ୍ତକ ବୃକ୍ଷ ।
ଅମ୍ଳପତ୍ରୀ—ସ୍ତ୍ରୀ.ବି. ପଳାଶୀ ଲତା ।
ଅମ୍ଳପନସ—ପୁଂ. ବି. (କ.ଧା) କେଉଁଠ, ଲକୁଚ ।
ଅମ୍ଳପିତ୍ତ—କ୍ଲୀ.ବି. (କ.ଧା) ଅଜୀର୍ଣ୍ଣରୋଗ-ବିଶେଷ ।
ଅମ୍ଳପର—ବିଂ ତନ୍ତୁଳିବୃକ୍ଷ ଓ ଫଳ ।

ଅମ୍ଳଫଳ—କ୍ଲୀ.ବି.(ବ.ବ୍ରୀ) ତନ୍ତୁଳିଗଛ, ତେନ୍ତୁଳୀ ।
ଅମ୍ଳବନ୍ଧ୍ୟା—ବି. ଅମ୍ଳରସ, କନ୍ଦ ।
ଅମ୍ଳଭେଦନ—ପୁଂ.ବି. ଅମ୍ଳବେତସ ।
ଅମ୍ଳମଧୁ—କ୍ଲୀ. ବି ଗୁଡ଼ମିଶା ଖଟା ।
ଅମ୍ଳରସ—ପୁଂ.ବି.ଆମ୍ବିଳରସ,ଖଟାରସ ।
ଅମ୍ଳବଷ୍ଟା—ସ୍ତ୍ରୀ.ବି. (ଅମ୍ଳ + ବଷ୍ଟ + ଈ) ଆମ୍ବିଳି ଶାଗ ।
ଅମ୍ଳବର୍ଗ—ପୁଂ.ବି. (୬ତତ୍ପୁ) ଅମ୍ଳରସ-ପ୍ରଧାନ ଦ୍ରବ୍ୟ(ବିଶେଷ)ସମୂହ, ଡାଳିମ୍ବ, ଅଁଳା,ମାରୁଲୁଙ୍ଗ, କଇଥ ,କରମଙ୍ଗା, କୋଳି, ତନ୍ତୁଳି, ଟଭା, ନାରଙ୍ଗ, କେଉଁଠ (ଅମ୍ଳବେତସ) ଆମ୍ବିତ, ଦହି, ଘୋଳଦହି, ସୁରା, ସୌବୀରକ, ତୁଷୋ-ଦକ, ଖଟାପାଳଙ୍ଗ, ଧାନ୍ୟାମ୍ଳ, ଲେମ୍ବୁ, କାଞ୍ଜିଆ ।
ଅମ୍ଳବଲ୍ଲୀ—ସ୍ତ୍ରୀ. ବି. ତ୍ରିପର୍ଣ୍ଣିକାନାମକ ମୂଳବିଶେଷ ।
ଅମ୍ଳବାଟକ—ପୁଂ. ବି. (ଅମ୍ଳ + ବଟ୍ + କ.ଅକ) ଆମ୍ବଡ଼ା ।
ଅମ୍ଳବାଟିକା—ସ୍ତ୍ରୀ.ବି.ନାଗବଲ୍ଲୀ, ପାନ ।
ଅମ୍ଳବାସ୍ତୁକ—ପୁଂ.ବି.ଖଟାପାଳଙ୍ଗ, ଅମ୍ଳ-ବେତସ । [କଇଁଆ ।
ଅମ୍ଳବୀଜ—କ୍ଲୀ. ବି. ତେନ୍ତୁଳି, (ଗ୍ରା)
ଅମ୍ଳବୃକ୍ଷ—କ୍ଲୀ. ବି. (କ.ଧା) ତେନ୍ତୁଳି, ତେନ୍ତୁଳିଗଛ ।
ଅମ୍ଳବେତସ—ପୁଂ. ବି. ଖଟାପାଳଙ୍ଗ ।
ଅମ୍ଳଶାକ—ପୁଂ.ବି. ଆମ୍ବିଳିଶାକ,ଖଟା-ପାଳଙ୍ଗ । [କାଞ୍ଜି ।
ଅମ୍ଳସାର—ପୁଂ.ବି. ଲେମ୍ବୁ, ଖଟାପାଳଙ୍ଗ,
ଅମ୍ଳହରିଦ୍ରା—ସ୍ତ୍ରୀ. ବି. (କ.ଧା) ଅମ୍ଳ-ରସାଧିକ ହଳଦ,ଆମ୍ବଅଦା,ଆମ୍ବହଳଦୀ ।
ଅମ୍ଳା—ସ୍ତ୍ରୀ.ବି.ତନ୍ତୁଡ଼ି,ତନ୍ତୁଳି,କଇଁଆ ।
ଅମ୍ଳାକ୍ତ—ତ୍ରି. ବିଂ. (୬ତତ୍ପୁ) ଅମ୍ଳଯୁକ୍ତ, ଆମ୍ବିଳ, ଟକ୍ ।
ଅମ୍ଳାଙ୍କୁଶ—ପୁଂ.ବିଂ. ଖଟାପାଳଙ୍ଗ ।
ଅମ୍ଳାଦନ—ପୁଂ.ବି.କୁରୁଣ୍ଟକବୃକ୍ଷ, ଦାଣ-କେରେଣ୍ଡା ଗଛ ।

ଅମ୍ଲାନ—ପୁଂ.ବି. ମହାସହା, ଅଁଲେଇ ଫୁଲ, (କ୍ଲୀ) ପଦ୍ମ (ବିଂ) ମ୍ଳାନ ନୁହେ, ଆନନ୍ଦିତ, ପ୍ରଫୁଲ୍ଲ, ସତେଜ,ହୃଷ୍ଟ, (ସ୍ତ୍ରୀ) ଅମ୍ଲାନା ।

ଅମ୍ଲାନକୁସୁମ—କ୍ଲୀ.ବି. ଯେଉଁ ଫୁଲ କେବେହେଁ ମଉଳେ ନାହିଁ (ଲାକ୍ଷଣିକ) ପରମାସୁନ୍ଦରୀ ଯୁବତୀକୁ କବିମାନେ ଅମ୍ଲାନ କୁସୁମବୋଲି କହିଅଛନ୍ତି ।

ଅମ୍ଲାନବଦନରେ—କ୍ରି. ବି. ହୃଷ୍ଟ-ମୁଖରେ,ପ୍ରଫୁଲ୍ଲିତହୋଇ,ଦ୍ୱିଧା ନକରି ।

ଅମ୍ଲାନମୁଖ—ବି.ବିଂ. (ବ.ବ୍ରୀ) ପ୍ରଫୁଲ୍ଲ-ମୁଖ, ଯାହାର ମୁଖ ମ୍ଳାନ ନୁହେଁ (ସ୍ତ୍ରୀ) ଅମ୍ଲାନମୁଖୀ ।

ଅମ୍ଲାନନୀ—ପଦ୍ମସମୂହ ।

ଅମ୍ଳିକା—ସ୍ତ୍ରୀ.ବି. ତିନ୍ତିଡ଼ି, ତେନ୍ତୁଳି, ତେନ୍ତୁଳିଗଛ, ପଲାଶୀଲତା ।

ଅମ୍ଳୀ—ସ୍ତ୍ରୀ. ବି. ତେନ୍ତୁଳିଫଳ ଓ ଗଛ ।

ଅମ୍ଲୋଟକ—ପୁଂ. ବି. ଖଟାପାଳଙ୍ଗ ।

ଅମ୍ଲୋଦ୍‌ଗାର—ପୁଂ. ବି. ଅଜୀର୍ଣ୍ଣଜନିତ ଆମ୍ବିଳିଆ ଢେକୁଟି ।

ଅମ୍ବୁଣିଆ—ବି. ଠାକୁରଙ୍କ ନିମିତ୍ତ ରଖା-ହୋଇଥିବା ଭୋଗଦ୍ରବ୍ୟାଦି ।

ଅୟ—ପୁଂ.ବି.(ଅ + ଇ + ଅ) ଶୁଭଦାୟକ ଦୈବ, ବ୍ୟବସାୟର ଲାଭ, ଶୁଭାଦୃଷ୍ଟ, ପଶାର ଦାନବିଶେଷ, ନରକବିଶେଷ ।

ଅୟଃ—କ୍ଲୀ. ବି. ଲୁହା,ଇସ୍ପାତ୍,ଲୌହ-ନିର୍ମିତ ଦ୍ରବ୍ୟ ।

ଅୟଃପାନ—କ୍ଲୀ. ବି. ନରକବିଶେଷ ।

ଅୟଃପିଣ୍ଡ—ପୁଂ. ବି. (୬ତତ୍ପୁ) ଲୌହ, ଲୁହାର ଗୁଳା ।

ଅୟଃପ୍ରତିମା—ସ୍ତ୍ରୀ. ବି. ଲୌହପ୍ରତିମା ।

ଅୟଃଶୂଳ—କ୍ଲୀ. ବି. ଲୌହନିର୍ମିତ ତୀକ୍ଷଣାସ୍ତ୍ରବିଶେଷ ।

ଅଯକ୍ଷ୍ମା—ବି.(ଅ + ଯକ୍ଷ୍ମା)ବ.ବ୍ରୀ.-ନୀରୋଗ, ନିରୁପଦ୍ରବ୍ୟ ।

ଅଯଜ୍ଞ—ବି. ବିଂ. (ବ.ବ୍ରୀ) ଅକୃତଯଜ୍ଞ, ଯେ ଯଜ୍ଞ କରେ ନାହିଁ, ଅନାର୍ଯ୍ୟ ।

ଅଯଜ୍ଞୀୟ—ବି.ବିଂ. (ନ.ତତ୍ପୁ) ଯଜ୍ଞରେ ଦେବାର ଅଯୋଗ୍ୟ, ଯାହା ଯଜ୍ଞ-ସମ୍ବନ୍ଧୀୟ ନୁହେ, ଅପବିତ୍ର ।

ଅଯଜନୀୟ—ବିଂ. (ଅ + ଯଜନୀୟ) ଯେ ଯଜ୍ଞାଦିରେ ପୂଜା ପାଇବାର ଅଯୋଗ୍ୟ, ଅପୂଜ୍ୟ, ନିନ୍ଦ୍ୟ, (ସ୍ତ୍ରୀ) ଅଯଜନୀୟା ।

ଅଯଜ୍ୟୁ—ବି. ବିଂ. ଯାଗକର୍ତ୍ତା ନୁହେ, ଅଧ୍ୱର୍ଯ୍ୟୁ ନୁହେ ।

ଅଯଜ୍ୱା—ପୁଂ.ବି. ଅକୃତଯଜ୍ଞ, ଯେ ଯଜ୍ଞ କରେ ନାହିଁ ।

ଅଯତ—ବି.ବିଂ.ନିୟମହୀନ,ଯେ ଇନ୍ଦ୍ରିୟ-ଦମନ କରି ନ ପାରେ, ଅଜିତେନ୍ଦ୍ରିୟ ।

ଅଯତ୍ନ—ପୁଂ.ବି.(ନ.ତତ୍ପୁ)ଯତ୍ନର ଅଭାବ, ଅନାଦର, ଅନାସ୍ଥା,(ବିଂ) ଯତ୍ନଶୂନ୍ୟ, ଯାହାର ଯତ୍ନ ନାହିଁ ।

ଅଯତ୍ନସିଦ୍ଧ—ବିଂ. (ଅ + ଯତ୍ନସିଦ୍ଧ)ଅନା-ୟାସସିଦ୍ଧ,ବିନାପରିଶ୍ରମରେ ସମ୍ପାଦିତ ।

ଅଯତ୍ନକୃତ—ବି. ବିଂ. (ନ.ତତ୍ପୁ) ବିନା-ଚେଷ୍ଟାରେ ସମ୍ପାଦିତ, ଅନାୟାସ ସମ୍ପନ୍ନ, (ସ୍ତ୍ରୀ) ଅଯତ୍ନକୃତା ।

ଅଯତ୍ନଲଭ୍ୟ—ବି.ବିଂ.(ନ.ତତ୍ପୁ) ସୁଲଭ, ଅନାୟାସପ୍ରାପ୍ୟ ।

ଅଯତ୍ନସମ୍ଭୂତ—ବି.ବିଂ. (" ତତ୍ପୁ) ବିନା-ଯତ୍ନରେ ଜାତ,ଅନାୟାସସିଦ୍ଧ,ସ୍ୱଭାବଜ ।

ଅଯତି—ପୁଂ. ବିଂ. କାମୁକ, ଯତ୍ନରହିତ, ଅଜିତେନ୍ଦ୍ରିୟ, (ସ୍ତ୍ରୀ) ଅଯତିନୀ ।

ଅଯତେନ୍ଦ୍ରିୟ—ପୁଂ. ବିଂ. (ବ.ବ୍ରୀ) ଯେ ଇନ୍ଦ୍ରିୟସଂଯମ କରେନାହିଁ,ଇନ୍ଦ୍ରିୟାସକ୍ତ ।

ଅଯଥା—(ଅବ୍ୟ) ବିଶୃଙ୍ଖଳରୂପେ,ଅନୁପ-ଯୁକ୍ତରୂପେ, ଅମୂଳକ, ଅଯୋଗ୍ୟ ।

ଅଯଥା—ବିଂ. (ଅ + ଯଥା) ଅଯୌକ୍ତିକ, ଅନୁପଯୁକ୍ତ, ଅନ୍ୟାୟ,ଅତ୍ୟଧିକ,ମିଥ୍ୟା, ଅନୁଚିତ, ଅପ୍ରାମାଣିକ,ଅସଙ୍ଗତ ।

ଅଯଥାକୃତ—ବି.ବିଂ. (ନ.ତତ୍ପୁ) ଅଯୋଗ୍ୟ ଭାବରେ ସମ୍ପାଦିତ ।

ଅଯଥାତଥା—ବି.ବିଂ.ବ.ବ୍ରୀ. (ଅ + ଯଥା-ତଥା) ଅନୁପଯୁକ୍ତ, ଅଯଥା, ବିପରୀତ, ଅମୂଳକ ।

ଅଯଥାର୍ଥ—ବି.ବିଂ.(ନ.ତତ୍ପୁ) ମିଥ୍ୟାଭୂତ, ଯାହା ଯଥାର୍ଥ ନୁହେ, (ସ୍ତ୍ରୀ) ଅଯଥାର୍ଥା ।

ଅଯଥାଭୂତ—ବି. ବିଂ. (ନ.ତତ୍ପୁ)ଅସତ୍ୟ, ସ୍ଥାନ ବା ବୃଦ୍ଧିବିଶିଷ୍ଟ, ଯେପରି ହେବା ଉଚିତ ସେପରି ନୁହେ ।

ଅଯଥାବତ୍—(ଅବ୍ୟ)ଅନନୁରୂପ, ଯଥୋ-ଚିତ ନୁହେ ।

ଅଯଥେଷ୍ଟ—(ଅବ୍ୟ) ଇଚ୍ଛାନୁରୂପ ନୁହେ, (ବିଂ) ଅଳ୍ପ, ନଅଣ୍ଟ, ଊଣା ।

ଅୟନ—କ୍ଲୀ. ବି. ( ଅୟ + ଇ + ଅନ) ଗମନ, ପଥ, ମାର୍ଗ, ବର୍ତ୍ମ, ଆଶ୍ରମ-ସ୍ଥାନ, ଶାସ୍ତ୍ର, ସୂର୍ଯ୍ୟଙ୍କର ଉତ୍ତର ଦକ୍ଷିଣ-ଗମନ ।

ଅୟନକାଳ—ପୁଂ.ବି.(୬ତତ୍ପୁ) ଅୟନାଂଶ-ସ୍ଥିତିକାଳ, ଉତ୍ତରାୟଣ ଓ ଦକ୍ଷିଣା-ୟନର ମଧ୍ୟବର୍ତ୍ତୀ ସମୟ ।

ଅୟନଚଳନ—କ୍ଲୀ.ବି.(୬ତତ୍ପୁ) ଅୟନାଂ-ଶର ସ୍ଥାନାନ୍ତର ଚଳନ ।

ଅୟନଜ—ପୁଂ. ବି. ଅୟନାଂଶଜାତ ମାସାଦି ।

ଅୟନଭାଗ—ପୁଂ. ବି. ଅୟନାଂଶ ।

ଅୟନମଣ୍ଡଳ—କ୍ଲୀ. ବି. ରାଶିଚକ୍ର, ରାଶି-ଚକ୍ରସ୍ଥ ସୂର୍ଯ୍ୟଗମନପଥ ।

ଅୟନମାସ—ପୁଂ.ବି.ଅୟନାଂଶାନୁସାରେ ଦିନମାନାଦିଜ୍ଞାନାର୍ଥ କଳ୍ପିତ ମାସ ।

ଅୟନବିନ୍ଦୁ—ପୁଂ. ବି. ଅୟନମଣ୍ଡଳର ଯେ ବିନ୍ଦୁ ବିଷୁବରେଖାରୁ ଚରମ-ଦୂରବର୍ତ୍ତୀ ।

ଅୟନସଙ୍କ୍ରମ—ପୁଂ.ବି.(୬ତତ୍ପୁ)ମେଷାଦି-ରାଶିର ଅୟନାଂଶରେ ଗ୍ରହମାନଙ୍କର ସଞ୍ଚାର ।

ଅୟନସଂକ୍ରାନ୍ତି—ସ୍ତ୍ରୀ.ବି. କର୍କଟ-ସଂକ୍ରାନ୍ତି, ମକର ସଂକ୍ରାନ୍ତି । [ ଭାଗ ।

ଅୟନାଂଶ—ପୁଂ.ବି. ସୂର୍ଯ୍ୟଗତିବିଶେଷର

ଅୟନାନ୍ତ—ପୁଂ.ବି. (୬ତତ୍ପୁ) ସୂର୍ଯ୍ୟଙ୍କର ଉତ୍ତର ବା ଦକ୍ଷିଣଦିଗରେ ଗମନର ଶେଷସୀମା ।

ଅୟନାନ୍ତବୃତ୍ତ—କ୍ଲୀ. ବି. ସୂର୍ଯ୍ୟଙ୍କ ଉତ୍ତର ଦକ୍ଷିଣଗତିର ସୀମାନିରୂପକ ରେଖା ।

ଅଯନ୍ତ୍ରିତ—ବି. ବିଂ.(ନ.ତତ୍ପୁ)ଅନିୟମିତ, ସ୍ୱେଚ୍ଛାଗ୍ରସ୍ତ, ଶାସ୍ତ୍ରାଗ୍ରହରହିତ, ଅବାଧ୍ୟ, ଅବ୍ୟାହତ,ଅନର୍ଗଳ, (ସ୍ତ୍ରୀ) ଅଯନ୍ତ୍ରିତା ।

ଅଯବ—ପୁଂ.ବ. ରକ୍ତାଜାତ କୃମିବିଶେଷ, ପିତୃକର୍ମ, ଶୁକ୍ଳ, କୃଷ୍ଣପକ୍ଷ, ଯବସଦୃଶ ।
ଅଯଶଃ—କ୍ଳୀ. ବ. (ନ. ତତ୍ପୁ) ଅଯଶ, ଅକୀର୍ତ୍ତି, ବଦନାମ, ନିନ୍ଦା, ଅଖ୍ୟାତି ।
ଅଯଶସ୍କର—ତ୍ରି. ବିଂ. (ଅଯଶସ୍ + କୃ + କ.ଅ ) ଅକୀର୍ତ୍ତିକର, ଲୋକନିନ୍ଦିତ, ନିନ୍ଦ୍ୟ, ଗର୍ହିତ (ସ୍ତ୍ରୀ) ଅଯଶସ୍କରୀ ।
ଅଯଶସ୍ୟ—ତ୍ରି.ବିଂ. (ନ.ତତ୍ପୁ) ଅପବାଦଜନକ, ଯାହାଯୋଗୁଁ ମନୁଷ୍ୟର ବଦନାମ ହୁଏ ।
ଅଯଶସ୍ୱୀ—ପୁଂ.ବ.(ନ.ତତ୍ପୁ)ଅକୀର୍ତ୍ତିମାନ୍, କୀର୍ତ୍ତିହୀନ, ଅବଖ୍ୟାତ, ଅପ୍ରସିଦ୍ଧ, (ସ୍ତ୍ରୀ) ଅଯଶସ୍ୱିନୀ ।
ଅୟସ୍—କ୍ଳୀ.ବ. ଲୌହ, ଲୁହା, ନଆଁ, ଚୁମ୍ବକ, ହିରଣ୍ୟ, ସ୍ୱର୍ଣ୍ଣ,ଗମନ, ଲୌହନିର୍ମିତ ଦ୍ରବ୍ୟ, କଡ଼ାଇ, ଅଗୁରୁ ।
ଅୟସ୍କଂସ—ପୁଂ ଓ କ୍ଳୀ.ବ. ଲୌହନିର୍ମିତ ପାନପାତ୍ର ।
ଅୟସ୍କର୍ଣ୍ଣୀ—ସ୍ତ୍ରୀ. ବ. ଲୁହାପରି କଠିନକର୍ଣ୍ଣଯୁକ୍ତା ସ୍ତ୍ରୀ ।
ଅୟସ୍କାନ୍ତ—ପୁଂ. ବ. ଚୁମ୍ବକପଥର, ଲୌହାକର୍ଷକ ମଣି,ଟଳାଲୁହା, କାନ୍ତଲୁହା ।
ଅୟସ୍କାମ—ତ୍ରି. ବ. ଲୌହାଭିଳାଷୀ, ଯେ ଲୌହ ପାଇବାକୁ ଇଚ୍ଛା କରେ ।
ଅୟସ୍କାର—ପୁଂ.ବ. (ଅୟସ୍ + କୃ + କ, ଅ) ଯେ ଲୁହାକାମ କରେ, କମାର, ଜଙ୍ଘର ଊର୍ଦ୍ଧ୍ୱଭାଗ ।
ଅୟସ୍କୁମ୍ଭ—ପୁଂ.ବ.(କ.ଧା)ଲୁହାର ଗରା, ଲୁହାର ଘଟ ।
ଅୟସ୍କୁଶା—ସ୍ତ୍ରୀ.ବ.ଲୁହାର ବାଗ,ଲୌହସହିତ ବନ୍ଧ ।                [ବିଶେଷ ।
ଅଦ୍ୟସ୍କୃତି—ସ୍ତ୍ରୀ.ବ. ମହାକୁଷ୍ଠର ଚିକିତ୍ସା-
ଅୟସ୍ଥୂଣା—ସ୍ତ୍ରୀ. ବ. ଲୌହମୟ ଗୃହସ୍ତମ୍ଭ, ଲୁହାଖୁମ୍ବ, ଲୌହପ୍ରତିମା ।
ଅୟସ୍ପାତ୍ର—କ୍ଳୀ.ବ. ଲୌହମୟ ପାତ୍ର ।
ଅୟସ୍ମୟ—ତ୍ରି. ବିଂ. ଲୌହମୟ, (ସ୍ତ୍ରୀ) ଅୟସ୍ମୟୀ ।
ଅୟାଃ—ପୁଂ.ବ. (ଅୟ + କ.ଅସ୍)ଅଗ୍ନି, ବହ୍ନି ।
ଅଯାଚକ—ପୁଂ. ବିଂ. (ନ.ତତ୍ପୁ) ଯେ ମାଗେ ନାହିଁ, ଯେ ଅନୁଗ୍ରହ-ପ୍ରାର୍ଥୀ ନୁହେ (ସ୍ତ୍ରୀ) ଅଯାଚକା ।
ଅଯାଚନୀୟ—ତ୍ରି.ବିଂ.(ନ.ତତ୍ପୁ)ଅଯାଚ୍ୟ, ଅପ୍ରାର୍ଥନୀୟ, (ସ୍ତ୍ରୀ) ଅଯାଚନୀୟା ।
ଅଯାଚିତ—କ୍ଳୀ.ବ. (ନ.ତତ୍ପୁ) ଅପ୍ରାର୍ଥିତ, ଯାହା ମଗାଯାଇ ନ ଥାଏ, ବଳେ ପଶିବା ।
ଅଯାଚୀ—ପୁଂ. ବିଂ. (ଅ + ଯାଚ୍ + କ. ଇନ୍) ଅଯାଚକ, ମାଗିବାବାଲା, ସମୃଦ୍ଧ, ଧନୀ, (ସ୍ତ୍ରୀ) ଅଯାଚନୀ ।
ଅଯାଚ୍ୟ—ତ୍ରି. ବିଂ. ( ଅଯାଚ + ମଁ.ଯ ) ଅପ୍ରାର୍ଥନୀୟ, ଯାହା ପ୍ରାର୍ଥବ୍ୟ ନୁହେ ।
ଅଯାଜ୍ୟ—ତ୍ରି. ବିଂ. ( ଅ + ଯଜ୍ + ଯ ) ଯେଉଁମାନେ ଯାଗପୂଜାଦି କରିବାରେ ନିଷିଦ୍ଧ, ପତିତ ।
ଅଯାଜ୍ୟଯାଜନ--କ୍ଳୀ.ବ. ପତିତାଦିମାନଙ୍କ ଯାଗପୂଜାକରିବା, ନିଷିଦ୍ଧଯଜ୍ଞର ଅନୁଷ୍ଠାନ ।
ଅଯାଜ୍ୟଯାଜୀ-ପୁଂ.ବିଂ. (ଅଯାଜ୍ୟ + ଯଜ୍ + କ. ଇନ୍) ପତିତଲୋକର ଯାଜନକାରୀ ।
ଅଯାତଯାମ—ତ୍ରି. ବିଂ. ଜୀର୍ଣ୍ଣ ନୁହେ, ବାସୀ ନୁହେ, ପରିଭୁକ୍ତ ନୁହେ, ଟାଟକା, ସଜ,ଯାହାର କାଳ ଗତ ହୋଇନାହିଁ ।
ଅଯାତୁ—ତ୍ରି. ବିଂ. ରାକ୍ଷସ ନୁହେ, ଅହିଂସକ ।
ଅଯାତ୍ରା—ସ୍ତ୍ରୀ.ବ.(ନ.ତତ୍ପୁ)ଅଶୁଭଯାତ୍ରା, ଯାତ୍ରାକାଳରେ ଅଶୁଭ ଲକ୍ଷଣ ।
ଅଯାତ୍ରିକ—ତ୍ରି. ବିଂ. (ନ.ତତ୍ପୁ) ଯାତ୍ରାର ଅନୁପଯୁକ୍ତ, ଯାତ୍ରାର ଅମଙ୍ଗଳସୂଚକ, (ସ୍ତ୍ରୀ) ଅଯାତ୍ରିକା ।
ଅଯଥାତଥ୍ୟ—ମିଥ୍ୟାତ୍ୱ, ଅଯଥାର୍ଥତ୍ୱ ।
ଅୟାନ—ତ୍ରି.ବ.(ଅ + ଯା + ଅନ)ସ୍ୱରୂପ, ପ୍ରକୃତି,ସ୍ୱଭାବ,ଯଙ୍କ,ନିସର୍ଗ,ଅଚଞ୍ଚଳତା ।
ଅୟାନନ୍ତ—ଯା.ବ.ସହାୟତା,ମୁରବୀପଣ ।
ଅୟାନୟ—ପୁଂ.ବ.ପଶାଖେଳର ଶୀର୍ଷସ୍ଥାନ ।
ଅୟାଲ୍-(ଯା) ଘୋଡ଼ା ଓ ସିଂହ ଉପରେ ଉଠିଥିବା ଲମ୍ବ ବାଳ,କେଶର, ବାଳବଚା, ସନ୍ତାନସନ୍ତତି ।                [ରାକ୍ଷସ ।
ଅୟାଶୁ—ପୁଂ. ବ. (ଅୟ + ଅଶ୍ + ଉ)
ଅୟାସ—(ଅବ୍ୟ) ଅଗ୍ନି ।
ଅୟାସ୍ୟ—ପୁଂ. ବ. ଶତ୍ରୁ, ପ୍ରାଣବାୟୁ, ଅଙ୍ଗିରାଋଷି, (ବି) ନିଶ୍ଚଳ, ଅଟଳ ।
ଅୟି—(ଅବ୍ୟ)କୋମଳ ସ୍ନେହସମ୍ବୋଧନ, ଅହେ, ହେ, ଅଲୋ, ଲୋ, ଆଗୋ, ଅନୁରାଗ, ଅନୁନୟ, ପ୍ରଶ୍ନାର୍ଥ ।
ଅୟିସୁଲକ୍ଷଣୀ—ଗ୍ରା.ବିଂ. ସଧବା ସ୍ତ୍ରୀ ।
ଅୟୁକ୍—ବିଂ.(ଅ + ଯୁଜ୍ + କ୍ୱିପ୍)ଅଯୁଗ୍ମ, ବିଯୋଡ଼ ।
ଅୟୁକ୍ଚ୍ଛଦ୍—ପୁଂ. ବ. ସପ୍ତପର୍ଣ୍ଣ ବୃକ୍ଷ, ସତନାଗଛ, ସପ୍ତଚ୍ଛଦ, ସତନା ।
ଅୟୁକ୍ତ—ତ୍ରି.ବିଂ. (ନ.ତତ୍ପୁ) ଯୁଆଳରେ ଯୋଗ୍ନ ହୋଇ ନ ଥିବା, ଯୋଗ ବା ମିଶାଣ କରାଯାଇ ନ ଥିବା, ଅସମ୍ବନ୍ଧ, ଅଯୋଗ୍ୟ, ଅନୁଚିତ, ଅଯୌକ୍ତିକ, ଅଲଗା, ଆପଦଗ୍ରସ୍ତ, ବେଯୋଡ଼, ଅସଂଯୁକ୍ତ, ଅନ୍ୟାୟ, ଅନୁଚିତ ।
ଅୟୁକ୍ତି—ସ୍ତ୍ରୀ. ବ. ମନ୍ଦଯୁକ୍ତି, କୁପରାମର୍ଶ, ଅନ୍ୟାୟ, ବିୟୋଗ, (ବିଂ) ଅୟୁକ୍ତ ।
ଅୟୁକ୍ତିଯୁକ୍ତ—ତ୍ରି.ବିଂ. (ନ.ତତ୍ପୁ)ଅଯୌକ୍ତିକ, ଯୁକ୍ତିବିରୁଦ୍ଧ, ଅସଙ୍ଗତ, ଅନୁଚିତ, ଅପରାମର୍ଶସିଦ୍ଧ, (ସ୍ତ୍ରୀ) ଅୟୁକ୍ତିଯୁକ୍ତା ।
ଅୟୁଗ—ତ୍ରି.ବିଂ.(ଅ + ଯୁଜ୍ + ଅ)ବିଷମ, ବିଯୋଡ଼ (ସଂଖ୍ୟା), ଯେଉଁ ସଂଖ୍ୟାକୁ ଦୁଇରେ ହରିଲେ ଛିଣ୍ଡିବ ନାହିଁ, ଯୁଗ୍ମଭିନ୍ନ, ଯୋଡ଼ା ହୋଇ ନ ଥିବା, ଏକୋଇ, ଏକୁଟିଆ ।
ଅୟୁଗପଦ୍—( ଅବ୍ୟ ) ଏକାବେଳକେ ନୁହେଁ, କମେ କମେ ।
ଅୟୁଗଳ—ତ୍ରି.ବିଂ.(ବ.ବ୍ରୀ)ଅଯୁଗ୍ମ,ବିଷମ, ବିଯୋଡ଼, (ସ୍ତ୍ରୀ) ଅୟୁଗଳା ।
ଅୟୁଗଶର—ପୁଂ.ବ. (ବ.ବ୍ରୀ) ପଞ୍ଚଶର, କାମ ।                [ ସୂର୍ଯ୍ୟ ।
ଅୟୁଗସପ୍ତି—ଅୟୁଗବାହ-ପୁଂ.ବ.ସପ୍ତାଶ୍ୱ,

ଅୟୁଗାର୍ଚ୍ଚିଷ୍—ପୁଂ. ବ (ବ.ବ୍ରୀ) ଅଗ୍ନି ।
ଅୟୁଗୂ—ସ୍ତ୍ରୀ. ବ. କାକବନ୍ଧ୍ୟା, ଯାହାର ଗୋଟିଏ ସନ୍ତାନ—ଆଉ ନାହିଁ ।
ଅୟୁଗ୍ମ—କ୍ଲୀ.ବଂ. (ଅ+ଯୁଜ୍+ମନ୍) ବିଷମ, ବିଯୋଡ଼, ଯୋଡ଼ା ଯୋଡ଼ା ହୋଇ ନ ଥିବା, ଏକୋଙ୍ଗା, ଏକୁଟିଆ ।
ଅୟୁଗ୍ମଚ୍ଛଦ—ପୁଂ. ବଂ. (ବ.ବ୍ରୀ) ସପ୍ତଚ୍ଛଦ ବୃକ୍ଷ, ସତନାଗଛ, ଛତିଆନା ।
ଅୟୁଗ୍ମନେତ୍ର—ପୁଂ.ବ. ଶିବ, ମହାଦେବ ।
ଅୟୁଗ୍ମବାଣ—ପୁଂ.ବ.(ବ.ବ୍ରୀ) ପଞ୍ଚଶର, କନ୍ଦର୍ପ କାମଦେବ ।
ଅୟୁଗ୍ମବାହ—ପୁଂ. ବ. ସପ୍ତାଶ୍ୱ ସୂର୍ଯ୍ୟ ।
ଅୟୁଗ୍ମରାଶି—ବ.(କ.ଧା) ବିଯୋଡ଼ ସଂଖ୍ୟା, ଯେଉଁ ସଂଖ୍ୟାକୁ ଦୁଇରେ ହରଲେ ଛିଡ଼ିବ ନାହିଁ ।
ଅୟୁଗ୍ମଶର—ପୁଂ. ବ. ପଞ୍ଚଶରବିଶିଷ୍ଟ, କନ୍ଦର୍ପ ।
ଅୟୁଜ୍—ତ୍ରି.ବ. ଅଯୁଗ୍ମ, ବିଯୋଡ଼, ବିଷମ,
ଅୟୁତ—ତ୍ରି. ବ. (ଅ+ଯୁତ) ଅସଂଯୁକ୍ତ, ଅସମ୍ବନ୍ଧ, (କ୍ଲୀ) ଦଶହଜାର, ଅୟୁତ ।
ଅୟୁତନାୟୀ—ପୁଂ. ବ. ଚନ୍ଦ୍ରବଂଶୀୟ ନୃପତିବିଶେଷ ।
ଅୟୁତ୍ର—ଗ୍ରା. ବଂ. ଜୀବିକାନିର୍ବାହର ଉପାୟଶୂନ୍ୟ, ନିଃସ୍ୱ, କଙ୍ଗାଳ ।
ଅୟୁତଶଃ—(ଅବ୍ୟ, ଦଶହଜାର, ଅୟୁତ ।
ଅୟୁତସିଦ୍ଧ—ତ୍ରି.ବଂ. ଅପୃଥକ୍ ସିଦ୍ଧ, ଯଥା, ଘଟ, କପାଳ ।
ଅୟୁବ—ତ୍ରି. ବ. (ଅ+ଯୁ+ବା+ଅ) ଅସଂସୃଷ୍ଟ, ସଂସର୍ଗଶୂନ୍ୟ ।
ଅୟୂପ୍ୟ—ତ୍ରି. ବ. ଯେଉଁକାଠରେ ଯୂପ-ପ୍ରସ୍ତୁତ ହୁଏ ନାହିଁ ।
ଅୟେ—(ଅବ୍ୟ) କୋପ, ବିଷାଦ, ସଂଭ୍ରମ, ସ୍ମରଣ, ସମ୍ବୋଧନପ୍ରଭୃତି ସ୍ଥଳେ ଏହି ଅବ୍ୟୟ ବ୍ୟବହୃତ ହୁଏ ।
ଅଯୋଗ—ପୁଂ.ବି.(ଅ+ଯୁଜ୍+କ,ଅ) ଯୋଗର ଅଭାବ, ବିଶ୍ଳେଷ, ଧ୍ୟାନର ଅଭାବ, ଔଷଧର ଅଭାବ, ଜ୍ୟୋତିଷୋକ୍ତ ତିଥିବାରାଦିଜାତ ଦୁଷ୍ଟଯୋଗ, କାତର, କଠିନୋଦ୍ୟମ (ଅୟସ୍+ଅଗ୍ର)

ଅୟୋଽଗ୍ର, କୂଟ, ସ୍ୱର୍ଣ୍ଣକାରର ଚୂଡ଼ା, ହାତୁଡ଼ି ।
ଅୟୋଗବ—ପୁଂ. ବ. ବୈଶ୍ୟକନ୍ୟାର ଗର୍ଭରୁ ଶୂଦ୍ର ଔରସରେ ଜାତ ସଙ୍କର-ଜାତିବିଶେଷ, ଅଇଁଷଗଉଡ଼ ।
ଅଯୋଗବାହ—ପୁଂ.ବ.ଯେଉଁ ବର୍ଣ୍ଣ ଅନ୍ୟର ଯୋଗବିନା ଉଚ୍ଚାରିତ ହୋଇନପାରନ୍ତି ଅନୁସ୍ୱାର, ବିସର୍ଗ, ଚନ୍ଦ୍ରବିନ୍ଦୁ ।
ଅଯୋଗା—ଗ୍ରା.ବଂ.ଅଯୋଗ୍ୟ (ବ୍ୟକ୍ତି), ନାଲାଏକ ।
ଅଯୋଗୀ—ପୁଂ.ବଂ (ଅ+ଯୋଗିନ୍)ଯେ ଯୋଗାଙ୍ଗ ଅନୁଷ୍ଠାନରେ ଅସମର୍ଥ ।
ଅୟୋଗୁଲ—ପୁଂ.ବ(କ.ଧା) ଲୌହଗୁଳି, ଲୁହାବାଟୁଳି ।
ଅୟୋଗୂ—ପୁଂ. ବ (ଅୟଃ+ଗମ+ଉ) କମାର, ଲୁହାକାରିଗର ।
ଅୟୋଗୋଲକ—କ୍ଲୀ. ବ (କ.ଧା)ଲୌହ-ନିର୍ମିତ ଗୋଲାକାରବସ୍ତୁ, ଲୁହାଗୁଳା ।
ଅଯୋଗ୍ୟ – ତ୍ରି. ବଂ. (ଅ+ଯୋଗ୍ୟ) ଅନୁପଯୁକ୍ତ, ନିଷ୍କର୍ମା, ଅକର୍ମଣ୍ୟ, ଅପଟୁ, ଅକ୍ଷମ, ନାଲାଏକ, ଅନୁଚିତ, ଅନର୍ହ, ଯୋଗ୍ୟ ନୁହେ, (ସ୍ତ୍ରୀ) ଅଯୋଗ୍ୟା ।
ଅଯୋଗ୍ୟମ୍ମନ୍ୟ—ତ୍ରି. ବଂ. ଯେ ନିଜକୁ ଅଯୋଗ୍ୟ ବୋଲି ମନେକରେ ।
ଅୟୋଽଗ୍ର—ପୁଂ.ବି.ମୁଷଳ, ଢେଙ୍କିର ସମା, ହାତୁଡ଼ି ।
ଅୟୋଘନ—ପୁଂ. ବ (ଅୟସ୍+ହନ୍+ଣ+ଅ)ଲୌହମୁଦ୍‌ଗର, ହାତୁଡ଼ି, ନିହାଣ ।
ଅୟୋଜାଲ—କ୍ଲୀ.ବ.ଲୌହନିର୍ମିତଜାଲ, (ବି) ଦୁର୍ଭେଦ୍ୟ, କପଟ, ଅସୁରବିଦ ।
ଅଯୋତ୍ର—କ୍ଲୀ. ବ. ନ.ତତ୍ପୁ;ଯୋତ୍ରାଭାବ, ଧନହୀନତା, ଦୈନ୍ୟ, (ସ୍ତ୍ରୀ) ଅଯୋତ୍ରା, (ବଂ) ଯୋତ୍ରହୀନ, ନିଃସ୍ୱ, ନିର୍ଦ୍ଧନ ।
ଅୟୋଦଂଷ୍ଟ୍ର—ତ୍ରି.ବି. ଯେଉଁ ରଥଚକାରେ ଲୁହାର ହାଲ ଲଗିଥାଏ ।
ଅୟୋଦନ୍ତୀ—ତ୍ରି. ବ. ଲୌହପରି କଠିନ-ଦନ୍ତଯୁକ୍ତ, ରାକ୍ଷସୀ ।
ଅଯୋଦ୍ଧା—ପୁଂ.ବ. (ନ.ତତ୍ପୁ) ଅକୁଶଳ-ଯୋଦ୍ଧା ।

ଅଯୋଧ୍ୟ—ପୁଂ.ବଂ.(ଅ+ଯୁଦ୍ଧ+ର୍ମି.ଯ) ଯାହା ସଙ୍ଗେ ଯୁଦ୍ଧକରିବା ଅନୁଚିତ, ଯେ ଶରଣାପନ୍ନ ହୋଇଅଛି, ଅଜେୟ, ଦୁର୍ଦ୍ଧର୍ଷ, (ବ) ମୁଗୁର, ମୁଦ୍‌ଗର, ଗଦା ।
ଅଯୋଧ୍ୟା—ସ୍ତ୍ରୀ. ବ. ସୂର୍ଯ୍ୟବଂଶୀୟ ରାଜା-ମାନଙ୍କର ରାଜଧାନୀ, ସ୍ୱନାମଖ୍ୟାତ-ନଗରୀ ।
ଅଯୋଧ୍ୟାନାଥ(ପତି)—ପୁଂ.ବ.ଅଯୋଧ୍ୟାର ରାଜା, ଶ୍ରୀରାମଚନ୍ଦ୍ର ।
ଅଯୋନି—ସ୍ତ୍ରୀ.ବ. (ନ.ତତ୍ପୁ)ସ୍ତ୍ରୀଜନନେ-ନ୍ଦ୍ରିୟ ଛଡ଼ା ଅନ୍ୟ ଅଙ୍ଗ,(ବଂ)ଅଦରହିତ, ଜନ୍ମରହିତ, ଅନାଦି (ବ) ପଦ୍ମଯୋନି, ବ୍ରହ୍ମା, ସ୍ୱୟମ୍ଭୂ, ଶିବ ।
ଅଯୋନିକ—ବଂ. ଯାହାର ଉତ୍ପତ୍ତିର କାରଣ କଥିତ ନାହିଁ, ଗ୍ରହରୂପ ଯଜ୍ଞ-ପାତ୍ରବିଶେଷ ।
ଅଯୋନିଜ—ପୁଂ.ବଂ.ଅଗର୍ଭଜାତ, ସ୍ୱୟମ୍ଭୂ, ଅଦେହ, ଯେ ମାତୃଗର୍ଭରୁ ଜନ୍ମିନାହିଁ, (ସ୍ତ୍ରୀ) ଅଯୋନିଜା,(ବ)ବିଷ୍ଣୁ, ଶିବ, ବ୍ରହ୍ମା, ଗଣେଶ, ବ୍ରହ୍ମାଙ୍କର ମାନସପୁତ୍ର ମନୁ, ନାରଦାଦି ।
ଅଯୋନିଜଜନ୍ମା—ପୁଂ.ବଂ. ସ୍ତ୍ରୀ. (ବ.ବ୍ରୀ) ଯେ ମାତୃଗର୍ଭରୁ ମାତୃଯୋନିବାଟେ ଜନ୍ମିନାହିଁ ।
ଅଯୋନିଜା—ସ୍ତ୍ରୀ.ବ.ସୀତା, ଆଦ୍ୟାଶକ୍ତି, ଦ୍ରୌପଦୀ, (ସ୍ତ୍ରୀ. ବଂ) ଅଗର୍ଭଜାତା ।
ଅଯୋନିସମ୍ଭବ—ପୁଂ. ବଂ. (ନ.ତତ୍ପୁ) ଅଯୋନିସମ୍ଭୂତ, ଅଯୋନିଜ, ଅଗର୍ଭ-ଜାତ (ସ୍ତ୍ରୀ) ଅଯୋନିସମ୍ଭବା ।
ଅଯୋନିସମ୍ଭବା—ସ୍ତ୍ରୀ.ବ.ସୀତା, ଜାନକୀ, (ସ୍ତ୍ରୀ.ବଂ) ଅଯୋନିଜା ।
ଅଯୌକ୍ତିକ—ତ୍ରି. ବଂ. ନ.ତତ୍ପୁ; (ଅ+ଯୌକ୍ତିକ) ଯୁକ୍ତିସିଦ୍ଧନୁହେ, ଯୁକ୍ତିବିରୁଦ୍ଧ, (ସ୍ତ୍ରୀ) ଅଯୌକ୍ତିକୀ ।
ଅଯୋନିସମ୍ଭୂତ—ତ୍ରି. ବଂ. (ନ.ତତ୍ପୁ) ଅଗର୍ଭଜାତ, (ସ୍ତ୍ରୀ) ଅଯୋନିସମ୍ଭୂତା ।
ଅୟୋମୟ—ତ୍ରି. ବଂ. ଲୌହବିକାର-ଜାତ ଅସ୍ତ୍ରବିଶେଷ, ଆୟସ, (ସ୍ତ୍ରୀ) ଅୟୋମୟୀ ।

ଅୟୋମଳ—କ୍ଲୀ.ବ. (୬ତତ୍ପୁ)ଲୁହାମଳ, ଲୁହାକଲଙ୍କ ।
ଅୟୋମୁଖ—କ୍ଲୀ. ବ. ଲଙ୍ଗଳାଦ୍ଧ, ବାଣ, ଲୌହାଗ୍ର,(ବି°) ଯାହାର ଅଗରେ ଲୁହା ଥାଏ, ଯଥା—ଢେଙ୍କିସମା (ପୁଂ) ଅସୁରବିଶେଷ ।
ଅୟୋରସ—ପୁଂ. ବ. ଲୁହାମଳ ।
ଅୟୋହୃଦୟ—ବି.ବି°.(ବ.ବ୍ରୀ)କଠିନ-ଚିତ୍ତ, ନିର୍ଦ୍ଦୟଚିତ୍ତ, ଦୟାଶୂନ୍ୟ ।
ଅଯୌଗିକ—ବି.ବି°. (ନ.ତତ୍ପୁ) ପ୍ରକୃତି-ପ୍ରତ୍ୟୟଯୋଗେ ଅସିଦ୍ଧ, ଅବ୍ୟୁତ୍ପନ୍ନ, ରୂଢ଼ ।
ଅର—କ୍ଲୀ.ବ.(ଋ+ଣ+ଅ)ଚକର ଭୁମ୍ବ ଓ ପଇ(ପୁଟି)କୁ ଯୋଗକରୁଥିବାକାଠ, ଚକର ବ୍ୟାସାର୍ଦ୍ଧ (ବି°) ଶୀଘ୍ରଗାମୀ (କ୍ରି. ବି°.) ଶୀଘ୍ର, ଚଞ୍ଚଳ ।
ଅରକ—ପୁଂ. ବି°. (ଋ+କ.ଅକ) ଶୈବାଳ,ପର୍ପଟ ବୃକ୍ଷ, ପୁଷ୍ପାଦିର ତରଳ ସାର, ଅରଖ ଗଛ ।
ଅରକଲା—(ସମ୍ଭ) ବଡ଼ ଗୁଳ୍ମବିଶେଷ ।
ଅରକ୍ଷ—ବି. ବି°. ଅରକ୍ଷିତ, ନିରାଶ୍ରୟ, ଅନାଥ ।
ଅରକ୍ଷଣୀ—ସ୍ତ୍ରୀ. ବ. ଅବିବାହିତା, ଦଶ ବର୍ଷରୁ ଊର୍ଦ୍ଧ୍ୱବୟସ୍କା ବାଳିକା ।
ଅରକ୍ଷିତ—ବି°. (ଅ+ରକ୍ଷିତ) ରକ୍ଷିତ ନୁହେ, ଅପାଳିତ, ଅସଞ୍ଚିତ, ଅଗୁପ୍ତ, (ସ୍ତ୍ରୀ) ଅରକ୍ଷିତା ।
ଅରକ୍ଷିତା—ପୁଂ. ବି°. ଅପାଳକ ।
ଅରକ୍ଷିତ ଦାସ—ଗ୍ରା. ବ୍ର. ଶରୀରଭେଦ-ନାମକ ଓଡ଼ିଆ ଯୋଗସାଧନ ପଦ୍ୟ-ଗ୍ରନ୍ଥରଚୟିତା ଓ ସାଧକ ।
ଅରଗାନ—ଯା.ବ.ଗିରିକାରେ ବଜାଯିବା ଉଚ୍ଚସ୍ୱରବିଶିଷ୍ଟ ବଡ଼ବାଦ୍ୟ ।
ଅରଖ—ଗ୍ରା. ବ. ଅରଖ ଗଛ, (ବି°) ଅରଖ (ନୂଆ) ।
ଅରଖି—ଯା. ବ. ମଦ, ସୁରା, ।
ଅରଖିତ, ଅରଖିତଆ—ଗ୍ରା. ପୁଂ. ବି°. ଅରକ୍ଷିତ, ଅନାଥ, (ସ୍ତ୍ରୀ)ଅରଖିତଆଣୀ ।
ଅରଗଡ଼—(ସମ୍ଭ) ବ. ଅର୍ଗଳ ।
ଅରଗଳ—ଗ୍ରା.ବ.ଅର୍ଗଳ,କବାଟ କିଳଣୀ, ଧଡ଼ା, ଅର୍ଗଳା ।
ଅରଗୁଣ—ଗ୍ରା. ବ. ସଦ୍‌ଗୁଣ, ଭଲଗୁଣ ।
ଅରଗ୍‌ବଧ—ପୁଂ. ବ. ସୁନାରି ଗଛ ।
ଅରଘ—ଗ୍ରା. ବ. ଅର୍ଘ (ଦେଖ) ।
ଅରଘଟ (କ)—ପୁଂ. ବ. (ଅର+ଘଟ୍ +ଅ) କୂପ, କୂଅରୁ ପାଣି କାଢ଼ିବାର କଳି ।
ଅରଘଟ୍ଟଘଟିକା—ଗ୍ରା. ବ. କୂପଭିତରକୁ ଯିବାପାଇଁ ବୃତ୍ତାକାର ପାବଚ୍ଛ,ପାହାଚ ।
ଅରତ୍ନ—ବି. ବି°. ଯେ ଅଳଂକୃତ କରେ ।
ଅରଙ୍କୃତ—ବି. ବ. (ଅଲଂ+କୃ+ତ) ଅଲଂକୃତ, ଭୂଷିତ ।
ଅରଙ୍କୃତି—ସ୍ତ୍ରୀ. ବ. ଅଲଙ୍କାର, ଭୂଷ ।
ଅରଙ୍ଗଜବ-ସାହାଜାହାନଙ୍କ ତୃତୀୟ ପୁତ୍ର ।
ଅରଙ୍ଗ—ବି. ବି°. (ବ.ବ୍ରୀ) ରଙ୍ଗସ୍ଥାନ, ଶୀଘ୍ରଗାମୀ ।
ଅରଙ୍ଗମ—ପୁଂ.ବ.ଗତି,ପରିମିତ ଗମନ ।
ଅରଜାଃ—ବି.ବି°.ରଜୋଗୁଣଶୂନ୍ୟ କାମ, କ୍ରୋଧ ଦିଶୂନ୍ୟ, ଧୂଳିଶୂନ୍ୟ, (ସ୍ତ୍ରୀ) କୁମାରୀ, କନ୍ୟା ।
ଅରଜସ୍କ—ପୁଂ. ବି°. (ଅ+ରଜସ୍କ) ଯାହା ଧୂଳିମୟ ନୁହେ, ରଜୋଗୁଣ-ରହିତ, (ସ୍ତ୍ରୀ) ଅରଜସ୍କା ।
ଅରଜସ୍କା—ସ୍ତ୍ରୀ. ବି°. (ଅରଜସ୍କ+ଆ) ଯେଉଁ ବାଳିକାର ରଜୋଦର୍ଶନ ହୋଇ ନାହିଁ, ଅପୁଷ୍ପୀ ।
ଅରଜାଃ—ସ୍ତ୍ରୀ. ବି°. (ଅ+ରଜସ୍) ଯେ ରଜସ୍ୱଳା ହୋଇନାହିଁ, ଧୂଳିଶୂନ୍ୟ ।
ଅରଜ, ଅର୍ଜି—ଯା. ଦରଖାସ୍ତ ବିଶେଷ, ଆପତ୍ତିବିଶେଷ ।
ଅରଟ—ଗ୍ରା. ବ. (ଅରଘଟ ଶବ୍ଦରୁ ଅପଭ୍ରଂଶ) ରେଖା, ସୂତାକାଟିବା ଯନ୍ତ୍ରବିଶେଷ ।
ଅରଟା—ଗ୍ରା ବ. ଘଣ୍ଟଆଳମାନେ ନାଚବାବେଳେ ଧାରଣକରିବା କାଠ-ଯନ୍ତ୍ରବିଶେଷ, ବିଷମସମସ୍ୟା, ଦୁସ୍ତର କଷ୍ଟ, ବିପଦ ।
ଅରଟୀ—ବାଦ୍ୟଯନ୍ତ୍ରବିଶେଷ ।
ଅରଟୁ—ପୁଂ. ବ. ସୁନାରି ଗଛ ।
ଅରଠୀ—ଗ୍ରା. ନଈବଢ଼ିରୁ କାଷ୍ଠାଦି ଧରିବାର ଯନ୍ତ୍ରବିଶେଷ ।
ଅରଡ଼ଙ୍ଗା—ଗ୍ରା. ବି°. ବଳିଷ୍ଠ, ବଳୁଆ, ବିଶାଳକାୟ, ଡେଙ୍ଗା ଓ ମୋଟା ।
ଅରଣ—ବି. ବି°. (ବ.ବ୍ରୀ) କ୍ରୀଡ଼ାସ୍ଥାନ, ଦୁଃଖିତ, ରଣକ୍ଷେତ୍ର ଅବଧି, (କ୍ଲୀ. ବ) ଶରଣ, ଆଶ୍ରୟ ।
ଅରଣା—ଗ୍ରା. ବ. ଅରଣ୍ୟ, ବନ, ବନ୍ୟ-ମହିଷ (ବି°) ବାଣୁଆଁ, ଦୁଷ୍ଟ, ଉନ୍ମତ୍ତ ।
ଅରଣି(ଣୀ)—ପୁଂ. ବ. ଅଗ୍ନି-ଉତ୍ପାଦକ ମନ୍ଥନକାଷ୍ଠବିଶେଷ, ଚକମକି ପଥର ସୂର୍ଯ୍ୟ, ଅଗ୍ନି, ଗଣିଆରି କାଠ, (ସ୍ତ୍ରୀ) ମାତ୍ରା, ମାର୍ଗ ।
ଅରଣିକ—ପୁଂ.ବ. ଅଗ୍ନିମନ୍ଥନ କରିବାର ଉପଯୋଗୀ ଅଗମଥି ଗଛ ।
ଅରଣିକେତୁ—ପୁଂ. ବ. ଅଗମଥି ଗଛ, ଅଗ୍ନି, ମନ୍ଥନବୃକ୍ଷ ।
ଅରଣୀସୁତ—ପୁଂ. ବ. ଶୁକଦେବ ।
ଅରଣ୍ଡା—ଗ୍ରା.ବ.ଗୃହର ପିଣ୍ଡା,ବାରଣ୍ଡା ।
ଅରଣ୍ୟ—କ୍ଲୀ. ବ. ବନ, ଜଙ୍ଗଲ, ଲଟା, ବିପିନ, (ପୁଂ. ବ) କଟଫଳ ବୃକ୍ଷ, କାଫଡ଼, ସନ୍ନ୍ୟାସୀମାନଙ୍କରୁ ଏକତମ ।
ଅରଣ୍ୟକଦଳୀ—ସ୍ତ୍ରୀ. ବ. ପାହାଡ଼ିଆ କଦଳୀ ଗଛ ।
ଅରଣ୍ୟକାର୍ପାସୀ—ସ୍ତ୍ରୀ. ବ. ବନକାର୍ପାସ, (ଗ୍ରା) କପାସିଆ ଗଛ ।
ଅରଣ୍ୟକୁସୁମ—ପୁଂ. ବ. କୁସୁମଫୁଲ ।
ଅରଣ୍ୟଗଜ—ପୁଂ. ବନହସ୍ତୀ ।
ଅରଣ୍ୟଗାନ—କ୍ଲୀ.ବ.ସାମବେଦାନ୍ତର୍ଗତ ଗାନବିଶେଷ ।
ଅରଣ୍ୟଘୋଳୀ—ସ୍ତ୍ରୀ. ବ. ବନଘୋଳୀ ଶାକବିଶେଷ । [ପକ୍ଷୀବିଶେଷ ।
ଅରଣ୍ୟଚଟକ—ପୁଂ. ବ ବନଚଟକ-
ଅରଣ୍ୟଚନ୍ଦ୍ରିକା—ସ୍ତ୍ରୀ. ବି°. (୬ତତ୍ପୁ) ନିଷ୍ଫଳ ବେଶଭୂଷା ।
ଅରଣ୍ୟଚର—ପୁଂ.ବି°.ଅରଣ୍ୟ+ଚର୍+କ.ଅ) ବନଚର, ଯେ ବଣରେ ରହେ, ବଣୁଆ, (ସ୍ତ୍ରୀ) ଅରଣ୍ୟଚରୀ ।

ଅରଣ୍ୟଜ—ବି.ବ୍ୟଂ. (ଅରଣ୍ୟ + ଜନ୍ + ଡ,ଅ) ବନଜାତମାତ୍ର, ବନ୍ୟ, ( ସ୍ତ୍ରୀ ) ଅରଣ୍ୟଜା ।

ଅରଣ୍ୟଜାତ—ବି.ବ୍ୟଂ. ବନଜାତ,ବନ୍ୟ, ବଣୁଆ, (ସ୍ତ୍ରୀ) ଅରଣ୍ୟଜାତା ।

ଅରଣ୍ୟଜାର୍ଦ୍ରକ—କ୍ଲୀ.ବି. ବନଆର୍ଦ୍ରକ, ବନଅଦା ।

ଅରଣ୍ୟଜୀର—ପୁଂ.ବି. ବନଜୀର ।

ଅରଣ୍ୟଜୀବ—ବନୋଦ୍ଭବ ଫଳାଦିଦ୍ୱାରା ଜୀବିତ ବାନପ୍ରସ୍ଥାଦି ।

ଅରଣ୍ୟଧର୍ମ—କ୍ଲୀ.ବି. ବାନପ୍ରସ୍ଥଧର୍ମ ।

ଅରଣ୍ୟଧାନ୍ୟ—କ୍ଲୀ.ବି. ନୀବାରାଦି ବନ୍ୟ ଧାନ, ବାଲୁଙ୍ଗା, (ଗ୍ରା) ଝିରି ।

ଅରଣ୍ୟପର୍ବ—କ୍ଲୀ.ବି.(ଅରଣ୍ୟ + ପର୍ବନ୍) ମହାଭାରତବିଶେଷ ।

ଅରଣ୍ୟପତି—ପୁଂ.ବି. ରୁଦ୍ର ।

ଅରଣ୍ୟଭବ—ବି.ବ୍ୟଂ. ବନଜାତ,ବନୋତ୍ପନ୍ନ, ବନ୍ୟ ।

ଅରଣ୍ୟମକ୍ଷିକା—ସ୍ତ୍ରୀ.ବି. ଡାଉଁଶ (ଦଂଶ) ।

ଅରଣ୍ୟମୟ—ବି. ବ୍ୟଂ. (ଅରଣ୍ୟ + ମୟ) ବନମୟ, ବନପୂର୍ଣ୍ଣ ।

ଅରଣ୍ୟମାର୍ଜାର—ପୁଂ. ବି. ବନବିଡ଼ାଲ, ବଣଭୁଆ ।

ଅରଣ୍ୟମୁଦ୍ଗ—ପୁଂ.ବି. (କ. ଧା) ବଣମୁଗ ।

ଅରଣ୍ୟଯାନ—ବି. ବ୍ୟଂ. ବନକୁ ଯିବା ବାହନବିଶେଷ ।

ଅରଣ୍ୟରକ୍ଷକ—ପୁଂ. ବି. ବନରକ୍ଷକ, ବନରକ୍ଷାକାରୀ କର୍ମଚାରୀ ।

ଅରଣ୍ୟରାଟ୍—ପୁଂ.ବି. ବନରାଜ, ବ୍ୟାଘ୍ର, ସିଂହ ।

ଅରଣ୍ୟରାଶି—ପୁଂ.ବନ୍ୟପଶୁଜାତୀୟ,ରାଶି, ଜ୍ୟୋତିଃଶାସ୍ତ୍ରୋକ୍ତ ସିଂହାଦି ରାଶି ।

ଅରଣ୍ୟରୁଦିତ—କ୍ଲୀ.ବି. ବୃଥା ରୋଦନ, ଯେଉଁ ବିଳାପ ଶୁଣିବାକୁ କେହି ନାହିଁ ।

ଅରଣ୍ୟରୋଦନ—କ୍ଲୀ.ବି. ନିଷ୍ଫଳ କ୍ରନ୍ଦନ, ଯେଉଁ କଥା ଶୁଣିବାକୁ କେହି ଶ୍ରୋତା ବା ରସଗ୍ରାହକ ନାହାନ୍ତି ।

ଅରଣ୍ୟବହ୍ନି—ପୁଂ.ବି.(୬ତତ୍ପୁ)ଦାବାନଳ ।

ଅରଣ୍ୟବାୟସ—ପୁଂ. ବି. ଡାମରକୁଆ, ଦ୍ରୋଣ କାକ ।

ଅରଣ୍ୟବାସ—ପୁଂ. ବି. (କ. ଧା) ବନବାସ, ବନମଧ୍ୟରେ ବାସ ।

ଅରଣ୍ୟବାସୀ—ପୁଂ.ବ୍ୟଂ. (ଅରଣ୍ୟ + ବସ୍ + କ,ଇନ୍) ବନବାସୀ (ମୁନିପ୍ରଭୃତି) (ସ୍ତ୍ରୀ) ଅରଣ୍ୟବାସିନୀ ।

ଅରଣ୍ୟଶାଳି—ପୁଂ. ବି. ବନଧାନ, ବାଲୁଙ୍ଗା, ଝିରିଧାନ, ନୀବାରଧାନ୍ୟ ।

ଅରଣ୍ୟଶୂକର—ପୁଂ. ବି. (କ.ଧା) ବନବରାହ, ବଣବାରହା ।

ଅରଣ୍ୟଶୂରଣ—ପୁଂ. ବି. ଅରଣ୍ୟଜାତ ଶୂରଣ, ବନଓଲୁଅ ।

ଅରଣ୍ୟଶ୍ୱାନ—ପୁଂ.ବି. ନେକଡ଼ା ବାଘ, ବୃକ, ଗ୍ରାମଶିଆଳ (ଗ୍ରା) ବଣ୍ଡ ।

ଅରଣ୍ୟଷଷ୍ଠୀ—ସ୍ତ୍ରୀ.ବି.ଜ୍ୟେଷ୍ଠମାସ ଶୁକ୍ଳଷଷ୍ଠୀ, ସ୍ତ୍ରୀମାନେ ସନ୍ତାନବୃଦ୍ଧ୍ୟର୍ଥ ଫଳାହାର କରି ଦେବୀପୂଜା କରନ୍ତି ।

ଅରଣ୍ୟା—ବି. (ଅରଣ୍ୟ + ଆ) ଔଷଧବିଶେଷ ।

ଅରଣ୍ୟାଧ୍ୟକ୍ଷ—ପୁଂ. ବି. ବନରକ୍ଷାନିମିତ୍ତ ରାଜନିଯୁକ୍ତ ରକ୍ଷକ, ବନରକ୍ଷକ ।

ଅରଣ୍ୟାନୀ—ସ୍ତ୍ରୀ.ବି. (ଅରଣ୍ୟ + ଆନ + ସ୍ତ୍ରୀଈ)ମହାରଣ୍ୟ,ବୃହଦ୍‌ବନ,ଝଙ୍କଲଟା, ବଡ଼ଜଙ୍ଗଲ, ଘୋରଜଙ୍ଗଲ, ଅଗନାଗ୍ନି ବନସ୍ତ ।

ଅରଣ୍ୟାଶ୍ରମ—କ୍ଲୀ.ବି. ବ୍ରହ୍ମଚର୍ଯ୍ୟ ,ବ୍ରହ୍ମଗୃହୀର ଧର୍ମବିଶେଷ ।

ଅରଣ୍ୟୋକାଃ—ପୁଂ.ବି. (ବ.ବ୍ରୀ), ମୁନି, ବାନପ୍ରସ୍ଥ ।

ଅରତ—ବି. ବ୍ୟଂ. ନ.ତତ୍ପୁ; (ଅ + ରତ) ବିରକ୍ତ, ଅନାସକ୍ତ, ବିରତ, ଅନୁରକ୍ତ ନୁହେଁ, ବିତୃଷ୍ଣ, ବିରାଗୀ, ଉଦାସୀନ ।

ଅରତତ୍ରପ—ପୁଂ.ବି(ଅ + ରତ + ତ୍ରପା) କୁକୁର,(ବ୍ୟଂ) ଲଜ୍ଜାହୀନ, (ସ୍ତ୍ରୀ) ଅରତତ୍ରପା ।

ଅରତି—ସ୍ତ୍ରୀ.ବି.(ଅ + ରତି) ଅସନ୍ତୋଷ, ଅପ୍ରୀତି, ବିରକ୍ତି, ବୈରାଗ୍ୟ, ନିର୍ମମତା, ସୁଖାଭାବ, ଜଡ଼ତା,ଚିତ୍ତବୈକଲ୍ୟ, ଏକପ୍ରକାର ପିତ୍ତରୋଗ, (ବ୍ୟଂ.ସ୍ତ୍ରୀ) ରତିହୀନ, ନିରୁତ୍ସାହ, ସର୍ବଙ୍ଗ ( ପୁଂ ) ଉଦ୍‌ବେଗ, କ୍ରୋଧ ।

ଅରତ୍ନି—ପୁଂ. ବି. (ଅ + ଋ + ଅତ୍ନି) କହୁଣୀଠାରୁ କନିଷ୍ଠା ଆଙ୍ଗୁଳି ଅଗ୍ରପରିମିତ ହାତର ମାପ, ମୁଠାବନ୍ଧାହାତ, କହୁଣୀ, ହାତ, (ଗ୍ରା.) କାଣିଏ ପରିମାଣ, ୨୧ଆଙ୍ଗୁଳିପରିମାଣ ।

ଅରଥୀ—ପୁଂ. ବି. ସାରଥିଭିନ୍ନ ।

ଅରଦ—ପୁଂ. ବ୍ୟଂ (ଅ + ରଦ) ଯେଉଁ ବାଳକର ଦାନ୍ତ ଉଠିନାହିଁ, ଯେ ଜନ୍ତୁର ଦାନ୍ତ ନାହିଁ, ଯାହାର ଦାନ୍ତ ନାହିଁ ।

ଅରଦଲି—ଗ୍ରା. ଆଦେଶବାହୀ ଚପରାଶି ।

ଅରଧୃ—ବି. ବ୍ୟଂ. ଶତ୍ରୁକର୍ତ୍ତୃକ ଅହିଂସ୍ୟ, ସମୃଦ୍ଧ, ଶତ୍ରୁମାନେ ଯାହାର ହିଂସାକରି ପାରନ୍ତି ନାହିଁ ।

ଅରନ୍ଧନ—କ୍ଲୀ.ବି.ପାକର ଅଭାବ,ଖାଦ୍ୟ ନ ରାନ୍ଧିବା, ସିଂହ ଓ କନ୍ୟାସଂକ୍ରାନ୍ତିଦିନ ପାଳିତ ବ୍ରତ, ଭାଦ୍ରମାସର ଶେଷଦିନ, ଯେଉଁଦିନ ପାକକରିବା ନିଷିଦ୍ଧ ।

ଅରନ୍ଧ୍ର—ବି. ବ୍ୟଂ. (ଅ + ରନ୍ଧ୍ର) ଛିଦ୍ରରହିତ, ଚନ୍ଦ୍ରାରହିତ,ନିବିଡ଼,ନିର୍ଦ୍ଦୋଷ ।

ଅରପସ୍—ବି. ବ୍ୟଂ. ପାପଶୂନ୍ୟ ।

ଅରଂ—(ଅବ୍ୟ) ଶୀଘ୍ରତା, ଅତିଶୟ ।

ଅରମ—ବି. ବ୍ୟଂ. (ଅ + ରମ) ଅଧମ, ନିକୃଷ୍ଟ, ଗର୍ହିତ, ନିନ୍ଦିତ ।

ଅରମ—ଗ୍ରା.ବ୍ୟଂ. ଅପରିଷ୍କୃତ,ଜଙ୍ଗଲିଆ, ମଇଳାପୂର୍ଣ୍ଣ, (ବି) କୁତ୍ସିତ ବା ଅପରିଷ୍କୃତ ସ୍ଥାନ ।

ଅରମଣୀୟ—ବି. ବ୍ୟଂ. ( ନ. ତତ୍ପୁ ) ଅମନୋରମ, ଅପ୍ରୀତିକର, ଅସୁନ୍ଦର ।

ଅରମତି—ସ୍ତ୍ରୀ. ବି. ପର୍ଯ୍ୟାପ୍ତବୁଦ୍ଧି, ଦୀପ୍ତି, ପୃଥ୍ୱୀ, ଧନ, ଅଙ୍ଗିର, ସର୍ବତ୍ରଗାମିନୀ ।

ଅରମାନ—(ଯା)ବି.ଇଚ୍ଛା,ସାଧ,ଲାଳସା, ଆଶା, ପ୍ରତିହିଂସା ।

ଅରର—କ୍ଲୀ. ବି. (ଋ + ଅର) କବାଟ, ବାଉଁଶ ନଳ, ଆବରଣ, ଖାପ, ଖୋଲ, ଚମଡ଼ାକାଟିବା ଛୁରୀ, ଯଜ୍ଞାଙ୍ଗ, ଯୁଦ୍ଧ, ଋଷିବିଶେଷ ।

ଅରଣି—କ୍ଳୀ.ବି. ଶ୍ରେଷ୍ଠ କବାଟ ।
ଅରଣ୍ଡ—କ୍ଳୀ.ବି. ଜଳ । [ ନାହିଁ ।
ଅରଣନ୍—ପୁଂ. ବିଂ. ଯେ ଦାନ କରେ-
ଅରରୁ—ପୁଂ.ବି. (ଋ+କ, ଅରୁ) ଶତ୍ରୁ, ଆୟୁଧ,ଅସୁରବିଶେଷ,(ବିଂ)ଗମନଶୀଳ ।
ଅରରୁସ୍—ପୁଂ. ବି. (ଋ+ଅରୁସ୍) ଯେ ଶତ୍ରୁ ଉପଦ୍ରବ କରିବାକୁ ଆସିଅଛି ।
ଅରରେ—( ଅବ୍ୟ ) ବ୍ୟଗ୍ରତାସୂଚକ ସମ୍ବୋଧନ, ଆରେ, ହଇରେ ( ନୀଚ-ବ୍ୟକ୍ତି ପ୍ରତି ବ୍ୟବହାର) ।
ଅରଲୁ—ପୁଂ.ବି (ଋ+ଅଲୁ) ଫଣଫଣା ଗଛ, ଲାଉ, ଅଲାବୁ, ପିତାଲାଉ ।
ଅରବ—ପୁଂ.ବି.(ନ. ତତ୍ପୁ) (ଋ+ଅପ୍) ଶବ୍ଦହୀନତା, ରବର ଅଭାବ(ବିଂ)ନୀରବ, ନିଃଶବ୍ଦ, ତାମ୍ର ।
ଅରବିନ୍ଦ—କ୍ଳୀ. ବି. (ଅର+ବିନ୍ଦ+ଅ) ପଦ୍ମ,ନୀଳକଇଁ,ରକ୍ତପଦ୍ମ,ସାରସପକ୍ଷୀ ।
ଅରବିନ୍ଦାକ୍ଷ—ପୁଂ.ବି. (ବ.ବ୍ରୀ) ପୁଣ୍ଡରୀକାକ୍ଷ, ପଦ୍ମଲୋଚନ ।
ଅରବିନ୍ଦନାଭ—ପୁଂ.ବି.ପଦ୍ମନାଭ,ବିଷ୍ଣୁ ।
ଅରବିନ୍ଦନାଭି—ପୁଂ.ବି.ପଦ୍ମନାଭ,ବିଷ୍ଣୁ ।
ଅରବିନ୍ଦିନୀ—ସ୍ତ୍ରୀ. ବି. ପଦ୍ମଯୁକ୍ତଦେଶ, ପଦ୍ମସମୂହ, ପଦ୍ମିନୀ ।
ଅରବିବର—ବି.(୬ତତ୍ପୁ)ଅରସନ୍ଧାତକର ଅରମାନଙ୍କ ମଧ୍ୟସ୍ଥ ଖୋଲ ଜାଗା ।
ଅରଶ୍ମନ୍—ତ୍ରି.ବିଂ.ରଶ୍ମିରହିତ ରଥାଦି ।
ଅରିଷ୍ଟି—ସ୍ତ୍ରୀ.ବି. ବିପଦ, ଅନିଷ୍ଟ, ବିବାଦ, ବିସମ୍ବାଦ, କଷ୍ଟ, ଦୁଃଖ, ଅମଙ୍ଗଳ ।
ଅରସ—ପୁଂ.ବି.ଆସ୍ୱାଦର ଅଭାବ, ନିକୃଷ୍ଟ ରସ. (ବିଂ) ରସଶୂନ୍ୟ,ସ୍ୱାଦହୀନ, ନୀରସ, କର୍କଶ, ଅରସିକ ।
ଅରସଜ୍ଞ—ତ୍ରି.ବିଂ.(ନ.ତତ୍ପୁ) ରସବୋଧ-ହୀନ, ଅରସିକ, (ସ୍ତ୍ରୀ) ଅରସଜ୍ଞା ।
ଅରସିକ—ପୁଂ.ବିଂ.(ନ.ତତ୍ପୁ) ଅରସଜ୍ଞ, ଅବିଦଗ୍ଧ, ଯାହାର ରସବୋଧ ନାହିଁ, (ସ୍ତ୍ରୀ) ଅରସିକା ।
ଅରସୁଆଳ—ଗ୍ରା.ବିଂ(ଅ+ରସୁଆଳ)ଯେ ରସପୂର୍ଣ୍ଣ ନୁହେ, ଅସୁଆଦିଆ ।

ଅରହଣ—ଗ୍ରା.ବି.ପୂଜା,ସମ୍ମାନ ପ୍ରଦର୍ଶନ ।
ଅରାଇବା—ଗ୍ରା. କ୍ରି. ବାଡ଼ ଘେରାଇବା ।
ଅରାଏ—ଗ୍ରା ବିଂ.ଉଚିତ ନୁହେ,ବୈଠକ, ଅଳ୍ପକିଛୁ ।
ଅରାଗୀ—ଗ୍ରା.ବି. ପୁଂ. ସ୍ତ୍ରୀ. ଅକ୍ରୋଧନ, ଯେ ରାଗୀ ନୁହେ ।
ଅରାଜକ—ବିଂ. ( ଅ+ରାଜନ୍+କ ) ଅବୁଝାମଣାରାଜ୍ୟ, ରାଜ୍ୟଶୂନ୍ୟ, ଯେଉଁ-ଦେଶରେ ରାଜା ନାହିଁ,(ବି) ଅରାଜକତା, ଦେଶରେ ରାଜା ନ ଥିବା ଅବସ୍ଥା ।
ଅରାଜକତା—ସ୍ତ୍ରୀ.ବି.(ଅରାଜକ+ଭା,ତା) ରାଜଶକ୍ତିର ଅବିଦ୍ୟମାନତା, ଦେଶର ଅଶାନ୍ତି, ପ୍ରଜାମେଳି ।
ଅରାଜକପୁରୀ—ଗ୍ରା. ବି. ଅରାଜକଦେଶ, ଯେଉଁସ୍ଥାନରେ ସୁବିଚାର ନ ଥାଏ, ଅବୁଝାମଣା ରାଜ୍ୟ ।
ଅରାଜିନ୍—ତ୍ରି. ବିଂ. (ଅ+ରାଜ+ଇନ୍) ଦୀପ୍ତଶୂନ୍ୟ,ଯେଉଁସ୍ଥାନରେ ରାଜା ନାହିଁ ।
ଅରାଜୀବ—ପୁଂ.ବି.(ଅର+ଆ+ଜୀବ+ଅ)ରଥକାର,(ବିଂ) ପଦ୍ମଶୂନ୍ୟ ଜଳାଦି ।
ଅରାତି—ପୁଂ. ବି (ଅ+ରା+କ,ତି) ଯେ ସୁଖ ଦିଏ ନାହିଁ, ଶତ୍ରୁ, କାମ-କ୍ରୋଧାଦି ଷଡ଼୍ରିପୁ,ଲଗ୍ନର ଷଷ୍ଠସ୍ଥାନ, ଛ-ସଂଖ୍ୟା, ବିପକ୍ଷ, ଚକ୍ର ।
ଅରାତିତାପନ—ତ୍ରି.ବିଂ(୬.ତତ୍ପୁ)ଶତ୍ରୁପୀଡ଼କ ବିପକ୍ଷଦମନକାରୀ,(ସ୍ତ୍ରୀ) ଅରାତିତାପନୀ ।
ଅରାତିଦମନ—କ୍ଳୀ. ବି. ବିପକ୍ଷନିବାରଣ, ଶତ୍ରୁନାଶ, (ବିଂ) ଶତ୍ରୁଦମନକାରୀ ।
ଅରାତିବନ୍—ତ୍ରି.ବିଂ.ଶତ୍ରୁପରି ଆଚରଯୁକ୍ତ ।
ଅରାତିଭଙ୍ଗ—ପୁଂ. ବି. ଶତ୍ରୁନାଶ, ବିପକ୍ଷ-ଦମନ । [ ଶୀଳ ।
ଅରାତୀୟୁ—ତ୍ରି.ବିଂ. ଶତ୍ରୁ ତୁଲ୍ୟ ଆଚରଣ-
ଅରାଧଃ—ତ୍ରି.ବିଂ. ଧନରହିତ ।
ଅରାମୁଣ୍ଡି—ଗ୍ରା.ବି.ଡିଙ୍ଗିଭରଣ୍ଡି,ଭରାମୁଣ୍ଡି ।
ଅରାୟୁ—ତ୍ରି. ବିଂ ( ଅ+ରା+ଅ+ଯ ) ଧନଶୂନ୍ୟ,ଯଜ୍ଞାଦିରେ ଦାନ,ଦାନଶୂନ୍ୟ ।
ଅରାଳ—ପୁଂ.ବିଂ.(ଅର+ଆ+ଲା+କ, ଅ)ନତବକ୍ର,କୁଟିଳ, ଟେଢ଼ା, ଟେରଛା, (ବି), ଝୁଣା, ମତ୍ତହସ୍ତୀ (ସ୍ତ୍ରୀ) ଅରାଳା ।

ଅରାଳା—ସ୍ତ୍ରୀ.ବିଂ. (ଅରାଳ+ଆ) ନତା, କୁଟିଳା, (ବି) ବେଶ୍ୟା, ବିମାର୍ଗା ସ୍ତ୍ରୀ ।
ଅରାବନ୍—ତ୍ରି. ବିଂ. ଅଦାତା, କୃପଣ, (ସ୍ତ୍ରୀ) ଅରାବରୀ ।
ଅରି—ପୁଂ.ବି (ଋ+ଇ)ଶତ୍ରୁ, ରଥାଙ୍ଗ, ଚକ୍ର, ବିଟଖଇର, କାମାଦି ଷଡ଼୍ରିପୁ, ( ଜ୍ୟୋତିଷ ) ଲଗ୍ନର ଷଷ୍ଠସ୍ଥାନ, ଛଅ ସଂଖ୍ୟା ।
ଅରିକ୍‌ଥଭାକ୍—ବିଂ. ଅନଂଶ, କ୍ଳୀବ, ପତିତାଦି, ଯେଉଁମାନେ ପିତୃଧନରେ ଅଧିକାରୀ ନୁହନ୍ତି ।
ଅରିଗୂର୍ତ୍ତି,ଗୂର୍ତ୍ତି—ପୁଂ.ବି.(ଶତ୍ରୁ) ବଧକରିବା ନିମିତ୍ତ ଉଦ୍ୟତ ।
ଅରିଘ୍ନୀ—ସ୍ତ୍ରୀ. ବିଂ. ଶତ୍ରୁନାଶିନୀ ।
ଅରିତା—ସ୍ତ୍ରୀ.ବି.(ଅରି+ଭା,ତା)ଶତ୍ରୁତା, ଅନିଷ୍ଟସମ୍ପାଦନ, ବିରୋଧ ।
ଅରିତ୍ର—ବିଂ. ( ଋ+ଇତ୍ର ) ନୌକା-ଚାଳନ ଦଣ୍ଡ, କାତ, ଆହୁଲା, କ୍ଷେପଣୀ, ରଥର ଆଗଚକ, ନଙ୍ଗର ।
ଅରିଦମନ—ପୁଂ. ବିଂ. (ବ.ବ୍ରୀ) ଶତ୍ରୁ-ଦମନକାରୀ (ପୁଂ. ବି) ଶତ୍ରୁଘ୍ନଙ୍କ ନାମା-ନ୍ତର । [ବିଶେଷ ।
ଅରିଦାନ୍ତ— ପୁଂ. ବି.ଯଦୁବଂଶୀୟ କ୍ଷତ୍ରିୟ-
ଅରିଦ୍ୱାଦଶ—ପୁଂ.ବି. ଜ୍ୟୋତିଃଶାସ୍ତ୍ରୋକ୍ତ-ବିବାହରେ ନିଷିଦ୍ଧ ଯୋଗବିଶେଷ ।
ଅରିନନ୍ଦନ—ପୁଂ.ବିଂ. ଯେ ଶତ୍ରୁକୁ ସନ୍ତୁଷ୍ଟ କରେ, ଇନ୍ଦ୍ରିୟାସକ୍ତ, ବ୍ୟସନାସକ୍ତ, (ବି) ଶତ୍ରୁତନୟ ।
ଅରିନ୍ଦମ—ତ୍ରି. ବିଂ. ( ଅରି+ଦମ୍+କ. ଅ) ଶତ୍ରୁଦମନକାରୀ, ଶତ୍ରୁବିଜୟୀ, ବିଜେତା ।
ଅରିନ୍ଦମୀ—ପୁଂ. ବିଂ. (ଅରିନ୍+ଦମ୍+କ.ଇନ୍) ଶତ୍ରୁଦମନକାରୀ, ଅରାତି-ବିଜୟୀ ।
ଅରିପ୍ର—ତ୍ରି. ବିଂ ପାପରହିତ, ( କ୍ଳୀ ) କୁତ୍ସିତ ନୁହେ ।
ଅରିମର୍ଦ୍ଦ—ପୁଂ.ବି.(ଅରି+ମୃଦ୍+କ.ଅ) କାସମର୍ଦ୍ଦ ବୃକ୍ଷ, (ବିଂ) ଯେ ଶତ୍ରୁକୁ ଦମନ କରେ ।

ଅରମର୍ଦ୍ଦନ—ତ୍ରି. ବଂ. ( ଅର + ମର୍ଦ୍ଦନ ) ଯେ ଶତ୍ରୁକୁ ଦମନ କରେ, (ବ) ଅକ୍ରୂରର ଭାଇ, (ସ୍ତ୍ରୀ) ଅରମର୍ଦ୍ଦନା ।

ଅରମିତ୍ର—କ୍ଳୀ.ବ.(୬ତତ୍ରୁ) ଶତ୍ରୁର ବନ୍ଧୁ ।

ଅରମେଜୟ—ପୁଂ. ବ. ଯେ ଶତ୍ରୁକୁ କମ୍ପିତ କରେ, ଅକ୍ରୂରର ସହୋଦର ।

ଅରମେଦ—ପୁଂ. ବ. ବୃକ୍ଷବିଶେଷ, ବଟଖଇର, ଅରମେଦକ କୃମିବିଶେଷ, ପାଡ଼ୁଗ୍ରପୋକ ।

ଅରଲା—ସ୍ତ୍ରୀ. ବ. ( ଅର + ଲ + କ୍ୱିପ୍ ) ମାତ୍ରା ବୃତ୍ତବିଶେଷ, ଯେ ବୃତ୍ତ ପଢ଼ିଲେ ଶତ୍ରୁର ମନ ଆନନ୍ଦ ହୁଏ ।

ଅରଷ—ପୁଂ.ବ. ମଳବନ୍ଧକାରୀ ରୋଗବିଶେଷ ।

ଅରଷଡ଼ଷ୍ଟକ—କ୍ଳୀ. ବ. ବିବାହନିଷିଦ୍ଧ ଯୋଗବିଶେଷ ।

ଅରଷଡ଼୍‌ବର୍ଗ—ପୁଂ.ବଂ କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ ଏହି ଛଅ ଅନ୍ତଃଶତ୍ରୁ ।

ଅରଷଣ୍ୟ—ତ୍ରି. ବଂ. ଅହିଂସକ ।

ଅରିଷ୍ଟ—ପୁଂ. ବ. (ଅ + ରିଷ୍ଟ) ଅମଙ୍ଗଳ, ମନ୍ଦ, ଅଶୁଭ, ଦୁର୍ଭାଗ୍ୟ, କ୍ଳେଶ, ଦୁଃଖ, ବିପତ୍ତି,ମୃତ୍ୟୁର ପୂର୍ବ ଲକ୍ଷଣ, ଦୁଷ୍ଟଗ୍ରହମାନଙ୍କର ମରଣବିଧାୟକ ଯୋଗ, ଅନ୍ତଭ୍ରଣ ଲ, ସୂତିକାଗାର, ଅନ୍ତଃପୁର, ଘୋଳଦହି, ରସୁଣ, ନିମଗଛ, ରିଠା ଫଳ ଓ ଗଛ, ମଦ୍ୟ,କୁଆ, କଙ୍କପକ୍ଷୀ, ବୃଷାସୁର, ବଳପୁତ୍ର ଦୈତ୍ୟବିଶେଷ, ବୈଦ୍ୟକ ନିର୍ଯ୍ୟାସ ଅର୍କ,ଅଦୃଷ୍ଟ, ଅନିଷ୍ଟସୂଚକ ଭୂକମ୍ପାଦି ଉତ୍ପାତ.(ବଂ) ଦୃଢ଼, ଅବିନାଶୀ, ମୃତ୍ୟୁହୀନ, ଅମର, ଅକ୍ଷତ, ଅଶୁଭ, ଶୁଭ, ( ଗ୍ରା.ବ ) କଳିକଳିଆ, ମାଡ଼ପିଟ, ଫୌଜଦାରୀ ।

ଅରିଷ୍ଟକ—ବ. ରିଠାଫଳ ଓ ଗଛ ।

ଅରିଷ୍ଟଗାତୁ—ପୁଂ.ବ (ଅରିଷ୍ଟ + ଗମ + ତୁ) ଅହିଂସିତ, ଗମନ ।

ଅରିଷ୍ଟତାତି—ସ୍ତ୍ରୀ. ବ. ଅରିଷ୍ଟବିସ୍ତାର, ଅହିଂସାବିସ୍ତାର, (ବଂ) ମଙ୍ଗଳକର, ସୁଖକର ।

ଅରିଷ୍ଟଦୁଷ୍ଟ—ତ୍ରି. ବଂ. (୬ତତ୍ରୁ) ମୃତ୍ୟୁଚିହ୍ନଦ୍ୱାରା ଦୁଷ୍ଟ, ମଦ୍ୟପାନରେ ଦୁଷ୍ଟ ।

ଅରିଷ୍ଟଦୁଷ୍ଟଧୀ—ତ୍ରି.ବଂ. (ବ.ବ୍ରୀ) ଆସନ୍ନମରଣକାଳେ ବିପରୀତବୁଦ୍ଧିଯୁକ୍ତ ।

ଅରିଷ୍ଟନେମି—ପୁଂ.ବ. ବିନତା ଗର୍ଭରେ କଶ୍ୟପଔରସଜାତ ପୁତ୍ରବିଶେଷ ।

ଅରିଷ୍ଟସୂଦନ—ତ୍ରି.ବଂ. (୬ ତତ୍ରୁ) ଅରିଷ୍ଟନାଶକ, (ବ) ବିଷ୍ଣୁ, ଶ୍ରୀକୃଷ୍ଣ ।

ଅରିଷ୍ଟା—ସ୍ତ୍ରୀ.ବଂ. ମରଣଚିହ୍ନ ଇତ୍ୟାଦି (ଦେଖ),ବ. କଟୁକୀଫଳର ଗଛ, ଗନ୍ଧର୍ବ ମାତା, କଶ୍ୟପଙ୍କ ଚତୁର୍ଥୀ ସ୍ତ୍ରୀ ।

ଅରିଷ୍ଟି—ସ୍ତ୍ରୀ.ବ. ଅମଙ୍ଗଳ,ଅଶୁଭ, ଅନିଷ୍ଟ, କଳହ, ବିବାଦ, ମାଡ଼ପିଟ୍ ।

ଅରିଷ୍ଟିକା—ସ୍ତ୍ରୀ.ବ. କଟୁକୀ, ରିଠାଫଳ ।

ଅରିଷ୍ଟୁତ—ତ୍ରି.ବଂ. ପ୍ରେରକ, ପ୍ରଶଂସିତ ।

ଅରିଷ୍ଟ—ତ୍ରି.ବଂ. ଶତ୍ରୁନାଶନନିମିତ୍ତ ସ୍ଥିତ ।

ଅରିହା—ପୁଂ. ବଂ. ( ଅରି + ହନ୍ + କ. କ୍ୱିପ୍)ଯେ ଶତ୍ରୁନାଶ କରେ, (ବ) ସୂର୍ଯ୍ୟ, ଶତ୍ରୁଘ୍ନ, ପୁରୁବଂଶୀୟ ନୃପତିବିଶେଷ, (ସ୍ତ୍ରୀ) ଅରିଘ୍ନୀ ।

ଅରିହିଂସକ—ତ୍ରି.ବ. ( ୬.ତତ୍ରୁ ) ଶତ୍ରୁନାଶକ, ବୈରୀଘାତକ, ବୈରୀନିର୍ଯ୍ୟାତକ, (ସ୍ତ୍ରୀ) ଅରିହିଂସିକା ।

ଅରୀଢ଼—ତ୍ରି. ବଂ. ( ଅ + ଲିହ + ତ ) ଶତ୍ରୁଦ୍ୱାରା ଅନଭିଭୂତ, ଅନାସ୍ୱାଦିତ ।

ଅରୀତି—ସ୍ତ୍ରୀ. ବ. ଅପ୍ରଥା, ଅପ୍ରଚଳନ, ଅନିୟମ, (ବ) ରୀତି ବିରୁଦ୍ଧ, ସଦାଚାରବିରୁଦ୍ଧ ।

ଅରୁ—ଗ୍ରା.ବଂ. ରକ୍ତବର୍ଣ୍ଣ, ଆଉ, ଅନ୍ୟ

ଅରୁଂଷିକା. ବ. କ୍ଷୁଦ୍ର ରୋଗବିଶେଷ, ବଡ଼ାରୋଗ ।

ଅରୁଃ—ପୁଂ.ବ. ସୂର୍ଯ୍ୟ,ଲାଲଖଇର, ବ୍ରଣ, ସ୍ଫୋଟକ, କ୍ଷତ ଘା, (ଅବ୍ୟ) ମର୍ମସନ୍ଧିସ୍ଥାନ ।

ଅରୁକ୍—ତ୍ରି. ବଂ. ( ଅ + ରୁଜ୍ + କ. କ୍ୱିପ୍) ରୋଗହୀନ, ନିରୋଗ, ସୁସ୍ଥ ।

ଅରୁଗଣ—ତ୍ରି. ବଂ. ରୋଗଶୂନ୍ୟ, ସୁସ୍ଥ ।

ଅରୁଚ—ତ୍ରି.ବଂ. (ଅ + ରୁଚ୍) ଦୀପ୍ତିହୀନ ।

ଅରୁଚକ—ଗ୍ରା. ବଂ. ଅରୋଚକ, ଅପ୍ରୀତିକର, ଯାହା ଖାଇବାକୁ ସ୍ୱାଦୁ ଲାଗେନାହିଁ ।

ଅରୁଚ୍ୟ—ଗ୍ରା. ବଂ. ଯାହା ରୁଚେ ନାହିଁ, ଅସୁନ୍ଦର, ସୁରୁଚିହୀନ, କୁତ୍ସିତ ।

ଅରୁଚି—ପୁଂ. ବ ( ଅ + ରୁଚି ) ରୁଚିର ଅଭାବ, ଅନିଚ୍ଛା, ଭୋଜନ ଦ୍ରବ୍ୟ ପ୍ରତି ଅନିଚ୍ଛା,ଭୋଜନ ଦ୍ରବ୍ୟ ମୁହଁକୁ ସୁଆଦିଆ ନ ଲାଗିବା, ବିରାଗ, ଅପ୍ରୀତି, ଅସୂୟା, ଘୃଣା, (ବଂ) ନିସ୍ପୃହ, ଇଚ୍ଛାହୀନ, ଦୀପ୍ତିହୀନ, ସ୍ତ୍ରୀ, (ଅ + ରୁଚି) ସନ୍ତୋଷର ଅଭାବ,ଆସକ୍ତିର ଅଭାବ, ଦୀପ୍ତିର ଅଭାବ ।

ଅରୁଚିକର—ତ୍ରି.ବଂ. (୬.ତତ୍ରୁ) ଅପ୍ରୀତିଦାୟକ, ଅସନ୍ତୋଷଜନକ, ବିରକ୍ତିକର, ଅସୁନ୍ଦର, ଅଭକ୍ତିଜନକ, (ସ୍ତ୍ରୀ) ଅରୁଚିକରୀ ।

ଅରୁଚିକର—ତ୍ରି.ବଂ.(ନ.ତତ୍ରୁ) ଅମଧୁର, ଅପ୍ରୀତିକର, ଅମନୋଜ୍ଞ, ଅସୁନ୍ଦର ।

ଅରୁଜ—ପୁଂ.ବ. ରୋଗନାଶକାରୀ ବସ୍ତୁ, (ବଂ)ରୋଗଶୂନ୍ୟ, ସୁସ୍ଥ, ନିରୋଗ, (ସ୍ତ୍ରୀ) ଅରୁଜା ।

ଅରୁଣ—ପୁଂ. ବ. ( ଋ + ଉନ୍ ) ସୂର୍ଯ୍ୟସାରଥି, ଗରୁଡ଼ର ବଡ଼ଭାଇ, ସୂର୍ଯ୍ୟ, ସନ୍ଧ୍ୟାରାଗ କୃଷ୍ଣମିଶ୍ରିତ ରକ୍ତବର୍ଣ୍ଣ, ଗାଢ଼, ନାଲି ରଙ୍ଗ, ଲୋହିତ, ପୁନ୍ନାଗ ବୃକ୍ଷ । କୁଙ୍କୁମ, ସିନ୍ଦୂର, ଗୁଡ଼, ଦାନବବିଶେଷ, ମାଘମାସର ସୂର୍ଯ୍ୟଙ୍କ ନାମ, ଉଦ୍ଦାଳକ ଋଷିଙ୍କ ପିତା, (ବଂ) କୃଷ୍ଣମିଶ୍ରିତ ରକ୍ତ, (ବର୍ଣ୍ଣ ,ଗାଢ଼ରକ୍ତ (ବର୍ଣ୍ଣ) ।

ଅରୁଣକମଳ—କ୍ଳୀ.ବ. ରକ୍ତୋତ୍ପଳ ।

ଅରୁଣଚୂଡ଼—ବ. (ବ. ବ୍ରୀ) କୁକ୍କୁଟ, କୁକୁଡ଼ା ।

ଅରୁଣଜ୍ୟୋତିଃ—କ୍ଳୀ. ବ. ( ୬. ତତ୍ରୁ ) ସୂର୍ଯ୍ୟସାରଥିଙ୍କ ଦ୍ୟୁତି, ବାଳ ସୂର୍ଯ୍ୟଙ୍କ କାନ୍ତି, ସୂର୍ଯ୍ୟକିରଣ, ରୌଦ୍ର ।

ଅରୁଣଦୂର୍ବା—ସ୍ତ୍ରୀ.ବ. ରକ୍ତଦୂର୍ବା ।

ଅରୁଣତେଜ—ଗ୍ରା. ବ.. ବିଶ୍ୱାମିତ୍ରଙ୍କ ପୂର୍ବବଂଶଧରଗଣ ।

ଅରୁଣନୟନ—ବି. ବିଂ. ଆରକ୍ତଲୋଚନ, ରଙ୍ଗଚକ୍ଷୁବିଶିଷ୍ଟ (ସ୍ତ୍ରୀ) ଅରୁଣନୟନା ।

ଅରୁଣପ୍ରିୟା—ସ୍ତ୍ରୀ.ବି. (୬ତତ୍ପୁ) ସୂର୍ଯ୍ୟଙ୍କର ଭାର୍ଯ୍ୟା, ସଂଜ୍ଞା,ଛାୟା,ସବର୍ଣ୍ଣା, ଅପ୍‌ସରା ।

ଅରୁଣପ୍ସୁ—ବି.ବିଂ. ଯାହାର ରୂପ ରକ୍ତ-ବର୍ଣ୍ଣ ।

ଅରୁଣଲୋଚନ—ପୁଂ. ବି. ପାରାବତପକ୍ଷୀ, ପାରା (ବିଂ) ରକ୍ତବର୍ଣ୍ଣଚକ୍ଷୁଯୁକ୍ତ ।

ଅରୁଣଶିଖା—ବି.(ବ.ବ୍ରୀ)କୁକ୍‌କୁଟ,କୁକୁଡ଼ା

ଅରୁଣସାରଥି—ପୁଂ.ବି.(ବ.ବ୍ରୀ) ସୂର୍ଯ୍ୟ ।

ଅରୁଣା—ସ୍ତ୍ରୀ.ବି.ଅରୁଣର ସ୍ତ୍ରୀଲିଙ୍ଗ,ମଞ୍ଜିଷ୍ଠ, ଅତୁସୀ, ଉଦ୍ଭୁଡ଼, କାଇଞ୍ଚ, ନାଲିଗାଈ, ମହାକାଳଫଳ, କୋଦୁଅ, କଦମ୍ବପୁଷ୍ପ, ନଦୀବିଶେଷ (ବିଂ) ରକ୍ତବର୍ଣ୍ଣା ।

ଅରୁଣାନୁଜ—ପୁଂ. ବି. (୬ତତ୍ପୁ) ଗରୁଡ଼, ମରୁତ ।

ଅରୁଣାତ୍ମଜ—ପୁଂ.ବି. (୬ତତ୍ପୁ) ସୂର୍ଯ୍ୟପୁତ୍ର, ଶନି, ଯମ, ସାବର୍ଣ୍ଣିମନୁ, କର୍ଣ୍ଣ, ସୁଗ୍ରୀବ, ଅଶ୍ୱିନୀକୁମାର ଦ୍ୱୟ, ଜଟାୟୁ ପକ୍ଷୀ ।

ଅରୁଣାତ୍ମଜା—ସ୍ତ୍ରୀ.ବି.ସୂର୍ଯ୍ୟକନ୍ୟା, ଯମୁନା, ତାପ୍ତୀ ।

ଅରୁଣାବରଜ—ପୁଂ.ବି. (ଅରୁଣ + ଅବ-ରଜ) ଗରୁଡ଼ ।

ଅରୁଣି—( ପ୍ରା.ମେଦନୀ ) ମାଛ ମାରିବା-ପାଇଁ ନାଳରେ ପକାଯିବା ଆଡ଼ବନ୍ଧ ।

ଅରୁଣିତ—ବି. ବିଂ. (ଅରୁଣ + ଇତ ) ଯାହାକୁ ରକ୍ତବର୍ଣ୍ଣ କରାହୋଇଅଛି, ରକ୍ତବର୍ଣ୍ଣ (ବସ୍ତୁ), ଲାଲରଙ୍ଗରଞ୍ଜିତ ।

ଅରୁଣିମ—ବି.ବି. ରକ୍ତାଭ, ଆରକ୍ତବର୍ଣ୍ଣ ।

ଅରୁଣିମା—ପୁଂ.ବି.(ଅରୁଣ + ଭା,ଇମନ୍) ରକ୍ତିମା, ଗୋଲାପି ଆଭା ।

ଅରୁଣୋଦ—ଗ୍ରା.ବି. ଜୈନଶାସ୍ତ୍ରାନୁସାରେ ପୃଥିବୀକୁ ବେଢ଼ିଥିବା ସମୁଦ୍ର, ଲୋହିତ-ସାଗର ।

ଅରୁଣୋଦକ—କ୍ଳୀ.ବି. ସରୋବରବିଶେଷ, ମନ୍ଦରପର୍ବତସ୍ଥିତ ସରୋବର ।

ଅରୁଣୋଦୟ—ପୁଂ.ବି. ସୂର୍ଯ୍ୟୋଦୟର ପୂର୍ବ ଚାରିଦଣ୍ଡ ବା ଦୁଇ ମୁହୂର୍ତ୍ତକାଳ; ଉଷାକାଳ ।

ଅରୁଣୋଦୟସପ୍ତମୀ—ମାଘଶୁକ୍ଳପକ୍ଷସପ୍ତମୀ, ଏ ଦିନ ଅରୁଣୋଦୟକାଳରେ ସ୍ନାନ-କରିବା ପୁଣ୍ୟଜନକ ।

ଅରୁଣୋପଲା—ପୁଂ. ବି. ପ୍ରସ୍ତରବିଶେଷ, ପଦ୍ମରାଗମଣି ।

ଅରୁଧ—ଗ୍ରା.ବି ସୁରଅସୁରଙ୍କ ମନ୍ତ୍ରୀ ।

ଅରୁନ୍ତୁଦ—ବି.ବିଂ ଦୁଃଖକର,ମର୍ମଭେଦୀ, କଠୋର,ଅତ୍ୟନ୍ତ ପୀଡ଼ାଦାୟକପୁରୁଷ, (ସ୍ତ୍ରୀ) ଅରୁନ୍ତୁଦା(ବି)ବୈରୀ, ଶତ୍ରୁ ।

ଅରୁନ୍ଧତୀ—ସ୍ତ୍ରୀ.ବି. ବଶିଷ୍ଠପତ୍ନୀ, ନକ୍ଷତ୍ର-ବିଶେଷ ।

ଅରୁନ୍ଧତୀଜାନି—ପୁଂ. ବି. ଅରୁନ୍ଧତୀଙ୍କ ସ୍ୱାମୀ, ବଶିଷ୍ଠମୁନି ।

ଅରୁମ୍ମର୍ଘ—ପୁଂ. ବି. ବ୍ରାହ୍ମଣବେଶଧାରୀ ରାକ୍ଷସବିଶେଷ ।

ଅରୁଷ୍—ବି. ବିଂ. ଅକ୍ରୋଧନ, ଯାହାର କ୍ରୋଧ ନାହିଁ, ରୋଚମାନ (ପୁଂ.ବି)ଅଶ୍ୱ, (କ୍ଳୀ)ପ୍ରଶାନ୍ତରୂପ, ହିଂସାରହିତ ।

ଅରୁଷୀ—ସ୍ତ୍ରୀ.ବି. ଶୁକ୍ଳବର୍ଣ୍ଣ ଉଷା, ଶୁକ୍ଳ-ବର୍ଣ୍ଣ ରୂପବତୀ ।

ଅରୁଷ୍କ—ପୁଂ. ବି. (ଅରୁଷ୍ + କୈ + ଅ) ଭଲିଆ ଫଳ ଓ ଗଛ (ବିଂ) ମର୍ମତୁଦ, (ସ୍ତ୍ରୀ) ଅରୁଷ୍କା ।

ଅରୁଷ୍କର—ବି.ବି. (ଅରୁସ୍ + କୃ + କ.ଅ) କ୍ଷତଉତ୍ପାଦକ, ଯାହା ଘା କରେ (ସ୍ତ୍ରୀ) ଅରୁଷ୍କରା (ବି) ଭଲିଆ ଗଛ ଓ ଫଳ ।

ଅରୁସ୍—ବି.ପୁଂ.(ଋ + ଉସ୍)ରକ୍ତଖଦିର, ବ୍ରଣ, ମର୍ମସ୍ଥାନ, ସୂର୍ଯ୍ୟ ।

ଅରୁଂସିକା—ସ୍ତ୍ରୀ. ବି. ରୋଗବିଶେଷ, ବଡ଼ାରୋଗ ।

ଅରୁହା—ସ୍ତ୍ରୀ. ବି. ( ଅ + ରୁହ + କ.ଅ + ଆ ) ଭୂଇଁ ଅଁଅଳା ।

ଅରୁକ୍ଷ—ବି.ବିଂ. ( ଅ + ରୁକ୍ଷ ) ସ୍ନିଗ୍ଧ, ମସୃଣ, ଯାହା ରୁକ୍ଷ ନୁହେ ।

ଅରୁକ୍ଷିତ—ବି.ବିଂ.ସ୍ନିଗ୍ଧ,ମସୃଣ,ଚକ୍‌କଣ

ଅରୁକ୍ଷ୍ଣ—ବି. ବିଂ. ସ୍ନିଗ୍ଧ, ମସୃଣ ।

ଅରୂପ—ବି. ବିଂ, (ବ.ବ୍ରୀ) ନିରାକାର, ରୂପଶୂନ୍ୟ(ବି) ଅସୁନ୍ଦର ରୂପ, କୁତ୍ସିତ-ରୂପ (ସ୍ତ୍ରୀ) ଅରୂପା ।

ଅରୂପକ—ବି. ବୌଦ୍ଧଦର୍ଶନ ଅନୁସାରେ ଯୋଗୀର ଅବସ୍ଥାବିଶେଷ, ନିର୍ବିକ-ସମାଧି ।

ଅରୂପରାଶି—ପୁଂ.ବି. ଯେ ରାଶିର ବର୍ଗ-ମୂଳ ଘନମୂଳ-ଇତ୍ୟାଦି ଠିକ୍ କରାଯାଇ ନାହିଁ ।

ଅରୂପହାର୍ଯ୍ୟ—ବି. ବିଂ. ( ଅ + ରୂପ + ହୃ + ଯ ) ସୌନ୍ଦର୍ଯ୍ୟାଦିଦ୍ୱାରା ଯାହାକୁ ବଶ କରାଯାଇ ନ ପାରେ ।

ଅରୂପା—ଗ୍ରା.ବିଂ. (ପୁଂ.ସ୍ତ୍ରୀ)ଅସୁନ୍ଦର ବା କୁତ୍ସିତ ରୂପବିଶିଷ୍ଟ ।

ଅରୂପାନନ୍ଦ + ଗ୍ରା.ବି. (ଅରୂପ + ଆନନ୍ଦ) ନିରାକାର,ପରମେଶ୍ୱର,ଅଲେଖସ୍ୱାମୀ ।

ଅରୂଷ—ପୁଂ. ବି. ସୂର୍ଯ୍ୟ, ସ୍ୱର୍ଗ, ନାଗ-ବିଶେଷ ।

ଅରେ—(ଅବ୍ୟ)ଆରେ,ହଇରେ,ଆପଣା-ଠାରୁ ନିକୃଷ୍ଟ ବ୍ୟକ୍ତିଙ୍କୁ ସମ୍ବୋଧନ ।

ଅରେଖ—ବିଂ. (ବ.ବ୍ରୀ) ରେଖାହୀନ, ଅରୂପ, ଅବିଶଦ, ଅଦୃଶ୍ୟ ।

ଅରେପସ୍—ବି.ବିଂ. ନିଷ୍ପାପ, ପାପଶୂନ୍ୟ, ନିର୍ମଳ ।

ଅରୋକ—ଗ୍ରା. ବିଂ. ଅବାଧ, ଯାହାକୁ କେହି ଅଟକାଏ ନାହିଁ ।

ଅରୋକ—ବି. ବିଂ. (ବ.ବ୍ରୀ ) ଦୀପ୍ତିଶୂନ୍ୟ, ଛିଦ୍ରଶୂନ୍ୟ, ଅନୁଜ୍ଜ୍ୱଳ (ସ୍ତ୍ରୀ) ଅରୋକା ।

ଅରୋକଦତ୍—ବି. ବିଂ. ଯାହାର ଘନ-ଦାନ୍ତ, ମେଳଦାନ୍ତ ନୁହେ, ଦୀପ୍ତିଶୂନ୍ୟ-ଦାନ୍ତ ।

ଅରୋଗ—ବି.ବିଂ.(ଅ + ରୋଗ)ନୀରୋଗ; ରୋଗଶୂନ୍ୟ,ରୋଗମୁକ୍ତ (ସ୍ତ୍ରୀ) ଅରୋଗା, (ବି) ରୋଗର ଅଭାବ, ସୁସ୍ଥତା ।

ଅରୋଗଣ—ବି. ବିଂ. ରୋଗଶୂନ୍ୟ ।

ଅରୋଗିତା—ବି. ରୋଗହୀନତା,ସୁସ୍ଥତା ।

ଅରୋଗୀ—ପୁଂ. ବିଂ. (ଅରୋଗ + ଇନ୍) ରୋଗଶୂନ୍ୟ, ନୀରୋଗ, ସୁସ୍ଥ, (ସ୍ତ୍ରୀ) ଅରୋଗିଣୀ ।

ଅରୋଚକ—ପୁଂ. ବିଂ. ଅରୁଚିକର, ଅପ୍ରୀତିକର, ଅସୁଆଦିଆ, ଯାହା ଖାଇ-ବାକୁ ଅସୁକୁ ମାଡ଼େ (ବି) ରୋଗ-

ବିଶେଷ, ଏଥିରେ ଖାଦ୍ୟ ଦ୍ରବ୍ୟ ପ୍ରତି ଅରୁଚି ଜନ୍ମେ, ଗର୍ଭିଣୀର ପ୍ରଥମ ୩।୪ ମାସ ପର୍ଯ୍ୟନ୍ତ ଖାଦ୍ୟ ଦ୍ରବ୍ୟ ପ୍ରତି ଅରୁଚି ।

ଅରୋଦନ—କ୍ଲୀ. ବି. ରୋଦନର ଅଭାବ ।

ଅରୋଧନ—କ୍ଲୀ. ବି. ରୋଧନାଭାବ (ବିଂ) ଆବଦ୍ଧ ନୁହେଁ, ଆବରଣରହିତ ।

ଅରୋଧ—ତ୍ରି. ବିଂ. (ନ.ତତ୍) ଯାହାକୁ ରୁଦ୍ଧ କରି ହୁଏନାହିଁ (ସ୍ତ୍ରୀ) ଅରୋଧା ।

ଅରୋପଣ—କ୍ଲୀ.ବି. ରୋପଣର ଅଭାବ ।

ଅରୋଷ—ପୁଂ.ବି.(ନ.ତତ୍) କ୍ରୋଧାଭାବ, ଅକ୍ରୋଧ (ବିଂ) କ୍ରୋଧଶୂନ୍ୟ, ରୋଷ-ହୀନ (ସ୍ତ୍ରୀ) ଅରୋଷା ।

ଅରୋଷଣ—ଗ୍ରା. ବିଂ. ( ଅ + ରୋଷଣ ) ଅକ୍ରୋଧନ, ଶାନ୍ତସ୍ୱଭାବ ।

ଅରୌଦ୍ର—ତ୍ରି. ବିଂ. (ନ. ତତ୍) ଭୀଷଣ ନୁହେଁ, ଅଭୟଙ୍କର, ସୁନ୍ଦର ଆକୃତି, ରାଗଦ୍ୱେଷାଦିଶୂନ୍ୟ, ବିଷ୍ଣୁ, ( ସ୍ତ୍ରୀ ) ଅରୌଦ୍ରୀ ।

ଅର୍କ—(ଧାତୁ) ତାପଦେବା ।

ଅର୍କ—ପୁଂ. ବି. (ଅର୍କ + ଅ)ସୂର୍ଯ୍ୟ,ଇନ୍ଦ୍ର, ବିଷ୍ଣୁ, ପଣ୍ଡିତ, ବଡ଼ଭାଇ, ଉତ୍ତର ଫାଲ୍‌ଗୁନୀ ନକ୍ଷତ୍ର, ଅରଖଗଛ, ରବି-ବାର, କିରଣ, ଆଲୋକ, ତମ୍ବା, ସ୍ଫଟିକ, ଅଗ୍ନି, ବଜ୍ର, ମନ୍ତ୍ର, ବୃକ୍ଷ, ସପ୍ତମୀ ତିଥି, ଦ୍ୱାଦଶ ସଂଖ୍ୟା, (ଗ୍ରା) ଅରକ, ତରଳଧାର (ବିଂ) ପୂଜନୀୟ ।

ଅର୍କକଳା—ସ୍ତ୍ରୀ. ବି. ସୂର୍ଯ୍ୟୋପାସନା-ନିମିତ୍ତ ପ୍ରୟୋଜନୀୟ ଦ୍ୱାଦଶସଂଖ୍ୟକ ପୀତବର୍ଣ୍ଣ ଅକାରାଦି ଢକାରାନ୍ତ ବର୍ଣ୍ଣ-ଭୂଷିତ କଳାବିଶେଷ, ଯଥା—ତପିନୀ, ତାପିନୀ, ଧୂମ୍ରା, ମରୀଚି, ଜ୍ୱାଳିନୀ, ରୁଚି, ସୁଷୁମ୍ନା, ଭୋଗଦା, ବିଶ୍ୱା, ବୋଧିନୀ, ଧାରିଣୀ, କ୍ଷମା-ଏହି ବାରକଳାର ନାମ ।

ଅର୍କକାନ୍ତା—ସ୍ତ୍ରୀ. ବି. ସୂର୍ଯ୍ୟପ୍ରିୟା, ସଂଜ୍ଞା, ଛାୟା, ପଦ୍ମ, ହୁଡ଼ହୁଡ଼ିଆ ଗଛ (ଅଣ-ସୋରିଷିଆ) ।

ଅର୍କକ୍ଷେତ୍ର—କ୍ଲୀ.ବି.(୬ ତତ୍) ସିଂହରାଶି, ପୁରୀଜିଲ୍ଲାର କୋଣାର୍କ,ସୌରଭାଦ୍ରମାସ ।

ଅର୍କଚନ୍ଦନ—ବି.ପୁଂ.ଓ କ୍ଲୀ.ରକ୍ତଚନ୍ଦନ ।

ଅର୍କଜ—ପୁଂ. ବି. (ଅର୍କ + ଜନ୍ + ଅ) ଶନି, ଯମ, ଅଶ୍ୱିନୀକୁମାର, ସୁଗ୍ରୀବ, କର୍ଣ୍ଣ, (ସ୍ତ୍ରୀ) ଯମୁନା, ତାପ୍ତୀ ।

ଅର୍କତନୟ—ପୁଂ.ବି. ୬ ତତ୍; (ଅର୍କ + ତନୟ) କର୍ଣ୍ଣରାଜା, ଶନି, ସୁଗ୍ରୀବ,ଯମ, ଅଶ୍ୱିନୀକୁମାରଦ୍ୱୟ, ସାବର୍ଣ୍ଣିମନୁ ।

ଅର୍କତନୟା—ସ୍ତ୍ରୀ.ବି. (୬ ତତ୍) ଅର୍କ + ତନୟା)ଯମୁନା, ତାପ୍ତୀ, ତପତୀ ନଦୀ ।

ଅର୍କଦୁଗ୍ଧ—କ୍ଲୀ.ବି. ଅରଖ କ୍ଷୀର ।

ଅର୍କନୟନ—ପୁଂ. ବି. (ବ.ବ୍ରୀ) ବିରାଟ-ପୁରୁଷ ।

ଅର୍କପତ୍ର—ବି. ଅରଖ ଗଛ ।

ଅର୍କପର୍ଣ୍ଣ—କ୍ଲୀ. ବି. ଅରଖଗଛ, ମନ୍ଦାର ଗଛ । [ଅକାନବିନ୍ଧ ।

ଅର୍କପର୍ଣ୍ଣୀ—କ୍ଲୀ. ବି. ପାନଅଇରି ଗଛ,

ଅର୍କପାଦପ—ପୁଂ.ବି. (କ.ଧା) ନିମ୍ବବୃକ୍ଷ, ନିମଗଛ, ଅରଖ ଗଛ ।

ଅର୍କପୁଷ୍ପୀ—ସ୍ତ୍ରୀ. ବି. (ବ.ବ୍ରୀ) ସୂର୍ଯ୍ୟମୁଖୀ ଫୁଲଗଛ ।

ଅର୍କପ୍ରିୟା—ସ୍ତ୍ରୀ. ବି. (୬ତତ୍) (ଅର୍କ + ପ୍ରିୟା)ସୂର୍ଯ୍ୟକାନ୍ତା,ସଂଜ୍ଞା, ଛାୟାପ୍ରଭୃତି, ଜବାପୁଷ୍ପ, ମନ୍ଦାରଫୁଲ (ବିଂ) ପଦ୍ମିନୀ ।

ଅର୍କବତ୍ସର—ପୁଂ. ଓ କ୍ଲୀ. ବି. (୬ତତ୍) ସୌରାବ୍ଦ, ସୌରବତ୍ସର । [ପଦ୍ମ ।

ଅର୍କବନ୍ଧୁ—ପୁଂ.ବି. (୬ତତ୍) ଗୌତମ,

ଅର୍କବଲ୍ଲଭ—ପୁଂ.ବି.ବଧୂଲି ବୃକ୍ଷ, ବନ୍ଧୁ-ଜୀବ, ପଦ୍ମ ।

ଅର୍କବଲ୍ଲଭା—ବି. ୬ତତ୍;(ଅର୍କ + ବଲ୍ଲଭା) ମନ୍ଦାର, ଜବା ।

ଅର୍କବାର—ବି. ରବିବାର ।

ଅର୍କବିଦ୍ୟା—ସ୍ତ୍ରୀ. ବି. ସ୍ଫଟିକତନ୍ତ୍ର, ଅର୍କ-ବିଷୟିଣୀ ବିଦ୍ୟା ।

ଅର୍କବିବାହ—ପୁଂ. ବି. ତୃତୀୟ ବିବାହ-ସିଦ୍ଧି ନିମିତ୍ତ ଅରଖ ଗଛକୁ କନ୍ୟାରୂପେ କଳ୍ପନା କରି ବିବାହ କରାଯାଏ ।

ଅର୍କବେଧ—ପୁଂ.ବି. ତାଳୀଶପତ୍ର ବୃକ୍ଷ ।

ଅର୍କବ୍ରତ—ପୁଂ. ବି. ମାଘମାସର ଶୁକ୍ଳ-ସପ୍ତମୀରେ କର୍ତ୍ତବ୍ୟ ବ୍ରତବିଶେଷ ।

ଅର୍କଭ—କ୍ଲୀ. ବି. ସୂର୍ଯ୍ୟାକ୍ରାନ୍ତନକ୍ଷତ୍ର, ସିଂହରାଶି, ଉତ୍ତରାଫାଲ୍‌ଗୁନୀ ନକ୍ଷତ୍ର ।

ଅର୍କଭକ୍ତା—ସ୍ତ୍ରୀ. ବି. ଆଦିତ୍ୟଭକ୍ତା, ଅଣସୋରିଷ ।

ଅର୍କମଣ୍ଡଳ—କ୍ଲୀ.ବି.(୬ତତ୍) ସୂର୍ଯ୍ୟମଣ୍ଡଳ, ଗୋଲାକାର ସୂର୍ଯ୍ୟ ।

ଅର୍କମୂଳ—ପୁଂ. ବି. ପାନଅଇଡ଼, ପାନ-ଅଇରି ଗଛ ।

ଅର୍କସିଦ୍ଧାନ୍ତ—ବି. ସୂର୍ଯ୍ୟସିଦ୍ଧାନ୍ତନାମକ, ଜ୍ୟୋତିଷ ଗ୍ରନ୍ଥ ।

ଅର୍କସୂନୁ—ପୁଂ.ବି. ସୂର୍ଯ୍ୟପୁତ୍ର, ଯମ,ଶନି, ଅଶ୍ୱିନୀକୁମାର, ସୁଗ୍ରୀବ, କର୍ଣ୍ଣ ।

ଅର୍କସୋଦର—ପୁଂ.ବି.(୬ତତ୍) ଐରାବତ ହସ୍ତୀ, ଭୟାନକ ବ୍ୟକ୍ତି, ଯାହାକୁ ଦେଖିଲେ ଭୟ ହୁଏ ।

ଅର୍କହିତା—ସ୍ତ୍ରୀ.ବି.ଅର୍କଭକ୍ତା,ଅଣସୋରି-ଷିଆ ଲତା ।

ଅର୍କାଶ୍ମ—ପୁଂ. ବି.(ଅର୍କ + ଅଶ୍ମନ) ସୂର୍ଯ୍ୟ-କାନ୍ତମଣି, ପଦ୍ମରାଗମଣି, ଅରୁଣୋପଳ ।

ଅର୍କାହ୍ୱ—ବି.ବ.ବ୍ରୀ;(ଅର୍କ + ଆହ୍ୱ) ଅରଖ-ଗୁଳ୍ମ ।

ଅର୍କେଡ଼—ବି. ମନୋହର ପୁଷ୍ପବିଶେଷ ।

ଅର୍କେନ୍ଦୁସଙ୍ଗମ—ପୁଂ.ବି.ଅମାବାସ୍ୟାତିଥି ।

ଅର୍କୋପଳ—ପୁଂ. ବି. ସୂର୍ଯ୍ୟକାନ୍ତମଣି, ପଦ୍ମରାଗମଣି ।

ଅର୍କ୍ୟ—ତ୍ରି. ବିଂ. (ଅର୍କ + ଯ) ପୂଜନୀୟ, ପୂଜ୍ୟ, ସ୍ତବନୀୟ । [କୋଣାର୍କ ।

ଅର୍କକ୍ଷେତ୍ର—ବି.(ଅର୍କ + କ୍ଷେତ୍ର)ସିଂହରାଶି,

ଅର୍ଗଳ—କ୍ଲୀ.ବି.(ରୁଜ + ଅଲ) କବାଟର କିଳଣୀ, ପ୍ରତିବନ୍ଧକ, ବାଧା, କଲ୍ଲୋଳ, ଢେଉ, ଅବରୋଧ,କବାଟ, କ୍ଷୁଦ୍ର ଅର୍ଗଳ, ଖିଲ, କାଠର ଗୋଜାକିଲା, ଦେବୀସ୍ତୋତ୍ର ବିଶେଷ ।

ଅର୍ଗଳା—ବି,(ଅର୍ଗଳ + ଆ)ହୁଡ଼ୁକା,ହାତୀ-ବନ୍ଧା ଶିଙ୍କୁଳି, ଅବରୋଧ, (ଗ୍ରା. ବିଂ) ଅନୁପମ, ସ୍ୱଚ୍ଛନ୍ଦବୃତ୍ତି ।

ଅର୍ଗଳିତ—ତ୍ରି.ବିଂ.(ଅର୍ଗଳା + ଇତ)କିଳା-ଯାଇଥିବା, ଅର୍ଗଳଯୁକ୍ତ, ଖିଲବନ୍ଧ ।

ଅର୍ଘ—(ଧାତୁ) କହିବା ।
ଅର୍ଘ—ପୁଂ.ବ.(ଅର୍ହ୍ +ଅ)ପୂଜା, ପୂଜା-ଦ୍ରବ୍ୟବିଶେଷ, ମୂଲ୍ୟ, ଦାମ, ଅକ୍ଷତ, ଦୂବ ଓ ସାଧାରଣତଃ ଜଳ ଅର୍ପଣପୂର୍ବକ ସମାଗତ ଅତିଥିଙ୍କ ସତ୍କାର ।
ଅର୍ଘବଳାବଳ—ବ.୬ତତ୍ (ଅର୍ଘ + ବଳାବଳ) ମୂଲ୍ୟର ହ୍ରାସ ବୃଦ୍ଧି, ବଜାରଭାଉ, ପଣ୍ୟଦ୍ରବ୍ୟମାନଙ୍କର ଦାଣ୍ଡଭାଉ ।
ଅର୍ଘସଂସ୍ଥାପନ—ବ. ୬ତତ୍; (ଅର୍ଘ + ସଂସ୍ଥାପନ) ପଣ୍ୟଦ୍ରବ୍ୟର ମୂଲ୍ୟନିରୂପଣ
ଅର୍ଘାସୁର—ଗ୍ରା.ବ. ଅଘାସୁର, କଂସାନୁଚର ରାକ୍ଷସବିଶେଷ ।
ଅର୍ଘାସୁର—ଗ୍ରା. ବ. (ଲକ୍ଷଣାର୍ଥ)ଅତିଶୟ ଡେଙ୍ଗା, ମୋଟା ଓ ହୃଷ୍ଟପୁଷ୍ଟ ବ୍ୟକ୍ତି ।
ଅର୍ଘାର୍ହ—ବି.ବଂ. (୬ତତ୍)ପୂଜୋପକରଣ ପ୍ରଦାନର ଯୋଗ୍ୟ, ପୂଜନୀୟ ।
ଅର୍ଘୀଶ—ପୁଂ. ବ. ସମସ୍ତ ଦେବତାଙ୍କ ମଧ୍ୟରେ ପୂଜ୍ୟତମ, ମହାଦେବ ।
ଅର୍ଘ୍ୟ—ବି. ବଂ. ( ଅର୍ଘ + ଯ ) ପୂଜ୍ୟ, ମାନ୍ୟ, ପୂଜନୀୟ, (ବି) ପୂଜାସାମଗ୍ରୀ, ବନମଧୁ, ଦେବତାଙ୍କ ପୂଜାରେ ବ୍ୟବହୃତ ମନ୍ତ୍ରଶୋଧିତ ଜଳ ।
ଅର୍ଘ୍ୟପାତ୍ର—ବି.ଯେଉଁଥାଳରେ ପୂଜୋପକରଣ ସଜ୍ଜିତ ହୋଇଥାଏ ।
ଅର୍ଘ୍ୟାଞ୍ଜଳି—ବ. ୬.ତତ୍; ( ଅର୍ଘ୍ୟ + ଅଞ୍ଜଳି ) ପୂଜାର୍ଥ ଜଳାଞ୍ଜଳି ।
ଅର୍ଚ୍ଚ୍—(ଧାତୁ), ବ. ପୂଜାକରିବା, ଦୀପ୍ତିପାଇବା, ଜ୍ୱଳା ।
ଅର୍ଚ୍ଚକ—ବି.ବଂ. (ଅର୍ଚ୍ଚ୍ + ଅକ) ପୂଜକ, ପୂଜାକାରୀ, ଉପାସକ, (ସ୍ତ୍ରୀ) ଅର୍ଚ୍ଚିକା ।
ଅର୍ଚ୍ଚନି—ବି.ବଂ.(ଅର୍ଚ୍ଚ + ଅନି)ଅର୍ଚ୍ଚନୀୟ ।
ଅର୍ଚ୍ଚତ୍ର୍ୟ—ବି.ବଂ.(ଅର୍ଚ୍ଚତ୍ର + ଯ,ପୂଜନୀୟ ।
ଅର୍ଚ୍ଚନ—କ୍ଲୀ. ବ. (ଅର୍ଚ୍ଚ୍ + ଅନ)ପୂଜନ, ପୂଜା, ବନ୍ଦନା, ସମ୍ମାନ ।
ଅର୍ଚ୍ଚନା—ସ୍ତ୍ରୀ. ବଂ.(ଅର୍ଚ୍ଚ୍ + ଅନ + ଆ) ପୂଜା ,ଭୋଜନ ନିମିତ୍ତ ନିମନ୍ତ୍ରଣ, ଦେବମୂର୍ତ୍ତି ।
ଅର୍ଚ୍ଚନୀୟ—ବି.ବଂ.(ଅର୍ଚ୍ଚ୍ + ଅନୀୟ)ପୂଜନୀୟ, ପୂଜ୍ୟ, (ସ୍ତ୍ରୀ) ଅର୍ଚ୍ଚନୀୟା ।

ଅର୍ଚ୍ଚା—ସ୍ତ୍ରୀ.ବଂ.(ଅର୍ଚ୍ଚ୍ + ଅ + ଆ)ପୂଜା, ପ୍ରତିମା, ପ୍ରତିକୃତି ।
ଅର୍ଚ୍ଚି—ସ୍ତ୍ରୀ. ବ. (ଅର୍ଚ୍ଚ୍ + ଇ)ଅଗ୍ନିଶିଖା, ଜ୍ୱାଳା, ତେଜ, ପ୍ରଭା, ଅଂଶୁ, କିରଣ, କୃଶାଶ୍ୱଙ୍କ ପତ୍ନୀ ।
ଅର୍ଚ୍ଚିତ—ବି. ବଂ. ପୂଜିତ, ଉପାସିତ, ମାନ୍ୟ, ଦୀପ୍ତ ।
ଅର୍ଚ୍ଚିରାଦିମାର୍ଗ—ପୁଂ.ବ.ଦେବତାମାନଙ୍କର ଗମନାଗମନର ଉତ୍ତର ପଥ ।
ଅର୍ଚ୍ଚିବାନ(ମାନ୍)—ପୁଂ.ବଂ. ଦୀପ୍ତିଯୁକ୍ତ ।
ଅର୍ଚ୍ଚିଷ୍ମାନ୍—ପୁଂ.ବ. ସୂର୍ଯ୍ୟ, ଅଗ୍ନି, ବିଷ୍ଣୁ, ଉପଦେଶବିଶେଷ ( ସ୍ତ୍ରୀ ) ଅର୍ଚ୍ଚିଷ୍ମତୀ, (ବଂ) ଦୀପ୍ତିମାନ୍, ପ୍ରଜ୍ୱଳିତ ।
ଅର୍ଚ୍ଚିଃ—ସ୍ତ୍ରୀ. ବ. ଅଗ୍ନିଶିଖା, ପୁଂ. ମୟୂଖ, କିରଣ, ଅଗ୍ନି, ଦୀପ୍ତିମାତ୍ର ।
ଅର୍ଚ୍ଚ୍ୟ—ବି, ବଂ. ପୂଜନୀୟ, ଅର୍ଚ୍ଚନୀୟ, ସ୍ତୁତ୍ୟ, (ସ୍ତ୍ରୀ) ଅର୍ଚ୍ଚ୍ୟା ।
ଅର୍ଜ୍ଜ—(ଧାତୁ) ଉପାର୍ଜନକରିବା, ରୋଜଗାର କରିବା ।
ଅର୍ଜ୍ଜକ—ପୁଂ.ବ. କାର୍ପାସ ବୃକ୍ଷ,କପାଗଛ, (ବଂ) ଉପାର୍ଜକ, ଯେ ଉପାର୍ଜ୍ଜନକରେ (ସ୍ତ୍ରୀ) ଅର୍ଜ୍ଜିକା ।
ଅର୍ଜନ—କ୍ଲୀ.ବ.(ଅର୍ଜ + ଣି.ଅନ) ଉପାର୍ଜନ, ରୋଜଗାର, ଆୟ, ଲାଭ, ପ୍ରାପ୍ତି ।
ଅର୍ଜୟିତା—ପୁଂ.ବଂ. ଅର୍ଜକ,ଉପାର୍ଜନକାରୀ (ସ୍ତ୍ରୀ) ଅର୍ଜୟିତ୍ରୀ ।
ଅର୍ଜିତ—ବି.ବଂ.(ଅର୍ଜ + ଣି.ତ)ଉପାର୍ଜିତ ଲବ୍ଧ, (ସ୍ତ୍ରୀ) ଅର୍ଜିତା ।
ଅର୍ଜିନଭିସ୍—(ଯା)ବି. ଦରଖାସ୍ତଲେଖକ, ନବସନ୍ଧା ।
ଅର୍ଜୁନ—ପୁଂ.ବ. (ଅର୍ଜ + ଉନ)ପାଣ୍ଡୁପୁତ୍ର ପାର୍ଥ, ତୃତୀୟପାଣ୍ଡବ,କାର୍ତ୍ତବୀର୍ଯ୍ୟାର୍ଜୁନ, ଶ୍ୱେତବର୍ଣ୍ଣ, ଧବଳ, ଚକ୍ଷୁରୋଗ, ଆଖିପତାରେ ଉଠିବା ବ୍ରଣ, ଆଲୁଅ, କର୍ପୂର, ରୌପ୍ୟ, ଚନ୍ଦ୍ରକିରଣ, ଆଖିରେ ଫୁଲ ପଡ଼ିବା, ସୁନା, ମୟୂର, ମାର, ଏକମାତ୍ର ପୁଅ, ଅର୍ଜୁନ ବୃକ୍ଷ,ଚର୍ମରୋଗବିଶେଷ (ବଂ) ଧଳା, ଉଜ୍ଜ୍ୱଳ,ନିର୍ମଳ । ରୌପ୍ୟ ନିର୍ମିତ, ଗ୍ରା. କୌଣସି ପୁରୁଷର ନାମ ।
ଅର୍ଜୁନଚ୍ଛବି—ବି. ବଂ. (ବ.ବ୍ରୀ) ଶ୍ୱେତ, ଧବଳ, ସାଦା ।
ଅର୍ଜୁନାରି—ପୁଂ.ବ.(୬ତତ୍)ପରଶୁରାମ ।
ଅର୍ଜୁନଧ୍ୱଜ—ପୁଂ. ବ. ଯେ ଅର୍ଜୁନଙ୍କର ରଥରେ ଧ୍ୱଜ, ହନୁମାନ୍ ।
ଅର୍ଜନପାଳି—ସ୍ତ୍ରୀ.ବ. ଶେତପାଳି ଲତାବିଶେଷ ।
ଅର୍ଜୁନବୃକ୍ଷ—ନଦୀସର୍ଜ,ଶାରତରୁ,ଇନ୍ଦ୍ରଦ୍ରୁ, କକୁଭ, ସମ୍ବର ।
ଅର୍ଜୁନୀ—ସ୍ତ୍ରୀ. ବ. (ଅର୍ଜୁନ + ଈ)ଖାଇ, କୁଟ୍ଟିଣୀ, ସର୍ପବିଶେଷ, କରତୋୟା ନଦୀ, ଅନିରୁଦ୍ଧର ସ୍ତ୍ରୀ ଉଷା, ଗାଈ ।
ଅର୍ଜୁନୋପମ—ପୁଂ.ବ. ସାଗୁଆନ ଗଛ, ଶାକବୃକ୍ଷ, (ବି) ଅର୍ଜୁନ ତୁଲ୍ୟ ।
ଅର୍ଣ୍ଣ—ପୁଂ. ବ. (ଋ + ଅନ) ଅକାରାଦି ବର୍ଣ୍ଣ, ଜଳ, ସାଗୁଆନ ଗଛ, ତରଙ୍ଗ, ଛନ୍ଦୋବିଶେଷ, (ସ୍ତ୍ରୀ) ଅର୍ଣ୍ଣାନଦୀ, (ଗ୍ରା) ଅନ୍ନ, ଭାତ ।
ଅର୍ଣ୍ଣଃ—କ୍ଲୀ.ବ. ସଲିଳ, ଜଳ ।
ଅର୍ଣ୍ଣବ—ପୁଂ. ବ. ସମୁଦ୍ର, ନଦୀ, ତରଙ୍ଗ, ଜଳବୃନ୍ଦ, ଗ୍ରହସଂଖ୍ୟା, ବାୟୁରାଶି, ସୂର୍ଯ୍ୟ, (ବଂ) ଜଳଯୁକ୍ତ, ଆନ୍ଦୋଳିତ, ଅସ୍ଥିର, ଫେଣଯୁକ୍ତ ।
ଅର୍ଣ୍ଣବଜ—ପୁଂ. ବ. (ଅର୍ଣ୍ଣବ—ଜନ୍ + ଡ.ଅ)ସମୁଦ୍ର ଫେନ,(ବଂ) ସମୁଦ୍ରଜାତ ଦ୍ରବ୍ୟ, (ସ୍ତ୍ରୀ) ଅର୍ଣ୍ଣବଜା ।
ଅର୍ଣ୍ଣବତରୀ—ବ.(ଅର୍ଣ୍ଣବ + ତରୀ)ଜାହାଜ, ନୌକା । [ ପ୍ରାନ୍ତ, ପୃଥିବୀ ।
ଅର୍ଣ୍ଣବନେମୀ—ସ୍ତ୍ରୀ. ବ. (ବ.ବ୍ରୀ) ସମୁଦ୍ର-
ଅର୍ଣ୍ଣବମନ୍ଦିର—ପୁଂ.ବ. (ବ.ବ୍ରୀ) ବରୁଣ ।
ଅର୍ଣ୍ଣବଯାନ—ବ. (ଅର୍ଣ୍ଣବ + ଯା + ଅନ) ଜାହାଜ । [ ଆକାଶ ।
ଅର୍ଣ୍ଣବସୂନୁ—ବ. ( ୬.ତତ୍ ) ମେଘ,
ଅର୍ଣ୍ଣବୋଦ୍ଭବ—ପୁଂ. ବ. ଅଗ୍ନିଜାର ବୃକ୍ଷ, ଚନ୍ଦ୍ର, (କ୍ଲୀ) ଅମୃତ, (ସ୍ତ୍ରୀ) ଶ୍ରୀ, ଲକ୍ଷ୍ମୀ ।
ଅର୍ଣ୍ଣସ୍—ପୁଂ. ବ. ସମୁଦ୍ର, ନଦୀ, ଜଳ, ବାୟୁରାଶି, ତରଙ୍ଗ, (ବି) ଜଳବିଶିଷ୍ଟ ।

ଅର୍ଣ୍ଣସ୍ୱତ—ପୁଂ.ବି. ସମୁଦ୍ର,(ବିଂ) ଜଳ-
ବିଶିଷ୍ଟ । [ ଜଳବିଶିଷ୍ଟ ।
ଅର୍ଣ୍ଣସ୍ୱିନ୍—ପୁଂ. ବି. ସମୁଦ୍ର, ( ବିଂ )
ଅର୍ଣ୍ଣୋଦ—ପୁଂ. ବି. (ଅର୍ଣ୍ଣ + ଦା + ଅ)
ମାତା, ମେଘ, ମୁଥା, ବିଂ)ଜଳଦାତା ।
ଅର୍ଣ୍ଣୋଭବ—ପୁଂ. ବି. ଶଙ୍ଖ, ( ବିଂ )
ଜଳଜାତ ଦ୍ରବ୍ୟମାତ୍ର,(ସ୍ତ୍ରୀ) ଅର୍ଣ୍ଣୋଭବା ।
ଅର୍ତ୍ତଗଳ(ଆ)—ପୁଂ.ବି.ନୀଳାଝିଣ୍ଟୀ,କୁରୁ-
ବକ ଗଛ । [ଅପବାଦ, କଳଙ୍କ ।
ଅର୍ତ୍ତନ—କ୍ଲୀ. ବି. (ଋତ୍ + ଅନ) ନିନ୍ଦା,
ଅର୍ତ୍ତି—ସ୍ତ୍ରୀ.ବି.(ଅର୍ଦ୍ଦ + ତି)ପୀଡ଼ା,ଧନୁର
ଅଗ୍ରଭାଗ, ଯନ୍ତ୍ରଣା ।
ଅର୍ତ୍ତିକ—ବି.ବିଂ. (ଅର୍ତ୍ତି + କଣ୍)ପୀଡ଼ା-
ଯୁକ୍ତ, ପୀଡ଼ିତ, (ସ୍ତ୍ରୀ) ଅର୍ତ୍ତିକା, ( ବି )
ପିଷ୍ଟକବିଶେଷ । [ ଭଗ୍ନୀ ।
ଅର୍ତ୍ତିକା—ସ୍ତ୍ରୀ.ବି.(ନାଟକୀୟ ଭାଷା)ବଡ଼-
ଅର୍ତ୍ତିୁକ—ପୁଂ.ବିଂ.ଋତ୍ୱିକ,ଅନ୍ୟକୁ ପରା-
ଭୂତ କରିବାକୁ ଇଚ୍ଛୁକ ।
ଅର୍ଥ—ବି. ( ଅର୍ଥ + ଅ ) ପ୍ରାର୍ଥନା,
ଧନ, ଐଶ୍ୱର୍ଯ୍ୟ, ପ୍ରୟୋଜନ, ତାତ୍ପର୍ଯ୍ୟ,
ଉଦ୍ଦେଶ୍ୟ, କାରଣ, ବିଷୟ, ସମ୍ପତ୍ତି,
ଇନ୍ଦ୍ରିୟ ଭୋଗ୍ୟବସ୍ତୁ, ( ଜ୍ୟୋତିଷ )
ଲଗ୍ନର ଦ୍ୱିତୀୟସ୍ଥାନ, ପ୍ରକାର, ନିଷେଧ,
ଅର୍ଘ୍ୟ, ମୂଲ୍ୟ (ଗ୍ରା) ପାଇଁ ।
ଅର୍ଥକର—ପୁଂ. ବିଂ. (ଅର୍ଥ + କୃ + ଅ)
ଯହିଁରୁ ଅର୍ଥଲବ୍ଧହୁଏ, (ସ୍ତ୍ରୀ) ଅର୍ଥକରୀ ।
ଅର୍ଥକାମୀ—ପୁଂ. ବିଂ. ବିତ୍ତାଭିଳାଷୀ,
ଧନଲୋଭୀ ।
ଅର୍ଥକାର୍ଶ୍ୟ—କ୍ଲୀ.ବି. ( ୬.ତତ୍ ) ଧନ-
କ୍ଷୀଣତା, ଦାରିଦ୍ର୍ୟ ।
ଅର୍ଥକୃଚ୍ଛ୍ର—କ୍ଲୀ. ବି. ଧନର କଷ୍ଟ, କଷ୍ଟ-
ସାଧ୍ୟ ପ୍ରୟୋଜନ, ଯେ ପ୍ରୟୋଜନ
କଷ୍ଟସାଧ୍ୟ ।
ଅର୍ଥକୃତ୍—ବିଂ. ଅର୍ଥକର ।
ଅର୍ଥକୃତ୍ୟ—ବି. ୬ତତ୍; (ଅର୍ଥ + କୃତ୍ୟ)
କୌଣସି ବିଷୟର ମୀମାଂସା ।
ଅର୍ଥକ୍ରିୟା—ବି. (କ. ଧା) ଅନ୍ୟମାନଙ୍କ
ଉପକାରରେ ଲାଗିବା,ବିଶିଷ୍ଟଉଦ୍ଦେଶ୍ୟରେ
କରାଯିବା କର୍ମ ।

ଅର୍ଥକ୍ରମ—ପୁଂ. ବି. ଜୈମିନିଙ୍କ ଉକ୍ତ
ଛଅଗୋଟି କ୍ରମର ଅନ୍ତର୍ଗତ କ୍ରମ-
ବିଶେଷ ।
ଅର୍ଥଗତ—ବି. ବିଂ. ଅର୍ଥନଷ୍ଟ, ଗତାର୍ଥ ।
ଅର୍ଥଗରୀୟାନ୍—ପୁଂ.ବିଂ. ଅର୍ଥଗୌରବ-
ଯୁକ୍ତ, ତାତ୍ପର୍ଯ୍ୟପୂର୍ଣ୍ଣ, ଭାବମୟ, (ସ୍ତ୍ରୀ)
ଅର୍ଥଗରୀୟସୀ ।
ଅର୍ଥଗୃଧ୍ନୁ—ବି. ବିଂ. ଅର୍ଥଲୋଲୁପ,
ଧନଲୋଭୀ, କୃପଣ ।
ଅର୍ଥଗୌରବ—କ୍ଲୀ. ବି. ଅଳ୍ପକଥାରୁ
ଅଧିକାର୍ଥପ୍ରକାଶ, ଗୂଢ଼ାର୍ଥତା, ଧନ-
ଗର୍ବ, ଧନଯୋଗୁ ପୂଜା ବା ମାନ୍ୟ ।
ଅର୍ଥଗ୍ରହ—ପୁଂ.ବି. (୬ତତ୍) ଅର୍ଥବୋଧ,
ଅଭିଧେୟ ଜ୍ଞାନ ।
ଅର୍ଥଘ୍ନ—ବି. ବିଂ. (ଅର୍ଥ + ହନ୍ +
କ.ଅ)ଅର୍ଥନାଶକ, ଧନକ୍ଷୟକାରୀ, (ସ୍ତ୍ରୀ)
ଅର୍ଥଘ୍ନୀ ।
ଅର୍ଥଚନ୍ତନ—କ୍ଲୀ.ବି. (୬ତତ୍) ତାତ୍ପର୍ଯ୍ୟ-
ଭାବନା, ସ୍ୱପରରାଷ୍ଟ୍ରଚିନ୍ତା ।
ଅର୍ଥଚିନ୍ତା—ସ୍ତ୍ରୀ. ବି. ମନ୍ତ୍ରୀର କର୍ତ୍ତବ୍ୟ,
ରାଜ୍ୟାଙ୍ଗତନ୍ତ୍ର ଓ ଆବାପାଦିର ଚିନ୍ତା ।
ଅର୍ଥଜାତ—କ୍ଲୀ. ବି. ଅର୍ଥସମୂହ, (ବିଂ)
ଯାହାର ଧନ ଅଛି ।
ଅର୍ଥଜ୍ଞ—ପୁଂ. ବିଂ. ( ଅର୍ଥ + ଜ୍ଞା + କ )
ପ୍ରୟୋଜନଜ୍ଞ, (ସ୍ତ୍ରୀ) ଅର୍ଥଜ୍ଞା ।
ଅର୍ଥତଃ—(ଅବ୍ୟ)ଅର୍ଥହେତୁ ଅର୍ଥାନୁସାରେ
ଅର୍ଥାତ୍, ବସ୍ତୁତଃ, ଫଳତଃ ।
ଅର୍ଥତତ୍ତ୍ୱ—କ୍ଲୀ. ବି. (୬ତତ୍) ପ୍ରକୃତ-
ବିଷୟ, ସ୍ୱରୂପ, ଧନ-ବିଜ୍ଞାନ ।
ଅର୍ଥଦ—ବି. ବିଂ. ( ଅର୍ଥ + ଦା + ଅ )
ଧନଦ, ଧନଦାତା, ବଦାନ୍ୟ,ଅନୁକୂଳ,
ଅନୁଗ୍ରହପରାୟଣ, (ସ୍ତ୍ରୀ) ଅର୍ଥଦା, (ପୁଂ)
କୁବେର । [ବିଶେଷ ।
ଅର୍ଥଦୂଷଣ—କ୍ଲୀ.ବି.ଅର୍ଥନାଶକବ୍ୟସନ
ଅର୍ଥନା—ସ୍ତ୍ରୀ.ବି.ଭିକ୍ଷା,ଯାଚଞ୍ଚା,ଅର୍ଦ୍ଦନା ।
ଅର୍ଥପତି—ପୁଂ. ବି. (୬ତତ୍)(ଅର୍ଥ + ପା
+ ତି)ଧନୀ ବ୍ୟକ୍ତି, ରାଜା, କୁବେର ।
ଅର୍ଥପର—ବି. ବିଂ. (ବ.ବ୍ରୀ)ଅର୍ଥଲୋଭୀ,
ଧନାର୍ଜନରେ ଆସକ୍ତ, କୃପଣ ।

ଅର୍ଥପିଶାଚ—ବିଂ(ଅର୍ଥ + ପିଶାଚ)ଅତ୍ୟନ୍ତ
ଲୋଭୀ ।
ଅର୍ଥପ୍ରକୃତି—ସ୍ତ୍ରୀ. ପ୍ରୟୋଜନର ହେତୁ,
ନାଟକାଙ୍ଗକାର୍ଯ୍ୟର କାରଣପଞ୍ଚକ ।
ଅର୍ଥପ୍ରୟୋଗ—ପୁଂ.ବି. (ଅର୍ଥ + ପ୍ର + ଯୁଜ୍
+ ଅ) ଋଣରେ ଟଙ୍କା ଖଟାଇବା,,
ମହାଜନୀ, ଧନବୃଦ୍ଧିଜୀବିକା ।
ଅର୍ଥପ୍ରାପ୍ତ—ପୁଂ.ବି. ତାତ୍ପର୍ଯ୍ୟଦ୍ୱାରା ଯାହା
ବୁଝିବାକୁ ହୁଏ ।
ଅର୍ଥବନ୍ଧ—ପୁଂ. ବି. ଶବ୍ଦାଦିଦ୍ୱାରା ବନ୍ଧ ।
ଅର୍ଥଭାବନା—ସ୍ତ୍ରୀ. ବି. ଅର୍ଥଚିନ୍ତା, ସର୍ଗ-
ଜନକ ମାତ୍ରା ସାଧନ ଭାବନା ।
ଅର୍ଥମର୍ଯ୍ୟାଦା—ସ୍ତ୍ରୀ. ବି. ସମସ୍ତ କାରଣ-
ବସ୍ତୁର ମେଳନ ।
ଅର୍ଥମାତ୍ର—କ୍ଲୀ. ବି. ଅବଧାରିତ ଅର୍ଥ ।
ଅର୍ଥମାତ୍ରା—ସ୍ତ୍ରୀ. ବି. ଅଳ୍ପଧନ, ଅଳ୍ପ-
ଧନାଂଶ, ବହୁଧନ, ଧନର ପରିମାଣ ।
ଅର୍ଥଲୁବ୍ଧ—ବିଂ. (ଅର୍ଥ + ଲୁବ୍ଧ)ଧନ-
ଲୋଭୀ ।
ଅର୍ଥବାଦ—ପୁଂ. ବି. ପ୍ରଶଂସନୀୟ ଗୁଣ-
ବାଚକ ଶବ୍ଦ, ପ୍ରଶଂସନୀୟ ବାକ୍ୟ,
ଉଦ୍ଦେଶ୍ୟ କଥନ, ପ୍ରାର୍ଥନାପତ୍ର, ସ୍ୱାଭି-
ପ୍ରାୟୋକ୍ତି, ଏହା ଦୁଇପ୍ରକାର, ନିନ୍ଦାର୍ଥ-
ବାଦ, ସ୍ତୁତ୍ୟର୍ଥବାଦ ।
ଅର୍ଥବାନ୍—ପୁଂ.ବି (ଅର୍ଥ + ବତ୍)ଅର୍ଥ-
ଯୁକ୍ତ, ଧନୀ, ସାର୍ଥକ, ସାଭିପ୍ରାୟ,
ଉଦ୍ଦେଶ୍ୟବିଶିଷ୍ଟ (ସ୍ତ୍ରୀ) ଅର୍ଥବତୀ ।
ଅର୍ଥବିଜ୍ଞାନ—କ୍ଲୀ. ବି. ଅର୍ଥବୋଧ, ଶବ୍ଦ-
ଶକ୍ତିଗ୍ରହଣ, ଅର୍ଥନୀତି ।
ଅର୍ଥବିତ୍—ବି.ବିଂ.(ଅର୍ଥ + ବିଦ୍ + କ୍ୱିପ୍.
କ) ଅର୍ଥଜ୍ଞ, ଶବ୍ଦାର୍ଥ-ପଣ୍ଡିତ, ଜ୍ଞାନୀ,
ତତ୍ତ୍ୱଜ୍ଞ, ମର୍ମଜ୍ଞ । [ବୋଧ ।
ଅର୍ଥବିପ୍ରକର୍ଷ—ପୁଂ.ବି. ବିଳମ୍ବରେ ଅର୍ଥ-
ଅର୍ଥବୋଧ—ବି. ୬ତତ୍;(ଅର୍ଥ + ବୋଧ)
ପଦର ଅର୍ଥ ବା ମର୍ମବିଷୟରେ ପ୍ରବେଶ ।
ଅର୍ଥବ୍ୟବହାର—ପୁଂ.ବି. (୬ତତ୍)ଧନର
ଯଥୋଚିତ ଆଚରଣ, ଅର୍ଥନୀତି-ଶାସ୍ତ୍ର ।

ଅର୍ଥବ୍ୟୟଜ୍ଞ—ପୁଂ.ବିଂ. ଧନ କି ଉଦ୍ଦେଶ୍ୟରେ କିପରି ବ୍ୟବହୃତ ହେବ, ଏହା ଜାଣିବା ଲୋକ, ନ୍ୟାଯ୍ୟବ୍ୟୟୀ ।

ଅର୍ଥଶାଳୀ—ପୁଂ.ବିଂ. (ଅର୍ଥ + ଶାଳିନ୍) ଧନଶାଳୀ,ଧନୀ, ଅର୍ଥଯୁକ୍ତ, (ସ୍ତ୍ରୀ) ଅର୍ଥଶାଳିନୀ ।

ଅର୍ଥଶାସ୍ତ୍ର—କ୍ଲୀ. ବି. ଅର୍ଥନୀତି-ବିଷୟକ ଶାସ୍ତ୍ର,ଶବ୍ଦାର୍ଥବିଷୟକ ବିଦ୍ୟା,ଅଭିଧାନ ।

ଅର୍ଥଶାସ୍ତ୍ରଘଟିତ—ତ୍ରି. ବିଂ. ଅର୍ଥନୀତି-ସମ୍ବନ୍ଧୀୟ, (ସ୍ତ୍ରୀ) ଅର୍ଥଶାସ୍ତ୍ରଘଟିତା ।

ଅର୍ଥଶୂନ୍ୟ—ତ୍ରି.ବିଂ. (୩.ତତ୍) ଅର୍ଥହୀନ, ତାତ୍ପର୍ଯ୍ୟବିହୀନ, ଅନର୍ଥକ, ନିରର୍ଥକ, ବୃଥା, ହୀନ,ଦରିଦ୍ର, ଅସଫଳ, ଅକୃତକାର୍ଯ୍ୟ, (ସ୍ତ୍ରୀ) ଅର୍ଥଶୂନ୍ୟା ।

ଅର୍ଥଶୌଚ—କ୍ଲୀ. ବି. ନ୍ୟାୟୋପାର୍ଜନ, ଅର୍ଥାର୍ଜନର ଶୁଦ୍ଧି ।

ଅର୍ଥସଂଗ୍ରହ—ପୁଂ. ବି. ଧନସଞ୍ଚୟ ।

ଅର୍ଥସଂସ୍ଥାନ—କ୍ଲୀ.ବି. (ଅର୍ଥ + ସମ + ସ୍ଥା + ଅନ) ଧନର ସ୍ଥିତି, ଅର୍ଥସଙ୍ଗତି, ଧନାଗାର, ଅର୍ଥସଞ୍ଚୟ ।

ଅର୍ଥସଞ୍ଚୟ—ପୁଂ. ବି. ଧନସଂଗ୍ରହ, ଧନସମୂହ ।

ଅର୍ଥସାଧନ—ବି. (୬ ତତ୍) (ଅର୍ଥ + ସାଧନ) ଉଦ୍ଦେଶ୍ୟସିଦ୍ଧି, ଧନଉପାର୍ଜନ, ଗୁଣି ବିଦ୍ୟାରେ ସିଦ୍ଧିବିଶେଷ ।

ଅର୍ଥସମାଜ—ପୁଂ.ବି. ଧନସମୂହ, ଅଭିଧେୟସମୂହ, କାରଣସମୂହ ।

ଅର୍ଥସମାହାର—ପୁଂ. ବି. ଧନୋପାର୍ଜନ, ଧନସଂଗ୍ରହ, ଅର୍ଥର ସଂକ୍ଷେପ କରିବା ।

ଅର୍ଥସମ୍ବନ୍ଧ—ପୁଂ. ବି. ଧନସମ୍ବନ୍ଧ, ଧନସଂସର୍ଗ, ଅଭିଧେୟସଂସର୍ଗ ।

ଅର୍ଥସାପେକ୍ଷ—ତ୍ରି.ବିଂ.ଧନାପେକ୍ଷ,ଯାହାର ଧନ ଦରକାର ଅଛି ।

ଅର୍ଥସିଦ୍ଧ—ତ୍ରି. ବିଂ. ସିଦ୍ଧମନୋରଥ, ସଫଳକାମ,କୃତକାର୍ଯ୍ୟ,(ସ୍ତ୍ରୀ)ଅର୍ଥସିଦ୍ଧା ।

ଅର୍ଥସିଦ୍ଧି—ଯେରୂପ ଶବ୍ଦ ନ ଥିଲେ ମଧ୍ୟ କେବଳ ଯୋଗ୍ୟତାଦ୍ୱାରା ଯେଉଁ ପଦାର୍ଥ ସିଦ୍ଧ ହୁଏ ।

ଅର୍ଥସିଦ୍ଧି—ସ୍ତ୍ରୀ.ବି. ଧନସିଦ୍ଧି,ପ୍ରୟୋଜନ ସିଦ୍ଧି, ଉଦ୍ଦେଶ୍ୟସିଦ୍ଧି, ଇଷ୍ଟସିଦ୍ଧି, ସାଫଲ୍ୟ ।

ଅର୍ଥହର—ତ୍ରି.ବିଂ. ଯେ ପରଧନ ହରଣ କରେ, ଚୋର, (ବି) ଧନାପହାରକ, ତସ୍କର ।

ଅର୍ଥହୀନ—ତ୍ରି.ବିଂ. (୩.ତତ୍) ଧନହୀନ, ଦରିଦ୍ର,ଅନର୍ଥକ,ଯେ କଥାର ଅର୍ଥ ନାହିଁ, (ସ୍ତ୍ରୀ) ଧନହୀନା ।

ଅର୍ଥାଗମ—ପୁଂ.ବି. (୬.ତତ୍) (ଅର୍ଥ + ଆଗମ) ଆୟ, ଆମଦାନୀ, ଶବ୍ଦାର୍ଥର ଉପସ୍ଥିତି, ଧନପ୍ରାପ୍ତି, ଉପାର୍ଜନ ।

ଅର୍ଥାତ୍—(ଅବ୍ୟ) ଅର୍ଥବଶତଃ, ତାତ୍ପର୍ଯ୍ୟହୀନ, ବସ୍ତୁତଃ, ଫଳତଃ ।

ଅର୍ଥାର୍ଥ—ବିଂ. ବି.ସ୍ମୀ; (ଅର୍ଥ + ଅର୍ଥ) ଉଦ୍ଦେଶ୍ୟସାଧନପାଇଁ ଉପଯୋଗୀ, (କ୍ରି. ବି.) ଅର୍ଥ ବା ଧନ ନିମନ୍ତେ କସ୍ୟବିନ୍ୟସ୍ତାଦି ।

ଅର୍ଥାର୍ଥୀ—ପୁଂ.ବିଂ. ଧନ ପାଇବାପାଇଁ ପ୍ରୟାସୀ, ଉଦ୍ଦେଶ୍ୟ ଲଭ କରିବାକୁ ଇଚ୍ଛୁକ, ସ୍ୱାର୍ଥାନ୍ୱେଷୀ ।

ଅର୍ଥାଧିକାରୀ—ପୁଂ.ବିଂ. ଧନର ଅଧିକାରବିଶିଷ୍ଟ, ଧନବାନ୍, ଧନୀ, ଧନରକ୍ଷକ ।

ଅର୍ଥାଧିକାର—ପୁଂ.ବି. ଧନର ଅଧିକାର, ଧନରକ୍ଷକତ୍ୱ, ଧନାଧ୍ୟକ୍ଷତ୍ୱ ।

ଅର୍ଥାନ୍ତର—କ୍ଲୀ.ବି. (ଅନ୍ୟ + ଅର୍ଥ)ଅନ୍ୟ ଅର୍ଥ, ଅର୍ଥଭେଦ, କୌଣସି ଅର୍ଥର ବିଭିନ୍ନତା, ବିରୁଦ୍ଧାର୍ଥ ।

ଅର୍ଥାନ୍ତରନ୍ୟାସ—ପୁଂ.ବି.ଅର୍ଥାଳଙ୍କାରବିଶେଷ ।

ଅର୍ଥାନ୍ତରେ—ଗ୍ରା. ଅବ୍ୟ, ଅନ୍ୟଢଙ୍ଗରେ, ଅନ୍ୟଭାବରେ, ଅନ୍ୟ ଅର୍ଥରେ ।

ଅର୍ଥାନ୍ୱିତ—ତ୍ରି.ବିଂ.ଅର୍ଥଯୁକ୍ତ,ଅଭିଧେୟବିଶିଷ୍ଟ, ସାର୍ଥକ, ପ୍ରୟୋଜନଯୁକ୍ତ, ଉଦ୍ଦେଶ୍ୟବିଶିଷ୍ଟ, ଅର୍ଥଶାଳୀ, ଧନବାନ୍, ଧନୀ,(ସ୍ତ୍ରୀ) ଅର୍ଥାନ୍ୱିତା ।

ଅର୍ଥାପତ୍ତି—ବି.୬ତତ୍; (ଅର୍ଥ + ଆପତ୍ତି) ଅର୍ଥର ପ୍ରାପ୍ତି, ଆନୁମାନିକ ପ୍ରସ୍ତାବନାବିଶେଷ, ଅର୍ଥାଳଙ୍କାରବିଶେଷ ।

ଅର୍ଥିକ—ପୁଂ.ବିଂ. ଯେ କୌଣସି ବିଷୟ ଗ୍ରହଣ ଥାଏ,ଭିକ୍ଷୁକ,ଯାଚକ,(ବି.)ରାଜାମାନଙ୍କୁ ନିଦ୍ରାରୁ ଉଠାଇବାପାଇଁ ସ୍ତୁତିପାଠକ ବ୍ୟକ୍ତି, ବନ୍ଦୀ ବୈତାଳିକ, ଭାଟ ।

ଅର୍ଥିତ—ତ୍ରି. ବିଂ.ଯାଚିତ,ଯାହାକୁ ମଗାଯାଇଛି, ପ୍ରାର୍ଥିତ, ଜିଜ୍ଞାସିତ, ପୃଷ୍ଟ, ବାଞ୍ଛିତ, ଅଭିଳଷିତ ।

ଅର୍ଥୀ—ପୁଂ.ବିଂ. ଯାଚକ, ସେବକ,ଅନୁଜୀବୀ, ଅର୍ଥଶାଳୀ,ବାଦୀ ବିବାଦୀ, ସହଚର, ସହାୟପ୍ରାର୍ଥୀ, (ସ୍ତ୍ରୀ) ଅର୍ଥିନୀ ।

ଅର୍ଥିସାତ୍—(ଅବ୍ୟ) ଯାଚକର ଅଧୀନକୃତ ।

ଅର୍ଥିତା—ସ୍ତ୍ରୀ. ବି. (ଅର୍ଥିନ୍ + ତା) ଅର୍ଥୀ ବା ପ୍ରାର୍ଥୀର ଅବସ୍ଥା, ଇଚ୍ଛା, ବାଞ୍ଛା, ପ୍ରାର୍ଥନା, ଅନୁରୋଧ ।

ଅର୍ଥେ—(ଅବ୍ୟ) ପାଇଁ, ନିମିତ୍ତ, ଉଦ୍ଦେଶ୍ୟରେ(ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୁଏ) ଯଥା—ଭୋଜନାର୍ଥେ ।

ଅର୍ଥୋପକ୍ଷେପକ—ପୁଂ.ବି.ନାଟକର ଅଙ୍ଗବିଶେଷ, ବିଷ୍କମ୍ଭକ ।

ଅର୍ଥୋଷ୍ମା—ବି. (ଅର୍ଥ + ଉଷ୍ମନ୍) ଧନଗର୍ବ,ଧନଶାଳିତ୍ୱ, ବେଶି ଧନ ହେବାରୁ ମନୁଷ୍ୟମନରେ ଉପୁଜିବା ଗରମି ।

ଅର୍ଥ୍ୟ—ତ୍ରି.ବିଂ.ନ୍ୟାଯ୍ୟ,ସାର୍ଥକ,ଯୁକ୍ତିଯୁକ୍ତ, ସଂପ୍ରୟୋଜନ,ଧନବାନ୍‌ପଣ୍ଡିତ,ଉଚିତ, ପ୍ରାର୍ଥିତ ହେବାର ଯୋଗ୍ୟ (ବି) ଗେରୁ, ଶିଳାଜତୁ ।

ଅର୍ଦ୍ଦ—(ଧାତୁ) ପୀଡ଼ାଦେବା, ଆଘାତକରିବା,ହତ୍ୟା କରିବା,ପ୍ରାର୍ଥନା କରିବା, ମାଗିବା, କଷ୍ଟ ଦେବା, କ୍ଷତକରିବା ।

ଅର୍ଦ୍ଦଉଲ—ଗ୍ରା.ବି.ଅର୍ଦ୍ଦୋଳ,ଅଳି, ଗୋଳମାଳ, ଜଞ୍ଜାଳ, ଗୁରୁଦାୟିତ୍ୱ, କାର୍ଯ୍ୟବ୍ୟସ୍ତତା ।

ଅର୍ଦ୍ଦନ—କ୍ଲୀ.ବି (ଅର୍ଦ୍ଦ + ଅନ) ଯାଚନ, ପୀଡ଼ନ, ହନନ, ଗମନ, ରଣ, ହିଂସା, ଦୁଃଖ, ଶିବ, ବିନାଶନ (ସ୍ତ୍ରୀ) ଅର୍ଦ୍ଦନା, (ବିଂ) ଚଞ୍ଚଳ, ଗତିଶୀଳ ।

ଅର୍ଦ୍ଦନା—ସ୍ତ୍ରୀ.ବି. ଭିକ୍ଷା, ବଧ, ହିଂସା ।

ଅର୍ଦ୍ଦନି—ବି. (ଅର୍ଦ୍ଦ + ଅନ + ଇ) ରୋଗ, ପ୍ରାର୍ଥନା କରିବା, ମାଗିବା, ଅଗ୍ନି ।

ଅର୍ଦ୍ଦଲି--(ଗ୍ରା) ବ. ଅର୍ଡ୍‌ର୍ଲି, ଆଜ୍ଞାବାହକ ଭୃତ୍ୟ, ବୋଲକରା ଚାକର ।

ଅର୍ଦ୍ଦାହଳଆ-ଗ୍ରା.ବ. ଅନବସ୍ଥିତ,ଗୋଲମାଲଆ, ଅଖାଡ଼ୁଆ,ଅଧୀର, ଅସ୍ତବ୍ୟସ୍ତ ।

ଅର୍ଦ୍ଦିତ—ବି.ବଂ. (ଅର୍ଦ୍ଦ + ତ) ଯାଚିତ, ଗତ, ପୀଡ଼ିତ, ହିଂସିତ, ବିନଷ୍ଟ ପ୍ରାର୍ଥିତ, ହତ,ଅନୁରୁଦ୍ଧ (ବ) ବାତବ୍ୟାଧିବିଶେଷ, ଧନୁଷ୍ଟଙ୍କାର ରୋଗ ।

ଅର୍ଦ୍ଦିତୀ—ପୁଂ. ବଂ. ମୁଖର ପକ୍ଷାଘାତଯୁକ୍ତ ରୋଗୀ, (ସ୍ତ୍ରୀ) ଅର୍ଦ୍ଦିନୀ ।

ଅର୍ଦ୍ଧ—ପୁଂ.ବ. (ଋଧ + ଅ) ଅଂଶ, ଏକଦେଶ,ସମାନ ଅଂଶ,କୌଣସି ପଦାର୍ଥର ଦୁଇ ସମାନ ଅଂଶରୁ ଏକଅଂଶ, ଅଧେ, (ବଂ) ଦ୍ୱିଭାଗୀକୃତ, ଅଧେ ପରିମିତ ।

ଅର୍ଦ୍ଧକୃତ—ବି.ବଂ.(୭ତତ୍ପୁ)ଯାହା ସମ୍ପୂର୍ଣ୍ଣ କରା ହୋଇନାହିଁ,ଦ୍ୱିଧା, ବିଭକ୍ତ (ସ୍ତ୍ରୀ) ଅର୍ଦ୍ଧକୃତା ।

ଅର୍ଦ୍ଧକଥିତ—ବି.ବଂ.(୭.ତତ୍ପୁ) ଅର୍ଦ୍ଧୋକ୍ତ, ଅସମ୍ପୂର୍ଣ୍ଣଭାବେ ଭାଷିତ ।

ଅର୍ଦ୍ଧକୌଡ଼ିବକ—ବି. ବଂ. ଅର୍ଦ୍ଧକୁଡ଼ପରିମାଣର ଯୋଗ୍ୟ, ଦୁଇକୁଡ଼ରୁ ଏକକୁଡ଼, ଅର୍ଦ୍ଧ ।

ଅର୍ଦ୍ଧଖାର—କ୍ଲୀ.ବ. ଖାରର ଅର୍ଦ୍ଧେକ ।

ଅର୍ଦ୍ଧଗଙ୍ଗା—ସ୍ତ୍ରୀ.ବ. (କ.ଧା) କାବେରୀ ନଦୀ । [ବିଶେଷ ।

ଅର୍ଦ୍ଧଗର୍ଭ—ବି. ବଂ. ସୂର୍ଯ୍ୟର କିରଣ-

ଅର୍ଦ୍ଧଗୁଚ୍ଛ—ପୁଂ. ବ. ଚବିଶିବଂଶତ ଗୁଚ୍ଛକପରିମାଣ, ଅଧଗୋଚ୍ଛେ ।

ଅର୍ଦ୍ଧଗ୍ରାସ-ପୁଂ.ବ.(୭ତତ୍ପୁ)ଗ୍ରହଣକାଳରେ ଚନ୍ଦ୍ର ସୂର୍ଯ୍ୟର ଅର୍ଦ୍ଧାଂଶର ଅନ୍ତର୍ଦ୍ଧାନ ।

ଅର୍ଦ୍ଧଚନ୍ଦ୍ର—ପୁଂ.ବ. ୬.ତତ୍ପୁ; (ଚନ୍ଦ୍ର + ଅର୍ଦ୍ଧ) ଚନ୍ଦ୍ରର ଅର୍ଦ୍ଧଭାଗ, ନଖକ୍ଷତଚିହ୍ନ, ଗଳହସ୍ତ,ଧକ୍‌କା, ଅର୍ଦ୍ଧରୌପ୍ୟମୁଦ୍ରା, ମୟୂରଚନ୍ଦ୍ରିକା, ଅନୁସ୍ୱାର, ଅଷ୍ଟମୀଚନ୍ଦ୍ର, ଅର୍ଦ୍ଧଚନ୍ଦ୍ରାକୃତି ଶର ।

ଅର୍ଦ୍ଧଚନ୍ଦ୍ରକ-ବ.ଅର୍ଦ୍ଧଚନ୍ଦ୍ରାକୃତି ବାଣର, ଅର୍ଦ୍ଧଚନ୍ଦ୍ରାକୃତି କରତଳ ।

ଅର୍ଦ୍ଧଚନ୍ଦ୍ରା—ସ୍ତ୍ରୀ.ବ. କଳା ତଉଡ଼ି ।

ଅର୍ଦ୍ଧଚନ୍ଦ୍ରାକୃତି—ସ୍ତ୍ରୀ.ବ. ଗଳହସ୍ତ ।

ଅର୍ଦ୍ଧଚୋଲକ—କ୍ଲୀ.ବ. କାଞ୍ଚୁଲି ।

ଅର୍ଦ୍ଧଜରତୀୟନ୍ୟାୟ—ବ. ନ୍ୟାୟଶାସ୍ତ୍ରରେ ପ୍ରସିଦ୍ଧ ।

ଅର୍ଦ୍ଧଜାହ୍ନବୀ—ସ୍ତ୍ରୀ.ବ. କାବେରୀ ନଦୀ ।

ଅର୍ଦ୍ଧଜୀବିତ—ବି.ବଂ. ଅର୍ଦ୍ଧପରିମାଣରେ ଜୀବିତ,ଅର୍ଦ୍ଧମୃତ (ସ୍ତ୍ରୀ) ଅର୍ଦ୍ଧଜୀବିତା ।

ଅର୍ଦ୍ଧଚକ୍ର—ପୁଂ. ବ. ଅସମ୍ପୂର୍ଣ୍ଣ ଚକ୍ର, ନେପାଳ ଲିମ୍ବୁ ।

ଅର୍ଦ୍ଧଦିନ—କ୍ଲୀ. ବ. ସାଢ଼େସାତ ମୁହୂର୍ତ୍ତକାଳ, ଦ୍ୱିପ୍ରହର ।

ଅର୍ଦ୍ଧଦୃଷ୍ଟି—ସ୍ତ୍ରୀ. ବ. (କ.ଧା) ଅସମ୍ପୂର୍ଣ୍ଣଦର୍ଶନ, କଟାକ୍ଷ ।

ଅର୍ଦ୍ଧଦେବ—ପୁଂ. ବ. ଦେବତାସମୀପରେ ବର୍ତ୍ତମାନ ।

ଅର୍ଦ୍ଧଧାର—କ୍ଲୀ. ବ. ବୈଦ୍ୟଶାସ୍ତ୍ରୋକ୍ତ ଅସ୍ତ୍ରବିଶେଷ ।

ଅର୍ଦ୍ଧନାରାୟଣ—କ୍ଲୀ. ବ. ଗଙ୍ଗାପ୍ରବାହଠାରୁ ଚାରିହାତପରିମିତ ନାରାୟଣସ୍ୱାମୀଙ୍କ ସ୍ଥାନବିଶେଷ ।

ଅର୍ଦ୍ଧନାରୀଶ—ପୁଂ. ବ. (କ.ଧା) ହରଗୌରୀରୂପରେ ଶିବଙ୍କ ମୂର୍ତ୍ତିଭେଦ, ମହାଦେବ ।

ଅର୍ଦ୍ଧନାରୀଶ୍ୱର—ପୁଂ. ବ. ମହାଦେବ ।

ଅର୍ଦ୍ଧନାବ—କ୍ଲୀ.ବ. ନୌକାର ଅର୍ଦ୍ଧାଂଶ ।

ଅର୍ଦ୍ଧନିମୀଳିତ—ବି.ବଂ. ଆଂଶିକଭାବେ ମୁଦ୍ରିତ, କେତେକ ଅଂଶ ଖୋଲା ଓ କେତେକ ଅଂଶ ବୁଜା (ସ୍ତ୍ରୀ) ଅର୍ଦ୍ଧନିମୀଳିତା ।

ଅର୍ଦ୍ଧନିଶା—ସ୍ତ୍ରୀ. ବ. ଅର୍ଦ୍ଧରାତ୍ରି ।

ଅର୍ଦ୍ଧପଣ—ପୁଂ.ବ.ପଣର ଅର୍ଦ୍ଧ,ଦଶଗଣ୍ଡା, କୋଡ଼ିଏ ଗଣ୍ଡାରୁ ଅଧେ ।

ଅର୍ଦ୍ଧପଥ—କ୍ଲୀ.ବ. ପଥର ଅର୍ଦ୍ଧାଂଶ ।

ଅର୍ଦ୍ଧପଥପିଣ୍ଡ—ଗ୍ରା. ବ. ଅର୍ଦ୍ଧପଥଶ୍ରାଦ୍ଧବେଳେ ମୃତ ବ୍ୟକ୍ତିର ପ୍ରେତ ଉଦ୍ଦେଶ୍ୟରେ ଦିଆଯିବା ପିଣ୍ଡ ।

ଅର୍ଦ୍ଧପଥଶ୍ରାଦ୍ଧ—ଗ୍ରା.ବ.ମୃତବ୍ୟକ୍ତିର ଶବଦାହ ପୂର୍ବରୁ ଶ୍ମଶାନରେ ଶବକୁ ସ୍ନାନକରାଇ ତେଲକର ବସାଇ ମୁଖାଗ୍ନିଦେବା ବ୍ୟକ୍ତି ଯେଉଁ ଶ୍ରାଦ୍ଧ କରନ୍ତି ।

ଅର୍ଦ୍ଧପରିସ୍ଫୁଟ—ବି. ବଂ. ଅସମ୍ୟକ୍ ସ୍ଫୁଟ, ଅଂଶତଃ ବ୍ୟକ୍ତ, ଅଧେ ଫୁଟିଥିବା ।

ଅର୍ଦ୍ଧପାଞ୍ଚାଳକ—ବଂ. ଅର୍ଦ୍ଧପଞ୍ଚାଳଦେଶଜାତ ।

ଅର୍ଦ୍ଧପାଦ—ପୁଂ.ବ. (୬.ତତ୍ପୁ) କବାଟବିଶେଷ,ଅଧପା ବା ଅଧଫୁଟ ପରିମାଣ ।

ଅର୍ଦ୍ଧପାଦକ—ବଂ. ଅର୍ଦ୍ଧପାଦପରିମାଣ, ଅଧପାଦେ । [ଉଡନ୍ତା ପକ୍ଷୀ ।

ଅର୍ଦ୍ଧପାରବତ—ପୁଂ.ବ. ଚିତ୍ରକଣ୍ଠ ପାରା, [ ଗଡବିଶେଷ ।

ଅର୍ଦ୍ଧପ୍ଲୁତାଇତ—କ୍ଲୀ.ବ.(୬ତତ୍ପୁ) ଅଶ୍ୱର [ ଦ୍ୱାରା ଧାବିତ ।

ଅର୍ଦ୍ଧପ୍ରସ୍ଥିକ—ଅର୍ଦ୍ଧପ୍ରସ୍ଥ ପରିମିତ ଦ୍ରବ୍ୟ

ଅର୍ଦ୍ଧବିନ୍ଦୁ—ଗ୍ରା.ବ. ଚନ୍ଦ୍ରବିନ୍ଦୁର ତଳେ ଥିବା ଖଣ୍ଡଚନ୍ଦ୍ର ଚିହ୍ନ ।

ଅର୍ଦ୍ଧଭାକ୍-ବି.ବଂ.(ଅର୍ଦ୍ଧ + ଭଜ + କ୍ୱିପ୍. କ ) ଅର୍ଦ୍ଧାଂଶଭାଜନ, ଅର୍ଦ୍ଧାଂଶରେ ଅଧିକାରୀ ।

ଅର୍ଦ୍ଧଭାଗ—ପୁଂ. ବ. ଭାଗର ଅର୍ଦ୍ଧେକ, କିୟଦଂଶ । [ଅଧିକାରୀ ।

ଅର୍ଦ୍ଧଭାକ୍—ବି. ବଂ. ଯେ ଅର୍ଦ୍ଧାଂଶର

ଅର୍ଦ୍ଧଭାସ୍କର—ପୁଂ.ବ. (ବ.ବ୍ରୀ) ମଧ୍ୟାହ୍ନ, ଯେଉଁ ସମୟରେ ଭାସ୍କର ଅଧେ ଥାନ୍ତି ।

ଅର୍ଦ୍ଧଭ୍ରମ—କ୍ଲୀ. ବ. ଏକ ଶବ୍ଦାଳଙ୍କାରବିଶେଷ ।

ଅର୍ଦ୍ଧମାଣବ(କ)—ପୁଂ.ବ.(୬ତତ୍ପୁ)ମାଣବକର ଅର୍ଦ୍ଧ ।

ଅର୍ଦ୍ଧମାତ୍ରା—ସ୍ତ୍ରୀ.ବ. ( ଅର୍ଦ୍ଧ + ମାତ୍ରା ) ଅର୍ଦ୍ଧପରିମାଣ, ଅର୍ଦ୍ଧଚନ୍ଦ୍ରାକୃତି, ବ୍ରହ୍ମରୂପିଣୀ ମାହେଶ୍ୱରୀ, ମାତ୍ରାର ମଧ୍ୟଭାଗ ।

ଅର୍ଦ୍ଧମାନ—ବ. (ଅର୍ଦ୍ଧ + ମାନ) ଅଧା, ଅର୍ଦ୍ଧପରିମାଣ (କାଳ) ।

ଅର୍ଦ୍ଧମାସ—ପୁଂ.ବ.ଏକପକ୍ଷ,ପନ୍ଦରଦିନ ।

ଅର୍ଦ୍ଧମୂର୍ଚ୍ଛିତ--ବି.ବଂ ମୂର୍ଚ୍ଛା ହେତୁ ଯାହାର ଅଧେ ଜ୍ଞାନ ହଜିଯାଇଅଛି, (ସ୍ତ୍ରୀ) ଅର୍ଦ୍ଧମୂର୍ଚ୍ଛିତା ।

ଅର୍ଦ୍ଧମୃତ—ବି.ବଂ. ଅଧମରା, ମୃତକଳ୍ପ, ଅମୃତ ପ୍ରାୟ, (ସ୍ତ୍ରୀ) ଅର୍ଦ୍ଧମୃତା ।

ଅର୍ଦ୍ଧଯାମ—ପୁଂ. ବି. ଦିବା ଓ ରାତ୍ରିର ଅଷ୍ଟମାଂଶ, ଘଟିକା ।
ଅର୍ଦ୍ଧରଥ—ପୁଂ.ବି. ଯେଉଁ ଯୋଦ୍ଧା ରଥୀଙ୍କ ଠାରୁ ଅଳ୍ପତର ଯୋଦ୍ଧା ।
ଅର୍ଦ୍ଧରାତ୍ର—ପୁଂ.ବି. ଅର୍ଦ୍ଧନିଶା,ଅଧରାତି ।
ଅର୍ଦ୍ଧର୍ଚ୍ଚ—ପୁଂ. କ୍ଲୀ. ଋକ୍‌ର ଅର୍ଦ୍ଧଭାଗ ।
ଅର୍ଦ୍ଧର୍ଚ୍ଚାଦି—ପୁଂ.ବି.ପାଣିନିସୂତ୍ରୋକ୍ତ ଶବ୍ଦବିଶେଷର ଗଣ ।
ଅର୍ଦ୍ଧଲକ୍ଷ୍ମୀହରି—ପୁଂ.ବି. ଯେଉଁ ମୂର୍ତ୍ତିରେ ବିଷ୍ଣୁ ଲକ୍ଷ୍ମୀ ମିଳିତହୋଇ ଅଛନ୍ତି ।
ଅର୍ଦ୍ଧାବଭେଦକ—ବି.(ଅର୍ଦ୍ଧ + ଅବଭେଦକ) ଅଧାକପାଳୀ ବିଥା ।
ଅର୍ଦ୍ଧାବଶିଷ୍ଟ—ବିଂ.ଅର୍ଦ୍ଧାଂଶ ବାକିଥିବା ।
ଅର୍ଦ୍ଧବିସର୍ଗ—ପୁଂ. ବି. ଅର୍ଦ୍ଧବିସର୍ଗସଦୃଶ ଉପଧ୍ମାନୀୟ ବର୍ଣ୍ଣବିଶେଷ ।
ଅର୍ଦ୍ଧବୀକ୍ଷଣ—କ୍ଲୀ. ବି. ଅପାଙ୍ଗଦର୍ଶନ, ଆଡ଼ଚକ୍ଷୁରେ ଦେଖା ।
ଅର୍ଦ୍ଧବୈନାଶିକ—ପୁଂ.ବି. ବୈଶେଷିକଶାସ୍ତ୍ରପ୍ରଣେତା ।
ଅର୍ଦ୍ଧବୈଶସ—କ୍ଲୀ. ବି. ଅର୍ଦ୍ଧବିନାଶ ।
ଅର୍ଦ୍ଧାଶନ—କ୍ଲୀ.ବି. ଅର୍ଦ୍ଧଭୋଜନ, ଅପ୍ରଚୁର ଭୋଜନ ।
ଅର୍ଦ୍ଧଶଫର,ଅର୍ଦ୍ଧସଫର—ପୁଂ.ବି.ଦଣ୍ଡେଇମାଛ, ଦଣ୍ଡପାଲ ।
ଅର୍ଦ୍ଧଶରୀର—ବି. ପତ୍ନୀ, (ସ୍ତ୍ରୀ) ଶରୀରର ଅଧେ, ଏକାଙ୍ଗୀ ବାତ ।
ଅର୍ଦ୍ଧଶ୍ଳୋକ—ପୁଂ.ବି. ପ୍ରଥମପାଦଦ୍ୱୟ ।
ଅର୍ଦ୍ଧସମ—ବିଂ. ଅର୍ଦ୍ଧସମାନ ।
ଅର୍ଦ୍ଧସୀରୀ—ପୁଂ.ବି. ଯେଉଁ କୃଷକ ଜମି ଭାଗୁଆ ଧରି ଅଧା ଭାଗ ପାଏ ।
ଅର୍ଦ୍ଧସ୍ଫୁଟ—ବିଂ. (ଅର୍ଦ୍ଧ + ସ୍ଫୁଟ) ଅଧଫୁଟା, ଅର୍ଦ୍ଧପ୍ରକାଶିତ କଥା, ଅସ୍ପଷ୍ଟ, (ସ୍ତ୍ରୀ) ଅର୍ଦ୍ଧସ୍ଫୁଟା ।
ଅର୍ଦ୍ଧାଙ୍ଗ—କ୍ଲୀ. ବି. ( ଅର୍ଦ୍ଧ + ଅଙ୍ଗ ) ଶରୀରର ଅର୍ଦ୍ଧେକ, ପତ୍ନୀ ।
ଅର୍ଦ୍ଧହର—ତ୍ରି.ବିଂ. (ଅର୍ଦ୍ଧ + ହୃ + ଉ,ଅ) ଅର୍ଦ୍ଧଭାଗୀ ।
ଅର୍ଦ୍ଧାଂଶ—ପୁଂ.ବି.ଅର୍ଦ୍ଧଭାଗ,ଅଧଭାଗେ ।
ଅର୍ଦ୍ଧାଂଶୀ—ପୁଂ. ବିଂ.(ଅର୍ଦ୍ଧାଂଶ + ଇନ୍) ଅର୍ଦ୍ଧଭାଗୀ, ଅଧେକ ଭାଗପାଇବାର ଅଧିକାରୀ, (ସ୍ତ୍ରୀ) ଅର୍ଦ୍ଧାଂଶିନୀ ।
ଅର୍ଦ୍ଧାଙ୍ଗୀ—ଗ୍ରା.ବି. ସ୍ତ୍ରୀ. (ଅର୍ଦ୍ଧାଙ୍ଗ + ଈ) ପତ୍ନୀ, ସ୍ତ୍ରୀ । [ ପତ୍ନୀ ।
ଅର୍ଦ୍ଧାଙ୍ଗିନୀ—ସ୍ତ୍ରୀ.ବି. (ଅର୍ଦ୍ଧାଙ୍ଗିନ୍ + ଈ)
ଅର୍ଦ୍ଧାଚ୍ଛାଦିତ—ତ୍ରି. ବିଂ. ଅଧା ଘୋଡ଼ାହୋଇଥିବା ।
ଅର୍ଦ୍ଧାର୍ଦ୍ଧ—ପୁଂ.ବି.ଚତୁର୍ଥାଂଶ,ଚଉଠେ, ପାଏ, ସୁକି ।
ଅର୍ଦ୍ଧାଶନ—କ୍ଲୀ. ବି. ( କ.ଧା ) ଅର୍ଦ୍ଧଭୋଜନ, ଅଧପେଟା, ଅର୍ଦ୍ଧାଂଶ ବ୍ୟାପ୍ତି ।
ଅର୍ଦ୍ଧାସନ—କ୍ଲୀ. ବି ୬ତତ୍; (ଅର୍ଦ୍ଧ + ଆସନ) ଆସନର ଅର୍ଦ୍ଧଭାଗ, ସ୍ନେହଦାନ, ବନ୍ଧାମୋଚନ । [ ଭାଗୁଆରି ।
ଅର୍ଦ୍ଧିକ—ତ୍ରି. ବିଂ. ଅର୍ଦ୍ଧଭାଗଯୋଗ୍ୟ,
ଅର୍ଦ୍ଧୀ—ପୁଂ. ବିଂ. ଅର୍ଦ୍ଧଭାଗାଧିକାରୀ, ଭାଗୁଆରି, (ସ୍ତ୍ରୀ) ଅର୍ଦ୍ଧିନୀ ।
ଅର୍ଦ୍ଧୁକ—ପୁଂ.ବିଂ. ବୃଦ୍ଧିଶୀଳ, ସମ୍ପନ୍ନ ।
ଅର୍ଦ୍ଧେକ—ଗ୍ରା. ବିଂ. ସମାନ ଦୁଇଭାଗରୁ ଏକଭାଗ, ଅଧେ ।
ଅର୍ଦ୍ଧେନ୍ଦୁ—ପୁଂ. ବି. ଅର୍ଦ୍ଧଚନ୍ଦ୍ର, ଚନ୍ଦ୍ରର ଅର୍ଦ୍ଧଭାଗ, ନଖଚିହ୍ନ, ଅର୍ଦ୍ଧଚନ୍ଦ୍ର ବାଣ, ଗଳହସ୍ତ, ଅତିପ୍ରୌଢ଼ା ସ୍ତ୍ରୀର ଯୋନିଦେଶରେ ଅର୍ଦ୍ଧଚନ୍ଦ୍ର ଆକାରରେ ଅଙ୍ଗୁଳିଯୋଜନ । [ ଚୂଡ଼ ।
ଅର୍ଦ୍ଧେନ୍ଦୁମୌଳି—ପୁଂ. ବି. ଶିବ, ଚନ୍ଦ୍ର-
ଅର୍ଦ୍ଧୋକ୍ତ—କ୍ଲୀ.ବି. (ଅର୍ଦ୍ଧ + ଉକ୍ତ)ଅସ୍ପଷ୍ଟବାକ୍ୟ,ସ୍ପଷ୍ଟକରି ସମ୍ପୂର୍ଣ୍ଣରୂପେ ନ କହିବା ।
ଅର୍ଦ୍ଧୋଚ୍ଚାରିତ—ତ୍ରି ବିଂ.(କ.ଧା) ଯାହାର ଅର୍ଦ୍ଧଭାଗ ମାତ୍ର ଉଚ୍ଚାରଣ କରାହୋଇଅଛି ।
ଅର୍ଦ୍ଧୋନ୍ମୀଳିତ—ତ୍ରି.ବିଂ.ଅଧେ ଗୋଟିଆ ହୋଇଥିବା,ଅଧେ ଖୋଲା ହୋଇଥିବା, କିଞ୍ଚିଦଂଶ ଉଦ୍ଘାଟିତ ।
ଅର୍ଦ୍ଧୋଦକ—କ୍ଲୀ.ବି. ଦେହର ନିମ୍ନାର୍ଦ୍ଧଭାଗ ପର୍ଯ୍ୟନ୍ତ ଜଳ, ଅଣ୍ଟାଯାଏ ପାଣି ।
ଅର୍ଦ୍ଧୋଦୟ—ପୁଂ. ବି.କ.ଧା.(ଅର୍ଦ୍ଧ + ଉଦୟ ) ପୌଷ କିମ୍ବା ମାଘମାସର ରବିବାର ଅମାବାସ୍ୟାରେ ବ୍ୟତିପାତଯୋଗ ଏବଂ ଶ୍ରବଣାନକ୍ଷତ୍ର ଏକତ୍ର ମିଳିତ ହେଲେ ଅର୍ଦ୍ଧୋଦୟ ଯୋଗ ହୁଏ—ଏହି ଯୋଗ ଗଙ୍ଗାଦି ତୀର୍ଥରେ ସ୍ନାନକରିବା ଯୋଗବିଶେଷ ।
ଅର୍ଦ୍ଧୋଦୟାସନ—କ୍ଲୀ.ବି. ସାଧନକାଳର ଆସନବିଶେଷ ।
ଅର୍ଦ୍ଧୋଦିତ-ତ୍ରି.ବିଂ.ଅର୍ଦ୍ଧୋଚ୍ଚରିତ,ଅର୍ଦ୍ଧପ୍ରକାଶିତ,ଅର୍ଦ୍ଧକଥିତ(ସ୍ତ୍ରୀ)ଅର୍ଦ୍ଧୋଦିତା ।
ଅର୍ଦ୍ଧୋରୁକ—କ୍ଲୀ.ବି. (ଅର୍ଦ୍ଧୋରୁ + କ) ସ୍ତ୍ରୀମାନଙ୍କର ପରିଧେୟ ଘାଗରା,କାଚ ।
ଅର୍ଦ୍ଧ୍ୟ—ତ୍ରି. ବିଂ. ଅର୍ଦ୍ଧସମ୍ବନ୍ଧୀ, ଅର୍ଦ୍ଧଜାତ ।
ଅର୍ନ୍ନ—(ପ୍ରା. ଗଡ଼) ବି. ଯେଉଁ ଗୋବିନ୍ଦ ଚଢ଼େଇ ଏକାଦିକ୍ରମେ ଗୋ ୧୦।୧୨ଟା ଚଢ଼େଇଙ୍କୁ ଜିତଥାଏ, (ଗ୍ରା.ବି.) ଅର୍ନ୍ନ, ଭାତ ।
ଅର୍ପଣ—କ୍ଲୀ.ବି. (ଅର୍ପି + ଅନ) ପ୍ରଦାନ, ନିକ୍ଷେପ, ସ୍ଥାପନ, ନ୍ୟସ୍ତକରଣ,ଯାଚିବା, ହବିରାଦି ତ୍ୟାଜ୍ୟଦ୍ରବ୍ୟ, ହବିର୍ଦାନପାତ୍ର, ଦେବତାଦି, ପ୍ରାପଣ, ସମର୍ପଣ, ନ୍ୟାସ ।
ଅର୍ପଣକରିବା—ଗ୍ରା. ତ୍ରି. ଦେବା, ନ୍ୟସ୍ତକରିବା, ଜିମା କରିବା ।
ଅର୍ପଣୀୟ—ତ୍ରି. ବିଂ. ଦାନୀୟ, ଦେୟ, ତ୍ୟାଜ୍ୟ,ନ୍ୟସ୍ତକରିବାର ଯୋଗ୍ୟ, (ସ୍ତ୍ରୀ) ଅର୍ପଣୀୟା । [ (ସ୍ତ୍ରୀ) ଅର୍ପୟିତ୍ରୀ ।
ଅର୍ପୟିତା—ପୁଂ.ବିଂ. ଅର୍ପଣକାରୀ, ଦାତା,
ଅର୍ପିତ—ତ୍ରି. ବିଂ. (ଅର୍ପି + ତ) ପ୍ରଦତ୍ତ, ସ୍ଥାପିତ, ନ୍ୟସ୍ତ, ଗଚ୍ଛିତ,ଲିଖିତ,ଅଙ୍କିତ, ଧୃତ,ପଠିତ,ଲିପ୍ତ,ନିକ୍ଷିପ୍ତ,(ସ୍ତ୍ରୀ)ଅର୍ପିତା ।
ଅର୍ପିତକର—ପୁଂ.ବିଂ.(ବ.ବ୍ରୀ)ପରଣୀତ, ଦତ୍ତହସ୍ତ ।
ଅର୍ପିବା—ଗ୍ରା. ତ୍ରି. ଅର୍ପଣ କରିବା ।
ଅର୍ପିଶ(ସ)—ପୁଂ. ବି. (ଋ + ଶିଚ୍ + କ. ଇଶ) ଅଗ୍ରମାଂସ, ହୃଦୟ,ବକ୍ଷ ।
ଅର୍ପ୍ୟ—ତ୍ରି. ବିଂ. ତ୍ୟାଜ୍ୟ, ନିବେଦନୀୟ ।

ଅର୍ବ୍—(ଧାତୁ)ହିଂସାକରିବା,ପୀଡ଼ାଦେବା।

ଅର୍ବ—ଗ୍ରା. ବି. ଘୋଟକ ।

ଅର୍ବତୀ—ସ୍ତ୍ରୀ.ବି.(ଅର୍ବନ୍ + ଈ) ଘୋଟକୀ, କୁଟ୍ଟନୀ, ଦୂତୀ, (ବିଂ) କୁତ୍ସିତା ।

ଅର୍ବା—ପୁଂ. ବି. ଅଶ୍ୱ, ଘୋଟକ, ଇନ୍ଦ୍ର, (ବିଂ)କୁତ୍ସିତ,ଅଧମ,ହୀନ,(ସ୍ତ୍ରୀ) ଅର୍ବତୀ ।

ଅର୍ବନ୍—ବି. ଘୋଡ଼ା, ଇନ୍ଦ୍ର, ଗୋକର୍ଣ୍ଣ, (ବିଂ) ନୀଚ, ଅଧମ, ନିକୃଷ୍ଟ । [ କ୍ଷୁଦ୍ର ।

ଅର୍ବାଙ୍—ବିଂ. ନିକୃଷ୍ଟ,ନୀଚ,ବନ୍ଧ,କନିଷ୍ଠ,

ଅର୍ବୀକ—(ଅବ୍ୟ)ପଶ୍ଚାତ୍, ମଧ୍ୟ, ସମୀପ, ପୂର୍ବ, ଆଦିମ(କାଳ)ବି.ପରବର୍ତ୍ତୀ,ନିକଟ, ନିକୃଷ୍ଟ ।

ଅର୍ବାଚୀନ—ପୁଂ. ବିଂ. (ଅର୍ବାଚ୍ + ଈନ) ବିରୁଦ୍ଧ, ବିପରୀତ, ପଶ୍ଚାଦ୍‌ବର୍ତ୍ତୀ,ନୂତନ, ଆଧୁନିକ, ଅଧମ, ନୀଚ, ନିକୃଷ୍ଟ, ପର- ବର୍ତ୍ତୀ, (ସ୍ତ୍ରୀ) ଅର୍ବାଚୀନା ।

ଅର୍ବୁଦ—କ୍ଲୀ.ବି.ଦଶକୋଟି ସଂଖ୍ୟା,ଆବୁ- ରୋଗ, ମାଂସପିଣ୍ଡ, ମଧ୍ୟପ୍ରଦେଶର ପର୍ବତବିଶେଷ ।

ଅର୍ବୁଦ—ପୁଂ. ବି. ସର୍ବବ୍ୟାପକ ଈଶାନ ।

ଅର୍ବୁଦତୀର୍ଥ—ବି. ହିନ୍ଦୁମାନଙ୍କର ତୀର୍ଥ- ବିଶେଷ ।

ଅର୍ଭ—ପୁଂ.ବି. (ଋ + ଭ) ଶିଶୁ ,ବାଳକ, ଶିଷ୍ୟ, କ୍ଷୁଦ୍ର, ଶିଶିର, ଶାକ, ଶସ୍ୟାଦି, ଔଷଧି,(ବିଂ),ପ୍ରଭାସ୍ୱାନ,ମଳିନ,ମୂର୍ଖ,କୃଶ ।

ଅର୍ଭକ—ପୁଂ.ବି. ବାଳକ, ପଶୁଶାବକ, ମୂର୍ଖ, ଅଜ୍ଞ ( ବିଂ.) କ୍ଷୁଦ୍ର,କ୍ଷୀଣ,ସଦୃଶ, (ସ୍ତ୍ରୀ) ଅର୍ଭିକା ।

ଅର୍ଭଗ—ପୁଂ.ବି. ବାଳକ, (ସ୍ତ୍ରୀ)ଅର୍ଭଗା ।

ଅର୍ଭଲୀଳା—ସ୍ତ୍ରୀ.ବି. (୬ତତ୍) ଶିଶୁକ୍ରୀଡ଼ା, ପିଲାଖେଳ ।

ଅର୍ମ—ବି.ପୁଂ.ଓ କ୍ଲୀ. (ଋ + ମନ୍) ଚକ୍ଷୁ- ରୋଗବିଶେଷ, ଗନ୍ତବ୍ୟ ଦେଶ ।

ଅର୍ମଣ—ପୁଂ.ବି. (ଋ + ର୍ମ.ମନ୍)ବୈଦ୍ୟ- କୋକ୍ତ ପରିମାଣବିଶେଷ, ଦ୍ରୋଣ- ପରିମାଣ, ସେ୩୨ର ଓଜନ ।

ଅର୍ମନ୍—କ୍ଲୀ. ବି. (ଋ + କ.ମନ୍) ଚକ୍ଷୁ- ରୋଗବିଶେଷ ।

ଅର୍ମାନିଘାଟ—ଗ୍ରା.ବି. କଲିକତାର ଗଙ୍ଗା- କୂଳରେ ଜାହାଜରୁ ଓହ୍ଲାଇବାର ଗୋଟିଏ ପ୍ରଧାନ ଘାଟ ।

ଅର୍ଯ୍ୟ—ପୁଂ. ବି. (ଋ + କ ଯ) ବୈଶ୍ୟ, ସ୍ୱାମୀ, ( ବିଂ ) ଭକ୍ତିମାନ୍, ଧାମିକ, ପୂଜନୀୟ, ନ୍ୟାଯ୍ୟ (ସ୍ତ୍ରୀ) ଅର୍ଯ୍ୟା ।

ଅର୍ଯ୍ୟମା—ପୁଂ.ବି.(ଅର୍ଯ୍ୟ + ମନ୍) ସୂର୍ଯ୍ୟ, ଅରଖ ଗଛ, ଉତ୍ତରଫାଲ୍‌ଗୁନୀନକ୍ଷତ୍ର, ଋଷିବିଶେଷ, ବେଦମନ୍ତ୍ରବିଶେଷ, ପିତୃ- ଲୋକବିଶେଷ ।

ଅର୍ଯ୍ୟମ୍ୟ—ପୁଂ. ବି. ସୂର୍ଯ୍ୟ ।

ଅର୍ଯ୍ୟି—(ଯା) ବି. ନିବେଦନପତ୍ର ।

ଅର୍ବାକ୍‌କାଳ - ପୁଂ.ବି. ପଶ୍ଚାତ୍‌କାଳ,ମଧ୍ୟ- କାଳ, (ବିଂ) ଅର୍ବାକ୍‌କାଳିକ ।

ଅର୍ବାକ୍‌ସ୍ରୋତଃ—ପୁଂ. ବି. ନଦ, (ସ୍ତ୍ରୀ) ନଦୀ,(ବିଂ)ଅଧୋ ଇନ୍ଦ୍ରିୟ,ଲିଙ୍ଗ,ଯୋନି

ଅର୍ବାଗ୍‌ବିଲ—ପୁଂ.ବି. ଚମଶ, ଯଜ୍ଞପାତ୍ର- ବିଶେଷ ।

ଅର୍ବାଚ—ତ୍ରି. ବିଂ. ପଶ୍ଚାତ୍‌କାଳବର୍ତ୍ତୀ, ଆଧୁନିକ, ନୂତନ, ଅଜ୍ଞ, (ସ୍ତ୍ରୀ)ଅର୍ବାଚୀ, ବିପର୍ଯ୍ୟସ୍ତ,ବ୍ୟତିକ୍ରାନ୍ତ, ବିପରୀତ, (ଅବ୍ୟ) ପଛେ, ମଧ୍ୟରେ (ବିଂ) ଅର୍ବାକ୍‌ତନ, ପଶ୍ଚାତ୍‌କାଳଜାତ, ମଧ୍ୟଜାତ ।

ଅର୍ବାଚକସୁ—ପୁଂ. ବି. ମେଘ ।

ଅର୍ବାବତ୍—ତ୍ରି.ବିଂ.ଅର୍ବାଚୀନ,ଆଧୁନିକ ।

ଅର୍ବାବସୁ—ପୁଂ.ବି. ଦେବତାର ହୋତା- ବିଶେଷ, ହୋମକର୍ତ୍ତା ।

ଅର୍ବୁକ—ପୁଂ.ବି.(ଅର୍ବ୍ + ଉକ) ଆଟବିକ, ଦକ୍ଷିଣଦେଶସ୍ଥ ନୃପତିବିଶେଷ ।

ଅର୍ଶ—ତ୍ରି. ବିଂ. (ଋଶ + କ.ଅ) ଅଶ୍ଳୀଳ, ପାପିଷ୍ଠ, (କ୍ଲୀ) ଅର୍ଶରୋଗବିଶେଷ, ଗୁହ୍ୟ ରୋଗବିଶେଷ ।

ଅର୍ଶାଦି—ପୁଂ.ବି. ପ୍ରତ୍ୟୟର ନିମିତ୍ତ ଶବ୍ଦ ସମୂହ (ଅର୍ଶ ଉପ ରୁଦାଦି ବିଶେଷ) ।

ଅର୍ଶଆଦ୍ୟ—ପୁଂ. ବି. ଅତିପାପୋଦ୍ଭବ ରୋଗବିଶେଷ ।

ଅର୍ଶଃ—କ୍ଲୀ.ବି.(ଋ + କ.ଅସ୍)ଗୁହ୍ୟସ୍ଥାନର ରୋଗବିଶେଷ, ଅର୍ଶରୋଗ ।

ଅର୍ଶସ—ତ୍ରି. ବିଂ (ଅର୍ଶସ୍ + ଅ) ଅର୍ଶ- ରୋଗଯୁକ୍ତ, (ସ୍ତ୍ରୀ) ଅର୍ଶସା ।

ଅର୍ଶସାନ୍—ତ୍ରି. ବିଂ. ଅଗ୍ନି, ବାଧକ, ହିଂସ୍ରକ, ମନ୍ଦେହ ନାମକ ଅସୁର ।

ଅର୍ଶୀ—ପୁଂ.ବିଂ(ଅର୍ଶ + ଇନ୍)ଅର୍ଶରୋଗୀ, (ସ୍ତ୍ରୀ) ଅର୍ଶିଣୀ ।

ଅର୍ଶୋଘ୍ନ—ପୁଂ.ବି.(ଅର୍ଶସ୍ + ହନ୍ + କ. ଅ) ଓଲୁଅ, ଭାଲିଆ, (ବିଂ) ଅର୍ଶରୋଗ- ନାଶକ, (ସ୍ତ୍ରୀ) ଅର୍ଶୋଘ୍ନୀ ।

ଅର୍ଶୋଘ୍ନୀ—ସ୍ତ୍ରୀ.ବି. ତାଳମୂଳୀ, ମୂଷଲୀ- ବୃକ୍ଷ, (ବିଂ) ଅର୍ଶନାଶିକା ।

ଅର୍ଶୋହିତ—ପୁଂ. ବି. ଭାଲିଆ, ଓଲୁଅ, (ବିଂ) ଅର୍ଶୋହିତକର ବସ୍ତୁମାତ୍ର ।

ଅର୍ଷଣ—କ୍ଲୀ. ବି. (ଋଷ୍ + ଅନ) ଗମନ, ଗମନସାଧକ ଶକଟାଦି ।

ଅର୍ହ—( ଧାତୁ ) ଯୋଗ୍ୟହେବା, ପୂଜା- କରିବା ।

ଅର୍ହ—ପୁଂ.ବି(ଅର୍ହ + କ.ଅ) ଇନ୍ଦ୍ର,ବିଷ୍ଣୁ, (ବିଂ) ପୂଜା ଯୋଗ୍ୟ,ପୂଜ୍ୟ,ମାନ୍ୟ (ସ୍ତ୍ରୀ) ଅର୍ହା ।

ଅର୍ହଣ—କ୍ଲୀ.ବି. (ଅର୍ହ୍ + ଭା. ଅନ)ପୂଜା, ସମ୍ମାନ, ଯୋଗ୍ୟତା, ପୂଜାସାମଗ୍ରୀ, ଅର୍ଚ୍ଚନା ।

ଅର୍ହଣା—ବି. ( ଅର୍ହ + ଭା, ଅନ + ଆ ) ପୂଜା, ସମ୍ମାନ, ଯୋଗ୍ୟତା, ପୂଜା- ସାମଗ୍ରୀ, ଅର୍ଚ୍ଚନା ।

ଅର୍ହଣୀୟ—ପୁଂ.ବିଂ (ଅର୍ହ୍ + ମ.ଅନୀୟ) ପୂଜନୀୟ, ପୂଜ୍ୟ, ପୂଜା ସାଧନଦ୍ରବ୍ୟ, (ସ୍ତ୍ରୀ) ଅର୍ହଣୀୟା ।

ଅର୍ହତ୍—ପୁଂ. ବି. (ଅର୍ହ୍ + କ ଅତ୍) ବୁଦ୍ଧଦେବ, ଜୈନସନ୍ନ୍ୟାସୀ, (ବିଂ) ବୌଦ୍ଧ, ଜୈନମତାବଲମ୍ବୀ, ପୂଜାର୍ହ, ପ୍ରଶଂସାର୍ହ, ଯୋଗ୍ୟ, ପ୍ରଶସ୍ତ ।

ଅର୍ହତମ—ତ୍ରି. ବିଂ. ( ଅର୍ହତ୍ + ତମ ) ଯୋଗ୍ୟତମ, ଅତିପ୍ରଶସ୍ତ, ସର୍ବୋତ୍କୃଷ୍ଟ ।

ଅର୍ହତର—ତ୍ରି. ବିଂ. ( ଅର୍ହତ୍ + ତର ) ଯୋଗ୍ୟତର, ଅଧିକତର, ପ୍ରଶସ୍ତ, (ସ୍ତ୍ରୀ) ଅର୍ହତରା ।

ଅର୍ହନ୍—ପୁଂ. ବି (ଅର୍ହ + କ.ଅତ୍) ବୁଦ୍ଧ, ବୌଦ୍ଧମତାବଲମ୍ବୀ,ଜୈନ ବା ବୌଦ୍ଧ, କ୍ଷପଣକ,(ବିଂ) ପୂଜ୍ୟ,ପ୍ରଶସ୍ତ, ଯୋଗ୍ୟ '

ଅର୍ହନ୍ତ—ପୁଂ. ବ. ବୁଦ୍ଧଦେବ, ଶିବ, କ୍ଷପଣକ, (ତ୍ରି°) ପୂଜା, ଆରାଧ୍ୟ, ମାନ୍ୟ, (ସ୍ତ୍ରୀ) ଅର୍ହନ୍ତୀ ।

ଅର୍ହନ୍ତୀ—ସ୍ତ୍ରୀ.ବ. ପୂଜ୍ୟତ୍ୱ, ପୂଜ୍ୟର ଭାବ, ପୂଜ୍ୟା; ଯୋଗ୍ୟା ।

ଅର୍ହା—ସ୍ତ୍ରୀ. ବ. ( ଅର୍ହ + ଆ ) ପୂଜା, ଆରାଧନା, ଯୋଗ୍ୟତା,(ବ°.ତ୍ରି) ପୂଜ୍ୟା, ଯୋଗ୍ୟା ।

ଅର୍ହାମୂର୍ତ୍ତି—ଗ୍ରା. ବ. ଅର୍ଚ୍ଚାମୂର୍ତ୍ତି ।

ଅର୍ହିତ—ତ୍ରି. ବ° (ଅର୍ହ + ର୍ମ,ତ) ପୂଜିତ, ସମ୍ମାନିତ, ପ୍ରଶଂସିତ (ସ୍ତ୍ରୀ) ଅର୍ହିତା ।

ଅର୍ହ୍ୟ—ତ୍ରି. ବ° (ଅର୍ହ୍ + ଯ) ପାଇବାର ଯୋଗ୍ୟ, ସ୍ତୁତ୍ୟ, ପୂଜ୍ୟ ।

ଅଲଟାଇବା—( ପ୍ରା.ସମ୍ଭ ) କ୍ରି. ଅଟକା-ଇବା, ବାଧା ଦେବା, ଲଖିଯିବା ।

ଅଲବତ୍—(ଗ୍ରା. ଅବ୍ୟ) ଅବଶ୍ୟ, ନିଶ୍ଚୟ, ନିଃସନ୍ଦେହରେ ।

ଅଲ୍‌ବିଦା—(ଯା) ବ. ରମ୍‌ଜାନ ମାସର ଶେଷ ଶୁକ୍ରବାର, ମୁସଲମାନମାନଙ୍କ ମହରମ ମାସର ୧୦ ତାରଖ ରାତିରେ କରାଯିବା ଉପବାସ ।

ଅଲକ୍—(ଗ୍ରା. ସମ୍ଭ) ବ. ଅଣକ, ଡଙ୍କା ।

ଅଲ—( ଧାତୁ ) ଭୂଷିତକରିବା ।

ଅଲ—କ୍ଲୀ. ବ ( ଅଲ + କ.ଅ ) ବିଛାର ପୁଚ୍ଛସ୍ଥିତ କଣ୍ଟକାକାର ପଦାର୍ଥବିଶେଷ, ବିଷାକ୍ତକୀଟଙ୍କ ନାହୁଡ଼, ହରିତାଳ ।

ଅଲକ—କ୍ଲୀ.ବ.(ଅଲ୍ + କ.ଅକ) ଚୂର୍ଣ୍ଣ-କୁନ୍ତଳ, କୁଙ୍କୁମ, ମେଘବିଶେଷ, ଝାମ୍ପଡ଼ାବାଳ, (ପୁଂ) ବାସ୍ତୁକୁକୁର ।

ଅଲକଦାମ—କ୍ଲୀ. ବ. (୬ ତତ୍ପୁ) ଚୂର୍ଣ୍ଣ-କୁନ୍ତଳସମୂହ ।

ଅଲକନନ୍ଦା—ସ୍ତ୍ରୀ. ବ. (ଅଲକ + ନନ୍ଦା) ଭାରତବର୍ଷୀୟ ଗଙ୍ଗା, କୁମାରୀ,ବାଳିକା, ମନ୍ଦାକିନୀ ।

ଅଲକପ୍ରଭା—ସ୍ତ୍ରୀ.ବ. (ବ.ବ୍ରୀ) (ଅଲକ + ପ୍ରଭା) କୁବେରପୁରୀ, ଅଲକା ।

ଅଲକପ୍ରିୟ—ପୁଂ. ବ. ପିଆଶାଳ ଗଛ, ଖାଜାଗଛ ।

ଅଲକବନ୍ଧନ—କ୍ଲୀ. ବ. (୬ତତ୍ପୁ)ବାସ୍ତୁ-କୁକୁର ବନ୍ଧା, ଚୂର୍ଣ୍ଣକୁନ୍ତଳବନ୍ଧନ, କେଶବନ୍ଧ, ବାଳବାନ୍ଧିବାର ଫିତା ।

ଅଲକମେଘ—ପୁଂ. ବ. (କ. ଧା) ଯେଉଁ ମେଘ ଆକାଶରେ ଚୂର୍ଣ୍ଣକୁନ୍ତଳ ପରି ବା ବିକ୍ଷିପ୍ତ କାର୍ପାସ ପରି ଦେଖାଯାଏ, ମେଘବିଶେଷ ।

ଅଲକରାଜି—ସ୍ତ୍ରୀ. ବ. (୬ ତତ୍ପୁ) ଚୂର୍ଣ୍ଣ-କୁନ୍ତଳସମୂହ, ଝୁମ୍ପୁଡ଼ାବାଳସମୂହ, ବାସ୍ତୁକୁକୁର ସକଳ ।

ଅଲକସଂହତି—ସ୍ତ୍ରୀ. ବ. (୬ତତ୍ପୁ) ଚୂର୍ଣ୍ଣ-କୁନ୍ତଳସମଷ୍ଟି ।

ଅଲକସ୍ତର—ପୁଂ. ବ. (୬ତତ୍ପୁ) ଚୂର୍ଣ୍ଣ-କୁନ୍ତଳ ସଦୃଶ ମେଘବିଶେଷ ।

ଅଲକସ୍ପର୍ଶୀ—ପୁଂ. ବ° (ଅଲକ + ସ୍ପୃଶ୍ + କ.ଇନ୍ ) ଚୂର୍ଣ୍ଣକୁନ୍ତଳସ୍ପର୍ଶକାରୀ, ମେଘସ୍ପର୍ଶକାରୀ,ଗଗନଚୁମ୍ବୀ,ଅଭ୍ରଂଲିହ ।

ଅଲକସ୍ତୂପ—ପୁଂ. ବ. (୬ତତ୍ପୁ) ମେଘ-ବିଶେଷ ।

ଅଲକା—ସ୍ତ୍ରୀ. ବ. (ଅଲ୍ + ଅକ + ଆ) ବାଳିକା, କୁବେରପୁରୀ, ଶ୍ୱେତ ଅରଖ, ଯୂଥ, ଦଳ ।

ଅଲକାତିଲକ—ସ୍ତ୍ରୀ. ବ°. ଅଙ୍ଗକ୍ଲିପ୍ତ-କୁଙ୍କୁମ, ପତ୍ରଲେଖା, ତିଳପୁଷ୍ପାକୃତି-ଚିତ୍ରବିଶେଷ ।

ଅଲକାଧିପ—ପୁଂ.ବ. (୬ ତତ୍ପୁ) (ଅଲକା + ଅଧି + ପା + ଅ) କୁବେର ।

ଅଲକାନନ୍ଦ—ନବଦ୍ୱୀପାଧିପତି କୃଷ୍ଣଚନ୍ଦ୍ର-ରାୟଙ୍କ ଗଙ୍ଗାକୂଳେ ସ୍ଥାପିତ ବନ-ବିଶେଷ ।

ଅଲକାପନ୍ତି—ଗ୍ରା. ବ. ଅଲକାସମୂହ, ଚୂର୍ଣ୍ଣକୁନ୍ତଳସମୂହ, ଅଲଙ୍କାରବିଶେଷ ।

ଅଲକାପାଟି—ଗ୍ରା. ବ. ( ସଂ-ଅଲକା ଓ ପଟ୍ଟ ) ଅଲକାନାମକ ଅଲଙ୍କାର, କପାଳର ଅଲକା ପିନ୍ଧିବା ସ୍ଥାନ ।

ଅଲକାପୁର (ରୀ)—ବ. କୁବେରପୁରୀ ।

ଅଲକାବଳୀ—ସ୍ତ୍ରୀ.ବ. (୬ତତ୍ପୁ) ଅଲକ-ସମୂହ ।

ଅଲକ୍ତ—ପୁଂ.ବ. (ବ.ବ୍ରୀ) (ଅ + ଲକ୍ତ) ଲକ୍ଷ, ଲଖ, ଅଲତା, ଲକ୍ଷାରସ ।

ଅଲକ୍ତକ—ପୁଂ. ବ. (ଅଲକ୍ତ + କ) ଅଲତା, ଲକ୍ଷା, ଲଖ ।

ଅଲକ୍ତକରାଗ—ପୁଂ.ବ.(୬ତତ୍ପୁ) ଅଲତା-ରଙ୍ଗ ।

ଅଲକ୍ତକାଙ୍କିତ—ତ୍ରି. ବ°. ( ୩.ତତ୍ପୁ ) ଅଲତାଦ୍ୱାରା ଚିହ୍ନିତ, ଅଲତାଦ୍ୱାରା ଅଙ୍କିତ, (ସ୍ତ୍ରୀ) ଅଲକ୍ତକାଙ୍କିତା ।

ଅଲକ୍ଷ—ଗ୍ରା. ବ°. (ଅ + ଲକ୍ଷ)ଅସମାନ, ତୁଳନାର ଅଯୋଗ୍ୟ, ଅଲକ୍ଷିତ, ଅଜ୍ଞାତ ଅସମକକ୍ଷ ।

ଅଲକ୍ଷଣ—କ୍ଲୀ.ବ. (ଅ + ଲକ୍ଷଣ) ମନ୍ଦ-ଚିହ୍ନ, ଦୁର୍ନିମିତ, ସୁଚିହ୍ନ ନୁହେ, କୁଲକ୍ଷଣ, ଦୁରଦୃଷ୍ଟ, ଅମଙ୍ଗଳ ।

ଅଲକ୍ଷଣା—ଗ୍ରା. ପୁଂ. ବ°. ଅଲକ୍ଷଣ (ପୁରୁଷ), ଦୁର୍ଭାଗ୍ୟ, ଅସୁନ୍ଦର ।

ଅଲକ୍ଷଣୀ—ଗ୍ରା.ବ°. ସ୍ତ୍ରୀ. କୁଲକ୍ଷଣା(ସ୍ତ୍ରୀ) ।

ଅଲକ୍ଷିତ—ତ୍ରି.ବ°.(ଅ + ଲକ୍ଷିତ)ଅଜ୍ଞାତ, ଅଦୃଷ୍ଟ, ଲକ୍ଷଣଦ୍ୱାରା ଅନନୁମିତ,ଅକୃତ, ଚନ୍ଦ୍ର, (ସ୍ତ୍ରୀ) ଅଲକ୍ଷିତା ।

ଅଲକ୍ଷିତଭାବରେ—ଗ୍ରା.କ୍ରି.ବ°. ଅତର୍କିତ ଭାବରେ ଗୁପ୍ତଭାବରେ ।

ଅଲକ୍ଷିତେ—ଗ୍ରା.କ୍ରି.ବ°.(ବ.ବ୍ରୀ.) ଆଢ଼ୁ-ଆଳରେ ଥାଇ, ଅଜ୍ଞାତସାରେ, ଅଦୃଷ୍ଟ-ଭାବରେ,ଗୋପନେ, ଅଲକ୍ଷିତଭାବରେ ।

ଅଲକ୍ଷ୍ୟ—ତ୍ରି.ବ°. ବ.ବ୍ରୀ, (ଅ + ଲକ୍ଷ୍ୟ) ଅଜ୍ଞେୟ, ଯାହା ଲକ୍ଷ୍ୟକରାଯାଇ ନାହିଁ, ବ୍ୟାଜଶୂନ୍ୟ, ଅତୁଳନୀୟ, ଅଦୃଶ୍ୟ, ଅନନ୍ୱେଷ୍ୟ, ଉଦ୍ଦେଶ୍ୟହୀନ, ସାମାନ୍ୟ, ତୁଚ୍ଛ ।

ଅଲକ୍ଷ୍ୟଗତି—ତ୍ରି. ବ°. (ବ.ବ୍ରୀ) ଗୂଢ଼-ଚର, ଅଦୃଶ୍ୟଗମନ ।

ଅଲକ୍ଷ୍ୟଜନ୍ମା—ବ°. ପୁଂ. ଓ ସ୍ତ୍ରୀ. ବ.ବ୍ରୀ; (ଅଲକ୍ଷ୍ୟ + ଜନ୍ମନ୍) ଯାହାର ଜନ୍ମ ତୁଚ୍ଛ ଅଟେ, ଅଜ୍ଞାତଜନ୍ମା (ଶିବ) ।

ଅଲକ୍ଷ୍ୟଲିଙ୍ଗ—ପୁଂ. ବ°. (ବ.ବ୍ରୀ) ଛଦ୍ମବେଶୀ,(ସ୍ତ୍ରୀ) ଅଲକ୍ଷ୍ୟଲିଙ୍ଗା ।

ଅଲକ୍ଷ୍ୟେ—ବ°. ଅଲକ୍ଷିତଭାବରେ, ଆଢ଼ୁଆଳରେ ।

ଅଲକ୍ଷ୍ମୀ—ସ୍ତ୍ରୀ. ବି. (ଅ + ଲକ୍ଷ୍ମୀ) ଲକ୍ଷ୍ମୀର ବିରୁଦ୍ଧ, ଲକ୍ଷ୍ମୀଙ୍କ ବଡ଼ଭଉଣୀ, ଭାଗ୍ୟ-ବିରୋଧିନୀ ଦେବତା, ଦୁର୍ଭାଗ୍ୟ, ଦୁର୍ଦ୍ଦଶା, (ଗ୍ରା.) ହତଭାଗ୍ୟ ବ୍ୟକ୍ତି ।

ଅଲକ୍ଷ୍ମୀକ—ବି. ବିଂ. (ବ.ବ୍ରୀ) ଲକ୍ଷ୍ମୀଛଡ଼ା, ଧନହୀନ, ଅପ୍ରିୟଦର୍ଶନ, ଅପ୍ରିୟଭାଷୀ, ମର୍ମପୀଡ଼କ, ପରୁଷଭାଷୀ ।

ଅଲଗ—ଗ୍ରା.ବିଂ. (ସଂ. ଅଲଗ୍ନ) ଅଲଗା, ଅସଂଲଗ୍ନ, ଶ୍ରୀହୀନ, ଅସୁନ୍ଦର, ଚିତ୍ତୁମତା, ନିଗୁଡ଼ିଆ ।

ଅଲଗଛ—ପ୍ରା. (କଟକ) ବି.ବିଂ. ଅଭୂତ ଭାବରେ, ଶୂନ୍ୟେ ଶୂନ୍ୟେ ।

ଅଲଗଡ଼(ଡିଆ)—ଗ୍ରା.ବିଂ.ବିଷମ,ଗୋଲ-ମାଳିଆ,ଅଖଜିଆ,ଅପରିଷ୍କୃତ, ଅସୁନ୍ଦର, ଅସଙ୍ଗତ, ଅଖାଡ଼ୁଆ, ଯାଚ୍ଛା ତା, ଅଯୋଗ୍ୟ, ଅସଂଲଗ୍ନ, ଅସଂବନ୍ଧ ।

ଅଲଗଣା—ଗ୍ରା.ପୁଂ.ବିଂ.ଯାହାର କିଛି ଠିକ୍ ନାହିଁ, ଆଲୁରୁବାଲୁରୁ, (ସ୍ତ୍ରୀ)ଅଲଗଣୀ ।

ଅଲଗର୍ଦ୍ଦ—ପୁଂ. ବି.(ଅ + ଲଗ + ଅର୍ଦ୍ଦ + କ.ଅ) ଜଳବ୍ୟାଳ, ଜଳବୁଡ଼ା ସାପ, ଧଣ୍ଡସାପ, ଢମ୍ପସାପ ।

ଅଲଗ୍ନ—ବି. ବିଂ. (ଅ + ଲଗ୍ନ) ନ.ତତ୍; ଲଗ୍ନ ନୁହେ,ଅସଂସ୍ପୃଷ୍ଟ, ଅଲଗା,ବିଚ୍ଛିନ୍ନ, (ସ୍ତ୍ରୀ) ଅଲଗ୍ନା । [ନିର୍ମୂଳୀ ଲତା ।

ଅଲଗପୋଇ—ଗ୍ରା. ସିଂହଭୂମ, (ବି)

ଅଲଗବାଲଗ—ଗ୍ରା.ବିଂ. ଅମେଳ,ଅସଂଲଗ୍ନ

ଅଲଗର୍ଦ୍ଧ—ବି.(ଅଲକ + ଅର୍ଦ୍ଧ) ଅଲଗର୍ଦ୍ଦ (ଦେଖ) ।

ଅଲଗା—ଗ୍ରା. ବି. ( ସଂ.ଅଲଗ୍ନ ) ଅନ୍ୟ, ଅପର, ନିଃସମ୍ପର୍କୀୟ, ପୃଥଗାନ୍ନ, ଭିନ୍ନ, ପାର୍ଶ୍ୱସ୍ଥ, କିଛି ଦୂରକୁ ଗତ ।

ଅଲଗୁଣି—ଗ୍ରା. ବି. ଯେଉଁ ଆଶ୍ରୟରେ ଲୁଗା ପ୍ରଭୃତି ରଖନ୍ତି, କାଷ୍ଠ ବା ବଂଶ-ଦଣ୍ଡବିଶେଷ । [ ଭାବରେ ।

ଅଲଗେ—ଗ୍ରା. କ୍ରି. ବିଂ. ଅନ୍ୟତ୍ର,ପୃଥକ୍-

ଅଲଘଞ୍ଚାଳ—ଗ୍ରା.ବି.ଅଳି,କଟାଳ,ନିଷେଧ

ଅଲଂ—( ଅବ୍ୟ ) ଭୂଷଣ, ସାମର୍ଥ୍ୟ ସମ୍ପୂର୍ଣ୍ଣତା, ପ୍ରାଚୁର୍ଯ୍ୟ,ନିଷେଧ, ବାରଣ, ଅତ୍ୟର୍ଥ, ବ୍ୟର୍ଥତା, ଅବଧାରଣ ।

ଅଲଂକରଣ—କ୍ଲୀ. ବି. (ଅଲଂ + କୃ + ଭା.ଅନ ) ଭୂଷଣ, କଙ୍କଣାଦିଭୂଷଣ ଦ୍ରବ୍ୟ,ଗହଣା, ଅଲଂକାରଦ୍ୱାରା ଭୂଷଣ, କରିବା ।

ଅଲଂକରିଷ୍ଣୁ—ବି ବିଂ. (ଅଲଂ + କୃ + ଇଷ୍ଣୁ) ଭୂଷଣକାରୀ,ଅଲଂକର୍ତ୍ତା, ଭୂଷଣ-ଶୀଳ, ବେଶକାରୀ, ଶୋଭାଜନକ, ଅଲଂକାରଯୁକ୍ତ ।

ଅଲଂକର୍ତ୍ତା—ପୁଂ. ବିଂ. (ଅଲଂ + କୃ + କ. ତୃ ) ଭୂଷଣକର୍ତ୍ତା, ଯେ ବେଶଭୂଷା କରେ, (ସ୍ତ୍ରୀ) ଅଲଂକର୍ତ୍ତ୍ରୀ ।

ଅଲଂକର୍ମ୍ମୀଣ—ପୁଂ.ବିଂ. (ଅଲ + କର୍ମନ୍ + ଇଣ) କାର୍ଯ୍ୟକ୍ଷମ, କାର୍ଯ୍ୟଦକ୍ଷ, (ସ୍ତ୍ରୀ) ଅଲଂକର୍ମିଣୀ ।

ଅଲଂକାର—ପୁଂ ବି. (ଅଲଂ + କୃ + ଅ) ଭୂଷା, ଭୂଷଣ, (ଗ୍ରା) ଗହଣା, କାବ୍ୟର ଗୁଣବିଶେଷ ।

ଅଲଂକାରକୌସ୍ତୁଭ—କବି କର୍ଣ୍ଣପୂର ବିରଚିତ ଅଲଂକାର ଗ୍ରନ୍ଥ ।

ଅଲଂକାରଶାସ୍ତ୍ର—ଯେଉଁ ଶାସ୍ତ୍ରରେ ଶବ୍ଦର ଓ ବାକ୍ୟର ଅଲଂକାରସମୂହ ଆଲୋ-ଚିତ ହୋଇଅଛି, ଶବ୍ଦ ଓ ଅର୍ଥାଲଙ୍କାର-ବିଷୟକ ଗ୍ରନ୍ଥବିଶେଷ ।

ଅଲଂକୃତ—ବି.ବିଂ. (ଅଲଂ + କୃ + ର୍ମ. ତ) ଭୂଷିତ, ମଣ୍ଡିତ, ଶୋଭିତ, ସଜ୍ଜିତ, କାବ୍ୟାଲଙ୍କାରବିଶିଷ୍ଟ,(ସ୍ତ୍ରୀ)ଅଲଂକୃତା ।

ଅଲଂକୃତି—ସ୍ତ୍ରୀ.ବି. (ଅଲଂ + କୃ + ତି) ଅଲଂକାର,ଭୂଷଣ,(ଗ୍ରା) ଗହଣା ।

ଅଲଂକ୍ରିୟା—ସ୍ତ୍ରୀ.ବି. (ଅଲଂ + କୃ + ଭା. ଅ + ଆ) ଭୂଷିତକରଣ, ଭୂଷା, ସଜା-ଇବା ଅଲଂକାର, ଭୂଷଣ ।

ଅଲଂଗାମୀ—ପୁଂ. ବିଂ. (ଅଲଂ + ଗମ୍ + ଇନ୍) ଯେ ପ୍ରଚୁର ଗମନ କରେ, ଯେ ସର୍ବଦା ଗମନ କରେ ।

ଅଲଙ୍ଗ—ପ୍ରା.(ବାଲେଶ୍ୱର)ବି.ଗୁଳଘର ।

ଅଲଙ୍ଘନ—କ୍ଲୀ ବି. (ନ.ତତ୍) ଅନତିକ୍ରମ ଅନତିବର୍ତ୍ତନ, ଲଙ୍ଘନ ନ କରିବା, ପାଳନ (ବିଂ) ଅଲଙ୍ଘିତ ।

ଅଲଙ୍ଘନୀୟ—ବି. ବିଂ. (ଅ + ଲଙ୍ଘ୍ + ଅନୀୟ ) ଯାହା ଅତିକ୍ରମ କରାଯାଏ ନାହିଁ, ଅବ୍ୟର୍ଥ ।

ଅଲଙ୍ଘିତ—ବି. ବିଂ. (ଅ + ଲଙ୍ଘିତ) ଲଙ୍ଘିତ ହୋଇ ନ ଥିବା, ଅଲଙ୍ଘନକାରୀ ।

ଅଲଙ୍ଘ୍ୟ—ବି. ବିଂ. (ଅ + ଲଙ୍ଘ + ଯ) ଯାହା ଲଙ୍ଘନ କରାଯାଏ ନାହିଁ, ଦୁରତି-କ୍ରମଣୀୟ ।

ଅଲଜିଆ—ଗ୍ରା.ପୁଂ. ଓ ସ୍ତ୍ରୀ.ବିଂ. ନିର୍ଲଜ୍ଜ ।

ଅଲଜ୍ଜ—ବିଂ.(ବ.ବ୍ରୀ)ଲଜ୍ଜାହୀନ, ନିଲଜ୍ଜ, (ସ୍ତ୍ରୀ) ଅଲଜ୍ଜା ।

ଅଲଜୀ—ସ୍ତ୍ରୀ.ବି.ସନ୍ଧିସ୍ଥାନର ରୋଗବିଶେଷ ।

ଅଲଞ୍ଜର—ପୁଂ.ବି.(ଅଲଂ + ଜୃ + କ.ଅ) ମାଟିର ବୃହତ୍ ଜଳପାତ୍ର, ମାଠିଆ ।

ଅଲଞ୍ଜୀବିକ—ବି. ବିଂ. ଜୀବିକା ନିର୍ବାହର ଯଥେଷ୍ଟ ଧନାଦି ।

ଅଲଞ୍ଜୁଷ—ବି. ବିଂ. ଭକ୍ଷଣ କରିବାର ପର୍ଯ୍ୟାପ୍ତ ମାଂସାଦି ।

ଅଲଣା—ଗ୍ରା.ବିଂ. (ଅ + ଲବଣାକ୍ତ) ସ୍ୱାଦ ହୀନ.ଅସାର,ନିକୃଷ୍ଟ,ଲୁଣ ପଡ଼ି ନଥିବା ।

ଅଳତା—ଗ୍ରା. ବି. ସ୍ତ୍ରୀ. (ଅଲକ୍ତ ଶବ୍ଦଜ) ଲାକ୍ଷାରସ ।

ଅଳତ ବେଢ଼ (ଶିର) – ଗ୍ରା.ବି. ତଳପାର ଧାର, ସ୍ତ୍ରୀଲୋକମାନଙ୍କର ଅଳତା ଲଗାଇବା ସ୍ଥାନ, ପାର୍ଷ୍ଣି ।

ଅଳତାସିନ୍ଦୂର—ଗ୍ରା. ବି. ସ୍ତ୍ରୀମାନଙ୍କର ଓ ବର-କନ୍ୟାଙ୍କର ପ୍ରସାଧନର ଦୁଇ-ଗୋଟି ପ୍ରଧାନ ଉପକରଣ, ଅଳତା ଓ ସିନ୍ଦୁର, କୁଳକର୍ମ-ବେଦିରେ ବିବାହ-ବେଳେ କରାଯିବା ସ୍ତ୍ରୀ-ଆଚାରବିଶେଷ ।

ଅଳତି—ପୁଂ.(ଅଲ + ଅତି)ଗୀତବିଶେଷ, ସ୍ୱରସାଧିବା ନିମିତ୍ତ ସାରିଗାମାଦି ସ୍ୱର-ବିଶେଷ, (ଗ୍ରା) ଅଳତି, ବିସ୍ଫୋଟକ-ରୋଗବିଶେଷ ।

ଅଲନ୍ତରାଃ—ଅବ୍ୟ. ଅତ୍ୟର୍ଥେ ।

ଅଳନ୍ଧନ—ବି. ବିଂ. ସମୃଦ୍ଧିଶାଳୀ, ଯାହାର ପ୍ରଚୁର ଧନ ଅଛି ।

ଅଳନ୍ଧୁ—ଗ୍ରା. ବି. ରନ୍ଧନଗୃହ-ମଧ୍ୟସ୍ଥ ଧୂଆଁର କଳା ।

ଅଳନ୍ଧୂମ—ପୁଂ.ବି. (ଅଲମ୍ + ଧୂମ) ଧୂମ-ସମୂହ, ଅଳନ୍ଧୂ ।

ଅଲପକ—ଗ୍ରା. ବିଂ. (ସଂ.ଅଳ୍ପକ) ଅଳ୍ପ-ମାତ୍ର, ଅଳ୍ପପରିମିତ, ନିକୃଷ୍ଟ,ସାମାନ୍ୟ ।

ଅଲପଟେ—ଗ୍ରା. କ୍ରି. ବିଂ. ମୃଦୁଭାବରେ, ଆସ୍ତେ ଆସ୍ତେ, ସହଜରେ ।

ଅଲ୍ପ—ଗ୍ରା. ବିଂ. ଅଳ୍ପ, ସାମାନ୍ୟ, ହୀନ, ସଂଖ୍ୟାରେ କମ୍ । [ପରିମାଣରେ ।

ଅଲପା-ଅଲପି—ଗ୍ରା.କ୍ରି. ବିଂ. ଅତିଅଳ୍ପ-

ଅଲଫା—ଗ୍ରା. ବିଂ. ଲମ୍ବଭସ୍ତାନ, (ଯା) ବାବାଜୀ, ଫକୀରମାନେ ମୁଣ୍ଡବାଟେ ଗଳାଇ ପିନ୍ଧିବା କୁର୍ତ୍ତା ।

ଅଲବତ୍—ଗ୍ରା. କ୍ରି.ବିଂ. ନିଶ୍ଚେ,ଅବଶ୍ୟ ।

ଅଲବଲ୍ଲ—ଗ୍ରା.ବି.ଏକପ୍ରକାର ଲମ୍ବାନଳ-ଯୁକ୍ତ ହୁକା, ଧୂମପାନ ପାତ୍ର ।

ଅଲୟ—ପୁଂ. ବି. ( ନ.ତତ୍ ) ଲୟର ଅଭାବ, ଧ୍ୱଂସହୀନତା, ଅବକାଶ, ବିଂ. (ବ.ବ୍ରୀ )ଲୟରହିତ,ଅବିଧ୍ୱଂସୀ, ଅକ୍ଷୟ, ଅମର, ଗୃହହୀନ, (ସ୍ତ୍ରୀ) ଅଲୟା ।

ଅଲଗ୍ନ—ଗ୍ରା. ବିଂ. ଅପରିଷ୍କୃତ, ଅଡୁଆ, ଅସ୍ତବ୍ୟସ୍ତ, (ବି) ଆବର୍ଜନା, ଅଳିଆ, (ସ୍ତ୍ରୀ) ଅଲଗ୍ନା ।

ଅଲମ୍—ଅବ୍ୟ, ଭୂଷଣ, ପର୍ଯ୍ୟାପ୍ତି, ବାରଣ, ନିରର୍ଥକ, ଶକ୍ତି, ଅତ୍ୟର୍ଥ, ସମ୍ପୂର୍ଣ୍ଣ, ପ୍ରଚୁର, ନିଷେଧ, ସମର୍ଥ ।

ଅଲମ୍ପଶୁ—ପୁଂ. ବି. ଯଜ୍ଞରେ ଯେ ପଶୁ ପ୍ରଶସ୍ତ ନୁହେ ।

ଅଲଂପୁରୁଷୀଣ—ପୁଂ. ବିଂ. ପ୍ରତିମଲ୍ଲାଦି ପୁରୁଷ, ଯେ ଅନ୍ୟସଙ୍ଗେ ମଲ୍ଲ ଯୁଦ୍ଧାଦି କରିପାରେ, ପୌରୁଷ, ପୁରୁଷୋଚିତ, (ସ୍ତ୍ରୀ) ଅଲଂପୁରୁଷୀଣା ।

ଅଲଂବୁଦ୍ଧି—ସ୍ତ୍ରୀ. ବି. (କ.ଧା) ନିରର୍ଥକ-ବୁଦ୍ଧି, ପର୍ଯ୍ୟାପ୍ତବୁଦ୍ଧି ।

ଅଲମ୍ବୁଷ—ପୁଂ.ବି (ଅଲଂ + ବୁଷ୍ + ମିଂ. ଅ) ବମନ, ପ୍ରହସ୍ତ, ରାବଣର ମନ୍ତ୍ରୀ, ରାକ୍ଷସବିଶେଷ ।

ଅଲମ୍ବୁଷା—ସ୍ତ୍ରୀ. ବି. ( ଅଲମ୍ବୁଷ + ଆ ) ଲଜ୍ଜାବତୀ ଲତା, ମଞ୍ଜିଷ୍ଠା, ମୁଣ୍ଡିରୀ. ଭୂଇଁକଦମ୍ବ, ସ୍ୱର୍ଗବେଶ୍ୟାବିଶେଷ, ଅନ୍ୟର ପ୍ରବେଶ ନିବାରକ ଦଣ୍ଡରେଖା, ଗଣ୍ଡୀରୀ, (ଗ୍ରା.ବିଂ) ଅଖାଡ଼ୁଆ, ହୁଣ୍ଡା ।

ଅଲମ୍ବୁସା—ପୁଂ. ବି. ଦେଶବିଶେଷ ।

ଅଲମ୍ପୁଷ୍ଟ—କ୍ରି. ବିଂ. ସମର୍ଥ ।

ଅଲର୍କ—ପୁଂ.ବିଂ. (ଅଲ + ଅର୍କ + କ,ଅ) ବାୟା କୁକୁର,ଅରଖ ଗଛ,କୃମିବିଶେଷ, ଅସୁରବିଶେଷ । [ ପୁଣ୍ୟ ।

ଅଲପସ୍—କ୍ଳୀ. ବି. ଅପାପ, ପାପଭିନ୍ନ,

ଅଲବାଳ—କ୍ଳୀ.ବି.ବୃକ୍ଷରେ ଜଳସେଚନ-ନିମିତ୍ତ କ୍ଷୁଦ୍ର ବନ୍ଧବିଶେଷ, ଆଲବାଲ, ମନ୍ଦା ।

ଅଲବ୍ଧ—କ୍ରି. ବିଂ. ନ.ତତ୍; (ଅ + ଲବ୍ଧ) ଅପ୍ରାପ୍ତ, ଅନଧିଗତ, (ସ୍ତ୍ରୀ) ଅଲବ୍ଧା ।

ଅଲଭ୍ୟ—କ୍ରି.ବିଂ. ନ.ତତ୍; (ଅ + ଲଭ୍ୟ) ଯାହା ଲାଭ କରିଯାଇ ନ ପାରେ, ଅପ୍ରାପ୍ୟ, ଅନଧିଗମ୍ୟ, ସୁଦୁଷ୍ପ୍ରାପ୍ୟ, (ସ୍ତ୍ରୀ) ଅଲଭ୍ୟା ।

ଅଲଭ୍ୟରେ—ଗ୍ରା. କ୍ରି. ବିଂ. ନ ଲୋଡ଼ି-କରି,ସହଜରେ, ପ୍ରାର୍ଥନାବ୍ୟତିରେକେ ।

ଅଲଲ—ବିଂ. ଉଚ୍ଛୃଙ୍ଖଳ, ଅନିଦ୍ଦିଷ୍ଟ ।

ଅଲସ—କ୍ରି. ବିଂ. (ଅ + ଲସ୍ + କ,ଅ) ଅବଶ୍ୟ କର୍ତ୍ତବ୍ୟ କାର୍ଯ୍ୟ କରିବାକୁ ଅନିଚ୍ଛୁକ, କୁଡ଼ିଆ, କ୍ଳାନ୍ତ । ଦୀର୍ଘସୂତ୍ର, ( କ୍ରିୟାମନ୍ଦ ) କାର୍ଯ୍ୟ କରିବାକୁ ଜଡ଼ପ୍ରାପ୍ତ, ଗୋଦର, ପାଦରୋଗ-ବିଶେଷ, ବୃକ୍ଷବିଶେଷ, (ପୁଂ.ବି) ଋଷି-ବିଶେଷ, (କ୍ଳୀ) ଅଲସତ୍ୱ, କ୍ରିୟାକରଣେ ଅପ୍ରଯତ୍ନ, ଅଲସୁଆ ।

ଅଲସକ—ପୁଂ. ବି. (ଅଲସ + କ + ଅ) ଉଦରରୋଗ, (ବି) ଆଲସ୍ୟଯୁକ୍ତ, ଅଳସଗମନ, (କ୍ଳୀ. ବି) ମନ୍ଦଗମନ, ଆସ୍ତେ ଆସ୍ତେ ଯିବା, (ବିଂ) ମନ୍ଦଗାମୀ ।

ଅଲସା—ସ୍ତ୍ରୀ. ବି. (ଅଲସ + ଆ) କାର୍ଯ୍ୟ-କରିବାରେ ଅକ୍ଷମା, (ସ୍ତ୍ରୀ) ହଂସପାଦୀ ଲତା, (ବିଂ) ଆଲସ୍ୟଯୁକ୍ତା ।

ଅଲସୁଆ—ବିଂ. ଅଲସ, ଆଲସ୍ୟଯୁକ୍ତ, ଅକର୍ମଣ୍ୟ ।

ଅଲାଇଚ—ଗ୍ରା. ବି. ଏଲା, ଏକପ୍ରକାର ମସଲା ।

ଅଲାଗୀ—ସ୍ତ୍ରୀ. ବିଂ. ରଜୋବତୀ, ଅସ୍ପୃଶ୍ୟା ସ୍ତ୍ରୀ, ଅସୁନ୍ଦରୀ ।

ଅଲାଜୁକ—ଗ୍ରା. ବିଂ. ନିର୍ଲଜ ।

ଅଲାତ—ପୁଂ.କ୍ଳୀ.ବି. (ଅ + ଲା + ମିଂ.ତ) ଅର୍ଦ୍ଧଦଗ୍ଧ କାଷ୍ଠ, ଦରପୋଡ଼ା ନିଆଁ-ଖୁଣ୍ଟା, ଜ୍ୱଳନ୍ତ ଅଙ୍ଗାର, କୋଇଲା (ବିଂ) ଅଗ୍ନିଦଗଧ ।

ଅଲାତୃଣ—କ୍ରି. ବି. ଆଦର୍ଶନଶୀଳ, ପୀଡ଼ନଶୀଳ, ହିଂସୁକ ।

ଅଲାବୁ(ବୂ)—ସ୍ତ୍ରୀ.ବି. (ଅ + ଲମ୍ବ୍ + ଉ) ଯାହା ଜଳରେ ବୁଡ଼େ ନାହିଁ, ଲାଉ, ପିତାଲାଉ, ତୁମ୍ବୀ ।

ଅଲାବୁମୟ—ବିଂ. ଲାଉତୁମ୍ବା, ଯୋଗୀ-ମାନଙ୍କର ଜଳପାତ୍ର, ବୀଣାପ୍ରଭୃତି ଯନ୍ତ୍ରର ଅଙ୍ଗବିଶେଷ ।

ଅଲାଷ୍ୟ—କ୍ରି. ବି. ଗମନଶୀଳ ।

ଅଲାର—କ୍ଳୀ.ବି. କବାଟ, କପାଟ ।

ଅଲାସ—ପୁଂ.ବି. ଜିହ୍ୱାରୋଗବିଶେଷ ।

ଅଲାହଦା—ଯା. ଅସଂପୃକ୍ତ, ସ୍ୱତନ୍ତ୍ର ।

ଅଳି—ପୁଂ. ବ ( ଅଲ + ଇ ) ଭ୍ରମର, ବୃଶ୍ଚିକ, କାକ, କୋକିଲ, ମଦିରା, ବସ୍ତୁ ରାଶି, (ଗ୍ରା.ବି) ସନିର୍ବନ୍ଧ, ଜିଗର, ଅନୁରୋଧ, (ଯା) ଅଭିଭାବକ, ରକ୍ଷକ, ତତ୍ତ୍ୱାବଧାୟକ ।

ଅଳିଅର—ଗ୍ରା.ବିଂ. ପୁଂ ଓ ସ୍ତ୍ରୀ. ଗେହ୍ଲା, ଗେଲବସର, ଯେ ପିଲାଦିନୁ ଗେଲ-ବସରରେ ବଢ଼ିଅଛି ।

ଅଳିଆ—ଗ୍ରା. ବି. ଝାଟୁଆ, ଆବର୍ଜନା, ଗୋଲମାଲ,ଅଡ଼ୁଆ,(ବିଂ)ଆବର୍ଜନାମୟ, ଅପରିଷ୍କୃତ, ଅମୀମାଂସିତ ।

ଅଳିକ—କ୍ଳୀ. ବି (ଅଳ + ଇକ) ଲଲାଟ, ଯାହା ଭୂଷିତ କରିହୁଏ, ଆକାଶ (ବିଂ) ମିଥ୍ୟା, ଅପ୍ରିୟ ଅସତ୍ୟ ।

ଅଳିକୁଳସଙ୍କୁଳ—ପୁଂ. ବି. କୁବ୍ଜକ ବୃକ୍ଷ, ଭଦ୍ରତରୁଣୀ, ପୁଷ୍ପବୃକ୍ଷବିଶେଷ, (ବିଂ) ଭ୍ରମରସମୂହ-ବ୍ୟାପ୍ତ ।

ଅଲଖା—ଗ୍ରା.ବିଂ. ଅରକ୍ଷିତ,ତୁଚ୍ଛ, ହୀନ, ନଗଣ୍ୟ, ଯାହାକୁ ମନୁଷ୍ୟ ବୋଲି କେହି ଗଣେ ନାହିଁ ।

ଅଲଗର୍ଦ୍ଦ—ପୁଂ. ବି. (ଅଲ + ଗୃଧ୍ + ଅ) ପାଣିଧଣ୍ଡ, ଧଣ୍ଡ ସାପ, ଡମ୍ପ ସାପ ।

ଅଲଗଲି—ସ୍ତ୍ରୀ. ବି. ସଙ୍କୀର୍ଣ୍ଣପଥ, ସରୁ-ରାସ୍ତା, ଅପ୍ରକାଶିତ ସ୍ଥାନ ।

ଅଲିଙ୍ଗ—ବି.ବିଂ.(ଅ + ଲିଙ୍ଗ)ଚିହ୍ନଶୂନ୍ୟ, ଲିଙ୍ଗଭିନ୍ନ. ଅନୁମାନଶୂନ୍ୟ, ଦୁଷ୍ଟଚିହ୍ନ, (ବି) ଲିଙ୍ଗଶୂନ୍ୟ, ପରଂବ୍ରହ୍ମ ।

ଅଲିଙ୍ଗୀ—ପୁଂ. ବି. ଭଣ୍ଡ ତପସ୍ୱୀ ନୁହେ, ବ୍ରହ୍ମଚାରିପ୍ରଭୃତି ।

ଅଲଜିହ୍ୱା—ସ୍ତ୍ରୀ. ବି. (କ.ଧା) ଘଣ୍ଟିକା ।

ଅଲଞ୍ଜର—ପୁଂ. ବି. (ଅଲଂ + ଜୃ + ଅ) ମୃଣ୍ମୟପାତ୍ର, ମାଠିଆ, ମାଟି କଳସ ।

ଅଲଦୂର୍ବା—ସ୍ତ୍ରୀ.ବି. (କ.ଧା.)ମାଳାଦୂର୍ବା, ମାଳଘାସ, ଗଣ୍ଠି ଦୂବ ।

ଅଲନ—ପୁଂ.ବି. ପର୍ଯ୍ୟାପ୍ତ,ଇଷ୍ଟ,ତପସ୍ୟା ଦ୍ୱାରା ଅତି ବୃଦ୍ଧିପ୍ରାପ୍ତ ।

ଅଲମୀ—ସ୍ତ୍ରୀ.ବି. ଭୃଙ୍ଗବଧୂ, ଭ୍ରମରୀ ।

ଅଲିନ୍ଦ—ପୁଂ. ବି. ( ଅଲ + ଇନ୍ଦ ) ଘର ବାହାରେ ଥିବା ପିଣ୍ଡା, ବାରଣ୍ଡା, ବେଦୀ ।

ଅଲିପକ—ପୁଂ. ବି (ଅ + ଲିପ୍ + ଅକ) ଭ୍ରମର, କୋକିଳ, କୁକୁର ।

ଅଲିପର୍ଣ୍ଣିକା—ସ୍ତ୍ରୀ ବି. ବୃଶ୍ଚିକ, ପତ୍ରାଖ୍ୟ ଲତା ।

ଅଲିପିଜ୍ଞ—ବି.ବିଂ. (ନ.ତତ୍)ଯେ ଲେଖି-ଜାଣେ ନାହିଁ, ନିରକ୍ଷର, ମୂର୍ଖ, (ସ୍ତ୍ରୀ) ଅଲିପିଜ୍ଞା ।

ଅଲିପ୍ସା—ସ୍ତ୍ରୀ.ବି. (ନ. ତତ୍) ଲିପ୍ସାର ଅଭାବ, ଅଲୋଭ, ଅନାକାଙ୍କ୍ଷା ।

ଅଲିପ୍ରିୟ—କ୍ଲୀ. ବି. କୋକନଦ, ରକ୍ତୋତ୍ପଳ, (ବିଂ) ଭ୍ରମରର ପ୍ରିୟବସ୍ତୁ, (ସ୍ତ୍ରୀ) ଅଲିପ୍ରିୟା ।

ଅଲିମକ—ପୁଂ. ବି. ଭେକ, ବେଙ୍ଗ, କୋକିଳ, ଭ୍ରମର, ମହୁଲିଗଛ, ପଦ୍ମ-କେଶର ।

**ଅଲିମୋଦା**—ସ୍ତ୍ରୀ.ବି. ଗଣିକାରି ବୃକ୍ଷ ।

ଅଲିମ୍ବକ—ପୁଂ. ବି. ଭ୍ରମର, କୋକିଳ, ଭେକ, ବେଙ୍ଗ, ମହୁଲିଗଛ, ପଦ୍ମ-କେଶର ।

ଅଲିଲ—ପୁଂ.ବି.ବେଦାନ୍ତପ୍ରସିଦ୍ଧ ଗଗନ-ବିହାରୀ ପକ୍ଷୀବିଶେଷ ।

ଅଲିବଲ୍ଲଭ—ପୁଂ.ବି. ଫଳେରୁହା ବୃକ୍ଷ, ପାଟଳୀଗଛ ।

ଅଲିବାହିନୀ—ସ୍ତ୍ରୀ.ବି. ( ଅଲି + ବହ୍ + ଣିଚ୍, କ + ଈ ) କୋଙ୍କଣ ଦେଶ-ପ୍ରସିଦ୍ଧ କାକାବୃକ୍ଷ, କୋବିକା ପୁଷ୍ପ ।

ଅଲୀ—ପୁ.ବି. ( ଅଲ + ଇନ୍ ) ବୃଶ୍ଚିକ, ଭ୍ରମର ।

ଅଲୀକ—କ୍ଲୀ. ବି (ଅଲ + ଈକ) ମିଥ୍ୟା, ଅସତ୍ୟ, ଅପ୍ରିୟତା, ଲଲାଟ, ସ୍ୱର୍ଗ, (ବିଂ) ମିଥ୍ୟା, କ୍ଷଣସ୍ଥାୟୀ, ଅମୂଳକ, ଅପ୍ରିୟ, କ୍ଷୁଦ୍ର, ଅଳ୍ପ ।

ଅଲୀକମତ୍ସ୍ୟ—ପୁଂ. ବି. ପିଷ୍ଟକବିଶେଷ, ଭଜା ରାଶିଯୁକ୍ତ ବରାପିଠା ।

ଅଲୀକସୁପ୍ତ—ବି.(ଅଲୀକ + ସୁପ୍ତ)ଚେଇଁ-ଶୋଇବା, ଗାଲୁପାଡ଼ି ଶୋଇବା ।

ଅଲୁ—ସ୍ତ୍ରୀ. ବି. ଗଡ଼ୁ, ଛୋଟ ଜଳପାତ୍ର, ଗାଲ ।

ଅଲୁକ୍—ବି. ବ. ବ୍ରୀ; ( ଅ + ଲୁକ୍ ) (ବ୍ୟାକରଣ) ଯେଉଁ ସମାସରେ ପୂର୍ବ-ପଦର ବିଭକ୍ତି ଲୁପ୍ତ ହୁଏ ନାହିଁ ।

ଅଲୁପ୍ତ—ବିଂ. ( ନ.ତତ୍ ) ଅବ୍ୟାହତ, ନିର୍ବିଘ୍ନ ।

ଅଲୁବ୍ଧ—ପୁଂ. ବିଂ. (ନ. ତତ୍) ଲୋଭ-ଶୂନ୍ୟ, ନିର୍ଲୋଭ, (ସ୍ତ୍ରୀ) ଅଲୁବ୍ଧା ।

ଅଲୂକ୍ଷ—ବି.ବିଂ. ଚିକ୍କଣ, ରୁକ୍ଷ ନୁହେଁ ।

ଅଲୂନ—ବି. ବିଂ. (ନ. ତତ୍) ଅଚ୍ଛିନ୍ନ, ଅକର୍ତ୍ତିତ, ଯାହା କଟା ହୁଏ ନାହିଁ ।

ଅଲେ—(ଅବ୍ୟ) ଅରେ ରେ, ଆରେ ରେ, (ଗ୍ରା) ନୀଚ ଲୋକର ସମ୍ବୋଧନ ।

ଅଲେଇ—ଗ୍ରା ବିଂ.ସ୍ତ୍ରୀ. ଓଲମୀ,ଓଲେଇ, ଅତିରକ୍ତ ଖାଦ୍ୟଲୋଭିନୀ, ଡାହାଣୀ, (ଗ୍ରା.ବି) ବିପଦ, ଅଶୁଭ, ଗ୍ରାମଦେବତା ।

ଅଲେଖ—ବି. ବ. ବ୍ରୀ, ( ଅ + ଲେଖା ) ନିରାକାର, ଭଗବାନ୍, (ଗ୍ରା. ବି) ଋଷି-ବିଶେଷ, ପୁରୁଷଙ୍କ ନାମବିଶେଷ ଅଲେଖସ୍ୱାମୀ, (ବିଂ) ଅନିର୍ବଚନୀୟ, ନିରାକାର, ଅବର୍ଣ୍ଣନୀୟ, ବିଚିତ୍ର, ଅଗଣିତ, ଅଲିଖିତ, ନଗଣ୍ୟ, ଯାହା ଉଲ୍ଲେଖଯୋଗ୍ୟ ନୁହେ ।

ଅଲେଖଧର୍ମ—ଗ୍ରା. ବି. ମହିମାଧର୍ମ, ଓଡ଼ିଶାରେ ପ୍ରଚଳିତ ନିରାକାର ବା ଶୂନ୍ୟ ଭଜନକାରୀ ହିନ୍ଦୁସମ୍ପ୍ରଦାୟ-ବିଶେଷ ।

ଅଲେଖପୁର—ଗ୍ରା.ବି. ମହାଶୂନ୍ୟ ।

ଅଲେଖସ୍ୱାମୀ—ଗ୍ରା. ବି. ଅଲେଖଧର୍ମା-ବଲମ୍ବୀମାନଙ୍କ ପୂଜିତ ନିରାକାର, ଈଶ୍ୱର, ସୂର୍ଯ୍ୟ, ଭୀମଭୋଇଙ୍କ ଗୁରୁ ଓ ମହିମାଧର୍ମପ୍ରବର୍ତ୍ତକ ।

ଅଲେଖା—ଗ୍ରା.ବିଂ.ଲେଖାହୋଇନ ଥିବା, ଅକଥନୀୟ, ଯାହା ଉଲ୍ଲେଖଯୋଗ୍ୟ ନୁହେ, ତୁଚ୍ଛ, ହେୟ, ଅଗଣିତ, ଅଲେ-ଖର ଡାକନାମ ।

ଅଲେପକ—ବି. ବିଂ. (ଅ + ଲେପ୍ + କ) ନିଃସମ୍ବନ୍ଧ, ନିର୍ଲେପ, ବେଦାଙ୍ଗ, ଅକଳଙ୍କ, (ବି.ପୁଂ.) ପରମାତ୍ମା, (ବିଂ) ଯେ ଲେପନ କରେ ନାହିଁ ।

ଅଲୋକ—ପୁଂ. ବି. ଲୋକଶୂନ୍ୟ ସ୍ଥାନ, ପାତାଳାଦି, (ବିଂ) ଅଦୃଶ୍ୟବସ୍ତୁ,ନିର୍ଜନ, ଲୋକଶୂନ୍ୟ, ଅକୃତପୁଣ୍ୟ, ପୁରୋହିତ ।

ଅଲୋକସାମାନ୍ୟ—ବି. ବିଂ. ନ.ତତ୍; ( ଅଲୋକ + ସାମାନ୍ୟ ) ଅଲୌକିକ, ଅସାଧାରଣବିଶିଷ୍ଟ, ସାଧାରଣ ଲୋକରେ ଦେଖାଯାଉ ନ ଥିବା, ଅସାମାନ୍ୟ ।

ଅଲୋକନ—କ୍ଲୀ.ବି. (ନ. ତତ୍) ଅଦର୍ଶନ ତିରୋଭାବ ।

ଅଲୋକନୀୟ—ବି.ବିଂ. (ନ.ତତ୍)ଅଲକ୍ଷ୍ୟ, ଅଦୃଶ୍ୟ, ଅଦ୍ରଷ୍ଟବ୍ୟ (ସ୍ତ୍ରୀ) ଅଲୋକନୀୟା ।

ଅଲୋକସାଧାରଣ—ବି. ବିଂ. (ନ. ତତ୍) ଅଲୋକସାମାନ୍ୟ, ଯାହା ସାଧାରଣ-ଲୋକରେ ନାହିଁ, ଅଲୌକିକ, (ସ୍ତ୍ରୀ) ଅଲୋକସାଧାରଣୀ ।

ଅଲୋକସୁନ୍ଦର—ବି. ବିଂ. (ନ.ତତ୍) ଜଗ-ତରେ ଯେ ରୂପ ସୌନ୍ଦର୍ଯ୍ୟ ଦେଖାଯାଇ-ନାହିଁ ତାଦୃଶ ସୌନ୍ଦର୍ଯ୍ୟବିଶିଷ୍ଟ, (ସ୍ତ୍ରୀ) ଅଲୋକସୁନ୍ଦରୀ ।

ଅଲୋକସ୍ପନ୍ଦନ—ବି. ବଂ. (ବ.ବ୍ରୀ) ଅତି-ସୁଖକର ସ୍ପନ୍ଦନ, ଜଗତରେ ଯେ ରୂପ ସୁଖକର ସ୍ପନ୍ଦନ ଅନୁଭୂତ ହୋଇ ନାହିଁ ତାଦୃଶ ସ୍ପନ୍ଦନ, ଅତି ସୁଖକର ସ୍ପନ୍ଦନ-ବିଶିଷ୍ଟ, (ସ୍ତ୍ରୀ) ଅଲୋକସ୍ପନ୍ଦନା ।

ଅଲୋକା—ସ୍ତ୍ରୀ.ବି.ଇଷ୍ଟକବିଶେଷ, କାନ୍ଥ-ମଧ୍ୟଗତ ଇଟା ।

ଅଲୋକିତ—ବି. ବଂ. (ନ.ତତ୍) ଅନବେକ୍ଷିତ, ଅଦୃଷ୍ଟ, (ଗ୍ରା.ବଂ) ଅଦୃଷ୍ଟପୂର୍ବ, ଅତି ଆଶ୍ଚର୍ଯ୍ୟ, ଅପାର ।

ଅଲୋକ୍ୟ—ବି· ବଂ. ସ୍ୱର୍ଗାଦିଲୋକର ଅସାଧନ, ଯେଉଁ କାର୍ଯ୍ୟ କଲେ ସ୍ୱର୍ଗାଦିଲୋକର ପ୍ରାପ୍ତି ହୁଏନାହିଁ,ଅସାଧାରଣ, ଅନନୁମିତ ।

ଅଲୋଚନ—ବଂ.ବ.ବ୍ରୀ;(ଅ + ଲୋଚନ) ଲୋଚନସ୍ଥାନ, ଯେଉଁ ଘରେ ଝରକା ନ ଥାଏ ।

ଅଲୋଡ଼ା – ଗ୍ରା. ବଂ.ଅପୃଚ୍ଛା, ଅପ୍ରାର୍ଥିତ, ଅନାମନ୍ତ୍ରିତ, ନିଷ୍ପ୍ରୟୋଜନ, ନଗଣ୍ୟ ।

ଅଲୋଭ—ପୁଂ.ବି.ନ.ତତ୍;(ଅ + ଲୋଭ) ଧନାଦିରେ ଅନାସ୍ଥା, ଲୋଭଶୂନ୍ୟତା, ସନ୍ତୋଷ, (ବଂ) ନିର୍ଲୋଭ,ଲୋଭଶୂନ୍ୟ

ଅଲୋଭୀ—ପୁଂ. ବଂ. (ନ.ତତ୍) ଲୋଭ-ଶୂନ୍ୟ,ନିର୍ଲୋଭ,ଅଲ୍ପସ୍ପୃହ,ଅନାକାଙ୍କ୍ଷୀ, ସନ୍ତୁଷ୍ଟ, (ସ୍ତ୍ରୀ) ଅଲୋଭିନୀ ।

ଅଲୋମବିଲୋମ—ଗ୍ରା. ବଂ. ପୂର୍ବାପର ସମ୍ବନ୍ଧ ନ ନେଇ ଲେଖାଯିବା ବା କୁହାଯିବା (ବିଷୟ) । [ସ୍ଥାନ ।

ଅଲୋମକ;ଅଲୋମା—ବଂ.(ବ.ବ୍ରୀ )ଲୋମ-

ଅଲୋଲ—ବି.ବଂ.ନ.ତତ୍;(ଅ + ଲୋଲ) ଅଚଞ୍ଚଳ, ତୃଷ୍ଣାରହିତ, ଅଶିଥିଳ,ଅଶ୍ଲଥ, ଆଣ୍ଟ, (ସ୍ତ୍ରୀ) ଅଲୋଲା ।

ଅଲୋଲୁପ—ବି. ବଂ. ଲୋଭଶୂନ୍ୟ, ଲୋଭନୀୟ ପଦାର୍ଥ ସମ୍ମୁଖରେ ଥିଲେ-ସୁଦ୍ଧା ଯାହାର ଚିତ୍ତ ବିକୃତ ହୁଏନାହିଁ ।

ଅଲୋହ—ପୁଂ.ବି.(ଅ + ଲୁହ + ଅ)ଋଷି-ବିଶେଷ. (କ୍ଲୀ) ଲୁହା ନୁହେ ।

ଅଲୋହିତ—ବି.ବଂ.ବ.ବ୍ରୀ;(ଅ + ଲୋହିତ) ଲୋହିତବର୍ଣ୍ଣ ନୁହେ, ଅରକ୍ତବର୍ଣ୍ଣ, ଗାଢ଼ ଲାଲ, (କ୍ଲୀ.ବି.) ରକ୍ତପଦ୍ମ ।

ଅଲୌକିକ—ବି. ବଂ. (ଅ + ଲୌକିକ) ଅସାମାନ୍ୟ, ଅସାଧାରଣ, ଅଦୃଷ୍ଟପୂର୍ବ, ଲୋକାତୀତ, ଚମତ୍କାର, ଅପାର, ଲୋକ-ବ୍ୟବହାରରେ ଅନଭିଜ୍ଞ, ଅସାମାଜିକ, (ସ୍ତ୍ରୀ) ଅଲୌକିକୀ,(ବି)ଅଲୌକିକତା ।

ଅଲୌକିକସନ୍ନିକର୍ଷ—ପୁଂ.ବି. ପ୍ରତ୍ୟକ୍ଷ-ସାଧନ ସନ୍ନିକର୍ଷ ।

ଅଳ୍ପ—ବି.ବଂ (ଅଲ + କ.ପ)ସାମାନ୍ୟ, ଈଷତ୍, କିଛି,ଅତି କମ୍‌ସଂଖ୍ୟକ, କ୍ଷୁଦ୍ର, ଶ୍ରେଷ୍ଠ, ନୀଚ, ନଗଣ୍ୟ, ହେୟ, ତୁଚ୍ଛ, (ବି)ଅଳ୍ପତା,କ୍ଷୁଦ୍ରତା(କ୍ରି.ବଂ) ସାମାନ୍ୟରେ, ଅଳ୍ପମାତ୍ର, (ସ୍ତ୍ରୀ) ଅଳ୍ପା ।

ଅଳ୍ପକ—ପୁଂ. ବି. କଣ୍ଟକ ବୃକ୍ଷବିଶେଷ, ଦୁରାଲଭା, (ବଂ) ଅଳ୍ପ ।

ଅଳ୍ପକେଶୀ—ସ୍ତ୍ରୀ. ବି. ଭୂତକେଶୀ ବୃକ୍ଷ, ଅଳ୍ପକେଶଯୁକ୍ତା ସ୍ତ୍ରୀ ।

ଅଳ୍ପକେ—ଗ୍ରା. କ୍ରି. ବଂ. ସହଜରେ, ଅଳ୍ପମାନରେ, ସାମାନ୍ୟ କଥାରେ ।

ଅଳ୍ପକରେ—ଗ୍ରା.କ୍ରି. ବଂ. ସାମାନ୍ୟରେ, ସହଜରେ, ଅଳ୍ପ ଆୟାସରେ ।

ଅଳ୍ପଦୃଷ୍ଟି—ବଂ. ପୁଂ. ଓ ସ୍ତ୍ରୀ. ବ. ବ୍ରୀ; (ଅଳ୍ପ + ଦୃଷ୍ଟି)ଅଦୂରଦର୍ଶୀ, ନୀଚମନା ।

ଅଳ୍ପଚେତାଃ—ବଂ.ପୁଂ.ସ୍ତ୍ରୀ.ଲଘୁଚେତାଃ କ୍ଷୁଦ୍ରମନାଃ, ଅନୁଦାର ।

ଅଳ୍ପଜୀବୀ—ପୁଂ. ବଂ. (ଅଳ୍ପ + ଜୀବ + କ.ଇନ୍) ଯେ ଅଳ୍ପକାଳ ବଞ୍ଚେ, (ସ୍ତ୍ରୀ) ଅଳ୍ପଜୀବିନୀ ।

ଅଳ୍ପଜ୍ଞ—ପୁଂ.ବଂ.(ଅଳ୍ପ + ଜ୍ଞା + କ.ଅ. ସାମାନ୍ୟଜ୍ଞାନବିଶିଷ୍ଟ,ଅପାରଦର୍ଶୀ, (ସ୍ତ୍ରୀ) ଅଳ୍ପଜ୍ଞା ।

ଅଳ୍ପଗନ୍ଧ—କ୍ଲୀ.ବି. ରକ୍ତକଇଁ(ବଂ)ଅଳ୍ପ-ଗନ୍ଧଯୁକ୍ତ ବସ୍ତୁ ମାତ୍ର, ସାମାନ୍ୟ ଗନ୍ଧ ।

ଅଳ୍ପତନୁ—ବି. ବଂ. ( ବ.ବ୍ରୀ. ) ଖର୍ବ, ବାମନ, ବାଙ୍ଗର, ଦୁର୍ବଳ, ଅଳ୍ପ ଅସ୍ଥି-ଯୁକ୍ତ ।

ଅଳ୍ପଦର୍ଶୀ—ବଂ.(ଅଳ୍ପ + ଦୃଶ + ଇନ୍) ଯେ ବିଚକ୍ଷଣ ନୁହେ, ଯାହାର ବିଜ୍ଞତା ଜନ୍ମି ନାହିଁ ।

ଅଳ୍ପଧୀ—ପୁଂ.ବଂ. (ବ.ବ୍ରୀ) ଅଳ୍ପବୁଦ୍ଧି, ମୂଢ଼ ।

ଅଳ୍ପପତ୍ର—ପୁଂ.ବି. କ୍ଷୁଦ୍ର କ୍ଷୁଦ୍ର ପତ୍ରଯୁକ୍ତ ତୁଳସୀବୃକ୍ଷ, ଅଳ୍ପପତ୍ରଯୁକ୍ତ ବୃକ୍ଷ ।

ଅଳ୍ପପଦ୍ମ—କ୍ଲୀ. ବି. କ.ଧା; ରକ୍ତକମଳ, ରକ୍ତୋତ୍ପଳ ।

ଅଳ୍ପପ୍ରମାଣ—ପୁଂ.ବି. ଖରଭୁଜଗଛ(ବଂ) ଅଳ୍ପପ୍ରମାଣଯୁକ୍ତ, ଖର୍ବ, ଶ୍ରେଷ୍ଠଆଡ଼ା ।

ଅଳ୍ପପ୍ରାଣ—ପୁ. ବଂ. (ଅଳ୍ପ + ପ୍ରାଣ)କ୍ଷଣ-ଜୀବୀ, ବର୍ଣ୍ଣବିଶେଷର ଉଚ୍ଚାରଣ-ବିଷୟରେ ମୁଖରୁ ବହିର୍ଗତ ପ୍ରାଣବାୟୁର ପ୍ରଯତ୍ନବିଶେଷ, ଝୁଙ୍କୁଜୀବନଆ, ଦୁର୍ବଳ, (ସ୍ତ୍ରୀ) ଅଳ୍ପପ୍ରାଣା, (ବି) ମହାପ୍ରାଣ ।

ଅଳ୍ପଭାଷୀ—ପୁଂ. ବଂ. (ଅଳ୍ପ + ଭାଷ୍ + କ.ଇନ୍)ଯେ ଅଧିକ କଥା କହେ ନାହିଁ, ମିତଭାଷୀ, (ସ୍ତ୍ରୀ) ଅଳ୍ପଭାଷିଣୀ ।

ଅଳ୍ପଭାଗ୍ୟ—ବି.ବଂ.(ବ.ବ୍ରୀ )ହତଭାଗ୍ୟ ।

ଅଳ୍ପମତି—ସ୍ତ୍ରୀ. ବି. (କ.ଧା), ସାମାନ୍ୟ-ବୁଦ୍ଧି, (ବଂ) ମନ୍ଦବୁଦ୍ଧିସମ୍ପନ୍ନ ।

ଅଳ୍ପମଧ୍ୟମ—ପୁଂ.ବଂ. ବ.ବ୍ରୀ ; (ଅଳ୍ପ + ମଧ୍ୟମ) କ୍ଷୀଣକଟୀ, (ସ୍ତ୍ରୀ) ଅଳ୍ପମଧ୍ୟମା ।

ଅଳ୍ପମାତ୍ର—ବି.ବଂ. (ବ.ବ୍ରୀ) ସାମାନ୍ୟ-ପରିମିତ, ଯତ୍‌ସାମାନ୍ୟ, ସ୍ୱଳ୍ପ, (ସ୍ତ୍ରୀ) ଅଳ୍ପମାତ୍ରା, (ବି.) ସାମାନ୍ୟ, କ୍ଷଣକାଳ, (ଗ୍ରା. କ୍ରି. ବଂ) ସାମାନ୍ୟ ପରିମାଣରେ ।

ଅଳ୍ପମାରିଷ—ପୁଂ. ବି. ଶାକବିଶେଷ, ଲେଉଟିଆ ଶାଗ, କଣ୍ଟାମାରିଷ ।

ଅଳ୍ପମୂଲ୍ୟ—କ୍ଲୀ. ବି. (କ.ଧା) ସାମାନ୍ୟ-ମୂଲ୍ୟ, କମ୍‌ଦାମ୍, (ବଂ) କମ୍‌ଦାମ୍‌ର, ସାମାନ୍ୟଦାମ୍‌ର ।

ଅଳ୍ପମେଧା—ପୁଂ. ବି. (ବ.ବ୍ରୀ) ଅଳ୍ପ-ଧାରଣାଶକ୍ତିଯୁକ୍ତ, ଦୁର୍ମେଧ, ଯାହାର ସ୍ମରଣଶକ୍ତି ନ ଥାଏ ।

ଅଳ୍ପପଚ—ବି.ବଂ. (ଅଳ୍ପ + ପଚ୍ + ଅ) ଯେ ସାମାନ୍ୟ ରାନ୍ଧେ,କୃପଣ,ଗଣ୍ଡିଖଣ୍ଡିଆ ।

ଅଳ୍ପବୟସ୍କ—ବି. ବଂ. (ବ.ବ୍ରୀ )ଅନଧିକ-ବୟସ୍କ, କମ୍ ବୟସ, (ସ୍ତ୍ରୀ) ଅଳ୍ପବୟସ୍କା ।

ଅଳ୍ପବଳ—କ୍ଲୀ. ବି. (କ.ଧା) ସାମାନ୍ୟ-ଶକ୍ତି, କମ୍‌ଜୋର (ସ୍ତ୍ରୀ) ଅଳ୍ପବଳା,

(ବି.)ସାମାନ୍ୟସାମର୍ଥ୍ୟସମ୍ପନ୍ନ,କମ୍‌ଜୋରି, ଦୁର୍ବଳ ।
ଅଳ୍ପବାଦୀ—ପୁଂ.ବିଂ. (ଅଳ୍ପ + ବଦ୍ + କ.ଇନ୍) ଅଳ୍ପଭାଷୀ, ମିତବାକ୍, (ସ୍ତ୍ରୀ) ଅଳ୍ପବାଦିନୀ ।
ଅଳ୍ପବିଦ୍ୟ—ତ୍ରି.ବିଂ. (ବ.ବ୍ରୀ) ଯେ ଅଳ୍ପ ପରିମାଣରେ ଲେଖାପଢ଼ା ଜାଣେ, ଅଳ୍ପଜ୍ଞ, (ସ୍ତ୍ରୀ) ଅଳ୍ପବିଦ୍ୟା ।
ଅଳ୍ପବୁଦ୍ଧି—ତ୍ରି. ବିଂ. (ବ.ବ୍ରୀ) ଅଳ୍ପଧୀ, କ୍ଷୀଣମତି, ନିର୍ବୁଦ୍ଧିଆ, ଜଡ଼ବୁଦ୍ଧି, ବି. (ସ୍ତ୍ରୀ) ସାମାନ୍ୟବୁଦ୍ଧି,ବୁଦ୍ଧିର ନ୍ୟୂନତା ।
ଅଳ୍ପଶଃ—ଅବ୍ୟ (ଅଳ୍ପ + ଶସ୍) ଅଳ୍ପେ ଅଳ୍ପେ, ଧୀରେ ଧୀରେ, କ୍ରମେ କ୍ରମେ ।
ଅଳ୍ପଶକ୍ତି—ସ୍ତ୍ରୀ. ବି. (କ.ଧା) ଯତ୍କିଞ୍ଚିତ୍ ସାମର୍ଥ୍ୟ, କମ୍‌ଜୋର, ସାମାନ୍ୟ କ୍ଷମତା, (ବିଂ) ଅଳ୍ପବଳ, କମ୍‌ଜୋରି, ଦୁର୍ବଳ ।
ଅଳ୍ପଶମୀ—ସ୍ତ୍ରୀ. ବି. ଶ୍ରେଷ୍ଠ ଶମୀବୃକ୍ଷ ।
ଅଳ୍ପସତ୍ତ୍ୱ—ବିଂ. (ଅଳ୍ପ + ସତ୍ତ୍ୱ) ବ.ବ୍ରୀ; କ୍ଷମତାହୀନ, ସାରଶୂନ୍ୟ, ଦୁର୍ବଳ ।
ଅଳ୍ପସରଃ—କ୍ଲୀ.ବି. (କ.ଧା) କ୍ଷୁଦ୍ର ଜଳାଶୟ, ପଲ୍ୱଲ
ଅଳ୍ପସାର—ତ୍ରି. ବିଂ. (ବ.ବ୍ରୀ) ଦୁର୍ବଳ, ଶକ୍ତିହୀନ, ଅଳ୍ପମୂଲ୍ୟ, (ସ୍ତ୍ରୀ) ଅଳ୍ପସାରା ।
ଅଳ୍ପସ୍ୱଳ୍ପ—ଗ୍ରା.ବିଂ. ଅତିଅଳ୍ପ,ଖୁବ୍‌କମ୍, ଅଳ୍ପପରିମାଣ ।
ଅଳ୍ପାଅଳ୍ପି—ଗ୍ରା. ବିଂ. ଅଳ୍ପ ଅଳ୍ପ, ଅତି ଅଳ୍ପମାତ୍ରାରେ ।
ଅଳ୍ପାକାଙ୍କ୍ଷୀ—ପୁଂ.ବିଂ.(ଅଳ୍ପ + ଆ + କାଙ୍କ୍ଷୀ + କ.ଇନ୍)ଅଳ୍ପାଶୟ, ଯେଅଧିକ ଆକାଙ୍କ୍ଷା ନ କରେ(ସ୍ତ୍ରୀ)ଅଳ୍ପାକାଙ୍କ୍ଷିଣୀ
ଅଳ୍ପାଧିକ—ତ୍ରି. ବିଂ. (ଅଳ୍ପ + ଅଧିକ) କମ୍ ବେଶି, ଯାହା ତାହା, ଯାହି ତାହି ।
ଅଳ୍ପାୟତ—ତ୍ରି.ବିଂ.ଅଳ୍ପବିସ୍ତୃତ,ଯାହାର ବିସ୍ତାର ଅଳ୍ପ ।
ଅଳ୍ପାୟୁଃ—ତ୍ରି. ବିଂ. ବ.ବ୍ରୀ; (ଅଳ୍ପ + ଆୟୁସ୍) ଅଳ୍ପକାଳଜୀବୀ, ଅଲପାଇଷ, (ବି) ଛେଳି ।
ଅଳ୍ପାଳ୍ପ—ତ୍ରି. ବିଂ. ଅତିଅଳ୍ପ, (ଗ୍ରା) ଅଳ୍ପାଅଳ୍ପ ।

ଅଳ୍ପାଶୟ—ପୁଂ. ବି. (କ.ଧା) ସାମାନ୍ୟ ଆଶୟ ବା ଆକାଙ୍କ୍ଷା, (ବିଂ) ଅନଧିକ ଆଶୟବିଶିଷ୍ଟ, ଅଳ୍ପାକାଙ୍କ୍ଷୀ (ସ୍ତ୍ରୀ) ଅଳ୍ପାଶୟା ।
ଅଳ୍ପାହାର—ପୁଂ.ବି. (କ.ଧା) ସାମାନ୍ୟ ଆହାର,ପରିମିତ ଭୋଜନ (ବିଂ)ଅଳ୍ପାହାରୀ, (ସ୍ତ୍ରୀ) ଅଳ୍ପାହାରା ।
ଅଳ୍ପାହାରୀ—ପୁଂ.ବିଂ.(ଅଳ୍ପ + ଆ + ହୃ କ.ଇନ୍) ଅଳ୍ପାହାରକାରୀ, ପରିମିତଭୋଜୀ (ସ୍ତ୍ରୀ) ଅଳ୍ପାହାରିଣୀ ।
ଅଳ୍ପିକା—ସ୍ତ୍ରୀ.ବି.ମୁଦ୍‌ଗପର୍ଣ୍ଣୀଲତା,ବଣମୁଗ ଲଇ । [କରାଯାଇଅଛି ।
ଅଳ୍ପିତ—ତ୍ରି.ବି ଅଳ୍ପୀକୃତ,ଯାହା ଅଳ୍ପ-
ଅଳ୍ପିଷ୍ଠ—ତ୍ରି. ବିଂ. (ଅଳ୍ପ + ଇଷ୍ଠ)ଅତିଶୟ ଅଳ୍ପ ସ୍ୱଳ୍ପ, ଯତ୍ସାମାନ୍ୟ, (ସ୍ତ୍ରୀ) ଅଳ୍ପିଷ୍ଠା ।
ଅଳ୍ପୀୟାନ୍—ପୁଂ.ବି. ଦୁଇଗୋଟି ମଧ୍ୟରୁ ଗୋଟିଏ, ଅତିଶୟ ଅଳ୍ପ,ଅଳ୍ପିଷ୍ଠ,(ସ୍ତ୍ରୀ) ଅଳ୍ପୀୟସୀ ।
ଅଳ୍ପେଅଳ୍ପେ—ଗ୍ରା.କ୍ରି.ବିଂ. ଧୀରେ ଧୀରେ, ଅଳ୍ପ ପରିମାଣରେ ।
ଅଳ୍ପୋଦରୀ—ସ୍ତ୍ରୀ. ବିଂ. (ଅଳ୍ପ + ଉଦର + ଈ) କୃଶୋଦରୀ, ସୁନ୍ଦରୀ ।
ଅଳ୍ପୋପଭୁକ୍ତ—ତ୍ରି. ବିଂ. ଯାହା ଅଳ୍ପ-ପରିମାଣରେ ଉପଭୋଗ କରା ହୋଇ-ଅଛି, (ସ୍ତ୍ରୀ) ଅଳ୍ପୋପଭୁକ୍ତା ।
ଅଲଅଲ୍ଲା—ବି. ମୁସଲମାନମାନଙ୍କର ଉପାସ୍ୟ ପରମଦେବତା ।
ଅଲ୍ଲା—ସ୍ତ୍ରୀ.ବି.ନାଟକରେ ଯାହାକୁ ମାତା, ବୋଲି ସମ୍ବୋଧନ କରାଯାଏ, ମାତା, ମୁସଲମାନମାନଙ୍କ ମତେ ଈଶ୍ୱର ।
ଅଲ୍ଲୀଳ—ଗ୍ରା. ବିଂ. ପୁଂ. ସ୍ତ୍ରୀ. ଗେହ୍ଲା, ସେରନ୍ତା, ଅଲଅର ।
ଅଲ୍ଲୋପନିଷଦ୍—ବି. ଅଥର୍ବବେଦରେ ଆଲ୍ଲା ଶବ୍ଦଦ୍ୱାରା ପରମେଶ୍ୱରଙ୍କୁ ନିର୍ଦ୍ଦେଶ କରି ଲେଖାଥିବା ସୂକ୍ତ ।
ଅଭ୍—(ଧାତୁ )ଗମନ,ରକ୍ଷଣ,ପ୍ରୀତିକରିବା, ପାଇବା, ଧରିବା, ହେବା, ଶୁଣିବା, ବଢ଼ିବା, ପ୍ରାର୍ଥନା କରିବା ।

ଅବ—ଅବ୍ୟ,(ଅବ + ଅ)ନିଶ୍ଚୟ, ବ୍ୟାପ୍ତ, ଅନାଦର, ଅସମ୍ପୂର୍ଣ୍ଣ, ଆଲମ୍ବନ, ଶୁଦ୍ଧି, ପରିଭବ, ନିୟୋଗ, କାର୍ଯ୍ୟରେ ନିଯୁକ୍ତ-କରିବା, ନମ୍ରତା, ସାଦୃଶ୍ୟ, ଆଲୋକ, ବିସ୍ତାର, ବିଶ୍ରାମ,ଆଦେଶ, ପୁଷ୍ଟି, ଜ୍ଞାନ ।
ଅବକଟ—କ୍ଲୀ. ବି. (ଅବ + କଟ) ଅତି-ଶୟ, ଅଧର, ବୈରୂପ୍ୟ (ବିଂ)ବିପରୀତ, ନମ୍ର, (ସ୍ତ୍ରୀ) ଅବକଟା ।
ଅବକବ୍—(ଗ୍ରା.ବି.) ଅବ୍ୟକବ୍ୟ,ସାମର୍ଥ୍ୟ, ଶକ୍ତି, ଅନ୍ୟଥାଚରଣ କରିବାର ଶକ୍ତି, ହଲଚଲ ।
ଅବକର—ପୁଂ.ବି. (ଅବ + କୃ + ର୍ମ ଅ) ଆବର୍ଜନା, ଜଞ୍ଜାଳ, ସମାର୍ଜନୀ-କ୍ଷିପ୍ତ-ଧୂଳି, ବିକ୍ଷେପ ।
ଅବକର୍ମିତ—ତ୍ରି. ବିଂ. (ଅବ + କର୍ମ + ତ) ବିଚଳିତ, (ପୁଂ) ବୃଦ୍ଧବିଶେଷ ।
ଅବକର—ପୁଂ.ବି. (ଅବ + କୃ + ର୍ମ.ଅ) ଉପହତ, ହନନ, ନାଶ, ଝାଟିଇବା, ଜଞ୍ଜାଳ ।
ଅବକର୍ତ୍ତ—ପୁଂ.ବି. (ଅବ + କୃତ + ର୍ମ.ଅ) ଖଣ୍ଡିତ ବା ଛିନ୍ନ, ଅଂଶ, ଖଣ୍ଡ ।
ଅବକର୍ତ୍ତନ—କ୍ଲୀ.ବି.(ଅବ + କୃତ୍ + ଭା. ଅନ) ଛେଦନ, କଟା, ସୂତାକଟା କଳ, ଚରକା ।
ଅବକର୍ଷଣ—କ୍ଲୀ. ବି. (ଅବ + କୃଷ୍ + ଭା.ଅନ) ବଳପୂର୍ବକ ଆକର୍ଷଣ, ଅଧୋ-ନୟନ ।
ଅବକଳ—ଗ୍ରା.ବି. (ସଂ-ଅବକଳିତ)କୃତ, ଅଟକଳ, ଆନୁମାନିକ, ଅନ୍ଦାଜ, (ବିଂ) ବିକଳା ବା ଗୁଲ୍ ନ ଥିବା ।
ଅବକଳିତ—ତ୍ରି. ବିଂ. (ଅବ + କଳ୍ + ର୍ମ.ତ) ଦୃଷ୍ଟ, ଜ୍ଞାତ, ଗୃହୀତ, ବଦ୍ଧ,ସଂକ-ଳିତ ।
ଅବକଳନ—ବି. (ଅବ + କଳ୍ + ଭା.ଅନ) ସଂକଳନ, ଜ୍ଞାନ, ବନ୍ଧନ, କୃତ, ମାପ, ଅନୁମାନ, ନିର୍ଣ୍ଣୟ, ବିଂ) ଅକଳିତ ।
ଅବକଳନା—ସ୍ତ୍ରୀ.ବି. (ଅବ + କଳ୍ + ଅନ + ଆ) ଅବକଳନ (ଦେଖ) ।

ଅବକା—ସ୍ତ୍ରୀ. ବ. ଶୈବାଳ, ଶିଉଳି ।
ଅବକାର—ପ୍ରା. ବ. ମାଦକ ଦ୍ରବ୍ୟ ବିକ୍ରି କରିବାପାଇଁ ସରକାରଙ୍କ ଧାର୍ଯ୍ୟ ଶୁଳ୍କ
ଅବକାଶ—ପୁଂ. ବ. ( ଅବ + କାଶ୍ + କ,ଅ)ବିଶ୍ରାମ କରିବାର ସମୟ, ଫାଙ୍କ, ଅବସର, ଫୁରୁସତ୍, କାର୍ଯ୍ୟରୁ ବିଶ୍ରାମ, ଛୁଟି, ମଧ୍ୟବର୍ତ୍ତୀ ସ୍ଥାନ, ଅନ୍ତର ।
ଅବକୀଳକ—ପୁଂ. ବ.ଅନ୍ତଃପ୍ରବିଷ୍ଟ ଶଙ୍କୁ ।
ଅବକୀର୍ଣ୍ଣ—ବି.ବଂ. (ଅବ + କୃ + ର୍ମ.ତ) ବ୍ୟାପ୍ତ,ଚୂର୍ଣ୍ଣୀକୃତ, ଧ୍ୱସ୍ତ, ନଷ୍ଟ, ବିକ୍ଷିପ୍ତ, (ସ୍ତ୍ରୀ) ଅବକୀର୍ଣ୍ଣା, (ବ) ବ୍ରହ୍ମଚର୍ଯ୍ୟ ବ୍ରତ, ଭଙ୍ଗ ।
ଅବକୀର୍ଣ୍ଣୀ—ପୁଂ.ବଂ. ଯେ ବ୍ରହ୍ମଚାରୀ ସ୍ତ୍ରୀ-ସଙ୍ଗ ଦ୍ୱାରା ବ୍ରତ ଭଙ୍ଗ କରେ ।
ଅବକୁଞ୍ଚନ—କ୍ଲୀ. ବ. (ଅବ + କୁନ୍ଚ + ଭା.ଅନ)କୁଞ୍ଚନ, ନଇଁବା, ନତକରଣ ।
ଅବକୁଣ୍ଠନ—କ୍ଲୀ. ବ. ( ଅବ + କୁଣ୍ଠ + ଅନ) ବେଷ୍ଟନ, ଘେର ବା ଆକର୍ଷଣ ।
ଅବକୁଣ୍ଠିତ—ବି. ବଂ. ( ଅବ + କୁନ୍ଠ୍ + ର୍ମ.ତ) ବେଷ୍ଟିତ, ଆକୃଷ୍ଟ, (ସ୍ତ୍ରୀ) ଅବକୁଣ୍ଠିତା ।
ଅବକୁନ୍ଥନ—କ୍ଲୀ. ବ.(ଅବ + କୁନ୍ଥ୍ + ଭା.ଅନ) କୁନ୍ଥନ, କୁନ୍ଥେଇବା ।
ଅବକୂଟାର—ବି. ବଂ. ଅତ୍ୟନ୍ତ ନମ୍ର, ବୈରୂପ୍ୟ ।
ଅବକ୍ଳୃପ୍ତି—ବି. ବଂ. (ଅବ + କୃପ୍ + ତ) ସମ୍ଭାବନା ।
ଅବକୃଷ୍ଟ—ବି.ବଂ.(ଅବ + କୃଷ୍ + ର୍ମ.ତ) ଦୂରୀକୃତ, ଅପସାରିତ, ନିଷ୍କାସିତ, ମନ୍ଦ, ଅଧମ, ଜଘନ୍ୟ, ଆକୃଷ୍ଟ, ହେୟ, (ବ) ଗୃହ ପରିଷ୍କାର କରିବା ଗୃକର, ହୀନ ଜାତି ।
ଅବକୃଷ୍ୟ—ବି ବଂ. ( ଅବ + କୃଷ୍ + ଯ) ଆକର୍ଷଣୀୟ, ଦୂରୀକରଣୀୟ ।
ଅବକେ—ଏକ୍ଷଣେ, ତତଃପର ।
ଅବକେଶୀ—ପୁଂ. ବଂ. ବନ୍ଧ୍ୟା ବୃକ୍ଷ, ଯେଉଁ ବୃକ୍ଷରେ ଫଳ ହୁଏ ନାହିଁ, ଅଳ୍ପକେଶଯୁକ୍ତ, (ବ) ଅଣ୍ଡିରାଗଛ, (ସ୍ତ୍ରୀ) ଅବକେଶିନୀ ।

ଅବକୋକିଲ—ବି. ବଂ. କୋକିଲର ଆକ୍ରୋଶଯୁକ୍ତ ।
ଅବକୋଟକ—ପୁଂ. ବ (ଅବ + କୁଟ୍ + କ. ଅକ) ପିକ ।
ଅବକ୍ତବ୍ୟ—ବି. ବଂ. ( ଅ + ବକ୍ତବ୍ୟ ) କହିବାର ଅଯୋଗ୍ୟ, ଅଶ୍ଳୀଳ, ନିଷିଦ୍ଧ-ବାକ୍ୟ, ଅକଥନୀୟ, ଅବାଚ୍ୟ, ମିଥ୍ୟା ବାକ୍ୟ ।
ଅବକ୍ର—ବି. ବଂ. ବୃକ୍ଷବିଶେଷ, ଯେଉଁ ଫେଟକାର ମୁହଁ ନାହିଁ ।
ଅବକ୍ର—ବି.ବଂ.ସରଳ,ସୋଜା, ସଳଖ ।
ଅବକର୍ଷିନ୍—ବି. ବଂ. ଅବକର୍ଷଣଶୀଳ ।
ଅବକ୍ରନ୍ଦ—ବି. ବଂ (ଅବ + କ୍ରନ୍ଦ୍ + ଅ) ଯେ ଧୀରେ ଧୀରେ କାନ୍ଦେ ।
ଅବକ୍ରନ୍ଦନ—କ୍ଲୀ. ବ. ( ଅବ + କ୍ରନ୍ଦ୍ + ଅନ) ଧୀରେ ଧୀରେ କାନ୍ଦିବା ।
ଅବକ୍ରମ—ପୁଂ. ବ (ଅବ + କ୍ରମ୍ + ଅ) ଅବଗମ, ନିମ୍ନଗତି ।
ଅବକ୍ରୟ—ପୁଂ. ବ ( ଅବ + କ୍ରୀ + ଅ ) ମୂଲ୍ୟ, ବସ୍ତୁ ସାଧନଦ୍ରବ୍ୟ, ମୂଲ୍ୟଦାନ, ପୂର୍ବକ ଗ୍ରହଣ,ପାଉଣା ।
ଅବକ୍ରାନ୍ତି—ସ୍ତ୍ରୀ. ବ. (ଅବ + କ୍ରମ୍ + ତି) ନିମ୍ନଗମନ, ନୀଚଗତି ।
ଅବକ୍ରିୟା—ବ. (ଅବ + କ୍ରିୟା) ଅପକର୍ମ, କୁତ୍ସିକ କର୍ମ, ଅନାଦର, ଉଦାସୀନତା, କୁକର୍ମ । [ କ୍ରୀତ ।
ଅବକ୍ରୀତ—ବି. ବଂ. ଅନ୍ୟାୟ୍ୟଭାବେ
ଅବକ୍ରୁଷ୍ଟ—ବି. ବଂ. (ଅବ + କ୍ରୁଶ୍ + ତ) ଯାହା ଉପରେ ଆକ୍ରୋଶ କରା ହୋଇ-ଅଛି, ଭର୍ତ୍ସିତ, ଅଭିଶପ୍ତ, ନିନ୍ଦିତ, (ବ) ଅବକ୍ରୋଶ ।
ଅବକ୍ରୋଶ—ବ. ( ଅବ + କ୍ରୁଷ୍ + ଭା. ଅ) କ୍ରୋଧପୂର୍ବକ ଭର୍ତ୍ସନା, ତିରସ୍କାର, ଗାଳି, (ବଂ) ଅବକୃଷ୍ଟ, ଅଭିଶାପ, ଚିତ୍କାର, ନିନ୍ଦା ।
ଅବକ୍ଲିନ୍ନ—ବି.ବଂ.(ଅବ + କ୍ଲିଦ୍ + ତ) ପକ୍ୱ, ଆର୍ଦ୍ର, ସଢ଼ା, ସଢ଼ିଯାଇଥିବା, ଗଳିତ ।

ଅବକ୍ଲେଦ—ପୁଂ.ବ (ଅବ + କ୍ଲିଦ୍ + ଅ) ପାକପରେ ପଚିସିବା ଜନିଷ,ସଢ଼ାଜିନିଷ ।
ଅବକ୍ଷୟ—ପୁଂ. ବ. ( ଅବ + କ୍ଷି + ଅ ) ବୃଦ୍ଧି ପରେ ନାଶର ପୂର୍ବ ଅବସ୍ଥା, ଭାବର ବିକାରବିଶେଷ ।
ଅବକ୍ଷୟଣ—କ୍ଲୀ ବ.ନାଶଜନକ ବ୍ୟାପାର ।
ଅବକ୍ଷିପ୍ତ—ବି.ବଂ. (ଅବ + କ୍ଷିପ୍ + ତ) ବିତାଡ଼ିତ, ତଳକୁ ଫିଙ୍ଗା ଯାଇଥିବା, ବିକ୍ଷିପ୍ତ, ବ୍ୟଙ୍ଗ, ବିଦ୍ରୂପଦ୍ୱାରା ଉପ-ହସିତ, (ବ) ଅବକ୍ଷେପ ।
ଅବକ୍ଷୀଣ—ବି. ବଂ. (ଅବ + କ୍ଷି + ତ) କ୍ଷୟପ୍ରାପ୍ତ,ବିନାଶୋନ୍ମୁଖ ବସ୍ତୁ ।
ଅବକ୍ଷୁତ—ବି. ବଂ. (ଅବ + କ୍ଷୁ + ତ) ଯେଉଁ ପଦାର୍ଥ ଉପରେ କେହି ଛିଙ୍କି ଦେଇଅଛି ।
ଅବକ୍ଷେତ୍ର—ବ. (ବିଜ୍ଞାନ ପରିଭାଷା)ବୃତ୍ତା-ଭାସ, ଅଣ୍ଡାକୃତି କ୍ଷେତ୍ର ।
ଅବକ୍ଷେପ—ପୁଂ.ବ. ଇତସ୍ତତଃ ଫୋପାଡ଼ିବା, ବିକ୍ଷେପ, ତିରସ୍କାର ।
ଅବକ୍ଷେପକ—ପୁଂ. ବଂ. ( ଅବ + କ୍ଷିପ୍ + କ, ଅକ) ଯେ ଶ୍ଳେଷୋକ୍ତି କରେ ବା ଉଡ଼ାଏ, ତିରସ୍କାରକାରୀ, (ସ୍ତ୍ରୀ) ଅବକ୍ଷେପିକା ।
ଅବକ୍ଷେପଣ—କ୍ଲୀ. ବ ( ଅବ + କ୍ଷିପ୍ + ଅନ) ଫିଙ୍ଗିବା ।
ଅବକ୍ଷେପଣୀ—ସ୍ତ୍ରୀ. ବ. ( ଘୋଡ଼ାର ) ଲଗାମ, ରଶି ।
ଅବଖାତ—କ୍ଲୀ. ବ,(ଅବ + ଖନ୍ + ତ) ନିମ୍ନ ଖାତ, ଗଭୀର ଗର୍ତ୍ତ ।
ଅବଖଣ୍ଡନ—କ୍ଲୀ.ବ (ଅବ + ଖଣ୍ଡ + ଭା. ଅନ)ଅବଚ୍ଛେଦ, ଭେଦନ,ବିନାଶ,ଧ୍ୱଂସ ।
ଅବଖାଦ—ପୁଂ.ବ. ନିନ୍ଦିତ ଖାଦ୍ୟ ।
ଅବଗଣନ—କ୍ଲୀ.ବ(ଅବ + ଗଣ୍ + ଅନ) ଅବଜ୍ଞା, ନିନ୍ଦା, ତିରସ୍କାର ।
ଅବଗଣନା—ବ. (ଅବ + ଗଣନା)ଅନାଦର, ଅବଜ୍ଞା, ଉପେକ୍ଷା, ତିରସ୍କାର ।
ଅବଗଣିତ—ବି.ବଂ. ଅନଙ୍ଗିତ, ନିନ୍ଦିତ, ଅବଜ୍ଞାତ, ତିରସ୍କୃତ, ଅବମାନିତ ।
ଅବଗଣ୍ଡ—ପୁଂ.ବ. ଗଣ୍ଡସ୍ଥ ବ୍ରଣବିଶେଷ, ଗାଲରେ ବିସ୍ଫୋଟକ ।

ଅବଗତ—ନି.ବିଂ. ନିମ୍ନଗତ,ଜ୍ଞାତ,ବୁଝି, ବୁଝିତ, ବନ୍ଦିତ, ମନିତ ।

ଅବଗତି—ସ୍ତ୍ରୀ. ବି. (ଅବ+ଗମ୍+ତି) ନିଶ୍ଚୟ ଜ୍ଞାନ, ଜ୍ଞାତ, ଜାଣିବା, ବୋଧ, ପ୍ରସ୍ଥାନ ।

ଅବଗଥ—ପୁଂ. ବିଂ. ପ୍ରାତଃସ୍ନାନ, ଯେ ·ପ୍ରାତଃକାଳେ ସ୍ନାନ କରିଅଛି ।

ଅବଗଦିତ—ନି.ବିଂ.(ଅବ+ଗଦ୍+ତ) ଅପବାଦଯୁକ୍ତ ।

ଅବଗନ୍ତବ୍ୟ—ନି. ବିଂ. (ଅବ+ଗମ୍+ ର୍ମି.ତବ୍ୟ) ଜ୍ଞାତବ୍ୟ, ଜ୍ଞେୟ, ବୋଧ, ପରିହାର୍ଯ୍ୟ, ତ୍ୟାଜ୍ୟ ।

ଅବଗମ—ପୁଂ. ବି. (ଅବ+ଗମ୍+ଅ) ନିଶ୍ଚୟଜ୍ଞାନ ।

ଅବଗାଇ—ପ୍ରଶମନ କରିବା,ଶାନ୍ତକରିବା, ବିଶ୍ରାମ, ବାକ୍ୟର ବିରାମ ।

ଅବଗାଢ଼—ନି. ବିଂ. (ଅବ+ଗାହ୍+ତ) ନିବିଡ଼, ନିମଗ୍ନ, ଅନ୍ତଃପ୍ରବିଷ୍ଟ, ଅତିରିକ୍ତ, ନତ, ନିମ୍ନ (ବି) ଅବଗାହ ।

ଅବଗାଦ—ପୁଂ. ବି. ନୌକାର ଜଳ-ସେଚନପାତ୍ର ।

ଅବଗାହ—ପୁଂ.ବି. (ଅବ+ଗାହ+ଅ) ସ୍ନାନ, ଅନ୍ତଃପ୍ରବେଶ, ଅବଗତି, ଗାଧୋ-ଇବା ଗୁଠ, ମଗ୍ନ, ମଜ୍ଜନ ।

ଅବଗାହନ—ବି. ଜଳରେ ବୁଡ଼ି ସ୍ନାନ, ଅନ୍ତଃପ୍ରବେଶ, ମଜ୍ଜନ ।

ଅବଗାହିବା—ଗ୍ରା. ଗାଧୋଇବା ।

ଅବଗାହିତ—ନି. ବିଂ. ଜଳମଧ୍ୟେ ନୀତ, ମଜ୍ଜିତ,ଅନ୍ତଃପ୍ରବେଶିତ,(ସ୍ତ୍ରୀ)ଅବଗାହିତା ।

ଅବଗାହୀ—ବିଂ. ( ଅବ+ଗାହ୍+କ. ଇନ୍) ମଗ୍ନ, ଅନୁଭବୀ ।

ଅବଗାହ୍ୟ—ନି.ବିଂ.(ଅବ+ଗାହ୍+ଯ) ସ୍ନାନର ଯୋଗ୍ୟ ଜଳାଦି, ଯାହାର ମର୍ମ୍ମ ବୁଝାଯାଏ ।

ଅବଗୀତ—ନି. ବିଂ. (ଅବ+ଗୈ+ତ) ବିବାଦଶୂନ୍ୟ, ଅପବାଦଗ୍ରସ୍ତ, ଦୁଷ୍ଟ, ଗର୍ହିତ, ଭର୍ତ୍ସିତ, ଖେଚଡ଼ା, ଖଳ, ନିନ୍ଦିତ, (ବି) ଅପବାଦ, କୁତ୍ସିତଗାନ, ନିନ୍ଦା,ମନ୍ଦଗୀତ,ଗୀତଦ୍ୱାରା ନିନ୍ଦାଗାନ ।

ଅବଗୁଣ—ପୁଂ. ବି. (ଅବ+ଗୁଣ୍+ଅ) ଗୁଣର ଅଭାବ, ଦୋଷ, ଅବଗୁଣ, ଅପକାର ।

ଅବଗୁଣ୍ଠନ—କ୍ଲୀ.ବି.(ଅବ+ଗୁଣ୍ଠ+ଅନ) ଓଢ଼ଣା, ସ୍ତ୍ରୀମାନଙ୍କର ମୁଖାବରଣ ବସ୍ତ୍ର, ଆବରଣ, ଘୋଡ଼ଣୀ ।

ଅବଗୁଣ୍ଠନବତୀ—ସ୍ତ୍ରୀ.ବିଂ.(ଅବଗୁଣ୍ଠନ+ ବତ୍+ଈ) ଆଚ୍ଛାଦନ ବସ୍ତ୍ରଦ୍ୱାରା ଆବୃତମୁଖୀ, ଓଢ଼ଣାପକାଇଥିବା ।

ଅବଗୁଣ୍ଠନମୁଦ୍ରା—ସ୍ତ୍ରୀ.ବି.ମୁଦ୍ରାବିଶେଷ ।

ଅବଗୁଣ୍ଠ୍ୟ—ନି.ବିଂ.(ଅବ+ଗୁଣ୍ଠ୍+ଯ) ଆଚ୍ଛାଦ୍ୟ,ଯାହାକୁ ଘୋଡ଼ାଇବା କର୍ତ୍ତବ୍ୟ ।

ଅବଗୁଣ୍ଠିକା—ସ୍ତ୍ରୀ.ବିଂ.(ଅବ+ଗୁଣ୍ଠ୍+ କ.ଅକ+ଆ)ଯେଉଁ ସ୍ତ୍ରୀ ମୁଖ ଘୋଡ଼ାଇ ଅଛି, ପରଦା, ଯବନିକା ।

ଅବଗୁଣ୍ଠିତ—ନି.ବିଂ. (ଅବ+ଗୁଣ୍ଠ୍+ ର୍ମି.ତ) ଆଚ୍ଛାଦିତ, ଆବୃତ, ଚୂର୍ଣ୍ଣୀକୃତ ।

ଅବଗୁମ୍ଫିତ—ନି. ବିଂ. (ଅବ+ଗୁମ୍ଫ+ ତ) ଗ୍ରଥିତ ।

ଅବଗୂର୍ଯ୍ୟ—ନି. ବିଂ. (ଅବ+ଗୁର୍+ଯ) ମାରିବାପାଇଁ ଉଠାଇବା ବାଡ଼ିପ୍ରଭୃତି ।

ଅବଗୃହ୍ୟ—କ୍ଲୀ.ବି (ଅବ + ଗୃହ୍+ର୍ମି. ଯ) ଅବଗ୍ରହ, ବିଚ୍ଛେଦ, ପଦପାଠ-କାଳେ କଣ୍ଠିତ୍ତ ଅବସାନ ।

ଅବଗୋଚର—ବି. ( ଅବ+ଗୋଚର ) ଅବଗତ (ବିଂ) ଅସ୍ପଷ୍ଟରୂପେ ଦୃଷ୍ଟ ବା ଜ୍ଞାତ ।

ଅବଗୋରଣ—କ୍ଲୀ. ବି. ( ଅବ+ଗୁର୍ +ଭା.ଅନ ) ବଧ କରିବା ପାଇଁଅସ୍ତ୍ରାଦି ଉଠାଇବା ।

ଅବଗ୍ରହ—ପୁଂ. ବି. (ଅବ+ଗ୍ରହ୍+ଭା. ଅ) ନିଗ୍ରହ, ପଛକୁ ପେଲିଦେବା, ଅପ-ସାରଣ, ଅନାବୃଷ୍ଟି, ମରୁଡ଼ି, ଗ୍ରହଣ, ଅନାଦର, ହରଣ, ବାଧା, ଶାପ, ମନରଭ୍ରମ, ତିରସ୍କାର, ସ୍ୱଭାବ, ଗଜ-ସମୂହ, ବୃଷ୍ଟିରୋଧ ।

ଅବଗ୍ରହଣ—କ୍ଲୀ.ବି. (ଅବ+ଗ୍ରହ୍+ଭା. ଅନ)ପ୍ରତିରୋଧ,ଅନାଦର ଜ୍ଞାନ,ଅବଜ୍ଞା ।

ଅବଗ୍ରାହ—ପୁଂ. ବି. (ଅବ+ଗ୍ରହ୍+ଭା. ଅ) ବୃଷ୍ଟିର ବ୍ୟାଘାତ ,ହସ୍ତୀର ଲଲାଟ, ଶାପ ।

ଅବଘଟ୍ଟ—ପୁଂ. ବି. (ଅବ+ଘଟ୍ଟ୍+ଅ) ଗାତ, ଛିଦ୍ର, ପେଷଣ, ଘରଟା, ଚକି ।

ଅବଘଟ୍ଟନ—କ୍ଲୀ.ବି.(ଅବ+ଘଟ୍ଟ୍+ଭା. ଅନ) ଆସ୍ଫାଳନ । [ ସ୍ଖଳିତ ।

ଅବଘଟିତ—ନି.ବିଂ. (ଅବ+ଘଟ୍+ତ)

ଅବଘର—ଗ୍ରା. ବିଂ. ଘିଅ ବା ତେଲରେ ବଘାର ବା ଫୁଟା ହୋଇ ନ ଥିବା ତରକାରୀ ।

ଅବଘର୍ଷଣ—କ୍ଲୀ. ବି. (ଅବ+ଘୃଷ୍+ ଅନ) ତଳେ ରଖି ଘଷିବା. ଘର୍ଷଣ, ମାର୍ଜନ, ରଗଡ଼ିବା, ମାଜିବା ।

ଅବଘର୍ଷିତ—ନି. ବିଂ. ଘର୍ଷିତ, ଯାହା ରଗଡ଼ା ହୋଇଅଛି, ମଜାହୋଇଥିବା, (ସ୍ତ୍ରୀ) ଅବଘର୍ଷିତା ।

ଅବଘାତ—ପୁଂ.ବି.(ଅବ+ହନ୍+ଭା.ଅ) କାଣ୍ଡିବା ଗୁହଳ, ହନନ, ତାଡ଼ନ, ବାଡେ଼ଇବା, ମୃତ୍ୟୁ, ଦାରୁଣ ପ୍ରହାର ।

ଅବଘାତକ—ପୁଂ.ବିଂ. (ଅବ+ହନ୍+ କ.ଅକ) ଅବଘାତକାରୀ, ଯେ ଅପମୃତ୍ୟୁ ଘଟାଏ, ଯେ ଧାନ ଆଦିକୁ କାଣ୍ଡେ, (ସ୍ତ୍ରୀ) ଅବଘାତିକା ।

ଅବଘାତୀ—ପୁଂ. ବିଂ. (ଅବ+ହନ୍+ କ ଇନ୍) ଆଘାତକାରୀ, ଯେ ଅପମୃତ୍ୟୁ ଘଟାଏ, ଯେ ଧାନ ଆଦିକୁ କାଣ୍ଡେ, (ସ୍ତ୍ରୀ) ଅବଘାତିନୀ ।

ଅବଘୁଷ୍ଟ—ନି. ବିଂ. (ଅବ+ଘୁଷ୍+ ର୍ମି.ତ) ପ୍ରଘୋଷିତ, ଶବ୍ଦଦ୍ୱାରା ଆହୂତ, ପ୍ରତିଧ୍ୱନିତ ।

ଅବଘୂର୍ଣ୍ଣନ—କ୍ଲୀ. ବି. (ଅବ+ଘୂର୍ଣ୍ଣ+ ଅନ) ଘୂରିଆଡ଼େ ବୁଲିବା, ଚଲାବୁଲା, ଆବର୍ତ୍ତନ, ଚକ୍ରାକାରେ ଭ୍ରମଣ ।

ଅବଘୂର୍ଣ୍ଣିତ—ନି. ବିଂ. ଘୂର୍ଣ୍ଣିତ, ଚକ୍ରା-କାରେ ଭ୍ରମିତ ।

ଅବଘୋଟିତ—ନି. ବିଂ. ( ଅବ+ଘୁଟ୍ +ତ ) ପରିବର୍ତ୍ତିତ, ବଦଳି ।

ଅବଘୋଷଣ—କ୍ଳୀ. ବ. (ଅବ + ଘୁଷ୍ + ଅନ)ଲୋକେ ଜାଣିବାଭଳି ଉଚ୍ଚସ୍ୱରରେ ପ୍ରଚାର ।

ଅବଘ୍ରାଣ—କ୍ଳୀ. ବ. ( ଅବ + ଘ୍ରାଣ ) ଦୁର୍ଗନ୍ଧ ।

ଅବଘ୍ରାତ—ବି. ବଂ. (ଅବ + ଘ୍ରା + ତ) ଯାହା ସୁଙ୍ଘାହୋଇଅଛି, ସୁଙ୍ଘାହୋଇ ଥିବା ଦ୍ରବ୍ୟ ।

ଅବଚକ୍ଷଣ—ବଂ. (ଅବ + ଚକ୍ଷ୍ + ଅନ) ନିନ୍ଦାକାରୀ, ଅପବାଦକାରୀ ।

ଅବଚନ—କ୍ଳୀ. ବ. ନିନ୍ଦା, ବଚନାଭାବ, (ବଂ) ବାକ୍ୟଶୂନ୍ୟ, କୁବାକ୍ୟ, କଠୋରବଚନ ।

ଅବଚନୀୟ—ବି. ବଂ. (ନ. ତତ୍ର) କହିବାର ଅଯୋଗ୍ୟ ବାକ୍ୟ, ଅଶ୍ଳୀଳବାକ୍ୟ, ଅନିର୍ବଚନୀୟ, (ସ୍ତ୍ରୀ) ଅବଚନୀୟା ।

ଅବଚୟ—ପୁଂ. ବ. (ଅବ + ଚି ଭା. ଅ) ପୁଷ୍ପାଦି ଚୟନକରିବା, ତୋଳିବା, ପାରିବା, ଏକତ୍ର ରଖିବା, ସଞ୍ଚୟ, ଅପଚୟ ।

ଅବଚସ୍କର—ପୁଂ. ବଂ. ଯେ କଥାନୁସାରେ ଚଳେ ନାହିଁ, ଅବାଧ, ଅନାଜ୍ଞାକାରୀ, (ସ୍ତ୍ରୀ) ଅବଚସ୍କରୀ ।

ଅବଚାୟ—ପୁଂ. ବ. (ଅବ + ଚାୟ୍ + ଅ) ହାତରେ ଧରି ଫଳ ପୁଷ୍ପ ତୋଳିବା ।

ଅବଚିତ—ବି. ବଂ. (ଅବ + ଚି + ର୍ମ ତ) ସଞ୍ଚିତ, ଗୃହୀତ, ପୁଷ୍ପାଦି ଆହୃତ, ଅପବ୍ୟୟିତ, ତୋଳାଯାଇଥିବା, (ସ୍ତ୍ରୀ) ଅବଚିତା ।

ଅବଚୂଡ଼—କ୍ଳୀ. ବ. (ଅବ + ଚୂଡ଼ା)ନେତ, ପତାକା, ଧ୍ୱଜାଗ୍ରବଦ୍ଧ ତଳ ଆଡ଼କୁ ଲମ୍ବିଥିବା ବସ୍ତ୍ରଖଣ୍ଡ, ମାଲ୍ୟ, ମାଳା, ଚାମର, ଚଅଁର ।

ଅବଚୂର୍ଣ୍ଣନ—କ୍ଳୀ. ବ. ପେଷଣ, ଚୂର୍ଣ୍ଣକରିବା, ଗୁଣ୍ଡକରିବା ।

ଅବଚୂର୍ଣ୍ଣିତ—ବି. ବଂ. (ଅବ + ଚୂର୍ଣ୍ଣିତ) ଉତ୍ତମରୂପେ ଚୂନାକରାଯାଇଥିବା, ଗୁଣ୍ଡକରାଇଥିବା, ଚୂର୍ଣ୍ଣୀକୃତ ।

ଅବଚୂଳ — କ୍ଳୀ. ବ. ( ବ. ବ୍ରୀ ) ଧ୍ୱଜର ଅଗ୍ରଭାଗବଦ୍ଧ ବସ୍ତ୍ର, ଚାମର, ଚଅଁର, ନେତ, ପତାକା ।

ଅବଚୂଳକ—କ୍ଳୀ. ବ. ଚାମର, ଚଅଁର ।

ଅବଚ୍ଛଦ—ପୁଂ. ବ. (ଅବ + ଛଦ + ଣ, ଅ) ଆଚ୍ଛାଦନସାଧନ, ପରିଚ୍ଛଦ ।

ଅବଚ୍ଛାତ—ବଂ. (ଅବ + ଛୋ + ର୍ମ. ତ) ଛାଲ ଉତାରି ଯାଇଥିବା, କଟାଯାଇଥିବା, ଉପବାସାଦିଦ୍ୱାରା କ୍ଷୀଣତା ପ୍ରାପ୍ତ, (ସ୍ତ୍ରୀ) ଅବଚ୍ଛାତା ।

ଅବଚ୍ଛିନ୍ନ—ବି. ବଂ. (ଅବ + ଛିଦ୍ + ର୍ମ. ତ) ଯୁକ୍ତ, ସଂଯୁକ୍ତ, ମିଳିତ, ମିଶ୍ରିତ, ବିଶିଷ୍ଟ, ବିଚ୍ଛିନ୍ନ, ବିଭକ୍ତ, ଖଣ୍ଡିତ, ସୀମାବଦ୍ଧ, ସଙ୍କୁଚିତ, ନିର୍ଣ୍ଣୀତ, ଅନ୍ୟାନ୍ୟ ସମସ୍ତ ପଦାର୍ଥରୁ ପୃଥକ୍ କରାଯାଇଥିବା, ବିଶ୍ଳିଷ୍ଟ, (ବି) ଅବଚ୍ଛେଦ ।

ଅବଚ୍ଛୁରିତ—କ୍ଳୀ. ବ. (ଅବ + ଛୁର୍ + ତ) ଉଚ୍ଚହାସ, ଅଟ୍ଟହାସ, (ବଂ) ମିଶ୍ରିତ, ବ୍ୟାପ୍ତ ।

ଅବଚ୍ଛୁରିତକ—କ୍ଳୀ. ବ. ଅଟ୍ଟହାସ୍ୟ, ହେଁ ହେଁ ହସ ।

ଅବଚ୍ଛେଦ—ପୁଂ. ବ. (ଅବ + ଛିଦ୍ + ଭା, ଅ) ଛେଦନ, ଅବଧାରଣ, ମିଶ୍ରଣ, ବିଚ୍ଛେଦ, ପ୍ରଭେଦ, ବିରାମ, ନିବୃତ୍ତି, ଉଚ୍ଛେଦ, ବିନାଶ, ଖଣ୍ଡ, ସୀମା, ଏକଦେଶ, ଏକାଂଶ, ନିର୍ଣ୍ଣୟ (ବଂ) ଅବଚ୍ଛିନ୍ନ ।

ଅବଚ୍ଛେଦକ—ବି. ବଂ. (ଅବ + ଛିଦ୍ + କ, ଅକ) ସଂଯୋଜକ, ବିଚ୍ଛେଦକାରକ, ବିଭାଜକ, ବିନାଶକ, ପ୍ରଭେଦକାରୀ, ନିର୍ଣ୍ଣାୟକ, ନିୟାମକ, (ବି) ବିଶେଷତ୍ୱ, ବୈଶିଷ୍ଟ୍ୟ, କୌଣସି ବସ୍ତୁର ପ୍ରଧାନ ଗୁଣ, (ସ୍ତ୍ରୀ) ଅବଚ୍ଛେଦିକା ।

ଅବଚ୍ଛେଦନ — କ୍ଳୀ. ବ. (ଅବ + ଛିଦ୍ + ଭା. ଅନ) ଛେଦନ, କର୍ତ୍ତନ, ବିଭାଜନ, ବିଶ୍ଳେଷଣ, ଭାଗକରିବା ।

ଅବଚ୍ଛେଦାବଚ୍ଛେଦ—ପୁଂ. ବ. (ଦତତ୍ର) ନିବାରଣପୂର୍ବକ ସାମ୍ୟସ୍ଥାପନ, ପ୍ରଭେଦ ।

ଅବଚ୍ଛେଦାବଚ୍ଛେଦରେ—ଗ୍ରା. ଅବ୍ୟ. ନିର୍ବିଶେଷରେ, ସର୍ବତୋଭାବରେ, ସବୁପ୍ରକାରେ ।

ଅବଚ୍ଛେଦ୍ୟ—ବି. ବଂ. (ଅବ + ଛିଦ୍ + ଯ) ଛେଦନାର୍ହ, କାଟିବାର ଯୋଗ୍ୟ, ଅବଧାରଣୀୟ ।

ଅବଛା—ଗ୍ରା. ବଂ. ପଦାର୍ଥର ତ୍ୟାଜ୍ୟାଂଶମାନ ବଗ୍ର ହୋଇନଥିବା, ବାଲି ଇତ୍ୟାଦିରୁ ଘାସ ବଗ୍ର ହୋଇ ନଥିବା, ଭଲ ମନ୍ଦ ଅଲଗା କରାଯାଇ ନଥିବା ।

ଅବଜନିତ—ବି. ବଂ. (ଅବ + ଜନ୍ + ର୍ମ. ତ) ଉତ୍ପାଦିତ ।

ଅବଜୟ—ପୁଂ. ବ. (ଅବ + ଜି + ଭା. ଅ) ପରାଜୟ, ଜୟଲାଭ ।

ଅବଜାନ—ଗ୍ରା. କ. ପ୍ରଣିଧାନ, ଅବଜ୍ଞା, ଅନାଦର ।

ଅବଜିତ—ବି. ବଂ. (ଅବ + ଜି + ର୍ମ. ତ) ପରାଜିତ, ବିଜିତ, ଘୃଣିତ, (ବି) ଅବଜୟ, ଅବଜିତ ।

ଅବଜ୍ଞା—ସ୍ତ୍ରୀ. ବ. (ଅବ + ଜ୍ଞା + ଭା. ଅ + ଆ) ଅନାଦର, ଅବମାନନା, ହେୟଜ୍ଞାନ, (ବଂ) ଅବଜ୍ଞାତ ।

ଅବଜ୍ଞାତ—ବି. ବଂ. (ଅବ + ଜ୍ଞା + ର୍ମ. ତ) ଅନାଦୃତ, ତିରସ୍କୃତ, ଅବଗଣିତ, ଉପେକ୍ଷିତ ।

ଅବଜ୍ଞାତା—ପୁଂ. ବଂ. (ଅବ + ଜ୍ଞା + କ. ତୃ)ଅବଜ୍ଞାକର୍ତ୍ତା, ଅନାଦରକାରୀ, ଉପେକ୍ଷାକାରକ, ଅବହେଳାକାରୀ, (ସ୍ତ୍ରୀ) ଅବଜ୍ଞାତ୍ରୀ ।

ଅବଜ୍ଞାନ—କ୍ଳୀ. ବ (ଅବ + ଜ୍ଞା + ଭା. ଅନ) ଅବମାନ, ତିରସ୍କାର, ଅନାଦର ।

ଅବଜ୍ଞେୟ — ବି. ବଂ. (ଅବ + ଜ୍ଞା + ର୍ମ. ଯ) ଅନାଦରଣୀୟ, ତିରସ୍କାର କରିବାର ଯୋଗ୍ୟ, ଅବଜ୍ଞାର ଯୋଗ୍ୟ, ଅଶ୍ରଦ୍ଧେୟ, (ସ୍ତ୍ରୀ) ଅବଜ୍ଞେୟା ।

ଅବଜ୍ଞୋପହତ—ବଂ. (ତୃତୀୟାତତ୍ର) ଘୃଣାସହକାରେ ବ୍ୟବହୃତ, ଅବମାନିତ ।

ଅବଞ୍ଚା—ଗ୍ରା. ବ. ନ ବଞ୍ଚିବା, ମରଣ ।

ଅବଟ—ପୁଂ. ବ. (ଅବ + ଅଟ + ଅ)ଗାତ, ଛିଦ୍ର, କୂପ, ଗହ୍ୱର, ବ୍ରଣାଦିଜନିତ କ୍ଷତ, ଶରୀରସ୍ଥ ନିମ୍ନସ୍ଥାନ, ଐନ୍ଦ୍ରଜାଲିକ, ଯାଦୁକର ।

ଅବଟକଚ୍ଛପ—ପୁଂ. ବି. ଗାତରେ ଥିବା କଇଁଛ, ସଂସାରବିଷୟରେ ଅନଭିଜ୍ଞ ବ୍ୟକ୍ତି ।

ଅବଟନିରୋଧନ—କ୍ଳୀ.ବି.ନରକବିଶେଷ, ଯେ ନରକରେ ପାପୀମାନେ କଷ୍ଟ ଭୋଗକରନ୍ତି ।

ଅବଟା—ଗ୍ରା. ବିଂ. (ଅ + ପିଷ୍ଟ) ଯାହା ବଟା ହୋଇନାହିଁ, ଅପିଷ୍ଟ ।

ଅବଟି (ଟୀ)—ସ୍ତ୍ରୀ.ବି.(ଅବ + ଅଟ୍ + ଅ) ଗର୍ତ୍ତ, କୂପ, ଦେହସ୍ଥିତ ଛିଦ୍ରାଦି ।

ଅବଟୀଟ—ପୁଂ. ବିଂ. (ବି.ସ୍ତ୍ରୀ)ଚେପ୍ଟା-ନାକା, (ବି) ନାସିକା ଅବନତହେବା ଅବସ୍ଥା, (ସ୍ତ୍ରୀ) ଅବଟୀଟା ।

ଅବଟୁ—ପୁଂ.ବି.(ଅବ + ଅଟୁ)ବେକମୂଳ, କୂଅ, ଗାତ, ଏକପ୍ରକାର ବୃକ୍ଷ, ବ୍ରାହ୍ମଣ ନୁହେ ।

ଅବଡ଼ଙ୍ଗ(ଙ୍କ)—ପୁଂ.ବି. (ଅବଡ଼ମ୍ + କୈ + ଗୈ + କ.ଅ) ହାଟ, ଗଞ୍ଜ, ଅଡ଼ଙ୍ଗ ।

ଅବଡ଼ୀନ—କ୍ଳୀ. ବି. (ଅବ + ଡ଼ୀ + ତ) ପକ୍ଷୀର ଅଧୋଗମନ, ତଳ ଆଡ଼କୁ ଉଡ଼ିବା,(ବିଂ)ଉଡ୍‌ଡ଼ୀନ,ଉପରକୁ ଉଡ଼ୁଥିବା ।

ଅବଢ଼ା—ଗ୍ରା. ବି. ପୁରୀ ବଡ଼ଦେଉଳର ଅନ୍ନ,(ବିଂ)ବଢ଼ାହୋଇ ନଥିବା ଖାଦ୍ୟ ।

ଅବଣ୍ଟା—ଗ୍ରା.ବିଂ.(ଅ + ବଣ୍ଟା)ଅବଣ୍ଟିତ, ଯାହା ବଣ୍ଟା ବା ଭାଗ ହୋଇ ନାହିଁ, ଇଜମାଲି ।

ଅବଦ—ପୁଂ. ବି. କୂପ, ଖାତ, ଗାତ ।

ଅବତତ—ବି.ବିଂ. (ଅବ + ତନ + ର୍ମ.ତ) ଆବୃତ, ବ୍ୟାପ୍ତ, ପ୍ରସାରିତ, ବିସ୍ତାରିତ ।

ଅବତତି—ସ୍ତ୍ରୀ. ବି. (ଅବ + ତନ୍ + ଭା. ତି) ସଂହତି, ସମୂହ, ଦଳ ।

ଅବତଂସ—ବି.ପୁଂ.କ୍ଳୀ. (ଅବ + ତନସ୍ + ଣ.ଅ) ଭୂଷଣ, ଅଳଂକାର, କିରୀଟ, ମସ୍ତକଭୂଷଣ, କର୍ଣ୍ଣଭୂଷଣ ।

ଅବତଂସିତ—ବି.ବିଂ. (ଅବତଂସ + ଇତ) ଭୂଷିତ,ଅଳଂକୃତ,ଅଳଂକାର ଶୋଭିତ, କର୍ଣ୍ଣଭୂଷଣ ଶୋଭିତ, କିରୀଟଭୂଷିତ ।

ଅବତମସ—କ୍ଳୀ.ବି.(ଅବ + ତମ)କ.ଧା; ବ୍ୟାପ୍ତ-ଅନ୍ଧକାର, ଈଷତ୍ ଅନ୍ଧକାର, ତିମିର ।

ଅବତରଣ—କ୍ଳୀ. ବି. (ଅବ + ତୃ + ଭା. ଅନ) ଓହ୍ଲାଇବା, ତଳକୁ ଓହ୍ଲାଇବା ନଦ୍ୟାଦି ପାରହେବା, ପହଁରିବା, ଜନ୍ମ-ଗ୍ରହଣ, ଅବରୋହଣ, ଉପୃତ, ଅବତାର, ଅପସାରଣ, ଆକସ୍ମିକ ତରୋଭାବ ।

ଅବତରଣିକା—ସ୍ତ୍ରୀ. ବି. (ଅବତରଣ + କ + ଆ) ଭୂମିକା, ଗ୍ରନ୍ଥର ପ୍ରସ୍ତାବନା, ସୋପାନ, ସିଡ଼ି ।

ଅବତରଣୀ—ସ୍ତ୍ରୀ.ବି. ଗ୍ରନ୍ଥପ୍ରସ୍ତାବ ନିମିତ୍ତ ମୁଖବନ୍ଧ, ଅବତରଣିକା, ଗ୍ରନ୍ଥାରମ୍ଭ, ଆଭା, ଭୂମିକା ।

ଅବତରି—ପ୍ରା. କ. ଅବତରଣ କରିବା, (ଗ୍ରା. ବିଂ) ଯାହା ବତୁରି ନାହିଁ, ଯାହା ପାଣିରେ ଭିଜା ହୋଇ ନାହିଁ ।

ଅବତରିବା—ଗ୍ରା. କ୍ରି. ଅବତାର ଗ୍ରହଣ-କରିବା, ଦେବତାବିଷ୍ଟ ବ୍ୟକ୍ତି (କାଳସୀ) ଦେବାଦେଶକୁ ପ୍ରକାଶ କରିବା, କ୍ରୋଧରେ ଉନ୍ମତ୍ତ ବା ଜ୍ଞାନହୀନ ହୋଇ ଗାଳି ଇତ୍ୟାଦି କରିବା, ଜନ୍ମିବା ।

ଅବତାନ—ପୁଂ. ବି. (ଅବ + ତନ୍ + ଭା. ଅ) ସନ୍ତାନ, ଅଧୋମୁଖ, ଲତାପ୍ରତାନ, ଆଚରଣ, ଆଚ୍ଛାଦନ, ବିସ୍ତାର ।

ଅବତାର—ପୁଂ. ବି. (ଅବ + ତୃ + ଅ) ତଳକୁ ଓହ୍ଲାଇବା, ପାରହେବା, ଦେବତାଙ୍କର ପୃଥିବୀରେ ଆବିର୍ଭାବ, ଅଭିବ୍ୟକ୍ତି, ପ୍ରାଦୁର୍ଭାବ, ବିକାଶ,ପ୍ରକାଶ, ପାବଚ୍ଛ, ତୀର୍ଥ, ଘାଟ, ପୁଷ୍କରିଣୀ, ଅବ-ତରଣିକା, ଉପୃତ, ଅବତରଣ ।

ଅବତାରଣ—କ୍ଳୀ.ବି.(ଅବ + ଣିଚ୍ + ତୃ + ଭା.ଅନ) ଲୁଗା କାନରେ ଭୂତର ପୂଜା, ଭୂତଝାଡ଼ିବା, ଗ୍ରନ୍ଥର ପ୍ରସ୍ତାବନା, ତଳକୁ ଓହ୍ଲାଇବା, ଅବତାରଗ୍ରହଣ, ଉପୃତ,ଅବରୋହଣ (ସ୍ତ୍ରୀ)(ଅବତାରଣା ।

ଅବତାରଣିକା—ସ୍ତ୍ରୀ. ବି.(ଅବତାରଣି + କ) ନୌକା, ଭୂମିକା, ଉପକ୍ରମଣିକା, ସିଡ଼ିର କ୍ରମ ।

ଅବତାରିତ—ବି. ବିଂ. (ଅବ + ତୃ + ର୍ମ. ତ)କୃତାବଗାହ, ଉପରୁ ତଳକୁ ଅଣା-ଯାଇଥିବା ବସ୍ତୁ ।

ଅବତାରିବା—ଗ୍ରା. କ୍ରି. ଉତ୍ତର ଦେବା, କୌଣସି ବ୍ୟକ୍ତି ବା ବସ୍ତୁକୁ ଉପରୁ ତଳକୁ ଓହ୍ଲାଇଦେବା ।

ଅବତାରୀ—ପୁଂ. ବିଂ. (ଅବ + ତୃ + କ. ଇନ୍)ଅବତାରଣକାରକ, ଆବିର୍ଭାବକ ।

ଅବତୀର୍ଣ୍ଣ—ବି.ବିଂ. (ଅବ + ତୃ + କ.ତ) ନିମ୍ନକୁ ଆଗତ, ଆବିର୍ଭୂତ, ଉତ୍ତୀର୍ଣ୍ଣ ।

ଅବତୁଳନ—କ୍ଳୀ.ବି. ତୁଳଦ୍ୱାରା ଓଜନ-କରିବା ।

ଅବତୋକା—ସ୍ତ୍ରୀ.ବି. ସ୍ରବଦ୍‌ଗର୍ଭା ଗାଈ, ଯେଉଁ ଗାଈ ଅସମୟରେ ଜନ୍ମ ଉଡ଼ି-ପକାଇଅଛି ।

ଅବତ୍ତ—ବି. ବିଂ. ( ଅବ + ଦା + ତ ) ଖଣ୍ଡିତ, ଦତ୍ତ, ପୁନର୍ଗୃହୀତ ।

ଅବତ୍ତୀ—ପୁଂ. ବିଂ. ଯାହାର ଆଶାଦି ଖଣ୍ଡିତ ହୋଇଅଛି, ଯାହା ଖଣ୍ଡିତ ହୋଇଅଛି ।

ଅବଦଂଶ—ପୁଂ.ବି.(ଅବ + ଦଂଶ + ର୍ମ. ଅ) ମଦ୍ୟପାନ ପରେ ଯାହା ଖାଇ-ବାକୁ ଭଲ ଲାଗେ, ଗୁଡ଼୍,ବୁଟ ଇତ୍ୟାଦି ।

ଅବଦତ୍ତ—ବି. ବିଂ. ଖଣ୍ଡିତ, ଯାହା ଦିଆଯାଇ ପୁନର୍ବାର ଗ୍ରହଣ, ଦତ୍ତ, ସମ୍ପାଦିତ, ଉତ୍ତୀର୍ଣ୍ଣ, ବିଲୀନ, (ସ୍ତ୍ରୀ) ଅବଦତ୍ତା ।

ଅବଦରଣ—କ୍ଳୀ.ବି.(ଅବ + ଦୃ + ଅନ) ବିଦାରଣ, ଖନନ, ଫାଟ, ଖନନାସ୍ତ୍ର, କୋଦାଳ ।

ଅବଦାଘ—ପୁଂ.ବି. ନିଦାଘ, ଗ୍ରୀଷ୍ମକାଳ ।

ଅବଦାତ—ପୁଂ.ବି. (ଅବ + ଦା + କ.ତ) ଶ୍ୱେତବର୍ଣ୍ଣ, ପୀତବର୍ଣ୍ଣ (ବିଂ) ବିଶୁଦ୍ଧ, ମନୋଜ୍ଞ, ପବିତ୍ର, ସୁନ୍ଦର ।

ଅବଦାନ—କ୍ଳୀ.ବି. ( ଅବ + ଦା + ଭା, ଅନ ) ପ୍ରଶସ୍ତକର୍ମ, ଖଣ୍ଡନ, ପରାକ୍ରମ, ଅତିକ୍ରମ, ଶୁଦ୍ଧୀକରଣ, କୀର୍ତ୍ତିଚ୍ଛେଦନ, ବେଣାମୂଳ, ପୁଣ୍ୟକର୍ମ ।

ଅବଦାରକ—ବି. ବିଂ. (ଅବ + ଦାର୍ + କ. ଅକ) ବିଦାରକ, ଛେଦକ, ଭୂମି-ଖନନାସ୍ତ୍ର, ଖଣିତ୍ର, (ସ୍ତ୍ରୀ) ଅବଦାରିକା ।

ଅବଦାରଣ—କ୍ଳୀ. ବ. (ଅବ + ଦାର + ଭା. ଅନ) ବିଦାରଣ, ଖନନ, ଶାବଳ ।

ଅବଦାରିତ—ତ୍ରି.ବିଂ. (ଅବ + ଦାର + ର୍ମ. ତ) ବିଦାରିତ, ବିଖଣ୍ଡିତ ।

ଅବଦାହ—ପୁଂ. ବ (ଅବ + ଦହ୍ + ଣ, ଅ) ଉଶୀର, ବେଣାମୂଳ, ଅଗ୍ନିଦ୍ୱାରା ପୋଡ଼ିଯିବା ଦାହନାଶକ ଦ୍ରବ୍ୟ, ଜ୍ୱରାଦି-ଜନିତ ଦାହ ।

ଅବଦାହେଷ୍ଟ—କ୍ଳୀ. ବ. (ଅବଦାହ + ଇଷ୍ଟ) ବେଣାମୂଳ, ଉଶୀର ।

ଅବଦୀର୍ଣ୍ଣ—ତ୍ରି.ବିଂ. (ଅବ + ଦୃ + କ.ତ) ବିଦୀର୍ଣ୍ଣ, ବିଦଳିତ, ଚୂର୍ଣ୍ଣୀଭୂତ, ଦ୍ରବୀଭୂତ, ଜୀର୍ଣ୍ଣ, ଗଳିତ ।

ଅବଦୋହ—ପୁଂ.ବ.(ଅବ + ଦୁହ୍ + ର୍ମ. ଅ) ଦୁଗ୍ଧଦୋହନ ।

ଅବଦ୍ୟ—ପୁଂ.ବିଂ. (ଅ + ବଦ୍ + ର୍ମ.ଯ) ଅଧମ, ପାପୀ, ନିନ୍ଦ୍ୟ, ନିକୃଷ୍ଟ, ପ୍ରତିକୃଷ୍ଟ, ଅକଥ୍ୟ, (ସ୍ତ୍ରୀ) ଅବଦ୍ୟା (ବି.କ୍ଳୀ) ଅନିଷ୍ଟ, ଦୋଷ, ପାପ, ନିନ୍ଦା ।

ଅବଦ୍ୟୋତନ—କ୍ଳୀ. ବ (ଅବ + ଦ୍ୟୁତ + ଅନ) ପ୍ରକାଶ କରିବା ।

ଅବଧ—ପୁଂ. ବ. (ନ. ତତ୍ପୁ) ଅହିଂସା, ଅବିନାଶ, ଅଯୋଧ୍ୟା ପ୍ରଦେଶ ଓ ନଗର, (ବିଂ) ଅବଧ୍ୟ, ବଧର ଅଯୋଗ୍ୟ, ଯାହାକୁ କେହି ମାରେ ନାହିଁ ।

ଅବଧପୁରୀ—ଗ୍ରା.ବ. ଅଯୋଧ୍ୟାନଗର ।

ଅବଧରିବା—ଗ୍ରା. କ୍ରି. (ଆଦେଶ) ପାଳନ-କରିବା ।

ଅବଧାତବ୍ୟ—ତ୍ରି. ବିଂ. (ଅବ + ଧା + ତବ୍ୟ) ମନୋଯୋଗର ବିଷୟ, ବୋଧର ବିଷୟ, ବୁଝିବା ।

ଅବଧାନ୍—ଗ୍ରା. ଅବ୍ୟ. ମାନ୍ୟବ୍ୟକ୍ତିଙ୍କୁ ସମ୍ବୋଧନ କରିବାର ବ୍ୟବହୃତ, ହେ ମହାଶୟ, ହେ ଅବଧାନ୍ ।

ଅବଧାନ—କ୍ଳୀ. ବ. (ଅବ + ଧା + ଭା, ଅନ) ପ୍ରଣିଧାନ, ମନୋଯୋଗବିଶେଷ, ଅଭିନିବେଶ ।

ଅବଧାନକରିବା—ଗ୍ରା. କ୍ରି. ମନୋଯୋଗ-ପୂର୍ବକ ଶୁଣିବା, ଅନୁଗ୍ରହପୂର୍ବକ କୌଣସି କାର୍ଯ୍ୟ କରିବା ।

ଅବଧାନପର—ପୁଂ. ବିଂ. ସାବଧାନ, ଅବହିତ, ମନୋଯୋଗୀ, ଦତ୍ତଧ୍ୟାନ, ସତର୍କ, ସଜାଗ (ସ୍ତ୍ରୀ) ଅବଧାନପରା ।

ଅବଧାବନ—କ୍ଳୀ.ବ.ପଶ୍ଚାଦ୍ଧାବନ, ପଛେ ପଛେ ଯିବା, ଅନୁସରଣ, ଧାବନ, ପ୍ରକ୍ଷାଳନ ।

ଅବଧାବକ—ପୁଂ. ବିଂ (ଅବ + ଧାବ + କ. ଅକ) ନିରୂପକ, (ସ୍ତ୍ରୀ)ଅବଧାବକା ।

ଅବଧାବିତ—ତ୍ରି. ବିଂ. ପଛରେ ଧାଉଁଥିବା, ଅନୁସୃତ, ଧୌତ ।

ଅବଧାର—ପୁଂ. ବ. (ଅବ + ଧୃ + ଅ) ନିଶ୍ଚୟ ।

ଅବଧାରଣ—କ୍ଳୀ. ବ. (ଅବ + ଧାରି + ଭା, ଅନ) ଇୟତ୍ତା, ପରିଚ୍ଛେଦ, ନିରୂପଣ, ସ୍ଥିରୀକରଣ, ନିଶ୍ଚୟ, ନିର୍ଣ୍ଣୟ ।

ଅବଧାରଣୀୟ—ତ୍ରି.ବିଂ (ଅବ + ଧାରି + ଅନୀୟ) ନିରୂପଣ କରିବାର ଯୋଗ୍ୟ ।

ଅବଧାରିତ—ତ୍ରି.ବିଂ (ଅବ + ଧାରି + ର୍ମ. ତ) ନିରୂପିତ ହେବାର ଯୋଗ୍ୟ, ଯାହା ନିର୍ଣ୍ଣୀତ ହୋଇପାରେ, ନିର୍ଦ୍ଦିଷ୍ଟ, ସ୍ଥିରୀକୃତ

ଅବଧାରୀ—ପୁଂ. ବିଂ. (ଅବ + ଧୃ + କ, ଇନ୍) ନିର୍ଣ୍ଣୟକାରୀ (ସ୍ତ୍ରୀ) ଅବଧାରିଣୀ ।

ଅବଧାର୍ଯ୍ୟ—ତ୍ରି.ବିଂ. (ଅବ + ଧୃ + ର୍ମ.ଯ) ନିର୍ଦ୍ଦେଶ୍ୟ, ନିରୂପିତ ହେବାର ଯୋଗ୍ୟ ।

ଅବଧି—ପୁଂ. ବ (ଅବ + ଧା + ଭା, ଇ) ସୀମା, କାଳ, ଚିତ୍ତାଭିନିବେଶ, ଅବଧାନ, ମନୋଯୋଗ, ନିୟମ, ବିଲ, ଗର୍ତ୍ତ, ଆଧାର, ମିଆଦ, ଆଜପର୍ଯ୍ୟନ୍ତ, ନିରୂପିତ ଶେଷ ସମୟ, ପର୍ଯ୍ୟନ୍ତ ।

ଅବଧିମତ୍—ତ୍ରି. ବିଂ. ଅବଧିବିଶିଷ୍ଟ ।

ଅବଧୀୟମାନ—ତ୍ରି.ବିଂ.ଯେଉଁ ବିଷୟରେ ମନୋଯୋଗ କରାହୋଇଅଛି ।

ଅବଧୀରଣା—ସ୍ତ୍ରୀ.କ୍ଳୀ.ବ.(ଅବ + ଧୀର + ଭା, ଅନ + ଆ) ଅବଜ୍ଞା, ଅବମାନନା, ଉପେକ୍ଷା (ବିଂ) ତିରସ୍କୃତ, ନିନ୍ଦିତ ।

ଅବଧୀରଣୀୟ—ତ୍ରି. ବିଂ. (ଅବଧୀର + ର୍ମ, ଅନୀୟ) ଉପେକ୍ଷଣୀୟ, ଅବଜ୍ଞେୟ, ଅନାଦରଣୀୟ ।

ଅବଧୀରିତ—ତ୍ରି.ବିଂ. (ଅବ + ଧୀର + ର୍ମ ତ) ଅବଜ୍ଞାତ, ଅନାଦୃତ, ଉପେକ୍ଷିତ, ଘୃଣିତ (ସ୍ତ୍ରୀ) ଅବଧୀରିତା ।

ଅବଧୂତ—ତ୍ରି.ବିଂ. (ଅବ + ଧୂ + କ.ତ) କମ୍ପିତ, ଆନ୍ଦୋଳିତ, ଉଦ୍ବେଳିତ, ଚାଳିତ, ତିରସ୍କୃତ, ତ୍ୟକ୍ତ, ଅଭିଭୂତ, ପ୍ରସାରିତ, ପରିତ୍ୟକ୍ତ, ଅନାଦୃତ, ସଂସାରମାୟାମୁକ୍ତ (ସ୍ତ୍ରୀ) ଅବଧୂତା (ବି) ଶୈବସନ୍ନ୍ୟାସୀବିଶେଷ ।

ଅବଧୂତାନୀ—ସ୍ତ୍ରୀ.ବ. (ଅବଧୂତ + ଆନୀ) ଅବଧୂତଦୀକ୍ଷାଗ୍ରହଣକାରିଣୀ, ସନ୍ନ୍ୟାସିନୀ, ଭବାନୀ, ଦୁର୍ଗା, ଅବଧୂତ ସନ୍ନ୍ୟାସୀଙ୍କର-ବୃତ୍ତି । [ଧୂତାନୀ (ଦେଖ) ।

ଅବଧୂତୀ—ସ୍ତ୍ରୀ.ବି. (ଅବଧୂତ + ଇ) ଅବ-

ଅବଧୂନନ—କ୍ଳୀ.ବ. (ଅବ + ଧୂନ + ଭା. ଅନ) ଚାଳନ, ଝାଡ଼ିବା, ଚଳତା-ବିଶେଷ, କମ୍ପନ ।

ଅବଧୂପିତ—ତ୍ରି.ବିଂ. (ଅବ + ଧୂପି + ର୍ମ. ତ) ଧୂପଦ୍ୱାରା ସୁରଭିକୃତ ।

ଅବଧୂଳନ—କ୍ଳୀ.ବ. ଅବଚୂର୍ଣ୍ଣନ, ଗୁଣ୍ଡ-କରି ପକାଇବା ।

ଅବଧୃତ—ତ୍ରି.ବିଂ. (ଅବ + ଧୃ + ର୍ମ.ତ) ଅବଧାରିତ, ନିଶ୍ଚିତ, ନିୟମିତ, ସ୍ଥାପିତ, ଶିକ୍ଷିତ (ବି) ଜ୍ଞାନେନ୍ଦ୍ରିୟଗଣ ।

ଅବଧୃଷ୍ୟ—ତ୍ରି. ବିଂ. (ଅବ + ଧୃଷ୍ + ଯ) ଅବଧର୍ଷଣୀୟ, ତିରସ୍କାରଯୋଗ୍ୟ, ପରାଭବନୀୟ ।

ଅବଧେୟ—ତ୍ରି.ବିଂ. (ଅବ + ଧା + ର୍ମ + ଯ) ନିର୍ଦ୍ଦେଷ୍ଟବ୍ୟ, ନିବେଶ୍ୟ, ସ୍ଥାପନୀୟ, ରଖିବାର ଯୋଗ୍ୟ, ଯେଉଁ ବିଷୟରେ ମନୋଯୋଗ କରାହୋଇଅଛି, ଜ୍ଞାତବ୍ୟ, (ସ୍ତ୍ରୀ) ଅବଧେୟା ।

ଅବଧୌତ—ତ୍ରି. ବିଂ (ଅବ + ଧାବ + ର୍ମ. ତ) ଅବଧୂତ ସମ୍ବନ୍ଧୀୟ, ଯାହା ଧୁଆ ହୋଇଅଛି, ପ୍ରକ୍ଷାଳିତ, (ସ୍ତ୍ରୀ)ଅବ-ଧୌତା, (ବି)ଯଜ୍ଞାନ୍ତେ ବିହିତ ସ୍ନାନ ।

ଅବଧୌତକ—ତ୍ରି.ବିଂ(ଅବଧୃତ + ଇକ) ଅବଧୂତ-ସମ୍ବନ୍ଧୀୟ, ଅବଧୌତ, (ସ୍ତ୍ରୀ) ଅବଧୌତକା ।

ଅବଧ୍ର—ବି. ବ୍ଂ. (ଅବ + ବଧ୍ + ରକ୍) ଅଧ୍ୱଂସିତ ।

ଅବଧ୍ୱଂସ—ପୁଂ. ବ. (ଅବ + ଧ୍ୱନ୍ସ + ଅ) ପରିତ୍ୟାଗ, ନାଶ, ଚୂର୍ଣ୍ଣନ, ନିନ୍ଦା, ଗୁଣ୍ଡକରିବା ।

ଅବଧ୍ୱସ୍ତ—ବି.ବ୍ଂ.(ଅବ + ଧ୍ୱନ୍ସ + ର୍ମ.ତ) ନଷ୍ଟ, ନିନ୍ଦିତ,ଚୂର୍ଣ୍ଣିତ, ତ୍ୟକ୍ତ, ଗୁଣ୍ଡିତ, (ସ୍ତ୍ରୀ) ଅବଧ୍ୱସ୍ତା ।

ଅବନ୍—ଗ୍ରା.ବି. ଅପଡ଼, ମନର ଅମେଳ, ବନ୍ଧୁଭାବ ଅଭାବ, ଶତ୍ରୁତା, ବିବାଦ, (ବ୍ଂ) ବର୍ଣ୍ଣିସ୍ଥାନ ।

ଅବନ—କ୍ଲୀ.ବ.(ଅବ + ଭା.ଅନ ପ୍ରୀଣନେ, ରକ୍ଷାକରିବା, ପ୍ରୀତି, ହର୍ଷ, ବୃଦ୍ଧି ,ପ୍ରାପ୍ତି, ପ୍ରାର୍ଥନା. (ବ୍ଂ) ବର୍ଣ୍ଣିସ୍ଥାନ ।

ଅବନତ—ବି. ବ୍ଂ. (ଅବ + ନମ୍ + କ. ତ) ଅଧୋମୁଖ, ଆନତ,କୃତନମସ୍କାର, ପ୍ରଣତ, ନମ୍ର, ନମ୍ରୀଭୂତ ।

ଅବନତମସ୍ତକ—କ୍ଲୀ. ବ. ( ଅଧୋଗତ ମସ୍ତକ, ହେଠମାଥ (ବ୍ଂ) ଅଧୋଗତ ମସ୍ତକବିଶିଷ୍ଟ, ଯେ ମୁଣ୍ଡ ନୁଆଁଇ ଅଛି, ହେଠମସ୍ତକ ।

ଅବନତମୁଖ ବା ବଦନ—ବ୍ଂ.(ବ.ବ୍ରୀ) ଅଧୋଗତମୁଖ କରି ସ୍ଥିତ, ଯାହାର ଅବନତ ମୁଖ (କ୍ଲୀ.ବ) ଅଧୋଗତମୁଖ, (ସ୍ତ୍ରୀ) ଅବନତମୁଖୀ ବା ବଦନା ।

ଅବନତି—ସ୍ତ୍ରୀ.ବ. (ଅବ + ନମ୍ + ଭା.ତି) ବିନୟ, ଅଗର୍ବ, ଅଧୋଗମନ, ତଳକୁ ନଇଁ ପଡ଼ିବା, ନମନ, ପ୍ରଣାମ, ( ଗ୍ରା ) ଅସମୃଦ୍ଧି, ଅନଭ୍ୟୁଦୟ ।

ଅବନଦ୍ଧ—ବି.ବ୍ଂ.(ଅବ + ନହ୍ + ର୍ମ.ତ) ଖଚିତ, ଗ୍ରେପିତ, ବେଷ୍ଟିତ, ବଦ୍ଧ (ସ୍ତ୍ରୀ) ଅବନଦ୍ଧା (କ୍ଲୀ.ବ) ମୃଦଙ୍ଗାଦି ବାଦ୍ୟ ।

ଅବନମନ—କ୍ଲୀ.ବ. (ଅବ + ନମ୍ + ଭା. ଅନ ) ନତକରଣ, ନମ୍ରାଭିମୁଖରେ ଆନୟନ, ଦମନ ।

ଅବନମିତ—ବି. ବ୍ଂ. (ଅବ + ନମ୍ + ଣିଚ + ର୍ମ.ତ) ନମ୍ରାଭିମୁଖେ ଆନୀତ, ବନ୍ଦୀକୃତ, (ସ୍ତ୍ରୀ) ଅବନମିତା ।

ଅବନମ୍ର—ବି. ବ୍ଂ. ଅତିଶୟ ନମ୍ର ।

ଅବନୟ—ପୁଂ.ବ୍ଂ.(ଅବ + ନୀ + ଭା.ଅ) ନିପାତନ, ଅଧୋନୟନ, ତଳକୁ ନୁଆଁଇବା, ନମନ ।

ଅବନୟନ—କ୍ଲୀ. ବ. (ଅବ + ନୀ + ଭା. ଅନ)ଅବସ୍ଥାପନ,ଅବନତ,ଜଳଢ଼ାଳିବା, ଅଧଃପାତନ, ନମନ ।

ଅବନା—ଗ୍ରା. ବ୍ଂ. ଅକଟା, ଯହିଁରେ ଇକାରାଦି ବନାନ ନ ଥାଏ, ଅବଗ୍ଧ ।

ଅବନାଟ—ବି. ବ୍ଂ. ( ଅବ + ନାସା ) ଚେପ୍ଟାନାକ, (ସ୍ତ୍ରୀ) ଅବନାଟୀ ।

ଅବନା ବନିବା—ଗ୍ରା. ବି. ଯୋଗସାଧନ ବା ପ୍ରାଣାୟାମଦ୍ୱାରା କୃଷ୍ଟସ୍ଥ ଚୈତନ୍ୟଙ୍କ ସାକ୍ଷାତ୍କାର ଲାଭକରିବା, ଅକଥ୍ୟ ବା ଅଶ୍ଳୀଳଭାଷାରେ ଗାଳିଦେବା ।

ଅବନାବନ୍ଧଶୃଙ୍ଖଳା—ବ. ଅବନା ଅକ୍ଷର-ରହିତ ବାକ୍ୟାଲଙ୍କାରବିଶେଷ ।

ଅବନାମ—ପୁଂ.ବ. (ଅବ + ନମ୍ + ଭା.ଅ) ଅବନତ, ମୁଣ୍ଡନୁଆଁଇବା, ନମସ୍କାର, ମୁଣ୍ଡନୁଆଁଇ ପ୍ରଣାମ ।

ଅବନାୟ—ପୁଂ. ବ. (ଅବ + ନୀ + ଅ) ଅଧୋନୟନ, ତଳଆଡ଼କୁ ନୁଆଁଇବା, ଅଧଃପ୍ରାପଣ ।

ଅବନାହ—ପୁଂ.ବ. (ଅବ + ନହ୍ + ଭା, ଅ) ବନ୍ଧନ, ପରିଧାନ ।

ଅବନି(ନୀ)- ସ୍ତ୍ରୀ.ବ.(ଅବ + ଅନି) ପୃଥିବୀ, ଭୂମି, ଦେଶ, ଭୂଭାଗ ।

ଅବନିକ୍ତ—ବି. ବ୍ଂ. (ଅବ + ନିଜ୍ + ତ) କ୍ଷାଳିତ, ଧୌତ, ଶୋଧିତ ।

ଅବନିତଳ—କ୍ଲୀ. ବ. ଧରାତଳ, ଭୂପୃଷ୍ଠ, ପୃଥିବୀ, ଧରାଧାମ ।

ଅବନିଦେବ—ପୁଂ.ବ. (ଷତତ୍ର) ଭୂଦେବ, ବ୍ରାହ୍ମଣ, ପୃଥିବୀର ଦେବତୁଲ୍ୟ ।

ଅବନିନାଥ—ପୁଂ. ବ. ପୃଥିବୀପାଳକ, ରାଜା, ନୃପ ।

ଅବନିପତି—ପୁଂ. ବ. (ଅବନି + ପା + ଅତି) ଭୂସ୍ୱାମୀ, ନୃପ, ରାଜା ।

ଅବନିପାଳ,ଅବନୀପାଳ—ପୁଂ.ବ.ଭୂସ୍ୱାମୀ, ନୃପ, ରାଜା ।

ଅବନିମଣ୍ଡଳ—କ୍ଲୀ. ବ. (ଷତତ୍ର) ଭୂମଣ୍ଡଳ, ଗୋଲାକାର ପୃଥିବୀ ।

ଅବନୀଧ୍ର—ପୁଂ. ବ. (ଅବନୀ + ଧୃ + କ. ଅ) ପର୍ବତ, ହିମାଳୟ ।

[ମୁଖ ।

ଅବନୀମୁଖ—ବି. ବ୍ଂ. (ବ.ବ୍ରୀ) ଅଧୋ-

ଅବନୀଶ—ପୁଂ. ବ. ପୃଥିବୀପତି, ଭୂପତି, ରାଜା ।

ଅବନେଜନ—କ୍ଲୀ. ବ. (ଅବ + ନିଜ୍ + ଭା.ଅନ) ପ୍ରକ୍ଷାଳନ, ଶ୍ରାଦ୍ଧରେ ପିଣ୍ଡଦାନ ପାଇଁ ବିସ୍ତୃତ କୁଶ ଉପରେ ଯେ ଜଳ ସେଚନ କରାଯାଏ ।

ଅବନ୍ତି(କା)ଅବନ୍ତୀ—ପୁଂ. ବ. ( ଅବ + ଅନ୍ତ, କ ) ଉତ୍ତର-ପଶ୍ଚିମ ଭାରତର ମାଳବଦେଶ, ପ୍ରାଚୀନ ରାଜା ବିକ୍ରମା-ଦିତ୍ୟଙ୍କ ରାଜଧାନୀ ଉଜ୍ଜୟିନୀ, ବର୍ତ୍ତମାନ ଜୟପୁର, ନଦୀବିଶେଷ, ତଦ୍ଦେଶବାସୀ ଜାତିବିଶେଷ ।

ଅବନ୍ତିବର୍ମା—ପୁଂ. ବ. କାଶ୍ମୀରର ଜଣେ ରାଜା, ଏହାଙ୍କର ପିତାଙ୍କ ନାମ ସୁଖ-ବର୍ମା

ଅବନ୍ତିସୋମ—କ୍ଲୀ. ବ୍ଂ. (ଅବନ୍ତି + ସୂ + ର୍ମ.ମ) ସମ୍ଭବତଃ ଏହା ଅବନ୍ତିଦେଶ-ବାସୀଙ୍କର ସୋମରସପର ପ୍ରିୟ ଥିବାରୁ ଏହି ନାମ ହୋଇଅଛି, କାଞ୍ଜି, ଆର-ନାଳ ।

ଅବପତନ—କ୍ଲୀ.ବ.ଅବନତି,ଅଧଃପତନ, ଅଧୋଗମନ, ଅବତରଣ ।

ଅବପତିତ—ବି. ବ୍ଂ. (ଅବ + ପତ୍ + କ.ତ) ଅଧଃପତିତ, ଅଧୋଗତ, ଅବ-ତୀର୍ଣ୍ଣ, ଅବନତ, ଅଷ୍ଟ୍ରଟ ।

ଅବପନ୍ନ—ବି.ବ୍ଂ.(ଅବ + ପଦ୍ + କ.ତ) ବିସୃଷ୍ଟ, ସହିପନ୍ନ, ଅଧଃପତିତ, ଯାହା ତଳକୁ ପକାଯାଇଅଛି ।

ଅବପାକ—ପୁଂ. ବ. (ଅବ + ପଚ୍ + ଅ) ଅପକୃଷ୍ଟପାକ, ଭଲରନ୍ଧା ନୁହେ, (ବ୍ଂ) ଯେ ମନ୍ଦପାକ କରେ ।

ଅବପାତ—ପୁଂ.ବ. (ଅବ + ପତ୍ + ଭା. ଅ)ଅଧଃପତନ,ଅଧୋଗମନ,ଅବତରଣ,

ତଳେ ପଡ଼ିଯିବା, ହାତୀ ଧରିବାପାଇଁ ଖୋଳା ଯାଇଥିବା ତୃଣାଦିଦ୍ୱାରା ଆଚ୍ଛାଦିତ ଗର୍ତ୍ତ, ଗାତ ।

ଅବପାତ୍ର—ବି. ବିଂ. ପତିତ ଜମ୍ମା ମ୍ଳେଚ୍ଛ ଜାତିର ଲୋକ, ଯେ ଲୋକ ଖାଇଲେ ପାତ୍ର ମାରି ହୁଏ ।

ଅବପାତିତ—ବି. ବିଂ. ଅପାଂକ୍ତେୟ, ଜ୍ଞାତିମାନେ ଯାହାକୁ ଖାଇବା ଧାଡ଼ିରୁ ଅନ୍ତର କରି ଅଛନ୍ତି । [ପଡ଼ିବା ।

ଅବପାଦ—ପୁଂ. ବି. ଅଧଃପତନ, ତଳେ

ଅବପାନ—କ୍ଲୀ. ବି. (ଅବ + ପା + ଅନ) ଦୂରସ୍ଥ ପାନୀୟ ଦ୍ରବ୍ୟ ।

ଅବପାଶିତ—ବି. ବିଂ. ପାଶବଦ୍ଧ, ଜାଲରେ ପଡ଼ିବା ମୃଗପ୍ରଭୃତି ।

ଅବପୀଡ଼—ବି. ବିଂ. (ଅବ + ପୀଡ଼୍ + ଅ) ସମସ୍ତବୟସରେ ଯେ ପୀଡ଼ା ହୁଏ, ଚିକିତ୍ସା-ବିଶେଷ ।

ଅବପୀଡ଼ନ-କ୍ଲୀ. ବି. (ଅବ + ପୀଡ଼୍ + ଅନ) ନିଷ୍ପୀଡ଼ନ, ପୀଡ଼ନଦୋଷବିଶେଷ ।

ଅବପ୍ଳୁତ—ପୁଂ. ବି. (ଅବ + ପ୍ଳୁ + ତ) ଲଙ୍ଘନ ଗତ, ଡେଇଁ ଡେଇଁ ଯିବା, (ବି) ସହସା ଅବତୀର୍ଣ୍ଣ (ସ୍ତ୍ରୀ) ଅବପ୍ଳୁତା ।

ଅବବନ୍ଧ—ପୁଂ. ବି. ଦୃଷ୍ଟିର ଆବରକ ରୋଗବିଶେଷ, ସମ୍ୟକ୍ ବନ୍ଧନ ।

ଅବବାଧା—ସ୍ତ୍ରୀ. ବି. (ଅବ + ବାଧ୍ + ଆ) ସକଳ ପ୍ରକାର ବାଧା, ପ୍ରତିବନ୍ଧନ ।

ଅବବାହୁକ—ପୁଂ. ବି. ବାୟୁରୋଗବିଶେଷ, ଯେଉଁ ରୋଗରେ ହାତ ଚଳେ ନାହିଁ, (ବିଂ) ବାହୁବିସ୍ଥାନ ।

ଅବବୁଦ୍ଧ—ବି. ବିଂ. (ଅବ + ବୁଧ୍ + ର୍ମ. ତ) ଜ୍ଞାତ, ପ୍ରବୁଦ୍ଧ, ଜାଗରିତ, ଅନୁଭୂତ, (ସ୍ତ୍ରୀ) ଅବବୁଦ୍ଧା ।

ଅବବୋଧ—ପୁଂ. ବି. (ଅବ + ବୁଧ୍ + ଭା. ଅ) ଜାଗରଣ, ଜ୍ଞାନ, ଅନୁଭବ, ଉପଦେଶ, ଭ୍ରମଜ୍ଞାନ, ପରଜ୍ଞାନ ।

ଅବବୋଧକ—ପୁଂ. ବି. (ଅବ + ବୋଧି + କ, ଅକ) ସୂର୍ଯ୍ୟ, ଜ୍ଞାପକ, ଯେ ଜଣାଇଦିଏ, ବୈତାଳିକ (ଅବ୍ୟ ବିଂ) ସୂଚକ ।

ଅବବୋଧନ—କ୍ଲୀ. ବି. (ଅବ + ବୁଧ୍ + ଣିଚ୍ + ଭା. ଅନ) ଜ୍ଞାପନ, ଜଣାଇବା, ଶିକ୍ଷଣ, ଜ୍ଞାନ, ବିନିଦ୍ରକରଣ ।

ଅବବୋଧିତ—ବି. ବିଂ. (ଅବ + ବୋଧି + ର୍ମ. ତ) ଜାଗରିତ, ପ୍ରବୋଧିତ ।

ଅବଭର୍ଜିତ—ବି. ବିଂ. (ଅବ + ଭ୍ରସ୍ଜ + ତ) ଭଜା ପଦାର୍ଥ, ଯେଉଁ ପଦାର୍ଥ ଭଜେଇ ନିଆ ହୋଇଅଛି ।

ଅବଭାଷଣ—କ୍ଲୀ. ବି. (ଅବ + ଭାଷ୍ + ଭା. ଅନ) କଥନ, ମନ୍ଦକଥନ, ବିରୁଦ୍ଧଭାଷଣ, ନିନ୍ଦନ ।

ଅବଭାସ—ପୁଂ. ବି. (ଅବ + ଭାସ୍ + ଭା, ଅ) ଜ୍ଞାନ, ପ୍ରକାଶ, ମିଥ୍ୟାଜ୍ଞାନ, ଦୀପ୍ତି, ଛଳ, ଅସାଧ୍ୟ ଆରୋପ ।

ଅବଭାସକ—ବି. ବିଂ. ପ୍ରକାଶକ, (କ୍ଲୀ) ସର୍ବପ୍ରକାଶକ, କୂଟସ୍ଥ ଚୈତନ୍ୟ, ପରମାତ୍ମା । [ପ୍ରକାଶିତ ।

ଅବଭାସିତ—ବି. ବିଂ. (ଅବ + ଭାସି + ତ)

ଅବଭୃଥ-ବି. ଯଜ୍ଞାନ୍ତେସ୍ନାନ, ଯଜ୍ଞାନ୍ତେ କର୍ମ, ଯଜ୍ଞ ।

ଅବଭୃଥ—ପୁଂ. ବି. (ଅବ + ଭୃ + କ. ଥ) ଯଜ୍ଞ, ଅଙ୍ଗହୀନ ବା ନ୍ୟୂନତା, ତ୍ରୁଟି ପୂରଣାର୍ଥ ପ୍ରଧାନ ଯଜ୍ଞ ଶେଷରେ ଅନୁଷ୍ଠିତ ଯଜ୍ଞ, ଯଜ୍ଞାନ୍ତେ ସ୍ନାନ ।

ଅବଭୃଥସ୍ନାନ—କ୍ଲୀ. ବି. (କ. ଧା) ଯଜ୍ଞାନ୍ତେ-ସ୍ନାନ, ଯଜ୍ଞ ଶେଷରେ ଯାଜ୍ଞିକର ସ୍ନାନ, ଦୀକ୍ଷାନ୍ତସ୍ନାନ ।

ଅବଭ୍ରଟ୍—ବି. ବିଂ. (ଅବ + ଭ୍ରନ୍ଶ + କ୍ୱିପ୍) ଅଧଃପତିତ, ଯେ ଉପରୁ ତଳେ ପଡ଼ିଅଛି ।

ଅବଭ୍ରଟ—ପୁଂ. ବିଂ. (ବ. ବ୍ରୀ) ଚେପଟା-ନାକ, ନତନାସିକ (ବି) ଚେପଟା ନାକଥିବା ଅବସ୍ଥା (ସ୍ତ୍ରୀ) ଅବଭ୍ରଟୀ ।

ଅବମ—ପୁଂ. ବିଂ. (ଅବ + ଅମ. କ) ଯାହାଠାରୁ ଆପଣାକୁ ରକ୍ଷା କରିଯାଏ, ଅଧମ, ନିକୃଷ୍ଟ, ନ୍ୟୂନ, ଦୂଷିତ (ବି) ଜ୍ୟୋତିଷମତେ ତ୍ର୍ୟହସ୍ପର୍ଶତିଥି (ଦିବସ) ।

ଅବମତ—ବି. ବିଂ. (ଅବ + ମନ୍ + ତ) ଅବଜ୍ଞାତ, ତିରସ୍କୃତ, ଅବଗଣିତ, ଅବମାନିତ ।

ଅବମତାଙ୍କୁଶ—ପୁଂ. ବି. (ବ. ବ୍ରୀ) ଦୁର୍ଦ୍ଦାନ୍ତ ହସ୍ତୀ, ଯେଉଁ ହାତୀକୁ ଆଙ୍କୁଶ ମାରି ଫେରେଇ ହୁଏ ନାହିଁ ।

ଅବମତି—ସ୍ତ୍ରୀ. ବି. (ଅବ + ମନ୍ + ଭା. ତି) ଅବଜ୍ଞା, ଅନାଦର, ତିରସ୍କାର, ହେୟଜ୍ଞାନ, ଅଶ୍ରଦ୍ଧା (ପୁଂ) ପ୍ରଭୁ ।

ଅବମତିଥି—ତ୍ର୍ୟହସ୍ପର୍ଶ ତିଥି ।

ଅବମଦିନ—କ୍ଲୀ. ବି. ତ୍ର୍ୟହସ୍ପର୍ଶ ଦିବସ ।

ଅବମନ୍ତବ୍ୟ—ବି. ବିଂ. (ଅବ + ମନ + ର୍ମ. ତବ୍ୟ) ଅବଜ୍ଞେୟ, ଅନାଦରଣୀୟ, ହେୟ ।

ଅବମନ୍ତା—ପୁଂ. ବିଂ. (ଅବ + ମନ୍ + କ. ତୃ) ଯେଉଁ ଲୋକ ଅବଜ୍ଞା କରେ, ବୟସ୍ତ-ଗୌରବ ଜ୍ଞାନହୀନ, ଅବଜ୍ଞାକାରୀ, (ସ୍ତ୍ରୀ) ଅବମନ୍ତ୍ରୀ ।

ଅବମନ୍ଥ—ପୁଂ. ବି. ଶୂକଦୋଷ ଜନିତ ରୋଗବିଶେଷ (ଶୁଶ୍ରୁତୋକ୍ତ) ।

ଅବମର୍ଦ୍ଦ—ପୁଂ. ବି. (ଅବ + ମୃଦ୍ + ଭା. ଅ) ପୀଡ଼ନ, ଚୂର୍ଣ୍ଣ କରିବା, ଭିଡ଼, ବିଦଳନ, ଶସ୍ତ୍ରକୃତ ଗୁରୁପ୍ରହାର ।

ଅବମର୍ଦ୍ଦକ—( ଅବ + ମୃଦ୍ + କ. ଅକ ) ଦଳନକାରୀ, ନିଷ୍ପୀଡ଼କ, ଅବମାନକାରୀ, ଉଚ୍ଛେଦକାରୀ, (ସ୍ତ୍ରୀ) ଅବମର୍ଦ୍ଦିକା ।

ଅବମର୍ଦ୍ଦନ—ପୁଂ. ବିଂ. (ଅବ + ମୃଦ୍ + କ. ଅନ ) ପୀଡ଼ନକାରୀ, ଧ୍ୱଂସକାରକ, (ସ୍ତ୍ରୀ) ଅବମର୍ଦ୍ଦନା (କ୍ଲୀ. ବି,) ଦଳନ, ପୀଡ଼ନ, ଅଙ୍ଗମର୍ଦ୍ଦନ, ସମ୍ବାହନ, ଧ୍ୱଂସ, ଉଚ୍ଛେଦ ।

ଅବମର୍ଦ୍ଦିତ—ବି. ବିଂ. (ଅବ + ମର୍ଦ୍ଦି + ର୍ମ. ତ) ପୀଡ଼ିତ, ବିଦଳିତ, ବିଧ୍ୱସ୍ତ ।

ଅବମର୍ଦ୍ଦୀ—ପୁଂ. ବିଂ. (ଅବ + ମର୍ଦ୍ଦି + କ. ଇନ୍) ପ୍ରମାଥୀ, ନିପୀଡ଼କ, (ସ୍ତ୍ରୀ) ଅବମର୍ଦ୍ଦିନୀ ।

ଅବମର୍ଶନ(ମର୍ଷଣ)—କ୍ଲୀ. ବି. (ଅବ + ମୃଶ୍ + ଭା. ଅନ) ବିଲୁପ୍ତି, ବିସ୍ମୃତି, ନାଟକର ସନ୍ଧ୍ୟାଂଶ ବିଶେଷ ।

ଅବମର୍ଶ(ମର୍ଷ)—ପୁଂ. ବି. (ଅବ + ମୃଶ୍ + ଭା. ଅନ) ଅସହନ, ଅକ୍ଷମା, ବିଲୋପ, ଆମର୍ଦ୍ଦନ, ସ୍ପର୍ଶ ପରାମର୍ଶ, ଅନୁଚିନ୍ତନ,

ବସ୍ତୁ, ପର୍ଯ୍ୟାଲୋଚନ, ନାଟକର ସନ୍ଧ୍ୟାଂଶବିଶେଷ ।
ଅବମର୍ଷିତ—ତ୍ରି. ବି°. (ଅବମର୍ଷ + ଇତ) ଜାତାବମର୍ଷ, ଅସହିଷ୍ଣୁ ।
ଅବମାନ—ପୁଂ. ବ. (ଅବ + ମନ୍ + ଅ) ଅବଜ୍ଞା, ଅନାଦର, ମାନ ।
ଅବମାନନା—ସ୍ତ୍ରୀ.ବ. (ଅବ + ମାନ + ଣି. ଅନ + ଆ)ଅପମାନ କରିବା, ଅସମ୍ମାନ କରିବା, ଅନାଦର କରିବା ।
ଅବମାନିତ—ତ୍ରି. ବି°. (ଅବ + ମାନ୍ + ର୍ମି.ତ) ଅପମାନିତ, ଲାଞ୍ଛିତ, ଅବଜ୍ଞାତ, ଅନାଦୃତ (ସ୍ତ୍ରୀ) ଅବମାନିତା ।
ଅବମାନୀ—ପୁଂ. ବି°. ଅପମାନକର୍ତ୍ତା, ଅପମାନବିଶିଷ୍ଟ, (ସ୍ତ୍ରୀ) ଅବମାନିନୀ ।
ଅବମାନନୀୟ—ତ୍ରି. ବି°. (ଅବ + ମାନ୍ + ର୍ମି.ଅନୀୟ) ଯାହାକୁ ଅନାଦର କରାଯାଇଅଛି, ଉପେକ୍ଷଣୀୟ, ଅବଜ୍ଞେୟ, ଅନାଦରଣୀୟ ।
ଅବମାନୟିତା—ପୁଂ. ବି°. (ଅବମାନ + ଇ + କ.ତୃ) ଯେ ଅବମାନ କରାଏ, (ସ୍ତ୍ରୀ) ଅବମାନୟିତ୍ରୀ ।
ଅବମାନ୍ୟ—ତ୍ରି. ବି°. (ଅବ + ମାନ୍ + ର୍ମି.ଯ) ଅପମାନର ଯୋଗ୍ୟ, ଯାହାକୁ ଅପମାନ ଦିଆଯାଇ ପାରେ, (ସ୍ତ୍ରୀ) ଅବମାନ୍ୟା ।
ଅବମାର୍ଜନ—କ୍ଳୀ.ବ.(ଅବ + ମୃଜ୍ + ଭା. ଅନ)ଧୌତକରଣ,ପ୍ରକ୍ଷାଳନ, ଶୋଧନ ।
ଅବମିଶ୍ର—ବ.(ଅବ + ମିଶ୍ର + ଭା.ଅ)ଦୁଇ ପଦାର୍ଥର ନିକୃଷ୍ଟ ବା ଅନୁଚିତରୂପେ ମିଶ୍ରଣ, (ବି°) ଅବମିଶ୍ରିତ ।
ଅବମୂର୍ଦ୍ଧଶୟ—ତ୍ରି. ବି°. (ଅବମୂର୍ଦ୍ଧ + ଶୀ + କ.ଅ)ମୁହଁ ମାଡ଼ି ଶୋଇଥିବା,ଅଧୋମୁଖେ ଶୟନକାରୀ,(ସ୍ତ୍ରୀ ଅବମୂର୍ଦ୍ଧଶୟା ।
ଅବମୂର୍ଦ୍ଧଶାୟୀ—ପୁଂ.ବି°. (ଅବମୂର୍ଦ୍ଧ + ଶୀ + କ. ଇନ୍) ମୁହଁମାଡ଼ି ଶୋଇଥିବା, ଯେ ମୁହଁ ମାଡ଼ି ଶୁଏ, (ସ୍ତ୍ରୀ) ଅବମୂର୍ଦ୍ଧଶାୟିନୀ ।
ଅବମୂର୍ଦ୍ଧା—ପୁଂ.ବି°.(ବ.ବ୍ରୀ)ଅଧୋମୁଖ, ଅଧୋମସ୍ତକ ।

ଅବମୋଚନ—କ୍ଳୀ. ବ. (ଅବ + ମୁଚ୍ + ଭା.ଅନ)ଉନ୍ମୋଚନ,ଖୋଲା,ବେପରଦା, ମୁକ୍ତି, ପରିତ୍ୟାଗ, (ବି°) ଅବମୁକ୍ତ ।
ଅବମୋଟନ— କ୍ଳୀ.ବ.(ଅବ + ମୋଟ୍ + ଭା.ଅନ) ଶରୀରମର୍ଦ୍ଦନ, ଆକ୍ଷେପ, ହାତ ଗୋଡ଼ ବାଡ଼େଇ କସ୍ରତ୍ ହେବା ।
ଅବୟ—ଗ୍ରା. ବି°. ଅବ୍ୟୟ, ଅକ୍ଷୟ ।
ଅବଯଜନ—କ୍ଳୀ. ବ. (ଅବ + ଯଜ୍ + ଅନ) ଅପଗମନ, ସାଧନ,ପୃଥକ୍ ଯୋଗ ।
ଅବୟବ—ପୁଂ.ବ. (ଅବ + ଯୁ + ଣ.ଅ) ଶରୀରର ଅଙ୍ଗପ୍ରତ୍ୟଙ୍ଗ, ଉପାଦାନ, ଉପକରଣ, ଅଂଶ, ଆକାର, ରୂପ, ଆକୃତ, ଚେହେରା, ପ୍ରତିଜ୍ଞାଦିପଞ୍ଚକ ଦ୍ରବ୍ୟର ସମବାୟୀକାରଣ ।
ଅବୟବୀ—ପୁଂ. ବି°. (ଅବୟବ + ଇନ୍) ଯାହାର ଅଙ୍ଗ ଅଛି,ଅଙ୍ଗଯୁକ୍ତ, ସାକାର, ଶରୀରୀ,ଆକାରଧାରୀ,ଅଂଶବିଶିଷ୍ଟ, ଉପକରଣ ବିଶିଷ୍ଟ(ନ୍ୟାୟ)ପ୍ରତିଜ୍ଞାଦି ପଞ୍ଚାଙ୍ଗ-ବିଶିଷ୍ଟ,(ସ୍ତ୍ରୀ) ଅବୟବିନୀ (ବ) ଅଙ୍ଗଧାରୀ, ଶରୀରଯୁକ୍ତ,ମୀମାଂସାସମ୍ବଳିତ ପ୍ରତିଜ୍ଞା ।
ଅବଯା—ତ୍ରି. ବି°. ଶତ୍ରୁତ୍ୟାଗୀ,ଯେହେଂତୁ କରିବାକୁ ଯାଏ ନାହିଁ ।
ଅବଯାଜ୍—କ୍ଳୀ.ବ.ଅବଯଜନ,ପୃଥକ୍ କରି ଯାଗ, ପୃଥକ୍ କରି ହବିର୍ଭାଗ ରଖିବା ।
ଅବଯାତା—ପୁଂ.ବି°. (ଅବ + ଯା + ତୃ) ପୃଥକ୍କର୍ତ୍ତା, ଯେ ପୃଥକ୍ କରେ, (ସ୍ତ୍ରୀ) ଅବଯାତ୍ରୀ । [ଅପଗମ ।
ଅବଯାନ—କ୍ଳୀ.ବ. (ଅବ + ଯା + ଅନ)
ଅବଯୁନ—ତ୍ରି. ବି°. କାନ୍ତିଶୂନ୍ୟ, ପ୍ରଜ୍ଞା-ଶୂନ୍ୟ,ଅପ୍ରଜ୍ଞାନ । [ଜ୍ଞିତ ।
ଅବରନ—(ସମ୍ବ)ବି°. ଅବରଣି, ଅନମ-
ଅବର—ତ୍ରି. ବି°. (ବ.ବ୍ରୀ) (ଅ + ବର) ଅଶ୍ରେଷ୍ଠ, କନିଷ୍ଠ, ନିମ୍ନତର, ପଛ-ଆଡ଼ର,ଅଧମ, ପରବର୍ତ୍ତୀ, ଅପର,ନ୍ୟୂନ, ହୀନକୁଳଜାତ (ସ୍ତ୍ରୀ) ଅବରା (ବ) ଶୂଦ୍ର, ହସ୍ତୀଜଙ୍ଘର ପଛଭାଗ, ଅତୀତକାଳ ।
ଅବରଗ(ଗା)—ଗ୍ରା.ପୁଂ.ବି°. ଯେ ନିଜ ସ୍ୱାଧୀନ ନୁହେ, ଅବାଗିଆ, ଅଖାଡୁଆ, ଅସୁନ୍ଦର ।

ଅବରଜ—ପୁଂ.ବ. (ଅବର + ଜନ + କ ଅ) କନିଷ୍ଠ ସହୋଦର, ସାନଭାଇ, ଶୂଦ୍ର (ସ୍ତ୍ରୀ) ଅବରଜା (ବି°) ପଶ୍ଚାଜ୍ଜାତ, ହୀନବଂଶଜାତ, ନିକୃଷ୍ଟ ।
ଅବରଜା—ସ୍ତ୍ରୀ. ବି°. (ଅବରଜ + ଆ) କନିଷ୍ଠା, ନିକୃଷ୍ଟା ।
ଅବରଜିଆ—ଗ୍ରା.ବି°.ପୁଂ ଓ ସ୍ତ୍ରୀ. ନିକୃଷ୍ଟ, ହୀନ, ତୁଚ୍ଛ, ହେୟ, କୁତ୍ସିତ, ଅପରିଷ୍କୃତ, ମଇଳାପୂର୍ଣ୍ଣ ।
ଅବରଣୀୟ—ପୁଂ. ବି°. (ଅ + ବୃ + ର୍ମି. ଅନୀୟ) ଅପୂଜ୍ୟ, ଯାହାକୁ ମାନ୍ୟ-କରିବା ଉଚିତନୁହେ(ସ୍ତ୍ରୀ)ଅବରଣୀୟା ।
ଅବରତ—ତ୍ରି. ବି°. (ଅବ + ରମ୍ + ତ) ବିଶ୍ରାନ୍ତ, ଅନବରତ, ସତତ ।
ଅବରତଃ—(ଅବ୍ୟ) ଅବର, ଅବରକେ, ଅବରଦ୍ୱାରା, ଅବରଉଦ୍ଦେଶ୍ୟେ,ଅବର-ଠାରୁ, ଅବରର, ଅବରଠାରେ ।
ଅବରତି—ସ୍ତ୍ରୀ. ବ. (ଅବ + ରମ୍ + ତି) ବିରାମ, ନିବୃତ୍ତି ।
ଅବରତିଆ—ଗ୍ରା. ବି°.(ଅ + ବ୍ରତ)ଯେଉଁ ବାଳକର ବ୍ରତ ହୋଇ ନାହିଁ, ଯେଉଁ ବ୍ୟକ୍ତି କୌଣସି ବ୍ରତ ପାଳନ କରି ନ ଥାଏ, ଧରିହୋଇ ନ ଥିବା, (ଅଣ୍ଡିରା, ବାଛୁରୀ) ।
ଅବରବର୍ଣ୍ଣ—ପୁଂ.ବ. ଶୂଦ୍ର,ନିକୃଷ୍ଟଜାତ, ନୀଚଜାତି ।
ଅବରବର୍ଣ୍ଣଜ—ପୁଂ. ବ. ଶୂଦ୍ର, ନିକୃଷ୍ଟ ବର୍ଣ୍ଣ-ଜାତ ରଙ୍ଗ ।
ଅବରବ୍ରତ—ପୁଂ.ବ. ସୂର୍ଯ୍ୟ, ଅରଖଗଛ, (ବି°) ହୀନବ୍ରତ ।
ଅବରୟା—ଗ୍ରା.ବି°. କୁତ୍ସିତ,ଅପରିଷ୍କୃତ, ମଇଳାପୂର୍ଣ୍ଣ, ନିକୃଷ୍ଟ, ହୀନ ।
ଅବରଶୈଳ—ପୁଂ. ବ. ଅସ୍ତାଚଳ ।
ଅବରଷା— ଗ୍ରା.ବ.(ଅ + ବର୍ଷା)ଅନାବୃଷ୍ଟି ।
ଅବରସ୍ତାତ୍—ଅବ୍ୟ. (ଅବର + ସ୍ତାତ୍) ପଶ୍ଚାତ୍, ପରେ ।
ଅବରା—ସ୍ତ୍ରୀ. ବ. (ବ.ବ୍ରୀ) ଦୁର୍ଗା, (ବି°) ଅଶ୍ରେଷ୍ଠା, ଅତିଶ୍ରେଷ୍ଠା ।

ଅବସ୍ତର୍ଦ୍ଧ—କ୍ଳୀ. ବ. ( କ.ଧା. ) ଦେହର ପଶ୍ଚାଦ୍ଭାଗ, ନାଭିଠାରୁ ପାଦପର୍ଯ୍ୟନ୍ତ ।

ଅବସ୍ତର୍ଦ୍ଧ୍ୟ—ବି. ବ୍ୟଂ. (ଅବସ୍ତର୍ଦ୍ଧ + ଯ) ଶେଷଭାଗରେ ଜାତ, ନ୍ୟୂନ, ଅଳ୍ପ, (ସ୍ତ୍ରୀ) ଅବସ୍ତର୍ଦ୍ଧ୍ୟା ।

ଅବଗୀଣ—ବି. ବ୍ୟଂ. (ଅବ + ଗୃ + ମ୍ପି.କ୍ତ) ଅନାଦୃତ, ଅବଜ୍ଞାତ, ନିନ୍ଦିତ, ତିରସ୍କୃତ, ଧିକ୍‌କୃତ ।

ଅବସୀୟାନ୍—ପୁଂ. ବ୍ୟଂ. ଶ୍ରେଷ୍ଠ ନୁହେ, ଅତି ଅଳ୍ପ, (ସ୍ତ୍ରୀ) ଅବସୀୟସୀ,କନିଷ୍ଠା ।

ଅବରୁଗ୍‌ଣ—ବି. ବ୍ୟଂ. ( ଅବ + ରୁଜ୍ + ମ୍ପି.କ୍ତ) ରୋଗଗ୍ରସ୍ତ, ପୀଡ଼ିତ, ବ୍ୟାଧିଗ୍ରସ୍ତ, (ସ୍ତ୍ରୀ) ଅବରୁଗ୍‌ଣା ।

ଅବରୁଦ୍ଧ—ବି.ବ୍ୟଂ.(ଅବ + ରୁଧ୍ + ମ୍ପି.କ୍ତ) ପ୍ରତିରୁଦ୍ଧ, ବଦ୍ଧ, ଆଚ୍ଛାଦିତ, ଆବୃତ, ପରିବୃତ, ଗୁପ୍ତ, ଅଜ୍ଞାତ, ସ୍ୱୀକୃତ, ବ୍ୟାହତ, ବେଷ୍ଟିତ, ଯେଉଁ ସ୍ତ୍ରୀଲୋକ ନିକଟକୁ କେହି ଯାଇ ପାରନ୍ତି ନାହିଁ, (ସ୍ତ୍ରୀ) ଅବରୁଦ୍ଧା ।

ଅବରୁଦ୍ଧି—ସ୍ତ୍ରୀ.ବ. (ଅବ + ରୁଧ୍ + ତି) ଅବରୋଧ, ବାନ୍ଧିରଖିବା ।

ଅବରୂଢ଼—ବି.ବ୍ୟଂ. (ଅବ + ରୁହ୍ + କ. କ୍ତ) ଉଚ୍ଚ ସ୍ଥାନରୁ ନୀଚ ଆଡ଼କୁ ଯେ ଓହ୍ଲାଇ ଅଛି, (ସ୍ତ୍ରୀ) ଅବରୂଢ଼ା, (ବ) ଅବରୋହଣ ।

ଅବରେଣ୍ୟ—ବି.ବ୍ୟଂ. (ନ.ତତ୍ପୁ) ଅଶ୍ରେଷ୍ଠ, ଅପ୍ରାର୍ଥନୀୟ, (ସ୍ତ୍ରୀ) ଅବରେଣ୍ୟା ।

ଅବରୋଚକ—ପୁଂ. ବ୍ୟଂ. ଅରୁଚିକାରକ ରୋଗବିଶେଷ ।

ଅବରୋଧ—ପୁଂ.ବ୍ୟଂ.(ଅବ + ରୁଧ୍ + ଭା. ଅ) ବିରୋଧ, ବାନ୍ଧି ରଖିବା, ରାଜବାଟି, ନିରୋଧ, ଅନ୍ତଃପୁର ।

ଅବରୋଧକ—ପୁଂ.ବ୍ୟଂ. (ଅବ + ରୁଧ୍ + କ. ଅକ) ଅବରୋଧକାରୀ, ନିରୋଧକାରୀ, ଆବରକ, (ସ୍ତ୍ରୀ) ଅବରୋଧିକା, (ବ.କ୍ଳୀ) ବୃତି, ବେଢ଼ା, (ପୁଂ.ବ) ଅନ୍ତଃପୁରରକ୍ଷକ ।

ଅବରୋଧନ—କ୍ଳୀ.ବ,(ଅବ + ରୁଧ୍ + ଭା. ଅନ) ନିରୋଧ, ବନ୍ଦକରି ରଖିବା, ରାଜ-ଅନ୍ତଃପୁର ।

ଅବରୋଧପ୍ରଥା—ସ୍ତ୍ରୀ. ବ. (୬ତତ୍ପୁ) ସ୍ତ୍ରୀଲୋକମାନଙ୍କୁ ଅନ୍ତଃପୁର ମଧ୍ୟରେ ଆବଦ୍ଧ କରି ରଖିବା ରୀତି ।

ଅବରୋଧାୟନ—କ୍ଳୀ.ବ. ରାଜାଙ୍କ ଅନ୍ତଃପୁର ।

ଅବରୋଧିକ—ପୁଂ. ବ. ( ଅବରୋଧ + ଇକ) ରାଜାଙ୍କ ଅନ୍ତଃପୁରରକ୍ଷକ ଭୃତ୍ୟ, କଞ୍ଚୁକୀ, (ସ୍ତ୍ରୀ) ଅବରୋଧିକା ।

ଅବରୋଧୀ—ପୁଂ. ବ୍ୟଂ. (ଅବ + ରୁଧ୍ + କ. ଇନ୍) ଯାହା ବା ଯେ ଅବରୋଧ କରେ, ଅବରୋଧକାରୀ (ସ୍ତ୍ରୀ) ଅବରୋଧିନୀ ।

ଅବରୋପଣ—କ୍ଳୀ. ବ. ( ଅବ + ରୁହ୍ ଣିଚ୍ + ଭା.ଅନ) ଓପାଡ଼ିବା, ଉତ୍ପାଟନ, ଓହ୍ଲାଇବା, ଅପନୟନ, ଅବତାରଣ ।

ଅବରୋପିତ—ବି.ବ୍ୟଂ. (ଅବ + ରୋପି + କ,କ୍ତ) ଉତ୍ପାଟିତ, ଅସ୍ତଗତ,ଅପସାରିତ, ନିର୍ମୂଳୀକୃତ ।

ଅବରୋହ—ପୁଂ.ବ. (ଅବ + ରୁହ + ଅ) ଅବତରଣ, ଓହ୍ଲାଇବା, ପ୍ରାଦୁର୍ଭାବ, ଉତ୍ପତ୍ତି, ଗଛର ଝୋହଲ, ଗୁଳୁଚିଲଇ, ସ୍ୱର୍ଗ, ଉଚ୍ଚ ସ୍ଥାନରୁ ନିମ୍ନକୁ ଖସିବା ।

ଅବରୋହକ—ବି. ବ୍ୟଂ.(ଅବ + ରୁହ୍ + କ. ଅକ) ଅବରୋହଣକାରୀ (ସ୍ତ୍ରୀ) ଅବରୋହିକା ।

ଅବରୋହଣ—କ୍ଳୀ. ବ, (ଅବ + ରୁହ୍ + ଭା. ଅନ) ଅବତରଣ, ଓହ୍ଲାଇବା, ଆରୋହଣ, ଅଧିରୋହଣ, ଉପରକୁ ଉଠିବା ।

ଅବରୋହଶାଖୀ—ପୁଂ.ବ. ବଟବୃକ୍ଷ, ପ୍ଲକ୍ଷ ବୃକ୍ଷ, ବରଗଛ ।

ଅବରୋହିକା—ସ୍ତ୍ରୀ. ବ. ଅଶ୍ୱଗନ୍ଧା ।

ଅବରୋହିତ—ପୁଂ. ବ. ଯାହାକୁ ଉଚ୍ଚ ସ୍ଥାନରୁ ତଳକୁ ଓହ୍ଲାଇଆ ହୋଇଅଛି ।

ଅବରୋହି(ହୀ)—ପୁଂ.ବ (ଅବ + ରୁହ୍ + କ.ଇନ୍) ଅବରୋହଣକାରୀ, ତଳକୁ ଓହ୍ଲାଉଥିବା, (ସ୍ତ୍ରୀ) ଅବରୋହିଣୀ, (ବ) ବଟବୃକ୍ଷ ।

ଅବର୍ଗ—ବ.ବର୍ଗର ଅଭାବ, (ଗ୍ରା) ଅବାଗ, ନିୟମ ବା କ୍ରମର ଅଭାବ, ସକଳ ସ୍ୱରବର୍ଣ୍ଣ, (ବ୍ୟଂ) ଅବର୍ଗା ।

ଅବର୍ଗା—ଗ୍ରା.ବ୍ୟଂ.ପୁଂ. ସ୍ତ୍ରୀ. ଅସାମାଜିକ, ଅଢ଼ଙ୍ଗା, ଅସୁନ୍ଦର, ନିୟମ ବା କ୍ରମରହିତ, ଅବାଗିଆ ।

ଅବର୍ଗ୍ୟ— ବ୍ୟଂ. (ଅ + ବର୍ଗ୍ୟ) ଯେଉଁ ବର୍ଣ୍ଣ ବ୍ୟଞ୍ଜନ ବର୍ଣ୍ଣମାନଙ୍କର ଅନ୍ତର୍ଗତ ନୁହେ ।

ଅବର୍ଣ୍ଣ—ପୁଂ. ବ. (କ.ଧା) ବର୍ଣ୍ଣମାଳାର ପ୍ରଥମ ସ୍ୱରବର୍ଣ୍ଣ (ଅ), (ନବର୍ଣ୍ଣ)ନ.ତତ୍ପୁ; ନୀଚଜାତି, ନିନ୍ଦା, ଅପବାଦ, ଅଶ୍ଳୀଳବାକ୍ୟରେ ଗାଳି,ଅପଯଶ, (ବ୍ୟଂ) ବର୍ଣ୍ଣହୀନ, ନୀଚ, (ଗ୍ରା) କୁତ୍ସିତବର୍ଣ୍ଣବିଶିଷ୍ଟ ।

ଅବର୍ତ୍ତନ—କ୍ଳୀ. ବ. (ଅ + ବୃତ୍ + ଅନ) ବର୍ତ୍ତମାନର ଅଭାବ, ଅସ୍ଥିତି, ନ ଥିବା, (ବ୍ୟଂ) ଜୀବିକାଶୂନ୍ୟ ।

ଅବର୍ତ୍ତମାନ—ପୁଂ.ବ୍ୟଂ.(ନ.ତତ୍ପୁ)ଅବିଦ୍ୟମାନ, ଯାହା ନ ଥାଏ, ଗତ, ମୃତ, ଅସ୍ତିତ୍ୱରହିତ, ସତ୍ତାରହିତ, ଅସ୍ଥିତ, ଅବର୍ଜିତ (ସ୍ତ୍ରୀ) ଅବର୍ତ୍ତମାନା, (ବ) ଅବର୍ତ୍ତମାନତା ।

ଅବର୍ତ୍ତମାନରେ -ଗ୍ରା.ବି.ବ୍ୟଂ.ଉପସ୍ଥିତ ନ ଥିବା ଅବସ୍ଥାରେ, ମୃତହେବା ପରେ ।

ଅବର୍ତ୍ତି—ସ୍ତ୍ରୀ. ବ. ଦରିଦ୍ରତା, ଜୀବନ-ରହିତ୍ୟ ।

ଅବର୍ତ୍ତିଆ—ଗ୍ରା. ବ୍ୟଂ. ଅବର୍ତ୍ତିଆ, ବ୍ରତହୋଇ ନ ଥିବା ।

ଅବର୍ତ୍ତ୍ୟ—ବି. ବ୍ୟଂ. ଅବାରଣୀୟ ।

ଅବର୍ଦ୍ଧମାନ—ବି.ବ୍ୟଂ. ବୃଦ୍ଧିଶୂନ୍ୟ, କ୍ଷୟଶୀଳ ।

ଅବର୍ଷଣ—କ୍ଳୀ. ବ. ବର୍ଷଣାଭାବ, (ବ୍ୟଂ) ବର୍ଷଣଶୂନ୍ୟ ।

ଅବଲକ୍ଷ—ପୁଂ. ବ. ଶ୍ୱେତବର୍ଣ୍ଣ (ଅବ + ଲକ୍ଷ + ମ୍ପି.ଅ ) ବ୍ୟଂ. ଅବଲକ୍ଷବିଶିଷ୍ଟ, ମୂର୍ଖ, ଶୁକ୍ଳବର୍ଣ୍ଣବିଶିଷ୍ଟ, ଶୁଭ୍ର ( ସ୍ତ୍ରୀ ) ଅବଲକ୍ଷା ।

ଅବଲକ୍ଷିତ—ବ୍ୟଂ(ଅବ + ଲକ୍ଷିତ)ଚିହ୍ନିତ, ଅବେକ୍ଷିତ ।

ଅବଲଖା—ଗ୍ରା. ବିଂ. ଯେଉଁ ଘୋଡ଼ା ଗ୍ଭଲିଲାବେଳେ ଆଗ ଗୋଡ଼ ଦୁହିଁକୁ ଏକାବେଳକେ ଉଠାଇବାକୁ ଶିକ୍ଷିତ ହୋଇଥାଏ, ମେଘରଙ୍ଗର, ଯେଉଁ ଧଳା ଘୋଡ଼ା ଦେହରେ ନାଲି ଟୋପି ଟୋପି ଦାଗ ଥାଏ ।

ଅବଲଗିତ—କ୍ଳୀବ (ଅବ + ଲଗ୍ + ମି. ତ) ଦୃଶ୍ୟକାବ୍ୟର (ନାଟକର) ପ୍ରସ୍ତାବନାବିଶେଷ, (ବିଂ) ସଲଗ୍ନ,ସଂଯୁକ୍ତ ।

ଅବଲଗ୍ନ—ପୁଂ. ବ. ( ଅବ + ଲଗ + ମି. ତ) ଦୃଢ଼ସଲଗ୍ନ, ଯାହା ଲଗିଥାଏ, (ସ୍ତ୍ରୀ) ଅବଲଗ୍ନା (ବ) କଟିଦେଶ, କଙ୍କାଳ ।

ଅବଲଙ୍ଘନ—କ୍ଳୀ. ବ. (ଅବ + ଲଙ୍ଘନ) ଉପରକୁ ଡେଇଁବା, କୁଦିବା ।

ଅବଲତା—ବ. (ଅବଲ + ଭା.ତା) ନିର୍ବଲତା, ବଲହୀନତା, ପ୍ରତିକୂଳତା ।

ଅବଲତ୍ତିକା—ସ୍ତ୍ରୀ. ବ. ଗୋଧୀ, କଷଣୀ, ବ୍ୟାଘାତ-ନିବାରକା, ବାହୁପଞ୍ଜିକା, ଗୋଧିସାପ ।

ଅବଲମ୍ବ—ପୁଂ. ବ. (ଅବ + ଲମ୍ବ + ଭା. ଅ) ଅବଲମ୍ବନ, ଆଶ୍ରୟ, ଆଶ୍ରୟସ୍ଥାନ, ଲଠି, ଯଷ୍ଟି, ତତ୍ତ୍ୱାବଧାନ, (ସ୍ତ୍ରୀ) ଅବଲମ୍ବା (ବିଂ) ଅବଲମ୍ବିତ ।

ଅବଲମ୍ବନ—କ୍ଳୀ.ବ.(ଅବ + ଲମ୍ବ୍ + ଭା. ଅନ) ଆଲମ୍ବନ, ଆଶ୍ରୟ, ଆଧାର, ଧାରଣ, ଉପାୟ, ଗତି, ଜୀବିକାନିର୍ବାହୋପାୟ, ପେଶା, ଡିଗ୍ର, ଆଶ୍ରୟଯୋଗ୍ୟ ଯଷ୍ଟି ଆଦି । [ଲମ୍ବନ ।

ଅବଲମ୍ବନା—ଗ୍ରା. ବ. ଆଶ୍ରୟ, ଅବ-

ଅବଲମ୍ବିତ—ବି.ବ. (ଅବ + ଲମ୍ବ + ମି. ତ ) ଶରଣଗତ, ଆଶ୍ରିତ, ରକ୍ଷିତ, ଗୃହୀତ, ପ୍ରାପ୍ତ, ଅବନତ, ଅଧୋଗତ, ତଳକୁ ଲମ୍ବିଥିବା, ପାଳିତ ।

ଅବଲମ୍ବୀ—ପୁଂ.ବିଂ (ଅବ + ଲମ୍ବ + କ ଇନ୍ ) ଆଶ୍ରୟକାରୀ, ଯେ ଆଶ୍ରୟପାଇଁ ଅନ୍ୟକୁ ଧରେ, ଅଧୋବଲମ୍ବୀ, (ସ୍ତ୍ରୀ) ଅବଲମ୍ବିନୀ ।

ଅବଲୟ - ଗ୍ରା. ବ. ଗାନକରିବା ସମୟରେ ସଙ୍ଗୀତର ଭାବ ବୁଝାଇବାପାଇଁ ନର୍ତ୍ତକ ହସ୍ତପଦାଦିଦ୍ୱାରା ଯେଉଁ ସଙ୍କେତ କରେ, ରୂପଦେଖା ।

ଅବଲ—ବି. ବ. (ବ.ସ୍ତ୍ର) ଦୁର୍ବଳ, ବଲହୀନ,(ସ୍ତ୍ରୀ)ଅବଲା(ବ.ପୁଂ.) ବରୁଣବୃକ୍ଷ ।

ଅବଲା—ସ୍ତ୍ରୀ. ବ. ( ଅ + ବଲ + ଆ ) ଯୋଷିତ୍, ସ୍ତ୍ରୀଲୋକ, ନାରୀ (ବିଂ) ଦୁର୍ବଳା, ବଲହୀନା, (ଗ୍ରା.ବିଂ.) ଯାହା ବଲା ହୋଇ ନ ଥାଏ, ଖୋଟ ଆଦି ଦାଉଡ଼ି ହୋଇ ନ ଥିବା ।

ଅବଲିପ୍ତ—ତ୍ରି.ବିଂ ( ଅବ + ଲିପ୍ + ମି. ତ) ଗର୍ବିତ,ଯାହା ଲେପନ କରାହୋଇଅଛି, କୃତଲେପନ, ପ୍ରଲିପ୍ତ, ଦୃପ୍ତ, (ସ୍ତ୍ରୀ) ଅବଲିପ୍ତା ।

ଅବଲୀ—ପୁଂ ବିଂ (ଅବଲ + ଇନ୍) ନ.ତତ୍ତ୍ୱ; ବଲହୀନ, ଦୁର୍ବଳ, ଶକ୍ତିହୀନ, (ସ୍ତ୍ରୀ) ଅବଲିନୀ ।

ଅବଲୀଢ଼ -ବି.ବିଂ(ଅବ + ଲିହ୍ + ମି.ତ) ଭକ୍ଷିତ, ଯେ ବସ୍ତୁ ଭୋଜନ କରାହୋଇଅଛି, ଯାହା ଚଟା ହୋଇଅଛି, ବ୍ୟାପ୍ତ,ବିନାଶିତ,ଦଗ୍ଧ (ସ୍ତ୍ରୀ)ଅବଲୀଢ଼ା ।

ଅବଲୀଳା—ସ୍ତ୍ରୀ.ବ. (ଅବ + ଲୀଳା)ଅନାୟାସ, ଅକ୍ଲେଶ, କୌତୁକ, ପରିହାସ ନୀଡ଼ା, ଅସଙ୍କୋଚ ।

ଅବଲୀଳାକ୍ରମେ—ବି.ବିଂ. ଅନାୟାସରେ, ଅକ୍ଲେଶରେ । [ ବଲହୀନ ।

ଅବଲୁଆ—ଗ୍ରା. ବିଂ. ଅବଲ, ଦୁର୍ବଳ,

ଅବଲୁଞ୍ଚନ—କ୍ଳୀ.ବ.(ଅବ + ଲୁଞ୍ଚ୍ + ଅନ ଛେଦନ, ଉତ୍ପାଟନ, ଛଡ଼ାଇ ରଖିବା, ଦୂରୀକରଣ, ଅପନୟନ, ନେଇଯିବା ।

ଅବଲୁଞ୍ଚିତ—ବି.ବିଂ. ଉତ୍ପାଟିତ, ଅପନୀତ, ଅକୃତବନ୍ଧନ ।

ଅବଲୁଣ୍ଠନ—କ୍ଳୀ.ବ.(ଅବ + ଲୁଣ୍ଠ୍ + ଭା. ଅନ) ଭୂଇଁରେ ଗଡ଼ିବା, ଲୋଟିବା, ପରିବର୍ତ୍ତନ, ଅପହରଣ ।

ଅବଲେଖ—ପୁଂ.ବ (ଅବ + ଲିଖ + ଭା. ଅ) ଭେଦକରିବା, ପୃଥକ୍ କରିବା ।

ଅବଲେଖନ—କ୍ଳୀ.ବ. (ଅବ + ଲେଖନ, ଦାଗକରିବା, କେଶସଂସ୍କାର ।

ଅବଲେଖନୀ—ସ୍ତ୍ରୀ.ବ (ଅବ + ଲିଖ + ଣ. ଅନ + ଈ) କେଶପ୍ରସାଧନୀ, କଙ୍କତିକା, ପାନିଆ ।

ଅବଲେଖା—ସ୍ତ୍ରୀ.ବ. (ଅବ + ଲିଖ୍ + ଭା. ଅ + ଆ) ଲେଖନ, ଅଙ୍କନ, ଘର୍ଷଣ, ପତ୍ରାଦି ଅଙ୍କନକରିବା ।

ଅବଲେପ—ପୁଂ.ବ. (ଅବ + ଲିପ୍ + ଭା. ଅ) ଗର୍ବ, ଲେପନ, ଭୂଷଣ, ସମ୍ବନ୍ଧ, ଦୂଷଣ, ଦୋଷ, ବିଦ୍ୱେଷ, ଦର୍ପ, ଅପମାନ, ମଖାଇବା, ସଙ୍ଗ, ଆକ୍ଷେପ ।

ଅବଲେପନ—କ୍ଳୀ. ବ. (ଅବ + ଲିପ୍ + ଭା.ଅନ ) ବିଲେପନ, ଲଗାଇବା ସମ୍ବନ୍ଧ,ମାଖିବା, ଗର୍ବ, ଦୂଷଣ,ଚନ୍ଦନାଦି ବୋଳିହେବା ।

ଅବଲେହ—ପୁଂ.ବ.(ଅବ + ଲିହ୍ + ଭା. ଅ)ଜିଭ ଅଗରେ ଗ୍ଭଟିବା, ଗ୍ଭଟିଖାଇବା ଔଷଧବିଶେଷ ।

ଅବଲେହନ—କ୍ଳୀ.ବ. (ଅବ + ଲିହ୍ + ଭା.ଅନ ) ଆସ୍ୱାଦନ, ଗ୍ଭଟିବା, ଜିହ୍ୱାଦ୍ୱାରା ଆସ୍ୱାଦନ ।

ଅବଲେହ୍ୟ—ବି.ବିଂ. (ଅବ + ଲିହ୍ + ମି. ଯ) ଜିହ୍ୱାଗ୍ରଦ୍ୱାରା ଆସ୍ୱାଦନୀୟ, ଗ୍ଭଟିବାର ଯୋଗ୍ୟ ।

ଅବଲୋକ—ପୁଂ.ବ. ( ଅବ + ଲୋକ୍ + ଭା.ଅ) ଦୃଷ୍ଟି, ଦେଖିବା, ଅନୁସନ୍ଧାନ, ମନୋଯୋଗପୂର୍ବକ ଦେଖିବା, ଜଳାକବାଟି ।

ଅବଲୋକନ—କ୍ଳୀ.ବ (ଅବ + ଲୋକ୍ + ଭା.ଅନ ) ଦର୍ଶନ, ଅନୁସନ୍ଧାନ, କଟାକ୍ଷ, ଆଲୋକ, ବିବେଚନା କରିବା, ନେତ୍ର, ଈକ୍ଷଣ, ପର୍ଯ୍ୟବେକ୍ଷଣ ।

ଅବଲୋକୟିତା—ପୁଂ.ବ. (ଅବ + ଲୋକ + କ,ତୃ) ଦର୍ଶକ,(ସ୍ତ୍ରୀ) ଅବଲୋକୟିତ୍ରୀ ।

ଅବଲୋକିତ—ବି. ବିଂ. ( ଅବ + ଲୋକ + ମି.ତ ) ଦୃଷ୍ଟ, ଯେ ବସ୍ତୁ ଦେଖାହୋଇଅଛି ।

ଅବଲୋକିତ—ନିରୀକ୍ଷିତ,ପରିଦୃଷ୍ଟ, (ପୁଂ) ଜୈନମୁନିବିଶେଷ, (ସ୍ତ୍ରୀ) ଅବଲୋକିତା । (କ୍ଳୀ.ବ) ଦର୍ଶନ, ନିରୀକ୍ଷଣ ।

ଅବଲୋକୀ—ପୁଂ.ବିଂ. (ଅବ + ଲୋକ୍ + କ.ଇନ୍) ଦର୍ଶକ, ଯେ ଦେଖେ, ଅନୁସନ୍ଧାନକାରୀ, ବିବେଚନାକାରୀ, (ସ୍ତ୍ରୀ) ଅବଲୋକିନୀ ।

**ଅବଲେପ**—ପୁଂ.ବି. (ଅବ+ଲିପ୍+ଘ. ଅ) ଖଣ୍ଡନ, ନାଶକରିବା, ବିଲେପ, ଅନ୍ତର୍ଦ୍ଧାନ, ଦଂଶନ ।

**ଅବଲୋମ**—ପୁଂ. ବି. ଅନୁକୂଳ ।

**ଅବଲ୍‌ଗୁଜା**—ବି. ସୋମରାଜୀ, ବାକୁଚୀ, (ବୈଦ୍ୟକ) ।

**ଅବବର୍ଷଣ**—କ୍ଲୀ. ବି. ଗୃହଅଡ଼େ ବର୍ଷା, କୃଷ୍ଣ ବର୍ଷଣ ।

**ଅବବାଦ**—ପୁଂ.ବି. (ଅବ+ବଦ୍+ଘ. ଅ) ନିନ୍ଦା, ବିଶ୍ୱାସ, ଆଜ୍ଞା, ଅବଲମ୍ବନ, ନିର୍ଦ୍ଦେଶ, ଶାସନ, ଶିକ୍ଷି ।

**ଅବବାହିକା**—ସ୍ତ୍ରୀ. ବି, (ଅବ+ବାହିକା) ନଈର ଦୁଇକୂଳର ଗଡ଼ାଣିଆ ସ୍ଥାନ ।

**ଅବଶ**—ପୁଂ.ବିଂ. ନ.ତତ୍, (ଅ+ବଶ) ପରାଧୀନ, ବଶତାପନ୍ନ ନୁହେଁ,କାମାଦିର ବଶୀଭୂତ, ଅବାଧ, ପରବଶ, ଅନାୟତ୍ତ, ଅବୋଧ, ଅସ୍ୱାଧୀନ, ଦୁର୍ବଳ, ଚଳିବା ଶକ୍ତିରହିତ, ଅଚଳ, ନିସ୍ତେଜ, ଶିଥିଳ, ଉପାୟାନ୍ତରହୀନ, ନାଗୁର, ଇନ୍ଦ୍ରିୟପରତନ୍ତ୍ର, ପ୍ରତିକୂଳ, (ସ୍ତ୍ରୀ) ଅବଶା ।

**ଅବଶଃ**—ଅବବାଦ, ଅବଶଂସନ ।

**ଅବଶକ୍‌ଥିକ**—ବି.ବିଂ. ବସ୍ତ୍ରାଦିଦ୍ୱାରା ପୃଷ୍ଠ ଓ ଜାନୁଦ୍ୱୟ ଏକତ୍ର ବନ୍ଧନପୂର୍ବକ ଉପବିଷ୍ଟ (ସ୍ତ୍ରୀ) ଅବଶକ୍‌ଥିକା ।

**ଅବଶାଙ୍ଗ**—କ୍ଲୀ. ବି. (କ.ଧା) ଅବଶାଙ୍ଗ ବା ଅବୟବ, ବିଂ. (ବ.ବ୍ରୀ) ଅବସନ୍ନ-ଦେହ ।

**ଅବଶାତନ**—କ୍ଲୀ.ବି.(ଅବ+ଶଦ୍+ଘ. ଅନ) ନଷ୍ଟହୋଇଯିବା, ଶୀର୍ଣ୍ଣତାକରଣ, ଛେଦନ ।

**ଅବଶିରସ୍**—ବି.ବିଂ.ଅବାଙ୍ମୁଖ,ଯାହାର ମୁଣ୍ଡ ତଳକୁ ଗୋଡ଼ ଉପରକୁ ।

**ଅବଶିଷ୍ଟ**—ବି. ବିଂ. (ଅବ+ଶିଷ୍+କ. ତ) ଅତିରିକ୍ତ, ପରିଶିଷ୍ଟ, ବାକି, ଯାହା ଶେଷକୁ ବାକିଥାଏ, ବଳିପଡ଼ିଥିବା, ଉଦ୍ଧୃତ,ଅବଶେଷ(ସ୍ତ୍ରୀ) ଅବଶିଷ୍ଟା, (କ୍ଲୀ ବି.) ଅବଶେଷ, ବିସ୍ମୋରଫଳ ।

**ଅବଶୀ**—ପୁଂ. ବିଂ. (ଅବଶ+ଇନ୍) ନ.ତତ୍; ଇନ୍ଦ୍ରିୟପରତନ୍ତ୍ର ।

**ଅବଶୀକୃତ**—ବି.ବିଂ. (ନ.ତତ୍)ଯାହାକୁ ବଶ କରାହୋଇନାହିଁ, ଅନର୍ଜିତ, ଅଦମିତ,ଆଶାସିତ,(ସ୍ତ୍ରୀ) ଅବଶୀକୃତା ।

**ଅବଶୀଭାବ**—ପୁଂ.ବି.(ନ.ତତ୍)ବଶୀଭୂତ ନ ହେବା, ଅବଶତା, ଅବାଧତା ।

**ଅବଶୀଭୂତ**—ବି. ବିଂ. (ନ.ତତ୍) ଅନାୟତ୍ତ, ବଶତାପନ୍ନ ନୁହେଁ, ଯେ ଅବଜ୍ଞା କରି କଥା ମାନେ ନାହିଁ, (ସ୍ତ୍ରୀ) ଅବଶୀଭୂତା ।

**ଅବଶୀର୍ଣ୍ଣ**—ବି.ବିଂ. (ଅବ+ଶୃ+କ.ତ) ଜୀର୍ଣ୍ଣ, ଛିନ୍ନ, ଭଗ୍ନ ।

**ଅବଶୀର୍ଷକ**—ବି.ବିଂ. (ବ.ବ୍ରୀ) ଅବାଙ୍ମୁଖ, ଯାହାର ଉପରକୁ ଗୋଡ଼ ତଳକୁ ମୁହଁ, (ପୁଂ. ବି.) ନେତ୍ରରୋଗବିଶେଷ ।

**ଅବଶେ**—ଗ୍ରା. ବି. ବିଂ. ଅନାୟତ୍ତରେ, ନାଗୁରହୋଇ ।

**ଅବଶେନ୍ଦ୍ରିୟ**—ପୁଂ.ବିଂ.(ବ.ବ୍ରୀ)ଯାହାର ଇନ୍ଦ୍ରିୟମାନେ ଅବଶୀଭୂତ, ଅଜିତେନ୍ଦ୍ରିୟ, ଇନ୍ଦ୍ରିୟପରାୟଣ, (ସ୍ତ୍ରୀ) ଅବଶେନ୍ଦ୍ରିୟା,(କ୍ଲୀ.ବି)ଅବଶୀଭୂତ ଇନ୍ଦ୍ରିୟ ।

**ଅବଶେଷ**—ପୁଂ.ବି. (ଅବ+ଶିଷ୍+ଘ. ଅ) ସମାପ୍ତି, ବାକି ରହିଥିବା ଅଂଶ, ନିଃଶେଷ, ଅନ୍ତ, ପରିଶେଷ (ବିଂ) ଅବଶିଷ୍ଟ, (ସ୍ତ୍ରୀ) ଅବଶେଷା ।

**ଅବଶେଷିତ**—ବି. ବିଂ. (ଅବ+ଶେଷି +ର୍ମ.ତ) ଅବଶିଷ୍ଟ ।

**ଅବଶୋଷ**—ପୁଂ.ବି.(ଅବ+ଶୁଷ୍+ଅ) ଅତ୍ୟନ୍ତ ଶୁଷ୍କହେବା ।

**ଅବଶ୍ୟ**—ବି.ବିଂ.ନ.ତତ୍;(ଅ+ବଶ+ଯ) ଅନାୟତ୍ତ, ଅନଧୀନ, ନିଶ୍ଚୟ, ନିଃସନ୍ଦେହ (ସ୍ତ୍ରୀ)ଅବଶ୍ୟା (ଗ୍ରା.ବି.ବିଂ.) ନିଶ୍ଚେ, ଅଲବତ୍, ନିଃସନ୍ଦେହରେ, ସର୍ବଦା, ନିତାନ୍ତ କର୍ତ୍ତବ୍ୟ ।

**ଅବଶ୍ୟକରଣ**—କ୍ଲୀ. ବି. ନିୟମକରଣ, ଅକରଣର ନିବୃତ୍ତି ।

**ଅବଶ୍ୟକରଣୀୟ** (କର୍ତ୍ତବ୍ୟ)—ବି. ବିଂ. ଯାହା ନିଶ୍ଚୟ କରିବାକୁହେବ, ଅବଶ୍ୟ, ଯଥା—ତଥା କରଣୀୟ ।

**ଅବଶ୍ୟପୁତ୍ର**—ପୁଂ.ବି.ଯେ ପୁତ୍ରକୁକୌଣସି-ମତେ ଶାସନ କରାଯାଏ ନାହିଁ ।

**ଅବଶ୍ୟମ୍ଭାବିତା**—ସ୍ତ୍ରୀ. ବି. ନିଶ୍ଚୟତା, ଭବିତବ୍ୟତା ।

**ଅବଶ୍ୟମ୍ଭାବୀ**—ବିଂ.(ଅବଶ୍ୟ+ଭୂ+ଣିଚ୍ +ଇନ୍) ଅନିବାର୍ଯ୍ୟ, ଯାହା ଅବଶ୍ୟ ହେବ, (ସ୍ତ୍ରୀ) ଅବଶ୍ୟମ୍ଭାବିନୀ ।

**ଅବଶ୍ୟା**—ସ୍ତ୍ରୀ. ବି. (ଅବ+ଶ୍ୟୈ+ଅ +ଆ) କୁଜ୍‌ଝଟିକା,କୁହୁଡ଼ି,ଅବଶୀଭୂତା, (ସ୍ତ୍ରୀ.ବିଂ)ଅବଶୀଭୂତା ।

**ଅବଶ୍ୟାମ**—ବି. (ଅବ+ଶ୍ୟୈ+ଘ.ମ) କୁହୁଡ଼ି, କୁଜ୍‌ଝଟିକା, ହିମ, ଶିଶିର, ଅହଂକାର, ଅଭିମାନ, ଗର୍ବ ।

**ଅବଶ୍ୟାୟ**—ପୁଂ.ବି.(ଅବ+ଶ୍ୟୈ+କ. ଅ) କୁହୁଡ଼ି, ନୀହାର, ଅଭିମାନ, ଦର୍ପ, ଜାକର, ଦମାକ୍, ହିମ ।

**ଅବଶ୍ରୟଣ**—କ୍ଲୀ. ବି. (ଅବ+ଶ୍ରି+ଘ. ଅନ) ପାକାନ୍ତେ ପାକଦ୍ରବ୍ୟ ଚୁଲ୍ଲୀରୁ ଉତାରିବା ।

**ଅବଷ୍କୟଣୀ**—ସ୍ତ୍ରୀ. ବି. (ନ.ତତ୍) ଯେଉଁ ଗାଈର ବାଛୁରୀକୁ ଅଲଗାକରିଦିଆ ହୋଇଅଛି, ଚିରପ୍ରସୂତା ଗାଈ, କଳବଆଣୀ ଗାଈ ।

**ଅବଷ୍ଟବ୍ଧ**—ବି. ବିଂ. (ଅବ+ସ୍ତନ୍ଭ୍+ ର୍ମ.ତ) ଆସନ୍ନ, ଆକ୍ରାନ୍ତ, ଆଶ୍ରିତ, ଅବଲମ୍ବିତ, ସଂବେଷ୍ଟିତ, ଆବୃତ,ପ୍ରତିରୁଦ୍ଧ, ଗର୍ବିତ ।

**ଅବଷ୍ଟମ୍ଭ**—ପୁଂ. ବି. (ଅବ+ସ୍ତମ୍ଭ+ଘ. ଅ) ପ୍ରାରମ୍ଭ, ଆନମ୍ରତା, ଆଲମ୍ବନ, ସ୍ତମ୍ଭ,ସୁବର୍ଣ୍ଣ,ଉତ୍କର୍ଷ, ସାମୀପ୍ୟ, ସୂଚନା, ବାଧା, ସ୍ଥିରସଂକଳ୍ପ, ରୋଧ, ଆକ୍ରମଣ, ଆଶ୍ରୟ, ଗର୍ବ ।

**ଅବଷ୍ଟଭ୍ୟ**—(ଅବ୍ୟ.) ଅବଲମ୍ବନ କରି ।

**ଅବଷ୍ୱାଣ**—ପୁଂ. ବି (ଅବ+ଷ୍ୱନ୍+ଅ) ଭୋଜନ ।

**ଅବଃ**—(ଅବ୍ୟ.)ଅପର ଶବ୍ଦାର୍ଥ,ପଶ୍ଚାଦର୍ଥ, (କ୍ଲୀ)ରକ୍ଷାକରିବା, ଯଶଃ, ଅନ୍ନ, ଧନ, ଗଗନ ।

ଅବସ—ପୁଂ.ବି.(ଅବ+କ.ଅସ୍)ରାଜା, ସୂର୍ଯ୍ୟ, ଅନ୍ନ ରକ୍ଷକ, (କ୍ଲୀ) ରକ୍ଷଣ, (ଅବ୍ୟ) ବ୍ୟତିରେକେ ।

ଅବସକ୍ତ—ବି. ବିଂ. (ଅବ+ସଞ୍ଜ୍+କ. ତ) ସଂଲଗ୍ନ, ସଂଯୁକ୍ତ, ସଂବନ୍ଧ, ରତ, ଲମ୍ବମାନ, ବ୍ୟାପୃତ, ନିଯୁକ୍ତ, ନିକ୍ଷିପ୍ତ, ସ୍ଥାପିତ, (ସ୍ତ୍ରୀ) ଅବସକ୍ତା ।

ଅବସକ୍ତି—ସ୍ତ୍ରୀ. ବି. (ଅବ+ସଞ୍ଜ୍+ଭା. ତି) ଆସକ୍ତି, ରତି, ସଂସକ୍ତି, ସଂଶ୍ଲେଷ, ବ୍ୟାପୃତି, ନିକ୍ଷେପ, ଆରମ୍ଭ ।

ଅବସକ୍ଥିକା—ସ୍ତ୍ରୀ.ବି.(ଅବ+ସକ୍ଥି+କ+ଆ) ପର୍ଯ୍ୟଙ୍କବନ୍ଧ, ଯୋଗକରିବାର ଆସନବିଶେଷ ।

ଅବସଡ୍ଡୀନ—କ୍ଲୀ.ବି. (ଅବ+ସମ୍+ଡୀ+ତ) ପକ୍ଷୀମାନଙ୍କର ଆକାଶରୁ ତଳକୁ ଗତି ।

ଅବସଥ(ଥ୍ୟ)—ପୁଂ.ବି. ଚୌପାଢ଼ି,ପାଠଶାଳା, ଚତୁଷ୍ପାଠୀ, ଗୃହାବାସ, ଗ୍ରାମ, ଖଞ୍ଜୀ, ଆଡ଼୍‌ଡ଼ା ।

ଅବସନ୍ଧ—ଗ୍ରା.ବି.ଅଭିସନ୍ଧ,ଗୂଢ଼ଉଦ୍ଦେଶ୍ୟ, ଗୁପ୍ତକଥା, ଗୁପ୍ତସ୍ଥାନ ।

ଅବସନ୍ନ—ବି.ବିଂ.(ଅବ+ସଦ୍+କ.ତ) ବିଷାଦପ୍ରାପ୍ତ, ନିଜରକାର୍ଯ୍ୟ ସାଧନରେ ଅକ୍ଷମ, ଶ୍ରାନ୍ତ, କ୍ଲାନ୍ତ, ଜଡ଼ୀଭୂତ, ମ୍ଳାନ, ନିଷ୍ପ୍ରଭ, (ସ୍ତ୍ରୀ) ଅବସନ୍ନା ।

ଅବସନ୍ନତା—ସ୍ତ୍ରୀ.ବି. (ଅବସନ୍ନ+ଭା.ତା) ଅବସାଦ । [ଅଶ୍ଳୀଳ ।

ଅବସଭ୍ୟ—ଗ୍ରା. ବିଂ. ଅସଭ୍ୟ, ବର୍ବର,

ଅବସର—ପୁଂ. ବି. (ଅବ+ସୃ+ଭା.ଅ) ଫୁରସତ୍, ଅବକାଶ, କାର୍ଯ୍ୟରୁ ଛୁଟି ବା ବିଶ୍ରାମ, ସୁବିଧା, ସୁଯୋଗ, ଉପଲକ୍ଷ୍ୟ, ପ୍ରସ୍ତାବ, ପ୍ରସଙ୍ଗ, ପ୍ରାରମ୍ଭ କାର୍ଯ୍ୟର ସୀମା, ପର୍ଯ୍ୟାୟ, କ୍ଷଣ, ବୃଷ୍ଟି, ବର୍ଷଣ, ବର୍ଷ, ମନ୍ତ୍ରବିଶେଷ, ପାଠାଙ୍କ ।

ଅବସର୍ଗଲସ୍ଥ—ପୁଂ.ବି ଅର୍ଦ୍ଧଗ୍ରନ୍ଥ ।

ଅବସର୍ଗ—ପୁଂବି. (ଅବ+ସୃଜ୍+ଭା.ଅ) ଅପ୍ରତିବନ୍ଧ, ସ୍ୱତନ୍ତ୍ରତା, ସ୍ୱେଚ୍ଛାଚାର, କାମଚାରାନୁଜ୍ଞା ତ୍ୟାଗ ।

ଅବସର୍ପ—ପୁଂ.ବି (ଅବ+ସୃପ୍+କ.ଅ) ଚର, ଭୃତ୍ୟ, ଦାସ, ଦୂତ, ଗୁପ୍ତଚର, ଗୃକର ।

ଅବସର୍ପଣ—ବି. (ଅବ+ସୃପ୍+ଭା.ଅନ୍) ସ୍ଥାନାନ୍ତରକୁ ଗମନ ।

ଅବସର୍ପିଣୀ—ସ୍ତ୍ରୀ.ବି. (ଅବ+ସୃପ୍+କ. ଇନ୍+ଈ) ଜୈନମାନଙ୍କରକାଳଭେଦ

ଅବସର୍ପୀ—ପୁଂ.ବିଂ (ଅବ+ସୃପ୍+କ. ଇନ୍) ଅଧୋଗନ୍ତା, ନିମ୍ନଗାମୀ, ପଶ୍ଚାଦ୍‌ଗାମୀ, (ସ୍ତ୍ରୀ) ଅବସର୍ପିଣୀ, (ପୁଂ.ବି.) ଦୂତ, ଗୁପ୍ତଚର ।

ଅବସବ୍ୟ—ବି. ବିଂ (ଅବ+ସବ୍ୟ)ଅପସବ୍ୟ, ଦକ୍ଷିଣ, ସବ୍ୟେତର, ଡାହାଣ, ପ୍ରତିକୂଳ, (ବି) ବାମେତର ଭାଗ, ଡାହାଣପାଖ ।

ଅବସାଦ—ପୁଂ.ବି. (ଅବ+ସଦ୍+ଭା. ଅ) ନାଶ, ବିଷାଦ,ଅବସନ୍ନତା, ବିରାମ, ଦୁର୍ବଳତା,ଜଡ଼ତା, ସ୍ୱକାର୍ଯ୍ୟେ ଅକ୍ଷମତ୍ୱ, ଶେଷ, କ୍ଳାନ୍ତି, ଶ୍ରାନ୍ତି ।

ଅବସାଦକ—ବି. ବିଂ (ଅବ+ସଦ୍+ଅକ) ଅବସନ୍ନତାକାରକ, କାର୍ଯ୍ୟରେ ଅକ୍ଷମତା ସମ୍ପାଦକ, ଖେଦକାରୀ, ଶ୍ରାନ୍ତିଜନକ, ଜଡ଼ତୋତ୍ପାଦକ, ସ୍ଫୂର୍ତ୍ତିକାରକ, (ସ୍ତ୍ରୀ) ଅବସାଦକା ।

ଅବସାଦନ—କ୍ଲୀ.ବି. (ଅବ+ସଦ୍+ଭା. ଅନ) ବିନାଶନ, କାର୍ଯ୍ୟରେ ଅକ୍ଷମତା, ସମ୍ପାଦନ, କ୍ଷୟ, ନିଃଶେଷକରଣ ।

ଅବସାଦିତ—ବି.ବିଂ.(ଅବ+ସାଦ୍+ମି. ତ) ଅବସନ୍ନତା ପ୍ରାପିତ,କୁଣ୍ଠିତ,ବିଷାଦିତ, ହତ, ବିଫଳୀକୃତ, କ୍ଷୀଣ, ନିଃଶେଷିତ, (ସ୍ତ୍ରୀ) ଅବସାଦିତା ।

ଅବସାନ—କ୍ଲୀ. ବି (ଅବ+ସୋ+ଭା. ଅନ) ବିରାମ, ଶେଷ, ସମାପ୍ତି, ମୃତ୍ୟୁ, ସୀମା, ନିବୃତ୍ତି, ଅବସାଦ, ଅବସ୍ଥାନ, ସ୍ଥିତି, କ୍ଷୟ, ଶ୍ମଶାନଭୂମି ।

ଅବସାନଜାତି—ସ୍ତ୍ରୀ. ବି. ଅବସାନ ବା ଗ୍ରାମର ସୀମାନ୍ତସ୍ଥିତ ନିଷାଦ,ଚର୍ମକାର-ପ୍ରଭୃତି ଜାତି ।

ଅବସାୟ—ପୁଂ. ବି. (ଅବ+ସୋ+ଭା. ଅ) ସମାପ୍ତି, ଶେଷ, ନିଶ୍ଚୟ, ସଂଗମ, ଅବସାନ (ଅବ୍ୟ) ସମାପନ କରି, ନିଶ୍ଚୟ କରି ।

ଅବସାୟକ—ବି. ବିଂ. ନିଶ୍ଚୟକାରକ, ସମାପକ ।

ଅବସାରଣ—କ୍ଲୀ. ବି. (ଅବ+ସୃ+ଭା. ଅନ) ଦୂରୀକରଣ, ବହିଷ୍କରଣ, ଘୁଞ୍ଚାଇ-ଦେବା, (ବିଂ) ଅବସାରିତ ।

ଅବସାରିତ—ବି. ବିଂ (ଅବ+ସୃ+ଣିଚ୍+ମି.ତ) ଦୂରୀକୃତ, ବହିଷ୍କୃତ ।

ଅବସିକ୍ତ—ବି. ବିଂ. (ଅବ+ସିଚ୍+ତ) କୃତସେକ,ଆପ୍ଳୁତ, ସ୍ନାତ, କୃତସ୍ନାନ ।

ଅବସିତ—ବି. ବିଂ (ଅବ+ସୋ+ମି. ତ) ସମାପ୍ତ, ନିଶ୍ଚିତ, ଅବସାନପ୍ରାପ୍ତ, ବୋଧିତ, ବିଗତ, ଅଜ୍ଞାତ, ପରିଣତ, ବିଦ୍ଧିତ, ସଞ୍ଚିତ, ବଦ୍ଧ, ରାଶୀକୃତ, ମର୍ଦ୍ଦିତ ।

ଅବସିତି—ବି. (ଅବ+ସୋ+ଭା.ତି) ଅବସାନ, ଦୂରୀକରଣ, ସମାପ୍ତି ।

ଅବସୃତ—ବି. ବିଂ (ଅବ+ସୃ+କ.ତ) ଅପସୃତ, ସ୍ଥାନାନ୍ତରଗତ, ଅବସରପ୍ରାପ୍ତ (ସ୍ତ୍ରୀ) ଅବସୃତା (ବି) ଅବସାରଣ ।

ଅବସୃଷ୍ଟ—ବି.ବିଂ (ଅବ+ସୃଜ୍+ମି.ତ) ଦତ୍ତ, ତ୍ୟକ୍ତ, ନିଃସୃତ, ସମର୍ପିତ, ଅଧଃକ୍ଷିପ୍ତ ।

ଅବସେ—(ଅବ୍ୟ) ରକ୍ଷାକରିବା ନିମିତ୍ତ ।

ଅବସେକ—ପୁଂ. ବି (ଅବ+ସିଚ୍+ଅ) ଗୃହଆଡ଼େ ପାଣି ଛିଞ୍ଚିବା, ନେତ୍ରବସ୍ତି-ରୋଗବିଶେଷ ।

ଅବସେକିମ—ପୁଂ. ବି. ପିଷ୍ଟକବିଶେଷ, ବଡ଼ି ।

ଅବସେଚନ—କ୍ଲୀ. ବି. (ଅବ+ସିଚ୍+ଅନ) ଗୃହଆଡ଼େ ଜଳସେଚନ କରିବା, ଅଧୋଦେଗେ ରକ୍ତସ୍ରାବକ ରୋଗବିଶେଷ ।

ଅବସ୍କନ୍ଦ—ପୁଂ. ବି (ଅବ+ସ୍କନ୍ଦ+ଅ) ଯାତ୍ରା, ଗମନ, ଅବରୋଧ, ଆକ୍ରମଣ, ନିରୋଧ, ରୋଧ, ଅବରୋହଣ,

ଅବତରଣ, ଅବଗାହନ,ଶିବର,ଗୁଡ଼ଣି, ତମ୍ବୁ, ଗାଡ଼ଣି, ସେନାନିବାସ ।
ଅବସ୍କନ୍ଦନ—କ୍ଳୀ. ବି. ଦେହ ବୁଡ଼ାଇ ଗାଧୋଇବା, ଅବଗାହନ, ଅବତରଣ, ଆକ୍ରମଣ, ରୋଧ ।
ଅବସ୍କନ୍ଦିତ—ବି.ବିଂ. (ଅବ + ସ୍କନ୍ଦ୍ + ର୍ମି. ତ) ଆକ୍ରାନ୍ତ, ଅଧୋଗତ, ଅବରୂଢ଼, ଅବତୀର୍ଣ୍ଣ, ଅବଗାଢ଼ ।
ଅବସ୍କନ୍ଦୀ—ପୁଂ.ବିଂ (ଅବ + ସ୍କନ୍ଦ୍ + କ. ଇନ୍) ଆକ୍ରମଣକାରୀ, ବଳାତ୍କାର-କାରକ, ଧର୍ଷୟିତା ।
ଅବସ୍କର—ପୁଂ. ବି. (ଅବ + କୃ + ଅ) ଆବର୍ଜନା, ଝାଟୁଆ, ସମାର୍ଜନୀଦ୍ୱାରା ନିକ୍ଷିପ୍ତ ଧୂଳି,ମଳ, ବିଷ୍ଠା, ମଇଳା, ମଳ-ଦ୍ୱାର, ଅଳିଆ ରଖିବା ପାତ୍ର, ଅଳିଆ ।
ଅବସ୍କରକ—ପୁଂ. ବି. ( ଅବ + କୃ + କ. ଅକ) ଝାଡ଼ୁବରଦାର, ମେହେନ୍ତର, ଗୁଆଁଣୀ, (ସ୍ତ୍ରୀ) ଅବସ୍କରକା ।
ଅବସ୍କରୀ—ଗ୍ରା. ବିଂ. ଆବର୍ଜନାମୟ, ଅସ୍କାର, ଅପରିଷ୍କୃତ, ଓଲିଆ ହୋଇ-ନ ଥିବା, ମଇଳାପୂର୍ଣ୍ଣ, ଧୂଳିମୟ (ବି) ଆବର୍ଜନା, ଝାଟୁଆ ।
ଅବସ୍କବ - ବି. ବିଂ. ଯେ ବିପଦରୁ ଉଦ୍ଧାର କରେ ନାହିଁ, ଧ୍ୱଂସକ ।
ଅବସ୍ତରଣ—କ୍ଳୀ. ବି. (ଅବ + ସ୍ତୃ + ଅନ) ବିସ୍ତାର ।
ଅବସ୍ଥା—ଗ୍ରା.ବି. ଦୁରବସ୍ଥା, ମନ୍ଦ ଅବସ୍ଥା, ଦୁର୍ଦ୍ଦଶା, କ୍ଷୀଣଦେହତା, ସାଂସାରିକ ଅବସ୍ଥା, ଦୁର୍ବଳତା, ବୈଷୟିକ ଅବସ୍ଥା, କ୍ଳେଶ, ଦୁଃଖଭୋଗ, ଦୈହିକ ଅବସ୍ଥା, ଚେହେରା, ( ବିଂ. ) କ୍ଷୀଣ, ଦୁର୍ବଳ, ଦୁର୍ଦ୍ଦଶାଗ୍ରସ୍ତ ।
ଅବସ୍ତାତ୍—(ଅବ୍ୟ) ପଶ୍ଚାଦ୍ଭାଗ, ଦେଶ-କାଳରେ ପଶ୍ଚାତ୍ ଭାଗ, ଦେଶକାଳରୁ ।
ଅବସ୍ତାପାଇବା—ଗ୍ରା କ୍ରି. ଦୁଃଖ ବା କଷ୍ଟ-ଭୋଗ କରିବା ।
ଅବସ୍ତାର—ପୁଂ.ବି (ଅବ + ସ୍ତୃ + ର୍ମି.ଅ) ଯବନିକା, ପର୍ଦ୍ଦା, ଚିକ, ଆସ୍ତରଣ, ଶଯ୍ୟା, ମସିଣା, ଘୋଡ଼ଣି ।

ଅବସ୍ତୁ—କ୍ଳୀ. ବି. ନ.ତତ୍ପୁ; (ଅ + ବସ୍ତୁ) ଅକିଞ୍ଚିତ୍କର ପଦାର୍ଥ, ନିକୃଷ୍ଟବସ୍ତୁ, ମିଥ୍ୟା ବିଷୟ, ବ୍ରହ୍ମ'ଠାରୁ ଜଗତର ଅନ୍ୟ ସମସ୍ତ ବସ୍ତୁ,ସାଂସାରିକ ବିଷୟର ଅବାସ୍ତବତା, ଅସତ୍ତ୍ୱ, ଅବିଦ୍ୟମାନତା, କିଛିନୁହେଁ,(ବିଂ) ଅସାର, ଅବିଦ୍ୟମାନ, ଅବାସ୍ତବ, ଗୁଣହୀନ ।
ଅବସ୍ତୁନିର୍ବନ୍ଧପର—ପୁଂ. ବିଂ. (୬ ତତ୍ପୁ) ନିକୃଷ୍ଟ ବସ୍ତୁପ୍ରତି ଆକାଙ୍କ୍ଷାଯୁକ୍ତ (ବ୍ୟକ୍ତି) ଅବସ୍ତାବ ବସ୍ତୁକୁ ଗ୍ରହଣ କରିବାକୁ ଉଦ୍ୟମ କରୁଥିବା, (ସ୍ତ୍ରୀ) ଅବସ୍ତୁ-ନିର୍ବନ୍ଧପରା ।
ଅବସ୍ତ୍ର—ପୁଂ. ବିଂ. ବ.ବ୍ରୀ; (ଅ + ବସ୍ତ୍ର) ବସ୍ତ୍ରହୀନ, ବିବସନ, ନଗ୍ନ, ଉଲଗ୍ନ (ସ୍ତ୍ରୀ) ଅବସ୍ତ୍ରା (ବି) ମନ୍ଦବସ୍ତ୍ର ।
ଅବସ୍ଥା—ସ୍ତ୍ରୀ. ବି. (ଅବ + ସ୍ଥା + ଭା.ଅ + ଆ) ସ୍ଥିତି, ଦଶାଭାବ, ପ୍ରକାର, ଭାଗ୍ୟ, ପରିମାଣ, ବୈଷୟିକଭାବ, ସଙ୍ଗତି, ସମୃଦ୍ଧି, ସୌଭାଗ୍ୟ, ସୁଯୋଗଲକ୍ଷଣ, ଦୁରୂହ ଅବସ୍ଥା, ଜୀବନର ଭିନ୍ନ ଭିନ୍ନ ସମୟ, ରୂପ, ଚେହେରା, ସ୍ଥାୟୀଭାବ, ଉପସ୍ଥିତି,ଅବସ୍ଥାନ, ଜୀବନର ଭିନ୍ନ ଭିନ୍ନ ସମୟରେ ଘଟିବା ଅବସ୍ଥା ବା ଦଶା ।
ଅବସ୍ଥାଚତୁଷ୍ଟୟ—କ୍ଳୀ. ବି (୬ତତ୍ପୁ)ମନୁ-ଷ୍ୟର ଚାରି ଅବସ୍ଥା ବା କାଳକୃତ-ଦେହବୈଲକ୍ଷଣ ।
ଅବସ୍ଥାତ୍ରୟ—କ୍ଳୀ.ବି. ୬ତତ୍ପୁ; (ଅବସ୍ଥା + ତ୍ରୟ) ମନୁଷ୍ୟର ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି, ଏହି ତିନି ଅବସ୍ଥା ।
ଅବସ୍ଥାଦଶକ—କ୍ଳୀ. ବି. ୬ତତ୍ପୁ; (ଅବସ୍ଥା + ଦଶକ) ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ୧୦ ଗୋଟି ଅବସ୍ଥା, ଅନଙ୍ଗଦଶା କାମ-ଶାସ୍ତ୍ରାନୁସାରେ ପରସ୍ପର ସଙ୍ଗ ପ୍ରାପ୍ତ ନ-ହେବା, ପ୍ରେମିକ ପ୍ରେମିକାଙ୍କଦ୍ୱାରା ଅନୁଭୂତ ଗୋ୧୦ଟି ଅବସ୍ଥା ।
ଅବସ୍ଥାଦ୍ୱୟ—କ୍ଳୀ.ବି.୬ତତ୍ପୁ; (ଅବସ୍ଥା + ଦ୍ୱୟ) ମନୁଷ୍ୟର ଦୁଇ ଅବସ୍ଥା ବା ଦଶା ଯଥା:—ସୁଖ ଓ ଦୁଃଖ ।

ଅବସ୍ଥାପକ—ବି.ବିଂ.(ଅବସ୍ଥା + ସ୍ଥା + ଣିଚ୍ କ.ଅକ) ସ୍ଥାପନକର୍ତ୍ତା, ସ୍ଥାପୟିତା,(ସ୍ତ୍ରୀ) ଅବସ୍ଥାପିକା ।
ଅବସ୍ଥାନ -କ୍ଳୀ.ବି.(ଅବ + ସ୍ଥା + ଭା.ଅନ) ସ୍ଥିତି,ବାସ,ରହିବା(ବିଂ)ଗତି ଅଟକିବା ସ୍ଥାନ, ରହିବା ସ୍ଥାନ ।
ଅବସ୍ଥାନ୍ତର—କ୍ଳୀ. ବି. ଅନ୍ୟ ଅବସ୍ଥା, ଭାବାନ୍ତର, ଦଶାନ୍ତର, ରୂପାନ୍ତର, ଭିନ୍ନ ଅବସ୍ଥା ।
ଅବସ୍ଥାପନ—କ୍ଳୀ.ବି. ନିବେଶନ, ସ୍ଥାପନ, ରକ୍ଷଣ, ରଖିବା ।
ଅବସ୍ଥାପନ୍ନ—ବି.ବିଂ.(୨ୟାତତ୍ପୁ) ସଙ୍ଗତି-ଶାଳୀ, ଆଢ୍ୟ, ଧନବାନ୍ ।
ଅବସ୍ଥାପୟିତା—ପୁଂ. ବିଂ. ଅବସ୍ଥାପକ, ସ୍ଥାପନକର୍ତ୍ତା, (ସ୍ତ୍ରୀ) ଅବସ୍ଥାପୟିତ୍ରୀ ।
ଅବସ୍ଥାପିତ—ବି. ବିଂ. (ଅବ + ସ୍ଥାପିତ) ନିବେଶିତ, ସ୍ଥାପିତ, ରକ୍ଷିତ, ସ୍ଥିରୀକୃତ, ନିର୍ଦ୍ଧାରିତ ।
ଅବସ୍ଥାପ୍ୟ—ବି.ବିଂ. ନିବେଶନୀୟ, ସ୍ଥାପ-ନୀୟ,(କ୍ରି.ବିଂ.) ସ୍ଥାପନ କରି ।
ଅବସ୍ଥାୟୀ—ପୁଂ. ବିଂ. ଅବସ୍ଥାନଯୁକ୍ତ, ଯେ ଥାଏ, ସ୍ଥିତିକାରୀ,(ସ୍ତ୍ରୀ)ଅବସ୍ଥାୟିନୀ ।
ଅବସ୍ଥାବିପର୍ଯ୍ୟୟ—ବି. ୬ତତ୍ପୁ;(ଅବସ୍ଥା + ବିପର୍ଯ୍ୟୟ) ବିପରୀତ ଦଶା, ଭାଗ୍ୟର ପରିବର୍ତ୍ତନ, ସୁଦଶା, ପରେ ଘଟିବା ଦୁର୍ଦ୍ଦଶା ।
ଅବସ୍ଥାଷଟ୍କ—କ୍ଳୀ. ବି. (୬ତତ୍ପୁ) ଜୀବର ଜନ୍ମ, ସ୍ଥିତି, ବୃଦ୍ଧି, ବିପରିଣାମ, ଅପ-କ୍ଷୟ, ନାଶ, ଏହି ଷଡ଼୍ବିଧ ଦଶା ।
ଅବସ୍ଥାହୀନ—ବି.ବିଂ. (୬ତତ୍ପୁ) ସଙ୍ଗତି-ରହିତ, ଅନାଢ୍ୟ, ନିର୍ଦ୍ଧନ, ଦରିଦ୍ର ।
ଅବସ୍ଥିତ—ବି. ବିଂ. ଅବସ୍ଥାନଯୁକ୍ତ, ଯେ ଥାଏ, ବର୍ତ୍ତମାନ, ସ୍ଥିତ, ଅବସ୍ଥିତ-ବିଶିଷ୍ଟ, ସ୍ଥିରୀଭୂତ ।
ଅବସ୍ଥିତଚିତ୍ତ—ପୁଂ.ବିଂ. ବ.ବ୍ରୀ; (ଅବ-ସ୍ଥିତ + ଚିତ୍ତ) ସ୍ଥିରଚିତ୍ତ, ସ୍ଥିରମତି, ପ୍ରଶାନ୍ତଚେତା, (ସ୍ତ୍ରୀ) ଅବସ୍ଥିତଚିତ୍ତା ।
ଅବସ୍ଥିତି—ସ୍ତ୍ରୀ.ବି. ( ଅବ + ସ୍ଥା + ତି ) ଅବସ୍ଥାନ । [ ଅଛୁ ।
ଅବସ୍ଥିତି—ବି. ବିଂ. ଆପଦରୁ ପାରହୋଇ

ଅବସ୍ୟନ୍ଦନ—କ୍ଲୀ.ବି. ଅବ + ସ୍ୟନ୍ଦ୍ + ଅନ) କ୍ଷରଣ, ଗମନ, ଗଳିପଡ଼ିବା, ବୋହିପଡ଼ିବା, ହିଂସା ।
ଅବସ୍ୟ—ତ୍ରି.ବିଂ. (ଅବଶ୍ୟ + ଉ) ରକ୍ଷଣେଚ୍ଛୁ ।
ଅବସ୍ରଂସନ—କ୍ଲୀ.ବି. (ଅବ + ସ୍ରଂସ୍ + ଅନ) ଅଧଃପତନ, କ୍ଷରଣ, ଝରିବା, ପତନ ।
ଅବସ୍ରଂସିତ—ତ୍ରି. ବିଂ. ଦଳିତ, ପାତିତ, ଯେ ପଦାର୍ଥ ଉପରୁ ପଡ଼ିଯାଇଅଛି ।
ଅବସ୍ରସ୍—ତ୍ରି. ବିଂ. ଭ୍ରଂଶନଶୀଳ, ଅବପତନ, ଖଣ୍ଡିତ, ଯାହା ପଡ଼ିଯାଇଅଛି ।
ଅବସ୍ରସ୍ତ—ତ୍ରି. ବିଂ. ଚ୍ୟୁତ, ପତିତ, ପଡ଼ିଥିବା, କ୍ଷରିତ (ସ୍ତ୍ରୀ) ଅବସ୍ରସ୍ତା ।
ଅବସ୍ୱତ—ତ୍ରି. ବିଂ. ରକ୍ଷଣଯୁକ୍ତ ।
ଅବହ—ତ୍ରି.ବିଂ.(ଅ + ବହ୍ + ଅ)ନଦ୍ୟାଦିର ସ୍ରୋତଶୂନ୍ୟ ପ୍ରଦେଶ, ଭୂସ୍ତରସ୍ଥ ସ୍କନ୍ଧସ୍ଥ ବାୟୁବିଶେଷ ।
ଅବହତ—ତ୍ରି.ବିଂ. (ଅବ + ହନ୍ + ତ) ଅଧାକାଣ୍ଡିଆ ଗୃହଳପ୍ରଭୃତି ।
ଅବହତି—ସ୍ତ୍ରୀ. ବି. (ଅବ + ହନ୍ + ତି) ଗୃହଳ କୁଟିବାଦ୍ୱାରା ବିଚୂର୍ଣ୍ଣୀକରିବାର ବ୍ୟାପାର ।
ଅବହନନ କ୍ଲୀ.ବି. (ଅବ + ହନ୍ + ଅନ) ଅବଘାତ, ଗୃହଳ ଅଦ୍ଧକୁଟିଙ୍କି ବା ପାହୁରଣୀଦ୍ୱାରା କାଣ୍ଡିବା ।
ଅବହରଣ—କ୍ଲୀ. ବି. (ଅବ + ହୃ + ଅନ) ସ୍ଥାନାନ୍ତରକୁ ନେବା, ଯୁଦ୍ଧ ସ୍ଥାନରୁ ଶିବିରକୁ ସେନାମାନଙ୍କୁ ନେବା ।
ଅବହସିତ—କ୍ଲୀ.ବି. (ଅବ + ହସ + ଭା. ତ) ଉପହାସ, (ବିଂ) ଉପହସିତ ।
ଅବହସ୍ତ—ପୁଂ.ବି.(ଅବ + ହସ୍ତ) ହାତର ପିଠିପାଖ, କରତଳର ପୃଷ୍ଠଦେଶ ।
ଅବହାର—ପୁଂ.ବି. ( ଅବ + ହୃ + ଅ ) ଚୌର, ଗ୍ରାହ, ବିରତି, ବିଶ୍ରାମ, ନିମନ୍ତ୍ରିତ ବ୍ରାହ୍ମଣମାନଙ୍କର ଧନାପହରଣ, ସ୍ୱଧର୍ମତ୍ୟାଗପୂର୍ବକ ଧର୍ମାନ୍ତର ଗ୍ରହଣ, ଯୁଦ୍ଧବିରତ ସୈନ୍ୟମାନଙ୍କର ଶିବିରକୁ ପ୍ରତ୍ୟାଗମନ, ବନ୍ଧକ ଥିବା ଜିନିଷକୁ ପରିଶୋଧ ପରେ ଖାତକକୁ ପ୍ରତ୍ୟର୍ପଣ, ପଶାଖେଳରେ ବିଶ୍ରାମ, ଉପହାର, ଅର୍ଥଦଣ୍ଡ, ଜଳହସ୍ତୀ, ହାଙ୍ଗର ଜନ୍ତୁବିଶେଷ ।
ଅବହାରକ—ପୁଂ.ବିଂ.(ଅବ + ହୃ + କ. ଅକ) ଅପହାରକ, ନିବାରକ, ବିରତିଘଟାଇବା, (ବି) ଜଳହସ୍ତୀ, ଶିଶୁମାର, ଯୁଦ୍ଧରୁ ନିବୃତ୍ତହେବା ଲୋକ, ନିମନ୍ତ୍ରିତ ବ୍ରାହ୍ମଣମାନଙ୍କର ଧନ ଅପହରଣକାରୀ ଲୋକ, (ସ୍ତ୍ରୀ) ଅବହାରିକା ।
ଅବହାର୍ଯ୍ୟ—ତ୍ରି.ବିଂ. (ଅବ + ହୃ + ମିଁ,ଯ) ଯାହା ଦାନ କରାଯାଏ, ସ୍ଥାନାନ୍ତର ନେବାର ଯୋଗ୍ୟ,ସମର୍ପଣୀୟ,ଅପନୟନୀୟ, ଉଦ୍ଧାର୍ଯ୍ୟ, ଦଣ୍ଡନୀୟ, (ସ୍ତ୍ରୀ) ଅବହାର୍ଯ୍ୟା ।
ଅବହାଲିକା—ସ୍ତ୍ରୀ. ବି. ପ୍ରାଚୀର ।
ଅବହାସ—ପୁଂ. ବି. (ଅବ + ହସ + ଭା. ଅ) ଉପହାସ, ମୃଦୁହାସ, ଥଟ୍ଟା (ବିଂ) ଅବହସିତ ।
ଅବହାସ୍ୟ—ତ୍ରି.ବିଂ. (ଅବ + ହସ + ଯ) ଉପହାସର ଯୋଗ୍ୟ । [ କ୍ଷଣି ।
ଅବହି—(ଯା) ଅବ୍ୟ. ଅବିଳମ୍ବେ, ଏହି-
ଅବହିତ—ପୁଂ.ବିଂ.(ଅବ + ଧା + କ,ତ) ସାବଧାନ,ବିଜ୍ଞାତ,ମନୋଯୋଗୀ,ନିବିଷ୍ଟ, ବିଦିତ (ସ୍ତ୍ରୀ) ଅବହିତା ।
ଅବହିତଚିତ୍ତ—ପୁଂ.ବିଂ. (ବି.ବ୍ରୀ)ଯାହାର ମନ ପ୍ରଶାନ୍ତ ବା ସ୍ଥିର ।
ଅବହିତ୍ଥା—ସ୍ତ୍ରୀ.ବି.(ଅ + ବହିଃ + ସ୍ଥା + ଅ + ଆ ) ଆକାରଗୁପ୍ତି, ମନର ଭାବ ବାହାରେ ପ୍ରକାଶ ନ କରି ଲୁଗ୍ରାଇବା, ନାୟକ ନାୟିକାଙ୍କ ବ୍ୟଭିଚାରିଭାବର ଏକତମ ଛଦ୍ମବେଶ, ହୃଦ୍‌ଗତଭାବ ।
ଅବହୀନ—ବିଂ. ( ଅବ + ହା + ମିଁ.ତ ) ପଶ୍ଚାତ୍‌ପତିତ ।
ଅବହୃତ—ତ୍ରି. ବିଂ (ଅବ + ହୃ + ମିଁ.ତ) ଅପହୃତ, ଅପନୀତ, ସ୍ଥାନାନ୍ତରକୁ ନେଇଥିବା, ଉଦ୍ଧୃତ, ଦଣ୍ଡିତ, ଯୁଦ୍ଧ ଭୂମିରୁ ପ୍ରତିନିବୃତ୍ତ (ସ୍ତ୍ରୀ) ଅବହୃତା ।
ଅବହେଳ—କ୍ଲୀ. ବି. (ଅବ + ହେଳ୍ + ଭା. ଅ) ଅନାଦର, ଅବଜ୍ଞା, ଉପେକ୍ଷା, ଅନାସ୍ଥାସ ।
ଅବହେଳନ—କ୍ଲୀ.ବି.(ଅବ + ହେଳ୍ + ଭା. ଅନ) ଅବଜ୍ଞା, ବେଖାତିର, ଅବହେଳା, ଉପେକ୍ଷା ।
ଅବହେଳନୀୟ—ତ୍ରି.ବିଂ. (ଅବ + ହେଳ୍ ମିଁ. ଅନୀୟ) ଉପେକ୍ଷଣୀୟ, ଅନାଦରଣୀୟ, ଅବଜ୍ଞେୟ ।
ଅବହେଳା—ସ୍ତ୍ରୀ. ବି. (ଅବ + ହେଳ୍ + ଅ + ଆ) ଅନାଦର, ଅବଜ୍ଞା, ବେଖାତିର, ଅବହେଳା, ଅନାସ୍ଥାସ, ଅଣହେଲା, ହତାଦର, ଅଶ୍ରଦ୍ଧା ।
ଅବହେଳିତ—ତ୍ରି.ବିଂ (ଅବ + ହେଳ୍ + ମିଁ. ତ) ଅବହେଳାବିଶିଷ୍ଟ, ଅନାଦୃତ, ଅବଜ୍ଞାତ, ଉପେକ୍ଷିତ, (ସ୍ତ୍ରୀ) ଅବହେଳିତା ।
ଅବହେଳେ—ଗ୍ରା. କ୍ରି. ବିଂ. ଅବହେଳାକ୍ରମେ, ଅନାସ୍ଥାସରେ । [କୁଟିଳ ।
ଅବହ୍ୱର—ତ୍ରି. ବିଂ ( ଅବ + ହ୍ୱୃ + ଅ )
ଅବା—(ଅବ୍ୟ) ଅଥବା, କିବା, ଅନ୍ୟଥା, ପ୍ରକାରାନ୍ତରେ କି ? କିମ୍ବା, (ଗ୍ରା) ସମ୍ଭବତଃ, କେଜାଣି, କଦବା ।
ଅବାଇଜ—ଗ୍ରା.ବିଂ. ଜାରଜ, ବେଧପିଲା, ଦୁଷ୍ଟ ।
ଅବାଇମଣ୍ଡଳ—ଗ୍ରା. ବି. ବାୟୁଶୂନ୍ୟ ପ୍ରଦେଶ, ଆକାଶ, ଶୂନ୍ୟମଣ୍ଡଳ ।
ଅବାକ୍—ତ୍ରି. ବିଂ (ଅ + ବାକ୍) ବି.ବ୍ରୀ; ବାକ୍ୟରହିତ, ବାକ୍‌ଶକ୍ତିହୀନ, ମୂକ, ବିସ୍ମିତ, ସ୍ତବ୍ଧ, ଅଦ୍ଭୁତ, ଅତ୍ୟାଶ୍ଚର୍ଯ୍ୟ, ବିସ୍ମୟଜନକ, ଅବାଙ୍ମୁଖ, ନତାନନ, ହେଠମୁଖ, ଦକ୍ଷିଣଦିଗଜାତ, (ସ୍ତ୍ରୀ) ଅବାଚୀ,(ଅବ୍ୟ)) ନିମ୍ନପ୍ରଦେଶ, ଅଧୋଦେଶ, ପଶ୍ଚାତ୍‌କାଳ ।
ଅବାକ୍‌ଜ୍ଞାନ—ବି. ( ଅବାକ୍ + ଜ୍ଞାନ ) ଅବଜ୍ଞା ।
ଅବାକ୍‌ପୁଷ୍ପ(ସ୍ତ୍ରୀ)—କ୍ଲୀ. ସ୍ତ୍ରୀ. ବି. ସୁଲଫା, ପାନମହୁରି, ସଉପ, ଗୁଗୁଚିଆ, ହେମପୁଷ୍ପୀ ।

ଅବାକ୍‌ଶାଖ—ପୁଂ. ବିଂ. (ବ.ବ୍ରୀ.)ଯାହାର ଡାଳ ତଳକୁ ଓହଳଥାଏ (ବି) ଅଶ୍ୱତ୍ଥ-ବୃକ୍ଷ ।

ଅବାକ୍‌ଶିରାଃ—ବି. ବିଂ. ଅବାଙ୍ମୁଖ, ପୋତାମୁହାଁ, ଅଧୋମୁଖ, ନତମସ୍ତକ, ଲଜ୍ଜିତ, ଦକ୍ଷିଣଆଡ଼କୁ ମୁଣ୍ଡ ।

ଅବାକ୍‌ଶ୍ରୁତି—ବି.ବିଂ. ଯାହାର ବାକ୍‌ଶକ୍ତି ଓ ଶ୍ରବଣ ଶକ୍ତି ନାହିଁ, କାଲ, ବୋବା ।

ଅବାକର—ପୁଂ. ବି. ( ଅବ + ଆକର ) ମୁଦ୍ରାଶାଳା ।

ଅବାକନ୍ - ପୁଂ. ବିଂ. ବାଗିନ୍ଦ୍ରିୟଶୂନ୍ୟ, (ବି) ପରମାତ୍ମା ।

ଅବାକ୍ଷ—ପୁଂ.ବିଂ.(ଅବ + ଅକ୍ଷ + କ.ଅ) ବ.ବ୍ରୀ. ରକ୍ଷକ,ଅଭିଭାବକ(ସ୍ତ୍ରୀ)ଅବାକ୍ଷା ।

ଅବାଗ—ଗ୍ରା. ବି. ଅସୁବିଧା, ଅକଳ, ବେବାଗ, ବେକାଇଦା, ଅଶୃଙ୍ଖଳା ।

ଅବାଗି(ଆ)—ଗ୍ରା. ପୁଂ ଓ ସ୍ତ୍ରୀ.ବିଂ.ଅଖାଡ଼ୁଆ, ଅଶୃଙ୍ଖଳ, ଏକବାଗିଆ, ଏକଜିଦିଆ,ଅସୁବିଧାଜନକ,ଗୋଳମାଳିଆ ।

ଅବାଗେ—ଗ୍ରା. କ୍ରି. ବିଂ. ଅକଳରେ, ଅଖନ୍ଦରେ ପଡ଼ି, ଅନନ୍ୟୋପାୟ ଅବସ୍ଥାରେ ।

ଅବାଗ୍ର—ପୁଂ. ବିଂ (ଅବ + ଅଗ୍ର)ଯାହାର ଅଗ୍ରଭାଗ ଅବନତ, ଅବନତମସ୍ତକ, (ସ୍ତ୍ରୀ) ଅବାଗ୍ରା ।

ଅବାଙ୍—ବି. ବିଂ (ଅବ + ଅନଚ୍ + କ, କ୍ୱିପ୍) ନତାନନ, ଅଧୋବଦନ, (ସ୍ତ୍ରୀ) ଅବାଚୀ ।

ଅବାଙ୍ମୁଖ—ବି. ବିଂ. ଅଧୋମୁଖ, ଅଧୋବଦନ, ଲଜ୍ଜାଦିବଶତଃ ହେଠ-ମୁଖ (ସ୍ତ୍ରୀ) ଅବାଙ୍ମୁଖୀ ।

ଅବାଙ୍ମନସଗୋଚର—ପୁଂ. ବିଂ. ବାକ୍ୟ ଓ ମନର ଅଗୋଚର, ଅଚିନ୍ତ୍ୟନୀୟ, ଅନିର୍ବାଚ୍ୟ (ବି) ପରମାତ୍ମା ।

ଅବାଚ୍—ଅବ୍ୟ, (ଅବ + ଅଚ + କ୍ୱିପ୍) ତଳଆଡ଼କୁ, ଦକ୍ଷିଣଦିଗକୁ, ତଳଆଡ଼କୁ ମୁହଁକରି ।

ଅବାଚୀ—ସ୍ତ୍ରୀ.ବି. (ଅବାଚ୍ + ଈ)ଦକ୍ଷିଣ ଦିଗ, ଅଧୋଦିଗ (ବିଂ) ନତାନନା ।

ଅବାଚୀନ—ବି. ବିଂ (ଅବାଚ୍ + ଈନ) ଦକ୍ଷିଣଦିଗସ୍ଥ, ଦକ୍ଷିଣଦେଶୀୟ, ଅଧସ୍ଥ, ଅଧୋଗତ (ସ୍ତ୍ରୀ) ଅବାଚୀନା ।

ଅବାଚ୍ୟ—କ୍ଲୀ. ବି. (ଅ + ବାଚ୍ୟ) ମନ୍ଦବାକ୍ୟ, ଗାଳି, ବଚନର ଅଯୋଗ୍ୟ, ନିନ୍ଦା (ବିଂ) ଅକଥ୍ୟ, ଅଶ୍ଳୀଳ ବାକ୍ୟ, ଅବକ୍ତବ୍ୟ, ଅଗ୍ରହଣୀୟ, ନିନ୍ଦାର୍ହ ।

ଅବାଚ୍ୟଦେଶ—ପୁଂ. ବି. ସ୍ତ୍ରୀଲୋକମାନଙ୍କର ଅଧୋଦେଶ, ଯୋନି ।

ଅବାଚ୍ୟବାଦ—ବି. ( ଅବାଚ୍ୟ + ବାଦ ) ନିନ୍ଦାବାଦ, ଗାଳି ।

ଅବାଜ—(ଯା) ବି. ଶବ୍ଦ, ଧ୍ୱନି, ନାଦ ।

ଅବାଞ୍ଚିତ—ବି. ବିଂ (ଅବ + ଅଞ୍ଚ + କ. ତ) ନମିତ, ଅଧୋଗାମୀ ।

ଅବାଜନ—ବି. ବିଂ. ମୂର୍ଖ ।

ଅବାଟ— ବି. ଅମଡ଼ା ପଥ, ଅପଥ ।

ଅବାଡ଼—ଗ୍ରା. ବିଂ. ଅପରୋକ୍ଷ, ପ୍ରତ୍ୟକ୍ଷ, ଅବକ୍ତବ୍ୟ, ବାଡ଼ ଦିଆହୋଇ ନ ଥିବା ।

ଅବାଡ଼ିଆ—ଗ୍ରା. ବିଂ. ବାଡ଼ିଆ ବା ପିଟା ହୋଇ ନ ଥିବା ।

ଅବାଡ଼ୁଅ—ଗ୍ରା. ବିଂ.ପୁଂ.ସ୍ତ୍ରୀ.ଅବିବାହିତ ।

ଅବାଣି(ଆ)—ଗ୍ରା.ବିଂ.ଯେଉଁ ବ୍ୟକ୍ତି ବାଣି ବା ସୂତା କାଟିବାରେ ଅଭ୍ୟସ୍ତ ନୁହେ, ଯେଉଁ ବସ୍ତୁଗୁଡ଼ାରେ ଦାଗ ଦିଆଯାଇନାହିଁ ।

ଅବାତ—ବି. ବିଂ. (ବ.ବ୍ରୀ.) ଅନ୍ଦୋଳିତ, ଅଶୁଷ୍କ, ନିବାତ, ବାୟୁବର୍ଜିତ ।

ଅବାତବିକ୍ଷୋଭିତ – ବିଂ. (ଅ + ବାତ + ବିକ୍ଷୋଭିତ) ଯାହା ବାୟୁଦ୍ୱାରା ଚଳିତ ନୁହେ ।

ଅବାଦ—ବି. (ଅ + ବାଦ) ଅପାଳନୀୟ ବାକ୍ୟ, ଅପ୍ରାମାଣ୍ୟ ବାକ୍ୟ ।

ଅବାଦୀ—ପୁଂ.ବି.(ଅ + ବାଦୀ)ଅବିରୋଧୀ, ଅବକ୍ତା, ଅବିବାଦୀ, ଅକଥନଶୀଳ, (ସ୍ତ୍ରୀ) ଅବାଦିନୀ ।

ଅବାଧ—ବି. ବିଂ. ବ.ବ୍ରୀ. (ଅ + ବାଧା) ବାଧାଶୂନ୍ୟ, ଅନର୍ଗଳ, ନିର୍ବିବାଦ, ସ୍ୱାଧୀନ,ପୀଡ଼ାଶୂନ୍ୟ,ଅବ୍ୟାହତ,ନିର୍ବିଘ୍ନ, ଅନାୟାସ, ଉଚ୍ଛୃଙ୍ଖଳ (ସ୍ତ୍ରୀ) ଅବାଧା ।

ଅବାଧକ—ପୁଂ. ବିଂ. (ନ.ତତ୍ପୁ) ଅପ୍ରତିବନ୍ଧକ, ଅବ୍ୟାଘାତଜନକ, ଅନୁକୂଳ, (ସ୍ତ୍ରୀ) ଅବାଧିକା ।

ଅବାଧରେ—ଗ୍ରା. କ୍ରି. ବିଂ.ଅନାୟାସରେ, ସହଜରେ,ନିର୍ବିଘ୍ନରେ,ସ୍ୱାଧୀନଭାବରେ ।

ଅବାଧିତ—ବି.ବିଂ. (ନ.ତତ୍ପୁ)ଅପ୍ରତିରୋଧିତ, ଅବ୍ୟାହତ, ଅପ୍ରତିରୁଦ୍ଧ, ଅପ୍ରତିହତ ।

ଅବାଧ୍ୟ—ବି. ବିଂ. ( ଅ + ବାଧ୍ + ଯ ) ବାଧାର ଅଯୋଗ୍ୟ, ଯେ ନିଷେଧ ଶୁଣେନାହିଁ, ଅବଶୀଭୂତ, ଅମାନିଆଁ ,ଢେଡ଼ା, ଅବଜ୍ଞାକାରୀ(ସ୍ତ୍ରୀ)ଅବାଧ୍ୟା(ବି) ଅବାଧ୍ୟତା ।

ଅବାନ—ବି. ବିଂ. ଶୁଷ୍କ ଫଳାଦି ।

ଅବାନ୍ତର— ବି. ବିଂ. ( ଅବ + ଅନ୍ତର ) ପ୍ରଧାନର ମଧ୍ୟଗତ,ସାମାନ୍ୟର ମଧ୍ୟଗତ, ମଧ୍ୟସ୍ଥିତ, ଅନ୍ତଃପାତୀ, ଅପ୍ରଧାନ, ପ୍ରଧାନ ବସ୍ତୁର ଅଙ୍ଗୀଭୂତ, ସମ୍ପର୍କରହିତ, ଆନୁଷଙ୍ଗିକ, ଅଧିକ, ଅପ୍ରାସଙ୍ଗିକ, ବାଜେ ।

ଅବାନ୍ତରଦିଗ—ବି. ଦୁଇଦିଗର ମଧ୍ୟସ୍ଥ କୋଣ ।

ଅବାନ୍ତରବିଭାଗ—ପୁଂ.ବି. (କ.ଧା)ଭେଦର ଭେଦ, ବିଭାଗର ବିଭାଗ, ଅବାନ୍ତରଗତ ବିଭାଗ ।

ଅବାନ୍ତରଶାସନ—କ୍ଲୀ. ବି. ରାଜ୍ୟାନ୍ତର୍ଗତ ବିଷୟସମୂହ ଯେଉଁ ଶାସନାଧୀନ ।

ଅବାନ୍ଧବ—ବି. ବିଂ (ବ.ବ୍ରୀ.) ବାନ୍ଧବଶୂନ୍ୟ ଅନାଥ, ମିତ୍ରହୀନ ( ସ୍ତ୍ରୀ ) ଅବାନ୍ଧବା (ପୁଂ.ବି.) ବାନ୍ଧବଭିନ୍ନ ଲୋକ, ଅବନ୍ଧୁ ।

ଅବାପିତ—ବି. ବିଂ. (ଅବ + ଆପ୍ + ଇ.ମ୍ପି,ତ) ଆରୋପିତ, ଯାହା ବୁଣାହୁଏ ନାହିଁ, କ୍ଷର ନ ହୋଇଥିବା, ପ୍ରାପିତ, ଗମିତ, ନୀତ, (ସ୍ତ୍ରୀ) ଅବାପିତା ।

ଅବାପିତଧାନ୍ୟ—ବି. ରୁଆଧାନ, ବୁଣାଧାନ ନୁହେ ।

ଅବାପ୍ତ—ବି. ବିଂ. (ଅବ + ଆପ୍ + ମ୍ପି, ତ) ପ୍ରାପ୍ତ, ଲବ୍ଧ, ଅଧିଗତ, ଅବାର, ଅବାର୍ଯ୍ୟ (ସ୍ତ୍ରୀ) ଅବାପ୍ତା ।

ଅବାପ୍ତବ୍ୟ—ବି. ବିଂ. ( ଅବ + ଆପ୍ + ତବ୍ୟ ) ପ୍ରାପ୍ତବ୍ୟ ।

ଅବାପ୍ତି—ସ୍ତ୍ରୀ. ବିଂ. (ଅବ + ଆପ୍ + କ୍ତି, ତି) ପ୍ରାପ୍ତି, ଲାଭ ।

ଅବାପ୍ୟ—ତ୍ରି. ବ୍ରଂ. (ଅବ + ଆପ୍ + ଯ) ପ୍ରାପ୍ୟ, ବୁଣା ହେବାର ଅଯୋଗ୍ୟ, ଅଗ୍ରେପ, ଯେଉଁକେଶାଦ ଛେଦନ କରିବାର ଯୋଗ୍ୟ ନୁହେ ।
ଅବାବ—(ସମ୍ପ)ଗୌଡ଼ମାନଙ୍କର ଶ୍ରେଣୀବିଶେଷ ।
ଅବାମ—କ୍ଲୀ. ବ. (ଅ + ବାମ) ଦକ୍ଷିଣ, ଅନୁକୂଳ, ଶୋଭନ ।
ଅବାସ୍ତ—ପୁଂ. ବ(ଅବ + ଇ + ଅ)ଅବସ୍ଥବ
ଅବାର—କ୍ଲୀ. ବ. ନଦୀପ୍ରଭୃତର ପୂର୍ବପାର, ଏପାର ( ବ୍ରଂ ) ବରଣ ନୁହେ, ପ୍ରାର୍ଥନାଭିନ୍ନ ( ଗ୍ରା. ବ. ) ଅଶୁଭବାର ବା ଦିନ ।
ଅବାରଜ—ଗ୍ରା. ବ. ଅବାରଣ, ପ୍ରଭେଦରହିତ୍ୟ (ବ୍ରଂ) ପ୍ରଭେଦରହିତ ।
ଅବାରଣ—କ୍ଲୀ. ବ. (ଅ + ବୃ + ଣିଚ୍ ଅନ) ନିଷେଧର ଅଭାବ (ବ୍ରଂ) ନିଷେଧଶୂନ୍ୟ, ଅବାର୍ଯ୍ୟ, ଅବାରଣୀୟ ।
ଅବାରଣୀୟ—ତ୍ରି.ବ୍ରଂ.(ଅ + ବାରଣୀୟ)। ଯାହାକୁ ନିଷେଧକରି ରଖାଯାଇ ନପାରେ, ଅବାରଣୀୟ,ଅନବାର୍ଯ୍ୟ(ସ୍ତ୍ରୀ)ଅବାରଣୀୟା
ଅବାରପାର—ପୁଂ.ବ. (ବ.ବ୍ରୀ) ଉଭୟକୂଳଯୁକ୍ତ ସମୁଦ୍ର ।
ଅବାରପାରୀଣ—ତ୍ରି. ବ୍ରଂ. ପାରଗ, ନଦୀପ୍ରଭୃତର ପାରଗତ ବ୍ୟକ୍ତ ।
ଅବାଶକା—ସ୍ତ୍ରୀ. ବ. (ବ.ବ୍ରୀ) ଧନିଆ ।
ଅବାଶ୍ରିତ—ତ୍ରି. ବ୍ରଂ. (ନ.ତତ୍ପ)ଅନଷିଦ୍ଧ, ଅନିବାରିତ, ମୁକ୍ତ, ଅବାଧିତ ।
ଅବାଶ୍ରୀଣ—ତ୍ରି.ବ୍ରଂ.ପାରଗ,ନଦୀପ୍ରଭୃତର ପାରଗତ, (ସ୍ତ୍ରୀ) ଅବାଶ୍ରୀଣା ।
ଅବାର୍ଯ୍ୟ—ତ୍ରି ବ୍ରଂ. (ଅ + ବାର + ମି.ଯ) ଅନିବାର୍ଯ୍ୟ, ଅବାରଣୀୟ, ଦୁର୍ବାର ।
ଅବାଳୁଆ—ଗ୍ରା. ପୁଂ. ବ୍ରଂ. ଅଙ୍ଗସ୍ଥ ଲୋମଶୂନ୍ୟ ।
ଅବାବଟ—ପୁଂ. ବ. କୁଣ୍ଡଗୋଳକାଦ, ଦ୍ୱିତୀୟପିତାକର୍ତ୍ତୃକ ସ୍ୱଜାତୀୟ ସ୍ତ୍ରୀଠାରେ ଜାତପୁତ୍ର ।
ଅବାବନ୍—ତ୍ରି. ବ୍ରଂ. ଅବସାରକ, (ସ୍ତ୍ରୀ) ଅବାବନ୍ନୀ ।
ଅବାବନ୍ତ—ଗ୍ରା. ବ. ଚଳନ୍ତ ସମ୍ପତ୍ତିମାନ, ଚଳନ୍ତ ଜାଏଦାଦ୍ ।
ଅବାବ—ଗ୍ରା. ବ୍ରଂ. ହଠାତ୍ ଉପସ୍ଥିତ, ଅପ୍ରତ୍ୟାଶିତ, ( କ୍ରି. ବ. ) ହଠାତ୍ ଅପ୍ରତ୍ୟାଶିତରୂପେ ।
ଅବାବୁଆ—ଗ୍ରା. ବ. ଅନିର୍ଦ୍ଦିଷ୍ଟ ପିତୃକ, ଅବୋବୁଆ, ଜାରଜ ।
ଅବାସା—ପୁଂ. ବ୍ରଂ. ( ଅ + ବାସସ୍ ) ବ.ବ୍ରୀ; ବସ୍ତ୍ରହୀନ, ନଗ୍ନ, ଦିଗମ୍ବର, ବୌଦ୍ଧ ।
ଅବାସୀ—ପୁଂ. ବ୍ରଂ. ନିବାସଶୀଳ ନୁହେ, (ସ୍ତ୍ରୀ) ଅବାସିନୀ ।
ଅବାସ୍ତବ—ତ୍ରି. ବ. ( ଅ + ବାସ୍ତବ ) ଅଯଥାର୍ଥ, ଭ୍ରମାତ୍ମକ,ଅମୂଳକ,ଅପ୍ରକୃତ, ଅଳକ, (ସ୍ତ୍ରୀ) ଅବାସ୍ତବୀ ।
ଅବାସ୍ତବିକ—ତ୍ରି. ବ୍ରଂ. ( ଅବାସ୍ତବ + ଇକ ) ଅଯଥାର୍ଥ, ଅପ୍ରକୃତ, ଅମୂଳକ, ଅସତ୍ୟ, କାଳ୍ପନିକ, ଅଲୌକିକ, (ସ୍ତ୍ରୀ) ଅବାସ୍ତବିକୀ ।
ଅବାହନ—ପୁଂ. ବ୍ରଂ. (ବ.ବ୍ରୀ) ଯାହାର ବାହନ ନାହିଁ ।
ଅବାହ୍ୟ—ତ୍ରି. ବ୍ରଂ (ଅ + ବାହ୍ୟ)ବ.ବ୍ରୀ; ବହନ କରିବାକୁ ଅକ୍ଷମ, ବାହାରର ନୁହେ, ଅଭ୍ୟନ୍ତର, କୁଳୀନ ।
ଅବି—ପୁଂ. ବ. ( ଅବ + ଇ ) ମେଷ, ସୂର୍ଯ୍ୟ,ପର୍ବତ,ନାଥ, ମୂଷା, ଲୋମକମ୍ବଳ, ଅର୍କଗଛ, ବାୟୁ, ପ୍ରାଚୀର, ପ୍ରଭୁ, ସ୍ୱାମୀ, (ସ୍ତ୍ରୀ) ଲଜ୍ଜା, ଋତୁମତୀ ସ୍ତ୍ରୀ ।
ଅବିଆଣ—ଗ୍ରା.ବ. ନିନ୍ଦିତଜନ୍ମ,ହୀନଜନ୍ମ ।
ଅବିଆଣୀ—ଗ୍ରା.ବ୍ରଂ. ପ୍ରସବ କରି ନ ଥିବା (ଗାଈ), ବାଞ୍ଝ, ବନ୍ଧ୍ୟା ।
ଅବିକ—ପୁଂ.ବ (ଅବି + କ)ଅବିଶବ୍ଦାର୍ଥ, ମେଷଜାତ, ସ୍ୱାରକ ।
ଅବିକଚ—ତ୍ରି. ବ୍ରଂ. ନ. ତତ୍; ( ଅ + ବିକଚ)ଅପ୍ରଫୁଲ୍ଲ,ଅପ୍ରକାଶିତ,ଅବିକଶିତ, ମୁଦ୍ରିତ ।
ଅବିକଟ—ପୁଂ. ବ. ମେଷସମୂହ, ମେଷପାଳକ, (ବ୍ରଂ) ଅବିଶାଳ, ଅବିସ୍ତୃତ, ଅଭୟଙ୍କର ଅସ୍ୱାଭାବିକ (ସ୍ତ୍ରୀ) ଅବିକଟା ।
ଅବିକଟାରଣ—ପୁଂ. ବ. ରାଜାଙ୍କୁ ମେଷସମୂହମଧ୍ୟରୁ ମେଷରୂପ କରଦାନ ।
ଅବିକତ୍ଥ—ତ୍ରି.ବ୍ରଂ.(ଅ + ବି + କତ୍ଥ + କ.ଅ) ଆତ୍ମଶ୍ଲାଘାରହିତ, ଅଗର୍ବିତ, ନିରହଙ୍କାର (ସ୍ତ୍ରୀ) ଅବିକତ୍ଥା ।
ଅବିକତ୍ଥନ—ତ୍ରି. ବ୍ରଂ. (ବ.ବ୍ରୀ) ଶ୍ଲାଘାଶୂନ୍ୟ, ଅଗର୍ବିତ, ନିରହଙ୍କାର (ସ୍ତ୍ରୀ) ଅବିକତ୍ଥନା, (ବ.କ୍ଲୀ) ଆତ୍ମଶ୍ଲାଘା ନ କରିବା, ଗର୍ବପ୍ରକାଶ ନ କରିବା ।
ଅବିକମ୍ପ—ତ୍ରି. ବ୍ରଂ. (ବ.ବ୍ରୀ) ଅଚଳ, ନିର୍ବିକଳ୍ପକ, ନିଃସଂଶୟ ।
ଅବିକଳ—ତ୍ରି. ବ୍ରଂ. ( ଅ + ବିକଳ ) ବ୍ୟାକୁଳ ନୁହେ, ଅବିସମ୍ବାଦ, ଅଖଣ୍ଡ, ଅଭଗ୍ନ, ଠିକ୍, ଯଥାତଥା ।
ଅବିକଳ୍ପ—ତ୍ରି. ବ୍ରଂ.(ବ.ବ୍ରୀ)ନିଃସନ୍ଦେହ, ନିଃସଂଶୟ, ପକ୍ଷାନ୍ତରରହିତ, (ବ. ପୁଂ) ଅସଂଶୟ ।
ଅବିକା—ଗ୍ରା. (ଅବ୍ୟ) ବର୍ତ୍ତମାନ, ଏହିକ୍ଷଣେ (ବ୍ରଂ) ଅବିକ୍ରୀତ, ବିକାହୋଇନଥିବା ।
ଅବିକାର—ପୁଂ. ବ. ଏକରୂପତା,ବିକାରର ଅଭାବ,ଘୃଣାରାହିତ୍ୟ, ବ୍ରଂ(ବ.ବ୍ରୀ) ଅଟଳ,ସ୍ଥିର,ଅପରିବର୍ତ୍ତିତ,ବିକାରଶୂନ୍ୟ, ନିର୍ବିକାର, ରାଗଦ୍ୱେଷହୀନ, (ସ୍ତ୍ରୀ) ଅବିକାରା ।
ଅବିକାରିଆ—ଗ୍ରା.ବ୍ରଂ. ପୁଂ. ସ୍ତ୍ରୀ. ଯାହାର ଘୃଣା ନାହିଁ, ନିର୍ବିକାର, ଭୂତପ୍ରେତାଦ ଆକର୍ଷଣ କରି ନ ଥିବା ।
ଅବିକାରୀ—ପୁଂ. ବ୍ରଂ. ( ନ + ବିକାରୀ ) ନ.ତତ୍; ବିକାରଜନକ ନୁହେ, (ସ୍ତ୍ରୀ) ଅବିକାରିଣୀ ।
ଅବିକାର୍ଯ୍ୟ—ତ୍ରି.ବ୍ରଂ.(ନ.ତତ୍ପ)ପରିଣାମରେ ଯାହାର କୌଣସି ବିକାର ଜାତ ହୁଏ ନାହିଁ, ଚିରସ୍ଥାୟୀ, (ସ୍ତ୍ରୀ) ଅବିକାର୍ଯ୍ୟା ।
ଅବିକୃତ—ତ୍ରି.ବ୍ରଂ.(ଅ + ବି + କୃ + ତ) ପ୍ରକୃତଗୁଣଯୁକ୍ତ, ଅବସ୍ଥାନ୍ତରିତ ନୁହେ, ପ୍ରକୃତ, ଯଥାର୍ଥ, ପୂର୍ବବତ୍, ଯଥାଭୂତ, ଖାଣି, ଅବିକୃତ୍, (ସ୍ତ୍ରୀ) ଅବିକୃତା ।

ଅବିକୃତ—ସ୍ତ୍ରୀ. ବି. (ଅ + ବିକୃତ) ଅପରିବର୍ତ୍ତିତ ଅବସ୍ଥା, ରୋଗଶୂନ୍ୟତା, ତ୍ରିଗୁଣର ସମତା ।

ଅବିକ୍ରମ—ବି. ବଂ. (ବ.ବ୍ରୀ) ପ୍ରତାପଶୂନ୍ୟ, ପରାକ୍ରମରହିତ, ଅପରାକ୍ରାନ୍ତ, ଭୀରୁ, (ସ୍ତ୍ରୀ) ଅବିକ୍ରମା,(ପୁଂ.ବି.)ବିକ୍ରମର ଅଭାବ, ପରାକ୍ରମରାହିତ୍ୟ, ଭୀରୁତା ।

ଅବିକ୍ରୟ—ପୁଂ. ବି. (ନ.ତତ୍ପୁ) ବିକ୍ରୟାଭାବ, ବିକ୍ରି ନ ହେବା ।

ଅବିକ୍ରାନ୍ତ—ପୁଂ.ବଂ. (ନ.ତତ୍ପୁ)ଅବିକ୍ରମ, ଅତୁଲନୀୟ, ଦୁର୍ବଳ, କମ୍‌ଜୋର, ସାହସହୀନ, ଭୀରୁ, (ସ୍ତ୍ରୀ) ଅବିକ୍ରାନ୍ତା ।

ଅବିକ୍ରିୟ—ବି. ବଂ. (ବ.ବ୍ରୀ) ଯାହାର କ୍ରିୟା ବିକାରପ୍ରାପ୍ତ ହୋଇନାହିଁ,ବିକାରଶୂନ୍ୟ, ଏକରୂପ, ଅବିକୃତ ।

ଅବିକ୍ରିୟା—ସ୍ତ୍ରୀ. ବି. (ନ.ତତ୍ପୁ) ଅବିକୃତ, ଏକରୂପତା ।

ଅବିକ୍ରୀତ—ବି. ବଂ. (ଅ + ବିକ୍ରୀତ) ଯେ ପଦାର୍ଥ ବିକ୍ରୀତ ହୋଇ ନାହିଁ ।

ଅବିକ୍ରେୟ—ବି. ବଂ. ( ଅ + ବିକ୍ରେୟ ) ଯାହା ବିକ୍ରୟକରିବାର ଯୋଗ୍ୟ ନୁହେ ।

ଅବିକ୍ଲବ—ପୁଂ. ବଂ. ( ଅ + ବିକ୍ଲବ ) ବୈକ୍ଲବ୍ୟ ରହିତ, ପ୍ରଶାନ୍ତ, ସ୍ଥିର (ସ୍ତ୍ରୀ) ଅବିକ୍ଲବା ।

ଅବିକ୍ଷତ—ବି. ବଂ. (ନ.ତତ୍ପୁ) ଅବିନଷ୍ଟ, ଦୂଷିତ ନୁହେ, ଅକ୍ଷତ, ଆଘାତପ୍ରାପ୍ତ, ଅଖଣ୍ଡିତ, ପୂର୍ଣ୍ଣ, (ସ୍ତ୍ରୀ) ଅବିକ୍ଷତା ।

ଅବିକ୍ଷିତ—ବି. ବଂ. ବିଶେଷରୂପେ କ୍ଷୟଶୂନ୍ୟ, ଯେ ବିଶିଷ୍ଟରୂପେ କ୍ଷୀଣ ନୁହେ ।

ଅବିକ୍ଷିପ—ବି. ବଂ. ବିକ୍ଷିପ୍ତ କରିବାକୁ ଅଶକ୍ତ ।

ଅବିକ୍ଷିପ୍ତ—ବି.ବଂ.(ଅ + ବିକ୍ଷିପ୍ତ)ନ.ତତ୍ପୁ; ଚଞ୍ଚଳ ନୁହେ, ଅଚଞ୍ଚଳ, ଅବିକୀର୍ଣ୍ଣ, ସାବଧାନ,ଅବିସ୍ମୃତ, ଯାହା ଚୂର୍ଣ୍ଣହୋଇଯାଇ ନାହିଁ ।

ଅବିକ୍ଷୀଣ—ବି. ବଂ. ବିଶେଷରୂପେ କ୍ଷୀଣ ନୁହେ । [ ବୃକ୍ଷ ।

ଅବିଗନ୍ଧା,ଅବିଗନ୍ଧିକା—ସ୍ତ୍ରୀ.ବି. ଅଜଗନ୍ଧା

ଅବିଗର୍ହିତ—ବି. ବଂ. ( ଅ + ବିଗର୍ହିତ ) ଅନିନ୍ଦିତ,ଅନିନ୍ଦ୍ୟ, ଅଦୂଷିତ,ସାଧୁସମ୍ମତ, ପ୍ରଶଂସିତ ।

ଅବିଗୀତ—ବି.ବଂ. (ନ.ତତ୍ପୁ) ଅନିନ୍ଦିତ, ଅବିଗର୍ହିତ, ପ୍ରଶଂସିତ, ପ୍ରଶସ୍ତ ।

ଅବିଗ୍ନ—ପୁଂ. ବି. (ଅ + ବିଜ୍ + ତ.ଣ) କରମର୍ଦ୍ଦ,କରମର୍ଦ୍ଦକ ବୃକ୍ଷ, ପାଣିଅଁଳା, (ବଂ.) ଉଦ୍‌ବିଗ୍ନ ନୁହେଁ ।

ଅବିଗ୍ରହ—ବି.ବଂ.(ବ.ବ୍ରୀ)ଯାହା ବିଶେଷରୂପେ ଜ୍ଞାତ ନୁହେ, ମୂର୍ତ୍ତିଶୂନ୍ୟ,ନିରାକାର, ଅଶରୀରୀ, ବିଗ୍ରହଶୂନ୍ୟ, (ସ୍ତ୍ରୀ) ଅବିଗ୍ରହା ।

ଅବିଘ୍ନ—ପୁଂ. ବି. ବିଘ୍ନାଭାବ, ଶୁଭ, (ବଂ) ଅବ୍ୟାଘାତ, ବିଘ୍ନଶୂନ୍ୟ, ନିର୍ବିଘ୍ନ ।

ଅବିଗୁଣ—ଗ୍ରା.ବି. ଅନିଷ୍ଟ, ମନ୍ଦ, ଦୁର୍ଗୁଣ, ଅଭିମାନ, ଅହିତ, ରୋଗ, ଅସନ୍ତୋଷ, ଝଗଡ଼ା, ଅବୁଝାପଣ ।

ଅବିଗୁଣିଆ—ଗ୍ରା.ବଂ. ପୁଂ. ସ୍ତ୍ରୀ. ଅନିଷ୍ଟକାରୀ, ଅହିତକର, ଯେ ଭଲ କଥାକୁ ମନ୍ଦ ବୁଝେ, ଏକଜିଦିଆ, ଦୋଷଯୁକ୍ତ ।

ଅବିଗୁଣୀ—ଗ୍ରା.ବଂ. ପୁଂ. ସ୍ତ୍ରୀ. ଅବିଗୁଣିଆ (ଦେଖ)

ଅବିଘ୍ନମସ୍ତୁ—(ବାକ୍ୟ) (ଅବିଘ୍ନଂ + ଅସ୍ତୁ) ଆରବ୍ଧ କାର୍ଯ୍ୟରେ କୌଣସି ବିଘ୍ନ ନ ଘଟୁ ।

ଅବିଘାତ—ବି. ବଂ. (ବ.ବ୍ରୀ) ଅବାଧ, ଅବ୍ୟାହତ,ଅବିଘ୍ନ, ଅପ୍ରତିବନ୍ଧ (ବି. ପୁଂ) ବାଧାଭାବ ।

ଅବିଘ୍ନେଶ୍ୱର—ପୁଂ.ବି.(୬ତତ୍ପୁ) ଗଣେଶ, ଲମ୍ବୋଦର ।

ଅବିଚଳ—ପୁଂ.ବି. (ଅ + ବିଚଳ) ଅବିଚଳିତ, ଅଚଞ୍ଚଳ, ଗତସ୍ଥାନ, ପ୍ରଶାନ୍ତ, ସ୍ଥିର, ଦୃଢ଼, ଅବ୍ୟାକୁଳ, ଅଟଳ ।

ଅବିଚକ୍ଷଣ—ବି.ବଂ. ( ନ.ତତ୍ପୁ ) ଅପଟୁ, ମନ୍ଦ, ବିଚକ୍ଷଣ ନୁହେ, ଅଦକ୍ଷ, ଅନାଡ଼ି, ଅବିବେକୀ ।

ଅବିଚଳିତ—ବି. ବଂ. (ନ.ତତ୍ପୁ) ସ୍ଥିର, ଦୃଢ଼, ଅବ୍ୟାକୁଳ, (ସ୍ତ୍ରୀ) ଅବିଚଳିତା ।

ଅବିଚଳ—ବି. ବଂ. ଅତିଶୟ ଚଳନରହିତ ।

ଅବିଚାର—ପୁଂ.ବି.(ନ. ତତ୍ପୁ) ଅନ୍ୟାୟ, ଅତ୍ୟାଚାର, ଅବିବେଚନା, ଅନ୍ୟାୟବିଚାର, ବିଚାରାଭାବ, (ବଂ) ବିଚାରରହିତ, ବିବେଚନାଶୂନ୍ୟ ।

ଅବିଚାରକ—ପୁଂ. ବଂ. (ନ. ତତ୍ପୁ) ଯେ ବିଚାର କରେ ନାହିଁ, ଅବିବେଚକ, ଅନୁଚିତବିଚାରକର୍ତ୍ତା (ସ୍ତ୍ରୀ) ଅବିଚାରିକା ।

ଅବିଚାରିତ—ତ୍ରି. ବଂ. (ନ.ତତ୍ପୁ) ଅବିବେଚିତ, ଯାହାର ବିଚାର କରାହୋଇନାହିଁ ।

ଅବିଚାରୀ—ପୁଂ.ବଂ(ଅ + ବିଚାର + ଇନ୍) ଅବିଚାରକ, (ସ୍ତ୍ରୀ) ଅବିଚାରିଣୀ ।

ଅବିଚାରେ—ଗ୍ରା. କ୍ରି. ବଂ. ନିଃସଂଶୟେ, ଅନ୍ୟାୟପୂର୍ବକ ।

ଅବିଚାର୍ଯ୍ୟ—ବି. ବଂ. ( ଅ + ବିଚାର୍ଯ୍ୟ ) ବିଚାରର ଅଯୋଗ୍ୟ ।

ଅବିଚଳି—କ୍ରି.ବଂ. ସ୍ଥିରଭାବେ ।

ଅବିଚିନ୍ତ୍ୟ—ବି. ବଂ. (ନ.ତତ୍ପୁ;) ଅଚିନ୍ତନୀୟ, ଅଭାବନୀୟ, ଚିନ୍ତାତୀତ ।

ଅବିଚେତନ—ବି. ବଂ. ଜ୍ଞାନରହିତ, ବିଜ୍ଞାନରହିତ ।

ଅବିଚ୍ଛିନ୍ନ—ବି.ବଂ. (ଅ + ବି + ଛିଦ୍ + ତ) ନ.ତତ୍ପୁ; ଅବିରାମ, ଧାରାବାହିକ, ସଂଲଗ୍ନ, ଯୁକ୍ତ, ଛିନ୍ନ ହୋଇ ନ ଥିବା, ଅସ୍ୱତନ୍ତ୍ର, ଅତୁଟ, ସନ୍ତତ ।

ଅବିଚ୍ଛିନ୍ନେ—ଗ୍ରା. କ୍ରି. ବଂ. ଅବିରତ, ସର୍ବଦା ।

ଅବିଚ୍ଛେଦ—ପୁଂ. ବି. ( ଅ + ବିଚ୍ଛେଦ ) ନ. ତତ୍ପୁ; ଅବିରହ, ବିଚ୍ଛେଦାଭାବ, ଅବାଧରେ, ସଙ୍ଗତ (ବଂ) ବିଚ୍ଛେଦଶୂନ୍ୟ, ସଂଲଗ୍ନ, ଅଖଣ୍ଡିତ, ମିଳିତ, କ୍ରମାନ୍ୱୟସଂଯୁକ୍ତ ।

ଅବିଚ୍ଛେଦେ—ଗ୍ରା. କ୍ରି. ବଂ. ବିଚ୍ଛେଦବ୍ୟତିରେକେ, ଏକାଦିକ୍ରମେ, ଧାରାବାହିକରୂପେ ।

ଅବିଚ୍ଛେଦ୍ୟ—ବି. ବଂ. (ନ.ତତ୍ପୁ) ବିଚ୍ଛେଦର ଅଯୋଗ୍ୟ, ଯାହା ବିଚ୍ଛିନ୍ନ କରିନ ହୁଏ ।

ଅବିଜା—ଗ୍ରା.ବି. (ଅ + ବୀଜ) ବେଧୁଆ, କାରକ, ଅନିର୍ଦ୍ଦିଷ୍ଟ ପିତୃକ ।

ଅବଙ୍କ—ତ୍ରି. ବିଂ. (ଅ + ବଙ୍କ) ନ.ତତ୍ପୁ, ପ୍ରବୀଣ ନୁହେଁ, ଅନିପୁଣ,ମୂର୍ଖ, ଅନଭିଜ୍ଞ, (ସ୍ତ୍ରୀ) ଅବଙ୍କା ।

ଅବଙ୍କତା—ସ୍ତ୍ରୀ. ବି. ( ଅବଙ୍କ + ଭା.ତା ) ଅନଭିଜ୍ଞତା, ଅଦୂରଦର୍ଶିତା ।

ଅବଜ୍ଞାତ—ତ୍ରି.ବିଂ. (ନ.ତତ୍ପୁ,) ବିଶେଷ-ରୂପେ ଅଜ୍ଞାତ, ଅଜଣା, ଅବିଦିତ, (ସ୍ତ୍ରୀ) ଅବିଜ୍ଞାତା ।

ଅବିଜ୍ଞାତା—ପୁଂ ବିଂ (ଅବିଜ୍ଞ + ତୃ) ଜଡ଼, ଅଜ୍ଞ,(ସ୍ତ୍ରୀ) ଅବିଜ୍ଞାତ୍ରୀ (ବି) ପରମେଶ୍ୱର, ପରଂବ୍ରହ୍ମ ।

ଅବିଜ୍ଞେୟ—ତ୍ରି. ବିଂ. ( ଅ + ବିଜ୍ଞେୟ ) ନ.ତତ୍ପୁ; ଦୁର୍ଜ୍ଞେୟ, ଯାହା ସହଜରେ ଜଣାଯାଏ ନାହିଁ, ଅଜ୍ଞେୟ ।

ଅବିଡ଼ୀନ--କ୍ଲୀ.ବି.(ନ.ତତ୍ପୁ)ପକ୍ଷୀମାନଙ୍କର ସମ୍ମୁଖ ଦିଗରେ ଗମନ ।

ଅବିତ—ତ୍ରି. ବିଂ.(ଅବ + ମିଂ.ତ) ପାଳିତ, ରକ୍ଷିତ, ତ୍ରାତ (ସ୍ତ୍ରୀ) ଅବିତା ।

ଅବିତଥ—କ୍ଲୀ.ବି. (ଅ + ବିତଥ)ନ.ତତ୍ପୁ, ସତ୍ୟ, (ବିଂ) ସତ୍ୟବିଶିଷ୍ଟ, ଯଥାର୍ଥ, ଅମୋଘ, ସଫଳ ।

ଅବିତଥ୍ୟ—କ୍ଲୀ. ବି. (ଅବିତଥ + ଭା,ଯ) ସତ୍ୟତା, ଯଥାର୍ଥ (ଗ୍ରା.ବି) ତଥ୍ୟସନ୍ଧାନ, ସମ୍ବାଦ ।

ଅବିତର୍କିତ—ତ୍ରି. ବିଂ. (ନ.ତତ୍ପୁ) ଅଚିନ୍ତିତ, ଅଭାବିତ ।

ଅବିତର୍କ୍ୟ—କ୍ଲୀ. ବି. (ନ.ତତ୍ପୁ) ତର୍କ-କରିବାକୁ ଅସମର୍ଥ, ଯାହା ତର୍କଦ୍ୱାରା ଜଣା ଯାଏ ନାହିଁ ।

ଅବିତା—ପୁଂ. ବିଂ. (ଅବ + ତୃ) ରକ୍ଷକ, (ସ୍ତ୍ରୀ) ଅବିତ୍ରୀ ।

ଅବିତାରୀ—ପୁଂ.ବିଂ. ଅନପାୟିନ୍, (ସ୍ତ୍ରୀ) ଅବିତାରିଣୀ, ଅନପାୟିନୀ ।

ଅବିତ୍ତ—ତ୍ରି. ବିଂ. ( ଅ + ବିଦ୍ + ତ ) ନ. ତତ୍ପୁ; ଅବିଖ୍ୟାତ, (ବ.ସ୍ତ୍ରୀ) ଧନ-ରହିତ ।

ଅବିତ୍ତି—ସ୍ତ୍ରୀ.ବି.(ଅ + ବିଦ୍ + ତି) ଜ୍ଞାନା-ଭାବ, ଅଲାଭ, ( ବିଂ ) ଜ୍ଞାନଶୂନ୍ୟ, ଲାଭଶୂନ୍ୟ ।

ଅବିତୃପ୍ତ—ତ୍ରି. ବିଂ. (ନ.ତତ୍ପୁ) ଅତୃପ୍ତ, ଅସନ୍ତୁଷ୍ଟ, (ସ୍ତ୍ରୀ) ଅବିତୃପ୍ତା ।

ଅବିତୃଷ୍ଣ—ପୁଂ.ବିଂ.(ନ + ବିତୃଷ୍ଣା)ବ.ସ୍ତ୍ରୀ; ସତୃଷ୍ଣ, ସାକାଂକ୍ଷ,ଅଭିଳାଷ,(ସ୍ତ୍ରୀ)ଅବି-ତୃଷ୍ଣା (ବି) ଅବିତୃଷ୍ଣତା ।

ଅବିତ୍ୟଜ—ବି. ପୁଂ. କ୍ଲୀ. ( ଅ + ବି + ତ୍ୟଜ୍ + ଅ) ପାରଦ, ପାରା ।

ଅବିଥୁର—ତ୍ରି.ବିଂ.(ଅ + ବ୍ୟଥ୍ + ଉର) ନ.ତତ୍ପୁ; ଅବିଯୁକ୍ତ ।

ଅବିଥ୍ୟ—ତ୍ରି. ବିଂ. (ଅବି + ଥ୍ୟ) ମେଷର ଯୋଗ୍ୟ, (ସ୍ତ୍ରୀ) ଅବିଥ୍ୟା ।

ଅବିଥ୍ୟା—ସ୍ତ୍ରୀ.ବି. (ଅ + ବିଥ୍ୟା)ଯୂଥିବୃକ୍ଷ, ଯୂଇଗଛ ।

ଅବିଦଗ୍ଧ—ତ୍ରି. ବିଂ. ଅସମ୍ୟକ୍‌ଦଗ୍ଧ, ଅଜୀର୍ଣ୍ଣ, ଅପଣ୍ଡିତ, ମୂଢ଼, ଅରସିକ, ବିବାହସ୍ୱଳନ ।

ଅବିଦାସୀ—ପୁଂ. ବିଂ. ଅସନ୍ତାପକ, (ସ୍ତ୍ରୀ) ଅବିଦାହିଣୀ ।

ଅବିଦିତ—ତ୍ରି.ବିଂ.(ଅ + ବିଦିତ)ନ.ତତ୍ପୁ; ଅଜ୍ଞାତ, ଯାହା ଜଣାନାହିଁ, ଅପରିଚିତ, ପରମେଶ୍ୱର, ଅଜଣା ।

ଅବିଦୁଗ୍ଧ—କ୍ଲୀ.ବି. ମେଷୀଦୁଗ୍ଧ,ମେଣ୍ଢୀ-ଦୁଗ୍ଧ ।

ଅବିଦୂର—କ୍ଲୀ.ବି. ଦୂର ନୁହେଁ, ସମୀପ, (ବିଂ) ନିକଟସ୍ଥ, ସମୀପବର୍ତ୍ତୀ ।

ଅବିଦୂସ—କ୍ଲୀ.ବି. (ଅବି + ଦୂସ୍) ମେଷ-ଦୁଗ୍ଧ, ମେଣ୍ଢୀକ୍ଷୀର ।

ଅବିଦ୍ଧକର୍ଣ୍ଣୀ—କ୍ଲୀ. ବି. ( ଅ + ବିଦ୍ଧ + କର୍ଣ୍ଣ + ଈ ) ପାଠ ଲତା, ବନତିକ୍ତିକା ଲତା, ଅକାନବିନ୍ଧ ଗଛ ।

ଅବିଦ୍ୟ—ବିଂ. ବ.ସ୍ତ୍ରୀ; ( ଅ + ବିଦ୍ୟା ) ଅକୃତବିଦ୍ୟ, ମୂର୍ଖ, ଅଜ୍ଞ, ଅଶିକ୍ଷିତ, (ସ୍ତ୍ରୀ) ଅବିଦ୍ୟା (ବି) ଅବିଦ୍ୟତା ।

ଅବିଦ୍ୟମାନ—ତ୍ରି. ବିଂ. (ଅ + ବିଦ୍ୟମାନ) ବର୍ତ୍ତମାନ ନୁହେଁ, ଯାହା ବର୍ତ୍ତମାନ ନାହିଁ, ଅଦର୍ଶନ, ଅଭାବ, ଅଦୃଷ୍ଟ (ସ୍ତ୍ରୀ) ଅବିଦ୍ୟମାନା, (ବି) ଅବିଦ୍ୟମାନତା ।

ଅବିଦ୍ୟା—ସ୍ତ୍ରୀ. ବି.(ଅ + ବିଦ୍ୟା) ଅଜ୍ଞତା, ମୂର୍ଖତା, ଅଜ୍ଞାନ, ସଂସାରମାୟା, ଅହଂ-ଭାବ, ତମଃ, ମୋହ, ତାମିସ୍ର, ମହା-ମୋହ, ଅନ୍ଧତାମିସ୍ର, ମାୟାଚ୍ଛନ୍ନ ଜ୍ଞାନ-ପ୍ରକୃତି, ଜଡ଼ ପ୍ରକୃତି ଯୁକ୍ତାସ୍ୱବିଶେଷ, ବେଶ୍ୟା, ରକ୍ଷିତା ସ୍ତ୍ରୀ, (ବିଂ) ଶାସ୍ତ୍ରାଦି ଜ୍ଞାନଶୂନ୍ୟ ।

ଅବିଧାୟୁ—ତ୍ରି. ବିଂ. ଧାୟମାନ ।

ଅବିନ୍ଧ୍ୟା—ସ୍ତ୍ରୀ. ବିଂ. ପ୍ରଶସ୍ତା, ଅନିନ୍ଦା-ଗାମିନୀ ।

ଅବିଦ୍ୱେଷ—ପୁଂ.ବି. (ନ.ତତ୍ପୁ) ବିରୋଧର ଅଭାବ, ଅନୁରାଗ, (ବିଂ) ଅନୁରାଗଯୁକ୍ତ ।

ଅବିଧବା—ସ୍ତ୍ରୀ. ବିଂ. ( ଅ + ବି + ଧବ ) ବ.ସ୍ତ୍ରୀ. ବିଧବା ନୁହେଁ, ସଧବା, ଜୀବ-ଭର୍ତ୍ତୃକା ।

ଅବିଧ—ତ୍ରି. ବିଂ. (ଅ + ବିଧା) ବ. ସ୍ତ୍ରୀ; ପ୍ରକାରଶୂନ୍ୟ, ବିଶେଷଣଶୂନ୍ୟ ।

ଅବିଧା—ସ୍ତ୍ରୀ. ବି. ନ.ତତ୍ପୁ; (ଅ + ବିଧା) ପ୍ରକାରର ଅଭାବ, ସୁଯୋଗର ଅଭାବ, ବିଶେଷଣର ଅଭାବ ।

ଅବିଧାନ—କ୍ଲୀ. ବି. ( ଅ + ବିଧାନ ) ନ.ତତ୍ପୁ; ଅବିଧି, ନିୟମର ଅଭାବ, ବେନିୟମ, ଅବ୍ୟବସ୍ଥା, ଅନୁଚିତ କର୍ମ, ଅନ୍ୟାୟ ବିଧି,ଅକରଣୀୟତା, ଅଶାସ୍ତ୍ରୀୟ ବ୍ୟବସ୍ଥା ।

ଅବିଧି—ପୁଂ.ବି.(ଅ + ବିଧି)ବିଧିର ଅଭାବ, ଅନୁଚିତ କର୍ମ, (ବିଂ) ଅବିଧେୟ, ଅବିହିତ ।

ଅବିଧିରେ—ଗ୍ରା. କ୍ରି. ବିଂ. ଅଯଥା ।

ଅବିଧେୟ—ବିଂ.(ଅ + ବିଧେୟ)ଅଯୋଗ୍ୟ, ଅନୁଚିତ, ଅକର୍ତ୍ତବ୍ୟ, ପ୍ରତିକୂଳ, (ସ୍ତ୍ରୀ) ଅବିଧେୟା ।

ଅବିଧ୍ୱଂସୀ—ବିଂ. (ଅ + ବିଧ୍ୱଂସିନ୍) ଅବି-ନାଶୀ, ଚିରସ୍ଥାୟୀ, ଅସରନ୍ତି, ଅମର, (ବି) ଅବିଧ୍ୱଂସିତା ।

ଅବିନ—ପୁଂ.ବି. (ଅବ + କ.ଇନ୍)ବହ୍ନି, ବାୟୁ, ରାଜା, ସମୁଦ୍ର,(ବିଂ)ଯାଗକର୍ତ୍ତା, ଅଧ୍ୱର୍ଯ୍ୟୁ,ଯଜୁର୍ବେଦଜ୍ଞାତା,(ସ୍ତ୍ରୀ) ଅବିନା ।

ଅବିନତ—ବିଂ. (ଅ + ବିନତ) ଯେ ବିନୟୀ ନୁହେଁ, ଅନମ୍ର, ଅନତ, (ସ୍ତ୍ରୀ) ଅବିନତା ।

**ଅବିନୟ**—ପୁଂ.ବି. (ଅ+ବିନୟ) ବିନୟର ଅଭାବ, ଔଦ୍ଧତ୍ୟ, ଧୃଷ୍ଟତା, ଅଶିଷ୍ଟ-ବ୍ୟବହାର,(ସ୍ତ୍ରୀ)ଅବିନୟା(ବିଂ)ଅବିନୀତ।

**ଅବିନଶ୍ୱର**—ତ୍ରି. ବିଂ. (ଅ+ବିନଶ୍ୱର) ଅବିନାଶୀ, ଚିରସ୍ଥାୟୀ, ଅକ୍ଷୟ, (ପୁଂ) କୂଟସ୍ଥ ପୁରୁଷ।

**ଅବିନାଭାବ**—ପୁଂ. ବି. (୬ତତ୍) ନିଜ ସମ୍ବନ୍ଧ, କାର୍ଯ୍ୟ ଓ କାରଣର ଅବଶ୍ୟମ୍ଭାବୀ ସମ୍ବନ୍ଧ ନ ଥିଲେ ନ ଥିବା।

**ଅବିନାଭାବୀ**—ତ୍ରି.ବିଂ. (ଅ+ବିନା+ଭୂ+ଇନ୍) ବ୍ୟାପ୍ୟ।

**ଅବିନାଭୂତ**—ତ୍ରି. ବିଂ. (ଅ+ବିନା+ଭୂତ) ବ୍ୟାପ୍ତ, ବ୍ୟାପ୍ୟବ୍ୟାପକଭାବ ସମ୍ବନ୍ଧ, ସମ୍ବନ୍ଧ ମାତ୍ର।

**ଅବିନାଶ**—ପୁଂ. ବି. (ଅ+ବିନାଶ) ବିନାଶ ନ ହେବା, (ବିଂ) ଚିରନ୍ତନ।

**ଅବିନାଶୀ**—ପୁଂ. ବିଂ. (ଅ+ବିନାଶୀ) ନ.ତତ୍; ଅବିନଶ୍ୱର, ନିତ୍ୟ, ଶାଶ୍ୱତ, ଅକ୍ଷୟ (ସ୍ତ୍ରୀ) ଅବିନାଶିନୀ।

**ଅବିନୀତ**—ପୁଂ. ବିଂ. (ଅ+ବିନୀତ) ନ.ତତ୍;ବିନୟଶୂନ୍ୟ,ଅଶିକ୍ଷିତ,କୁବିଷୟାସକ୍ତ,ଅଦାନ୍ତ,ଗର୍ବୀ, ଦୁଷ୍ଟ, ଧୃଷ୍ଟ, ଉଦ୍ଧତ, ଅସତ୍, ଅସଂଯତ, ପ୍ରଗଲ୍ଭ, ଅଶାନ୍ତ, (ସ୍ତ୍ରୀ) ଅବିନୀତା (ବି) ଅବିନୟ।

**ଅବିନୀତା**—ସ୍ତ୍ରୀ. ବିଂ. (ନ.ତତ୍) ଅଶିଷ୍ଟା, ଉଦ୍ଧତସ୍ୱଭାବା, ଅସତୀ, କୁଳଟା, (ବି) ଦୁଷ୍ଟା ସ୍ତ୍ରୀ, କୋପନା ସ୍ତ୍ରୀ।

**ଅବିନୀୟ**—ପୁଂ.ବି. (ଅ+ବି+ନୀ+ଯ) କଲ୍କଭିନ୍ନ, ପିଷ୍ଟଔଷଧଭିନ୍ନ, ପାପଭିନ୍ନ, (ବିଂ) ଚୂର୍ଣ୍ଣଔଷଧଶୂନ୍ୟ, ପାପଶୂନ୍ୟ, କପଟଶୂନ୍ୟ,(ତ୍ରି.ବିଂ)ବିନୟ ନ କରି।

**ଅବିନେୟ**—ତ୍ରି.ବିଂ.(ଅ+ବି+ନୀ+ଯ) ନ.ତତ୍; ଦୁର୍ଦ୍ଦମନୀୟ, ବ୍ୟାଘ୍ରାଦି ଜନ୍ତୁ।

**ଅବିନ୍ଧ୍ୟ**—ପୁଂ. ବି. ରାକ୍ଷସବିଶେଷ।

**ଅବିନ୍ୟସ୍ତ**—ତ୍ରି. ବିଂ. (ନ.ତତ୍) ଯାହାର ବିନ୍ୟାସ କରା ହୋଇ ନାହିଁ, ଅସଜ୍ଜିତ, (ସ୍ତ୍ରୀ) ଅବିନ୍ୟସ୍ତା।

**ଅବିନ୍ୟାସ**—ପୁଂ.ବି. (ନ.ତତ୍) ବିନ୍ୟାସର ଅଭାବ, ସଜ୍ଜା ନହେବା, ସ୍ଥାପନ ନ କରିବା, ଗଚ୍ଛିତ ନ ରଖିବା, ଖରାପଭାବରେ ସଜେଇବା।

**ଅବିପକ୍ଷ**—ପୁଂ. ବିଂ. (ବ.ବ୍ରୀ) ବିପକ୍ଷରହିତ, ପ୍ରତିପକ୍ଷଶୂନ୍ୟ, ପ୍ରତିଦ୍ୱନ୍ଦ୍ୱୀବିହୀନ, ଶତ୍ରୁହୀନ,ଅପ୍ରତିପକ୍ଷ,ଅପ୍ରତିଦ୍ୱନ୍ଦ୍ୱୀ, ଅପ୍ରତିକୂଳ,ଅନନୁକୂଳ,(ସ୍ତ୍ରୀ) ଅବିପକ୍ଷା।

**ଅବିପଟ**—ପୁଂ.ବି. (କ.ଧା) ମେଷଲୋମର ବସ୍ତ୍ର, ପଶମୀ କପଡ଼ା,କମ୍ବଳାଦି।

**ଅବିପନ୍ନ**—ତ୍ରି.ବିଂ.(ଅ+ବିପନ୍ନ)ନ.ତତ୍; ବିପଦ୍ଗ୍ରସ୍ତ ନୁହେ, ଅସଙ୍କଟାପନ୍ନ, ଅକ୍ଷତ, ଅକଳଙ୍କିତ, ଅମଳିନ, ଅଦୂଷିତ, ଅନାହତ, (ସ୍ତ୍ରୀ) ଅବିପନ୍ନା।

**ଅବିପଶ୍ଚିତ୍**—ପୁଂ.ବିଂ.(ନ.ତତ୍)ବିଚାରଶୂନ୍ୟ, ତାତ୍ପର୍ଯ୍ୟଜ୍ଞାନଶୂନ୍ୟ, ଅବିବେକୀ, ମୂର୍ଖ, ଅପଣ୍ଡିତ, ଅବିଦ୍ୟ, ଅବିଜ୍ଞ, (ସ୍ତ୍ରୀ) ଅବିପଶ୍ଚିତା।

**ଅବିପାକ**—ପୁଂ.ବି. (ନ.ତତ୍) ଫଳରୂପେ ଅପରିଣତ ଧର୍ମ ଓ ଅଧର୍ମପ୍ରଭୃତି, ଅପାକରୋଗବିଶେଷ, ଦୁର୍ଗତିସ୍ଥାନତା, ଭଲ ଅବସ୍ଥା, ଫଳାଦିର ପାଚିଲାର ଅଭାବ।

**ଅବିପାଳ**—ତ୍ରି. ବିଂ. ମେଷପାଳକ।

**ଅବିପୁଳ**—ତ୍ରି.ବିଂ.ବିପୁଳ ନୁହେ, କ୍ଷୁଦ୍ର, କମ୍। [କୁଶଳ।

**ଅବିପ୍ର**—ପୁଂ. ଚଂ. ଅମେଧାବୀ, ଅସୁଡ଼-

**ଅବିପ୍ରକୃଷ୍ଟ**—ତ୍ରି. ବିଂ. (ନ.ତତ୍) ଦୂରସ୍ଥ ନୁହେ, ନିକଟସ୍ଥ, ଅଦୂର, (ସ୍ତ୍ରୀ) ଅବିପ୍ରକୃଷ୍ଟା।

**ଅବିପ୍ରତିହତ**—ତ୍ରି.ବିଂ. (ନ.ତତ୍) ପାଦଦ୍ୱାରା ଅନାକ୍ରାନ୍ତ, ଗମନାଗମନରହିତ, ଅକ୍ଷୁଣ୍ଣ।

**ଅବିପ୍ରିୟ**—ପୁଂ.ବି.(ନ.ତତ୍)ଅନପକାର, ଆନୁକୂଲ୍ୟ,ଶ୍ୟାମାକାତୃଣ, ଶୁଆଁ, ଅବିର, (ବିଂ) ବିରକ୍ତିକର ନୁହେ, ଆନନ୍ଦଜନକ,ଅପ୍ରତିକୂଳ,ଇଷ୍ଟ,ପ୍ରିୟ,ଅନବଜ୍ଞାତ, ଅବିରକ୍ତିକର, (ସ୍ତ୍ରୀ) ଅବିପ୍ରିୟା।

**ଅବିପ୍ଳୁତ**—ତ୍ରି. ବିଂ. (ଅ+ବି+ପ୍ଳୁ+ମି.ତ) ଯେ ଲମ୍ଫଦେଇ ଯାଏ ନାହିଁ, ଅକ୍ଷତ, ଅବିନଷ୍ଟ, ଅବିଧ୍ୱଂସୀ,ଅବାଧରେ ପ୍ରବର୍ତ୍ତିତ, ଆଚରିତ, ଅନୁପଦ୍ରୁତ, ଅବିପର୍ଯ୍ୟସ୍ତ, ଅଦୂଷିତ, ଯାହା ଜଳରେ ପ୍ଳାବିତ ହୋଇନାହିଁ, ଯେ କୌଣସି ବ୍ରତରୁ ସ୍ଖଳିତ ହୋଇ ନାହିଁ, ରାଜାଶୂନ୍ୟ,ଯୁଦ୍ଧରନାମବିପ୍ଳବ,(ସ୍ତ୍ରୀ)ଅବିପ୍ଳୁତା

**ଅବିପ୍ଳୁତବ୍ରହ୍ମଚର୍ଯ୍ୟ**—ପୁଂ.ବିଂ. (ବ.ବ୍ରୀ) ଯେଉଁ ବ୍ୟକ୍ତି ବ୍ରହ୍ମଚର୍ଯ୍ୟବ୍ରତରୁ ଆଦୌ ସ୍ଖଳିତ ହୋଇନାହିଁ, ଯେ ଆଦୌ ବୀର୍ଯ୍ୟପାତ କରି ନାହିଁ।

**ଅବିଭକ୍ତ**—ତ୍ରି. ବିଂ. (ଅ+ବିଭକ୍ତ) ବିଭାଗରହିତ, ଅଖଣ୍ଡିତ, ବଣ୍ଟାହୋଇ ନ ଥିବା, ଏକଭାବାପନ୍ନ, ଭେଦରହିତ, ଯାହାକୁ ଏକାଧିକ ମାଲିକ ଏକତ୍ର ଭୋଗକରନ୍ତି, ଇଜମାଲି (ସ୍ତ୍ରୀ) ଅବିଭକ୍ତା।

**ଅବିଭାଗ**—ବି. (ଅ+ବିଭାଗ) ବିଭକ୍ତହୋଇ ନ ଥିବା ଅବସ୍ଥା, ଇଜମାଲି ଅବସ୍ଥା।

**ଅବିଭାବନୀୟ**-ବିଂ. (ଅ+ବିଭାବ+ଅନୀୟ) ନ.ତତ୍;ଅବିତର୍କ୍ୟ, ଅବୋଧ।

**ଅବିଭାବିତ**—ତ୍ରି.ବିଂ.(ନ.ତତ୍)ଅଲକ୍ଷିତ, ଅବିତର୍କିତ, ଅଚିନ୍ତିତ, ଯାହାକୁ ଲକ୍ଷ୍ୟକରାଯାଏ ନାହିଁ।

**ଅବିଭାଜ୍ୟ**—ତ୍ରି. ବିଂ.(ଅ+ବି+ଭଜ୍+ଯ) ନ.ତତ୍; ଯାହା ବିଭାଗଯୋଗ୍ୟ ନୁହେ, ସୂକ୍ଷ୍ମ,ଯାହା ଭାଗକରା ହୁଏନାହିଁ, (ସ୍ତ୍ରୀ) ଅବିଭାଜ୍ୟା।

**ଅବିଭ୍ରମ**—ପୁଂ.ବି. (ନ.ତତ୍) ଧୀରତା।

**ଅବିମିଶ୍ର**—ତ୍ରି. ବିଂ. (ନ.ତତ୍) ଯାହାର ମିଶ୍ରଣ କରାହୋଇ ନାହିଁ, ବିଶୁଦ୍ଧ, ଖାଣ୍ଟି, ଭେଲମିଶା ନୁହେ (ସ୍ତ୍ରୀ) ଅବିମିଶ୍ରା।

**ଅବିମୁକ୍ତ**—ତ୍ରି. ବିଂ. (ଅ+ବିମୁକ୍ତ) ନ.ତତ୍; ଯାହା ବିମୁକ୍ତ ହୋଇନାହିଁ, ଅପରିତ୍ୟକ୍ତ, ବଦ୍ଧ, ଯେ ମୁକ୍ତିଲାଭ କରିପାରେ ନାହିଁ (ବି) କାଶୀକ୍ଷେତ୍ର, ଆନମଦୁରା, କାନମୁଣ୍ଡା, (ସ୍ତ୍ରୀ) ଅବିମୁକ୍ତା।

ଅବିମୁକ୍ତେଶ୍ୱର—ପୁଂ. ବି. (୬ତତ୍ପୁ) କାଶୀସ୍ଥ ଶିବଲିଙ୍ଗଭେଦ, କାଶୀ-ବିଶ୍ୱନାଥ ।

ଅବିମୃଷ୍ୟ—ତ୍ରି. ବିଂ. ନ.ତତ୍ପୁ; (ଅ+ବି+ମୃଷ୍+ଯ)ଅବିବେଚକ, ନିଃସନ୍ଦିଗ୍ଧ, ସନ୍ଦେହର ଯୋଗ୍ୟ, ଅବିଗୃହ୍ୟ ।

ଅବିମୃଷ୍ୟକାରିତା—ସ୍ତ୍ରୀ.ବି. ଅବିବେଚନା, ଅବିବେକିତା, ଅଖାଡ଼ୁପଣିଆଁ, ଅବି-ବେଚକତା ।

ଅବିମୃଷ୍ୟକାରୀ—ପୁଂ.ବିଂ. (ଅବିମୃଷ୍ୟ+କୃ+କ.ଇନ୍) ଯେ ଭାବିଚିନ୍ତି କାର୍ଯ୍ୟ-ନ କରେ, ଅଦୂରଦର୍ଶୀ, ଅବିବେଚକ, (ସ୍ତ୍ରୀ ଅବିମୃଷ୍ୟକାରିଣୀ ।

ଅବିମୃଷ୍ୟବାଦୀ—ପୁଂ. ବିଂ.(ଅବିମୃଷ୍ୟ+ବଦ୍+କ,ଇନ୍) ଅବିବେଚ୍ୟଭାଷୀ,ଯେ, ଆଗପଛ ନ ବିଚାରି କଥା କହେ, (ସ୍ତ୍ରୀ) ଅବିମୃଷ୍ୟବାଦିନୀ ।

ଅବିମୃଷ୍ୟଭାଷୀ—ପୁଂ. ବିଂ. (ଅବି+ମୃଷ୍ୟ+ଭାଷ୍+କ.ଇନ୍) ବିବେଚନା ନକରି ଯେ କଥାକହେ (ସ୍ତ୍ରୀ) ଅବିମୃଷ୍ୟଭାଷିଣୀ, (ଭା.) ଅବିମୃଷ୍ୟଭାଷିତା ।

ଅବିଯୁକ୍ତ—ତ୍ରି.ବିଂ. (ନ.ତତ୍ପୁ)ଅବିଚ୍ଛିନ୍ନ, ସଂଯୁକ୍ତ,ମିଳିତ, ଅବିରହିତ, (ସ୍ତ୍ରୀ) ଅବି-ଯୁକ୍ତା ।

ଅବିୟୋଗ—ପୁଂ. ବି. ନ.ତତ୍ପୁ; (ଅ+ବିୟୋଗ)ବିୟୋଗର ଅଭାବ, ସଂଯୋଗ, ସାହଚର୍ଯ୍ୟ,ଅମରଣ(ବିଂ, ବିୟୋଗଶୂନ୍ୟ, ସଂଯୁକ୍ତ ।

ଅବିୟୋଗବ୍ରତ—କ୍ଲୀ.ବି. ଯେ ବ୍ରତକଲେ ସ୍ୱାମୀସହିତ ବିୟୋଗ ହୁଏ ନାହିଁ, ଅବୈଧବ୍ୟବ୍ରତ ।

ଅବିରମ—ପୁଂ. ବି. ବିରାମର ଅଭାବ । ଅବିଚ୍ଛେଦ (ବିଂ; ସନ୍ତତ,ଅବିଶ୍ରାନ୍ତ,ଅନ-ବରତ ।

ଅବିରକ୍ତ—ପୁଂ. ବିଂ. (ଅ+ବିରକ୍ତ) ଅନୁରକ୍ତ,ଆସକ୍ତ, ବିରକ୍ତିହୀନ,ଉଦାସୀନ, (ସ୍ତ୍ରୀ) ଅବିରକ୍ତା ।

ଅବିରଣ—କ୍ଲୀ.ବି.ଅବିନାଶ,ଅବିଗତରଣ, ସଂଗ୍ରାମନାଶ ।

ଅବିରତ—ତ୍ରି. ବିଂ. ନ.ତତ୍ପୁ (ଅ+ବି+ରମ୍+ତ)ସତତ, ଅନବରତ, ଅଶ୍ରାନ୍ତ, ଅନିଶ, ନିଯୁକ୍ତ, ଆସକ୍ତ, ଅବିଶ୍ରାନ୍ତ, (ସ୍ତ୍ରୀ) ଅବିରତା ।

ଅବିରତି—ସ୍ତ୍ରୀ. ବି. ନିବୃତ୍ତିର ଅଭାବ, ବିଷୟରେ ସ୍ଥିରଚିତ୍ତ, ବିରାମର ଅଭାବ, ଅସଂଯମ ।

ଅବିରତେ—ଗ୍ରା.କ୍ରି.ବିଂ. ସତତ,ସର୍ବଦା, ସବୁବେଳେ ଅବିଶ୍ରାନ୍ତଭାବରେ ।

ଅବିରଳ—ତ୍ରି.ବିଂ. (ଅ+ବିରଳ) ଘନ, ନିବିଡ଼,ମଧ୍ୟେ ବିଚ୍ଛେଦରହିତ, ନିରନ୍ତର, ସାନ୍ଦ୍ର (ସ୍ତ୍ରୀ ଅବିରଳା ।

ଅବିରୁଦ୍ଧ—ତ୍ରି. ବିଂ. (ନ.ତତ୍ପୁ) ବିରୁଦ୍ଧ ନୁହେ, ବିରୋଧଶୂନ୍ୟ, ଏକତ୍ର, ସହା-ବସ୍ଥିତ, ନିର୍ଦ୍ଦୋଷ, ବନ୍ଧନରହିତ, ଅବିପରୀତ, ଅନୁଯାୟୀ, ଅପ୍ରତିକୂଳ, ଅନୁକୂଳ, (ସ୍ତ୍ରୀ) ଅବିରୁଦ୍ଧା ।

ଅବିରୋଧ—ପୁଂ. ବି. (ଅ+ବିରୋଧ) ଅବିଦ୍ୱେଷ, ଏକତ୍ର ଅବସ୍ଥାନ, ଏକତ୍ର ସମାବେଶ, ବିବାଦର ଅଭାବ, ନିର୍ବିଘ୍ନ, ଅନାୟାସ ।

ଅବିରୋଧୀ—ପୁଂ. ବିଂ. (ଅବିରୋଧ+ଇନ୍) ଅବିବାଦପ୍ରିୟ, ଅବିରୁଦ୍ଧ, ଅପ୍ର-ତିକୂଳ, ଅନୁଯାୟୀ (ସ୍ତ୍ରୀ) ଅବିରୋଧିନୀ ।

ଅବିଲ—ଗ୍ରା. ବି. ଅଶୁଭ,ଅମଙ୍ଗଳ, ମନ୍ଦ, (ବିଂ ଅମଙ୍ଗଳକର, ଅଶୁଭକାରକ ।

ଅବିଲକ୍ଷଣ—ତ୍ରି. ବିଂ. ଅବିଜାତୀୟ ତୁଲ୍ୟ-ରୂପ, ଭେଦକ ଧର୍ମଶୂନ୍ୟ ।

ଅବିଲକ୍ଷ୍ୟ—ତ୍ରି.ବିଂ.(ବ.ବ୍ରୀ)ବ୍ୟାଜଶୂନ୍ୟ, ଛଳରହିତ, ଶଠତ୍ୱଶୂନ୍ୟ, ପ୍ରତିକାର-ଶୂନ୍ୟ ।

ଅବିଲମ୍ବ—ବିଂ(ଅ+ବିଳମ୍ବ)ଶୀଘ୍ର,ତୁରିତ ବିଳମ୍ବହୀନ(ବି) ତ୍ୱରା ।

ଅବିଲମ୍ବନ—କ୍ଲୀ. ବି. (ନ.ତତ୍ପୁ)ବିଳମ୍ବର ଅଭାବ, ଶୀଘ୍ରତା, ତ୍ୱରା ।

ଅବିଲମ୍ବିତ—ତ୍ରି.ବିଂ.(ନ.ତତ୍ପୁ) ବିଳମ୍ବ-ଶୂନ୍ୟ,ତ୍ୱରାଯୁକ୍ତଦ୍ରବ୍ୟ ଶୀଘ୍ରନିଷ୍ପନ୍ନ, (ସ୍ତ୍ରୀ) ଅବିଲମ୍ବିତା (କ୍ରି. ବିଂ) ଶୀଘ୍ର,ସତ୍ୱର ।

ଅବିଲା—ସ୍ତ୍ରୀ.ବି. ମେଷୀ, ମେଣ୍ଢୀ,ଭେଡ଼ୀ, (ବିଂ)ଗର୍ତ୍ତଶୂନ୍ୟସ୍ଥାନ, ବାତୁଳ, ବିଧବା, ଅକ୍ଷତଯୋନି ବିଧବା ।

ଅବିଲାସ—ପୁଂ. ବି. ବିଳାସର ଅଭାବ, ଅପ୍ରକାଶ, ଲୀଳାର ଅଭାବ ।

ଅବିଲାସୀ—ପୁଂ. ବିଂ. (ନ.ତତ୍ପୁ)ବିଳାସ-ରହିତ, ଅଭୋଗାସକ୍ତ, ଅସୌଖୀନ, ଯେ ବାବୁଗିରି କରିବାକୁ ଭଲ ନ ପାଏ, (ସ୍ତ୍ରୀ) ଅବିଲାସିନୀ ।

ଅବିଲୁପ୍ତ—ତ୍ରି. ବିଂ. (ନ.ତତ୍ପୁ) ବିନାଶ ରହିତ, ଅବିକୃତ ।

ଅବିଲମ୍ବେ—ଗ୍ରା. କ୍ରି. ବିଂ. ବିଳମ୍ବବ୍ୟତି-ରେକେ, ସତ୍ୱର,ଶୀଘ୍ର, ତତ୍କ୍ଷଣାତ୍ ।

ଅବିବକ୍ଷା—ସ୍ତ୍ରୀ. ବି. (ନ.ତତ୍ପୁ) କହିବାର ଅନିଚ୍ଛା ।

ଅବିବକ୍ଷିତ—ତ୍ରି.ବିଂ. (ନ.ତତ୍ପୁ)ତାତ୍ପର୍ଯ୍ୟର ବିଷୟୀଭୂତ ନୁହେ, ଯାହା କହିବାଇଚ୍ଛା-ନୁହେ ।

ଅବିବର—କ୍ଲୀ. ବି. ଛିଦ୍ର ନୁହେ, ବିବର ନୁହେ, (ବିଂ) ନିରନ୍ଧ୍ର,ଘନ, ଗର୍ତ୍ତଶୂନ୍ୟ ସ୍ଥାନ ।

ଅବିବାଚ୍ୟ—କ୍ଲୀ. ବି. ଅଗ୍ନିଷ୍ଟୋମଯାଗର ଶେଷସ୍ଥ ଦଶମ ଦିନ ।

ଅବିବାଦ—ପୁଂ. ବି. (ଅ+ବିବାଦ) ବିରୁଦ୍ଧବାକ୍ୟର ଅଭାବ, ଏକବାକ୍ୟ ବ୍ୟବହାରବିଶେଷ ଭାବ (ବିଂ) ବିରୋଧ-ଶୂନ୍ୟ ।

ଅବିବାଦରେ—ଗ୍ରା.କ୍ରି.ବିଂ. ନିର୍ବିବାଦରେ ଅବିବାଦେ ।

ଅବିବାଦୀ—ପୁଂ. ବିଂ. (ଅ+ବିବାଦିନ୍) ନ.ତତ୍ପୁ; ଅବିରୋଧୀ, ଅବିବାଦପ୍ରିୟ, ନିରୀହ, ଶାନ୍ତପ୍ରିୟ (ସ୍ତ୍ରୀ) ଅବିବାଦିନୀ ।

ଅବିବାହ—ପୁଂ. ବି. ଅନୂଢ଼ ।

ଅବିବାହିତ—ତ୍ରି.ବିଂ.(ନ.ତତ୍ପୁ) ବିବାହିତ ନୁହେ, ଅନୂଢ଼; ଅପରିଣୀତ, (ସ୍ତ୍ରୀ) ଅବିବାହିତା ।

ଅବିବାହ୍ୟ—ଗ୍ରା.ବିଂ(ନ.ତତ୍ପୁ)ଯେ ବିବାହ ହୋଇ ନାହିଁ,କନ୍ୟାଦାନର ଅଯୋଗ୍ୟ ।

ଅବିବିକ୍ତ—ତ୍ରି. ବିଂ.(ନ.ତତ୍ପୁ) ଅସଂପୃକ୍ତ, ନୁହେ, ଏକୀଭୂତ,ଅବିଶୁଦ୍ଧ, ପୂତନୁହେ, ନିର୍ଜନନୁହେ ।

ଅବିବେକ—ପୁଂ. ବି. (ନ.ତତ୍) ବିଶେଷ-ଜ୍ଞାନର ଅଭାବ, ଅବିବେଚନା ମୂର୍ଖତା, ମୂଢ଼ତା, ଭ୍ରମ, ଅଜ୍ଞାନ, ବ୍ୟାକୁଳତା-ଜନିତ ମୋହ, ଅବୁଝାମଣା, (ସ୍ତ୍ରୀ) ଅବିବେକା (ବିଂ) ବିବେକରହିତ, ବିବେଚନାଶୂନ୍ୟ, ଅବିମୃଷ୍ୟକାରୀ ।

ଅବିବେକତା—ସ୍ତ୍ରୀ. ବି. ବିବେକରାହିତ୍ୟ, ଅବିବେଚନା, ଅଜ୍ଞତା, ମୂଢ଼ତା ।

ଅବିବେକୀ—ପୁଂ. ବିଂ (ଅ + ବିବେକ + ଇନ୍) ବିବେକଶୂନ୍ୟ, ଅବିଚାରୀ, ଶାସ୍ତ୍ରାଦି-ଜ୍ଞାନଶୂନ୍ୟ, ଚିନ୍ତାହୀନ, ଅବୁଝାମଣା, ଅଖାଡ଼ୁଆ, ମୂଢ଼ (ସ୍ତ୍ରୀ) ଅବିବେକିନୀ ।

ଅବିବେଚକ—ତ୍ରି. ବିଂ. (ଅ + ବିବେଚକ) ବିବେଚକ ନୁହେ, କର୍ତ୍ତବ୍ୟାକର୍ତ୍ତବ୍ୟ-ବିବେଚନାରହିତ, ବିଚାରହୀନ (ସ୍ତ୍ରୀ) ଅବିବେଚିକା ।

ଅବିବେଚନା—ସ୍ତ୍ରୀ. ବି. (ନ.ତତ୍) ବିବେଚନାଭାବ, ଅବିଚାରଣା, ଅନ୍ୟାଯ୍ୟ-ବିବେଚନା, ଅବିଚାର ।

ଅବିବେଚନୀୟ—ତ୍ରି. ବିଂ. (ନ.ତତ୍) ବିବେଚନାର ଅଯୋଗ୍ୟ ।

ଅବିବେଚିତ—ତ୍ରି. ବିଂ. (ନ.ତତ୍) ଅବିଚାରିତ, ଅନାଲୋଚିତ, (ସ୍ତ୍ରୀ) ଅବିବେଚିତା

ଅବିବେଚନ—ତ୍ରି. ବିଂ. ଇଚ୍ଛାଶୀଳ, ଅବିଗତ-କାମ, ଯଥାକାମ ।

ଅବିଶଙ୍କ—ତ୍ରି. ବିଂ. (ବ.ବ୍ରୀ) ନିର୍ଭୀକ, ନିଃସନ୍ଦେହ, ନିଃଶଙ୍କ (ସ୍ତ୍ରୀ) ଅବିଶଙ୍କା ।

ଅବିଶଙ୍କା—ସ୍ତ୍ରୀ. ବି. (ନ.ତତ୍) ବିଶେଷ-ଶଙ୍କାର ଅଭାବ, ଭୟଶୂନ୍ୟତା, ନିର୍ଭୀକତା, ବିଶ୍ୱାସ, (ବିଂ) ବିଶେଷଶଙ୍କା-ରହିତ, ଅବିଶଙ୍କିତ ।

ଅବିଶଙ୍କିତ—ତ୍ରି. ବିଂ. (ନ.ତତ୍) ବିଶେଷ-ରୂପ ଶଙ୍କାରହିତ, ଯାହାର ଶଙ୍କା ଜନ୍ମେ ନାହିଁ, ଅଭୀତ, ନିର୍ଭୟ, ଦୁର୍ଭାବନା-ରହିତ, ବିଶ୍ୱାସକାରୀ, (ସ୍ତ୍ରୀ) ଅବିଶଙ୍କିତା ।

ଅବିଶସ୍ତା—ପୁଂ. ବିଂ. ଶମିତା, ବିଶସନେ ଅକୁଶଳ, (ସ୍ତ୍ରୀ) ଅବିଶସ୍ତ୍ରୀ ।

ଅବିଶୁଦ୍ଧ—ତ୍ରି. ବିଂ. (ନ.ତତ୍) ବିଶୁଦ୍ଧ, ନୁହେ, ମଳିନ, ପବିତ୍ର ନୁହେ, ଅଶାସ୍ତ୍ରୀୟ, ଆସ୍ମରବିରୁଦ୍ଧ (ସ୍ତ୍ରୀ) ଅବିଶୁଦ୍ଧା ।

ଅବିଶୁଦ୍ଧି—ସ୍ତ୍ରୀ. ବି. ଶୁଦ୍ଧିର ବିପରୀତ, ଦୋଷ ।

ଅବିଶେଷ—ପୁଂ. ବି. (ନ.ତତ୍) ଭେଦକ ଧର୍ମର ଅଭାବ, ଅଭେଦ, ଐକ୍ୟ, (ସ୍ତ୍ରୀ) ଅବିଶେଷା, (ବିଂ) ବିଶେଷ, ବିରହିତ, ଅଭିନ୍ନ ।

ଅବିଶେଷଜ୍ଞ—ତ୍ରି. ବିଂ. (ନ.ତତ୍) ବିଶେଷ ଅନଭିଜ୍ଞ, ଭେଦକଧର୍ମାନଭିଜ୍ଞ, ସୂକ୍ଷ୍ମ-ତତ୍ତ୍ୱର ଜ୍ଞାନହୀନ, ଯେ ମର୍ମକଥା ନ-ଜାଣେ, ଯେ ବେଶି ଜାଣେ ନାହିଁ, (ସ୍ତ୍ରୀ) ଅବିଶେଷଜ୍ଞା ।

ଅବିଶେଷିତ—ତ୍ରି. ବିଂ. ଯାହାକୁ ଅନ୍ୟ-ଠାରୁ, ବିଶେଷରୂପେ ଭେଦ କରି ହୁଏ ନାହିଁ ।

ଅବିଶ୍ରାନ୍ତ—ତ୍ରି. ବିଂ. ନ.ତତ୍; (ଅ + ବି + ଶ୍ରମ୍ + ତ) ବିରାମରହିତ, ସନ୍ତତ, ଅନବରତ, ଅଜସ୍ର, ଧାରାବାହିକ, (ସ୍ତ୍ରୀ) ଅବିଶ୍ରାନ୍ତା ।

ଅବିଶ୍ରାମ—ପୁଂ. ବିଂ. ବ.ବ୍ରୀ, ଅବିରାମ, ବିଶ୍ରାମରହିତ, ଅବିରତ, (ସ୍ତ୍ରୀ) ଅବିଶ୍ରାମା ।

ଅବିଶ୍ରୁତ—ବିଂ. (ଅ + ବିଶ୍ରୁତ) ବିଖ୍ୟାତ, ନୁହେ, ଅପ୍ରସିଦ୍ଧ ।

ଅବିଶ୍ୱସନୀୟ—ତ୍ରି. ବିଂ. (ନ.ତତ୍) ବିଶ୍ୱାସ କରଣାଯୋଗ୍ୟ, ଯାହାଠାରେ ବିଶ୍ୱାସ-କରାଯାଏ ନାହିଁ ।

ଅବିଶ୍ୱସ୍ତ—ତ୍ରି. ବିଂ. (ନ.ତତ୍) ବିଶ୍ୱାସର-ଯୋଗ୍ୟତାହୀନ, ଯାହାକୁ ବିଶ୍ୱାସ କରା-ଯାଇ ନ ପାରେ, ବିଶ୍ୱାସଘାତକ, (ସ୍ତ୍ରୀ) ଅବିଶ୍ୱସ୍ତା ।

ଅବିଶ୍ୱାସ—ପୁଂ. ବି. (ନ.ତତ୍) ବିଶ୍ୱାସର, ଅଭାବ, ଅପ୍ରତ୍ୟୟ (ବିଂ) ବିଶ୍ୱାସବିହୀନ, ଅବିଶ୍ୱସ୍ତ, (ସ୍ତ୍ରୀ) ଅବିଶ୍ୱାସା ।

ଅବିଶ୍ୱାସୀ—ପୁଂ. ବିଂ. (ନ.ତତ୍) ଯେ ବିଶ୍ୱାସ କରେ ନାହିଁ, ଅପ୍ରତ୍ୟୟଶୀଳ, (ସ୍ତ୍ରୀ) ଅବିଶ୍ୱାସିନୀ ।

ଅବିଶିଷ୍ଟ—ତ୍ରି. ବିଂ. ବିଶିଷ୍ଟ ନୁହେ, ଯୁକ୍ତ ।

ଅବିଷ—ପୁଂ. ବି. (ଅବ୍ + ଇଷ୍ଟ) ସମୁଦ୍ର, ରାଜା, ଆକାଶ, ପ୍ରୀତିକାରୀ, ବିଷଶୂନ୍ୟ, ନିର୍ବିଷ, (ସ୍ତ୍ରୀ) ନଦୀ (ବିଂ) ରକ୍ଷକମାତ୍ର, (ସ୍ତ୍ରୀ) ଅବିଷା ।

ଅବିଷକ୍ତ—ତ୍ରି. ବିଂ. ଅସଂଲଗ୍ନ, ଅସଂଯୁକ୍ତ ।

ଅବିଷମ—ତ୍ରି. ବିଂ. (ବ.ବ୍ରୀ) ବିଷମ ନୁହେ, ସମ, ଯେଡ଼, ସୁଖବୋଧ, ସୁଗମ, ତୁଲ୍ୟ, ଅତିବିଷମ, ଅତିଭୀଷଣ, ସୁଗ୍ରହ ।

ଅବିଷୟ—ତ୍ରି. ବିଂ. (ଅ + ବିଷୟ) ବ.ବ୍ରୀ; ବିଷୟାଶ୍ରିତ, ଅଜ୍ଞାତ, ଅପ୍ରତିପାଦ୍ୟ, ଇନ୍ଦ୍ରିୟଜ୍ଞାନହୀନ, ବିଷୟବିରକ୍ତ, ଅଗୋ-ଚର, (ସ୍ତ୍ରୀ) ଅବିଷୟା (ବି. ପୁଂ) ଅପ୍ରକାଶ, ଅଦର୍ଶନ, ଅନୁଦୟ ।

ଅବିଷୟୀ—ପୁଂ. ବିଂ. (ନ.ତତ୍) ଅବିଷୟା-ସକ୍ତ, ଅଭୋଗାସକ୍ତ, ଧନହୀନ, ଅସ-ଙ୍ଗତିପନ୍ନ (ସ୍ତ୍ରୀ) ଅବିଷୟିଣୀ ।

ଅବିଷୟୀଭୂତ—ବିଂ. (ଅ + ବିଷୟ + ଚ୍ୱୀ + ଭୂତ) ଯାହା ପୂର୍ବେ ଇନ୍ଦ୍ରିୟ-ଗୋଚର ଥିଲା, ବର୍ତ୍ତମାନ ନାହିଁ ।

ଅବିଷହ୍ୟ—ତ୍ରି. ବିଂ. (ନ.ତତ୍) ସହ୍ୟ-କରିବାକୁ ଅସମର୍ଥ, ଅଗୋଚର, ଅତିଦାରୁଣ, ପ୍ରଖର, ଅସାଧ୍ୟ, ଦୁର୍ଦ୍ଧର୍ଷ, (ଅବ୍ୟ) ସହ୍ୟ ନ କରି ।

ଅବିଷ୍ଟମ୍ଭ—ପୁଂ. ବି. ଆଶ୍ରୟର ଅଭାବ, (ବିଂ) ଆଲମ୍ବନ ଶୂନ୍ୟ ।

ଅବିଷ୍ଟୁ—ତ୍ରି. ବିଂ. ଅତିଶୟ ରକ୍ଷକ ।

ଅବିଷା—ସ୍ତ୍ରୀ. ବି. (ଅବିଷ + ଆ) ପୃଥିବୀ, ସ୍ୱର୍ଗ, ନିର୍ବିଷାତୃଣ, ନଦୀ ।

ଅବିଷୀ—ସ୍ତ୍ରୀ. ବି. (ଅବ + ଇଷ୍ + ଈ) ନଦୀ, ପୃଥିବୀ, ସ୍ୱର୍ଗ ।

ଅବିଷ୍ୟା—ସ୍ତ୍ରୀ. ବି. ଗମନେଚ୍ଛା ।

ଅବିଷ୍ୟୁ—ତ୍ରି. ବିଂ. ରକ୍ଷାକରିବାର ଇଚ୍ଛା-ଶୀଳ, ପାଳନକାମ ।

ଅବିସ୍—କ୍ଲୀ. ବି. ରକ୍ଷଣ, ଗତି ।

ଅବିସମ୍ବାଦ—ପୁଂ. ବି. (ନ.ତତ୍) ପ୍ରମାଣର ଅନୁସରଣାଭାବ, ଯଥାର୍ଥବିଷୟାର୍ଥକ, ଅବିତଣ୍ଡା, ଅବିବାଦ, ଅବିରୋଧ, ପରିପାଳନ, ମିଳନ ।

ଅବିସମ୍ବାଦୀ—ପୁଂ. ବିଂ. (ନ.ତତ୍) ପ୍ରମାଣା-ନୁଯାୟୀ, ଯଥାର୍ଥବାଦୀ, ସଫଳପଦାର୍ଥ, (ସ୍ତ୍ରୀ) ଅବିସମ୍ବାଦିନୀ ।

ଅବିସମ୍ବାଦିତ—ତ୍ରି. ବିଂ. (ନ.ତତ୍ପୁ) ଅବି-ରୋଧିତ, ଯହିଁରେ ମତଭେଦ ନାହିଁ, ଅପ୍ରତିରୋଧିତ (ସ୍ତ୍ରୀ) ଅବିସମ୍ବାଦିତା ।

ଅବିସର୍ଗୀ—ପୁଂ.ବିଂ.(ନ.ତତ୍ପୁ)ଅତ୍ୟାଗୀ, ଅବର୍ଜନଶୀଳ (ସ୍ତ୍ରୀ) ଅବିସର୍ଗିଣୀ (ବି) ଯେଉଁ ଜ୍ୱର ଛାଡ଼େ ନାହିଁ, ଅବିରାମ-ଜ୍ୱର, ଲଗ୍ନାଜ୍ୱର ।

ଅବିସାର—ବିଂ. ପ୍ରଭାମସ୍ତ, ସୁସାର, ଅତ୍ୟୁତ୍କୃଷ୍ଟ ।

ଅବିସ୍ରୋତ—କ୍ଲୀ. ବି. ମେଣ୍ଢୀଦୁଗ୍ଧ, ମେଣ୍ଢୀକ୍ଷିର । [ବିଶେଷ ।

ଅବିସ୍ଥଲ—କ୍ଲୀ.ବି.ମହାଭାରତୋକ୍ତ ଗ୍ରାମ-

ଅବିସ୍ପଷ୍ଟ—ତ୍ରି. ବିଂ. (ନ.ତତ୍ପୁ) ଅସ୍ପଷ୍ଟ, (ବାକ୍ୟ) ଅସ୍ଫୁଟ, ଅବ୍ୟକ୍ତ, ଜଡ଼ିତ, (ସ୍ତ୍ରୀ) ଅବିସ୍ପଷ୍ଟା (ବି) ଅସ୍ପଷ୍ଟବାକ୍ୟ ।

ଅବିସ୍ମରଣ—କ୍ଲୀ. ବି. ବିସ୍ମରଣର ଅଭାବ, ସ୍ମରଣ ।

ଅବିସ୍ମୃତ—ତ୍ରି. ବିଂ. ବିସ୍ମୃତ ନୁହେ ।

ଅବିହିତ—ତ୍ରି.ବିଂ. (ନ.ତତ୍ପୁ)ଅପ୍ରତିହିତ, ଅନିବାରିତ, ଅବିଚ୍ଛିନ୍ନ ।

ଅବିହାଡ଼ା—ଗ୍ରା. ପୁଂ. ବିଂ. ଅବିବାହିତ, (ସ୍ତ୍ରୀ) ଅବିହାଡ଼ୀ ।

ଅବିହିତ—ତ୍ରି. ବିଂ. (ଅବି + ଧା + ତ) ନିଷିଦ୍ଧ, ଅକୃତ, ସ୍ୱେଚ୍ଛର ହିତକର, (ଶୁଆଁ), ଅନୁଚିତ, ଅସଙ୍ଗତ, ବେଆ-ଇନ, ବିଧିବିରୁଦ୍ଧ, ଅବୈଧ, ଅନ୍ୟାଯ୍ୟ, ଅକର୍ତ୍ତବ୍ୟ, ଅବ୍ୟବସ୍ଥିତ, (ସ୍ତ୍ରୀ) ଅବିହିତା ।

ଅବିହିଂସ—ତ୍ରି. ବିଂ. ଅହିଂସ୍ୟ, ହିଂସାର ଅଯୋଗ୍ୟ, ଯାହାକୁ ହିଂସା କରନ୍ତି ନାହିଁ । [ ସ୍ୱଚ୍ଛ ।

ଅବିହ୍ୱଳ—ତ୍ରି. ବିଂ. ବ୍ୟାକୁଳ ନୁହେ,

ଅବୀ—ସ୍ତ୍ରୀ. ବି. (ଅବ + ଇ + ଈ) ରଜ-ସ୍ୱଳା ସ୍ତ୍ରୀ, ଋତୁମତୀ ସ୍ତ୍ରୀ, ଛାଗୀ, ମେଣ୍ଢୀ ।

ଅବୀକାଶ—ପୁଂ. ବି. ପ୍ରକାଶର ଅଭାବ, (ବିଂ) ପ୍ରକାଶଶୂନ୍ୟ ।

ଅବୀକ୍ଷଣ—କ୍ଲୀ ବି. (ନ.ତତ୍ପୁ) ଦର୍ଶନର ଅଭାବ (ବିଂ) ଦର୍ଶନଶୂନ୍ୟ, (ସ୍ତ୍ରୀ, ଅବୀ-କ୍ଷଣା ।

ଅବୀକ୍ଷିତ—ତ୍ରି. ବିଂ. (ନ.ତତ୍ପୁ) ଯାହା ଦୃଷ୍ଟ ନୁହେ; ଅବଗଣିତ;(ସ୍ତ୍ରୀ)ଅବୀକ୍ଷିତା, (ବି) ବୀକ୍ଷଣାଭାବ, ଦର୍ଶନାଭାବ ।

ଅବୀଚି—ପୁଂ. ବି. ସ୍ତ୍ରୀ. ତରଙ୍ଗ ନୁହେ, ଶ୍ରେଣୀନୁହେ,ଅବିନାଶଭିନ୍ନ,ସୁଖ ନୁହେ, ଅନଳପ, ନରକବିଶେଷ (ବିଂ)ତରଙ୍ଗ-ଶୂନ୍ୟ, (ଜଳାଶୟ) ।

ଅବୀଜ—ତ୍ରି. ବି. ବୀଜଶୂନ୍ୟ ଫଳାଦି, କଦଳୀ, (ସ୍ତ୍ରୀ) ଦ୍ରାକ୍ଷା ( ବିଂ ) ବୀଜର ଅନାଧାରଯୁକ୍ତ,ଅପ୍ରଶସ୍ତ, ଅଙ୍କୁରୋତ୍ପାଦନର ଅଯୋଗ୍ୟ, ଶୂନ୍ୟସ୍ଥାନ, କାରଣଶୂନ୍ୟ, ନିର୍ମୂଳ, ଯୋଗଭିନ୍ନ ଅନ୍ୟତ୍ର ଚିତ୍ତବୃତ୍ତି-ନିବାରଣ ।

ଅବୀଜକ—ତ୍ରି. ବିଂ. ବ.ବ୍ରୀ; (ଅ + ବୀଜ କ) ଯାହାର ମଞ୍ଜି ନାହିଁ, ଅଣପୁରୁଷା, ମୂଳକାରଣହୀନ । [ ଲତା ।

ଅବୀଜା—ସ୍ତ୍ରୀ. ବି. (ଅବୀଜ + ଆ)ଦ୍ରାକ୍ଷା-

ଅବୀତ—କ୍ଲୀ. ବି. ଅନୁମାନ ।

ଅବୀର—ତ୍ରି. ବିଂ. (ବ.ବ୍ରୀ) ବୀର ନୁହେ, ବଳବାନ୍ ନୁହେ, ପୁତ୍ରାଦିଶୂନ୍ୟ, ଅନାଥ, ଭୀରୁ, ଦୁର୍ବଳ, (ସ୍ତ୍ରୀ) ଅବୀରା ।

ଅବୀରା—ସ୍ତ୍ରୀ. ବିଂ. ( ଅ + ବୀର + ଆ ) ନ.ତତ୍ପୁ; ପତିପୁତ୍ରହୀନା,ଅନାଥା, ଅସ-ହାୟା ।

ଅବୀରୋଚିତ—ବିଂ. ( ଅ + ବୀରୋଚିତ ) ଯେଉଁ କର୍ମକରିବା ବୀରପକ୍ଷରେ ଅଶୋ-ଭନୀୟ । [କରେ ।

ଅବୁ—ତ୍ରି. ବିଂ. ଯେ ପିଅବାର ତର୍ପଣ-

ଅବୁଝା—ପୁଂ. ବିଂ. ଯେ ବୁଝେ ନାହିଁ, ଯେ ବିବେଚନା କରେ ନାହିଁ, ଅବି-ବେକ, ନିର୍ବୋଧ, ଅବୋଧ ।

ଅବୁଝାମଣା—ଗ୍ରା. ବି. (ଅ + ବୁଝାମଣା) ଅବିଗ୍ରହ, ଅନ୍ୟାଯ୍ୟବିଗ୍ରହ, ଜିଦିଖୋର ।

ଅବୁତବୁ—ପିତା ମାତା ଶିଶୁମାନଙ୍କୁ ଏହିରୂପେ ପଢ଼ାନ୍ତି, ଏହି ପଦ ସଂସ୍କୃତ ଶ୍ଳୋକ ପ୍ରଥମ ପାଦରୁ ଅପଭ୍ରଂଶ, "ଅବରୁବୋ ଗିରସୁତା ଶଶିଭୂଷଃ" ଇତ୍ୟାଦି ।

ଅବୁଅବୁ—ଗ୍ରା. ବିଂ. ଜଡ଼ବତ୍, ନଷ୍ଟଚେଷ୍ଟ, ଆଡ଼ଷ୍ଟ ।

ଅବୁଝ—ଅବିବେଚକ,ଅରସିକ,ଅବୋଧ, ଅସାମ୍ବାସ୍ତ, ଅଜ୍ଞତା ।

ଅବୃକ—ତ୍ରି.ବିଂ. ଆବରକ ନୁହେ, ମୃଗ-ଭିନ୍ନ, ଆବରକଶୂନ୍ୟ, ମୃଗଶୂନ୍ୟସ୍ଥାନ, ହିଂସକରହିତ ।

ଅବୃତ୍ତ—ତ୍ରି. ବିଂ. ( ନ. ତତ୍ପୁ ) ଜୀବିତ, ଅଖଣ୍ଡିତ, ଅସ୍ଥିତିରହିତ, ଗତିରହିତ ।

ଅବୃତ୍ତି—ସ୍ତ୍ରୀ. ବି. ସ୍ଥିତିର ଅଭାବ, ଜୀବି-କାର ଅଭାବ, ବିବରଣର ଅଭାବ (ବିଂ) ବୃତ୍ତିହୀନ, ସ୍ଥିତିହୀନ ।

ଅବୃତ୍ତିକ—ତ୍ରି. ବିଂ. ବ.ବ୍ରୀ, (ଅ + ବୃତ୍ତିକ) ଜୀବିକାହୀନ, ବେକାର, ଯେଉଁ ଦେଶରେ ଜୀବିକା ଯୁଟେ ନାହିଁ ।

ଅବୃଦ୍ଧ—ପୁଂ. ବିଂ. (ନ.ତତ୍ପୁ) ବୃଦ୍ଧିପ୍ରାପ୍ତ ନୁହେ, ଅପ୍ରାଚୀନ, ଅର୍ବାଚୀନ, (ସ୍ତ୍ରୀ) ଅବୃଦ୍ଧା ।

ଅବୃଦ୍ଧିକ—କ୍ଲୀ. ବି. (ବ.ବ୍ରୀ) ବୃଦ୍ଧିହୀନ ମୂଳଧନ, ବିନା ସୁଧ ଟଙ୍କା, (ବିଂ) ଯାହାର ବୃଦ୍ଧି ନାହିଁ ।

ଅବୃଦ୍ଧ—ତ୍ରି. ବିଂ. ବୃଦ୍ଧିଶୂନ୍ୟ, ଅବର୍ଦ୍ଧକ, ବୁଢ଼ା ହୋଇ ନ ଥିବା ।

ଅବୃନ୍ତ—ତ୍ରି. ବିଂ. ବ.ବ୍ରୀ; (ଅ + ବୃନ୍ତ) ଯେଉଁ ଫଳ ବା ପୁଷ୍ପାଦିର ଡେମ୍ଫନଥାଏ ।

ଅବୃଷ୍ଟି—ସ୍ତ୍ରୀ.ବି. (ନ.ତତ୍ପୁ) ବୃଷ୍ଟିର ଅଭାବ, ଅନାବୃଷ୍ଟି,ମରୁଡ଼ି, (ପୁଂ.ବି) ବୃଷ୍ଟିଶୂନ୍ୟ, ମେଘ ।

ଅବୃଷ୍ଟିକ—ତ୍ରି. ବିଂ. ବ.ବ୍ରୀ; (ଅ + ବୃଷ୍ଟି + କ) ଯେଉଁ ସ୍ଥାନ ବା ଦେଶରେ ବର୍ଷା ହୁଏ ନାହିଁ, ବର୍ଷାଋତୁ ଛଡ଼ା ଅନ୍ୟ (ଋତୁ) ।

ଅବୃଷ୍ଟିସଂରମ୍ଭ—ପୁଂ. ବି. ନିବିଡ଼ ମେଘ, ଯେଉଁ ମେଘରୁ ଅତିବେଗରେ ବୃଷ୍ଟି ହୁଏ ନାହିଁ ।

ଅବୃହତ୍—ତ୍ରି. ବିଂ. କ୍ଷୁଦ୍ର, ବଡ଼ ନୁହେ, ଛୋଟ ।

ଅବେକତ—ବି°. ଅବ୍ୟକ୍ତ, ଅସ୍ପଷ୍ଟ ।

ଅବେକ୍ଷକ—ବି. ବି°. (ଅ + ଇକ୍ଷ + କ. ଅକ) ଦର୍ଶକ, ପର୍ଯ୍ୟାଲୋଚକ, ପରୀକ୍ଷକ, ଆୟବ୍ୟୟାଦିର ଅଧ୍ୟକ୍ଷ ।

ଅବେକ୍ଷଣ—କ୍ଲୀ.ବି. (ଅବ + ଇକ୍ଷ୍ + ଭା. ଅନ) ଦର୍ଶନ, ପର୍ଯ୍ୟାଲୋଚନ, ଅବଧାନ, ପ୍ରତିଜାଗରଣ, ବିଗ୍ଚର, ମନୋଯୋଗ, ପ୍ରତୀକ୍ଷା, ପାଳନ ।

ଅବେକ୍ଷଣୀୟ—ବି. ବି°. (ଅବ + ଇକ୍ଷ୍ ମି. ଅନୀୟ ) ଦର୍ଶନୀୟ, ଆଲୋଚନୀୟ, ଈକ୍ଷଣୀୟ ।

ଅବେକ୍ଷମାଣ—ବି. ବି°. (ଅବ + ଇକ୍ଷ୍ + କ.ଆନ) ନିରୀକ୍ଷମାଣ, (ସ୍ତ୍ରୀ) ଅବେକ୍ଷମାଣା ।

ଅବେକ୍ଷା—ସ୍ତ୍ରୀ.ବି°. (ଅବ + ଇକ୍ଷ୍ + ଭା. ଆ) ଅବଧାନ, ଦର୍ଶନ, ପର୍ଯ୍ୟାଲୋଚନା, ଅବେକ୍ଷଣ ।

ଅବେକ୍ଷିତ—ବି. ବି°. ( ଅବ + ଇକ୍ଷ + ମି.ତ ) ଦୃଷ୍ଟ,ପର୍ଯ୍ୟାଲୋଚିତ,ଆଲୋଚିତ, ପାଳିତ, ଅବଲୋକିତ ।

ଅବେକ୍ଷିତା—ପୁ°. ବି°. (ଅବ + ଇକ୍ଷ୍ + ତୃ) ଦର୍ଶକ, ପର୍ଯ୍ୟାଲୋଚକ (ସ୍ତ୍ରୀ) ଅବେକ୍ଷିତ୍ରୀ ।

ଅବେକ୍ଷୀ—ପୁ°. ବି°. (ଅବ + ଇକ୍ଷ୍ + କ. ଇନ୍) ଅବେକ୍ଷକ, ପର୍ଯ୍ୟବେକ୍ଷଣକାରୀ, ତତ୍ତ୍ୱାବଧାରକ, ପରୀକ୍ଷାକାରୀ, ତଦନ୍ତକାରୀ, ଅନାଉଁଥିବା ।

ଅବେକ୍ଷ୍ୟ—ବି. ବି°. (ଅବ + ଇକ୍ଷ୍ + ମି. ଯ) ଦୃଶ୍ୟ, ପର୍ଯ୍ୟାଲୋଚନୀୟ, ପାଳନୀୟ, ଅବେକ୍ଷ୍ୟ, ଦର୍ଶନୀୟ, (ଅବ୍ୟ) ଦେଖି, ବିବେଚନା କରି ।

ଅବେଣୀ—ବି°. (ଅ + ବେଣୀ) ବ.ବ୍ରୀ; ଯାହାର କେଶ ବେଣୀ ଆକାରରେ ବନ୍ଧାହୋଇନାହିଁ, ଏକତ୍ର ମିଳିତହୋଇ ବହୁ ନ ଥିବା (ନଦୀ ସମୂହ) ।

ଅବେଣୀବଦ୍ଧ—ବି.ବି°. ନ.ତତ୍ପୁ) ବେଣୀବନ୍ଧା ହୋଇ ନଥିବା (କେଶ) ଅଲୁଳାୟିତ ।

ଅବେଣ୍ଟ—ଗ୍ରା. ବି°. (ଫ.ଅବୃନ୍ତ) ଅବୃନ୍ତ (ଫଳ ବା ଫୁଲ), ବେଣ୍ଟି ନଥିବା ।

ଅବେଦନ—ବି.ବି°. (ବ.ବ୍ରୀ ) ବେଦନାଶୂନ୍ୟ, (କ୍ଲୀ. ବି) ବେଦନାର ଅଭାବ, ଅପରିଜ୍ଞାନ ।

ଅବେଦନାଜ୍ଞ—ବି. ବି°. ବେଦନାନଭିଜ୍ଞ, ଯାହାକୁ ବେଦନା ଜଣା ନାହିଁ ।

ଅବେଦନୀୟ- ବି.ବି°.(ନ.ତତ୍ପୁ) ଅଜ୍ଞେୟ, ଗୁପ୍ତ, ଦୁର୍ବୋଧ୍ୟ ଅନନୁଭବନୀୟ, ଅପ୍ରାପ୍ୟ, ଗ୍ରହଣସ୍ଥାନର ଅଯୋଗ୍ୟ ।

ଅବେଦୀ—ସ୍ତ୍ରୀ. ବି. ଜ୍ଞାନାଭାବ, ପରିଷ୍କୃତା ଭୂମି ନୁହେ ।

ଅବେଦ୍ୟ—ବି. ବି°. (ନ.ତତ୍ପୁ)ଅଜ୍ଞେୟ, ଯାହା ଜାଣିପାରି ହୁଏନାହିଁ, ଅଲଭ୍ୟ, ଅଜ୍ଞାତବ୍ୟ, ଅନବଗମ୍ୟ,(ସ୍ତ୍ରୀ) ଅବିବାହ, (ସ୍ତ୍ରୀ)ଅବେଦ୍ୟା(ପୁ°) ଗୋବତ୍ସ,ବାଛୁରି ।

ଅବୋଧ—ବି°.(ଅ + ବଧ୍ + ମି.ଯ)ବିଦ୍ଧହେବାର ଅଯୋଗ୍ୟ ( ଜ୍ୟୋତିଷ ) ବିବାହାଦି ନିଷେଧକ ।

ଅବେଲ—ବି.ବି°.(ବ.ବ୍ରୀ) ସୀମାରହିତ, ନିର୍ମର୍ଯ୍ୟାଦ, ଅସାମୟିକ, ତଟଶୂନ୍ୟ (ବି. ପୁ°)ଅପହ୍ନବ,ଅପଳାପ,(ସ୍ତ୍ରୀ)ଅବେଲା । (ସ୍ତ୍ରୀ.ବି) ଗୁବାକଚୂର୍ଣ୍ଣ, କଟାଗୁଆ, ଅପ୍ରଶସ୍ତ କାଳ ।

ଅବେଳା—ଗ୍ରା. ଯେ ସମୟରେ କୌଣସି ବିଶେଷ କର୍ମ କରି ହୁଏ ନାହିଁ, ଅସମୟ, ଅପ୍ରକୃତ ବେଳ ।

ଅବେପାର—ଗ୍ରା. ବି. (ଫ. ଅବ୍ୟାପାର) ଅବ୍ୟାପାର ।

ଅବେପାରୀ—ଗ୍ରା. ବି°. (ଅ + ବ୍ୟାପାରୀ) ବାଣିଜ୍ୟ ବା ବ୍ୟବସାୟରେ ଅନଭିଜ୍ଞ ।

ଅବେଭାର—ଗ୍ରା.ବି. (ଫ + ଅବ୍ୟବହାର) ମନ୍ଦବ୍ୟବହାର, ବ୍ୟବହାରର ଅଭାବ, ଅଭଦ୍ର ଆଚରଣ (ବି°) ଅବ୍ୟବହୃତ, ଅନୁଚିତ ।

ଅବେଭାରୀ—ଗ୍ରା. ବି°. (ଫ.ଅବ୍ୟବହାରୀ) ଅବେପାରୀ, ଅବିଷୟୀ, ମନ୍ଦାଚରଣକାରୀ

ଅବେଷ୍ଟ—ତ୍ରି. ବି°. (ଅବ + ଯଜ୍ + ତ) ନାଶିତ, ବେଷ୍ଟନରହିତ ।

ଅବୈତନିକ—ବି. ବି°. ନ.ତତ୍; (ଅ + ବେତନ + ଇକ) ଯେ ବେତନଭୋଗୀ ନୁହେ, ବିନାବେତନରେ କର୍ମଗ୍ରାହୀ, ମାଗଣା, (ସ୍ତ୍ରୀ) ଅବୈତନିକା ।

ଅବୈଦ୍ୟ—ପୁ°. ବି. (ନ.ତତ୍) ଅପକୃଷ୍ଟ ବୈଦ୍ୟ, ଅଶିକ୍ଷିତ ଚିକିତ୍ସକ, ଅପଟୁ ଚିକିତ୍ସକ ।

ଅବୈଧ—ବି. ବି°. ନ.ତତ୍; (ଅ + ବିଧି + ଅ) ଯାହା ବିଧିରେ ନାହିଁ, ନିଷିଦ୍ଧ, ଅସଙ୍ଗତ, ଅଯୌକ୍ତିକ, ଅକର୍ତ୍ତବ୍ୟ, ବେଆଇନ, (ସ୍ତ୍ରୀ) ଅବୈଧୀ ।

ଅବୈଧଜନତା—ସ୍ତ୍ରୀ. ବି. ( ଅବୈଧ + ଜନତା ) ଜମାଉତବନ୍ଧ, ବିଧିନିଷେଧକାର୍ଯ୍ୟପ୍ରବୃତ୍ତ, ଦଳବଦ୍ଧଲୋକ ।

ଅବୈଧପ୍ରଣୟ—ବି.(କ.ଧା) ବିବାହବିନା ସ୍ତ୍ରୀପୁରୁଷ ମଧ୍ୟରେ ପ୍ରେମ ।

ଅବୈଧସନ୍ତାନ—ପୁ°. ସ୍ତ୍ରୀ. ବି. ଯେଉଁ ସନ୍ତାନ ବିବାହିତ ଦମ୍ପତିଠାରୁ ଉତ୍ପନ୍ନ ନୁହେ, ଜାରଜସନ୍ତାନ ।

ଅବୈଧବ୍ୟ—କ୍ଲୀ. ବି. ପତିଗ୍ରାହିତ୍ୟାଭାବ, ସଧବାବସ୍ଥା ।

ଅବୈମତ୍ୟ—କ୍ଲୀ.ବି. (ଅ + ବିମତ + ଭା. ଯ) ମତଭେଦାଭାବ, ଐକ୍ୟମତ ।

ଅବୈୟାତ୍ୟ—କ୍ଲୀ.ବି. ଧାର୍ଷ୍ଟ୍ୟାଭାବ,ସଲଜ୍ଜତ୍ୱ,(ବି°) ସଲଜ୍ଜତ୍ୱଯୁକ୍ତ, ଲଜ୍ଜାବିଶିଷ୍ଟ ।

ଅବୈର—କ୍ଲୀ. ବି. ବିରୋଧାଭାବ, (ବି°) ବିରୋଧଶୂନ୍ୟ, ଯୁଧିଷ୍ଠିର ।

ଅବୈରାଗ୍ୟ—କ୍ଲୀ. ବି. ବିଷୟାଭିଳାଷ ।

ଅବୈଲକ୍ଷଣ୍ୟ—କ୍ଲୀ. ବି. ଭେଦକ ଧର୍ମର ଅଭାବ, ଅଭେଦ, (ବି°) ଭେଦକ ଧର୍ମର ଅଭାବବିଶିଷ୍ଟ, ଅଭିନ୍ନ ।

ଅବୋକ୍ଷଣ—କ୍ଲୀ.ବି.(ଅବ + ଉକ୍ଷ୍ + ଅନ) ବଙ୍କା ହାତରେ ଜଳସେକରୂପ ବୈଧକାର୍ଯ୍ୟ ।

ଅବୋଦ—ବି. ବି°. (ଅବ + ଉନ୍ଦ୍ + କ. ଅ) ଅବକ୍ଲେଦନ, ଓଦାହେବା, ସନ୍ତସନ୍ତିଆ ହେବା । [ ପାଖ ଦେଶ ।

ଅବୋଦେବ—ଅବ୍ୟ. ଦେବତାର ପଛ-

ଅବୋଧ—ବି. ବି°. (ବ.ବ୍ରୀ)ବୋଧଶୂନ୍ୟ, ମୂର୍ଖ, ଅଜ୍ଞାନ(ପୁ°.ବି.)ନ.ତତ୍;ଜ୍ଞାନାଭାବ ବୋଧଶୂନ୍ୟତା ।

ଅବୋଧଗମ୍ୟ— ବି.ବଂ.(ନ.ତତ୍ପୁ)ଅବୋଧ, ଦୁର୍ବୋଧ,ବୋଧାତୀତ, ଜ୍ଞାନର ଅଗମ୍ୟ, (ସ୍ତ୍ରୀ) ଅବୋଧଗମ୍ୟା ।

ଅବୋଧମାତ୍ର—ବି.ବଂ.(ଅ + ବୋଧମାତ୍ର) ଅବୋଧ (ଦେଖ) ।

ଅବୋଧ—ବି. ବଂ. (ନ.ତତ୍ପୁ) ଅବୋଧ-ଗମ୍ୟ, ଦୁର୍ବୋଧ୍ୟ, ବୋଧାତୀତ, (ସ୍ତ୍ରୀ) ଅବୋଧା ।

ଅବୋଲକରା—ଗ୍ରା.ପୁଂ.ବଂ.ଯେଉଁ ଲୋକ ଆଦେଶ ପାଳେନାହିଁ, ଅମାନିଆଁ, ଆଦେଶ ଲଙ୍ଘନକାରୀ, (ସ୍ତ୍ରୀ) ଅବୋଲ-କରୀ ।

ଅବୋଷ—ପୁଂ. ବ. (ଅବ + ଉଷ୍ + ଅ) ଉଷ୍ଣାନ୍ନ, ତାତଲାଭାତ, (ବଂ.) ତପ୍ତାନ୍ନର ହିତକର ବସ୍ତୁ, ଘୃତାଦ ।

ଅବ୍ଦ—ପୁଂ. ବ. ( ଅବ + ଦ ) ବତ୍ସର, ମେଘ, ପର୍ବତବିଶେଷ, ବର୍ଷ, ପର୍ବତ, ମୁସ୍ତକ, ମୁଥା ।

ଅବ୍ଦପ—ପୁଂ.ବ.ବତ୍ସରାଧିପ, ବର୍ଷାଧିପତି ।

ଅବ୍ୟ—ବଂ.ମେଷର ଶରୀରଜାତ ଲୋମାଦ, ମେଣ୍ଢାଲୋମ, (ଗ୍ରା.ବ.) ଘୃଣା ।

ଅବ୍ୟକବ୍ୟ—ଗ୍ରା. ବ. ଆବୁକାବୁ, ଶକ୍ତି, କ୍ଷମତା, ପରାକ୍ରମ, ଇତସ୍ତତଃ ଚଳିବାର ଶକ୍ତି ।

ଅବ୍ୟକ୍ତ—ପୁଂ ବ.(ଅ + ବି + ଅଞ୍ଜ + ତ) ବିଷ୍ଣୁ, ଶିବ, କନ୍ଦର୍ପ, ମୂର୍ଖବ୍ୟକ୍ତି, ସର୍ବ-କାରଣର ପ୍ରଧାନ ଆତ୍ମା, (କ୍ଳୀ.ବ)ବ୍ରହ୍ମ, ସୂକ୍ଷ୍ମଶରୀର,(ସ୍ତ୍ରୀ.ବ)ସୁଷୁପ୍ତି ଅବସ୍ଥା,ଶବ୍ଦ-ପ୍ରଭୃତିର କାରଣ(ବଂ) ଅସ୍ପଷ୍ଟ,ବସ୍ତୁମାତ୍ର, ମୂର୍ଖ, ପ୍ରକୃତ, ଆତ୍ମା, ଅଦୃଶ୍ୟ,ବ୍ୟକ୍ତିହୀନ

ଅବ୍ୟକ୍ତକ୍ରିୟା—ସ୍ତ୍ରୀ.ବ (କ.ଧା)ବୀଜଗଣିତ ସମ୍ବନ୍ଧୀୟ ଗଣନା ।

ଅବ୍ୟକ୍ତପଦ—ବଂ. ( ବ.ବ୍ରୀ ) ଯାହା ବାହାରକୁ ଶୁଣାଯାଏନାହିଁ, ଯାହା ଧ୍ୱନି-ରୂପେ ପ୍ରକାଶିତ ହୁଏ ନାହିଁ ।

ଅବ୍ୟକ୍ତପୁଷ୍ପକ—ବି. ବଂ. (ବ.ବ୍ରୀ ) ଯେଉଁ ଗଛରେ ଫୁଲ ଫୁଟିବାର ଦେଖାଯାଏ-ନାହିଁ ।

ଅବ୍ୟକ୍ତବର୍ତ୍ମା—ପୁଂ. ସ୍ତ୍ରୀ. ବଂ. ( ବ.ବ୍ରୀ ) ଯାହାର ମାର୍ଗ ବା ଗତି ପ୍ରଚ୍ଛନ୍ନ ଅଟେ ।

ଅବ୍ୟକ୍ତମୂଳପ୍ରଭବ—ପୁଂ.ବ.ସଂସାରବୃକ୍ଷ ।

ଅବ୍ୟକ୍ତରାଗ—ପୁଂ. ବ. ( ଅ + ବ୍ୟକ୍ତ + ରାଗ ) ଈଷତ୍ ରକ୍ତବର୍ଣ୍ଣ, ଅରୁଣବର୍ଣ୍ଣ, ସନ୍ନ୍ୟାସୀ,ଋଷି, (ବଂ)ଅରୁଣବର୍ଣ୍ଣବିଶିଷ୍ଟ, ଅଭିଳାଷ (ସ୍ତ୍ରୀ) ଅବ୍ୟକ୍ତରାଗା ।

ଅବ୍ୟକ୍ତରାଶି—ପୁଂ.ବ. ଅଜ୍ଞାତରାଶି, ଯେଉଁ ରାଶି ସଂଖ୍ୟାଦ୍ୱାରା ଅବ୍ୟକ୍ତ ।

ଅବ୍ୟକ୍ତଲକ୍ଷଣ-ପୁଂ.ବ.(ବ.ବ୍ରୀ)ମହାଦେବ, ଶିବ ।

ଅବ୍ୟକ୍ତଲିଙ୍ଗ—କ୍ଳୀ. ବ. ସାଂଖ୍ୟମତସିଦ୍ଧ ମହତ୍ତତ୍ତ୍ୱାଦ(ବଂ)ଅବ୍ୟକ୍ତ ଚିହ୍ନରୋଗାଦ, ଗୁପ୍ତାଶ୍ରମବିଶିଷ୍ଟ ସନ୍ନ୍ୟାସୀ ।

ଅବ୍ୟକ୍ତଶକ୍ତି—ବି.ଜଡ଼ ବା ଜୀବରେ ଯେଉଁ ଶକ୍ତି ପ୍ରଚ୍ଛନ୍ନ ହୋଇ ରହିଥାଏ, ଯାହା ସୁଯୋଗ ପାଇଲେ ପ୍ରକାଶିତ ହୁଏ ।

ଅବ୍ୟକ୍ତଶିରସ୍କ—ବଂ. (ବ.ବ୍ରୀ) ଯେଉଁ ଜୀବମାନଙ୍କର ମୁଣ୍ଡ ସ୍ପଷ୍ଟରୂପେ ବାରି-ହୁଏନାହିଁ ( ଶାମୁକା ) ।

ଅବ୍ୟଙ୍ଗ—ବି. ବଂ. (ବ.ବ୍ରୀ) ପୂର୍ଣ୍ଣାଙ୍ଗ, ସୁନିର୍ମିତ, ଅନବଦ୍ୟ, ବ୍ୟକ୍ତ, ପରିହାସ-ବିହୀନ (ସ୍ତ୍ରୀ) ଅବ୍ୟଙ୍ଗା (ବି) ବାଇଡ଼ଙ୍କ, ଶୂକଶିମ୍ବି ।

ଅବ୍ୟଗ୍ର—ବି. ବଂ. ( ନ.ତତ୍ପୁ ) ଶାନ୍ତ, ଅନାକୁଳ, ଉଦାସୀନ, ଅବ୍ୟାପୃତ, ଅବିପନ୍ନ,ଅଭିନିବିଷ୍ଟ, ଅନୁଦ୍ବିଗ୍ନ, ସୁବି ବେଚକ (ସ୍ତ୍ରୀ)ଅବ୍ୟଗ୍ରା (ବି.) ଅବ୍ୟଗ୍ରତା ।

ଅବ୍ୟଙ୍ଗା—ସ୍ତ୍ରୀ. ବଂ. ( ଅବ୍ୟଙ୍ଗ + ଆ ) ଅବ୍ୟଙ୍ଗର ସ୍ତ୍ରୀଲିଙ୍ଗ(ବ)ବାଇଡ଼ଙ୍କ ।

ଅବ୍ୟଙ୍ଗାଙ୍ଗ—ପୁଂ.ବଂ. (ବ.ବ୍ରୀ) ଅବି-କଳାଙ୍ଗ, ପୂର୍ଣ୍ଣା ଙ୍ଗ,ସମ୍ପୂର୍ଣ୍ଣ,ନିଖୁଣ (ସ୍ତ୍ରୀ) ଅବ୍ୟଙ୍ଗାଙ୍ଗୀ ।

ଅବ୍ୟଞ୍ଜନ—ପୁଂ.ବ. ଶୃଙ୍ଗହୀନ ପଶୁ(ବଂ) ଯେଉଁ ବ୍ୟକ୍ତିର ବା ପ୍ରାଣୀର ଲିଙ୍ଗ ବା ଯୌବନଜ୍ଞାପକ ଚିହ୍ନାଦ ନାହିଁ, ହେଣ୍ଡଡ଼ା, ମାଖୁନା, ଚିହ୍ନଶୂନ୍ୟ, ଉପ-କରଣଶୂନ୍ୟ, ଲକ୍ଷଣଶୂନ୍ୟ, ସୁଲକ୍ଷଣ-ହୀନ, ବ୍ୟଞ୍ଜନବର୍ଣ୍ଣଶୂନ୍ୟ, ଅବ୍ୟକ୍ତ ।

ଅବ୍ୟଣ୍ଡା—ସ୍ତ୍ରୀ.ବ.(ଅ + ବି + ଅଣ୍ଡ + ଆ) ଶୂକଶିମ୍ବି, ବାଇଡ଼ଙ୍କ ।

ଅବ୍ୟତିକର—ପୁଂ. ବ. ସଂସର୍ଗାଭାବ, (ବଂ) ସଂସର୍ଗଶୂନ୍ୟ ।

ଅବ୍ୟତିକୀର୍ଣ୍ଣ—ବି. ବଂ. (ଅ + ବି + ଅତି + କୃ.ତ) ଅସଂକୀର୍ଣ୍ଣ,ଅମିଶ୍ରିତ, ପୃଥକ୍ ।

ଅବ୍ୟଷ୍ଟା—ସ୍ତ୍ରୀ. ବ. ସଉତୁଣୀର ସହିତ ଯେଉଁ ସ୍ତ୍ରୀ ପତି ନିକଟକୁ ଯାଏନାହିଁ ।

ଅବ୍ୟଥ—ପୁଂ. ବ. (ଅ + ବ୍ୟଥା) ସର୍ପ, (ବଂ) ବ୍ୟଥାଶୂନ୍ୟ, ନିର୍ଭୟ, ସକରୁଣ, ସଦୟ (ସ୍ତ୍ରୀ) ଅବ୍ୟଥା, ସ୍ତ୍ରୀ. ହରଡ଼ା, ଶୁଣ୍ଠୀ ପଦ୍ମଚାରିଣୀ ବୃକ୍ଷ ।

ଅବ୍ୟଥସ୍ତ—ପୁଂ.ବ. (ନ.ତତ୍ପୁ) ଘୋଡ଼ା ।

ଅବ୍ୟଥା—ସ୍ତ୍ରୀ. ବ. ବ୍ୟଥାର ଅଭାବ, ଦୃଢ଼ତା, ସ୍ଥଳପଥା,ଗୁଳ୍ମବିଶେଷ, ଶୁଣ୍ଠୀ, ହରଡ଼ା, ପଦ୍ମଚାରିଣୀ ବୃକ୍ଷ ।

ଅବ୍ୟଥି—ବି. ବଂ. ( ଅ + ବ୍ୟଥ୍ + ଇ ) ବ୍ୟଥାଶୂନ୍ୟ, ଦୁଃଖଶୂନ୍ୟ ।

ଅବ୍ୟଥିଷ—ପୁଂ. ସ୍ତ୍ରୀ. ( ଅ + ବ୍ୟଥ୍ + ଇଷ ସୂର୍ଯ୍ୟ, ସମୁଦ୍ର,(ସ୍ତ୍ରୀ) ଅବ୍ୟଥିଷୀ, ପୃଥିବୀ, ରାତ୍ରି ।

ଅବ୍ୟଥୀ—ପୁଂ.ବଂ.(ଅ + ବ୍ୟଥା + ଇନ୍) ନିର୍ଭୟ, ବ୍ୟଥାଶୂନ୍ୟ, ଯେ ଅନ୍ୟକୁ ବ୍ୟଥା ନ ଦିଏ (ସ୍ତ୍ରୀ) ଅବ୍ୟଥିନୀ ।

ଅବ୍ୟଥ୍ୟ—ବି. ବଂ. ( ଅ + ବ୍ୟଥ୍ + କ, ଯ) ବ୍ୟଥାଶୂନ୍ୟ, ଯେ ଦୁଃଖିତ ନୁହେ, ଯେ ବ୍ୟଥା ଦିଏ ନାହିଁ ।

ଅବ୍ୟପଦେଶ—ବି. ବଂ.(ନ.ତତ୍ପୁ) ଯାହା ଆଦେଶ କରାହୋଇନାହିଁ, ଯାହା କୁହା-ହୋଇନାହିଁ, ଅନିର୍ବାଚ୍ୟ । [ ପେକ୍ଷ ।

ଅବ୍ୟପେକ୍ଷ—ବି ବଂ (ବ.ବ୍ରୀ) ଅନ-

ଅବ୍ୟପେକ୍ଷା—ସ୍ତ୍ରୀ. ବ. ( ଅ + ବି + ଅପେକ୍ଷା ) ବେଖାତିର, ଅନବଧାନ, ଏକପଦ ସଙ୍ଗରେ ଆଉ ଏକ ପଦର ବିଶେଷ ରୂପସମ୍ବନ୍ଧର ଅଭାବ(ବଂ.ବ୍ରୀ) ଅପେକ୍ଷାଶୂନ୍ୟ ।

ଅବ୍ୟପେତ — ବଂ. (ଅ + ବି + ଅପେତ) ଅଭିନ୍ନ, ଅବିଚ୍ଛିନ୍ନ, ସଂଲଗ୍ନ ।

ଅବ୍ୟଭାର—(ଅବ୍ୟବହାର ଶବ୍ଦଜ) ଅପବ୍ୟବହାର । [ଶୂନ୍ୟହେତୁ ।

ଅବ୍ୟଭିଚରିତ—ବି. ବି°. ବ୍ୟଭିଚାରିର-

ଅବ୍ୟଭିଚାର- -ପୁଂ.ବି. (ଅ + ବ୍ୟଭିଚାର) ବ୍ୟଭିଚାରର ଅଭାବ, ଅନ୍ୟଥାର ଅଭାବ, ନୈସ୍ଗିର୍ଯ୍ୟରୂପ, ଅବିଚ୍ଛେଦ, ସ୍ଥିରତା, ଅବାଧା, ଅନାୟାସ, ଅଲଙ୍ଘନ ।

ଅବ୍ୟଭିଚାରିଣୀ—ସ୍ତ୍ରୀ.ବି°.(ନ.ତତ୍ପୁ)ଅଭ୍ରଷ୍ଟାଚାରିଣୀ ଅସଦାଚରଣରହିତା, ଏକନିଷ୍ଠା, ପରପୁରୁଷାନୁରକ୍ତା, ଅକୁଳଟା ।

ଅବ୍ୟଭିଚରିତ—ବି. ବି. (ନ.ତତ୍ପୁ)ବାଧାଶୂନ୍ୟ, ଅପ୍ରତିବନ୍ଧକ ।

ଅବ୍ୟଭିଚାରୀ—ପୁଂ. ବି°. (ନ.ତତ୍ପୁ) ଯେ କୌଣସି ମତେ ଅସତ୍ପଥ ଅବଲମ୍ବନ କରେନାହିଁ, ଅପରିବର୍ତ୍ତନଶୀଳ, ସ୍ଥିର, ନିତ୍ୟ, ସ୍ଥାୟୀ, ଦୃଢ଼, ବ୍ୟଭିଚାରରହିତ ସାଧୁ, ଏକନିଷ୍ଠ, ଅବିଚଳ, ଧାର୍ମିକ (ସ୍ତ୍ରୀ) ଅବ୍ୟଭିଚାରିଣୀ ।

ଅବ୍ୟୟ—କ୍ଲୀ. ବି.ବ.ବ୍ରୀ (ଅ + ବି + ଇ + ଅ) ଯେଉଁ ଶବ୍ଦ ତିନଲିଙ୍ଗ,ସମସ୍ତ ବିଭକ୍ତି, ସମସ୍ତ ବଚନରେ ଏକରୂପ, ସମସ୍ତ ବିଭକ୍ତିରେ ସମସ୍ତ ବଚନରେ ସମସ୍ତ ଲିଙ୍ଗରେ ଏକରୂପ. ଶବ୍ଦବୃତ୍ତିଧର୍ମ ବିଶେଷ, ବ୍ରହ୍ମ ।

ଅବ୍ୟୟା—ସ୍ତ୍ରୀ. ବି°. ଅବ୍ୟୟର ସ୍ତ୍ରୀଲିଙ୍ଗ, (ବି) ଦୁର୍ଗା ।

ଅବ୍ୟୟାତ୍ମା—ପୁଂ. ବି. ଅବିନଶ୍ୱରଭାବ, ଯାହାର ବିନାଶ ନାହିଁ, ପରମେଶ୍ୱର, ପରମାତ୍ମାପ୍ରଭୃତି ।

ଅବ୍ୟୟୀ—ପୁଂ.ବି° (ନ.ତତ୍ପୁ) ବ୍ୟୟରହିତ, ମିତବ୍ୟୟୀ, ଅଳ୍ପରଚୀ, କୃପଣ, (ସ୍ତ୍ରୀ) ଅବ୍ୟୟିଣୀ ।

ଅବ୍ୟୟୀଭାବ—ପୁଂ. ବି. ( ଅବ୍ୟୟୀ + ଭୂ + ଭା,ଅ) ବ୍ୟାକରଣସିଦ୍ଧ ସମାସବିଶେଷ, ବ୍ୟୟ ନ କରିବା ଅବସ୍ଥା, ନିର୍ଦ୍ଧନତା ଯୋଗୁ ବ୍ୟୟର ଅଭାବ,ଅପରିବର୍ତ୍ତନୀୟ ଅବସ୍ଥା, ଅକ୍ଷୟତ୍ୱ, ମରଣଧର୍ମରହିତତ୍ୟ ।

ଅବ୍ୟର୍ଣ୍ଣ—ବି°.(ଅ + ବ୍ୟର୍ଣ୍ଣ) ଅତ୍ୟାଗ୍ରହଶତ ହୋଇ ନ ଥିବା ।

ଅବ୍ୟର୍ଥ—ପୁଂ.ବି. ନ.ତତ୍ପୁ; (ଅ + ବ୍ୟର୍ଥ) ସଫଳ, ସାର୍ଥକ, ଅମୋଘ, ଲାଭଜନକ, (ସ୍ତ୍ରୀ) ଅବ୍ୟର୍ଥା ।

ଅବ୍ୟର୍ଥଲକ୍ଷ୍ୟ—ପୁଂ.ବି°.ବ.ବ୍ରୀ;(ଅବ୍ୟର୍ଥ + ଲକ୍ଷ୍ୟ) ଯାହାର ବାଣ ବା ଶର ଲକ୍ଷ୍ୟଭ୍ରଷ୍ଟ ନୁହେ, ଯାହାର ଲକ୍ଷ୍ୟ ଅମୋଘ ଘଟେ, (ସ୍ତ୍ରୀ) ଅବ୍ୟର୍ଥଲକ୍ଷ୍ୟା ।

ଅବ୍ୟଲୀକ—ବି. ବି°. ( ଅ + ବ୍ୟଲୀକ ) ପ୍ରୀତିକର, ମନୋରମ. ନିଷ୍କପଟ, ପ୍ରିୟସତ୍ୟ,ଯାହା ମିଥ୍ୟା ନୁହେ (ସ୍ତ୍ରୀ) ଅବ୍ୟଲୀକା ।

ଅବ୍ୟବଧାନ—କ୍ଲୀ. ବି. ବ୍ୟବଧାନର ଅଭାବ,ଆଢ଼ୁଆଳ ନଥିବା,ଫାଙ୍କ ନଥିବା, ଆସକ୍ତି, ଅନବଧାନ, ଅଭେଦ, (ବି°) ବ୍ୟବଧାନଶୂନ୍ୟ, ଅବ୍ୟବହିତ, ପ୍ରମତ୍ତ, (ସ୍ତ୍ରୀ) ଅବ୍ୟବଧାନା ।

ଅବ୍ୟବସାୟ—ପୁଂ.ବି. (ନ.ତତ୍ପୁ)ନିଶ୍ଚୟର ଅଭାବ, ଉଦ୍ଯୋଗର ଅଭାବ, ଅନନୁଶୀଳନ, ଚେଷ୍ଟାଶୂନ୍ୟତା, (ବି.)ନଷ୍ଟଚେଷ୍ଟ, ଅବ୍ୟବସ୍ଥିତ ।

ଅବ୍ୟବସାୟୀ—ପୁଂ.ବି°. (ନ.ତତ୍ପୁ)ଉଦ୍ୟମଶୂନ୍ୟ, ଅନଭିଜ୍ଞ, ଅନୁଦ୍ୟତ, ଅନାଡ଼ୀ, ବ୍ୟବସାୟବୁଦ୍ଧିହୀନ, ନିଶ୍ଚୟର ଅଭାବଯୁକ୍ତ (ସ୍ତ୍ରୀ) ଅବ୍ୟବସାୟିନୀ ।

ଅବ୍ୟବସିତ—ବି. ବି°. (ନ.ତତ୍ପୁ) ବ୍ୟବସାୟରହିତ, ଉଦ୍ୟମହୀନ ।

ଅବ୍ୟବସ୍ଥ—ବି. ବି°. (ବ.ବ୍ରୀ) ବ୍ୟବସ୍ଥାରହିତ, ଅନିର୍ଦ୍ଦିଷ୍ଟ, ଅସ୍ଥିର, ବିଧିହୀନ, ଅନିଶ୍ଚିତ, ଅନୟତ, (ସ୍ତ୍ରୀ) ଅବ୍ୟବସ୍ଥା ।

ଅବ୍ୟବସ୍ଥା—ସ୍ତ୍ରୀ. ବି. (ବ.ବ୍ରୀ) ଅବିଧି, ଶାସ୍ତ୍ରାଦିର ବିରୁଦ୍ଧବ୍ୟବସ୍ଥା, ଅନିୟମ, (ବି°.) ଅବ୍ୟବସ୍ଥିତ ।

ଅବ୍ୟବସ୍ଥିତ—ବି.ବି°(ଅ + ବି + ଅବ୍ + ସ୍ଥା + ତ)ନ.ତତ୍ପୁ;ଶାସ୍ତ୍ରାଦିର ମର୍ଯ୍ୟାଦାରହିତ, ଅନିୟତରୂପ, ଚଞ୍ଚଳ, ଅସ୍ଥିର, ପରିବର୍ତ୍ତନଶୀଳ, ବିଶୃଙ୍ଖଳ (ସ୍ତ୍ରୀ) ଅବ୍ୟବସ୍ଥିତା ।

ଅବ୍ୟବସ୍ଥିତଚିତ୍ତ—ପୁଂ. ବି°. ( ବ.ବ୍ରୀ ) ଅସ୍ଥିରଚିତ୍ତ, ଚଞ୍ଚଳମତି, (ସ୍ତ୍ରୀ) ଅବ୍ୟବସ୍ଥିତଚିତ୍ତା, (କ୍ଲୀ. ବି.) ଅସ୍ଥିରମନ ।

ଅବ୍ୟବସ୍ଥିତଚେତା—ପୁଂ.ବି°. (ଅବ୍ୟବସ୍ଥିତ + ଚେତସ୍) ଅସ୍ଥିରମତି, ଯାହାର ମନ ଚଞ୍ଚଳ ।

ଅବ୍ୟବହାର୍ଯ୍ୟ—ବି°.(ଅ + ବି + ଅବ + ହୃ + ଣିଂ.ଯ) ସମାଜଚ୍ୟୁତ, ଅପାଂକ୍ତେୟ ।

ଅବ୍ୟବହାର୍ଯ୍ୟ—ବି.ବି°.(ଅ + ବ୍ୟବହାର୍ଯ୍ୟ) ଯାହା ବ୍ୟବହାରଯୋଗ୍ୟ ନୁହେ, ଅନାଚରଣୀୟ,ଅକର୍ମଣ୍ୟ, ପତିତ, (ସ୍ତ୍ରୀ) ଅବ୍ୟବହାର୍ଯ୍ୟା ।

ଅବ୍ୟବହାର—ପୁଂ.ବି. (ନ.ତତ୍ପୁ) ବ୍ୟବହାରାଭାବ, ଅପ୍ରୟୋଗ, ଦୁର୍ବ୍ୟବହାର, ଅତ୍ୟାଚାର ।

ଅବ୍ୟବହିତ—ବି. ବି°. (ଅ + ବି + ଅବ + ଧା + ତ) ସାକ୍ଷାତ୍ ସମ୍ବନ୍ଧ, ବ୍ୟବଧାନରହିତ, ଯେଉଁ ଦୁଇଦ୍ରବ୍ୟ ମଧ୍ୟରେ ଫାଙ୍କ ନ ଥାଏ, ନିକଟସ୍ଥ, ସଂଲଗ୍ନ, ସନ୍ନିହିତ ।

ଅବ୍ୟବହୃତ—ବି. ବି°. (ନ.ତତ୍ପୁ) ଯାହା ବ୍ୟବହୃତ ହୁଏ ନାହିଁ, ଭୋଗାଦିଦ୍ୱାରା ଅଦୂଷିତ, ଅନୁପଭୁକ୍ତ. ଅପ୍ରଚଳିତ (ସ୍ତ୍ରୀ) ଅବ୍ୟବହୃତା ।

ଅବ୍ୟବୁ—(ପ୍ରା.କ)ବୋଧହୀନ, ଚିନ୍ତାଶୂନ୍ୟ, ମୁଗ୍ଧ, ମୋହିତ ।

ଅବ୍ୟସନ—କ୍ଲୀ.ବି.ବ୍ୟସନାଭାବ, ଦୁଃଖାଦିର ଅଭାବ, ବି°. (ବ.ବ୍ରୀ) ବ୍ୟସନରହିତ, ଅଦୁଷ୍କ୍ରିୟାରତ ।

ଅବ୍ୟସନୀ—ପୁଂ.ବି. (ନ.ତତ୍ପୁ) ବ୍ୟସନଶୂନ୍ୟ,ଅଦୁଷ୍କ୍ରିୟାରତ(ସ୍ତ୍ରୀ) ଅବ୍ୟସନିନୀ, ବ୍ୟସନରହିତା ସ୍ତ୍ରୀ ।

ଅବ୍ୟସ୍ତ—ବି. ବି°. (ନ.ତତ୍ପୁ) ଅବିକ୍ଷିପ୍ତ, ଅବିପର୍ଯ୍ୟସ୍ତ, ସମସ୍ତ, ଅପୃଥକଭୂତ, ସମାନବଦ୍ଧ, ସଂକ୍ଷିପ୍ତ, ଅବ୍ୟାକୁଳ, ସଂଗୃହୀତ (ସ୍ତ୍ରୀ) ଅବ୍ୟସ୍ତା ।

ଅବ୍ୟାକୁଳ—ବି. ବି°. (ଅ + ବ୍ୟାକୁଳ) ନିରାକୁଳ, ସ୍ୱଚ୍ଛନ୍ଦ, ସୁସ୍ଥଚିତ୍ତ, ଶୃଙ୍ଖଳାରହିତ, ପ୍ରଶାନ୍ତ, (ସ୍ତ୍ରୀ) ଅବ୍ୟାକୁଳା ।

ଅବ୍ୟାକୃତ—ବି. ବିଂ. ଅପ୍ରକାଶିତ, ଅପ୍ରକଟୀଭୂତ, ଅଜ୍ଞାନ, ପ୍ରଧାନ, (ସ୍ତ୍ରୀ) ଅବ୍ୟାକୃତା, (କ୍ଲୀ. ବି) ବେଦାନ୍ତରେ ବ୍ରହ୍ମବ୍ୟତୀତ ଜଗତର ଉତ୍ପତ୍ତିର ବୀଜ ।

ଅବ୍ୟାକ୍ଷେପ—ବି. (ଅ + ବ୍ୟାକ୍ଷେପ) ମାନସିକ ଚଞ୍ଚଳତାର ଅଭାବ, ଦୃଢ଼ସଂକଳ୍ପ ।

ଅବ୍ୟାଖ୍ୟା—ସ୍ତ୍ରୀ. ବି. (ଅ + ବ୍ୟାଖ୍ୟା) ଅବ୍ୟକ୍ତତା, ବ୍ୟାଖ୍ୟାର ଅଭାବ, ଅବୋଧ୍ୟତା, (ବିଂ) ଅବ୍ୟାଖ୍ୟାତ ।

ଅବ୍ୟାଖ୍ୟାତ—ବି ବିଂ. (ନ.ତତ୍) ବିଶିଷ୍ଟ ରୂପେ ଅକଥିତ, ଅବର୍ଣ୍ଣିତ, ଯାହାର ବ୍ୟାଖ୍ୟା ହୋଇନାହିଁ (ସ୍ତ୍ରୀ) ଅବ୍ୟାଖ୍ୟାତା ।

ଅବ୍ୟାଖ୍ୟେୟ—ବି. ବିଂ. (ନ.ତତ୍) ଦୁର୍ବୋଧ, ଯାହାର ବ୍ୟାଖ୍ୟା କରାଯାଇପାରେ ।

ଅବ୍ୟାଘାତ—ବିଂ. ଅପ୍ରତିବନ୍ଧକ, ଅବାଧ, ଲଗାଲଗି, (ବି) ବାଧାର ଅଭାବ ।

ଅବ୍ୟାଜ—ବି.ବିଂ.ବ. ବ୍ରୀ; (ଅ + ବ୍ୟାଜ) ଅକପଟ, ଅମାୟିକ, ବାଧାରହିତ, ସ୍ୱାଭାବିକ, ବିଳମ୍ବରହିତ, ଶୀଘ୍ର, ସତ୍ୱର, (ପୁଂ.ବି) ଅକପଟତା, ସରଳତା, ଛଳର ଅଭାବ, ଶଠତାର ଅଭାବ ।

ଅବ୍ୟାଜମନୋହର—ବିଂ. (ଅବ୍ୟାଜ + ମନୋହର) ସ୍ୱାଭାବିକସୌନ୍ଦର୍ଯ୍ୟଯୋଗୁଁ ସୁନ୍ଦର, (ସ୍ତ୍ରୀ) ଅବ୍ୟାଜମନୋହରା ।

ଅବ୍ୟାଜରେ—ଗ୍ରା. କ୍ରି. ବିଂ. ଅକପଟଭାବରେ, ଅକାରଣରେ, ବୃଥା ।

ଅବ୍ୟାପକ—ବି. ବିଂ. (ଅ + ବ୍ୟାପକ) ବ୍ୟାପକ ନୁହେଁ, ଆଂଶିକ, ସୀମାବଦ୍ଧବିଶିଷ୍ଟ, ଅବ୍ୟବସାୟ (ସ୍ତ୍ରୀ) ଅବ୍ୟାପିକା, (ବି) ଅବ୍ୟାପକତା ।

ଅବ୍ୟାପନୀୟ—ବି.ବିଂ.(ନ.ତତ୍) ଅବ୍ୟାପ୍ୟ, ବ୍ୟାପ୍ତିରହିତ, ଯାହା ବ୍ୟାପେ ନାହିଁ ।

ଅବ୍ୟାପନ୍ନ—ତ୍ରି.ବିଂ.(ନ.ତତ୍) ଅନାପଦ, ସୁସ୍ଥ, ଜୀବିତ ।

ଅବ୍ୟାପାର—ପୁଂ. ବି. କାର୍ଯ୍ୟରୁ ନିବୃତ୍ତି, କାର୍ଯ୍ୟରେ ନ ଲଗିଥିବା ଅବସ୍ଥା, ବେକାରପଣ, ମନ୍ଦକାର୍ଯ୍ୟ, ତ୍ରି.ବିଂ. (ବ.ବ୍ରୀ) ବ୍ୟାପାରଶୂନ୍ୟ, ଅଭ୍ୟାସହୀନ, ବ୍ୟାପାରରହିତ, (ସ୍ତ୍ରୀ) ଅବ୍ୟାପାରା ।

ଅବ୍ୟାପାରେ ସୁବ୍ୟାପାର—ଗ୍ରା. (ପ୍ରବଚନ) ଯାହା ନିଜର କାର୍ଯ୍ୟ ନୁହେ ସେଥିରେ ପ୍ରବୃତ୍ତ ହୋଇ କାର୍ଯ୍ୟ କରିବା ।

ଅବ୍ୟାପୀ—ପୁଂ. ବିଂ. (ଅ + ବ୍ୟାପିନ୍) ଅବ୍ୟାପକ, ଇୟତ୍ତାବିଶିଷ୍ଟ, ପରିଚ୍ଛିନ୍ନ, (ସ୍ତ୍ରୀ) ଅବ୍ୟାପିନୀ ।

ଅବ୍ୟାପ୍ତ—ବି.ବିଂ. (ଅ + ବ୍ୟାପ୍ତ) ବ୍ୟାପ୍ତ ନୁହେ, ସସୀମ, ପରିଚ୍ଛିନ୍ନ (ବି.) ଅବ୍ୟାପ୍ତ ।

ଅବ୍ୟାପ୍ତି—ସ୍ତ୍ରୀ. ବି. (ଅ + ବ୍ୟାପ୍ତି) ନ.ତତ୍; ବ୍ୟାପିକରି ନଥିବା, ବ୍ୟାପ୍ତିରେ ଅଭାବ (ବିଂ) ଅବ୍ୟାପ୍ତ ।

ଅବ୍ୟାବର୍ତ୍ତନ—ତ୍ରି. ବିଂ. ବ୍ୟାବୃତ୍ତିଶୂନ୍ୟ, ଅନ୍ୟର ନିବାରଣଶୂନ୍ୟ (କ୍ଲୀ.ବି) ଅନ୍ୟଠାରୁ ନିବାରଣ ନ କରିବା ।

ଅବ୍ୟାପ୍ୟବୃତ୍ତି—ସ୍ତ୍ରୀ.ବି. ଆଂଶିକ ଘଟିବା ବୃତ୍ତି ବା ସଙ୍ଗ (ବିଂ) ଏକାଂଶରେ ସ୍ଥିତ ।

ଅବ୍ୟାଭର—ଗ୍ରା.ବି. ଅବୈଧ ଅନୁଷ୍ଠାନ, ଅସମାଜିକ କାର୍ଯ୍ୟ, ଅବ୍ୟବହାର ।

ଅବ୍ୟାୟାମ—ପୁଂ.ବି. (ନ.ତତ୍) ବ୍ୟାୟାମର ଅଭାବ, ବିସ୍ତାରର, ଅଭାବ (ବିଂ) ପରିଶ୍ରମାଦି ବ୍ୟାପାରଶୂନ୍ୟ ।

ଅବ୍ୟାବର୍ତ୍ତକ—ତ୍ରି. ବିଂ. ଅକୃତ ନିବାରଣ, ଯେ ଅନ୍ୟକୁ ଭେଦ କରେ ନାହିଁ, ଅବିଶେଷକ ।

ଅବ୍ୟାପ୍ୟ—ତ୍ରି.ବିଂ. (ନ ତତ୍) ଅବ୍ୟାପନୀୟ, ସମୁଦାୟ ଘଟନାକୁ ବ୍ୟାପି ନଥିବା (ସ୍ତ୍ରୀ) ଅବ୍ୟାପ୍ୟା ।

ଅବ୍ୟାହତ—ତ୍ରି.ବିଂ. (ଅ + ବି + ଆ + ହନ୍ + ତ) ନ.ତତ୍; ବ୍ୟାଘାତଶୂନ୍ୟ, ମିଥ୍ୟା ନୁହେ, ସତ୍ୟ ବାକ୍ୟ, ଅକୁଣ୍ଠିତ, ଅବାଧ, ଅପ୍ରତିହତ, ଅବ୍ୟର୍ଥ, ମୁକ୍ତ ।

ଅବ୍ୟାହତଗତି—ପୁଂ. ସ୍ତ୍ରୀ.ବିଂ. (ବ. ବ୍ରୀ) ଅବାଧଗତି, ଯାହାର ଗତିକୁ କେହି ବାଧାଦିଏ ନାହିଁ ।

ଅବ୍ୟାହତି—ସ୍ତ୍ରୀ. ବି. (ଅ + ବି + ଆ + ହନ୍ + କ୍ତି) ନିସ୍ତାର, ପରିତ୍ରାଣ, ଅବ୍ୟାଘାତ ମୁକ୍ତି, ଅବିଘ୍ନରକ୍ଷା, ନିଷ୍କୃତି, ମଙ୍ଗଳ ।

ଅବ୍ୟାହତାଜ୍ଞ—ପୁଂ.ବି.(ବ.ବ୍ରୀ) ଯାହାର ଆଜ୍ଞା ବା ହୁକୁମକୁ କେହି ବାଧା ଦେଇ ନ ପାରେ, (ସ୍ତ୍ରୀ) ଅବ୍ୟାହତାଜ୍ଞା ।

ଅବ୍ୟାହୃତ—ତ୍ରି.ବିଂ.(ନ.ତତ୍) ଅକଥିତ, ଅଯୁକ୍ତ, ଅନୁଚ୍ଚାରିତ (ସ୍ତ୍ରୀ) ଅବ୍ୟାହୃତା ।

ଅବ୍ୟୁତ୍ପନ୍ନ—ତ୍ରି. ବିଂ. (ନ.ତତ୍) ଅଶିକ୍ଷିତ, ଶବ୍ଦାର୍ଥାନଭିଜ୍ଞ, ଅପାରଦର୍ଶୀ, ଅଜ୍ଞାନ, ଅଜ୍ଞ, (ସ୍ତ୍ରୀ) ଅବ୍ୟୁତ୍ପନ୍ନା, (ବି.) ଅବ୍ୟୁତ୍ପନ୍ନତା ।

ଅବ୍ୟୁତ୍ଥିତି—ସ୍ତ୍ରୀ.ବି. (ନ.ତତ୍) ଉତ୍ଥାନର ଅଭାବ, ନ ଉଠିବା, ବାକ୍ୟର ଗୁଣବିଶେଷ ।

ଅବ୍ୟୂଢ଼—ତ୍ରି.ବିଂ. ନ.ତତ୍; (ଅ + ବ୍ୟୂଢ଼) ଅନୂଢ଼, ଅବିବାହିତ, ଅପରିଣୀତ, ଅବିବାହିତ, ଅକୃତବିବାହ, ବିକ୍ଷିପ୍ତ, (ସ୍ତ୍ରୀ) ଅବ୍ୟୂଢ଼ା ।

ଅବ୍ୟୂଢ଼ାନ୍ନ—ବି. ବର ବା କନ୍ୟାର ବିବାହସମ୍ବନ୍ଧୀୟ ମଙ୍ଗଳଭୋଜନୋତ୍ସବ ।

ଅବ୍ରଣ—ତ୍ରି. ବିଂ. ବ. ବ୍ରୀ; (ଅ + ବ୍ରଣ) ବ୍ରଣରହିତ, ଅକ୍ଷତ, ପୂର୍ଣ୍ଣ, ଯାହା ଅଙ୍ଗହୀନ ନୁହେ, ଅବିପ୍ଲୁତ, (ସ୍ତ୍ରୀ) ଅବ୍ରଣା ।

ଅବ୍ରତ—ତ୍ରି. ବିଂ. (ବ.ବ୍ରୀ) ଶାସ୍ତ୍ରବିହିତ, ନିୟମଶୂନ୍ୟ, ବ୍ରତରହିତ, ଅନୁପନୀତ, ଯେ ବ୍ରତାଲମ୍ବନ କରିନାହିଁ (ସ୍ତ୍ରୀ) ଅବ୍ରତା ।

ଅବ୍ରତୀ—ପୁଂ.ବିଂ. (ନ.ତତ୍) ବ୍ରତାଚରଣବିହୀନ, ଅନନୁଷ୍ଠାୟୀ, ଅନଯୋଜିତ, ଅପ୍ରବୃତ୍ତ, (ସ୍ତ୍ରୀ) ଅବ୍ରତିନୀ ।

ଅବ୍ରତୁଆ—ପୁଂ. ସ୍ତ୍ରୀ. ବିଂ. ଯେଉଁ ଦ୍ୱିଜବାଳକର ଉପନୟନ ହୋଇ ନାହିଁ, ଯେ ବ୍ରତାଚରଣ କରି ନାହିଁ ।

ଅବ୍ରତ୍ୟ—ତ୍ରି. ବିଂ. ବ୍ରତକାଳରେ ଅନାଚରଣୀୟ ମିଥ୍ୟା ବାକ୍ୟାଦି ।

ଅବ୍ରହ୍ମଚର୍ଯ୍ୟ—ତ୍ରି. ବିଂ. (ବ.ବ୍ରୀ) ବ୍ରହ୍ମଚର୍ଯ୍ୟବିହୀନ, ଇନ୍ଦ୍ରିୟସଂଯମରହିତ, (କ୍ଲୀ.ବି) ବ୍ରହ୍ମଚର୍ଯ୍ୟର ଅଭାବ, ସୁରତ, ମୈଥୁନ ।

ଅବ୍ରାହ୍ମଣ୍ୟ—କ୍ଲୀ.ବ. ବ୍ରାହ୍ମଣର କର୍ତ୍ତବ୍ୟ-ଲଙ୍ଘନ, ବ୍ରାହ୍ମଣର ଅଯୋଗ୍ୟ କର୍ମ (ବି) ବ୍ରାହ୍ମଣଧର୍ମ ବହିର୍ଭୂତ, ବ୍ରାହ୍ମଣମାନଙ୍କର ଅନାଚରଣୀୟ (ସ୍ତ୍ରୀ) ଅବ୍ରାହ୍ମଣ୍ୟା ।

ଅବ୍ରାହ୍ମଣ—ପୁଂ.ବି. (ନ.ତତ୍) ନିସ୍ତ୍ରାଣ-ବ୍ରାହ୍ମଣ, ହଳୁଆ ବ୍ରାହ୍ମଣ, ନୀଚ ବ୍ରାହ୍ମଣ, ଶୂଦ୍ର, ବ୍ରାହ୍ମଣେତର ଜାତି (ବିଂ) ବ୍ରାହ୍ମଣରହିତ ।

ଅବ୍ରୁବାଣ—ବିଂ.(ଅ + ବ୍ରୁ + କ. ଆନ) ବାକ୍‌ଶକ୍ତିହୀନ, ଯାହାର କଥା କହିବାର କ୍ଷମତା ଜନ୍ମିନାହିଁ, ଶିଶୁ (ସ୍ତ୍ରୀ) ଅବ୍ରୁବାଣା ।

ଅଶକୁନ--ପୁଂ.କ୍ଲୀ.ବି.(ନ.ତତ୍) ଦୁର୍ନିମିତ୍ତ ଅନିଷ୍ଟସୂଚକାଦ୍ଭୁଦର୍ଶନ, ଅମଙ୍ଗଳ, (ବିଂ) ଅଯାତ୍ରିକ (ସ୍ତ୍ରୀ) ଅଶକୁନା ।

ଅଶକ୍ତ—ତ୍ରି. ବିଂ. ( ଅ + ଶକ୍ + ତ ) ଅସମର୍ଥ, କାର୍ଯ୍ୟାକ୍ଷମ, ଅପାରଗ (ସ୍ତ୍ରୀ) ଅଶକ୍ତା ।

ଅଶକ୍ତି—ସ୍ତ୍ରୀ.ବି. ସାମର୍ଥ୍ୟର ଅଭାବ,ଶକ୍ତିର ଅଭାବ,ଅପଟୁତା, (ବିଂ) ଶକ୍ତିହୀନ ।

ଅଶକତ—ଗ୍ରା.ବିଂ. (ସଂ. ଅଶକ୍ତ) କ୍ଳାନ୍ତ, ଅକ୍ଷମ,ଅସମର୍ଥ, ଅଟାଣୁଆ, ଅକଠିନ, ଦୁର୍ବଳ, ଅଦମ୍ଭ । [ କ୍ଳାନ୍ତ ।

ଅଶକତି—ଗ୍ରା. ବି. ଅସାମର୍ଥ୍ୟ, ଅକ୍ଷମତା,

ଅଶକୁମ୍ଭ—ସ୍ତ୍ରୀ.ବି. (କ.ଧା)ପଣା, ଜଳର ଉତ୍ପାତ, ତୃଣବିଶେଷ ।

ଅଶକ୍ୟ—ତ୍ରି. ବିଂ. ( ଅ + ଶକ୍ + ଯ ) ନ.ତତ୍ ଅସାଧ୍ୟ,ସାଧ୍ୟାତୀତ,ଶକ୍ତିବହିର୍ଭୂତ (ସ୍ତ୍ରୀ) ଅଶକ୍ୟା ।

ଅଶଗୁ—ପ୍ରା. ( ସମ୍ବ. ) ପୁଂ. ବିଂ. ( ସଂ. ଅପଶକୁନ) ଅମଙ୍ଗୁଳିଆ (ଲୋକ) ।

ଅଶଙ୍କ—ତ୍ରି. ବିଂ. ବ.ବ୍ରୀ; ଶଙ୍କାହୀନ, ନିଃଶଙ୍କ, ନିର୍ଭୟ, ନିଶ୍ଚିନ୍ତ, ସାହସୀ (ସ୍ତ୍ରୀ) ଅଶଙ୍କା ।

ଅଶଙ୍କନୀୟ—ତ୍ରି. ବିଂ. ନ.ତତ୍; ଯାହାକୁ ଭୟ କରା ନ ଯାଏ, ଯହିଁରେ କୌଣସି ଭୟ ନାହିଁ ।

ଅଶଙ୍କା— ସ୍ତ୍ରୀ.ବି. ସଂଶୟର ଅଭାବ,ଭୟର ଅଭାବ,ଦୁର୍ଭାବନାରାହିତ୍ୟ (ବିଂ) ଶଙ୍କା-ଶୂନ୍ୟ, ନିଶ୍ଚିନ୍ତ ।

ଅଶଙ୍କିତ—ତ୍ରି. ବିଂ. ନ.ନତ୍; ଅଭୀତ, ସନ୍ଦେହରହିତ, ନିଃଶଙ୍କ, ନିରୁଦ୍‌ବେଗ, ନିଶ୍ଚିନ୍ତ (ସ୍ତ୍ରୀ) ଅଶଙ୍କିତା ।

ଅଶଠ—ତ୍ରି.ବିଂ.ନ.ତତ୍; ଶଠତାବିହୀନ, ଅଧୂର୍ତ୍ତ, ଠିକ ନୁହେ ।

ଅଶତ୍ରୁ—ପୁଂ. ବି. ଚନ୍ଦ୍ର, ମିତ୍ର, ଯୁଧିଷ୍ଠିର (ବିଂ.) ଶତ୍ରୁରହିତ, ପ୍ରତିଦ୍ୱନ୍ଦ୍ୱୀବିହୀନ, ବନ୍ଧୁଭାବାପନ୍ନ ।

ଅଶନ—ପୁଂ.ବି. (ଅଶ + ର୍ମି.ଅନ) ଅଶନ ଗଛ, ପିଆଶାଳଗଛ, (କ୍ଲୀ) ଭୋଜନ, ଭକ୍ଷବସ୍ତୁ, ଖାଦ୍ୟ (ବିଂ) ଭକ୍ଷକ (ସ୍ତ୍ରୀ) ଅଶନା । [ ମାଳିଆ ।

ଅଶନଟ—ଗ୍ରା.ବି. ଅଡୁଆ (ବିଂ) ଗୋଳ-

ଅଶନନାଳୀ—ସ୍ତ୍ରୀ.ବି.(୬ତତ୍)ଗଳନଳୀ, ଶଙ୍ଖନଳା, ଅନ୍ନନାଳୀ ।

ଅଶନପର୍ଣ୍ଣୀ—ସ୍ତ୍ରୀ.ବି. (ବ.ବ୍ରୀ) ଆରେଟୀ-ବୃକ୍ଷ, ରସୁଣିଆ ଘାସ, ଅପରାଜିତା-ଲତା ।

ଅଶନବସନ—କ୍ଲୀ.ବି. (ଦ୍ୱନ୍ଦ୍ୱ) ଖାଦ୍ୟ ଓ ପରିଧେୟ, ଭାତ ଲୁଗା ।

ଅଶନାୟା—ସ୍ତ୍ରୀ.ବି.ଭୋଜନେଚ୍ଛା,ବୁଭୁକ୍ଷା, କ୍ଷୁଧା ।

ଅଶନାୟିତ—ତ୍ରି. ବିଂ. ( ଅଶନାୟ + ଇତ ) ଭୋଜନେଚ୍ଛାଯୁକ୍ତ, କ୍ଷୁଧିତ, ବୁଭୁକ୍ଷିତ (ସ୍ତ୍ରୀ) ଅଶନାୟିତା ।

ଅଶନି—ପୁଂ.ସ୍ତ୍ରୀ. ବି. (ଅଶ୍ + କ. ଅନି) ମେଘୋତ୍ପନ୍ନ ତେଜ, ବଜ୍ର, ଚଡ଼କ, ବିଜୁଳୀ, ଅଗ୍ନି, ଉଲ୍‌କାବିଶେଷ ।

ଅଶବ୍ଦ—ପୁଂ.ବି. ଶବ୍ଦଭିନ୍ନ ଅର୍ଥ, ବାଚ୍ୟ, (ବିଂ) ଶବ୍ଦହୀନ । [ ଷୋଭ ।

ଅଶମ—ପୁଂ. ବି. (ନ.ତତ୍) ଅଶାନ୍ତ,

ଅଶ୍‌ମାନ୍—(ଯା) ବି. ଆକାଶ,ନୀଳବର୍ଣ୍ଣ ।

ଅଶ୍‌ମାନି—(ଯା) ବିଂ. ଆକାଶସମ୍ବନ୍ଧୀୟ ନୀଳବର୍ଣ୍ଣ, ମିଥ୍ୟାକଥା ।

ଅଶରଣ—ତ୍ରି.ବିଂ. (ଅ + ଶରଣ, ବ.ବ୍ରୀ, ଅନାଥ,ଅସହାୟ, ଗୃହଶୂନ୍ୟ, ନିରାଶ୍ରୟ, ଅରକ୍ଷିତ, (ସ୍ତ୍ରୀ) ଅଶରଣା ।

ଅଶରମ—ଗ୍ରା. ବିଂ. ପୁଂ. ନିର୍ଲ୍ଲଜ, ବେଶରମା, (ସ୍ତ୍ରୀ) ଅଶରମୀ ।

ଅଶରୀର—ପୁଂ.ବିଂ. (ବ.ବ୍ରୀ)ଦେହହୀନ, ଜୀବନ୍ମୁକ୍ତ ଦୈବ, ଆକାଶସମ୍ଭବ (ବି) କାମଦେବ, ପରମାତ୍ମା, କନ୍ଦର୍ପ, (ସ୍ତ୍ରୀ) ଅଶରୀରା ।

ଅଶରୀରୀ—ପୁଂ. ବିଂ. ନ.ତତ୍; ( ଅ + ଶରୀର + ଇନ୍ ) ଅଙ୍ଗହୀନ, ନିରାକାର, ଭୌତିକ, ଆକାରଶୂନ୍ୟ, (ସ୍ତ୍ରୀ) ଅଶରୀ-ରିଣୀ, (ବି) କନ୍ଦର୍ପ, କାମ ।

ଅଶର୍ମ—କ୍ଲୀ.ବି.ନ.ତତ୍; (ଅ + ଶର୍ମନ୍) ଅସୁଖ, ଦୁଃଖ, କ୍ଳେଶ (ବିଂ) ଦୁଃଖିତ, ପୀଡ଼ିତ, (ସ୍ତ୍ରୀ) ଅଶର୍ମୀ ।

ଅଶର୍ମା—ପୁଂ.ସ୍ତ୍ରୀ.ବିଂ.ସୁଖହୀନ,ଦୁଃଖିତ, କ୍ଳିଷ୍ଟ, ବ୍ୟଥିତ, ପୀଡ଼ିତ । [ ମାଳିଆ ।

ଅଶଲଟ୍—ଗ୍ରା.ବି. ବିଂ. ଅଡୁଆ,ଗୋଳ-

ଅଶବାର—(ଯା) ବି. ଅଶ୍ୱାରୋହୀ ।

ଅଶସ୍ତ୍ର—ବିଂ. ବ.ବ୍ରୀ; (ଅ + ଶସ୍ତ୍ର) ଶସ୍ତ୍ର-ହୀନ, ( ଗ୍ରା. ବିଂ ) ଉପାୟାନ୍ତରହୀନ, (ସ୍ତ୍ରୀ) ଅଶସ୍ତ୍ରା ।

ଅଶସ୍ତ୍ର – ଗ୍ରା. ବିଂ. ( ସଂ.ଅଶସ୍ତ୍ର) ଅଶସ୍ତ୍ର, କାର୍ଯ୍ୟସାଧନୋପାୟରହିତ ।

ଅଶାଖ—ତ୍ରି. ବିଂ. (ବ.ବ୍ରୀ) ଶାଖାହୀନ (ବୃକ୍ଷ), ଯେଉଁ ଗଛର ଡାଳନାହିଁ (ସ୍ତ୍ରୀ) ଅଶାଖା ।

ଅଶାଖା—ଗ୍ରା. ବିଂ. ( ସଂ ଅ + ଶାଖା ) ଅଶାଖ (ଦେଖ), ଶାକବ୍ୟଞ୍ଜନାଦିରହିତ (ଅନ୍ନ), ଅସଖା, ବନ୍ଧୁହୀନ, ନିଃସହାୟ, (ବି) ତୃଣବିଶେଷ ।

ଅଶାନ୍ତ—ତ୍ରି.ବିଂ.ନ. ତତ୍; (ଅ + ଶାନ୍ତ) ଦୁରନ୍ତ, ଶାନ୍ତ ନୁହେ, ଶାନ୍ତଗୁଣହୀନ, ଶମତାରହିତ, ଅଶିଷ୍ଟ, ଦୁଷ୍ଟ, ଦୁର୍ଦ୍ଦାନ୍ତ, (ସ୍ତ୍ରୀ) ଅଶାନ୍ତା ।

ଅଶାନ୍ତି—ସ୍ତ୍ରୀ.ବି.(ଅ + ଶମ + ତି)ଶାନ୍ତିର ଅଭାବ,ମାନସିକ ଉଦ୍‌ବେଗ, ଅସ୍ଥିରତା, ଅତୃପ୍ତି, ସନ୍ତାପ, ଉପଦ୍ରବ, ଅନବୃତ୍ତି, ଗୋଳମାଳ, କଷ୍ଟ, ଅସନ୍ତୋଷ, ରୋଗ ଆଦି ଉପଶମ ନ ହେବା ।

ଅଶାମ୍ୟ—ବିଂ. (ଅ + ଶାମ୍ୟ)ଯାହା ଉପ ଶମିତ ହୋଇ ନ ପାରେ, ଅଶମନୀୟ ।

ଅଶାରୀରକ—ତ୍ରି. ବିଂ. (ନ.ତତ୍) ଅଜା-ସ୍ତିକ, ଅଦୈହିକ (ସ୍ତ୍ରୀ) ଅଶାରୀରକା ।

ଅଶାଶ୍ୱତ—ବି. ବାଂ. (ନ.ତତ୍ପୁ) ଅନତ୍ୟ, ଅସ୍ଥିର, କ୍ଷଣିକ, ଅସନାତନ, ଅଚିରସ୍ଥାୟୀ (ସ୍ତ୍ରୀ) ଅଶାଶ୍ୱତୀ ।

ଅଶାସନ—କ୍ଲୀ.ବ.ନ.ତତ୍ପୁ (ଅ+ଶାସନ) ଶାସନର ଅଭାବ, ଅରାଜକତା, ନିୟମଶୂନ୍ୟତା, କୁଶାସନ ।

ଅଶାସନୀୟ—ତ୍ରି. ବାଂ. (ନ.ତତ୍ପୁ)ଶାସନର ଅଯୋଗ୍ୟ, ଅଦମନୀୟ, ଦୁର୍ଦ୍ଦାନ୍ତ, ଅଦମ୍ୟ, (ସ୍ତ୍ରୀ) ଅଶାସନୀୟା ।

ଅଶାସିତ—ତ୍ରି.ବାଂ. (ନ.ତତ୍ପୁ) ଯାହାକୁ ଶାସନ କରି ହୁଏନାହିଁ, ଅଦମିତ (ସ୍ତ୍ରୀ) ଅଶାସିତା ।

ଅଶାସ୍ୟ—ବାଂ. (ଅ+ଶାସ+ର୍ମ,ଯ) ଅଶାସନୀୟ (ସ୍ତ୍ରୀ) ଅଶାସ୍ୟା ।

ଅଶାସ୍ତ୍ର—କ୍ଲୀ. ବ.(ନ.ତତ୍ପୁ ବେଦବିରୁଦ୍ଧଶାସ୍ତ୍ର, ଶାସ୍ତ୍ରାଭାବ, ଅବୈଧ, ଅବୈଧ (ବାଂ. ବ.ବ୍ରୀ) ବେଦାଦିଶାସ୍ତ୍ରବିରୁଦ୍ଧ, ଶାସ୍ତ୍ରବହିର୍ଭୂତ, ଅବିହିତ, (ସ୍ତ୍ରୀ) ଅଶାସ୍ତ୍ରା ।

ଅଶି—ଗ୍ରା.ବ. (ସ. ଅଶୀତି) ୮୦ସଂଖ୍ୟା, (ବାଂ) ଅଶୀସଂଖ୍ୟକ ।

ଅଶିକ୍ଷା—ସ୍ତ୍ରୀ. ବ. (ନ ତତ୍ପୁ) ଶିକ୍ଷାର ଅଭାବ, କୁଶିକ୍ଷା ।

ଅଶିକ୍ଷିତ—ବି.ବାଂ. (ଅ+ଶିକ୍ଷିତ) ଶିକ୍ଷାଶୂନ୍ୟ, ଅବିନୀତ, ଗଢ଼ନୈପୁଣ୍ୟହୀନ ଘୋଟକାଦି, ଅନଭିଜ୍ଞ, ମୂର୍ଖ, ଅଭବ୍ୟ, (ସ୍ତ୍ରୀ) ଅଶିକ୍ଷିତା । [ ମାସ ।

ଅଶିଣ—ଗ୍ରା. ବ. (ସ.ଅଶ୍ୱିନ) ଆଶ୍ୱିନ-

ଅଶିତ—ବି.ବାଂ.ନ.ତତ୍ପୁ; (ଅଶ+କ.ତ) ଭକ୍ଷିତ, ଖାଇବାରେ ତୃପ୍ତ, କୃଷ୍ଣବର୍ଣ୍ଣ, ଅଶାଣିତ (ସ୍ତ୍ରୀ) ଅଶିତା ।

ଅଶିତ୍ର—ପୁଂ.ବ.(ଅଶ+କ.ଇତ୍ର)ଚୌର, ଚୋର, ଦେବଭକ୍ଷ ଚରୁ, ତସ୍କର ।

ଅଶିଥିଳ—ବି. ବାଂ. (ନ.ତତ୍ପୁ) ଶିଥିଳ ନୁହେ, ଦୃଢ଼, ନିବିଡ଼,ଅନଳସ,ଢ଼ୁଗୁଲା-ହୋଇ ନ ଥିବା (ସ୍ତ୍ରୀ) ଅଶିଥିଳା ।

ଅଶିପଦ—ପୁଂ. ବ. ଶ୍ଳୀପଦରୋଗର ଅଭାବ (ବାଂ)ଶ୍ଳୀପଦନାମକ ପାଦରୋଗଶୂନ୍ୟ ।

ଅଶିମିଦ—ବି. ବାଂ. ଅହିଂସକ ।

ଅଶିର—ପୁଂ. ବ. ରାକ୍ଷସ, ସୂର୍ଯ୍ୟ, ଅଗ୍ନି, (କ୍ଲୀ.ବ) ହୀରକ (ସ୍ତ୍ରୀ) ଅଶିରା ।

ଅଶିରସ୍କ—ପୁଂ.ବ. (ବ.ବ୍ରୀ) ମସ୍ତକହୀନ, କବନ୍ଧ (ବାଂ) ଯାହାର ମୁଣ୍ଡ ନାହିଁ । (ସ୍ତ୍ରୀ) ଅଶିରସ୍କା ।

ଅଶିରଃସ୍ନାନ—କ୍ଲୀ. ବ. ବେକ ପର୍ଯ୍ୟନ୍ତ ଗାଧୋଇବା,ମସ୍ତକଭିନ୍ନ ସର୍ବାଙ୍ଗ ସ୍ନାନ ।

ଅଶିବ—କ୍ଲୀ. ବାଂ. (ଅ+ଶିବ) ମଙ୍ଗଳ ନୁହେ, ଅଶୁଭ, ଅମଙ୍ଗଳକର, (ବ) ଅମଙ୍ଗଳ । [ ଉଷ୍ଣ ।

ଅଶିଶିର—ତ୍ରି. ବାଂ. (ନ.ତତ୍ପୁ)ଅଶୀତଳ,

ଅଶିଶିରକର—ପୁଂ.ବ. (ବ.ବ୍ରୀ) ସୂର୍ଯ୍ୟ, ଉଷ୍ଣାଂଶୁ ।

ଅଶିଶିକ୍ଷା—ସ୍ତ୍ରୀ. ବ. ଯୋଜନେଚ୍ଛା ।

ଅଶିଶୁ—ପୁଂ.ବ. ଶିଶୁ ନୁହେ, ଯୁବା(ବାଂ) ଶିଶୁରହିତ, ଅନପତ୍ୟ, (ସ୍ତ୍ରୀ) ଅଶିଶ୍ୱୀ ।

ଅଶିଶ୍ୱିକା—ସ୍ତ୍ରୀ.ବାଂ. ଶିଶୁରହିତା, ଅନପତ୍ୟା, ସନ୍ତାନହୀନା, ଅଣ୍ଟକୁଡ଼ୀ ।

ଅଶିଷ୍ଟ—ବି. ବାଂ. ନ.ତତ୍ପୁ; (ଅ+ଶିଷ୍ଟ) ଅଭଦ୍ର, ଗର୍ହିତ, ଅଶିକ୍ଷିତ, ଅସଭ୍ୟ, ଅପ୍ରାମାଣିକ, ବ୍ୟଭିଚାରବାନ୍, ଦୁରନ୍ତ, ଅଭବ୍ୟ, ଅଶାନ୍ତ (ସ୍ତ୍ରୀ) ଅଶିଷ୍ଟା (ବ) ଅଶିଷ୍ଟତା ।

ଅଶିଷ୍ଟାଚାର—ପୁଂ. ବ. (କ.ଧା) ଅଭଦ୍ରବ୍ୟବହାର, ଦୁର୍ବୃତ୍ତା, ଦୁରାଚରଣ, (ବାଂ) ଅଭଦ୍ରବ୍ୟବହାରକାରୀ, ଦୁରାଚାରୀ, (ସ୍ତ୍ରୀ) ଅଶିଷ୍ଟାଚାରୀ ।

ଅଶିଷ୍ଣୁ—ବି. ବାଂ. ଅତିଶୟଭୋକ୍ତା (ପୁଂ) ଅଗ୍ନି ।

ଅଶିଷ୍ୟ—ତ୍ରି. ବାଂ. (ନ.ତତ୍ପୁ) ଶାସନର ଅବିଷୟ, ଅବକ୍ତବ୍ୟ, ଅନୁପଦେଷ୍ଟବ୍ୟ, ଯେଉଁ ବିଷୟରେ କୌଣସି ନିୟମ କରା ହୋଇନାହିଁ ।

ଅଶୀତ—କ୍ଲୀ. ବ. (ଅ+ଶୀତ) ଶୀତ ନୁହେ,ଗରମ,ଉଷ୍ଣ (ସ୍ତ୍ରୀ) ଅଶୀତା ।

ଅଶୀତକର—ପୁଂ.ବ.(ବ.ବ୍ରୀ) ଉଷ୍ଣାଂଶୁ, ସୂର୍ଯ୍ୟ । [ ଅଗ୍ନି ।

ଅଶୀତମ—ପୁଂ. ବ. କ୍ଷେତ୍ରାରପ୍ରଧାନ,

ଅଶୀତି—ସ୍ତ୍ରୀ.ବ. ଅଶୀ ସଂଖ୍ୟା(ବାଂ)ଅଶୀସଂଖ୍ୟକ ।

ଅଶୀତିକ—ବାଂ (ଅଶୀତି+କ) ଅଶୀବର୍ଷବୟସ୍କ, ଅଶୀବର୍ଷର ।

ଅଶୀତିତମ—ବାଂ(ଅଶୀତି+ତମ) ଅଶୀସଂଖ୍ୟାର ପୂରଣ ।

ଅଶୀତିପର—ପୁଂ. ବାଂ (ଅଶୀତି+ପର) ଯାହାର ବୟସ ୮୦ ବର୍ଷରୁ ବେଶୀ, (ସ୍ତ୍ରୀ) ଅଶୀତିପରା ।

ଅଶୀର୍ଷକ—ତ୍ରି.ବାଂ.ମସ୍ତକରହିତ,ଅଗ୍ରଶୂନ୍ୟ

ଅଶୀଳ—କ୍ଲୀ. ବ. ଦୁଷ୍ଟସ୍ୱଭାବ, ବାଂ. (ବ ବ୍ରୀ) ଦୁଃଶୀଳ, ଦୁଷ୍ଟସ୍ୱଭାବ, ଅଶିଷ୍ଟ, ଅସଭ୍ୟ, ଦୁର୍ବୃତ୍ତ (ସ୍ତ୍ରୀ) ଅଶୀଳା ।

ଅଶୁ—ଗ୍ରା. ବ. (ସ. ଅସୁ) ପ୍ରାଣ, ଜୀବନ ।

ଅଶୁଆର—ବାଂ. ଅଶ୍ୱବାର, ଅଶ୍ୱାରୋହୀ, (ଗ୍ରା.ବ) ଅଶ୍ୱାରୋହୀ ସେନା, ଉତ୍କୃଷ୍ଟ ଘୋଡ଼ାଚଢ଼ୁଆ, ଶୁଆର ।

ଅଶୁଚ—ବ. ଶୋକର ଅଭାବ (ବାଂ) ଶୋକଶୂନ୍ୟ ।

ଅଶୁଚି—ବ. (ଅ+ଶୁଚି) ଅଗ୍ନି ନୁହେ, ଅପବିତ୍ର, ଆଷାଢ଼ମାସ ନୁହେ, ଶୁକ୍ଳବର୍ଣ୍ଣ ନୁହେ, କୃଷ୍ଣବର୍ଣ୍ଣ, ଶୃଙ୍ଗାର ରସ ନୁହେ, (ବାଂ) ଅପବିତ୍ର, କୃଷ୍ଣବର୍ଣ୍ଣଯୁକ୍ତ, ଅଶୁଦ୍ଧ, ସମଳ, କପଟ ।

ଅଶୁଚିବନ୍ତ(ମନ୍ତ)—ଗ୍ରା. ବାଂ. (ଅ+ଶୁଚିମନ୍ତ) ଯେଉଁ ବ୍ୟକ୍ତି ସର୍ବଦା ପବିତ୍ର ନ ଥାଏ, ଅପବିତ୍ର !

ଅଶୁଦ୍ଧ—ବି. ବାଂ. (ନ.ତତ୍ପୁ)ଶୁଦ୍ଧ ନୁହେ, ଦୋଷଯୁକ୍ତ, ଅପବିତ୍ର, ଅଶୁଚି, ଭ୍ରମଶୂନ୍ୟ, ଅସଂଶୋଧିତ, ଅଜ୍ଞାତ, ଅନର୍ଦ୍ଧାଶିତ, ଯେ ମୃତ କୁଟୁମ୍ବାଦି ଲୋକର ଶୁଦ୍ଧିକ୍ରିୟା ବିଧିମତେ କରି ନ ଥାଏ, (ସ୍ତ୍ରୀ) ଅଶୁଦ୍ଧା ।

ଅଶୁଦ୍ଧବାସକ—ବ. ଯାହାର ଘରଦ୍ୱାର ନାହିଁ, ବାରବୁଲା, ସନ୍ଦିଗ୍ଧଚରିତ୍ର ଲୋକ ।

ଅଶୁଦ୍ଧା—ସ୍ତ୍ରୀ.ବାଂ. ଅଶୁଚି, ଋତୁମତୀ ।

ଅଶୁଦ୍ଧି—ସ୍ତ୍ରୀ.ବ. ନ. ତତ୍ପୁ; (ଅ + ଶୁଦ୍ଧି) ଶୁଦ୍ଧିର ଅଭାବ, ଦୋଷ, ଅପବିତ୍ରତା, (ବିଂ) ଶୁଦ୍ଧିହୀନ, ଦୁଷ୍ଟ, ଅଶୁଚି, ଅପବିତ୍ର, ଅଶୁଦ୍ଧ ।

ଅଶୁଦ୍ଧିପତ୍ର—କ୍ଲୀ. ବ. (କ.ଧା) ଭ୍ରମ ସମ୍ବଳିତ ପତ୍ର, ଯେଉଁ ପତ୍ରରେ ପୁସ୍ତକାଦିର ସମସ୍ତ ଭୁଲ ଏକସଙ୍ଗେ ଲେଖାଥାଏ ।

ଅଶୁଦ୍ଧିସଂଶୋଧନ—ବ. ଭ୍ରମସଂଶୋଧନ ।

ଅଶୁନା—ଗ୍ରା. (ସମ୍ଭ) ବିଂ. ଅନ୍ୟମନସ୍କହେତୁ ଯେ କଥା ଶୁଣେ ନାହିଁ ।

ଅଶୁଭ—କ୍ଲୀ.ବ. (ଅ + ଶୁଭ) ଅମଙ୍ଗଳ, ଅନିଷ୍ଟ, ପାପ, ଲଜ୍ଜାଜନକ କାର୍ଯ୍ୟ (ବିଂ) ଅମଙ୍ଗଳସୂଚକ, ଅସୁନ୍ଦର, ଯାହା ମନୋରମ ନୁହେ, ଅଶୁଭବିଶିଷ୍ଟ, କୁତ୍ସିତ ।

ଅଶୁଭକର—ବି.ବିଂ.(ଅଶୁଭ + କୃ + ଅ) ଅମଙ୍ଗଳଜନକ (ସ୍ତ୍ରୀ) ଅଶୁଭକରୀ ।

ଅଶୁଭକ୍ଷଣ—ପୁଂ. ବ. (କ ଧା) ଯେଉଁ ସମୟରେ ଯାତ୍ରାଦି କଲେ ଅମଙ୍ଗଳ ହୁଏ ।

ଅଶୁଭଦର୍ଶନ—ପୁଂ.ବ.(୬ତତ୍ପୁ)ଅଶକୁନ ଦେଖିବା (ବିଂ) ଅସୁନ୍ଦର, ଯାହାକୁ ଦେଖିବା ଅଶୁଭସୂଚକ ।

ଅଶୁଭ୍ର—ପୁଂ.ବ.(ନ.ତତ୍ପୁ)ଶୁଭ୍ର ନୁହେ, କୃଷ୍ଣ (ବିଂ) କୃଷ୍ଣବର୍ଣ୍ଣ ।

ଅଶୁଲ୍କ—ବିଂ. ବ.ବ୍ରୀ; (ଅ + ଶୁଲ୍କ) କର ରହିତ, ନିଷ୍କର, ମାଗଣା ।

ଅଶୁଶ୍ରୂଷୁ—ବିଂ. (ଅ + ଶୁଶ୍ରୂଷୁ) ଯେ ଶୁଣିବାକୁ ବା ଶିଖିବାକୁ ଇଚ୍ଛୁକ ନୁହେ, ଅବାଧ ।

ଅଶୁଷ୍କ—ବି. ବିଂ. ଯାହା ଶୁଷ୍କ ହୋଇନାହିଁ, କଞ୍ଚା ।

ଅଶୂନ୍ୟ—ବି. ବିଂ. (ଅ + ଶୂନ୍ୟ) ଅହୀନ, ପୂର୍ଣ୍ଣ, ଖାଲି ନୁହେ, ବୃଥା ନୁହେ ।

ଅଶୂର—ପୁଂ. ବିଂ. (ଅ + ଶୂର) ଅବୀର; ସାହସହୀନ ।

ଅଶୃତ—ବି.ବିଂ. ନ.ତତ୍ପୁ, (ଅ + ଶୃତ), ଅପକ୍ୱ, କଞ୍ଚା, ଯାହା ରନ୍ଧା ହୋଇନାହିଁ (ସ୍ତ୍ରୀ) ଅଶୃତା ।

ଅଶେବ—ବି.ବିଂ.ଅସୁଖକର,କ୍ଲେଶକର ।

ଅଶେଷ—ପୁଂ.ବ. (ଅ + ଶେଷ) ଶେଷାଭାବ, ବଳି ନ ପଡ଼ିବା (ବିଂ) ଅସୀମ, ବହୁ, ଅନେକ, ଅନନ୍ତ, ସମୁଦାୟ, ପୂର୍ଣ୍ଣ ସବୁ, ସମସ୍ତ, ଅପରିମେୟ, (ସ୍ତ୍ରୀ) ଅଶେଷା ।

ଅଶେଷଜ୍ଞ—ବି ବିଂ (ଅଶେଷ + ଜ୍ଞା + କ. ଅ) ସମସ୍ତ ବିଷୟରେ ଅଭିଜ୍ଞ, ଯେ ସବୁ ବିଷୟ ଜାଣେ, ପାରଦର୍ଶୀ, ବିଶାରଦ (ସ୍ତ୍ରୀ) ଅଶେଷଜ୍ଞା ।

ଅଶେଷବିଧ—ବି. ବିଂ.(ବ.ବ୍ରୀ);ଅସଂଖ୍ୟପ୍ରକାର, ନାନାରକମ, ସବୁପ୍ରକାରର, (ସ୍ତ୍ରୀ) ଅଶେଷବିଧା ।

ଅଶେଷତଃ—ଅବ୍ୟ. ( ଅଶେଷ + ତସ୍ ) ବହୁପ୍ରକାରେ, ପୂର୍ଣ୍ଣରୂପେ, ଅଗଣିତରୂପେ ।

ଅଶେଷିତ—ବି. ବିଂ. ( ଅ + ଶେଷିତ ) ସମ୍ପୂର୍ଣ୍ଣରୂପେ, ବିଧ୍ୱସ୍ତ ।

ଅଶେଷେ—ଗ୍ରା. ଅବ୍ୟ. ସମ୍ପୂର୍ଣ୍ଣରୂପେ, ଅନେକ ବ୍ୟକ୍ତିଙ୍କୁ ।

ଅଶୋକ—ପୁଂ.ବ.(ଅ + ଶୋକ) ସ୍ୱନାମପ୍ରସିଦ୍ଧ ବୃକ୍ଷବିଶେଷ,ବିଷ୍ଣୁ (କ୍ଲୀ) ପାରଦ, (ବିଂ.ବ.ବ୍ରୀ) ଶୋକରହିତ, ଶୋକାକୁଳିତ ନୁହେ, ଯାହା ଶୋକଜନକ ନୁହେ,ସୁଖୀ, (ସ୍ତ୍ରୀ) ଅଶୋକା (ବ.ପୁଂ) ବୌଦ୍ଧମତାବଲମ୍ବୀ ପାଟଳିପୁତ୍ରର ପ୍ରସିଦ୍ଧ ସମ୍ରାଟ୍, ଦଶରଥରାଜାଙ୍କ ମନ୍ତ୍ରୀବିଶେଷ, ମଗଧର ଆଉ ଦୁଇଜଣ ରାଜା ।

ଅଶୋକତୀର୍ଥ—କ୍ଲୀ.ବ. କାଶୀକ୍ଷେତ୍ରାନ୍ତର୍ଗତ ତୀର୍ଥବିଶେଷ ।

ଅଶୋକତ୍ରିରାତ୍ର—କ୍ଲୀ. ବ, ମାର୍ଗଶିର, ଜ୍ୟେଷ୍ଠ, ଭାଦ୍ରମାସମାନଙ୍କରେ କରିବାର ବ୍ରତବିଶେଷ । [ କଢ଼ି ।

ଅଶୋକକଳିକା—ବ.(୬ତତ୍ପୁ) ଅଶୋକ-

ଅଶୋକନୃପତି—ପୁଂ.ବ. ମଗଧର ରାଜାବିଶେଷ ।

ଅଶୋକପୂର୍ଣ୍ଣିମା—ସ୍ତ୍ରୀ.ବ.ଫାଲ୍‌ଗୁନ ପୂର୍ଣ୍ଣିମା

ଅଶୋକରୋହିଣୀ—ସ୍ତ୍ରୀ.ବ. କଟୁକୀଲତା, କଟୁକା, କଟି । [ ଷଷ୍ଠୀ ।

ଅଶୋକଷଷ୍ଠୀ—ସ୍ତ୍ରୀ. ବ. ଚୈତ୍ର, ଶୁକ୍ଲ-

ଅଶୋକସୁନ୍ଦରୀ—ସ୍ତ୍ରୀ. ବ. ପାର୍ବତୀଙ୍କ କନ୍ୟା, ନହୁଷଙ୍କ ପତ୍ନୀ ଓ ଯଯାତିଙ୍କ ଜନନୀ ।

ଅଶୋକା—ସ୍ତ୍ରୀ. ବ. କଟୁକୀଲତା,କଟୁକୀ, ଚୈତ୍ରଶୁକ୍ଳଷଷ୍ଠୀ (ବିଂ) ଶୋକହୀନା, ଆହ୍ଲାଦିତା ।

ଅଶୋକକାନନ ( ବନ )—ଲଙ୍କାଦ୍ୱୀପସ୍ଥ ରାବଣର ବିହାରବନ, ଅଶୋକବୃକ୍ଷର ଉଦ୍ୟାନ ।

ଅଶୋକାରି—ପୁଂ.ବ.(ବ.ବ୍ରୀ),ଅଶୋକନାଶକ, କଦମ୍ବବୃକ୍ଷ ।

ଅଶୋକାଷ୍ଟମୀ—ସ୍ତ୍ରୀ.ବ.କ.ଧା; (ଅଶୋକ + ଅଷ୍ଟମୀ) ଚୈତ୍ରମାସର ଶୁକ୍ଲାଷ୍ଟମୀ ।

ଅଶୋଚ—ପୁଂ. ବ. ଶୋକାଭାବ ।

ଅଶୋଚନୀୟ—ବି.ବିଂ.(ନ.ତତ୍ପୁ);ଶୋକର ଅଯୋଗ୍ୟ, ଯେଉଁ ବିଷୟରେ ଶୋକ କରି ନ ଯାଏ (ସ୍ତ୍ରୀ) ଅଶୋଚନୀୟା ।

ଅଶୋଚିତ—ବି. ବିଂ. (ନ.ତତ୍ପୁ) ଯାହା ନିମିତ୍ତ ଶୋକ କରି ନହୁଏ,ଅବିଲପିତ ।

ଅଶୋଚ୍ୟ—ବି.ବିଂ. ଶୋକାନର୍ହ, ଯାହା ଉଦ୍ଦେଶ୍ୟରେ ଶୋକକରିବାକୁ ହୁଏନାହିଁ, ଆତ୍ମଘାତୀ, ଶୋକର ଅଯୋଗ୍ୟ ।

ଅଶୋଧନ—କ୍ଲୀ. ବ. (ନ.ତତ୍ପୁ) ଶୋଧନର ଅଭାବ, ଅମାର୍ଜନ, ଅପରିଶୋଧ, (ବିଂ) ଶୋଧନଶୂନ୍ୟ ।

ଅଶୋଧନୀୟ—ତ୍ରି.ବିଂ.(ନ.ତତ୍ପୁ)ଶୋଧନର ଅଶକ୍ୟ, ଅସଂଶୋଧ, ଅପରିଶୋଧ, (ସ୍ତ୍ରୀ) ଅଶୋଧନୀୟା ।

ଅଶୋଧିତ—ତ୍ରି. ବିଂ. (ନ.ତତ୍ପୁ) ଯାହା ଜଳାଦିଦ୍ୱାରା ଧୌତ କରାହୋଇ ନାହିଁ, ଅନିର୍ମଳୀକୃତ, ଅପରିଷ୍କୃତ, ଅମାର୍ଜିତ, ଅସଂଶୋଧିତ, (ସ୍ତ୍ରୀ) ଅଶୋଧିତା ।

ଅଶୋଭନ—କ୍ଲୀ. ବ. ମଙ୍ଗଳର ଅଭାବ, (ବିଂ) ଅସୁନ୍ଦର, ଅପରିପାଟି, ( ସ୍ତ୍ରୀ ) ଅଶୋଭନା (ବି) ଅସୌନ୍ଦର୍ଯ୍ୟ ।

ଅଶୋଭା—ଗ୍ରା.ବିଂ.(ଅ + ଅଶୋଭା)ଅସୁନ୍ଦର,ଅଶୋଭନ,(ବି) ଶୋଭାର ଅଭାବ ।

ଅଶୋଷ୍ୟ—ତ୍ରି.ବିଂ.(ନ.ତତ୍ପୁ)ଶୋଷଣକରିବାର ଅଯୋଗ୍ୟ, ଯାହା ଶୋଷଣକରାଯାଇ ନପାରେ, ଅଶୋଷଣୀୟ ।

ଅଶୌଚ—କ୍ଲୀ.ବ.(ଅ + ଶୌଚ)ନ.ତତ୍ପୁ, ଶୁଦ୍ଧିର ଅଭାବ, ଅଶୁଦ୍ଧି, କୁଟୁମ୍ବରେ ଜନ୍ମ ବା ମରଣ ଘଟିବାର ଦଶଦିନ-ପର୍ଯ୍ୟନ୍ତ ଅଶୁଦ୍ଧି, ରଜସ୍ୱଳା ସ୍ତ୍ରୀର ତିନି-ଦିନପର୍ଯ୍ୟନ୍ତ ଅଶୁଦ୍ଧି, ମଳମୂତ୍ରାଦି-ହେତୁକ ଅଶୁଦ୍ଧି, ମାସ୍ତ ।

ଅଶୌଚସଙ୍କର—ପୁଂ. ବ. ଅଶୌଚ-ମଧ୍ୟରେ ଅନ୍ୟଶୌଚ ଘଟିବା, ଅଶୌଚ-ଦ୍ୱୟର ମିଶ୍ରଣ ।

ଅଶୌଚାନ୍ତ—ପୁଂ. ବ. (୬ତତ୍ପୁ) ଯେଉଁ-ଦିନ ଅଶୌଚକାଳ ଗତ ହୁଏ ।

ଅଶୌଚୀ—ଗ୍ରା.ପୁଂ. ବିଂ.ଯେଉଁ ବ୍ୟକ୍ତିର ଅଶୌଚ ହୋଇଥାଏ ।

ଅଶୌର୍ଯ୍ୟ—କ୍ଲୀ. ବ. ବୀରତ୍ୱର ଅଭାବ, (ବିଂ) ପରାକ୍ରମଶୂନ୍ୟ ।

ଅଶ୍ନ—ତ୍ରି.ବିଂ. ବ୍ୟାପକ, ଭୋଜନଶୀଳ, ବ୍ୟାପ୍ତ, (ପୁଂ.ବ.) ରାକ୍ଷସବିଶେଷ ।

ଅଶ୍ନୀତପିବତା—ସ୍ତ୍ରୀ.ବ. ଖିଆପିଆ, ଖାଅ ପିଅ, ଖାଇପିଇ ମଉଜ କରିବାକୁ ଡାକରା ।

ଅଶ୍ମ—ବ.(ଅଶ + କ.ମନ୍)ପ୍ରସ୍ତର, ପର୍ବତ, ମେଘ, ପଥର ।

ଅଶ୍ମକ—ପୁଂ. ବ. ଋଷିବିଶେଷ, ସୂର୍ଯ୍ୟ-ବଂଶୀୟ ଜଣେ ରାଜା ।

ଅଶ୍ମକଦଳୀ - ସ୍ତ୍ରୀ.ବ.କାଷ୍ଠକଦଳୀ,କାଠିଆ-କଦଳୀ ।

ଅଶ୍ମକୁଟ—ପୁଂ. ବ. ଧାନ୍ୟାଦି କୁଟିବାର ପଥର, କୁଟୁଣୀ, ବାନପ୍ରସ୍ଥ,(ବିଂ)ଯେଉଁ ଲୋକ ପଥର ଉପରେରଖି ଧାନକୁଟେ ।

ଅଶ୍ମକେତୁ—ସ୍ତ୍ରୀ. ବ. କ୍ଷୁଦ୍ର ପାଷାଣଭେଦୀ ବୃକ୍ଷ ।

ଅଶ୍ମଗନ୍ଧା—ସ୍ତ୍ରୀ. ବ. ପୃଶ୍ନିପର୍ଣ୍ଣୀ ଲତା ।

ଅଶ୍ମଗର୍ଭ—ପୁଂ.ବ. (ଅଶ୍ମ + ଗର୍ଭ) ମର-କତମଣି, ହରିନ୍ମଣି, ଶ୍ୟାମବର୍ଣ୍ଣମଣି ।

ଅଶ୍ମଗର୍ଭଜ—କ୍ଲୀ.ବ. (ଅଶ୍ମଗର୍ଭ + ଜନ + କ.ଅ) ମରକତମଣି । [ବାଟୁଲ ।

ଅଶ୍ମଗୁଡ଼—ପୁଂ.ବ. ପଥରଗୋଲା,ପଥର-

ଅଶ୍ମଘ୍ନ—ପୁଂ.ବ. (ଅଶ୍ମ + ହନ୍ + କ.ଅ) ପାଷାଣଭେଦକ ବୃକ୍ଷ, ଭୁକୁଣୀହାଡ-ପୋଗ୍ରା ।

ଅଶ୍ମଜ—କ୍ଲୀ.ବ. (ଅଶ୍ମ + ଜନ୍ + କ.ଅ) ଶିଳାଜତୁ,ଗେରୁମାଟି,ଲୌହ,ଅଶ୍ମଜତୁ ।

ଅଶ୍ମଜାତ—ସ୍ତ୍ରୀ. ବ. ପାନ୍ନାନାମକ ମଣି-ବିଶେଷ, ରତ୍ନମାତ୍ର, ମରକତମଣି ।

ଅଶ୍ମଦାରଣ—ପୁଂ. ବ. (ଅଶ୍ମ + ଦାରଣ) ପଥର ବନ୍ଧ ଖୋଳିବାର ଅସ୍ତ୍ର,ଟାଙ୍ଗିଆ, ଗଇନ୍ତୀ, ଚକମକ ।

ଅଶ୍ମନ୍ତ— କ୍ଲୀ. ବ. ଚୁଲ୍ଲୀ,ଉମ୍ନେଇ,ମୂଝ-ପଡ଼ିଆ, (ବିଂ) ଅଶୁଭ, ଅସୀମ ।

ଅଶ୍ମନ୍ତକ—କ୍ଲୀ. ବ. ଚୁଲ,ମଲ୍ଲିକା,ଆଚ୍ଛା-ଦନ, ଦୀପାଧାର,ଭୁଖା, (ପୁଂ.)ଆମ୍ଳି-ତ-ଗଛ । [ ନିର୍ମିତ ।

ଅଶ୍ମମୟ—ତ୍ରି. ବିଂ. ପ୍ରସ୍ତରମୟ, ପ୍ରସ୍ତର-

ଅଶ୍ମପୁଷ୍ପ—କ୍ଲୀ. ବ. ଶିଳାଜତୁ, ଲୋଭାନ-ନାମକ ଗନ୍ଧଦ୍ରବ୍ୟ ।

ଅଶ୍ମଭାଲ—କ୍ଲୀ.ବ.ହାମାମଦସ୍ତା,ଦ୍ରବ୍ୟଚୂର୍ଣ୍ଣ କରିବାର ଲୌହପାତ୍ରବିଶେଷ ।

ଅଶ୍ମଭିଦ୍—ପୁଂ. ବ. (ଅଶ୍ମ + ଭିଦ୍ + କ୍ୱିପ୍)ପାଷାଣଭେଦୀ ବୃକ୍ଷ,ଭୁକୁଣୀ ହାଡ-ପୋଗ୍ରା (ବିଂ) ପାଷାଣଭେଦକାରୀ ।

ଅଶ୍ମଭେଦ—ପୁଂ. ବ. ( ଅଶ୍ମ + ଭିଦ୍ + କ.ଅ ) ଭୁକୁଣୀହାଡପୋଗ୍ରା, ପାଷାଣ-ଭେଦୀ ବୃକ୍ଷ । [ ମଣି ।

ଅଶ୍ମଯୋନି—ପୁଂ.ବ. (ବ.ବ୍ରୀ) ମରକତ-

ଅଶ୍ମର—ତ୍ରି. ବିଂ. (ଅଶ୍ମ + ର) ପ୍ରସ୍ତର-ସମ୍ବନ୍ଧୀୟ, ପଥୁରିଆ, ପ୍ରସ୍ତରଯୁକ୍ତ,(ସ୍ତ୍ରୀ) ଅଶ୍ମରୀ ।

ଅଶ୍ମରଥ—ପୁଂ. ବ. ଋଷିବିଶେଷ ।

ଅଶ୍ମରୀ—ସ୍ତ୍ରୀ.ବ.(ଅଶ୍ମ + ର + ଈ)ମୂତ୍ର-କୃଚ୍ଛ୍ର ରୋଗବିଶେଷ, ପଥୁରିଆରୋଗ ।

ଅଶ୍ମରୀଘ୍ନ—ପୁଂ. ବ. (ଅଶ୍ମରୀ + ହନ୍ + କ.ଅ) ବରୁଣ ବୃକ୍ଷ, ଭୁକୁଣୀହାଡ-ପୋଗ୍ରା ।

ଅଶ୍ମରୀହର—ପୁଂ.ବ.(ଅଶ୍ମରୀ + ହୃ + କ.ଅ) ଅର୍କ୍କୂନଗଛ, ଧାନ୍ୟବିଶେଷ ।

ଅଶ୍ମସାର—ପୁଂ.ବ. ଲୌହ, ଲୌହମଳ, ଇନ୍ଦ୍ରନୀଳମଣି, ହୀରକ, (ବିଂ) ଲୌହ-ନିର୍ମିତ ।

ଅଶ୍ମହନନ—କ୍ଲୀ. ବ. ଲୌହନିର୍ମିତ ଅସ୍ତ୍ର, ସାବଳ, ଗଇନ୍ତୀ ।

ଅଶ୍ମା—ପୁଂ.ବ.(ଅଶ୍ମ + କ.ମନିନ)ପ୍ରସ୍ତର, ଅଗ୍ନିଜନକ ପ୍ରସ୍ତର, ଚକମକ ପଥର, କୁଆପଥର, କରକା ।

ଅଶ୍ମାର୍ମ—କ୍ଲୀ. ବ. ପଥୁରିରୋଗ,ଅଶ୍ମରୀ ।

ଅଶ୍ମୋତ୍ଥ—କ୍ଲୀ. ବ. (ଅଶ୍ମ + ଉତ୍ + ସ୍ଥା + କ.ଅ) ଶିଳାଜତୁ , ଭୁକୁଣୀହାଡ-ପୋଗ୍ରା ।

ଅଶ୍ର—କ୍ଲୀ. ବ. (ଅଶ + କ.ର) କୋଣ, ଲୋତକ, ଚକ୍ଷୁଜଳ, ରକ୍ତ ।

ଅଶ୍ରଦ୍ଧାନ—ପୁଂ. ବିଂ. (ଅ + ଶ୍ରଦ୍ଧାନ) ଶ୍ରଦ୍ଧାହୀନ, ଅବିଶ୍ୱାସୀ, ଭକ୍ତିହୀନ, (ସ୍ତ୍ରୀ) ଅଶ୍ରଦ୍ଧାନା ।

ଅଶ୍ରଦ୍ଧ—ପୁଂ. ବିଂ. (ଅ + ଶ୍ରଦ୍ଧା) ବ.ବ୍ରୀ; ଶ୍ରଦ୍ଧାହୀନ, ଭକ୍ତିରହିତ, ଆସ୍ଥାଶୂନ୍ୟ, ବିଶ୍ୱାସହୀନ, ଅପ୍ରତ୍ୟୟୀଆସ୍ତିକ୍ୟବୁଦ୍ଧି-ରହିତ, (ସ୍ତ୍ରୀ) ଅଶ୍ରଦ୍ଧା ।

ଅଶ୍ରଦ୍ଧା—ସ୍ତ୍ରୀ.ବ. (ଅ + ଶ୍ରଦ୍ଧା)ଅସ୍ନେହ, ଅଭକ୍ତି, ଅବିଶ୍ୱାସ, ଅନାଦର, ଘୃଣା ।

ଅଶ୍ରଦ୍ଧିତ—ତ୍ରି.ବିଂ.(ଅ + ଶ୍ରଦ୍ଧିତ)ନ.ତତ୍ପୁ; ଘୃଣିତ, ଅନାଦୃତ ।

ଅଶ୍ରଦ୍ଧେୟ—ତ୍ରି.ବିଂ. ଯେ ସ୍ନେହ ବ୍ୟବ-ହାର ପାଇବାର ଅଯୋଗ୍ୟ, ବିଶ୍ୱାସର ଅଯୋଗ୍ୟ, ଘୃଣ୍ୟ, ଆଦରର ଅଯୋଗ୍ୟ, (ସ୍ତ୍ରୀ) ଅଶ୍ରଦ୍ଧେୟା ।

ଅଶ୍ରପ—ତ୍ରି. ବିଂ. (ଅଶ୍ର + ପା + କ.ଅ) ରକ୍ତପାନକାରୀ,ଶୋଣିତପାୟୀ,(ପୁଂ.ବ) ରାକ୍ଷସ, ନିଶାଚର, (ସ୍ତ୍ରୀ) ଅଶ୍ରପା ।

ଅଶ୍ରବଣ—କ୍ଲୀ.ବ.(ନ.ତତ୍)ଶ୍ରବଣାଭାବ, ଅନାକର୍ଣ୍ଣନ, ନଶୁଣିବା, ଶ୍ରୁତିହୀନତା, ବଧିରତ୍ୱ, (ବିଂ) ଶ୍ରୁତିହୀନ,କର୍ଣ୍ଣରହିତ, ବଧିର, ଯେ ଶୁଣେନାହିଁ (ସ୍ତ୍ରୀ)ଅଶ୍ରବଣା ।

ଅଶ୍ରମ—ପୁଂ. ବ. (ନ.ତତ୍) ଶ୍ରମାଭାବ, ପରିଶ୍ରମ ନ କରିବା, ଅନାୟାସ,ନିଶ୍ଚେଷ୍ଟ-ଷ୍ଟତା, ଆଳସ୍ୟ, ଅଶ୍ରାନ୍ତ, ସ୍ଫୁର୍ତ୍ତି (ବିଂ)

(ବ.ବ୍ରୀ) ଶ୍ରମହୀନ, ନିଶ୍ଚେଷ୍ଟ, ଅଳସ, ଅକ୍ଳାନ୍ତ (ସ୍ତ୍ରୀ) ଅଶ୍ରମା ।

ଅଶ୍ରାଦ୍ଧ—ବି.ବଂ. (ଅ + ଶ୍ରାଦ୍ଧ) ନ.ତତ୍ପୁ; ଶ୍ରଦ୍ଧାହୀନ,ଅଶ୍ରଦ୍ଧ, (ସ୍ତ୍ରୀ) ଅଶ୍ରାଦ୍ଧୀ, (ବି. ବଂ. ବ.ବ୍ରୀ) ଶ୍ରାଦ୍ଧହୀନ, ଯାହାର ଶ୍ରାଦ୍ଧ-କରା ହୁଏନାହିଁ, ଶ୍ରାଦ୍ଧରହିତ, ଯେଉଁ କ୍ରିୟାରେ ଶ୍ରାଦ୍ଧ କରା ନ ହୁଏ (ସ୍ତ୍ରୀ) ଅଶ୍ରାଦ୍ଧା ।

ଅଶ୍ରାଦ୍ଧଭୋଜୀ—ପୁଂ.ବଂ.ନ.ତତ୍ପୁ; (ଅ + ଶ୍ରାଦ୍ଧଭୋଜନ୍) ଯେ ଶ୍ରାଦ୍ଧାନ୍ନ ଭକ୍ଷଣ-କରେ ନାହିଁ, ଅଶ୍ରାଦ୍ଧିନ୍ (ସ୍ତ୍ରୀ) ଅଶ୍ରାଦ୍ଧ-ଭୋଜିନୀ ।

ଅଶ୍ରାଦ୍ଧୀ—ପୁଂ.ବଂ. (ନ ତତ୍ପୁ) ଶ୍ରାଦ୍ଧାଦି ପଞ୍ଚଯଜ୍ଞଶୂନ୍ୟ ।

ଅଶ୍ରାଦ୍ଧେୟ—ପୁଂ.ବଂ.ଶ୍ରାଦ୍ଧର ଅଯୋଗ୍ୟ ଯୁବତୀ କନ୍ୟା ବିବାହକରିବା ବ୍ୟକ୍ତି ।

ଅଶ୍ରାନ୍ତ—ବି. ବଂ. ନ.ତତ୍ପୁ: (ଅ + ଶ୍ରାନ୍ତ) ଅକ୍ଳାନ୍ତ, ଅବିରତ, ଅନବରତ, ନିର୍ମିକ, ଧାରାବାହିକ (ସ୍ତ୍ରୀ) ଅଶ୍ରାନ୍ତା ।

ଅଶ୍ରାବ୍ୟ—ବି.ବଂ. (ଅ + ଶ୍ରାବ୍ୟ) ଯାହା ଶ୍ରବଣଯୋଗ୍ୟନୁହେ, ଅଶ୍ଳୀଳ, କୁତ୍ସିତ, ଶ୍ରୁତିକଟୁ, ଅସ୍ପଷ୍ଟ, ଯାହା ଶୁଭେ ନାହିଁ, (ସ୍ତ୍ରୀ) ଅଶ୍ରାବ୍ୟା ।

ଅଶ୍ରି,ଅଶ୍ରୀ ସ୍ତ୍ରୀ.ବି.(ଅଶ + ର + ଈ)ଗୃହା-ଦିର କୋଣ,ଅସ୍ତ୍ରାଦିରଅଗ୍ରଭାଗ,ଖଡ୍ଗା-ଦିର ଧାର ।

ଅଶ୍ରୀକ—ବି. ବଂ. ( ଅ + ଶ୍ରୀ + କ. ) ବ.ବ୍ରୀ; ଶ୍ରୀହୀନ, ଶୋଭାହୀନ, ସମୃଦ୍ଧି-ହୀନ (ସ୍ତ୍ରୀ) ଅଶ୍ରୀକା ।

ଅଶ୍ରୀର—ବି. ବଂ. କୁତ୍ସିତ, ଅମଙ୍ଗଳ ।

ଅଶ୍ରୁ—କ୍ଳୀ.ବି.(ଅଶ୍ + କ.ରୁ) ଲୋତକ, ଚକ୍ଷୁଜଳ, ନୟନବାରି ।

ଅଶ୍ରୁକ—ତ୍ରି.ବଂ. ଅଶ୍ରୁଯୁକ୍ତ, ଅଶ୍ରୁପୂର୍ଣ୍ଣ ।

ଅଶ୍ରୁକଣ—ବି. ( ଅଶ୍ରୁ କଣ) ୬ତତ୍ପୁ; ଅଶ୍ରୁବିନ୍ଦୁ, ଲୁହଟୋପା ।

ଅଶ୍ରୁଗଦ୍‌ଗଦକଣ୍ଠ—ବି. ବଂ. (ବ.ବ୍ରୀ) ବାଷ୍ପହେତୁ ରୁଦ୍ଧକଣ୍ଠ, ଅପରିସ୍ଫୁଟ ବାକ୍ (ସ୍ତ୍ରୀ) ଅଶ୍ରୁଗଦ୍‌ଗଦ୍‌କଣ୍ଠା ।

ଅଶ୍ରୁଜଳ—କ୍ଳୀ ବି. (କ.ଧା) ଅଶ୍ରୁବାରି, ନୟନଜଳ, ଲୁହ ।

ଅଶ୍ରୁତ—ବି. ବଂ. ( ଅ + ଶ୍ରୁ + ତ ) ନ.ତତ୍ପୁ; ଯାହା ଶୁଣାଯାଇନାହିଁ, ଶ୍ରୁତି-ବିରୁଦ୍ଧ, ବେଦବିରୁଦ୍ଧ, ଶାସ୍ତ୍ରଜ୍ଞାନହୀନ, (ସ୍ତ୍ରୀ) ଅଶ୍ରୁତା ।

ଅଶ୍ରୁତଚର—ବି.ବଂ. (ଅଶ୍ରୁତ + ଚର) ଯାହା ପୂର୍ବେ କେବେ ଶୁଣାଯାଇ ନାହିଁ, ଅଶ୍ରୁତପୂର୍ବ, (ସ୍ତ୍ରୀ) ଅଶ୍ରୁତଚରୀ ।

ଅଶ୍ରୁତପୂର୍ବ—ବଂ. ( ଅ + ଶ୍ରୁତପୂର୍ବ ) ନ.ତତ୍ପୁ; ଯାହା ପୂର୍ବେ ଶୁଣାହୋଇ ନାହିଁ, ଅଶ୍ରୁତଚର ।

ଅଶ୍ରୁତସ୍ୱର—ପୁଂ. ବ. (କ.ଧା) ଯେଉଁ କଣ୍ଠଧ୍ୱନି ପୂର୍ବେ ଶୁଣାଯାଇ ନ ଥିଲା, ଅପରିଚିତ କଣ୍ଠଧ୍ୱନି, ଅତିମୃଦୁ କଣ୍ଠଧ୍ୱନି, (ବଂ.ବ.ବ୍ରୀ) ଯାହାର କଣ୍ଠଧ୍ୱନି କେବେ ଶୁଣା ନ ଥିଲା, ମୃଦୁକଣ୍ଠଧ୍ୱନିବିଶିଷ୍ଟ ।

ଅଶ୍ରୁତି—ବି. ବଂ. (ବ.ବ୍ରୀ) ଶ୍ରୁତିହୀନ, ବଧିର, (ସ୍ତ୍ରୀ.ବି) ନ.ତତ୍ପୁ; ଅଶ୍ରବଣ ।

ଅଶ୍ରୁଧାରା—ସ୍ତ୍ରୀ. ବି. (୬ତତ୍ପୁ) ନୟନ-ନିର୍ଗତ ଜଳଧାରା, ଧାରାରୂପେ ପତିତ ନେତ୍ରଜଳ, ଲୁହର ପ୍ରବାହ, ଆଖିରୁ ଅବିରତ ଲୁହଗଡ଼ିବା ।

ଅଶ୍ରୁନୟନ(ନେତ୍ର)-କ୍ଳୀ.ବି.(କ.ଧା)ଅଶ୍ରୁ-ଯୁକ୍ତଚକ୍ଷୁ (ବଂ)ବ.ବ୍ରୀ;ଅଶ୍ରୁଯୁକ୍ତନେତ୍ର-ବିଶିଷ୍ଟ (ସ୍ତ୍ରୀ) ଅଶ୍ରୁନୟନା ।

ଅଶ୍ରୁପାତ—ପୁଂ.ବି. (୬ତତ୍ପୁ) କ୍ରନ୍ଦନ, ଚକ୍ଷୁଜଳପକାଇବା, ଆଖିରୁ ଲୁହ-ବୋହିବା ।

ଅଶ୍ରୁପୂର୍ଣ୍ଣ—ତ୍ରି.ବଂ (୩ତତ୍ପୁ) ଲୋତକ-ପୂର୍ଣ୍ଣ, ବାଷ୍ପାକୁଳ ।

ଅଶ୍ରୁପ୍ରବାହ—ପୁଂ.ବି.(୬ତତ୍ପୁ)ଧାରାରୂପେ ପତିତ ନେତ୍ରଜଳ ।

ଅଶ୍ରୁପ୍ଳାବିତ—ତ୍ରି.ବଂ.(୩ତତ୍ପୁ)ଅଶ୍ରୁସିକ୍ତ, (ସ୍ତ୍ରୀ) ଅଶ୍ରୁପ୍ଳାବିତା । [ ଲୁହ ।

ଅଶ୍ରୁବାରି—କ୍ଳୀ.ବି. (କ.ଧା)ନେତ୍ରଜଳ,

ଅଶ୍ରୁବିନ୍ଦୁ—ପୁଂ.ବି. (୬ତତ୍ପୁ) ଅଶ୍ରୁକଣା, ଲୁହଟୋପା ।

ଅଶ୍ରୁବିମୋଚନ—କ୍ଳୀ.ବି.(୬ତତ୍ପୁ) ଅଶ୍ରୁ-ମୋଚନ, ଲୁହଗଡ଼ାଇବା ।

ଅଶ୍ରୁବିସର୍ଜନ-କ୍ଳୀ.ବି.(୬ତତ୍ପୁ)ଅଶ୍ରୁତ୍ୟାଗ, ଲୁହପକାଇବା ।

ଅଶ୍ରୁଭାରାକ୍ରାନ୍ତ—ତ୍ରି.ବଂ.(୩ତତ୍ପୁ)ଅଶ୍ରୁ-ପୂର୍ଣ୍ଣ, ଲୋତକଦ୍ୱାରା ଆକ୍ରାନ୍ତ ।

ଅଶ୍ରୁମାନ୍—ପୁଂ.ବି.(ଅଶ୍ରୁ + ମତ୍ପୁ)ଅଶ୍ରୁ-ଯୁକ୍ତ,ଅଶ୍ରୁପୂର୍ଣ୍ଣ,ସାଶ୍ରୁ,ଅଶ୍ରୁବିମୋଚନ ।

ଅଶ୍ରୁମୁଖ—କ୍ଳୀ. ବି. (କ.ଧା) ନୟନ-ଜଳରେ ପ୍ଳାବିତବଦନ, ଅଶ୍ରୁଯୁକ୍ତ ମୁଖ, ଦ୍ୱାଦଶ ପିତୃଗଣଙ୍କ ମଧ୍ୟରେ ଶେଷ ପିତୃତ୍ରୟ, ପିତ୍ରାଦି ତିନିପୁରୁଷ-'ପିଣ୍ଡଭାକ୍',ବୃଦ୍ଧ ପ୍ରପିତାମହଠାରୁ ତିନି ପୁରୁଷ 'ଲେପଭାକ୍', ତତ୍‌ପରବର୍ତ୍ତୀ ତିନିପୁରୁଷ, "ନାନ୍ଦୀମୁଖୀ" ଏବଂ ଶେଷ ପିତୃତ୍ରୟ 'ଅଶ୍ରୁମୁଖ', ( ଶାତାତପ ସଂହିତା) ତ୍ରି. ବଂ.ବବ୍ରୀ; ନେତ୍ରଜଳ-ପୂର୍ଣ୍ଣମୁଖ,କାନ୍ଦୁରାମୁହାଁ,(ସ୍ତ୍ରୀ)ଅଶ୍ରୁମୁଖୀ ।

ଅଶ୍ରୁସମ୍ବରଣ—କ୍ଳୀ.ବି.(୬ତତ୍ପୁ)ଲୋତକ-ଧାରାର ନିରୋଧକରଣ, କାନ୍ଦ ସମ୍ଭାଳିବା ।

ଅଶ୍ରୁସିକ୍ତ—ତ୍ରି. ବଂ. (୩ତତ୍ପୁ)ଅଶ୍ରୁଦ୍ୱାରା ଆର୍ଦ୍ର, ଲୁହରେ ଓଦା ହୋଇଥିବା ।

ଅଶ୍ରେୟଃ—ତ୍ରି.ବଂ. (ଅ + ଶ୍ରେୟସ୍)ଅପ-କାରକ, ଅନିଷ୍ଟଜନକ, ଅପ୍ରୟୋଜନୀୟ, ନିକୃଷ୍ଟ (କ୍ଳୀ. ବି) ଅପକାର, ଅପ୍ରୟୋ-ଜନ, ଅମଙ୍ଗଳ, ଅନିଷ୍ଟ ।

ଅଶ୍ରେୟସ୍କର – ତ୍ରି. ବଂ. (ଅଶ୍ରେୟସ୍ + କୃ + କ.ଅ)ଅମଙ୍ଗଳଜନକ, ଅବିଧେୟ, ଅନୁଚିତ, (ସ୍ତ୍ରୀ) ଅଶ୍ରେୟସ୍କରୀ ।

ଅଶ୍ରେଷ୍ଠ—ତ୍ରି.ବଂ.(ଅ + ଶ୍ରେଷ୍ଠ)ନିକୃଷ୍ଟ ।

ଅଶ୍ରେୟାନ୍—ପୁଂ. ବଂ. (ନ.ତତ୍ପୁ)ଅମ-ଙ୍ଗଳଜନକ, ଅଧମ, ହୀନ, ଅପ୍ରଶସ୍ତ, ଅନୁତ୍କୃଷ୍ଟ, ଅବକୃଷ୍ଟ, (ସ୍ତ୍ରୀ) ଅଶ୍ରେୟସୀ ।

ଅଶ୍ରୋତବ୍ୟ—ତ୍ରି.ବଂ.(ନ.ତତ୍ପୁ)ଶ୍ରବଣର ଅଯୋଗ୍ୟ,ଅଶ୍ରାବ୍ୟ(ସ୍ତ୍ରୀ)ଅଶ୍ରୋତବ୍ୟା ।

ଅଶ୍ରୋତ୍ରିୟ—ପୁଂ.ବଂ. (ନ ତତ୍ପୁ)ବେଦ-ପାଠବିହୀନ ବ୍ରାହ୍ମଣ (ବଂ) ଶ୍ରୋତ୍ରୀୟ-ରହିତ, ବେଦାଜ୍ଞ ବ୍ରାହ୍ମଣହୀନ ।

ଅଶ୍ରୌତ—ତ୍ରି. ବଂ. (ନ ତତ୍ପୁ) ଶ୍ରୁତି-ବିରୁଦ୍ଧ, ବେଦବିହିତ ନୁହେ ।

ଅଶ୍ଳାଘମାୟୁ,ଅଶ୍ଳାଘ୍ୟ—ତ୍ରି.ବିଂ.(ନ.ତତ୍ରୁ) ଅପ୍ରଶଂସ ହ୍ୱଁ,ପ୍ରଶଂସାରଅଯୋଗ୍ୟ, ଅପ୍ରଶଂସମାୟୁ, ଅଧନ୍ୟ (ସ୍ତ୍ରୀ) ଅଶ୍ଳାଘମାୟୁା ।

ଅଶ୍ଳିଷ୍ଟ—ତ୍ରି.ବିଂ. (ନ.ତତ୍ରୁ) ଅସଙ୍ଗତ, ଅସମ୍ବନ୍ଧ, ଶ୍ଳେଷଶୂନ୍ୟ (କାବ୍ୟ) ଅପ୍ରାସଙ୍ଗିକ ।

ଅଶ୍ଳୀକ—ତ୍ରି.ବିଂ. ଶ୍ରୀନାଶକ, ଅଶ୍ଳାଘ୍ୟ ।

ଅଶ୍ଳୀଲ—ତ୍ରି.ବିଂ. (ଅ + ଶ୍ରୀ + ଲ)ଅସୁନ୍ଦର, ଲଜ୍ଜାଜନକ, କୁତ୍ସିତ, ବିଗତଶ୍ରୀକ.ନିର୍ଲଜ୍ଜ,ଅଭଦ୍ର,ଇତରଜନୋଚିତ, ଜଘନ୍ୟ, (କ୍ଳୀ.ବି) ଲଜ୍ଜାଜନକ ଗ୍ରାମ୍ୟ ଭାଷା, କାବ୍ୟର ଦୋଷବିଶେଷ,ଅକଥ୍ୟ ।

ଅଶ୍ଳୀଲତା—ସ୍ତ୍ରୀ. ବି. ଯେଉଁ ବାକ୍ୟ ଶୁଣିଲେ ଲଜ୍ଜାର ଉଦୟ ହୁଏ, ଗ୍ରାମ୍ୟଭାଷା, କାବ୍ୟର ଅଭବ୍ୟତା,ଅସାଧୁତା; ଜଘନ୍ୟତା, ଅଭଦ୍ରତାଦୋଷବିଶେଷ ।

ଅଶ୍ଳୀଲଭାଷୀ-ପୁଂ.ବିଂ.(ଅଶ୍ଳୀଲ + ଭାଷ୍ + କ. ଇନ୍) ଅଶ୍ଳୀଲବାଦୀ, ଯେ ଅଶ୍ଳୀଲ କଥା କହେ, (ସ୍ତ୍ରୀ) ଅଶ୍ଳୀଲଭାଷିଣୀ ।

ଅଶ୍ଳେଷା—ସ୍ତ୍ରୀ. ବି (ଅ + ଶ୍ଳେଷ୍ + ଆ) ନକ୍ଷତ୍ରବିଶେଷ, ନବମ ନକ୍ଷତ୍ର ।

ଅଶ୍ଳେଷାଜ—ପୁଂ. ବି. (ଅଶ୍ଳେଷା + ଜନ୍ କ. ଅ) କେତୁଗ୍ରହ ।

ଅଶ୍ଳେଷାଭବ—ପୁଂ. ବି(ଅଶ୍ଳେଷା + ଭୂ + ଅ + କ. କ୍ୱପ୍) କେତୁଗ୍ରହ ।

ଅଶ୍ୱ—ପୁଂ.ବି. (ଅଶ୍ + କ.ବ) ଘୋଟକ, ଘୋଡ଼ା (ସ୍ତ୍ରୀ) ଅଶ୍ୱା, ଅଶ୍ୱୀ, ଧନୁର୍ଦ୍ଧାରୀ, ଅଶ୍ୱଜାତୀୟ ପୁରୁଷ, ନୃପତିବିଶେଷ, ବୃଷ୍ଣି ବଂଶୀୟ ନୃପତିବିଶେଷ ।

ଅଶ୍ୱକନ୍ଦା—ସ୍ତ୍ରୀ.ବି. ଅଶ୍ୱଗନ୍ଧାବୃକ୍ଷ ।

ଅଶ୍ୱକର୍ଣ୍ଣ—ପୁଂ. ବି. (୬ତତ୍ରୁ) ଯାହାର ପତ୍ର ଘୋଡ଼ାକାନପରି, ଶାଳଗଛ, କୁଆମଇତା ।

ଅଶ୍ୱକମା—ସ୍ତ୍ରୀ. ବି. ଅଶ୍ୱିନୀନକ୍ଷତ୍ର ।

ଅଶ୍ୱକୁଟୀ—ସ୍ତ୍ରୀ.ବି. ମନ୍ଦୁରା, ଅଶ୍ୱଶାଳା ।

ଅଶ୍ୱକୋବିଦ—ପୁଂ. ବି. (୭ତତ୍ରୁ) ଅଶ୍ୱତତ୍ତ୍ୱଜ୍ଞ, ଘୋଡ଼ାଚଢ଼ାରେ ଅତିପଣ୍ଡିତ ।

ଅଶ୍ୱକ୍ରନ୍ଦ—ପୁଂ. ବି. ଦେବସେନାପତିବିଶେଷ ।

ଅଶ୍ୱକ୍ରାନ୍ତ—ବି. ଇନ୍ଦ୍ରଦ୍ୱୀପର ପୌରାଣିକ ନାମ, ଅନ୍ୟ ନାମ ଇକ୍ଷୁକାଚ ।

ଅଶ୍ୱଖରଜ—ପୁଂ.ବି. ଖଚର, ଖଚଡ଼ ।

ଅଶ୍ୱଖୁର—ପୁଂ. ବି. ( ୬ତତ୍ରୁ ) ନଖୀନାମକ ଗନ୍ଧଦ୍ରବ୍ୟ, ଘୋଡ଼ା ଛୁରା ।

ଅଶ୍ୱଖୁରା ବା ଖୁରୀ—ସ୍ତ୍ରୀ. ବି ଅପରାଜିତା ଲତା ।

ଅଶ୍ୱଗତି—ସ୍ତ୍ରୀ.ବି.୬ତତ୍ରୁ; (ଅଶ୍ୱ + ଗତି) ଘୋଡ଼ାର ଗତି, ଧାଗ, ଛନ୍ଦୋବିଶେଷ, ଯଥା—ଅସ୍କନ୍ଦିତ, କଦମ ଧୌରିତକ । ଦୁଲ୍‌କି, ରେଚିତ, ଜୋରଦୋଲକି ବା ଝପଟ, ବଲ୍‌ଗିତ ଓ ଛଡ଼ିତକ ପ୍ଳୁତ, ଘୋଡ଼ାଦୌଡ଼ (ବିଂ) ଅଶ୍ୱପରି ଦ୍ରୁତଗତି ।

ଅଶ୍ୱଗନ୍ଧା—ସ୍ତ୍ରୀ.ବି.(ଅଶ୍ୱ + ଗନ୍ଧା) ଅଶ୍ୱକନ୍ଦାବୃକ୍ଷବିଶେଷ, ଅସ୍କନ୍ଦ ।

ଅଶ୍ୱଗୋଯୁଗ—କ୍ଳୀ.ବି. ଅଶ୍ୱଦ୍ୱୟ, ଏକଯୋଡ଼ା ଘୋଡ଼ା ।

ଅଶ୍ୱଗୋଷ୍ଠ—କ୍ଳୀ.ବି. ଅଶ୍ୱଶାଳା,ଅସ୍ତାବଲ

ଅଶ୍ୱଗ୍ରୀବ—ପୁଂ. ବି. ହୟଗ୍ରୀବ ନାମରେ ବିଷ୍ଣୁଙ୍କର ଅବତାରବିଶେଷ, (ବି.ବିଂ) ଘୋଡ଼ାର ଗ୍ରୀବାପରି ଗ୍ରୀବାବିଶିଷ୍ଟ, ବକଗ୍ରୀବ (ସ୍ତ୍ରୀ) ଅଶ୍ୱଗ୍ରୀବା ।

ଅଶ୍ୱଘ୍ନ—ପୁଂ.ବି. (ଅଶ୍ୱ + ହନ୍ + କ.ଅ) କରବୀର ବୃକ୍ଷ ।

ଅଶ୍ୱଚକ୍ର—କ୍ଳୀ.ବି. (୬ତତ୍ରୁ) ଜ୍ୟୋତିର୍ଗ୍ରନ୍ଥକଥିତ ଚକ୍ରବିଶେଷ (ପୁଂ) ଅଶ୍ୱସମୂହ ।

ଅଶ୍ୱଚକ୍ଷୁସା—ସ୍ତ୍ରୀ. ବି. ଘୋଡ଼ାରୋଗନିବାରକ ଔଷଧ ଉପାୟାଦି ।

ଅଶ୍ୱଚେଷ୍ଟିତ—କ୍ଳୀ.ବି. ଘୋଡ଼ାର କାୟକୃତ ବ୍ୟାପାରବିଶେଷ, ଅଶ୍ୱର ଗତି ।

ଅଶ୍ୱଡିମ୍ବ—କ୍ଳୀ. ବି. ଘୋଡ଼ାଅଣ୍ଡିମ, ଆକାଶକୁସୁମ, ଘୋଡ଼ାଡିମ୍ବ ଭଳି ଅବିଶ୍ୱାସଯୋଗ୍ୟ, ହାସ୍ୟୋଦ୍ଦୀପକ ଓ ଅସମ୍ଭବ ବିଷୟ ।

ଅଶ୍ୱତର—ପୁଂ. ବି. (ଅଶ୍ୱ + ତୃ + ଅ) ଖଚର, ସର୍ପବିଶେଷ, ଗନ୍ଧର୍ବବିଶେଷ, ବେସର, ନାଗବିଶେଷ (ସ୍ତ୍ରୀ)ଅଶ୍ୱତରୀ, (ବିଂ) ଦ୍ରୁତଗାମୀ ।

ଅଶ୍ୱତରୀ—ସ୍ତ୍ରୀ.ବି.(ଅଶ୍ୱତର + ଈ) ସ୍ତ୍ରୀଜାତୀୟ ଖଚର, ବାଷ୍ପୀୟପୋତ, ଜାହାଜ ।

ଅଶ୍ୱତୀର୍ଥ – କ୍ଳୀ. ବି. କାନ୍ୟକୁବ୍ଜଦେଶର କାଳୀନଦୀ ଓ ଗଙ୍ଗାନଦୀର ସଙ୍ଗମସ୍ଥଳରେ ଏହି ତୀର୍ଥ ଅବସ୍ଥିତ ।

ଅଶ୍ୱତ୍ଥ—ପୁଂ. ବି. (ଅଶ୍ୱ + ସ୍ଥା + ଅ) ସ୍ୱନାମଖ୍ୟାତ ବୃକ୍ଷବିଶେଷ, ବିଷ୍ଣୁବୃକ୍ଷ, ସୂର୍ଯ୍ୟ, (କ୍ଳୀ) ଜଳ ।

ଅଶ୍ୱତ୍ଥକ—ପୁଂ.ବି. ଅଶ୍ୱତ୍ଥ ବୃକ୍ଷ ।

ଅଶ୍ୱତ୍ଥଖଣ୍ଡ—ପୁଂ.ବି.ପାଚିଲା ଅଶ୍ୱତ୍ଥଫଳ ।

ଅଶ୍ୱତ୍ଥଭେଦ—ପୁଂ.ବି. ନନ୍ଦୀବୃକ୍ଷ ।

ଅଶ୍ୱତ୍ଥା—ସ୍ତ୍ରୀ.ବି. ପୂର୍ଣ୍ଣିମାତିଥି ।

ଅଶ୍ୱତ୍ଥାମା—ପୁଂ. ବି. (ଅଶ୍ୱ + ସ୍ଥାମ + ଆ) ଦ୍ରୋଣାଚାର୍ଯ୍ୟଙ୍କ ପୁତ୍ର, ମହାଭାରତଯୁଦ୍ଧରେ ହତ ଗୋଟିଏ ହାତୀର ନାମ, ସାବର୍ଣ୍ଣି ମନୁଙ୍କ ପୁତ୍ର ।

ଅଶ୍ୱତ୍ଥିକ—ତ୍ରି.ବିଂ.ଯେ ଜନ୍ତୁ ଅଶ୍ୱତ୍ଥଫଳ ଖାଏ ।

ଅଶ୍ୱତ୍ଥୀ—ସ୍ତ୍ରୀ. ବି. ଶ୍ରେଷ୍ଠ ଅଶ୍ୱତ୍ଥବୃକ୍ଷ, ଅଶ୍ୱତ୍ଥପରି ଶ୍ରେଷ୍ଠ ଶ୍ରେଷ୍ଠ ପତ୍ରଯୁକ୍ତ, ପିପ୍‌ପଳୀ, ବନଜାତ କ୍ଷୁଦ୍ର ବୃକ୍ଷବିଶେଷ ।

ଅଶ୍ୱଦଂଷ୍ଟ୍ରା—ସ୍ତ୍ରୀ. ବି. ଗୋକ୍ଷୁରବୃକ୍ଷ, ଗୁଖୁରାଗଛ, ଘୋଡ଼ାର ଦାନ୍ତ ।

ଅଶ୍ୱନାୟ—ପୁଂ.ବି. (ଅଶ୍ୱ + ନୀ + ଅ ) ଅଶ୍ୱପାଳକ, ସଇସ ।

ଅଶ୍ୱନ୍ତ—ତ୍ରି. ବିଂ. ଅଶୁଭ (ବି) କ୍ଷେତ୍ର, ମୃତ,ଚୂଲ୍ଲୀ, ଅନବଧି, ପ୍ରାଣୀହିଂସାର ସ୍ଥାନ ।

ଅଶ୍ୱପ—ପୁଂ. ବି. ଅଶ୍ୱପାଳକ, ସଇସ, ଅଗ୍ନିପାଳକ, ସାଗ୍ନିକ ।

ଅଶ୍ୱପତି—ପୁଂ. ବି. ଅଶ୍ୱପାଳକ, ସଇସ, କେକୟଦେଶର ଜନୈକ କ୍ଷତ୍ରିୟ ରାଜା, ମଦ୍ରଦେଶର ରାଜା ।

ଅଶ୍ୱପର୍ଣ୍ଣ—ତ୍ରି.ବି. ଅଶ୍ୱର ଗମନଯୁକ୍ତ ରଥ, ମେଘବ୍ୟାପିଗମନ ।

ଅଶ୍ୱପାଦ—ତ୍ରି. ବିଂ. ଘୋଡ଼ା ପାଦପରି ପାଦଯୁକ୍ତ ଜନ୍ତୁ, ଗର୍ଦ୍ଦଭାଦି ।

ଅଶ୍ୱପାଳ—ପୁଂ.ବି. ଅଶ୍ୱରକ୍ଷକ, ସଇସ ।

ଅଶ୍ୱପୁଚ୍ଛୀ—ସ୍ତ୍ରୀ.ବି. ମାଷପର୍ଣ୍ଣୀ ବୃକ୍ଷ ।

ଅଶ୍ୱପେଜ—ପୁଂ.ବି. ଋଷିବିଶେଷ ।

ଅଶ୍ୱପେଶଃ—ତ୍ରି. ବିଂ. ଅଶ୍ୱଦ୍ୱାରା ନିରୂପଣୀୟ ।

ଅଶ୍ୱବକ୍ତ୍ର—ପୁଂ.ବି. (ବ.ବ୍ରୀ) କିନ୍ନର ।

ଅଶ୍ୱବଡ଼ବ—ପୁଂ.ବି.ଘୋଡ଼ା ଓ ଘୋଡ଼ୀ ।

ଅଶ୍ୱବନ୍ଧ—ବି. କାମଶାସ୍ତ୍ରବର୍ଣ୍ଣିତ ରତି-ବନ୍ଧବିଶେଷ ।

ଅଶ୍ୱବାରଣ—ପୁଂ.ବି. ଗବୟ ।

ଅଶ୍ୱବାଳ—ପୁଂ. ବି. ୬ ତତ୍; (ଅଶ୍ୱ + ବାଳ) କାଶ, କାଉଁଶୀ, କାଶତୃଣ, ଘୋଡ଼ାର କେଶର, କାଶପୁଷ୍ପ ।

ଅଶ୍ୱବାହୁ—ପୁଂ. ବି. ଯଦୁବଂଶୀୟ ଚିତ୍ର-କର ପୁତ୍ର ।

ଅଶ୍ୱମହିଷିକା—ସ୍ତ୍ରୀ. ବିଂ. ପରସ୍ପର ପ୍ରତି ନିତ୍ୟବୈରଯୁକ୍ତ, (ବି) ଘୋଡ଼ା ଓ ମହିଷି ମଧ୍ୟରେ ଥିବା ବୈରଭାବପରି ଦୁଇଜଣଙ୍କ ମଧ୍ୟରେ ନିତ୍ୟ ବିରୋଧ-ଭାବ ଓ ସର୍ବଦା ବୈରତା ।

ଅଶ୍ୱମାର—ପୁଂ. ବିଂ. କରବୀର ଫୁଲର ଗଛ ।

ଅଶ୍ୱମୁଖ—ପୁଂ.ବି. କିନ୍ନର, ଦେବଯୋନି-ବିଶେଷ, (ସ୍ତ୍ରୀ) ଅଶ୍ୱମୁଖୀ, କିନ୍ନରୀ ।

ଅଶ୍ୱମେଧ—ପୁଂ. ବି. କ. ଧା; ( ଅଶ୍ୱ + ମେଧ ) ପୂର୍ବକାଳର ଯଜ୍ଞବିଶେଷ ।

ଅଶ୍ୱମେଧ—ପୁଂ. ବି. ରାଜର୍ଷିବିଶେଷ ।

ଅଶ୍ୱମେଧିକ—କ୍ଳୀ. ବି. ମହାଭାରତର ଅନ୍ତର୍ଗତ ଚତୁର୍ଦ୍ଦଶପର୍ବ (ପୁଂ) ମେଧାଶ୍ୱ ।

ଅଶ୍ୱମେଧୀୟ —ପୁଂ. ବି. ଅଶ୍ୱମେଧଯଜ୍ଞର ଯୋଗ୍ୟ ପଶୁ (ସ୍ତ୍ରୀ) ଅଶ୍ୱମେଧୀୟା ।

ଅଶ୍ୱୟୁ—ତ୍ରି. ବିଂ. ଘୋଡ଼ାଯୁକ୍ତ,ଘୋଡ଼ାର ଇଚ୍ଛାଯୁକ୍ତ ।

ଅଶ୍ୱଯୁକ୍—ସ୍ତ୍ରୀ. ବି. (ଅଶ୍ୱ + ଯୁଜ + କ୍ୱିପ୍) ଆଶ୍ୱିନମାସ, ଅଶ୍ୱିନୀ ନକ୍ଷତ୍ର ।

ଅଶ୍ୱଯୁଜ—ସ୍ତ୍ରୀ.ବି.ଅଶ୍ୱିନୀନକ୍ଷତ୍ର,ଅଶ୍ୱିନୀ-ନକ୍ଷତ୍ରଯୁକ୍ତ କାଳ, ଗୃହ୍ଣ ଆଶ୍ୱିନମାସ ।

ଅଶ୍ୱରକ୍ଷକ—ପୁଂ.ବି. (ଅଶ୍ୱ ରକ୍ଷ + କ ) ଘୋଟକପାଳକ, ଘୋଡ଼ାର ସଇସ ।

ଅଶ୍ୱରଜ୍ଜୁ—ସ୍ତ୍ରୀ. ବି. (କ. ଧା) ବଲ୍‌ଗା, ବାଗ, କଡ଼ିଆଳି, ଲଗାମ ।

ଅଶ୍ୱରତ୍ନ—କ୍ଳୀ. ବି. ଘୋଟକଶ୍ରେଷ୍ଠ, ଉଚ୍ଚୈଃଶ୍ରବା, ଇନ୍ଦ୍ରଙ୍କର ଘୋଡ଼ା ।

ଅଶ୍ୱରଥ—ପୁଂ. ବି. ଘୋଟକଯୁକ୍ତ ରଥ, (ସ୍ତ୍ରୀ) ଗନ୍ଧମାଦନପର୍ବତ ନିକଟସ୍ଥ ନଦୀ-ବିଶେଷ ।

ଅଶ୍ୱରାଜ—ପୁଂ. ବି. ଉଚ୍ଚୈଃଶ୍ରବାନାମକ ଘୋଟକ, ଇନ୍ଦ୍ରର ଘୋଡ଼ା ।

ଅଶ୍ୱରୋଧକ—ପୁଂ. ବି. କରବୀଫୁଲର ଗଛ ।

ଅଶ୍ୱରୋହ—ପୁଂ. ବି. ( ଅଶ୍ୱ + ରୁହ୍ + ଅ) ଅଶ୍ୱାରୋହୀ, ଘୋଡ଼ାସବାର ।

ଅଶ୍ୱଳ—ତ୍ରି. ବିଂ. ଅଶ୍ୱଗ୍ରାହକ, ଋଷି-ବିଶେଷ ।

ଅଶ୍ୱଲକ୍ଷଣ—କ୍ଳୀ. ବି. ଘୋଡ଼ାର ଶୁଭା-ଶୁଭସୂଚକ ଚିହ୍ନବିଶେଷ ।

ଅଶ୍ୱଲଳିତ—କ୍ଳୀ. ବି. ତେଇଶଟି ଅକ୍ଷର ପାଦଯୁକ୍ତବର୍ଣ୍ଣବୃତ୍ତବିଶେଷ ।

ଅଶ୍ୱଲାଲ—ସ୍ତ୍ରୀ. ବି. (୬ତତ୍) ବ୍ରହ୍ମସର୍ପ, ହଲାହଲସର୍ପ, ଘୋଡ଼ାର ବାଜୁ ।

ଅଶ୍ୱଲିଙ୍ଗୀ—ତ୍ରୀ. ବିଂ. (ଅଶ୍ୱ + ଲିଙ୍ଗୀ) ଘୋଡ଼ାପରି ବୃହତ୍‌ଲିଙ୍ଗବିଶିଷ୍ଟ (ବ୍ୟକ୍ତି) ।

ଅଶ୍ୱବକ୍ତ୍ର—ପୁଂ.ବି. କିନ୍ନର, କିଂପୁରୁଷ, ଦେବଯୋନିବିଶେଷ, ହୟଗ୍ରୀବ ବିଷ୍ଣୁ ।

ଅଶ୍ୱବହ—ପୁଂ.ବି. (ଅଶ୍ୱ + ବହ୍ + ଅ) ଅଶ୍ୱର ବହନୀୟ, ଅଶ୍ୱାରୋହୀ, ସାଦୀ ।

ଅଶ୍ୱବାନ୍—ପୁଂ. ବିଂ. ଅଶ୍ୱଯୁକ୍ତ, (ସ୍ତ୍ରୀ) ଅଶ୍ୱବତୀ ।

ଅଶ୍ୱବାର—ପୁଂ.ବି (ଅଶ୍ୱ + ବୃ + ଣିଚ୍ + ଅ )ଅଶ୍ୱାରୋହୀ, ଘୋଡ଼ାସବାର, ସାଦୀ ।

ଅଶ୍ୱବାହ—ପୁଂ.ବି. (ଅଶ୍ୱ + ବହ୍ + ଅ) ଯେ ଅଶ୍ୱମେଧର ଅଶ୍ୱ ଯଜ୍ଞସ୍ଥଳକୁ ନେଇଯାଏ, ସବାର ।

ଅଶ୍ୱବାହ—ପୁଂ.ବି. (ଅଶ୍ୱ + ବହ + ଅ) ଘୋଡ଼ାସବାର, ସାଦୀ ।

ଅଶ୍ୱବିକ୍ରୟୀ—ପୁଂ. ବିଂ. ଯେ ଘୋଡ଼ା ବିକ୍ରୟକରି ଜୀବିକାନିର୍ବାହ କରେ ।

ଅଶ୍ୱବିଦ୍—ପୁଂ. ବି. (ଅଶ୍ୱ + ବିଦ୍)ନଳ-ରାଜା,(ବିଂ) ଅଶ୍ୱଲଭକର୍ତ୍ତା,ଅଶ୍ୱବିଦ୍ୟା-ବିଶାରଦ । [ ସ୍ତ୍ରକ ।

ଅଶ୍ୱବୈଦ୍ୟ—ପୁଂ. ବି. ଘୋଡ଼ାର ଚିକି-

ଅଶ୍ୱଶଙ୍କୁ—ପୁଂ. ବି. ଘୋଡ଼ା ବାନ୍ଧିବାର ଖୁଣ୍ଟି । [ ଶାହାଡ଼ାଗଛ ।

ଅଶ୍ୱଶାଖୋଟ—ପୁ. ବି. ବୃକ୍ଷବିଶେଷ,

ଅଶ୍ୱଶାବ(କ)—ପୁଂ.ବି.(୬ତତ୍)ଘୋଡ଼ା-ଛୁଆ ।

ଅଶ୍ୱଶାଳା—ସ୍ତ୍ରୀ. ବି. (ଅଶ୍ୱ + ଶାଳା) ମନ୍ଦୁରା, ଘୋଡ଼ାର ଘର, ଅସ୍ତାବଲ, ଘୋଡ଼ାରଖିବାର ସ୍ଥାନ ।

ଅଶ୍ୱଶାସ୍ତ୍ର—କ୍ଳୀ. ବି. ଶାଳିହୋତ୍ରକୃତ ଘୋଡ଼ାର ଲକ୍ଷଣାଦିଜ୍ଞାପକ ଶାସ୍ତ୍ର ।

ଅଶ୍ୱଶିରଃ—କ୍ଳୀ.ବି. ଘୋଡ଼ାମୁଣ୍ଡ,ଦାନବ-ବିଶେଷ ।

ଅଶ୍ୱଶୃଗାଳିକା—ସ୍ତ୍ରୀ. ବି. ଘୋଡ଼ା ଓ ଶୃଗାଳର ଚିର ବିରୋଧ ।

ଅଶ୍ୱଶ୍ଚନ୍ଦ୍ରା—ତ୍ରି. ବି. ଯେ ସ୍ତ୍ରୀ ଅଶ୍ୱଦ୍ୱାରା ଆହ୍ଲାଦ କରାଏ ।

ଅଶ୍ୱଷଡ଼ଗବ—କ୍ଳୀ.ବି.ଛଅଗୋଟି ଘୋଡ଼ା, ଘୋଟକଷଟ୍‌କ ।

ଅଶ୍ୱସନ—ତ୍ରି. ବିଂ. ଅଶ୍ୱଦାତା, ଯେ ଘୋଡ଼ା ଦାନ କରେ ।

ଅଶ୍ୱାସା—ତ୍ରି. ବିଂ. ଅଶ୍ୱଦାତା ।

ଅଶ୍ୱସାଦ—ପୁଂ ବିଂ. (ଅଶ୍ୱ + ସଦ୍ + ଅ) ଅଶ୍ୱଚାଳକ, ସାଦୀ ।

ଅଶ୍ୱସାଦୀ—ପୁଂ.ବି.(ଅଶ୍ୱ + ସଦ୍ + କ.ଇନ୍) ଅଶ୍ୱାରୋହୀ, ସାଦୀ, ଘୋଡ଼ାସବାର ।

ଅଶ୍ୱସେନ—ପୁଂ. ବି. ଜିନପିତୃବିଶେଷ, ନୃପବିଶେଷ, ତକ୍ଷକପୁତ୍ର, ସର୍ପବିଶେଷ, ଦ୍ରୋଣାଚାର୍ଯ୍ୟଙ୍କର ସାରଥି ।

ଅଶ୍ୱସେନନୃପନନ୍ଦନ—ପୁଂ. ବି. ସନତ୍-କୁମାର ।

ଅଶ୍ୱସ୍ତନ—ତ୍ରି. ବିଂ. ଆଜକାର, ଯାହା-କେବଳ ବର୍ତ୍ତମାନ ଦିନଜାତ, ପର ଦିନରେ ନ ଥାଏ, ଅସଞ୍ଚୟୀ,ଯେ କାଲି-ପାଇଁ ସଞ୍ଚୟ ନକରେ,(ସ୍ତ୍ରୀ) ଅଶ୍ୱସ୍ତନୀ ।

ଅଶ୍ୱସ୍ତନବିଧାନ—ବି. ଆସନ୍ନା କାଲପାଇଁ ବ୍ୟବସ୍ଥାର ଅଭାବ, ଭବିଷ୍ୟତ୍‌ପାଇଁ ବ୍ୟବସ୍ଥାର ଅଭାବ,(ବି)ଅଶ୍ୱସ୍ତନବିଧାତୃ।

ଅଶ୍ୱସ୍ତନିକ—ବି. ବିଂ. ଯେଉଁ ଗୃହସ୍ଥ କେବଳ ବର୍ତ୍ତମାନ ଦିନର ପର୍ଯ୍ୟାପ୍ତ ଧନ ସଞ୍ଚୟ କରିପାରେ, ଯାହାର ଧନ ପରଦିନକୁ ନ ଥାଏ।

ଅଶ୍ୱସ୍ତୋମୀୟ—କ୍ଲୀ.ବି. ଅଶ୍ୱର ସ୍ତୁତିଯୁକ୍ତ ସୂକ୍ତବିଶେଷ।

ଅଶ୍ୱସ୍ଥାନ—କ୍ଲୀ. ବି. ଘୋଡ଼ା ରଖିବା ଘର, ଅସ୍ତାବଲ, ଘୋଡ଼ାଶାଳ।

ଅଶ୍ୱହନ୍ତା—ପୁଂ. ବି. କରବୀର ଫୁଲଗଛ, (ବିଂ)ଅଶ୍ୱନାଶକ (ସ୍ତ୍ରୀ)ଅଶ୍ୱହନ୍ତ୍ରୀ।

ଅଶ୍ୱହୟ—ପୁଂ. ବି. ଯେ ଅଶ୍ୱଯୁକ୍ତ ରଥରେ ସର୍ବଦା ଗମନ କରେ।

ଅଶ୍ୱହାସ—ଗ୍ରା.ବି. ଘୋଡ଼ାହସପରି ଉଚ୍ଚହାସ୍ୟ, ହେଁ ହେଁ ହସ।

ଅଶ୍ୱହୃଦୟ—କ୍ଲୀ. ବି. ଅଶ୍ୱବିଦ୍ୟାବିଶେଷ, ଅଶ୍ୱାଭିଳାଷ। [ଘୋଡ଼ୀ।

ଅଶ୍ୱା—ସ୍ତ୍ରୀ. ବି. (ଅଶ୍ୱ+ଆ) ଘୋଟକୀ,

ଅଶ୍ୱାକ୍ଷ—ପୁଂ. ବି. (ବ.ବ୍ରୀ) ଦେବସରଗଛ, ସର୍ପପବୃକ୍ଷ।

ଅଶ୍ୱାଦି—ପାଣିନ୍ୟୁକ୍ତ ଗଣବିଶେଷ।

ଅଶ୍ୱାଧ୍ୟକ୍ଷ—ପୁଂ. ବି. (୬ତତ୍) ଘୋଟକସମୂହର ତତ୍ତ୍ୱାବଧାୟକ, ଅଶ୍ୱପାଳ।

ଅଶ୍ୱାବରୋହକା—ସ୍ତ୍ରୀ. ବି. (ଅଶ୍ୱ+ଅବ+ରୁହ୍+କ.ଅକ+ଆ) ଅଶ୍ୱଗନ୍ଧା ବୃକ୍ଷ।

ଅଶ୍ୱାବରୋହଣ—କ୍ଲୀ. ବି. ୫ତତ୍; (ଅଶ୍ୱ+ଅବରୋହଣ) ଘୋଡ଼ାରୁ ଓହ୍ଲାଇବା, (ବିଂ) ଅଶ୍ୱାବରୋହକ।

ଅଶ୍ୱାମଘ—ବି. ବିଂ. ଯାହାର ଅଶ୍ୱରୂପ ଧନ ଅଛି, ଯେ ଅଶ୍ୱରୂପ ଧନ ଦାନ କରେ।

ଅଶ୍ୱାୟୁର୍ବେଦ—ପୁଂ. ବି. ଘୋଡ଼ାର ଆୟୁ ଓ ଚିକିତ୍ସା ଜାଣି ପାରିବାର ଶାସ୍ତ୍ର।

ଅଶ୍ୱାରି—ପୁଂ. ବି. ୬ତତ୍; (ଅଶ୍ୱ+ଅରି) ମହିଷ, ମହିଷି, ଘୋଡ଼ାର ଶତ୍ରୁ।

ଅଶ୍ୱାରୂଢ଼—ପୁଂ.ବି.(ଅଶ୍ୱ+ଆରୂଢ଼)ସାଦୀ, ଅଶ୍ୱାରୋହୀ।

ଅଶ୍ୱାରୋହ—ପୁଂ.ବି.(ଅଶ୍ୱ+ଆ+ରୁହ୍+କ. ଅ)ଘୋଡ଼ାର ଚାଳକ, ଘୋଡ଼ାର ବାହକ (ସ୍ତ୍ରୀ) ଅଶ୍ୱାରୋହା।

ଅଶ୍ୱାରୋହଣ -କ୍ଲୀ.ବି.(୭ତତ୍)ଘୋଡ଼ାରେ ଚଢ଼ିବା,ଘୋଡ଼ା ଚଢ଼ିବାରେ କୃତିତ୍ୱ।

ଅଶ୍ୱାରୋହୀ—ପୁଂ. ବିଂ. ( ଅଶ୍ୱ+ଆ+ରୁହ୍+କ.ଇନ୍) ଘୋଡ଼ାସବାର, ସାଦୀ, (ସ୍ତ୍ରୀ) ଅଶ୍ୱାରୋହିଣୀ।

ଅଶ୍ୱାବତାନ—ପୁଂ.ବି. ଋଷିବିଶେଷ।

ଅଶ୍ୱାସନ—ପୁଂ. ବି. (ଅଶ୍ୱ+ଅସ୍+କ. ଅନ) ନାଗବିଶେଷ।

ଅଶ୍ୱାହ୍ୱା—ସ୍ତ୍ରୀ.ବି. ଅଶ୍ୱଗନ୍ଧା।

ଅଶ୍ୱିନ—ପୁଂ. ବିଂ. ଅଶ୍ୱିନୀକୁମାରଦ୍ୱୟନାମକ ସ୍ୱର୍ଗବୈଦ୍ୟ, ନକୁଳ, ସହଦେବ, (ଜ୍ୟୋତିଷ) ଦୁଇ ସଂଖ୍ୟା।

ଅଶ୍ୱିନୀ—ସ୍ତ୍ରୀ. ବି. (ଅଶ୍ୱ+ଇନ୍+ଈ) ସତାଇଶ ନକ୍ଷତ୍ର ମଧ୍ୟରେ ପ୍ରଥମ ନକ୍ଷତ୍ର।

ଅଶ୍ୱିନୀକୁମାର—ପୁଂ. ବି, (ଅଶ୍ୱିନୀ+କୁମାର)ବଡ଼ବାରୂପଧାରିଣୀ ସୂର୍ଯ୍ୟପତ୍ନୀ ଗର୍ଭରୁ ଜାତ ସ୍ୱର୍ବୈଦ୍ୟ,ଦେବଚିକିତ୍ସକ, ତୀର୍ଥବିଶେଷ। [ବାନର।

ଅଶ୍ୱିନୀକୁମାରସୁତ—ବି. (୬ତତ୍) ସୁଷେଣ

ଅଶ୍ୱୀ—ପୁଂ.ବି(ଅଶ୍ୱ+ଈ)ଅଶ୍ୱିନୀକୁମାର, ନକୁଳ ସହଦେବ, ମିଥୁନରାଶି, ଅଶ୍ୱଦ୍ୱୟ, ଦୁଇ ସଂଖ୍ୟା, ଅଶ୍ୱାରୋହ (ସ୍ତ୍ରୀ) ଘୋଟକୀ।

ଅଶ୍ୱୀନ—ବି.ବିଂ. (ଅଶ୍ୱ+ଈନ) ଅଶ୍ୱର ଏକ ଦିନରେ ଗମନଯୋଗ୍ୟ, (ସ୍ତ୍ରୀ) ଅଶ୍ୱୀନା।

ଅଶ୍ୱୀୟ—କ୍ଲୀ.ବି. ଘୋଡ଼ା ଘାସ, ପାଲ, ଅଶ୍ୱସମୂହ, (ବିଂ) ଘୋଡ଼ାର ହିତକର, ଘୋଟକସମ୍ବନ୍ଧୀୟ।

ଅଶ୍ୱୋରସ—କ୍ଲୀ. ବି. ୭ତତ୍; (ଅଶ୍ୱ+ଉରସ୍) ପ୍ରଧାନ ଘୋଡ଼ା, (ବିଂ. ବ.ବ୍ରୀ) ବିଶାଳବକ୍ଷ, (ସ୍ତ୍ରୀ ଅଶ୍ୱୋରସା।

ଅଷଡ଼କ୍ଷୀଣ—ବି. ବିଂ. ( ବ.ବ୍ରୀ ) ଯେଉଁ ମନ୍ତ୍ରଣା ଦୁଇଜଣରେ କରାହୁଏ, ଯେ ମନ୍ତ୍ରଣା କାଳବେଳେ ଛଅଚକ୍ଷୁ ହୁଏ ନାହିଁ, ଗୁପ୍ତ।

ଅଷାଢ଼ (ଅଶାଢ଼)—ପୁଂ.ବି. ଆଷାଢ଼ମାସ, ବ୍ରହ୍ମଚାରୀର ପଳାଶଦଣ୍ଡ।

ଅଷାଢ଼ା(ଅଶାଢ଼ା)—ସ୍ତ୍ରୀ.ବି. ଅଶ୍ୱିନୀନକ୍ଷତ୍ରଠାରୁ ପୂର୍ବଦିଗରେ ୨୦ ନକ୍ଷତ୍ର ଓ ଉତ୍ତର ଦିଗରେ ୨ ନକ୍ଷତ୍ର।

ଅଷାଢ଼ୁଆ—ଗ୍ରା. ବି. ବନ୍ୟଫଳବିଶେଷ।

ଅଷାଢ଼ୁଆସୂତା—ଗ୍ରା. ବି. (ସଂ.ଅବ୍ୟୂଢ଼+ସୂତ୍ର) କୌତୁକସୂତ୍ର, ବିବାହଦିବସରେ ବରକନ୍ୟାଙ୍କ ହସ୍ତରେ ଦୂବ, ବରକୋଳିପତ୍ର ଓ ଆମ୍ବପତ୍ରଯୁକ୍ତ ବନ୍ଧାହେବା ସୂତାଡୋର। [ସଂଖ୍ୟକ।

ଅଷ୍ଟ—ବି. ଆଠସଂଖ୍ୟା, (ବିଂ) ଅଷ୍ଟ-

ଅଷ୍ଟକ—କ୍ଲୀ.ବି.(ଅଷ୍ଟନ୍+କ) ପାଣିନିଙ୍କର ଅଷ୍ଟାଧ୍ୟାୟୀ ସୂତ୍ରଗ୍ରନ୍ଥ, (ବିଂ) ଆଠପରସ୍ତ ବା ଆଠଗୁଣ ହୋଇଥିବା, ଅଷ୍ଟସଂଖ୍ୟକ।

ଅଷ୍ଟକଙ୍କାଳ—ଗ୍ରା. ବି. ଦେହର ସମସ୍ତ କଙ୍କାଳ, ପଞ୍ଜରାହାଡ଼।

ଅଷ୍ଟକଙ୍କାଳ—ଗ୍ରା ପୁଂ.ବିଂ. ଅତି ଦରିଦ୍ର, ଅତି କୃପଣ, (ସ୍ତ୍ରୀ) ଅଷ୍ଟକଙ୍କାଳୁଣୀ।

ଅଷ୍ଟକର୍ଣ୍ଣ—ପୁଂ.ବି. ବ.ବ୍ରୀ,(ଅଷ୍ଟ+କର୍ଣ୍ଣ) ଚତୁର୍ମୁଖ,ବ୍ରହ୍ମା। [ ଯୁକ୍ତ ରାଜା।

ଅଷ୍ଟକର୍ମ—ପୁଂ. ବି. ଆଠପ୍ରକାର କର୍ମ-

ଅଷ୍ଟକା—ସ୍ତ୍ରୀ. ବି. ଶ୍ରାଦ୍ଧବିଶେଷ, ତିଥିବିଶେଷ, ପୌଷ-ମାଘ-ଫାଲ୍‌ଗୁନମାସର କୃଷ୍ଣାଷ୍ଟମୀବିହିତ କର୍ମ।

ଅଷ୍ଟକାଙ୍ଗ -- କ୍ଲୀ. ବି. (ବ.ବ୍ରୀ) ପଶା ଖେଳିବାର ଛକ, ପଶାପାଲିର ଘର।

ଅଷ୍ଟକାଳ—ବି. (ଅଷ୍ଟ+କାଳ) ଦିନରାତି, ସର୍ବଦା, ଦିବାରାତ୍ର, ଆଠପ୍ରହର।

ଅଷ୍ଟକାଳୀ—ଗ୍ରା. (ଅବ୍ୟ) ଆଠକାଳୀ-ବାରମାସୀ, ବର୍ଷସାକ।

ଅଷ୍ଟକିଳା—ବି. ଅଷ୍ଟକୁଳାଚଳ (ଦେଖ)।

ଅଷ୍ଟକୁଳ—ବି. ଅଷ୍ଟନାଗ, ଅଷ୍ଟଦିଗ ଓ କୋଣ।

ଅଷ୍ଟକୁଳା—ଗ୍ରା.ବି. ଅନନ୍ତାଦି ଅଷ୍ଟନାଗ।

ଅଷ୍ଟକୁଳାଚଳ—ପୁଂ. ବି. ( କ.ଧା ) ମହେନ୍ଦ୍ର, ମଳୟ, ସହ୍ୟ, ଶକ୍ତିମାନ୍,

ଋକ୍ଷ, ବିନ୍ଧ୍ୟ, ପାରିଯାତ୍ର, ହିମାଳୟ, ଏହି ଆଠଟି କୁଳପର୍ବତ ।

ଅଷ୍ଟକୋଣ—ବି. ବି. ଅଷ୍ଟକୋଣ ଯୁକ୍ତ-କ୍ଷେତ୍ର, ଯନ୍ତ୍ରବିଶେଷ, କୁଣ୍ଡବିଶେଷ, ଆଠକଣିଆଁ ।

ଅଷ୍ଟକ୍ରୀତ—ବି. ବିଂ. ଅଷ୍ଟସଂଖ୍ୟକ ଦ୍ରବ୍ୟ-ଦ୍ୱାରା ଯାହା କ୍ରୀତ ହୋଇଅଛି ।

ଅଷ୍ଟକ୍ଷୀର—କ୍ଲୀ.ବି. ଗାଈ, ମେଷ, ଛେଳି, ମହିଷ, ମନୁଷ୍ୟ, ହସ୍ତୀ, ଅଶ୍ୱ ଓ ଓଟର ଦୁଗ୍ଧ, ଏହି ଆଠ କ୍ଷୀର ଔଷଧରେ ବ୍ୟବହାର୍ଯ୍ୟ ।

ଅଷ୍ଟଗବ—କ୍ଲୀ. ବି. ଆଠୋଟି ଗୋରୁର [ ସମଷ୍ଟି ।

ଅଷ୍ଟଗୁଣ—ବି. ବିଂ. (ବି.ସ୍ତ୍ରୀ) ଆଠଗୁଣ, ଦୟା, କ୍ଷାନ୍ତି, ଅନସୂୟା, ଶୌଚ, ଅନାୟାସ,ମଙ୍ଗଳ,ଅକାର୍ପଣ୍ୟ ଓ ଅସ୍ପୃହା ଏହା ଲୋକର ଆଠଗୁଣ ।

ଅଷ୍ଟଗୃହୀତ—ବି. ବିଂ. ଯାହା ଆଠଥର ଗ୍ରହଣ କରା ହୋଇଅଛି ।

ଅଷ୍ଟଚଣ୍ଡୀ—ସ୍ତ୍ରୀ. ବି. ମଙ୍ଗଳା, ବିମଳା, ସର୍ବମଙ୍ଗଳା, କାଳୀ, ରାତ୍ରିକାଳିକା, ବିକଟା, କାମାକ୍ଷା ଓ ଭବାନୀ ଚଣ୍ଡୀର ଏହି ଅଷ୍ଟମୂର୍ତ୍ତି ।

ଅଷ୍ଟଚତ୍ୱାରିଂଶତ୍—ସ୍ତ୍ରୀ. ବି. (କ.ଧା), ଅଠଚାଳିଶ ସଂଖ୍ୟା, (ବିଂ) ଅଠଚାଳିଶ ସଂଖ୍ୟାର ପୂରକ ।

ଅଷ୍ଟତୟ—ବି. ବି. (ଅଷ୍ଟ + ତୟ) ଆଠ ଅବୟବଯୁକ୍ତ, (ବି.କ୍ଲୀ) ଆଠ ସଂଖ୍ୟା ।

ଅଷ୍ଟତାରିଣୀ—ସ୍ତ୍ରୀ. ବି. ଭଗବତୀର ଅଷ୍ଟ-ମୂର୍ତ୍ତି-ତାରା, ଉଗ୍ରା, ମହୋଗ୍ରା, ବଜ୍ରା, କାଳୀ, ସରସ୍ୱତୀ, କାମେଶ୍ୱରୀ ଓ ଚାମୁଣ୍ଡା । [ ସଂଖ୍ୟାଯୁକ୍ତ ।

ଅଷ୍ଟତ୍ରିକ—କ୍ଲୀ.ବି. ଚବିଶ, (ବିଂ) ଚବିଶ

ଅଷ୍ଟତ୍ୱ—କ୍ଲୀ. ବି. ଆଠସଂଖ୍ୟା ।

ଅଷ୍ଟଦଂଷ୍ଟ୍ର—ପୁଂ. ବି. ଋକ୍‌ବେଦୋକ୍ତ ଦାନବବିଶେଷ ।

ଅଷ୍ଟଦଳ—କ୍ଲୀ. ବି. (ବି.ସ୍ତ୍ରୀ) ଅଷ୍ଟପତ୍ର ପଦ୍ମ, ଅଷ୍ଟପତ୍ରକଯନ୍ତ୍ର, ଷଟ୍‌ଚକ୍ରାନ୍ତର୍ଗତ ହୃତ୍ ଚକ୍ର,(ବିଂ)ଆଠୋଟି ପାଖୁଡ଼ା ଥିବା ।

ଅଷ୍ଟଦଳବନ୍ଧ—ଗ୍ରା. ବି. କାବ୍ୟାଲଙ୍କାର-ବିଶେଷ ।

ଅଷ୍ଟଦଶା—ସ୍ତ୍ରୀ.ବି. ଅଷ୍ଟ ସାତ୍ତ୍ୱିକ ବିକାର, ଅଣମିତ ପ୍ରେମର ଆଠଗୋଟି ଲକ୍ଷଣ ।

ଅଷ୍ଟଦିକ୍—ସ୍ତ୍ରୀ. ବି. (କ.ଧା) ଆଠଦିଗ, ପୂର୍ବାଦି ।

ଅଷ୍ଟଦିକ୍‌କରିଣୀ—ସ୍ତ୍ରୀ.ବି.ଅଷ୍ଟଦିଗହସ୍ତିନୀ ।

ଅଷ୍ଟଦିକ୍‌ପାଳ—ପୁଂ.ବି.(ଅଷ୍ଟ + ଦିକ୍ + ପାଳ + ଅ)କ.ଧା; ଇନ୍ଦ୍ରାଦି ଅଷ୍ଟଦିଗପତି ।

ଅଷ୍ଟଦିଗ୍‌ଗଜ—ପୁଂ. ବି. ଐରାବତାଦି ଅଷ୍ଟ-ଦିଗହସ୍ତୀମାନେ ।

ଅଷ୍ଟଦୁର୍ଗ—ବି. ଆଠଗଡ଼,ଓଡ଼ିଶାର ଗଡ଼-ଜାତବିଶେଷ, ଗଞ୍ଜାମ ଜିଲାର ଗୋଟିଏ ତାଲୁକ, 'କୋଦାଳା ଆଠଗଡ଼ ।

ଅଷ୍ଟଦ୍ରବ୍ୟ—କ୍ଲୀ.ବି. ଅଶ୍ୱତ୍ଥ, ଉଦୁମ୍ବର, ବଟ, ନ୍ୟଗ୍ରୋଧ, ସମିଧ, ତିଳ, ସୋରିଷ, ଏବଂ ପାୟସସାଜ୍ୟ, ଏହି ଆଠ ଦ୍ରବ୍ୟ ।

ଅଷ୍ଟଧା—(ଅବ୍ୟ) ଆଠପ୍ରକାର,ଆଠଥର, ଆଠଭାଗରେ, ( କ୍ରି. ବିଂ. ) ଆଠପ୍ରକା-ରରେ, ଆଠ ପରସ୍ତ ।

ଅଷ୍ଟଧାତୁ—ପୁଂ.ବି.(କ.ଧା)ସ୍ୱର୍ଣ୍ଣ,ରୌପ୍ୟ, କଂସା,ତମ୍ବା,ସୀସା,ରଙ୍ଗ,ଲୁହା,ପିତଳ, ଏହି ଆଠପ୍ରକାର ଧାତୁ ।

ଅଷ୍ଟନବତି—ସ୍ତ୍ରୀ.ବି.(କ.ଧା) ଅଠାନବେ, ୯୮ ସଂଖ୍ୟା ।

ଅଷ୍ଟନାଗ—ପୁଂ. ବି. ଅନନ୍ତ, ବାସୁକି-ପ୍ରଭୃତି ନାଗମାନେ ।

ଅଷ୍ଟନାୟିକା—ସ୍ତ୍ରୀ.ବି.(ଅଷ୍ଟ + ନାୟିକା) ଆଠପ୍ରକାର ନାୟିକା ।

ଅଷ୍ଟନିଧି—ପୁଂ. ବି. (କ.ଧା) ପଦ୍ମ, ମହା-ପଦ୍ମପ୍ରଭୃତି କୁବେରଙ୍କର ଅଷ୍ଟରତ୍ନ ।

ଅଷ୍ଟପଞ୍ଚାଶତ୍—ବି. (କ.ଧା) ଅଠାବନ, ୫୮ ସଂଖ୍ୟା ।

ଅଷ୍ଟପଟ୍ଟମହିଷୀ—ସ୍ତ୍ରୀ. ବି. ଶ୍ରୀକୃଷ୍ଣଙ୍କର ଆଠଗୋଟି ପାଟରାଣୀ;ଯଥା:—ରୁକ୍ମିଣୀ, ସତ୍ୟଭାମା,କାଳନ୍ଦୀ,ଶୁଚସ୍ମିତା,ମିତ୍ରବିନ୍ଦା, ଜାମ୍ବବତୀ, ନାଗ୍ନଜିତୀ ଓ ସୁଲକ୍ଷଣା ।

ଅଷ୍ଟପାଟରାଣୀ—ସ୍ତ୍ରୀ. ବି. ଦ୍ୱାରକାରେ ଶ୍ରୀକୃଷ୍ଣଙ୍କର ଅଷ୍ଟସଂଖ୍ୟକ ପଟ୍ଟମହିଷୀ ।

ଅଷ୍ଟପାଦ—ପୁଂ.ବି.(ବି.ସ୍ତ୍ରୀ);(ଅଷ୍ଟ + ପାଦ) ମାଙ୍କଡ଼ଶା, ବୁଢ଼ିଆଣୀ, ଊର୍ଣ୍ଣନାଭ, ଶରଭମୃଗବିଶେଷ ।

ଅଷ୍ଟପାଦିକା—ସ୍ତ୍ରୀ. ବି. ଲତାବିଶେଷ, ଦ୍ୱୀପରମାଳୀ ଲତା, ଭଦ୍ରବଲ୍ଲୀ ।

ଅଷ୍ଟପାଶ—ପୁଂ.ବି. (କ.ଧା)ମାୟାବନ୍ଧନ, ଘୃଣା, ଅପମାନ, ଲଜ୍ଜା, ମାନ, ମୋହ, ଦମ୍ଭ, ଦ୍ୱେଷ ଓ ନୈପୁଣ୍ୟ ।

ଅଷ୍ଟପୁଷ୍ପୀ—ସ୍ତ୍ରୀ. ବି. ପୁଷ୍ପାଷ୍ଟକ ।

ଅଷ୍ଟପ୍ରହର—କ୍ଲୀ. ବି. ଆଠ ପ୍ରହରର ସମଷ୍ଟି, ସମସ୍ତ ଦିବାରାତ୍ର ।

ଅଷ୍ଟପ୍ରହରୀ—ଗ୍ରା.ବିଂ.(ଅଷ୍ଟପ୍ରହର + ଇନ୍) ଅହୋରାତ୍ରବ୍ୟାପୀ, ଦିନରାତି ସବୁବେଳେ ହେଉଥିବା ସଙ୍କୀର୍ତ୍ତନ ।

ଅଷ୍ଟବନ୍ଧ—ଗ୍ରା. ବିଂ. ଶରୀରର ଅଷ୍ଟ ସ୍ଥାନରେ ବନ୍ଧ ହୋଇଥିବା (ବ୍ୟକ୍ତି), ଅତିଦୁର୍ବୋଧ (ବି) ଅଷ୍ଟବନ୍ଧ ଋଷି ।

ଅଷ୍ଟବଜ୍ର—ବି.ପୁଂ.କ୍ଲୀ.(କ.ଧା)ଅଷ୍ଟବଜ୍ର-ବଜ୍ର ଅମୋଘ, ଅଷ୍ଟଦେବାସ୍ତ୍ର-ସୁଦର୍ଶନ, ଶୂଳ, ଅକ୍ଷମାଳା, ବଜ୍ର,ପାଶ, ଯମଦଣ୍ଡ, କାର୍ତ୍ତିକେୟଙ୍କ ଶକ୍ତି, ଦୁର୍ଗାଙ୍କ ଖଡ୍ଗ ।

ଅଷ୍ଟବଟ—ଗ୍ରା. ବି. ଅଲେଖଧର୍ମୀଙ୍କ କଳ୍ପିତ ଆଠଗୋଟି ବଟଗଛ, ଯଥା:— ହେତୁବଟ, ଯୋଗବଟ, କର୍ମବଟ, କାମନାବଟ,ବିଷ୍ଣୁବଟ,ଦେବବଟ, ଅନନ୍ତ-ବଟ ଓ ମହାମାପ୍ରକାଶ ବଟ ।

ଅଷ୍ଟବସୁ—ପୁଂ.ବି.(ଅଷ୍ଟ + ବସୁ) ଦେବ-ଗଣବିଶେଷ; ଆପ,ଧ୍ରୁବ,ଅନଳ,ସୋମ, ଅନିଲ, ଧର, ପ୍ରତ୍ୟୂଷ, ପ୍ରଭବ, ଏହି ଆଠବସୁ ।

ଅଷ୍ଟବିଧ—ବି.ବିଂ. (ବି.ସ୍ତ୍ରୀ)ଆଠପ୍ରକାର, (ସ୍ତ୍ରୀ) ଅଷ୍ଟବିଧା ।

ଅଷ୍ଟଭୁଜା – ସ୍ତ୍ରୀ.ବି.ଦେବୀର ମୂର୍ତ୍ତିବିଶେଷ, ମହାସରସ୍ୱତୀ ।

ଅଷ୍ଟଭୈରବ—ପୁଂ.ବି.(କ.ଧା)ଅସିତାଙ୍ଗ, ରୁରୁ,ଚଣ୍ଡ, କ୍ରୋଧୋନ୍ମତ୍ତ, ଭୟଙ୍କର, କପାଳୀ, ଭୀଷଣ, ସଂହାର, ଏହି ଆଠ-ଭୈରବ,ଶିବଙ୍କର ଆଠଜଣ ସହଚର ।

ଅଷ୍ଟମ—ବି. ବି. (ଅଷ୍ଟ + ମଟ୍) ଆଠ-ସଂଖ୍ୟାର ପୂରଣ ।

ଅଷ୍ଟମକାଳିକ—ତ୍ରି. ବିଂ. ଯେଉଁ ସନ୍ନ୍ୟାସୀ ସାତେ ଦିନଦିନ ଉପବାସ କରି ଚତୁର୍ଥ ଦିନ ରାତିରେ ଖାଏ ।

ଅଷ୍ଟମଙ୍ଗଳ—କ୍ଲୀ. ବ. (ଅଷ୍ଟ + ମଙ୍ଗଳ) ବ.ସ୍ତ୍ରୀ; ଅଷ୍ଟପ୍ରକାର ମଙ୍ଗଳ ଦ୍ରବ୍ୟ ମୃଗରାଜ, ବୃଷ, ନାଗ, କଳସ,ଚାମର, ପତାକା, ଭେରୀ, ଦୀପ, (ଅନ୍ୟ) ଗୌ, ବ୍ରାହ୍ମଣ, ଅଗ୍ନି, ସ୍ୱର୍ଣ୍ଣ, ଘୃତ, ଆଦିତ୍ୟ, ଜଳ, ରାଜା,ଘୋଟକବିଶେଷ, (ପୁଂ.ବ) କ୍ଷୁର ଚତୁଷ୍ଟୟ, ପୁଚ୍ଛ, ମୁଖ,ବକ୍ଷ,ପୃଷ୍ଠ, ଏହି ଆଠସ୍ଥାନରେ ମଙ୍ଗଳସୂଚକ ଶ୍ୱେତବର୍ଣ୍ଣ ଚିହ୍ନଥିବା ଘୋଟକ,ଘୋଡ଼ା ।

ଅଷ୍ଟମଙ୍ଗଳଘୃତ—କ୍ଲୀ. ବ. ଆଠପ୍ରକାର ମସଲାଯୁକ୍ତ ପାକ କରିବାର ଘୃତ ।

ଅଷ୍ଟମଙ୍ଗଳା—ସ୍ତ୍ରୀ. ବ. ବିବାହପରର ଅଷ୍ଟମ ଦିବସ ।

ଅଷ୍ଟମାନ—କ୍ଲୀ.ବ. ଏକ କୁଡ଼ା ପରିମାଣ, ଶରାବର ଅର୍ଦ୍ଧ,ଆଠମୁଠା ପରିମାଣ (ଗ୍ରା) ମାଣେ ।

ଅଷ୍ଟମିକ—ସ୍ତ୍ରୀ. ବ. ଶୁକ୍ତି ପରିମାଣ, ଚାରି ତୋଳା ପରିମାଣ, ଦୁଇକର୍ଷ ପରିମାଣ ।

ଅଷ୍ଟମୀ—ସ୍ତ୍ରୀ.ବ. ତିଥିବିଶେଷ,ଅମାବାସ୍ୟା ବା ପୂର୍ଣ୍ଣିମାଠାରୁ ଗଣାଯିବା ଅଷ୍ଟମଦିବସ, କ୍ଷୀରକାକୁଲ, କ୍ଷୀରକାକୋଲ ।

ଅଷ୍ଟମୁଷ୍ଟି—ପୁଂ.ବ. କୁଞ୍ଚିପରିମାଣ,ମାଣେ ।

ଅଷ୍ଟମୂତ୍ର—କ୍ଲୀ. ବ. (ବୈଦ୍ୟ)ଗୋ,ମେଷ, ଛାଗ, ମହିଷ, ହସ୍ତୀ, ଘୋଟକ, ଗର୍ଦ୍ଦଭ, ଉଷ୍ଟ୍ର ଏମାନଙ୍କର ମୂତ୍ର ।

ଅଷ୍ଟମୂର୍ତ୍ତି—ପୁଂ.ବ. (ଅଷ୍ଟ + ମୂର୍ତ୍ତି )ଭୂମି-ପ୍ରଭୃତି ଅଷ୍ଟମୂର୍ତ୍ତିଧର,ଶିବ (ବିଂ) ଅଷ୍ଟ-ମୂର୍ତ୍ତିଧର ।

ଅଷ୍ଟଯୋଗିନୀ—ସ୍ତ୍ରୀ. ବ. ଦୁର୍ଗାଙ୍କର ଅଷ୍ଟ ସଖୀ, ଯଥା:—ଶୈଳପୁତ୍ରୀ, ଚଣ୍ଡଘଣ୍ଟା, ସ୍କନ୍ଦମାତା;କାଳରାତ୍ରି, ଚଣ୍ଡିକା, କୁଷ୍ମାଣ୍ଡୀ, କାତ୍ୟାୟନୀ,ମହାଗୌରୀ-ଏହି ଆଠ ।

ଅଷ୍ଟରତ୍ନି—ତ୍ରି. ବିଂ. ହାତ ମୁଠାକର ଆଠ ହାତର ପରିମାଣ ।

ଅଷ୍ଟଲୋକପାଳ—ପୁଂ. ବ. ( କ. ଧା ) ଇନ୍ଦ୍ରାଦି ଅଷ୍ଟ ଦିକ୍‌ପାଳଗଣ ।

ଅଷ୍ଟଲୌହକ—କ୍ଲୀ.ବ.(ଅଷ୍ଟ + ଲୌହକ ସ୍ୱର୍ଣ୍ଣାଦି ଅଷ୍ଟଧାତୁବିଶେଷ ।

ଅଷ୍ଟବର୍ଗ—ପୁଂ.ବ. ଆଠପ୍ରକାର ଔଷଧ-ବିଶେଷର ଗଣ, ମେଦାଦି ଶୁଭାଶୁଭ ଫଳସୂଚକ, ଗ୍ରହଭିନ୍ନ ଜନ୍ମକାଳୀନ ଅଷ୍ଟଗ୍ରହ ସମୁଦାୟର ସାଧନଚକ୍ର ।

ଅଷ୍ଟଶ୍ରବଣ—ପୁଂ. ବ. ବ୍ରହ୍ମା ।

ଅଷ୍ଟଶମ୍ଭୁ—ପୁଂ. ବ. ( କ.ଧା ) ଶିବ, ମହାଦେବ,ଏକସ୍ଥାନରେ ସ୍ଥାପିତ ଆଠ-ଗୋଟି ଶିବଲିଙ୍ଗ ।

ଅଷ୍ଟଶ୍ରୁତି—ପୁଂ. ବ. ବ.ସ୍ତ୍ରୀ; ( ଅଷ୍ଟ + ଶ୍ରୁତି ) ଚତୁର୍ମୁଖ, ବ୍ରହ୍ମା, ପ୍ରଜାପତି ।

ଅଷ୍ଟଷଷ୍ଟି – ସ୍ତ୍ରୀ. ବ. ଅଠଷଠି, ଷାଠିଏରୁ ଅଷ୍ଟ ଅଧିକ ।

ଅଷ୍ଟଷଷ୍ଟିତମ—ତ୍ରି. ବ. ଅଠଷଠିସଂଖ୍ୟକ (ସ୍ତ୍ରୀ) ଅଠଷଷ୍ଟିତମା ।

ଅଷ୍ଟସଖା—ପୁଂ. ବ. ଶ୍ରୀକୃଷ୍ଣଙ୍କର ବୃନ୍ଦା-ବନରେ ବାଲ୍ୟକାଳୀନ ଆଠଜଣ ସଙ୍ଗୀ ବାଳକ—ଶ୍ରୀଦାମ, ସୁଦାମ, ସୁବଳ, ବସୁଦାମ, ମଧୁମଙ୍ଗଳ, କଙ୍କିଣି ଆଦି, ବରୁଥକ ।

ଅଷ୍ଟସିଦ୍ଧି—ସ୍ତ୍ରୀ.ବ. ଅଣିମାଦି ଆଠପ୍ରକାର ସିଦ୍ଧି; ଯଥା—ଅଣିମା,ଲଘିମା, ବ୍ୟାପ୍ତି, ପ୍ରାକାମ୍ୟ, ମହିମା, ଈଶିତା, ବଶିତା, କାମାବସାୟିତା,ଏହି ଆଠପ୍ରକାର ସିଦ୍ଧି ।

ଅଷ୍ଟସଖୀ—ସ୍ତ୍ରୀ. ବ. ( ଅଷ୍ଟନ୍ + ସଖୀ ) ଭାଗବତୋକ୍ତ ରାଧିକାଙ୍କର ଆଠଜଣ ସହଚରୀ—ଲଳିତା, ବିଶାଖା, ଚିତ୍ରା ଚମ୍ପକଲତା, ତୁଙ୍ଗବିଦ୍ୟା, ଇନ୍ଦୁରେଖା, ରଙ୍ଗଦେବୀ ଓ ସୁଦେବୀ; କାମଶା-ସ୍ତ୍ରୋକ୍ତ ଅଷ୍ଟନାୟିକାବିଶେଷ, ମନ୍ଦିରରେ ଚିତ୍ରିତ ଅଷ୍ଟଦିକ୍‌ପାଳମାନଙ୍କ ସ୍ତ୍ରୀ ।

ଅଷ୍ଟସପ୍ତତି—ସ୍ତ୍ରୀ. ବ. (କ.ଧା) ଅଠସ୍ତରି, ସତୁରିରୁ ଆଠ ଅଧିକ ।

ଅଷ୍ଟାଂଶିତ—ତ୍ରି. ବିଂ. ଆଠ ଭାଗରେ ବିଭକ୍ତ, ଆଠ ଭାଗରେ ଭଙ୍ଗା ହୋଇ-ଥିବା (କାଗଜ) ।

ଅଷ୍ଟାକପାଳ—ତ୍ରି.ବ.ଅଷ୍ଟକପାଲେ ସଂସ୍କୃତ ଦୁଃଖୀ ପୁରୋଡ଼ାଶାଦି (ବ)ଯଜ୍ଞବିଶେଷ, (ସ୍ତ୍ରୀ) ଅଷ୍ଟାକପାଲା ।

ଅଷ୍ଟାକଷ୍ଟୀ—ଗ୍ରା.ବ. କଉଡ଼ୀ ଓ ଗୁଟିଦ୍ୱାରା ଏକପ୍ରକାର ଖେଳ ବାଳକାମାନେ ଖେଳନ୍ତି ।

ଅଷ୍ଟାକ୍ଷର—ତ୍ରି.ବିଂ.(ବ.ସ୍ତ୍ରୀ)ଆଠ ଅକ୍ଷର-ଯୁକ୍ତ ମନ୍ତ୍ର, ଆଠଅକ୍ଷରଯୁକ୍ତ ଅନୁଷ୍ଟୁଭ୍, ଜାତୀୟବର୍ଣ୍ଣ ବିଶେଷ ।

ଅଷ୍ଟାଙ୍ଗ—ପୁଂ. ବ. (ଅଷ୍ଟ + ଅଙ୍ଗ) ଆଠ ଅଙ୍ଗ (ଯମ-ନିୟମାଦି) ବିଶିଷ୍ଟ ଯୋଗ-ବିଶେଷ, ଯମ, ନିୟମ, ଆସନ, ପ୍ରାଣା-ୟାମ,ପ୍ରତ୍ୟାହାର,ଧ୍ୟାନ,ଧାରଣା, ସମାଧି ଏହି ଆଠ ପ୍ରକାର ଯୋଗ, ଦେହର ଆଠଗୋଟି ଅଙ୍ଗ, ରାଜ୍ୟ ଶାସନର ଆଠ ଗୋଟି ଅଙ୍ଗ ବା ଉପାଦାନ, ଆୟୁ-ର୍ବେଦର ଆଠଗୋଟି ଶାଖା, ସୂର୍ଯ୍ୟଙ୍କୁ ଦିଆଯିବା ଅର୍ଘ୍ୟବିଶେଷ ।

ଅଷ୍ଟାଙ୍ଗାର୍ଘ୍ୟ—ପୁଂ.ବ.ଜଳ,ଦୁଗ୍ଧାଦିଅର୍ଘ୍ୟ ବିଶେଷ । [ଅଷ୍ଟାଙ୍ଗ ।

ଅଷ୍ଟାଙ୍ଗଚକ୍ରସ୍ତ୍ରା—ସ୍ତ୍ରୀ. ବ. ଚକ୍ରସ୍ତ୍ରାଶାସ୍ତ୍ରର

ଅଷ୍ଟାଙ୍ଗଧୂପ—ପୁଂ.ବ.ଗୁଗୁଲ ନିମ୍ବପତ୍ରାଦି ଅଷ୍ଟପଦାର୍ଥ ମିଶ୍ରିତ ଧୂପବିଶେଷ ।

ଅଷ୍ଟାଙ୍ଗପ୍ରଣାମ—ବି. ( କ.ଧା ) ସାଷ୍ଟାଙ୍ଗ ପ୍ରଣିପାତ, ଭୂମିଷ୍ଠପ୍ରଣାମ ।

ଅଷ୍ଟାତ୍ରିଂଶ—ବି.ବିଂ. (ଅଷ୍ଟନ୍ + ତ୍ରିଂଶତ୍) ଅଠତିରିଶସଂଖ୍ୟକ, ଅଠତିରିଶସଂଖ୍ୟା ।

ଅଷ୍ଟାଙ୍ଗମୈଥୁନ—କ୍ଲୀ.ବ.ମୈଥୁନର ଆଠ ପ୍ରକାର ଅଙ୍ଗବିଶେଷ ।

ଅଷ୍ଟାଙ୍ଗଯୋଗ—ପୁଂ. ବ. ଯମ ନିୟମାଦି ଯୋଗର ଆଠ ପ୍ରକାର ନିୟମବିଶେଷ ।

ଅଷ୍ଟାଦଶ—ତ୍ରି'ବିଂ.(ଅଷ୍ଟନ୍ + ଦଶ) ଅଠର ସଂଖ୍ୟାର ପୂରଣ, ଅଠର ସଂଖ୍ୟାବିଶିଷ୍ଟ ।

ଅଷ୍ଟାଦଶବିଦ୍ୟା—ସ୍ତ୍ରୀ. ବି. ଶିକ୍ଷାପ୍ରଭୃତି ଅଠର ପ୍ରକାର ବିଦ୍ୟା, ଯଥା—ଶିକ୍ଷା, କଳ୍ପ, ବ୍ୟାକରଣ, ନିରୁକ୍ତ, ଛନ୍ଦ, ଜ୍ୟୋତିଷ-ଏହି ଷଡ଼ଙ୍ଗ, ଚତୁର୍ବେଦ ଏପରି ଦଶ, ମୀମାଂସା, ନ୍ୟାୟ, ଧର୍ମ-ଶାସ୍ତ୍ର, ପୁରାଣ, ଆୟୁର୍ବେଦ, ଧନୁର୍ବେଦ, ଗାନ୍ଧର୍ବ, ଅର୍ଥଶାସ୍ତ୍ର ସର୍ବସୁଦ୍ଧା ଏହି ଆଠ ମିଶି ଅଷ୍ଟାଦଶ ବିଦ୍ୟା ।

ଅଷ୍ଟାଦଶପୁରାଣ—କ୍ଲୀ. ବି. ହିନ୍ଦୁମାନଙ୍କର ଅଠରଟି ମହାପୁରାଣ ।

ଅଷ୍ଟାଦଶଭୁଜା—ସ୍ତ୍ରୀ. ବି. ଦେବୀ ମାହାତ୍ମ୍ୟୋକ୍ତ ମହାଲକ୍ଷ୍ମୀଙ୍କର ମୂର୍ତ୍ତି ।

ଅଷ୍ଟାଦଶବିବାଦପଦ—କ୍ଲୀ. ବି. ଋଣଦାନାଦି ଅଠରପ୍ରକାର ବିବାଦର ସ୍ଥଳ ।

ଅଷ୍ଟାଦଶାଙ୍ଗ—କ୍ଲୀ. ପୁଂ. ବି. ଅଠରଟି ଦ୍ରବ୍ୟର ପାଚନବିଶେଷ ।

ଅଷ୍ଟାଦଶୋପଚାର—ପୁଂ. ବି. ତନ୍ତ୍ରୋକ୍ତ ପୂଜାର ଅଠର ପ୍ରକାର ଉପଚାର ।

ଅଷ୍ଟାପଦ—କ୍ଲୀ. ପୁଂ. ବି. (ଅଷ୍ଟନ୍ + ପଦ) ବୁଢ଼ିଆଣୀ, ପଶାର ଛକ, ବିଚିତ୍ର ବସ୍ତ୍ର, ସ୍ୱର୍ଣ୍ଣ, କୈଳାସପର୍ବତ, ଶରଭ ମୃଗବିଶେଷ (ସ୍ତ୍ରୀ) ଚନ୍ଦ୍ରମଲ୍ଲିକା ।

ଅଷ୍ଟାବଧାନ—ପୁଂ. ବି. (ଅଷ୍ଟ + ଅବଧାନ) ଅଭ୍ୟାସ ଯୋଗୁଁ ଏକସମୟରେ ଆଠ ପ୍ରକାର ଭିନ୍ନ ଭିନ୍ନ ବିଷୟରେ ମନୋନିବେଶ ।

ଅଷ୍ଟାବଧାନୀ—ପୁଂ. ବିଂ. (ଅଷ୍ଟ + ଅବଧାନ + ଇନ୍) ଯେଉଁ ଲୋକ ଏକସମୟରେ ଅଭ୍ୟାସଯୋଗୁଁ ଆଠଗୋଟି କଥାରେ ମନୋନିବେଶ କରିପାରେ ।

ଅଷ୍ଟାବିଂଶ—ବିଂ. (ଅଷ୍ଟନ୍ + ବିଂଶ) ଅଠେଇଶ ସଂଖ୍ୟାର ପୂରକ ।

ଅଷ୍ଟାବିଂଶତି—ବି. ଅଠାଇଶ ସଂଖ୍ୟା ।

ଅଷ୍ଟାବିଂଶତିତତ୍ତ୍ୱ—କ୍ଲୀ. ବି. ରଘୁନନ୍ଦନ ଭଟ୍ଟାଚାର୍ଯ୍ୟପ୍ରଣୀତ ମଳମାସାଦି ଅଠାଇଶ ବିଷୟରେ ସ୍ମୃତିଶାସ୍ତ୍ରବିଶେଷ ।

ଅଷ୍ଟାବିଂଶତିତମ—ବିଂ. (ଅଷ୍ଟାବିଂଶତି + ତମ) ଅଠେଇଶ ସଂଖ୍ୟାର ପୂରକ ।

ଅଷ୍ଟାର—ତ୍ରି. ବିଂ. ଆଠକୋଣଯୁକ୍ତ, ଆଠ ଅଂଶ ଯୁକ୍ତ ।

ଅଷ୍ଟାବକ୍ର—ପୁଂ. ବିଂ. ଯାହା ଶରୀର ଆଠ ଜାଗାରେ ବଙ୍କା, (ବି.) ମୁନିବିଶେଷ ।

ଅଷ୍ଟାଶୀତି—ବିଂ. ବି. (ଅଷ୍ଟନ୍ + ଅଶୀତି) ଅଠାଅଶୀ ।

ଅଷ୍ଟାଶୀତିତମ—ତ୍ରି. ବିଂ. ଅଠାଅଶୀ ସଂଖ୍ୟାର ପୂରଣ, ୮୮ ସଂଖ୍ୟକ, (ସ୍ତ୍ରୀ) ଅଷ୍ଟାଶୀତିତମା । [ କୋଣିଆଁ ।

ଅଷ୍ଟାଶ୍ରି—ବିଂ. (ଅଷ୍ଟ + ଅଶ୍ରି + ଇନ୍) ଆଠ-

ଅଷ୍ଟାସ୍ର—ବିଂ. ବ. ବ୍ରୀ. (ଅଷ୍ଟ + ଅସ୍ର + ଆଠ) କୋଣିଆଁ, ଆଠପହଲିଆ ।

ଅଷ୍ଟାହ—ପୁଂ. ବି. (ଅଷ୍ଟ + ଅହନ୍) ଆଠଦିନର ସମାହାର ।

ଅଷ୍ଟି—ସ୍ତ୍ରୀ. ବି. (ଅସ + ମିଂ. ତି) ଫଳାଦିର ମଞ୍ଜି, ଷୋହଳ ଅକ୍ଷରବିଶିଷ୍ଟ ଛନ୍ଦୋବିଶେଷ, ଟାକୁଆ ।

ଅଷ୍ଟୈଶ୍ୱର୍ଯ୍ୟ—ବି. (ଅଷ୍ଟ + ଐଶ୍ୱର୍ଯ୍ୟ) ଦିଗ୍‌ଦେବତା ଓ ଯୋଗସିଦ୍ଧ ପୁରୁଷମାନଙ୍କର ସାଧନଲବ୍ଧ ଆଠଗୋଟି ଅନନ୍ୟସୁଲଭ ସିଦ୍ଧି ବା ବିଶେଷତ୍ୱ ।

ଅଷ୍ଟୋତ୍ତର—ତ୍ରି. ବିଂ. (ବ. ବ୍ରୀ) ଅଷ୍ଟାଧିକ, ଆଠଅଧିକ ।

ଅଷ୍ଟୋତ୍ତରୀ—ସ୍ତ୍ରୀ. ବିଂ. ବ୧୦୮ର୍ଷ ସମଗ୍ର ଦଶାର ଭୋଗକାଳ ପୂର୍ଣ୍ଣ ହୁଏ ଏହି ହିସାବରେ ଗଣନୀୟଦଶା (ଜ୍ୟୋତିଷ) ।

ଅଷ୍ଟ୍ରା—ସ୍ତ୍ରୀ. ବି. ଚଟୁ, ରଥଚକ୍ରର ଅଙ୍ଗବିଶେଷ । [ବୃହତ୍ ନଗର ।

ଅଷ୍ଟ୍ରୀୟା—ଏହା ଇଉରୋପର ଗୋଟିଏ

ଅଷ୍ଟ୍ରେଲେସିଆ—ଯା. ବି. ଏହା କେତେଗୁଡ଼ିଏ ଦ୍ୱୀପପୁଞ୍ଜ ।

ଅଷ୍ଠି—ସ୍ତ୍ରୀ. ବି. (ଅ + ସ୍ଥା + କ. ତି) ଫଳର ଟାଣ ମଞ୍ଜି, ଟାକୁଆ, ଧାପକରୋଗର ରୋଗିଣୀବିଶେଷ ।

ଅଷ୍ଠିଲା—ସ୍ତ୍ରୀ. ବି. ଏକପ୍ରକାର ଗୁଳ୍ମରୋଗ, ଫଳର ଟାକୁଆ, ବର୍ତ୍ତୁଳାକାର ପଥରଖଣ୍ଡ । [ ଆଣ୍ଠୁ ।

ଅଷ୍ଠିବାନ୍—ପୁଂ. ବି (ଅଷ୍ଠି + ବତ୍) ଜାନୁ,

ଅସକଟ—ଗ୍ରା. (ସମ୍ବ) ବି. ବିରକ୍ତି, ଆବର୍ଜନା, ଅଳିଆ, (ବିଂ) କୁତ୍ସିତ, ଆବର୍ଜନାମୟ, ମଳଯୁକ୍ତ ।

ଅସକଟିଆ—ଗ୍ରା. ସମ୍ବ-ପୁଂ. ବିଂ. ମଇଳାଲୋକ, ଅପରିଷ୍କୃତ ବ୍ୟକ୍ତି, (ସ୍ତ୍ରୀ) ଅସକଟିନ୍ ।

ଅସଂଯତ—ତ୍ରି. ବିଂ. (ଅ + ସଂଯତ) ଅବଦ୍ଧ, ବନ୍ଧନଶୂନ୍ୟ, ମିଳିତ ନୁହେ, ଅନିୟମିତ, ସଂଯମହୀନ, (ସ୍ତ୍ରୀ) ଅସଂଯତା ।

ଅସଂଯମ—ପୁଂ. ବି. (ନ. ତତ୍) ସଂଯମାଭାବ, ଇନ୍ଦ୍ରିୟନିଗ୍ରହର ଅଭାବ, ଉଚ୍ଛୃଙ୍ଖଳତା ।

ଅସଂଯମୀ—ବିଂ. ନ. ତତ୍, (ଅ + ସଂଯମୀ) ଇନ୍ଦ୍ରିୟନିଗ୍ରହରହିତ, ଅଜିତେନ୍ଦ୍ରିୟ, ଇନ୍ଦ୍ରିୟବଶ, ରିପୁପରତନ୍ତ୍ର, କାମୁକ, କ୍ରୋଧୀ, (ସ୍ତ୍ରୀ) ଅସଂଯମିନୀ ।

ଅସଂଯୁକ୍ତ—ତ୍ରି. ବିଂ. (ନ. ତତ୍) ବିଯୁକ୍ତ, ଯାହା ମିଳିତ ନୁହେ, ବିଚ୍ଛିନ୍ନ, (ସ୍ତ୍ରୀ) ଅସଂଯୁକ୍ତା ।

ଅସଂଯୁତ—ତ୍ରି. ବିଂ. ଯାହା ମିଳିତ ନୁହେ ।

ଅସଂଯୋଗ—ପୁଂ. ବି. ନ. ତତ୍; (ଅ + ସଂଯୋଗ) ସଂଯୋଗର ଅଭାବ, ବିଚ୍ଛେଦ, ବିୟୋଗ, ବିଶ୍ଳେଷ ।

ଅସଂଲଗ୍ନ—ତ୍ରି. ବିଂ. ନ. ତତ୍; (ଅ + ସଂଲଗ୍ନ) ବିଭକ୍ତ, ଅସଂବଦ୍ଧ, ଯାହା ଠିକ୍ ଲାଗେ ନାହିଁ, ପୂର୍ବାପରବିରୁଦ୍ଧ, ସମ୍ବନ୍ଧବିରହିତ, ଅସଙ୍ଗତ, (ସ୍ତ୍ରୀ) ଅସଂଲଗ୍ନା ।

ଅସଂବୃତ—ତ୍ରି. ବିଂ. (ଅ + ସଂବୃତ) ନରକବିଶେଷ, ଅନାବୃତ, ଆଚ୍ଛାଦନଶୂନ୍ୟ ।

ଅସଂଶୟ୍ୟ—ତ୍ରି. ବିଂ. (ନ. ତତ୍) ନିଃସନ୍ଦେହ, ଯହିଁରେ ସନ୍ଦେହ ହୋଇ ନ ପାରେ ।

ଅସଂଶୟ—ପୁଂ. ବି. (ଅ + ସଂଶୟ) ସନ୍ଦେହର ଅଭାବ (ବିଂ) ସନ୍ଦେହଶୂନ୍ୟ, ନିଶ୍ଚିତ ।

ଅସଂଶୟାନ—ପୁଂ. ବିଂ. (ଅ + ସଂଶୟାନ) ଯେ ସନ୍ଦିହାନ ନୁହେ (ସ୍ତ୍ରୀ) ଅସଂଶୟାନା ।

ଅସଂଶୟିତ—ତ୍ରି. ବିଂ. (ନ. ତତ୍) ଅସନ୍ଦିଗ୍ଧ (ସ୍ତ୍ରୀ) ଅସଂଶୟିତା ।

ଅସଂଶୋଧନ—କ୍ଲୀ. ବି. (ନ. ତତ୍) ସଂଶୋଧନର ଅଭାବ, ଶୁଦ୍ଧ ନ କରିବା ।

ଅସଂଶୋଧିତ—ତ୍ରି. ବିଂ (ନ. ତତ୍) ସଂଶୋଧନରହିତ, ଅଶୋଧିତ, ଶୁଦ୍ଧ ହୋଇ ନ ଥିବା (ସ୍ତ୍ରୀ) ଅସଂଶୋଧିତା ।

ଅସଂସ୍ରବ—ତ୍ରି. ବିଂ. ଦୂରଦେଶ, ପୃଥକ୍ ।

ଅସଂଶ୍ଳିଷ୍ଟ—ତ୍ରି. ବିଂ. (ନ. ତତ୍) ଅସଙ୍ଗତ, ଅସଂଯୁକ୍ତ, ଅସଂପୃକ୍ତ, ଅସଂବଦ୍ଧ, (ସ୍ତ୍ରୀ) ଅସଂଶ୍ଳିଷ୍ଟା ।

ଅସଂସକ୍ତ—ବି. ବିଂ. (ନ.ତତ୍) ସଂସର୍ଗବିରହିତ, ଅସଂଶ୍ଳିଷ୍ଟ, ବିଚ୍ଛିନ୍ନ, (ସ୍ତ୍ରୀ) ଅସଂସକ୍ତା ।

ଅସଂସର୍ଗ—ପୁଂ. ବି. ସଂସର୍ଗର ଅଭାବ, (ବିଂ) ସମ୍ବନ୍ଧଶୂନ୍ୟ ।

ଅସଂସୃଷ୍ଟ—ବି. ବି. (ନ.ତତ୍) ସଂସର୍ଗରହିତ, ବିଚ୍ଛିନ୍ନ, ଅସଂପୃକ୍ତ, ଅସଂଶ୍ଳିଷ୍ଟ (ସ୍ତ୍ରୀ) ଅସଂସୃଷ୍ଟା ।

ଅସଂସ୍କୃତ—ବି. ବିଂ. ନ, ତତ୍; (ଅ+ସଂସ୍କୃତ) ଗର୍ଭାଧାନାଦି ସଂସ୍କାରରହିତ, ଅପରିଷ୍କୃତ, ଅଶୁଦ୍ଧ, ଅଜାତସଂସ୍କାର, ସଂସ୍କୃତଭାଷାବହିର୍ଭୂତ ।

ଅସଂସ୍ତୁତ—ବି. ବିଂ. ଅପରିଚିତ, ଯାହାର ସ୍ତବ କରା ହୁଏନାହିଁ ।

ଅସଂସ୍ଥିତ—ବି.ବିଂ. (ନ.ତତ୍) ବିଯୁକ୍ତ, ବିଶୃଙ୍ଖଳ, ପରଲୋକଗତ ନୁହେ, ଚଞ୍ଚଳ ।

ଅସଂସାହସ—ପୁଂ.ବି. (ନ.ତତ୍) ଦୁଃସାହସ, ଅଯଥା ଅତିରିକ୍ତ ସାହସ ।

ଅସଂସାହସିକ—ପୁଂ. ବିଂ. (ଅ+ସମ୍+ସାହସିକ) ଦୁଃସାହସିକ, (ସ୍ତ୍ରୀ) ଅସଂସାହସିକା (ବି) ଅସଂସାହସିକତା ।

ଅସଂସ୍ଥାନ—କ୍ଳୀ. ବି. (ନ.ତତ୍) ସଂସ୍ଥାନର ଅଭାବ, ଅପ୍ରତୁଲ, ଅନଟନ, ଅସଂଗତି, ପ୍ରଣାଳୀର ଅଭାବ, ବନ୍ଦୋବସ୍ତର ଅଭାବ ।

ଅସଂସ୍ଥିତି—ସ୍ତ୍ରୀ.ବି. (ନ.ତତ୍) ବିଶୃଙ୍ଖଳ ଅବ୍ୟବସ୍ଥା ।

ଅସଂହତ—ବି. ବିଂ. (ନ.ତତ୍) ଏକତ୍ର ନୁହେ, ଅସଂଲଗ୍ନ, ଇତସ୍ତତଃ, ବିକ୍ଷିପ୍ତ, (ସ୍ତ୍ରୀ) ଅସଂହତା,(ବି) ବ୍ୟୂହବିଶେଷ ।

ଅସକୃତ୍—(ଅବ୍ୟ) ମୁହୁର୍ମୁହୁ, ଅନେକବାର, ପୌନଃପୁନ୍ୟ, ବାରଂବାର ।

ଅସକ୍ତ—ବି. ବିଂ. ନ.ତତ୍; (ଅ+ସକ୍ତ) ସକ୍ତିଶୂନ୍ୟ, ସଙ୍ଗଶୂନ୍ୟ, ଅପ୍ରତିବନ୍ଧ, ବିଷୟବିରାଗୀ, ଫଳାଭିଳାଷଶୂନ୍ୟ, ଅପ୍ରତିହତ, ଅନାସକ୍ତ ।

ଅସକ୍ଥ—ବି. ବିଂ. (ବ.ବ୍ରୀ) ଊରୁଶୂନ୍ୟ, ସକ୍ଥି ରହିତ (ସ୍ତ୍ରୀ) ଅସକ୍ଥୀ ।

ଅସକନ୍ଦା—ଗ୍ରା.ବିଂ.ମଇଳାଯୁକ୍ତ,ଅଖଞ୍ଜିଆ, ଅଡ଼ୁଆ, ଜଞ୍ଜାଳମୟ ।

ଅସକନ୍ଦି—ଗ୍ରା.ବି. ଅଡ଼ୁଆ, ଗୋଲମାଲ, ଅଖଞ୍ଜିଆ, ମଇଳା ।

ଅସକରା—ଗ୍ରା. ବି. ଅଳିଆ, ମଇଳା ।

ଅସକତିଆ—ଗ୍ରା. ବି. ଅସାମର୍ଥ୍ୟ, ଅକ୍ଷମତା, କ୍ଳାନ୍ତି ।

ଅସକ୍ନା—ସ୍ତ୍ରୀ. ବିଂ. ଅପ୍ରାପ୍ତପୁଷ୍ପା ।

ଅସଖୀ—ପୁଂ. ବି. ବନ୍ଧୁ ନୁହେ, ଶତ୍ରୁ ।

ଅସଖ୍ୟ—କ୍ଳୀ ବି. (ନ.ତତ୍)ଅସୌହୃଦ୍ୟ, ଅମିତ୍ରତା, ଅସଦ୍ଭାବ, ଶତ୍ରୁତା ।

ଅସଗୋତ୍ର—ବି. ବିଂ. (ନ.ତତ୍) ଯେ ଆପଣା ଗୋତ୍ରର ନୁହେ, ଅନ୍ୟବଂଶୋଦ୍ଭବ (ସ୍ତ୍ରୀ) ଅସଗୋତ୍ରା ।

ଅସଂକଳ୍ପ—ପୁଂ. ବି. ସଙ୍କଳ୍ପର ଅଭାବ, (ବିଂ) ଅସଂକଳ୍ପିତ ।

ଅସଂକୀର୍ଣ୍ଣ—ବି.ବିଂ. (ନ.ତତ୍) ଅସଂକୁଳ, ଅମିଶ୍ରିତ, ଅନଳ୍ପପ୍ରଷ୍ଠ,ବିସ୍ତୃତ,ଅଜନାକୀର୍ଣ୍ଣ, ଅସଙ୍କୁଚିତ (ସ୍ତ୍ରୀ) ଅସଙ୍କୀର୍ଣ୍ଣା ।

ଅସଙ୍କୁଚିତ—ବି.ବିଂ. (ନ.ତତ୍) ସଙ୍କୋଚଶୂନ୍ୟ, ଅକୁଣ୍ଠିତ, ଅକୁଞ୍ଚିତ ।

ଅସଙ୍କୁଳ—ବି. ବିଂ. (ନ.ତତ୍) ପରସ୍ପର ଅବିରୁଦ୍ଧ, ଗ୍ରାମାଦିର ପଥ ଅମିଳିତ, ଅମିଶ୍ର, ବିସ୍ତୀର୍ଣ୍ଣ ।

ଅସଂକ୍ରାନ୍ତମାସ—ପୁଂ. ବି. (କ.ଧା) ମଳମାସ ।

ଅସଙ୍କୋଚ—ପୁଂ.ବି.(ନ.ତତ୍)ସଙ୍କୋଚରାହିତ୍ୟ, ଦ୍ୱୁଧାସ୍ୱାନତା, ସଙ୍କୋଚ ନ କରିବା (ବିଂ) ଅସଂକୁଚିତ ।

ଅସଂକ୍ଷେପ—ପୁଂ. ବି. ସଂକ୍ଷେପ ନୁହେ, ଅଗଣିତ, ବହୁ ।

ଅସଙ୍ଗୁଲା—ଗ୍ରା.ବିଂ.ଅନିମନ୍ତ୍ରିତ,ଅଜାଙ୍କାଷିତ, ଅନାଦୃତ, ଘୃଣିତ, ନିଷ୍ଫଳ, (ବି) ଅନାଦର, ଅଯତ୍ନ ।

ଅସଂଖ୍ୟ—ବି.ବିଂ. ବ.ବ୍ରୀ; (ଅ+ସମ୍+ଖ୍ୟା+ଅ) ଅଗଣନୀୟ, ଯାହାର ସଂଖ୍ୟା ନାହିଁ (ସ୍ତ୍ରୀ) ଅସଂଖ୍ୟା ।

ଅସଂଖ୍ୟରାଶି—ବି. ଗଣନାତୀତ ସଂଖ୍ୟା ।

ଅସଂଖ୍ୟାତ—ବି. ବିଂ. (ନ.ତତ୍) ଅନେକ, ଅଗଣିତ, ଅଗଣ୍ୟ, ଅସଂଖ୍ୟ, (ସ୍ତ୍ରୀ) ଅସଂଖ୍ୟାତା ।

ଅସଂଖ୍ୟେୟ—ବି. ବିଂ. (ନ.ତତ୍) ଯାହା ଗଣିହୁଏନାହିଁ,ଅଗଣ୍ୟ(ସ୍ତ୍ରୀ)ଅସଂଖ୍ୟେୟା ।

ଅସଙ୍ଗ—ପୁଂ. ବି. ସମ୍ବନ୍ଧର ଅଭାବ, ବୈରାଗ୍ୟ, ଅନାସକ୍ତି (ସ୍ତ୍ରୀ)ଅସଙ୍ଗା (ବିଂ) (ବ.ବ୍ରୀ) ସଙ୍ଗରହିତ, ନିର୍ଲିପ୍ତ, ଅପ୍ରତିହତ ।

ଅସଙ୍ଗତ—ତ୍ରି. ବିଂ. (ଅ+ସମ୍+ଗମ୍+ତ) ଅଯୌକ୍ତିକ, ମେଳ ନ ଥିବା, ଅସମ୍ଭବ,ଅନୁଚିତ,ଅଯୁକ୍ତ,ମିଥ୍ୟା, ବେଖାପ ଅସମ୍ବନ୍ଧ (ସ୍ତ୍ରୀ) ଅସଙ୍ଗତା ।

ଅସଙ୍ଗତି—ସ୍ତ୍ରୀ.ବି. (ନ ତତ୍ )ସାମଞ୍ଜସ୍ୟର ଅଭାବ, ଅମେଳ, ଅସମ୍ବନ୍ଧ, ଅଯୌକ୍ତିକତା, ଅର୍ଥାଲଙ୍କାରବିଶେଷ ।

ଅସଙ୍ଗମ—ପୁଂ.ବି. (ନ.ତତ୍) ମେଳନର ଅଭାବ, ସଙ୍ଗମର ଅଭାବ, ମୈଥୁନାଭାବ, ସୁରତରାହିତ୍ୟ, ବିୟୋଗ,(ବିଂ) ସଙ୍ଗମଶୂନ୍ୟ ।

ଅସଙ୍ଗା—ଗ୍ରା. ବିଂ. ପୁଂ. ସ୍ତ୍ରୀ. ଯେଉଁ ବୃଷ ବା ଗାଈ ଅବଧି ସଙ୍ଗମ କରିନାହିଁ ।

ଅସଙ୍ଗୀ—ପୁଂ. ବିଂ. ସମ୍ବନ୍ଧଶୂନ୍ୟ, ଅନାସକ୍ତ (ବି) କୁସଙ୍ଗୀ, ମନ୍ଦସଙ୍ଗୀ ।

ଅସଜ୍ଜନ—ପୁଂ.ବି. (କ.ଧା)ସଜ୍ଜନ ନୁହେ, ଦୁର୍ଜ୍ଜନ, ଅସତ୍ ଲୋକ ।

ଅସଜ—ଗ୍ରା. ବି. (ଅ+ସଜ) ଅଖଞ୍ଜ, ଅକଳ, ଗୋଳମାଳ, ସ୍ତ୍ରୀର ଗର୍ଭାବସ୍ଥା, ଉପାୟାନ୍ତରହୀନତା (ବିଂ) ଅସୁବିଧାଜନକ, ବିଗିଡ଼ିଥିବା, ଗୁପ୍ତ (ଅଙ୍ଗ), ଅସୁନ୍ଦର, ବାସୀ, ଅସଜ୍ଜିତ, ଅପ୍ରସ୍ତୁତ, ଅକଳିଆ ।

ଅସଜଥାନ—ଗ୍ରା. ବି. ଅସୁବିଧାଜନକ ସ୍ଥାନ, ମର୍ମସ୍ଥାନ, ଦେହର ଗୁପ୍ତାଙ୍ଗ ।

ଅସଜସଜ—ଗ୍ରା.ବି.ଅସୁବିଧା ଓ ସୁବିଧା ।

ଅସଜା—ଗ୍ରା. ବିଂ. (ସ+ଅସଜ୍ଜିତ) ଅସଜ୍ଜିତ, ଅନଲଂକୃତ ।

ଅସଜାଡ଼—ଗ୍ରା. ବିଂ. (ଫ. ଅ + ସଜ୍ଜା) ସଜଡ଼ା ହୋଇ ନ ଥିବା, ଅସଜ୍ଜିତ, ଅପରିଷ୍କୃତ, ପୀଡ଼ିତ, ଅସୁବିଧାଜନକ ଧାରାରେ ବଗିଡ଼ିଥିବା ।

ଅସଜ୍ଜିତ—ଗ୍ରା. ବିଂ. (ଅ + ସଜ୍ଜିତ) ଅପ୍ରସ୍ତୁତ, ଅସଜାଲ, ଅସୁବିଧାଜନକ, (ବି) ଅସୁବିଧା, ଅପ୍ରସ୍ତୁତ ଅବସ୍ଥା ।

ଅସଞ୍ଜ୍ଞା—ସ୍ତ୍ରୀ. ବି. ସଞ୍ଜ୍ଞାର ଅଭାବ (ବିଂ) ସଞ୍ଜ୍ଞାହୀନ, ଜ୍ଞାନରହିତ ।

ଅସଡ଼—ଗ୍ରା.ବିଂ. ଅଶିଷ୍ଟ,ଅଭଦ୍ର,ଅବାଧ୍ୟ, ଅଶିକ୍ଷିତ, ଅଶ୍ଳୀଳଭାଷୀ,ଯେଉଁ ମାଟିପାତ୍ର ଘିଅ ତେଲରେ ସଡ଼ ହୋଇନାହିଁ ।

ଅସଢ଼ା—ଗ୍ରା ବିଂ. ଯାହା ସଢ଼ି ନ ଥାଏ, ଯାହା ପାଚକର ଘୁଲଘୁଲା ହୋଇ ନ ଥାଏ ।

ଅସଣ୍ଠଣ—ଗ୍ରା.ବି. (ଅ + ସଂସ୍ଥାନ) ଶୃଙ୍ଖଳାର ଅଭାବ, (ବିଂ)ବିଶୃଙ୍ଖଳ,ଅଠିକଣା, ଅସୁନ୍ଦର ।

ଅସଣ୍ଠବା—ଗ୍ରା.ବିଂ. ଅସଙ୍ଗତ, ଅଖାଡ଼ୁଆ, କୁତ୍ସିତ, ଅସୁନ୍ଦର ।

ଅସଣା—ଗ୍ରା.ବିଂ. ଅପରିଷ୍କୃତ ।

ଅସତ୍—ବି.ବିଂ.ଅସାଧୁ,ନିନ୍ଦିତ, ଦୁଷ୍ଟାଶୟ, ଅବିଦ୍ୟମାନ, ଅନିତ୍ୟ, ଦୁର୍ଜ୍ଜନ ।

ଅସତ୍କର୍ମ—କ୍ଳୀ. ବି ବେଦାଦିଶାସ୍ତ୍ରନିଷିଦ୍ଧ କାର୍ଯ୍ୟ ।

ଅସତ୍କୃତ—ବି. ବିଂ. (ନ.ତତ୍) ଅନାଦୃତ, ପୂଜିତ ନୁହେ, ଅସମ୍ମାନିତ, (ସ୍ତ୍ରୀ) ଅସତ୍କୃତା ।

ଅସତ୍ଖ୍ୟାତି—ସ୍ତ୍ରୀ.ବି.ଅଖ୍ୟାତି,ଅନ୍ୟଥାଖ୍ୟାତି, ଆତ୍ମଖ୍ୟାତି, ଅନିର୍ବଚନୀୟ, ରଜତ, ପ୍ରପଞ୍ଚର ଜ୍ଞାନ ।

ଅସତ୍ଚରିତ୍ର—ବି.ବିଂବ.ବ୍ରୀ, (ଅସତ୍ + ଚରିତ୍ର) ଅସଦାଚାରୀ,ଦୁଷ୍ଟଚରିତ୍ର, ଦୁର୍ବୃତ୍ତ, (ସ୍ତ୍ରୀ) ଅସଚ୍ଚରିତ୍ରା,(ବି.କ୍ଳୀ) ମନ୍ଦଚରିତ୍ର, ଅସାଧୁଶୀଳତା ।

ଅସତର୍କ—ବି.ବିଂ.(ନ.ତତ୍)ଅସାବଧାନ, ସତର୍କତାରହିତ (ସ୍ତ୍ରୀ) ଅସତର୍କା ।

ଅସଚ୍ଛଳ—ଗ୍ରା. ବିଂ. (ଫ.ଅ + ସଚଳ) ଅସଙ୍ଗତପନ୍ନ, ଅଭାବଗ୍ରସ୍ତ, ନିର୍ଦ୍ଧନ ।

ଅସତୀ—ସ୍ତ୍ରୀ. ବିଂ. ନ.ତତ୍; (ଅ + ସତୀ) ଭ୍ରଷ୍ଟା, କୁଲଟା, ପୁଂଶ୍ଚଲୀ, ବ୍ୟଭିଚାରିଣୀ ।

ଅସତ୍ତା—ସ୍ତ୍ରୀ.ବି.(ଅସତ୍ + ଭା,ତା) ଅବିଦ୍ୟମାନତା, ଅସାଧୁତ୍ୱ, ଅବ୍ୟକ୍ତତା, ଦୁଷ୍ଟତା ।

ଅସତ୍ତ୍ୱ—କ୍ଳୀ.ବି. ଅବିଦ୍ୟମାନତ୍ୱ,ଅଦ୍ରବ୍ୟ, ସତ୍ତ୍ୱଭିନ୍ନ ଗୁଣ (ବିଂ) ଜନ୍ତୁଶୂନ୍ୟ(ସ୍ଥାନ) ସାତ୍ତ୍ୱିକଗୁଣରହିତ, ନିର୍ବୀର୍ଯ୍ୟ, ସାଧୁତାବର୍ଜିତ, (ସ୍ତ୍ରୀ) ଅସତ୍ତ୍ୱା ।

ଅସତ୍ପଥ—ପୁଂ. ବି. ଶାସ୍ତ୍ରାଦିନିଷିଦ୍ଧ କାର୍ଯ୍ୟାଦି, ମନ୍ଦପଥ, କୁପଥ ।

ଅସତ୍ପରିଗ୍ରହ—ପୁଂ.ବି. ଅସତ୍ପରିବାର, ଦୁଷ୍ଟପତ୍ନୀ, ମନ୍ଦପକ୍ଷର ଅବଲମ୍ବନ ।

ଅସତ୍ପୁତ୍ର—ବି.ବିଂ,(ବ.ବ୍ରୀ) ପୁତ୍ରହୀନ, ନିଃସନ୍ତାନ, କୁପୁତ୍ରବିଶିଷ୍ଟ (ସ୍ତ୍ରୀ) ଅସତ୍ପୁତ୍ରା(ପୁଂ.ବି) କୁପୁତ୍ର, ମନ୍ଦପୁତ୍ର ।

ଅସତ୍ପ୍ରତିଗ୍ରହ—ପୁଂ. ବି. ନିଷିଦ୍ଧଦ୍ରବ୍ୟଗ୍ରହଣ, ଅସତ୍ ପାତ୍ରଠାରୁ ବ୍ରାହ୍ମଣଦ୍ୱାରା ଦାନଗ୍ରହଣ ।

ଅସତ୍ୟ—କ୍ଳୀ. ବି. (ଅ + ସତ୍ୟ) ସତ୍ୟ ନୁହେ; ମିଥ୍ୟା କଥା, ମିଛ କଥା, ପ୍ରତିଜ୍ଞାଲଙ୍ଘନ (ବିଂ) ମିଥ୍ୟା ।

ଅସତ୍ୟସନ୍ଧ—ବି. ବିଂ ମିଥ୍ୟା ଅଭିସନ୍ଧିଯୁକ୍ତ, ବିଶ୍ୱାସଘାତକ, ନୀଚ, କୃତଘ୍ନ, ଦୁରାତ୍ମା (ସ୍ତ୍ରୀ) ଅସତ୍ୟସନ୍ଧା ।

ଅସଦଧ୍ୟେତା—ପୁଂ.ବିଂ. (୬ତତ୍)ନିନ୍ଦିତ ଶାସ୍ତ୍ରର ଅଧ୍ୟୟନକର୍ତ୍ତା ।

ଅସଦାଗମ—ପୁଂ.ବି (କ.ଧା) କୁତ୍ସିତଦ୍ରବ୍ୟର ଆଗମ, ଦୁଷ୍ଟ ଦ୍ରବ୍ୟର ଲାଭ, ବେଦବିରୁଦ୍ଧ ଶାସ୍ତ୍ର, ନାସ୍ତିକାଦିଶାସ୍ତ୍ର ।

ଅସଦାଚରଣ—କ୍ଳୀ.ବି (କ.ଧା) ଅଭଦ୍ରବ୍ୟବହାର,ଦୁଷ୍ଟାଚରଣ,ମନ୍ଦ ଆଚରଣ ।

ଅସଦାଚାର—ପୁଂ. ବି. (କ.ଧା) ମନ୍ଦ ଆଚରଣ, ଯାହା ଶିଷ୍ଟାଚାର ନୁହେ, ଦୁର୍ବ୍ୟବହାର ।

ଅସଦାଚାରୀ—ପୁଂ.ବିଂ. ମନ୍ଦଆଚରଣକାରୀ ।

ଅସଦୃଶ—ବି. ବିଂ. (ନ.ତତ୍) ଅଯୁକ୍ତରୂପ, ଅନନୁରୂପ, ଅସମାନ, ଅନୈକ୍ୟ, ବିଷମ, ଅସାଧାରଣ (ସ୍ତ୍ରୀ) ଅସଦୃଶୀ ।

ଅସଦ୍ଗ୍ରହ—ପୁଂ. ବି. ମିଥ୍ୟାଜ୍ଞାନ, ଶୁକ୍ତିରେ ରଜତାଦି ଜ୍ଞାନ, ଭ୍ରାନ୍ତଜ୍ଞାନ ।

ଅସଦ୍ଗ୍ରାହୀ—ପୁଂ.ବିଂ.(କ.ଧା)ଅନୁଚିତଦାନଗ୍ରହଣକାରୀ, ଅଶାସ୍ତ୍ରୀୟ ଦାନଗ୍ରହୀତା, ଧନଲୋଭୀ (ସ୍ତ୍ରୀ) ଗ୍ରାହିଣୀ ।

ଅସଦ୍ଧେତୁ—ପୁଂ. ବି. ନ୍ୟାୟଶାସ୍ତ୍ର ପ୍ରସିଦ୍ଧ ବ୍ୟଭିଚାରାଦି ଦୋଷଯୁକ୍ତହେତୁ ।

ଅସଦ୍ଭାବ—ପୁଂ.ବି. (ନ.ତତ୍) ଅବିଦ୍ୟମାନତା, ଦୁଃସ୍ୱଭାବ, ଅସଡ଼, ଅସତ୍ତା, ମିତ୍ରତାର ଅଭାବ, ଶତ୍ରୁତା ।

ଅସଦ୍ବୃତ୍ତି—ସ୍ତ୍ରୀ. ବି. (କ.ଧା) ମନ୍ଦସ୍ୱଭାବ, ସଦାଚାରର ଅଭାବ, ସଦ୍ବ୍ୟବହାରର ଅଭାବ, ଦୁର୍ବ୍ୟବହାର, ଦୁରାଚରଣ, (ବି.) ଦୁରାଚାର, ଦୁର୍ବୃତ୍ତ ।

ଅସଦ୍ବ୍ୟବହାର—ପୁଂ.ବି(କ.ଧା.) ମନ୍ଦବ୍ୟବହାର,ଅସଦାଚରଣ, କଦାଚରଣ, ଦୁର୍ବୃତ୍ତତା, ଅଯଥାଭାବରେ ନିଯୋଗ, (ବିଂ.) ଦୁର୍ବ୍ୟବହାରକାରୀ, ଦୁରାଚାର ।

ଅସନଟ୍—ଗ୍ରା. ବି. ଗୋଲମାଲ, ଆବର୍ଜନା,(ବିଂ) ଗୋଲମାଲଆ, ଅଖଣ୍ଡିଆ, ଆବର୍ଜନାମୟ ।

ଅସନ—ପୁଂ.ବି.(ଅସ + ଭା.ଅନ)କ୍ଷେପଣ, ପିଆଶାଳଗଛ,ଅସନଗଛ, (ବିଂ)ଚଳନଶୀଳ ।

ଅସନପର୍ଣ୍ଣୀ—ସ୍ତ୍ରୀ.ବି. ଶୁନୁଶୁନିଆ ଶାଗ ।

ଅସନା—ଗ୍ରା.ବିଂ.କୁତ୍ସିତ, ଘୃଣିତ,କଦାକାର (ସ୍ତ୍ରୀ) ଅସନୀ, (ବି) ମଇଳା, ମଳ, ଝାଡ଼ୁଆ । [ଦେଶାଦି ।

ଅସନ—ବି.ବିଂ. କ୍ଷେପକର ନିକଟସ୍ଥ-

ଅସନ୍ତାନ—ପୁଂ. ବି. ଦେବତରୁ ନୁହେ, ବିସ୍ତାରର ଅଭାବ, (ବିଂ) ବିସ୍ତାରଶୂନ୍ୟ ।

ଅସନ୍ତାପ—ପୁଂ. ବି. ସନ୍ତାପର ଅଭାବ ।

ଅସନ୍ତୁଷ୍ଟ—ବି.ବିଂ.ନ.ତତ୍;(ଅ + ସନ୍ତୁଷ୍ଟ) ଅତୃପ୍ତ, ବିରକ୍ତ, (ବି.) ଅସନ୍ତୋଷ (ସ୍ତ୍ରୀ) ଅସନ୍ତୁଷ୍ଟା ।

ଅସନ୍ତୁଷ୍ଟି—ସ୍ତ୍ରୀ.ବି.(ନ.ତତ୍) ଅସନ୍ତୋଷ, ଅତୃପ୍ତି,ବିରକ୍ତି ।

ଅସନ୍ତୋଷ—ପୁଂ. ବି. ନ.ତତ୍; (ଅ + ସନ୍ତୋଷ) ସନ୍ତୋଷର ଅଭାବ, ଅତୃପ୍ତ, ବିରକ୍ତ,(ବିଂ) ଅସନ୍ତୁଷ୍ଟ ।

ଅସନ୍ଦିଗ୍ଧ—ତ୍ରି. ବିଂ. ନ.ତତ୍; (ଅ + ସନ୍ଦିଗ୍ଧ)ସନ୍ଦେହର ଅବିଷୟ, ସନ୍ଦେହଶୂନ୍ୟ,ନିଶ୍ଚିତ,ଅବଧାରିତ,ସ୍ଥିର,ବିଶ୍ୱସ୍ତ, (ସ୍ତ୍ରୀ) ଅସନ୍ଦିଗ୍ଧା । [ ରୁଦ୍ଧ ।

ଅସନ୍ଦିତ—ତ୍ରି. ବିଂ. ବନ୍ଧନଶୂନ୍ୟ, ଅନ-

ଅସନ୍ଦିହାନ—ତ୍ରି. ବିଂ. (ନ.ତତ୍) ଅସନ୍ଦେହକାରୀ, ଅସଂଶୟୀ (ସ୍ତ୍ରୀ) ଅସନ୍ଦିହାନା ।

ଅସନ୍ଦେହ—ବି. (ଅ + ସନ୍ଦେହ) ସନ୍ଦେହର ଅଭାବ, ସ୍ଥିରତା ।

ଅସନ୍ଦେହ—ଗ୍ରା. ବିଂ.ପୁଂ. ଯେ କାହାରିଠାରେ ସନ୍ଦେହ କରେ ନାହିଁ, ଯେ ସମସ୍ତଙ୍କୁ ବିଶ୍ୱାସ କରେ,ଯାହାକୁ ଅପରାଧାଦିରେ ସନ୍ଦେହ କରାଯାଏ ନାହିଁ ।

ଅସନ୍ଧି—ଗ୍ରା. ବି. ସଂକୀର୍ଣ୍ଣ ସ୍ଥାନ, ଅସଂଯୋଗ, ସନ୍ଧିକାର୍ଯ୍ୟର ଅଭାବ, ଅଶାନ୍ତି, ନିରୁପାୟ ଅବସ୍ଥା, (ବିଂ) ଅବଦ୍ଧ,ମୁକ୍ତ, ସନ୍ଧିହୀନ, ବିଶ୍ଳିଷ୍ଟ ।

ଅସନ୍ନଦ୍ଧ—ତ୍ରି.ବିଂ.(ଅ + ସମ୍ + ନହ୍ + ତ) ନ.ତତ; ଦୃପ୍ତ, ଗର୍ବିତ, ପଣ୍ଡିତାଭିମାନୀ, ଅକୃତ, ସନ୍ନାହ, ବର୍ମହୀନ, ସମ୍ଭୂତ, ଜାତ ।

ଅସନ୍ନିକର୍ଷ—ପୁଂ. ବି. (ନ.ତତ୍) ଅସାନ୍ନିଧ୍ୟ, ଦୂରତ୍ୱ ।

ଅସନ୍ନିକୃଷ୍ଟ—ତ୍ରି. ବିଂ. (ନ.ତତ୍) ଅସନ୍ନିହିତ, ଦୂରସ୍ଥିତ, (ସ୍ତ୍ରୀ) ଅସନ୍ନିକୃଷ୍ଟା ।

ଅସନ୍ନିଧାନ—କ୍ଳୀ. ବି. ନ.ତତ୍) ଅସନ୍ନିକର୍ଷ, ଅସାମୀପ୍ୟ,ଅନୈକଟ୍ୟ, ଦୂରତ୍ୱ ।

ଅସନ୍ନିବୃତ୍ତି—ସ୍ତ୍ରୀ.ବି.(ନ.ତତ୍)ଅପୁନରାବୃତ୍ତି, ଅପ୍ରତ୍ୟାଗମନ ।

ଅସନ୍ନିହିତ—ତ୍ରି. ବିଂ. (ଅ + ସନ୍ନିହିତ) ଦୂରସ୍ଥ ।

ଅସପତ୍ନ—ତ୍ରି. ବି. (ଅ + ସପତ୍ନ) ଶତ୍ରୁ ନୁହେ, ମିତ୍ର(ବିଂ) ଶତ୍ରୁହୀନ, ନିଷ୍କଣ୍ଟକ ।

ଅସପିଣ୍ଡ—ବି. ନିଜଠାରୁ ସପ୍ତମ ପୁରୁଷପର୍ଯ୍ୟନ୍ତ ଛଡ଼ା ପୁରୁଷ ଓ ସ୍ତ୍ରୀ ।

ଅସଫା—ଗ୍ରା.ବିଂ. (ସଂ.ଅ + ଆ + ସଫା) ଅନିର୍ମଳ, ଅପରିଷ୍କୃତ ।

ଅସଭ୍ୟ—ତ୍ରି. ବିଂ. ( ଅ + ସଭା + ଯ ) ସଭାରେ ବସିବାର ଅନୁପଯୁକ୍ତ, ଅଶିକ୍ଷିତ, ଜଙ୍ଗଲ, ଖଲ, ବର୍ବର, ଅଭଦ୍ର, ଅନୁନ୍ନତ, ନୀଚ, ଅଧମ ( ଗ୍ରା. ) ଅଶ୍ଳୀଳ, ଅଶିଷ୍ଟ ।

ଅସଭ୍ୟତା—ସ୍ତ୍ରୀ. ବି. ଭଦ୍ର ସମାଜର ଅଯୋଗ୍ୟତା, ଅଶିଷ୍ଟତା, ଅଭବ୍ୟତା ।

ଅସମ—ତ୍ରି. ବିଂ. ନ.ତତ୍; (ଅ + ସମ) ଅତୁଲ୍ୟ, ଅସମାନ, ବେଯୋଡ଼, ଅନୁପମ, ଅଦ୍ୱିତୀୟ, ଅସାଧାରଣ, ପରସ୍ପର, (ସ୍ତ୍ରୀ) ଅସମା (ପୁଂ.ବି) ବୁଦ୍ଧ ।

ଅସମକକ୍ଷ—ବିଂ.ନ.ତତ୍; (ଅ + ସମକକ୍ଷ) ଯେ ଅନ୍ୟସଙ୍ଗେ ସରି ହେବାର ବା ପଟ ପକାଇବାର ଉପଯୋଗୀ ନୁହେ, ଯେ ଅନ୍ୟର ସମାନସ୍କନ୍ଧ ନୁହେ ।

ଅସମକ୍ଷ—କ୍ଳୀ. ବି.ଅପ୍ରତ୍ୟକ୍ଷ,ଅନୁମିତାଦିଜ୍ଞାନ, ପଛଆଡ଼, ଦୃଷ୍ଟିର ପଛ, (ବିଂ) ଅପ୍ରତ୍ୟକ୍ଷବିଷୟ, ଅସାକ୍ଷାତ୍, ଅନୁପସ୍ଥିତରେ ଘଟିବା ।

ଅସମଗ୍ର—ତ୍ରି. ବିଂ. (ନ.ତତ୍)ଅସଂପୂର୍ଣ୍ଣ, ଅସମସ୍ତ, ଆଂଶିକ (ସ୍ତ୍ରୀ) ଅସମଗ୍ରା ।

ଅସମଞ୍ଜସ—ତ୍ରି. ବିଂ.ନ.ତତ୍;(ଅ + ସମଞ୍ଜସ) ଅସଙ୍ଗତ, ଅନୁଚିତ, ଅନୁପଯୁକ୍ତ, ଅସମ୍ଭବ, ଅମେଳ, ଅସଦୃଶ ( ବି ) ଅଯୋଗ୍ୟ ଓ ନିକମ୍ମବ୍ୟକ୍ତି, ଅନୌଚିତ୍ୟ ଅନୁପଯୁକ୍ତତା ।

ଅସମତଳ—ତ୍ରି. ବିଂ. (ନ.ତତ୍) ଯାହାର ପୃଷ୍ଠଦେଶ ସମତଳ ନୁହେ,ଉଚ୍ଚାନୀଚ୍ଚ, ଅଚିକ୍କଣ, ବନ୍ଧୁର ।

ଅସମଦ—ତ୍ରି. ବିଂ. ଗର୍ବରହିତ, କଳହହୀନ, ବିରୋଧଶୂନ୍ୟ ।

ଅସମନ—ତ୍ରି. ବିଂ. ବିଭିନ୍ନ ବର୍ଣ୍ଣ ।

ଅସମନେତ୍ର—ପୁଂ. ବି. ତ୍ରିନେତ୍ର, ଶିବ, (କ୍ଳୀ) କପାଳର ତୃତୀୟ ନେତ୍ର ।

ଅସମଦର୍ଶୀ—ପୁଂ.ବିଂ. (ନ.ତତ୍) ଯେ ସମସ୍ତଙ୍କୁ ସମାନ ଚକ୍ଷୁରେ ଦେଖେନାହିଁ, ପକ୍ଷପାତୀ (ସ୍ତ୍ରୀ) ଅସମଦର୍ଶିନୀ ।

ଅସମଭାବ—ବି.ନ.ତତ୍; (ଅ + ସମଭାବ) ଅସମାନତା, ଯାହାର ଦୁଇପାଖ ଓଜନରେ ସମାନ ନ ଥାଏ ।

ଅସମତା—ବି. ସ୍ତ୍ରୀ.କ୍ଳୀ. ନ.ତତ୍; (ଅସମ + ତା) ଅସମାନତ୍ୱ, ବୈଷମ୍ୟ ବିଯୋଜିତତ୍ୱ, ଭିନ୍ନତା ।

ଅସମୟ—ପୁଂ.ବି.ନ.ତତ୍;(ଅ + ସମୟ) ଅପ୍ରଶସ୍ତକାଳ, ଦୁଷ୍ଟକାଳ, ଅନୁପଯୁକ୍ତବେଳ, ବେଋତୁ, ଅକାଳ, ଦୁଃସମୟ, ଅପ୍ରକୃତ ।

ଅସମୟସମୟ—ଗ୍ରା. ବି. ମନ୍ଦ ଓ ଭଲ ସମୟ, ଭବିଷ୍ୟତରେ ଦରକାର ହେବାବେଳ ।

ଅସମର୍ଥ—ତ୍ରି. ବିଂ. (ନ.ତତ୍) ଅଶକ୍ତ, ଦୁର୍ବଳ, କାର୍ଯ୍ୟାକ୍ଷମ, ଅପାରଗ, ଅକ୍ଷମ, (ସ୍ତ୍ରୀ) ଅସମର୍ଥା (ବି) ଅସମର୍ଥତା ।

ଅସମର୍ଥନ—କ୍ଳୀ. ବି. (ନ.ତତ୍) ସମର୍ଥନ ନ କରିବା, ଅନନୁମୋଦନ ।

ଅସମର୍ଥସମାସ—ପୁଂ. ବି. (କ.ଧା) ଯେଉଁ ଶବ୍ଦ ସହିତ ଯାହାର ସମାସ ହେବା ଉଚିତ ତାହାକୁ ବ୍ୟତିକ୍ରମ କରି ଅନ୍ୟ ଶବ୍ଦ ସହିତ ସମାସ କରିବା ।

ଅସମର୍ପିତ—ତ୍ରି. ବିଂ. (ନ.ତତ୍) ଅନର୍ପିତ, ଅପ୍ରଦତ୍ତ ।

ଅସମବାଣ—ପୁଂ. ବି. କନ୍ଦର୍ପ, ପଞ୍ଚଶର ।

ଅସମବାୟିକାରଣ—କ୍ଳୀ. ବି. (କ.ଧା) ନ୍ୟାୟମତେ ସମବାୟିକାରଣ ଦ୍ରବ୍ୟ, ତଦ୍ଭିନ୍ନ ଦ୍ରବ୍ୟସ୍ଥିତ ଗୁଣାଦି କାରଣ, ସମବାୟିକାରଣରେ ଆସନ୍ନ ବା ରତ, ଆଗନ୍ତୁକ ବା ନୈମିତ୍ତିକ ହେତୁ ।

ଅସମବାୟୀ—ପୁଂ.ବିଂ. (ନ.ତତ୍) ଅସମ୍ବନ୍ଧ, ଅମିଳିତ, ସମ୍ବନ୍ଧଶୂନ୍ୟ, ଆଗନ୍ତୁକ, ନୈମିତ୍ତିକ, (ସ୍ତ୍ରୀ) ଅସମବାୟିନୀ ।

ଅସମବୃତ୍ତ—କ୍ଳୀ.ବି.ଛନ୍ଦଶାସ୍ତ୍ରୋକ୍ତ ବିଷମବୃତ୍ତ ।

ଅସମଶୀର୍ଷ—ତ୍ରି.ବିଂ. (ବ.ବ୍ରୀ) ଯାହାର ଶୀର୍ଷ ସମ ଅର୍ଥାତ୍ ଏକରେଖାସ୍ଥ ନୁହେ, (ସ୍ତ୍ରୀ) ଅସମଶୀର୍ଷା ।

ଅସମଷ୍ଟ—ତ୍ରି. ବିଂ. ଅବ୍ୟାପ୍ତ ।

ଅସମସାମୟିକ—ବି. ବି. ( ନ.ତତ୍ପୁ ) ଅସମକାଳୀନ,ଏକ ସମୟରେ ଅବିଦ୍ୟମାନ (ସ୍ତ୍ରୀ) ସାମୟିକୀ ।

ଅସମସାହସ—ପୁଂ. ବିଂ. (କ.ଧା) ଅସାଧାରଣ ବିକ୍ରମ, ଦୁଃସାହସ ।

ଅସମସାହସିକ—ପୁଂ.ବିଂ. (ଅସମସାହସ + ଇକ) ଯେଉଁ କାର୍ଯ୍ୟ କରିବାକୁ ଅସାଧାରଣ ଉତ୍ସାହ ଲୋଡ଼ା ହୁଏ (ସ୍ତ୍ରୀ) ଅସମସାହସିକା ।

ଅସମସାହସୀ—ପୁଂ. ବିଂ. (ଅସମସାହସ + ଇନ) ଦୁଃସାହସୀ (ସ୍ତ୍ରୀ) ଅସମସାହସିନୀ ।

ଅସମସ୍ତ—ବି. ବିଂ. (ଅ + ସମସ୍ତ) ଅସଂକ୍ଷିପ୍ତ, ବ୍ୟାକରଣୋକ୍ତ ସମାସଶୂନ୍ୟ, ଅସମାପ୍ତ, ଭିନ୍ନ, ବ୍ୟସ୍ତ ।

ଅସମାନ—ବି. ବିଂ. ( ଅ + ସମାନ ) ଅତୁଲ୍ୟ, ସଜାତୀୟ ନୁହେ, ବିଷମ, ଅସମତଳ (ସ୍ତ୍ରୀ) ଅସମାନା (ବି) ଅସମାନତା । [ ବିଶେଷ ।

ଅସମମାନକର୍ତ୍ତୃତ୍ୱ—ବି. ବାକ୍ୟଦୋଷ-

ଅସମାପ—କ୍ଲୀ. ବି. ଅସମାପ୍ତି ( ବିଂ. ) ସମାପିତ ।

ଅସମାପକ—ପୁଂ.ବିଂ.(ନ.ତତ୍ପୁ) ଅସମାପ୍ତି, ଯେ ସାଧକ କାର୍ଯ୍ୟାଦି ସମାପ୍ତ ନ କରେ, ଅସମ୍ପାଦକ (ସ୍ତ୍ରୀ) ଅସମାପିକା ।

ଅସମାପିତ—ବି.ବିଂ.(ନ.ତତ୍ପୁ)ଅସମାପ୍ତି-ପ୍ରାପିତ, ଯାହା ଶେଷ କରାହୋଇନାହିଁ, ଅନିଷ୍ପନ୍ନ, (ସ୍ତ୍ରୀ) ଅସମାପିତା ।

ଅସମାପ୍ତ—ବି.ବିଂ.ନ.ତତ୍ପୁ;(ଅ + ସମାପ୍ତ) ଅସମ୍ପୂର୍ଣ୍ଣ, ସମାପ୍ତିରହିତ, ଅପୂର୍ଣ୍ଣ, (ବି) ଅସମାପ୍ତି ।

ଅସମାବୃତ୍ତ—ପୁଂ. ବିଂ. ଉପନୟନପରେ ଗୁରୁଗୃହରୁ ଯେ ବ୍ରହ୍ମଚାରୀ ଫେରି ନ ଆସେ ।

ଅସମାହାର—ପୁଂ.ବି. ମିଳନର ଅଭାବ ।

ଅସମାହିତ—ବି.ବିଂ. ସମାଧିଶୂନ୍ୟ, ଚିତ୍ତର ଏକାଗ୍ରତାଶୂନ୍ୟ ।

ଅସମୀକ୍ଷ୍ୟକାରିତା—ସ୍ତ୍ରୀ. ବି. ଅବିମୃଷ୍ୟକାରିତା, ପୂର୍ବାପର ବିବେଚନା ନ କରି କାର୍ଯ୍ୟକରିବା ।

ଅସମୀକ୍ଷ୍ୟକାରୀ—ପୁଂ.ବିଂ. (ଅ + ସମୀକ୍ଷ୍ୟ + କୃ + କ.ଇନ୍ ) ଅବିବେଚକ, ଯେ ବୁଝିସୁଝି କାର୍ଯ୍ୟ ନ କରେ, ମୂର୍ଖ, (ସ୍ତ୍ରୀ) ଅସମୀକ୍ଷ୍ୟକାରିଣୀ ।

ଅସମୀକ୍ଷ୍ୟଭାଷିତା—ସ୍ତ୍ରୀ. ବି.(ଅସମୀକ୍ଷ୍ୟ + ଭାଷ + ଇନ୍ + ଭା.ତା ) ଆଗପଛ ନ ବୁଝି ନ ବିଚାରି କଥା କହିବା ।

ଅସମୀକ୍ଷ୍ୟଭାଷୀ—ପୁଂ.ବିଂ. (ଅସମୀକ୍ଷ୍ୟ + ଭାଷ + କ.ଇନ୍) ଯେ ସମ୍ୟକ୍ ବିଚାର ନକରି କଥାକହେ,(ସ୍ତ୍ରୀ)ଅସମୀକ୍ଷ୍ୟଭାଷିଣୀ ।

ଅସମୀଚୀନ—ବି.ବି. (ନ.ତତ୍ପୁ) ଅନୁପଯୋଗୀ,ଅଯଥାର୍ଥ, ବେଠିକ୍,ଅଯୌକ୍ତିକ, ନିକୃଷ୍ଟ, (ସ୍ତ୍ରୀ) ଅସମୀଚୀନା ।

ଅସମୃଦ୍ଧି—ସ୍ତ୍ରୀ. ବି. (ନ.ତତ୍ପୁ) ସମୃଦ୍ଧିର ଅଭାବ,ସୌଭାଗ୍ୟହୀନତା, (ବିଂ)ସମୃଦ୍ଧିଶୂନ୍ୟ ।

ଅସମ୍ପତ୍ତି—ସ୍ତ୍ରୀ. ବି. ଧନର ଅଭାବ,(ବିଂ) ଧନହୀନ ।

ଅସମ୍ପନ୍ନ—ବି.ବିଂ. (ଅ + ସମ୍ପନ୍ନ) ଅପୂର୍ଣ୍ଣ, ଅସମ୍ପାଦିତ, ଅକୃତ,ବିଭବହୀନ,ଗରିବ ।

ଅସମ୍ପର୍କ—ପୁଂ. ବି. (ନ. ତତ୍ପୁ) ସମ୍ବନ୍ଧର ଅଭାବ, ସମ୍ପର୍କର ଅଭାବ, (ବିଂ)ସମ୍ବନ୍ଧଶୂନ୍ୟ, ନିଃସମ୍ପର୍କ ।

ଅସମ୍ପର୍କିତ—ବି. ବିଂ. (ନ.ତତ୍ପୁ) ସମ୍ପର୍କଶୂନ୍ୟ, ସମ୍ବନ୍ଧବିହୀନ ।

ଅସମ୍ପର୍କୀୟ—ବି. ବିଂ.(ନ.ତତ୍ପୁ)ସମ୍ପର୍କଶୂନ୍ୟ, ଯାହା ସହିତ କୌଣସି ସମ୍ବନ୍ଧ ନାହିଁ,ନିଃସମ୍ପର୍କୀୟ,(ସ୍ତ୍ରୀ)ଅସମ୍ପର୍କୀୟା ।

ଅସମ୍ପୂର୍ଣ୍ଣ—ବି.ବିଂ.(ଅ + ସମ୍ପୂର୍ଣ୍ଣ)ନ.ତତ୍ପୁ; ଅସମାପ୍ତ, ଅପୂର୍ଣ୍ଣ, ଅଙ୍ଗହୀନ; (ବି) ଅସମ୍ପୂର୍ଣ୍ଣତା ।

ଅସମ୍ପୃକ୍ତ—ବି. ବିଂ. ନ.ତତ୍ପୁ; (ଅ + ସମ୍ପୃକ୍ତ) ଅ ମୁକ୍ତ, ଅସଂଯୁକ୍ତ, ସମ୍ବନ୍ଧବିହୀନ (ସ୍ତ୍ରୀ) ଅସମ୍ପୃକ୍ତା ।

ଅସମ୍ପ୍ରଜ୍ଞାତ—ବି. ବିଂ. (ବ ବ୍ରୀ) ନିର୍ବିକଳ୍ପକ, ନିର୍ବୀଜ ।

ଅସମ୍ପ୍ରତି—(ଅବ୍ୟ)ଅଯୋଗ୍ୟକାଳ,ଅନୁପସ୍ଥିତ କାଳ, ଯେଉଁ କାର୍ଯ୍ୟର ଯେଉଁ କାଳ ନୁହେ ।

ଅସମ୍ବନ୍ଧ—ବି. ବିଂ. (ନ.ତତ୍ପୁ) ସମ୍ବନ୍ଧଶୂନ୍ୟ, ଅସଂଲଗ୍ନ, ନିରର୍ଥକ, ପରସ୍ପରସମ୍ବନ୍ଧରହିତ, ଅସଙ୍ଗତ, ନିଃସମ୍ପର୍କ, (ସ୍ତ୍ରୀ) ଅସମ୍ବନ୍ଧା, (କ୍ଲୀ. ବି.) ଅର୍ଥରହିତ ବା ଅସମ୍ଭବ ବାକ୍ୟ ।

ଅସମ୍ବନ୍ଧପ୍ରଲାପ—ପୁଂ.ବି. (କ.ଧା) ଅସଙ୍ଗତବାକ୍ୟ, ଅପ୍ରସ୍ତୁତ ବାକ୍ୟ,ନିଷ୍ପ୍ରୟୋଜନକଥନ ।

ଅସମ୍ବନ୍ଧପ୍ରଲାପୀ—ପୁଂ. ବିଂ. ଅସମ୍ବନ୍ଧଭାଷୀ, ଅସଂଲଗ୍ନ ବାକ୍ୟକଥକ, ଯେ ଅସଙ୍ଗତ କଥା କହେ, (ସ୍ତ୍ରୀ) ଅସମ୍ବନ୍ଧପ୍ରଲାପିନୀ ।

ଅସମ୍ବନ୍ଧ—ପୁଂ.ବି. (ନ.ତତ୍ପୁ) ସମ୍ବନ୍ଧ ବା ସମ୍ପର୍କର ଅଭାବ,(ବିଂ) ଅସଙ୍ଗତ, ଅନୁଚିତ, ଅନ୍ୟାଯ୍ୟ । [ ବିଶେଷ ।

ଅସମ୍ବନ୍ଧାତିଶୟୋକ୍ତି—ବି. ଅର୍ଥାଲଙ୍କାର-

ଅସମ୍ବାଧ—ବି. ବିଂ. ( ବ.ବ୍ରୀ ) ପରସ୍ପର ସଂଘର୍ଷଣ ରୂପ ପୀଡ଼ାରହିତ, ବିରଳ, ଜନତାରହିତ,ଅଧିଗମ୍ୟ, ନିର୍ଜନ, କଷ୍ଟହୀନ, ଅସଂକୀର୍ଣ୍ଣ, ମଝିରେ ଯାହାର ଫାଙ୍କଥାଏ, ବାଧାଶୂନ୍ୟ,ଖୋଲା,ମେଲା ।

ଅସମ୍ଭବ—ବି. ବିଂ. (ଅ + ସମ୍ + ଭୂ + ଅ) ଯାହା ସମ୍ଭବେ ନାହିଁ, ଯାହା ଘଟି ନ ପାରେ, ଅସାଧ୍ୟ, ଅଲୌକିକ, ଅଘଟଣ, ବିଶ୍ୱାସର ଅଯୋଗ୍ୟ ଅନନୁମେୟ, ଆଶ୍ଚର୍ଯ୍ୟ, (ପୁଂ. ବି.) ନ.ତତ୍ପୁ, ଘଟିବାର ଅଭାବ, ସମ୍ଭବରାହିତ୍ୟ,ଅଭାବ, ନାସ୍ତିତ୍ୱ, ଅଲୌକିକ ଘଟନା ।

ଅସମ୍ଭବତ୍—ବି. ବିଂ. ଅସମ୍ଭବ ବସ୍ତୁ ।

ଅସମ୍ଭାବ୍ୟ—ବି. ବି. (ଅ + ସମ୍ଭବ + ଯ) ଯାହାର ସମ୍ଭବ ନାହିଁ, ଯାହା ହେବନାହିଁ,ଅବୋଧ, (କ୍ରି.ବିଂ.)ଅସାଧାରଣରୂପେ, ଅବୋଧରୂପେ ।

ଅସମ୍ଭାବନା—ସ୍ତ୍ରୀ. ବି. (ଅ + ସମ୍ଭାବନା) ସମ୍ଭାବନାର ଅଭାବ, ଅଖ୍ୟାତ, ଅସମ୍ମାନ, ଅମର୍ଯ୍ୟାଦା, ଅନନୁଗ୍ରହ ।

ଅସମ୍ଭାବନୀୟ—ବି.ବିଂ. (ନ.ତତ୍ପୁ) ସମ୍ଭାବନାର ଅଯୋଗ୍ୟ, ଯାହା ହେବ ନାହିଁ, (ସ୍ତ୍ରୀ) ଅସମ୍ଭାବନୀୟା ।

ଅସମ୍ଭାବିତ—ବି. ବିଂ. (ନ.ତତ୍) ଅତର୍କିତ, ଅଭାବିତ, ସମ୍ଭବ ବୋଲି ବିବେଚନା ହୋଇ ନ ଥିବା ।

ଅସମ୍ଭାଳ—ଗ୍ରା. ବିଂ. (ସ+ଅ+ସମ୍ଭୃତ) ଅସମ୍ଭୃତ, ଅଧୀର, ଅସ୍ଥିର, ଉଦ୍ବିଗ୍ନ, ଅତଚ୍ଛ, ଅସ୍ତବ୍ୟସ୍ତ, ଅନିରୁଦ୍ଧ, ଅସଂଯତ, ଅସାବଧାନ, ଅସହ୍ୟ, ଅଠାଠିକ୍, ଅଡ଼ବିପନ୍ନ,(ବି.)ଉଦ୍ବେଗ,ଅଧୈର୍ଯ୍ୟ,ଅସ୍ଥିରତା,(କ୍ରି ବିଂ) ଅସହ୍ୟରୂପେ, ଅତଚ୍ଛରୂପେ,ବେଗ ସମ୍ଭାଳନହେବା ପ୍ରକାରରେ ।

ଅସମ୍ଭାଳେ-ଗ୍ରା.କ୍ରି.ବିଂ. ଅସ୍ତବ୍ୟସ୍ତ ହୋଇ, ଅଧୀର ହୋଇ, ଅତି ଅଥୟ ହୋଇ ।

ଅସମ୍ଭୂତ—ବି. ବିଂ.(ନ.ତତ୍)ଅନନୁଭୂତ, ଅନୁତ୍ପନ୍ନ, ଅଜାତ, ଅସାଧାରଣ, (ସ୍ତ୍ରୀ) ଅସମ୍ଭୂତା ।

ଅସମ୍ଭାବ୍ୟ—ବି. ବିଂ. ନ.ତତ୍, ( ଅ+ସମ୍ଭାବ୍ୟ ) ଅଲୌକିକ, ଯାହା ନିର୍ଣ୍ଣୟ କରାଯାଇ ନ ପାରେ । [ ଅଭାବ ।

ଅସମ୍ଭୂତି—ସ୍ତ୍ରୀ. ବିଂ. (ନ.ତତ୍)ସମ୍ଭବର

ଅସମ୍ଭୃତ—ବି. ବି. ଅସନୃସିଦ୍ଧ, ଯାହା ସୁନ୍ଦରରୂପେ ପାଳିତ ହୁଏ ନାହିଁ ।

ଅସମ୍ଭେଦ—ପୁଂ. ବି. ମିଳନର ଅଭାବ, ଭେଦର ଅଭାବ ।

ଅସମ୍ଭୋଗ—ପୁଂ. ବି. (ନ.ତତ୍)ଅନୁପଭୋଗ, ଭୋଗ ନ କରିବା,ଅମୈଥୁନ ।

ଅସମ୍ଭ୍ରମ—ପୁଂ.ବି.(ଅ+ସମ୍ଭ୍ରମ,ଅନାଦର, ଅସମ୍ମାନ,ଅପମାନ, ସ୍ଥିରତା,କାର୍ଯ୍ୟରେ ବାସ୍ତବତାର ଅଭାବ,ଭ୍ରମର ଅଭାବ,(ବିଂ) ଅଚଞ୍ଚଳ, ସ୍ଥିର, ମର୍ଯ୍ୟାଦାଶୂନ୍ୟ ।

ଅସମ୍ଭ୍ରାନ୍ତ—ପୁଂ. ବିଂ. ( ଅ+ସମ୍ଭ୍ରାନ୍ତ ) ସମ୍ଭ୍ରମହୀନ, ଅଚଞ୍ଚଳ, ଅବ୍ୟାକୁଳ,ଅସମ୍ମାନିତ, ଅଭଦ୍ର, ମର୍ଯ୍ୟାଦାଶୂନ୍ୟ।

ଅସମ୍ମତ—ବି.ବିଂ. (ନ.ତତ) ଅସ୍ୱୀକୃତ, ଅନିଚ୍ଛୁକ, ଅନଭିମତ,ନାରାଜ,ଅପ୍ରିୟ ।

ଅସମ୍ମତି—ସ୍ତ୍ରୀ. ବି. ସମ୍ମତିର ଅଭାବ, ଅସ୍ୱୀକାର, ଅନିଚ୍ଛାମତର ପାର୍ଥକ୍ୟ,(ବିଂ) ସମ୍ମତିଶୂନ୍ୟ, ଅସ୍ୱୀକୃତ ।

ଅସମ୍ମାନ-ପୁଂ.ବି.ନ.ତତ୍; (ଅ+ସମ୍ମାନ) ଅନାଦର, ଅପମାନ, ଅମର୍ଯ୍ୟାଦା ।

ଅସମ୍ମାନିତ—ବି. ବିଂ. (ନ.ତତ୍)ଅନାରାଧିତ, ଅପୂଜିତ, ଅସମାଦୃତ, ଅନାବୃତ, ଅବଜ୍ଞାତ, ଉପେକ୍ଷିତ, ଅବମାନିତ ।

ଅସମ୍ମିତ—ବି. ବିଂ. ଅପରିମିତ ।

ଅସମ୍ମୁଗ୍ଧ—ବି. ବିଂ. (ନ.ତତ୍) ଅକୃତସନ୍ଦେହ, ଯେ ସନ୍ଦେହ କରେ ନାହିଁ, ପାଣ୍ଡିତ୍ୟ, ଅଭିମାନରହିତ ।

ଅସମ୍ମୂଢ଼—ବି.ବିଂ. (ଅ + ସମ + ମୁହ + ତ) ସ୍ଥିର, ନଷ୍ଟସ୍ପୃ, ଭ୍ରାନ୍ତିରହିତ ।

ଅସମ୍ମୃଷ୍ଟ—ବି ବିଂ.(ଅ+ସମ୍+ମୃଷ+ତ) କ୍ଷମାର ଅବିଷୟ, ଯାହାକୁ କ୍ଷମା କରି ହୁଏନାହିଁ, ପରସ୍ପର ସଂଘର୍ଷଣଶୂନ୍ୟ, ବାଧାରହିତ ।

ଅସମ୍ମୋହ—ପୁଂ.ବି. ନ.ତତ୍; (ଅ+ସମ୍+ମୁହ୍+ଅ)ଭ୍ରମର ଅଭାବ,ଯଥାର୍ଥଜ୍ଞାନଯୁକ୍ତ ଉତ୍ସାହ, ଅବ୍ୟାକୁଳତା (ବିଂ)ଭ୍ରମରହିତ,ସ୍ଥିରବୁଦ୍ଧି,ଅସମ୍ମୂଢ଼ ।

ଅସମ୍ୟକ୍—ବି. ବିଂ. ( ଅ+ସମ୍ୟକ୍ ) ଅପର୍ଯ୍ୟାପ୍ତ, ଯାହା ନିର୍ଦ୍ଦିଷ୍ଟ ସୀମାପର୍ଯ୍ୟନ୍ତ ଯାଇନାହିଁ, ବେଜାଏ (କ୍ରି.ବିଂ) ଖୁବ୍ ସାମାନ୍ୟପରିମାଣରେ, ଅଯଥାରୂପେ, ଅନ୍ୟାୟକ୍ରମେ ।

ଅସମ୍ୟକ୍କାରୀ—ପୁଂ. ବିଂ. ଅନ୍ୟାୟକର୍ମ କରିବା (ବ୍ୟକ୍ତି), ନିଜର କର୍ତ୍ତବ୍ୟକର୍ମ ଉତ୍ତମରୂପେ କରୁ ନ ଥିବା, (ସ୍ତ୍ରୀ) ଅସମ୍ୟକ୍କାରିଣୀ ।

ଅସଂଶ୍ଳିଷ୍ଟ—ବି. ବିଂ. (ନ.ତତ୍)ଅସଂସୃଷ୍ଟ ସମ୍ବନ୍ଧଶୂନ୍ୟ, ଅସଂଯୁକ୍ତ(ସ୍ତ୍ରୀ)ଅସଂଶ୍ଳିଷ୍ଟା ।

ଅସର—ଗ୍ରା. ବି. ଅବସର, ଫୁରୁସତ୍, ବିଶ୍ରାମ ସମୟ, ସୁବିଧା, ଅପସର ।

ଅସରନ୍ତ—ଗ୍ରା. ଅଶେଷ, ଅକ୍ଷୟ, ଅସଂଖ୍ୟ, ଯାହାର ଶେଷ ନାହିଁ ।

ଅସରନ୍ତଭଣ୍ଡାର—ଗ୍ରା. ବି. ଅକ୍ଷୟଭଣ୍ଡାର, ଯେଉଁ ଭଣ୍ଡାରରୁ ଯେତେ ବ୍ୟୟକଲେ ଶେଷ ହୁଏ ନାହିଁ ।

ଅସରପି (ଫି)—(ଯା) ବି. ସୁନାମୋହର, ସ୍ୱର୍ଣ୍ଣମୁଦ୍ରା ।

ଅସରଳ—ବି. ବିଂ. (ନ.ତତ୍) ଅନୃଜୁ, ବକ୍ର,କୁଟିଳ,କପଟୀ,(ସ୍ତ୍ରୀ) ଅସରଳା ।

ଅସରା—ଗ୍ରା.ବି.ଧାରାବୃଷ୍ଟି,(ବିଂ)ଅସରନ୍ତ ।

ଅସରୁ—ପୁଂ. ବି. କୁକୁରଗୁଡ଼ିଆ ଗଛ ।

ଅସର୍ପା(ରପା)—ଗ୍ରା. ବି. ପତଙ୍ଗବିଶେଷ, ତୈଳପାୟିକା ପୋକ ।

ଅସର୍ପି(ରପି)—ବି. ସ୍ୱର୍ଣ୍ଣମୁଦ୍ରା ।

ଅସଲ—କ୍ଲୀ. ବି. ଅସ୍ତ୍ରକ୍ଷେପର ଉପଯୁକ୍ତ ମନ୍ତ୍ରବିଶେଷ, ଲୌହ, (ଗ୍ରା.)ବ୍ୟବସାୟୀ ବା ମହାଜନର ମୂଳଧନ, ମୂଳ, ଜଡ଼, ମୂଳକାରଣ, ଉତ୍ତମ ବା ଭଲ କାର୍ଯ୍ୟ, ଉଚିତ କର୍ମ, (ବିଂ) ଯାଥାର୍ଥ, ପ୍ରକୃତ, ଅବିମିଶ୍ରିତ, ବିଶୁଦ୍ଧ, ଖାଣ୍ଟି, ପ୍ରଧାନ, ମୌଳିକ ।

ଅସଲଟ—ଗ୍ରା. ବିଂ. ଅସଜଟ (ଦେଖ) ।

ଅସଲସୁଧ—(ଯା) ବି. ମହାଜନର ମୂଳଧନ ଓ କଳନ୍ତର ।

ଅସବର୍ଣ୍ଣ—ବି. ବିଂ. ନ. ତତ୍; (ଅ+ସବର୍ଣ୍ଣ) ଅସଜାତୀୟ, ବିଭିନ୍ନ ବର୍ଣ୍ଣ, ଏକଜାତି ନୁହେ ।

ଅସବର୍ଣ୍ଣବିବାହ—ପୁଂ.ବି.(ଷ ତତ୍) ବିଭିନ୍ନ ଜାତୀୟ ବରକନ୍ୟାଙ୍କର ବିବାହ ।

ଅସବାବ (ଯା) ବି. ଗୃହର ଚଳନୀୟ ମାଲ ।

ଅସବ୍ୟ—ବିଂ. (ଅ+ସବ୍ୟ) ବାମ, ବାଁ (ଗ୍ରା.ବି.) ବାମପାଖ ।

ଅସଷ୍ଟତ୍—ବି. ବିଂ. ପରସ୍ପର ଆଶ୍ରିତ, ଅଗମନଶୀଳ, ସଙ୍ଗତିବର୍ଜିତ ।

ଅସସତ୍—ବି. ବିଂ. ଜାଗରୂକ, ନିଜକାର୍ଯ୍ୟରେ ମନୋଯୋଗୀ (ସ୍ତ୍ରୀ) ଅସସତ୍ତା ।

ଅସହ—ପୁଂ.ବି. ଗ୍ରୀବାର ମଧ୍ୟଭାଗ(ବି.ବିଂ.) ଅକ୍ଷମାଶୀଳ, ଅସହିଷ୍ଣୁ,ଅଧୀର, ଅମର୍ଷଣ, ଅସହ୍ୟ, ଦୁଃସହ (ସ୍ତ୍ରୀ) ଅସହା ।

ଅସହନୀ—ଗ୍ରା. ବିଂ. ଅସହିଷ୍ଣୁ (ବି) ଅସହିଷ୍ଣୁତା ।

ଅସହନ—ପୁଂ. ବି. ବୈରୀ; ଶତ୍ରୁ (ବିଂ) କ୍ଷମାଶୂନ୍ୟ, ଅସହିଷ୍ଣୁ, ଅସହ୍ୟ (କ୍ଲୀ.ବି) ସହ୍ୟ ନ କରିବା ।

ଅସହନୀୟ—ବି.ବଂ. (ନ.ତତ୍) ଅସହ୍ୟ, ଦୁଃସହ, (ସ୍ତ୍ରୀ) ଅସହନୀୟା ।

ଅସହମାନ—ବି. ବଂ. (ଅ + ସହ୍ + କ. ମାନ) ଅସହିଷ୍ଣୁ, କ୍ଷମାଶୂନ୍ୟ, (ସ୍ତ୍ରୀ) ଅସହମାନା ।

ଅସହଯୋଗ—ପୁଂ.ବି. (ନ.ତତ୍) ସହଯୋଗିତାର ଅଭାବ, ସମ୍ବନ୍ଧର ଅଭାବ, ଅସମ୍ପର୍କ ।

ଅସହଯୋଗଆନ୍ଦୋଳନ—ବି. (ଆଧୁନିକ ପ୍ରୟୋଗ) ମହାତ୍ମା ଗାନ୍ଧିଙ୍କ ପ୍ରବର୍ତ୍ତିତ ସ୍ୱଜାତିକ ଅଧିକାର ଲାଭ କରିବା ଉଦ୍ଦେଶ୍ୟରେ ପ୍ରଜାମାନେ ସରକାରଙ୍କ ସଙ୍ଗେ ସମ୍ପର୍କ ନ ରଖିବାରୂପ ଭାରତବ୍ୟାପୀ ଆନ୍ଦୋଳନ ।

ଅସହଯୋଗୀ—ପୁଂ. ବଂ. ସହଯୋଗଶୂନ୍ୟ, ଯେ ଅସହଯୋଗ କରେ (ସ୍ତ୍ରୀ) ଅସହଯୋଗିନୀ ।

ଅସହାୟ—ବି. ବଂ (ଅ + ସହାୟ) ନିଃସହାୟ, ଯାହାର କେହି ସାହାଭରସା ନାହିଁ, ବନ୍ଧୁହୀନ, ଏକାକୀ, ନିଗୁଟିଆ (ସ୍ତ୍ରୀ) ଅସହାୟା (ବି) ଅସହାୟତା ।

ଅସହାୟତା—ସ୍ତ୍ରୀ.ବି(ଅସହାୟ + ଭା.ତା) ଅସହାୟ ଅବସ୍ଥା, ବନ୍ଧୁହୀନ ଅବସ୍ଥା, ନିର୍ଜନତା, ମୁନିର ଜୀବନ ବା ବୃତ୍ତି ।

ଅସହିଷ୍ଣୁ—ବି.ବଂ. (ଅ + ସହିଷ୍ଣୁ)ଅକ୍ଷମ, ଅସହନଶୀଳ, ଯେ ସହିପାରେ ନାହିଁ, ଧୈର୍ଯ୍ୟହୀନ, ଈର୍ଷାପର ।

ଅସହିଷ୍ଣୁତା—ସ୍ତ୍ରୀ.ବି(ଅସହିଷ୍ଣୁ + ଭା.ତା) ସହିଷ୍ଣୁତାରାହିତ୍ୟ, ଅସହନଶୀଳତା, ଧୈର୍ଯ୍ୟହୀନତା, ଅଧୈର୍ଯ୍ୟ ।

ଅସହ୍ୟ—ବି.ବଂ. (ଅ + ସହ୍ + ଯ)ଯାହା ସହ୍ୟ କରିହୁଏ ନାହିଁ, ଅସହନୀୟ, ଅସମ୍ଭବ (ସ୍ତ୍ରୀ) ଅସହ୍ୟା ।

ଅସାକ୍ଷାତ୍—(ଅବ୍ୟ) ପରୋକ୍ଷ, ଇନ୍ଦ୍ରିୟର ଅଯୋଗ୍ୟ,ଯାହା ଇନ୍ଦ୍ରିୟଗ୍ରାହ୍ୟ ନୁହେ ।

ଅସାକ୍ଷାତ—ଗ୍ରା.ବଂ. ପରୋକ୍ଷ,ଇନ୍ଦ୍ରିୟର ଅଯୋଗ୍ୟ (ବି) ଅଦର୍ଶନ, ଦେଖା ନ ମିଳିବା ।

ଅସାକ୍ଷାତ୍କାର—ପୁଂ. ବି. (ନ.ତତ୍) ପ୍ରତ୍ୟକ୍ଷର ଅଭାବ, ପ୍ରତ୍ୟକ୍ଷର ଅବିଷୟ, ପରୋକ୍ଷଜ୍ଞାନ ।

ଅସାକ୍ଷିକ—ବି.ବଂ.(ବ.ବ୍ରୀ) ସାକ୍ଷୀଶୂନ୍ୟ, ଯେଉଁ ଘଟଣାରେ କେହି ସାକ୍ଷୀ ନ ଥାଏ, ଅଧିଷ୍ଠାତୃହୀନ ।

ଅସାକ୍ଷୀ—ପୁଂ. ବଂ (ନ.ତତ୍) ବଚନ ହେତୁ ବା ଦୋଷାଦି ହେତୁ ସାକ୍ଷ୍ୟକାର୍ଯ୍ୟରେ ଅଗ୍ରାହ୍ୟ, ଅସାକ୍ଷାତ୍ ଦ୍ରଷ୍ଟା, ଅପ୍ରତ୍ୟକ୍ଷଦର୍ଶୀ, ଅନୁପଯୁକ୍ତ ସାକ୍ଷୀ (ସ୍ତ୍ରୀ) ଅସାକ୍ଷିଣୀ । [ଅଭାବ ।

ଅସାକ୍ଷ୍ୟ—ବି.(ଅ + ସାକ୍ଷ୍ + ଯ) ପ୍ରମାଣର

ଅସାଙ୍ଗ—ପ୍ରା. (ସମ୍ବ.) ସ୍ତ୍ରୀ.ବଂ ଗର୍ଭବତୀ ।

ଅସାଡ଼—ଗ୍ରା. ବଂ. (ଫ.ଅସାର) ଚଳିବାଶକ୍ତିରହିତ,ଅଚଳ,ବଗିଡ଼ିଥିବା,ଫଙ୍କାହୀନ ।

ଅସାତ୍ତ୍ୱିକ—ବି. ବଂ. (ନ.ତତ୍)ସତ୍ତ୍ୱଗୁଣରହିତ, ଅଧାର୍ମିକ, (ସ୍ତ୍ରୀ) ଅସାତ୍ତ୍ୱିକୀ ।

ଅସାତ୍ମ୍ୟ—ବି. (ଅ + ସ + ଆତ୍ମନ୍ + ଯ) ଅସ୍ୱାସ୍ଥ୍ୟକର ଖାଦ୍ୟ ।

ଅସାଦ—ବଂ. ( ଅ + ସଦ୍ + ଣିଚ୍.ଅ ) ଅକ୍ଳାନ୍ତ, କ୍ଳାନ୍ତିରହିତ ।

ଅସାଧ—ଗ୍ରା.ବି. ଅନିଚ୍ଛା, ସାଧ ନ ଥିବା ।

ଅସାଧନ—କ୍ଳୀ. ବି. (ଅ + ସାଧନ)ସମ୍ପାଦନର ଅଭାବ, ଅକାରଣ,(ବଂ)ଉପାୟରହିତ, କାର୍ଯ୍ୟସାଧନର ଉପକରଣରହିତ ।

ଅସାଧାରଣ—ବି. ବଂ. (ଅ + ସାଧାରଣ) ନ.ତତ୍; ଅସାମାନ୍ୟ,ଯାହା ସବୁଠାରେ ନାହିଁ, ବିଶିଷ୍ଟ, ଅତୁଲ୍ୟ, ଅସାଧ୍ୟ ।

ଅସାଧି—ଗ୍ରା. ବଂ. ଅସାଧ୍ୟ, ଅବାଧ୍ୟ ।

ଅସାଧିତ—ବି. ବଂ ( ନ.ତତ୍ ) ଯାହା ସାଧନ କରାହୋଇନାହିଁ, ଅସମ୍ପାଦିତ, ଅପ୍ରତିପାଦିତ, ଅକୃତ, (ସ୍ତ୍ରୀ) ଅସାଧିତା ।

ଅସାଧୁ—ବି. ବଂ. (ନ.ତତ୍) ଅପ୍ରିୟ, ଅଶିଷ୍ଟ, ଅଭଦ୍ର, ଅସତ୍, ସାଧୁ ନୁହେଁ, ଅସଚ୍ଚରିତ୍ର, ଦୁଷ୍ଟ, ମନ୍ଦ, ନିନ୍ଦିତ, (ସ୍ତ୍ରୀ) ଅସାଧ୍ୱୀ ।

ଅସାଧୁତା—ସ୍ତ୍ରୀ. ବି. (ଅସାଧୁ + ଭା.ତା) ଅସତ୍ପଣ,ଅଭଦ୍ରତା,ରଚନାର ଦୋଷବିଶେଷ ।

ଅସାଧ୍ୱସ—କ୍ଳୀ.ବି.(ନ.ତତ୍) ଭୟହୀନତା, ନିର୍ଭିକତା, ଅବ୍ୟାକୁଳତା, ଅସମ୍ଭ୍ରମ, (ବି) ଭୟରହିତ,ଅକୁତୋଭୟ,ନିର୍ଭିକ, ଅବ୍ୟାକୁଳ । [କୁଳଟା ।

ଅସାଧ୍ୱୀ—ସ୍ତ୍ରୀ. ବଂ. ( ନ.ତତ୍ ) ଅସତୀ,

ଅସାଧ୍ୟ—ବି ବଂ. (ଅ + ସାଧ୍ + ଯ)ଯାହା ସାଧିତ ହୋଇ ନ ପାରେ, ଅଶକ୍ୟ, କଷ୍ଟକର, ଅସମ୍ଭବ, ଦୁରାରୋଗ୍ୟ, ଯାହାକୁ ଆରୋଗ୍ୟ କରାଯାଇ ନ ପାରେ, ଅପ୍ରତିକାର୍ଯ୍ୟ, ପ୍ରମାଣଦ୍ୱାରା ଅନିର୍ଣ୍ଣେୟ, (ସ୍ତ୍ରୀ) ଅସାଧ୍ୟା ।

ଅସାଧ୍ୟସାଧନ—କ୍ଳୀ. ବି. (୬ତତ୍) ଯାହା କେହି କରିପାରିବେ ନାହିଁ ତାହା ସାଧନ କରିବା ।

ଅସାନ—ଗ୍ରା. ବଂ. ଅସାଡ଼, ଫଙ୍କାହୀନ, ବୋଧରହିତ, ଅନୁଭୂତିଶୂନ୍ୟ ।

ଅସାନ୍ତାପିକ—ବି. ବଂ. ସନ୍ତାପବିଷୟରେ ଅସମର୍ଥ ।

ଅସାନ୍ଦ୍ର—ବି. ବଂ.(ନ.ତତ୍) ଅନିବିଡ଼, ବିରଳ,ଲଗାଲଗି ନୁହେଁ, ଫାଙ୍କଫାଙ୍କ ।

ଅସାବଧାନ—ବି. ବଂ. ନ.ତତ୍ (ଅ + ସାବଧାନ)ସାବଧାନତାଶୂନ୍ୟ, ଅସତର୍କ, ଅନବହିତ, ପ୍ରମାଦୀ, ଅନ୍ୟମନସ୍କ ।

ଅସାବଧାନତା—ସ୍ତ୍ରୀ.ବି. (ଅସାବଧାନ + ଭା.ତା) ସାବଧାନଭାବ, ଗରହସିଆରି, ଅସତର୍କତା, ଅମନୋଯୋଗିତା ।

ଅସାମଞ୍ଜସ୍ୟ·କ୍ଳୀ.ବି. (ଅସମଞ୍ଜସ + ଭା.ଯ) ସାମଞ୍ଜସ୍ୟର ଅଭାବ, ମୀମାଂସାର ଅଭାବ, ଅଯୁକ୍ତତ୍ୱ, ସନ୍ନିବେଶର ଅଭାବ, ଅଲକ୍ଷଣ, ଅସ୍ଥାପନ, ଅନୁପଯୁକ୍ତତା ।

ଅସାମର୍ଥ୍ୟ—କ୍ଳୀ. ବି. ( ଅ + ସାମର୍ଥ୍ୟ ) ସାମର୍ଥ୍ୟର ଅଭାବ, ଅକ୍ଷମତ୍ୱ, ପଟୁତାର ଅଭାବ ।

ଅସାମୟିକ—ବି.ବଂ.ନ.ତତ୍ପୁ, (ଅସମୟ + ଇକ) ଅପ୍ରାପ୍ତକାଳ, ଠିକ୍ ସମୟରେ ନୁହେ, ଋତୁବହିର୍ଭୂତ, (ସ୍ତ୍ରୀ) ଅସାମୟିକୀ ।

ଅସାମାଜିକ—ତ୍ରି. ବଂ. (ନ.ତତ୍ପୁ) ଯାହା ସମାଜସମ୍ବନ୍ଧୀୟ ନୁହେ, ସମାଜସହିତ ସମ୍ପର୍କଶୂନ୍ୟ, ଅସାମ୍ପ୍ରଦାୟିକ, ସମାଜର ଅନୁପଯୁକ୍ତ, ଅସଭ୍ୟ ।

ଅସାମାନ୍ୟ—ବଂ.ନ.ତତ୍ପୁ;(ଅ + ସାମାନ୍ୟ) ତୁଳ୍ୟତ୍ୱର ଅଭାବ, ଅସାଧାରଣ, ଯାହା ସଚରାଚର ଘଟେ ନାହିଁ, ଲୋକାତୀତ, ଅଲୌକିକ, ଅନୁପମ ।

ଅସାମ୍ପ୍ରତ—ବଂ.(ଅ + ସାମ୍ପ୍ରତ) ଅନୁଚିତ ଅସାମୟିକ ।

ଅସାମ୍ପ୍ରତଂ—(ଅବ୍ୟ) ଅଯୁକ୍ତ, ଅନୁଚିତ, ଅନ୍ୟାଯ୍ୟ, ଅକର୍ତ୍ତବ୍ୟ ।

ଅସାମ୍ପ୍ରଦାୟିକ—ବି.ବଂ.(ନ.ତତ୍ପୁ) ଯାହା ସମ୍ପ୍ରଦାୟଘଟିତ ନୁହେ, ସମ୍ପ୍ରଦାୟ ସହିତ ସମ୍ପର୍କରହିତ, ଅସାମାଜିକ, ସାର୍ବଜନୀନ ।

ଅସାମ୍ୟ—କ୍ଲୀ. ବ. (ନ.ତତ୍ପୁ) ଅସମତା, ଅସାଦୃଶ୍ୟ, ବିଭିନ୍ନତା, ବୈଷମ୍ୟ ।

ଅସାର—ପୁଂ.ବ. (ଅ + ସାର) ଗବଗଛ, ଅଗୁରୁଚନ୍ଦନ,(ଗ୍ରା)ପଶାଖେଳରେ ଅନ୍ଦର-କାଣ୍ଡ ଦାନ, ମନ୍ଦକର୍ମ, ଅନ୍ୟାୟ, (ବଂ) ସାରବସ୍ତୁବିହୀନ, ମଜ୍ଜାହୀନ, ଅପଦାର୍ଥ, ବଳହୀନ, ଫମ୍ପା, ମୂଲ୍ୟହୀନ, ବୃଥା, ନୀରସ, ଅନୁପଯୋଗୀ, ବାଜେ ।

ଅସାରତା—ସ୍ତ୍ରୀ. ବ. (ଅସାର + ଭ୍ବ.ତା) ସାରଶୂନ୍ୟତା, ଦୁର୍ବଳତା ।

ଅସାରସ୍ୱପ୍ନ—ବି. ( କ.ଧା ) ନିଷ୍ଫଳ ବା ଅବାସ୍ତବ ସ୍ୱପ୍ନ, ଦୁଃସ୍ୱପ୍ନ, ଅଶୁଭସୂଚକ ସ୍ୱପ୍ନ ।

ଅସାରୀ—ସ୍ତ୍ରୀ.ଅସାରର ସ୍ତ୍ରୀଲିଙ୍ଗ,(ଗ୍ରା.ବଂ) ଠିକ୍ ନୁହେଁ, ଉଚିତ ନୁହେଁ ।

ଅସାଶ—ଗ୍ରା. ବ. ତନ୍ତୀଙ୍କ ବ୍ୟବହୃତ ବାଉଁଶ କାଠିର ନଟେଇ ।

ଅସାର୍ଥକ—ବଂ.(ଅ + ସାର୍ଥକ) ମୂଲ୍ୟହୀନ, ନିରର୍ଥକ, ପଣ୍ଡ, ଯାହା ସାର୍ଥକ ବା ସଫଳ ନୁହେଁ, ନିଷ୍ଫଳ, ନିଷ୍ପ୍ରୟୋଜନ, ବିଫଳ, ଅକୃତାର୍ଥ, ଉଦ୍ଦେଶ୍ୟବିହୀନ, ବୃଥା ।

ଅସାଷ୍ଟମ—ଗ୍ରା. ବଂ. ଅଜ୍ଞାନ, ଅଚେତନ, ବେହୋସ, ମୋହଗ୍ରସ୍ତ, ଉନ୍ମତ୍ତ, ଅଥୟ, (ବ) ମୂର୍ଚ୍ଛା, ସଂଜ୍ଞାହୀନତା ।

ଅସାହସିକ—ପୁଂ. ବଂ. (ଅ + ସାହସିକ) ଯେ ସାହସସହିତ କାମ କରେ ନାହିଁ, ଯେ ଅଖାଡ଼ୁଆ ନୁହେ, (ସ୍ତ୍ରୀ) ଅସାହସିକୀ

ଅସାହା—ଗ୍ରା. ବଂ. ( ଫ.ଅସହାୟ ) ଅସହାୟ, ନିଃସହାୟ, ଏକାକୀ ।

ଅସି—ପୁଂ.ସ୍ତ୍ରୀ.ବ. (ଅସ୍ + ର୍ମି.ଇ) ଖଡ୍ଗ, ଖଣ୍ଡା, କରବାଳ, ତରବାରି, ବାରାଣସୀନିକଟସ୍ଥ ନଦୀବିଶେଷ ।

ଅସିଆଁ—ଗ୍ରା.ବଂ.(ଫ.ଅ + ସୂଚ) ସିଆଁ ବା ସିଲାଇ ହୋଇ ନ ଥିବା ।

ଅସିଆଣା—ଗ୍ରା. ବଂ.ପୁଂ. ସ୍ତ୍ରୀ (ଫ.ଅ + ସଜ୍ଞାନ) ଯେ ସିଆଣା ବା ଚତୁର ନୁହେ, ଅଚତୁର, ନିର୍ବୁଦ୍ଧିଆ, ଓଲ୍ଲା; (ସ୍ତ୍ରୀ) ଅସିଆଣୀ ।

ଅସିଉକାର—ଗ୍ରା. ବ. ( ଫ.ଅସ୍ୱୀକାର ) ଅସ୍ୱୀକାର, (ବଂ) ଅସ୍ୱୀକୃତ ।

ଅସିକ—କ୍ଲୀ.ବ. (ଅସ + ଇକ) ଅଧର ଓ ଚିବୁକର ମଧ୍ୟଭାଗ, ତଳପାଟି ଓ ଥୋଡ଼ିମଧ୍ୟସ୍ଥ ଅଂଶ ।

ଅସିକାର୍ଯ୍ୟ—ବି.(କ.ଧା)ଅସ୍ତ୍ରଶସ୍ତ୍ର ଓ ଖଣ୍ଡା ଚଳାଇବାର ସାଧନା ।

ଅସିକାଳିକା—ଗ୍ରା. ବ.ସ୍ତ୍ରୀ. ଖଡ୍ଗଧାରିଣୀ କାଳୀ ବା ଚଣ୍ଡୀ ଠାକୁରାଣୀ ।

ଅସିକ୍ନିକା—ସ୍ତ୍ରୀ.ବ.(ଅସିକ୍ନୀ + କ + ଆ) ଅସିକ୍ନୀ, କଙ୍କସ, ଦାସୀ ।

ଅସିକ୍ନୀ-ସ୍ତ୍ରୀ.ବ.(ଅସିକ୍ନ + ଈ) ଅନ୍ତଃପୁରଚାରିଣୀ ଅବୃଦ୍ଧା ଦାସୀ, ନଦୀବିଶେଷ, ବୀରଣ ପ୍ରଜାପତିଙ୍କ କନ୍ୟା, ଦକ୍ଷପ୍ରଜାପତିଙ୍କ ପତ୍ନୀ ।

ଅସିଗଣ୍ଡ—ପୁଂ.ବ.(ବ.ବ୍ରୀ) ଗାଲବାଲିଶ, କ୍ଷୁଦ୍ର ବାଲିଶ, ତକିଆ ।

ଅସିଚର୍ମ—କ୍ଲୀ.ବ. (ଦ୍ୱନ୍ଦ୍ୱ) ତରବାରି ଓ ଫଳକ, ଢାଲ ତଲୱାର ।

ଅସିଚର୍ଯ୍ୟା—ସ୍ତ୍ରୀ. ବ. (୬ତତ୍ପୁ) ଅସିର ବ୍ୟବହାର ବା ଆଚରଣ, ତରବାରି ଖେଳ ।

ଅସିଜୀବୀ - ପୁଂ. ବ. ( ଅସି + ଜୀବ + ଇନ୍) ସେଉଁ ଲୋକ ଅସ୍ତ୍ରଦ୍ୱାରା ଯୁଦ୍ଧାଦି କରି ଜୀବିକା ନିର୍ବାହ କରେ ।

ଅସିଝା—ଗ୍ରା. ବଂ. (ଫ.ଅସିଦ୍ଧ) ଅସିଦ୍ଧ, ଅର୍ଦ୍ଧସିଦ୍ଧ, ଦରସିଝା ।

ଅସିତ—ପୁଂ.ବ (ଅ + ସିତ) କଳାରଙ୍ଗ, ଶନିଗ୍ରହ, ଏକପ୍ରକାର ବିଷଧର ମୂଷିକ, ବ୍ୟାସଙ୍କ ଶିଷ୍ୟ ଓ କଶ୍ୟପଙ୍କ ବଂଶଧର-ମୁନିବିଶେଷ; ଭରତଙ୍କ ପୁତ୍ର, ପର୍ବତ-ବିଶେଷ, କୃଷ୍ଣ ସର୍ପ, ସର୍ପଭୟ ନିବାରକ-ମନ୍ତ୍ରବିଶେଷ, କୃଷ୍ଣପକ୍ଷ (ବଂ) କୃଷ୍ଣବର୍ଣ୍ଣ-ବିଶିଷ୍ଟ, କଳା, ଶ୍ୟାମଳ, ନୀଳ, (ସ୍ତ୍ରୀ) ଅସିତା ।

ଅସିତକାର୍ଚ୍ଚିଃ—ପୁଂ. ବ. ଅଗ୍ନି ।

ଅସିତଗିରି—ପୁଂ. ବ. ନୀଳଗିରି, ନୀଳପର୍ବତ ।

ଅସିତଗ୍ରୀବ—ପୁଂ. ବ. (ବ.ବ୍ରୀ) ଅଗ୍ନି, ନୀଳକଣ୍ଠ, ଶିବ, ମୟୂର ।

ଅସିତପକ୍ଷ—ପୁଂ.ବ. (କ.ଧା) କୃଷ୍ଣପକ୍ଷ ।

ଅସିତଫଳ—ପୁଂ. ବ. ମଧୁନାରିକେଳ ।

ଅସିତବର୍ଣ୍ଣ—ପୁଂ.ବ. (କ.ଧା) କୃଷ୍ଣବର୍ଣ୍ଣ, କଳାରଙ୍ଗ(ବଂ) କୃଷ୍ଣବର୍ଣ୍ଣବିଶିଷ୍ଟ, କଳାରଙ୍ଗର ।

ଅସିତବର୍ତ୍ମା—ବ. ବ.ବ୍ରୀ; (ଅସିତ + ବର୍ତ୍ମନ୍) ଅଗ୍ନି, ନିଆଁ ।

ଅସିତମୃଗ—ପୁଂ. ବ. କୃଷ୍ଣସାର ମୃଗ ।

ଅସିତରୋମା—ପୁଂ. ବ. (ବ ବ୍ରୀ) ଜଣେ ଦାନବ ।

ଅସିତା—ସ୍ତ୍ରୀ. ବ. ନୀଳୀବୃକ୍ଷ, ନୀଳଗଛ, ଅନ୍ତଃପୁରଚାରିଣୀ ଯୁବତୀ, ଦାସୀ, ସ୍ୱନାମଖ୍ୟାତ ଅପ୍ସରା (ବଂ, କୃଷ୍ଣବର୍ଣ୍ଣା ।

ଅସିତାପାଙ୍ଗୀ—ସ୍ତ୍ରୀ.ବଂ.(ବ ବ୍ରୀ)କୃଷ୍ଣବର୍ଣ୍ଣ-ନେତ୍ରପ୍ରାନ୍ତବିଶିଷ୍ଟା (ସ୍ତ୍ରୀ) ।

ଅସିତାଭ୍ରଶେଖର-ପୁଂ.ବ. ବୁଦ୍ଧବିଶେଷ ।

ଅସିତାମ୍ବୁଜ—କ୍ଲୀ. ବ. ନୀଳପଦ୍ମ ।

ଅସିତାର୍ଚ୍ଚିଃ—ପୁଂ.ବ. (ବ.ବ୍ରୀ) ଅଗ୍ନି, ବହ୍ନି, ନିଆଁ ।

ଅସିତାଳୁ—ପୁଂ. ବି. ନୀଳ ଆଳୁ, କଳା-କଲର୍ସୀ ।

ଅସିତାଶ୍ମା—ପୁଂ. ବି. (କ.ଧା) ଇନ୍ଦ୍ରନୀଳମଣି, ନୀଳକାନ୍ତମଣି, ମଣିବିଶେଷ ।

ଅସିତା—ପୁଂ. ବିଂ. କ୍ଷେପକ ।

ଅସିତୋତ୍ପଳ—କ୍ଲୀ. ବି. (କ.ଧା) ନୀଳକଇଁ, ନୀଳପଦ୍ମ ।

ଅସିତୋପଳ—ପୁଂ. ବି. (କ.ଧା) ଇନ୍ଦ୍ରନୀଳମଣି, ନୀଳକାନ୍ତମଣି ।

ଅସିଦଂଷ୍ଟ୍ର—ପୁଂ. ବି. (ବ.ବ୍ରୀ) ମକର, କୁମ୍ଭୀର, ଜଳଜନ୍ତୁବିଶେଷ ।

ଅସିଦ୍ଧ—ବି. ବିଂ. ନ.ତତ୍ପୁ; (ଅ+ସିଦ୍ଧ) ଅନିଷ୍ପନ୍ନ, ଅପକ୍ୱ, ଅସିଝା, ଅପ୍ରମାଣିତ, ଅପୂର୍ଣ୍ଣ, ଅକୃତକାର୍ଯ୍ୟ, ସଫଳତାଶୂନ୍ୟ ।

ଅସିଦ୍ଧାର୍ଥ—ପୁଂ. ବି. (ଅ+ସିଦ୍ଧାର୍ଥ) ଅକୃତକାର୍ଯ୍ୟ, ଯେ ନିଜର ଉଦ୍ଦେଶ୍ୟ ସାଧନକରି ନାହିଁ ।

ଅସିଦ୍ଧି—ସ୍ତ୍ରୀ. ବିଂ. ନ.ତତ୍ପୁ; (ଅ+ସିଦ୍ଧି) ଅନିଷ୍ପତ୍ତି, ପାକର ଅଭାବ, ଯୋଗଶାସ୍ତ୍ରୋକ୍ତ ସିଦ୍ଧିର ଅଭାବ, ଅସମ୍ପନ୍ନତା, ନିଷ୍ଫଳତା, ଅପୂର୍ଣ୍ଣତା ।

ଅସିଧାରା—ସ୍ତ୍ରୀ. ବି. (୬ତତ୍ପୁ) ଖଡ୍ଗର ତୀକ୍ଷ୍ଣାଗ୍ରଭାଗ ।

ଅସିଧାରାବ୍ରତ—କ୍ଲୀ. ବି. (କ.ଧା)ସଙ୍ଗମନିବାରଣାର୍ଥ ସ୍ତ୍ରୀ ପୁରୁଷଙ୍କ ମଧ୍ୟରେ ଉନ୍ମୁକ୍ତ ଅସିସ୍ଥାପନପୂର୍ବକ ଏକ ଶେଯରେ ଶୟନ, ଶେଯରେ ଯୁବକ ଯୁବତୀର ଅବିକୃତ ଚିତ୍ତରେ ଏକତ୍ର ଅବସ୍ଥାନରୂପ ବ୍ରତ ।

ଅସିଧାବ—ପୁଂ. ବି. (ଅସି+ଧାବ+କ.ଅ) ଖଡ୍ଗମାର୍ଜନାକାରୀ, ଖଡ୍ଗ ଆଦି ଶସ୍ତ୍ରକୁ ଶାଣଦେଇ ଜୀବିକାନିର୍ବାହକାରୀ ଜାତିବିଶେଷ ।

ଅସିଧେନୁ—ସ୍ତ୍ରୀ. ବି. ଛୁରିକା, ଛୁରୀ, ବାଙ୍କଛୁରୀ ।

ଅସିପତ୍ର—ପୁଂ. ବି. (ବ.ବ୍ରୀ) ଇକ୍ଷୁବୃକ୍ଷ, ଆଖୁଗଛ, ତରବାରଖୋଳ, ନରକବିଶେଷ ।

ଅସିପତ୍ରକ—ପୁଂ.ବି. (ବ.ବ୍ରୀ)ଇକ୍ଷୁ,ଆଖୁ, ଖଣ୍ଡାଦାଢ଼ ପରି ଯାହାର ପତ୍ର ।

ଅସିପତ୍ରବନ—କ୍ଲୀ. ବି. ନରକବିଶେଷ, ଏହି ନରକବନର ବୃକ୍ଷ ଓ ପତ୍ର ସମସ୍ତ ଖଡ୍ଗପରି ଅଟେ ।

ଅସିପତ୍ରବ୍ରତ—କ୍ଲୀ. ବି. ଅଶ୍ୱମେଧମଧ୍ୟରେ କର୍ତ୍ତବ୍ୟ ବ୍ରତବିଶେଷ ।

ଅସିପାଣିକ—ପୁଂ.ବିଂ. ବ.ବ୍ରୀ; (ଅସି+ପାଣି+କ) ଖଡ୍ଗଧାରୀ ।

ଅସିପୁଚ୍ଛ—ପୁଂ. ବି. (ବ.ବ୍ରୀ) ଶୁଶୁକ, ଶିଶୁମାର ।

ଅସିପୁଚ୍ଛକ—ପୁଂ. ବି. (ଅସି+ପୁଚ୍ଛକ) ଯାହାର ପୁଚ୍ଛ ଖଡ୍ଗ ପରି, ଶିଶୁମାରନାମକ ଜନ୍ତୁ । [ଛୁରୀ ।

ଅସିପୁତ୍ରିକା—ସ୍ତ୍ରୀ. ବି. (୬ତତ୍ପୁ) ଛୁରିକା,

ଅସିପୁତ୍ରୀ—ସ୍ତ୍ରୀ. ବି. (ଅସି+ପୁତ୍ରୀ) ଛୁରିକା, ଛୁରୀ ।

ଅସିଫଳକ—ବି. ୬ତତ୍ପୁ;(ଅସି+ଫଳକ) ଖଣ୍ଡାର ଫଳା, ଅସିପତ୍ର ।

ଅସିମେଦ—ପୁଂ.ବିଂ.(ବ.ବ୍ରୀ)ବିଟଖଦିର, ଖଇର, ପାକଡ଼ା ଖଇର ।

ଅସିର—ବି.ବିଂ. (ଅସି+ଇର)କ୍ଷେପକ ।

ଅସିଲତା—ବି. (୬ତତ୍ପୁ) ଖଣ୍ଡାର ଫଳା, ତରବାରୀ ।

ଅସିଲୋମା—ପୁଂ.ବି.ଦନୁର ପୁତ୍ରବିଶେଷ ।

ଅସିସାଧକ—ବି. ବିଂ. (୬ତତ୍ପୁ) ଖଡ୍ଗସାଧନାକାରୀ,ଅସି-ବ୍ୟବସାୟୀ, ଯୁଦ୍ଧୋପଜୀବୀ । [ଯୋଗ୍ୟ ।

ଅସିହତ୍ୟ—ବି. ବିଂ. ଖଡ୍ଗଦ୍ୱାରା ବଧର

ଅସିହେତି—ପୁଂ.ବି. (ବ.ବ୍ରୀ) ଖଡ୍ଗଦ୍ୱାରା ଯୁଦ୍ଧକାରୀ, ଖଡ୍ଗଧାରୀ ଯୋଦ୍ଧା ।

ଅସୀମ—ବି. ବିଂ. (ଅ+ସୀମନ+ଅ) ସୀମାରହିତ, ଅନନ୍ତ, ଅଶେଷ (ସ୍ତ୍ରୀ) ଅସୀମା, (କ୍ଲୀ. ବି) ଅନନ୍ତ, ବ୍ରହ୍ମ ।

ଅସୁଅ—ଗ୍ରା. ବି. (ଫ.ଅ+ସ୍ରୋତଃ) ସ୍ରୋତର ଅଭାବ ।

ଅସୁଆଦ—ଗ୍ରା.ବିଂ.(ଫ.ଅସ୍ୱାଦୁ)ଅସ୍ୱାଦୁ, ଯାହା ସ୍ୱାଦ ଲାଗେ ନାହିଁ, (ବି) ସ୍ୱାଦହୀନତା, ଅସ୍ୱାଦୁତା, ଅରୁଚି ।

ଅସୁକର—ବି.ବିଂ. (ଅ+ସୁକର)ଦୁଷ୍କର, କଷ୍ଟସାଧ୍ୟ ।

ଅସୁକୁ—ଗ୍ରା. ବି. ଘୃଣା, ଅରୁଚି,ଅସୁଖ ।

ଅସୁକୁଣ୍ଠା—ଗ୍ରା. ବିଂ. (ଫ.ଅଶୁଷ୍କା) ଯେ ଶୁଖି ଯାଇ ନ ଥାଏ ।

ଅସୁକ୍ଷଣ—କ୍ଲୀ. ବି. ଅବଜ୍ଞା, ଅନାଦର ।

ଅସୁଖକର—ବି. ବିଂ. ନ.ତତ୍ପୁ; (ଅସୁଖ+କୃ+ଅ) କ୍ଲେଶଜନକ, ଦୁଃଖପ୍ରଦ, କଷ୍ଟଦାୟକ, (ସ୍ତ୍ରୀ) ଅସୁଖକରୀ ।

ଅସୁଖାବହ—ବି. ବିଂ. (୬ତତ୍ପୁ) ଅସୁଖଜନକ, ଦୁଃଖଦାୟକ, କ୍ଲେଶକର,(ସ୍ତ୍ରୀ) ଅସୁଖାବହା ।

ଅସୁଖୀ—ପୁଂ.ବିଂ.(ଅସୁଖ+ଇନ୍)ଦୁଃଖୀ, କ୍ଲେଶୀ,ପୀଡ଼ିତ,ଅସନ୍ତୁଷ୍ଟ,(ସ୍ତ୍ରୀ)ଅସୁଖିନୀ ।

ଅସୁଖୋଦର୍କ—ବିଂ.(ବ.ବ୍ରୀ)ଦୁଃଖଜନକ, ଯାହାର ଶେଷଫଳ ଦୁଃଖ ।

ଅସୁଗୁରୁ—ଗ୍ରା. ବିଂ. ଅସୁନ୍ଦର,ଅସୁବିଧାଜନକ, ଗୋଳମାଳିଆ, ବଗିଡ଼ି ଯାଇଥିବା, (ବି) ଅସୁବିଧା, ରୋଗ, ଅସୁନ୍ଦରପଣ ।

ଅସୁଗମ—ବି. ବିଂ. (ନ.ତତ୍ପୁ) ଦୁର୍ଗମ, ଦୁର୍ବୋଧ, ଅସୁକର, ଦୁରୂହ (ସ୍ତ୍ରୀ) ଅସୁଗମା ।

ଅସୁତୃପ—ପୁଂ. ବି. ୬ତତ୍ପୁ,(ଅସୁ+ତୃପ୍+ଅ) ଯମଦୂତବିଶେଷ ।

ଅସୁନ୍ଦର—ପୁଂ. ବିଂ. (ଅ+ସୁନ୍ଦର) କଦାକାର, କୁତ୍ସିତ, ଅନୁଚିତ,ଅନ୍ୟାଯ୍ୟ, (ସ୍ତ୍ରୀ) ଅସୁନ୍ଦରୀ, (ବି.) ଅସୌନ୍ଦର୍ଯ୍ୟ ।

ଅସୁଧାରଣ—କ୍ଲୀ. ବି. (୬ତତ୍ପୁ) ଜୀବନଧାରଣ, ଜୀବିତ ଥିବା ଜୀବ ।

ଅସୁନୀତି—ସ୍ତ୍ରୀ. ବି. (ଅସୁ+ନୀ+ତି) ନ.ତତ୍ପୁ;ପ୍ରାଣବାୟୁ,ଉଦ୍‌ଗମନୀତ ନୁହେ ।

ଅସୁପ୍ତ—ବି. ବିଂ. (ନ.ତତ୍ପୁ) ଅନିଦ୍ରିତ, ନିଦ୍ରାହୀନ,ବିନିଦ୍ର,ଜାଗ୍ରତ(ସ୍ତ୍ରୀ)ଅସୁପ୍ତା ।

ଅସୁମ୍ଭ—ବି.ବିଂ. ସୋମଲତାରଅଭିଷବକର୍ତ୍ତା ନୁହେ, ଯେ ସୋମଲତା ଛେଚେ ନାହିଁ ।

ଅସୁଭୃତ୍—ବି. ବିଂ. (ଅସୁ+ଭୃ+କ୍ୱିପ୍) ପ୍ରାଣଧାରୀ,ପ୍ରାଣୀ,ଜୀବନ୍ତ,ସଜୀବ ।

ଅସୁମାନ୍—ପୁଂ.ବିଂ.(ଅସୁ+ମତ୍)ପ୍ରାଣୀ, ସଜୀବ, ଜୀବନ୍ତ (ସ୍ତ୍ରୀ) ଅସୁମତୀ ।

ଅସୁମାର(ର)—ଗ୍ରା. ବିଂ. ଅସଂଖ୍ୟ, ଅଗଣିତ, ଅତ୍ୟଧିକ, ଅଶେଷ, ଅସୀମ, ଅପାର, ଅପ୍ରମେୟ ।

ଅସୁର—ପୁଂ. ବି. ନ.ତତ୍; (ଅ + ସୁର) ସୁରବିରୋଧୀ, ଦୈତ୍ୟ, ଦାନବ ।

ଅସୁରକ୍ଷ—ବି. ବିଂ. ( ଅସୁ + ସୁ + ରକ୍ଷ + ର୍ମ.ଅ ) ଯାହା ସ୍ୱଚ୍ଛନ୍ଦେ ରକ୍ଷା କରା ଯାଏ ନାହିଁ, ଯାହାକୁ ଜଗିରଖିବା କଷ୍ଟକର, ବିନାଶୀ, (ସ୍ତ୍ରୀ) ଅସୁରକ୍ଷା ।

ଅସୁରଭାଗ—ଗ୍ରା.ବି. (ଜ୍ୟୋତିଷ ପରିଭାଷା) ଦକ୍ଷିଣ ଭୂଗୋଲାର୍ଦ୍ଧ ।

ଅସୁରଭୋଜନ—ଗ୍ରା. ବି. ଅସୁରଙ୍କ ପରି ବହୁତଗୁଡ଼ାଏ ଖାଇବା ।

ଅସୁରରାଜ—ପୁଂ. ବି. ବଳିରାଜା, ପ୍ରହ୍ଲାଦର ନାତି, ଅସୁରାଧ୍ୟକ୍ଷ । [ବିଷ୍ଣୁ ।

ଅସୁରରିପୁ—ପୁଂ.ବି. (୬ତତ୍) ଅସୁରାରି,

ଅସୁରସା—ସ୍ତ୍ରୀ. ବି. (ବ.ବ୍ରୀ) ତୁଳସୀବିଶେଷ, ଲଣ୍ଡାବାଗୁଲି । [ଅସୁରଘ୍ନୀ ।

ଅସୁରହା—ପୁଂ. ବିଂ. ଅସୁରନାଶକ, ସ୍ତ୍ରୀ)

ଅସୁରା—ସ୍ତ୍ରୀ ବି. (ଅ + ସୁ + ରା + କ.ଅ + ଆ) ରାତି, ରାଶି । [ଶୁକ୍ରାଚାର୍ଯ୍ୟ ।

ଅସୁରାଚାର୍ଯ୍ୟ—ପୁଂ.ବି. (ଅସୁର + ଆଚାର୍ଯ୍ୟ)

ଅସୁରାଧିପ—ପୁଂ.ବି. ପ୍ରହ୍ଲାଦର ପୌତ୍ର, ବଳିଦୈତ୍ୟ ।

ଅସୁରାହ୍ୱ—କ୍ଲୀ. ବି. କାଂସ୍ୟ, କଂସା ।

ଅସୁର୍ଯ୍ୟ—ବି.ବିଂ. ଅସୁରଙ୍କର ହିତକର ।

ଅସୁରୀ—ସ୍ତ୍ରୀ. ବି. (ଅସୁର + ଈ)ରାକ୍ଷସୀ, ରାଈ ସୋରିଷ, ଅଲକ୍ଷଣୀ ବା କ୍ରୁଦ୍ଧ ତା ସ୍ତ୍ରୀ, ବୃକ୍ଷବିଶେଷ ।

ଅସୁରୁଣୀ—ଗ୍ରା.ସ୍ତ୍ରୀ.ବି. (ଅସୁର + ଉଣୀ) ଅସୁରୀ (ଦେଖ) ।

ଅସୁଲ—(ଯା.) ବି. ଆଦାୟ, ଅନ୍ୟଠାରୁ ଧନଆଦି ଗ୍ରହଣ,ଧନାଦି ନେବା,ଦେଣାଦାର ପରିଶୋଧ ।

ଅସୁଲଭ—ବି.ବିଂ.ନ.ତତ୍;(ଅ + ସୁଲଭ) ଦୁଷ୍ପ୍ରାପ୍ୟ, ସୁଲଭ ନୁହେଁ, ଦୁର୍ଲ୍ଲଭ,ମହର୍ଗ (ଗ୍ରା.ବିଂ) ଅସୁନ୍ଦର,ଅପ୍ରଶଂସାର୍ହ,ନିନ୍ଦ୍ୟ ।

ଅସୁଷ୍ୱି—ବି. ବିଂ. ସୋମଲତାର ପୀଡ଼କ ନୁହେଁ, ଯେ ସୋମଲତା ଛେଚେ ନାହିଁ ।

ଅସୁତାର—ଗ୍ରା. ବି. ଅସଙ୍ଗତି, ଯୋଗ୍ରହୀନତା, ଅସଚ୍ଛଳଅବସ୍ଥା, ଦୈନ୍ୟ (ବିଂ) ଅସୁବିଧାମୟ,ଅଟଙ୍କିଆ, ଅସୁସ୍ଥ, ଅସୃତ୍ର, ଅସାଧ, ଅଶୋଭନୀୟ, ଅନୁପଯୁକ୍ତ, ବିଗିଡ଼ିଥିବା ।

ଅସୁସୂ—ପୁଂ. ବି. ବାଣ ।

ଅସୁସ୍ଥ—ବି. ବିଂ. ନ.ତତ୍; (ଅ + ସୁସ୍ଥ) ପୀଡ଼ିତ, ସୁଖରହିତ, ରୁଗ୍‌ଣ, ଅସୁଖୀ, (ସ୍ତ୍ରୀ) ଅସୁସ୍ଥା, (ବି) ଅସୁସ୍ଥତା ।

ଅସୁସ୍ଥି—ଗ୍ରା.ବିଂ. ଯେ ଶ୍ରମକାତର ନୁହେଁ, ଅନଳସ, ଷ୍ଟୁର୍ତ୍ତିବାନ୍ ।

ଅସୁହୃତ୍—ପୁଂ. ବି. (ନ.ତତ୍) ଅଦେଖା, ଅମିତ୍ର, ଶତ୍ରୁ, ପ୍ରତିପକ୍ଷ ।

ଅସୂ—ସ୍ତ୍ରୀ.ବି. ଯେ ସ୍ତ୍ରୀ ପ୍ରସବ କରେ ନାହିଁ, ବନ୍ଧ୍ୟା ।

ଅସୂର୍କ୍ଷଣ, ଅସୂକ୍ଷଣ—କ୍ଲୀ. ବି. ଅନାଦର, ଅବଜ୍ଞା, ଅବହେଳା ।

ଅସୂକ୍ଷ୍ମ—ବି.ବିଂ. (ନ.ତତ୍) ସ୍ଥୂଳ,ମୋଟା, ଯାହା ସରୁ ବା ମିହି ନୁହେଁ ।

ଅସୂକ୍ଷ୍ମଦର୍ଶୀ—ପୁଂ.ବିଂ. (ନ.ତତ୍)ସୂକ୍ଷ୍ମଦର୍ଶୀତାରହିତ, ସୂକ୍ଷ୍ମାନୁସୂକ୍ଷ୍ମଦର୍ଶନବିହୀନ, ସ୍ଥୂଳଦର୍ଶୀ, ସ୍ଥୂଳବୁଦ୍ଧି, ଯେ ମୋଟାମୋଟି ଦେଖେ (ସ୍ତ୍ରୀ) ଅସୂକ୍ଷ୍ମଦର୍ଶିନୀ ।

ଅସୂତ—ବି. ବିଂ. ଅପ୍ରସୂତ, ଯେ ପ୍ରସବ କରେନାହିଁ, ଯେ କୌଣସି କର୍ମ କରେ ନାହିଁ ।

ଅସୂତଜରନ୍ତୀ—ସ୍ତ୍ରୀ.ବି. (ଅସୂତା + ଜରନ୍ତୀ) ଯେଉଁ ସ୍ତ୍ରୀ ପିଲାଜନ୍ମ ନକରି ବୁଢ଼ୀ ହୋଇ ଥାଏ ।

ଅସୂତି—ବି. (ଅ + ସୂ + ଭା.ତି) ଜନ୍ମ ନ କରିବା, ବାଧା, ବନ୍ଧ୍ୟାକରଣ ।

ଅସୂନୁ—ବି.ବିଂ. (ବ.ବ୍ରୀ.)ଅସୂତ, ଅପୁତ୍ରକ, ନିଃସନ୍ତାନ ।

ଅସୂୟ—ପୁଂ.ବିଂ. (ଅସୂ + କ.ଅ)ଅସୂୟାଯୁକ୍ତ, ପରଶ୍ରୀକାତର, ଅସନ୍ତୁଷ୍ଟ (ସ୍ତ୍ରୀ) ଅସୂୟା ।

ଅସୂୟକ—ବି.ବିଂ.(ଅସୂୟ + ଅକ)ଗୁଣରେ ଦୋଷାରୋପଶୀଳ, ଯେ ପରଗୁଣରେ ଦୋଷ ଦିଏ ।

ଅସୂୟନ—କ୍ଲୀ.ବି.(ଅସୂ + ଭା.ଅନ) ନିନ୍ଦନ ଅପବାଦ, ଦ୍ୱେଷ, ଈର୍ଷା ।

ଅସୂୟା—ସ୍ତ୍ରୀ. ବି. (ଅ + ସୂ + ଆ) ପରକାର୍ଯ୍ୟରେ ଦୋଷାରୋପଣ,ଈର୍ଷା,ଦ୍ୱେଷ, ନିନ୍ଦା, କ୍ରୋଧ, ପରଶ୍ରୀକାତରତା, ପରର ସୁଖ ଦେଖି ନ ପାରିବା, ଅହିପତ୍ନୀ ।

ଅସୂୟାପର—ପରତନ୍ତ୍ର,ପରବଶ, ବି.ବିଂ. ବ.ବ୍ରୀ) ପରଗୁଣରେ ଦୋଷାବିଷ୍କାରକ, ଈର୍ଷାପରାୟଣ ଇତ୍ୟାଦି, (ସ୍ତ୍ରୀ) ଅସୂୟାପରା ।

ଅସୂୟିତା—ପୁଂ.ବିଂ.(ଅସୂ + ତୃ)ଅସନ୍ତୁଷ୍ଟ, ଅସୂୟାଯୁକ୍ତ, ପରଶ୍ରୀକାତର ( ସ୍ତ୍ରୀ ) ଅସୂୟିତ୍ରୀ ।

ଅସୂୟୁ—ବି. ବିଂ. ଅସୂୟାଶୀଳ, କ୍ରୋଧୀ, ପରଶ୍ରୀକାତର । [ରହିତ ।

ଅସୂର—ବି. ବିଂ. ସ୍ତୋତ୍ରରହିତ, ସ୍ତବ-

ଅସୂର୍ତ୍ତ—ବି. ବିଂ. ପ୍ରାଣବାତ ।

ଅସୂର୍ଯ୍ୟଂପଶ୍ୟ—ବି.ବିଂ (ଅ + ସୂର୍ଯ୍ୟଂ + ପଶ୍ୟ) ଅତ୍ୟନ୍ତଗୁପ୍ତ, ଅନ୍ତଃପୁରବାସିନୀ ରାଣୀପ୍ରଭୃତି (ସ୍ତ୍ରୀ) ଅସୂର୍ଯ୍ୟଂପଶ୍ୟା ।

ଅସୂର୍ଯ୍ୟଂପଶ୍ୟରୂପା—ସ୍ତ୍ରୀ. ବିଂ. (ବ.ବ୍ରୀ) ଯାହାର ରୂପକୁ ସୂର୍ଯ୍ୟ ସୁଦ୍ଧା ଦେଖିନାହାନ୍ତି, ଅତ୍ୟନ୍ତସୁନ୍ଦରୀ, ଅନ୍ତଃପୁରବାସିନୀ ନାୟିକା ।

ଅସୂର୍ଯ୍ୟଂପଶ୍ୟା—ସ୍ତ୍ରୀ. ବିଂ. (ଅସୂର୍ଯ୍ୟଂପଶ୍ୟ + ଆ ) ଅତିଲାବଣ୍ୟମୟୀ, ସତତ ଅନ୍ତଃପୁରରେ ଆବଦ୍ଧ ଅତିକୋମଳଦେହା ।

ଅସୃକ୍—କ୍ଲୀ.ବି. ଅ + ସୃଜ୍ + କ.କ୍ୱିପ୍) ରକ୍ତ, ରୁଧିର, ଶୋଣିତ, କୁଙ୍କୁମ, ଷୋଡ଼ଶ ଯୋଗ ।

ଅସୃକ୍‌କର—ପୁଂ.ବି.(ଅସୃକ୍ + କୃ + ଅ) (୬ତତ୍) ଶରୀରସ୍ଥ ରସଧାତୁ ।

ଅସୃଗ୍‌ଧରା—ସ୍ତ୍ରୀ. ବି. (ଅସୃକ୍ + ଧୃ + ଅ + ଆ) ଚର୍ମ, ତ୍ୱକ୍ ।

ଅସୃକ୍‌ଧାର—ବି. ( ଅସୃକ୍ + ଧୃ + ଅ ) ଅନିୟମିତ ଓ ଅତିରିକ୍ତ ରକ୍ତସ୍ରାବରୂପ ରୋଗ ।

ଅସୃଗ୍‌ବହା—ସ୍ତ୍ରୀ. ବି. ନାଡ଼ୀବିଶେଷ ।

ଅସୃଗ୍‌ବିମୋକ୍ଷଣ—କ୍ଲୀ. ବି. (ଅସୃକ୍ + ବିମୋକ୍ଷଣ) ରକ୍ତନିଃସରଣ, ରକ୍ତସ୍ରାବ-ରୂପ ରୋଗବିଶେଷ ।

ଅସୃକ୍—କ୍ଲୀ.ବି. ରୁଧିର, ରକ୍ତ, କୁଙ୍କୁମ ।

ଅସୃଜ୍ୟ—ତ୍ରି. ବିଂ. ( ନ.ତତ୍ ) ଅସର୍ଜ-ନୀୟ, ଯାହା ସୃଷ୍ଟି କରିହୋଇନାହିଁ, (ସ୍ତ୍ରୀ) ଅସୃଜ୍ୟା ।

ଅସୃଣି—ତ୍ରି. ବିଂ. ( ବ.ବ୍ରୀ ) ନିରଙ୍କୁଶ; ଉଚ୍ଛୃଙ୍ଖଳ (ସ୍ତ୍ରୀ) ଅସୃଣୀ ।

ଅସୃପାଟୀ—ସ୍ତ୍ରୀ.ବି.ରକ୍ତଧାରା,ରକ୍ତସ୍ରୋତ ।

ଅସେଚନ—ବିଂ. ( ଅ + ସେଚନ + ଅ) ଅତିସୁନ୍ଦର, ଅତିପ୍ରିୟଦର୍ଶନ ।

ଅସେଚନକ—ତ୍ରି. ବିଂ. ବ.ବ୍ରୀ, (ଅ + ସେଚନ + ଅ + କ ) ଯାହାଠାରେ ଚକ୍ଷୁର ଓ ମନର କ୍ଷରଣ ହୁଏ ନାହିଁ, ଅତି ସୁନ୍ଦର, ଅତିପ୍ରିୟଦର୍ଶନ, ଯାହାକୁ ଦେଖିଲେ ମନ ଓ ଆଖି ତାହାଠାରେ ଲାଗିରହେ ଏବଂ ଦେଖିବାର ଆକାଙ୍‌କ୍ଷା ନିବୃତ୍ତ ହୁଏ ନାହିଁ, ସୌମ୍ୟଦର୍ଶନ ।

ଅସେବନ—କ୍ଲୀ.ବି. (ନ.ତତ୍) ସେବାର ଅଭାବ,ଅପରିଚର୍ଯ୍ୟା, ଅସମାଦର, ଅନୁ-ପଭୋଗ, ଅନାରାଧନା, ଔଷଧାଦି ନ ଖାଇବା, (ବିଂ) ସେବାଶୂନ୍ୟ ।

ଅସେବନୀୟ,ଅସେବ୍ୟ—ତ୍ରି.ବିଂ.(ନ.ତତ୍) ଅନାରାଧ୍ୟ, ଅସମାଦରଣୀୟ, ସେବନର ଅଯୋଗ୍ୟ ବା ଅସାଧ୍ୟ, ଅନୁପଭୋଗ୍ୟ, ଅଭକ୍ଷ୍ୟ ।

ଅସେବିତ—ତ୍ରି.ବିଂ. (ନ.ତତ୍) ଯାହାର ସେବା କରା ହୋଇ ନାହିଁ, ଅସମାଦୃତ, ଅନାଦୃତ,ଅଭକ୍ଷିତ,ଅବଜ୍ଞାତ,ଅପାଳିତ, ଅନୁପଭୁକ୍ତ, (ସ୍ତ୍ରୀ) ଅସେବିତା ।

ଅସୈରଣ—ଗ୍ରା. ବି. ଯାହା ସହାଯାଏ ନାହିଁ,ଅନ୍ୟାୟବିଷୟ,ଅସହ୍ୟବ୍ୟାପାର ।

ଅସୈଣିକ—ଗ୍ରା.ବି. ଅପ୍ରଣୟ, ଅନୈକ୍ୟ, ଅମେଳ ।

ଅସୌ—(ସର୍ବ;) ଅଦସ୍ ଶବ୍ଦରଜ ।

ଅସୌଜନ୍ୟ—କ୍ଲୀ. ବି. ( ନ.ତତ୍ ) ସୌଜନ୍ୟାଭାବ,ଅସୁଜନତା,ଦୌର୍ଜନ୍ୟ, ଅଶିଷ୍ଟତା, ଅଭଦ୍ରତା ।

ଅସୌନ୍ଦର୍ଯ୍ୟ—କ୍ଲୀ. ବି. ସୌନ୍ଦର୍ଯ୍ୟର ଅଭାବ (ବିଂ) ଅସୁନ୍ଦର ।

ଅସୌମ୍ୟ—ତ୍ରି.ବିଂ.ସୁନ୍ଦରତାର ବିରୋଧୀ, ଅପ୍ରିୟ, ପ୍ରିୟଦର୍ଶନ ନୁହେ, ଅପ୍ରୀତି-କର, ଅକମନୀୟ, କୁତ୍ସିତ ( ସ୍ତ୍ରୀ ) ଅସୌମ୍ୟା ।

ଅସୌମ୍ୟଦର୍ଶନ—ତ୍ରି. ବିଂ. (ବ.ବ୍ରୀ) ଅସୁଦୃଶ୍ୟ, ଅସୁନ୍ଦରମୂର୍ତ୍ତି, କଦାକାର, କୁତ୍ସିତ, (ସ୍ତ୍ରୀ) ଅସୌମ୍ୟଦର୍ଶନା ।

ଅସୌମ୍ୟସ୍ୱର—ତ୍ରି.ବିଂ. କର୍କଶସ୍ୱରଯୁକ୍ତ ।

ଅସୌଷ୍ଠବ—କ୍ଲୀ. ବି. (ଅ + ସୌଷ୍ଠବ) ସୌନ୍ଦର୍ଯ୍ୟର ଅଭାବ, ଅମନୋମିଳନ, ଅକୌଶଳ, ଅପରିପାଟୀ, ଅଳଙ୍କାର-ଶାସ୍ତ୍ରୋକ୍ତ ସ୍ୱରଦଶାବିଶେଷ ( ବିଂ ) ସୌନ୍ଦର୍ଯ୍ୟହୀନ, କଦାକାର, ( ସ୍ତ୍ରୀ ) ଅସୌଷ୍ଠବା ।

ଅସୌହାର୍ଦ୍ଦ—କ୍ଲୀ.ବି.(ନ.ତତ୍)ଅସଖ୍ୟ, ଅମିତ୍ରତା, ଅସଦ୍ଭାବ, ବୈର, ଶତ୍ରୁତା ।

ଅସୌହୃଦ—କ୍ଲୀ. ବି. (ନ.ତତ୍) ଅସଂଖ୍ୟ ଶତ୍ରୁତା, ଅପ୍ରଣୟ ।

ଅସ୍କନ୍ନ—ତ୍ରି. ବିଂ. କ୍ଷରିତ ନୁହେ ।

ଅସ୍କନ୍ଦନ—ତ୍ରି. ବି. ବୋଧର. ଅଭାବ, ବୋଧଶୂନ୍ୟ ।

ଅସ୍କର—ଗ୍ରା. ବି. ଅଳିଆ, ଆବର୍ଜନା, ମଇଳା (ବିଂ) ଆବର୍ଜନାମୟ, ମଇଳା-ପୂର୍ଣ୍ଣ, ଅପରିଷ୍କୃତ ।

ଅସ୍କଧୋଯୁ—ତ୍ରି. ବିଂ. ଅହ୍ରସ୍ୱ, ଅନଳ୍ପ, ଅବିଚ୍ଛିନ୍ନ ।

ଅସ୍ଖଳିତ—ତ୍ରି. ବିଂ. ( ନ.ତତ୍) ଯାହା ସ୍ଖଳିତ ହୁଏ ନାହିଁ,ଅପ୍ରମତ୍ତ,ଅବିଚଳିତ, ଅବ୍ୟାହତ, ଅଚଞ୍ଚଳ ।

ଅସ୍ତ—କ୍ଲୀ.ବି. (ଅସ + ତ) ପଶ୍ଚିମାଚଳ କ୍ଷିପ୍ତ, ଅବସିତ, ଦର୍ଶନର ଅଯୋଗ୍ୟତ୍ୱ, ଲଗ୍ନର ସପ୍ତମ ସ୍ଥାନ ।

ଅସ୍ତ—ବିଂ. ପ୍ରେରିତ, ତ୍ୟକ୍ତ, ଅବସାନ-ପ୍ରାପ୍ତ, ତଳକୁ ଗତ,(ବି) ମୃତ୍ୟୁ,ଶେଷ, ଅଦର୍ଶନ, କ୍ଷୟ, ବିନାଶ ।

ଅସ୍ତକ—ପୁଂ. ବି. ନିର୍ବାଣ, ମୋକ୍ଷ ।

ଅସ୍ତଗ—ପୁଂ. ବି. ସୂର୍ଯ୍ୟକିରଣରେ ଆଚ୍ଛନ୍ନହେବା, ଅଦୃଶ୍ୟଗ୍ରହ, ଅଦୃଶ୍ୟ-ଦ୍ରବ୍ୟମାତ୍ର ।

ଅସ୍ତଗତ—ତ୍ରି. ବିଂ. (୨ତତ୍;) (ଅସ୍ତ + ଗତ) ପଶ୍ଚିମାଚଳପ୍ରାପ୍ତ, ଅନ୍ତର୍ହିତ, ଦୃଷ୍ଟିବହିର୍ଭୂତ, ଅଦୃଶ୍ୟ, ଭୂତ, ମୃତ, ବିଲୁପ୍ତ, (ସ୍ତ୍ରୀ) ଅସ୍ତଗତା ।

ଅସ୍ତକରିବା—ଗ୍ରା. କ୍ରି. ( ସଂ. ଅସ୍ତ ) ପାସୋରିବା ।

ଅସ୍ତକାଳ—ବି. ୬ତତ୍, ( ଅସ୍ତ + କାଳ) ଗ୍ରହନକ୍ଷତ୍ରାଦିଙ୍କ ବୁଡ଼ିଯିବା ସମୟ, ବିପଦକାଳ, ସୂର୍ଯ୍ୟାସ୍ତସମୟ, ମନୁଷ୍ୟର ସମ୍ପତ୍ତି କ୍ଷୟହେବା ସମୟ ।

ଅସ୍ତଗମନ—କ୍ଲୀ. ବି. ( ୨ତତ୍ ) ବୁଡ଼ିଯିବା ଅବସ୍ଥା, ପଶ୍ଚିମାଚଳପ୍ରାପ୍ତି ।

ଅସ୍ତଗମନୋନ୍ମୁଖ—ତ୍ରି.ବିଂ. ଅସ୍ତାଚଳେ ଗମନୋଦ୍ୟତ,(ସ୍ତ୍ରୀ)ଅସ୍ତଗମନୋନ୍ମୁଖୀ ।

ଅସ୍ତଗାମୀ—ପୁଂ. ବିଂ. (ଅସ୍ତ + ଗମ୍ + କ,ଇନ୍) ଅସ୍ତାଚଳେ ଗମନଶୀଳ, ବିଲୀୟମାନ, (ସ୍ତ୍ରୀ) ଅସ୍ତଗାମିନୀ ।

ଅସ୍ତଗିରି—ପୁଂ. ବି. କ.ଧା (ଅସ୍ତ + ଗିରି) ଅସ୍ତାଚଳ, ଚରମପର୍ବତ, ପଶ୍ଚିମାଚଳ ।

ଅସ୍ତଂ—(ଅବ୍ୟ) ଅଦର୍ଶନ, ନାଶ ।

ଅସ୍ତମତ୍ତା—ସ୍ତ୍ରୀ. ବି. ଶାଲପର୍ଣ୍ଣୀ ବୃକ୍ଷ ।

ଅସ୍ତମନ—କ୍ଲୀ. ବି. ଅସ୍ତାଚଳଗମନ, ତିରୋଧାନ, ଅଦୃଶ୍ୟହେବା, ସୂର୍ଯ୍ୟସହିତ ଏକଧ୍ରୁବକରେ ଅଇ, କୌଣସି ତାରାର ଉଦୟହେବା ।

ଅସ୍ତମୟ—ପୁଂ. ବି. ଅବସାନ, ପ୍ରଳୟ ସୂର୍ଯ୍ୟାଦିର ଅଦର୍ଶନ, ଅନ୍ୟଗ୍ରହ ସମସ୍ତ-ଙ୍କର ସୂର୍ଯ୍ୟସହିତ ଯୋଗ,କ୍ଷୟ,ବିନାଶ ।

ଅସ୍ତମୟନ—କ୍ଲୀ. ବି. ଅସ୍ତଗମନ, ଅସ୍ତ-ହେବା, ଅନ୍ତର୍ଦ୍ଧାନ, ବିଲୋପ, ବିଧ୍ୱଂସ ।

ଅସ୍ତମିତ—ତ୍ରି. ବିଂ. ତତ୍, ( ଅସ୍ତଂ + ଇ + ତ ) ଅସ୍ତଗତ, ନଷ୍ଟ, ବିଲୁପ୍ତ, ଅଦୃଶ୍ୟ, (ସ୍ତ୍ରୀ) ଅସ୍ତମିତା ।

ଅସ୍ତର—(ଯା ବି. କୁର୍ତ୍ତାର ବାହାର କନାତଳେ ଯେଉଁ ପ୍ରସ୍ତେ ନରମ ଓ ମଜଭୁତିଆ କନା ଦିଆଯାଏ ।

ଅସ୍ତର—ଯା. ବି. ରଙ୍ଗର ପ୍ରଥମ ଲେପ, ପଲସ୍ତରା,ଚୂନ, ସୁରୁକି, ବାଲିପ୍ରଭୃତିର ପ୍ରଲେପ, ଅନ୍ତରପଟ,ସ୍ତ୍ରୀମାନେ ବାହାର୍ ଲୁଗା ତଳେ ପିନ୍ଧିବା ଲୁଗା', (ଗ୍ରା.ବି. ସଂ.ଅସ୍ତ୍ର)ଅସ୍ତ୍ର,ଶସ୍ତ୍ର,ଅପରେସନ,ଉପାୟ ।

ଅସ୍ତରଣ—କ୍ଲୀ. ବି. ବିସ୍ତାର ନ କରିବା ।

ଅସ୍ତବ୍ଧ—ତ୍ରି.ବି. (ନ.ତତ୍ପୁ) ଅଜଡ଼ୀଭୂତ, ଅଚମତ୍କୃତ, ଅବିହ୍ୱଳ, (ସ୍ତ୍ରୀ) ଅସ୍ତବ୍ଧା ।

ଅସ୍ତବ୍ୟସ୍ତ—ତ୍ରି. ବିଂ. (ଅସ୍ତ + ବ୍ୟସ୍ତ) ଅସ୍ଥିର, ଚଞ୍ଚଳ, ବ୍ୟାକୁଳିତ, ଲେଉଟ-ପାଉଟ, ଗିଜ୍-ଖରାପ, ବିନଷ୍ଟ, ଉଦ୍ବେଳିତ, ଅସ୍ତାଚଳରେ ନିକ୍ଷିପ୍ତ,ଗୋଳମାଳିଆ ।

ଅସ୍ତା—ଗ୍ରା.ବି. ପାଣି ଝରିବା ବନ୍ଦ କରିବା ପାଇଁ ଡଙ୍ଗାର ପଟାଇ ସନ୍ଧି ମେଳରେ ଖନ୍ଦାଯିବା କୁମ୍ଭୀଗଛର ଛେଲି, ଯେଉଁ ଗଛର ଛାଲରୁ ଅସ୍ତା ହୁଏ, କୁମ୍ଭୀଗଛ ।

ଅସ୍ତାଘ—ତ୍ରି. ବିଂ. ଅତିଗଭୀର, ଅଗାଧ ।

ଅସ୍ତାଚଳ—ପୁଂ.ବି କ.ଧା;(ଅସ୍ତ + ଅଚଳ) ଅସ୍ତଗିରି, ପଶ୍ଚିମାଚଳ ।

ଅସ୍ତାଚଳଗତ—ତ୍ରି. ବିଂ. (୨ତତ୍ପୁ)ଅସ୍ତମିତ, ଅସ୍ତଗିରି-ଶିଖରାରୂଢ଼ ।

ଅସ୍ତାଚଳଗାମୀ—ପୁଂ.ବିଂ. ଅସ୍ତଗମନୋଦ୍ୟତ, ଅସ୍ତାଚଳଗତ, (ସ୍ତ୍ରୀ) ଅସ୍ତାଚଳଗାମିନୀ ।

ଅସ୍ତାବଲ—(ଯା) ଘୋଡ଼ାଶାଳ, ମନ୍ଦୁରା ।

ଅସ୍ତି—(ଅବ୍ୟ)ବିଦ୍ୟମାନତା, ସ୍ଥିତି, ଭାବ, ସତ୍ତା. ଥିବା ବା ହେବା ଅବସ୍ଥା, (ଗ୍ରା) ହଁ ଅଛି (ସ୍ତ୍ରୀ.ବି) କଂସରାଜାର ପତ୍ନୀ, ଜରାସନ୍ଧର କନ୍ୟା ।

ଅସ୍ତିନାସ୍ତି—ଗ୍ରା.ବି.ହଁ କି ନାହିଁ ବୋଲି ଜବାବ, କୌଣସି କାର୍ଯ୍ୟ ହେବାର ବା ନ ହେବାର ଦୃଢ଼ ଜବାବ ।

ଅସ୍ତିକ୍ଷୀରା—ସ୍ତ୍ରୀ.ବି.ବହୁ ଦୁଗ୍ଧବତୀ ଗୋରୁ ପ୍ରଭୃତି ।

ଅସ୍ତିତ୍ୱ—କ୍ଲୀ. ବି(ଅସ୍ତି + ତ୍ୱ)ବିଦ୍ୟମାନତା, ସତ୍ତା, ସ୍ଥିତି, ସ୍ଥାୟିତ୍ୱ ।

ଅସ୍ତିମାନ୍—ପୁଂ. ବି. ଧନୀ, ଯାହାର ଧନ ଅଛି, (ସ୍ତ୍ରୀ) ଧନବିଶିଷ୍ଟା ସ୍ତ୍ରୀ ।

ଅସ୍ତୁ—ଅବ୍ୟ (ଅସ + ତୁ) ଅନୁଜ୍ଞା, ପୀଡ଼ା, ପ୍ରତିକ୍ଷେପ, ଅସୂୟା, ପ୍ରକର୍ଷ,ଅଙ୍ଗୀକାର, ପ୍ରଶଂସା, ଲକ୍ଷଣ, ଏ ହେତୁ, ଏଥିରେ ମୋର ସମ୍ମତି ଅଛି ।

ଅସ୍ତୁତ—ତ୍ରି.ବିଂ. (ନ.ତତ୍ପୁ) ଅକୃତସ୍ତବ, ଯାହାର ସ୍ତବ କରାହୋଇନାହିଁ, ଅପ୍ରଶଂସିତ ।

ଅସ୍ତୁରା—(ଯା) ବି. ଭଣ୍ଡାରିର କତୁରୀ ।

ଅସ୍ତେନ—ତ୍ରି.ବିଂ. ଚୋର ନୁହେଁ, ସାଧୁ ।

ଅସ୍ତେୟ—କ୍ଲୀ. ବି. (ନ.ତତ୍ପୁ) ଚୋରିର ଅଭାବ, ଅଚୌର୍ଯ୍ୟ ।

ଅସ୍ତୋଦୟ—ପୁଂ. ବି. ସୂର୍ଯ୍ୟ ଅସ୍ତଠାରୁ ଉଦୟ ପର୍ଯ୍ୟନ୍ତ ନିୟମପୂର୍ବକ କାର୍ଯ୍ୟକରଣ,ଅସ୍ତଠାରୁ ଉଦୟକାଳ ପର୍ଯ୍ୟନ୍ତ ।

ଅସ୍ତୋଭ—ତ୍ରି. ବି. ଅନର୍ଥକ ଶବ୍ଦଶୂନ୍ୟ

ଅସ୍ତୋନ୍ମୁଖ—ତ୍ରି. ବିଂ. (୬ତତ୍ପୁ) ଅସ୍ତଗମନୋଦ୍ୟତ(ସ୍ତ୍ରୀ) ଅସ୍ତୋନ୍ମୁଖୀ ।

ଅସ୍ତ୍ୟ—କ୍ଲୀ. ବି. ଗୃହ, ଘର, ଆଶ୍ରୟ ।

ଅସ୍ତ୍ୟଥ—(ଅବ୍ୟ) ଅଛି, ଥିବ, ରହିଅଛି, ରହିବ ।

ଅସ୍ତ୍ୟର୍ଥ—ତ୍ରି.ବିଂ.(ବ.ବ୍ରୀ) ଅଛି ଏହିପରି ଯାହାର ଅର୍ଥ ।

ଅସ୍ତ୍ୟାନ—କ୍ଲୀ.ବି. (ଅ + ସ୍ତୈ + ଭା.ଅନ) ନିନ୍ଦା, ଭର୍ତ୍ସନା, ବେଖାତିର, (ବିଂ.) ସଂହତ ନୁହେଁ, ସମୂହ ନୁହେଁ ।

ଅସ୍ତ୍ର—କ୍ଲୀ. ବି. (ଅସ + ତ୍ର) କ୍ଷେପଣୀୟ ବାଣାଦି ହତିଆର, ଗୁପ, ଧନୁ, ଶରାଦି ଆୟୁଧ, ଯେଉଁ ଅସ୍ତ୍ର ଶତ୍ରୁ ଉପରକୁ ଫିଙ୍ଗାଯାଏ ।

ଅସ୍ତ୍ରକଣ୍ଟକ—ପୁଂ.ବି.(କ.ଧା)ବାଣ,ବାଣର ଅଗ୍ରଭାଗ, କଣ୍ଟାପରି ଏଥିପାଇଁ ।

ଅସ୍ତ୍ରକାର—ପୁଂ.ବି.(ଅସ୍ତ୍ର + କୃ + ଅ)ଅସ୍ତ୍ରନିର୍ମାଣକର୍ତ୍ତା, ଯେ ଆୟୁଧ ତିଆରି କରେ ।

ଅସ୍ତ୍ରକ୍ଷତ—କ୍ଲୀ. ବି. (କ.ଧା) ଅସ୍ତ୍ରଘାତଜନିତ କ୍ଷତ, ଅସ୍ତ୍ରକୃତକ୍ଷତ ।

ଅସ୍ତ୍ରକ୍ଷେପ—ପୁଂ.ବି. (୬ତତ୍ପୁ) ଅସ୍ତ୍ରନିକ୍ଷେପ କରିବା ।

ଅସ୍ତ୍ରକ୍ଷେପକ—ପୁଂ.ବିଂ ଅସ୍ତ୍ରମୋଚନକର୍ତ୍ତା, ଯେ ଅସ୍ତ୍ର ନିକ୍ଷେପ କରେ ।

ଅସ୍ତ୍ରକ୍ଷେପଣ—କ୍ଲୀ.ବି.(୬ତତ୍ପୁ)ଅସ୍ତ୍ରମୋଚନ, ବାଣାଦି ତ୍ୟାଗ କରିବା ।

ଅସ୍ତ୍ରଗୁରୁ—ପୁଂ. ବି. ଧନୁର୍ବେଦାଚାର୍ଯ୍ୟ, ଅସ୍ତ୍ରବିଦ୍ୟାଶିକ୍ଷକ ।

ଅସ୍ତ୍ରଗ୍ରାମ—ବି.୬ତତ୍ପୁ;(ଅସ୍ତ୍ର + ଗ୍ରାମ)ନାନାବିଧ ଅସ୍ତ୍ରର ସଂଗ୍ରହ ।

ଅସ୍ତ୍ରଚାଳନ—କ୍ଲୀ. ବି. (୬ତତ୍ପୁ) ହତିଆର ଚଳାଇବା,ରୋଗୀପ୍ରତି ଚିକିତ୍ସାର୍ଥ ଅସ୍ତ୍ରପ୍ରୟୋଗ ।

ଅସ୍ତ୍ରଚିକିତ୍ସକ—ପୁଂ.ବି.(୩ତତ୍ପୁ)ହତିଆରଦ୍ୱାରା ଚିକିତ୍ସା କରିବା ବ୍ୟକ୍ତି, ଯେ ଛୁରିକାଦିଦ୍ୱାରା ବ୍ରଣାଦି ରୋଗର ଚିକିତ୍ସା କରେ ।

ଅସ୍ତ୍ରଚିକିତ୍ସା—ସ୍ତ୍ରୀ. ବି. ତତ୍ପୁ; (ଅସ୍ତ୍ର + ଚିକିତ୍ସା) ଅସ୍ତ୍ରଦ୍ୱାରା ରୋଗୋପଶମନର ଉପାୟ ।

ଅସ୍ତ୍ରଜିତ୍—ପୁଂ. ବି.(ଅସ୍ତ୍ର + ଜି + କ୍ୟପ୍ + ତୁକ୍) କବାଟ ବେଣ୍ଟ, ବୃକ୍ଷବିଶେଷ ।

ଅସ୍ତ୍ରଜୀବ—ପୁଂ. ବି. ବେତନଭୋଗୀ ସୈନିକ ବା ଯୋଦ୍ଧା ।

ଅସ୍ତ୍ରଜୀବୀ—ପୁଂ. ବିଂ. ଯେଉଁ ଲୋକ ଅସ୍ତ୍ରଦ୍ୱାରା ଜୀବିକାନିର୍ବାହ କରେ ।

ଅସ୍ତ୍ରଧାରଣ—କ୍ଲୀ.ବି.(୬ତତ୍ପୁ)ଯୁଦ୍ଧଇତ୍ୟାଦି କରିବାପାଇଁ ହତିଆର ଧରିବା ।

ଅସ୍ତ୍ରଧାରୀ—ପୁଂ. ବିଂ. (ଅସ୍ତ୍ର + ଧୃ + କ. ଇନ୍) ଯେ ଅସ୍ତ୍ରଧାରଣକରେ, ଅସ୍ତ୍ରଧାରକ, (ସ୍ତ୍ରୀ) ଅସ୍ତ୍ରଧାରିଣୀ ।

ଅସ୍ତ୍ରନିବାରଣ—ବି. (୬ତତ୍ପୁ) ଶତ୍ରୁପ୍ରେରିତ ଅସ୍ତ୍ରକୁ ଅଟକିବା ।

ଅସ୍ତ୍ରଭେଦ—ବି. ୬ତତ୍ପୁ; (ଅସ୍ତ୍ର + ଭେଦ) ଅସ୍ତ୍ରର ପ୍ରକାର, ଏକପ୍ରକାର ଅସ୍ତ୍ର ।

ଅସ୍ତ୍ରମନ୍ତ୍ର—ପୁଂ ବି. (କ.ଧା) ଅସ୍ତ୍ରପ୍ରୟୋଗର ମନ୍ତ୍ର ।

ଅସ୍ତ୍ରମାର୍ଜ—ପୁଂ. ବି. (ଅସ୍ତ୍ର + ମୃଜ + କ. ଅ) ଯେ ହତିଆର ଶାଣଦିଏ, ଶାଣକାର ।

ଅସ୍ତ୍ରଯୁଦ୍ଧ—କ୍ଲୀ.ବି.(୩ତତ୍ପୁ)ଅସ୍ତ୍ରଦ୍ୱାରାଯୁଦ୍ଧ ।

ଅସ୍ତ୍ରଲେଖା—ସ୍ତ୍ରୀ. ବି.(୬ତତ୍ପୁ) ଅସ୍ତ୍ରଦ୍ୱାରା ଲଙ୍ଘନ, ଅସ୍ତ୍ରଘାତ ଚିହ୍ନ, ଅସ୍ତ୍ରଶ୍ରେଣୀ ।

ଅସ୍ତ୍ରବନ୍ଧ—ବି.୬ତତ୍ପୁ,(ଅସ୍ତ୍ର + ବନ୍ଧ) ଶରବର୍ଷଣ, ଅବିଶ୍ରାନ୍ତ ଶରଧାରା ।

ଅସ୍ତ୍ରବିତ୍—ପୁଂ.ବିଂ. (ଅସ୍ତ୍ର + ବିଦ୍ + କ. କ୍ୱିପ୍)ଅସ୍ତ୍ରପ୍ରୟୋଗାଦିରେ ଅଭିଜ୍ଞ, ଅସ୍ତ୍ର ବିଦ୍ୟାରେ ପାରଦର୍ଶୀ ।

ଅସ୍ତ୍ରବିଦ୍ୟା—ସ୍ତ୍ରୀ. ବି.(କ.ଧା) ଅସ୍ତ୍ରକ୍ଷେପଣ ଓ ଆକର୍ଷଣଜ୍ଞାପକ ବିଦ୍ୟା, ଅସ୍ତ୍ରକ୍ଷେପଣାଦି ଜ୍ଞାନ ।

ଅସ୍ତ୍ରବେଦ—ପୁଂ.ବି.(କ.ଧା) ଧନୁର୍ବେଦ, ଅସ୍ତ୍ରବିଦ୍ୟା, ଶସ୍ତ୍ରଶାସ୍ତ୍ର, ସମରବିଜ୍ଞାନ ।

ଅସ୍ତ୍ରବେଧ—ବି ୩ତତ୍ପୁ, (ଅସ୍ତ୍ର + ବେଧ) ଦେହରେ ଅସ୍ତ୍ର ଗଳିଯିବା ।

ଅସ୍ତ୍ରବୃଷ୍ଟି—ସ୍ତ୍ରୀ. ବି. (୬ତତ୍ପୁ) ଅସ୍ତ୍ରବର୍ଷଣ, ନିରନ୍ତର ଅସ୍ତ୍ରକ୍ଷେପଣ ।

ଅସ୍ତ୍ରଶସ୍ତ୍ର— କ୍ଲୀ. ବି. ( ଦ୍ୱନ୍ଦ୍ୱ ) କ୍ଷେପଣୀୟ ଓ ଧାରଣୀୟ ଯୁଦ୍ଧୋପକରଣ ସମ୍ବନ୍ଧ ପ୍ରହରଣ ।

ଅସ୍ତ୍ରଶିକ୍ଷା—ସ୍ତ୍ରୀ. ବି. (୬ତତ୍ପୁ) ଯୁଦ୍ଧାର୍ଥ ଅସ୍ତ୍ରଚାଳନଶିକ୍ଷା ।

ଅସ୍ତ୍ରସନ୍ଧି—ପୁଂ. ବି. (୬ତତ୍ପୁ) ଅସ୍ତ୍ର ପ୍ରୟୋଗର କୌଶଳ ବା ତଥ୍ୟ ।

ଅସ୍ତ୍ରସାୟକ—ପୁଂ. ବି. (ଅସ୍ତ୍ର + ସୋ + କ.ଅକ) ନାରାଚାସ୍ତ୍ର, ସମ୍ପୂର୍ଣ୍ଣ ଲୌହମୟ ବାଣ ।

ଅସ୍ତ୍ରହୀନ—ବି. ବିଂ. ଅସ୍ତ୍ରଶୂନ୍ୟ, ଅସ୍ତ୍ରବ୍ୟାପାରଶୂନ୍ୟ, ବାକ୍‌ଯୁଦ୍ଧାଦି ।

ଅସ୍ତ୍ରାଗାର—କ୍ଲୀ. ବି. (ଅସ୍ତ୍ର + ଆଗାର) ଅସ୍ତ୍ର ରଖିବାର ଗୃହ ।

ଅସ୍ତ୍ରାଘାତ—ପୁଂ. ବି. ଅସ୍ତ୍ରପ୍ରହାର,ହତିଆରର ଚୋଟ ।

ଅସ୍ତ୍ରାହତ—ବି. ବିଂ ଅସ୍ତ୍ରଦ୍ୱାରାଆହତ ।

ଅସ୍ତ୍ରୀ—ପୁଂ. ବିଂ.(ଅସ୍ତ୍ର + ଇନ୍)ଅସ୍ତ୍ରଧାରୀ, ଅସ୍ତ୍ର ସଜ୍ଜିତ, (ସ୍ତ୍ରୀ) ଅସ୍ତ୍ରିଣୀ (ବି.)ଧନୁର୍ଦ୍ଧାରୀ ବ୍ୟକ୍ତି, ଯେ ସ୍ତ୍ରୀ ନୁହେ ।

ଅସ୍ତ୍ରୀକ—ପୁଂ. ବିଂ. (ଅସ୍ତ୍ର + ଈକ) ସ୍ତ୍ରୀହୀନ, ଅପତ୍ନୀକ, ଅବିବାହିତ ।

ଅସ୍ଥାଗ—ବି. ବିଂ. ଅଗାଧ, ଅତଳସ୍ପର୍ଶ ।

ଅସ୍ଥାନ—କ୍ଲୀ. ବି. (ଅ + ସ୍ଥାନ, ଅଯୋଗ୍ୟ ସ୍ଥାନ, ସ୍ଥଳହୀନ, ଶରୀରର ଗୁପ୍ତାଙ୍ଗ, ଅସ୍ଥାୟିତ୍ୱ, ମନ୍ଦସ୍ଥାନ, ଅଯୋଗ୍ୟପାତ୍ର ।

ଅସ୍ଥାନେ—(ଅବ୍ୟ) ଅଯୁକ୍ତ ।

ଅସ୍ଥାୟୀ-ପୁଂ.ବିଂ.(ଅ + ସ୍ଥାୟିନ୍) ଚଞ୍ଚଳ, ସ୍ଥିତିଶୀଳ ନୁହେ,ଅଚିରସ୍ଥାୟୀ,ଅନିତ୍ୟ, କ୍ଷଣସ୍ଥାୟୀ, ପରିବର୍ତ୍ତନଶୀଳ, (ସ୍ତ୍ରୀ ) ଅସ୍ଥାୟିନୀ ।

ଅସ୍ଥାନସ୍ଥ—ପୁଂ. ବିଂ. (ଅସ୍ଥାନ + ସ୍ଥା + କ.ଅ)ଅନୁଚିତ ବା ଅନୁପଯୁକ୍ତସ୍ଥାନରେ ଥିବା, (ସ୍ତ୍ରୀ) ଅସ୍ଥାନସ୍ଥା ।

ଅସ୍ଥାସ୍ନୁ—ବି. ବିଂ. (ବ.ବ୍ରୀ ) ଅତିଗଭୀର, ଅତଳସ୍ପର୍ଶ, ଅଗାଧ (ସ୍ତ୍ରୀ) ଅସ୍ଥାସ୍ନୁ ।

ଅସ୍ଥାୟିତା(ତ୍ୱ)—ବି.ସ୍ତ୍ରୀ ଓ କ୍ଲୀ. ସ୍ଥିତିରାହିତ୍ୟ, ଭଙ୍ଗୁରତା, ନଶ୍ୱରତ୍ୱ ।

ଅସ୍ଥାବର—ବି. ବିଂ. ନତତ୍ପୁ; (ଅ + ସ୍ଥାବର) ଜଙ୍ଗମ,ସ୍ଥାବର ନୁହେ, ଯାହା ସ୍ଥିର ବା ଦୃଢ଼ୀଭୂତ ନୁହେ, ଜମିଛଡ଼ା ଅନ୍ୟ ସମ୍ପତ୍ତି, (ସ୍ତ୍ରୀ) ଅସ୍ଥାବରା ।

ଅସ୍ଥି—କ୍ଲୀ. ବି. (ଅସ୍ + ଥି) ଜୀବଦେହ ମଧ୍ୟସ୍ଥ ଟାଣୁଆ ଉପାଦାନ, ହାଡ଼, ବୀଜଫଳର ଟାକୁଆ ବା ଟାଣମଞ୍ଜି ।

ଅସ୍ଥିକୃତ୍ ବିଂ. (ଅସ୍ଥି + କୃ + କ.କ୍ୱିପ୍) ହାଡ଼ରସା, ମଜ୍ଜା ।

ଅସ୍ଥିଗ୍ରନ୍ଥି—ପୁଂ. ବି. (୬ତତ୍ପୁ) ହାଡ଼ର ଗଣ୍ଠି, ଯେ ସ୍ଥାନରେ ଅସ୍ଥିଦ୍ୱୟ ମିଳିତ ଗୋଟିଏ ସନ୍ଧିଦ୍ୱାରା ବଦ୍ଧଅଛୁ ।

ଅସ୍ଥିଚୟନ—ବି.୬ତତ୍ପୁ:(ଅସ୍ଥି + ଚୟନ) ଦାହ ପରେ ଗଙ୍ଗାଦିତୀର୍ଥରେ ପକାଇବାପାଇଁ ମୃତବ୍ୟକ୍ତିର ଶବଦାହ ଭସ୍ମରୁ ଦଗ୍ଧ ଅସ୍ଥିଖଣ୍ଡର ସଂଗ୍ରହ ।

ଅସ୍ଥିଚର୍ମବିଶିଷ୍ଟ—ବି. ବିଂ.(୩ତତ୍ପୁ)ହାଡ଼ଚର୍ମମାତ୍ରଧାରୀ, ମାଂସମାତ୍ରଧାରୀ, ଅତିକୃଶକାୟ (ସ୍ତ୍ରୀ) ଅସ୍ଥିଚର୍ମବିଶିଷ୍ଟା ।

ଅସ୍ଥିଚ୍ଛଳିତ—ବି.ସୁଶ୍ରୁତୋକ୍ତ କାଣ୍ଡଭଗ୍ନ ନାମକ, ହାଡ଼ ଭାଙ୍ଗିବା ।

ଅସ୍ଥିଜ—ପୁଂ. ବି. (ଅସ୍ଥି + ଜନ୍ + ଡ଼) ଅସ୍ଥିଧାତୁ ଜାତ, ମଜ୍ଜା, ହାଡ଼ରସା.।

ଅସ୍ଥିତ – ବି. ବିଂ. ନ.ତତ୍ପୁ;(ଅ + ସ୍ଥିତ) ସ୍ଥିତିରହିତ, ଅବିଦ୍ୟମାନ, ଅସ୍ଥିର, ଉପାସ୍ଥିରହିତ (ସ୍ତ୍ରୀ) ଅସ୍ଥିତା ।

ଅସ୍ଥିତପଞ୍ଚକ—ବି. ( ଗଣିତପରିଭାଷା ) ଯେଉଁ ଧାରାଦ୍ୱାରା ପାଞ୍ଚଗୋଟି ଦତ୍ତ ରାଶିରୁ ଗୋଟିଏ ଅଜ୍ଞାତ ରାଶି ବାହାର କରିବାକୁ ହୁଏ, ମିଶ୍ରତ୍ରୈରାଶିକ ଧାରା ।

ଅସ୍ଥିତପାଟୀଗଣିତ—ଅଙ୍କଶାସ୍ତ୍ରବିଶେଷ ।

ଅସ୍ଥିତି—ସ୍ତ୍ରୀ. ବି. (ନ.ତତ୍ପୁ) ସ୍ଥିତିର ଅଭାବ, ଅସ୍ଥୈର୍ଯ୍ୟ, ମର୍ଯ୍ୟାଦାର ଅଭାବ, ଅନବସ୍ଥିତତା, ସଙ୍ଗତିହୀନତା, ଅବିଦ୍ୟମାନତା ।

ଅସ୍ଥିତୁଣ୍ଡ-ପୁଂ.ବି.(ବ.ବ୍ରୀ)ପକ୍ଷୀ,କାଠହଣା ଚଢ଼େଇ । [ ବେଦନା ।

ଅସ୍ଥିତୋଦ—ପୁଂ.ବି. (୬ତତ୍ପୁ) ହାଡ଼ର

ଅସ୍ଥିତ୍ୱ—କ୍ଲୀ. ବି. (ଅସ୍ଥି + ତ୍ୱ) ହାଡ଼ପାଲଟିବା ।

ଅସ୍ଥିଦଣ୍ଡ—ବି. ମେରୁଦଣ୍ଡ ।

ଅସ୍ଥିଧନ୍ୱା—ପୁଂ.ବି.(ବ.ବ୍ରୀ)ଶିବ,ଶଙ୍କର ।

ଅସ୍ଥିପଞ୍ଜର—ପୁଂ. ବି. (ଅସ୍ଥି + ପଞ୍ଜର) ଶରୀରସ୍ଥ ଅସ୍ଥିସମୂହ, ପଞ୍ଜରାକାର କଙ୍କାଳ ।

ଅସ୍ଥିପ୍ରକ୍ଷେପ—ପୁଂ. ବି. ମୃତ ବ୍ୟକ୍ତିର ସତ୍କାର ପର ଅସ୍ଥିବିଧି ଅନୁସାରେ ଗଙ୍ଗାରେ ସମର୍ପଣ କରିବା ।

ଅସ୍ଥିବିଜ୍ଞାନ—ବି. (କ.ଧା)ଯେଉଁ ବିଜ୍ଞାନଦ୍ୱାରା ଅସ୍ଥିମାନଙ୍କ ବିଷୟ ଜଣାଯାଏ ।

ଅସ୍ଥିଭକ୍ଷ—ପୁଂ.ବି.(ଅସ୍ଥି + ଭକ୍ଷ)ହାଡ଼ଗିଳା ଚେଢ଼େଇ,କୁକୁର ସ୍ତ୍ରୀ)ଅସ୍ଥିଭକ୍ଷା ।

ଅସ୍ଥିଭଙ୍ଗ—ପୁଂ. ବି. ହାଡ଼ ଭାଙ୍ଗିଯିବା, ହାଡ଼ଭଙ୍ଗା ଲତା ।

ଅସ୍ଥିଭେଦୀ—ପୁଂ. ବିଂ. (୬ତତ୍ପୁ) ଅସ୍ଥିଭଙ୍ଗକାରୀ, ଯେ ହାଡ଼ ଭାଙ୍ଗିଦିଏ (ସ୍ତ୍ରୀ) ଅସ୍ଥିଭେଦନୀ ।

ଅସ୍ଥିମାନ୍—ପୁଂ.ବି.(ଅସ୍ଥି + ମତ୍)ଅସ୍ଥିଯୁକ୍ତ ପ୍ରାଣୀ, ଯାହାର ଶରୀରରେ ହାଡ଼ଅଛୁ (ସ୍ତ୍ରୀ) ଅସ୍ଥିମତୀ ।

ଅସ୍ଥିମୟ—ବି.ବିଂ. (ଅସ୍ଥି + ମୟ)ଅସ୍ଥିନିର୍ମିତ ଅସ୍ତ୍ରାଦି, ଅସ୍ଥ୍ୟାତ୍ମକ, ଅସ୍ଥିରୂପ ଅବୟବବିଶିଷ୍ଟ ।

ଅସ୍ଥିମାଳା—ସ୍ତ୍ରୀ. ବି. (୬ତତ୍ପୁ)ଅସ୍ଥିନିର୍ମିତ ଜପମାଳା, ହାଡ଼ସମୂହ ।

ଅସ୍ଥିମାଳୀ—ପୁଂ.ବି. (ଅସ୍ଥି + ମାଳା + ଇନ୍)ଶିବ (ବିଂ.) ଅସ୍ଥି ମାଳାଧାରୀ (ସ୍ତ୍ରୀ) ଅସ୍ଥିମାଳିନୀ ।

ଅସ୍ଥିଯୁଜ୍—ପୁଂ. ବ, ହାଡ଼ଯୋଡ଼ାଗଛ, ହାଡ଼କଙ୍କାଳ ।

ଅସ୍ଥିର—ତ୍ରି.ବିଂ.ନ.ତତ୍ପୁ; (ଅ + ସ୍ଥିର) ଚଞ୍ଚଳ, ଅସ୍ଥାୟୀ,ଅଧୀର, ନଶ୍ୱର,ଅନିଶ୍ଚିତ (ସ୍ତ୍ରୀ) ଅସ୍ଥିରା ।

ଅସ୍ଥିରଚିତ୍ତ—ପୁଂ.ବି.(ବ.ବ୍ରୀ)ଚଞ୍ଚଳମନା, ଯାହାର ମନରେ ସ୍ଥିରତା ନାହିଁ, ଅବ୍ୟବସ୍ଥିତ ଚିତ୍ତ, (ସ୍ତ୍ରୀ) ଅସ୍ଥିରଚିତ୍ତା ।

ଅସ୍ଥିରଚେତାଃ—ପୁଂ.ବିଂ.ବ.ବ୍ରୀ;ଅସ୍ଥିର + ଚେତସ୍) ଚଞ୍ଚଳମନା, ବ୍ୟାକୁଳଚିତ୍ତ, ଅବ୍ୟବସ୍ଥିତଚିତ୍ତ (ବ) ପରିବର୍ତ୍ତନଶୀଳମନ ।

ଅସ୍ଥିରତା—ସ୍ତ୍ରୀ. ବ. ( ଅସ୍ଥିର + ତା ) ଚାଞ୍ଚଲ୍ୟ, ଚପଳତା, ବ୍ୟାକୁଳତା, ଅଧୀରତା, ଅନିଶ୍ଚୟତା, ଅସ୍ଥାୟିତ୍ୱ ।

ଅସ୍ଥିରଧୀ-ପୁଂ.ବିଂ(ଅସ୍ଥିର + ଧୀ)ଅସ୍ଥିରଚେତା ।

ଅସ୍ଥିରବୁଦ୍ଧି—ପୁଂ. ବିଂ. (କ.ଧା)ଚଞ୍ଚଳମତି, ଚପଳସ୍ୱଭାବ, ଅବ୍ୟବସ୍ଥିତଚିତ୍ତ, (କ୍ଲୀ. ବ) ଚଞ୍ଚଳମତି ।

ଅସ୍ଥିବିଗ୍ରହ—ପୁଂ.ବ ଶିବଙ୍କର ଅନୁଚର, ଭୃଙ୍ଗୀଶ, ଭୃଙ୍ଗୀ ।

ଅସ୍ଥିଶୃଙ୍ଖଳା-ସ୍ତ୍ରୀ.ବ. (ବ.ବ୍ରୀ)ହାଡ଼ଯୋଡ଼ା ଗଛ, ଗ୍ରନ୍ଥିମାନ୍ ବୃକ୍ଷ, ହାଡ଼କଙ୍କାଳି ଗଛ ।

ଅସ୍ଥିଶେଷ—ତ୍ରି. ବିଂ. (ବ.ବ୍ରୀ)ମାଂସାଦିଶୂନ୍ୟ, ଅତିକୃଶ, ଅସ୍ଥିମାତ୍ରାବଶେଷ, କଙ୍କାଳସାର (ସ୍ତ୍ରୀ) ଅସ୍ଥିଶେଷା ।

ଅସ୍ଥିସଂଯୋଗ—ପୁଂ.ବ. (୬ତତ୍ପୁ)ହାଡର ମିଳନ, ଅସ୍ଥିସନ୍ଧି, ହାଡ଼ଯୋଡ଼ିଦେବା ।

ଅସ୍ଥିସଂହାର—ପୁଂ. ବ. (ବ.ବ୍ରୀ) ହାଡ଼ଯୋଡ଼ା ଗଛ (ସ୍ତ୍ରୀ) ଅସ୍ଥିସଂହାରିକା ।

ଅସ୍ଥିସଂହାରକ—ତ୍ରି.ବିଂ. (୬ତତ୍ପୁ)ହାଡ଼ଧ୍ୱଂସକାରୀ, ଅସ୍ଥିଭେଦନକାରୀ ( ପୁଂ ) ହାଡ଼ଗିଲା ପକ୍ଷୀ ।

ଅସ୍ଥିସଂହାରୀ—ସ୍ତ୍ରୀ.ବ.ହାଡ଼ଯୋଡ଼ା ଗଛ ।

ଅସ୍ଥିସଞ୍ଚୟ—ପୁଂ. ବ.(୬ତତ୍ପୁ)ଦାହପରେ ଗଙ୍ଗାଦି ତୀର୍ଥରେ ପକାଇବାପାଇଁ ମୃତବ୍ୟକ୍ତିର ଦଗ୍ଧ ଅସ୍ଥିଖଣ୍ଡ-ସଂଗ୍ରହ ।

ଅସ୍ଥିସନ୍ଧି—ସ୍ତ୍ରୀ.ବ. (୬ତତ୍ପୁ) ଅସ୍ଥିଦ୍ୱୟର ସଂଯୋଗସ୍ଥଳ, ହାଡ଼ଯୋଡ଼ିବା ଜାଗା ।

ଅସ୍ଥିସମର୍ପଣ—କ୍ଲୀ.ବ. (୬ତତ୍ପୁ)ଗଙ୍ଗାରେ ମୃତବ୍ୟକ୍ତିର ଅସ୍ଥିନିକ୍ଷେପ ।

ଅସ୍ଥିସମ୍ଭବ—ପୁଂ.ବ.ଅସ୍ଥିଜାତମଜ୍ଜାଧାତୁ; ବଜ୍ର ।

ଅସ୍ଥିସାର—ପୁଂ.ବ.(ଅସ୍ଥି + ସାର)ମଜ୍ଜାଧାତୁ ,(ବିଂ.)ରକ୍ତମାଂସହୀନଦେହ (ସ୍ତ୍ରୀ) ଅସ୍ଥିସାରା ।

ଅସ୍ଥିସ୍ନେହ—ପୁଂ. ବ. ମଜ୍ଜା, ଶରୀରସ୍ଥ ଷଷ୍ଠଧାତୁ ।

ଅସ୍ଥୂର—ପୁଂ. ବ. ବହୁ ଅଶ୍ୱଯୁକ୍ତ ରଥ ।

ଅସ୍ଥୈର୍ଯ୍ୟ—କ୍ଲୀ.ବ.(ନ.ତତ୍ପୁ) ସ୍ଥିରତାର ଅଭାବ, ବ୍ୟାକୁଳତା, ନଶ୍ୱରତା, (ବିଂ.) ସ୍ଥୈର୍ଯ୍ୟହୀନ ।

ଅସ୍ନାତ—ପୁଂ.ବିଂ. (ନ.ତତ୍ପୁ)ସ୍ନାନରହିତ, ଯେ ସ୍ନାନ କରିନାହିଁ, ଅଗାଧୁଆ, (ସ୍ତ୍ରୀ) ଅସ୍ନାତା ।

ଅସ୍ନାତକ—ପୁଂ. ବ. ( ନ.ତତ୍ପୁ ) ଯେଉଁ ବ୍ୟକ୍ତିର ବ୍ରହ୍ମଚର୍ଯ୍ୟ ସମାପନ ହୋଇନାହିଁ ।

ଅସ୍ନାନ—କ୍ଲୀ. ବ. (ନ.ତତ୍ପୁ) ସ୍ନାନାଭାବ, ଅନବଗାହନ, ସ୍ନାନ ନ କରିବା ।

ଅସ୍ନାନିଆ—ଗ୍ରା. ବିଂ. (ସଂ.ଅସ୍ନାତ)ଅଗାଧୁଆ, ସ୍ନାନ କରି ନ ଥିବା ।

ଅସ୍ନାବିର—ତ୍ରି.ବିଂ. (ନ.ତତ୍ପୁ)ଶିରାବର୍ଜିତ, ସ୍ଥୂଳଶରୀରଶୂନ୍ୟ (ସ୍ତ୍ରୀ) ଅସ୍ନାବିରା ।

ଅସ୍ନିଗ୍ଧ-ତ୍ରି.ବିଂ. (ନ.ତତ୍ପୁ) ସ୍ନେହଦ୍ରବ୍ୟରହିତ, ତୈଳପଦାର୍ଥବିହୀନ, ଅମସୃଣ, କର୍କଶ, ଅମଧୁର, ଅପ୍ରୀତିକର, (ସ୍ତ୍ରୀ) ଅସ୍ନିଗ୍ଧା ।

ଅସ୍ନିଗ୍ଧଦାରୁ କ୍ଲୀ.ବ.ଦେବଦାରୁବିଶେଷ, କର୍କଶ କାଷ୍ଠ ।

ଅସ୍ନେହ—ପୁଂ. ବ. (ନ.ତତ୍ପୁ) ସ୍ନେହର ଅଭାବ, ଭଲ ନ ପାଇବା, ତୈଳଦ୍ରବ୍ୟରାହିତ୍ୟ,(ବିଂ.)ସ୍ନେହଶୂନ୍ୟ, ଖସଖସିଆ, (ସ୍ତ୍ରୀ) ଅସ୍ନେହା ।

ଅସ୍ପନ୍ଦ—ତ୍ରି. ବିଂ. (ବ.ବ୍ରୀ) ସ୍ପନ୍ଦନଶୂନ୍ୟ, କମ୍ପନରହିତ, ଅଚଳ, ସ୍ଥିର, ଅବଶ ।

ଅସ୍ପନ୍ଦନ—କ୍ଲୀ.ବ. ଚଳନର ଅଭାବ(ବିଂ) ନିସ୍ପନ୍ଦ ଶୂନ୍ୟ ।

ଅସ୍ପନ୍ଦିତ—ତ୍ରି, ବିଂ, (ନ.ତତ୍ପୁ)ଅକମ୍ପିତ, କମ୍ପନରହିତ, ଅଚଳ, ସ୍ଥିର ।

ଅସ୍ପର୍ଶ—ପୁଂ.ବ (ନ.ତତ୍ପୁ) ସ୍ପର୍ଶର ଅଭାବ, ନ ଛୁଇଁବା,(ବି.)ସ୍ପର୍ଶଶୂନ୍ୟ (ସ୍ତ୍ରୀ)ଅସ୍ପର୍ଶା ।

ଅସ୍ପର୍ଶଯୋଗ—ପୁଂ.ବ. ନିର୍ବିକଳ୍ପକ ଜ୍ଞାନ, ବିଷୟସ୍ପୃହାଶୂନ୍ୟ ।

ଅସ୍ପର୍ଶନୀୟ—(ଅସ୍ପର୍ଶ)—ତ୍ରି.ବିଂ.(ନ.ତତ୍ପୁ) ସ୍ପର୍ଶର ଅଯୋଗ୍ୟ, ଅଶୁଚି, ଅତ୍ୟନ୍ତ ପାପିଷ୍ଠ, ଯାହାକୁ ଛୁଇଁବା ଉଚିତ ନୁହେ (ସ୍ତ୍ରୀ) ଅସ୍ପର୍ଶନୀୟା ।

ଅସ୍ପଷ୍ଟ—ତ୍ରି. ବିଂ. ନ.ତତ୍ପୁ, (ଅ + ସ୍ପଷ୍ଟ) ଯାହା ଭଲରୂପେ ଶୁଣାଯାଏ ନାହିଁ,ପଢ଼ାଯାଏନାହିଁ ବା ବୁଝାଯାଏ ନାହିଁ ।

ଅସ୍ପଷ୍ଟଗର୍ଭ—ସ୍ତ୍ରୀ. ବିଂ. (ବ.ବ୍ରୀ) ଯାହାର ଗର୍ଭଲକ୍ଷଣ ସ୍ପଷ୍ଟ ଅନୁଭୂତ ହୁଏ ନାହିଁ ଏପରି (ସ୍ତ୍ରୀ) ।

ଅସ୍ପଷ୍ଟତା(ତ୍ୱ)—ବ.(ଅସ୍ପଷ୍ଟ + ଭା.ତା')(ତ୍ୱ) ଅବ୍ୟକ୍ତତା, ଅସ୍ଫୁଟତା, ଅପରିଷ୍କୃତଭାବ ବା ଅବସ୍ଥା, ଅପରିଷ୍କାର ।

ଅସ୍ପଷ୍ଟତାଦୋଷ—ବ.ବାକ୍ୟ ବା ରଚନାଦିର ଦୋଷବିଶେଷ ।

ଅସ୍ପଷ୍ଟବାଦୀ—ପୁଂ. ବ. (ଅସ୍ପଷ୍ଟ + ବଦ୍ + କ.ଇନ୍) ଅସ୍ପଷ୍ଟଭାଷୀ, ଯେ ସ୍ପଷ୍ଟରୂପେ କଥା ନ କହେ, (ସ୍ତ୍ରୀ) ଅସ୍ପଷ୍ଟବାଦିନୀ ।

ଅସ୍ପଷ୍ଟଭାଷୀ—ପୁଂ.ବିଂ. (ଅସ୍ପଷ୍ଟ + ଭାଷ + କ.ଇନ୍) ଅସ୍ପଷ୍ଟବାଦୀ, ଯେ ସ୍ପଷ୍ଟରୂପେ କଥା କହେନାହିଁ ।

ଅସ୍ପଷ୍ଟଲେଖ—ପୁଂ. ବ. (କ.ଧା) ଯେଉଁ ଆଲୁଅରେ ପରିଷ୍କାର ଦେଖାଯାଏନାହିଁ ।

ଅସ୍ପୃଶ୍ୟ—ତ୍ରି.ବ.ନ.ତତ୍ପୁ;(ଅ + ସ୍ପୃଶ + ଯ) ସ୍ପର୍ଶର ଅଯୋଗ୍ୟ, ଛୁଇଁବାର ଯୋଗ୍ୟ ନୁହେଁ,ଅଶୁଚି,(ସ୍ତ୍ରୀ) ଅସ୍ପୃଶ୍ୟା ।

ଅସ୍ପୃଷ୍ଟ—ତ୍ରି.ବିଂ ( ନ.ତତ୍ପୁ ) ସ୍ପର୍ଶଶୂନ୍ୟ ଯାହାକୁ କେହି ଛୁଅନ୍ତିନାହିଁ ।

ଅସ୍ପୃହ—ତ୍ରି.ବିଂ. (ବ.ବ୍ରୀ) ସ୍ପୃହାଶୂନ୍ୟ, ଲୋଭଶୂନ୍ୟ,ଉଦାସୀନ (ସ୍ତ୍ରୀ)ଅସ୍ପୃହା ।

ଅସ୍ପୃହଣୀୟ—ତ୍ରି.ବିଂ. (ନ.ତତ୍ପୁ)ଅବାଞ୍ଛନୀୟ, ଲୋଭର ଅଯୋଗ୍ୟ, (ସ୍ତ୍ରୀ) ଅସ୍ପୃହଣୀୟା ।
ଅସ୍ପୃହା—ସ୍ତ୍ରୀ. ବି. ଇଚ୍ଛାର ଅଭାବ,(ବିଂ) ସ୍ପୃହାରହିତ, ନିସ୍ପୃହ ।
ଅସ୍ଫୁଟିତ—ତ୍ରି.ବିଂ. (ନ ତତ୍ପୁ) ସ୍ଫୁଟିତରହିତ, ଯାହା ଫୁଲ ଫୁଟେନାହିଁ ।
ଅସ୍ଫୁଟିତ—ସ୍ତ୍ରୀ.ବି.(ନ.ତତ୍ପୁ)ଫୁଲନଉଠିବା।
ଅସ୍ଫୁଟ—ତ୍ରି. ବିଂ. ନ.ତତ୍ପୁ; (ଅ+ସ୍ଫୁଟ) ପ୍ରକାଶରହିତ, ଅବ୍ୟକ୍ତ, ଅପ୍ରକାଶିତ, ଅବିକଶିତ, ଅସ୍ପଷ୍ଟ (ସ୍ତ୍ରୀ) ଅସ୍ଫୁଟା ।
ଅସ୍ଫୁଟବାକ୍—ପୁଂ.ବି. ଯାହାର କଥାରେ ଜଡ଼ତା ଅଛି, ଶିଶୁ ।
ଅସ୍ଫୁଟସ୍ୱର—ତ୍ରି. ବିଂ. (ବ.ବ୍ରୀ) ଅବ୍ୟକ୍ତକଣ୍ଠସ୍ୱରଯୁକ୍ତ, ପୁଂ. ବି. (କ.ଧା) ଅସ୍ପଷ୍ଟ କଣ୍ଠଧ୍ୱନି ।
ଅସ୍ମଦ୍—(ସର୍ବ)(ଅସ୍+ମଦ୍) ଓଡ଼ିଆରେ ଏ ଶବ୍ଦର ସ୍ୱତନ୍ତ୍ର ବ୍ୟବହାର ନାହିଁ, ମୁଁ ଓ ଆମ୍ଭେ ଶବ୍ଦର ମୂଳ ସଂସ୍କୃତ ଶବ୍ଦ ।
ଅସ୍ମଦ୍‌ବିଧ—ତ୍ରି.ବିଂ. ଅସ୍ମାଦୃଶ,ଆମ୍ଭପରି, ମୋପରି, ମୋଭଳି ।
ଅସ୍ମୟୁ—ତ୍ରି.ବିଂ.ଆମ୍ଭେ, ଏହିପରି ଇଚ୍ଛା ।
ଅସ୍ମିତା—ବି. (ଅ+ସ୍ମି+ତା)ମୁଁ ଅଛି ଏହି ଜ୍ଞାନ,ଅହଙ୍କାର, ଅହଂଜ୍ଞାନ ।
ଅସ୍ମଦାଦି—(ସର୍ବ) ମୋପରି ଲୋକ, ମୁଁ ଏବଂ ଅନ୍ୟମାନେ, ଆମ୍ଭେମାନେ ।
ଅସ୍ମଦୀୟ—ତ୍ରି. ବିଂ. ( ଅସ୍ମଦ୍+ଈୟ ) ଆମ୍ଭସମ୍ବନ୍ଧୀୟ, ଯାହା ଆମ୍ଭର, ଆମ୍ଭର, ଆମ୍ଭମାନଙ୍କର (ସ୍ତ୍ରୀ) ଅସ୍ମଦୀୟା ।
ଅସ୍ମନ୍ତ—କ୍ଲୀ. ବି. ଚୁଲ୍ଲୀ, ଅଗ୍ନାନ୍ତ ।
ଅସ୍ମରଣ—କ୍ଲୀ. ବି. (ନ.ତତ୍ପୁ) ବିସ୍ମରଣ, ମନେ ନ ରଖିବା ।
ଅସ୍ମରଣୀୟ—ତ୍ରି. ବିଂ. (ନ.ତତ୍ପୁ) ଯାହା ସ୍ମରଣ ରଖିହେବନାହିଁ, ଯାହା ସ୍ମରଣକରି ନ ଯାଏ, ସ୍ମରଣର ଅଯୋଗ୍ୟ ବା ଅସାଧ୍ୟ, ସ୍ମରଣାତୀତ ।

ଅସ୍ମାର୍ତ୍ତ—ତ୍ରି.ବିଂ.(ନ.ତତ୍ପୁ) ସ୍ମୃତିଶାସ୍ତ୍ରାନଭିଜ୍ଞ,ଯେ ସ୍ମୃତି ଜାଣେ ନାହିଁ, ସ୍ମୃତିଶାସ୍ତ୍ର ଅମାନ୍ୟକାରୀ, ସ୍ମୃତିବିରୁଦ୍ଧ, ଅଶାସ୍ତ୍ରୀୟ ।
ଅସ୍ମିତା—ସ୍ତ୍ରୀ. ବି. ( ଅସ୍ମି+ସ୍ତ.ତା ) ଅହଂଜ୍ଞାନ, ଅହଂକାର, ଅଭିମାନ, ମୋହ ।
ଅସ୍ମୃତ—ତ୍ରି. ବିଂ. ( ନ ତତ୍ପୁ ) ଯାହା ସ୍ମରଣ ରଖିହୁଏ ନାହିଁ, ବିସ୍ମୃତ, (ସ୍ତ୍ରୀ) ଅସ୍ମୃତା ।
ଅସ୍ମୃତି—ସ୍ତ୍ରୀ. ବି. (ନ.ତତ୍ପୁ) ସ୍ମରଣର ଅଭାବ, ମନେ ନ ରଖିବା ( ଗ୍ରା. ବିଂ. ) ସ୍ମୃତି ବା ଧର୍ମଶାସ୍ତ୍ରବହିର୍ଭୂତ,ଅଶାସ୍ତ୍ରୀୟ ।
ଅସ୍ମେର—ବି. ( ଅ+ସ୍ମେର ) ଲଜ୍ଜାର ଅଭାବ, (ବିଂ) ଅଲଜ୍ଜିତ ।
ଅସ୍ୟହତ୍ୟ—ପୁଂ. ବିଂ. (ଓତତ୍ପୁ) ଯାହା ଖଡ଼୍ଗଦ୍ୱାରା ହଣାଯାଇ ନାହିଁ ।
ଅସ୍ୟହେତି—ପୁଂ. ବିଂ. (ବ.ବ୍ରୀ) ଯେଉଁ ଯୋଦ୍ଧାର ଖଡ଼୍ଗ-ଅସ୍ତ୍ର ନାହିଁ ।
ଅସ୍ୟୁଦ୍ୟତ—ପୁଂ. ବି. (ବ.ବ୍ରୀ) ଉଦ୍ଧୃତ ଖଡ଼୍ଗ, ଯେ ଖଡ଼୍ଗ ଉଠାଇ ଅଛି ।
ଅସ୍ର—ବି.ପୁଂ.କ୍ଲୀ. (ଅସ+ର) କୋଣ, କେଶ, ରକ୍ତ, ଚକ୍ଷୁଜଳ, ଲୋତକ ।
ଅସ୍ରକଣ୍ଠ—କ୍ଲୀ. ବି. ( ବ.ବ୍ରୀ ) ଯାହାର କଣ୍ଠ ଦେଶରେ ଅସ୍ର (କୋଣ) ଅଛି, ବାଣ । [ଖଦିର ।
ଅସ୍ରଖଦିର—ପୁଂ.ବି.ବିଟ ଖଦିର, ପାକଡ଼ା
ଅସ୍ରଜ—କ୍ଲୀ. ବି.(ଅସ୍ର+ଜନ୍+କ.ଅ) ମାଂସ ।
ଅସ୍ରପ—ପୁଂ ବି.(ଅସ୍ର+ପା+ଅ)ରାକ୍ଷସ, ଯେ ରକ୍ତ ପିଏ,ଜୋକ, (ସ୍ତ୍ରୀ) ଅସ୍ରପା ।
ଅସ୍ରପତ୍ରକ—ପୁଂ. ବି. ରକ୍ତଶାକ, ବୃକ୍ଷବିଶେଷ ।
ଅସ୍ରପା—ସ୍ତ୍ରୀ.ବି.(ଅସ୍ରପ+ଆ)ଜଳୌକା, ଜୋକ, ରାକ୍ଷସୀ ( ବିଂ) ସ୍ତ୍ରୀରକ୍ତ ପାନକାରିଣୀ ।
ଅସ୍ରଫଲା—ସ୍ତ୍ରୀ. ବି. ( ବ.ବ୍ରୀ ) ସଲ୍ଲକୀବୃକ୍ଷ, ଶାଲୁଇ ଗଛ ।

ଅସ୍ରମାତୃକା—ସ୍ତ୍ରୀ. ବି. (୬ତତ୍ପୁ) ଶରୀରସ୍ଥ ରସଧାତୁ ।
ଅସ୍ରରୋଧନୀ—ସ୍ତ୍ରୀ. ବି. (୬ତତ୍ପୁ) ଲଜକୁଳୀ ଲତା ।
ଅସ୍ରବାନ୍—ପୁଂ. ବିଂ. ଅକ୍ଷରତ, ଯାହା ଗଳି ପଡ଼େ ନାହିଁ (ସ୍ତ୍ରୀ) ଅସ୍ରବତୀ ।
ଅସ୍ରବିନ୍ଦୁଚ୍ଛଦା—ସ୍ତ୍ରୀ.ବି. ଲକ୍ଷଣା ନାମକ ବୃକ୍ଷବିଶେଷ ।
ଅସ୍ରାର୍କକ—ପୁଂ. ବି. ଶ୍ୱେତ ତୁଳସୀଗଛ, ରକ୍ତୋତ୍ପାଦକ ରସ ।
ଅସ୍ରି—ସ୍ତ୍ରୀ. ବି. ରକ୍ତ, କୋଣ ।
ଅସ୍ରୁ—କ୍ଲୀ. ବି.(ଅସ୍+ମ୍ରୁ.ରୁ)ଚକ୍ଷୁଜଳ, ଲୋତକ, ଲୁହ ।
ଅସ୍ରେମା—ପୁଂ. ବିଂ. ପ୍ରଶସ୍ୟ, ପ୍ରଶସ୍ତ ।
ଅସ୍ୱ(କ)—ତ୍ରି. ବିଂ. ( ବ.ବ୍ରୀ ) ନିର୍ଦ୍ଧନ, ଅନାତ୍ମୀୟ, ଆତ୍ମୀୟ ନୁହେ, ଦରିଦ୍ର, ନିଃସ୍ୱ, ଅସ୍ୱକୀୟ, ଆପଣାର ନୁହେ, ପରକୀୟ ।
ଅସ୍ୱକୀୟ—ତ୍ରି. ବିଂ. (ନ.ତତ୍ପୁ) ଅସ୍ୱୀୟ, ଅନିଜ, ଆପଣାର ହୋଇ ନ ଥିବା, (ସ୍ତ୍ରୀ) ଅସ୍ୱକୀୟା ।
ଅସ୍ୱଚ୍ଛ—ପୁଂ. ବିଂ. (ନ.ତତ୍ପୁ) ଅନିର୍ମଳ, ଅସରଳ, ପ୍ରତିବିମ୍ବଧାରଣାକ୍ଷମ, ଆବିଳ, ଯହିଁରେ ପ୍ରତିବିମ୍ବ ପଡ଼େ ନାହିଁ ସ୍ତ୍ରୀ) ଅସ୍ୱଚ୍ଛା ।
ଅସ୍ୱଚ୍ଛନ୍ଦ—ତ୍ରି. ବିଂ. ( ନ.ତତ୍ପୁ ) ସ୍ୱଚ୍ଛନ୍ଦ ନୁହେ, ପରାଧୀନ, ଅସୁଖୀ ( ସ୍ତ୍ରୀ ) ଅସ୍ୱଚ୍ଛନ୍ଦା (ବି) ଅସ୍ୱଚ୍ଛନ୍ଦତା ।
ଅସ୍ୱଜାତି—ସ୍ତ୍ରୀ. ବି. (ନ.ତତ୍ପୁ) ସ୍ୱଜାତି ନୁହେ, (ବିଂ) ଭିନ୍ନଜାତି, ଯଥା— ବ୍ରାହ୍ମଣ, କ୍ଷତ୍ରିୟ, ଗୋ, ଅଶ୍ୱ ।
ଅସ୍ୱତନ୍ତ୍ର—ତ୍ରି. ବିଂ. ( ନ.ତତ୍ପୁ) ସ୍ୱାଧୀନ ନୁହେ, ପରାଧୀନ, ଅବଭିନ୍ନ, ( ସ୍ତ୍ରୀ ) ଅସ୍ୱତନ୍ତ୍ରା ।
ଅସ୍ୱତ୍ୱ—ତ୍ରି. ବିଂ. (ବ.ବ୍ରୀ) ସ୍ୱତ୍ୱହୀନ, ସ୍ୱାମିତ୍ୱରହିତ, (ସ୍ତ୍ରୀ) ଅସ୍ୱତ୍ୱା, (କ୍ଲୀ.ବି) ନ.ତତ୍ପୁ; ସ୍ୱତ୍ୱାଭାବ ।
ଅସ୍ୱନ୍ତ—କ୍ଲୀ. ବି. ( ବ.ବ୍ରୀ ) ଅଶୁଭ, ଅମଙ୍ଗଳ, ପ୍ରାଣାନ୍ତ, ମରଣ, ଚୁଲ୍ଲୀ, ( ବିଂ ) ସୀମାରହିତ, ଅଦମ୍ୟ, କ୍ଷୟରହିତ,ଯାହାର ପରିଣାମ ଭଲ ନୁହେ ।

ଅସ୍ୱସ୍ତ—ସ୍ତ୍ରୀ. ବି. ( ନ.ତତ୍ ) ଅସୁଖ, ଅଶାନ୍ତି, ଅସ୍ୱଚ୍ଛନ୍ଦତା ।
ଅସ୍ୱପ୍ନ—ପୁଂ. ବି. (ଅ + ସ୍ୱପ୍ନ) ଦେବତା, ସୁର (ବିଂ) ନିଦ୍ରାରହିତ, କାର୍ଯ୍ୟଦକ୍ଷ, ବିନିଦ୍ର(ସ୍ତ୍ରୀ)ଅସ୍ୱପ୍ନା(କ୍ଲୀ.ବି) ନିଦ୍ରାରାହିତ୍ୟ, ଜାଗରଣ, ସ୍ୱପ୍ନାଭାବ ।
ଅସ୍ୱର—ପୁଂ. ବିଂ. ( ବ.ବ୍ରୀ ) ମନ୍ଦସ୍ୱର-ଯୁକ୍ତ (ବି) ସ୍ୱରବର୍ଣ୍ଣ ଛଡ଼ା ବ୍ୟଞ୍ଜନବର୍ଣ୍ଣ ମାତ୍ର ।
ଅସ୍ୱରସ—ପୁଂ.ବି.(ନ.ତତ୍) ଅକୌଶଳ, ଅପ୍ରଶସ୍ତ, ବିରୋଧ, ଅମେଳ, ମନୋ-ମାଳିନ୍ୟ ।
ଅସ୍ୱର୍ଗ୍ୟ—ତ୍ରି. ବିଂ. ( ନ.ତତ୍ ) ସ୍ୱର୍ଗର ଅସାଧନ,ଯେଉଁ କାର୍ଯ୍ୟକଲେ ସ୍ୱର୍ଗ ମିଳେ ନାହିଁ, ଅଧୋଗତିବିଧାୟକ, ( ସ୍ତ୍ରୀ ) ଅସ୍ୱର୍ଗ୍ୟା ।
ଅସ୍ୱସ୍ତି—ଅବ୍ୟ. ( ନ.ତତ୍ ) ଅଶାନ୍ତି, ଅମଙ୍ଗଳ, ଅସ୍ୱଚ୍ଛନ୍ଦତା, ଅସୁଖ ।
ଅସ୍ୱସ୍ଥ—ତ୍ରି. ବିଂ. (ନ.ତତ୍) ସ୍ୱସ୍ଥ ନୁହେ, ଅପ୍ରକୃତିସ୍ଥ, ରୋଗାଦିରେ ଅଭିଭୂତ(ସ୍ତ୍ରୀ) ଅସ୍ୱସ୍ଥା ।
ଅସ୍ୱାଚ୍ଛନ୍ଦ୍ୟ—କ୍ଲୀ.ବି. ସ୍ୱାଚ୍ଛନ୍ଦ୍ୟର ଅଭାବ, ପରାଧୀନତା ।
ଅସ୍ୱାତନ୍ତ୍ର୍ୟ—କ୍ଲୀ. ବି. ( ନ.ତତ୍ ) ପରା-ଧୀନତା, ସ୍ୱାତନ୍ତ୍ର୍ୟର ଅଭାବ, ଅପାର୍ଥକ୍ୟ, ବିଶେଷତ୍ୱ ନ ଥିବା ଅବସ୍ଥା ବା ଭାବ ।
ଅସ୍ୱାଦ—ବି. ( ଅ + ସ୍ୱାଦ ) ମନ୍ଦସ୍ୱାଦ, ଅରୁଚି (ବିଂ) ଅସ୍ୱାଦୁ ।
ଅସ୍ୱାଦୁ—ତ୍ରି. ବିଂ. (ନ.ତତ୍) ଉତ୍ତମ ସ୍ୱାଦୁରହିତ, ସ୍ୱାଦହୀନ, ବିରସ, ଯାହା ଖାଇଲେ ଭଲ ଲାଗେନାହିଁ, (ବି) ଅସ୍ୱା-ଦୁତା ।
ଅସ୍ୱାଦୁକଣ୍ଟକ—ପୁଂ. ବି. ଖୋଲୁଗି ।
ଅସ୍ୱାଧ୍ୟାୟ—ତ୍ରି.ବିଂ. ବିଧିପୂର୍ବକ ବେଦା-ଧ୍ୟୟନହୀନ, (ବି) ଅନଧ୍ୟୟନ କାଳ ।
ଅସ୍ୱାଭାବିକ—ତ୍ରି.ବିଂ. (ନ.ତତ୍) ସ୍ୱଭାବ-ବିରୁଦ୍ଧ, ଅପ୍ରାକୃତିକ, ଅନୈସର୍ଗିକ, କୃତ୍ରିମ, ଲୋକାତୀତ, ଅସାଧାରଣ, ଅଲୌକିକ ।
ଅସ୍ୱାମିକ—ତ୍ରି.ବିଂ. ( ବ.ବ୍ରୀ ) ସ୍ୱାମି-ରହିତ, ନାଓ୍ୱାରସ, ମାଲିକ ନ ଥିବା, (ବି) ଅରଣ୍ୟ, ପର୍ବତ, ପୁଣ୍ୟ, ନଦୀ, ତୀର୍ଥ,ଏହିମାନେ ଅସ୍ୱାମିକ, (ସ୍ତ୍ରୀ) ଅସ୍ୱା-ମିକା, ବିଧବା, ଅବିବାହିତା ।
ଅସ୍ୱାମିବିକ୍ରୟ—ପୁଂ.ବି. (୬ତତ୍) ସ୍ୱାମୀ-ଭିନ୍ନ ଅନ୍ୟକର୍ତ୍ତୃକ ବିକ୍ରୟ ।
ଅସ୍ୱାମୀ—ପୁଂ. ବିଂ. (ନ.ତତ୍)ସ୍ୱାମୀଭିନ୍ନ ଅନ୍ୟ, ସ୍ୱତ୍ୱହୀନ, (ବି) ପରପୁରୁଷ, (ସ୍ତ୍ରୀ) ଅସ୍ୱାମିନୀ ।
ଅସ୍ୱାମ୍ୟ—କ୍ଲୀ. ବି. (ନ.ତତ୍) ସମତାର ଅଭାବ, ସ୍ୱାମିତ୍ୱର ଅଭାବ, ଅନଧିକାର ।
ଅସ୍ୱାର୍ଥ—ତ୍ରି. ବିଂ. ବ.ବ୍ରୀ: (ଅ + ସ୍ୱାର୍ଥ) ସ୍ୱାର୍ଥଶୂନ୍ୟ, ସ୍ୱପ୍ରୟୋଜନ ରହିତ,ଭିନ୍ନା-ର୍ଥକ, ଉଦ୍ଦେଶ୍ୟହୀନ, (ବି) ସ୍ୱାର୍ଥ-ହୀନତା, ଅଲାଭ ।
ଅସ୍ୱାଥପର—ବିଂ. ଯେ ସ୍ୱାର୍ଥପର ନୁହେ, ନିଃସ୍ୱାର୍ଥ (ସ୍ତ୍ରୀ) ଅସ୍ୱାର୍ଥପରା ।
ଅସ୍ୱାବେଶ—ତ୍ରି. ବିଂ. ଆତ୍ମାରେ, ସ୍ୱଭା-ବରେ, ସ୍ୱସ୍ଥାନରେ ଅସ୍ଥିତ ।
ଅସ୍ୱାସ୍ଥ୍ୟ—କ୍ଲୀ. ବି. (ଅ + ସ୍ୱାସ୍ଥ୍ୟ) ସ୍ୱାସ୍ଥ୍ୟର ଅଭାବ ଓ ଉଦ୍‌ବେଗ, ଉପଦ୍ରବ, ପୀଡ଼ା, (ବିଂ.) ଉଦ୍‌ବିଗ୍ନ, ପୀଡ଼ିତ ।
ଅସ୍ୱାସ୍ଥ୍ୟକର—ବିଂ. (ନ.ତତ) ଅସ୍ୱାସ୍ଥ୍ୟ-ଜନକ, ରୋଗଜନକ, (ବି) ଅସ୍ୱାସ୍ଥ୍ୟ-କରତା ।
ଅସ୍ୱୀକାର—ପୁଂ. ବି. ନ.ତତ୍ (ଅ + ସ୍ୱୀକାର) ସ୍ୱୀକାରର ଅଭାବ, ପ୍ରତ୍ୟା-ଖ୍ୟାନ, ଅପଲାପ, ନାମଞ୍ଜ, (ବିଂ.) ସ୍ୱୀକାର ବା ଅଙ୍ଗୀକାରରହିତ ।
ଅସ୍ୱୀକାର୍ଯ୍ୟ—ତ୍ରି. ବିଂ. (ନ.ତତ୍) ସମ୍ମ-ତିର ଅଯୋଗ୍ୟ, ପ୍ରତ୍ୟାଖ୍ୟେୟ ।
ଅସ୍ୱୀକୃତ—ତ୍ରି. ବିଂ. (ନ.ତତ୍)ଅନଙ୍ଗୀ-କୃତ, ଅନନୁମୋଦିତ, ଅପ୍ରତିଗୃହୀତ, ଅପହୃତ, ଅପଲପିତ (ସ୍ତ୍ରୀ) ଅସ୍ୱୀକୃତା ।
ଅସ୍ୱୀକୃତି—ସ୍ତ୍ରୀ.ବି. (ନ.ତତ୍)ଅସ୍ୱୀକାର ।
ଅସ୍ୱୈରୀ—ପୁଂ. ବିଂ. (ନ.ତତ୍) ପରା-ଧୀନ,ଅସ୍ୱେଚ୍ଛାଚାରୀ, (ସ୍ତ୍ରୀ) ଅସ୍ୱୈରିଣୀ, ଅସ୍ୱତନ୍ତ୍ରା, ଅବ୍ୟଭିଚାରିଣୀ ।
ଅହ—(ଅବ୍ୟ) ପ୍ରଶଂସା, ଆକ୍ଷେପ ନିୟୋଗ, ନିଗ୍ରହ, ଅର୍ଚ୍ଚନ, ଆଗ୍ରହାତି-ଶୟ ।
ଅହଂ—ଗ୍ରା. ବି. (ସଂ. ଅହଂ) ଅହଂଭାବ, ଆତ୍ମାଭିମାନ, ଅହଂକାର, ଗର୍ବ, ଗର୍ବବିଶେଷ ।
ଅହଂକାର(କୃତ)—ପୁଂ.ବି.(ଅହଂ + କୃ + କ.ଅ) ଗର୍ବ, ଅହମିକା,ଆତ୍ମାଭିମାନ, ଅବିଦ୍ୟା, ଅଜ୍ଞାନ ।
ଅହଂକାରୀ—ପୁଂ.ବିଂ. ଗର୍ବୀ, ଅଭିମାନ-ଯୁକ୍ତ, ଦାମ୍ଭିକ, (ସ୍ତ୍ରୀ) ଅହଂକାରିଣୀ ।
ଅହଂକୃତ—ତ୍ରି.ବିଂ.(ଅହଂ + କୃ + କ.ତ) ଗର୍ବୀ, ଅହଂକାରଯୁକ୍ତ, ହାମ୍‌ବଡ଼ା, (ସ୍ତ୍ରୀ) ଅହଂକୃତା ।
ଅହଂକୃତି—ସ୍ତ୍ରୀ. ବି. ( ଅହଂ + କୃ + ଭା ତି ) ମୁଁ, ମୁଁ କରିବାକାର୍ଯ୍ୟ, ଅହଂ-କାରପଣିଆ ।
ଅହଙ୍କୁଟ—ଗ୍ରା. ବି. ଅବଗୁଣ, ଅଭିମାନ, ଅବୁଝାପଣ, ଜିଗରଦସ୍ତି ।
ଅହଙ୍କୁଟିଆ—ଗ୍ରା. ବି. ପୁଂ. ଓ ସ୍ତ୍ରୀ. (ଗାଳି) ବେକାୟ୍ଦା ଅଭିମାନୀ, ଅବୁଝା, ଜିଗରଆ ।
ଅହଂପୂର୍ବ—ବି. ମୁଁ ଆଗେଯିବି,ମୁଁ ଆଗେ କରିବି, ଆଗଚଲାଭାବ, ଗର୍ବପ୍ରକାଶ, ବାଲିଙ୍ଗି ।
ଅହଂଭଦ୍ର—ତ୍ରି.ବି. ମୁଁ ଏକା ଭଦ୍ର ଏହି-ପରି ନିର୍ଣ୍ଣୟର ପ୍ରୟୋଜନ ।
ଅହଂମଦ—ପୁଂ. ବି.(କ.ଧା) ଅହଂକାର, ମୁଁ ବଡ଼ ଏହିରୂପ ଅଭିମାନ ।
ଅହଂଯୁ—ବିଂ. ପୁଂ. ସ୍ତ୍ରୀ. ଅହଂକାରୀ, ଆତ୍ମଗର୍ବୀ, (ବି.) ଯୋଦ୍ଧା ।
ଅହଃ—କ୍ଲୀ. ବି. ଦିବସ ।
ଅହଃପତି – ପୁଂ. ବି. ଅହର୍ପତି, ସୂର୍ଯ୍ୟ, ଦିନନାଥ ।
ଅହଃଶେଷ—ପୁଂ.ବି. (୬ତତ୍) ଦିବାବ-ସାନ, ସନ୍ଧ୍ୟାକାଳ ।

ଅହତ—କ୍ଳୀ. ବ. ନୂତନବସ୍ତ୍ର, ଯେ ଲୁଗା କେହି ପିନ୍ଧିନାହିଁ, ଅକ୍ଷତ, (ବିଂ) ହତଭିନ୍ନ, ଅନାହତ, ଅତାଡ଼ିତ ।

ଅହତି—ସ୍ତ୍ରୀ. ବ. ହନନର ଅଭାବ, ଅବିନାଶ, (ବିଂ) ଅବିନଷ୍ଟ ।

ଅହନା—ସ୍ତ୍ରୀ. ବ. ଊଷା ।

ଅହନ୍ତା—ସ୍ତ୍ରୀ. ବ. ଶତ୍ରୁତା, ଅଦଉଡ, ପ୍ରତିହିଂସା, କ୍ରୋଧ, ଅନିଷ୍ଟକାମନା, ଅହଂକାର, ଅକସ ।

ଅହନ୍ତଆ—ଗ୍ରା ବିଂ.ପୂର୍ବକୃତ ଦୋଷପାଇଁ ପ୍ରତିହିଂସାପରାୟଣ ହୋଇ ପରେ ଦାଉସାଧିବା (ବ୍ୟକ୍ତି), ପ୍ରତିହିଂସା-ପୂର୍ଣ୍ଣ (ବିଷୟ) ।

ଅହମ୍ମକ—(ଯା) ଓଲୁ, ନିର୍ବୋଧ ।

ଅହମହମିକା—ସ୍ତ୍ରୀ. ବ. ପରସ୍ପର ମଧ୍ୟରେ ବଡ଼େଇକରିବା, ମୁହିଁବାଲୁଙ୍ଗି, ନିଜର ବଡ଼ପଣ ଦେଖାଇହେବା ।

ଅହମିକା—ବ.(ଅହଂ + କ + ଅ) ଗର୍ବ, ଅହଂକାର, ମୁହିଁବାଲୁଙ୍ଗି କରିବା ।

ଅହମ୍ମତି—ସ୍ତ୍ରୀ. ବ. ( କ.ଧା ) ଅବିଦ୍ୟା, ଅଜ୍ଞାନ ।

ଅହର—ବି. ବିଂ. (ଅ + ହର୍ + ଅ) ହାରକନୁହେ, ବାହନସ୍ଥାନ ।

ଅହର୍ଗଣ—ପୁଂ. ବ. (ଜ୍ୟୋତିଷ) ମାସର ଗତଦିବସମାନଙ୍କର ସଂଖ୍ୟା ।

ଅହର୍ପତି, ଅହର୍ମଣି—( ଅହଃ + ପତି ) ୬ତତ୍ପୁ ପୁଂ.ବ.ସୂର୍ଯ୍ୟ, ଦିନନାଥ ।

ଅହର୍ମୁଖ—ବି. ବିଂ. ପ୍ରତ୍ୟୁଷ, ପ୍ରାତଃକାଳ, ବଡ଼ିଭୋର ।

ଅହରହଃ—ବି. ବିଂ. (ଦ୍ୱନ୍ଦ୍ୱ) (ଅହନ୍ + ଅହନ୍) ପ୍ରତିଦିନ, ସର୍ବଦା, ଦିନ ଦିନ ।

ଅହର୍ନାଥ—ପୁଂ.ବ. ସୂର୍ଯ୍ୟ, ଅରଖଗଛ ।

ଅହର୍ନିଶ—କ୍ଳୀ.ବି.(ଅହନ୍ + ନିଶା + ଅ) ଦିବାରାତ୍ର, ସର୍ବଦା, ନିରନ୍ତର ।

ଅହର୍ବାନ୍ଧବ—ପୁଂ.ବ.୬ତତ୍ପୁ;(ଅହନ୍ + ବାନ୍ଧବ) ସୂର୍ଯ୍ୟ, ଅରଖଗଛ ।

ଅହର୍ଭ୍ରଜ—ସ୍ତ୍ରୀ. ବ. ଇଷ୍ଟକବିଶେଷ, ଯେଉଁ ଇଟା ବହୁକାଳ ରହେ ।

ଅହର୍ମଣି—ପୁଂ. ବ, (୬ତତ୍ପୁ) ସୂର୍ଯ୍ୟ, ଦିବାକର, ଅରଖଗଛ ।

ଅହର୍ବିଦ—ପୁଂ. ବ. ଏକାହସାଧ୍ୟ ଅଗ୍ନିଷ୍ଟୋମବେତ୍ତା ।

ଅହସା—ଗ୍ରା(ସମ୍ପୂ) ବ.ଶିଶୁରୋଗବିଶେଷ, ପିଠୁଲାରୋଗ ।

ଅହଲ୍ୟ—ବି. ବିଂ. (ନ.ତତ୍ପୁ) ଯେଉଁଭୂମି ଲଙ୍ଗଳଦ୍ୱାରା କର୍ଷଣ କରାଯାଇ ନାହିଁ, ପଡ଼ିଆଜମି ।

ଅହଲ୍ୟା—ସ୍ତ୍ରୀ.ବ.(ଅ + ହଲ୍ + ଯ + ଆ) ଗୌତମମୁନିଙ୍କର ପତ୍ନୀ, ବୃଦ୍ଧାଶ୍ୱଙ୍କର କନ୍ୟା, ଅପ୍ସରାବିଶେଷ, ସ୍ତ୍ରୀ ଲୋକଙ୍କ ଦିଆଯିବା ନାମ ।

ଅହଲ୍ୟା ନନ୍ଦନ --ପୁଂ.ବ. ଶତାନନ୍ଦଋଷି ।

ଅହଲ୍ୟାରାଜ- -ପୁଂ. ବ. ଇନ୍ଦ୍ର ।

ଅହଲ୍ୟାବାଇ—ଗ୍ରା. ବି. ମାଲବର ସ୍ୱନାମଖ୍ୟାତା ରାଣୀ ।

ଅହଲ୍ୟାହ୍ରଦ —ପୁଂ.ବ. (କ.ଧା)ଗୌତମଙ୍କର ଆଶ୍ରମ-ନିକଟସ୍ଥ ତୀର୍ଥବିଶେଷ ।

ଅହଲ୍ଲିକ—ପୁଂ. ବ. ପ୍ରେତ ।

ଅହସ୍କର—ପୁଂ. ବ. ୬ତତ୍ପୁ (ଅହନ୍ + କୃ + ଅ) ସୂର୍ଯ୍ୟ, ଅର୍କବୃକ୍ଷ ।

ଅହସ୍ତ—ବି. ବିଂ. ହସ୍ତଶୂନ୍ୟ, ସର୍ପାଦି ପ୍ରାଣୀ, ଛିନ୍ନହସ୍ତ ।

ଅହସ୍ପତି—ପୁଂ. ବ. ସୂର୍ଯ୍ୟ, ଅର୍କବୃକ୍ଷ ।

ଅହହ—(ଅବ୍ୟ) ଆଃ, ଆହା, ଆହେ, ଅହୋ, ହାସ୍ୟହାସ୍ୟ, ଆନନ୍ଦସମ୍ବୋଧନ ।

ଅହାର୍ଯ୍ୟ—ପୁଂ. ବ. ପର୍ବତ,(ବିଂ) ଯାହା-ସ୍ଥାନାନ୍ତରିତ ହୋଇ ନ ପାରେ, ହରଣର ଅଯୋଗ୍ୟ, ଅଭେଦ୍ୟ, ଅହରଣୀୟ, (ସ୍ତ୍ରୀ) ଅହାର୍ଯ୍ୟା ।

ଅହି—ପୁଂ.ବ.(ଅ + ହ + ଇ)ସର୍ପ,ସାପ, ସୂର୍ଯ୍ୟ, ପଥିକ, ରାହୁ, ବୃତ୍ରାସୁର, ଜଳ ଖଳ,(ଜ୍ୟୋତିଷ) ଅଶ୍ଳେଷାନକ୍ଷତ୍ର ।

ଅହିଅ—ଗ୍ରା. ସ୍ତ୍ରୀ. ବିଂ. ସଧବା ସ୍ତ୍ରୀ ।

ଅହିଅକଉଡ଼ି—ଗ୍ରା.ବି. ସଧବା ସ୍ତ୍ରୀର ଶବ ଶ୍ମଶାନକୁ ନିଆ ହେଲାବେଳେ ଶବ ଆଗେ ଆଗେ ସ୍ୱାମୀ ଯେଉଁ ଖଇମିଶା କଉଡ଼ି ବୁଣେ ।

ଅହିଅମଣ୍ଡଳ—ଗ୍ରା. ବ. ଅହ୍ୟ ସ୍ତ୍ରୀମାନେ ମଲାପରେ ବୈକୁଣ୍ଠର ଯେଉଁ ସ୍ଥଳ ବା ଲୋକକୁ ଯାଆନ୍ତି, ମଙ୍ଗଳ କାର୍ଯ୍ୟରେ ସଧବା ସ୍ତ୍ରୀମାନଙ୍କଦ୍ୱାରା କଟା ହୋଇଥିବା ଚିତା ବା ପଦ୍ମାକାର ଚିତ୍ର ।

ଅହିଅହିତ —ପୁଂ.ବ.(ଅହି + ଅହିତ)ଇନ୍ଦ୍ର ।

ଅହିଆ—ଗ୍ରା.ବି. ଅସ୍ଥାୟୀ ଚୁଲ୍ଲୀ ।

ଅହିଂସକ—ବି. ବିଂ. (ନ.ତତ୍ପୁ) ହିଂସାରହିତ, ଯେ ଅନିଷ୍ଟକାରକ ନୁହେ, ଜିତେନ୍ଦ୍ରିୟ, (ସ୍ତ୍ରୀ) ଅହିଂସିକା ।

ଅହିଂସ୍ୟ—ବି. ବିଂ. (ନ.ତତ୍ପୁ) ବଧର ଅଯୋଗ୍ୟ, ଯାହାକୁ ବଧ କରିବା ଉଚିତ ନୁହେ, ଅବଧ୍ୟ ।

ଅହିଂସାନ—ବି.ବିଂ. ହିଂସାଶୀଳ ନୁହେ, ଯେ କାହାର ହିଂସା କରେ ନାହିଁ ।

ଅହିଂସିତ—ବି. ବ. (ନ.ତତ୍ପୁ) ଯାହାର ହିଂସା କରାହୁଏନାହିଁ,ଅହତ, ଅନାହତ, ଅକ୍ଷତ, (ସ୍ତ୍ରୀ) ଅହିଂସିତା ।

ଅହିଂସ୍ର—ବି.ବିଂ. (ନ.ତତ୍ପୁ) ଯେ ହିଂସାସ୍ୱଭାବର ନୁହେ, ଯେ ଅନିଷ୍ଟକାରୀ ନୁହେ ।

ଅହିକା—ସ୍ତ୍ରୀ. ବ. ଶାଲ୍ମଳୀ ବୃକ୍ଷ, ଶିମୂଳୀ ଗଛ, (ପୁଂ.) ଧ୍ରୁବନକ୍ଷତ୍ର ।

ଅହିକାନ୍ତ—ପୁଂ. ବ. (୬ତତ୍ପୁ) ବାୟୁ ।

ଅହିକ୍ଷେତ୍ର—ପୁଂ. ବ. ହସ୍ତିନାର ପୂର୍ବଦେଶବର୍ତ୍ତୀ ଦେଶବିଶେଷ, ଯେଉଁ ଭୂମିରେ ସାପ ଥାନ୍ତି ।

ଅହିଚ୍ଛତ୍ର—ପୁଂ.ବ. (୬ତତ୍ପୁ) ମେଣ୍ଢାଶିଙ୍ଘା ଗଛ, (ସ୍ତ୍ରୀ) ନଗରୀବିଶେଷ(ପୁଂ) ଦେଶବିଶେଷ ।

ଅହିଚ୍ଛତ୍ରା—ସ୍ତ୍ରୀ.ବି. ପୁଷ୍ପବିଶେଷ, ଶର୍କରା, [ ଚିନି ।

ଅହିଜିତ୍—ପୁଂ.ବ.(ଅହି + ଜି + କ.କ୍ୱିପ୍) କୃଷ୍ଣ, ଇନ୍ଦ୍ର,ଗରୁଡ଼, ମୟୂର, ନେଉଳ ।

ଅହିଜିହ୍ୱା—ସ୍ତ୍ରୀ. ବ. ନାଗଜିହ୍ୱାନାମକ ଲତାବିଶେଷ ।

ଅହିଣ୍ଡୁକା—ସ୍ତ୍ରୀ.ବ.ଶୁଶ୍ରୁତୋକ୍ତ କୀଟ- [ ବିଶେଷ ।

ଅହିତ—ପୁଂ.ବ. (ଅ + ହିତ) ନ. ତତ୍ପୁ; ଶତ୍ରୁ, (କ୍ଳୀ.ବ.)ଅମଙ୍ଗଳ, ଅନିଷ୍ଟ, ଅପକାର, କୁପଥ୍ୟ, ଅଯୋଗ୍ୟ, ବିଂ. ଅମଙ୍ଗଳଜନକ, ଅନିଷ୍ଟକର ।

ଅହିତକର—ତ୍ରି. ବିଂ. (ନ.ତତ୍ପୁ)ଅନିଷ୍ଟକର, ଅମଙ୍ଗଳଜନକ, ଅପକାରୀ, (ସ୍ତ୍ରୀ) ଅହିତକାରୀ ।

ଅହିତକାରୀ—ପୁଂ. ବି°.(ଅହିତ + କୃ + କ ଇନ୍) ଅନିଷ୍ଟକାରକ, ଅମଙ୍ଗଳସାଧକ, ଅପକାରକ, କ୍ଷତିଜନକ, (ସ୍ତ୍ରୀ) ଅହିତକାରିଣୀ ।

ଅହିତାଚାରୀ—ପୁଂ. ବି° (ଅହିତ + ଆ + ଚର + କ.ଇନ୍) ଅହିତକର, ଅନିଷ୍ଟକାରୀ,ଅପକାରୀ ।

ଅହିତୁଣ୍ଡିକ—ପୁଂ.ବି.(ଅହି + ତୁଣ୍ଡି + ଇକ) ସାପୁଆକେଳା, ବ୍ୟାଳଗ୍ରାହୀ ।

ଅହିଦ୍ୱିଟ୍—ପୁଂ.ବି.(ଅହି + ଦ୍ୱିଷ୍ + କ୍ୱିପ୍) ଗରୁଡ଼,ମୟୂର, ଇନ୍ଦ୍ର, କୃଷ୍ଣ, ନେଉଳ ।

ଅହିନକୁଲତା—ସ୍ତ୍ରୀ. ବି (ଅହିନକୁଳ + ଭା.ତା) ସାପ-ନେଉଳ ମଧ୍ୟରେ ଥିବା ଚିରସ୍ଥାୟୀ ବିରୋଧଭାବ, ନିତ୍ୟ-ବୈରିତା, ସ୍ୱାଭାବିକ ଶତ୍ରୁତା ।

ଅହିନକୁଲଭାବ—ବି. ଅହିନକୁଲତା, (ଦେଖ) । [ (ଦେଖ) ।

ଅହିନକୁଲସମ୍ବନ୍ଧ—ବି. ଅହି-ନକୁଲତା

ଅହିନରକ—ଗ୍ରା. ବି. ଅହିଅ ନରକ (ଦେଖ) । [ ଶେଷନାଗ ।

ଅହିନାଥ—ପୁଂ. ବି. (୬ତତ୍) ବାସୁକି,

ଅହିନିର୍ମୋକ – ପୁଂ.ବି. ସାପକାତି ।

ଅହିନିର୍ଲ୍ଲୟଣୀ—ସ୍ତ୍ରୀ. ବି. ସାପକାତି ।

ଅହିପତାକ—ପୁଂ. ବି. ସର୍ପବିଶେଷ ।

ଅହିପତି—ପୁଂ.ବି. ବାସୁକି ନାଗ ।

ଅହିପୁତ୍ରକ—ପୁଂ.ବି. ନୌକାବିଶେଷ, ଛୋଟପୁଲ ଡଙ୍ଗା ।

ଅହିପୂତନ—କ୍ଲୀ.ବି. କ୍ଷୁଦ୍ରରୋଗବିଶେଷ, ବ୍ରଣରୋଗବିଶେଷ ।

ଅହିଫେନ—ପୁଂ. ବି. ୬ତତ୍; (ଅହି + ଫେନ) ଅଫିମ, ସାପଗରଳ, ସାପର ଫେଣ ।

ଅହିବ୍ରତ—ଗ୍ରା.ବି. ଓ ବି°. (ସଂ.ଅୟୁତ) ଅୟୁତ, ଦଶହଜାର ସଂଖ୍ୟା ।

ଅହିବୁଧ୍ନ—ପୁଂ. ବି. (କ.ଧା) ରୁଦ୍ର-ବିଶେଷ,ଶିବ ଉତ୍ତରଭାଦ୍ରପଦ ନକ୍ଷତ୍ର-ବିଶେଷ । [ ବିଶେଷ ।

ଅହିର୍ବୁଧ୍ନ—ପୁଂ.ବି. (କ.ଧା) ଶିବ,ରୁଦ୍ର-

ଅହିବ୍ରଧ୍ନଦେବତା—ସ୍ତ୍ରୀ. ବି. (ବ.ବ୍ରୀ) ଉତ୍ତରଭାଦ୍ରପଦ ନକ୍ଷତ୍ର ।

ଅହିର୍ବୁଧ୍ନ୍ୟ—ପୁଂ. ବି. ଅଗ୍ନି, ମଧ୍ୟସ୍ଥାନ, ଦେବତା ।

ଅହିଭୟ—କ୍ଲୀ. ବି. (୫ତତ୍) ସର୍ପଭୟ, ସ୍ୱପକ୍ଷୀୟବ୍ୟକ୍ତି, ଦ୍ରୋହ ବା ଅନିଷ୍ଟ କରିବାର ଭୟ ।

ଅହିଭୟଦା—ସ୍ତ୍ରୀ.ବି.(ଅହିଭୟ + ଦା + କ.ଅ + ଆ ଭୂଇଁ ଅଁଳା ।

ଅହିଭାନୁ—ପୁଂ.ବି. ପ୍ରବାହବାୟୁ ।

ଅହିଭୁକ୍—ପୁଂ.ବି. (ଅହି + ଭୁଜ୍ + କ୍ୱିପ୍) ମୟୂର, ଗରୁଡ଼, ନକୁଲ, (ବି°) ସର୍ପଭୋଜୀ ।

ଅହିଭୁଜ—ପୁଂ.ବି. ଅହିଭୁକ୍ (ଦେଖ) ।

ଅହିଭୂଷଣ—ପୁଂ. ବି. (ବ.ବ୍ରୀ) ଶିବ, ମହାଦେବ ।

ଅହିଭୃତ୍—ପୁଂ.ବି. ଶିବ, ମହାଦେବ ।

ଅହିମ—କ୍ଲୀ.ବି. ଉଷ୍ଣସ୍ପର୍ଶ (ବି°) ଉଷ୍ଣସ୍ପର୍ଶ-ଯୁକ୍ତ, ଗରମ, ଅଶୀତଳ ।

ଅହିମକର—ପୁଂ. ବି. ( ଅହିମ + କର) ସୂର୍ଯ୍ୟ, ସର୍ପ ଓ ମଗର ।

ଅହିମତେଜାଃ—ପୁଂ.ବି.(ବ.ବ୍ରୀ) ସୂର୍ଯ୍ୟ ।

ଅହିମଦ୍ୟୁତି—ପୁଂ.ବି.ସୂର୍ଯ୍ୟ,ଅର୍କବୃକ୍ଷ ।

ଅହିମର୍ଦ୍ଦିନୀ—ସ୍ତ୍ରୀ.ବି. ଗନ୍ଧନାକୁଲିନାମକ ମୂଳ ବିଶେଷ ।

ଅହିମନ୍ୟୁ—ବି. ବି. ହନନଶୀଳ, ହିଂସ୍ର, (ବି°) ସର୍ପର କ୍ରୋଧ ।

ଅହିମାୟା—ପୁଂ.ବି. ବୃତ୍ରାସୁରାଦି ।

ଅହିମାର—ପୁଂ.ବି. ଅରିମେଦକ ବୃକ୍ଷ, ଗରୁଡ଼, ମୟୂର, ଇନ୍ଦ୍ର ।

ଅହିମାଂଶୁ—ପୁଂ.ବି. (ବ.ବ୍ରୀ) ସୂର୍ଯ୍ୟ ।

ଅହିମେଦ(କ)—ପୁଂ.ବି.ଅରିମେଦ ବୃକ୍ଷ ।

ଅହିରା—ଗ୍ରା. ବି. ହାଣ୍ଡି-ମାଠିଆପ୍ରଭୃତି ଭୂମିରେ ଅସ୍ଥିର କରି ରଖିବାର ପାଳ ମୁଚୁଳା, ମଳା ।

ଅହିରାଜ—ପୁଂ.ବି (୬ତତ୍) ଗୋଖର-ଜାତୀୟ ଶଙ୍ଖଚୂଡ଼ନାମକ ସର୍ପବିଶେଷ, ମଥାରେ ମଣି ଥିବା ବଡ଼ ସର୍ପ ଅନନ୍ତ, ସହସ୍ର ଫଣାଧାରୀ ନାଗ, (ପୁରାଣ) ପାତାଳର ରାଜା ବାସୁକି ।

ଅହିରା,ଅହିଘରା—ଗ୍ରା. ବି. ଅଗ୍ନି-ଉତ୍ସବ-ବିଶେଷ । [ ଏକଶ୍ରେଣୀ ।

ଅହିରଗଉଡ଼—ଗ୍ରା. ବି. ଗଉଡ଼ଙ୍କାଭିତର

ଅହିରିପୁ—ପୁଂ. ବି. କୃଷ୍ଣ, ଇନ୍ଦ୍ର, ଗରୁଡ଼, ନେଉଳ ।

ଅହିଲତା—ସ୍ତ୍ରୀ ବି. (କ.ଧ) ତାମ୍ବୁଲୀ, ପାନଅଇର ଲତା ।

ଅହିଶୁଷ୍ମ—ତ୍ରି. ବି°. ବ୍ୟାପକ ବଳ ।

ଅହିସଂକ୍ରନ୍ଦ—କ୍ଲୀ.ବି.ସର୍ପତୁଲ୍ୟଦୀର୍ଘସଂଶ୍ଲିଷ୍ଟଯୁକ୍ତ, (ପୁଂ) ତଦାକାର ଦେଶ ।

ଅହିହତ୍ୟ—କ୍ଲୀ.ବି. ବୃତ୍ରାସୁରର ହନନ, ସାପ ପିଟିବା ।

ଅହିହନ—ପୁଂ. ବି. ଗରୁଡ଼, ଇନ୍ଦ୍ର ।

ଅହୀ—ସ୍ତ୍ରୀ.ବି;ଗୋରୁ(ଦ୍ୱିବଚନ)ଦ୍ୟୁଲୋକ ଏବଂ ପୃଥିବୀ ।

ଅହୀନ—ପୁଂ. ବି. (୬ତତ୍) ବହୁଦିନ ସାଧ୍ୟ ଦ୍ୱିରାତ୍ର୍ୟାଦି ଯାଗ, ଅହୀ ନାମିନଃ ସ୍ୱାମୀ, ସର୍ପରାଜ, ବାସୁକୀ (ବି°) ନ୍ୟୂନ ନୁହେ (ସ୍ତ୍ରୀ) ଅହୀନା । [ ବିଶେଷ ।

ଅହୀନଗୁ—ପୁଂ. ବି ସୂର୍ଯ୍ୟ ବଂଶୀୟ ରାଜା-

ଅହୀନର—ପୁଂ. ବି. ଚନ୍ଦ୍ରବଂଶୀୟ ଉଦୟ ନରପତି ।

ଅହୀନ୍ଦ୍ର—ପୁଂ. ବି. ( ୬ତତ୍ ) ସର୍ପରାଜ, ବାସୁକି, ଶେଷନାଗ । [ ଗଉଡ଼ ।

ଅହୀର—ପୁଂ.ବି. ଆଭୀର, ଗଉଡ଼, ଅହିର

ଅହୀରଣୀ—ପୁଂ. ବି. (ଅହି + ଈର + କ. ଅନ) ଦ୍ୱିମୁଖ ସର୍ପ, ଦ୍ୱିମୁଁହା ସାପ ।

ଅହୀଶ୍ୱର—ପୁଂ.ବି. ୬ତତ୍; (ଅହି + ଈଶ୍ୱର) ଅନନ୍ତ, ବାସୁକି, ସର୍ପରାଜ ।

ଅହୀଶୁବ—ପୁଂ. ବି°. ବୃଦ୍ଧିଯୁକ୍ତ, (ବି) ଶତ୍ରୁବିଶେଷ ।

ଅହୁ—ତ୍ରି. ବି°.ବ୍ୟାପକ (ସ୍ତ୍ରୀ) ବ୍ୟାପିକା, (କ୍ଲୀ) ଭଗ ।

ଅହୁତ—ପୁଂ. ବି. ହୋମଶୂନ୍ୟ, ବେଦ-ପାଠ,(ବି°) ଅନାହୂତ (ସ୍ତ୍ରୀ) ଅହୁତା ।

ଅହୃଣାନ—ବି. ବି°. ଅକ୍ରୋଧୀ ।

ଅହୃତ—ବି. ବି°. (ନ.ତତ୍) ଯାହା ହରଣ କରି ହୁଏନାହିଁ, ଅପ୍ରେରିତ, (ସ୍ତ୍ରୀ) ଅହୃତା ।

ଅହୃଦ୍ୟ—ବି. ବଂ. (ନ.ତତ୍ପୁ) ଅକମନୀୟ, ଅପ୍ରୀତିକର, ଅସୁନ୍ଦର, (ସ୍ତ୍ରୀ) ଅହୃଦ୍ୟା ।

ଅହୃଷ୍ଟ—ବି. ବଂ. (ନ.ତତ୍ପୁ) ଅସନ୍ତୁଷ୍ଟ, ଆନନ୍ଦିତ ହୋଇ ନ ଥିବା, (ସ୍ତ୍ରୀ) ଅହୃଷ୍ଟା ।

ଅହେ—(ଅବ୍ୟ) ସମବୟସ୍କ ବା ଆପଣାଠାରୁ ନ୍ୟୂନବୟସ୍କ ଲୋକ ପକ୍ଷରେ ସମ୍ବୋଧନସୂଚକ ।

ଅହେଜା—ଗ୍ରା. ବି. ଅବସର ।

ଅହେଡ଼—ବି. ବଂ. ଅବଜ୍ଞାଶୂନ୍ୟ, ଅନାଦରରହିତ, ଅହେଡ଼ମାନ ।

ଅହେତୁ—ପୁଂ. ବି. ଅଣହେତୁ, ହେତୁ କରି ନପାରିବା ଅବସ୍ଥା,ଅମନୋଯୋଗ, (ଗ୍ରା.ବଂ) ଅମନୋଯୋଗୀ, ଯେ ଶୀଘ୍ର ଭୁଲିଯାଏ ।

ଅହେତୁକ—ବି.ବଂ. (ବ.ବ୍ରୀ )ହେତୁଶୂନ୍ୟ ଅକାରଣ, ନିଃସ୍ୱାର୍ଥ, ମୂଳହୀନ,ଆକସ୍ମିକ, ଅନର୍ଥକ । [ଅତ୍ୟାଜ୍ୟ

ଅହେୟ—ବି. ( ଅ + ହେୟ ) ଅଘୃଣ୍ୟ,

ଅହେରୁ—ସ୍ତ୍ରୀ.ବି. (ଅ + ହି + ରୁ) ଶତାବରୀ, ଶତମୂଳୀ, ଛତୁଆରି ।

ଅହୈତୁକ—ବଂ. ( ଅ + ହେତୁ + କ ) କାରଣରହିତ, ଅକାରଣ, ନିଷ୍କାମ ।

ଅହୈତୁକୀ – ବଂ. (ଅ + ହେତୁ + ଅକ + ଇନ୍) ନିରହେତୁକ, ହେତୁଶୂନ୍ୟ ।

ଅହୈତୁକପ୍ରେମ—ବି. (ଅହୈତୁକ + ପ୍ରେମ) ଯେଉଁ ପ୍ରେମରେ ପ୍ରତିଦାନର ଆଶା-ନାହିଁ, କାରଣ-ରହିତ ପ୍ରେମ ।

ଅହୈତୁକଭକ୍ତି- -ବି.ନିଷ୍କାମଭକ୍ତି, କାମନା ନ ରଖି ଯେଉଁ ଭକ୍ତି କରାଯାଏ ।

ଅହୋ—(ଅବ୍ୟ) ଶୋକ, ବିଷାଦ, ଦୟା, ବିତର୍କ, ପ୍ରଶଂସା, ଅସୂୟାର୍ଥରେ ପ୍ରଯୁକ୍ତ ସମ୍ବୋଧନ, ହଇହେ, ଓହୋ, ଅହୋ, ଇତ୍ୟାଦି ।

ଅହୋରଥନ୍ତର—କ୍ଲୀ. ବି. ଦିବସେଶେଷ ରଥନ୍ତର ନାମକ ସାମବେଦ ।

ଅହୋରୂପ—ଗ୍ରା. ବଂ. ଆଶ୍ଚର୍ଯ୍ୟଜନକ ।

ଅହୋବତ—(ଅବ୍ୟ) ଖେଦ, ବିସ୍ମୟ, ସମ୍ବୋଧନ, ଅନୁକମ୍ପା, ଏହି ଅର୍ଥରେ ପ୍ରୟୋଗ । [ଖେଦ ।

ଅହୋହୋ —(ଅବ୍ୟ) ସମ୍ବୋଧନ,ବିସ୍ମୟ,

ଅହ୍ନବାର୍ଯ୍ୟ—ପୁଂ. ବଂ. ଯେ ଅପଲାପ କରେ ନାହିଁ ।

ଅହ୍ନାୟ—(ଅବ୍ୟ)ଶୀଘ୍ରତା,ଝଟିତି,ଦ୍ରୁତ ।

ଅହ୍ନୁଣିଆଁ—ଗ୍ରା. ଯାହା ନୈବେଦ୍ୟପାଇଁ ରଖା ହୁଏ, ମହାପ୍ରସାଦବିଶେଷ ।

ଅହ୍ନୁଣିଆକୂଅ—ଗ୍ରା. ବି. ଯେଉଁ କୂଅରେ ମାରା ହୋଇଥିବା ଅହ୍ନୁଣିଆ ନିକ୍ଷେପ କରାଯାଏ । [ସ୍ତ୍ରୀ

ଅହ୍ୟ—ଗ୍ରା.ବଂ.ସ୍ତ୍ରୀ. ପ୍ରଶଂସନୀୟା,ସଧବା,

ଅହ୍ରୀକ—ବି. ବଂ. ନିର୍ଲଜ୍ଜ, ଲଜ୍ଜାରହିତା ।

ଅହ୍ରୀୟାଣ—ବି.ବଂ. ନିର୍ଲଜ, ଲଜ୍ଜାହୀନ ।

ଅହ୍ୱ—ପୁଂ ବି. କବି, ଶୁକ୍ର ।

ଅହ୍ରୁତ—ବି. ବଂ. ବକ୍ର ନୁହେ ।

ଅହ୍ରୀକ—ପୁଂ.ବି. କ୍ଷପଣକ, (ବଂ) ନିର୍ଲଜ୍ଜ, ଲଜ୍ଜାହୀନ ।

ଅହ୍ୱଲ—ବି. ବି. ଭଲ୍ଲାତକ, ଭାଲିଆ-ଗଛ,(ବଂ) ବିହ୍ୱଳ ନୁହେ ।

# ଆ

ଆ—ଆକାର,ଦ୍ୱିତୀୟ ସ୍ୱରବର୍ଣ୍ଣ,ଅକାର ଓ ଅକାର ମିଳି ଆବର୍ଣ୍ଣ ହୋଇଥାଏ, ଏହା ଦୀର୍ଘସ୍ୱର ଓ ପ୍ଲୁତ ସ୍ୱର ଅଟେ, ଏହାର ସଂକ୍ଷିପ୍ତ ଆକୃତି (ା) ଏହିପରି ହୁଏ,ଯଥା-(କ + ଆ = କା) କାମଧେନୁତନ୍ତ୍ରେଲେଖା-ଅଛି ଯେ, ଆକାର କୌଣ୍ଡଳୀସ୍ୱ ବର୍ଣ୍ଣ, ଏଥିରେ ବ୍ରହ୍ମା, ବିଷ୍ଣୁ ଓ ଶିବ ବିରାଜିତ ଅଛନ୍ତି, ଏହା ପଞ୍ଚପ୍ରାଣମୟ, ଏହାର ଉଚ୍ଚାରଣ ସ୍ଥାନ କଣ୍ଠ, (ଅବ୍ୟ) (ଆପ + କ୍ୱିପ୍) ବାକ୍ୟ, ସ୍ମରଣ, ସମୁଚ୍ଚୟ,ଅନୁ-କମ୍ପା, ଅଙ୍ଗୀକାର, ଈଷଦର୍ଥ, କ୍ରିୟା-ଯୋଗ,ସୀମା, ବ୍ୟାପ୍ତି, ବ୍ୟାଜ,ପର୍ଯ୍ୟନ୍ତ ।

ଆଃ—ପୁଂ. ମହେଶ୍ୱର, ପିତାମହ, ବାକ୍ୟ, (ଅବ୍ୟ) କୋପ, ପୀଡ଼ା ସ୍ମରଣ,ସନ୍ତାପ, ସୁଖ ଓ ଦୁଃଖସୂଚକ ସ୍ୱର ।

ଆଇ—(ଗ୍ରା) ସ୍ତ୍ରୀ. ବି. ମାତାମହୀ, ମା'ର ମା', (ଅ) ଲଜ୍ଜାବୋଧକ, (ମ୍ଳେଚ୍ଛଜ) ଆସ ।

ଆଇଆ—ଗ୍ରା. ସ୍ତ୍ରୀ. ବି. ଆୟା ।

ଆଇଖାଡ଼ି—ଗ୍ରା. (ଗଡ଼ଜାତ) ଦନ୍ତମୁହାଁ ହେବାପାଇଁ ବ୍ୟବହୃତ କାଠି ।

ଆଇଁଗିଣିଆ—ଗ୍ରା.ବଂ. ରନ୍ଧାଦୋଷରୁ ବା ଫଳର ନିକୃଷ୍ଟତା ହେତୁ ବିସ୍ୱାଦ ଲାଗୁଥିବା ।

ଆଇଚ—ବି. ଏକପ୍ରକାର ଫୁଲଗଛ, କାୟସ୍ଥମାନଙ୍କର ଉପାଧିବିଶେଷ ।

ଆଇନ୍—ଯା. ବି. ରାଜକୀୟ ବିଧି, ରାଜ-ନିୟମ, ବ୍ୟବସ୍ଥାଶାସ୍ତ୍ର ।

ଆଇନ୍‌କଟ—ଯା. (ଆନିକଟ ଦେଖ) ।

ଆଇନ୍‌କାନୁନ୍—ଯା. ବିଧିବ୍ୟବସ୍ଥାସମୂହ, ନିୟମମାନ ।

ଆଇନୀ—ଆକବରୀ ପୁସ୍ତକବିଶେଷ, ଏହା ପାରସ୍ୟ ଭାଷାଲିଖିତ ଆକବରଙ୍କ ରାଜନୀତିବିଷୟକ ।

ଆଇଲ—ଗ୍ରା. ଆଲବାଲର ଅପଭ୍ରଂଶ, ଦୁଇଦିଗ ଭୂମିର ମଧ୍ୟଭାଗ, କିମ୍ବା ବୃକ୍ଷ ଚତୁର୍ଦ୍ଦିଗରେ ସ୍ଥାପିତ ଜଳ ରକ୍ଷା କରିବାର ହିଡା ବା ମନ୍ଦା ।

ଆଇଲୁ—(ମ୍ଳେଚ୍ଛଜ) ଆସ,ଆସିଲୁ,ଆସନ୍ତୁ ।

ଆଇବୋ—(ମ୍ଳେଚ୍ଛଜ) ଆସ, ପିତାମହୀ ।

ଆଇବୁଢ଼ା—ଆଇବଡ଼—ଅନୂଢ଼ା ଶବ୍ଦର ଅପଭ୍ରଂଶ, ଅବିବାହିତ, ଉଥୁବା ।

ଆଇଁଷ—ଗ୍ରା. ବି. (ଆମିଷର ଅପଭ୍ରଂଶ) ମାଛ ମାଂସାଦି, ମାଛକାତି, (ବିପରୀତ) ନିରାଇଁଷ ।

ଆଇଁଷକାତି—ଗ୍ରା.ବି. ମାଛକାତି, ସଦାବିହାରୀ ଫୁଲ ଓ ଗୁଳ୍ମ ।

ଆଇଁଷିଆ-ଆଇଁଷିଣିଆ—ଗ୍ରା. ବି. ଆମିଷ-ଗନ୍ଧଯୁକ୍ତ, ଆମିଷପରି ଗନ୍ଧଯୁକ୍ତ ।

ଆଈ—ଗ୍ରା. ସ୍ତ୍ରୀ.ବି.(ସଂ.ଆର୍ଯ୍ୟା)ମାତାମହୀ, ମା'ର ମା', ପିତାମହୀ, (ପୁଂ) ଅଜା ।

ଆଈତୋଟା—ଗ୍ରା.ବି.ପୁରୀଧାମରଗୁଣ୍ଡିଚା-ମଣ୍ଡପ ନିକଟ ଉପବନ ।

ଅହୃଦ୍ୟ—ବି. ବଂ. (ନ.ତତ୍ପୁ) ଅକମନୀୟ, ଅପ୍ରୀତିକର, ଅସୁନ୍ଦର, (ସ୍ତ୍ରୀ) ଅହୃଦ୍ୟା ।

ଅହୃଷ୍ଟ—ବି. ବଂ. (ନ.ତତ୍ପୁ) ଅସନ୍ତୁଷ୍ଟ, ଆନନ୍ଦିତ ହୋଇ ନ ଥିବା, (ସ୍ତ୍ରୀ) ଅହୃଷ୍ଟା ।

ଅହେ—(ଅବ୍ୟ) ସମବୟସ୍କ ବା ଆପଣାଠାରୁ ନ୍ୟୂନବୟସ୍କ ଲୋକ ପକ୍ଷରେ ସମ୍ବୋଧନସୂଚକ ।

ଅହେଳା—ଗ୍ରା. ବି. ଅବଗୃର ।

ଅହେଡ଼—ବି. ବଂ. ଅବଜ୍ଞାଶୂନ୍ୟ, ଅନାଦରରହିତ, ଅହେଡ଼ମାନ ।

ଅହେତୁ—ପୁଂ. ବି. ଅଣହେତୁ, ହେତୁ କରି ନପାରିବା ଅବସ୍ଥା, ଅମନୋଯୋଗ, (ଗ୍ରା.ବଂ) ଅମନୋଯୋଗୀ, ଯେ ଶୀଘ୍ର ଭୁଲିଯାଏ ।

ଅହେତୁକ—ବି.ବଂ. (ବ.ବ୍ରୀ) ହେତୁଶୂନ୍ୟ ଅକାରଣ, ନିଃସ୍ୱାର୍ଥ, ମୂଳହୀନ, ଆକସ୍ମିକ, ଅନର୍ଥକ । [ଅଭ୍ୟାଳ୍ୟ

ଅହେୟ—ବି. (ଅ+ହେୟ) ଅଘୃଣ୍ୟ,

ଅହେରୁ—ସ୍ତ୍ରୀ.ବି. (ଅ+ହ+ରୁ) ଶତାବରୀ, ଶତମୂଳୀ, ଛତୁଆରି ।

ଅହୈତୁକ—ବଂ. (ଅ+ହେତୁ+କ) କାରଣରହିତ, ଅକାରଣ, ନିଷ୍କାମ ।

ଅହୈତୁକୀ—ବଂ. (ଅ+ହେତୁ+ଅକ+ଇନ୍) ନିରହେତୁକ, ହେତୁଶୂନ୍ୟ ।

ଅହୈତୁକପ୍ରେମ—ବି. (ଅହୈତୁକ+ପ୍ରେମ) ଯେଉଁ ପ୍ରେମରେ ପ୍ରତିଦାନର ଆଶା ନାହିଁ, କାରଣ-ରହିତ ପ୍ରେମ ।

ଅହୈତୁକଭକ୍ତି—ବି.ନିଷ୍କାମଭକ୍ତି, କାମନା ନ ରଖି ଯେଉଁ ଭକ୍ତି କରାଯାଏ ।

ଅହୋ—(ଅବ୍ୟ) ଶୋକ, ବିଷାଦ, ଦୟା, ବିତର୍କ, ପ୍ରଶଂସା, ଅସୂୟାର୍ଥରେ ପ୍ରଯୁକ୍ତ ସମ୍ବୋଧନ, ହଇହେ, ଓହୋ, ଅହୋ, ଇତ୍ୟାଦି ।

ଅହୋରଥନ୍ତର—କ୍ଲୀ. ବି. ଦିବସେଶେସ୍ୱ ରଥନ୍ତର ନାମକ ସାମବେଦ ।

ଅହୋରୂପ—ଗ୍ରା. ବଂ. ଆଶ୍ଚର୍ଯ୍ୟଜନକ ।

ଅହୋବତ—(ଅବ୍ୟ) ଖେଦ, ବିସ୍ମୟ, ସମ୍ବୋଧନ, ଅନୁକମ୍ପା, ଏହି ଅର୍ଥରେ ପ୍ରୟୋଗ । [ଖେଦ ।

ଅହୋହୋ—(ଅବ୍ୟ) ସମ୍ବୋଧନ, ବିସ୍ମୟ,

ଅହ୍ନବାଦୀ—ପୁଂ. ବଂ. ଯେ ଅପଲାପ କରେ ନାହିଁ ।

ଅହ୍ନାୟ—(ଅବ୍ୟ) ଶୀଘ୍ରତା, ଝଟିତି, ଦ୍ରୁତ ।

ଅହ୍ନୁଣିଆଁ—ଗ୍ରା. ଯାହା ନୈବେଦ୍ୟପାଇଁ ରଖା ହୁଏ, ମହାପ୍ରସାଦବିଶେଷ ।

ଅହ୍ନୁଣିଆକୂଅ—ଗ୍ରା. ବି. ଯେଉଁ କୂଅରେ ମାତ୍ର ହୋଇଥିବା ଅହ୍ନୁଣିଆ ନିକ୍ଷେପ କରାଯାଏ । [ସ୍ତ୍ରୀ

ଅହ୍ୟ—ଗ୍ରା.ବଂ.ସ୍ତ୍ରୀ. ପ୍ରଶଂସନୀୟା, ସଧବା,

ଅହ୍ରୀକ—ବି. ବଂ. ନିର୍ଲଜ୍ଜ, ଲଜ୍ଜାରହିତା ।

ଅହ୍ରୀଣ—ବି.ବଂ. ନିର୍ଲଜ, ଲଜ୍ଜାହୀନ ।

ଅହ୍ୱ—ପୁଂ ବି. କବି, ଶୁକ୍ର ।

ଅହ୍ରୁତ—ବି. ବଂ. ବନ୍ଦ ନୁହେ ।

ଅହ୍ରୀକ—ପୁଂ.ବି. କ୍ଷପଣକ, (ବଂ) ନିର୍ଲଜ୍ଜ, ଲଜ୍ଜାହୀନ ।

ଅହ୍ୱଲ—ବି. ବି. ଭଲ୍ଲାତକ, ଭାଲିଆଗଛ, (ବଂ) ବିହ୍ୱଳ ନୁହେ ।

# ଆ

ଆ—ଆକାର, ଦ୍ୱିତୀୟ ସ୍ୱରବର୍ଣ୍ଣ, ଅକାର ଓ ଅକାର ମିଳି ଆବର୍ଣ୍ଣ ହୋଇଥାଏ, ଏହା ଦୀର୍ଘସ୍ୱର ଓ ପ୍ଳୁତ ସ୍ୱର ଅଟେ, ଏହାର ସଂକ୍ଷିପ୍ତ ଆକୃତି (।) ଏହିପରି ହୁଏ, ଯଥା- (କ+ଆ=କା) କାମଧେନୁତନ୍ତ୍ରେଲେଖା ଅଛି ଯେ, ଆକାର ଜ୍ୟୋତିର୍ମୟ ବର୍ଣ୍ଣ, ଏଥିରେ ବ୍ରହ୍ମା, ବିଷ୍ଣୁ ଓ ଶିବ ବିରାଜିତ ଅଛନ୍ତି, ଏହା ପଞ୍ଚପ୍ରାଣମୟ, ଏହାର ଉଚ୍ଚାରଣ ସ୍ଥାନ କଣ୍ଠ, (ଅବ୍ୟ) (ଆପ+କ୍ୱିପ୍) ବାକ୍ୟ, ସ୍ମରଣ, ସମୁଚ୍ଚୟ, ଅନୁକମ୍ପା, ଅଙ୍ଗୀକାର, ଈଷଦର୍ଥ, କ୍ରିୟାଯୋଗ, ସୀମା, ବ୍ୟାପ୍ତି, ବ୍ୟାଜ, ପର୍ଯ୍ୟନ୍ତ ।

ଆଃ—ପୁଂ. ମହେଶ୍ୱର, ପିତାମହ, ବାକ୍ୟ, (ଅବ୍ୟ) କୋପ, ପୀଡ଼ା ସ୍ମରଣ, ସନ୍ତାପ, ସୁଖ ଓ ଦୁଃଖସୂଚକ ସ୍ୱର ।

ଆଇ—(ଗ୍ରା) ସ୍ତ୍ରୀ. ବି. ମାତାମହୀ, ମା'ର ମା', (ଅ) ଲଜ୍ଜାବୋଧକ, (ମ୍ଳେଚ୍ଛଜ) ଆସ ।

ଆଇଆ—ଗ୍ରା. ସ୍ତ୍ରୀ. ବି. ଆୟା ।

ଆଇଖାଡ଼ି—ଗ୍ରା. (ଗଡ଼ଜାତ) ଦନ୍ତମୁହାଁ ହେବାପାଇଁ ବ୍ୟବହୃତ କାଠି ।

ଆଇଁଗିଣିଆ—ଗ୍ରା.ବଂ. ରନ୍ଧାଦୋଷରୁ ବା ଫଳର ନିକୃଷ୍ଟତା ହେତୁ କଷାୟ ଲାଗୁଥିବା ।

ଆଇଚ—ବି. ଏକପ୍ରକାର ଫୁଲଗଛ, କାୟସ୍ଥମାନଙ୍କର ଉପାଧିବିଶେଷ ।

ଆଇନ୍—ଯା. ବି. ରାଜକୀୟ ବିଧି, ରାଜନିୟମ, ବ୍ୟବସ୍ଥାଶାସ୍ତ୍ର ।

ଆଇନ୍‌କଟ—ଯା. (ଆନକଟ ଦେଖ) ।

ଆଇନ୍‌କାନୁନ୍—ଯା. ବିଧିବ୍ୟବସ୍ଥାସମୂହ, ନିୟମମାନ ।

ଆଇନୀ—ଆକବରୀ ପୁସ୍ତକବିଶେଷ, ଏହା ପାରସ୍ୟ ଭାଷାଲିଖିତ ଆକବରଙ୍କ ରାଜନୀତିବିଷୟକ ।

ଆଇଲ—ଗ୍ରା. ଆଲବାଲର ଅପଭ୍ରଂଶ, ଦୁଇଦିଗ ଭୂମିର ମଧ୍ୟଭାଗ, କିମ୍ବା ବୃକ୍ଷ ଚତୁର୍ଦ୍ଦିଗରେ ସ୍ଥାପିତ ଜଳ ରକ୍ଷା କରିବାର ହତା ବା ମନ୍ଦା ।

ଆଇଲୁ—(ମ୍ଳେଚ୍ଛଜ) ଆସ, ଆସିଲୁ, ଆସନ୍ତୁ ।

ଆଇବୋ—(ମ୍ଳେଚ୍ଛଜ) ଆସ, ପିତାମହୀ ।

ଆଇବୁଢ଼ା—ଆଇବଡ଼—ଅନୂଢ଼ା ଶବ୍ଦର ଅପଭ୍ରଂଶ, ଅବିବାହିତ, ଉଥୁବ୍ର ।

ଆଇଁଷ—ଗ୍ରା. ବି. (ଆମିଷର ଅପଭ୍ରଂଶ) ମାଛ ମାଂସାଦି, ମାଛକାତ, (ବିପରୀତ) ନିରାଇଁଷ ।

ଆଇଁଷକାତ—ଗ୍ରା.ବି. ମାଛକାତ, ସଦାବିହାରୀ ଫୁଲ ଓ ଗୁଳ୍ମ ।

ଆଇଁମିଆ-ଆଇଁଷିଣିଆ—ଗ୍ରା. ବି. ଆମିଷଗନ୍ଧଯୁକ୍ତ, ଆମିଷପର ଗନ୍ଧଯୁକ୍ତ ।

ଆଈ—ଗ୍ରା. ସ୍ତ୍ରୀ.ବି.(ସଂ.ଆର୍ଯ୍ୟା)ମାତାମହୀ, ମା'ର ମା', ପିତାମହୀ, (ପୁଂ) ଅଜା ।

ଆଇଠୋଟା—ଗ୍ରା.ବି.ପୁରୀଧାମରଗୁଣ୍ଡିଚାମଣ୍ଡପ ନିକଟ ଉପବନ ।

ଆଈନ୍ଦା-ଆଏନ୍ଦା—ଗ୍ରା. ବିଂ. ଆଗାମୀ, (ବର୍ଷ ବା ସମୟ) ଭବିଷ୍ୟତ୍,ଭବିଷ୍ୟତ୍-ସମୟ, ପୁନର୍ବାର ।

ଆଈମା—ଗ୍ରା. ବି. ପିତାମହୀ ।

ଆଈଶାଶୁ—ଗ୍ରା.ସ୍ତ୍ରୀ.ବି. ସ୍ୱାମୀ ବା ସ୍ତ୍ରୀର ଆଈ, ଶାଶୁଙ୍କ ମା, (ପୁଂ) ଅଜାଶୁର ।

ଆଉ—ଅବ୍ୟ. (ସଂଯୋଜକ) ପୁଣି, ଏବଂ, ମଧ୍ୟ, ଆହୁରି, ଅନ୍ୟ, ଗ୍ରା. ବିଂ.ଅଧିକ ।

ଆଉଚ—ବି. ବୃକ୍ଷବିଶେଷ ।

ଆଉଜା— ଗ୍ରା.ବି.ଆଉଜିବାକର୍ମ,ଅଉଜେଇ-ଥିବା, କବାଟ ଆଦିକୁ ଆଉଜାଇବା, ଗ୍ରା.ବିଂ. ଅଣଉ ହୋଇଥିବା, ବନ୍ଦ କରାଯାଇଥିବା (କବାଟ ବା ଦ୍ୱାର) ।

ଆଉଜାଇବା—ଗ୍ରା. କ୍ରି. ଆଉଜିବାର-ଣିଜନ୍ତରୂପ,ମେଲାଥିବାକବାଟକୁ ନ କିଳି ବନ୍ଦ କରିଦେବା, କୌଣସି ପଦାର୍ଥକୁ ଅନ୍ୟ ଆଶ୍ରୟ ଉପରକୁ ଡେରିଦେବା ।

ଆଉଜିବା— ଗ୍ରା.କ୍ରି. କେଆଡ଼କୁ ଢଳିବା, କାନ୍ଥ ଆଦିକୁ ଲାଗିଯିବା, ପକ୍ଷ ଅବ-ଲମ୍ବନ କରିବା, ପକ୍ଷପାତ କରିବା, କୌଣସି ବ୍ୟକ୍ତିର ଆଶ୍ରାନେବା ।

ଆଉଟେ—ଗ୍ରା. ବି. (ସଂ.ଆବର୍ତ୍ତନ) ଦୁଧ-ଆଦିର ଆବର୍ତ୍ତନ, ଆଉଟା ।

ଆଉଟପାଉଟ—ଗ୍ରା. ବିଂ. ସନ୍ତାପରେ ଅସ୍ଥିର, ଅତି ସନ୍ତାପ, ଦହଗଞ୍ଜ, ନେଉଟପଉଟ, ଇତସ୍ତତଃ ସଞ୍ଚାଳିତ ।

ଆଉଟା—ଗ୍ରା. ବି. ( ସଂ.ଆବର୍ତ୍ତନ)ସିଝା-ଇବା ପାଇଁ ଦୁଧକୁ ଚୁଲ୍ଲୀଉପରେ ବସାଇ ଘାଣ୍ଟିବା, ସୁନାପ୍ରଭୃତିକୁ ନିଆଁରେ ବସାଇ ତରଳାଇବା, (ବିଂ) ନିଆଁ ଉପରେ ଘଣ୍ଟା ହୋଇଥିବା, (ଧାତୁ) ତରଳା ଯାଇଥିବା,(ସମ୍ବ) ଅନ୍ୟଗୋଟା

ଆଉଟାଇବା—ଗ୍ରା.କ୍ରି. ଆଉଟିବା କ୍ରିୟାର ଣିଜନ୍ତ ରୂପ ।

ଆଉଟି—ଗ୍ରା. (ଅବ୍ୟ.) ( ଆଉ + ଟି ) ଆହୁରି ମଧ୍ୟ, କେବେହେଁ, କେଭେଁ, (ସର୍ବ) ଅନ୍ୟଗୋଟିକ ।

ଆଉଟିବା—ଗ୍ରା. କ୍ରି. ତରଳ ପଦାର୍ଥ-ଗରମ କରିବା, ଘାଣ୍ଟିବା ।

ଆଉର୍ତ୍ତ—ଗ୍ରା. ବି. (ସଂ—ଆବର୍ତ୍ତ) ଜଳା-ବର୍ତ୍ତ, ଭଉଁରି ।

ଆଉର୍ତ୍ତା—ଗ୍ରା.ବି. ଦରାଣ୍ଡିବା ।

ଆଉରତ—ଗ୍ରା. ସ୍ତ୍ରୀ. ବି. ଭାର୍ଯ୍ୟା, ବିବା-ହିତା ସ୍ତ୍ରୀ ।

ଆଉରି—ଗ୍ରା.ଅବ୍ୟ.ଆଉ,ଆହୁରି,ଓ,ଏବଂ, ଅପେକ୍ଷାକୃତ, ଅତ୍ୟନ୍ତ, ଅଧିକନ୍ତୁ ।

ଆଉଁରିଆ—ଗ୍ରା.ବି. ବାତରୋଗବିଶେଷ, (ବିଂ) ବାତରୋଗ, ପୀଡ଼ିତ ।

ଆଉଲପାଉଲ—ଗ୍ରା. ବିଂ. ( ଆକୁଳ ଓ ବ୍ୟାକୁଳ) ଅସ୍ତବ୍ୟସ୍ତ, ଅଡ଼ୁଆ ତଡ଼ୁଆ, ଇତସ୍ତତଃ, ବିକ୍ଷିପ୍ତ, ହୀନପ୍ରଭ, ଭୟ-ବିହ୍ୱଳ, ପାଗଳପରି, ଅତି ଆତୁର ।

ଆଉଲି—ଗ୍ରା. ବି. କ୍ଷେପଣୀ, ଆହୁଲା, ଡଙ୍ଗାଚଳାଇବାର ପକ୍ଷଯୁକ୍ତ ଦଣ୍ଡ, କେଲୁଅର ।

ଆଉଲନ୍—ଗ୍ରା.ବି. (ମେଦନୀପୁର) (ବିଂ) ଆକୁଳାସ୍ଥିତ, ଅସ୍ତବ୍ୟସ୍ତ ।

ଆଉଁଶାଝାଡ଼ା—ଗ୍ରା. (ବସ୍ତ୍ରର) ବି. ନାଲ-ରକ୍ତ ଝାଡ଼ା ।

ଆଉଁଷା—ଗ୍ରା. ବି. ( ସଂ.ଆମର୍ଷ ) ସମ୍ବାହନ, ଦେହ ଉପରେ କୋମଳ-ଭାବେ ହାତବୁଲାଇବା ।

ଆଉଁଷାପାଉଁଷା—ଗ୍ରା. ବି. ଦେହକୁ କୋମଳଭାବେ ଆଉଁଷିବା ଓ ଜୋରରେ ଘଷିବା କାର୍ଯ୍ୟ ।

ଆଉଁଷିବା, ଆଉଁସିବା—ଗ୍ରା.କ୍ରି. ଦେହ-ଉପରେ କୋମଳଭାବେ ହାତବୁଲାଇବା

ଆଉସ—ଗ୍ରା.ବି.(ମେଦନୀପୁର) ହେମନ୍ତ-ଋତୁରେ ଆମଦାନୀ ହେବା ବିଆଲିଧାନ ।

ଆଏ—ଗ୍ରା.ବି. ( ସଂ. ଆୟ) ଆୟ, ଅର୍ଜନ. ଅଲଙ୍କାର, (ବିପ) ବ୍ୟୟ, (ଗ୍ରା.) ସମ୍ବ (କ୍ରି) ଅଛି, ଅଟେ ।

ଆଏଅଲଙ୍କାର—ଗ୍ରା. ବି. ଦେହର ଅଲଙ୍କାରସମୂହ, ଅଲଙ୍କାର ଓ ଧନାଦି ।

ଆଏଖ୍—ଗ୍ରା. (ସମ୍ବ) ( ସଂ.ଅକ୍ଷି) ଆଖି ।

ଆଏଖ୍ ଆସିବା - ଗ୍ରା. (ସମ୍ବ) ବି. ଆଖି-ପତାରେ ଉଠିବା ଆଲୁଅ ବା ବ୍ରଣ, ଆଖି ବଥାଇବା ।

ଆଏତ୍—ଗ୍ରା. (ସମ୍ବ)ବି.ବିଂ.(ସଂ.ଆୟୁଷ) ଆୟୁଷ (ଦେଖ) ।

ଆଏବ—(ଯା)ବି.ଦୋଷ, ତ୍ରୁଟି, ଦୁର୍ଗୁଣ, ମନ୍ଦଗୁଣ ।

ଆଏବି—(ଯା)ବିଂ.ବିଶେଷଦୁର୍ଗୁଣଯୁକ୍ତ ।

ଆଏଶ—(ଗ୍ରା.)ବି. ମଉଜ, ସୁଖ, (ଅୟାସ ଦେଖ) ।

ଆଏଶି—ଗ୍ରା. ବିଂ. ଯେ ମଉଜ ବା ଅଏ-ସରେ ଚଳେ ।

ଆଲ—ବି. ବଙ୍ଗଦେଶୀୟ ବୃକ୍ଷବିଶେଷ ।

ଆଉଟ୍ରାମ—ଏଭାରତବର୍ଷରେ ଖ୍ରୀ୧୮୦୩ର ଜଣେ ସେନାପତି ।

ଆଉଡ଼—ଗ୍ରା. ବଙ୍ଗଦେଶର ଖଡ଼ବିଶେଷ

ଆଉଲ—ବଙ୍ଗୀୟ ବୈଷ୍ଣବସମ୍ପ୍ରଦାୟ-ବିଶେଷ ।

ଆଉଲି— ପାଗଳ, ନିର୍ବୋଧ, ଆଲବା ।

ଆଉଶଧାନ ବା ଆଶୁଧାନ—ବି. ଆଶୁ-ଧାନ୍ୟର ଅପଭ୍ରଂଶ ।

ଆଓଟାନ ବା ଆଉଟା—ଗ୍ରା. କରଚୁଲ୍ଲୀ-ଦ୍ୱାରା ଦୁର୍‌ଧାଦିର ପାକକରଣ ।

ଆଓଡ଼ ବା ଆଡ଼ବାଙ୍କ—ଗ୍ରା.ଯେ ସ୍ଥାନରେ ନଦୀ ବନ୍ଦହୋଇ ଉପରକୁ ଉଠେ ।

ଆଓଡ଼ାନ ବା ଆଡ଼େଇବା, ଆଉଡ଼ିବା—ଗ୍ରା. ଆବୃତ୍ତିକରଣ, ପୁସ୍ତକାଦିର ପତ୍ର ଆଡ଼େଇବା । [ସ୍ଥାନ ।

ଆଓତା—ଗ୍ରା. ଛାୟା ଆବରଣ, ଆବୃତ୍ତ-

ଆଓତାନ—ଗ୍ରା. ଉତ୍ତାନର ଅପଭ୍ରଂଶ, ଓଲଟିପଡ଼ିବା ।

ଆଓଲାତ—(ମ୍ଳେଚ୍ଛ) ବୃକ୍ଷାଦି ସମ୍ପତ୍ତି ।

ଆଣ୍ଠା,ଆଂଠା—ଅଗ୍ନି ରଖିବାନମିତ୍ତଲୁହାର ପାତ୍ରବିଶେଷ, ଆଁଙ୍କଡ଼ା ।

ଆଁଠୀ,ଆଙ୍ଗୁଠୀ—ଏହା ଅଙ୍ଗୁରୀୟକଶବ୍ଦଜ, ଆଙ୍ଗୁଠି ।

ଆଁକ—ଅଙ୍କଶବ୍ଦର ଅପଭ୍ରଂଶ, ଅଙ୍କ, କଳଙ୍କ, ଦାଗ, ଚିହ୍ନ ।

ଆଙ୍କା ବା ଆଙ୍କିବା—ଗ୍ରା. ଅଙ୍କନର ଅପ-ଭ୍ରଂଶ, ଚିତ୍ରାଦି ଆଙ୍କିବା ।

ଆଁକଡ଼ାନ—(ବଙ୍ଗ)ଆକୁଞ୍ଚନ ଶବ୍ଦର ଅପ-ଭ୍ରଂଶ, ସଙ୍କୋଚକରା ।

ଆଁକୁଡ଼—ଏହା ଅଙ୍କୁରଶବ୍ଦର ଅପଭ୍ରଂଶ ଗଜା, ନୂତନ ଗଛ ହେବା, ଅଙ୍କୁର ।
ଆଙ୍କୁଶୀ,ଆଙ୍କୁଡ଼ୀ—ଗ୍ରା.ନଗି, ଉଚ୍ଚସ୍ଥାନରୁ ଫଳ ଇତ୍ୟାଦି ତୋଳିବାର ବଂଶଦଣ୍ଡ-ବିଶେଷ ।
ଆଙ୍କୁଶ,ଆଙ୍କୁଶୀ—ଅଙ୍କୁଶଶବ୍ଦର ଅପଭ୍ରଂଶ, ଲୌହନିର୍ମିତ ଆୟୁଧବିଶେଷ, ହସ୍ତୀ-ଶାସନର ଅସ୍ତ୍ରବିଶେଷ ।
ଆଁଜଣା—ପଲଙ୍ଗ ପ୍ରଭୃତି ପାକ କରିବାର ପୂର୍ବେ ବହୁବିଧ ମସଲଦ୍ୱାରା ସିଦ୍ଧ ଜଳ ।
ଆଁକଣଲୀ—ଗ୍ରା. ଢେଙ୍କୀର ମଧ୍ୟସ୍ଥଳ କାଷ୍ଠବିଶେଷ, ପଖିଆ ।
ଆଁଚ—ଅଗ୍ନିର ଉତ୍ତାପ ।
ଆଁଖି,ଆଖି—ବି. ଅକ୍ଷିଶବ୍ଦର ଅପଭ୍ରଂଶ, ଚକ୍ଷୁ, ଲୋଚନ, ନେତ୍ର ।
ଆଁଚଡ଼ ବା ଆଞ୍ଚୁଣୀ—ଗ୍ରା. କଣ୍ଟାଦିରେ କ୍ଷତହେବା, ଚିର୍ମିନେବା ।
ଆଁଚଳ—ଅଞ୍ଚଳଶବ୍ଦର ଅପଭ୍ରଂଶ,ଅଞ୍ଚଳ, ଲୁଗାର କାନି ।
ଆଁଚ୍ଚ,ଆଁଚ—( ବଙ୍ଗ ) ବିବେଚନା କରିବା ବା କର ।
ଆଁଚୁନ,ଆଚାଁଇବା—(ଗ୍ରା) ଆଚମନର ଅପଭ୍ରଂଶ, ଖାଇସାରି ମୁଖ ଧୋଇବା ।
ଆଞ୍ଚିଲ—(ବଙ୍ଗ) ଦେହରେ କୃଷ୍ଣବର୍ଣ୍ଣ ବ୍ରଣପରି ଉଚ୍ଚ ପଦାର୍ଥବିଶେଷ ।
ଆଞ୍ଜନାଇ—(ବଙ୍ଗ)ଚକ୍ଷୁପତାରେ ହେବା ବ୍ରଣବିଶେଷ, (ଗ୍ରା) ଆଲୁଅ ।
ଆଞ୍ଜଲା,ଆଞ୍ଜଲ—ଗ୍ରା. ଅଞ୍ଜଳିର ଅପ-ଭ୍ରଂଶ ।
ଆଣ୍ଟ—ଗ୍ରା.ଦୃଢ଼, ଶକ୍ତ, କଡ଼ା, ଗାରମା ।
ଆଣ୍ଟକୁଡ଼ା, ଆଣ୍ଟୁକୁଡ଼ା—ଗ୍ରା. ଯାହାର ପୁତ୍ରାଦି ସନ୍ତାନ ନାହିଁ, ଅପୁତ୍ରିକ ।
ଆଣ୍ଟନ ବା ଆଣ୍ଟିବା—ଗ୍ରା. ଦୃଢ଼ବନ୍ଧନ ।
ଆଣ୍ଟୁ, ଆଟୁ, ମାଣ୍ଟୁ, ମାଟୁ,—ଗ୍ରା. ବି. ମୃତ୍ତିକାନିର୍ମିତ କୋଠା ।
ଆଣ୍ଠୁଆ—ଗ୍ରା. ବିଂ.ଠାଣୁଆ, ଅହଂକାରୀ ।
ଆଣ୍ଠିଏ,ଆଣ୍ଠୁଆଣ୍ଠି—ଗ୍ରା.ବି.ଆଣ୍ଠୁ ପର୍ଯ୍ୟନ୍ତ
ଆଣ୍ଠୁ—ଗ୍ରା. ଗୋଡ଼ର ମଧ୍ୟଭାଗବିଶେଷ, ଜାନୁର ନିମ୍ନଭାଗ ।

ଆଣ୍ଠୁଆ—ଗ୍ରା. ବି. ଆଣ୍ଠୁର ମାଡ଼ ।
ଆଣ୍ଠେଇବା—ଗ୍ରା. କ୍ରି. ଆଣ୍ଠୁମାଡ଼ିବସିବା
ଆନ୍ତୁଡ଼, ଆନ୍ତୁଡ଼ୀ—ଗ୍ରା. ଅରିଷ୍ଟର ଅପ-ଭ୍ରଂଶ, ସୂତିକାଗୃହ ।
ଆଁତ ବା ଅନ୍ତ—ଗ୍ରା.ଅନ୍ତ୍ରର ଅପଭ୍ରଂଶ, ପେଟର ନାଡ଼ୀବିଶେଷ, ଅନ୍ତବୃଜୁଳା, ଅନ୍ତପୂଠ ।
ଆନ୍ତକାନ—(ବଙ୍ଗ)ଚମକିବା;ଭୟପାଇବା
ଆନ୍ତମୋଡ଼ା—(ବଙ୍ଗ) ବୃକ୍ଷବିଶେଷ ।
ଆନ୍ତରସା—(ବଙ୍ଗ)ଶିଶୁମାନଙ୍କରଉଦରା-ମୟ ପୀଡ଼ା, ଅନ୍ତରସା ।
ଆନ୍ଧାର—(ବଙ୍ଗ) ଅନ୍ଧାର ।
ଆମ୍ବ—ବି.ବୃକ୍ଷବିଶେଷ,ରସାଳ,ସହକାର ।
ଆମ୍ର—ବି. ବୃକ୍ଷବିଶେଷ,ଚୂତ,ଆମ୍ବ ।
ଆଁ—ଗ୍ରା.ବି. ମୁଖବ୍ୟାଦାନ (ବିଂ)ମେଲା-କରିଥିବା (ପାଟି)
ଆଃ—ଅବ୍ୟ. ଆହା, ହାସ୍ୟ, କୋପାର୍ଥକ, ବିରକ୍ତିସୂଚକ, ପୀଡ଼ାଜ୍ଞାପକ, ଶୋକ ଓ ହର୍ଷସୂଚକ ।
ଆଂଶ—(ବଙ୍ଗ) ଆଂଶୁଶବ୍ଦର ଅପଭ୍ରଂଶ, ସୂକ୍ଷ୍ମତନ୍ତୁ,ଆଂଶୁ ।
ଆଂଶାନ—(ବଙ୍ଗ)ଅଳ୍ପଶୁଷ୍କ ।
ଆଂଶିକ—ବିଂ. ( ଅଂଶ + ଇକ ) ଅଂଶ-ସମ୍ବନ୍ଧୀୟ, ଅପୂର୍ଣ୍ଣ ।
ଆଂଶୁ—ବି. ( ଗ୍ରା. ) ଶ୍ଲକ୍ଷ୍ଣାଗ୍ର, ଖର-ସ୍ପର୍ଶତା, ଅମସୃଣତା, ସୂକ୍ଷ୍ମସୂତ୍ର ।
ଆଂଶୁଆଂଶୁଆ—ଗ୍ରା. ବିଂ. (ଫ.ଅଂଶୁଲ) (ଅଂଶୁଲ ଦେଖ) ।
ଆଁକାଡ଼ା—(ବଙ୍ଗ) ଗୃହଲକାଣ୍ଡିଲପୂର୍ବର କୁଣ୍ଡା ବାହାର କର ନ ଥିବା ଅବସ୍ଥା, ଅକାଣ୍ଡିଆ ।
ଆଁକରବା—ଗ୍ରା.କ୍ରି. ପାଟିମେଲା କରିବା, ମୁଖବ୍ୟାଦାନ କରିବା ।
ଆକ,ଆଖୁ—ଗ୍ରା. ଏହା ଇକ୍ଷୁଶବ୍ଦର ଅପ-ଭ୍ରଂଶ, ଆଖୁ, ଇକ୍ଷୁ ।
ଆକଜ—ଗ୍ରା.ବି.ଆକେଜ୍,ଶତ୍ରୁତା,ବିବାଦ, ବିରୋଧ ।
ଆକଟ—ଗ୍ରା. ବି. ମନାକରିବା, ଦର୍କାର, ଆବଶ୍ୟକ, ତାଡ଼ନା, ତାଗିଦ୍, ଅଟକ୍,

ନିଷେଧ, ଜବରେଶ, ଶାସନ, (ବିଂ) ଜବରେଶ ଅଲଙ୍ଘ୍ୟ, ନିର୍ଦ୍ଦିଷ୍ଟ, କଡ଼ା ।
ଆକଟିବା- ଗ୍ରା.କ୍ରି.ଶାସନାର୍ଥଗାଳିଦେବା, ସାବଧାନ କରିବା, ଅଟକାଇବା, ନିଷେଧ କରିବା ।
ଆକଣ୍ଠ—ଅବ୍ୟ. ( ଆ + କଣ୍ଠ ) କଣ୍ଠ ପର୍ଯ୍ୟନ୍ତ, କଣ୍ଠାବଧି ।
ଆକଣ୍ଠମଗ୍ନ—ତ୍ରି. ବିଂ. ଯାହାର କଣ୍ଠ ପର୍ଯ୍ୟନ୍ତ ଜଳମଗ୍ନ ହୋଇଅଛି, (ସ୍ତ୍ରୀ) ଆକଣ୍ଠମଗ୍ନା ।
ଆକତା—ଗ୍ରା. ବିଂ. ଅକ୍ଷମ, ହାଲିଆ ।
ଆକନ—ପୁଂ. ବି. ( ଆ + କନ୍ + ଅ ) ଋଷିବିଶେଷ ।
ଆକନାଦା—ଗ୍ରା.(ଫ.ଆବିଦ୍ଧକର୍ଣ୍ଣୀ)ଅକାନ-ବିନ୍ଧ, ପାପଚେଲିକା, ଯୂଈ, ମାଲତୀ ।
ଆକନୀ—(ଯା)ବି. ପଲଉପ୍ରଭୃତି ରାନ୍ଧିବା-ପାଇଁ ମସଲଦ୍ୱାରା ସିଝା ହୋଇଥିବା ।
ଆକନ୍ଦ—ପୁଂ. ବି. ଅର୍କବୃକ୍ଷ, ଅରଖ, କ୍ଷୀରଦଳ, ପୁଚ୍ଛୀ, ପ୍ରତାପ ।
ଆକପିଳ—ତ୍ରି. ବିଂ. ଈଷତ୍ କପିଳ ବର୍ଣ୍ଣ, ଆପିଙ୍ଗଳ, (ସ୍ତ୍ରୀ) ଆକପିଳା ।
ଆକପିଶ—ତ୍ରି. ବିଂ. ଈଷତ୍ କପିଳବର୍ଣ୍ଣ ।
ଆକମ୍ପ—ପୁଂ. ବି. (ଆ + କମ୍ପ + ଭା.ଅ) ଅଳ୍ପକମ୍ପିବା, ଈଷତ୍‌କମ୍ପ, ( ବିଂ ) ଆକମ୍ପିତା ।
ଆକମ୍ପନ—କ୍ଲୀ. ବି. (ଆ + କମ୍ପ୍ + ଭା. ଅନ) ଅଳ୍ପକମ୍ପନ, ଥରିବା ।
ଆକମ୍ପିତ—ତ୍ରି. ବିଂ. ( ଆ + କମ୍ପିତ ) ଈଷତ୍ କମ୍ପିତ, ଅଳ୍ପକମ୍ପିତ, ଅଳ୍ପ ଚଳିତ, ଆଧୂତ, ଥରୁଥିବା,ହଲୁଥିବା ।
ଆକମ୍ପ୍ର—ତ୍ରି. ବିଂ. (ଆ + କମ୍ପ୍ର) ଅଳ୍ପ କମ୍ପନଶୀଳ ।
ଆକର—ପୁଂ. ବି.(ଆ + କୃ + ଅ)ସମୂହ, ଶ୍ରେଷ୍ଠ, ଖଣି, ଉତ୍ପତ୍ତିସ୍ଥାନ, ଆଦି, ମୂଳ(ଗ୍ରା.)ଗରଜ,ଦରକାର,ପ୍ରୟୋଜନ ।
ଆକରକଡ଼ା—ଗ୍ରା.ଗୁଲଦଣ୍ଡୀ, ଗୁଲଚାନ ।
ଆକରଜ—ତ୍ରି. ବିଂ. ଖନିଜାତ; (ଆକର + ଜନ + କ.ଅ)ଖଣିଜ, ଖଣିରୁ ଉତ୍ପନ୍ନ ବା ଜାତ ।

ଆକର—ଗ୍ରା. ବିଂ. ମହାର୍ଘ, ମହଙ୍ଗା, ଜରୁର (ଗ୍ରା.ବି) ଜରୁରି, ବିଶେଷ ଅଭାବ ।

ଆକରିକ—ପୁଂ. ବି. ( ଆକର+ଇକ ) ରତ୍ନାଦିର ଉତ୍ପତ୍ତିସ୍ଥଳେ ରାଜନିଯୁକ୍ତ ଲୋକ, (ବିଂ) ଖଣିରେ କାମ କରୁଥିବା, ଖଣିଜ, ଖଣିଜାତ ।

ଆକରୀ—ତ୍ରି. ବିଂ. ( ଆକର+ଇନ୍ ) ପ୍ରଶସ୍ତ ଆକରଜାତ, ଖଣିଜାତ ।

ଆକରୋଟ—ଏକପ୍ରକାର ଫଳଗଛ, (ଆଖୋଟର ଅପଭ୍ରଂଶ) ଆଖରୋଟ ।

ଆକର୍ଣ୍ଣ—ଅବ୍ୟ. ( ଆ+କର୍ଣ୍ଣ ) କର୍ଣ୍ଣପର୍ଯ୍ୟନ୍ତ ।

ଆକର୍ଣ୍ଣଚକ୍ଷୁ—ବି. କର୍ଣ୍ଣପର୍ଯ୍ୟନ୍ତ ଚକ୍ଷୁ, ଦୀର୍ଘନୟନ ।

ଆକର୍ଣ୍ଣନ—କ୍ଲୀ. ବି. (ଆ+କର୍ଣ୍ଣ,+ଭା, ଅନ) ଶ୍ରବଣ ।

ଆକର୍ଣ୍ଣନୀୟ—ତ୍ରି. ବିଂ. (ଆ+କର୍ଣ୍ଣ+ର୍ମ, ଅନୀୟ) ଶ୍ରବଣୀୟ, ଶ୍ରବଣଯୋଗ୍ୟ, ଶ୍ରୋତବ୍ୟ । [ ଆକୃଷ୍ଟ ।

ଆକର୍ଣ୍ଣପୂରିତ—ତ୍ରି. ବିଂ. କର୍ଣ୍ଣପର୍ଯ୍ୟନ୍ତ

ଆକର୍ଣ୍ଣୟିତା—ପୁଂ. ବିଂ. (ଆ+କର୍ଣ୍ଣ+କ, ତୃ) ଶ୍ରୋତା, ଯେ ଶୁଣେ, (ସ୍ତ୍ରୀ) ଆକର୍ଣ୍ଣୟିତ୍ରୀ ।

ଆକର୍ଣ୍ଣବିସ୍ତୃତ—ତ୍ରି. ବିଂ. କର୍ଣ୍ଣପର୍ଯ୍ୟନ୍ତ ପ୍ରସାରିତ, କାନପର୍ଯ୍ୟନ୍ତ ଟଣାହୋଇଥିବା ।

ଆକର୍ଣ୍ଣିତ—ତ୍ରି. ବିଂ. ( ଆ+କର୍ଣ୍ଣ+ର୍ମ, ତ ) ଶ୍ରୁତ, ଶୁଣାଯାଇଥିବା ।

ଆକର୍ଷ—ପୁଂ.ବି. (ଆ+କୃଷ+ଅ) ପଶା, ଇନ୍ଦ୍ରିୟ, ଧନୁର୍ବିଦ୍ୟାଭ୍ୟାସ, ପଶାପାଲି, ଧନୁଟାଣିବା, ଆଙ୍କୁଶୀ, ଆକର୍ଷଣ, ଦୂରକୁଟାଣିନେବା, ଚୁମ୍ବକ, କଷଟିପଥର ।

ଆକର୍ଷକ—ପୁଂ. ବିଂ. ( ଆ+କୃଷ୍+କ, ଅକ) ଆକର୍ଷଣକାରୀ,(ସ୍ତ୍ରୀ)ଆକର୍ଷିକା, (ବି) ଚୁମ୍ବକପଥର ।

ଆକର୍ଷଣ—କ୍ଲୀ. ବି. (ଆ+କୃଷ୍+ଭା, ଅନ) ଟାଣିଆଣିବା, ବଳପୂର୍ବକ ଅନ୍ୟ ମନମୋହିବା, ଝୋଟାରିବା, ଆକ୍ରମଣସ୍ଥାନକୁ ନେବା ।

ଆକର୍ଷଣୀ—ସ୍ତ୍ରୀ. ବି. (ଆ+କୃଷ୍+ଅନ+ଈ) ମୁଦ୍ରାବିଶେଷ, ଆଙ୍କୁଡ଼ୀ, ଆଙ୍କୁଶୀ, (ବିଂ) ଆକର୍ଷଣକାରିଣୀ ।

ଆକର୍ଷଣୀୟ—ବି. (ଆ+କୃଷ୍+ର୍ମ, ଅନୀୟ) ଟିଙ୍କିହେବାର ଯୋଗ୍ୟ ।

ଆକର୍ଷାଦି—ପୁଂ.ବି.ପାଣିନି ବ୍ୟାକରଣର ଗଣବିଶେଷ ।

ଆକର୍ଷିକ—ତ୍ରି. ବିଂ. ( ଆକୃଷ୍+ଇକ ) ଆକର୍ଷଣକାରୀ, ଚୁମ୍ବକସମ୍ବନ୍ଧୀୟ, (ବି) ଶିଳାବିଶେଷ, ଚୁମ୍ବକପଥର ।

ଆକର୍ଷିଣୀ—ସ୍ତ୍ରୀ. ବି. (ଆ+କୃଷ୍+ଇନ୍+ଈ) ଆକର୍ଷଣକାରିଣୀ, (ବି) ଆଙ୍କୁଶୀ, ଆଙ୍କୁଡ଼ୀ ।

ଆକର୍ଷିତ—ତ୍ରି. ବିଂ. (ଆ+କୃଷ୍+ଣିଚ୍+ର୍ମ, ତ) ଆକର୍ଷଣକାରିତ, ଆକର୍ଷଣପ୍ରାପିତ, (ସ୍ତ୍ରୀ) ଆକର୍ଷିତା ।

ଆକର୍ଷିବା—ଗ୍ରା. କ୍ରି. (ଆ+କୃଷ) ଆକର୍ଷଣକରିବା, ଟାଣିବା, ଉପକ୍ରମହେବା, ରାଗକରିବା, ଆକୃଷ୍ଟହେବା, ଆକ୍ରୋଶକରିବା ।

ଆକର୍ଷୀ—ପୁଂ. ବିଂ. (ଆକର୍ଷ+ଇନ୍) ଆକର୍ଷଣକର୍ତ୍ତା, (ସ୍ତ୍ରୀ) ଆକର୍ଷିଣୀ ।

ଆକଳନ—କ୍ଲୀ. ବି. (ଆ+କଲ୍+ଭା, ଅନ) ଆଶଙ୍କା, ଗ୍ରହଣ, ସଂଗ୍ରହ, ଗଣନା ।

ଆକଳନା—ସ୍ତ୍ରୀ. ବି. (ଆ+କଲ୍+ଅନ+ଆ) ଆଶଙ୍କା, ଗ୍ରହଣ, ବନ୍ଧନ, ଆକାଙ୍କ୍ଷା, ଅନୁସନ୍ଧାନ ।

ଆକଳିତ—ତ୍ରି. ବିଂ. (ଆ+କଲ୍+ର୍ମ, ତ) ଅନୁଗତ, ଅନୁକୃତ, ଗ୍ରଥିତ, ବୁଝାଯାଇଥିବା, ସଂଗୃହୀତ ।

ଆକଳ୍ପ—ଅବ୍ୟ. (ଆ+କଳ୍ପ) କଳ୍ପାନ୍ତପର୍ଯ୍ୟନ୍ତ, ପ୍ରଳୟକାଳପର୍ଯ୍ୟନ୍ତ, (ପୁଂ) ( ଆ+କୃପ+ଣ, ଅ ) ବେଶରଚନା, ଆନନ୍ଦ, କଳ୍ପନା, ଉନ୍ମାଦ, ବ୍ୟାଧି, ପୀଡ଼ା, ଯୋଡ଼ାଥାନ, ଗଣ୍ଠି, ବେହୋସହେବା ।

ଆକଳ୍ପକ—ପୁଂ. ବି. (ଆ+କଳ୍ପ+କ) ତମଃ, ମୋହ, ଗଣ୍ଠି, ଉତ୍କଣ୍ଠା, ହର୍ଷ, ଆନନ୍ଦ ।

ଆକଷ—ପୁଂ.ବି. (ଆ+କଷ୍+ଣ, ଅ) କଷଟିପଥର ।

ଆକସ୍ମିକ—ତ୍ରି.ବିଂ. (ଅକସ୍ମାତ୍+ଇକ) ଅକସ୍ମାତ୍‌ଜାତ, ହଠାତ୍‌ଉତ୍ପନ୍ନ, ଅପ୍ରତ୍ୟାଶିତ, ଅକାରଣ, ଅମୂଳକ ।

ଆକା, ଆଖା—ଗ୍ରା. ବି. ଚୁଲ୍ଲୀ, ଉହ୍ନେଇ ।

ଆକାଙ୍କ୍ଷ—ବିଂ. (ଆ+କାଙ୍କ୍ଷ+କ, ଅ) ଅର୍ଥ ପୂର୍ତ୍ତିକରିବାପାଇଁ ଲୋଡ଼ୁଥିବା (ଶବ୍ଦ) ।

ଆକାଙ୍କ୍ଷଣୀୟ—ବିଂ. (ଆ+କାଙ୍କ୍ଷ+ର୍ମ, ଅନୀୟ) ସ୍ପୃହଣୀୟ, ଯାହାକୁ ଆକାଙ୍କ୍ଷାକରଯାଏ (ସ୍ତ୍ରୀ) ଆକାଙ୍କ୍ଷଣୀୟା ।

ଆକାଙ୍କ୍ଷା—ସ୍ତ୍ରୀ.ବି. (ଆ+କାଙ୍କ୍ଷ+ଆ) ଇଚ୍ଛା, ଅଭିଳାଷ, ସ୍ପୃହା, ଅନୁସନ୍ଧାନ, ଆଶା, ଉଦ୍ଦେଶ୍ୟ, ଶ୍ରୋତାର ପ୍ରଶ୍ନସ୍ୱରୂପ ।

ଆକାଙ୍କ୍ଷିତ-ପୁଂ.ବିଂ. (ଆ+କାଙ୍କ୍ଷ+ର୍ମ, ତ) ଇଚ୍ଛାର ବିଷୟ, ଅଭିଳଷିତ, ଅଭୀଷ୍ଟ, ଅପେକ୍ଷିତ, ଜିଜ୍ଞାସିତ, ଆବଶ୍ୟକ, (ସ୍ତ୍ରୀ) ଆକାଙ୍କ୍ଷିତା ।

ଆକାଙ୍କ୍ଷୀ—ପୁଂ. ବିଂ. (ଆକାଙ୍କ୍ଷା+କ, ଇନ୍) ପ୍ରତ୍ୟାଶୀ, ଯେ ଇଚ୍ଛାକରେ, ଅଭିଳାଷୀ, ଅପେକ୍ଷାକାରୀ, ଜିଜ୍ଞାସୁ, (ସ୍ତ୍ରୀ) ଆକାଙ୍କ୍ଷିଣୀ ।

ଆକାଟଖିଆ—ମାଙ୍କୁଆ ।

ଆକାଟମୂର୍ଖ—ଗ୍ରାଂ. ବିଂ. ଅତ୍ୟନ୍ତମୂର୍ଖ, ଅକାଟମୂର୍ଖ ।

ଆକାମାନ—ଗ୍ରା. ବିଂ. ଅମୁଣ୍ଡିତ, ଯେ ସର୍ପର ବିଷଦାନ୍ତ ଭଗ୍ନ ହୋଇନ ଥାଏ, ଅମାର୍ଜିତ, ତୀବ୍ର ବିଷଧର, ଖୁବ୍ ରାଗୀ ।

ଆକାମାର୍ବେ- ଅବ୍ୟ(ଅକାମାର୍ବେ ଦେଖ) ।

ଆକାସ—ପୁଂ. ବି.(ଆ+ଚ+ଅ)ଯଜ୍ଞର ଯେଉଁ ଅଗ୍ନିକୁ ସଞ୍ଚୟକରି ରଖିବାକୁ ହୁଏ, ନବାସ, ଚୟନ, ଶରୀର ଚିତା, ଚିତାଗ୍ନି ।

ଆକାସ୍ରାବ—ପୁଂ. ବିଂ. ବ୍ରହ୍ମ ଦେଶାନ୍ତର୍ଗତ ସ୍ଥଳବିଶେଷର ନାମ ।

ଆକାର—ପୁଂ. ବି. (ଆ + କୃ + ଣିଚ୍ + ଭା.ଅ) ମୂର୍ତ୍ତି, ଆକୃତି, ଅବୟବସଂସ୍ଥାନବିଶେଷ, ଆହ୍ୱାନ, ମନୋଭାବପ୍ରକାଶ, ଇଙ୍ଗିତ, ଠାର, ଚେହେରା ।

ଆକାରଗୁପ୍ତି—ସ୍ତ୍ରୀ.ବି. (୬ତତ୍) ମନୋଭାବଗୋପନ, ଆକୃତିଗୋପନ ।

ଆକାରଗୂହନ—କ୍ଲୀ. ବି. (୬ତତ୍) ଆକାରଗୁପ୍ତି ମୁଖବିକାରାଦିର ଗୋପନ ।

ଆକାରଗୋପନ—କ୍ଲୀ. ବି. (୬ତତ୍) ଭୟହର୍ଷାଦିହେତୁକ ହୃଦ୍‌ଗତଭାବ ବା ମୁଖବିକାରାଦିର ଗୋପନ, ଅବହିତ୍ଥା ।

ଆକାରଣ—କ୍ଲୀ.ବି.(ଆ + କୃ + ଣିଚ୍ + ଭା. ଅନ) ସମ୍ବୋଧନ, ନିମନ୍ତ୍ରଣ, ଡକାଇବା, ବିପକ୍ଷକୁ ସ୍ପର୍ଦ୍ଧାପୂର୍ବକ ଆହ୍ୱାନ ।

ଆକାରଣା—ବି. (ଆକାରଣ + ଆ) ଆକାରଣ (ଦେଖ) ।

ଆକାରପ୍ରକାର—(ଗ୍ରା) ବି. ଢଙ୍ଗଢାଙ୍ଗ, ଭାବଭଙ୍ଗୀ, ଚେହେରା ଓ ଆଚରଣ ।

ଆକାରବନ୍ତ—(ଗ୍ରା) ପୁଂ. ବିଂ. (ସଂ—ଆକାରବାନ୍) ଆକାରବାନ୍ (ଦେଖ) ।

ଆକାରବାନ୍—ପୁଂ.ବିଂ. (ଆକାର + ବତ୍) ଆକୃତିବିଶିଷ୍ଟ, ସାକାର, ମୂର୍ତ୍ତିମାନ୍, ସୁଗଠିତ, ସୌଷ୍ଠବସମ୍ପନ୍ନ, ସୁନ୍ଦର ଦେହଧାରୀ, (ସ୍ତ୍ରୀ) ଆକାରବତୀ, (ଆକାରବାନ୍ ଦେଖ)

ଆକାରାନୁଭାବକତା—ସ୍ତ୍ରୀ. ବି. (୬ତତ୍) ଯେଉଁ ବୃତ୍ତିଦ୍ୱାରା ଆକାରର ଅନୁଭବ କରାଯାଏ ।

ଆକାରାନ୍ତ—ବିଂ. (ବ.ବ୍ରୀ) (ଆକାର + ଅନ୍ତ) ଯେଉଁ ପଦ ଶେଷରେ "ଆ" ଥାଏ ।

ଆକାରିତ—ବି. ବିଂ. (ଆ + କୃ + ଣିଚ୍ + ର୍ମ.ତ) ଆହୂତ, ଅନୁମୋଦିତ, ଅନୁଜ୍ଞାତ, ନିକ୍ଷିପ୍ତ, ମୂର୍ତ୍ତିରୂପେ ଗଠିତ, ତଳବ କରାଯାଇଥିବା, ଜବରଦସ୍ତି ଆଦାୟ କରାଯାଇଥିବା ।

ଆକାଲ—ଗ୍ରା.ବି.କାଳପର୍ଯ୍ୟନ୍ତ, ଅସମୟ, ଅକାଳ, ମହର୍ଘକାଳ ।

ଆକାଲିକ—ପୁଂ. ବି. (ଆକାଲ + ଇକ) ଅସାମୟିକ, ଅକାଲଜାତ, ଅଚିରସ୍ଥାୟୀ, କ୍ଷଣବିଧ୍ୱଂସୀ, ସମାନକାଳୀନ, ଜନ୍ମବିନାଶଶାଳୀ (ସ୍ତ୍ରୀ) ଆକାଲିକା ।

ଆକାଲିକପ୍ରଳୟ—ପୁଂ. ବିଂ. (କ.ଧା) ପ୍ରଳୟବିଶେଷ, କପିଳଙ୍କ ଶାପରେ ଅକାଳରେ ଜଗତ୍‌ପ୍ଲାବନରୂପ ଧ୍ୱଂସବିଶେଷ ।

ଆକାଲିକୀ—ସ୍ତ୍ରୀ. ବି. (ଆକାଲିକ + ଈ) ଅସାମୟିକୀ, ଅସମୟୋତ୍ପନ୍ନ ଇତ୍ୟାଦି, (ବି) ବିଦ୍ୟୁତ୍ ।

ଆକାଶ—କ୍ଲୀ.ବି (ଆ + କାଶ୍ + କ.ଅ) ପଞ୍ଚଭୂତ ମଧ୍ୟରୁ ଭୂତବିଶେଷ, ବିନ୍ଦୁ, କଣା, ଛିଦ୍ର, ବ୍ରହ୍ମ, ଶୂନ୍ୟ, ଗଗନ, ଅମ୍ବର, ନଭଃ ।

ଆକାଶକକ୍ଷ—କ୍ଲୀ. ବି. ଗଗନ, ମଧ୍ୟ, ଚକ୍ରବାଳ, କୌଣସି ସ୍ଥାନରେ ରହି ପୃଥିବୀର ଦିଗ୍‌ବଳୟ ପ୍ରାନ୍ତରୁ ଆକାଶ ପର୍ଯ୍ୟନ୍ତ କଳ୍ପନା ପରିଧି ।

ଆକାଶକଖାଁ—ଗ୍ରା. ବି. (ପ୍ରବ) ଶୂନ୍ୟରେ କଖାଁ ଫଳିବା ଯେପରି ଅସମ୍ଭବ ସେହିପରି ଅସମ୍ଭବ କଥା, ସୃଷ୍ଟିଛଡ଼ା କଥା, ଅନିଶ୍ଚିତ ବିଷୟ ।

ଆକାଶକୁ ଉଠାଇବା—ଗ୍ରା.କ୍ରି. କୌଣସି ବ୍ୟକ୍ତିକୁ ଅଯଥା ପ୍ରଶଂସାକରିବା କୌଣସି ବ୍ୟକ୍ତିକୁ ଅଯଥା ଆଶାଦେବା ।

ଆକାଶକୁସୁମ—କ୍ଲୀ.ବି.(ଆକାଶ + କୁସୁମ) ଆକାଶଜାତ କୁସୁମ, ମିଥ୍ୟା, ଅସତ୍ୟ, ଅବସ୍ତୁ ।

ଆକାଶଗ—ପୁଂ. ବିଂ. (ଆକାଶ + ଗମ୍ + କ.ଅ) ଆକାଶଗାମୀ,(ବି) ଖେଚର, ପକ୍ଷୀ (ସ୍ତ୍ରୀ) ଆକାଶଗା ।

ଆକାଶଗଙ୍ଗା—ସ୍ତ୍ରୀ. ବି.କ ଧା; (ଆକାଶ + ଗଙ୍ଗା) ସ୍ୱର୍ଗଗଙ୍ଗା, ମନ୍ଦାକିନୀ, ଛାୟାପଥ ।

ଆକାଶଗରୁଡ଼—ବି. ଔଷଧବୃକ୍ଷବିଶେଷ, ନିର୍ମୂଳୀ ଲତା ।

ଆକାଶଗା—ସ୍ତ୍ରୀ.ବି. ସ୍ୱର୍ଗଗଙ୍ଗା, ଆକାଶଗାମିନୀ ।

ଆକାଶଗାମୀ—ପୁଂ.ବିଂ.(ଆକାଶ + ଗମ୍ + ଇନ୍) ଶୂନ୍ୟଗାମୀ, ଶୂନ୍ୟବିହାରୀ, ଆକାଶ ଆଡ଼କୁ ଗତିକରୁଥିବା (ଶର ବା ବାଣ) ।

ଆକାଶଚକ୍ର—ଗ୍ରା. ବି. ଏକପ୍ରକାର ବାଣ, ଶୂନ୍ୟଚକ୍ର ।

ଆକାଶଚମସ—ବି. (ଆକାଶ + ଚମସ) ଚନ୍ଦ୍ର ।

ଆକାଶଚର—ବି. ବିଂ. (ଆକାଶ + ଚର + ଅ) ଗଗନବିହାରୀ, ଖେଚର, ଉଡ଼ନ୍ତା,(ବି) ପକ୍ଷୀପ୍ରଭୃତି(ସ୍ତ୍ରୀ)ଆକାଶଚରୀ ।

ଆକାଶଚରୀ—ସ୍ତ୍ରୀ.ବି. (ଆକାଶ + ଚର୍ + ଈ) ଦେବୀ, ପକ୍ଷିଣୀ ।

ଆକାଶଚାରୀ—ପୁଂ. ବିଂ.(ଆକାଶ + ଚର୍ + କ.ଇନ୍) ଆକାଶଚର, (ସମସ୍ତ ଅର୍ଥରେ) ।

ଆକାଶଚିତ୍ର—କ୍ଲୀ. ବି. (୬ତତ୍) ଆକାଶର ଚିତ୍ର, ଆକାଶର ମାନଚିତ୍ର ।

ଆକାଶଜନନୀ—ପୁଂ. ବି. (ଆକାଶପ୍ରଦୀପ ଦେଖ)

ଆକାଶଦୁହିତା—ସ୍ତ୍ରୀ.ବି. (୬ତତ୍) ପ୍ରତିଶବ୍ଦ, ପ୍ରତିଧ୍ୱନି ।

ଆକାଶପଟ—ପୁଂ. ବି. (୬ତତ୍)ଆକାଶର ଚିତ୍ର, ଗଗନରୂପ ପଟ, ନଭଃସ୍ଥଳ, ଶୂନ୍ୟଦେଶ, ରୂପକ ।

ଆକାଶପଥ—ପୁଂ. ବି. (କ.ଧା) ଗଗନମାର୍ଗ, ନଭଃସ୍ଥଳ, ଶୂନ୍ୟଦେଶ ।

ଆକାଶପ୍ରଦୀପ—ପୁଂ.ବି.କାର୍ତ୍ତିକ ମାସରେ ବିଷ୍ଣୁଙ୍କ ପ୍ରୀତିନିମିତ୍ତ ଉଚ୍ଚରେ ଯେଉଁ ପ୍ରଦୀପ ଦିଆଯାଏ, ଆକାଶଦୀପ ।

ଆକାଶପ୍ରାନ୍ତ—ପୁଂ. ବି. (୬ତତ୍) ଆକାଶର ଶେଷଭାଗ, ଯେଉଁଠାରେ ଆକାଶ ଓ ପୃଥିବୀ ମିଳିତ ହେଲପରି ଦେଖାଯାଏ ।

ଆକାଶଭାଷିତ—କ୍ଲୀ.ବି. (ଆକାଶ + ଭାଷ୍ + ତ) ଦୈବବାଣୀ, ଅଦୃଶ୍ୟରୂପେ ଯେଉଁ ବାକ୍ୟ ଶୁଣାଯାଏ, ନାଟକବ୍ୟବହୃତ ।

ଆକାଶମଣ୍ଡଳ—କ୍ଲୀ. ବି, (ଆକାଶ + ମଣ୍ଡଳ) ଗଗନମଣ୍ଡଳ, ନଭୋମଣ୍ଡଳ, ଶୂନ୍ୟ ।

ଆକାଶମୟ—ପୁଂ. ବି. ଆକାଶ, (ପ୍ରଚୁରାର୍ଥେ ମୟ ପ୍ରତ୍ୟୟ) ଆକାଶରୂପ ।
ଆକାଶମଲ୍ଲୀ—ବି. ଏକପ୍ରକାର ବାଣ, ଆଉସବାଜି ।
ଆକାଶମାର୍ଗ—ବି. ୬ତତ୍ପୁ; (ଆକାଶ + ମାର୍ଗ) ଶୂନ୍ୟମାର୍ଗ, ଆକାଶପଥ, (ବିଂ) ବାୟୁ ।
ଆକାଶମାଂସୀ—ସ୍ତ୍ରୀ.ବି. ଜଟାମାଂସୀ ।
ଆକାଶମୁଖୀ—ପୁଂ.ବି.ସନ୍ନ୍ୟାସୀବିଶେଷ ।
ଆକାଶମୂଳୀ—ସ୍ତ୍ରୀ. ବି. କୁମ୍ଭିକା, ଜଳଜ ଶାକବିଶେଷ, ବୋରଝାଞ୍ଜି ଦଳ ।
ଆକାଶଯନ୍ତ୍ର—କ୍ଲୀ.ବି. (୬ତତ୍ପୁ) ବ୍ୟୋମଯାନ ।
ଆକାଶଯାନ—କ୍ଲୀ.ବି. (ଆକାଶ + ଯାନ) ବ୍ୟୋମଯାନ, ବେଲୁନ୍, ପୁରାଣୋକ୍ତ ଆକାଶର ରଥ ବା ବିମାନ ।
ଆକାଶରକ୍ଷୀ—ପୁଂ. ବିଂ. ଆକାଶରକ୍ଷକ, ପ୍ରାଚୀର ଉପରେ ଯେ ଗଡ଼ ରକ୍ଷା କରେ ।
ଆକାଶଲତା—ବି. ଆକାଶ + ଲତା) ବିଦ୍ୟୁତ୍, ଘନଲତା ।
ଆକାଶସଲିଳ—ପୁଂ. ବି. କ୍ଲୀ. ଆକାଶରୁ ପଡିତ ଜଳ ।
ଆକାଶବଚନ—ପୁଂ.କ୍ଲୀ. ବି. ଆକାଶରେ କହିବା, ଅଲକ୍ଷ୍ୟଭାବେ କହିବା, ନାଟକାଙ୍ଗବାକ୍ୟବିଶେଷ ।
ଆକାଶବର୍ତ୍ତୀ—ପୁଂ. ବିଂ. ଆକାଶଗାମୀ, ଆକାଶପଥୀ । [ଶୂନ୍ୟମାର୍ଗ ।
ଆକାଶବର୍ତ୍ମ—ପୁଂ. କ୍ଲୀ. ବି. ଆକାଶପଥ,
ଆକାଶବଲ୍ଲୀ—ସ୍ତ୍ରୀ. ବି. ଆକାଶବେଲ, ଅମରବେଲ ଲତା ।
ଆକାଶବାଣୀ—ସ୍ତ୍ରୀ. ବି. କ.ଧା; (ଆକାଶ ବାଣୀ) ଆକାଶଭାଷିତ, ଆକାଶବଚନ, ଦୈବବାଣୀ, ଅଶରୀରୀ ବାଣୀ ।
ଆକାଶବାନ୍—ପୁଂ.ବି. (ଆକାଶ + ବତ୍) ଶୂନ୍ୟରୁ କେତେକ ଅଂଶରୁ ଘୋଟିଥିବା ବା ଅଧିକାର କରିଥିବା ।
ଆକାଶବାୟୁ—ପୁଂ. ବି. ପୃଥିବୀର ଚତୁଃପାର୍ଶ୍ୱେ ବେଷ୍ଟିତ ବାଷ୍ପରାଶିକୁ ଆକାଶବାୟୁ କହନ୍ତି, ଆକାଶପବନ ।
ଆକାଶବିମାନ—ବି. କ.ଧା; (ଆକାଶ + ବିମାନ) (ଆକାଶଯାନ ଦେଖ)
ଆକାଶବିହାର—ବି. ୭ତତ୍ପୁ;(ଆକାଶ + ବିହାର) ଦେବତାମାନଙ୍କର ଶୂନ୍ୟରେ ଗମନାଗମନ, ବ୍ୟୋମଯାନଦ୍ୱାରା ଶୂନ୍ୟରେ ଯିବା ଆସିବା, ଆକାଶରେ ଉଡ଼ିବା ।
ଆକାଶବୃତ୍ତି—ବି. କ. ଧା; (ଆକାଶ + ବୃତ୍ତି) ଆକାଶକୁ ଗ୍ରହିଁରହିବା ବୃତ୍ତି, ଶୂନ୍ୟକୁ ଗ୍ରହିଁରହିବା, ଜୀବିକାସ୍ଥାନତା ।
ଆକାଶସଲିଳ—ବି. (ଆକାଶ + ସଲିଳ) ବର୍ଷା, ବର୍ଷାପାଣି, କାକର ।
ଆକାଶସ୍ପର୍ଶୀ—ବିଂ.( ଆକାଶ + ସ୍ପୃଶ୍ + ଇନ୍)ଗଗନସ୍ପର୍ଶୀ, ଯାହା ଆକାଶକୁ ସ୍ପର୍ଶ କଲପରି ଜଣାପଡ଼େ, ଅତିଉଚ୍ଚ, (ସ୍ତ୍ରୀ) ଆକାଶସ୍ପର୍ଶନୀ ।
ଆକାଶସ୍ଫଟିକ—ପୁଂ. ବି. କରକା, କୁଆପଥର, କଇଁଚ ।
ଆକାଶାସ୍ତିକାୟ—ପୁଂ. ବି. ଅର୍ହତମତ, ସିଦ୍ଧଜୀବଭିନ୍ନ, ଆବରଣବେଷ୍ଟନ ପଦାର୍ଥବିଶେଷ ।
ଆକାଶୀୟ—ବିଂ. ଆକାଶସମ୍ବନ୍ଧୀୟ ।
ଆକିଞ୍ଚନ—କ୍ଲୀ.ବି. (ଆ + କମ୍ + ଚନ) ଚେଷ୍ଟା, ଯତ୍ନ, ପ୍ରୟାସ, ନିର୍ଦ୍ଧନତା, ଦୈନ୍ୟ, ଦାରିଦ୍ର୍ୟ ।
ଆକିଞ୍ଚନ୍ୟ—କ୍ଲୀ.ବି.ଦାରିଦ୍ର୍ୟ, ଦରିଦ୍ରତା ।
ଆକିଦନ୍ତ—ପୁଂ. ବି. ଦେଶବିଶେଷ, ତଦ୍ଦେଶବାସୀ ।
ଆକିଦା—ଗ୍ରା. ବି. ଅକିଦା, ହୁଲପ ।
ଆକିଂ—ଅବ୍ୟ. ବର୍ଜନ, ବିତର୍କ ।
ଆକୀର୍ଣ୍ଣ—ବିଂ. (ଆ + କୃ + ତ) ବିକ୍ଷିପ୍ତ, ବ୍ୟାପ୍ତ, ସଙ୍କୀର୍ଣ୍ଣ, ସଂକୁଳ, (ବି) ଦଳ ।
ଆକୁଞ୍ଚନ—କ୍ଲୀ. ବି. ( ଆ + କୁଞ୍ଚ୍ + ଅନ ) ସଙ୍କୋଚନ, ବସ୍ତୁତନୁହେ, ବନ୍ଧଣ, କୌଣସିଦ୍ରବ୍ୟ ଗୋଟାଇ ଆଣିବା, କୁଞ୍ଚିତ, କୁଙ୍କୁଡ଼ା ।
ଆକୁଞ୍ଚନୀୟ—ବି. ବିଂ. ( ଆ + କୁଞ୍ଚ୍ + ଅନୀୟ ) କୁଞ୍ଚନସାଧ୍ୟ, ଯାହାକୁ କୁଞ୍ଚିତ କରାଯାଏ ।
ଆକୁଞ୍ଚିତ—ବିଂ. (ଆକୁଚ + ତ) ସଙ୍କୁଚିତ, ଈଷତ୍‌ବକ୍ର, ଆଭୁଗ୍ନ ।
ଆକୁଣ୍ଠିତ—ବିଂ. (ଆ + କୁଣ୍ଠି + ତ) ଲଜ୍ଜାବନତ, ଆଙ୍କାବାଙ୍କା ।
ଆକୁଣ୍ଡକୁଣ୍ଡ—ଗ୍ରା.ବି.ଘୋରତର କଳହ, ଭୃତ୍ୟସ୍ଥବ୍ୟକ୍ତିଦ୍ୱାରା ବିବାଦବର୍ଦ୍ଧନ ।
ଆକୁଳ—ବିଂ. (ଆ + କୁଲ୍ + ଅ) ବ୍ୟଗ୍ର, ଉଦ୍‌ବିଗ୍ନ, ନିରାକୁଳ, ବ୍ୟାକୁଳ, କ୍ଷୁବ୍ଧ, ଚକିତ, ବ୍ୟସ୍ତ, ବିପର୍ଯ୍ୟସ୍ତ, ଅସମ୍ବନ୍ଧ ।
ଆକୁଳତା—ବି.(ଆକୁଳ + ତା)ଉଦ୍‌ବେଗ, କିଂକର୍ତ୍ତବ୍ୟବିମୂଢ଼ତା, ସମୂହ, ଉତ୍କଣ୍ଠା ।
ଆକୁଳାକୁଳ—ବିଂ. ଅତ୍ୟନ୍ତ ଆକୁଳ, ଆକୁଳପ୍ରକାର, ବ୍ୟସ୍ତ ।
ଆକୁଳୀ—ବିଂ. ( ଆକୁଳ + ଇନ୍ ) ବ୍ୟାକୁଳତ୍ୱ ।
ଆକୁଳିତ—ବିଂ. ( ଆ + କୁଲ୍ + ତ ) ବ୍ୟାକୁଳୀଭୂତ, ବ୍ୟାକୁଳିତ, ସଞ୍ଚାଳିତ, ଆନ୍ଦୋଳିତ ।
ଆକୁଳୀକୃତ—ବିଂ. ବ୍ୟାକୁଳତାପ୍ରାପ୍ତ, ଯାହାକୁ ବ୍ୟାକୁଳ କରାଯାଇଥାଏ ।
ଆକୁଳୀଭୂତ—ବିଂ. (ଚ୍ୱିପ୍ରତ୍ୟୟ) ଯେ ନିଜେ ଆକୁଳ ହୋଇଥାଏ, କାତରୀଭୂତ, ଉଦ୍‌ଭ୍ରାନ୍ତ ।
ଆକୂତ—ବିଂ. (ଆ + କୂ + ତ) ଆଶୟ, ଅଭିପ୍ରାୟ, ମନରଭାବ, ଇଚ୍ଛା ।
ଆକୂଣିତ—ବିଂ. (ଆ + କୂଣ୍ + ତ)ଅଳ୍ପ ସଙ୍କୁଚିତ ।
ଆକୂତି—ସ୍ତ୍ରୀ. ବି. (ଆ + କୂ + ତି)ଅଭିପ୍ରାୟ, ସ୍ୱାୟଂଭୁବ ମନୁଙ୍କର କନ୍ୟା ।
ଆକୃତିପର—ପୁଂ.ବିଂ. (ଆକୂତ + ପର) ଆପଣାର ଅଭିପ୍ରାୟ ସିଦ୍ଧି କରିଥିବା, (ସ୍ତ୍ରୀ) ଆକୂତପରା ।
ଆକୃତି—ସ୍ତ୍ରୀ.ବି.(ଆ + କୃ + ତି)ଅବୟବସଂସ୍ଥାନବିଶେଷ, ଇଙ୍ଗିତ, ରୂପ, ଆକାର, ନମୁନା, ଜାତି, ଆଚରଣ, ପ୍ରକାର ।
ଆକୃତଗଣ—ପୁଂ.ବି.ଯାହାର ଆକୃତି ବା ରୂପ ଦେଖି ଗଣ ସ୍ଥିର କରାଯାଏ, ବ୍ୟାକରଣର ଗଣବିଶେଷ ।

ଆକୃତିଗତ—ବି. ବଂ. (୨ତତ୍) ଦୈହିକ ଆକାର ସମ୍ବନ୍ଧୀ, ବାହ୍ୟ ।
ଆକୃତିଛତ୍ରା—ସ୍ତ୍ରୀ.ବଂ.ଘୋଷାତକୀଲତା ।
ଆକୃତିମାନ୍—ପୁଂ.ବଂ.(ଆକୃତି+ମତ୍) ଦେହଧାରୀ, ନିଜେ ଆକୃତି ଧରିଥିବା, (ସ୍ତ୍ରୀ) ଆକୃତିମତୀ ।
ଆକୃଷ୍ଟ—ବଂ. (ଆ+କୃଷ୍+ତ) ଆକର୍ଷଣଯୁକ୍ତ, ଆସକ୍ତ, କର୍ଷିତ, ବଶୀକୃତ, ଗୃହୀତ, ମୁଗ୍ଧ ।
ଆକୃଷ୍ଟି—ସ୍ତ୍ରୀ. ବ. (ଆ+କୃଷ୍+ତି) ଆକର୍ଷଣ, ଧନୁଟାଣିବା, ମାଧ୍ୟାକର୍ଷଣ ।
ଆକୃଷ୍ୟମାଣ—ବି. ବଂ.(ଆ+କୃଷ୍+ମ ମାନ) ଯାହାକୁ ଆକର୍ଷଣ କରାଯାଉଅଛି, ବଳପୂର୍ବକ ଆନୀୟମାନ ।
ଆକେ—ବଂ. ଅବ୍ୟାକୃତରୂପ, (ଅବ୍ୟ) ଅନ୍ତିକ, ନିକଟ, ଦୂର ।
ଆକେକରା—ସ୍ତ୍ରୀ. ବଂ. ବକ୍ରାକ୍ଷି, ଟେରା, ନିକଟଦୃଷ୍ଟି ।
ଆକେନପ—ପୁଂ. ବ. (ଆ+କେ+ନ+ପା+ଅ)ନିକଟପାତ, ନିକଟଗାମୀ, ମେଧାବୀ ।
ଆକେଲଗୁଡ଼ୁମ୍—ବଂ.ହତବୁଦ୍ଧି,ବିଭ୍ରାନ୍ତ, ବିହ୍ୱଳ, (ବି) ବୁଦ୍ଧିଭ୍ରଂଶ, ବିଭ୍ରାନ୍ତି ।
ଆକେଲସଲାମୀ—ବି. ନିର୍ବୁଦ୍ଧିତା ପ୍ରକାଶର ଦଣ୍ଡ । [ମକର ରାଶି ।
ଆକୋକେର—ପୁଂ.ବ. ଜ୍ୟୋତିଷୋକ୍ତ,
ଆକୋଲା—ସ୍ତ୍ରୀ.ବି. ବେରାର ଅନ୍ତର୍ଗତ ଗୋଟିଏ ପ୍ରଧାନ ନଗରୀ ।
ଆକୌଶଳ—କ୍ଲୀ.ବ. ଅପାଟବ,ଅପଟୁତା
ଆକ୍‌କାରା—ମହାର୍ଘ, ଦୁର୍ମୂଲ୍ୟ ।
ଆକ୍‌କେଲ—(ମ୍ଳେଚ୍ଛଜ) ଜ୍ଞାନ, ବୋଧ ।
ଆକ୍‌ସ୍ବର—ସର୍ବଦା, ସଚରାଚର ।
ଆକ୍ତା—କୋଷବାହାର କରିଥିବା ଘୋଡ଼ା-ପ୍ରଭୃତି ପଶୁ, ଦାମୁଡ଼ି ଅତିକ୍ରାନ୍ତ, କଂକର୍ତ୍ତବ୍ୟବିମୂଢ଼ ।
ଆକ୍ତାଘୋଡ଼ା—ଗ୍ରା.ବ.ଛେଦନ ବା ମର୍ଦ୍ଦନ-ଦ୍ୱାରା ଯେଉଁ ଘୋଡ଼ାର ପୁଂସ୍ତ୍ୱ ନଷ୍ଟ କରାଯାଇଅଛି ।

ଆକ୍ରନ୍ଦ—ପୁଂ.ବ.(ଆ+କ୍ରନ୍ଦ୍+ଅ)ସ୍ୱାମୀ, ରକ୍ଷକ,ଆହ୍ୱାନ, ମିତ୍ର,ଭ୍ରାତା, ଉଚ୍ଚସ୍ୱର, ପାଟି କରି କାନ୍ଦିବା, ଦାରୁଣଯୁଦ୍ଧ, ମିତ୍ର ରାଜା ।
ଆକ୍ରନ୍ଦନ—କ୍ଲୀ.ବ. (ଆ+କ୍ରନ୍ଦ୍+ଅନ) ପାଟି କରି କାନ୍ଦିବା, ଆହ୍ୱାନ ।
ଆକ୍ରନ୍ଦିତ—ବଂ.ଦୁଃଖୀର ରୋଦନ ଶୁଣି ଯେ ସେହି ସ୍ଥାନକୁ ଯାଏ ।
ଆକ୍ରନ୍ଦନ—ବଂ.ଯେ କାନ୍ଦି କାନ୍ଦି ଡାକେ ।
ଆକ୍ରନ୍ଦ—କ୍ଲୀ.ବ. ଯୁଦ୍ଧ ।
ଆକ୍ରମ—ପୁଂ.ବ. (ଆ+କ୍ରମ୍+ଅ)ବଳ, ବେଗ ଘୋଟିବା, ବଳବା ଅତିକ୍ରମଣ, ମରଲୋକ ପ୍ରାପ୍ତି ସାଧନ କର୍ମ, କୃତାକ୍ରମଣ, ନିନ୍ଦା, ବଳଦ୍ୱାରା ଉଲ୍ଲଙ୍ଘନ, ଅଭିଭୂତ, ବ୍ୟାପ୍ତ, ଆଗ୍ରହ ।
ଆକ୍ରମକ—ବଂ. (ଆ+କ୍ରମ୍+ଅକ) ଆକ୍ରମଣକାରୀ ।
ଆକ୍ରମଣ—କ୍ଲୀ.ବ. (ଆ+କ୍ରମ୍+ଅନ) ବଳଦ୍ୱାରା ଅତିକ୍ରମଣ,ଚଢ଼ାଉ,ଅଭିଭବ, ଆରୋହଣ, ଉଦୟ ।
ଆକ୍ରମଣୀୟ—ବି. ବଂ. (ଆ+କ୍ରମ୍+ଅନୀୟ) ଆକ୍ରମଣର ଯୋଗ୍ୟ, ଯାହା ବା ଯାହାକୁ ଆକ୍ରମଣ କରିବା ଉଚିତ ।
ଆକ୍ରମିବା—ଗ୍ରା.କ୍ରି.(ଆ+କ୍ରମିବା)ଆକ୍ରମଣ କରିବା, ଅତିକ୍ରମ କରିବା ।
ଆକ୍ରୟ—ବଂ. (ଆ+କ୍ରୀ+କ.ଅ)ଖୁଚୁରା ବେପାର, ବୁଲିବିକା ।
ଆକ୍ରା—ବଂ. (ଗ୍ରା) ଦୁର୍ମୂଲ୍ୟ, ଲୋଡ଼ା, ମହର୍ଗ ।
ଆକ୍ରାନ୍ତ—ବଂ. (ଆ+କ୍ରମ+ତ) ପରାଭୂତ, ଅଧିଷ୍ଠିତ, ଅତିରକ୍ତ, ଆପ୍ତ, ଗ୍ରସ୍ତ, ବିସ୍ତୀର୍ଣ୍ଣ, ସୀମାବଶିଷ୍ଟ, ଅତିକ୍ରାନ୍ତ ।
ଆକ୍ରାନ୍ତି—ସ୍ତ୍ରୀ.ବ (ଆ+କ୍ରମ+ତି)ଆକ୍ରମଣ, ଉପରେ ସ୍ଥାପନଦ୍ୱାରା ବ୍ୟାପ୍ତି, ଅଧିକାରକରଣ, ପାଦ ପକାଇବା, ଉପରକୁ ଉଠିବା ।
ଆକ୍ରାନ୍ତେ—ଗ୍ରା.କ୍ରି.ବଂ. ବ୍ୟାସ୍‌ଙ୍କ ମଧ୍ୟରେ ଗୃହଆଡ଼େ ବ୍ୟାପ୍ତି ।
ଆକ୍ରାମକ—ବି.ବଂ.(ଆ+କ୍ରମ୍+କ.ଅକ) ଆକ୍ରମଣକାରୀ (ସ୍ତ୍ରୀ) ଆକ୍ରାମିକା ।

ଆକ୍ରୀଡ଼—ପୁଂ. ବ. (ଆ+କ୍ରୀଡ଼୍+ଅ) କ୍ରୀଡ଼ାସ୍ଥାନ, ମଲ୍ଲଭୂମି, ପ୍ରମୋଦ, କୁଞ୍ଜ ଉଦ୍ୟାନ, ରାଜାଙ୍କର ସାଧାରଣ ବନ, (ବଂ) ବିହାରଶୀଳ ।
ଆକ୍ରୀଡିତ—ପୁଂ. ବଂ. (ଆ+କ୍ରୀଡିତ) ଖେଳୁଥିବା, (ସ୍ତ୍ରୀ) ଆକ୍ରୀଡ଼ିତା ।
ଆକ୍ରୀଡ଼ୀ—ପୁଂ. ବଂ. (ଆ+କ୍ରୀଡ଼୍+ଇନ୍) କ୍ରୀଡ଼ାଶୀଳ ।
ଆକ୍ରୁଷ୍ଟ—ପୁଂ. ବଂ. (ଆ+କ୍ରୁଶ+ତ) ଯାହାପ୍ରତି ଆକ୍ରୋଶ କରାଯାଏ, ଶବ୍ଦିତ, ନିନ୍ଦିତ, ଅଭିଶପ୍ତ, (କ୍ଲୀ) ପରୁଷଭାଷଣ, ମନ୍ଦକଥନ ।
ଆକ୍ରୋଶ—ପୁଂ. ବ. (ଆ+କ୍ରୁଶ୍+ଅ) ବିରୁଦ୍ଧଚିନ୍ତା, ଶାପ, ନିନ୍ଦା, ଅପବାଦ, କଟୂକ୍ତି, ଗାଳି, ଦ୍ୱେଷ, ଉଚ୍ଚୈଃସ୍ୱର, ଅଧଉଠ ।
ଆକ୍ରୋଶନ—କ୍ଲୀ. ବ. (ଆ+କ୍ରୁଶ୍+ଅନ) ଅଭିଷଙ୍ଗ, ଅପବାଦ, ବିରୁଦ୍ଧଚିନ୍ତା ।
ଆକ୍ରୋଶନୀୟ—କ୍ରି. ବଂ.(ଆ+କ୍ରୁଶ୍+ଅନୀୟ)ନିନ୍ଦନୀୟ, ଭର୍ତ୍ସନୀୟ,ତିରସ୍କାର୍ଯ୍ୟ, (ସ୍ତ୍ରୀ) ଆକ୍ରୋଶନୀୟା ।
ଆକ୍ରୋଶକ—ପୁଂ. ବ. (ଆ+କ୍ରୁଶ୍+ଅକ) ଆକ୍ରୋଶକର୍ତ୍ତା, ଚିତ୍କାର କରୁଥିବା ଦ୍ୱେଷକାରୀ, (ସ୍ତ୍ରୀ) ଆକ୍ରୋଶିକା ।
ଆକ୍ରୋଶିବା—ଗ୍ରା. କ୍ରି. ଏକାଗ୍ର କରିବା, ବ୍ୟାପିବା । [ଆକ୍ରୋଶକର୍ତ୍ତ୍ରୀ ।
ଆକ୍ରୋଷ୍ଟା—ପୁଂ.ବଂ. (ଆ+କ୍ରୁଶ+ତୃ)
ଆକ୍ଳାନ୍ତ—ବି. ବଂ. ନିରତିଶୟ କ୍ଳାନ୍ତ ।
ଆକ୍ଳିନ୍ନ—ବଂ.(ଆ+କ୍ଳିନ୍ନ)ଓଦାହୋଇଥିବା, ତିନ୍ତା ହୋଇଥିବା ।
ଆକ୍ଳୀ—ଅ (ଆ+କ୍ଳୀଦ+ଇ) ବିକାର ।
ଆକ୍ଳେଦ—ପୁଂ. ବ. (ଆ+କ୍ଳିଦ୍+ଅ) ଆର୍ଦ୍ରୀଭାବ, ସନ୍ତସନ୍ତିଆ, ବତୁରାଇବା ।
ଆକ୍ଷଦ୍ୟୂତ—ବ. (ଅକ୍ଷଦ୍ୟୂତ+ଅ)ଜୁଆଖେଳ, (ବଂ) ଜୁଆଖେଳସମ୍ବନ୍ଧୀୟ ।
ଆକ୍ଷଦ୍ୟୂତକ—କ୍ଲୀ.ବ.(ଅକ୍ଷଦ୍ୟୂତ+ଇକ) ପଶାଖେଳରେ ଯେଉଁ ବିରୋଧ ଜନ୍ମେ, ବୈର ।

ଆକ୍ଷପଣ—ବି. (ଆ + କ୍ଷପଣ) ଉପବାସ, ତଦ୍ଦ୍ୱାରା ଦେହଶୁଦ୍ଧି, ଭୋଜନାଦରୁ ବିରତ ।

ଆକ୍ଷପାଟିକ—ପୁଂ.ବି. ଅକ୍ଷକ୍ରୀଡ଼ାଧ୍ୟକ୍ଷ, ବିଚାରାଧ୍ୟକ୍ଷ, (ସ୍ତ୍ରୀ) ଆକ୍ଷପାଟିକା ।

ଆକ୍ଷପାଦ—ପୁଂ. ବିଂ. ( ଅକ୍ଷପାଦ + ଅ ) ଅକ୍ଷପାଦସମ୍ବନ୍ଧୀୟ, ଅକ୍ଷପାଦକୃତ, ଗୌତମଙ୍କଦ୍ୱାରା ଶିକ୍ଷା ଦିଆଯାଇଥିବା, (ସ୍ତ୍ରୀ) ଆକ୍ଷପାଦୀ, (କ୍ଲୀ) ଗୌତମକୃତ ଶାସ୍ତ୍ର, ନ୍ୟାୟଶାସ୍ତ୍ର, (ବି) ନୈୟାୟିକ, ପଣ୍ଡିତ, ନ୍ୟାୟଦର୍ଶନ ।

ଆକ୍ଷରିକ—ତ୍ରି.ବିଂ.(ଅକ୍ଷର + ଇକ)ଅକ୍ଷର-ସମ୍ବନ୍ଧୀୟ, ବର୍ଣ୍ଣଘଟିତ ପ୍ରତ୍ୟେକ ଅକ୍ଷରକୁ ଅନୁସରଣ କରାଯିବା, (ସ୍ତ୍ରୀ) ଆକ୍ଷରିକୀ ।

ଆକ୍ଷାଣ—ବିଂ. ବ୍ୟାପ୍ୟମାନ ।

ଆକ୍ଷାର—ପୁଂ.ବି. (ଆ + କ୍ଷାର + ଭା.ଅ) ପୁରୁଷ ବା ସ୍ତ୍ରୀ ପ୍ରତି ଅଗମ୍ୟଗମନ ଦୋଷାରୋପ କରିବା, ଅପରାଧ-ସମ୍ବନ୍ଧୀୟ ଅଭିଯୋଗ ।

ଆକ୍ଷାରଣ—କ୍ଲୀ. ବି. (ଆ + କ୍ଷର୍ + ଣିଚ୍ + ଭା.ଅନ) ଆକ୍ଷାର ଦେଖ ।

ଆକ୍ଷାରିତ—ତ୍ରି.ବିଂ. ଆ + କ୍ଷର + ଣିଚ୍ + ର୍ମ.ତ ) ଅଗମ୍ୟଦୋଷଦୂଷିତ ସ୍ତ୍ରୀ କିମ୍ବା ପୁରୁଷ, ନିନ୍ଦିତ, ଅପବାଦଗ୍ରସ୍ତ, (ସ୍ତ୍ରୀ) ଆକ୍ଷାରିତା ।

ଆକ୍ଷିକ—ପୁଂ.ବିଂ. (ଅକ୍ଷ + ଇକ) ପାଶକ୍ରୀଡ଼ାବିଷୟକ, ଯେ ପଶାଖେଳରେ ଜିତି ଅଛି, (ସ୍ତ୍ରୀ) ଆକ୍ଷିକୀ, (ବି) ପାଶକ୍ରୀଡ଼କ, ଜୁଆଡ଼ି, ଆଚୁଗଛ, (କ୍ଲୀ.ବି) ପାଶକ୍ରୀଡ଼ାପାଇଁ ଋଣ ।

ଆକ୍ଷିକପଣ—ବି. ଜୁଆଖେଳରେ ରଖାଯିବା ବାଜି ।

ଆକ୍ଷିତ୍—ବିଂ.(ଆ + କ୍ଷି + କ୍ୱିପ୍)ଆବର୍ତ୍ତମାନ, ଯେ ଫେରି ଆସିଛି ।

ଆକ୍ଷିପ୍ତ—ତ୍ରି. ବିଂ. (ଆ + କ୍ଷିପ୍ + ର୍ମ.ତ) ଆକୃଷ୍ଟ, କୃତାକ୍ଷେପ, ଯାହା ସମ୍ବନ୍ଧେ ଆକ୍ଷେପ କରାଯାଇଅଛି, ଦୁଃଖିତ, କ୍ଷୁବ୍ଧ, ଭର୍ତ୍ସିତ ।

ଆକ୍ଷିପ୍ତିକା ବି.(ଆକ୍ଷିପ୍ତ + କ + ଆ)ରଙ୍ଗଭୂମିକୁ ଆସିଲାବେଳେ ବୋଲାଯିବା ସଙ୍ଗୀତ ।

ଆକ୍ଷୀବ—ପୁଂ.ବି. (ଆ + କ୍ଷୀବ + ଇ + ଅ) ସଜନାଗଛ, ଅଲ୍ପ ଉନ୍ମତ୍ତ, (ବିଂ) ନିଶାଉନ୍ମତ୍ତ ।

ଆକ୍ଷୁଣ୍ଟୀ—ବିଂ. ନିର୍ଦ୍ଦୟ, ନିଷ୍ଠୁର, ହତଲକ୍ଷ୍ମୀ, (ସ୍ତ୍ରୀ.ବି) ଉଗ୍ରା ସ୍ତ୍ରୀ ।

ଆକ୍ଷେଟୀ—ପୁଂ. ବି. ବ୍ୟାଧ, ଶିକାରୀ ।

ଆକ୍ଷେପ—ପୁଂ.ବି. ( ଆ + କ୍ଷିପ୍ + ଅ ) ଭର୍ତ୍ସନା, ଅପବାଦ,ଆକର୍ଷଣ, ଧାନ୍ୟାଦି କେନ୍ଦ୍ର ରଖିବା, ଅର୍ଥାଲଙ୍କାରବିଶେଷ, ହାତଗୋଡ଼ ଛାଟିଆଡ଼ିବା, ଅପହରଣ, ବିକ୍ଷେପ, ଦୁଃଖ ।

ଆକ୍ଷେପକ—ପୁଂ.ବିଂ. (ଆ + କ୍ଷିପ୍ + କ. ଅକ) ନିନ୍ଦକ, ଆକର୍ଷକ, 'ଭର୍ତ୍ସନାକାରୀ, (ସ୍ତ୍ରୀ) ଆକ୍ଷେପିକା, (ବି) ବାତରୋଗବିଶେଷ, ବ୍ୟାଧ ।

ଆକ୍ଷେପଣ—କ୍ଲୀ.ବି. (ଆ + କ୍ଷିପ୍ + ଅନ) ଆକ୍ଷେପ ଶବ୍ଦାର୍ଥ, ଭର୍ତ୍ସନା, ଅପବାଦ ।

ଆକ୍ଷେପୀ —ପୁଂ.ବିଂ.(ଆ + କ୍ଷିପ୍ + ଇନ୍) ଆକର୍ଷଣକାରୀ, ଯେ ସୂକ୍ଷ୍ମ ଦୃଷ୍ଟିଦ୍ୱାରା ଆକର୍ଷଣ କରେ ।

ଆକ୍ଷୈତ୍ରଜ୍ଞ—କ୍ଲୀ.ବି. ଅନାତ୍ମଜ୍ଞ, ଅନିପୁଣ, ଅକୌଶଳ, କ୍ଷେତ୍ରଜ୍ଞାନଭିଜ୍ଞ ।

ଆକ୍ଷୋଟ,ଆକ୍ଷୋଡ଼—ବି.ଆକରୋଟ ବୃକ୍ଷ, ଆକ୍ରୋଟ ।

ଆକ୍ଷୋଦନ—ବି.ମୃଗୟା,ପାରଧି,ଶିକାର ।

ଆଖ—ପୁଂ.ବି. (ଆ + ଖନ + ଅ)ଖନିତ୍ର, ଖଣତି ।

ଆଖଡ଼ଆଖଡ଼ା—ଅକାରଣ, ଅହେ, ଏଇଲେ ଅଖଡ଼ାରେ ପ୍ରାଣ ଯାଇଥାନ୍ତା ।

ଆଖଣ୍ଡଳ—ପୁଂ. ବି. (ଆ + ଖଣ୍ଡ୍ + କ.ଅଲ) ଇନ୍ଦ୍ର, ସହସ୍ରାକ୍ଷ, ହନ୍ତା ।

ଆଖଣ୍ଡଳଧନୁ—କ୍ଲୀ.ବି. (୬ତତ୍ପୁ) ଇନ୍ଦ୍ରଧନୁ, ରାମଧନୁ ।

ଆଖଣ୍ଡଳମଣି—ପୁଂ.ବି.ବାଲେଶ୍ୱର ଜିଲ୍ଲା ବୈତରଣୀ ଓ ସାଳନ୍ଦୀ ନଦୀସଙ୍ଗମସ୍ଥ ଶିବଲିଙ୍ଗବିଶେଷ ।

ଆଖଣ୍ଡୀ—ବିଂ. ( ଆ + ଖଣ୍ଡ + ଇନ୍) ଅ.ଖଣ୍ଡକ, ଭେଦକ ।

ଆଖନ୍ଦ—ଗ୍ରା.ବି. ଅଟକ, ଜବତ୍, ଲୁଚି ଶସ୍ୟକୁ ଜଗିବା, ଅଗଣା, ଫସଲ ।

ଆଖଦ୍ଧ—ଗ୍ରା. ବି. ଏକପ୍ରକାର ବନ୍ଧୁକ ।

ଆଖଦ୍ଧବା—ଗ୍ରା.କ୍ରି.ଆଗୁଳିବା,ଓଗାଳିବା, ଜବତ୍ କରିବା, ଅଟକାଇବା ।

ଆଖନ—ପୁଂ.ବିଂ. (ଆ + ଖନ୍ + କ.ଅ) ଖନିତ୍ର, ଖଣତି, ଖଣତି ।

ଆଖନକ—ପୁଂ. ବି. ( ଆଖନ + ଇକ ) ଚୌର,ମୂଷିକ,ଶୂକର(ବିଂ)ଖନନକାରୀ ।

ଆଖନିକବକ—ପୁଂ. ବି. ଖନିତ୍ର,ଖଣତି, ଚୌର,ଶୂକର, ମୂଷିକ, (ବିଂ) ଖନନକର୍ତ୍ତା ।

ଆଖପାଖ—ଗ୍ରା. ଅବ୍ୟ, ଇତସ୍ତତଃ, ଏପାଖ ସେପାଖ (ବିଂ) ନିକଟବର୍ତ୍ତୀ, ଚତୁର୍ଦ୍ଦିଗ, ସମୀପ, (ଗ୍ରା. ବି) ନୈକଟ୍ୟ, ସାମୀପ୍ୟ । [ଚତୁର୍ଦ୍ଦିଗରେ ।

ଆଖପାଖେ—ଗ୍ରା. କ୍ରି. ବିଂ. ନିକଟରେ,

ଆଖର—ପୁଂ. ବି. (ଆ + ଖନ୍ + ଅର) ଖନିତ୍ର, ମୃଗବିଳ, ( ଗ୍ରା. ) ମୃଦଙ୍ଗର ସ୍ୱର ବା ଉତ୍କୃଷ୍ଟବିଶେଷ (ଯା) ଶେଷ ।

ଆଖେର—(ଯା) ବିଂ. ସର୍ବଶେଷ, ଖତମ୍, ଗତ, (କ୍ରି. ବିଂ.) ସର୍ବଶେଷକୁ, ପଛକୁ, ଶେଷବେଳକୁ ।

ଆଖରେସ୍ଥ—ବିଂ. ଆଖରେ ସ୍ଥିତ ।

ଆଖରୋଟ—(ଯା)ବି. ଏକ ପ୍ରକାର ଫଳ ।

ଆଖାତ—ବି. ନ.ତତ୍ପୁ; ( ଆଖତ + ଅ) ଦେବଖାତ, ସ୍ୱାଭାବିକ ଜଳାଶୟ, ଉପସାଗର ।

ଆଖାନ—ପୁଂ. ବି. ( ଆ + ଖନ୍ + ଅ ) ସମସ୍ତ ଦିଗରେ ଖୋଳିବା ।

ଆଖାଶାଖା—ପ୍ରା. ବି. ସହାୟ, ରକ୍ଷକ ।

ଆଖି—ଗ୍ରା. ବି. ଆଖି, ଦୃଷ୍ଟି, ଚକ୍ଷୁ ,ନେତ୍ର ଆଖିପଟର ଗଣ୍ଠି ,(ଲ.ଅର୍ଥ)ବିବେଚନାଶକ୍ତି, ବୁଦ୍ଧି, ନଡ଼ିଆ ମୁଣ୍ଡସ୍ଥ ଛିଦ୍ର ।

ଆଖିଆ—ଗ୍ରା. ବିଂ. ପୁଂ. ସ୍ତ୍ରୀ ଚକ୍ଷୁବିଶିଷ୍ଟ,ଦୃଷ୍ଟିଆ (ଗଞ୍ଜାମ) ପ୍ରଚକ୍ଷୁ, (ସ୍ତ୍ରୀ) ଆଖେଇ । [ବ୍ୟା ।

ଆଖିଖୁଞ୍ଚା—ପ୍ରା. ବି. ଆଖିଭିତରେ ହେବା

ଆଖିଛଟା—ଗ୍ରା. ବି. ଅପାଙ୍ଗ ଦୃଷ୍ଟି, ଆଖିଠାର ।

ଆଖିଛୁଇଁବା—ଗ୍ରା. କ୍ରି. ଶପଥପୂର୍ବକ ଆଖିକୁ ସ୍ପର୍ଶ କରିବା ।

ଆଖିଦୃଷ୍ଟିଆ—ଗ୍ରା. ବିଂ. ଯାହା ଲୋକଙ୍କ ଲାଲସାପୂର୍ଣ୍ଣ ଚକ୍ଷୁରେ ଦେଖା ଯାଇଅଛି ।

ଆଖିଦେଖାଇବା—ଗ୍ରା. କ୍ରି. ଭୟ ଦେଖାଇବା, ଭ୍ରୂକୁଟୀ କରିବା, ଆଖିଦ୍ୱାରା ଧମକେଇବା ।

ଆଖିଡିଆଁ—ବି. (ଗ୍ରା.) ଚକ୍ଷୁସ୍ଫୁରଣ ।

ଆଖିଧରା—ବି. (ଗ୍ରା) ଚକ୍ଷୁରୋଗବିଶେଷ ।

ଆଖିପତା—(ଗ୍ରା.) ବି. ଆଖିଡାଙ୍କୁଣୀ, ନେତ୍ରପତ୍ର ।

ଆଖିପିଛୁଡ଼ା—ବି. ପଲକ, ଚକ୍ଷୁର ପଲକ ।

ଆଖିପାଣି—ଗ୍ରା. ବି. ଲୋତକ, ଲୁହ ।

ଆଖିପାଣି ଆଖିରେମରିବା—ଗ୍ରା. ବି. କୌଣସି କାର୍ଯ୍ୟପାଇଁ ଗୁହିଁ ଗୁହିଁ ଶେଷରେ ନିରାଶ ହେବା ।

ଆଖିପିଛାଳ—ଗ୍ରା. ବି. ଆଖିର ପଲକକୁ ଶୀଘ୍ର ଶୀଘ୍ର ବୁଜିବା, ଆଖି ପଲକ ।

ଆଖିପୁଅ—ଗ୍ରା. ବି. ଆଖି-ଡୋଳାର ମଧ୍ୟରେ ଥିବା କଳା ଅଂଶ ।

ଆଖିଫିଟିବା—ଗ୍ରା. କ୍ରି. ଚକ୍ଷୁରୁନ୍ମୀଳିତ ହେବା, (ଲକ୍ଷଣାର୍ଥ) କୌଣସି ବିଷୟରେ ଜ୍ଞାନୋଦୟ ବା ଚୈତନ୍ୟୋଦୟ ହେବା ।

ଆଖିଫୁଟା—ବିଂ. ଗାଳିବିଶେଷ, ଅଦୂରଦର୍ଶୀ, ମୂର୍ଖ, ଅନ୍ଧ, ଅଜ୍ଞ, ଅବିବେଚକ ।

ଆଖିବୁଜିବା—ଗ୍ରା. କ୍ରି. ଚକ୍ଷୁବନ୍ଦକରିବା, (ଲ. ଅର୍ଥ) ମରିଯିବା ।

ଆଖିବୁଲାଇବା—ଗ୍ରା. କ୍ରି. କ୍ରୋଧରେ ଆଖିକୁ ବଡ଼ ବଡ଼ କରି ଏଣେ ତେଣେ ବୁଲାଇବା (ଲ. ଅର୍ଥ, ଅନ୍ୱେଷଣକରିବା, ଭଲରୂପେ ଚାରିଆଡ଼େ ଦେଖିବା ।

ଆଖିରଙ୍ଗକରିବା—ଗ୍ରା କ୍ରି. ଆରକ୍ତ ଚକ୍ଷୁ ଦେଖାଇବା, ରାଗହେବା ।

ଆଖିରି—(ଯା.) ଶେଷ, ପରିଣାମ, ନିକଟ ।

ଆଖିରୁଚକ—ଗ୍ରା. ବିଂ. ଚକ୍ଷୁରୋଚକ, ଯାହା ଦେଖିବାକୁ ଭଲ ଲାଗେ ।

ଆଖିରୁ ଜୁଳୁଜୁଳିଆପୋକବାହାରିଯିବା—ଦୁର୍ବଳତାପ୍ରଭୃତି ହେତୁରୁ ମସ୍ତିଷ୍କବିକୃତି ଘଟିଲେ ଆଖି ଆଗରେ ଜୁଳୁଜୁଳିଆ ପୋକ ବାହାରିବା ପରି ଅଗ୍ନିକଣାମାନ ଦେଖାଯିବା ।

ଆଖିରୁପାଣିମରିଯିବା—ଗ୍ରା. ବି. (ବୃଦ୍ଧତ୍ୱହେତୁ ) ଦୃଷ୍ଟିଶକ୍ତି ଲୋପ ପାଇବା, (ବହୁକାଳ ଚାହିଁ ଚାହିଁ) ଆଖିକୁ ଦେଖା ନ ଯିବା ।

ଆଖିରେ ଆଙ୍ଗୁଠି ଗେଞ୍ଜିବା—ଗ୍ରା. କ୍ରି. ବିରକ୍ତ କରିବା, ଠକିଦେବା ।

ଆଖିରେ ଧୂଳିପକାଇବା—ଗ୍ରା. କ୍ରି. ଠକିଦେବା ।

ଅଖିରେ ନଯିବା—ଗ୍ରା. କ୍ରି. ଦୃଷ୍ଟି ଦେବା, ସହି ନ ପାରିବା ।

ଆଖିରେ ନାଚିବା—ଗ୍ରା. କ୍ରି. (କୌଣସି ଅନୁପସ୍ଥିତ ବିଷୟ ) ଉପର୍ଯ୍ୟୁପରି ସ୍ମରଣରେ ଆସିବା ।

ଆଖିଲଞ୍ଜି—ଗ୍ରା. ବି. ଚକ୍ଷୁର ପ୍ରାନ୍ତଦେଶ ।

ଆଖିଲେନ୍ଧେରା—ଗ୍ରା. ବି. ଚକ୍ଷୁରୁ ବହିର୍ଗତ ମଳ ।

ଆଖିଲୋଭା—ଗ୍ରା. ବିଂ. ଚକ୍ଷୁର ପ୍ରୀତିକର, ସୁନ୍ଦର ।

ଆଖୁ—ପୁଂ. ବି. (ଆ + ଖନ୍ + ଉ) ମୂଷା, ଚୋର, ଶୂକର, ଦେବତାଡ଼ବୃକ୍ଷ, କୃପଣ, ଇକ୍ଷୁର ଅପଭ୍ରଂଶ. ମଧୁରରସବିଶିଷ୍ଟ ତୃଣଜାତୀୟ ଗୁଳ୍ମବିଶେଷ ।

ଆଖୁକରୀଷ—କ୍ଳୀ. ବି. ମୂଷିକର ଶୁଷ୍କବିଷ୍ଠା ।

ଆଖୁକର୍ଣ୍ଣପର୍ଣ୍ଣିକା—ସ୍ତ୍ରୀ. ବି. ମୂଷାକାନପତ୍ର ।

ଆଖୁକର୍ଣ୍ଣୀ—ସ୍ତ୍ରୀ. ବି. (ବ. ବ୍ରୀ) ମୂଷାକାନଲତା, ଲତାବିଶେଷ ।

ଆଖୁକଳ—ଗ୍ରା. ବି. ଯେଉଁ କଳରେ ଆଖୁ ପେଡ଼ାଯାଏ, ଆଖୁଖାଇ ।

ଆଖୁଖାଇ—କ୍ଳୀ. ବି. ଆଖୁକଳ ।

ଆଖୁଗ—ପୁଂ. ବି. ( ଆଖୁ + ଗମ୍ + କ, ଅ) ଇନ୍ଦୁରବାହନ, ଗଣେଶ, ମୂଷିକ ।

ଆଖୁଘାତ—ପୁଂ. ବି. ( ଆଖୁ + ହନ୍ + ଅ) ଶୂଦ୍ରଜାତି, ନୀଚଜାତି ।

ଆଖୁଟୀ—( ଗ୍ରା. ) ବାଳକମାନଙ୍କର ଆବଦାର, ହକୁଟୀ ।

ଆଖୁନ—(ଯା.) ବି. ଶିକ୍ଷକ, ପାର୍ଶି ଓ ଆରବୀଭାଷାର ଶିକ୍ଷକ । [ ଲତା ।

ଆଖୁପର୍ଣ୍ଣିକା—ସ୍ତ୍ରୀ. ବି. (ବ. ବ୍ରୀ) ମୂଷାକାନ

ଆଖୁପବ—ଗ୍ରା. ବି. ଆଖୁରେ ଥିବା ଗଣ୍ଠି, ଏକଗଣ୍ଠିଠାରୁ ଆଉଗଣ୍ଠି ପର୍ଯ୍ୟନ୍ତ ଏକପବ ।

ଆଖୁପାଷାଣ—ପୁଂ. ବି. ପାଷାଣବିଶେଷ, ଚୁମ୍ବକପଥର ।

ଆଖୁଭୁକ୍—ପୁଂ. ବି. (ଆଖୁ + ଭୁଜ୍ + କ. କ୍ୱିପ୍) ବିଡ଼ାଳ, ମାର୍ଜ୍ଜାର, ବିରାଡ଼ି ।

ଆଖୁରଥ—ପୁଂ. ବି. (ବ. ବ୍ରୀ) ଗଣେଶ ।

ଆଖୁବିଷହା—ସ୍ତ୍ରୀ. ବି. (ଆଖୁ + ବିଷ + ହନ୍ + ଅ + ଆ ) ମୂଷିକବିଷହର, ଦେବତାଡ଼ ବୃକ୍ଷ, ଦେବତାଳୀଲତା ।

ଆଖୁଶାଳ—ଗ୍ରା. ବି. ଆଖୁପେଡ଼ାହେବା ସ୍ଥାନ ।

ଆଖୂତ୍କର—ପୁଂ. ବି. ମୂଷାମାଟି ।

ଆଖୂତ୍ଥ—ବିଂ. (ଆଖୁ + ଉତ୍ + ସ୍ଥା + ଅ) ଆଖୁଭବ, (କ୍ଳୀ) ମୂଷା ଉଠିବା ।

ଆଖେଇବା—ଗ୍ରା. କ୍ରି. ଦେଖିବା, କ୍ରମଶଃ ନିକଟବର୍ତ୍ତୀ ହେବା, ଦୃଷ୍ଟି ।

ଆଖେଟ—ପୁଂ. ବି. (ଆ + ଖେଟ୍ + ଅ) ମୃଗୟା, ଶିକାର, ପାରିଧି, ତ୍ରାସ, ଭୟ ।

ଆଖେଟକ—ପୁଂ. ବି. (ଆ + ଖେଟ୍ + କ. ଅକ ) ମୃଗୟା, ଶିକାରୀଜନ୍ତୁ, ବ୍ୟାଧ, (ବିଂ) ମୃଗୟାଶୀଳ, ତ୍ରାସଜନକ, ଶିକାରୀ, (ସ୍ତ୍ରୀ) ଆଖେଟିକା ।

ଆଖେଟକପର୍ବ—ବି. ୬ତତ୍; (ଆଖେଟକ + ପର୍ବ) ଶ୍ରାବଣଶୁକ୍ଳତ୍ରୟୋଦଶୀ ।

ଆଖେଟଶୀର୍ଷକ—କ୍ଳୀ. ସୁଡ଼ଙ୍ଗ, ରନ୍ଧ୍ରବିଶେଷ ।

ଆଖେଟିକ—ପୁଂ. ବି. ମୃଗୟାଜନ୍ତୁ-ଶିକାରୀ କୁକୁର (ବିଂ) ମୃଗୟାବିଷୟକ, ତ୍ରାସଜନକ, ମୃଗୟାକାରୀ, (ସ୍ତ୍ରୀ) ଆଖେଟିକା ।

ଆଖେଟୀ—ବି. ବାଣୁଆ, ଶବର, ବ୍ୟାଧ ।

ଆଖୋଟ—ପୁଂ. ବି. ଶୈଳପୀଲୁବୃକ୍ଷ, ଆଖ୍‌ରୋଟ ଗଛ ।

ଆଖୋଟୀ—ସ୍ତ୍ରୀ. ବି. ବିରୋଧ, ବିବାଦ, କଳହ, ଦ୍ୱେଷ, ଶତ୍ରୁତା, ନଷ୍ଟାମି ।

ଆଖ୍ୟା—ସ୍ତ୍ରୀ.ବି. (ଆ+ଖ୍ୟା+ଆ) ସଂଜ୍ଞା, ସୂଚନାମ, ବାଚକ ଶବ୍ଦ, ନାମ ଉପାଧି, କଥନ ।

ଆଖ୍ୟାତ—ବିଂ. (ଆ+ଖ୍ୟା+ମଁ. ତ) କଥିତ, ଭଣିତ ଅଭିହିତ, ଉକ୍ତ, ପ୍ରସିଦ୍ଧ, ସୂଚିତ, ବ୍ୟାଖ୍ୟାତ, ପ୍ରକାଶିତ, (କ୍ଳୀ) ବ୍ୟାକରଣର ପ୍ରକରଣବିଶେଷ ।

ଆଖ୍ୟାତି—ସ୍ତ୍ରୀ. ବି. (ଆ+ଖ୍ୟା+ତି) କଥନ, (ବିଂ)ଆଖ୍ୟାତ, କଥିତ ।

ଆଖ୍ୟାତା—ପୁଂ. ବି. (ଆ+ଖ୍ୟା+ତୃ) ଉପଦେଶକ, ବ୍ୟାଖ୍ୟାକର୍ତ୍ତା ।

ଆଖ୍ୟାନ—କ୍ଳୀ. ବି. (ଆ+ଖ୍ୟା+ଭା. ଅନ) କଥନ, ପ୍ରତିବଚନ, ଉପନ୍ୟାସ ଗଳ୍ପ, ଇତିହାସ, ନାମୋଲ୍ଲେଖ ।

ଆଖ୍ୟାନକୀ—ସ୍ତ୍ରୀ.ବି.ବିଷମ ବୃତ୍ତବିଶେଷ ।

ଆଖ୍ୟାପତ୍ର—କ୍ଳୀ. ବି. (କ.ଧା) ଆଖ୍ୟା-ସୂଚକ ପତ୍ର ।

ଆଖ୍ୟାୟକ—ପୁଂ. ବି. (ଆ+ଖ୍ୟା+କ.ଅକ) ବାର୍ତ୍ତାବହ, ଦୂତ (ବିଂ)ବକ୍ତା, କଥକ, ପ୍ରକାଶକ (ସ୍ତ୍ରୀ) ଆଖ୍ୟାୟିକା ।

ଆଖ୍ୟାୟିକା—ସ୍ତ୍ରୀ. ବି. (ଆ+ଖ୍ୟା+ଅକ.ଆ) ଗଳ୍ପକଥା, ଐତିହାସିକ, ଉପନ୍ୟାସ, କଥାକାବ୍ୟ ।

ଆଖ୍ୟାୟୀ—ବିଂ. (ଆ+ଖ୍ୟା+କ.ଇନ୍) କଥକ, ଆବେଦକ, ଦୂତାଦି, (ସ୍ତ୍ରୀ) ଆଖ୍ୟାୟିନୀ ।

ଆଖ୍ୟେୟ—କ୍ରି. ବିଂ. (ଆ+ଖ୍ୟା+ମଁ. ଯ) କଥନୀୟ, ବକ୍ତବ୍ୟ,ବାଚ୍ୟ, ଆଖ୍ୟା-ବିଶିଷ୍ଟ ।

ଆଗ—ଗ୍ରା. ବି. (ସଂ.ଅଗ୍ର) ସମ୍ମୁଖ ବା ପୂର୍ବଭାଗ,ପୂର୍ବକାଳ,(ଗ୍ରା.ବିଂ. ସମ୍ମୁଖ-ବର୍ତ୍ତୀ, ଅଗ୍ରସର, ପ୍ରଥମ,ପୁରାତନ, ଭବିଷ୍ୟତ୍, ପ୍ରଥମକରଣୀୟ, (କ୍ରି. ବିଂ.) ସର୍ବପ୍ରଥମେ, ସମ୍ମୁଖରେ, ପୂର୍ବେ ।

ଆଗଃ—କ୍ଳୀ. ବି. (ଆ+ଇ+କ.ଅସ୍) ଦୋଷ,ଅଧର୍ମ, ପାପ,କ୍ଷତି, ଅପରାଧ ।

ଆଗକୁହା—ବିଂ. ଯେ ସମସ୍ତ ଆଗରୁ କହେ, ଆଗତକୁହା, ଯେ ଅନାଦୃତ ହୋଇ ବାକ୍ୟ ବ୍ୟୟକରେ, (ସ୍ତ୍ରୀ ଆଗକୋହୀ ।

ଆଗଚଲା—ଗ୍ରା.ପୁଂ. ସ୍ତ୍ରୀ. ଯେ ସମସ୍ତଙ୍କୁ ଅତିକ୍ରମ କରି ଚାଲେ, କେହି ନ ଚାଲୁଣୁ ଯେ ଚାଲେ, ଫାଜିଲ, ଆଗବୋଲା, ମୁଖର, (ବି) ଦ୍ୱିତୀୟହେବା ବିଧବା ସ୍ତ୍ରୀର ପୂର୍ବସ୍ୱାମୀ ଔରସଜାତ ସନ୍ତାନ

ଆଗଚ୍ଛମାନ—ପୁଂ.ବିଂ. (ଆ+ଗମ୍+କ.ଆନ) ଯେ ଆସିଅଛି,ଆଗମନଶୀଳ ।

ଆଗଡ଼—ଗ୍ରା. ଅର୍ଗଳର ଅପଭ୍ରଂଶ, ଡାଟି ଧଡ଼ା, ପାଗଡ଼ୀ ।

ଆଗଡ଼ା—ଗ୍ରା.ଧାନ୍ୟାଦିର ଯେଉଁ ଶେଷ ଭାଗ କାର୍ଯ୍ୟରେ ଲାଗେ ନାହିଁ, ଅଗାଡ଼ୀ, ଭୁଷି, ଚକ୍ଷୁ, ସମାଧାନ ।

ଆଗତ—ପୁଂ.ବିଂ. (ଆ+ଗମ୍+କ.ତ) ଉପସ୍ଥିତ, ଆଗମନ, ପ୍ରାପ୍ତ, ଆସ୍ୟାତ, ଲବ୍ଧ, ଅଧିଗତ, (ସ୍ତ୍ରୀ) ଆଗତା (କ୍ଳୀ) ଆଗମନ, (ଗ୍ରା) ଫେରି ଆସିଥିବା ।

ଆଗତକୁହା—ଗ୍ରା. ବିଂ. (ଗାଳି) ଯେ ମନଗଢ଼ା ଭବିଷ୍ୟତ୍ କଥା କହେ, ବାହାପିଆ କଥା କହିବା, ଯେ ଅଶ୍ରୁତ-ପୂର୍ବ ବା ଅସମ୍ଭବ କଥା କହେ, (ବି) ଭବିଷ୍ୟତ୍ କଥା କହିବା, (ସ୍ତ୍ରୀ) ଆଗତ-କହୀ ।

ଆଗତଚଢ଼େଇକୁ ବେସରବଟା—ପ୍ରା. ଭବିଷ୍ୟତ, ଅନିଶ୍ଚିତ କଥାପାଇଁ ପ୍ରସ୍ତୁତ ହୋଇ ରହିବା ।

ଆଗତପଞ୍ଚା—ଗ୍ରା.ବି. ଭବିଷ୍ୟତ୍ ସମ୍ବନ୍ଧେ ପୂର୍ବରୁ ଚିନ୍ତାକରିବା । [ବାଟ ।

ଆଗତପଥ—ବି. (ଆଗତ+ପଥ) ଆସିବା

ଆଗତବନ୍ଧକ—ଗ୍ରା. ବି. କୌଣସି ସମ୍ପତ୍ତିକୁ ହସ୍ତାନ୍ତର କରିବା ପୂର୍ବରୁ ମହାଜନ ନିକଟରୁ ଟଙ୍କା ଆଣି ବନ୍ଧକ ଦେବା ।

ଆଗତି—ସ୍ତ୍ରୀ. ବି. (ଆ+ଗମ୍+ଭା.ତି) ଆଗମନ, ପ୍ରାପ୍ତି ।

ଆଗତୁରୁ—ବିଂ. (ଅଗ୍ର ଓ ତୁରା ଶବ୍ଦଜ) ଅଗ୍ରିମ, ନିର୍ଦ୍ଦିଷ୍ଟ ଶବ୍ଦର ପୂର୍ବ ଅର୍ଥାତ୍ ପାଉଣା ନ ହେଉଣୁ ଦିଆଯିବା,(କ୍ରି.ବିଂ) ପୂର୍ବରୁ ।

ଆଗତ୍ୟ—ଅବ୍ୟ, (ଆ+ଗମ+ଯ)ଆସି, ଆଗମନକାରୀ ।

ଆଗପଛ—ଗ୍ରା.ବି. ସର୍ବପ୍ରଥମ ଓ ସର୍ବଶେଷ ବିଷୟ, ଆଗପାଖ ଓ ପଛପାଖ, ପ୍ରଥମ ଓ ତତ୍‌ପରବର୍ତ୍ତୀ ବ୍ୟକ୍ତି, ପୂର୍ବ-କାଳ ଓ ପରବର୍ତ୍ତୀ କାଳ, (ଗ୍ରା. ବିଂ) ପ୍ରଥମ ଓ ତତ୍‌ପରବର୍ତ୍ତୀ, ସର୍ବପ୍ରଥମ ଓ ସର୍ବଶେଷ, ସମ୍ମୁଖରେ ଓ ପଶ୍ଚାଦ୍-ଭାଗରେ ଥିବା (ପ୍ରା.କ୍ରି. ବିଂ) ପ୍ରଥମେ ଓ ପରେ, ଆଗେ, ପଛେ ।

ଆଗପତୁରିଆ—ଗ୍ରା. ବିଂ. (ସଂ.ଅଗ୍ରଭୁକ୍) ସମାଜସ୍ଥ ମନୁଷ୍ୟମାନଙ୍କର ସାମାଜିକ ଭୋଜନ ବା ଅନୁଷ୍ଠାନ ପଙ୍‌କ୍ତିବେଳେ ସର୍ବାଗ୍ରେ ଯାହାଙ୍କପାଇଁ ପତ୍ର ପଡ଼େ ।

ଆଗବଳିବା—ଗ୍ରା. କ୍ରି. କୌଣସି ବ୍ୟକ୍ତି ଅପେକ୍ଷା ଆତୁର ଆଗକୁ ଚାଲିଯିବା, ପାଗ୍ରେଟିଯିବା ।

ଆଗବଳେଇବା—ଗ୍ରା. କ୍ରି. ପାଗ୍ରେଟି ଯିବା, ବିଶିଷ୍ଟ ମାନ୍ୟବ୍ୟକ୍ତି ବିଦାୟ ନେଲାବେଳେ ତାଙ୍କ ସଙ୍ଗେ ସଙ୍ଗେ ଖଣ୍ଡେଦୂର ଯିବା ।

ଆଗବୋଲା—ଗ୍ରା. ବିଂ. ପୁଂ. ସ୍ତ୍ରୀ. ଯେ ସମସ୍ତଙ୍କ ଆଗରେ ବଳି କଥା କହେ, ମୁଖିଆ, ମୁଖର (ସ୍ତ୍ରୀ) ଆଗବୋଲି ।

ଆଗଭରି,ଆଗବଢ଼—ଗ୍ରା. କ୍ରି. ବିଂ. ଅଗ୍ର-ସର ହୋଇ, ଆଗୁଆହୋଇ ।

ଆଗମନରପେକ୍ଷ—କ୍ରି. ବିଂ. (ତତ୍) ଯାହା ଲେଖା ଆଦି ପ୍ରମାଣ ଉପରେ ନିର୍ଭର ନ କରେ ।

ଆଗମବକ୍ତା—ପୁଂ.ବି. ଭବିଷ୍ୟତ୍ ବକ୍ତା ।

ଆଗମବବୋଧ—ପୁଂ.ବ. (ତନ୍ତ୍ର) ଶ୍ରୁତି-ବିବୋଧ,ବାକ୍ୟର ଅର୍ଥବୋଧ ବିଶେଷ ।
ଆଗମ୍ୟ—ଅବ୍ୟ. (ଆ+ଗମ୍+ଯ)ଆସି, ଆଗମନ କରି ।
ଆଗନ୍ତବ୍ୟ—ବିଂ. (ଆ+ଗମ୍+ତବ୍ୟ) ଆଗମ୍ୟ, ପ୍ରାପ୍ତ, (କ୍ଲୀ) ଆଗମନ ।
ଆଗନ୍ତୁ—ପୁଂ ବ. (ଆ+ଗମ୍+ତୁ)ଯେ ସର୍ବଦା ରହେ ନାହିଁ, ଅତିଥି, ଅଭ୍ୟାଗତ ବ୍ୟକ୍ତି, ନବାଗତ, ଅପରିଚିତ ବ୍ୟକ୍ତି, (ବିଂ ଆଗମନଶୀଳ ।
ଆଗନ୍ତୁକ—ପୁଂ. (ଆଗନ୍ତୁ+କ) ଯେ ଆସି ପହଞ୍ଚିଲା, ଅତିଥି, (ବିଂ) ହଠାତ୍ ।
ଆଗନ୍ତୁଜ—ବିଂ. (ଆଗନ୍ତୁ+ଜନ୍+ଅ ହଠାତ ଉତ୍ପନ୍ନ ରୋଗ ଦି ।
ଆଗମ—ପୁଂ ବ. (ଆ+ଗମ୍+ଣ.ଅ) ଆରମ୍ଭ, ଆଗମନ, ପ୍ରାପ୍ତି, ଉତ୍ପତ୍ତି, ତନ୍ତ୍ରଶାସ୍ତ୍ର, ଶ୍ରୁତି, ସାମଦାନାଦି, ଉପଦେଶ, କର୍ମନିଦର୍ଶନ, ଉପାସ୍ୟ, ଶାସ୍ତ୍ରେ ପରିଶ୍ରମ, ବେଦଶାସ୍ତ୍ର ସାକ୍ଷୀପତ୍ର ।
ଆଗମଲ୍ଲୀ—ସ୍ତ୍ରୀ. ବ କ୍ଷୁଦ୍ର ଲତା ବିଶେଷ ।
ଆଗମନ—କ୍ଲୀ.ବ.(ଆ+ଗମ୍+ଭା ଅନ) ଆସିବା, ଆଗତ, ଉତ୍ପତ୍ତି, ଉପସ୍ଥିତି, ମୈଥୁନ ।
ଆଗମନୀ—(ଗ୍ରା.) ସ୍ତ୍ରୀ.ବ. ଶାରଦୀୟ ପୂଜା ସମୟରେ ଦୁର୍ଗାଙ୍କର ଆଗମନସୂଚକ ଗୀତିକ ବିଶେଷ । [ପର ।
ଆଗମବତ୍—ପୁଂ.ବ. ଆଗମଯୁକ୍ତ, ବେଦ-
ଆଗମବୃଦ୍ଧ—ପୁଂ. ବିଂ. ଆଗମଶାସ୍ତ୍ରେ ପ୍ରବୀଣ, ଶାସ୍ତ୍ରାଲୋଚନାରେ ଯାହାର ବୁଦ୍ଧି ମାର୍ଜିତ ହୋଇଅଛି ।
ଆଗମବେତ୍ତା—ବିଂ. ଆଗମ ବିଦ୍+ତୃ) ଆଗମଜ୍ଞ, ଯେ ଆଗମ ଜାଣେ ।
ଆଗମବେଦୀ—ପୁଂ ବିଂ. (ଆଗମ+ବିଦ୍ କ.ଇନ୍) ଆଗମବେତ୍ତା, (ବି) ଶଙ୍କରାଚାର୍ଯ୍ୟଙ୍କର ପରମ ଗୁରୁ ଗୌଡ଼ପାଦାଚାର୍ଯ୍ୟ ।
ଆଗମାପେକ୍ଷ—ପୁଂ.ବିଂ. (ତନ୍ତ୍ର)ସାହ ଲେଖାଦି ପ୍ରମାଣ ଉପରେ ନିର୍ଭରକରେ ।
ଆଗମାପାୟୀ—ପୁଂ.ବିଂ. (ତନ୍ତ୍ର)ଉତ୍ପତ୍ତି ଏବଂ ବିନାଶଶୀଳ, କ୍ଷଣିକ,ଅଚିରସ୍ଥାୟୀ, (ସ୍ତ୍ରୀ) ଆଗମାପାୟିନୀ ।

ଆଗମାବର୍ତ୍ତୀ—ସ୍ତ୍ରୀ.ବ. ବୃଶ୍ଚିକାଲୀ ବିଛୁଆତି, କ୍ଷୁପବିଶେଷ ।
ଆଗମିକ—ବିଂ. ଆଗମପ୍ରାପ୍ତ ।
ଆଗମିତ—ବିଂ. (ଆ+ଗମ୍+ଣିଚ୍+ମ. ତ) ଅଧୀତ, ଜ୍ଞାପିତ, ପଠିତ, ଅଧ୍ୟାପିତ, ଯାପିତ, ପ୍ରାପିତ, ଅଭ୍ୟାସିତ, (ସ୍ତ୍ରୀ) ଆଗମିତା ।
ଆଗର—ପୁଂ. ବ. (ଆ+ଗୃ+ଅ)ଅମାବାସ୍ୟା, (ଗ୍ରା) ଅବ୍ୟ. ଆଗେ, ସମ୍ବୋଧନପଦ, (ବିଂ) ଶ୍ରେଷ୍ଠ, ଦକ୍ଷ, ନିପୁଣ, ଅଗ୍ରଗଣ୍ୟ, ଅଗ୍ରଣୀ, ଅଗ୍ରସର, (ବି) ଗୃହ, ଆଳୟ, ଆଧାର, କାଷ୍ଠାଦି ଛିଦ୍ର କରିବାର ଭ୍ରମର ଯନ୍ତ୍ର, ଅଗରଭଅଁର ।
ଆଗର ଓସ୍ତାଇ ବା ଆଗରବାଲ—ଗ୍ରା. ବୈଶ୍ୟଜାତିବିଶେଷ ।
ଆଗଲ ବା ଆଗଲାନ—ଗ୍ରା.ରକ୍ଷାକରିବା, ଚୌକିଦାର ।
ଆଗଲ—ଗ୍ରା ବିଂ. ଆଠକ, ଆଗର, ଅଗ୍ରଣୀ, ଅଗ୍ରବର୍ତ୍ତୀ,ଅଗ୍ରଦୂତ, ମଜଭୁତ ।
ଆଗଳିତ—ବି.ବିଂ. (ଆ+ଗଳ+କ.ତ) ସ୍ଖଳିତ, ଗ୍ରସ୍ତ, ପତିତ, ଅବନତ, ଆମୁକ୍ତ, କାତର ।
ଆଗରୁଁ—ବି. ବିଂ. ପୂର୍ବରୁ, ଆଗଠାରୁ, ପ୍ରଥମରୁ ।
ଆଗବାନ—ପୁଂ.ବିଂ. ଯେ ଗୋରୁ ଚରାଏ ବା ରକ୍ଷାକରେ, ଗଉଡ଼, ଗୋପାଳ ।
ଆଗଃ—କ୍ଲୀ. ବ. ଅପରାଧ, ଦଣ୍ଡ, ପାପ ।
ଆଗସ୍କୃତ—ପୁଂ.ବିଂ.ବ.ସ୍ତ୍ରୀ. (ଆଗସ୍+କୃ+କ୍ୱିପ୍) ଅପରାଧୀ, ଅପରାଧକାରୀ, ଦୋଷୀ, ପାପୀ ।
ଆଗସ୍ତୀ—ସ୍ତ୍ରୀ. ବ. ଦକ୍ଷିଣଦିଗ ।
ଆଗସ୍ତୀୟ—ପୁଂ.ବ.ଅଗସ୍ତିଙ୍କ ସ୍ତୁତିକାରକ
ଆଗସ୍ତ୍ୟ—ବିଂ. ଅଗସ୍ତିମୁନି-ସମ୍ବନ୍ଧୀୟ ବସ୍ତୁ,ଦକ୍ଷିଣ ଦିଗ୍ଭାଗ,ଅଗସ୍ତିଙ୍କପୁତ୍ର ।
ଆଗା—ଗ୍ରା. ବ. ଧାର, ଅଗ୍ରଭାଗ, ପ୍ରାନ୍ତଭାଗ, ଅନ୍ତ,ମସ୍ତକ,ଶେଷଭାଗ,ସର୍ବାଗ୍ରେ ।
ଆଗାଛା—ଗ୍ରା. ତୃଣାଗଛ, ପୁଷ୍ପ ଓ ଫଳ-ଜମିଉ ରୋପଣ ନ କରିବା ଗଛ ।

ଆଗାଧ—ବି. ବିଂ. (ଆ+ଗାଧ+ଅ) ଅତଳସ୍ପର୍ଶ, ଯାହା ସହଜେ ବୁଡ଼ିଯାଏ ନାହିଁ, ଅଗାଧ, ଅତିଗଭୀର ।
ଆଗାମକ—ପୁଂ. ବିଂ. ଭବିଷ୍ୟତ ବିଷୟଜ୍ଞାପକ ।
ଆଗାମାସ୍ତି—ଗ୍ରା.ବ. ଯାହାର ବୁଦ୍ଧି ତାତ୍କ୍ଷଣ ନୁହେ, ଯେ ଅଜ୍ଞାନରେ ଜଡ଼ୀଭୂତ ।
ଆଗାମିକ—ଗ୍ରା.ଅବ୍ୟ,ଭବିଷ୍ୟତକୁ,ପରେ, ଭବିଷ୍ୟତ୍‌ରେ ।
ଆଗାମୀ—ପୁଂ. ବିଂ. ଆ+ଗମ୍+କ. ଇନ୍) ଆଗନ୍ତୁକ, ଭବିଷ୍ୟତ୍‌କାଳେ ଯାହା ହେବ, (ସ୍ତ୍ରୀ) ଆଗାମିନୀ,ଭାବିନୀ, ଭବିଷ୍ୟତ୍ ପ୍ରାପ୍ତ ।
ଆଗାମୁକ—ବିଂ. (ଆ+ଗମ୍+ଉକ) ଆଗମନଶୀଳ ।
ଆଗାର—କ୍ଲୀ.ବ.(ଆ+ଅଗ+ର+ଅ) ଗୃହ, ଘର, ଭବନ, ଆଧାର, ପାତ୍ର ।
ଆଗାରଗୋଧିକା—ସ୍ତ୍ରୀ.ବ. ଗୃହଗୋଧିକା, ଝିଟିପିଟି । [ଅଲନ୍ଦ ।
ଆଗାରଧୂମ—ପୁଂ. ବ. ଗୃହସ୍ଥିତ ଧୂମ,
ଆଗି—ପୁଂ.ବିଂ. ଅଗ୍ନିତୁଲ୍ୟ, ବିଷମକ୍ରୁଦ୍ଧ, ଘୋରରାଗୀ, (ବି) ଅଗ୍ନି, ନିଆଁ ।
ଆଗିଆଣୀ—ଆଗରେ, ଆଗରୁ ।
ଆଗିନା ବା ଆଙ୍ଗିନା—ଗ୍ରା ହଠାଇବା ।
ଆଗିଲ୍—ଗ୍ରା.ବି ବିଂ. (ଆଗ ଦେଖ)
ଆଗିଲ୍ ପିଛିଲ୍—ଗ୍ରା.ବି. ବିଂ. (ଆଗପଛ ଦେଖ)
ଆଗୁଁ—ଗ୍ରା. ଅବ୍ୟ, ପ୍ରଥମରୁ, ପୂର୍ବରୁ, ପୂର୍ବାପେକ୍ଷା, ଦମ୍ଭୁଛଦଗରୁ ।
ଆଗୁଃ—ସ୍ତ୍ରୀ. ବ. ଅଙ୍ଗୀକାର, ପ୍ରତିଜ୍ଞା ।
ଆଗୁ—ଗ୍ରା. ଅଗ୍ର ଶବ୍ଦର ଅପଭ୍ରଂଶ, ଆଗେ, ଅଗ୍ରେ ।
ଆଗୁଆ—ଗ୍ରା. ବିଂ. ଅଗ୍ରବର୍ତ୍ତୀ, ଅଗ୍ରସରୀ, ଆଗଲ, (ସ୍ତ୍ରୀ) ଆଗୋଇ ।
ଅଗୁଆଲ—ଗ୍ରା.ବ.କୁରାଡ଼ିର ଦାଢ଼ପାଖ ।
ଆଗୁଣ୍ଡୀ—ସ୍ତ୍ରୀ. ବ. ଆଗାମୀର ଅପଭ୍ରଂଶ, ଆଗାମୀ ଅଗ୍ରିମ, ସର୍ବପ୍ରଥମେ ।
ଆଗୁନ—ଗ୍ରା.ପୁଂ.ବ. ଅଗ୍ନିର ଅପଭ୍ରଂଶ, ଅଗି, ନିଆଁ, (ବିଂ) ଅଗ୍ନିତୁଲ୍ୟ ।
ଆଗୁର—ସ୍ତ୍ରୀ. ବ. (ଆ+ଗୁର୍+କ୍ୱିପ୍) ପ୍ରତିଜ୍ଞା, ଜିଦ୍ ।

ଆଗୁରଣ—କ୍ଲୀ.ବ. (ଅ + ଗୁର୍ + ଅନ) ଉଦ୍ୟମ, ଉଦ୍‌ଯୋଗ ।

ଆଗୁର—ଗ୍ରା. ଲଗ୍ନ ଖଣ୍ଡି, ହୃଦ୍‌ଜାତ-ବିଶେଷ,ସୂତ ଜାତର କେଶାଖା,ଜାୟୁଷ୍ଟ

ଆଗୁଳ—ଗ୍ରା. ବ. (ଫ.ଅର୍ଗଳ) ଜ୍ୱରର କାରଣ ଓ ଔଷଧବିଶେଷ, ଅଟକା, ନିରୋଧ, (ପ୍ରା.ଗଞ୍ଜାମ) ଆଡୁଆଲ,ଦୃଷ୍ଟି ପଥରେ ବାଧା, ଆବଦ୍ଧଜଳ, ପୋଖରୀ ।

ଆଗୁଳା—ଗ୍ରା.ବ. ଲୁହାମୁହ, ଯେ ଆଗୁଳେ ବା ଅଟକାଏ, ଲୁହାଅଗୁଆ, ( ବିଂ ) ସମାପ୍ତ, ଅଧିକ, ବେଶୀ ।

ଆଗୁଳିବା—ଗ୍ରା.କ୍ରି. ସମ୍ମୁଖରୁ ଗତିରୋଧ-କରିବା, ଆଗରୁ ଘଞ୍ଚିବା, ଅଟକିବା ।

ଆଗୁଲ୍‌ଫଲମ୍ବିତ—କ୍ରି.ବିଂ.ଗୁଲ୍‌ଫପର୍ଯ୍ୟନ୍ତ ଲମ୍ବମାନ, (ସ୍ତ୍ରୀ) ଆଗୁଲ୍‌ଫଲମ୍ବିତା ।

ଆଗୁସାର—ବ. ଅଗ୍ରସର ଶବ୍ଦର ଅପ ଭ୍ରଂଶ, କୌଣସି କାର୍ଯ୍ୟରେ ସ୍ୱେଚ୍ଛା-କ୍ରମେ ଆଗେ ବ ହାରିବା, ମୁଝର ।

ଆଗୂ—ସ୍ତ୍ରୀ. ବ. (ଆ + ଗମ୍ + ଭା.କ୍ୱିପ୍) ପ୍ରତିଜ୍ଞା, ନିୟମ, ସମ୍ବିତ୍, ଅଙ୍ଗୀକାର । ଶପଥ । [ଉଦ୍ୟମ ।

ଆଗୂର୍ଣ୍ଣ—ବିଂ. (ଆ + ଗୁର୍ + ତ)ଉଦ୍ୟତ.

ଆଗୂର୍ତ୍ତ—ବିଂ.(ଆ + ଗୁର୍ + ତ)ଉଦ୍ୟତ ଉଦ୍ୟମ ।

ଆଗୂର୍ତ୍ତୀ—ବିଂ. କୃତୋଦ୍ୟମ ।

ଆଗେ—ଅବ୍ୟ. ଗ୍ରା. ଅପେକ୍ଷା, ଭୂତ କାଳରେ, ଆଗରେ, ପୂର୍ବେ, ଆଦି, ଅଗ୍ରେ, ପ୍ରଥମେ, (ଅଗ୍ରଶବ୍ଦର ଅପଭ୍ରଂଶ) ସମ୍ମୁଖରେ, ପୂର୍ବକାଳେ ।

ଆଗେଆଗେ—ଗ୍ରା. ( ଅବ୍ୟ ) ପୂର୍ବରେ, ସମ୍ମୁଖରେ, ପ୍ରଥମରେ ।

ଆଗେଇବସିବା—ଗ୍ରା.କ୍ରି. ଗୃହିଁ ବସିବା ।

ଆଗେଇବା—ଗ୍ରା.କ୍ରି. (ଅକର୍ମକ ଫ ଅଗ୍ର) ଅଗ୍ରସର ହେବା, ପୂର୍ବକୁ ଯିବା, ଆଗକୁ ଚାଲିବା, କିଛି ଦୂର ଅଗ୍ରସର ହେବା, (ସ.କର୍ମକ ଆଗରେ ରଖିବା ।

ଆଗୋ—ଗ୍ରା. (ଅବ୍ୟ) କୋମଳ ସମ୍ବୋଧନବାଚକ ଶବ୍ଦ, ସ୍ତ୍ରୀମାନଙ୍କ ପ୍ରତି-ସମ୍ବୋଧନ ଓ ସ୍ନେହଯୁକ୍ତ ସମ୍ବୋଧନ ।

ଆଗ୍ନାପୌଷ୍ଣ—ବିଂ. ଯେ ହୋମଦ୍ରବ୍ୟର ଦେବତା ଅଗ୍ନି ଓ ସୂର୍ଯ୍ୟ ।

ଆଗ୍ନାବୈଷ୍ଣବ—ବିଂ. ଯେଉଁ ହୋମ-ଦ୍ରବ୍ୟର ଦେବତା, ଅଗ୍ନି ଓ ବିଷ୍ଣୁ ।

ଆଗ୍ନିକ—ବିଂ.(ଅଗ୍ନି + ଅକ) ଅଗ୍ନିସମ୍ବନ୍ଧୀ

ଆଗ୍ନିଡାଣ୍ଡେସ୍ତ—ବିଂ. ଅଗ୍ନି ଦଗ୍ଧଙ୍କର ମର୍ମପସ୍ଥ ଦେଶାଦ ।

ଆଗ୍ନିଧ୍ର—ପୁଂ. ବ. (ଅଗ୍ନିଧ୍ର + ଅ)ଅଗ୍ନି-ରକ୍ଷଣ ବିଷୟରେ ନିଯୁକ୍ତ ଋତ୍ୱିକ୍(କ୍ଲୀ) ଯଜ୍ଞାଗ୍ନିସ୍ଥାନ, ହୋମକୁଣ୍ଡ ।

ଆଗ୍ନିପଦ-ବିଂ. ଅଗ୍ନିରେ ଦୀୟମାନଦ୍ରବ୍ୟ, ଅଗ୍ନିସ୍ଥାନେ କର୍ତ୍ତବ୍ୟ ବସ୍ତୁ ।

ଆଗ୍ନିମରୁତ—ବିଂ. ମୁନିବିଶେଷ, ଅଗ୍ନି ଓ ବାୟୁଦେବତାଙ୍କ ସ୍ତବ, ଯେ ହବନୀୟ ପଦାର୍ଥର ଦେବତା ଅଗ୍ନି ଓ ବାୟୁ ।

ଆଗ୍ନିବାରୁଣ—ବିଂ. ଅଗ୍ନି ଦେବତାଙ୍କର ଘିଅପ୍ରଭୃତ, ଯେ ହବନୀୟ ଦ୍ରବ୍ୟର ଦେବତା ଅଗ୍ନି ଓ ବରୁଣ ।

ଆଗ୍ନିବେଶ୍ୟ—ପୁଂ. ବ. ଅଗ୍ନିବେଶ୍ୟ ନାମକ ଋଷିଙ୍କର ପୁତ୍ର (ସ୍ତ୍ରୀ)ଅଗ୍ନିବେଶୀ

ଆଗ୍ନିଶର୍ମ୍ମୀ—ପୁଂ. ସ୍ତ୍ରୀ. ଅଗ୍ନିଶର୍ମ୍ମାଙ୍କ ପୁତ୍ର ବା କନ୍ୟାରୂପ ଅପତ୍ୟ ।

ଆଗ୍ନିଷ୍ଟୋମିକ—ପୁଂ. ବ. ଅଗ୍ନିଷ୍ଟୋମ-ଯଜ୍ଞ ଜାଣିଥିବା ଲୋକ, ଅଗ୍ନିଷ୍ଟୋମ ବ୍ରତ କରିଥିବା ବ୍ୟକ୍ତି, ଅଗ୍ନିଷ୍ଟୋମ ବ୍ୟାଖ୍ୟା ଗ୍ରନ୍ଥ ।

ଆଗ୍ନିଷ୍ଟୋମିକୀ—ସ୍ତ୍ରୀ. ବ. ଅଗ୍ନିଷ୍ଟୋମ-ଯଜ୍ଞର ଦକ୍ଷିଣା ।

ଆଗ୍ନୀଧ୍ର—କ୍ଲୀ.ବ.(ଅଗ୍ନି + ଇନ୍ଧ୍ + କ୍ୱିପ୍ ଯଜମାନର ସ୍ଥାନ, ସାଗ୍ନିକ ଦ୍ୱିଜ, ସାଗ୍ନିକ ଯଜମାନ,ଦ୍ୱିଜ,ଅଗ୍ନିଧ୍ର ସ୍ଥାନ ।

ଆଗ୍ନୀଧ୍ରା—ସ୍ତ୍ରୀ.ବ.ଅଗ୍ନିଚୟନାର୍ଥ ଯୋଗ୍ୟ ଶାଳା, ଯେଉଁ ଘରେ ଅଗ୍ନି ରହେ ।

ଆଗ୍ନେନ୍ଦ୍ର—ବିଂ. ଆଗ୍ନେନ୍ଦ୍ର ଦେବତାଙ୍କ ହବିପ୍ରଭୃତ ଦ୍ରବ୍ୟ, ଯେ ହୋମ ଦ୍ରବ୍ୟର ଦେବତା, ଅଗ୍ନି ଓ ଇନ୍ଦ୍ର ।

ଆଗ୍ନେୟ—କ୍ରି.ବିଂ. (ଅଗ୍ନି + ଏୟ)ଅଗ୍ନି-ସମ୍ବନ୍ଧୀୟ, ଅଗ୍ନିବିଶିଷ୍ଟ, ଅଗ୍ନିଧର, ଅଗ୍ନିଗର୍ଭ,ଅଗ୍ନିସଂଯୋଗରେ କ୍ରିୟାଶୀଳ, ଅଗ୍ନିଜନକ, ଅଗ୍ନିବୃଦ୍ଧିକାରୀ, ପାଚକ ଦୀପ୍ତିମାନ୍, (ସ୍ତ୍ରୀ) ଆଗ୍ନେୟୀ ( କ୍ଲୀ.ବ) ସ୍ୱର୍ଣ୍ଣ, ଘୃତ, ଶୋଣିତ, ଅଗ୍ନିପୁରାଣ, ଭଦ୍ରଦ୍ୱୀପ ସ୍ଥାନ, ବାୟୁପୁରାଣ, (ପୁଂ. ବ.) ଅଗସ୍ତ୍ୟ ମୁନି, ପୂର୍ବଦକ୍ଷିଣ କୋଣ ବା ଦିଗ ।

ଆଗ୍ନେୟଗିରି—ପୁଂ.ବ. (କ.ଧା.) ଯେଉଁ ପର୍ବତରୁ ଉଷ୍ଣ ତରଳ ପଦାର୍ଥ ନିର୍ଗତ ହୁଏ ।

ଆଗ୍ନେୟପ୍ରସ୍ତର—କ୍ଲୀ.ବ. ପଥରବିଶେଷ ।

ଆଗ୍ନେୟାସ୍ତ୍ର—କ୍ଲୀ. ବ. (ଆଗ୍ନେୟ + ଅସ୍ତ୍ର) ଅଗ୍ନିସମ୍ବନ୍ଧୀୟ ଅସ୍ତ୍ର, ବନ୍ଧୁକାଦ ।

ଆଗ୍ନେୟୀ—ସ୍ତ୍ରୀ.ବ (ଆଗ୍ନେୟ + ଈ)ସ୍ୱାହା, ଅଗ୍ନିପତ୍ନୀ, ଅଗ୍ନିକୋଣ । [ଦକ୍ଷିଣା ।

ଆଗ୍ନ୍ୟାଧାନିକୀ—ସ୍ତ୍ରୀ.ବ.ଆଗ୍ନ୍ୟାଧାନ ଯଜ୍ଞର

ଆଗ୍ର—ଗ୍ରା. ବ. (ଫ. ଉଗ୍ରକ୍ଷତ୍ରିୟ ବା ବୈଶ୍ୟ) ଏ ଦେଶରେ ବାସ କରୁଥିବା ବୈଶ୍ୟଜାତିବିଶେଷ ।

ଆଗ୍ରଥନ—କ୍ଲୀ.ବ. (ଆ + ଗ୍ରଥ୍ + ଭା.ଅନ) ଗ୍ରନ୍ଥନ, ଗୁମ୍ଫା, ବନ୍ଧନ ।

ଆଗ୍ରଭୋଜନିକ—ପୁଂ.ବ. ଯାହାଙ୍କୁ ଅଗ୍ର-ଭୋଜନ ଦିଆଯାଏ, ଅଗ୍ରଦାନୀ ବ୍ରାହ୍ମଣ, ଯେ ଶ୍ରାଦ୍ଧାଦିରେ ଅଗ୍ରଭୋଜନ ଦ୍ରବ୍ୟ ନିଏ ।

ଆଗ୍ରୟଣ—ବିଂ. (ନୂତନ) ଶସ୍ୟାରମ୍ଭେ କର୍ତ୍ତବ୍ୟ ଯାଗବିଶେଷ ଓ ଶସ୍ୟାନ୍ତେ ସମାଧେୟ ଯଜ୍ଞବିଶେଷ ।

ଆଗ୍ରହ—ପୁଂ. ବ. (ଆ + ଗ୍ରହ + ଭା.ଅ) ଆବେଶ, ଆସକ୍ତି, ଆକ୍ରମ, ଗ୍ରହଣ, ଦଣ୍ଡ, ଅତ୍ୟନ୍ତ, ବ୍ୟଗ୍ରତା, ଅନୁଗ୍ରହ, ସାହାଯ୍ୟ ।

ଆଗ୍ରହାତିଶୟ—ପୁଂ. ବ. ( ୬ତତ୍ପୁ ) ଅତ୍ୟନ୍ତ ଆଗ୍ରହ, ଆଗ୍ରହର ଆଧିକ୍ୟ ।

ଆଗ୍ରହାନ୍ୱିତ—କ୍ରି.ବିଂ. (୩ତତ୍ପୁ)ଆଗ୍ରହ-ଯୁକ୍ତ, ଅତ୍ୟନ୍ତଶୀଳ, ବ୍ୟଗ୍ର, ( ସ୍ତ୍ରୀ ) ଆଗ୍ରହାନ୍ୱିତା ।

ଆଗ୍ରହାୟଣ—ପୁଂ. ବ. ମାର୍ଗଶିର ମାସ, ବର୍ଷର ଆଦ୍ୟମାସ ।

ଆଗ୍ରହାୟଣକ—କ୍ଲୀ.ବ. ଯେ ଋଣ ମାର୍ଗଶିର ମାସରେ ଦିଆଯାଏ ।
ଆଗ୍ରହାୟଣିକ—କ୍ଲୀ. ବ. ମାର୍ଗଶିର ପୂର୍ଣ୍ଣିମାରେ ଦିଆଯିବା ଋଣ ।
ଆଗ୍ରହାୟଣୀ—ସ୍ତ୍ରୀ. ବ. ମାର୍ଗଶିର ପୂର୍ଣ୍ଣିମା, ମୃଗଶିର ନକ୍ଷତ୍ର ।
ଆଗ୍ରହାୟଣେଷ୍ଟି—ବ. ନବାନ୍ନ ।
ଆଗ୍ରା- (ଅଗ୍ରବଣ ଶବ୍ଦର ଅପଭ୍ରଂଶ) ସ୍ୱନାମଖ୍ୟାତ ନଗର, ଏ ପୂର୍ବେ ମୁସଲମାନଙ୍କ ରାଜଧାନୀ ଥିଲ ।
ଆଗ୍ରାୟଣ—ପୁଂ.ସ୍ତ୍ରୀ.ବ. (ଅଗ୍ର + ଆୟଣ) ଆଗ୍ରାୟଣ ଋଷିଙ୍କ ଗୋତ୍ରର ଅପତ୍ୟ, ନବାନ୍ନ ଶ୍ରାଦ୍ଧ, ନବଶସ୍ୟେଷ୍ଟି ଯଗବିଶେଷ ।
ଆଗ୍ରିଆ—ପ୍ରା. (ସମ୍ବ) ଆଗ୍ରିକାତ ।
ଆଘ—ପ୍ର (ସମ୍ବ)କ୍ରି.ବିଂ. ଆଗେ,ପ୍ରଥମେ, ପହିଲ, ପୂର୍ବେ ।
ଆଘଟ୍ଟକ—ପୁଂ. ବ. (ଆ + ଘଟ୍ + କ. ଅକ) ରକ୍ତବର୍ଣ୍ଣ ଅପାମାର୍ଗ, (ବିଂ) ଚାଳକ ।
ଆଘଟ୍ଟନ,ଆଘଟ୍ଟନା—କ୍ଲୀ ସ୍ତ୍ରୀ. ବ (ଆ + ଘଟ୍ଟ + ଭା. ଅନ) ଚାଳନ, ଚାଳନା ଏକସ୍ଥାନରୁ ଅନ୍ୟ ସ୍ଥାନକୁ ନେବା, ଘର୍ଷଣ, ସଂଘଟନ, ସ୍ପର୍ଶ, ଆଲୋଡ଼ନ ।
ଆଘଟ୍ଟିତ—କ୍ରି. ବିଂ. (ଆ + ଘଟ୍ଟ + ମଂ. ତ) ଚାଳିତ, ଘୃଷ୍ଟ, ସ୍ପୃଷ୍ଟ, ଆଲୋଡ଼ିତ, (ସ୍ତ୍ରୀ) ଆଘଟ୍ଟିତା ।
ଆଘର୍‌ପିଛାର—ପ୍ରା. (ସମ୍ବ) ଅବ୍ୟ. ପୂର୍ବାପର, ଆଗପର । [ମର୍ଦ୍ଦନ ।
ଆଘର୍ଷ—ପୁଂ. ବ. (ଆ + ଘୃଷ୍ + ଅ,
ଆଘର୍ଷଣ—କ୍ଲୀ. ବ. (ଆ + ଘୃଷ୍ + ଅନ) ମର୍ଦ୍ଦନ,ଘଷା,ମନ୍ଥନ । [ବିଶେଷ ।
ଆଘମର୍ଷଣ—କ୍ଲୀ.ବ. ପାପନାଶକ ସୂକ୍ତ-
ଆଘାଟ—ପୁଂ. ବ. (ଆ + ଘାଟ + କ. ଅ) ଅପାମାର୍ଗ, (ବିଂ) ଯେ ଆଘାତ କରେ, ଗାଧୁଆ ଘାଟ ବା ରୂଠ ।
ଆଘାଟୀ—ପୁଂ. ବିଂ. ଆଘାତକର୍ତ୍ତା ।

ଆଘାତ—ପୁଂ.ବ. (ଆ + ହନ୍ + ଭା.ତ) ବଧ, ଚ୍ଛେଟ, ଛେଦନ, ତାଡ଼ନ, ଆହନନ, ପ୍ରହାର, ବଧସ୍ଥାନ ।
ଆଘାତକ—କ୍ରି. ବିଂ. (ଆ + ହନ୍ + କ, ଅକ) ବଧକାରୀ, ଆଘାତକାରୀ, ଘାତୁକ, (ସ୍ତ୍ରୀ) ଆଘାତକା ।
ଆଘାତନ—କ୍ଲୀ.ବ. (ଆ + ହନ୍ + ଣିଚ୍ + ଭା, ଅନ) ଆଘାତ, ପ୍ରହାର, ମାରିବା, ବଧସ୍ଥାନ, ହନନ, ଅବସ୍ଥାନ ।
ଆଘାତପ୍ରତିଘାତ—ପୁଂ. ବ. (ଦ୍ୱନ୍ଦ୍ୱ) କୌଣସି ବ୍ୟକ୍ତିକୁ ଆଘାତ କଲେ ତନ୍ନିବୃତ୍ତିରେ ଆହତ ବ୍ୟକ୍ତି ଆଘାତକାରୀକୁ ଯେଉଁ ଆଘାତ କରେ ।
ଆଘାତସହ—କ୍ରି. ବିଂ. (ଆଘାତ + ସହ + କ. ଅ) ପ୍ରହାରସହନକ୍ଷମ, ଯେ ମାଡ଼ପିଟ୍ ସହିପାରେ, (ସ୍ତ୍ରୀ) ଆଘାତସହା ।
ଆଘାତିତ—ଗ୍ରା. ବିଂ. (ସ ଆହତ) ଆଘାତପ୍ରାପ୍ତ, ଆହତ ।
ଆଘାତୀ—ପୁଂ. ବିଂ. ଆଘାତ + ଇନ୍) ଆଘାତପ୍ରାପ୍ତ,ଆହତ, (ସ୍ତ୍ରୀ) ଆଘାତିନୀ ।
ଆଘାର—ପୁଂ.ବ. (ଆ + ଘୃ + ମଂ, ଅ) ଘୃତ, ଆଜ୍ୟ ।
ଆଘୂର୍ଣ୍ଣନ—କ୍ଲୀ. ବ. (ଆ + ଘୂର୍ଣ୍ଣ + ଅନ) ଚକ୍ରପ୍ରାୟ ଭ୍ରମଣ, ପରିଭ୍ରମଣ, ଘୂରିବା ।
ଆଘୂର୍ଣ୍ଣିତ—କ୍ରି. ବିଂ. (ଆ + ଘୂର୍ଣ୍ଣ + ମଂ, ତ) ଚଳିତ, ଭ୍ରାନ୍ତ, ଭ୍ରମିତ, ଘୂର୍ଣ୍ଣି ସ୍ୱମାନ, ଚକ୍ରଆଡ଼େ ବୁଲାଇ ହେଉଥିବା ।
ଆଘୃଣି—ପୁଂ.ବ. କ୍ରୋଧ, ଆଗତଦୀପ୍ତି, ଆଗତକ୍ରୋଧ ।
ଆଘୋଷଣ—କ୍ଲୀ. ବ. (ଆ + ଘୁଷ୍ + ଅନ) ପ୍ରଚୁର ନମିତ୍ତ ଉଚ୍ଚସ୍ୱରେ ଶବ୍ଦ କରିବା, (ସ୍ତ୍ରୀ) ଆଘୋଷଣା ।
ଆଘୋଷିତ—କ୍ରି.ବିଂ. (ଆ + ଘୋଷି + ମଂ.ତ) ଯାହାର ଘୋଷଣା କରାହୋଇଅଛି, ପ୍ରଚୁରିତ ।
ଆଘ୍ରାଣ—କ୍ଲୀ.ବ. (ଆ + ଘ୍ରା + ଭା.ଅନ) ତୃପ୍ତି, ପୁଷ୍ପ ଇତ୍ୟାଦି ଆଘ୍ରାଣ କରିବା, ଗନ୍ଧ, ଗନ୍ଧଗ୍ରହଣ, ସନ୍ତୋଷ, ଶୁଙ୍ଘିବା ।

ଆଘ୍ରାତ—କ୍ରି. ବିଂ. (ଆ + ଘ୍ରା + ତ) ଗୃହୀତଗନ୍ଧ, ଅବକ୍ଷୟୀଭୂତ, ଆକ୍ରାନ୍ତ, ସନ୍ତୁଷ୍ଟ, ତୃପ୍ତ ।
ଆଘ୍ରାତି—ବିଂ.(ଆ + ଘ୍ରା + କ.ତ)ତୃପ୍ତ, ସନ୍ତୁଷ୍ଟ (ଗ୍ରା.) ଆଘ୍ରାତ, ଶୁଙ୍ଘାଯିବା ।
ଆଘ୍ରାୟକ—କ୍ରି. ବିଂ. (ଆ + ଘ୍ରା + କ. ଅକ) ଆଘ୍ରାଣକାରୀ, ଯେ ଶୁଙ୍ଘେ, (ସ୍ତ୍ରୀ) ଆଘ୍ରାୟିକା ।
ଆଘ୍ରେୟ—ବିଂ. (ଆ + ଘ୍ରା + ମଂ,ଯ) ଯାହା ଘ୍ରାଣ କରିବାର ଯୋଗ୍ୟ, ନାସିକାଗ୍ରାହ୍ୟ ବସ୍ତୁ, ଆଘ୍ରାଣ ଯୋଗ୍ୟ, ସୁବାସିତ ।
ଆଘ୍ୟ—କ୍ଲୀ. ବ. ଏକପ୍ରକାର ମଧୁ, ଶ୍ରାଦ୍ଧ ଦିନରେ ଅର୍ଘଦାନ ।
ଆଙ୍—ଅବ୍ୟ. 'ଆ' (ସ) ଉପସର୍ଗ ।
ଆଙ୍ଲ—ପ୍ରା. (ସମ୍ବ.) ବ. ଜଳାବର୍ତ୍ତି, ଜଳଭଉଁରୀ । [ଅଖାଡ଼ୁଆ ।
ଆଙ୍କାବାଙ୍କା—ଗ୍ରା. ବିଂ. ବଙ୍କା, ଅସଜଆ,
ଆଙ୍କିବା—ଗ୍ରା. କ୍ରିଂ. (ସ. ଅଙ୍କଧାତୁ) ଚିତ୍ରକରିବା, ଅଙ୍କନକରିବା (ଗ୍ରା.ସମ୍ବ) ଚଢ଼ିଦେବା, (ଗଡ଼ଜାତ) ସ୍ଥାନଚ୍ୟୁତ କରିବା ।
ଆଙ୍କୁ—ଗ୍ରା. ବ. ଆଙ୍କୁଲଗଛ, ଧଳା କାଠର ବନ୍ୟକଣ୍ଟକୀ ଛୋଟଗଛ ।
ଆଙ୍କୁକୋଳି—ଗ୍ରା ବ. ସାନ କେରେନ୍ଦା କୋଳି । [ଲମ୍ବଦଣ୍ଡ, ଆଙ୍କୁଡ଼ୀ ।
ଆଙ୍କୁଡ଼ା—ଗ୍ରା.ବ. (ସ.ଆକର୍ଷୀ) ବଙ୍କାଗ୍ର,
ଆଙ୍କୁଡ଼ାଇବା—ଗ୍ରା. କ୍ରି. ବଙ୍କାଗ୍ରଯୋଗୁଁ ଅଟକିଯିବା ।
ଆଙ୍କୁଡ଼ାପୋକ—ଗ୍ରା. ବ. ପେଟରେ ଜନ୍ମିବା ଏକ ପ୍ରକାର କୀଟ,ସୂଲପୋକ ।
ଆଙ୍କୁଡ଼ିବା—ଗ୍ରା. କ୍ରି. ଆଙ୍କୁଡ଼ୀରେ ତୋଳିବା, ଆଙ୍କୁଡ଼ୀରେ ଧରିଲପରି ଟାଣି ଧରିବା ।
ଆଙ୍କୁପାଙ୍କୁ—ଗ୍ରା. ବିଂ. ଉତ୍କଣ୍ଠିତ ।
ଆଙ୍କୁରବା—ଗ୍ରା. କ୍ରି. (ମେଦିନୀପୁର ଭାଷା) ପାଚିଲା ଧାନକୁ କେଣ୍ଡା କେଣ୍ଡା କରି ହାତରେ ଛଡ଼ାଇବା ।

ଆଙ୍କୁଲ—ଗ୍ରା. ବି. ବନ୍ୟକଣ୍ଟକ ବୃକ୍ଷବିଶେଷ, ଆଙ୍କୋଟ ।

ଆଙ୍କୁଲକୋଳି—ଗ୍ରା. ବି. ଆଙ୍କୁଲଗଛର କୋଳି ।

ଆଙ୍କୁଶ—ଗ୍ରା. ବି. (ସଂ. ଅଙ୍କୁଶ) ହସ୍ତୀ ତାଡ଼ନାର୍ଥ ବକ୍ରାଗ୍ରଲୌହଦଣ୍ଡବିଶେଷ ।

ଆଙ୍କୁଶାସ୍ଫାଳନ ବିଂ.ଅଙ୍କୁଶଦ୍ୱାରାଦ୍ଗନସ୍ଥାଘାତ ।

ଆଙ୍କୁଶିକ—ବି. ବିଂ.ଅଙ୍କୁଶପ୍ରହାରଯୁକ୍ତ ।

ଆଙ୍କୋଠ—ବି. ଆଙ୍କୋଟ, ଆଙ୍କୁଲ ଗଛ ।

ଆଙ୍ଗୁଛ—ପ୍ରା. (ସମ୍ବ.) ବି. ଗାମୁଛା, ଗାତ୍ରମାର୍ଜ୍ଜନୀ ।

ଆଙ୍ଗୁଠା—ଗ୍ରା. ବି. (ସଂ.ଅଙ୍ଗୁଷ୍ଠ) ବଡ଼ ମୁଦି,ମୁଦିଆ,ବୁଢ଼ା ଆଙ୍ଗୁଳିରେ ପିନ୍ଧିବା ମୁଦି ।

ଆଙ୍ଗ—କ୍ଳୀ.ବି. (ଅଙ୍ଗ+ଅ) କୋମଳ ଅଙ୍ଗ, (ବିଂ) ଅଙ୍ଗଦେଶ ଜାତ ଅଙ୍ଗରାଜ୍ୟର ଅପତ୍ୟ, ଅଙ୍ଗସମ୍ବନ୍ଧୀୟ, (ସ୍ତ୍ରୀ) ଆଙ୍ଗୀ, (ଗ୍ରା.ବି) ଅହଙ୍କାର, ରାଗ ।

ଆଙ୍ଗକ—ବିଂ. ଅଙ୍ଗଦେଶଜାତ, ଅଙ୍ଗଦେଶର ସେବକ ।

ଆଙ୍ଗରୁ—ଗ୍ରା. ଅଙ୍ଗମୋଛ, ଗାମୁଛା ।

ଆଙ୍ଗଟୀ—ଗ୍ରା. ଏହା ଅଙ୍ଗୁରୀୟକର ଅପଭ୍ରଂଶ, ମୁଦ୍ରିକା, ମୁଦି ।

ଆଙ୍ଗନ୍—ଗ୍ରା. ବି. (ଲରିଆ) ଲଙ୍ଗନ, ପ୍ରାଙ୍ଗଣ, ଅଗଣା ।

ଆଙ୍ଗରେଖା—ଗ୍ରା. ବି. ଅଙ୍ଗରକ୍ଷିଣୀର ଅପଭ୍ରଂଶ, ଜାମା, କୁରୁତା ।

ଆଙ୍ଗଲିଆ—ଗ୍ରା. ବି. ( ସଂ. ଲାଙ୍ଗଲୀ ) ବିଷଲାଙ୍ଗୁଲିଆ ଲତା, ଲହଲାଙ୍ଗୁଲିଆ ଲତା ।

ଆଙ୍ଗବିଦ୍ୟ—ବିଂ. ଯେ ବ୍ୟାକରଣାଦି ଅଙ୍ଗବିଦ୍ୟା ଜାଣେ, ଅଙ୍ଗବିଦ୍ୟାର ବ୍ୟାଖ୍ୟାଗ୍ରନ୍ଥ । [କୋଇଲି ।

ଅଙ୍ଗାର—କ୍ଳୀ. ବି. ଅଙ୍ଗାରସମୂହ,

ଆଙ୍ଗାର୍ଯ୍ୟସ୍ତର—ପୁଂ. ବି. ଭୌଗୋଳିକମାନଙ୍କ ମତରେ ବାରୁଣ ସ୍ତର ଉତ ଯୁଗରେ ଉତ୍ପନ୍ନ,ତନ୍ମଧ୍ୟେ ଆଦ୍ୟର ପ୍ରଥମ ଯୁଗରେ ଛ କାଓସ୍ଥ ସ୍ତର ଉତ୍ପନ୍ନ ହୁଏ, ଏଥିରୁ ପଞ୍ଚମ କାଓସ୍ଥ ସ୍ତରର ନାମ ।

ଆଙ୍ଗିକ—ବି.ବିଂ. (ଅଙ୍ଗ+ଇକ) ଭାବପ୍ରକାଶକ, ଅଙ୍ଗନଷ୍ପନ୍ନ, ଭ୍ରୂବିକ୍ଷେପାଦି, ଅଦ୍ଧଂଗୁଣିଆ, ଅଙ୍ଗସମ୍ବନ୍ଧୀୟ, (ବି) ମୃଦଙ୍ଗ ବାଦ୍ୟର ଶିଳ୍ପୀ, ଯେ ମୃଦଙ୍ଗ ବଜାଇ ପାରେ ।

ଆଙ୍ଗିକଅଭିନୟ—ବି. ନାଟକୀୟ ପାତ୍ରମାନେ ନିଜର ଅଙ୍ଗଚାଳନଦ୍ୱାରା ଯେଉଁ ଅଭିନୟ ପ୍ରଦର୍ଶନ କରନ୍ତି ।

ଆଙ୍ଗିଣିଆ—ଗ୍ରା. ବିଂ. ଉତ୍ତାପର ଅସମତା ହେତୁ ଅର୍ଦ୍ଧ ସିଦ୍ଧ ଓ ବିସ୍ୱାଦ, ଆଇଙ୍ଗିଣିଆ ।

ଆଙ୍ଗିରସ—ପୁଂ. ସ୍ତ୍ରୀ. ବି.(ଅଙ୍ଗିରସ+ଅ) ଅଙ୍ଗିରା ଋଷିଙ୍କର ଗୋତ୍ରାପତ୍ୟ, ଅଥର୍ବ ବେଦର ସୂକ୍ତବିଶେଷ, ସମ୍ବର୍ତ୍ତ, ଆସ୍ଥା, ବୃହସ୍ପତି, ଉତଥ୍ୟ ।

ଆଙ୍ଗିରସେଶ୍ୱର—ପୁଂ. ବି. ଆଙ୍ଗିରସ ଦ୍ୱାରା ପ୍ରତିଷ୍ଠିତ କାଶୀସ୍ଥ ଶିବଲିଙ୍ଗବିଶେଷ ।

ଆଙ୍ଗୁଆ—ଗ୍ରା.ବିଂ.ଅଦ୍ଧଂଗୁଣିଆ, ଅକୁଣ୍ଠା, ଜିଦ୍ଦିଖୋର, ରାଗୀ ।

ଆଙ୍ଗୁଛ—ଗ୍ରା.ବି. (ବସ୍ତ୍ର) ଗାମୁଛା ।

ଆଙ୍ଗୁଟି—ଗ୍ରା. ବି. ଅଙ୍ଗୁଠି, ପୁଷ୍ପଗୁଳ୍ମ ବିଶେଷ ।

ଅଙ୍ଗୁଠିଫୁଟା—ଗ୍ରା.ବି. ଖେଳବିଶେଷ ।

ଅଙ୍ଗୁଠିଫୁଟାଇବା—ଗ୍ରା. କ୍ରି. ଅଙ୍ଗୁଠିର ଗଣ୍ଠି ମାନଙ୍କୁ ଟାଣିବା ଓ ମୋଡ଼ିବା ।

ଆଙ୍ଗୁଠିମାରିବା—ଗ୍ରା. କ୍ରି. ଅଙ୍ଗୁଳିଦ୍ୱାରା ସଙ୍କେତ କରିବା, ଟିପ ମାରିବା ।

ଆଙ୍ଗୁଳା—ଗ୍ରା. ବିଂ. ଅଙ୍ଗୁଳିଦ୍ୱାରା ସଲସଲ କରାଯାଇଥିବା ।

ଆଙ୍ଗୁଳି—ଗ୍ରା. ବି. ( ସଂ—ଅଙ୍ଗୁଳି ) ଅଙ୍ଗୁଠି, ଏକ ଆଙ୍ଗୁଳ ପରିମାଣ ।

ଆଙ୍ଗୁର—( ପା. ) ଅଙ୍ଗୁର, ଦ୍ରାକ୍ଷା, ମଧୁରସା, ଗୁରୁଫଳା, ଅମୃତଫଳା, ରସା ।

ଆଙ୍ଗୁଳିକ—ପୁଂ.ବି. ଅଙ୍ଗୁଳିର ଆକୃତି, ଯାହାର ଆକୃତି ଅଙ୍ଗୁଳିପରି ।

ଅଙ୍ଗୁଳ,ଅଙ୍ଗୁଳି—ଅଙ୍ଗୁଳି ଶବ୍ଦର ଅପଭ୍ରଂଶ, ଅଙ୍ଗୁଳିପ୍ରସ୍ଥ ପରିମାଣ ।

ଆଙ୍ଗୁଳହାଡ଼ା— ଗ୍ରା.) ଅଙ୍ଗୁଳିଉପରିସ୍ଥ ରୋଗବିଶେଷ । [ଆଘୋଷ ।

ଆଙ୍ଗୁଷ—ପୁଂ. ବି. ସ୍ତୋତ୍ର, ସ୍ତୋମ,

ଆଙ୍ଗ୍ୟ—ବିଂ. ଅଙ୍ଗଜାତିର ନିକଟସ୍ଥ ଦେଶାଦି ।

ଆଚକା—( ଗ୍ରା. ) ଅବ୍ୟ. ହଠାତ୍, ମୂଲ୍ୟବିନା, ଆନୁମାନିକ ।

ଆଚକେ—(ଅବ୍ୟ) ଜାମନା ।

ଆଚକ୍ଷମାଣ—ବି.ବିଂ. (ଆ+ଚକ୍ଷ୍+କ. ଆନ) କଥନଶୀଳ, କହୁଥିବା, (ସ୍ତ୍ରୀ) ଆଚକ୍ଷମାଣା ।

ଆଚକ୍ଷାଣ—ବିଂ. ବ୍ୟାଖ୍ୟାକର୍ତ୍ତା, ଯେ ବ୍ୟାଖ୍ୟା କରଅଛି ।

ଆଚକ୍ଷୁ—ପୁଂ.ବି. ବ.ବ୍ରୀ.;(ଆ+ଚକ୍ଷୁ) ପଣ୍ଡିତ, (ଅବ୍ୟ) ଚକ୍ଷୁପର୍ଯ୍ୟନ୍ତ ।

ଆଚକ୍ଷୁସ—ବିଂ. ବକ୍ତା, ଆଖ୍ୟାନକର୍ତ୍ତା ।

ଆଚଞ୍ଚଳ—ବି. ବିଂ. ଈଷତ୍ ଚଞ୍ଚଳ, (ସ୍ତ୍ରୀ) ଆଚଞ୍ଚଳା [ ବୁଦ୍ଧିମାନ୍ ।

ଆଚତୁର—(ଅବ୍ୟ.) ଚତୁରପର୍ଯ୍ୟନ୍ତ,ଚାଳାକ,

ଆଚତୁର୍ଯ୍ୟ—କ୍ଳୀ. ବି. ଅନୈପୁଣ୍ୟ, ଅଚାଳାକ, ବୁଦ୍ଧିହୀନ । [ ମନ ।

ଆଚମ—ପୁ.ବି. (ଆ+ଚମ+ଅ)ଆଚ-

ଆଚମକା— ଅବ୍ୟ) ହଠାତ୍, ସହସା, ଅତର୍କିତଭାବରେ, ଆଚମ୍ବିତେ ।

ଆଚମନ—କ୍ଳୀ. ବି. (ଆ+ଚମ୍+ଭା. ଅନ) ଭୋଜନାଦି ପରେ ମୁଖ ପ୍ରଧୌତ କରିବା, ଆଚମନ-କ୍ରିୟାବିଶେଷ, ଆଞ୍ଚୋଇବା ।

ଆଚମନକ—ପୁଂ. ବି. (ଆଚମନ+କ) ଆଚମନ ଜଳ, ପିକଦାନ, ଜଳପାତ୍ର, ନିଷ୍ଠୀବନ ପାତ୍ର, ଅବଖୁରା ।

ଆଚମନୀ—ଗ୍ରା.ବି. ଛୋଟ ଡାଲ,ଲୋଟିଆ, ଅବଖୁରା, ପଞ୍ଚପାତ୍ର ।

ଆଚମନୀୟ—ବି.ବିଂ. (ଆ+ଚମ୍+ମ. ଅନୀୟ) ଆଚମନର ଆବଶ୍ୟକ, ଯାହା ଖାଇଲେ ଆଞ୍ଚୋଇବାକୁ ହୁଏ, (କ୍ଳୀ) ଆଚମନାର୍ଥ ଜଳ, ମୁଖ ଧୋଇବା ପାଣି, ଭକ୍ଷ୍ୟଦ୍ରବ୍ୟ ।

ଆଚମ୍ୟ—ଅବ୍ୟ. ଆଚମନଯୋଗ୍ୟ ଜଳ, ଆଚମନ କର।

ଆଚମ୍ବିତ—ଗ୍ରା. ବିଂ. (ସଂ-ଅସମ୍ଭାବିତ) ହଠାତ୍, ଅକସ୍ମାତ୍, ଆଶ୍ଚର୍ଯ୍ୟାନ୍ୱିତ, ଚକିତ, ତ୍ରସ୍ତ, ବିସ୍ମିତ, ଅସମ୍ଭବ, ଅସମ୍ଭାବିତ, ଅଭୂତପୂର୍ବ, ଅଶ୍ରୁତପୂର୍ବ।

ଆଚମ୍ବିତେ—ଗ୍ରା. କ୍ରି. ବିଂ. ହଠାତ୍, ଚକିତଭାବେ, ଆଶ୍ଚର୍ଯ୍ୟରୂପେ, ଅକସ୍ମାତ୍, ସହସା।

ଆଚୟ—ପୁଂ.ବି. (ଆ + ଚି + ଅ) ଦୂରସ୍ଥ ପୁଷ୍ପ ଫଳ ତୋଳିବା, ଫୁଲତୋଳା-ସଂଳାଶେ ନିଯୁକ୍ତଲୋକ।

ଆଚରଣ—କ୍ଲୀ. ବି. (ଆ + ଚର୍ + ଭା. ଅନ) ଆଚାର, ସ୍ୱଭାବ, ରଥ, ଶକଟ, ଗତି, ଶୁଦ୍ଧଚରଣ, ବ୍ୟବହାର, ଅନୁଷ୍ଠାନ।

ଆଚରଣକରିବା—ଗ୍ରା.କ୍ରି. (ଉତ୍ତମ ବା ମନ୍ଦ) ବ୍ୟବହାରକରିବା, (ବ୍ରତାଦି) ସାଧନକରିବା, ପାଳନକରିବା।

ଆଚରଣୀୟ—ବି. ବିଂ. (ଆ + ଚର୍ + ମି: ଅନୀୟ) ଅନୁଷ୍ଠେୟ, କର୍ତ୍ତବ୍ୟ, ଆଚରିତବ୍ୟ, ବ୍ୟବହାର୍ଯ୍ୟ, ବ୍ୟବହାର-ଯୋଗ୍ୟ, (ସ୍ତ୍ରୀ) ଆଚରଣୀୟା।

ଆଚରିତ—କ୍ଲୀ. ବି. (ଆ + ଚର୍ + ଭା, ତ) ଆଚାର, ଗତି, (ବିଂ) ଅନୁଷ୍ଠିତ, ପାଳିତ, କୃତ, ବ୍ୟବହୃତ, ଅଭ୍ୟସ୍ତ, (ସ୍ତ୍ରୀ) ଆଚରିତା।

ଆଚର୍ଯ୍ୟ—କ୍ଲୀ. ବି. (ଆ + ଚର + ଯ) ଆଚରଣୀୟକର୍ମ, ଶୁଭକର୍ମ।

ଆଚାନକ—ଗ୍ରା. ବିଂ. (ସଂ-ଆଶ୍ଚର୍ଯ୍ୟ) ଆଶ୍ଚର୍ଯ୍ୟଜନକ, ଆକସ୍ମିକ।

ଆଚାନ୍ତ—ବି. ବିଂ.(ଆ + ଚମ + କ.ତ) ଆଚମନକର୍ତ୍ତା, ଆଞ୍ଚୋଇଥିବା, କୃତାଚମନ।

ଆଚାଭୁଆ—ଗ୍ରା. ବିଂ. ଅଭୁତ, ଅସମ୍ଭବ, ମିଥ୍ୟା, ବିସ୍ମୟାବିଷ୍ଟ, ହତବୁଦ୍ଧି, ଅପୂର୍ବ, କିଂଭୂତକିମାକାର।

ଆଚାମ—ପୁଂ.ବି. (ଆ + ଚମ୍ + ଭା. ଅ) ଆଚମନ, ଭକ୍ଷ୍ୟବସ୍ତୁ, ମଣ୍ଡ, ପେଜ, ପାନ, ତୋରାଣି, ଆମ୍ବଆଦିର ଆଚାର।

ଆଚାର—ପୁଂ.ବି. (ଆ + ଚର୍ + ଭା.ଅ) ଆଚରଣ, ଅନୁଷ୍ଠାନ, ନିୟମ, ପଦ୍ଧତି, ସ୍ନାନ, ଚରଣ, ବୃତ୍ତି, ଧାରା, ଶୁଦ୍ଧ (ଗ୍ରା) ମସଲାଯୁକ୍ତ ଆମ୍ବଲେମ୍ବୁ ଇତ୍ୟାଦି।

ଆଚାରଚ୍ୟୁତ—ପୁଂ.ବିଂ. (୫ତତ୍) ଶିଷ୍ଟ ବ୍ୟବହାର ବହିର୍ଭୂତ, ଶିଷ୍ଟାଚାର ଲଙ୍ଘନକାରୀ, ଜଘନ୍ୟ ବୃତ୍ତି ଆଚରଣ କରିବା, ଦୁରାଚାର।

ଆଚାରଦୀପ—ପୁଂ. ବି. ଅନନ୍ତଦୀପ, ନରଜନା ଇତ୍ୟାଦି, ନାଗଦେବଭଟ୍ଟ ବିରଚିତ ଆଚାରବିଷୟକ ଗ୍ରନ୍ଥବିଶେଷ।

ଆଚାରବନ୍ତ—ଗ୍ରା. ପୁଂ.ବିଂ. (ସଂ-ଆଚାର ବତ୍) (ଆଚାରବାନ୍ ଦେଖ) (ସ୍ତ୍ରୀ) ଆଚାରବନ୍ତୀ।

ଆଚାରବାନ୍—ପୁଂ.ବିଂ.(ଆଚାର + ବତ୍) ଶାସ୍ତ୍ରୋକ୍ତ ଅନୁଷ୍ଠାନଯୁକ୍ତ, ଅନୁଷ୍ଠାନ ବାନ୍, ନିୟମବାନ୍, ଧାର୍ମ୍ମିକ, (ସ୍ତ୍ରୀ) ଆଚାରବତୀ, ଅନୁଷ୍ଠାନବତୀ।

ଆଚାରବର୍ଜ୍ଜିତ—ପୁଂ. ବିଂ. ଆଚାର-ବହି-ର୍ଭୂତ, ଆଚାରହୀନ, (ସ୍ତ୍ରୀ) ଆଚାର-ବର୍ଜ୍ଜିତା।

ଆଚାରବିଚାର—ଗ୍ରା.ବି. ଲୋକପ୍ରଚଳିତ ବ୍ୟବହାର ବା ରୀତିନୀତି, ଶିଷ୍ଟାଚାର।

ଆଚାରବିରୁଦ୍ଧ—ବିଂ.(୭ତତ୍)ଲୌକିକା-ଚାର ବିପରୀତ, (ଗ୍ରା.) ଶିଷ୍ଟାଚାର ବିପରୀତ।

ଆଚାରବିହୀନ—ବିଂ. (୩ତତ୍) ଆଚାର-ଭ୍ରଷ୍ଟ, ସଦାଚାରବର୍ଜ୍ଜିତ, ଅସଦାଚାର, ଅଭଦ୍ର, ଅଶିଷ୍ଟ।

ଆଚାରବେତ୍ତା—ପୁଂ. ବି. ଯେ ଆଚାର ଜାଣେ, (ସ୍ତ୍ରୀ) ଆଚାରବେତ୍ତ୍ରୀ।

ଆଚାରବେଦୀ—ପୁଂ. ବିଂ. ଆଚାରଜ୍ଞ, ଯେ ଆଚାର ଜାଣେ।

ଆଚାରବେଦୀ—ସ୍ତ୍ରୀ. ବି. ପୁଣ୍ୟଭୂମି, ଆର୍ଯ୍ୟାବର୍ତ୍ତ।

ଆଚାରବ୍ୟବହାର—ପୁଂ. ବି. ଆଚରଣ ଓ ରୀତି, ଶିଷ୍ଟାଚାର।

ଆଚାରଭ୍ରଷ୍ଟ—ବି.ବିଂ. (୫ତତ୍) ଆଚାର-ହୀନ, ସଦାଚାରବର୍ଜ୍ଜିତ, (ସ୍ତ୍ରୀ) ଆଚାରଭ୍ରଷ୍ଟା।

ଆଚାରରହିତ—ବିଂ.(୩ତତ୍) ନୈତିକା-ଚାରର ବିପରୀତ କାର୍ଯ୍ୟ କରୁଥିବା, ସଦାଚାରବର୍ଜିତ (ଗ୍ରା.ବିଂ) ଅନାଚାରୀ।

ଆଚାରହୀନ—ବିଂ. (ଆଚାର + ହୀନ) ଆଚାର ରହିତ (ଦେଖ)।

ଆଚାରାଙ୍ଗ—କ୍ଲୀ.ବି. ଜୈନଙ୍କର ଦ୍ୱାଦଶ-ଅଙ୍ଗ ମଧ୍ୟେ ଅଙ୍ଗବିଶେଷ, (ବି) ରମା-ନୁଜ ବୈଷ୍ଣବ-ସମ୍ପ୍ରଦାୟର ଉପ-ସମ୍ପ୍ରଦାୟବିଶେଷ।

ଆଚାରୀ—ପୁଂ. ବି. (ଆ + ଚର୍ + କ. ଇନ୍) ସଦାଚାରୀ, ଆଚାରଯୁକ୍ତ, ଶାସ୍ତ୍ରୋକ୍ତ ଅନୁଷ୍ଠାତା, ଶୁଦ୍ଧଶୀଳ, (ସ୍ତ୍ରୀ) ଆଚାରିଣୀ।

ଆଚାରୀ—ସ୍ତ୍ରୀ.ବି. (ଆଚାର + ଈ) ବସ୍ତୁତ, ହେଲଞ୍ଚାଲତା, ହିଲମୋଚକ, ହିଡ଼-ମୋଚ୍।

ଆଚାରୀମଠ—ଗ୍ରା. ବି. ଯେଉଁ ମଠରେ ଆଚାରୀ ବୈଷ୍ଣବମାନେ ବାସ କରନ୍ତି।

ଆଚାର୍ଯ୍ୟ—ପୁଂ. ବି. (ଆ + ଚର୍ + କ. ଯ) ଗୁରୁ, ଶିକ୍ଷାଗୁରୁ, ଦ୍ରୋଣାଚାର୍ଯ୍ୟ, ଯେଉଁ ବ୍ରାହ୍ମଣ ଶିଷ୍ୟର ଉପନୟନ କରି ସରହସ୍ୟ ବେଦ ଅଧ୍ୟୟନ କରାଏ, ପୁରୋହିତ, ବ୍ରାହ୍ମଣ ଉପାଧିବିଶେଷ।

ଆଚାର୍ଯ୍ୟକ—କ୍ଲୀ. ବି. ଆଚାର୍ଯ୍ୟର କର୍ମ୍ମ, ଆଚାର୍ଯ୍ୟର ଧର୍ମ୍ମ, ଉପଦେଶ।

ଆଚାର୍ଯ୍ୟଭୋଗୀ—ପୁଂ. ବିଂ. ଆଚାର୍ଯ୍ୟର ଭୋଗ୍ୟ (ବସ୍ତୁ)।

ଆଚାର୍ଯ୍ୟମିଶ୍ର—ପୁଂ.ବି. ଅତଶସ୍ୱ ପୂଜ୍ୟ।

ଆଚାର୍ଯ୍ୟା - ସ୍ତ୍ରୀ. ବି. (ଆଚାର୍ଯ୍ୟ + ଆ) ମନ୍ତ୍ରବ୍ୟାଖ୍ୟାକାରିଣୀ, ଶିକ୍ଷାଦାତ୍ରୀ, ବେଦମନ୍ତ୍ରାଦିର ଉପଦେଷ୍ଟ୍ରୀ।

ଆଚାର୍ଯ୍ୟାଣୀ—ସ୍ତ୍ରୀ.ବି. (ଆଚାର୍ଯ୍ୟ + ଆଣୀ) ଆଚାର୍ଯ୍ୟପତ୍ନୀ, ଗୁରୁପତ୍ନୀ।

ଆଚିଖ୍ୟାସା—ସ୍ତ୍ରୀ. ବି. କହିବାର ଇଚ୍ଛା, କହିବା ନିମିତ୍ତ ଇଚ୍ଛା।

ଆଚିଖ୍ୟାସୁ—ବିଂ. କହିବାକୁ ଇଚ୍ଛୁକ, କହିବା ନିମିତ୍ତ ଇଚ୍ଛୁକ।

ଆଚିତ—ବି. ସଂ. (ଆ+ଚି+ର୍ମ. ତ) ବ୍ୟାପ୍ତ, ଆକୀର୍ଣ୍ଣ, ଏକତ୍ର ସନ୍ନିବେଶିତ, ଗ୍ରଥିତ, ବଶୀକୃତ, ଗୁମ୍ଫିତ, ସଞ୍ଚିତ, ଆଚ୍ଛନ୍ନ, (ପୁଂ. ବ) ଏକ ଗାଡ଼ିର ବୋଝାଇ, (କ୍ଳୀ.ବ ଦଶଭାରର ପରିମାଣ।

ଆଚିତାଦି—ପୁଂ.ବ. ଆଚିତ, ପର୍ଯ୍ୟାଚିତ, ପରିଗୃହୀତ, ନିଚୁକ୍ତ, ପ୍ରତିପନ୍ନ ଇତ୍ୟାଦି ଆଚିତପଣ।

ଆଚୂଷଣ—କ୍ଳୀ. ବ. (ଆ+ଚୂଷ୍+ଭା. ଅନ) ଚୋଷିବା, ଔଷଧି ସଂଯୋଗେ ଆକର୍ଷଣ, ଶରୀରସ୍ଥ ରକ୍ତଶୋଷଣ କ୍ରିୟା।

ଆଚୋଟ—ଗ୍ରା. ବଂ. ଅନାହତ, ଅକ୍ଷତ, ଆକର୍ଷିତ, ଅଚଷା, ଗୃଷ୍ଟ ହୋଇ ନ ଥିବା।

ଆଛକ—ବ. ଆଛୁ (ଦେଖ)।

ଆଛଦ୍—ବଂ (ଆ+ଛଦ୍+କ୍ୱିପ୍)ଆଚ୍ଛାଦନବସ୍ତୁ, ଆଚ୍ଛାଦନବସ୍ତ୍ର, (ପୁଂ)ଆଚ୍ଛାଦ।

ଆଚ୍ଛନ୍ନ—ବି. ବଂ. (ଆ+ଛଦ୍+ର୍ମ,ତ) ଆବୃତ, ଅଭିଭୂତ, ବ୍ୟାପ୍ତ, ସ୍ତ୍ରୀ) ଆଚ୍ଛନ୍ନା (ଗ୍ରା.ବଂ.) ଗୁପ୍ତ, ଛଦ୍ମବେଶୀ ସମାପ୍ତ, (ବ) ଆବୃତତା।

ଆଚ୍ଛନ୍ନତା—ଗ୍ରା. ସ୍ତ୍ରୀ. ବ. ଗୋପନ, ଆଚ୍ଛଦନ।

ଆଚ୍ଛା—ଗ୍ରା.(ଅବ୍ୟ) ସ୍ୱୀକାର, ତର୍ଜନାର୍ଥ, ହେଉ, ହଁ, ତଥାସ୍ତୁ, ଉତ୍ତମ, ଦେଖା ଯାଉ (ଗ୍ରା.ବଂ) ଭଲ, ଉତ୍ତମ, ସୁସ୍ଥ, (ବ) ମଙ୍ଗଳ, ସ୍ୱାସ୍ଥ୍ୟ,(ବି. ବଂ.) ଉତ୍ତମରୂପେ।

ଆଚ୍ଛାକରି—ଗ୍ରା.ବି. ବଂ. ଉତ୍ତମରୂପେ, ସମ୍ପୂର୍ଣ୍ଣରୂପେ।

ଆଚ୍ଛାକରିବା—ଗ୍ରା. ବି. ଉତ୍ତମ କାର୍ଯ୍ୟ କରିବା,ଚିକିତ୍ସାଦ୍ୱାରା ଆରୋଗ୍ୟକରିବା।

ଆଚ୍ଛାଦ—ପୁଂ. ବ. (ଆ+ଛଦ୍+କ.ଅ) ବସନ, ଲୁଗା,ଗ୍ରନ୍ଥ,ସର୍ପୋଷ, ଡାଙ୍କୁଣୀ, ଆବରଣ, ଘୁଦର, ଆଚୁଆଳ।

ଆଚ୍ଛାଦନ—ପୁଂ. ବଂ. (ଆ+ଛଦ୍+ଣିଚ୍+କ.ଅନ) ଆବରକ, ଆଚ୍ଛାଦନକାରୀ, ତିରୋଧାୟକ,(ସ୍ତ୍ରୀ) ଆଚ୍ଛାଦକା।

ଆଚ୍ଛାଦନ—କ୍ଳୀ. ବ. (ଆ+ଛଦ୍+ଣ. ଅନ) ଆଚ୍ଛାଦନ କରିବା, ବ୍ୟବଧାନ, ଘୋଡ଼ାଇବା, ଆବରଣ, ଢାଙ୍କୁଣୀ, ଆଢ଼ୁଆଳ, ଘୁଦର, ଢଙ୍କା।

ଆଚ୍ଛାଦନୀୟ—ବି. ବଂ. (ଆ+ଛଦ+ର୍ମ ଅନୀୟ) ଆଚ୍ଛାଦନ ଯୋଗ୍ୟ, ଯାହା ଆବୃତ କରିବାର ଆବଶ୍ୟକ (ସ୍ତ୍ରୀ) ଆଚ୍ଛାଦନୀୟା।

ଆଚ୍ଛାଦୀ—ଗ୍ରା.ବି.ଆଚ୍ଛାଦିତ କରି, ଆବୃତ କରି।

ଆଚ୍ଛାଦିତ—ପୁଂ.ବଂ.(ଆ+ଛଦ+ଣିଚ୍+ର୍ମ.ତ)ଆବୃତ, ଗୁପ୍ତ, ଆଚ୍ଛନ୍ନ, ଯାହା ଘୋଡ଼ଆ ହୋଇଅଛି, (ସ୍ତ୍ରୀ) ଆଚ୍ଛାଦିତା

ଆଚ୍ଛାଦିବା—ଗ୍ରା. ବି. (ସଂ. ଆଚ୍ଛାଦନ ଆବୃତ କରିବା, ଲୁଚାଇବା, ଛୁଆଣି କରିବା।

ଆଚ୍ଛାଦୀ—ପୁଂ. ବଂ.(ଆ+ଛଦ୍+ଇନ) ଆଚ୍ଛାଦନକାରୀ, ଯେ ଆଚ୍ଛାଦନ କରେ, (ସ୍ତ୍ରୀ) ଆଚ୍ଛାଦନୀ।

ଆଚ୍ଛାଦ୍ୟ—ବି. ବଂ. (ଆ+ଛଦ+ର୍ମ. ଯ) ଆଚ୍ଛାଦନୀୟ, ଗୋପ୍ୟ।

ଆଚ୍ଛିନ୍ନ—ବି. ବଂ. (ଆ+ଛିଦ୍+ର୍ମ. ତ) ବଳଦ୍ୱାରା ଗୃହୀତ, ଅସ୍ତ୍ରଦ୍ୱାରା ଛେଦିତ, ବଳପୂର୍ବକ ନିଆଯାଇଥିବା, (ସ୍ତ୍ରୀ) ଆଚ୍ଛିନ୍ନା।

ଆଚ୍ଛୁ—ଆଛୁଗଛ।

ଆଚ୍ଛୁକ—ପୁଂ. ବ. ବୃକ୍ଷବିଶେଷ, ଆଚ୍ଛୁ।

ଆଚ୍ଛୁରିତ—କ୍ଳୀ.ବ. (ଆ+ଛୁର୍+ତ) ଶବ୍ଦଯୁକ୍ତ ହାସ୍ୟ, ଉଚ୍ଚହାସ୍ୟ, ନଖଦ୍ୱାରା ବାଦ୍ୟ (ବଂ) ମିଶ୍ରିତ, ଲିପ୍ତ, କ୍ଷତ, ନଖାବୃତ, ମ୍ରକ୍ଷିତ।

ଆଚ୍ଛୁରିତକ—କ୍ଳୀ. ବ. (ଆ+ଛୁର୍+ତ+କ) ଆଚ୍ଛୁରିତ, ନଟବାଦ୍ୟ, ଅଟ୍ଟହାସ୍ୟ।

ଆଚ୍ଛେଦ—ପୁଂ. ବ. (ଆ+ଛିଦ୍+ଭା. ଅ) ସମସ୍ତ ପ୍ରକାର ଛେଦନ, ଅଳ୍ପ ଛେଦନ, କର୍ତ୍ତନ, ବଳପୂର୍ବକ ଛଡ଼ାଇ-ନେବା, କାଢ଼ିନେବା, ଚୋରଣ।

ଆଚ୍ଛେଦକ—ପୁଂ. ବଂ. (ଆ+ଛିଦ୍+କ.ଅକ) ଆଚ୍ଛେଦନକର୍ତ୍ତା, ବଳପୂର୍ବକ ଗ୍ରହଣକାରୀ, (ସ୍ତ୍ରୀ) ଆଚ୍ଛେଦକା।

ଆଚ୍ଛେଦୀ—ପୁଂ ବଂ. ଆ+ଛିଦ୍+କ. ଇନ୍ ଆଚ୍ଛେଦକ, (ସ୍ତ୍ରୀ) ଆଚ୍ଛେଦନୀ।

ଆଚ୍ଛୋଟନ—କ୍ଳୀ. ବ. (ଆ+ଛୁଟ୍+ଅନ) ଅଙ୍ଗୁଳିମୋଟନ, ଆଙ୍ଗୁଳି ଭାଙ୍ଗିବା।

ଆଚ୍ଛୋଟିତ—ବି. ବଂ. (ଆ+ଛୁଟ୍+ତ) ଆଙ୍ଗୁଳି ଫୁଟାଇବା, ଆଙ୍ଗୁଳି ଭାଙ୍ଗି ଶବ୍ଦ କରିବା।

ଆଚ୍ଛୋଦନ—କ୍ଳୀ ବ. (ଆ+ଛୁଦ୍+ଭା. ଅନ) ମୃଗୟା, ଶିକାର।

ଆଚ୍ୟୁତଦନ୍ତି—ପୁଂ ବ.ଆୟୁଧଜୀବୀବିଶେଷ, ଯେ ଆୟୁଧଦ୍ୱାରା ଜୀବିକାନିର୍ବାହ କରେ।

ଆଚ୍ୟୁତନ୍ତ୍ୟ—ପୁଂ. ବ. ଆୟୁଧଜୀବୀବିଶେଷ, ଏକ ସ୍ଥାନରେ ଅନେକ ଆୟୁଧଜୀବୀ।

ଆଚ୍ୟୁତକ—ପୁଂ. ବଂ. ଅଚ୍ୟୁତର ପୁତ୍ର, (ସ୍ତ୍ରୀ ଆଚ୍ୟୁତକୀ। [ତାଡ଼ନ।

ଆଛୁଡ଼—ଗ୍ରା. ପଡ଼ିଶିବା, ଆଘାତ,

ଆଛୁଡ଼ାନ—(ବଙ୍ଗ) ଆଘାତକରଣ, ଛୁଡ଼ିବା ନୁହେ।

ଆଛା—ଗ୍ରା. ଅବ୍ୟ) ଆଚ୍ଛା (ଦେଖ)।

ଆଛୁ—ଗ୍ରା. ବ. (ସଂ-ଆଚ୍ଛକ) ଯେଉଁ ଗଛ ଚେରରେ ସୂତା ରଙ୍ଗୀନ ହୁଏ, ସ୍ୱନାମପ୍ରସିଦ୍ଧ ବୃକ୍ଷବିଶେଷ।

ଆଛୋଲ—(ବଙ୍ଗ) ଯେଉଁ ବାଂଶପ୍ରଭୃତି ଚୋଛି ପରିଷ୍କାର କରାଯାଇ ନ ଥାଏ, ଅପରିଷ୍କୃତ, ଅପରିଚ୍ଛନ୍ନ। [କରିବା।

ଆଜ୍—(ଧାତୁ) ଗମନ କରିବା, ଗତି।

ଆଜ୍—ପ୍ରା (ସମ୍ବ.) ଆଜି, ଅଦ୍ୟ।

ଆଜଗବ—ଗ୍ରା. ବଂ. ଆଶ୍ଚର୍ଯ୍ୟଜନକ, ଅଜଗବ, (ବି.ବଂ.) ହଠାତ୍,ଆଶ୍ଚର୍ଯ୍ୟଜନକରୂପେ।

ଆଜଠାରୁ—ଗ୍ରା. (ସମ୍ବ) ଅବ୍ୟ, ଆଜିଠାରୁ, ବର୍ତ୍ତମାନଠାରୁ।

ଆଜତକ—ପ୍ରା. (ସମ୍ବ.) ଅବ୍ୟ. ଅବତକ୍ (ଦେଖ)।

**ଆଜନୁ**—ଗ୍ରା. (ସମ୍ପ.) ଅବ୍ୟ. ଆଜିଠାରୁ, ବର୍ତ୍ତମାନଠାରୁ ।

ଆଜ—ପୁଂ. ବ. (ଆଜ + ଭ୍ର.ଅନ) ଗମନ, (କ୍ଲୀ. ବ) (ଆ + ଅଜ + ଭ.ଅ ) ଘୃତ, (ବି.ବଂ.) (ଅଜ + ଅ) ଅଜସମ୍ବନ୍ଧୀୟ, ଛାଗର, (ସ୍ତ୍ରୀ) ଆଜୀ (ଗ୍ରା.) ଅଦ୍ୟ.ଆଜି ।

ଆଜକ—କ୍ଲୀ.ବ. (ଆଜ + କ) ଛାଗସମୂହ, ଚେଳମଳ, ଗ୍ରା. ଅବ୍ୟ) ଅଦ୍ୟ,ଆଜିକ, ଆଜଦନ ।

ଆଜକବୀର୍ଣ—ବଂ. ଛାଗସମୂହ ଯୁକ୍ତ ନଦୀର ନିକଟସ୍ଥ ଦେଶ ବ, ଟ୍ରାଣୀ ।

ଆଜକାର—ପୁଂ.ବ ( ଆଜ + କୃ + କ. ଅ) ଶିବଙ୍କର ବୃଷଭ, ତ୍ରିପୁରାସୁରର ବଧ କାଳରେ ନିଜେ ଭଗବାନ୍ ବୃଷଭରୂପ ଧାରଣ କରିଥିବାରୁ ବିଷ୍ଣୁଙ୍କର ନାମ, (ଗ୍ରା.) ଆଜିର ।

ଆଜଗର—କ୍ଲୀ.ବ. ଅଜଗରସମ୍ବନ୍ଧୀୟ, ଅଗସ୍ତ୍ୟମୁନିଙ୍କ ଶାପରେ ନହୁଷଙ୍କର ସର୍ପହେବା ବିବରଣ ।

ଆଜଗବ—କ୍ଲୀ. ବ. (ଅଜଗବ + ଅ) ମହାଦେବଙ୍କ ଧନୁ, ଶିବଧନୁ ।

**ଆଜଗବ,ଆଜଗୁବ**—(ଯା. ଆଶ୍ଚର୍ଯ୍ୟଜନକ, ବିସ୍ମୟଜନକ, ଦୈବ, ଆକସ୍ମିକ ଅଦ୍ଭୁତ, ଅବିଶ୍ୱାସ ।

ଆଜଧେନବ—ପୁଂ. ସ୍ତ୍ରୀ. ବ. ଛାଗୀରୂପ ଧେନୁଥିବା ମୁନିଙ୍କ ଅପତ୍ୟ, ସେ ମୁନି ଛାଗଦ୍ୱାରା ଧେନୁର କାର୍ଯ୍ୟ କରନ୍ତି ତାଙ୍କର ପୁତ୍ର ବା କନ୍ୟା ।

ଆଜନ—କ୍ଲୀ.ବ. ଯାବଜ୍ଜୀବନ, ମୃତ୍ୟୁକାଳ ପର୍ଯ୍ୟନ୍ତ ।

ଆଜନକ—କ୍ଲୀ.ବ. ବିଖ୍ୟାତଜନ୍ମ, (ବଂ) ବିଖ୍ୟାତ ଜନ୍ମା, (ଅବ୍ୟ) ଜନ୍ମପର୍ଯ୍ୟନ୍ତ ।

ଆଜନ୍ମ ଅବ୍ୟ. ( ଆ + ଜନ୍ମ ବି. ବଂ. ଜନ୍ମପର୍ଯ୍ୟନ୍ତ, ଯାବଜ୍ଜୀବନ ।

**ଆଜନ୍ମକାଳ**—ଅବ୍ୟ ଜନ୍ମସମୟରୁ, ଜନ୍ମାବଧି, ଯାବଜ୍ଜୀବନ ।

**ଆଜନ୍ମଦୁଃଖୀ**—ପୁଂ. ବଂ. ( ଆଜନ୍ମ + ଦୁଃଖିନ୍) ଯେଉଁ ଲୋକ ଜନ୍ମକାଳରୁ ଦୁଃଖ ଭୋଗ କରି ଆସିଅଛି, ( ସ୍ତ୍ରୀ ) ଆଜନ୍ମଦୁଃଖିନୀ ।

ଆଜନ୍ମସୁଖୀ—ପୁଂ.ବଂ.(ଆଜନ୍ମ + ସୁଖିନ୍) ଯେଉଁ ବ୍ୟକ୍ତି ଜନ୍ମାବଧି ସୁଖରେ କାଳ କଟାଇଅଛି, (ସ୍ତ୍ରୀ) ଆଜନ୍ମସୁଖିନୀ ।

ଆଜନ୍ମସୁରଭିପତ୍ର—ପୁଂ.ବ.ମରୁବକବୃକ୍ଷ ।

ଆଜମାର୍ଯ୍ୟ—ପୁଂ.ସ୍ତ୍ରୀ. ଆଜମୀରର କନ୍ୟା ବା ପୁତ୍ରରୂପ ସନ୍ତାନ ।

ଆଜମୀଢ଼—ପୁଂ. ବ. ( ଆଜମୀଢ଼ + ଅ) ଆଜମୀଢ଼ ଦେଶଜାତ, ଆଜମୀଢ଼ ଦେଶର ରାଜା, ଯଦୁବଂଶସ୍ଥ ନୃପବିଶେଷ

ଆଜମୀର—ରାଜପୁତାନାନ୍ତର୍ଗତ ଆଜମୀର ମାରୱାର ବିଭାଗର ପ୍ରଧାନ ନଗର ।

ଆଜୟନ—କ୍ଲୀ. ବ. ଯୁଦ୍ଧ, ସଂଗ୍ରାମ ।

ଆଜଯାଏ—ଗ୍ରା.ଅବ୍ୟ,(ସଂ-ଅଦ୍ୟ) ଆଜିପର୍ଯ୍ୟନ୍ତ ।

ଆଜରସ—ଅବ୍ୟ. ଜରାପର୍ଯ୍ୟନ୍ତ, ବୃଦ୍ଧକାଳ ପର୍ଯ୍ୟନ୍ତ, (ବଂ) ଜରାପ୍ରାପ୍ତ ।

ଆଜବ—ଯା. ବଂ. ଅଦ୍ଭୁତ, ଆଶ୍ଚର୍ଯ୍ୟ, ଆଜବସହର, ବିଚିତ୍ର ।

ଆଜବସ୍ତ୍ରେୟ—ପୁଂ. ସ୍ତ୍ରୀ. ଅଜବସ୍ତିନାମକ ଋଷିଙ୍କ ପୁତ୍ର ଓ କନ୍ୟାରୂପ ସନ୍ତାନ ।

ଆଜବାହ—ବଂ.ବଦରିକାଶ୍ରମର ଉତ୍ତରସ୍ଥ ପର୍ବତମଧ୍ୟ ଉଚ୍ଚ ସ୍ଥାନର ନାମ ଆଜବାହ, ଅଳବାହ ଦେଶଜାତାଦି ।

ଆଜବୁଝି—ବଂ.ନବୋଧ,ବୋକା,ଅବୁଝା ।

ଆଜଯୁଁ—ଗ୍ରା. ବ. ବଂ. ଆଜିଠାରୁ ।

ଆଜା—ଗ୍ରା.(ସମ୍ପ.)ବ. ଘାଆ ଆଯ,ଅଛି ଯାଉ ହେବା ।

ଆଜାଡ଼—ଗ୍ରା. ଶୂନ୍ୟ, ମୋଚନ,ଅବସର ଉଜାଡ଼ିବା, ଗୁହ୍ୟ, ଅବସର ।

ଆଜାତଶତ୍ରବ ପୁଂ. ବ. ଯୁଧିଷ୍ଠିରଙ୍କର ପୁତ୍ର, ଅଜାତଶତ୍ରୁନାମକ ରାଜାଙ୍କ ଅପତ୍ୟ, ଭଦ୍ରସେନ ରାଜା ।

ଆଜାତି—ସ୍ତ୍ରୀ. ବ. ( ଆ + ଜନ + ତି ) ଆଜନନ, ଜନ୍ମ (ଅବ୍ୟ) ଜାତିପର୍ଯ୍ୟନ୍ତ ।

ଆଜାଦ୍ୟ—ପୁଂ.ସ୍ତ୍ରୀ. ଆଜଭକ୍ଷକ ମୁନିଙ୍କ ପୁତ୍ର ବା କନ୍ୟା-ଅପତ୍ୟ ।

ଆଜାନ—ଅବ୍ୟ.ସୃଷ୍ଟିକାଳପର୍ଯ୍ୟନ୍ତ ପ୍ରକୃତ, (ପୁଂ)ଉତ୍ପତ୍ତି, ମୁସଲମାନମାନେ ନମାଜ ପଢ଼ିଲାବେଳେ କାନରେ ଅଙ୍ଗୁଳି ଦେଇ ଡାକିବାର ନାମ ।

ଆଜାନନ—ବଂ. ସୃଷ୍ଟିକାଳପର୍ଯ୍ୟନ୍ତ ଜାତ ବେଦାଦି, ବେଦ ଦୁଇପ୍ରକାର-ଆଜାନ ଓ କର୍ମବେଦ ।

ଆଜାନଦେବ—ପୁଂ. ବ. ଦେବତ୍ୱ ପ୍ରାପ୍ତ, ଚିରପ୍ରସିଦ୍ଧ ଦେବ, ସୃଷ୍ଟିକାଳରୁ ଦେବ ।

ଆଜାନା—ଗ୍ରା. ଅଜ୍ଞାତ, ଯାହା ଜଣାଯାଏ ନାହିଁ, ଅଜଣା, ଅପରିଚିତ ।

ଆଜାନି—ପୁଂ.ବଂ. ( ଆ + ଜନ + ଇ ) ଜନକ, ଜନ୍ମଦାତ୍ରୀ, ଅନୁଜାତ ।

ଆଜାନିକ୍ୟ—କ୍ଲୀ. ବ. ଆଜନ୍ମସିଦ୍ଧ ପଦାର୍ଥର ଭାବ ଓ କର୍ମ । [ ଯାଏ ।

ଆଜାନୁ—ଅବ୍ୟ. ଜାନୁ ପର୍ଯ୍ୟନ୍ତ, ଆଣ୍ଠୁ

ଆଜାନୁଲମ୍ବିତ—ବି. ବଂ. ଜାନୁଦେଶପର୍ଯ୍ୟନ୍ତ ଲମ୍ବମାନ,ଆଣ୍ଠୁ ପର୍ଯ୍ୟନ୍ତ ବିସ୍ତୃତ ।

ଆଜାନେୟ—ପୁଂ. ବ. ( ଆଜ - ମୀ. ଆଜେନୟ) ଉତ୍ତମ ଅଶ୍ୱ, ଯୁଦ୍ଧ ଜାଣିବା ଅଶ୍ୱ ।

ଆଜାସ୍ୟନ—ପୁଂ. ସ୍ତ୍ରୀ. ( ଅଜ + ଆସ୍ୟନ) ଅଜନାମକ ରାଜାଙ୍କର ପୁତ୍ର, ଦଶରଥ, ଅଜନାମକ ବ୍ରାହ୍ମଣପୁତ୍ର ।

ଆଜି—ବ. (ଅଜ + ଭ.ଇ, ସମରଭୂମି, ସଂଗ୍ରାମ, ସମତଳକ୍ଷେତ୍ର, କ୍ଷଣ, ମାର୍ଗ, ଆକ୍ଷେପ, ଦେଶଭାଷାରେ ଅଦ୍ୟ, ନିନ୍ଦା, (ଯା) ଆହ୍ଲ, ମାତାମହୀ ।

ଆଜିକ—ଗ୍ରା.ଅବ୍ୟ. (ସଂ.ଅଦ୍ୟ,କେବଳମାତ୍ର ଆଜଦିନ ।

ଆଜିକା—ଗ୍ରା. ବ. ( ସଂ.ଅଦ୍ୟ ) ଅଦ୍ୟତନ, ଆଜିଦିନର, ଆଜି ଘଟିବା ।

ଆଜିକାର—ଗ୍ରା.ବଂ.ଆଜିଦିନର, ଅଦ୍ୟତନ, ଆଜି ଘଟିବା ।

ଆଜିକାଲି—( ଗ୍ରା. ) ଅବ୍ୟ, ସେବେ, ବର୍ତ୍ତମାନ, ଅଧୁନା, ସମ୍ପ୍ରତି, (ସଂ.ଅଦ୍ୟକଲ୍ୟ )

ଆଜିକି ଗ୍ରା.ଅବ୍ୟ, ଆଜିପର୍ଯ୍ୟନ୍ତ, ଆଜଦିନ ପର୍ଯ୍ୟନ୍ତ ସୁମାରି କରିବାରେ, ଆଜିକୁ , ଆଜିଠାରୁ ।

ଆଜତକ—ଗ୍ରା. କ୍ରି. ବି°. (ସଂ.ଅ-ତକ) ଆଜପର୍ଯ୍ୟନ୍ତ ।

ଆଜନିସ୍ତ—ବି°. ଚର୍ମର ନିକଟସ୍ଥ ପ୍ରଦେଶାଦି

ଆଜିର—ଗ୍ରା. ବି°. ଆଜିକାର, ଆଜି-ଦିନର, ଅଦ୍ୟତନ ।

ଆଜିଣ—ବି°.ଅଗଣାର ନିକଟସ୍ଥପ୍ରଦେଶାଦି, ଉଠାଇବାର ନିକଟ ଭୂମି, (ଗ୍ରା. ବି°.) ଆଜିକାର, ଆଜିଦିନର, ଅଦ୍ୟତନ ।

ଆଜିରେସ୍ତ—ବି°. ପ୍ରାଙ୍ଗଣର ନିକଟସ୍ଥ ପ୍ରଦେଶାଦି, ଉଠାଇବାଦ୍ୱାରା ଯେ ଯେ ବସ୍ତୁ ଜନ୍ମେ ।

ଆଜିହାନ—କ୍ରି. ବି°. (ଆ+ହନ୍+କ. ଆନ) .ଆଗମନଶୀଳ, ଆସିଥିବା, (ସ୍ତ୍ରୀ) ଆଜିହାନା ।

ଆଜିହର୍ଷ—ସ୍ତ୍ରୀ. ବି. (ଆ+ହୃ+ସ+ଅ+ଆ) ଆହରଣଇଚ୍ଛା, ଆହରଣକରିବାର ଇଚ୍ଛା ।

ଆଜୀକୃଣ—କ୍ଲୀ. ବି. (ଆଜୀ+କୃଣ୍+କ) ମର୍ଯ୍ୟାଦାର ଆବରକ ଦେଶ ।

ଆଜୀକୃଣିକ—ପୁଂ. ବି. (ଆଜୀ+କୃଣ୍+ଅକ) ପଥ, ଅଧ୍ୟାୟ, ନ୍ୟାୟ, ବିହାର, ମନୁଷ୍ୟ, ହସ୍ତୀ, ଆଜିକୃଣ ଦେଶଜାତ ।

ଆଜୀଗର୍ତ୍ତି—ପୁଂ.ସ୍ତ୍ରୀ. ଆଜିଗର୍ତ୍ତିର କନ୍ୟା ବା ପୁତ୍ରରୂପ ସନ୍ତାନ ।

ଆଜୀବ—ପୁଂ. ବି. (ଆ+ଜୀବ୍+ଅ) ଜୀବନୋପାୟ ଦ୍ରବ୍ୟାଦି, ଉପାୟ, ବୃତ୍ତି, ଜୀବନ ନିମିତ୍ତ ଅବଲମ୍ବ,ଜୀବନୋପାୟକାରୀ ।

ଆଜୀବନ—କ୍ଲୀ. ବି. (ଆ+ଜୀବ୍+ଣ, ଅନ) ବୃତ୍ତିର ଉପାୟ, ଜୀବନର ଉପାୟ, ଜୀବିକା ।

ଆଜୀବିକା—ସ୍ତ୍ରୀ ବି. ଜୀବିକା-ବୃତ୍ତି,ଜୀବନ-ଧାରଣ ଉପାୟ, (ବି°) ଆଜୀବକ, ଜୀବନରକ୍ଷକ ।

ଆଜୀବ୍ୟ—କ୍ରି. ବି. (ଆ+ଜୀବ୍+ଣ, ଯ) ଜୀବନୋପାୟ-ବୃତ୍ତ୍ୟାଦି, ବୃତ୍ତି ନିମିତ୍ତ ଆଶ୍ରିତ ନୃପାଦି, ସହାୟ, (କ୍ଲୀ) ଜୀବିକା, ଜୀବନୋପାୟ ।

ଆଜୀର—ଯା. ବି. ଗୋଲାମ, କ୍ରୀତଦାସ ।

ଆଜୁ—ଗ୍ରା. (ଅବ୍ୟ) ଆଜିଠାରୁ ଆରମ୍ଭ-କରି, ଆଜିଠାରୁ ଏଣିକି ।

ଆଜୂଃ—ସ୍ତ୍ରୀ. ବି. (ଆ+ଜୁ+ଉର୍) ଅବୈତନିକ କାର୍ଯ୍ୟ, ବେଗାର ।

ଆଜୁଁ—ଗ୍ରା. (ଅବ୍ୟ) ଆଜିଠାରୁ, ଆଜି-ଠାରୁ ଏଣିକି, ଆଜିଠାରୁ ଆରମ୍ଭକରି ।

ଆଜୂ—ସ୍ତ୍ରୀ. ବି. (ଆ+ଜୁ+କ.କ୍ୟପ୍) ଅବୈତନିକ କର୍ମକାରକ,ଠିକାଗୃକର, ଅସ୍ଥାୟୀଗୃକର ।

ଆଜୂର୍—ସ୍ତ୍ରୀ.ବି. (ଆ+ଜୂର୍+କ୍ୟପ୍) ବିଷ୍ଟି, ମୁକୁଟ, ଅବୈତନିକ ।

ଆଜ୍ଞାନ—ଯା. କ୍ରି. ବପନ ବା ରୋପଣ କରିବା, ବୁଣିବା ବା ରୋଇବା ।

ଆଜ୍‌ଜାର—ଯା. ବି. ଉଚ୍ଚଭୂମି, ଜଳରେ ବୁଡ଼ି ନ ଯିବା ଭୂମି ।

ଆଜ୍ଞପ୍ତ—ପୁଂ. ବି°. (ଆ+ଜ୍ଞା+ଣିଚ୍+ମି.ତ) ଆଦିଷ୍ଟ, ଆଜ୍ଞାପିତ, ଅନୁମତି-ପ୍ରାପ୍ତ, (ସ୍ତ୍ରୀ) ଆଜ୍ଞପ୍ତା ।

ଆଜ୍ଞପ୍ତି—ସ୍ତ୍ରୀ.ବି. (ଆ+ଜ୍ଞା+ଣିଚ୍+ଭା.ତି) ଆଜ୍ଞା, ଆଦେଶ, ଅନୁମତି ।

ଆଜ୍ଞା—ସ୍ତ୍ରୀ. ବି. (ଆ+ଜ୍ଞା+ଅ+ଆ) ଆଦେଶ, ଅନୁମତି, ନିର୍ଦ୍ଦେଶ, ହୁକୁମ ।

ଆଜ୍ଞାକର—ପୁଂ. ବି°. (ଆଜ୍ଞା+କୃ+ଅ) ଆଦେଶପ୍ରତିପାଳକ, ଆଦେଶ ନୁ-ସାରେ କାର୍ଯ୍ୟକାରୀ ଭୃତ୍ୟ, (ସ୍ତ୍ରୀ)ଆଜ୍ଞା-କାରିଣୀ ।

ଆଜ୍ଞାକରିବା—ଗ୍ରା. କ୍ରି. ଆଜ୍ଞାପାଳନ କରିବା, ଆଦେଶଦେବା, କଥାରେ ହଁ କରିବା, ଗୁରୁଜନମାନେ ଡାକିଲେ ସେମାନଙ୍କୁ ଆଜ୍ଞା ବୋଲି ଉତ୍ତର ଦେବା ।

ଆଜ୍ଞାକର୍ତ୍ତା—ପୁଂ. ବି°.(୬ତତ୍) ନିଦେଶ ପ୍ରଦାନକାରୀ, ଆଦେଶଦାନ, ଆଦେଷ୍ଟା, (ସ୍ତ୍ରୀ) ଆଜ୍ଞାକର୍ତ୍ତ୍ରୀ ।

ଆଜ୍ଞାକାରୀ—ପୁଂ ବି°. (ଆଜ୍ଞା+କୃ+ଇନ୍) ଯେ ଆଦେଶ ପାଳନ କରେ, ଆଜ୍ଞାବହ, ଆଦେଶାନୁବର୍ତ୍ତୀ, (ସ୍ତ୍ରୀ) ଆଜ୍ଞାକାରିଣୀ ।

ଆଜ୍ଞାକ୍ରମେ—ଗ୍ରା. କ୍ରି. ବି°. ଆଦେଶାନୁ-ସାରେ, ଆଦେଶାନୁବର୍ତ୍ତୀହୋଇ ।

ଆଜ୍ଞାଗତ—ପୁଂ.ବି. (ଆଜ୍ଞା+ଗମ୍+ତ) ଯେ ଆଦେଶ ପାଇଅଛି, ଯେ ଆଜ୍ଞା-ପ୍ରାପ୍ତ ହୋଇଅଛି ।

ଆଜ୍ଞାଚକ୍ର—କ୍ଲୀ.ବି. (କ.ଧା) ଷଟ୍‌ଚକ୍ର-ମଧ୍ୟସ୍ଥ ଷଷ୍ଠଚକ୍ର,ଭ୍ରୂମଧ୍ୟସ୍ଥ ଦ୍ୱିଦଳ ପଦ୍ମା-କାର ଚକ୍ରବିଶେଷ ।

ଆଜ୍ଞାତ—ପୁଂ.ବି°.(ଆ+ଜ୍ଞା+ତ)ସମ୍ୟକ୍ ଜ୍ଞାତ, ଆଜ୍ଞାପ୍ରାପ୍ତ, ଅଲ୍ପଜ୍ଞାତ ।

ଆଜ୍ଞାତୀର୍ଥ—କ୍ଲୀ. ବି. ଆଜ୍ଞାଚକ୍ର, ଆଜ୍ଞା-ଚକ୍ରରେ ମନରେ ସ୍ନାନକରିବାର ଥିବାରୁ ଏହାକୁ ଆଜ୍ଞାତୀର୍ଥ କୁହାଯାଏ ।

ଆଜ୍ଞାଦାତା—ପୁଂ. (ଆଜ୍ଞା—ଦାତୃ) ଯେ କୌଣସିହୁକୁମଦିଅନ୍ତି (ସ୍ତ୍ରୀ)ଆଜ୍ଞାଦାତ୍ରୀ ।

ଆଜ୍ଞାଧୀନ—କ୍ରି.ବି°.(୬ତତ୍;) ଆଦେଶା-ନୁବର୍ତ୍ତୀ,ଆଜ୍ଞାକାରୀ, ଆଦେଶର ଅଧୀନ, (ସ୍ତ୍ରୀ) ଆଜ୍ଞାଧୀନା ।

ଆଜ୍ଞାନ—କ୍ଲୀ.ବି.(ଆ+ଜ୍ଞା+ଅନ)ଆଜ୍ଞା କରିବା, ମାନସବୃତ୍ତିବିଶେଷ, ସଂଜ୍ଞାନ, ବିଜ୍ଞାନ,ମେଧା,ଦୃଷ୍ଟି,ଧୃତି,ମତି,ସଂକଳ୍ପ-ଇତ୍ୟାଦି ।

ଆଜ୍ଞାନୁଗ—ପୁଂ.ବି°.(ଆଜ୍ଞା+ଅନୁ+ଗମ୍+ଅ)ଆଜ୍ଞାନୁସାରେ ଗମନମକାରୀଭୃତ୍ୟ, ଆଜ୍ଞାନୁବର୍ତ୍ତୀ, ଆଜ୍ଞାନୁଗତ ।

ଆଜ୍ଞାନୁଗାମୀ—ପୁଂ. ବି. ଆଜ୍ଞାନୁସାରୀ, ଆଦେଶକ୍ରମେ ପଛରେ ଆସିବ ଭୃତ୍ୟ, ସେବକ, (ସ୍ତ୍ରୀ) ଆଜ୍ଞାନୁଗାମିନୀ ।

ଆଜ୍ଞାନୁଯାୟୀ—ପୁଂ. ବି°. (୬ତତ୍) ଆଜ୍ଞାନୁସାରେ ଗମନ କରୁଥିବା ଭୃତ୍ୟାଦି ସେବକ, (ସ୍ତ୍ରୀ) ଆଜ୍ଞାନୁଯାୟିନୀ ।

ଆଜ୍ଞାନୁବର୍ତ୍ତନ—କ୍ଲୀ. ବି. (୬ତତ୍) ଆଦେଶପାଳନ, ହୁକୁମମାନିବା, କଥା ଶୁଣିବା ।

ଆଜ୍ଞାନୁବର୍ତ୍ତିତା—ସ୍ତ୍ରୀ.ବି.(ଆଜ୍ଞାନୁବର୍ତ୍ତିନ-+ଭା.ତା)ଆଜ୍ଞାପାଳନ,ଆଦେଶପାଳନ ।

ଆଜ୍ଞାନୁରୂପ- କ୍ରି.ବି°.(୬ତତ୍)ଆଦେଶାନୁ-ରୂପ, ଅନୁମତ୍ୟନୁଯାୟୀ ।

ଆଜ୍ଞାନୁବର୍ତ୍ତୀ—ପୁଂ. ବି°. (୬ତତ୍) ଯେ ସର୍ବଦା ଆଦେଶ ମାନି ଚଳେ,ଆଦେଶ-

ମାତ୍ରେ ଆସେ ହୁକୁମ ମାନ୍ୟକାରୀ, ଦାସ, ଭୃତ୍ୟ ସେବକ, (ସ୍ତ୍ରୀ) ଆଜ୍ଞାନୁବର୍ତ୍ତିନୀ ।
ଆଜ୍ଞାନୁସାରୀ—ପୁଂ. ବିଂ. (୬ତତ୍ପୁ) ଯେ ଆଜ୍ଞାନୁସାରେ କର୍ମ କରେ,ଯେ କହିବାକ୍ଷଣି କାର୍ଯ୍ୟ କରେ, ଭୃତ୍ୟ, ସେବକ, (ସ୍ତ୍ରୀ) ଆଜ୍ଞାନୁସାରିଣୀ ।
ଆଜ୍ଞାପକ—ପୁଂ. ବିଂ. (ଆ + ଜ୍ଞା + ଣିଚ୍ + କ.ଅକ ) ଆଦେଷ୍ଟା, ଆଜ୍ଞାଦାତା, ସ୍ୱାମୀ,ନିୟୋଗକର୍ତ୍ତା, (ସ୍ତ୍ରୀ ଆଜ୍ଞାପିକା ।
ଆଜ୍ଞାପତ୍ର—କ୍ଲୀ.ବି. ଆଜ୍ଞା + ପତ୍ର ଆଦେଶଜ୍ଞାପକ ପତ୍ର, ହୁକୁମନାମା, ଆଜ୍ଞାସୂଚକ ପତ୍ର । [ଙ୍କର ଆଦେଶଲିପି ।
ଆଜ୍ଞାପତ୍ରିକା—ବି. ରାଜା ବା ଦେବତା-
ଆଜ୍ଞାପନ—କ୍ଲୀ.ବି.(ଆ + ଜ୍ଞା + ଣିଚ୍ + ଭା.ଅନ ) ଆଦେଶଦାନ, ନିଯୋଜନ ।
ଆଜ୍ଞାପାଳନ – କ୍ଲୀ. ବି. (୬ତତ୍ପୁ) ହୁକୁମ ମାନି କାର୍ଯ୍ୟ କରିବା, ଆଦେଶାନୁସାରେ କର୍ମ କରିବା ।
ଆଜ୍ଞାପିତ—ବି. ବି. ( ଆ + ଜ୍ଞାପି + ର୍ମ. ତ) ଆଜ୍ଞପ୍ତ, ଆଦିଷ୍ଟ,(ସ୍ତ୍ରୀ ଆଜ୍ଞାପିତା ।
ଆଜ୍ଞାପ୍ରମାଣ—ବି.ବିଂ.(ବ.ବ୍ରୀ) ଆଦେଶାନୁରୂପ, ହୁକୁମମତ ।
ଆଜ୍ଞାବଳା—ଗ୍ରା. ବିଂ. (ଆଜ୍ଞା + ବଳା) ନିର୍ବୋଧ ଭୃତ୍ୟ, କୌଣସି ଲୋକ ବା ଭୃତ୍ୟ ଯାହାଠାରୁ ଉପକାର ପାଇବା ଆଶାରେ ସେ ଯାହା କହେ ବା କରେ ସେ ସମସ୍ତ ଅସମୀଚୀନ ହେଲେ ସୁଦ୍ଧା ସେହି କଥା ବା କାର୍ଯ୍ୟକୁ ଅନୁମୋଦନ କରି ଚାଲେ ।
ଆଜ୍ଞାବହ—ପୁଂ. ବିଂ. (ଆଜ୍ଞା + ବହ + କ.ଅ) ଚାକର, ଦାସ, ସେବକ, ଆଜ୍ଞାକାରୀ, ଆଦେଶପାଳକ,(ସ୍ତ୍ରୀ)ଆଜ୍ଞାବହା ।
ଆଜ୍ଞାବଚ୍ଛୁ—ପ୍ରା. (ସମ୍ବ.) ସାନ କଙ୍କଡ଼ା ବଗ୍ର ।
ଆଜ୍ଞାଭଙ୍ଗ—ପୁଂ. ବି (୬ତତ୍ପୁ ଅଦେଶ ନ ମାନିବା, ହୁକୁମ ନ ମାନିବା,ଆଦେଶାତିବର୍ତ୍ତନ,ଆଜ୍ଞାଲଙ୍ଘନ । [ କରେ ।
ଆଜ୍ଞାସମ୍ପାଦୀ—ପୁଂ.ବିଂ. ଯେ ଆଜ୍ଞାପାଳନ
ଆଜ୍ଞାହେବା—ଗ୍ରା.କ୍ରି.(ଆଜ୍ଞାକରିବାଦେଖ) ।

ଆଜ୍ୟ—କ୍ଲୀ. ବି. (ଆ + ଅଞ୍ଜ + କ.ଯ) ଘୃତ, ହବିଃ, ଘିଅ ।
ଆଜ୍ୟଦୋହ—କ୍ଲୀ ବି. ସାମବେଦର ସୂକ୍ତବିଶେଷ ।
ଆଜ୍ୟପ—ପୁଂ. ବି. (ଆଜ୍ୟ + ପା + ଅ) ବୈଶ୍ୟମାନଙ୍କର ପିତୃଦେବ, ପୁଲସ୍ତ୍ୟର ପୁତ୍ର, (ବିଂ) ଘୃତପାୟୀ,(ସ୍ତ୍ରୀ)ଆଜ୍ୟପା ।
ଆଜ୍ୟଭାଗ—ପୁଂ. ବିଂ. (୬ତତ୍ପୁ) ଘୃତର ଏକ ଦେଶ, ଘୃତର ବୈଦିକ ଆହୁତିବିଶେଷ ।
ଆଜ୍ୟଭୁକ୍—ପୁଂ.ବି. (ଆଜ୍ୟ + ଭୁଜ୍ + କ.କ୍ୱିପ୍ ) ଦେବତା, ଅଗ୍ନି, ହୁତାଶନ, ଯେ ଘୃତାହୁତ ଭୋଗ କରନ୍ତି, (ବିଂ) ଘୃତଭୋଜୀ ।
ଆଜ୍ୟସ୍ଥାଳୀ—କ୍ଲୀ. ବି. (ଆଜ୍ୟ + ସ୍ଥାଳୀ) ଯେଉଁ ପାତ୍ରରେ ହୋମାର୍ଥେ ଘୃତ ଥାଏ, ଘିଅପଲମ ।
ଆଝାଲ—ଗ୍ରା.ଝାଲାନୁହେ,କଟୁରସ ନୁହେଁ, ଲଙ୍କାବର୍ଜିତ, ଯାହା ଝଳା ବା ପୋଡ଼ା ହୋଇନାହିଁ ।
ଆଟୁଁ—ଗ୍ରା.(ଅବ୍ୟ)ଆଜିଁ ,ଆଜହୁଁ ,ଆଜିଠାରୁ, ଆଦ୍ୟରୁ, ବର୍ତ୍ତମାନଠାରୁ ।
ଆଞ୍ଚ—ଗ୍ରା. ବି. ଭାବନା, ଦକା, ଦାଉ, କଳନା,ଅଳ୍ପମାତ୍ରବାଧା,(ବିଂ)ସାମାନ୍ୟ ।
ଆଞ୍ଚ—ଗ୍ରା.ବି. (ସଂ.ଅର୍ଚ୍ଚିସ୍)ଉତ୍ତାପ,ତେଜ ଶିଖା, ନିଆଁ ଧାସ, ସାମାନ୍ୟ ଯୋଗ ବା ସ୍ପର୍ଶ, ସାମାନ୍ୟ ବାଧା, ଆଘାତ ବା ପରିଶ୍ରମ ।
ଆଞ୍ଚପାଞ୍ଚ—ଗ୍ରା.ବି. ବାଣସନ୍ଧାନ ।
ଆଞ୍ଚୁ—ପ୍ରା. (ଗଞ୍ଜାମ) ବି. ଘୋଡ଼ାଗାଡ଼ି ପ୍ରଭୃତିର ଡାକ ।
ଆଞ୍ଚିବା—ଗ୍ରା.କ୍ରି.ଅନୁମାନ କରିବା,ମନେ, ମନେ ଠିକ୍ କରିବା, ଆକଳନକରିବା, ଟାଣିବା, ନୁଆଁଇବା, ଇଚ୍ଛାକରିବା, ଅସ୍ତ୍ର ଉଠାଇବା । [ ବା ବ୍ରଣ ।
ଆଞ୍ଚିଲ୍—ପ୍ରା. (ମେଦିନୀପୁର ବି. ଭରୁଡ଼ି
ଆଞ୍ଚୁଆ—ଗ୍ରା.ବି (ସଂ.ଆଚମନ) ଭୋଜନ ପରେ ତୁଣ୍ଡ ଧୋଇବା ।

ଆଞ୍ଚୁଡ଼ା—ଗ୍ରା. ବିଂ. ଘଷି ହୋଇ ଚର୍ମ ଛଡ଼ା ହୋଇ ଯାଇଥିବା,(ବି)ଚର୍ମ ଛଡ଼ା,ଚର୍ମ ଛଡ଼ା ଦାଗ ।
ଆଞ୍ଚୁଡ଼ିବା—ଗ୍ରା. କ୍ରି. ଚର୍ମ ଛଡ଼ିବା ।
ଆଞ୍ଜନ—କ୍ଲୀ. ବି. (ଆ + ଅଞ୍ଜ୍ + ଅନ) ସକଳ ଦିଗରେ କଜ୍ଜଳ, ଅଞ୍ଜନାର ପୁତ୍ର, (ପୁଂ) ହନୁମାନ୍ ।
ଆଞ୍ଜନ,ଆଞ୍ଜୁକ—ବି.ଆକ୍ଷିପତାର ଯନ୍ତ୍ରଣାଦାୟକ ବ୍ରଣବିଶେଷ, ଆଲୁଅପ୍ରଭୃତି, କୃଷ୍ଣବର୍ଣ୍ଣ ଖନିଜ ପଦାର୍ଥ, ଚକ୍କଣ ଇଟା ରଙ୍ଗର ଟିଙ୍କିପିଟିବିଶେଷ, ହନୁମାନ୍ ।
ଆଞ୍ଜନକ୍ୟ—କ୍ଲୀ. ବି. ଅଞ୍ଜନ ସାଧକତ୍ୱ ।
ଆଞ୍ଜନେୟ—ପୁଂ. ବି. (ଅଞ୍ଜନା + ଏୟ) ଅଞ୍ଜନାର ପୁତ୍ର ହନୁମାନ୍ ।
ଆଞ୍ଜଳିକ୍ୟ—କ୍ଲୀ. ବି. ଆଞ୍ଜୁଳି କରିବା ।
ଆଞ୍ଜାମ— ଯା ) ନିର୍ବାହ, ସରବରାହ, ବନ୍ଦୋବସ୍ତ, ଯୋଗାଡ଼ ।
ଆଞ୍ଜିନେୟ—ପୁଂ.ବି. ସର୍ପବିଶେଷ,ସରୀସୃପବିଶେଷ, ଆଞ୍ଜନୀ ।
ଆଞ୍ଜିହିଷା—ସ୍ତ୍ରୀ. ବି. (ଆ + ଅନହ୍ + ସନ୍ ଅ) ଯିବାର ଇଚ୍ଛା, ଗମନେଚ୍ଛା ।
ଆଞ୍ଜୁମାନ—(ଯା) ବି. ସଭା ସମିତି ।
ଆଟ୍—ଗ୍ରା. ବି. (ସମ୍ବ) ପିଣ୍ଡା, ଅଳିନ୍ଦ ।
ଆଟକ—ଗ୍ରା.ବି. ଆବରଣ, ବାଧା, ଅବରୋଧ,ଅସମ୍ଭବ,ନିରୋଧ, କଏଦ, (ବିଂ). ବନ୍ଦ, ଅବରୁଦ୍ଧ । [ ଦେବା ।
ଆଟକାଇବା—ଗ୍ରା. ରୁଦ୍ଧକରିବା, ବାଧା-
ଆଟକାଲ୍—(ବଙ୍ଗ) ଅନୁମାନ, ଅନ୍ଦାଜ ଅଟକାଇବା ।
ଆଟକୁଡ଼ା—( ବଙ୍ଗ ) ଯେ ଉଚ୍ଛିଷ୍ଟ ଗୋଟାଇ ଖାଏ, ଅଣ୍ଟୁକୁଡ଼ା, ଯାହାର ସନ୍ତାନ ନାହିଁ ।
ଆଟକୌଡ଼େ—(ବଙ୍ଗ) ବାଳକ ଜନ୍ମର ଅଷ୍ଟମଦିନ ପିଲାମାନେ ଗୀତ ଗାଇ କୁଲାରେ କଉଡ଼ି ଧରି ଖେଳନ୍ତି ଆଠକଉଡ଼ି ।
ଆଟଙ୍କ—ଗ୍ରା.ବି. ଦୁଇହାତରେ ଅଙ୍ଗୁଳିମାନଙ୍କଦ୍ୱାରା ବେଷ୍ଟିତ ସ୍ଥାନ, ଏକ ବଡ଼ା, ଅଟଙ୍ଗା ।
ଆଟଣା—ଗ୍ରା. ବି. ମଧ୍ୟଭଳିଆ ହାଣ୍ଡି,ବଡ଼ ଆଟିକା, ସାନ ନହଡ଼ି ।

ଆଟପରେ—ଅଷ୍ଟପ୍ରହରର ଅପଭ୍ରଂଶ, ଆଠପ୍ରହର ।
ଆଟପିଲିସ୍ବା—ଗ୍ରା. ବି. ଆଠପଲ ଓଜନ ସାହାର, (ଯେପର ଆଠପଲିଆ ଛାଲ) ।
ଆଟପିଠା—(ବଙ୍ଗୀୟ) ଅତ୍ୟନ୍ତ କଷ୍ଟସହିଷ୍ଣୁ, ଅଣ୍ଟାପିଟି ଲଗାଇ କାମକରିବା ।
ଆଟଭଜା—(ବଙ୍ଗୀୟ) ଆଠଭଜା, ଆଠପ୍ରକାର ଭଜା ଜିନିଷ । [ମୀର ଚନ୍ଦ୍ର ।
ଆଟମୀକ—(ବଙ୍ଗୀୟ) ଅଷ୍ଟମିକ, ଅଷ୍ଟ-
ଆଟରୁଷ—ପୁଂ. ବି. ବାସକ (ଙ୍ଗ) ବୃକ୍ଷ ।
ଆଟଲ – ଗ୍ରା.ବଙ୍କା,ମାଛ ଧରିବାର ବଡ଼ଘଣବିଶେଷ ।
ଆଟଲା—ଗ୍ରା. ବଡ଼ା, ସ୍ଥୂଳ, ଆଟୁଲା ।
ଆଟଲାଣ୍ଟିକମହାସାଗର—ପୁଂ. ବି. ଇଉରୋପ, ଆଫ୍ରିକା ଏବଂ ଆମେରିକା ମଧ୍ୟରେ ଅବସ୍ଥିତ । (ବିଶେଷ ।
ଆଟଲସ—ପୁଂ. ବି. ସ୍ୱନାମଖ୍ୟାତ ପର୍ବତ-
ଆଟବିକ—ପୁଂ. ବି. (ଅଟବୀ+ଇକ) ଅରଣ୍ୟାଗ୍ରସ୍ତ, ବନବାସୀ, ଆରଣ୍ୟକ, ଜଙ୍ଗଲ, (ସ୍ତ୍ରୀ)ଆଟବିକୀ, (ବି) ଆରଣ୍ୟକ ସୈନ୍ୟବିଶେଷ ।
ଆଟଣୀ—ସ୍ତ୍ରୀ. ବି. ଦକ୍ଷିଣଦେଶସ୍ଥ ସଜନପୁଷ୍ପବିଶେଷ । [(ଗଞ୍ଜାମ) ମଲାଟ ।
ଆଟା—(ବଙ୍ଗୀୟ)ଗଦ,ଗହମଚୂନା,ଅଟା,
ଆଟଶାସ୍ୟା—(ବଙ୍ଗୀୟ) ଯେ ସନ୍ତାନ ଆଠ ମାସରେ ଜନ୍ମ ହୋଇଥାଏ, ଆଠମାସିଆ ।
ଆଟାଶୀମା—(ବଙ୍ଗୀୟ) ଯହିଁରେ ଅଟାଅଛି, ଅପକ୍ୱ, ଅଟାଶୀରଶୀ ।
ଆଟାସଟା—(ବଙ୍ଗୀୟ) ଦୃଢ଼, ମଜଭୁତ ।
ଆଟି—ପୁଂ.ବି. (ଆ+ଅଟ+ଇ)ଶରାଳୀ ପକ୍ଷୀ, ମତ୍ସ୍ୟବିଶେଷ, ହଂସରାଢ଼ୀ, (ଗ୍ରା. ବି) ବଡ଼ା, ଗୋଗ୍ଣ । [ଇକ୍ଷୁକ୍ଷ ।
ଆଟିକା—ପୁଂ.ବିଂ.ଗମନେ ପ୍ରବୃତ୍ତ,ଯିବାକୁ
ଆଟିକା—ଗ୍ରା.ବି. ଗ୍ରେଟ ମାଟିହାଣ୍ଡି, ପୁରୀ ଜଗନ୍ନାଥ ଦର୍ଶନକୁ ଆସିଥିବା ଯାତ୍ରୀମାନେ ଶ୍ରୀ ଜଗନ୍ନାଥଙ୍କଠାରେ ଚିରକାଳ ଭୋଗ ଲଗିବା ଉଦ୍ଦେଶ୍ୟରେ ପଣ୍ଡାମାନଙ୍କ ଜମା ଯେଉଁ ଧନ ଦେଇଯାଆନ୍ତି ବା ଦେବାକୁ ସ୍ୱୀକାର କରଯାଆନ୍ତି ।
ଆଟିକାକରିବା—ଗ୍ରା. (ପୁରୀ) କ୍ରି. ଜଗନ୍ନାଥଙ୍କଠାରେ ଚିରକାଳ ଭୋଗ ଲଗିବା ଉଦ୍ଦେଶ୍ୟ ପଣ୍ଡାଙ୍କ ଜମା ଧନ ଦେବା ବା ସ୍ୱୀକାର କରିବା ।
ଆଟିକାଚହୁଁ—ଗ୍ରା. ପୁଂ. ବିଂ. (ବ୍ୟଙ୍ଗ ଓ ନିନ୍ଦାର୍ଥ) ଯେଉଁ ବ୍ୟକ୍ତି ରନ୍ଧା ଖାଦ୍ୟ ଦ୍ରବ୍ୟ ପ୍ରତି ସର୍ବଦା ଗୃଧ୍ନି ରହିଥାଏ ଓ ତାହା ଯେପରି ବ୍ୟୟିତ ହୁଏ ସେଥିପ୍ରତି ସାବଧାନ ଥାଏ; ହାଣ୍ଡିଚୁଙ୍ଗା, (ସ୍ତ୍ରୀ) ଆଟିକାଚହୁଁ, ହାଣ୍ଡିଚୁଙ୍ଗୀ ।
ଆଟିକାପିଠା—ଗ୍ରା. ବିଂ. କ୍ରୋଧନଶୀଳ, ଦୁଷ୍ଟ, କୃତଘ୍ନ, (ବି) ଯେଉଁ ବ୍ରାହ୍ମଣ ଦଶାହାଦିକ୍ରିୟା କରନ୍ତି,ନିନ୍ଦିତ ବ୍ରାହ୍ମଣ, ଦଶାହ ଦିନ କ୍ରିୟା ଧରିଥିବା ବ୍ୟକ୍ତିଦ୍ୱାରା ଦଶଭୁଠରେ ଭସାଇ ଦଅାଯିବା ଦଗ୍ଧହାଣ୍ଡିକୁ ପ୍ରହାର, ହାଣ୍ଡିପିଠା ।
ଆଟିକା ବାନ୍ଧିବା—ଗ୍ରା. କ୍ରି. (ପୁରୀ) (ଆଟିକାକରିବା ଦେଖ), ଗ୍ରା. ଛଟ ବାନ୍ଧିବା, (କେତେ ଲୋକ ଅଣ୍ଟାରେ ଗର୍ଭିଣୀ ସ୍ତ୍ରୀର ବଢ଼ିଥିବା ପେଟ ଦେଖି ଓଲିଆ ବାନ୍ଧିବା, ଆଟିକା ବାନ୍ଧିବା ବା ଛଟ ବାନ୍ଧିବା କହିଥାନ୍ତି) ।
ଆଟିକୀ—ସ୍ତ୍ରୀ.ବି. ବାଳିକା, ଅପ୍ରାପ୍ତବୟସ୍କା ଯେ ବାହାରକୁ ଯିବାର ଯୋଗ୍ୟ ।
ଆଟିକନ—କ୍ଲୀ.ବି. (ଆ+ଟିକ୍+ଅନ) ପିଲାମାନଙ୍କର ପ୍ରାଥମିକ ଅଳ୍ପ ଗତି ।
ଆଟୁ—ଗ୍ରା.ବି. (ସ.ଅଟ୍ଟ)ପଟୋତନ ଘର, ମାଟିକୋଠା, (ସମ୍ବ)ପିଣ୍ଡା, ବାରଣ୍ଡା ।
ଆଟୁଘର—ଗ୍ରା.ବି. ଫଟାନିର୍ମିତ ଛାତଘର ।
ଆଟୁଲା—ଗ୍ରା. ବି. କୁରାଢ଼ୀ ଆଦିର ମୂଳରେ ଥିବା ଛିଦ୍ର, କମାରର ହତିଆରବିଶେଷ ।
ଆଟୋପଟଙ୍କାର—ପୁଂ.ବି (କ.ଧା) ଦୁପ୍ତବାକ୍ୟ, ଦମ୍ଭୋକ୍ତି, ବଡ଼େଇ,ଆସ୍ଫାଳନ ।
ଆଠ—ବି. ବିଂ. ଅଷ୍ଟ,ଆଠସଂଖ୍ୟା ।
ଆଠଅଣି—ଗ୍ରା. ବି. ଅଧୁଲି, ଆଠଅଣା ମୂଲ୍ୟର ମୁଦ୍ରା । [(ଜିନିଷ) ।
ଆଠଅଣିଆଁ—ଗ୍ରା. ବିଂ. ଆଠଅଣାମୂଲ୍ୟର
ଆଠଅଂସିଆ,ଆଠଆଁସୁଆ—ଗ୍ରା ବି. (ସ. ଅଷ୍ଟ+ଅସ୍ର) ଆଠକୋଣବିଶିଷ୍ଟ ।
ଆଠକାଳବାରମାସୀ—ଗ୍ରା.(ଅବ୍ୟ)ବର୍ଷର ସମୁଦାୟକାଳ, ସର୍ବଦା, ଅନବରତ ।
ଆଠକୋଣିଆ—ଗ୍ରା. ବିଂ. ଆଠକୋଣବିଶିଷ୍ଟ, ଆଠଗୋଟି କୋଣ ଥିବା ।
ଆଠଗଡ଼—ଗ୍ରା. ବି. ଓଡ଼ିଶାର ଗଡ଼ଜାତ ରାଜ୍ୟବିଶେଷ, ଗଞ୍ଜାମର ଜମିଦାରୀବିଶେଷ ।
ଆଠଗଡ଼ିଆ—ଗ୍ରା. ବି. ଏକପ୍ରକାର ସୋରିଷ୍ମ (ଲଘୁ) ଧାନ ।
ଆଠଗଡ଼ିଆବ୍ରାହ୍ମଣ—ଗ୍ରା. ବି. ଓଡ଼ିଶାରେ ବାସ କରୁଥିବା ଶାସନୀ ବ୍ରାହ୍ମଣଙ୍କଠାରୁ ନିକୃଷ୍ଟ ଶ୍ରେଣୀସ୍ଥ ବ୍ରାହ୍ମଣ, ଏମାନେ ପରିବାଦ ଆମଦାନୀ କରି ବଞ୍ଚନ୍ତି ।
ଆଠଚେମା—ଗ୍ରା. ବି. (ଗଞ୍ଜାମ) ଏକପ୍ରକାର ଦେଶୀ କଉଡ଼ିଖେଳ ।
ଆଠଣୀ—ଗ୍ରା.ବି. ଅଧୁଲି, ଅର୍ଦ୍ଧମୁଦ୍ରା ।
ଆଠତାଳ—ଗ୍ରା. ବି. ସଙ୍ଗୀତର ତାଳବିଶେଷ । [ଖେଳ ।
ଆଠପଚଣ—ଗ୍ରା.ବି. ଏକପ୍ରକାର କଉଡ଼ି-
ଆଠପଣ—ଗ୍ରା.ବି. ଅର୍ଦ୍ଧେକ, ଅର୍ଦ୍ଧନଷ୍ଟନ୍ତ, (ବି) ଅର୍ଦ୍ଧେକ, ୧୬୦ ଗଣ୍ଡା ବା ୬୪୦ ଗୋଟା, (କ୍ରି.ବିଂ) ପୂର୍ଣ୍ଣ ପଦାର୍ଥ ବା ସଂଖ୍ୟାର ଅର୍ଦ୍ଧପରିମାଣ ।
ଆଠପହର—ଗ୍ରା. (ଅବ୍ୟ) ଦିନ ଚାରିପହର ଓ ରାତି ଚାରିପହର, ଏହିପରି ସମସ୍ତ ଦିନରାତି, ଅହର୍ନିଶ ।
ଆଠପେଣ୍ଡୁ—ଗ୍ରା. ବି. ଯଜନ, ଯାଜନ, ଅଧ୍ୟୟନ, ଅଧ୍ୟାପନ, ଦାନ, ପ୍ରତିଗ୍ରହ, ପୂଜା, ବୈଶ୍ୱଦେବ, ଏହି ବ୍ରାହ୍ମଣର ଅଷ୍ଟକର୍ମ ।
ଆଠପୋଇ—ଗ୍ରା. ବି. (ସ-ଅଷ୍ଟପଦୀ) ଆଠପଦଯୁକ୍ତ କବିତା ।
ଆଠବାଙ୍କ—ଗ୍ରା. ବିଂ. ଯେଉଁ ବ୍ୟକ୍ତିର ଅଙ୍ଗପ୍ରତ୍ୟଙ୍ଗ ବଙ୍କା, ବହୁସ୍ଥାନରେ ବଙ୍କ ।

ଆଠମଙ୍ଗଳା—ଗ୍ରା. ବି. (ସଂ ଅଷ୍ଟମଙ୍ଗଳ) ବିବାହର ଅଷ୍ଟମ ଦିବସ, ଉକ୍ତ ଦିବସର କାର୍ଯ୍ୟ । [ ବିଶେଷ ।

ଆଠମଲ୍ଲିକ—ଗ୍ରା.ବି.ଓଡ଼ିଶାର ଗଡ଼ଜାତ-

ଆଠମାସିଆ—ଗ୍ରା. ବି. (ପୁଂ.ସ୍ତ୍ରୀ) ଗର୍ଭର ଅଷ୍ଟମମାସରେ ଜାତ ଶିଶୁ ।

ଆଠାନ୍ତର—ଗ୍ରା. (ମେଦିନୀପୁର) ।

ଆଠିକାଠି—ଗ୍ରା. ବି. (ସଂ-ଅତି + କ୍ଲିଷ୍ଟ) ଅତିଶୟ କ୍ଲାନ୍ତ ।

ଆଠୁଆର—ଗ୍ରା. ବି. ( ସଂ-ଅଷ୍ଟ ) ଅଠି-ଆର (ଦେଖ), ଆଜିଠାରୁ ଏକ ସପ୍ତାହର ପରବର୍ତ୍ତୀ ଦିବସ, ଆଜିର ବାର (କ୍ରି·ବିଂ.) ଆଠଦିନରେ ଥରେ ।

ଆଠୁଆରଗାଧୁଆ—ଗ୍ରା. ବି. ପ୍ରସବ କରିବାର ଅଷ୍ଟମ ଦିବସରେ ପ୍ରସୂତିର ସ୍ନାନ, ଅଠିଆର ।

ଆଠୁଆରଭାର—ଗ୍ରା.ବି. ଧନୀଲୋକମାନଙ୍କ ଘରୁ ବିବାହିତା ଝିଅମାନଙ୍କ ଘରକୁ ଆଠଦିନକୁ ଆଠଦିନ ପଠାଯିବା ଭାର ।

ଅଡ଼କ—ପ୍ରା. (ସମ୍ବ) ବି. ଖିଲ, କବାଟ, ଶଗଡ଼ ଦଣ୍ଡାରେ ଆଡ଼-ବାଗରେ ଲଗାଯିବା ଦଣ୍ଡା ।

ଆଡ଼ିକେ—କ୍ରି. ବିଂ. ଏକଆଡ଼େ, ଏକ-ଦିଗରେ, ଏକପକ୍ଷରେ,ଏକ ମୁଣ୍ଡରେ ।

ଆଡ଼କେଣିଆ—ପ୍ରା. ( ସମ୍ବ ) କ୍ରି. ବିଂ. ଏକପାଖିଆ ହୋଇ, କଡ଼ବାଗେ, ତେରଚ୍ଛାଭାବରେ ।

ଆଡ଼ଣୀ—ଗ୍ରା. ବି. ବସ୍ତ୍ରନିର୍ମିତ ପଙ୍ଖା, ଢାଲ, ବଡ଼ାଉପ୍ରଭୃତି ।

ଆଡ଼ତ୍ତଦାର—ଗ୍ରା. ବି. ଦଣ୍ଡୁଆ, ମାଲ-ଗୋଦାମରକ୍ଷକ ।

ଆଡ଼ତି—ଗ୍ରା. ବି. (ସଂ ଆର୍ତ୍ତି) ଗୃହ-କାର୍ଯ୍ୟ, ପାଇଟି, ସାଧାରଣ କର୍ମ, କାର୍ଯ୍ୟ ।

ଆଡ଼ନଜାଲ—ପ୍ରା. (ସମ୍ବ) ବି. ( ସଂ— ଅର୍ଦ୍ଧ + ଜାଲ) ମାଛ ଧରିବାପାଇଁ ନଈରେ ନଈରେ ଲଗିଥିବା ଏକପ୍ରକାର କମ୍ ଓସାରର ଲମ୍ବ ଜାଲ ।

ଆଡ଼ପ—ଗ୍ରା. ବି. ଗୁଣ୍ଡିଚ୍ଚ ମଣ୍ଡପ ।

ଆଡ଼ଭୋକେଟ୍—ବି. ଓକିଲ ।

ଆଡ଼ମଇ—(ପ୍ରା. ସମ୍ବ) ବି. ଅସମତଳ କାଦୁଆ କ୍ଷେତର କାଦୁଅକୁ ସମାନ କରିବାକୁ ବ୍ୟବହୃତ କାଷ୍ଠଯନ୍ତ୍ର-ବିଶେଷ, ମଇ ।

ଆଡ଼ମରା—ଗ୍ରା.(ସମ୍ବ)ବି.ଅର୍ଗଳ,ଗ୍ରୁମ୍ବୁ ଣ୍ଡିଆ ଉପରେ ଆଡ଼ବାଗରେ ପକାଯିବାକାଠ ।

ଆଡ଼—ଗ୍ରା. ବି. ( ସଂ-ଅର୍ଦ୍ଧ ) ତରଫ, ପାର୍ଶ୍ୱ, କଡ଼, ପାଖ, ଦିଗ, ଦେହର (ଅମୁକ) ଅଂଶ, ପକ୍ଷ, ଦଳ, ଓସାର, ପ୍ରସ୍ଥ, ନୈକଟ୍ୟ, ବ୍ରହ୍ମାଣ୍ଡ, ପୃଥିବୀ ବା ଦେଶର ଅଂଶ, ଯୁଦ୍ଧର ପକ୍ଷ, ପଣ, ବାଜି, ଅନ୍ତରାଳ, ଆଢ଼ୁଆଲ, ଆଡ଼ୁଆ, ବାଧା, ଆନୁକୂଲ୍ୟ, ପକ୍ଷସମର୍ଥନ, ଆଗମନ, ଆସିବା, ଉପସ୍ଥିତି, ଆକାର, ଔରସ, ପିତୃତ୍ୱ, ମାତୃତ୍ୱ, ଗର୍ଭ ।

ଆଡ଼—ପ୍ରା. (ପୁରୀ) କଦଳୀ ଗଣତି କରା-ଯିବା ସଂଖ୍ୟାବିଶେଷ, ଯୋ ୩୬ ଡ଼ା ବା ଯୋ ୪୦ ଡ଼ା (ଗ୍ରା.ବିଂ) ବକ୍ର, ତେରଚ୍ଛା, ଅନ୍ତରିତ, ଅନ୍ତର୍ହିତ, ଅଦୃଶ୍ୟ, ପଳା-ୟିତ, ଈଷତ୍ ବକ୍ର, ଟେରା, ଆଡ଼େଇ ଯିବା, ପାଖେଇଯିବା, ବିପକ୍ଷ,ପ୍ରତିକୂଳ, ବାମ, ବାଧାଜନକ, ଈଷତ୍, ସମାନ୍ୟ, ବଳିପଡ଼ିଥିବା, ଅବଜ୍ଞାତ, ଅନ୍ୟଥାକୃତ, ଏପାଖରେ ସ୍ଥିତ ବା ସଜ୍ଜିତ, ଏକ ପାଖିଆ । [ ପାଖରୁ ଅନ୍ତରିତ ।

ଆଡ଼ଅନ୍ତର—ଗ୍ରା. ବିଂ. ପାଖଛଡ଼ା,

ଆଡ଼ଅନ୍ଧାର—ଗ୍ରା.ବି. ଈଷତ୍ ଅନ୍ଧକାର, ଅଳ୍ପ ଅନ୍ଧାରିଆ ସ୍ଥାନ ।

ଆଡ଼ଆଖି—ଗ୍ରା. ବି. (ସଂ.ଅର୍ଦ୍ଧ + ଅକ୍ଷି) ଈଷତ୍‌ଦୃଷ୍ଟି, ବକ୍ରଦୃଷ୍ଟି, ଟେରାଆଖି ।

ଆଡ଼ଆଖିଆ—ଗ୍ରା. ବିଂ. ଟେରା, ଯେ ବାଙ୍କଚୁହାଣିରେ ଚୁହେଁ ।

ଆଡ଼ଆଡ଼—ଗ୍ରା. ବିଂ. ଏକପାଖିଆ ଲଜ୍ଜା, ଭୟ ବା ଅପମାନ ଯୋଗୁଁ, ସାମନାରେ କଥା କହିବାକୁ ବା ଠିଆ ହେବାକୁ ସଙ୍କୋଚ ବୋଧ କରୁଥିବା ।

ଆଡ଼ଉହାଡ଼—ଗ୍ରା. ବି. (ସଂ. ଅଗ୍ରାଳ ଓ ଅନ୍ତରାଳ ) ଆଢ଼ୁଆଲ ଓ ଅନ୍ତରାଳ, ପାର୍ଶ୍ୱବର୍ତ୍ତୀ ଅଦୃଶ୍ୟ ସ୍ଥାନ ।

ଆଡ଼କୁ—ଗ୍ରା. ଅବ୍ୟ. (ଅମୁକର) ତର-ଫକୁ ,ଦିଗକୁ , ନିକଟକୁ ,ପାଖକୁ,ଅଞ୍ଚ-ଳକୁ, ( ଭବିଷ୍ୟତ୍‌ରେ ଅମୁକ ସମୟ ) ସଦିକ, ସୁଦ୍ଧା, ସପକ୍ଷରେ, ପକ୍ଷସମର୍ଥନ-ପୂର୍ବକ,ଲକ୍ଷ୍ୟକରି,ଉଦ୍ଦେଶ୍ୟକରି, ପରୋ-କ୍ଷରେ, ଅମୁକ ବ୍ୟକ୍ତି ପ୍ରତି ।

ଆଡ଼ଖୁର—ଗ୍ରା. ବି. ପେଡ଼ି, ମଞ୍ଜୁଷା, କାଠର ବଡ଼ ଚତୁରପେଡ଼ି ।

ଆଡ଼ଖେମଟା—ଗ୍ରା. ବି. ସଙ୍ଗୀତର ତାଳ ଓ ନୃତ୍ୟବିଶେଷ ।

ଆଡ଼ଖୋସା—ଗ୍ରା. ବି. ଦକ୍ଷିଣୀ ଖୋସା, ମୁଣ୍ଡ ପଛଆଡ଼େ ବେକର ଏକ ପାଖକୁ ଢଳିଥିବା ଝୋବାଫାଲପରି ସଜ୍ଜିତକୁଡ଼ା ।

ଆଡ଼ଙ୍ଗ—ଗ୍ରା.ବି. (ପୁରୀ ଚିଲିକା ଉପକୂଳ ଓ ବାଲେଶ୍ୱର) ଅଡ଼ଙ୍ଗ, ଲୁଣ ମରା-ଯିବା ପରେ ତାହା ଜମା କରାଯିବା ସ୍ଥାନ ବା ଗଞ୍ଜ,ଲୁଣକାଣ୍ଡ, ଲୁଣଗୋଲା ।

ଆଡ଼ଚକ୍ଷୁ—ଗ୍ରା. ବି. (ସଂ.ଅର୍ଦ୍ଧ + ଚକ୍ଷୁ) (ଆଡ଼ଆଖି ଦେଖ)

ଆଡ଼ଚୁହାଣି—ଗ୍ରା. ବି. ବାଙ୍କଚୁହାଣି, ଈଷତ୍ ବକ୍ରଦୃଷ୍ଟି, ଅପାଙ୍ଗଦୃଷ୍ଟି ।

ଆଡ଼ଚରା—ଗ୍ରା.ବି. (ସଂ.ଅଗ୍ରାଳ + ଚର) ଏକପାର୍ଶ୍ୱକୁ ଡେଇଁବା, ଏକରକମ ନାଚ,ଡେଇଁ ଡେଇଁ ପାହୁଣ୍ଡ ପକାଇବା ।

ଆଡ଼ଚରାମାରିବା—ଗ୍ରା. କ୍ରି. କଡ଼ବାଗରେ ଡେଇଁବା, ଏକ ପାର୍ଶ୍ୱକୁ କୁଦାମାରିବା, ନାଚିବାବେଳେ ଏକପାଖକୁ କୁଦିବା ।

ଆଡ଼ଛତା—ଗ୍ରା. ବି. ରାଜା ବା ଦେବ-ତାଙ୍କ ଦେହରେ ଆଡ଼ଖରା ନ ପଡ଼ିବା-ପାଇଁ କଡ଼ରେ ଧରାଯିବା ପଙ୍ଖା·ଆକୃ-ତିରେ ଛତା, ଆଡ଼େଣି, ତ୍ରାସ ।

ଆଡ଼ଚ୍ଛାଟ—ଗ୍ରା. ବି. ତେରଚ୍ଛାଭାବରେ ପଡ଼ୁଥିବା ବର୍ଷା ବା ଛଟାହେବା ପାଣିର ଆଘାତ, ଛିଟିକିଡ଼ା ।

ଆଡ଼ଣ—ଗ୍ରା.ବି. ଆଡ଼ିବା କର୍ମ, ଦେହକୁ ଆସନ୍ନ ଆଘାତରୁ ରକ୍ଷା କରିବା କର୍ମ, ଢାଲ (ପ୍ରାଚୀନ)ଯୁଦ୍ଧରେ ବ୍ୟବ-ହୃତ ଶସ୍ତ୍ରବିଶେଷ, ପରିଘା ।

ଆଡ଼ଣି—ଗ୍ରା. ବି. (ଫ.ଆଡ୍‌ଡନୀ) ଢାଲ, ଆଡ଼ଛତା । [କର୍ମ ବା ପେଷା ।

ଆଡ଼ତଦାର—(ଯା) ବି. ଆଡ଼ତଦାରର

ଆଡ଼ଢଆ—ପୁଂ.ବି. ଗ୍ରା. ଗୃହକର୍ମ କରିବାରେ ନିପୁଣ (ବି) ଡଗର, ଦୂତ, ଆଦେଶବହ ଭୃତ୍ୟ, ପାଇଟିଆଳ, ଟହଲିଆ, (ସ୍ତ୍ରୀ) ଆଡ଼ଢଆଣୀ ।

ଆଡ଼ଦୀର୍ଘ—ଗ୍ରା. ବି. (ସଂ.ଆଳି+ଦୀର୍ଘ) ପ୍ରସ୍ଥ ଓ ଦୀର୍ଘ, କ୍ଷେତ୍ରଫଳ, (ଗ୍ରା. ବିଂ.) ପ୍ରଶସ୍ତ ଓ ଦୀର୍ଘ, ଖୁବ୍‌ଚୌଡ଼ା ଓ ଖୁବ୍‌ଲମ୍ବା ।

ଆଡ଼ନୟନ—ଗ୍ରା.ବି. (ଆଡ଼ଆଖି ଦେଖ) ।

ଆଡ଼ପଅଭଡ଼ା—ଗ୍ରା.ବି.ଗୁଣ୍ଡିଚ୍ଚାମଣ୍ଡପରେ ଥିବା ସମୟରେ ଯେଉଁ ଅନ୍ନ ରନ୍ଧା ହୋଇ ଜଗନ୍ନାଥଙ୍କୁ ଭୋଗ ଲଗେ ।

ଆଡ଼ପଗଲା—ଗ୍ରା. ବିଂ. ସାମାନ୍ୟ ବାୟା, ଆଡ଼ବାୟା ।

ଆଡ଼ପଟିଆ—ଗ୍ରା. ବିଂ. ଏକପାଖିଆ, ଅଣେଇହୋଇଥିବା, ଏକତରଫା, ଏକପକ୍ଷୀୟ ।

ଆଡ଼ପଣନ୍ତ—ଗ୍ରା. ବି. ଦେହର ପାର୍ଶ୍ୱରେ ଥିବା ପିନ୍ଧା ଲୁଗାର କାନି ।

ଆଡ଼ପାଣିଆ—ଗ୍ରା. ବିଂ. ଅତି କାଠଆ ନୁହେ, ଅଳ୍ପପାଣିଆଁ ।

ଆଡ଼ବଙ୍କା—ଗ୍ରା. ବିଂ. ଏକ ପାଖକୁ ବକ୍ର ହୋଇଥିବା, ଈଷତ୍‌ବକ୍ର, କୁଟିଳ, ଛଳପୂର୍ଣ୍ଣ, କପଟ, ଅନ୍ୟଥା କରିଯିବା, ବ୍ୟତିକ୍ରାନ୍ତ, ଅପାଳିତ, (ବି) ସମାନ୍ୟ ବ୍ୟତିକ୍ରମ । [ଦେଖ ] ।

ଆଡ଼ବହଲ—ଗ୍ରା. ବିଂ. ( ଆଡ଼ପାଣିଆଁ

ଆଡ଼ବହିରା—ଗ୍ରା.ବି. (ସମ୍ଭ) ବିଂ. ବଡ଼ବୋଲି । [ବାଗ ।

ଆଡ଼ବାଗ—ଗ୍ରା. ବି. ପ୍ରସ୍ଥାବ ଚୌଡ଼ା-

ଆଡ଼ବାଙ୍କ—ଗ୍ରା ବି. ବିଂ. ଆଂଶିକବକ୍ରତା (ଆଡ଼ବାଙ୍କ ଦେଖ) ।

ଆଡ଼ବାଙ୍କିଆ—ଗ୍ରା. ପୁଂ. ବିଂ. ( ଆଡ଼ବଙ୍କା ଦେଖ) (ସ୍ତ୍ରୀ) ଆଡ଼ବାଙ୍କେଇ ।

ଆଡ଼ବାଙ୍କେ—ଗ୍ରା. କ୍ରି. ବିଂ. ଈଷତ୍ ବକ୍ରଭାବରେ, କଡ଼ ବାଗରେ, ବଙ୍କା ହୋଇ, କର୍ଣ୍ଣମାର୍ଗରେ ।

ଆଡ଼ବାନସୁନା—ଗ୍ରା. ବି. ଖାଣ୍ଟିସୁନା ।

ଆଡ଼ବାୟା—ଗ୍ରା. ପୁଂ. ବି. (ଫ.ଅର୍ଦ୍ଧ+ବାଉଳ) ଆଡ଼ପାଗଲା, ଅର୍ଦ୍ଧବାଉଳା, (ସ୍ତ୍ରୀ) ଆଡ଼ବାୟାଣୀ ।

ଆଡ଼ଭଙ୍ଗି—ଗ୍ରା. ବିଂ. କଥାର ବକ୍ରତା ବା ଛନ୍ଦ,କୂଟ,ବକ୍ରୋକ୍ତି, (ବିଂ.) ଆଡ଼ଭଙ୍ଗିଆ ।

ଆଡ଼ଭିରିଆ—ଗ୍ରା. ବିଂ, ବିଦେଶାଗତ ଯାଯାବର ଜାତିବିଶେଷ, ଏମାନେ ଆଖିରୁ ପରଲ କାଢ଼ନ୍ତି ।

ଆଡ଼ମୁହିଁ—ଗ୍ରା.ପୁଂ.ବିଂ. ଏକଆଡ଼କୁ ମୁହିଁ ବୁଲାଇଥିବା, ଭ୍ରୂକୁଟି କରିଥିବା, (ସ୍ତ୍ରୀ) ଆଡ଼ମୁହାଁ । [ କାରୁକାର୍ଯ୍ୟ ।

ଆଡ଼ମେଘାଡମ୍ବରୁ—ଗ୍ରା. ବି. ଏକପ୍ରକାର

ଆଡ଼ମୋଡ଼ା—ଗ୍ରା.ବି. ଅଳସ ଭାଙ୍ଗିବା, ଆଳସ୍ୟ ଦୂର କରିବାପାଇଁ ଭିଡ଼ିମୋଡ଼ି ହେବା ।

ଆଡ଼ମ୍ବରିଆ—ଗ୍ରା.ପୁଂ.ସ୍ତ୍ରୀ.ବିଂ. ଆଡ଼ମ୍ବରପୂର୍ଣ୍ଣ, ଆଡ଼ମ୍ବରପ୍ରିୟ ।

ଆଡ଼ଜୁଆଳି—ଗ୍ରା.ବି. ଜୁଆଳିର ବାଙ୍କୁଲି ।

ଆଡ଼ନ୍ତୁ—ଗ୍ରା. ବିଂ.(ଆଡ଼ୁ ଦେଖ) ଗଭିରୁ, ଔରସରୁ ।

ଆଡ଼ରେ—ଗ୍ରା. (ଅବ୍ୟ) ଚୌଡ଼ା ବା ପ୍ରସ୍ଥବାଗରେ, ଏପାଖରୁ ସେପାଖକୁ, ଢଗରେ, ପକ୍ଷରେ ଔରସରେ, ପାଖରେ, ଗର୍ଭରେ ।

ଆଡ଼ହେବା—ଗ୍ରା. କ୍ରି. ଆଡ଼େଇଯିବା, ପାଖେଇଯିବା, ସ୍ଥାନାନ୍ତରକୁ ଯିବା, ଦୂରରେ ରହିବା ।

ଆଟୀମୁଖ—କ୍ଲୀ. ବି. ସୁଶ୍ରୁତୋକ୍ତ ଶରୀର ପକ୍ଷୀର ମୁଖପରି ଶସ୍ତ୍ରବିଶେଷ ।

ଆଟେକାଟେ—(ଗ୍ରା.) ଦେହର ଅଷ୍ଟକୋଷ୍ଟେ, ସର୍ବାଙ୍ଗେ ।

ଆଟୋପ—ପୁଂ. ବି. ( ଆ+ଟୂପ୍+ଅ ) ସରମ୍ଭ, ଗର୍ବ, ଆଡ଼ମ୍ବର, ଦମାକ, ପେଟଗରଜିବା, ସମ୍ଭ୍ରମ ।

ଆଠାର—( ଦଗୀୟ ) ଅଷ୍ଟାଦଶର ଅପଭ୍ରଂଶ, ଅଠର ।

ଆଡ଼ମ୍ବର—ପୁଂ.ବି. (ଆ+ଡବି+ଅର) ହର୍ଷ, ଦର୍ପ, ତୂର୍ଯ୍ୟସ୍ୱନ, ଯୁଦ୍ଧରେ ଡାକିବା, ଜାକ୍‌ଜମକ, କ୍ରୋଧ, ବବାଦୂକତା, ହସ୍ତୀଗର୍ଜ୍ଜନ, ଆରମ୍ଭ, ସଂରମ୍ଭ, ଚକ୍ଷୁଲୋମ, ମେଘଶବ୍ଦ, ଯୁଦ୍ଧ, ଘନଘଟା, ରଣବାଦ୍ୟଧ୍ୱନି, ଘୋଷା ।

ଆଡ—ଗ୍ରା. ପ୍ରସ୍ଥ, ପରିସର, ବଙ୍କା,ପାର୍ଶ୍ୱ, ଢଗ ।

ଆଡ଼ମ୍ବରୀ—ପୁଂ.ବିଂ. (ଆଡ଼ମ୍ବର+ଇନ୍) ସମାରୋହଯୁକ୍ତ, ଘଟାବିଶିଷ୍ଟ, ଗର୍ବିତ, ଅହଙ୍କାରୀ, ଦମାକ୍‌ଯୁକ୍ତ ।

ଆଡ଼କାଠା—( ବଂଗୀୟ ) କଡ଼କାଠ, ଅଡା, ଆଡ଼କାଠ ।

ଆଡ଼ତ—( ଯା· ) ବି. ଦ୍ରବ୍ୟାଦି ବିକ୍ରୟ ନିମିତ୍ତ ଆଡ଼ା ବା ଗୋଲାଘର, ପେଣ୍ଠ, ଗଞ୍ଜ, ଗୋଦାମ ।

ଆଡର୍, ଆଡ଼ତେରେଛୁ—ଗ୍ରା. ବଙ୍କା, ଆଡ଼ତେରେଛୁ ।

ଆଡରି, ଆଡଲି, ଆଡୁଲି—ଗ୍ରା. ନଦୀକୂଳର ଉଚ୍ଚ ପାହାଡ଼ ।

ଆଡ଼ମାଦଳା—ଗ୍ରା. ନିୟମାନୁସାରେ ଯାହାର ଦୀର୍ଘ ପ୍ରସ୍ଥ ସମାନ ନୁହେଁ ।

ଆଡ଼ଶ—ପୁଂ. ବି. ବୃକ୍ଷବିଶେଷ, କେହି କେହି "ଅଶ୍ୱଗନ୍ଧା" କହନ୍ତି ।

ଆଡ଼ଷ୍ଟ—ଗ୍ରା· ଅବଶ, କଠିନ, ନିଶ୍ଚଳ, ଅଚେଷ୍ଟ, ଜଡ଼ସଡ଼ ।

ଆଡସା,ଆରସା—ଗ୍ରା. ବି. ଅପରିଷ୍କୃତ ସ୍ଥାନ, (ବିଂ.) କୁଟିଳ, ଟେରା, ବଙ୍କିତ ।

ଆଡରୁଷା—ଗ୍ରା. ବି. ( ଆଡ଼+ରୁଷା ) ଅଳ୍ପ କୋପ, ଛଳ,ଅଳ୍ପ ମାନ,ଅବ୍ୟକ୍ତ ଅଭିମାନ ।

ଆଡ଼ା—ଗ୍ରା. ବି. ଆଡ଼ମ୍ବର, ମତ୍ସ୍ୟଧରିବା ଯନ୍ତ୍ରବିଶେଷ, ଯେଉଁସ୍ଥାନରେ କେତେକ ଲୋକ ବସି ଖେଳନ୍ତି ବା ଗାନ ବାଦ୍ୟ କରନ୍ତି, ଅଭିମାନ, ଦୀର୍ଘ, ପ୍ରସ୍ଥ ।

ଆଡ଼ାଆଡ଼ି—ଗ୍ରା. କ୍ରି. ବିଂ. ପରସ୍ପର ବିବାଦ, ଆଡ଼ବାଗରେ, ଛନ୍ଦାଛନ୍ଦି ହୋଇ ।

ଆଡ଼ାଇ—ଗ୍ରା· (ବଙ୍ଗ) ସାର୍ଦ୍ଧଦ୍ୱିର ଅପଭ୍ରଂଶ, ଦୁଇ ଏବଂ ଅର୍ଦ୍ଧମିଳିତ ସଂଖ୍ୟା, ଅଢ଼େଇ ।

ଆଡ଼ାଖେମଟା—ବାରମାସାର ତାଳ-ବିଶେଷ, ଆଡ଼ଖେମଟା ।

ଆଡ଼ାଚୌତାଲ—ସାତମାତ୍ରର ତାଲ, ଗୁରୁଶ୍ରେଷ୍ଠି ତାଲ ଓ ଘତ୍ନାତି ଫାଙ୍କ ।

ଆଡ଼ାନା—ବଙ୍ଗଳା ରାଗିଣୀବିଶେଷ ।

ଆଡ଼ାନୀ—ଗ୍ରା· ଝାଲର ଥିବା ଡନାର ବଡ଼ ପଙ୍ଖା, ଆଡ଼ଣୀ ।

ଆଡ଼ାମୋଡ଼ା—ଗ୍ରା·ଗାତ୍ରଭଙ୍ଗ, ଭଙ୍ଗମୋଡ଼

ଆଡ଼ାଲ୍—(ଅନ୍ତରାଳର ଅପଭ୍ରଂଶ)ଆଚ୍ଛାଦନ, ଆଢୁଆଲ ।

ଆଡ଼ାରକ—ପୁଂ·ବି·(ଆଡ଼ + ଅ + ଆରକ) ଋଷିବିଶେଷ ।

ଆଡ଼ି—ପୁଂ· ବି· (ଅଡ଼ + ଇଣ୍) ସ୍ୱନାମ ଖ୍ୟାତ ମତ୍ସ୍ୟବିଶେଷ, (ପୁଂ·ସ୍ତ୍ରୀ) ଶରାଳି ପକ୍ଷୀ, (ସ୍ତ୍ରୀ) ପ୍ରଢକ୍କା, ଧାନ୍ୟାଦିର ପରିମାଣ, (ଗ୍ରା) ଜଙ୍ଗଲରୁ ଜନ୍ତୁ କାଢ଼ିବା, ଶତ୍ରୁତା, ଶିକାର କରିବାକୁ ଯେଉଁଠାରେ ଲୁଚି ବସନ୍ତି, ପଣ, ଅନ୍ୟମାନଙ୍କ ଗୁପ୍ତକଥା ନ ଶୁଣିବାପାଇଁ ଲୁଚି ବସିବା, (ସମ୍ବଲ ଓ ବାଲେଶ୍ୱର ପୋଖରୀ-ବନ୍ଧ, କ୍ଷେତ ବା କିଆରୀର ହିଡ଼, ସମୁଦ୍ର ଉପର କୂଳ, (ଗ୍ରା· ବିଂ) ଝାଣ ।

ଆଡ଼ିଆ—ଗ୍ରା·ବି· ଆଡ଼ିବନ୍ଧ, ଆଡ଼େଇବା, ବନ୍ଦଚର, ପାଣି ଅଟକିବାର ପ୍ରତିବନ୍ଧ, ଛିପ ଜମି ।

ଆଡ଼ିବା—ଗ୍ରା·କ୍ରି· ଅଟକାଇବା, ଶିକାର, ପାରିଧି, ଉପଶମ କରିବା, ବନ୍ଦକ୍ଷୁହାଣୀ, ଖେଳରେ ବାଜି ରଖିବା, ଯୁଦ୍ଧରେ ଆତ୍ମରକ୍ଷାପାଇଁ ଢାଲଦ୍ଧ ପଟାଇବା ।

ଆଡ଼ିଆଇବା—ଗ୍ରା· କ୍ରି· ବନ୍ଦକରିବା, ଏକ ପାଖକୁ ଘୁଞ୍ଚାଇବା, ଏକଆଡ଼କୁ ବନ୍ଦକରି ଧରିବା, ପାଖେଇବା, ଏକ-ପାଖକୁ ଘୁଞ୍ଚିବା ।

ଆଡ଼ିଫଳନ୍ଦ—ଗ୍ରା· ବି· (ଚିଲିକା ଅଞ୍ଚଳ) ଚିଲିକାରେ ଚଳୁଥିବା ଆଡ଼ିକାଠ ବା ଫଳନ୍ଦ।

ଆଡ଼ିବନ୍ଧ—ଗ୍ରା· ବି· ନଦୀପ୍ରଭୃତିର ଆଡ଼ ବା ଚୌଡ଼ା ବାଗରେ ପଡ଼ିଥିବା ବନ୍ଧ, ଚଉକାଠର ଶ୍ରେଷ୍ଠ କାଠ ଅର୍ଥାତ୍ ଆଡ଼କାଠ । [ସ୍ଥାନରୁ ।

ଆଡ଼ୁ—ଗ୍ରା· (ଅବ୍ୟ) ପକ୍ଷରୁ, ଦିଗରୁ,

ଆଡ଼ୁଆ—ଗ୍ରା· ବିଂ· ବକ୍ର, ତିର୍ଯ୍ୟକ୍, କଢ଼ବାଗିଆ, ଅନ୍ୟପ୍ରକାର ।

ଆଡ଼ୁମାଡ଼ୁ—ଗ୍ରା· ବମନୋଦ୍‌ବେଗ ।

ଆଡ଼ୁ—ପୁଂ· ବି· (ଅଣ + ଉଣ) ଉଡ଼ୁପ, ପ୍ଳବ, ଭେଲା ।

ଆଡ଼େ—ଗ୍ରା· (ଅବ୍ୟ) ଦିଗରେ, ଅଞ୍ଚଳରେ, ଆଡ଼କୁ, ନିକଟକୁ, ଦିଗକୁ, ସ୍ଥାନକୁ, ଦେହର ଗୋଟିଏ ପାଖରେ, ଔରସରେ, ପକ୍ଷରେ, ଗର୍ଭରେ, ଠାରେ, ସହିତ ।

ଆଡ଼େଇବା—କ୍ରି· ଏକଆଡ଼କୁ କରିଦେବା, ପାଖେଇବା, ଏକପାଖିଆକରିବା ।

ଆଡ଼େଇହେବା—ଏକସ୍ଥାନରୁ ଅନ୍ୟ ସ୍ଥାନକୁଯିବା ।

ଆଡ଼ଡ଼ା — ଗ୍ରା) ବି· ଗାଡ଼ିପ୍ରଭୃତି ରହିବାର ସ୍ଥାନ, ଷ୍ଟେସନ୍, ବିଶ୍ରାମ କରିବାର ସ୍ଥାନ, ଆଖଡ଼ା, ଯେଉଁ ସ୍ଥାନରେ ସମକର୍ମୀ । ମନ୍ଦ ଲୋକେ ଏକତ୍ର ହୁଅନ୍ତି, ଆମୋଦପ୍ରମୋଦ ବୈଠକ ।

ଆଡ଼ଡ଼ାକରିବା—ଗ୍ରା·କ୍ରି·,ମନ୍ଦଅଭିପ୍ରାୟରେ ସଙ୍ଗୀଲୋକମାନଙ୍କ ସଙ୍ଗେ ଏକ ସ୍ଥାନରେ ଯୋଗଦେବା, ଅନେକ ଲୋକ ମିଳି ବୃଥା ଗଳ୍ପରେ ସମୟ ନଷ୍ଟ କରିବା ।

ଆଢ଼—ଗାଢ଼, କଞ୍ଜୁସ ।

ଆଢ଼କ—ପୁଂ·ବି·(ଆ + ଢୌକ୍ + କ·ଅ) ଗୋଟିଏ ପରିମାଣବୋଚକ ଶବ୍ଦ, ଧାନ୍ୟାଦିର ପରିମାପକ, ଅଢ଼ା ।

ଆଢ଼କଜମ୍ବୁ—ସ୍ଥୂଳ ଜମ୍ବୁଯୁକ୍ତ ଦେଶ, ଆଢ଼କ ଜମ୍ବୁକ, ବଡ଼ ବଡ଼ ଜାମୁହେବା ସ୍ଥାନ ।

ଆଢ଼କିକ—କ୍ରି· ବିଂ· (ଆଢ଼କ + ଇକ) ଆଢ଼କ ବା ଆଠସେର ପରିମିତ ଶସ୍ୟ-ମଞ୍ଜି ବୁଣିବାର ଯୋଗ୍ୟ କ୍ଷେତ୍ର।

ଆଢ଼କୀ—ସ୍ତ୍ରୀ· ବି· (ଆଢ଼କ + ଈ)ଶମୀ-ଧାନ୍ୟ ବିଶେଷ, ହରଡ଼ ।

ଆଢ଼କୀନ—ବି· ବିଂ· (ଆଢ଼କିକ ଦେଖ) ।

ଆଢ଼ୁଆଲ—ଗ୍ରା·ବିଂ· ଗୋପନୀୟ,ଆଚ୍ଛନ୍ନ, ଉହାଳ (ବି) ଅନ୍ତରାଳ ।

ଆଢ୍ୟ—ପୁଂ·ବିଂ·(ଆ + ଧୈ + ଅ)ସାଧୁ, ଯୁକ୍ତ, ବିଶିଷ୍ଟ, ସମ୍ପନ୍ନ, ଧନୀ, ବିଭବ-ଶାଳୀ(ବି)ବଙ୍ଗ ବୈଶ୍ୟଙ୍କ ବଂଶୋପାଧି-ବିଶେଷ ।

ଆଢ୍ୟକୁଳୀନ—ପୁଂ·ବି· ଆଢ୍ୟକୁଳଜାତ, ବଡ଼ବଂଶଜାତ ।

ଆଢ୍ୟଙ୍କରଣ—କ୍ଲୀ·ବି·ଯେ ଧନୀ ନ ଥିଲା, ଯାହାଦ୍ୱାରା ତାକୁ ଧନୀ କରାଯାଇଅଛି ।

ଆଢ୍ୟଚର—ପୁଂ· ବିଂ· (ଆଢ୍ୟ + ଚର) ଯେ ପୂର୍ବେ ଆଢ୍ୟ ଥିଲା, ଯେ ଧନୀ ଥିଲା, ଭୂତପୂର୍ବ ଧନୀ (ସ୍ତ୍ରୀ) ଆଢ୍ୟଚରୀ ।

ଆଢ୍ୟତମ—ପୁଂ· ବିଂ· (ଆଢ୍ୟ + ତମ) ଅତିଶୟ ଆଢ୍ୟ, ଅତିଶୟ ଧନୀ ।

ଆଢ୍ୟପଦୀ—ଅବ୍ୟ· ଅଢ୍ୟପଦ ପ୍ରହରଣ-ଯୁକ୍ତ ଯୁଦ୍ଧ ।

ଆଢ୍ୟମ୍ଭବନ—କ୍ଲୀ· ବି· ଯେ ପୂଜ୍ୟ ନ ଥାଇ ପରେ ଯଦ୍ୱାରା ପୂଜ୍ୟ ହୁଏ ।

ଆଢ୍ୟମ୍ଭବିଷ୍ଣୁ—ବିଂ·(ଆଢ୍ୟଂ + ଭୂ + ଇଷ୍ଣୁ) ଯେ ପୂର୍ବେ ଧନୀ ନ ଥିଲା ବର୍ତ୍ତମାନ ଧନୀ ହୋଇଅଛି, ହଠାତ୍ ବାବୁ, ଯେ ହଠାତ୍ ବଡ଼ଲୋକ ହୋଇଅଛି ।

ଆଢ୍ୟମ୍ଭାବୁକ—ପୁଂ·ବିଂ· ଯେ ପୂର୍ବେ ଧନୀ ନ ଥିଲା ବର୍ତ୍ତମାନ ଧନୀ ହୋଇଅଛି, ଯେ ପୂର୍ବେ ଆଢ୍ୟ ନ ଥିଲା ବର୍ତ୍ତମାନ ଆଢ୍ୟ ହୋଇଅଛି । [ବିଶେଷ ।

ଆଢ୍ୟବାତ—ପୁଂ· ବି· ଉରୁସ୍ତମ୍ଭ ରୋଗ-

ଆଣ—ପୁଂ· ବି· (ଅଣ + ଘ·ଅ) ଶବ୍ଦ, ଧ୍ୱନି, (ଗ୍ରା·ବି)ତରକାରୀର ଝୋଳ(ପ୍ରା — ବାଲେଶ୍ୱର) କାଞ୍ଜିକୁ ବହଳ କରିବା ପାଇଁ ଦିଆଯାଇଥିବା ଚାଉଳ ପିଠଉ, (ପ୍ରା—କେନ୍ଦ୍ରାପଡ଼ା) ବଡ଼ି କରିବା-ପାଇଁ ବଟା ଯାଇଥିବା ବିରି, (ଗ୍ରା·କ୍ରି) ଆଣିବା କ୍ରିୟାର ୨ୟ ପୁରୁଷ, ଏକ ବଚନ ଓ ବହୁବଚନର ଅନୁଜ୍ଞା ରୂପ । ଓ (ହ କ୍ରି· ଆନୀୟ) — ସେହି ଜନପଦକୁ ମୋ ପାଖକୁ ଆଣ ।

ଆଣକ—ପୁଂ. ବିଂ. (ଅ + ଆଣ୍ + କ, ଅକ) ଅଧମ, କୁତ୍ସିତ, ଅଳ୍ପ, ଈଷତ୍, କ୍ଷୁଦ୍ର, ଅପକୃଷ୍ଟ, (ବି) ଟଙ୍କାର ଷୋଳଭାଗରୁ ଏକଭାଗ, ଅଣାଏ, ଅଣି, ଏକଅଣା ମୂଲ୍ୟମୁଦ୍ରା, (କ୍ଲୀ.ବ) ପାର୍ଶ୍ୱେଶୟନ କରି ମୈଥୁନ କରିବା, ରତିବିଶେଷ ।

ଆଣବ—କ୍ଲୀ. ବ. (ଅଣୁ + ଅ) ଅଣୁତ୍ୱ, ସୂକ୍ଷ୍ମତା, କ୍ଷୁଦ୍ରତ୍ୱ, କ୍ଷୁଦ୍ରତା ।

ଆଣବିକ—ବିଂ. (ଅଣୁ + ଇକ) ଅଣୁସମ୍ବନ୍ଧୀୟ, ଅଣୁ ଦ୍ୱାରା ସାଧିତ ।

ଆଣବୀନ—ବିଂ. କ୍ଷେତ୍ରବିଶେଷ, ଯେଉଁ କ୍ଷେତ୍ରରେ ଅଣୁଧାନ୍ୟ, ସର୍ଷପ (ସୋରିଷ) ଆଦି ଜାତ ହୁଏ ।

ଆଣି—ଗ୍ରା. ବ. ଗର୍ବ, ଟେକ, ମର୍ଯ୍ୟାଦା, ଟାଣପଣ, ବଡ଼ିମା, ଆଡ଼ମ୍ବର, ଶୋଭା, (ପୁଂ.ବ. ସ୍ତ୍ରୀ.) (ଅନ + ଇ) ଖଡ୍ଗକୋଟି, ତରବାରି, କାନକଲା ।

ଆଣିବା—କ୍ରି. (ଆନୟନର ଅପଭ୍ରଂଶ) ଆନୟନ କରିବା ।

ଆଣୀ—ସ୍ତ୍ରୀ. ବ. ରଥଚକ୍ରର ଅଗ୍ରରେ ଥିବା ଖିଲା, କୋଟି, ସୀମା ।

ଆଣୀବେୟ—ପୁଂ. ସ୍ତ୍ରୀ. ବ. ଆଣୀବ ଋଷିଙ୍କ ଅପତ୍ୟ ପୁତ୍ର ବା କନ୍ୟା ।

ଆଣ୍ଟ—ଗ୍ରା. ବିଂ. ଦୃଢ଼, କଠିନ, ଟାଣ, ଏକଜିଦିଆ, (ବ) ଗର୍ବ, ଧୈର୍ଯ୍ୟ, ଭିଡ଼, ଜୋର, ଏକଜିଦି (ଗ୍ରା) କଡ଼ା, ବଳୁଆ, ଗର୍ବିତ ।

ଆଣ୍ଟିବା—ଗ୍ରା. କ୍ରି. ଘୃଷିବା, (ପେଚ) କଷିବା, ଚିପିବା, ଦୃଢ଼ଭାବରେ ବସାଇବା ।

ଆଣ୍ଟୁଆ—ଗ୍ରା. ପୁଂ. ବିଂ. ଟାଣୁଆ, ବଳୁଆ, ଶକ୍ତ, କାର୍ଯ୍ୟକ୍ଷମ, ଅବାଧ, ବହୁଳିଆ ।

ଆଣୁ—ଗ୍ରା.ବ. ଗୋଡ଼ର ଭଣ୍ଡା ଓ ଜଙ୍ଘମଧ୍ୟସ୍ଥ ଗଣ୍ଠି, ଜାନୁ ।

ଆଣୁଆ—ଗ୍ରା. ବ. ଆଣୁ ଦ୍ୱାରା ଆଘାତ, ଆଣୁମାଡ଼, (ବିଂ) ଯେ ଆଣୁମାଡ଼ି ବସିଥାଏ

ଆଣୁଆଇବା—ଗ୍ରା. କ୍ରି. ଆଣ୍ଠୁଆଇବା, ଭୂଇଁରେ ଆଣୁଭରାଦେବା ।

ଆଣୁଆଡ଼ୁ ବୃଦ୍ଧାମଣା—ଗ୍ରା. ବ. ଓଲଟ ବୃଦ୍ଧାମଣା, ଅବସ୍ଥର, ନିର୍ଦ୍ଦୋଷକୁ ଦୋଷୀକରିବା ।

ଆଣୁଅଁଣି—ଗ୍ରା. ବିଂ. ଆଣୁ ପରିମିତ ଗଭୀର, ଆଣୁଏ ।

ଆଣୁକୁଡ଼ା—ଗ୍ରା. ପୁଂ.ବ. (ଆଣୁ + କୁଳ) ନିସନ୍ତାନ, ଯାହାର ସନ୍ତାନଗଣ ମରିଯାଇଛନ୍ତି (ସ୍ତ୍ରୀ) ଆଣୁକୁଡ଼ୀ ।

ଆଣୁଗଣ୍ଠି—ଗ୍ରା.ବ. ଶରୀରଗଣ୍ଠି ବା କବଜ ସ୍ଥାନମାନ, ଆଣୁ ବା ଜାନୁର ଗଣ୍ଠି ।

ଆଣୁଭରା—ଗ୍ରା. ବ. ଭୂଇଁରେ ଆଣୁକୁ ଲଗାଇବା, ଯେ ଆଣୁରେ ଭରା ଦେଇ ଚାଲେ ।

ଆଣ୍ଠେଇବା—ଗୁରୁଣ୍ଡିବା ।

ଆଣ୍ଡ—ବିଂ. ଯାହା ଅଣ୍ଡାରୁ ଜାତ ହୁଏ, ପକ୍ଷୀ, ସର୍ପପ୍ରଭୃତି, (ସ୍ତ୍ରୀ) ଆଣ୍ଡା, (ପୁଂ) ହିରଣ୍ୟଗର୍ଭ, ବ୍ରହ୍ମା, ପୁରୁଷର ବୃଷଣ, ଅଣ୍ଡକୋଷ ।

ଆଣ୍ଡଜ—ପୁଂ.ବ. ଅଣ୍ଡଜାତ, ପକ୍ଷୀ, ସର୍ପାଦି, (କ୍ଲୀ) ତାହାର ଶରୀର ।

ଆଣ୍ଡବାଜ୍—ଗ୍ରା. ବିଂ. ଆଣ୍ଡାହୋଇ ନ ଥିବା ଘୋଡ଼ା, ଇନ୍ଦ୍ରିୟପରାୟଣ, କାମୁକ ।

ଆଣ୍ଡବାଜି—ଗ୍ରା.ବ. ଖଚଡ଼ାମି, ଦୁଷ୍ଟାମି ।

ଆଣ୍ଡାୟନ—ପୁଂ. ବିଂ. ଅଣ୍ଡନିଷ୍ପନ୍ନ, ଅଣ୍ଡଜାତ ।

ଆଣ୍ଡିଗାଣ୍ଡ—ଗ୍ରା. ବ. ଠିକଣା, ତଥ୍ୟ ।

ଆଣ୍ଡିଲ—ଗ୍ରା. ଅଣ୍ଡଶୟ୍ୟମ, ସମ୍ପନ୍ନ ।

ଆଣ୍ଡୀର—ପୁଂ. ବ. ଅଣ୍ଡଯୁକ୍ତ, ପୁରୁଷ, ବହୁଡିମ୍ବଯୁକ୍ତ, ଯେ ବହୁଡ଼ିମ୍ବ ପ୍ରସବକରେ

ଆଣ୍ଡିବନ୍ତ—ପୁଂ. ବ. ରାଜାବିଶେଷ ।

ଆଣ୍ଡୁଆ—ବିଂ. ଏକଟାଟିଆ, ଅଖାଡ଼ୁଆ, ଅବୁଝା ।

ଆଣ୍ଡୁଆବୁଝାମଣା—ଗ୍ରା.ବ. ଅବୁଝାମଣା ।

ଆଣ୍ଡୋଳିବା—ଗ୍ରା.କ୍ରି. ଅଣ୍ଡାଳିବା, ଦରାଣ୍ଡିବା, ଅନ୍ଧାରରେ ଖୋଜିବା ।

ଅଣ୍ଡ୍ରା—ଗ୍ରା. (ସମ୍ଭ) ପୁଂ. ବ. ଅଣ୍ଡିରା, ପୁରୁଷ, ସ୍ୱାମୀ ।

ଆତ୍—(ଅବ୍ୟ) ଅନନ୍ତର ଅର୍ଥ ।

ଆତ—ବିଂ. (ଆ + ଅତ + ଯ) ସତତଗତ, ଉତ୍ଥିତ, ଗତ, (ବ) ଫଳବିଶେଷ, ବୃକ୍ଷବିଶେଷ ।

ଆତଇତ—ଗ୍ରା. ବ. ଅଡବଶା, ଅବୁଝୀ ।

ଆତକ—ବିଂ. (ଅ + ଅତ + ଅକ) ସତତଗମନକାରୀ, ସର୍ପବିଶେଷ, (ଗ୍ରା.ବିଂ) ଭୟତ୍ରସ୍ତ ।

ଆତଙ୍କ—ପୁଂ.ବ. (ଆ + ତନ୍କ + ଅ) ରୋଗ, ସନ୍ତାପ, ସନ୍ଦେହ, ଭୟ, ଶଙ୍କା, ମୁରଜଧ୍ୱନି, ଯାତନା, ଜ୍ୱର, ପୀଡ଼ା, ବିପଦ, ବିଶେଷଚିନ୍ତା ।

ଆତଙ୍କିତ—ବି. ବିଂ. (ଆତଙ୍କ + ଇତ) ଶଙ୍କିତ, ଭୀତ, ସନ୍ତପ୍ତ, ରୁଗ୍ଣ, ବିପନ୍ନ, (ସ୍ତ୍ରୀ) ଆତଙ୍କିତା ।

ଆତଙ୍ଗ—ପୁଂ. ବ. (ଆ + ତନ୍କ + ଅ) ଭୟ, ପୀଡ଼ା, ଆତଙ୍କ ଦେଖ ।

ଆତଙ୍ଗୀ—ଗ୍ରା. ପୁଂ. ବିଂ. ଆକୁଳିତ, ଆର୍ତ୍ତିଯୁକ୍ତ ।

ଆତଞ୍ଚନ—କ୍ଲୀ. ବ. (ଆ + ତଞ୍ଚ୍ + ଅନ) ବେଗ, ପ୍ରାପଣ, ଆପ୍ୟାୟନ, ନିକ୍ଷେପ, ଉପଦ୍ରବ, ତୁଷ୍ଟିସାଧନ, ଦ୍ରବ ଦ୍ରବ୍ୟ, ପ୍ରକ୍ଷେପଣୋଚିତ ଚୂର୍ଣ୍ଣ ।

ଆତତ—ବିଂ. (ଆ + ତନ୍ + ର୍କ.ତ) ବିସ୍ତୃତ, ଆରୋପିତ, ପ୍ରସାରିତ, କଳ୍ପିତ, ମୁରଜଧ୍ୱନି ।

ଆତତଜ୍ୟ—ପୁଂ.ବିଂ. (ବ.ବ୍ରୀ) ଆଧିକ୍ୟ, ଗୁଣାରୋପିତ ଧନୁ, ବିସ୍ତୃତଛିଲାଯୁକ୍ତ ।

ଆତତାୟୀ—ପୁଂ.ବିଂ. ବଧୋଦ୍ୟତ, ଅନିଷ୍ଟକାରୀ, ଯେ ବଧକରିବାକୁ ଉଦ୍ୟତ ହୁଏ, ଯେ ଘରେ ଅଗ୍ନି ଲଗାଏ, ଯେ ଭୂମି ଓ ସ୍ତ୍ରୀ ହରଣ କରେ, ଯେ ଅନିଷ୍ଟପାଇଁ ଶସ୍ତ୍ର ଧରେ, ଅଗ୍ନିଦାତା ଆଦି ଷଡ଼ବିଧ ଶତ୍ରୁ, (ବ) ମହାପାପୀ, ଶଙ୍ଖଚିଲ ।

ଆତନ—ପୁଂ. ବ. (ଆ + ତନ୍ + ଇନ୍) ବିସ୍ତାରକ, ଯେ ବିସ୍ତାର କରେ ।

ଆତପ ପୁଂ.ବିଂ. (ଆ + ତପ୍ + କ୍ୱିପ୍) ଯେ ତାପ ଦିଏ ।

ଆତପ—ପୁଂ. ବ. (ଆ + ତପ୍ + କ.ଅ) ଦ୍ୟୋତ, ରୌଦ୍ର, ପ୍ରକାଶ, ଖରା, (ବିଂ) ଅରୁଆ, (ଗ୍ରା.ବ) ବ୍ୟାଘ୍ରାଦି ଭୟଙ୍କର ଜନ୍ତୁବିଶେଷ ।

ଆତପତ୍ର—କ୍ଲୀ. ବ. ( ଆତପ + ତ୍ରୈ + କ.ଅ ) ଛତ୍ର, ଛତା ।
ଆତପତଣ୍ଡୁଲ—କ୍ଲୀ. ବ. (କ.ଧା)ଅରୁଆ ଚାଉଳ, ଉଆଚାଉଳ । [ ଛତ୍ର, ଛତା ।
ଆତପତ୍ରକ—କ୍ଲୀ.ବ. ( ଆତପତ୍ର + କ )
ଆତପବତ୍ର—ବିଂ. (ଆତପ + ବରୁପ୍ ) ତାପଯୁକ୍ତ ।
ଆତପବର୍ଷ୍ୟ—ବିଂ. ବୃଷ୍ଟିର ଜଳ ।
ଆତପବାରଣ—କ୍ଲୀ. ବ. (୬ତତ୍ପୁ) ଛତ୍ର, ଆତପତ୍ର । [ ବର୍ଷାକାଳ ।
ଆତପାତ୍ୟୟ—ପୁଂ.ବ. ରୌଦ୍ରାପଗମ,
ଆତପାନ୍ନ—କ୍ଲୀ. ବ. ( ଆତପ + ଅନ୍ନ) ଅରୁଆ ଅନ୍ନ, ଉଆଭାତ । [ବର୍ଷାକାଳ ।
ଆତପାତ୍ୟୟ—ପୁଂ. ବ. ରୌଦ୍ରାପଗମ,
ଆତପାଶ୍ରବ—ପୁଂ.ବ.ରୌଦ୍ରାଶ୍ରବ,ଗ୍ରୀଷ୍ମ, ଗ୍ରୀଷ୍ମଯୁକ୍ତ ସ୍ଥାନ । [ ସ୍ଥାନାଦ ।
ଆତପୀଯ୍—ପୁଂ. ବ. ରୌଦ୍ରର ନିକଟସ୍ଥ
ଆତପୋଦକ—କ୍ଲୀ.ବ. ମରୀଚିକା, ମୃଗତୃଷ୍ଣା ।
ଆତମାମ୍—ଅବ୍ୟ. ଅତଶୟ ଆଭିମୁଖ୍ୟ, ଅତଶୟ ସାମ୍ମୁଖ୍ୟ, ସକଳ ଦଗ, ସମସ୍ତ ପ୍ରକାର ।
ଆତଯାତ—ବି. (ଆସ୍ୟାତ + ଯାତ) ଯିବା ଆସିବା, ପଶିବା ବାହାରିବା, ଜନ୍ମମରଣ, ଚଳପ୍ରଚଳ, ( ଗ୍ରା.ବି. ) ଚଳପ୍ରଚଳ ହେଉଥିବା, ପୁନଃପୁନଃ ଜନ୍ମଥିବା ବା ମରୁଥିବା, ଯିବା ଆସିବା କରୁଥିବା । [ ଅଣ୍ଡାମ କରିବା ।
ଆତଯାତକରିବା—ଗ୍ରା. କ୍ରି.ଚଳାଇନେବା
ଆତଯାତକର—ଗ୍ରା. ବିଂ. ଯିବା ଆସିବା କରୁଥିବା ଲୋକ,ବ୍ୟବସାୟୀ,ବେପାରୀ ।
ଆତର—ପୁଂ.ବ. (ଆ + ତୃ + ଅ)ପାରିଆଣି, ତଙ୍ଗାଭଡ଼ା, ଅତରବିଶେଷ, ନଦୀ ପାରର ମଜୁରି, ତରପଣ୍ୟ ।
ଆତର୍ପଣ,ଆତପର୍ଣ୍ଣ—କ୍ଲୀ.ବ. (ଆ + ତୃପ୍ + ଭା.ଅନ ) ତୃପ୍ତି, ତୃପ୍ତି ଜନ୍ମାଇବା, ମଙ୍ଗଳଦ୍ରବ୍ୟଲେପନ, ଆଲପଣାଝୋଣ୍ଡି, (ବିଂ.) ଯେ ତୃପ୍ତି କରେ ।
ଆତବ—ପୁଂ. ବ. ( ଆ + ତୁପ୍ + ଅ) ହିଂସା କରିବା,(ବିଂ) ହିଂସ୍ରକ, (ପୁଂ.ବି) ବୃକ୍ଷବିଶେଷ ।

ଆତ୍ରସ—(ଯା)ବ. ସୂର୍ଯ୍ୟକାନ୍ତମଣି, ଯାହା ଖରାରେ ଧରିଲେ ଜଳେ ନିଆଁ ପଡ଼େ, ଅଗ୍ନି, (ପ୍ରା.ବ୍ର.) ଅଗ୍ନି-ଉତ୍ପାଦକ ।
ଆତସବାଜି—(ଯା)ବ. କୌତୁକ,ଖେଳ ବିଶେଷ, ଅଗ୍ନିକ୍ରୀଡ଼ା, ବାରୁଦନିର୍ମିତ ନାନାପ୍ରକାର ବାଣ, ତତ୍ସମ୍ବନ୍ଧୀୟ ଗ୍ରନ୍ଥ । [ ଭୂମ, ପିଓସୀ ।
ଆତା—(ଗ୍ରାମ) (ଆତାଦେଖ)(ସିଂହ-
ଆତାଇ—ପୁଂ.ବ. ଅବୈତନିକ ବାଦ୍ୟକର, ଯେ ରୀତିମତ ଗାନ ବାଜଣା କରେନାହିଁ ଅଥଚ ଏହା ତାହାର ପେଷା ।
ଆତାନ—ପୁଂ.ବ. (ଆ + ତନ୍ + ଅ)ଦୀର୍ଘ ବିସ୍ତାର, ସମ୍ମୁଖରେ ବିସ୍ତାର ।
ଆତାନକ—ପୁଂ. ବିଂ. ( ଆ + ତନ୍ + ଅକ) ବିସ୍ତାରକ, ଯେ ବିସ୍ତାର କରେ ।
ଆତାପି—ପୁଂ.ବ.(ଆ + ତପ + ଇ)ଅସୁର ବିଶେଷ, ଆତାପି ଓ ବାତାପି ଦୁଇଭାଇ, (ଗ୍ରା.ବ) ଲେମ୍ବୁଜାତୀୟ ଫଳବିଶେଷ, ବାତାପି ।
ଆତାପୀ—ପୁଂ.ବ.(ଆ + ତପ + ଇନ୍ ) ଚିଲ ନାମକ ପକ୍ଷୀ, ଆତାୟୀ, ଚିଲ୍ଲ, ଅସୁରବିଶେଷ, ଲେମ୍ବୁ ଓ ଖଟାପାଲଙ୍ଗବିଶେଷ ।
ଆତାମ୍ର—ବିଂ.ବ.ଈଷତ୍ତାମ୍ରବର୍ଣ୍ଣ,ପାଟଳ ।
ଆତାୟୀ—ପୁଂ.ବ. (ଆ + ତାୟ + ଇନ୍) ଚିଲନାମକ ପକ୍ଷୀ, ଗୃଧ୍ରବିଶେଷ ।
ଆତାର୍—ପୁଂ. ବ. (ଆ + ତୃ + ଣ.ଅ) ନୌକାରେ ପାରି ହେବା ମୂଲ୍ୟ, ପାରିଆଣି, ନୌକାଭଡ଼ା, ତରପଣ୍ୟ ।
ଆତାରକାତାର—ଗ୍ରା. ଛଟପଟ, ଆକୁଳବ୍ୟାକୁଳ, ଅତରକତର, ଝଟ୍‌ପଟ୍ ।
ଆତାଲପାତାଲ—ଗ୍ରା. ଆତଳପାତଳର ଅପଭ୍ରଂଶ । [ ସର୍ବତ୍ର ।
ଆତଳପାତାଲ—ଗ୍ରା. ଛଟପଟ କରିବା,
ଆତାଲୀ—ଅବ୍ୟ. (ଅ + ତଲ + ଇନ୍) କାତର ବ୍ୟକ୍ତିକୁ ବ୍ୟାକୁଳ କରିବା ।
ଆତି—ପୁଂ.ବ.(ଅତ + ଈ)ଶରାରି ପକ୍ଷୀ, (ବିଂ)ସର୍ବଦା ଗମନକାରୀ ।

ଆତିକ୍ତ—ବିଂ. ଈଷତ୍ତିକ୍ତ, ଅଳ୍ପ ପିତା ଲାଗୁଥିବା ।
ଆତିଥେୟ—କ୍ଲୀ. ବ. (ଅତିଥି + ଏୟ) ଅତିଥିର ନିମିତ୍ତ ଭୋଜନାଦ, ଅତିଥିସେବକ, (ବିଂ) ଅତିଥିସେବାପରାୟଣ, ଅତିଥିର ଉପଯୁକ୍ତ ।
ଆତିଥ୍ୟ—କ୍ଲୀ.ବ. (ଅତିଥି + ଯ)ଅତିଥିସେବା, ଅତିଥିସତ୍କାର, ଅତିଥିର ଭକ୍ଷ୍ୟଦ୍ରବ୍ୟ ।
ଆତିଥ୍ୟସ୍ୱୀକାର—ପୁଂ. ବ. ( ୬ତତ୍ପୁ ) ଆତିଥ୍ୟ ହେବା, ଅତିଥିସତ୍କାର ଗ୍ରହଣକରିବା ।
ଆତିଦେଶିକ—ତ୍ରି. ବିଂ. (ଅତିଦେଶ + ଇକ) ଅତିଦେଶପ୍ରାପ୍ତ, ସୀମାତିକ୍ରମ କରିଥିବା, ଅନ୍ୟତ୍ର ଆରୋପିତ ।
ଆତିଯାତ୍ରିକ—ପୁଂ. ବିଂ. ଆତିବାହିକ ଦେବ ।
ଆତିରେକ୍ୟ—କ୍ଲୀ. ବ. ଅତିଶୟ ବୃଦ୍ଧି, ଅତି ବେଶି ।
ଆତିବାହିକ—ପୁଂ. ବିଂ. ଇହଲୋକରୁ ପରଲୋକକୁ ପ୍ରାପ୍ତହେବା ନିମିତ୍ତ ଈଶ୍ୱର ନିଯୁକ୍ତ ଅଚିରାଦି ଅଭିମାନୀ ଦେବଗଣ, ଧୂମାଦି ଅଭିମାନୀ ଦେବଗଣ ।
ଆତିବିଡ଼—ଗ୍ରା. ଶୀଘ୍ର,ଆସ୍ତେ ସମ୍ଭ୍ରମେ, କ୍ଷିପ୍ରତାର ସହିତ ।
ଆତିଶ—(ହିନ୍ଦ) ଅତିବିଷା, ଅତିବିଷାନାମକ ଜ୍ୱରଘ୍ନ ଗୁଳ୍ମବିଶେଷ ।
ଆତିଶଯ୍ୟ—କ୍ଲୀ. ବ. (ଅତିଶୟ + ଯ) ଆଧିକ୍ୟ ।
ଆତିସ୍ୱାସ୍ତନ—ବିଂ. ଦାସର ନିକଟସ୍ଥ ଦେଶାଦି, ସେବକର ନିକଟ ସ୍ଥାନ ।
ଆତିଷଦ୍‌ଗୁ - ଅବ୍ୟ. ଗୋ-ସମୂହର ଅବସ୍ଥାନ କାଳ ପର୍ଯ୍ୟନ୍ତ ।
ଆତିଷ୍ଠ—କ୍ଲୀ.ବ.(ଅତି + ସ୍ଥା + ଅ) ଅନ୍ୟକୁ ତଡ଼ି ଦେଇ ରହିବା, ଉତ୍କର୍ଷ ।
ଆତୁ—ପୁଂ. ବ. (ଅତ୍ + ଉ ) ଭେଳା, ଉଡ଼ୁପ । [ ସ୍ନେହ ।
ଆତୁଆତୁ—ଗ୍ରା. ଅତିଶୟ ଯତ୍ନ, ଅତିଶୟ
ଆତୁର୍—ପୁଂ. ବ. ସୂର୍ଯ୍ୟଙ୍କର ଅସ୍ତଗତ କାଳ, ଅସ୍ତକାଳ ।

ଆତୁଜ—ବିଂ.(ଆ+ତୁଜ୍+ଇ)ହିଂସକ ବଳଗ୍ରାହକ ।

ଆତୁଣ୍ଡି—ଗ୍ରା. (ଗଡ଼ଜାତ) ଏକଜାତୀୟ ଲତା ।

ଆତୁର—ବିଂ.(ଆ+ତୁର୍+ଅ) ରୋଗୀ, କାର୍ଯ୍ୟାକ୍ଷମ, ପୀଡ଼ିତ, କାତର, ଅଧୀର, (ଆ+ତ+ଉର) ଗତଶକ୍ତିରହିତ, (ସ୍ତ୍ରୀ) ଆତୁରା, (ଗ୍ରା.ବି) କାତରତା, ଅଧୀରତା ।

ଆତୁରଗୃହ,ଆତୁରାବାସ—ପୁଂ.ବି.(୬ତତ୍) ଅନୁତ୍ତିଶାଳ, ଚିକିତ୍ସାର୍ଥ ପୀଡ଼ିତ ଲୋକମାନଙ୍କ ରହିବା ସ୍ଥାନ, ଡାକ୍ତରଖାନା ।

ଆତୁରସନ୍ନ୍ୟାସ—କ୍ଲୀ.ବି ସନ୍ନ୍ୟାସବିଶେଷ, ମୁମୂର୍ଷୁ ବ୍ୟକ୍ତିର ସନ୍ନ୍ୟାସଗ୍ରହଣ ।

ଆତୁରିଆ—ଗ୍ରା. ପୁଂ. ବିଂ. (ସଂ-ଆତୁର) ଅଧୀର, ବ୍ୟସ୍ତ, ଉତ୍କଣ୍ଠିତ, (ସ୍ତ୍ରୀ) ଆତୁରୀ ।

ଆତୁରୋପକ୍ରମଣୀୟ—ପୁଂ. ବି. ଗ୍ରନ୍ଥବିଶେଷ, ଚିକିତ୍ସାଗ୍ରନ୍ଥ ବିଶେଷ ।

ଆତୁର୍ଯ୍ୟ—କ୍ଲୀ. ବି. ଆତୁରତ୍ୱ, ପୀଡ଼ା ।

ଆତୃଣ୍ଣ—ବିଂ.(ଆ+ତୃଦ୍+ତ)ହିଂସିତ, ଛିନ୍ନ ।

ଆତୃପ୍ୟ—କ୍ଲୀ.ବି.ଆତନାମକ ଫଳବିଶେଷ, ଆତା, (ତ୍ରି.ବିଂ.)(ଆ+ତୃପ୍+କ୍ୟପ୍.ମ) ତୃପ୍ତିସାଧନଯୋଗ୍ୟ, ପ୍ରୀତିକର, (ସ୍ତ୍ରୀ) ଆତୃପ୍ୟା ।

ଆତୋଦ୍ୟ—କ୍ଲୀ. ବି. (ଆ+ତୁଦ୍+ଯ) ବୀଣାଦି ଚତୁଃପ୍ରକାର ବାଦ୍ୟର ନାମ, ବାଦ୍ୟ ମାତ୍ର, ବାଦ୍ୟଯନ୍ତ୍ର, ବାଜଣା ।

ଆତ୍ତ—ତ୍ରି.ବିଂ.(ଆ+ଦା+ତ) ଗୃହୀତ, ପ୍ରାପ୍ତ, ସ୍ୱୀକୃତ, ହୃତ, ଧୃତ ।

ଆତ୍ତଗନ୍ଧ—ତ୍ରି.ବିଂ.(ଆତ୍ତ+ଗନ୍ଧ) ଶତ୍ରୁଦ୍ୱାରା ପରାଜିତ, ଗୃହୀତ ଗନ୍ଧପୁଷ୍ପାଦି, ହୃତଗର୍ବ, ପରାଭୂତ, ଆଘ୍ରାତ (ସ୍ତ୍ରୀ) ଆତ୍ତଗନ୍ଧା ।

ଆତ୍ତଗର୍ବ—ତ୍ରି. ବିଂ. (ଆତ୍ତ+ଗର୍ବ) ଅଭିଭୂତ, ପରାଜିତ, ହୃତଗର୍ବ ।

ଆତ୍ତଦଣ୍ଡ—ତ୍ରି. ବିଂ. (ବ.ବ୍ରୀ) ଗୃହୀତଦଣ୍ଡ, ଦଣ୍ଡପାଣି, (ସ୍ତ୍ରୀ) ଆତ୍ତଦଣ୍ଡା ।

ଆତ୍ତଶସ୍ତ୍ର—ତ୍ରି.ବିଂ. (ବ.ବ୍ରୀ) ଗୃହୀତଶସ୍ତ୍ର, ଧୃତାସ୍ତ୍ର, ଶସ୍ତ୍ରପାଣି ।

ଆତ୍ତି—ଗ୍ରା. (ଆତ୍ମୀୟ ଶବ୍ଦର ଅପଭ୍ରଂଶ) ସ୍ନେହ, ମମତା, ଯତ୍ନ ।

ଆତ୍ମକଳହ—ପୁଂ. ବି. ନିଜ ନିଜ ମଧ୍ୟରେ କଳହ, ସ୍ୱଜନବିରୋଧ, ଗୃହବିବାଦ ।

ଆତ୍ମକର୍ମନ୍—ବି. ସ୍ୱୀୟ କର୍ତ୍ତବ୍ୟ କାର୍ଯ୍ୟ, ନିଜର କରଣୀୟ କର୍ମ ।

ଆତ୍ମକାମ—ବିଂ. ଯେ ସମସ୍ତ ବିଷୟ ଛାଡ଼ି କେବଳ ନିଜକୁ ଅଭିଳାଷ କରେ, ଯେ କେବଳ ଆତ୍ମାକୁ ଜାଣିବାକୁ ଇଚ୍ଛା କରେ ।

ଆତ୍ମକୃତ—ତ୍ରି. ବିଂ. ୩ତତ୍; (ଆତ୍ମନ୍+କୃତ)ନିଜଦ୍ୱାରା କରାଯାଇଥିବା, ସ୍ୱକୃତ, (ସ୍ତ୍ରୀ) ଆତ୍ମକୃତା ।

ଆତ୍ମକାମେୟ—ବିଂ. ଆତ୍ମକାମସମ୍ବନ୍ଧୀୟ ।

ଆତ୍ମକୃତ—ତ୍ରି. ବିଂ. ୩ତତ୍; (ଆତ୍ମନ୍+କୃତ) ନିଜଦ୍ୱାରା କରାଯାଇଥିବା, ସ୍ୱହସ୍ତ ସମ୍ପାଦିତ, (ସ୍ତ୍ରୀ) ଆତ୍ମକୃତା ।

ଆତ୍ମଗତ—ତ୍ରି. ବିଂ. ସ୍ୱଗତ, ମନେମନେ, ଆତ୍ମନିଷ୍ଠ, ସ୍ୱକୀୟ (ସ୍ତ୍ରୀ) ଆତ୍ମଗତା ।

ଆତ୍ମଗର୍ବ—ପୁଂ. ବି. ( ଆତ୍ମନ୍+ଗର୍ବ ) ଆତ୍ମାଭିମାନ, ନିଜର ବଡ଼େଇ, ଅହଂକାର ।

ଆତ୍ମଗରିମା—ପୁଂ.ବି. (ଆତ୍ମନ୍+ଗୁରୁ+ଇମନ୍) ଆତ୍ମଶ୍ଲାଘା, ଅହଂକାର, ଦର୍ପ ।

ଆତ୍ମଗୁଣ—ପୁଂ. ବି. ୬ତତ୍; (ଆତ୍ମନ୍+ଗୁଣ) (ଦର୍ଶନଶାସ୍ତ୍ର) ବୁଦ୍ଧି, ହର୍ଷ, କଷ୍ଟ, ଅଭିଳାଷ, ଘୃଣା, ଚେଷ୍ଟା, ସଂଖ୍ୟା, ପରିମାଣ, ବିଚ୍ଛେଦ, ମିଳନ, ବିରହ, ଧାରଣା, ଗୁଣ ସଦ୍ଧୃତ୍ୟ ଓ ସ୍ମୃତି ।

ଆତ୍ମଗୁପ୍ତ—ପୁଂ. ବିଂ. (ଆତ୍ମନ୍+ଗୁପ୍ତ) ନିଜ ଶକ୍ତିଦ୍ୱାରା ରକ୍ଷିତ, ଅପ୍ରକାଶିତଭାବେ ଅବସ୍ଥିତ, ସୁରକ୍ଷିତ, (ସ୍ତ୍ରୀ) ବାଇଡ଼ଙ୍କ ଲତା ।

ଆତ୍ମଗୋପନ—କ୍ଲୀ. ବି. (୬ତତ୍)ମନୋଗତ ଭାବ ଦିର ଅପ୍ରକାଶ, ଯଦ୍ଦ୍ୱାରେ ମନର ଭାବ ପ୍ରକାଶିତ ନହୁଏ ସେହିପରିଭାବେ କାର୍ଯ୍ୟ କରିବା, ଲୁକ୍କାୟନ ।

ଆତ୍ମଗୌରବ—କ୍ଲୀ.ବି. (୬ତତ୍) ଆତ୍ମାଭିମାନ, ନିଜର ବଡ଼େଇ, ନିଜର ଗୁରୁତ୍ୱ ।

ଆତ୍ମଗ୍ରାହିତା—ସ୍ତ୍ରୀ କ୍ଲୀ.ବି. ସ୍ୱାର୍ଥପରତା, ଉଦରମ୍ଭରି ।

ଆତ୍ମଗ୍ରାହୀ—ପୁଂ. ବିଂ. (ଆତ୍ମନ୍+ଗ୍ରହ+ଇନ୍) ଉଦରମ୍ଭରି, ସ୍ୱାର୍ଥପର, ଆତ୍ମଜ୍ଞ ।

ଆତ୍ମଗ୍ଲାନି—ବି. ୬ତତ୍; (ଆତ୍ମ+ଗ୍ଲାନି) ସ୍ୱନିନ୍ଦା, ନିଜପ୍ରତି ଧିକ୍କାର, ଅନୁତାପ ।

ଆତ୍ମଘାତ—ବି ୬ତତ୍; (ଆତ୍ମନ୍+ଘାତ) ଆତ୍ମହତ୍ୟା, ଅଜ୍ଞାନତା ।

ଆତ୍ମଘାତକ—ତ୍ରି. ବିଂ. ଆତ୍ମଘାତୀ, ଆତ୍ମହତ୍ୟାକାରୀ, (ସ୍ତ୍ରୀ) ଆତ୍ମଘାତିକା ।

ଆତ୍ମଘାତୀ—ପୁଂ.ବିଂ. (ଆତ୍ମନ୍+ଘାତ+ଇନ୍) ଯେ ଆତ୍ମହତ୍ୟା କରେ, ନିଜର ପ୍ରାଣ ନିଜେ ନାଶ କରେ, (ସ୍ତ୍ରୀ) ଆତ୍ମଘାତିନୀ ।

ଆତ୍ମଘୋଷ—ପୁଂ.ବି. (ଆତ୍ମନ୍+ଘୁଷ୍+ଅ) କାକ, କୁକ୍କୁଟ, ମୃଗ ।

ଆତ୍ମଜ—ପୁଂ. ବି. (ଆତ୍ମନ୍+ଜନ୍+ଅ) ପୁତ୍ର, ସନ୍ତାନ, (ସ୍ତ୍ରୀ) ଆତ୍ମଜା, କନ୍ଦର୍ପ, ମନୋଭବା ବୁଦ୍ଧି ।

ଆତ୍ମଜନ୍ମା—ପୁଂ.ବି. ପୁତ୍ର (କ୍ଲୀ) ଆତ୍ମାର ପୁତ୍ରରୂପେ ଉତ୍ପତ୍ତି ।

ଆତ୍ମଜା—ସ୍ତ୍ରୀ.ବି. ଦୁହିତା, କନ୍ୟା ।

ଆତ୍ମଜ୍ଞ—ପୁଂ. ବିଂ. (ଆତ୍ମନ୍+ଜ୍ଞା+ଅ) ଯେ ଆପଣାକୁ ଚିହ୍ନେ, ଯେ ନିଜର ଦୋଷ ଗୁଣ ବୁଝିପାରେ, ପଣ୍ଡିତ, ପରମାତ୍ମଜ୍ଞାନୀ, ବୁଧ, (ସ୍ତ୍ରୀ) ଆତ୍ମଜ୍ଞା ।

ଆତ୍ମଜ୍ଞାନ—କ୍ଲୀ.ବି.(ଆତ୍ମନ୍+ଜ୍ଞା+ଅନ) ଆପଣାକୁ ଚିହ୍ନିବା, ଯଥାର୍ଥରୂପେ ଆତ୍ମସମ୍ବନ୍ଧୀୟ ଜ୍ଞାନ, ଆତ୍ମବୋଧ ।

ଆତ୍ମତତ୍ତ୍ୱ—କ୍ଲୀ. ବି. (୬ତତ୍) ଆତ୍ମାର ଯଥାର୍ଥ ସ୍ୱରୂପ, ଚୈତନ୍ୟରୂପ, ଆତ୍ମାରୂପ ପରମ ପଦାର୍ଥ ।

ଆତ୍ମତତ୍ତ୍ୱଜ୍ଞ—ପୁଂ. ବିଂ. (ଆତ୍ମତତ୍ତ୍ୱ+ଜ୍ଞା+କ.ଅ) ପଦାର୍ଥର ତତ୍ତ୍ୱଜ୍ଞ, ବ୍ରହ୍ମସ୍ୱରୂପଜ୍ଞ, (ସ୍ତ୍ରୀ) ଆତ୍ମତତ୍ତ୍ୱଜ୍ଞା ।

ଆତ୍ମତନ୍ତ୍ର—ତ୍ରି. ବିଂ. (ବ.ବ୍ରୀ) ସ୍ୱତନ୍ତ୍ର, ସ୍ୱାଧୀନ (ସ୍ତ୍ରୀ) ଆତ୍ମତନ୍ତ୍ରା ।

ଆତ୍ମତା—ସ୍ତ୍ରୀ. ବି. (ଆତ୍ମନ୍+ତା) ସ୍ୱରୂପତା, ପରମାତ୍ମତ୍ୱ, ବନ୍ଧୁତା, ପ୍ରଶସ୍ତ, ସଦ୍ଭାବ ।

ଆତ୍ମତୁଲ୍ୟ—ବି.ବଂ. (୬ତତ୍) ନିଜତୁଲ୍ୟ, ନିଜର ସମାନ, ସ୍ୱସଦୃଶ, ନିଜର ମତ ।

ଆତ୍ମତୁଷ୍ଟି—ବି. ବଂ. ଯେ ଆତ୍ମଜ୍ଞାନଦ୍ୱାରା ସର୍ବଦା ସନ୍ତୁଷ୍ଟ ଥାଏ, ଆତ୍ମଜ୍ଞାନଦ୍ୱାରା ସନ୍ତୋଷ ଲାଭ କରିବା ।

ଆତ୍ମତ୍ୟାଗ—ପୁଂ. ବି. (୬ତତ୍) ଆତ୍ମହତ୍ୟା, ସ୍ୱାର୍ଥତ୍ୟାଗ, ଆପଣାର ଇଷ୍ଟ ବା ସୁଖପ୍ରତି ଅନାସ୍ଥା ।

ଆତ୍ମତ୍ୟାଗୀ—ପୁଂ.ବଂ. (ଆତ୍ମନ୍ + ତ୍ୟଜ + ଇନ୍) ଆତ୍ମଘାତୀ, ସ୍ୱାର୍ଥତ୍ୟାଗୀ, ଯେ ପରପାଇଁ ନିଜର ସୁଖ ସ୍ୱାଚ୍ଛନ୍ଦ୍ୟକୁ ଛାଡ଼େ, (ସ୍ତ୍ରୀ) ଆତ୍ମତ୍ୟାଗିନୀ ।

ଆତ୍ମତ୍ରାଣ—କ୍ଲୀ.ବି. (୬ତତ୍) ଆତ୍ମରକ୍ଷା, ନିଜକୁ ବିପଦରୁ ଉଦ୍ଧାର କରିବା ।

ଆତ୍ମଦମନ—କ୍ଲୀ. ବି. (୬ତତ୍) ଆତ୍ମସଂଯମ, କାମକ୍ରୋଧାଦି ରିପୁଗଣର ଶାସନ, ଇନ୍ଦ୍ରିୟନିରୋଧ ।

ଆତ୍ମଦର୍ଶ—ପୁଂ. ବି. (ଆତ୍ମନ୍ + ଦୃଶ + ଅ) ଆଦର୍ଶ, ଦର୍ପଣ, ଆତ୍ମାର ଦର୍ଶନ ।

ଆତ୍ମଦର୍ଶକ—କ୍ଲୀ.ବି. (ଆତ୍ମନ୍ + ଦର୍ଶକ) ଯହିଁରେ ଆପଣାର ରୂପ ଦେଖାଯାଏ, ଦର୍ପଣ, ମୁକୁର ।

ଆତ୍ମଦର୍ଶନ—କ୍ଲୀ.ବି.୬ତତ୍; (ଆତ୍ମନ୍ + ଦୃଶ୍ + ଅନ୍) ଆତ୍ମସାକ୍ଷାତ୍କାର, ସମସ୍ତ ଜୀବନରେ ଆତ୍ମଜ୍ଞାନ,ସମସ୍ତ ପ୍ରାଣୀଙ୍କୁ ନିଜ ପରି ଦେଖିବା ।

ଆତ୍ମଦାନ—କ୍ଲୀ.ବି.(୬ତତ୍) ଆତ୍ମୋତ୍ସର୍ଗ, ଆତ୍ମତ୍ୟାଗ, ସ୍ୱାର୍ଥବିସର୍ଜନ ।

ଆତ୍ମଦେବତା—ସ୍ତ୍ରୀ. ବି. ନିଜର ଇଷ୍ଟଦେବତା, ଗୃହଦେବତା ।

ଆତ୍ମଦ୍ରୋହ—ପୁଂ. ବି. ୬ତତ୍; (ଆତ୍ମନ୍ + ଦ୍ରୋହ) ନିଜକୁ ନିର୍ଯ୍ୟାତନା କରିବା, ଆତ୍ମହତ୍ୟା, ନିଜକୁ ଅପରାଧୀ ବୋଲି ବିଚାର କରିବା ।

ଆତ୍ମଦ୍ରୋହୀ—ପୁଂ.ବଂ. (ଆତ୍ମନ୍ + ଦ୍ରୁହ୍ + ଇନ୍) ଆତ୍ମଘାତୀ, ନିଜର ଅନିଷ୍ଟକାରୀ, ଯେ ନିଜକୁ ନଷ୍ଟକରେ, (ସ୍ତ୍ରୀ) ଆତ୍ମଦ୍ରୋହିଣୀ ।

ଆତ୍ମଦ୍ରୋହିତା—ସ୍ତ୍ରୀ. କ୍ଲୀ. ବି. (ଆତ୍ମଦ୍ରୋହିନ୍ + ତା) ଆତ୍ମଦ୍ରୋହୀର ଭାବ ବା କାର୍ଯ୍ୟ, ଅନିଷ୍ଟସାଧନ, ଆତ୍ମବିନାଶ, ଆତ୍ମହତ୍ୟା ।

ଆତ୍ମଧ୍ୟାନ—କ୍ଲୀ. ବି. ଆତ୍ମଦର୍ଶନ ନିମିତ୍ତ ଚିନ୍ତାରୂପ ଯୋଗବିଶେଷ, ଆତ୍ମସାକ୍ଷାତ୍କାରସାଧନ ମାନସବୃତ୍ତିବିଶେଷ ।

ଆତ୍ମନ୍, ଆତ୍ମ—ବି. ଆପଣାର ଜୀବ, ବ୍ରହ୍ମା, ସୂର୍ଯ୍ୟ, ବାୟୁ, ଅଗ୍ନି, ବୁଦ୍ଧି ।

ଆତ୍ମନ୍‌ବତ୍—ବଂ. ଆତ୍ମବିଶିଷ୍ଟ ।

ଆତ୍ମନ୍ୱୀନ୍—ପୁଂ ବଂ. ମନସ୍ୱୀ, ପ୍ରଶସ୍ତମନା ।

ଆତ୍ମନାଶ—ପୁଂ.ବି (୬ତତ୍) ସ୍ୱ ହସ୍ତେ ଆପଣାର ପ୍ରାଣ ବଧ, ଆତ୍ମହତ୍ୟା, ଆତ୍ମଦ୍ରୋହ ।

ଆତ୍ମନାଶୀ—ପୁଂ ବଂ. ଆତ୍ମଘାତୀ, ଆତ୍ମହତ୍ୟାକାରୀ, (ସ୍ତ୍ରୀ) ଆତ୍ମନାଶିନୀ ।

ଆତ୍ମନିଗ୍ରହ—ପୁଂ.ବି. (୬ତତ୍ ଆପଣାକୁ କ୍ଲେଶ ଦେବା, ଆତ୍ମସଂଯମ, ଇନ୍ଦ୍ରିୟଦମନ ।

ଆତ୍ମନିବିଷ୍ଟ—ବି. ବଂ. ବି. (ଆ + ଅତ୍ + ମନ୍) ନିଜର ନିଜକୁ ସମ୍ବୋଧନ, ଆତ୍ମନିମଗ୍ନ, (୭ ତତ୍) ଆପଣାଠାରେ ନିବିଷ୍ଟ ।

ଆତ୍ମନିବେଦନ—କ୍ଲୀ. ବି. ୬ ତତ୍; (ଆତ୍ମନ୍ + ନିବେଦନ) ଆତ୍ମୋତ୍ସର୍ଗ, ସ୍ୱାର୍ଥତ୍ୟାଗ; ସ୍ୱାର୍ଥବିସର୍ଜନ ।

ଆତ୍ମନିର୍ଣ୍ଣୟ—ବି. ୬ ତତ୍; (ଆତ୍ମନ୍ + ନିର୍ଣ୍ଣୟ) ନିଜେ କଅଣ ଏକଥା ଉତ୍ତମରୂପେ ବୁଝିବା, ଆତ୍ମଜ୍ଞାନ ।

ଆତ୍ମନିର୍ଭର—ପୁଂ.ବଂ.(ଆତ୍ମନ୍ + ନିର୍ଭର) ଯେ ଆପଣା ଉପରେ ନିର୍ଭରକରେ ।

ଆତ୍ମନିର୍ଭରଶୀଳ—ବି. ବଂ. (ବ.ବ୍ରୀ.) ଆତ୍ମନିର୍ଭରକାରୀ, ସ୍ୱାବଲମ୍ବୀ, ଆତ୍ମପ୍ରତ୍ୟୟୀ, (ସ୍ତ୍ରୀ) ଆତ୍ମନିର୍ଭରଶୀଳା ।

ଆତ୍ମନିଷ୍ଠ—ପୁଂ.ବଂ.(ବ.ବ୍ରୀ)ଆତ୍ମନିର୍ଭରଶୀଳ, ମୁମୁକ୍ଷୁ, ବ୍ରହ୍ମନିଷ୍ଠ, ଆତ୍ମଦର୍ଶୀ, (ସ୍ତ୍ରୀ) ଆତ୍ମନିଷ୍ଠା ।

ଆତ୍ମନିଷ୍ଠା—ବି. ୬ତତ୍; (ଆତ୍ମନ୍ + ନିଷ୍ଠା) ଏକାନ୍ତ ଈଶ୍ୱର ବିଶ୍ୱାସ, ଆପଣାଠାରେ ଏକାନ୍ତ ବିଶ୍ୱାସ, ବ୍ରହ୍ମନିଷ୍ଠା ।

ଆତ୍ମଘ୍ନ—ପୁଂ. ବଂ. (ଆତ୍ମନ୍ + ହନ୍) ଆତ୍ମହତ୍ୟକାରୀ ପଥ୍ୟ, (ବି ପୁତ୍ର,କନ୍ୟା, ଶାଳକ, ବିଦୂଷକ ।

ଆତ୍ମଘ୍ନା—ସ୍ତ୍ରୀ. ବଂ. ଆତ୍ମହତ୍ୟକାରିଣୀ, (ବି) କନ୍ୟା ।

ଆତ୍ମନେପଦ—କ୍ଲୀ. ବି. (ଆତ୍ମନ୍ + ପଦ) (ସଂ-ବ୍ୟାକରଣ) ଯେଉଁକ୍ରିୟାର ବିଭକ୍ତି ଆତ୍ମଫଳଭାଗିତ୍ୱ ପ୍ରକାଶ କରେ, ପରସ୍ମୈପଦର ଇତର ପଦ ।

ଆତ୍ମନେପଦୀ—ପୁଂ. ବି. ବ୍ୟାକରଣପ୍ରସିଦ୍ଧ ଆତ୍ମନେପଦୀ ଧାତୁବିଶେଷ ।

ଆତ୍ମନେଭାଷା—ସ୍ତ୍ରୀ.ବି.ନିଜ ଉଦ୍ଦେଶ୍ୟରେ କଥା, ଆତ୍ମନେପଦୀର ଅର୍ଥ ।

ଆତ୍ମପର—ବି. ବଂ. (୬ତତ୍) ନିଜର ଓ ଅପର ଲୋକ, ଆତ୍ମମ୍ଭରି, ସ୍ୱାର୍ଥପରାୟଣ, ଆତ୍ମନିଷ୍ଠ ।

ଆତ୍ମପରାୟଣ—ବି. ବଂ. (ବ.ବ୍ରୀ) ସ୍ୱାର୍ଥପର, ଆତ୍ମନିଷ୍ଠ, ବ୍ରହ୍ମନିଷ୍ଠ, (ସ୍ତ୍ରୀ) ଆତ୍ମପରାୟଣା ।

ଆତ୍ମପରିଚୟ—ପୁଂ.ବି. (୬ତତ୍) ନିଜର ନାମ ଧାମ ଜ୍ଞାପନପୂର୍ବକ ପରିଚୟଦେବା ।

ଆତ୍ମପରୀକ୍ଷା—ସ୍ତ୍ରୀ.ବି. ୬ତତ୍,(ଆତ୍ମନ୍ + ପରୀକ୍ଷା) ନିଜର କାର୍ଯ୍ୟକଳାପ ବା ମନୋଗତ ଭାବକୁ ଉତ୍ତମରୂପେ ବିଚାର କରିବା ।

ଆତ୍ମପୀଡ଼ନ—କ୍ଲୀ. ବି. ଆପଣାକୁ କ୍ଲେଶଦେବା, ନିଜେ କଷ୍ଟ ଭୋଗ କରିବା ।

ଆତ୍ମପୁରାଣ—ପୁଂ. ବି. ଶଙ୍କରାନନ୍ଦ ରଚିତ ଉପନିଷଦର ଅର୍ଥପୂ ପୁସ୍ତକବିଶେଷ ।

ଆତ୍ମପୂଜନ—ସ୍ତ୍ରୀ. ବି. (୬ତତ୍) ଆପଣାକୁ ଦେବତା ଜ୍ଞାନକରିବା ବା ଦେବତାଙ୍କ ପରି ଆରାଧନା କରିବା ।

ଆତ୍ମପୋଷକ—ପୁଂ. ବଂ. (୬ତତ୍) ଯେ ନିଜେ ନିଜକୁ ପୋଷଣ କରେ, ଆତ୍ମମ୍ଭରି, ସ୍ୱପାଳକ, ଯେ ଆପଣା ପେଟ ଭରେ ।

ଆତ୍ମପୋଷଣ—କ୍ଳୀ. ବି. (୬ତତ୍ପୁ) ନିଜେ ନିଜର ପୁଷ୍ଟିସାଧନ କରିବା,ଆତ୍ମମ୍ଭରିତ୍ୱ ।

ଆତ୍ମପ୍ରକାଶ—ପୁଂ. ବି. (୬ତତ୍ପୁ) ସ୍ୱରୂପ-ପ୍ରକଟନ, ନିଜମୂର୍ତ୍ତି ପ୍ରଦର୍ଶନ, ନିଜର ପରିଚୟ ପ୍ରଦାନ, ଚୈତନ୍ୟପ୍ରକାଶ, ପରମାତ୍ମାଙ୍କୁ ସାକ୍ଷାତ୍ କରିବା ।

ଆତ୍ମପ୍ରତାରଣା—କ୍ଳୀ.ବି. (୬ତତ୍ପୁ) ଆତ୍ମ-ବଞ୍ଚନ, ଦାନଭୋଗହୀନ ଜୀବନଯାପନ ।

ଆତ୍ମପ୍ରତିଷ୍ଠା—ସ୍ତ୍ରୀ. ବି. (୬ତତ୍ପୁ) ନିଜର ପ୍ରତିପତ୍ତି, ପ୍ରାଧାନ୍ୟ ବା ଗୌରବ ।

ଆତ୍ମପ୍ରତ୍ୟୟ—ପୁଂ. ବି. (୬ତତ୍ପୁ) ନିଜ ଉପରେ ଆସ୍ଥା ବା ବିଶ୍ୱାସ ।

ଆତ୍ମପ୍ରତ୍ୟୟୀ—ପୁଂ. ବିଂ. ନିଜ ଶକ୍ତିର ବିଶ୍ୱାସକାରୀ, ଈଶ୍ୱର-ବିଶ୍ୱାସକାରୀ, ବ୍ରହ୍ମନିର୍ଭରଶୀଳ, (ସ୍ତ୍ରୀ) ଆତ୍ମପ୍ରତ୍ୟୟିନୀ

ଆତ୍ମପ୍ରଭ—ପୁଂ.ବିଂ. ସ୍ୱୟଂ ପ୍ରକାଶମାନ, (ବି) ପରମାତ୍ମା, (ସ୍ତ୍ରୀ) ଆତ୍ମପ୍ରଭା ।

ଆତ୍ମପ୍ରଭବ—ପୁଂ. ବି. ( ଆତ୍ମ+ପ୍ର+ଭୂ +ଅ) ପୁତ୍ର, ତନୁଜ, କନ୍ଦର୍ପ, (ସ୍ତ୍ରୀ) କନ୍ୟା, ବୁଦ୍ଧି, ଆତ୍ମପ୍ରଭବା ।

ଆତ୍ମପ୍ରମାଦ—ପୁଂ. ବିଂ. (୬ତତ୍ପୁ) ନିଜର ଭ୍ରମ, ଆପଣାର ଭୁଲ, ଚିତ୍ତବିଭ୍ରମ, ଆପଣାକୁ ଭୁଲିଯିବା ।

ଆତ୍ମପ୍ରଶଂସା—ସ୍ତ୍ରୀ. ବି. (୬ତତ୍ପୁ) ନିଜେ ନିଜର ସୁଖ୍ୟାତି କରିବା, ଆତ୍ମଶ୍ଲାଘା, ନିଜେ ନିଜେ ଠେକ ହେବା ।

ଆତ୍ମପ୍ରସାଦ—ପୁଂ.ବି.(ଆତ୍ମନ୍+ପ୍ରସାଦ) ଭଲ କାର୍ଯ୍ୟ କରିବା ଯୋଗୁଁ ନିଜ-ମନରେ ଜାତ ହେବା ସନ୍ତୋଷ ।

ଆତ୍ମପ୍ରାଧାନ୍ୟ—କ୍ଳୀ.ବି. (୬ତତ୍ପୁ) ସ୍ୱୀୟ ଶ୍ରେଷ୍ଠତା ।

ଆତ୍ମବଞ୍ଚକ—ତ୍ରି. ବିଂ. (୬ତତ୍ପୁ) ଆତ୍ମ-ବଞ୍ଚନକାରୀ, ଦାନଭୋଗହୀନ ଜୀବନ-ଯାପକ; (ସ୍ତ୍ରୀ) ଆତ୍ମବଞ୍ଚକା ।

ଆତ୍ମବଞ୍ଚନା—ବି.(ଆତ୍ମନ୍+ବଞ୍ଚନା)ନିଜ ଦୋଷକୁ ନିଜେ ସ୍ୱୀକାର ନ କରିବା ।

ଆତ୍ମବନ୍ଧୁ—ପୁଂ.ବି. ନିଜର ମିତ୍ର, ମାଉସୀ ଓ ପିଉସୀପୁଅ ଭାଇ ।

ଆତ୍ମବତ୍—ବିଂ. (ଆତ୍ମନ୍+ବତ୍) ଆପଣା ପରି, ଆପଣା ସମାନ ।

ଆତ୍ମବତ୍ତା—ସ୍ତ୍ରୀ. ବି. ଆତ୍ମସାଦୃଶ୍ୟ,ଭେଦ-ବୁଦ୍ଧିରହିତତ୍ୱ, ପକ୍ଷପାତବିରହ, ମନ-ସ୍ୱିତା ।

ଆତ୍ମବର୍ଗ—ପୁଂ. ବି. (୬ତତ୍ପୁ) ଆପଣାର ଲୋକ, ବନ୍ଧୁବାନ୍ଧବ ।

ଆତ୍ମବଳି—ପୁଂ. ବି, ( ୬ତତ୍ପୁ ) ନିଜକୁ ବଳିଦେବା, ଆତ୍ମୋତ୍ସର୍ଗ, ସ୍ୱାର୍ଥତ୍ୟାଗ, ନିଜ ସୁଖ ବିସର୍ଜନ ।

ଆତ୍ମବଶ—ପୁଂ. ବିଂ. (ଆତ୍ମନ୍+ବଶ ) ଯେ ନିଜକୁ ଆୟତ୍ତ କରିପାରେ (ବି) ମନୋବଶୀକରଣ, ଇନ୍ଦ୍ରିୟନିଗ୍ରହ, (ସ୍ତ୍ରୀ.) ଆତ୍ମବଶା ।

ଆତ୍ମବାନ୍—ପୁଂ.ବିଂ. ଯାହାର ଅନ୍ତରାତ୍ମା ଉନ୍ନତ, (ସ୍ତ୍ରୀ) ଆତ୍ମବତୀ ।

ଆତ୍ମବିକାଶ—ପୁଂ. ବି. (୬ତତ୍ପୁ) ସ୍ୱକୀୟ ସ୍ଫୂର୍ତ୍ତି, ସ୍ୱୀୟପୁଷ୍ଟି, ଆତ୍ମପ୍ରକାଶ ।

ଆତ୍ମବିକ୍ରୟ—ପୁଂ.ବି. (ଆତ୍ମନ୍+ବିକ୍ରୟ) ପର ନିକଟରେ ବିବେକକୁ ବିକ୍ରୟ କରିବା, (ବିଂ) ଆତ୍ମବିକ୍ରୟୀ ।

ଆତ୍ମବିଦ୍ୟା—ବି. ( ଆତ୍ମନ୍+ବିଦ୍ୟା ) ଯେଉଁ ବିଜ୍ଞାନ ବା ବିଦ୍ୟାଦ୍ୱାରା ଆତ୍ମା-ସମ୍ବନ୍ଧେ ଜ୍ଞାନଲାଭ ହୁଏ ।

ଆତ୍ମଭବ—ତ୍ରି. ବିଂ. (ବ.ବ୍ରୀ) ମନୋ-ଜାତ, ମାନସଜନ୍ମା (ସ୍ତ୍ରୀ) ଆତ୍ମଭବା (ପୁଂ.ବି) କାମଦେବ, କନ୍ଦର୍ପ, ଆତ୍ମ-ବିଦ୍ୟମାନତା ।

ଆତ୍ମଭାବ—ପୁଂ. ବି. ୬ ତତ୍ପୁ; ଆପଣାର ଭାବ ବା ପ୍ରକୃତି, ସ୍ୱଭାବ ।

ଆତ୍ମଭୂ—ପୁଂ.ବି.(ଆତ୍ମନ୍+ଭୂ+କ୍ୱିପ୍) କନ୍ଦର୍ପ, ପୁତ୍ର, ବ୍ରହ୍ମା, ଶିବ, ବିଷ୍ଣୁ,(ବିଂ) ସ୍ୱୟଂଉତ୍ପନ୍ନ, (ସ୍ତ୍ରୀ) କନ୍ୟା, ବୁଦ୍ଧି ।

ଆତ୍ମଭୂତ—ପୁଂ. ବିଂ. (ଆତ୍ମନ୍+ଭୂ+ତ) ତନୁଜ, ପୁତ୍ର, କନ୍ଦର୍ପ, (ସ୍ତ୍ରୀ) ଆତ୍ମ-ଭୂତା, କନ୍ୟା, ବୁଦ୍ଧି ।

ଆତ୍ମଭୂତି—ସ୍ତ୍ରୀ. ବି. ( ଆତ୍ମନ୍+ଭୂତି ) ନିଜସ୍ୱ ।

ଆତ୍ମଭୂୟ—କ୍ଳୀ.ବି. (ଆତ୍ମନ୍+ଭୂ+ଯ) ଆତ୍ମତ୍ୱ, ବ୍ରହ୍ମରୂପ ।

ଆତ୍ମମୟ—କ୍ଳୀ. ବିଂ. ଆତ୍ମସ୍ୱରୂପପ୍ରାପ୍ତ ।

ଆତ୍ମମର୍ଯ୍ୟାଦା—ସ୍ତ୍ରୀ. ବି. (୬ତତ୍ପୁ) ନିଜର ମାନ, ଆତ୍ମସମାଦର, ଆତ୍ମଗୌରବ ।

ଆତ୍ମମର୍ଯ୍ୟାଦାଜ୍ଞାନ—କ୍ଳୀ. ବି. ( ୬ତତ୍ପୁ ) ନିଜ ମାନର ବୋଧ, ଆତ୍ମଗୌରବର ଧାରଣା ।

ଆତ୍ମମାନୀ—ପୁଂ. ବିଂ. ଅଭିମାନୀ,ଗର୍ବିତ, ସମସ୍ତ ପ୍ରାଣୀଙ୍କୁ ଯେ ନିଜ ପରି ମନେ କରେ । [ ଅନୁଜ ।

ଆତ୍ମମୂର୍ତ୍ତି—ପୁଂ.ବି.(ବ.ବ୍ରୀ)ଭ୍ରାତା,ଭାଇ,

ଆତ୍ମମୂଳୀ—ସ୍ତ୍ରୀ. ବି. ଦୁରାଲଭା ଲତା, ଦୁର୍ଲଭା ଲତା, ଜଗତ୍ ।

ଆତ୍ମମ୍ଭରି(ରୀ)—ପୁଂ. ବିଂ. (ଆତ୍ମନ୍+ଭୃ +କ.ଇ ) ଯେ ନିଜର ପେଟ ପାଇଁ କେବଳ ଯତ୍ନ କରେ, ପେଟୁ, ସ୍ୱାର୍ଥପର ।

ଆତ୍ମଯୋନି—ପୁଂ.ବି. (ଆତ୍ମନ୍+ଯୋନି) ବ.ବ୍ରୀ; ହିରଣ୍ୟଗର୍ଭ, ବ୍ରହ୍ମା, ବିଷ୍ଣୁ, ଶିବ, କନ୍ଦର୍ପ ।

ଆତ୍ମରକ୍ଷା—ସ୍ତ୍ରୀ. ବି. ଇନ୍ଦ୍ରବାରୁଣୀ ବା ମହାକାଳ ବୃକ୍ଷ, ଆପଣାର ରକ୍ଷା, ଶତ୍ରୁ-ମାନଙ୍କଠାରୁ ଅସ୍ତ୍ରଦ୍ୱାରା ରକ୍ଷା ।

ଆତ୍ମରାମ—ପୁଂ. ବି. ଆତ୍ମଜ୍ଞାନମାତ୍ରେ ତୃପ୍ତ ଯୋଗୀନ୍ଦ୍ର, ଜ୍ଞାନାମୃତରେ ତୃପ୍ତ ସାଧୁ ।

ଆତ୍ମଲାଭ—ପୁଂ. ବି. (୬ତତ୍ପୁ) ଉତ୍ପତ୍ତି, ନିଜର ଲାଭ, ଜ୍ଞାନ, ତତ୍ତ୍ୱଜ୍ଞାନ, ଆତ୍ମାର ଲାଭ ।

ଆତ୍ମଲିଙ୍ଗ—କ୍ଳୀ. ବି. ଆତ୍ମାର ଅସ୍ତିତ୍ୱ-ପରିଚାୟକ ସୁଖ ଦୁଃଖାଦି ।

ଆତ୍ମଲୀନ—ତ୍ରି. ବିଂ. (୬ତତ୍ପୁ) ଆପଣା-ଠାରେ ଲୟ ପ୍ରାପ୍ତ, ଆତ୍ମନିମଗ୍ନ, ଆତ୍ମନିବିଷ୍ଟ ।

ଆତ୍ମଲୋକ—ପୁଂ. ବି. ସ୍ୱପ୍ରକାଶ, ଆତ୍ମା ।

ଆତ୍ମଲୋମ—କ୍ଳୀ.ବି.ଶ୍ମଶ୍ରୁ, ଦାଢ଼ି, ଶରୀରସ୍ଥ ଲୋମ ।

ଆତ୍ମବଞ୍ଚକ—ପୁଂ. ବିଂ. କୃପଣ, ଲୋଭୀ ।

ଆତ୍ମବତ୍—ପୁଂ. ବିଂ. (ଅତ୍ମନ+ବତ୍) ବଶୀଭୂତଚିତ୍ତ, ନିର୍ବିକାରଚିତ୍ତ, (ଅବ୍ୟ) ନିଜପରି ।

ଆତ୍ମବତ୍ତା—ସ୍ତ୍ରୀ. ବି. ( ଆତ୍ମବତ୍ + ତା ) ଆତ୍ମସଦୃଶ,ସମସ୍ତଙ୍କୁ ଆପଣା ପରି ଜ୍ଞାନ, ଭେଦବୁଦ୍ଧିରହିତ, ପକ୍ଷପାତବିରହ, ମନସ୍ୱିତା ।

ଆତ୍ମବିକ୍ରୟୀ—ପୁଂ.ବିଂ. (ଆତ୍ମନ୍ + ବି + କ୍ରୀ + କ.ଇନ୍ ) ଆତ୍ମବିକ୍ରେତା, (ସ୍ତ୍ରୀ) ଆତ୍ମବିକ୍ରୟିଣୀ ।

ଆତ୍ମବିକ୍ରେତା—ପୁଂ.ବିଂ.(୬ତତ୍) ଆତ୍ମବିକ୍ରୟକାରୀ, ଅର୍ଥବଶ ହୋଇ ପରଠାରେ ମୁଣ୍ଡ ବିକିବା, ( ନୌକରୀ କରିବା) ।

ଆତ୍ମବିସ୍ମୃତି—ସ୍ତ୍ରୀ. ବି. ଆପଣାକୁ ଭୁଲିଯିବା, ଆପଣାର ଦୋଷଗୁଣାଦି ପ୍ରତି ଲକ୍ଷ୍ୟ ନ କରିବା ।

ଆତ୍ମବିଗ୍ରହ—ପୁଂ. ବି. (୬ତତ୍) ଅନ୍ତର୍ବିଚ୍ଛେଦ, ଗୃହବିବାଦ, ଆପଣା ଆପଣା ଭିତରେ ବିରୋଧ ।

ଆତ୍ମବିଚ୍ଛେଦ—ପୁଂ. ବି. (୬ତତ୍) ଆତ୍ମବିରହ, ପରସ୍ପର ମଧ୍ୟରେ ବିବାଦ, ଗୃହବିବାଦ, ଅନ୍ତର୍ନିଗ୍ରହ ।

ଆତ୍ମବିନାଶ—ପୁଂ. ବି. (୬ତତ୍) ଆତ୍ମନାଶ, ଆତ୍ମଘାତ, ଆତ୍ମହତ୍ୟା ।

ଆତ୍ମବିରୋଧ—ପୁଂ. ବି. (୬ତତ୍) ପରସ୍ପର ସହିତ କଳହ, ନିଜର ବୈପରୀତ୍ୟ ।

ଆତ୍ମବିଶୁଦ୍ଧି—ସ୍ତ୍ରୀ. ବି. (୬ତତ୍)ଚିତ୍ତଶୁଦ୍ଧି, ପ୍ରାୟଶ୍ଚିତ୍ତଦ୍ୱାରା ପାପକ୍ଷୟ, ସ୍ୱଦୋଷନିରାକରଣ ।

ଆତ୍ମବିଶ୍ୱାସ—ପୁଂ.ବି.(୬ତତ୍)ନିଜ ଶକ୍ତିର ବିଶ୍ୱାସ, ଆତ୍ମପ୍ରତ୍ୟୟ ।

ଆତ୍ମବିସର୍ଜନ—କ୍ଲୀ. ବି. (୬ତତ୍) ଆତ୍ମତ୍ୟାଗ, ସ୍ୱାର୍ଥତ୍ୟାଗ, ଜୀବନତ୍ୟାଗ ।

ଆତ୍ମବିସ୍ମୃତ—ପୁଂ. ବିଂ. (୨ତତ୍) ନିଜର ଦୋଷଗୁଣ ପ୍ରତି ଲକ୍ଷ୍ୟହୀନ ବା ତାହା ବୁଝିବାରେ ଅକ୍ଷମ ।

ଆତ୍ମବିହାରୀ—ପୁଂ. ବିଂ. (୭ତତ୍) ଆତ୍ମାରାମ, ଆତ୍ମକ୍ରୀଡ଼ାପର ।

ଆତ୍ମବିହ୍ୱଳ—ପୁଂ. ବିଂ. (୭ତତ୍) ଆପଣା ବିଷୟରେ ଏକାନ୍ତ ଅଭିଭୂତ, (ସ୍ତ୍ରୀ) ଆତ୍ମବିହ୍ୱଳା ।

ଆତ୍ମବିତ୍—ପୁଂ.ବିଂ. (ଆତ୍ମନ୍ + ବିଦ୍ + କ୍ୱିପ୍) ଆତ୍ମଜ୍ଞ, ଯେ ଜୀବାତ୍ମା ଓ ପରମାତ୍ମାଙ୍କୁ ଜାଣେ, ସୁଧୀ, ସ୍ୱପକ୍ଷଜ୍ଞାତା ।

ଆତ୍ମବିଦ୍ୟା—ସ୍ତ୍ରୀ.ବି.(କ.ଧା) ବ୍ରହ୍ମବିଦ୍ୟା, ଯୋଗଶାସ୍ତ୍ର, ଅଧ୍ୟାତ୍ମବିଦ୍ୟା, ବେଦାନ୍ତଦର୍ଶନ ।

ଆତ୍ମବୀର—ପୁଂ.ବିଂ. (ବ.ବ୍ରୀ) ଅତିଶୟ ବଳଯୁକ୍ତ (ତତ୍)ଶଳା,ପୁତ୍ର,ବିଦୂଷକ ।

ଆତ୍ମବୁଦ୍ଧି—ସ୍ତ୍ରୀ.ବି. ୬ତତ୍; (ଆତ୍ମନ୍ + ବୁଦ୍ଧି ) ଆପଣାର ବୁଦ୍ଧି, ଆତ୍ମଜ୍ଞାନ, ଆତ୍ମସମ୍ବନ୍ଧୀୟ ଜ୍ଞାନ ବା ଧାରଣା ।

ଆତ୍ମବୃତ୍ତି—ସ୍ତ୍ରୀ.ବି. ଆପଣାର ଜୀବନୋପାୟ ।

ଆତ୍ମଶକ୍ତି—ସ୍ତ୍ରୀ.ବି. (୬ତତ୍) ଆତ୍ମାନୁରୂପ ଶକ୍ତି, ନିଜର ବଳ ବା ସାମର୍ଥ୍ୟ,ସହଜଶକ୍ତି ।

ଆତ୍ମଶଲ୍ୟା—ସ୍ତ୍ରୀ.ବି. (୬ତତ୍) ଶତାବରୀ, ଶତମୂଳୀ, ଛତୁଆରି ।

ଆତ୍ମଶାସନ—କ୍ଲୀ. ବି. (୩ତତ୍) ମନ ଓ ବହିରିନ୍ଦ୍ରିୟର ଦମନ, ସ୍ୱାୟତ୍ତଶାସନ ।

ଆତ୍ମଶୁଦ୍ଧି—ସ୍ତ୍ରୀ.ବି.(୬ତତ୍)ଦେହଶୁଦ୍ଧି, ଚିତ୍ତଶୁଦ୍ଧି, ଆପଣାର ପବିତ୍ରତା, ନିଜର ନିର୍ଦ୍ଦୋଷତା, ପ୍ରାୟଶ୍ଚିତ୍ତଦ୍ୱାରା ସ୍ୱକୃତ ପାପଖଣ୍ଡନ ।

ଆତ୍ମଶ୍ଳାଘା—ସ୍ତ୍ରୀ.ବି.୬ତତ୍; (ଆତ୍ମନ୍ + ଶ୍ଳାଘା ) ନିଜଗୁଣର ପ୍ରଶଂସା, ନିଜର ମିଥ୍ୟାଗୁଣ ପ୍ରକାଶ, ନିଜମୁଖେ ନିଜର ଗର୍ବ ପ୍ରକାଶ ।

ଆତ୍ମସଂଯମ—ପୁଂ.ବି. (ଆତ୍ମନ୍ + ସଂଯମ) ମନର ବଶୀକରଣ, ଚିତ୍ତସଂଯମ, ଜିତେନ୍ଦ୍ରିୟତା, ମନର ବିକାର ପରିତ୍ୟାଗ ।

ଆତ୍ମସଂଯମୀ—ପୁଂ. ବିଂ. (ଆତ୍ମସଂଯମ + ଇନ୍ ) ଇନ୍ଦ୍ରିୟନିଗ୍ରହକାରୀ, ଜିତେନ୍ଦ୍ରିୟ, (ସ୍ତ୍ରୀ) ଆତ୍ମସଂଯମିନୀ ।

ଆତ୍ମସଂଶୟ—ପୁଂ.ବି. (୬ତତ୍) ଆତ୍ମାର ଅସ୍ତିତ୍ୱର ସନ୍ଦେହ ବା ଅବିଶ୍ୱାସ, ପ୍ରାଣସଂଶୟ ।

ଆତ୍ମସଂସ୍ଥ—ବି. ବିଂ. (୭ତତ୍) ବ୍ରହ୍ମନିଷ୍ଠ, ଆତ୍ମଭାବାପନ୍ନ, ଆତ୍ମୈକାକାର, (ସ୍ତ୍ରୀ) ଆତ୍ମସଂସ୍ଥା ।

ଆତ୍ମସଂକ୍ରାନ୍ତ—ବି. ବିଂ. ( ୨ତତ୍ ) ସ୍ୱସମ୍ବନ୍ଧୀୟ, ଆପଣାର, ନିଜର, (ସ୍ତ୍ରୀ) ଆତ୍ମସଂକ୍ରାନ୍ତା ।

ଆତ୍ମସମର୍ଥନ—କ୍ଲୀ.ବି.(୬ତତ୍)ଆପଣାକୁ ସମର୍ଥନ କରିବା, ନିଜେ ଯାହା କହିଅଛି ବା କରିଅଛି ତାହା ପ୍ରମାଣସିଦ୍ଧ କରିବା ।

ଆତ୍ମସମର୍ପଣ—କ୍ଲୀ. ବି. (୬ତତ୍) ଆପଣାକୁ ଦାନ କରିବା, ନିଜକୁ କାହାର ହାତରେ ସମର୍ପି ଦେବା, ଆପଣାକୁ ଓ ଆପଣାର ଲୋକମାନଙ୍କୁ ନିରସ୍ତ୍ର କରି ବିପକ୍ଷର ଅଧୀନତା ସ୍ୱୀକାର କରିବା ।

ଆତ୍ମସମ୍ପର୍କ—ପୁଂ. ବି. (୬ତତ୍) ସ୍ୱକୀୟ ସମ୍ବନ୍ଧ, ଆତ୍ମସଂସ୍ରବ ।

ଆତ୍ମସମୁଦ୍ଭବ—ପୁଂ. ବି. (ବ.ବ୍ରୀ) ପୁତ୍ର, କନ୍ଦର୍ପ, (ସ୍ତ୍ରୀ) ଆତ୍ମସମୁଦ୍ଭବା କନ୍ୟା, ବୁଦ୍ଧି, (ବିଂ) ମନରି ସୁଖାଦି ।

ଆତ୍ମସମ୍ବନ୍ଧ—ପୁଂ. ବି.(୬ତତ୍) ସ୍ୱସମ୍ବନ୍ଧ, ଆତ୍ମସମ୍ପର୍କ ।

ଆତ୍ମସମ୍ବନ୍ଧୀୟ—ବି.ବିଂ. (୬ତତ୍) ଆତ୍ମସମ୍ପର୍କୀୟ, ସ୍ୱସଂକ୍ରାନ୍ତ (ସ୍ତ୍ରୀ) ଆତ୍ମସମ୍ବନ୍ଧୀୟା ।

ଆତ୍ମସମ୍ଭବ—ପୁଂ. ବି. (ବ.ବ୍ରୀ) ତନୁଜ, ବ୍ରହ୍ମା, କନ୍ଦର୍ପ, (ସ୍ତ୍ରୀ) କନ୍ୟା, ବୁଦ୍ଧି, (ବିଂ) ମନରେ ଜାତାଦି ।

ଆତ୍ମସମ୍ଭବା—ସ୍ତ୍ରୀ. ବି. କନ୍ୟା, ଝିଅ ।

ଆତ୍ମସମ୍ମାନ—ବି.୬ତତ୍; (ଆତ୍ମ + ସମ୍ମାନ) (ଆତ୍ମମର୍ଯ୍ୟାଦା ଦେଖ)

ଆତ୍ମସମ୍ମାନୀ—ପୁଂ. ବିଂ. (ଆତ୍ମସମ୍ମାନ + ଇନ୍ ) ଆତ୍ମମର୍ଯ୍ୟାଦାଶାଳୀ, ଆତ୍ମସମାଦରବିଶିଷ୍ଟ ।

ଆତ୍ମସମ୍ମିତ—ବି. ବିଂ. ( ୬ତତ୍ ) ସ୍ୱସଦୃଶ,ଆପଣାପରି (ସ୍ତ୍ରୀ)ଆତ୍ମସମ୍ମିତା ।

ଆତ୍ମସାକ୍ଷୀ—ପୁଂ. ବିଂ. ବେଦାନ୍ତସିଦ୍ଧ ବୁଦ୍ଧିବୃତ୍ତିପ୍ରକାଶକ ଚୈତନ୍ୟ, ଆତ୍ମସାକ୍ଷିକ, ପରମାତ୍ମା ।

ଆତ୍ମସାତ୍—ଅବ୍ୟ. ( ଆତ୍ମନ୍ + ସାତ୍ ) ଅଧୀନୀଭୂତ, ଅଧୀନୀକ୍ରିୟମାଣ, ଆୟତ୍ତ, ନିଜର କରିବା, ( ବିଂ ) ହସ୍ତଗତ, ଆତ୍ମାୟତ୍ତ ।

ଆତ୍ମସାତ୍‌କୃତ—ବି. ବଂ. (ଆତ୍ମସାତ୍ + ଚ୍ୱି + କୃ + ର୍ମ.ତ) ସ୍ୱାୟତ୍ତୀକୃତ, ଆତ୍ମସାତ୍ କରାଯାଇଥିବା ।

ଆତ୍ମସାର—ବି. ବଂ. (ବ.ବ୍ରୀ) ଆତ୍ମମ୍ଭରି, ସ୍ୱାର୍ଥପର ।

ଆତ୍ମସିଦ୍ଧ—ବଂ. ସ୍ୱୟଂସିଦ୍ଧ, ଯାହା ଚେଷ୍ଟାଦ୍ୱାରା ବ କରା ଯାଇ ନାହିଁ ।

ଆତ୍ମସିଦ୍ଧି—ସ୍ତ୍ରୀ. ବ. ଆତ୍ମଜ୍ଞାନଲାଭ, ମୋକ୍ଷ ।

ଆତ୍ମସୁଖ—ପୁଂ. ବଂ. ଆତ୍ମରୂପ ପରମାନନ୍ଦ, ଆତ୍ମଲାଭମାତ୍ରେ ସୁଖୀ, (କ୍ଲୀ.ବ) ନିଜ ସୁଖ, ସ୍ୱୀୟସୁଖ, ଆପଣାର ଦୁଃଖନିବୃତ୍ତି ।

ଆତ୍ମସ୍ତୁତି—ସ୍ତ୍ରୀ.ବ.(୬ତତ୍) ସ୍ୱୀୟ ଗୁଣକୀର୍ତ୍ତନ, ଆତ୍ମଶ୍ଳାଘା ।

ଆତ୍ମସ୍ଥ—ବି.ବଂ.(ଆତ୍ମନ୍ + ସ୍ଥା + କ.ଅ, ପ୍ରକୃତିସ୍ଥ, ମନୋବୃତ୍ତି ପଦାର୍ଥ, ସୁସ୍ଥ, ଆତ୍ମନିଷ୍ଠ, ଆତ୍ମାରାମ ।

ଆତ୍ମହତ୍ୟା—ସ୍ତ୍ରୀ ବ.୬ତତ୍; ଆତ୍ମନ୍ + ହତ୍ୟା)ନିଜ ଜୀବନ ନିଜେ ନଷ୍ଟକରିବା, ଆତ୍ମଘାତ, ସ୍ୱବଧ, ଉଦ୍‌ବନ୍ଧନ, ବିଷଭକ୍ଷଣ, ଜଳମଜ୍ଜନ ।

ଆତ୍ମହନ୍, ଆତ୍ମହା—ପୁଂ. ବଂ. (ଆତ୍ମନ୍ + ହନ୍) ଯଥାର୍ଥ ଆତ୍ମଜ୍ଞାନ ନ ଥିବା, ଦେହାଦିର ଅଭିମାନୀ, ଆତ୍ମଘାତୀ, (ସ୍ତ୍ରୀ) ଆତ୍ମଘାତିନୀ ।

ଆତ୍ମହନନ—କ୍ଲୀ. ବ. (୬ତତ୍) ସ୍ୱହସ୍ତେ ନିଜର ପ୍ରାଣନାଶ, ଆତ୍ମହତ୍ୟା ।

ଆତ୍ମହନ୍ତା—ପୁଂ. ବ. (୬ତତ୍) ଆତ୍ମବିନାଶୀ, ଆତ୍ମଘାତୀ, (ସ୍ତ୍ରୀ) ଆତ୍ମହନ୍ତ୍ରୀ ।

ଆତ୍ମହରା—ଗ୍ରା. ବଂ. ଆତ୍ମବିସ୍ମୃତ ।

ଆତ୍ମହିତ—କ୍ଲୀ. ବ. (୬ତତ୍) ନିଜର ଇଷ୍ଟ, ଆପଣାର ମଙ୍ଗଳ ।

ଆତ୍ମହୀନ—ବି.ବଂ.(୩ତତ୍) ସ୍ୱାର୍ଥରହିତ, (ସ୍ତ୍ରୀ) ଆତ୍ମହୀନା ।

ଆତ୍ମା—ପୁଂ.ବ. (ଆ + ଅତ + କ.ମନ୍) ଆପେ, ସ୍ୱରୂପ, ବ୍ରହ୍ମ, ଜୀବ, ବୁଦ୍ଧି, ଧୈର୍ଯ୍ୟ, ଅନ୍ତଃକରଣ, ସୂର୍ଯ୍ୟ, ବାୟୁ-ଅଧିଷ୍ଠାତ୍ରୀ ଦେବତା, ମନଃ, ଦେହ, ସ୍ୱଭାବ, ଯତ୍ନ, ବହ୍ନି, ଚିତ୍ତ, ହୃଦୟ, ପୁତ୍ର, ଆତ୍ୟନ୍ତିକ ନିବୃତ୍ତି, ଆତ୍ମା-ଦ୍ୱିବିଧ, ଯଥା-ଜୀବାତ୍ମା, ପରମାତ୍ମା ।

ଆତ୍ମାଘାତକ—ଗ୍ରା. ପୁଂ. ବଂ. (ସଂ ଆତ୍ମଘାତୀ) ଆତ୍ମହତ୍ୟାକାରୀ, (ସ୍ତ୍ରୀ) ଆତ୍ମାଘାତକୀ ।

ଆତ୍ମାଘାତୀ—ଗ୍ରା. ବଂ. (ସଂ ଆତ୍ମଘାତୀ) ଆତ୍ମାଘାତକ ଦେଖ ।

ଆତ୍ମାଦର—ପୁଂ. ବ (୬ତତ୍) ଆତ୍ମସମାଦର, ଆତ୍ମଗୌରବ, ନିଜକୁ ନୀଚ ମନେ ନ କରିବା ।

ଆତ୍ମାଧୀନ—ପୁଂ.ବ.(୬ତତ୍) ପୁତ୍ର, ଶଳା ବିଦୂଷକ, ଭଣ୍ଡ, ପ୍ରାଣୀ, ଜୀବ, (ବଂ) ସ୍ୱାଧୀନ, ନିଜ ଉପରେ ନିର୍ଭର କରୁଥିବା, ସଜୀବ, ସ୍ୱତନ୍ତ୍ର, ଆତ୍ମସ୍ୱତ୍ୱ ।

ଆତ୍ମାନନ୍ଦ—ବି ବ. (ବ ବ୍ରୀ) ଆତ୍ମାରାମ, ଆପଣାର ଆନନ୍ଦରେ ବିଭୋର ।

ଆତ୍ମାନୁରୂପ—ପୁଂ. ବଂ. ନିଜର ତୁଲ୍ୟ, ନିଜ ସଦୃଶ, ନିଜପର ।

ଆତ୍ମାନୁଶାସନ—କ୍ଲୀ. ବ. (୬ତତ୍)ଆତ୍ମତତ୍ତ୍ୱୋପଦେଶ, ଆତ୍ମସମ୍ବନ୍ଧରେ ଉପଦେଶ ।

ଆତ୍ମାନୁସନ୍ଧାନ—କ୍ଲୀ.ବ. (୬ତତ୍) ଆତ୍ମପରୀକ୍ଷା, ଆତ୍ମଦର୍ଶନ, ବ୍ରହ୍ମଜ୍ଞାନଲାଭର ପ୍ରୟାସ ।

ଆତ୍ମାନ୍ୱେଷୀ—ପୁଂ. ବଂ. (ଆତ୍ମନ୍ + ଅନୁ + ଇଷ୍ + କ. ଇନ) ଆତ୍ମପରୀକ୍ଷାକାରୀ ବ୍ରହ୍ମଜ୍ଞାନଲାଭର ପ୍ରୟାସୀ ।

ଆତ୍ମାପରାଧ—ପୁଂ. ବ. (୬ତତ୍) ସ୍ୱକୃତ ଦୋଷ, ନିଜ ପ୍ରତି କୃତ ଅପରାଧ ।

ଆତ୍ମାପହାର—ପୁଂ. ବ. (୬ତତ୍) ନିଜେ ଯେଉଁ କୁଳର ତଦପେକ୍ଷା ଉଚ୍ଚ କୁଳର ବୋଲି ବାହାନା କରିବା ।

ଆତ୍ମାପହାରକ—ପୁଂ.ବଂ.୬ତତ୍;(ଆତ୍ମନ୍ + ଅପ + ହୃ + ଅକ) ଯେ ନିଜକୁ ଲୁଗ୍ରାଏ ବଞ୍ଚକ, ଶଠ, ଯେ ନିଜ ପରିଚୟ ଗୋପନ ରଖେ, (ସ୍ତ୍ରୀ) ଆତ୍ମାପହାରିକା ।

ଆତ୍ମାପହାରୀ—ପୁଂ. ବଂ. (ଆତ୍ମନ୍ + ଅପ + ହୃ + କ.ଇନ୍)ଆତ୍ମା ପହାରକ, ଆତ୍ମଗୋପନକାରୀ, ଶଠ ।

ଆତ୍ମାପୁରୁଷ—ଗ୍ରା. ବ. (ସଂ-ଆତ୍ମନ୍ + ପୁରୁଷ) ଆତ୍ମାରୂପ ପୁରୁଷ, ହୃଦୟସ୍ଥ ଆତ୍ମା, ଜୀବନ, ପ୍ରାଣ ।

ଆତ୍ମାବମାନନା—ସ୍ତ୍ରୀ.ବ. (୬ତତ୍) ଆତ୍ମାର ଅବମାନନା, ଆପଣାକୁ ନୀଚ ଭାବି ଗ୍ଳାନି ଭୋଗ କରିବା ।

ଆତ୍ମାବଲମ୍ବନ—କ୍ଲୀ.ବ. (୬ତତ୍) ସ୍ୱାବଲମ୍ବନ, ଆତ୍ମନିର୍ଭର, କୌଣସି ବିଷୟପାଇଁ ଅପରର ସାହାଯ୍ୟ ନ ଲୋଡ଼ି ନିଜେ ତାହା ସାଧନ କରିବା ।

ଆତ୍ମାବଲମ୍ବୀ—ପୁଂ.ବଂ. (ଆତ୍ମନ୍ + ଅବ-ଲମ୍ବ + କ.ଇନ୍) ସ୍ୱାବଲମ୍ବୀ, ଆତ୍ମନିର୍ଭରଶୀଳ, (ସ୍ତ୍ରୀ) ଆତ୍ମାବଲମ୍ବିନୀ ।

ଆତ୍ମାଭିମାନ—ପୁଂ.ବ. (୬ତତ୍) ଆପଣାକୁ ଶ୍ରେଷ୍ଠ ମନେ କରି ଅଭିମାନ ବା ଗର୍ବ ବୋଧିବା ।

ଆତ୍ମାଭିମାନୀ—ପୁଂ. ବଂ. (ଆତ୍ମାଭିମାନ + ଇନ୍) ଆତ୍ମାଭିମାନବିଶିଷ୍ଟ, ନିଜକୁ ବଡ଼ ବୋଲି ଗର୍ବକରିବା, ଅହଂକାରୀ, (ସ୍ତ୍ରୀ) ଆତ୍ମାଭିମାନିନୀ ।

ଆତ୍ମାଭୋଗ—ଗ୍ରା. ବଂ. (ସଂ ଆତ୍ମନ୍ + ଭୋଗ) ନିଜର ଅନୁଭୂତ ବିଷୟ ।

ଆତ୍ମାରାମ—ବି. ବଂ. (ଆତ୍ମନ୍ + ଆ + ରମ୍ + ଅ) ଜ୍ଞାନପ୍ରାପ୍ତି ନିମିତ୍ତ ଯତ୍ନବାନ୍ ଯୋଗୀ, ଯୋଗୀନ୍ଦ୍ରବିଶେଷ, ବ୍ରହ୍ମଜ୍ଞାନୀ, ସତତ ସନ୍ତୁଷ୍ଟାନ୍ତଃକରଣ, ସର୍ବଦା ଈଶ୍ୱରଚିନ୍ତକ ।

ଆତ୍ମାର୍ଥ—ପୁଂ.ବ.(୬ତତ୍)ନିଜର ପ୍ରୟୋଜନ ବା ଇଷ୍ଟ, ସ୍ୱାଥ, (ବି.ବ.) ସ୍ୱାର୍ଥପର (ଅବ୍ୟ) ନିଜ ନିମିତ୍ତ, ଆପଣା ପାଇଁ, (ସ୍ତ୍ରୀ) ଆତ୍ମାର୍ଥୀ ।

ଆତ୍ମାଲମ୍ବ—ପୁଂ. ବ. ହୃଦସ୍ପର୍ଶ ।

ଆତ୍ମାଲିଙ୍ଗ—ଗ୍ରା. ବ. ଆତ୍ମାର ଅଂଶ, ଅର୍ଦ୍ଧାଙ୍ଗ ।

ଆତ୍ମାଶସ୍ତ—ବ.(ଆତ୍ମନ୍ + ଆଶସ୍ତ)ନିଜ ଉପରେ ନିର୍ଭରତା ।

ଆତ୍ମାଶୟୀ—ପୁଂ. ବିଂ. ( ଆତ୍ମାଶୟ + ଇନ୍) ଆତ୍ମନିର୍ଭର, (ସ୍ତ୍ରୀ) ଆତ୍ମାଶୟିନୀ ।

ଆତ୍ମାଶୀ—ପୁଂ.ବି. (ଆତ୍ମନ୍ + ଅଶ୍ + କ. ଇନ୍) ସ୍ୱକୁଳଭକ୍ଷକ ମୀନ, ମତ୍ସ୍ୟ,ମାଛ ।

ଆତ୍ମାଶ୍ରୟ—ପୁଂ. ବି. ୬ତତ୍ପୁ, (ଆତ୍ମନ୍ + ଶ୍ରି + ଅ) ନିଜ ଆଶ୍ରିତ, ଚିତ୍ତାଶ୍ରିତ, ସ୍ୱାବଲମ୍ବନ ।

ଆତ୍ମାଶ୍ରୟୀ—ପୁଂ. ବିଂ. (ଆତ୍ମନ୍ + ଆ + ଶ୍ରି + କ.ଇନ୍ ) ଆତ୍ମବଲମ୍ବୀ, ସ୍ୱାବଲମ୍ବୀ, (ସ୍ତ୍ରୀ ଆତ୍ମାଶ୍ରୟିଣୀ ।

ଆତ୍ମାହୁତ—ସ୍ତ୍ରୀ. ବି. (୬ତତ୍ପୁ) ଆପଣାକୁ ଆହୁତ ଦାନ, ଆତ୍ମବଳି, ଆତ୍ମୋତ୍ସର୍ଗ, ଆତ୍ମବିସର୍ଜନ ।

ଆତ୍ମୀୟ—ପୁଂ. ବିଂ. (ଆତ୍ମନ୍ + ଈୟ) ନିଜ ସମ୍ବନ୍ଧୀୟ, ସ୍ୱକୀୟ, ଅନ୍ତରଙ୍ଗ, କୁଟୁମ୍ବସମ୍ପର୍କୀୟ, (ବି) ସ୍ୱଜନ, କୁଟୁମ୍ବ, ସୁହୃଦ, ଅନ୍ତରଙ୍ଗ ବନ୍ଧୁବାନ୍ଧବ, (ସ୍ତ୍ରୀ) ଆତ୍ମୀୟା ।

ଆତ୍ମୀୟସ୍ୱଜନ—ପୁଂ. ବି. (ଆତ୍ମୀୟ + ସ୍ୱଜନ) କୁଟୁମ୍ବ ଓ ବନ୍ଧୁ ।

ଆତ୍ମେଶ୍ୱର—ପୁଂ. ବିଂ. ମନର ସଂଯମଶୀଳ, ଯେ ନିଜ ମନକୁ ଆୟତ୍ତ କରିଅଛି ।

ଆତ୍ମୋତ୍କର୍ଷ—ପୁଂ. ବି. (୬ତତ୍ପୁ) ନିଜର ଉତ୍କୃଷ୍ଟତା ଆତ୍ମୋନ୍ନତି, ଆପଣାର ଶ୍ରୀବୃଦ୍ଧି ।

ଆତ୍ମୋତ୍ପତ୍ତି—ସ୍ତ୍ରୀ. ବି. ଆତ୍ମାର ବିକାଶ, ନିଜର ଜନ୍ମ ।

ଆତ୍ମୋତ୍ସର୍ଗ—କ୍ଲୀ. ବି. (୬ତତ୍ପୁ) ଆତ୍ମତ୍ୟାଗ, ଆତ୍ମବିସର୍ଜନ, ସ୍ୱାର୍ଥବର୍ଜନ, ସ୍ୱାର୍ଥତ୍ୟାଗ, ଜଗତର ହିତନିମିତ୍ତ ଆତ୍ମସୁଖ, ଏପରି କି ଜୀବନପର୍ଯ୍ୟନ୍ତ ପରିତ୍ୟାଗ ।

ଆତ୍ମୋଦୟ—ପୁଂ. ବି. (୬ତତ୍ପୁ) ସ୍ୱକୀୟ ଉନ୍ନତି, ନିଜର ଅଭ୍ୟୁଦୟ ।

ଆତ୍ମୋଦ୍ଭବ—ପୁଂ.ବିଂ.(ବ.ବ୍ରୀ)ଆତ୍ମଜାତ, ନିଜ ଦେହରୁ ଉଦ୍ଭୂତ, ସ୍ୱୟମ୍ଭୂତ, (ବି) ପୁତ୍ର, କନ୍ଦର୍ପ, ଆତ୍ମଜ ।

ଆତ୍ମୋଦ୍ଭବା—ସ୍ତ୍ରୀ. ବି. ମାଷପର୍ଣ୍ଣୀବୃକ୍ଷ, କନ୍ୟା, ବୁଦ୍ଧି,(ପୁଂ. ବି) ପୁତ୍ର, କନ୍ଦର୍ପ, (ବି) ଚିତ୍ତଜାତ ସୁଖ ଦୁଃଖାଦି ।

ଆତ୍ମୋନ୍ନତି—ସ୍ତ୍ରୀ. ବି. (୬ତତ୍ପୁ) ନିଜର ମାନସିକ, ନୈତିକ ଓ ବୈଷୟିକ ଉନ୍ନତି, ଆପଣାର ଆଧ୍ୟାତ୍ମିକ ଉନ୍ନତି ।

ଆତ୍ମୋପକାରକ (କାରୀ)—ପୁଂ. ବିଂ. (୬ତତ୍ପୁ) ଆତ୍ମହିତକର, ଆପଣାର ଉପକାର ସାଧକ, ନିଜର ମଙ୍ଗଳ ଜନକ. (ସ୍ତ୍ରୀ) ଆତ୍ମୋପକାରିକା ବା ଆତ୍ମୋପକାରିଣୀ ।

ଆତ୍ମୋପଜୀବୀ—ପୁଂ.ବିଂ. ନଟ, ଭାରିଆ, ମୂଲିଆ, (ସ୍ତ୍ରୀ)ଆତ୍ମୋପଜୀବିନୀ, ବେଶ୍ୟା ।

ଆତ୍ମୋପମ—ବିଂ. (ବ.ବ୍ରୀ) ନିଜସଦୃଶ, ଆତ୍ମତୁଲ୍ୟ. (ସ୍ତ୍ରୀ) ଆତ୍ମୋପମା ।

ଆତ୍ମୌପମ୍ୟ—କ୍ଲୀ.ବି. (୬ତତ୍ପୁ) ଆତ୍ମନ୍ + ଔପମ୍ୟ, ନିଜ ସାଦୃଶ୍ୟ, ସହାନୁଭୂତି ।

ଆତ୍ୟନ୍ତିକ—ପୁଂ. ବିଂ. (ଅତ୍ୟନ୍ତ + ଷ୍ଣ. ଇକ) ଅତିଶୟ, ଅତିଶୟ, ବେଶୀ, ଅସୀମ, ଅଶେଷ, ସମ୍ପୂର୍ଣ୍ଣରୂପେ, ଧାରାବାହିକ,ଅବିଚ୍ଛିନ୍ନ, ମରଣପର୍ଯ୍ୟନ୍ତ ।

ଆତ୍ୟନ୍ତିକ ଦୁଃଖନିବୃତ୍ତି—ସ୍ତ୍ରୀ. ବି. ଅପବର୍ଗ, ମୁକ୍ତି, ମୋକ୍ଷ ।

ଆତ୍ୟନ୍ତିକ ପ୍ରଳୟ—ପୁଂ.ବି. ଚାରିପ୍ରକାର ପ୍ରଳୟ ମଧ୍ୟରୁ ମୋକ୍ଷର ନାମ ।

ଆତ୍ୟନ୍ତୀନ—ତ୍ରି. ବି. (ଅତ୍ୟନ୍ତ + ଈନ୍) ଆତ୍ୟନ୍ତିକ ଦେଖ ।

ଆତ୍ୟୟିକ- ତ୍ରି. ବିଂ. (ଅତ୍ୟୟ + ଇକ. ନାଶ, ପ୍ରୟୋଜନକ (କର୍ମ) ବିନାଶନିମିତ୍ତ ( କାର୍ଯ୍ୟ ), ନାଶସମ୍ବନ୍ଧୀୟ, ପ୍ରାଣାନ୍ତକର, ଅଶୁଭନିମିତ୍ତକ, ଦୁଃଖଜନକ,ବିପଦସୂଚକ, (ସ୍ତ୍ରୀ) ଆତ୍ୟୟିକୀ ।

ଆତ୍ରେୟ—ପୁଂ. ବି. ( ଅତ୍ରି + ଏୟ ) ଅତ୍ରିମୁନିଙ୍କ ପୁତ୍ର, ଦତ୍ତ, ଦୁର୍ବାସା, ଚନ୍ଦ୍ର, ଶଙ୍କରର ରସଧାତୁ, ଆୟୁର୍ବେଦାଧ୍ୟାପକ ମୁନିବିଶେଷ, ନାଡ଼ିଜ୍ଞାନପ୍ରକରଣ ଗ୍ରନ୍ଥପ୍ରଣେତା ।

ଆତ୍ରେୟସଂହିତା—ବି. ସତ୍ୟଯୁଗରୁ ରଚିତ ଓ ବ୍ୟବହୃତ ବୈଦ୍ୟକ ଗ୍ରନ୍ଥ ।

ଆତ୍ରେୟୀ, ଆତ୍ରେୟିକା—ସ୍ତ୍ରୀ. ବି. ( ଆତ୍ରେୟ + ଈ ) ଋତୁମତୀ, ନଦୀବିଶେଷ, ସ୍ୱନାମଖ୍ୟାତା ଆଜନ୍ମ ବ୍ରହ୍ମଚାରିଣୀ, ପୁଷ୍ପବତୀ ସ୍ତ୍ରୀ, ଅତ୍ରିପତ୍ନୀ, (ବିଂ) ରଜସ୍ୱଳା ।

ଆଥର୍ବଣ—ପୁଂ. ବି. ଅଥର୍ବବେଦଜ୍ଞ ବ୍ରାହ୍ମଣ, ପୁରୋହିତ, ଅଥର୍ବବେଦୀ ଧର୍ମ, ଅଥର୍ବବେଦସମୂହ, ( ବିଂ ) ଅଥର୍ବବେଦଜ୍ଞ, ଅଥର୍ବବେଦୀୟ, ଅଥର୍ବବେଦବିହିତ ।

ଆଥର୍ବଣିକ—ପୁଂ. ବିଂ. ଯେ ବ୍ରାହ୍ମଣ ଅଥର୍ବବେଦପାଠ କରେ, ଅଥର୍ବପାଠୀ ।

ଆଦୋଡ଼—ମୁହାଁମୁହିଁ, ଧାନ୍ୟଜାତୀୟ ଶସ୍ୟକାଣ୍ଡରୁ ବାହାରିବା ।

ଆଦଂଶ—ପୁଂ. ବି. (ଆ + ଦନ୍ଶ + ଅ) ଦଂଶନ, କାମୁଡ଼ିବା, ଦନ୍ତ ।

ଆଦଉ—ଗ୍ରା. ଅବ୍ୟ (ଫ-ଆଦୌ) ଆଦୌ, ଜମାରୁ ମୋଟେ, ପ୍ରଥମରୁ, ଆରମ୍ଭରୁ ।

ଆଦତ—(ଯା) ମୋଟ ଦେୟ, ଅଭ୍ୟାସ, ରୀତି, ଧାରା, ଆଚାର ।

ଆଦଦ—ବିଂ. ଯେ ଆଦାୟ କରେ ।

ଆଦବ୍—(ଯା, ବି. ଶିଷ୍ଟାଚାର ।

ଆଦମ—(ଯା)ବି.ମୁସଲମାନ ଓ ଇହୁଦୀମାନଙ୍କର ମତ, ଭଗବାନ୍ ପ୍ରଥମେ ନିଜ ସଦୃଶ ଆଦମଙ୍କୁ ଜାତ କରିଥିଲେ ।

ଆଦମଗିରି—ପୁଂ.ବି. ସୋମଗିରି, ସୋମଶୈଳ,ଲଙ୍କାର ଦକ୍ଷିଣସ୍ଥ ପର୍ବତବିଶେଷ ।

ଆଦମି—ବି. ବ୍ୟକ୍ତି ।

ଆଦର—ପୁଂ. ବି. (ଆ + ଦୃ + ଭ୍ର, ଅ) ସମ୍ମାନ, ମର୍ଯ୍ୟାଦା, ସ୍ନେହ, ଯତ୍ନ, ଅନୁରାଗ, ବାହ୍ୟ ପ୍ରଯତ୍ନ, ଭକ୍ତି, ଶ୍ରଦ୍ଧା, (ଗ୍ରା. ବି) ତୋଷାମ ।

ଆଦରଣୀୟ—ବିଂ. (ଆ + ଦୃ + ର୍ମ + ଅନୀୟ) ପୂଜ୍ୟ, ଅବଲମ୍ବନୀୟ, ଆଦରଯୋଗ୍ୟ, ମାନନୀୟ, ଗ୍ରହଣୀୟ, (ସ୍ତ୍ରୀ) ଆଦରଣୀୟା ।

ଆଦରା—ଗ୍ରା. ବି. ଚିହ୍ନ, ଅଙ୍କ, ଦାଗ, ଠେସଦିଆ କାଠ, ( ବିଂ ) ଗୁଷ୍ଟଭଙ୍ଗ ହୋଇଥିବା ।

ଆଦରିଆଦରି—ଗ୍ରା. ବି. ପରସ୍ପର ପରସ୍ପରକୁ ରାଜି ହୋଇ ଗ୍ରହଣ କରିବା, ଥୁଆଥୋଇ, ବିବାହ ନ ହୋଇ ସ୍ୱାମୀ,

(ବ) ପରସ୍ପର ପ୍ରତି ଅନୁରାଗ ପ୍ରଦର୍ଶନ, ତୋଷାମତ୍ତ, ଅନୁନୟ ପ୍ରାର୍ଥନା, ସ୍ତ୍ରୀ ଓ ପୁରୁଷ ମଧ୍ୟରେ ଅସାମାଜିକ ପ୍ରଣୟ ।
ଆଦରଣୀ—ସ୍ତ୍ରୀ. ବିଂ. ଆଦରର ପାତ୍ରୀ; ସୋହାଗିନୀ, ପତିପ୍ରିୟା, ଅଭିମାନିନୀ ।
ଆଦରିବା—ଗ୍ରା.କ୍ରି. ଆଦରସହ ଗ୍ରହଣ-କରିବା, ସମ୍ମାନ କରିବା, ଇଚ୍ଛାରେ ଗ୍ରହଣ କରିବା, ସ୍ନେହ କରିବା, ଆଗ୍ରହ କରିବା, ଅନିବାର୍ଯ୍ୟ ଜାଣି ଗ୍ରହଣ କରିବା ।
ଆଦର୍ତ୍ତବ୍ୟ—ବିଂ. (ଆ + ଦୃ + ର୍ମ,ତବ୍ୟ) ଆଦରର ଯୋଗ୍ୟ ।
ଆଦର୍ଶ—ପୁଂ. ବି. ( ଆ + ଦୃଶ୍ + ଅ ) ଦର୍ପଣ, ଦୃଷ୍ଟାନ୍ତ, ପ୍ରତିଲିପି, ନମୁନା, ଅନୁକରଣୀୟ, ଶ୍ରେଷ୍ଠ ବ୍ୟକ୍ତି ବା ବସ୍ତୁ, (ବିଂ, ଅନୁକରଣଯୋଗ୍ୟ ।
ଆଦର୍ଶଚରିତ ଚରିତ୍ର)—କ୍ଳୀ.ବି. (କ.ଧା) ଯେଉଁ ଚରିତ୍ର ଦେଖି ଆପଣାର ଚରିତ୍ର ସଂଶୋଧନ କରିବା କର୍ତ୍ତବ୍ୟ, ଅତ୍ୟୁ-ତ୍କୃଷ୍ଟ ଚରିତ୍ର ବା ଆଚରଣ, (ବିଂ) ଅତ୍ୟୁତ୍କୃଷ୍ଟ ଚରିତ୍ରବିଶିଷ୍ଟ, ଆଦର୍ଶଭୂତ ଚରିତ ଯାହାର ।
ଆଦର୍ଶମଣ୍ଡଳ—ପୁ.ବି. ଆଦର୍ଶର ମଣ୍ଡଳ-ଯୁକ୍ତ ସର୍ପବିଶେଷ, ଗୋଲ୍‌ଦର୍ପଣ ।
ଆଦର୍ଶମାନବ—ପୁଂ. ବି. (କ.ଧା) ଯେଉଁ ବ୍ୟକ୍ତିର କାର୍ଯ୍ୟକଳାପ ଦର୍ଶନପୂର୍ବକ ଚରିତ୍ରର ଶୁଦ୍ଧି ଓ ଉନ୍ନତି ସାଧନ କରାଯାଏ ।
ଆଦର୍ଶସ୍ଥାନୀୟ—ପୁଂ. ବିଂ. ( ୬ତତ୍ପୁ ) ଆଦର୍ଶ ହେବାର ଯୋଗ୍ୟ, ଆଦର୍ଶ ସ୍ୱରୂପ ।
ଆଦର୍ଶସ୍ୱଭାବ—ପୁଂ. ବି. (କ.ଧା) ଯେଉଁ ପ୍ରକୃତି ଦେଖି ସ୍ୱୀୟ ସ୍ୱଭାବର ଦୋଷ-ସଂଶୋଧନ ଓ ଗୁଣୋନ୍ନତି ସମ୍ପାଦନ କରିବାକୁ ହୁଏ (ବିଂ) ଅତି ଉତ୍କୃଷ୍ଟ ସ୍ୱଭାବବିଶିଷ୍ଟ ।
ଆଦଲ—ଗ୍ରା.ବି. ଆକୃତିର ଭାବ,ସ୍ୱରୂପ ।
ଆଦବାଦ—ଯା. ବିବାଦ, କଳହ ।

ଆଦହନ—କ୍ଳୀ. ବି. (ଆ + ଦହ୍ + ଭା, ଅନ) ଦାହ,ପୋଡ଼ିବା, ହିଂସା, କୁତ୍ସନ, ନିନ୍ଦା, ଶ୍ମଶାନ ।
ଆଦାଙ୍ଗୀ—(ଅର୍ଦ୍ଧାଂଶର ଅପଭ୍ରଂଶ) ଅର୍ଦ୍ଧାଂଶ, ଅସମ୍ପୂର୍ଣ୍ଣ, ଅର୍ଦ୍ଧାଙ୍ଗ, ଶରୀରରୁ ଅଧେ ।
ଆଦାଡ଼—ଗ୍ରା. ଜଙ୍ଗଲପୂର୍ଣ୍ଣ ସ୍ଥାନ, ଜଙ୍ଗଲିଆ, ଜଞ୍ଜାଳପୂର୍ଣ୍ଣ ସ୍ଥାନ ।
ଆଦାଡ଼ିଆ—ବନ୍ୟ, ଦୁର୍ଦ୍ଦାନ୍ତ ।
ଆଦାତବ୍ୟ—ବିଂ.(ଆ + ଦା + ର୍ମ,ତବ୍ୟ) ଗ୍ରହଣୀୟ, ପ୍ରତିଗ୍ରାହ୍ୟ ।
ଆଦାତା —ପୁଂ. ବିଂ. (ଆ + ଦା + ତୃ) ଗ୍ରହୀତା, ଯେ ଗ୍ରହଣ କରେ, ଗ୍ରାହକ ।
ଆଦାଦକ—ବିଂ. ଅଦାଦିଗଣପଠିତ ଧାତୁବିଶେଷ ।
ଆଦାନ—କ୍ଳୀ.ବି. (ଆ + ଦା + ଭା.ଅନ) ଗ୍ରହଣ, ପ୍ରତିଗ୍ରହ, ସ୍ୱୀକାର, ଅସୁଲ, ରୋଗଲକ୍ଷଣ, ନିଦାନ, ଅଶ୍ୱାଭରଣ, ଆଦାୟ କରିବା, ହସ୍ତୀର ଅଳଙ୍କାର-ବିଶେଷ, ରତ୍ନମାଳା (ସ୍ତ୍ରୀ) ଆଦାନୀ ।
ଆଦାନକାଳ—ବି. ଯେଉଁ ସମୟରେ ସୂର୍ଯ୍ୟ ପୃଥିବୀରୁ ଜଳ ଗ୍ରହଣ କରନ୍ତି ।
ଆଦାନପ୍ରଦାନ—ବି. (ଆଦାନ + ପ୍ରଦାନ) ଦେବାନେବା, ଦେନ୍‌ନେଣ୍, ଦାନ-ପ୍ରତିଗ୍ରହ, ବିନିମୟ, ପରସ୍ପର ମଧ୍ୟରେ ବିବାହଦ୍ୱାରା ବର-କନ୍ୟା ଗ୍ରହଣ ।
ଆଦାନୀ—ସ୍ତ୍ରୀ. ବି. ( ଆ + ଦୋ + ର୍ମ. ଅନ + ଈ) ହସ୍ତୀଘୋଷା ଲତା ।
ଆଦାବ—(ଯା) ବି. ବନ୍ଦେଗି, ସେଲାମ, ପ୍ରଣାମ ।
ଆଦାୟ --ବିଂ.(ଆ + ଦା + ଯ) ଗ୍ରହୀତା, ଗ୍ରହଣକର୍ତ୍ତା (ପୁଂ.ବି) ଗ୍ରହଣ, (ଅବ୍ୟ) ଗ୍ରହଣକରି, ( ଗ୍ରା.ବି ) ଗ୍ରହଣକରିବା, ଆମଦାନୀ, ଅସୁଲ୍‌କରିବା, ନେବା, ସମଗ୍ର ଗୃହୀତ ବସ୍ତୁର ପରିମାଣ ।
ଆଦାୟଚର—ବିଂ. ଯେ ଗ୍ରହଣ କରି ଯାଏ ।
ଆଦାୟୀ—ବିଂ. ଯେ ଗ୍ରହଣ କରେ, ଯେ ଆଦାୟ କରେ (ସ୍ତ୍ରୀ) ଆଦାୟିନୀ ।

ଆଦାର—ପୁଂ. ବି ( ଆ + ଦୃ + ଅ ) ଆଦର, ସମ୍ମାନ, ( ଅବ୍ୟ ) ବିବାହ-ପର୍ଯ୍ୟନ୍ତ ।
ଆଦାରବମ୍ମୀ—ସ୍ତ୍ରୀ. ବି. ଅମ୍ଳବେତସ ପରି ପୁଷ୍ପଯୁକ୍ତଲତାବିଶେଷ । [ଦରବାର ।
ଆଦାଲତ—(ଯା) ବିଚାରାଳୟ, କଚେରୀ,
ଆଦି—ପୁଂ.ବି. (ଆ + ଦା + ଇ) ପ୍ରଥମ, ପ୍ରଥମ ସତ୍ତା,କାରଣ, ସାମୀପ୍ୟ, ପ୍ରକାର, ଅବୟବ, ମୂଳ, ଆରମ୍ଭ,ଅଗ୍ର, ହେତୁ ।
ଆଦିକନ୍ଦ—ଗ୍ରା. ବି. ଆଦିପୁରୁଷ, ଭଗବାନ୍ ।
ଆଦିକର—ପୁଂ. ବିଂ. ପ୍ରଥମକାରକ, ପ୍ରାକ୍ ସୃଷ୍ଟିକର୍ତ୍ତା । [ଓଗେର ।
ଆଦିକରି—ଗ୍ରା.ଅବ୍ୟ.(ସଂ.ଆଦି,ଇତ୍ୟାଦି,
ଆଦିକର୍ତ୍ତା—ପୁଂ.ବିଂ. ଆଦିକାରକ,ଆଦି-ଭୂତ କର୍ତ୍ତା, ସୃଷ୍ଟିକର୍ତ୍ତା, ଯେ ପ୍ରଥମେ କରିଅଛି ।
ଆଦିକର୍ମ୍ମ—କ୍ଳୀ.ବି. ପ୍ରଥମକାର୍ଯ୍ୟ, ପ୍ରଥମ-ଜାତ କାର୍ଯ୍ୟମାତ୍ର ।
ଆଦିକବି—ପୁଂ.ବି. ହିରଣ୍ୟଗର୍ଭ, ବ୍ରହ୍ମା, ବାଲ୍ମୀକିଋଷି, କେହି କେହି ବ୍ୟାସଙ୍କୁ ମଧ୍ୟ କହନ୍ତି ।
ଆଦିକାଣ୍ଡ—କ୍ଳୀ.ବି. (କ.ଧା) ରାମାୟଣର ବାଲକାଣ୍ଡ ବା ପ୍ରଥମ କାଣ୍ଡ ।
ଆଦିକାରଣ—କ୍ଳୀ.ବି.(କ.ଧା)ପରମେଶ୍ୱର, ସବୁକାରଣର ମୂଳକାରଣ, କଣାଦଙ୍କ ମତରେ ପ୍ରଥମ କାରଣ, ସମବାୟି-କାରଣ, ପ୍ରକୃତି, ପରମାଣୁ ।
ଆଦିକାବ୍ୟ—କ୍ଳୀ.ବି. (କ.ଧା) ବାଲ୍ମୀକି-ରଚିତ ରାମାୟଣ ।
ଆଦିକାଳ—ପୁଂ. ବି. (କ.ଧା) ପ୍ରଥମ-କାଳ, ସତ୍ୟଯୁଗ, ସୃଷ୍ଟିର ଆରମ୍ଭକାଳ ।
ଆଦିକେଶବ—ପୁଂ.ବି. କାଶୀସ୍ଥ କେଶବ-ମୂର୍ତ୍ତିବିଶେଷ ।
ଆଦିଗଙ୍ଗା—ବି. ଗଙ୍ଗାନଦୀର ଶାଖା-ବିଶେଷ, ପୂର୍ବେ ଯେଉଁ ନଦୀବାଟେ ଗଙ୍ଗା ସମୁଦ୍ରରେ ପଡ଼ୁଥିଲା ।
ଆଦିଗଦାଧର—ପୁଂ. ବି କାଶୀସ୍ଥ ବିଷ୍ଣୁ-ମୂର୍ତ୍ତିବିଶେଷ,ଗୟାସ୍ଥ ବିଷ୍ଣୁମୂର୍ତ୍ତିବିଶେଷ ।

ଆଦିଜନନୀ—ସ୍ତ୍ରୀ. ବି. (କ.ଧା) ଜନନୀ ସଦୃଶ, ଉତ୍ପତ୍ତିସ୍ଥାନ, ଆଦିଯୋନି ।

ଆଦିଜିନ—ପୁଂ.ବି.ଋଷଭ ଦେବ,ଜୈନ-ମାନଙ୍କର ଆଦିଦେବତା ।

ଆଦିଜୀବବିନ୍ଦୁ—ବି. ଜୀବନୀଶକ୍ତିବିଶିଷ୍ଟ, ଜୀବର ଆଦି ରେଣୁ ।

ଆଦିତଃ – ଅବ୍ୟ. ଆଦି + ତସ୍)ପ୍ରଥମରୁ, ଆଦ୍ୟରୁ, ସର୍ବାଗ୍ରେ, ପ୍ରଥମେ ।

ଆଦିତାଳ—ପୁଂ. ବି. ( କ.ଧା ) ତାଳ-ବିଶେଷ, ଏଥିରେ ଗୋଟିଏ ଲଘୁତାଳ ଥାଏ ।

ଆଦିତେୟ—ପୁଂ. ବି. (ଆଦିତ୍ୟ + ଏୟ) ଅଦିତିଙ୍କ ପୁତ୍ର,ଦେବତାମାନେ, ସୂର୍ଯ୍ୟ, ଇନ୍ଦ୍ର ।

ଆଦିତ୍ୟ—ପୁଂ. ବି. ( ଆଦିତ୍ୟ + ଯ ) ଅଦିତିଙ୍କର ସନ୍ତାନ, ସମସ୍ତ ଦେବତା, ସୂର୍ଯ୍ୟ, ପୁନର୍ବସୁ ନକ୍ଷତ୍ର, ଆକନ୍ଦଗଛ, ଅର୍କଗଛ, ସୂର୍ଯ୍ୟଙ୍କର ପୁତ୍ର, କନ୍ୟା, ରବିବାର ।

ଆଦିତ୍ୟକେତୁ—ପୁଂ. ବି. (ବ.ବ୍ରୀ) ସୂର୍ଯ୍ୟ ଧ୍ୱଜରଥଯୁକ୍ତ, ଧୃତରାଷ୍ଟ୍ର ପୁତ୍ର, ଅରୁଣ, ସୂର୍ଯ୍ୟସାରଥି ।

ଆଦିତ୍ୟକେଶବ—ପୁଂ. ବି. କାଶୀରେ ଥିବା କେଶବମୂର୍ତ୍ତିବିଶେଷ ।

ଆଦିତ୍ୟପତ୍ରା—ପୁଂ. ବି. (ବ.ବ୍ରୀ) ଅଣ-ସୋରିଷିଆ, ଅର୍କପତ୍ର,ଅର୍କଦଳ, ତପନ ଛଦ, ରବିପ୍ରିୟ, ରଶ୍ମିପତି, ରୁଦ୍ର ।

ଆଦିତ୍ୟପର୍ଣ୍ଣିନୀ—ସ୍ତ୍ରୀ. ବି. ସୁଶ୍ରୁତୋକ୍ତ ଔଷଧବିଶେଷ ।

ଆଦିତ୍ୟପୁରାଣ—କ୍ଳୀ. ବି. ଉପପୁରାଣ-ବିଶେଷ, ସୂର୍ଯ୍ୟ-ପୁରାଣ, ସୌରପୁରାଣ ।

ଆଦିତ୍ୟପୁଷ୍ପିକା—ସ୍ତ୍ରୀ. ବି. ରକ୍ତପୁଷ୍ପ, ଅର୍କବୃକ୍ଷ, ନାଲି ଅରଖ ଗଛ ।

ଆଦିତ୍ୟଭକ୍ତା—ସ୍ତ୍ରୀ.ବି. (୬ତତ୍)ବରଦା, ଅର୍କଭକ୍ତା, ସୁବର୍ଚ୍ଚଳା, ସୂର୍ଯ୍ୟଲତା, ସୂର୍ଯ୍ୟାବର୍ତ୍ତୀ, ଅନେସେ ରିଷିଆ, ମଣ୍ଡୂକ-ପର୍ଣ୍ଣୀ, ସୁରସମ୍ଭବା, ବରିଷ୍ଠା, ମଣ୍ଡୂକୀ ।

ଆଦିତ୍ୟବ୍ରତ—କ୍ଳୀ. ବି. ସୂର୍ଯ୍ୟଙ୍କ ଉପା-ସନା ନିମିତ୍ତ ବ୍ରତବିଶେଷ, (ବିଂ) ଆଦିତ୍ୟବ୍ରତିକ ।

ଆଦିତ୍ୟସୂନୁ—ପୁଂ. ବି. (୬ତତ୍) ସୂର୍ଯ୍ୟ-ପୁତ୍ର, ସୁଗ୍ରୀବ, କର୍ଣ୍ଣ, ଯମ, ଶନି, ମନୁ ।

ଆଦିତ୍ୟାଦିନବଗ୍ରହ—ବି.ହିନ୍ଦୁ ଜ୍ୟୋତିଷ-ମତରେ ସୂର୍ଯ୍ୟ, ଚନ୍ଦ୍ର, ମଙ୍ଗଳ, ବୁଧ, ବୃହସ୍ପତି,ଶୁକ୍ର,ଶନି,ରାହୁ ଓ କେତୁ ଏହି ନବଗ୍ରହ ।

ଆଦିତ୍ସା—ସ୍ତ୍ରୀ. ବି. (ଆ + ସନ୍ + ଦା + ଭା.ଅ + ଆ) ଗ୍ରହଣେଚ୍ଛା, ଜିଘୃକ୍ଷା ।

ଆଦିତ୍ସୁ—ବି.ବିଂ. (ଆ + ଦା + ସନ୍ + କ,ଉ) ଗ୍ରହଣ କରିବାକୁ ଇଚ୍ଛୁକ, ଗ୍ରହ-ଣେଚ୍ଛୁ, ଜିଘୃକ୍ଷୁ ।

ଆଦିଦେବ—ପୁଂ. ବି. ( ଆଦି + ଦେବ ) (କ.ଧା) ନାରାୟଣ, ଶିବ, ଆଦିକାରଣ, ବ୍ରହ୍ମା, ସୂର୍ଯ୍ୟ ।

ଆଦିଦେବତା—ସ୍ତ୍ରୀ.ବି. (କ.ଧା) ବିଶ୍ୱେ-ଶ୍ୱରୀ, ଜଗନ୍ମାତା, ଦୁର୍ଗା ।

ଆଦିଦୈତ୍ୟ—ପୁଂ.ବି. (କ.ଧା) ହିରଣ୍ୟ-କଶିପୁନାମକ ଦୈତ୍ୟ ।

ଆଦିନ୍—ପୁଂ. ବିଂ. ( ଅଦ୍ + ଇନ୍ ) ଭକ୍ଷକ ଖାଦକ ।

ଆଦିନାଥ—ପୁଂ.ବି. (କ.ଧା) ବିଶ୍ୱେଶ୍ୱର, ମହାଦେବ, ଜଗତ୍ପତି, ପରମେଶ୍ୱର, ପରଂବ୍ରହ୍ମ ।

ଆଦିନାଶ୍ରୀ—ସ୍ତ୍ରୀ. ବି (କ.ଧା) ଆଦ୍ୟା-ଶକ୍ତି, ପ୍ରକୃତି, ଦୁର୍ଗା ।

ଆଦିପର୍ବ—କ୍ଳୀ. ବି. (ଆଦି + ପର୍ବ) ମହାଭାରତର ପ୍ରଥମ ପର୍ବ, ବ୍ରହ୍ମପୁରାଣ ।

ଆଦିପୁରାଣ—କ୍ଳୀ. ବି. ପୁରାଣବିଶେଷ, ଅଠର ପୁରାଣ ମଧ୍ୟରୁ ୧ମ ପୁରାଣ, ଚତୁ-ର୍ଲକ୍ଷାତ୍ମକ ବ୍ରହ୍ମନିର୍ମିତ ପୁରାଣବିଶେଷ ।

ଆଦିପୁରୁଷ—ପୁଂ. ବି. କ.ଧା; (ଆଦି + ପୁରୁଷ) ମନୁଷ୍ୟମାନଙ୍କର ଆଦିବୀଜ-ସ୍ୱରୂପ ହିରଣ୍ୟଗର୍ଭ ବଂଶର ୧ମ ପୁରୁଷ, ବ୍ରହ୍ମା, ନାରାୟଣ ।

ଆଦିବଳ—କ୍ଳୀ.ବି. (୬ତତ୍) ଉତ୍ପାଦନ ବା ଅଭ୍ୟୁତ୍ପାଦନଶକ୍ତି ।

ଆଦିବସ—ପୁଂ.ବି. ଅଶୁଭଦିନ,ଅଦିନ ।

ଆଦିବୃକ୍ଷ—ପୁଂ.ବି.ଫସାରବୃକ୍ଷ, ଅଶ୍ୱତ୍ଥ-ବୃକ୍ଷ ।

ଆଦିବ୍ରାହ୍ମସମାଜ—ଗ୍ରା. ବି. ରାଜା ରାମ-ମୋହନରାୟଙ୍କ ପ୍ରବର୍ତ୍ତିତ ବ୍ରାହ୍ମସମାଜ ।

ଆଦିଭବ—ପୁଂ.ବି. ( କ.ଧା ) ହିରଣ୍ୟ-ଗର୍ଭ, ବ୍ରହ୍ମା, ବିଷ୍ଣୁ ,(ବିଂ.୭ତତ୍)ଅଗ୍ରଜ, ବଡ଼ଭାଇ ।

ଆଦିଭୂତ—ବି. ବିଂ. ( ଆଦି + ଭୂତ ) ପ୍ରଥମେ ଘଟିଥିବା, ଅଗ୍ରଜାତ, ଆଦ୍ୟ, ଆଦିମ ( କ୍ଳୀ. ବି. ) ଆକାଶ, ପଞ୍ଚଭୂତ ମଧ୍ୟରେ ସର୍ବପ୍ରଥମ ଭୂତ (ପୁଂ.ବି.)ବ୍ରହ୍ମା, ବିଷ୍ଣୁ ।

ଆଦିମ—ବି. ବିଂ. (ଆଦି + ମ) ପ୍ରଥମେ ଜାତ, ପ୍ରଥମରେ ଉତ୍ପନ୍ନ, ଆଦ୍ୟ,ପ୍ରଥମ, ଅତିପ୍ରାଚୀନ, (ସ୍ତ୍ରୀ) ଆଦିମା ।

ଆଦିମକାଳ—ବି. ( ଆଦିମ + କାଳ ) ପୂର୍ବକାଳ, ଆବହମାନ କାଳ, ସୃଷ୍ଟିର ଆରମ୍ଭକାଳ ।

ଆଦିମତ୍—ବିଂ. (ଆଦି + ମତୁପ୍) ଆଦି-ଯୁକ୍ତ, ସକାରଣ, ଆଦିସୀମାଯୁକ୍ତ (ସ୍ତ୍ରୀ) ଆଦିମତୀ ।

ଆଦିମନିବାସୀ—ପୁଂ. ବିଂ. ( କ.ଧା ) ପ୍ରଥମ ଅଧିବାସୀ, କୌଣସି ସ୍ଥାନର ମୂଳ ବାସିନ୍ଦା,ପୂର୍ବକାଳରେ ବା ପ୍ରଥମରେ ବାସକରୁଥିବା ( ଜାତି ) କୋହ୍ଲ, କନ୍ଧ, ସାନ୍ତାଳପ୍ରଭୃତି ଅନାର୍ଯ୍ୟଜାତି ।

ଆଦିମାନବ—ପୁଂ.ବି.(କ.ଧା)ବାଇବେଲ୍ ଅନୁସାରେ ପ୍ରଥମ ପୁରୁଷ ବା ପ୍ରଥମ ସୃଷ୍ଟ ମନୁଷ୍ୟ ।

ଆଦିମାତା – ସ୍ତ୍ରୀ. ବି. ( ଆଦି + ମାତା ) ଆଦ୍ୟମାତା ।

ଆଦିମୂଳ—ପୁଂ. ବି. ( ଆଦି + ମୂଳ ) ଭଗବାନ୍, ବିଷ୍ଣୁ, ଶ୍ରୀକୃଷ୍ଣ ।

ଆଦିଯୁଗ—ପୁଂ.ବି. ସତ୍ୟଯୁଗ ।

ଆଦିରସ—ପୁଂ. ବି. ( ଆଦି + ରସ ) ଶୃଙ୍ଗାର ରସ ।

ଆଦିରସାଶ୍ରିତ-ବି.ବିଂ. (୨ତତ୍)ଶୃଙ୍ଗାର-ରସପୂର୍ଣ୍ଣ, (ସ୍ତ୍ରୀ) ଆଦିରସାଶ୍ରିତା ।

ଆଦିରାଜ—ପୁଂ. ବି. ( ଆଦି + ରାଜନ ) ପୃଥୁ ନାମକ ରାଜା, କାଳିଦାସଙ୍କମତେ ବୈବସ୍ୱତମନୁ ।
ଆଦିବରାହ—ପୁଂ.ବି. ଯଜ୍ଞବରାହରୂପରେ ଅବତୀର୍ଣ୍ଣ ବିଷ୍ଣୁଙ୍କ ଅବତାରବିଶେଷ ।
ଆଦିବିଦ୍ୱାନ୍—ପୁଂ.ବି. କପିଳ ମୁନି ।
ଆଦିଶକ୍ତି—ସ୍ତ୍ରୀ.ବି. (କ.ଧା) ପରମେଶ୍ୱରଙ୍କର ମାୟାରୂପ ଶକ୍ତି, ଦେବୀମୂର୍ତ୍ତିବିଶେଷ, ଦୁର୍ଗା ।
ଆଦିଶରୀର—କ୍ଳୀ. ବି. (କ.ଧା) ଭୋଗ ନିମିତ୍ତ ପରମେଶ୍ୱରଙ୍କଦ୍ୱାରା ସୃଷ୍ଟ ଆଦ୍ୟଲିଙ୍ଗାଖ୍ୟ ଶରୀର, ଅବିଦ୍ୟାନାମକ ସୂକ୍ଷ୍ମ ଶରୀର ।
ଆଦିଶୂର—ପୁଂ. ବି. ଏ ବଙ୍ଗ ଓ ଗୌଡ଼ଦେଶର ରାଜା ଥିଲେ ।
ଆଦିଶ୍ୟ—ଅବ୍ୟ. ( ଆ + ଦିଶ୍ + ଯ ) ଆଦେଶ ଦେଇ, ଆଦେଶ କରି ।
ଆଦିଷ୍ଟ—ପୁଂ.ବିଂ. (ଆ + ଦିଶ୍ + ର୍ମ,ତ) ଆଜ୍ଞପ୍ତ, ଆଜ୍ଞାଯୁକ୍ତ, ନିଯୁକ୍ତ, କଥିତ, (କ୍ଳୀ. ବି.) ଆଦେଶ, ଉପଦେଶ ଭୁକ୍ତାବଶିଷ୍ଟ, ଉଚ୍ଛିଷ୍ଟ, ଆଜ୍ଞା ।
ଆଦିଷ୍ଟସନ୍ଧି—ବି. ଯେଉଁ ସନ୍ଧି ବା ଶାନ୍ତି ସ୍ଥାପନରେ ଏକପକ୍ଷଙ୍କ ଆଦେଶରେ ସର୍ତ୍ତମାନ ଲିପିବଦ୍ଧ ହୁଏ ଏବଂ ଅପର ପକ୍ଷ ରାଜ୍ୟତ୍ୟାଗ କରନ୍ତି ।
ଆଦିଷ୍ଟୀ—ପୁଂ. ବି. ଆଦେଶକର୍ତ୍ତା, ଯେ ବ୍ରହ୍ମଚାରୀଙ୍କୁ ବ୍ରତାଦେଶ କରିହୋଇଥାଏ ।
ଆଦିସର୍ଗ—ପୁଂ. ବି. ( କ.ଧା ) ପ୍ରଳୟ ପରେ ପ୍ରଥମ ସୃଷ୍ଟି, ପ୍ରଥମ ସର୍ଗ ।
ଆଦୀର୍ଘ—ବିଂ. ଈଷତ୍‌ଦୀର୍ଘ, ପଦ୍ମପତ୍ରାକୃତି ।
ଆଦୀନବ—ପୁଂ. ବି. (ଅ + ଦୀନ + ବ) ଦୋଷ,କ୍ଳେଶ (ବିଂ) ଦୁର୍ଦ୍ଦମ, ପରିକ୍ଲିଷ୍ଟ, କ୍ଳେଶଯୁକ୍ତ, ଦୁରନ୍ତ, ଦୁଃଖଦାୟକ ।
ଆଦୀପକ—ପୁଂ.ବିଂ. ଉଦ୍ଦୀପକ,ପ୍ରକାଶକ, ଯେ ଅନ୍ୟ ଘରେ ନିଆଁ ଦିଏ ।
ଆଦୀପନ—କ୍ଳୀ.ବି. ଉଦ୍ଦୀପନ, ପ୍ରକାଶନ, ଆଲ୍ପନା, ଅଚ୍ଚର୍ଯ୍ୟ, ଚିତା ।
ଆଦୀପିତ—ବିଂ. ଉଦ୍ଦୀପିତ, ପ୍ରକାଶିତ ।
ଆଦୃତ୍ତା, ଆଦୁଲ୍—ଗ୍ରା. ବିଂ. ଅନାବୃତ, ଅନାଚ୍ଛାଦିତ, ଆଲୁଳାୟିତ ।
ଆଦୂର—ପୁଂ.ବିଂ. ଯେ ବିଦାରଣ କରେ, ବିଦାରଣ କର୍ତ୍ତା । [ ଅଣ ।
ଆଦୁଲୀ—ଗ୍ରା. ଅଧୁଲି, ଆଠଅଣୀ, ଆଠ-
ଆଦୃତ—ପୁଂ. ବିଂ. (ଆ + ଦୃ + ର୍ମ,ତ) ସମ୍ମାନିତ, ପୂଜିତ, (କ୍ଳୀ.ବିଂ) ଆଦରଯୁକ୍ତ ।
ଆଦୃତ୍ୟ—ଅବ୍ୟ. (ଆ + ଦୃ + ଯ) ଆଦର କରି, ସମ୍ମାନ କରି, (ବିଂ)ଆଦରଣୀୟ ।
ଆଦୃଶ୍ୟ—ଗ୍ରା. କ୍ରି. ବିଂ. (ସଂ—ସଦୃଶ) ଈଷତ୍, ସାମାନ୍ୟରେ, ଅଳ୍ପରେ, (ଅମୁକ) ସହିତ ଈଷତ୍ ସାଦୃଶ୍ୟ ଥାଇ ।
ଆଦୃଷ୍ଟି—ସ୍ତ୍ରୀ. ବି. (ଆ + ଦୃଶ୍ + ଭା,ତି) କ୍ରୋଧରେ ସଙ୍କୁଚିତ ଦୃଷ୍ଟି, ଅପାଙ୍ଗଦର୍ଶନ, କଟାକ୍ଷ, ଉପାନ୍ତସମ୍ମିଳିତ ନେତ୍ର ।
ଆଦେୟ—ବିଂ. ( ଆ + ଦା + ର୍ମ,ଯ ) ଗ୍ରହଣକରିବାର ଯୋଗ୍ୟ, ଗ୍ରହଣର ଉଚିତ, ଗ୍ରହଣୀୟ ।
ଆଦେବକ—ବିଂ. ( ଆ + ଦିବ୍ + ଅକ ) ଦ୍ୟୂତକାରକ, ଯେ ପଶା ବା ଦାବା ଖେଳେ ।
ଆଦେବନ-କ୍ଳୀ.ବି.(ଆ + ଦିବ୍ + ଭା,ଅନ) ପଶାଖେଳ, ଦାବାଖେଳ, ଦ୍ୟୂତସାଧନ, ପଶା, ଦାବା ।
ଆଦେଶ—ପୁଂ.ବି. (ଆ + ଦିଶ୍ + ର୍ମ,ଅ) ଆଜ୍ଞା, ଉପଦେଶ, ଅନୁମତି, ଏକବର୍ଣ୍ଣ ଠାରେ ଅନ୍ୟ ବର୍ଣ୍ଣର ଆରୋପ, ପ୍ରଦର୍ଶନ, କଥନ, ଜ୍ୟୋତିଃଶାସ୍ତ୍ରୋକ୍ତ ଫଳ, ହୁକୁମ, ଉପୃତ୍ତି ।
ଆଦେଶକ—ପୁଂ.ବିଂ. (ଆ + ଦିଶ୍ + କ, ଅକ) ଯେ ଆଦେଶ କରେ, ଆଦେଶକର୍ତ୍ତା ଆଦେଷ୍ଟା, ହୁକୁମକାରକ, ଉପଦେଷ୍ଟା, ଶାସକ, (ସ୍ତ୍ରୀ) ଆଦେଶିକା,
ଆଦେଶକର୍ତ୍ତା—ପୁଂ. - ବିଂ. (୬ତତ୍) ଆଦେଷ୍ଟା, ଆଜ୍ଞାଦାତା, ହୁକୁମକାରକ, (ସ୍ତ୍ରୀ) ଆଦେଶକର୍ତ୍ତ୍ରୀ ।
ଆଦେଶକ୍ରମେ—ଙ୍କ. ବିଂ. ( ବ.ବ୍ରୀ ) ଆଦେଶାନୁସାରେ ହୁକୁମମତେ, ଆଜ୍ଞାକ୍ରମେ ।
ଆଦେଶଦାତା—ପୁଂ. ବିଂ. ( ୬ତତ୍ ) ଆଦେଶକର୍ତ୍ତା, ଉପଦେଷ୍ଟା, ଆଜ୍ଞାକର୍ତ୍ତା, (ସ୍ତ୍ରୀ) ଆଦେଶଦାତ୍ରୀ ।
ଆଦେଶନ—କ୍ଳୀ. ବି. (ଆ + ଦିଶ୍ + ଭା, ଅନ) ଆଦେଶ, ଆଜ୍ଞା, ଅନୁଶାସନ, ବିଧାନ ।
ଆଦେଶପତ୍ର—କ୍ଳୀ. ବି. (କ.ଧା) ଆଜ୍ଞାଲିପି, ହୁକୁମନାମା, ଅନୁମତିପତ୍ର ।
ଆଦେଶପାଳକ—ପୁଂ. ବିଂ. ( ୬ତତ୍ ) ଆଜ୍ଞାକାରୀ, ଆଜ୍ଞାନୁସାରେ କାର୍ଯ୍ୟକାରୀ, (ସ୍ତ୍ରୀ) ଆଦେଶପାଳିକା ।
ଆଦେଶପାଳନ—କ୍ଳୀ. ବି. ( ୬ତତ୍ ) ଆଜ୍ଞାପାଳନ, ଆଜ୍ଞାନୁବର୍ତ୍ତନ, ହୁକୁମ ଅନୁସାରେ କାର୍ଯ୍ୟ କରିବା ।
ଆଦେଶଲଙ୍ଘନ—କ୍ଳୀ. ବି. ( ୬ତତ୍ ) ଆଜ୍ଞାଲଙ୍ଘନ, ଆଜ୍ଞାକର୍ତ୍ତନ, ହୁକୁମ ନ ମାନିବା ।
ଆଦେଶାନୁବର୍ତ୍ତୀ—ପୁଂ.ବିଂ. ( ୬ତତ୍ ) ଆଜ୍ଞାପାଳକ, ଆଜ୍ଞାନୁବର୍ତ୍ତୀ, (ସ୍ତ୍ରୀ) ଆଦେଶାନୁବର୍ତ୍ତିନୀ ।
ଆଦେଶୀ—ପୁଂ. ବିଂ. (ଆ + ଦିଶ + କ, ଇନ୍) ଆଦେଶକର୍ତ୍ତା, ଉପଦେଷ୍ଟା, ହୁକୁମକାରୀ, ( ବି ) ଦୈବଜ୍ଞ, ଗଣକ, (ସ୍ତ୍ରୀ) ଆଦେଶିନୀ ।
ଆଦେଶ୍ୟ—ବିଂ. ( ଆ + ଦିଶ + ଯ ) ଉପଦେଶ୍ୟ, କଥନୀୟ, ଆଜ୍ଞାପ୍ୟ ।
ଆଦେଷ୍ଟା—ପୁଂ.ବିଂ (ଆ + ଦିଶ୍ + କ,ତୃ) ଆଦେଶକର୍ତ୍ତା, ଆଜ୍ଞାକର୍ତ୍ତା, ଉପଦେଶକ, ଶାସକ, (ବି.ପୁଂ) ଯଜମାନ, ଯଷ୍ଟା, ସ୍ତ୍ରୀ) ଆଦେଷ୍ଟ୍ରୀ ।
ଆଦୌ—ଅବ୍ୟ. (ଆଦି + ଔ) ପ୍ରଥମେ, ଅଗ୍ରେ, ଜନ୍ମାରୁ, ପୂର୍ବେ, କେବେହେଲେ, ପ୍ରଥମତଃ, ମୋଟେ, ଜମା ।
ଆଦ୍ୟ ବିଂ. ( ଆଦି + ଯ ) ପ୍ରଥମେ ଜାତ, ଯାହା ଆଗରେ ହୋଇଥାଏ, ପ୍ରଧାନ, ଶ୍ରେଷ୍ଠ (କ୍ଳୀ ଧାନ୍ୟ, ମୌଳିକ, ଭୋଜନାହ, ଭକ୍ଷଣୀୟ, ସ୍ତ୍ରୀ) ଆଦ୍ୟା ।
ଆଦ୍ୟକବି—ପୁଂ. ବି. (କ.ଧା) ବ୍ରହ୍ମା, ହିରଣ୍ୟଗର୍ଭ ବାଲ୍ମୀକି ।

ଆଦ୍ୟକାଣ୍ଡ—କ୍ଲୀ.ବି.(କ.ଧ) ରାମାୟଣର ବାଲକାଣ୍ଡ ।

ଆଦ୍ୟକାଳ—ପୁଂ. ବି. (କ.ଧା) ଧର୍ମ୍ମ-ପୂଜାର ପ୍ରଥମାରମ୍ଭ କାଳ ।

ଆଦ୍ୟକୃତ୍ୟ—କ୍ଲୀ. ବି. (କ.ଧା) ଆଦ୍ୟ-ଶ୍ରାଦ୍ଧ ।

ଆଦ୍ୟଗଙ୍ଗା—ସ୍ତ୍ରୀ. ବି. (କ.ଧା) ଆଦିଗଙ୍ଗା ଦେଖ ।

ଆଦ୍ୟନ୍ତ—ଅବ୍ୟ. (ଆଦି + ଅନ୍ତ) ପ୍ରଥମରୁ ଶେଷ ପର୍ଯ୍ୟନ୍ତ (ବି) ଆରମ୍ଭ ଓ ଶେଷ ।

ଆଦ୍ୟନ୍ତବାନ୍—ପୁଂ. ବିଂ. (ଆଦ୍ୟନ୍ତ + ବତ୍) ଆଦି ଓ ଅନ୍ତବିଶିଷ୍ଟ, ଯାହାର ପ୍ରଥମ ଓ ଶେଷ ଅଛି, ଯାହାର ଉତ୍ପତ୍ତି ଓ ବିନାଶ ଅଛି, ଅଚିରସ୍ଥାୟୀ ଅନିତ୍ୟ, (ସ୍ତ୍ରୀ) ଆଦ୍ୟନ୍ତବତୀ ।

ଆଦ୍ୟପ୍ରାନ୍ତ—କ୍ରି. ବିଂ. (ଆଦ୍ୟ + ପ୍ରାନ୍ତ) ପୂର୍ବାପର, ପ୍ରଥମରୁ ଶେଷଯାଏ ।

ଆଦ୍ୟମାଷକ—ପୁଂ.ବି. ମଣ୍ଡା, ଏକଅଣା ଓଜନର ପଦାର୍ଥ, ପ୍ରଥମମାଷା, ପାଞ୍ଚରତି ପରିମାଣ ।

ଆଦ୍ୟମୂଳ—ଗ୍ରା. କ୍ରି. ବିଂ. ସର୍ବପ୍ରଥମରୁ ଆରମ୍ଭ କରି ଶେଷ ପର୍ଯ୍ୟନ୍ତ, ସବିଶେଷ ବର୍ଣ୍ଣନ ସହିତ ।

ଆଦ୍ୟବୀଜ—କ୍ଲୀ.ବି.(କ.ଧା) ମୂଳକାରଣ, ଆଦିକାରଣ, ଈଶ୍ୱର, ସାଂଖ୍ୟମତସିଦ୍ଧ ପ୍ରଧାନ ।

ଆଦ୍ୟରସ—ପୁଂ.ବି. (କ.ଧା) ଆଦିରସ, ଶୃଙ୍ଗାର ରସ ।

ଆଦ୍ୟଲୀଳା ସ୍ତ୍ରୀ. ବି. (କ.ଧା) ପ୍ରଥମ ଅବସ୍ଥାର ଖେଳ, ବାଲ୍ୟକ୍ରୀଡ଼ା, ପିଲାଖେଳ ।

ଆଦ୍ୟଶ୍ରାଦ୍ଧ—କ୍ଲୀ. ବି. (ଆଦ୍ୟ + ଶ୍ରାଦ୍ଧ) ପ୍ରଥମ ଶ୍ରାଦ୍ଧ, ଅଶୌଚ ଶ୍ରାଦ୍ଧ, ମୃତର ପ୍ରଥମକୃତ୍ୟ ।

ଆଦ୍ୟା—ସ୍ତ୍ରୀ. ବି. ଆଦି + ଯ + ଆ) ତନ୍ତ୍ରୋକ୍ତ ଦୁର୍ଗ,କାଳୀ ତାରା, ଭୁବନେଶ୍ୱରୀ, ସୁନ୍ଦରୀ, ପ୍ରକୃତି, ଯୋଗମାୟା, (ବିଂ) ପ୍ରଥମା ।

ଆଦ୍ୟାକାଳୀ (ଶକ୍ତି)—ସ୍ତ୍ରୀ. ବି. ନିର୍ବାଣ-ତନ୍ତ୍ରୋକ୍ତ ପରମପ୍ରକୃତି, ଏ କାଳକୁ ଗ୍ରାସ କରେ ବୋଲି ଏହାକୁ କାଳୀ ବୋଲଯାଏ, ସମସ୍ତଙ୍କର ଆଦିରୂପିଣୀ ବୋଲି ଆଦ୍ୟା ।

ଆଦ୍ୟାଦି—ପୁଂ.ବି. (ବ.ବ୍ରୀ) ବ୍ୟାକରଣ ପ୍ରସିଦ୍ଧ ଆକୃତିଗଣବିଶେଷ. ଯଥା— ଆଦି, ମଧ୍ୟ.ଅନ୍ତ, ପୃଷ୍ଠ,ପାର୍ଶ୍ୱ ଇତ୍ୟାଦି ।

ଆଦ୍ୟାରମ୍ଭ—ବି. ପ୍ରଥମ ଆରମ୍ଭ ।

ଆଦ୍ୟାବୁଦ୍ଧି—ବି (ଆଦ୍ୟା + ବୁଦ୍ଧି) ପ୍ରାଣୀର ସହଜ ବୁଦ୍ଧି, ସ୍ୱାଭାବିକ ମାନସିକ ବୃତ୍ତି ।

ଆଦ୍ୟୁଁ—ଗ୍ରା.କ୍ରି.ବିଂ. ଆଦ୍ୟରୁ, ପ୍ରଥମରୁ ଆରମ୍ଭ କରି ।

ଆଦ୍ୟୁଦାତ୍ତ—ବିଂ. ଯାହାର ଆଦିସ୍ୱର ଉଦାତ୍ତ ହୁଏ ।

ଆଦ୍ୟୂନ—ବିଂ.(ତତ୍ପୁ) ଔଦରିକ,ସ୍ୱାର୍ଥପର, ପେଟୁକ, ପେଟ, ବିଜିଗୀଷାରହିତ ଆଦ୍ୟଶୂନ୍ୟ, ଅନାଦି, ଯାହାର ଜୟ-କରିବାକୁ ଇଚ୍ଛା ନ ଥାଏ ।

ଆଦ୍ୟୋତ—ବି. (ଆ + ଦ୍ୟୁତ୍ + ଭା.ଅ) ପ୍ରକାଶ, ବିକାଶ ।

ଆଦ୍ୟୋପାନ୍ତ—କ୍ଲୀ. ବି. (ଆଦ୍ୟ + ଉପ + ଅନ୍ତ) କ.ଧା; ପ୍ରଥମାବଧି ଶେଷ ପର୍ଯ୍ୟନ୍ତ, ଆଦ୍ୟରୁ ଶେଷଯାଏ, ପୂର୍ବାପର ସମ୍ପୂର୍ଣ୍ଣ । [ଆଦରିବା ।

ଆଦ୍ରିବା—ଗ୍ରା.କ୍ରି.ଗ ଇ ଗର୍ଭବତୀ ହେବା,

ଆଦ୍ରିୟମାଣ—ପୁଂ.ବିଂ. (ଆ + ଦୃ + ମା. ଆନ) ଯାହାକୁ ଆଦର କରାଯାଉଅଛି, ମର୍ଯ୍ୟାଦାନ୍ୱିତ, ପୂଜ୍ୟମାନ, ମାନ୍ୟରପାତ୍ର, ଆଦୃତ, (ସ୍ତ୍ରୀ) ଆଦ୍ରିୟମାଣା ।

ଆଧ, ଆଧା (ବଙ୍ଗ) ଅର୍ଦ୍ଧ ଶବ୍ଦର ଅପଭ୍ରଂଶ, ଅଧା, ଅଧେ, ଅର୍ଦ୍ଧେକ ।

ଆଧକପାଳ—ଗ୍ରା.(ବଙ୍ଗ ଅଧାକପାଳୀ, ମୁଣ୍ଡ ବ୍ୟଥା ପରି ରୋଗବିଶେଷ ।

ଆଧମନ—କ୍ଲୀ.ବି.(ଆ + ଧା + ଭା.ଅମନ୍ ବନ୍ଧକଦାନ, ଋଣ ସକାଶେ କୌଣସି ପଦାର୍ଥ ବନ୍ଧକ ରଖିବା ।

ଆଧମର୍ଣ୍ଣ୍ୟ—କ୍ଲୀ. ବି. ଋଣୀର ଧର୍ମ୍ମ, ଖାତକର କାର୍ଯ୍ୟ ।

ଆଧର୍ମ୍ମିକ—ପୁଂ.ବିଂ.ଅଧର୍ମ୍ମଶୀଳ, ଅଧାର୍ମ୍ମିକ, ଯେ ଧର୍ମ୍ମ କର୍ମ୍ମ କରେ ନାହିଁ ।

ଆଧର୍ଷ—ପୁଂ. ବି. (ଆ + ଧୃଷ୍ + ଭା.ଅ) ତିରସ୍କାର, ବଳଦ୍ୱାରା ପୀଡ଼ନ, ଅପମାନନ, ନର୍ଯ୍ୟାତନ, ପରାଭବ ।

ଆଧର୍ଷିତ—କ୍ରି.ବିଂ. ଆ + ଧୃଷ୍ + ମି ତ) ଅପମାନିତ, ତିରସ୍କୃତ, ବଳଦ୍ୱାରା ପରାଜିତ, ଆକ୍ରାନ୍ତ, ନିଗୃହୀତ ।

ଆଧର୍ଷ୍ୟ—ବିଂ. (ଆ + ଧୃଷ୍ + ମି.ଯ) ପୀଡ଼ନୀୟ, ଅପମାନନୀୟ, ଦୁର୍ବଳ, ଆକ୍ରମଣୀୟ, (କ୍ଲୀ) ଦୁର୍ବଳତା ।

ଆଧଲା—ଗ୍ରା.(ବଙ୍ଗ) ଏକ ପଇସାର ଅର୍ଦ୍ଧ, ଅଧଲା ।

ଆଧଲି—ଗ୍ରା.(ବଙ୍ଗ) ଅଧଟଙ୍କା, ଅଧୁଲି, ଆଠଅଣି ଆଠଅଣା ।

ଆଧାତା—ପୁଂ. ବିଂ. (ଆ + ଧା + କ + ତୃ) ସ୍ଥାପୟିତା, ଶିକ୍ଷୟିତା ।

ଆଧାନ—କ୍ଲୀ. ବି (ଆ + ଧା + ଅନ) ଅଗ୍ନ୍ୟାଧାନ, ଗର୍ଭାଧାନ ସଂସ୍କାରପୂର୍ବକ ଅଗ୍ନି ଇତ୍ୟାଦିର ସ୍ଥାପନ, ସମ୍ପାଦନ, ଉତ୍ପାଦନ, ସନ୍ନିବେଶ, ଯଜନପ୍ରଭୃତି, ଜାମିନ୍, ପାତ୍ରବନ୍ଧକ ଦେବା, ଅଭିନିବେଶ, ଆଶ୍ରୟ ।

ଆଧାନକ—ପୁଂ.ବିଂ ଆଧାନକର୍ତ୍ତା,ଇଡାମିନ୍ନ.(ବି) ଗର୍ଭାଧାନ ସଂସ୍କାର ବେଦ-ବିହିତ ଗର୍ଭପାତ୍ର ସଂସ୍କାର ।

ଆଧାୟୀ - ବିଂ.ଆଧାନକର୍ତ୍ତା, ବି)ଆଧାନ, (ଅବ୍ୟ.) ଆଧାନ କରି ।

ଆଧାୟକ—ବିଂ. (ଆ + ଧା + କ.ଅକ) ସ୍ଥାପୟିତା, ଜନକ, ପ୍ରୟୋଜକ ।

ଆଧାର—ପୁଂ.ବି. (ଆ + ଧୃ + ଅ)ପାତ୍ର, ଆଶ୍ରୟ, ଗଛମୂଳ ମଣ୍ଡା, ବନ୍ଧ, ସ୍ଥାନ ଆଲମ୍ବ, ଅଧିକରଣ, ଆଲବାଳ, ଅଧିକରଣକାରକବିଶେଷ, (ଗ୍ରା.ବି ପକ୍ଷିଶାବକମାନଙ୍କୁ ସେମାନଙ୍କର ମା ତା ଖାଇବାକୁ ଯେ ଆହାର ଆଣି ଦିଏ, ଆହାର, ଖାଦ୍ୟ ।

ଆଧାରଶକ୍ତି—ସ୍ତ୍ରୀ. ବ. (୬ତତ୍) ମାତୃକା, ପ୍ରକୃତି, ଚନ୍ଦ୍ରଙ୍କର ଅମାନାମକ ମହାକଳା, ମୂଳାଧାରକୁଳକୁଣ୍ଡଳିନୀ ପରମଦେବତା ।

ଆଧାରାଧିକରଣ—କ୍ଲୀ. ବ. (ଆଧାର + ଅଧିକରଣ) ସ୍ଥାନ ବା ପାତ୍ରବାଚକ ।

ଆଧାରାଧେୟଭାବ—ପୁଂ.ବ.ଯାହା ଯାହାର ଆଧାର, ଯାହା ଯାହାର ଆଧେୟ, ଏହି ଉଭୟ ସମ୍ବନ୍ଧ,ଯଥା—ଘଟ ଓ ଭୂତଳ।

ଆଧାର୍ମିକ—ପୁଂ. ବଂ. (ଅଧର୍ମ + ଇକ) ଅଧାର୍ମିକ, ଧର୍ମହୀନ, (ସ୍ତ୍ରୀ) ଆଧାର୍ମିକା ।

ଆଧି—ପୁଂ.ବଂ. (ଆ + ଧା + ଇ)ମନଃପୀଡ଼ା, ମନୋବେଦନା, ବିପଦ, ସ୍ଥାନ, ଆଶା, ସ୍ଥାପନ, ବନ୍ଧକଦେବା, ଗଚ୍ଛିତ ବସ୍ତୁ, ବ୍ୟସନ, ଆପତ୍ତି, ଉଦ୍‌ବିଗ୍ନତା, ସନ୍ତାପ, ଦୁଃଖ, ପ୍ରତ୍ୟାଶା, ଅଧିଷ୍ଠାନ, (ଗ୍ରା.ବ) କ୍ଷମତା, ଅଧିକାର, ଐଶ୍ୱର୍ଯ୍ୟ, ରୋଗ, ବ୍ୟାଧି, ଆଡ଼ମ୍ବର, ସମ୍ପତ୍ତି ।

ଆଧିକ୍—ଗ୍ରା. (ସମ୍ଭ)ବଂ.ଚକିତ,ବିସ୍ମିତ ।

ଆଧିକରଣିକ—ପୁଂ. ବ. (ଅଧିକରଣ + ଇକ) ବିଚାରକ, ମାଜିଷ୍ଟ୍ରେଟ୍‌ପ୍ରଭୃତି ।

ଆଧିକାରିକ—ବି.ବଂ. (ଅଧିକାର + ଇକ) ଅଧିକାରସମ୍ବନ୍ଧୀୟ, ସ୍ୱତ୍ୱସଂକ୍ରାନ୍ତ, ପଦସମ୍ବନ୍ଧୀୟ, (ସ୍ତ୍ରୀ) ଆଧିକାରିକୀ ।

ଆଧିକ୍ୟ—କ୍ଲୀ.ବ.(ଅଧିକ + ଯ)ଅଧିକତା, ଆତିଶଯ୍ୟ, ଶ୍ରେଷ୍ଠତା, ଉତ୍କର୍ଷ, ବୃଦ୍ଧି, ପ୍ରାଧାନ୍ୟ, ବଳି ପଡ଼ିବା ଅଂଶ ବା ବସ୍ତୁ, ଆଧିକ୍ଲିଷ୍ଟ, ବି. ବଂ. (୩ତତ୍) ମନଃପୀଡ଼ାରେ ଦୁଃଖିତ, ଶୋକାର୍ତ୍ତ ।

ଆଧିଜ—ବି.ବଂ. (ଆଧି + ଜନ୍ + କ.ଅ) ମନୋବେଦନାଜାତ, ଦୁଃଖହେତୁକ, (ସ୍ତ୍ରୀ) ଆଧିଜା ।

ଆଧିଜ୍ଞ—ବି. ବଂ. (ଆଧି ଜ୍ଞା + କ.ଅ) ବ୍ୟଥିତ, ମନୋଦୁଃଖଯୁକ୍ତ, ବ୍ୟଥାର ଅନୁଭବକ, ବଦ୍ଧ ।

ଆଧିଦୈବ—ବଂ. (ଅଧିଦେବ + ଅ) ଦେବସମ୍ବନ୍ଧୀୟ, ଦୈବଜାତ, ଦୈବୀ, ଗ୍ରହ ବା ଦେବତାଙ୍କ ଯୋଗୁଁ ଜାତ ବା ଘଟିତ ।

ଆଧିଦୈବିକ—ବି. ବଂ. (ଅଧିଦେବ + ଇକ) ଦୁଃଖବିଶେଷ, ଦୈବଜାତ, ବାତାଦିଜନିତ ଦୁଃଖ, ଦେବତା ବିଷୟରେ ଯେ ଶାସ୍ତ୍ର ପ୍ରଣୀତ ହୋଇଅଛି ।

ଆଧିପତ୍ୟ—କ୍ଲୀ. ବ. ସ୍ୱାମିତ୍ୱ, ପ୍ରଭୁତ୍ୱ, କର୍ତ୍ତୃତ୍ୱ, ରାଜତ୍ୱ, ରାଜକ୍ଷମତା ।

ଆଧିବନ୍ଧ—ପୁଂ. ବ. ଅନେକ ପ୍ରକାରକ୍ଷଣ ସକାଶେ ଚିନ୍ତା, ପ୍ରଜାବିଷୟକ ଚିନ୍ତା ।

ଆଧିବଧ୍—ଗ୍ରା.ବ. ଗଡ଼ବଧି, ରାଜନୀତି ମାନ ।

ଆଧିବେଦନିକ—ବି. ବଂ. (ଆଧିବେଦନ + ଇକ) ସ୍ୱାମୀ ଦ୍ୱିତୀୟଦାରପରିଗ୍ରହ ବେଳେ ପ୍ରଥମ ସ୍ତ୍ରୀକୁ ଦେବାସମ୍ପତ୍ତି ।

ଆଧିବ୍ୟାଧି—ପୁଂ.ବ. (ଦ୍ୱନ୍ଦ୍ୱ) ମନଃପୀଡ଼ା, ସମସ୍ତ ପ୍ରକାର ଶାରୀରିକ, ମାନସିକ, ଓ ବୈପତ୍ତିକ ଦୁଃଖ ।

ଆଧିଭୋଗ—ପୁଂ. ବ. ବନ୍ଧକ ଦ୍ରବ୍ୟର ଭୋଗ, ମନୋବ୍ୟଥାର ଅନୁଭବରୂପ ଭୋଗ ।

ଆଧିଭୌତିକ—ବଂ. (ଅଧିଭୂତ + ଇକ) ଦୁଃଖବିଶେଷ, ଡାଂଶ ମଶକ ବ୍ୟାଘ୍ର ସର୍ପାଦିହେତୁ ଦୁଃଖ,ଭୂତଜାତ,କ୍ଷିତ୍ୟାଦି ପଞ୍ଚଭୂତଜାତ ।

ଆଧିମନ୍ୟବ—ପୁଂ. ବ. (କ.ଧା) ଜ୍ୱରର ସନ୍ତାପ, ଜ୍ୱରର ଉତ୍ତାପ ବା ଜ୍ୱାଳା ।

ଆଧିରଥି—ପୁଂ. ବ. କୁନ୍ତୀପୁତ୍ର କର୍ଣ୍ଣ ।

ଆଧିରାଜ୍ୟ—କ୍ଲୀ. ବ. (ଅଧିରାଜ + ଯ) ଆଧିପତ୍ୟ, ରାଜ୍ୟାଧିକାର ।

ଆଧିଶ୍ରୟଣିକ—ପୁଂ ବଂ. (ଅଧିଶ୍ରୟଣ + ସ୍ୱ,ଇକ) ଦୃଷ୍ଟି ବା ଆଲୋକକେନ୍ଦ୍ର ବା ତାପକେନ୍ଦ୍ରସମ୍ବନ୍ଧୀୟ ।

ଆଧିଶ୍ରୟଣିକବ୍ୟବଧି—ବଂ. ଭିନ୍ନ ଭିନ୍ନ ଆଲୋକ ବା ତାପ ନିଃସାରକ ପଦାର୍ଥର ଦୃଷ୍ଟି, ଆଲୋକକେନ୍ଦ୍ରର ଦୂରତ୍ୱ ।

ଆଧିସ୍ତେନ—ପୁଂ. ବ. ଯେ ଗୁପ୍ତରେ ସଞ୍ଚିତ ଧନକୁ ବଳପୂର୍ବକ ଭୋଗ କରେ ।

ଆଧୀକରଣ—କ୍ଲୀ.ବ. (ଆଧି + ଚ୍ୱି + କୃ + ଭା.ଅନ) ପ୍ରଥମେ ବନ୍ଧକ ଦେବା ।

ଆଧୀକୃତ—ବଂ. (ଆଧି + ଚ୍ୱି + କୃତ) ଯାହା ବନ୍ଧକ କରାଯାଇ ଥାଏ ।

ଆଧୁତ—ବି. ବଂ. (ଆଧୂ + କ.ତ) ଈଷତ୍ କମ୍ପିତ, ଚାଳିତ, ଅଭିଭୂତ, ବିକ୍ଷିପ୍ତ, ବ୍ୟାକୁଳିତ ।

ଆଧୁନିକ—ବଂ. (ଅଧୁନା + ଇକ) ଯାହା ବର୍ତ୍ତମାନ ହୋଇଅଛି, ଅର୍ବାଚୀନ, ଅପ୍ରାଚୀନ, ଆଜିକାଲିର, ଇଦାନୀନ୍ତନ, ନବ୍ୟ ।

ଆଧୃତ—ବି. ବଂ. (ଆ + ଧୃ + ର୍ମ.ତ) ଗୃହୀତ, ଉପରକୁ ଟେକା ହୋଇଥିବା ।

ଆଧୃଷ୍ଟ—ବି. ବଂ. (ଆ + ଧୃଷ୍ + ର୍ମ.ତ) ପରାଜିତ, ନିଗୃହୀତ ।

ଆଧୃଷ୍ଟି—ସ୍ତ୍ରୀ. ବ. (ଆ + ଧୃଷ୍ + ଭା.ତି) ପରାଭବ,ପରାଜୟ, ବଳପୂର୍ବକ ନିଗ୍ରହକରିବା, ଆକ୍ରମଣ ।

ଆଧୃଷ୍ୟ—ବଂ. (ଆ + ଧୃଷ୍ + ଯ) ଧର୍ଷଣୀୟ, ପରାଜୟନୀୟ ।

ଆଧେୟ—ବି. ବଂ. (ଆ + ଧା + ଯ) ଉତ୍ପାଦ୍ୟ, ବନ୍ଧକ ଦେବାର ଯୋଗ୍ୟ, ସ୍ଥାପନୀୟ, (ଦ୍ରବ୍ୟ) ଆଶ୍ରିତ, (କ୍ଲୀ) ଆଧାନ, ଆଧାର ସ୍ଥିତ ଦ୍ରବ୍ୟ ।

ଆଧୋରଣ—ପୁଂ. ବ. (ଆ + ଧୋର + ଅନ) ହସ୍ତୀର ଗତି, ନିପୁଣ ହସ୍ତୀପକ, ସୁଶିକ୍ଷିତ ମାହୁନ୍ତ,ନିଷାଦୀ,ହସ୍ତୀଯୋଦ୍ଧା ।

ଆଧ୍ମାତ—ବି. ବଂ. (ଆ + ଧ୍ମା + କ.ତ) ଶବ୍ଦିତ, ବାୟୁପୂରିତ, ସ୍ଫୀତ, ଉଦ୍ଧତ, ନିବର୍ଦ୍ଧିତ, ଦଗ୍ଧ,ଫୁଲିଯିବା,ବଜାଯିବା (ସ୍ତ୍ରୀ) ଆଧ୍ମାତା,କ୍ଲୀ.ବ, (ଆ + ଧ୍ମା + ଭା. ତ) ଶବ୍ଦ,ସଗର୍ବୋକ୍ତି,ବିକତ୍ଥନ, ବାତବ୍ୟାଧିବିଶେଷ, ପେଟଫମ୍ପା, ସ୍ତବ୍ଧତା, ଫୁଲ୍ଲ, ଆଧ୍ମାନ, ଅଗ୍ନିସଂଯୋଗ ।

ଆଧ୍ମାନ—ପୁଂ. ବ. (ଆ + ଧ୍ମା + ଅନ) ବାତରୋଗକାରୀ ବାତବ୍ୟାଧି, (କ୍ଲୀ.) ପେଟଫାମ୍ପିବା, ଉଚ୍ଚାରଣ, ଶବ୍ଦ, ନାଳିକାନାମକ ଗନ୍ଧଦ୍ରବ୍ୟ,ଫୁଲିଉଠିବା, ବୃଦ୍ଧି ।

ଆଧ୍ମାନୀ—ସ୍ତ୍ରୀ. ବ. (ଆ + ଧ୍ମା + ଅନ + ଈ) ନାଳିକାନାମକ ଗନ୍ଧଦ୍ରବ୍ୟ ।

ଆଧ୍ମାପନ—କ୍ଳୀ. ବି. ଶବ୍ଦନିଷ୍ପାଦନ, ଆଧ୍ମାନନିଷ୍ପାଦନ, ଶରୀରରେ ବନ୍ଧ ବାଣାଦି ଉଦ୍ଧାରର ଉପାୟବିଶେଷ ।

ଆଧ୍ୟକ୍ଷ—କ୍ଳୀ. ବି. ଅଧ୍ୟକ୍ଷତା ।

ଆଧ୍ୟା—ସ୍ତ୍ରୀ ବି. ( ଆ + ଧ୍ୟୈ + ଆ ) ଚିନ୍ତନ,ଚିନ୍ତା,ଉତ୍କଣ୍ଠା, ଧ୍ୟାନ,ଔତ୍ସୁକ୍ୟ-ହେତୁ ସ୍ମରଣ, ଅଧ୍ୟା, ଅଧିଆ ।

ଆଧ୍ୟାତ୍ମିକ—ତ୍ରି. ବିଂ. (ଅଧି + ଆତ୍ମନ୍ + ଇକ ) ଶୋକ, ମୋହ, ଜ୍ୱରାଦିରୂପ ଦୁଃଖ, ବ୍ରହ୍ମବିଷୟକ, ସହଜ,ମାନସିକ, ଆତ୍ମସମ୍ବନ୍ଧୀୟ ।

ଆଧ୍ୟାନ—କ୍ଳୀ. ବି. ( ଆ + ଧ୍ୟୈ + ଭା. ଅନ ) ଚିନ୍ତା, ଉତ୍କଣ୍ଠାପୂର୍ବକ ସ୍ମରଣ, ଦୁଶ୍ଚିନ୍ତା, ଧ୍ୟାନ, ସ୍ମରଣ ।

ଆଧ୍ୟାପକ—ପୁଂ. ବି. ଅଧ୍ୟାପକ, ଶିକ୍ଷକ ।

ଆଧ୍ୟାୟିକ—ପୁଂ. ବି. ଅଧୀତବେଦ, ଯେ ବେଦ ଅଧ୍ୟୟନ କରିଅଛି ।

ଆଧ୍ୟାସିକ—ବିଂ. ବେଦ ନ୍ତମତେ ଚିନ୍ତା-କର ଅଯଥାର୍ଥ ବସ୍ତୁରେ ଯଥାର୍ଥ ଜ୍ଞାନ ।

ଆଧ୍ର—ପୁଂ. ବି. (ଆ + ଧୃ + ଅ)ଆଧାର, ଅଧିକରଣ ।

ଆଧ୍ୱନିକ—ବିଂ.ପଥରେକୁଶଳ,ଯେ ମାର୍ଗ-କଥା ଭଲଭାବେ ଜାଣେ ।

ଆଧ୍ୱର୍ଯ୍ୟବ—ପୁଂ.ସ୍ତ୍ରୀ. ଯେ ଉତ୍ତମଭାବରେ ଯଜ୍ଞବିଷୟ ଜାଣେ ଓ କରେ, ଯେ ଯଜ୍ଞ ଜାଣେ ତାହାର ପୁତ୍ର କନ୍ୟାରୂପ ଗୋତ୍ରାପତ୍ୟ ।

ଆଧ୍ୱର୍ଯ୍ୟବ—ବି. ଅଧ୍ୱର୍ଯ୍ୟୁ ସମ୍ବନ୍ଧୀୟ କର୍ମ୍ମାଦି

ଆନ୍ ଗ୍ରା. ବି. (ଫ. ଆନ୍) ରଙ୍ଗ, ପଣ, ଜଗର, ପ୍ରତିଜ୍ଞା, ଇଚ୍ଛା, ମନର ବାଧା, ମନୋଦୁଃଖ, ଅଭିମାନ ।

ଆନ୍‌ମାନ୍—ଗ୍ରା. ( ସମ୍ବ ) ବି. ଅନୁମାନ (ଗ୍ରା.ବି) ସନ୍ତୋଷ,ଆନନ୍ଦ,(ବିଂ)ସନ୍ତୁଷ୍ଟ ।

ଆନ—ପୁଂ. ବି. (ଆ + ଅନ୍ + କ୍ୱିପ୍ ) ଉଚ୍ଛ୍ୱାସ, ନାସିକାଦ୍ୱାରା ନିଃଶ୍ୱାସ ଛାଡ଼ିବା, ଅନ୍ୟ, ଇତର, (ବି) ଶପଥ, ରାଣ, ମର୍ଯ୍ୟାଦା, ସୀମା, ଭିନ୍ନ ।

ଆନଆନ—ଗ୍ରା. ବିଂ. (ସଂ. ଅନ୍ୟଅନ୍ୟ) ବିଭିନ୍ନ ପ୍ରକାରର, ବିଚିତ୍ର, ଅପୂର୍ବ, ଅନ୍ୟାନ୍ୟ ।

ଆନକ—ପୁଂ. ବି. ( ଆ + ଅଣ + ଅକ ) ପଟହ, ଭେରୀ, ମୃଦଙ୍ଗ, ଶବ୍ଦଯୁକ୍ତ ମେଘ, ଢକା, (ବିଂ) ଉତ୍ସାହକାରୀ, ଶବ୍ଦାୟମାନ ।

ଆନକଦୁନ୍ଦୁଭି—ପୁଂ. ବି. (କ.ଧା) ବସୁ-ଦେବ, (ସ୍ତ୍ରୀ)ବୃହତ୍‌ଢକା,ବୃହତ୍‌ପଟହ ।

ଆନକସ୍ଥଳୀ—ସ୍ତ୍ରୀ. ବି. ଆନକପ୍ରଧାନ ଦେଶବିଶେଷ ।

ଆନଖା—( ଅନୀକ୍ଷିତ ଶବ୍ଦର ଅପଭ୍ରଂଶ) ଯାହା କେବେ ଦେଖା ଯାଇନାହିଁ, ଅଦେଖା ।

ଆନଡୁହ—କ୍ଳୀ. ବିଂ. (ଅନଡୁହ୍ + ଅ) ବୃଷର ଗୋମୟ, ଚର୍ମ ବା ମାଂସାଦି, ସ୍ୱନାମଖ୍ୟାତ ତୀର୍ଥବିଶେଷ,ବୃଷସମ୍ବନ୍ଧୀୟ

ଆନଡୁହ୍ୟ—ପୁଂ. ବି. ଆନଡୁତ୍ ନାମକ ଋଷିଙ୍କର ଗୋତ୍ରାପତ୍ୟ ।

ଆନତ—ତ୍ରି. ବିଂ. ( ଆ + ନମ୍ + କ + ତ) ନମ୍ରୀଭୂତ, ଅଧୋମୁଖ, ଯେ ପ୍ରଣାମ କରିଅଛି, ତଳ୍ଳି ହୋଇଥିବା, ଅବନତ, ତଳମୁହାଁ, ବିନୀତ ।

ଆନତି—ସ୍ତ୍ରୀ. ବି. (ଆ + ନମ୍ + ଭା.ତି ) ଅଧୋମୁଖ, ନମ୍ରତା, ପ୍ରଣାମ,ଅବନତି ।

ଆନତିକର—ପୁଂ. ବିଂ. (୬ତତ୍) ପରି-ତୋଷସାଧକ, ସନ୍ତୋଷକାରୀ, ଆହ୍ଲାଦ-ଜନକ, (ସ୍ତ୍ରୀ) ଆନତିକରୀ ।

ଆନଦ୍ଧ—ତ୍ରି. ବିଂ. (ଆ + ନହ୍ + ର୍ମି.ତ) ବଦ୍ଧ, ସଜ୍ଜିତ, ବ୍ୟାପ୍ତ, ଗ୍ରଥିତ,(କ୍ଳୀ. ବି) ବେଶଭୂଷାଦି, ମୃଦଙ୍ଗପ୍ରଭୃତି ।

ଆନନ—କ୍ଳୀ. ବି. (ଆ + ଅନ୍ + ଅନ) ମୁଖ, ମସ୍ତକ, ବଦନ, ପାଟି ।

ଆନନଚନ୍ଦ୍ରିକା—ସ୍ତ୍ରୀ.ବି. ବିବାହର ଅଷ୍ଟ-ମଙ୍ଗଳା ପରେ ବରକନ୍ୟାଙ୍କର ଦେଖା-ଦେଖି ରୂପ ଶୁଭଦୃଷ୍ଟି, ସ୍ତ୍ରୀ ଆଚାର ।

ଆନନ୍ତର୍ଯ୍ୟ—କ୍ଳୀ. ବିଂ. ( ଅନନ୍ତ + ଯ ) ଅବ୍ୟବହିତ, ଅବ୍ୟବଧାନ, ଅନନ୍ତରତା, ପଶ୍ଚାଦ୍‌ଭାଗ, ଶେଷ ।

ଆନନ୍ତ୍ୟ—କ୍ଳୀ. ବି. ( ଅନନ୍ତ + ଭା.ଯ ) ଅନନ୍ତତ୍ୱ,ଅଶେଷତ୍ୱ, ଅସୀମତ୍ୱ, ବାହୁଲ୍ୟ, ବହୁଭାବ, ଅନନ୍ତଫଳ, ଅନନ୍ତତୃପ୍ତି, ଅବିଚ୍ଛେଦ, ନିତ୍ୟତା, ଅମରତା, ଅପ-ବର୍ଗ ମୁକ୍ତି, ଶାଶ୍ୱତ, ପ୍ରତିଷ୍ଠା ।

ଆନନ୍ଦ—ପୁଂ.ବି.(ଆ + ନନ୍ଦ୍ + ଅ)ହର୍ଷ, ସୁଖ, ଆହ୍ଲାଦ, ପରମବ୍ରହ୍ମ, (କ୍ଳୀ) ମଦ୍ୟ, ଗୃହ, (ବିଂ)ଆନନ୍ଦଯୁକ୍ତ, ହର୍ଷ-ବିଶିଷ୍ଟ, ଆନନ୍ଦଜନକ ।

ଆନନ୍ଦକ—ତ୍ରି. ବିଂ. ( ଆନନ୍ଦ + ଅକ ) ପ୍ରୀତିକର ।

ଆନନ୍ଦକର—ତ୍ରି.ବିଂ. (ଆନନ୍ଦ + କୃ + ଅ) ୬ତତ୍; ଆନନ୍ଦଜନକ, ପ୍ରୀତିପ୍ରଦ, ଆହ୍ଲାଦଜନକ ।

ଆନନ୍ଦକାନନ—କ୍ଳୀ. ବି. କାଶୀକ୍ଷେତ୍ର, ମରଣରେ ବ୍ରହ୍ମାନନ୍ଦ ପ୍ରାପ୍ତିହେତୁକ ଆନନ୍ଦକାନନ । [ ଶିଷ୍ୟ ।

ଆନନ୍ଦଗିରି—ପୁଂ. ବି. ଶଙ୍କରାଚାର୍ଯ୍ୟଙ୍କର

ଆନନ୍ଦଜ—ବିଂ. ଆନନ୍ଦରୁ ଜାତ, ଅଶ୍ରୁ-ପ ତାଦି ।

ଆନନ୍ଦଜନକ—ବିଂ. (ଆନନ୍ଦ + ଜନକ) ହର୍ଷଜନକ ।

ଆନନ୍ଦତୃତୀୟା—ସ୍ତ୍ରୀ. ବି. ବ୍ରତବିଶେଷ, ବୈଶାଖ, ଶ୍ରାବଣ, ମାର୍ଗଶିର ଶୁକ୍ଳ-ତୃତୀୟାରେ ହୁଏ ।

ଆନନ୍ଦଥୁ—ପୁଂ. ବି. (ଆ + ନନ୍ଦ + ଭା. ଅଥୁ) ପ୍ରୀତି, ହର୍ଷ, ଆମୋଦ, ପ୍ରମୋଦ, ଆନନ୍ଦ,ଆହ୍ଲାଦ, ବି. (ଆନ + ନନ୍ଦ + କ.ଅଥୁ) ଆହ୍ଲାଦିତ, ହୃଷ୍ଟ, ଆନନ୍ଦିତ ।

ଆନନ୍ଦଦଣ୍ଡ—ପୁଂ. ବି. (ବ.ବ୍ରୀ) ଉପସ୍ଥ, ମେଢ୍ର, ଦଣ୍ଡାନନ୍ଦ ।

ଆନନ୍ଦଦାୟକ—ତ୍ରି. ବିଂ. ( ଆନନ୍ଦ + ଦାୟକ) ୬ତତ୍, ପ୍ରୀତିପ୍ରଦ; ଆହ୍ଲାଦ-ଜନକ, (ସ୍ତ୍ରୀ) ଆନନ୍ଦଦାୟିକା ।

ଆନନ୍ଦନ—କ୍ଳୀ. ବି. ( ଆ + ନନ୍ଦ + ଭା. ଅନ) ଗମନାଗମନ ସମୟେ ଆଲିଙ୍ଗନ, ଅଭିବାଦନ, ସ୍ୱାଗତ ଜିଜ୍ଞାସା, ହର୍ଷ, (ବିଂ) ସୁଖଜନକ, ପ୍ରମୋଦଜନକ ।

ଆନନ୍ଦପଟ -ପୁଂ.କ୍ଳୀ.(ମଧ୍ୟ.କ.ଧା) ନବୋ-ଢ଼ାର ବସ୍ତ୍ର, ପାଟ୍ଟି, ବଡ଼ଲପାଟ, ଗୁଜରାଟ ଅନ୍ତର୍ଗତ ପ୍ରାଚୀନ ନଗରବିଶେଷ ।

ଆନନ୍ଦପୂର୍ଣ୍ଣ— ପୁଂ. ବି. ଆନନ୍ଦମୟ ପରମାତ୍ମା, ପରମବ୍ରହ୍ମ ।

ଆନନ୍ଦପ୍ରଭବ—କ୍ଲୀ. ବି. (୬ତତ୍ପୁ) ବୀର୍ଯ୍ୟ, ରେତଃ, ଭୂତାଦି ପ୍ରପଞ୍ଚ, ପ୍ରାଣିସମୂହ ।

ଆନନ୍ଦବର୍ଦ୍ଧନ—କ୍ଲୀ ବି (୬ତତ୍ପୁ) ଆନନ୍ଦର ବୃଦ୍ଧିଜନକ, (ବିଂ) ଆନନ୍ଦର ବୃଦ୍ଧିକାରକ ।

ଆନନ୍ଦଭୁକ୍—ପୁଂ.ବିଂ. ଆନନ୍ଦ + ଭୁଜ୍ + କ୍ୱିପ୍) ପ୍ରାଜ୍ଞ, ତତ୍ତ୍ୱଜ୍ଞାନବିଶାରଦ, ଯେ ଆନନ୍ଦ ଭୋଗ କରେ ।

ଆନନ୍ଦଭୈରବ— ପୁଂ. ବି. ( କ. ଧା ) ତନ୍ତ୍ରୋକ୍ତ ଶିବମୂର୍ତ୍ତିବିଶେଷ, ଭୈରବବିଶେଷ, ଶଙ୍କରାଭରଣ ଓ ଭୈରବ ମିଶା ରାଗବିଶେଷ,(ସ୍ତ୍ରୀ) ଆନନ୍ଦଭୈରବୀ

ଆନନ୍ଦମୟ—ପୁଂ.ବି. (ଆନନ୍ଦ + ମୟଟ୍) ପ୍ରଚୁର ଆନନ୍ଦମୟ, ପରମାତ୍ମା, (ବିଂ) ଆନନ୍ଦମୟ, କୋଷାଭିମାନୀ ଜୀବ, (ସ୍ତ୍ରୀ) ଆନନ୍ଦମୟୀ, ଭାଗମୂର୍ତ୍ତିବିଶେଷ ।

ଆନନ୍ଦମୟକୋଷ– ପୁଂ. ବି. ବେଦାନ୍ତମତେ ପଞ୍ଚକୋଷ ମଧ୍ୟରୁ ପଞ୍ଚମ କୋଷ, ସତ୍ତ୍ୱପ୍ରଧାନ ଜ୍ଞାନ, ସୁଷୁପ୍ତି ଅବିଦ୍ୟାସ୍ୱରୂପକାରଣ ଶରୀର ।

ଆନନ୍ଦୟିତା—ପୁଂ.ବିଂ. ( ଆ + ନନ୍ଦ + କ.ତୃ ) ପ୍ରୀତିଦାତା, ହର୍ଷଜନକ ।

ଆନନ୍ଦଲହରୀ—ସ୍ତ୍ରୀ ବି.ବାଦ୍ୟଯନ୍ତ୍ରବିଶେଷ, ଘୁଙ୍ଗୁର, ଶଙ୍କରାଚାର୍ଯ୍ୟକୃତ ଦୁର୍ଗାସ୍ତୁତିବିଶେଷ ।

ଆନନ୍ଦଲୋକ– ପୁଂ. ବି.(କ.ଧା)ଆହ୍ଲାଦପୂର୍ଣ୍ଣ ଭବନ, ସୁଖଧାମ, ସ୍ୱର୍ଗଲୋକ ।

ଆନନ୍ଦବନ—କ୍ଲୀ. ବି. ଆନନ୍ଦମୟବନ, (ପୁଂ) ସ୍ୱନାମଧନ୍ୟ ଜଣେ ପରମହଂସପରିବ୍ରାଜକ ।

ଆନନ୍ଦବୃନ୍ଦାବନଚମ୍ପୂ—କର୍ଣ୍ଣପୂର କବିବିରଚିତ ଗଦ୍ୟପଦ୍ୟମିଶ୍ରିତ କାବ୍ୟବିଶେଷ ।

ଆନନ୍ଦବ୍ରତ—କ୍ଲୀ.ବି. ବ୍ରତବିଶେଷ, ଏହି ବ୍ରତ ଚୈତ୍ରଠାରୁ ଚାରିମାସ ଅଯାଚିତ ବ୍ରତ କରାଯାଏ ଓ ଶେଷରେ ବସ୍ତ୍ରଯୁକ୍ତ ଜଳ କୁମ୍ଭ ସ୍ୱର୍ଣ୍ଣ ଦାନ କରାଯାଏ ।

ଆନନ୍ଦସନ୍ଦୋହ—ପୁଂ. ବି. ( ୬ତତ୍ପୁ ) ଆହ୍ଲାଦ ସୁଧା, ଆନନ୍ଦକର ସୁଖରାଶି, ମହାନନ୍ଦ ।

ଆନନ୍ଦସମ୍ଭବ—ପୁଂ. ବି. ତତ୍ତ୍ୱଜ୍ଞାନଦ୍ୱାରା ବ୍ରହ୍ମାନନ୍ଦର ପ୍ରକାଶ ( ବିଂ ) ଭୂତାଦି ପ୍ରାଣୀ ଯାହାଠାରୁ ଜାତ ହୁଏ ।

ଆନନ୍ଦସାଗର—ପୁଂ.ବି (କ.ଧା) ସମୁଦ୍ରଜଳରାଶି ପରି ଅପରିମେୟ ଆନନ୍ଦ ।

ଆନନ୍ଦା—ସ୍ତ୍ରୀ. ବି. (ଆ + ନନ୍ଦ୍ + ଇ + ଆ ) ବିଜୟା, ସିଦ୍ଧି, ଭାଙ୍ଗ, ସୁଗନ୍ଧଦ୍ରବ୍ୟବିଶେଷ, ଆମ୍ରମଣୀଲତା ।

ଆନନ୍ଦାର୍ଣ୍ଣବ— ପୁଂ. ବି. ବ୍ରହ୍ମାନନ୍ଦ, ପରମେଶ୍ୱର, ଜ୍ୟୋତିଷପ୍ରସିଦ୍ଧ ଯୋଗବିଶେଷ

ଆନନ୍ଦାଶ୍ରୁ—କ୍ଲୀ. ବି. (ମ. ଲୋ. କ. ଧା ) ସୁଖାଶ୍ରୁ, ଆନନ୍ଦଜନିତ ଅଶ୍ରୁ ।

ଆନନ୍ଦି—ପୁଂ. ବି. (ଆ + ନନ୍ଦ୍ + ଭା.ଇ) ହର୍ଷ, କୌତୁକ, ମହାନ୍ତ ନୃସିଂହଙ୍କର ଶିଷ୍ୟବିଶେଷ, ଏ ଚୈତନ୍ୟଚରିତାମୃତର ଟୀକା କରିଅଛନ୍ତି ।

ଆନନ୍ଦିତ—ପୁଂ.ବିଂ. (ଆ + ନନ୍ଦ୍ + କ.ତ) ହର୍ଷଯୁକ୍ତ,ହୃଷ୍ଟ, ସୁଖୀ, ଅଭିନନ୍ଦିତ ।

ଆନନ୍ଦୀ—ପୁଂ.ବିଂ. (ଆ + ନନ୍ଦ + ଇନ୍) ଆନନ୍ଦଯୁକ୍ତ, ଆନନ୍ଦଜନକ ।

ଆନନ୍ଦୀ—ସ୍ତ୍ରୀ. ବି. ବୃକ୍ଷବିଶେଷ, ଅନନ୍ତ ପତ୍ର ।

ଆନମନ— କ୍ଲୀ.ବି.(ଆ + ନମ୍ + ଭା.ଅନ) ନମ୍ର ହେବା, ସମ୍ୟକ୍ ନମ୍ର, ବିଶେଷ ଭାବେ ନମ୍ରତା,ନତକରଣ, ବଙ୍କାଇବା ।

ଆନମନୀୟ—ତ୍ରି. ବିଂ. (ଆ + ନମ୍ + ମି. ଅନୀୟ) ଯାହା ନୁଆଁ ଯାଏ,ବକ୍ରକରିବାର ଯୋଗ୍ୟ ।

ଆନମିତ—ତ୍ରି. ବିଂ. (ଆ + ନମ୍ + ଇ + ତ) ଆନତୀକୃତ, ଆବର୍ଜିତ, ଆକୁଳୀକୃତ, ଯାହା ନୁଆଁ ହୋଇଅଛି, ଈଷତ୍ ନଇଁଥିବା, (ସ୍ତ୍ରୀ) ଆନମିତା ।

ଆନମ୍ୟ—ତ୍ରି. ବିଂ. (ଆ + ନମ୍ + ମି. ଯ) ନମ୍ର କରିବାର ଯୋଗ୍ୟ, (ଅବ୍ୟ) ନତ ହୋଇ, ନମସ୍କାର କରି ।

ଆନମ୍ର—ବିଂ. ଈଷତ୍ନମନଶୀଳ, ଅଳ୍ପନମ୍ର ।

ଆନୟ—ପୁଂ. ବି. ଏକସ୍ଥାନରୁ ଅନ୍ୟ ସ୍ଥାନକୁ ନେବା, ଉପନୟନ ସଂସ୍କାର, (କ୍ଲୀ) ଆନୟନ, ଏକସ୍ଥାନରୁ ଅନ୍ୟସ୍ଥାନକୁ ନେବା ।

ଆନୟନ—କ୍ଲୀ. ବି. (ଆ + ନୀ + ଭା,ଅନ) ଆଣିବା, ସ୍ଥାନାନ୍ତରପ୍ରାପଣ ।

ଆନୟନୀୟ—ତ୍ରି. ବିଂ ( ଆ + ନୀ + ମି. ଅନୀୟ ) ଆଣିବା ଉଚିତ, ଯାହା ଆଣିବାକୁ ହେବ, ଆନୟନଯୋଗ୍ୟ, ଆନୟନସାଧ୍ୟ, (ସ୍ତ୍ରୀ) ଆନୟନୀୟା ।

ଆନର୍ତ୍ତ—ପୁଂ. ବି. ( ଆ + ନୃତ୍ + ଅ ) ନାଟ୍ୟଶାଳା, ନାଟଘର, ଯୁଦ୍ଧ, ସୂର୍ଯ୍ୟବଂଶୀୟ ରାଜାବିଶେଷ, ଦ୍ୱାରକାଦେଶ, (କ୍ଲୀ) ଜଳ, (ବିଂ ଯେ ନୃତ୍ୟ କରେ, ନର୍ତ୍ତକ, ନାଚିବା ।

ଆନର୍ତ୍ତକ—ପୁଂ.ବିଂ (ଆ + ନୃତ୍ + ଅକ ନର୍ତ୍ତକ,ନୃତ୍ୟକାରୀ, ଆନର୍ତ୍ତଦେଶଜାତ ।

ଆନର୍ତ୍ତନ—କ୍ଲୀ. ବି. ( ଆ + ନୃତ୍ ଭା, ଅନ) ନୃତ୍ୟ ।

ଆନର୍ତ୍ତପୁର—କ୍ଲୀ. ବି. ଆନର୍ତ୍ତଦେଶର ପ୍ରଧାନ ନଗର, ଦ୍ୱାରକା ପୁରୀ ।

ଆନର୍ତ୍ତିତ—ତ୍ରି. ବିଂ. ( ଆ + ନୃତ + ମି, ତ) ନର୍ତ୍ତିତ ।

ଆନର୍ତ୍ତୀୟ—ବିଂ. ( ଆନର୍ତ୍ତ + ଈୟସ୍ ) ଆନର୍ତ୍ତ ଦେଶଜାତ ।

ଆନର୍ଥକ୍ୟ—କ୍ଲୀ. ବି. (ଅନର୍ଥକ + ଭା,ଯ) ନିଷ୍ପ୍ରୟୋଜନ, ଅକାରଣ, ବ୍ୟର୍ଥତା, ନିଷ୍ଫଳତ୍ୱ ।

ଆନଳ—ତ୍ରି. ବିଂ. (ଅନଳ + ଅ)ଅନଳସମ୍ବନ୍ଧୀୟ, ଆଗ୍ନେୟ, ଅଗ୍ନିଗର୍ଭ, (ପୁଂ ବି, ଅନଳ, ଅଗ୍ନି, (ସ୍ତ୍ରୀ) ଆନଳୀ ।

ଆନବ—ବିଂ. ପ୍ରାଣୀସମ୍ବନ୍ଧୀୟ ବଳାଦି ।

ଆନବ୍ୟ— କ୍ଲୀ.ବି.ନରସମ୍ବନ୍ଧୀୟ ତନ୍ତ୍ରୋକ୍ତ ଦୁଇଟି ମଳ ।

ଆନସ୍—ବିଂ. ଶକଟସମ୍ବନ୍ଧୀୟ, ପିତୃସମ୍ବନ୍ଧୀୟ, ଗାଡ଼ିର କୌଣସି ବସ୍ତୁ ।

ଆନାଜ—(ହିନ୍ଦି) ତରକାରୀ, ଫଳମୂଳ, ଶାକସବଜୀ ।

ଆନାଥ୍ୟ—କ୍ଲୀ.ବ. (ଅନାଥ + ଯ) ସ୍ୱାମୀଶୂନ୍ୟତ୍ୱ, ପତିରହିତତ୍ୱ ।
ଆନ୍‌ମନ୍ତ୍ର—ଯା. ଜମା, ଗଚ୍ଛିତ ।
ଆନାମ୍ୟ—ବିଂ. ( ଆ + ନମ୍ + ଯ ) ନମସ୍କାର୍ଯ୍ୟ ।
ଆନାୟ—ପୁଂ.ବି. ( ଆ + ନୀ + ଘ,ଅ ) ଜାଲ, ଫାନ୍ଦ, ମତ୍ସ୍ୟ ଧରିବାନିମିତ୍ତ ସୂତ୍ରାଦିନିର୍ମିତ ଜାଲ (ମୁଣ୍ଡାଜାଲ) ।
ଆନାୟୀ—ପୁଂ. ବିଂ. (ଆ + ନୀ + ଇନ୍) ଯେ ଏକସ୍ଥାନରୁ ଅନ୍ୟ ସ୍ଥାନକୁ କୌଣସି ଲୋକକୁ ନେଇଯାଏ, ଜାଲିକ, ଯେ ଜାଲ ଧରି ମାଛ ମାରେ, ଝିଙ୍କ, ଗିରଗିରିଆ, ବ୍ୟାଧ ।
ଆନାଯ୍ୟ—ପୁଂ. ବି. (ଆ + ନୀ + ର୍ମି, ଯ) ବେଦପ୍ରସିଦ୍ଧ ଦକ୍ଷିଣାଗ୍ନିବିଶେଷ, ଗାର୍ହପତ୍ୟାଗ୍ନିରୁ ଅଗ୍ନି ଯେଉଁ ଦକ୍ଷିଣାଗ୍ନିକୁ ଆରୋପିତ କରାଯାଏ ।
ଆନାର—ଯା ବି. ଡାଳିମ୍ବ, ବେଦନା ।
ଆନାରସ—ବି. ଏହା କୋଙ୍ଗାପ୍ରଭୃତି ଜାତୀୟ ବୃକ୍ଷ, ସପୁରି ।
ଆନାହ—ପୁଂ. ବି. (ଆ + ନହ୍ + ଘ,ଅ) ଦୈର୍ଘ୍ୟ,ବନ୍ଧ, ମଳମୂତ୍ରରୋଧକ ରୋଗବିଶେଷ ।
ଆନାହିକ—ପୁଂ. ବି. ଆନାହ ରୋଗର ପ୍ରତିକାରବିଧି ।
ଆନିରୁଦ୍ଧ—ପୁଂ. ସ୍ତ୍ରୀ. ଅନିରୁଦ୍ଧଙ୍କର ପୁତ୍ର ବା କନ୍ୟାରୂପ ଅପତ୍ୟ, ଯେ ରୁଦ୍ଧ ନୁହେ ତାହାର ପୁତ୍ର ବା କନ୍ୟାରୂପ ଅପତ୍ୟ ।
ଆନର୍ତ୍ତ—ପୁଂ. ବି ଦେବ-ହ୍ରଦସ୍ଥତୁଲ୍ୟ, ଦେବତାବିଶେଷ ।
ଆନଳ—ବିଂ. (ଅନଳ + ଅଣ୍) ବାୟୁ ସମ୍ବନ୍ଧୀୟ, ବାୟୁ ଦେବତାଙ୍କର ହବନୀୟ ଘୃତାଦି, (ବି) ଅନଳସୁତ, ହନୁମାନ୍, ଭୀମ (ସ୍ତ୍ରୀ) ଆନଳୀ,ସ୍ୱାତୀନକ୍ଷତ୍ର ।
ଆନୀ—ଗ୍ରା. ବି. (ଫ.ଆନନ) ବାଦ୍ୟବିଶେଷ, (ଯା) ଭାବ, ଅବସ୍ଥା ।
ଆନୀତ—ତ୍ରି. ବିଂ. ( ଆ + ନୀ + ର୍ମି,ତ ) ଯାହା କୌଣସିଠାରୁ ଅଣା ହୋଇଅଛି, ଅଣା ହୋଇଥିବା, କୃତାନୟନ, (ସ୍ତ୍ରୀ) ଆନୀତା ।
ଆନୀତି—ସ୍ତ୍ରୀ. ବି. ( ଆ + ନୀ + ତି ) ଆନୟନ, ଏକସ୍ଥାନରୁ ଅନ୍ୟ ସ୍ଥାନକୁ କୌଣସି ପଦାର୍ଥ ଆଣିବା ।
ଆନୀଳ—ପୁଂ.ବିଂ. ନୀଳବର୍ଣ୍ଣଯୁକ୍ତ, (ବି) ଅଳ୍ପ ନୀଳବର୍ଣ୍ଣ, ଈଷତ୍ ନୀଳବର୍ଣ୍ଣ, ସୁନ୍ଦର ନୀଳବର୍ଣ୍ଣ, ନୀଳବର୍ଣ୍ଣ ଘୋଡ଼ା, (ସ୍ତ୍ରୀ) ଆନୀଳୀ, ନୀଳବର୍ଣ୍ଣ ଘୋଡ଼ୀ ।
ଆନୀଳ ଶତପତ୍ର—ବି. ଇନ୍ଦୀବର, ନୀଳକଇଁ ।
ଆନୁଆନ—ଗ୍ରା. (ଫ-କେଡେକ) ଅନ୍ୟ, (ବିଂ) ବିଭିନ୍ନ ।
ଆନୁକଲ୍ପିକ—ବିଂ. (ଅନୁକଳ୍ପ + ଇକ ଅନୁକଳ୍ପବୋଧକ ଗ୍ରନ୍ଥର ଅଧ୍ୟୟନକାରୀ, ଅନୁକଳ୍ପଭିଜ୍ଞ, ଅନୁକଳ୍ପସାଧନ ।
ଆନୁକୂଳକ—ବିଂ. ( ଅନୁକୂଳ + କ ) ଅନୁକୂଳଦ୍ୱାରା ବର୍ତ୍ତିମ ନ ।
ଆନୁକୂଲ୍ୟ—କ୍ଲୀ.ବି. (ଅନୁକୂଳ + ଘ,ଯ) ଅନୁକୂଳତା-ଆଚରଣ, ସାହାଯ୍ୟକରଣ, ଉପକାର, ସହାୟତା, ଦୟା, ଆନୁଗୁଣ୍ୟ, ଅନୁଗ୍ରହ, ଐକ୍ୟ ।
ଆନୁଗଙ୍ଗ୍ୟ—ବିଂ. ଗଙ୍ଗାର ପଶ୍ଚାଦ୍‌ଭବ, ଗଙ୍ଗାର ପଛରେ ଜାତ ହେବା ।
ଆନୁଗତିକ—ବିଂ. ପଶ୍ଚାଦ୍‌ଗମନଦ୍ୱାରା ସନ୍ତୋଷଲବ୍ଧ, ଅନୁଗମନଦ୍ୱାରା ଜାତ ସନ୍ତୋଷାଦି ।
ଆନୁଗତ୍ୟ—କ୍ଲୀ. ବି. ( ଅନୁଗତ + ଯ ) ଅନୁଗମନରୂପ ଆଚରଣ, ଅନୁଗତର ଧର୍ମ, ସାହାଯ୍ୟ ଘନିଷ୍ଠତା, ଅନୁଗତତ୍ୱ, ଗୋମେଷାଦି, ଉପାସନା ।
ଆନୁଗାଦିକ—ବିଂ. ଯେ ପଛରେ କହେ, ପଶ୍ଚାତ୍ କଥନ ।
ଆନୁଗୁଣିକ—ବିଂ. ଅନୁକୂଳଜ୍ଞ, ସ୍ୱରୂପଜ୍ଞ, ଅନୁକୂଳବୋଧକ ଗ୍ରନ୍ଥର ଅଧେତା ।
ଆନୁଗୁଣ୍ୟ—କ୍ଲୀ. ବି. ( ଅନୁଗୁଣ + ଯ ) ଅନୁକୂଳାଚରଣ, ସାହାଯ୍ୟ କରିବା, ଅନୁକୂଳତ୍ୱ, ସହାୟତା ।
ଆନୁଗ୍ରାମିକ—ବିଂ. ଗ୍ରାମର ପଛରେ ଜାତ ଦ (ସ୍ତ୍ରୀ) ଆନୁଗ୍ରାମିକୀ ।
ଆନୁଚରକ—କ୍ଲୀ.ବି. (ଅନୁ + ଚର୍ + ଅକ) ଭୃତ୍ୟର କର୍ତ୍ତବ୍ୟକର୍ମ, ଅନୁଚରର ଧର୍ମଯୁକ୍ତ ଆଚରଣ ।
ଆନୁଢ—ପୁଂ.ସ୍ତ୍ରୀ. ଅନୁଢନାମକ ମୁନିଙ୍କ ପୁ ଦ୍ର କନ୍ୟାରୂପ ଅପତ୍ୟ, (ସ୍ତ୍ରୀ) ସମ୍ୟକ୍ ସ୍ତବକରିବା, ସର୍ବତୋଭାବେ ସ୍ତବକରିବା ।
ଆନୁତଲ୍ୟ—ବିଂ. ତଳର ପଶ୍ଚାତ୍‌ଜାତାଦି,ତଳର ପଛରେ ଜାତ, ଗୃହିର ପଛରେ ଜାତ ।
ଆନୁଦୃଷ୍ଟିନେୟ—ପୁଂ. ସ୍ତ୍ରୀ. ଅନୁକୂଳ ଦୃଷ୍ଟିଜାତ ।
ଆନୁନାଶ୍ୟ—ବିଂ. ନାଶର ପଶ୍ଚାତ୍‌ଜାତ, (ସ୍ତ୍ରୀ) ଆନୁନାଶ୍ୟା
ଆନୁନାସିକ୍ୟ—କ୍ଲୀ. ବି. ଅନୁନାସିକ ବର୍ଣ୍ଣର ଧର୍ମ, ନାସିକା ସହିତ ସେହି ସେହି ସ୍ଥାନରୁ ଉଚ୍ଚାର୍ଯ୍ୟ, ଅଳ୍ପପଦଜ୍ଞ ।
ଆନୁପଥ୍ୟ—ବିଂ. ଯାହା ପଥର ପଶ୍ଚାତ୍ ହୁଏ ।
ଆନୁପଦିକ—ତ୍ରି.ବିଂ. (ଅନୁପଦ + ଇକ) ପଶ୍ଚାତ୍‌ଧାବମାନ, ପଦଗ୍ରନ୍ଥର ଅଧ୍ୟୟନକର୍ତ୍ତ ।
ଆନୁପଦ୍ୟ—ବିଂ. ପଦର ପଶ୍ଚାତ୍‌ଜାତ, ଯାହା ପଦର ପଛରେ ହୁଏ ।
ଆନୁପୂର୍ବ—କ୍ଲୀ. ବି. ( ଅନୁପୂର୍ବ + ଅ ) ଅଗ୍ର, ପଶ୍ଚାତ୍‌ଭାଗରୂପ କ୍ରମ, ଯଥାକ୍ରମ, ପରମ୍ପରା, ଆନୁଲୋମ, ପରିପାଟୀ, ଧାରାବାହିକତା ।
ଆନୁପୂର୍ବିକ—ତ୍ରି.ବିଂ. (ଅନୁପୂର୍ବ + ଇକ) ଧାରାବାହିକ, ସପରିପାଟୀ, ମୂଳାବଧି କ୍ରମବିଶେଷ, କ୍ରମାନୁସାରୀ, ଠିକ୍ ପୂର୍ବରୁ ଆରମ୍ଭ କରି ବର୍ଣ୍ଣନା ।
ଆନୁପୂର୍ବୀ—ସ୍ତ୍ରୀ. ବି. (ଅନୁପୂର୍ବ + ଅ + ଈ) ପରିପାଟୀ, ମୂଳାବଧିକ୍ରମ, ଠିକ୍ ମୂଳରୁ ଆରମ୍ଭ କରି, କ୍ରମବିଶେଷ, ଯଥାକ୍ରମ ।
ଆନୁପୂର୍ବ୍ୟ—ବି. ( ଅନୁପୂର୍ବ + ଘ + ଯ ) ଆନୁପୂର୍ବ ଦେଖ ।

ଆନୁବଧିତ୍ସା—ସ୍ତ୍ରୀ. ବ. (ଅନୁ+ବ+ଧା+ସନ୍. ଅ+ଆ) ଉପକାରୀର ପ୍ରତ୍ୟୁପକାର ନ କରିବାର ଇଚ୍ଛା, କୃତଘ୍ନତା, ନିମକହାରାମି ।
ଆନୁମାନିକ—ବି.ବିଂ.(ଅନୁମାନ+ଇକ) ଅନୁମାନପ୍ରାପ୍ତ, ଯୁକ୍ତିସିଦ୍ଧ, ଅନୁମିତ ପଦାର୍ଥ, ଅନ୍ଦାଜି, ସମ୍ଭାବ୍ୟ, କାଳ୍ପନିକ, (କ୍ଲୀ. ବ.) ଅନୁମାନପ୍ରକୃତ ।
ଆନୁମାସ୍ୟ—ବିଂ. ମାସର ପଛରେ ଜାତ, ଯେ ମାସର ପଛରେ ହୁଏ ।
ଆନୁଯବ୍ୟ—ବିଂ. ଯବର ପଶ୍ଚାତ୍‌ଜାତ, ଯେ ଯବର ପଛରେ ହୁଏ ।
ଆନୁଯାତ୍ରିକ—ପୁଂ.ବ.(ଅନୁଯାତ୍ରା+ଇକ) ଅନୁଚର ।
ଆନୁଯୂପ୍ୟ—ବିଂ. ଯୂପର ପଶ୍ଚାତ୍‌ଜାତ, ଯେ ଯୂପ ପଛରେ ହୁଏ ।
ଆନୁରକ୍ତି—ସ୍ତ୍ରୀ. ବ. (ଅନୁରକ୍ତ+ଷ୍ୟ.ଇ) ଅନୁରାଗ, ସ୍ନେହ, ଆନୁଗତ୍ୟ, ଆସକ୍ତି ।
ଆନୁରହତ୍ୟ—ପୁଂ. ସ୍ତ୍ରୀ. ବ. ଅନୁରହର କନ୍ୟା ବା ପୁତ୍ରରୂପ ଅପତ୍ୟ ।
ଆନୁରୂପ୍ୟ—କ୍ଲୀ.ବ. (ଅନୁରୂପ+ଷ୍ୟ,ଯ) ସାଦୃଶ୍ୟ, ଔଚିତ୍ୟ, ତୁଲ୍ୟତା ।
ଆନୁରୋହତ—ପୁଂ.ସ୍ତ୍ରୀ.ବ. ଅନୁରୋହତ୍ ମୁନିଙ୍କ ପୁତ୍ରପୌତ୍ରାଦି, ଅନୁରୋହତାଦିନ ।
ଆନୁଲେପିକ—ବିଂ. ଅନୁଲେପିକାର ଧର୍ମ୍ମ ଓ କର୍ମ୍ମ, ଅନୁଲେପକଙ୍କ ଧର୍ମ୍ମଜନକ କର୍ମ୍ମ ।
ଆନୁଲୋମିକ—ବିଂ. (ଅନୁଲୋମ+ଇକ) ଯଥାକ୍ରମେ କାର୍ଯ୍ୟକାରୀ, କ୍ରମାନୁଯାୟୀ, ଅନୁକୂଳ, କ୍ରମିକ ।
ଆନୁଲୋମ୍ୟ—କ୍ଲୀ.ବ. (ଅନୁଲୋମ+ଷ୍ୟ, ଯ) ଅନୁକ୍ରମ, ଅନୁକୂଳତା, ବର୍ଣ୍ଣାନୁକ୍ରମ, ପରିପାଟୀ ।
ଆନୁବଂଶ୍ୟ—ବିଂ. ଯେ ବାଉଁଶଗଛର ପଛରେ ହୁଏ, କ୍ରମିକ କୁଟୁମ୍ବତା, କୁଟୁମ୍ବତାରକ୍ରମ ।
ଆନୁବେଶ୍ୟ—ପୁଂ.ବିଂ.(ଅନୁବେଶ+ଯ) ନିଜ ଘର ପାଖରେ ଯେ ବାସ କରେ, ପଡ଼ୋଶୀ, ପ୍ରତିବେଶୀ ।
ଆନୁଶାତକ—ବିଂ. (ଅନୁଶତକ+ଅଣ୍) ଅନୁଶତକସମ୍ବନ୍ଧୀୟ ।
ଅନୁଶାସନିକ—ବି. ବିଂ.)(ଅନୁଶାସନ+ଇକ) ଶାସନର ନୀତିବାକ୍ୟପ୍ରଭୃତି, ରାଜନୀତିର ଅନୁଶାସନସମ୍ବନ୍ଧୀୟ, (ବ) ମହାଭାରତର ପର୍ବବିଶେଷ (ସ୍ତ୍ରୀ) ଆନୁଶାସନିକା ।
ଆନୁଶ୍ରାବିକ—ବିଂ.ବ. (ଅନୁଶ୍ରାବ+ଇକ) ବେଦବିହିତ କ୍ରିୟାକଲାପ, ବେଦବିହିତ (ଯାଗାଦି) ।
ଆନୁଷଙ୍ଗ—ବିଂ. (ଗୌଣ) ସଙ୍ଗେ ସଙ୍ଗେ, ଆନୁଷଙ୍ଗିକ ।
ଆନୁଷଙ୍ଗିକ—ବି. ବିଂ. (ଅନୁସଙ୍ଗ+ଇକ) ଅପରିହାର୍ଯ୍ୟ, ସଙ୍ଘଟିତ, ଅପ୍ରଧାନ, ଅବାନ୍ତର, ସଂଲଗ୍ନ, ସଂଶ୍ଳିଷ୍ଟ, ଗୁହ୍ୟ ।
ଆନୁଷକ—(ଅବ୍ୟ) (ଆ+ଅନୁ+ସଞ୍ଜ୍+କ୍ୱିପ୍) ଆନୁପୂର୍ବୀ, ପରିପାଟୀ ।
ଆନୁଷଣ୍ଡ—ବିଂ. (ଅନୁଷଣ୍ଡ+ଅଣ୍) ଅନୁଷଣ୍ଡ ଦେଶଜାତ ।
ଆନୁଷ୍ଠାନିକ—ବି. ବିଂ. (ଅନୁଷ୍ଠାନ+ଇକ ଅନୁଷ୍ଠାନସମ୍ବନ୍ଧୀୟ, ଅନୁଷ୍ଠାନୀୟ, ଆରମ୍ଭଘଟିତ, ଆରମ୍ଭସମ୍ବନ୍ଧୀୟ, ପ୍ରାରମ୍ଭିକ, ଆଦ୍ୟ, ପ୍ରାଥମିକ ।
ଆନୁଷ୍ଠିକ—ବିଂ. (ଅନୁଷ୍ଠାନ+ଇକ) ଅନୁଷ୍ଠାନସମ୍ବନ୍ଧୀୟ ।
ଆନୁଷ୍ଟୁଭ୍—ବିଂ. (ଅନୁଷ୍ଟୁପ୍+ଅ) ଅନୁଷ୍ଟୁପ୍‌ଛନ୍ଦଯୁକ୍ତ ମନ୍ତ୍ରାଦି, ଅନୁଷ୍ଟୁପ୍ ସମ୍ବନ୍ଧୀୟ (ସ୍ତ୍ରୀ) ଆନୁଷ୍ଟୁଭୀ, ସରସ୍ୱତୀଙ୍କ ଉଦ୍ଦେଶ୍ୟେ ହବନୀୟ ଘୃତାଦି ।
ଆନୁସାନ୍ଧ୍ୟ—ବିଂ. ସନ୍ଧ୍ୟାର ପଶ୍ଚାତ୍‌ଜାତ, ରାତ୍ର୍ୟାଦି ।
ଆନୁସୀତ୍ୟ—ବିଂ. ଲଙ୍ଗଳର ପଶ୍ଚାତ୍‌ଜାତ, ସୀତାଙ୍କର ପଛରେ ଜାତ ।
ଆନୁସୀର୍ଯ୍ୟ—ବିଂ. (ଅନୁସୀର+ଯ) ଲଙ୍ଗଳର ପଶ୍ଚାତ୍‌ଜାତ ।
ଆନୁସୂୟ—ବିଂ. (ଅନୁସୂୟା+ଅ) ଅନୁସୂୟାଙ୍କ ଦତ୍ତ, ଅତ୍ରି ପତ୍ନୀଙ୍କଦ୍ୱାରା ଦତ୍ତ ।
ଆନୁସୃତନେୟ—ବିଂ. ଅନୁସରଣଜାତ, ପଶ୍ଚାଦ୍‌ଗମନରୁ ଲବ୍ଧ, ପଶ୍ଚାଦ୍‌ଗମନଜାତ ।
ଅନୁସୃଷ୍ଟିନେୟ—ବିଂ. ସୃଷ୍ଟିର ପଛରେ ଜାତ, ଦାନର ପଶ୍ଚାତ୍‌ଜାତ ।
ଆନୁହାରତ—ବିଂ. ପଶ୍ଚାଦ୍‌ହରଣକାରୀଠାରୁ ଜାତ ।
ଆନୂପ—କ୍ଲୀ. ବ. (ଅନୂପ+ଯ)ଅନୂପଦେଶସ୍ଥ ଜଳ, (ପୁଂ. ବ) ତଦ୍ଦେଶସ୍ଥ ଜନ୍ତୁ, ମହିଷାଦି,(ବି.ବିଂ.) ଜଳବହୁଳସ୍ଥାନସମ୍ବନ୍ଧୀୟ, ବହୁଜଳବିଶିଷ୍ଟ ।
ଆନୂପକ—ବିଂ. (ଅନୂପ+ଅକ) ଜଳପ୍ରାୟ ଦେଶର ମନୁଷ୍ୟ ।
ଆନୃଣ୍ୟ—କ୍ଲୀ. ବ. (ଅନୃଣ+ଯ)ଋଣରହିତତ୍ୟ, ଋଣରୁ ମୁକ୍ତ ହେବା, ପ୍ରତ୍ୟୁପକାରଦ୍ୱାରା କୃତ ଉପକାରର ପ୍ରତିଶୋଧ ।
ଆନୃତ—ବିଂ.(ଅନୃତ+ଅ) ଯେ ସର୍ବଦା ମିଥ୍ୟା କହେ, ଯେ ସର୍ବଦା ମିଥ୍ୟାନୁଶୀଳନକରେ ।
ଆନୃଶଂସି—ପୁଂ.ସ୍ତ୍ରୀ.ବ. ଦୟାଳୁର ପୁତ୍ର, ଆନୃଶଂସୀୟ ।
ଆନୃଶଂସ୍ୟ—କ୍ଲୀ.ବ.ଅନିଷ୍ଠୁରତା, ଅନୁକମ୍ପା, ଦୟା, କାରୁଣ୍ୟ ।
ଆନେୟତବ୍ୟ—ବିଂ. (ଆ+ନୀ+ନି. ତବ୍ୟ) ଆଣିବାର ଯୋଗ୍ୟ ।
ଆନେତା—ପୁଂ.ବିଂ. (ଆ+ନୀ+କ.ତୃ) ଆନୟନକର୍ତ୍ତା, ଯେ ଆଣେ, ଆଣିବା ଲୋକ,(ସ୍ତ୍ରୀ) ଆନେତ୍ରୀ,ଆନୟନଶୀଳା ।
ଆନେୟ—ବିଂ. (ଆ+ନୀ+ନି.ଯ) ଦକ୍ଷିଣାଗ୍ନି, ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ନେବା, ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଆଣିବା ।
ଆନୈପୁଣ—କ୍ଲୀ. ବ. (ଅନିପୁଣ+ଅ) ଅପଟୁତା, ପଟୁତାର ଅଭାବ,ଅବିଚକ୍ଷଣ ।
ଆନୈଶ୍ୱର୍ଯ୍ୟ—କ୍ଲୀ.ବ.ବୃଦ୍ଧିରଧର୍ମବିଶେଷ, ଐଶ୍ୱର୍ଯ୍ୟର ଅଭାବ ।

ଆନ୍ତ—ବି. ବିଂ. (ଆନ୍ + କ.ତ)ପୀଡ଼ିତ, ଅର୍ମିତ, ବ୍ୟାଧିଗ୍ରସ୍ତ, ଗତ, ଅନ୍ତସମ୍ବନ୍ଧୀୟ, ଅନ୍ତିମ, ଆନ୍ତ୍ୟ, ଶେଷ ।

ଆନ୍ତଃପୁରିକ—ପୁଂ. ବ. ( ଅନ୍ତଃପୁର + ଇକ ) ଅନ୍ତଃପୁରାଧ୍ୟକ୍ଷ ।

ଆନ୍ତର—ବି.ବିଂ.(ଅନ୍ତର୍ + ଅ) ଅଭ୍ୟନ୍ତର, ଅଭ୍ୟନ୍ତରେଜାତ, ମଧ୍ୟଜାତ, ଆନ୍ତରିକ, ନିଗୂଢ଼, ମନୋଗତ, ଅନ୍ତର୍ଗତ, (ବ) ଅନ୍ତଃକରଣ ।

ଆନ୍ତରତମ୍ୟ—କ୍ଲୀ. ସୌସାଦୃଶ୍ୟ ।

ଆନ୍ତରପ୍ରପଞ୍ଚ—ପୁଂ. ବ. (କ.ଧା) ଅଭ୍ୟନ୍ତରଜାତ,ଆଧ୍ୟାତ୍ମିକ,ଦୈହିକ ବିସ୍ତାର ।

ଆନ୍ତର୍ବାଗାରିକ—ବିଂ. ଅନ୍ତଃପୁର ରକ୍ଷା ନିମିତ୍ତ ନିଯୁକ୍ତ ଲୋକର କର୍ତ୍ତବ୍ୟ କର୍ମ ।

ଆନ୍ତର୍ବାଲ—ବିଂ. ଶରୀରମଧ୍ୟେ ଆତ୍ମାର ସ୍ଥିତି, ଯେ ଶରୀର ମଧ୍ୟେ ଆତ୍ମାର ସ୍ଥିତି ଜାଣେ ।

ଆନ୍ତରିକ—ବି. ବ. ( ଅନ୍ତର୍ + ଇକ ) ଅନ୍ତର୍ଗତ ପ୍ରକୃତ, ମାନସିକ, ମନୋଗତ, ଆଭ୍ୟନ୍ତରୀଣ, ଅନ୍ତରର ସହିତ, ଅକପଟ, ଐକାନ୍ତିକ ।

ଆନ୍ତ(ର)ୀକ୍ଷ—ବିଂ. ( ଅନ୍ତରୀକ୍ଷ + ଅ ଆକାଶଜାତ ଉତ୍ପାଦାଦି, ଆକାଶ ସମ୍ବନ୍ଧୀୟ, ଆକାଶରେ ଘଟିବା, (ବ) ବୃଷ୍ଟିଜଳ, ଆକାଶ ।

ଆନ୍ତରୀଣ—ବି. ବିଂ. ( ଅନ୍ତର + ଇନ୍ ) ଅନ୍ତର୍ବର୍ତ୍ତୀ, ମଧ୍ୟସ୍ଥ, (ସ୍ତ୍ରୀ) ଆନ୍ତରୀଣା ।

ଆନ୍ତରୀପକ—ବିଂ. ଅନ୍ତରୀପଜାତ, ଯେ ଅନ୍ତରୀପରେ ଜନ୍ମେ ।

ଆନ୍ତର୍ଗଣିକ—ବିଂ. ଗଣମଧ୍ୟେ ଜାତ ।

ଆନ୍ତର୍ଗେହିକ - ବିଂ. ଗୃହମଧ୍ୟେ ଜାତ, ଆନ୍ତର୍ବେଶିକ ।

ଆନ୍ତର୍ଜାତିକ—ବିଂ. (ଅନ୍ତର୍ଜାତି + ଇକ) ସ୍ୱାଧୀନ ଜାତିମାନଙ୍କର ପରସ୍ପର ସମ୍ପର୍କ ବା ସ୍ୱାର୍ଥସମ୍ବନ୍ଧୀୟ ।

ଆନ୍ତର୍ଯ୍ୟ କ୍ଲୀ. ବ. (ଅନ୍ତର + ଯ) ଅନ୍ତର୍ବର୍ତ୍ତିତ୍ୱ, ସାଦୃଶ୍ୟ, ତୁଲ୍ୟତା ।

ଆନ୍ତ୍ରିକା—ସ୍ତ୍ରୀ. ବ. (ଅନ୍ତିକ + ଅ + ଆ) ଭଗିନୀ, ଜ୍ୟେଷ୍ଠା, ଅନ୍ତିକା, ଜ୍ୟେଷ୍ଠା ଭଗିନୀ, ବଡ଼ଭଉଣୀ ।

ଆନ୍ତ୍ର—କ୍ଲୀ.ବ. (ଅନ୍ତ୍ର + ଅ) ବାୟୁବାହକ ନାଡ଼ୀବିଶେଷ, (ବିଂ) ଅନ୍ତ୍ରସମ୍ବନ୍ଧୀୟ, ନ ଡ଼ୀମୟ, (ସ୍ତ୍ରୀ) ଆନ୍ତ୍ରୀ ।

ଆନ୍ତ୍ରିକ—ବି. ବିଂ. (ଅନ୍ତ୍ର + ଇକ) ଅନ୍ତ୍ରକୁଣ୍ଡଳୀସମ୍ବନ୍ଧୀୟ, (ବ) ଅନ୍ତ୍ରସମ୍ବନ୍ଧୀୟ, ସାଂଘାତିକ ଜ୍ୱରରୋଗ ।

ଆନ୍ଦାଜ—( ଯା ) ବ. ଅନୁମାନ, ଅନୁଭବ, ପରିମାଣ ।

ଆନ୍ଦାଜୀ—( ଯା ) ବିଂ. ଆନୁମାନିକ ।

ଆନ୍ଦାମାନଦ୍ୱୀପପୁଞ୍ଜ—ବଙ୍ଗୋପସାଗରର ଦକ୍ଷିଣସ୍ଥ କ୍ଷୁଦ୍ର ଓ ବୃହତ୍ ଦ୍ୱୀପପୁଞ୍ଜବିଶେଷ ।

ଆନ୍ଦୁ—( ଯା. ) ବ. ହସ୍ତୀର ପଦବନ୍ଧନ ଶୃଙ୍ଖଳା, ପାଦଭୂଷଣ ।

ଆନ୍ଦୋଳ—ଆନ୍ଦୋଳନ, ଦୋଳନ ।

ଆନ୍ଦୋଳକ—ବିଂ. ଆନ୍ଦୋଳନ + ଅକ) ଦୋଳନକର୍ତ୍ତା, ଯେ କୌଣସି ବିଷୟରେ ଚାଳନ କରେ ।

ଆନ୍ଦୋଳନ—କ୍ଲୀ. ବ (ଆ + ଦୋଲ + ଅନ) ତର୍କ ବିତର୍କ,ବିକ୍ଷୋଭ, ଦୋଳା, ଚହଲ, କମ୍ପନ, ପାଲଙ୍କି, ପୁନଃପୁନଃ ଦୋଳନ, ଅନୁସନ୍ଧାନ, ବିବେଚନା, ବାରମ୍ବାର ସଞ୍ଚାଳନ ।

ଆନ୍ଦୋଳା—ଗ୍ରା. ବ. ( ଫ-ଆନ୍ଦୋଲନ ) ମନୁଷ୍ୟବାହିତ ଯାନ, ଖଟିଆ, ପାଲଙ୍କି, ଦୋଳା ।

ଆନ୍ଦୋଳନୀୟ—ବି. ବିଂ. (ଆନ୍ଦୋଳ + ଣି.ଅନୀୟ ) ଆନ୍ଦୋଳନର ଯୋଗ୍ୟ, ଯାହାର ଆନ୍ଦୋଳନ କର୍ତ୍ତବ୍ୟ, ଯେଉଁ ବିଷୟ ଆନ୍ଦୋଳନ କରିବା ଉଚିତ, (ସ୍ତ୍ରୀ) ଆନ୍ଦୋଳନୀୟା ।

ଆନ୍ଦୋଳିତ—ବି. ବିଂ. ( ଆନ୍ଦୋଳ + ଣି.ତ ) ଚଳିତ, କମ୍ପିତ, ଦୋଳିତ, ଅନୁଶୀଳିତ, ଆଲୋଚିତ,ଲମ୍ବିତ, (ସ୍ତ୍ରୀ) ଆନ୍ଦୋଳିତା ।

ଆନ୍ଧସିକ—ବି. ବିଂ. ( ଆନ୍ଧସ୍ + ଇକ ) ପାଚକ, ପାକକର୍ତ୍ତା, ସୂପକାର, ସୁଆର, (ସ୍ତ୍ରୀ) ଆନ୍ଧସିକା ।

ଆନ୍ଧି—ଗ୍ରା.ବ.ସନ୍ଧି,କ୍ଷୁଦ୍ର ଜାଲା ବା ଫଟା ।

ଆନ୍ଧୀଗବ—କ୍ଲୀ.ବ. ଉତ୍ତରସ୍ୟପର୍ବତେଶେଷ ଆର୍ଦ୍ରା ପର୍ବମାନ ସୃକ୍ତଗତ ସୃକ୍ତବିଶେଷ ।

ଆନ୍ଧୂ—ଗ୍ରା.ବ. (ଫ ଅନ୍ଧୂ) ହାତଗୋଡ଼ଶିକୁଳୀ ।

ଆନ୍ଧ୍ୟ—କ୍ଲୀ. ବ (ଅନ୍ଧ + ଷ୍ୟ.ଯ) ଦୃଷ୍ଟିଶକ୍ତିରହିତତ୍ୟ, ଅନ୍ଧତା, ଦୃଷ୍ଟିହୀନତା ।

ଆନ୍ଧ୍ର—ପୁଂ.ବ. (ଆ-ଅନ୍ଧ + ରନ୍)ଦେଶବିଶେଷ,ତଦ୍ଦେଶବାସୀ, ସେହି ଦେଶର ରାଜା ।

ଆନ୍ନ—ବିଂ. (ଅନ୍ନ + ଅ) ଅନ୍ନଲାଭକର୍ତ୍ତା ଅନ୍ନସମ୍ବନ୍ଧୀୟ, ଖାଦ୍ୟଘଟିତ, (ସ୍ତ୍ରୀ) ଆନ୍ନୀ ।

ଆନ୍ମନା—ଗ୍ରା. (ଉନ୍ମନାଶବ୍ଦର ଅପଭ୍ରଂଶ) ଅନ୍ୟମନସ୍କ ।

ଆନ୍ୟତରେୟ—ପୁଂ. ସ୍ତ୍ରୀ. ଅନ୍ୟତରର ପୁତ୍ର ବା କନ୍ୟାରୂପ ଅପତ୍ୟ ।

ଆନ୍ୟଭାବ୍ୟ—କ୍ଲୀ. ବ. ଅନ୍ୟରୂପତ୍ୱ ।

ଆନ୍ୱୟିକ—ବି. ବିଂ. (ଅନ୍ୱୟ + ଇକ) ପ୍ରଶସ୍ତକୁଳଜାତ, କୁଳୀନ, (ସ୍ତ୍ରୀ) ଆନ୍ୱୟିକା, ପ୍ରଶସ୍ତକୁଳଜାତା, କୁଳୀନା ।

ଆନ୍ୱୟିକ୍ୟ—କ୍ଲୀ. ବ. ଅନ୍ୱୟିକ, ଶବ୍ଦାର୍ଥ ।

ଆନ୍ୱୀକ୍ଷିକୀ—ସ୍ତ୍ରୀ. ବ. ( ଅନୁ + ଈକ୍ଷ୍ + ଇକ + ଈ) ଗୌତମପ୍ରଣୀତ ଆତ୍ମବିଦ୍ୟା, ଦଣ୍ଡନୀତି, ଅର୍ଥଶାସ୍ତ୍ରର ତର୍କବିଦ୍ୟା, ନ୍ୟାୟଶାସ୍ତ୍ର, ଦୁର୍ଗା ।

ଆନ୍ୱୀପ—କ୍ଲୀ. ବ. ଅନୁକୂଳ ।

ଆନ୍ୱୀପିକ—ବିଂ. ଅନୁକୂଳ ।

ଆପ୍—କ୍ଲୀ. ବ. (ଆପ୍ + ଅ) ଜଳରାଶି ।

ଆପ୍—ଗ୍ରା. ସର୍ବ. (ଫ-ଆତ୍ମନ୍) ଆପେ, ସ୍ୱୟଂ, ନିଜେ ( ଗ୍ରା.ବିଂ. ) ଆପଣାର,

ଆପ୍‌କାର୍ଯ୍ୟ—ଗ୍ରା. ବ. (ଫ-ଆତ୍ମକାର୍ଯ୍ୟ) ନିଜର କାର୍ଯ୍ୟ ବା ପ୍ରୟୋଜନ । ସ୍ୱାର୍ଥାନ୍ୱେଷୀ ।

ଆପଃ—କ୍ଲୀ. ବ. (ଆପ୍ + ଅସ୍) ଜଳ, ବ୍ୟାପ୍ତି, ପ ପ, ଜଳରାଶି ।

ଆପ୍‌ରୁଚି—ଗ୍ରା.ଅ. (ଫ-ଆତ୍ମରୁଚି ନିଜର ରୁଚି ଅନୁସାରେ ।

ଆପ୍‌ରୁପି—ପ୍ରା. (ସମ୍ପୃ ବିଂ. ଆତ୍ମମୁଖୀ, ସ୍ୱାର୍ଥପର ।

ଆପ୍ତସୁଖୀ—ଗ୍ରା. ବିଂ. ( ଯ ଆତ୍ମସୁଖୀ ) ସ୍ୱାର୍ଥପର, ଆତ୍ମମ୍ଭରି ।

ଆପ—ବି. ( ଆପ୍ + କ.ଅସ୍ ) ଅଷ୍ଟବସୁ ଅନ୍ତର୍ଗତ ଚତୁର୍ଥବସୁ, ଜଳରାଶି,ଆକାଶ, (ଗ୍ରା) ନିଜେ, ଆପଣା ।

ଆପକ—ବିଂ. (ଆପ୍ + ଅକ) ପ୍ରାପକ, ପ୍ରାପ୍ତିକର୍ତ୍ତା ।

ଆପକର—ବି.ଂ ଅପକାରଜାତ ।

ଆପକ୍ୱ—କ୍ଳୀ ବି. (ଆ + ପକ୍ୱ)ଅଲ୍ପପକ୍ୱ, ଅଳ୍ପ ପାକକରିବା ପଦାର୍ଥ (ବି) ପୁଳି-ପିଠା ।

ଆପକ୍ଷିତ—ପୁଂ. ବି. ଅପକ୍ଷିତର ସନ୍ତାନ (ସ୍ତ୍ରୀ) ଆପକ୍ଷିତ୍ୟା, ଅପକ୍ଷିତର କନ୍ୟା ।

ଆପଗା ସ୍ତ୍ରୀ. ବି. (ଆପ + ଗମ୍ + ଆ) ନଦୀ, ସରିତ୍, ତଟିନୀ ।

ଆପଗେୟ—ପୁଂ.ବି. ଗାଙ୍ଗେୟ, ଗଙ୍ଗାର ପୁତ୍ର, ଭୀଷ୍ମ ।

ଆପଚ୍ଛିକ—ବିଂ. ଆପତ୍ + ଛିଦ୍ + ଅ ଯେ ଆପତ୍ ଛେଦନ କରେ ।

ଆପଜାତ୍ୟ—କ୍ଳୀ. ବି. କୁଳୋଚିତ ଗୁଣା ବଳୀ ।

ଆପଟ ଗ୍ରା. ବି. ଆବରଣ, ଘୋଡ଼ଣୀ, ଯାନବାହକ ଜାତିବିଶେଷ, କଡ଼ପଟ, ଅନ୍ତରାଳ, ପରଦା, ଆଶ୍ରୟ ( ଗ୍ରା.ବିଂ. ) ନିରୁଦ୍ଧ, ଘୋଡ଼ାଇ ରଖାଯାଇଥିବା, ଆବୃତ, (ପ୍ରା ଗଞ୍ଜାମ, (ବି) ଦକ୍ଷିଣା-ଞ୍ଚଳ, ଓଡ଼ିଆନାମକ ଶୂଦ୍ରଜାତି, ( ଗଡ଼ ଜାତ) ପାଣି ଆପଟ । [ ଟବ ।

ଆପଟବ—କ୍ଳୀ. ବି. ପଟୁଶୂନ୍ୟତା, ଅପ

ଆପଣ—ପୁଂ. ବି. ( ଆ + ପଣ୍ + ଅ ) ଦୋକାନ, ବସ୍ତୁ ବିକ୍ରୟ ସ୍ଥାନ, ହାଟ, ବଜାର,(ଖ୍ରା) ଯୁଷ୍ମତ୍ ଶବ୍ଦର ସ୍ଥଳେ ଆପଣ, ପାଠଶାଳା ବା ଗୃହାଳୀର ଶିକ୍ଷକ, ଆତ୍ମୀୟବ୍ୟକ୍ତି (ଗ୍ରା.ସର୍ବ) ଦ୍ୱିତୀୟପୁରୁଷ ମାନ୍ୟାର୍ଥ ଏକବଚନ ରୂପେ ଶବ୍ଦଭିତ୍ତିରେ ବ୍ୟବହୃତ ପଦ, ସେ ମହାଶୟ ।

ଆପଣା—ଗ୍ରା.ବିଂ. ସ୍ୱୟଂ, ନିଜେ,ନିଜର, ଆପଣାର ।

ଆପଣିକ—ବିଂ. (ଆପଣ + ଇକ) ହାଟରୁ ଅଣା ହୋଇଥିବା, ହାଟକର, ବଣିକ, ଦୋକାନୀ, ଦୋକାନଦାର ।

ଆପଣେଆପଣେ—ଗ୍ରା.ବି.(ଅବ୍ୟ.) ସ୍ୱୟଂ ସ୍ୱୟଂ, ନିଜେ ନିଜେ, ଆପେ ଆପେ ।

ଆପତ୍—ସ୍ତ୍ରୀ. ବି. (ଆ + ପତ + ଭା. କ୍ୱିପ୍) ବିପଦ୍, ବିପତ୍ତି ସଙ୍କଟ, ଦୁର୍ଘଟନା ।

ଆପତନ—କ୍ଳୀ. ବି. (ଆ + ପତ୍ + ଭା. ଅନ) ଆଗମନ, ପ୍ରାପ୍ତି, ଜ୍ଞାନ, ଦୈବ-ବଶରୁ ପତନ, ବିପଦ, ସଂଘଟନ ।

ଆପତି—ପୁଂ. ବି. ( ଆ + ପତ୍ + ଇ ) ସଦାଗତି, ସତତଗାମୀ, ବାୟୁ ।

ଆପତିକ—ପୁଂ. ବି. ( ଆ + ପତ୍ + ଇକ) ଶ୍ୟେନ, ବାଜପକ୍ଷୀ, ଛଞ୍ଚାଣ, (ବିଂ) ଦୈବାୟତ୍ତ ଆକସ୍ମିକ ଦୈବୀ ।

ଆପତିତ—ବି.ବିଂ. (ଆ + ପତ୍ + କ.ତ ହଠାତ୍ ଆଗତ, ଦୈବାତ୍ ପତିତ, ଯାହା ଘଟିଅଛି, ଘଟିତ, ଅବରୂଢ଼, ପତିତ, ସ୍ତ୍ରୀ) ଆପତିତା ।

ଆପତ୍କାଲ୍ୟ—ପୁଂ. ବି. ଆପତ୍କାଳରେ ଯାହା କର୍ତ୍ତବ୍ୟ, ବିପଦକାଳରେ ଯାହା କରିବା ଉଚିତ ।

ଆପତ୍କାଳ—ପୁଂ.ବି. ( ୬ତତ୍ ) ବିପତ୍ତି କାଳ, ବିପଦ ସମୟ, ଅସମୟ, ଦୁଃସମୟ ।

ଆପତ୍କାଳିକା—ବିଂ. ଆପଦକାଳେ ଜାତ, ବିପଦକାଳେ ଜାତ ।

ଆପତ୍ତି—ସ୍ତ୍ରୀ. ବି. (ଆ + ପଦ୍ + ଭା.ତି) ବାଧାଦାନ, ଗୁହାରି, ଅସମ୍ମତି, ଆପଦ୍ ଜୀବନୋପାୟ, ଅପ୍ରାପ୍ତି, ପ୍ରାପ୍ତି, ତିର-ସ୍କାର, ପ୍ରାର୍ଥନା, ଅର୍ଥାଦିର ସିଦ୍ଧି, ଦୋଷ, ବିପକ୍ଷୀତ ଯୁକ୍ତି ।

ଆପତ୍ତିକର—ପୁଂ. ବିଂ. ଆପତ୍ତିର ଉତ୍ପା-ଦକ, ଆପତ୍ତିଯୋଗ୍ୟ ।

ଆପତ୍ୟ—ପୁଂ. ବି. ଅପତ୍ୟଠାରୁ ଜାତ, (ଅବ୍ୟ) ପୁତ୍ରଠାରୁ ଆରମ୍ଭ କରି ।

ଆପଥ—ଗ୍ରା.ବି. ମନ୍ଦପଥ,ଅବାଟ,ଅପଥ ।

ଆପଥ ପୁଂ. ବିଂ. ଆଗରେ ମାର୍ଗ ସମ୍ବ-ନ୍ଧୀୟ, (ସ୍ତ୍ରୀ) ଆପଥୀ ।

ଆପଦ୍—ସ୍ତ୍ରୀ. ବି. (ଆ + ପଦ + କ୍ୱିପ୍) ବିପତ୍ତି, ଦୁର୍ଘଟନା, ବିପଦ, ଦୁଃଖ, ମେଘ, ମୁଥା ।

ଆପଦ—(ଅବ୍ୟ) ଆପାଦ, ପାଦପର୍ଯ୍ୟନ୍ତ, (ଗ୍ରା.ବି) ଅପଦ ଦେଖ) ।

ଆପଦକାଳ ପୁଂ. ବିଂ. ବିପଦକାଳ, ବିପତ୍ତି ସମୟ,ବିପଦଦ୍ୱାରା ଯେ ଅସମୟ ଘଟିଅଛି ।

ଆପଦର୍ପ—ପ୍ରା. (କଟକ) ବି. ଆଶ୍ୱାସନା ଆଦର, ହେପାଜତ ।

ଆପଦା—ସ୍ତ୍ରୀ ବି. (ଆ + ପଦ + କ.ଅ + ଆ) ଆପଦ୍, ବିପତ୍ତି ।

ଆପଦେବ—ପୁଂ. ବି. ୬ତତ୍ ) ଜଳ ଦେବତା, ବରୁଣ ।

ଆପଦଗ୍ରସ୍ତ—ବି. ବିଂ. ( ତତ୍) ବିପଦ-ଗ୍ରସ୍ତ, ବିପନ୍ନ, (ସ୍ତ୍ରୀ ଆପଦଗ୍ରସ୍ତା ।

ଆପଦ୍ଧର୍ମ—ପୁଂ. ବିଂ. (ଆପଦ୍ + ଧର୍ମ ବିପଦସମୟରେ ବ୍ରାହ୍ମଣାଦିର ଜୀବିକାର୍ଥ ଅବଲମ୍ବିତ ଅନ୍ୟାୟଧର୍ମ, ସାଧାରଣ ସମୟରେ ଅକରଣୀୟ ହେଲେ ମଧ୍ୟ ଆପଦକାଳରେ କରାଯାଇପାରିବ ବୋଲି ଶାସ୍ତ୍ରରେ ଅନୁମତ କରାଯାଇ ଥିବା କାର୍ଯ୍ୟ ।

ଆପନ—କ୍ଳୀ.ବି. (ଆପ୍ + ଭା.ଅନ)ପ୍ରାପ୍ତି, ମରିଚ, ଗ୍ରା. ନିଜେ ।

ଆପନିକ—ବି. ବିଂ. (ଆପନ + ଇକ) ଇନ୍ଦ୍ରନୀଳମଣି, କିରାତ, ବ୍ୟାଧ ।

ଆପନେୟ—ବି. ବିଂ. (ଆ + ଅପ + ନୀ + ର୍ମ.ଯ) ସର୍ବଦା ଅପନେୟ, ଦୂରୀକାର୍ଯ୍ୟ, ବର୍ଜ୍ଜନୀୟ ।

ଆପନ୍ନ—ବି. ବିଂ. (ଆ + ପଦ୍ + କ.ତ) ଆପଦଗ୍ରସ୍ତ, ପ୍ରାପ୍ତ, ଲବ୍ଧ, ଆପତିତ, ସଂଘଟିତ, ଅଧିକୃତ, ପୁନଃପ୍ରାପ୍ତ ।

ଆପନ୍ନସତ୍ତ୍ୱା—ସ୍ତ୍ରୀ.ବିଂ. (ବ.ବ୍ରୀ) ଗର୍ଭିଣୀ ସ୍ତ୍ରୀ, ଯାହାର ଗର୍ଭେ ସନ୍ତାନ-ଜନ୍ତୁ ଥାଏ, ଅନ୍ତଃସତ୍ତ୍ୱା ।

ଆପମିତ୍ୟକ—ବିଂ.(ଅପ + ମେ + ତ + ଯ.କ) ବିନିମୟ, ବଦଳ ଦେଇ ଆଣିବା ପଦାର୍ଥ । [ନଦୀବିଶେଷ ।

ଆପଯା—ସ୍ତ୍ରୀ. ବି. (ଆପ + ଯା + ଅ.ଆ)

ଆପୟିତା—ବିଂ. ( ଅପ + ଇ + ତୃ ) ପ୍ରାପଣକର୍ତ୍ତା, ଯେ କୌଣସି ପଦାର୍ଥ ପାଇକରି ଦିଏ ।

ଆପରାଧଯ୍ୟ—କ୍ଲୀ. ବି. ଅପରାଧକର୍ତ୍ତୃତ୍ୱ ।

ଆପରାହ୍ଣିକ—ବି. ବିଂ. ( ଅପରାହ୍ଣ + ଇକ ) ଅପରାହ୍ଣେ ଜାତ, ଉପରଓଳି ବିହିତକାର୍ଯ୍ୟ, ବୈକାଳିକ, ଅପରାହ୍ଣରେ ଘଟିବା ।

ଆପର୍ତ୍ତିକ—ପୁଂ. ବି. ଋତୁବିଶେଷେ ଯାଗାଦି ନିମିତ୍ତ ଅଧ୍ୟାୟବୋଧକ ବେଦର କଳ୍ପ-ଗ୍ରନ୍ଥବିଶେଷ ।

ଆପବ—ପୁଂ. ବି. ବରୁଣଙ୍କର ଅପତ୍ୟ, ବଶିଷ୍ଠ ମୁନି, ନାରାୟଣ, ପରମପୁରୁଷ ।

ଆପସ୍,ଆପଃ—କ୍ଲୀ.ବି. ଜଳ, ଗୋପନ ।

ଆପସ୍ମାର—କ୍ଲୀ. ବି. ( ଅପସ୍ମାର + ଅ ) ଗାତ୍ରମଳ, ଦେହର ମଳ ।

ଆପସ୍ତମ୍ବ—ପୁଂ. ବି. ଋଷିବିଶେଷ, ଏ କଳ୍ପସୂତ୍ର ରଚନା କରିଅଛନ୍ତି ।

ଆପସ୍ତମ୍ଭ—ବି. (ଆପ + ସ୍ତମ୍ଭ) ବଡ଼ ବଡ଼ ଜଳାଶୟରୁ ସ୍ତମ୍ଭାକାରରେ ଆକାଶକୁ ଜଳ ଉଠିବାର ନୈସର୍ଗିକ ଘଟଣା ।

ଆପସ୍ତମ୍ବିନୀ—ସ୍ତ୍ରୀ. ବି. (ଆପସ୍ତମ୍ବ + ଇନ୍ + ଈ) ଲିଙ୍ଗିନୀ ଲତା ।

ଆପାକ—ପୁଂ. ବି. (ଆ + ପଚ + ଘ,ଅ) ସମ୍ୟକ୍ ପାକ, ଈଷତ୍ ପାକ, ପୁଟପାକ, କୁମ୍ଭାର ଉହା, କୁମ୍ଭାରପୁରାଣ, ଅବ୍ୟ) ପାକ ପର୍ଯ୍ୟନ୍ତ । [ କଜ୍ଜଳ ।

ଆପାଙ୍ଗ୍ୟ—କ୍ଲୀ.ବି.(ଅପାଙ୍ଗ + ଯ)ଅଞ୍ଜନ,

ଆପାଟଳ—ବି. ବିଂ.ଈଷତ୍ ପାଟଳ ବର୍ଣ୍ଣ, ଆଲୋହିତ, (ସ୍ତ୍ରୀ) ଆପାଟଳା ।

ଆପାଣ୍ଡୁର—ବି.ବିଂ. ଈଷତ୍ ପାଣ୍ଡୁବର୍ଣ୍ଣ, (ସ୍ତ୍ରୀ) ଆପାଣ୍ଡୁରା ।

ଆପାତ—ପୁଂ.ବି. (ଆ + ପତ୍ + ର୍ମ,ତ) ପତ, ପତନକାଳ, ବର୍ତ୍ତମାନକାଳ, ଉପକ୍ରମ,ପଥ,ତତ୍କାଳ, ପ୍ରଥମ ସମୟ, ସମୀପେ ଆଗମନ, ଘଟଣା, ଉପସ୍ଥିତ ।

ଆପାତକଂ—ବିଂ. ଆପାତତଃ, ଏତ୍ତକ୍ଷଣି, ବର୍ତ୍ତମାନ ।

ଆପାତକଠିନ—ବି. ବିଂ. (୭ତତ୍ର)ଯାହା ପ୍ରଥମେ କଠିନ, କିନ୍ତୁ ପରିଣାମରେ କଠିନ ନୁହେ ।

ଆପାତତଃ—ଅବ୍ୟ. ( ଆପାତ + ତସ୍ ) କାରଣବିନା, ଅକସ୍ମାତ୍, ବର୍ତ୍ତମାନ, ପ୍ରଥମତଃ, ନିତାନ୍ତପକ୍ଷରେ, ସମ୍ପ୍ରତି, ଅବଧାରଣ ନ କରି ।

ଆପାତମଧୁର—ବି. ବିଂ. (୭ତତ୍ର) ଯାହା ବର୍ତ୍ତମାନ ସୁଖପ୍ରଦ, କ୍ଷଣିକ ସୁଖକର ।

ଆପାତମନୋରମ—ବି. ବିଂ. (୭ତତ୍ର) ଆପାତତଃ ଚିତ୍ତାକର୍ଷକ ସତ୍ୟ; କିନ୍ତୁ ପରିଣାମରେ ନୁହେ, (ସ୍ତ୍ରୀ) ଆପାତ-ମନୋରମା ।

ଆପାତଲିକା—ସ୍ତ୍ରୀ. ବି. ବୈତାଳୀୟ-ବୃତ୍ତବିଶେଷ ।

ଆପାତି—ପୁଂ. ବିଂ. ( ଆ + ପତ୍ + କ. ଇନ୍ ) ସବର୍ତ୍ତୀ, ଆକ୍ରମଣକାରୀ ।

ଆପାତ୍ୟ—ବି.ବିଂ. (ଆ + ପତ + କ.ଯ) ଯେ ଆକ୍ରମଣ କରିବାକୁ ନିକଟେ ଆଗମନ କରେ, କର୍ତ୍ତବ୍ୟର ଆପତନ, ( ଅବ୍ୟ ) ସକଳ ପ୍ରକାରେ ପତନ କରାଇ ।

ଆପାଦ—ପୁଂ. ବି. (ଆ + ପଦ୍ + ଘ.ଅ) ଫଳଲାଭ, ଆଗତ, (ଅବ୍ୟ) ପାଦ-ପର୍ଯ୍ୟନ୍ତ, ପାଦଠାରୁ ଆରମ୍ଭ କରି ।

ଆପାଦନ—କ୍ଲୀ. ବି. (ଆ + ପଦ୍ + ଣିଚ୍ ଅନ) ଆପତ୍ତିବିଷୟୀକରଣ, ସମ୍ପାଦକ । ଜ୍ଞାନଦ୍ୱାରା ସମ୍ପାଦ୍ୟର ନିଷ୍ପତ୍ତି, ସମ୍ପାଦନ

ଆପାଦମସ୍ତକ—ବିଂ.(ଆ + ପଦ + ମସ୍ତକ) ପାଦଠାରୁ ମସ୍ତକଯାଏ ।

ଆପାଦିତ—ବିଂ. (ଆ + ପାଦ + ର୍ମ.ତ) ସମ୍ପାଦିତ, ଅନୁଷ୍ଠିତ, ନିଷ୍ପାଦିତ ।

ଆପାନ—କ୍ଲୀ. ବି. ( ଆ + ପା + ଅନ ) ଭୈରବୀ ଚକ୍ର, ସୁରାପାନ, ମିଳିତ ହୋଇ ସୁରାପାନ, ମଦ୍ୟପାନ ପାତ୍ର, ସୁରାପାନ ସ୍ଥାନ, ଆପାନକ, ମଦୁଆଙ୍କ ସଭା ।

ଆପାମର—ଅବ୍ୟ, (ଆ + ପାମର)ପାମର ପର୍ଯ୍ୟନ୍ତ, ସମସ୍ତେ, ସାଧାରଣ ।

ଆପାୟୀ—ପୁଂ.ବିଂ. (ଆ + ପା + ଇନ୍) ସୁରାପାନକର୍ତ୍ତା, ମଦ୍ୟପାୟୀ, ମଦ୍ୟପ, ମଦୁଆ, (ସ୍ତ୍ରୀ) ଆପାୟିନୀ ।

ଆପାଲ—ପୁଂ.ବି. (ଆ + ପଲ + କ.ଇ) କେଶକୀଟ, ଉକୁଣୀ ।

ଆପି—ପୁଂ. ବି. (ଆପ + ଇନ୍) ଧନାଦି-ପ୍ରାପକ, ପ୍ରାପ୍ତବନ୍ଧୁ, ବନ୍ଧୁତ୍ୱ, ହୃଦ୍ୟତା ।

ଆପିଙ୍ଗଳ—ବି. ବିଂ. ଈଷତ୍ ପିଙ୍ଗଳବର୍ଣ୍ଣ, ସମ୍ପୂର୍ଣ୍ଣ ପିଙ୍ଗଳ, (ସ୍ତ୍ରୀ) ଆପିଙ୍ଗଳା ।

ଆପିଞ୍ଜର—କ୍ଲୀ. ବି. (ଆ + ପିଞ୍ଜର)ସ୍ୱର୍ଣ୍ଣ, (ପୁଂ) ଅଳ୍ପ ହରିତାଳବର୍ଣ୍ଣ, (ବିଂ)ଅଳ୍ପ ହରିତାଳ ବର୍ଣ୍ଣଯୁକ୍ତ ।

ଆପିଲ୍—ଯା. ନିମ୍ନ ଅଦାଲତରେ ବିଚାର ହେଲେହେଁ ପୁନର୍ବିଚାରସକାଶେ ଉଚ୍ଚ ଅଦାଲତରେ ପ୍ରାର୍ଥନା ।

ଆପିଶଲି—ପୁଂ. ବି. ( ଅପିଶଲ + ଇ ) ଆଦିଶାବ୍ଦିକ ମୁନି ବିଶେଷ, ଏ ଜଣେ ପ୍ରାଚୀନ ବୈୟାକରଣ,(କ୍ଲୀ)ଆପିଶଲିଙ୍କ ପ୍ରଣୀତ ଶାସ୍ତ୍ର । [ବୃଦ୍ଧିଯୁକ୍ତ ।

ଆପୀ—ବିଂ.(ଆ + ପ୍ୟୈ + କ୍ୱିପ୍)ସ୍ଥୂଳ,

ଆପୀଡ଼—ପୁଂ. ବି. ( ଆ + ପୀଡ଼୍ + ଅ) ଶିରୋଭୂଷଣ, ଗୃହ ବାହାରେ ନିର୍ଗତ କାଷ୍ଠ, ଚପିବା, ଶିଖାସ୍ଥ ମାଲ୍ୟ, ପୀଡ଼ା-ଦାନ, (ବିଂ) ଯେ ପୀଡ଼ାଦିଏ ।

ଆପୀଡ଼ନ—କ୍ଲୀ.ବି. (ଆ + ପୀଡ଼୍ + ଘ. ଅନ) ଗାଢ଼ ଆଲିଙ୍ଗନ, ଦୃଢ଼ ବନ୍ଧନ, ସମ୍ୟକ୍ ବନ୍ଧନ, ଅତ୍ୟାଗ୍ରହ, ଚପିବା, ସଂପେଷଣ ।

ଆପୀଡ଼ା—ସ୍ତ୍ରୀ.ବି. (ଆ + ପୀଡ଼୍ + ଅ + ଆ) ସମ୍ୟକ୍ ପୀଡ଼ା ।

ଆପୀଡ଼ିତ—ବି. ବିଂ. (ଆ + ପୀଡ଼୍ + ର୍ମ. ତ) ନିଷ୍ପୀଡ଼ିତ. ନିଃସୃଷ୍ଟ, ଗାଢ଼ାଲିଙ୍ଗିତ, ବେଦନାପ୍ରାପ୍ତ, ଦୃଢ଼ବନ୍ଧନ, ଶୋଭିତ, ଭୂଷିତ, (ସ୍ତ୍ରୀ) ଆପୀଡ଼ିତା ।

ଆପୀତ—କ୍ଲୀ.ବି.(ଆ + ପା + ତ)ଈଷତ୍-ପୀତ, ମାକ୍ଷିକ ଧାତୁ,(ପୁଂ)ଅଳ୍ପ ପୀତ-

ବର୍ଣ୍ଣ, (ବିଂ) ଅଳ୍ପ ପୀତବର୍ଣ୍ଣଯୁକ୍ତ, ଯେ ଜଳ ବା ଦୁଗ୍ଧ ଅଳ୍ପ ପାନ କରାଯାଇଅଛି ।

ଆପୀନ—କ୍ଳୀ. ବି. (ଆ + ପୀନ) ଓଧ, ପହ୍ଲା, ଗୋ ମହିଷାଦିର ସ୍ତନମଣ୍ଡଳ, (ପୁଂ)କୂପ,(ବିଂ) ଈଷତ୍ ସ୍ଥୂଳ,ବେଣ୍ଟ ।

ଆପୁ—ଗ୍ରା. ବିଂ. ଅଫିମ ।

ଆପୁଆ—ଗ୍ରା. ବି. ଅଫିମଖୋର ।

ଆପୁଚ—(ପ୍ରା-ଗଞ୍ଜାମ) ବି. ତେନ୍ତୁଳମଞ୍ଜି ।

ଆପୁମଞ୍ଜି—ପ୍ରା.(ଗଞ୍ଜାମ)ବି. ପୋସ୍ତଦାନା ।

ଆପୁସି—ଗ୍ରା. କ୍ରି. ବିଂ. ଅନ୍ୟୋନ୍ୟରେ ରଫା କରିବା ପ୍ରକାରେ, ଆପୋସି ଘରୋଇ ଭାବରେ । [ପିଷ୍ଟକ ।

ଆପୂପ—ପୁଂ. ବି. (ଅପୂପ + ଅ) ପିଠା,

ଆପୂପିକ—ପୁଂ.ବିଂ.(ଅପୂପ + ଇକ) ଯେ ପୁଳି ରୁଟି ପ୍ରଭୃତି ପିଠା ପାକ କରେ, ଆପୂପଭକ୍ତ, ଅପୂପ ବିକ୍ରେତା, ଅପୂପଭକ୍ଷଣଶୀଳ, (କ୍ଳୀ) ଅପୂପସମୂହ ।

ଆପୂପ୍ୟ—ପୁଂ.ବି. (ଅପୂପ + ଯ)ଚାଉଳ, ଯବ ଗହମପ୍ରଭୃତି ଚୂର୍ଣ୍ଣ ଦ୍ୱାରା ଯେ ପିଠା ପ୍ରସ୍ତୁତ କରାଯାଏ, ପିଠା ତିଆରି ହେବା ଉପକରଣ, (ପିଷ୍ଟକ) ।

ଆପୂର—ପୁଂ.ବି.(ଆ + ପୂର + ଅ)ଜଳାଦିର ପ୍ରବାହ,ଅଳ୍ପ ପୂରଣ,ଅଭିବ୍ୟାପ୍ତି ।

ଆପୂରିତ—ବିଂ. (ଆ + ପୂର + ତ)ଅଭିବ୍ୟାପ୍ତ, ଯାହାର ପୂରଣ ହୋଇଅଛି ।

ଆପୂର୍ତ୍ତି—ସ୍ତ୍ରୀ ବି (ଆ + ପୂର + ତି)ସମ୍ୟକ୍ ପୂରଣ, ଈଷତ୍ ପୂରଣ, ପୂର୍ଣ୍ଣସନ୍ତୋଷ, ସର୍ବତୋଭାବେ ପୂରଣ, ତୃପ୍ତି ।

ଆପୂର୍ଯ୍ୟମାଣ—ବିଂ.(ଆ + ପୂର + ଅ.ଶାନଚ୍) ସମ୍ୟକ୍‌ବ୍ୟାପ୍ତ,ସମ୍ୟକ୍ ପୂରଣ,ଶୁକ୍ଳପକ୍ଷ ।

ଆପୃଷ—କ୍ଳୀ ବି.(ଆ + ପୃଷ୍ + ଅ) ରଙ୍ଗ, ସମ୍ୟକ୍‌ପୃଷ୍ଟ, (ଅବ୍ୟ) ସୂର୍ଯ୍ୟପର୍ଯ୍ୟନ୍ତ ।

ଆପୃଚ୍—ବିଂ.(ଆ + ପୃଚ୍ + କ୍ୱିପ୍) ସଂସର୍ଗ ଯୁକ୍ତ ।

ଆପୃଚ୍ଛା—ସ୍ତ୍ରୀ ବି. (ଆ + ପୃଚ୍ଛ୍ + ଅ + ଆ) ପ୍ରଶ୍ନ, ଆଳାପ, ଆଭାଷଣ, ଆନନ୍ଦ ଜିଜ୍ଞାସା ।

ଆପୃଚ୍ଛ୍ୟ—ବିଂ.ଜିଜ୍ଞାସ୍ୟ, (ଅବ୍ୟ ପଚାରି, ଜିଜ୍ଞାସା କରି ।

ଆପେ—ଗ୍ରା.ସର୍ବ.(ସଂ ଆତ୍ମନ୍)ସ୍ୱୟଂ,ନିଜେ

ଆପେ ଆପେ—ଗ୍ରା.(ସର୍ବ)ନିଜେ ନିଜେ, (କ୍ରି. ବିଂ.) ନିଜେ ନିଜେ, ମନକୁ, ସ୍ୱେଚ୍ଛାକ୍ରମେ, ଅନାହୂତଭାବେ ।

ଆପେକ୍ଷିକ—କ୍ରି. ବିଂ. ଅପେକ୍ଷାକୃତ, ତୁଳନାଦ୍ୱାରା ପ୍ରାପ୍ତ, ଅନ୍ୟ ସଙ୍ଗେ ତୁଳନାଦ୍ୱାରା ଯାହା ନିର୍ଦ୍ଧାରିତ ହୁଏ, (ସ୍ତ୍ରୀ) ଆପେକ୍ଷିକୀ ।

ଆପେକ୍ଷିକଗୁରୁତ୍ୱ—କ୍ଳୀ.ବି.ସମଆୟତନବିଶିଷ୍ଟ ଭିନ୍ନ ଭିନ୍ନ ପଦାର୍ଥର ଗୁରୁତ୍ୱର ଯେଉଁ ସମ୍ବନ୍ଧ ।

ଆପେକ୍ଷିକତା—ସ୍ତ୍ରୀ. ବି. (ଆପେକ୍ଷିକ + ଭା, ତା) ଏକ ବସ୍ତୁ ସଙ୍ଗେ ଅନ୍ୟ ବସ୍ତୁ ତୁଳନା କରିବା ଅବସ୍ଥା ।

ଆପୋକ୍ଳିମ—କ୍ଳୀ. ବି. ଜ୍ୟୋତିଷମତେ ଲଗ୍ନଠାରୁ ତୃତୀୟ, ଷଷ୍ଠ, ନବମ ଏବଂ ଦ୍ୱାଦଶ ସ୍ଥାନ ।

ଆପୋଦେବତା—ବି. (ଆପଃ + ଦେବତା) ଜଳଦେବତା, ବରୁଣ ।

ଆପୋମୟ—ବିଂ. (ଆପଃ + ମୟଟ୍) ଜଳବିକାର, ଜଳପ୍ରଚୁର ।

ଆପୋମାର୍ଜ୍ଜନ—କ୍ଳୀ.ବି. (ଆପଃ + ମାର୍ଜ୍ଜନ) ଦେହରେ ପାଣି ସିଞ୍ଚି ହେବା ।

ଅପୋମୂର୍ତ୍ତି—ପୁଂ. ବି. ସବେ୍ରଚିଷମୁନିଙ୍କ ପୁତ୍ର ।

ଆପୋଽଶାନ—କ୍ଳୀ. ଜଳଦ୍ୱାରା ଉପରେ ଏବଂ ତଳେ ଆସ୍ତରଣରୂପ ଆଚ୍ଛାଦନକର୍ମ ।

ଆପୋସ୍—(ଯା)ବି.ବିବାଦର ପକ୍ଷମାନଙ୍କ ମଧ୍ୟରେ ପରସ୍ପର ମିଳାମିଶା, ପଞ୍ଚାଏତ ଭଦ୍ରଲୋକଙ୍କଦ୍ୱାରା ବିବାଦ ମେଣ୍ଟନ, (କ୍ରି.ବିଂ.) ପରସ୍ପର ମିଳାମିଶା ହୋଇ, ଅଦାଲତଙ୍କ ବିନା ସାହାଯ୍ୟରେ ।

ଆପୋସ—ଗ୍ରା. (ଗଡ଼ଜାତ) ବି. ଆପଣାର ଆତ୍ମୀୟ ଲୋକ ।

ଆପ୍ତ—ପୁଂ.ବି. ସ୍ୱନାମଖ୍ୟାତ ନାଗରାଜ, ଭ୍ରମ-ପ୍ରମାଦରହିତ, ଜ୍ଞାନଯୁକ୍ତ ମୁନି, ପୂର୍ବପୁରୁଷ ଓ ମହାଜନମାନେ ।

ସ୍ୱକର୍ମଣ୍ୟଭିଯୁକ୍ତୋ ଯୋ
ରାଗଦ୍ୱେଷ-ବିବର୍ଜିତଃ
ଜ୍ଞାନବାନ୍ ଶୀଳସମ୍ପନ୍ନ,
ଆପ୍ତୋଜ୍ଞେୟଃ ସ ଏବ ହି (ଭାଗଫଳ)

ଆପ୍ତକାମ—କ୍ରି. ବିଂ. (ବ.ବ୍ରୀ) (ଆପ୍ତ + କାମ) ପରମାତ୍ମା, ଯେ ବ୍ରହ୍ମ ଓ ଆତ୍ମାକୁ ଏକ ବୋଲି ଜାଣେ, ଉଦାସୀନ, ଯେ ନିଜର ଅଭିଳଷିତ ପଦାର୍ଥ ପାଇଥାଏ, ପୂର୍ଣ୍ଣ ମନୋରଥ ।

ଆପ୍ତକାରି—ପୁଂ.ବିଂ. (ଆପ୍ତ + କୃ + କ, ଇନ୍) ଯୁକ୍ତକାରକ, ବିଶ୍ୱସ୍ତଭୃତ୍ୟ, ଆପ୍ତ ଓ ଆଦେଶପାଳକ, (ସ୍ତ୍ରୀ) ଆପ୍ତକାରିଣୀ ।

ଆପ୍ତଗର୍ଭା—ସ୍ତ୍ରୀ. ବି. ଗର୍ଭିଣୀ ସ୍ତ୍ରୀ, ଯେ ସ୍ତ୍ରୀର ଗର୍ଭ ହୋଇଛି ।

ଆପ୍ତତା—ସ୍ତ୍ରୀ.ବି. ଆତ୍ମୀୟତା, ବନ୍ଧୁତ୍ୱ ।

ଆପ୍ତବଚନ—କ୍ଳୀ. ବି. (କ.ଧା) ବିଶ୍ୱସ୍ତ ବାକ୍ୟ, ଦୈବବାଣୀ, ମୁନିବାକ୍ୟ, ବେଦପୁରାଣାଦି ସଜ୍ଜନ ବା ବନ୍ଧୁର ଉପଦେଶ, ପ୍ରବଚନ ।

ଆପ୍ତବାକ୍—ସ୍ତ୍ରୀ. ବି. ( କ.ଧା ) ବେଦ, ବେଦମୂଳକ ସ୍ମୃତି ଇତିହାସ ପୁରାଣ ।

ଆପ୍ତବାକ୍ୟ—କ୍ଳୀ. ବି. (ଆପ୍ତ + ବାକ୍ୟ) ଭ୍ରମରହିତ ବିଶ୍ୱସ୍ତ କଥା, ପ୍ରମାଣ, ସିଦ୍ଧାନ୍ତ ବାକ୍ୟ ।

ଆପ୍ତବ୍ୟ—ବିଂ. ( ଆପ୍ + ର୍ମ, ତବ୍ୟ ) ପ୍ରାପ୍ୟ, ଅଧିଗମ୍ୟ ।

ଆପ୍ତଶ୍ରୁତି—ସ୍ତ୍ରୀ. ବି. ( କ.ଧା ) ବେଦ, ସ୍ମୃତିପୁରାଣାଦି, ବିଶ୍ୱସ୍ତ କିମ୍ବଦନ୍ତୀ ।

ଆପ୍ତସାର—ଗ୍ରା. ବି. ଅମଙ୍ଗଳ ନିବାରଣାର୍ଥ କାର୍ଯ୍ୟବିଶେଷ, ସ୍ତ୍ରୀସ୍ୱ ଏକମାତ୍ର ଧନ ।

ଆପ୍ତା—ସ୍ତ୍ରୀ.ବି. (ଆପ୍ + ତ + ଆ)ଜଟା, (ବିଂ) ବିଶ୍ୱସ୍ତା, ପ୍ରାପ୍ତା ।

ଅପ୍ତି—ସ୍ତ୍ରୀ. ବି. (ଆପ୍ + ଭା, ତି) ପ୍ରାପ୍ତି, ସଂଯୋଗ, ସ୍ତ୍ରୀ-ସଂଯୋଗ, ସମ୍ପଦ, ହିତ, ସମ୍ବନ୍ଧ, ଲାଭ, ସମାପ୍ତି, ଉତ୍ତରକାଳ, ଉପଯୋଗିତା ।

ଆପ୍ତୋର୍ଯାମ—କ୍ଲୀ. ବ. ଯାଗବିଶେଷ ।

ଆପ୍ତ୍ୟ—ବିଂ. ପାଇବାର ଯୋଗ୍ୟ, ପ୍ରାପ୍ତବ୍ୟ ।

ଆପ୍ନବାନ୍—ପୁଂ. ବ. (ଅପ୍ନବାନ୍ + ଅ) ଅପ୍ନବାନ୍ ଅର୍ଥ, ବତ୍ସଗୋତ୍ର ପ୍ରବର ଋଷିବିଶେଷ ।

ଆପ୍ୟ—ବିଂ. (ଆପ୍ + ର୍ମ,ଯ) ଆପ୍ତବ୍ୟ, ଲଭ୍ୟ, (ସ୍ତ୍ରୀ) ଆପ୍ୟା, (ଆପ୍ + ଯ) ଜଳମୟ, ଜଳଜ, ଜଳୀୟ, (ସ୍ତ୍ରୀ) ଆପ୍ୟ, (କ୍ଲୀ.ବ) (ଆପ୍ + କ,ଯ) କର୍ମର ଶେଷଭୂତ ମନ୍ତ୍ରାଦି, ଗୃଷ୍ମସମନ୍ତ୍ରସମ୍ବନ୍ଧୀୟ ଦେବବିଶେଷ ।

ଆପ୍ୟାନ—କ୍ଲୀ. ବ. (ଆ + ପ୍ୟାୟ + ତ) ପ୍ରୀତି, ବୃଦ୍ଧି, (ବିଂ) ପ୍ରୀତ, ବୃଦ୍ଧ, ବଳିଷ୍ଠ, ମୋଟା, ଫୁଲିଥିବା ।

ଆପ୍ୟାୟିତ—ବିଂ. (ଆ + ପ୍ୟାୟ + କ,ତ) ଆନନ୍ଦିତ; ବର୍ଦ୍ଧିତ, ପୂରିତ, ତୃପ୍ତି-ପ୍ରାପିତ, ପ୍ରୀଣିତ, ସ୍ଫୀତ, ସନ୍ତୁଷ୍ଟ, ପୁଷ୍ଟ ।

ଆପ୍ର—ବିଂ. (ଆ + ପୃ + ଅ) ପୂରକ, ଯେ ପୂରଣ କରେ ।

ଆପ୍ରଚ୍ଛନ୍ନ—ବିଂ. (ଆ + ପ୍ର + ଛଦ୍ + ତ) ସମ୍ୟକ୍ ଲୁକ୍କାୟିତ, ଈଷତ୍‌ଗୁପ୍ତ ।

ଆପ୍ରଚ୍ଛନ—କ୍ଲୀ.ବ. (ଆ + ପ୍ରଚ୍ଛ୍ + ଅନ) ଆନନ୍ଦସମ୍ପାଦନ, ଗମନାଗମନ ସମୟରେ ବନ୍ଧୁମାନଙ୍କର କୁଶଳ ପ୍ରଶ୍ନ, ବନ୍ଧୁ-ମାନଙ୍କର ମଧ୍ୟରେ ଭେଟ ବା ବିଦାୟକାଳୀନ ଆଲିଙ୍ଗନ ଜିଜ୍ଞାସା ।

ଆପ୍ରପଦ—(ଅବ୍ୟ.) ପାଦାଗ୍ର ପର୍ଯ୍ୟନ୍ତ, ପାଦର ଅଙ୍ଗୁଳିପର୍ଯ୍ୟନ୍ତ ।

ଆପ୍ରପଦୀନ—ବିଂ. (ଆ + ପ୍ରପଦ + ଈନ) ମସ୍ତକଠାରୁ ପାଦାଗ୍ର ପର୍ଯ୍ୟନ୍ତ ଲମ୍ବମାନ ବସ୍ତ୍ରାଦି, ମାଳାଦି, ବନମାଳା ।

ଆପ୍ରବଣ—ବିଂ. ଈଷତ୍‌ନମ୍ର, ଅଳ୍ପନମ୍ର, କ୍ଲୀ. (ଆ + ପ୍ରୁ + ଅନ) ଅଳ୍ପକ୍ଷରଣ, ଈଷତ୍ ଦ୍ରବଣ ।

ଆପ୍ରୀ—ସ୍ତ୍ରୀ.ବ. (ଆ + ପ୍ରୀ + ଡ଼) ପ୍ରଯାଜ୍ୟ ଦ୍ୱାରା ଯଜନୀୟ ।

ଆପ୍ରୀତ—ବିଂ. (ଆ + ପ୍ରୀ + ତ) ସମ୍ୟକ୍ ପ୍ରୀତ, ଈଷତ୍ ତୃପ୍ତ ।

ଆପ୍ରୀତପ—ପୁଂ.ବ. ବିଷ୍ଣୁ, ନାରାୟଣ ।

ଆପ୍ଲବ—ପୁଂ. ବ. (ଆ + ପ୍ଲୁ + ଭା,ଅ) ସ୍ନାନ, ଦେଶ ଭାସିଯିବା, ଜଳପ୍ଲାବନ, ପହଁରିବା, ଜଳବୃଦ୍ଧି, ଆସେଚନ, (କ୍ଲୀ) ଆପ୍ଲବନ ।

ଆପ୍ଲବନ—କ୍ଲୀ. ବ. (ଆ + ପ୍ଲୁ + ଭା,ଅନ) ପାଣିରେ ପହଁରିବା, ସ୍ନାନ, ବୁଡ଼ିବା ।

ଆପ୍ଲବବ୍ରତୀ—ପୁଂ.ବ. ସ୍ନାତକ ଗୃହସ୍ଥ-ବିଶେଷ, ଯେ ବେଦାଦି ଅଧ୍ୟୟନ କରି ଦାରପରିଗ୍ରହ ନିମନ୍ତେ ସମାବର୍ତ୍ତନ ସ୍ନାନ କରି ସ୍ମୃତିଶାସ୍ତ୍ରୋକ୍ତ ବ୍ରତାଚରଣ କରେ ।

ଆପ୍ଲାବ—ପୁଂ. ବ. (ଆ + ପ୍ଲୁ + ଅ) ଆପ୍ଲବ, ଜଳପ୍ଲାବନ ।

ଆପ୍ଲାବିତ—ବିଂ. (ଆ + ପ୍ଲୁ + ଣିଚ୍ + ତ) ପାଣି ମାଡ଼ି ଯାଇଥିବା, ଜଳାଦିପ୍ରବାହ-ଦ୍ୱାରା ଅଭିବ୍ୟାପ୍ତ, ଯେ ଦେଶ ଜଳ-ପ୍ଲାବିତ ହୋଇଅଛି ।

ଆପ୍ଲାବ୍ୟ—ବିଂ.(ଆ + ପ୍ଲୁ + ଯ)ଯେ ଜଳ ପ୍ଲାବନ କରେ, ଜଳାଦିଦ୍ୱାରା ପ୍ଲାବିତବ୍ୟ ସ୍ଥାନ, (କ୍ଲୀ) ଆପ୍ଲାବନ ।

ଆପ୍ଲୁତ—ବିଂ. (ଆ + ପ୍ଲୁ + କ, ତ) ପାଣି ମାଡ଼ିଯାଇଥିବା, ଅଭିଷିକ୍ତ, ନିମଜ୍ଜିତ, ଅଭିଭୂତ, ସ୍ନାତ, ଯେ ସ୍ନାନ କରିଅଛି, ଆର୍ଦ୍ରୀଭୂତ, ଉପ୍ଲୁତ, (କ୍ଲୀ) ସ୍ନାନ, ମଗ୍ନ, (ପୁଂ) ସ୍ନାତକ ଗୃହସ୍ଥ-ବିଶେଷ ।

ଆପ୍ଲୁତ୍ୟ—ଅବ୍ୟ. (ଆ + ପ୍ଲୁ + ଯ) ସ୍ନାନକରି, ଉଲ୍ଲମ୍ଫନ କରି, ସ୍ନାନ ସାରି, ଡେଇଁ ।

ଆପ୍ଲୁଷ୍ଟ—ବିଂ. (ଆ + ପ୍ଲୁଷ୍ + ର୍ମ,ତ) ଅଳ୍ପଦଗ୍ଧ, ଈଷତ୍‌ଦଗ୍ଧ, ଅଳ୍ପ-ପୋଡ଼ିଯାଇଥିବା ।

ଆପ୍ୱ—ପୁଂ.ବିଂ. ବାୟୁ ।

ଅପ୍ସରସ—ବିଂ. (ଅପ୍ସରସ୍ + ଅ) ଅପ୍ସରାସମ୍ବନ୍ଧୀ, ଅପ୍ସରୋଜାତ ।

ଆଫଗାନ—ଯା. ଆଫଗାନିସ୍ଥାନ ଓ ତନ୍ନିକଟ ଦେଶବାସୀ ମୁସଲମାନ-ବିଶେଷ, ପଠାଣ ।

ଆଫଗାନିସ୍ଥାନ—ଆସିଆର ଅନ୍ତର୍ଗତ ଗୋଟିଏ ଦେଶ ।

ଆଫଲୋଦୟ—ଅବ୍ୟ. (ଆ + ଫଲୋ-ଦୟ) ଫଳଲାଭ ପର୍ଯ୍ୟନ୍ତ, ସଫଳ ହେବାଯାକେ ।

ଆଫଲୋଦୟକର୍ମା—ପୁଂ. ସ୍ତ୍ରୀ. ବିଂ. (ବ.ବ୍ରୀ) ଫଲୋଦୟ ପର୍ଯ୍ୟନ୍ତ ଯେ କର୍ମ କରେ, ଅଧ୍ୟବସାୟଶୀଳ ।

ଆଫା—ଗ୍ରା. ଜନଗ୍ରୂତି, ମାଛଧରିବାର ଜାଲବିଶେଷ ।

ଆଫାପଚ୍ଛି—ସମ୍ପ୍ରଦାୟବିଶେଷ ।

ଆଫିଙ୍—ଅଫିମ, ଅହିଫେନ ।

ଆଫିସ୍—ଯା. ଯେ ସ୍ଥାନରେ ଲୋକ-ମାନେ ହିସାବ-ପତ୍ରସମ୍ବନ୍ଧୀୟ କାର୍ଯ୍ୟ କରନ୍ତି, ଦପ୍ତରଖାନା, ଅଫିସ୍ ।

ଆଫୁକ—କ୍ଲୀ. ବ. ଆପୁ, ଅହିଫେନ ।

ଆଫ୍ରିକା—ସ୍ତ୍ରୀ. ବ. ପୃଥିବୀର ମହାଦ୍ୱୀପ ମଧ୍ୟରୁ ଗୋଟିଏ ମହାଦ୍ୱୀପ ।

ଆଫ୍ରିଦି—ଖାଇବର ଗିରିସଙ୍କଟ ମଧ୍ୟରେ ଏକ ପ୍ରକାର ଅସଭ୍ୟଜାତି ।

ଆଫଫାକରିବା—ଗ୍ରା. କ୍ରି. ଆଖିରେ ଗୁଣ୍ଡ ଆଦି ପଡ଼ିଲେ କନା ବା ଲୁଗାକୁ ପୁଡ଼ା କରି ମୁହଁ ମେଲାଇ ଯେ କନାଖଣ୍ଡ ଉପରେ ପାଟିରେ ପବନ ଦେଇ ତାକୁ ଆଣି ଆଖିରେ ମାଡ଼ିବା ।

ଆବଡ଼ାଖାବଡ଼ା—ଗ୍ରା.ବ.ବନ୍ଧୁର,ଅସମାନ

ଆବଡ଼ତାବଡ଼—ଗ୍ରା. ନିରର୍ଥକ ବାକ୍ୟ, ଆବଡ଼ଆବଡ଼, ଯେ କଥାରେ କୌଣସି ଅର୍ଥ ନ ଥାଏ ।

ଆବ୍‌ଦାର—ଯା. ବି. ବାଳକମାନଙ୍କର ବାହାନା, ଆଖୁଟୀ, ଜଗର, ଜିଦି, ଅଳି, ଉପର୍ଯ୍ୟୁପରି ପ୍ରାର୍ଥନା ।

ଆବରିଆବରି—ଗ୍ରା.ବ.ପରସ୍ପର ପରସ୍ପରକୁ ଅବଲମ୍ବନ କରିବା, ଅନ୍ୟାନ୍ୟ ସମ୍ବନ୍ଧ, ପରସ୍ପର ସଙ୍ଗେ ମିଳନ,(ବିଂ) ପରସ୍ପରକୁ ଅବଲମ୍ବନ କରୁଥିବା, ପରସ୍ପର ସଙ୍ଗେ ମିଳିତ, ଅନ୍ୟୋନ୍ୟସମ୍ବନ୍ଧ ।

ଆବ୍ରଜାବରି—ଗ୍ରା.ବିଂ. ଗୋଲମାଲିଆ, ଅପରିଷ୍କୃତ, ଅବିନ୍ୟସ୍ତ, ମଇଳା ।

ଆବଦ୍ଧ—କ୍ଲୀ. ବିଂ. ( ଆ + ବନ୍ଧ୍ + ତ ) ଦୃଢ଼ବନ୍ଧନ, ପ୍ରେମ, ସ୍ନେହ, ବିଂ. (ଆ + ବନ୍ଧ + ର୍ମି.ତ) ବିରଚିତ, ବଦ୍ଧ, ପ୍ରଥିତ, ପ୍ରତିବନ୍ଧକ, ଭୂଷଣ, ବ୍ୟାପୃତ, ସଂଲଗ୍ନ, କଳ୍ପିତ, ବିଜଡ଼ିତ ।

ଆବନେୟ—ପୁଂ. ବି. (ଅବନି + ଏୟ) ଅବନୀତନୟ, ଭୌମ, ମଙ୍ଗଳ ଗ୍ରହ ।

ଆବନ୍ତ୍ୟ—ବିଂ. (ଅବନ୍ତି + ଯ) ଅବନ୍ତି-ଦେଶସ୍ଥ, ( ପୁଂ. ବି. ) ଅବନ୍ତିରାଜ, ବ୍ରାତ୍ୟ ବ୍ରାହ୍ମଣର ଔରସରେ ବ୍ରାହ୍ମଣୀର ଗର୍ଭଜାତ ସନ୍ତାନ ।

ଆବନ୍ଧ—ପୁଂ.ବି. (ଆ + ବନ୍ଧ + ଅ) ଦୃଢ଼-ବନ୍ଧନ, ଯୋକ୍ତ୍ର, ଯୁତ, ଦଉଡ଼ି, ପ୍ରେମ, ଭୂଷଣ, (କ୍ଲୀ) ଆବନ୍ଧନ ।

ଆବପ ବି. (ଆ + ବପ୍ + ଅ) ଧାନ୍ୟସ୍ଥାପନ ପାତ୍ର, ଭାଣ୍ଡ, ପାତ୍ର, କ୍ଷୌରକର୍ମ, କେଶାଦି ମୁଣ୍ଡନ, ବୀଜରୋପଣ, ବୁଣା ।

ଆବର—(ଅବର ଶବ୍ଦର ଅ.ଭ୍ରଂ) ଅସଭ୍ୟ ନିର୍ବୋଧ, ଆବର ପର୍ବତ, ଆବର ଜାତି-ବିଶେଷ, (ଦେ.ପଦ୍ୟ) ପୁଣି, ଏବଂ, ଆଉ, ଆଉର (ଗ୍ରା.ସର୍ବ) ଅପର, ଅନ୍ୟ ।

ଆବରକ—ବିଂ. ( ଆ + ବୃ + କ.ଅକ ) ଆବରଣକାରୀ, ଆଚ୍ଛାଦକ, ଢାଙ୍କୁଣୀ ।

ଆବର୍ଣ୍ଣ—ଉତ୍ପାଟନ ଯୁକ୍ତ, ଯାହା ଉପାଡ଼ି ପକାହୋଇଥାଏ ।

ଆବାଦ—(ଯା.) କୃଷି ।

ଆବାଧ—ପୁଂ. ବି. ( ଆ + ବାଧ୍ + ଅ ) ପ୍ରତିବନ୍ଧ, ପୀଡ଼ା, ପୀଡ଼ାକର କର୍ମ, କ୍ଲେଶ, (ବ.ବ୍ରୀ) ବିଂ. ପୀଡ଼ାଶୂନ୍ୟ ।

ଆବାଧା-ସ୍ତ୍ରୀ.ବି. (ଆ + ବାଧ୍ + ଅ + ଆ) ପୀଡ଼ା, ଆଧିଭୌତିକ, ଆଧ୍ୟାତ୍ମିକ, ଆଧି-ଦୈବିକ ଏହି ତ୍ରିବିଧ ତାପ ।

ଆବି—ପୁଂ. ବି. ଅନ୍ଧକଦୈତ୍ୟର ପୁତ୍ର, ଦୈତ୍ୟବିଶେଷ ।

ଆବିୟାର—ଏ ଦାକ୍ଷିଣାତ୍ୟ ପ୍ରଦେଶରେ ଜଣେ ବିଦ୍ୟାବତୀ ମହିଳା ଥିଲେ ।

ଆବିଲ—ବିଂ. (ଆ + ବିଲ୍ + ଅ) ଅସ୍ୱଚ୍ଛ ଗୋଳିଆ, କଳୁଷିତ, କଳୁଷ, ଭେଦକ ।

ଆବିଲକନ୍ଦ—ପୁଂ.ବି. ମାଲାକନ୍ଦ ଲତା-ବିଶେଷ ।

ଆବୁ—ରାଜପୁତନାନ୍ତର୍ଗତ ପର୍ବତବିଶେଷ (ଅର୍ବୁଦର ଅପଭ୍ରଂଶ) ।

ଆବୁଲଫଜଲ—ସମ୍ରାଟ୍ ଆକବରଙ୍କର ପ୍ରଧାନ ମନ୍ତ୍ରୀ ।

ଆବୁଲଫୈଜୀ—ଏ ସମ୍ରାଟ୍ ଆକବରଙ୍କ ସମୟରେ ଜଣେ ପ୍ରଧାନ କବି ।

ଆବ୍ଦ—ବିଂ. ମେଘଜାତ, ଯାହା ମେଘରେ ଜାତ ହୁଏ, ମେଘସମ୍ବନ୍ଧୀୟ ।

ଆଭ୍ର—ଗ୍ରା. ବି. ଅଭ୍ର, ମେଘନାଳ ।

ଆଭଗ—ପୁଂ. ବି. ( ବ.ବ୍ରୀ ) ଅତିଶୟ ମାହାତ୍ମ୍ୟଯୁକ୍ତ ଦେବତା, ମାହାତ୍ମ୍ୟଯୁକ୍ତ

ଆଭଣ୍ଡନ—କ୍ଲୀ.ବି. (ଆ + ଭଣ୍ଡ୍ + ଅନ) ନିରୂପଣ ।

ଆଭୟଜାତ - ପୁଂ.ସ୍ତ୍ରୀ. ବି. ଅଭୟଜାତର ପୁତ୍ର ବା କନ୍ୟାରୂପ ଅପତ୍ୟ ।

ଆଭରଣ—କ୍ଲୀ.ବି. (ଆ + ଭୃ + ଣ,ଅନ) ଭୂଷଣ, ଅଳଙ୍କାର, ସମ୍ୟକ୍‌ପୋଷଣ ।

ଆଭରିତ—ବିଂ. ( ଆ + ଭୃ + ଇତ ) ପୂରିତ, ଅଳଂକୃତ, ଭୂଷିତ ।

ଆଭର୍ମ—କ୍ଲୀ. ବି. ( ଆ + ଭୃ + ମନ୍ ) ଗର୍ଭାଦିର ସମ୍ୟକ୍ ଭରଣ, ପୋଷଣ ।

ଆଭା- ସ୍ତ୍ରୀ.ବି. (ଆ + ଭା + ଅ + ଆ) ଛାୟା, ପ୍ରଭା, ଦୀପ୍ତି, ଶୋଭା, କାନ୍ତି, ଉପମାନ, ବାତରୋଗବିଶେଷ ।

ଆଭାଣକ—ବି. (ଆ + ଭଣ୍ + କ.ଅକ) ପ୍ରବାଦ, ପ୍ରବଚନ । [ ଛାୟା ।

ଆଭାତ—ସ୍ତ୍ରୀ.ବି.(ଆ + ଭା + ତ) ପ୍ରତିବିମ୍ବ,

ଆଭାଷ—ପୁଂ. ବି. (ଆ + ଭାଷ + ଭା.ଅ) ମୁଖବନ୍ଧ, ପ୍ରବେଶିକା, ଭୂମିକା, ଅନୁଷ୍ଠାନ, ଆଳାପ ।

ଆଭାଷଣ—କ୍ଲୀ.ବି. (ଆ + ଭାଷ୍ + ଭା.ଅନ) ଉକ୍ତି, କଥାଭାଷା, ଉକ୍ତିପ୍ରତ୍ୟୁକ୍ତି, ପରସ୍ପର କଥୋପକଥନ, ଆଳାପ, ସମ୍ବୋଧନ ।

ଆଭାଷିତ—ବିଂ. ( ଆ + ଭାଷ୍ + ର୍ମି.ତ ) କଥିତ, ଉକ୍ତ, ଆଳପିତ, (ସ୍ତ୍ରୀ) ଆଭାଷିତା ।

ଆଭାଷ୍ୟ—ତ୍ରି. ବିଂ. (ଆ + ଭାଷ୍ + ର୍ମି.ଯ) ଆମନ୍ତ୍ରଣୀୟ, ସମ୍ବୋଧନୀୟ, ଆଳାପର ଯୋଗ୍ୟ, ଆଳାପ୍ୟ, ଜିଜ୍ଞାସ୍ୟ (ଅବ୍ୟ) ସମ୍ବୋଧନକର, କହି ।

ଆଭାସ—ପୁଂ. ବି. (ଆ + ଭାସ୍ + ଭା.ଅ) ଦେଖାଯିବା, ତୁଲ୍ୟ ପ୍ରକାଶ, ଦୁଷ୍ଟହେତୁ-ପ୍ରଭୃତି, ଇଙ୍ଗିତ, ସୂଚନା, ଅଭିପ୍ରାୟ, ସାଦୃଶ୍ୟ, ଦୀପ୍ତି, ସାମାନ୍ୟ ଅଭିପ୍ରାୟ, ପ୍ରତିବିମ୍ବ ।

ଆଭାସଧର୍ମ—ବି. (ଆଭାସ + ଧର୍ମ) ନିଜ ଇଚ୍ଛାରେ ଆଶ୍ରୟ କରିବା ଏକ ଧର୍ମ ।

ଆଭାସନ—କ୍ଲୀ. ବି. (ଆ + ଭାସ୍ + ଭା. ଅନ) ଦୀପନ, ପ୍ରକାଶନ, ବ୍ୟାଖ୍ୟାନ ।

ଆଭାସମାନ ବିଂ. (ଆ + ଭାସ୍ + କ,ଆନ) ପ୍ରକାଶମାନ, ଦୀପ୍ୟମାନ, ପ୍ରତିଭାସମାନ ।

ଆଭାସିବା—ଗ୍ରା. (ପଦ୍ୟ-କ୍ରିୟା) ବୋଧ-ହେବା, ଅନୁମିତ ହେବା, ଉଦିତହେବା ।

ଆଭାସୁର—ତ୍ରି. ବିଂ. (ଆ + ଭାସ୍ + କ. ଉର) ସମ୍ୟକ୍ ଦୀପ୍ତିଶୀଳ, ସମୁଜ୍ଜ୍ୱଳ ।

ଆଭାସ୍ୱର—ତ୍ରି.ବିଂ.(ଆ + ଭାସ୍ + ବରଚ୍) ସମ୍ୟକ୍ ଦୀପ୍ତିଶୀଳ, (ପୁଂ.ବି) ଗଣ-ଦେବତାବିଶେଷ ।

ଆଭିଚରଣିକ—ବିଂ. ( ଅଭିଚରଣ + ଇକ ) ମାରଣାଦି ସାଧନ ବିଧାନବିଶେଷ, ଅଥର୍ବବେଦୋକ୍ତ ଶତ୍ରୁମାରଣ ମୋହ-ନାଦି ସାଧନମନ୍ତ୍ରବିଶେଷ, ଆଭିଚାରିକ ।

ଆଭିଚାରିକ—ବିଂ. (ଅଭିଚାର + ଇକ) ଅଭିଚାର, ଯାହାର ଅଭିଚାର ମନ୍ତ୍ର ପ୍ରୟୋଜନ ।

ଆଭିଜନ—କ୍ଲୀ.ବିଂ. ବଂଶପରମ୍ପରା ଗତ, ବଂଶସମ୍ବନ୍ଧୀୟ, ସତ୍‌କୁଳୋଚିତ, (ବି) କୌଳୀନ୍ୟ ।

ଆଭିଜାତିକ—ବିଂ. (ଅଭିଜାତ + ଇକ) ଉଚ୍ଚବଂଶସମ୍ବନ୍ଧୀୟ, ବଂଶପରମ୍ପରାଯୁକ୍ତ ।

ଆଭିଜାତ୍ୟ—କ୍ଲୀ.ବି. (ଅଭିଜାତ + ଯ) କୌଳୀନ୍ୟ, ପାଣ୍ଡିତ୍ୟ, ସୌନ୍ଦର୍ଯ୍ୟ, ବଂଶ-ମର୍ଯ୍ୟାଦା, ଲଜ୍ଜା, ଉଚ୍ଚବଂଶରେ ଜନ୍ମ-ହେତୁ ଗର୍ବ ।

ଆଭିଜିତ—ବିଂ. (ଅଭିଜିତ୍ + ଅ) ଅଭିଜିତ ନକ୍ଷତ୍ରରେ ଜାତ, ଅଭିଜିତ ନକ୍ଷତ୍ର-ସମ୍ବନ୍ଧୀୟ ।

ଆଭିଜାତ୍ୟ—ବି°. ଅଭିଜିତ ନକ୍ଷତ୍ରରେ ଜାତ ।
ଆଭିଧା—ସ୍ତ୍ରୀ. ବି. ଶବ୍ଦବୃତ୍ତିବିଶେଷ, କଥନ, ଅଭିଧା ।
ଆଭିଧାନିକ—କ୍ଲୀ. ବି. (ଅଭିଧା + ଇକ + ଅ) ଶବ୍ଦ ।
ଆଭିଧାନିକ—ବି°. (ଅଭିଧାନ + ଇକ) ଅଭିଧାନସମ୍ବନ୍ଧୀୟ, ଅଭିଧାନ ପୁସ୍ତକରେ ଯାହା ମିଳେ, ଅଭିଧାନସମ୍ବନ୍ଧୀୟ, (ବି) ଅଭିଧାନ ରଚୟିତା ।
ଆଭିଧାନୀୟକ—କ୍ଲୀ. ବି. କଥନୀୟତ୍ୱ ।
ଆଭିପ୍ଲାବିକ—ବି°. ଅଭିପ୍ଲବ ବିଦ୍ଧତତ୍ତ୍ୱଯୁକ୍ତ, ସାମାଦି,ସାମବେଦବିଶେଷ,(ବି)ଗବାମୟନ ଯାଗାନ୍ତର୍ଗତ ଷଡ଼ହବିଶେଷ ।
ଆଭିମାନିକ—ବି°. ଶବ୍ଦାଦି ପଞ୍ଚତନ୍ମାତ୍ର, ସାଂଖ୍ୟମତସିଦ୍ଧ ଅଭିମାନ ହେତୁ ଉତ୍ପାଦିତ ଉଭୟ ଇନ୍ଦ୍ରିୟ ।
ଆଭିମୁଖ୍ୟ—କ୍ଲୀ. ବି. (ଅଭିମୁଖ + ଯ) ଅଭିମୁଖତ୍ୱ, ସମ୍ମୁଖତ୍ୱ, ପ୍ରସନ୍ନତା, ଆନୁକୂଲ୍ୟ, ଅନୁଗ୍ରହ, ପ୍ରସାଦ ।
ଆଭିରୂପକ—କ୍ଲୀ. ବି. ସୌନ୍ଦର୍ଯ୍ୟ, ଉତ୍କର୍ଷ, ପାଣ୍ଡିତ୍ୟ ।
ଆଭିରୂପ୍ୟ—କ୍ଲୀ. ବି. (ଅଭିରୂପ + ଯ) ସୌନ୍ଦର୍ଯ୍ୟ, ଅଭିରୂପର ଭାବ ।
ଆଭିଷିକ୍ତ—ବି.ବି°. (ଅଭି + ସିଚ୍ + ତ) ଅଭିଷେକନିଷ୍ପନ୍ନ ।
ଆଭିଷେଚନିକ—ବି. ବି°. (ଅଭିଷେଚନ + ଇକ) ରାଜାଭିଷେକର ଉପଯୁକ୍ତ ଦ୍ରବ୍ୟବିଶେଷ, ସ୍ନାନାର୍ଥ ବିଧାନ ।
ଆଭିହାରିକ—ବି°. (ଅଭିହାର + ଇକ) ଉପଢୌକନ ଦ୍ରବ୍ୟ, ଭେଟ କରିବାର ଦ୍ରବ୍ୟ, ପ୍ରାତଃକାଳରେ ମଙ୍ଗଳାର୍ଥ ରାଜାସମୀପେ ଆନୀୟନ ଦ୍ରବ୍ୟ ।
ଆଭୀକ—କ୍ଲୀ.ବି. ଅଭୀକ ନାମକ ଋଷିର ଦୃଷ୍ଟ ସାମବିଶେଷ ।
ଆଭୀକ୍ଷ୍ଣ କ୍ଲୀ.ବି.(ଅଭୀକ୍ଷ୍ଣ + ଅ)ପୌନଃପୁନ୍ୟ, ଆଧିକ୍ୟ ।
ଆଭୀକ୍ଷ୍ଣ୍ୟ-କ୍ଲୀ.ବି. (ଅଭୀକ୍ଷ୍ଣ + ଯ) ସତତା, ସାତତ୍ୟ, ପୌନଃପୁନ୍ୟ, ଆଧିକ୍ୟ ।

ଆଭୀର—ପୁଂ.ବି. (ଆ + ଅଭି + ଋ + ଅ) ଗୋପ, ଗୌଡ଼, ସଙ୍କୀର୍ଣ୍ଣ ଜାତିବିଶେଷ, ମ୍ଳେଚ୍ଛଜାତି, ଦେଶବିଶେଷ, (ସ୍ତ୍ରୀ) ଆଭୀରୀ ।
ଆଭୀରପଲ୍ଲୀ—ସ୍ତ୍ରୀ. ବି. ଗୋପପ୍ରଧାନ ଗ୍ରାମ, ଘୋଷ, ଗଉଡ଼ଗ୍ରାମ ।
ଆଭୀରୀ—ସ୍ତ୍ରୀ.ବି. ମହାଶୂଦ୍ରୀ, ଗୋପୀ, ଗୋପାଳୁଣୀ, ଗଉଡୁଣୀ ।
ଆଭୀଳ—କ୍ଲୀ.ବି. (ଆ + ଅଭି + ଇଲ,ଅ) କଷ୍ଟ, କୃଚ୍ଛ୍ର, ଦୁଃଖ, ଭୟାନକ, (ବି°) କଷ୍ଟଯୁକ୍ତ, ଭୟାନକ ।
ଆଭୀଷବ—କ୍ଲୀ.ବି. ସାମବିଶେଷ ।
ଆଭୁ—ବି°. (ଆ + ଭୂ + କ୍ୱିପ୍) ବିଭୁ, ବ୍ୟାପକ ।
ଆଭୁଗ୍ନ—ବି°. (ଆ + ଭୁଜ୍ + କ୍ତ) ଆକୁଞ୍ଚିତ, ଅଳ୍ପବକ୍ର ।
ଆଭୁଡ଼ାପଡ଼ିବା—ଗ୍ରା. କ୍ରି. (ଆବୁରା ପଡ଼ିବା ଦେଖ) ।
ଆଭୂତସଂପ୍ଲବ—(ଅବ୍ୟ) ସର୍ବଭୂତଙ୍କର ପ୍ରଳୟ ପର୍ଯ୍ୟନ୍ତ, ଆପ୍ରଳୟ ।
ଆଭୂତି—ସ୍ତ୍ରୀ.ବି.(ଆ + ଭୂ + ତି)ବ୍ୟାପ୍ତି ।
ଆଭୃତ—ବି°. (ଆ + ଭୃ + ମି.ତ) ଧୃତ, ସମ୍ପାଦିତ, ଦତ୍ତ, ଜାତ । [ଧାରଣ ।
ଆଭୃତି—ସ୍ତ୍ରୀ. ବି. (ଆ + ଭୃ + ଭା.ତି)
ଆଭୋଗୀ—ସ୍ତ୍ରୀ. ବି. କଲ୍ୟାଣଆହାରୀ, ରାଗିଣୀବିଶେଷ ।
ଆଭୋଗ—ପୁଂ. ବି. (ଆ + ଭୁଜ୍ + ଅ) ପରିପୂର୍ଣ୍ଣତା, ବରୁଣଙ୍କର ଛତ୍ର, ଯତ୍ନ, ପ୍ରୟାସ, ସର୍ପର ଫଣା, ବିସ୍ତାର,ଭଣିତ, ବିମର୍ଦ୍ଦ, ବକ୍ରଗତି, କୌଟିଲ୍ୟ, ପ୍ରାନ୍ତଭୂମି, ମଧ୍ୟ, ସମ୍ୟକ୍ ସୁଖାଦିର ଅନୁଭବ ।
ଆଭୋଗୟ—ବି°. (ଆଭୋଗ + ଯା + ଅ) ଆପୂର୍ଣ୍ଣ ।
ଆଭୋଗି—ବି. (ଆଭୋଗ + ଇ) ବିଷୟାଭୋଗକାରୀ, ସମ୍ୟକ୍ ସୁଖାନୁଭବକର୍ତ୍ତା ।
ଆଭୋଗୀ—ବି°. (ଆଭୋଗ + ଇନ୍)ପରିପୂର୍ଣ୍ଣ, ଯତ୍ନବାନ୍ ସମ୍ୟକ୍ ସୁଖାଦିଯୁକ୍ତ, (ସ୍ତ୍ରୀ) ଆଭୋଗିନୀ, ଅଭ୍ୟନ୍ତର, ମଧ୍ୟବର୍ତ୍ତୀ

ଆଭ୍ୟନ୍ତର—ବି°. (ଅଭ୍ୟନ୍ତର + ଅ) ଅଭ୍ୟନ୍ତରର ଭାବ, ଆନ୍ତରିକ, ମାନସିକ ।
ଆଭ୍ୟନ୍ତରିକ—ବି°. (ଅଭ୍ୟନ୍ତର + ଇକ) ଆନ୍ତରିକ, ମାନସିକ, ଅଭ୍ୟନ୍ତର ।
ଆଭ୍ୟନ୍ତରୀଣ—ବି. ବି°. (ଅଭ୍ୟନ୍ତର + ଈନ) ଅଭ୍ୟନ୍ତରସମ୍ବନ୍ଧୀୟ, ମଧ୍ୟସ୍ଥ, ଭିତରର ।
ଆଭ୍ୟବହାରିକ—ବି°. (ଅଭି + ଅବ + ହୃ + ଇକ) ଭୋଜନୀୟ ଅନ୍ନାଦି, ଭୋଜନୀୟ, ଭୋଜ୍ୟ, ଭକ୍ଷ୍ୟ, ଅଭ୍ୟବହାର୍ଯ୍ୟ
ଆଭ୍ୟାଗାରିକ—ବି°. (ଅଭ୍ୟାଗାର + ଇକ) କୁଟୁମ୍ବଭରଣେ ବ୍ୟାପୃତ, କୁଟୁମ୍ବ ପୋଷିବାରେ ଜଡ଼ିତ ।
ଆଭ୍ୟାଦାୟିକ—କ୍ଲୀ. ବି. ପିତୃକୁଳ କମ୍ବା ମାତୃକୁଳରୁ ପ୍ରାପ୍ତ ସ୍ତ୍ରୀ-ଧନବିଶେଷ ।
ଆଭ୍ୟାସିକ—ବି°.(ଅଭ୍ୟାସ + ଇକ)ନିକଟେ ସ୍ଥିତ, ଅଭ୍ୟାସପ୍ରାପ୍ତ,ପୁନଃପୁନଃ ଉଚ୍ଚାରଣଜାତ, ଦୃଢ଼ ସଂସ୍କାରବଦ୍ଧ, ଅଭ୍ୟାସକାରୀ, ସାଧାରଣ, ଅଭ୍ୟସ୍ତ ।
ଆଭ୍ୟୁଦୟିକ—କ୍ଲୀ. ବି. (ଅଭ୍ୟୁଦୟ + ଇକ) ମାଙ୍ଗଳିକ, ବୃଦ୍ଧି ନିମିତ୍ତ ଶ୍ରାଦ୍ଧବିଶେଷ, ଆଭ୍ୟୁଦୟିକ ଶ୍ରାଦ୍ଧ, ଉନ୍ନତିପ୍ରଦ, ନାନ୍ଦୀମୁଖୀ ଶ୍ରାଦ୍ଧ, ହିତକର ।
ଆଭ୍ରିକ—ବି. ବି°. (ଅଭ୍ରି + ଇକ) ଯେ କାଠ କୋଦାଳରେ ଖୋଳେ, (ଝିଟିକ) ମେଘରୁ ଜାତ ଜଳପ୍ରଭୃତି ।
ଆଭ୍ର୍ୟ—ବି°. (ଅଭ୍ର + ଯ) ମେଘଜାତ, ଆକାଶଜାତ, (ପୁଂ.ସ୍ତ୍ରୀ) ଅଭ୍ରର ପୁତ୍ର ବା କନ୍ୟାରୂପ ଅପତ୍ୟ ।
ଆମ୍—ଅବ୍ୟ.(ଅମ୍ + ଇ + କ୍ୱିପ୍)ଅଙ୍ଗୀକାର, ସ୍ୱୀକାର, ନିଶ୍ଚୟ, ଜ୍ଞାନ, ସ୍ମୃତି, ପ୍ରତିବଚନ, (ପ୍ରା. ସମ୍ବ) ଆମ୍ବ ।
ଆମ୍‌ଚୂର—ପ୍ରା. (ଲରିଆ) ବି. ଆମ୍ବୁଲ ।
ଆମ୍‌ଚୂର—ଆମ୍ରଚୂର୍ଣ୍ଣର ଅପଭ୍ରଂଶ(ଲରିଆ) କଞ୍ଚା ଆମ୍ବ ଛଡ଼ାଇ ଟିକି ଟିକି କରି ଖରାରେ ଶୁଖାଇଲେ ତାକୁ ଆମଚୂର୍ କହନ୍ତି, ଆମ୍ବୁଲ ।
ଆମ୍‌ବାହାର—ପ୍ରା. (ସମ୍ବ.) ଆମାଶୟ ଝାଡ଼ା, ନାଳରକ୍ତ ଝାଡ଼ା ।

ଆମ୍ମୁକ୍ତାର—ପ୍ରା. (ସମ୍ବ) ବ. ସାଧାରଣ କ୍ଷମତାପ୍ରାପ୍ତ କାର୍ଯ୍ୟକାରୀ ।

ଆମ୍ମୁକ୍ତାରନାମା—ପ୍ରା. (ସମ୍ବ)ବ.ସାଧାରଣ କ୍ଷମତାପତ୍ର । [ଦେଖ ।

ଆମ୍ସି—ପ୍ରା. (ମେଦିନୀପୁର) ବ. ଆମ୍ବୁଲ

ଆମ—ବ.(କ.ଅ) ଉଦରସ୍ଥ ଅପକ୍ୱ ଦୁଷ୍ଟରସ, ଅଜୀର୍ଣ୍ଣରୋଗ,ଲୁଷରହିତ ଧାନ୍ୟ ଵ ଶସ୍ୟ, ରୋଗ, ବ. ( ଆ ଅମ + ଣ.ଅ ) ରୋଗୀ, ଅପକ୍ୱ, କଞ୍ଚା, ଯାହା ସିଦ୍ଧ ହୋଇ ନଥାଏ,ବହ୍ନି ପାକରହିତ,ପୋଡ଼ା ହୋଇ ନଥିବା ।

ଆମକୁମ୍ଭ—ପୁଂ. ବ. (କ.ଧା) ଅଦଗ୍ଧ ମୃଣ୍ମୟକଳସ,ମାଟିର କଳସୀ, ମାଠିଆ ।

ଆମଗନ୍ଧ—ବିଂ.(ଆମ + ଗନ୍ଧ୍ + ଇ)ଚିତାଧୂମଗନ୍ଧ, ଅପକ୍ୱ ମାଂସାଦିର ଗନ୍ଧବିଶିଷ୍ଟ, (ବ) ଦୁର୍ଗନ୍ଧ, ସଡ଼ାଗନ୍ଧ, ମାଛ ଶୁଖୁଆ ପୋଡ଼ାଗନ୍ଧ ।

ଆମଗର୍ଭ—ପୁଂ. ବ. (କ.ଧା) ଅପରିଣତ ଗର୍ଭ, ଭ୍ରୂଣ ।

ଆମଜ—ବି. ବିଂ. (ଆମ + ଜନ୍ + ଅ) ଆମଜନିତ, ଅପକ୍ୱରସଜାତ, ବ୍ୟାଧିଜନିତ ।

ଆମଜ୍ୱର—ପୁଂ. ବ. (କ.ଧା) ନବଜ୍ୱର, ତରୁଣ ଜ୍ୱର ।

ଆମଞ୍ଚ—ଗ୍ରା. ବ. ଶରସନ୍ଧାନ, ଧନୁରେ ଶର ସଂଯୋଗ ଧନୁରେ,ଶରଯୋଜନା ।

ଆମଞ୍ଚନ—ଗ୍ରା. ବ. (ଆମଞ୍ଚ ଦେଖ )

ଆମଟ୍—ପ୍ରା. (ଲରିଆ)ବ.ଆମ୍ବିଲ ଢଅଣ, (ବସ୍ତର) ବ. କାଞ୍ଜି ।

ଆମଡ଼ା—ସ୍ତ୍ରୀ ବ.(ଆମ୍ରାତକର ଅପଭ୍ରଂଶ) ଆମ୍ବଡ଼ା ।

ଆମଦାନି—(ଯା) ବ.ଦେଶାନ୍ତରରୁ ସ୍ୱଦେଶକୁ ଆନୟନ,ଆୟ,ଲାଭ, ଭୂମିର ଲାଭ ବା ଆୟ, ଆଦାୟ, ବ୍ୟବସାୟରେ ଲଭ୍ୟବସ୍ତୁ ବା ଧନ,.(ବିଂ,ଦେଶାନ୍ତରରୁ ଆନୀତ (ପଣ୍ୟ) ଲାଭରୂପେ ମିଳିଥିବା, ଆଦାୟ କରାଯାଇଥିବା, (ବିପରୀତ) ରପ୍ତାନି ।

ଆମଧୁର—ବି.ବିଂ. (ଆ + ମଧୁର + ଯ) ଈଷତ୍ ମଧୁର ରସବିଶିଷ୍ଟ, ଅଳ୍ପ ମିଠାଲାଗୁଥିବା ।

ଆମନଶମ—ଗ୍ରା.ବ.ଓଠ,ଜିଭ ଓ ପାଟିରେ ଫୁଟିବା ଏକପ୍ରକାର ବ୍ରଣରୋଗ, ଆମ ଓ କଫଜନିତ ରୋଗ ।

ଆମନସ୍ୟ—କ୍ଲୀ.ବ.ଦୁଃଖ,ଯାତନା,ପୀଡ଼ା, କଷ୍ଟ, ବ୍ୟଥା ।

ଆମନ୍ତ୍ର—ପୁଂ. ବ. (ଆମ + ତ୍ରୈ + ଅ ) (ଆ + ମନ୍ତ୍ର + ଅ) ଏରଣ୍ଡ ବୃକ୍ଷ,ଜଡ଼ାଗଛ, ସମ୍ବୋଧନ, ଆହ୍ୱାନ, ନିମନ୍ତ୍ରଣ, ଅଭିନନ୍ଦନ, ସମ୍ବର୍ଦ୍ଧନା, ନିଯୋଜନ, ଯାହା ଅକରଣେ ପ୍ରତ୍ୟବାୟ ନାହିଁ ।

ଆମନ୍ତ୍ରଣ—କ୍ଲୀ. ବ. (ଆ + ମନ୍ତ୍ର୍ + ଭା. ଅନ) ଅଭିନନ୍ଦନ, ସମ୍ବୋଧନ, ସାଦର ସମ୍ଭାଷଣ, ଆହ୍ୱାନ ।

ଆମନ୍ତ୍ରୟିତା—ପୁଂ.ବିଂ.(ଆ + ମନ୍ତ୍ରି + କ. ତୃ) ଆମନ୍ତ୍ରଣକାରକ, (ସ୍ତ୍ରୀ) ଆମନ୍ତ୍ରୟିତ୍ରୀ

ଆମନ୍ତ୍ରିତ—ବି.ବିଂ. (ଆ + ମନ୍ତ୍ର + ର୍ମ.ତ) ଆବଶ୍ୟକ କାର୍ଯ୍ୟେ ନିଯୋଜିତ, ନିମନ୍ତ୍ରିତ, ଆହୂତ, ସମ୍ଭାଷିତ, (କ୍ଲୀ.ବ. ) ଆହ୍ୱାନ, ସମ୍ଭାଷ୍ୟ ।

ଆମନ୍ତ୍ରିବା—ଗ୍ରା. ବି. (ସଂ.ଆ + ମନ୍ତ୍ର ) ଆମନ୍ତ୍ରଣ କରିବା, ମନ୍ତ୍ରୋଚ୍ଚାରଣପୂର୍ବକ ଡାକିବା ।

ଆମନ୍ତ୍ର୍ୟ—ବିଂ. (ଆ + ମନ୍ତ୍ର + ଯ) ଆମନ୍ତ୍ରଣୀୟ, ସମ୍ବୋଧନୀୟ, ଆବଶ୍ୟକ କାର୍ଯ୍ୟେ ନିଯୋଜ୍ୟ, (ଅବ୍ୟ) ସମ୍ବୋଧନ କରି । [ ବାସୁଦେବ ।

ଆମନ୍ଦ—ପୁଂ. ବ. (ଆମ + ଦୋ + ଅ )

ଆମନ୍ଦା—ସ୍ତ୍ରୀ.ବ.(ଆ + ମନ୍ଦ + ଅ + ଆ) ଝିଣ୍ଟିବିଶେଷ ।

ଆମନ୍ଦ୍ର—ପୁଂ. ବ. ଈଷତ୍ ଗମ୍ଭୀର ଶବ୍ଦ, (ବିଂ) ଈଷତ୍ ଗମ୍ଭୀର ଶବ୍ଦଯୁକ୍ତ ।

ଆମପାକ—ପୁଂ.ବ. (ଆମ + ପଚ୍ + ଅ) ବୈଦ୍ୟଶାସ୍ତ୍ରୋକ୍ତ ଶୋଥ, ଆମରସର ପାକ ।

ଆମପାତ୍ର—କ୍ଲୀ.ବ.(କ.ଧା) ଅପକ୍ୱ ପାତ୍ର, କଞ୍ଚାମାଟିର ପାତ୍ର ।

ଆମମୋକ୍ତାର —(ଯା) ବ. ବିଷୟସମ୍ପତ୍ତିଘଟିତ ସର୍ବପ୍ରକାର କାର୍ଯ୍ୟ ନିର୍ବାହାର୍ଥେ ନିଯୁକ୍ତ ପ୍ରତିନିଧି ।

ଆମୟ—ପୁଂ.ବ.(ଆମ + ଯା + ଅ)ରୋଗ, ବ୍ୟାଧି, ଗଦ ପୀଡ଼ା, ଔଷଧବିଶେଷ, କୁଡ଼ । [ ଅସୀମ ।

ଆମୟଦା—(ଯା) ପ୍ରଚୁର, ଅପରିମିତ,

ଆମୟାବୀ—ବିଂ. (ଆମୟ + ଅବ + ଇନ୍) ରୋଗଯୁକ୍ତ, ରୋଗୀ, ବ୍ୟାଧିଗ୍ରସ୍ତ, (ସ୍ତ୍ରୀ) ଆମୟାବିନୀ ।

ଆମୟିକ—ବି.ବିଂ. ( ଆମୟ + ଇକ ) ରୋଗସମ୍ବନ୍ଧୀୟ,ରୋଗ ପ୍ରତିକାରସଂକ୍ରାନ୍ତ ।

ଆମର—ଗ୍ରା.(ସର୍ବ)ଆମ୍ଭର,ଆମ୍ଭମାନଙ୍କର ।

ଆମରକ୍ତ—କ୍ଲୀ.ବ. (ଆମ + ରକ୍ତ)ରୋଗବିଶେଷ, ଅତିସାରବିଶେଷ, ଝାଡ଼ା ସଙ୍ଗେ ନାଳ ଓ ରକ୍ତ ପଡ଼ିବା ରୋଗ ।

ଆମରଣ—ବି.ବିଂ.(ଆ + ମରଣ)ମରଣକାଳ ପର୍ଯ୍ୟନ୍ତ, ଯାବଜ୍ଜୀବନ ।

ଆମରଣାନ୍ତ—ବି.ବିଂ.ମୃତ୍ୟୁକାଳ ପର୍ଯ୍ୟନ୍ତ ।

ଆମରଣାନ୍ତିକ—ବି.ବିଂ. (ଆମରଣାନ୍ତ + ଇକ) ମରଣକାଳ ପର୍ଯ୍ୟନ୍ତ ବ୍ୟାପକ, ମରଣପର୍ଯ୍ୟନ୍ତସ୍ଥାୟୀ(ସ୍ତ୍ରୀ)ଆମରଣାନ୍ତିକୀ ।

ଆମରସ—ପୁଂ.ବ. ପାକସ୍ଥଳୀର ରସବିଶେଷ,ଅପକ୍ୱ ରସଧାତୁ, କଞ୍ଚାରସ ।

ଆମର ସେ – ଗ୍ରା. (ସର୍ବ)ପୁଂ ମୋ ସ୍ୱାମୀ ବା ମୋ ସ୍ତ୍ରୀ ।

ଆମରୁତ—(ଯା) ବ. ପେୟାର ଫଳ ।

ଆମରୁଲ—(ବଙ୍ଗୀୟ) କ୍ଷୁଦ୍ର ବୃକ୍ଷବିଶେଷ, ଅମ୍ଳରସ ଶାକବିଶେଷ, ବୃଙ୍ଗେରୀ, ଦନ୍ତଶଠା ।

ଆମର୍ଦ୍ଦ—ପୁଂ. ବ. (ଆ + ମୃଦ୍ + ଅ)ବଳହେତୁ ନିଷ୍ପୀଡ଼ନ, (କ୍ଲୀ) ଆମର୍ଦ୍ଦନ ।

ଆମର୍ଦ୍ଦୀ—ବିଂ. (ଆ + ମୃଦ୍ + ଇନ୍)ବଳହେତୁ ନିଷ୍ପୀଡ଼ନକାରୀ ଯେ ଅନ୍ୟଦ୍ୱାରା ମର୍ଦ୍ଦନ କରାଏ ।

ଆମର୍ଶ—ପୁଂ.ବ. (ଆ + ମୃଶ୍ + ଭା,ଅ) ସମ୍ୟକ୍ସ୍ପର୍ଶ, ଉପଦେଶ, ଭକ୍ଷଣ, ସ୍ପର୍ଶ, ଚିନ୍ତା, (କ୍ଲୀ.ବ.) ଆମର୍ଶଣ ।

ଆମର୍ଷ—ପୁଂ.ବ. (ଆ+ମୃଷ୍+ଭା,ଅ) ଅକ୍ଷମା, କୋପ, ଅସହନ, ରାଗ ।

ଆମଳକ—ପୁଂ.ବ. (ଆ+ମଲ୍+ଅ+ମିଁ,କ) ଅଁଳା ଗଛ, ଆମଲକ୍ଷ ଗଛ, ଧାତ୍ରୀବୃକ୍ଷ,(କ୍ଳୀ) ବ. ଅଁଳାଫଳ ।

ଆମଲକ୍ଷୀ – ସ୍ତ୍ରୀ.ବ. ଅଁଳାନାମକ ଗଛ ଓ ଫଳ,ଶ୍ରୀଫଳା,ଧାତ୍ରିକା,ଶିବା,ଅମୃତା ।

ଆମଲଶିଳା—ବ. ଅଁଲାଶାଳୀ, ଦେଉଳର ଅଁଳାବେଢ଼ ।

ଆମଲା—(ଯା) ବ. ବେତନଭୋଗୀ କର୍ମଚାରୀ, ଗୁମାସ୍ତା ।

ଆମବାତ—ପୁଂ.ବ (ଆମ+ବାତ)ବାତରୋଗବିଶେଷ, ଅପାକଜନିତ ବାତ ରୋଗବିଶେଷ ।

ଆମବିକାର—ପୁଂ.ବ. (୬ତତ୍ପୁ) ଉଦରାମୟ, ଅଜୀର୍ଣ୍ଣ ବିକାର, ଆମାଶୟ ।

ଆମଶୂଳ—ପୁଂ.ବ. (ଆମ+ଶୂଳ) (ମଧ୍ୟ-କ.ଧା) ଆମଜନିତ ଉଦରବେଦନା, ପେଟମରୁଦ୍ଧ ଶୂଳରୋଗ ।

ଆମଶ୍ରାଦ୍ଧ—କ୍ଳୀ.ବ.ଆମ ଅନ୍ନ, ଅପକ୍ୱାନ୍ନଦ୍ୱାରା ଶ୍ରାଦ୍ଧବିଶେଷ ।

ଆମସତ୍ତ୍ୱ—(ବଙ୍ଗୀୟ) ପାଚିଲା ଆମ୍ବରସ ଖରାରେ ଶୁଖାଇଲେ ଆମସତ୍ତ୍ୱ ହୁଏ, ଆମ୍ବସଢ଼ା ।

ଆମସୀ—(ବଙ୍ଗ) ଆମ୍ରଶୁଷ୍କର ଅପଭ୍ରଂଶ, କଞ୍ଚା ଆମ୍ବ କାଟି ଶୁଖାଇଲେ ଆମସୀ ହୁଏ, ଆମ୍ବୁଲ ।

ଆମହାର୍ଷ୍ଟ—(ଯା.) ଏ ଲର୍ଡ ହେଷ୍ଟିଂସ୍‌ଙ୍କ ପରେ ଭାରତର ଗଭର୍ଣ୍ଣରଜେନେରାଲ ହୋଇଥିଲେ ।

ଆମହାସ୍ୟ—ବିଂ. ସମ୍ୟକ୍‌ରୂପେ ପୂଜା କରିବାର ମନ୍ତ୍ରବିଶେଷ ।

ଆମହାସ୍ୟବ—କ୍ଳୀ.ବ. ସାମବିଶେଷ ।

ଆମା—(ଆମ ଶବ୍ଦରୁ ଜାତ) ଯେ ଇଟା ଭଲ ପୋଡ଼ା ହୋଇ ନ ଥାଏ, (ଗ୍ରା. ଅବ୍ୟ) ବିସ୍ମୟସୂଚକ, ଆଲୋ, ମାଲୋ ।

ଆମାଜୀର୍ଣ୍ଣ—ବି. ଅପାକ ହେତୁ ଆମରସ ରେଚନ ରୋଗ ।

ଆମାତିସାର—ପୁଂ.ବ.(ଆମ+ଅତିସାର) ଆମକୃତ ଭେଷ୍ଟ ଅତିସାର ରୋଗବିଶେଷ, ନାଲରକ୍ତ ଝାଡ଼ା ।

ଆମାତ୍ୟ—ପୁଂ.ବ.(ଅମାତ୍ୟ+ଅ) ମନ୍ତ୍ରୀ, ସହାୟ, ସଚିବ ।

ଆମାଦ୍—ବିଂ.ଯେ କଞ୍ଚା ମାଂସାଦ ଖାଏ ।

ଆମାନତ୍—(ଯା) ବ. ଗଚ୍ଛିତ ରଖିବା, ଜମାଦେବା, ଗଚ୍ଛିତ ଟଙ୍କା ବା ଦ୍ରବ୍ୟ ।

ଆମାନସ୍ୟ—କ୍ଳୀ. ବ. ( ଅମାନସ+ଯ ) ଦୁଃଖ, ଯାତନା, ପୀଡ଼ା, କଷ୍ଟ, ବ୍ୟଥା ।

ଆମାମ୍ନ—ଗ୍ରା. ବ. କାଞ୍ଜି ।

ଆମାନ୍ନ—କ୍ଳୀ.ବ.(ଆମ+ଅନ୍ନ) ତଣ୍ଡୁଳ, ଗୁଣ୍ଡୁଲ, ଅପକ୍ୱ ଅନ୍ନ (କ.ଧା) ଆତପତଣ୍ଡୁଳ ।

ଆମାବାସ୍ୟ—ତ୍ରି.ବିଂ. ଅମାବାସ୍ୟା ଜାତ, ଅମାବାସ୍ୟାକର୍ତ୍ତବ୍ୟ ଦର୍ଶଯାଗ ।

ଆମାଶୟ—ପୁଂ.ବ. (ଆମ+ଆଶ୍ରୟ) ଦେହ ମଧ୍ୟସ୍ଥିତ ନାଭିର ଊର୍ଦ୍ଧ୍ୱେଭୁକ୍ତ ଅପକ୍ୱ ଅନ୍ନାଦିର ସ୍ଥାନବିଶେଷ, ଆମସଞ୍ଚିତ ହେବା ସ୍ଥାନ, ଗର୍ଭସ୍ଥ ଯନ୍ତ୍ରବିଶେଷ ।

ଆମିକ୍ଷା—ସ୍ତ୍ରୀ.ବ. (ଆ+ମିଷ୍+ସ+ଆ) ଛେନା, ଦୁଗ୍ଧବିକାରବିଶେଷ ।

ଆମିକ୍ଷୀୟ—ବିଂ.(ଆମିକ୍ଷା+ଈୟ)ଆମିକ୍ଷାଜାତ, (କ୍ଳୀ.ବ) ଆମିକ୍ଷାର ଉପକରଣ ଦଧି, ଦହି ।

ଆମିତୌଜ—ପୁଂ.ବ.ଅମିତୌଜାରପୁତ୍ର, ଅପରମିତ ବଳବାନ୍‌ର ପୁତ୍ର ।

ଆମିତ୍ର—ବିଂ.(ଅମିତ୍ର+ଅ)ଶତ୍ରୁସମ୍ବନ୍ଧୀୟ ।

ଆମିନୀ—ସ୍ତ୍ରୀ. ବ. ଦେବସେବାକାରିଣୀ, ଦେବଦାସୀ ।

ଆମିର—ଗ୍ରା.ବ. ଲଙ୍କାମରିଚ ।

ଆମିଶ୍ର—ବିଂ. ସଂସୃଷ୍ଟ ।

ଆମିଷ—କ୍ଳୀ.ବ.(ଆ+ମିଷ+ଅ) ମାଂସ ଭକ୍ଷ୍ୟଦ୍ରବ୍ୟ, ଭୋଜନ, (ପୁଂ) ଲୋଭସଞ୍ଚୟ, ମତ୍ସ୍ୟ, ଭୋଗ୍ୟବସ୍ତୁ, ସମ୍ଭୋଗ ବିଷୟ, ଉତ୍କୋଚ, ଲଭ, କାମଗୁଣ, ଖାଦ୍ୟ, ଶିକାର, ପତ୍ର, ଜମ୍ବୀର ଗଛର ଫଳ, ଲୋଭମୀୟ ପଦାର୍ଥ, ଅଭିଲାଷ ।

ଆମିଷପ୍ରିୟ—ପୁଂ.ବ. କାକ ଓ ଗୃଧ୍ରପକ୍ଷୀ, (ବିଂ) ମାଂସାଭିଳାଷୀ, ମାଂସଲୋଲୁପ ।

ଆମିଷଭୁକ୍—ତ୍ରିଂ.ବ. (ଆମିଷ+ଭୁଜ୍+କ,କ୍ୱିପ୍) ମତ୍ସ୍ୟମାଂସଭୋଜୀ ।

ଆମିଷଭୋଜୀ—ପୁଂ.ବିଂ. (ଆମିଷ+ଭୁଜ୍+କ,ଇନ) ମତ୍ସ୍ୟମାଂସଭକ୍ଷଣକାରୀ, ମାଂସଲୋଭୀ (ସ୍ତ୍ରୀ) ଆମିଷଭୋଜିନୀ ।

ଆମିଷଲୋଲୁପ—ତ୍ରି.ବ. (୬.ତତ୍ପୁ) ମତ୍ସ୍ୟମାଂସପ୍ରିୟ, ମାଛମାଂସରେ ଅତ୍ୟନ୍ତ ଅଭିଳାଷୀ ।

ଆମିଷାଶୀ—ପୁଂ. ବିଂ. (ଆମିଷ+ଅଶ୍+କ, ଇନ) ଆମିଷଭୋଜୀ, ମତ୍ସ୍ୟମାଂସଭକ୍ଷକାରୀ, ମାଂସଲୋଭୀ, (ସ୍ତ୍ରୀ) ଆମିଷାଶିନୀ ।

ଆମିଷୀ—ସ୍ତ୍ରୀ. ବ. (ଆମିଷ୍+ଅ+ଈ) ମିଷୀ, ଜଟାମାଂସୀ ।

ଆମିସ୍—ପୁଂ. ବ. ମାଂସ । [ ବିକାର ।

ଆମିକ୍ଷା—ବ. ଆମିକ୍ଷା, ଛେନା, ଦୁଗ୍ଧର

ଆମିନ୍—(ଯା.) ଅମୀନ, ଯେ ଭୂମି ଜରିପ୍ କରେ ।

ଆମୀନ୍—କ୍ଳୀ. ବ. ଥାନେଶ୍ୱର ଦକ୍ଷିଣପୂର୍ବ ଗୋଟିଏ ବଡ଼ଜଙ୍ଗଲ, ଚକ୍ରବ୍ୟୂହ ମଧ୍ୟ କହନ୍ତି ।

ଆମୀନଉଦ୍‌ଦୀନଖାଁ—ଲୋହରର ନବାବ, ଦିଲ୍ଲୀର ଜଣେ ପ୍ରଧାନ ସାମନ୍ତ ।

ଆମୀନଗଡ଼—ବୋମ୍ବାଇ- ପ୍ରଦେଶାନ୍ତର୍ଗତ କାଲାଦଗିଜିଲ୍ଲାର ନଗରବିଶେଷ ।

ଆମୀନା—ସ୍ତ୍ରୀ. ବ. ମୁସଲମାନଧର୍ମ୍ମପ୍ରବର୍ତ୍ତକ ମହମ୍ମଦଙ୍କର ମାତା, ଆବୁଲ୍ଲାଙ୍କ ପତ୍ନୀ ।

ଆମୀରଖାଁ—ଏ ଜାହାଙ୍ଗିରଙ୍କ ରାଜତ୍ୱକାଳରେ ଠଟ୍ଟର ଶାସନକର୍ତ୍ତା ହୋଇଥିଲେ ।

ଆମୀରଖାଁ—ଏ ଜଣେ ସମ୍ଭ୍ରାନ୍ତ ଲୋକ, ଆଲମଗୀର ବାଦସାହଙ୍କର ପ୍ରଧାନପ୍ରିୟ ।

ଆମୀରଖାଁ—ଏ ପିଣ୍ଡାରୀମାନଙ୍କର ଜଣେ ପ୍ରଧାନ ସେନାନାୟକ ଥିଲେ ।

ଆମୀରଖାଁ—ଏ ଆଲମଗିରଙ୍କର ରାଜତ୍ୱ ସମୟରେ ସାହାଜାହାନାବାଦର କର୍ତ୍ତା ଥିଲେ ।

ଆମୀରଖାଁ—ଆଲୀଶାହ, ଏ କାଶ୍ମୀରରାଜ ସିକନ୍ଦରଙ୍କର ପୁତ୍ର, କାଶ୍ମୀରର ରାଜା ।

ଆମୀରତୈମୁର—ଜଗଦ୍‌ବିଖ୍ୟାତ ମୋଗଲ ବୀର, ତୁର୍କିର ଅଧୀଶ୍ବର ।

ଆମୀରବାଦ—କାସିମ୍‌ବାରିଦଙ୍କର ପୁତ୍ର, ଆହ୍ମଦାବାଦ୍‌ବିଦରର ଶାସନକର୍ତ୍ତା ।

ଆମୀରବାରିଦ ୨ୟ—ଏ ଆଲିବାରିଦ ଶାହକୁ ସିଂହାସନଚ୍ୟୁତ କରି ଆହ୍ମଦାବାଦର ସିଂହାସନରେ ବସିଥିଲେ ।

ଆମୀରମିର୍ଜ୍ଜା—ଏ ଜଣେ ନବାବ,ପ୍ରଥମେ ଇଂରାଜ ସାହେବ ଥାଇ ପରେ ମୁସଲମାନ ଧର୍ମ ଗ୍ରହଣ କରିଥିଲେ ।

ଆମିରସିଂ—ତାଞ୍ଜୋରର ଜଣେ ରାଜା ଥିଲେ ।

ଆମୀରସିଂଥପା—ଏ ନେପାଲର ଜଣେ ପ୍ରଧାନ ସର୍ଦ୍ଦାର ଓ ମହାଯୋଦ୍ଧା ବୋଲି ପ୍ରସିଦ୍ଧ ଥିଲେ ।

ଆମୀଲନ—କ୍ଲୀ.ବି.(ଆ + ମିଲ୍ + ଭା.ଅନ) ନିମୀଲନ, ନିମେଷଣ ।

ଆମୀବତ୍ରକ—ବିଂ. ସମ୍ମୁଖରେ ପ୍ରାପକ, (ବୈଦିକ ଶବ୍ଦ) ।

ଆମୁକ୍ତ—ତ୍ରି. ବିଂ. (ଆ + ମୁଚ୍ + ର୍ମ,ତ) ଖୋଲା, ମୁକୁଳା, ଧୃତ, ଈଷତ୍ ମୁକ୍ତ, ବଦ୍ଧ, ପରିହିତ, ନିକ୍ଷିପ୍ତ, ପରିତ୍ୟକ୍ତ ।

ଆମୁକ୍ତି—ବି. (ଆ + ମୁକ୍ତି) ସ୍ୱାଧୀନତା, (ଅବ୍ୟ) ମୁକ୍ତି ପର୍ଯ୍ୟନ୍ତ ।

ଆମୁଖ—କ୍ଲୀ.ବି. (ଆ + ମୁଖ) ନାଟକର ପ୍ରସ୍ତାବନାରୂପ ଅଙ୍ଗବିଶେଷ

ଆମୁପ—ପୁଂ ବି.କଣ୍ଟକଯୁକ୍ତ ବଂଶବିଶେଷ, କଣ୍ଟାବାଁଶ ।

ଆମୁର—(ବୈଦିକ) ପୁଂ. ବି. ବାଧକ ।

ଆମୁରା—ଏକପ୍ରକାର ଗଛ, ନେପାଳ, ଆଣ୍ଡାମାନ୍, ସୁନ୍ଦରବନପ୍ରଭୃତିରେ ଜାତ ହୁଏ ।

ଆମୁରି—(ବୈଦିକ) ମାରୟିତା, ନାଶକ ।

ଆମୁଷ୍ୟାୟଣ—ପୁଂ.ବି.(ଅମୁଷ୍ୟ + ଆୟନ) ଅମୁଷ୍ୟ ପୁତ୍ର, ପ୍ରଖ୍ୟାତ ବଂଶଜ, ପ୍ରସିଦ୍ଧ ବଂଶୀ, କୁଳୀନ ।

ଆମୁଷ୍ମିକ—ତ୍ରି. ବିଂ. (ଅମୁଷ୍ମିନ୍ + ଇକ) ପାରଲୌକିକ, ପରଲୋକସମ୍ବନ୍ଧୀୟ ।

ଆମୂଳ—ଅବ୍ୟ. (ଆ + ମୂଳ) ମୂଳପର୍ଯ୍ୟନ୍ତ ପ୍ରଥମାବଧି, ମୂଳରୁ ଉତ୍ତମରୂପେ ।

ଆମୂଳଚୂଳ—ତ୍ରି. ବିଂ. ମୂଳରୁ ଶେଷପର୍ଯ୍ୟନ୍ତ, ଆଦ୍ୟୋପାନ୍ତ ।

ଆମୃତ୍ୟୁ—ଅବ୍ୟ. (ଆ + ମୃତ୍ୟୁ) ମୃତ୍ୟୁପର୍ଯ୍ୟନ୍ତ, ଆମରଣ ।

ଆମୃଷ୍ଟ—ତ୍ରି. ବିଂ. (ଆ + ମୃଜ୍ + ର୍ମ,ତ) ମର୍ଦ୍ଦିତ, ମାର୍ଜ୍ଜିତ,ଉଚ୍ଛନ୍ନ, ସମ୍ପୃଷ୍ଟ, ପରିଲୁପ୍ତ, ହୃତ, (ସ୍ତ୍ରୀ) ଆମୃଷ୍ଟା ।

ଆମେ—ସ.(ଗ୍ରା) ଆମ୍ଭେ, ଆମ୍ଭେମାନେ ।

ଆମେନ୍ୟ—ବିଂ. ସମ୍ପୂର୍ଣ୍ଣ ପରିମେୟ ।

ଆମେରିକା—ସ୍ତ୍ରୀ.ବି. ଗୋଟିଏ ମହାଦ୍ୱୀପ, ଏହା ଉତ୍ତର ଓ ଦକ୍ଷିଣ ଭେଦରେ ଦୁଇଭାଗ ହୋଇଅଛି ।

ଆମୋକ୍ଷଣ—କ୍ଲୀ. ବି. (ଅ + ମୁକ୍ଷ୍ + + ଭା. ଅନ) ଧାରଣ, ପରିଧାନ, ଆମୋଚନ ।

ଆମୋଚନ—କ୍ଲୀ. ବି. (ଆ + ମୁଚ୍ + ଭା.ଅନ) ପରିଧାନ, ସଂଯୋଗ, ମୁକ୍ତି ।

ଆମୋଟ—ପୁଂ.ବି. (ଆ + ମୁଟ୍ + ଭା,ଅ) ଆମର୍ଦ୍ଦନ ।

ଆମୋଦ—ପୁଂ.ବି.(ଆ + ମୁଦ୍ + ଭା,ଅ) । ପ୍ରମୋଦ, ଆହ୍ଲାଦ, ପ୍ରୀତି, ଗନ୍ଧ, ଦୂରକୁ ଚହଟୁଥିବା ସୁଗନ୍ଧ,ଆନନ୍ଦ, ହର୍ଷ

ଆମୋଦନ—କ୍ଲୀ. ବି. (ଆ + ମୁଦ୍ + ଣିଚ୍ + ଭା,ଅନ) ଆମୋଦକରଣ, ପ୍ରହର୍ଷଜନକ, ପ୍ରୀଣନ, ସୌରଭ ସମ୍ପାଦନ, (ବିଂ) ଆନନ୍ଦଜନକ ।

ଆମୋଦପ୍ରମୋଦ—(ଗ୍ରା)ବି. ନାନାବିଧ ଆନନ୍ଦ ଉତ୍ସବ ।

ଆମୋଦା—କୈମୂର ଗିରିର ଶିଖରସ୍ଥ ଗୋଟିଏ ଗ୍ରାମ ।

ଆମୋଦ—କ୍ରି. (କ.ପ୍ର) ଆମୋଦ କର, ଆମୋଦିତ କର, ଆହ୍ଲାଦିତ କର ।

ଆମୋଦିତ—ବିଂ. (ଆମୋଦ + ଇତ) ପୁଲକିତ, ଆନନ୍ଦିତ, ସୁଗନ୍ଧଯୁକ୍ତ, ସୁରଭୀକୃତ, ହୃଷ୍ଟ ।

ଆମୋଦିବା—କ୍ରି. (କ.ପ୍ର) ଆମୋଦ କରିବା ।

ଆମୋଦୀ—ବିଂ. (ଆମୋଦ + ଇନ୍) ହର୍ଷଯୁକ୍ତ, ଗନ୍ଧଯୁକ୍ତ, ସୁଗନ୍ଧଜନକ, ଆମୋଦକରିବା ଯାହାର ସ୍ୱଭାବ, (ସ୍ତ୍ରୀ) ଆମୋଦିନୀ । [ଅପହରଣ ।

ଆମୋଷ—ପୁଂ. ବି. (ଆ + ମୁଷ୍ + ଅ)

ଆମ୍ନାତ—ପୁଂ.ବିଂ. (ଆ + ମ୍ନା + ର୍ମ,ତ) ସୁନ୍ଦର, ଅଭ୍ୟସ୍ତ, ସମ୍ୟକ୍ ଅଧୀତ ବେଦାଦି, କଥିତ, କ୍ଲୀ.(ଆ + ମ୍ନା + ଭା. ତ) ସମ୍ୟକ୍ ଅଭ୍ୟାସ, ଅଧ୍ୟୟନ ।

ଆମ୍ନାତୀ—ବିଂ. କୃତବେଦାଭ୍ୟାସ, ଯେ ବେଦ ଅଭ୍ୟାସ କରିଅଛି ।

ଆମ୍ନାନ—କ୍ଲୀ. ବି. (ଆ + ମ୍ନା + ଅନ) ବେଦାଦି ପାଠ, ବେଦାଦିର ଅଭ୍ୟାସ ।

ଆମ୍ନାୟ—ପୁଂ. ବି. (ଆ + ମ୍ନା + ଅ) ବେଦ,ଶ୍ରୁତି, ମୁନିମାନେ ଯାହା ଅଭ୍ୟାସ କରନ୍ତି, ଗୁରୁପରମ୍ପରାକ୍ରମେ ପ୍ରାପ୍ତ ଉପଦେଶ, ଉପଦେଶ ମାତ୍ର, କୁଳ, କୁଳଧର୍ମ, ତନ୍ତ୍ରଶାସ୍ତ୍ର ।

ଆମ୍ପୁରିବା—ଗ୍ରା.(ସମ୍ବ)କ୍ରି.ନଖରେଚିମ୍ପିବା, ନଖେଇବା ।

ଆମ୍ପୁଡ଼ା—ଗ୍ରା. ବି. ନଖରେ ଚିମ୍ପିବା, (ବିଂ) ନଖଦ୍ୱାରା ରମ୍ପା ହୋଇଥିବା, ।

ଆମ୍ପୁଡ଼ କାମ୍ପୁଡ଼ହେବା—ଗ୍ରା.କ୍ରି. କୋଡ଼ କଲାଭଳି ହେବା, ବିରକ୍ତ ହେବା ।

ଆମ୍ପୁଡ଼ିବା—ଗ୍ରା. କ୍ରି. ଚିମ୍ପୁଡ଼ିବା, ନଖ ଦ୍ୱାରା ଚିମ୍ପିବା ବା ବିଦାରିବା ।

ଆମ୍ବ—ପୁଂ. ବି. ଧାନ୍ୟବିଶେଷ, ଶାଳିଧାନ୍ୟ, କମଳଧାନ୍ୟ, ଧାନ ।

ଆମ୍ବ—ଗ୍ରା.ବି. ଆମ୍ର, ରସାଳ, ଆମ୍ବ-ଫଳ ଓ ଗଛକୁ ବୁଝାଏ, ଆମଦେହର ଆମାଶୟ ଧାତୁ ।

ଆମ୍ବଅଦା—ଗ୍ରା. ବି. (ଆମ୍ବକଶିଆ ଗଦ ଦେଖ) ।

ଆମ୍ବଅମାବାସ୍ୟା—ଗ୍ରା. (ଗଞ୍ଜାମ) (ବଉଳ ଅମାବାସ୍ୟା ଦେଖ) ।

ଆମ୍ବଆମ୍ବୁଆ—ଗ୍ରା.ବିଂ. ଆମ୍ବ ପରି ଚକଟିତ ହୋଇଥିବା, ଆମ୍ବଭଳି ।

ଆମ୍ବକନ୍ଦନ—ଗ୍ରା. ବି. ଆମ୍ବପାଚବାନ୍ଧନ ।
ଆମ୍ବକେଶ୍ରଆ—ଗ୍ରା. ବି. (ବଣିଆ ଶବ୍ଦ) ଏକପ୍ରକାର ନାକଚଣା ।
ଆମ୍ବଛେଚ୍ଚ—ଗ୍ରା.ବି. ଲୁଣ ମସଲାଦ ଦେଇ ଛେଚ୍ଚ ହୋଇଥିବା କଞ୍ଚା ଆମ୍ବ ।
ଆମ୍ବଡ଼ା—ଗ୍ରା.ବି. (ସଂ-ଆମ୍ରାତକ) ଆମ୍ବପରି ଏକପ୍ରକାର ଫଳଗଛ ।
ଆମ୍ବଡାହାଣୀ—ଗ୍ରା. ବି. ଆମ୍ବ ଗଛରେ ବେଢ଼ଥିବା ମାଛକାଜାତୀୟ ଏକପ୍ରକାର ଶ୍ରେଷ୍ଠ ପୋକ ।
ଆମ୍ବତା—ଉତ୍ତରପଶ୍ଚିମାଞ୍ଚଳସ୍ଥ ଶାହ୍ୱରଣପୁର ପ୍ରଦେଶର ଗୋଟିଏ ନଗର ।
ଆମ୍ବତୋଟା—ଗ୍ରା. ବି. ଆମ୍ବଗଛ ଲାଗିଥିବା ଉପବନ, ଆମ୍ବବନ, ଆମ୍ବବଗିଚ୍ଚ, ଆମ୍ବ ବଗାଏତ ।
ଆମ୍ବବଉଳ—ଗ୍ରା. ବି. ଆମ୍ରମୁକୁଳ ।
ଆମ୍ବରୀଷପୁତ୍ରକ—ପୁଂ. ବି. ଅମ୍ବରୀଷ ରାଜାଙ୍କର ପୁତ୍ର ।
ଆମ୍ବରୀତାମାକ—( ବଙ୍ଗୀୟ ) ତମାଖୁ ସଙ୍ଗରେ ଅନ୍ୟ ଗନ୍ଧଦ୍ରବ୍ୟ ମିଶାଇଲେ ଆମ୍ବରୀ ତମାଖୁ ହୁଏ । [ଖଣ୍ଡା ।
ଆମ୍ବଲ—( ଅମ୍ଳର ଅପଭ୍ରଂଶ ) ଆମ୍ବିଳ,
ଆମ୍ବଲସି—ଗ୍ରା. ବି. ଶ୍ରେଷ୍ଠ ଆମ୍ବର ତୀବ୍ର ଲସା, ଏହାକୁ ପଖାଳରେ ମିଶାଇ ଖାଇଲେ ଏକ ପ୍ରକାର ବାସନା ହୁଏ ।
ଆମ୍ବଲହୁ—ଗ୍ରା. ବି. (ସଂ-ଆମ ଓ ରକ୍ତ) ଆମ ଓ ରକ୍ତ, ନାଲରକ୍ତ ।
ଆମ୍ବସଢ଼ା—ଗ୍ରା.ବି. ପାଚିଲା ଆମ୍ବର ରସକୁ ଖରାରେ ଶୁଖାଇ ତଆର କରାଯାଇଥିବା ଏକପ୍ରକାର ଆଗୁର ।
ଆମ୍ବହଳଦ—( ବଙ୍ଗ ) ଆମ୍ବ ହଳଦୀ, ଏକ ପ୍ରକାର ଗଛ, (ସଂସ୍କୃତ) କଚ୍ଚୁର, ଦ୍ରାବିଡ଼, କର୍ଣ୍ଣ ।
ଆମ୍ବାତ—ବହାର ପ୍ରଦେଶର ଏକପ୍ରକାର କୃଷକଜାତ,ଏ ଦୁଇ ଶ୍ରେଣୀରେ ବିଭକ୍ତ ।
ଆମ୍ବାଦ (ଅମ୍ବାଦ)—ହାଇଦ୍ରାବାଦ ଅନ୍ତର୍ଗତ ଗୋଟିଏ ତାଲୁକା ।
ଆମ୍ବାଡ଼ା—ଏକପ୍ରକାର ଗଛ, (ସଂସ୍କୃତ-ଦାର୍ବୀ, କର୍ପୂରହରିଦ୍ରା, ଆମ୍ରଗନ୍ଧା, ସୁରଭି ) ।
ଆମ୍ବିଳ—ଗ୍ରା.ବି.(ଅମ୍ଳଶବ୍ଦର ଅପଭ୍ରଂଶ) ଖଟା, ଅମ୍ଳରସବିଶେଷ, ଖଟେଇଉଅଣ, (ବି) ଅମ୍ଳରସବିଶିଷ୍ଟ ।
ଆମ୍ବିଳଖଟ୍ଟରଆମାଟି—ଗ୍ରା.ବି.ଯେଉଁ ବାଲିମିଶା ନାଲିମାଟିରୁ ଚତୁର୍ମାସ୍ୟାରେ ତେଲପରି ଚକ୍‌କଣ ବାହାରେ, (ଖୁବ୍-ଉର୍ବର ମାଟି ) ।
ଆମ୍ବିଲତୋରାଣି—ଗ୍ରା. ବି. ଏକଦନରୁ ଅଧିକ ରହିଯାଇ ଆମ୍ବିଳ ହୋଇଥିବା ଭାତମଣ୍ଡ ବା ତୋରାଣି ।
ଆମ୍ବେଲ—ପେଶୋୟାର ପ୍ରଦେଶରଉତ୍ତରପୂର୍ବରେ ଥିବା ଗୋଟିଏ ଗିରପଥ ।
ଆମ୍ବିକେୟ—ପୁଂ. ବି.(ଅମ୍ବିକା+ଏୟ) ଧୃତରାଷ୍ଟ୍ର, କାର୍ତ୍ତିକେୟ, ଶାକଦ୍ୱୀପର ପର୍ବତବିଶେଷ ।
ଆମ୍ବିଲହାକୁଟି—ଗ୍ରା. ବି. ଅଜୀର୍ଣ୍ଣ ହେଲେ ପାଟିବାଟେ ଯେଉଁ ଅମ୍ଳଗନ୍ଧବିଶିଷ୍ଟ ହାକୁଟି ଉଠେ ।
ଆମ୍ବୁଆଳ—ଗ୍ରା. ବି. ଯେଉଁ ଋତୁରେ ଆମ୍ବଫଳ ହୁଏ, ଯେଉଁ ଋତୁରେ ଶରୀର ଆମଯୁକ୍ତ ହୁଏ, ଗ୍ରୀଷ୍ମଋତୁ, ସ୍ଥୂଳକାୟ, ମୋଟା (ଦେହ) ।
ଆମ୍ବୁରୁଡା—ଗ୍ରା. ବି. ଚିଲ୍କାର ଏକପ୍ରକାର ମାଛ ।
ଆମ୍ବୁଲ—ଗ୍ରା.ବି. କଞ୍ଚାଆମ୍ବଫାଳ ଖରାରେ ଶୁଖାଯାଇ ଲୁଣମସଲାରେ ଯୁଆ ହୋଇଥିବା, ଆମ୍ବଆଗୁର ।
ଆମ୍ବୁଲବାଇ—ଗ୍ରା. ବି. କ୍ଷଣିକ, ଉନ୍ମାଦ ବା ମତ୍ତତା, କୌଣସି କାର୍ଯ୍ୟନମିତ୍ତ ମନୁଷ୍ୟମନରେ ଆସିବା କ୍ଷଣିକ ତୀବ୍ର ଉତ୍ତେଜନା ବା ଜଗର ।
ଆମ୍ବୁଲିଆ—ଗ୍ରା. ବି. ଅଲଓ୍ୱଦା,ସମ୍ପୂର୍ଣ୍ଣରୂପେ ଶୁଖି ନ ଥିବା (ବସ୍ତ୍ରାଦ) ।
ଆମ୍ଭ—ଗ୍ରା. ସର୍ବ. (ସଂ+ଅସ୍ମଦ୍)ଆମ୍ଭର, ମୋର, ଆମ୍ଭମାନଙ୍କର ।
ଆମ୍ଭନ୍ତ—ଗ୍ରା. ( କ ) (ସର୍ବ) ଆମ୍ଭକୁ, ଆମ୍ଭମାନଙ୍କୁ ।
ଆମ୍ଭସ୍—ବି. ବିଂ. (ଅମ୍ଭସ୍+ଅ)ଜଳୀୟ, ଜଳଜ, ଜଳମୟ, (ସ୍ତ୍ରୀ) ଆମ୍ଭସୀ ।
ଆମ୍ଭସିକ—ପୁଂ. ବି. ମତ୍ସ୍ୟବିଶେଷ ।
ଆମ୍ଭି—ବିଂ. ଜଳଜାତାଦ,ଯେ ଜଳରେ ଜନ୍ମେ ।
ଆମ୍ଭେ—ଗ୍ରା. ସର୍ବ; ( ସଂ-ଅସ୍ମଦ ) ମୁଁ ଶବ୍ଦର ମାନ୍ୟାର୍ଥ ପ୍ରୟୋଗ ।
ଆମ୍ର—ପୁଂ. ବି.(ଆମ୍+ର୍+ଅ=ଆମ୍ର; ଆମ୍ର+ଅ) ଆମ୍ବଗଛ ଓ ଫଳ, ଚୂତ, ରସାଳ, ଆମ୍ର ।
ଆମ୍ରକାନନ—କ୍ଲୀ. ବି. (୬.ତତ୍ପୁ) ଆମ୍ବବଗିଚ୍ଚ ।
ଆମ୍ରଗନ୍ଧକ—ପୁଂ. ବି. (ବ.ବ୍ରୀ)ସମଷ୍ଟିଲ ବୃକ୍ଷ, ଶାକବିଶେଷ, ଆମ୍ବକସିଆ ଅଦା, (ଆମାଦା) ।
ଆମ୍ରଗନ୍ଧା,ଆମ୍ରଗନ୍ଧୀ—ସ୍ତ୍ରୀ.ବି. ମୂଳ କାଣ୍ଡ ପ୍ରସିଦ୍ଧ ବୃକ୍ଷବିଶେଷ, ଆମ୍ବକସିଆ ଅଦା ।
ଆମ୍ରଗୁପ୍ତ—ପୁଂ.ବି.ଗୋତ୍ରପ୍ରବର୍ତ୍ତକ ଋଷିବିଶେଷ ।
ଆମ୍ରତେଲ—କଞ୍ଚାଆମ୍ବକୁ ଚିର ମସଲାଦ ଦେଇ ସୋରସତେଲରେ ପକାଇ ଖରାରେ ଶୁଖାଯାଏ ।
ଆମ୍ରପାଲୀ—ଜଣେ ବୌଦ୍ଧରମଣୀ, ଏ ବୁଦ୍ଧଦେବଙ୍କ ବିଶ୍ରାମାର୍ଥେ ଗୋଟିଏ ଉପବନ ଦାନ କରିଥିଲେ ।
ଆମ୍ରପେଶୀ—(ବି) ଶୁଷ୍କ ଆମ୍ରକୋଷ ।
ଆମ୍ରମୟ—ବି.(ଆମ୍ର+ମୟ)ଆମ୍ରବିକାର, ଆମ୍ବସତ୍ତ୍ୱ, ଆମ୍ବର ଅବୟବ ।
ଆମ୍ରରସାକୃତ—ସ୍ତ୍ରୀ.ବି.(ଆମ୍ରରସ+ଆ+କୃ+ତ) ପୀତାଖ୍ୟ ରସାଳବିଶେଷ ।
ଆମ୍ରବନ—କ୍ଲୀ. ବି. ଆମ୍ରବୃକ୍ଷସମୂହାତ୍ମକ ବନ, ଆମ୍ବଗଛ ବନ, ଆମ୍ବବଗିଚ୍ଚ, ଆମ୍ବତୁଠ ।
ଆମ୍ରାତ—ପୁଂ.ବି.(ଆମ୍ର+ଅତ)ଆମ୍ବଡ଼ାବୃକ୍ଷ, (କ୍ଲୀ) ଆମ୍ବଡ଼ାଫଳ ।
ଆମ୍ରାତକ—ପୁଂ. ବି. ( ଆମ୍ର+ଅତ+ଅକ)ଆମ୍ବଡ଼ାଗଛ, (କ୍ଲୀ)ଆମ୍ବଡ଼ାଫଳ ।
ଆମ୍ରାତକେଶ୍ୱର—ପୁଂ. ବି. ନର୍ମଦାନଦୀର ଉତ୍ତରକୂଳ ତୀର୍ଥବିଶେଷ, ଏଠାରେ ମହାଦେବମନ୍ଦର ଅଛି ।

ଆମ୍ରାବର୍ତ୍ତ—ସ୍ତ୍ରୀ. ବି. ନଦୀବିଶେଷ ।
ଆମ୍ରାବର୍ତ୍ତି—ପୁଂ. ବି. (ଆମ୍ର+ଆ+ବୃତ+ଅ)ଆମ୍ରାତକବୃକ୍ଷ, ଆମ୍ବଡ଼ାଗଛ ।
ଆମ୍ରିମା—ପୁଂ. ବି. ଅମ୍ଳତ୍ୱ, (କ୍ଳୀ) ଆମ୍ଳ୍ୟ, ଅମ୍ଳତ୍ୱ ।
ଆମ୍ରେଡ଼କ—କ୍ରି. ବିଂ. ( ଆ+ମ୍ରେଡ଼୍+କ, ଅକ୍)ପୁନଃ ପୁନଃ କଥନକାରୀ, ଯେ ଗୋଟିଏ କଥାକୁ ବାର ବାର କହେ ।
ଆମ୍ରେଡ଼ନ—କ୍ଳୀ. ବି. (ଆ+ମ୍ରେଡ଼୍+ଭା, ଅନ) ଏକ ବିଷୟର ପୁନଃପୁନଃ କଥନ ବା ଆଲୋଚନା ।
ଆମ୍ରେଡ଼ିତ—କ୍ଳୀ. ବି. (ଆ+ମ୍ରେଡ଼୍+ଭା.ତ) ଦୁଇତିନଥର କଥନ,ବାରମ୍ବାର ଉଚ୍ଚାରଣ, ପୁନଃପୁନଃ କଥନ, (କ୍ରି.ବିଂ, (ଆ+ମ୍ରେଡ଼୍+ର୍ମ,ତ) ଦୁଇତିନିବାର କଥିତ, ପୁନଃପୁନଃ ଉଚ୍ଚାରିତ ।
ଆମ୍ଳକୂଚ—ଏକପ୍ରକାର ଗଛ ।
ଆମ୍ଳବେତସ—ପୁଂ.ବି. ଅମ୍ଳବେତସବୃକ୍ଷ ।
ଆମ୍ଳବେତସକ—ପୁଂ. ବି. ତିନ୍ତିଡ଼ୀବୃକ୍ଷ, ତେନ୍ତୁଳୀଗଛ, କଇଁଆଗଛ, (ବିଂ) ଅମ୍ଳରସବିଶିଷ୍ଟ ।
ଆମ୍ଳା—ସ୍ତ୍ରୀ. ବି. (ଅମ୍ଳ+ଆ) ତିନ୍ତିଡ଼ୀ-ବୃକ୍ଷ, ତେନ୍ତୁଳୀଗଛ, କଇଁଆଗଛ ।
ଆମ୍ଳିକା—ସ୍ତ୍ରୀ.ବି. ଅମ୍ଳରସ,ଅମ୍ଳୋଦ୍‌ଗାର, ତେନ୍ତୁଳୀଗଛ ।
ଆମ୍ଳିତପତ୍ର—ଗ୍ରା. ବି. ଅମ୍ଳଲୋଣିକା, ଏକପ୍ରକାର ଅମ୍ଳଶାକ ।
ଆମ୍ଳୀକା—ସ୍ତ୍ରୀ. ବି. (ଅମ୍ଳିକା ଦେଖ) ।
ଆୟ—ପୁଂ.ବି. (ଆ+ଇ+ଭା,ଅ)ଲାଭ, ପ୍ରାପ୍ତି,ଧନାଗମ, ଲଗ୍ନର ଏକାଦଶସ୍ଥାନ, ଅନ୍ତଃପୁରରକ୍ଷକ ।
ଆୟକର—ବିଂ. ( ଆୟ+କୃ+ଅ ) ଧନାଗମସାଧକ, ଲାଭଜନକ, (ପୁ.ବି) (୪ଉକ୍ତ) ଲୋକଙ୍କ ନିର୍ଦ୍ଦିଷ୍ଟ ଆୟ ଉପରେ ସରକାରଙ୍କଦ୍ୱାରା ନିର୍ଦ୍ଧାରିତ କରା-ଯାଇଥିବା ଟାକ୍‌ସ ।
ଆୟଃଶୂଳିକ—ବିଂ. (ଆୟ+ଶୂଳ+ଅକ)କଡ଼ାକଥା କହି ଯେ କାର୍ଯ୍ୟ ସିଦ୍ଧି-କରେ, ସାହସିକ, ତୀକ୍ଷ୍ଣ ଉପାୟଦ୍ୱାରା ଅର୍ଥକର ।
ଆୟଜ—(ବୈଦିକ)ବିଂ. (ଆ+ଯଜ+ଇ) ଆଯଷ୍ଟବ୍ୟ, ସର୍ବତୋ ଯଜ୍ଞସାଧନ ।
ଆଯଜିଷ୍ଟ—(ବୈଦିକ) ବିଂ. ଦେବତାର ସମ୍ମୁଖ ହୋଇଥିବା ଯାଗର ବିଷୟୀ-ଭୂତ ।
ଆୟତ—ବିଂ.(ଆ+ଯମ୍+ତ) ବିସ୍ତୃତ, ଦୀର୍ଘ, ଆକୃଷ୍ଟ, ଆକର୍ଷଣଯୁକ୍ତ,ନିୟମିତ, ଦୃଢ଼, (ବି)ସମକୋଣୀ ସମାନ୍ତରାଳକ୍ଷେତ୍ର ଅଧିକାର, ଗୃହ, ବଳ, କ୍ଷେତ୍ରଫଳ, ଆୟତନ ।
ଆୟତକରିବା—ଗ୍ରା. କ୍ରି. ଜବତ୍‌କରିବା, ବଶୀଭୂତକରିବା ।
ଆୟତଚ୍ଛଦା—ସ୍ତ୍ରୀ. ବି. (ଆୟତ+ଛଦ) (ବ.ବ୍ରୀ)କଦଳୀ, କଦଳୀଗଛ,ରମ୍ଭାତରୁ ।
ଆୟତନ—କ୍ଳୀ.ବି. (ଆ+ଯତ୍+ଅନ) ଆଶ୍ରୟ, ବିଶ୍ରାମସ୍ଥାନ, ଯଜ୍ଞସ୍ଥାନ, ପରି-ସର, ମନ୍ଦିର, ବିସ୍ତୃତ, ଅବସ୍ଥିତି,ଘର-ବାଡ଼ି, ପରିମାଣ, ରୋଗର କାରଣ, ଦେବାଦିର ବନ୍ଦନସ୍ଥାନ,ଭଦ୍ରାସନ,ସୀମା ।
ଆୟତଲୋଚନ—କ୍ଳୀ. ବି. (କ.ଧା) ବିଶାଳନେତ୍ର, (ବିଂ. ବ.ବ୍ରୀ) ବିସ୍ତୃତ-ନେତ୍ରବିଶିଷ୍ଟ ।
ଆୟତସ୍ତୂ—ବିଂ. ଆୟତସ୍ତାବକ, ଯେ ବିସ୍ତୃତଭାବେ ସ୍ତୁତି କରେ ।
ଆୟତି—ବିଂ. ( ଆ+ଯା+ଭା,ତି ) ଉତ୍ତରକାଳ, ଆଗାମିକାଳ, ଆଗମନ, ପ୍ରଭାବ, ମିଳନ, ଯତ୍ନ, ଆୟାମ,ବିସ୍ତାର, ସଂଯମ, କୋଷଦଣ୍ଡଜ ତେଜ, ଫଳଦାନ କାଳ ।
ଆୟତୀ—(ବୈଦିକ) କ୍ଳୀ. ବି. ବାହୁ ।
ଆୟତୀଗବ—(ଅବ୍ୟ) ଗୋଷ୍ଠରୁ ଗୋରୁର ଆଗମନ କାଳ ବା ଫେରିବା ସମୟ ।
ଆୟତୀସମ—(ଅବ୍ୟ) ବର୍ଷର ଆଗମନ କାଳ ।
ଆୟତ୍ତ—ବିଂ. ( ଆ+ଯତ୍+କ.ତ ) ଅଧୀନ, ବଶୀଭୂତ, କୃତଯତ୍ନ, ହସ୍ତ-ଗତ, ଖିନ୍ନ ।
ଆୟତ୍ତାଧୀନ—ବିଂ. ବଶୀଭୂତ, ଅଧୀନ ।
ଆୟତ୍ତି—ସ୍ତ୍ରୀ. ବି. (ଆ+ଯତ୍+ଭା.ତି) ସ୍ନେହ, ବଶିତ୍ୱ, ସାମର୍ଥ୍ୟ, ପ୍ରଭାବ, ସୀମା, ଶୟନ,ଦୈର୍ଘ୍ୟ, ଉତ୍ତରକାଳ,ଅଧୀନତା, ଉପାୟ, ଇନ୍ଦ୍ର, ଗୌରବ, ବଳ ।
ଆୟଥାତଥ୍ୟ—କ୍ଳୀ. ବି. (ଅଯଥାତଥା+ଭା,ଯ) ଅନୌଚିତ୍ୟ, ଅଯଥାତଥ୍ୟ, ଅଯଥାଯୋଗ୍ୟତ୍ୱ ।
ଆୟନ—କ୍ଳୀ. ବି. (ଆ+ଅୟ+ଅନ) ସମ୍ୟକ୍ ଆଗମନ,ଗ୍ରହମାନଙ୍କର ଦକ୍ଷିଣା-ୟନ ଓ ଉତ୍ତରାୟଣ ସମ୍ବନ୍ଧୀ ଗମନାଦି ।
ଆୟନଚଳନା—କ୍ରାନ୍ତିମଣ୍ଡଳର ସାମ-ୟିକ ପରିବୃତ୍ତି ଚଳନା ।
ଆୟନା—(ଯା)ଆରସୀ,ଦର୍ପଣ,ଆଇନା ।
ଆୟବସ—ପୁଂ. ବି. ରାଜବିଶେଷ ।
ଆୟବାନ୍—ପୁଂ.ବିଂ. ଲାଭବିଶିଷ୍ଟ,ଗମନ-କର୍ତ୍ତା ।
ଆୟବ୍ୟୟ—ପୁଂ. ବି. ଜମା ଓ ଖର୍ଚ୍ଚ, ଅର୍ଥର ଆଗମନ ଓ ଅର୍ଥର ବ୍ୟୟିତ-କରଣ ।
ଆୟମନ—କ୍ଳୀ. ବି. (ଆ+ଯମ+ଭା.ଅନ) ବିସ୍ତାର,ଦୈର୍ଘ୍ୟ,ନିୟମନ,ନିୟମ-କରିବା, ନିଗ୍ରହ, ବିସ୍ତାର କରିବା ।
ଆୟମା—ଗ୍ରା. ବି. ମୁସଲମାନ ରାଜ-ପ୍ରଦତ୍ତ ନିଷ୍କର ଭୂମି ।
ଆୟମାଦାର—(ଯା) ବି. ଆୟମା ଜମି ଭୋଗକାରୀ ।
ଆୟର୍ଲଣ୍ଡ—ଇଉରୋପର ଗୋଟିଏ ଦ୍ୱୀପ ।
ଆୟଲ୍ଲକ—ପୁଂ. ବି. ଉତ୍କଣ୍ଠା ।
ଆୟସ—ବିଂ.(ଅୟସ୍+ଅ) ଲୌହମୟ, ଲୌହନିର୍ମିତ(ସ୍ତ୍ରୀ)ଆୟସୀ, ଅଙ୍ଗରକ୍ଷିଣୀ ଜାଲକାଲୁହା, ଲୁହାକବାଟ, ବର୍ମ୍ମ ।
ଆୟସୀ—ବି.(ଆୟସ୍+ଅ+ଈ)ଲୌହ-ମୟୀ ।
ଆୟସ୍କାର—ପୁଂ.ବି.ଲୌହକାର,କମାର ।
ଆୟସ୍ତ—ବିଂ. ( ଆ+ଯସ୍+ର୍ମ.ତ ) କ୍ଷିପ୍ତ, କ୍ଲେଶିତ, ପ୍ରତିହତ, ତୀକ୍ଷ୍ଣୀକୃତ, ଆୟାସଯୁକ୍ତ, ଶାଣିତ, ଦାଢ଼ୁଆ, କ୍ରୁଦ୍ଧ ।

ଆୟୁସ୍ଥାନ—କ୍ଲୀ.ବ. ଲଭସ୍ଥାନ,ରଜାଙ୍କର ଶୁଳ୍କଗ୍ରହଣ ସ୍ଥାନ,ମଣିପ୍ରଭୃତିର ଆକର ସ୍ଥାନ, ଲଗ୍ନଠାରୁ ଏକାଦଶ ସ୍ଥାନ ।

ଆୟସ୍ଥୂଣ—ପୁଂ. ସ୍ତ୍ରୀ. ବ. ଲୌହମୟୀ ସ୍ଥୁଣା, ଲୌହପ୍ରତିମା, ଆୟସ୍ଥୂଣା, ପୁତ୍ର ବା କନ୍ୟାରୂପ ଅପତ୍ୟ ।

ଆୟସ୍ୟନ୍—ବିଂ. ଯତ୍ନବିଶିଷ୍ଟ ।

ଆୟା—(ଯା) ଦାସୀ, ଧାତ୍ରୀ, ସ୍ତ୍ରୀଲୋକମାନଙ୍କ ଦାସୀ ।

ଆୟା—(ଆର୍ଯ୍ୟା ଶବ୍ଦର ଅପଭ୍ରଂଶ ) ଆର୍ଯ୍ୟୀୟା ପିତାମହୀ (ଯା) ଧାତ୍ରୀ, ଧାଇ, ଦାସୀ ।

ଆୟାକୋଟ—ମାଲବାର ପ୍ରଦେଶର ଗୋଟିଏ ପ୍ରାଚୀନ ନଗର ।

ଆୟାତ—କ୍ଲୀ. ବ. (ଆ+ଯା+ଭା.ତ) ଉଦ୍ରେକ, ଆଗମନ, ଆଡଶଯ୍ୟ, (ବିଂ) (ଆ+ଯା+କ.ତ) ଆଗତ,ପ୍ରାପ୍ତ,ଆସିଥିବା, ମିଳିଥିବା ।

ଆୟାତି—ପୁଂ. ବ. ( ଆ+ଯା+ତି ) ନହୁଷଙ୍କର ଚତୁର୍ଥ ପୁତ୍ର, ପ୍ରସିଦ୍ଧ ଯଯାତିଙ୍କ ସହୋଦର, ଆଗମନ, ସ୍ଥାନାନ୍ତର ଗମନ ।

ଆୟାନ—କ୍ଲୀ.ବ. (ଆ+ଯା+ଭା.ଅନ) ଆଗମନ,ସ୍ୱଭାବ, ପ୍ରକୃତ, (ଅବ୍ୟ) ଯାନ ପର୍ଯ୍ୟନ୍ତ, ଗମନ ପର୍ଯ୍ୟନ୍ତ ।

ଆୟାନଘୋଷ—ଶ୍ରୀରାଧାଙ୍କ ସ୍ୱାମୀ ।

ଆୟାପନ୍ଥୀ—ସମ୍ପ୍ରଦାୟବିଶେଷ, ଏମାନେ (ବ୍ରାହ୍ମଣ) ମଦ୍ୟମାଂସ ଭକ୍ଷଣ କରନ୍ତି ।

ଆୟାପାଣା—ଏକପ୍ରକାର ଗଛ ।

ଆୟାମ—ପୁଂ. ବ. (ଆ+ଯମ୍+ଭା.ଅ) ଦୈର୍ଘ୍ୟ, ପରମାଣବିଶେଷ, ନିୟମ, ପ୍ରାଣାୟାମ, ସଂଯମ, ବିସ୍ତାର ।

ଆୟାସ—ପୁଂ. ବ. (ଆ+ଯସ୍+ଭା.ଅ) ଅତିଯତ୍ନ, କଷ୍ଟ, ପରିଶ୍ରମ,କ୍ଲାନ୍ତି, ପୀଡ଼ା, ଦୁର୍ବଳତା ।

ଆୟାସକ—ପୁଂ. ବିଂ. ଆୟାସଯୁକ୍ତ, ଯତ୍ନବାନ୍, ଆୟାସଜନକ ।

ଆୟାସସାଧ—ତ୍ରି. ବିଂ. (୩ତତ୍) କଷ୍ଟସାଧ୍ୟ, କ୍ଲେଶ ସମ୍ପାଦ୍ୟ, ଦୁଷ୍କର,ଦୁରୂହ ।

ଆୟାସୀ—ପୁଂ. ବିଂ. (ଆୟାସ+ଇନ) ଆୟାସଯୁକ୍ତ, ପରିଶ୍ରମୀ, ଶ୍ରାନ୍ତ, କ୍ଲାନ୍ତ, (ସ୍ତ୍ରୀ) ଆୟାସିନୀ ।

ଆୟୀ—ବିଂ.ଲଭଯୁକ୍ତ,(ସ୍ତ୍ରୀ)ଆୟିନୀ,ଗନ୍ତୀ

ଆୟୀ—ଗ୍ରା.ସ୍ତ୍ରୀ.ବ. ମାତାମହୀ, ପିତାମହୀ, ଯେଯେ ମା ।

ଆୟୁ—ବିଂ. ( ଇ+ଉ ) ଗମନଶୀଳ, ଜୀବନକାଳ, (ପୁଂ.ବ) ମନୁଷ୍ୟ, ଅନ୍ନ, ପରମାୟୁ,ଅନୁହ୍ଲାଦ ପୁତ୍ର, ମଣ୍ଡୂକରାଜ, କୃଷ୍ଣ ପୁତ୍ରବିଶେଷ, ଉର୍ବଶୀ ପୁରୁରବା ପୁତ୍ର ।

ଆୟୁଃ—କ୍ଲୀ. ବ. (ଇ+ଉସ୍) ଜୀବନ, ପରମାୟୁ, ଜୀବିତକାଳ, ସ୍ଥିତିକାଳ, ପ୍ରାଣ, ଖାଦ୍ୟ, ପ୍ରାଣଶକ୍ତି, ପୁଷ୍ୟାନକ୍ଷତ୍ର, ଘୃତ, (ପୁଂ.ବ.) ପୁରୁରବାଙ୍କ ପୁତ୍ର ।

ଆୟୁଃକ୍ଷୟ—ପୁଂ. ବ. (୬ତତ୍) ଜୀବିତକାଳ କମିଯିବା, ପରମାୟୁହାନି ।

ଆୟୁଃପ୍ରଦ—ତ୍ରି.ବିଂ.(ଆୟୁସ୍+ପ୍ର+ଦା. କ.ଅ) ଯହିଁରେ ଆୟୁ ବୃଦ୍ଧି ହୁଏ ।

ଆୟୁଃଶେଷ—ପୁଂ. ବ. (୬ତତ୍) ମୃତ୍ୟୁ, ଜୀବନାବସାନ, (ବିଂ) ମୃତ,ମୁମୂର୍ଷୁ ।

ଆୟୁକ୍ତ—ବିଂ. (ଆ+ଯୁଜ୍+ମି.ତ) ସମ୍ୟକ୍ ବ୍ୟାପାରିତ, ଈଷତ୍ଯୁକ୍ତ, ନିଯୁକ୍ତ,ସଂଶ୍ଳିଷ୍ଟ,ନିପୁଣ,(କ୍ଲୀ.ବ) ସମ୍ୟକ୍ ନିଯୋଜନ ।

ଆୟୁତ—ତ୍ରି. ବିଂ. (ଆ+ଯୁ+ମି.ତ) ମିଶ୍ରିତ, ଯୁକ୍ତ (କ୍ଲୀ.ବ) ଈଷତ୍ ଗଳିତ, ନବନୀତ ।

ଆୟୁଧ—କ୍ଲୀ. ବ. (ଆ+ଯୁଧ୍+ଣ,ଅ) ଶସ୍ତ୍ରମାତ୍ର, ପ୍ରହରଣ, ହସ୍ତମୁକ୍ତ, ଯନ୍ତ୍ରମୁକ୍ତ, ତ୍ରିବିଧ ଆୟୁଧମାତ୍ର, ହତିଆର, ଅସ୍ତ୍ର, ହାତହତିଆର ।

ଆୟୁଧଧର୍ମ୍ମିଣୀ—ସ୍ତ୍ରୀ. ଜୟନ୍ତୀଗଛ ।

ଆୟୁଧନ୍ୟାସ—ପୁଂ.ଶ୍ରୀପୂଜାର ଅଙ୍ଗନ୍ୟାସବିଶେଷ ।

ଆୟୁଧପିଶାଚିକା—ସ୍ତ୍ରୀ. ବ. ( ୬ତତ୍ ) ଗର୍ହିତ ସମରବୃତ୍ତି ।

ଆୟୁଧବ୍ୟସନ—କ୍ଲୀ.ବ. (୬ତତ୍) ଅସ୍ତ୍ରକୃଚ୍ଛ୍ର, ଧନୁର ଜ୍ୟାଚ୍ଛେଦପ୍ରଭୃତି ।

ଆୟୁଧାଗାର—କ୍ଲୀ.ବ. (ଆୟୁଧ+ଆଗାର) ରଜାଙ୍କ ଅସ୍ତ୍ର ରଖିବାର ଗୃହ,ଅସ୍ତ୍ରଶାଳା, ଯେଉଁଠାରେ ଅସ୍ତ୍ରଶସ୍ତ୍ର ରଖାଯାଏ ।

ଆୟୁଧିକ—ପୁଂ. ବିଂ. (ଆୟୁଧ+ଇକ) ଶସ୍ତ୍ରଜୀବୀ, ଯେ ଶସ୍ତ୍ର ବ୍ୟବହାରଦ୍ୱାରା ବଞ୍ଚେ, ଯୋଦ୍ଧା, ଶସ୍ତ୍ରଧାରୀ ।

ଆୟୁଧୀ—ପୁଂ. ଶସ୍ତ୍ରଧାରୀ, ଆୟୁଧଧାରୀ ।

ଆୟୁଧୀୟ—ପୁଂ. ବିଂ. (ଆୟୁଧ+ଈୟ) ଅସ୍ତ୍ରଶସ୍ତ୍ର ବ୍ୟବସାୟୀ, ଯୋଦ୍ଧା ।

ଆୟୁର୍ଦା—(ବୈଦିକ) ଆୟୁର୍ଦାତା,ଆୟୁଷଦାତା ।

ଆୟୁର୍ଦାୟ—ପୁଂ.ବ. ଆୟୁର୍ଗଣନ,ଆୟୁଷଗଣନ,ବଳବିଶେଷ,ସ୍ଥିତି ଓ ଯୋଗାଦିଦ୍ୱାରା ଗ୍ରହମାନଙ୍କର ଆୟୁର୍ଦାନ ।

ଆୟୁର୍ଦ୍ରବ୍ୟ—କ୍ଲୀ. ବ. ଆୟୁକାରକ ଔଷଧ, ଘୃତ । [ଯୁଦ୍ଧ କରେ ।

ଆୟୁର୍ଯୁଧ୍—(ବୈଦିକ.) ଯେ ଆଜୀବନ

ଆୟୁର୍ଯୋଗ—ପୁ. ବ. ଜ୍ୟୋତଷୋକ୍ତ ଗ୍ରହଯୋଗବିଶେଷ, ଯେ ସବୁ ଗ୍ରହଯୋଗରେ ଉଚିତ ଆୟୁ ଲାଭ ହୁଏ ।

ଆୟୁର୍ବୃଦ୍ଧି—ସ୍ତ୍ରୀ. ବ. ( ୬ତତ୍ ) ଦ୍ରବ୍ୟବିଶେଷର ସେବନଦ୍ୱାରା ଆୟୁର ବୃଦ୍ଧି, ପାର ଓ ଅଭ୍ର ଏକତ୍ର ସେବନ କଲେ ଆୟୁବୃଦ୍ଧି ହୁଏ, ପ୍ରାଣାୟାମରେ ଆୟୁବୃଦ୍ଧି ହୁଏ ।

ଆୟୁର୍ବେଦ—ପୁଂ.ବ. (ଆୟୁଃ+ବିଦ୍+ଅ ) ଜ୍ୟୋତିଷଶାସ୍ତ୍ର, ଚିକିତ୍ସାଶାସ୍ତ୍ର, ଋକ୍‌ବେଦବିଶେଷ ।

ଆୟୁର୍ବେଦଜ୍ଞ—ତ୍ରି. ବିଂ. ( ଆୟୁର୍ବେଦ +ଜ୍ଞା+କ.ଅ) ଆୟୁର୍ବେଦଶାସ୍ତ୍ରରେ ଜ୍ଞାନସମ୍ପନ୍ନ, ଚିକିତ୍ସାଶାସ୍ତ୍ରରେ ଅଭିଜ୍ଞ ।

ଆୟୁର୍ବେଦବିତ୍—ତ୍ରି. ବିଂ. (ଆୟୁର୍ବେଦ +ବିଦ୍+କ. କ୍ୱିପ୍) ଚିକିତ୍ସାଶାସ୍ତ୍ରଜ୍ଞ ।

ଆୟୁର୍ବେଦମୟ—ପୁଂ. ବ. ଧନ୍ୱନ୍ତରି, ଧନ୍ୱନ୍ତରି ପ୍ରଚୁରରୂପେ ଆୟୁର୍ବେଦ ଜାଣିଥିବାରୁ ତାଙ୍କର ନାମ ଆୟୁର୍ବେଦମୟ ହୋଇଅଛି ।

ଆୟୁର୍ବେଦସଂହିତା—ବି. ଅଥର୍ବ ବେଦରୁ ଗୃହୀତ ଏକଲକ୍ଷ ଶ୍ଳୋକ ଥିବା ଗ୍ରନ୍ଥବିଶେଷ ।

ଆୟୁର୍ବେଦିକ—ପୁଂ. ବିଂ. (ଆୟୁର୍ବେଦ + ଇକ) ଆୟୁର୍ବେଦସମ୍ବନ୍ଧୀ (ବି) ବୈଦ୍ୟ ।

ଆୟୁର୍ବେଦୀ—ପୁଂ. ବି. (ଆୟୁର୍ବେଦ + ଇନ୍) ଚିକିତ୍ସା-ଶାସ୍ତ୍ରବେତ୍ତା, ବୈଦ୍ୟ, ଗଣକ ।

ଆୟୁର୍ବେଦୀୟ—ବି. ବିଂ. (ଆୟୁର୍ବେଦ + ଈୟ) ଆୟୁର୍ବେଦସମ୍ବନ୍ଧୀୟ, ଚିକିତ୍ସା-ଶାସ୍ତ୍ରସମ୍ବନ୍ଧୀୟ ।

ଆୟୁର୍ଯୋଗ—ପୁଂ. ବି. (ବି.ସ୍ତ୍ରୀ) ଔଷଧ ।

ଆୟୁଷ୍(ସ୍)—ଜୀବିତକାଳ ।

ଆୟୁଷ—ଗ୍ରା.ବି. (ସଂ.ଆୟୁଃ)ଆୟୁଃଦେଖ ।

ଆୟୁଷବନ୍ତ—ଗ୍ରା.ବିଂ. (ଆୟୁଷ୍ମାନ୍‌ଦେଖ)

ଆୟୁଷମନ୍ତ—ଗ୍ରା.ବିଂ. (ଆୟୁଷ୍ମାନ୍ ଦେଖ)

ଆୟୁଷ୍କ—ବିଂ. ଆୟୁଦ୍ୱାରା ପ୍ରକାଶମାନ, ପ୍ରଶସ୍ତଆୟୁ ।

ଆୟୁଷ୍କର—ବି.ବିଂ. (ଆୟୁଷ + କୃ + କ ଅ) ଆୟୁବୃଦ୍ଧିକାରକ, ପରମାୟୁଜନକ, (ସ୍ତ୍ରୀ) ଆୟୁଷ୍କରୀ ।

ଆୟୁଷ୍କାମ—ବି.ବିଂ. ବି.ସ୍ତ୍ରୀ; (ଆୟୁଃ + କାମ) ଆୟୁଷଅଭିଳାଷୁକ, ଯେ ଆୟୁ ଇଚ୍ଛାକରେ ।

ଆୟୁଷ୍କୃତ—ବିଂ. (ଆୟୁସ୍ + କୃ + ତ) ଆୟୁବୃଦ୍ଧିକର, ଯେ ଦ୍ରବ୍ୟ ଆୟୁଷ ବଢ଼ାଏ, ଘୃତାଦି ।

ଆୟୁଷ୍ଟୋମ—ପୁଂ. ବି. ଆୟୁସାଧନ ଋକ୍ ସମୁଦାୟାତ୍ମକ ସ୍ତୋମବିଶେଷ, ସେହି ସ୍ତୋମଯୁକ୍ତ ଅତିରାତ୍ରବିଶେଷ ।

ଆୟୁଷ୍ମତ୍—ବିଂ. (ଆୟୁଃ + ମତୁପ୍) ପ୍ରଶସ୍ତାୟୁଷ୍କ, ଦୀର୍ଘଜୀବୀ, ଯୋଗ-ବିଶେଷ ।

ଆୟୁଷ୍ମତୀ—ସ୍ତ୍ରୀ. ବି. (ଆୟୁଃ + ମତ୍ + ଈ) ବିଶେଷ ପରମାୟୁବିଶିଷ୍ଟା ସ୍ତ୍ରୀ ।

ଆୟୁଷ୍ମତ୍ତା—ସ୍ତ୍ରୀ. ବି. (ଆୟୁଷ୍ମତ୍ + ତା) ଦୀର୍ଘଜୀବିତା, ଦୀର୍ଘଜୀବନ ।

ଆୟୁଷ୍ମନ୍ତ—ଗ୍ରା. ବିଂ.ଦୀର୍ଘଜୀବୀ, ବିଶେଷ ପରମାୟୁବିଶିଷ୍ଟ ।

ଆୟୁଷ୍ମାନ୍—ପୁଂ. ବିଂ. (ଆୟୁସ୍ + ମତ୍) ଦୀର୍ଘାୟୁ, ବିଶେଷ ପରମାୟୁବିଶିଷ୍ଟ, (ବି) ଯୋଗବିଶେଷ ।

ଆୟୁଷ୍ମାନ୍‌ଭବ—(ଆଶୀର୍ବାଦ ବଚନ) ଦୀର୍ଘାୟୁ ହୁଅ ।

ଆୟୁଷ୍ୟ—ବି. ବିଂ. (ଆୟୁଷ୍ + ଯ) ଆୟୁ ସାଧନ ପାରଦାଦି ଦ୍ରବ୍ୟ, ପ୍ରାଣାୟାମାଦି କର୍ମ୍ମ, ଆୟୁଷ୍କର,(ବି) ପରମାୟୁ, ପଥ୍ୟ, ଅନ୍ନ ।

ଆୟୁଷ୍ୟସୂକ୍ତ—କ୍ଲୀ. ବି. ଛନ୍ଦୋଗପରି-ଶିଷ୍ଟୋକ୍ତ ଆଭ୍ୟୁଦୟିକ ଶ୍ରାଦ୍ଧାଦିରେ ପାଠ୍ୟ ସୂକ୍ତବିଶେଷ ।

ଆୟେଷା—ସ୍ତ୍ରୀ. ବି. ମୁସଲମାନ ଧର୍ମ୍ମ ପ୍ରବର୍ତ୍ତକ ମହମ୍ମଦଙ୍କର ତୃତୀୟପତ୍ନୀ, ବଙ୍ଗନବାବ କତ୍‌ଲୁଖାଙ୍କ କନ୍ୟା ।

ଆୟୋଗ—ପୁଂ.ବି. (ଆ + ଯୁଜ୍ + ଭା.ଅ) ଗନ୍ଧମାଲ୍ୟୋପହାର, ବ୍ୟାପାର, ରୋଧ, ତୀର୍ଥ, ଘାଟ,କୂଳ, ସଂଯୋଗ,ନିୟୋଗ ।

ଆୟୋଗବ—ପୁଂ. ସ୍ତ୍ରୀ. ବି. (ଅୟୋ-ଗବ + ଅ) ବୈଶ୍ୟାଗର୍ଭରେ ଶୂଦ୍ରର ଔରସଜାତ ଜାତିବିଶେଷ, (ସ୍ତ୍ରୀ) ଆୟୋଗବୀ ।

ଆୟୋଜକ—ବି. ବିଂ. (ଆ + ଯୁଜ୍ + କ,ଅକ) ଯେ ଯୋଗାଡ଼ କରେ,ସଂଗ୍ରହ-କାରକ,ଉଦ୍‌ଯୋଗୀ,(ସ୍ତ୍ରୀ)ଆୟୋଜିକା ।

ଆୟୋଜନ—କ୍ଲୀ.ବି. (ଆ + ଯୁଜ୍ + ଭା. ଅନ) ଉଦ୍‌ଯୋଗ, ଆହରଣ, ସଂଗ୍ରହ, ଯୋଗ, ସଂଶ୍ଳେଷ, ଯୋଗାଡ଼, (ନ୍ୟାୟ-ମତେ) କର୍ମ୍ମ, ବ୍ୟାଖ୍ୟାନ, (ଅବ୍ୟ) ଯୋଜକପର୍ଯ୍ୟନ୍ତ ।

ଆୟୋଜିତ—ବି. ବିଂ. (ଆ + ଯୁଜ୍ + ଣିଚ୍ + ତ) ଯାହାର ଆୟୋଜନ କରାହୋଇଅଛି, ସମ୍ୟକ୍ ସମ୍ପାଦିତ, ସଂଗୃହୀତ, ଆହୃତ ।

ଆୟୋଦ—ପୁଂ. ବି. ଧୌମ୍ୟମୁନି ।

ଆୟୋଧନ—କ୍ଲୀ.ବି. (ଆ + ଯୁଧ୍ + ଅନ) ରଣକ୍ଷେତ୍ର, ଯୁଦ୍ଧସ୍ଥାନ, ଯୋଧନ, ଯୁଦ୍ଧ-କ୍ରିୟା, ବଧ, ହିଂସା ।

ଆର—ପୁଂ. ବି. (ଋ + କ.ଅ) ମଙ୍ଗଳ ଗ୍ରହ, ଶନି ଗ୍ରହ, ମଧୁରାମ୍ଳ ଫଳବୃକ୍ଷ, ପ୍ରାନ୍ତଭାଗ (କ୍ଲୀ) ଚମାରର ଅସ୍ତ୍ରବିଶେଷ, ଅର, ମୁଣ୍ଡଲୌହ, ପିତ୍ତଳ, କୋଣ, (ପୁଂ) ଗମନ, ଦୂର ।

ଆରଉଲ—ଗ୍ରା.ବି. ଦିବସର ଅନ୍ୟ ଅର୍ଦ୍ଧ, ଅପରାହ୍ଣ ।

ଆରକ୍—(ଯା) ମୂଳଅର୍ଥ, ଘର୍ମ୍ମ, ଘମ, ଅର୍କ, ଉତ୍ତର-ପଶ୍ଚିମାଞ୍ଚଳେ ପ୍ରଚଳିତ ମଦ୍ୟବିଶେଷ ।

ଆରକ—ଗ୍ରା. (ସର୍ବ) ଅନ୍ୟବ୍ୟକ୍ତି, ଅନ୍ୟ-ଜଣକ, ଅନ୍ୟପଦାର୍ଥ ।

ଆରକୂଟ—ପୁଂ. କ୍ଲୀ. ବି. (ଆର + କୂଟ) ପିତ୍ତଳାଭରଣ, ପିତ୍ତଳର ଅଳଙ୍କାର, ପିତ୍ତଳ ।

ଆରକ୍ତ—ବି. ବିଂ. (ଆ + ରନ୍‌ଜ୍ + ତ) ଈଷତ୍ ରକ୍ତ,ଈଷତ୍ ରକ୍ତବର୍ଣ୍ଣ, ସମ୍ୟକ୍ ରକ୍ତବର୍ଣ୍ଣ, ରକ୍ତବର୍ଣ୍ଣଯୁକ୍ତ, ସମ୍ୟକ୍ ଅନୁରକ୍ତ,(କ୍ଲୀ) ଅନୁରାଗ ।

ଆରକ୍ତନୟନ—ପୁଂ. ବିଂ. (ବି.ସ୍ତ୍ରୀ) କ୍ରୋଧ, ନିଶା, କାମ ବା ରୋଗଯୋଗୁଁ ଆଖି ଲାଲହେବା (ସ୍ତ୍ରୀ) ଆରକ୍ତନୟନା ।

ଆରକ୍ତିମା—ସ୍ତ୍ରୀ. ବି. (ଆରକ୍ତ + ଇମନ୍) ଈଷତ୍‌ଲାଲ, ବିଶେଷ ଲାଲରଙ୍ଗ ।

ଆରକ୍ଷ—ପୁଂ. ବି. (ଆ + ରକ୍ଷ୍ + କ.ଅ) ହସ୍ତିମସ୍ତକ କୁମ୍ଭର ଅଧଃସ୍ଥଳ, ହସ୍ତି-ମୁଣ୍ଡର ଚର୍ମ୍ମ,ସନ୍ଧି,ସୈନ୍ୟ(ବିଂ)ରକ୍ଷକ, ରକ୍ଷୋଦ୍ଦିଷ୍ଟ (ସ୍ତ୍ରୀ) ସମ୍ୟକ୍‌ରକ୍ଷା ।

ଆରକ୍ଷକ—ବି. ବିଂ. ରକ୍ଷାକାରୀ, ରକ୍ଷା-କର୍ତ୍ତା,ରକ୍ଷକ (ସ୍ତ୍ରୀ) ଆରକ୍ଷିକା (ପୁଂ.ବି) ପ୍ରହରୀ ।

ଆରକ୍ଷା—ସ୍ତ୍ରୀ.ବି. (ଆ + ରକ୍ଷ୍ + ଅ + ଆ) ଆରକ୍ଷଣ, ତ୍ରାଣ । [ରକ୍ଷୀ ।

ଆରକ୍ଷିକ-ପୁଂ.ବି. (ଆ + ରକ୍ଷ + କ.ଇକ)

ଆରଗ୍‌ବଧ—ପୁଂ.ବି. (ଆ + ରଗ + ବଧ୍ + ଅ)ରାଜବୃକ୍ଷ,କୃତମାଲ,ସୁନାରୀଗଛ ।

ଆରଙ୍ଗ—ମଧ୍ୟପ୍ରଦେଶ ରାଏପୁରଜିଲ୍ଲାସ୍ଥ ଗୋଟିଏ ନଗର, ଆରଙ୍ଗ ।

ଆରଜ୍—(ଯା)ବି. ଆବେଦନ, ଦରଖାସ୍ତ, ପ୍ରାର୍ଥନା, ଅନୁନୟ ।

ଆରଜ୍‌ବେଗ—(ଯା) ବି. ଯେ ବ୍ୟକ୍ତି ଅଦାଲତରେ ଅର୍ଜି ପେଷ କରାଏ, ପେସ୍କାର, ବେଞ୍ଚକ୍ଲର୍କ ।

ଆରଜା—(ଯା) ଶସ୍ତା,ଯେ ମହର୍ଗ ନୁହେ

ଆରଜୀ—(ଯା) ଜ୍ଞାପନପତ୍ର, ଆବେଦନ-ପତ୍ର, ଦରଖାସ୍ତ, ଅଭିଯୋଗ ।

ଆରଟ—ବିଂ. (ଆ + ରଟ୍ + ଅ) ସମ୍ୟକ୍ ଶବ୍ଦକର୍ତ୍ତା, (ପୁଂ.ବି) ନଟ,ମାଂସ, (ସ୍ତ୍ରୀ) ନଟୀ, ଶବ୍ଦକର୍ତ୍ତ୍ରୀ । [ଆରାବ ।

ଆରଟିତ—କ୍ଲୀ.ବି. (ଆ + ରଟ୍ + ଭା.ତ)

ଆରଟ—ପୁଂ.ବି. ଯଯାତିବଂଶୀୟ ସେତୁ ପୁତ୍ର,ଏହାର ପୁତ୍ରନାମ ଗାନ୍ଧାର,ଦେଶ-ବିଶେଷ, ପଞ୍ଜାବ ।

ଆରଟ୍ଟଜ—ପୁଂ. ସ୍ତ୍ରୀ.ବିଂ. ଆରଟ୍ଟ ଦେଶ-ଜାତ, ଆରଟ୍ଟଦେଶୋତ୍ପନ୍ନ, (ବି) ଘୋଟକ । [ ନଗର ।

ଆରଡ଼ା—ବଙ୍ଗଳାର ଗୋଟିଏ ପ୍ରାଚୀନ

ଆରଣ—(ଯା) କ୍ଲୀ.ବି. (ଆ + ଋ + ଅନ) ଅନ୍ଧକୂପାଦି, (ଗ୍ରା. ବି) ଆଙ୍କୁଶ ।

ଆରଣି—ପୁଂ. ବି. ( ଆ + ଋ + ଅନି ) ଆବର୍ତ୍ତ, ଜଳର ଭ୍ରମଣ, ଜଳର ଘୂର୍ଣ୍ଣନ, ଘୂରୁଥିବାଜଳ, ଆରଣିଜାତ ।

ଆରଣେୟ—ପୁଂ.ବିଂ.ବି.(ଆରଣୀ + ଏୟ) ଶୁକଦେବ, ଅରଣୀଭବ, ଅରଣୀ-ସମ୍ବନ୍ଧୀ, ମହାଭାରତ ବନପର୍ବାନ୍ତର୍ଗତ ଅରଣୀହରଣ ଅଧିକାରେ ବ୍ୟାସକୃତ ଅବାନ୍ତର ପର୍ବବିଶେଷ ।

ଆରଣ୍ୟ—ତ୍ରି.ବିଂ. (ଆରଣ୍ୟ + ଅ)ବନ-ଜାତ, (ପଶୁ ପ୍ରଭୃତି), ତୃଣ, ଧାନ୍ୟ ବା ନୀବାର, ଜ୍ୟୋତିଷୋକ୍ତ ମକର ରାଶିର ପ୍ରଥମାର୍ଦ୍ଧ ଦିବସୀୟ ସିଂହରାଶି, ମେଷ, ବୃଷ, ମହାଭାରତ ପର୍ବ ଓ ରାମାୟଣ କାଣ୍ଡବିଶେଷ ।

ଆରଣ୍ୟକ—ତ୍ରି. ବିଂ. (ଅରଣ୍ୟ + କ) ବନବାସୀ, ବନଜାତ, (ବି) ନ୍ୟାୟଶାସ୍ତ୍ର, ମହାଭାରତ ପର୍ବବିଶେଷ, ମୁନି, ବାନ-ପ୍ରସ୍ଥ,ଅରଣ୍ୟେ ଗେୟ, ଜଙ୍ଗଲୀ ମନୁଷ୍ୟ, ବନ୍ୟ ହସ୍ତୀ ଇତ୍ୟାଦି, ପଥ, ଗୋମୟ, (କ୍ଲୀ) ବେଦର ଅଂଶବିଶେଷ ।

ଆରଣ୍ୟକ ପର୍ବ—ବି.ସାମବେଦର ଶାଖା-ବିଶେଷ ।

ଆରଣ୍ୟକବ୍ରାହ୍ମଣ—ବି. ସାମବେଦର ଶାଖାବିଶେଷ, ଏକ ପ୍ରକାର ବ୍ରାହ୍ମଣ ।

ଆରଣ୍ୟକୁକ୍‌କୁଟ—ପୁଂ. ସ୍ତ୍ରୀ ବନକୁକ୍‌କୁଟ, ବନକୁକୁଡ଼ା, (ସ୍ତ୍ରୀ) ଅରଣ୍ୟ କୁକ୍‌କୁଟୀ ।

ଆରଣ୍ୟଗାନ—ସାମବେଦାତ୍ମକ ଗାନଗ୍ରନ୍ଥ-ବିଶେଷ, ସାମଗାନ ଚାରିପ୍ରକାର, ଯଥା-ଗେୟଗାନ, ଆରଣ୍ୟଗାନ, ଊହଗାନ, ଊହ୍ୟଗାନ ।

ଆରଣ୍ୟପଶୁ—ପୁଂ. ବି. (କ.ଧା) ସୃଷ୍ଟ୍ୟୁକ୍ତ ସାତପ୍ରକାର ମହାପାଦ ଜଙ୍ଗଲ ପଶୁ ।

ଆରଣ୍ୟମୁଦ୍‌ଗ—ପୁଂ.ବି. (କ.ଧା) ବନ-ମୁଦ୍‌ଗ, ବଣମୁଗ, ମୁଦ୍‌ଗପର୍ଣ୍ଣୀ ।

ଆରଣ୍ୟରାଶି— ପୁଂ. ବି. ଆରଣ୍ୟଶବ୍ଦୋକ୍ତ ପ୍ରଥମାର୍ଦ୍ଧ ଦିବସୀୟ ମକର ଓ ସିଂହ-ରାଶି, ମେଷ ଏବଂ ବୃଷରାଶି ।

ଆରଣ୍ୟକସଂହିତା—ଛନ୍ଦ ଅର୍ଚ୍ଚିକ ଷଷ୍ଠ ପ୍ରପାଠକର ନାମ ଆରଣ୍ୟସଂହିତା, ଏହା ଅରଣ୍ୟରେ ଅଧ୍ୟୟନ କରାଯାଏ ।

ଆରତ—ବିଂ.(ଆ + ରମ + ତ)ଉପରତ-ରତ, ସର୍ବତୋଭାବେ ରତହେବା, ରତିଦକ୍ଷ, ରମଣପଟୁ, ପ୍ରଶାନ୍ତ, ବିରତ, ଆର୍ତ୍ତି, କାମାତୁର ।

ଆରତି—ସ୍ତ୍ରୀ. ବି. ( ଆ + ରମ୍ + ଭା.ତି ) ଏକାନ୍ତ ଇଚ୍ଛା, ଦର୍ଶନଲାଲସା, ଅଭି-ରୁଚି, ମନୋଯୋଗ, ବିହ୍ୱଳତା, ରତି, ଉପରାମ, ନିବୃତ୍ତି, ନୀରାଜନ, ଆରତିକ, ଆଲତି, କ୍ଷାନ୍ତି, (ପୁଷ୍ପର) ବୃନ୍ତ ହୋଇ ଯାଇଥିବା ଅବସ୍ଥା ।

ଆରଥ—ପୁଂ. ବି. ଗୋଟିଏ ଅଶ୍ୱଦ୍ୱାରା ଗମନସାଧନ ରଥ, ବଗୀ ପ୍ରଭୃତି ।

ଆରଦ୍ର—(ହରଦ୍ରାର ଅପଭ୍ରଂଶ) ହଳଦୀ, ଓଦା । [ସେତୁପୁତ୍ର ।

ଆରଦ୍ଧ—ବିଂ. (ଆ + ରଧ + ତ)ସସିଦ୍ଧ,

ଆରନାଲ,ଆରନାଳକ—କ୍ଲୀ.ବି.(ଆର + ନର + ଅବାଲକ ) କାଞ୍ଜି, କାଞ୍ଜିପାଣି, କାଞ୍ଜିକ, ତୋରାଣି, ତୋରାଣି, ।

ଆରପଟ—ଗ୍ରା. ବି. ଅପରଦିଗ, ଅନ୍ୟ-ପାର୍ଶ୍ୱ, ବିପରୀତ ଦିଗ ବା ଅଂଶ ।

ଆରପାର—ଗ୍ରା.ବିଂ.ଅସ୍ତବ୍ୟସ୍ତ (ବି) ନଦୀ ବା ଜଳାଶୟର ବିପରୀତ କୂଳ ।

ଆରବ୍ଧ—ତ୍ରି..ବିଂ. (ଆ + ରଭ୍ + ମି.ତ) କୃତାରମ୍ଭଣ, ଯାହାର ଆରମ୍ଭ କରା-ହୋଇଅଛି, (କ୍ଲୀ) ଆରମ୍ଭ, ଉପକ୍ରାନ୍ତ, ଅନୁଷ୍ଠିତ ।

ଆରବ୍ଧବ୍ୟ—ବିଂ. ( ଆ + ରଭ୍ + ମି. ତବ୍ୟ) ଆରବ୍ଧ ହେବାର ଯୋଗ୍ୟ ।

ଆରବ୍ଧି—ବିଂ. (ଆ + ରଭ୍ + ଭା.ତି ) ଆରମ୍ଭ, ଉଦ୍‌ଯୋଗ ।

ଆରଭଟ—ପୁଂ.ବି. (କ.ଧା) ଶୂର, ସାହ ।

ଆରଭଟି(ଟୀ)—ସ୍ତ୍ରୀ.ବି. (ଆ + ରଭ୍ + ମି.ଅଟି-ଟୀ) ବୃତ୍ତିବିଶେଷ,ମାୟା, ଇନ୍ଦ୍ର-ଜାଲ, ବଧ, ବନ୍ଧନ, ପ୍ରବଞ୍ଚନା, ଦମ୍ଭ, ବନ୍ଧନ, ମିଥ୍ୟାଦିଯୁକ୍ତ ବୃତ୍ତିକୁ ଆରଭଟୀ କୁହାଯାଏ,—ପରତ୍ୟାଗ, ଅଧଃପତନ, ବସ୍ତୁ ଉତ୍ଥାନ, ସଫେଟ, ଏହି ଚାରିପ୍ରକାର ଆରଭଟୀ ବୃତ୍ତିର ଅଙ୍ଗ ।

ଆରଭମାଣ—ତ୍ରି.ବିଂ. (ଆ + ରଭ୍ + କ. ଆନ) ଯାହା ଆରମ୍ଭ କରାହୋଇଅଛି, ଉପକ୍ରମମାଣ, ଯେ ଆରମ୍ଭ କରଅଛି ।

ଆରଭ୍ୟ-ବିଂ. (ଆ + ରଭ୍ + ଯ)ଆରମ୍ଭ-ଣୀୟ, ଆରମ୍ଭକରିବାର ଯୋଗ୍ୟ,(ଅବ୍ୟ) ଆରମ୍ଭକରି, ବୌଦ୍ଧଶାସ୍ତ୍ରମତେ ସମ୍ବ-ନ୍ଧୀୟ ।

ଆରମଣ—କ୍ଲୀ.ବି.(ଆ + ରମ୍ + ଭା,ଅନ) ଆରାମ, ବିଶ୍ରାମ, ଆରତିସାଧନ, ଆନନ୍ଦଲାଭ, ବିଶ୍ରାମ ସ୍ଥାନ ।

ଆରମ୍ବଣ—କ୍ଲୀ.ବି. (ଆ + ଲବ + ଅନ) (ବୈଦିକ) ଆଲମ୍ବନ, ଆଶ୍ରୟ ।

ଆରମ୍ଭ—ପୁଂ. ବି. ଆ + ରଭ୍ + ଭା.ଅ) ଉଦ୍ୟମ, ତ୍ୱରା, ଉପକ୍ରମ, ପ୍ରଥମ କାର୍ଯ୍ୟ, ପ୍ରସ୍ତାବନା, ଯତ୍ନ, ଉପାୟ, ବଧ, ଦର୍ପ, ପ୍ରୟୋଗ, ପ୍ରବୃତ୍ତି, କୌଣସି କାର୍ଯ୍ୟର ପ୍ରଥମ ଉପକ୍ରମକୁ ଆରମ୍ଭ କୁହାଯାଏ ।

ଆରମ୍ଭକ—ତ୍ରି. ବିଂ. (ଆ + ରଭ୍ + କ, ଅକ ) ଆରମ୍ଭକାରକ, ଯେ ଆରମ୍ଭ କରେ, ଜନକ, ଉତ୍ପାଦକ ।

ଆରମ୍ଭଣ—କ୍ଲୀ. ବି. (ଆ + ରଭ୍ + ଅନ) ଆରମ୍ଭ, ଉଦ୍ୟମ, ଚେଷ୍ଟା, ପ୍ରସ୍ତାବନା, ଗର୍ବ ।

ଆରଭ୍ୟମାନ—ବିଂ. (ଯାହାକୁ) ଆରମ୍ଭ କରାଯାଏ, ଆରମ୍ଭର ପ୍ରୟୋଜନ ପଦାର୍ଥ, ଉପାଦାନକରଣ ।

ଆରମ୍ଭଣୀୟ—ବିଂ. (ଆ + ରଭ୍ + ଅନୀୟ) ଯାହା ଆରମ୍ଭ କରିବାର ଯୋଗ୍ୟ, ଆରମ୍ଭ କରିବାର ଶକ୍ୟ ପଦାର୍ଥ ।

ଆରମ୍ଭବାଦ—ପୁଂ. ବି. ପରୀକ୍ଷାପୂର୍ବକ କଥାବିଶେଷ, ବୈଦେଶିକମାନଙ୍କର ମତସିଦ୍ଧ ପରମାଣୁରୁ ଜଗତର ଉତ୍ପତ୍ତି-ବାଦ ।

ଆରମ୍ଭୀ—ପୁଂ. ବିଂ. (ଆରମ୍ଭ + ଇନ୍) ଆଡ଼ମ୍ବରପ୍ରିୟ, ଗର୍ବୀ ।

ଆରବ—(ଆ + ରୁ + ଅ) ଏସିଆଖଣ୍ଡର ପଶ୍ଚିମସ୍ଥ ଗୋଟିଏ ଦେଶ, ଶବ୍ଦ, ଧ୍ୱନି ।

ଆରବ—ପୁଂ.ବି. (ଆ + ରୁ + ଅ) ସମ୍ୟକ୍ ଶବ୍ଦ, ଆରାବ, ସଂରାବ, ବିରାବ ।

ଆରବ୍ୟ—ଆରବଦେଶର ଭାଷା, କୋରାନ୍ ଶାସ୍ତ୍ର ଏହି ଭାଷାରେ ଲିଖିତ ।

ଆରସ—(ଅଡ଼୍ସ) ଏକପ୍ରକାର ଗଛ ।

ଆରସୀ—ଗ୍ରା. ବି. ଆୟନା, ଆର୍ଶୀ, ଦର୍ପଣ, ଦର୍ଶନ ।

ଆରସୁଲା—ଗ୍ରା. କୀଟବିଶେଷ, ତେଲା ପୋକ, ତୈଳପାୟିକା, ତୈଳଚୌରିକା (ଅସର୍ପା) ।

ଆରସ୍ୟ—କ୍ଲୀ.ବି. ରସହୀନତ୍ୱ, ଅରସତ୍ୱ, ଅରସତା ।

ଆରା—ସ୍ତ୍ରୀ. ବି. (ଆ + ଋ + ଅ + ଆ) ଚର୍ମଭେଦକ ଅସ୍ତ୍ରବିଶେଷ, ପ୍ରତୋଦ, ଅଶ୍ୱାଦିତାଡ଼ନା ଦଣ୍ଡ, ଛୁରିକା, ଫୋଡ଼ଣୀ, ପାଞ୍ଚଣ, କରତ, ଅଙ୍କୁଶ, ତର୍କୁ ।

ଆରା—ବିହାର ପ୍ରଦେଶାନ୍ତର୍ଗତ ଶାହାବାଦ ଜିଲ୍ଲାର ଗୋଟିଏ ନଗରବିଶେଷ ।

ଆରାକର—(ଯା) ପୁଂ.ବି. କରତି ।

ଆରାକାନ—ବ୍ରହ୍ମଦେଶର ଉତ୍ତର ବିଭାଗ ପ୍ରଦେଶବିଶେଷ ।

ଆରାଗ୍ର—କ୍ଲୀ.ବି. ଚର୍ମଭେଦକାସ୍ତ୍ରର ଅଗ୍ର-ଭାଗ, ପାଞ୍ଚଣର ଅଗ୍ରଭାଗ, ଅର୍ଦ୍ଧଚନ୍ଦ୍ରାକାର କ୍ଷୁରପ୍ରାୟ ଅସ୍ତ୍ରର ମୁଖ । [କ୍ଷେତ ।

ଆରାଜି—(ଯା) ବି. ଜମି, ଭୂମି, କ୍ଷେତ୍ର ।

ଆରାଟ୍ଟୀ—ସ୍ତ୍ରୀ. ବି. (ଆ + ରାଜ୍ + ଅନନ୍ + ଈ) ଦେଶବିଶେଷ ।

ଆରାଟ୍ଟକ—ବି. ଆରାଷ୍ଟ୍ରକଦେଶ, (ବିଂ) ତଦ୍ଦେଶଜାତ ।

ଆରାତ୍—ଅବ୍ୟ. ଦୂର, ସମୀପ, ନିକଟ, ଦୂରରେ, ନିକଟରେ ।

ଆରାତି—ପୁଂ.ବି. (ଆ + ରା + ଅତି) ଶତ୍ରୁ, ରିପୁ, ବୈରୀ, ବିପକ୍ଷ ।

ଆରାତୀୟ—ବିଂ. ନିକଟଜାତ, ଦୂରଜାତ, ଦୂରେ ବା ନିକଟେ ଜାତ, ଶତ୍ରୁସମ୍ବନ୍ଧୀୟ

ଆରାତ୍ରିକ—କ୍ଲୀ. ବି. (ଆ + ରାତ୍ରି + କ) ନୀରାଜନ କର୍ମ, ଆରତି, ପ୍ରଦୀପଦ୍ୱାରା ମନ୍ତ୍ରୋଚ୍ଚାରଣ ପୂର୍ବକ ବନ୍ଦାପନା ।

ଆରାଧକ—ପୁଂ. ବି. (ଆ + ରାଧ୍ + କ. ଅକ) ଆରାଧନାକାରୀ, ଉପାସକ, ପୂଜକ, ସେବକ, (ସ୍ତ୍ରୀ) ଆରାଧିକା ।

ଆରାଧନ—କ୍ଲୀ. ବି. (ଆ—ରାଧ୍ + ଭା. ଅନ) ସାଧନ, ପ୍ରାପ୍ତି, ତୋଷଣ, ପଚନ, ପାକ, ସନ୍ତୋଷ, ସତ୍କାର, ସମାଦର, ସଂସିଦ୍ଧି, ଅଭ୍ୟାସ, ପାକ, ଅର୍ଚ୍ଚନା, ପୂଜା, ସେବା, ପରିଚର୍ଯ୍ୟା, ଅଭ୍ୟାସ ।

ଆରାଧନା—ସ୍ତ୍ରୀ. ବି. (ଆ + ରାଧ୍ + ଅନ + ଆ) ସେବା, ଶୁଶ୍ରୂଷା ଅଭ୍ୟାସ, ପ୍ରାପ୍ତି, ଉପାସନା, ପୂଜା, ପୂଜା-ସାଧନ, ପାକ, ଆରାଧନା ।

ଆରାଧନୀୟ—ବି. ବିଂ. (ଆରାଧ୍ + କର୍ମ, ଅନୀୟ) ଆରାଧନା କରିବାର ଯୋଗ୍ୟ, ସେବନୀୟ, ଉପାସ୍ୟ (ସ୍ତ୍ରୀ) ଆରାଧନୀୟା ।

ଆରାଧୟ—ପୁଂ.ବି, (ଆ + ରାଧ୍ + ଇ + ଅ) ଆରାଧନକାରକ, (କ୍ଲୀ) ଆରାଧୟ୍ୟ, ଆରାଧନକର୍ତ୍ତୃତ୍ୱ, ଆରାଧନାକର, ଉପାସ୍ୟ

ଆରାଧୟିତା—ପୁଂ. ବିଂ. (ଆ + ରାଧ୍ + ଇ + ତୃ) ପରିଚାରକ, ସେବକ, ଶୁଶ୍ରୂଷା-କାରକ (ସ୍ତ୍ରୀ) ଆରାଧୟିତ୍ରୀ ପରିଚାରିକା ।

ଆରାଧୟିଷ୍ଣୁ—ବିଂ. (ଆ + ରାଧ୍ + କ. ଇଷ୍ଣୁ) ଆରାଧନଶୀଳ ।

ଆରାଧିତ—ବି. ବି.°. (ଆ + ରାଧ୍ + ର୍ମ. ତ) ସେବିତ ପୂଜିତ, ଅର୍ଚ୍ଚିତ, ତୋଷିତ, ଅଭ୍ୟସ୍ତ, ପ୍ରାପ୍ତ, (ସ୍ତ୍ରୀ) ଆରାଧିତା ।

ଆରାଧ୍ୟ—ବି. ବିଂ. (ଆ + ରାଧ୍ + କର୍ମ + ଯ) ଉପାସ୍ୟ, ସେବ୍ୟ, ପୂଜ୍ୟ, ତୋଷ-ଣୀୟ ।

ଆରାଧ୍ୟମାନ—ବି.ବିଂ. (ଆ + ରାଧ୍ + କର୍ମ. ଆନ) ପୂଜ୍ୟମାନ, ସେବ୍ୟମାନ ।

ଆରାପ—ବିହାରପ୍ରଦେଶୀୟ ସାତମୂଲୀୟ ମଦ୍ଧିୟାନାମକ ନୀଚଜାତିର ଶାଖା-ବିଶେଷ ।

ଆରାମ—ଯା. (ବି). (ଆ + ରମ୍ + ଅ) ଉପ-ବନ, କୃତ୍ରିମବନ, ଉଦ୍ୟାନ, ବଗିଚା, ଅବାଧ, ଉପରାମ, ସୁସ୍ଥତା, ସୁଖ, ବିରତି, ନିବୃତ୍ତି ।

ଅରାମ—ପୁଂ. ବିଶ୍ରାମ, ସୁସ୍ଥତା, ଆଶ୍ରୟ, ଆଧାର, ପ୍ରୀତି, ସ୍ୱାଚ୍ଛନ୍ଦ୍ୟ, ସେବନ, ବିଶ୍ରାମଭବନ, (ଗ୍ରା) ଆରୋଗ୍ୟ ।

ଆରାମଶାହ—ଦିଲ୍ଲୀର ଜଣେ ବାଦଶା, ସୁଲ୍‌ତାନ କୁତବଉଦ୍ଦୀନଙ୍କ ପୁତ୍ର ।

ଆରାବଲୀ—ରାଜପୁତନାଠାରୁ ଆଜମୀର ପର୍ଯ୍ୟନ୍ତ ବିସ୍ତୃତ ଗିରିଶ୍ରେଣୀ ।

ଆରାମଶୀତଳା—ସ୍ତ୍ରୀ.ବି. (ତନ୍ତ୍ର) ସୁଗନ୍ଧ ପତ୍ରଯୁକ୍ତ ବୃକ୍ଷବିଶେଷ ।

ଆରାମିକ—ପୁଂ. ବିଂ. (ଆରାମ + ଇକ) ଉଦ୍ୟାନପାଳ, ମାଳୀ । [ଭୂଭାଗ ।

ଆରାରଟ—ଆର୍ମେନିୟାର ପାର୍ବତୀୟ

ଆରାରୁଟ—(ଯା.) ଏକପ୍ରକାର ଗଛର (ଶିକଡ଼) ମୂଳଚେର, ହଳଦିଜାତୀୟ ଶାକଗୁଳ୍ମବିଶେଷ, ପାଳୁଅ ।

ଆରାଳ—ବିଂ. ଅଳ୍ପବକ୍ର, ଅଳ୍ପକୁଟିଳ, ଅରାଳିତ, ଅଳ୍ପବକ୍ରୀଭୂତ, ଈଷତ୍ କୁଟିଳଭୂତ ।

ଆରାଳିକ—ବି. ବିଂ. (ଆରାଳ + ଇକ) କୁଟିଳ ଆଚରଣକର୍ତ୍ତା, କପଟିଆ, ବକ୍ରଗାମୀ, (ବିଂ) ପାଚକ, ସୁପକାର, ସୁଆର, ରାନ୍ଧୁଣିଆ ।

ଆରୁଣୀ—ବିଂ. (ଆରାବ + ଇନ୍) ସମ୍ୟକ୍ ଶବ୍ଦକାରକ ।
ଆରି—ଗ୍ରା.ବି.ମତ୍ସ୍ୟବିଶେଷ, ଆଳମାଛ, ଗ୍ରେଟ କରତ ।
ଆରିଆ—ଗ୍ରା. ଅବ୍ୟ. ବୋଟକୁ ପାଖକୁ ନିଅ, ବୋଟ ଚଳାଅ ।
ଆରିତ୍ର—ବିଂ. ନୌକାଦଣ୍ଡଜାତ, ନୌକାଦଣ୍ଡଦ୍ୱାରା ଯାହା ହୁଏ, (ସ୍ତ୍ରୀ) ଆରିତ୍ରିକୀ, ଆରିତ୍ରିକା ।
ଆରିନ୍ଦମ—ପୁଂ.ବି. ସନଶ୍ରୁତ ରାଜାଙ୍କ ପିତା,(ବିଂ) ଶତ୍ରୁବିଜେତା ରାଜାଙ୍କପୁତ୍ର ।
ଆରିନ୍ଦା—(ଯା) ବି. କରବାହକ, ଯେ ବ୍ୟକ୍ତି ରାଜକୋଷରେ ଟଙ୍କା ଆଦାୟ କରି ଜମାଦିଏ, ପିଆଦା ।
ଆରିନ୍ଦମିକ—ବିଂ. ଅରିନ୍ଦମ ଜାତାଦି, ଯେ ଶତ୍ରୁ ଦମନ କରେ ଓ ତାହାଦ୍ୱାରା ଯାହା ହୁଏ । [ଦେଶାଦି ।
ଆରିଷ୍ଟୀୟ—ବିଂ. ଅରିଷ୍ଟର ନିକଟସ୍ଥ
ଆରିସା—ସ୍ତ୍ରୀ. ବି. ଗୁଡ଼ଲଚୂନା ଓ ଗୁଡ଼ରେ ଖଲି ପ୍ରସ୍ତୁତ କରି ତାକୁ ଦଳି ଘିଅ ବା ତେଲରେ ଛାଣି ତିଆରି କରିବା ପିଷ୍ଟକବିଶେଷ, ଏକଜାତୀୟ ଅର୍ଶୋହର ଗୁଳ୍ମ, ଅର୍ଶରୋଗ ।
ଆରିହଣକ—ବିଂ. ଶତ୍ରୁଘାତକସମ୍ପନ୍ନ, ଯେ ଶତ୍ରୁହନନ କରେ, ତଦ୍ଧ୍ୱାରାନିଷ୍ପନ୍ନ ।
ଆରୁ—ପୁଂ. ବି.(ଋ + ଉ) ବୃକ୍ଷବିଶେଷ, କର୍କଟ, ଶୂକର, ଆଳୁ, ପିଙ୍ଗଳବର୍ଣ୍ଣ, କଙ୍କଡ଼ା । [ପାଧିବିଶେଷ ।
ଆରୁକ—ଗ୍ରା.ବି. କେଉଟମାନଙ୍କ ବଂଶୋ-
ଆରୁକା—ଗ୍ରା. ବି. କେବଳ ଧାନଗଛ ମୂଳକାଟି ହଉସୁଙ୍କର ଅଗ ଏକତ୍ରଛନ୍ଦି ଧାନବିଡ଼ା ବନ୍ଧାଯିବାର ନାମ ।
ଆରୁଜ—ବିଂ. ସମ୍ୟକ୍ ପୀଡ଼କ, ସମ୍ୟକ୍ ପୀଡ଼ାଦାୟକ, (ପୁଂ.ବି) ରାବଣପକ୍ଷୀୟ ରାକ୍ଷସବିଶେଷ ।
ଆରୁଜନ୍ତୁ—(ଯା) ବିଂ.ଭଞ୍ଜକ,ଭେଦକାରୀ ।
ଆରୁଣକ—ବିଂ. ଅରୁଣଦେଶଭବାଦି, ଅରୁଣଦେଶଜାତାଦି ।
ଆରୁଣଡ଼ାଙ୍ଗୀ—ଅରୁଣଡ଼ଙ୍ଗୀ, ମାନ୍ଦ୍ରାଜ ପ୍ରଦେଶସ୍ଥ ତାଞ୍ଜୋରର ଗୋଟିଏ ଭୂଭାଗ ।
ଆରୁଣି—ପୁଂ.ବି. (ଅରୁଣ + ଇ) ଉଦ୍ଦାଳକ, ଗୌତମ ମୁନି ବୈଶମ୍ପାୟନଙ୍କ ଶିଷ୍ୟବିଶେଷ,ଅରୁଣ, ଉପବେଶିର ପୁତ୍ର, ଶ୍ୱେତକେତୁର ପିତା, ପ୍ରଜାପତିର ପୁତ୍ର ସୁପର୍ଣ୍ଣେୟ,ବ୍ୟାସ, ସାମବେଦ ବ୍ରାହ୍ମଣବିଶେଷ, ସୂର୍ଯ୍ୟତନୟ, ବିନତାର ପୁତ୍ର, ଗରୁଡ଼ାଗ୍ରଜର କନ୍ୟା ବା ପୁତ୍ରରୂପ ଅପତ୍ୟ ।
ଆରୁଣୀ—ପୁଂ.ବି. ବୈଶମ୍ପାୟନଙ୍କଶିଷ୍ୟ, ଆରୁଣିପ୍ରୋକ୍ତ ଗ୍ରନ୍ଥର ଅଧ୍ୟୟନକାରୀ ଛାତ୍ରସବୁ । [(ବଡ଼ବା)
ଆରୁଣୀ—(ଯା) ସ୍ତ୍ରୀ. ବି. ଅରୁଣବର୍ଣ୍ଣୀ,
ଆରୁଣେୟ—ପୁଂ. ବି. ଉଦ୍ଦାଳକ ପୁତ୍ର, ଶ୍ୱେତକେତୁ ।
ଆରୁଣ୍ୟ—କ୍ଲୀ. ବି. (ଅରୁଣ + ଯ) ରାଗ, ଲୌହିତ୍ୟ, ରକ୍ତିମା ।
ଆରୁତ—କ୍ଲୀ. ବି. (ଆ + ରୁ + ତ) ଆରାବ, ସମ୍ୟକ୍ ଶବ୍ଦ,ଧ୍ୱନି, (ବିଂ) ଶବ୍ଦଯୁକ୍ତ, ଆରାବଯୁକ୍ତ, ଧ୍ୱନିତ ।
ଆରୁଦ୍ଧ—ବିଂ. ( ଆ + ରୁଧ୍ + ତ) ରୁଦ୍ଧ, ନିରୁଦ୍ଧ, ବଦ୍ଧ ।
ଆରୁରୁକ୍ଷା—ସ୍ତ୍ରୀ.ବି.(ଆ + ରୁହ୍ + ସନ୍ + ଅ + ଆ) ଆରୋହଣେଚ୍ଛା, ପ୍ରାପ୍ତୀଚ୍ଛା ।
ଆରୁରୁକ୍ଷୁ—ତ୍ରି.ବିଂ.(ଆ + ରୁହ୍ + ସନ + ଉ) ଆରୋହଣ କରିବାକୁ ଇଚ୍ଛୁକ, ଯେ ବୃକ୍ଷଇତ୍ୟାଦି ଚଢ଼ିବାକୁ ଇଚ୍ଛା କରେ, ଲୋଭେଚ୍ଛୁ ।
ଆରୁଷୀ—ସ୍ତ୍ରୀ. ମନୁଙ୍କର କନ୍ୟା, ଚ୍ୟବନରୃଷିଙ୍କ ପତ୍ନୀ ।
ଆରୁଷୀୟ—ବିଂ. ଆରୁଷୀସମ୍ବନ୍ଧୀୟ, ଆରୁଷର ନିକଟ ସ୍ଥାନାଦି ।
ଆରୁଷ୍କର—କ୍ଲୀ. ବି. ଭଲ୍ଲାତକ ବୃକ୍ଷ ଓ ଫଳ, ଭଲିଆଗଛ ଓ ଫଳ ।
ଆରୁହ—ବିଂ.(ଆ + ରୁହ + ଅ) ଆରୋହଣକର୍ତ୍ତା, ଯେ ସୋପାନାଦିରେ ଆରୋହଣ କରେ (ବି) ଆରୋହଣ ।
ଆରୂ—ପୁଂ. ବି. (ଆ + ଋ + ଉ) ପିଙ୍ଗଳ ବର୍ଣ୍ଣ (ତ୍ରି. ବିଂ.) ପିଙ୍ଗଳବର୍ଣ୍ଣଯୁକ୍ତ ।
ଆରୂଢ଼—ତ୍ରି. ବିଂ. (ଅ + ରୁହ୍ + କ.ତ) ଆରୋହଣକର୍ତ୍ତା,ପ୍ରାପ୍ତ, ଆଶ୍ରିତ, ଉଚ୍ଚ, ଅଗାଢ଼, (ସ୍ତ୍ରୀ) ଆରୂଢ଼ା ।
ଆରୂଢ଼ଯୌବନା—ତ୍ରି. ବିଂ. ( ବ.ବ୍ରୀ ) ଯୌବନପ୍ରାପ୍ତା, ନବଯୁବତୀ, ପତିପ୍ରସଙ୍ଗ ଚିନ୍ତୟା ।
ଆରୂଢ଼ି—ସ୍ତ୍ରୀ. ବି. (ଆ + ରୁହ୍ + ଭା.ତି) ଆରୋହଣ, ପଦପ୍ରାପ୍ତି, ମଧ୍ୟାନାୟିକାବିଶେଷ ।
ଆରେ—(ଯା) ଅବ୍ୟ. ଦୂରେ, ଅବଜ୍ଞାସୂଚକ ସମ୍ବୋଧନ ଶବ୍ଦ, ବିସ୍ମୟ, ଅନୁତାପ, ଘୃଣା, କ୍ରୋଧ ଓ ସମ୍ବୋଧନସୂଚକ ଶବ୍ଦ ।
ଆରେ—ଗ୍ରା.ମିତ, ପାପୀ, ବିପକ୍ଷ,କୁକର୍ମୀ ଏମାନଙ୍କୁ ଏହି ଶବ୍ଦରେ ଡକାଯାଏ ।
ଆରେଅଘ—ବିଂ. (ବୈଦିକ) ବି. ନିଷ୍ପାପ, ପାପଶୂନ୍ୟ ।
ଆରେଇବା—ଗ୍ରା. କ୍ରି. (ଫ.ଆଦର) ଭଲ ଲଗିବା, ଆଦରିଯିବା, ଆପଣ ପର ଭଲ ପାଇବା, ଆଦର କରିବା, ଏକ ପାଖକୁ ଘୁଞ୍ଚାଇ ଦେବା, ଆଡ଼େଇ ଦେବା, ଆଡ଼କୁ ବା ଦିଗକୁ ଅଗ୍ରସର ହେବା, ଅଭ୍ୟସ୍ତ ହେବା, ( ନାହରଆ ଭାଷା) ଉଖାରିବା, ଖସାଇବା, ପାଖେଇବା, ଆଗକୁ ଚଲାଇବା ।
ଆରେକ—ପୁଂ. ବି. (ଆ + ରିଚ୍ + ଅ) ସନ୍ଦେହ, ସଂଶୟ, (ଗ୍ରା) ଅନ୍ୟଜଣେ, ଅପରବ୍ୟକ୍ତି ।
ଆରେଚିତ—ବି.. (ଆ + ରେ + ର୍ମି.ତ) ଈଷତ୍ ଆକୁଞ୍ଚିତ, ସନ୍ଦେହଯୁକ୍ତ, ଶୂନ୍ୟୀକୃତ ।
ଆରେଣି—(ଫ-ଅରଣି) ଗ୍ରା. ବି. (ଆରଣି ଦେଖ) ଯୁଦ୍ଧ, (ବିଂ) ଶ୍ରେଷ୍ଠ ।
ଆରେବତ—ପୁଂ. ବି. (ଆ + ରେବ + ଇ + ଅତ ) କୃତମାଲ, ସୁନାରିଗଛ, (କ୍ଲୀ. ବି.) ସୁନାରିଫଳ ।

ଆରେରେ—ଗ୍ରା. ଅବ୍ୟ (ଆରେ ଦେଖ) (ସ୍ତ୍ରୀ) ଆଲୋଲୋ ।

ଆରୋକ—(ବୈଦିକ) ପୁଂ. ଶିଖା ।

ଆରୋଗ୍ୟ—କ୍ଲୀ. ବ. (ଆ + ରୋଗ + ଯ) ରୋଗଶୂନ୍ୟତ୍ୱ, ନିରୋଗିତା, ରୋଗଶୂନ୍ୟତା, ସ୍ୱାସ୍ଥ୍ୟ ।

ଆରୋଗ୍ୟବ୍ରତ—କ୍ଲୀ. ବ. ବ୍ରତବିଶେଷ, ରୋଗଶୂନ୍ୟ ନିମିତ୍ତ ମାଘ ଶୁକ୍ଳ ସପ୍ତମୀଠାରୁ ଏକବର୍ଷ ପର୍ଯ୍ୟନ୍ତ ପ୍ରତି ଶୁକ୍ଳପକ୍ଷ ସପ୍ତମୀରେ ସୂର୍ଯ୍ୟପୂଜାରୂପକ ଯେ ବ୍ରତ କରାଯାଏ ।

ଆରୋଗ୍ୟଶାଳା—ସ୍ତ୍ରୀ.ବ.(୬ତତ୍),ଚିକିତ୍ସାନିମିତ୍ତ ରାଜାଦିଙ୍କଦ୍ୱାରା କୃତ ଔଷଧଗୃହବିଶେଷ, ଡାକ୍ତରଖାନା, ଦାତବ୍ୟଚିକିତ୍ସାଳୟ ।

ଆରୋଗ୍ୟସାଧକ—ତ୍ରି. ବଂ. ( ୬ତତ୍ ) ରୋଗନାଶ, ବ୍ୟାଧିହର, ନିର୍ବ୍ୟାଧିକାରକ, ସୁସ୍ଥତାଜନକ(ସ୍ତ୍ରୀ) ଆରୋଗ୍ୟସାଧିକା ।

ଆରୋଗ୍ୟସାଧ୍ୟ—ତ୍ରି. ବଂ. (୭ତତ୍) ଯାହା ଆରାମ କରାଯାଇପାରେ, ପ୍ରତିକାର୍ଯ୍ୟ, ପ୍ରତିବିଧେୟ ।

ଆରୋଗ୍ୟସ୍ନାନ—(କ୍ଲୀ.ବ.)ରୋଗଶେଷରେ ଆରୋଗ୍ୟ ଲାଭ ପରେ ଯେ ସ୍ନାନ କରାଯାଏ ।

ଆରୋଚନ –(ଯା) ବଂ. ଅରୁଚି ।

ଆରୋଧନ—କ୍ଲୀ. ବ.(ଆ + ରୁଧ୍ + ଅନ) ଅବରୋଧନ,ନିରୋଧ,(ବଂ) ଆରୋଧକ, ଆବରକ ।

ଆରୋପ—ପୁଂ.ବ. (ଆ + ରୁହ୍ + ଣିଚ୍. ଅ) ଏକ ବସ୍ତୁରେ ଅନ୍ୟ ବସ୍ତୁର ଧର୍ମକୁ ସ୍ଥାପନ କରିବା, ଉଦ୍ଭାବନ, ମିଥ୍ୟାଜ୍ଞାନ, କଳ୍ପନା, ଅଧ୍ୟାସ, ଅବଭାସ, ସ୍ଥାପନ, ନିବେଶ, ଅର୍ପଣ, ଅଭେଦଜ୍ଞାନ, ଭ୍ରମ, ଧନୁର ଜ୍ୟାରେ ଗୁଣ ଚଢ଼ାଇବା ।

ଆରୋପକ—ତ୍ରି. ବଂ. (ଆ + ରୋପି + ଣ.ଅକ) ବୃକ୍ଷାଦିର ଆରୋପଣକର୍ତ୍ତା, ଯେ ବୃକ୍ଷାଦି ରୋପଣ କରେ(ସ୍ତ୍ରୀ)ଆରୋପିକା ।

ଆରୋପଣ—କ୍ଲୀ. ବ. (ଆ + ରୁହ୍ + ଇ + ଣ.ଅନ) ଆରୋହଣ, ସମ୍ପାଦନ, ସମ୍ୟକ୍‌ରୋପଣ, ସ୍ଥାପନ, ଧନୁରେ ଗୁଣ ଚଢ଼ାଇବା, ରୋଇବା, ସ୍ଥାପନକରିବା ।

ଆରୋପଣୀୟ—ତ୍ରି.ବ. (ଆ + ରୁହ୍ + ଣିଚ + ମ୍ପ.ଅନୀୟ) ଆରୋହଣ କରାଇବାର ଯୋଗ୍ୟ, ରୋପଣ କରାଇବାର ଯୋଗ୍ୟ, ଆରୋପ୍ୟ ।

ଆରୋପିତ—ତ୍ରି. ବଂ. (ଆ + ରୁହ୍ + ଣିଚ୍ + ମ୍ପ.ତ ) ଯାହାକୁ ଆରୋହଣ କରାହୋଇଅଛି, ଯାହାକୁ ରୋପଣ କରାଯାଇଅଛି, ଅନ୍ୟପଦାର୍ଥରେ ସ୍ଥାପିତ, କଳ୍ପିତ, ଗଚ୍ଛିତ, ଅଭିଷିକ୍ତ, ଉତ୍ପାଦିତ, ଆଲକ୍ଷିତ, (ସ୍ତ୍ରୀ) ଆରୋପିତା ।

ଆରୋପ୍ୟ—ବଂ. (ଆ + ରୋପି + ମ୍ପ.ଯ) ଆରୋପଣୀୟ, କଳ୍ପନୀୟ, ଅଧ୍ୟାସାର୍ହ, ଆରୋପର ବିଷୟ, ଉଦ୍‌ଭାବନୀୟ, ଯାହାକୁ ଆରୋହଣ କରାଯିବ ।

ଆରୋପ୍ୟମାଣ—ତ୍ରି. ବ. (ଆ + ରୋପି + ମ୍ପ.ଆନ ) ଆରୋହ୍ୟମାଣ, ଯାହାକୁ ଆରୋହଣ କରାହୋଇଅଛି, ବିମୋହ୍ୟମାନ, (ସ୍ତ୍ରୀ) ଆରୋପ୍ୟମାଣା ।

ଆରୋହ—ପୁଂ. ବ. (ଆ + ରୁହ୍ + କ. ଅ) ତଳୁ ଉପରକୁ ଉଠିବା, ଅଙ୍କୁରାଦିର ପ୍ରାଦୁର୍ଭାବ, ହସ୍ତୀ ବା ଘୋଡ଼ା ଉପରକୁ ଚଢ଼ିବା, ଦୀର୍ଘତ୍ୱ, ଉଚ୍ଚତ୍ୱ, ନିତମ୍ବ,ମାନ, ଭାର, ଆକ୍ରମଣ, ବୃଦ୍ଧି, ଗର୍ବ, ଖନି, ସ୍ତ୍ରୀନିତମ୍ବ, ଅନୁମାନ, ଯେ ଚଢ଼େ ।

ଆରୋହକ—ତ୍ରି.ବଂ. (ଆ + ରୁହ୍ + କ. ଅକ) ଆରୋହଣକର୍ତ୍ତା, ଯେ ଆରୋହଣ କରେ ।

ଆରୋହଣ—କ୍ଲୀ. ବ. (ଆ + ରୁହ୍ + ଭା. ଅନ)ନୀଚ ସ୍ଥାନରୁ ଉର୍ଦ୍ଧ୍ୱସ୍ଥାନକୁ ଗମନ, ଅଙ୍କୁରାଦିମାନଙ୍କର ପ୍ରାଦୁର୍ଭାବ,ସୋପାନ, ସିଡ଼ି, ନିଶୁଣୀ, ଅଭିକ୍ରମ, ସମାରୋହ, ପାବଚ୍ଛ ।

ଆରୋହଣୀ—ସ୍ତ୍ରୀ.ବ. (ଆ + ରୁହ୍ + ଅନ + ଈ) ସୋପାନ, ସିଡ଼ି, ପାହାଚ ।

ଆରୋହଣୀୟ—ତ୍ରି.ବଂ. ( ଆ + ରୁହ୍ + ମ୍ପ.ଅନୀୟ)ଆରୋହଣ ଯୋଗ୍ୟ, ଯାହାକୁ ଉଠିବାକୁ ହେବ, ଆରୋପଣ ସାଧନ ପଦାର୍ଥ ।

ଆରୋହବାନ୍—ବଂ. (ଆରୋହ + ବତ୍) ପ୍ରଶସ୍ତ ନିତମ୍ବଯୁକ୍ତ, ଯାହାର ଭଲ ନିତମ୍ବ ଅଛି, ( ସ୍ତ୍ରୀ ) ଆରୋହବତୀ, ଆରୋହିଣୀ ।

ଆରୋହିତ—ତ୍ରି. ବଂ. ( ଆ + ରୁହ୍ + ଣିଚ୍ + ମ୍ପ.ତ ) ଯାହାକୁ ଆରୋହଣ କରା ହୋଇଅଛି ।

ଆରୋହୀ—(ଆ + ରୁହ୍ + ଇନ୍)ଉଦ୍ଭିଦର ଜାତିଭେଦ, ଆରୋହଣକାରୀ, ଯେ ସବୁ ଉଦ୍ଭିଦ ନିଜର ଭାର ବହନ କରିବାକୁ ଅସମର୍ଥ ।

ଆରୋହ୍ୟମାଣ—ତ୍ରି. ବଂ.(ଆ + ରୁହ୍ + ଣିଚ୍ + ମ୍ପ.ଆନ ) ଯାହାକୁ ଚଢ଼ାଇ ଦିଆହୋଇଅଛି ।

ଆର୍କ—ବଂ. (ଅର୍କ + ଅ)ଅର୍କ,ସୂର୍ଯ୍ୟ,ଅର୍କବ୍ୟାପ୍ୟ, ସୂର୍ଯ୍ୟସମ୍ବନ୍ଧୀୟ, ସୌରି, (ସ୍ତ୍ରୀ) ଆର୍କୀ ।

ଆର୍କଟ—ମାନ୍ଦ୍ରାଜ ପ୍ରଦେଶର ଗୋଟିଏ ଜିଲ୍ଲା, ଏଠାରେ ରକ୍ତଚନ୍ଦନ ବେଶି ମିଳେ, ଏ ଜିଲ୍ଲା ଦୁଇ ଭାଗରେ ବିଭକ୍ତ, ଦକ୍ଷିଣ ଓ ଉତ୍ତର; ଉତ୍ତର ଆର୍କଟ କାଷ୍ଠ, ପିତଳ ଓ କାଚର କାର୍ଯ୍ୟ ନିମିତ୍ତ ପ୍ରସିଦ୍ଧ ।

ଆର୍କଲୁଷ—ପୁଂ. ବ. ଅର୍କଲୂଷନାମକ ଋଷିଙ୍କର କନ୍ୟା ବା ପୁତ୍ରରୂପ ଅପତ୍ୟ

ଆର୍କଲୂଷି —ପୁଂ. ସ୍ତ୍ରୀ.ବ. ଅର୍କଲୂଷ ଋଷିଙ୍କର ଅପତ୍ୟ ।

ଆର୍କାୟଣ—ବଂ. ଅର୍କର ଗୋତ୍ର, ଆର୍କାୟଣି, ଅର୍କର ନିକଟସ୍ଥ ଦେଶାଦି, ସୂର୍ଯ୍ୟଲୋକ ସାଧନ ଯଜ୍ଞାଦି ।

ଆର୍କାୟନ -ପୁଂ.ବ.ଯଜ୍ଞବିଶେଷ,ଭଗୀରଥ ଷୋହଳ ଥର ଏ ଯଜ୍ଞ କରିଥିଲେ ।

ଆର୍କି—ପୁଂ.ବି. (ଅର୍କ+ଇ) ସୂର୍ଯ୍ୟପୁତ୍ର, ଯମ,ଶନି,ବୈବସ୍ୱତ,ମନୁ,ସୁଗ୍ରୀବ,କର୍ଣ୍ଣ ।

ଆର୍କ୍ଷ—ତ୍ରି. ବିଂ. (ଋକ୍ଷ+ଅ) ନାକ୍ଷତ୍ର-ସନାଦ, ନକ୍ଷତ୍ରସମ୍ବନ୍ଧୀ ଷାଠିଏ ଦଣ୍ଡ, ଭଲ୍ଲୁକସମ୍ବନ୍ଧୀ ସ୍ଥାନାଦ,ଭଲ୍ଲୁକଲୋମାଦ, (କ୍ଲୀ.ବି.)ଋକ୍ଷଗଣ,ଗ୍ରହନକ୍ଷତ୍ରାଦସମୂହ ।

ଆର୍କ୍ଷୋଦ—ପୁଂ.ବି. ଋକ୍ଷୋଦ ପର୍ବତରେ ପିତ୍ରାଦକ୍ରମେ ବାସକାରୀ ଦ୍ୱିଜବିଶେଷ ।

ଆର୍କ୍ଷ୍ୟ—ବିଂ. (ଋକ୍ଷ+ଯ) ନକ୍ଷତ୍ରଭବ, ନକ୍ଷତ୍ରରେ ଯାହା ହୁଏ, ଭଲ୍ଲୁକ ଯାହା କରେ ।

ଆର୍ଗଡ଼ା—ଦେ. ( ଅର୍ଗଳର ଅପଭ୍ରଂଶ ) ଘୋଡ଼ାଗାଡ଼ିର ଭଡ଼ା ବା ବନ୍ଧସ୍ଥ ସ୍ଥାନ ଏକ ସ୍ଥାନୀୟ ବ୍ୟବସାୟୀ, ବ୍ୟକ୍ତି,ଜନ୍ତୁ ବା ଦ୍ରବ୍ୟ ଏକତ୍ର ରଖିବାର ସ୍ଥାନ ।

ଆର୍ଗରଣ,ଆର୍ଗୟନ—ବିଂ. ଋଗୟନ ବ୍ୟାଖ୍ୟାନ ଗ୍ରନ୍ଥଜ୍ଞାତ ।

ଆର୍ଗଲ—କ୍ଲୀ. ବି. (ଅର୍ଗଳ+ଅ) ଦ୍ୱାର-ରୋଧକ କାଷ୍ଠବିଶେଷ, ଖିଲ, ଖିଡ଼ିକି ।

ଆର୍ଗବଧ—ପୁଂ. ବି. ଆରଗ୍ୱଧ, କୃତ-ମାଲ, ସୁନାରିଗଛ ।

ଆର୍ଘା—ସ୍ତ୍ରୀ.ବି. (ଆ+ଅର୍ଘ+ଅ+ଆ) ପୀତବର୍ଣ୍ଣ ଦୀର୍ଘମୁଖ ଭ୍ରମର ପରି ମଧୁ-ମକ୍ଷିକାବିଶେଷ, ମହୁମାଛି ।

ଆର୍ଘ୍ୟ—କ୍ଲୀ.ବି. (ଆର୍ଘା + ଯ) ଆର୍ଘାଖ୍ୟ ମଧୁମକ୍ଷିକା ନିଷ୍ପାଦିତ ମଧୁ, ଆର୍ଘାନାମକ ମହୁମାଛିଙ୍କଦ୍ୱାରା ସଞ୍ଚିତ ମହୁ, ମଧୂକ-ବୃକ୍ଷର ନିର୍ଯ୍ୟାସରୂପ ମଧୁ ।

ଆର୍ଚ୍ଚ—ବିଂ. ଯାହାର ପୂଜା କରାଯାଏ, ଯାହାର ଆରାଧନା କରାଯାଏ ।

ଆର୍ଚ୍ଚକ୍ତ—ପୁଂ. ବି. ଋଚକର ପୁତ୍ର ।

ଆର୍ଚ୍ଚଭିନ୍—ପୁଂ. ବି. ଋଗ୍ଭଙ୍କ ଶିଷ୍ୟ ଯେଉଁ ଗ୍ରନ୍ଥ କରିଅଛନ୍ତି ତାହାର ଅଧ-ୟନକାରୀ, ତାହାର ଅଧ୍ୟେତା ।

ଆର୍ଚ୍ଚି—ପ୍ରା. (ଗଞ୍ଜାମ) ବି. ଖିଲ୍ଲଣ ।

ଆର୍ଚ୍ଚିକ—କ୍ଲୀ. ବି. ସାମବେଦୀୟ ଗ୍ରନ୍ଥ-ବିଶେଷ ।

ଆର୍ଚ୍ଚୀକ—ବିଂ. ଋଚକ ପର୍ବତଜାତ, ଋଚକ ପର୍ବତ, ଏହି ପର୍ବତ ପୁଷ୍କର-ତୀର୍ଥ ନିକଟରେ ଅଛି ।

ଆର୍ଜବ—କ୍ଲୀ. ବି. (ଋଜୁ+ଅ) ସାରଲ୍ୟ, ସରଳତା, ପ୍ରତାରଣାରହିତତ୍ୱ, ସରଳ, ସତ୍ତ୍ୱସ୍ୱଭାବ, ଋଜୁତା,ଅକାପଟ୍ୟ,ବିନୀତ-ଭାବ, ଅବକ୍ରତା ।

ଆର୍ଜୀକ—ପୁଂ.ବି.(ଋଜୀକ+ଅ)ଋଜୀକ-ଦେଶ ସମ୍ବନ୍ଧୀ ।

ଆର୍ଜୀକୀୟ—ପୁଂ.ବି. ବେଦୋକ୍ତ ଦେଶ-ବିଶେଷ, (ସ୍ତ୍ରୀ) ଆର୍ଜୀକୀୟା, ବେଦୋକ୍ତ ନଦୀବିଶେଷ ।

ଆର୍ଜ୍ଜୁନାୟକ—ବିଂ. ଆର୍ଜ୍ଜୁନାୟନର ବିଷୟ ବା ଦେଶ । [ ପତ୍ୟ ।

ଆର୍ଜ୍ଜୁନାୟନ-ପୁଂ.ସ୍ତ୍ରୀ.ଅର୍ଜ୍ଜୁନର ଗୋତ୍ରା-

ଆର୍ଜ୍ଜୁନାବକ—ବିଂ. ଅର୍ଜ୍ଜୁନାବନାମକ ଦେଶୋଦ୍ଭବ,ଆର୍ଜ୍ଜୁନାବ ଦେଶଜାତ ।

ଆର୍ଜ୍ଜୁନି-ପୁଂ.ବି. (ଅର୍ଜ୍ଜୁନ+ଇ)ଅର୍ଜ୍ଜୁନ ପୁତ୍ର, ଅଭିମନ୍ୟୁ ।

ଆର୍ଜ୍ଜୁନେୟ-ପୁଂ.ବି. ଅର୍ଜ୍ଜୁନଙ୍କ ଅପତ୍ୟ, କୁଶିକଋଷିଙ୍କଠାରୁ ଅର୍ଜ୍ଜୁନ ପ୍ରତିପାଳନ କରିଥିଲେ ବୋଲି ତାହାର ନାମ କୌଶିକ ଓ ଆର୍ଜ୍ଜୁନେୟ ହୋଇଅଛି ।

ଆର୍ତ୍ତ—ତ୍ରି. ବିଂ. ( ଆ+ଋ+କ,ତ ) ପୀଡ଼ିତ, ଦୁଃଖିତ, ଅସୁସ୍ଥ, ବିନାଶୀ, ବ୍ୟାକୁଳିତ, କ୍ଲିଷ୍ଟ, ବିପନ୍ନ, କାତର, ବିହ୍ୱଳ, ଜର୍ଜ୍ଜରିତ, (ସ୍ତ୍ରୀ) ଆର୍ତ୍ତା ।

ଆର୍ତ୍ତଗଲ—ପୁଂ. ବି. (ଆ+ଋ+ତ+ଗଲ+ଅ) ନୀଳଝିଣ୍ଟୀ, ଦାସକେରଣ୍ଡା ଗଛ ଓ ଫୁଲ ।

ଆର୍ତ୍ତତ୍ରାଣ—ପୁଂ. ବି. (ଆର୍ତ୍ତ+ତ୍ରୈ+କ,ଅନ) ଆର୍ତ୍ତ ବା ବିପନ୍ନ ଲୋକକୁ ଉଦ୍ଧାର କରୁଥିବାରୁ ଈଶ୍ୱର (ବିଂ) ବିପନ୍ନର ଉଦ୍ଧାରକାରୀ ।

ଆର୍ତ୍ତନାଦ-ପୁଂ. ବି. (ଆର୍ତ୍ତ+ନଦ୍ + ଅ) କରୁଣଧ୍ୱନି,ଶୋକସୂଚକ ଶବ୍ଦ,ତ୍ରାହି ରବ

ଆର୍ତ୍ତନାଶନ—ପୁଂ. ବିଂ. ବି. ( ୬ତତ୍ପୁ ) (ଆର୍ତ୍ତତ୍ରାଣ ଦେଖ) । [ ପୁତ୍ର ।

ଆର୍ତ୍ତପର୍ଣ୍ଣି—ପୁଂ. ବି. ଋତପର୍ଣ୍ଣ ରାଜାଙ୍କ

ଆର୍ତ୍ତଭାଗ—ପୁଂ. ସ୍ତ୍ରୀ. ଋତଭାଗ ଋଷିଙ୍କ ଗୋତ୍ରାପତ୍ୟ, (ସ୍ତ୍ରୀ) ଆର୍ତ୍ତଭାଗୀ ।

ଆର୍ତ୍ତବ—ବି. ( ଋତୁ+ଅ ) ସ୍ତ୍ରୀରଜ, ଋତୁ, ଶୋଣିତ, ଋତୁମତୀ ସ୍ତ୍ରୀର ରକ୍ତ, ସ୍ତ୍ରୀମାନଙ୍କର ଜରାୟୁ ନିଃସୃତ ରକ୍ତ, (ବିଂ)ସ୍ତ୍ରୀ.ରଜଃସମ୍ବନ୍ଧ, ଷଡ଼ୃତୁସମ୍ବନ୍ଧୀୟ ।

ଆର୍ତ୍ତବୀ—ସ୍ତ୍ରୀ. ବି. (ଆର୍ତ୍ତବ+ଈ) ଋତୁ-ସମ୍ବନ୍ଧୀୟା, ବି. (ସ୍ତ୍ରୀ) ଘୋଟକୀ ।

ଆର୍ତ୍ତସ୍ୱର—ପୁଂ.ବି. (କ.ଧା) ଆର୍ତ୍ତନାଦ, କାତରଧ୍ୱନି, ଦୁଃଖଯୁକ୍ତ କଣ୍ଠସ୍ୱର ।

ଆର୍ତ୍ତା—ସ୍ତ୍ରୀ. ବିଂ.(ଆର୍ତ୍ତ+ଆ) ପୀଡ଼ିତା, (ବି. ସ୍ତ୍ରୀ.) ସ୍ତ୍ରୀ-ରଜଃ ।

ଆର୍ତ୍ତି—ସ୍ତ୍ରୀ· ବି. (ଆ+ଋ+ତି) ପୀଡ଼ା, ମନୋବ୍ୟଥା, ଧନୁଷ୍କୋଟି, ଧନୁର ଅଗ୍ର, ବିନାଶ,କ୍ଲେଶ, ଆପଦ, ଧନାଦରହିତତ୍ୱ, ରୋଗ ।

ଆର୍ତ୍ତିହର—ପୁଂ. ବି. (ଆର୍ତ୍ତି+ହୃ+ଅ) ବିପଦ୍ଧିହାରକ, ଦୁଃଖନାଶକ ।

ଆର୍ତ୍ତ୍ନୀ—ସ୍ତ୍ରୀ.ବି. ଗତିକର୍ତ୍ତ୍ରୀ, ଯେ ସ୍ତ୍ରୀ ଗମନ କରେ ।

ଆର୍ତ୍ୱିଜ—କ୍ଲୀ.ବି. (ଋତ୍ୱିଜ+ଅ)ପୁରୋ-ହିତର କର୍ମ୍ମ, ପୌରୋହିତ୍ୟ ।

ଆର୍ତ୍ୱିଜୀନ—ପୁଂ.ବି. (ଋତ୍ୱିଜ+ଅ+ଈନ)ସ୍ୱୟଂ ଯଜମାନ,ଋତ୍ୱିକ୍,ପୁରୋହିତ ।

ଆର୍ତ୍ୱିଜ୍ୟ—କ୍ଲୀ. ବି. ( ଋତ୍ୱିଜ୍+ଯ ) ଋତ୍ୱିକ୍‌କର୍ମ, ଯାଜନ ।

ଆର୍ତ୍ତ୍ୱେୟୀ—ସ୍ତ୍ରୀ. ବି. ଆର୍ତ୍ତବଯୁକ୍ତା ସ୍ତ୍ରୀ ।

ଆର୍ତ୍ତ୍ୟ—ପୁଂ. ବି. ଅଥର୍ବବେଦୋକ୍ତ ଦ୍ୱିମୂର୍ଦ୍ଧାନାମକ ଅସୁରର ପିତା ।

ଆର୍ଥ—ତ୍ରି. ବିଂ. (ଅର୍ଥ+ଅ) ଅର୍ଥହେତୁ ପ୍ରାପ୍ତ, ବାକ୍ୟାର୍ଥର ମର୍ଯ୍ୟାଦାଦ୍ୱାରା ପ୍ରାପ୍ତ,(ସ୍ତ୍ରୀ) ଆର୍ଥୀ, ଅଳଙ୍କାରଶାସ୍ତ୍ରୋକ୍ତ ଅର୍ଥସମ୍ଭବବ୍ୟଞ୍ଜନା, ଉପମାଲଙ୍କାର-ବିଶେଷ ।

ଆର୍ଥିକ—ତ୍ରି. ବିଂ. (ଅର୍ଥ+ଇକ) ଅର୍ଥ-ଗ୍ରାହକ, ଅର୍ଥହେତୁ ଆଗତ, ବାକ୍ୟର ମର୍ଯ୍ୟାଦା ପ୍ରାପ୍ତ, ଅର୍ଥସମ୍ବନ୍ଧୀୟ, ଅଭି-ଧେୟ ପ୍ରୟୋଜନ,ଅର୍ଥଜ୍ଞ, ବିଜ୍ଞ, ଧନୀ ।

ଆର୍ଥିକସ୍ୱାତନ୍ତ୍ର୍ୟ—ବି. ( ଆଧୁନିକ ବ୍ୟବ-ହାର)ଅର୍ଥାଗମ ଓ ଅର୍ଥବ୍ୟୟ ସମ୍ବନ୍ଧରେ ଅନ୍ୟ ପ୍ରଦେଶ ସଙ୍ଗେ କୌଣସି ପ୍ରତିଦେ-ଶର ସମ୍ପର୍କଶୂନ୍ୟତା ।

ଆର୍ଥିବ୍ୟଞ୍ଜନାବୃତ୍ତି—ବି. ବକ୍ତା ବାକ୍ୟ-ବୋଧବ୍ୟ ସମ୍ବନ୍ଧ ଅନ୍ୟ ସନ୍ନିଧି ପ୍ରସ୍ତାବ କାଲ ଦେଶ କାକୁ ଓ ଚେଷ୍ଟାଦିର ବିଶିଷ୍ଟତାବଶତଃ ଯେଉଁ ବୃତ୍ତି ଅନ୍ୟ ଅର୍ଥ ପ୍ରକାଶ କରେ ।

ଆର୍ଦଲି,ଆର୍ଦଲୀ (ଇଂରାଜୀରୁ ଅପଭ୍ରଂଶ) ପଦାତିକ ସିପାହି, ଯେ ପ୍ରଧାନ ସୈନିକର ଆଜ୍ଞାବହ କାର୍ଯ୍ୟ କରେ, କୌଣସି ବିଶିଷ୍ଟ ଲୋକ ଆସିଲେ ଯେ ନିଜ ପ୍ରଭୁ ନିକଟରେ ଜଣାଏ ।

ଆର୍ଦୋଳ—ଗ୍ରା. ବି. ଅଳି, ସାନୁବନ୍ଧ ପ୍ରର୍ଥନା, ଜଞ୍ଜାଳ, ଝଞ୍ଜଟ, ଦାଉ, ଦୁଃଖ, ଅତ୍ୟାଗ୍ରହ ।

ଆର୍ଦ୍ଧକଂସିକ—ବିଂ. ଅର୍ଦ୍ଧ କଂସ ପରିମିତ ପଦାର୍ଥଦ୍ୱାରା କ୍ରୀତ । [ କ୍ରୀତ ।

ଆର୍ଦ୍ଧଦ୍ରୋଣିକ—ବିଂ. ଅର୍ଦ୍ଧ ଦ୍ରୋଣଦ୍ୱାରା

ଆର୍ଦ୍ଧଧାତୁକ—କ୍ଳୀ. ବିଂ. ତିଙ୍ ଏବଂ ଶିତ୍ ଭିନ୍ନ ଧାତୁର ଉତ୍ତର ବିହିତ ପ୍ରତ୍ୟୟବିଶେଷ ।

ଆର୍ଦ୍ଧପୁର—କ୍ଳୀ.ବି. ପୁରର ସମାନାର୍ଦ୍ଧ ।

ଆର୍ଦ୍ଧବାହନକ—ବିଂ. ଯେ ଅର୍ଦ୍ଧ ବେତନ-ଦ୍ୱାରା କ୍ରୀତ ଥାଏ ।

ଆର୍ଦ୍ଧମାସିକ-ତ୍ରି. ବିଂ. (ଅର୍ଦ୍ଧମାସ+ଇକ) ଅର୍ଦ୍ଧମାସସମ୍ବନ୍ଧୀୟ, ପାକ୍ଷିକ, ଅର୍ଦ୍ଧମାସସ୍ଥାୟୀ, ମାସାର୍ଦ୍ଧେ ଭରଣୀୟ, (ସ୍ତ୍ରୀ) ଅର୍ଦ୍ଧମାସିକୀ ।

ଆର୍ଦ୍ଧରାତ୍ରିକ—ବିଂ. ଅର୍ଦ୍ଧରାତ୍ରଭବ, ଅର୍ଦ୍ଧରାତ୍ରେ ଯାହା ହୁଏ ।

ଆର୍ଦ୍ଧିକ—ପୁଂ. ସ୍ତ୍ରୀ. ଅନ୍ୱଷ୍ଠବର୍ଣ୍ଣ, ବୈଶ୍ୟ କନ୍ୟାଠାରୁ ଜାତ ବ୍ରାହ୍ମଣଦ୍ୱାରା ସଂସ୍କୃତ ବର୍ଣ୍ଣକୁ ଆର୍ଦ୍ଧିକ କୁହାଯାଏ,(ବିଂ) ଅର୍ଦ୍ଧସମ୍ବନ୍ଧୀୟ ।

ଆର୍ଦ୍ର—ବିଂ. (ଆର୍ଦ+ର)କ୍ଳିନ୍ନ, ସରସ, ସଜଳ ବସ୍ତ୍ର, ଭିଜା, ତିମିତ, ସ୍ନିଗ୍ଧ, ଓଦା,ନୂତନ, ମୃଦୁ, ଶିଥିଳ,ସନ୍ତସନ୍ତିଆ, ପ୍ରେମବିଗଳିତ ।

ଆର୍ଦ୍ରକ—କ୍ଳୀ. ବି. (ଆର୍ଦ୍ର+କ) ଶୃଙ୍ଗବେର, ଅଦା, ମୂଳପ୍ରଧାନବୃକ୍ଷବିଶେଷ ।

ଆର୍ଦ୍ରପଦୀ—ସ୍ତ୍ରୀ. ବି. ଅର୍ଦ୍ଧ ଚରଣା ସ୍ତ୍ରୀ, ଯେଉଁ ସ୍ତ୍ରୀର ପାଦ ତନ୍ତ୍ର ଅଛି ବା ଓଦା ହୋଇଅଛି ।

ଆର୍ଦ୍ରିମ୍—(ଅବ୍ୟ) ସରସତ୍ୱ, ରସଯୁକ୍ତ, ଆର୍ଦ୍ରକୃତ୍ୟ । [ ବଣବସ୍ତି ।

ଆର୍ଦ୍ରମାଷା—ସ୍ତ୍ରୀ. ମାଷପର୍ଣୀ, ମାଷପର୍ଣ୍ଣୀ ।

ଆର୍ଦ୍ରଶାକ—କ୍ଳୀ. ବି. ଆର୍ଦ୍ରକ, ଅଦା, ସୁନୁସୁନିଆ ଶାଗ ।

ଆର୍ଦ୍ରବୃକ୍ଷୀ—ପୁଂ. ବି. ସରସ ବୃକ୍ଷ (ବିଂ) ଆର୍ଦ୍ରବୃକ୍ଷୀୟ,

ଆର୍ଦ୍ରା—ସ୍ତ୍ରୀ.ବି.ନକ୍ଷତ୍ରବିଶେଷ,ଜ୍ୟୋତିଷୋକ୍ତ ୨୭ନକ୍ଷତ୍ର ମଧ୍ୟରୁ ଷଷ୍ଠ ନକ୍ଷତ୍ର-ପୁଞ୍ଜ ।

ଆର୍ଦ୍ରାବଲି—ଗ୍ରା. ବି. (ଆର୍ଦ୍ରା+ଆବଳି) ଇନ୍ଦ୍ରଧନୁ, ପଦ୍ମାକୃତ ଶରବିଶେଷ, ଆକାଶରେ ଉଦିତ ହେବା ଏକପ୍ରକାର ଜ୍ୟୋତି ବା ଆଲୋକ, କାଳପୁରୁଷ ।

ଆର୍ଦ୍ରାଲୁବ୍ଧକ—ପୁଂ. ବି. ଆର୍ଦ୍ରା,କେତୁ ଗ୍ରହ ।

ଆର୍ଦ୍ରିତ—ବିଂ. (ଆର୍ଦ୍ର+କ୍ତ) ଓଦା ହୋଇଥିବା, ଭିଜା ।

ଆର୍ଧନା—ଗ୍ରା. ବି. ( ସଂ : ଆରାଧନା ) ପୂଜା, ସେବା, ନୈବେଦ୍ୟ, ସବିନୟ ନିବେଦନ, ତୋଷାମୋଦ ।

ଆର୍ବୀ—(ପା.) ଆରବ ଦେଶସମ୍ବନ୍ଧୀୟ, ତଦ୍ଦେଶୀୟ ଭାଷା ।

ଆର୍ଭବ—ପୁଂ. ବି. ତୃତୀୟସବନେଗେୟ ସପ୍ତସାମାତ୍ମକ ପବମାନବିଶେଷ ।

ଆର୍ମସ୍ଆକ୍ଟ—(ଯା.) ବି. ସାଧାରଣ ଲୋକେ ଅସ୍ତ୍ର ଶସ୍ତ୍ର ରଖିବାର କଟକଣା କରିବାପାଇଁ ସରକାରଙ୍କ ପ୍ରବର୍ତ୍ତିତ ନିୟମାବଳୀ ।

ଆର୍ମାନି—ଗ୍ରା.ବି.ନାମ (ଇଂରାଜୀଆର୍ମେନି) ଆସିୟାକ ତୁରସ୍କର ଅଞ୍ଚଳବିଶେଷ, ଆର୍ମାନିଭାଷା ।

ଆର୍ମେନିୟା—ଆସିଆର ପଶ୍ଚିମରେ ଗୋଟିଏ ଦେଶ (ବିଂ) ତଦ୍ଦେଶୀୟ ।

ଆର୍ଯ୍ୟ—ପୁଂ. ବିଂ. (ଋ+କ,ଯ) ମହାକୂଳ, କୁଳୀନ, ସଭ୍ୟ, ସଜ୍ଜନ, ସାଧୁ, ପୂଜ୍ୟ, ଶ୍ରେଷ୍ଠ, ସଙ୍ଗତ, ମାନ୍ୟ, ଉଦାରଚରିତ, ସ୍ୱାମୀ, ଗୁରୁ, ଶାନ୍ତଚିତ୍ତ, ବେଦୋକ୍ତ ପ୍ରାଚୀନ ଜାତି ।

ଆର୍ଯ୍ୟକ—ପୁଂ. ବିଂ. ( ଆର୍ଯ୍ୟ+କ ) ଆର୍ଯ୍ୟ, ଶ୍ରେଷ୍ଠ, ଉତ୍ତମ ବର୍ଣ୍ଣ, ସଜ୍ଜାନୁଷ୍ଠାତା, ମାନନୀୟ, ବନ୍ଧୁ, କଞ୍ଚୁକୀ (ବି) ପିତାମହ,ନାଗବିଶେଷ(ସ୍ତ୍ରୀ)ଆର୍ଯ୍ୟିକା ।

ଆର୍ଯ୍ୟଗୃହ୍ୟ—ବିଂ. ( ଆର୍ଯ୍ୟଗୃହ+ଯ ) ଆର୍ଯ୍ୟପକ୍ଷାଶ୍ରିତ, ଆର୍ଯ୍ୟପକ୍ଷପାତୀ, ସତ୍ପକ୍ଷ ।

ଆର୍ଯ୍ୟଚରିତ—ତ୍ରି. ବିଂ. (ବ.ବ୍ରୀ) ସଦାଚାରସମ୍ପନ୍ନ (ସ୍ତ୍ରୀ) ଆର୍ଯ୍ୟଚରିତା ।

ଆର୍ଯ୍ୟଚେତାଃ—ପୁଂ. ବିଂ. ସାଧୁଚିତ୍ତ, ମହାତ୍ମା ।

ଆର୍ଯ୍ୟତା—ସ୍ତ୍ରୀ. ବି. ( ଆର୍ଯ୍ୟ+ଭା,ତା ) ସଦାଚାର, ଧର୍ମଶୀଳତା ।

ଆର୍ଯ୍ୟତାରାଦେବୀ—ସ୍ତ୍ରୀ. ବି. ବୌଦ୍ଧତନ୍ତ୍ରୋକ୍ତ ଶକ୍ତିବିଶେଷ, ମହାଜନସମ୍ପ୍ରଦାୟମାନେ କହନ୍ତି ଏହି ସର୍ବପ୍ରଥମା ଜ୍ଞାନଶ୍ରେଷ୍ଠା ଶକ୍ତି ଓ ମୁକ୍ତିବିଧାୟିନୀ ।

ଆର୍ଯ୍ୟଦେବ—ପୁଂ. ବି. ନାଗାର୍ଜ୍ଜୁନର ଜଣେ ଶିଷ୍ୟ,ଏ ଶତ୍ରୁସମାଧି ଏବଂ ଚତୁଃଶତ୍ତ ଗାଥା ରଚନା କରିଥିଲେ, ଅପର ନାମ କାନାଦେବ । [ ଧର୍ମ୍ମ ।

ଆର୍ଯ୍ୟଧର୍ମ୍ମ—ପୁଂ.ବି.ସଦାଚାର, ସନାତନ

ଆର୍ଯ୍ୟପଥ—ପୁଂ. ବି. ସଦାଚାର, ଅଗ୍ରଚଳିତ, ଆର୍ଯ୍ୟମାର୍ଗ, ସନ୍ମାର୍ଗ, ସତ୍ଧର୍ମ୍ମ ।

ଆର୍ଯ୍ୟପୁତ୍ର—ପୁଂ. ବି. ( ଆର୍ଯ୍ୟ+ପୁତ୍ର ) ଦେବତୁ; ସ୍ୱାମୀ, ମାନ୍ୟର ପୁତ୍ର, କଞ୍ଚୁକୀପୁତ୍ର (ନାଟକରେ) ସ୍ତ୍ରୀର ସ୍ୱାମୀ ପ୍ରତି ଓ ସୂତ୍ରଧାର ପ୍ରତି ନଟୀର ସମ୍ବୋଧନ ।

ଆର୍ଯ୍ୟପ୍ରାୟ—ପୁଂ. ବି. ଆର୍ଯ୍ୟାବର୍ତ୍ତାଦି ଦେଶ, (ବିଂ) ଆର୍ଯ୍ୟଭୂୟିଷ୍ଠ ପ୍ରଚୁର ଧାର୍ମ୍ମିକ ଜନ ।

ଆର୍ଯ୍ୟଭଟ୍ଟ—ପୁଂ. ବି. ପ୍ରସିଦ୍ଧ ଜ୍ୟୋତିଃଶାସ୍ତ୍ରରଚୟିତା ବା ରଚକ, ଏ ଆର୍ଯ୍ୟସିଦ୍ଧାନ୍ତ ଗ୍ରନ୍ଥ ଲେଖିଛନ୍ତି, ଆଧୁନିକ ଭାରତୀୟ ଜ୍ୟୋତିଷ ଓ ବିଜ୍ଞାନର ପ୍ରତିଷ୍ଠାତା ।

ଆର୍ଯ୍ୟମିଶ୍ର—ପୁଂ ବିଂ. (୬ତତ୍ପୁ) ଗୌରବାନ୍ୱିତ, ମାନ୍ୟ, ତୈବର୍ଣ୍ଣିକ ପୂଜ୍ୟ ।

ଆର୍ଯ୍ୟମହାଗିରି—ପୁଂ.ବି. ଜୈନଶାସ୍ତ୍ରୋକ୍ତ ସିଦ୍ଧପୁରୁଷବିଶେଷ ।

ଆର୍ଯ୍ୟାବୃତ୍ତ—କ୍ଲୀ. ବି. ସାଧୁର କର୍ତ୍ତବ୍ୟ, ସଜ୍ଜନର କର୍ତ୍ତବ୍ୟ, ନିୟମ ।

ଆର୍ଯ୍ୟଶ୍ୱେତ—ପୁଂ. ବି. ଶ୍ରେଷ୍ଠଚରିତ, ଶ୍ୱେତକେତୁଋଷି. ଆର୍ଯ୍ୟଶ୍ୱେତଙ୍କ କନ୍ୟା ଓ ପୁତ୍ରରୂପ ଅପତ୍ୟ ।

ଆର୍ଯ୍ୟସମାଜ—ଗ୍ରା. ବି. ଦୟାନନ୍ଦ ସରସ୍ୱତୀଙ୍କକର୍ତ୍ତୃକ ପ୍ରତିଷ୍ଠିତ ଆଧୁନିକ ଧର୍ମସମ୍ପ୍ରଦାୟବିଶେଷ, ଏମାନେ ବୈଦିକ ଧର୍ମ ମାନନ୍ତି; କିନ୍ତୁ ମୂର୍ତ୍ତି-ପୂଜାଦି କରନ୍ତି ନାହିଁ ଓ ଜାତିଭେଦ ସ୍ୱୀକାର କରନ୍ତି ନାହିଁ ।

ଆର୍ଯ୍ୟସିଦ୍ଧାନ୍ତ—ପୁଂ. ବି. ଆର୍ଯ୍ୟଭଟ୍ଟ ପ୍ରଣୀତ ଜ୍ୟୋତିଷଗ୍ରନ୍ଥବିଶେଷ ।

ଆର୍ଯ୍ୟସିଂହ—ପୁଂ. ବି. ସିଂହଳୀ ପୁତ୍ର, ଏ ମଧ୍ୟଦେଶାଧିବାସୀ ବୌଦ୍ଧଧର୍ମ ପ୍ରଚାରନିମନ୍ତେ କାବୁଲ ଯାଇଥିଲେ, ତତ୍ରତ୍ୟ ରାଜାଙ୍କଦ୍ୱାରା ହତ ।

ଆର୍ଯ୍ୟସୁସ୍ଥିତ—ପୁଂ. ବି. ଆର୍ଯ୍ୟସୁହସ୍ତିର ପ୍ରଧାନ ଶିଷ୍ୟ, ଏହାଙ୍କଠାରୁ ଜୈନମାନଙ୍କର କୋଟିକ ଗଚ୍ଛ ବଂଶ ଉତ୍ପନ୍ନ ହୋଇଅଛି ।

ଆର୍ଯ୍ୟସୁହସ୍ତି—ପୁଂ. ବି. ଜୈନମାନଙ୍କର ଜଣେ ସିଦ୍ଧ ପୁରୁଷ, ଏ ବଶିଷ୍ଠଗୋତ୍ରୀୟ ଥିଲେ, ସମ୍ପ୍ରତି ରାଜାଙ୍କୁ ଜୈନଧର୍ମରେ ଦୀକ୍ଷିତ କରିଥିଲେ ।

ଆର୍ଯ୍ୟହଲଂ—ଅବ୍ୟ, ବଳାତ୍କାର ।

ଆର୍ଯ୍ୟା—ସ୍ତ୍ରୀ. ବି. (ଆ+ଋ+ଯ+ଆ) (ଆର୍ଯ୍ୟ+ଆ) ଆଈ, ଶ୍ୱଶ୍ରୂ, ଶାଶୁ, ଶ୍ରେଷ୍ଠା ସ୍ତ୍ରୀ, ଦୁର୍ଗା, ପାର୍ବତୀ,ମାତ୍ରାବୃତ୍ତବିଶେଷ, ଛନ୍ଦୋବିଶେଷ ।

ଆର୍ଯ୍ୟାଗୀତି—ସ୍ତ୍ରୀ. ବି. ବୃତ୍ତରତ୍ନାକରୋକ୍ତ ମାତ୍ରାବୃତ୍ତବିଶେଷ ।

ଆର୍ଯ୍ୟାଣକ—ଦେଶବିଶେଷ, ତୁଷାରଦେଶ ନିକଟେ ଅବସ୍ଥିତ ।

ଆର୍ଯ୍ୟାବର୍ତ୍ତ—ପୁଂ. ବି. (ଆର୍ଯ୍ୟ+ଆବର୍ତ୍ତ) ଦେଶବିଶେଷ, ଭାରତବର୍ଷର ବିଭାଗବିଶେଷ, ପୂର୍ବ-ପଶ୍ଚିମରେ ସମୁଦ୍ର ଓ ଦକ୍ଷିଣୋତ୍ତରରେ ପର୍ବତ ଏହି ମଧ୍ୟଭାଗକୁ ଆର୍ଯ୍ୟାବର୍ତ୍ତ କହନ୍ତି, ପୁଣ୍ୟଭୂମି ।

ଆର୍ଣଲ—ପ୍ରା. (ମେଦିନୀ) (ସଂ.ଅପ୍ସରା) ଅପ୍ସରା ।

ଆର୍ଷ—ତ୍ରି. ବିଂ. (ଋଷି+ଅ) ବେଦୋକ୍ତ ଋଷିସମ୍ବନ୍ଧୀ, ବୈଦିକ, ଋଷିସେବିତ, ପୂତ, ଋଷିକୃତ ପୁରାଣ-କାବ୍ୟାଦି, ବିବାହବିଶେଷ, ମନ୍ତ୍ରସମୂହ, ଆର୍ଷତୀର୍ଥ, (ପୁଂ) ଋଷିସେବିତ ବେଦ ।

ଆର୍ଷଧର୍ମ—ପୁଂ.ବି. ମନ୍ୱାଦି କଥିତଧର୍ମ, ଆର୍ଷବିବାହ ।

ଆର୍ଷପ୍ରୟୋଗ—ବି. (ଆର୍ଷ+ପ୍ରୟୋଗ)-ବ୍ୟାକରଣବିରୁଦ୍ଧ, ଅଥଚ ବିଶିଷ୍ଟ ପ୍ରାଚୀନ ଋଷିମାନଙ୍କକର୍ତ୍ତୃକ ଶାସ୍ତ୍ରାଦିରେ ବ୍ୟବହୃତ ଶବ୍ଦାଦି ।

ଆର୍ଷବିବାହ—ବି (ଆର୍ଷ+ବିବାହ)ଆର୍ଯ୍ୟଋଷି ପ୍ରବର୍ତ୍ତିତ ବିବାହପ୍ରଣାଳୀବିଶେଷ, ଉପଯୁକ୍ତ ବରକୁ ନିମନ୍ତ୍ରଣ କରି ଏକହଳ ବା ଦୁଇହଳ ଗାଈ ବିନିମୟରେ କନ୍ୟାପ୍ରଦାନପୂର୍ବକ ଯେଉଁ ବିବାହ ସମ୍ପନ୍ନ ହୁଏ ।

ଆର୍ଷଭ—ତ୍ରି. ବିଂ. (ଋଷଭ+ଅ) ବୃଷସମ୍ବନ୍ଧୀ, (କ୍ଲୀ) ଋଷଭଦେବଚରିତ ।

ଆର୍ଷଭି—ପୁଂ.ବି. (ଋଷଭ+ଇ) ଋଷଭଦେବ ପୁତ୍ର, ଚକ୍ରବର୍ତ୍ତୀ-ନୃପବିଶେଷ, ମହାରାଜ ଭରତ ।

ଆର୍ଷଭୀ—ସ୍ତ୍ରୀ. ବି. କପିକଚ୍ଛୁ, ବାଇଡଙ୍କ, ମଧ୍ୟପଥସ୍ଥ ତୀର୍ଥତ୍ରୟ ମଧ୍ୟେ ତୀର୍ଥବିଶେଷ ।

ଆର୍ଷଭ୍ୟ—ପୁଂ. ବିଂ. (ଋଷଭ+ଯ) ଷଣ୍ଢୋପଯୁକ୍ତ (ବୃଷ) ଷଣ୍ଢ ହେବାପାଇଁ ଉପଯୁକ୍ତ ହୃଷ୍ଟପୁଷ୍ଟ (ବାଛୁରି) ।

ଆର୍ଷିକ୍ୟ—କ୍ଲୀ. ବି. (ଋଷି+କ+ଯ). ଋଷିଧର୍ମ ।

ଆର୍ଷିଷେଣ—ପୁଂ. ସ୍ତ୍ରୀ. ଋଷିଷେଣ ମୁନିଙ୍କର ଗୋତ୍ରାପତ୍ୟ ।

ଆର୍ଷେୟ—କ୍ଲୀ.ବି. ଋଷିଗଣ ରୂପପ୍ରବରବିଶେଷ, ଆର୍ଷେୟୀ (ବିଂ) ଆର୍ଷଋଷିପ୍ରଣୀତ, ପ୍ରବରଜାତ, ମନ୍ତ୍ରଦର୍ଶୀ ଋଷିବିଶେଷ ।

ଆର୍ଷ୍ଟିଷେଣ—ପୁଂ. ବି. ଚନ୍ଦ୍ରବଂଶୀୟ ଶଲ ନୃପାତ୍ମଜ, ନୃପବିଶେଷ, ଗୋତ୍ର ପ୍ରବରବିଶେଷ ।

ଆର୍ଷ୍ଟିଷେଣାଶ୍ରମ—କ୍ଲୀ. ତୀର୍ଥବିଶେଷ ।

ଆର୍ହତ—ବିଂ. ଜୈନସମ୍ବନ୍ଧୀ, (କ୍ଲୀ.ବି) (ଅର୍ହତ୍+ଅ) ଜୈନ, ବୁଦ୍ଧବିଶେଷ ।

ଆର୍ହନ୍ତୀ—ସ୍ତ୍ରୀ.କ୍ଲୀ.ଯୋଗ୍ୟତା, ସ୍ତ୍ରୀସ୍ୱଭାବ, (କ୍ଲୀ) ଆର୍ହନ୍ତ୍ୟ, ଯୋଗ୍ୟତା ।

ଆର୍ହାୟଣ—ପୁଂ. ସ୍ତ୍ରୀ. ଅର୍ହନାମକ ଋଷିଙ୍କର ଗୋତ୍ରାପତ୍ୟ ।

ଆର୍ହାୟ—ପୁଂ. ବି. ଏହି ସୂତ୍ର ପର୍ଯ୍ୟନ୍ତ ପାଣିନିବିହିତ ପ୍ରତ୍ୟୟବିଶେଷ, ସେହିସବୁ ସୂତ୍ରବିହିତ ଅର୍ଥ ।

ଆଲ—କ୍ଲୀ. ବି. (ଆ+ଅଲ+ଅ) କପଟତା,ହରିତାଳ,ବିଷାକ୍ତ ପଦାର୍ଥ, (ବିଂ) ଅନଳ୍ପ, ଅଧିକ, ଶ୍ରେଷ୍ଠ, (ଗ୍ରା. ବି.) ପ୍ରାନ୍ତଭାଗ, ବାହାନା, ଗୃହ, ବଡ଼ ବଡ଼ ମାଛମାନେ ଯେଉଁ ଚହଲାକରି ରହନ୍ତି ।

ଆଲ,ଆଲୁଣୀ—ବି. ଲବଣହୀନ ଖାଦ୍ୟାଦି, ଯହିଁରେ ଲୁଣ ଦିଆଯାଇ ନ ଥାଏ ।

ଆଲକାତରା—ପଦାର୍ଥବିଶେଷ, ଘୁଣନାଶକ, ରାଳ, କୋଇଲାରୁ ବାହାରିବା ତୀବ୍ରଗନ୍ଧ ନିର୍ଯ୍ୟାସ, ମୋଟାତେଲ ଓ ଶିଳାଜତୁ ବା ପିଚ୍ ଏକତ୍ର କଲେ ଆଲକାତରା ହୁଏ ।

ଆଲକୁଶୀ—ଗ୍ରା. ବି. ଗୁଳ୍ମବିଶେଷ, ଶୂକଶିମ୍ବି, ଆତ୍ମଗୁପ୍ତା, କଉଁଚ, ବାଇଡଙ୍କ ।

ଆଲଖନାମୀ—ଶୈବସନ୍ନ୍ୟାସୀସମ୍ପ୍ରଦାୟବିଶେଷ, ଅଲକ୍ଷ୍ୟ ଦେବତାର ଉପାସକ ଯୋଗୁଁ ଏପରି ନାମ ହୋଇଅଛି ।

ଆଲକ୍ଷି—ବିଂ. (ଆ+ଲକ୍ଷ୍+ଇ) ଜ୍ଞାତା, ଯେ ବୁଝିପାରେ ।

ଆଲକ୍ଷିତ—ବିଂ. (ଆ+ଲକ୍ଷି+ର୍ମ.କ୍ତ) ସମ୍ୟକଜ୍ଞାତ, ଚକ୍ଷୁଦ୍ୱାରା ଜ୍ଞାତ, ସମ୍ୟକ୍ ଜଣାଯିବା, ଚକ୍ଷୁଦ୍ୱାରା ଜଣାପଡ଼ିବା, ନିଶ୍ଚିତ ।

ଆଲକ୍ଷ୍ୟ—ତ୍ରି.ବିଂ. (ଆ + ଲକ୍ଷ୍ + ର୍ମ.ଯ) ସମ୍ୟକ୍‌ଜ୍ଞେୟ, ଲକ୍ଷଣଦ୍ୱାରା ଜ୍ଞାତବ୍ୟ, (ଅବ୍ୟ) ସମ୍ୟକ୍ ଜାଣିପାରି, ସମ୍ୟକ୍ ଲକ୍ଷ୍ୟ କରି ।

ଆଲଖେଲା—ଯା.ବି.ଜାମା,ଢିଲା କୁରୁତା

ଆଲଗର୍ଦ୍ଦ—ପୁଂ.ବି. (ଅଲ + ଗର୍ଦ୍ଦ୍ + ଅ) ଜଳସର୍ପ, ପାଣିସାପ, ପାଣିଧଣ୍ଡ ।

ଆଲଗଲତା—ସ୍ତ୍ରୀ. ବି. ଲତାବିଶେଷ ।

ଆଲଗା—ବଙ୍ଗ, ( ଅଲଗ୍ନ ଶବ୍ଦର ଅପଭ୍ରଂଶ)ପୃଥକ୍, ଅଲଗା, ଖୋଲା ବାଧା-ନୋହିବା ।

ଆଲଗୋଚ—ଗ୍ରା.ସ୍ପର୍ଶ ନ କରିଦେବା ବା ଗ୍ରହଣ କରିବା, ସ୍ପର୍ଶ ନ କରି ପ୍ରଦାନ ବା ଗ୍ରହଣ । [ବଲ୍ଲୀ ।

ଆଲଗୋଚଲତା—ଲତାବିଶେଷ,ଆକାଶ-

ଆଲଗୋଜା—ଭାରତବର୍ଷରେ ପୂର୍ବ-କାଳରେ ପ୍ରଚଳିତ ଶୁଷିର ଯନ୍ତ୍ରବିଶେଷ, ସରଳ ବଂଶୀ ।

ଆଲଗୁଲ—ସିଦ୍ଧ ନ କରି ଯେ ଗୁହଳ ଧାନରୁ ବାହାର କରାଯାଏ, ଉଆଗୁହଳ

ଆଲଜ—ବିଂ. (ଆ + ଲଜ + ଇ) ଆକ୍ଷେପକ, (ସ୍ତ୍ରୀ) ଆଲଜିଭ ।

ଆଲଜିହ୍ୱା—ସ୍ତ୍ରୀ.ବିଂ. ଆଲଜିଭ,ଘଣ୍ଟିକା ।

ଆଲଟ—ଗ୍ରା. ବି. ରାଜବ୍ୟଜନ, ପଙ୍ଖା, ଆଡ଼ଣୀ ।

ଆଲଟପ'—ଗ୍ରା.ସହଜେ,ଚେଷ୍ଟାବ୍ୟତୀତ ।

ଆଲଣା—ଗ୍ରା. ବି. ନିତ୍ୟ ବ୍ୟବହାର୍ଯ୍ୟ ବସ୍ତ୍ରାଦି ରଖିବାନିମନ୍ତେ ଆଡ଼ଧାରଣା ଓ ଗୋଡ଼ ଲାଗିଥିବା କାଠର ଅଲଗୁଣି ।

ଆଲତା—(ଅଲକ୍ତକର ଅପଭ୍ରଂଶ)ଲାକ୍ଷା-ରସ, ଅଲତା । [ଆରତି ।

ଆଲତି—ବି.(ଆରତି ଶବ୍ଦଜ) ନୀରାଜନା,

ଆଲପିନ୍—(ଯା) ଲୌହନିର୍ମିତ କ୍ଷୁଦ୍ର କଣ୍ଟା, ପିନ୍ । [ବଜାଇବା ।

ଆଲପିବା—ଗ୍ରା. ପଦ୍ୟ. କ୍ରି. ବାଦ୍ୟଯନ୍ତ୍ର

ଆଲପିତ—ବିଂ. ( ଆ + ଲପ୍ + ର୍ମ.ତ) ଆଭାଷିତ ।

ଆଲପ୍ତିଗୀନ୍—ବୁଖାରାର ଜଣେ ପ୍ରଧାନ ସାମନ୍ତ, ଖୁରାସାନର ଶାସନକର୍ତ୍ତା, ଗଜନୀ ତାହାର ରାଜଧାନୀ ।

ଆଲ୍‌କୋରାନ—(ଯା)ବି.ମହମ୍ମଦପ୍ରଣୀତ ମୁସଲମାନମାନଙ୍କ ଧର୍ମପୁସ୍ତକ ।

ଆଲ୍‌ପକା—ଗ୍ରା. ବି. ଆମେରିକାର ଓଟ-ଜାତୀୟ ଆଲପକାନାମକ ପ୍ରାଣୀର ଲୋମରେ ପ୍ରସ୍ତୁତ ବସ୍ତ୍ରବିଶେଷ, ସ୍ୱନାମ-ଖ୍ୟାତ ପଶୁ ।

ଆଲ୍‌ପସ୍—(ଯା) ବି.ଇଟାଲିର ଉତ୍ତରରେ ଅବସ୍ଥିତ ପର୍ବତମାଳା ।

ଆଲବଲା—( ହିନ୍ଦି ) ବୃହତ୍ ନଳଯୁକ୍ତ ହୁକା, ଗୁଡ଼୍‌ଗୁଡ଼ୀ ହୁକା ।

ଆଲବ୍ଧ—ବିଂ. ( ଆ + ଲଭ୍ + ର୍ମ.ତ ) ସଂସୃଷ୍ଟ, ସଂଯୁକ୍ତ, ସ୍ପୃଷ୍ଟ, ହିଂସିତ, ଉକ୍ତ ।

ଆଲବ୍ଧି—ସ୍ତ୍ରୀ.ବି.(ଆ + ଲଭ୍ + ତି)ସ୍ପର୍ଶ, ହିଂସା ।

ଆଲଭନ—କ୍ଲୀ.ବି.(ଆ + ଲଭ୍ + ଭା.ଅନ) ହିଂସା, ସ୍ପର୍ଶ, ଆଲମ୍ଭନ, ମର୍ଦ୍ଦନ, ବଧ ।

ଆଲଭନୀୟ—ବିଂ.(ଆ + ଲଭ୍ + ଅନୀୟ) ସ୍ପୃଶ୍ୟ, ହିଂସନୀୟ, (ନୁମ୍) ଆଲମ୍ଭନୀୟ, ମର୍ଦ୍ଦନୀୟ ।

ଆଲଭ୍ୟ—ବିଂ.(ଆ + ଲଭ୍ + ଯ) ପ୍ରାପ୍ୟ, ଲାଭ ହେବା ଯୋଗ୍ୟ, ସ୍ପୃଶ୍ୟ, ହିଂସ୍ୟ, (ଅବ୍ୟ) ସ୍ପର୍ଶକରି, ହିଂସାକରି ।

ଆଲମ—ଗ୍ରା. ବି. କୌଣସି ଦେବଦେବୀ-ମାନଙ୍କର ବିଜୟ ପ୍ରତିମା ପରି ସାଙ୍କେ-ତିକ ବାନା, (ପ୍ରା. ଗଞ୍ଜାମ) ନିଶାଣ ।

ଆଲମକବି—ଜଣେ ପ୍ରସିଦ୍ଧ ମୁସଲମାନ କବି, ଏ ପ୍ରଥମେ ବ୍ରାହ୍ମଣ ଥିଲେ ପରେ ମୁସଲମାନ ହେଲେ ।

ଆଲମଗୀର ୧ମ—ସମ୍ରାଟ ଆରଙ୍ଗଜେବ ।

ଆଲମଗୀର ୨ୟ—ଏହାଙ୍କ ନାମ ଅଜି-ଜରଦ୍ଦୀନ, ସମ୍ରାଟ ଜାହାନ୍ଦରଶାହଙ୍କ ପୁତ୍ର ।

ଆଲମଡାଙ୍ଗା—ବଙ୍ଗ ପ୍ରଦେଶାନ୍ତର୍ଗତ. ନଦୀୟାଜିଲାର ଗୋଟିଏ ଗ୍ରାମ ।

ଆଲମନଗର—ଅଯୋଧ୍ୟାପ୍ରଦେଶସ୍ଥ ସୀତା ପୁରର ଗୋଟିଏ ନଗର ।

ଆଲମପରେ—ମାନ୍ଦ୍ରାଜ ପ୍ରଦେଶସ୍ଥ ଚେଙ୍ଗଲପଟ୍ଟ ଜିଲା ମଧ୍ୟରେ ଗୋଟିଏ ଗ୍ରାମ,ଏଠାରେ ପୂର୍ବେ କସ୍ତୁରୀମିଳୁଥିଲା ।

ଆଲମପୁର—ବୁନ୍ଦେଲଖଣ୍ଡ ମଧ୍ୟରେ ଇନ୍ଦୋରରାଜ୍ୟାନ୍ତର୍ଗତ ପ୍ରଗଣାବିଶେଷ ।

ଆଲମାରି—(ପର୍ତ୍ତୁଗୀଜ୍ ଶବ୍ଦର ଅପଭ୍ରଂଶ) କପାଟଯୁକ୍ତ ଦଣ୍ଡାୟମାନ ଆଧାର-ବିଶେଷ, ପୁସ୍ତକାଧାର, ଠିଆ ବାକ୍ସ, ଆଲମାରି ।

ଆଲମ୍ବ—ବି.(ଆ + ଲମ୍ବ୍ + ଅ)ଉପାୟ, ଆଧାର, ତଳକୁ ଲମ୍ବିବା, ଅବଲମ୍ବନ, ଆଶ୍ରୟ, ଦୁର୍ଗସ୍ଥ, ଗ୍ରା.ବି. (ସଂ—ଆ + ଲମ୍ବ) ରଥ, ବିମାନ, ପାଲିଙ୍କି, ବେଦୀ ଇତ୍ୟାଦିର ଚାରିପାଖରେ ଝୁଲୁଥିବା କାରୁକାର୍ଯ୍ୟବିଶିଷ୍ଟ ଝୁମ୍ପି, ଝାଲର ।

ଆଲମ୍ବନ—କ୍ଲୀ. ବି. (ଆ + ଲମ୍ବ୍ + ଅନ ) ଅବଲମ୍ବନ, ଆଶ୍ରୟକରଣ, ଝୁଲିବା, ବିଭାବବିଶେଷ, ଯାହା ଅବଲମ୍ବନ କରି ରସର ଅବତାରଣା କରାଯାଏ, ସହାୟ, ଆଶ୍ରୟ, ଆଯତନ, କାରଣ, ଭିତ୍ତି, ରସାଲମ୍ବନ ନାୟିକା ।

ଆଲମ୍ବି—ପୁଂ.ବି. (ଆଲମ୍ବ + ଇ)ବୈଶ-ମ୍ପାୟନଙ୍କ ଶିଷ୍ୟ, ଆଲମ୍ବର ପୁତ୍ର, (ସ୍ତ୍ରୀ) ଆଲମ୍ବାୟନୀ, ଏ ବାଜସେନେୟୀଦଶା-ନ୍ତର୍ଗତ ଋଷିଙ୍କ ମାତା ।

ଆଲମ୍ବିତ—ବିଂ. (ଆ + ଲମ୍ବ + ର୍ମ.ତ) ଧୃତ, ଗୃହୀତ, ଆଶ୍ରିତ, ଲମ୍ବମାନ, ପଡ଼ିସିବା ଭୟରେ ଯାହା ଧରାଯାଏ, ଯଷ୍ଟି ଇତ୍ୟାଦି ।

ଆଲମ୍ବୀ—ପୁଂ.ବିଂ.(ଆ + ଲମ୍ବ + ଇନ୍) ଅବଲମ୍ବନକାରୀ, ଆଶ୍ରୟୀ, ରକ୍ଷକ, ଆଲମ୍ବପ୍ରୋକ୍ତ ଗ୍ରନ୍ଥାଧ୍ୟାୟୀ(ସ୍ତ୍ରୀ, ଆଲମ୍ବିନୀ ।

ଆଲମ୍ଭ—ପୁଂ. ବି. (ଆ + ଲଭ୍ + ଅ) ସଂସ୍ପର୍ଶ, ଆଲିଙ୍ଗନ, ଯାଗବିଶେଷ, ହିଂସନ, ବଧ, ମାରଣ, ଯୁଦ୍ଧ ।

ଆଲମ୍ଭ୍ୟ—ତ୍ରି.ବିଂ. ବଧ୍ୟ, ଲଭ୍ୟ,ହିଂସ୍ୟ, ପ୍ରାପ୍ୟ (ଅବ୍ୟ) ଆଲିଙ୍ଗନ କରି,ହିଂସା-କରି ।

ଆଲୟ—ପୁଂ. ବି. ( ଆ + ଲୀ + ଅ ) ଗୃହ, ଆଧାର, ସଂଶ୍ଳେଷ (ଅବ୍ୟ) ଲୟ-ପର୍ଯ୍ୟନ୍ତ, ବାସସ୍ଥାନ, ଆତ୍ମା ।

ଆଳସ୍ୟବିଜ୍ଞାନ—କ୍ଲୀ. ବି. ବୌଦ୍ଧମତ, ସିଦ୍ଧ ଅହମାସ୍ପଦ ବିଜ୍ଞାନବିଶେଷ, ବୌଦ୍ଧମାନଙ୍କ ମତରେ ବିଜ୍ଞାନ ଛଡ଼ା ବାହ୍ୟବସ୍ତୁ ଆଉ କିଛି ନାହିଁ ।

ଆଲର୍କ—କ୍ଲୀ. ବି. (ଅଲର୍କ + ଅ) ବାୟା କୁକୁର ବିଷ, ଘାରିଥିବା କୁକୁରର ବିଷ, (ବିଂ) ଅଲର୍କସମ୍ବନ୍ଧୀୟ ।

ଆଲବଣ୍ୟ—କ୍ଲୀ.ବି. ଲବଣରସ ଭିନ୍ନତ୍ୱ, ଅଲବଣତା, ଅଲବଣତ୍ୱ, ଅଲଣା ।

ଆଲବାଲ—କ୍ଲୀ. ବି. ( ଆ + ଲ୍ + ର୍ମି. ଆଲ) ବୃକ୍ଷମୂଳେ ଜଳଦେବାସକାଶେ ନିର୍ମିତ ମଳା, ମନ୍ଦା ।

ଆଲସ—ବିଂ. ( ଆଲସ + ଅ ) କାର୍ଯ୍ୟ କରିବାକୁ ଇଚ୍ଛା କରେ ନାହିଁ, ଅଳସ, ଅଲସୁଆ (କ୍ଲୀ.ବି) ଆଲସ୍ୟ, ଔଦାସ୍ୟ, ନିଶ୍ଚେଷ୍ଟତା ।

ଆଲସ୍ୟ—ବି. (ଅଲସ + ଯ) କାର୍ଯ୍ୟ-କରିବା ବିଷୟରେ ଅଯତ୍ନ ବା ହେଳା, ଅଲସତା, ଜଡ଼ତା, ଅଖଟୁଆଣିଆ, ନିଶ୍ଚେଷ୍ଟତା,ଶ୍ରମକାତରତା, ସାମର୍ଥ୍ୟସତ୍ତ୍ୱେ କାର୍ଯ୍ୟରେ ହେଳା ବା ଅନୁତ୍ସାହ ।

ଆଲସ୍ୟପର—ପୁଂ. ବିଂ. (୭ତତ୍) ଶ୍ରମ-ବିମୁଖ, ଅଲସୁଆ, କାର୍ଯ୍ୟକୁଣ୍ଠ ।

ଆଲ୍ୟପରତନ୍ତ୍ର—ବିଂ. (୬ତତ୍) ଆଲ-ସ୍ୟର ଅଧୀନ, ଅଲସୁଆ, ଶ୍ରମବିମୁଖ ।

ଆଲସ୍ୟପରବଶ—ବିଂ. (୬ତତ୍) ଆଲସ୍ୟ ପରତନ୍ତ୍ର, ଅଲସୁଆ ।

ଆଲସ୍ୟପରାୟଣ—ବିଂ. (ବି.ସ୍ତ୍ରୀ) ଅଲ-ସୁଆ, ଶ୍ରମବିମୁଖ ।

ଆଲ୍ଲା—ପ୍ରା. ( ସମ୍ବ ) ବିଂ. କ୍ରୋଧ, ଅସନ୍ତୋଷ (ଯା.ବି) ଆଲ୍ଲା ଦେଖ ।

ଆଲାଉଦ୍ଦୀନ୍ ଖିଲ୍‌ଜି—ଏ ଦିଲ୍ଲୀର ଜଣେ ବାଦଶାହ ଥିଲେ ।

ଆଲାଉଦ୍ଦୀନ୍‌ହସନଗଙ୍ଗୋବାମନୀ-ଦକ୍ଷିଣା-ପଥର ପ୍ରଥମ ବାମନୀ ରାଜ୍ୟ ସ୍ଥାପୟିତା ବା ପ୍ରଥମ ରାଜା । [ଭାନ୍ ।

ଆଲାଉଦ୍ଦୀନମସୁଦ—ଦିଲ୍ଲୀର ଜଣେ ସୁଲ

ଆଲାକ୍ତ—ବିଂ. ବିଷାକ୍ତ, (ସ୍ତ୍ରୀ) ଆଲାକ୍ତା, ବିଷାକ୍ତା ।

ଆଲାତ—କ୍ଲୀ. ବି. ଅଲାତ, ଅଙ୍ଗାର ।

ଆଲାଉନ—(ବଙ୍ଗୀୟ) ଗ୍ରା. କୌଣସି କାର୍ଯ୍ୟରେ ଯୋର ନ ଥିବା, ଆସ୍ଥା ନ ଥିବା ।

ଆଲାଉପଲାଉ—ଗ୍ରା. ଅକଥ୍ୟକଥନ, ଇସ୍ତ୍ରଡ଼ୁଂ ସିଆଡ଼ୁ କହିବା ।

ଆଲାଗା—ସ୍ୱତନ୍ତ୍ରଭାବେ, ଭିନ୍ନଭାବେ ।

ଆଲାଧ-(ଆଲଗର୍ଦ୍ଦର ଅପଭ୍ରଂଶ) କୃଷ୍ଣସର୍ପ, ବିଷଧର ନାଗବିଶେଷ ।

ଆଲାଧଫେଣା—ଲତାବିଶେଷ, ନାଗ-ଫେଣୀ ଲତା ।

ଆଲାନ—କ୍ଲୀ.ବି.(ଆ + ଲୀ + ଅନ) ଗଜ-ବନ୍ଧନ ସ୍ତମ୍ଭ, ବନ୍ଧନ ରଜ୍ଜୁ, ବନ୍ଧନ ।

ଆଲାନକ—ବିଂ. ( ଆ + ଲ + ଅକ ) ଆଲାନ. ଗଜବନ୍ଧନର କାଷ୍ଠାଦି ।

ଆଲାପ—ପୁଂ. ବି. (ଆ + ଲପ୍ + ଅ) କଥନ,ପରସ୍ପର କଥନ, ସ୍ୱର ସାଧନା-କ୍ଷର ସା ରି ଗା ମ ଉଚ୍ଚାରଣ,ପରିଚୟ, କଥୋପକଥନ, ପକ୍ଷୀରବ, ସମ୍ଭବ ଇତ୍ୟାଦି ।

ଆଲାପନ—କ୍ଲୀ.ବି. (ଆ + ଲାପି + ଭା. ଅନ) ପରସ୍ପର କଥନ, ସ୍ୱସ୍ତିବାଚନ, ଆଭାଷଣ ।

ଆଲାପନୀୟ—ତ୍ରି. ବିଂ. ( ଆ + ଲାପି + ର୍ମି. ଅନୀୟ) ଅଲାପଯୋଗ୍ୟ ।

ଆଲାପପରିଚୟ—ବି. (ଦ୍ୱନ୍ଦ୍ୱ) ଜଣାଶୁଣା, ଦେଖାଶୁଣା, ଘନିଷ୍ଠ ପରିଚୟ ।

ଆଲାପିତ—ତ୍ରି.ବିଂ. (ଆ + ଲାପି + ର୍ମି. ତ) ସମ୍ଭାଷିତ, ପରିଚିତ ।

ଆଲାପିନୀ—ସ୍ତ୍ରୀ.ବି. (ଆଲାପ + ଇନ୍ + ଈ) ବୀଣା, ଆଲାପକାରିଣୀ ସ୍ତ୍ରୀ ।

ଆଲାପୀ—ପୁଂ.ବିଂ. (ଆ + ଲାପି + ଇନ୍) ଯାହା ସଙ୍ଗେ ଆଲାପ ଅଛି, ପରିଚିତ, ସାମାଜିକ, ଗଳ୍ପପ୍ରିୟ, ଗପୁଡ଼ି, (ସ୍ତ୍ରୀ) ଆଲାପିନୀ ।

ଆଲାପୁର—ଉତ୍ତରପ୍ରଦେଶ ପଶ୍ଚିମସ୍ଥ ବଦାୟୁନ୍‌ର ଗୋଟିଏ ନଗର ।

ଆଲାପ୍ୟ—ତ୍ରି.ବିଂ. (ଆ + ଲାପି + ଯ) କଥନୀୟ, ଆଭାଷ୍ୟ, ଆଲାପଯୋଗ୍ୟ ।

ଆଲାଲ—ଗ୍ରା. ପୁତ୍ରସ୍ଥାନ ଧନୀଲୋକ, ଐଶ୍ୱର୍ଯ୍ୟଶାଳୀ, ଆଢ୍ୟ, ବଡ଼ଲୋକ ।

ଆଲାବୁ—ସ୍ତ୍ରୀ. ବି. ଅଲାବୁ, ଲାଉ, ତୁମ୍ବୀ ।

ଆଲାବର୍ତ୍ତ—କ୍ଲୀ.ବି. (ଆଲ + ଆ + ବୃତ + ର୍ମି.ତ) ବସ୍ତ୍ରନିର୍ମିତ ବ୍ୟଜନ,ବସ୍ତ୍ରଦ୍ୱାରା ପ୍ରସ୍ତୁତ ବିଚଣା,କନାବିଚଣା,ଟଣାପଙ୍ଖା ।

ଆଲାସ୍ୟ—ପୁଂ.ବି. (ଆଲ + ଆସ୍ୟ + ଅ) କୁମ୍ଭୀର, ସମ୍ୟକ୍ ନୃତ୍ୟ ।

ଆଲାହାବାଦ—ଉତ୍ତର- ପଶ୍ଚିମାଞ୍ଚଳର ଗୋଟିଏ ବିଭାଗ, ଗଙ୍ଗା ଓ ଯମୁନାର ମିଳନ (ପ୍ରୟାଗତୀର୍ଥ ଅଛି) ।

ଆଲାହୟା—ରାଗିଣୀ ବିଶେଷ, ଶ୍ମଶାନ ବା ପଙ୍କଯୁକ୍ତ ସ୍ଥାନରୁ ଉଠୁଥିବା ବାଷ୍ପ-ବିଶେଷ ।

ଆଲି (ଲୀ)—ପୁଂ. ବି. (ଅଲ + କ.ଇ) ବିଚ୍ଛୁଆଣି, ବୃଶ୍ଚିକ, ଭ୍ରମର, ଓଡ଼ଶାର କଳିବିଶେଷ, ମତ୍ସ୍ୟବିଶେଷ, (ସ୍ତ୍ରୀ) ବୟସ୍ୟା,ସୁଖୀ, ସନ୍ତତ, ଶ୍ରେଣୀ,ରେଖା, ସଂଖ୍ୟା, ଶୁଦ୍ଧାନ୍ତଃକରଣ, ଅନର୍ଥ, ସ୍ତୁତ୍ତ ।

ଆଲିଆ—ଗ୍ରା. ବିଂ. ମଫସଲିଆ, ନିବୁଦ୍ଧିଆ,ଓଲୁ,ଯେ ଚଲାକ ଚତୁର ନୁହେ, ( ପ୍ରା-ଗଞ୍ଜାମ) ହାଟୁଆ ଶୂଦ୍ରଜାତ-ବିଶେଷ ।

ଆଲିଖିତ—ବିଂ. (ଆ + ଲିଖ୍ + ର୍ମି.ତ) କୃତଲେଖନ,ବର୍ତ୍ତିତ,ଚିତ୍ରାର୍ପିତ,ଅଙ୍କିତ ।

ଆଲିଗର୍ଦ୍ଦ—ପୁଂ. ସ୍ତ୍ରୀ. ଅଲିଶୁ ମୁନିଙ୍କର କନ୍ୟା ବା ପୁତ୍ରରୂପ ଅପତ୍ୟ ।

ଆଲିଙ୍ଗନ—କ୍ଲୀ. ବି. (ଆ + ଲିନ୍‌ଗ + ଭା. ଅନ)ଆଶ୍ଳେଷଣ, କୌଣସି ଲୋକର ଅଙ୍ଗ ସହିତ ଅନ୍ୟର ଅଙ୍ଗ ସଂଯୋଗ, ଆଲିଙ୍ଗନ ସାତ ପ୍ରକାର, କୁଣ୍ଢାକୁଣ୍ଢି ।

ଆଲିଙ୍ଗନୀୟ—ତ୍ରି. ବିଂ. (ଆ + ଲିନ୍‌ଗ + ର୍ମି, ଅନୀୟ) ଯାହାକୁ ଆଲିଙ୍ଗନ କରା-ଯାଇ ପାରେ, ଆଲିଙ୍ଗନ ଯୋଗ୍ୟ, ଆଶ୍ଳେଷଣୀୟ, (ସ୍ତ୍ରୀ) ଆଲିଙ୍ଗନୀୟା ।

ଆଲିଙ୍ଗିତ—ତ୍ରି.ବିଂ. (ଆ + ଲିନ୍‌ଗ + ତ) ଆଶ୍ଳିଷ୍ଟ,ପରିବଦ୍ଧ, (ବି) ତନ୍ତ୍ରସାରମତେ ୨୦ ଅକ୍ଷରରୁ ୩୦ ଅକ୍ଷର ପର୍ଯ୍ୟନ୍ତ ମନ୍ତ୍ର-ବିଶେଷ ।

ଆଲିଙ୍ଗୀ—ପୁଂ. ବିଂ. (ଆ + ଲିଙ୍ଗ + ଇନ) ଆଲିଙ୍ଗନକର୍ତ୍ତା (ସ୍ତ୍ରୀ) ଆଲିଙ୍ଗିନୀ।

ଆଲିଙ୍ଗ୍ୟ—ବି. ବିଂ. (ଆ + ଲିଙ୍ଗ + ମିଂ.ଯ) ଆଲିଙ୍ଗନର ଯୋଗ୍ୟ, (ଅବ୍ୟ) ଆଲିଙ୍ଗନ କରି,(ପୁଂ) ବାଦ୍ୟମାନଙ୍କ ମୃଦଙ୍ଗବିଶେଷ।

ଆଲିଙ୍ଗାସ୍ଥନ—ପୁଂ. ବି. ଗ୍ରାମ୍ୟବିଶେଷ।

ଆଲିଞ୍ଜର—ପୁଂ.ବି. (ଅଲିଞ୍ଜର + ଅ) ମୃଣ୍ମୟ ବୃହତ୍ ପାତ୍ର, ମାଟିନିର୍ମିତ ବଡ଼ ପାତ୍ର।

ଆଲିନ୍ଦ—ପୁଂ. ବି. (ଅଲିନ୍ଦ + ଅ) ବହିର୍ଦ୍ୱାରର ପ୍ରକୋଷ୍ଠ, ଗୃହାଭ୍ୟନ୍ତର, ଗୃହର ଏକଦେଶ।

ଆଲିପ—ବିଂ. (ଆ + ଲିପ + ଅ)ଆଲେପନକାରୀ, ଯେ ସୁନ୍ଦର ଲେପନ କରେ।

ଆଲିପ୍ତ—ବିଂ.(ଆ + ଲିପ୍ + ମିଂ.ତ)କୃତ ଲେପନ, ଯେ ଲିପା ହୋଇଅଛି, ଚର୍ଚ୍ଚିତ।

ଆଲିପନା—( ଆଲିମ୍ପନର ଅପଭ୍ରଂଶ ) ଦେବସ୍ଥାନ ଲେପନ ବା ଚିତ୍ରକରଣ, ଲିପାପୋଛା,ଝୁଣ୍ଟି ଦିଆଯିବା।

ଆଲିପଣା—ଗ୍ରା. ବିବାହଦିବସରେ ବର ପକ୍ଷରୁ କନ୍ୟାପକ୍ଷ ବ୍ରାହ୍ମଣମାନଙ୍କୁ ଦିଆଯିବା ଭୋଜନ ବିଶେଷ, (ନିସଙ୍ଗୁଡ଼ି)।

ଆଲିମାଲିକା—ଗ୍ରା.ବି. ଏଣୁତେଣୁ ବାକେ ଜିନିଷମାନ।

ଆଲିମ୍ପନ—କ୍ଲୀ.ବି.(ଆ + ଲିମ୍ପ + ଅନ) ସର୍ବତୋଭାବେ ଲେପନ କରିବା, ଚିତା, ଝୁଣ୍ଟି ପ୍ରଭୃତି।

ଆଲିପିପାଇସ୍—ବୃକ୍ଷବିଶେଷ, ଏହି ଗଛ ଆମେରିକାରୁ ଭାରତକୁ ଅଣାଯାଇଅଛି।

ଆଲୀ—ସ୍ତ୍ରୀ. ବି. ( ଆଲି + ଈ ) ସଖି, ବୟସ୍ୟା, ଶ୍ରେଣୀ, ସାର, ବିନ୍ଦୁ, ସେତୁ, ମତ୍ସ୍ୟବିଶେଷ, ଏ ମାଛ ବଙ୍ଗ ଓ ଓଡ଼ିଶାରେ ମିଳେ।

ଆଲୀ—ମୁସଲମାନ ଧର୍ମପ୍ରଚାରକ ମହମ୍ମଦଙ୍କର ଜାମାତା ବା ଜ୍ୱାଇଁ।

ଆଲୀଆଦିଲଶାହ, ୧ମ ଓ ୨ୟ—ବିଜୟପୁରର ରାଜା।

ଆଲୀଢ଼—ବି.ବିଂ. (ଆ + ଲିହ୍ + ମିଂ,ତ) ଆସ୍ୱାଦିତ, କ୍ଷତ, ଭକ୍ଷିତ, ଚାଟିହୋଇ ଥିବା, (କ୍ଲୀ) ଶରାଦିକ୍ଷେପଣ ସମୟରେ ଉପବେଶନବିଶେଷ, ବୀରମାନଙ୍କ ଉପବେଶନବିଶେଷ।

ଆଲୀନ—ବି. ବିଂ. (ଆ + ଲୀ + କ,ତ) ଲଗ୍ନପ୍ରାପ୍ତ, ବ୍ୟାପ୍ତ, ବିଲୀନ, ପ୍ରସ୍ତୁତ, ସମ୍ମିଳିତ, ବିଗଳିତ,(କ୍ଲୀ.ବି) ସଂଶ୍ଳେଷ, ସୁବର୍ଣ୍ଣ, ରଙ୍ଗଧାତୁ, ସୀସକଧାତୁ,ସୀସା।

ଆଲୀନକ—କ୍ଲୀ. ବି. ( ଆଲୀନ + କ ) ରଙ୍ଗଧାତୁ।

ଆଲୀବାହାଦୂର—ବନ୍ଦାପ୍ରଦେଶର ଜଣେ ନବାବ, ବାଜିରାଓ ପେଶୋଆଙ୍କ ପୌତ୍ର।

ଆଲୀବର୍ଦ୍ଦୀଖାଁ—ବଙ୍ଗଳାର ନବାବ।

ଆଳୁ—ପୁଂ. (ଆଲ୍ + ଉ) ପେଚକ,ପେଚା (ସ୍ତ୍ରୀ) ଗଲନ୍ତିକା, ଗଡ଼ୁ, ଭେଳା, ଚନ୍ଦ୍ର, ମୂଳବିଶେଷ,ଝରୀ,ଘଟୀ,(କ୍ଲୀ.ବି.)ଗୋଲ ଆଳୁ, ଶୂନ୍ୟସଂଖ୍ୟା, ଭେଲା, ଭେଲକ, ମୂଳବିଶେଷ, ଦେଶୀ ଆଳୁ।

ଆଳୁ—(ଆ + ଲା + ଉ)ବୃକ୍ଷବିଶେଷ,ମୂଳଜାତୀୟ ଲତାବିଶେଷ, ଦେଶୀ ଓ ବିଲାତିଆଳୁ, କ୍ଷୁଦ୍ରଜଳାଧାର କଳସ।

ଆଳୁଅ—ଗ୍ରା. ବି. (ସଂ—ଆଲୋକ,ଦୀପ୍ତି ପ୍ରକାଶ, ଚକ୍ଷୁପତାରେ ଉଠିବା ବ୍ରଣବିଶେଷ. ଅନିଷ୍ଟ, ସାମାନ୍ୟ କ୍ଷତ।

ଆଳୁଆନ—ଗ୍ରା. ବି. ପଶମାଦି ନିର୍ମିତ ଶୀତବସ୍ତ୍ର, ସାର୍ଜ।

ଆଳୁଇ—ଔଷଧବିଶେଷ।

ଆଳୁକ—କ୍ଲୀ. ବି. ( ଆଳୁ + କ ) କନ୍ଦବିଶେଷ, ବିଲାତି ଓ ଗୋଲଆଳୁଠାରୁ ପୃଥକ୍, ଏହା ଅନେକପ୍ରକାର ଦେଶୀ।

ଆଳୁକୁଚମାଳୁକୁଚ—ଗ୍ରା.ବି.ଆଲିମାଲିକା, ଏଣୁତେଣୁ ବାକେ ବସ୍ତୁମାନ।

ଆଲୁଞ୍ଚନ—କ୍ଲୀ.ବି, ( ଆ + ଲୁଞ୍ଚ + ଣି, ଅନ)ଉତ୍ପାଟନ, ଉପାଡ଼ିବା, କେଶାଦିର ବନ୍ଧନ ନ କରିବା, ଛେଦନ।

ଆଲୁଞ୍ଚିତ—ବି. ବିଂ. (ଆ + ଲୁଚ + ତ) ଉତ୍ପାଟିତ, ବନ୍ଧନମୁକ୍ତ, ଖୋଲା, ପର୍ଯ୍ୟାକୁଳ ଅପମାନିତ।

ଆଲୁଣ୍ଠନ—କ୍ଲୀ.ବି. (ଆ + ଲୁଠି + ଅନ) ବଳପୂର୍ବକ ଅପହରଣ,ଲୁଟି ବା ଗ୍ରହଣ କରିବା। [ଲବଣଶୂନ୍ୟ।

ଆଲୁଣି—(ଅଲବଣର ଅପଭ୍ରଂଶ)

ଆଲୁଫା—ପ୍ରା. ଜୀବିକାନିର୍ବାହର ଧନ।

ଆଲୁବାଲୁ—ଗ୍ରା.ବି. (ସଂ—ଆଲୁଲାୟିତ) ଇତସ୍ତତଃ ବିକ୍ଷିପ୍ତ, ଉନ୍ମୁକ୍ତ, ଅସୁନ୍ଦର, ଅଡୁଆ।

ଆଲୁବାଲୁଆ—ଗ୍ରା. ବିଂ. ବାଲବାଳୁଆ, ଅଧିକ କେଶଯୁକ୍ତ।

ଆଲୁବାଲୁକା—ଗ୍ରା. ବି. (ସଂ.ଏଲବାଲୁକ) ସୁଗନ୍ଧି ଔଷଧ ଦ୍ରବ୍ୟବିଶେଷ।

ଆଲୁର୍‌ବାଲୁର୍—ଗ୍ରା. ବିଂ. ଆଲୁବାଲୁ, ଇତସ୍ତତଃ ବିକ୍ଷିପ୍ତ, ଉନ୍ମୁକ୍ତ।

ଆଲୁବୋଖାରା—ବୃକ୍ଷବିଶେଷ- ଅମ୍ଳଫଳବିଶେଷ।

ଆଲୁଲ—ବିଂ.(ଆ + ଲୁଲ୍ + ଅ)ଉନ୍ମୁକ୍ତ, ଚଞ୍ଚଳୀଭୂତ,ଭ୍ରଷ୍ଟାଦି, (କ୍ଲୀ.ବିଂ.) ଆଲୁଲାୟିତ, ଅସଂଯତ।

ଆଲୁଲାୟିତ—ବିଂ (ଆ + ଲୁଲ୍ + ମିଂ.ତ) ବନ୍ଧନରହିତ,ମୁକୁଳା,ଅସଂଯତ, ଏଣେତେଣେ ବିକ୍ଷିହୋଇ ଓହଳିଥିବା।

ଆଲୂ—ପୁଂ.ବି.(ଆ + ଲୂ + କ୍ୱିପ)ଆଲୁଡ଼ା, ଆଲୁକି।

ଆଲୂନ—ବିଂ. (ଆ + ଲୂ + ମିଂ,ତ)ଈଷତ୍ଛିନ୍ନ, ଅଳ୍ପଛିନ୍ନ, ସମ୍ୟକ୍‌ଛିନ୍ନ।

ଆଲେକମ୍—ଯା. ମୁସଲମାନମାନଙ୍କର ପ୍ରତିନମସ୍କାରସୂଚକ ଶବ୍ଦ, ଅର୍ଥାତ୍ "ସଲମ୍" ଶବ୍ଦର ପ୍ରତ୍ୟୁତ୍ତରବାଣୀ, ଶବ୍ଦ।

ଆଲେକସନ୍ଦାର—( ଆଲେକଜାନ୍ଦାର ) ଜଗଦ୍‌ବିଖ୍ୟାତ ମହାବୀର, ସିକନ୍ଦରଶାହା ନାମରେ ମୁସଲମାନସମାଜରେ ବିଖ୍ୟାତ।

ଆଲେଖ—ପୁଂ.ବି. ( ଆ + ଲିଖ୍ + ଅ) ସମ୍ୟକ୍ ଲେଖନ, ଲେଖନପତ୍ର, ଚିଠିକାଗଜ; ଲିପିପତ୍ର, ଦଲିଲ।

ଆଲେଖନ—କ୍ଲୀ.ବି.(ଆ+ଲିଖ୍+ଅନ) ସମ୍ୟକ୍‌ଲିଖନ, (ବିଂ) ଲେଖନକର୍ତ୍ତା, (ପୁଂ) ଆଶ୍ଚର୍ଯ୍ୟ, (କ୍ଲୀ) ଲିଖନସାଧନ କାଗଜପ୍ରଭୃତି ।

ଆଲେଖନୀ—ସ୍ତ୍ରୀ. ବି. (ଆଲେଖନ+ଈ) ଲେଖନସାଧନୀ, ତୁଳିକା, ବର୍ତ୍ତିକା ।

ଆଲେଖ୍ୟ—କ୍ଲୀ. ବି. (ଆ+ଲିଖ୍+ଯ) ଚିତ୍ର, ଛବି, ଚିତ୍ରପଟ, ପ୍ରତିକୃତି, ପଟସ୍ଥ ଚିହ୍ନ, ଲେଖ୍ୟ ଦେବାଦିମାନଙ୍କର ପ୍ରତିବିମ୍ବ, (ବିଂ) ଲେଖନୀୟ, ଯେଉଁ ପଟରେ ଚିହ୍ନ ଥାଏ, ଚିହ୍ନଣୀୟ ।

ଆଲେଖ୍ୟଶେଷ-ପୁଂ.ବିଂ. ମୃତ,ଯେ ମୃତବ୍ୟକ୍ତିର ଶେଷ ପ୍ରତିବିମ୍ବମାତ୍ର ଚିହ୍ନପଟେ ଥାଏ, ସେହି ମୃତବ୍ୟକ୍ତିର ନାମ ଆଲେଖ୍ୟ ଶେଷ, (ସ୍ତ୍ରୀ) ଆଲେଖ୍ୟଶେଷା ।

ଆଲେଖ୍ୟସମର୍ପିତ—ବିଂ. ଚିତ୍ରାର୍ପିତ, ଚିହ୍ନନ୍ୟସ୍ତ ।

ଆଲେପ—ପୁଂ. ବି. (ଆ+ଲିପ୍+ଅ) ଉପଲେପ, ଆଲିମ୍ପନ, (କ୍ଲୀ. ବି.) ଆଲେପନ, ଆଲିପ୍ୟମାନ, ଯାହା ଲେପନ କରାଯାଏ ।

ଆଲେପ—ପୁଂ. ବି. (ଆ+ଲପ୍+ଅ) ବୌଦ୍ଧଶାସ୍ତ୍ରମତେ ଅଂଶ, ଖଣ୍ଡ, ଲିପିବା, ବୋଳିବା, ମଲମ ।

ଆଲେପନ—କ୍ଲୀ. ବି.(ଆ+ଲିପ୍+ଭା, ଅନ) ଲିପିବା. ବୋଳିବା, ମଲମ ।

ଆଲେପିତ—ବିଂ. (ଆ+ଲେପି+ର୍ମି. ତ) ଲିପାପୋଛା ହୋଇଥିବା (କାନ୍ଥ-ଆଦି) ।

ଆଲେୟା—ସ୍ତ୍ରୀ. ବି. ରାଗିଣୀବିଶେଷ, ଅଗ୍ନିମୁଖ,ଜଳୁ ଉଲ୍‌କାମୁଖ,ଅପଦେବତା, (ଭୂତ ଆଲୋକ) ଶ୍ମଶାନ ବା ପଙ୍କଯୁକ୍ତ ସ୍ଥାନରୁ ଉତ୍‌ଥିତ ବାଷ୍ପୋଦ୍ଭୂତ ଆଲୋକ ।

ଆଲେ—ଗ୍ରା. (ଅବ୍ୟ) ସ୍ତ୍ରୀବ୍ୟକ୍ତିର ସମ୍ବୋଧନ ।

ଆଲୋକ—ପୁଂ. ବି. (ଆ+ଲୋକ୍+ଅ) ସୂର୍ଯ୍ୟଚନ୍ଦ୍ରାଦିଜାତ ପ୍ରକାଶ, ଆଲୁଅ, ଜୟଶବ୍ଦ, ଦର୍ଶନ, ଦୃଷ୍ଟିପଥ, ଦୀପ୍ତି, ସ୍ତୁତି, ଦର୍ଶନ, (ଲ.ଅ)ସଭ୍ୟତା,ପ୍ରଦୀପ ।

ଆଲୋକଚିତ୍ର—ପୁଂ. ବି. (ମଧ୍ୟ-କ.ଧା) ଆଲୋକ ସାହାଯ୍ୟରେ ତୋଳି ବା ଛବି, ବାଏସ୍କୋପ, ଫଟୋଗ୍ରାଫ୍ ।

ଆଲୋକଜନିତ ସ୍ଥିତିଗତି—ବି.(ବିଜ୍ଞାନ-ପରିଭାଷା) ଯେଉଁଆଡ଼ୁ ଆଲୋକ ଆସୁ ଥାଏ ଉଦ୍ଭିଦମାନଙ୍କର ସେହିଆଡ଼କୁ ବଢ଼ିବାର ଗତି ।

ଆଲୋକନ—କ୍ଲୀ. ବି. (ଆ+ଲୋକ+ଭା.ଅନ) ଦର୍ଶନ, ଦୃଷ୍ଟି, ଦେଖିବା, (ଣିଚ୍ ଲୋକ) ଦେଖାଇବା ।

ଆଲୋକନୀୟ—ତ୍ରି.ବିଂ. (ଆ+ଲୋକ+ର୍ମି.ଅନୀୟ) ଦର୍ଶନୀୟ, ଦ୍ରଷ୍ଟବ୍ୟ, ଦେଖିବାର ଯୋଗ୍ୟ ।

ଆଲୋକପକ୍ଷ—ବି.(ମଧ୍ୟ-କ.ଧା) ଚାନ୍ଦ୍ରମାନ ମାସର ଚନ୍ଦ୍ରପକ୍ଷ, ଶୁକ୍ଲପକ୍ଷ ।

ଆଲୋକପ୍ରାପ୍ତ—ବିଂ. (୨ତତ୍) ଆଲୋକ ପାଇଥିବା (ଲ.ଅ) ସଭ୍ୟ, ଜ୍ଞାନପ୍ରାପ୍ତ ।

ଆଲୋକବର୍ତ୍ତିକା—ବି. ଯେଉଁ ବତି ବା ଶଳିତାରେ ଆଲୁଅ ଲଗେ, ବଳିତା ।

ଆଲୋକବିଜ୍ଞାନ—କ୍ଲୀ. ବି. ଆଲୋକ ଓ ଦର୍ଶନବିଷୟକ ବିଦ୍ୟା ।

ଆଲୋକମୟ—ତ୍ରି. ବି. (ଆଲୋକ+ମୟ) ଆଲୋକପୂର୍ଣ୍ଣ, ଆଲୋକିତ ।

ଆଲୋକମାର୍ଗ—ପୁଂ.ବି. ଆଲୋକ ପଥ, ଗବାକ୍ଷ, ଝରକା, ଜାଲିକବାଟ ।

ଆଲୋକସ୍ତମ୍ଭ—ପୁଂ.କ୍ଲୀ.ବିଂ.(ମଧ୍ୟ.କ.ଧା) ଯେଉଁ ଖମ୍ବରେ ଆଲୋକ ଦିଆଯାଇ ଥାଏ, ପଥିକମାନଙ୍କୁ ରାତିରେ ବାଟ ଦେଖାଇବା ନିମନ୍ତେ ରାସ୍ତାରେ ଓ ଜାହାଜମାନଙ୍କୁ ପଥ ଦେଖାଇବା ନିମନ୍ତେ ସମୁଦ୍ର ଉପକୂଳରେ ଉଚ୍ଚସ୍ତମ୍ଭ ଉପରେ ଦିଆଯାଇଥିବା ଉଜ୍ଜ୍ୱଳ ଆଲୋକ ।

ଆଲୋକିତ—ତ୍ରି. ବି. (ଆ+ଲୋକ+ର୍ମି.ତ) ଆଲୋକ ଦିଆଯାଇଥିବା, ଦୃଷ୍ଟ; ପ୍ରଦୀପ୍ତ, କ୍ଲୀ.(ଭା.ତ) ଦର୍ଶନ, ଆଲୋକ (ସ୍ତ୍ରୀ) ଆଲୋକିତା ।

ଆଲୋକୀ—ପୁଂ. ବିଂ. (ଆ+ଲୋକ୍+ଇନ୍)ଦ୍ରଷ୍ଟା, ଦର୍ଶନକର୍ତ୍ତା, ଯେ ଦେଖେ, ଦର୍ଶକ, (ସ୍ତ୍ରୀ) ଆଲୋକିନୀ ।

ଆଲୋକ୍ୟ—ତ୍ରି.ବିଂ. (ଆ+ଲୋକ୍+ର୍ମି. ଯ) ଦର୍ଶନୀୟ(ଅବ୍ୟ)ଦେଖିକରି, ଦେଖି ।

ଆଲୋଚକ—ତ୍ରି.ବିଂ.(ଆ+ଲୋଚ୍+କ. ଅକ) ଆଲୋଚନାକାରୀ, ବିବେଚକ, ଦର୍ଶକ, ଦର୍ଶୟିତା ।

ଆଲୋଚନ—କ୍ଲୀ. ବି. (ଆ+ଲୋଚ୍+ଅନ) ବିଶେଷ ଧର୍ମଦ୍ୱାରା ବିବେଚନା କରିବା, ଆନ୍ଦୋଳନ, ମନ୍ତବ୍ୟପ୍ରକାଶ, ସାଂଖ୍ୟମତସିଦ୍ଧ ଅନ୍ତଃକରଣର ବୃତ୍ତିବିଶେଷ,ତଦନ୍ତ,ଚର୍ଚ୍ଚା,(ସ୍ତ୍ରୀ)ଆଲୋଚନା, ଦର୍ଶନ, (ଅବ୍ୟ) ଲୋଚନ ପର୍ଯ୍ୟନ୍ତ ।

ଆଲୋଚନା—ସ୍ତ୍ରୀ. ବି. (ଆ+ଲୋଚ୍+ଭା.ଅନ+ଆ) ଆଲୋଚନ, ଦର୍ଶନ, ଅବଲୋକନ, ଆନ୍ଦୋଳନ, ଚର୍ଚ୍ଚା, ଅନୁଶୀଳନ ।

ଆଲୋଚନୀୟ—ତ୍ରି.ବିଂ. (ଆ+ଲୋଚ+ର୍ମି.ଅନୀୟ) ଅନୁଶୀଳନୀୟ, ବିବେଚ୍ୟ, ଆଲୋଚନାଯୋଗ୍ୟ ।

ଆଲୋଚିତ—ତ୍ରି.ବିଂ. (ଆ+ଲୋଚ୍+ର୍ମି.ତ) ଆଲୋଚନାବିଷୟୀଭୂତ,ବିଶେଷଦର୍ଶନାଦିଦ୍ୱାରା ଯାହାର ଆଲୋଚନା କରାଯାଇଅଛି, ଅବଧାରିତ, ଅନୁଶୀଳିତ, ପରୀକ୍ଷିତ ।

ଆଲୋଚ୍ୟ—ତ୍ରି.ବିଂ. (ଆ+ଲୋଚ୍+ର୍ମି. ଯ) ଆଲୋଚନା କରିବାର ଯୋଗ୍ୟ, ବିଚାରଯୋଗ୍ୟ, ବିଚାରାଧୀନ, (ଅବ୍ୟ) ଆଲୋଚନାକରି ।

ଆଲୋଡ଼ନ—କ୍ଲୀ.ବି. (ଆ+ଲୁଡ଼୍+ଭା. ଅନ) ବିଲୋଡ଼ନ, ମନ୍ଥନ, ଆନ୍ଦୋଳନ, ଆବର୍ତ୍ତନ, ଆଉଟିବା, ଘାଣ୍ଟିବା, (ବିଂ) ଆଲୋଡ଼ିତ ।

ଆଲୋଡ଼ିତ—ତ୍ରି.ବିଂ. (ଆ+ଲୁଡ଼୍+ର୍ମି. ତ)ମଥିତ, ମର୍ଦ୍ଦିତ, ଚୂର୍ଣ୍ଣୀକୃତ, ଆନ୍ଦୋଳିତ, ସମ୍ମିଳିତ ।

ଆଲୋଡ଼ିବା—ଗ୍ରା. କ୍ରି. ମନ୍ଥନକରିବା, ଆବର୍ତ୍ତନ କରିବା, ଆଲୋଚନା କରିବା ।

ଆଲୋସ୍ୱାର (ଆଲବାର)—ରାଜପୁତାନାର ଗୋଟିଏ ରାଜ୍ୟ ।

ଆଲୋଳ—ବି.ବିଂ. (ଆ + ଲୋଲ୍)ଈଷତ୍ ଚଞ୍ଚଳ, ଅଳ୍ପଚଞ୍ଚଳ, (ପ୍ରା.ବି.)ଆଲୋକ, (ବିଂ) ଆଲୋକମୟ ।

ଆଲୋଳିତ—ବି. ବିଂ. (ଆ + ଲୁଲ୍ + ତ) ଈଷତ୍‌ଚଞ୍ଚଳୀକୃତ, (କ୍ଲୀ) ଈଷତ୍‌ଚଞ୍ଚଳ ।

ଆଲୋଷ୍ଟୀ—(ଅବ୍ୟ) ହିଂସା ।

ଆଲୋହାସ୍ୱନ—ବିଂ. ଯାହା ଲୁହାଦ୍ୱାରା ହୋଇନାହିଁ ।

ଆଲୋହିତ—ବି. ବି. ଈଷତ୍ ଲୋହିତ ବର୍ଣ୍ଣ, ଆରକ୍ତ (ସ୍ତ୍ରୀ) ଆଲୋହିତା ।

ଆଲ୍ଲା—(ଯା) ବି. ମୁସଲମାନମାନଙ୍କର ଈଶ୍ୱରଙ୍କୁ ଡାକିବାର ନାମ, ଈଶ୍ୱର, ଭଗବାନ୍ ।

ଆବକ—ପୁଂ.ବିଂ. (ଅବ + ଅକ)ରକ୍ଷକ, ଯେ ରକ୍ଷା କରେ ।

ଆବଟ୍ୟ—ପୁଂ. ସ୍ତ୍ରୀ. ଅବଟଋଷିଙ୍କର ଗୋତ୍ରାପତ୍ୟ, (ସ୍ତ୍ରୀ) ଆବଟ୍ୟା, (ପ୍ରବର ବିଶେଷ ।

ଆବନତୀୟ—ବିଂ. ଅବନତର ନିକଟସ୍ଥ ଦେଶାଦି, ଅବନତସମ୍ବନ୍ଧୀୟ ।

ଆବନ୍ତ—ପୁଂ.ବି. ଅବନ୍ତଦେଶର ରାଜା, ଚନ୍ଦ୍ରବଂଶୀୟ ନୃପତିବିଶେଷ ।

ଆବନ୍ତ୍ୟ— ବିଂ. ଅବନ୍ତିଦେଶଭବ (ଜାତ) ଅବନ୍ତିର ରାଜା, (ସ୍ତ୍ରୀ) ଆବନ୍ତୀ, ବ୍ରାତ୍ୟ ବ୍ରାହ୍ମଣର ସବର୍ଣ୍ଣାସ୍ତ୍ରୀଠାରୁ ଉତ୍ପନ୍ନ ବର୍ଣ୍ଣବିଶେଷ ।

ଆବପନ—କ୍ଲୀ. ବି. (ଆ + ବପ୍ + ଅନ) ଧାନ୍ୟାଦିସ୍ଥାପନର ପାତ୍ର, ଖଳା,ଭୂମିରେ ବୀଜାଦି ନିଧାନ, ବୁଣା, (ସ୍ତ୍ରୀ) ଆବପନୀ, (କ୍ଲୀ) କେଶାଦି ସଂମୁଣ୍ଡନ ।

ଆବପନକ୍ରିୟା—ସ୍ତ୍ରୀ.ବୀଜବପନାଦି କ୍ରିୟା ।

ଆବସ୍ତୁ—ପୁଂ. ବି. ଆଗମନ, ଆଗମନକର୍ତ୍ତା, ଦେଶବିଶେଷ, ଜଳ, (ବିଂ) ଆବସ୍ଥକ ।

ଆବରକ— କ୍ଲୀ.ବି.(ଆ + ବୃ + ଅ + କ) ଆଚ୍ଛାଦନ ବସ୍ତ୍ରାଦି, ଅପବାରକ, (ବିଂ) ଆଚ୍ଛାଦକ, ଢାଙ୍କୁଣୀ ।

ଆବରଣ—କ୍ଲୀ.ବି. (ଆ + ବୃ + ଭା.ଅନ) ଚର୍ମଫଳକ, ଢାଲ, ବେଦାନ୍ତମତସିଦ୍ଧ ଚୈତନ୍ୟ ଆବରକ ଅଜ୍ଞାନ, ଢାଙ୍କୁଣୀ, ଆଚ୍ଛାଦନସାଧନମାତ୍ର, ପ୍ରାଚୀରାଦି, ବେଷ୍ଟନ, ଆବୃତ, ପରଦା, ଅବରୋଧ ।

ଆବରଣପଟ—ବି. ଯେଉଁ ପରଦାଦ୍ୱାରା କୌଣସି ବସ୍ତୁକୁ ଘୋଡ଼ାଇ ଦିଆଯାଏ ।

ଆବରଣଶକ୍ତି—ସ୍ତ୍ରୀ.ବି. ଯେଉଁ ଶକ୍ତିଦ୍ୱାରା ବସ୍ତୁର ସ୍ୱରୂପ ତିରୋହିତ ହୋଇ ଅନ୍ୟ ରୂପ ପ୍ରତୀତ ହୁଏ, ମାୟାଶକ୍ତି,ବେଦାନ୍ତମତସିଦ୍ଧ ଅଜ୍ଞାନ ଶକ୍ତି ।

ଆବରଣୀ—ସ୍ତ୍ରୀ.ବି. ଢାଙ୍କୁଣୀ, ପରଦା ।

ଆବରଣୀୟ—ବିଂ.(ଆ + ବୃ + ମିଂ.ଅନୀୟ) ଆଚ୍ଛାଦନଯୋଗ୍ୟ, ଯାହା ଲୁଚାଇବା ଯୋଗ୍ୟ ।

ଆବରସମକ—କ୍ଲୀ. ବି. ଆବର ସମବର୍ଷର ଆଦ୍ୟକାଳ, ବର୍ଷର ଆଦ୍ୟ ସମୟେ ଦତ୍ତ ଋଣ, ପ୍ରଥମ ମାସର ଖଜଣା ।

ଆବରା—ପ୍ରା. ( ଗଞ୍ଜାମ ) ଲୁଣ ପାଣିକୁ ନଆଁରେ ବସାଇ ସେଥିରୁ ଲୁଣମାରିବାପାଇଁ ବ୍ୟବହୃତ ପିହାଣ, ଲୁଣ ମାରିବାରେ ବ୍ୟବହୃତ କଆର ।

ଆବରି—ଗ୍ରା. କ୍ରି. (କବିପ୍ରୟୋଗ) ଆବରଣ କରି, ଆଚ୍ଛାଦି, ଢାଙ୍କି ।

ଆବରିବା—ଗ୍ରା. (ପଦ୍ୟ) କ୍ରି. ଆବରଣ କରିବା, ଘେରିକରି ରହିବା, ଅଧିକାର କରି ବସିବା,(ଲକ୍ଷ୍ୟ) କୌଣସି ମନୋଗତ ଭାବକୁ ଗୁପ୍ତ ରଖିବା, ଆପଣାର କରିବା, ଘୋଟିବା, ଘୋଡ଼ାଇବା ।

ଆବରିତ—ବିଂ. ( ଆବୃତ ଶବ୍ଦର ଅପଭ୍ରଂଶ ) ଆଚ୍ଛନ୍ନ, ଆବୃତ, ଢଙ୍କାହୋଇଥିବା ।

ଆବରୁ—(ଯା) ପୁଂ. ପର୍ଦ୍ଦା, ଯବନିକା, ସ୍ତ୍ରୀଲୋକମାନଙ୍କର ସମ୍ଭ୍ରମ ବା ଲଜ୍ଜାଶୀଳତା, ସତୀତ୍ୱ, ସମ୍ମାନ, ମର୍ଯ୍ୟାଦା ।

ଆବର୍ଜ୍ଜନ—କ୍ଲୀ. ବି. (ଆ + ବୃଜ୍ + ଭା. ଅନ) ଗୁଡ଼ି ପଳାଇବା, ସମ୍ୟକ୍‌ତ୍ୟାଗ, ଆନମନ, ବଶୀକରଣ ।

ଆବର୍ଜ୍ଜନା—ସ୍ତ୍ରୀ.ବି. (ଆ + ବୃଜ୍ + ଅନ + ଆ) ଝାଟିଆ, ଅଳିଆ, ଯାହା ପକାଇ ଦିଆଯାଏ ।

ଆବର୍ଜ୍ଜିତ—ବିଂ. (ଆ + ବୃଜ୍ + ମିଂ.ତ) ଓଲଥା ହୋଇଥିବା, ଦତ୍ତ, ତ୍ୟକ୍ତ, ଆହୃତ, ସଂଗମିତ, ପ୍ରକ୍ଷିପ୍ତ, ଆକୃଷ୍ଟ, ସିକ୍ତ, କ୍ଷିପ୍ତ, (ସ୍ତ୍ରୀ) ଆବର୍ଜ୍ଜିତା ।

ଆବର୍ତ୍ତ—ପୁଂ. ବି. ( ଆ + ବୃତ୍ + ଅ ) ଘୋଡ଼ା ଦେହର ଭଉଁରୀ, ଜଳଭଉଁରୀ, ଘୂର୍ଣ୍ଣାୟମାନ ଜଳ,ରୋମସଂସ୍ଥାନବିଶେଷ, ଲୋମର ଭଉଁରୀ, ରାଜାବର୍ତ୍ତନାମକ ମଣିବିଶେଷ, ମେଘର ଅଧିପବିଶେଷ, ଭଉଁରୀ, ମାକ୍ଷିକ ଧାତୁ, ଚିନ୍ତା, ସମ୍ୟକ୍ ବର୍ତ୍ତମାନ,ପରିବର୍ତ୍ତ, ବାସଭୂମି,କୁଣ୍ଡଳୀ, ସଂସାର ।

ଆବର୍ତ୍ତକ—ପୁଂ. ବି. (ଆ + ବୃତ୍ + କ) ମେଘାଧିପବିଶେଷ, ଅଶ୍ୱାଦିର ରୋମସ୍ଥଚିହ୍ନବିଶେଷ, ମେରୁଦଣ୍ଡସଂଲଗ୍ନ ଅସ୍ଥି ଖଣ୍ଡ,(ବିଂ)ଆଘଟ୍ଟକ, ଯେ ଦୁଗ୍ଧାଦି ପୁନଃପୁନଃ ଆଉଟେ ।

ଆବର୍ତ୍ତକୀ—ସ୍ତ୍ରୀ.ବି. (ଆ + ବୃତ୍ + ଅକ. ଈ) କୋଙ୍କଣ, ଭଗବତବଲ୍ଲୀନାମକ ଲତା, ଭଦ୍ରଦନ୍ତିକା, ଚକ୍ରାକାର,ଭ୍ରମର, ଜଳଭଉଁରୀ, ଘୋଡ଼ାଚିହ୍ନବିଶେଷ ।

ଆବର୍ତ୍ତନ କ୍ଲୀ. ବି. ( ଆ + ବୃତ୍ + ଭା. ଅନ ) ଆଲୋଡ଼ନ, ଆଉଟା, ଗୁଣନ, ବଷ୍ଟ , ଜମ୍ବୁଦ୍ୱୀପର ଉପଦ୍ୱୀପ, ଘୂର୍ଣ୍ଣନ, ମନ୍ଥନ, ପୁନରାଗମନ, ବେଢ଼ିବା, (ସ୍ତ୍ରୀ) ଆବର୍ତ୍ତନୀ, ଦାବୀ,ଚଟ, (କ୍ଲୀ)ବେଷ୍ଟନ, ପ୍ରାଚୀରାଦି, (ବି) ବସ୍ତୁ ।

ଆବର୍ତ୍ତନବାଦ—ବି. (ଆବର୍ତ୍ତନ + ବାଦ) ମୃତ୍ୟୁପରେ ପୁନଃ ସଂସାରରେ ଜନ୍ମଗ୍ରହଣ କରିବାର ବିଶ୍ୱାସ ।

ଆବର୍ତ୍ତନବାଦୀ—ପୁଂ.ବି (ଆବର୍ତ୍ତନ + ବାଦୀ) ଯେଉଁ ଲୋକ ବିଶ୍ୱାସ କରେ ଜୀବ ମୃତ୍ୟୁ ପରେ ପୁନର୍ବାର ଜନ୍ମଗ୍ରହଣ କରେ, (ସ୍ତ୍ରୀ) ଆବର୍ତ୍ତନବାଦିନୀ ।

ଆବର୍ତ୍ତନମଣି—ପୁଂ.ବି.(କ.ଧା)ରାଜାବର୍ତ୍ତନାମକ ଉପରତ୍ନ ।

ଆବର୍ତ୍ତିନୀ—ସ୍ତ୍ରୀ. ବ. (ଆ + ବୃତ୍ + ଅନ. ଈ) ଆଉଟିବା ଡଙ୍କା, ମନ୍ଥନଦଣ୍ଡ, ଘୋଟଣା, ଆଉଟିବା ପାତ୍ର, ଯାହାଦ୍ୱାରା ଆଉଟାଯାଏ, ଅଣକ, କୁଇ, ଉରୁବୁଡ଼ ।
ଆବର୍ତ୍ତନୀୟ—ତ୍ରି. ( ଆ + ବୃତ୍ + ମଂ. ଅନୀୟ ) ଦ୍ରାବଣୀୟ, ଗୁଣନୀୟ, ଅଭ୍ୟସନୀୟ, ଦ୍ରାବଣୀୟ ଧାତୁ ପ୍ରଭୃତ, ଆଲୋଡ଼ନୀୟ ଦୁଗ୍ଧାଦ, ଗୁଣନୀୟ ଅଙ୍କାଦ ।
ଆବର୍ତ୍ତିମଣି—ପୁଂ. ରାଜାବର୍ତ୍ତମଣି ।
ଆବର୍ତ୍ତମାନ—ତ୍ରି. ବଂ. (ଆ + ବୃତ୍ + କ. ଆନ) ଫେରି ଆସୁଥିବା, ଘୂର୍ଣ୍ଣାୟମାନ ।
ଆବର୍ତ୍ତବାତ୍ୟା—ସ୍ତ୍ରୀ. ବ. ଘୂର୍ଣ୍ଣିବାୟୁ, ଚଣ୍ଡପବନ । [ଧୂପାଦ ।
ଆବର୍ତ୍ତିକ—ବଂ. ଆବର୍ତ୍ତିକାର ଧୂମସାଧନ
ଆବର୍ତ୍ତିତ—ତ୍ରି. ବଂ. (ଆ + ବୃତ + ଇ, ତ) କୃତାବର୍ତ୍ତନ ଦୁଗ୍ଧାଦ, ଯେଉଁ ଦୁଗ୍ଧାଦ ଆଉଟା ହୋଇଥାଏ, ଦ୍ରାବିତ ଧାତୁପ୍ରଭୃତ, ଗୁଣିତ ଅଙ୍କାଦ, ଅଭ୍ୟସ୍ତ ପାଠାଦ, ଆବର୍ତ୍ତ ହେଉଥିବା ଜଳାଦ ।
ଆବର୍ତ୍ତୀ—ପୁଂ. ବଂ. (ଆ + ବୃତ୍ + ଇନ୍) ଆବର୍ତ୍ତନଶୀଳ, ଯେ ସର୍ବଦା ଆବର୍ତ୍ତମାନ ହୁଏ, ଆବର୍ତ୍ତିକ, ଦ୍ରାବକ (ସ୍ତ୍ରୀ) ଆବର୍ତ୍ତିନୀ, ଯେଉଁ ସ୍ତ୍ରୀ ଫେରିଆସେ, ମେଣ୍ଢାସିଙ୍ଘା ।
ଆବର୍ହିତ—ତ୍ରି. ବଂ. (ଆ + ବୃହ୍ + ଇ, ତ) ଉତ୍ପାଟିତ, ଉନ୍ମୂଳିତ, ଧ୍ୱଂସିତ ।
ଆବଲଦାଖି—ସୁନ୍ୟାମଖ୍ୟାତ ଜଣେ ପ୍ରସିଦ୍ଧ ଡକାଏତ ।
ଆବଲି, ଆବଲୀ—ସ୍ତ୍ରୀ. ବ. (ଆ + ବଲ୍ + ଇ, ଈ) ଶ୍ରେଣୀ, ପଂକ୍ତି, ପରମ୍ପରା, ସମୂହ, ବଂଶ ।
ଆବଲିତ—ବଂ. (ଆ + ବଲ୍ + ତ) ଈଷତ୍ ଚଳିତ, ସମ୍ୟକ୍ ଚଳିତ ।
ଆବଲ୍ୟ—କ୍ଲୀ. ବ. ( ଆ + ବଲ୍ + ଯ ) ଦୁର୍ବଳତା, ଦୌର୍ବଲ୍ୟ, ବଳହାନ, ସ୍ଫୂର୍ତ୍ତିହୀନତା, ଜଡ଼ତା ।
ଆବଶୀର—ପୁଂ. ବ. ଜନପଦବିଶେଷ, ମହାବୀର କର୍ଣ୍ଣ ଏଦେଶ ଜୟକରିଥିଲେ ।
ଆବଶ୍ୟକ—ବଂ. (ଅବଶ୍ୟ + କ) ଅବଶ୍ୟମ୍ଭାବୀ, ନିତାନ୍ତ ପ୍ରୟୋଜନ, ନିଶ୍ଚିତ, ଅବଶ୍ୟକର୍ତ୍ତବ୍ୟ, ନିରବକାଶ, ନିଶ୍ଚୟ ଓ ଉଚିତ (ଗ୍ରା. ବ) ଦରକାର, ପ୍ରୟୋଜନ ।
ଆବଶ୍ୟକତା—ସ୍ତ୍ରୀ. ବ. (ଆବଶ୍ୟକ + ଭା. ତା) ପ୍ରୟୋଜନୀୟତା, ପ୍ରୟୋଜନ, ଦରକାର ।
ଆବଶ୍ୟକୀୟ—ବଂ. (ଆବଶ୍ୟକ + ଇୟ) ପ୍ରୟୋଜନୀୟ, ଦରକାରି, ଜରୁରି ।
ଆବସଢ—ସ୍ତ୍ରୀ. ବ. ନଶୀଥ, ଅର୍ଦ୍ଧରାତ୍ର ।
ଆବସଥ—ପୁଂ. ବ. (ଆ + ବସ୍ + ଅଥ) ଗୃହ, ବିଶ୍ରାମସ୍ଥାନ, ଗ୍ରାମ, ବ୍ରତବିଶେଷ, ହୋମସ୍ଥାନ ।
ଆବସଥିକ—ପୁଂ. ବ. (ଅବସଥ + ଇକ) ଗୃହସ୍ଥ, ବ୍ରତୀ, ଗୃହବାସୀ (ସ୍ତ୍ରୀ) ଆବସଥିକା ।
ଆବସଥ୍ୟ—ପୁଂ. ବ. (ଆବସଥ + ଯ) ଗୃହସମ୍ବନ୍ଧୀୟ, ଲୌକିକ ଅଗ୍ନି, ବାସସ୍ଥାନ, ତପସ୍ୱୀର ଗୃହ, ପଞ୍ଚପ୍ରକାର ଅଗ୍ନି ମଧ୍ୟରୁ ଅଗ୍ନିବିଶେଷ ।
ଆବସାନ—ବଂ. ଯେ ଗ୍ରାମସୀମାରେ ବାସକରେ, (ସ୍ତ୍ରୀ) ଆବସାନୀ, ଚଣ୍ଡାଳାଦ ।
ଆବସାନକ—ବଂ. (ଅବସାନ + ଇକ) ଶେଷକାଳ ଭବ, ଯାହା ଶେଷରେ ହୁଏ, ଅନ୍ତିମ ।
ଆବସିତ—ବଂ. ପକ୍ୱଧାନ୍ୟ, ନିର୍ଣ୍ଣୀତ, ଅବଧାରିତ, ସମାପ୍ତ, ସ୍ତୂପୀକୃତ, ଭଣ୍ଡାରରେ ସ୍ଥାପିତ ।
ଆବସ୍ଥିକ—ବଂ. କାଳକୃତ, ଅବସ୍ଥାରୁ ଜାତ, ସମୟସମ୍ଭବ, ଅବସ୍ଥାସମ୍ଭବ ।
ଆବହ—ପୁଂ. ବ. ( ଆ + ବହ୍ + ଅ ) ଜନକ, ଦାତା, ବାୟୁବିଶେଷ, ଅଗ୍ନିଙ୍କର ସପ୍ତଜିହ୍ୱାରୁ ଏକତମ (ବଂ) ବହନକାରୀ, ଜନକ, ଉତ୍ପାଦକ ।
ଆବହନ—କ୍ଲୀ. ବ. (ଆ + ବହ୍ + ଭା, ଅନ) ପ୍ରୋଦନ, ବହନ, ଆନୟନ ।
ଆବହବାୟୁ—ବ. (ବିଜ୍ଞାନ ପରିଭାଷା ) ଜଳବାୟୁ, ଭୂମଣ୍ଡଳର ଉପରସ୍ଥ ବାୟୁ ।
ଆବହମାନ—ତ୍ରି. ବଂ. ( ଆ + ବହ୍ + କ. ଆନ) କ୍ରମାଗତ, ଧାରାବାହିକ (ଆ + ବହ + ମାନ) ଚିରପ୍ରଚଳିତ, ଯାହା ଚିରକାଳରୁ ଚଳି ଆସୁଅଛି ।
ଆବହମାନକାଳ—ବ. ଚିରକାଳ, ବହୁପୂର୍ବକାଳଠାରୁ ଆଜିପର୍ଯ୍ୟନ୍ତ ଚଳିଆସୁଥିବା କାଳ ।
ଆବା—ପ୍ରା. (ଗଞ୍ଜାମ) ଅବ୍ୟ. ଆଶ୍ଚର୍ଯ୍ୟ, ଦୁଃଖସୂଚକ, ଅହୋ, ଆହା ।
ଆବାଆବା—ଗ୍ରା. ଅବ୍ୟ. ଅତ୍ୟନ୍ତ ଭୟତ୍ରସ୍ତହୋଇ ଉଚ୍ଚାରଣ କରିବା ଶବ୍ଦ ।
ଆବାକାବା—ଗ୍ରା. ଅବ୍ୟ. (ସଂ. ଅବାକ୍) ଆଶ୍ଚର୍ଯ୍ୟାନ୍ୱିତରୂପେ, କିଂକର୍ତ୍ତବ୍ୟବିମୂଢ଼ ହୋଇ (ବଂ) ସ୍ତବ୍ଧ, କିଂକର୍ତ୍ତବ୍ୟବିମୂଢ଼, ଆଶ୍ଚର୍ଯ୍ୟାନ୍ୱିତ ।
ଆବାଖାବା—ଗ୍ରା. ( ଅବ୍ୟ. ) ଅସମାନଭାବରେ, କେଉଁଠାରେ କମ୍ କେଉଁଠାରେ ବେଶି କେଉଁଠାରେ ବା ନାହିଁ ଏପରି ଭାବରେ, ଏଠେଇ ସେଠେଇ, (ବଂ) ଅସମତଳ, ବନ୍ଧୁର ।
ଆବାଦ—(ଯା.) ବ. ଭୂମିକୁ ଚାଷକରି ଫସଲ ଉତ୍ପନ୍ନକରିବା (ବଂ) କୃଷ୍ଟ, ଚଷାଯାଇଥିବା, ଜନପୂର୍ଣ୍ଣ, ଲୋକାଧ୍ୟୁଷିତ ।
ଆବାଦୀ—(ଯା.) ବଂ. କୃଷି କରାଯାଇଥିବା (ଭୂମି) ଲୋକାଧ୍ୟୁଷିତ (ବ) ବାସସ୍ଥାନ ।
ଆବାଧ—କ୍ଲୀ. ବ. (ଆ + ବାଧ୍ + କ. ଅ) ପୀଡ଼ା, ପ୍ରତିବନ୍ଧ, ପୀଡ଼ାକର କର୍ମ, ତ୍ରିଭୁଜକ୍ଷେତ୍ରର ମଧ୍ୟସ୍ଥ ଲମ୍ବରେଖାର ଦୁଇ ପାର୍ଶ୍ୱସ୍ଥ ଭୂମି ।
ଆବାଧା—ସ୍ତ୍ରୀ. ବ. ଦୁଃଖ, ପୀଡ଼ା, ଭୂମିଖଣ୍ଡ ।
ଆବାପ—ପୁଂ. ବ. ( ଆ + ବପ୍ + ଅ ) ମଞ୍ଜି ବୁଣିବା, ଆଲବାଲ, ଖଳା, ଭାଣ୍ଡ, ସର୍ବତୋଭାବେ ବପନ, ଧାନ୍ୟାଦର ସ୍ଥାପନ, ଶତ୍ରୁଚିନ୍ତା, ପ୍ରଧାନ ହୋମ, ଆକ୍ଷେପ, ନିମ୍ନୋନ୍ନତ ଭୂମି, କଙ୍କଣାଦ ଭୂଷଣ, ରାଜ୍ୟରକ୍ଷା, ମିଶ୍ରଣ, ଅଳୀ ।
ଆବାପକ—ବ. ( ଆ + ବପ୍ + ଅ, କ ) ପ୍ରକୋଷ୍ଠାଭରଣ, ବଳୟାଦ ହସ୍ତଭୂଷଣ, (ବଂ) ଆବପନକର୍ତ୍ତା, ସମ୍ୟକ୍ ବପନକାରୀ ।

ଆବାପନ—କ୍ଲୀ.ବି. (ଆ + ବପ୍ + ଅନ) ସୂତ୍ରଯନ୍ତ୍ର, ତନ୍ତ୍ର, କେଶାଦିର ସମ୍ୟକ୍ ମଣ୍ଡନ, କଙ୍କଣ ।

ଆବାପିକ—କ୍ଲୀ.ବି. (ଆବାପନେ ସାଧୁ) ଯେ ଭଲ ବୁଣି ପାରେ ।

ଆବାରି—କ୍ଲୀ. ବି. ( ଆ + ବୃ + ଇନ୍ ) ହାଟ (ବିଂ) ସମ୍ୟକ୍ ଜଳଯୁକ୍ତ, (ଅବ୍ୟ) ବାରିପର୍ଯ୍ୟନ୍ତ, ଜଳ ପର୍ଯ୍ୟନ୍ତ ।

ଆବାଲ—ପୁଂ. ବି. ( ଆ + ବଲ୍ + ଅ ) ଆଲବାଳ, ସଞ୍ଚାର, ବାଳକ ପର୍ଯ୍ୟନ୍ତ, (କ୍ରି·ବି) ବାଲ୍ୟାବଧି ।

ଆବାଲବୃଦ୍ଧ‒(ଅବ୍ୟ.) ବାଳକଠାରୁ ବୃଦ୍ଧ ପର୍ଯ୍ୟନ୍ତ ।

ଆବାଲବୃଦ୍ଧବନିତା—(ଅବ୍ୟ.) ବାଳକ, ବୃଦ୍ଧ ଏବଂ ସ୍ତ୍ରୀଲୋକ ପର୍ଯ୍ୟନ୍ତ ।

ଆବାଲ୍ୟ—(ଅବ୍ୟ.) (ଆ + ବଲ୍ + ଯ) ବାଲ୍ୟାବସ୍ଥା ପର୍ଯ୍ୟନ୍ତ ।

ଆବାସ—ପୁଂ.ବି.(ଆ + ବସ୍ + ଅ)ବାସ୍-ସ୍ଥାନ, ଗୃହ, ସମ୍ୟକ୍ ବାସ, ସଙ୍ଗ ।

ଆବାସଭୂମି—ସ୍ତ୍ରୀ. ବି. (କ·ଧା) ନିବାସ-ସ୍ଥଳ, ଆବାସଯୋଗ୍ୟ ଭୂମି ।

ଆବାହନ—କ୍ଲୀ. ବି. ( ଆ + ବହ୍ + ଇ + ଣ୍ଣ.ଅନ) ନିମନ୍ତ୍ରଣ, ନିକଟକୁ ଆସିବା ନିମିତ୍ତ ଦେବତାଙ୍କର ଆହ୍ୱାନ ।

ଆବାହନୀ—ସ୍ତ୍ରୀ. ବି. (ଆ + ବହ + ଇ + ଅନ୍ + ଈ) ମୁଦ୍ରାବିଶେଷ, ( ବିଂ ) ଆବାହନସମ୍ବନ୍ଧୀୟ ।

ଆବାହିତ—ବି. ବିଂ. (ଆ + ବହ୍ + ଣିଚ୍ ର୍ମି.ତ) ଆହୂତ, ଆମନ୍ତ୍ରିତ, ନିକଟକୁ ଅଣାଯାଇଥିବା ।

ଆବି—ବି. ଅନ୍ଧକଦୈତ୍ୟର ପୁତ୍ର ।

ଆବିଃ—(ଅବ୍ୟ.) ସୁସ୍ପଷ୍ଟ, ପ୍ରକାଶ୍ୟ ।

ଆବିକ—କ୍ଲୀ. ବି. (ଆବି + କ) କମ୍ବଳ, ମେଷଦୁଗ୍ଧ (ବିଂ) ମେଷସମ୍ବନ୍ଧୀୟ ।

ଆବିକସୌତ୍ରିକ—କ୍ଲୀ. ବିଂ. ମେଷସୂତ୍ର ନିର୍ମିତ(ବି)ବୈଶ୍ୟଜାତିର ଯଜ୍ଞୋପବୀତ ।

ଆବିକ୍ୟ—ବିଂ. ଆବିକସମ୍ବନ୍ଧୀୟ, ମେଷ-ଲୋମସମ୍ବନ୍ଧୀୟ ।

ଆବିଗ୍ନ—ବିଂ. ( ଆ + ବିଜ୍ + କ୍ତ ) ଉଦ୍‌ବିଗ୍ନ, ଖିନ୍ନ (ପୁଂ.ବି) ପାଣିଅଁଳା ଗଛ, କରମର୍ଦ୍ଦକ, କରଞ୍ଜ ।

ଆବିଜ୍ଞାନ୍ୟ—କ୍ଲୀ. ବିଜ୍ଞାନସ୍ଥାନ ।

ଆବିଦୂର୍ଯ୍ୟ—କ୍ଲୀ. ( ଆ + ବିଦୂର + ଯ ) ସନ୍ନିକର୍ଷ, ନୈକଟ୍ୟ ।

ଆବିଦ୍ଧ—ବି. ବିଂ. ( ଆ + ବ୍ୟଧ୍ + ତ ) ତାଡ଼ିତ, ବିଦ୍ଧ, ଛିଦ୍ରୀକୃତ, କ୍ଷିପ୍ତ,ବକ୍ର, କୁଟିଳ, ମୂର୍ଖ, ନିରସ୍ତ, ଭଗ୍ନ,ଅଭିଭୂତ ।

ଆବିଦ୍ଧକର୍ଣ୍ଣୀ—ସ୍ତ୍ରୀ. ଅମ୍ବଷ୍ଠା, ନିମୁଇଲତା, ଅକାନବିନ୍ଧ ।

ଆବିଧ—(ପୁଂ) (ଆ + ବ୍ୟଧ + ଅ) କାଠ ଫୋଡ଼ିବାର ଅସ୍ତ୍ରବିଶେଷ, ଭଅଁର, ଫୋଡ଼ଣୀ ।

ଆବିର୍ଭବନ—କ୍ଲୀ. ବି. (ଆବିସ୍ + ଭୂ + ଣ୍ଣ,ଅନ) ଆବିର୍ଭାବ, ଅବତାର ।

ଆବିର୍ଭାବ—ପୁଂ.ବି. (ଆବିସ୍ + ଭୂ + ଣ୍ଣ, ଅ) ପ୍ରକାଶ, ଉତ୍ପତ୍ତି, ଜନ୍ମ, ଉଦୟ, ଅଧିଷ୍ଠାନ, ପ୍ରାଦୁର୍ଭାବ ।

ଆବିର୍ଭୂତ—ବି. ବିଂ. (ଆବିସ୍ + ଭୂ + କ, ତ) ପ୍ରକଟିତ, ଅଭିବ୍ୟକ୍ତ, ଉଦିତ, ଅବତୀର୍ଣ୍ଣ, ଅଧିଷ୍ଠିତ, ଜାତ, ଆଗତ ।

ଆବିର୍ମୁଖୀ—ବି. ଚକ୍ଷୁ, ଆଖି ।

ଆବିଲ—ବି. ବିଂ. (ଆ + ବିଲ୍ + କ,ଅ) କଳୁଷିତ, ଆକୁଳ, ଅପରିଷ୍କୃତ, ଗୋଳିଆ, ଦୁର୍ବୋଧ,ନିଷ୍ପ୍ରଭ, ସନ୍ଦିଗ୍ଧ, ପାପୀ ।

ଆବିଷ୍କରଣ—କ୍ଲୀ.ବି. (ଆବିସ୍ + କୃ + ଣ୍ଣ, ଅନ) ନୂତନ, ପ୍ରକାଶ, ପ୍ରକାଶସାଧନ, ଆବିଷ୍କାର ।

ଆବିଷ୍କରଣୀୟ—ବି. ବିଂ. ( ଆବିସ୍ + କୃ + ର୍ମି, ଅନୀୟ ) ଆବିଷ୍କାରଯୋଗ୍ୟ, ଯାହା ଆବିଷ୍କାର କରିବାକୁ ହେବ ଅଥବା କରିବା ଉଚିତ ବା ଆବଶ୍ୟକ ।

ଆବିଷ୍କର୍ତ୍ତା—ପୁଂ.ବିଂ.(ଆବିସ୍ + କୃ + କ, ତୃ) ନୂତନ ପ୍ରକାଶକ, ପ୍ରକାଶକ (ସ୍ତ୍ରୀ) ଆବିଷ୍କର୍ତ୍ତ୍ରୀ ।

ଆବିଷ୍କାର—ପୁଂ.ବି. (ଆବିସ୍ + କୃ + ଣ୍ଣ, ଅ) ନୂତନପ୍ରକାଶ, ଆବିଷ୍କରଣ ।

ଆବିଷ୍କୃତ—ବି.ବିଂ. (ଆବିସ୍ + କୃ + ର୍ମି, ତ) ନବପ୍ରକାଶିତ, ବ୍ୟକ୍ତ, ପ୍ରକଟିତ ।

ଆବିଷ୍କ୍ରିୟା—ସ୍ତ୍ରୀ. ବି. ( ଆବିସ୍ + କୃ + ଯ. ଆ) ଆବିଷ୍କାର ।

ଆବିଷ୍ଟ—ବିଂ. ( ଆ + ବିଶ୍ + କ.ତ ) ଭୂତାଦିଗ୍ରସ୍ତ, ପ୍ରେମାବେଶଯୁକ୍ତ, ନିଯୁକ୍ତ, ନିବିଷ୍ଟ, ବ୍ୟାପ୍ତ, ମୋହିତ, ଦୁଃଖପୀଡ଼ିତ, ଆସକ୍ତ, ସମ୍ବଦ୍ଧ,ମନୋଯୋଗୀ, ପ୍ରବିଷ୍ଟ ।

ଆବିସ୍ତରାଂ—(ଅବ୍ୟ) ( ଆବିସ୍ + ତରପ୍ + ଆମ୍ ) ଅତିଶୟ ପ୍ରକାଶ, ଅତ୍ୟନ୍ତ ପ୍ରକାଶ ।

ଆବୀ—ସ୍ତ୍ରୀ. ବି. ( ଆବି + ଅ + ଈ ) ରଜସ୍ୱଳା ସ୍ତ୍ରୀ, ଗର୍ଭବତୀ ।

ଆବୀତ—ବି. ବିଂ. ( ଆ + ବେ୍ୟ + ତ ) ସମସ୍ତପ୍ରକାରେ ଗ୍ରଥିତ, ଉତ୍କ୍ଷେପଣ କରି ଧୃତ, ( ଆ + ବୀ + କ,ତ ) ଅତୀତ, ଗତ, ଆବୃତ, ପରିହିତ, ଦକ୍ଷିଣାଂଶ-ସ୍ଥାପିତ (ଯଜ୍ଞସୂତ୍ର), (ସ୍ତ୍ରୀ) ଆବୀତା, (କ୍ଲୀ·ବି) (ଆ + ବୀ + ଣ୍ଣ, ତ) ସମ୍ୟକ୍ ଗ୍ରଥନ, ସୁନ୍ଦର କରି ଗୁନ୍ଥିବା, ଉତ୍-କ୍ଷେପଣ କରି ଧରିବା ।

ଆବୀତୀ—ପୁଂ. ବି. ଦକ୍ଷିଣ ସ୍କନ୍ଧୋପରି ଧୃତ ଯଜ୍ଞସୂତ୍ର, ପ୍ରାଚୀନାବୀତୀ ।

ଆବୀର—ଯା. ବି.ଅବୀର, ଫଗୁ, ରଞ୍ଜକ-ଦ୍ରବ୍ୟବିଶେଷ ।

ଆବୁ—ଗ୍ରା. ( ସଂ-ଅର୍ବୁଦ ) ଅଧିମାଂସ, ରୋଗବିଶେଷ, ଆବୁ ପରି ବାହାରିଥିବା ବୃକ୍ଷଶାଖାଦିର କାଠୁଆ ଅଂଶ ।

ଆବୁଆ – ଗ୍ରା. ବିଂ. ଆବୁଯୁକ୍ତ, ବନ୍ଧୁର ।

ଆବୁଆବୁଆ—ଗ୍ରା.ବିଂ. ଆବୁଆ, ବନ୍ଧୁର, ଆବୁଯୁକ୍ତ ।

ଆବୁକ—ପୁଂ. ବି. ( ଅବ + ଉ + କ ) ନାଟ୍ୟୋକ୍ତିରେ ଜନକ, ପିତା ।

ଆବୁଡ଼ାଖାବୁଡ଼ା—ଗ୍ରା. ବିଂ. ଅସମତଳ, ବନ୍ଧୁର, ଉଚ୍ଚନୀଚ ।

ଆବୁଡ଼ାପଡ଼ିବା—କ୍ରି. ଗ୍ରା. ଆଗଭର ହେବା, ଆବଶ୍ୟକ ନ ଥିବାବେଳେ କୌଣସି କାର୍ଯ୍ୟରେ ପ୍ରବେଶ କରିବା ।

ଆବୁଡାବୁ—ଗ୍ରା. ଅବ୍ୟ. (ସଂ.ଅବରୁବଃ) ତୁମ୍ଭଙ୍କୁ ରକ୍ଷା କରନ୍ତୁ, "ଆବୁଡାବୁ ଗିରସୁତା, ମା ବୋଇଲେ ପଡ଼ରେ ପୁତା ।" ଶିଶୁରଞ୍ଜନ ଗୀତ ।

ଆବୁତ୍ତ—ପୁଂ.ବି. (ଆ+ବୁଧ୍+କ.ତ) ନାଟ୍ୟୋକ୍ତିରେ ଭଉଣୋଇ, ଭଗିନୀପତି ।

ଆବୁର—ଗ୍ରା. ବି. ( ସଂ-ଆବରଣ ) ମହତ୍ତ୍ୱ, ଇଜ୍ଜତ, ଅବର ।

ଆବୁରାଆବୁର—ଗ୍ରା. ବି. ମୋର ମୋର କହି ଗ୍ରହଣ କରିବା, ସମସ୍ତଙ୍କ ଆଗ-ବଳ କାର୍ଯ୍ୟରେ ହସ୍ତକ୍ଷେପ କରିବା ।

ଆବୁରିବା—ଗ୍ରା.କ୍ରି. (ଆବୋରିବା ଦେଖ)

ଆବୃତ୍—ସ୍ତ୍ରୀ. ବି. (ଆ+ବୃତ୍+କ୍ୱିପ୍) ଆବରଣ, ଆବର୍ତ୍ତନ, ପୁନଃପୁନଃ ଗ୍ରହଣ, ପରିପାଟୀ, ଗୁଷ୍ଠୀଭାବ, (ବି°) ଜାତକର୍ମାଦି ସଂସ୍କାର, ଯେ ଫେରି ଆସିଅଛି ।

ଆବୃତ—ବି°. (ଆ+ବୃ+ର୍ମ,ତ କୃତା-ବରଣ, ଅପ୍ରକାଶିତ, ଆଚ୍ଛାଦିତ, ବେଷ୍ଟିତ, ବ୍ୟାପ୍ତ, ଅଜ୍ଞାନାବୃତ,ପୂରିତ, ନିରୁଦ୍ଧ, ରକ୍ଷିତ, ବ୍ରାହ୍ମଣ ଔରସରେ ଉଗ୍ରକନ୍ୟା ଗର୍ଭଜାତ ।

ଆବୃତି—ସ୍ତ୍ରୀ.ବି. (ଆ+ବୃ+ତି) ଆବ-ରଣ, ଆଚ୍ଛାଦନ, ତିରୋଧାନ, ବେଷ୍ଟନ ପ୍ରାଚୀର ।

ଆବୃତ୍ତ—ବି. ବି°. (ଆ+ବୃତ୍+ର୍ମ,ତ) ପୁନଃପୁନଃ ଅଭ୍ୟସ୍ତ, ପଠିତ, ଗୁଣିତ, (ସ୍ତ୍ରୀ) ଆବୃତ୍ତା, (ଆ+ବୃତ+କ,ତ ) ଆବର୍ତ୍ତମାନ, ଯେ ଫେରିଆସିଅଛି, ପରିବୃତ,ପ୍ରତ୍ୟାବୃତ୍ତ, ଘୂର୍ଣ୍ଣିତ, ପ୍ରଚ୍ଛିତ ।

ଆବୃତ୍ତି—ସ୍ତ୍ରୀ. ବି. (ଆ+ବୃତ୍+ଭା,ତି) ବାରମ୍ବାର ଅଭ୍ୟାସ, ଘୋଷିବା, ଫେରି-ଆସିବା, ପ୍ରତ୍ୟାବୃତ୍ତି, ଗୁଣନ, ପଠନ, ପୁନର୍ଜନ୍ମ ହେବା ।

ଆବୃତ୍ତିଦୀପକ—କ୍ଲୀ. ବି. ଦୀପକାବୃତ୍ତି-ରୂପ ଅର୍ଥାଳଙ୍କାରବିଶେଷ, ମଣିଷ ।

ଆବୃଷ୍ଟି—ସ୍ତ୍ରୀ. ବି. (ଆ+ବୃଷ୍+ଭା,ତି) ସମ୍ୟକ୍‌ବର୍ଷଣ, ସମ୍ୟକ୍‌ବର୍ଷା, (ଅବ୍ୟ) ବୃଷ୍ଟି ପର୍ଯ୍ୟନ୍ତ ।

ଆବେ—ଗ୍ରା. (ଅବ୍ୟ) ନୀଚବ୍ୟକ୍ତି ପ୍ରତି ପ୍ରଯୁଜ୍ୟ ଅବଜ୍ଞାର୍ଥକ ସମ୍ବୋଧନ ।

ଆବେଗ—ପୁଂ. ବି. (ଆ+ବିଜ୍+ଭା, ଅ) ତ୍ୱରା, ସମ୍ଭ୍ରମ, ବ୍ୟାକୁଳତା, ଚିତ୍ତ-ଚାଞ୍ଚଲ୍ୟ, ଉତ୍କଣ୍ଠାଜନିତ ତ୍ୱରା ।

ଆବେଣିକ—ବି. ବି°. ସ୍ୱାଧୀନ, ଯେ ଅପରମତର ବଶବର୍ତ୍ତୀ ନୁହେ ।

ଆବେଦକ—ବି. ବି°. (ଆ+ବିଦ୍+ଣିଚ୍+ଅକ) ବିଜ୍ଞାପକ, ବାଦୀ, ଯେ ନାଲିସ୍ କରେ, ଆବେଦନକାରୀ, ପ୍ରାର୍ଥୀ, (ସ୍ତ୍ରୀ) ଆବେଦକା ।

ଆବେଦନ—କ୍ଲୀ. ବି. (ଆ+ବିଦ୍+ଭା, ଅନ) ବିଜ୍ଞାପନ, ବ୍ୟବହାରେତ୍ତଥାପନ, ଜ୍ଞାପାପତ୍ର ନିବେଦନ, ବିବାହ,ଦରଖାସ୍ତ, ନାଲିସ୍ କରିବା ।

ଆବେଦନୀୟ—ବି.ବି°. (ଆ+ବିଦ୍+ର୍ମ, ଅନୀୟ) ବିଜ୍ଞାପନୀୟ, ଯାହାକୁ ଜଣାଇ ଦିଆଯାଏ, ଯେ ପଦାର୍ଥର ଆବେଦନ କରାଯାଏ,ପ୍ରାର୍ଥନୀୟ,(ସ୍ତ୍ରୀ)ଆବେଦନୀୟା ।

ଆବେଦିତ—ବି. ବି°. (ଆ+ବିଦ୍+ଇ +ର୍ମ,ତ) ବିଜ୍ଞାପିତ, ଯାହାକୁ ଜଣାଇ ଦିଆଯାଏ, ଯେ ପଦାର୍ଥର ଆବେଦନ କରାଯାଏ, ନାଲିସ୍ ଲିଖିତ ବସ୍ତୁ ।

ଆବେଦୀ—ବି°. (ଆ+ବିଦ୍+ଣିଚ୍+ଇନ୍ ) ବିଜ୍ଞାପକ, ନାଲିସକାରୀ, ବାଦୀ, ଆଜ୍ଞାପକ, ଆଜ୍ଞାକାରୀ,(ସ୍ତ୍ରୀ) ଆବେଦନୀ ।

ଆବେଦ୍ୟ—ବି. ବି°. (ଆ+ବିଦ୍+ଇ +ର୍ମ,ଯ) ବିଜ୍ଞାପ୍ୟ, ଜଣାଇବାର ଯୋଗ୍ୟ, (ଅବ୍ୟ) ଜଣାଇଁ, କଣେଇଁ, (ସ୍ତ୍ରୀ) ଆବେଦ୍ୟା ।

ଆବେଧ—ବି. ବି°. (ଆ+ବିଧ୍+ର୍ମ,ଯ) ଯାହାକୁ ବିଦ୍ଧ କରାଯାଏ ମୁକ୍ତାଦିମଣି, ଛିଦ୍ର କରିବାର ଯୋଗ୍ୟମଣି ପ୍ରଭୃତି, ବେଧନୀୟ, ଛିଦ୍ରୀକରଣୀୟ ।

ଆବେଶ—ପୁଂ. ବି. (ଆ+ବିଶ୍+ଭା,ଅ) ଅହଂକାରବିଶେଷ, ସଂରମ୍ଭ, କ୍ରୋଧ, ଅଭିନିବେଶ, ଆସଙ୍ଗ, ଅନୁପ୍ରବେଶ, ଗ୍ରହଭୟ, ଭୂତାଦି ପ୍ରବେଶ, ଅପସ୍ମାର, ଅଧିଷ୍ଠାନ, ଆନ୍ତରିକଯତ୍ନ, ଆସ୍ୱୀ-କରଣ ।

ଆବେଶନ—କ୍ଲୀ.ବି. (ଆ+ବିଶ୍+ଅନ) ଶିଳ୍ପଶାଳା, ଭୂତାବେଶ, ସୈନ୍ୟ-ଗ୍ରହଣୀ, ସୂର୍ଯ୍ୟ ଓ ଚନ୍ଦ୍ରଙ୍କର ପରିଧି ପ୍ରବେଶ ସମ୍ପାଦନ ବ୍ୟାପାର, ଗୃହ-ଦ୍ୱୋଧାଦି ଯାହାଦ୍ୱାରା ପ୍ରବେଶ କରାଯାଏ ।

ଆବେଶରସ—ପୁଂ.ବି. କାମାବେଶଜନିତ ବିକୃତଭାବ ।

ଆବେଶିକ—ପୁଂ.ବି. ( ଆବେଶ+ଇକ) ଅତିଥି, ବାନ୍ଧବାଦି, ଆଗନ୍ତୁକ, ପ୍ରବେଶ, (ବି°) ପ୍ରତିଷ୍ଠିତ, ଅସାଧାରଣ ।

ଆବେଶିତ—ବି°. (ଆ + ବେଶି+ର୍ମ,ତ) ନିବେଶିତ, ଆବେଶଯୁକ୍ତ, ମନୋଯୋଗ-ଯୁକ୍ତ, ପ୍ରବେଶିତ, ସମାହିତ ।

ଆବେଷ୍ଟ—ପୁଂ. ବି. (ଆ+ବେଷ୍ଟ୍+ଭା, ଅ) ଆବେଷ୍ଟନ, ବେଢ଼ ।

ଆବେଷ୍ଟକ—ପୁଂ.ବି°.(ଆ+ବେଷ୍ଟ୍+ଣ, ଅକ) ଆବରଣକାରକ, ପ୍ରାଚୀରାଦି, ବେଢ଼ା ।

ଆବେଷ୍ଟନ—କ୍ଲୀ.ବି.(ଆ+ବେଷ୍ଟ୍+ଭା, ଅନ)ଆବରଣ ସାଧନ ପ୍ରାଚୀରାଦି,ବେଢ଼ା ।

ଆବୋଉ—(ପ୍ରା) ବାଲେଶ୍ୱର ଓ ବାଙ୍କି ଅଞ୍ଚଳର କରଣଗୋଷ୍ଠୀରେ ପ୍ରଚଳିତ; ବି. ଖୁଡ଼ୀ, ଦେଠେଇ, (ଗ୍ରା.ଅ.) ପିତୃ ମାତୃହୀନ ଶିଶୁଙ୍କୁ ପିଲାଦିନୁ ପାଳିଥିବା ପିଉସୀ, ମାଉସୀ, ମାଇଁ ଆଦିଙ୍କ ପ୍ରତି ଉକ୍ତଶିଶୁମାନଙ୍କ ସ୍ନେହ ସମ୍ବୋଧନ ।

ଆବୋଧନ-କ୍ଲୀ.ବି.(ଆ+ବୁଧ+ଭା,ଅନ) ବୋଧ, ବୁଦ୍ଧି, ଜ୍ଞାନ ।

ଆବୋର—ଗ୍ରା.ବି. ଆବୁର ଦେଖ ।

ଆବୋରାଆବୁର—ଗ୍ରା.ବି. ଆବୁରାଆବୁର ଦେଖ ।

ଆବୋରିବା—ଗ୍ରା. କ୍ରି. (ସଂ—ଆବରଣ) ଆରିବା, ଘୋଟିବା, ଗୋଳିବା, ଅଟ-କାଇବା, ଆତ୍ମସ୍ୱକରିବା, ରକ୍ଷାକରିବା, ଅଧିକାର କରିବା, ପାଳିବା, ଆଦର କରିବା । [ ବାର୍ଷିକ ।

ଆର୍ଦ୍ଧିକ—ବି°.(ଅର୍ଦ୍ଧ+ଇକ)ଅର୍ଦ୍ଧସମ୍ବନ୍ଧୀ,

ଆବ୍ୟ—ବି. ବ. (ଆବ + ଯ) ମେଷ ସମ୍ବନ୍ଧୀୟ ଲୋମାଦି ।

ଆବ୍ୟାଧୀ—ବି॰. (ଆ + ବ୍ୟଧ + ଇନ୍) ସମ୍ୟକ୍ ପୀଡ଼କ, ପୀଡ଼ାଦାୟକ, (ସ୍ତ୍ରୀ) ଆବ୍ୟାଧିନୀ ।

ଆବ୍ରଶ୍ଚନ—କ୍ଳୀ.ବ. (ଆ + ବ୍ରଶ୍ଚ + ଆନ) ଈଷତ୍ଛେଦନ, ଛେଦ୍ୟବୃକ୍ଷ ପ୍ରବେଶ, ଭଲରୂପେ କାଟିବା ।

ଆବ୍ରସ୍କ—ପୁଂ.ବ. ଈଷତ୍ଛେଦନ, (ବି॰) ସ୍ୱପାଦ କରିବା ନିମିତ୍ତ ବୃକ୍ଷର ଯେ ସ୍ଥାନ ଛେଦନ କରାଯାଏ ।

ଆବ୍ରୀଡ଼କ—ପୁଂ.ବ.(ଆ + ବ୍ରୀଡ଼୍ + ଅକ) ନିର୍ଲଜଦେଶ, ଲଜ୍ଜାସ୍ଥାନଦେଶ ।

ଆବ୍ରହ୍ମସ୍ତମ୍ବ (ମ୍ଭ)—( ଅବ୍ୟ. ) ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କଠାରୁ ଆରମ୍ଭ କରି ଅତି ସ୍ୱଳ୍ପ ପଦାର୍ଥ ପର୍ଯ୍ୟନ୍ତ ।

ଆଶ୍—ପ୍ରା. (ସମ୍ବ) ବ ଆଶା ।

ଆଶ୍କଡ଼—(ଗ୍ରା.) ବି॰. (ସଂ—ଅଶକ୍ତ) କ୍ଳାନ୍ତ,ଶ୍ରାନ୍ତ, ଅଶକ୍ତ, ଅକ୍ଷମ,ବେଗପୂର୍ବକରୁ ଜଡ଼ତା ବୋଧକରୁଥିବା, (ବି) କ୍ଳାନ୍ତ, ଶ୍ରାନ୍ତ, କ୍ଳାନ୍ତବୋଧ ।

ଆଶ୍‌ପାଶ୍—(ଭା)ବି॰.ନିକଟବର୍ତ୍ତୀ(କ୍ରି.ବି॰) ଆଖ ପାଖ, ନିକଟରେ, ଗୃହପାଖେ ।

ଆଶ—ପୁଂ.ବ. (ଆଶ୍ + ଘ,ଅ) ଭୋଜନ, ଆଶା ଶବ୍ଦର ଅପଭ୍ରଂଶ, (ଗ୍ରା ବ) ଆଶା, ଇଚ୍ଛା ।

ଆଶଂସନ—କ୍ଳୀ.ବ. (ଆ + ଶନସ୍ + ଘ, ଅନ) ଆଶଂସା, କଥନ, ଆଶା, ଅଭିଲାଷ, ସମ୍ଭାବନା, ନିବୃତ୍ତି, ପ୍ରାର୍ଥନା ।

ଆଶଂସା—ସ୍ତ୍ରୀ. ବ. (ଆ + ଶସ୍ + ଆ) ଆଶା,ଅପ୍ରାପ୍ତ ପଦାର୍ଥର ପାଇବା ଇଚ୍ଛା, ମନୋରଥ ।

ଆଶଂସିତ—ବି.ବି॰. (ଆ + ଶନସ୍ + ମି, ତ) କଥିତ, ଇଚ୍ଛା ବିଷୟୀଭୂତ,ପ୍ରାର୍ଥିତ, ଆଶା କରାଯାଇଥିବା, ଇପ୍ସିତ (ସ୍ତ୍ରୀ) ଆଶଂସିତା, (କ୍ଳୀ ବ.)ମନୋରଥ,ଆଶା, ଇଚ୍ଛା କଥନ ।

ଆଂଶସିତା—ପୁଂ.ବି॰.(ଆ + ଶନସ୍ + କ, ତୃ) ଭାବୀ ଶୁଭେଚ୍ଛାଯୁକ୍ତ, ଅଭିଳାଷୀ, ଇଚ୍ଛୁକ,ପ୍ରାର୍ଥକ,କଥୟିତା,(ସ୍ତ୍ରୀ) ଆଶଂସିତ୍ରୀ, ଆକାଙ୍କ୍ଷା ।

ଆଶଂସୀ—ପୁଂ.ବି॰.(ଆ + ଶନସ୍ + କ, ଇ) ଆଶଂସୁ, ଆଶଂସାକାରୀ,ଆଶାଯୁକ୍ତୀ, ପ୍ରାର୍ଥକ, ଅଭିଲାଷୀ ।

ଆଶଂସୁ—ବି.ବି॰ (ଆ + ଶନସ୍ + କ,ଉ) ଭାବିଶୁଭାକାଙ୍କ୍ଷୀ, ପ୍ରତ୍ୟାଶୀ, ଶୁଭେଚ୍ଛୁ, ଆଶଂସାକାର, ଆକାଙ୍କ୍ଷୀ ।

ଆଶକ—ବି.ବି॰. (ଆଶ + ଅକ) ଭକ୍ଷକ, ବେଗଯୁକ୍ତ, ଭୋଜନକାରକ ( ଯା. ) ପ୍ରଣୟୀ ।

ଆଶକ୍ତ—ବି.ବି॰. (ଆ + ଶକ୍ + କ,ତ) ସମ୍ୟକ୍ ଆଶକ୍ତିଯୁକ୍ତ, ସମର୍ଥ ।

ଆଶକ୍ତି—ସ୍ତ୍ରୀ.ବ.(ଆ + ଶକ୍ + ତି)ସାମର୍ଥ୍ୟ, ଯୋଗ୍ୟତା ।

ଆଶଗନ୍ଧ—(ହିନ୍ଦି) ଅଶ୍ୱଗନ୍ଧାର ଅପଭ୍ରଂଶ ଏକ ପ୍ରକାର ଗଛ ।

ଆଶଙ୍କନୀୟ—ବି.ବି॰.(ଆ + ଶନ୍କ + ମି, ଅନୀୟ) ଶଙ୍କାର ବିଷୟ, ଶଙ୍କାକରିବାର ଯୋଗ୍ୟ, ଅନିଷ୍ଟକର ବୋଲି ଭାବନୀୟ ।

ଆଶଙ୍କା—ସ୍ତ୍ରୀ.ବ.(ଆ + ଶଙ୍କ + ଆ) ଭୟ, ତ୍ରାସ, ଅନିଷ୍ଟକର ବୋଲି ଚିନ୍ତା, ସନ୍ଦେହ,ସଙ୍କୋଚ,ବିତର୍କ, ଅନିଶ୍ଚୟତା ।

ଆଶଙ୍କିତ—ବି.ବ. (ଆ + ଶଙ୍କ୍ + ମି,ତ) ତ୍ରସ୍ତ, ସଶଙ୍କିତ, ଭୀତ,ଚକିତ, ସନ୍ଦିଗ୍ଧ, ଯାହାର ଆଶଙ୍କା କରାହୋଇଅଛି, (କ୍ଳୀ) ଭୟ, ସନ୍ଦେହ, ଚକିନ ।

ଆଶଙ୍କୀ—ବି॰. (ଆ + ଶନ୍କ + ଇନ୍ ) ଆଶଙ୍କାଯୁକ୍ତ, ସନ୍ଦେହୀ, ଯେ ଆଶଙ୍କା କରେ, ଆଶଙ୍କିତ, ସଂଶୟକାରକ,ଭୀରୁ ।

ଆଶଙ୍କ୍ୟ—ବି. ବି॰. (ଆ + ଶକ + ଯ) ଆଶଙ୍କାର ବିଷୟ, ସନ୍ଦେହର ଯୋଗ୍ୟ, (ଅବ୍ୟ) ସନ୍ଦେହ କରି ।

ଆଶନ—ପୁଂ. ବ. (ଅଶନ୍ + ଅ ) ଅଶନ ଗଛ, (ବି॰) ଯେ ଭୋଜନ କରଏ, ବଜ୍ରାଙ୍କୀ, ଇନ୍ଦ୍ର, (ବି) ବଜ୍ର ।

ଆଶନା—( ଯା. ) ଚିହ୍ନା, ଜଣାଶୁଣା ।

ଆଶୟ—ପୁଂ.ବ. (ଆ + ଶୀ + ଅ)ଅଭିପ୍ରାୟ, ଆଧାର, ବିଭବ, ବୌଦ୍ଧମତ ବିଜ୍ଞାନସମୂହ, ଖାଡବିଶେଷ, ଆଶ୍ରୟ, ହୃଦୟ, ଚିନ୍ତା, ପଣସଗଛ,ମନ ଅଦୃଷ୍ଟ ।

ଆଶୟାଗ୍ନି—ପୁଂ.ବ.(୬ତତ୍)ଜଠରାନଳ, ଅଜୀର୍ଣ୍ଣରୋଗ ।

ଆଶୟାର୍ଥ—ବ. ( ମଧ୍ୟ କ.ଧା ) କୌଣସି ଶବ୍ଦ ବା ବାକ୍ୟର ତାତ୍ପର୍ଯ୍ୟାର୍ଥ ଆକ୍ଷରିକ ବା ଶବ୍ଦଶକ୍ତିଗତ ଅର୍ଥଛଡ଼ା ଲେଖକର ଗୂଢ଼ ଅଭିପ୍ରାୟ ସୂଚକାର୍ଥ ।

ଆଶୟାଶ—ପୁଂ. ବ. ( ଅଶୟ + ଅଶ + ଅ) ଅଗ୍ନି, ଦୁଃଖାନଳ ।

ଆଶୟୋପମା—ବ. (ମଧ୍ୟ-କ.ଧା)ଅର୍ଥାଲଙ୍କାରବିଶେଷ ।

ଆଶର—ପୁଂ.ବ.(ଆ + ଶୃ + କ.ଅ)ଅଗ୍ନି, ରାକ୍ଷସ, କ୍ରବ୍ୟାଦ ।

ଆଶରୁଫୀ—(ଯା) ସ୍ୱର୍ଣ୍ଣମୁଦ୍ରା, ମୋହର, ଅଶରଫୀ ।

ଆଶରୀକ—କ୍ଳୀ.ବ. ରୋଗବିଶେଷ, ଆଶରିକ, (ବି॰) ରାକ୍ଷସସମ୍ବନ୍ଧୀୟ, ଅଗ୍ନିସମ୍ବନ୍ଧୀୟ ।

ଆଶଶେଓଡ଼ା—ଏକପ୍ରକାର ଗଛ, ଏହାର ପାଞ୍ଚକୋଣିଆ ପତ୍ର ଓ ରଙ୍ଗବର୍ଣ୍ଣ ଗ୍ରେଟ ଗ୍ରେଟ ଫଳ ହୁଏ ।

ଆଶବ—କ୍ଳୀ. ବ. (ଆଶୁ + ଅ) ଶୀଘ୍ରତ୍ୱ, ଆଶିମା, ଆଶୁତ୍ୱ, ଆଶୁତା ।

ଆଶସ୍—ବି. ବି॰. ( ଆଶନ୍ସ + କ୍ୱିପ୍ ) ଭାବୀ ଶୁଭେଚ୍ଛାକାରୀ, ( ଆଶନ୍ସ + ଭା. କ୍ୱିପ୍ ) ଭାବୀ ଶୁଭଇଚ୍ଛା, କଥନ, ସ୍ତୁତିସାଧନ ।

ଆଶସନ—କ୍ଳୀ. ବ. କଥନ, ଭାବୀ ଶୁଭଇଚ୍ଛାକରଣ, ତୃଷାଧାନ ।

ଆଶସ୍ତ—କ୍ଳୀ. ବ. (ଆ + ଶନସ୍ + ତ) ସ୍ତୁତ, ଯାହାକୁ ସ୍ତବ କରାଯାଇଅଛି ।

ଆଶା—ସ୍ତ୍ରୀ. ବ. (ଆ + ଅଶ୍ + ଅ + ଆ) ଦିକ୍, ଦିଗ, ପ୍ରତ୍ୟାଶା, ପାଇ ନ ଥିବା ପଦାର୍ଥର ପାଇବାକୁ ଇଚ୍ଛା, ଭରସା, ତୃଷ୍ଣା, ଦକ୍ଷକନ୍ୟା, ଦୈର୍ଘ୍ୟ, ବାଞ୍ଛା, ଆଶାବାଡ଼ି ।

ଆଶାଜନକ—ବି॰. (୬ତତ୍) ଆଶାପ୍ରଦ ।

**ଆଶାଢ଼**—ପୁଂ.ବି. ଆଷାଢ଼, ଦଣ୍ଡ, ବ୍ରହ୍ମଚାରୀମାନଙ୍କର ପଲାଶାଦି ଦଣ୍ଡ, ଆଷାଢ଼ ମାସ ।

ଆଶାଢ଼ା—ସ୍ତ୍ରୀ.ବି. ଆଷାଢ଼ା ନକ୍ଷତ୍ର, ବ୍ରହ୍ମଚାରୀର ପଲାଶଦଣ୍ଡ,ଆଶାଢ଼ ନକ୍ଷତ୍ରଯୁକ୍ତ ପୂର୍ଣ୍ଣିମା, (ପୁଂ)ଆଷାଢ଼ମାସ ।

ଆଶାତୀତ—ବି. ବିଂ. (୭ତତ୍) ବାସନାତୀତ, ଯାହା ଆଶା କରି ହୋଇଅଛି ତା ଅପେକ୍ଷା ଅଧିକ ।

ଆଶାଦାମ—କ୍ଲୀ. ବି. ଆଶାରୂପ ବନ୍ଧନରଜ୍ଜୁ, ଆଶାରୂପ ବନ୍ଧନଶୃଙ୍ଖଳ, ଆଶାରୂପ ମାଳ ।

ଆଶାଧର—ଜଣେ ପ୍ରସିଦ୍ଧଜୈନଗ୍ରନ୍ଥକର୍ତ୍ତା, ଏହାଙ୍କ ରଚିତ ଜିନସଜ୍ଜକଳ୍ପ, ଆରି ଧନାସାର, ସଟୀକ ଧର୍ମ୍ମାମୃତ, ପ୍ରମେୟରତ୍ନାକର, ବାକ୍ୟାଲଙ୍କାରଟୀକାପ୍ରଭୃତି

**ଆଶାନ**—(ଯା)ବି., ଲଘବ,ବିଶ୍ରାମ,ନିସ୍ତାର ନିସ୍ତୃତି, ଉଦ୍ଧାର, ପ୍ରତିକାର ।

ଆଶାନନ୍ଦ—ପୁଂ. ବି. ରାମାନନ୍ଦଙ୍କର ଜଣେ ପ୍ରଧାନ ଶିଷ୍ୟ ।

ଆଶାନନ୍ଦଭେଙ୍କି—ଏ ଜଣେ ବିଖ୍ୟାତ ବଙ୍ଗାଳୀ ବ୍ରାହ୍ମଣବୀର ।

ଆଶାନ୍ୱିତ—ପୁଂ.ବି.(୩ତତ୍) ଆଶାଯୁକ୍ତ, ଆଶାକରୁଥିବା, (ସ୍ତ୍ରୀ) ଆଶାନ୍ୱିତା ।

ଆଶାପତି—ପୁଂ. ବି. (୬ତତ୍) ଦିଗ୍‌ପତି, ଦିଗ୍‌ପାଳ । [ ରୂପକ ।

ଆଶାପଥ—ପୁଂ.ବି. ଆଶାରୂପକ ପଥ,

ଆଶାପାଳ—ପୁଂ.ବି. (ଆଶା + ପାଳ + କ.ଅ) ଦିଗ୍‌ପାଳଇନ୍ଦ୍ରପ୍ରଭୃତି, ଅଶ୍ୱମେଧ ଯାଗର ଅଶ୍ୱରକ୍ଷକ ରାଜପୁତ୍ର ।

ଆଶାପିଶାଚିକା—ସ୍ତ୍ରୀ.ବି.(କ.ଧା)ମୋହିନୀଆଶା ।

ଆଶାପୁର—କ୍ଲୀ. ବି. ପୁରବିଶେଷ, ନଗରବିଶେଷ, ଯେଉଁ ନଗରରେ ବେଶି ଗୁଗ୍‌ଗୁଲ ମିଳେ ।

ଆଶାପୁରସମ୍ଭବ—ପୁଂ. ବି. ଆଶାପୁରଜାତ, ଗୁଗ୍‌ଗୁଲବିଶେଷ ।

ଆଶାପ୍ରାପ୍ତ—ବି. ବିଂ. (୨ତତ୍) ଯେ କୌଣସି ପ୍ରକାର ଆଶା ପାଇଅଛି, ଆଶାନ୍ୱିତ,ପ୍ରତ୍ୟାଶୀ (ସ୍ତ୍ରୀ) ଆଶାପ୍ରାପ୍ତା ।

ଆଶାବନ୍ଧ—ପୁଂ. ବି. ( ଆଶା + ବନ୍ଧ ) ମର୍କଟଜାଲ, ତୃଷ୍ଣାବନ୍ଧ, ଦିଗ୍‌ବନ୍ଧ, ଆଶ୍ୱାସ, ମାଙ୍କଡ଼ଜା ଜାଲ, ଆଶାପାଶ ।

ଆଶାବରୀ—ସ୍ତ୍ରୀ. ବି. (ସଙ୍ଗୀତ) ସମ୍ପୂର୍ଣ୍ଣ ରାଗିଣୀ (ଗ୍ରା) ସାବେରୀ ରାଗ, ଭୈରବରାଗର ସ୍ତ୍ରୀ ।

ଆଶାର୍କ—ପୁଂ. ବି. କାତ୍ୟାୟନକୃତ କର୍ମ୍ମପ୍ରଦୀପର ଟୀକାକାର ।

ଆଶାବହ—ବିଂ. (ଆଶା + ବହ + ଅ ) ଆଶାଧାରୀ, ଯହିଁରେ ଆଶା ଜାତ ହୁଏ, ଯହିଁରେ ଆଶା ପୂର୍ଣ୍ଣ ହୁଏ, (ବି) ଆକାଶର ପୁତ୍ର, ନୃପବିଶେଷ, ସୂର୍ଯ୍ୟ ।

ଆଶାବାଡ଼ି— ଗ୍ରା. ବି. (ଫ-ଆଶ୍ରୟ) ଯେଉଁ ଯଷ୍ଟିଉପରେ ମନୁଷ୍ୟ ଆପଣା ଶରୀରର ଭାର ବନ୍ଧି ଚାଲେ ବା ବସେ, ରାଜଚିହ୍ନସୂଚକ ଦଣ୍ଡବିଶେଷ ।

ଆଶାବାନ୍—ପୁଂ.ବିଂ. ( ଆଶା + ବତ୍ ) ଆଶାବିଶିଷ୍ଟ (ବ୍ୟକ୍ତି) ଆଶାୟୀ ।

ଆଶାଭଙ୍ଗ - ପୁଂ. ବି. (୬ତତ୍) ଆଶାଭଙ୍ଗ, ଆଶାଲୋପ, ନୈରାଶ୍ୟ,ଆକାଙ୍କ୍ଷା ବୈଫଲ୍ୟ । [ ଆଶା ।

ଆଶାଭରସା—ଗ୍ରା. ବି. କୌଣସିପ୍ରକାର

ଆଶାୟୀ—ବିଂ.(ଆଶା + ଇ ଇନ୍)ଆଶାବାନ୍, ଆଶାନ୍ୱିତ, (ସ୍ତ୍ରୀ) ଆଶାୟିନୀ ।

ଆଶାସୋଠ—ଯା. ( ଆଶ + ସୋଠା ) ରାଜାଙ୍କ ଗହଣରେ ଅନୁଚରଙ୍କଦ୍ୱାରା ବାହିତ,ଆଶାବାଡ଼ି ସୋଠାବାଡ଼ିନାମକ ରାଜଦଣ୍ଡଦ୍ୱୟ ।

ଆଶାସ୍ପଦ—କ୍ଲୀ. ବି. (୬ତତ୍) ଆଶାର ସ୍ଥଳ, ଯେଉଁଠାରେ ଆଶା କରାଯାଏ ।

ଆଶାସ୍ୟ—ବି.ବିଂ. (ଆ + ଶାସ୍ + ମଁ,ଯ) ଆଶଂସନୀୟ, ପ୍ରାର୍ଥନୀୟ, କଥନୀୟ, ଆଶୀଃସାଧ (ଅବ୍ୟ) କହି କରି, କହି ।

ଆଶାହତ—ବି.ବିଂ. (ବି.ସ୍ତ୍ରୀ) ହତାଶ, ନଷ୍ଟାଂଶ (ସ୍ତ୍ରୀ) ଆଶାହତା ।

ଆଶି—କ୍ଲୀ. ବି. ( ଆ + ଅଶ + ଇ ) ଭୋଜନ, ଭକ୍ଷଣ ।

ଆଶିକ୍ଷା—ସ୍ତ୍ରୀ. ବି.(ଆ + ଶିକ୍ଷ + ଅ + ଆ) ସମ୍ୟକ୍ ଶିକ୍ଷା ,ଉପଦେଶ ।

ଆଶିତ—ବି. ବିଂ. ( ଆ + ଅଶ୍ + ତ ) ଭକ୍ଷିତ, ସମ୍ୟକ୍‌ଭୁକ୍ତ ଅନ୍ନାଦି, ଅଶିତ, ଭୋଜନଦ୍ୱାରା ତୃପ୍ତ(କ୍ଲୀ)ସମ୍ୟକ୍‌ଭୋଜନ, ତୃପ୍ତି ।

ଆଶିତଙ୍ଗମ—ବି.ବିଂ.(ଆଶିତ + ଗୋ + ଅ) ପ୍ରଚୁର ତୃଣପୂର୍ଣ୍ଣ, ଯେଉଁକ୍ଷେତ୍ରରେ ଗୋରୁମାନେ ତୃଣଭକ୍ଷଣ କରି ତୃପ୍ତିଲାଭ କରନ୍ତି, ତୃଣପୂର୍ଣ୍ଣ ଗୋଚର ।

ଆଶିତଙ୍ଗବୀନ—ବିଂ. ( ଆଶିତ + ଗୋ + ଈନ) ପ୍ରଚୁର ଘାସଯୁକ୍ତ ସ୍ଥାନ,ତୃଣପୂର୍ଣ୍ଣ ଗୋଚର, ଯେ ସ୍ଥାନରେ ଘାସାଦି ଖାଇ ଗୋରୁମାନେ ତୃପ୍ତିଲାଭ କରନ୍ତି, ଅରଣ୍ୟ ।

ଆଶିତମ୍ଭବ—ବିଂ. ଯେଉଁ ଅନ୍ନାଦି ଖାଇ ପ୍ରାଣୀମାନେ ତୃପ୍ତହୁଅନ୍ତି(କ୍ଲୀ) ଭୋଜନଦ୍ୱାରା ତୃପ୍ତ ହେବା ।

ଆଶିତା—ବିଂ. (ଆ + ଅଶ + ତୃ) ତୃପ୍ତିହେତୁ ଭକ୍ଷକ,ଖାଦକ, ପେଟୁ, ଭୋକ୍ତା, (ସ୍ତ୍ରୀ) ଆଶିତ୍ରୀ ।

ଆଶିନ୍—ବିଂ. ( ଅଶ + ଇନ୍ ) ଭୋକ୍ତା, ଭକ୍ଷକ,ଖାଦକ (ବି) ସର୍ପାଦିର ବିଷଦନ୍ତବିଶେଷ ।

ଆଶିନ—ପୁଂ. ବିଂ. (ଆଶିନ୍ + ଅ)ଅତିଶୟଭୋକ୍ତା,ଅତ୍ୟନ୍ତ ଭକ୍ଷକ, ବଡ଼ଖିଆ ।

ଆଶିମନ୍—ପୁଂ. ବି. (ଆଶୁ + ଇମନ୍) ଶୀଘ୍ରତ୍ୱ, ଚଞ୍ଚଳତା ।

ଆଶିର୍—ବିଂ. (ଆ + ଶ୍ରି + କ୍ୱିପ୍)ପାକର ଯୋଗ୍ୟ ଦୁଗ୍ଧାଦି ।

ଆଶିର—ବି. ବିଂ. (ଆଶିର୍ + ଅ)ପାକଯୋଗ୍ୟ ଦୁଗ୍ଧାଦି (ପୁଂ.ବି) (ଆ + ଅଶ + ଇର) ସୂର୍ଯ୍ୟ, ଅଗ୍ନି, ରାକ୍ଷସ ।

ଆଶିଷିକ—ବିଂ. (ଆଶିଷ୍ + ଇକ) ଆଶୀର୍ବାଦକ, ଆଶୀର୍ବାଦାଭିରତ ।

ଆଶିଷ୍ଟ—ବି. (ଆ + ଶାସ୍ + ତ)ଯାହାକୁ ଆଶୀର୍ବାଦ କରାଯାଇ ଥାଏ, ଉତ୍ତମ, ସଜ୍ଜନ ।

ଆଶିଷ୍ଠ— ବିଂ.ଅତ୍ୟନ୍ତ,ଶୀଘ୍ର,ଖୁବ୍‌ଚଞ୍ଚଳ ।

ଆଶିସ୍—ସ୍ତ୍ରୀ. ବି. (ଆ + ଶାସ୍ + କ୍ୱିପ୍) ସପଦନ୍ତ, ସାପର ଦାନ୍ତ, ପ୍ରାର୍ଥନା ।

ଆଶୀ—ସ୍ତ୍ରୀ.ବି.(ଆ+ଆଶ୍+କ୍ୱିପ୍+ଈ) ସାପର ଦାନ୍ତ ଓ ବିଷ, ଭକ୍ଷକ, ବିଷ ବିଦ୍ୟା, ଶୁଭକାମନା, ମଙ୍ଗଳପ୍ରାର୍ଥନା, ଆଶୀର୍ବାଦ । [ବାଦ ।

ଆଶୀର୍ଗେୟ—ବିଂ. ନାନ୍ଦୀପାଠ, ସ୍ତୁତି-

ଆଶୀର୍ଦା—ସ୍ତ୍ରୀ.ବି.ଦେବତା, ପୂଜ୍ୟବ୍ୟକ୍ତି ।

ଆଶୀୟାନ୍—ବିଂ. ଅତ୍ୟନ୍ତ ଶୀଘ୍ର (ସ୍ତ୍ରୀ) ଆଶୀୟସୀ ।

ଆଶୀତ—ବିଂ. (ଆ+ଶୀ+ତ) ପକ୍ୱ-ଦୁଗ୍‌ଧାଦି, ସିଦ୍ଧ ଦୁଗ୍‌ଧାଦି ।

ଆଶୀର୍ବଚନ—କ୍ଳୀ. ବି. (ମଧ୍ୟ-କ.ଧା) (ଆଶିସ୍+ବଚ୍+ଭା.ଅନ) (ଆଶୀର୍ବାଦ ଦେଖ) (ବିଂ) ଆଶୀର୍ବାଚକ ।

ଆଶୀର୍ବାଦ—ପୁଂ. (ଆଶିସ୍+ବଦ୍+ଅ) ଇଷ୍ଟାର୍ଥଆବିଷ୍କରଣ ବାକ୍ୟ, ଆଶୀର୍ବଚନ, ଶୁଭାକାଙ୍କ୍ଷାର ସୂଚକ ବାକ୍ୟ, ମଙ୍ଗଳ-ବାଦ, ଅନ୍ୟର ମଙ୍ଗଳବାଞ୍ଛା ପ୍ରକାଶ ।

ଆଶୀର୍ବାଦକ—ପୁଂ.ବିଂ.(ଆଶିସ୍ + ବଦ୍) +କ.ଅକ) ଯେ ଆଶୀର୍ବାଦ କରେ ଶୁଭପ୍ରାର୍ଥକ (ସ୍ତ୍ରୀ) ଆଶୀର୍ବାଦକା ।

ଆଶୀର୍ବାଦକରିବା—ଗ୍ରା. କ୍ରି. ପରର ମଙ୍ଗଳକାମନା ଉଚ୍ଚାରଣ କରିବା ।

ଆଶୀର୍ବାଦଘର—ଗ୍ରା. ବି. ପୁନର୍ବିବାହ, ଦୁର୍ବାକ୍ଷତ, ଦ୍ୱିରାଗମନ ଉତ୍ସବ (ବାଲ୍ୟ-ବିବାହପ୍ରଥା ପ୍ରଚଳିତ ହିନ୍ଦୁସମ୍ପ୍ରଦାୟ ମାନଙ୍କର ସ୍ତ୍ରୀ ଋତୁମତୀ ହେବାପରେ ଜ୍ୟୋତିଷମତରେ ଶୁଭଦିନ ଧରାଯାଇ ହୋମ ଓ ମଙ୍ଗଳ ଅନୁଷ୍ଠାନପରେ ସ୍ୱାମୀ ସ୍ତ୍ରୀଙ୍କର ମିଳନ ହେବା) ବନ୍ଧାଣଘର ।

ଆଶୀର୍ବାଦ ଗୁଣ୍ଡଲ—ଗ୍ରା.ବି. ହୋମ,ଯଜ୍ଞ, ବିବାହାଦି ଅନୁଷ୍ଠାନ ସମାପ୍ତିପରେ ପୁରୋହିତ ଓ ଅନ୍ୟାନ୍ୟ ବ୍ରାହ୍ମଣମାନେ ବେଦୋକ୍ତ ମନ୍ତ୍ରଯୁକ୍ତ ଆଶୀର୍ବଚନଉଚ୍ଚାରଣ କରି ଯେଉଁ ଅକ୍ଷତକୁ କର୍ତ୍ତାଙ୍କ ମୁଣ୍ଡ ଉପରେ ପକାନ୍ତି ।

ଆଶୀର୍ବାଦଦକ୍ଷିଣା—ବି.ଶୁଭାନୁଷ୍ଠାନପରେ ଉପସ୍ଥିତ ବ୍ରାହ୍ମଣମାନେ କର୍ମଶେଷରେ କର୍ମକର୍ତ୍ତାଙ୍କୁ ଆଶୀର୍ବାଦ କରି ତହିଁ ନିମନ୍ତେ ଯେଉଁ ଦକ୍ଷିଣା ବା ଅର୍ଥପାଆନ୍ତି ।

ଆଶୀର୍ବିଷ—ପୁଂ. (ବ.ବ୍ରୀ) ସର୍ପ, ସାପ, ବିଷଧର ସରୀସୃପ, (ବିଂ) କ୍ଷିପ୍ର, ଚଞ୍ଚଳ ।

ଆଶୁ—କ୍ରି. ବିଂ. (ଅଶ+ଉ)ଶୀଘ୍ର,ସତ୍ୱର (ପୁଂ.ବି) ବର୍ଷାଭବ ଧାନ୍ୟ, ଆଶୁଧାନ୍ୟ, ବିଆଲିଧାନ ।

ଆଶୁକବି—ବିଂ. ( ଆଶୁ+କବି ) ଯେ ହଠାତ୍ କବିତା ରଚନା କରିପାରେ ।

ଆଶୁକାରୀ—ପୁଂ. ବିଂ. (ଆଶୁ+କୃ+ଇନ୍) ଶୀଘ୍ର କାର୍ଯ୍ୟକାରୀ, ସତ୍ୱର କାର୍ଯ୍ୟ-ସାଧକ, (ସ୍ତ୍ରୀ) ଶୀଘ୍ର କାର୍ଯ୍ୟକାରିଣୀ, ଆଶୁକାରିଣୀ ।

ଆଶୁକ୍ରିୟା—ସ୍ତ୍ରୀ.କ୍ରି. ବିଂ. ଶୀଘ୍ର କରିବା, (ବିଂ) ଶୀଘ୍ର କର୍ମକାରୀ ।

ଆଶୁଗ - ପୁଂ.ବି. (ଆଶୁ+ଗମ୍+କ.ଅ) ବାଣ, ବାୟୁ,ସୂର୍ଯ୍ୟ, ଶର,(ବିଂ) ଶୀଘ୍ର-ଗାମୀ ।

ଆଶୁଗତି—ପୁଂ.ବି.(ବ.ବ୍ରୀ)ବାୟୁ,(କ.ଧା) ଶୀଘ୍ରଗମନ ।

ଆଶୁଗାମୀ-ପୁଂ.ବିଂ. (ଆଶୁ + ଗମ୍+କ. ଇନ୍ ) ଯେ ଶୀଘ୍ର ଗମନ କରିପାରେ, ଶୀଘ୍ରଗାମୀ,(ପୁଂ.ବି)ବାୟୁ,ସୂର୍ଯ୍ୟ,ଶର ।

ଆଶୁଗ—ବିଂ. ଶୀଘ୍ରଗାମୀ, ଯେ ଶୀଘ୍ର ଯାଇପାରେ ।

ଆଶୁତୋଷ—ବି.ବ.ବ୍ରୀ,(ଆଶୁ+ତୋଷ) ଶିବ, ମହାଦେବ, (ବିଂ) ଯେ ଅଳ୍ପକେ ସନ୍ତୁଷ୍ଟ ହୁଏ ।

ଆଶୁଧାନ୍ୟ—କ୍ଳୀ.ବି.(କ.ଧା)ବିଆଲିଧାନ ।

ଆଶୁପତ୍ରୀ—ସ୍ତ୍ରୀ.ବି.(ବ.ବ୍ରୀ) ଶଲ୍ଲକୀଲତା ।

ଆଶୁପତ୍ୱନ୍—ପୁଂ.ବି. ଶୀଘ୍ରଗାମୀ, (ସ୍ତ୍ରୀ) ଆଶୁପତ୍ୱରୀ । [ଯୋଗ ।

ଆଶୁଫଳ—ପୁଂ. ବି. ଶାକସବଜ, ହଠ-

ଆଶୁମାନ୍-ବିଂ. (ଆଶୁ+ମତୁପ୍)ଶୀଘ୍ରତା-ଯୁକ୍ତ, (ସ୍ତ୍ରୀ) ଆଶୁମତୀ ।

ଆଶୁରୋଷ—କ୍ରି. ବିଂ.(ବ.ବ୍ରୀ)ଶୀଘ୍ରକୁପିତ, କୋପନସ୍ୱଭାବ, ଉଗ୍ରପ୍ରକୃତି ।

ଆଶୁବ୍ରୀହି—ପୁଂ.ବି. ବର୍ଷାକାଳଜ ଧାନ୍ୟ, ଆଶୁଧାନ, ବିଆଲି ଧାନ ।

ଆଶୁଶୁକ୍ଷଣି—ପୁଂ. ବି. (ଆଶୁ+ଶୁଚ୍+କ.ଅନି) ଅଗ୍ନି, ବାୟୁ, ପବନ ।

ଆଶୁହେଷସ୍—ବିଂ. ଶୀଘ୍ର ଶବ୍ଦାୟମାନ, ଶୀଘ୍ର ଶବ୍ଦକାରୀ ।

ଆଶୁଷ୍ପାଣ—ବିଂ.ଯେ ସମ୍ୟକ୍ ଶୁଷ୍କହୋଇ-ଅଛି, ଶୁଷ୍କ ।

ଆଶୂ—ବିଂ. ଶୀଘ୍ର, ଚଞ୍ଚଳ ।

ଆଶେକୁଟୀ—ପୁଂ. ବି. ପର୍ବତବିଶେଷ ।

ଆଶୈଶବ—( ଅବ୍ୟ ) ବାଲ୍ୟକାଳରୁ ଆରମ୍ଭ କରି ।

ଆଶୋକେୟ-ବିଂ. (ଅ+ଶୋକ+ଏୟ) ଅଶୋକବୃକ୍ଷର ନିକଟସ୍ଥ ଦେଶାଦି, ଶୋକହୀନା ସ୍ତ୍ରୀର ଅପତ୍ୟ ।

ଆଶୌଚ—କ୍ଳୀ. ବି. (ଆ+ଶୌଚ୍+ଅ) ଅଶୌଚାର୍ଥ, ଅଶୌଚ ।

ଆଶ୍ଚର୍ଯ୍ୟ—କ୍ରି.ବିଂ. (ଆ+ଚର୍+ର୍ଯ୍ୟ.ଯ) ( ସ.ଆଗମ ) ଅନିତ୍ୟ, ବିସ୍ମୟଜନକ, ଅପୂର୍ବ, ଅଦ୍ଭୁତ, ବିସ୍ମିତ, ଚମତ୍କୃତ, ଅଦୃଷ୍ଟପୂର୍ବ, ଅକସ୍ମାତ୍ ଦୃଶ୍ୟମାନ, (କ୍ଳୀ.ବି) ବିସ୍ମୟ, ଚମତ୍କାର, ବିସ୍ମୟ-ଜନକ ବସ୍ତୁ ବା ଘଟନା ।

ଆଶ୍ଚର୍ଯ୍ୟଜନକ—କ୍ରି. ବି. ( ୬ତତ୍ପୁ ) ବିସ୍ମୟକର, ଯହିଁରେ ବିସ୍ମୟ ଜନ୍ମେ, (ସ୍ତ୍ରୀ) ଆଶ୍ଚର୍ଯ୍ୟଜନକା ।

ଆଶ୍ଚର୍ଯ୍ୟାନ୍ୱିତ—ବିଂ. ( ଆଶ୍ଚର୍ଯ୍ୟ+ଅନୁ +ଇ+ତ ) ଆଶ୍ଚର୍ଯ୍ୟଯୁକ୍ତ, ବିସ୍ମିତ ।

ଆଶ୍ଚୋତନ—ବିଂ. (ଆ+ଶ୍ଚୁତ୍+ଅନ) ସମ୍ୟକ୍ କ୍ଷରଣଶୀଳ, ଯାହା ସର୍ବଦା ଗଳି ପଡ଼େ,( କ୍ଳୀ.ବି ) ସମ୍ୟକ୍‌କ୍ଷରଣ, ଗଳିପଡ଼ିବା, ପତନ ।

ଆଶ୍ମ—ପୁଂ. ବିଂ. ( ଅଶ୍ମ+ଅ ) ପ୍ରସ୍ତର-ବିକାର, ପଥରନିର୍ମିତ ପୁତ୍ତଳୀପ୍ରଭୃତି ।

ଆଶ୍ମକ—ପୁଂ. ବି. (ଅଶ୍ମ+କୈ+ଅ ) ଶାଲ୍ୱଦେଶର ଗୋଟିଏ ଗ୍ରାମ, (ବିଂ) ଆଶ୍ମକ ଗ୍ରାମଜାତ ।

ଆଶ୍ମନ—ପୁଂ.ବି. (ଅଶ୍ମନ୍+ଅ) ପଥର-ଜନିତ, ସୂର୍ଯ୍ୟ ସାରଥିଙ୍କ ପୁତ୍ର ବା କନ୍ୟାରୂପ ଅପତ୍ୟ, ପ୍ରସ୍ତରସମୂହ, ସୂର୍ଯ୍ୟ ସାରଥି, ଅରୁଣ ।

ଆଶ୍ମନ୍ୟ—ବିଂ. ( ଅଶ୍ମନ୍ + ଯ ) ପ୍ରସ୍ତର ନିକଟସ୍ଥ ଦେଶାଦି । [ ବାହକ ।

ଆଶ୍ମଭାରକ—ବିଂ. ପ୍ରସ୍ତରହାରକ,ପ୍ରସ୍ତର-

ଆଶ୍ମରଥ୍ୟ—ପୁଂ. ସ୍ତ୍ରୀ. ବ. ଅଶ୍ମରଥମୁନିଙ୍କର (ପୁତ୍ର ବା କନ୍ୟାରୂପ) ଅପତ୍ୟ, ଅଶ୍ମରଥମୁନିଙ୍କ ଗୋତ୍ରାପତ୍ୟ ।

ଆଶ୍ମରିକ —ପୁଂ.ବ. (ଆଶ୍ମର + ଇକ)ଆଶ୍ମରୀ ରୋଗ ।

ଆଶ୍ମାୟନ—ପୁଂ.ସ୍ତ୍ରୀ. ବ୍. ଆଶ୍ମନ୍‌ନାମକ ଋଷିଙ୍କର ଗୋତ୍ରାପତ୍ୟ ।

ଆଶ୍ମିକ —ବି.ବିଂ. (ଆଶ୍ମ + ଇକ)ପ୍ରସ୍ତର-ଭାରହାରକ, ବାହକ, ଆବାହକ ।

ଆଶ୍ମେୟ—ପୁଂ. ସ୍ତ୍ରୀ. ବ. ଆଶ୍ମନ୍‌ନାମକ ଋଷିଙ୍କର ପୁତ୍ର ବା କନ୍ୟାରୂପ ଅପତ୍ୟ ।

ଆଶ୍ୟାନ—ବିଂ. (ଆ + ଶ୍ୟୈ + ତ)ଘନୀ-ଭୂତ, ଶୁଷ୍କପ୍ରାୟ । [ ଲୋତକ ।

ଆସ୍ର—କ୍ଲୀ.ବ. (ଅସ୍ର + ଅ) ଚକ୍ଷୁର ଜଳ,

ଆଶ୍ରପଣ—କ୍ଲୀ. ବ. (ଆ + ଶ୍ରା + ଇ + ଅନ) ପାକକରଣ ।

ଆଶ୍ରବ—ପୁଂ.ବ. (ଆ + ଶ୍ରୁ + ଭା.ଅ)ପ୍ରତି-ଶ୍ରୁତି, ସ୍ୱୀକାର, କ୍ଲେଶ, ବିଂ.(ଆ + ଶ୍ରୁ + କ.ଅ) କଥାର ବାଧ୍ୟ, ବଶୀଭୂତ, (ସ୍ତ୍ରୀ) ଆଶ୍ରବା ।

ଆଶ୍ରମ—ପୁଂ. ବ.(ଆ + ଶ୍ରମ୍ + ଅ)ବ୍ରହ୍ମ-ଚର୍ଯ୍ୟ ପ୍ରଭୃତିଙ୍କର ଶାସ୍ତ୍ରବିହିତ ବ୍ରତପ୍ରକାର ଧର୍ମବିଶେଷ ତପସ୍ୟାର ସ୍ଥାନ, ତପୋ-ବନ, ମଠ, ପରମେଶ୍ୱର ।

ଆଶ୍ରମଗୁରୁ—ପୁଂ. ବ. ( ୬ତତ୍ ) ଆଶ୍ରମ-ନିୟନ୍ତା, ରାଜା, ତପୋବନସ୍ୱାମୀ, ମଠସ୍ଥ କିମ୍ବା ତପୋବନସ୍ଥ ଛାତ୍ରମାନଙ୍କର ଉପଦେଷ୍ଟା, ଆଶ୍ରମବିଶେଷର ଧର୍ମାଚାର୍ଯ୍ୟ ।

ଆଶ୍ରମଧର୍ମ—ପୁଂ.ବ. ବ୍ରହ୍ମଚର୍ଯ୍ୟାଦିବିହିତ ଧର୍ମ, ବର୍ଣ୍ଣଧର୍ମ, ଆଶ୍ରମଧର୍ମ, ବର୍ଣ୍ଣା-ଶ୍ରମଧର୍ମ, ଗୁଣଧର୍ମ, ଆଶ୍ରମାନୁମୋଦିତ କାର୍ଯ୍ୟ, ନିମିତ୍ତ ଧର୍ମ, ସାଧାରଣ ଧର୍ମ ।

ଆଶ୍ରମପଦ—କ୍ଲୀ.ବ. (କ.ଧା) ମୁନିଋଷି-ମାନଙ୍କର ଆଶ୍ରମରୂପ ସ୍ଥାନ,ତପୋବନ ।

ଆଶ୍ରମପୀଡ଼ା—ସ୍ତ୍ରୀ. ବ. (୬ତତ୍)ତପୋ-ବନ ବା ଆଶ୍ରମ ଭୂମିର ଶାନ୍ତିଭଙ୍ଗ ।

ଆଶ୍ରମବାସ—ପୁଂ.ବ. ମୁନିଋଷିମାନଙ୍କର ତପୋବନାଦିରେ ବାସ, ମହାଭାରତୋକ୍ତ ଧୃତରାଷ୍ଟ୍ରାଦିଙ୍କର ଆଶ୍ରମବାସ ଲକ୍ଷିତ ପର୍ବବିଶେଷ ।

ଆଶ୍ରମବାସିକ—କ୍ଲୀ. ବ. (ଆଶ୍ରମବାସ + ଇକ ) ମହାଭାରତୋକ୍ତ ଧୃତରାଷ୍ଟ୍ରାଦି-ଙ୍କର ବନବାସପ୍ରତିପାଦକ ପର୍ବବିଶେଷ, (ବିଂ) ଧୃତରାଷ୍ଟ୍ରାଦିଙ୍କର ଆଶ୍ରମବାସ ସମ୍ବନ୍ଧୀ ।

ଆଶ୍ରମଭ୍ରଷ୍ଟ—ପୁଂ.ବ. (୫ତତ୍) ଆଶ୍ରମ-ବିଶେଷର କର୍ତ୍ତବ୍ୟ ପାଳନରୁ ସ୍ଖଳିତ, କୌଣସି ତପୋବନ ବା ମଠରୁ ତାଡ଼ିତ ।

ଆଶ୍ରମସଦ୍—ପୁଂ.ବ. (ଆଶ୍ରମ + ସଦ୍ + କ୍ୱିପ୍ ) ଆଶ୍ରମବାସୀ, ତପୋବନ-ବାସରତ ବାନପ୍ରସ୍ଥାଦି ।

ଆଶ୍ରମିକ—ବି. ବିଂ. ( ଆଶ୍ରମ + ଇକ ) ଆଶ୍ରମଯୁକ୍ତ, ଆଶ୍ରମୀ, ଯେ ଆଶ୍ରମରେ ଥାଏ, ତପୋବନନିବାସୀ ।

ଆଶ୍ରମୀ—ପୁଂ. ବିଂ. (ଆଶ୍ରମ + ଇନ୍) ଆଶ୍ରମିକ, ଆଶ୍ରମଯୁକ୍ତ ଆଶ୍ରମସ୍ଥ (ସ୍ତ୍ରୀ) ଆଶ୍ରମିଣୀ ।

ଆଶ୍ରୟ—ପୁଂ. ବ. (ଆ + ଶ୍ରି + ଭା.ଅ) ପକ୍ଷାବଲମ୍ବନ, ସମ୍ପର୍କ, ଅନନ୍ୟଶରଣ, ଅବଲମ୍ବନ, ବ୍ୟପଦେଶ, ସାମୀପ୍ୟ, (ଆ + ଶ୍ରି + ମି.ଅ)ବ. ଗୃହ, ଆଧାର, ବିଷୟ, କାରଣ, ରକ୍ଷକ, ସହାୟ, ନିବନ୍ଧନ, ପ୍ରମାଣ, କର୍ତ୍ତା, ପଞ୍ଚଇନ୍ଦ୍ରିୟ ଓ ମନ, ରକ୍ଷାସ୍ଥାନ ।

ଆଶ୍ରୟକ—ପୁଂ.ବିଂ. ଯେ ଆଶ୍ରୟ କରେ, ଆଶ୍ରିତ, ଶରଣାଗତ (ବ୍ୟକ୍ତି) ।

ଆଶ୍ରୟଣ--କ୍ଲୀ.ବ. (ଆ + ଶ୍ରି + ଭା.ଅନ) ସମ୍ୟକ୍‌ସେବା, ଅବଲମ୍ବନ, (ବିଂ) ଆଶ୍ରୟକର୍ତ୍ତା, (ସ୍ତ୍ରୀ) ଆଶ୍ରୟଣୀ ।

ଆଶ୍ରୟଣୀୟ—ବି.ବିଂ. (ଆ + ଶ୍ରି + ମି, ଅନୀୟ) ଆଶ୍ରୟଯୋଗ୍ୟ, ଯାହାର ଆଶ୍ରୟ କରିବା ଉଚିତ, ଅବଲମ୍ବନୀୟ, (ସ୍ତ୍ରୀ) ଆଶ୍ରୟଣୀୟା ।

ଆଶ୍ରୟଦାତା—ପୁଂ. ବିଂ. ( ୬ତତ୍ ) (ଆଶ୍ରୟ + ଦା + ତୃ) ଆଶ୍ରୟଦାନକର୍ତ୍ତା, ଯେ ଆଶ୍ରୟ ଦାନ କରେ, (ସ୍ତ୍ରୀ) ଆଶ୍ରୟଦାତ୍ରୀ ।

ଆଶ୍ରୟପ୍ରାର୍ଥୀ—ପୁଂ. ବିଂ. (୬ତତ୍) ଯେ ଆଶ୍ରୟ ପ୍ରାର୍ଥନା କରେ, ଶରଣାର୍ଥୀ, (ସ୍ତ୍ରୀ) ଆଶ୍ରୟପ୍ରାର୍ଥିନୀ ।

ଆଶ୍ରୟଭୁକ୍—ପୁଂ. ବ. (ଆଶ୍ରୟ + ଭୁଜ୍ + କ୍ୱିପ୍ ) ଯେଉଁ ପକ୍ଷିମାନେ କେତେଦିନ ପର୍ଯ୍ୟନ୍ତ ପିତାମାତାଙ୍କର ଆଶ୍ରୟରେ ପାଳିତ ହୁଅନ୍ତି,କାକ ଚଳ-ପ୍ରଭୃତି ପକ୍ଷୀ ।

ଆଶ୍ରୟଭୂତ—ବିଂ. ଆଶ୍ରୟସଦୃଶ,ଅବଲମ୍ବନ

ଆଶ୍ରୟସ୍ଥଳ—ବ. ଅବଲମ୍ବନ, ଯାହାକୁ ଆଶ୍ରୟ କରାଯାଏ ।

ଆଶ୍ରୟହୀନ—ବି. ବିଂ. (୩ତତ୍) ଆଶ୍ରୟ ରହିତ, ଯାହାର କୌଣସି ଆଶ୍ରୟ ନାହିଁ, ନିରାଶ୍ରୟ, ନିରବଲମ୍ବନ ।

ଆଶ୍ରୟାର୍ଥୀ—ପୁଂ. ବିଂ. (ଆଶ୍ରୟ + ଅର୍ଥ + କ, ଇନ୍) ଆଶ୍ରୟ ଅନ୍ୱେଷଣକାରୀ, ଯେ ଆଶ୍ରୟ ଲୋଡ଼ୁଅଛି, ଆଶ୍ରୟପ୍ରାର୍ଥୀ, (ସ୍ତ୍ରୀ) ଆଶ୍ରୟାର୍ଥିନୀ ।

ଆଶ୍ରୟାଶ—ପୁଂ.ବ. (ଆଶ୍ରୟ + ଅଶ୍ + କ, ଅ) ଅଗ୍ନି, ଅନଳ, ଧଳାଚିତାଗଛ, ମଲ୍ଲାଙ୍ଗ, କୃତ୍ତିକା ନକ୍ଷତ୍ର, (ବିଂ) ଆଶ୍ରୟ-ନାଶକ । [ ହେତ୍ୱାଭାସ ।

ଆଶ୍ରୟାସିଦ୍ଧ—ପୁଂ. ବ. ନ୍ୟାୟୋକ୍ତ

ଆଶ୍ରୟାସିଦ୍ଧି—ସ୍ତ୍ରୀ. ବ. ନ୍ୟାୟଶାସ୍ତ୍ରୋକ୍ତ ହେତୁର ଦୋଷବିଶେଷ ।

ଆଶ୍ରୟୀ—ପୁଂ. ବିଂ. (ଆଶ୍ରୟ + ଇନ୍) ଯେ ଆଶ୍ରୟ କରେ, ଆଶ୍ରିତ, ଆଶ୍ରୟ-ବିଶିଷ୍ଟ, (ସ୍ତ୍ରୀ) ଆଶ୍ରୟିଣୀ ।

ଆଶ୍ରା—ଗ୍ରା.ବ. (ଆଶ୍ରୟ ଶବ୍ଦଜ) ଆଶ୍ରୟ, ସାହା, ସହାୟ, ଭରସା, ଅବଲମ୍ବନ ।

ଆଶ୍ରାବ—ବିଂ. (ଆ + ଶ୍ରୁ + ଇ + ଅ) ଶ୍ରାବଣ, ଶ୍ରବଣ କରାଇବା, କାହାକୁ କୌଣସିବିଷୟ ଶୁଣାଇବା, ଅଙ୍ଗୀକାର ।

ଆଶ୍ରି—ସ୍ତ୍ରୀ. ବ. ସମ୍ୟକ୍‌କୋଣ ।

ଆଶ୍ରିତ—ବି. ବିଂ. (ଆ + ଶ୍ରି + କ,ତ) ଆଶ୍ରୟପ୍ରାପ୍ତ, ଶରଣାଗତ, ଆଧେୟ, ଅବଲମ୍ବିତ, ଇନ୍ଦ୍ରିୟଗୋଚର ବସ୍ତୁ-

ମାତ୍ର, ପରିବାର, ଅପେକ୍ଷୀ, ଅନୁସୃତ, ସେବକ, ବଶବର୍ତ୍ତୀ, ସମ୍ବନ୍ଧୀ, ଆରୂଢ଼, ଅଧୀନ, ସ୍ଥିତ ।

ଆଶ୍ରିତବତ୍ସଳ—ତ୍ରି ବଂ(୭ତତ୍) ଶରଣାଗତ ବା ସେବକଙ୍କୁ ରକ୍ଷା କରିବା ବ୍ୟକ୍ତି, (ସ୍ତ୍ରୀ) ଆଶ୍ରିତବତ୍ସଳା ।

ଆଶ୍ରିତବାତ୍ସଲ୍ୟ—ବ. ଶରଣାଗତଙ୍କୁ ରକ୍ଷା କରିବା ଗୁଣ, ସେବକଙ୍କୁ ସାହାଯ୍ୟ ହେବା ଗୁଣ ।

ଆଶ୍ରିତ୍ୟ—(ଅବ୍ୟ) (ଆ+ଶ୍ରି+ଯ) ଆଶ୍ରୟ କରି ।

ଆଶ୍ରୀ—ପୁଂ.ବଂ. ଚକ୍ଷୁଜଳଯୁକ୍ତ,ଲୋତକଯୁକ୍ତ (ସ୍ତ୍ରୀ) ଆଶ୍ରିଣୀ ।

ଆଶ୍ରୁତ—ବଂ. (ଆ+ଶ୍ରୁ+କ୍ୱିପ୍) ଅଙ୍ଗୀକାର, (ବଂ) ଅଙ୍ଗୀକାରକର୍ତ୍ତା ।

ଆଶ୍ରୁତ—ତ୍ରି. ବଂ. (ଆ+ଶ୍ରୁ+ମ୍ପ,ତ) ଅଙ୍ଗୀକୃତ, ପ୍ରତିଜ୍ଞାତ, ସମ୍ୟକ୍ ଶ୍ରୁତ, ଯାହା ଉତ୍ତମରୂପେ ଶୁଣାଯାଇଥାଏ ।

ଆଶ୍ରୁତି—ସ୍ତ୍ରୀ. ବ. (ଆ+ଶ୍ରୁ+ତି) ଅଙ୍ଗୀକାର, ଶ୍ରବଣ ।

ଆଶ୍ରେୟ—ତ୍ରି. ବଂ. (ଆ+ଶ୍ରି+ମ୍ପ, ଯ) ଆଶ୍ରିତବ୍ୟ, ଆଶ୍ରୟଯୋଗ୍ୟ, ଆଶ୍ରୟଣୀୟ ।

ଆଶ୍ଳିଷ୍ଟ—ତ୍ରି.ବଂ. (ଆ+ଶ୍ଳିଷ୍+କ,ତ) ଆଲିଙ୍ଗିତ, ସମ୍ବନ୍ଧ, ବ୍ୟାପ୍ତ, ସଂଯୁକ୍ତ, ଜଡ଼ିତ, ସଂଶ୍ଳିଷ୍ଟ, ଶ୍ଳେଷୋକ୍ତିବିଶିଷ୍ଟ ।

ଆଶ୍ଳେଷ—ପୁଂ. ବ. (ଆ+ଶ୍ଳିଷ୍+ଭା, ଅ) ଏକଦେଶ ସମ୍ବନ୍ଧ, ଆଲିଙ୍ଗନ, ଆଶ୍ଳେଷ,ଅନ୍ୱୟ, (ସ୍ତ୍ରୀ)ଅଶ୍ଳେଷା ନକ୍ଷତ୍ର ।

ଆଶ୍ଳେଷାର୍ଥ—ବ. (ଆଶ୍ଳେଷ+ଅର୍ଥ) ଶବ୍ଦର ଅର୍ଥବିଶେଷ, ଏକଶ୍ଳୋକଦ୍ୱାରା ଏକାଧିକ ଅର୍ଥବୋଧ ଶ୍ଳେଷାର୍ଥ ।

ଆଶ୍ୱ—କ୍ଳୀ. ବ. (ଅଶ୍ୱ+ଅ) ଅଶ୍ୱସମୂହ, ଅଶ୍ୱତ୍ଥ, ଅଶ୍ୱର କର୍ମ, ଅଶ୍ୱସୂନ,(ବଂ) ଅଶ୍ୱସମ୍ବନ୍ଧୀୟ ।

ଆଶ୍ୱତରାଶ୍ୱି—ପୁଂ. ବୃଦ୍ଧାଳମୁନ, ଅଶ୍ୱତର ଋଷିଙ୍କର ଅପତ୍ୟ ।

ଆଶ୍ୱତ୍ଥ- କ୍ଳୀ.ବ.(ଅଶ୍ୱତ୍ଥ+ଅ)ଅଶ୍ୱତ୍ଥବୃକ୍ଷର ଫଳ,(ବଂ) ଆଶ୍ୱତ୍ଥୀୟ,ଅଶ୍ୱତ୍ଥସମ୍ବନ୍ଧୀୟ, ଅଶ୍ୱତ୍ଥ ସମ୍ବନ୍ଧୀ.(ସ୍ତ୍ରୀ)ଆଶ୍ୱତ୍ଥୀ ଶାଖା, ଅଶ୍ୱିନୀନକ୍ଷତ୍ରଯୁକ୍ତ ରାତ୍ରି ।

ଆଶ୍ୱତ୍ଥିକ—ପୁଂ.ବ. (ଅଶ୍ୱତ୍ଥ+ଇକ) ଆଶ୍ୱିନମାସ,ଆଶ୍ୱତ୍ଥିକ,(ବଂ) ଅଶ୍ୱତ୍ଥସମ୍ବନ୍ଧୀୟ, ଅଶ୍ୱତ୍ଥବୃକ୍ଷଜାତ ।

ଆଶ୍ୱପତ—ତ୍ରି. ବଂ. (ଅଶ୍ୱପତି+ଅ) ଅଶ୍ୱପତିସମ୍ବନ୍ଧୀୟ ।

ଆଶ୍ୱପସ୍—ପୁଂ. ବଂ. ଶୀଘ୍ର କର୍ମକାରୀ, ଯେ ଶୀଘ୍ର କାର୍ଯ୍ୟ କରେ ।

ଆଶ୍ୱପାଳକ—ପୁଂ. ସ୍ତ୍ରୀ. ଅଶ୍ୱପାଳର କନ୍ୟା ବା ପୁତ୍ରରୂପ ଅପତ୍ୟ ।

ଆଶ୍ୱପେଜନ୍—ବଂ. ଅଶ୍ୱପେଜ ଋଷିପ୍ରଣୀତ ଗ୍ରନ୍ଥାଧାୟୀ, ଯେ ଅଶ୍ୱପେଜଋଷିଙ୍କକୃତ ଗ୍ରନ୍ଥ ଅଧ୍ୟୟନ କରେ ।

ଆଶ୍ୱବାଳ—ବଂ. ଔଷଧସମ୍ବନ୍ଧୀ, ତୃଣର ।

ଆଶ୍ୱଭାରିକ—ବଂ. ଅଶ୍ୱବାହ୍ୟଭାରର ବା ଅଶ୍ୱରୂପଭାରର ହରଣକର୍ତ୍ତା, ବହନକର୍ତ୍ତା, ଆବାହନକର୍ତ୍ତା ।

ଆଶ୍ୱମେଧିକ—ବଂ. (ଅଶ୍ୱମେଧ+ଇକ) ଅଶ୍ୱମେଧଯଜ୍ଞ-ସାଧନ ଦ୍ରବ୍ୟାଦି, ଅଶ୍ୱମେଧ ଯଜ୍ଞବିଷୟକ ଗ୍ରନ୍ଥ, ମହାଭାରତୋକ୍ତ ଅଶ୍ୱମେଧପର୍ବବିଶେଷ ।

ଆଶ୍ୱଯୁଜ—ପୁଂ. ବଂ. (ଅଶ୍ୱଯୁଜ+ଅ) ଆଶ୍ୱଯୁଜୀ, ଅଶ୍ୱିନୀନକ୍ଷତ୍ରଯୁକ୍ତ ମାସ, ଚାନ୍ଦ୍ରମାନ ଆଶ୍ୱିନମାସ (ବଂ) ଆଶ୍ୱିନମାସ ସମ୍ବନ୍ଧୀୟ ।

ଆଶ୍ୱଯୁଜକ—ପୁଂ.ବ.ଆଶ୍ୱିନମାସ ପୂର୍ଣ୍ଣିମାରେ ବୁଣା ମାଷ, ଆଶ୍ୱିନ ପୂର୍ଣ୍ଣିମୀଦିନ ବୁଣାବୀଜ ।

ଆଶ୍ୱଯୁଜୀ—ସ୍ତ୍ରୀ. ବ. ଆଶ୍ୱିନପୂର୍ଣ୍ଣିମା, ଆଶ୍ୱିନପୂର୍ଣ୍ଣମୀ, କୁମାରପୂର୍ଣ୍ଣିମା ।

ଆଶ୍ୱରଥ—ତ୍ରି.ବଂ. (ଅଶ୍ୱରଥ+ଅ)ଅଶ୍ୱଯୁକ୍ତ ରଥର ଆବଶ୍ୟକୀୟ ଦ୍ରବ୍ୟାଦି ।

ଆଶ୍ୱଲକ୍ଷଣିକ—ବଂ. (ଅଶ୍ୱଲକ୍ଷଣ+ଇକ) ଅଶ୍ୱଲକ୍ଷଣାଭିଜ୍ଞ, ଯେ ଘୋଡ଼ାର ଶୁଭାଶୁଭ ଲକ୍ଷଣ ଜାଣେ, ଯେ ଉକ୍ତ ବିଷୟକ ଗ୍ରନ୍ଥ ଅଧ୍ୟୟନ କରେ ।

ଆଶ୍ୱଲାୟନ—ପୁଂ.ବ.ଋଗ୍‌ବେଦୀୟଶ୍ରୌତ ଓ ଗୃହ୍ୟସୂତ୍ରକାରକ ଋଷିବିଶେଷ ।

ଆଶ୍ୱଶ୍ୟ—କ୍ଳୀ.ବ. ଶୀଘ୍ରଗାମୀ ଅଶ୍ୱାରୂଢ଼ବଳ, ଦ୍ରୁତଗାମୀ ଅଶ୍ୱବଳ ।

ଆଶ୍ୱଶ୍ୱ—ବଂ. (ଆଶୁ+ଅଶ୍ୱ) ଶୀଘ୍ରଗାମୀ ଅଶ୍ୱଯୁକ୍ତ ।

ଆଶ୍ୱସିତ ବଂ-(ଆ+ଶ୍ୱସ୍+ମ୍ପ.ତ)ଆଶ୍ୱସ୍ତ, ଉତ୍ସାହିତ, ପ୍ରବୋଧିତ ।

ଆଶ୍ୱସ୍ତ—ତ୍ରି. ବଂ. (ଆ+ଶ୍ୱସ୍+କ.ତ) ଆଶ୍ୱାସପ୍ରାପ୍ତ, ନିରୁଦ୍‌ବେଗ, ଉତ୍ସାହିତ, ପ୍ରବୋଧିତ । [ଗୋତ୍ରାପତ୍ୟ ।

ଆଶ୍ୱାୟନ—ପୁଂ.ସ୍ତ୍ରୀ.ଅଶ୍ୱନାମକଋଷିଙ୍କର

ଆଶ୍ୱାବତାନ—ପୁଂ. ସ୍ତ୍ରୀ. ଅଶ୍ୱାବତାନନାମକ ଋଷିଙ୍କର (ପୁତ୍ର ବା କନ୍ୟାରୂପ) ଅପତ୍ୟ ।

ଆଶ୍ୱାସ—ପୁଂ. ବ. (ଆ+ଶ୍ୱସ୍+ଅ) ଅନୁନୟ, ଉତ୍ସାହଦାନ, ଭରସା, ନିବୃତ୍ତି, ଆଶ୍ରୟଦାନ, ସାନ୍ତ୍ୱନା, ଆଖ୍ୟାୟିକା, ଆଶା, ନିଃଶ୍ୱାସ, ବିଶ୍ରାମ, ଆଶାଦାନ, ପରିଚ୍ଛେଦ ।

ଆଶ୍ୱାସକ—ପୁଂ. ବଂ. (ଆ+ଶ୍ୱସ୍+କ. ଅକ) ଆଶ୍ୱାସକାରକ, ସାନ୍ତ୍ୱନାକାରୀ, ଆଶ୍ୱାସଦାତା, (ସ୍ତ୍ରୀ) ଆଶ୍ୱାସିକା ।

ଆଶ୍ୱାସନ—କ୍ଳୀ. ବ. (ଆ+ଶ୍ୱସ+ଅନ) କୋମଳବ୍ୟବହାର, ସାନ୍ତ୍ୱନା, ଉତ୍ସାହ,ପ୍ରବୋଧଦାନ, ଆଶ୍ୱାସପ୍ରଦାନ ।

ଆଶ୍ୱାସନୀୟ—ବଂ. (ଆ+ଶ୍ୱସ୍+ମ୍ପ, ଅନୀୟ) ଯାହାକୁ ଆଶ୍ୱାସ ଦେବା ଉଚିତ ବା ଆବଶ୍ୟକ ।

ଆଶ୍ୱାସିତ—ବଂ. (ଆ+ଶ୍ୱାସି+ମ୍ପ.ତ) ଆଶ୍ୱାସପ୍ରାପିତ, ପ୍ରବୋଧିତ, ଆଶ୍ୱସ୍ତ, ଅନୁନୀତ, (ଆଶ୍ୱାସନ ଦେଖ) ।

ଆଶ୍ୱାସୀ—ବ. (ଆ+ଶ୍ୱସ୍+ଇନ୍) ପ୍ରତ୍ୟାଶାଯୁକ୍ତ, ସାନ୍ତ୍ୱନାଯୁକ୍ତ ।

ଆଶ୍ୱାସ୍ୟ—ବଂ.(ଆ+ଶ୍ୱସ୍+ଯ)ସାନ୍ତ୍ୱନୀୟ,(ଅବ୍ୟ.) ସାନ୍ତ୍ୱନାକରି ।

ଆଶ୍ୱିକ—ତ୍ରି. ବଂ. (ଅଶ୍ୱ+ଇକ) ଯେ ଅଶ୍ୱକୁ ହରଣ,ବହନ,ଆବାହନ କରେ, ଅଶ୍ୱଲକ୍ଷସୂଚକ ସଂଯୋଗ ଉତ୍ପାତନିମିତ୍ତ, ଅଶ୍ୱସମ୍ବନ୍ଧୀୟ ।

ଆଶ୍ୱିନ—ବିଂ. (ଅଶ୍ୱିନୀ + ଅ) ବ୍ୟାପ୍ତ, ଅଶ୍ୱିଦେବତାସମ୍ବନ୍ଧୀୟ, (ବି) ଆଶ୍ୱିନମାସ. ଆଶ୍ୱଯୁଜ (ସ୍ତ୍ରୀ) ଇଷ୍ଟକାବିଶେଷ, ଇଟା, ଚଡବିଶେଷ, ଛଡ଼ା, (ପୁଂ) ଯଜ୍ଞୀୟ କପାଳ, ପାତ୍ରବିଶେଷ, ଅଶ୍ୱିନୀକୁମାରଦ୍ୱୟ, ଶସ୍ତ, ଅଶ୍ୱିନୀକୁମାରସମ୍ବନ୍ଧୀୟ ଘୃତାଦି ।

ଆଶ୍ୱିନୀ—ସ୍ତ୍ରୀ. ବି. ଆଶ୍ୱିନ ପୂର୍ଣ୍ଣିମା ।

ଆଶ୍ୱିନେୟ—ପୁଂ. ( ଅଶ୍ୱିନୀ + ଏୟ ) ଅଶ୍ୱିନୀକୁମାରଦ୍ୱୟ, ନକୁଳ, ସହଦେବ, ଅଶ୍ୱର ଗନ୍ତବ୍ୟ ପଥ, ସ୍ୱର୍ଗବୈଦ୍ୟ, ଘୋଡ଼ାର ଯିବା ମାର୍ଗ ।

ଆଶ୍ୱିନ—ପୁଂ. ଅଶ୍ୱର ଏକଦିନର ଗମ୍ୟ ପଥ, ଦିନକରେ ଘୋଡ଼ା ଯେତେଦୂର ପଥ ଯାଇପାରେ ସେହିପଥ ।

ଆଶ୍ୱେୟ—ବିଂ. ଅଶ୍ୱୀ ଦେବତାଙ୍କର ଘୃତାଦି, ଅଶ୍ୱୀର ଅପତ୍ୟ, ଯେ ସମସ୍ତ ଯଜ୍ଞୀୟ ଦ୍ରବ୍ୟର ଦେବତା ଅଶ୍ୱୀ ।

ଆଷାଢ଼—ପୁଂ.ବି.(ଆଷାଢ଼ + ଅ)ଆଷାଢ଼ମାସ, ପଲାଶଦଣ୍ଡ, ମଳୟପର୍ବତ ଦଣ୍ଡ ।

ଆଷାଢ଼କ—ପୁଂ. ବି. (ଆଷାଢ଼ + କ) ଆଷାଢ଼ମାସ, ପଲାଶଦଣ୍ଡ ।

ଆଷାଢ଼ଭବ—ପୁଂ. ବି. (ଆଷାଢ଼ + ଭୂ + ଅ) ଆଷାଢ଼ାନକ୍ଷତ୍ରଜାତ, ମଙ୍ଗଳଗ୍ରହ ।

ଆଷାଢ଼ଶୁକ୍ଳ—ଗ୍ରା. ବି. ରାଗବିଶେଷ ।

ଆଷାଢ଼ା—ସ୍ତ୍ରୀ. ବି. (ଆ + ସହ + କ, ଅ + ଆ) ଆଷାଢ଼ାନକ୍ଷତ୍ର, ପୂର୍ବାଷାଢ଼ା ଓ ଉତ୍ତରାଷାଢ଼ାନକ୍ଷତ୍ର ।

ଆଷାଢ଼ାଭୂ—ପୁଂ.ବି. (ଆଷାଢ଼ା + ଭୂ + କ୍ୱିପ୍)ଆଷାଢ଼ାନକ୍ଷତ୍ରଜାତ, ମଙ୍ଗଳ ଗ୍ରହ ।

ଆଷାଢ଼ି—ସ୍ତ୍ରୀ. ବି. ( ଆ + ସହ + ତି ) ସମ୍ୟକ୍‌ସହନ, ରତିଦେବୀ ।

ଆଷାଢ଼ୀ—ସ୍ତ୍ରୀ. ବି. (ଆଷାଢ଼ + ଅ + ଈ) ଆଷାଢ଼ମାସ, ଆଷାଢ଼ପୂର୍ଣ୍ଣିମା, ଯଜ୍ଞୀୟ ଇଷ୍ଟକାବିଶେଷ, (ବିଂ) ଆଷାଢ଼ମାସସମ୍ବନ୍ଧୀୟ ।

ଆଷାଢ଼ୀୟ—ବି. ବିଂ. (ଆଷାଢ଼ + ଈୟ) ଆଷାଢ଼ସମ୍ବନ୍ଧୀୟ, ଆଷାଢ଼ାନକ୍ଷତ୍ରଜାତ ।

ଆଷ୍ଟମ—ପୁଂ. ଅଷ୍ଟମଭାଗ ।

ଆଷ୍ଟମମାତୁର—ବିଂ. ଆଠ ମା'ର ପୁଅ, ଅଷ୍ଟମାତାର ପୁତ୍ର ।

ଆଷ୍ଟି—ପୁଂ. ଆଠଜଣର ଅପତ୍ୟ, ଆଠଜଣର ପୁତ୍ର ।

ଆଷ୍ଟ—କ୍ଳୀ. ଆକାଶ ।

ଆଷ୍ଟୀ—ସ୍ତ୍ରୀ. ବନଦ୍ରାଖ ବ୍ୟାପ୍ତା ।

ଆଂସ—ଗ୍ରା. ବି. ଧାର, ଦାଢ଼ ।

ଆସ୍—(ଧାତୁ)ଉପବେଶନ ଅର୍ଥେ ଅଦାଦି ସେଟ୍, ଆସ୍ତେ ଇତ୍ୟାଦି ।

ଆସ୍—ଅବ୍ୟ.(ଆ + ଅସ୍ + କ୍ୱିପ୍)ସ୍ମରଣ, ଆକ୍ଷେପ, ସମନ୍ତାତ୍, କୋପ, ଖେଦ, ପୀଡ଼ା, ହେତୁ, ଗର୍ବସହ ଗର୍ଜ୍ଜନ ।

ଆସ—ପୁଂ. ବି. (ଆସ୍ + ଅ) ଆସନ, ସ୍ଥିତି, ଉପବେଶନ, ଧନୁକ, ନିକ୍ଷେପ, ବସିବାରସ୍ଥାନ, (ଗ୍ରା.କ୍ରି) ତୁମ୍ଭେ ବା ତୁମ୍ଭେମାନେ ଆଗମନ କର ।

ଆସକ୍ତ—ବି. ବିଂ. (ଆ + ସନ୍‌ଜ + କ୍ତ) ଆସଙ୍ଗଯୁକ୍ତ, ଅନ୍ୟବିଷୟ ଛାଡ଼ି ଏକ ବିଷୟରେ ନିବିଷ୍ଟ, ଅନୁରକ୍ତ, ପ୍ରୀତ, ସଂସକ୍ତ, ଲାଗିଥିବା, ସଂଯୁକ୍ତ, ଲଗ୍ନ (କ୍ଳୀ) ତତ୍ପର, ପ୍ରସିତ, ସମ୍ୟକ୍ ସମ୍ବନ୍ଧ, (ଅବ୍ୟ) ନିତ୍ୟ, ଅନବରତ, ନିରନ୍ତର ।

ଆସକ୍ତଚିତ୍ତ—କ୍ଳୀ. ବି. (କ.ଧା) ଅନୁରକ୍ତ ହୃଦୟ, ଏକାନ୍ତ ନିବିଷ୍ଟମନ, (ବିଂ, ବ.ବ୍ରୀ) ଏକାଗ୍ରଚିତ୍ତ, ନିବିଷ୍ଟମନାଃ, ଅନୁରକ୍ତହୃଦୟ, (ସ୍ତ୍ରୀ) ଆସକ୍ତଚିତ୍ତା ।

ଆସକ୍ତି—ସ୍ତ୍ରୀ. ବି. (ଆ + ସନ୍‌ଜ + ତି) ଅନ୍ୟବିଷୟ ପରିତ୍ୟାଗକରି ଏକବିଷୟ ଅବଲମ୍ବନ, ସ୍ନେହ, ସାତିଶୟ ମନୋଯୋଗ, ମିଳନ, ଅନୁରାଗ, ସଙ୍ଗ, ସହବାସ, ଅଭିନିବେଶ ।

ଆସଙ୍ଗ—ପୁଂ. ବି. (ଆ + ସଞ୍ଜ୍ + ଘ, ଅ) ( ଆସକ୍ତ ସକଳାର୍ଥରେ ) ଅଭିନିବେଶ, ପ୍ରାପ୍ତ ବା ଉପସ୍ଥିତ ବିନାଶପ୍ରାପ୍ତ ପଦାର୍ଥର ରକ୍ଷଣାଭିଳାଷ, ଭୋଗାଭିଳାଷ, କର୍ତ୍ତୃତ୍ୱାଭିମାନ, ସମ୍ୟକ୍ ସମ୍ବନ୍ଧ ।

ଆସଙ୍ଗତ୍ୟ—କ୍ଳୀ. ବି. ସଙ୍ଗତାଦିଭାବ, ଅସମ୍ବନ୍ଧ ।

ଆସଙ୍ଗଲିପ୍ସା—ସ୍ତ୍ରୀ. ବି. ୬ତତ୍ପୁ;(ଆସଙ୍ଗ + ଲଭ୍ + ସନ୍ + ଆ ) ସଙ୍ଗଲାଲସା, ଏକତ୍ର ରହିବାଇଚ୍ଛା, ସଙ୍ଗସ୍ପୃହା, ସହବାସବାସନା ।

ଆସଙ୍ଗଲିପ୍ସୁ—ପୁଂ. ସ୍ତ୍ରୀ. ବିଂ. (ଆସଙ୍ଗ + ଲଭ୍ + ସନ୍ + ଉ) ସହବାସକରିବାକୁ ଇଚ୍ଛୁକ, ମିଳିତହେବାକୁ ଇଚ୍ଛୁକ, ଏକତ୍ର ସଙ୍ଗ ହେବାର ଇଚ୍ଛା ।

ଆସଙ୍ଗିନୀ—ସ୍ତ୍ରୀ. ବି. ବାତ୍ୟାସମୂହ, (ବିଂ) ଆସଙ୍ଗଯୁକ୍ତ ।

ଆସଙ୍ଗିମ—ପୁଂ.ସୁଶ୍ରୁତୋକ୍ତ କର୍ଣ୍ଣବେଧର ଅଙ୍ଗ, କର୍ଣ୍ଣବନ୍ଧନର ଆକୃତିବିଶେଷ ।

ଆସଞ୍ଜନ—କ୍ଳୀ. ବି. (ଆ + ସଞ୍ଜ୍ + ଣି, ଅନ)ଆସଙ୍ଗ, ସମ୍ୟକ୍‌ସମ୍ବନ୍ଧ, ଯୋଜନ, ସଂଯୋଗ, ଲାଗିରହିବା, ବସ୍ତ୍ରାଦି ପରିଧାନ, ଉତ୍ପାଦନ, (ବିଂ) ଆସଞ୍ଜିତ ।

ଆସଞ୍ଜିତ—ବିଂ. (ଆ + ସଞ୍ଜ୍ + ଇ + ତ) ସଂଯୋଜିତ ।

ଆସଡ଼—ଜଣେ ଜୈନଗ୍ରନ୍ଥକାର, ଏହାଙ୍କ ରଚିତ ବିବେକମଞ୍ଜରୀ ଓ ଉପଦେଶ କୁଣ୍ଡଳୀ ।

ଆସତ୍ତି—ସ୍ତ୍ରୀ. ବି. (ଆ + ସଦ୍ + କ୍ତି, ତି) ମିଳନ, ସନ୍ନିଧି, ପ୍ରାପ୍ତି, ଲାଭ, ସଙ୍ଗମଲାଭ, ନୈକଟ୍ୟସମ୍ବନ୍ଧ, ନ୍ୟାୟମତେ ପ୍ରତ୍ୟକ୍ଷଜନକ ସନ୍ନିକର୍ଷ ବୁଦ୍ଧିର ବିଚ୍ଛେଦ ନ ଥିଲେ ଆସତ୍ତି ହୁଏ ।

ଆସଦ—ମିର୍ଜ୍ଜା ଆସଦଉଲ୍ଲା ଖାଁ, ଏ ଜଣେ ବିଖ୍ୟାତ ମୁସଲମାନ କବି, ଏହାଙ୍କର ଇନସାକାବ୍ୟ ବିଶେଷ ଆଦୃତ ।

ଆସଦଖାଁ—ତୁର୍କୀବଂଶୋଦ୍ଭବ ଜଣେ ସମ୍ଭ୍ରାନ୍ତ ବ୍ୟକ୍ତି ।

ଆସଦନ—କ୍ଳୀ. ବି. (ଆ + ସଦ୍ + ଣି, ଅନ) ପ୍ରାପ୍ତି, ନୈକଟ୍ୟସମ୍ବନ୍ଧ, ଆସକ୍ତ, ଉପବେଶନ, ବସିବାର ସ୍ଥାନ ।

ଆସଦରୁସି—ଜଣେ ବିଖ୍ୟାତ ମୁସଲମାନ କବି, ଶାହନାମାର କେତେକ ଅଂଶ ଏ ଲେଖିଅଛନ୍ତି ।

ଆସନ—କ୍ଳୀ ବି. (ଆସ୍ + ଅନ) ବସିବାସ୍ଥାନ, ପୀଢ଼ା-କମ୍ବଳାଦି, ଉପବେଶନ

କରିବା, ବସିବା, ହସ୍ତୀର ସ୍କନ୍ଧଦେଶ, ଘୋଟକର ପୃଷ୍ଠଦେଶ, ଶାଳଗଛ, ଯୋଗାଦି ସାଧନ ସମ୍ପର୍କରେ ଭିନ୍ନଭିନ୍ନ ଉପବେଶନପ୍ରଣାଳୀ, ପୂଜା କରିବାର ପୀଠ,ଦେବପୂଜାର ଷୋଡ଼ଶ ଉପଚାରର ପ୍ରଥମ ଉପଚାର, ରତିବନ୍ଧ, ଜିଗୀଷୁ ଓ ଶତ୍ରୁର ପରସ୍ପର କାଳପ୍ରତୀକ୍ଷାର୍ଥ ଅବସ୍ଥାନ, ପଦ୍ମାସନାଦି ଉପବେଶନବିଶେଷ ।

ଆସନଗ୍ରହଣ—କ୍ଲୀ. ବି. (୬ତତ୍ପୁ)ଆସନ ନେଇ ବସିବା, ଉପବେଶନ ।

ଆସନଟଳିବା—ଗ୍ରା. କ୍ରି. ବସିବାସ୍ଥାନରେ ଅସ୍ଥିର ହୋଇ ବସି ନ ପାରିବା ।

ଆସନପରିଗ୍ରହ—ପୁଂ. ବି. (୬ତତ୍ପୁ) ଆସନଗ୍ରହଣ, ଆସନ ଧରି ବସିବା ।

ଆସନପାଦାସନ—ବି. ଆଗନ୍ତୁକ ବ୍ୟକ୍ତି ବସିବାନିମିତ୍ତ ଦିଆଯିବା କମ୍ବଳାଦି ଆସନ ଓ ପାଦ ରଖିବାପାଇଁ ଦିଆଯିବା ପୀଢ଼ା ।

ଆସନବନ୍ଧ—ପୁଂ. ବି. ଯୋଗଶାସ୍ତ୍ରୋକ୍ତ ପଦ୍ମାସନାଦି ଉପବେଶନ ବିନ୍ୟାସ, ସଙ୍ଗମାର୍ଥ ଉପବେଶନବିଶେଷ ।

ଆସନମନ୍ତ୍ର—ପୁଂ. ବି. ଆସନଶୁଦ୍ଧ୍ୟର୍ଥ ବା ଆସନଦାନାର୍ଥ ଆସନୋପବେଶନାର୍ଥ ମନ୍ତ୍ରବିଶେଷ ।

ଆସନଶୁଦ୍ଧି—ବି. (୬ତତ୍ପୁ) ପୂଜା ବା ଯୋଗ ସାଧନ କରିବା ପୂର୍ବରୁ ଆସନ ମନ୍ତ୍ରଦ୍ୱାରା ଆସନକୁ ପବିତ୍ରୀକରଣ ।

ଆସନସୋଲ—ବର୍ଦ୍ଧମାନଜିଲ୍ଲାର ଗୋଟିଏ ଗ୍ରାମ, ରେଲ୍‌ଷ୍ଟେସନ, ଏଠାରୁ କୋଇଲା ରପ୍ତାନି ହୁଏ ।

ଆସନା—ସ୍ତ୍ରୀ. ବି. (ଆସ୍ + ଅନ୍ + ଆ) ସ୍ଥିତି, ଉପବେଶନ, ବସିବା (ଗ୍ରା. କ୍ରି.) ତୁମ୍ଭେ ଆସନାହିଁ,(ଯା.ବି) ବନ୍ଧୁପ୍ରଣୟୀ ।

ଆସନାଇ—(ଯା) ବି. ବନ୍ଧୁତ୍ୱ, ପ୍ରୀତି, ପ୍ରଣୟ, ସ୍ତ୍ରୀ ପୁରୁଷଙ୍କ ଅବୈଧ ପ୍ରଣୟ ।

ଆସନାଦି—ପୁଂ.ବି. ପୂଜାର ଷୋଳ ପ୍ରକାରଉପଚାର,ପୂଜାଙ୍ଗଉପକରଣ ।

ଆସନି—ଗ୍ରା.ବି. ବସିବା ନିମିତ୍ତ ଗୁଣ-କଣିଆ କ୍ଷୁଦ୍ର କମ୍ବଳାଦିନିର୍ମିତ ଆସନ ।

ଆସନୀ—ସ୍ତ୍ରୀ. ବି. (ଆସ୍ + ଅନ + ଈ) ବିପଣି, ଦୋକାନ, ସ୍ଥିତି, ଉପବେଶନ, କ୍ଷୁଦ୍ରାସନ ।

ଆସନ୍ତ—ଗ୍ରା. ଅବ୍ୟ. ସହିତ ।

ଆସନ୍ତା—ଗ୍ରା. ବିଂ. ଆଗାମୀ, ଆସୁଥିବା, ନିକଟ ଭବିଷ୍ୟତ୍ (କାଳ), ଭାବୀ, ଆଗମନଶୀଳ ।

ଆସନ୍ଦ—ପୁଂ.ବି.(ଆ + ସଦ୍ + ଅ)ବାସୁଦେବ, ପରଂବ୍ରହ୍ମ, କୃଷ୍ଣ ।

ଆସନ୍ଦିକା—ସ୍ତ୍ରୀ. ବି. (ଆ + ସମ୍ + ଦୋ + ଇକ + ଆ) ଏକପ୍ରକାର ଉଚ୍ଚାଖଟ, କାଷ୍ଠାସନବିଶେଷ ।

ଆସନ୍ଦୀ—ସ୍ତ୍ରୀ. ବି. (ଆ + ସମ୍ + ଦୋ + ଅ + ଈ) ଏକ ପ୍ରକାର ଉଚ୍ଚାଖଟ, କାଷ୍ଠାସନବିଶେଷ, ଉପବେଶନଯୋଗ୍ୟ ଆସନମଞ୍ଚ, କ୍ଷୁଦ୍ରଖଟ୍ୱା,ସଭାର ମଧ୍ୟସ୍ଥିତ ବେଦିକା ।

ଆସନ୍ନ—ବି. ବିଂ. (ଆ + ସଦ୍ + କ୍ତ) ଆଶ୍ରିତ, ପ୍ରାପ୍ତ, ଆସକ୍ତିଯୁକ୍ତ, ଆଗତ ପ୍ରାପ୍ତ, ନିକଟସ୍ଥ, ଉପସ୍ଥିତ, ସନ୍ନିଧାନଯୁକ୍ତ, ସମ୍ୟକ୍‌ସ୍ଥିତ, ମୁମୂର୍ଷୁ, ଅନ୍ତିମ, (ପୁଂ.ବି) ଅସ୍ତୋନ୍ମୁଖ ସୂର୍ଯ୍ୟ (କ୍ଲୀ.ବି) ମୃତ୍ୟୁ, ସାନ୍ନିଧ୍ୟ ।

ଆସନ୍ନକାଳ—ପୁଂ.ବି. ମୃତ୍ୟୁକାଳ, ବିପଦ୍ କାଳ, ନିକଟଭବିଷ୍ୟତ୍, ମୃତ୍ୟୁର ଅବ୍ୟବହିତ ପୂର୍ବକାଳ ।

ଆସନ୍ନପରିଚାରକ—ପୁଂ. ବି. (କ.ଧା) ଅନବରତ ସମୀପବର୍ତ୍ତୀ ଭୃତ୍ୟ ।

ଆସନ୍ନପ୍ରସବା—ସ୍ତ୍ରୀ. ବି. (ବ.ବ୍ରୀ) ଯାହାର ସନ୍ତାନ ପ୍ରସବ ସମୟ ନିକଟ ହୋଇଅଛି । [ଜାତ ।

ଆସନ୍ୟ—ବି. ବିଂ. ମୁଖଭବ, ମୁଖରୁ

ଆସପଦ—ଗ୍ରା. ବି. (ସଂ-ଆସ୍ପଦ) ସ୍ନେହ, କୋମଳ ବ୍ୟବହାର, ଗେହ୍ଲାକରିବା ।

ଆସଫଉଦ୍ଦୌଲ୍ଲା—ଅଯୋଧ୍ୟାର ନବାବ ।

ଆସଫଖାଁ—ସମ୍ରାଟ ଆକବରଙ୍କର ଜଣେ ପ୍ରଧାନ ଲୋକ, ରାଣୀ ଦୁର୍ଗାବତୀଙ୍କୁ ଯୁଦ୍ଧରେ ପରାସ୍ତ କରିଥିଲେ ।

ଆସଫଖାଁ—ସମ୍ରାଟ୍ ଅକବରଙ୍କର ବକ୍‌ସିଗିରି କାର୍ଯ୍ୟ କରୁଥିଲେ, ଏ ଜଣେ କବି ଓ ସୁପଣ୍ଡିତ ଥିଲେ ।

ଆସଫଖାଁ—ଜାହାଙ୍ଗୀରଙ୍କର ଜଣେ ପ୍ରଧାନ ଉଜୀର, ଏହାଙ୍କର କନ୍ୟାକୁ ଶାହ ଜାହାନ ବିବାହ କରିଥିଲେ ।

ଆସବ—ପୁଂ. ବି. (ଆ + ସୁ + ଅ)ଅଭିଷବ, ଅଭିଷବନୀୟ ମଦ୍ୟ, ସୀଧୁ, ମଦ୍ୟ, ମଧୁ, ତାଡ଼ୀ, ଅରକ, ମଦ୍ୟପାତ୍ର ।

ଆସବଦ୍ରୁ—ପୁଂ.ବି. (ମଧ୍ୟ-କଧା) ତାଳବୃକ୍ଷ, ଆସବଜନକ ଗଛ ।

ଆସବପାୟୀ—ପୁଂ. ବିଂ. (ଆସବ + ପା + କ.ଇନ୍) ମଦ୍ୟପାନକାରୀ, (ସ୍ତ୍ରୀ) ଆସବପାୟିନୀ ।

ଆସବସେବୀ—ପୁଂ.ବି. (ଆସବ + ସେବ କ.ଇନ୍) ସୁରାପାୟୀ, ଯେ ନିରନ୍ତର ମଦ୍ୟପାନ କରେ,(ସ୍ତ୍ରୀ) ଆସବସେବିନୀ ।

ଆସବାବ—(ଯା) ପୁଂ.ବି. ଦ୍ରବ୍ୟ,ଜିନିଷ, ଯନ୍ତ୍ର, ଘରକରଣାଜିନିଷ, ଗୃହସଜ୍ଜା ଉପକରଣ ।

ଆସବାର—ପୁଂ. ଯା. ବି. ଅଶ୍ୱାରୋହୀ, ଘୋଡ଼ାର ସୱାର ।

ଆସମାନ—ଯା. ବି. ଆକାଶ, ଶୂନ୍ୟ ।

ଆସମାନୀ—ଯା. ଆକାଶପରି ନୀଳ, ଫିକାନୀଳ । [ ପର୍ଯ୍ୟନ୍ତ ।

ଆସମୁଦ୍ର—ବି.ବିଂ.(ଆ + ସମୁଦ୍ର)ସମୁଦ୍ର

ଆସମୁଦ୍ରକରଗ୍ରାହୀ—ପୁଂ.ବି. ସମ୍ରାଟ୍,ରାଜଚକ୍ରବର୍ତ୍ତୀ ।

ଆସମ୍ବନ୍ଧ—ବିଂ. ସଙ୍କୀର୍ଣ୍ଣ ସ୍ଥାନ, ଦେହକୁ ଦେହ ଲାଗିବାର ସ୍ଥାନ ।

ଆସଯା—ଗ୍ରା.ବି. ଯିବାଆସିବା, ଗତାଗତ, ଗମନାଗମନ, ସଂଶ୍ରବ ।

ଆସର—ଗ୍ରା· ପୁଂ. ବି. (ଆ + ସୃ + ଅ) ରାକ୍ଷସ, ସଭା, ମଜଲିସ୍, ସମାରୋହ, ରଙ୍ଗସ୍ଥଳ, ଯାତ୍ରାଦି ଦେଖିଯିବାର ସାଧାରଣ ସ୍ଥାନ ।

ଆସଲ—ଯା· ପ୍ରକୃତ, ମୂଳ, ଯଥାର୍ଥ, ଅସଲ, ମୂଳଧନ, ଦାଦନ ଟଙ୍କା ।

ଆସଲଗୈର—ଯା. ଯାଠୀମଧୁ, ଯଷ୍ଟୀମଧୁ, ଯଥାର୍ଥଗୈର ।

ଆସା-ସ୍ତ୍ରୀ.ବି. (ଆ+ସୋ+ଅ) ଅନ୍ତିକା, ନିକଟ,(ଯା) ଯଷ୍ଟି,ବାଡ଼ି,ଆସାବାଡ଼ି ।

ଆସାଦନ—କ୍ଳୀ.ବି. (ଆ+ସାଦ+ଅନ) ସନ୍ନିଧାପନ,ସ୍ଥାପନ, ପାଇବା, ମର୍ଦ୍ଦନ, ନୈକଟ୍ୟ, ପହଞ୍ଚିବା, ଗମନ, ଆକ୍ରମଣ ।

ଆସାଦିତ—ତ୍ରି. ବିଂ. (ଆ+ସାଦ+ଣି, ତ) ନିକଟୀକୃତ, ପ୍ରାପ୍ତ, ଆସ୍ୱୋଜିତ, ସମ୍ପାଦିତ, କାମକେଳୀ, ଆସକ୍ତ, (ସ୍ତ୍ରୀ) ଆସାଦିତା ।

ଆସାଦ୍ୟ—ବିଂ. (ଆ+ସଦ୍+ଇ+ଯ) ପ୍ରାପ୍ୟ, ଅବସନ୍ନ କରିବା, (ଅବ୍ୟ)ପାଇ ।

ଆସାନ୍—ଯା. ବି. ଉପକାର, ସହଜ, ସୁବିଧା, ଲାଭ, ଆରାମ, ସୁଖ, ବିଶ୍ରାମ, ଆରୋଗ୍ୟ ମୁକ୍ତି, (ବିଂ) ଉପଶାନ୍ତ, ଆରାମପ୍ରାପ୍ତ ।

ଆସାବରଦାର—ଯା. ଯଷ୍ଟିବାହକ, ଯେ ବାଡ଼ିଧରି ଆଗରେ ଯାଏ, (ଆସାବ) (ପୁଂ) (ବୈଦିକ) ସ୍ତୋତା, ଯେ ସ୍ତବ କରେ ।

ଆସାବରୀ—ସ୍ତ୍ରୀ. ବି. ଦିବା ଦ୍ୱିପ୍ରହର-କାଳୀନ କୋମଳ ରାଗିଣୀବିଶେଷ ।

ଆସାବ୍ୟ—ତ୍ରି.ବିଂ. (ଆ+ସୁ+ଯ) ଅଭିଷବନୀୟ ମଦ୍ୟାଦି ।

ଆସାମ—ଭାରତବର୍ଷର ଗୋଟିଏ ପ୍ରାନ୍ତ-ପ୍ରଦେଶ, ବଙ୍ଗଦେଶର ଉତ୍ତର-ପୂର୍ବରେ ଅବସ୍ଥିତ ।

ଆସାମୀ—ଯା. ବି. କୃଷି, କୃଷୀ, ପ୍ରତିବାଦୀ, ଦୋଷୀ, ଆସାମର ଲୋକ, ଭାଷା ବା ବସ୍ତୁ, ମୁଦାଲ ବ୍ୟକ୍ତି, ଦାବୀଦାର ବ୍ୟକ୍ତି ।

ଆସାର—ପୁଂ.ବି. (ଆ+ସୃ+ଅ) ଧାରା-ସମ୍ପାତ, ଜଳକଣା, ପ୍ରବେଶ, ଅବିରଳ ଧାରା ବୃଷ୍ଟି ପ୍ରସରଣ, ସୈନ୍ୟମାନଙ୍କର ଚତୁର୍ଦ୍ଦିଗେ ବ୍ୟାପ୍ତି, ସୁହୃଦ୍‌ବଳ, ବୃଷ୍ଟି-ପତନ, ବିସ୍ତାର । [କରି ।

ଆସି—ଗ୍ରା. କ୍ରି. (ଅସମାପିକା) ଆଗମନ

ଆସିଆ—ଗ୍ରା.ବି.(ନାମ)ପୂର୍ବ ଗୋଲାର୍ଦ୍ଧର ପ୍ରଧାନ ମହାଦେଶ, (ଗ୍ରା. ଅବ୍ୟ)ସଦୃଶ, ପରି, ଆଂଶତଃ, ପ୍ରାୟଶଃ, ଯଥା— ନାଲିଆସିଆ ।

ଆସିକ – ପୁଂ.ବିଂ. (ଅସି+ଇକ)ଖଡ୍ଗ-ଦ୍ୱାରା ଯୁଦ୍ଧକାରକ, ତରବାରିଦ୍ୱାରା ଯୁଦ୍ଧକାରୀ,ଉପବେଶନକାରୀ,ଖଡ୍ଗଧାରୀ

ଆସିକା—ସ୍ତ୍ରୀ.ବି. ପର୍ଯ୍ୟାୟକ୍ରମେ ଉପ-ବେଶନ, ଗଞ୍ଜାମ ଜିଲ୍ଲାର ଗ୍ରେଟନଗର-ବିଶେଷ, ।

ଆସିକ୍ତ—ତ୍ରି. ବିଂ. (ଆ+ସିଚ୍+ତ) ଈଷତ୍‌ସିକ୍ତ, ସମ୍ୟକ୍‌ସିକ୍ତ, ଉତ୍ତମରୂପେ ଜଳାଦିଦ୍ୱାରା ସେକଯୁକ୍ତ, ବିଶେଷ-ଭାବେ ଓଦାହୋଇଥିବା,ସମ୍ପୂର୍ଣ୍ଣ ଆର୍ଦ୍ର ।

ଆସିଚ—ତ୍ରି ବିଂ. ଆସିଚ୍ୟମାନ, ଆହୃତ ।

ଆସିତ—କ୍ଳୀ.ବି. (ଆସ୍+ଭା,ତ) ଉପ-ବେଶନ, ବସିବାର ସ୍ଥାନ, (ବିଂ) ଉପବିଷ୍ଟ, ସ୍ଥିତ, (ପୁଂ.ବି)ଅସିତ ମୁନି-ଙ୍କର ପୁତ୍ର ବା କନ୍ୟାରୂପ ଅପତ୍ୟ, ଶାଣ୍ଡିଲ୍ୟଗୋତ୍ରର ପ୍ରବର ।

ଆସିଧାର—କ୍ଳୀ. ବି. (ଅସିଧାରା+ଅ) କାମୁକଭାବ ଗୁଢ଼ ଯୁବକ ଯୁବତୀ ଅବି-ଚଳିତ ଚିତ୍ତରେ ଏକତ୍ର ଅବସ୍ଥାନ କରିବା ବ୍ରତ ।

ଆସିଦ୍ଧ—ବିଂ. (ଆ+ସିଧ+ତ)ରାଜାଜ୍ଞା ହେତୁ ବାଦୀ ଯେଉଁ ପ୍ରତିବାଦୀକୁ ବନ୍ଧନ କରିଥାଏ, ସୁସିଦ୍ଧ, ଯାହାର ଗମନାଦି ରୋଧ କରାହୋଇଥାଏ ସେହି ବ୍ୟକ୍ତି ।

ଆସିନାସି—ପୁଂ,ସ୍ତ୍ରୀ.ବି. ଅସିନାସ ମୁନି-ଙ୍କର ଅପତ୍ୟ ।

ଆସିବା—ଗ୍ରା. କ୍ରି. ଆଗମନ କରିବା, ପହଞ୍ଚିବା, ଉପସ୍ଥିତ ହେବା, ପଇଟିବା, ବିଦ୍ୟା ବା ପାଠ ଆୟତ୍ତ ହେବା, କାର୍ଯ୍ୟ ସମ୍ପାଦନ କରି-ଜାଣିବା, ଜ୍ଞାତହେବା, ଉଦିତ ହେବା, ମିଳିବା, ଅନୁଭୂତ ହେବା, ଉପକ୍ରମ ହେବା ।

ଆସିୟା-ଗୋଟିଏ ମହାଦ୍ୱୀପ,ଜମ୍ବୁଦ୍ୱୀପ ।

ଆସୀନ—ତ୍ରି. ବିଂ. (ଆସ+କ, ଈନ) ଉପବିଷ୍ଟ, ସ୍ଥିତ, ବସିଥିବା, ଅନୁ-ଦ୍ୟୋଗୀ, ବିଛଣା ବା ଆସନରେ ବସିଥିବା ।

ଆସୀନପ୍ରଚଳାୟିତ—କ୍ଳୀ. ବି. ବସିକରି ନିଦ୍ରାହେତୁ ଢୁଳେଇ ପଡ଼ିବା ।

ଆସୁତ୍—ତ୍ରି. ବିଂ. (ଆ+ସୁ+କ୍ୱିପ୍) କୃତାଭିଷବ, କୃତସ୍ନାନ, ଯେ ସ୍ନାନ କରିଅଛି ।

ଆସୁତ—ସ୍ତ୍ରୀ. ବି. (ଆ+ସୁ+ଭା,ତି) ସୋମଲତାଦି ନିଷ୍ପୀଡ଼ନ, ଅଭିଷବ, ମଦ୍ୟନିଷ୍ପାଦନ, କ୍ଷୀରାଦିପେୟ, ପ୍ରସବ ।

ଆସୁତୀୟ—ବିଂ. ସ୍ନାନକାରୀ ବା ମଦ୍ୟ-କାରୀସମ୍ବନ୍ଧୀୟ ।

ଆସୁତୀବଳ—ପୁଂ.ବି. ଶୌଣ୍ଡିକ, ଶୁଣ୍ଡୀ, ଯେ ସୋମଲତାରୁ ରସ ବାହାର କରି-ପାରେ ସେପରି ଯାଜ୍ଞିକ ।

ଆସୁର—ତ୍ରି.ବିଂ. (ଅସୁର+ଅ) ଅସୁର-ସମ୍ବନ୍ଧୀୟ, ନିନ୍ଦିତ, ଘୃଣ୍ୟ, ଦୁଷ୍ଟ, ଧୂର୍ତ୍ତ, ଅପବିତ୍ର, ଅଶୁଚି, ଅନିଷ୍ଟକର, ଭୟ-ଙ୍କର, (ସ୍ତ୍ରୀ—ଆସୁରୀ)(ପୁଂ.ବି) ଅସୁର, ବିବାହବିଶେଷ, କନ୍ୟାକୁ ଓ କନ୍ୟାର ଆତ୍ମୀୟସ୍ୱଜନଙ୍କୁ ଅର୍ଥପ୍ରଦାନପୂର୍ବକ କନ୍ୟା ପରିଣୟ, (କ୍ଳୀ.ବି) ବିଟ୍‌ଲବଣ ।

ଆସୁରବିବାହ—ବି. ହିନ୍ଦୁଶାସ୍ତ୍ରକଥିତ ବିବାହବିଶେଷ, ଯେଉଁ ବିବାହରେ ବର କନ୍ୟାକୁ କିଣି ବିବାହ କରେ ।

ଆସୁରସ୍ୱ—କ୍ଳୀ. ବି. ଯଜନହୀନ ବ୍ୟକ୍ତିର ଧନ ।

ଆସୁରାୟଣ—ପୁଂ.ବି. ଅସୁରର ଗୋତ୍ରା-ପତ୍ୟ, (ସ୍ତ୍ରୀ) ଆସୁରାୟଣୀ ।

ଆସୁରି—ପୁଂ.ବି. କପିଳଋଷିଙ୍କର ଶିଷ୍ୟ ଋଷିବିଶେଷ, ଅସୁରଋଷିଙ୍କ ପୁତ୍ର ।

ଆସୁରିକ—ତ୍ରି.ବିଂ. (ଅସୁର+ଇକ) ଅସୁରସମ୍ବନ୍ଧୀୟ ।

ଆସୁରିବାସିନ୍—ପୁଂ. ବିଂ.ଆସୁରି ମୁନି-ଙ୍କର ଶିଷ୍ୟ, ଯଜୁର୍ବେଦ ସମ୍ପ୍ରଦାୟିକ ଋଷିବିଶେଷ ।

ଆସୁରୀ—ସ୍ତ୍ରୀ.ବିଂ. (ଆସୁର+ଈ)ଅସୁର-ସମ୍ବନ୍ଧୀୟା, (ବି) ବୈଦିକ ଛନ୍ଦୋ-ବିଶେଷ, ରାଇସୋରିଷ, ଚିକିତ୍ସା-ବିଶେଷ, ବିଟ୍‌ଲବଣ ।

ଆସୁରୀସ୍ୱ—ପୁଂ.ବି. ଅସୁର କଥିତ କଳ୍ପ ଶାସ୍ତ୍ରବିଶେଷ ।
ଆସେଚନବାନ୍—ପୁଂ.ବିଂ ଅତି ଭଲପାଉ ଥିବା ଲୋକ ।
ଆସେକ—ପୁଂ.ବି. (ଆ + ସିଚ୍ + ଭା.ଅ) ପାଣି ଛିଞ୍ଚିବା, ସମ୍ୟକ୍ ସେଚନ କରିବା, ଜଳାଦିଦ୍ୱାରା ବୃକ୍ଷାଦିମାନଙ୍କର ଅଳ୍ପ ସେଚନ କରିବା ।
ଆସେଚନ—ତ୍ରି. ବିଂ. (ଆସେଚନ + ସ୍ୱାର୍ଥେ ଅ)ଅତି ତୃପ୍ତିକାରକ, ଯାହାକୁ ପ୍ରତିଦିନ ଦେଖିଲେ ମଧ୍ୟ ତୃପ୍ତି ଶେଷ ହୁଏନାହିଁ ସେହି ପଦାର୍ଥ, ଆସେଚନକ ।
ଆସେଚନକ—ବିଂ. ବି. (ଆସେଚନ + କ) ଆସେଚନ ଦେଖ ।
ଆସେଦିବାନ୍—ବିଂ. ନିକଟାଗତ, ପ୍ରାପ୍ତ, (ସ୍ତ୍ରୀ) ଆଗତା, ପ୍ରାପ୍ତା, ଉପସ୍ଥିତା ।
ଆସେଦ୍ଧା-ପୁଂ.ବିଂ. (ଆ + ସିଦ୍ଧ + କ.ତୃ) ବିବାଦ ବିଷୟରେ ରାଜାଙ୍କ ଆଜ୍ଞା ହେତୁ ପ୍ରତିବାଦିର ଗତିରୋଧକର୍ତ୍ତା, ଆସେଦ୍ଧକର୍ତ୍ତା, ବାଦୀ, ଅବରୋଧକାରୀ, ଯେ ଧରେ, (ସ୍ତ୍ରୀ) ଆସେଦ୍ଧ୍ରୀ ।
ଆସେଧ—ପୁଂ.ବି. (ଆ + ସିଧ + ଭା.ଅ ରାଜାଜ୍ଞାହେତୁ ବାଦୀଦ୍ୱାରା ପ୍ରତିବାଦୀର ସ୍ଥାନାନ୍ତର ଗମନ ନିଷେଧ, କୌଣସି କର୍ମ୍ମ ଉଦ୍ଦେଶ୍ୟ କରି ବିଦେଶ ପଠାଇବା ।
ଆସେଧକ— ତ୍ରି.ବିଂ. (ଆ + ସିଧ୍ + କ. ଅକ) ଆସେଦ୍ଧା, ଆସେଧକର୍ତ୍ତା, ଅବରୋଧକାରକ, (ସ୍ତ୍ରୀ) ଆସେଧିକା ।
ଆସେଧନୀୟ—ତ୍ରି.ବିଂ. (ଆ + ସିଧ୍ + ମି. ଅନୀୟ) ଅବରୋଧଯୋଗ୍ୟ ।
ଆସେବନ—କ୍ଲୀ. ବି. (ଆ + ସେବ୍ + ଅନ) ସର୍ବଦା ସେବାକରିବା, ପୁନଃ ପୁନଃ ସେବନ ।
ଆସେବା—ସ୍ତ୍ରୀ.(ଆ + ସେବ୍ + ଅ + ଆ) ସମ୍ୟକ୍ ସେବା, ରକ୍ଷସୀ, ପୁନଃ ପୁନଃ ପ୍ରବୃତ୍ତି ।
ଆସେବିତ—ତ୍ରି. ବିଂ. (ଆ + ସେବ୍ + ତ) ସମ୍ୟକ୍ ସେବିତ, ପୁନଃପୁନଃ ସେବିତ, ସମ୍ୟକ୍ ସେବା ।
ଆସେବିତ୍ତ—ବିଂ. ଆସେବିତ, ସୁନ୍ଦର ସେବାକାରୀ ।
ଆସୋରା—ଯା. ବି. ମହରମ୍ ମାସର ୧୦ମ ଦିନରେ ପାଳିତ ହେବା ମୁସଲ୍‌ମାନମାନଙ୍କର ଉତ୍ସବ ।
ଆସ୍କନ୍ଦ—ପୁଂ. ବି. (ଆ + ସ୍କନ୍ଦ୍ + ଅ) ଉତ୍ପ୍ଲବନ, ଊର୍ଦ୍ଧ୍ୱକୁ ଡେଇଁବା, ଆକ୍ରମଣ, ସମ୍ୟକ୍ ଶୋଷଣ, ତିରସ୍କାର, ଅଶ୍ୱର ଗତିବିଶେଷ ।
ଆସ୍କନ୍ଦନ—କ୍ଲୀ. ବି. (ଆ + ସ୍କନ୍ଦ୍ + ଭା. ଅନ) ଯୁଦ୍ଧ,ତିରସ୍କାର, ଆକ୍ରମଣ, ଉତ୍ପ୍ଲବନ, ଧାବନ, ଘୋଡ଼ା କଦମ ଚାଲି, ଆସ୍ଫାଳନ, ଅଶ୍ୱଗତିବିଶେଷ, ଶୋଷଣ, ହନନ ।
ଆସ୍କନ୍ଦିତ—କ୍ଲୀ. ବି. (ଆ + ସ୍କନ୍ଦ୍ + ମି. ତ) ଅଶ୍ୱଗତିବିଶେଷ, (ବିଂ) ଆସ୍କନ୍ଦନଯୁକ୍ତ, ଆସ୍କନ୍ଦିତ, ତିରସ୍କୃତ, ପଶ୍ଚାଦ୍ଧାବିତ, ଆକ୍ରାନ୍ତ, ବିନଷ୍ଟ ।
ଆସ୍କନ୍ଦୀ—ବିଂ. (ଆ + ସ୍କନ୍ଦ୍ + ଇନ୍) ଧ୍ୱଂସକ, ଘାତୀ, ବିନାଶୀ ।
ଆସ୍କର—ଖା. ବିଂ. (ଫ-ଅପରିଷ୍କାର) ଆବର୍ଜ୍ଜନାପୂର୍ଣ୍ଣ, ଅପରିଷ୍କୃତ ।
ଆସ୍କ୍ର—ବିଂ. (ଆ + କ୍ରମ + ଡ଼) ଆକ୍ରାମକ, ଯେ ଆକ୍ରମଣ କରେ, ଆକ୍ରମଣ ।
ଆସ୍ତାରା—(ଯା) ବି. ପ୍ରଶସ୍ତ, ମୁହଁଦେବା ।
ଆସ୍ତ—ତ୍ରି.ବିଂ. (ଆ + ଅସ୍ + ତ)ସମ୍ୟକ୍ କ୍ଷିପ୍ତ, ଏକବାର ଫିଙ୍ଗି ଦେବା ।
ଆସ୍ତର—ପୁଂ. ବିଂ. (ଆ + ସ୍ତୃ + ମି.ଅ) ହସ୍ତୀର ପୃଷ୍ଠସ୍ଥ କମ୍ବଳ, ଝାଲର ସୁବିସ୍ତାର ଅସ୍ତ୍ରବିଶେଷ, (ଆସ୍ତରଣ ଦେଖ) ।
ଆସ୍ତରଣ—କ୍ଲୀ.ବି.(ଆ + ସ୍ତୃ + ମି.ଅନ) ବିଛଣା, ଶଯ୍ୟା, ଆସନ, ବିଛଣାଚଦର, କମ୍ବଳ, ହସ୍ତୀ ପୃଷ୍ଠସ୍ଥ ଚିହ୍ନିତ କମ୍ବଳ, ଉତ୍ତରୀୟ ବସ୍ତ୍ର, ଘୋଡ଼ାପିଠିରେ ପକାଯିବା ଚିହ୍ନିତ କମ୍ବଳ, ପୋଷାକ ବା କୁରୁତାତଳେ ଦିଆଯିବା କନା, ବାହାରର ଆଚ୍ଛାଦନ ବା ସ୍ତର, କାନ୍ଥରେ ପଲସ୍ତରା କରିବା, ଉପରେ ପକାଇବା ଘୋଡଣୀ, ଖଣ୍ଡୁଆ ।
ଆସ୍ତରଣିକ—ତ୍ରି. ବିଂ. (ଆସ୍ତରଣ + ଇକ) ଆସ୍ତରଣ ସାଧନ ବସ୍ତ୍ରାଦି, (କ୍ଲୀ) ବି.) ଆସ୍ତରଣସମୂହ ।
ଆସ୍ତରଣୀୟ—ତ୍ରି. ବିଂ. (ଆସ୍ତରଣ + ଇୟ) ଅସ୍ତରଣସମ୍ବନ୍ଧୀ ।
ଆସ୍ତାନ—(ଯା) ବି. ଗୃହ, ଫକୀର (ବୈଷ୍ଣବ) ମାନଙ୍କର ବିଶ୍ରାମ ଘର, ଆଡ଼୍ଡା, ଆଶ୍ରମ, ହିନ୍ଦୁମାନେ ମୁସଲମାନ ଫକୀରଙ୍କୁ ସତ୍ୟପୀର ବୋଲି ପୂଜା କରିବାବେଳେ ଯେଉଁ ଆସନ ବା ପୀଢ଼ାରେ ସତ୍ୟପୀରଙ୍କୁ ଆବର୍ଭାବ କରନ୍ତି ।
ଆସ୍ତାନ ପଡ଼ିଆରୀ—ଗ୍ରା.ବି. ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର ସେବକବିଶେଷ ।
ଆସ୍ତାସ୍ଥନ—ବିଂ. ବର୍ତ୍ତମାନ ନିକଟବର୍ତ୍ତୀ ଦେଶାଦି ।
ଆସ୍ତାର—ପୁଂ.(ଆ + ସ୍ତୃ + ଅ) ବିସ୍ତାରଯୋଗ୍ୟ, ବିସ୍ତାର ।
ଆସ୍ତାରପଂକ୍ତି ସ୍ତ୍ରୀ.ବୈଦିକଛନ୍ଦୋବିଶେଷ ।
ଆସ୍ତାବ—ପୁଂ. (ଆ + ସ୍ତୁ + ଅ) ଯଜ୍ଞରେ ଯେଉଁଠାରେ ସ୍ତୋତାମାନେ ସ୍ତବ କରନ୍ତି, ସମ୍ୟକ୍ ସ୍ତବ ।
ଆସ୍ତାବଲ—ଯା. ବି. ଘୋଡ଼ାଶାଳ, ଘୋଡ଼ାର ଘର
ଆସ୍ତି—ଗ୍ରା ବି.(ଫ ଅସ୍ତି) ବିଷୟ,ସମ୍ପତ୍ତି ବିଭବ, ଅସ୍ତିତ୍ୱ ।
ଆସ୍ତିକ—ପୁଂ.ବିଂ. (ଅସ୍ତି + ଇକ) ପରଲୋକ, ଅସ୍ତିତ୍ୱବାଦୀ, ଯେ ପରକାଳ ଥିବାର ବିଶ୍ୱାସ କରେ ଧାର୍ମିକ, ଈଶ୍ୱରବାଦୀ, (ବି) ଜରତ୍କାରୁ ମୁନିଙ୍କର ପୁତ୍ର ଆସ୍ତିକ ଋଷି ।
ଆସ୍ତିକତା—ସ୍ତ୍ରୀ. ବି. (ଆସ୍ତିକ + ତା) ବୈଦିକ ଧର୍ମର ଶ୍ରଦ୍ଧା, ଈଶ୍ୱର ଓ ବୈଦିକ ଧର୍ମ ବିଷୟରେ ବିଶ୍ୱାସ, ଆସ୍ତିକର ବ୍ୟବହାର, ଈଶ୍ୱର ଓ ପରଲୋକରେ ବିଶ୍ୱାସ ।

ଆସ୍ତିକାର୍ଥଦ—ପୁଂ. ଜନମେଜୟଙ୍କ ରାଜା ।

ଆସ୍ତିକ୍ୟ—କ୍ଲୀ.ବି. (ଆସ୍ତିକ + ଯ) ଆସ୍ତିକତ୍ୱ, ପରଲୋକ ସ୍ୱୀକାର, (ଆସ୍ତିକତା ଦେଖ ) ।

ଆସ୍ତିନ୍—ଯା. ବି. କୁରୁତାର ହାତ ।

ଆସ୍ତିନାସ୍ତି—ଗ୍ରା. ବି. (ସଂ.ଅସ୍ତି ଓ ନାସ୍ତି ) ହଁ କି ନାହିଁ ସ୍ଥିର ଜବାବ, ଗୋଟିଏ ନିଶ୍ଚିତ କଥା ।

ଆସ୍ତିବାଡି—ଗ୍ରା.ବି. ବିଷୟସମ୍ପତ୍ତି, ବିଷୟ-ଆଶୟ, ଚଳନ୍ତ ଅଚଳନ୍ତ ସମ୍ପତ୍ତି ।

ଆସ୍ତୀକ—ପୁଂ. (ଆସ୍ତି + ଇକ) ବାସୁକୀ ଭଗିନୀ ମନସାର ଗର୍ଭେ ଜରତ୍କାରୁ ମୁନିଙ୍କର ଔରସେ ଜାତ ପୁତ୍ର, ଆସ୍ତୀକ ମୁନି ।

ଆସ୍ତୀକଜନନୀ—ସ୍ତ୍ରୀ.ବି. (୬ତତ୍) ଜରତ୍କାରୁ ମୁନିପତ୍ନୀ ବାସୁକି ଭଗିନୀ ମନସାଦେବୀ, ଆସ୍ତୀକଙ୍କ ମାତା ।

ଆସ୍ତୀର୍ଣ୍ଣ—ବି.ବିଂ. ( ଆ + ସ୍ତୃ + ର୍ମ.ତ ) ବିସ୍ତୀର୍ଣ୍ଣ, ବ୍ୟାପ୍ତ, ପାତିତ, ଆଚ୍ଛାଦିତ, ଆସନାଦ, ପୀଡ଼ିତ, ଆକର୍ଣ୍ଣ ।

ଆସ୍ତୃତ—ବି. ବିଂ. (ଆ + ସ୍ତୃ + ର୍ମ.ତ ) ବିସ୍ତାରିତ, ପ୍ରସାରିତ, ଆସନାଦ, ପ୍ରୀଣିତ, ରକ୍ଷିତ, (ସ୍ତ୍ରୀ) ଆସ୍ତୃତା ।

**ଆସ୍ତେ**—ଗ୍ରା. ବି.ବିଂ. ଧୀରେ, ଧୀରଭାବରେ, ହାଉଲେ ହାଉଲେ, କୋମଳ ଭାବରେ, ନିଃଶବ୍ଦରେ ।

ଆସ୍ତେଆସ୍ତେ—ଗ୍ରା.ବି.ବିଂ.(ଆସ୍ତେ ଦେଖ) ।

ଆସ୍ତେୟ—ବିଂ. ବିଦ୍ୟମାନ ପଦାର୍ଥସକଳ, **ଅଚୌର୍ଯ୍ୟ** । [ଆୟୁଧସମ୍ବନ୍ଧୀ ।

ଆସ୍ତ୍ର—ବିଂ. (ଅସ୍ତ୍ର + ଅ) ଅସ୍ତ୍ରସମ୍ବନ୍ଧୀୟ,

ଅସ୍ତ୍ରବୁଧ୍ନ—ପୁଂ.(ବୈଦିକ) ଅସ୍ତ୍ରବୁଧ୍ନ ପୁତ୍ର ।

ଆସ୍ଥା—ସ୍ତ୍ରୀ. ବି. (ଆ + ସ୍ଥା + ଆ) ଆଲମ୍ବନ, ଅପେକ୍ଷା, ଶ୍ରଦ୍ଧା, ସ୍ଥିତି, ଯତ୍ନ, ଆଦର, ନିଷ୍ଠା, ନିର୍ଭର, ମନୋଯୋଗ, ସଭା, ଆସ୍ଥାନ, ଚେଷ୍ଟା, ବିଶ୍ୱାସ ।

**ଆସ୍ଥାତା** ବି.ବିଂ.(ଆ + ସ୍ଥା + ତୃ) ସ୍ଥିତିକାରୀ ।

**ଆସ୍ଥାନ**—କ୍ଲୀ.ବି.(ଆ + ସ୍ଥା + ଅନ) ସଭା, **ଆସ୍ଥା**, ବିଶ୍ୱାସ, ନିର୍ଭର, ଯତ୍ନ, ପ୍ରୟାସ, ଅବଲମ୍ବନ, ବିଶ୍ରାମ ସ୍ଥାନ, ଆରୋହଣ, ପ୍ରତିମାଦି ବସିବାର ସ୍ଥାନ, ଅଧିଷ୍ଠାନ ସ୍ଥାନ, ପୀଠ, ମଠ, କେନ୍ଦ୍ରସ୍ଥାନ, କଚେରୀଘର, ଶ୍ରଦ୍ଧା [ଈ) ସଭା ।

ଆସ୍ଥାନୀ—ସ୍ତ୍ରୀ.ବି. (ଆ + ସ୍ଥା + ଅନ +

ଆସ୍ଥାପନ—କ୍ଲୀ.ବି. (ଆ + ସ୍ଥାପି + ଅନ) ସମ୍ୟକ୍‌ସ୍ଥାପନ, ରକ୍ଷାକରିବା, ସୁଶ୍ରୁତୋକ୍ତ ବ୍ରଣୋପକ୍ରମଣୀୟ ବସ୍ତିବିଶେଷ ।

ଆସ୍ଥାପିତ—ବି.ବିଂ. (ଆ + ସ୍ଥାପି + ତ) ସମ୍ୟକ୍ ସ୍ଥାପିତ, ରଖେଇଥିବା ।

ଆସ୍ଥାପିକା—ସ୍ତ୍ରୀ. ବି. (ଆ + ସ୍ଥା + ଅକ + ଆ) ଆସ୍ଥାନ, ଆସ୍ଥିତ, ସମ୍ୟକ୍‌ସ୍ଥିତି, ଆସ୍ଥାପକ, ଆସ୍ଥାନକର୍ତ୍ତ୍ର (ସ୍ତ୍ରୀ) ଆସ୍ଥାପିକା, ଆସ୍ଥାନକର୍ତ୍ତ୍ରୀ ।

ଆସ୍ଥାୟୀ—ପୁଂ. ବି. (ସଙ୍ଗୀତ) (ଆ + ସ୍ଥା + କ,ଇନ୍ ) କୌଣସିରାଗାଳାପର ପ୍ରଥମଚରଣ ବା ମୁଖବନ୍ଧ ।

ଆସ୍ଥିତ—ବି. ବିଂ. (ଆ + ସ୍ଥା + ର୍ମ,ତ ) ଅବସ୍ଥାନ, ପ୍ରାପ୍ତ, ଆରୂଢ଼, ଆଶ୍ରିତ, ଅଧିଷ୍ଠିତ, ଆକ୍ରାନ୍ତ, ବ୍ୟାପ୍ତ, (କ୍ଲୀ.ବି.) ସ୍ଥିତ ।

ଆସ୍ଥିତି—ସ୍ତ୍ରୀ.ବି.(ଆ + ସ୍ଥା + ତି) ସମ୍ୟକ୍ ସ୍ଥିତି, ଥିବା, ରହିବା ।

ଆସ୍ଥେୟ—ବି.ବିଂ. (ଆ + ସ୍ଥା + ର୍ମ,ୟ) ଆଶ୍ରୟଣୀୟ, ଅବଲମ୍ବନୀୟ, କର୍ତ୍ତବ୍ୟ ।

ଆସ୍ନାତ—ବିଂ.(ଆ + ସ୍ନା + ତ) କୃତସ୍ନାନ ଯେ ସ୍ନାନ କରିଅଛି ।

ଆସ୍ନାନ—କ୍ଲୀ. ବି. (ଆ + ସ୍ନା + ଅନ) ସମ୍ୟକ୍‌ସ୍ନାନ, ପ୍ରକ୍ଷାଳନଦ୍ୱାରା ଶୁଦ୍ଧି, ଗାଧୋଇବା ।

ଆସ୍ପଦ—କ୍ଲୀ. ବି. (ଆ + ପଦ୍ + ଅ) ପ୍ରତିଷ୍ଠା, ଆଧାର, ପାତ୍ର, ଆଶ୍ରୟ, କାର୍ଯ୍ୟ, ପଦ, ସ୍ଥାନ, କୃତ୍ୟ, ପ୍ରଭୁତ୍ୱ, ଅବଲମ୍ବନ, ବିଷୟ, ଅବସ୍ଥାନ, ଲଗ୍ନର ଦଶମସ୍ଥାନ ।

ଅସ୍ପର୍ଦ୍ଧା—ସ୍ତ୍ରୀ. ବି. (ଆ + ସ୍ପର୍ଦ୍ଧ୍ + ଅ + ଆ) ଆସ୍ଫାଳନ, ପରାଭିଭବେଚ୍ଛା, ମାତ୍ସର୍ଯ୍ୟ ପ୍ରକାଶ, ଅହଂକାର, ଗର୍ବ, ଡମାକ୍, ପ୍ରତିଯୋଗିତା, ଯୁଝିବା, ବଡ଼େଇ କରିବା, ଗାରିମା ।

ଆସ୍ପର୍ଦ୍ଧୀ—ପୁଂ. ବିଂ. (ଆ + ସ୍ପର୍ଦ୍ଧ + କ, ଇନ୍) ଆସ୍ପର୍ଦ୍ଧାକାରୀ, ଯେ ଆସ୍ପର୍ଦ୍ଧା କରେ, (ସ୍ତ୍ରୀ) ଆସ୍ପର୍ଦ୍ଧିନୀ ।

ଆସ୍ପନ୍ଦନ—କ୍ଲୀ.ବି.(ଆ + ସ୍ପନ୍ଦ୍ + ଘ,ଅନ) ଈଷତ୍‌କମ୍ପନ, ଅଲ୍ପଚଳନ ।

ଆସ୍ପାତ୍ର—କ୍ଲୀ. ବି.ମୁଖ ରୂପପାତ୍ର, ଆସ୍ୟରୂପ ପାତ୍ର ।

ଆସ୍ଫାଳ—ପୁଂ. ବି. (ଆ + ସ୍ଫାଳ + ଅ) ଚାଳନ, ହସ୍ତୀର କର୍ଣ୍ଣଚାଳନ ।

ଆସ୍ଫାଳନ—କ୍ଲୀ.ବି. (ଆ + ସ୍ଫାଳ + ଅନ) ଗାତ୍ରମର୍ଦ୍ଦନ, ତାଡ଼ନ, ଚାଳନ, ଆଟୋପ, ପ୍ରାଗଲ୍‌ଭ, ଦମ୍ଭ, ଦର୍ପ, ଧୂନନ, ସଂଘର୍ଷ, ଗର୍ବପ୍ରକାଶ, ତାଳମାରିବା, ଅହଂକାର ।

ଆସ୍ଫାଳିତ—ବି.ବିଂ. (ଆ + ସ୍ଫାଳ + ର୍ମ, ତ) ଚାଳିତ, ଆଘଟ୍ଟିତ, ତାଡ଼ିତ, ସଞ୍ଚାଳିତ, ଆକ୍ଷିପ୍ତ ।

ଆସ୍ଫୁଜିତ୍—ପୁଂ.ବି.(ଆ + ସ୍ଫୁଳ + ଜି + କ୍ୱିପ୍) ଶୁକ୍ରାଚାର୍ଯ୍ୟ ।

ଆସ୍ଫୋଟକ—ପୁଂ. ବି. (ଆ + ସ୍ଫୁଟ୍ + ଅକ) ଆଙ୍ଗୁଠି ଫୁଟାଇବା, ସଶବ୍ଦଘାତ, ମେଲହୋଇଯିବା, ଆର୍କବୃକ୍ଷ, ଅର୍ଖଗଛ, (ସ୍ତ୍ରୀ) ନବମଲ୍ଲିକା, ମଲ୍ଲର ବାହୁଶବ୍ଦ, ଫୋଡ଼ିବା, ସଂଘର୍ଷଜାତଶବ୍ଦ, ଫୁଟ୍‌କି ଶବ୍ଦ ।

ଆସ୍ଫୋଟକ—କ୍ଲୀ.ବି. ( ଆ + ସ୍ଫୁଟ୍ + କ + ଅକ) ଆଖୋଟ, ପର୍ବତରପୀଲୁବିଶେଷ, ଆଖରୋଟଗଛ, (ବିଂ) ବାହୁଶବ୍ଦକାରୀ, (ମଲ୍ଲୀ ମାଲ ) ।

ଆସ୍ଫୋଟନ—କ୍ଲୀ. ବି. (ଆ + ସ୍ଫୁଟ୍ + ଘ. ଅନ) ପ୍ରକାଶ, ତାଳମାରି ବାହୁର ଶବ୍ଦକରିବା, କୁଲାଦ୍ୱାରା ଧାନ ଇତ୍ୟାଦି ପାଛୋଡ଼ିବା, ସଂକୋଚନ, ପ୍ରସାରଣ ।

ଆସ୍ଫୋଟନା—ସ୍ତ୍ରୀ.ବି.(ଆ + ସ୍ଫୁଟ୍ + କ + ଅନ + ଆ) ବନମଲ୍ଲିକା, ବଣମଲ୍ଲି ।

ଆସ୍ଫୋଟନୀ—ସ୍ତ୍ରୀ. ବି. (ଆ + ସ୍ଫୁଟ୍ + ଇ + ଅନ + ଈ) ବେଧନାସ୍ତ୍ର, ଫୋଡ଼ଣୀ, ଭଅଁର ।

ଆସ୍ଫୋଟା—ସ୍ତ୍ରୀ.ବ.ନବମଲ୍ଲିକା,ନଆଳୀ ।

ଆସ୍ଫୋଟିତ—ତ୍ରି ବଂ.(ଆ + ସ୍ଫୁଟ୍ + ଇ + ତ) ବିଦଳିତ, (କ୍ଲୀ) ବାହୁପ୍ରଭୃତିର ତାଳଦ୍ୱାରା ଶବ୍ଦପ୍ରକାଶ ।

ଆସ୍ଫୋଟ—ପୁଂ.ବ.(ଆ + ସ୍ଫୁଟ + ଅ)ଅର୍କ ବୃକ୍ଷ,ଅର୍କଗଛ, କୋବିଦାର ବୃକ୍ଷ, ପଲାଶ ବୃକ୍ଷ ।

ଆସ୍ଫୋତା—ସ୍ତ୍ରୀ.ବ.(ଆ + ସ୍ଫୁଟ୍ + ଅ ଆ) ଅପରାଜିତା, ସାରିବା ହାପରମାଳୀ ଲତା, ଶୁଆଁ ମଲ୍ଲି, ବଣକପାସିଆଗଛ ।

ଆସ୍ମାକ—ବିଂ. (ଅସ୍ମଦ୍ + ଅ) ଅସ୍ମତ୍ ସମ୍ବନ୍ଧୀ, ଯେ ପଦାର୍ଥ ଆମ୍ଭର ଅଟେ ।

ଆସ୍ମାକୀନ—ବିଂ. ଅସ୍ମତ୍ସମ୍ବନ୍ଧୀ, ଆମ୍ଭର ପଦାର୍ଥ ।

ଆସ୍ୟ—କ୍ଲୀ.ବ.(ଅସ୍ + ଯ) ମୁଖ, ବକ୍ତ୍ର, ଲପନ, ମୁଖମଧ୍ୟ, ଆନନ, ତୁଣ୍ଡ, (ବିଂ) ମୁଖଜାତ, ମୁଖସମ୍ବନ୍ଧୀୟ, (ତ୍ରା ବ) ଆଶୟ, ଅଭିପ୍ରାୟ, ଉଦ୍ଦେଶ୍ୟ, ଲକ୍ଷ୍ୟ, (ସ୍ତ୍ରୀ) ଆସ୍ୟା ।

ଆସ୍ୟନ୍ଦନ—କ୍ଲୀ. (ଆ + ସ୍ୟନ୍ଦ୍ + ଅନ) ଈଷତ୍ କ୍ଷରଣ, ଅଳ୍ପଗଳନ ।

ଆସ୍ୟନ୍ଧୟ—ବିଂ. ମୁଖାମୃତାସ୍ୱାଦକ, ମୁଖଚୁମ୍ବକ, ମୁଖଚୁମ୍ବନକାରୀ ।

ଆସ୍ୟପତ୍ର—କ୍ଲୀ.ବ. (ବ.ବ୍ରୀ)ପଦ୍ମ, ଅରବିନ୍ଦ । [ବିଗ୍ରହ ।

ଆସ୍ୟଲାଙ୍ଗଳ—ପୁଂବ. (ବ.ବ୍ରୀ) ଶୂକର,

ଆସ୍ୟଲୋମା—କ୍ଲୀ.ବ. (୬ତତ୍) ମୁଖଜାତ ଦାଢ଼ି, ନଶ, ଶ୍ମଶ୍ରୁ ।

ଆସ୍ୟା—ସ୍ତ୍ରୀ.ବ.(ଆସ + ଯ + ଆ) ସ୍ଥିତି, ଗତିରାହିତ୍ୟ,ବିଲକ୍ଷଣ,ଜିହ୍ବା,ଉପବେଶନ, ମୁଖମଧ୍ୟ, ଛେପ, ଆନନ୍ଦ ।

ଆସ୍ୟାସବ—ପୁଂ.ବ. (୬ତତ୍)ଲାଳା,ଲାଳ, ମୁଖଲାଳ, ମୁଖାମୃତ, ଛେପ ।

ଆସ୍ର—କ୍ଲୀ.ବ. (ଅସ୍ର + ଅ) ରୁଧିର, ରକ୍ତ (ବିଂ) ଆସ୍ରୀ,ରକ୍ତଯୁକ୍ତ,(ସ୍ତ୍ରୀ) ଆସ୍ରିଣୀ ।

ଆସ୍ରପ—ପୁଂ.ବ,(ଅସ୍ର + ପା + ଅ)ରାକ୍ଷସ, ଅସୁର, ଜୋକ ବା ଜୁଙ୍କ, ମୂଳାନକ୍ଷତ୍ର, ରକ୍ତପାୟୀ ।

ଆସ୍ରବ—ପୁଂ.ବ. (ଆ + ସ୍ରୁ + ଅ)କ୍ଲେଶ, ଦୁଃଖ,ଅର୍ହତ ମତ ସିଦ୍ଧ ପଦାର୍ଥବିଶେଷ, କଷ୍ଟ, କ୍ଷରଣ, ଝରିବା, ଅନ୍ନର ମଣ୍ଡ ବା ପେଜ ବା ଫେମ୍ପଲ ।

ଆସ୍ରାବ—ପୁଂ.ବ,(ଆ + ସ୍ରୁ + ଅ)କ୍ଷତଘା, ସମ୍ୟକ୍ କ୍ଷରଣ, ମୁଖଲାଳ, ସମ୍ୟକ୍ କ୍ଷରଣ ଯୁକ୍ତ ।

ଆସ୍ରାବୀ—ପୁଂ. ବ. (ଆ + ସ୍ରୁ + ଇନ୍) ମଦସ୍ରାବୀ, ମତ୍ତ, କ୍ଷରଣକାରୀ ।

ଆସ୍ରାଘ—ବିଂ.ଆସ୍ରକ୍ଷାପକ,ଯେ ରକ୍ତ ପଡ଼ିବାର ଜଣାଇ ଦିଏ । [ଅପତ୍ୟ ।

ଆସ୍ରଯୁଣ—ବିଂ. ଆସ୍ରକ୍ଷାପକର ବଂଶ,

ଆସ୍ରୀ—ବିଂ. ଆସ୍ର + ଇନ୍) ରକ୍ତଯୁକ୍ତ ।

ଆସ୍ୱଦନୀୟ—ତ୍ରି.ବଂ. (ଆ + ସ୍ୱଦ + ମି. ଅନୀୟ ) ସ୍ୱାଦଗ୍ରହଣଯୋଗ୍ୟ, ଯାହା ଚଖାଯିବ, ସୁସ୍ୱାଦୁ, ମୁଖରୁଚକର ।

ଆସ୍ୱନିତ—ତ୍ରି.ବଂ. (ଆ + ସ୍ୱନ୍ + ମି,ତ) ଗର୍ଜିତ, ଶବ୍ଦିତ, (ସ୍ତ୍ରୀ) ଆସ୍ୱାନିତା ।

ଆସ୍ୱାଦ—ପୁଂ. ବ. (ଆ + ସ୍ୱଦ୍ + ମି,ଅ) ମଧୁରାଦିରସ, ଶୃଙ୍ଗାରାଦିରସ, ରସର ଅନୁଭବ, ସ୍ୱାଦ, ଆସ୍ୱାଦନ, ପାନ, ଭୋଜନ ।

ଆସ୍ୱାଦକ —ତ୍ରି.ବଂ.( ଆ + ସ୍ୱଦ୍ + ଣିଚ୍ + ଅକ) ଆସ୍ୱାଦନକର୍ତ୍ତା, ସ୍ୱାଦଗ୍ରହଣକାରୀ, (ସ୍ତ୍ରୀ) ଆସ୍ୱାଦିକା ।

ଆସ୍ୱାଦନ—କ୍ଲୀ.ବ. (ଆ + ସ୍ୱାଦ୍ + ଅନ) ଆସ୍ୱାଦ, ପାନ, ଭୋଜନ, ରସର ଅନୁଭବ, ସ୍ୱାଦଗ୍ରହଣ, ଚାଖିବା ।

ଆସ୍ୱାଦବତ୍—ତ୍ରି.ବଂ. (ଆ + ସ୍ୱାଦ୍ + ଣିଚ୍ + ବତ ) ରସଯୁକ୍ତ, ଆସ୍ୱାଦଯୁକ୍ତ ।

ଆସ୍ୱାଦିତ—ତ୍ରି.ବଂ.(ଆ + ସ୍ୱଦ୍ + ଣିଚ୍ + ମି,ତ)ଭୋଜନ କରିବା ଭୋଗ କରି ଯେ ଆସ୍ୱାଦ ଲାଭ କରଅଛୁ, ଭୁକ୍ତ, ପ୍ରୀତ ।

ଆସ୍ୱାଦୀ—ବିଂ.(ଆସ୍ୱାଦ + ଇନ୍) ସୁସ୍ୱାଦୁ, ଉତ୍ତମ ସ୍ୱାଦଯୁକ୍ତ, ସୁଆଦିଆ ।

ଆସ୍ୱାଦୁ—ବିଂ. (ଆ – ସ୍ୱଦ୍ + କ,ଉ) ସୁସ୍ୱାଦ, ସୁଆଦିଆ ।

ଆସ୍ୱାଦ୍ୟ—(ଅବ୍ୟ) ଆସ୍ୱାଦନ କରି, (ତ୍ରି. ବଂ) (ଆ + ସ୍ୱଦ + ଣିଚ୍ + ମି,ଯ) ଆସ୍ୱାଦନୀୟ,ଆସ୍ୱାଦଯୋଗ୍ୟ ଆସ୍ୱାଦଗ୍ରହଣଯୋଗ୍ୟ ।

ଆସ୍ୱାନ୍ତ—ବିଂ.(ଆସ୍ୱନ୍ + ତ) ଶବ୍ଦିତ ।

ଆସ୍ରବ—ପୁଂ. (ଆ + ସ୍ରୁ + ଅ) ସମ୍ୟକ୍ ଗଳନ, ଗଳିତଦ୍ରବ୍ୟ ।

ଆହ—(ଅବ୍ୟ)(ଆ + ହନ୍ + ଡ଼) ଅଘାତ, ଧ୍ରୁଧାତୁର ଅର୍ଥ, କ୍ଷେପ,ନିଯୋଗ, ବୃତ, ସମ୍ଭାବନା, ବିଷାଦ ।

ଆହକ—ପୁଂ. ( ଆ + ହନ୍ + ଡ଼ + କ) ବୈଦ୍ୟଶାସ୍ତ୍ରୋକ୍ତ ଜ୍ୱରବିଶେଷ, ନାସାଜ୍ୱର,ଉହାଜ୍ୱର,ନାକରେ ହେବା ଜ୍ୱର ।

ଆହତ—ତ୍ରି. ବଂ. (ଆ + ହନ୍ + ତ) ଆଘାତପ୍ରାପ୍ତ,ମର୍ଦ୍ଦିତ, ଆଘୂର୍ଣ୍ଣିତ,ଅଭ୍ୟସ୍ତ, ଗୁଣିତ, ବ୍ୟଥିତ, ପ୍ରହୃତ, ତାଡ଼ିତ, ଜ୍ଞାତ, ବିନାଶିତ, ଅଭିଭୂତ, ଆକ୍ରାନ୍ତ, ଦଗ୍ଧ,ନିଷ୍ଫଳୀକୃତ,କୃତାକର୍ଷଣ,ଧ୍ୱନିତ, (ବି)ମିଥ୍ୟାର୍ଥକ ବାକ୍ୟ,ମିଛକଥା,ଠକକା, ଜୀର୍ଣ୍ଣବସ୍ତ୍ର, ବସ୍ତ୍ରବିଶେଷ, ପୁରାତନବସ୍ତ୍ର ।

ଆହତଲକ୍ଷଣ—ତ୍ରି.ବଂ.(ବ.ବ୍ରୀ)ଶୌର୍ଯ୍ୟାଦି ଗୁଣଦ୍ୱାରା ପ୍ରସିଦ୍ଧ (ସ୍ତ୍ରୀ) ଆହତଲକ୍ଷଣା ।

ଆହତି—ସ୍ତ୍ରୀ. ବ. (ଆ + ହନ୍ + କ୍ତି) ଶବ୍ଦହେତୁ ଆଘାତ, ତାଡ଼ନ, ଆଗମନ, ଗୁଣନ, ମର୍ଦ୍ଦନ,ବିନାଶ, ଦଳନ,ମାଡ଼ ।

ଆହନନ—କ୍ଲୀ.ବ.(ଆ + ହନ୍ + ଭା,ଅନ) ମାଡ଼ଦେବା, ଆଘାତକରଣ, ତାଡ଼ନ ସାଧନ ଦଣ୍ଡାଦି, ଧାତୁଖଣ୍ଡକୁ ହାତୁଡ଼ିଦ୍ୱାରା ପିଟିବା, (ବିଂ) ତାଡ଼ନସାଧନ ଦଣ୍ଡାଦିଜାତ, ଆହତ ।

ଆହନନୀୟ—ବିଂ (ଆ + ହନ୍ + ମି, ଅନୀୟ) ଯାହାକୁ ମାଡ଼ ଦିଆଯିବା, ବା ପିଟିବାଯୋଗ୍ୟ ।

ଆହନ୍ତବ୍ୟ—ବିଂ.(ଆ + ହନ୍ + ମି, ତବ୍ୟ) ଆହନନୀୟ, ମାଡ଼ଖାଇବାରଯୋଗ୍ୟ ।

ଆହନନବତ୍—ବିଂ.(ଆହନନ + ମତୁପ୍) ବନ୍ଧନବତ୍ ।

ଆହନସ୍—ବିଂ.ଆହନନୀୟ,ହନନଯୋଗ୍ୟ, ନିର୍ବୀର୍ଯ୍ୟ, ସୋମାଦି ।

ଆହନସ୍ୟ—କ୍ଲୀ.ହନନ ସାଧନଦ୍ରବ୍ୟାଦି ।

ଆହର—ତ୍ରି.ବିଂ. (ଆ + ହୃ + ଅ)ସଞ୍ଚୟକାରକ, ଯେ ଯୋଗାଡ଼ କରେ, ଆହରଣକାରୀ, ( ପୁଂ.ବି ) ଅନ୍ତର୍ମୁଖଶ୍ୱାସ ଉଚ୍ଛ୍ୱାସ, ଆହରଣ ।

ଆହର—ନକ୍ଷତ୍ର ଜାତିବିଶେଷ ।

ଆହରକରଟା—ସ୍ତ୍ରୀ. ବି. କରଟପ୍ରଭୃତି ଆହରଣକର ଏହିପରି ଉପଦେଶ କରିବା (କରଟ—କାକ) ।

ଆହରଚେଟା—ସ୍ତ୍ରୀ. ବି. ଦାସପ୍ରଭୃତି ଆହରଣ ନିମିତ୍ତ ଆଦେଶ କ୍ରିୟା ।

ଆହରଣ—କ୍ଲୀ. ବି.(ଆ + ହୃ + ଭା,ଅନ) ଆନୟନ, ଆୟୋଜନ, ଅନୁଷ୍ଠାନ, ଆହ୍ରୟମାଣ ଦ୍ରବ୍ୟ, ବିବାହାଦିର ଉପଢୌକନ, ଅପହରଣ, ଉଚ୍ଚାରଣ, ଅପନୟନ,ସଂଗ୍ରହ, ସଞ୍ଚୟ,ସଂକଳନ, ଉପାର୍ଜ୍ଜନ, ନିର୍ବାହ କରାଇବା ।

ଆହରଣୀୟ-ତ୍ରି.ବିଂ.(ଆ + ହୃ + ଅନୀୟ) ଆୟୋଜନୀୟ, ଆନୟନର ଯୋଗ୍ୟ, ଉପଢୌକନର ଯୋଗ୍ୟ, ସଂଗ୍ରହର-ଉପଯୁକ୍ତ ବା ଯୋଗ୍ୟ ।

ଆହରନିବପା—ସ୍ତ୍ରୀ. ବି. ଆହରଣ କର, ବପନକର ଏହିପରି ଆଦେଶ କ୍ରିୟା ।

ଆହର ବିଷ୍କିରା—ସ୍ତ୍ରୀ ବି. ଆହରଣକର, ଛଡ଼ାଅ ଏହିରୂପ ଆଦେଶ କରିବା ।

ଆହର୍ତ୍ତା—ପୁଂ. ବିଂ. (ଆ + ହୃ + କ,ତୃ) ଆହରଣକର୍ତ୍ତା, ଉପାର୍ଜ୍ଜନ, ଆୟୋଜନ, ଆନୟନକର୍ତ୍ତା, ସଂଗ୍ରାହକ, ସଂକଳୟିତା, ଅନୁଷ୍ଠାନକର୍ତ୍ତା, (ସ୍ତ୍ରୀ) ଆହର୍ତ୍ତ୍ରୀ ।

ଆହବ—ପୁଂ.ବି.(ଆ + ହ୍ୱେ + ଅ)ଯୁଦ୍ଧ, ଯଜ୍ଞ,ସଂଗ୍ରାମ, ଯୁଦ୍ଧକ୍ଷେତ୍ର, ନାକମଧ୍ୟରେ ହେବା ବ୍ରଣ (ଗ୍ରା.ବି.) ଆସ୍ପର୍ଦ୍ଧା, ଆସ୍ଥା, ଦାମ୍ଭିକତା, ସାହସ, ଉତ୍ସାହ ।

ଆହବନ—କ୍ଲୀ.ବି. (ଆ + ହୁ + ଭା,ଅନ) ଯଜ୍ଞ, ସମ୍ୟକ୍‌ହୋମ, ଆହୁତି ।

ଆହବନୀୟ-ପୁଂ.ବି. (ଆ + ହୁ + ଅନୀୟ) ଯଜ୍ଞର ଅଗ୍ନିବିଶେଷ, (ବିଂ) ହୋତବ୍ୟ ହୋମ କରିବାର ଯୋଗ୍ୟ ।

ଆହା—ଗ୍ରା.ଅବ୍ୟ (ସଂ ଅହୋ) ଅନୁତାପ, ଆକ୍ଷେପ ବା ଖେଦସୂଚକ ( ହାସ୍ୟ ) ଦୁଃଖସୂଚକ ଅବ୍ୟୟ, ଆନନ୍ଦସୂଚକ, ଦୟା ବା ଅନୁକମ୍ପା ସୂଚକ ।

ଆହାକରିବା—ଗ୍ରା. କ୍ରି. ଖେଦକରିବା, ଅନୁତାପକରିବା, ସହାନୁଭୂତି ପ୍ରକାଶକରିବା ।

ଆହାମଦ୍—(ଯା) ବି. ହଜାରତ୍ ମିର୍ଜା ଗୋଲାମ, ଅହେମଦ୍‌ମୁସଲମାନ୍, ଆହାମଦୀୟସମ୍ପ୍ରଦାୟର ପ୍ରବର୍ତ୍ତକ ।

ଆହାମକ୍—(ଯା) ବିଂ. ମୂର୍ଖ, ବୋକା, ନିର୍ବୋଧ । [ ଧଗା ।

ଆହାମକି—ଗ୍ରା. ବି. ମୂର୍ଖପଣ, ନିର୍ବୋ-

ଆହାମଦୀୟ—ଗ୍ରା.ବି. ମୁସଲମାନ ମାନଙ୍କର ନୂତନ ସମ୍ପ୍ରଦାୟବିଶେଷ ।

ଆହାର—ପୁଂ.ବି. (ଆ + ହୃ + ଅ)ଆହରଣ, ସଂଗ୍ରହ, ପାନ, ଭୋଜନ, ଶବ୍ଦାଦିସମ୍ୟକ୍ ଜ୍ଞାନ, ଆହରଣକାରୀ, ବହନ, ଭକ୍ଷ୍ୟ ବସ୍ତୁ,ଖାଦ୍ୟ,ଦେହ ପୁଷ୍ଟିର ଉପାଦାନ । [ ନଗର ।

ଆହାର-ରାଜପୁତାନାସ୍ଥ ଗୋଟିଏ ପ୍ରାଚୀନ

ଆହାରକ—ବିଂ. ( ଆ + ହୃ + କ.ଅକ ) ସଂଗ୍ରହୀତା, ଭବିଷ୍ୟତ୍‌ପାଇଁ ସଂଗ୍ରହକାରୀ ।

ଆହାରଛଟା—ଗ୍ରା. ବି. ରୋଗବିଶେଷ, ମୂର୍ଚ୍ଛାବାତ, ମୃଗୀବାତ, ଅପସ୍ମାର ।

ଆହାରଗୁଡ଼ିବା-ଗ୍ରା.କ୍ରି.ରୋଗ ବା ବାର୍ଦ୍ଧକ୍ୟ ହେତୁ ବା ଅରୁଚିବଶତଃ ଖାଇବା ତ୍ୟାଗକରିବା ।

ଆହାରଢୋକିବା—ଗ୍ରା. ବି. ଫୁଲ ଉଡ଼ାଇବା ପରେ ଧାନ ମଧ୍ୟରେ ଧଳାଶିଷ ଜାତ ହେବା ।

ଆହାରନାଳୀ—ବି. ଯେଉଁ ନାଳବାଟେ ମୁଖଗହ୍ୱରରୁ ପେଟକୁ ଖାଦ୍ୟ ଯାଏ ।

ଆହାରପାକ-ପୁଂ.ବି. (ଆହାର + ପାକ) ଅନ୍ନାଦିର ରସାଦିରୂପେ ପରିମାଣରୂପ-ପାକବିଶେଷ, ହଜମ ହେବା ।

ଆହାରବିହାର—ବି.(ସହଚର) ଆହାରାଦି ଯାବତୀୟ ଦୈନିକ କାର୍ଯ୍ୟ, ପାନାହାରାଦି

ଆହାରଶୁଦ୍ଧି—ସ୍ତ୍ରୀ.ବି. (୬ତତ୍) ଖାଦ୍ୟ ସମ୍ବନ୍ଧେ ପବିତ୍ରତା, ଭକ୍ଷ୍ୟ ଅନ୍ନାଦିର ସୂକ୍ଷ୍ମରୂପେ ଶୋଧନ, ପରିଷ୍କୃତ ଆହାର, ଶବ୍ଦାଦିବିଷୟକ ଜ୍ଞାନ ଶୁଦ୍ଧି ।

ଆହାରସମ୍ଭବ-ପୁଂ. ବି. (ବ.ବ୍ରୀ)ଆହାରପାକଜ ଦେହସ୍ଥ ରସ ଧାତୁ,ରସ, ରକ୍ତ, ଚର୍ବି ପ୍ରଭୃତି ।

ଆହାରାନ୍ୱେଷୀ—ପୁଂ.ବିଂ.ଯେ ଖାଦ୍ୟଦ୍ରବ୍ୟ ଖୋଜୁଥାଏ, (ସ୍ତ୍ରୀ) ଆହାରାନ୍ୱେଷିଣୀ ।

ଆହାରାଭାବ—ବି. (୬ତତ୍) ଖାଦ୍ୟାଭାବ, ଅନାହାର ।

ଆହାରାର୍ଥୀ—ପୁଂ. ବିଂ. (୬ତତ୍)ଭୋଜନ ପ୍ରାର୍ଥୀ, ଭୋଜନାଭିଳାଷୀ, ଜୀବିକାର୍ଥୀ, (ସ୍ତ୍ରୀ) ଆହାରାର୍ଥିନୀ ।

ଆହାରୀ—ପୁଂ.ବିଂ. (ଆହାର + ଇନ୍)ଯେ ଖାଏ, ପେଟୁ, ଉଦରମ୍ଭରି, ଯେ ବେଶି ଖାଇପାରେ ।

ଆହାରୀୟ—ବିଂ.(ଆହାର + ଈୟ) ଖାଦ୍ୟସମ୍ବନ୍ଧୀୟ, ଖାଦ୍ୟର ଯୋଗ୍ୟ ।

ଆହାର୍ଯ୍ୟ-ବିଂ. (ଆ + ହୃ + ର୍ଯ୍ୟ.ଯ)ସଂଗ୍ରହଯୋଗ୍ୟ, ଭୋଜ୍ୟ, ଯତ୍ନସାଧ୍ୟ, ଅସ୍ୱାଭାବିକ, ଆରୋପିତ, ଆହରଣୀୟ ବସ୍ତୁପ୍ରଭୃତି, ବ୍ୟାପ୍ୟଦ୍ରବ୍ୟ, କୃତ୍ରିମ, ଲୌକିକାଗ୍ନି, କଳ୍ପିତ ଅପସାରଣୀୟ,ନୈମିତ୍ତିକ, ଭକ୍ଷ୍ୟ, ଖାଦ୍ୟ, ନାଟ୍ୟାଦିର ଅଭିନୟବିଶେଷ ।

ଆହାର୍ଯ୍ୟଶୋଭା—ସ୍ତ୍ରୀ. ବି. (କ.ଧା) କୃତ୍ରିମ ସୌନ୍ଦର୍ଯ୍ୟ, ବେଶଭୂଷାଦିଦ୍ୱାରା ଯେଉଁ ଶୋଭା ସମ୍ପାଦନ କରାଯାଏ ।

ଆହାର୍ଯ୍ୟସାମଗ୍ରୀ—ବି.(କ.ଧା)ଖାଦ୍ୟବସ୍ତୁ ।

ଆହାଲାଦ—ଗ୍ରା. ବି. (ସଂ—ଆହ୍ଲାଦ) ହର୍ଷ, ଆନନ୍ଦ, ଆମୋଦ, ସ୍ନେହ ।

ଆହାଲାଦକରିବା—ଗ୍ରା.କ୍ରି. ସ୍ନେହକରିବା, କୋମଳ ବ୍ୟବହାର କରିବା ।

ଆହାବ—ପୁଂ. ବି. ( ଆ + ହ୍ୱେ + ଅ ) ଦ୍ରୋଣ କଳସ, ଡଙ୍ଗା ଆକୃତିର ଜଳପାତ୍ରବିଶେଷ, ନିପାନ, ଯୁଦ୍ଧ, ଆହ୍ୱାନ, ଅଗ୍ନି, ଆହ୍ୱାନସାଧନମନ୍ତ୍ରବିଶେଷ,କୂପନିକଟସ୍ଥ କୁଣ୍ଡ, ଗବାଦି ପଶୁର ଜଳପାନାର୍ଥ କୂପସମୀପବର୍ତ୍ତୀ କ୍ଷୁଦ୍ର ଜଳାଶୟ, କୁଣ୍ଡ ।

ଆହିଂସ—ପୁଂ.ସ୍ତ୍ରୀ.ଅହିଂସକର (ପୁତ୍ର ବା କନ୍ୟାରୂପ ଅପତ୍ୟ) ଅହିଂସାୟନ ।

ଆହୁକ—ପୁଂ.ବି.କେଉଁଗ୍ରନ୍ଥ,ପାଣିନି ମୁନି, ସାପୁଆ । [ଦ୍ରବ୍ୟାଦି ।

ଆହୁଚ୍ଛତ୍ର—ବିଂ. ଅହିଚ୍ଛତ୍ର ଦେଶଜାତ

ଆହୁଣ୍ଡିକ—ପୁଂ. ବି. ନିଷାଦ ଔରସରେ ବୈଦେହୀଠାରୁ ଜାତ ଅନ୍ତ୍ୟଜ (ସଙ୍କର) ନୀଚଜାତି, କାରାଗାର ପ୍ରଭୃତିରେ ବାହ୍ୟ ସଂରକ୍ଷଣ ଏମାନଙ୍କର ବୃତ୍ତି ।

ଆହିତ—ତ୍ରି. ବିଂ. (ଆ+ଧା+ମିଂ.ତ) ନ୍ୟସ୍ତ, କ୍ଷିପ୍ତ, ସ୍ଥାପିତ, ରକ୍ଷିତ, ଅର୍ପିତ, କୃତ, ଜନିତ, ନିକ୍ଷିପ୍ତ, ସମ୍ପାଦିତ, ପ୍ରତିଷ୍ଠିତ, ସଂହିତ, ଜାତ, ଆରୋପିତ, ଆସକ୍ତ, ଅନୁଭୂତ ।

ଆହିତଲକ୍ଷଣ—ପୁଂ.ବିଂ. (ବ.ବ୍ରୀ)ନ୍ୟସ୍ତଚିହ୍ନ, ଗୁଣାଦିଦ୍ୱାରା ବିଖ୍ୟାତ, (ସ୍ତ୍ରୀ) ଆହିତଲକ୍ଷଣା ।

ଆହିତାଗ୍ନି—ପୁଂ. ବି. (ଆହିତ+ଅଗ୍ନି) ସାଗ୍ନିକ, ସଂସ୍କାରାଗ୍ନିଯୁକ୍ତ, ସାଗ୍ନିକ ବ୍ରାହ୍ମଣ, ଅଗ୍ନିହୋତ୍ରୀ ବ୍ରାହ୍ମଣ ।

ଆହିତାଗ୍ନିଗଣ—ପାଣିନ୍ୟୁକ୍ତ ପରନିପାତ ଶବ୍ଦସମୂହ, ଅହିତାଗ୍ନି, ଜାତପୁତ୍ର, ମଦ୍ୟପୀତ ଇତ୍ୟାଦି ।

ଆହିତି—ସ୍ତ୍ରୀ. (ଆ+ଧା+ତି) ସ୍ଥାପନ, ଆଧାନ,ମନ୍ତ୍ରଦ୍ୱାରା ସଂସ୍କାରରୂପ ଆହିତି ।

ଆହିତୁଣ୍ଡିକ—ପୁଂ.ବି.(ଅହିତୁଣ୍ଡ+ଇକ) ବ୍ୟାଳଗ୍ରାହୀ,ସାପୁଆ,ଯେ ସର୍ପ ଖେଳାଏ, କେଳା ।

ଆହିମତ—ତ୍ରି. ବିଂ. ସର୍ପବିଶିଷ୍ଟ ଦେଶର ନିକଟେ ଉତ୍ପନ୍ନ ଦ୍ରବ୍ୟାଦି ।

ଆହିର, ଆହୀର—ଗ୍ରା. ବି. ଗୋପଜାତିବିଶେଷ, ଆଭୀର, ଗଉଡ଼-ଜାତି, ଆଭୀର-ଗଉଡ଼ ।

ଆହୁକ—ପୁଂ. ବି. ଯଦୁବଂଶୀୟ କ୍ଷତ୍ରିୟବିଶେଷ, କଂସର ପିତା ।

ଆହୁତ—ତ୍ରି. ବିଂ. (ଆ+ହୁ+ମିଂ.ତ) ସମ୍ୟକ୍‌ରୂପେ ହୁତ, ଯହିଁରେ ବା ଯାହା ଆହୁତି ଦିଆହୋଇଅଛି, ମନ୍ତ୍ରପାଠପୂର୍ବକ ହୋମ-ଅଗ୍ନିରେ ନିକ୍ଷିପ୍ତ (କ୍ଳୀ-ବିଂ.) (ଆ+ହୁ+କ୍ତ, ଢ)ପଞ୍ଚଯଜ୍ଞାନ୍ତର୍ଗତ ମନୁଷ୍ୟଯଜ୍ଞ ବା ଭୂତଯଜ୍ଞ,ନୃଯଜ୍ଞ, ଅତିଥିପୂଜନ, ସମ୍ମୁଖେ ହୁତ ଦେବାଦି ।

ଆହୁତି—ସ୍ତ୍ରୀ ବି. (ଆ+ହୁ+ତି) ମନ୍ତ୍ର ଦ୍ୱାରା ଦେବୋଦ୍ଦେଶେ ଅଗ୍ନିରେ ଘୃତାଦିର ନିକ୍ଷେପ, ଅଗ୍ନି, ହୋମଦ୍ରବ୍ୟ, ହବନୀୟ ଘୃତାଦି ।

ଆହୁତିଦେବା—ଗ୍ରା.କ୍ରି. ଘୃତାଦି ହୋମାଗ୍ନିରେ ନିକ୍ଷେପ କରିବା, (ଲକ୍ଷଣାର୍ଥ) ବିସର୍ଜନ କରିବା, ଜଳାଞ୍ଜଳି ଦେବା, ଉତ୍ତେଜିତ କରିବା ।

ଆହୁରି—ଗ୍ରା.(ଅବ୍ୟ)ପୁଣି, ଆଉ,ଅଦ୍ୟାପି, (ବିଂ) ଆଉ, ଅଧିକ ।

ଆହୁଲା—ଗ୍ରା. ବି. କ୍ଷେପଣୀ, କାତ, ନୌଚାଳନର ଦଣ୍ଡ, କେଲୁଆର ।

ଆହୁଲାଇବା—ଗ୍ରା.କ୍ରି. ଆହୁଲା ପକାଇବା, ଆହୁଲାଦ୍ୱାରା ନୌକା ଚଳାଇବା, (କୁଲାପ୍ରଭୃତିଦ୍ୱାରା) ବାୟୁ ସଞ୍ଚାଳିତ କରିବା ।

ଆହୁଲ୍ୟ—କ୍ଳୀ. ବି. କାର୍ଣ୍ଣାଟାଦିଦେଶେ ତରବଟ ନାମକ କାଞ୍ଚନବର୍ଣ୍ଣ ପୁଷ୍ପବିଶେଷ, ଶିଲ୍ଧ୍ରୀ ଫଳ, ଲଣ୍ଡାବୃକ୍ଷ ।

ଆହୂବ—ବିଂ. (ଆ+ହ୍ୱେ+ଅ) ଆହ୍ୱାନର ଯୋଗ୍ୟ, ଡାକିବାର ଯୋଗ୍ୟ ।

ଆହୂ—ତ୍ରି. ବିଂ. (ଆ+ହ୍ୱେ+କ୍ୱିପ୍) ଆହ୍ୱାୟକ, ଯେ ଡାକେ, ଆହୂୟମାନ, ଯାହାକୁ ଡକାଯାଏ ।

ଆହୂତ ବିଂ. (ଆ+ହ୍ୱେ+ମିଂ.ତ)କୃତାହ୍ୱାନ, ଯାହାକୁ ଡକାଯାଇଅଛି, ଆମନ୍ତ୍ରିତ, ଅଭିହିତ, ସଙ୍କେତ, ଆଭୂତପ୍ରଳୟପର୍ଯ୍ୟନ୍ତ, ପୃଥିବୀର ପ୍ରଳୟପର୍ଯ୍ୟନ୍ତ, ନାମକୃତବ୍ୟପଦେଶ, ବର୍ଣ୍ଣ ।

ଆହୂତପ୍ରପଳାୟୀ—ପୁଂ. ବିଂ. (କ.ଧା) ସୈନବାଦୀବିଶେଷ, ଡାକିଲେ ମଧ ଯେ ପଳାଇଯାଏ, ବିଚାରାଳୟରେ ଆହ୍ୱାନପ୍ରାପ୍ତ ହୋଇ ପରେ ଯେ ପଳାୟନ କରେ, (ପ୍ରତିବାଦୀ, ସାକ୍ଷୀ) ।

ଆହୂତସଂପ୍ଳବ—ପୁଂ. ବି. ପ୍ରଳୟକାଳ, ପୃଥିବୀ ପର୍ଯ୍ୟନ୍ତ ଜଳରେ ଭାସିଯିବା ।

ଆହୂତି—ସ୍ତ୍ରୀ.ବି.(ଆ+ହ୍ୱେ+ତି)ଆହ୍ୱାନ କରିବା, ଡାକିବା, ହୋମସମୟରେ ଘୃତ, ସମିଧ, ତିଳପ୍ରଭୃତିକୁ ଆହୂତି ଦିଆଯାଏ ।

ଆହୂୟ-ଅବ୍ୟ, (ଆ+ହ୍ୱେ+ଯ)ଆହ୍ୱାନକରି, ଡାକି ।

ଆହୃତ—ତ୍ରି. ବିଂ. (ଆ+ହୃ+ମିଂ.ତ) ଆନୀତ,ଯାହା ଅପହରଣ କରାହୋଇଅଛି, ଆସ୍ୱୋଜିତ, ସଞ୍ଚିତ, ସଂକଳିତ, ନୀତ,ଆକୃଷ୍ଟ, ଅପହୃତ,ଭୁକ୍ତ, ଯୋଜିତ, ଦୃଷ୍ଟୀକୃତ ।

ଆହୃତି—ସ୍ତ୍ରୀ. ବି. (ଆ+ହୃ+ତି)ଆହରଣ, ଆନୟନ ।

ଆହୃତ୍ୟ—ଅବ୍ୟ. (ଆ+ହୃ+ଯ) ଆହରଣ କରି, ଆଣି ।

ଆହେୟ—ତ୍ରି.ବିଂ. (ଅହି+ଏୟ) ସର୍ପସମ୍ବନ୍ଧୀୟ, ବିଷ, ଚର୍ମ, ଅସ୍ଥିପ୍ରଭୃତି ।

ଆହେରିୟା—(ରଜପୁତ) କ୍ରୀଡ଼ାକାରୀ, ମୃଗୟାକାରୀ, ମୃଗୟାକ୍ରୀଡ଼ା ।

ଆହୋ—(ଅବ୍ୟ) ପ୍ରଶ୍ନ, ବିକଳ୍ପ, ବିଚାର, ଯଦି, ସନ୍ଦେହାର୍ଥକ,ସମ୍ବୋଧନ ।

ଆହୋପୁରୁଷିକା—ସ୍ତ୍ରୀ. ବି. ଆତ୍ମଶ୍ଳାଘା, ନିଜର ବାହାଦୁରୀ ପ୍ରକାଶ,ଆତ୍ମପ୍ରଶଂସା, ଆତ୍ମବଡ଼ିମା । [ସଙ୍ଗତ ।

ଆହୋଯାଲ ଯା.ବି. ଅବସ୍ଥା,ଦଶା,ଯୋତ୍ର,

ଆହୋସ୍ୱିତ୍—(ଅବ୍ୟ) ବିକଳ୍ପ, ପ୍ରଶ୍ନ, ଅଥବା, କିମ୍ବା, ଯଦି ।

ଆହ୍ନ—କ୍ଳୀ.ବି. (ଅହନ୍+ଅ)ଦିନସମୂହ, ଯାହା ଦିନର କର୍ତ୍ତବ୍ୟ,ସ୍ନାନଭୋଜନାଦି, (ବିଂ) ଦୈନିକ ।

ଆହ୍ନିକ—ତ୍ରି.ବିଂ. (ଅହନ୍+ଇକ)ଦିନକୃତ୍ୟ, ଦୈନିକ, ପ୍ରତିଦିନ ଘଟୁଥିବା, ଦିନରେ ଉତ୍ପନ୍ନ(କ୍ଳୀ.ବି, ଦିନର କର୍ତ୍ତବ୍ୟ କାର୍ଯ୍ୟ, ଏକଦିନ, ବେତନାଦିଦ୍ୱାରା କ୍ରୀତ ଦାସାଦି, ପ୍ରତିଦିନର କର୍ତ୍ତବ୍ୟ ପାଠ, ସନ୍ଧ୍ୟାବନ୍ଦନାଦି କାର୍ଯ୍ୟ ।

ଆହ୍ନିକଗତି ସ୍ତ୍ରୀ.ବି.(କ.ଧା (ଆହ୍ନିକ+ଗତି) ପୃଥିବୀର ଦୈନିକ ଗତି, ଏକ ଅହୋରାତ୍ର ମଧ୍ୟରେ ପୃଥିବୀର ସ୍ୱୀୟ

ମେରୁଦଣ୍ଡ ଚତୁର୍ଦ୍ଦିଗରେ ଏକବାର ଆବର୍ତ୍ତନ ।
ଆହ୍ଲାଦ—ପୁଂ.ବି. (ଆ + ହ୍ଲାଦ + ଭା ଅ) ଆନନ୍ଦ, ହର୍ଷ, ଆମୋଦ, ତୁଷ୍ଟି ।
ଆହ୍ଲାଦକ—ତ୍ରି. ବିଂ. ( ଆ + ହ୍ଲାଦ + କ,ଅକ ) ଆହ୍ଲାଦଜନକ, ଆନନ୍ଦକର, ଆନନ୍ଦଯିତା, ଆନନ୍ଦଦାୟକ ।
ଆହ୍ଲାଦନ—କ୍ଲୀ.ବି.(ଆ + ହ୍ଲାଦ୍ + ଭା. ଅନ) ଆନନ୍ଦସମ୍ପାଦନ, ଆନନ୍ଦଦାୟକ ବସ୍ତୁ, (ବିଂ) ଆନନ୍ଦସମ୍ପାଦକ, ପ୍ରୀତି, ସନ୍ତୋଷ ।
ଆହ୍ଲାଦିତ—ତ୍ରି ବିଂ.(ଆ + ହ୍ଲାଦ୍ + ଇ, ତ) ଆନନ୍ଦଯୁକ୍ତ, ଜାତାନନ୍ଦ, ଯାହାର ଆନନ୍ଦ ଜାତ ହୋଇଅଛି (ସ୍ତ୍ରୀ) ଆହ୍ଲାଦିତା ।
ଆହ୍ଲାଦିନୀ—ସ୍ତ୍ରୀ.ବି. (ଆହ୍ଲାଦ + ଇନ୍ + ଈ) ବିଦ୍ୟୁତ୍, ବିଜୁଳୀ (ବିଂ) ଆମୋଦଯୁକ୍ତା, ହର୍ଷଯୁକ୍ତା ।
ଆହ୍ଲାଦୀ—ପୁଂ.ବି (ଆ + ହ୍ଲାଦ + ଇନ୍) ଆନନ୍ଦଯୁକ୍ତ, ଆନନ୍ଦକାରୀ, ସୁଖକର, ସର୍ବଦା ଆମୋଦ ପ୍ରମୋଦ କରିବା ଯାହାର ସ୍ୱଭାବ, (ସ୍ତ୍ରୀ) ଆହ୍ଲାଦିନୀ ।
ଆହ୍ୱ—ବିଂ.(ଆ + ହ୍ୱେ + ଡ଼)ଆହ୍ୱାନକାରୀ
ଆହ୍ୱୟ—ପୁଂ. ବିଂ. (ଆହ୍ୱେ + ଣ, ଅ) ସଂଜ୍ଞା, ନାମ, ଆଖ୍ୟା, ମେଷାଦିଦ୍ୱାରା ପଣପୂର୍ବକ କ୍ରୀଡ଼ା ।
ଆହ୍ୱୟନ—କ୍ଲୀ.ବି.(ଆ + ହ୍ୱେ୍ + ଅନ) ନାମ, ନାମର ଆଦେଶସାଧନ ଶବ୍ଦବିଶେଷ, (ବିଂ) ଆହ୍ୱାନକାରୀ ।
ଆହ୍ୱୟିତବ୍ୟ—ତ୍ରି ବିଂ. (ଆ + ହ୍ୱେ + ଣିଚ୍ + ମ୍,ତବ୍ୟ, ଆହ୍ୱୟନୀୟ,ଆହ୍ୱାରଣୀୟ, ଯାହାକୁ ଡାକିବାକୁ ହୁଏ ।
ଆହ୍ୱର—ତ୍ରି.ବିଂ. (ଆ + ହ୍ୱୃ + ଅ)କୁଟିଳ, ଉଶୀନର ଦେଶୋତ୍ପନ୍ନ, କନ୍ଦମୀୟ ।
ଆହ୍ୱା—ସ୍ତ୍ରୀ.ବି. (ଆ + ହ୍ୱେ + ଅ + ଆ) ଆହ୍ୱାନ, ସଂଜ୍ଞା, ନାମ, ଆଖ୍ୟା ।
ଆହ୍ୱାନ—କ୍ଲୀ. ବି (ଆ + ହ୍ୱେ + ଭା + ଅନ) ସମ୍ବୋଧନ, ନିମନ୍ତ୍ରଣ, ଡାକରା, ଆହ୍ୱାନ, ଡାକିବା, ସଂଜ୍ଞା, ନାମ,ଆଜ୍ଞାସାଧନ, ରାଜକୀୟ ପତ୍ର, ଆବାହନ, ଡାକିବାନାମା ।
ଆହ୍ୱାୟ—ପୁଂ. ବି. (ଆ + ହ୍ୱେ + ଅ) ଆହ୍ୱାନ, ଡାକିବା, ଡାକରା, ନାମ ।
ଆହ୍ୱାୟକ—ତ୍ରି. ବିଂ. (ଆ + ହ୍ୱେ + କ, ଅକ ) ଆହ୍ୱାନକାରକ, ଯେ ଆହ୍ୱାନ କରେ (ପୁଂ.ବି.)ଦୂତ(ସ୍ତ୍ରୀ) ଆହ୍ୱାୟିକା ।
ଆହ୍ୱାୟିତବ୍ୟ—ତ୍ରି. ବିଂ. (ଆ + ହ୍ୱେ + ଣିଚ୍ + ମ୍,ତବ୍ୟ)ଡକାଇବାର ଯୋଗ୍ୟ ।
ଆହ୍ୱାରକ-ବିଂ.(ଆ + ହ୍ୱୃ + ଅକ)କୁଟିଳ ।
ଆହ୍ୱୃତ—ସ୍ତ୍ରୀ. ବି. ( ଆ + ହ୍ୱୃ + ତ ) କୌଟିଲ୍ୟ, କୁଟିଳତା, ରାଜବିଶେଷ ।
ଆହ୍ମଦ-ଜଣେ ବିଖ୍ୟାତ ମୁସଲମାନପଣ୍ଡିତ ।
ଆହ୍ମଦକବୀର—ଜଣେ ମୁସଲମାନ ଫକୀର ।
ଆହ୍ମଦଖାଁବଙ୍ଗଶ—ଫରକ୍କାବାଦର ଜଣେ ନବାବ ।
ଆହ୍ମଦଖାଁସୁର—ଏ ସିକନ୍ଦରଶାସୁର ଉପାଧି ଧାରଣ କରି ପଞ୍ଜାବର ରାଜା ହୋଇଥିଲେ ଓ କିଛୁଦିନ ଦିଲ୍ଲୀ ସିଂହାସନ ଅଧିକାର କରିଥିଲେ ।
ଆହ୍ମଦଗଡ଼—ବୁଲନ୍ଦ ସହର ଅନ୍ତର୍ଗତ ଗୋଟିଏ ଗ୍ରାମ ।
ଆହ୍ମଦନଗର—ମହାରାଷ୍ଟ୍ର ପ୍ରଦେଶାନ୍ତର୍ଗତ ଗୋଟିଏ ଜିଲା, ନଗରବିଶେଷ ।
ଆହ୍ମଦନିଜାମଶାହବହ୍ରି— ଦକ୍ଷିଣାପଥର ନିଜାମଶାହି ବଂଶର ସ୍ଥାପୟିତା ଏବଂ ଜଣେ ମହାଯୋଦ୍ଧା ।
ଆହ୍ମଦଶାହ-୧ମ ଗୁଜରାଟର ଦ୍ୱିତୀୟରାଜା ।
ଆହ୍ମଦଶାହଆବଦାଲୀ—ଜଣେ ବିଖ୍ୟାତ ଆଫଗାନ ବୀର ଓ କାନ୍ଦାହାରର ରାଜା, ଏ ମରହଟ୍ଟାମାନଙ୍କ ସଙ୍ଗେ ପାନିପଥ ଯୁଦ୍ଧ କରି ଜୟୀ ହୋଇଥିଲେ ।
ଆହ୍ମଦଶାହବଲିବାହ୍ମଣୀ—ଦକ୍ଷିଣାପଥର ଜଣେ ସୁଲତାନ, ଫିରୋଜସାହର ଭାଇ ।
ଆହ୍ମଦାବାଦ—ଗୁଜରାଟ ପ୍ରଦେଶର ଗୋଟିଏ ପ୍ରଧାନ ବାଣିଜ୍ୟ ସ୍ଥାନ,ପ୍ରଧାନ ନଗର ଓ ରାଜଧାନୀ ।
ଆହ୍ମଦାବାଦନଗର—ଗୁଜରାଟ ମଧ୍ୟରେ ସର୍ବଶ୍ରେଷ୍ଠ ନଗର, ଏଠାରେ ସୁନାରୁପାର ଜରି ଓ କାଗଜ ପ୍ରସ୍ତୁତ ହୁଏ, ଏହା ପଶମ ଓ ତୁଳାପାଇଁ ପ୍ରସିଦ୍ଧ ।

# ଇ

ଇ-କାର – ତୃତୀୟ ସ୍ୱରବର୍ଣ୍ଣ ଏହାର ଉଚ୍ଚାରଣ ସ୍ଥାନ ତାଳୁ, ଇକାର, ଇ-ମାତ୍ରା ‘ି’ ।
ଇ—ପୁଂ.ବି. (ଅ + ଇ + କ୍ୱିପ୍) କାମଦେବ,କନ୍ଦର୍ପ,ରୁକ୍ମିଣୀଙ୍କର ଗର୍ଭଜାତ ।
ଇ—ଅବ୍ୟ.ପାଞ୍ଚଜନ୍ୟ, ମଖାଙ୍କୁର,ଖେଦ, ମନସ୍ତାପ,ପ୍ରକୋପୋକ୍ତି, ଦୟା, ନିଷ୍ଠୁର ବାକ୍ୟ, ନିରାକରଣ, ପ୍ରତ୍ୟକ୍ଷ, ସନ୍ନିଧି, ଦୁଃଖଭାବନ, କ୍ରୋଧ, ବିବୋଧ, ବିସ୍ମୟ, ସମ୍ବୋଧନ, ମାଧବ, ବିଦ୍ୟା, ଦକ୍ଷିଣଚକ୍ଷୁ, ଗନ୍ଧର୍ବ ।
ଇ—(ଧାତୁ) ଗମନ କରିବା ।
ଇଅଁଲା—ଗ୍ରା. ବି. ( ସଂ-ଇଡ଼ା ) (ଇଡ଼ା ଦେଖ) ।
ଇଆଇଆର—( ଯା. ) ଇଷ୍ଟ-ଇଣ୍ଡିଆ ରେଲ୍‌ଓ୍ୱେ ।
ଇଆଡ଼—ଗ୍ରା. ବି. ଏହିଆଡ଼, ଏହି ଅଞ୍ଚଳ, ଏହି ସ୍ଥାନ ।
ଇଆଡ଼କା(ର)—ଗ୍ରା. ବିଂ. ଏହି ସ୍ଥାନର, ଏହି ଅଞ୍ଚଳର ।
ଇଆଡ଼କୁ—ଗ୍ରା. ଅବ୍ୟ. ଏଆଡ଼କୁ, ଏହିଆଡ଼କୁ ।
ଇଆଡ଼ୁ – ଗ୍ରା. (ସର୍ବ) ଏଠାରୁ, ଏ ପକ୍ଷରୁ, ଏ ତରଫରୁ ।
ଇଆଡ଼ୁସିଆଡ଼ୁ— ଗ୍ରା. ଅବ୍ୟ. ଏଣୁତେଣୁ, ଅସମ୍ବନ୍ଧଭାବରେ, ଗୋଲମାଲଆରୂପେ ।
ଇଆଦ୍—(ଯା) ବି. ସ୍ମରଣ, ମନେ ପକାଇବା ।
ଇଆର—ଯା. ବି. (ସଂ-ୟାର) ଉପପତି, ବିଟପୁରୁଷ, ଜାର, ମଉଜୀ ସାଙ୍ଗ ।

ମେରୁଦଣ୍ଡ ଚତୁର୍ଦ୍ଦିଗରେ ଏକବାର ଆବର୍ତ୍ତନ ।

ଆହ୍ଲାଦ—ପୁଂ.ବ. (ଆ + ହ୍ଲାଦ + ଭା ଅ) ଆନନ୍ଦ, ହର୍ଷ, ଆମୋଦ, ତୁଷ୍ଟି ।

ଆହ୍ଲାଦକ—ତ୍ରି. ବିଂ. ( ଆ + ହ୍ଲାଦ + କ,ଅକ ) ଆହ୍ଲାଦଜନକ, ଆନନ୍ଦକର, ଆନନ୍ଦସ୍ପିତା, ଆନନ୍ଦଦାୟକ ।

ଆହ୍ଲାଦନ—କ୍ଲୀ.ବ.(ଆ + ହ୍ଲାଦ୍ + ଭା. ଅନ) ଆନନ୍ଦସମ୍ପାଦନ, ଆନନ୍ଦଦାୟକ ବସ୍ତୁ, (ବିଂ) ଆନନ୍ଦସମ୍ପାଦକ, ପ୍ରୀତ, ସନ୍ତୋଷ ।

ଆହ୍ଲାଦତ—ତ୍ରି ବିଂ.(ଆ + ହ୍ଲାଦ୍ + ଇ, ତ) ଆନନ୍ଦଯୁକ୍ତ, ଜାତାନନ୍ଦ, ଯାହାର ଆନନ୍ଦ ଜାତ ହୋଇଅଛି (ସ୍ତ୍ରୀ) ଆହ୍ଲାଦତା ।

ଆହ୍ଲାଦନୀ—ସ୍ତ୍ରୀ.ବ. (ଆହ୍ଲାଦ + ଇନ୍ + ଈ) ବିଦ୍ୟୁତ୍, ବିଜୁଳୀ (ବିଂ) ଆମୋଦଯୁକ୍ତା, ହର୍ଷଯୁକ୍ତା ।

ଆହ୍ଲାଦୀ—ପୁଂ:ବ (ଆ + ହ୍ଲାଦ + ଇନ୍) ଆନନ୍ଦଯୁକ୍ତ, ଆନନ୍ଦକାରୀ, ସୁଖକର, ସର୍ବଦା ଆମୋଦ ପ୍ରମୋଦ କରିବା ଯାହାର ସ୍ୱଭାବ, (ସ୍ତ୍ରୀ) ଆହ୍ଲାଦନୀ ।

ଆହ୍ୱ—ବିଂ.(ଆ + ହ୍ୱେ + ଡ଼)ଆହ୍ୱାନକାରି

ଆହ୍ୱୟ—ପୁଂ. ବିଂ. (ଆହ୍ୱେ + ଣ, ଅ) ସଂଜ୍ଞା, ନାମ, ଆଖ୍ୟା, ମେଢାଦିଦ୍ୱାରା ପଣପୂର୍ବକ କ୍ରୀଡ଼ା ।

ଆହ୍ୱୟନ—କ୍ଲୀ.ବ.(ଆ + ହ୍ୱୟ୍ + ଅନ) ନାମ, ନାମର ଆଦେଶସାଧନ ଶବ୍ଦବିଶେଷ, (ବିଂ) ଆହ୍ୱାନକାରୀ ।

ଆହ୍ୱୟିତବ୍ୟ—ତ୍ରି ବିଂ. (ଆ + ହ୍ୱେ + ଣିଚ୍ + ମିଁ,ତବ୍ୟ, ଆହ୍ୱୟନୀୟ,ଆକାରଣୀୟ, ଯାହାକୁ ଡାକିବାକୁ ହୁଏ ।

ଆହ୍ୱର—ତ୍ରି.ବିଂ. (ଆ + ହ୍ୱୃ + ଅ)କୁଟିଳ, ଉଶୀନର ଦେଶୋତ୍ପନ୍ନ, ନିନ୍ଦନୀୟ ।

ଆହ୍ୱା—ସ୍ତ୍ରୀ.ବ. (ଆ + ହ୍ୱେ + ଅ + ଆ) ଆହ୍ୱାନ, ସଂଜ୍ଞା, ନାମ, ଆଖ୍ୟା ।

ଆହ୍ୱାନ—କ୍ଲୀ. ବ. (ଆ + ହ୍ୱେ + ଭା + ଅନ) ସମ୍ବୋଧନ, ନିମନ୍ତ୍ରଣ, ଡାକରା, ଆହ୍ୱାନ, ଡାକିବା, ସଂଜ୍ଞା, ନାମ,ଆଜ୍ଞାସାଧନ, ରାଜକୀୟ ପତ୍ର, ଆବାହନ, ତଲବନାମା ।

ଆହ୍ୱାୟ—ପୁଂ. ବ. (ଆ + ହ୍ୱେ + ଅ) ଆହ୍ୱାନ, ଡାକିବା, ଡାକରା, ନାମ ।

ଆହ୍ୱାୟକ—ତ୍ରି. ବିଂ. (ଆ + ହ୍ୱେ + କ, ଅକ ) ଆହ୍ୱାନକାରକ, ଯେ ଆହ୍ୱାନ କରେ (ପୁଂ.ବ.)ଦୂତ(ସ୍ତ୍ରୀ) ଆହ୍ୱାୟିକା ।

ଆହ୍ୱାୟିତବ୍ୟ—ତ୍ରି. ବିଂ. (ଆ + ହ୍ୱେ + ଣିଚ୍ + ମିଁ,ତବ୍ୟ)ଡକାଇବାର ଯୋଗ୍ୟ ।

ଆହ୍ୱାରକ-ବିଂ.(ଆ + ହ୍ବୃ + ଅକ)କୁଟିଳ ।

ଆହ୍ବୃତ—ସ୍ତ୍ରୀ. ବ. ( ଆ + ହ୍ବୃ + ତ ) କୌଟିଲ୍ୟ, କୁଟିଳତା, ରାଜବିଶେଷ ।

ଆହ୍ମଦ-ଜଣେ ବିଖ୍ୟାତ ମୁସଲମାନପଣ୍ଡିତ ।

ଆହ୍ମଦକବୀର—ଜଣେ ମୁସଲମାନ ଫକୀର ।

ଆହ୍ମଦଖାଁବଙ୍ଗଶ—ଫରକ୍କାବାଦର ଜଣେ ନବାବ ।

ଆହ୍ମଦଖାଁସୁର—ଏ ସିକନ୍ଦରଶାସୁର ଉପାଧି ଧାରଣ କରି ପଞ୍ଜାବର ରାଜା ହୋଇଥିଲେ ଓ କିଛୁଦିନ ଦିଲ୍ଲୀ ସିଂହାସନ ଅଧିକାର କରିଥିଲେ ।

ଆହ୍ମଦଗଡ଼—ବୁଲନ୍ଦ ସହର ଅନ୍ତର୍ଗତ ଗୋଟିଏ ଗ୍ରାମ ।

ଆହ୍ମଦନଗର—ମହାରାଷ୍ଟ୍ର ପ୍ରଦେଶାନ୍ତର୍ଗତ ଗୋଟିଏ ଜିଲା, ନଗରବିଶେଷ ।

ଆହ୍ମଦନିଜାମଶାହବହ୍ରି— ଦକ୍ଷିଣାପଥର ନିଜାମଶାହି ବଂଶର ସ୍ଥାପୟିତା ଏବଂ ଜଣେ ମହାଯୋଦ୍ଧା ।

ଆହ୍ମଦଶାହ-୧ମ ଗୁଜରାଟର ଦ୍ୱିତୀୟରାଜା ।

ଆହ୍ମଦଶାହଆବଦାଲୀ—ଜଣେ ବିଖ୍ୟାତ ଆଫଗାନ ବୀର ଓ କାନ୍ଦାହାରର ରାଜା, ଏ ମରହଟ୍ଟାମାନଙ୍କ ସଙ୍ଗେ ପାନିପଥ ଯୁଦ୍ଧ କରି ଜୟୀ ହୋଇଥିଲେ ।

ଆହ୍ମଦଶାହବଲ୍ଲିବାହ୍ମଣୀ— ଦକ୍ଷିଣାପଥର ଜଣେ ସୁଲତାନ, ଫିରୋଜସାହର ଭାଇ ।

ଆହ୍ମଦାବାଦ—ଗୁଜୁରାଟ ପ୍ରଦେଶର ଗୋଟିଏ ପ୍ରଧାନ ବାଣିଜ୍ୟ ସ୍ଥାନ,ପ୍ରଧାନ ନଗର ଓ ରାଜଧାନୀ ।

ଆହ୍ମଦାବାଦନଗର—ଗୁଜରାଟ ମଧ୍ୟରେ ସର୍ବଶ୍ରେଷ୍ଠ ନଗର, ଏଠାରେ ସୁନାରୁପାର ଜରି ଓ କାଗଜ ପ୍ରସ୍ତୁତ ହୁଏ, ଏହା ପଶମ ଓ ତୂଳାପାଇଁ ପ୍ରସିଦ୍ଧ ।

# ଇ

ଇ-କାର – ତୃତୀୟ ସ୍ୱରବର୍ଣ୍ଣ ଏହାର ଉଚ୍ଚାରଣ ସ୍ଥାନ ତାଳୁ, ଇକାର, ଇ-ମାତ୍ରା ‘ି’ ।

ଇ—ପୁଂ.ବ. (ଅ + ଇ + କ୍ୱିପ୍) କାମଦେବ,କନ୍ଦର୍ପ ,ରୁକ୍ମିଣୀଙ୍କର ଗର୍ଭଜାତ ।

ଇ—ଅବ୍ୟ.ପାଞ୍ଚଜନ୍ୟ, ମଣାଙ୍କୁର,ଖେଦ, ମନସ୍ତାପ,ପ୍ରକୋପୋକ୍ତି, ଦୟା, ନିଷ୍ଠୁର ବାକ୍ୟ, ନିରାକରଣ, ପ୍ରତ୍ୟକ୍ଷ, ସନ୍ନିଧି, ଦୁଃଖଭାବନ, କ୍ରୋଧ, ବିବୋଧ, ବିସ୍ମୟ, ସମ୍ବୋଧନ, ମାଧବ, ବିଦ୍ୟା, ଦକ୍ଷିଣଚକ୍ଷୁ, ଗନ୍ଧର୍ବ ।

ଇ—(ଧାତୁ) ଗମନ କରିବା ।

ଇଅଁଲା—ଗ୍ରା. ବି. ( ସଂ-ଇଡ଼ା ) (ଇଡ଼ା ଦେଖ) ।

ଇଆଇଆର୍—( ଯା. ) ଇଷ୍ଟ-ଇଣ୍ଡିଆ ରେଲଓ୍ୱେ ।

ଇଆଡ଼—ଗ୍ରା. ବି. ଏହିଆଡ଼, ଏହି ଅଞ୍ଚଳ, ଏହି ସ୍ଥାନ ।

ଇଆଡ଼କା(ର)—ଗ୍ରା. ବିଂ. ଏହି ସ୍ଥାନର, ଏହି ଅଞ୍ଚଳର ।

ଇଆଡ଼କୁ—ଗ୍ରା. ଅବ୍ୟ. ଏଆଡ଼କୁ, ଏହିଆଡ଼କୁ ।

ଇଆଡ଼ୁ – ଗ୍ରା. (ସର୍ବ) ଏଠାରୁ, ଏ ପକ୍ଷରୁ, ଏ ତରଫରୁ ।

ଇଆଡ଼ୁସିଆଡ଼ୁ— ଗ୍ରା. ଅବ୍ୟ. ଏଣୁତେଣୁ, ଅସମ୍ବନ୍ଧଭାବରେ, ଗୋଲମାଲଆରୂପେ ।

ଇଆଦ୍—(ଯା) ବି. ସ୍ମରଣ, ମନେ ପକାଇବା ।

ଇଆର—ଯା. ବି. (ସଂ-ଯ୍ୱାର) ଉପପତି, ବିଟପୁରୁଷ, ଜାର, ମଉଜୀ ସାଙ୍ଗ ।

ଇଆରକ—(ଯା.) ବି. ବନ୍ଧୁତା, ଦୋସ୍ତି, ଫାଜିଲମି, ପାପଦୋସ୍ତି, ଅବୈଧପ୍ରଣୟ ।

ଇଉକ୍ଲିଡ୍—(ଯା)ବି. ପାଶ୍ଚାତ୍ୟ ଜ୍ୟାମିତି-ଗ୍ରନ୍ଥପ୍ରଣେତା ।

ଇଉନାନୀ—ଯା. ବିଂ. ହାକମୀ ଚିକିତ୍ସା-ସମ୍ବନ୍ଧୀୟ, ହାକମୀ ଚିକିତ୍ସାବିଷୟକ ।

ଇଉରୋପ—(ଯା) ୟୁରୋପ, ମହାଦ୍ୱୀପ, ପଶ୍ଚିମ ମହାଦେଶ ।

ଇଏ—ଗ୍ରା.ସର୍ବ.(ସଂ ଇଦମ୍) ଏହି ଦେଖ ।

ଇଂରାଜ—ଇଙ୍ଗ୍ରେଜ,ଇଂଲଣ୍ଡ ଦେଶଲୋକ, ଇଂଲଣ୍ଡୀୟ ଭାଷା ।

ଇଂରାଜଟୀକା—ଗ୍ରା. ବି. ବସନ୍ତର ମାରାତ୍ମ କତା ନିବାରଣାର୍ଥ ଦିଆଯିବା ଗୋବୀଜ ଟୀକା ।

ଇଂରାଜୀଭାଷା—ଇଂରାଜମାନଙ୍କର ଭାଷା, ଯେଉଁ ଭାଷାରେ ଇଂରାଜମାନେ କଥା-ବାର୍ତ୍ତା କରନ୍ତି ।

ଇଂଲଣ୍ଡ—ଦେଶବିଶେଷ, ଗ୍ରେଟବ୍ରିଟେନର ଦକ୍ଷିଣାଂଶ ।

ଇଃ—ଗ୍ରା.ଅବ୍ୟ. ଖେଦ,କ୍ରୋଧ,ବେଦନା, ଅଧୀର ଓ ବିସ୍ମୟସୂଚକ ଅବ୍ୟୟ ।

ଈଁ—ଗ୍ରା.ଅବ୍ୟ. ପୀଡ଼ା, ଅସୂୟା, ବିସ୍ମୟ, ବିରକ୍ତି, ଦୟା, ନିନ୍ଦାର୍ଥବୋଧକ ଶବ୍ଦ ।

ଇଂକଡ଼—ବି. ଶରକାଠି, ଲତାବିଶେଷ, ଇକ୍ଷୁଜାତୀୟ ଗୁଳ୍ମବିଶେଷ ।

ଇଂଠଲ—(ପ୍ରା-ସମ୍ବ) ବି. ଖନ୍ଦା, ଅନ୍ଧୁଆ, ଅଇନ୍ଦା, ଅସ୍ଥାୟୀ ଲମ୍ବଚୁଲ୍ଲୀ ।

ଇକ—(ଧାତୁ) ସ୍ମରଣ କରିବା ।

ଇକଟ—ପୁଂ. ବି. ( ଇ + କଟ୍ + ଅ ) ବଂଶାଙ୍କୁର, ବାଉଁଶ କରଡ଼, ବାଉଁଶ ଗଜା ।

ଇକ୍କଟ—ପୁଂ. ବି. (ଇତ୍ + କଟ + ଅ) କଟସାଧନତୃଣବିଶେଷ ।

ଇକ୍‌ବାଲ—(ଯା) ବି. ଉଚ୍ଚ ସ୍ଥାନରେ ରବ୍ୟାଦି ଗ୍ରହସ୍ଥିତି, ରାଜଯୋଗ-ବିଶେଷ ।

ଇକାର—ପୁଂ.ବି.(ଇ + କାର)‘ଇ’ବର୍ଣ୍ଣ, ‘ଇ’ ଅକ୍ଷର, ‘ଇ’ ମାତ୍ରା ।

ଇକାରାଦି—ବି. (ବି.ଶ୍ରୀ) ଯେଉଁ ଶବ୍ଦ ବା ବାକ୍ୟମାନଙ୍କର ଆଦ୍ୟରେ ଇ ଥାଏ, ଇରୁ ଆରମ୍ଭ କରି ।

ଇକାରାନ୍ତ—ବି. (ବି.ଶ୍ରୀ) ଯେଉଁ ଶବ୍ଦ-ମାନଙ୍କର ଶେଷରେ ଇ ଥାଏ ।

ଇକ୍ଷାଣିକା—ସ୍ତ୍ରୀ.ବି. ଅନିକ୍ଷ, ଅଣଆଖୁଆ ।

ଇକ୍ଷୁ—ପୁଂ.ବି.(ଇଷ୍ + ସୁ) ମଧୁର ରସ-ଯୁକ୍ତ ସ୍ୱନାମଖ୍ୟାତ ବୃକ୍ଷବିଶେଷ, ଆଖୁ, କୋକିଲାକ୍ଷ ବୃକ୍ଷ, କୋଇଲେଖା, ନଦୀ-ବିଶେଷ ।

ଇକ୍ଷୁକ—ପୁଂ.ବି.(ଇକ୍ଷୁ + କ)ଇକ୍ଷୁପ୍ରକାର । ଏକପ୍ରକାର ଆଖୁ, କନ୍ତାର ଆଖୁ ।

ଇକ୍ଷୁକାଣ୍ଡ—ପୁଂ. ବି. କାଶତଣ୍ଡୀ, ମୁଞ୍ଜ-ଗଛ, କାଉଁଶୀ, ଫୁଲଶର, ଅଣଆଖୁଆ ।

ଇକ୍ଷୁକୁଟ୍ଟକ—ପୁଂ. ବି. (ଇକ୍ଷୁ + କୁଟ୍ଟ + ଅକ)ଗୁଡ଼କାରକ,ଗୌଡ଼ିକ,ଆଖୁଖାଇ ।

ଇକ୍ଷୁଗନ୍ଧ—ପୁଂ.ବି.(ବି.ଶ୍ରୀ)କ୍ଷୁଦ୍ର ଗୋକ୍ଷୁର ବୃକ୍ଷ, ଗୋଖୁରା ଗଛ ।

ଇକ୍ଷୁଗନ୍ଧା—ସ୍ତ୍ରୀ.ବି. (ଇକ୍ଷୁ + ଗନ୍ଧ + ଆ) ଧଳା ଭୂଇଁକଖାରୁ, କୋଇଲେଖା, କାଉଁଶୀ, ଗୋଖୁରା, ଗୋଖୁରା ।

ଇକ୍ଷୁଗନ୍ଧିକା—ସ୍ତ୍ରୀ.ବି. ଭୂମିକୁଷ୍ମାଣ୍ଡ, ଭୂଇଁ କଖାରୁ, କୋଇଲେଖା, କାଉଁଶୀ ।

ଇକ୍ଷୁଜ—ବିଂ. ( ଇକ୍ଷୁ + ଜନ୍ + କ.ଅ ) ଗୁଡ଼ାଦି, ଆଖୁରୁ ଯାହା ଜାତ ହୁଏ ।

ଇକ୍ଷୁତୁଲ୍ୟା—ସ୍ତ୍ରୀ.ବି. (ଇକ୍ଷୁ + ତୁଲ୍ୟ + ଆ) ଧାନ୍ୟବିଶେଷ, ଜନରା, ଅନାଖୁ, କାଶତୃଣ, କାଉଁଶୀ ।

ଇକ୍ଷୁଦଣ୍ଡ—ପୁଂ. ବି. ଆଖୁଗଛ, ଅସଲ ଆଖୁ, ଇକ୍ଷୁଯଷ୍ଟି ପ୍ରଭୃତି ମଧ୍ୟ ବ୍ୟବହୃତ ହୁଏ ।

ଇକ୍ଷୁଦର୍ଭା—ସ୍ତ୍ରୀ.ବି.(ବି.ଶ୍ରୀ)ତୃଣବିଶେଷ ।

ଇକ୍ଷୁଦା—ସ୍ତ୍ରୀ. ବି.(ଇକ୍ଷୁ + ଦା + ଅ + ଆ) ନଦୀବିଶେଷ ।

ଇକ୍ଷୁନେତ୍ର—କ୍ଲୀ. ବି. ଆଖୁଗଣ୍ଠି, ଆଖୁ-ମୂଳ, ଆଖୁଗଣ୍ଠିରେ ଥିବା ଆଖି ।

ଇକ୍ଷୁପତ୍ର—ପୁଂ.ବି. ( ବି.ଶ୍ରୀ ) ବାଜରା-ନାମକ ଶସ୍ୟବିଶେଷ, ଆଖୁର ପତ୍ର, ଜୁଆର ଧାନ୍ୟ ।

ଇକ୍ଷୁପାକ—ପୁଂ.ବି.(ଇକ୍ଷୁ + ପଚ୍ + ଅ) (ଷଷ୍ଠୀତତ୍)ପାକଯୋଗ୍ୟ ରସାଦି, ଗୁଡ଼, କନ୍ଦ, ମିଶ୍ରି ପ୍ରଭୃତି ।

ଇକ୍ଷୁପ୍ର—ପୁଂ.ବି.(ଇକ୍ଷୁ + ପୃ + ଅ)ଶର-ବନ, ଶରବଣ, ତୃଣ, ଶରତୃଣ ।

ଇକ୍ଷୁବାଳିକା—ସ୍ତ୍ରୀ.ବି. ( ବି.ଶ୍ରୀ ) ଇକ୍ଷୁ-ତୁଲ୍ୟକେଶ, କୋଇଲେଖା, କାଉଁଶୀ, ଆଖୁପରି ଯାହାରଅଗରେ ପତ୍ର ଥାଏ ।

ଇକ୍ଷୁଭକ୍ଷିତା—ସ୍ତ୍ରୀ. ବି. ଯେଉଁ ସ୍ତ୍ରୀ ଇକ୍ଷୁ-ଭକ୍ଷଣକରିଅଛି,ଯେଉଁ ସ୍ତ୍ରୀ ଆଖୁ ଖାଇଅଛି

ଇକ୍ଷୁମତୀ—ସ୍ତ୍ରୀ. ବି. (ଇକ୍ଷୁ + ମତ୍ + ଈ) ନଦୀବିଶେଷ, ଆଖୁମୂଳ, ଆଖୁଗଣ୍ଠି ।

ଇକ୍ଷୁମୂଳ—କ୍ଲୀ. ବି (ବି.ଶ୍ରୀ ) ବାଉଁଶଗଛ, (ଷତତ୍.) ଆଖୁଗଣ୍ଠି, ଆଖୁମୂଳ ।

ଇକ୍ଷୁମେହ—ପୁଂ.ବି. ମେହରୋଗବିଶେଷ, ମଧୁମେହ, ବହୁମୂତ୍ରରୋଗ ।

ଇକ୍ଷୁଯନ୍ତ୍ର—କ୍ଲୀ.ବି. (ଇକ୍ଷୁ + ଯନ୍ତ୍ର)ଆଖୁ-ଖାଇ, ଯାହାଦ୍ୱାରା ଆଖୁରୁ ରସ ବାହାର କରାଯାଏ ।

ଇକ୍ଷୁଯୋନି—ପୁଂ. ବି. ଆଖୁବାଡ଼ି, ଆଖୁ-କଆଁରା, କୋଇଲେଖା, କାଶତୃଣ, ଗୋକ୍ଷୁରା ।

ଇକ୍ଷୁର-ପୁଂ.ବି.(ଇକ୍ଷୁ + ର + ଅ)କୋଳିକା ଗଛ, ଗୋଖୁରା, ଆଖୁଗଛ, କୋଇ-ଲେଖା । [ ଲେଖାଗଛ ।

ଇକ୍ଷୁରକ—ପୁଂ.ବି. କୋକିଲାକ୍ଷ,କୋଇ ।

ଇକ୍ଷୁରସ—ପୁଂ.ବି. (ଇକ୍ଷୁ + ରସ)ଆଖୁ-ରସ, ଆଖୁଦୋରୁଅ,(ବି.ଶ୍ରୀ)କାଶତୃଣ ।

ଇକ୍ଷୁରସକ୍ୱାଥ—ପୁଂ. ବି.(ଷ.ତତ୍)ଗୁଡ଼ ।

ଇକ୍ଷୁରସୋଦ—ପୁଂ. ବି. (ବି.ଶ୍ରୀ)ଇକ୍ଷୁ-ସମୁଦ୍ର । [ ବିଦାରୀ ।

ଇକ୍ଷୁବଲ୍ଲୀ—ସ୍ତ୍ରୀ. ବି. କ୍ଷୀରକନ୍ଦ, କ୍ଷୀର-

ଇକ୍ଷୁବାଟୀ—ସ୍ତ୍ରୀ. ବ. ପୁଣ୍ଡ୍ରକ, ଇକ୍ଷୁ।
ଇକ୍ଷୁବାଟିକା ସ୍ତ୍ରୀ.ବ.ପୁଣ୍ଡ୍ରକ,ପୁଣ୍ଡ୍ରକାଖୁ, ପୁଣ୍ଡ୍ରକ-ଆଖୁ।
ଇକ୍ଷୁବିକାର—ପୁଂ. ବ. ଗୁଡ଼ପ୍ରଭୃତ, ମିଷ୍ଟାନ୍ନ, ମିଠେଇ।
ଇକ୍ଷୁବେଷ୍ଟନ—ପୁଂ.ବ. ଭଦ୍ରମୁଞ୍ଜ, ମୁଥା।
ଇକ୍ଷୁଶର—ପୁଂ.ବ.ବ. (ଇକ୍ଷୁ+ଶୃ+ଅ) କାଉଁଶୀ, କାଶତୃଣ।
ଇକ୍ଷୁଶାକଟ—କ୍ଲୀ.ବ. ଆଖୁକ୍ଷେତ, ଆଖୁବାଡ଼, ଆଖୁକିଆରି।
ଇକ୍ଷୁଶାକିନ—କ୍ଲୀ. ବ. ଆଖୁର ଭୂମି।
ଇକ୍ଷୁସାର—ପୁଂ. ବ. (୬.ତତ୍) ଗୁଡ଼, ଚିନି, କନ୍ଦ।
ଇକ୍ଷୁସମୁଦ୍ର—ପୁଂ. ବ. ପୁରାଣୋକ୍ତ ସପ୍ତସମୁଦ୍ର-ମଧ୍ୟବର୍ତ୍ତୀ ସମୁଦ୍ରବିଶେଷ,ଇକ୍ଷୁସମୁଦ୍ର।
ଇକ୍ଷ୍ୱାକୁ—ପୁଂ. ବ. (ଇକ୍ଷୁ+ଅକ+ଉ) ବୈବସ୍ୱତମନୁଙ୍କର ପୁତ୍ର, ସୂର୍ଯ୍ୟବଂଶୀୟ ପ୍ରଥମରାଜା (ସ୍ତ୍ରୀ.ବ.) ତିକ୍ତଲାଉ, କଟୁତୁମ୍ବୀ, ପିତାଲାଉ।
ଇକ୍ଷ୍ୱାର—ପୁଂ. ବ (ଇକ୍ଷୁ+ଋ+ଇ) କାଶତୃଣ, କାଉଁଶୀ।
ଇକ୍ଷ୍ୱାଲକ—ପୁଂ. ବ. କୁଶ, କାଉଁଶୀ, କାଶତୃଣ।
ଇକ୍ଷ୍ୱାଲିକା—ସ୍ତ୍ରୀ. ବ. (ଇକ୍ଷ୍ୱାଲକ+ଆ) ଅନାଖୁ, ଅଣଆଖୁଆ।
ଇଖ—(ଧାତୁ) ଗତିକରିବା।
ଇଗ—(ଧାତୁ) ଗତିକରିବା।
ଇଙ୍ଗ—(ଧାତୁ) ଅଧ୍ୟୟନକରିବା।
ଇଙ୍ଗ-ପୁଂ. ବ.(ଇନ୍‌ଗ+ଅ) ଅଭିପ୍ରାୟାନୁରୂପ ଚେଷ୍ଟା,ଜ୍ଞାନ, ଇଙ୍ଗିତ, ଠାରିବା, (ବିଂ) ଚଳନଶୀଳ, ଜଙ୍ଗମ, ଅଦ୍ଭୁତ, (ସ୍ତ୍ରୀ) ଇଙ୍ଗା।
ଇଙ୍ଗନ—କ୍ଲୀ. ବ. (ଇନ୍‌ଗ+ଭା.ଅନ) ହୃଦ୍‌ଗତଭାବ, ଚଳନ, ଜ୍ଞାନ, ସଙ୍କେତ, କମ୍ପନ, ଠାର, ଇସାରା, ଚେଷ୍ଟା।
ଇଙ୍ଗନା—ସ୍ତ୍ରୀ. ବ. (ଇଙ୍ଗ+ଅନ+ଆ) ପ୍ରସିଦ୍ଧି।
ଇଙ୍ଗିଡ଼—ପୁଂ.ବ.(ଇଙ୍ଗ+ଇଲ)ଇଙ୍ଗୁଦୀବୃକ୍ଷ, ପୋଇଗୁନ୍ଦିଆ ଗଛ।
ଇଙ୍ଗିତ—କ୍ଲୀ.ବ.(ଇଙ୍ଗ+ତ)ଅଭିପ୍ରାୟ, ଚେଷ୍ଟାପ୍ରକାଶ,ଠାର,ଅନ୍ୱେଷଣ,ଚେଷ୍ଟା, ସଙ୍କେତ, ଅଙ୍ଗ, ଇସାରା, ସୂଚନା,ଗୃହଚଳନ, ଢଙ୍ଗ।
ଇଙ୍ଗିତକଳା—ସ୍ତ୍ରୀ. ବ. ଉପନ୍ୟାସାଦିର ନବୀନ କାଳ୍ପନିକ ରଚନା,ସୂଚନାଦ୍ୱାରା ଭାବର ଚିତ୍ରଣ।
ଇଙ୍ଗିତଜ୍ଞ—ପୁଂ.ବ.(ଇଙ୍ଗିତ+ଜ୍ଞା+ଅ) ଯେ ସଙ୍କେତ ଜାଣିପାରେ, ଠାର ଇତ୍ୟାଦି ଜାଣିଥିବା ବ୍ୟକ୍ତି, ଯେ ଠାରଠୁରରୁ ହୃଦ୍‌ଗତଭାବ ବୁଝିପାରେ, ଯେ ସଙ୍କେତ ବୁଝିପାରେ।
ଇଙ୍ଗିଠ—ଗ୍ରା. ବ. ଅଙ୍ଗ, ପରିହାସ, ଶ୍ଳେଷବଚନ।
ଇଙ୍ଗିଠିଆ—ଗ୍ରା ବିଂ. ଅଙ୍ଗିଲ, ପରିହାସପ୍ରିୟ, ନକଲିଆ, (ସ୍ତ୍ରୀ) ଇଙ୍ଗିଠେଇ।
ଇଙ୍ଗୁ—ପୁଂ. ବ. (ଇଙ୍ଗ+ଉ)ରୋଗ।
ଇଙ୍ଗୁଦ—ପୁଂ. ବ. (ଇଙ୍ଗୁ+ଦା+ଅ) ଜ୍ୟୋତିଷ୍ମତୀ ବା ଫୁଟିଫୁଟିକାଗଛ, ତାପସବୃକ୍ଷ,ପୋଇଗୁନ୍ଦିଆ,ଇଙ୍ଗୁଦୀଗଛ।
ଇଙ୍ଗୁଦୀ—ସ୍ତ୍ରୀ ବ. (ଇଙ୍ଗୁଦ+ଈ) ହିଙ୍ଗୋଟବୃକ୍ଷ, ଇଙ୍ଗୁଦୀବୃକ୍ଷ, ତାପସତରୁ, ପୋଇଗୁନ୍ଦିଆଗଛ।
ଇଙ୍ଗୁଲ—ପୁଂ.ବ.(ଇଙ୍ଗୁ+ଲା+କ.ଅ) ଇଙ୍ଗୁଦୀଗଛ, ପୋଇଗୁନ୍ଦିଆଗଛ।
ଇଙ୍ଗୁଳା—ସ୍ତ୍ରୀ. ବ. (ଇଙ୍ଗୁଲ+ଆ) ଇଙ୍ଗୁଦୀଗଛ, ପୋଇଗୁନ୍ଦିଆଗଛ।
ଇଙ୍ଗ୍ୟ—ବିଂ.(ଇଙ୍ଗ+ଯ)ଗମନଯୋଗ୍ୟ, ଯେ ସ୍ଥାନକୁ ଯିବାକୁ ହୁଏ।
ଇଙ୍ଗ୍ରେଜ—ପୁଂ. ବ.ଇଂଲଣ୍ଡଦେଶଜାତଲୋକସକଳ।
ଇଚଡ଼,ଇଞ୍ଚଡ଼—ଗ୍ରା. ପଣସକଠା, କଷିପଣସ, ନୂତନପଣସ, କଣ୍ଟକଫଳ।
ଇଚ୍ଛକ—ପୁଂ. ବ. (ଇଷ୍+କ, ଅକ) ଇଚ୍ଛାଯୁକ୍ତବ୍ୟକ୍ତି, ଟାବାଲେମ୍ବୁଗଛ, (ସ୍ତ୍ରୀ) ଇଚ୍ଛିକା।
ଇଚ୍ଛା—ସ୍ତ୍ରୀ. ବ. (ଇଷ୍+ଅ+ଆ)ମନର ଧର୍ମ,ବାଞ୍ଛା,ସ୍ପୃହା, ଉତ୍ସାହ,ଆକାଙ୍କ୍ଷା, ପ୍ରବୃତ୍ତି, ପୀଠଶକ୍ତି ବିଶେଷ।
ଇଚ୍ଛାକୃତ—ବିଂ. (୩ୟା.ତତ୍) ଯଥେଚ୍ଛାଚାର, ଇଚ୍ଛା ଅନୁସାରେ ଯାହା କରାଯାଏ, ଜ୍ଞାନକୃତ।
ଇଚ୍ଛାଠାକୁରାଣୀ—ଗ୍ରା. ସ୍ତ୍ରୀ. ବ. ବିନା ଟୀକାରେ ମନକୁ ହେବା ବସନ୍ତରୋଗ।
ଇଚ୍ଛାତ୍ରୟ—ବିଂ. ତିନପ୍ରକାର ଅଭିଳାଷ।
ଇଚ୍ଛାଦାନ—କ୍ଲୀ. ବ. (୬ତତ୍) ଅଭୀଷ୍ଟ ଦ୍ରବ୍ୟ ଦାନ।
ଇଚ୍ଛାଧୀନ—ବିଂ. (୬ଷ୍ଠୀତତ୍) ଇଚ୍ଛାର ବଶୀଭୂତ।
ଇଚ୍ଛାନିବୃତ୍ତି—ସ୍ତ୍ରୀ. ବ. (୬ଷ୍ଠୀତତ୍) ବାସନାର ଶାନ୍ତି, କାମନାନାଶ, ଇଚ୍ଛାର ନିବାରଣ।
ଇଚ୍ଛାନିମିତ୍ତକ—ବିଂ. (ବ.ବ୍ରୀ) ଇଚ୍ଛାଜନିତ, ଇଚ୍ଛାଧୀନ, ଇଚ୍ଛାରେ ଯାହା କରିବାକୁ ହୁଏ।
ଇଚ୍ଛାନୁଗତ—ବିଂ. (୬ଷ୍ଠୀତତ୍) ସ୍ୱାଧୀନତା, ସ୍ୱାଧୀନତ୍ୱ, ଇଚ୍ଛାଧୀନ।
ଇଚ୍ଛାନୁଗାମୀ—ପୁଂ. ବ. (୬ଷ୍ଠୀତତ୍) ଇଚ୍ଛାର ଅନୁସରଣକାରୀ, ଇଚ୍ଛାମତ କାର୍ଯ୍ୟକାରୀ, ଇଚ୍ଛାଧୀନ, ଯଥେଚ୍ଛାଚାରୀ (ସ୍ତ୍ରୀ) ଇଚ୍ଛାନୁଗାମିନୀ।
ଇଚ୍ଛାନୁଯାୟୀ—ପୁଂ. ବିଂ. (୬ଷ୍ଠୀତତ୍) ଇଚ୍ଛାନୁଗାମୀ, ଇଚ୍ଛାର ଅନୁଗମନକାରୀ (ସ୍ତ୍ରୀ) ଇଚ୍ଛାନୁଯାୟିନୀ।
ଇଚ୍ଛାନୁରୂପ—ବିଂ.(୬ଷ୍ଠୀତତ୍)ଇଚ୍ଛାମତ, ଯଥାସାଧ୍ୟ, ଇଚ୍ଛାକରିବାପର (ସ୍ତ୍ରୀ) ଇଚ୍ଛାନୁରୂପା।
ଇଚ୍ଛାପତ୍ର—ଗ୍ରା. ବ. (କ.ଧା) ନିଜ ଇଚ୍ଛାନୁସାରେ ସମ୍ପତ୍ତିର ବିନିଯୋଗପତ୍ର, ଉଇଲ୍।

ଇଚ୍ଛାପୂର୍ବକ—କ୍ରି. ବିଂ. (ବ.ସ୍ତ୍ରୀ) ଇଚ୍ଛାନୁସାରେ, କାହାରଦ୍ୱାରା ପ୍ରରୋଚିତ ନ ହୋଇ ।

ଇଚ୍ଛାଫଳ—କ୍ଳୀ. ବି. ଇଚ୍ଛାର ପରିଣାମ ବା ଉଦ୍ଦେଶ୍ୟ ।

ଇଚ୍ଛାବତୀ—ସ୍ତ୍ରୀ.ବି.(ଇଚ୍ଛା + ବତୁ + ଈ) କାମୁକୀ, ଇଚ୍ଛାଯୁକ୍ତା ସ୍ତ୍ରୀ, ଧନାଦିରେ ଇଚ୍ଛାବତୀ, ଗଣିତଶାସ୍ତ୍ରବିଶେଷ ।

ଇଚ୍ଛାବର—ଗ୍ରା. ବି. ସ୍ୱୟମ୍ବରରେ କନ୍ୟା ନିଜ ଇଚ୍ଛାରେ ଯେଉଁ ବର ବରଣ କରେ ।

ଇଚ୍ଛାବସନ୍ତ—ଗ୍ରା.ବି. ମସୂରିକା ରୋଗ, ମନକୁ ହେବା ବସନ୍ତ ରୋଗ ।

ଇଚ୍ଛାବସୁ—ପୁଂ. ବି. (ବ.ସ୍ତ୍ରୀ) କୁବେର, ଯାହାର ଇଚ୍ଛାରେ ଧନୋତ୍ପତ୍ତି ହୁଏ ।

ଇଚ୍ଛାବାନ୍—ପୁଂ. ବିଂ. (ଇଚ୍ଛା + ବତୁ) ଇଚ୍ଛାଯୁକ୍ତ, ଅଭିଳାଷୀ, ବାସନାବିଶିଷ୍ଟ, ଲୋଭୀ, କାମୁକ,ସ୍ପୃହାଯୁକ୍ତ,ଆକାଂକ୍ଷୀ, (ସ୍ତ୍ରୀ) ଇଚ୍ଛାବତୀ ।

ଇଚ୍ଛାଭେଦୀରସ—ପୁଂ. ବି. ଆୟୁର୍ବେଦଶାସ୍ତ୍ରୋକ୍ତ କୋଷ୍ଠବଦ୍ଧତାର ଔଷଧବିଶେଷ ।

ଇଚ୍ଛାମୟ—ବିଂ.(ଇଚ୍ଛା + ମୟ)ପରମେଶ୍ୱର, ନିଜ ଇଚ୍ଛାରେ କାର୍ଯ୍ୟ କରିବା ।

ଇଚ୍ଛାମୟୀ—ସ୍ତ୍ରୀ.ବି. ଭଗବତୀ, ଦୁର୍ଗା ।

ଇଚ୍ଛାଶକ୍ତି—ସ୍ତ୍ରୀ.ବି. ଅଭୀଷ୍ଟ ସାଧନ ଶକ୍ତି ।

ଇଚ୍ଛାସୁଖେ—କ୍ରି.ବିଂ. ଇଚ୍ଛାପୂର୍ବକ ସୁଖର ସହିତ ।

ଇଚ୍ଛାଲବା—ଗ୍ରା.କ୍ରି(ଗଞ୍ଜାମ),ସମ୍ଭାଳିବା ।

ଇଚ୍ଛିତ—ବିଂ.(ଇଚ୍ଛା + ଇତ)ସ୍ପୃହାଯୁକ୍ତ, ଅଭିଳଷିତ,ଅଭିଳାଷୀ,(ସ୍ତ୍ରୀ) ଇଚ୍ଛିତା ।

ଇଚ୍ଛୁ—ପୁଂ.ସ୍ତ୍ରୀ.ବିଂ. (ଇଷ + ଉ)ଇଚ୍ଛାଶୀଳ, ଇଚ୍ଛୁକ, ଅଭିଳାଷୀ, ସମ୍ମତ, ରାଜି, ଉତ୍ସାହୀ, ଇଚ୍ଛାଯୁକ୍ତ ।

ଇଚ୍ଛୁକ—ପୁଂ.ବିଂ.(ଇଷ୍ + ଉକ) ଇଚ୍ଛାଶୀଳ, ଅଭିଳାଷୀ, ଉତ୍ସାହୀ (ବି) ଟଭାଲେମ୍ବୁଗଛ ।

ଇଚ୍ଛର—ଗ୍ରା.ବି.ଭୂମିଷ୍ଠ ନବଜାତ ଶିଶୁର ଅଙ୍ଗସଞ୍ଚାଳନ କ୍ରିୟା ।

ଇଜ୍‌ମାଇଲ୍—(ଯା)ବିଂ. ବହୁବ୍ୟକ୍ତିଙ୍କର ଅଧିକାରଭୁକ୍ତ (ସମ୍ପତ୍ତି) ।

ଇଜ୍‌ମାଲ—(ଯା)ବି.ଇଜ୍‌ମାଇଲ୍ ଦେଖ ।

ଇଜତ୍—(ଯା) ବି. ମର୍ଯ୍ୟାଦା, ମହତ୍ତ୍ୱ, ସମ୍ମାନ, ମହତ୍ତ୍ୱଜନିତ ଯଶ ଓ ସୁନାମ, ଲଜ୍ଜାଯୁକ୍ତ ଶିଷ୍ଟତା, ଉଦାରତା, ଅପ୍ରକାଶ୍ୟ ସ୍ଥାନ, ସ୍ତ୍ରୀର ସତୀତ୍ୱ, ମାନ, ସମ୍ଭ୍ରମ, ସୁନାମ, ଉଚ୍ଚଭାବ ।

ଇଜତ୍‌ଦାବୀ—ଗ୍ରା. ବି. ମର୍ଯ୍ୟାଦାହାନିର କ୍ଷତିପୂରଣ ଦାବୀ କରିବା ।

ଇଜତ୍‌ଦାର—(ଯ) ବିଂ. ମର୍ଯ୍ୟାଦାବନ୍ତ ।

ଇଜତ୍‌ଦାଣ—ଗ୍ରା. ବି. ମର୍ଯ୍ୟାଦା ବଜାଏ ରଖିବା ଆଚରଣ।

ଇଜତ୍-ମହତ୍—ଗ୍ରା.ବି. ମାନମର୍ଯ୍ୟାଦା ।

ଇଜତ୍‌ସିକା—ଗ୍ରା.ବି.ମହତ୍ତ୍ୱହାନି ଘଟିବା, ସ୍ତ୍ରୀର ସତୀତ୍ୱହାନି ଘଟିବା, କଳଙ୍କ ରଟନା ହେବା ।

ଇଜତ୍‌ହାନି—ଗ୍ରା. ବି. ଅପମାନ,ସମ୍ମାନନାଶ ।

ଇଜତ୍‌ହୁରୁମତ୍—(ଯା).ବି.ମାନମର୍ଯ୍ୟାଦା ।

ଇଜତି (ଆ)—ଯା. ବିଂ. ଇଜତ୍‌ଦାର, ମର୍ଯ୍ୟାଦାବନ୍ତ ।

ଇଜରା— ଯା).ବି.କରାଦି ଆଦାୟ କରିବା କ୍ଷମତା, ସାମୟିକ ପଟ୍ଟା, ଇଜାରା ।

ଇଜରାକମା—(ଯା) ବି. ଇଜରାଦାର ମାଲିକଙ୍କୁ ଦେବା ନିର୍ଦ୍ଧାରିତ ଖଜଣା ।

ଇଜରାପଟ୍ଟା—ଗ୍ରା. ବି. ଯେଉଁ ପଟ୍ଟାରେ ଭୂସ୍ୱାମୀ ରଇତଙ୍କୁ ଇଜରା ଲେଖିଦିଏ ।

ଇଜାହାର—(ଯା)ବି.ଅଭିଯୋଗ ବର୍ଣ୍ଣନ, ଏତାଲ, ଥାନାରେ ପୋଲିସ୍ ନିକଟରେ ଦେବା ଅପରାଧ ଖବର ।

ଇଜାହାରକରିବା—ଗ୍ରା. କ୍ରି. କୌଣସି ହାକିମଙ୍କ ନିକଟରେ ଅଭିଯୋଗ ବ୍ୟକ୍ତ କରିବା, ଥାନାରେ ଏତାଲ ଦେବା ।

ଇଜାହାରନେବ—ଗ୍ରା. କ୍ରି. ପୁଲିସ୍ ଏତାଲକାରୀର କଥାକୁ ନିଜ ଡାଇରି ଆଦିରେ ଲିପିବଦ୍ଧ କରିବା ।

ଇଜହାରୀ—ଗ୍ରା.ବିଂ.ଯେ ଇଝାର ଦିଏ ।

ଇଜାଦ୍—ଯା. ବି. ନୂତନ ପ୍ରକାଶ, ଆବିଷ୍କାର, ମାପରେ ଜଣା ପଡ଼ିବା, ଅତିରିକ୍ତ ଭୂମି ।

ଇଜାନଗର – ଗ୍ରା.ବି. (ସଂ ବିଜୟନଗର) ବିଜୟନଗର (ଦାକ୍ଷିଣାତ୍ୟ ପ୍ରଦେଶ) ।

ଇଜାଫତ୍—(ଯା) ବି. ଶାସନ, ରାଜ୍ୟ, ସଂଯୋଗ ।

ଇଜାଫା—(ଯା)ବି.ସଂଯୋଗ,ଗୁଣ,ବୃଦ୍ଧି ।

ଇଜାର—(ଯା)ବି.କଟୀଠାରୁ ପାଦ ପର୍ଯ୍ୟନ୍ତ ପରିଧେୟ ବସ୍ତ୍ର, ହୁଗୁଲା ପାଇଜାମା ।

ଇଜାରାଦାର—(ଯା) ବି.ଯେ କ୍ଷେତ ଜମା ନିଏ, ଯେ କୌଣସି ଜଲ୍ ଜମା ନିଏ, ସାମୟିକ ପଟ୍ଟାଗ୍ରହୀତା ।

ଇଜାରଦାରୀ—(ଯା)ବି. ଇଜାରଦାରର କର୍ତ୍ତବ୍ୟ ।

ଇଜାରା—(ଯା)ବି.କ୍ଷେତ୍ର,କ୍ଷେତ୍ରଯୁକ୍ତ ଜିଲ୍ଲା, ମିଆଦୀ ବନ୍ଦୋବସ୍ତ, ନିର୍ଦ୍ଧାରିତ ଖଜଣାରେ ନିର୍ଦ୍ଦିଷ୍ଟ ସମୟନିମନ୍ତେ ସମ୍ପତ୍ତିଭୋଗର ଅଧିକାର ।

ଇଜାରୀ—(ଯା)ବି. ବସ୍ତ୍ରବିଶେଷ ।

ଇଜେର—(ଯ)ବି.କଟୀଠାରୁ ପାଦପର୍ଯ୍ୟନ୍ତ ପରିଧେୟ ବସ୍ତ୍ରବିଶେଷ, ହୁଗୁଲା ପାଇଜାମା ।

ଇଜ୍ଜତ୍—(ଯା)ବି.ମାନ, ସମ୍ଭ୍ରମ, ମର୍ଯ୍ୟାଦା ଉଦାରତା, ଉଚ୍ଚଭାବ ।

ଇଜ୍ଜଳ—ପୁଂ. ବି. ଜଳବେତସ, ହିଜ୍ଜଳଗଛ, ନିଚୁଳ ବୃକ୍ଷ ।

ଇଜ୍ୟ—ପୁଂ. ବି. (ଯଜ + ଯ) ବୃହସ୍ପତି, ପୁଷ୍ୟାନକ୍ଷତ୍ର, ବିଷ୍ଣୁ, ଗୁରୁ, ଶିକ୍ଷକ, ପରମେଶ୍ୱର, ଦେବଗୁରୁ,(ବିଂ)ପୂଜନୀୟ, ଗୁରୁସ୍ଥାନୀୟ ।

ଇଜ୍ୟା—ସ୍ତ୍ରୀ. ବି. ( ଯଜ + ଯ + ଆ ) ଯଜ୍ଞ, ଦାନ, ସଙ୍ଗମ, ମିଳନ, ପ୍ରତିମା ଗୋରୁ, କୁଟ୍ଟିନୀ, (ବିଂ.) ପୂଜ୍ୟା ।

ଇଜ୍ୟାଶୀଳ—ପୁଂ. ବିଂ.(ଇଜ୍ୟା + ଶୀଳ) ଯେ ସର୍ବଦା ଯଜ୍ଞ କରେ, ପୁନଃପୁନଃ ଯାଗକର୍ତ୍ତା,ଯାଜକ ।

ଇଜାର—ଗ୍ରା. ବି. ଇଜହାର (ଦେଖ) ।

ଇଞ୍ଚ—(ଯା) ବି. ଏକବୃଦ୍ଧାଙ୍ଗୁଳ ପରିମାଣ, ପ୍ରାୟ ଦୁଇ ଅଙ୍ଗୁଳ ପରିମାଣ, ଏକ ପଇସା ବ୍ୟାସର ପରିମାଣ ।

ଇଞ୍ଚକିଆ—ଗ୍ରା. ବିଂ, ଏକଇଞ୍ଚ ପରିମିତ ।

ଇଞ୍ଚଡ଼—ଗ୍ରା.ବି. କହିପଣସ,ପଣସକଠା ।

ଇଞ୍ଚରିବା—(ପ୍ରା.ସମ୍ବ) କ୍ରି. ଉଖାରିବା ।

ଇଞ୍ଚାକ—ପୁଂ.ବି.ଜଳବୃଶ୍ଚିକ, ଏକପ୍ରକାର ମାଛ, ଚିଙ୍ଗୁଡ଼ିମାଛ ।

ଇଞ୍ଜିନ୍—ଯା. ବି. କଳ, ଯନ୍ତ୍ର, ଉତ୍ତପ୍ତ ବାଷ୍ପଦ୍ୱାରା ଚାଳିତ କଳ, ସାଧନ ।

ଇଞ୍ଜିନିଅର—ଇଂ. ବି. କଳଚାଳକ, ଶିଳ୍ପଜ୍ଞ, କଳନିର୍ମାତା ।

ଇଞ୍ଜିଲ—ଯା. ବି. ଧର୍ମଗ୍ରନ୍ଥ, ମୁସଲମାନୀ ଭାଷାରେ ବାଇବେଲର ନାମ ।

ଇଞ୍ଜେକ୍ସନ—ଇଂ. ବି. ଆଶୁ ପ୍ରତୀକାର-ନିମିତ୍ତ ଦେହ ଫୋଡ଼ି ରୋଗୀର ଶରୀରରେ ଔଷଧ ପ୍ରୟୋଗ ।

ଇଟ୍—ସ୍ତ୍ରୀ. ବି. (ଇଷ୍ + କ୍ୱିପ୍) ଇଚ୍ଛା, ଅଭିଳାଷ ।

ଇଟ୍‌ଚର—ପୁଂ.ବି. (ଇଟ୍ + ଚର + ଅ) ଯେ ସ୍ୱେଚ୍ଛାରେ ଯିବା ଆସିବା କରେ, ଷଣ୍ଢ, ବୃଷଭ ।

ଇଟ—(ଧାତୁ) ଗତ କରିବା ।

ଇଟ—ଗ୍ରା.ବି. ଚିଙ୍ଗୁଡ଼ିମାଛ ଓ କଙ୍କଡ଼ା ମାନଙ୍କ ମୁଣ୍ଡରେ ଥିବା ଲାଲ ଟାଣୁଆ ସ୍ୱାଦୁ ମାଂସଖଣ୍ଡ ।

ଇଟଲା—ଗ୍ରା. ବି. ଅଁଳେଇ ଫୁଲ ।

ଇଟା—ଗ୍ରା. ବି. ( ସଂ ଇଷ୍ଟକ ) ଇଷ୍ଟକ, ଇଟା, ନିର୍ଦ୍ଦିଷ୍ଟ ଆକୃତିବିଶିଷ୍ଟ ପୋଡ଼ା ମାଟିଖଣ୍ଡ) ।

ଇଟାକାଲ ମାରିବା—ଗ୍ରା.କ୍ରି. ଇଟା ଗଢ଼ା-ପରେ ଶୁଖିଲା ଓ ଗଣିବାପାଇଁ ପାଙ୍କ ରଖି କାନ୍ଥି ଆକାରରେ ରଖିବା ।

ଇଟାଭାଟି—ଗ୍ରା. ବି. ଯେଉଁ ଠାରେ ଇଟା ସ୍ତୂପାକାରରେ ସଜ୍ଜିତ ହୋଇ ପୋଡ଼ା ହୁଏ ।

ଇଟାଲି—(ଯା)ବି.ଇଉରୋପ ମହାଦେଶା-ନ୍ତର୍ଗତ ଦେଶବିଶେଷ ।

ଇଟାଲିଆ—ଗ୍ରା.ବିଂ.ଇଟାପରି ଫିକାରଙ୍ଗ-ଯୁକ୍ତ, ଇଟ ପରି ଟାଣୁଆ ।

ଇଠେଇଁ—ଗ୍ରା. ( ପୁର୍ବଓଡ଼ିଶାକ ) ଅବ୍ୟ, ଏଠାରେ, ଏହି ସ୍ଥାନରେ ।

ଇଡ଼(ଳ)—ସ୍ତ୍ରୀ. ବି (ଇଲ + କ୍ୱିପ୍) ଭୂମି, ଅନ୍ନ, ବର୍ଷାକାଳ, ଭୃତ୍ତିସ୍ଥ ପ୍ରଯାଜ, ଯଜ୍ଞାଙ୍ଗ ଷଷ୍ଠପ୍ରଯାଜ ।

ଇଡ଼—ବିଂ. ସ୍ତୁତିଯୋଗ୍ୟ ।

ଇଡ଼ା(ଳା)—ସ୍ତ୍ରୀ. ବି. (ଇଲ + ଅ + ଆ) ଦକ୍ଷକନ୍ୟା, କଶ୍ୟପଙ୍କର ପତ୍ନୀ, ମନୁ-କନ୍ୟା, ବୁଧପତ୍ନୀ, ପୃଥିବୀ,ଧେନୁ, ସ୍ୱର୍ଗ, ସରସ୍ୱତୀ, ହବି, ଅନ୍ନ, ଦେବୀ, ଦୁର୍ଗା, ବାଣୀ, ବାମପାର୍ଶ୍ୱସ୍ଥ ରକ୍ତବାହୀ ନାଡ଼ୀ, (ଗ୍ରା.ବିଂ) ଇଡ଼ିବା, ଚାଳିବା ।

ଇଡ଼ାଚକା—ସ୍ତ୍ରୀ. ବି. ( ଇଡ଼ା + ଅଚ + ଅକ + ଆ) ବରଟା ।

ଇଡ଼ାବାନ୍—ପୁଂ. ବିଂ. (ଇଡ଼ା + ବତୁ) ଇଡ଼ାନାଡ଼ୀବିଶିଷ୍ଟ ।

ଇଡ଼କା—ସ୍ତ୍ରୀ. ବି. ( ଇଡ଼୍ + କ + ଆ ) ପୃଥିବୀ,(ପ୍ରା ଗଞ୍ଜାମ)ଏକପ୍ରକାର ଛେଳି ।

ଇଡ଼ିକ୍କ—ପୁଂ.ବି.(ଇଡ଼ିକ୍—କୈ + ଅ) ବନ୍ୟ ଛାଗଲ, ବଣଛାଗ, ନଗମସ୍ଥ ।

ଇଡ଼ିବା—ଗ୍ରା. କ୍ରି. ଚାଳିବା, ଅଜାଡ଼ିବା (ତରଳ ପଦାର୍ଥ) ।

ଇଡ଼ୀସ୍ଥ—ବିଂ. ଭାରତର ଏକଅଂଶ ।

ଇଡ଼୍ୟ—ପୁଂ. ବିଂ. (ଇଡ଼ + ର୍ମ.ଯ) ସ୍ତବ-କରିବା ଯୋଗ୍ୟ, ସ୍ତୁତ୍ୟ, ପୂଜ୍ୟ, (ସ୍ତ୍ରୀ) ଇଡ଼୍ୟା, ପୂଜ୍ୟା ।

ଇଡ୍ୱର—ପୁଂ.ବି. (ଇଟ + ବୃ + ଅ)ବୃଷ, ଷଣ୍ଢ ।

ଇଣ୍—(ଧାତୁ) ଗମନକରିବା ।

ଇଣ୍ଡେରିକା—ସ୍ତ୍ରୀ. ବି. ବଟିକା ।

ଇଣ୍ଡା—ପ୍ରା. (ଗଞ୍ଜାମ) ବି. ଚୁଲ୍ଲୀଟିଙ୍କା ।

ଇଣ୍ଡିଆ—ଇଂ. ବି. ଭାରତବର୍ଷ ।

ଇଣ୍ଡୁରି—ଗ୍ରା.ବି. ପିଠାବିଶେଷ ।

ଇଣ୍ଡୁ—ପୁଂ.କ୍ଲୀ.ବି.ହାଣ୍ଡି ଧରିବାରକଡ଼ା, ଚମୁଟା ।

ଇତ୍ତ୍ରି—ବିଂ. ( ଇ + ତ୍ରି + କ୍ୱିପ୍ ) ଯାହା ହେବାକ୍ଷଣି ଚାଲିଯାଏ, ଇତ୍ତ୍ରିସଞ୍ଜ୍ଞା ।

ଇତ—ବିଂ. (ଇ + କ.ତ)ଗତ, ପ୍ରସ୍ଥିତ, ପ୍ରାପ୍ତ, (ମିଂ.ତ) ଲବ୍ଧ, ଜ୍ଞାତ ।

ଇତଃ—ଅବ୍ୟ. (ଇଦମ୍ + ତସ୍) ଏଠାରୁ, ଇଆଡ଼ୁ, ଏହିଠାରେ, ନିଶ୍ଚୟ ।

ଇତଃପର—ଅବ୍ୟ.(ଇତସ୍ + ପର) ଏହା ପରେ, ଅନନ୍ତର, ଏଥିଉତ୍ତାରୁ ।

ଇତଃପୂର୍ବେ—ଅବ୍ୟ. ଏହାର ପୂର୍ବେ, ଆଗେ । [ଆଦିତ୍ୟବାର ।

ଇତ୍‌ବାର—ଯା. ବି. ବିଶ୍ୱାସ, ରବିବାର,

ଇତର—ବିଂ. (ଇ + ତୃ + ଅ) ନୀଚ, ପାମର, ଅନ୍ୟ, ଭିନ୍ନ, ସାମାନ୍ୟ, ଅଧମ, କାତର, ତ୍ୟକ୍ତ, ଅବଶିଷ୍ଟ ।

ଇତରଜନ—ପୁଂ. ବି. (କ.ଧା) ଜନ-ସାଧାରଣ, ଅନ୍ୟଲୋକ, ଶ୍ରେଷ୍ଠଲୋକ, ଭଦ୍ରବ୍ୟକ୍ତି ଅପେକ୍ଷା ନୀଚବ୍ୟକ୍ତି ।

ଇତରଜାତୀୟ—ବିଂ. (ଇତରଜାତ + ଈୟ) ଭିନ୍ନ, ଭିନ୍ନଜାତିଭୁକ୍ତ, ଅନ୍ୟ ଜାତିର ଅନ୍ତର୍ଗତ, ଭିନ୍ନଶ୍ରେଣୀସ୍ଥ, ନୀଚ-ଜାତୀୟ, ହୀନଜାତିଭୁକ୍ତ, ମନୁଷ୍ୟ ଭିନ୍ନ ଇତର ଜାତିର ଅନ୍ତର୍ଗତ ।

ଇତରତଃ—ଅବ୍ୟ. ( ଇତର + ତସ୍ ) ଅନ୍ୟଭାବରେ, ପରଦେହ ବା ପର ଲୋକରେ ।

ଇତରତା—ସ୍ତ୍ରୀ. ବି. (ଇତର + ଭା.ତା) ନୀଚତା, ପାମରତ୍ୱ, ଶ୍ରେଷ୍ଠଲୋକ ପର ବ୍ୟବହାର । [ବା ପକ୍ଷରେ ।

ଇତରତ୍ର—ଅବ୍ୟ. ଅନ୍ୟତର ସ୍ଥାନରେ

ଇତରଥା—ଅବ୍ୟ. (ଇତର + ଥା)ଭିନ୍ନାର୍ଥ, ଅନ୍ୟଥା, ଅନ୍ୟପ୍ରକାର, ନତୁବା ।

ଇତରବିଶେଷ—ପୁଂ. ବି. ଅନ୍ୟପ୍ରଭେଦ, ବିଭିନ୍ନତା,ତାରତମ୍ୟ,ପାର୍ଥକ୍ୟ, ଭେଦାଭେଦ, ଅନ୍ୟଠାରୁ ବିଶେଷତ୍ୱ ।

ଇତରବ୍ୟବହାର—ବି. ( ଷତତ୍ ) ଶ୍ରେଷ୍ଠ ଲୋକଙ୍କ ବ୍ୟବହାର, ନୀଚ ବ୍ୟବହାର ।

ଇତରଭାଷା—ସ୍ତ୍ରୀ.ବି.(ମଧ୍ୟ କ.ଧା)ଇତର ଜନ ବ୍ୟବହୃତଭାଷା,ଅଶିଷ୍ଟଭାଷା ।

ଇତରେତର—ବିଂ. (ଇତର + ଇତର) ଅନ୍ୟୋନ୍ୟ, ପରସ୍ପର ।

ଇତରେତରଯୋଗ—ପୁଂ. ବି. (ଷତତ୍) ପରସ୍ପର ସମ୍ବନ୍ଧ, ଦ୍ୱନ୍ଦ୍ୱନାମକ ସମାସ ।

ଇତରେତରାଶ୍ରୟ—ପୁଂ. ବି. (ଇତରେତର - ଆ + ଶ୍ରି + ଅ ) ପରସ୍ପର ଅବଲମ୍ବନ, ପରସ୍ପରାଶ୍ରୟ, ଅନ୍ୟୋନ୍ୟାଶ୍ରୟ, ରୂପ ନ୍ୟାୟର ଦୋଷବିଶେଷ ।

ଇତରେଦ୍ୟୁଃ—ଅବ୍ୟ. (ଇତର + ଏଦ୍ୟୁଃ) ଅନ୍ୟଦିନେ ବା ସମୟେ, ଆଉଦିନେ ।

ଇତଲା—ଯା. ବି. ସମ୍ବାଦ, ବିଜ୍ଞାପନ, ରିପୋର୍ଟ ।

ଇତସ୍ତେତସ୍ତ—ଅବ୍ୟ, ଚତୁର୍ଦ୍ଦିଗେ, ଇଆଡ଼େ ସିଆଡ଼େ, ଘୁରଆଡ଼େ, ଏଠାରେ ସେଠାରେ ।

ଇତସ୍ତତଃ—ଅବ୍ୟ. ନାନାସ୍ଥାନେ, ଘୁର ଆଡ଼େ, ଏଣେତେଣେ, (ବିଂ) ଏଣେ ତେଣେ ବିକ୍ଷିପ୍ତ ।

ଇତାଅତ୍—ଯା. ବି. ଅଧୀନତା ।

ଇତା—ପ୍ରା. (ସମ୍ଭ) ସର୍ବଂ. ଏହିଟା, ଏହି ଲୋକଟା, ଅନାଦରାର୍ଥ ।

ଇତାଲି—ୟୁରୋପ-ମହାଦେଶସ୍ଥ ଗୋଟିଏ ଦେଶ ।

ଇତି—ଅବ୍ୟ. (ଇ + ତି)ଅତଏବ, ଏହି ହେତୁ, ପ୍ରକାଶ, ନିଦର୍ଶନ, ପ୍ରକାର, ଅନୁକର୍ଷ, ସମାପ୍ତି, ସ୍ୱରୂପ, ପ୍ରକରଣ, ସାନ୍ନିଧ, ବିବକ୍ଷାନିୟମ, ମତ, ପ୍ରତ୍ୟକ୍ଷ, ଅବଧାରଣ, ଇହା, ବ୍ୟବସ୍ଥା, ପରାମର୍ଶ, ମାନ, ଏହିପରି, ପ୍ରକର୍ଷ, ଉପକ୍ରମଆଦି ।

ଇତିକ—ବିଂ. ଗମନବିଶିଷ୍ଟ ।

ଇତିକଥା—ବିଂ. ( ବ.ବ୍ରୀ ) ଅଶ୍ରଦ୍ଧେୟ, ଅବିଶ୍ୱାସ,ନଷ୍ଟ,ଅର୍ଥଶୂନ୍ୟ ବାକ୍ୟର ବକ୍ତା ।

ଇତିକଥା—ସ୍ତ୍ରୀ.ବି. ଅର୍ଥଶୂନ୍ୟ କଥା, ଉପକଥା ବୃଥାକଥା, ଅଶ୍ରଦ୍ଧେୟ କଥା, ଏହା କଥାମାତ୍ର ।

ଇତିକର୍ତ୍ତବ୍ୟ—ବିଂ.(ଇତି + କୃ + ତବ୍ୟ) କରିବାର ଯୋଗ୍ୟ,ଆବଶ୍ୟକ,କର୍ତ୍ତବ୍ୟ-କର୍ତ୍ତବ୍ୟ ନିର୍ଦ୍ଧାରଣ ।

ଇତିକର୍ତ୍ତବ୍ୟତା—ସ୍ତ୍ରୀ. ବି. (ଇତିକର୍ତ୍ତବ୍ୟ + ତା) ଇତିକର୍ତ୍ତବ୍ୟ, ବାଧ୍ୟତା, ଏହା କରିବା ଉଚିତକର୍ମ, ଏହାର ଔଚିତ୍ୟ ।

ଇତିକର୍ତ୍ତବ୍ୟବିମୂଢ଼—ପୁଂ ବି. (ଷତତ୍) କର୍ତ୍ତବ୍ୟ ଅବଧାରଣରେ ଅସମର୍ଥ, (ସ୍ତ୍ରୀ) ଇତିକର୍ତ୍ତବ୍ୟବିମୂଢ଼ା ।

ଇତିକାର୍ଯ୍ୟତା—ସ୍ତ୍ରୀ. ବି. ଇତିକର୍ତ୍ତବ୍ୟ, ଆବଶ୍ୟକ ।

ଇତିମଧ୍ୟେ—ଅବ୍ୟ. ଏହି ଅବସର ମଧ୍ୟରେ, ଏହି ସମୟେ, ଏମନ୍ତ ସମୟରେ, ଏଥିମଧ୍ୟେ ।

ଇତିମାତ୍ର—କ୍ଲୀ. ବିଂ. ( ଇତି + ମାତ୍ର ) ଏତନ୍ମାତ୍ର, ଏତତ୍ ପରିମାଣ, ଏତାବତ୍ ।

ଇତିବତ୍—ଅବ୍ୟ. (ଇତି + ବତ୍) ଏହିପରି ଏହିରୂପ

ଇତିବୃତ୍ତ—କ୍ଲୀ. ବି. ପୁରାଣଶାସ୍ତ୍ର, ଏହି ପରି ଚରିତ୍ର, ଇତିହାସ, ପୂର୍ବବୃତ୍ତାନ୍ତ, ବର୍ଣ୍ଣନା, ଘଟନା ।

ଇତିଶ—ପୁଂ. ବି. ଋଷିବିଶେଷଙ୍କର ଗୋତ୍ରାପତ୍ୟ ।

ଇତିହ—ଅବ୍ୟ. (ଇତି + ହ) ପ୍ରାଚୀନ କଥା, କିମ୍ବଦନ୍ତୀ, ଗଳ୍ପ, ଜନଶ୍ରୁତି, ପ୍ରବଚନ, ଢଗ ।

ଇତିହା—ସ୍ତ୍ରୀ.ବି. ଜନଶ୍ରୁତି, କିମ୍ବଦନ୍ତୀ, ପ୍ରବଚନ, ପୁରାତନ କଥା ।

ଇତିହାସ—ପୁଂ. ବି. (ଇତିହ + ଅସ + ଅ) ପୂର୍ବବୃତ୍ତ, ପ୍ରାଚୀନ ଆଖ୍ୟାନ, ଅତୀତକାଳ ଘଟନା ।

ଇତିହାସଜ୍ଞ—ପୁଂ. ବି. (ଇତିହାସ + ଜ୍ଞା + ଅ) ଇତିହାସଶାସ୍ତ୍ରରେ ପଣ୍ଡିତ, ପୂର୍ବବୃତ୍ତ ବିଷୟରେ ଜ୍ଞାନୀ ।

ଇତିହାସନିବନ୍ଧ (ନ)—ପୁଂ. କ୍ଲୀ ବି. ଉପାଖ୍ୟାନଗ୍ରନ୍ଥ, ପୌରାଣିକ ସନ୍ଦର୍ଭ ।

ଇତିହାସବାଦ—ପୁଂ. ବି. ପୁରାବୃତ୍ତ ।

ଇତିହାସବିତ୍—ପୁଂ. ବିଂ. (ଇତିହାସ-ବିଦ୍ + କ୍ୱିପ୍) ଇତିହାସଜ୍ଞ ।

ଇତୁରୁଡ଼ି—ପ୍ରା.ବି. ଅର୍କାଦିବର୍ଗର ବନ୍ୟ ରୋହିଣୀ, ଏକଜାତୀୟ ଲତା ।

ଇତୋମଧ୍ୟେ—ଗ୍ରା. ଏ ମଧ୍ୟରେ, ଏହି ସମୟରେ ।

ଇତ୍କଟ—ପୁଂ. ବି. ଇଙ୍କଡ଼ (ଦେଖ) ।

ଇତ୍କୀଲା—ସ୍ତ୍ରୀ. ବି. ରୋଚନାନାମକ ସୁଗନ୍ଧ ଦ୍ରବ୍ୟ ।

ଇତ୍ଥଂ—ଅବ୍ୟ. (ଇଦମ୍ + ଥମ୍) ଏହି ପ୍ରକାର, ଏହିପରି ।

ଇତ୍ଥଂକାର—ଅବ୍ୟ. (ଇତ୍ଥଂ + କୃ + ଣମୁଲ୍) ଏହିପରି ବା ଏହିପ୍ରକାରେକରି ।

ଇତ୍ଥଂଭାବ—ପୁଂ. ବି. (ଇତ୍ଥଂ + ଭୂ + ଅ)ପାଇବା,କୌଣସିପ୍ରକାର ପ୍ରାପ୍ତି ।

ଇତ୍ଥଂଭୂତ—ବିଂ. (ଇତ୍ଥଂ + ଭୂ + ତ) କୌଣସି ପ୍ରକାର ପ୍ରାପ୍ତି, ଏବଂଭୂତ, ଏହିପ୍ରକାରେ ଜାତ, ଇଦୃଶ, ଏହିରୂପ, ଏହି ପ୍ରକାର ।

ଇତ୍ଥଂବିଧ—ବିଂ. ଏହିପରି, ଏପରି ।

ଇତ୍ଥଂଶାଲ—ଯା. ବି. ଜ୍ୟୋତିଷୋକ୍ତ ତାଜିକ ଯୋଗ ।

ଇତ୍ଥା—ଅବ୍ୟ. ସତ୍ୟ. ଏହିପ୍ରକାର, ଏହିପରି ।

ଇତ୍ଥାଧୀ—ପୁଂ.ବିଂ.(ବ.ବ୍ରୀ)ସତ୍ୟପରାୟଣ, ଦୃଢ଼ବୁଦ୍ଧି, ସୁଧୀ ।

ଇତ୍ଫାକ—ଯା. ବି. ବାକ୍ୟ ।

ଇତ୍ୟ—ବିଂ.(ଇଣ୍ + ଯ) ଗମନଯୋଗ୍ୟ, ଯେ ସ୍ଥାନକୁ ଯିବାକୁ ହୁଏ, ଗମ୍ୟ, (ସ୍ତ୍ରୀ) ଇତ୍ୟା ।

ଇତ୍ୟକ—ପୁଂ.ବି.) (ଇତ୍ୟ+କୈ+ଅ ଗମନ, ଦ୍ୱାରପାଳ । [ପାଇଁ ।
ଇତ୍ୟର୍ଥଂ—ଅବ୍ୟ. ଏହି ନିମିତ୍ତ, ଏଇଥି-
ଇତ୍ୟବସରେ—କ୍ରି. ବିଂ. ଏହିସମୟରେ, ଏହି ସୁବିଧାରେ, ଇତିମଧ୍ୟରେ ।
ଇତ୍ୟା—ସ୍ତ୍ରୀ.ବି.(ଇଣ୍+ଯ+ଆ)ଶିବିକା, ଗମନକରିବା, ଗ୍ରା. ବି. ଯଶୋହର ନିକଟବର୍ତ୍ତୀ ଗ୍ରାମବିଶେଷ, ଏଠାରେ ଖଜୁରି ଗୁଡ଼, ଚିନି ଓ ତମାଖୁ ଉତ୍ପନ୍ନ ହୁଏ ।
ଇତ୍ୟାକାର—ବିଂ.(ବ.ବ୍ରୀ.) ଏହି ପ୍ରକାରରେ ଏବଂଭୂତ, ଏତଦ୍‌ବିଧ ।
ଇତ୍ୟାଦି—ବି. ବ.ବ୍ରୀ.; (ଇତି+ଆଦି) ଏହିସକଳ, ପ୍ରଭୃତି, ସମସ୍ତ, ଏବଂ, ଏହିପରି ଅନ୍ୟାନ୍ୟ ।
ଇତ୍ୟୁକ୍ତ—ବିଂ.(ଇତି+ବଚ୍+ତ) ଏହିପରି କଥିତ, ଏହି ସକଳ କଥିତ ।
ଇତ୍ୱର—ପୁଂ. ବିଂ. (ଇ+ବର) ପଥିକ, ନୀଚ, ଦରିଦ୍ର, କ୍ରୂରକର୍ମା, ନିଷ୍ଠୁର, ଇଚ୍ଛାନୁସାରେ ଗମନକାରୀ, ସର୍ବତ୍ର ଗମନଶୀଳ, (ବି) ବୃଷ, ଷଣ୍ଢ ।
ଇତ୍ୱରୀ—ସ୍ତ୍ରୀ.ବି.(ଇ+ବର+ଈ)ଅସତୀ ସ୍ତ୍ରୀ, ଅଭିସାରିକା, କୁଳଟା, [ଭ୍ରଷ୍ଟା ସ୍ତ୍ରୀ ।
ଇତ୍ୱା—ଅ. କ୍ରି. (ଇ+କ୍ତ୍ୱା) ଗମନକରି
ଇଦ୍—ଯା. ବି. ମୁସଲମାନମାନଙ୍କର ପର୍ବବିଶେଷ ।
ଇଦ୍‌ଗା—ଯା. ବି. ଇଦପର୍ବ ସମୟରେ ମୁସଲମାନମାନେ ଏକତ୍ର ହୋଇ ଯେଉଁଠାରେ ନମାଜ କରନ୍ତି ।
ଇଦ୍—(ଧାତୁ) ପରମୈଶ୍ୱର୍ଯ୍ୟ ।
ଇଦଂ—ସର୍ବ.(ଇଦମ୍+ଅମ୍) ଏହା, ଏହି, ସମ୍ମୁଖସ୍ଥଦୃଶ୍ୟ, ବୁଦ୍ଧିର ବିଷୟଯୋଗ୍ୟ ।
ଇଦକାର୍ଯ୍ୟା—ସ୍ତ୍ରୀ. ବି. ହରିଲଜ୍ଜାଳତା, ଦୁଲ୍ଲଭା ।
ଇଦନ୍ତନ—ବିଂ. ଇଦାନୀନ୍ତନ, ଆଧୁନିକ, ନବ୍ୟ, ଏହିକ୍ଷଣି ।
ଇଦନ୍ତା—ସ୍ତ୍ରୀ. ବି. ଅଙ୍ଗୁଳିପ୍ରଭୃତିଦ୍ୱାରା ଦେଖାଇବାର ବିଷୟ ।
ଇଦଂରୂପେ—କ୍ଳୀ. ବି. ଏହିପରି, ଏପରି ।
ଇଦଂବିଦ୍—ପୁଂ.ବିଂ. (ଇଦଂ+ବିଦ+କ୍ୱିପ୍) ଯେ ଏହା ଜାଣେ, ଏହାକୁ ଯେ ଜାଣେ ।
ଇଦମ୍ମୟ—ପୁଂ. ବି. (ଇଦମ୍+ମୟ) ଏହାଦ୍ୱାରା ପ୍ରସ୍ତୁତ । [ନିଷ୍ପନ୍ନତା ।
ଇଦମିତ୍ଥ- ଗ୍ରା.ବି.(ଫ-ଇଦଂ+ଇତ୍ଥଂ)
ଇଦମୀୟ—ବିଂ. (ଇଦମ୍+ଈୟ) ଏତତ୍ସମ୍ବନ୍ଧୀୟ, ଏତଦୀୟ ।
ଇଦା—ଅବ୍ୟ. (ଇଦମ୍+ଦା) ନବ, ନୂତନ, ନୂଆ ।
ଇଦା—ସ୍ତ୍ରୀ.ବି. (ଇ+କ୍ୱିପ୍+ଆ)ସମ୍ବତ୍ସରାଦି ବର୍ଷପଞ୍ଚକଅନ୍ତର୍ଗତ ତୃତୀୟବତ୍ସର ।
ଇଦାନୀ—ଅବ୍ୟ. (ଇଦମ୍+ଦାନୀ) ଅଧୁନା, ସମ୍ପ୍ରତି, ବର୍ତ୍ତମାନ, ଏକ୍ଷଣି, ଏକାଳେ, ଏ ସମୟେ ।
ଇଦାନୀଂ—(ଅବ୍ୟ) ସାମ୍ପ୍ରତଂ,ଅଳ୍ପଦିନ ହେଲା, ଏହିକ୍ଷଣି, ଏହି ସମୟରେ ।
ଇଦାନୀନ୍ତନ—(ଅବ୍ୟ) ବିଂ. ବର୍ତ୍ତମାନ, ଆଧୁନିକ, ନବ୍ୟ, ଏବେ ଘଟିଥିବା, ଅନତିପୂର୍ବକାଳୀନ, ସାମ୍ପ୍ରତିକ ।
ଇଦାବତ୍ସର—ପୁଂ. ବି. ବୃହସ୍ପତିଙ୍କ ଗତି ଅନୁସାରେ ପ୍ରତି ୬୦ ବର୍ଷରେ ୧୨ ଗୋଟି ଯୁଗ ହୁଏ; ପ୍ରତିଯୁଗରେ ପାଞ୍ଚ ବର୍ଷ ଥାଏ; ଏହି ପାଞ୍ଚବର୍ଷ ମଧ୍ୟରୁ ତୃତୀୟ ବର୍ଷର ନାମ ।
ଇଦୁବତ୍ସର—ପୁଂ. ବି. (ଇଦ୍+ଉ+ବତ୍ସର) ଇଦାବତ୍ସର (ଦେଖ) ।
ଇଦ୍ଦତ୍—ଯା. ବିଂ ମୁସଲମାନ ବିଧବା ବିବାହ ନିଷେଧର ନିର୍ଦ୍ଦିଷ୍ଟ କାଳ ।
ଇଦ୍ଧ—କ୍ଳୀ. ବି. (ଇନ୍ଧ୍+ତ) ରୌଦ୍ର, ଦୀପ୍ତି, ଆଶ୍ଚର୍ଯ୍ୟ, ସମୂହ ।
ଇଦ୍ଧ—ବିଂ. (ଇନ୍ଧ୍+କ,ତ) ପ୍ରଜ୍ୱଳିତ, ଦଗ୍ଧ, ଦୀପ୍ତ, ନିର୍ମଳ, ପରିଷ୍କୃତ, ପ୍ରଚଣ୍ଡ, ଅପ୍ରତିହତ ।
ଇଦ୍ଧଦୀଧିତି—ପୁଂ.ବି. ଅଗ୍ନି ।
ଇଦ୍ଧା—ଅବ୍ୟ.(ଇନ୍ଧ୍+ତ+ଆ)ପ୍ରକାଶ୍ୟ
ଇଦେଟ୍‌କୋରବାନ୍—ଯା.ବି. ମୁସଲମାନମାନଙ୍କର ବକରୀଦ୍‌ପର୍ବବିଶେଷ, ଏହି ପର୍ବରେ ଛେଳି, ଗୋରୁ ଓ ଓଟ ବଳି ଦେବାର ବିଧି କୋରାନ୍‌ରେ ଅଛି ।
ଇଧ୍ମ—କ୍ଳୀ.ବି.(ଇଧ୍+ମ) ଜାଳନକାଠ, ଯଜ୍ଞୀୟ ସମିଧ, (ପୁଂ) ପ୍ରିୟବ୍ରତର ପୁତ୍ର, ଉଦ୍ଦୀପନ ।
ଇଧ୍ମଜିହ୍ୱ—ପୁଂ. ବି. (ବ.ବ୍ରୀ.) ଅଗ୍ନି, ସର୍ବଭକ୍ଷ, ନିଆଁ ।
ଇଧ୍ମବାହ—ପୁଂ.ବି. (ଇଧ୍ମ+ବହ+ଅ) ଦୃଢ଼ସ୍ୟୁ, ଅଗସ୍ତ୍ୟଙ୍କର ପୁତ୍ର, ଋଷିବିଶେଷ ।
ଇଧ୍ମବ୍ରଶ୍ଚନ—ପୁଂ. ବିଂ. ଇନ୍ଧନଚ୍ଛେଦକ (କୁଠାରାଦି) ।
ଇନ୍—ପ୍ରତ୍ୟୟ ବିଶେଷ,ଯଥା—ଗମ+ଇନ୍—ଗମୀ କ୍ଷମ+ଇନ୍=କ୍ଷମୀ, ଇତ୍ୟାଦି ।
ଇନ୍ତିଜାର—ଯା. ବି. ପ୍ରତୀକ୍ଷା, ଅନ୍ୟର ମନ ଯୋଗାଇବା, ବେଠି, ଅନୁସରଣ ।
ଇନ୍ତାନ୍—ଯା. ବି. ପରୀକ୍ଷା ।
ଇନ—ପୁଂ.ବି. (ଇନ୍+ଅ, ରାଜା,ପ୍ରଭୁ, ସୂର୍ଯ୍ୟ, ହସ୍ତାନକ୍ଷତ୍ର, ଈଶ୍ୱର, ସ୍ୱାମୀ ।
ଇନର୍—ଗ୍ରା. (ସମ୍ବ ବି. ଅତ୍ରତ୍ୟ, ଏ ସ୍ଥାନର, ଏ ସମୟର ।
ଇନାମ୍—ଯା. ବି. ପୁରସ୍କାର, ଉପହାର, (ପ୍ରା—ଗଞ୍ଜାମ) ଜାଗିର ଜମି, ନାଖରାଜ ଜମି ।
ଇନାମ୍‌ଦାର—ଯା. ବି. ଜାଗିରଦାର, ଯେ ରାଜକୀୟ ପୁରସ୍କାର ପାଇଥାଏ ।
ଇନାମୀ—ସ୍ତ୍ରୀ. ବି. ବଟପତ୍ରୀ ବୃକ୍ଷ ।
ଇନୁ—ପ୍ରା. (ସମ୍ବ) ଅବ୍ୟ, ଏଣୁ, ଏହି ଯୋଗୁଁ, ଏ ଉପରୁ, ଏହିଠାରୁ ।
ଇନେ—ପ୍ରା. (ସମ୍ବ) ଅବ୍ୟ, ଏଣେ, ଏଥି, ଏଠାରେ ।

ଇନେକେ—ଗ୍ରା.(ସମ୍ପୃ) ଅବ୍ୟ. ଏଠାକୁ, ଏବେଗକୁ, ଏଣିକି, ଆଜିକାଲିକି ।
ଇନ୍ତଜାମ୍—ଯା.ବି. ନସ୍ତମ, ବନ୍ଦୋବସ୍ତ, ବ୍ୟବସ୍ଥା ।
ଇନ୍ତଜାର—ଯା.ବି. ପ୍ରତୀକ୍ଷା, ଭରସା ।
ଇନ୍ତହା—ଯା. ବି. ଶେଷ, ସୀମା ।
ଇନ୍ଥିହା—ସ୍ତ୍ରୀ. ବି. ତାଳକୋଳ୍ପ ମୁଖହା ।
ଇନ୍ଦର—ଗ୍ରା. ବି. (ସଂ-ଅନ୍ଧୁ) କ୍ଷୁଦ୍ର ଜଳାଶୟ, କୂଅ, ଗାଡ ।
ଇନ୍ଦନ୍ଦ୍ବର—କ୍ଲୀ.ବି. ଇନ୍ଦ୍+ଅ+ବର ନୀଳପଦ୍ମ (ପୁଂ) ଭ୍ରମର ମଧୁକର ।
ଇନ୍ଦାର—ଯା. ବି. କ୍ଷୁଦ୍ର ଜଳାଶୟ,କୂପ, ଗଡ଼ି । [କମଳା ।
ଇନ୍ଦି—ସ୍ତ୍ରୀ.ବି.(ଇନ୍ଦ୍+ଇ) ଇନ୍ଦୀ,ଲକ୍ଷ୍ମୀ,
ଇନ୍ଦିରା—ସ୍ତ୍ରୀ. ବି. (ଇନ୍ଦ+ଇର୍+ଆ) ଲକ୍ଷ୍ମୀ, କମଳା ।
ଇନ୍ଦିନ୍ଦିର—ପୁଂ. ବି. ଭ୍ରମର, ଷଟ୍ପଦ ।
ଇନ୍ଦିରାମନ୍ଦିର—ପୁଂ.କ୍ଲୀ.ବି.ଲକ୍ଷ୍ମୀମନ୍ଦିର, ବିଷ୍ଣୁ ।
ଇନ୍ଦିରାଳୟ—ପୁଂ.କ୍ଲୀ.ବି. ପଦ୍ମ, ନୀଳୋତ୍ପଳ, ପଙ୍କଜବନ ।
ଇନ୍ଦିବର—କ୍ଲୀ.ବି. ନୀଳୋତ୍ପଳ, ନୀଳ ପଦ୍ମ । [କୁବଳୟ ।
ଇନ୍ଦିବର—କ୍ଲୀ. ବି. ନୀଳପଦ୍ମ, ନୀଳକଇଁ,
ଇନ୍ଦୀବର(ବାର)—କ୍ଲୀ. ବି. ନୀଳପଦ୍ମ, ସାଧାରଣଉତ୍ପଳ,ପଦ୍ମଲତା, ନୀଳକଇଁ ।
ଇନ୍ଦୀବରା—ସ୍ତ୍ରୀ.ବି. ଶତମୂଳୀ,ଛତୁଆସି ।
ଇନ୍ଦୀବରଣୀ—ସ୍ତ୍ରୀ. ବି. ପଦ୍ମଲତା ।
ଇନ୍ଦୀବାର—ପୁଂ. ବି. ନୀଳପଦ୍ମ ।
ଇନ୍ଦୁ—ପୁଂ.ବି.(ଇନ୍ଦ୍+କ.ଉ)ଚନ୍ଦ୍ର, ମୃଗଶିରାନକ୍ଷତ୍ର,ଏକସଂଖ୍ୟାବୋଧକ,କର୍ପୂର ।
ଇନ୍ଦୁକ—ପୁଂ.ବି.(ଇନ୍ଦ୍+ଉକ)ଅଶ୍ମନ୍ତକ ବୃକ୍ଷ ।
ଇନ୍ଦୁକକ୍ଷା—ସ୍ତ୍ରୀ.ବି.ରାଶିଚକ୍ରସ୍ଥଚନ୍ଦ୍ରମଣ୍ଡଳ, ଚନ୍ଦ୍ରକକ୍ଷର ପରିମାଣ ୩୨୪୦୦୦ ଯୋଜନ ।

ଇନ୍ଦୁକମଳ—କ୍ଲୀ. ବି. (କ.ଧା)ଶୁକ୍ଳପକ୍ଷ ।
ଇନ୍ଦୁକଳା—ସ୍ତ୍ରୀ. ବି. (୬ତତ୍ପୁ)ଚନ୍ଦ୍ରକଳା, ଚନ୍ଦ୍ରଙ୍କର ଷୋହଳ ଭାଗରୁ ଏକଭାଗ କଳା, ଗୁଡୁଚୀ ।
ଇନ୍ଦୁକଳାବଟିକା—ସ୍ତ୍ରୀ. ବି. ବୈଦ୍ୟୋକ୍ତ ଔଷଧବିଶେଷ ।
ଇନ୍ଦୁକଳିକା—ସ୍ତ୍ରୀ.ବି.(ବ.ବ୍ରୀ) କିଆଫୁଲ, ଚନ୍ଦ୍ରକଳା, କେତକୀ । [ମଣି ।
ଇନ୍ଦୁକାନ୍ତ—ପୁଂ ବି. (ବ.ବ୍ରୀ)ଚନ୍ଦ୍ରକାନ୍ତ-
ଇନ୍ଦୁକାନ୍ତା—ସ୍ତ୍ରୀ. ବି. (ବ.ବ୍ରୀ) କିଆ, ନକ୍ଷତ୍ର, ଯାମିନୀ, ତାରକା, କେତକୀ ।
ଇନ୍ଦୁକାନ୍ତା—ସ୍ତ୍ରୀ.ବି. ଚନ୍ଦ୍ରପ୍ରିୟା,ରୋହିଣୀ ରାତି ।
ଇନ୍ଦୁକିରୀଟ—ପୁଂ. ବି. (ବ.ବ୍ରୀ) ଶିବ ।
ଇନ୍ଦୁକ୍ଷୟ—ପୁଂ. ବି. (ଇନ୍ଦୁ+କ୍ଷି+ଅ) ଅମାବାସ୍ୟା, ଚନ୍ଦ୍ରକ୍ଷୟ, ଅମାବସ୍ୟା ।
ଇନ୍ଦୁଜ—ପୁଂ. ବି. (ଇନ୍ଦୁ+ଜନ୍+ଅ) ବୁଧ, ଚନ୍ଦ୍ରତନୟ ।
ଇନ୍ଦୁଜନକ—ପୁଂ.ବି.(୬ତତ୍ପୁ) ଅତ୍ରିମୁନି, ସମୁଦ୍ର, ସାଗର ।
ଇନ୍ଦୁଜା—ସ୍ତ୍ରୀ. ବି. (ଇନ୍ଦୁ+ଜନ୍+ଅ +ଆ) ନର୍ମଦା ନଦୀ, ରେବାନଦୀ ।
ଇନ୍ଦୁଦଳ—କ୍ଲୀ.ବି,(୬ତତ୍ପୁ) ଚନ୍ଦ୍ରକଳା ।
ଇନ୍ଦୁନିଭ—ବିଂ. ଚନ୍ଦ୍ରୋପମ ।
ଇନ୍ଦୁନିଭାନନ—ବିଂ. (ଇନ୍ଦୁ+ନିଭ+ ଆନନ) ଚନ୍ଦ୍ରବଦନ, (ସ୍ତ୍ରୀ) ନିଭାନନା, ଚନ୍ଦ୍ରବଦନା ।
ଇନ୍ଦୁପୁତ୍ର—ପୁଂ.ବି. (୬ତତ୍ପୁ) ବୁଧଗ୍ରହ ।
ଇନ୍ଦୁପୁଷ୍ପିକା—ସ୍ତ୍ରୀ. ବି. (ବ.ବ୍ରୀ) ବିଷଲାଙ୍ଗଳା, ବିଷଲାଙ୍ଗଳିଆ ଗଛ ।
ଇନ୍ଦୁପୂର୍ଣ୍ଣିମା—ଗ୍ରା.ବି.ଭାଦ୍ରବମାସରପୂର୍ଣ୍ଣିମା ।
ଇନ୍ଦୁଭ—କ୍ଲୀ. ବି. ମୃଗଶିରା ନକ୍ଷତ୍ର, କର୍କଟରାଶି ।
ଇନ୍ଦୁଭା - ସ୍ତ୍ରୀ. ବି. (ଇନ୍ଦୁ+ଭା+ଅ+ ଆ) କୁମୁଦିନୀ, ଚନ୍ଦ୍ରକରଣ ।
ଇନ୍ଦୁଭୂଷଣ—ପୁଂ.ବି.(ବ.ବ୍ରୀ) ନୀଳପଦ୍ମ, ମହାଦେବ, ଶଙ୍କର, ଶିବ ।

ଇନ୍ଦୁଭୃତ୍- ପୁଂ.ବି.(ଇନ୍ଦୁ+ଭୃ+କ୍ୱିପ୍) ଶିବ, ମହାଦେବ, ମହେଶ୍ୱର, ଚନ୍ଦ୍ରଚୂଡ଼ ।
ଇନ୍ଦୁମଣି—ପୁଂ.ବି.ଚନ୍ଦ୍ରକାନ୍ତମଣି,ମୁକ୍ତା ।
ଇନ୍ଦୁମଣ୍ଡଳ—ବି. ଚନ୍ଦ୍ରବିମ୍ବ, ମଣ୍ଡଳାକାର ପଦାର୍ଥ, ଚନ୍ଦ୍ରମଣ୍ଡଳ ପରିମାଣ ୪୮୦ ଯୋଜନ ।
ଇନ୍ଦୁମାନ୍—ପୁଂ.ବି. (ଇନ୍ଦୁ+ମତୁ)ଶିବ, ମୟୂର ।
ଇନ୍ଦୁମତୀ—ସ୍ତ୍ରୀ.ବି. (ଇନ୍ଦୁ+ମତୁ+ଈ) ପୃଥିବୀ, ପୂର୍ଣ୍ଣିମା, ଅଜରାଜାଙ୍କର ପତ୍ନୀ, ଦଶରଥଙ୍କର ମାତା ।
ଇନ୍ଦୁମୁଖୀ—ସ୍ତ୍ରୀ.ବିଂ.(ବ.ବ୍ରୀ)ଚନ୍ଦ୍ରବଦନା, ଚନ୍ଦ୍ରମୁଖୀ ।
ଇନ୍ଦୁମୌଳି—ପୁଂ.ବି.(ବ.ବ୍ରୀ)ମହାଦେବ, ଶିବ ।
ଇନ୍ଦୁର—ପୁ.ବି.(ଇନ୍ଦ୍+ଉର)ମୂଷିକ, ମୂଷା, ଆଖୁ ।
ଇନ୍ଦୁରତ୍ନ—କ୍ଲୀ. ବି. (ମଧ୍ୟ.କଧ)ମୁକ୍ତା ।
ଇନ୍ଦୁରାଜ—ପୁଂ. ବି. (ଇନ୍ଦୁ+ରାଜ୍+ କ୍ୱିପ୍) ଚନ୍ଦ୍ରକାନ୍ତମଣି, କୁମୁଦ ।
ଇନ୍ଦୁରେଖା—ସ୍ତ୍ରୀ. ବି. (୬ତତ୍ପୁ) ଚନ୍ଦ୍ରଖଣ୍ଡ, ରାଧିକାଙ୍କର ସଖୀବିଶେଷ, ଚନ୍ଦ୍ରକଳା,ସୋମଲତା,ଗୁଳୁଚ,ଯୁଆଣୀ ।
ଇନ୍ଦୁଲେଖା—ସ୍ତ୍ରୀ. ବି. (୬ତତ୍ପୁ) ଇନ୍ଦୁରେଖାଶବ୍ଦାର୍ଥ, ଯୁଆଣୀ, ଗୁଳୁଚୀ, ସୋମଲତା ।
ଇନ୍ଦୁଲୋକ—ପୁଂ. ବି. ଚନ୍ଦ୍ରଲୋକ ।
ଇନ୍ଦୁଲୋହକ—କ୍ଲୀବି.(ଇନ୍ଦୁ+ଲୋହ+ କ) ରୌପ୍ୟ, ଶୁଭ୍ରବର୍ଣ୍ଣ ଲୁହା ।
ଇନ୍ଦୁଲୌହ—କ୍ଲୀ. ବି. ଲୌହଧାତୁ ।
ଇନ୍ଦୁବଟୀ—( ମେହ ଓ ବାତରୋଗର ) ବୈଦ୍ୟକ ଔଷଧ ବିଶେଷ ।
ଇନ୍ଦୁବଦନ—ପୁଂ.ବି.(ବ.ବ୍ରୀ) ଚନ୍ଦ୍ରାନନ ।
ଇନ୍ଦୁବଦନା—ସ୍ତ୍ରୀ.ବି. ଚନ୍ଦ୍ରମୁଖୀ, ବୃତ୍ତରତ୍ନାକରୋକ୍ତ ଛନ୍ଦୋବିଶେଷ ।
ଇନ୍ଦୁବଲ୍ଲୀ—ସ୍ତ୍ରୀ. ବି. ( ଇନ୍ଦୁ+ବଲ୍ଲୀ ) ସୋମଲତା ।

ଇନ୍ଦୁବାର—ପୁଂ. ବି. ମନୁମାଛି, ସମସ୍ତ ଗ୍ରହମାନଙ୍କର ଅବସ୍ଥାନରୂପ ଯୋଗ-ବିଶେଷ ।

ଇନ୍ଦୁବାସର—ପୁଂ. ବି. ସୋମବାର ।

ଇନ୍ଦୁବ୍ରତ—କ୍ଳୀ. ବି. ଚାନ୍ଦ୍ରାୟଣ ବ୍ରତ, ପ୍ରାୟଶ୍ଚିତ୍ତବିଶେଷ ।

ଇନ୍ଦୁଶେଖର—ପୁଂ. ବି. (ବ.ବ୍ରୀ) ମହାଦେବ, ଚନ୍ଦ୍ରଚୂଡ଼, ଶିବ ।

ଇନ୍ଦୁଶେଖର ରସ—ବୈଦ୍ୟକ ଔଷଧ-ବିଶେଷ । [ଆଖୁ ।

ଇନ୍ଦୁର—ପୁଂ.ବି. ମୂଷିକ, ମୂଷା, ଇନ୍ଦୂର,

ଇନ୍ଦୋର—ଗ୍ରା. ବି. ସୁବିଖ୍ୟାତ ନଗର-ବିଶେଷ ।

ଇନ୍ଦ୍ର—ପୁଂ. ବି. (ଇନ୍ଦ୍+କ.ର) ଆତ୍ମା, ସ୍ୱର୍ଗଂ, କୂଟଜ, ସିନ୍ଦୁବାର, ସୂର୍ଯ୍ୟ, ଶଙ୍କ, ରାଜି, ଯୋଗବିଶେଷ, ଦେବରାଜ, ପ୍ରଭୁ, ଅଧିପତି,ଦ୍ୱୀପବିଶେଷ, (ବିଂ) ମହାଧନୀ, ପ୍ରଧାନ, ଶ୍ରେଷ୍ଠ ।

ଇନ୍ଦ୍ରକ—କ୍ଳୀ. ବି. (ଇନ୍ଦ୍ର+କୈ+ଅ) ସଭାଗୃହ, ମନ୍ଦରଗିରି, ଇନ୍ଦ୍ରଙ୍କର ସୁଖ, ଆସ୍ଥାନ, ଗୃହ ।

ଇନ୍ଦ୍ରକର୍ମ୍ମା—ପୁଂ. ବି. (ବ.ବ୍ରୀ) ବିଷ୍ଣୁ ।

ଇନ୍ଦ୍ରକୀଲ—ପୁଂ. ବି. (ଇନ୍ଦ୍ର+କୀଲ) ମନ୍ଦର ପର୍ବତ, ପର୍ବତବିଶେଷ ।

ଇନ୍ଦ୍ରକୁଞ୍ଜର—ପୁଂ. ବି. (୬ତତ୍) ଐରାବତ ହସ୍ତୀ ।

ଇନ୍ଦ୍ରକୂଟ—ପୁଂ. ବି. କୈଳାସ ପର୍ବତ ନିକଟରେ ଥିବା ଗୋଟିଏ ପର୍ବତ ।

ଇନ୍ଦ୍ରକୃଷ୍ଟ—ବିଂ. (ଇନ୍ଦ୍ର+କୃଷି+ତ) ଇନ୍ଦ୍ରକର୍ଷିତ, ବୃଷ୍ଟିହେଲେ ଯେଉଁ ଧାନ୍ୟାଦି ସ୍ୱଭାବରେ ଉତ୍ପନ୍ନ ହୁଏ ।

ଇନ୍ଦ୍ରକେତୁ—ପୁଂ. ବି. ବିମାନର ଧ୍ୱଜ ।

ଇନ୍ଦ୍ରକୋଷ—ପୁଂ. ବି (ଇନ୍ଦ୍ର+କୋଷ) ମଞ୍ଚ,ମଞ୍ଚା,ଖୁଣ୍ଟି,ଖଟ, ବାରଣ୍ଡା,ପଲଙ୍କ ।

ଇନ୍ଦ୍ରଗିରି—ପୁଂ. ବି. ମହେନ୍ଦ୍ର ପର୍ବତ, ଏହିପର୍ବତ କୁଳପର୍ବତ ମଧ୍ୟରେ ଗଣ୍ୟ ।

ଇନ୍ଦ୍ରଗୁରୁ—ପୁଂ. ବି. (୬ତତ୍) ବୃହସ୍ପତି, କଶ୍ୟପ ।

ଇନ୍ଦ୍ରଗୋପ—ପୁଂ. ବି. ମଖମଲି, ସାଧବ ପୋକ, ରକ୍ତବର୍ଣ୍ଣ, ଏକପ୍ରକାର ପୋକ, (ସାଦା ଓ ନାଲି ୨ ପ୍ରକାର) ।

ଇନ୍ଦ୍ରଗୋବିନ୍ଦ ଚୁନ୍ଦୁଆ—ଗ୍ରା. ବି. ଏକ ପ୍ରକାର ଉତ୍କୃଷ୍ଟ କାରୁକାର୍ଯ୍ୟ-ଖଚିତ ଚୁନ୍ଦୁଆ ।

ଇନ୍ଦ୍ରଘୋଷ—ପୁଂ. ବି. (ଇନ୍ଦ୍ର+ଘୁଷ୍+ଅ) ଇନ୍ଦ୍ର, ବାସବ ।

ଇନ୍ଦ୍ରଚନ୍ଦ—କ୍ଳୀ. ବି. ଏକପ୍ରକାର ଅସ୍ତ୍ର, ଆୟୁଧବିଶେଷ ।

ଇନ୍ଦ୍ରଚନ୍ଦନ—କ୍ଳୀ. ବି. (୬ତତ୍) ହରି-ଚନ୍ଦନ, ଶ୍ୱେତଚନ୍ଦନ ।

ଇନ୍ଦ୍ରଚନ୍ଦ୍ରନମାନିବା—ଗ୍ରା. କ୍ରି. କୌଣସି ବ୍ୟକ୍ତି ବା ଗୁରୁଜନମାନଙ୍କୁ ଗ୍ରାହ୍ୟ ବା ଖାତିର୍ ନ କରିବା ।

ଇନ୍ଦ୍ରଚାପ—ପୁଂ. ବି. (୬ତତ୍) ଇନ୍ଦ୍ରଧନୁ, ଇନ୍ଦ୍ରଶରାସନ, ଆର୍ଦ୍ଧାଳୁ ।

ଇନ୍ଦ୍ରଚିର୍ଭିଟୀ—ସ୍ତ୍ରୀ. ବି. ଏକପ୍ରକାର ଲତା, ଇନ୍ଦ୍ରବାରୁଣୀ, ମହାକାଲ ଲତା ।

ଇନ୍ଦ୍ରଚ୍ଛନ୍ଦ—କ୍ଳୀ. ବି. ସହସ୍ର ଗୋଛିଆ ହାର, ଯେଉଁ ହାରରେ ହଜାରଟା ଗୋଛି ଥାଏ ।

ଇନ୍ଦ୍ରଜନନ—କ୍ଳୀ. ବି. ପରମାତ୍ମାଙ୍କର ଦେହସମ୍ବନ୍ଧବିଶେଷ, ଇନ୍ଦ୍ରଙ୍କର ଜନ୍ମ ବର୍ଣ୍ଣିତ ଗ୍ରନ୍ଥବିଶେଷ ।

ଇନ୍ଦ୍ରଜାଲ—କ୍ଳୀ. ବି. ମାୟାକର୍ମ୍ମ, ଭେଲକି, ଭୋଜବାଜି, କୁହୁକ, ମାୟା-ଜାଲ, ଛୁଦ୍ର, ଉପାୟ ।

ଇନ୍ଦ୍ରଜାଲବିଦ୍ୟା—ସ୍ତ୍ରୀ. ବି. ଭେଲକି ଜାଣିବାର ଶାସ୍ତ୍ର ବା ବିଦ୍ୟା ।

ଇନ୍ଦ୍ରଜାଲିକ—ପୁଂ. ବିଂ. (ଇନ୍ଦ୍ରଜାଲ+ଇକ) କୁହୁକକାରୀ, ମାୟାବୀ,ବାଜିକର, କୁହୁକିଆ ।

ଇନ୍ଦ୍ରଜିତ୍—ପୁଂ. ବି. (ଇନ୍ଦ୍ର+ଜି+କ୍ୱିପ୍) ରାବଣପୁତ୍ର, ମେଘନାଦ ।

ଇନ୍ଦ୍ରଜିତ୍‌ସିଂହ—ପୁଂ. ବି. ଖ୍ୟାତନାମା ଜଣେ ବୁନ୍ଦେଲର ରାଜା ।

ଇନ୍ଦ୍ରଜିତ୍‌ବିଜୟୀ—ପୁଂ. ବି. ଲକ୍ଷ୍ମଣ ।

ଇନ୍ଦ୍ରଜିଦ୍ଧନ୍ତା—ପୁଂ. ବି. (ଇନ୍ଦ୍ରଜିତ୍+ହନ୍+ତୃ) ଲକ୍ଷ୍ମଣ ।

ଇନ୍ଦ୍ରଦୂତ—ବିଂ. (ବୈଦିକ)ଇନ୍ଦ୍ରଦତ୍ତ ।

ଇନ୍ଦ୍ରତପନ—ପୁଂ. ବି. (ଇନ୍ଦ୍ର+ତପ୍+ଅନ) ବାତାପୀଅସୁର, ଇନ୍ଦ୍ରଜିତ ।

ଇନ୍ଦ୍ରତୀର୍ଥ—କ୍ଳୀ. ବି. ହିନ୍ଦୁମାନଙ୍କର ତୀର୍ଥବିଶେଷ ।

ଇନ୍ଦ୍ରତୂଲ—କ୍ଳୀ. ବି. ଆକାଶବୁଢ଼ୀସୂତା, ବୁଢ଼ିଆଣୀ ସୂତା ।

ଇନ୍ଦ୍ରତୋୟା—ସ୍ତ୍ରୀ. ବି. ଗନ୍ଧମାଦନ ପର୍ବତର ନିକଟବର୍ତ୍ତୀ ନଦୀବିଶେଷ ।

ଇନ୍ଦ୍ରତ୍ୱ—କ୍ଳୀ.ବି.(ଇନ୍ଦ୍ର+ଭା,ତ୍ୱ)ଇନ୍ଦ୍ର-ଙ୍କର ଭାବ ବା ପଦ, ପ୍ରାଧାନ୍ୟ ।

ଇନ୍ଦ୍ରଦତ୍ତ—ପୁଂ. ବି. ସିଦ୍ଧାନ୍ତକୌମୁଦୀ ଗୂଢ଼ଫକ୍କିକାପ୍ରକାଶନାମକ ଗ୍ରନ୍ଥକର୍ତ୍ତା ।

ଇନ୍ଦ୍ରଦମନ—ପୁଂ.ବି. ବାଣାସୁରର ପୁତ୍ର ।

ଇନ୍ଦ୍ରଦାରୁ—ପୁଂ.ବି.(କ.ଧା)ଦେବବୃକ୍ଷ ।

ଇନ୍ଦ୍ରଦେବୀ—ସ୍ତ୍ରୀ.ବି. କାଶ୍ମୀରର ରାଜା, ମେଘବାହନଙ୍କର ସ୍ତ୍ରୀ ।

ଇନ୍ଦ୍ରଦ୍ୟୁମ୍ନ—ପୁଂ. ବି. ସ୍ୱନାମଖ୍ୟାତ ଉତ୍କଳସମ୍ରାଟ୍, ଓଡ଼ିଶାର ଜଗନ୍ନାଥ ମନ୍ଦିର ନିର୍ମାଣ କରିଥିଲେ, ଏହାଙ୍କଦ୍ୱାରା ଖୋଳା ହୋଇଥିବା ପୁଷ୍କରିଣୀ ।

ଇନ୍ଦ୍ରଦ୍ରୁ—ପୁଂ.ବି.ଅର୍ଜ୍ଜୁନବୃକ୍ଷ,ଦେବଦାରୁ, କଟଜବୃକ୍ଷ, କୁରେଇଗଛ, ଇନ୍ଦ୍ରଦ୍ରୁମ ।

ଇନ୍ଦ୍ରଦ୍ରୁମ—ପୁଂ. ବି. (୬ତତ୍) ଅର୍ଜ୍ଜୁନ ବୃକ୍ଷ,ଦେବଦାରୁ,କୂଟଜ,କୁରେଇ ଗଛ ।

ଇନ୍ଦ୍ରଦ୍ୱୀପ—ପୁଂ. କ୍ଳୀ. ବି. ପୌରାଣିକ-ମତେ ଭାରତବର୍ଷର ଗୋଟିଏ ବିଭାଗ ।

ଇନ୍ଦ୍ରଧନୁ—କ୍ଳୀ. ବି. (୬ତତ୍) ଇନ୍ଦ୍ରା-ୟୁଧ, ମେଘଦେହରେ ପତିତ ନିବର୍ଣ୍ଣ ଧନୁବିଶେଷ ।

ଇନ୍ଦ୍ରଧ୍ୱଜ—ପୁଂ. ବି. ଭାଦ୍ରବମାସ ଶୁକ୍ଳ ଦ୍ୱାଦଶୀ ଦିନ ଇନ୍ଦ୍ରଙ୍କର ସନ୍ତୋଷ ନିମିତ୍ତ ଧ୍ୱଜଦାନ ବିଶେଷ ।

ଇନ୍ଦ୍ରନକ୍ଷତ୍ର—କ୍ଳୀ. ବି. ଜ୍ୟେଷ୍ଠାନକ୍ଷତ୍ର, ଫାଲ୍‌ଗୁନୀନକ୍ଷତ୍ର ।

ଇନ୍ଦ୍ରନାଶୀ—ସ୍ତ୍ରୀ. ବି. (୬ତତ୍) (ଇନ୍ଦ୍ର+ନାଶୀ) ଇନ୍ଦ୍ରପତ୍ନୀ, ଶଚୀ ।

ଇନ୍ଦ୍ରମାଳ—ଇନ୍ଦ୍ରନୀଳମଣି,ମରକତମଣି ।

ଇନ୍ଦ୍ରପର୍ବତ—ପୁଂ. ବ. ମହେନ୍ଦ୍ରପର୍ବତ, ନୀଳପର୍ବତ ।

ଇନ୍ଦ୍ରପାଳିବା—ଗ୍ରା. ବ. ବୃଷ୍ଟି ହେବା ।

ଇନ୍ଦ୍ରପୁତ୍ରୀ—ସ୍ତ୍ରୀ.ବ.ଅଦିତି, ଦେବମାତା ।

ଇନ୍ଦ୍ରପୁରୀ—ସ୍ତ୍ରୀ. ବ. (୬ଷ୍ଠୀତତ୍ପୁ)ଅମରାବତୀ, ଇନ୍ଦ୍ରଙ୍କ ରାଜଧାନୀ ।

ଇନ୍ଦ୍ରପୁରୋହିତ—ପୁଂ. ବ. ବୃହସ୍ପତି, (ସ୍ତ୍ରୀ) ଇନ୍ଦ୍ରପୁରୋହିତା (ବ.ଗ୍ରା) ପୁଷ୍ୟାନକ୍ଷତ୍ର । [ ଲବଙ୍ଗ ।

ଇନ୍ଦ୍ରପୁଷ୍ପ—ପୁଂ. ବ. (ବ.ଗ୍ରା)ଇନ୍ଦ୍ରଯବ,

ଇନ୍ଦ୍ରପୁଷ୍ପା—ସ୍ତ୍ରୀ.ବ. ବିଷଲାଙ୍ଗଲୀ, ଲାଙ୍ଗଲିଆ ।

ଇନ୍ଦ୍ରପ୍ରମତି—ପୁଂ.ବ.ଋଗବେଦ୍ ଅଧ୍ୟୟନ ନିମିତ୍ତ ଗୃହୀତ ବ୍ୟାସଙ୍କର ଶିଷ୍ୟ, ପୈଲଋଷିଙ୍କର ଶିଷ୍ୟ ।

ଇନ୍ଦ୍ରପ୍ରସ୍ଥ—କ୍ଳୀ. ବ. ଗୋଟିଏ ନଗର, ହସ୍ତିନାପୁର, ମହାରାଜ ଯୁଧିଷ୍ଠିରଙ୍କର ରାଜଧାନୀ, ଦିଲ୍ଲୀ ।

ଇନ୍ଦ୍ରପ୍ରହରଣ—କ୍ଳୀ. ବ. ବଜ୍ର, ଦଧୀଚି-ମୁନିଙ୍କର ଅସ୍ଥି ଦ୍ୱାରା ନିର୍ମିତ ।

ଇନ୍ଦ୍ରଭୂତି—ପୁଂ. ବ. ଜଣେ ଜୈନ-ଗଣଧର, ମହାବୀରଙ୍କର ପ୍ରଧାନ ଶିଷ୍ୟ ।

ଇନ୍ଦ୍ରଭେଷଜ—କ୍ଳୀ.ବ.(ଇନ୍ଦ୍ର + ଭେଷଜ) ଶୁଣ୍ଠୀ ।

ଇନ୍ଦ୍ରମଖ—ପୁଂ.ବ. (୬ଷ୍ଠୀତତ୍ପୁ) ଇନ୍ଦ୍ରଙ୍କ ତୃପ୍ତି ନିମିତ୍ତ ଯେଉଁ ଯଜ୍ଞ କରାଯାଏ ।

ଇନ୍ଦ୍ରମହ—କ୍ଳୀ. ବ. ଇନ୍ଦ୍ରଙ୍କର ପ୍ରୀତି-ଜନକ ଉତ୍ସବ ଯଜ୍ଞାଦି ।

ଇନ୍ଦ୍ରମହକାମୁକ—ପୁଂ. ବ. (ଇନ୍ଦ୍ରମହ-କମ୍ + ଉକ) କୁକୁର ।

ଇନ୍ଦ୍ରମାର୍ଗ—ପୁଂ. ବ. କୁରୁକ୍ଷେତ୍ର ପର-ବର୍ତ୍ତୀ ସ୍ଥାନର ନିକଟବର୍ତ୍ତୀ ତୀର୍ଥବିଶେଷ, ଏଠାରେ ବଶିଷ୍ଠଙ୍କର ଆଶ୍ରମ ଥିଲା ।

ଇନ୍ଦ୍ରମାଷ—ପୁଂ. ବ. ଔଷଧ ଗୁଳ୍ମ ବିଶେଷ, ନାକଚଣା ।

ଇନ୍ଦ୍ରଯବ—ପୁଂ.ବ.(ଇନ୍ଦ୍ର + ଯବ)କୁଟଜ ମଞ୍ଜି, ଉଦ୍ଭିଦବୀଜବିଶେଷ, କୁରେଇମଞ୍ଜି ।

ଇନ୍ଦ୍ରଲଜ୍ଜା—ସ୍ତ୍ରୀ.ବ. ଔଷଧି,ଧାନ, କଳା-ପ୍ରଲମ୍ବିତର ଗଛ ।

ଇନ୍ଦ୍ରଲୁପ୍ତ—ପୁଂ.ବ.କେଶନାଶକ ରୋଗ, ଶିରରୋଗ, ଚନ୍ଦା ପଡ଼ିଯିବା ରୋଗ ।

ଇନ୍ଦ୍ରଲୋକ—ପୁଂ. ବ. (ଇନ୍ଦ୍ର + ଲୋକ) ଅମରାବତୀ, ସୁରପୁରୀ ।

ଇନ୍ଦ୍ରବଂଶା—ସ୍ତ୍ରୀ. ବ. ୧୨ ଅକ୍ଷରବିଶିଷ୍ଟ ଛନ୍ଦବିଶେଷ, ବୃତ୍ତବିଶେଷ ।

ଇନ୍ଦ୍ରବଜ୍ରା—ସ୍ତ୍ରୀ. ବ. ୧୧ ଅକ୍ଷରବିଶିଷ୍ଟ ଛନ୍ଦ ବା ବୃତ୍ତବିଶେଷ ।

ଇନ୍ଦ୍ରବଟୀ—ବୈଦ୍ୟୋକ୍ତ ଔଷଧବିଶେଷ ।

ଇନ୍ଦ୍ରବଳ—ପୁଂ. ବ. ଜଣେ ପ୍ରାଚୀନ ଶବରରାଜା, ଉଦୟନଙ୍କର ପୁତ୍ର ।

ଇନ୍ଦ୍ରବଲ୍ଲରୀ—ସ୍ତ୍ରୀ. ବ. ମହାକାଳ ଲତା, ଇନ୍ଦ୍ରବାରୁଣୀ,ଗୋଟିଏ ଲତା, ରାଖାଲ-ଶସା ଲତା ।

ଇନ୍ଦ୍ରବଲ୍ଲୀ—ସ୍ତ୍ରୀ. ବ. ପାରିଜାତ ଲତା, ମହାକାଳ ଲତା । [ ମଧ୍ୟଭାଗ ।

ଇନ୍ଦ୍ରବସ୍ତି—ପୁଂ ବ. (୬ଷ୍ଠୀତତ୍ପୁ) ଜଙ୍ଘର

ଇନ୍ଦ୍ରବାରୀ—ବିହାର ପ୍ରଦେଶସ୍ଥ ମଘିଆ ତେଲିମାନଙ୍କର ଗୋଟିଏ ପ୍ରଥା ।

ଇନ୍ଦ୍ରବାରୁଣିକା—ସ୍ତ୍ରୀ.ବ. ଇନ୍ଦ୍ରବାରୁଣୀ, ଇନ୍ଦ୍ରମାରିଷ, ମହାକାଳ ଲତା ।

ଇନ୍ଦ୍ରବୃଦ୍ଧ—ବାତପିତ୍ତଜନିତ ଚର୍ମରୋଗ ବିଶେଷ, ବ୍ରଣରୋଗବିଶେଷ ।

ଇନ୍ଦ୍ରବୀଜ—ପୁଂ.ବ. (୬ଷ୍ଠୀତତ୍ପୁ) କୁଟଜ-ବୀଜ, ଇନ୍ଦ୍ରଯବ, କୁରେଇଫଳ ।

ଇନ୍ଦ୍ରବୃକ୍ଷ— ପୁଂ. ବ. (କ.ଧା)ଦେବଦାରୁ ବୃକ୍ଷ ।

ଇନ୍ଦ୍ରବୃଦ୍ଧା—ସ୍ତ୍ରୀ. ବ ରୋଗବିଶେଷ, ଏକପ୍ରକାର ବ୍ରଣ । [ ଧର୍ମ୍ମ ।

ଇନ୍ଦ୍ରବ୍ରତ—କ୍ଳୀ. ବ. ବ୍ରତବିଶେଷ,ରାଜ-

ଇନ୍ଦ୍ରଶତ୍ରୁ—ପୁଂ. ବ. (୬ଷ୍ଠୀତତ୍ପୁ) (ଇନ୍ଦ୍ର + ଶତ୍ରୁ) ପ୍ରହ୍ଲାଦ, ବୃତ୍ରାସୁର ।

ଇନ୍ଦ୍ରଶୈଳ—ପୁଂ. ବ. ଇନ୍ଦ୍ରକୀଳ ପର୍ବତ ।

ଇନ୍ଦ୍ରସାରଥି—ପୁଂ.ବ.ମାତଲି, ଇନ୍ଦ୍ରଙ୍କର ରଥଚାଳକ, ବାୟୁ ।

ଇନ୍ଦ୍ରସାବର୍ଣ୍ଣି— ପୁଂ.ବ. (କ.ଧା)ଚତୁର୍ଦ୍ଦଶ ମନୁ ।

ଇନ୍ଦ୍ରସୁତ—ପୁଂ. ବ. ଜୟନ୍ତ, ଅର୍ଜ୍ଜୁନ, ଅର୍ଜ୍ଜୁନବୃକ୍ଷ, ବାନରରାଜ ବାଲୀ ।

ଇନ୍ଦ୍ରସୁରସ—ପୁଂ. ବ. ସିନ୍ଧୁବାରବୃକ୍ଷ, ପାଣି ବେଗୁନିଆଁ ।

ଇନ୍ଦ୍ରସୁରା—ସ୍ତ୍ରୀ. ବ. କଇଞ୍ଚିକାକୁଡ଼ି ।

ଇନ୍ଦ୍ରସୁରସ—ପୁଂ. ବ. ପାଣିବେଗୁନିଆଁ, ସିନ୍ଧୁବାର ।

ଇନ୍ଦ୍ରସୂକ୍ତ—କ୍ଳୀ.ବ.ଇନ୍ଦ୍ରଦୈବତ ସୂକ୍ତ-ମନ୍ତ୍ର, ଏହି ମନ୍ତ୍ରରେ ଇନ୍ଦ୍ରଙ୍କର ସ୍ତବ କରାଯାଏ ।

ଇନ୍ଦ୍ରସେନ—ପୁଂ.ବ.(ବ.ଗ୍ରା)ନଳରାଜାଙ୍କ ପୁତ୍ର, ଯୁଧିଷ୍ଠିରଙ୍କର ସାରଥି-ପୁତ୍ର, ପରୀକ୍ଷିତଙ୍କ ପୁତ୍ର ।

ଇନ୍ଦ୍ରସେନା—ସ୍ତ୍ରୀ.ବ. ଇନ୍ଦ୍ରଙ୍କର ସୈନ୍ୟ, ବ୍ରଧ୍ନଙ୍କର ମାତା,ନଳରାଜାଙ୍କର କନ୍ୟା ।

ଇନ୍ଦ୍ରସେନାନୀ—ପୁଂ. ବ. କାର୍ତ୍ତିକେୟ, କାର୍ତ୍ତିକେଶ୍ୱର ।

ଇନ୍ଦ୍ରସ୍ତୁତ୍—ପୁଂ.ବ.(ଇନ୍ଦ୍ର-ସ୍ତୁ + କ୍ୱିପ୍) ଇନ୍ଦ୍ରଯଜ୍ଞ, ଯେଉଁ ଯଜ୍ଞରେ ଇନ୍ଦ୍ରଙ୍କର ଆରାଧନା ହୁଏ ।

ଇନ୍ଦ୍ରସ୍ତୋମ—ପୁଂ. ବ. ଅତିରାତ୍ରାଙ୍ଗଭୂତ ଯଜ୍ଞବିଶେଷ,ରାଜାଙ୍କର ଅନୁଷ୍ଠେୟଯଜ୍ଞ ।

ଇନ୍ଦ୍ରହବ—ପୁଂ. ବ. (ଇନ୍ଦ୍ର + ହ୍ୱେ + ଅ) ଇନ୍ଦ୍ରଙ୍କର ଆହ୍ୱାନ ।

ଇନ୍ଦ୍ରହୂ—ସ୍ତ୍ରୀ.ବ.(ଇନ୍ଦ୍ର + ହ୍ୱେ + କ୍ୱିପ୍) ଇନ୍ଦ୍ରୋପାସକ ମୁନି,ଇନ୍ଦ୍ରଙ୍କ ଆରାଧନା-ମନ୍ତ୍ରବିଶେଷ ।

ଇନ୍ଦ୍ରା—ସ୍ତ୍ରୀ.ବ.(ଇନ୍ଦ୍ + ର + ଆ)ଶଚୀ-ଦେବୀ, କଇଁଚିକାକୁଡ଼ି, ଇନ୍ଦ୍ରବାରୁଣୀ ।

ଇନ୍ଦ୍ରାଗ୍ନି—ପୁଂ. ବ. (ଦ୍ୱନ୍ଦ୍ୱ) ଇନ୍ଦ୍ର ଓ ଅଗ୍ନି, ବଜ୍ରାଗ୍ନି ।

ଇନ୍ଦ୍ରାଗ୍ନିଧୂମ—ପୁଂ.ବ. (୬ଷ୍ଠୀତତ୍ପୁ)ହିମ, ବରଫ, ବାଜ ।

ଇନ୍ଦ୍ରାଣୀ—ସ୍ତ୍ରୀ. ବ. ଶଚୀ, ଦୁର୍ଗାଶକ୍ତି, ସ୍ତ୍ରୀମାନଙ୍କର କାର୍ଯ୍ୟ, ସୂକ୍ଷ୍ମୈଳା, ସ୍ଥୂଳୈଳା, ସିନ୍ଧୁବାର, ମାତୃକାବିଶେଷ, ଯୋଗିନୀବିଶେଷ, ରତିବନ୍ଧବିଶେଷ ।

ଇନ୍ଦ୍ରାଣିକା—ସ୍ତ୍ରୀ.ବ. (ଇନ୍ଦ୍ର + ଆନୀ + କ + ଆ) ଶଚୀଙ୍କ ପ୍ରବର୍ତ୍ତିତ ରତିବନ୍ଧ-

ବିଶେଷ, ସିନ୍ଧୁବାର, ପାଣିବେଗୁନିଆଁ, ଆଷ୍ଟମାତୃକା ମଧ୍ୟରୁ ଏକତମା,ଯୋଗିନୀ-ବିଶେଷ ।

ଇନ୍ଦ୍ରାଦୁଣ—ପୁଂ.ବି.(ଇନ୍ଦ୍ର+ଆ+ଦୁଣ୍ ଅ)ଇନ୍ଦ୍ରଗୋପ କୀଟ,ସାଧବାଣୀ ପୋକ ।

ଇନ୍ଦ୍ରାନୁଜ—ପୁଂ. ବି. (ଇନ୍ଦ୍ର+ଅନୁଜ) ୬ତତ୍; ବାମନ, ବିଷ୍ଣୁ, ଶ୍ରୀକୃଷ୍ଣ, ବାମନାବତାର, ଉପେନ୍ଦ୍ର ।

ଇନ୍ଦ୍ରାଭ—ପୁଂ.ବି. (ଇନ୍ଦ୍ର+ଆଭା+ଅ) ବି.ଶ୍ରୀ; କୁରୁବଂଶୀୟ ଧୃତରାଷ୍ଟ୍ରଙ୍କର ୭ମ ପୁତ୍ର ।

ଇନ୍ଦ୍ରାମଇ—ସ୍ତ୍ରୀ ବି. ବନ୍ୟବୃକ୍ଷବିଶେଷ, କଅଳ ଗଛ,(ସଂ କର୍କିନୀ,କୃଷ୍ଣଶାଲ୍ମଳୀ)

ଇନ୍ଦ୍ରାୟଣୀ—ସ୍ତ୍ରୀ.ବି. ଇନ୍ଦ୍ରାଣୀ, ଶଚୀ । ନୃସିଂହପୁରାଣବର୍ଣ୍ଣିତ ୧୮ଠାକୁରାଣୀଙ୍କ ମଧ୍ୟରୁ ଏକ ଠାକୁରାଣୀ, ଦୁର୍ଗାଙ୍କ ଅଙ୍ଗରୁ ଜାତ ଦେବୀବିଶେଷ ।

ଇନ୍ଦ୍ରାୟୁଧ—କ୍ଲୀ. ବି. (ଇନ୍ଦ୍ର+ଆୟୁଧ) ୬ତତ୍; ଇନ୍ଦ୍ରଙ୍କର ଅସ୍ତ୍ର, ବଜ୍ର, ରାମଧନୁ, ଇନ୍ଦ୍ରଧନୁ ।

ଇନ୍ଦ୍ରାରି—ପୁଂ.ବି.(ଇନ୍ଦ୍ର+ଅରି)୬ତତ୍; ଅସୁର, ଦୈତ୍ୟ । [ଅମରାବତୀ ।

ଇନ୍ଦ୍ରାଲୟ—ପୁଂ. ବି. (୬ତତ୍)ସ୍ୱର୍ଗ,

ଇନ୍ଦ୍ରାଲିଶ-ପୁଂ.ବି. (ଇନ୍ଦ୍ର+ଆ+ଲିଶ+ ଅ) ଇନ୍ଦ୍ରଗୋପକୀଟ,ସାଧବାଣୀପୋକ ।

ଇନ୍ଦ୍ରାବରଜ—ପୁଂ. ବି. ବିଷ୍ଣୁ, ଉପେନ୍ଦ୍ର, ବାମନ, ବାମନାବତାର ।

ଇନ୍ଦ୍ରାବସାନ—ପୁଂ.ବି. ମରୁଭୂମି, ବାଲୁକାମୟ ପ୍ରଦେଶ ।

ଇନ୍ଦ୍ରାଶନ ପୁଂ.କ୍ଲୀ.ବି.(ଇନ୍ଦ୍ର+ଅଶ୍+ ଅନ) ସିଦ୍ଧି, ଗଞ୍ଜେଇ, ଭାଙ୍ଗ ।

ଇନ୍ଦ୍ରାସନ—କ୍ଲୀ.ବି. (୬ତତ୍) ଦେବରାଜ ଇନ୍ଦ୍ରଙ୍କ ବସିବାର ଆସନ, ସିଂହାସନ, ରାଜାସନ । [ଲିଙ୍ଗ ।

ଇନ୍ଦ୍ରି—ସ୍ତ୍ରୀ.ବି.(ଇନ୍ଦ୍ରିୟଶବ୍ଦଜ)ଇନ୍ଦ୍ରିୟ,

ଇନ୍ଦ୍ରିୟ—କ୍ଲୀ. ବି.(ଇନ୍ଦ୍ର+ଇୟ)ଯାହାଦ୍ୱାରା ମନୁଷ୍ୟମନରେ ପଦାର୍ଥର ବା ବାହ୍ୟିକ ବିଷୟର ଜ୍ଞାନ ଜନ୍ମେ, ଯାହା ଦ୍ୱାରା ମନୁଷ୍ୟ କର୍ମ କରିପାରେ ସେହି ଜ୍ଞାନ, କର୍ମ ଓ ଅନ୍ତରଭେଦରେ ଇନ୍ଦ୍ରିୟ ଗୋ୧୪ଟି ।

ଇନ୍ଦ୍ରିୟକାର୍ଯ୍ୟ—କ୍ଲୀ. ବି. ଜ୍ଞାନ, ଚକ୍ଷୁପ୍ର, ଶ୍ରାବଣ, ଘ୍ରାଣ, ରାସନ, ତ୍ୱାଚ, ମନନ ଏହି ଛଅରୂପ କାର୍ଯ୍ୟ ।

ଇନ୍ଦ୍ରିୟକ୍ଷୋଭ—ପୁଂ.ବି.ଇନ୍ଦ୍ରିୟମାନଙ୍କ-ଜନିତ ଦୁଃଖ, ଚିତ୍ତବିଭ୍ରମ ।

ଇନ୍ଦ୍ରିୟଗମ୍ୟ—ବିଂ. (୩ତତ୍) ଇନ୍ଦ୍ରିୟମାନଙ୍କଦ୍ୱାରା ଅନୁଭୂତ ବା ଗ୍ରହଣୀୟ, ପ୍ରତ୍ୟକ୍ଷ ।

ଇନ୍ଦ୍ରିୟଗୋଚର-ପୁଂ.ବି. ଜ୍ଞାନପଥବର୍ତ୍ତୀ, ଛଅ ଇନ୍ଦ୍ରିୟଦ୍ୱାରା ଛଅ ପ୍ରକାର ଜ୍ଞାନ, ଇନ୍ଦ୍ରିୟର ବିଷୟ, ଜ୍ଞାନଗମ୍ୟ ।

ଇନ୍ଦ୍ରିୟଗ୍ରାମ—ପୁଂ.ବି.(୬ତତ୍) ଇନ୍ଦ୍ରିୟ-ସମୂହ, ଇନ୍ଦ୍ରିୟସକଳ ।

ଇନ୍ଦ୍ରିୟଗ୍ରାହ୍ୟ—ବିଂ.(୩ତତ୍) ଇନ୍ଦ୍ରିୟ-ଦ୍ୱାରା ଗ୍ରହଣୀୟ,ଅନୁଭବନୀୟ,ଜ୍ଞାନଗମ୍ୟ ।

ଇନ୍ଦ୍ରିୟଘାତ—ବିଂ. (୬ତତ୍) ଇନ୍ଦ୍ରିୟ-ଶକ୍ତି ବିଲୋପ, ଅନ୍ଧତ୍ୱ ବଧିରତ୍ୱାଦି ।

ଇନ୍ଦ୍ରିୟଘ୍ନ—ବିଂ.(ଇନ୍ଦ୍ରିୟ+ହନ+ଅ) ରୋଗ, ପୀଡ଼ା ।

ଇନ୍ଦ୍ରିୟଜ—ବିଂ.(ଇନ୍ଦ୍ରିୟ+ଜନ୍+ଅ) ଇନ୍ଦ୍ରିୟର ସନ୍ନିକର୍ଷଜାତ ପ୍ରତ୍ୟକ୍ଷ(ଜ୍ଞାନ) ।

ଇନ୍ଦ୍ରିୟଜୟ—ପୁଂ.ବି. (୬ତତ୍)ଇନ୍ଦ୍ରିୟ-ନିଗ୍ରହ, ଜିତେନ୍ଦ୍ରିୟତା ।

ଇନ୍ଦ୍ରିୟଜୟ—ପୁଂ. ବି. ଜିତେନ୍ଦ୍ରିୟ, ବିଜିତେନ୍ଦ୍ରିୟ ।

ଇନ୍ଦ୍ରିୟଜ୍ଞାନ—ପୁଂ. ବି. ପ୍ରତ୍ୟକ୍ଷଜ୍ଞାନ ।

ଇନ୍ଦ୍ରିୟତୃପ୍ତି—ସ୍ତ୍ରୀ. ବି. (୩ତତ୍) କର୍ମେନ୍ଦ୍ରିୟବିଶେଷଦ୍ୱାରା ସୁଖଲାଭ, ରମଣ ।

ଇନ୍ଦ୍ରିୟଦମନ—କ୍ଲୀ. ବି. ଇନ୍ଦ୍ରିୟଜୟ, ଇନ୍ଦ୍ରିୟମାନଙ୍କୁ ନିଗ୍ରହ କରିବା, ବଶୀଭୂତ କରିବା ।

ଇନ୍ଦ୍ରିୟଦୋଷ—ପୁଂ. ବି. (ଇନ୍ଦ୍ରିୟ+ ଦୋଷ) ୬ତତ୍; ଇନ୍ଦ୍ରିୟର ଉଚ୍ଛୃଙ୍ଖଳତା, ଇନ୍ଦ୍ରିୟଜନ୍ୟ ଦୋଷ,ଲମ୍ପଟ୍ୟ, ଚୌର୍ଯ୍ୟାଦି କୁକର୍ମ ।

ଇନ୍ଦ୍ରିୟନିଗ୍ରହ—ପୁଂ.ବି. ବହିରିନ୍ଦ୍ରିୟ ଓ ଅନ୍ତରେନ୍ଦ୍ରିୟମାନଙ୍କୁ ଦମନ କରିବା, ଇନ୍ଦ୍ରିୟମାନଙ୍କୁ ବଶୀଭୂତ କରିବା ।

ଇନ୍ଦ୍ରିୟନିରୋଧ—ପୁଂ. ବି. (୬ତତ୍) ଇନ୍ଦ୍ରିୟଦମନ, ଇନ୍ଦ୍ରିୟକ୍ରିୟା-ନିରୋଧ ।

ଇନ୍ଦ୍ରିୟପର—ପୁଂ. ବିଂ. ଇନ୍ଦ୍ରିୟ-ସୁଖଲାଭରେ ରତ, ଇନ୍ଦ୍ରିୟପରାୟଣ ।

ଇନ୍ଦ୍ରିୟପରାୟଣ—ପୁଂ. ବିଂ. ଇନ୍ଦ୍ରିୟ-ସେବାତତ୍ପର, ଭୋଗାଦିରେ ରତ, (ସ୍ତ୍ରୀ) ଇନ୍ଦ୍ରିୟପରାୟଣା ।

ଇନ୍ଦ୍ରିୟବଧ—ପୁଂ.ବି. ଇନ୍ଦ୍ରିୟମାନଙ୍କର ସ୍ୱ ସ୍ୱ ବିଷୟଶକ୍ତିର ପ୍ରତିଘାତ ବା ଆଘାତ ।

ଇନ୍ଦ୍ରିୟବର୍ଗ—ପୁଂ.ବି. (୬ତତ୍)ଇନ୍ଦ୍ରିୟ-ସମୂହ, ଇନ୍ଦ୍ରିୟଗ୍ରାମ ।

ଇନ୍ଦ୍ରିୟବଶ—ପୁଂ.ବି (୬ତତ୍)ଇନ୍ଦ୍ରିୟର ବଶୀଭୂତ, ଅଜିତେନ୍ଦ୍ରିୟ ।

ଇନ୍ଦ୍ରିୟବାନ୍-ପୁଂ.ବିଂ.(ଇନ୍ଦ୍ରିୟ+ବତ୍) ଯାହାର ଇନ୍ଦ୍ରିୟବଶ ହୋଇଅଛି, ଯାହାର ଇନ୍ଦ୍ରିୟ ପ୍ରଶସ୍ତ ।

ଇନ୍ଦ୍ରିୟବିପ୍ରତିପତ୍ତି—ସ୍ତ୍ରୀ. ବି. ଇନ୍ଦ୍ରିୟର ବିପରୀତ କାର୍ଯ୍ୟ ପ୍ରତିପାଦନ, ଇନ୍ଦ୍ରିୟ-ଦୋଷ, ଇନ୍ଦ୍ରିୟବିକୃତି ।

ଇନ୍ଦ୍ରିୟବିଲାସ-ପୁଂ.ବି.(୬ତତ୍)ଇନ୍ଦ୍ରିୟ-ବୃତ୍ତିମାନ ଚରିତାର୍ଥକରଣ ।

ଇନ୍ଦ୍ରିୟବିଷୟ—ବିଂ (ଇନ୍ଦ୍ରିୟ+ବିଷୟ) ଇନ୍ଦ୍ରିୟଗୋଚର, ଇନ୍ଦ୍ରିୟଗ୍ରାହ୍ୟ ।

ଇନ୍ଦ୍ରିୟବୋଧନ-ବିଂ. (ଇନ୍ଦ୍ରିୟ+ବୁଧ+ ଣିଚ୍.ଅନ)ଚକ୍ଷୁରାଦିଇନ୍ଦ୍ରିୟର ସ୍ୱକାର୍ଯ୍ୟେ ଉଦ୍‌ବୋଧକ, ପାନସାଧ୍ୟ ବିକଳତା-ବୋଧକ (ମଦ୍ୟ) ।

ଇନ୍ଦ୍ରିୟଭୋଗ ପୁଂ.ବି.(ଇନ୍ଦ୍ରିୟ+ଭୋଗ) ୬ତତ୍; ଇନ୍ଦ୍ରିୟବିଲାସ, ଇନ୍ଦ୍ରିୟବୃତ୍ତି-ଚରିତାର୍ଥକରଣ ।

ଇନ୍ଦ୍ରିୟମୁଗ୍ଧକର— ବିଂ. ଇନ୍ଦ୍ରିୟର ମୋହଜନକ ରୂପଦର୍ଶନ, ସ୍ପର୍ଶନାଦ-ଦ୍ୱାରା ସ୍ୱ ସ୍ୱ ବିଷୟରେ ଉଦ୍ଦୀପକ ।

ଇନ୍ଦ୍ରିୟଲାଳସା—ସ୍ତ୍ରୀ.ବି. ଇନ୍ଦ୍ରିୟ ସୁଖର ଅତ୍ୟନ୍ତ ଲଭେଚ୍ଛା ।

ଇନ୍ଦ୍ରିୟସନ୍ନିକର୍ଷ—ପୁଂ.ବି.ପ୍ରତ୍ୟକ୍ଷଜନକ ବ୍ୟାପାର, ନିଜ ନିଜ ବିଷୟ ସହିତ ଇନ୍ଦ୍ରିୟର ସମ୍ବନ୍ଧ ।
ଇନ୍ଦ୍ରିୟସଂଯୋଗ—ପୁଂ. ବି. ( ୬ତତ୍ ) ଇନ୍ଦ୍ରିୟ ଦମନ, ଇନ୍ଦ୍ରିୟନିଗ୍ରହ, ଜିତେନ୍ଦ୍ରିୟତା ।
ଇନ୍ଦ୍ରିୟସେବକ-ପୁଂ.ବିଂ.ଇନ୍ଦ୍ରିୟସମୂହର ପରିତୃପ୍ତିସାଧକ ଭୋଗ ସୁଖାଦିର ଅନୁରକ୍ତ,ବିଳାସପରାୟଣ,କାମୁକ,ଲମ୍ପଟ
ଇନ୍ଦ୍ରିୟସେବା (ସେବନ)—ସ୍ତ୍ରୀ. କ୍ଲୀ. ବି. (୬ତତ୍) ଭୋଗ-ସୁଖାଦିରେ ଅନୁରକ୍ତ ।
ଇନ୍ଦ୍ରିୟସେବୀ—ପୁଂ.ବିଂ. (ଇନ୍ଦ୍ରିୟ + ସେବନ୍) ଇନ୍ଦ୍ରିୟସେବକ (ଦେଖ) ।
ଇନ୍ଦ୍ରିୟସ୍ୱାପ-ପୁଂ.ବି.ସୁଷୁପ୍ତି, ଅଚୈତନ୍ୟ, ପ୍ରଳୟ, ଜ୍ଞାନଲୋପ, ସଂଜ୍ଞାଶୂନ୍ୟତା, ମରଣକାଳ । [ ଇନ୍ଦ୍ରିୟ ।
ଇନ୍ଦ୍ରିୟସ୍ୱାମୀ—ପୁଂ ବି. ବିଷ୍ଣୁଙ୍କର ନାମ,
ଇନ୍ଦ୍ରିୟାଦି—ପୁଂ.ବି. ଇନ୍ଦ୍ରିୟର କାରଣ-ରୂପ ଅହଂକାର ।
ଇନ୍ଦ୍ରିୟାଧିଷ୍ଠାତା— ପୁଂ. ବି. ଅଚେତନ ଇନ୍ଦ୍ରିୟମାନଙ୍କର ସ୍ୱ-ସ୍ୱକାର୍ଯ୍ୟ ସମ୍ପାଦନ ନିମିତ୍ତ ଈଶ୍ୱରନିଯୁକ୍ତ ଦେବତା ।
ଇନ୍ଦ୍ରିୟାୟତନ—କ୍ଲୀ.ବି. ଶରୀର, ଆତ୍ମା, ଦେହ ।
ଇନ୍ଦ୍ରିୟାରାମ -ପୁଂ.ବି.(ଇନ୍ଦ୍ରିୟ + ଆ + ରମ୍ + ଅ) ଇନ୍ଦ୍ରିୟ-ଚରିତାର୍ଥନିମିତ୍ତ ଭୋଗାସକ୍ତ ବ୍ୟକ୍ତି ।
ଇନ୍ଦ୍ରିୟାର୍ଥ—ପୁଂ. ବି. ଇନ୍ଦ୍ରିୟଭୋଗ୍ୟ ପଦାର୍ଥ, ରୂପ, ରସ, ସ୍ପର୍ଶପ୍ରଭୃତି ।
ଇନ୍ଦ୍ରିୟାବତ୍—ବିଂ. (ଇନ୍ଦ୍ରିୟ + ବତ୍) ଇନ୍ଦ୍ରିୟବିଶିଷ୍ଟ ।
ଇନ୍ଦ୍ରିୟାବନ୍—ବିଂ. (ଇନ୍ଦ୍ରିୟ + ବନ୍) ପ୍ରଶସ୍ତ ଇନ୍ଦ୍ରିୟବିଶିଷ୍ଟ, ପ୍ରଶସ୍ତ ଇନ୍ଦ୍ରିୟଯୁକ୍ତ ।
ଇନ୍ଦ୍ରିୟାସକ୍ତ—ପୁଂ.ବିଂ (୭ତତ୍)ଇନ୍ଦ୍ରିୟ ସେବାରେ ମଗ୍ନ । [ପରାୟଣତା ।
ଇନ୍ଦ୍ରିୟାସକ୍ତି—ସ୍ତ୍ରୀ.ବି.(୭ତତ୍) ଇନ୍ଦ୍ରିୟ-
ଇନ୍ଦ୍ରିୟାସଙ୍ଗ—ପୁଂ. ବି. ( ୬ତତ୍ ) ବିଷୟସଙ୍ଗ-ପରିହାର ।
ଇନ୍ଦ୍ରିୟେଶ—ପୁଂ. ବି. ଜୀବ, ଇନ୍ଦ୍ରିୟର ଦେବଗଣ, ସୂର୍ଯ୍ୟାଦି । [ସୁରଗୁରୁ ।
ଇନ୍ଦ୍ରେଜ୍ୟ—ପୁଂ. ବି. (୬ତତ୍) ବୃହସ୍ପତି,
ଇନ୍ଦ୍ରେଶ୍ୱର—ପୁଂ. ବି. ଶିବଲିଙ୍ଗବିଶେଷ, ଇନ୍ଦ୍ରଙ୍କଦ୍ୱାରା ସ୍ଥାପିତ ଶିବଲିଙ୍ଗ ।
ଇନ୍ଧ୍—(ଧାତୁ) ଦୀପ୍ତି, ଶୋଭା ।
ଇନ୍ଧ—ପୁଂ.ବି. (ଇନ୍ଧ + ଅ)ଦୀପ୍ତି, ଇନ୍ଧ-ନାମକ ଋଷି, ପ୍ରଦୀପ ।
ଇନ୍ଧନ—କ୍ଲୀ. ବି. ( ଇନ୍ଧ୍ + ଣ, ଅନ ) ତୃଣ, କାଠ, ଜାଳିବା କାଠ, ଯେ ଅଗ୍ନି ପ୍ରଜ୍ୱଳିତ କରେ, ଜ୍ୱାଳା ।
ଇନ୍ଧନବାନ୍—ପୁଂ.ବିଂ.(ଇନ୍ଧନ + ବତ୍) ଜ୍ୱଳାଯୁକ୍ତ, ଜ୍ୱାଳାବିଶିଷ୍ଟ ।
ଇନ୍‌ଫିସାଲ—ଯା.ବି. ନିଷ୍ପତ୍ତି, ବିଚାର ।
ଇନ୍‌ସାଫ—ଯା. ବି. ନିଷ୍ପତ୍ତି, ବିଚାର, ନ୍ୟାଯ୍ୟ ବିଚାର, ସୁବିଚାର ।
ଇନ୍ୱ—(ଧାତୁ )ଗତି କରିବା,ବ୍ୟାପ୍ତହେବା ପ୍ରୀଣନ, ପ୍ରୀତିକର ।
ଇନ୍ୱକା—ସ୍ତ୍ରୀ.ବି. (ଇନ୍ୱ୍ + ଅ + କୈ + ଅ + ଆ) ଇଲ୍ୱଲା, ମୃଗଶୀରାନକ୍ଷତ୍ର ଉପରେ ଥିବା ପାଞ୍ଚୋଟି ତାରା ।
ଇବତିଦା—ଯା.ବି. ଆରମ୍ଭ ।
ଇବନ୍‌ଆବୁଉସୈବିୟା—ଯା. ବି. ଜଣେ ମୁସଲମାନ-ଗ୍ରନ୍ଥକର୍ତ୍ତା ।
ଇବନ୍‌ବତୁତା—ଯା.ବି. ଆରବଦେଶୀୟ ଜଣେ ଭ୍ରମଣକାରୀ, ଦିଲ୍ଲୀର ବିଚାର-ପତି ଥିଲେ ।
ଇବାଗିର୍—ପ୍ରା. (ସମ୍ବ) ବି.ବିଂ. ଏପରି, ଏପରି, (ବିଂ) ଏ ପ୍ରକାରର ।
ଇବ୍ରାହିମ ଆଦିଲଶାହ (୧)—ବିଜୟ-ପୁରରେ ଜଣେ ସୁଲତାନ ଥିଲେ ।
ଇବ୍ରାହିମ ଆଦିଲଶାହ (୨) —ବିଜୟ-ପୁରରେ ରାଜା ଥିଲେ ।
ଇବ୍ରାହିମକୁତବଶାହ— ଗୋଲକୁଣ୍ଡାର ଅଧୀଶ୍ୱର ଥିଲେ ।
ଇବ୍ରାହିମ ଖାଁ—ସମ୍ରାଟ ଆଲମଗୀରଙ୍କ ସମୟରେ କାଶ୍ମୀର, ଲାହୋର, ବିହାର ଓ ବଙ୍ଗ-ପ୍ରଦେଶମାନଙ୍କର କ୍ରମରେ ଶାସନକର୍ତ୍ତା ହୋଇଥିଲେ ।
ଇବ୍ରାହିମଖାଁ ଫଥାଜଙ୍ଗ—ବିହାର-ପ୍ରଦେ-ଶର ଜଣେ ଶାସନକର୍ତ୍ତା ଥିଲେ ।
ଇବ୍ରାହିମଖାଁ ସୂର—ବୟାନର ଜଣେ, ଶାସନକର୍ତ୍ତା ୧୫୫୫ ଖ୍ରୀଷ୍ଟାବ୍ଦରେ ଆଗ୍ରା ଓ ଦିଲ୍ଲୀ ଜୟ କରିଥିଲେ ।
ଇଭ—ପୁଂ.ବି.(ଇ + ଭ,କ)ହସ୍ତୀ, ଆଠ ସଂଖ୍ୟା, ନାଗେଶ୍ୱରବୃକ୍ଷ, ଶ୍ରେଷ୍ଠାର୍ଥ-ବାଚକ, ଗଜପିପ୍‌ପଳୀ ।
ଇଭକଣା—ସ୍ତ୍ରୀ.ବି.(ଇଭ + କଣା) ଗଜ-ପିପ୍‌ପଳୀ, ଗଜପିପ୍‌ପଳୀ ।
ଇଭକେଶର—ପୁଂ. ବି. ନାଗେଶ୍ୱର, ନାଗକେଶର ।
ଇଭଗନ୍ଧା—ସ୍ତ୍ରୀ.ବି. (ବ.ବ୍ରୀ) ନାଗଦନ୍ତୀ-ବୃକ୍ଷ, ଗଜଦନ୍ତୀ ବିଷବୃକ୍ଷ ।
ଇଭଦନ୍ତୀ—ସ୍ତ୍ରୀ.ବି. (ବ.ବ୍ରୀ) ନାଗଦନ୍ତୀ ବୃକ୍ଷ, ଗଜଦନ୍ତୀ ।
ଇଭନିମୀଳିକା—ସ୍ତ୍ରୀ. ବି. ରଙ୍ଗ, ସିଦ୍ଧି, ବୈଦଗ୍ଧୀ,ପଟୁତା,ରସିକତା,ପାଣ୍ଡିତ୍ୟ ।
ଇଭପାଳକ—ପୁଂ. ବି. ( ୬ଷ୍ଠୀ ତତ୍ ) ମାହୁନ୍ତ, ହସ୍ତିପକ, ଗଜରକ୍ଷକ ।
ଇଭପୋଟା—ସ୍ତ୍ରୀ. ବି. ଯେଉଁ ହସ୍ତିନୀର ଲକ୍ଷଣ ସବୁ ପୁରୁଷ ହସ୍ତୀର ଲକ୍ଷଣପରି ଅଟେ । [ ଛୁଆ ।
ଇଭପୋତ—ପୁଂ.ବି. କରିଶାବକ,ହାତୀ-
ଇଭଭର—ପୁଂ.ବି.ହସ୍ତିସମୂହ,ହାତୀପଲ ।
ଇଭମାଚଳ—ପୁଂ. ବି. (ଇଭଂ + ଆ + ଚଳ + କ.ଅ) ସିଂହ, ଇଭରିପୁ ।
ଇଭପ୍ରିୟା—ସ୍ତ୍ରୀ. ବି. (ଇଭ + ପ୍ରୀ + ମୁଁ,ଅ) ସ୍ୱର୍ଣ୍ଣକ୍ଷୀରୀବୃକ୍ଷ, ଗଜମାନଙ୍କର ଖାଦ୍ୟ ବୃକ୍ଷ । [ ମାଈ ହାତୀ ।
ଇଭଯୁବତି—ସ୍ତ୍ରୀ. ବି. ଯୁବତି କରିଣୀ,
ଇଭରାଜ,ଇଭରାଟ୍ -ପୁଂ.ବିଂ.(୬ଷ୍ଠୀତତ୍) ଐରାବତହସ୍ତୀ,ହସ୍ତୀମାନଙ୍କର ରାଜା ।
ଇଭଷା—ସ୍ତ୍ରୀ. ବି. (ଇଭ + ଷା + ଅ + ଆ) ସ୍ୱର୍ଣ୍ଣକ୍ଷୀରୀ ବୃକ୍ଷ ।
ଇଭାଖ୍ୟ—ପୁଂ. ବି. (ବ.ବ୍ରୀ) ନାଗେଶ୍ୱର ବୃକ୍ଷ, ନାଗକେଶର ଗଛ ।
ଇଭାନନ—ପୁଂ. ବି. (ବ.ବ୍ରୀ) ଗଣେଶ, ଗଜାନନ । [ ଗଜଙ୍ଘ ।
ଇଭାରି—ପୁଂ. ବି. (୬ଷ୍ଠୀ ତତ୍) ସିଂହ,

ଇଭୋଷଣା—ସ୍ତ୍ରୀ.ବି.(କ.ଧା)ଗଜପିପ୍ପଳୀ ଗଜପିପ୍ପଳା ।

ଇଭ୍ୟ—ପୁଂ. ବି. (ଇଭ + ଯ) ଧନବାନ୍ ଲୋକ, ରାଜା, ହସ୍ତିପକ, ମାହୁନ୍ତ, (ବିଂ) ଧନୀ ।

ଇଭ୍ୟକା—ସ୍ତ୍ରୀ. ବି. (ଇଭ୍ୟ + କ + ଆ) ହସ୍ତିନୀ, ଶଲ୍ଲକୀ ବୃକ୍ଷ ।

ଇଭ୍ୟତଲ୍ଲ୍ୟଲ—ପୁଂ. ବିଂ. ଯାହାର ଅନେକ ହାତୀଘୋଡ଼ା ଅଛନ୍ତି ।

ଇଭ୍ୟା—ସ୍ତ୍ରୀ. ବି. (ଇଭ + ଯ + ଆ) ହସ୍ତିନୀ, ଶଲ୍ଲକୀ ବୃକ୍ଷ, (ବିଂ) ଧନବତୀ ।

ଇମକ—ଇଦମ୍, ଏହି, ଏହା ।

ଇମଥା—(ଅବ୍ୟ) ଇଦାନୀନ୍ତନରୂପେ, ବର୍ତ୍ତମାନପର ।

ଇମନ୍—(ସଙ୍ଗୀତ) ଆଧୁନିକ ରାଗବିଶେଷ, ମୁସଲମାନମାନଙ୍କଦ୍ୱାରା ସୃଷ୍ଟ ।

ଇମନ୍‌କଲ୍ୟାଣ—(ସଙ୍ଗୀତ) ରାଗବିଶେଷ ।

ଇମନ୍‌ପୂରିୟା—(ସଙ୍ଗୀତ) ରାଗବିଶେଷ ।

ଇମନ୍‌ବେଲାବଲୀ—(ସଙ୍ଗୀତ) ଆଧୁନିକ ରାଗ ବିଶେଷ ।

ଇମନ୍ ଭୈରବୀ—(ସଙ୍ଗୀତ) ଆଧୁନିକ ରାଗବିଶେଷ । [ଦର୍ଶନ ।

ଇମତହାନ୍—(ଯା) ବି. ପରୀକ୍ଷା, ପର-

ଇମଲା—(ଯା.) ବି. ଲିଖନପ୍ରଣାଳୀ ।

ଇମାରହାଣ୍ଡି—ଗ୍ରା. ବି. ଦୁଇସେର ଗୁଣ୍ଡିଚାର ମହାପ୍ରସାଦ ଅନ୍ନ ସମ୍ଭାଇବା ଭଳି ହାଣ୍ଡି ।

ଇମାଦୁଲ୍‌ମୁଲକ୍—ଦକ୍ଷିଣାପଥ ଇମାଦଶାହୀ ରାଜବଂଶର ସ୍ଥାପୟିତା ।

ଇମାନ୍—(ଯା) ବି. ବିଶ୍ୱାସ, ଧର୍ମ, ସାଧୁତା, ଆସ୍ତିକ୍ୟ ବୁଦ୍ଧି, ବିବେକ ।

ଇମାନ୍‌ଦାର—(ଯା.) ବିଂ. ବିଶ୍ୱାସୀ, ବିବେକବାନ୍, ଧର୍ମଭୀରୁ, ଧାର୍ମିକ ।

ଇମାମ୍—(ଯା.) ବି. ପ୍ରଧାନ ଯାଜକ, ଯେ ସ୍ତୁତିପାଠ କରେ, ମୁସଲମାନମାନଙ୍କର ଗୁରୁ । [ଲିକା ।

ଇମାରତ୍—(ଯା)ବି. ଘର, ପକା, ଅଟ୍ଟା-

ଇମାମବାଡ଼ା—(ଯା)ବି. ମୁସଲମାନମାନଙ୍କର ଉପାସନା ମନ୍ଦିର ।

ଇମିତ—ଗ୍ରା. (କଟକ ଓ ପୁରୀ) ବିଂ. ଅବ୍ୟ. ଏପରି, ଏହିରୂପେ, ଇମିତ ।

ଇମିତ ସିମିତ—ଗ୍ରା. କ୍ରି. ବିଂ. ଯେପରି ଇଚ୍ଛା ସେପରି (ବିଂ) ଯେ, ସେ, ହେଉ, ଯାଚ୍ଛା'ତା ।

ଇୟ—(ପ୍ରତ୍ୟୟ ବିଶେଷ)

ଇୟକ୍ଷୁ—ବିଂ. (ଯଜ୍ + ଉ) ଯେ ଯଜ୍ଞ କରିବାକୁ ଇଚ୍ଛାକରେ ।

ଇୟତ୍—ବିଂ. (ଇଦମ୍ + ବତ୍)ଏହିପରିମାଣ, ଏତିକି, ଏତେ ଦ୍ରବ୍ୟାଦି, ଅଳ୍ପସଂଖ୍ୟା ।

ଇୟତ୍ତକ—ବି. (ଇୟତ୍ତା + କ) ନିର୍ଦ୍ଧାରିତ ହେବା, ଅଳ୍ପପ୍ରମାଣ । [ବର୍ତ୍ତମାନ ।

ଇୟତ୍‌କାଲ—ପୁଂ. ବି. ଏହି ସମୟ,

ଇୟତ୍ତା—ସ୍ତ୍ରୀ.ବି. (ଇୟତ୍ + ତ + ଆ) ଏତାବତ୍ତ୍ୱ, ଏତେପରିମାଣ,ସୀମା,ସଂଖ୍ୟା, ସୁମାରି, ସ୍ଥିରତା, ନିର୍ଦ୍ଧାରିତ ପରିମାଣ ।

ଇୟତ୍ତାପରିଚ୍ଛେଦ—ପୁଂ. ବି. (୬ତତ୍) ସୀମାନିର୍ଦ୍ଦେଶ, ସୀମା, ଅନ୍ତ, ଶେଷ ।

ଇୟସ୍—ପୁଂ. ବିଂ. (ଇ + ଅସ୍) ଗନ୍ତା, ଯେ ଗମନକରେ (ବି) ଗମନ ।

ଇସ୍ତାତ୍‌ବାର—(ଯା) ବି.ବିଶ୍ୱାସ,ସମ୍ମାନ ।

ଇସ୍ତାଦ୍—(ଯା) ବି. ସ୍ମରଣ, ଧାରଣା ।

ଇସ୍ତାଦଦସ୍ତ—(ଯା) ବି. ସ୍ମରଣଚିହ୍ନ, ସ୍ମାରକ ଲିପି ।

ଇୟାନ୍—ପୁଂ. ବିଂ. (ଇଦମ୍ + ବତ୍) ଏତାବତ୍,ଏତତ୍‌ପରିମିତ(ସ୍ତ୍ରୀ) ଇୟତୀ ।

ଇୟାର—(ଯା) ବନ୍ଧୁ, ସଙ୍ଗୀ, ଉପପତି, ସୁହୃତ୍, ରହସ୍ୟପ୍ରିୟ ।

ଇୟାରକି—(ଯା) ବି. ରହସ୍ୟପ୍ରିୟତା, ରସିକତା, ଅସାର ଆମୋଦପ୍ରମୋଦ ।

ଇରଜୂ—ପୁଂ. ବି. ପୃଥିବୀର ଈଶ୍ୱର ।

ଇରସାଲ—(ଯା) ବି. ଇସାଲ, ରାଜକୋଷକୁ ବା ପ୍ରଭୁ ନିକଟକୁ ଅର୍ଥପ୍ରେରଣ, ସଦରକୁ ଟଙ୍କା ଚାଲାଣ (ପୁନ) ।

ଇରସାଲନାମା—(ଯା) ବି. ଯେଉଁପତ୍ର ବା ପୁସ୍ତକରେ ପ୍ରେରିତ ଅର୍ଥର ବିବରଣ ଲିପିବଦ୍ଧ ହୋଇଥାଏ, ଚାଲାଣ ।

ଇର—ପୁଂ.ବି. (ଇର୍ + ଅ)ଉର୍ବରଭୂମି, (ଗ୍ରା.ବି) ପ୍ରସବପରେ ଗାଈ ବା ମଇଁଷି ପେଟରୁ ପଡ଼ିବା ଫୁଲ ।

ଇରଣ—କ୍ଲୀ. ବି. (ଇର + ଅନ) ଊଷର ଭୂମି, ଶୂନ୍ୟମରୁ, ଜଳବୃକ୍ଷାଦି-ଶୂନ୍ୟ ମରୁଭୂମି, ଅନୁର୍ବର ।

ଇରଦାଡ଼ିଆ—ଗ୍ରା. ବିଂ. ଯେଉଁ ମଇଁଷିର ବାଛୁରି ଜନ୍ମ ହେବାପରେ ଫୁଲ ପଡ଼ି ନ ଥାଏ ।

ଇରବେଲ୍ଲିକା—ସ୍ତ୍ରୀ.ବି.ମୁଖବ୍ରଣ ବିଶେଷ ।

ଇରମ୍ମଦ—ପୁଂ. ବି. (ଇର + ମଦ + କ, ଅ) ବାଡ଼ବାନଳ, ବଜ୍ରାନଳ, ହସ୍ତୀ, ଅଗ୍ନି, ବିଦ୍ୟୁତ୍ ।

ଇରା—ସ୍ତ୍ରୀ. ବି. (ଇ + ର + ଆ) ଭୂମି, ବୃଷ୍ଟି, ଜଳ, ଅନ୍ନ, ସୁରା, ମଦ୍ୟ, ବାକ୍ୟ, ବୈତ୍ୟ, ଭାଷା, ସରସ୍ୱତୀ, ମେଘ ।

ଇରାକ—ପାରସ୍ୟର ଗୋଟିଏ ପ୍ରଦେଶ ତୁରସ୍କର ଗୋଟିଏ ପ୍ରଦେଶ ।

ଇରାକ୍ଷୀର—ପୁଂ.ବି.(ବ.ବ୍ରୀ) କ୍ଷୀରସମୁଦ୍ର ।

ଇରାଚର—କ୍ଲୀ. ବି. (ଇରା + ଚର) କରକା, କରକା ପଥର,(ବିଂ) ଭୂଚର, ଖେଚର, ଜଳଚର, (ସ୍ତ୍ରୀ) ଇରାଚରୀ ।

ଇରାଜ—ପୁଂ. ବି. (ଇରା + ଜନ + ଅ) କନ୍ଦର୍ପ, କାମ, ବୃକ୍ଷଲତାଦି ଉଦ୍ଭିଦ ।

ଇରାଣ—ଗୋଟିଏ ଦେଶ, ଆର୍ଯ୍ୟମାନଙ୍କର ପ୍ରଥମ ବାସସ୍ଥାନ କାସ୍ପିୟ ହ୍ରଦନିକଟସ୍ଥ ଇରାଣ ରାଜ୍ୟ । [ମଣ୍ଡଳିକ ।

ଇରାଦା—(ଯା) ବି. ଇଚ୍ଛା, ଅଭିପ୍ରାୟ,

ଇରାମୁଖ—କ୍ଲୀ. ବି. ପ୍ରଦୋଷ, ସନ୍ଧ୍ୟା ।

ଇରାମ୍ବର—କ୍ଲୀ. ବି. (ବ.ବ୍ରୀ) କରକା, ବର୍ଷୋପଲ, କୁଆପଥର, କଇଁରା ।

ଇରାବତୀ—ସ୍ତ୍ରୀ. ବି. (ଇରା + ବତ୍ + ଈ) ନଦୀବିଶେଷ, ବଟପତ୍ରୀ, ବୃକ୍ଷ, ରୁଦ୍ରପତ୍ନୀ, ବ୍ରହ୍ମଦେଶସ୍ଥ ନଦୀ ।

ଇରାବାନ୍—ପୁଂ. ବି. (ଇରା + ବତ୍) ସମୁଦ୍ର, ଅର୍ଜ୍ଜୁନଙ୍କର ପୁତ୍ର,ମେଘ,ରାଜା ।

ଇରି—ପୁଂ. ବି. ଦ୍ରୁମବିଶେଷ ।

ଇରିକା—ସ୍ତ୍ରୀ.ବି.(ଇରା + କ + ଆ)ଜଳ ।

ଇରକାବନ—କ୍ଲୀ.ବ. ଜଲନକଟସ୍ଥ ବନ, ନଲବନ, ସନ୍ତ୍ରବଣ ।
ଇରଣ—କ୍ଲୀ.ବ. (ଇର + ଇନନ୍)ଊଷର ଭୂମି, ଶୂନ୍ୟ, ଊଷର ।
ଇରଣ୍ୟ—କ୍ଲୀ. ବ. ଊଷର କ୍ଷେତ୍ର ।
ଇରନ୍—ପୁଂ. ବିଂ. ପ୍ରେରକ, ଯେ ପଠାଏ, ଈର୍ଷ୍ୟକ, ଯେ ଈର୍ଷ୍ୟା କରେ ।
ଇରବଲ୍ଲୀ—ସ୍ତ୍ରୀ. ବ. ମସ୍ତକର ଏକପ୍ରକାର କ୍ଷୁଦ୍ର ବ୍ରଣ ।
ଇରବେଲ୍ଲିକା—ଅତଶସ୍ୟ ଜ୍ୱର ଓ ବେଦନାଯୁକ୍ତ ତ୍ରିଦୋଷଜ ମସ୍ତକର ଗୋଲାକାର ପୀଡ଼କାବିଶେଷ ।
ଇରମେଦ—ପୁଂ.ବ. (ବ.ସ୍ତ୍ର) ଅରମେଦ, ବିଟଖଦିର, ଏକପ୍ରକାର ଖଇର ।
ଇରୁଣ୍ଡି, ଇରୁଣ୍ଡିବନ୍ଧ—(ଗ୍ରା) ବ. ଚଉ-କାଠର ତଳଅଂଶ, ଦେହଲୀ ।
ଇରେଶ—ପୁଂ. ବ. (ଇରା + ଈଶ)ବିଷ୍ଣୁ, ବରୁଣ, ରାଜା, ବାଗୀଶ । [ ଘ ।
ଇର୍ମ—କ୍ଲୀ. ବ. (ଇ + ମନ୍) ବ୍ରଣ, କ୍ଷତ,
ଇର୍ଯ—ବିଂ. (ଇର + ଯ) ପ୍ରେରକ ।
ଇର୍ବାରୁ—ପୁଂ. ବ. ( ଇରୁ + ର + ଉ ) କର୍କଟୀ,କାକୁଡ଼ୀ, ହିଂସ୍ରକ ଜନ୍ତୁ,ବିଶାଲ
ଇର୍ବାରୁଶୁକ୍ତିକା—ସ୍ତ୍ରୀ.ବ. କର୍କଟୀବିଶେଷ, ଏକପ୍ରକାର କାକୁଡ଼ୀ । [ବିଶେଷ ।
ଇର୍ବାରୁକ—ପୁଂ.ବ.(ଇର୍ବାରୁ + କ)ମୃଗ-
ଇଲ—( ଧାତୁ ) ଶୟନ କରିବା, ଗମନ କରିବା, କ୍ଷେପଣ କରିବା ।
ଇଲ୍—ପୁଂ.ବ. ( ଇଲ + ଅ ) କର୍ଦ୍ଦମ-ପ୍ରଜାପତିଙ୍କ ପୁତ୍ର ।
ଇଲଚ—ଯା. ବ. ମନ୍ଦ, ଖରାପ ।
ଇଲବିଲା—ସ୍ତ୍ରୀ. ବ. କୁବେରଙ୍କ ମାତା, ପୁଲସ୍ତ୍ୟଙ୍କ ପତ୍ନୀ ।
ଇଲମ—ଯା. ବ. ବିଦ୍ୟା, ଜ୍ଞାନ,ବିଜ୍ଞାନ ।
ଇଲମଗୌତମକରିବା—(ପ୍ରା·ସମ୍ବ) କ୍ରି. ଇତସ୍ତତକରିବା,ହସରେ ଉଡ଼ାଇଦେବା ।
ଇଲମଦାର—ଯା.ବିଂ.ବିଦ୍ୱାନ୍,ପଣ୍ଡିତ ।
ଇଲା—ସ୍ତ୍ରୀ.ବ. (ଇଲ + ଅ + ଆ)ପୃଥିବୀ, ବାକ୍ୟ, ବାଣୀ, ଧେନୁ, ଗୋ, ମଦ୍ୟ, ସ୍ୱପ୍ନଶୀଳ, ଜଳ, ବୈବସ୍ୱତମନୁଙ୍କର କନ୍ୟା, ବୁଧଙ୍କର ସ୍ତ୍ରୀ, ଜମ୍ବୁଦ୍ୱୀପର ନବବର୍ଷ ମଧ୍ୟରେ ବର୍ଷବିଶେଷ ।
ଇଲାକା—ଯା.ବ.ସମ୍ପତ୍ତି,ସୀମା, ଭୂସମ୍ପତ୍ତି, ଅଧିକାର, ଦାବୀ, ସମ୍ପର୍କସମ୍ବନ୍ଧ, ରାଜ୍ୟ-ବିଭାଗ, ଜିଲ୍ଲା ।
ଇଲାକାତୁଟେଇବା—ଗ୍ରା. କ୍ରି. ପୃଥକ୍ କରିଦେବା, ସମ୍ପର୍କ ତୁଟେଇଦେବା, ଅଡ଼ୁଆ ଛଡ଼ାଇବା, ବିବାଦ ମୀମାଂସା କରିବା, ସ୍ତ୍ରୀକୁ ଛାଡ଼ପତ୍ର ଦେବା ।
ଇଲାକାଦାର - ଗ୍ରା. ବିଂ. ସମ୍ପତ୍ତି ପରି-ଚାଳନପାଇଁ ଭାରପ୍ରାପ୍ତ, ସମ୍ପର୍କଯୁକ୍ତ, (ବି) ଭାରପ୍ରାପ୍ତ ବ୍ୟକ୍ତି ।
ଇଲାକାପତ୍ର—ଗ୍ରା. ବ. ଅଧିକାର,ସମ୍ପର୍କ ।
ଇଲାକାବାଡ଼ି—ଗ୍ରା. ବ. ଭୂସମ୍ପତ୍ତି, ଜମି-ବାଡ଼ି, ବିଷୟସ୍ୱାଦ ।
ଇଲାକାରଖିବା—ଗ୍ରା. କ୍ରି. ସମ୍ପର୍କରଖିବା, ସମ୍ପର୍କ ରହିବା ।
ଇଲାଗି—ଗ୍ରା. କ୍ରି. ବିଂ. ଏଥିପାଇଁ ।
ଇଲାଗେ—ଗ୍ରା. ଅବ୍ୟ, ଏହିଲାଗେ, ବର୍ତ୍ତମାନ ।
ଇଲାଚ—ଯା.ବ.ଅଲାଇଚ,ମସଲାବିଶେଷ ।
ଇଲାଜ—ଯା.ବ.ଔଷଧ,ମନ୍ତ୍ରତନ୍ତ୍ରପ୍ରୟୋଗ ।
ଇଲାବୃତ—କ୍ଲୀ. ପୁଂ. ବ. ଜମ୍ବୁଦ୍ୱୀପର ନବବର୍ଷ ବା ଦେଶ ମଧ୍ୟରୁ ଚତୁର୍ଥ ଦେଶ ବା ବର୍ଷ, ବୁଧଗ୍ରହ, ଅଗ୍ନିଙ୍କ ପୁତ୍ର ।
ଇଲାହି—ଯା.ବିଂ.ପବିତ୍ର, ଧର୍ମାର୍ଥ,ଉତ୍କୃଷ୍ଟ, ମହାନ୍, ଶ୍ରେଷ୍ଠ ।
ଇଲାସ୍ମୀ—ଯା.ବ. ବିସ୍ତାନ ନାମକ ସ୍ଥାନର ଜଣେ ବିଖ୍ୟାତ ମୁସଲମାନ ଦାର୍ଶନିକ ।
ଇଲାହିଗଜ—ଯା. ବ. ମୋଗଲସମ୍ରାଟ ଆକବରଙ୍କଦ୍ୱାରା ପ୍ରଚଳିତ ଇଂ୪୧ଞ୍ଚ ଆ ଏକପ୍ରକାର ଗଜ ।
ଇଲି(ଲୀ)—ସ୍ତ୍ରୀ. ବ. (ଇଲ + ଅ—ଈ) ଛୁରିକା, ଛୁରି, ତ୍ରେଗ୍ର ।
ଇଲିକା—ସ୍ତ୍ରୀ. ବ. ( ଇଲା + କ + ଅ ) ପୃଥିବୀ ।
ଇଲିନା—ସ୍ତ୍ରୀ.ବ. ଚନ୍ଦ୍ରବଂଶୀୟ ମେଧାତିଥି ରାଜାଙ୍କ କନ୍ୟା । [ ବିଶେଷ ।
ଇଲିଶ—ପୁଂ. ବ. ସୁନାମଖ୍ୟାତ ମତ୍ସ୍ୟ-
ଇଲୀ—ସ୍ତ୍ରୀ. ବ. (ଇଲ + ଅ + ଈ)କରି-ପାଲିକା, କଟାରି, ଦା ।
ଇଲୀବିଶ—ପୁଂ. ବ. ବେଦୋକ୍ତ ଅସୁର-
ଇଲୀଶ—ପୁଂ.ବ. (ଇଲ + ଈଶ) ମତ୍ସ୍ୟ-ବିଶେଷ, ଇଲସୀ, ଗାଙ୍ଗେୟ, ବାରି-କର୍ପୂର, ଶଫରାଧିପ, ଜଲତାଲ, ରାଜ-ଶଫର, ଇଲ୍ଲୀଶ, ଜଲତାପୀ ।
ଇଲେକ—(ଲେଖାର ଅପଭ୍ରଂଶ) କାଳୀ ବା କଲମର ଦାଗ, ଚିହ୍ନ, ଆଁକ, ନାସ୍ତିଚିହ୍ନ ।
ଇଲୋରା—ଦୌଲତାବାଦ ନିକଟରେ ଥିବା ସ୍ଥାନ ଗୁହା ମନ୍ଦିର ନିମିତ୍ତ ପ୍ରସିଦ୍ଧ, ହିନ୍ଦୁଶାସ୍ତ୍ରରେ ଶିବଲାର୍ଥ ବୋଲି ଖ୍ୟାତ ।
ଇଲ୍ଲକ—ପୁଂ. ବ. ଏକପ୍ରକାର ପକ୍ଷୀ ।
ଇଲ୍ଲିଶ—ପୁଂ. ବ. ଇଲ୍ଲିସି ମାଛ ।
ଇଲ୍ୱକା—ସ୍ତ୍ରୀ. ବ. ମୃଗଶିରା ନକ୍ଷତ୍ରର ଶିରୋଦେଶସ୍ଥ କ୍ଷୁଦ୍ର ତାରକାପଞ୍ଚକ ।
ଇଲ୍ୱଡ଼—ପୁଂ.ବ.ମତ୍ସ୍ୟବିଶେଷ, ଦୈତ୍ୟ-ବିଶେଷ,ସିଂହିକାର ପୁତ୍ର ।
ଇଲ୍ୱଳ—ପୁଂ.ବ.ବାତାପି ଦୈତ୍ୟର ଜ୍ୟେଷ୍ଠ-ଭାଇ, ରାକ୍ଷସବିଶେଷ ।
ଇଲ୍ୱଲା—ସ୍ତ୍ରୀ.ବ.(ଇଲ + କ୍ୱିପ୍ + ବଲଚ୍) ମୃଗଶିରା ନକ୍ଷତ୍ର ଉପରେ ଥିବା ଗୋଟିଏ କ୍ଷୁଦ୍ର ତାରା ।
ଇଲ୍ଲତ—ଯା.ବ.ମଇଲା,ମଇଳା,କାଦୁଆ, ନୀଚଲୋକ ।
ଇଲ୍ଲତଖାନା—ଯା. ବ. ପାଇଖାନା ।
ଇଲ୍ଲାଲ—ଯା. ଅବ୍ୟ, ମୁସଲମାନମାନେ ଆଲ୍ଲା ବା ଈଶ୍ୱରଙ୍କୁ ଡାକିବାର ସମ୍ବୋ-ଧନ ।
ଇବ—ଅବ୍ୟ.ସାଦୃଶ୍ୟ,ତୁଲ୍ୟ, ଉତ୍ପ୍ରେକ୍ଷା, ଈଷଦର୍ଥବୋଧକ, ବାକ୍ୟାଲଂକାର, ଅବଧାରଣନିର୍ଣ୍ଣୟ ।
ଇବ—(ଧାତୁ) ବ୍ୟାପ୍ତି, ପ୍ରୀତିକରିବା ।
ଇବା—ପ୍ରା.ପ୍ରତ୍ୟୟ, ଏହି ପ୍ରତ୍ୟୟ ଓଡ଼ିଆ ଧାତୁ ସଙ୍ଗେ ଯୁକ୍ତ ହୋଇ ଧାତ୍ୱର୍ଥକ କ୍ରିୟା ବୁଝାଏ, ଯଥା—( ଖା-ଧାତୁ + ଇବା = ଖାଇବା) ଶୋ-ଧାତୁ + ଇବା, = ଶୋଇବା ।

ଇଶାଳକ—ପୁଂ. ବି. ଲମ୍ବୋଦର ପୁତ୍ର ।
ଇଶ୍‌ଇଶ୍‌କରିବା—ଗ୍ରା. କ୍ରି. ଘୃଣା କରିବା, କଷ୍ଟବୋଧକ ଧ୍ୱନି କରିବା,ସିଁଟିମାରିବା, ସ୍ତ୍ରୀମାନଙ୍କର ପତିସଙ୍ଗମ ସମୟରେ ଅନୁରାଗଦ୍ୟୋତକ ଅବ୍ୟକ୍ତ ମଧୁର ଧ୍ୱନି-କରିବା ।
ଇଶ୍‌ତହାର—ଯା. ବି. ବିଜ୍ଞାପନ ପତ୍ର ।
ଇଶ—ପ୍ରା. ( ଗଡ଼ଜାତ ) ବି. ପରିହାସ, ଇଙ୍ଗିତ, ଥଟ୍ଟା ।
ଇଶନବିସ୍—ଯା. ବି. ସମନ କରାଯିବା ସାକ୍ଷୀମାନଙ୍କର ତାଲିକା,ସାକ୍ଷୀତାଲିକା ।
ଇଶା—ଯା. ବି. ଯୀଶୁଖ୍ରୀଷ୍ଟ ।
ଇଶାଣ—ଗ୍ରା.ବି. (ସଂ—ଈଶାନ)ଈଶାନ-କୋଣ,ପାକଶାଳାର ଈଶାନକୋଣରେ ସ୍ଥାପିତ ଦେବତା ।
ଇଶାଦ୍—ଯା.ବି. ସାକ୍ଷୀ ।
ଇଶାଦୀ—ଯା.ବି. ସାକ୍ଷୀ ।
ଇଶାରା—ଯା.ବି. ସଙ୍କେତ, ଇଙ୍ଗିତ ।
ଇଶୀକା—ସ୍ତ୍ରୀ. ବି. (ଇଶ+ଇକ+ଆ) ହସ୍ତିର ଚକ୍ଷୁଗୋଲକ, ହାତୀର ଚକ୍ଷୁର ମଣି ।
ଇଷ୍—ବିଂ. (ଇଷ୍+କ୍ୱିପ୍) ଇଚ୍ଛାଯୁକ୍ତ, (ବି) ଅନ୍ନ, ଖାଦ୍ୟ, ଇଚ୍ଛାବିଷୟ,ଯାତ୍ରା, ପ୍ରେରଣ ।
ଇଷ୍—(ଧାତୁ) ଗମନ କରିବା, ଘୂଞ୍ଚିବା
ଇଷ—ପୁଂ.ବି. (ଇଷ+ଅ)ଆଶ୍ୱିନମାସ, ଆଶ୍ୱୟୁଜମାସ, ଲଙ୍ଗଳକୁ କୁଆଳି ସଙ୍ଗେ ଲଗାଇବା ଲମ୍ବକାଠ ।
ଇଷଣି—ସ୍ତ୍ରୀ.ବି. (ଇଷ+ଅନ) ପ୍ରେଷଣ, ପ୍ରେରଣ । [ ପ୍ରେରଣ ।
ଇଷଣୀ—ସ୍ତ୍ରୀ. ବି. (ଇଷଣି+ଯ+ଆ)
ଇଷମ—ପୁଂ. ବି. କାମଦେବ, କନ୍ଦର୍ପ, ବସନ୍ତ ଋତୁ ।
ଇଷଲଙ୍ଗଳଆ—ଗ୍ରା. ବି. (ସଂ ଲଙ୍ଗଳ) ଏକଜାତୀୟ ଗୁଳ୍ମ, ଲହଲଙ୍ଗୁଳିଆ ଗୁଳ୍ମ ।
ଇଷବ୍ୟ—ବିଂ. (ଇଷୁ+ଯ) ଶରଲକ୍ଷ୍ୟ, ଯେ ଉତ୍ତମରୂପେ ବାଣ ପ୍ରୟୋଗ କରିପାରେ ।

ଇଷି ଗ୍ରା.ଅବ୍ୟ.ପୀଡ଼ାସୂଚକ ଧ୍ୱନି,ଶୀତ୍କାର, ଘୃଣାବ୍ୟଞ୍ଜକ ଧ୍ୱନି ।
ଇଷିକା—ସ୍ତ୍ରୀ. ବି. (ଇଷ+ଅକ+ଆ) ହସ୍ତିର ଚକ୍ଷୁଗୋଲକ, ମଣି, ତୂଳିକା, ଚିତ୍ରକର୍ମର ଯନ୍ତ୍ରବିଶେଷ, ମୁଞ୍ଜ ତୃଣ, ଏକଜାତୀୟ ଘାସ, ତୂଳୀ ।
ଇଷିତ—ଗ୍ରା. ଅବ୍ୟ. ( ସଂ-ଈଷତ୍ ) ସାମାନ୍ୟ ମାତ୍ର, ଅଳ୍ପଶରେ ।
ଇଷିର—ବିଂ. ( ଇଷ+ଇର+ଅ ) ଗମନଶୀଳ, (ବି.ପୁଂ) ଅଗ୍ନି, ବହ୍ନି ।
ଇଷୀକା—ସ୍ତ୍ରୀ. ବି (ଇଷ୍+ଇକ+ଆ) ହସ୍ତିର ଚକ୍ଷୁଗୋଲକ,କାଶ ତୃଣ, ମୁଞ୍ଜା ତୃଣ, ଶରକାଠି ।
ଇଷୁ – ପୁଂ. ସ୍ତ୍ରୀ. ବି (ଇଷ+ଉ) ସଂଖ୍ୟା, ବାଣ, ବୃତ୍ତକ୍ଷେତ୍ର ମଧ୍ୟର ରେଖା-ବିଶେଷ, ସାମବେଦବିହିତ ଯଜ୍ଞବିଶେଷ, ଆରମ୍ଭ, ଶର ।
ଇଷୁକାମଶମୀ—ସ୍ତ୍ରୀ.ବି.ଗ୍ରାମବିଶେଷ, ପୁଷ୍ପ-ବିଶେଷ ।
ଇଷୁକାର—ପୁଂ. ବି. (ଇଷୁ+କୃ+ଅ) ଯେ ବାଣ ପ୍ରସ୍ତୁତ କରେ, କମାର ।
ଇଷୁକୃତ୍—ପୁଂ. ବି.(ଇଷୁ+କୃ+କ୍ୱିପ୍) କର୍ମକାର, କମାର ।
ଇଷୁଧର—ପୁଂ. ବିଂ. (ଇଷୁ+ଧୃ+ଅ) ବାଣଧାରୀ, ଇଷୁଭୃତ୍, ଧନୁର୍ଦ୍ଧର ।
ଇଷୁଧି—ପୁଂ. ସ୍ତ୍ରୀ.ବି' (ଇଷୁ+ଧା+ଇ) ବାଣାଧାର, ତୂଣ ତୂଣୀର, ଯହିଁରେ ବାଣ ରଖାଯାଏ ।
ଇଷୁଧ୍ୟା—ସ୍ତ୍ରୀ. ବି. ( ଇଷୁଧି+ଯ+ଅ ) ପ୍ରାର୍ଥନା ।
ଇଷୁପ୍—ପୁଂ. ବି. ( ଇଷୁ+ପା+ଆ ) ଅସୁରବିଶେଷ, ଏହି ଅସୁର ନଗ୍ନଜିତ୍ ନାମକରାଜାରୂପେ ଅବତୀର୍ଣ୍ଣ ହୋଇଥିଲା ।
ଇଷୁପଥ—ପୁଂ.ବି.ବାଣପଥ, ବାଣମାର୍ଗ ।
ଇଷୁପୁଷ୍ପା—ଶରପୁଷ୍ପା ବୃକ୍ଷ ।
ଇଷୁଭୃତ୍—ପୁଂ.ବି.(ଇଷୁ+ଭୃ + କ୍ୱିପ୍) ବାଣଧାରୀ ।
ଇଷୁମାନ୍—ପୁଂ.ବି. (ଇଷୁ+ମତ୍)ବାଣ-ଧାରୀ, ବାଣବିଶିଷ୍ଟ, ପ୍ରଶସ୍ତ ବାଣଧାରୀ, ଯେ ଧନୁର୍ବିଦ୍ୟା ଜାଣେ ।

ଇଷୁମାର୍ଗ—ପୁଂ. ବି. (୬ତତ୍ପୁ) ଆକାଶ ।
ଇଷୁମାତ୍ର—ସ୍ତ୍ରୀ.ବି. (ଇଷୁ+ମାତ୍ର)ବାଣ-ପ୍ରମାଣ, ଋକ୍‌ବେଦୀମାନଙ୍କର କୁଣ୍ଡ, ବାଣପ୍ରମାଣ ମାତ୍ର, କେବଳ ବାଣ ।
ଇଷୁରମୂଳ—ଗ୍ରା. ବି. ଅର୍କମୂଳା ।
ଇଷୁବିକ୍ଷେପ—ପୁଂ. ବି. ବାଣ ଗୁଡ଼ିବାର ସ୍ଥାନ, ୧୫୦ ହାତ ପରିମାଣବିଶିଷ୍ଟ ପ୍ରଦେଶ ।
ଇଷେତ୍ୱାକ—ପୁଂ. ବି. ଯଜୁର୍ବେଦର ପ୍ରଥମାଧ୍ୟାୟ, ଇଷେତ୍ୱ ଶବ୍ଦବିଶିଷ୍ଟ ଅନୁବାଦ ।
ଇଷ୍ଟର୍ତ୍ତ୍ର—ପୁଂ. ବିଂ. (ଇଷ୍+କୃ+ତୃ) ନିଷ୍ପତ୍ତି, ନିଷ୍ପାଦନକାରୀ, (ସ୍ତ୍ରୀ)ଇଷ୍ଟର୍ତ୍ତ୍ରୀ ।
ଇଷ୍ଟକୃତ—ସ୍ତ୍ରୀ.ବି.(ଇଷ୍+କୃ+ତ) ଧାଈ, ଜନନୀ ।
ଇଷ୍ଟ—ବିଂ. (ଇଷ୍+ମି.ତ) ବାଞ୍ଛିତ, ଅଭିଲଷିତ,ଅଭିପ୍ରେତ, ପ୍ରାର୍ଥିତ, ପ୍ରିୟ, ପ୍ରଶଂସିତ, ପୂଜିତ, ସତ୍କୃତ, ଯଜ୍ଞରେ ତର୍ପିତ, କୃତ, ହୁତ (ସ୍ତ୍ରୀ) ଇଷ୍ଟା ।
ଇଷ୍ଟ—କ୍ଲୀ. ବି. (ଇଷ୍+ଭା.ତ) ଅଭି-ଲାଷ, ହୁତ, ଉପକାର, ଯଜ୍ଞାଦିକର୍ମ, ପ୍ରିୟବସ୍ତୁ, ଇଷ୍ଟଦେବତା, ମଙ୍ଗଳ, (ପୁଂ.ବି) ଏରଣ୍ଡ ବୃକ୍ଷ, ଯଜ୍ଞ, ଆପ୍ତ ବନ୍ଧୁ, ଦୟିତ, ପତି, ବିଷ୍ଣୁ ।
ଇଷ୍ଟକ—ପୁଂ. ବି. (ଇଷ୍+ତକ) ଇଟା, ଦଗ୍ଧମୃତ୍ତିକାଖଣ୍ଡ ।
ଇଷ୍ଟକଚିତ—ବିଂ. ଇଷ୍ଟକଦ୍ୱାରା ବ୍ୟାପ୍ତ ସ୍ଥାନାଦି, ଇଟାଦ୍ୱାରା ପରିପୂର୍ଣ୍ଣ ସ୍ଥାନ ।
ଇଷ୍ଟକର୍ମ୍ମ—କ୍ଲୀ.ବି. (କ. ଧା) ଗଣିତ-ବିଶେଷ, ଇଷ୍ଟଲାଭାର୍ଥ ପ୍ରକ୍ରିୟାବିଶେଷ, ଅଭୀଷ୍ଟ କାର୍ଯ୍ୟ ।
ଇଷ୍ଟକା—ସ୍ତ୍ରୀ. ବି. (ଇଷ୍+ତକ+ଆ) ଇଟା,ଯଜ୍ଞାଗ୍ନି ସଂଗ୍ରହନିମିତ୍ତ ମୃତ୍ତିକାଦି-ନିର୍ମିତ ଦ୍ରବ୍ୟବିଶେଷ ।
ଇଷ୍ଟକାପଥ—କ୍ଲୀ. ବି. ବୀରଣ ମୂଳ, ବେଣାମୂଳ ( ପୁଂ.ବି ) ପକା ରାସ୍ତା, ସଡ଼କ, ଇଟାନିର୍ମିତ ପଥ ।
ଇଷ୍ଟକାମଧୁକ୍—ସ୍ତ୍ରୀ. ବି. ( ଇଷ୍ଟକାମ+ ଦୁହ୍+କ୍ୱିପ୍)ଯେ ଅଭିଲଷିତ ପ୍ରିୟକାର୍ଯ୍ୟ ସମ୍ପନ୍ନ କରେ ।

ଇଷ୍ଟକାସନ୍ଧ—କ୍ଲୀ.ବ. ବୈଦ୍ୟୋକ୍ତ ଗନ୍ଧକାବକାରଣ ଯନ୍ତ୍ରବିଶେଷ ।
ଇଷ୍ଟକାଳୟ—ପୁଂ.ବ.(ଇଷ୍ଟକ + ଆଳୟ) ପକାଘର, କୋଠା ।
ଇଷ୍ଟକାବ—ବିଂ. ଇଷ୍ଟକଯୁକ୍ତ ସ୍ଥାନ, ଯେ ସ୍ଥାନରେ ଇଟା ଥାଏ ।
ଇଷ୍ଟକାବତ୍—ବିଂ. ( ଇଷ୍ଟକା + ବତ୍ ) ଇଷ୍ଟକା ନିକଟସ୍ଥ ଦେଶପ୍ରଭୃତି, (ସ୍ତ୍ରୀ) ଇଷ୍ଟକାବତୀ ।
ଇଷ୍ଟକାରୀ—ପୁଂ. ବିଂ. ( ଇଷ୍ଟ + କୃ + ଇନ୍ ) ହିତୈଷୀ, ହିତାଭିଳାଷୀ ।
ଇଷ୍ଟଗନ୍ଧ—ପୁଂ. ବ. (ବ.ବ୍ରୀ) ସୁଗନ୍ଧ, ସୁଗନ୍ଧ ଦ୍ରବ୍ୟ, ବାଲୁକା, ବାଲି, (ବିଂ) ସୁଗନ୍ଧଯୁକ୍ତ ।
ଇଷ୍ଟଗୋଷ୍ଠୀ—ସ୍ତ୍ରୀ. ବ. ଅଭୀଷ୍ଟ ବିଷୟର ସମ୍ଭାଷ, ଇଷ୍ଟଜନଆଳାପ ।
ଇଷ୍ଟଜନ—ପୁଂ.ବ. (କ.ଧା) ପ୍ରିୟବ୍ୟକ୍ତି ।
ଇଷ୍ଟତମ—ପୁଂ. ବିଂ. (ଇଷ୍ଟ + ତମ)ଅତିଶୟ ପ୍ରିୟ, ଅତ୍ୟନ୍ତ ମନୋମତ ।
ଇଷ୍ଟଦେବ—ପୁଂ.ବ. ( କ.ଧା ) ପୂଜ୍ୟଦେବତା, ଗୁରୁଠାକୁର, ଯାହାଙ୍କଠାରୁ ତନ୍ତ୍ରାଦିମନ୍ତ୍ର ଗ୍ରହଣ କରାଯାଏ ।
ଇଷ୍ଟଦେବତା—(ସ୍ତ୍ରୀ) ବ.(କ.ଧା.) ଉପାସ୍ୟ ଦେବତା, ଦୀକ୍ଷାଗୁରୁ ।
ଇଷ୍ଟନିଷ୍ଠା– ସ୍ତ୍ରୀ. ବ. (୭ତତ୍) ଯାଗାଦି ଧର୍ମ୍ମକାର୍ଯ୍ୟରେ ଶ୍ରଦ୍ଧା ବା ଆସ୍ତିକ୍ୟବୁଦ୍ଧି ।
ଇଷ୍ଟପୂର୍ତ୍ତି—ବ. (୬ଷ୍ଠୀତତ୍) ( ଇଷ୍ଟ + ପୂର୍ତ୍ତି) ମନୋବାଞ୍ଛାପୂରଣ ।
ଇଷ୍ଟପ୍ରୟୋଗ—ପୁଂ. ବ. (କ.ଧା) ଶିଷ୍ଟପ୍ରୟୋଗ, ମହତ୍ତ୍ୱଲୋକର ବାକ୍ୟ, ମହତ୍ତ୍ୱବାକ୍ୟ ।
ଇଷ୍ଟବାନ୍—ପୁଂ. ବ. ( ଇଷ୍ଟ + ବତ୍ ) ଯଜ୍ଞକାରୀ, ଇଚ୍ଛାବିଶିଷ୍ଟ, ଇଷ୍ଟକର୍ମ୍ମକାରୀ, ଯେ ବେଦାଧ୍ୟୟନାଦି କରେ ।
ଇଷ୍ଟବିୟୋଗ—ପୁଂ.ବିଂ. (୬ତତ୍) ପ୍ରିୟବିଚ୍ଛେଦ ।
ଇଷ୍ଟମନ୍ତ୍ର—ବ. ଯେଉଁମନ୍ତ୍ରଦ୍ୱାରା ଇଷ୍ଟଦେବତାଙ୍କୁ ଆରାଧନା କରାଯାଏ ।
ଇଷ୍ଟମୂଳାଂଶକାଢ—ପୁଂ.ବ. ଲୀଳାବତୀକଥିତ ମୂଳାଂଶ କାଢବିଶେଷ ।
ଇଷ୍ଟଲାଭ—ପୁଂ. ବ, ( ଇଷ୍ଟ + ଲାଭ ) ମନୋବାଞ୍ଛାପୂରଣ ।
ଇଷ୍ଟସାଧନ—କ୍ଲୀ. ବ. (ଇଷ୍ଟ + ସାଧ + ଅନ) ୬ତତ୍; ଅଭୀଷ୍ଟସିଦ୍ଧି, ଅଭିଳଷିତସମ୍ପାଦନ ।
ଇଷ୍ଟସିଦ୍ଧି—ସ୍ତ୍ରୀ. ବ. ଅଭିଳଷିତ ବିଷୟର ସାଧନ, ଫଳୋତ୍ପାଦନ, ମନୋବାଞ୍ଛାପୂରଣ ।
ଇଷ୍ଟା—ସ୍ତ୍ରୀ. ବ. ( ଯଜ୍ + ତ + ଆ ) ଶମୀବୃକ୍ଷ, ସମିଧଦ୍ୱାରା ହୋମ କରିବା ହେତୁ ।
ଇଷ୍ଟାଦ—ପୁଂ. ବ. (ବ.ବ୍ରୀ)ଗଣବିଶେଷ, ଇଷ୍ଟାଦିଗଣ, ଇଷ୍ଟ, ପୂର୍ତ୍ତ, ଅଯୁକ୍ତ, ଗୃହୀତ ଇତ୍ୟାଦି ।
ଇଷ୍ଟାପତ୍ତି—ସ୍ତ୍ରୀ. ବ. (ଇଷ୍ଟ + ଆପତ୍ତି) (୬ତତ୍) ଲାଭ, ଉପକାର, ଇଷ୍ଟସିଦ୍ଧି, ଅଭିଳଷିତ ପ୍ରାପ୍ତି ।
ଇଷ୍ଟାପୂର୍ତ୍ତି—କ୍ଲୀ. ବ. (ଇଷ୍ଟ + ଆପୂର୍ତ୍ତି) ଅଗ୍ନିହୋତ୍ରାଦି ଯଜ୍ଞ, ସାଧାରଣ ହିତକର ଅନୁଷ୍ଠାନ ।
ଇଷ୍ଟାର୍ଥୋଦ୍ୟୁକ୍ତ—ପୁଂ. ବିଂ. ଉତ୍ସୁକ, ଉତ୍ସାହଯୁକ୍ତ, ଅଭୀଷ୍ଟବସ୍ତୁ ନିମିତ୍ତ ଉଦ୍ୟନ୍ତ ହେବା ।
ଇଷ୍ଟାଳାପ—ପୁଂ. ବିଂ. (କ.ଧା) ସଦାଳାପ, ପରସ୍ପର ଭଦ୍ରାଳାପ ।
ଇଷ୍ଟି—ସ୍ତ୍ରୀ. ବ.(ଯଜ + ତି) ଯଜ୍ଞ, ଇଚ୍ଛା, ଅଭିଳାଷ, ଶ୍ଳୋକସଂଗ୍ରହ, ଦାନସଂଗ୍ରହ, ହୋମ, ଅନୁରୋଧ ।
ଇଷ୍ଟିକା—ସ୍ତ୍ରୀ. ବ. (ଇଷ୍ + ତକ + ଆ) ଇଟା, ଯଜ୍ଞାଗ୍ନି ଚୟନ ନିମିତ୍ତ ମୃତ୍ତିକାଦିର ପାତ୍ରବିଶେଷ । [ ତୁଣ ।
ଇଷ୍ଟିକାପଥିକ—କ୍ଲୀ.ବ.ଲମଜ୍ଜକ ନାମକ
ଇଷ୍ଟିକାମ—ପୁଂ. ବ. ଇଚ୍ଛାନୁରୂପ କାର୍ଯ୍ୟ, ଯଜ୍ଞକର୍ମ୍ମ ।
ଇଷ୍ଟିକୃତ୍—ପୁଂ. ବିଂ. ( ଇଷ୍ଟି + କୃ + କ୍ୱିପ୍) ଯେ ଯାଗକରେ, ଯାଗକାରୀ ।
ଇଷ୍ଟିପଚ—ପୁଂ.ବ. (ଇଷ୍ଟି + ପଚ୍ + ଅ ) କୃପଣ, ଅସୁର, ଦାନବ ।
ଇଷ୍ଟିମୁଷ୍—ପୁଂ.ବ.(ଇଷ୍ଟି + ମୁଷ୍ + କ୍ୱିପ୍) ଦୈତ୍ୟ ।
ଇଷ୍ଟୀ—ପୁଂ. ବିଂ. (ଇଷ୍ଟ + ଇନ୍) ଇଚ୍ଛାଯୁକ୍ତ, ଅଭିଳାଷୀ, ଯଜ୍ଞକାରୀ, ଯେ ଯାଗ କରିଅଛି ।
ଇଷ୍ଟୀକୃତ—କ୍ଲୀ.ବ. ଯାହା ଅଭିଳାଷକରାଯାଇ ନ ଥାଏ ସେହି ଅଭିଳାଷ କରିବା, ଯଜ୍ଞବିଶେଷ ।
ଇଷ୍ଟୃ—ସ୍ତ୍ରୀ. ବ. (ଇଷ୍ + ସ୍ନୃ) ଇଚ୍ଛା, ଅଭିଳାଷ, ଲିପ୍ସା ।
ଇଷ୍ମ—ପୁଂ.ବ.(ଇଷ୍ + ମକ୍) କାମଦେବ, ବସନ୍ତକାଳ, ଗମନ ।
ଇଷ୍ଟ୍ୟୟନ—କ୍ଲୀ. ବ. (ବ.ବ୍ରୀ) ଯାଗବିଶେଷର ଅନୁଷ୍ଠାନ, ସାମ୍ବତ୍ସରିକ ଶ୍ରାଦ୍ଧ, ଅଗ୍ନି ଦୈବତ ପ୍ରଭୃତି ।
ଇଷ୍ୟ—ପୁଂ. ବ. (ଇଷ + ଯ) ବସନ୍ତକାଳ, ବସନ୍ତ ଋତୁ ।
ଇଷ୍ୱ—ପୁଂ.ବ. (ଇଷ + ବନ୍) ଆଚାର୍ଯ୍ୟ ।
ଇଷ୍ୱଗ୍ର—କ୍ଲୀ.ବ.(୬ତତ୍)ବାଣର ଅଗ୍ରଭାଗ
ଇଷ୍ୱନୀକ—କ୍ଲୀ. ବ. ବାଣର ଅବୟବ ।
ଇଷ୍ୱସନ—କ୍ଲୀ.ବ.(ଇଷୁ + ଅସ + ଅନ) ଧନୁକ, ଚାପ, ଯାହାଦ୍ୱାରା ଶର କ୍ଷେପ କରାଯାଏ ।
ଇଷ୍ୱସ୍ତ୍ର—କ୍ଲୀ. ବ. ( ୬ତତ୍ ) ବାଣାସ୍ତ୍ର, ଶରାସ୍ତ୍ର, ବାଣରୂପକ ଅସ୍ତ୍ର, ଧନୁ ।
ଇଷ୍ୱାସ—ବିଂ. (ଇଷୁ + ଅସ୍ + ଅ) ଧନୁର୍ଦ୍ଧାରୀ, ବାଣକ୍ଷେପକ, (ବ) ଧନୁକ, ଯେ ବାଣ କ୍ଷେପକରେ, ଖରଦ୍ରାଜ ।
ଇସ୍—ଅବ୍ୟ.(ଇ + ସୋ + କ୍ୱିପ୍)କୋପ, ସନ୍ତାପ, ଦୁଃଖାନୁଭବ କରିବା, ଭାବନା, ଘୃଣା ଓ ଆଶ୍ଚର୍ଯ୍ୟବୋଧକ ।
ଇସତତସ—ଗ୍ରା. ଅବ୍ୟ. (ସଂ.ଇତସ୍ତତଃ ) ଏଣୁତେଣୁ , ଦ୍ୱିଧାଭାବ, ଦ୍ୱିଧାକଥା, ଯେ କୌଣସି ପଦାର୍ଥ, ଏଣୁତେଣୁ ଗୁଡ଼ିଏ ବାଜେ ଜିନିଷ ।
ଇସବ୍‌ଗୁଲ—ଯା. ଦେଶୀୟ ଔଷଧ ବୀଜବିଶେଷ,ଏକପ୍ରକାର ବୃକ୍ଷର ମଞ୍ଜି ।
ଇସମୂଳ—ଏକ ପ୍ରକାର ଗଛ, ଅର୍କପତ୍ର, ଅର୍କମୂଳା, ସୁନନ୍ଦା, ବିଷାପହା ।

ଇସ୍‌ମାଇଲ୍—ମୁସଲମାନମାନଙ୍କର ଇସମାଇଲୀ ଧର୍ମସମ୍ପ୍ରଦାୟର ପ୍ରବର୍ତ୍ତିକ ।
ଇସମାଇଲ୍ ଆଦିଲଶାହ—ଆହ୍ମଦ ନଗରର ରାଜା ଥିଲେ ।
ଇସର—ବିହାରପ୍ରଦେଶସ୍ଥ ଦୋସାଧ୍‌ମାନଙ୍କର ଗୋଟିଏ ପଙ୍‌କ୍ତି ବା ଶାଖା ।
ଇସଲାମଖାଁମଷଦୀ—ସମ୍ରାଟ୍‌ଶାହାଜାହାନଙ୍କ ସମୟରେ ବଙ୍ଗର ସୁବାଦାର ବା ଶାସନକର୍ତ୍ତା ଥିଲେ ।
ଇସଲାମଗଡ଼—ରାଜପୁତାନାରପ୍ରାନ୍ତଭାଗରେ ଗୋଟିଏ ପ୍ରାଚୀନ ଦୁର୍ଗ ।
ଇସଲାମ ନଗର-ବୁନ୍ଦାଖଣ୍ଡ ପ୍ରଦେଶାନ୍ତର୍ଗତ ବିଶୈଲି ପରଗଣାର ଗୋଟିଏ ନଗର ।
ଇସଲାମାବାଦ—ପୂର୍ବବଙ୍ଗସ୍ଥ ଚଟ୍ଟଗ୍ରାମ-ଜିଲ୍ଲାର ଗୋଟିଏ ପ୍ରଧାନ ନଗର ।
ଇସାଖେଲ—ଆଫଗାନଜାତିବିଶେଷ ।
ଇସାଦ୍—(ଯା) ବି. ସାକ୍ଷୀ, ଦଲିଲର ସାକ୍ଷୀ, ହାସିଆ ସାକ୍ଷୀ । [କ୍ରମରେ ।
ଇସାମାର୍ଗ—ଗ୍ରା. କ୍ରି. ବିଂ. ଏହିପରି,
ଇସାମାର୍ଗେ—ଗ୍ରା.କ୍ରି.ବିଂ.ଏହିପରି,କ୍ରମରେ
ଇସାରା—(ଯା) ବି. ସଙ୍କେତ, ଠାର, ହାତଦ୍ୱାରା ସଙ୍କେତ ।
ଇସୁ—(ଯା) ବି. ମୋକଦ୍ଦମାର ମୀମାଂସା-ନିମନ୍ତେ ନିର୍ଦ୍ଧାରିତ ବିଷୟ,ମୋକଦ୍ଦମାର ବିଚାର ପର୍ଯ୍ୟନ୍ତ ।
ଇସୁକୁଲ—ଗ୍ରା. ବି. ବିଦ୍ୟାଳୟ, (ବିଂ) ଇସୁକୁଲିଆ । [କଲାପାନ ।
ଇସ୍କାପାନ—ଗ୍ରା. ବି. ଖେଳିବା ତାସର,
ଇସ୍କାତର—ଯା. ବି. ଏକପ୍ରକାର ଲେଖିବାର ବାକ୍‌ସ ।
ଇସ୍କାର୍ଦୋ—କାଶ୍ମୀର ରାଜ୍ୟର ବଲତି-ନାମକ ପ୍ରଦେଶାନ୍ତର୍ଗତ ଗୋଟିଏ ପ୍ରଧାନ ନଗର ।
ଇସ୍କୁଲ—ଗ୍ରା.ବି.ବିଦ୍ୟାଳୟ ପାଠଶାଳା ।
ଇସ୍ତକ—ଯା. ଅବ୍ୟ, ଏହିଠାରେ, ଏହି ସ୍ଥାନରେ, ଅବଧି, ପର୍ଯ୍ୟନ୍ତ, ଠାରୁ, ଲାଗିତ ।
ଇସ୍ତକଲାଗାଦ—ଯା. ଅବ୍ୟ, ଏହିଠାରୁ ସେଠା ପର୍ଯ୍ୟନ୍ତ, ଏହି ସ୍ଥାନରୁ ସେହି ସ୍ଥାନ ପର୍ଯ୍ୟନ୍ତ ।

ଇସ୍ତଫା—ଯା. ବି. ଛାଡ଼ପତ୍ର, କର୍ମତ୍ୟାଗ ପତ୍ର, ଅବସାନ, ଶେଷ, କ୍ଷମା, ମାଫ୍, ସ୍ୱୟଂ ସ୍ୱାର୍ଥତ୍ୟାଗ କରିବା ।
ଇସ୍ତଫାନାମା—ଯା. ବି. ନିଜେ କାର୍ଯ୍ୟରୁ ଅନ୍ତର ହେବାପାଇଁ ଦେବା ଆବେଦନ-ପତ୍ର, ସମ୍ପତ୍ତିପ୍ରଭୃତିରୁ ସ୍ୱତ୍ୱ ତ୍ୟାଗ-କରିବାର ନିଦର୍ଶନ ପତ୍ର ।
ଇସ୍ତମରାର—ଯା. ବି. ଚିରସ୍ଥାୟୀ, ଦୀର୍ଘ-କାଳସ୍ଥାୟୀ । [ପ୍ରୟୋଗ ।
ଇସ୍ତମାଲ—ଯା.ବି. ଅଭ୍ୟାସ,ଅନୁଶୀଳନ,
ଇସ୍ତାଫା—ଯା. ବି. ଇସ୍ତଫା (ଦେଖ) ।
ଇସ୍ତାହାର—ଯା.ବି. ବିଜ୍ଞାପନ,ଘୋଷଣା, ସାଧାରଣ ପ୍ରଚାରିତ ବିଜ୍ଞାପନ ।
ଇସ୍ତାହାର ଓ ଇସ୍ତିହାର—ଯା.ବି.ଇସ୍ତା-ହାର (ଦେଖ) । [ଅଭ୍ୟାସ ।
ଇସ୍ତିଆଯାଲ୍—ଯା. ବି. ଦୈନିକ କାର୍ଯ୍ୟ,
ଇସ୍ତିଫସାର—ଯା. ବି. ଯମାନବନ୍ଦୀ, ମୋକଦ୍ଦମାରେ ପକ୍ଷଙ୍କୁ କରାଯିବା ପ୍ରଶ୍ନ ।
ଇସ୍ତିମରାରୀ—ଯା. ବି. ପୁନଃପୁନଃ, ଅନ-ବରତ, ଚିରସ୍ଥାୟୀ ।
ଇସ୍ତିସ୍ଫାଫା—ଯା. ବି. କ୍ଷମା, ଛାଡ଼ ।
ଇସ୍ତିରି—ଗ୍ରା. ବି. ଧୋବାମାନେ ପରିଷ୍କୃତ ହୋଇଥିବା ବସ୍ତ୍ରାଦିକୁ ଲୌହ ବା ପିତ୍ତଳ ଯନ୍ତ୍ର ସାହାଯ୍ୟରେ ମସୃଣ କରିବା ।
ଇସ୍ତିହାରନାମ—ଯା ବି. ଲିଖିତ ବିଜ୍ଞାପନ
ଇସ୍ତ୍ରି—(ଇଂ- ଷ୍ଟିଲର ଅପଭ୍ରଂଶ)ଲୁହାର-ପାତ, ଧୋବାମାନଙ୍କର ଲୁଗା ପରିଷ୍କାର କରିବା ଯନ୍ତ୍ରବିଶେଷ ।
ଇସ୍ପନ୍ଦ—ଯା. ବି. ଏକଜାତୀୟ ବୀଜ ।
ଇସ୍ପାତ—ଯା. ବି. ପରିଷ୍କୃତ ଲୌହ, ଟାଣଲୁହା ।
ଇସ୍ଲାମ—ଯା. ବି. ମହମ୍ମଦଙ୍କର ପ୍ରବର୍ତ୍ତିତ ଧର୍ମ, ମୁସଲମାନ ।
ଇସ୍ଲାମୀ—ଯା.ବିଂ. ମୁସଲମାନ ଧର୍ମସମ୍ବନ୍ଧୀୟ. ମୁସଲମାନ ଧର୍ମବିଶ୍ୱାସୀ ।
ଇହ—ଅବ୍ୟ,(ଇଦମ୍ ଶବ୍ଦର ୭ମୀଅର୍ଥରେ ନିପାତ ) ଏଠାରେ, ଏହି ପୃଥିବୀରେ, ଏହି ଲୋକରେ ।

ଇହକାଳ—ପୁଂ. ବି. ଏହିକାଳ, ଜନ୍ମ-ଠାରୁ ମୃତ୍ୟୁ ପର୍ଯ୍ୟନ୍ତ ସମୟ, ଇହଲୋକ, ବର୍ତ୍ତମାନ ସମୟ ।
ଇହଜଗତ—କ୍ଲୀ. ବି. ଏହି ପୃଥିବୀ ।
ଇହଜନ୍ମ—କ୍ଲୀ.ବି. ଏହି ଜନ୍ମ, ବର୍ତ୍ତମାନ ଜନ୍ମ ।
ଇହଜୀବନ—କ୍ଲୀ. ବି. ଏହି ଶରୀରରେ ଯେତେଦିନ ବଞ୍ଚିବାକୁ ହୁଏ । [ଜନ୍ମେ ।
ଇହତନ—ବିଂ. ଏହି ଜଗତରେ ଯାହା
ଇହତିଆଜ୍—ଯା.ବି.ଅଭାବ,ପ୍ରୟୋଜନ ।
ଇହତିରାତ୍—ଯା. ବି. ମିତାଚାର ।
ଇହତ୍ୟ—ବିଂ. (ଇହ + ତ୍ୟ) ଏହିକାଳରେ ଯାହା ହୁଏ, ଅତ୍ରତ୍ୟ, ( ଅବ୍ୟ ) ଏହି ସ୍ଥାନର, ଅତ୍ରତ୍ୟ ।
ଇହଲୋକ—ପୁଂ. ବି. ମନୁଷ୍ୟଲୋକ, ମର୍ତ୍ତ୍ୟଲୋକ, ଏହି ସଂସାର, ପୃଥିବୀ ।
ଇହଦ୍ୱିତୀୟା—ସ୍ତ୍ରୀ. ବି. ଏହିକାଳର ଦ୍ୱିତୀୟା ।
ଇହପଞ୍ଚମୀ—ସ୍ତ୍ରୀ. ବି. ବର୍ତ୍ତମାନ ପଞ୍ଚମୀ, ଏହି ପଞ୍ଚମୀ । [ଦେଶ ।
ଇହଲ—ପୁଂ.ବି.(ଇହ + ଲା + ଅ)ଚେଦି
ଇହସାନ୍—ଯା. ବି. ଦୟା ।
ଇହସ୍ଥ—ବିଂ. (ଇହ + ସ୍ଥା + ଅ) ଅତ୍ରସ୍ଥ, ଏହି ସ୍ଥାନର ।
ଇହସ୍ଥାନ—କ୍ଲୀ.ବି.ଏହିଜଗତ,ଏହିସ୍ଥାନ ।
ଇହା—ସ୍ତ୍ରୀ.ବି. ଚେଷ୍ଟା,ଯତ୍ନ,(ବଙ୍ଗ) ଏହି ।
ଇହା—ପୁଂ. ବି. (ଇ + ହନ୍ + କ୍ୱିପ୍) ମହାଦେବ, ଶିବ, (ବିଂ) କାମଧ୍ୱଂସକ, (ଗ୍ରା.ସର୍ବ) ଏହି ବସ୍ତୁ ବା ଲୋକ ।
ଇହାମୁତ୍ର—ଅବ୍ୟ. ( ଇହ + ଅମୁତ୍ର ) ଇହଲୋକ ଓ ପରଲୋକରେ, ସର୍ବତ୍ର, ସର୍ବଦା, ଅନନ୍ତ କାଳଯାଏ ।
ଇହି—ଗ୍ରା. ଅବ୍ୟ. ଘୃଣାବ୍ୟଞ୍ଜକ ଧ୍ୱନି ।
ଇହୁଦୀ—ସ୍ତ୍ରୀ.ବି. ଜୁ ଜାତୀୟ ଲୋକ, ଜୁ-ନାମକ ଜାତିର ଭାଷା ।

# ଈ

ଈ—ଚତୁର୍ଥ ସ୍ୱରବର୍ଣ୍ଣ, ଦୀର୍ଘସ୍ୱର, ଏହାର ଉଚ୍ଚାରଣ ସ୍ଥାନ ତାଳୁ, 'ଈ' କାର, ଈମାତ୍ରା, 'ୀ'।

ଈଃ—ଅବ୍ୟ, କୋପ, ଯନ୍ତ୍ରଣା ବା ଘୃଣାବୋଧକ ଧ୍ୱନି।

ଈ—(ଧାତୁ) ଗମନ କରିବା।

ଈ—ଅବ୍ୟ. ବିଷାଦ, ଅନୁକମ୍ପା, କୃପା, କ୍ରୋଧ, ଦୁଃଖାନୁଭବ, କ୍ଲେଶାଦିବୋଧକ ପ୍ରତ୍ୟକ୍ଷ, ନିକଟ।

ଈ—ସ୍ତ୍ରୀ. ପୁଂ.ବି. (ଅ + ଈ) କାମଦେବ, ଲକ୍ଷ୍ମୀ, ଗୋବିନ୍ଦ, ତ୍ରିମୂର୍ତ୍ତୀଶ, ଶାନ୍ତ, ବାମଲୋଚନ ନୃସିଂହାସ୍ତ୍ର, ମାୟା, ସୁରେଶ୍ୱର, କନ୍ୟାଯୁଗ, କର୍କଟ।

ଈ(ପ୍ରତ୍ୟୟ)—ବି.ସ୍ତ୍ରୀଲିଙ୍ଗରେ,କ୍ଷୁଦ୍ରତାବାଚକରେ, ଅଭୂତଭାବରେ, ଅଛି ଅର୍ଥରେ।

ଈକାର—ପୁଂ. ବି. (ଈ + କାର) ଚତୁର୍ଥ ସ୍ୱରବର୍ଣ୍ଣ, 'ଈ' ଏହି ବର୍ଣ୍ଣମାତ୍ର।

ଈକାରାଦି – ପୁଂ.ବି.ବିଂ.(ବ.ବ୍ରୀ)ଈକାରଠାରୁ ଆରମ୍ଭ କରି ପରବର୍ତ୍ତୀ ଅନ୍ୟାନ୍ୟ ବର୍ଣ୍ଣ।

ଈକାରାନ୍ତ—ବିଂ.(ବ.ବ୍ରୀ)ଯାହାର ଅନ୍ତରେ (ଶେଷରେ) ଈ ଥାଏ।

ଈକ୍ଷ୍—(ଧାତୁ) ଦର୍ଶନ, ପର୍ଯ୍ୟାଲୋଚନା।

ଈକ୍ଷକ—ପୁଂ.ବିଂ. (ଈକ୍ଷ + କ) ଦର୍ଶକ।

ଈକ୍ଷଣ—କ୍ଲୀ.ବି. (ଈକ୍ଷ୍ + ଅନ) ନେତ୍ର, ଚକ୍ଷୁ, ଦର୍ଶନ, ନିରୂପଣ, ଅବଲୋକନ, ପର୍ଯ୍ୟବେକ୍ଷଣ।

ଈକ୍ଷଣୀକ—ପୁଂ. ବିଂ. (ଈକ୍ଷଣ + ଇକ) ଦୈବଜ୍ଞ, ଜ୍ୟୋତିଷିକ, ନିମିତ୍ତଜ୍ଞ, (ସ୍ତ୍ରୀ) ଈକ୍ଷଣୀକା।

ଈକ୍ଷଣିକା—ସ୍ତ୍ରୀ. ବି. (ଈକ୍ଷଣ + ଇକ + ଆ) ଦୈବଜ୍ଞା, ଗଣକର ସ୍ତ୍ରୀ, ନିମିତ୍ତଜ୍ଞା।

ଈକ୍ଷଣୀୟ—ବିଂ. ଦର୍ଶନୀୟ, ଦୃଶ୍ୟ।

ଈକ୍ଷମାଣ—ପୁଂ. ବିଂ. (ଈକ୍ଷ + କ.ଆନ) ଦର୍ଶନକାରୀ, ଦେଖିଥିବା, (ସ୍ତ୍ରୀ) ଈକ୍ଷମାଣା।

ଈକ୍ଷା—ସ୍ତ୍ରୀ. ବି. ( ଈକ୍ଷ୍ + ଅ + ଆ ) ବିଚାରଣା, ଦୃଷ୍ଟି, ପର୍ଯ୍ୟାଲୋଚନା, ନେତ୍ର, ଦର୍ଶନ।

ଈକ୍ଷିତ—ବିଂ.(ଈକ୍ଷ୍ + ମିଁ.ତ)ଦୃଷ୍ଟ, ଅବଲୋକିତ, ରକ୍ଷିତ, (ସ୍ତ୍ରୀ) ଈକ୍ଷିତା, ବିଚାରିତା।

ଈକ୍ଷିତା—ପୁଂ. ବିଂ. (ଈକ୍ଷ୍ + ତୃ)ଦ୍ରଷ୍ଟା, ଦର୍ଶକ, ଯେ ଦେଖେ, ବିଚାରକ, (ସ୍ତ୍ରୀ) ଈକ୍ଷିତ୍ରୀ।

ଈଖ୍—(ଧାତୁ) ଗମନ କରିବା।

ଈଙ୍ଖ୍—(ଧାତୁ) ଗମନ କରିବା।

ଈଜ୍—(ଧାତୁ)ଗମନ କରିବା,ନିନ୍ଦାକରିବା

ଈଜାଦ୍—ଯା. ବି. ପ୍ରକାଶ, ଆବିଷ୍କାର।

ଈଜକ—ପୁଂ.ବି.ଜନପଦବିଶେଷ,ଦେଶବିଶେଷ।

ଈଟା—ପ୍ରା. (ସମ୍ପ) ସର୍ବ. ଏହିଟା,ଏହି।

ଈଡ଼୍—(ଧାତୁ)ସ୍ତୁତିକରିବା, ସ୍ତବକରିବା, ପ୍ରଶଂସା କରିବା।

ଈଡ଼ା—ସ୍ତ୍ରୀ. ବି. (ଈଡ଼ + ଅ + ଆ)ସ୍ତୁତି, ପ୍ରଶଂସା, ଘୋଷଣା, ନାଡ଼ୀବିଶେଷ।

ଈଡ଼ିତ—ବିଂ. ( ଈଡ଼୍ + ମିଁ.ତ ) ସ୍ତୁତ, ପ୍ରଶଂସିତ, (ବି) ସ୍ତୁତି, ପ୍ରଶଂସା, (ସ୍ତ୍ରୀ) ଈଡ଼ିତା।

ଈଡ଼୍ୟ—ବିଂ. (ଈଡ଼୍ + ମିଁ.ଯ)ସ୍ତବନୀୟ, ଶ୍ଳାଘ୍ୟ,ପୂଜ୍ୟ, ସ୍ତବ କରିବାର ଉପଯୁକ୍ତ, (ସ୍ତ୍ରୀ) ଈଡ଼୍ୟା।

ଈଡ଼୍ୟମାନ—ପୁଂ.ବିଂ. (ଈଡ଼୍ + ମିଁ.ଆନ) ସ୍ତୂୟମାନ, ଯାହାକୁ ସ୍ତବ କରି ହୋଇଥାଏ।

ଈତ୍ୟୁପଦ୍ରବ—ପୁଂ. ବି, ଅନାବୃଷ୍ଟ୍ୟାଦି ଉପଦ୍ରବ।

ଈତି – ସ୍ତ୍ରୀ.ବି. (ଈ + ମିଁ.ତି) ଗତି,ଡିମ୍ବ, ପ୍ରବାସ,କଳହଭେଦ, ନୃପତିହେତୁ ଯୁଦ୍ଧ, ଅତିବୃଷ୍ଟି ପ୍ରଭୃତି ଛଅପ୍ରକାର ଉପଦ୍ରବ।

ଈଦ୍—ଯା. ବି. ମୁସଲମାନଙ୍କର ଧର୍ମୋତ୍ସବଦିନ।

ଈଦୃକ୍—ବିଂ. (ଇଦମ୍ + ଦୃଶ୍ + କ୍ୱିପ୍) ଏହିପରି,ଏବଂଭୂତ, ଏହାପରି, ଈଦୃଶ।

ଈଦୃକ୍ତା—ସ୍ତ୍ରୀ.ବି.(ଈଦୃଶ୍ + ତଲ୍ + ଆ) ଏହିରୂପ, ଏହିପରି।

ଈଦୃକ୍ଷ—ବିଂ.(ଇଦମ୍ + ଦୃଶ + ମିଁ.କସ୍) ଏହିରୂପ, ଏହିପରି, ଈଦୃଶ, (ସ୍ତ୍ରୀ) ଈଦୃକ୍ଷା।

ଈଦୃଶ—ବିଂ. (ଇଦମ୍ + ଦୃଶ୍ + ମିଁ.ଅ) ଏହିପରି, ଏହାର ସଦୃଶ, ଏପରି (ସ୍ତ୍ରୀ) ଈଦୃଶୀ।

ଈପ୍ସା—ସ୍ତ୍ରୀ. ବି. (ଆପ୍ + ସ.ଆ)ବାଞ୍ଛା, ପାଇବାର ଇଚ୍ଛା, ଲିପ୍ସା।

ଈପ୍ସିତ—ବିଂ.(ଆପ୍ + ସ.ତ) ବାଞ୍ଛିତ, ଅଭିଳଷିତ, ଯାହା ପାଇବାକୁ ଇଚ୍ଛା ହୁଏ, ପ୍ରିୟ।

ଈପ୍ସିତ—କ୍ଲୀ.ବି. (ଆପ୍ + ସ + ଭା.ତ) ମନୋରଥ, ସ୍ପୃହା, ଅଭିଳାଷ।

ଈପ୍ସିତାର୍ଥ—ପୁଂ. ବି. (କ.ଧା) ବାଞ୍ଛିତ ଫଳ, ମନସ୍କାମନା।

ଈପ୍ସୁ—ପୁଂ.ବିଂ. ( ଆପ୍ + ସନ୍ + ଉ) ଇଚ୍ଛୁକ, ଧର୍ମଜ୍ଞ, ଧାର୍ମିକ, ପାଇବାକୁ ଇଚ୍ଛୁକ।

ଈପ୍ସୁମୃଗ—ପୁଂ.ବି. ମୃଗ, ବୃକ।

ଈପ୍ସିରସ୍—ପୁଂ.ବିଂ.ଯେ ପାଇଅଛି, ଯେ ପାଇଥାଏ।

ଈର୍—(ଧାତୁ) ଗମନ କରିବା, କମ୍ପନ, ପ୍ରେରଣ କରିବା, କ୍ଷେପଣ କରିବା।

ଈରଣ—କ୍ଲୀ.ବି.(ଈର୍ + ଭା.ଅନ)କ୍ଷାରଭୂମି,ଊଷରଭୂମି,ଗତି, କମ୍ପନ, ପ୍ରେରଣ, ସମୀରଣ, (ବିଂ) ଶୂନ୍ୟ, ଊଷର।

ଈରମା—ସ୍ତ୍ରୀ. ବି. ନଦୀବିଶେଷ।

ଈରକା—ସ୍ତ୍ରୀ ବି. (ଈର + ଇକ + ଆ) ବୃକ୍ଷବିଶେଷ।

ଈରଣ—ବି. ଆକାଶ, ଊଷରଭୂମି,କ୍ଷାରମୃତ୍ତିକା, ମରୁଭୂମି।

ଈରତ—ବିଂ.(ଈର + ମି.ତ) ଉଚ୍ଚାରିତ, କ୍ଷିପ୍ତ, ପ୍ରେରିତ, କଥିତ, ବସୃଷ୍ଟ,କମ୍ପିତ, ଗତ, ବକ୍ଷିପ୍ତ, କଳ୍ପିତ,ଆକୃଷ୍ଟ,ଚାଳିତ, ବିସର୍ଜ୍ଜିତ ।

ଈରଣ—କ୍ଲୀ.ବ.(ଈର + ଖ + ତ)ଉକ୍ତି, କଥନ, ବାକ୍ୟ, କଥା ।

ଈରିଣ—ପୁଂ.ବିଂ. (ଈର୍ + ଇନ୍)ଗମନଶୀଳ (ବ୍ୟକ୍ତି) ଗାମୀ, ଗ୍ରାମ୍ୟମାଣ ।

ଈର୍ଷ୍ୟ—(ଧାତୁ) ଈର୍ଷାକରିବା, ଅନ୍ୟର ଭଲ ଦେଖି ନ ପାରିବା ।

ଈର୍ମ—ପୁଂ. କ୍ଲୀ ବ. ( ଈର + ମକ୍ ) ଶାରୀରକ ଓ ଆଗନ୍ତୁକ ଭେଦରେ ଦୁଇପ୍ରକାର ବ୍ରଣରୋଗବିଶେଷ ।

ଈର୍ଯ୍ୟା—ସ୍ତ୍ରୀ. ବ. ( ଈର୍ + ଯ + ଆ ) ଭିକ୍ଷୁବ୍ରତ, ଧ୍ୟାନ ଧାରଣାଦି ।

ଈର୍ଯ୍ୟାପଥ—ପୁଂ. ବ. ଭିକ୍ଷୁବ୍ରତ, ଧ୍ୟାନଧାରଣାଦି ଶିଖିବାର ଉପାୟ ।

ଈର୍ବାରୁ—ପୁଂ. ସ୍ତ୍ରୀ. ବ. (ଈର୍ + ଋ + ଉ) କର୍କଟୀ, କାକୁଡ଼ୀ, ଫୁଟିକାକୁଡ଼ୀ ।

ଈର୍ଷା,ଈର୍ଷ୍ୟା—ସ୍ତ୍ରୀ.ବ. (ଈର୍ଷ୍ୟ + ଅ + ଆ) ଦ୍ୱେଷ, ପରଶ୍ରୀକାତରତା, ଅକ୍ଷମା, ହିଂସା, ଦ୍ୱେଷ, ଅନ୍ୟର ସୁଖ ସୌଭାଗ୍ୟାଦି ଦର୍ଶନରେ ଅସୁଖାନୁଭବ, ଖଣ୍ଡିତା ନାୟିକା ।

ଈର୍ଷାନ୍ୱିତ—ପୁଂ.ବିଂ.(ଈର୍ଷା + ଅନ୍ୱିତ) (୩ତତ୍ପୁ), ଈର୍ଷାଯୁକ୍ତ, ଈର୍ଷାଳୁ, (ସ୍ତ୍ରୀ) ଈର୍ଷାନ୍ୱିତା ।

ଈର୍ଷାପର—ପୁଂ.ବିଂ.ଈର୍ଷୀ, ଈର୍ଷାପ୍ରକୃତିକ, (ସ୍ତ୍ରୀ) ଈର୍ଷାପରା ।

ଈର୍ଷାପରତନ୍ତ୍ର—ପୁଂ. ବିଂ. ( ୬ ତତ୍ପୁ ) ଈର୍ଷାବଶ,ହିଂସାର ବଶବର୍ତ୍ତୀ, ବିଦ୍ୱେଷପରାୟଣ, ଈର୍ଷାନ୍ୱିତ, ଈର୍ଷାର ଅଧୀନ, (ସ୍ତ୍ରୀ) ଈର୍ଷାପରତନ୍ତ୍ରା ।

ଈର୍ଷାପରବଶ—ପୁଂ. ବିଂ. ( ୬ ତତ୍ପୁ ) ଈର୍ଷାପରତନ୍ତ୍ର (ଦେଖ), (ସ୍ତ୍ରୀ) ଈର୍ଷାପରବଶା ।

ଈର୍ଷାପରାୟଣ-ପୁଂ.ବିଂ.(ବ.ବ୍ରୀ)ଈର୍ଷାପର (ଦେଖ), (ସ୍ତ୍ରୀ) ଈର୍ଷାପରାୟଣା ।

ଈର୍ଷ୍ୟାଳୁ—ପୁଂ. ବିଂ ( ଈର୍ଷ୍ୟା + ଆଳୁ ) ଅକ୍ଷମ, ପରଶ୍ରୀକାତର, ହିଂସାଯୁକ୍ତ ।

ଈର୍ଷିତ—ପୁଂ. ବିଂ. ( ଈର୍ଷା + ଇତ ) ସଞ୍ଜାତେର୍ଷ୍ୟ, ଯାହାର ଈର୍ଷା ଜାତହୋଇଥାଏ ।

ଈର୍ଷୀ,ଈର୍ଷ୍ୟୀ-ପୁଂ.ବିଂ.(ଈର୍ଷ୍ୟା + ଇନ୍) ଈର୍ଷାବିଶିଷ୍ଟ, କୋପନସ୍ୱଭାବ, ହିଂସାଯୁକ୍ତ (ସ୍ତ୍ରୀ) ଈର୍ଷିଣୀ ।

ଈଲା—ସ୍ତ୍ରୀ. ବ. ( ଈଡ଼ + ଆ ) ପୃଥିବୀ, ବାଣୀ,ଧେନୁ, ସ୍ତବ, ସରସ୍ୱତୀ, ପ୍ରଶଂସା ।

ଈଲି—ସ୍ତ୍ରୀ.ବ. (ଈଡ଼୍ + ଇ)ଖଡ୍ଗାକାର ଛୁରିକାବିଶେଷ, ଏକଧାରାନାମକ ଯବନାସ୍ତ୍ରବିଶେଷ ।

ଈଲିକା—ସ୍ତ୍ରୀ. ବ. ( ଈଲି + କ + ଆ ) ଖଡ୍ଗାକୃତି ଛୁରିକାବିଶେଷ, ଖଡ୍ଗପରି ଏକପ୍ରକାର ଛୁରୀ ।

ଈଲିତ—ପୁଂ. ବିଂ. (ଈଡ଼୍ + ତ) ସ୍ତୁତ, ପ୍ରଶଂସିତ, ଯାହାର ସ୍ତବ କରାହୋଇଅଛି ।

ଈଲୀ-ସ୍ତ୍ରୀ.ବ. (ଈଡ଼ + ଈ) କରପାଲୀ, କରପାଲିକା,ଗୁପ୍ତୀ,ଏକପ୍ରକାର ଛୁରିକା ।

ଈଶ୍—ପୁଂ.ବ (ଈଶ + କ୍ୱିପ୍)ଈଶ,ଈଶ୍ୱର

ଈଶ୍—(ଧାତୁ) ଐଶ୍ୱର୍ଯ୍ୟ, ପ୍ରଭୁତ୍ୱ ।

ଈଶ—ପୁଂ. ବ. (ଈଶ + କ,ଅ) ଈଶ୍ୱର, ପ୍ରଧାନ, ପ୍ରଭୁ, ସ୍ୱାମୀ, ଶିବ, ବିଷ୍ଣୁ, ନେତା, ନାୟକ, ହଳଯନ୍ତ୍ର, ନିୟନ୍ତା, ରାଜା, (ବିଂ) ଶ୍ରେଷ୍ଠ, ସମର୍ଥ ।

ଈଶପୁରୀ-ସ୍ତ୍ରୀ.ବ.(୬ଷ୍ଠୀତତ୍ପୁ)କାଶୀକ୍ଷେତ୍ର ।

ଈଶବଳ—କ୍ଲୀ.ବ.(୬ତତ୍ପୁ)ପାଶୁପତ ଅସ୍ତ୍ର ।

ଈଶଲାଙ୍ଗଲୀ—ସ୍ତ୍ରୀ. ବ. ଲତାବିଶେଷ, ଲହଲଙ୍ଗଲିଆ,ଗର୍ଭପାତନୀ, ଅଗ୍ନିମୁଖୀ, ଲାଙ୍ଗଲୀ, ଦୀପ୍ତା, ହଳନୀ, ବିଶଲ୍ୟା, ଅଗ୍ନିଶିଖିକା; ଲାଙ୍ଗଲିକା ।

ଈଶସଖା—ପୁଂ. ବ. ( ଈଶ + ସଖା ) (୬ତତ୍ପୁ) କୁବେର, ଶିବଙ୍କର ସଖା ।

ଈଶତ୍ୱ—କ୍ଲୀ. ବ. (ଈଶ + ତ୍ୱ) ଈଶିତ୍ୱ, ନାୟକର ଭାବ ।

ଈଶନ—କ୍ଲୀ.ବ.(ଈଶ + ଅନ)ନିୟମନ, ଶାସନ, ଶିକ୍ଷା ।

ଈଶା—ସ୍ତ୍ରୀ.ବ.(ଈଶ + ଅ + ଆ)ଲଙ୍ଗଳଦଣ୍ଡ, ଶିବପତ୍ନୀ, ଦୁର୍ଗା, ସ୍ୱାମୀର ସ୍ତ୍ରୀ, ପ୍ରଭୁର ସ୍ତ୍ରୀ, ଲଙ୍ଗଳର ଦଣ୍ଡ, ଐଶ୍ୱର୍ଯ୍ୟାନ୍ୱିତା, ନାରୀ, ସୀତା ।

ଈଶାଦଣ୍ଡ—ପୁଂ. ବିଂ. ଗାଡ଼ିପ୍ରଭୃତିର ଚକ ମଧ୍ୟରେ ଥିବା ଦଣ୍ଡାକାର କାଠବିଶେଷ, ଅଖ ।

ଈଶାଦନ୍ତ—ପୁଂ.ବ.ହସ୍ତୀ,ଗଜ,ଗଜଦନ୍ତ ।

ଈଶାଧାସ୍ୟ—ପୁଂ.ବ. ଈଶୋପନିଷଦ୍ ।

ଈଶାନ-ପୁଂ.ବ.(ଈଶ + ଆନ)ମହାଦେବ, ଏଗାର ସଂଖ୍ୟା,ଶମୀବୃକ୍ଷ,ପ୍ରଭୁ,ଅଷ୍ଟମୂର୍ତ୍ତିମଧ୍ୟରୁ ସୂର୍ଯ୍ୟ,ରୁଦ୍ର, ସଂଖ୍ୟା,ଆର୍ଦ୍ରାନକ୍ଷତ୍ର, ସାଧ୍ୟଦେବବିଶେଷ (କ୍ଲୀ.ବ) ଜ୍ୟୋତି, ତେଜ ।

ଈଶାନକୋଣ—ପୁଂ.ବ. ପୂର୍ବ ଓ ଉତ୍ତରମଧ୍ୟବର୍ତ୍ତୀ ଦିଗବିଶେଷ, ଐଶାନ୍ୟକୋଣ ।

ଈଶାନଜ-ପୁଂ.ବ.(ଈଶାନ + ଜନ୍ + ଅ) ଈଶାନ କଲ୍ପଭବ ।

ଈଶାନବର୍ମା—ପୁଂ. ବ. ଜଣେ ପ୍ରାଚୀନ ମୌଖରୀରାଜ ।

ଈଶାନାଦପଞ୍ଚମୂର୍ତ୍ତି—ସ୍ତ୍ରୀ. ବ. ଈଶାନ, ତତ୍ପୁରୁଷ, ଅଘୋର, ବାମଦେବ, ସଦ୍ୟୋଜାତ ।

ଈଶାନାଧ୍ୟୁଷିତ—ପୁଂ.ବ. ତୀର୍ଥବିଶେଷ ।

ଈଶାନୀ—ସ୍ତ୍ରୀ.ବ. (ଈଶ—ଆନୀ)ଭବାନୀ, ଦୁର୍ଗା, ଶମୀବୃକ୍ଷ, ଶାଲ୍ମଳୀ ।

ଈଶାବାସ୍ୟ—କ୍ଲୀ. ବ. ଉପନିଷଦ୍ ଗ୍ରନ୍ଥ ।

ଈଶିତା—ପୁଂ.ବ. (ଈଶ + ତୃ) ଅଧିପତି, ପ୍ରଭୁ, ରାଜା, ଈଶ୍ୱର, (ବିଂ) ପ୍ରଧାନ, ସମର୍ଥ, ଶ୍ରେଷ୍ଠ ।

ଈଶିତବ୍ୟ—ବିଂ.(ଈଶ + ତବ୍ୟ,ଅଧୀନ, ବଶମ୍ବଦ, (ବ) ଐଶ୍ୱର୍ଯ୍ୟ ।

ଈଶିତା—ସ୍ତ୍ରୀ.ବ. (ଈଶ + ତା)ଅଣିମାଦିଅଷ୍ଟ ଐଶ୍ୱର୍ଯ୍ୟମଧ୍ୟରୁ ପ୍ରଥମ ଐଶ୍ୱର୍ଯ୍ୟ, ଆଧିପତ୍ୟ, ବିସ୍ତାର କରିବା ।

ଈଶିତ୍ୱ—କ୍ଲୀ.ବି. ଐଶ୍ୱର୍ଯ୍ୟ,ସର୍ବପ୍ରାଧାନ୍ୟ, ଆଧିପତ୍ୟ, ପ୍ରଭୁତ୍ୱ, ରାଜ୍ୟ, ସାମର୍ଥ୍ୟ, ଯାହାଦ୍ୱାରା ସ୍ଥାବରଜଙ୍ଗମାଦି ବଶୀଭୂତ ହୁଅନ୍ତି ସେହି ଯୋଗଜ ଧର୍ମବିଶେଷ ।

ଈଶିନ୍—ପୁଂ. ବି. (ଈଶ + ଇନ୍) ପ୍ରଭୁ, ପତି, ଈଶ୍ୱର, (ସ୍ତ୍ରୀ) ଈଶିନୀ ।

ଈଶୋପନିଷତ୍—ସ୍ତ୍ରୀ. ବି. ଉପନିଷତ୍ ବିଶେଷ, ବ୍ରହ୍ମ ସାକ୍ଷାତ୍ କରିବାର ଉପାୟ ବର୍ଣ୍ଣିତ ଉପନିଷଦ୍ ।

ଈଶ୍ୱର—ପୁଂ. ବି. ସଙ୍ଗୀତଶାସ୍ତ୍ରକର୍ତ୍ତା, ରାମସ୍ତୋତ୍ର ଓ ବିଷ୍ଣୁସ୍ତୁତିନାମକ ସଂସ୍କୃତ-ଗ୍ରନ୍ଥରଚୟିତା ।

ଈଶ୍ୱର—ପୁଂ.ବି. (ଈଶ + କ.ବର)ଶିବ, ବ୍ରହ୍ମା, ପରମେଶ୍ୱର, ଭଗବାନ୍, କାମଦେବ, ରାଜା, ରୁଦ୍ରବିଶେଷ, ଭର୍ତ୍ତା, ବିଶୁଦ୍ଧସତ୍ତ୍ୱପ୍ରଧାନ ଅଜ୍ଞାନୋପହିତ ଚୈତନ୍ୟ, ଅନ୍ତର୍ଯ୍ୟାମୀ, ଅବିଦ୍ୟାଦି-କର୍ତ୍ତୃକ ଅସମ୍ବନ୍ଧ ପୁରୁଷବିଶେଷ, ଜୀବାତ୍ମା, ମହାପୁରୁଷ, ସମୃଦ୍ଧର, ଧନୀ-ବ୍ୟକ୍ତି (ବିଂ) ସମର୍ଥ, ଶ୍ରେଷ୍ଠ, ପ୍ରଧାନ, କ୍ଷମତାଶୀଳ, ଧନୀ, ସ୍ୱାମୀ, ପ୍ରଭୁ ।

ଈଶ୍ୱରକୃଷ୍ଣ—ପୁଂ. ବି. ପ୍ରସିଦ୍ଧ ସାଂଖ୍ୟ-କାରିକାର ଗ୍ରନ୍ଥକର୍ତ୍ତା,ସାଂଖ୍ୟ ଚନ୍ଦ୍ରିକା-ନାମ୍ନୀ ଟୀକାର ରଚୟିତା ।

ଈଶ୍ୱରଚନ୍ଦ୍ର ବିଦ୍ୟାସାଗର—ବଙ୍ଗଦେଶର ଜଣେ ଖ୍ୟାତନାମା ପଣ୍ଡିତ, (ସେ) ଅନେକ ଗ୍ରନ୍ଥ ଲେଖିଅଛନ୍ତି ।

ଈଶ୍ୱରଜଟା—ଗ୍ରା.ବି.ଈଶରଜଟା, ଖଡ଼ାପର ବର୍ଷଜୀବୀ ଗୁଳ୍ମ, ମୟୂରଚୂଳିଆ ।

ଈଶ୍ୱରଜଡ଼—ପ୍ରା.(ସିଂହଭୂମି) ଶତାବରୀ, ଛତୁଆରୀ ।

ଈଶ୍ୱରତୀର୍ଥ- ଶୃଙ୍ଗେରି ଶାଙ୍କର ସମ୍ପ୍ରଦାୟର ଜଣେ ଗୁରୁ ଥିଲେ ।

ଈଶ୍ୱରତ୍ୱ କ୍ଲୀ.ବି.(ଈଶ୍ୱର + ତ୍ୱ) ଈଶିତା, ସମସ୍ତଙ୍କ ଉପରେ ଆଧିପତ୍ୟ ବିସ୍ତାର କରିବା ।

ଈଶ୍ୱରଦତ୍ତ—ବି. (୬ତତ୍). ଭଗବାନ୍ ଦେଇଥିବା,ପ୍ରାକୃତିକ,ସହଜ,ଜନ୍ମଗତ ।

ଈଶ୍ୱର ନ କରନ୍ତୁ— ଗ୍ରା. ବି. ଏପରି ଅମଙ୍ଗଳ ନ ଘଟୁ ।

ଈଶ୍ୱରନିଷେଧ—ପୁଂ. ବି. ଈଶ୍ୱରନିଷିଦ୍ଧ କାର୍ଯ୍ୟ,ଅନିଷ୍ଟଜନକ କାର୍ଯ୍ୟ,ନାସ୍ତିକତା ।

ଈଶ୍ୱରନିଷ୍ଠ—ପୁଂ.ବିଂ.(ବ.ବ୍ରୀ)ଈଶ୍ୱରଙ୍କଠାରେ ଏକାନ୍ତ ନିର୍ଭରଶୀଳ ।

ଈଶ୍ୱରନିଷ୍ଠା—ସ୍ତ୍ରୀ.ବି. (୭ତତ୍) ଈଶ୍ୱରଙ୍କଠାରେ ଏକାନ୍ତ ବିଶ୍ୱାସ ।

ଈଶ୍ୱରପରାୟଣ—ପୁଂ. ବିଂ. (ବ.ବ୍ରୀ) ଈଶ୍ୱରନିଷ୍ଠ, ଭକ୍ତ, ଯେ କେବଳ ଈଶ୍ୱରଙ୍କୁ ଆଶ୍ରୟ କରିଥାଏ ।

ଈଶ୍ୱରପାର୍ବତୀ—ବି. (ଦ୍ୱନ୍ଦ୍ୱ) ହର ଓ ପାର୍ବତୀ, ଉମା-ମହେଶ୍ୱର ।

ଈଶ୍ୱରପୁରୀ—ମଧ୍ୱାଚାର୍ଯ୍ୟଙ୍କର ଜନୈକ ସାଧୁଶିଷ୍ୟ, ଗୟାଧାମରେ ଚୈତନ୍ୟ ଏହାଙ୍କଠାରୁ ଦୀକ୍ଷିତ ହୋଇଥିଲେ ।

ଈଶ୍ୱରପୂଜକ—ପୁଂ. ବିଂ. (୬ ତତ୍) ଈଶ୍ୱରଙ୍କର ଉପାସକ, ଭଗବାନଙ୍କର ଉପାସକ ।

ଈଶ୍ୱରପୂଜା—ସ୍ତ୍ରୀ. ବି. (୬ତତ୍) ଈଶ୍ୱରଙ୍କର ଆରାଧନା, ଭଗବାନଙ୍କର ଆରାଧନା ।

ଈଶ୍ୱରପ୍ରଣିଧାନ—କ୍ଲୀ. ବି. (୭ତତ୍) ଈଶ୍ୱରୋପାସନା, ଈଶ୍ୱରଭକ୍ତି ।

ଈଶ୍ୱରପ୍ରଣୋଦିତ—ପୁଂ.ବିଂ. (୩ ତତ୍) ଭଗବାନଙ୍କକର୍ତ୍ତୃକ ଅନୁପ୍ରାଣିତ, ପ୍ରତ୍ୟାଦିଷ୍ଟ ବା ଉତ୍ତେଜିତ ।

ଈଶ୍ୱରପ୍ରସାଦ—ପୁଂ. ବି. (୬ ତତ୍) ଈଶ୍ୱରଙ୍କର ଅନୁଗ୍ରହ, ଭଗବାନଙ୍କର ଅନୁଗ୍ରହ ।

ଈଶ୍ୱରପ୍ରାପ୍ତି—ସ୍ତ୍ରୀ. ବି. ଈଶ୍ୱରଲାଭ, ମୋକ୍ଷ, ନିର୍ବାଣ, ମୁକ୍ତି ।

ଈଶ୍ୱରପ୍ରେମିକ—ପୁଂ. ବିଂ. (ଈଶ୍ୱର + ପ୍ରେମନ୍ + ଇକ ) ଭଗବଦ୍‌ଭକ୍ତ, ଭଗବାନଙ୍କ ପ୍ରତି ପ୍ରୀତିମାନ୍ ।

ଈଶ୍ୱରବାଦ—ପୁଂ.ବି. (ଈଶ୍ୱର + ବାଦ) ଯେଉଁମତ ଈଶ୍ୱରଙ୍କର ଅସ୍ତିତ୍ୱ ସ୍ଥାପନ କରେ ।

ଈଶ୍ୱରବାଦୀ—ପୁଂ. ବିଂ. (ଈଶ୍ୱର + ବଦ୍ + ଇନ୍) ଯେ ଈଶ୍ୱରଙ୍କର ଅସ୍ତିତ୍ୱ ସ୍ୱୀକାର କରେ, (ସ୍ତ୍ରୀ) ଈଶ୍ୱରବାଦିନୀ ।

ଈଶ୍ୱରବିଭୂତି—ସ୍ତ୍ରୀ. ବି. (୬ ତତ୍) ଈଶ୍ୱରଙ୍କର ଐଶ୍ୱର୍ଯ୍ୟ, ଭଗବାନଙ୍କରଅଂଶ

ଈଶ୍ୱରବିରୋଧ—ପୁଂ. ବି. (୬ ତତ୍) ସ୍ୱାମିସହିତ ବିବାଦ, ମୁନିବ ସହିତ ଝଗଡ଼ା, ନାସ୍ତିକ୍ୟ, ଜଗଦୀଶ୍ୱରଙ୍କ କୃତ ନିୟମର ଅନ୍ୟଥା କରଣ ।

ଈଶ୍ୱରବିରୋଧୀ—ପୁଂ. ବିଂ. (୬ତତ୍) ଭକ୍ତିହୀନ, ଭଗବାନଙ୍କର ନିର୍ଦ୍ଦିଷ୍ଟ ନିୟମର ଅନ୍ୟଥାକରଣ ।

ଈଶ୍ୱରବିଶ୍ୱାସୀ—ପୁଂ. ବିଂ. ଈଶ୍ୱରଙ୍କଠାରେ ନିଷ୍ଠାବାନ୍, ଆସ୍ତିକବାଦୀ ।

ଈଶ୍ୱର ଭଲ କରନ୍ତୁ—ଗ୍ରା.ମୁଦ୍ରାଦୋଷରୁ କେତେକ ଲୋକଙ୍କ କଥା ମଧ୍ୟରେ ବ୍ୟବହୃତ ବାକ୍ୟ ।

ଈଶ୍ୱରଭାବ—ପୁଂ. ବି. (୬ତତ୍) ଈଶ୍ୱରତ୍ୱ, ଦେବଭାବ, ରାଜପ୍ରକୃତି, ନିୟମଶକ୍ତି, ପ୍ରଭୁତ୍ୱ ।

ଈଶ୍ୱରଭୀରୁ—ପୁଂ. ବିଂ. (୫ତତ୍) ଈଶ୍ୱରଙ୍କ ପ୍ରତି ଭୟଶୀଳ, ଭଗବଦ୍ଭକ୍ତ, ଭଗବାନଙ୍କ ପ୍ରତି ଭାବଯୁକ୍ତ ।

ଈଶ୍ୱରଶର୍ମା—ପୁଂ. ବି. ବ୍ୟବସ୍ଥାସେତୁ-ନାମକ ସ୍ମୃତିଗ୍ରନ୍ଥକର୍ତ୍ତା ।

ଈଶ୍ୱରସଦ୍ମ—କ୍ଲୀ. ବି ଦେବଭବନ ।

ଈଶ୍ୱରସଭା—ସ୍ତ୍ରୀ. ବି. ରାଜସଭା ।

ଈଶ୍ୱରସାକ୍ଷୀ-ପୁଂ ବି.(କ ଧା) ବେଦାନ୍ତୋକ୍ତ ମତସିଦ୍ଧ ମାୟାବୃତ ଚୈତନ୍ୟବିଶେଷ ।

ଈଶ୍ୱରସାଧନ—କ୍ଲୀ.ବି. ଭଗବଦ୍ ପୂଜା, ଗୁରୁପଦେଶାନୁସାରେ ଈଶ୍ୱରଲାଭାର୍ଥ ଉପାସନା ।

ଈଶ୍ୱରସାଯୁଜ୍ୟ—ବି. ଈଶ୍ୱରଙ୍କଠାରେ ଲୟପ୍ରାପ୍ତି, ମୁକ୍ତିବିଶେଷ ।

ଈଶ୍ୱରସୁମତି—ପାର୍ବତୀ ପରିଣୟନାମକ ସଂସ୍କୃତ ଗ୍ରନ୍ଥର ରଚୟିତା ।

ଈଶ୍ୱରସେବା—ସ୍ତ୍ରୀ.ବି. ଈଶ୍ୱର ଉପାସନା, ଆରାଧନା ।

ଈଶ୍ୱରା—ସ୍ତ୍ରୀ.ବି. (ଈଶ୍ୱର + ଆ) ଦୁର୍ଗା, ପାର୍ବତୀ,ଲକ୍ଷ୍ମୀ,ସରସ୍ୱତୀ ଆଦି ଯାବତୀୟ ଆଦିଶକ୍ତି । [ ଇତ୍ୟାଦି ।

ଈଶ୍ୱରା—ସ୍ତ୍ରୀ. ବିଂ. ସ୍ୱାମିନୀ,ଶ୍ରେଷ୍ଠା,ନାରୀ-

ଈଶ୍ୱରାଧୀନ—ବି. (୬ତତ୍) ପରମେଶ୍ୱରଙ୍କର ଆୟତ୍ତ, ପ୍ରଭୁଙ୍କର ବଶୀଭୂତ ବା ଆଜ୍ଞାକାରୀ, ଯାହା ଭଗବାନଙ୍କର ଇଚ୍ଛା ଉପରେ ନିର୍ଭର କରେ ।

ଈଶ୍ୱରାନନ୍ଦ—ପୁଂ.ବି.ଈଶ୍ୱରଙ୍କର ଆମୋଦ, ଲୀଳା ଖେଳା ।

ଈଶ୍ୱରାରାଧନା—ସ୍ତ୍ରୀ.ବି. (୬ତତ୍)ଈଶ୍ୱର-ପୂଜା, ଭଗବାନଙ୍କର ଉପାସନା ।

ଈଶ୍ୱରାନୁଗୃହୀତ—ପୁଂ. ବିଂ. (୩ତତ୍) ପ୍ରଭୁଙ୍କର ଅନୁଗ୍ରହପ୍ରାପ୍ତ, ଭଗବାନଙ୍କର ଅନୁଗୃହୀତ ।

ଈଶ୍ୱରାବତାର—ପୁଂ. ବି. ଭୂମଣ୍ଡଳରେ ଭଗବାନଙ୍କ ନଶ୍ୱରଜୀବର ଆକାରରେ ବା ସ୍ୱରୂପରେ ଆବିର୍ଭାବ ।

ଈଶ୍ୱରାଶୀର୍ବାଦ—ପୁଂ. ବି. ( ୬ତତ୍ ) ଜଗଦୀଶ୍ୱରଙ୍କ ଆଶୀର୍ବଚନ,ପରମେଶ୍ୱରଙ୍କର ଦୟା, ଭଗବତ୍ କୃପା ।

ଈଶ୍ୱରୀ—ସ୍ତ୍ରୀ. ବି. (ଈଶ୍ୱର + ଈ) ଦୁର୍ଗା, ଲକ୍ଷ୍ମୀ, ସରସ୍ୱତୀ-ଆଦି ସକଳ ଆଦିଶକ୍ତି, ଲିଙ୍ଗିନୀ ବୃକ୍ଷ, ବନ୍ଧ୍ୟାକର୍କୋଟକୀ ବୃକ୍ଷ, ରୁଦ୍ରଜଟା ଲତା(ବିଂ)ଐଶ୍ୱର୍ଯ୍ୟାନ୍ୱିତା ସ୍ତ୍ରୀ, ସ୍ୱାମିନୀ, ଶ୍ରେଷ୍ଠା ।

ଈଶ୍ୱରେଚ୍ଛା—ସ୍ତ୍ରୀ.ବି.ଈଶ୍ୱରଙ୍କର ଇଚ୍ଛା ।

ଈଶ୍ୱରୋପାସକ—ପୁଂ. ବିଂ. (୬ତତ୍) ଈଶ୍ୱରପୂଜକ, ଭଗବାନଙ୍କର ଆରାଧକ ।

ଈଶ୍ୱରୋପାସନା—ସ୍ତ୍ରୀ ବି. ( ୬ତତ୍ ) ଭଗବାନଙ୍କର ପୂଜା, ଆରାଧନା ।

ଈଷ୍—(ଧାତୁ) ଉଞ୍ଛବୃତ୍ତି, ଦାନ, ଦର୍ଶନ, ଗମନ, ଅହିଂସା, ଆଘାତକରିବା, ଗତି କରିବା ।

ଈଷ୍—ପୁଂ. ବି. (ଈଷ୍ + ଅ) ଆଶ୍ୱିନ ମାସ, ଉତ୍ତମ ମନୁର ପୁତ୍ର ।

ଈଷତ୍—ଅବ୍ୟ, ( ଈଷ + ଅତ୍ ) ଅଳ୍ପ, କିଞ୍ଚିତ୍, ମନାକ୍, ସୂକ୍ଷ୍ମ, ଲେଶ, ଅଳ୍ପ-ପରିମାଣରେ ।

ଈଷତ୍କର—ପୁଂ. ବିଂ. ( ଈଷତ୍ + କୃ + ଅ) ଅତ୍ୟଳ୍ପ, ଲେଶ, ଅନୁବନ୍ଧ, ଅଳ୍ପପ୍ରୟାସ ସାଧ୍ୟ, ଅଳ୍ପକାରୀ, ଉପ-ପଦ, ଗନ୍ଧ ।

ଈଷତ୍ପାଣ୍ଡୁ—ବିଂ. ଧୂସର ବର୍ଣ୍ଣଯୁକ୍ତ ଦ୍ରବ୍ୟାଦି, ଧୂସରବର୍ଣ୍ଣ ।

ଈଷଦୁଷ୍ଣ - ବିଂ. ( ଈଷତ୍ + ଉଷ୍ଣ ) ଅଳ୍ପତପ୍ତ, ଈଷଦୁଷ୍ଣ ଦ୍ରବ୍ୟାଦି, କୋଷ୍ଣ, କବୋଷ୍ଣ, ମନ୍ଦୋଷ୍ଣ, ଅଳ୍ପ ଗରମ, ସାମାନ୍ୟ ଗରମ, କଦୁଷ୍ଣ ।

ଈଷଦୂନ—ବିଂ. କ ଧା (ଈଷତ୍ + ଊନ) କିଞ୍ଚିତ୍ ଊଣ ;କିଞ୍ଚିକମ୍ (ସ୍ତ୍ରୀ) ଈଷଦୂନା ।

ଈଷଦ୍ଦର୍ଶନ—କ୍ଲୀ. ବି. (କ ଧା) କଟାକ୍ଷ, ସାମାନ୍ୟ ଦୃଷ୍ଟିପାତ ।

ଈଷଦ୍ଧାସ (ସ୍ତ୍ରୀ)—କ୍ଲୀ. ବି. (ଈଷତ୍ + ହାସ) ଅଳ୍ପହାସ, ସାମାନ୍ୟ ହାସ ।

ଈଷଦ୍ବିକସିତ ବିଂ.(କ.ଧା) ଅଳ୍ପପ୍ରସ୍ଫୁଟିତ ଅଳ୍ପଫୁଟିଥିବା ।

ଈଷଭିନ୍ନ—(କ.ଧା) ଅଳ୍ପରୂପେ ପୃଥକ୍, ଅଳ୍ପଭାବରେ ପୃଥକ୍ ।

ଈଷଦ୍ରକ୍ତ—ପୁଂ. ବି. (କ.ଧା) ଅତ୍ୟଳ୍ପ ରକ୍ତବର୍ଣ୍ଣ, ଅବ୍ୟକ୍ତରାଗ, ଅରୁଣ (ବିଂ) ସାମାନ୍ୟ ଲାଲ, ଅଳ୍ପଲୋହିତବର୍ଣ୍ଣଯୁକ୍ତ ।

ଈଷନ୍ମାତ୍ର—ବିଂ. (ବ.ବ୍ରୀ) ଅଳ୍ପମାତ୍ର, ଈଷତ୍ ମାତ୍ରା ଯାହାର,(ସ୍ତ୍ରୀ)ଈଷନ୍ମାତ୍ରା ।

ଈଷା—ସ୍ତ୍ରୀ.ବି. (ଈଷ + ଅ + ଆ)ସୀତା, ଦୁର୍ଗା, ଲାଙ୍ଗଳଦଣ୍ଡ, ଲଙ୍ଗଳଈଷ ।

ଈଷାଦଣ୍ଡ—ପୁଂ.ବି. (୬ତତ୍) ଅକ୍ଷ ଏବଂ ଯୁଗଧାରକ ଦଣ୍ଡ । [ହସ୍ତୀ ।

ଈଷାଦନ୍ତ—ପୁଂ. ବି. ବଡ଼ଦନ୍ତବିଶିଷ୍ଟ

ଈଷାଧାର ପୁଂ.ବି. ଲାଙ୍ଗଳ,ରଥପ୍ରଭୃତି ।

ଈଷାଳୁ—ଗ୍ରା.ବିଂ. ଈର୍ଷାଳୁ,ଈର୍ଷ୍ୟାଯୁକ୍ତ ।

ଈଷିକା—ସ୍ତ୍ରୀ. ବି. (ଈଷ + ଇକ + ଆ) ହସ୍ତୀନେତ୍ରର ଗୋଳକ, ମଣି, ତୂଳିକା, ତୁଳିକା, ତୂଳୀ, ଏକପ୍ରକାର ଅସ୍ତ୍ର, କାଶତୃଣ, ହସ୍ତିଚକ୍ଷୁର ଗୋଲକାର, ପଦାର୍ଥ ।

ଈଷିତ —ଗ୍ରା. କ୍ରି. ବିଂ. (ସଂ—ଈଷତ୍) ସାମାନ୍ୟରେ, ଅଳ୍ପରେ (ବିଂ) ଅଳ୍ପ, ସାମାନ୍ୟ । [ବହ୍ନି ।

ଈଷିର—ପୁଂ. ବି. (ଈଷ + ଇର)ଅଗ୍ନି,

ଈଷୀକା—ସ୍ତ୍ରୀ.ବି.ହସ୍ତିର ନେତ୍ରଗୋଳକ, ମଣି, ତୂଳିକା, ଏକପ୍ରକାର ଅସ୍ତ୍ର, କାଶତୃଣ, କାଉଁଶୀ, ତୂଳୀ ।

ଈଷ୍ମ—ପୁଂ.ବି.(ଈଷ + ମନ୍)କାମଦେବ, ବସନ୍ତଋତୁ, ବସନ୍ତ ।

ଈଷଦ୍ଗୋଲ—ଯା. ବି. ଏକପ୍ରକାର ବୃକ୍ଷର ମଞ୍ଜି, ଏକପ୍ରକାର ବୀଜ ।

ଈଶା—ବି. ଖ୍ରୀଷ୍ଟାନମାନଙ୍କର ଯୀଶୁ ।

ଈହ୍—(ଧାତୁ)ଚେଷ୍ଟାକରିବା, ଯତ୍ନ କରିବା

ଈହ—ପୁଂ.ବିଂ, (ଈହ + ଅ) ସଞ୍ଚାୟକ, ଚେଷ୍ଟାକାରୀ ।

ଈହମାନ—ପୁଂ. ବିଂ. (ଈହ + ମାନ) ଚେଷ୍ଟମାନ, ଚେଷ୍ଟାକରୁଥିବା ବ୍ୟକ୍ତି, (ସ୍ତ୍ରୀ) ଈହମାନା ।

ଈହା—ସ୍ତ୍ରୀ.ବି.(ଈହ୍ + ଅ + ଆ)ଉଦ୍ୟମ, ବାଞ୍ଛା, ଇଚ୍ଛା, ଚେଷ୍ଟା, ଯତ୍ନ, କ୍ରିୟା, ଉତ୍ସାହ ।

ଈହାମୃଗ—ପୁଂ.ବି. ନେକେଡ଼ା ବାଘ, କୋକ, ବୃକ, ବଳିଆ କୁକ୍କୁର,ଯୋଗ, ନାଟକବିଶେଷ ।

ଈହାମୃଗ--ପୁଂ.ବି.ରୂପକନାଟକବିଶେଷ ।

ଈହାବୃକ--ପୁଂ.ବି.(ମଧ୍ୟ-କ.ଧା)ଈହାମୃଗ, ହେଟାବାଘ, ଦୃଶ୍ୟକାବ୍ୟାନ୍ତର୍ଗତ ଏକ-ପ୍ରକାର ରୂପକ ।

ଈହିତ—ବିଂ. (ଈହ୍ + ତ) ଚେଷ୍ଟିତ, ଅପେକ୍ଷିତ, ଉଦ୍ୟତ (ସ୍ତ୍ରୀ) ଈହିତା ।

ଈହିତ -କ୍ଲୀ.ବି. (ଈହ୍ + ଭା,ତ) ଉଦ୍-ଯୋଗ ଚରିତ, ମତଲବ, ଅଭୀଷ୍ଟକାର୍ଯ୍ୟ ।

ଈହିନୀ—ସ୍ତ୍ରୀ. ବିଂ. ( ଈହ୍ + ଇନ୍ ) କାଙ୍କ୍ଷୀଣୀ,ଅଭିଳାଷିଣୀ,ପ୍ରାପ୍ତୀଚ୍ଛାକାରିଣୀ

# ଉ

ଉ—ପଞ୍ଚମ ସ୍ୱରବର୍ଣ୍ଣ, ଏହାର ଉଚ୍ଚାରଣସ୍ଥାନ ଓଷ୍ଠ, ହ୍ରସ୍ୱ ସ୍ୱର ।

ଉ—ଅବ୍ୟ. (ଉ + କ୍ୱିପ୍) ବିମର୍ଶ, ବିକଳ୍ପ, ସମ୍ଭାବନା, ସମ୍ବୋଧନ, କୋପପ୍ରକାଶ, ଅନୁକମ୍ପା, ଦୟା, ନିୟୋଗ, ଅନୁମତି, ପଦପୂରଣ, ବାକ୍ୟପୂରଣ, ଅଙ୍ଗୀକାର, ପ୍ରଶ୍ନ, ବିତର୍କ ।

ଉ—ପୁଂ. ବି. (ଅତ + ଉ) ଶିବ, ବ୍ରାସ, ବ୍ରହ୍ମା, ଚନ୍ଦ୍ରମଣ୍ଡଳ ।

ଉଃ—(ଅବ୍ୟ), କ୍ରୋଧସୂଚକ, ଦୁଃଖ ସୂଚକ, ବିସ୍ମୟସୂଚକ, ଶାରୀରିକ ପୀଡ଼ାସୂଚକ ଧ୍ୱନି ।

ଉ—(ଧାତୁ) ଶବ୍ଦକରିବା ।

ଉଅକରିବା—ଗ୍ରା.କ୍ରି. ଡାକଲେ ପ୍ରତ୍ୟୁତ୍ତର ଦେବା, (ଲକ୍ଷଣାର୍ଥ) ଦରକାରବେଳେ କର୍ମରେ ଆସିବା । [ଆତପାନ୍ନ ।

ଉଆ—ଗ୍ରା.ବିଂ. ଅରୁଆ (ଚାଉଳ) ସଂ—

ଉଆଉ—ଗ୍ରା. ବି. ଅମ୍ଳରସବିଶିଷ୍ଟ ଫଳବିଶେଷ, ଅଉ, ଓଉ ।

ଉଆଁସ—ଗ୍ରା. ବି. ( ସଂ—ଅମାବାସ୍ୟା ) ଅମାବାସ୍ୟା, ନଷ୍ଟଚନ୍ଦ୍ର ତିଥି ।

ଉଆଁସୀ—ଗ୍ରା. ସ୍ତ୍ରୀ. ବିଂ. ଯେଉଁ କନ୍ୟା ଅମାବାସ୍ୟା ତିଥିରେ ଜନ୍ମିଥାଏ ।

ଉଆଚାଉଳ—ଗ୍ରା.ବି.ଧାନ ସିଝା ନ ହୋଇ କୁଟାହେବା ଚାଉଳ, ଆତପ ତଣ୍ଡୁଳ ।

ଉଆଚୂଡ଼ା—ଗ୍ରା.ବି. ଧାନ ସିଝା ନ ହୋଇ କେବଳ ପାଣିରେ ବତୁରି ହୋଇ ଯେଉଁ ଚୂଡ଼ା କୁଟା ହୋଇଥାଏ । .

ଉଆଜିବ—ଯା. ବିଂ. ଓ୍ୟାଜିବ (ଦେଖ) ।

ଉଆଧାନ—ଗ୍ରା.ବି. ଯେଉଁ ଧାନ ସିଝ ନ ହୋଇ କେବଳ ମାତ୍ର ଖରାରେ ଶୁଖାହୋଇ କୁଟାଯାଏ ।

ଉଆପଛିଆ—ଗ୍ରା.ବିଂ. ଉଆସଦୃଶ କୁଟା ହୋଇଥିବା ଉଷୁନା ଚାଉଳ ।

ଉଆପସ୍—ଯା.ବି. ପ୍ରତ୍ୟର୍ପଣ, ଫେରସ୍ତ ।

ଉଆରଣ୍ଟ—ଯା.ବି. ଗିରଫ, ପରଓ୍ୱାନା ।

ଉଆରସ୍—ଯା.ବି. ଜ୍ଞାତି, ଉତ୍ତରାଧିକାରୀ ।

ଉଆରସଦାର୍—ଗ୍ରା. ବି. ଓ୍ୟାରସଦାର୍ (ଦେଖ) ।

ଉଆରି—ଯା·ବିଂ. ଶଯ୍ୟା ।

ଉଆରି—ଯା. ବି. ଅନୁସାରେ, କ୍ରମଅନୁସାରେ ।

ଉଆରିଜା -ଯା.ବି. ଜମିଦାରୀ କଚେରୀରେ ଥିବା ଏକପ୍ରକାର କାଗଜ, ବ୍ୟାବହାରିକ ବିଷୟମାନଙ୍କର ଶ୍ରେଣୀବିଭାଗ ଆନୁସାରେ ଲିଖନ ।

ଉଆଲ—ଗ୍ରା.ବି. ଅଳଆକୁଟା ।

ଉଆଲୁ—ପ୍ରା. (ସମ୍ବ) ବିଂ. ଦରପୋଡ଼ା, ଅର୍ଦ୍ଧଦଗ୍ଧ ।

ଉଆସ—ଗ୍ରା. ବି. ରାଜାଙ୍କ ନଅର, ରାଜଭବନ, ଅନ୍ତଃପୁର, ଚଉସରି, ରାଜବାଟୀ ।

ଉଆସଘରିଆ—ଗ୍ରା.ପୁଂ. ବିଂ. ଅନ୍ତଃପୁରଚର, ଭୃତ୍ୟ, (ସ୍ତ୍ରୀ) ଉଆସଘରିଆଣୀ ।

ଉଇ—ଗ୍ରା. ବି. ଏକପ୍ରକାର ପିପୀଲିକା, ଉଇପୋକ, ବଲ୍ମୀକ ।

ଉଇଟାକୁ—ଗ୍ରା. ବି. ଉଇହୁଙ୍କାଭିତରେ ଥିବା ଉଇରାଣୀ ଓ ତାହାର ବସା, ଉଇଙ୍କ ବିଷ୍ଠାରୂପ ମାଟି, ଏଥିରୁ ଖୁଦଛତୁ ଅଙ୍କୁରେ ବା ଗଜୁରେ ।

ଉଇଁଚୂଇଁ ହେବା—ଗ୍ରା. କ୍ରି. ଅମଙ୍ଗହେବା, ରୁଙ୍ଗିଚୁଙ୍ଗି ହେବା, ଚୂପ୍‌ଚୂପ୍ କଥାବାର୍ତ୍ତା କରିବ ।

ଉଇଁବା—ଗ୍ରା. ବି. ଉଦିତହେବା (ବିଂ) ଉଦିତ ହେଉଥିବା ।

ଉଇଁଲ—ଯା. ଇଚ୍ଛାନୁସାରେ ସମ୍ପତ୍ତିର ଶେଷବିନିଯୋଗ ପତ୍ର ।

ଉଁ—ଗ୍ରା. ବି. କ୍ରୋଧ, ବିରକ୍ତି ବା ଅସମ୍ମତିସୂଚକ, ପ୍ରଶ୍ନସୂଚକ, କ'ଣ କଥାର ଅସ୍ପଷ୍ଟରେ ଆଉଥରେ କହିବାପାଇଁ ଅନୁଗ୍ରହ ଅର୍ଥରେ ପ୍ରଯୁକ୍ତ ଶବ୍ଦ, ଉତ୍ତର ଦେବା ଉପଲକ୍ଷେ ପ୍ରଯୁକ୍ତ ଶବ୍ଦ ।

ଉଁ—ଗ୍ରା. ଅବ୍ୟ. କୋପ ବା କ୍ରୋଧସୂଚକ ଅବ୍ୟୟ, ପ୍ରତିଜ୍ଞାସୂଚକ ସ୍ୱୀକାର ।

ଉଁଉଁ—ଗ୍ରା.(ଅବ୍ୟ) ଦୁଃଖସୂଚକ, ଅସମ୍ମତିସୂଚକ ।

ଉଁକିମାରିବା—ଗ୍ରା. କ୍ରି. ଆଢ଼ୁଆଳରୁ ବା ଫାଙ୍କ ଦେଇ ସାମାନ୍ୟ ଦୃଷ୍ଟିକରିବା, ଲୁଚିଲୁଚି ଦେଖିବା । [ଅଞ୍ଜୁଳା ।

ଉଁଜଳି—ପ୍ରା. (ସମ୍ବ) (ସଂ ଅଞ୍ଜଳି) ଅଞ୍ଜଳି,

ଉଁଡ଼ିବା—ପ୍ରା. (ସମ୍ବ) କ୍ରି. (ପକ୍ଷୀ) ଡିମ୍ବ ଉଷୁମାଇବା, (ଶିଶୁ) ମାତାର କୋଳରେ ଉଷୁମ ଟାଣିବା ।

ଉଁହୁଁ—ଗ୍ରା. (ଅବ୍ୟ) ଅସମ୍ମତ ବା ନିଷେଧାର୍ଥକ ନାହିଁ ।

ଉକ୍‌ଚେଇବା—ଗ୍ରା. କ୍ରି. ଝୁଲାଇବା, ଲଟକାଇବା ।

ଉକ୍—ଗ୍ରା. ବି. (ହୁକା ଶବ୍ଦର ଅପଭ୍ରଂଶ) ଉଲ୍‌କାପିଣ୍ଡ, ଅଗ୍ନିସ୍ଫୁଲିଙ୍ଗ, ଅସ୍ତ୍ରବିଶେଷ, ଉହ୍ମା, ମସାଲ, ଉଡ଼ନ୍ତିୀୟମାନ ଅଗ୍ନିକଣା ।

ଉକଟ—ଗ୍ରା.ବିଂ.(ଉତ୍କଟଶବ୍ଦର ଅପଭ୍ରଂଶ) ଉତ୍କଟ, କଠିନ, ଅତିଶୟ ।

ଉକଡ଼ିବା—ଗ୍ରା.କ୍ରି. ହୁଗୁଳା ହୋଇଯିବା, ଉପୁଡ଼ିବା ।

ଉକଡ଼ୀ—ଗ୍ରା. ବି. ମଞ୍ଚବିଶେଷ, ବୃକ୍ଷବିଶେଷ, ଗଛ ।

ଉକତ—ଗ୍ରା. ବିଂ. (ପଦ୍ୟ) (ସଂ-ଉକ୍ତ) ଉକ୍ତ, ପ୍ରକୃରିତ, କଥିତ ।

ଉକତି—ଗ୍ରା.ବି. ଉକ୍ତି ଦେଖ ।

ଉକନାହ—ପୁଂ. ବି. ପୀତ ରକ୍ତବର୍ଣ୍ଣଯୁକ୍ତ ଘୋଟକ, କଳା ଓ ରକ୍ତବର୍ଣ୍ଣ ଅଶ୍ୱ ।

ଉକଳକ୍ଷେତ୍ର—ବଦାୟୁନ ପ୍ରଦେଶାନ୍ତର୍ଗତ ସୋରଣର ପ୍ରାଚୀନ ନାମ ।

ଉକର—ଗ୍ରା.ବି. ଦୋଷ ଦେଖାଇ ଗାଳିଦେବା, ବଂଶଦୋଷ ପ୍ରଦର୍ଶନ, ବଂଶମର୍ଯ୍ୟାଦାରେ ପୂର୍ବଦୋଷ ପ୍ରଦର୍ଶନପୂର୍ବକ ଦିଆଯିବା ଗାଳି ।

ଉକରଖୋଳିବା—ଗ୍ରା. କ୍ରି. ଗୋଇ ଖୋଳିବା, ବଂଶଦୋଷ ଦେଖାଇ ଗାଳି ଦେବା, ଅନ୍ୟର ଛିଦ୍ରମାନ ବାହାରେ ପ୍ରକାଶ କରିବା ।

ଉକା—ଗ୍ରା. ବି. (ସଂ-ଉଲ୍‌କା) ଉଲ୍‌କା, ମସାଲ, ଉହ୍ଵା, ବାନ୍ତି, ଅଗ୍ନିଶିଖା, ଜ୍ଵଳନ୍ତ ତୃଣ ।

ଉକାର—ପୁଂ. ବି. (ଉ+କାର)ମହେଶ୍ଵର, ଶିବ, ପଞ୍ଚମ ସ୍ଵରବର୍ଣ୍ଣ, ଉବର୍ଣ୍ଣ, ଉ-ବର୍ଣ୍ଣାତ୍ମକ ମାତ୍ରା ।

ଉକାର—ଗ୍ରା. ବି. ବାନ୍ତି, ବମନ, ବମନେଚ୍ଛା, ହାକୁଟି । [ଇବା ।

ଉକାର ଉଠିବା—ଗ୍ରା. ବି. ବାନ୍ତିଦେଖା-

ଉକାରିବା—ଗ୍ରା. କ୍ରି. ବମନ କରିବା, ଉଙ୍କାରିବା, ଉଚାରଣ କରିବାକୁ ଆରମ୍ଭ କରିବା ।

ଉକାଳ—ଗ୍ରା. ବି. ବାନ୍ତି, ଉଚ୍ଛାଳ, ବମନ, (ସଂ ଉଦ୍‌ଗାର) [କାର୍ଯ୍ୟ ।

ଉକାରତ—ଯା ବି. ଉକାଲତ, ଓକିଲର

ଉକାଲତନାମା—ଯା.ଓକିଲ ନିଯୁକ୍ତପତ୍ର ।

ଉକାଳିବା—ଗ୍ରା. କ୍ରି. ବାନ୍ତି କରିବା, ଉଦ୍‌ଗାର ଦେବା, ଉଦ୍‌ଗାର କରିବା ।

ଉକି—ଗ୍ରା. ବି. ଗୋପନରେ ଥାଇ ଦେଖିବା, ଗୁପ୍ତଦୃଷ୍ଟି, ବାନ୍ତି ।

ଉକିଆ—ଗ୍ରା. ବି ଆଲୁଅ, ଅଂଶୁ,କିରଣ, ରଶ୍ମି, ଆଲୋକ ।

ଉକିମାରିବା—ଗ୍ରା. କ୍ରି. ଉଙ୍କିମାରିବା ।

ଉକିଲ—ଯା. ବି. ବ୍ୟବହାରଜୀବୀ, ମୋକଦ୍ଦମାରେ ବାଦୀ ଓ ପ୍ରତିବାଦୀମାନଙ୍କର ପ୍ରତିନିଧି ।

ଉକୁ—(ଯା)ବି.ଆରମ୍ଭ,ଘଟଣା,ଅପରାଧର ଘଟଣା,କୌଣସି ବିଷୟର ଆରମ୍ଭ ।

ଉକୁଚ୍ଛ—ଗ୍ରା. ବି. ଟାଙ୍ଗିବା, ଉଦ୍‌ବନ୍ଧନ, ଟଙ୍ଗାହେବା ଅବସ୍ଥା, (ବିଂ) ଟଙ୍ଗାହୋଇ ଥିବା ।

ଉକୁଚ୍ଛଇବା—ଗ୍ରା. କ୍ରି. ଲଟକାଇବା, ଟାଙ୍ଗିବା, ଟଙ୍ଗାଇବା ।

ଉକୁଚବା—ଗ୍ରା. କ୍ରି. ଲମ୍ବେଇବା, ଲଟକାଇବା, ଲମ୍ବିବା, ଝୁଲିବା, ଟାଙ୍ଗିହେବା, ଓହଳାଇବା ।

ଉକୁଚହେବା—ଗ୍ରା. କ୍ରି. ନିଜ ବେକରେ ଫାଶୀଲଗାଇ ଝୁଲି ମରିବା, ଦଉଡ଼ିରେ ଦୋଳି ଖେଳିବା, ଦଉଡ଼ିରେ ବେକ ଭିଡ଼ି ହୋଇଯିବା ।

ଉକୁଟ—ଗ୍ରା. ବି. ବାଦ୍ୟସଙ୍ଗେ ବୋଲିଯିବା ସ୍ଵରବିଶେଷ ।

ଉକୁଟା—ଗ୍ରା. ବିଂ. ପ୍ରସ୍ଫୁଟିତ, ପିତ୍ତଳାଦି ଧାତୁ ପାତ୍ରରେ ରହି ବିସ୍ଵାଦୁ ଓ ବିଷାକ୍ତ ହୋଇଥିବା (ଅମ୍ଳଖାଦ୍ୟ) ।

ଉକୁଟାଇବା—ଗ୍ରା. କ୍ରି. ବୋଲିଦେବା, ଚହଟିତ କରିବା, ଫୁଟାଇବା, ପ୍ରସ୍ଫୁଟିତ କରାଇବା ।

ଉକୁଟା-ଉକୁଟିହେବା—ଗ୍ରା. କ୍ରି. ପରସ୍ପର ଛିଦ୍ର ଖୋଲାଖୋଲି ହୋଇ ପରସ୍ପରକୁ ଗାଳିଦେବା । [ଦେଖ ।

ଉକୁଟାଣ—ଗ୍ରା. ବି. (ସଂ-ଉତ୍କଟ) ଉକୁଟା

ଉକୁଟିବା—ଗ୍ରା. କ୍ରି. ପ୍ରକାଶିତ ହେବା, ଚିତ୍ର ବା ଖୋଦନ କରି ଲେଖିବା, ପିତ୍ତଳ କିମ୍ବା ତମ୍ବାପ୍ରଭୃତି ଧାତୁପାତ୍ରରେ ଅମ୍ଳଦ୍ରବ୍ୟ ରହିବାଯୋଗୁଁ ବିସ୍ଵାଦ ବା ବିକୃତ ହେବା ।

ଉକୁଣି—ଗ୍ରା. ବି. (ସଂ-ଉତ୍କୁଣ) କେଶକୀଟ, ମତ୍କୁଣ, ଉଦଂଶ, କିଟୀଭ,ଯୂକ, କୋଳକୁଣ ।

ଉକୁଣିଆଁ ପୋକ—ଗ୍ରା ବି. ଏକଜାତୀୟ କ୍ଷୁଦ୍ରକୀଟ, ପୁରାତନ ଗୃହଇଲ ଇତ୍ୟାଦିରେ ଜନ୍ମିବା ଉକୁଣିପରି ଏକପ୍ରକାର ରକ୍ତବର୍ଣ୍ଣ କୀଟ ବା ପୋକ ।

ଉକୁଣିମାରିବା—ଗ୍ରା. କ୍ରି. ମୁଣ୍ଡକେଶ ମଧ୍ୟରୁ ଉକୁଣି ବାହାର କରି ମାରିବା, (ଲ ଅର୍ଥ)ପରର ଅନିଷ୍ଟ ଚିନ୍ତାକରିବା । ଯଥା:—'ଯେ ଯାହାକୁ ଦେଖି ନପାରେ ଉଆଁସ ଅନ୍ଧାରେ ଉକୁଣିମାରେ ।'

ଉକୁତାଇବା—ଗ୍ରା. କ୍ରି. ଛଳପୂର୍ବକ କହିବା, ନିଜପୂର୍ବକୃତ ଉପକାରକୁ ଲକ୍ଷ୍ୟ କରି ଛଳାଇକରି କହିବା ।

ଉକୁତାଉକୁତ—ଗ୍ରା. ବି. ଉକ୍ତି-ପ୍ରତ୍ୟୁକ୍ତି, କବାବ-ସବାଲ । [ତାରିଖ ।

ଉକୁତାରିଖ—ଗ୍ରା. ବି. ଅପରାଧ ଘଟିବା

ଉକୁମ୍—ପ୍ରା (ଭଦ୍ରି) ବି. ହୁକୁମ ।

ଉକୁସ୍ଥଳ ବା ସ୍ଥାନ—ଗ୍ରା. ବି. ଅପରାଧଘଟନାସ୍ଥଳ, ସରଜମିନ୍ ।

ଉକେଇବା—ଗ୍ରା. କ୍ରି. ପିତ୍ତଳ ବା ତମ୍ବାପ୍ରଭୃତି ଧାତୁନିର୍ମିତ ପାତ୍ରରେ ରହି କୌଣସି ଖାଦ୍ୟଦ୍ରବ୍ୟ ବିସ୍ଵାଦ ଓ ବିକୃତ ହେବା ।

ଉକ୍‌କାରିବା—ସ୍ତ୍ରୀ. ବି. ମିଷ୍ଟାନ୍ନବିଶେଷ ।

ଉକ୍‌କସ୍ତି—ଗ୍ରା. ବି. ବାଦ୍ୟବିଶେଷ ।

ଉକ୍‌କଲୀ—ଗ୍ରା. ବି. ବାଦ୍ୟବିଶେଷ ।

ଉକ୍ତ—ବିଂ. (ବଚ୍+ର୍ମ.ତ) କଥିତ, ଉଲ୍ଲିଖିତ, ନିର୍ଦ୍ଦିଷ୍ଟ, ପୂର୍ବୋକ୍ତ, କ୍ଲୀ. ବି. (ଭା.ତ) କଥନ, ଏକାକ୍ଷରପାଦ ଛନ୍ଦବିଶେଷ ।

ଉକ୍ତପୁଂସ୍କ—ବିଂ. ଯେ ଶବ୍ଦ ବିଶେଷଣ ହୋଇ ପୁଂ.ସ୍ତ୍ରୀ.କ୍ଲୀବଲିଙ୍ଗ ହୁଏ ତାହାକୁ 'ଉକ୍ତପୁଂସ୍କ' ବା 'ଭାଷିତପୁଂସ୍କ' କହନ୍ତି ।

ଉକ୍ତବତ୍—ବିଂ. (ବଚ୍+ତବତ୍)କଥିତ, କଥନବିଶିଷ୍ଟ ।

ଉକ୍ତାନୁକ୍ତ—ବିଂ. (ଉକ୍ତ+ଅନୁକ୍ତ)ଦ୍ଵନ୍ଦ୍ଵ; କଥିତ ଓ ଅକଥିତ, ଯାହା କୁହା ହୋଇଅଛି ଓ ଯାହା କୁହାହୋଇନାହିଁ ।

ଉକ୍ତି—ସ୍ତ୍ରୀ. ବି. (ବଚ୍+ଭା.ତି) କଥା, ବାକ୍ୟ, ବଚନ, ବ୍ରାହ୍ମୀ, ଭାରତୀ, ଭାଷା, ବ୍ୟାହାର, ଲପିତ, ଭାଷିତ, ବଚ ।

ଉକ୍‌ଥ—କ୍ଲୀ. ବି. (ବଚ+ର୍ମ.ଥ) ସାମବେଦ, ସାମବେଦର ଅଂଶବିଶେଷ, (ପୁଂ. ବି) ଅଗ୍ନି ।

ଉକ୍‌ଥପତ୍ର—ପୁଂ.ବି.(ବ.ବ୍ରୀ) ଏକପ୍ରକାର ଯଜ୍ଞ, ଯଜ୍ଞକର୍ତ୍ତା ।

ଉକ୍‌ଥପାତ୍ର-କ୍ଲୀବ (ଉକ୍‌ଥ+ପାତ୍ର)ତତ୍ପୁ; ଯଜ୍ଞଭାଜନ, (ପୁଂ.ବି) ଯଜ୍ଞକାରୀ ।

ଉକ୍‌ଥଭୃତ୍—ପୁଂ. ବିଂ. (ଉକ୍‌ଥ+ଭୃ କ୍ଵିପ୍) ଅପ୍ରଗୀତ ସ୍ତବବିଭାଗକାରୀ ମୁନିବିଶେଷ ।

ଉକ୍‌ଥବର୍ଦ୍ଧନ—ପୁଂ. ବି. (ଉକ୍‌ଥ+ବୃଧ୍ +ଣି.ଅନ) ଇନ୍ଦ୍ର ।

ଉକ୍ଥବାହସ୍—ପୁଂ. ବିଂ. ( ଉକ୍ଥ + ବହ୍ + ଅସ୍ ) ଶାସ୍ତ୍ରପାଠକ ।

ଉକ୍ଥଶାସ—ପୁଂ. ବି. (ଉକ୍ଥ + ଶଂସ୍ + ବିନ୍ ) ଯଜମାନ, ଯାଜ୍ଞିକ ।

ଉକ୍ଥା—ସ୍ତ୍ରୀ. ବି. (ଉକ୍ଥ + ଆ) ଏକାକ୍ଷର ଛନ୍ଦୋବିଶେଷ ।

ଉକ୍ଷ୍—(ଧାତୁ ) ସେଚନ, ବର୍ଷଣ, ଓଦା କରିବା ।

ଉକ୍ଷ—ବିଂ. ( ଉକ୍ଷ୍ + ମଂ.ଅ ) ସିକ୍ତ, ଧୌତ, ସେକକାରୀ, ପରିଷ୍କୃତ ।

ଉକ୍ଷଣ—କ୍ଲୀ.ବି.(ଉକ୍ଷ୍ + ଭା.ଅନ)ସେଚନ, ସେକ, ପ୍ରୋକ୍ଷଣ, ଛିଞ୍ଚିବା, ପାଣିଛିଞ୍ଚା ।

ଉକ୍ଷତର—ପୁଂ. ବି. ( ଉକ୍ଷନ୍ + ତର ) ଶ୍ରେଷ୍ଠ ବୃଷ, ମହାବୃଷ, ଯେ ଭାର ବୋହି ନ ପାରେ, ସାନଷଣ୍ଢ, ବଳଦ ।

ଉକ୍ଷତରୀ—ସ୍ତ୍ରୀ.ବି.(ଉକ୍ଷତର + ଈ)ବାଛୁରୀ, ବୃଦ୍ଧଗବୀ, ବୁଢ଼ୀ ଗାଈ, ଯେଉଁ ଗାଈର ଯୌବନ ନଷ୍ଟ ହୋଇଅଛି ।

ଉକ୍ଷା—ପୁଂ. ବି. (ଉକ୍ଷ୍ + କ.ଆ) ବୃଷ, ଷଣ୍ଢ, ବଳଦ, ଋଷଭନାମକ ଔଷଧ, (ବିଂ) ସେଚକ ।

ଉକ୍ଷାଲ—ବିଂ. ଉନ୍ନତ, ଶ୍ରେଷ୍ଠ, କଙ୍କାଳ, ଦନ୍ତୁର, ଉତ୍କଟ (ବି) ବାନର ।

ଉକ୍ଷିତ—ବିଂ. (ଉକ୍ଷ୍ + ତ) ସିକ୍ତ, ଜଳଦ୍ୱାରା ଧୌତ, ଲିପ୍ତ, ଅଭିଷିକ୍ତ ।

ଉଖ୍ନା ଉଛେ—ପ୍ରା. (ସମ୍ବ)କ୍ରି.ବର୍ତ୍ତମାନ ଅପ୍ରାପ୍ୟ ଅଟେ,ବର୍ତ୍ତମାନ ମିଳିବ ନାହିଁ ।

ଉଖ୍ଲ—ପ୍ରା. (ସମ୍ବ) ଯେ ଘରର ଗୁପ୍ତକଥା ବାହାରେ ପ୍ରକାଶ କରେ ।

ଉଖ୍—(ଧାତୁ) ଗମନ କରିବା ।

ଉଖ—ପୁଂ.ବିଂ.(ଉଖ + ଅ,ଗମନକାରୀ ।

ଉଖ—ଗ୍ରା. ବି. କର୍ମକାରର ଘର୍ଷଣୀ, ଉହା, ଲୌହମୟ ଘର୍ଷଣ ଯନ୍ତ୍ର ।

ଉଖ—ବିଂ. ( ଉତ୍ + ଖନ + ଅ ) ଯେ ଊର୍ଦ୍ଧ୍ୱ ଖନନ କରେ,କେଞ୍ଚୁଆ ପ୍ରଭୃତି ।

ଉଖଡ଼—( ସଂ ଉତ୍‌ଖ୍ୟାତ ) କୁଳୀନ ଲୋକର କୁଳଦୋଷବିଶେଷ ।

ଉଖଡ଼ା ବା ଉଖୁଡ଼ା—ଗ୍ରା. ବି. ଉଖୁଡ଼ା, ଲିଆ ଓ ଗୁଡ଼ କିମ୍ବା ଚିନି-କନ୍ଦଦ୍ୱାରା ଉଖୁଡ଼ା ତିଆରି ହୁଏ ।

ଉଖଡ଼ୀ—ଗ୍ରା. ବି. ନାରିକେଳର ମାଳା-ପ୍ରଭୃତି, କେନ୍ଦୁ ୨ କପାଳାଦିର ଚର୍ଚ୍ଚିତ ଦାଗକୁ ଉଖଡ଼ୀ କହନ୍ତି ।

ଉଖନ୍—ପ୍ରା. (ସମ୍ବ) ଉକୁଣି (ଦେଖ) ।

ଉଖରା—ଗ୍ରା.ବି. (ସଂ-ଉତ୍‌ଖଣ୍ଡ) ମୁଡ଼କି, ମୁଢ଼ି, ଉଖୁଡ଼ା ।

ଉଖଲ—ପୁଂ. ବି. ଏକପ୍ରକାର ତୃଣ, ଏହାର ଭକ୍ଷଣରେ ପଶୁମାନଙ୍କର ବିଶେଷ ଉପକାର ହୁଏ ।

ଉଖବଲ—ପୁଂ. ବି. ଭୂରିପତ୍ର ତୃଣ, ତୃଣୋତ୍ତମ, ସୁତୃଣ, ଏହାର ଭକ୍ଷଣରେ ପଶୁମାନଙ୍କର ଉପକାର ହୁଏ ।

ଉଖା—ସ୍ତ୍ରୀ.ବି (ଉଖ + ଅ + ଆ) ହାଣ୍ଡି, କରେଇ, ପାକପାତ୍ର, ବଟୁଲି, ଚୁଲ୍ଲୀ, (ଗ୍ରା.ବି) ଉହା ।

ଉଖାଡ଼ିବା—ଗ୍ରା. କ୍ରି. କେଞ୍ଚି ଖୋଳିବା, ହୁଗୁଳା କରିବା, ଓପାଡ଼ିବା ।

ଉଖାରିବା—ଗ୍ରା.କ୍ରି. (ସଂ ଉତ୍କାର) ଏଣେ ତେଣେ ଘାଣ୍ଟିବା, ଉତ୍ତେଜିତ କରିବା, ବିଗାଡ଼ିବା, ଉଖାଡ଼ିବା ।

ଉଖି—ପ୍ରା. (ବସ୍ତ୍ରର) ବି. ଛଳ,ବାହାନା, ସୂତ୍ର, ସୁବିଧା, ଖଞ୍ଜ, ବଦମାସୀ ।

ଉଖୁଡ଼ା—ଗ୍ରା.ବି. (ସଂ-ଉତ୍‌ଖୋଟକ)ଗୁଡ଼ କନ୍ଦ ବା ଚିନି ଦ୍ୱାରା ପାକ ହୋଇଥିବା ଲିଆ ।

ଉଖୁଡ଼ିବା—ଗ୍ରା. କ୍ରି. କୌଣସି ପଦାର୍ଥ ହୁଗୁଳା ହୋଇଯିବା, ଉପୁଡ଼ିବା, ଉପୁଡ଼ି ପଡ଼ିବା ।

ଉଖୁଣୀ—ପ୍ରା. ବି. ଧାନ ବେଙ୍ଗଲାରୁ ପାଲକୁଟା ଆଦି ବାହାର କରିବାରେ ବ୍ୟବହୃତ ବଙ୍କାଗ୍ର ଦଣ୍ଡ ।

ଉଖୁନ୍—ପ୍ରା (ସମ୍ବ) ବି.ଉକୁଣୀ (ଦେଖ)

ଉଖୁରା—ପ୍ରା. (ଗଞ୍ଜାମ) ବି. ଅଳ୍ପ ଚାଉଳ ଓ ବେଶି ଡାଲି ଏକତ୍ର ଭଜା ପ୍ରସ୍ତୁତ କରିବା ଯାଉ ।

ଉଖୁରା—ଗ୍ରା.ବି.ନୂଆଁ ଉଖାରିବା,ଉଖୁରା କାଠି, ଅଳ୍ପ ଚାଉଳ ବେଶି ଡାଲିରେ ପ୍ରସ୍ତୁତ କରାଯିବା ଯାଉ,(ପ୍ରା.ଗଞ୍ଜାମ) ।

ଉଖୁରାଇବା—ଗ୍ରା.କ୍ରି.ଉସ୍କାଇବା, ଏଣେତେଣେ ଘାଣ୍ଟିବା, ଉତ୍ତେଜିତ କରିବା, ବିଗାଡ଼ିବା, ଉଖାଡ଼ିବା ।

ଉଖୁରିଆ—ଗ୍ରା.ବିଂ. ଯେ ଅନ୍ୟ ବ୍ୟକ୍ତିକୁ ମତାଏ ବା ଉତ୍ତେଜିତ କରେ, ଚୁଗୁଲି-ଖୋର ।

ଉଖୁଳୀ—ଗ୍ରା. ବି. ଉଦୂଖଳ ।

ଉଖେର—ପ୍ରା. (ସମ୍ବ) ବି. ଉଦୂଖଳ, ଟିଙ୍କିଭରଣ୍ଡି ।

ଉଖ୍ୟ—ବିଂ. ( ଉଖା + ଯ ) ସ୍ଥାଳୀପକ୍ୱ ମାଂସାଦି, ହାଣ୍ଡିରେ ପାକ କରାଯାଇଥିବା, ପୈଠର ।

ଉଗରଣ—କ୍ଲୀ. ବି. (ସଂ-ଉଦ୍‌ଗୀରଣ) ବମନ, ବାନ୍ତି, ନ୍ୟାକାର । [କରିବା ।

ଉଗରାଣ—କ୍ରି. (ସଂ-ଉଦ୍‌ଗୀରଣ) ବାନ୍ତି-

ଉଗଳା—ଗ୍ରା. ବି. ଅଟକ, (ବିଂ) ଅଟକ-ହୋଇଥିବା, ନିରୁଦ୍ଧ ।

ଉଗାର୍—ଗ୍ରା.ବି.(ସଂ-ଉଦ୍‌ଗାର) ବାନ୍ତି, ଉଦ୍‌ଗାର, ହାକୁଟି ।

ଉଗାରିବା—ଗ୍ରା. କ୍ରି. ବାନ୍ତିକରିବା, ହାକୁଟିମାରିବା, ଫୋପାଡ଼ିବା, ଉଦ୍‌-ଗୀରଣକରିବା ।

ଉଗାଳ—ଗ୍ରା. ବି. ( ସଂ-ଉଦ୍‌ଗୀରଣ ) ଗଉଡ଼ମାନଙ୍କର ପ୍ରଶ୍ନୋତ୍ତରସୂଚକ ପୌରାଣିକ ଗୀତ, ଅଟକ, ବାନ୍ତି, ପଶୁ-ପ୍ରଭୃତିଙ୍କର ଅବରୋଧ(ପ୍ରା.ମେଦିନୀପୁର) ବି. ଧାନକ୍ଷେତର ହିଡ଼ ।

ଉଗାଳିବା - ଗ୍ରା. କ୍ରି ଅଟକାଇବା, ଆଗୁଳିବା ।

ଉଗୁଇବା—ଗ୍ରା.କ୍ରି. ଉପରକୁ ଜୋରରେ ଉଠିବା,କ୍ରୋଧ ବା ଗର୍ବରେ ତେଇଁବା ।

ଉଗୁଡ଼ା—ଗ୍ରା. ବିଂ. ମୁହଁମଡ଼ା ହୋଇ ରଖାଯାଇଥିବା, ଲେଉଟା ଯାଇଥିବା, ଓଲଟା ରଖିବା ।

ଉଗୁଡ଼ାଇବା, ଉଗୁଡ଼େଇବା—ଗ୍ରା. କ୍ରି. ମୁହଁମାଡ଼ି ପକାଇବା, ମୁହଁମଡ଼ାଇ ରଖିବା, ଲେଉଟାଇଦେବା ।

ଉଗୁର—ଗ୍ରା ବିଂ. ( ସଂ. ଉଦ୍‌ଗ୍ରହ ) ପୂର୍ବୋପଭୁକ୍ତ, ବଳକା, ପ୍ରଥମେ ବ୍ୟବହୃତ ହୋଇଥିବା, ଉଚ୍ଛିଷ୍ଟ ।

**ଉଗୁରାଇବା ଉଗୁରେଇବା**—ଗ୍ରା.କ୍ରି.ଅନ୍ୟ ବ୍ୟକ୍ତିଦ୍ୱାରା ଉଗୁର କରିବା, ଯଥାଃ— ପିଲାମାନଙ୍କଦ୍ୱାରା ନୂଆ ଲୁଗାକୁ ବ୍ୟବହାର କରାଇବା ।

**ଉଗୁରାଇଦେବା**—ଗ୍ରା.କ୍ରି.ନିଜର ପୌରୁଷ ବା ପ୍ରଶଂସାକୁ କହିଦେବା, ଗର୍ବ ପ୍ରକାଶ କରିବା ।

**ଉଗୁରୁକରିବା**—ଗ୍ରା. କ୍ରି. ବ୍ୟବହାରଦ୍ୱାରା ଦୂଷିତ କରିବା, ପ୍ରଥମେ ( ନୂଆଲୁଗା-ଦିକୁ) ବ୍ୟବହାର କରିବା ।

**ଉଗୁରେଇଦେବା**—ଗ୍ରା. କ୍ରି. ଉଗୁରାଇ-ଦେବା (ଦେଖ) । [ଉଚ୍ଛିଷ୍ଟ ।

**ଉଗୁଳା**—ଗ୍ରା.ବିଂ.ଉଗୁର(ଦେଖ),ବଳକା.

**ଉଗୁଳ**—ଗ୍ରା. ବିଂ. ଉତ୍କୃଷ୍ଟ ଅଧିକ ।

**ଉଗୁଳିବା**—ଗ୍ରା. କ୍ରି. ଅଧିକାହେବା, ବଳିପଡ଼ିବା ।

**ଉଗେଗିବା**—ଗ୍ରା (ଗଞ୍ଜାମ) କ୍ରି. ହଗିବା ।

**ଉଗ୍ର**—ପୁଂ.ବି. (ଉଚ + ରକ୍) ଶିବଙ୍କର ଅଷ୍ଟମୂର୍ତ୍ତି ମଧ୍ୟରୁ ବାୟୁମୂର୍ତ୍ତି, ରାଜବିଶେଷ, ଶୂଦ୍ରା ଠାରୁ କ୍ଷତ୍ରିୟଔରସଜାତ ଜାତି-ବିଶେଷ, ଆଦିତ୍ୟ, ପୂର୍ବାଫାଲଗୁନୀ, ପୂର୍ବାଷାଢ଼ା, ପୂର୍ବଭାଦ୍ରପଦ, ମଘା ଓ ଭରଣୀନକ୍ଷତ୍ର, ସଜନାଗଛ, କେରଳଦେଶ, ଦାନବବିଶେଷ, ଶିବ, ଧୃତରାଷ୍ଟ୍ରଙ୍କର ପୁତ୍ର, ବିଷ୍ଣୁ ( କ୍ଲୀ. ବି ) ବତ୍ସନାଭନାମକ ବିଷ, ମହୁରା ( ବିଂ ) ଚଢ଼ଚଢ଼ିଆ,କଟୁ,ଦୀର୍ଘ, ବୃହତ୍, ପ୍ରଚଣ୍ଡ, ଉତ୍କଟ, ପ୍ରଖର, ତୀବ୍ର, କ୍ରୁଦ୍ଧ, ଭୟାନକ କର୍ମ୍ମ, କୋପନ, ନିଷ୍ଠୁର, ( ସ୍ତ୍ରୀ ) ତୀର୍ଥବିଶେଷ, ଶୈବ-ସମ୍ପ୍ରଦାୟବିଶେଷ, ଉଗ୍ରା, ବଚ, ଧନିଆଁ, ଯୁଆଣୀ, ତୀକ୍ଷ୍ଣ-ବୀର୍ଯ୍ୟ ବସ୍ତୁ, ଯୋଗିନୀବିଶେଷ ।

**ଉଗ୍ରକ**—ପୁଂ.ବିଂ (ଉଗ୍ର + କ)ବଳବାନ୍ (ବି) ନାଗବିଶେଷ ।

**ଉଗ୍ରକର୍ମ୍ମ**—କ୍ଲୀ. ବି. ଅସ୍ତ୍ରଚାଳନାଦି ବୀରୋଚିତ କର୍ମ୍ମ ।

**ଉଗ୍ରକର୍ମ୍ମା**—ପୁଂ ବିଂ. (ଉଗ୍ର+କର୍ମନ୍) ହିଂସ୍ରସ୍ୱଭାବ, ଯେ ନିଷ୍ଠୁର କର୍ମ୍ମ କରେ, ପ୍ରାଣିହିଂସାକାରୀ, ଖଳ ।

**ଉଗ୍ରକାଣ୍ଡ**—ପୁଂ. ବି. (ବ.ବ୍ରୀ) କଲରା, କାରବେଲ୍ଲ ।

**ଉଗ୍ରଗନ୍ଧ**—କ୍ଲୀ. ବି. (ବ.ବ୍ରୀ)ହିଙ୍ଗୁ (ପୁଂ) ରସୁଣ, କଟଫଳ, ଅର୍କକ ବୃକ୍ଷ, ଚମ୍ପକ, ଚମ୍ପା, (ବିଂ) ଉତ୍କଟଗନ୍ଧଯୁକ୍ତ ।

**ଉଗ୍ରଗନ୍ଧା**—ସ୍ତ୍ରୀ.ବି. (ଉଗ୍ର + ଗନ୍ଧ୍ + ଆ) ଅଜମୋଦା, ବଚ, ଯୁଆଣୀ ।

**ଉଗ୍ରଚଣ୍ଡ**—ସ୍ତ୍ରୀ. ବି. ( ଉଗ୍ର + ଚଣ୍ଡୀ ) ଭଗବତୀଙ୍କର ମୂର୍ତ୍ତିବିଶେଷ, ଦୁର୍ଗାଙ୍କର ଆବରଣଶକ୍ତିବିଶେଷ, ଅତିକୋପନ ସ୍ୱଭାବା ସ୍ତ୍ରୀ ।

**ଉଗ୍ରଚଣ୍ଡୀ**—ସ୍ତ୍ରୀ.ବି. ଉଗ୍ରଚଣ୍ଡା (ଦେଖ) ।

**ଉଗ୍ରତା**—ସ୍ତ୍ରୀ.ବି. (ଉଗ୍ର + ତା)ଉଗ୍ରସ୍ୱଭାବ, ଉଗ୍ରକର୍ମ, ଅଳଙ୍କାରଶାସ୍ତ୍ରୋକ୍ତ ବ୍ୟଭିଚାରୀ ଗୁଣବିଶେଷ, ଦୁଷ୍ଟମତିଆଁ, ପଚଣ୍ଡତା ।

**ଉଗ୍ରତାରା**—ସ୍ତ୍ରୀ.ବି.(ଉଗ୍ର + ତୃ + ଣି + ଅ + ଆ) ଭଗବତୀଙ୍କର ମୂର୍ତ୍ତିବିଶେଷ ।

**ଉଗ୍ରତ୍ୱ**—କ୍ଲୀ. ବି. (ଉଗ୍ର + ତ୍ୱ) ଉଗ୍ରତା, ଉଗ୍ରଭାବ, ଉଗ୍ରକର୍ମ୍ମ ।

**ଉଗ୍ରଦନ୍ତ**—ପୁଂ. ବିଂ. ( ବ.ବ୍ରୀ ) ନିର୍ମମ, ନିଷ୍ଠୁର, ନୃଶଂସ ।

**ଉଗ୍ରଦର୍ଶନ**—କ୍ଲୀ ବି. (କ.ଧା) ଭୟଙ୍କର-ମୂର୍ତ୍ତି, ଭୟାନକ ଚେହେରା, ଭୟାନକ-ଦର୍ଶନ, (ବିଂ) ଯାହାର ମୂର୍ତ୍ତି ଦେଖିଲେ ଭୟ ଜନ୍ମେ,ଭୟାନକ (ସ୍ତ୍ରୀ)ଉଗ୍ରଦର୍ଶନା ।

**ଉଗ୍ରଦେବ**—ପୁଂ. ବି. ( କ.ଧା ) ଶିବ, ମହେଶ୍ୱର ।

**ଉଗ୍ରଧନ୍ୱା**—ପୁଂ. ବି. (ଉଗ୍ର + ଧନ୍ୱନ୍) (ବ.ବ୍ରୀ), ଶିବ, ଇନ୍ଦ୍ର, ଭୀଷ୍ମ, ମଗଧ-ରାଜାଙ୍କ କନିଷ୍ଠ ପୁତ୍ର (ବିଂ)ମହାଧନୁର୍ଦ୍ଧର ।

**ଉଗ୍ରପନ୍ଥୀ**—ଗ୍ରା.ବିଂ. (ଆଧୁନିକ ପ୍ରୟୋଗ) ରାଜନୀତିରେ ପ୍ରଚଣ୍ଡନୀତି ଅବଲମ୍ବନ-କାରୀ (ଦଳ) ।

**ଉଗ୍ରପୁତ୍ର**—ପୁଂ ବି. ଶୂଦ୍ରବଂଶଜାତ,ଶିବପୁତ୍ର, କାର୍ତ୍ତିକେୟ, ଗଭୀର ଜଳାଶୟ ।

**ଉଗ୍ରପ୍ରକୃତି**—ପୁଂ ସ୍ତ୍ରୀ.ବିଂ. (ବ.ବ୍ରୀ)ଯାହାର ସ୍ୱଭାବ କର୍କଶ, କ୍ରୁଦ୍ଧସ୍ୱଭାବଯୁକ୍ତ ( ବି ) କ୍ରୁଦ୍ଧସ୍ୱଭାବ, କଡ଼ା ମିଜାଜ ।

**ଉଗ୍ରମୂର୍ତ୍ତି**—ପୁଂ.ବିଂ.(ଉଗ୍ର + ମୂର୍ତ୍ତି)ବ.ବ୍ରୀ, ଭୀଷଣମୂର୍ତ୍ତି, ଯାହାର ସ୍ୱଭାବ ଭୟାନକ ।

**ଉଗ୍ରମ୍ପଶ୍ୟ**—ବିଂ.ଉଗ୍ରଦୃଷ୍ଟିଯୁକ୍ତ ବନ୍ୟଜନ୍ତୁ, ବ୍ୟାଘ୍ରାଦି, ଭୀମଦର୍ଶନ, କଟୁଭାଷୀ (ସ୍ତ୍ରୀ) ଅପସରାବିଶେଷ ।

**ଉଗ୍ରରେତାଃ**—ପୁଂ. ବି. ରୁଦ୍ରବିଶେଷ ।

**ଉଗ୍ରବକ୍ତା**—ପୁଂ.ବିଂ.(କ.ଧା)କର୍କଶଭାଷୀ, ପରୁଷବାକ୍ୟକଥକ, ରୁକ୍ଷବାଦୀ (ସ୍ତ୍ରୀ) ଉଗ୍ରବକ୍ତ୍ରୀ ।

**ଉଗ୍ରବୀର୍ଯ୍ୟ**—ପୁଂ. ବିଂ. (ବ.ବ୍ରୀ) ବିଶେଷ-ବଳଶାଳୀ, ତୀବ୍ର,କଟୁ,(ସ୍ତ୍ରୀ)ଉଗ୍ରବୀର୍ଯ୍ୟା ।

**ଉଗ୍ରଶେଖରା**—ସ୍ତ୍ରୀ. ବି. ( ୬ ତତ୍ ) ମନ୍ଦାକିନୀ, ଗଙ୍ଗା, ତ୍ରିପଥଗା ।

**ଉଗ୍ରଶ୍ରବାଃ**—ପୁଂ. ବି. ( ଉଗ୍ର + ଶ୍ରବସ୍ ) ରୋମହର୍ଷପୁତ୍ର, ସୌତି, ଧୃତରାଷ୍ଟ୍ର-ଙ୍କର ପୁତ୍ର (ବିଂ) ତୀକ୍ଷ୍ଣକର୍ଣ୍ଣବିଶିଷ୍ଟ ।

**ଉଗ୍ରସେନ**—ପୁଂ. ବି. ପରୀକ୍ଷିତଙ୍କ ପୁତ୍ର, ଜନମେଜୟଙ୍କ ଭ୍ରାତା, ମଥୁରାର ରଜା, କଂସର ପିତା, ଧୃତରାଷ୍ଟ୍ରଙ୍କ ପୁତ୍ର ।

**ଉଗ୍ରସେନଜ**—ପୁଂ. ବି. ( ଉଗ୍ରସେନ + ଜନ୍ + ଅ) କଂସ, କଂସାସୁର ।

**ଉଗ୍ରସେନା**—ସ୍ତ୍ରୀ. ବି. ଅକ୍ରୂରର ସ୍ତ୍ରୀ ।

**ଉଗ୍ରସ୍ୱଭାବ**—ପୁଂ. ବିଂ. (ଉଗ୍ର + ସ୍ୱଭାବ) ବ.ବ୍ରୀ; ପଚଣ୍ଡ ସ୍ୱଭାବବିଶିଷ୍ଟ, ହଠାତ୍ କ୍ରୋଧମତ୍ତ, ବି. ( କ.ଧା ) ପଚଣ୍ଡ ବା କଡ଼ା ପ୍ରକୃତି, ସ୍ତ୍ରୀ) ଉଗ୍ରସ୍ୱଭାବା ।

**ଉଗ୍ରା**—ସ୍ତ୍ରୀ.ବି. (ଉଗ୍ର + ଆ) ଉଗ୍ରଜାତୀୟା ସ୍ତ୍ରୀ, ଯୋଗିନୀବିଶେଷ, କୋପନା ନାରୀ, ଯୁଆଣୀ, ବଚ, ଧନିଆଁ, (ବିଂ) କ୍ରୁଦ୍ଧା ଇତ୍ୟାଦି । [ ରାଜର୍ଷି ।

**ଉଗ୍ର ଦେବ**—ପୁଂ. ବିଂ. ଜଣେ ବୈଦିକ

**ଉଗ୍ରାୟୁଧ**—ପୁଂ. ବି. ଜଣେ ପ୍ରାଚୀନ ପୌରବ ରଜା, କୃତରାଜାର ପୁତ୍ର, ଧୃତରାଷ୍ଟ୍ରଙ୍କର ଜଣେ ପୁତ୍ର ।

**ଉଗ୍ରେଶ**—ପୁଂ. ବି. (ଉଗ୍ର + ଈଶ)କ.ଧା; ମହାଦେବ, ଶିବ ।

**ଉଘା**—ଗ୍ରା. ବି. (ସଂ-ଉଗ୍ର) ଉହା (ସଂ-ଉଦଘାଟନ) ଅନ୍ୟର ଦୋଷ ଦେଖାଇ ଛଳ କଥା କହିବା, ଉଘାଣ ।

**ଉଘାଇବା**—ଗ୍ରା. କ୍ରି. ଦୋଷ ଦେଖାଇ ଗାଳିଦେବା, ନିଜକୃତ ଉପକାରକୁ ଲକ୍ଷ୍ୟ କରି ଛୁଗୁଲାଇବା ।

ଉଘେଇବା—ଗ୍ରା. କ୍ରି. ଉଘାଇବା ଦେଖ ।
ଉଘାଉଘିହେବା—ଗ୍ରା. କ୍ରି. (ସଂ-ଉଦ୍‌ଘାଟନ) ପରସ୍ପର ଛିଦ୍ର କହି ଗାଳି ଦିଆ ଦେଇ ହେବା । [ ବା ମଞ୍ଜା ।
ଉଘାଡ଼—ଗ୍ରା. ବି. ଏକ ପ୍ରକାର ଭାଙ୍ଗ
ଉଘାଣ-ଗ୍ରା. କ୍ରି. (ସଂ-ଉଦ୍‌ଘାଟନ) ଉଘାଇବା, ଛଳ କଥା କହିବା ।
ଉଘାଣ୍ଡ—ଗ୍ରା. ବି. କ୍ଷେତ ଜଗିବା ଲୋକ, କ୍ଷେତର ଜଗୁଆଳି ।
ଉଘେଇ—ଗ୍ରା. ସ୍ତ୍ରୀ. (ସଂ-ଉଦ୍‌ଘାଟିକା) ଯେଉଁ ସ୍ତ୍ରୀ ପରକୁ ଉଘାଏ ।
ଉଙ୍କାର—ଗ୍ରା. ପର୍ଯ୍ୟା. ବି. (ସଂ ଓଁକାର) ଓଁକାର, ବିଷ୍ଣୁଙ୍କର ଜନୈକ ସଙ୍ଗୀ, (ହ, ବ) ।
ଉଙ୍କାରିବା—ଗ୍ରା. କ୍ରି. ଆରମ୍ଭ କରିବା, ପ୍ରାଥମିକ ସୂଚନା କରିବା, କହିବାକୁ ଆରମ୍ଭ କରିବା ।
ଉଙ୍କିବା—ଗ୍ରା. କ୍ରି. ଲୁଚକରି ମୁଣ୍ଡ ଟେକି ଦେଖିବା, ଉକୁଟିକା (ଦେଖ) ।
ଉଙ୍କିମାରିବା—ଗ୍ରା. କ୍ରି. ଉଙ୍କିବା (ଦେଖ), ଗର୍ବ ଓ ଅଭିମାନସୂଚକ ଶବ୍ଦ କରିବା ।
ଉଙ୍କୁଣ—ପୁଂ. ବି. ଉତ୍କୁଣ, ଉକୁଣୀ ।
ଉଙ୍କୋଶ—ପୁଂ. ବି. ନୂତନ ନୂତନ ଆଳାପ, ଆଭାସ ।
ଉଚ୍‌କା ଫାନ୍ଦ—ପ୍ରା. (ସମ୍ବ) ଗଳାରେ ଫାଶୀ ଲଗାଇବା ।
ଉଚ୍—(ଧାତୁ) ସମବାୟ, ମିଶ୍ରଣ ।
ଉଚ—ଗ୍ରା. ବିଂ. (ସଂ-ଉଚ୍ଚ) ଉନ୍ନତ, ଉପରଭାଗ, ଉଦାର, ଉତ୍କୃଷ୍ଟ ।
ଉଚବାଚ—ଗ୍ରା. ବି. (ସଂ ଉଚ୍ଚ + ବାଚ୍ୟ) ଅନ୍ୟୋନ୍ୟରେ ବଡ଼ପାଟିରେ ଉତ୍ତର ପ୍ରତ୍ୟୁତ୍ତର ଓ ଗୋଳମାଳ କରିବା, ଅନ୍ୟୋନ୍ୟରେ କଳହ ବା ବୋଲ-ବୋଲି, ଅବୋଧ କଥାଭାଷା ।
ଉଚିତ—ବିଂ. (ଉଚ + ଇତ) ଯୋଗ୍ୟ, କର୍ତ୍ତବ୍ୟ, ପରିଚିତ, ଅଭ୍ୟସ୍ତ, ଯଥାର୍ଥ, ଯୁକ୍ତିସିଦ୍ଧ, ବିହିତ ।

ଉଚିତକାରୀ—ପୁଂ. ବିଂ. ବୈଧକର୍ମକର୍ତ୍ତା, ଯେ ନ୍ୟାୟାନୁଗତ କାର୍ଯ୍ୟ କରେ (ସ୍ତ୍ରୀ) ଉଚିତକାରିଣୀ ।
ଉଚିତବକ୍ତା—ପୁଂ. ବିଂ. ଯେ ହକ୍‌କଥାକହେ ନ୍ୟାୟୀ, ସ୍ପଷ୍ଟବାଦୀ (ସ୍ତ୍ରୀ) ଉଚିତବକ୍ତ୍ରୀ ।
ଉଚିତଭାଷୀ—ପୁଂ. ବିଂ. (ଉଚିତ + ଭାଷ + ଇନ୍) ଉଚିତବାଦୀ, ସ୍ପଷ୍ଟବକ୍ତା (ସ୍ତ୍ରୀ) ଉଚିତଭାଷିଣୀ ।
ଉଚିତରେ—ଗ୍ରା. କ୍ରି. ବିଂ. ପରି, ସଦୃଶ ।
ଉଚିତେ—ଗ୍ରା. କ୍ରି. ବିଂ. ପ୍ରକୃତରେ ।
ଉଚୁଲାଇବା—ପ୍ରା. (ସମ୍ବ) କ୍ରି. ଗଛର ଛେଲି ବା ଡାଳ ଆଦି ଟାଣିକରି ଚୁଙ୍ଗାଇ ଦେବା । (ଦେଖ) ।
ଉଚେଇବା—ଗ୍ରା. କ୍ରି. ଉଞ୍ଚେଇବା,
ଉଚ୍ଚ—ବିଂ. ଉତ୍ + ଚ + ଅ) ଉପର, ଉନ୍ନତ, ଉଁଚ, ରାଶିଭେଦ, ଅଂଶଭାଗ, ତୁଙ୍ଗ, ସରବ, ଅଳି, ଉଦାତ୍ତ, ବିଶିଷ୍ଟ, ଶ୍ରେଷ୍ଠ, ପ୍ରଧାନ ବଡ଼, (ବି) ଉଚ୍ଚତା ।
ଉଚ୍ଚକୁଳ—କ୍ଲୀ. ବି. (କ.ଧା) ଉନ୍ନତବଂଶ, ସମ୍ଭ୍ରାନ୍ତ ବଂଶ । [ ଉନ୍ନତ ।
ଉଚ୍ଚକୈଃ—(ଅବ୍ୟ) ଅତିଶୟ ଉଚ୍ଚ,
ଉଚ୍ଚକ୍ଷୁଃ—ପୁଂ. ବିଂ. (ବ ବ୍ରୀ) ଯେ ଚକ୍ଷୁର ଉପରଭାଗରେ ଦେଖୁଥାଏ, ଯେଉଁ ଚକ୍ଷୁର ଉତ୍ପାଟନ ହୋଇଥାଏ ।
ଉଚ୍ଚଙ୍ଗମ—ପୁଂ. ବି. ଉଚ୍ଚଗାମୀ ପକ୍ଷୀ, ବିହଙ୍ଗମ । [ ଜାତ ।
ଉଚ୍ଚଜାତ—ବି. (ଉଚ୍ଚ + ଜାତ) ଉତ୍କୃଷ୍ଟ
ଉଚ୍ଚଟା—ସ୍ତ୍ରୀ. ବି. (ଉତ୍ + ଚଟ୍ + ଅ + ଆ) ଗୁଞ୍ଜା, କାଇଁଚ, ଭୂଇଁଅଁଳା, ନାଗର, ମୁଥା, ଆମ୍ଳିତ ପତ୍ର, ଦର୍ପ, ଦମ୍ଭ, ଚର୍ଚ୍ଚା, ସ୍ୱଭାବ, ଏକପ୍ରକାର ତୃଣ, ଆଚରଣ, (ପର୍ଯ୍ୟାୟ) କବିକ୍ଷୀ, ଚଣ୍ଡାଳ ଚନ୍ଦଳା, ଅମ୍ବୁପତ୍ର, ଜଟିଳା, ଶୃଙ୍ଖଳା, ଉତ୍ତାନକ ।
ଉଚ୍ଚଣ୍ଡ—ବିଂ. (ଉତ୍ + ଚଣ୍ଡ୍ + ଅ) ତ୍ୱରାନ୍ୱିତ, ଶୀଘ୍ର, ଦୁର୍ଦ୍ଦାନ୍ତ, ଭୟାନକ, ପ୍ରଚଣ୍ଡ, ଅତି ଚଞ୍ଚଳ ।
ଉଚ୍ଚତମ—ବିଂ (ଉଚ୍ଚ + ତମ) ସର୍ବାପେକ୍ଷା ଉଚ୍ଚ, ଅତିଉଚ୍ଚ । [ଉଚ୍ଚ ।
ଉଚ୍ଚତର—ବିଂ. (ଉଚ୍ଚ + ତର) ଦୁଇଟିମଧ୍ୟରୁ

ଉଚ୍ଚତରୁ—ପୁଂ. ବି. (କ. ଧା) ବଡ଼ଗଛ, ନାଡ଼ିକେଳ ବୃକ୍ଷ, ନଡ଼ିଆ ଗଛ ।
ଉଚ୍ଚତା—ସ୍ତ୍ରୀ. ବି. (ଉଚ୍ଚ + ତା) ଉଚ୍ଚ-ଅବସ୍ଥା, ଔନ୍ନତ୍ୟ, ଡେଙ୍ଗା, ଉଦାରତା ।
ଉଚ୍ଚତାଳ—କ୍ଲୀ. ବି. (କ. ଧା) ଗାନାଦିରେ ନୃତ୍ୟ, ପାନଗୋଷ୍ଠୀରେ ନୃତ୍ୟ ।
ଉଚ୍ଚଦେବ - ପୁଂ. ବି. (କ. ଧା) ବିଷ୍ଣୁ, ପ୍ରଧାନ ଦେବତା, ଶ୍ରୀକୃଷ୍ଣ ।
ଉଚ୍ଚଧ୍ୱଜ—କ୍ଲୀ. ବି. ତୁଷିତନାମକ ସ୍ୱର୍ଗସ୍ଥ ବୁଦ୍ଧଙ୍କ ନାମ ।
ଉଚ୍ଚନାଦ—ପୁଂ ବି. (କ.ଧା) ଉଚ୍ଚଧ୍ୱନି ।
ଉଚ୍ଚନୀଚ—ବିଂ. ଉତ୍ତମ ଓ ଅଧମ, ଅସମତଳ, ବନ୍ଧୁର, ଉତ୍କୃଷ୍ଟ ନିକୃଷ୍ଟ, ଭଲମନ୍ଦ, ଖାଲ-ଢିପ, ଉନ୍ନତ ଓ ଅବନତ ।
ଉଚ୍ଚନ୍ଦ୍ର—ପୁଂ. ବି. (ଉତ୍ + ଚନ୍ଦ୍ର) ଶେଷରାତ୍ର, ରାତ୍ରିଶେଷ । [ପଡ଼ିବା ।
ଉଚ୍ଚପତନ—କ୍ଲୀ. ବି. (୬ ତତ୍) ଉଚ୍ଚସ୍ଥାନରୁ
ଉଚ୍ଚପଦ—କ୍ଲୀ. ବି. (କ. ଧା) ସମ୍ମାନର ସ୍ଥାନ, ଉନ୍ନତାବସ୍ଥା, ପ୍ରଧାନକର୍ମ, ବଡ଼ଚାକିରି ।
ଉଚ୍ଚପଦସ୍ଥ—ପୁଂ. ବିଂ. (ଉଚ୍ଚପଦ + ସ୍ଥା + କ, ଅ) ପ୍ରଧାନକାର୍ଯ୍ୟକାରୀ ।
ଉଚ୍ଚପ୍ରକୃତି—ସ୍ତ୍ରୀ ବି. (କ.ଧା.) ଉନ୍ନତସ୍ୱଭାବ, ପ୍ରଶସ୍ତଚିତ୍ତ, ଉଚ୍ଚମିଜାଜ, (ବିଂ) ଉନ୍ନତସ୍ୱଭାବବିଶିଷ୍ଟ, ଉଚ୍ଚମିଜାଜୀ, ପ୍ରଶସ୍ତଚେତା ।
ଉଚ୍ଚବଂଶ—ପୁଂ. ବି. ଭଦ୍ରବଂଶ, ମର୍ଯ୍ୟାଦାଯୁକ୍ତ ବଂଶ, ଉନ୍ନତବଂଶ ।
ଉଚ୍ଚବଚ—ଗ୍ରା. ବି. ଉଚ୍ଚସ୍ୱରଯୁକ୍ତ ଭାଷଣ ।
ଉଚ୍ଚବାଚ—ଗ୍ରା. ବି. ଉଚବାଚ (ଦେଖ) (ବିଂ) ଉଚ୍ଚସ୍ୱରଯୁକ୍ତ ।
ଉଚ୍ଚଭାବ—ପୁଂ. ବି. (୬ ତତ୍) ଉନ୍ନତଭାବ ବା ପ୍ରକୃତି, ଉଚ୍ଚତା, ଉନ୍ନତି ।
ଉଚ୍ଚଭାଷଣ—କ୍ଲୀ. ବି. (ଉଚ୍ଚ + ଭାଷ୍ + ଅନ) ବଡ଼ପାଟି କରି କଥା କହିବା, ଭଡ଼ ଭଡ଼ ହେବା, ଅମର୍ଯ୍ୟାଦାସୂଚକ କଥାବାର୍ତ୍ତା ।
ଉଚ୍ଚଭାଷୀ—ପୁଂ ବିଂ. (ଉଚ୍ଚ + ଭାଷ୍ + କ ଇନ୍) ଯେ କଡ଼ାକଥା କହେ, ମନ୍ଦବକ୍ତା, ଯେ ବଡ଼ପାଟି କରି କହେ, (ସ୍ତ୍ରୀ) ଉଚ୍ଚଭାଷିଣୀ ।

ଉଚ୍ଚମନାଃ--ପୁଂ.ସ୍ତ୍ରୀ.ବିଂ.(ଉଚ୍ଚ + ମନସ) ଉନ୍ନତସ୍ୱଭାବଯୁକ୍ତ, ଉଦାରଭାବାପନ୍ନ ।

ଉଚ୍ଚନ୍ତ—ଗ୍ରା. ବି. ଉପହାସଜନକ, ବାଦ୍ ପକାଇବା ।

ଉଚ୍ଚୟ—ପୁଂ. ବି. (ଉତ୍ + ଚି + ଭା,ଅ) ଚୟନ, ପରିଧାନ ବସ୍ତ୍ରଗ୍ରନ୍ଥି, ରଚନା, ନୀବି, କଉଁମୁଠି, ରାଶି, ପୁଞ୍ଜ, ସମୂହ, ଗଦା, ଖୋସଣି ।

ଉଚ୍ଚରଥ—ବଙ୍ଗ ବାରେନ୍ଦ୍ର ବ୍ରାହ୍ମଣମାନଙ୍କ ମଧ୍ୟରେ ଭରଦ୍ୱାଜଗୋତ୍ରର ଗୋଟିଏ ଶାଖା ।

ଉଚ୍ଚରିତ—ବିଂ. (ଉତ୍ + ଚର୍ + ତ) କୀର୍ତ୍ତିତ, କଥିତ, ଶବ୍ଦିତ ।

ଉଚ୍ଚଳ—କ୍ଲୀ.ବି.(ଉତ୍ + ଚଲ୍ + କ.ଅ) ମନ,ଚିତ୍ତ, ହୃଦୟ, (ଭା.ଅ) ଅପହରଣ, ପ୍ରସ୍ଥାନ ।

ଉଚ୍ଚଲଗ୍ନ—କ୍ଲୀ. ବି. (କ.ଧା) ଅତ୍ୟୁତ୍କୃଷ୍ଟ ଶୁଭକାର୍ଯ୍ୟ ସମ୍ପାଦନ କାଳ ।

ଉଚ୍ଚଳିତ—ବିଂ. (ଉତ୍ + ଚଲ୍ + କ.ତ) ନିର୍ଗତ, ପ୍ରସ୍ଥିତ ।

ଉଚ୍ଚଲୁଣିଆ—ଗ୍ରା.ବିଂ. ବେଶି ଲୁଣ ପକାଇବାଦ୍ୱାରା ଟିକିଏ ଅଧିକ ଲୁଣି ହୋଇ ଥିବା ।

ଉଚ୍ଚଶିରସ୍କ—ପୁଂ.ବିଂ. (ବ.ବ୍ରୀ) ଉନ୍ନତମସ୍ତକବିଶିଷ୍ଟ । [ ବିଶିଷ୍ଟ ।

ଉଚ୍ଚଶିରା—ପୁଂ. ସ୍ତ୍ରୀ. ବିଂ. ଉନ୍ନତମସ୍ତକ-

ଉଚ୍ଚହାସ୍ୟ—କ୍ଲୀ.ବି. (କ.ଧା) ଚିତ୍କାରକରି ହସିବା, ବଡ଼ ପାଟିକରି ହସିବା ।

ଉଚ୍ଚହୃଦୟ—କ୍ଲୀ. ବି. (କ.ଧା) ଉନ୍ନତମନଃ, ପ୍ରଶାନ୍ତଚିତ୍ତ, ମହଦନ୍ତଃକରଣ, ଉଦାରସ୍ୱଭାବ, ମହାଶୟତ୍ୱ, ( ବିଂ. ) ଉନ୍ନତମନାଃ, ଉଦାରପ୍ରକୃତି, ମହାଶୟ (ସ୍ତ୍ରୀ) ଉଚ୍ଚହୃଦୟା ।

ଉଚ୍ଚା—ଗ୍ରା. ବିଂ. ଉନ୍ନତ, ଡେଙ୍ଗା, ଉଚ୍ଚ, (ବିଂ) ଉଚ୍ଚତା ।

ଉଚ୍ଚାକାଙ୍କ୍ଷ—ପୁଂ.ବିଂ.(ବ.ବ୍ରୀ) ଉଚ୍ଚାଭିଲାଷୀ, (ସ୍ତ୍ରୀ) ଉଚ୍ଚାକାଙ୍କ୍ଷା ।

ଉଚ୍ଚାକାଙ୍କ୍ଷା—ସ୍ତ୍ରୀ.ବି. (କ.ଧା)ଉଚ୍ଚାଭିଲାଷ, ପ୍ରଧାନତ୍ୱ ଲାଭର ବାସନା ।

ଉଚ୍ଚାକାଙ୍କ୍ଷୀ—ପୁଂ.ବିଂ. (ଉଚ୍ଚାକାଙ୍କ୍ଷା + ଇନ୍)ଉଚ୍ଚାଭିଲାଷୀ, ବଡ଼ ହେବାକୁ ଇଚ୍ଛୁକ,ପ୍ରଧାନତ୍ୱ ଲାଭ କରିବାକୁ ଇଚ୍ଛୁକ, (ସ୍ତ୍ରୀ) ଉଚ୍ଚାକାଙ୍କ୍ଷିଣୀ ।

ଉଚ୍ଚାଟ—ପୁଂ.ବିଂ. (ଉତ୍ + ଚଟ୍ + ଭା.ଅ) ମାନସିକ ଚଞ୍ଚଳତା, ମାନସିକ ଅସ୍ଥିରତା, ବୈମନସ୍ୟ, ଉଦ୍‌ବେଗ, ଉତ୍କଣ୍ଠା, (ବିଂ) ବାଉଳା, କ୍ଷିପ୍ରପ୍ରାୟ, ଉତ୍ତେଜିତ, ଉତ୍ତେଜନାପୂର୍ଣ୍ଣ, ବାତୁଳପ୍ରାୟ ।

ଉଚ୍ଚାଟନ—କ୍ଲୀ.ବି.(ଉଚ୍ଚ + ଅଟ୍ + ଅନ) ଉତ୍ପାଟନ, ଚଞ୍ଚଳକରଣ, ଷଟ୍‌କର୍ମାନ୍ତର୍ଗତ ଅଭିଚାରବିଶେଷ, ଉତ୍କଣ୍ଠା, ବିବାଦ, ବ୍ୟାକୁଳତା, ଅନ୍ୟର ମନକୁ ବାଉଳାକରାଇବା, (ବିଂ.) ଅଶାନ୍ତ, ଉଦ୍‌ବିଗ୍ନ ।

ଉଚ୍ଚାଟିତ—ବିଂ. ଅପସାରିତ, ଦୂରୀକୃତ, ବିରକ୍ତ, ଅଶାନ୍ତ, ଅଧୀର, ବାଉଳା ।

ଉଚ୍ଚାଟପାଣି—ଗ୍ରା. ବି. କୌଣସି ଲୋକର ମନରେ ବ୍ୟାକୁଳତା ବା ବାତୁଳତା ଆଣିବାପାଇଁ ଅଭିମନ୍ତ୍ରିତ ଜଳ ।

ଉଚ୍ଚାଟପେଷଣ—ଗ୍ରା. ବି. ଉଚ୍ଚାଟନାର୍ଥ ଯନ୍ତ୍ରମନ୍ତ୍ରପ୍ରୟୋଗ ।

ଉଚ୍ଚାଟପ୍ରୟୋଗ—ଗ୍ରା. ବି. ଶତ୍ରୁର ଉଚ୍ଚାଟନ ନିମିତ୍ତ ମନ୍ତ୍ରଯନ୍ତ୍ର ପ୍ରୟୋଗ ।

ଉଚ୍ଚାଟବାୟୁ—ଗ୍ରା. ବିଂ. ଅନ୍ୟ ବ୍ୟକ୍ତିର ମନ୍ତ୍ରଯନ୍ତ୍ର ବା ଗୁଣି-ଗାରଡ଼ିଦ୍ୱାରା ବାତୁଳପ୍ରାୟ ହୋଇଥିବା (ବ୍ୟକ୍ତି) ।

ଉଚ୍ଚାନୀଚ୍ଚ—ଗ୍ରା. ବିଂ. ଉଚ୍ଚନୀଚ, ଅସମତଳ, ବନ୍ଧୁର, ବଡ଼ସାନ ।

ଉଚ୍ଚାଭିଲାଷ—ପୁଂ. ବି. (କ.ଧା) ଉଚ୍ଚାକାଙ୍କ୍ଷା, ବଡ଼ ହେବାର ଇଚ୍ଛା, ପ୍ରଧାନତ୍ୱ ଲାଭର ବାସନା ।

ଉଚ୍ଚାଭିଲାଷୀ—ପୁଂ. ବିଂ. (ଉଚ୍ଚାଭିଲାଷ + ଇନ୍ )ଉଚ୍ଚାକାଙ୍କ୍ଷୀ, ବଡ଼ ହେବାକୁ ଇଚ୍ଛୁକ, ପ୍ରଧାନତ୍ୱଲାଭର ପ୍ରୟାସୀ, (ସ୍ତ୍ରୀ) ଉଚ୍ଚାଭିଲାଷିଣୀ ।

ଉଚ୍ଚାର—ପୁଂ. ବି. ( ଉତ୍ ଚର୍ + ଅ ) ମଳ, ବିଷ୍ଠା, ପୁରୀଷ, ଉଚ୍ଚାରଣ, (ବିଂ) କଥିତ, ବର୍ଣ୍ଣିତ ।

ଉଚ୍ଚାରକ—ପୁଂ. ବିଂ. ( ଉଚ୍ଚାର + କ ) ଉଚ୍ଚାରଣକାରୀ, ମଳତ୍ୟାଗୀ, ପୁରୀଷୋତ୍ସର୍ଗୀ ।

ଉଚ୍ଚାରଣ—କ୍ଲୀ.ବି.(ଉତ୍ + ଚୃର + ଅନ) କଥନ, ଶବ୍ଦ ପ୍ରୟୋଗ, କୀର୍ତ୍ତନ ।

ଉଚ୍ଚାରଣକରିବା—ଗ୍ରା. କ୍ରି. ବର୍ଣ୍ଣନକରିବା, କହିବା, ବଖାଣ କରିବା, ଶବ୍ଦ କରିବା ।

ଉଚ୍ଚାରଣସ୍ଥାନ—କ୍ଲୀ. ବି. ( ୬ତତ୍ ) ଯେଉଁସ୍ଥାନରୁ ଶବ୍ଦର ଉଚ୍ଚାରଣ ସମ୍ପନ୍ନ ହୁଏ, କଣ୍ଠ ପ୍ରଭୃତି ।

ଉଚ୍ଚାରଣାର୍ଥକ—ବି. (ବ.ବ୍ରୀ ) ଉଚ୍ଚାରଣ ହେତୁକ, ଉଚ୍ଚାରଣନିମିତ୍ତକ, ଉଚ୍ଚାରଣବୋଧକ ।

ଉଚ୍ଚାରଣୀୟ—ବିଂ. (ଉତ୍ + ଚୃର + ର୍ମି. ଅନୀୟ ) ଉଚ୍ଚାରଣଯୋଗ୍ୟ, ଉଚ୍ଚାର୍ଯ୍ୟ ।

ଉଚ୍ଚାରିତ—ବିଂ. (ଉତ୍ + ଚୃର + ର୍ମି.ଇ) କଥିତ, ଶବ୍ଦାୟିତ, କୀର୍ତ୍ତିତ, କୃତମଳତ୍ୟାଗ ।

ଉଚ୍ଚାର୍ଯ୍ୟ—ବିଂ. (ଉତ୍ + ଚୃର + ର୍ମି.ଯ) ଉଚ୍ଚାରଣ ଯୋଗ୍ୟ, କଥନୀୟ (ସ୍ତ୍ରୀ) ଉଚ୍ଚାର୍ଯ୍ୟା ।

ଉଚ୍ଚାର୍ଯ୍ୟମାଣ—ବିଂ. ( ଉତ୍ + ଚୃର + ଆନ ) ଯାହା ଉଚ୍ଚାରଣ କରାଯାଇଅଛି, (ସ୍ତ୍ରୀ) ଉଚ୍ଚାର୍ଯ୍ୟମାଣା ।

ଉଚ୍ଚାଳିତ—ବିଂ.(ଉତ୍ + ଚୃଲ + କ.ତ) ଉଦ୍‌ଗତ, ପ୍ରସ୍ଥିତ, ନିର୍ଗତ ।

ଉଚ୍ଚାବଚ—ବିଂ.(ଉଚ୍ଚ + ଆବଚ)ବିବିଧ, ନାନାପ୍ରକାର, ଅସମାନ, ଭଲମନ୍ଦ, ବନ୍ଧୁର, ଖାଲଢିପ, ଉଚ୍ଚନୀଚ ।

ଉଚ୍ଚିଙ୍ଗଟ—ପୁଂ. ବି. (ଉତ୍ + ଚିଙ୍ଗଟ) ଚିଙ୍ଗୁଡ଼ିମାଛ, କୋପନସ୍ୱଭାବ ବ୍ୟକ୍ତି, ଏକକାଳୀୟ ଝିଣ୍ଟିକା ।

ଉଚ୍ଚିଟିଙ୍ଗ—ପୁଂ. ବି. ପତଙ୍ଗବିଶେଷ ।

ଉଚ୍ଚିତ—ବିଂ ( ଉତ୍ + ଚି + ର୍ମି.ତ ) ସଂଗୃହୀତ ।

ଉଚ୍ଚୀକୃତ—ବିଂ. (ଉଚ୍ଚ + ଚ୍ୱି + କୃ + ର୍ମି.ତ)ନୀଚ ବସ୍ତୁକୁ ଉଚ୍ଚ କରାଯାଇଥିବା, ଯାହା ଏବେ ଉଚ୍ଚ କରାହୋଇଅଛି ।

ଉଚ୍ଚୁଙ୍ଗ—ଗ୍ରା. ବି. ଉଇଚିଣ୍ଡା, ଏକପ୍ରକାର ପୋକ, ଶ୍ରେଷ୍ଠ ଅସର୍ପା ।

ଉଚୂଡ଼—ପୁଂ.ବି.(ବ.ବ୍ରୀ) ଧ୍ୱଜର ଉପର-ଭାଗ ବସ୍ତ୍ରଖଣ୍ଡ,ନିଶାଣର ପାଗ,ପତାକା ।

ଉଚ୍ଚୈଃ—ଅବ୍ୟ. ( ଉତ୍ + ଚ + ଡୈସ୍ ) ଉଚ୍ଚ, ଉନ୍ନତ, ଯଥେଷ୍ଟ, ଅଧିକ, ପ୍ରଚୁର ।

ଉଚ୍ଚୈର୍ଘୋଷ—ବିଂ. ଉଚ୍ଚଶବ୍ଦ,ଘୋଷଣା-ବିଶିଷ୍ଟ ।

ଉଚ୍ଚୈଃଶିରାଃ—ପୁଂ. ବିଂ. ଉଚ୍ଚମସ୍ତକ, ମହତ୍ତର, ମହଜ୍ଜନ, ମହାତ୍ମା ।

ଉଚ୍ଚୈଃଶ୍ରବଣ—ଗ୍ରା.ବି. ଇନ୍ଦ୍ରଙ୍କର ଘୋଡ଼ା

ଉଚ୍ଚୈଃଶ୍ରବା—ପୁଂ. ବି. ଇନ୍ଦ୍ରଙ୍କର ଅଶ୍ୱ, ଲମ୍ବକାନ, (ବିଂ.ବ.ବ୍ରୀ) ବଧିର, ଉଞ୍ଚ-କାନିଆ, ଲମ୍ବକର୍ଣ୍ଣ ।

ଉଚ୍ଚୈଃସ୍ୱର—ପୁଂ.ବି.ଚିତ୍କାର,ବଡ଼ପାଟି ।

ଉଚ୍ଚୈର୍ଘୁଷ୍ଟ—କ୍ଲୀ. ବି. ଘୋଷଣା, ଧେଣ୍ଡୁରା, କଳରବ, କୋଳାହଳ ।

ଉଚ୍ଛ—( ଧାତୁ ) ଉଞ୍ଛ ।

ଉଚ୍ଛ—ପୁଂ.ବି.(ଉଚ୍ଛ + ଅ)ବନ୍ଧ,ସମାଗମ, ଅତିକ୍ରମ, ତ୍ୟାଗ କରିବା ।

ଉଚ୍ଛନ୍ନ—ବିଂ. (ଉତ୍ + ଛଦ + ତ)ନଷ୍ଟ, ଚଞ୍ଚଳ, ବ୍ୟଗ୍ର, ବିବର୍ଣ୍ଣ, ବିଶ୍ରୀ, ଅତି-ଚଞ୍ଚଳ, ବ୍ୟାକୁଳ, (ଗ୍ରା. ବିଂ) ବ୍ୟସ୍ତ, ଅସ୍ଥିର, ଦୁଃଖଯୁକ୍ତ, ଲୁପ୍ତ, ଗତ, ତ୍ରସ୍ତ ।

ଉଚ୍ଛନ୍ନକରିବା—ଗ୍ରା. କ୍ରି. ସମୂଳେ ନଷ୍ଟ କରିବା, ବ୍ୟସ୍ତଭାବରେ ଅଳିକରିବା, ଅତିଚଞ୍ଚଳ କରାଇବା । [ଅବସ୍ଥା ।

ଉଚ୍ଛନ୍ନଦଶା—ଗ୍ରା. ବି. ସର୍ବନାଶ ଘଟିବା

ଉଚ୍ଛନ୍ନସନ୍ଧି—ସ୍ତ୍ରୀ.ବି.ସନ୍ଧିବିଶେଷ,କୌଣସି ପ୍ରକାର ଭଲ ରାଜ୍ୟ ଛଡ଼ାଇନେଇ ପରେ ଯେଉଁ ସନ୍ଧି କରାଯାଏ ।

ଉଚ୍ଛନ୍ନହେବା—ଗ୍ରା. କ୍ରି. ସମୂଳେ ବିନଷ୍ଟ ହେବା, ସତ୍ୟାନାଶ ହେବା, ଅତି-ଅଧୀର ହେବା, ଅତିବ୍ୟସନ୍ୟତ ହେବା, (ବଂଶାଦି) ଲୁପ୍ତ ହେବା ।

ଉଚ୍ଛବ—ଗ୍ରା.ବି. (ସଂ—ଉତ୍ସବ) ଉତ୍ସବ, ଆମୋଦ, ଆହ୍ଲାଦ,ଭୋଜି,ବଣଭୋଜି ।

ଉଚ୍ଛସ୍ଥ—କ୍ଲୀ.ବି.ତ୍ରିକୋଣର ପଶ୍ଚାଦ୍ଭାଗପଦ ।

ଉଚ୍ଛଳ—ବିଂ. ( ଉତ୍ + ଶଳ + କି.ଅ ) ଅଧାର ଅତିକ୍ରମ କରି ଊର୍ଦ୍ଧ୍ୱେ ପ୍ଲାବିତ ହୋଇଥିବା, ସର୍ବତଃ ବ୍ୟାପ୍ତ,ଉଚ୍ଛଳିତ ।

ଉଚ୍ଛଳନ—କ୍ଲୀ. ବି. (ଉତ୍ + ଶଳ୍ + ଭା. ଅନ)ଉଦ୍‌ଗମନ, ଉତ୍କ୍ଷେପ,ଉଚ୍ଛୁଳିବା ।

ଉଚ୍ଛଳିତ—ବିଂ. (ଉତ୍ + ଶଳ୍ + କ,ତ) ଉତ୍କ୍ଷିପ୍ତ, ଉତ୍ଥିତ, ସ୍ଫୀତ, ପ୍ଲାବିତ, ବୃଦ୍ଧିପ୍ରାପ୍ତ, ଫୁଲୁଥିବା ।

ଉଚ୍ଛା—ଗ୍ରା.ବି.କଳାଗଛ.(ସଂ—ପର୍ଯ୍ୟାୟ) କଠିଲ୍ଲିକ ସୁଷବୀ, ସୁକାଣ୍ଡ, ଉଗ୍ରକାଣ୍ଡ, କଠିଲ୍ଲି, କାରବେଲ୍ଲି, ନାସା ସମ୍ବେଦନ, ପଟୁ ।

ଉଚ୍ଛାଦନ—କ୍ଲୀ.ବି.(ଉତ୍ + ଛଦ + ଭା, ଅନ ) ଘଷିହୋଇ ମଳ ଛଡ଼ାଇବା, ଦେହରେ ଚନ୍ଦନାଦି ବୋଳିବା, ଗାତ୍ର-ମାର୍ଜନ, ଆଚ୍ଛାଦନ, ଶରୀରର ମଇଳା ପରିଷ୍କାର କରିବା ।

ଉଚ୍ଛାଳ—ଗ୍ରା ବି.ବାନ୍ତି,ବମନ,ଉଦ୍‌ଗାର ।

ଉଚ୍ଛାସ୍ତ୍ର—ବିଂ. ଉତ୍ + ଶାସ୍ତ୍ର)ଶାସ୍ତ୍ରବିରୁଦ୍ଧ, ଅଶାସ୍ତ୍ରୀୟ, ବେଆଇନ୍ ।

ଉଚ୍ଛାସ୍ତ୍ରବର୍ତ୍ତୀ—ପୁଂ. ବିଂ. ଶାସ୍ତ୍ରୋଲ୍ଲଙ୍ଘନ-କାରୀ, ଶାସ୍ତ୍ରବିରୁଦ୍ଧାଚାରୀ ।

ଉଚ୍ଛିଖ—ପୁଂ.ବିଂ. (ବ.ବ୍ରୀ)ଉନ୍ନତଶିଖା, ପ୍ରଜ୍ୱଳିତ ଅଗ୍ନି, ଉପରମୁହାଁ, (ବି) ନାଗବିଶେଷ ।

ଉଚ୍ଛିଙ୍ଘନ—କ୍ଲୀ.ବି.(ଉତ୍ + ଶିଙ୍ଘ + ଅନ) ନାଶପର ନାକଦ୍ୱାରା ଟାଣିନେବା ।

ଉଚ୍ଛିତ—ପୁଂ. ବିଂ. (ଉତ୍ + ଶି + ତ) ବୁଦ୍ଧି ।

ଉଚ୍ଛିତ୍ତି—ସ୍ତ୍ରୀ.ବି.(ଉତ୍ + ଛିଦ୍ + ଭା,ତି) ଉଚ୍ଛେଦ, ବିନାଶ, ସମୂଳେ ଉତ୍ପାଟନ ।

ଉଚ୍ଛିନ୍ନ—ବିଂ. (ଉତ୍ + ଛିଦ୍ + ର୍ମ,ତ) ସମୂଳେ ଉତ୍ପାଟିତ,ବିନାଶିତ,ଉନ୍ମୂଳିତ, ବିଦଳିତ, ଅଧମ ।

ଉଚ୍ଛିରସ୍—ପୁଂ. ବିଂ. (ବ.ବ୍ରୀ) ଉନ୍ନତ, ମହାମାନ୍ୟତ, ଉନ୍ନତମସ୍ତକ,(ବି) ବୌଦ୍ଧ-ଶାସ୍ତ୍ରୋକ୍ତ ଗୋଟିଏ ପର୍ବତ ।

ଉଚ୍ଛିଲୀନ୍ଧ୍ର—କ୍ଲୀ.ବି. ଛତୁ, (ବିଂ.ବ.ବ୍ରୀ) ପ୍ରସ୍ଫୁଟିତ, ଶିଲୀନ୍ଧ୍ରଯୁକ୍ତ ।

ଉଚ୍ଛିଷ୍ଟ—ବିଂ. ( ଉତ୍ + ଶିଷ୍ + କ.ତ) ଭୁକ୍ତାବଶିଷ୍ଟ, ଭୋଜନ ପରେ ପାତ୍ରରେ ବଳିଥିବା, ଅଇଣ୍ଠା ହୋଇଥିବା, ତ୍ୟକ୍ତ, ଦଗ୍ଧାବଶିଷ୍ଟ (ବି) ମଧୁ, ମହୁ ।

ଉଚ୍ଛିଷ୍ଟକଳ୍ପନା—ସ୍ତ୍ରୀ. ବି. ଅନ୍ୟକୃତ କଳ୍ପନା ।

ଉଚ୍ଛିଷ୍ଟଗଣପତି—ପୁଂ. ବି. କାଞ୍ଚିଳସ୍ଥା ବା ହେରମ୍ବ ସମ୍ପ୍ରଦାୟ ।

ଉଚ୍ଛିଷ୍ଟଗଣେଶ—ପୁଂ. ବି. ତନ୍ତ୍ରୋକ୍ତ ଗଣେଶମୂର୍ତ୍ତିଭେଦ ।

ଉଚ୍ଛିଷ୍ଟଚଣ୍ଡାଳିନୀ—ସ୍ତ୍ରୀ. ବି. ତନ୍ତ୍ରୋକ୍ତ ମାତଙ୍ଗଦେବୀଙ୍କର ମୂର୍ତ୍ତିବିଶେଷ ।

ଉଚ୍ଛିଷ୍ଟଭୋଜନ—ପୁଂ. ବି. ଦେବ-ନୈବେଦ୍ୟ ବଳିର ଭୋଜନକର୍ତ୍ତା (କ୍ଲୀ) ନିତାନ୍ତ ହୀନବୃତ୍ତି, ଅନ୍ୟର ଉଚ୍ଛିଷ୍ଟ ଖାଇବା ।

ଉଚ୍ଛିଷ୍ଟଭୋଜୀ—ପୁଂ. ବିଂ. ( ଉଚ୍ଛିଷ୍ଟ + ଭୋଜ + ଇନ୍ ) ଅଇଣ୍ଠାଖିଆ, ନୀଚ, ପରୋପଜୀବୀ, ଯେ ଉଚ୍ଛିଷ୍ଟ ଖାଏ ।

ଉଚ୍ଛିଷ୍ଟମୁଖ—ପୁଂ.ବିଂ.(ବ ବ୍ରୀ) ଅଇଣ୍ଠା-ମୁହାଁ, ଖାଇସାରି ମୁହଁଧୋଇ ନ ଥିବା

ଉଚ୍ଛିଷ୍ଟମୋଦନ—କ୍ଲୀ. ବି. (କ.ଧା)ସିକ, ମହୁସିଠା, ମହଣ ।

ଉଚ୍ଛିଷ୍ଟଲେପ—ପୁଂ.ବି. (୬ତତ୍) ଭକ୍ଷ୍ୟ-ପାତ୍ରଲଗ୍ନ ଭୁକ୍ତଶେଷ ଅନ୍ନାଦି ।

ଉଚ୍ଛିଷ୍ଟାନ୍ନ—କ୍ଲୀ.ବି. (କ.ଧା) ପରତ୍ୟକ୍ତ ଖାଦ୍ୟ, ଅଇଣ୍ଠା ଭାତ ।

ଉଚ୍ଛୀର୍ଷକ—କ୍ଲୀ. ବି. ମାଣ୍ଡି, ଉପାଧାନ, ତକିଆ, ମସ୍ତକ, ଶିରସ୍ଥାନ, (ବିଂ) ଉନ୍ନତମସ୍ତକ ।

ଉଚ୍ଛୁକ—ଗ୍ରା ବିଂ.(ସଂ—ଉତ୍ସୁକ)ଉତ୍ସୁକ (ଦେଖ) ବି. କୌତୂହଳ, ଔତ୍ସୁକ୍ୟ ।

ଉଚ୍ଛୁଣି—ଗ୍ରା.ଅବ୍ୟ. ଏହିକ୍ଷଣି,ବର୍ତ୍ତମାନ ।

ଉଚ୍ଛୁର—ଗ୍ରା.ବିଳମ୍ବ,ଡେରି,ମଠକରିବା ।

ଉଚ୍ଛୁଷ୍କ—ବିଂ. (ଉତ୍ + ଶୁଷ୍, କ. କ ) ଉପରଭାଗ ଶୁଷ୍କ, ସନ୍ତପ୍ତ, ଶୀର୍ଣ୍ଣ ।

ଉଚ୍ଛୂନ—ବିଂ. (ଉତ୍ + ଶ୍ୱି + କ, ତ) ସ୍ଫୀତ, ଫୁଲିଥିବା, ଉନ୍ନତ, ଉଚ୍ଛ୍ୱସିତ, ଉଚ୍ଚ (ବି) ଫୁଲିବା ।

ଉଚ୍ଛୃଙ୍ଖଳ—ବିଂ. ( ବ. ବ୍ରୀ ) ବିଶୃଙ୍ଖଳ, ନିସ୍ପ୍ରମରହିତ, ଅବାଧ, ସ୍ୱେଚ୍ଛାଚାରୀ ।

ଉଚ୍ଛେତ୍ତୃ—ପୁଂ.ବି°.(ଉତ୍ + ଛିଦ୍ + କ,ତୃ) ଉଚ୍ଛେଦକାରକ, ନାଶକ, ଛେଦକ, (ସ୍ତ୍ରୀ) ଉଚ୍ଛେତ୍ତ୍ରୀ ।

ଉଚ୍ଛେଦ—ପୁଂ.ବି.(ଉତ୍ + ଛିଦ + ଭା,ଅ) ଉତ୍ପାଟନ, ଉନ୍ମୂଳନ, ବିନାଶ, ଧ୍ୱଂସ ।

ଉଚ୍ଛେଦକ—ପୁଂ.ବି°. (ଉତ୍ + ଛିଦ୍ + ଅକ)ବିନାଶକ. ଉଚ୍ଛେଦକର୍ତ୍ତା,ଉଚ୍ଛେତ୍ତୃ, (ସ୍ତ୍ରୀ) ଉଚ୍ଛେଦିକା ।

ଉଚ୍ଛେଦନୀୟ—ବି°. (ଉତ୍ + ଛିଦ୍ + ର୍ମ, ଅନୀୟ) ଉତ୍ପାଟନୀୟ, ଧ୍ୱଂସଯୋଗ୍ୟ, ବିନାଶ୍ୟ ସ୍ତ୍ରୀ) ଉଚ୍ଛେଦନୀୟା ।

ଉଚ୍ଛେଦ୍ୟ—ବି°. (ଉତ୍ + ଛିଦ୍ + ର୍ମ,ଯ) ଉତ୍ପାଟନୀୟ, ଉଚ୍ଛେଦନୀୟ ।

ଉଚ୍ଛେଷ—ପୁଂ. ବି. (ଉତ୍ + ଶିଷ୍ + ଅ) ଅବଶେଷ ଭୁକ୍ତଶେଷ ଅନ୍ନାଦ, ଉଚ୍ଛିଷ୍ଟ ।

ଉଚ୍ଛେଷଣ—କ୍ଲୀ.ବି. (ଉତ୍ + ଶିଷ୍ + ଭା, ଅନ) ଉଚ୍ଛେଷ (ଦେଖ) ।

ଉଚ୍ଛେଷିତ—ବି°. (ଉତ୍ + ଶେଷି + ର୍ମ.ତ ଉଚ୍ଛିଷ୍ଟୀକୃତ, ଚର୍ମ୍ବିତ ।

ଉଚ୍ଛେଷ୍ୟ—ବି°. (ଉତ୍ + ଶିଷ୍ + ର୍ମ.ଯ) ଅବଶେଷଣୀୟ ।

ଉଚ୍ଛୋଚନ—ବି°. (ଉତ୍ + ଶୁଚ୍ + ଅନ) ଶୋକୋଦ୍‌ଗମ ।

ଉଚ୍ଛୋଷଣ—ବି.(ଉତ୍ + ଶୋଷି + ଅନ) ସନ୍ତାପକ, ଊର୍ଦ୍ଧ୍ୱଶୋଧକ, ( କ୍ଲୀ.ବି. ) ଊର୍ଦ୍ଧ୍ୱଶୋଷଣ, ଶୁଖିଯିବା, ସନ୍ତାପିତକରଣ, ଶୁଖେଇବା ।

ଉଚ୍ଛୋଷିତ—ବି°.(ଉତ୍ + ଶୋଷି + ର୍ମ.ତ) ଶୁଷ୍କୀକୃତ, ସନ୍ତାପିତ ।

ଉଚ୍ଛୋଷୁକ—ବି°.(ଉତ୍ + ଶୁଷ୍ + ଉକ) ଊର୍ଦ୍ଧ୍ୱଶୋଷଯୁକ୍ତ ।

ଉଚ୍ଛ୍ରାୟ—ପୁଂ. ବି. (ଉତ୍ + ଶ୍ରି + ଅ) ଉଚ୍ଚତା, ଉନ୍ନତ, ଉଚ୍ଚସଂଖ୍ୟା, ଉତ୍କର୍ଷ ।

ଉଚ୍ଛ୍ରୟଣ—କ୍ଲୀ.ବି.(ଉତ୍ + ଶ୍ରି + ଭା,ଅନ) ଉନ୍ନତ, ଉତ୍ଥାପନ, (ବି°) ଉତ୍କୃଷ୍ଟ ।

ଉଚ୍ଛ୍ରାୟ—ପୁଂ. ବି. (ଉତ୍ + ଶ୍ରି + ଅ) ଉଚ୍ଛ୍ରୟ, ଉଚ୍ଚତା, ଆରୋହ, ଉଦୟ, ଉତ୍ସେଧ, ସମୁଚ୍ଛ୍ରୟ ।

ଉଚ୍ଛ୍ରାୟୀ—ପୁଂ. ବି°. (ଉତ୍ + ଶ୍ରି + କ. ଇନ୍) ଉନ୍ନତ ।

ଉଚ୍ଛ୍ରିତ—ବି°. ଉତ୍ + ଶ୍ରି + କ.ତ) ଉନ୍ନତ, ଗର୍ବିତ, ଫୁଲଥିବା, ଉଦ୍ଧତ, ସମ୍ଭ୍ରାନ୍ତ, ସମୃଦ୍ଧ, ଉତ୍ପନ୍ନ ।

ଉଚ୍ଛ୍ରିତି—ସ୍ତ୍ରୀ. ବି. (ଉତ୍ + ଶ୍ରି + ଭା.ତି ଉଚ୍ଛ୍ରାୟ, ଉଚ୍ଚସଂଖ୍ୟା, ଉନ୍ନତି, ଉତ୍କର୍ଷ ।

ଉଚ୍ଛ୍ୱସିତ—ବି°. (ଉତ୍ + ଶ୍ୱସ୍ + କ.ତ) ବିକସିତ, ପ୍ରସ୍ଫୁଟିତ, ସ୍ଫୀତ, ଜୀବିତ, କମ୍ପିତ, ଶିଥିଳୀଭୂତ, ବିଶ୍ଳିଷ୍ଟ, ଆଶ୍ୱାସଯୁକ୍ତ,(କ୍ଲୀ.ବି)ଉଚ୍ଛ୍ୱାସ, କମ୍ପନ, ସ୍ଫୁରଣ, ପ୍ରାଣ ।

ଉଚ୍ଛ୍ୱାସ—ପୁଂ. ବି. (ଉତ୍ + ଶ୍ୱସ୍ + ଅ ଅନ୍ତର୍ମୁଖଶ୍ୱାସ, ବିଶ୍ଳେଷ, ବିକାଶ, ସ୍ଫୀତି, ଆକାଙ୍କ୍ଷା, ଆଶ୍ୱାସ, ଭାବପ୍ରକାଶ, ଫାଙ୍କ, ଅଧ୍ୟାୟ, ପରିଚ୍ଛେଦ, ପ୍ରାଣନ ।

ଉଚ୍ଛ୍ୱାସିତ—ବି°. (ଉତ୍ + ଶ୍ୱାସି + ର୍ମ.ତ ଉନ୍ମେଷିତ, ବିଶ୍ଳେଷିତ, ସ୍ଫୀତକରାଯାଇଥିବା ।

ଉଚ୍ଛ୍ୱାସୀ—ପୁଂ. ବି°. (ଉଚ୍ଛ୍ୱାସ + ଇନ୍) ଊର୍ଦ୍ଧ୍ୱଶ୍ୱାସଯୁକ୍ତ, ଉଦ୍‌ଗତ, ମୁମୂର୍ଷୁ, ଭାବପ୍ରବଣହୃଦୟ । [ଉଞ୍ଛ ।

ଉଛ—(ଧାତୁ) ବନ୍ଧ, ସମାପନ, ବିରାମ,

ଉଛ—ଗ୍ରା.ବି.(ସଂ-ଉତ୍ସ)ପ୍ରସ୍ରବଣ, ଝରଣା, ଉତ୍ସବ, ଆମୋଦ, ବିବାହର ତୃତୀୟ ଓ ଚତୁର ୨ୟ ଦିନ ।

ଉଛଳିବା—ଗ୍ରା.କ୍ରି. (ସଂ-ଉଚ୍ଛଳନ)ତରଳ ପଦାର୍ଥ ପାତ୍ରରୁ ବା କୂଳରୁ ଉପରକୁ ଉଠିବା । [ସଜେଇବା ।

ଉଛୁଇବା—ଗ୍ରା. କ୍ରି. ଶଯ୍ୟା ବିଛାଇବା,

ଉଛୁଲ—ଗ୍ରା. ବି. (ସଂ-ଉଚ୍ଛଳନ) ବମନ, ଉଦ୍‌ଗାର ।

ଉଛୁଳିବା—ଗ୍ରା.କ୍ରି.କୃପାଦିକୁ ଉତ୍ତମରୂପେ ପରିଷ୍କାର କରିବା, ବାନ୍ତ କରିବା, ଗୁପ୍ତଛିଦ୍ରମାନ ସାଧାରଣରେ ପ୍ରକାଶକରିବା ।

ଉଛୁବା—ଗ୍ରା.କ୍ରି. (ସଂ ଉଞ୍ଛନ୍) ଯତ୍ନପୂର୍ବକ ଝାଡ଼ିବା, ସଜକରିବା, ଉଞ୍ଛିବା, ସଜାଡ଼ିବା, ବିନ୍ୟାସ କରିବା, ଯୁକ୍ତକରିବା ।

ଉଛୁଡ଼ ଅ,—ଗ୍ରା. ବି. ଅବାଧ, ଦୁଷ୍ଟ ।

ଉଛୁଡ଼ିବା—ଗ୍ରା. କ୍ରି. ବଳାତ୍କାରରେ ଝିଙ୍କିନେବା, ବଳପୂର୍ବକ ଆକର୍ଷଣ କରିବା, ଆକ୍ରମଣ କରିବା, ଛୁଞ୍ଚାଡ଼ିବା, ଫୋପାଡ଼ିବା, ବଳପୂର୍ବକ ବିକ୍ଷିପ୍ତ ବା ବିଶ୍ଳିଷ୍ଟ ହେବା । [ବର୍ତ୍ତମାନ ।

ଉଛୁଣି—ଗ୍ରା.(ବାଲେଶ୍ୱର)ଅବ୍ୟ. ଏକ୍ଷଣି,

ଉଛୁର—ଗ୍ରା. ବି. (ସଂ-ଉଚ୍ଛ୍ରୟ) ବିଳମ୍ବ, ଡେରି,ସମୟାତିକ୍ରମ, ବେଳା ଗଡ଼ିଯିବା ।

ଉଛୁଳା—ଗ୍ରା.ବି° (ସଂ-ଉଚ୍ଛଳିତ) ଅବାଧ, ଉଛୁଳୁଥିବା ।

ଉଛୁଳିବା—ଗ୍ରା. କ୍ରି. ଜଳପ୍ରଭୃତି ପଦାର୍ଥ ପାତ୍ରର ବା କୂଳର ଉପରକୁ ଉଠିବା, ବ୍ୟାପ୍ତହେବା, ଶବ୍ଦଦ୍ୱାରା ମୁଖରିତ ହେବା, ପୂର୍ଣ୍ଣହେବା, (ଲ.ଅର୍ଥ) ଅତିଶକ୍ତ ହେବା । [ଦୋସର ।

ଉଜନା—ଗ୍ରା.(ସମ୍ବ) ସବ,ଅନ୍ୟ, ଅପର,

ଉଜ—ଗ୍ରା. ବି°. ( ସଂ-ଏକଃ ) ସାମାନ୍ୟ, ସରଳ, (ବି) ତେଜ, ପ୍ରଭାବ, ନିର୍ମାଣ, ଶ୍ରେଷ୍ଠ, ଉଜ୍ଜ୍ୱଳ, ଠେକ, ଉତ୍କୃଷ୍ଟ, ଉଜ୍ଜ୍ୱଳତା, ସଳଖ, ଉନ୍ନତ, କ୍ଷମ ।

ଉଜଇ—ଗ୍ରା. କ୍ରି. ନଦୀପ୍ରଭୃତିରେ ଭାସି ବୁଲିବା, ପହଁରିବା, ସନ୍ତରଣ କରିବା ।

ଉଜଟ—ଗ୍ରା. ବି°. (ସଂ-ଉଜ୍‌ଝଟ) ଅବୁଝା, ଅବୁଝ ।

ଉଜଡ଼ା—ଗ୍ରା. ବି°. ନିର୍ମୂଳ, ନଷ୍ଟ, ଅପବ୍ୟୟିତ, ଅପବ୍ୟୟକାରୀ ।

ଉଜଡ଼ିଆ ବା ଉଜାଡ଼ିଆ—ଗ୍ରା. ବି°. ଅପବ୍ୟୟକାରୀ, ଖରଚୀ ।

ଉଜନ—ଗ୍ରା.ବି.ବିପରୀତ, ଉଲ୍‌ଟା,ସ୍ରୋତର ବୈପରୀତ୍ୟ, ଉଜାଣି ।

ଉଜର—ଯା.ବି. ଓଜର,ଆତ୍ମସମର୍ଥନ ।

ଉଜଳ—ଗ୍ରା. ବି°. (ସଂ-ଉଜ୍ଜ୍ୱଳ) ଉଜ୍ଜ୍ୱଳ, କାନ୍ତିଯୁକ୍ତ, ସ୍ରୋତ ଭାଙ୍ଗିଯିବା,ଆଲୋକ, ଉଜ୍ଜ୍ୱଳତା, ଧୋବା ।

ଉଜଳଘର—ଗ୍ରା. ବି. (ଗଞ୍ଜାମ) ଧୋବାଘର ।

ଉଜଳଣୀ—ଗ୍ରା. ବି. ସ୍ତ୍ରୀ. ଧୋବଣୀ ।

ଉଜଳା—ଗ୍ରା. ବି. ଧୋବା ।

ଉଜା—ବି°. (ସଂ-ଉଜ୍ଜ)ସରଳ, ସୋଜା ।

ଉଜାଇନ୍—ବିହାରନିବାସୀ ସୂର୍ଯ୍ୟବଂଶୀୟ ରାଜପୁତମାନଙ୍କର ଶ୍ରେଣୀଭେଦ ।

ଉଜାଉଜି—ଗ୍ରା. ବି°. ସୋଜା, ସୁଜ ।

ଉଜାଗର—ବି°. ଅନିଦ୍ର, ଜାଗ୍ରତ (ବି) ଅନିଦ୍ରା, ନିଦ୍ରାରାହିତ୍ୟ, ରାତ୍ରି ଜାଗରଣ ।

ଉଜାଡ଼—ଗ୍ରା.ବି°.ଉଜଡ଼, ନିର୍ମୂଳ, ନଷ୍ଟ ଅପବ୍ୟୟ, ନାଶ (ବି)କ୍ଷତି,ଲୋକସାନ୍ ।

ଉଜାଡ଼ମନ୍ତ—ଗ୍ରା.ବି.ଧ୍ୱଂସ, କ୍ଷୟ, ଅପବ୍ୟୟ (ବି°) ଅପବ୍ୟୟୀ, ଅପବ୍ୟୟିତ, ଦୁଷ୍ଟ, ଦୁର୍ବୁଦ୍ଧି ।

ଉଜାଡ଼ିବା—ଗ୍ରା. କ୍ରି. (ସଂ-ଉତ୍କୃଷ୍ଟ) ନଷ୍ଟକରିବା, ଅପବ୍ୟୟ କରିବା ।

ଉଜାଣ—ଗ୍ରା. ବି°. ଜୁଆରଯୁକ୍ତ ।

ଉଜାଣି—ଗ୍ରା. କ୍ରି. ବି°. (ଉତ୍+ଯାନ) ସ୍ରୋତର ବିପରୀତରେ ।

ଉଜାଣି—ଗ୍ରା. ବି°. ବିପରୀତ ଦିଗକୁ ଗତି କରୁଥିବା, ଜୁଆରିଆ ।

ଉଜାଣିଛୁଟିବା—ଗ୍ରା. କ୍ରି. ସ୍ରୋତର ବିପରୀତଆଡ଼କୁ ଛୁଟିବା, ଜୁଆରଛୁଟିବା ।

ଉଜାଲା—ପ୍ରା (ସମ୍ବ) ବି. ଆଲୋକ ।

ଉଜି—ଗ୍ରା. ବି. ପଶା ବା ତାସଖେଳାଳି ଦୁଇଜଣ ସଙ୍ଗୀ ମଧ୍ୟରୁ ଜଣେ, କାନାକାନି, ସାଧାରଣରେ ଜଣା ।

ଉଜିର୍—(ଯା)ବି. ରାଜ୍ୟର ମନ୍ତ୍ରୀ,ସଚିବ, ମନ୍ତ୍ରୀ । [ଫାର୍ସି ।

ଉଜିରୀ—(ଯା) ବି. ମନ୍ତ୍ରିପଦ, ମନ୍ତ୍ରୀର

ଉଜୁ—(ଯା) ବି. ନମାଜପଢ଼ିବା ପୂର୍ବରୁ ମୁସଲମାନମାନଙ୍କର ଜଳଦ୍ୱାରା ମୁହଁ, ହାତ ଓ ଗୋଡ଼ ଧୋଇ ପବିତ୍ରହେବାରୂପ କ୍ରିୟା ।

ଉଜୁଆଁ—ଗ୍ରା. ବି. (ସଂ-ଉଦ୍ୟାପନ) ବ୍ରତଉଦ୍ୟାପନା, ବ୍ରତସମାପ୍ତି, କୌଣସି ବ୍ରତ ବା ଅନୁଷ୍ଠାନର ପରିସମାପ୍ତି ।

ଉଜୁଡ଼ା—ଗ୍ରା. ବି. ନାଶ, ଅପଚୟ (ବି° ଯାହା ଉଜୁଡ଼ିଯାଏ ବା ନଷ୍ଟହୁଏ, ନାଶକାରୀ ।

ଉଜୁଡ଼ିବା—ଗ୍ରା. କ୍ରି. ନଷ୍ଟହେବା, ଅପବ୍ୟୟିତ ହେବା ।

ଉଜୁଲୁରି—ଗ୍ରା. ବି°. ଶ୍ୱାସରୋଧ ହେବାରୁ ବିବ୍ରତ, ରୁଦ୍ଧଶ୍ୱାସ ।

ଉଜୁଳୀ—ଗ୍ରା. ବି. ଧୋବଣୀ ।

ଉଜୁହାତ୍—(ଯା) ବି. ଆପତ୍ତି, ଆପତ୍ତି ଲେଖାଥିବା ଦରଖାସ୍ତ ।

ଉଜେଇବା—ଗ୍ରା. କ୍ରି. ବ୍ରତ ଉଦ୍ୟାପନ କରିବା, ପରିସମାପ୍ତି କରିବା, ଉପରକୁ ଉଠିବା ।

ଉଜ୍ଜଟ—ଗ୍ରା.ବି°. ନଷ୍ଟ, ନିର୍ମୂଳ, ଖାଲି ।

ଉଜ୍ଜଳ—କ୍ଲୀ.ବି. ସ୍ଥୂଳ ବା ବଳିଷ୍ଠହେବା ।

ଉଜ୍ଜୟିନୀ—ସ୍ତ୍ରୀ. ବି. (ଉତ୍+ଜି+ଇନ୍+ଈ) ମାଳବ ରାଜ୍ୟର ରାଜଧାନୀ, ବିଶାଳ ଅବନ୍ତୀ ନଗର ।

ଉଜ୍ଜୟନ୍ତ—ପୁଂ.ବି. କାଥିଆୱାଡ଼ା ଅନ୍ତର୍ଗତ ଗୋଟିଏ ପବିତ୍ର ପର୍ବତ, ରୈବତକ ପର୍ବତ, ହିନ୍ଦୁ ଓ ଜୈନମାନଙ୍କର ପୁଣ୍ୟପ୍ରଦ ତୀର୍ଥସ୍ଥାନ ।

ଉଜ୍ଜଳ—ବି. (ଉତ୍+ଜଳ+ଅ) ଉଝାଳିବା, ସଫା କରିବା, ମାଜିବା, କୂପ ଇତ୍ୟାଦିରୁ ପଙ୍କୋଦ୍ଧାର କରିବା, ଶୋଧିବା. ଗୁପ୍ତରହସ୍ୟ ଉଦ୍‌ଘାଟନ କରିବା, ଗୁହ୍ୟଛିଦ୍ରମାନ ପ୍ରକଟ କରିବା ।

ଉଜ୍ଜଳନ—କ୍ଳୀ. ବି. (ଉତ୍+ଜଳ+ଅନ) ଉଝାଳିବା (ଦେଶ) ।

ଉଜ୍ଜଳିତ—ବି°. (ଉତ୍+ଜଳ୍+ଇତ) ଉଝାଳା ହୋଇଥିବା ।

ଉଜ୍ଜାନକ—ପୁଂ. ବି. କାଶ୍ମୀରର ଉତ୍ତରସ୍ଥିତ ଦେଶବିଶେଷ ।

ଉଜ୍ଜାଲକ—ପୁଂ. ବି. ଉଜ୍ଜାନକ, ଉତଙ୍କ ମହର୍ଷିଙ୍କର ଆଶ୍ରମ-ନିକଟବର୍ତ୍ତୀ ଗୋଟିଏ ବିସ୍ତୀର୍ଣ୍ଣ ମରୁଭୂମି ।

ଉଜ୍ଜାସନ—କ୍ଲୀ.ବି.(ଉତ୍+ଜସ୍+ଣି+ଲ୍ଲ.ଅନ) ମାରଣ, ବଧ, ହନନ ।

ଉଜ୍ଜିଘ୍ର—ପୁଂ. ବି°. (ଉତ୍+ଘ୍ରା+ଅ) ଆଘ୍ରାଣକର୍ତ୍ତା, ଯେ ସୁଙ୍ଘେ ।

ଉଜ୍ଜିତି—ସ୍ତ୍ରୀ. ବି. (ଉତ୍+ଜି+ତି) ଉତ୍କୃଷ୍ଟ ଜୟ ।

ଉଜ୍ଜିହାନ—ପୁ. ବି. ଦେଶବିଶେଷ ।

ଉଜ୍ଜିହାନା—ସ୍ତ୍ରୀ. ବି. ଗୋଟିଏ ପ୍ରାଚୀନ ନଗରୀ ।

ଉଜ୍ଜୀବନ—କ୍ଲୀ.ବି. (ଉତ୍+ଜୀବ୍+ଲ୍ଲ, ଅନ) ମୂର୍ଚ୍ଛାପରେ ପୁନଃ ଚୈତନ୍ୟଲାଭ, ଲୁପ୍ତ ପ୍ରାୟ ହୋଇ ପୁନଃ ପ୍ରବଳ ହୋଇ ଉଠିବା ।

ଉଜ୍ଜୀବିତ—ବି°. (ଉତ୍+ଜୀବ୍+ର୍ଣି.ତ) ମୂର୍ଚ୍ଛାପରେ ପୁନଃ ଚୈତନ୍ୟ ପ୍ରାପ୍ତ, ଅଚୈତନ୍ୟାବସ୍ଥାରୁ ମୁକ୍ତ ।

ଉଜ୍ଜୀବୀ—ପୁଂ. ବି°. (ଉତ୍+ଜୀବ+ଇନ୍) ଯେ ପୁନର୍ବାର ବଞ୍ଚିଉଠେ ।

ଉଜ୍ଜୃମ୍ଭ—ପୁଂ. ବି. (ଉତ୍+ଜୃମ୍ଭ+ଲ୍ଲ,ଅ) ବିକାଶ, ଚେଷ୍ଟା, ହାଇମାରିବା (ବି°) ପ୍ରସ୍ଫୁଟିତ, ଚେଷ୍ଟିତ, ବିକଶିତ, ମୁଖବ୍ୟାଦାନକାରୀ ।

ଉଜ୍ଜୃମ୍ଭଣ—କ୍ଲୀ.ବି. (ଉତ୍+ଜୃମ୍ଭ+ଲ୍ଲ, ଅନ) ମୁଖବିକାଶ, ହାଇମାରିବା ଆବେଗ, ଆଧିକ୍ୟ ।

ଉଜ୍ଜୃମ୍ଭିତ—ବି°.(ଉତ୍+ଜୃମ୍ଭ୍+କ,ତ) ବିକାଶିତ, ଚେଷ୍ଟିତ (କ୍ଲୀ ବି.) ଚେଷ୍ଟା, ହାଇମାରିବା, ବିକାଶ ।

ଉଜ୍ଜେଷ—ପୁଂ. ବି. (ଉତ୍+ଜିଷ୍+ଅ) ଉନ୍ନତି, ଉତ୍କର୍ଷପ୍ରାପ୍ତି (ବି°) ଉତ୍କୃଷ୍ଟ, ଜୟଯୁକ୍ତ ।

ଉଜ୍ଜେଷୀ—ପୁଂ. ବି. (ଉତ୍+ଜିଷ୍+ଇନ୍) ଉତ୍କୃଷ୍ଟ ଜୟଶୀଳ, ଉତ୍କୃଷ୍ଟ ଜୟଯୁକ୍ତ । [ଧନୁର୍ଗୁଣ ।

ଉଜ୍ଜ୍ୟ—ବି°. ଆରୋପିତଜ୍ୟା, ଆରୋପିତ-

ଉଜ୍ଜ୍ୱଳ—ବି°. (ଉତ୍+ଜ୍ୱଳ୍+କ,ଅ) ଦୀପ୍ତିମାନ୍, ଦୀପ୍ତ, ତେଜୋମୟ, ବିମଳ ବିଶଦ, ବିକାଶୀ, ନିର୍ମଳ, ପରିଷ୍କୃତ, ଶୋଭନୀୟ (ବି) ଶୃଙ୍ଗାର ରସ, ସୁବର୍ଣ୍ଣ, ସୁନା ।

ଉଜ୍ଜ୍ୱଳତା—ସ୍ତ୍ରୀ.ବି. (ଉଜ୍ଜ୍ୱଳ+ତା+ଆ) ଦୀପ୍ତି, ନିର୍ମଳତା, ଶୁଭ୍ରତା, ଚାକଚକ୍ୟ ।

ଉଜ୍ଜ୍ୱଳଦତ୍ତ—ଜଣେ ବିଖ୍ୟାତ ପଣ୍ଡିତ, ଏ ଉଣାଦିସୂତ୍ରବୃତ୍ତି ରଚନା କରିଅଛନ୍ତି ।

ଉଜ୍ଜ୍ୱଳନ—କ୍ଲୀ. ବି. (ଉତ୍+ଜ୍ୱଲ୍+ଲ୍ଲ, ଅନ) ଉଦ୍ଦୀପ୍ତ କରିବା, ନିର୍ମଳତା, ଆଲୋକିତ କରିବା ।

ଉଜ୍ଜ୍ୱଳରସ—ପୁଂ. ବି. ଶୃଙ୍ଗାର ରସ ।

ଉଜ୍ଜ୍ୱଳିତ—ବି°. (ଉତ୍+ଜ୍ୱଲ୍+କ.ତ) ପ୍ରଦୀପ୍ତ, ପ୍ରଜ୍ୱଳିତ, ଆଲୋକିତ ।

ଉଜ୍ଝ୍—(ଧାତୁ) ତ୍ୟାଗ କରିବା ।
ଉଜ୍ଝ—ପୁଂ. ବି. (ଉଜ୍ଝ୍ + ଅ) ତ୍ୟାଗ, ବିସର୍ଜନ, ବର୍ଜନ, ବମନ, ବର୍ଷଣ ।
ଉଜ୍ଝଟ—ଗ୍ରା. ବିଂ. ଦୁଷ୍ଟ, ଜିଦ୍‌ଖୋର, ଅବୁଝା, ମନୁଆଁ, ଦୃପ୍ତ ।
ଉଜ୍ଝଟିଆ—ଗ୍ରା. ପୁଂ.ବିଂ. ଉଜ୍ଝଟ (ଦେଖ), (ସ୍ତ୍ରୀ) ଉଜ୍ଝଟୀ ।
ଉଜ୍ଝନ—କ୍ଲୀ. ବି. ( ଉଜ୍ଝ୍ + ଭା, ଅନ ) ବିସର୍ଜନ, ତ୍ୟାଗ ।
ଉଜ୍ଝିତ—ବିଂ. ( ଉଜ୍ଝ୍ + ର୍ମି,ତ) ତ୍ୟକ୍ତ, ବର୍ଜ୍ଜିତ, ବିସୃଷ୍ଟ, ଉତ୍ସୃଷ୍ଟ, ବିହୀନ, ଉଦ୍‌ଗୀର୍ଣ୍ଣ ।
ଉଝଲା—ଗ୍ରା. ବି. ପଙ୍କ ଉଦ୍ଧାର କରିବା କର୍ମ, ଗୁପ୍ତରହସ୍ୟ ଉଦ୍‌ଘାଟନ ।
ଉଝାଳିବା—ଗ୍ରା. କ୍ରି. ପରିଷ୍କାର କରିବା, ପଙ୍କୋଦ୍ଧାରକରଣ, ସଫାକରିବା, ମାଜିବା, ଗୃହଦ୍ରବ୍ୟମାନ ପରିପାଟ କରିବା. ଶୋଧିବା,ଗୁପ୍ତରହସ୍ୟ ଉଦ୍‌ଘାଟନକରିବା
ଉଟେଇ—ଗ୍ରା. କ୍ରି. ବି. ଅକାରଣ, ମାହାଳିଆ, ବୃଥା, ନାମମାତ୍ର,(ବାକ୍ୟରିଃ ଲୁହେ), (ବିଂ) ଅନିମନ୍ତ୍ରିତ, ଅନାହୂତ, ମାହାଳିଆ, ବୃଥା ।
ଉଞ୍ଚ—ଗ୍ରା.ବିଂ. ଉଚ, ଉନ୍ନତ, ଡେଙ୍ଗା ।
ଉଞ୍ଚକପାଳ—ଗ୍ରା. ବି. ଆଖିପତାଠାରୁ ଅସାଧାରଣଭାବରେ ଉନ୍ନତ କପାଳ ।
ଉଞ୍ଚକପାଳିଆ—ଗ୍ରା. ପୁଂ. ବିଂ. ଯାହାର କପାଳ ଉଚ,(ଲ.ଅର୍ଥ)ଭାଗ୍ୟବାନ୍, ସ୍ତ୍ରୀ) ଉଞ୍ଚକପାଳୀ ।
ଉଞ୍ଚା—ଗ୍ରା.ବିଂ.,(ସଂ ଉଚ୍ଚ)ଉଚ,ଉତ୍ତୁଙ୍ଗ, ଡେଙ୍ଗା, ଉତ୍ତୋଳିତ ହୋଇଥିବା ।
ଉଞ୍ଚାଇବା—ଗ୍ରା. କ୍ରି. ଆଘାତକରିବା-ପାଇଁ ହସ୍ତ କିମ୍ବା ଅସ୍ତ୍ରାଦି ଉଠାଇବା, କୌଣସି ସ୍ଥାନକୁ ଉଚ୍ଚତର କରିବା ।
ଉଞ୍ଚୁଆ—ଗ୍ରା. ବିଂ. (ସଂ ଉଚ୍ଚ) ଉଚ, ଡେଙ୍ଗା, ଉଚ ହୋଇଥିବା ।
ଉଞ୍ଚେଇବା— ଗ୍ରା.କ୍ରି. ଉଞ୍ଚାଇବା (ଦେଖ,
ଉଞ୍ଛ୍—(ଧାତୁ) ଖୁଣ୍ଟିବା, ଛାଣ୍ଟିବା ।
ଉଞ୍ଛ—ପୁଂ.କ୍ଲୀ.ବି.(ଉଞ୍ଛ୍ + ଭା,ଅ)ଧାନ୍ୟ କଣା ଗ୍ରହଣ, ଜୀବିକାନିର୍ବାହନିମିତ୍ତ ଧାନ ଖୁଣ୍ଟିକରି ନେବା, ଉଦ୍ଧୃତ ଶସ୍ୟର ଶେଷାହରଣ. (ପୁଂ.ବିଂ) ଉଞ୍ଛଶୀଳ ।
ଉଞ୍ଛନ—କ୍ଲୀ. ବି ( ଉଞ୍ଛ + ଭା, ଅନ ) ଖୁଣ୍ଟିନେବା, କୁଣ୍ଢେଇବା, ପଢ଼ିବା, ଶସ୍ୟ ସଂଗ୍ରହରୂପକର୍ମ ।
ଉଞ୍ଛବୃତ୍ତି—ସ୍ତ୍ରୀ.ବି. ସାମାନ୍ୟ ବ୍ୟବସାୟ, ଶସ୍ୟାଦି ଖୁଣ୍ଟି ଜୀବିକାନିର୍ବାହ କରିବା, କିଆରୀରୁ ଧାନଗୋଟାଇବା ରୂପ ଜୀବିକା
ଉଞ୍ଛଶୀଳ-କ୍ଲୀ.ବି ଉଞ୍ଛବୃତ୍ତି (ବିଂ) କ୍ଷେତ୍ରରୁ ଉଦ୍‌ବୃତ୍ତଶସ୍ୟାଦି ଆହରଣକାରୀ ।
ଉଞ୍ଛା—ଗ୍ରା. ବି. (ସଂ-ଉଞ୍ଛନ) ଉଞ୍ଛିବା କର୍ମ, (ପ୍ରା ପୁଞ୍ଜା) ଶୁଖିଗଲେ, ଖଣ୍ଡୁଡ଼ ହେବାପାଇଁ ଅଯୋଗ୍ୟ (ନଡ଼ିଆ) ।
ଉଞ୍ଛିବା—ଗ୍ରା କ୍ରି. ସାଉଁଳିବା, ଲୁଗା କୁଞ୍ଚ ସଜାଡ଼ିବା, ସଜ୍ଜିତ କରିବା, ରୁଞ୍ଚିବା ।
ଉଞ୍ଛେଇବା—ଗ୍ରା.କ୍ରି. ଉଞ୍ଛିବାର ଣିଜନ୍ତ ରୂପ । [ ଆଲୋକ ।
ଉଞ୍ଜର—ପ୍ରା. (ଲରିଆ) ବି. (ସଂ ଉଜ୍ଜ୍ୱଳ
ଉଟ—ପୁଂ. ବି. କ୍ରମେଳକ, ଉଷ୍ଟ୍ର, ଓଟ, ଘାସପତ୍ର, ଲମ୍ବୋଷ୍ଠ । [ ଅଜାଣତ ।
ଉଟକ୍‌କରି—ଗ୍ରା. ବିଂ. ଅଜ୍ଞାନ, ମୂର୍ଖ,
ଉଟଙ୍ଗନ—ଗ୍ରା.ବି. ଏକପ୍ରକାର ବୃକ୍ଷ ।
ଉଟଜ—ପୁଂ. ବି. ( ଉଟ + ଜନ୍ + ଅ ) ପର୍ଣ୍ଣଶାଳା, କୁଡ଼ିଆଘର, ଘାସପତ୍ର-ନିର୍ମିତ ମୁନିମାନଙ୍କର କୁଟୀର ।
ଉଟମୁହାଁ— ଗ୍ରା.ବିଂ.ଉପରକୁ ଯା'ରମୁହଁ ଥାଏ, ଉପରମୁହାଁ ।
ଉଠ୍—ଗ୍ରା. (ଅବ୍ୟ) ଦୂରହୋ, ଦୂର୍, ଦୂର୍‌କର, ଯାଆନ ।
ଉଠ୍‌ବସ୍ ଗ୍ରା.ବି.ଉପର୍ଯ୍ୟୁପରି ଠିଆହେବା ଓ ବସିବା, ଉଠାବସା, ହଇରାଣ, ଅସ୍ଥିରତା, ବେଟେଇ, ଦଉଡ଼ଧାପଡ଼, ପାଠଶାଳୀରେ ଦିଆଯାଉଥିବା ଉଠିବା ଓ ବସିବା'ରୂପ ଦଣ୍ଡ ।
ଉଠବା—ପ୍ରା. (ସମ୍ବ) ଉଠିବା (ଦେଖ)
ଉଠ୍‌ସନ—ପ୍ରା. (ସମ୍ବ) ବି. ଉପବାସର ପୂର୍ବଦିନ ପାଳିବା ଅଧିବାସ ।
ଉଠ—ଗ୍ରା. ଶଯ୍ୟା ତ୍ୟାଗକର, ନିଦ୍ରା-ତ୍ୟାଗକର ।
ଉଠନ୍ତା ଗ୍ରା.ବିଂ.(ସଂ-ଉତ୍ଥାନ)ଉଠିଥିବା, ବାହାରିଥିବା, ଉନ୍ନତ ।
ଉଠା—ଗ୍ରା.ବି. (ସଂ-ଉତ୍ଥାନ) ଉଠିବା, ଉପରକୁ ବା ଉଚ୍ଚକୁ ଗମନ କରିବା, ଠିଆହେବା, ଉଦିତ ହେବା, ( ବିଂ ) ଉଠିଥିବା, ଉତ୍ଥିତ, ଉଦିତ,ପ୍ରକାଶିତ, ସ୍ରୋତର ବିପରୀତ ଦିଗକୁ ଉଠୁଥିବା, ଉତ୍ତୋଳିତ, ଯାହାକୁ ସ୍ଥାନାନ୍ତରକୁ ନିଆଯାଇପାରେ ।
ଉଠାଇନେବା—ଗ୍ରା. କ୍ରି. ( ମନୁଷ୍ୟକୁ ) ବଳପୂର୍ବକ ଅପହରଣ କରିବା, ପ୍ରତ୍ୟାହାର କରିବା ।
ଉଠାଇବା—ଗ୍ରା. କ୍ରି. ( ସଂ-ଉତ୍ଥାପନ) ଉଠିବାର ଣିଜନ୍ତରୂପ, ଚଢ଼ାଇବା, ଉନ୍ନତକରିବା ଟେକିବା, ପ୍ରକଟକରିବା, ନିଦ୍ରା ଭଙ୍ଗାଇବା, ସ୍ଥାନଭ୍ରଷ୍ଟ କରାଇବା, ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ନେବା, ଉଦିତହେବା, ଲୋପ କରିବା, ତଡ଼ି-ଦେବା, ସ୍ରୋତର ବିପରୀତ ଦିଗକୁ ଗତି କରାଇବା,ଆଦାୟ କରିବା,ସଉଦା ଆଦି କାଲିନେବା, କାର୍ଯ୍ୟ ସମାଧା କରିବା, ଉଚ୍ଚତର ପଦକୁ ଅଗ୍ରସର କରାଇବା ବା ନେବା, ଲଣ୍ଠନର ବତୀକୁ ଟେକିବା,ପ୍ରସ୍ତାବକୁ ସଭାରେ ଉପସ୍ଥାପିତ କରିବା ।
ଉଠାଉଠି—ଗ୍ରା.ଅବ୍ୟ,ପୁନଃପୁନଃ ଉପର ଶ୍ରେଣୀକୁ ଉଠିବା, ପରସ୍ପର ନିଦ୍ରା ଭଙ୍ଗାଇଦେବା ।
ଉଠାଉଠିକରିବା—ଗ୍ରା. କ୍ରି. ଛାତ୍ରମାନଙ୍କୁ କ୍ଲାସ ଉଠାଇବା,ଲୁପ୍ତ କରିବା, ସ୍ଥାନାନ୍ତରକରିବା, ତଡ଼ିଦେବା, ଡେରିବା, ଠିଆ କରାଇବା, ନିଦ ଭଙ୍ଗାଇଦେବା, ଉତ୍ତୋଳିତ କରିବା ।
ଉଠାଉଠିପରୀକ୍ଷା—ଗ୍ରା.ବି. ବାର୍ଷିକପରୀକ୍ଷା, ଯେଉଁ ପରୀକ୍ଷାଫଳରେ ବିଦ୍ୟାଳୟର କ୍ଲାସ ପ୍ରମୋସନ ହୁଏ ।
ଉଠାଣ - ଗ୍ରା. ବି. ଦୋକାନଠାରୁ କାଲି ଗ୍ରହଣ, ମେଘର ନିମ୍ନ-ଉତ୍ପତ୍ତି ସ୍ଥାନ-

ଆଡ଼କୁ ଗମନ, ଉତ୍ତୋଳନ, ଉଚ୍ଚଭୂମି, ଅଗଣା, ଉତ୍ଥାପନ ।
ଉଠାଣି-ଗ୍ରା.ବି. (ସଂ-ଉତ୍ଥାନ) ଉପରକୁ ଯିବା, ଊର୍ଦ୍ଧ୍ୱଗତ, ସମୋଚ୍ଚପଥ, ଏକା-ବେଳକେ ଉଚ୍ଚପଥ, ଉଚ୍ଚତା, ନିମ୍ନରୁ ଉଚ୍ଚ ସ୍ଥାନକୁ ଉଠିବା କିମ୍ବା, ( ବିଂ ) ଏକାବେଳକେ ଉଚ୍ଚ ।
ଉଠିଆ—ଗ୍ରା. ବି. ଆବାଦୀ ଜମି, ମାଗଣା ଖାଇବାକୁ ମିଳିବା, ବିନା ପରିଶ୍ରମରେ ଲବ୍ଧ ବସ୍ତୁ, ଲାଭଜନକ ସମସ୍ତ, ଫସଲ କଟା ବା ଉପୁଡ଼ାପରେ କ୍ଷେତ୍ରରେ ରହି ଥିବା ଘାସଆଦି (ଯାହାକୁ ଗୋରୁ ଆଦି ଅତି ଆନନ୍ଦରେ ଖାଆନ୍ତି , (ବିଂ)ଅଗ୍ରଜ, ଆବାଦୀ, ଉତ୍କୃଷ୍ଟ, ଉନ୍ନତ, ଉଣ୍ଡାକରି-ଇବା, ମାଗଣା ମିଳିବା ।
ଉଠିଆରି—ଗ୍ରା. ବି. ସନ୍ତାନସନ୍ତତି ଜନ୍ମର ୭ମ ଦିନର କୃତ୍ୟ ବା ଅନୁଷ୍ଠାନ ।
ଉଠିଆଡ଼ାକ-ଗ୍ରା. ବି. ଡାକଉପରେ ଡାକ ପକାଇବା, ଭୋଜି ଇତ୍ୟାଦିରେ ଆଦର-ପୂର୍ବକ ନିମନ୍ତ୍ରଣ କରି ଡାକିବା ।
ଉଠିଆଭାଇ—ଗ୍ରା.ବି.ଜ୍ୟେଷ୍ଠଭାଇ, (ବିପ) ପିଠିଆ ଭାଇ ।
ଉଠିଆଡଗାଧୁଆ—ଗ୍ରା. ବି. ଶିଶୁ ଜନ୍ମର ୭ମ ଦିନରେ ମାତା ଓ ଶିଶୁର ପ୍ରଥମ ସ୍ନାନ ।
ଉଠିପଡ଼ି—ଗ୍ରା. କ୍ରି. ବିଂ. ଅଧ୍ୟବସାୟ ସହକାରେ, ବାଧାକୁ ଭ୍ରୂକ୍ଷେପ ନକରି ।
ଉଠିବସି- ଗ୍ରା.କ୍ରି. ବିଂ. ଧୀରସ୍ଥିରଭାବରେ ମଝେ ମଝେ ବିଶ୍ରାମ ନେଇ ।
ଉଠିବସିବା—ଗ୍ରା.କ୍ରି. ଶୋଇବାରୁ ଉଠି ହଠାତ୍ ବସିବା ।
ଉଠିବା—ଗ୍ରା. କ୍ରି. ବିଂ. ଉପରକୁ ଗମନ କରିବା, ଚଢ଼ିବା,ନିଦ୍ରା ତ୍ୟାଗ କରିବା, ପ୍ରକାଶିତ ହେବା, ଉଦିବା, ଦେଖା-ଯିବା, ବସିବାଆସନ ତ୍ୟାଗ କରିବା, ଠିଆ ହେବା, ଉନ୍ନତ କରିବା, ଫୁଲିବା, ଚଢ଼ାହେବା, ରହିତ ହେବା, ଲୋପ ପାଇବା, ଆବିର୍ଭାବ ହେବା, (ଲିଙ୍ଗ) ଉତ୍ତେଜିତ ହେବା, ଆଦାୟ ହେବା, ଶୁଣାଯିବା, ଭୂମିତ୍ୟାଗ କରିବା, ସମ୍ପାଦିତ ହେବା,ହଠାତ୍ ଉପୁଜିବା, ଉପ୍ତାଦିତହେବା. ସ୍ରୋତର ବିପରୀତ ଦିଗକୁ ଗତି କରିବା, (ନଦୀ ବା ମାଛ),ମଞ୍ଜିରୁ ଗଛ ବାହାରିବା, ସ୍ଥାନାନ୍ତରକୁ ନିଆ-ଯିବା, ଗଜୁରିବା, ପ୍ରମୋସନ ପାଇବା, ନିର୍ଗତ ହେବା. ଉପୁଡ଼ିବା, ପ୍ରକାଶିତ ହେବା, ସ୍ପଷ୍ଟ ହେବା, ଉତ୍ତରିବା, ଉତ୍ତୋଳିତ ହେବା, ଚଳିବା, ପ୍ରବିଷ୍ଟ ହେବା, ଗୃହସ୍ଥହେବା, କାମ କରିବାକୁ ପ୍ରସ୍ତୁତ ହେବା ।
ଉଠିବାଟି—ଗ୍ରା.ବି.ପଡ଼ିଆ ଜମିକୁ ଉଠିଆ ବା ଆବାଦ କରିବ ପାଇଁ ପ୍ରଜାସଙ୍ଗେ ଜମିଦାରର ଚୁକ୍ତି ।
ଉଠିବାଟିମାହାଲ୍—ଗ୍ରା.ବି. ଯେଉଁ ଜମି ଦାଖଲରେ ଥିବା ଜମିକୁ ପ୍ରଜା ପ୍ରତିବର୍ଷ ଚାଷ କରେ ନାହିଁ ଓ ଜମିର ଅବସ୍ଥା ଦେଖି ବର୍ଷେ ଚାଷ କରେ ପୁଣି ବର୍ଷେ କରେ ନାହିଁ ।
ଉଠିବା ପଡ଼ିବା—ଗ୍ରା. କ୍ରି. ଆଲୋଚନା, ତର୍କବିତର୍କ, କୋଳାହଳ, ସିଂହନାଦ ଦ୍ୱାରା ଉଦ୍‌ବେଳିତ ହେବା ।
ଉଠଉଠୁହେବା – ଗ୍ରା.କ୍ରି.ଉଠିବାକୁ ପ୍ରସ୍ତୁତ ହେବା. ଚାଲି ଯିବାକୁ ପ୍ରସ୍ତୁତ ହେବା ।
ଉଠନ୍ତିବସନ୍ତି—ଗ୍ରା. ଅବ୍ୟ. ହରଘଡ଼ି, ସବୁବେଳେ, ପ୍ରତିକ୍ଷଣ, ସର୍ବଦା ।
ଉଠେ—ପ୍ରା.(ସମ୍ବ) ପାଇଁ, ଲାଗି, ଯୋଗୁଁ ହେତୁରୁ ।
ଉଡ଼ଉଡ଼ହେବା-ଗ୍ରା.କ୍ରି. ଉଡ଼ିବାକୁ ପ୍ରସ୍ତୁତ ହେବା, ମନ ଉଡ଼ିବା, ମନ ଅସ୍ଥିର ବା ଅଥୟ ହେବା
ଉଡୁପବନ—ପ୍ରା.(ସମ୍ବ)ବି. ଘୂର୍ଣ୍ଣୀବାୟୁ ।
ଉଡ଼ଶୋ—ପ୍ରା. (ସମ୍ବ) ବି.ଓଡ଼ଶ, ଗୁଞ୍ଜି-ପୋକ । [ଜଲ ।
ଉଡ଼୍— ଧାତୁ) ସଂହତ, ନକ୍ଷତ୍ର, ତାରା,
ଉଡ଼—ଗ୍ର .ବି.(ସଂ ଉଡ଼୍ ଧାତୁ)ଗୁଡ଼,ବାଜି,. ଗୁଣ ।
ଉଡ଼ଙ୍ଗ—ବି. (ପ୍ରା କ)ସର୍ପ, ପତାକା,ଧ୍ୱଜ (ଗ୍ରା.ବିଂ) ଫରୁଆ, ବାୟୁଭିଆ, ଅପ-ବ୍ୟୟୀ । [ଧଳାଇସିବା ।
ଉଡ଼ଅକ୍ଷିକରିବା—ଗ୍ରା. କ୍ରି. ଅଜ୍ଞାତଭାବରେ
ଉଡ଼ଣ—ଗ୍ରା.ବି.(ସଂ ଉଡ୍‌ଡୀନ) ଉଡ଼ିବା ।
ଉଡ଼ଣୀ—ଗ୍ରା. ବି. ଓଢ଼ଣୀ (ଦେଖ) ।
ଉଡ଼ନ୍—ଗ୍ରା.ବିଂ.(ସଂ ଉଡ୍‌ଡୀନ)ଉଡ଼ୁଥିବା (ଲ.ଅ) ଅନିଶ୍ଚିତ ।
ଉଡ଼ନ୍ତା ଗ୍ରା.ବିଂ. ସଂ-ଉଡ୍‌ଡୀନ) ଉଡ଼ୁଥିବା ୧—ଉଡ଼ନ୍ତା ଖଇ ଗୋବିନ୍ଦାୟ ସ୍ୱାହା, ଉଡ଼ିଯିବା ଖଇକୁ ମହାପ୍ରଭୁଙ୍କୁ ଉତ୍ସର୍ଗ କରିବା ନ୍ୟାୟ, ୨—ଉଡ଼ନ୍ତା ଚଢ଼େ-ଇକୁ ବେସର ବଟା, ଅନାଗତ ବସ୍ତୁ ନିମନ୍ତେ ଆଗରୁ ପ୍ରସ୍ତୁତହୋଇ ରହିବା, ୩-ଉଡ଼ନ୍ତା ଚଢ଼େଇର ପକ୍ଷୀ ଗଣିବା, ଅତ୍ୟନ୍ତ ଗୂଢ଼ ରହସ୍ୟ ଭେଦ କରିବା, ଅତି ବିଚକ୍ଷଣ ସମ୍ବନ୍ଧେ ।
ଉଡ଼ା—ଗ୍ରା.ବି. ଉପରେ ଉଡ଼ିବା, (ବିଂ) ନଷ୍ଟ, ଦୂଷିତ, ଅସ୍ଥାୟୀ, ମୈଥୁନଜନିତ ରୋଗବିଶେଷ, ଅନିଶ୍ଚିତ ।
ଉଡ଼ାଇକରିକହିବା—ଗ୍ରା. କ୍ରି. କୌଣସି ବ୍ୟକ୍ତିନାମରେ ମିଥ୍ୟା ଅପବାଦ ଦେବା ।
ଉଡ଼ାଇଦେବା—ଗ୍ରା.କ୍ରି.ପକ୍ଷିମାନଙ୍କୁ ପିଞ୍ଜରା ବା ଶିକ୍କଳିରୁ ଫିଟାଇ ଦେବା, ଅଦୃଶ୍ୟ କରାଇବା, ଅପ୍ରମାଣିତ କରିବା. ଭୁରୁ ଡାଇଦେବା, ମିଥ୍ୟା ବୋଲି ଘୋଷଣା ବା ପ୍ରତିପନ୍ନ କରାଇବା, ଅପବ୍ୟୟ କରିବା ।
ଉଡ଼ାଇବା-ଗ୍ରା.କ୍ରି.(ସଂ-ଉଡ୍‌ଡୀନ)ଉଡ଼ିବାର ଣିଜନ୍ତ ରୂପ, ଆକାଶରେ ଗତି କରା-ଇବା, ହୁରୁଡ଼ାଇ ଦେବା, ଉଡ଼ିବାକୁ ଶିକ୍ଷା ଦେବା, ଶୂନ୍ୟରେ ଉଡ଼ିବାର ଉପାୟ କରିବା, ପବନାଦିଦ୍ୱାରା ସ୍ଥାନା-ନ୍ତରିତ କରିବା, ଉଦ୍‌ବିଗ୍ନ କରାଇବା, ଅନ୍ୟମନସ୍କ କରାଇବା, ପତାକାଆଦିର ଏକ ପ୍ରାନ୍ତକୁ ପବନରେ ଉଡ଼ିବା ପରି କରିବା, ଆରୋପିତ ଦୋଷକୁ (ଆପଣା ଉପରୁ) ଘଷାଇ ଦେବା, ଅପବ୍ୟୟ କରିବା, ବିତେବାଦ୍ କରିବା, ଅଦୃଶ୍ୟ ବା ଲୁପ୍ତ କରିବା, ବାହିତ କରିବା, ଭସାଇ ଦେବା,ବିଚଳିତ କରିବା, ଶେଷ କରିବା, ସାରିବା ।

**ଉଡ଼ାଉଡ଼କରିବା**—ଗ୍ରା.କ୍ରି. ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଉଡ଼ିବା ।

**ଉଡ଼ାକଳ**—ଗ୍ରା ବି. ଯେଉଁ ଯାନ ସାହାଯ୍ୟରେ ମନୁଷ୍ୟ ଆକାଶରେ ବିଚରଣ କରିପାରେ (ବ୍ୟୋମଯାନ) ।

**ଉଡ଼ାଖବର**—ଗ୍ରା ବି.ଜନଶ୍ରୁତି, ଅନିଶ୍ଚିତ ସମ୍ବାଦ ।

**ଉଡ଼ାଣ**—ଗ୍ରା.ବି.(ସଂ.ଉଡ୍ଡୀନ) ଉଡ଼ିବା ଉଡ଼ାଇବା କର୍ମ, ଯୁଦ୍ଧରେ ଶତ୍ରୁକୁ ଆକାଶକୁ ଉଡ଼ାଇ ଦେବା ।

**ଉଡ଼ାଣିଆଁ**—ଗ୍ରା. ବିଂ. ଅପବ୍ୟୟୀ,ଉଡ଼ିବାରେ ଅଭ୍ୟସ୍ତ, ଉଡ଼ୁଥିବା, ମିଥ୍ୟାପବାଦଯୁକ୍ତ, ଯାହା ଉପରେ ଉପରେ ଥାଏ, ବାହ୍ୟ, ଅନିଶ୍ଚିତ ।

**ଉଡ଼ାନ୍ତେରିଆ**—ଗ୍ରା ବିଂ ଅପବ୍ୟୟୀ (ଲୋକ), ଅନିଶ୍ଚିତ, ଶୁଣା (କଥା) ।

**ଉଡ଼ାପବନ**—ଗ୍ରା ବି. ଝଡ଼ତୋଫାନ, ଖଣ୍ଡିଆଭୂତ ।

**ଉଡ଼ାପନସ୍**—ଗ୍ରା.ବି.ଗଛିରେ ଆକାଶକୁ ଉଠିବା ଆଳୋକପାସ ବା ଲଶୁନବିଶେଷ ।

**ଉଡ଼ାବାଜ୍**– ଗ୍ରା. ବିଂ. ଅପବ୍ୟୟୀ ।

**ଉଡ଼ାବୁଡ଼ା**—ଗ୍ରା. ବିଂ. ଦୁଷ୍ଟ, ହିତାହିତ ବିବେଚନାଶୂନ୍ୟ, ଯେ ଉଡ଼ାବୁଡ଼ା ପରି ଅନିଷ୍ଟ କରେ, ଅପବ୍ୟୟୀ, ଅନ୍ୟକୁ ହଟହଟା କରୁଥିବା, ଅସ୍ଥିର, ଅଥୟ ।

**ଉଡ଼ାମାଛ**—ଗ୍ରା ବି. ସାମୁଦ୍ରିକ ମତ୍ସ୍ୟ ବିଶେଷ, ଏ ମାଛମାନେ ଉଡ଼ିପାରନ୍ତି ।

**ଉଡ଼ାଳ**—ଗ୍ରା. ବିଂ. ଉଡ଼ିବାରେ ଦକ୍ଷ ।

**ଉଡ଼ିଆ**—( ଓଡ୍ରଶବ୍ଦଜ ) ବି. ଉଡ଼ିଷ୍ୟାର ଲୋକ, ଉତ୍କଳବାସୀ, (ସ୍ତ୍ରୀ) ଉଡ଼ିଆଣୀ ।

**ଉଡ଼ିଦେବା**—ପ୍ରା. ( ସମ୍ବ ) କ୍ରି. ଶସ୍ତ୍ର ଦ ପଳାଇବା ।

**ଉଡ଼ିବା**—ଗ୍ରା.କ୍ରି. (ସଂ ଉଡ୍ଡୀନ)ଆକାଶ ମାର୍ଗରେ ଗତି କରିବା, ଅଦୃଶ୍ୟହେବା, ଶୂନ୍ୟରେ ଚାଳିତ ହେବା, ଅସ୍ଥିର ହେବା, ଅଥୟ ହେବା,ଲୋପ ପାଇବା, ନାଶହେବା, ଅନ୍ୟମନସ୍କ ହେବ, କମ୍ପିତ ହେବା (ବେଗ), ଝୁଲିବା, ବାଜି ରଖିବା, ଡରିବା, ଦଉଡ଼ିବା, ସର୍ବତ୍ର ଲୋକମୁଖେ ପ୍ରଚରିତ ହେବା, ଖୁବ୍ ବେଗରେ ଗତି କରିବା ।

**ଉଡ଼ିଯିବା**—ଗ୍ରା କ୍ରି. ଉଡ଼ିବା, ଝଡ଼ିକରି ଅଦୃଶ୍ୟ ହେବା, ବହିର୍ଗତ ହେବା, ଲୋପ ହେବ ,ଅତିବେଗରେ ଦୌଡ଼ିବା, ସ୍ଥାନତ୍ୟାଗ କରିବା ।

**ଉଡ଼ିଷ୍ୟା**—ଗ୍ରା.ବି. ଉତ୍କଳ ଦେଶ ।

**ଉଡ଼ୁ**- ସ୍ତ୍ରୀ.କ୍ଳୀ.ବି(ଉଡ଼ + ଉ)ଜଳ,ନକ୍ଷତ୍ର, ତାରପୁଞ୍ଜ, ପକ୍ଷୀ, କେଉଟ, ମହୁ ।

**ଉଡ଼ୁକାନ୍ତ**—ପୁଂ.ବି. (୬ତତ୍) ଚନ୍ଦ୍ର ।

**ଉଡ଼ୁଗ୍ରହପତି**—ପୁଂ. ବି.ନକ୍ଷତ୍ର ଓ ଗ୍ରହମାନଙ୍କର ପତି, ସୂର୍ଯ୍ୟ ।

**ଉଡ଼ୁଚକ୍ର**—କ୍ଳୀ. ବି. ନକ୍ଷତ୍ରମଣ୍ଡଳ ।

**ଉଡ଼ୁପ**—କ୍ଳୀ. ବି. (ଉଡ଼ୁ + ପା + ଅ) ପ୍ଳବ, ଭେଳ , ତରଣି, ଭେଳକ, ତାରକ,କୋଲ, ନୌକା (ପୁଂ)ଚନ୍ଦ୍ର, ତାମ୍ବନାଥ (କ୍ଳୀ) ଚମଡ଼ାର ପାନପାତ୍ର, ଭସ୍ତି ।

**ଉଡ଼ୁପତି**—ପୁଂ. ବି. (୬ତତ୍) ଚନ୍ଦ୍ର, ସମୁଦ୍ର, ବରୁଣ, କର୍ପୂର ।

**ଉଡ଼ୁପଥ**--ପୁଂ.ବି. ୬ତତ୍;(ଉଡ଼ୁ + ପଥ) ଆକାଶ ।

**ଉଡ଼ୁମ୍ବର**—ବି (ଉଡ଼ୁ + ବୃ + ଅ) ତାମ୍ର, ତମ୍ବା, କୁଷ୍ଠ, ଜଳକୀଟ ବିଶେଷ, କପି, ଦେଶବିଶେଷ, ନପୁଂସକ, ଢାର୍ଷ, ଦୁଇତୋଳା ପରିମାଣ,ଦୁଆରମୁହଁ,ଉଦୁମ୍ବର ବୃକ୍ଷ ଓ ଫଳ, ଦେହଲୀ ।

**ଉଡ଼ୁମ୍ବରପର୍ଣ୍ଣୀ**—ସ୍ତ୍ରୀ. ବି. ଦନ୍ତୀଗଛ ।

**ଉଡ଼ୁରାଟ୍**—ପୁଂ.ବି. ଚନ୍ଦ୍ର, ନକ୍ଷତ୍ରପତି ।

**ଉଡ଼ୁଲୋମା**—ପୁଂ. ବି. ପ୍ରବର ଋଷିଭେଦ । [ ଜଳ ।

**ଉଡ଼ୂ**—ସ୍ତ୍ରୀ. ବି. ( ଉଡ଼ୁ + ଉ ) କାଶ;

**ଉଡ଼ୁପ**—ପୁଂ. କ୍ଳୀ. ବି. ଭେଳା, ଚନ୍ଦ୍ର, ନୌକା, ଡଙ୍ଗା, ଚର୍ମବନ୍ଧ, ପାତ୍ରବିଶେଷ, ତାମ୍ରପାତ୍ର, ଭସ୍ତି ।

**ଉଡ୍ଡୟନ**—କ୍ଳୀ.ବି.(ଉତ୍ + ଡୀ + ଣ, ଅନ)ଆକାଶବିହାର, ଶୂନ୍ୟରେ ଗମନ, ଉଡ଼ିବା, ନଭୋଗତି ।

**ଉଡ୍ଡୟନ**—କ୍ଳୀ. ବି. (ଉତ୍ + ଡ଼ୀ + ଅନ ଇ.) ଉଡ଼ିବାର ।

**ଉଡ୍ଡୟମାନ**—ପୁଂ. ବିଂ. ( ଉତ୍ + ଡ଼ୀ + କ ଆନ) ନଭୋଗମନକାରୀ,ଉଡ଼ୁଥିବା, (ସ୍ତ୍ରୀ) ଉଡ୍ଡୟମାନା ।

**ଉଡ୍ଡାମର**—ପୁଂ ବିଂ.(ଉତ୍ + ଡାମର) ଅତିପ୍ରଚଣ୍ଡ, ଉଦ୍ଭଟ,ଶ୍ରେଷ୍ଠ, ସର୍ବୋତ୍କୃଷ୍ଟ, ଅସାଧାରଣ,ଅତ୍ୟୁଗ୍ର (ବି) ତନ୍ତ୍ରବିଶେଷ ।

**ଉଡ୍ଡୀନ**--କ୍ଳୀ ବି (ଉତ୍ + ଡ଼ୀ + ଭା.ତ) ଉଡ଼ିବା, ନଭୋଗତି, ଶୂନ୍ୟଗମନ, ଉଡ୍ଡୟନ,(ବିଂ)ଊର୍ଦ୍ଧ୍ୱଗାମୀ,ନଭୋଗତ, ଯେ ଉଡ଼ୁଅଛି ।

**ଉଡ୍ଡୀୟନ** - କ୍ଳୀ ବି.(ଉଡ୍ଡୀୟ + ଅନ) ଉଡ୍ଡୟନ, ଉଡ଼ିବା ।

**ଉଡ୍ଡୀୟମାନ**- ପୁଂ.ବିଂ. (ଉତ୍ + ଡ଼ୀ + ଆନ ) ଆକାଶଗାମୀ, ଉଡ଼ନ୍ତା (ସ୍ତ୍ରୀ) ଉଡ୍ଡୀୟମାନା ।

**ଉଡ୍ଡୀଶ**—ପୁଂ.ବି.ଶିବ,ତନ୍ତ୍ରଶାସ୍ତ୍ରଭେଦ ।

**ଉଡ୍ଡୀଶତନ୍ତ୍ର**—କ୍ଳୀ. ବି ତନ୍ତ୍ରୋକ୍ତ ଷଟ୍‌କର୍ମର ଅଭିଚାର ନିର୍ଦ୍ଦିଷ୍ଟ ହୋଇଥିବା ତନ୍ତ୍ର ବିଶେଷ ।

**ଉଢ଼ଣା(ଓଢ଼ଣା)**—ଗ୍ରା.ବି. ଲଜ୍ଜା ନିମନ୍ତେ ମୁଣ୍ଡରୁ ନାକ ପର୍ଯ୍ୟନ୍ତ ଲୁଗା ଢାଙ୍କିବା (ପ୍ରା-ସମ୍ବ) ଘୋଡ଼େଇ ହେବା ଚାଦର ।

**ଉଢ଼ଣୀ**—( ପ୍ରା-ସମ୍ବ ) ବି. ଘୋଡ଼େଇ ହେବା ଚାଦର, ଚାଦର, ଚଦ୍ଦରମୀ ।

**ଉଢ଼୍ରେନ୍**—(ପ୍ରା-ସମ୍ବ)ବିଂ.ଉଠାଣିଆ, କ୍ରମଶଃ ଉପରକୁ ଉଠୁଥିବା ।

**ଉଢ଼ାଳ**—ଗ୍ରା. ବି. ଆଢ଼ୁଆଳ, ଆବରଣ, ଅନ୍ତରାଳ ।

**ଉଢ଼ିବା**—(ପ୍ରା-ପୁରୀ) କ୍ରି (ସଂ-ପରିଧାନ) ବସ୍ତ୍ରାଦି ପିନ୍ଧିବା, ବସ୍ତ୍ରାଦି ଦେହରେ ବେଢ଼ାଇବା ।

**ଉଣ**--(ପ୍ରା-ମେଦିନୀ)ବିଂ.(ସଂ-ଊନ)ଊଣା ।

**ଉଣକ**—ବିଂ. (ଓଣ + ଅକ) ଅପସାରକ (ସ୍ତ୍ରୀ) ଉଣିକା ।

**ଉଣା**—ଗ୍ରା.ବିଂ.(ସଂ-ଊନ)ଊଣା(ଦେଖ)

ଊଣାଅଧିକ—ଗ୍ରା.ବି. ( ସଂ-ନ୍ୟୂନାଧିକ ) କମ୍‌ବେଶି, ନ୍ୟୂନତା ଅଧିକ୍ୟ, ଅଳ୍ପ-ବହୁତ, ଋଟି ବା ଅତିଶକ୍ତତା, ( ବିଂ ) ଅଳ୍ପାଧିକ, ନ୍ୟୂନାଧିକ (କ୍ରି.ବିଂ) ପ୍ରାୟ, ଅଳ୍ପାଧିକ ପରିମାଣରେ, ମୋଟାମୋଟି ଭାବରେ ।

ଊଣାଦ—ପୁଂ. ବି. ଯାହାର ଆଦ୍ୟରେ ଉଣ୍ ପ୍ରତ୍ୟୟ ଅଛି, ବ୍ୟାକରଣୋକ୍ତ ଉଣାଦିପ୍ରତ୍ୟୟ ବିଶେଷ ।

ଊଣାଭାଗିଆ—ଗ୍ରା. ବିଂ. ଯେଉଁ ବ୍ୟକ୍ତିର ଭାଗ୍ୟ ସୌଭାଗ୍ୟହୀନ ।

ଊଣେଇଶି—ଗ୍ରା. ବିଂ. ( ସଂ-ଊନବିଂଶ ) କୋଡ଼ିଏରୁ ଏକ ଊଣା, କୋଡ଼ିଏରୁ ଏକ କମ୍ ।

ଊଣେଇଶିବିଶ୍—ଗ୍ରା. କ୍ରି. ବିଂ. ନ୍ୟୂନାଧିକ, ପ୍ରାୟ, ସାମାନ୍ୟ ପ୍ରଭେଦଥିବାଅବସ୍ଥାରେ, (ବିଂ) ପ୍ରାୟସମାନ ।

ଉଣ୍ଡଲିବା—ଗ୍ରା (ସମ୍ବ) କ୍ରି. ଭୂମିରେ ଲୁଣ୍ଠିତ ହେବା, ଗଡ଼ିବା ।

ଉଣ୍ଡାଇବା—ଗ୍ରା. କ୍ରି. ଗୋଟାଇବା, ଏକତ୍ର କରିବା ।

ଉଣ୍ଡାଉଣ୍ଡି—ଗ୍ରା. ବିଂ. ଉଣ୍ଡିବାକିମ୍ବା, ଯତ୍ନପୂର୍ବକ ଅନ୍ୱେଷଣ କରିବା ।

ଉଣ୍ଡାଉଣ୍ଡି କରିବା—ଗ୍ରା. କ୍ରି. ଅଭିପ୍ରେତ ପଦାର୍ଥକୁ ଗୋପନରେ ଠାବରେଇବା, ଆଖି ବୁଲାଇବା, ଠିକଣା କରିବା, ଉତ୍ତମ ରୂପେ ଖୋଜିବା, ଅନୁସନ୍ଧାନ କରିବା ।

ଉଣ୍ଡାଳିଆ—ଗ୍ରା. ବିଂ. ଉଣ୍ଡାଳିବାରେ ଦକ୍ଷ, (ସ୍ତ୍ରୀ) ଉଣ୍ଡାଳେଈ ।

ଉଣ୍ଡାଳିବା—ଗ୍ରା. କ୍ରି. (ସଂ-ଅନୁସନ୍ଧାନ) ଅଣ୍ଡାଳିବା, ଦରାଣ୍ଡିବା, ଗୁପ୍ତସ୍ଥାନ ଖୋଜିବା ।

ଉଣ୍ଡିବା—ଗ୍ରା. କ୍ରି. ଖୋଜିବା, ସୁବିଧା ସୁଯୋଗ ଖୋଜୁଥିବା, ଦୋଷ ତର୍ଜଣା କରିବା, ଠଉରେଇବା, ଅଣ୍ଡାଳିବା, ଦରାଣ୍ଡିବା, ଅନୁସନ୍ଧାନ କରିବା, ଲୁଚା ପଦାର୍ଥକୁ ଖୋଜିବା, ଛକି ଛକିକରେ ଖୋଜିବା, ଦେଶକାଳ ପାତ୍ର ପ୍ରତି ଦୃଷ୍ଟି ରଖିବା ।

ଉଣ୍ଡେଇବା—ଗ୍ରା. କ୍ରି ( ଉଣ୍ଡିବାର ଣିଜନ୍ତରୂପ) ଉଣ୍ଡାଇବା ଦେଖ ।

ଉଣ୍ଡୁକ—ପୁଂ.ବି.ଦେହସ୍ଥ କୋଷ୍ଠଭେଦ ।

ଉଣ୍ଡେରକ—ପୁଂ.ବି ପିଷ୍ଟକ ଦ ।

ଉତ୍—ଅବ୍ୟ,(ଉ + କ୍ୱିପ୍) ସଂ-ଉପସର୍ଗ, ପ୍ରଶ୍ନ, ବିତର୍କ, ସମୁଚ୍ଚୟ, ଅଧିକ, ସନ୍ଦେହ, ଉପରେ, ଉପରକୁ, ସମ୍ୟକ୍ ରୂପେ, ଇତସ୍ତତ ଉଚ୍ଚୈଃ ସ୍ୱରରେ, ଉତ୍କଟ, ଓଲଟା ଊର୍ଦ୍ଧ୍ୱକୁ, ଊର୍ଦ୍ଧ୍ୱରେ, ଊର୍ଦ୍ଧ୍ୱ, ଉତ୍କର୍ଷ, ।

ଉତ—ଅବ୍ୟ. (ଉ + ମି.ତ) ଅତ୍ୟର୍ଥ, ପଦପୂରଣ, ଅତ୍ୟନ୍ତ, ବିକଳ୍ପ, ସମୁଚ୍ଚୟ, ବିତର୍କ, ପ୍ରଶ୍ନ. ଆହୋ (ବେ + ମି,ତ) ବିଂ. ତନ୍ତୁବାୟନିର୍ମିତ, ଗ୍ରଥିତ, ଆବୃତ ।

ଉତଙ୍କ—ପୁଂ. ବି. ବେଦନାମକ ମୁନିଙ୍କର ପ୍ରଧାନ ଶିଷ୍ୟ, ଗୌତମ ଋଷିଙ୍କର ଜଣେ ଶିଷ୍ୟ ।

ଉତଥ୍ୟ—ପୁଂ.ବି.ମୁନିବିଶେଷ, ବୃହସ୍ପତିଙ୍କର ବଡ଼ଭାଇ, ଅଙ୍ଗିରାଙ୍କର ବଡ଼ପୁଅ ।

ଉତଥ୍ୟତନୟ—ପୁଂ.ବି.ଗୌତମ ମୁନି ।

ଉତଥ୍ୟାନୁଜ—ପୁଂ. ବି. ବୃହସ୍ପତି,ଦେବଗୁରୁ । [ ଦେବଗୁରୁ ।

ଉତଥ୍ୟାନୁଜନ୍ମା—ପୁଂ. ବି. ବୃହସ୍ପତି;

ଉତଥ୍ୟାବରଜ—ପୁଂ. ବି. (ଉତଥ୍ୟ + ଅବରଜ)(୬ତତ୍ପୁ)ବୃହସ୍ପତି,ଦେବଗୁରୁ ।

ଉତନ—ଗ୍ରା.ବି ସମ୍ପତ୍ତି, ଧନ ।

ଉତପାତ—ଗ୍ରା. ବି. ( ସଂ + ଉତ୍ପାତ ) ଅତ୍ୟାଚାର, ଦୌରାତ୍ମ୍ୟ, ଉପଦ୍ରବ ଦୈବୀଦୁର୍ଘଟନା, ( ବିଂ ) ଦୁରନ୍ତ, ଅତ୍ୟାଚାରୀ, ଉପଦ୍ରବକାରୀ, ଗର୍ବୀ ।

ଉତପାତିଆ—ଗ୍ରା. ବିଂ. ଉତ୍ପାତକାରୀ, ଉତ୍ପୀଡ଼କ ।

ଉତର—ଗ୍ରା ବି.ଉତୁରିବାକିମ୍ବା,ଅନୁବାଦ କର୍ମ, (ବି) ଉତୁରୁଥିବା, ଅନୁବାଦକ, ଉଦ୍ଧୃତ ।

ଉତରିବା—ଗ୍ରା. କ୍ରି. (ସଂ + ଉତ୍ତରଣ) ଓହ୍ଲାଇବା, ଅବତରଣ କରିବା, ଉପସ୍ଥିତ ହେବା, ପହଞ୍ଚିବା, ଆଉଟା-ହେବା, ଜଳୀୟ ପଦାର୍ଥ ତ ପଯୋଗୁଁ ସ୍ଫୀତ ହେବା, ଉଦ୍‌ଗାରହେବା, ଉତ୍ତୀର୍ଣ୍ଣ-ହେବା, ସମ୍ପାଦିତ ହେବା, ନିଷ୍ପନ୍ନ-ହେବା, ଉତ୍ତୀର୍ଣ୍ଣ ହେବା, ଗର୍ବ ଛନ୍ନ-ହେବା, ଗର୍ବଦୃପ୍ତ ହେବା, ଫଳରେ ଦେଖା ଦେବା, ଉତ୍ତର କରିବା, ବଳଦୃପ୍ତ ହୋଇ କାର୍ଯ୍ୟ କରିବା ।

ଉତଲ—ଗ୍ରା. ବିଂ. ( ସଂ + ଉଜ୍ଜ୍ୱଳ ଓ ଉଦ୍‌ବେଳିତ ) ବ୍ୟଗ୍ର, ଉତ୍କଣ୍ଠିତ, ଅଧୀର, ଅସ୍ଥିର, ଚଞ୍ଚଳିଆ ।

ଉତା—ଗ୍ରା (ବାଲେଶ୍ୱର)ବି.ଧନର ଓଳି, ହୋତାର ଅପଭ୍ରଂଶରେ ଓତା ବା ଉତା ।

ଉତାର—ଗ୍ରା.ବି (ସଂ + ଉତ୍ତର)ଉତ୍ତର, ପ୍ରତିକିମ୍ବା, ପ୍ରତିକାର, କୃତ ଅନସ୍ତର ପ୍ରତିଷେଧ,ଓହ୍ଲାଇବା. ତଳକୁ ଆଣିବା, ଅବତରଣ, ଉତ୍ତରଦାତା, ଜମାନମସ୍ଥାନ, ଉତ୍ତାଣି ।

ଉତାର୍—ଗ୍ରା. ବି ଆଦର୍ଶ, ଗୋଟିଏ ଦେଖିକରି ଅନ୍ୟଟି ଲେଖି ରଖିବା ।

ଉତାରଖାନା—ଗ୍ରା ବି. ଉତ୍ତରଣସ୍ଥାନ, ଅଡ଼ା, ପାନ୍ଥଶାଳା ।

ଉତାରିବା—ଗ୍ରା.କ୍ରି. ( ସଂ-ଉତ୍ + ତୃ ) ଅବିକଳ ନକଲ କରିବା, ଓହ୍ଲାଇବା, (ହାଣ୍ଡି)ତଳକୁ ଆଣିବା(ଚମଡ଼ା, କୋଟ, କାମିଜ ଆଦି) ଦେହରୁ କାଢ଼ିବା ବା ବାହାର କରିବା, ଅବତୀର୍ଣ୍ଣ କରାଇବା ।

ଉତୁଆଣୀ—ଗ୍ରା.ବିଂ.(ସଂ + ଉତ୍ତାନଶାୟୀ) ଦୁଧଖିଆ (ପିଲା),ଦୁଗ୍ଧପୋଷ୍ୟ(ଶିଶୁ) ।

ଉତୁରା—ଗ୍ରା ବି (ସଂ + ଉତ୍ତରଣ)ତରଳ ଦ୍ରବ୍ୟ ଦର ଅଗ୍ନି ଉତ୍ତାପରେ ସ୍ଫୀତ,(ବିଂ) ଅଗ୍ନି ଉତ୍ତାପରେ ହାଣ୍ଡି ଫାଡ଼ ଟପି ଉତୁରି ପଡ଼ୁଥିବା, ନକଲ କରାଯାଇ-ଥିବା, ଅବତରଣ କରିଥିବା, ଓହ୍ଲାଇ-ଥିବା, ଦେହରୁ କଢ଼ାଯାଇଥିବା, ଉତ୍ତର ଦାତା ସମ୍ବନ୍ଧୀୟ, ଗର୍ବସ୍ଫୀତ,ଅତ୍ୟାଚାରୀ ।

ଉତୁରାଇବା—ଗ୍ରା. କ୍ରି. ଉତୁରିବାର ଣିଜନ୍ତରୂପ, ଉତାରିବାର ଣିଜନ୍ତରୂପ ।

ଉତୁରି—ଗ୍ରା.ବି ଉତ୍ସବ, ଓତା ।

ଉତୁରିବା—ଗ୍ରା. କ୍ରି. ଅବତୀର୍ଣ୍ଣ ହେବା, ଦୁଗ୍ଧାଦିପାତ୍ରରୁ ଉତ୍ଥିତ ,ଉଚ୍ଛୁଳିବା, ଉତରିବା (ଦେଖ) ।

ଉତୁରୁଡ଼ି—ଗ୍ରା.ବି. ଅର୍କାଦିବର୍ଗର ବନ୍ୟ-ଲତା, ଉତୁରୁଲି ।

ଉତୁସିଲ—ଗ୍ରା. ବିଂ. ( ସଂ ଉତ୍ଫୁଲ୍ଲ ) ହର୍ଷାନ୍ୱିତ, ଆମୋଦିତ, ଆହ୍ଲାଦିତ, ଉତ୍ଫୁଲ୍ଲ । [ ଅତସି ।

ଉତୁସି—ଗ୍ରା.ବି. (ସଂ—ଅତସୀ)ଅତୁସି,

ଉତ୍କ—ପୁଂ. ବି. (ଉତ୍ + କ) ଉତ୍ସୁକ, ଉଦ୍‌ବିଗ୍ନ, ଉତ୍କଣ୍ଠିତ, ଉନ୍ମନା, ଅଧୀର, ଅସ୍ଥିର (ସ୍ତ୍ରୀ) ଉତ୍କା ।

ଉତ୍କଚ—ବିଂ. ( ବ.ବ୍ରୀ ) କେଶଶୂନ୍ୟ, ଉନ୍ନତକେଶ, ବିକଶିତ, ବିକଚ ।

ଉତ୍କଞ୍ଚୁକ-ବିଂ.(ବ.ବ୍ରୀ) କାଞ୍ଚୁଲିରହିତ ।

ଉତ୍କଟ—ବିଂ. ( ଉତ୍ + କଟ ) ଅଧିକ, ଦୁଃସାଧ୍ୟ, ଉଗ୍ର, ତୀବ୍ର, ଉଦଗ୍ର, ବିଷମ (ବେଗ)ସମ୍ପନ୍ନ,ଦୃପ୍ତ, ଶ୍ରେଷ୍ଠ,ଭୟାନକ, ଉନ୍ନତ,ଅତିରିକ୍ତ, ଅଗାଢ (ସ୍ତ୍ରୀ) ଉତ୍କଟା, (ବି) ମଦମତ୍ତହସ୍ତୀ, ମତ୍ତତା,ଅହଙ୍କାର, ରକ୍ତେକ୍ଷୁ ଗୁଡ଼ତ୍ୱକ୍ .ଡାଲଚିନି,ତେଜପତ୍ର

ଉତ୍କଟା—ସ୍ତ୍ରୀ. ବି ସୈଂହଲୀ ଲତା, ସିଂହଳୀ ଲତା ।

ଉତ୍କଟକୋଟିକ-ବିଂ. ବ.ବ୍ରୀ, (ଉତ୍କଟ + କୋଟି + କ) ବିଷମ ସମସ୍ୟାର ଦୁଇଟି ମୀମାଂସା ମଧ୍ୟରେ ଦୋଳାୟମାନ, ଯେଉଁ ସ୍ଥାନରୁ ସହଜରେ ତଡ଼ି ଦିଆ-ଯାଇ ନ ପାରେ ସେପରି ସ୍ଥାନରେ ଛିଡ଼ା ହୋଇଥିବା ।

ଉତ୍କଣ୍ଠ—ପୁଂ. ବି. ବ.ବ୍ରୀ (ଉତ୍ + କଣ୍ଠ) ଆସନ,ଶୃଙ୍ଗାରର ଷୋଡ଼ଶବନ୍ଧାନ୍ତର୍ଗତ ତ୍ରୟୋଦଶବନ୍ଧ ( ବିଂ ) ଉଦ୍‌ଗ୍ରୀବ, ବେକ ଟେକିଥିବା ।

ଉତ୍କଣ୍ଠା- ସ୍ତ୍ରୀ.ବି (ଉତ୍ + କଣ୍ଠ + ଅ + ଆ) ଔତ୍ସୁକ୍ୟ,ଭାବନା,ଉଦ୍‌ବେଗ ବେଦନା ।

ଉତ୍କଣ୍ଠିତ—ପୁଂ.ବିଂ. (ଉତ୍କଣ୍ଠା + ଇତ) ଉଦ୍‌ବିଗ୍ନ , ଉତ୍ସୁକ, ଚିନ୍ତିତ, ବ୍ୟଥିତ, ଦୁଃଖିତ, (ସ୍ତ୍ରୀ) ଉତ୍କଣ୍ଠିତା ।

ଉତ୍କଣ୍ଠିତା—ସ୍ତ୍ରୀ.ବି. (ଉତ୍କଣ୍ଠିତ + ଆ) ନାୟିକାଭେଦ, ସଙ୍କେତ ସ୍ଥାନକୁ ପତି ନ ଆସିବାରୁ ଯେଉଁ ନାୟିକା ବିଶେଷ ଦୁଃଖିତ ହୁଏ ।

ଉତ୍କତା—ସ୍ତ୍ରୀ.ବି. ( ଉତ୍କ + ତା ) ଗଜ-ପିପ୍‌ପଳୀ, ଉତ୍କଣ୍ଠା ।

ଉତ୍କନ୍ଧର—ପୁଂ. ବିଂ (ବ.ବ୍ରୀ) ଉନ୍ନତ-ଗ୍ରୀବ, ଯାହାର ବେକ ଉଚ୍ଚା (ସ୍ତ୍ରୀ) ଉତ୍କନ୍ଧରା ।

ଉତ୍କମ୍ପ—ପୁଂ.ବି.(ଉତ୍ + କମ୍ପ + ଘ.ଅ) କାମାଦିଜନିତ କମ୍ପନ, ଭୟଜନିତ କମ୍ପ(ବିଂ)ଉତ୍କମ୍ପାନ୍ୱିତ;ଅତିକମ୍ପିତ ।

ଉତ୍କମ୍ପନ—କ୍ଲୀ. ବି (ଉତ୍ + କମ୍ପ + ଘ, ଅନ)ଉତ୍କମ୍ପ (ବିଂ) ଉତ୍କମ୍ପୀ, ଉତ୍କମ୍ପିତ ।

ଉତ୍କମ୍ପୀ-ପୁଂ.ବିଂ (ଉତ୍ + କମ୍ପ + ଇନ୍) ଉତ୍କମ୍ପାନ୍ୱିତ, କମ୍ପାନ୍ୱିତ ।

ଉତ୍କର—ପୁଂ ବି (ଉତ୍ + କୃ + ର୍ପ,ଅ) ରାଶି, ସମୂହ, ପ୍ରସାରଣ, ବିକ୍ଷେପ, ବିକ୍ଷିପ୍ତଧୂଳ୍ୟାଦି କୁଢ଼, ଗଦା ।

ଉତ୍କରାଦି-ପାଣିନି କଥିତ ଗୋଟିଏ ଗଣ-ବିଶେଷ, ଉତ୍କରାଦି ଗଣ ।

ଉତ୍କର୍କର—ପୁଂ. ବି. ବାଦ୍ୟଯନ୍ତ୍ରବିଶେଷ ।

ଉତ୍କର୍ଣ୍ଣ—ପୁଂ.ବିଂ. (ଉତ୍ + କର୍ଣ୍ଣ)ବ.ବ୍ରୀ: ଯେ କାନ ଡେରିଥାଏ, ଶ୍ରବଣେଚ୍ଛୁକ, ଉନ୍ମୂଳନ, ଛେଦନ, ଉତ୍ପାଟନ ।

ଉତ୍କର୍ତ୍ତନ— କ୍ଲୀ.ବି. (ଉତ୍ + କୃତ + ଘ ଅନ) ଖଣ୍ଡ ଖଣ୍ଡ କରି କାଟିବା, ମୂଢ଼-ଗର୍ଭ ଚିକିତ୍ସା ବିଶେଷ ।

ଉତ୍କର୍ଷ— ପୁଂ ବି. (ଉତ୍ + କୃଷ୍ + ଅ) ଉପାଦେୟତା, ଅତିସାର, ଶ୍ରେଷ୍ଠତା, ଉତ୍କୃଷ୍ଟତା,ବୃଦ୍ଧି, ଉନ୍ନତ(ବିଂ)ଅତିଶୟ ଯୁକ୍ତ ଉନ୍ନତ, ଉତ୍କର୍ଷନିମିତ୍ତ, ଉତ୍କୃଷ୍ଟ ।

ଉତ୍କର୍ଷକ—ପୁଂ ବିଂ. (ଉତ୍ + କୃଷ + ଣି, ଅକ ଉନ୍ନତିକାରକ,ଉତ୍ପାଟନକାରୀ, କର୍ଷକୋଶୀ ।

ଉତ୍କର୍ଷଣ— କ୍ଲୀ. ବି. (ଉତ୍ + କୃଷ + ଘ ଅନ ) ଊର୍ଦ୍ଧ୍ୱଆକର୍ଷଣ, ଉନ୍ମୂଳନ, ଅପସାରଣ, ଟାଣିନେବା, ସୁଶ୍ରୁତୋକ୍ତ ମୂଢ଼ଗର୍ଭଚିକିତ୍ସାର ଗୋଟିଏ ଉପାୟ ।

ଉତ୍କର୍ଷୀ- ପୁଂ.ବିଂ.(ଉତ୍ + କୃଷ + ଇନ୍) ଉଦ୍ଧାରକ, ଊର୍ଦ୍ଧ୍ୱ ଆକର୍ଷଣକାରୀ, ଉତ୍କର୍ଷାନ୍ୱିତ, ଗୁଣାପନ୍ନ ।

ଉତ୍କଳ—ବି.(ଉତ୍ + କଲ + ଅ)ଓଡ଼ିଶା, ଓଡ଼ିଆଭାଷୀଦେଶ,ଓଡ଼ିଆଭାଷା, ସୁଦ୍ୟୁମ୍ନ, (ଧ୍ରୁବଙ୍କ ଔରସରେ ଇଳାଗର୍ଭଜାତ ସନ୍ତାନ) ଧ୍ରୁବଙ୍କ ଜ୍ୟେଷ୍ଠ ପୁତ୍ର, ବ୍ୟାଧ, ପଞ୍ଚଗୌଡ଼ ବ୍ରାହ୍ମଣ ମଧ୍ୟରେ ଏକତମ (ବିଂ) ଉତ୍କଣ୍ଠିତ, ବଡ଼ପାଟିଆ, ପାଟି କରୁଥିବା ।

ଉତ୍କଳଭାଷୀ—ଗ୍ରା. ବିଂ. ଯେଉଁମାନେ ଓଡ଼ିଆ ଭାଷାରେ କଥା କହନ୍ତି, ଯେଉଁମାନଙ୍କର ମାତୃଭାଷା ଓଡ଼ିଆ ।

ଉତ୍କଳମଣି— ଗ୍ରା. ବି. ବଙ୍ଗଳାର ଶ୍ରୀଯୁକ୍ତ ପ୍ରଫୁଲ୍ଲଚନ୍ଦ୍ର ରାୟଙ୍କ ପ୍ରଦତ୍ତ ସ୍ୱର୍ଗୀୟ ପଣ୍ଡିତ ଗୋପବନ୍ଧୁ ଦାଶଙ୍କ ଉପାଧି ।

ଉତ୍କଳାପ—ବିଂ ଉଚ୍ଚ ମୟୂର ପୁଚ୍ଛ ।

ଉତ୍କଳିକା—ସ୍ତ୍ରୀ ବି.(ଉତ୍ + କଲ + ଅକ + ଆ) ଉତ୍କଣ୍ଠା, ଊର୍ମି, ତେଉ, ଫୁଲ-କଢ଼ି, ହେଲା, ଲହରୀ, ଉଦ୍‌ବେଗ,(ବିଂ) କଢ଼ ଧରିଥିବା ।

ଉତ୍କଳିକାକୁଳ—ପୁଂ.ବିଂ.(ଉତ୍କଳିକା + ଆକୁଳ)ଅତ୍ୟନ୍ତ;ଉତ୍କଣ୍ଠିତ । [ଭେଦ ।

ଉତ୍କଳିକାପ୍ରାୟ--କ୍ଲୀ.ବି.ସମାସଯୁକ୍ତ ଗଦ୍ୟ-

ଉତ୍କଳିଙ୍ଗ —ବି. (ନାମ) ଉତ୍ତରକଳିଙ୍ଗ ।

ଉତ୍କଳିତ—ପୁଂ.ବିଂ (ଉତ୍ + କଲ + ତ) ଉତ୍କଣ୍ଠିତ,ବୁଦ୍ଧିମାନ୍, ବିକମ୍ପିତ, ତର-ଙ୍ଗିତ ।

ଉତ୍କଳୀ—ବିଂ. (ଉତ୍କଳ + ଇନ୍)ଉତ୍କଳ-ଦେଶବାସୀ, ଓଡ଼ିଆ, ଉତ୍କଳଦେଶୀୟ ।

ଉତ୍କଳୀୟ—ବିଂ.(ଉତ୍କଳ + ଇୟ)ଉତ୍କଳୀ (ଦେଖ) ।

ଉତ୍କା—ସ୍ତ୍ରୀ. ବି. ( ଉତ୍ + କ + ଆ ) ଉତ୍କଣ୍ଠିତା ନାୟିକା ।

ଉତ୍କାକା—ସ୍ତ୍ରୀ ବି (ଉତ୍କ + ଅକ + କ,ଅ + ଆ) ପ୍ରତିବର୍ଷ ପ୍ରସୂତା ଗାଈ, ବର୍ଷ-ବିଆଣୀ ଗାଈ,ପ୍ରତିବର୍ଷ ପ୍ରସୂତା ଗାଈ ।

ଉତ୍କାଳୁ—ପୁଂ. ବିଂ. (ବ ବ୍ରୀ)ଉନ୍ନତ-ତାଳୁଯୁକ୍ତ, ଉନ୍ନତ ତାଳୁବିଶିଷ୍ଟ ।

ଉତ୍କାର—ପୁଂ.ବି. (ଉତ୍ + କୃ + ଘ,ଅ) ଧାନ୍ୟୋତ୍କ୍ଷେପଣ, ଧାନ ପାଛୁଡ଼ିବା, ଉତ୍କର (ଦେଖ) ।

ଉତ୍କାରିକା—ସ୍ତ୍ରୀ.ବି. (ଉତ୍ + କୃ + ଅକ + ଆ)ସୁଶ୍ରୁତୋକ୍ତ ଶୋଥାଦିନିବାରକ ଏକପ୍ରକାର ପାଚନ ।

ଉତ୍କାସ—ପୁଂ.ବି.(ଉତ୍ + କସ୍ + ଘ,ଅ) କାଶରୋଗବିଶେଷ ଊର୍ଦ୍ଧ୍ୱଗତ ଶ୍ଳେଷ୍ମୋତ୍‌କ୍ଷେପକ ରୋଗ, ଦମା କାଶ ।

ଉତ୍କିର—ବିଂ. (ଉତ୍ + କୃ + ଅ)ଉତ୍‌କ୍ଷେପକ ।

ଉତ୍କୀର୍ଣ୍ଣ—ବିଂ. ( ଉତ୍ + କୃ + ର୍ମ,କ୍ତ ) ଉତ୍‌କ୍ଷିପ୍ତ,ଉଲ୍ଲିଖିତ,କ୍ଷତ,ବିଦ୍ଧ ଖୋଦିତ, ଚିହ୍ନିତ, ଇତଃସ୍ତତ,ବିକ୍ଷିପ୍ତ (ବି)ଆଘାତ, କ୍ଷତ ।

ଉତ୍କୀର୍ତ୍ତନ—କ୍ଲୀ.ବି. (ଉତ୍ + କୀର୍ତ୍ତି + ଘ. ଅନ) ଘୋଷଣା, ପ୍ରଚାର, ପ୍ରଶଂସା, ବର୍ଣ୍ଣନା ।

ଉତ୍କୀର୍ତ୍ତିତ—ବିଂ (ଉତ୍ + କୀର୍ତ୍ତି + ର୍ମ.କ୍ତ) ବର୍ଣ୍ଣିତ, ପ୍ରଚାରିତ, ଘୋଷିତ ।

ଉତ୍କୁଞ୍ଚିକା—ସ୍ତ୍ରୀ. ବି. ଔଷଧ ଭେଦ, କଳାଜୀର ।

ଉତ୍କୁଟ—ପୁଂ.ବି. (ଉତ୍ + କୁଟ – ଘ,ଅ) ଉତ୍ତାନଶୟନ, ଚିତ୍‌ହୋଇ ଶୋଇବା ।

ଉତ୍କୁଣ—ପୁଂ.ବି.(ଉତ୍ + କୁଣ + ଘ,ଅ) କେଶକୀଟ, ଉକୁଣୀ, ଚମଉକୁଣୀ ।

ଉତ୍କୂଜ—ପୁଂ. ବି କୋକିଳରଶବ୍ଦ,ଉଚ୍ଚ ପକ୍ଷୀରବ ।

ଉତ୍କୂଟ – ପୁଂ. ବି. (ଉତ୍ + କୂଟ୍ + ଅ) ଛତ୍ର, ଛତା, ଛତ୍ର ।

ଉତ୍କୂର୍ଦ୍ଦନ—କ୍ଲୀ.ବି. (ଉତ୍ + କୂର୍ଦ୍ଦ୍ + ଘ, ଅନ) ଉତ୍‌ପତନ (ବିଂ) ଉତ୍କୂର୍ଦ୍ଦିତ ।

ଉତ୍କୂଳ—ବିଂ. (ଉତ୍ + କୂଳ) କୂଳକୁ ଲଙ୍ଘିଥିବା, ଉଚ୍ଛୁଳିଥିବା ।

ଉତ୍କୂଳିତ—ବିଂ.(ଉତ୍ + କୂଲ୍ + ଇତ) କୂଳଉପରକୁ ନୀତ, ଉଦ୍ବେଳ, କୂଳକୁ ଲଙ୍ଘିଥିବା, କୂଳରେ ଲାଗିବା ।

ଉତ୍‌କୃତି— ସ୍ତ୍ରୀ· ବି. (ଉତ୍ + କୃ + ତି) ୨୬ ଅକ୍ଷର ବିଶିଷ୍ଟ ଛନ୍ଦୋବିଶେଷ ।

ଉତ୍କୃତ୍ତ—ବିଂ. (ଉତ୍ + କୃତ୍ + ର୍ମ.କ୍ତ) ଛିନ୍ନ, ଉତ୍‌ଖାତ, ଖଣ୍ଡିତ, ଖଣ୍ଡ ଖଣ୍ଡ ହୋଇଥିବା ।

ଉତ୍କୃତ୍ୟ—ବିଂ. (ଉତ୍ + କୃତ୍ + ର୍ମ,ଯ) ଉତ୍‌କର୍ତ୍ତନୀୟ, ଛେଦନୀୟ ।

ଉତ୍କୃତ୍ୟମାନ—ବିଂ.(ଉତ୍ + କୃତ୍ + ର୍ମ. ମାନ) ଛେଦ୍ୟମାନ, ଯାହା ଖଣ୍ଡ ଖଣ୍ଡ ହୋଇ କଟା ଯାଉଅଛି ।

ଉତ୍କୃଷ୍ଟ—ବି. ( ଉତ୍ + କୃଷ୍ + ର୍ମ,କ୍ତ ) ପ୍ରଶସ୍ତ, ଉତ୍ତମ, ଶ୍ରେଷ୍ଠ, କୁଳାଦିଗୁଣ ସମ୍ପନ୍ନ, ଅତିଶୟ, ଉଚ୍ଚବର୍ଣ୍ଣ, ଗୁଣ ହୋଇଥିବା, ଉତ୍କର୍ଷାନ୍ୱିତ, ଉନ୍ନତ, ଗୃହୀତ, ଉଚ୍ଚପଦାରୂଢ଼ (ସ୍ତ୍ରୀ)ଉତ୍କୃଷ୍ଟା ।

ଉତ୍କୃଷ୍ଟତା—ସ୍ତ୍ରୀ. ବି· ( ଉତ୍କୃଷ୍ଟ + ତା ) ଶ୍ରେଷ୍ଠତା, ଉତ୍ତମତା,ପ୍ରାଧାନ୍ୟ, ଉତ୍କର୍ଷ, ପ୍ରଶସ୍ତତା ।

ଉତ୍କୃଷ୍ଟାର୍ହ—ପୁଂ ବିଂ. (ଉତ୍କୃଷ୍ଟ + ଅର୍ହ) ଉନ୍ନତି କରିବାର ଯୋଗ୍ୟ ।

ଉତ୍କେନ୍ଦ୍ରଶକ୍ତି—ବି. ଘାଉଁର ଖାଉଥିବା ବସ୍ତୁକୁ ଯେଉଁ ଶକ୍ତି କେନ୍ଦ୍ରଠାରୁ ଦୂରକୁ ଫିଙ୍ଗିଦିଏ ।

ଉତ୍କୋଚ -ପୁଂ.ବି(ଉତ୍ + କୁଚ୍ + ଣ,ଅ) ଉପଢୌକନ, ଲାଞ୍ଚ, ରହସ୍ୟଭାବ, ଘୁଷ୍, ଅଣ୍ଟାଗୁଞ୍ଜା ।

ଉତ୍କୋଚକ—ପୁଂ.ବି. (ଉତ୍ + କୁଚ୍ + କ,ଅକ) ଯେ ଲାଞ୍ଚଦିଏ ( କ୍ଲୀ· ବି ) ଧୌମ୍ୟାଶ୍ରମ ନିକଟସ୍ଥ ତୀର୍ଥବିଶେଷ ।

ଉତ୍କୋଚଗ୍ରାହୀ—ପୁଂ.ବିଂ (ଉତ୍କୋଚ + ଗ୍ରହ + କ,ଇନ୍ )ଯେ ଲାଞ୍ଚଖାଏ,ଲାଞ୍ଚୁଆ,

ଉତ୍କୋଚଜୀବୀ—ପୁଂ ବିଂ. (ଉତ୍କୋଚ + ଜୀବ + କ,ଇନ୍)ଯେ ଲାଞ୍ଚଦ୍ୱାରା ଜୀବିକା ନିର୍ବାହ କରେ, (ସ୍ତ୍ରୀ) ଉତ୍କୋଚଜୀବିନୀ

ଉତ୍‌କ୍ରମ—ପୁଂ. ବି. (ଉତ୍ + କ୍ରମ + ଅ) ବ୍ୟତିକ୍ରମ, ବୈପରୀତ୍ୟ, ଅନଧିକାର ପ୍ରବେଶ, ଉପରକୁ ଡେଇଁବା, ବିକ୍ରମ, ନିର୍ଗମ,ସୀମାଲଙ୍ଘନ,କୁଦିବା,ନିଃସରଣ ।

ଉତ୍‌କ୍ରମଣ—କ୍ଲୀ. ବି.(ଉତ୍ + କ୍ରମ + ଘ ଅନ) ଅପସରଣ,ଊର୍ଦ୍ଧ୍ୱଗମନ, ଶରୀର ଜୀବ ମାର ପ୍ରସ୍ଥାନ ।

ଉତ୍‌କ୍ରମଣବାୟୁ— ପୁଂ.ବି. ଉଦାନବାୟୁ ।

ଉତ୍‌କ୍ରମଣୀୟ—ବିଂ.(ଉତ୍ + କ୍ରମ + ର୍ମ. ଅନୀୟ) ଅତିକ୍ରମଣୀୟ ।

ଉତ୍କ୍ରାନ୍ତ—ବିଂ (ଉତ୍ + କ୍ରମ୍ + କ.କ୍ତ) ଉଦ୍‌ଗତ,ଅତିକ୍ରାନ୍ତ,ଉଲ୍ଲଙ୍ଘିତ,ଉତ୍ତୀର୍ଣ୍ଣ, ବିଶୀର୍ଣ୍ଣ, ଉପେକ୍ଷିତ, ମୃତ, ବିପର୍ଯ୍ୟସ୍ତ, ହୀନ ଉତ୍କ୍ରାନ୍ତ ।

ଉତ୍‌କ୍ରାନ୍ତି—ସ୍ତ୍ରୀ.ବି. (ଉତ୍ + କ୍ରମ୍ + ଘ. ତି) ଦେହରୁ ଅପସାରଣ, ମରଣ, ଉତ୍କ୍ରମ, କ୍ରମେ ଉନ୍ନତି ।

ଉତ୍କ୍ରୋଶ—ପୁଂ ବି. (ଉତ୍ + କ୍ରୁଶ୍ + କ ଅ ) ଜଳଚର ପକ୍ଷୀବିଶେଷ, ବାଜ, ଶ୍ୟେନ, କୁରର ପକ୍ଷୀ, ଚିତ୍କାର ।

ଉତ୍କ୍ଲେଦ – ପୁଂ. ବି (ଉତ୍ + କ୍ଲିଦ୍ + ଘ·ଅ ଅର୍ଦ୍ରୀଭାବ ।

ଉତ୍‌କ୍ଲେଦୀ – ପୁଂ.ବିଂ (ଉତ୍ + କ୍ଲେଦ୍ + ଇନ୍ )ଆର୍ଦ୍ରଭାବାନ୍ୱିତ, ନିଷେଚକ ।

ଉତ୍‌କ୍ଲେଶ—ବି.(ଉତ୍ + କ୍ଲିଶ୍ + ଘ,ଅ) ଊର୍ଦ୍ଧ୍ୱଗ ବାୟୁକୃତ କ୍ଲେଶ,ପୀଡ଼ା(ବିଂ) ଉତ୍‌କ୍ଲେଶକ, ଉତ୍କ୍ଲେଶ୍ୟ ।

ଉତ୍‌କ୍ଷିପ୍ତ—ବିଂ. (ଉତ୍ + କ୍ଷିପ୍ + ର୍ମ·କ୍ତ) ଉତ୍ପାଟିତ, ଊର୍ଦ୍ଧ୍ୱକୁକ୍ଷିପ୍ତ, ଅଭିଭୂତ, ଉନ୍ନୀତ (ବି) ଧୁତୁରାଫଳ, ଦୁଦୁରାଫଳ, ଉପରକୁ ଫିଙ୍ଗିବା । [ବିଶେଷ ।

ଉତ୍‌କ୍ଷିପ୍ତକମ୍ପନ—କ୍ଲୀ. ବି. ଭୂମିକମ୍ପ-

ଉତ୍‌କ୍ଷିପ୍ତିକା—ସ୍ତ୍ରୀ.ବି. (ଉତ୍ + କ୍ଷିପ୍ + ତି + କ + ଆ) କର୍ଣ୍ଣାଳଙ୍କାର ବିଶେଷ, ତାଟଙ୍କ, କାପ ।

ଉତ୍‌କ୍ଷେପ—ପୁଂ.ବି.(ଉତ୍ + କ୍ଷିପ୍ + ଅ) ଊର୍ଦ୍ଧ୍ୱକୁ ଫୋପାଡ଼ିବା,ପାଛୁଡ଼ିବା,(ବିଂ) ଉତ୍‌କ୍ଷେପକାରକ, ଉତ୍‌କ୍ଷେପ,ଊର୍ଦ୍ଧ୍ୱକୁ କ୍ଷେପଣ ।

ଉତ୍‌କ୍ଷେପକ—ପୁଂ.ବି. (ଉତ୍ + କ୍ଷିପ୍ + ଅକ)ଊର୍ଦ୍ଧ୍ୱକୁ ନିକ୍ଷେପକାରୀ,ଉଦ୍ଧାରକ, ଯେ ଉପରକୁ ଫିଙ୍ଗି ପୁଣି ଧରିପକାଏ ।

ଉତ୍‌କ୍ଷେପଣ—କ୍ଲୀ·ବି. (ଉତ୍ + କ୍ଷିପ୍ + ଘ, ଅନ) ଊର୍ଦ୍ଧ୍ୱକୁ କ୍ଷେପଣ,ଉଦଞ୍ଚନ, ଧାନ୍ୟୋତ୍‌କ୍ଷେପଣ, ଷୋଡ଼ଶପଣ, ଉଦ୍‌ଗୀରଣ,ବମନ,ବ୍ୟଜନ,ନ୍ୟାୟମତେ କର୍ମବିଶେଷ ।

ଉତ୍‌କ୍ଷୋଭିତ—ବିଂ. ଅତିକ୍ଷୋଭଯୁକ୍ତ, ସମାକୁଳ ।

ଉତ୍‌ଖଚିତ--ବିଂ. (ଉତ୍ + ଖଚ୍ + ମିଂ,ତ) ଉତ୍କୃଷ୍ଟରୂପରେ ରଚିତ, ଉଦ୍‌ଗ୍ରଥିତ ।

ଉତ୍‌ଖଳା—ସ୍ତ୍ରୀ. ବି. (ଉତ୍ + ଖଲ + ଅ + ଆ) ମୁରା ନାମକ ଗନ୍ଧଦ୍ରବ୍ୟ ।

ଉତ୍‌ଖାତ—ବିଂ. (ଉତ୍ + ଖନ୍ + ମିଂ,ତ) ଉନ୍ମୂଳିତ, ଉତ୍ପାଟିତ, ମୂଳରୁ ଖୋଳା ଯାଇଥିବା, ସମୂଳେ ବିନଷ୍ଟ, (ଭା ବି) ସମୂଳେବିନାଶ, ମୂଳୋତ୍ପାଟନ ।

ଉତ୍‌ଖାତକେଳି—ପୁଂ ବି କେଳିବିଶେଷ, ବପ୍ରକ୍ରୀଡ଼ା, ଶୃଙ୍ଗାଦି ଦ୍ୱାରା ବୃଷଗଜାଦିଙ୍କର ମୃତ୍ତିକାଖନନ । [ଛେଦନ ।

ଉତ୍‌ଖେଦ—ପୁଂ.ବି (ଉତ୍ + ଖିଦ୍ + ଅ)

ଉତ୍ତ—ବିଂ. ( ଉନ୍ଦ୍ + କ,ତ ) ଆର୍ଦ୍ର, ଭିଜା, ଉନ୍ନଥିବା, ଓଦାଥିବା ।

ଉତ୍ତଂସ—ପୁଂ ବି (ଉତ୍ + ତନସ୍ + ଅ) କର୍ଣ୍ଣଭୂଷଣ, କାନଫୁଲ, କାନରଗହଣା, ଶିରୋଭୂଷଣ, ପଗଡ଼ି ଇତ୍ୟାଦି ।

ଉତ୍ତଂସିକ—ପୁଂ ବି. ନାଗବିଶେଷ ।

ଉତ୍ତପ୍ତ—କ୍ଳୀ.ବି. (ଉତ୍ + ତପ୍ + ଭା.ତ) ଶୁଷ୍କମାଂସ, ସନ୍ତାପ, (ବିଂ) ତପ୍ତ, ସନ୍ତପ୍ତ, ଦଗ୍ଧ, ପରିପ୍ଳୁତ, ଉଷ୍ଣ, ତାଡିତ ।

ଉତ୍ତବ୍ଧ—ବିଂ. (ଉତ୍ + ସ୍ତବ୍ଧ) ସ୍ତମ୍ଭୀଭୂତ, ବନ୍ଦ ହୋଇଥିବା ।

ଉତ୍ତଭିତ—ବିଂ. ଉନ୍ମୀତ ।

ଉତ୍ତମ—ପୁଂ. ବିଂ. ( ଉତ୍ + ତମ୍ + କ,ଅ ) ଭଲ ଉତ୍କୃଷ୍ଟ, ଉପାଦେୟ, ଚରମ, ଶ୍ରେଷ୍ଠ, (ବି) ବିଷ୍ଣୁ, ଉତ୍ତାନପାଦ ରାଜାର ପୁତ୍ର, ପ୍ରିୟବ୍ରତପୁତ୍ର, ତୃତୀୟ ମନୁ, ଏକବିଂଶତିବ୍ୟାସ, (ସ୍ତ୍ରୀ) ଉତ୍ତମା, (ବିପ) ଅଧମ ।

ଉତ୍ତମତା—ସ୍ତ୍ରୀ. ବି ( ଉତ୍ତମ + ତା ) ଶ୍ରେଷ୍ଠତା, ଉତ୍କୃଷ୍ଟତା, ଉପାଦେୟତା ।

ଉତ୍ତମପଦ—କ୍ଳୀ ବି. (କ ଧା.) ଶ୍ରେଷ୍ଠପଦ ବା ମର୍ଯ୍ୟାଦା, ଉଚ୍ଚପଦ, ବଡ଼ଚାକିରୀ ।

ଉତ୍ତମପୁରୁଷ—ପୁଂ.ବି ( କ.ଧା. ) ମୁଁ, ଆମ୍ଭେ, ଆମ୍ଭେମାନେ, ଭଲଲୋକ, ଭଦ୍ର, ସାଧୁ, ପରମାତ୍ମା ।

ଉତ୍ତମଫଲିନୀ—ସ୍ତ୍ରୀ. ବି. (ଉତ୍ତମଫଲ + ଇନ୍ + ଈ ) ଦୁଗ୍ଧିକାବୃକ୍ଷ, କ୍ଷୀରାଇ, ଦୁଧିଆମେଣ୍ଟାଲତା ।

ଉତ୍ତମମଧ୍ୟମ--ଗ୍ରା.ବି. (ଲ, ଅର୍ଥ )ମାଡ଼, ପ୍ରହାର, ଭର୍ତ୍ସନା, ଗାଳି ।

ଉତ୍ତମମଧ୍ୟମଦେବା—ଗ୍ରା. କ୍ରି. (ଲ, ଅର୍ଥ ) ମାଡ଼ଦେବା, ଆଗ୍ର, 'ଉ' ପଦ ଶୁଣାଇ ଦେବା, ମନବୋଧ କରି ଗାଳିଦେବା, ମନ ବୋଧକରି ଛେଚିବା ।

ଉତ୍ତମର୍ଣ୍ଣ—ପୁଂ. ବି ( ଉତ୍ତମ + ଋଣ ) ଋଣଦାତା, ମହାଜନ, ସାହୁକାର, ସେଠ, ମୂଳଧନର ସ୍ୱାମୀ ।

ଉତ୍ତମର୍ଣ୍ଣିକ—ପୁଂ. ବିଂ. ଉତ୍ତମର୍ଣ୍ଣ, ଋଣଦାତା, ମହାଜନ, ସାହୁକାର, ସେଠ ।

ଉତ୍ତମର୍ଣ୍ଣୀ—ପୁଂ ବିଂ. (କ.ଧା)ଉତ୍ତମର୍ଣ୍ଣ, ଋଣଦାତା, ମହାଜନ, ସାହୁକାର, ସେଠ ।

ଉତ୍ତମଶ୍ଳୋକ—ବିଂ. (ବ ବ୍ରୀ) ପୁଣ୍ୟଶ୍ଳୋକ (ପୁଂ.ବି) ଭଗବାନ୍, ଧ୍ୱନିକାବ୍ୟ ।

ଉତ୍ତମସଂଗ୍ରହ – ପୁଂ ବି. (କ.ଧା) ସମ୍ୟକ୍ ସଂଗ୍ରହଣ, ପରଦାରଗମନ, ନିର୍ଜନେ ପର ସ୍ତ୍ରୀସହ ପ୍ରେମାଳାପ ।

ଉତ୍ତମସାହସ—ପୁଂ.ବି.(କ.ଧା)ସ୍ମୃତ୍ୟୁକ୍ତ ଦଣ୍ଡବିଶେଷ, ଦୁଃସାହସ, ଏକହଜାର ପଣ କଉଡ଼ି ଜୋରିମାନା ।

ଉତ୍ତମା—ସ୍ତ୍ରୀ. ବି (ଉତ୍ + ତମ + ଆ ) ଉତ୍କୃଷ୍ଟା ସ୍ତ୍ରୀ, ସ୍ୱୀୟାଦି ନାୟିକାଭେଦ, ଦୁଗ୍ଧିକାବୃକ୍ଷ, ( ବିଂ ) ବରରୋହା, ଗୁଣୋତ୍କୃଷ୍ଟା, ଶାସ୍ତ୍ରବର୍ଣ୍ଣିତ ଗୁଣବତୀ ନାୟିକା ବିଶେଷ ।

ଉତ୍ତମାଙ୍ଗ—କ୍ଳୀ. ବି. ( ଉତ୍ତମ + ଅଙ୍ଗ ) (କ.ଧା), ମସ୍ତକ, ମୁଖ, ଶିର, (ବିପ) ଅଧମାଙ୍ଗ ।

ଉତ୍ତମା ଦୂତୀ—ସ୍ତ୍ରୀ. ବି. ଯେଉଁ ଦୂତୀ ନାୟକ ନାୟିକାଙ୍କୁ ମିଠା କଥା କହି ପଟାଇପାରେ ।

ଉତ୍ତମାନାୟିକା—ସ୍ତ୍ରୀ.ବି. ଯେଉଁ ସ୍ୱକୀୟା-ନାୟିକା ପତି ପ୍ରତିକୂଳ ହେଲେ ମଧ୍ୟ ପତିଙ୍କ ପ୍ରତି ଅନୁକୂଳା ଥାଆନ୍ତି ।

ଉତ୍ତମାରଣୀ—ସ୍ତ୍ରୀ. ବି. ଇନ୍ଦୀବରୀ, ଶତମୂଳୀ, ଶତାବରୀ, ଛତୁଆସା ।

ଉତ୍ତମାର୍ଦ୍ଧ—ପୁଂ ବି (କ.ଧା) ଉତ୍କୃଷ୍ଟ ବା ଶେଷ ଅର୍ଦ୍ଧାଂଶ ।

ଉତ୍ତମାଶା ଅନ୍ତରୀପ—ଗ୍ରା. ବି. ଆଫ୍ରିକା-ମହାଦେଶର ଅନ୍ତରୀପ ।

ଉତ୍ତମୌଜା—ପୁଂ.ବି (ଉତ୍ତମ + ଓଜସ୍) (ବ·ବ୍ରୀ) ଦଶମ ମନୁଙ୍କ ପୁତ୍ରଭେଦ, ଜଣେ ମହାବୀର, ପାଣ୍ଡବପକ୍ଷୀୟ ଯୋଦ୍ଧା, (ବିଂ) ପ୍ରଧାନ, ତେଜସ୍ୱୀ, ମହାବଳ ।

ଉତ୍ତମ୍ଭ—ପୁଂ. ବି. ( ଉତ୍ + ସ୍ତମ୍ଭ + ଭା,ଅ) ସ୍ତମ୍ଭୀଭାବ, ନିବୃତ୍ତି, ଅବଲମ୍ବ, ଠିଆହୋଇ ରହିଯିବା ।

ଉତ୍ତମ୍ଭନ—କ୍ଳୀ.ବି. (ଉତ୍ + ସ୍ତମ୍ଭ + ଭା, ଅନ ) ଅବଲମ୍ବନ, ବର୍ଜନ, ଖମ୍ବ, ଖୁଣ୍ଟ, ନିବୃତ୍ତି, ସ୍ତମ୍ଭୀଭାବ ।

ଉତ୍ତର—କ୍ଳୀ.ବି (ଉତ୍ + ତୃ + ଣ + ଅ) ପ୍ରତିବଚନ, ଜବାବ, ମୀମାଂସା, ଆପତ୍ତି-ଖଣ୍ଡନ, ଦୋଷଭଞ୍ଜନବାକ୍ୟ, ସିଦ୍ଧାନ୍ତ, ଆଧିକ୍ୟ, ପ୍ରାଚୁର୍ଯ୍ୟ, ବିଷ୍ୟୋଗଫଳ, ପ୍ରତିକାର ।

ଉତ୍ତର—ପୁଂ. ବି. (ଉତ୍ + ତୃ + କ.ଅ) ବିଷ୍ଣୁ, ଶିବ, ଉପରଭାଗ, ପର୍ବତବିଶେଷ, ବିରାଟଙ୍କ ପୁତ୍ର ।

ଉତ୍ତର—ପୁଂ.ବିଂ. (ଉତ୍ + ତୃ + ମିଂ,ଅ) ଦକ୍ଷିଣର ବିପରୀତ(ଦିଗ), ବାମ, ଉତ୍ତୀର୍ଣ୍ଣ, ଉତ୍ତମ, ଯୋଗ୍ୟ, ଅସାଧାରଣ, ଶ୍ରେଷ୍ଠ, ଊର୍ଦ୍ଧ୍ୱ, ଉଚ୍ଚ, ପ୍ରବଣ, ପରବର୍ତ୍ତୀ, ଭବିଷ୍ୟ, ଶେଷ, ଦୁର୍ଲଭ ଉଲ୍ଲଙ୍ଘନାର୍ହ, ଅନନ୍ତର, (ସ୍ତ୍ରୀ) ଉତ୍ତରା (କ୍ରି.ବିଂ.) ଉତ୍ତରରୁ, ପରେ, ଅନନ୍ତର, ପଛେ, ( ଗ୍ରା. ବି ) ଅଧିକ, ବାକ୍ୟ, କଥା, ଆଦେଶପାଳନ ।

ଉତ୍ତର ଅୟନାନ୍ତ—ବି. ( ଜ୍ୟୋତିଷ-ପରିଭାଷା ) ସୂର୍ଯ୍ୟ ବିଷୁବ ରେଖାଠାରୁ ଉତ୍ତରକୁ ଚଳିବାର ଶେଷସୀମା ସୂଚକ କଳ୍ପିତରେଖା ।

ଉତ୍ତରକର୍କଟବନ୍ଧ—ବିଂ (ଭୂଗୋଳପରିଭାଷା ) ଉତ୍ତରମେରୁ ୦ରୁ ଉତ୍ତର ସମକର୍କଟ-ବନ୍ଧର ଶେଷସୀମା ପର୍ଯ୍ୟନ୍ତ ଭୂଗୋଳର ଅଂଶ ।

ଉତ୍ତରକବାଟ—ଗ୍ରା ବିଂ. ବୀରମାନଙ୍କୁ ପ୍ରାଚୀନ ଉତ୍କଳ ସମ୍ରାଟମାନଙ୍କର ଦତ୍ତ ଉପାଧି ବିଶେଷ ।

ଉତ୍ତରକଳିଙ୍ଗ—ବି. ପ୍ରାଚୀନ ତ୍ରିକଳିଙ୍ଗର ଉତ୍ତରାଂଶ, ଓଡ଼ିଶାର ପ୍ରାଚୀନ ନାମ ।

ଉତ୍ତରକାଣ୍ଡ—ପୁଂ. ବି. ରାମାୟଣରେ ଶେଷକାଣ୍ଡ, ପୁସ୍ତକର ପରବର୍ତ୍ତୀଭାଗ, ଶେଷଭାଗ ।

ଉତ୍ତରକାଳ—ପୁଂ.ବି (କ.ଧା) ଭବିଷ୍ୟତ୍ କାଳ, ଗୌଣକାଳ, ପରବର୍ତ୍ତୀ ସମୟ ।

ଉତ୍ତରକାଳୀନ—ବିଂ. ( ଉତ୍ତରକାଳ + ଈନ) ଉତ୍ତରକାଳ ସମ୍ବନ୍ଧୀୟ, ପରବର୍ତ୍ତୀ ସମୟର ଯାହା ଭବିଷ୍ୟତରେ ଘଟିବ ।

ଉତ୍ତରକୁରୁ—ପୁଂ.ବି ଜମ୍ବୁଦ୍ୱୀପର ବର୍ଷ ବିଶେଷ, କୁରୁବର୍ଷ, ରୁଷ୍, ତାତାର, ତିବତ୍ ଓ ତୁର୍କି ସ୍ଥାନକୁ ଉତ୍ତରକୁରୁ କହନ୍ତି, ଦେଶ ବିଶେଷ ।

ଉତ୍ତରକେନ୍ଦ୍ର—ପୁଂ.ବି. ପୃଥିବୀର ଉତ୍ତର-ପ୍ରାନ୍ତ, ସୁମେରୁ ।

ଉତ୍ତରକୋଶଳ—ପୁଂ. ବି. ପ୍ରାଚୀନ ଜନପଦ ବିଶେଷ, ବର୍ତ୍ତମାନ ଅଯୋଧ୍ୟାର ଉତ୍ତରାଂଶ କୋଶଳ ଦେଶ ।

ଉତ୍ତରକୋଶଳା—ସ୍ତ୍ରୀ ବି. ଅଯୋଧ୍ୟା ନଗରୀ କୋଶଳ ଦେଶ, ମହାନଦୀର ଉତ୍ତରାଂଶର ପ୍ରାଚୀନ ନାମ ।

ଉତ୍ତରକ୍ରିୟା—ସ୍ତ୍ରୀ. ବି. (କ.ଧା) ଉତ୍ତର-କାଳ, ଅନ୍ତ୍ୟେଷ୍ଟିକ୍ରିୟା, ପ୍ରତିବଚନଦାନ, କର୍ତ୍ତବ୍ୟ କର୍ମ, ସାମ୍ବତ୍ସରିକ ଶ୍ରାଦ୍ଧ ।

ଉତ୍ତରଖଣ୍ଡ—ବି. କୌଣସି ପୁସ୍ତକର ଦ୍ୱିତୀୟ ବା ଶେଷଖଣ୍ଡ, ପୁସ୍ତକର ପରବର୍ତ୍ତୀଖଣ୍ଡ ।

ଉତ୍ତରଖଣ୍ଡନ—କ୍ଲୀ. ବି. ( ୬ ତତ୍ ) ପ୍ରତିବଚନ, ନିରସନ, ପ୍ରତ୍ୟୁତ୍ତର, ରଦ, ଜବାବ ।

ଉତ୍ତରଗ୍ରନ୍ଥ—ପୁଂ. ବି. ଶେଷସନ୍ଦର୍ଭ ପରିଶିଷ୍ଟ ।

ଉତ୍ତରଗାମୀ—ପୁଂ.ବିଂ. (ଉତ୍ତର + ଗମ୍ + ଣ,ଇନ୍) ଉତ୍ତରାଭିମୁଖରେ ଗମନକାରୀ, (ସ୍ତ୍ରୀ) ଉତ୍ତରଗାମିନୀ ।

ଉତ୍ତରଙ୍ଗ—କ୍ଲୀ ବି.(ଉତ୍ତର + ଗମ୍ + ଅ) ଦ୍ୱାରୋର୍ଦ୍ଧ୍ୱଦାରୁ, ନାଗଦନ୍ତ, (ବିଂ) ଅଶାନ୍ତ, ତରଙ୍ଗିତ, ଉଦ୍ଗତତରଙ୍ଗ ।

ଉତ୍ତରଚ୍ଛଦ—ପୁଂ. ବି. (ଉତ୍ତର + ଛଦ) (କ.ଧା) ଶଯ୍ୟାର ଉପର ଆସ୍ତରଣ ବସ୍ତ୍ର, ଶଯ୍ୟାର ଚଦର, ଉତ୍ତରୀୟ, ଘୋଡ଼ିହେବା ଲୁଗା ।

ଉତ୍ତରଜ—ପୁଂ. ବିଂ. ( ଉତ୍ତର + ଜନ୍ + ଅ ) ଅନନ୍ତରଜାତ, ପଛରେ ଯାହାର ଜନ୍ମ, (ସ୍ତ୍ରୀ) ଉତ୍ତରଜା, (ପୁଂ. ବି. ) ଉତ୍ତମ ପୁରୁଷ, ପରବଂଶ ।

ଉତ୍ତରଜ୍ୟୋତିଷ—ପୁଂ. ବି. ଭାରତର ପଶ୍ଚିମଦିଗସ୍ଥ ଜନପଦବିଶେଷ, ଦେଶ-ବିଶେଷ ।

ଉତ୍ତରଣ—କ୍ଲୀ. ବି. ( ଉତ୍ + ତୃ + ଣ, ଅନ ) ଉତରଣ, ନଦୀ ଆଦି ପାର ହେବା, ଅବରୋହଣ, ଓହ୍ଲାଇବା, ଅଭିପ୍ରେତ ସ୍ଥାନରେ ପହଞ୍ଚିବା, ଉତୁରିବା, କୌଣସି ସ୍ଥାନରେ ଉପସ୍ଥିତ ହେବା ।

ଉତ୍ତରଣସ୍ଥାନ – କ୍ଲୀ. ବି. ଆଡ଼୍ଡ଼ା, ପହଞ୍ଚିବା ସ୍ଥାନ, ପାନ୍ଥଶାଳା ।

ଉତ୍ତରଣୀୟ—ବିଂ. ( ଉତ୍ + ତୃ + ର୍ମ. ଅନୀୟ ) ଅତିକ୍ରମଣୀୟ, ଯାହା ପାର ହେବାକୁ ହେବ, ଗମନୀୟ, ଗମ୍ୟ, ପ୍ରାପ୍ୟ ।

ଉତ୍ତରତଃ—ଅବ୍ୟ. ଉତ୍ତରରୁ, ଊର୍ଦ୍ଧ୍ୱରେ, ପଶ୍ଚାତ୍, ବାମେ ।

ଉତ୍ତରତ୍ର—ଅବ୍ୟ. (ଉତ୍ତର + ତ୍ର) ଉତ୍ତର ଦିଗରେ, ପରେ, ଗ୍ରନ୍ଥର ପରଭାଗରେ ।

ଉତ୍ତରଦାନ—କ୍ଲୀ. ବି. ( ୬ ତତ୍ ) ପ୍ରତିବଚନପ୍ରଦାନ, ଜବାବ ଦେବା ।

ଉତ୍ତରଦାୟକ—ପୁଂ. ବିଂ. ( ଉତ୍ତର + ଦା + ଅକ ) ଯେଉଁ ଭୃତ୍ୟ ସ୍ୱାମୀକୁ ଜବାବ ଦିଏ, ଅବାଧ୍ୟ, ପ୍ରତ୍ୟୁତ୍ତରଦାତା, ଯେ ଜବାବ ଦିଏ (ସ୍ତ୍ରୀ) ଉତ୍ତରଦାୟିକା ।

ଉତ୍ତର ଦିକ୍—ସ୍ତ୍ରୀ. ବି. ଦିଗବିଶେଷ, ଉଦୀଚୀ, ଉତ୍ତର ଦିଗ ।

ଉତ୍ତରଦିକ୍‌କାଳ—ପୁଂ. ବିବାହରେ ଉତ୍ତର ଦିଗ୍‌ବର୍ତ୍ତୀ କାଳଚକ୍ର ।

ଉତ୍ତରଦିକ୍‌ପାଳ—ପୁଂ.(୬ତତ୍)କୁବେର ।

ଉତ୍ତରଦିକ୍‌ପାଶ—ପୁଂ. ବିଂ. ବୃହସ୍ପତି ବାରରେ ଉତ୍ତର ଦିଗ ଯାତ୍ରା ଯୁଦ୍ଧାଦି ନିଷେଧଜ୍ଞାପକ ପାଶଚକ୍ର ।

ଉତ୍ତର ଦିଗ—ସ୍ତ୍ରୀ. ବି. ଉତ୍ତର ଦକ୍ଷିଣର ବିପରୀତଦିଗ, ଉତ୍ତରାଞ୍ଚଳ ।

ଉତ୍ତରଦିଗୀଶ—ପୁଂ.ବିଂ.କୁବେର,ବୁଧ ।

ଉତ୍ତରଦିଗ୍‌ବଳୀ—ପୁଂ.ବି. ଶୁକ୍ର, ଚନ୍ଦ୍ର ।

ଉତ୍ତରଧେୟ—ବିଂ. ( ୭ତତ୍ ) ଅନନ୍ତର କରଣୀୟ, ପଶ୍ଚାତ୍ କର୍ତ୍ତବ୍ୟ, ଯାହା ପରେ କରାହେବ ।

ଉତ୍ତର ଧ୍ରୁବ—ବି. ଉତ୍ତରଦିଗସ୍ଥ ଧ୍ରୁବ ନକ୍ଷତ୍ର, ପୃଥିବୀର ଉତ୍ତର କେନ୍ଦ୍ରର ମୁଣ୍ଡ ଉପରେ ଥିବା ନକ୍ଷତ୍ର ।

ଉତ୍ତରପକ୍ଷ—ପୁଂ. ବି. (କ.ଧା) ବିଚାର-ପକ୍ଷ, ପୂର୍ବପକ୍ଷର ନିରସକ ସିଦ୍ଧାନ୍ତ-ପକ୍ଷ, ଉତ୍ତର ବିକଳ୍ପ, ପ୍ରଶ୍ନର ଉତ୍ତର, ପ୍ରଶ୍ନକର୍ତ୍ତାର ବିପରୀତ ପକ୍ଷ, ତର୍କର ସିଦ୍ଧାନ୍ତ, କୃଷ୍ଣପକ୍ଷ ।

ଉତ୍ତରପଟ—ପୁଂ.ବି. (କ.ଧା) ଉତ୍ତରୀୟ, ଓଢ଼ଣା, ବିଛଣା ଚଦର ।

ଉତ୍ତରପଥ—ପୁଂ.ବି. (କ.ଧା) ଉତ୍ତରସ୍ଥ ମାର୍ଗ, ଦେବଯାନ, ପରବର୍ତ୍ତୀ ପଥ, ବ୍ରହ୍ମଲୋକ ମାର୍ଗ ।

ଉତ୍ତର ପଥିକ—ପୁଂ.ବିଂ. ପଥିକ, ଉତ୍ତର ଦେଶବାସୀ ।

ଉତ୍ତରପଦ—କ୍ଲୀ. ବି. ( କ.ଧା. ) ସମାସର ଶେଷପଦ, ସମାସଯୋଗ୍ୟ ପଦ ସମାସନିଷ୍ପନ୍ନ ସମସ୍ତ ପଦର ଅନ୍ତିମପଦ ।

ଉତ୍ତରପଶ୍ଚିମ—ପୁଂ.ବି.ଉତ୍ତର ଓ ପଶ୍ଚିମ-ଦିଗର ମଧ୍ୟବର୍ତ୍ତୀ ସ୍ଥାନ, ବାୟୁ କୋଣ ।

ଉତ୍ତରପଡ଼ା—ବଙ୍ଗ ପ୍ରଦେଶାନ୍ତର୍ଗତ ହୁଗୁଲୀ ଜିଲ୍ଲାର ଗୋଟିଏ ନଗର ।

ଉତ୍ତରପାଦ—ପୁଂ. ବି. ଚତୁଷ୍ପାଦବ୍ୟବହାରାନ୍ତର୍ଗତ ଦ୍ୱିତୀୟ ପାଦ, ବୃହସ୍ପତି ।

ଉତ୍ତରପୁରୁଷ—ପୁଂ. ବି. ( କ.ଧା ) ଉତ୍ତରଜ, ପରବର୍ତ୍ତୀ ସବଂଶୀୟ ବା ସଗୋତ୍ରଜ ।

ଉତ୍ତରପୂର୍ବ—ପୁଂ. ବି. ଈଶାନକୋଣ ।

ଉତ୍ତରପ୍ରଚ୍ଛଦ—ପୁଂ. ବିଂ (କ.ଧା.) ଆସ୍ତରଣ ବସ୍ତ୍ର, ଉତ୍ତରଚ୍ଛଦ, ବେଡ଼ାଣ ।

ଉତ୍ତରପ୍ରତ୍ୟୁତ୍ତର—କ୍ଲୀ. ବି.(ଦ୍ୱନ୍ଦ୍ୱ) ପ୍ରତିବଚନ ଏବଂ ତାହାର ପ୍ରତିବାକ୍ୟ, ବାଦାନୁବାଦ, ତର୍କ, ବିତର୍କ, ଜବାବ ସୁଆଲ, ଉକ୍ତି ପ୍ରତ୍ୟୁକ୍ତି ।

ଉତ୍ତରଫାଲ୍‌ଗୁନୀ—ସ୍ତ୍ରୀ.ବି.ନକ୍ଷତ୍ରବିଶେଷ, ଦ୍ୱାଦଶ ନକ୍ଷତ୍ର ।

ଉତ୍ତରବୟସ୍—କ୍ଲୀ ବି (କ.ଧା.)ପଶ୍ଚିମ-ବୟସ, ବାର୍ଦ୍ଧକ୍ୟ, ବୁଢ଼ା ।

ଉତ୍ତରବର୍ତ୍ତୀ—ପୁଂ.ବିଂ. (ଉତ୍ତର+ବୃତ +କ,ଇନ୍) ଉତ୍ତର ଦିଗରେ ସ୍ଥିତ, (ସ୍ତ୍ରୀ) ଉତ୍ତରବର୍ତ୍ତିନୀ ।

ଉତ୍ତରଭାଦ୍ରପଦ—ବି. ଷଡ଼ବିଂଶ ନକ୍ଷତ୍ର, ନକ୍ଷତ୍ର ବିଶେଷ, ୨୬ ନକ୍ଷତ୍ର ।

ଉତ୍ତରଭାରତୀ—ସ୍ତ୍ରୀ. ବି. ପ୍ରତିବଚନ, ଜବାବ ।

ଉତ୍ତରମାନସ—କ୍ଲୀ ବି. (କ.ଧା.)ମାନସ-ସରୋବରର ଉତ୍ତରସ୍ଥ ତୀର୍ଥବିଶେଷ ।

ଉତ୍ତରମୀମାଂସା—ସ୍ତ୍ରୀ. ବି. (୬ ତତ୍ପୁ) ପଞ୍ଚାଙ୍ଗନ୍ୟାୟୋପେତ ବାକ୍ୟ ସମୂହାତ୍ମକ ବିଚାର ବିଷୟକ ଗ୍ରନ୍ଥ, ବ୍ରହ୍ମସୂତ୍ର ।

ଉତ୍ତରମେଘ—ପୁଂ. ବି. କାଳିଦାସଙ୍କ ରଚିତ ମେଘଦୂତ କାବ୍ୟର ଶେଷାର୍ଦ୍ଧ ।

ଉତ୍ତରମେରୁ—ପୁଂ.ବି.(କ.ଧା.) ପୃଥିବୀର ଉତ୍ତର ପ୍ରାନ୍ତ ସୁମେରୁ ।

ଉତ୍ତରମେରୁବୃତ୍ତ—ବି ମେରୁଠାରୁ ଅଂ ୨୩½ଶ ଅନ୍ତରରେ ସେ ସବୁ କ୍ଷୁଦ୍ର ବୃତ୍ତ କଳ୍ପିତ ହୁଏ, ସୁମେରୁ ବୃତ୍ତ ।

ଉତ୍ତରରହିତ—ବିଂ. (୫ତତ୍ପୁ) ବର୍ଜିତ, ବିହୀନ, ଶୂନ୍ୟ, ହୀନ, ପ୍ରତିବଚନ-ବିହୀନ, ନିରୁତ୍ତର ।

ଉତ୍ତରରା—ଗ୍ରା.ବି. ପ୍ରାଚୀନ ଉତ୍କଳରାଜାମାନଙ୍କ ଦ୍ୱାରା ବୀରମାନଙ୍କୁ ପ୍ରଦତ୍ତ ଉପାଧିବିଶେଷ ।

ଉତ୍ତରରାମଚରିତ—କ୍ଲୀ. ବି. (କ.ଧା.) ସ୍ୱନାମଖ୍ୟାତ କବି ଭବଭୂତିଙ୍କ ରଚିତ ନାଟକବିଶେଷ ।

ଉତ୍ତରଳ—ବିଂ.(ଉତ୍+ତରଳ)ଚଞ୍ଚଳ, ଉତୁରୁଥିବା, କମ୍ପୁଥିବା, ଅରୁଥିବା ।

ଉତ୍ତରଲକ୍ଷଣ—କ୍ଲୀ. ବି (୬ତତ୍ପୁ) ପ୍ରତିବଚନ ନିଦର୍ଶନ, ଜବାବର ଚିହ୍ନ ।

ଉତ୍ତରରାଢ଼ୀ—ବଙ୍ଗୀୟ କାୟସ୍ଥମାନଙ୍କର ଶ୍ରେଣୀବିଶେଷ, ବଙ୍ଗୀୟ ମୁଚି, କମାର ଭଣ୍ଡାରୀ କୈବର୍ତ୍ତମାନଙ୍କର ଶ୍ରେଣୀ-ବିଶେଷ ।

ଉତ୍ତରବସ୍ତି—ପୁଂ. ବି. ସୁଶ୍ରୁତୋକ୍ତ ମୂତ୍ରାଶୟରେ ସ୍ନେହ ପ୍ରୟୋଗ କରିବାର ଯନ୍ତ୍ର ବିଶେଷ ।

ଉତ୍ତର ବସ୍ତ୍ର—କ୍ଲୀ. ବି.(କ.ଧା)ଉତ୍ତରୀୟ; ଚଦର, ଓଢ଼ଣା ।

ଉତ୍ତରବାଦୀ—ପୁଂ.ବିଂ. (ଉତ୍ତର+ବଦ୍ +କ.ଇନ୍) ପ୍ରତିବାଦୀ, ଆସାମୀ (ସ୍ତ୍ରୀ), ଉତ୍ତରବାଦିନୀ ।

ଉତ୍ତରବାରେନ୍ଦ୍ର—ପୁଂ.ବି. ବଙ୍ଗଦେଶୀୟ ବାରେନ୍ଦ୍ର ବ୍ରାହ୍ମଣମାନଙ୍କର ଶାଖାଭେଦ ।

ଉତ୍ତରବାହିନୀ—ସ୍ତ୍ରୀ. ବି. (ଉତ୍ତର+ବହ +କ. ଇନ+ଈ) ଯେଉଁନଦୀ ଉତ୍ତର ଦିଗକୁ ବହିଯାଇ ଅଛି ।

ଉତ୍ତରବେଦୀ—ସ୍ତ୍ରୀ.ବି.ବେଦୋକ୍ତ ବେଦୀ ଭେଦ,କୁକର୍ମ୍ମବେଦ,ସମନ୍ତ ପଞ୍ଚକତୀର୍ଥ ।

ଉତ୍ତରଷୋଡ଼ଶ—ବି. ଅନ୍ତ୍ୟେଷ୍ଟି କ୍ରିୟାର ଶେଷ ଦୁଇଦିନର ଆଚରିତ କର୍ମ, (ଏକାଦଶ ଓ ଦ୍ୱାଦଶ ଦିନର କର୍ମ ସମ୍ପନ୍ନ ଶ୍ରାଦ୍ଧବିଶେଷ) ।

ଉତ୍ତରସକ୍ଥ—କ୍ଲୀ.ବି.ସକ୍‌ଥିସ୍ୟ ଉତ୍ତରଭାଗ

ଉତ୍ତରସାକ୍ଷୀ—ପୁଂ ବିଂ. (୬ତତ୍ପୁ)ସାକ୍ଷୀ-ଭେଦ ସଫେଇସାକ୍ଷୀ,ସହକାରୀ ପ୍ରତିବାଦୀର ସାକ୍ଷୀ (ସ୍ତ୍ରୀ) ସାକ୍ଷିଣୀ ।

ଉତ୍ତରସାଧକ—ପୁଂ. ବିଂ. ସହକାରୀ, ସାହାଯ୍ୟକାରୀ, ସହାୟ, ଉତ୍ତେଜକ, ତାନ୍ତ୍ରିକସାଧନରେ ଯେ ପଛରେଥାଇ ଶବାରୂଢ଼ ସାଧକଙ୍କୁ ସାହାଯ୍ୟକରେ ।

ଉତ୍ତରହନୁ—ପୁଂ.ବି ହନୁହାଡ଼ର ଉପର ଭାଗ ।

ଉତ୍ତରା—ସ୍ତ୍ରୀ. ବି ଉତ୍ତର ଶବ୍ଦଯୁକ୍ତ ନକ୍ଷତ୍ରଗଣ, ଉତ୍ତରଦିଗ, ବିରାଟ ରାଜ-କନ୍ୟା, (ବିଂ) ଉତ୍ତରଦିଗ ସମ୍ବନ୍ଧୀୟ ।

ଉତ୍ତରାକାଣ୍ଡ—ପୁଂ. ବି. ରାମାୟଣ ସାତକାଣ୍ଡର ଶେଷକାଣ୍ଡ ।

ଉତ୍ତରାଧର—ବିଂ. ଉଚ୍ଚ,ନୀଚ,ଖାଲଢିପ, (ବି) ଉପରିସ୍ଥଓଷ୍ଠ, (ବିପ) ଅଧରାଧର ।

ଉତ୍ତରାଧିକାର—ବି (ଉତ୍ତର+ଅଧିକାର) ଧନସ୍ୱାମୀର ମୃତ୍ୟୁପରେ ତାଙ୍କ ସମ୍ପତ୍ତିରେ ତାହାସଙ୍ଗେ ସମ୍ପର୍କ ନିବନ୍ଧନସ୍ୱତ୍ୱ ।

ଉତ୍ତରାଧିକାରୀ—ପୁଂ. ବି. ପୁତ୍ରପ୍ରଭୃତି, ଦାୟାଦ, ଉଆରସ, ପରର ଅଧିକାରୀ, ସ୍ୱାମୀର ଅଭାବରେ ସମ୍ପତ୍ତିର ଅଧିକାରୀ, (ସ୍ତ୍ରୀ) ଉତ୍ତରାଧିକାରିଣୀ ।

ଉତ୍ତରାପଥ—ପୁଂ. ବି. ଭାରତବର୍ଷର ଉତ୍ତରସ୍ଥିତ ଦେଶ, ଆର୍ଯ୍ୟାବର୍ତ୍ତ ।

ଉତ୍ତରାଭାସ—ପୁଂ ବି. (ବ.ବ୍ରୀ.) ଦୁଷ୍ଟ-ଉତ୍ତର, ଅସଦୁତ୍ତର, ଅପ୍ରକୃତଉତ୍ତର ।

ଉତ୍ତରାୟଣ—କ୍ଲୀ.ବି.(ଉତ୍ତର+ଅୟନ) ସୂର୍ଯ୍ୟଙ୍କର ଉତ୍ତରଦିଗ ଗମନ କାଳ, ଉତ୍ତରଦିଗ୍‌ବର୍ତ୍ତୀ ସୂର୍ଯ୍ୟଙ୍କର ଗମନପଥ ।

ଉତ୍ତରାୟଣାନ୍ତବୃତ୍ତ—ସୂର୍ଯ୍ୟଙ୍କର ଉତ୍ତରରେ ଗତିର ସୀମାନିର୍ଦ୍ଦେଶାତ୍ମକ ରେଖା, ବିଷୁବ ରେଖାର ସାଢ଼େ ୨୩ ଅଂଶ ଉତ୍ତରରେ ଅକ୍ଷରେଖା କଳ୍ପିତ ହୁଏ ।

ଉତ୍ତରାରଣି(ଣୀ)—ସ୍ତ୍ରୀ. ବି. ଅଗ୍ନିମନ୍ଥନ ଯନ୍ତ୍ରର ଉପରସ୍ଥ ମନ୍ଥନ କାଷ୍ଠଦଣ୍ଡ ।

ଉତ୍ତରାର୍ଦ୍ଧ—କ୍ଲୀ. ବି. ଦେହର ପୂର୍ବାର୍ଦ୍ଧ, ଶେଷାର୍ଦ୍ଧ, ଶେଷଖଣ୍ଡ ।

ଉତ୍ତରାଶା—ସ୍ତ୍ରୀ. ବି. (ଉତ୍ତର+ଆଶା) କ.ଧା ଉତ୍ତରଦିଗ, (୬ ତତ୍ପୁ) ପ୍ରତିବଚନ ଲାଭର ପ୍ରତ୍ୟାଶା । [ ବିଶେଷ ।

ଉତ୍ତରାଶ୍ମ—ପୁଂ. ବି. ପାର୍ବତୀୟ ଦେଶ-

ଉତ୍ତରାଷାଢ଼ା—ସ୍ତ୍ରୀ.ବି.(ଉତ୍ତର+ଅଷାଢ଼ା) ଏକବିଂଶ ନକ୍ଷତ୍ର ।

ଉତ୍ତରାସଙ୍ଗ—ପୁଂ. ବି. (ଉତ୍ତର+ଆ+ସଞ୍ଜ+ଅ) ଓଢ଼ଣା, ଚଦର, ଉତ୍ତରୀୟ-ବସ୍ତ୍ର, ପାଛୁଡ଼ା ।

ଉତ୍ତରାହ—ପୁଂ ବି. (ଉତ୍ତର+ଅହ+ଅ) ପରଦିନ, ଗତଦିବସ ।

ଉତ୍ତରିକା—ସ୍ତ୍ରୀ. ବି. ନଦୀବିଶେଷ ।

ଉତ୍ତରୀ—ସ୍ତ୍ରୀ. ବି. (ସଂ-ଉତ୍ତରୀୟ) ଉତ୍ତରୀୟ ବସ୍ତ୍ର, ଚାଦର, ଉତ୍ତରୀୟପଇତା, ବେଢ଼ାଣ ।

ଉତ୍ତରୀୟ—କ୍ଳୀ. ବି. ( ଉତ୍ତର + ଈୟ) ଉତ୍ତରୀୟ ବସ୍ତ୍ର, ଏକପଟା, ବେଢ଼ାଣ, ପାଛୁଡ଼ା, ଦୋସତାଚାଦର ।

ଉତ୍ତରେଦ୍ୟୁଃ—ଅବ୍ୟ. (ଉତ୍ତର + ଏଦ୍ୟୁସ୍) ପରଦିନ, କାଲି, କାଲ୍ୟ, ଆଗାମୀଦିବସ ।

ଉତ୍ତରେଦ୍ୟୁଷ୍କ—ବିଂ. ପରବର୍ତ୍ତୀ ଦିବସରେ ଘଟିବା, ଆଗାମୀ କାଲି ଘଟିବା ।

ଉତ୍ତରୋତ୍ତର—କ୍ରି. ବିଂ. ( ଉତ୍ତର + ଉତ୍ତର) କ୍ରମେ କ୍ରମେ, ପରପର, (ବି) (୭ ତତ୍) ଉତ୍ତରର ଉତ୍ତର ପ୍ରତ୍ୟୁତ୍ତର, ପରମ୍ପରା । [ ଓଷ୍ଠ ।

ଉତ୍ତରୋଷ୍ଠ—ପୁଂ. ବି. (ଭ.ଧା ) ଉପର

ଉତ୍ତର୍ଜନ—କ୍ଳୀ.ବି (ଉତ୍ + ତର୍ଜ୍ + ଣ, ଅନ) ଉଚ୍ଚସ୍ୱରରେ ଭର୍ତ୍ସନା, ବଡ଼ପାଟିରେ ଗାଳିଦେବା ।

ଉତ୍ତଳିତ—ବିଂ. ( ଉତ୍ + ତଳ + ତ ) ଉତ୍କ୍ଷିପ୍ତ, ଉପରକୁ ଫିଙ୍ଗିଦେବା ।

ଉତ୍ତାନ—ବିଂ.(ଉତ୍ + ତନ + ଅ) ଊର୍ଦ୍ଧ୍ୱ ମୁଖରେ ଶୋଇବ, ଚିତ୍‌ହୋଇ ଶୋଇବା, ଅଗଭୀର, ଊର୍ଦ୍ଧ୍ୱଗତ ।

ଉତ୍ତାନକ—ପୁଂ.ବି (ଉତ୍ + ତନ୍ + ଅକ) ଉଚ୍ଚଟାବୃକ୍ଷ, ବୃକ୍ଷ ବିଶେଷ ।

ଉତ୍ତାନପତ୍ରକ—ପୁଂ.ବି. ରକ୍ତ ଏରଣ୍ଡବୃକ୍ଷ, ରଙ୍ଗଜଡ଼ା ଗଛ ।

ଉତ୍ତାନପଦ—ସ୍ତ୍ରୀ ବି. ବୃକ୍ଷ, ଶକ୍ତ ।

ଉତ୍ତାନପାଦ—ପୁଂ.ବି ସ୍ୱାୟମ୍ଭୁବ ମନୁଙ୍କର ପୁତ୍ର, ଧ୍ରୁବଙ୍କର ପିତା, ରାଜାବିଶେଷ, (ବିଂ.ବ.ବ୍ରୀ) ଉଲଟ ପାଦବିଶିଷ୍ଟ ।

ଉତ୍ତାନପାଦଜ—ପୁଂ. ବି. (ଉତ୍ତାନପାଦ + ଜନ + ଅ) ଧ୍ରୁବ, ଉତ୍ତମ ।

ଉତ୍ତାନଶୟ—ବିଂ (ଉତ୍ତାନ + ଶୀ + କ.ଅ) ଯେ ଚିତ୍‌ହୋଇ ଶୁଏ, (ବି) ଶିଶୁ ।

ଉତ୍ତାନଶାୟୀ—ପୁଂ. ବି. (ଉତ୍ତାନ + ଶୀ + ଣ ଇନ୍) ଊର୍ଦ୍ଧ୍ୱମୁଖରେ ଶୋଇଥିବ, ଯେ ଚିତ୍‌ହୋଇ ଶୁଏ, (ସ୍ତ୍ରୀ) ଉତ୍ତାନଶାୟିନୀ ।

ଉତ୍ତାନଶୀବନ୍—ପୁଂ ବିଂ. ଉତ୍ତାନସ୍ଥିତ ।

ଉତ୍ତାନିତ—ବିଂ (ଉତ୍ତାନ + ଣିଂ. ତ) ଊର୍ଦ୍ଧ୍ୱମୁଖୀକୃତ, ଊର୍ଦ୍ଧ୍ୱୀକୃତ, ବିସ୍ତାରିତ ।

ଉତ୍ତାପ—ପୁଂ.ବିଂ.(ଉତ୍ + ତପ୍ + ଘ ଅ) ଉଷ୍ଣତା, ତାପ, ଉଷ୍ମା, ସନ୍ତାପ, ଗ୍ରୀଷ୍ମ, ଗରମ, ତେଜ, ରାଗ କ୍ରୋଧ ।

ଉତ୍ତାପନ—କ୍ଳୀ ବି (ଉତ୍ + ତପ୍ + ଣି + ଣ ଅନ ) ତାପିତକରଣ, ତତାଇବା, ଗରମ କରିବା, (ସ୍ତ୍ରୀ. ବିଂ.) (ଲ-ଅର୍ଥ ) ସୁପୀଡ଼ିତ ।

ଉତ୍ତାପିତ—ବିଂ. (ଉତ୍ + ତପ୍ + ଣି + ତ) ଯାହା ଉତ୍ତପ୍ତ ହୋଇଅଛି, ଉଷ୍ମୀକୃତ, ସନ୍ତାପିତ, ନିପୀଡ଼ିତ, ଗରମ କରାଯାଇଥିବା ।

ଉତ୍ତାର—ସ୍ତ୍ରୀ ବି. (ସଂ-ଉତ୍ତର) ଉତ୍ତର, ଛୁଡ଼ନିସ୍ତା, ନକଲ, କପି, (ବି.(ଉତ୍ + ତୃ + ଣ,ଅ) ବମନ, ଉତ୍ତରଣ, ପାରିହେବା, (ବିଂ) ଉଚ୍ଚଶବ୍ଦଯୁକ୍ତ, ଉତ୍କୃଷ୍ଟ, ଊର୍ଦ୍ଧ୍ୱଗତ ତାରକ ବିଶିଷ୍ଟ ।

ଉତ୍ତାରକ—ପୁଂ ବିଂ. (ଉତ୍ + ତୃ + ଣି + ଣ, ଅକ ) ଯେ ପାରକରେ, ଯେ ଅବତରଣ କରାଏ, (ବି) ଶିବ ।

ଉତ୍ତାରଣ—କ୍ଳୀ ବି. (ଉତ୍ + ତୃ + ଣ. ଅନ) ଉତ୍ତୋଳନ, ପରେଗମନ, ଉତ୍ତରଣ, (ପୁଂ) ବିଷ୍ଣୁ, (ବିଂ) ଉଦ୍ଧାରକ, ଉପରେ ଗମନକାରୀ ।

ଉତ୍ତାରିବା—ସ୍ତ୍ରୀ କ୍ରି. (ସଂ-ଉତ୍ତରଣ ) ନକଲ କରିବା, (ଗ୍ରାମ୍ୟ) କାଢ଼ିବା, ଓହ୍ଲାଇଦେବା, ଜଳକୁ ଖସାଇ ପକାଇବା, ଚୁଲ୍ଲୀରୁ ଓହ୍ଲାଇବା, ବାହାର କରିଦେବା, ପାଲଟିବା ।

ଉତ୍ତାଳ—ପୁଂ.ବିଂ. (ଉତ୍ + ତୃ + ଇନ୍) ଚପଳ, ଉଦ୍ଧାରକ, ଚଞ୍ଚଳ, ଅସ୍ଥିର, କମ୍ପମାନ (ସ୍ତ୍ରୀ) ଉତ୍ତାରିଣୀ ।

ଉତ୍ତାର୍ଯ୍ୟ ବିଂ. ( ଉତ୍ + ତୃ + ଣି. ଯ ) ଉଦ୍ଧାର୍ଯ୍ୟ, ତରଣଯୋଗ୍ୟ, ଉଦ୍‌ବମନୀୟ ପରେନେତବ୍ୟ ।

ଉତ୍ତାରୁ—ଗ୍ରା .ଅବ୍ୟ.(ସଂ-ଉତ୍ତର) ପରେ ।

ଉତ୍ତାରେ—କ୍ରି. ବିଂ. ପରେ, ଉତ୍ତାରୁ ।

ଉତ୍ତାଳ—ବିଂ. ( ଉତ୍ + ତଲ୍ + ଅ ) ଉନ୍ନତ, ଉତ୍କୃଷ୍ଟ, ତ୍ୱରିତ, ଅସ୍ଥିର, ଯୋଉଁକର ଗୁଲେ, ବଳସ୍ୱର, ଶ୍ରେଷ୍ଠ, ମହାନ୍ ଉତ୍କଟ, ଭୟାନକଶବ୍ଦକାରୀ, ପ୍ଲବଙ୍ଗମ, (ବି) ଭେକ, ବାନର, ହରିଣ, (ଗ୍ରା. ବି ଅସ୍ଥିରତା, ଉତ୍କଣ୍ଠା ।

ଉତ୍ତାଳତରଙ୍ଗ ସ୍ଥିତ—ବିଂ. ଉତ୍ତାଳ ତରଙ୍ଗ ଉଠୁଥିବା (ସମୁଦ୍ର) ।

ଉତ୍ତିଷ୍ଠ—କ୍ରି. (ସଂ-ମୂଳକ) ଉଠ, ଉତ୍‌ଥିତ ହୁଅ ।

ଉତ୍ତିଷ୍ଠତ—କ୍ରି. ( ସଂ. + ମୂଳକ) ଉଠ, ଚେଷ୍ଟାକର, ଉଦ୍‌ଯୋଗୀ ହୁଅ ।

ଉତ୍ତିଷ୍ଠହୋମ—ପୁଂ. ବି. ଯଜ୍ଞବିଶେଷ, ଠିଆହୋଇ ହୋମ କରିବା ଯାଗବିଶେଷ ।

ଉତ୍ତିଷ୍ଠମାନ—ପୁଂ.ବିଂ.(ଉତ୍ + ସ୍ଥା + କ, ଆନ) ଉତ୍ଥାନଶୀଳ, ବୃଦ୍ଧିଶୀଳ, ବର୍ତ୍ତିମାନ, ଚେଷ୍ଟମାନ, ଉଦ୍‌ଯୁଜ୍ୟମାନ, ଯେ ଉଦ୍‌ଯୋଗ କରୁଅଛି, (ସ୍ତ୍ରୀ) ଉତ୍ତିଷ୍ଠମାନା ।

ଉତ୍ତୀର୍ଣ୍ଣ—ବିଂ. (ଉତ୍ + ତୃ + ର୍ମ,ତ ) ପାରଗତ, ଜଳରୁବାହାରିବା, ନିର୍ଗତ, ଅତିକ୍ରାନ୍ତ, ଉପସ୍ଥିତ କୃତକାର୍ଯ୍ୟ, ମୁକ୍ତ, ନିଷ୍କୃତିପ୍ରାପ୍ତ, ପାରହୋଇଥିବ ।

ଉତ୍ତୁଙ୍ଗ—ବିଂ (ଉତ୍ + ତୁଙ୍ଗ୍ + ଅ ) ଉଚ୍ଚ, ଉନ୍ନତ, ଅତିଉଚ୍ଚ ଡେଙ୍ଗା, ଅତଡ଼ିଆ ।

ଉତ୍ତୁର—ବମ୍ବାଇପ୍ରଦେଶ ନାସିକ ପୁନାଜିଲାର ଗୋଟିଏ ନଗର ।

ଉତ୍ତୁଷ—ପୁଂ.ବି. (ଉତ୍ + ତୁଷ) ବ୍ରୀହି, ଲାଜା ଖଇ, ଲିଆ, ଭୃଷ୍ଟଧାନ୍ୟ ।

ଉତ୍ତେଜକ—ପୁଂ ବିଂ. (ଉତ୍ + ତିଜ୍ + ଣ, ଅକ) ଉଦ୍ଦୀପକ, ପ୍ରବର୍ତ୍ତକ, ପ୍ରୋତ୍ସାହକ, ଉତ୍ସାହଜନକ, ଯେ ମତାଏ, ତୀକ୍ଷ୍ଣକାରକ, ତେଜସ୍କର, ତେଜୋଜନକ, ଜୀବନଶକ୍ତିର ବର୍ଦ୍ଧକ ବା ସଞ୍ଚାରକ, (ବି) ଉଦ୍ଦୀପକ ବସ୍ତୁ ।

ଉତ୍ତେଜନ—କ୍ଳୀ ବି. (ଉତ୍ + ତିଜ୍ + ଣ ଅନ) ତୀକ୍ଷ୍ଣକାରଣ, ଧାରଦେବା, ଉଦ୍ଦୀପନ, ପ୍ରବଳପ୍ରେରଣ; ଚିତ୍ତବିକ୍ଷୋଭ,

ପ୍ରୋତ୍ସାହନ, ଉତ୍ସାହଦାନ, ତେଜୋଜନନ, ତେଜଃପ୍ରଦାନ ।

ଉତ୍ତେଜନା — ସ୍ତ୍ରୀ. ବ. (ଉତ୍ + ତିଜ୍ + ଣି, ଅନ + ଆ) ଶାଣାଦିଦ୍ୱାରା ତୀକ୍ଷ୍ଣକରଣ, ପ୍ରେରଣା, ପ୍ରବର୍ତ୍ତନ, ଉଦ୍ଦୀପନ, ଚଢ଼ାଇବା, ପକେଇବା, ଧମକାଇବା, ଉଦ୍ଦୀପନ, ଉତ୍ସାହଦାନ, ସଜୀବକରଣ ।

ଉତ୍ତେଜିତ — ବିଂ. (ଉତ୍ + ତିଜ୍ + ଣି, ତ) ଉଦ୍ଦୀପିତ, ପ୍ରେରିତ, ଶାଣିତ, ଉଦ୍ୟୁକ୍ତ, ବିରକ୍ତ, ଘଣ୍ଟାହୋଇଥିବା, ପ୍ରବର୍ତ୍ତିତ (ବି) ଅଶ୍ୱଗତିବିଶେଷ (ସ୍ୱ.ତ) ।

ଉତ୍ତେରିତ — କ୍ଲୀ. ବ. (ଉତ୍ + ତୃ + ଇତ) ଅଶ୍ୱଗତିଭେଦ, ଅଶ୍ୱ ।

ଉତ୍ତୋରଣ — ବିଂ. (ଉତ୍ + ତୋରଣ) ଉଚ୍ଚପୁରଦ୍ୱାରଯୁକ୍ତ ନଗରାଦି, ଉଚ୍ଚବହିର୍ଦ୍ୱାରଯୁକ୍ତ ନଗର ।

ଉତ୍ତୋଳକ — ପୁଂ. ବିଂ. ଯେ କୌଣସି ବସ୍ତୁକୁ ଉପରକୁ ଟେକେ, ଉତ୍ଥାପକ ।

ଉତ୍ତୋଳନ — କ୍ଲୀ. ବ. (ଉତ୍ + ତୁଲ୍ + ଣି, ଅନ) ଉତ୍ଥାପନ, ଉପରକୁ ଉଠାଇବା, ଟେକିବା, ଉପରକୁ ଟାଣିବା, ଅଶ୍ୱର ବେଗଯୁକ୍ତ ଗତିବିଶେଷ ।

ଉତ୍ତୋଳିତ — ବିଂ. (ଉତ୍ + ତୁଲ + ତ) ଉତ୍କ୍ଷିପ୍ତ, ଉଠାହୋଇଥିବା, ଊର୍ଦ୍ଧ୍ୱକୁ ନୀତ, ଉନ୍ନମିତ, ଉଚ୍ଚକରାଯାଇଥିବା ।

ଉତ୍ତ୍ୟକ୍ତ — ବିଂ. (ଉତ୍ + ତ୍ୟଜ୍ + ଣି. ତ) ପରିତ୍ୟକ୍ତ, ବିରକ୍ତ, ଊର୍ଦ୍ଧ୍ୱକୁ କ୍ଷିପ୍ତ, ଉତ୍କ୍ଷିପ୍ତ ।

ଉତ୍ତ୍ରସ୍ତ — ପୁଂ. ବିଂ. (ଉତ୍ + ତ୍ରସ୍ + ତ) ଚକିତ, ସନ୍ତ୍ରସ୍ତ, ଅତିଭୀତ, ଅତର୍କ୍କ (ସ୍ତ୍ରୀ) ଉତ୍ତ୍ରସ୍ତା ।

ଉତ୍ତ୍ରାସ — ପୁଂ. ବ. (ଉତ୍ + ତ୍ରସ୍ + ଅ) ଅତିଭୟ, ଚମକ ।

ଉତ୍ଥ — ବିଂ. (ଉତ୍ + ସ୍ଥା + କ.ଅ) ଉତ୍ଥିତ, ଉନ୍ନତ, ଉଦ୍‌ଗତ, ଉତ୍ପନ୍ନ, ଜାତ, ଉଦିତ ।

ଉତ୍ଥଲନ — କ୍ଲୀ. ବ. (ଉତ୍ + ସ୍ଥଲ + ଣ, ଅନ) ଉପରକୁ ଉଚ୍ଛୁଳୁଥିବା, ଉତୁରିବା ।

ଉତ୍ଥଲିତ — ବିଂ. (ଉତ୍ + ସ୍ଥଲ + ଣି, ତ) ଉଚ୍ଛୁଳିପଡ଼ିଥିବା, ଉତୁରିପଡ଼ିଥିବା ।

ଉତ୍ଥାନ — କ୍ଲୀ. ବ. (ଉତ୍ + ସ୍ଥା + ଣ, ଅନ) ଊର୍ଦ୍ଧ୍ୱପତନ, ଉଦ୍ୟମ, ଉଦୟ, ଉନ୍ନତି, ପଠାଇବା, ଉତ୍ସାହ, ଅଭ୍ୟୁଦୟ, ଉତ୍ପତ୍ତି, ହର୍ଷ, ରାଜ୍ୟଚନ୍ତା, ପ୍ରକାଶପାଇବା, ବିଦ୍ରୋହ, ଶଯ୍ୟାତ୍ୟାଗ, ପ୍ରାଙ୍ଗଣ, ପୁସ୍ତକ, ଯୁଦ୍ଧ, ଉଠିବା, ତନ୍ତ୍ର, ପୌରୁଷ, ପ୍ରଜାମେଳି, ଉଦ୍ରେକ, ଠିଆହେବା, ମଳରୋଧ, ସୈନ୍ୟ, ପୁନର୍ଜ୍ଜୀବନଲାଭ, ଚୈତ୍ୟ, ଯଜ୍ଞଗୃହ ।

ଉତ୍ଥାନପତନ — କ୍ଲୀ. ବ (ଦ୍ୱନ୍ଦ୍ୱ) ଉଠିବା ପଡ଼ିବା, ଅଭ୍ୟୁଦୟ ଓ ବିନାଶ ।

ଉତ୍ଥାନଶକ୍ତି — ସ୍ତ୍ରୀ ବ. (୬ ତତ୍) ଶଯ୍ୟା ବା ଆସନରୁ ଉଠିବାର କ୍ଷମତା ।

ଉତ୍ଥାନଶକ୍ତିରହିତ - ବିଂ. (୩ତତ୍) ଦୁର୍ବଳ, ଶକ୍ତିହୀନ, କ୍ଷୀଣ, ଉନ୍ନତିଲାଭର କ୍ଷମତାଶୂନ୍ୟ ।

ଉତ୍ଥାନୈକାଦଶୀ — ସ୍ତ୍ରୀ. ବ. (ଉତ୍ଥାନ + ଏକାଦଶୀ) କାର୍ତ୍ତିକମାସର ଶୁକ୍ଳ ଏକାଦଶୀ ।

ଉତ୍ଥାପକ — ପୁଂ. ବିଂ. (ଉତ୍ + ସ୍ଥାପି + ଣ, ଅକ) ଯେ କୌଣସିବିଷୟ ଉତ୍ଥାପନ କରେ, ଯେ ଉଠାଏ, ପ୍ରସ୍ତାବକ, ପ୍ରବୋଧକ, ଉତ୍ଥାପନକର୍ତ୍ତା, (ସ୍ତ୍ରୀ) ଉତ୍ଥାପିକା ।

ଉତ୍ଥାପନ — କ୍ଲୀ. ବ. (ଉତ୍ + ସ୍ଥାପି + ଣ, ଅନ) ଉତ୍ତୋଳନ, ପ୍ରେରଣ, ପ୍ରବୋଧନ, କ୍ଷୋଭନ, ଉଠାଇବା, ପ୍ରସ୍ତାବନା, ଉପସ୍ଥାପିତକରିବା, ହଲଚଲ କରିବା ।

ଉତ୍ଥାପନଚତୁର୍ଦ୍ଦଶୀ — ସ୍ତ୍ରୀ. ବ. କାର୍ତ୍ତିକ ଶୁକ୍ଳ ଚତୁର୍ଦ୍ଦଶୀ, ଏଥିରେ ମହାଦେବଙ୍କର ନିଦଭଙ୍ଗାଯାଏ, ଭୁବନେଶ୍ୱର ଲିଙ୍ଗରାଜଙ୍କର ଯାତ୍ରାବିଶେଷ ।

ଉତ୍ଥାପିତ — ବିଂ. (ଉତ୍ + ସ୍ଥାପି + ତ) ଉତ୍ତୋଳିତ, ପ୍ରେରିତ, ପ୍ରବୋଧିତ, କ୍ଷୋଭିତ, ଯାହାଉତ୍ଥାପନ କରାହୋଇଅଛି, ଉପରକୁ ଉଠାଯାଇଥିବା, ଉପସ୍ଥାପିତ ।

ଉତ୍ଥିତ - ବିଂ. (ଉତ୍ + ସ୍ଥା + ତ) ପ୍ରକାଶିତ, ଉଦିତ, ଘଟିଥିବା, ଦଣ୍ଡାୟମାନ, ଅନୁଭୂତ, ପ୍ରତ୍ୟକ୍ଷୀକୃତ, ଉନ୍ନତ, ଉଦ୍ୟତ, ଉଦ୍‌ଗତ, ବୃଦ୍ଧିଯୁକ୍ତ, ପ୍ରଜ୍ୱଳିତ, ପୁନର୍ଣ୍ଣବିତ, ପ୍ରବୃଦ୍ଧ, ସ୍ଫୁରିତ, ନିର୍ଗତ, ଉତ୍ତୀର୍ଣ୍ଣ, ଆବିର୍ଭୂତ, ସଦ୍ୟୋଗତ, ବର୍ଦ୍ଧିତ ।

ଉତ୍ଥିତହେବା - ଗ୍ରା. କି. ଉଠିବା, ଘଟିବା, ନିର୍ଗତହେବା, ଉପରକୁ ଉଠିବା, ନିଦ୍ରାରୁ ଉଠିବା, ବସିବାସ୍ଥାନରୁ ଉଠିବା ।

ଉତ୍ଥିତାଙ୍ଗୁଳି — ପୁଂ. ବ. ବିସ୍ତୃତାଙ୍ଗୁଳି, କରତଳ, ଚପେଟ, ଚାପୁଡ଼ ।

ଉତ୍ଥିତି — ସ୍ତ୍ରୀ. ବ. (ଉତ୍ + ସ୍ଥା + ଣ. ତି) ଉଚ୍ଚତା, ଉଠିବା, ଠିଆହେବା, ପ୍ରବୋଧନ ।

ଉତ୍ପକ୍ଷ୍ମ — ପୁଂ. ବ. (ଉତ୍ + ପକ୍ଷ୍ମ) ଆଗ୍ରହାତିଶଯ୍ୟରେ ଯେ ଆଖି ପତାକୁ ଉପରକୁ ଉଠାଇଥାଏ, (ସ୍ତ୍ରୀ) ଉତ୍ପକ୍ଷ୍ମା ।

ଉତ୍ପଚିଷ୍ଣୁ — ପୁଂ. ବିଂ. (ଉତ୍ + ପଚ୍ + ଇଷ୍ଣୁ) ଊର୍ଦ୍ଧ୍ୱକୁ ପତନଶୀଳ ।

ଉତ୍ପଟ — ପୁଂ. ବ. (ଉତ୍ + ପଟ୍ + ଅ) ବୃକ୍ଷାଦିର ବକଳ ଭେଦକରି ବାହାରିବା ରସ, ବୃକ୍ଷାଦିର ତ୍ୱକ୍ ଭେଦ କରି ଉଦ୍‌ଗତ ନିର୍ଯ୍ୟାସ ।

ଉତ୍ପତ — ପୁଂ. ବିଂ. (ଉତ୍ + ପତ୍ + କ. ଅ) ପକ୍ଷୀ, (ବିଂ) ଊର୍ଦ୍ଧ୍ୱଗାମୀ ।

ଉତ୍ପତନ — କ୍ଲୀ. ବ. (ଉତ୍ + ପତ୍ + ଣ. ଅନ) ଊର୍ଦ୍ଧ୍ୱଗମନ, ଉତ୍ପତ୍ତି, ଉଦୟ, ଉତ୍ଥାନ, ଉତ୍ପ୍ଲବନ, ଉପରକୁ ଡେଇଁବା, ଲମ୍ଫନ, ଉଡ଼ିବା ।

ଉତ୍ପତନପତା - ସ୍ତ୍ରୀ. ବ. ଉତ୍ପତନାଦି ନିର୍ଦ୍ଦେଶାର୍ଥ ଚିହ୍ନ । [ ପୁରାଣ ।

ଉତ୍ପତାକ — ବିଂ. ଉତ୍ତୋଳିତ ପତାକାଯୁକ୍ତ

ଉତ୍ପତିତ - ପୁଂ. ବ. (ଉତ୍ + ପତ୍ + କ. ତ) ଉତ୍ଥିତ, ଉଦ୍‌ଗତ, ଉଦ୍‌ଘାଟିତ, ଉଡ୍ଡୀନ, ଉଦିତ, ଉପରକୁ ଉଠିଥିବା, (ସ୍ତ୍ରୀ) ଉତ୍ପତିତା ।

ଉତ୍ପତିଷ୍ଣୁ — ପୁଂ. ବିଂ. (ଉତ୍ + ପତ୍ + ଇଷ୍ଣୁ) ଉତ୍ପତନଶୀଳ, ଊର୍ଦ୍ଧ୍ୱକୁ ଡେଇଁବାକୁ ପ୍ରସ୍ତୁତ, ଉଡ଼ିବାରେ ଅଭ୍ୟସ୍ତ, ଉଡ଼ୁଥିବା, ଉଡ଼ିବାକୁ ପ୍ରସ୍ତୁତ ।

ଉତ୍ପତିତା — ପୁଂ. ବିଂ. (ଉତ୍ + ପତ୍ + କ, ତୃ) ଡେଇଁଥିବା, ଊର୍ଦ୍ଧ୍ୱଗାମୀ, (ସ୍ତ୍ରୀ) ଉତ୍ପତିତ୍ରୀ ।

ଉତ୍ପତ୍ତି—ସ୍ତ୍ରୀ ବି. (ଉତ୍ + ପଦ୍ + ଭା,ତି) ଉଦ୍ଭବ,ଜନ୍ମ, ଆବିର୍ଭାବ,ବୃଦ୍ଧ୍ୟୁତ୍ପତନ, ଆରମ୍ଭ, ଘଟନା, ଉତ୍ପାଦନ, ଉତ୍ପନ୍ନ ଦ୍ରବ୍ୟ, ଉପନୟନ ହେବାରୁ ବ୍ରାହ୍ମଣାଦିର ଦ୍ୱିତୀୟ ଜନ୍ମ ।

ଉତ୍ପତ୍ତିକ୍ରମ—ପୁଂ.ବି. (୬ତତ୍) ଜଗତର ଉତ୍ପତ୍ତିକ୍ରମ ଆତ୍ମାରୁ ଆକାଶ, ଆକାଶରୁ ବାୟୁ,ବାୟୁରୁ ଅଗ୍ନି, ଅଗ୍ନିରୁ ଜଳ, ଜଳରୁ ପୃଥିବୀ, ପୃଥିବୀରୁ ଔଷଧି, ଔଷଧିରୁ ଅନ୍ନ, ଅନ୍ନରୁ ରେତଃ,ରେତରୁ ପୁରୁଷ ସମ୍ଭୂତ ।

ଉତ୍ପତ୍ତିବ୍ୟୁତ୍କ୍ରମ— ପୁଂ. ବି. ଉତ୍ପତ୍ତିକ୍ରମର ବିପରୀତ କ୍ରମ, ଯଥା—ସ୍ଥଳସ୍ଥରେ ପୃଥିବୀ ଜଳରେ ଇତ୍ୟାଦି ବିପରୀତ ଭାବେ ଉତ୍ପତ୍ତି ।

ଉତ୍ପତ୍ତିମୂଳ—କ୍ଲୀ. ବି, (୬ତତ୍)ଜନ୍ମସ୍ଥଳ, ଆଦି, ଆରମ୍ଭ ।

ଉତ୍ପତ୍ତିସ୍ଥାନ—କ୍ଲୀ.ବି. (୬ତତ୍)ଜନ୍ମସ୍ଥାନ, ନଦୀ ଆଦି ଯେଉଁଠାରୁ ବାହାରି ଥାଏ, ଆରମ୍ଭ ।

ଉତ୍ପଥ—ପୁଂ. ବି. ଶାସ୍ତ୍ରବିରୁଦ୍ଧ, ନ୍ୟାୟ-ଅତିକ୍ରମ, କୁପଥ, ଅସତ୍ପଥ ।

ଉତ୍ପଥଗାମୀ—ପୁଂ. ବିଂ. (ଉତ୍ପଥ + ଗମ୍ + କ. ଇନ୍) ଯେ ଅବାଟରେ ଯାଏ, ବିପଥଗାମୀ (ସ୍ତ୍ରୀ) ଉତ୍ପଥଗାମିନୀ ।

ଉତ୍ପଥପ୍ରତିପନ୍ନ—ପୁଂ. ବିଂ. ଯେ କୁପଥ ଅବଲମ୍ବନ କରିଥାଏ, ଅସତ୍, ମନ୍ଦ, ଦୁରାଚାର ।

ଉତ୍ପଥପ୍ରବୃତ୍ତ—ପୁଂ. ବିଂ. (୬ତତ୍) ଯେ କୁମାର୍ଗ ଆଶ୍ରୟ କରେ, ମନ୍ଦ, ଅସତ୍ ।

ଉତ୍ପଥାଶ୍ରୟୀ—ପୁଂ.ବିଂ.(ଉତ୍ପଥ + ଆଶ୍ରୟ + କ.ଇନ୍) ଅସତ୍ପଥାବଲମ୍ବୀ, ଉନ୍ମାର୍ଗଗାମୀ, କଦାଚାରୀ,ସଦାଚାରଭ୍ରଷ୍ଟ, (ସ୍ତ୍ରୀ) ଉତ୍ପଥାଶ୍ରୟିଣୀ ।

ଉତ୍ପଦ୍ୟମାନ--ପୁଂ ବିଂ (ଉତ୍ + ପଦ୍ + ଯ + କ.ଆନ) ଜାୟମାନ, ଘଟୁଥିବା, ଉଦିତ ହେଉଥିବା, ଯାହା ଉତ୍ପନ୍ନ ହୋଇଅଛି, (ସ୍ତ୍ରୀ) ଉତ୍ପଦ୍ୟମାନା ।

ଉତ୍ପନ୍ନ-ବିଂ.(ଉତ୍ + ପଦ୍ + କ.ତ)ଜାତ, ଉଦ୍ଭୂତ, ଉତ୍ଥିତ, ସୃଷ୍ଟ, ନିର୍ମିତ, ଆବିର୍ଭୂତ, ଘଟିଥିବା ।

ଉତ୍ପନ୍ନ--ସ୍ତ୍ରୀ. ବିଂ. ଆୟ, ଲାଭ, ଜନ୍ମ; ଉତ୍ପତ୍ତି, ଉତ୍ପନ୍ନ ଶସ୍ୟାଦି ।

ଉତ୍ପନ୍ନବୁଦ୍ଧି—ପୁଂ. ବିଂ. (ବ.ବ୍ରୀ) ଉପସ୍ଥିତ ବୁଦ୍ଧିବିଶିଷ୍ଟ, ପ୍ରତ୍ୟୁତ୍ପନ୍ନମତି, ସ୍ତ୍ରୀ.ବି. (କ.ଧା) କାର୍ଯ୍ୟକାଳରେ ସହସା ଉପସ୍ଥିତ ବୁଦ୍ଧି ।

ଉତ୍ପନ୍ନଭକ୍ଷୀ-ପୁଂ.ବିଂ. (ଉତ୍ପନ୍ନ + ଭକ୍ଷିନ୍) ଯେ ପ୍ରତିଦିନ ଆଣିଖାଏ, ଯାହାର ଦୈନିକ ଆମଦାନି ସେହି ଦିନର ଖରଚକୁ ହୁଏ—ବାସିକୁ ରହେ ନାହିଁ ।

ଉତ୍ପଳ—କ୍ଲୀ.ବି. (ଉତ୍ + ପଲ୍ + କ ଅ) କମଳ, ନଳିନ, ଅମ୍ଭୋଜ, କୁମୁଦ, ଜଳପୁଷ୍ପ କଇଁ, କୁଷ୍ଠ, ଜଳଜାତ ଲତାବିଶେଷ, (ବିଂ) ନିର୍ମାଂସ, ମାଂସହୀନ, (ବି) କୁମୁଦାଦି, କୁଷ୍ଠୌଷଧି, ଜଣେ ବିଖ୍ୟାତ ଜ୍ୟୋତିର୍ବିଦ୍, ବୌଦ୍ଧମତେ ନରକ । [ଭେଦ ।

ଉତ୍ପଳଗନ୍ଧ—କ୍ଲୀ.ବି. ଗୋଶୀର୍ଷ, ଚନ୍ଦନ-

ଉତ୍ପଳପତ୍ର—କ୍ଲୀ. ବି. (୬ ତତ୍) ସୁଶ୍ରୁତୋକ୍ତ ଚିକିତ୍ସା ଅସ୍ତ୍ରବିଶେଷ, କମଳଦଳ, ପଦ୍ମପାଖୁଡ଼ା, ସ୍ତ୍ରୀଲୋକର ନଖାଘାତ ତିଳକ ।

ଉତ୍ପଳପୁର—କ୍ଲୀ.ବି.କାଶ୍ମୀରର ଗୋଟିଏ ପ୍ରାଚୀନ ନଗର ।

ଉତ୍ପଳଭେଦ୍ୟକ—ପୁଂ.ବି. ସୁଶ୍ରୁତୋକ୍ତ କର୍ଣ୍ଣବନ୍ଧାକୃତି ଭେଦ ।

ଉତ୍ପଳଶାରିବା—ସ୍ତ୍ରୀ.ବି (କ.ଧା) ଶ୍ୟାମାଲତା, ସୁଆଁ ଲଇ ।

ଉତ୍ପଳଷଟ୍କ-କ୍ଲୀ.ବି. ଜ୍ୱରାତିସାରରୋଗର ଔଷଧବିଶେଷ ।

ଉତ୍ପଳାକ୍ଷ—ପୁଂ.ବି. କାଶ୍ମୀରର ଜଣେ ପ୍ରାଚୀନ ରାଜା, (ବିଂ. ବ.ବ୍ରୀ) ପଦ୍ମଲୋଚନ,କମଳନେତ୍ର,(ସ୍ତ୍ରୀ) ଉତ୍ପଳାକ୍ଷୀ ।

ଉତ୍ପଳାଦି—ବୈଦ୍ୟୋକ୍ତ ଔଷଧବିଶେଷ ।

ଉତ୍ପଳାପୀଡ଼—ପୁଂ.ବି. କାଶ୍ମୀରର ରାଜାବିଶେଷ ।

ଉତ୍ପଳାବନ—କ୍ଲୀ.ବି. ପାଞ୍ଚାଳସ୍ଥ ଗୋଟିଏ ଅତି ପ୍ରାଚୀନ ତୀର୍ଥ ।

ଉତ୍ପଳିନୀ-ସ୍ତ୍ରୀ. ବି. (ଉତ୍ପଳ + ଇନ୍ + ଈ) ଜଳପୁଷ୍ପବିଶେଷ,କୈରବିଣୀ,କୁମୁଦ୍ୱତୀ, କୁମୁଦିନୀ, ଚନ୍ଦ୍ରେଷ୍ଟା, କୁବଳୟିନୀ, ଇନ୍ଦୀବରିଣୀ, ନୀଳୋତ୍ପଳିନୀ, ଛନ୍ଦୋବିଶେଷ ।

ଉତ୍ପଳେଶ୍ୱର-ପୁଂ.ବି. ମହାନଦୀର ନାମାନ୍ତର, ସ୍ୱନାମ ପ୍ରସିଦ୍ଧ ଶିବଲିଙ୍ଗବିଶେଷ ।

ଉତ୍ପବନ—କ୍ଲୀ.ବି.ପ୍ଲାବନ,ଯଜ୍ଞୀୟପାତ୍ରାଦି ସଂସ୍କାର ଭେଦ,କୁଶାଦି ଦ୍ୱାରା ଜଳୋତ୍କ୍ଷେପଣ, ମାର୍ଜନ ।

ଉତ୍ପଶ୍ୟ—ବିଂ. (ଉତ୍ + ଦୃଶ + କ.ଅ) ଊର୍ଦ୍ଧ୍ୱମୁଖ, ଊର୍ଦ୍ଧ୍ୱଦୃଷ୍ଟି, ଊର୍ଦ୍ଧ୍ୱମୁଖୀ, (ସ୍ତ୍ରୀ) ଉତ୍ପଶ୍ୟା ।

ଉତ୍ପାଟ—ପୁଂ. ବି. (ଉତ୍ + ପାଟି + ଭା.ଅ) ଉନ୍ମୂଳନ, କାନପତାରେ ହେବା ରୋଗବିଶେଷ ।

ଉତ୍ପାଟକ—ପୁଂ.ବିଂ (ଉତ୍ + ପାଟି + କ. ଅକ) ଉତ୍ପାଟନକାରୀ, ଉନ୍ମୂଳକ, ଯେ ଉପାଡ଼େ ଯେ ଭିତରୁ ବାହାରକୁ ଓଟାରି ଆଣେ, (ସ୍ତ୍ରୀ) ଉତ୍ପାଟିକା ।

ଉତ୍ପାଟନ—କ୍ଲୀ. ବି. (ଉତ୍ + ପାଟି + ଭା ଅନ) ଉନ୍ମୂଳନ, ଉପାଡ଼ିବା, ଦୂରୀକରଣ, ନିର୍ମୂଳ କରିବା, ଛଡ଼ାଇବା, ବହିଷ୍କରଣ, ସୁଶ୍ରୁତୋକ୍ତ ବ୍ରଣ ବେଦନାଭେଦ ।

ଉତ୍ପାଟନୀୟ—ବିଂ. (ଉତ୍ + ପାଟି + ର୍ମ. ଅନୀୟ) ଉନ୍ମୂଳନ ଯୋଗ୍ୟ, ଯାହାର ଉତ୍ପାଟନ କରିବା ଆବଶ୍ୟକ, (ସ୍ତ୍ରୀ) ଉତ୍ପାଟନୀୟା ।

ଉତ୍ପାଟୟିତା-ପୁଂ.ବିଂ. (ଉତ୍ + ପାଟି + କ.ତୃ) ଉତ୍ପାଟକ (ଦେଖ) ।

ଉତ୍ପାଟିକା—ସ୍ତ୍ରୀ. ବି. (ଉତ୍ + ପାଟି + କ ଆ) ବୃକ୍ଷର ଶୁଷ୍କ ଛାଲି, (ବି) ଉତ୍ପାଟନକର୍ତ୍ତ୍ରୀ ।

ଉତ୍ପାଟିତ-ବିଂ. (ଉତ୍ + ପାଟି + ର୍ମ ତ) ଉନ୍ମୂଳିତ, ଉପୁଡ଼ା ହୋଇଥିବା, ସମୂଳେ ବିନଷ୍ଟ, ବହିଷ୍କୃତ ।

ଉତ୍ପାଟୀ—ପୁଂ ବିଂ (ଉତ୍ + ପାଟି + କ. ଇନ୍) ଉତ୍ପାଟନକାରୀ, ଉତ୍ପାଟକ, ଉନ୍ମୂଳକ (ସ୍ତ୍ରୀ) ଉତ୍ପାଟିନୀ ।

ଉତ୍ପାତ—ପୁଂ.ବ. (ଉତ୍ + ପତ୍ + ଘ.ଅ) ଊର୍ଦ୍ଧ୍ୱପତନ, ଉତ୍ପତନ, ପ୍ରାଣୀମାନଙ୍କର ଅଶୁଭସୂଚକ ଅକସ୍ମାତ୍ ଦୈବଘଟନା, ଉପଦ୍ରବ, ଦୌରାତ୍ମ୍ୟ, ବିନାଶ, ଦ୍ରବ୍ୟାଦି ନଷ୍ଟ କରିବା, ଏହି ଉତ୍ପାତ ଦିବ୍ୟ ଆନ୍ତରୀକ୍ଷ ଓ ଭୌମ ଭେଦରେ ତିନି-ପ୍ରକାର ଅଟେ ।

ଉତ୍ପାତକ—ପୁଂ.ବ (ଉତ୍ପାତ + କ) ଊର୍ଦ୍ଧ୍ୱ ପତନଶୀଳ ଜନ୍ତୁବିଶେଷ, ମୃଗ, (ବିଂ) ଊର୍ଦ୍ଧ୍ୱପତନଶୀଳ ।

ଉତ୍ପାତକେତୁ—ପୁଂ.ବ. ଅମଙ୍ଗଳ ଚିହ୍ନ, ଉଲ୍‌କାପାତ, ଭୂମିକମ୍ପ, ଧୂମକେତୁ ପ୍ରଭୃତି ।

ଉତ୍ପାତମେଘ—ପୁଂ. ବ. (ମଧ୍ୟ-ପଦ ଲୋପୀ) ଉତ୍ପାତର ଲକ୍ଷଣ ସ୍ୱରୂପ ଅକାଳରେ ବହୁବୃଷ୍ଟି କରିବା, ମେଘ ବା ଉଲ୍‌କା-ପୁଞ୍ଜଯୁକ୍ତ ମେଘ ।

ଉତ୍ପାତଲକ୍ଷଣ—ବ. (୬ତତ୍) ଅମଙ୍ଗଳ-ଚିହ୍ନ, ଅଶୁଭସୂଚକ ଘଟନା ।

ଉତ୍ପାତସାଗର—ବ. (ବଶିଷ୍ଠଙ୍କ କୃତ) ଦୈବୀ ଅମଙ୍ଗଳମାନଙ୍କ ପୂର୍ବ ଚିହ୍ନମାନ ବର୍ଣ୍ଣିତ ହୋଇଥିବା ଜ୍ୟୋତିଷ ଗ୍ରନ୍ଥ-ବିଶେଷ । [ କାରୀ ।

ଉତ୍ପାତିଆ—ଗ୍ରା.ବିଂ.ଅତ୍ୟାଚାରୀ, ଅନିଷ୍ଟ-

ଉତ୍ପାଦ—ପୁଂ.ବ.(ଉତ୍ + ପାଦ + ଘ.ଅ) ଉତ୍ପତ୍ତି, ଉତ୍ପାଦନ, ନିଃସାରଣ, ଜନ୍ମ, (ବିଂ) ଉନ୍ନତଚରଣ ।

ଉତ୍ପାଦକ—ପୁଂ.ବ (ଉତ୍ + ପାଦ + ଅକ) ପଶୁବିଶେଷ, ଅଷ୍ଟପାଦ, ଶରଭ, ଗଜା-ରିତ, (ବିଂ) ଉତ୍ପତ୍ତିକାରକ, ଜନକ, ଗୁଣମାୟକ ।

ଉତ୍ପାଦନ—କ୍ଳୀ.ବ. (ଉତ୍ + ପାଦ + ଣିଚ୍,ଅନ) ଉତ୍ପତ୍ତିକରଣ, ଜନ୍ମାଇବା, ଜନ୍ମାନ,ଫଳରେ ଘଟାଇବା,ଦେଇବା, ଫଳିବା, ଅର୍ଜନ ।

ଉତ୍ପାଦନୀୟ—ବିଂ. (ଉତ୍ + ପାଦ + ଣିଚ୍ ଅନୀୟ) ଜନନୀୟ, ଉତ୍ପାଦନ କରିବାର ଯୋଗ୍ୟ ।

ଉତ୍ପାଦପୂର୍ବ—କ୍ଳୀ. ବ. ଜୈନଶାସ୍ତ୍ରୋକ୍ତ ଚତୁର୍ଦ୍ଦଶ ପୂର୍ବର ପ୍ରଥମ ।

ଉତ୍ପାଦୟିତା—ପୁଂ.ବିଂ. (ଉତ୍ + ପାଦ + ତୃ) ଯେ ଉତ୍ପନ୍ନ କରେ, ଜନୟିତା, ଜନ୍ମଦାତା, ନିର୍ମାତା, ପିତା (ସ୍ତ୍ରୀ) ଉତ୍ପାଦୟିତ୍ରୀ ।

ଉତ୍ପାଦଶୟନ—ପୁଂ.ସ୍ତ୍ରୀ.ବ. (ଉତ୍ପାଦ + ଶୀ + ଅନ) ଟିଟିଭପକ୍ଷୀ, ଟେଣ୍ଟେଇପକ୍ଷୀ, ଏ ପକ୍ଷୀ ଉପରକୁ ଗୋଡ଼ ଟେକି ଶୟନ କରେ ।

ଉତ୍ପାଦିକା—ସ୍ତ୍ରୀ. ବ. (ଉତ୍ + ପାଦ + ଅକ + ଆ) ଦେହିକା ନାମକ କୀଟ, ହିଲମୋଚିକା, ହିଞ୍ଚାଶାକ, ପୂତିକା, ପୋଇଶାଗ, ଉଇ ( ସ୍ତ୍ରୀ. ବ. ) ଜନନୀ, ଉତ୍ପାଦନକାରିଣୀ, ଜନ୍ମଦାତ୍ରୀ ।

ଉତ୍ପାଦିତ—ବିଂ.(ଉତ୍ + ପାଦ + ର୍ମ.କ୍ତ) ଜନ୍ମ କରାଯାଇଥିବା, ଜନିତ, ଜନ୍ମପ୍ରାପ୍ତ, କୃତ, ନିର୍ମିତ ।

ଉତ୍ପାଦୀ—ପୁଂ.ବିଂ. (ଉତ୍ + ପଦ୍ + କ, ଇନ୍) ଉତ୍ପତ୍ତିଶୀଳ, ଜନ୍ୟ, ଜନକ, ଉତ୍ପାଦକ,ଉତ୍ପନ୍ନକାରୀ (ସ୍ତ୍ରୀ) ଉତ୍ପାଦିନୀ ।

ଉତ୍ପାଦ୍ୟ—ବିଂ. (ଉତ୍ + ପାଦ + ର୍ମ,ଯ) ଜନନୀୟ, ଉତ୍ପାଦନଯୋଗ୍ୟ, ଜନ୍ମ-ଯୋଗ୍ୟ ।

ଉତ୍ପାଦ୍ୟମାନ—ବିଂ. (ଉତ୍ + ପାଦ + କ, ଆନ) ଯାହାର ଉତ୍ପାଦନ କରା-ହୋଇଅଛି, ଜନ୍ୟମାନ ।

ଉତ୍ପାବ—ପୁଂ. ବ. (ଉତ୍ + ପୂ + ଘ,ଅ) ଯଜ୍ଞୀୟପାତ୍ରାଦିର ସଂସ୍କାରବିଶେଷ ।

ଉତ୍ପାରଣ—କ୍ଳୀ. ବ. ଉତ୍ତରଣ,ଡେଇଁକରି ପାର ହେବା ।

ଉତ୍ପାଲୀ—ସ୍ତ୍ରୀ.ବ. (ଉତ୍ + ପାଳ + ଘ, ଅ + ଈ) ଆରୋଗ୍ୟ ।

ଉତ୍ପିଞ୍ଛ—ବିଂ. ବ. ବ୍ରୀ; (ଉତ୍ + ପିଞ୍ଛ) ଆଶାସ୍ତ୍ରୀ, ଉଦ୍‌ଗ୍ରୀବ, ଉଦ୍‌ବିଗ୍ନ, ଆନନ୍ଦୋତ୍ଫୁଲ୍ଲ, ଅସମ୍ଭାଳ, ଅସ୍ଥିର ।

ଉତ୍ପିଞ୍ଜର—ବିଂ.(ଉତ୍ + ପିଞ୍ଜର) ପିଞ୍ଜରମୁକ୍ତ, ବନ୍ଧନମୁକ୍ତ, ଉଚ୍ଛୃଙ୍ଖଳ, କାରାମୁକ୍ତ, ଫଳୁକ, ବଳପିତ, (ସ୍ତ୍ରୀ) ଉତ୍ପିଞ୍ଜରା ।

ଉତ୍ପିଞ୍ଜଳ—ବିଂ. (୬ତତ୍) ଅତିଶୟ, ବ୍ୟାକୁଳ, ପିଙ୍ଗଳ ବର୍ଣ୍ଣ ।

ଉତ୍ପିତ୍ସୁ—ପୁଂ. ବିଂ. (ଉତ୍ + ପତ୍ + ସ + ଉ) ଊର୍ଦ୍ଧ୍ୱକୁ ଗମନ କରିବାର ଇଚ୍ଛୁକ ।

ଉତ୍ପିପାସୁ—ପୁଂ.ବିଂ. (ଉତ୍ + ପା + ସ + ଉ)ଅତ୍ୟନ୍ତ ତୃଷାର୍ତ୍ତ, ଅତିବ୍ୟାକୁଳ, ଉଦ୍‌ବିଗ୍ନ, ଉତ୍କଣ୍ଠିତ ।

ଉତ୍ପିଷ୍ଟ—ବିଂ. (ଉତ୍ + ପିଷ୍ + ର୍ମ.କ୍ତ) ଉନ୍ମଥିତ, ପିଷ୍ଟ,ଚୂର୍ଣ୍ଣିତ, ମର୍ଦ୍ଦିତ(କ୍ଳୀ.ବ) ସ୍ତ୍ରୀତେଜ ସନ୍ଧିମୁକ୍ତରୂପ ଅସ୍ଥିଭଙ୍ଗ ବିଶେଷ ।

ଉତ୍ପୀଡ଼-ବ.(ଉତ୍ + ପୀଡ଼ + ଅ) ଉଦ୍ରେକ, ସଂଘର୍ଷଣ, ବାଧ, ଉନ୍ମଥନ, ଫେନ, ପୁଞ୍ଜି, ଉସ୍ତ, ଆଘାତ, ଆହତ ସ୍ଥାନ, ଉପଦ୍ରବ,ପ୍ରବାହ ଆଧିକ୍ୟ (ବିଂ)ସମ୍ୟକ୍ ପୀଡ଼କ ।

ଉତ୍ପୀଡ଼କ—ପୁଂ. ବିଂ (ଉତ୍ + ପୀଡ଼୍ + କ, ଅକ) ଉତ୍ପୀଡ଼ନକାରୀ, ଉପଦ୍ରବ-କାରୀ, ଅତ୍ୟାଚାରୀ, ବିଶେଷ କ୍ଳେଶ-ଦେଉଥିବା (ସ୍ତ୍ରୀ) ଉତ୍ପୀଡ଼ିକା ।

ଉତ୍ପୀଡ଼ନ—କ୍ଳୀ.ବ.(ଉତ୍ + ପୀଡ଼୍ + ଘ, ଅନ) ଉଦ୍ରେକନ, ପ୍ରବର୍ଦ୍ଧନ, ଆଧିକ୍ୟ, ଲୁଚ୍‌ଲୁଚ, ଅତ୍ୟାଚାର, ପେଲାପେଲି, ଠେସାଠେସି, ପୀଡ଼ାପୀଡ଼ି, ଉପଦ୍ରବ, କ୍ଳେଶ ଦେବା, ମର୍ମମର, ବାଧା ।

ଉତ୍ପୀଡ଼ିତ—ବିଂ.(ଉତ୍ + ପୀଡ଼୍ + ର୍ମ.କ୍ତ) ଉପଦ୍ରୁତ,କ୍ଳିଷ୍ଟ,ଅତିପୀଡ଼ିତ, ଗ୍ଳାନିତ, ଉତ୍କ୍ଷିପ୍ତ, ଉଦ୍ରେକିତ, ପ୍ରବର୍ଦ୍ଧିତ ।

ଉତ୍ପୁଚ୍ଛ—ବିଂ. (ବ.ବ୍ରୀ) ଊର୍ଦ୍ଧ୍ୱଲାଙ୍ଗୁଳ, (ସ୍ତ୍ରୀ) ଉତ୍ପୁଚ୍ଛା ।

ଉତ୍ପୁଟକ—ପୁଂ.ବ. (ଉତ୍ + ପୁଟ୍ + କ) କର୍ଣ୍ଣପାଲୀଗତ ରୋଗବିଶେଷ ।

ଉତ୍ପୁଲକ—ବିଂ.(ବ.ବ୍ରୀ.) ଜାତରୋମାଞ୍ଚ, ହୃଷ୍ଟ । [ ଅଗ୍ନି ।

ଉତ୍ପ୍ରଭ—ବିଂ. ପ୍ରଜ୍ୱଳିତ, ଉଦର୍ଚ୍ଚି (ବ)

ଉତ୍ପ୍ରାସ—ପୁଂ. ବ. (ଉତ୍ + ପ୍ର + ଅସ୍ + ଅ) ଉପହାସ, ଈଷତ୍ ହାସ୍ୟ, ଅଟ୍ଟହାସ, ଉତ୍କ୍ଷେପ ।

ଉତ୍ପ୍ରାସନ—କ୍ଲୀ.ବ.(ଉତ୍ + ପ୍ର + ଅସ୍ + ଣ୍ଣ.ଅନ) ଉପହାସ, ଉତ୍କ୍ଷେପ, ଉପରକୁ ଫୋପାଡ଼ିବା, ଉପହାସ, ଥଟ୍ଟା, ଅଳ୍ପହାସ ।

ଉତ୍ପ୍ରେକ୍ଷଣ କ୍ଲୀ.ବ. (ଉତ୍ + ପ୍ର + ଈକ୍ଷ + ଣ୍ଣ.ଅ.ନ) ଉଦ୍ଭାବନ,ସମ୍ଭାବନ,ଊର୍ଦ୍ଧ୍ୱଦୃଷ୍ଟି ।

ଉତ୍ପ୍ରେକ୍ଷା-ସ୍ତ୍ରୀ.ବ.(ଉତ୍ + ପ୍ର + ଈକ୍ଷ୍ + ଅ + ଆ)ଅନୁମାନ,ଉଦ୍ଭାବନ, ପରୀକ୍ଷଣ, ଅନବଧାନ, ଉପେକ୍ଷା, ବିତର୍କ, କାବ୍ୟାଲଂକାରବିଶେଷ, ଅନୁମାନ, ଦର୍ଶନ ।

ଉତ୍ପ୍ଲବନ—କ୍ଲୀ.ବ. (ଉତ୍ + ପ୍ଳୁ + ଣ୍ଣ. ଅନ) ଉଲ୍ଲମ୍ଫନ, ଡେଇଁବା, କୁଦିବା, ଉଚ୍ଛୁଳିପଡ଼ିବା, ଅଭିମନ୍ତ୍ରିତ କୁଶାଦିଯୁକ୍ତ ବାରି ଦ୍ୱାରା ଦ୍ରବ୍ୟଶୁଦ୍ଧି, ଜଳ ଉପରେ ଭାସିବା ।

ଉତ୍ପ୍ଲବା- ସ୍ତ୍ରୀ.ବ.(ଉତ୍ + ପ୍ଳୁ + ଅ + ଆ) ନୌକା ।

ଉତ୍ପ୍ଲୁତ—ବିଂ. (ଉତ୍ + ପ୍ଳୁ + କ.ତ) ଓଲଟପାଲଟ କରିଥିବା, ଅଡୁଆ, ଉପରକୁ ଡେଇଁଥିବା, କୁଦିଥିବା, ଉଚ୍ଛୁଳିଥିବା, ଭାସୁଥିବା, ବଢ଼ିଥିବା (ନଦୀ ଆଦି) ।

ଉତ୍ଫାଳ—ପୁଂ.ବ. (ଉତ୍ + ଫଲ + ଅ) ଉଲ୍ଲମ୍ଫନ, ବୃଦ୍ଧି ।

ଉତ୍ଫୁଲ୍ଲ—ବିଂ. (ଉତ୍ + ଫୁଲ + କ.ଅ) ପ୍ରଫୁଲ୍ଲ, ବିକଶିତ, ପ୍ରୀତ, ବର୍ଦ୍ଧିତ, ସ୍ଫୂର୍ତ୍ତିଯୁକ୍ତ, ଆନନ୍ଦିତ,ସ୍ତ୍ରୀଲୋକର କରଣବିଶେଷ,ଉତ୍ତାନ,(ସ୍ତ୍ରୀ)ଉତ୍ଫୁଲ୍ଲା,ଯୋନି ।

ଉତ୍ଫୁଲ୍ଲିତ— ଗ୍ରା.ବିଂ.ଉତ୍ଫୁଲ୍ଲ(ଦେଖ) ।

ଉତ୍‌ରୌଲା—ଅଯୋଧ୍ୟା ପ୍ରଦେଶାନ୍ତର୍ଗତ ଗୋଣ୍ଡା ଜିଲ୍ଲାର ଗୋଟିଏ ନଗର ।

ଉତ୍ସ—ପୁଂ.ବ. (ଉତ୍ + ସ)ଖାତ, କୂପ, ଉତ୍ସରଣ,ପ୍ରସ୍ରବଣ,ପର୍ବତ ଝରଣା,ଝର ।

ଉତ୍ସଙ୍ଗ—ପୁଂ.ବ. (ଉତ୍ + ସନ୍ଜ୍ + ଅ) ମଧ୍ୟଭାଗ, ଉରୁ, ତଳ, ପୃଷ୍ଠଦେଶ, ଅଗ୍ରଭାଗ, ଶିଖର, ନାଲୀ ବ୍ରଣର ତଳଦେଶ, ଆଭୋଗ, ଊର୍ଦ୍ଧ୍ୱଦେଶ, ପର୍ବତର ଢାଲୁ, ପର୍ବତର ଅଗ୍ରଭାଗ.ଅଙ୍କ,କୋଡ଼,କୋଳ, ସଙ୍ଗ, ସଂସର୍ଗ, ଆଲିଙ୍ଗନ, ଆସକ୍ତି, ଯୋଗ, ମିଳନ, ଗର୍ଭ, କୋଠାର ଛାତ, ଅଟ୍ଟାଳିକାର ଅଗ୍ରଭାଗ (ବିଂ)ସଙ୍ଗରହିତ, ଉତ୍ପନ୍ନ, ନଷ୍ଟ, ସନ୍ନ୍ୟାସୀ ।

ଉତ୍ସଙ୍ଗିତ—ବିଂ. (ଉତ୍ସଙ୍ଗ + ଇତ) କୋଳରେ ସ୍ଥାପିତ, ଅଙ୍କଗତ, ସଙ୍ଗପ୍ରାପ୍ତ, ମିଳିତ, ସମ୍ପୃକ୍ତ, ଆଲିଙ୍ଗିତ, ଏକତ୍ର ଜଡ଼ିତ ।

ଉତ୍ସଙ୍ଗୀ—ପୁଂ. ବିଂ. (ଉତ୍ସଙ୍ଗ + ଇନ୍) ଉତ୍ସଙ୍ଗଯୁକ୍ତ, ସଙ୍ଗୀ, ସହଚର, ନାଳଯୁକ୍ତ, ଗଭୀର, (ସ୍ତ୍ରୀ) ଉତ୍ସଙ୍ଗିନୀ,(ପୁଂ.ବ) ଗଭୀର, କ୍ଷତ, ନାଲିବ୍ରଣ ।

ଉତ୍ସଜ୍ଜନ—କ୍ଲୀ.ବ.(ଉତ୍ + ସନ୍ଜ୍ + ଣ୍ଣ. ଅନ) ଊର୍ଦ୍ଧ୍ୱସଂଯୋଜନ, ଉତ୍କ୍ଷେପଣ, ଉତ୍ତୋଳନ ।

ଉତ୍ସତ୍ତି—ସ୍ତ୍ରୀ.ବ. (ଉତ୍ + ସଦ୍ + ଣ୍ଣ.ତି) [ ଉଚ୍ଛେଦ ।

ଉତ୍ସଧି—ପୁଂ.ବ (ଉତ୍ସ + ଧା + ଇ)ଜଳପ୍ରବାହଶୀଳ କୂପ ।

ଉତ୍ସନ୍ନ—ବିଂ. (ଉତ୍ + ସଦ୍ + କ.ତ) ଉଚ୍ଛିନ୍ନ, ସମୂଳ ଛେଦନ, ନଷ୍ଟ, ଅନାଶ୍ୱାସ ସାଧ୍ୟ, ଲୁପ୍ତ, ଉତ୍ଥିତ, ବର୍ଦ୍ଧିତ, ଅଧଃପତିତ, ନିବୃତ୍ତ, ବିଗତ ।

ଉତ୍ସର୍ଗ—ପୁଂ.ବ. (ଉତ୍ + ସୃଜ୍ + ଣ୍ଣ.ଅ) ତ୍ୟାଗ, ଦାନ, ସାମାନ୍ୟ ବିଧି, ନ୍ୟାସ, ସାତ୍ତ୍ୱିକ କର୍ତ୍ତବ୍ୟ କ୍ରିୟାବିଶେଷ, ସ୍ୱତ୍ୱତ୍ୟାଗ, ମଳମୂତ୍ରାଦି ତ୍ୟାଗକ୍ରିୟା, ବ୍ରତସମାପ୍ତି, ଗୁହ୍ୟଦେଶ, ଦେବତା ଉଦ୍ଦେଶ୍ୟରେ ଦାନ ବା ନିବେଦନ, ପାଣି ଛଡ଼ାଇବା, (ଗ୍ରା ବ) ଉଚ୍ଛବ, ବେଧ, (ବିଂ) ଉଚ୍ଛନ୍ନ,ଉତ୍ସର୍ଗୀକୃତ, ଉତ୍ସୃଷ୍ଟ, ସଂକଳ୍ପିତ ।

ଉତ୍ସର୍ଗ କରିବା—ଗ୍ରା.କ୍ରି.କୌଣସି ବସ୍ତୁକୁ ଦେବତା ଉଦ୍ଦେଶ୍ୟରେ ଦାନକରିବା, ନିବେଦନ କରିବା, ଦାନକରିବା, ବଡ଼ଲୋକଙ୍କ ନାମରେ ଗ୍ରନ୍ଥକୁ ଉପହାର ଦେବା,ପ୍ରେତ ମ୍ବାର ମୁକ୍ତିନିମିତ୍ତ ବୃଷୋତ୍ସର୍ଗ କରିବା ।

ଉତ୍ସର୍ଗପତ୍ର—କ୍ଲୀ. ବ. ଯେଉଁ ପତ୍ରରେ କୌଣସି ବ୍ୟକ୍ତିଙ୍କୁ ଉତ୍ସୃଷ୍ଟ ହୋଇଥିବା ବିଷୟ ପୁସ୍ତକାଦ୍ୟରେ ବର୍ଣ୍ଣିତ ଥାଏ ।

ଉତ୍ସର୍ଜ୍ଜନ—କ୍ଲୀ. ବ.(ଉତ୍ + ସୃଜ୍ + ଣ୍ଣ, ଅନ) ଦାନ, ତ୍ୟାଗ, ବେଦୋତ୍ସର୍ଗରୂପ ଛ ମାସ କର୍ତ୍ତବ୍ୟ ବୈଦିକମାନଙ୍କର କ୍ରିୟା ବିଶେଷ ।

ଉତ୍ସର୍ପ—ପୁଂ.ବ.(ଉତ୍ + ସୃପ + ଣ୍ଣ,ଅ) ଊର୍ଦ୍ଧ୍ୱଗତି, ସ୍ଫୀତି ।

ଉତ୍ସର୍ପଣ—କ୍ଲୀ.ବ. (ଉତ୍ + ସୃପ + ଣ୍ଣ, ଅନ) ଉଲ୍ଲଙ୍ଘନ,ଊର୍ଦ୍ଧ୍ୱଗମନ,ତ୍ୟାଗ ।

ଉତ୍ସର୍ପୀ—ପୁଂ. ବିଂ. (ଉତ୍ସର୍ପ + ଇନ୍) ଊର୍ଦ୍ଧ୍ୱଗାମୀ,ଉଲ୍ଲଙ୍ଘନକାରୀ, ପରିତ୍ୟାଗକାରୀ,ଉତ୍ସୃତ, (ସ୍ତ୍ରୀ) ଉତ୍ସର୍ପିଣୀ ।

ଉତ୍ସର୍ପିଣୀ—ସ୍ତ୍ରୀ. ବ. (ଉତ୍ସର୍ପିନ୍ + ଈ) ଊର୍ଦ୍ଧ୍ୱଗମନଶୀଳା, ଜୈନମାନଙ୍କର କାଳବିଭାଗ ।

ଉତ୍ସର୍ଯ୍ୟା—ସ୍ତ୍ରୀ.ବ.(ଉତ୍ + ସୃ + ଯ + ଆ) ଋତୁମତୀ ବା ଗର୍ଭଯୋଗ୍ୟାବସ୍ଥା ଗାଈ, ବଳଦ ପଡ଼ିବା ଗାଈ ।

ଉତ୍ସବ—ପୁଂ ବ: (ଉତ୍ + ସୂ + ଣ୍ଣ, ଅ) ଆରମ୍ଭ, ଆନନ୍ଦଜନକବ୍ୟାପାର,ମଉଜ, ଉତ୍ସେକ, ଇଚ୍ଛାପ୍ରସର, ଭୋଜି, କୋପ, ଉନ୍ନତ, ଅଭ୍ୟୁଦୟ, କ୍ଷଣ, ଉଦ୍ରେକ, ହର୍ଷଣ ।

ଉତ୍ସବ ସଂକେତ—ପୁଂ. ବ. (ବ.ବ୍ରୀ) ପୃଷ୍ଠାରଣ୍ୟବାସୀ ଜାତିବିଶେଷ, ମ୍ଳେଚ୍ଛଜାତିବିଶେଷ ।

ଉତ୍ସାଦ—ପୁଂ.ବ. (ଉତ୍ + ସଦ + ଣ୍ଣ, ଅ) ଉଚ୍ଛେଦ, ବିନାଶ, ଧ୍ୱଂସ ।

ଉତ୍ସାଦକ—ପୁଂ.ବିଂ. (ଉତ୍ + ସଦ୍ + ଣି + କ, ଅକ) ବିନାଶକ, କ୍ଷୟକାରକ, (ସ୍ତ୍ରୀ) ଉତ୍ସାଦିକା ।

ଉତ୍ସାଦନ—କ୍ଲୀ.ବ.(ଉତ୍ + ସଦ + ଣ୍ଣ, ଅନ) ଉତ୍ସାରଣ, ସ୍ଥାନାନ୍ତର କରଣ, ଆଉଟାହେବା, ପରିଷ୍କରଣ, ଉତ୍ସନ୍ନ କରିବା,ଉଦ୍‌ବର୍ତ୍ତନ,ତୈଳାଦିଦ୍ୱାରାଗାତ୍ରଶୋଧନ, ବିନାଶନ, ଉନ୍ମୂଳନ, ମହାଗାଭ ପରିତ୍ୟକ୍ତ ଦେଶ ।

ଉତ୍ସାଦନୀୟ -ବିଂ. (ଉତ୍ + ସାଦ + ଣି, ଅନୀୟ ) ବିନାଶଯୋଗ୍ୟ, ଉନ୍ମୂଳନୀୟ, ଉଦ୍ବର୍ତ୍ତନୀୟ (ବି) ଉଦ୍ବର୍ତ୍ତନୀୟକଷାୟାଦି

ଉତ୍ସାଦ—( ଉତ୍ସ + ଆଦ ) ପାଣିନି ଉକ୍ତ ଗୋଟିଏ ଗଣ ।

ଉତ୍ସାଦିତ—ବିଂ.(ଉତ୍ + ସଦ୍ + ଣି + ଣି,ତ) ଉନ୍ମୂଳିତ,ଉଦ୍ବର୍ତ୍ତିତ,ପରିଷ୍କୃତ, ବିନାଶିତ, ଉତ୍ପାଟିତ ।

ଉତ୍ସାଦ୍ୟ—ବିଂ. (ଉତ୍ + ସାଦ + ଣି,ଯ) ଉତ୍ସାଦନୀୟ (ଦେଖ ।

ଉତ୍ସାରକ—ପୁଂ.ବି.(ଉତ୍ + ସୃ + ଣି + ଅକ) ଦ୍ୱାରପାଳ, ଦ୍ୱାରୀ, ଦୌବାରିକ, ଅପସାରକ (ବିଂ) ଉତ୍ସାରଣକର୍ତ୍ତା ।

ଉତ୍ସାରଣ—କ୍ଲୀ ବି.(ଉତ୍ + ସୃ + ଣି + ଅନ) ଉତ୍ତୋଳନ, ଦୂରୀକରଣ, ତଡ଼ିଦେବା, ଘୁଞ୍ଚାଇବା, ଅପସାରଣ ।

ଉତ୍ସାରିତ—ବିଂ.(ଉତ୍ + ସୃ + ଣି + ଣି, ତ) ଦୂରୀକୃତ, ଚ୍ୟୁତ, ସ୍ଥାନାନ୍ତରିତ, ଉର୍ଦ୍ଧ୍ୱକ୍ଷିପ୍ତ,ପ୍ରବାହିତ,ବାଧାରହିତ, ଅବାଧ, ଉତ୍କ୍ଷିପ୍ତ, ନିରାକୃତ (ସ୍ତ୍ରୀ) ଉତ୍ସାରିତା ।

ଉତ୍ସାହ--ପୁଂ.ବି. (ଉତ୍ + ସହ୍ + ଣି,ଅ) ଉଦ୍ୟମ, ଅଧ୍ୟବସାୟ, ସ୍ଥିରଯତ୍ନ, ବୀରରସର ସ୍ଥାୟୀଭାବ,ସ୍ୱଜାତ ଗୁଣବିଶେଷ, ଅନୁରାଗ, ସ୍ଫୂର୍ତ୍ତି, ତେଜ, କଲ୍ୟାଣ, ସୂତ୍ର, ହର୍ଷ, ସଂରମ୍ଭ, ଉଦ୍ବେଗ ।

ଉତ୍ସାହକ—ପୁଂ.ବିଂ (ଉତ୍ + ସାହ + କ, ଅକ) ଉତ୍ସାହଦାତା, ଯେ ଉତ୍ସାହ ଦିଏ, ଉତ୍ତେଜକ, ଉଦ୍ଯୋଗୀ ।

ଉତ୍ସାହଦାତା—ପୁଂ. ବି. (୬ତତ୍) ଯେ ଉତ୍ସାହ ଦିଏ, ପ୍ରଶୋଦକ, ଉତ୍ତେଜକ, ପୃଷ୍ଟପୋଷକ (ସ୍ତ୍ରୀ) ଉତ୍ସାହଦାତ୍ରୀ ।

ଉତ୍ସାହନ—କ୍ଲୀ.ବି.(ଉତ୍ + ସାହ + ଣି, ଅନ) ଉତ୍ସାହଦାନ,ଉତ୍ତେଜନ,ପ୍ରଶୋଦନ,ଅଧ୍ୟବସାୟ,ବିଂ.(ଉତ୍ + ସାହ + କ, ଅନ) ଯେ ଉତ୍ସାହ ଦିଏ, ଉତ୍ସାହପ୍ରଦ, ଉତ୍ସାହଦାତା ।

ଉତ୍ସାହନୀୟ—ବିଂ. ( ଉତ୍ସାହ + ଣି, ଅନୀୟ ) ଉତ୍ସାହଯୋଗ୍ୟ, ଯାହାକୁ ଉତ୍ସାହିତ କରିବାକୁ ହେବ ।

ଉତ୍ସାହବର୍ଦ୍ଧକ—ପୁଂ. ବିଂ. ( ୬ତତ୍ ) ଅନ୍ୟର ଉତ୍ସାହ ବୃଦ୍ଧିକାରୀ ( ସ୍ତ୍ରୀ ) ଉତ୍ସାହବର୍ଦ୍ଧିକା ।

ଉତ୍ସାହବର୍ଦ୍ଧନ—କ୍ଲୀ. ବି. ( ଉତ୍ସାହ + ବୃଧ୍ + ଅନ) ଉଦ୍ୟମବୃଦ୍ଧି, ବୀରତ୍ୱ, ଅଧ୍ୟବସାୟ (ବିଂ) ଉତ୍ସାହଦାତା,ଯାହା ଉତ୍ସାହକୁ ବଢ଼ାଏ । [ ନାଶ ।

ଉତ୍ସାହଭଙ୍ଗ—ପୁଂ.ବି. (୬ତତ୍) ଉତ୍ସାହ

ଉତ୍ସାହଶୀଳ—ପୁଂ.ବିଂ. (ବବ୍ରୀ) ଉତ୍ସାହବିଶିଷ୍ଟ,ଉତ୍ସାହୀ,ଆଗ୍ରହାନ୍ୱିତ,ଉଦ୍ଯୋଗ

ଉତ୍ସାହଶୂନ୍ୟ—ବିଂ. (୩ତତ୍) ଉତ୍ସାହରହିତ, ନିରୁତ୍ସାହ, ଆଗ୍ରହବିହୀନ ।

ଉତ୍ସାହସମ୍ପନ୍ନ—ପୁଂ. ବିଂ. ( ୩ତତ୍ ) ଉତ୍ସାହାନ୍ୱିତ,ଉତ୍ସାହଯୁକ୍ତ,ଆଗ୍ରହଯୁକ୍ତ ।

ଉତ୍ସାହିତ—ବିଂ.(ଉତ୍ + ସହ୍ + ଣି + ତ)ଉତ୍ତେଜିତ, ପ୍ରୋତ୍ସାହିତ, ହେମତ ପାଇଥିବା ।

ଉତ୍ସାହୀ—ପୁଂ. ବିଂ. (ଉତ୍ସାହ + ଇନ୍ ) ସାହସିକ, ଆଗ୍ରହାନ୍ୱିତ, ଉଦ୍ୟମଶୀଳ, ଦୃଢ଼ପ୍ରତିଜ୍ଞ,ଅଧ୍ୟବସାୟୀ,(ସ୍ତ୍ରୀ)ଉତ୍ସାହିନୀ

ଉତ୍ସିକ୍ତ—ବିଂ. ( ଉତ୍ + ସିଚ୍ + ତ ) ଗର୍ବିତ, ବର୍ଦ୍ଧିତ, ଉଦ୍ରିକ୍ତ, ଉଦ୍ଗତ, ଉପରିସିକ୍ତ, ଅବିନୀତ, ଆର୍ଦ୍ରୀକୃତ, ଉଦ୍ଧତ, ଉପପ୍ଲୁତ (ସ୍ତ୍ରୀ) ଉତ୍ସିକ୍ତା ।

ଉତ୍ସିକ୍ତମନାଃ—ପୁଂ. ବିଂ. (ଉତ୍ସିକ୍ତ + ମନସ୍ ) ବ. ବ୍ରୀ; ମତ୍ତ, ଚଳଚିତ୍ତ, ଅସ୍ଥିରମନାଃ ।

ଉତ୍ସିଚ୍ୟମାନ—ବିଂ. (ଉତ୍ + ସିଚ୍ + କ, ଆନ ) ଯାହା ସେଚନ କରାହୋଇଅଛି, ଉଦ୍ରିଚ୍ୟମାନ, ବର୍ଦ୍ଧମାନ, (ସ୍ତ୍ରୀ) ଉତ୍ସିଚ୍ୟମାନା ।

ଉତ୍ସୁକ—ପୁଂ. ବିଂ. (ଉତ୍ + ସୁ + କ) ଇଚ୍ଛୁକ, ଆଗ୍ରହାନ୍ୱିତ, କୌତୂହଳୀ, ଲାଳାୟିତ, ଉତ୍କଣ୍ଠିତ, ବ୍ୟଗ୍ର, ପ୍ରିୟ, ଅଭୀଷ୍ଟ ବିଷୟରେ ଉଦ୍ୟୁକ୍ତ ।

ଉତ୍ସୁକତା—ସ୍ତ୍ରୀ. ବି. ( ଉତ୍ସୁକ + ତା) ଉଦ୍ଯୋଗିତା, ବ୍ୟଗ୍ରତା, କୌତୂହଳ, ଉତ୍କଣ୍ଠା, ଅଧ୍ୟବସାୟ ।

ଉତ୍ସୂତ୍ର—ବିଂ. (ଉତ୍ + ସୂତ୍ର) ବିଧାନସୂତ୍ରର ବହିର୍ଭୂତ, ଅନ୍ୟାୟ, ନିୟମବହିର୍ଭୂତ ।

ଉତ୍ସୂର—ପୁଂ.ବି.( ୨ତତ୍) ଦିନାବସାନ, ବିକାଳ, ଉଚ୍ଛୂର ।

ଉତ୍ସୃଜନ—କ୍ଲୀ. ବି. (ଉତ୍ + ସୃଜ୍ + ଣି. ଅନ) ତ୍ୟାଗ, ସମର୍ପଣ ।

ଉତ୍ସୃଜ୍ୟ—ବିଂ. (ଉତ୍ + ସୃଜ୍ + ଯ) ତ୍ୟକ୍ତବ୍ୟ, ଦେୟ ।

ଉତ୍ସୃଷ୍ଟ—ବିଂ. ( ଉତ୍ + ସୃଜ୍ + ତ ) ତ୍ୟକ୍ତ, ବିସୃଷ୍ଟ, ଦତ୍ତ, ନିବେଦନ, ପ୍ରଯୁକ୍ତ, ପ୍ରସାରିତ, ଉପେକ୍ଷିତ, ମୁକ୍ତ, ସୃଷ୍ଟ, କୃତବର୍ଜ୍ଜଣ, ଉଚ୍ଛିଷ୍ଟ ।

ଉତ୍ସୃଷ୍ଟାର୍ଥ—ପୁଂ ବି ( କ.ଧା ) ତ୍ୟକ୍ତଧନ,ଦତ୍ତଧନ (ବିଂ ବ.ବ୍ରୀ) ଧନଦାତା ଯାହାର ମତ ଗ୍ରାହ୍ୟ ଦିଆଯାଇଅଛି, (ଅନୁବାଦ ସମୟରେ ଯଦି କୌଣସି ଶବ୍ଦର ଅର୍ଥ ଅନୁଦିତ ନ ହୁଏ, ତାହା ହେଲେ ତାହାକୁ ଉତ୍ସୃଷ୍ଟାର୍ଥ କୁହାଯାଏ ) ।

ଉତ୍ସେକ—ପୁଂ.ବି. (ଉତ୍ + ସିଚ୍ + ଅ) ଗର୍ବ, ଅହଂକାର ଉଦ୍ରେକ, ଉପରିସେକ, ଦର୍ପ, କ୍ଷେତରେ ପାଣି ମଡ଼ାଇବା, ଉପରେ ସିଞ୍ଚିବା ।

ଉତ୍ସେଚନ—କ୍ଲୀ ବି. (ଉତ୍ + ସିଚ୍ + ଅନ) ଊର୍ଦ୍ଧ୍ୱସେକ, ଉପରେ ଉଠିବା, ଉତ୍ତେଜନା, ଉପର ସେକ, ଜଳବରଷିବା, ପାଣି ମଡ଼ଇବା, ପାଣିବଢ଼ି, ଉପରକୁ ସିଞ୍ଚିବା ।

ଉତ୍ସେଧ—ବିଂ. ( ଉତ୍ + ସିଧ୍ + ଅ ) ଉଚ୍ଚ (ପୁଂ.କ୍ଲୀ)ପର୍ବତବୃକ୍ଷାଦିର ଦୈର୍ଘ୍ୟ, ଉଚ୍ଚତା, ଗୌରବ, ଉପରିଭାଗ,ଶରୀର ସଂହନନ, ପୃଥୁଳତା, ଔଦ୍ଧତ୍ୟ, ପ୍ରତିପତ୍ତି ।

ଉଥୁଗି—ସ୍ତ୍ରୀ. ବି. (ସଂ-ଉତ୍ଥାନ) ଚିତ୍‌ହୋଇ ଶୋଇବା ଅବସ୍ଥାରେ ସ୍ୱପ୍ନରେ କେବେ କେବେ ମନୁଷ୍ୟକୁ ମାଡ଼ିବସିଲା ପରି ଜଣାଯିବା ମୂର୍ତ୍ତିବିଶେଷ ( ବି ) ଅବବାହକା ।

ଉଥିଲବା—ଗ୍ରା. କ୍ରି. (ସଂ-ଉତ୍ତ୍ଅଲନ) ଉଛୁଳିବା, (ଦେଶ)

ଉଦ୍—ଅବ୍ୟ. ପ୍ରକାଶ, ବିଶ୍ଳେଷ, ଲାଭ, ଉତ୍କର୍ଷ, ଊର୍ଦ୍ଧ୍ୱ, ପ୍ରାବଲ୍ୟ, ଆଶ୍ଚର୍ଯ୍ୟ, ଶକ୍ତି, ପ୍ରାଧାନ୍ୟ, ବିଚ୍ଛେଦ, ବନ୍ଧନ, ଭାବ ମୋକ୍ଷ, ବୃଦ୍ଧି, ଅସ୍ୱାସ୍ଥ୍ୟ, ବିପରୀତ, ନୈକଟ୍ୟ, ମୋଚନ, ସାମର୍ଥ୍ୟ, ଭେଦନ, ଉତ୍କଟ, ଚଞ୍ଚଳ, ଅଭାବ, ବଡ଼ ।

ଉଦ୍ଦାନ୍—ଗ୍ରା.ବି. ଲୋକାନ କାଠି ରଖି ଜାଳିବାରେ ବ୍ୟବହୃତ ଧାତୁ ପାତ୍ର ।

ଉଦ୍‌ଲିଆ—ପ୍ରା. (ସମ୍ଭ) ବି. ପର ସ୍ତ୍ରୀ ବା ଅବିବାହିତ କନ୍ୟା ପର ପୁରୁଷଠାରେ ପ୍ରେମଲୁବ୍ଧା ହୋଇ ସ୍ୱସ୍ଥାନ ତ୍ୟାଗ କରି ସେହି ପର ପୁରୁଷ ସଙ୍ଗେ ଅନ୍ୟତ୍ର ରକ୍ଷିତା ରୂପେ ରହିବା । [ବାର ।

ଉଦ୍—କ୍ଲୀ.ବି. (ଉନ୍ଦ+ଅ) ଜଳ, ପାଣି,

ଉଦକ୍—ଅବ୍ୟ ଉତ୍ତରଦିଗସ୍ଥ, ଉତ୍ତରସ୍ଥିତ, ଉତ୍ତର କାଳର, ଉତ୍ତରାଭିମୁଖ, (ବି) ଉତ୍ତରଦିଗ, ଉତ୍ତରଦେଶ, ଉତ୍ତର କାଳ ।

ଉଦକ—କ୍ଲୀ. ବି (ଉନ୍ଦ୍+ଅକ) ଜଳ, ପାଣି, ବାରି ।

ଉଦକକୃଚ୍ଛ୍ର—ପୁଂ. ବି. ବ୍ରତଭେଦ ।

ଉଦକକ୍ରିୟା—ସ୍ତ୍ରୀ. ବି. (କର୍ମ) ଶାସ୍ତ୍ର ବିହିତ ଜଳ ଦ୍ୱାରା ତର୍ପଣ, ପ୍ରେତ ଉଦ୍ଦେଶ୍ୟରେ ଜଳଦାନ, ସ୍ନାନ ।

ଉଦକପରୀକ୍ଷା—ସ୍ତ୍ରୀ.ବି. ବିବାଦାଦି କାଳେ ଲୌକିକ ପ୍ରମାଣାଭାବରେ ଜଳମଜ୍ଜନ ଦ୍ୱାରା ଶପଥ କରିବା ।

ଉଦକମଣ୍ଡଳ—ଗ୍ରା. ବି. ଦକ୍ଷିଣାଞ୍ଚଳସ୍ଥ ମହୀଶୂର ରାଜ୍ୟର ନୀଳଗିରି ପର୍ବତ ଅଧିତ୍ୟକାରେ ଅବସ୍ଥିତ ଗ୍ରୀଷ୍ମ ନିବାସ ଉଟକାମଣ୍ଡ ।

ଉଦକମେହ—କ୍ଲୀ.ବି. ମେହରୋଗବିଶେଷ

ଉଦକବାଦ୍ୟ - କ୍ଲୀଂ.ବି. ଜଳସାଧ୍ୟ ବାଦ୍ୟ ବିଶେଷ, ଜଳତରଙ୍ଗରୂପ କଳାବିଶେଷ ।

ଉଦକଷଟ୍‌ପଲଘୃତ—ବୈଦ୍ୟୋକ୍ତଘୃତ ବିଶେଷ ।

ଉଦକାଶୟ—ପୁଂ.ବି. (ଉଦକ+ଆଶୟ) ଜଳାଶୟ, ଜଳାଧାର ।

ଉଦକାର୍ଥୀ—ପୁଂ.ବିଂ. (ତତ୍) ଜଳ-ପ୍ରାର୍ଥନାକାରୀ । [ତୃଷ୍ଣାର୍ତ୍ତ ।

ଉଦକୀର୍ଣ୍ଣ—ପୁଂ. ବି. ମହାକରଞ୍ଜ, ଉଦ-

ଉଦକୁମ୍ଭ—ପୁଂ.ବି ଜଳଧା, (ଉଦ+କୁମ୍ଭ) ଉଦକ ପୂର୍ଣ୍ଣ କଳସ, କମଣ୍ଡଳୁ, ମାଠିଆ ।

ଉଦରୋଦର—ପୁଂ.ବି. ଜଳୋଦର ରୋଗ ।

ଉଦକ୍ତ—ବିଂ. (ଉଦ+ଅନ୍‌ଚ+କ୍ତ) ଊର୍ଦ୍ଧ୍ୱଗତ, ଉତ୍ଥିତ, ଆରୂଢ଼, କୂପରୁ ଉତ୍ତୋଳିତ, କୂଅରୁ ଉଠାଇଥିବା, (ସ୍ତ୍ରୀ) ଉଦକ୍ତା ।

ଉଦକପ୍ରବଣ—ପୁଂ.ବି. କ୍ରମଶଃ ଦକ୍ଷିଣରୁ ଉତ୍ତରକୁ ନମ୍ର, ଉତ୍ତରମାର୍ଗଗାମୀ ।

ଉଦକ୍ୟ - ପୁଂ. ବିଂ. (ଉଦକ+ଯ) ଜଳ ଯୋଗ୍ୟ ସ୍ନାନ ପ୍ରଭୃତି, ଜଳସ୍ନାନାର୍ହ, ଜଳ ସମ୍ବନ୍ଧୀୟ, ଜଳୀୟ, ଅଶୁଚ, (ସ୍ତ୍ରୀ) ଉଦକ୍ୟା ।

ଉଦକ୍ୟା—ସ୍ତ୍ରୀ ବି. (ଉଦକ୍ୟ+ଆ) ଋତୁମତୀ, ରଜସ୍ୱଳା, ଜଳୀୟା ।

ଉଦଖଣ୍ଡ—ପୁଷ୍କରକୈବର୍ତ୍ତଗର୍ଭରେ ଉଦନ୍ଦନାମକ ସ୍ଥାନର ସମ୍ଭବତଃ ପ୍ରାଚୀନନାମ

ଉଦକ୍‌ସେନ—ପୁଂ. ବି. ରାଜାବିଶେଷ ।

ଉଦଗଦ୍ର—ପୁଂ. ବି. (ମଧ୍ୟ-କଧା) ଉତ୍ତର ଗିରି, ହିମାଳୟ, ଉତ୍ତରାଚଳ ।

ଉଦଗୟନ—କ୍ଲୀ.ବି. (ତତ୍) ଉତ୍ତରାୟଣ, ମାଘାଦି ଛମାସ ।

ଉଦଗ୍‌ଦଶ—କ୍ଲୀ. ବି. ଉତ୍ତରାସ୍ତ୍ର ବସ୍ତ୍ର ।

ଉଦଗ୍‌ଭୂମ—ପୁଂ. ବି. ଉତ୍କୃଷ୍ଟ ମୃତ୍ତିକା, ସଦ୍‌ଭୂମି ।

ଉଦଗ୍ର—ବିଂ.ବି.ସ୍ତ୍ରୀ; (ଉଦ୍+ଅଗ୍ର) ଉଚ୍ଚ, ଉନ୍ନତ, ବୈମତ୍ତମତ, ବୃଦ୍ଧ, ଉଦ୍ଧତ, ଦୀର୍ଘ, ବିଶାଳ, ମହତ୍, ଉତ୍କଟ, ଗୌରବାନ୍ୱିତ, ଉଦ୍‌ଦୀପ୍ତ, ଉଦାର, ଉଦ୍‌ଗତ, ଉଚ୍ଛ୍ରିତ, ବୃଦ୍ଧିତ, ତୀବ୍ର, (ସ୍ତ୍ରୀ) ଉଦଗ୍ରା ।

ଉଦଗ୍ରଦତ୍—ପୁଂ. ବି. ଉଚ୍ଚଦନ୍ତହସ୍ତୀ (ବି) ଉଚ୍ଚଦନ୍ତଯୁକ୍ତ ।

ଉଦଗ୍ରାଭ—ପୁଂ. ବି. ଉଦକଗ୍ରାହୀ ମେଘ ।

ଉଦକଚମସ—ପୁଂ. ବି. ଉଦକସ୍ଥାପନ ଯୋଗ୍ୟ, ଚମସାକାର ପାତ୍ର ଭେଦ ।

ଉଦଙ୍କ—ପୁଂ ବି. (ଉତ୍+ଅନ୍‌ଚ୍+ଅ) ଚର୍ମମୟ, ଘୃତାଦିପାତ୍ର, ସନ୍ଦଂଶ, ସଣ୍ଡାଶି, ଚମୁଟା, କୁମ୍ପା, ଜଣେ ଋଷି ।

ଉଦଙ୍ମୁଖ—ପୁଂ.ବିଂ.ବି.ସ୍ତ୍ରୀ, ଉତ୍ତରମୁଖ, ଉତ୍ତରମୁହାଁ, ଊର୍ଦ୍ଧ୍ୱମୁଖ, (ସ୍ତ୍ରୀ) ଊର୍ଦ୍ଧ୍ୱମୁଖୀ ।

ଉଦଙ୍ମୃତ୍ତିକ—ପୁଂ.ବି. ଉତ୍କୃଷ୍ଟ ମୃତ୍ତିକା, ସଦ୍‌ଭୂମି ।

ଉଦଚ—ବିଂ. (ଉତ୍+ଅନ୍‌ଚ୍+କ.କ୍ୱିପ୍) ଉତ୍ତରାଭିମୁଖ, ଉତ୍ତରମୁହାଁ, ଉତ୍ତର ଦିଗସ୍ଥ, ଊର୍ଦ୍ଧ୍ୱଗତ, ଉତ୍ତର କାଳର, ଭବିଷ୍ୟତର, ଭାବୀ, (ଅବ୍ୟ) ଉତ୍ତର ଦିଗକୁ, ଉତ୍ତରାଭିମୁଖେ ।

ଉଦଜ—ପୁଂ. ବି. (ଉତ୍+ଅଜ) ପଶୁ-ପ୍ରେରଣ, ବିଂ (ଉଦ+ଜନ+କ.ଅ) ଜଳୀୟ, ଜଳଜାତ, ଜଳଜ (ପଦ୍ମ) ।

ଉଦଜନ—ସାଙ୍କେତିକ ଚନ୍ଦ୍ର, ସୂକ୍ଷ୍ମାଂଶର ଗୁରୁତ୍ୱ ।

ଉଦଞ୍ଚନ—କ୍ଲୀ. ବି. (ଉତ୍+ଅନ୍‌ଚ୍+ଅନ) ଊର୍ଦ୍ଧ୍ୱକ୍ଷେପଣ, ଉପରକୁ ଉଠିବା, ଢାଙ୍କୁଣୀ, ଉଦ୍‌ଗମନ, ଆଚ୍ଛାଦନ, ପୂଜନ, ଜଳ ଉତ୍ତୋଳନ ପାତ୍ର, ବାଲ୍‌ଟି ପ୍ରଭୃତି (ବିଂ) ଉତ୍‌କ୍ଷେପକ ।

ଉଦଞ୍ଚିତ—ବିଂ.(ଉତ୍+ଅନ୍‌ଚ୍+ମ.କ୍ତ) ଉତ୍‌କ୍ଷିପ୍ତ, ପୂଜିତ, ଊର୍ଦ୍ଧ୍ୱଗତ, ଆକୁଞ୍ଚିତ ।

ଉଦଣ୍ଡ—ଗ୍ରା.ବି. (ସଂ-ଉଦ୍ଦଣ୍ଡ) ରାଜୋପକରଣବିଶେଷ, (ବିଂ) ଦୁଷ୍ଟ, ଅବାଧ୍ୟ ।

ଉଦଣ୍ଡୀ—ଗ୍ରା. ବିଂ. ସ୍ତ୍ରୀ. ଦୁଷ୍ଟା, ଅବାଧ୍ୟା, ଅଶାନ୍ତା (ବାଳିକା) ।

ଉଦଣ୍ଡପୁର—କ୍ଲୀ. ବି. ମଗଧ ଦେଶର ଗୋଟିଏ ନାମ, ବିହାର ନଗର ।

ଉଦଣ୍ଡପାଳ—ପୁଂ. ବି. ମତ୍ସ୍ୟ, ସର୍ପ ।

ଉଦଦ୍ୟା—ସ୍ତ୍ରୀ.ବି.(ଉତ୍+ଅଦ୍+ଯ+ଆ) ତୈଳପାୟିକା, ତେଲ୍‌ପୋକ, ଅସର୍ପା ।

ଉଦଧି—ପୁଂ. ବି (ଉଦ+ଧା+ଇ) । ସମୁଦ୍ର, ତଟ, ସୁରସଂଖ୍ୟା, ମେଘ, ସୂର୍ଯ୍ୟ, ସାଗର, ଜଳଧି ।

ଉଦଧିକ୍ରା—ପୁଂ.ବିଂ. (ଉଦଧି+କ୍ରମ+ବଟ୍) ସମୁଦ୍ରକ୍ରମଣକର୍ତ୍ତା ।

**ଉଦଧିମଳ**—ପୁଂ ବି. (୬ ତତ୍) ସମୁଦ୍ର-ଫେନ, ସମୁଦ୍ରଫେଣା ।

ଉଦଧିମାନ—ପୁଂ.ବି.ଫେଣ,ସମୁଦ୍ରଫେଣ ।

ଉଦଧିମେଖଳା—ସ୍ତ୍ରୀ. ବି. ଚାରି ଦିଗରେ ସମୁଦ୍ର ବେଷ୍ଟିତା ପୃଥିବୀ ।

ଉଦଧିସୁତା—ସ୍ତ୍ରୀ. ବି. (୬ ତତ୍) ଲକ୍ଷ୍ମୀ, ଦ୍ୱାରକାପୁରୀ ।

ଉଦନ—କ୍ଲୀ. ବି. ଉଦକ, ଜଳ ।

ଉଦନ୍ତ—ପୁଂ.ବି. (ଉତ୍ + ଅନ୍ତ)ବାର୍ତ୍ତା, ବୃତ୍ତାନ୍ତ, ସାଧୁ ସମ୍ବାଦ,ସମାଚାର, ବୃତ୍ତି-ସ୍ୱାଜନ ଖବର, ( ବିଂ ) ପାକ କରି ଶେଷରେ ଯାହା ପାଇବାକୁ ହୁଏ ।

ଉଦନ୍ତକ—ପୁଂ.ବି.(ଉଦନ୍ତ + କ)ସମ୍ବାଦ ବାର୍ତ୍ତା ।

ଉଦନ୍ତିକା—ସ୍ତ୍ରୀ.ବି.(ଉଦନ୍ତ + ଣି + ଅକ + ଆ) ତୃପ୍ତି ।

ଉଦନ୍ୟା—ସ୍ତ୍ରୀ. ବି. (ଉଦକ + ଯ + ଆ) ପିପାସା, ତୃଷ୍ଣା, ଶୋଷ, ଜଳ ନଷ୍ଟନ, (ବିଂ) ଜଳସମ୍ବନ୍ଧିନୀ । [ପିପାସୁ ।

ଉଦନ୍ୟୁ—ବିଂ. (ଉଦନ୍ୟ + ଉ)ଜଳେଚ୍ଛୁ ।

ଉଦନ୍‌ବାନ୍—ପୁଂ. ବି (ଉଦକ + ବତ୍) ସମୁଦ୍ର,ଋଷିବିଶେଷ(ବିଂ) ଉଦକଯୁକ୍ତ ।

ଉଦପାତ୍ର—କ୍ଲୀ ବି.(୬ତତ୍)ଜଳପୂର୍ଣ୍ଣପାତ୍ର, ଜଳାଧାର ।

ଉଦପାନ—ପୁଂ. କ୍ଲୀ.ବି.(ଉଦ + ପା + ଅନ) କୂପ, କୂପସମୀପସ୍ଥ ଜଳାଧାର, ନିପାନ ।

ଉଦବସିତ—ବି (ଉଦ + ବସ୍ + ମିଁ.ତ) ବାସଗୃହ, ପରିଖାବେଷ୍ଟିତ ବାସସ୍ଥାନ ।

ଉଦବାସ—ପୁଂ. ବି. (୭ତତ୍) ଜଳରେ ବାସ ବା ଅବସ୍ଥିତି, ଜଳ ନିକଟସ୍ଥ ବା ମଧ୍ୟସ୍ଥ ଗୃହ ।

ଉଦବାହକ—ପୁଂ. ବି. (୬ତତ୍) ଜଳ-ବହନକର୍ତ୍ତା, ପାଣିବୁହା, (ସ୍ତ୍ରୀ) ଉଦ-ବାହିକା । [ଜଳଯାନ ।

ଉଦବାହନ—ପୁଂ.କ୍ଲୀ ବି.(୬ତତ୍)ମେଘ,

ଉଦବାହୀ—ପୁଂ.ବିଂ.(ଉଦ + ବହ୍ + ଣି, ଇନ୍)ଜଳବହନକାରୀ(ସ୍ତ୍ରୀ)ଉଦବାହିନୀ ।

ଉଦବିନ୍ଦୁ—ପୁଂ. ବି. ( ୬ତତ୍) ଜଳର ଟୋପା, ଟୋପେ ପାଣି । [ ଅବଣ ।

ଉଦମ-ବିଂ.(ଉତ୍ + ଅମ + ଅ)ଅନାବୃତ,

ଉଦମାନ—ପୁଂ ବି. ମାନଭେଦ ।

ଉଦୟ—ପୁଂ. ବି. (ଉତ୍ + ଇ + ଷ,ଅ) ଉଠିବା, ଆରମ୍ଭ ସୁଖ, ସୌଭାଗ୍ୟ, ଉତ୍କର୍ଷ, ଘଟନା, ସାମର୍ଥ୍ୟ, ପରାକ୍ରମ, ପୂର୍ବପର୍ବତ, ଉଦୟାଚଳ, ସମୁନ୍ନତି, ମଙ୍ଗଳ, ଦୀପ୍ତି, ପ୍ରକାଶ, ବୃଦ୍ଧି, ଲାଭ, ଫଳସିଦ୍ଧି, ଲଗ୍ନ, ଉତ୍‌ଥାନ, ଗ୍ରହମାନ-ଙ୍କର ପ୍ରକାଶ ଓ ଆବିର୍ଭାବ ।

ଉଦୟକାଳ—ପୁଂ ବି. (୬ତତ୍) ଉଦୟ ହେବାର ସମୟ, ସମୃଦ୍ଧି ସମୟ, ନାଗ ବିଶେଷ ।

ଉଦୟଗିରି—ପୁଂ. ବି. (ଉଦୟ + ଗିରି) ଓଡ଼ିଶାନ୍ତର୍ଗତ ପୁରୀଜିଲାର ଗୋଟିଏ ପର୍ବତ, ପବିତ୍ର ଗୁହା ନିମିତ୍ତ ପ୍ରସିଦ୍ଧ, ଗଞ୍ଜାମର ଗୋଟିଏ ତାଲୁକା, ଆନ୍ଧ୍ର ପ୍ରଦେଶସ୍ଥ ନେଲ୍ଲୋର ଜିଲାର ଗୋଟିଏ ବିଭାଗ ।

ଉଦଦ୍ଦିନ—ପୁଂ.ବି. (ଉତ୍ + ଇ + ଅନ) ଅଗସ୍ତ୍ୟ, ଶତାନୀକପୁତ୍ର ବୃଷଭଧ୍ୱଜ, ବସ୍ତ୍ରରାଜ, (କ୍ଲୀ)ଉତ୍‌ଥାନ,ଉଦୟ,ସୂର୍ଯ୍ୟ ଉତ୍ତରାୟଣ ହେବା ।

ଉଦୟନାଥ ତ୍ରିବେଦୀ କବୀନ୍ଦ୍ର—ପୁଂ.ବି. ବୁନ୍ଦାବର ଅନ୍ତର୍ଗତ ଆମେଠୀର ଜଣେ ପ୍ରଧାନ କବି, ଏହି କବି ରତି ବିନୋଦ ନାମକ ଗ୍ରନ୍ଥ ରଚନା କରିଅଛନ୍ତି ।

ଉଦୟନାଚାର୍ଯ୍ୟ—ପୁଂ. ବି. କିରଣାବଳୀ ଓ କୁସୁମାଞ୍ଜଳି ନାମକ ସଂସ୍କୃତ ଗ୍ରନ୍ଥର ପ୍ରଣେତା ।

ଉଦୟପୁର—ଗ୍ରା. ବି. ରାଜପୁତନାନ୍ତର୍ଗତ ଗୋଟିଏ ଦେଶୀୟ ରାଜ୍ୟ,ଏହାର ଅପର ନାମ ମିବାର,ମାଳବ ରାଜ୍ୟର ଅନ୍ତର୍ଗତ ଗୋଟିଏ ନଗର, ତ୍ରିପୁରା ରାଜ୍ୟର ଗୋଟିଏ ବିଭାଗ, ମଧ୍ୟପ୍ରଦେଶାନ୍ତର୍ଗତ ଗୋଟିଏ ବିଶାଳ ରାଜ୍ୟ ।

ଉଦୟପ୍ରଭସୂରି—ପୁଂ.ବି. ଜଣେ ଜୈନ-ଗ୍ରନ୍ଥକାର,ଏ ପ୍ରବଚନସାରୋଦ୍ଧାର,ବିଷମ-ପଦବ୍ୟାଖ୍ୟା, ଓ ଧର୍ମ୍ମଶାସ୍ତ୍ର ଭ୍ୟୁଦୟ କାବ୍ୟ ରଚନା କରିଅଛନ୍ତି ।

ଉଦୟବାନ୍—ପୁଂ.ବିଂ.(ଉଦୟ + ବତ୍) ଉଦିତ ।

ଉଦୟବେଳା-ସ୍ତ୍ରୀ.ବି(୬ତତ୍)ଅରୁଣୋଦୟ କାଳ, ଅତିପ୍ରାତଃ ସମୟ ।

ଉଦୟଭଦ୍ର—ପୁଂ. ବି. ଜଣେ ବୌଦ୍ଧ ନରପତି । [ ଜଣେ ରାଜା ।

ଉଦୟମାଣିକ୍ୟ—ପୁଂ.ବି. ତ୍ରିପୁରା ରାଜ୍ୟର

ଉଦୟମାନ—ପୁଂ ବିଂ.(ଉତ୍ + ଅୟ + ଶାନ ) ଯାହାଙ୍କର ଉଦୟ ହେଉଅଛି, ପ୍ରକାଶମାନ ।

ଉଦୟରାଶି—ପୁଂ ବି. (୬ତତ୍,ଗ୍ରହମାନ-ଙ୍କର ଉଦୟର ରାଶି (ମେଷାଦି) ।

ଉଦୟସିଂହ—ପୁଂ. ବି. ମିବାରର ରାଣା, ସଙ୍ଗଙ୍କର କନିଷ୍ଠପୁତ୍ର, ଉଦୟପୁରର ରାଜା, ମାଡ଼ୋବାର ବା ଯୋଧପୁରର ରାଜା, ମାଳଦେବଙ୍କର ପୁତ୍ର ।

ଉଦୟସ୍ତମ୍ଭ—ପୁଂ.ବି. ଜୟସ୍ତମ୍ଭ ।

ଉଦୟସ୍ପର୍ଶ—ବି. (ଜ୍ୟୋତିଷ) ଗୋଟିଏ ଦିନର ସୂର୍ଯ୍ୟୋଦୟ ସମୟକୁ ଗତ ଦିନରେ ପଡ଼ିଥିବା ତିଥିର ସାମାନ୍ୟ କେତେଦଣ୍ଡ ବାକି ଥିବା ଅବସ୍ଥା, ସୂର୍ଯ୍ୟୋଦୟସମୟରେ ଲଗିବା ସୂର୍ଯ୍ୟୋ-ପରାଗ ବା ଚନ୍ଦ୍ରୋଦୟ କାଳେ ଘଟିବା ଚନ୍ଦ୍ରଗ୍ରହଣ ।

ଉଦୟାଚଳ -ପୁଂ.ବି.(ଉଦୟ + ଅଚଳ) (ମଧ୍ୟ-କର୍ମଧା) ଉଦୟପର୍ବତ,ଉଦୟଗିରି ।

ଉଦୟାଦିତ୍ୟ—ପୁଂ. ବି. ଚାଲୁକ୍ୟରାଜ ଭୁବନୈକମଲ୍ଲଙ୍କର ସେନାପତି, ପରେ ବନବାସ ନାମକ ସ୍ଥାନର ରାଜା ହୋଇଥିଲେ ।

ଉଦୟାଶ୍ୱ—ପୁଂ.ବି. ମଗଧରାଜ ଅଜାତ ଶତ୍ରୁଙ୍କର ପୌତ୍ର,ପାଟଳୀପୁତ୍ର ନଗରର ସ୍ଥାପନକର୍ତ୍ତା ।

ଉଦୟାସ୍ତ - ବି. (ଦ୍ୱନ୍ଦ୍ୱ) (ଉଦୟ + ଅସ୍ତ) ଉଦୟକାଳଠାରୁ ସନ୍ଧ୍ୟାପର୍ଯ୍ୟନ୍ତ,ପ୍ରଭାତ ଠାରୁ ସାୟଂକାଳ ପର୍ଯ୍ୟନ୍ତ ।

ଉଦୟୀଭଦ୍ର—ପୁଂବି ମଗଧରାଜ ଅଜାତ-ଶତ୍ରୁଙ୍କର ପୁତ୍ର ।

ଉଦୟୀ—ପୁଂ.ବଂ.(ଉଦ୍ + ଅୟ୍ + କ, ଇନ୍) ଉଦୟଶୀଳ, ଉଦୀୟମାନ, ଆବିର୍ଭୂୟମାଣ,ଅଭ୍ୟୁଦୟଯୁକ୍ତ, ସମୃଦ୍ଧ, (ସ୍ତ୍ରୀ) ଉଦୟିନୀ ।

ଉଦୟୋନ୍ମୁଖ—ପୁଂ. ବଂ. (ଉଦୟ + ଉନ୍ମୁଖ) ୭ ତତ୍, ଯାହାର ଉଦୟ ହେବାର ଉପକ୍ରମ ହୋଇଅଛି ।

ଉଦର-କ୍ଲୀ ବ.(ଉଦ୍ + ଋ + ଅ)ଜଠର, କୁକ୍ଷି, ପେଟ, ଅଭ୍ୟନ୍ତର, ଯୁଦ୍ଧ, ଭ୍ରୂଣ, ଗର୍ଭ, କଟିଦେଶ ।

ଉଦର—ପୁଂ.ବି. (ଉଦର + ଅ) ଉଦର ରୋଗ ବିଶେଷ, ଉଦର ରୋଗ ୮ ପ୍ରକାର ଅଟେ । [ ଗଣ୍ଠି ।

ଉଦରଗହ୍ୱର—ବ. (କ.ଧା) ପେଟରୂପକ

ଉଦରଗ୍ରନ୍ଥି—ପୁଂ.ବ. (ଉଦର + ଗ୍ରନ୍ଥି) (ମଧ୍ୟ କ.ଧା)ଗୁଳ୍ମରୋଗ,ପ୍ଳୀହା, ପେଟ ମଧ୍ୟସ୍ଥ ଗଣ୍ଠି । [ ନାଗୋଦ ।

ଉଦରତ୍ରାଣ—କ୍ଲୀ.ବ (ବ.ବ୍ରୀ)କମରବନ୍ଧ,

ଉଦରଥି—ପୁଂ.ବ.(ଉଦ୍ + ଋ + ଅଥିନ୍) ସମୁଦ୍ର, ସୂର୍ଯ୍ୟ । [ବା ଅନ୍ତ ।

ଉଦରନାଡ଼ି—ବ. ପେଟ ମଧ୍ୟସ୍ଥ ନାଡ଼ି

ଉଦରପଦୀ—ସ୍ତ୍ରୀ ବ. (ଉଦର + ପଦ + କ, ଇନ୍) ଗେଣ୍ଡା, ଶାମୁକା ।

ଉଦରପରତା—ସ୍ତ୍ରୀ.ବ. ରୋଗ ବିଶେଷ, ଏହି ରୋଗରେ ଅତିଶୟ ଖାଇବାକୁ ଇଚ୍ଛା ହୁଏ ।

ଉଦରପରାୟଣ—ପୁଂ. ବଂ. (ଉଦର + ପରାୟଣ)ପେଟୁ , ଉଦରପୂରଣେ ବ୍ୟସ୍ତ, ପେଟୁକ, ଉଦରସର୍ବସ୍ୱ, ଔଦରିକ, (ସ୍ତ୍ରୀ) ଉଦରପରାୟଣା ।

ଉଦରପିଶାଚ—ପୁଂ.ବଂ. ଯଥେଚ୍ଛାହାରୀ, ଖାଦ୍ୟାଖାଦ୍ୟ ବିଚାରବିହୀନ, ସର୍ବାନ୍ନଭକ୍ଷକ ପେଟ ଯେ ଯାହାପାଏ ତାହା ଖାଏ

ଉଦରପୀଡ଼ା—ସ୍ତ୍ରୀ. ବ. (୬ ତତ୍) ପେଟକଣା,ପେଟମରା ରୋଗ,ପେଟ ବିଗିଡ଼ିବା ।

ଉଦରପୂରଣ- କ୍ଲୀ.ବ.(୬ ତତ୍)ଭୋଜନ, ପେଟପୂରିବା ।

ଉଦରପୂର୍ତ୍ତି—ସ୍ତ୍ରୀ. ବ. (ଉଦର + ପୂର୍ତ୍ତି) ଉଦରପୂରଣ, ପେଟପୂରିବା, ଭୋଜନ ।

ଉଦରଭଙ୍ଗ—ପୁଂ.ବ. (୬.ତତ୍) ପେଟଭାଙ୍ଗିବା,ପେଟ ଲେଉଟିବା, ଅତିସାର, ଉଦରାମୟ ।

ଉଦରମ୍ଭରି—ପୁଂ.ବ.(ଉଦର + ଭୃ + କ, ଇ) ଆତ୍ମମ୍ଭରି, ପେଟୁ, ପେଟୁକ, ଗିଲା, ସ୍ୱାର୍ଥପର ।

ଉଦରରସ—ପୁଂ. ବ. (ମଧ୍ୟ କ.ଧା) ଶରୀରସ୍ଥ ଯେଉଁରସ ଉଦରରୁ ନିର୍ଗତ ହୋଇ ଭୁକ୍ତଦ୍ରବ୍ୟକୁ ପାକ କରେ ।

ଉଦରରୋଗ—ପୁଂ. ବ. ଉଦରୀ ।

ଉଦରଶୟ—ପୁଂ. ବ(ଉଦର + ଶୀ + ଅ) ପେଟରେ ଭରଦେଇ ଶୟନକାରୀ, ଅବମୂର୍ଦ୍ଧଶୟ, ଭ୍ରୂଣ ।

ଉଦରଶାଣ୍ଡିଲ୍ୟ—ପୁଂ.ବ. ଋଷିବିଶେଷ ।

ଉଦରସର୍ବସ୍ୱ—ପୁଂ.ବଂ.(ବ.ବ୍ରୀ)ଔଦରିକ ଉଦରମ୍ଭରି,ପେଟୁକ, ପେଟୁ , ଗିଲା ।

ଉଦରସାତ୍—ବଂ. ( ଉଦର + ସାତ୍ ) ଆତ୍ମସାତ୍,ଭକ୍ଷିତ, ଗର୍ଭସାତ୍,(ଲ.ଅର୍ଥ) ଆତ୍ମସାତ୍ ।

ଉଦରସ୍ଥ—ପୁଂ. ବ. (ଉଦର + ସ୍ଥା + ଅ) ଗର୍ଭସ୍ଥ, ଭକ୍ଷିତ ।

ଉଦରାଧ୍ମାନ—କ୍ଲୀ. ବ. ପେଟ ଫାମ୍ପିବା, ପେଟଫମ୍ପା,ପେଟ ଗଡ଼ବଡ଼ ହେବା ।

ଉଦରାମୟ—ପୁଂ.ବ. (ଉଦର + ଆମୟ) ରୋଗବିଶେଷ, ପେଟପୀଡ଼ା, ଅତିସାର, ଅଜୀର୍ଣ୍ଣପୀଡ଼ା । [୬ତତ୍, ନାଭି ।

ଉଦରାବର୍ତ୍ତ—ପୁଂ.ବ (ଉଦର + ଆବର୍ତ୍ତ)

ଉଦରାବେଷ୍ଟ—ପୁଂ. ବ. କୃମି ।

ଉଦରିଣୀ—ସ୍ତ୍ରୀ.ବଂ.(ଉଦର + ଇନ୍ + + ଈ) ଗର୍ଭବତୀ, ଅନ୍ତଃସତ୍ତ୍ୱା, ବୃହତ୍ ଉଦରଯୁକ୍ତା ସ୍ତ୍ରୀ ।

ଉଦରିଲ—ପୁଂ. ବଂ. (ଉଦର + ଇଲ) ଉଦରୀ, ସ୍ଥୂଳୋଦର, ପେଟୁଆ,ତୋଳା, (ସ୍ତ୍ରୀ) ଉଦରିଲା ।

ଉଦରୀ —ପୁଂ.ବଂ.(ଉଦର + ଇନ୍)ଉଦରିଲ, ପେଟୁଆ, ତୋଳା, ଉଦ୍ଧଳ, ସ୍ଥୂଳୋଦରଯୁକ୍ତ, (ବି) ଉଦରସ୍ଫୀତତା ଜଳୋଦର ରୋଗ ।

ଉଦର୍କ—ପୁଂ.ବ (ଉତ୍ + ଋଚ୍ + ମି.ଅ) ଉତ୍ତରକାଳ, ଭବିଷ୍ୟଫଳ, ସମାପ୍ତି, ଭବିଷ୍ୟତ୍ ଫଳ, ଅନ୍ତିମ, ଶେଷ, ମଦନକଣ୍ଟକ ବୃକ୍ଷ ।

ଉଦର୍ଚ୍ଚିଃ—ପୁଂ.ବ.(ଉତ୍ + ଅର୍ଚ୍ଚିସ୍)ଅଗ୍ନି, ଶିବ, କନ୍ଦର୍ପ,(ବଂ. ବ.ବ୍ରୀ.) ପ୍ରଜ୍ୱଳିତ, ଉଦ୍ଗତଶିଖା, ଜଳଜଳ କରୁଥିବା, ଉଜ୍ଜ୍ୱଳପ୍ରଭାବିଶିଷ୍ଟ ।

ଉଦର୍ଦ୍ଦ—ପୁଂ.ବ. (ଉତ୍ + ଅର୍ଦ୍ଦ + କ.ଅ) ରୋଗବିଶେଷ,ବିଷରପି ଖାଇଥିବା ବଥ ।

ଉଦର୍ଦ୍ଧ--ପୁଂ.ବ. ମାରାତ୍ମକ ରୋଗବିଶେଷ ।

ଉଦଲବଣିକ—ବଂ. ( ଉଦଲବଣ + ଇକ ) ଲବଣ ଓ ଜଳ ଦେଇ ସିଦ୍ଧ ବ୍ୟଞ୍ଜନାଦି, ଲୁଣ ଶୁଖୁଆ ପ୍ରଭୃତି ।

ଉଦବସିତ—କ୍ଲୀ.ବ.(ଉତ୍ + ଅବ + ସୋ + ତ) ଭବନ, ଗୃହ ।

ଉଦବାସ—ପୁଂ. ବ. ବ୍ରତପାଳନ ନିମିତ୍ତ ଜଳରେ ବାସ ।

ଉଦବାହ—ପୁଂ. ବ. ଜଳବାହକ ।

ଉଦବିନ୍ଦୁ—ପୁଂ ବ (ଉଦ + ବିନ୍ଦୁ) ଜଳକଣା, ପାଣିଟୋପା ।

ଉଦଶରାବ—ପୁଂ.ବ. ଜଳପୂର୍ଣ୍ଣ ଶରାବ, ପାଣିରେ ପୂର୍ଣ୍ଣ ହୋଇଥିବା ଶରା ।

ଉଦଶ୍ରୁ—ବଂ. ( ବ.ବ୍ରୀ ) ନିର୍ଗତାଶ୍ରୁ, ଯାହାର ଅଶ୍ରୁ ନିର୍ଗତ ହୁଏ, ଗଳଦଶ୍ରୁ, ଯାହାର ଲୁହ ବୋହୁଥାଏ ।

ଉଦଶ୍ୱିତ୍-କ୍ଲୀ.ବ.(ଉଦ + ଶ୍ୱି + କ୍ୱିପ୍) ଅର୍ଦ୍ଧଜଳଯୁକ୍ତ, ଘୋଳ, ଅଧେ ପାଣି ମିଶିଥିବା ଘୋଳ ଦହି ।

ଉଦସନ—କ୍ଲୀ. ବ. (ଉଦ + ଅସ୍ + ଭା. ଅନ)ଉତ୍କ୍ଷେପଣ,ନିରସନ,ଦୂରୀକରଣ ।

ଉଦସ୍ତ—ବଂ ( ଉତ୍ + ଅସ୍ + ମି.ତ ) ଉତ୍କ୍ଷିପ୍ତ,ବହିଷ୍କୃତ,ଇତସ୍ତତ,ଦୂରୀକୃତ, ଅପସାରିତ ।

ଉଦହରଣ--କ୍ଲୀ ବ.(ଉଦ + ହୃ + ଅନ) କୁମ୍ଭ, କଳସ, ମାଠିଆ ।

ଉଦହାର--ବଂ.(ଉଦକ + ହୃ + ଅ)ଜଳହାରକ, ଜଳବାହକ, (ବି) ଜଳହରଣ, ମେଘ ।

**ଉଦା**—ଗ୍ରା.ବିଂ.ମାଗଣା,ଉଠିଆ(ଦେଖ), ବି. ବୁଆଧାନ, (ଗ୍ରା.ବିଂ) ଡାକୁଥିବା, ଭଜା ।

**ଉଦାଜ**—ପୁଂ.ବି. (ଉଦ୍+ଅଜ୍+ଅ) ପ୍ରେରଣ ।

**ଉଦାତ୍ତ**—ପୁଂ.ବି. (ଉତ୍+ଆ+ଦା+ ର୍ମ, ତ) ସ୍ୱରଭେଦ, (ଗାନର ଉଚ୍ଚସ୍ୱର) ମୁଖ ଭିତର ତାଳୁପ୍ରଭୃତିର ଊର୍ଦ୍ଧ୍ୱ- ଭାଗରୁ ଯେଉଁ ସ୍ୱର ଉଚ୍ଚାରିତ ହୁଏ, ବାଦ୍ୟବିଶେଷ, ଦାନ, ବାକ୍ୟାଲଙ୍କାର ବିଶେଷ,(ବିଂ)ଦୟାଳୁ,ମହତ୍, ଉଚ୍ଚୈଃ- ସ୍ୱରବିଶିଷ୍ଟ, ସମର୍ଥ, ଦାତା, ଉଚ୍ଚ, ହୃଦୟଙ୍ଗମ, ବିଖ୍ୟାତ, (ସ୍ତ୍ରୀ) ଉଦାତ୍ତା ।

**ଉଦାନ**—ପୁଂ ବି.(ଉତ୍+ଆ+ଅନ+ ଅ) ଶରୀରର କଣ୍ଠସ୍ଥ ବାୟୁବିଶେଷ, ନାଭି, ସର୍ପ, ବୌଦ୍ଧଶାସ୍ତ୍ରଭେଦ ।

**ଉଦାପୁ**—ପୁଂ.ବି. (ଉତ୍+ଆପ୍+ଉ) ସହଦେବ ପୁତ୍ର, ମଗଧରାଜ ଜରାସନ୍ଧର ପୌତ୍ର, ପକ୍ଷ୍ମ, ଚକ୍ଷୁର ପତା ।

**ଉଦାପେକ୍ଷୀ**—ପୁଂ ବି. ବିଶ୍ୱାମିତ୍ରଙ୍କ ପୁତ୍ର

**ଉଦାୟୁଧ**—ପୁଂ.ବିଂ.(ବ.ବ୍ରୀ.)ଉଦ୍ଧୃତାସ୍ତ୍ର ବଧ କରିବାକୁ ଯେ ଶସ୍ତ୍ର ଉତ୍ତୋଳନ କରିଥାଏ ।

**ଉଦାର**—ପୁଂ.ବିଂ. (ଉତ୍+ଆ+ଋ+ ଅ, ଅଗାଧ, ରମ୍ୟ,ବାଞ୍ଛିତ, ଫଳପ୍ରଦ, ଦାତା, ମହାତ୍ମା, ସରଳ, ଶିଷ୍ଟ,ଉତ୍କୃଷ୍ଟ, ଗମ୍ଭୀର, ମହୋଚ୍ଚ, ମହତ୍, ବଦାନ୍ୟ, ଦୟାଳୁ, ସାରବାନ୍, ନ୍ୟାଯ୍ୟ, ଅସା- ଧାରଣ, ଦକ୍ଷିଣ ।

**ଉଦାରଚରିତ (ଚରିତ୍ର)**—ବିଂ (ବ.ବ୍ରୀ.) ମହାନୁଭବ,ରାଗଦ୍ୱେଷ ବିଶୂନ୍ୟ,ଉଦାର- ସ୍ୱଭାବ,(ବି-କ ଧା) ଉଦାର ଆଚରଣ, ଉନ୍ନତ ସରଳ ବ୍ୟବହାର,(ସ୍ତ୍ରୀ)ଉଦାର- ଚରିତା (ତ୍ରା) ।

**ଉଦାରଚିତ୍ତ**—ବିଂ. (ବ.ବ୍ରୀ.) ଉଦାର- ହୃଦୟ, ମହାପ୍ରାଣ, ସରଳମନାଃ, (ସ୍ତ୍ରୀ) ଉଦାରଚିତ୍ତ,(ବି କ.ଧା) ଉଦାରହୃଦୟ, ସରଳମନ ।

**ଉଦାରଚେତାଃ**—ପୁଂ.ବିଂ. (ଉଦାର+ ଚେତସ୍) ଉଦାରମନାଃ (ଦେଖ) ।

**ଉଦାରତା**—ସ୍ତ୍ରୀ. ବି. (ଉଦାର+ତା) ମହତ୍ତ୍ୱ, ଔଦାର୍ଯ୍ୟ, ସାଧୁତା, ଦାକ୍ଷିଣ୍ୟ, ବଦାନ୍ୟତା, ଗାମ୍ଭୀର୍ଯ୍ୟ, ସୌଜନ୍ୟ, ଦୟା. ଅଳଙ୍କାରବିଶେଷ, ଯୋଉଁଥିବା କୁହୁଡ଼ି ।

**ଉଦାରଦର୍ଶନ**—ପୁଂ. ବିଂ. (ବବ୍ରୀ) ରମ୍ୟାକୃତି, ପୁଣ୍ୟଦର୍ଶନ, ବିଶାଳାକ୍ଷ, ସ୍ୱରୂପ ।

**ଉଦାରଧୀ**—ପୁଂ. ବିଂ. (ବ.ବ୍ରୀ) ମହା- ବୁଦ୍ଧି, ପ୍ରାଜ୍ଞ, ବିଚକ୍ଷଣ, ମହାମନା, ମହାନୁଭବ, ଉଚ୍ଚାଶୟ, (ବିଂ) ବିଷ୍ଣୁ (ସ୍ତ୍ରୀ-ବି) ମହତୀ ବୁଦ୍ଧି, ପ୍ରଜ୍ଞା ।

**ଉଦାରପ୍ରକୃତି**—ବି. ଉନ୍ନତ ସ୍ୱଭାବ, ମହଚ୍ଚରିତ୍ର, (ବିଂ.) ଉନ୍ନତସ୍ୱଭାବବିଶିଷ୍ଟ ବଦାନ୍ୟ, ଦକ୍ଷିଣ, ମହାନୁଭାବ ।

**ଉଦାରମତି**—ବିଂ. (ବ.ବ୍ରୀ.) ମହାମନା, ଉନ୍ନତହୃଦୟ, ପ୍ରଶସ୍ତଚିତ୍ତ, ଉଚ୍ଚାଶୟ ।

**ଉଦାରମନା**—ପୁଂ.ସ୍ତ୍ରୀ. ବିଂ. (ବ.ବ୍ରୀ) ସରଳହୃଦୟ (ବ୍ୟକ୍ତି), ଅକପଟ, ମହାନ୍ ।

**ଉଦାରସଙ୍କଳ**—ବି.(ଉଦାର+ସମ୍+ ଜ୍ଞା+ଅକ) ଦ୍ୱ୍ୟର୍ଥବୋଧକ, ଯାହାର ଅର୍ଥ ସନ୍ଦେହଜନକ ।

**ଉଦାରହୃଦ୍**—ବିଂ. (ବ.ବ୍ରୀ) ଉଦାର ହୃଦୟ, ମହାମନା, ମହାଶୟ, ପ୍ରଶସ୍ତ ଚିତ୍ତ ।

**ଉଦାରା(ସଙ୍ଗୀତ)**-(ଉଦାର+ଆ)ନାଭିରୁ ଯେ ସପ୍ତ ସ୍ୱର ଉଚ୍ଚରିତ ହୁଏ ତାହାକୁ ଉଦାରା କହନ୍ତି ।

**ଉଦାସ**—ଗ୍ରା. ବିଂ.ପୁଂ. ସ୍ତ୍ରୀ. ଉଦାସୀନ, ଉଦାସ (ଦେଖ) ।

**ଉଦାବଡ଼**—ଗ୍ରା. ବିଂ. (ସଂ-ଉଦାରବର) ବିଷୟାନଭିଜ୍ଞ, ଅକର୍ମଣ୍ୟ, ଅକାମିକା ।

**ଉଦାବସର**—ପୁଂ. ବି.ବର୍ଷବିଶେଷ,ଏହି ବର୍ଷରେ ରୌପ୍ୟଦାନେ ମହାଫଳ ହୁଏ ।

**ଉଦାବର୍ତ୍ତ**—ପୁଂ. ବି. (ଉତ୍+ଆ+ ବୃତ୍+ଅ) ରୋଗବିଶେଷ, ମଳମୂତ୍ର- ରୋଧକ ରୋଗବିଶେଷ ।

**ଉଦାବସୁ**—ପୁଂ ବି. ନିମି ପୌତ୍ର, ଜନ- କଙ୍କ ପୁତ୍ର ।

**ଉଦାବୁଲିବା**—ଗ୍ରା. କ୍ରି. ବିନାରକ୍ଷକରେ ଗୋରୁମାନେ ବୁଆଧାନ ଇତ୍ୟାଦି ଖାଇବାକୁ ବୁଲିବା, (ଲ-ଅ) ସ୍ୱାଧୀନ- ଭାବରେ ବିଚରଣ କରିବା ।

**ଉଦାସ**—ବିଂ.ଅସହାୟ,ଅନଭିଜ୍ଞ, ନିରା- ନନ୍ଦ, ଶିଥିଳ, ନିର୍ଲିପ୍ତ, ଉଦ୍ଦେଶ୍ୟହୀନ, ଶୂନ୍ୟ, ବିଷଣ୍ଣ, ସମ୍ପର୍କଶୂନ୍ୟ, ହତାଶ, ଚିନ୍ତାମଗ୍ନ, ଉନ୍ମୀଳିତ,ଉଦ୍‌ଘାଟିତ,(ସ୍ତ୍ରୀ) ଉଦାସା ।

**ଉଦାସିନୀ**—ସ୍ତ୍ରୀ. ବିଂ. ବିରାଗିଣୀ, ସନ୍ନ୍ୟା- ସିନୀ, ଅନାଥା, ନିରାଶ୍ରୟା, ଅସହାୟା ।

**ଉଦାସୀ**—ପୁଂ. ବିଂ. (ଉତ୍+ଆସ୍+ ଇନ୍) ସନ୍ନ୍ୟାସୀ ସମ୍ପ୍ରଦାୟବିଶେଷ, ବିଦେଶୀ, ବୈରାଗୀ, ଅଧୀର, (ସ୍ତ୍ରୀ) ଉଦାସିନୀ ।

**ଉଦାସୀନ**—ପୁଂ. ବିଂ.(ଉତ୍+ଆସ୍+ ଆନ)ବୈରାଗୀ,ନିଃସଙ୍ଗ, ସଂସାରତ୍ୟାଗୀ, ଆସ୍ଥାଶୂନ୍ୟ, ମଧ୍ୟସ୍ଥ, ଅବାଧ, ବ୍ୟାକୁଳ, ସ୍ୱତନ୍ତ୍ର, ତଟସ୍ଥ, ସମ୍ପର୍କରହିତ, ଉପେ- କ୍ଷକ, ଯାହାର ସହିତ ଆଳାପ ପରିଚୟ ନ ଥାଏ, (ସ୍ତ୍ରୀ) ଉଦାସୀନା ।

**ଉଦାସ୍ଥିତ**—ପୁଂ. ବି. (ଉତ୍+ଆ+ସ୍ଥା +ତ) ଅଧ୍ୟକ୍ଷ, ଦ୍ୱାରପାଳ, ଚର, ପ୍ରଣିଧି,(ବିଂ) ଊର୍ଦ୍ଧ୍ୱସ୍ଥ, ନଷ୍ଟସନ୍ନ୍ୟାସ, ପ୍ରବ୍ରଜ୍ୟାବସିତ ।

**ଉଦାହରଣ, ଉଦାହାର**—କ୍ଳୀ.ବି. (ଉତ୍ +ଆ+ହୃ+ଅନ) ଦୃଷ୍ଟାନ୍ତ, ନିଦର୍ଶନ, ଉଲ୍ଲେଖ, ବର୍ଣ୍ଣନ, ସନ୍ଦର୍ଭ,ପ୍ରବନ୍ଧ,କଥା- ପ୍ରସଙ୍ଗ, ଉତ୍ପେକ୍ଷିତ, ନାଟ୍ୟଶାସ୍ତ୍ରୋକ୍ତ ଗର୍ଭାଙ୍କବିଶେଷ ।

**ଉଦାହରଣସ୍ଥଳ**—ବି. (୬ ତତ୍) ଉଦା- ହରଣର ବିଷୟୀଭୂତ ବିଷୟ, (ବିଂ) ଅନୁକରଣୀୟ ।

ଉଦାହରଣୀୟ—ବି°. (ଉତ୍ + ଆ + ହୃ + ର୍ମି,ଅନୀୟ) ଉଦାହରଣ ଦେବାର ଯୋଗ୍ୟ ।

ଉଦାହାର—ପୁଂ. ବି. (ଉତ୍ + ଆ + ହୃ + ଅ) ଉଦାହରଣ, ଯୁକ୍ତ ଓ ବ୍ୟାପ୍ତି-ଦ୍ୱାରା ଦୃଷ୍ଟାନ୍ତ ।

ଉଦାହୃତ—ବି° (ଉତ୍ + ଆ + ହୃ + ର୍ମି, ତ) ଉଲ୍ଲିଖିତ, ଯାହା ଉଦାହରଣ ଦିଆ ହୋଇଥାଏ, ଦୃଷ୍ଟାନ୍ତରୂପେ କଥିତ, ଉଚ୍ଚାରିତ, ବର୍ଣ୍ଣିତ, ଉପନ୍ୟସ୍ତ ।

ଉଦିତ ବି°. (ଉତ୍ + ଇ + କ୍ତ,ତ) ଉଦ୍‌ଗତ, ଉଚତ, ଉନ୍ନତ, ଉତ୍ପନ୍ନ, ଉଦୟପ୍ରାପ୍ତ, ପ୍ରାଦୁର୍ଭୂତ, ଉକ୍ତ,ଉତ୍‌ଥିତ, କଥିତ, ପ୍ରକାଶିତ, (ବି) ଲଗ୍ନ,ରାଶିଉଦୟ, (ସ୍ତ୍ରୀ) ଉଦିତା । [ଉଦୟ ।

ଉଦିତି—ସ୍ତ୍ରୀ. ବି. (ଉତ୍ + ଇ + ତି)

ଉଦିତୋଦିତ—ବି°. (ଉଦିତ + ଉଦିତ) ଶାସ୍ତ୍ରୋକ୍ତ, ଖ୍ୟାତ, କଥିତ ।

ଉଦିଷ୍ଟାନ—ଗ୍ରା. ବି°. ଦୁଷ୍ଟ କଳି ବା ଫୌଜଦାରୀ କରିବାକୁ ଉଦ୍ୟତ, (ବି) କଳି କଜିଆ, ଦୁଷ୍ଟାମି ।

ଉଦୀକ୍ଷଣ—କ୍ଳୀ.ବି. (ଉତ୍ + ଈକ୍ଷ୍ + ଅନ) ଦର୍ଶନ, ପ୍ରତୀକ୍ଷା, ଦେଖିବା, ଉପରକୁ ଚାହିଁବା ।

ଉଦୀକ୍ଷିତ—ବି°. (ଉତ୍ + ଈକ୍ଷ୍ + କ୍ତ,ତ) ଉପରକୁ ଚାହିଁଥିବା,ଅପେକ୍ଷା କରୁଥିବା ।

ଉଦୀଚୀ—ସ୍ତ୍ରୀ.ବି.(ଉଦଚ୍ + ଈ) ଉତ୍ତର ଦିଗ, ଉତ୍ତରାଞ୍ଚଳ ।

ଉଦୀଚୀନ—ବି°. ( ଉଦୀଚୀ + ଈନ ) ଉଦୀଚ୍ୟ, ଉତ୍ତରଦିକ୍‌ସମ୍ବନ୍ଧୀୟ ଉତ୍ତର ଦେଶୀୟ ।

ଉଦୀଚ୍ୟ—ବି° (ଉଦୀଚୀ + ଯ)ଉତ୍ତର-ଦେଶୀୟ, ଉତ୍ତରଦିଗ-ଦେଶକାଳଭବ, କର୍ମସମାପ୍ତି ।

ଉଦୀଚ୍ୟ—ପୁଂ.ବି.ସରସ୍ୱତୀନଦୀର ଉତ୍ତର-ପଶ୍ଚିମସ୍ଥ ଦେଶ, (କ୍ଳୀ.ବି.)ବାଲା ନାମକ ଗନ୍ଧଦ୍ରବ୍ୟ ।

ଉଦୀଚ୍ୟବୃତ୍ତ—କ୍ଳୀ. ବି. ଉତ୍ତରମେରୁର ସଢ଼େ ୨୩ ଅଂଶଦକ୍ଷିଣରେ ଯେଉଁ ଅକ୍ଷରେଖା ଅଛି ।

ଉଦୀଚ୍ୟବୃତ୍ତି—ସ୍ତ୍ରୀ. ବି. ବୈତାଳୀୟ ଛନ୍ଦୋଭେଦ ।

ଉଦୀଚ୍ୟାଲୋକ—ବି. ଉତ୍ତରମେରୁ ନିକଟସ୍ଥ ଅଞ୍ଚଳରେ ଷମନ୍ୱୟରେ ଯେଉଁ ଛମାସ ରାତି ହୁଏ ସେହି ସମୟରେ ସାମୟିକ ଉତ୍ତରଆକାଶରେ ଦେଖାଯିବା ଅଦ୍ଭୁତ ଆଲୋକମାଳା ।

ଉଦୀଚ୍ୟେତରବୃତ୍ତ—କ୍ଳୀ. ବି. ଦକ୍ଷିଣ ମେରୁରୁ ସାଢ଼େ ୨୩ ଅଂଶ ଉତ୍ତରରେ ଯେଉଁ ଅକ୍ଷରେଖା ଅଛି ।

ଉଦୀପ—ବି°. ଉଦ୍‌ଗତ ଜଳ ।

ଉଦୀୟମାନ—ପୁଂ, ବି. (ଉତ୍ + ଈ + କ. ଆନ) ଉଦିତହୋଇଥିବା ଅବଭୂସ୍ୟମାଣ ।

ଉଦୀରଣ—କ୍ଳୀ. ବି. ( ଉତ୍ + ଈର୍ + ଣ୍ଣି,ଅନ) ଉଚ୍ଚାରଣ,କଥନ,ଉଦ୍ଦୀପନ, ପ୍ରେରଣ, ଉଜ୍ଜୃମ୍ଭଣ, ଉତ୍ପତ୍ତି, ଉତ୍କର୍ଷ, ନିର୍ଦ୍ଦେଶ, ବର୍ଣ୍ଣନା, ଉତ୍‌କ୍ଷେପଣ ।

ଉଦୀରିତ—ବି°. (ଉତ୍ + ଈର୍ + ର୍ମି,ତ) ଉଦ୍ଦୀପିତ, ପ୍ରକାଶିତ, କଥିତ, ଉଦ୍‌କ୍ତ, ପ୍ରେରିତ, ଉଚ୍ଚାରିତ, ଉତ୍‌କ୍ଷିପ୍ତ ।

ଉଦୀର୍ଣ୍ଣ—ବି°. (ଉତ୍ + ଈର୍ + ର୍ମି, ତ) ଉଦିତ, ଉଦ୍‌କ୍ତ, ପ୍ରବଳ, ଉତ୍କଟ, ଉଦାର, ଉଦ୍ଧତ, ଉଦ୍ଦୀପ୍ତ, ଦାମ୍ଭିକ, ଉତ୍ପନ୍ନ, (ପୁଂ.) ବିଷ୍ଣୁ ।

ଉଦୀର୍ଯ୍ୟମାନ-ପୁଂବି°.(ଉତ୍ + ଈର୍ + ର୍ମି, ଆନ)କଥ୍ୟମାନ,ନିର୍ଦ୍ଦିଶ୍ୟମାନ,ଉଚ୍ଚାର୍ଯ୍ୟମାଣ । [ମୁକୁଳା ।

ଉଦୁଆଁ—ଗ୍ରା ବି°. ମେଲା, ଖୋଲା,

ଉଡଉଡଆ—ଗ୍ରା. ବି°. ସମ୍ପୂର୍ଣ୍ଣ ପ୍ରଚଣ୍ଡ ରୌଦ୍ରଯୁକ୍ତ, ତୀବ୍ର ମଧ୍ୟାହ୍ନ ।

ଉଦୁଣ୍ଡର—ଗ୍ରା. (ଇସ୍ଲାମ) ବି°. ଖଚୁଆ, ରାଜାଙ୍କର ଗୁପ୍ତଚର ।

ଉଦୁମ୍—ଗ୍ରା. (ସମ୍ଭ) ବି°. ଉଷ୍ଣ, ଉଷୁମ, ଉଷ୍ମ, (ବି) ଉତ୍ତାପ ଉଷ୍ଣତା ।

ଉଦୁଉଦୁମା-ଗ୍ରା.ବି°.ବଗୁଲିଆ, ଖେଚଡ଼ା, ଅଥୟ, ଅଶାନ୍ତ, ଗୋଳମାଳକରୁଥିବା; ମୋଟା ଓ ଅଳସୁଆ; ଡେଙ୍ଗା ଓ ଅକାମିକା, ଦୁଷ୍ଟ, ଦୁମ୍‌ଦୁମ୍ ହୋଇ ଦୌଡ଼ୁ-ଥିବା ବା ବୁଲୁଥିବା, (ବି) ବହୁତ ବଧା ଗୁପୁଡ଼ାଆଦି ମାଡ଼ ।

ଉଦୁମ୍ବର—ବି. (ଉଦ୍ + ଉ + ବୃ + ଅ) ଉଦୁମ୍ବର ବୃକ୍ଷ, ଯଜ୍ଞଡିମିରି, ଜନ୍ତୁଫଳ, ତପସାଙ୍ଗ, ଯଜ୍ଞାଙ୍ଗ, କୁଷ୍ଠବିଶେଷ, ଦେହଳୀ, ପିଣ୍ଡକ, ତାମ୍ର, କ୍ଳୀବବ୍ୟକ୍ତି ।

ଉଦୁମ୍ବରଦଳା—ସ୍ତ୍ରୀ ବି. ଦନ୍ତୀବୃକ୍ଷ ।

ଉଦୁମ୍ବରପର୍ଣ୍ଣୀ—ସ୍ତ୍ରୀ.ବି.ଦନ୍ତୀବୃକ୍ଷ,ଦନ୍ତୀ ଗଛ । [ବିଶେଷ ।

ଉଦୁମ୍ବରାବତୀ—ସ୍ତ୍ରୀ.ବି.ହରିବଂଶୋକ୍ତନଦୀ-

ଉଦୁମ୍ବଲ—ପୁଂ.ବି.ଉଦୁମ୍ବର,ଡିମିରିଗଛ ।

ଉଦୂଖଳ-କ୍ଳୀବି(ଉତ୍ + ଖଳ + ଅ)ଉଲୂଖଳ, ଉଖଳ, ଚିଙ୍କିଭଣ୍ଡି, ଗୁଗ୍‌ଗୁଲ, ହେମଦନ୍ତା, ହାତପାହାରଣୀ, ଏକପ୍ରକାର ଧାନକୁଟିବା ବା ଚାଉଳ କଣ୍ଡିବାର ପାତ୍ର ।

ଉଦୂଢ଼—ବି.(ଉତ୍ + ବହ୍ + ତ) ଉଢ଼, ବିବାହିତ, ସ୍ଥୂଳ, ଧୃତ, ବାହିତ,ଉନ୍ନତ ଅତିଶୟ, ଅଧିକ, ଭଗ୍ନ ।

ଉଦେଜୟ-ବି°.(ଉତ୍ + ଏଜ୍ + ଣି + ଅ) ଉଦ୍‌ବେଗକାରକ, ଭୟପ୍ରଦ, ଉତ୍କମ୍ପ-ଜନକ । [ଅନ୍ନ ।

ଉଦୌଦନ—କ୍ଳୀ. ବି. ଜଳଦ୍ୱାରା ସିଦ୍ଧ

ଉଦ୍‌ଗତ—ବି°. (ଉଦ୍ + ଗମ୍ + କ୍ତ ତ) ଉତ୍‌ଥିତ,ଉତ୍ପନ୍ନ ଉଦିତ,ନିର୍ଗତ,ପ୍ରସିଦ୍ଧ, ପ୍ରକାଶିତ, ଉଦ୍ଭ୍ରାନ୍ତ, (ସ୍ତ୍ରୀ) ଉଦ୍‌ଗତା ।

ଉଦ୍‌ଗତଶୃଙ୍ଗ—ପୁଂ.ବି°. ଯେଉଁ ପଶୁର ଶୃଙ୍ଗ ଉଠିଥାଏ ।

ଉଦ୍‌ଗତା—ସ୍ତ୍ରୀ.ବି. ବିଷମବୃତ୍ତି ଛନ୍ଦୋ-ଭେଦ । [ମୃତ ।

ଉଦ୍‌ଗତାସୁ—ବି°. (ବ.ବ୍ରୀ )ବିଗତପ୍ରାଣ,

ଉଦ୍‌ଗତି—ସ୍ତ୍ରୀ.ବି.(ଉତ୍ + ଗମ୍ + କ୍ତି.ତି) ଉର୍ଦ୍ଧ୍ୱଗତି, ଉଦୟ ଉତ୍ପତ୍ତି ।

ଉଦ୍‌ଗନ୍ଧ—ବି°. (ବ.ବ୍ରୀ ) ଉତ୍କୃଷ୍ଟ ଗନ୍ଧ ଯୁକ୍ତ, ଉତ୍‌ଥିତ ସୌରଭ ।

ଉଦ୍‌ଗମ—ପୁଂ. ବି. (ଉତ୍ + ଗମ୍ + ଅ) ଉତ୍ଥାନ, ଉତ୍ପତ୍ତି, ଉଦୟ, ଉଠିବା, ଉପରକୁ ଠେଲି ଉଠିବା, ଟାଙ୍କୁରିବା, ବାହାରକୁ ବାହାରିବା,ଜ୍ଞାନ, ଚଢ଼ିବା, ଦେଖାଯିବା ।

**ଉଦ୍‌ଗମନ** କ୍ଲୀ.ବି. (ଉତ୍ + ଗମ୍ + ଅନ) ଉତ୍ଥାନ, ଉତ୍ପତ୍ତି, ଉଦୟ, ଉଠିବା, ଦର୍ଶନ, ବଢ଼ିବା, ଟାଙ୍କୁରିବା, ବାହାରକୁ ବାହାରିବା, ଜ୍ଞାନ ।

**ଉଦ୍‌ଗମନୀୟ**—କ୍ଲୀ.ବି. (ଉଦ୍‌ଗମ + ଅନୀୟ) ଧୌତବସ୍ତ୍ରଦ୍ୱୟ, ଧୂଆବସ୍ତ୍ରଯୋଡ଼ା, (ବିଂ) ଆରୋହଣୀୟ, ପରିଷ୍କୃତ ।

**ଉଦ୍‌ଗଳିତ**—ବିଂ. (ଉତ୍ + ଗଲ୍ + କ୍ତ.) ନିଃସୃତ ।

**ଉଦ୍‌ଗାଢ଼**—କ୍ଲୀ.ବି. (ଉତ୍ + ଗାହ୍ + କ୍ତ) ଅତିଶୟ, ଅଧିକ, (ବି) ଅତିଶୟଯୁକ୍ତ, ଅତ୍ୟଧିକ ।

**ଉଦ୍‌ଗାତା**—ପୁଂ.ବିଂ. (ଉତ୍ + ଗୈ + ତୃ) ଉଚ୍ଚୈଃସ୍ୱରରେ ଗାନକର୍ତ୍ତା, (ବି) ସାମବେଦଗାୟକ, ଋତ୍ୱିଗ୍‌ଭେଦ, (ସ୍ତ୍ରୀ) ଉଦ୍‌ଗାତ୍ରୀ ।

**ଉଦ୍‌ଗାର**—ପୁଂ.ବି. (ଉତ୍ + ଗୄ + ଘ.ଅ) ବମନ, ମୁଖରୁ ବାୟୁ ନିର୍ଗମ, ନିଃସରଣ, ଉଚ୍ଚାରଣ, ବର୍ତ୍ତଣ, ବାନ୍ତି, ହାକୁଟି, ପ୍ରତିଧ୍ୱନି, ଉପଦେଶ ।

**ଉଦ୍‌ଗାରଶୋଧନ**—ପୁଂ.ବି. (ଉଦ୍‌ଗାର + ଶୁଧ୍ + ଣି + ଅନ) କୃଷ୍ଣଜୀରା, କଳାଜୀରା ।

**ଉଦ୍‌ଗାରୀ**—ପୁଂ.ବିଂ. (ଉତ୍ + ଗୄ + କ. ଇନ୍) ଉଦ୍‌ଗାରଯୁକ୍ତ, ନିଃସାରୀ, ବର୍ଷୀ, ଗର୍ଜନକାରୀ ।

**ଉଦ୍‌ଗୀରଣ**—କ୍ଲୀ ବି. (ଉତ୍ + ଗୄ + ଅନ) ଉଦ୍‌ଗାର, କଣ୍ଠସ୍ୱରଭେଦ, ବମନ, ନିଃସରଣ, ହାକୁଟି ମାରିବା, ଥୁକିବା, ବର୍ଷଣ ।

**ଉଦ୍‌ଗୀତ**—ବିଂ. (ଉତ୍ + ଗୈ + ର୍ମ,କ୍ତ) ଉଚ୍ଚୈଃସ୍ୱରରେ ଗୀତ, ଉଚ୍ଚସ୍ୱରରେ ଗୀତ, ନିନାଦିତ ।

**ଉଦ୍‌ଗୀତି**—ସ୍ତ୍ରୀ. ବି (ଉତ୍ + ଗୈ + କ୍ତି) ଉଚ୍ଚୈଃସ୍ୱରରେ ଗାନ, ଆର୍ଯ୍ୟାଛନ୍ଦୋବିଶେଷ ।

**ଉଦ୍‌ଗୀଥ**—ପୁଂ.ବି. (ଉତ୍ + ଗୈ + ଥ) ସାମବେଦଧ୍ୱନି, ଓଁକାର, ପ୍ରଣବ, ସାମ, ସାମଗାନାବୟବଭେଦ, ଉପବୀତ ।

**ଉଦ୍‌ଗୀରଣ**—ବିଂ. ନିଃସାରଣ, ଉଦ୍‌ଗରଣ (ଦେଖ) ।

**ଉଦ୍‌ଗୀର୍ଣ୍ଣ**—ବିଂ. (ଉତ୍ + ଗୄ + ର୍ମ,କ୍ତ) ବମିତ, ଉଚ୍ଚାରିତ, ଉଦ୍‌ଗତ, ଅନୁରଞ୍ଜିତ ଅନୁବଦ୍ଧ, ନିର୍ଗତ, ପ୍ରତିବିମ୍ବିତ, ବାନ୍ତି କରାଯାଇଥିବା, (ସ୍ତ୍ରୀ) ଉଦ୍‌ଗୀର୍ଣ୍ଣା ।

**ଉଦ୍‌ଗୂର୍ଣ୍ଣ**—ବିଂ. (ଉତ୍ + ଗୁର + ର୍ମ,କ୍ତ) ଉତ୍ତୋଳିତ, ଉଚ୍ଛନ୍ନ, ଉଦ୍ୟତ, ଉତ୍ତେଜିତ, ଉଦ୍ଭ୍ରାନ୍ତ, ଟେଣ୍ଣା ହୋଇଥିବା, ଉଦ୍‌ଗତ ଯାହା ଟେକା ହୋଇଅଛି ।

**ଉଦ୍‌ଗ୍ରଥିତ**—ବିଂ. (ଉତ୍ + ଗ୍ରଥ + କ୍ତ) ଉପରଭାଗେ ବଦ୍ଧ, ଉପରେ ଗ୍ରଥିତ, ଆଗରେ ଗଣ୍ଠି ପଡ଼ିଥିବା, ଆଗରେ ଟେଗ୍ରୁ-ହୋଇ ବନ୍ଧା ହୋଇଥିବା ।

**ଉଦ୍‌ଗ୍ରନ୍ଥ**—ବିଂ. (ଉତ୍ + ଗ୍ରନ୍ଥ + ଘ,ଅ) ଉନ୍ମୁକ୍ତ, (ପୁଂ.ବି) ଉନ୍ମୋଚନ, ପରିଚ୍ଛେଦ ।

**ଉଦ୍‌ଗ୍ରନ୍ଥନ**—କ୍ଲୀ. ବି. (ଉତ୍ + ଗ୍ରନ୍ଥ + ଅନ) ଗାଣ୍ଠି ଉଠାଇବା, ଗାଣ୍ଠିମା, ଅଗରେ ଗଣ୍ଠି ପକାଇବା ।

**ଉଦ୍‌ଗ୍ରନ୍ଥି**—ବିଂ. ହସ୍ତର-ବନ୍ଧନସ୍ଥାନ, ନିଗ୍ରନ୍ଥ, ବିରକ୍ତ ।

**ଉଦ୍‌ଗ୍ରନ୍ଥିତ**—ବିଂ. ବିମୋଚିତ ।

**ଉଦ୍‌ଗ୍ରହଣ**—କ୍ଲୀ. ବି. (ଉତ୍ + ଗ୍ରହ୍ + ଅନ) ଗ୍ରହଣ, ଉଦ୍‌ଗ୍ରହଣ, ଗିଳିବା, ଧରିବା, ଉଠାଇନେବା, ପରିଶୋଧନ ।

**ଉଦ୍‌ଗ୍ରହ**—ପୁଂ.ବି. (ଉତ୍ + ଗ୍ରହ୍ + ଅ) ଉଦ୍‌ଗ୍ରହଣ (ଦେଖ) ।

**ଉଦ୍‌ଗ୍ରାଭ**—ପୁଂ.ବି. (ଉତ୍ + ଗ୍ରହ୍ + ଅ) ଗ୍ରହଣ, ଉନ୍ନିବନ୍ଧ, ଦାନ ।

**ଉଦ୍‌ଗ୍ରାହ**—ପୁଂ ବି (ଉତ୍ + ଗ୍ରହ + ଅ) ଦାନ, ବାଦଭେଦ, ବିଦ୍ୟାବିଚାର, ଗ୍ରହଣ, ଉଠାଇନେବା ।

**ଉଦ୍‌ଗ୍ରାହଣୀ**—ସ୍ତ୍ରୀ ବି. (ଉତ୍ + ଗ୍ରହ୍ + ଇନ୍ + ଈ) ପାଶଭିକ୍ଷୁ ।

**ଉଦ୍‌ଗ୍ରହିତ**—ବିଂ. (ଉତ୍ + ଗ୍ରହ୍ + ଇତ) ଉପରିଉନ୍ନୀତ, ବଦ୍ଧ, ଉଦୀର୍ଣ୍ଣ, ଅନ୍ତଃକରଣେ ଅର୍ପିତ, ଆକ୍ରାନ୍ତ, ଉପରଆରୂ-ଧରାଯାଇଥିବା, ଉନ୍ନମିତ, ଗ୍ରାହିତ, ମହତ୍, ଗିଳାଯାଇଥିବା ।

**ଉଦ୍‌ଗ୍ରୀବ**—ପୁଂ. ବିଂ. (ବ.ବ୍ରୀ) ଊର୍ଦ୍ଧ୍ୱଗ୍ରୀବ, ଉନ୍ମୁଖ, ଆଗ୍ରହାନ୍ୱିତ, ବ୍ୟଗ୍ର, ଉତ୍ସୁକ, ବ୍ୟାକୁଳ, ଯେ ବେକକୁ ଟେକିଥାଏ, (ସ୍ତ୍ରୀ) ଉଦ୍‌ଗ୍ରୀବା ।

**ଉଦ୍‌ଘ**—ପୁଂ.ବି. (ଉତ୍ + ହନ୍ + ଅ) ଅଗ୍ନି, ପ୍ରଶଂସ, ଦେହବାୟୁ, କରପୁଟ (ବିଂ) ପ୍ରଶସ୍ତ, ପ୍ରକାଣ୍ଡ ।

**ଉଦ୍‌ଘଟ୍ଟକ**—ପୁଂ ବି. (ଉତ୍ + ଘଟ୍ଟ + କ) ତାଳ, ଉନ୍ମୋଚନ, କୂପଯନ୍ତ୍ରବିଶେଷ ।

**ଉଦ୍‌ଘଟ୍ଟନ**—କ୍ଲୀ.ବି. (ଉତ୍ + ଘଟ୍ଟ + ଣି, ଅନ) ଆଘାତ, ଧକା ମାରିବା, ଉନ୍ମୋଚନ, ଘାଣ୍ଟିବା, ପ୍ରହାର, ପାଲଟିବା (ଲୁଗା), ଉଦ୍‌ଘର୍ଷଣଦ୍ୱାରା ଚଳାଇବା ।

**ଉଦ୍‌ଘଟ୍ଟିତ**—ବିଂ. (ଉତ୍ + ଘଟ୍ଟ + ର୍ମ,କ୍ତ) ଉପନୀତ, ଉଦ୍‌ଘାଟିତ, ଆହତ, ଉନ୍ମୋଚିତ, ପାଲଟା ଯାଇଥିବା (ଲୁଗା) ।

**ଉଦ୍‌ଘନ**—ପୁଂ.ବି. (ଉତ୍ + ହନ୍ + ଅ) କାଷ୍ଠମୟ ଆଧାର, କର୍ମକାର (ବଢ଼େଇ) ମାନେ ଏହି କାଷ୍ଠ ଉପରେ କାଠ ରଖି ପରିଷ୍କାର କରନ୍ତି ।

**ଉଦ୍‌ଘର୍ଷଣ**—କ୍ଲୀ ବି. (ଉତ୍ + ଘୃଷ୍ + ଣି, ଅନ) ଉପରେ ଘର୍ଷଣ, ଦୁଇ ପଦାର୍ଥ ପରସ୍ପର ଘଷିହେବା, ଇଷ୍ଟକାଦି କଠିନ ଦ୍ରବ୍ୟଦ୍ୱାରା ଗାତ୍ରାଦି ମାର୍ଜ୍ଜନ ।

**ଉଦ୍‌ଘସ**—କ୍ଲୀ.ବି. (ଉତ୍ + ଅଦ୍ + ର୍ମ,ଅ) ମାଂସ ଭକ୍ଷ୍ୟବସ୍ତୁ ।

**ଉଦ୍‌ଘାଟ**—ପୁଂ.ବି. (ଉତ୍ + ଘଟ୍ + ଅ) ଉଦ୍‌ଘାଟନ, ରାଜସ୍ୱଗ୍ରହଣ ସ୍ଥାନ, କୂଡ଼ଘାଟ, ପହରାଘର, ଥାନା, ପଣ୍ୟାଦି ଦ୍ରବ୍ୟ ଦେଖାଇବାର ଖୋଲା ଜାଗା (ସ୍ଥାନ) ।

**ଉଦ୍‌ଘାଟକ**—ପୁଂ. କ୍ଲୀ. ବି. (ଉତ୍ + ଘାଟି + ଅକ) କୂପରୁ ଜଳ ଆଣିବାର ଯନ୍ତ୍ର, ବାଲ୍‌ଟି, ଦୁବ, ଘରଣା, ଘଟୀ, (ବିଂ) ଉନ୍ମୋଚନକାରୀ, ପ୍ରକାଶକ, ଯେ ମୁକୁଳା, ଉନ୍ମୁକ୍ତକ ।

ଉଦ୍‌ଘାଟନ-କ୍ଲୀ.ବ.(ଉତ୍‌+ଘାଟି+ଣ, ଅନ) ଉନ୍ମୋଚନ, ଖୋଲିବା, କଞ୍ଚି, ଉଲ୍ଲେଖ, ପ୍ରକାଶ କରଣ, କୂପରୁ ଜଳ ଆଣିବା ନିମିତ୍ତ ରଜ୍ଜୁସହିତ ଚର୍ମପାତ୍ର ।

ଉଦ୍‌ଘାଟିତ—ବିଂ. (ଉତ୍‌+ଘାଟି+ର୍ମ, ତ) ପ୍ରକାଶିତ, ଆବରଣରହିତ, ମେଲା କରାଯାଇଥିବା, ଉନ୍ମୋଚିତ, କୃତୋଦ୍‌ଘାଟନ, ମେଲା, ଖଲାସ, ମୁକ୍ତ ।

ଉଦ୍‌ଘାଟିତଜ୍ଞ—ବିଂ. (ଉଦ୍‌ଘାଟିତ+ଜ୍ଞା+କ, ଅ) ବିଜ୍ଞ, ପ୍ରାଜ୍ଞ, ବୁଦ୍ଧିମାନ୍ ।

ଉଦ୍‌ଘାଟିତାଙ୍ଗ—ବିଂ.(ବ.ବ୍ରୀ)ମୁକ୍ତଗାତ୍ର, ଖୋଲାଦେହ, ବିଜ୍ଞ, ବୁଦ୍ଧିମାନ୍ ।

ଉଦ୍‌ଘାତ—ପୁଂ.ବ (ଉତ୍‌+ହନ୍‌+ଅ) ପ୍ରତିଘାତ, ବାଧା, ଆରମ୍ଭ, ପାଦସ୍ଖଳନ, କୁମ୍ଭକ, ସୂଚନା, ଅଧଃସ୍ଥ, ମୁଗୁର, ମୁଦ୍‌ଗର, ଅରଘଟ୍ଟ, ଉତ୍ତୁଙ୍ଗ, ନିଦର୍ଶନ, ଅରଘଟ୍ଟ, ଗ୍ରନ୍ଥ-ପରିଚ୍ଛେଦ ।

ଉଦ୍‌ଘାତକ—ପୁଂ. ବ. (ଉତ୍‌+ହନ୍‌+ଅକ) ନାଟକୀୟ ପ୍ରସ୍ତାବନାବିଶେଷ ।

ଉଦ୍‌ଘାତୀ—ପୁଂ.ବିଂ.(ଉତ୍‌+ହନ୍‌+କ ଇନ୍) ଉଦ୍‌ଘାତକାରୀ, ଉନ୍ନତାବନତ ।

ଉଦ୍‌ଘୂର—ବିଂ. (ଉଦ୍‌+ଘୂର୍‌+ଅ) ହାଲୁକା, ଭାରଶୂନ୍ୟ, ଦୃଢ଼ ।

ଉଦ୍‌ଘୁଷିତ—ବିଂ. ( ଉତ୍‌+ଘୁଷ୍‌+ର୍ମ,ତ) ପ୍ରତଙ୍କାତ ।

ଉଦ୍‌ଘୁଷ୍ଟ—ବିଂ. (ଉତ୍‌+ଘୁଷ୍‌+ର୍ମ,ତ) ନିନାଦିତ,(ଭ୍ର ତ) କ୍ଲୀ.ବ. ଉଚ୍ଚଘୋଷ ।

ଉଦ୍‌ଘୂର୍ଣ୍ଣ—ବିଂ.(ଉତ୍‌+ଘୂର୍ଣ୍ଣ୍‌+କ,ଅ) ଉପରେ ଘୁରୁଥିବା, ଘୂର୍ଣ୍ଣିତ ।

ଉଦ୍‌ଘୂର୍ଣ୍ଣା—ସ୍ତ୍ରୀ. ବ. (ଉତ୍‌+ଘୂର୍ଣ୍ଣ+ଅ+ଆ) ମହାଭାବ ବା ଦଶାବିଶେଷ, ଦିବ୍ୟୋନ୍ମାଦ ।

ଉଦ୍‌ଘୋଷ—ପୁଂ.ବ. (ଉତ୍‌+ଘୁଷ୍‌+ଅ) ଉଚ୍ଚଶବ୍ଦ କରଣ ପାଟି କରିବା, ପୁନଃ ପୁନଃ କଥନ, କୀର୍ତ୍ତନ,(ବିଂ) ଉଚ୍ଚଶବ୍ଦ-କାରୀ ।

ଉଦ୍ଦଂଶ—ପୁଂ. ବ.(ଉତ୍‌+ଦଂଶ୍‌+କ, ଅ) କେଶକୀଟ, ଉକୁଣୀ, ଡାଶ, ଦଂଶ, ମଶକ, ମଶା, ଓଡ଼ଶ ।

ଉଦ୍ଦଣ୍ଡ—ବିଂ. ( ଉତ୍‌+ଦଣ୍ଡ୍‌+ଅ ) ବ.ବ୍ରୀ, ପ୍ରଚଣ୍ଡ, ଉତ୍କଟ, ପ୍ରତାପୀ, ଉନ୍ନତ ଦଣ୍ଡଯୁକ୍ତ, ସିଧାଠେଙ୍ଗା ଧରିଥିବା (ବ୍ୟକ୍ତି), ଅବାଧ, ଅମାନିଆ, ଖଡ୍‌ଗହସ୍ତ, ପ୍ରଗାଢ଼, ଉଦ୍ୟତ, (ବି) ଉନ୍ନତଦଣ୍ଡ ବା ରାଜଦଣ୍ଡ, ଉତ୍ତୋଳିତ ଲଠି ।

ଉଦ୍ଦଣ୍ଡନୃତ୍ୟ—କ୍ଲୀ.ବ. ଠିଆନାଚ ।

ଉଦ୍ଦଣ୍ଡପାଳ—ପୁଂ.ବ ଉନ୍ନତ ଦଣ୍ଡକାର, ସର୍ପବିଶେଷ, ମତ୍ସ୍ୟବିଶେଷ ।

ଉଦ୍ଦନ୍ତୁର—ବିଂ.(ଉତ୍‌+ଦନ୍ତ୍‌+ଉର) ଉତ୍ତୁଙ୍ଗ, କରାଳ, ଅତି ଡେଙ୍ଗା, ଉତ୍କଟ-ଦନ୍ତ, ଦାନ୍ତୁରା, ବଡ଼ଦନ୍ତା, ଭୟଙ୍କର, ଉଚ୍ଚ, (ସ୍ତ୍ରୀ) ଉଦ୍ଦନ୍ତୁରା ।

ଉଦ୍ଦାନ—କ୍ଲୀ. ବ. (ଉତ୍‌+ଦା+ଣ, ଅନ) ଶୁଳ୍କ, କର, ସୂର୍ଯ୍ୟଙ୍କର ରାଶି-ସଂକ୍ରମଣ କାଳ, ବନ୍ଧନ, ଉଦ୍ୟମ, ଚୁଲ୍ଲୀ-ବଡ଼ବାଗ୍ନି, ମଧ୍ୟ, ଲଗ୍ନ, କଟିଦେଶ. ପୋଷଣ ।

ଉଦ୍ଦାନ୍ତ—ବିଂ. (ଉତ୍‌+ଦମ୍‌+କ, ତ) ସ୍ଥିରସ୍ୱଭାବାପନ୍ନ, ଅତିଦମିତ, ଶାନ୍ତ, (ସ୍ତ୍ରୀ) ଉଦ୍ଦାନ୍ତା ।

ଉଦ୍ଦାମ—ବିଂ. (ଉତ୍‌+ଦମ୍‌+ଅ)ଉଚ୍ଛୃଙ୍ଖଳ, ବନ୍ଧନରହିତ, ସ୍ୱତନ୍ତ୍ର, ଅଶାସ୍ୟ, ଉତ୍କଟ, ସ୍ୱେଚ୍ଛାଗାମୀ, ଦୃପ୍ତ, ମହତ୍‌, ବୃହତ୍‌, ମହାକାୟ,ଗମ୍ଭୀର,(ବି)ବରୁଣ, ଯମ, (ସ୍ତ୍ରୀ) ଉଦ୍ଦାମା ।

ଉଦ୍ଦାମା—ପୁଂ. ବିଂ. (ଉତ୍‌+ଦାମନ୍) ଉଚ୍ଛୃଙ୍ଖଳ, ବନ୍ଧନରହିତ, ଉତ୍କଟ, ଅତିଶୟ, ଯତ୍ନ ।

ଉଦ୍ଦାଳ—ପୁଂ.ବ. (ଉତ୍‌+ଦଳ+ଅ) ବହୁବାର ବୃକ୍ଷ, ଓଉ, କନକୋଦ୍ରବ, ବଣକୋଦୁଅ, କୁଟ୍ରି, ଧାନ୍ୟବିଶେଷ ।

ଉଦ୍ଦାଳକ—ପୁଂ.ବ (ଉଦ୍ଦାଳ+କ) ଋଷି-ବିଶେଷ, ଯାଜ୍ଞବଲ୍କ୍ୟଙ୍କର ଗୁରୁ, ବହୁବାରକ ବୃକ୍ଷ ଓଉ ।

ଉଦ୍ଦାଳକବ୍ରତ—କ୍ଲୀ. ବ. ବ୍ରତବିଶେଷ ।

ଉଦ୍ଦାଳକାୟନ—ପୁଂ. ବ. ଋଷିଭେଦ, ଶ୍ୱେତକେତୁ । [ବନ୍ଧାହୋଇଥିବା ।

ଉଦ୍ଦିତ—ବିଂ.(ଉତ୍‌+ଦୋ+ତ)ବଦ୍ଧ,

ଉଦ୍ଦିଷ୍ଟ—ବିଂ ( ଉତ୍‌+ଦିଶ୍‌+ର୍ମ. ତ ) ପୂର୍ବୋକ୍ତ, କୀର୍ତ୍ତିତ, ସଙ୍କଳ୍ପିତ, ସାଙ୍କେତିତ, ଉପଦିଷ୍ଟ, ଅଭିପ୍ରେତ, ଯାହାର ଅନୁସନ୍ଧାନ କରାଯାଇଅଛି, ଲକ୍ଷ୍ୟୀକୃତ, ଯାହାର ଲକ୍ଷ୍ୟ କରାହୋଇଥାଏ, (ବି) ଉପାସ୍ୟଭେଦ ।

ଉଦ୍ଦୀପ—କ୍ଲୀ. ବ. (ଉତ୍‌+ଦୀପ୍‌+ଅ) ଉତ୍ତେଜନ. ପ୍ରୋତ୍ସାହନ, ଉଦ୍ଦୀପକ, ଗୁଗ୍‌ଗୁଳୁ ।

ଉଦ୍ଦୀପକ—ବିଂ.(ଉତ୍‌+ଦୀପ୍‌+ଅକ)ଉଗ୍ର, ଉଦ୍ଭାବକ, ପ୍ରକାଶକ, ଉତ୍ତେଜକ, ଯେ ମତାଏ, ଯେ ବଢ଼ାଏ, ତେଜସ୍ୱାନ୍, ଉଜ୍ଜ୍ୱଳ, ଜନକ, ଯେ ଉତ୍ସାହ ଦାନ କରେ, ଯେ ବଢ଼ାଏ, (ସ୍ତ୍ରୀ)ଉଦ୍ଦୀପିକା ।

ଉଦ୍ଦୀପନ—କ୍ଲୀ.ବ. (ଉତ୍‌+ଦୀପ୍‌+ଣି. ଅନ ) ପ୍ରକାଶ, ଉତ୍ତେଜନ, ବର୍ଦ୍ଧିତ-କରଣ, ପ୍ରଜ୍ୱଳନ, କାମକ୍ରୋଧାଦିମାନଙ୍କୁ ପ୍ରବଳ କରିବା, ଅଳଂକାରୋକ୍ତବିଭାବ-ବିଶେଷ ।

ଉଦ୍ଦୀପନବିଭାବ—ପୁଂ.ବ. (ମଧ୍ୟ-କ.ଧା) ଶୃଙ୍ଗାରରସର ବିଭାବବିଶେଷ ।

ଉଦ୍ଦୀପନା—ସ୍ତ୍ରୀ.ବ.(ଉତ୍‌+ଦୀପ୍‌+ଅନ+ଆ) ମତାଇବା, ଉତ୍ତେଜନା ବଢ଼ାଇବା, ଜଳାଇବା, ଉତ୍ସାହଦେବା, ଅଳଂକାରରେ ରସର ବିଭାବବିଶେଷ ।

ଉଦ୍ଦୀପିତ—ବିଂ.(ଉତ୍‌+ଦୀପି+ତ)ପ୍ରଜ୍ୱଳିତ, ପ୍ରକାଶିତ, ବର୍ଦ୍ଧିତ, ଉଜ୍ଜ୍ୱଳିତ, ଉତ୍ତେଜିତ ।

ଉଦ୍ଦୀପ୍ତ—ବିଂ. ( ଉତ୍‌+ଦୀପ୍‌+ତ ) ପ୍ରକାଶାନ୍ୱିତ ପ୍ରଜ୍ୱଳିତ, ବର୍ଦ୍ଧିତ, ଆଲୋକିତ, ଅତିଶୟ ତେଜସ୍ୱାନ୍, ଉଗ୍ର, ଉଜ୍ଜ୍ୱଳୀକୃତ, ବ୍ୟକ୍ତୀକୃତ ।

ଉଦ୍ଦୀପ୍ର—ପୁଂ. ବ (ଉତ୍‌+ଦୀପ୍‌+ର) ଗୁଗ୍‌ଗୁଳ, (ବିଂ) ଉଦ୍ଦୀପ୍ତ, ଅତିଦୀପ୍ତିଶୀଳ ।

ଉଦ୍ଧୃତ—ବିଂ. (ଉତ୍‌+ଦୃ+ତ)ପଳାୟିତ, ଗଳିତ ।

ଉଦ୍ଧୃପ୍ତ—ବିଂ. ( ଉତ୍‌+ଦୃପ୍‌+ତ ) ଉଦ୍ଧତ, ଗର୍ବାନ୍ୱିତ ।

ଉଦ୍ଦେଶ୍ୟ—ପୁଂ.ବି. (ଉତ୍ + ଦିଶ୍ + ଅ) ଅନୁସନ୍ଧାନ, ଲକ୍ଷ୍ୟ, ଅଭିଳାଷ, ଉପଦେଶ ବାର୍ତ୍ତା, ସମ୍ବାଦ, ତଥ୍ୟ, ଉଲ୍ଲେଖ, ନାମକଥନ, ଉପଦେଶ, ଦେଶ, ପ୍ରଦେଶ, ସଂକ୍ଷେପ, ଉତ୍କୃଷ୍ଟଦେଶ, ଅଭିସନ୍ଧି, ଅଭିପ୍ରାୟ, ତନ୍ତ୍ରାଧିକରଣଭେଦ ।

ଉଦ୍ଦେଶକ—ପୁଂ. ବିଂ.(ଉତ୍ + ଦିଶ୍ + ଅକ) ଲକ୍ଷ୍ୟକାରୀ, ପ୍ରବେଶକ, ଅନ୍ୱେଷଣକାରୀ, ଉପଦେଶକ, ଉଦାହରଣବାକ୍ୟ, ପ୍ରଶ୍ନ ।

ଉଦ୍ଦେଶକରିବା—ଗ୍ରା. କ୍ରି. ଲକ୍ଷ୍ୟକରିବା, ଅପେକ୍ଷା କରିବା, ଖୋଜିବା, ଖବରନେବା, ତତ୍ତ୍ୱନେବା, ସଙ୍କେତଦ୍ୱାରା ସୂଚନା କରିବା ।

ଉଦ୍ଦେଶ୍ୟରେ—ଗ୍ରା.କ୍ରି.ବିଂ. ଲକ୍ଷ୍ୟ ରଖି, ଲକ୍ଷ୍ୟକରି, ବିଷୟରେ (ଅମୁକ) ।

ଉଦ୍ଦେଶ୍ୟ—ବିଂ. (ଉତ୍ + ଦିଶ୍ + ର୍ମ.ଯ) ଅନୁସନ୍ଧେୟ, ଲକ୍ଷ୍ୟ, ଉଦ୍ଦେଶ୍ୟ କରିବାର ଯୋଗ୍ୟ, ଅଭିପ୍ରେତ, (ବି) ବାକ୍ୟର କର୍ତ୍ତୃପଦ, ଅନୁବାଦ୍ୟ, ତାତ୍ପର୍ଯ୍ୟ, ଅଭିପ୍ରାୟ, ପ୍ରୟୋଜନ, ଅଭିସନ୍ଧି, ସ୍ଥଳ ।

ଉଦ୍ଦେଶ୍ୟବିଧେୟସମ୍ବନ୍ଧ—(ନ୍ୟାୟ)—ବି. ଲକ୍ଷ୍ୟ ଓ ଲକ୍ଷିତବିଷୟର ସମ୍ପର୍କ ।

ଉଦ୍ଦେଶ୍ୟମୂଳକ—ବିଂ.(ବ.ବ୍ରୀ)ଉଦ୍ଦେଶ୍ୟଯୁକ୍ତ, ଯାହାର ମୂଳରେ କୌଣସି ଉଦ୍ଦେଶ୍ୟ ଥାଏ ।

ଉଦ୍ଦେଶ୍ୟସିଦ୍ଧି—ସ୍ତ୍ରୀ ବି. ଅନୁମିତ ଦୋଷଭେଦ, ଅଭିପ୍ରେତସିଦ୍ଧି ।

ଉଦ୍ଦେଷ୍ଟା—ପୁଂ. ବିଂ. (ଉତ୍ + ଦିଶ୍ + ତୃ) ଅନୁସନ୍ଧାନକର୍ତ୍ତା, ଅନ୍ୱେଷକ ।

ଉଦ୍ଦେହିକ—ପୁଂ. ବିଂ. ଦେଶବିଶେଷ, (ସ୍ତ୍ରୀ) ଉଦ୍ଦେହିକା, କୀଟବିଶେଷ ।

ଉଦ୍ଦ୍ୟୋତ ଉଦ୍ଦ୍ୟୋତ-ପୁଂ. ବି (ଉତ୍ + ଦ୍ୟୁତ + ଭା.ଅ)ଦ୍ୟୁତି, ପ୍ରକାଶ, ଆତପ, ରୌଦ୍ର, ଗ୍ରନ୍ଥପରିଚ୍ଛେଦ ।

ଉଦ୍ଦ୍ୟୋତକ—ପୁଂ.ବିଂ.(ଉତ୍ + ଦ୍ୟୁତ୍ + ଣିଚ୍ + କ.ଅକ ଉଦ୍ଦୀପକ, ପ୍ରକାଶକ ।

ଉଦ୍ଦ୍ୟୋତକରାଚାର୍ଯ୍ୟ—ପୁଂ. ବିଂ. ଜଣେ ପ୍ରସିଦ୍ଧ ନୈୟାୟିକ, ନ୍ୟାୟବାର୍ତ୍ତିକରଚୟିତା ।

ଉଦ୍ଦ୍ୟୋତନ-କ୍ଲୀ. ବି. (ଉତ୍ + ଦ୍ୟୁତ୍ + ଣି + ଭା.ଅନ)ଉଦ୍ଦୀପନ, ପ୍ରକାଶନ ।

ଉଦ୍ଦ୍ୟୋତିତ—ବିଂ. (ଉତ୍ + ଦ୍ୟୁତ୍ + ଣି + ତ ) ଉଦ୍ଦୀପିତ ପ୍ରକାଶିତ ।

ଉଦ୍ଦ୍ରାବ-ପୁଂ ବି. (ଉତ୍-ଦ୍ରୁ + ଅ)ପ୍ରସ୍ଥାନ, ଦ୍ରୁତପଦରେ ପଳାୟନ, ଉତ୍କୃଷ୍ଟ ଗତିଯୁକ୍ତ, ଅସ୍ଥୈର୍ଯ୍ୟ ।

ଉଦ୍ଦ୍ରୁତ—ବିଂ.(ଉତ୍ + ଦ୍ରୁ + କ.ତ ) ପଳାୟିତ, ଚଳିତ, (ସ୍ତ୍ରୀ) ଉଦ୍ଦ୍ରୁତା ।

ଉଦ୍ଧତ—ପୁଂ ବି (ଉତ୍ + ହନ + କ.ତ) ରାଜମଲ୍ଲ, ( ବିଂ ) ଅବିନୀତ, ଦୁରନ୍ତ, ଉତ୍ଥିତ, ଉତ୍କ୍ଷିପ୍ତ ଦୃପ୍ତ, ସମୁଦ୍ଧତ, ଆହୃତ, ଘୂର୍ଣ୍ଣିତ, ନିବଦ୍ଧ, ଘୋର, ଉତ୍କଟ, ଧୃଷ୍ଟ ।

ଉଦ୍ଧତଚାରୀ—ପୁଂ.ବିଂ.(ଉଦ୍ଧତ + ଚର୍ + କ ଇନ୍) ଉଦ୍ଧତ କାର୍ଯ୍ୟକାରୀ, ଅବିନୀତ, ଧୃଷ୍ଟ, ଯେ ଉଦ୍ଧତଭାବରେ ଚଳେ ।

ଉଦ୍ଧତମନ—କ୍ଲୀ. ବି. ଅଭିମାନ, ଗର୍ବ ।

ଉଦ୍ଧତି—ସ୍ତ୍ରୀ.ବି (ଉତ୍ + ହନ୍ + ଭା.ତି) ଉଦ୍‌ଗତି ଉନ୍ନତି, ଉତ୍ପତନ, ଔଦ୍ଧତ୍ୟ, ଧୃଷ୍ଟତା, ଗର୍ବ ।

ଉଦ୍ଧମ—ବିଂ.(ଉତ୍ + ଧ୍ମା + ଅ)କୃତଶବ୍ଦ ଯେ ଶବ୍ଦ କରେ, ଅତି ଶବ୍ଦକାରକ ।

ଉଦ୍ଧୟ—ବିଂ. (ଉତ୍ + ଧେ + ଅ) ଯେ ଉଠାଇ କରି ପାନ କରେ, ଯେ ଟେକି କରି ପାନକରେ ।

ଉଦ୍ଧରଣ—କ୍ଲୀ.ବି (ଉତ୍ + ହୃ + ଅନ) ଉଦ୍ଧାର, ମୁକ୍ତି, ଋଣଶୋଧ, ଉନ୍ମୂଳନ, ଉତ୍ତୋଳନ, ଉତ୍ଥାପନ, ବମନ, ଦୂରୀକରଣ, ପରିବେଟଣ, ଉତ୍ପାଦନ, ତ୍ରାଣ, ବ୍ୟସନରୁ ମୁକ୍ତି ।

ଉଦ୍ଧରଣୀୟ-ବିଂ.(ଉତ୍ + ହୃ + ର୍ମ.ଅନୀୟ) ଉତ୍ତୋଳନୀୟ, ଉନ୍ମୂଳନୀୟ, ଅପନେୟ ।

ଉଦ୍ଧରିତ—ବିଂ. ଉତ୍ତୋଳିତ, ଉନ୍ନୀତ ।

ଉଦ୍ଧର୍ତ୍ତା—ପୁଂ. ବିଂ. (ଉତ୍ + ହୃ + ତୃ) ଉଦ୍ଧାରକାରକ, ପୃଷ୍ଠପୋଷକ, ଉନ୍ମୂଳୟିତା, ତାରଣକାରକ, ଋଣଶୋଧକ, (ସ୍ତ୍ରୀ) ଉଦ୍ଧର୍ତ୍ରୀ ।

ଉଦ୍ଧର୍ଷ—ପୁଂ.ବି (ଉତ୍ + ହୃଷ୍ + ଅ)ହର୍ଷ, (ବିଂ) ଜାତହର୍ଷ ।

ଉଦ୍ଧର୍ଷଣ - କ୍ଲୀ.ବି.(ଉତ୍ + ହର୍ଷି + ଅନ) ରୋମାଞ୍ଚ, ପୁଲକ, ରୋମହର୍ଷଣ, ପ୍ରୋତ୍ସାହନ, (ବିଂ) ହର୍ଷଯୁକ୍ତ, ଉତ୍କୃଷ୍ଟ ହର୍ଷଜନକ ପୁଲକିତ ।

ଉଦ୍ଧର୍ଷୀ-ପୁଂ.ବିଂ.(ଉତ୍ + ହର୍ଷି + ଇନ୍) ଉଦ୍ଧର୍ଷକାରକ, ଅତିପ୍ରୀତିକର, (ସ୍ତ୍ରୀ) ବସନ୍ତତିଳକନାମକ ବର୍ଣ୍ଣବୃତ୍ତଭେଦ ।

ଉଦ୍ଧର୍ଷିଣୀ - ସ୍ତ୍ରୀ.ବି ବସନ୍ତତିଳକା ବୃତ୍ତ ।

ଉଦ୍ଧଳନ—ଗ୍ରା.(ସମ୍ବ) ବି ତରକାରୀକୁ ବାସଯୁକ୍ତ କରିବାପାଇଁ ତହିଁରେ ଦିଆଯିବା ଅଳଇଚ ଇତ୍ୟାଦି ।

ଉଦ୍ଧବ-ପୁଂ.ବି.(ଉତ୍ + ଧୃ + ଅ)ଯଜ୍ଞାଗ୍ନି, ଉତ୍ସବ, କୃଷ୍ଣମାତୁଳ, ଯାଦବବିଶେଷ, କୃଷ୍ଣସଖା, ବୃହସ୍ପତି ଶିଷ୍ୟ ।

ଉଦ୍ଧସ୍ତ—ବିଂ.ଉତ୍କ୍ଷିପ୍ତ ହସ୍ତ, ଉଦ୍‌ବାହୁ, ଊର୍ଦ୍ଧ୍ୱବାହୁ ।

ଉଦ୍ଧାନ—କ୍ଲୀ. ବି (ଉତ୍ + ଧା + ଅନ) ଚୁଲ୍ଲୀ, (ବିଂ) ଉଦ୍‌ଗତ, ବମିତ, ଆରୂଢ଼, ଉଦ୍‌ଗୀର୍ଣ୍ଣ, (ସ୍ତ୍ରୀ) ଉଦ୍ଧାନା ।

ଉଦ୍ଧାନ୍ତ—ପୁଂ.ବି. (ଉତ୍ + ଧାମି + ତ) ମଦଶୂନ୍ୟହସ୍ତୀ, (ବିଂ)ଉଦ୍‌ବାନ୍ତ, ବମିତ, ଉଦ୍‌ଗୀର୍ଣ୍ଣ ।

ଉଦ୍ଧାର—ପୁଂ. ବି. ( ଉତ୍ + ଧୃ + ଅ ) ମୁକ୍ତି, ପରିତ୍ରାଣ, ଋଣଶୋଧ, ପତିତ ବ୍ୟକ୍ତିକୁ ସମାଜରେ ଗ୍ରହଣ, ନଷ୍ଟପଦାର୍ଥର ପୁନରଧିକାର, ଅଂଶଭେଦ, ମୋଚନ, (ସ୍ତ୍ରୀ) ଗୁଳୁଚୀ ।

ଉଦ୍ଧାରକ—ପୁଂ.ବି. ଯେ ଉଦ୍ଧାରକରେ, ଉଦ୍ଧର୍ତ୍ତା, (ସ୍ତ୍ରୀ) ଉଦ୍ଧାରିକା ।

ଉଦ୍ଧାରଚିହ୍ନ—ଗ୍ରା. ବି. କୌଣସି କଥିତ ବା ଲିଖିତ ବିଷୟରୁ ଉଦ୍ଧୃତାଂଶର ଆଦ୍ୟରେ ଓ ଶେଷରେ ବ୍ୟବହୃତଚିହ୍ନ ।

ଉଦ୍ଧାରଣ—କ୍ଲୀ.ବି. (ଉତ୍ + ଧୃ + ଣି + ଅନ) ଉତ୍ଥାପନ, ଉଦ୍ଧାରସାଧନ, ଉତ୍ତୋଳନ, ତ୍ରାଣ, ଉଦ୍ଧରଣ, ବିସର୍ଜନ, ଅପନୟନ ।

ଉଦ୍ଧାରଣଦତ୍ତ—ପୁଂ. ବି. ଚୈତନ୍ୟଦେବଙ୍କର ଜଣେ ପ୍ରଧାନଭକ୍ତ ।

ଉଦ୍ଧାରିବା—ଗ୍ରା. କ୍ରି. ଉଦ୍ଧାରକରିବା ମୁକ୍ତକରିବା,ଟେକିଧରିବା । [ଗୁଳୁଚୀ

ଉଦ୍ଧାରା—ସ୍ତ୍ରୀ ବି (ଉତ୍ + ଧୃ + ଅ + ଆ

ଉଦ୍ଧି—ପୁଂ. ବି. ( ଉତ୍ + ଧା + ଇ ) ଊର୍ଦ୍ଧ୍ୱଧାରଣ ।

ଉଦ୍ଧୁର—ବିଂ. (ଉତ୍ + ଧୁର୍ + ଅ) ଭାରଶୂନ୍ୟ, ଦୃଢ଼, ଉଚ୍ଚ, ଉଦ୍ୟତ, ଉତ୍ସୁକ, ଦୁଃସହ ।

ଉଦ୍ଧୂଷଣ—କ୍ଲୀ ବି(ଉତ୍ + ଧୂଷ୍ + ଅନ) ରୋମାଞ୍ଚ, ଉଦ୍ଧର୍ଷଣ, ପୁଲକ ।

ଉଦ୍ଧୂତ—ବିଂ. ( ଉତ୍ + ଧୂ + ର୍ମ,ତ ) ଉତ୍କମ୍ପିତ, ଉତ୍ପାଟିତ, ଜରସ୍ତ ଉତ୍କ୍ଷିପ୍ତ, ଉତ୍ଖାତ, ଉନ୍ମଥିତ, ( ସ୍ତ୍ରୀ ) ଉଦ୍ଧୂତା ।

ଉଦ୍ଧୂନନ—କ୍ଲୀ ବି. (ଉତ୍ + ଧୂ + ନୁ + ଅନ ) କମ୍ପନ, ଉତ୍କ୍ଷେପଣ, ଉତ୍କମ୍ପନ ।

ଉଦ୍ଧୂପନ—କ୍ଲୀ.ବି (ଉତ୍ + ଧୂପ୍ + ଅନ ଊର୍ଦ୍ଧ୍ୱସଞ୍ଚାଳନ, ଉତ୍କ୍ଷେପଣ, (ବିଂ) କମ୍ପନ,ପ୍ରବର୍ତ୍ତିକ, ସଂସ୍କାରକ ।

ଉଦ୍ଧୂଲନ—କ୍ଲୀ. ବି. (ଉତ୍ + ଧୂଲ୍ + ଅନ) ଚୂର୍ଣ୍ଣୀକରଣ, ଧୂଳିପରିମର୍ଦ୍ଦନ, ମସଲା ଗୁଣ୍ଡା ।

ଉଦ୍ଧୂଷଣ—କ୍ଲୀ.ବି. (ଉତ୍ + ଧୂଷ୍ + ଅନ) ରୋମାଞ୍ଚ, ପୁଲକୋଦ୍‌ଗମ, ( ବିଂ ) ରୋମାଞ୍ଚିତ, ପୁଲକିତ ।

ଉଦ୍ଧୃତ—ବିଂ (ଉତ୍ + ଧୃ + ର୍ମ ତ)ପୁନର୍ବାର ଅଧିକୃତ, ଉଦ୍ଧାରଦ୍ୱାରା ବିଭକ୍ତ, ଉତ୍ତୋଳିତ, ଗୃହୀତ, ଯାହା ଉଠାଇ ହୋଇଅଛି, ଉତ୍ତୋଳିତ, ଉନ୍ମୋଚିତ, କୌଣସି ବିଷୟରୁ ସଂଗୃହୀତ, ଉତ୍କ୍ଷିପ୍ତ ଉନ୍ମୂଳିତ ଉନ୍ମମିତ,ସଙ୍କଳିତ, ବର୍ଜିତ, ପ୍ରତାଂଶ ଧୃତ,ନୀତ, ଉଦ୍‌ଗୀର୍ଣ୍ଣ,ଭୁକ୍ତାବଶିଷ୍ଟ, ରକ୍ଷିତ ଉଦ୍‌ବୃତ୍ତ ।

ଉଦ୍ଧୃତଚନ୍ଦ୍ର—ସ୍ତ୍ରୀ. ବି. ଉଦ୍ଧାର ଚନ୍ଦ୍ର (ଦେଖ) ।

ଉଦ୍ଧୃତପାଣି—ପୁଂ ବି. ଉତ୍ତରୀୟମଧ୍ୟରୁ ବହିଷ୍କୃତ ହସ୍ତ ।

ଉଦ୍ଧୃତାଂଶ—ପୁଂ.ବି. (କ ଧା) ଅନ୍ୟର ଲେଖାରୁ ଗୃହୀତ ଅଂଶ, ରୋମାଞ୍ଚିତ ।

ଉଦ୍ଧୃଷ୍ଟ —ବିଂ. (ଉତ୍ + ହୃଷ୍ଟ) ଅତିହୃଷ୍ଟ

ଉଦ୍ଧୃତି--ସ୍ତ୍ରୀବି.(ଉତ୍ + ହୃ + ତି) ଉତ୍କ୍ଷେପଣ,ଉତ୍ତୋଳନ ଉନ୍ମୂଳନ,ମୋଚନ

ଉଦ୍ଧ୍ମାନ—କ୍ଲୀ.ବି. (ଉତ୍ + ଧ୍ମା + ଅନ) ଚୁଲ୍ଲୀ, ଉତ୍ସୃଷ୍ଟ । [ କ୍ଷେପଣ ।

ଉଦ୍ଧ୍ୟ—ପୁଂ.ବି.ନଦ,(କ୍ଲୀ.ବି) ଜଳୋତ୍-

ଉଦ୍‌ବଗ—ସ୍ତ୍ରୀ.ବି. ଗୁଆ,(ଯଦୁମଣିପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର ) । [ ନତ୍ୟ ।

ଉଦ୍‌ବତ୍ସର—ପୁଂ.ବି ଚାନ୍ଦ୍ରମାସାନ୍ୟତବର୍ଷ,

ଉଦ୍‌ବଦ୍ଧ-ବିଂ.(ଉତ୍-ବନ୍ଧ୍ + ତ)ଊର୍ଦ୍ଧ୍ୱରେ ବଦ୍ଧ, ଉପରେ ବନ୍ଧା ହୋଇଥିବା, ବନ୍ଧନଭ୍ରଷ୍ଟ, ଝଙ୍ଗା ହୋଇଥିବା ।

ଉଦ୍‌ବନ୍ଧକ—ପୁଂ. ବି. (ଉତ୍ + ବନ୍ଧ୍ + ଅକ) ବର୍ଣ୍ଣସଙ୍କର ଜାତିବିଶେଷ, ( ଧୋବା ) ଧୁବା ।

ଉଦ୍‌ବନ୍ଧନ—କ୍ଲୀ.ବି. (ଉତ୍ + ବନ୍ଧ୍ + ଅନ) ଗଳାରେ ଦଉଡ଼ିଦେଇ ଊର୍ଦ୍ଧ୍ୱରେ ବନ୍ଧନ, ମରିବା ଇଚ୍ଛାରେ ବେକରେ ଦଉଡ଼ି ଦେବା, ବନ୍ଧନଚ୍ୟୁତ, ( ବିଂ ) ବନ୍ଧନଭ୍ରଷ୍ଟ ।

ଉଦ୍‌ବପନ—କ୍ଲୀ.ବି.(ଉତ୍ + ବପ୍ + ଭା. ଅନ ) ଉତ୍ତୋଳନ, ଉତ୍ପାଟନ ।

ଉଦ୍‌ବର୍ତ୍ତ-ବି (ଉତ୍ + ବୃତ + ଭା ଅ)ଅତିରେକ, ଆଧିକ୍ୟ, ବଳିପଡ଼ିଥିବା ଅଂଶ, (ବି.ର୍ମ ଅ) ପ୍ରୟୋଜନାତିରିକ୍ତ ।

ଉଦ୍‌ବମନ-କ୍ଲୀ ବି(ଉତ୍ + ବମ୍ + ଭା.ଅନ ଉଦ୍‌ଗୀରଣ, ବମନ, ହାକୁଟି, ବାନ୍ତି ।

ଉଦ୍‌ବମିତ—ପୁଂ. ବି.(ଉତ୍ + ବମିତ) ଉଦ୍‌ଗୀର୍ଣ୍ଣ,ବାନ୍ତିକରିଯାଇଥିବା, ହାକୁଟି ମାରୁଥିବା ।

ଉଦ୍‌ବାହୁ-ପୁଂ.ବିଂ (ଉତ୍ + ବାହୁ)ଊର୍ଦ୍ଧ୍ୱବାହୁ, ଯେ ଉପରକୁ ହାତ ଟେକିଥାଏ ।

ଉଦ୍‌ବିଲ—ବି.ଉଦ୍ଭିନ୍ନ,ବିଲରୁଉଦ୍‌ଗତ ।

ଉଦ୍‌ବୁଦ୍ଧ—ବିଂ. (ଉତ୍ + ବୁଧ୍ + ତ । ପ୍ରସ୍ଫୁଟିତ, ବିକଶିତ, ଉଦ୍ଦୀପିତ,ପ୍ରବୁଦ୍ଧ, ଉଦିତ,ଅନୁସ୍ମୃତ, ଯାହାମନେପଡ଼େ ।

ଉଦ୍‌ବୋଧ-ପୁଂ.ବି. (ଉତ୍ + ବୁଧ + ଅ) କିଞ୍ଚିତ୍‌ଜ୍ଞାନ, ନ୍ୟାୟ୍ୟାଦିମତେ, ପୂର୍ବଜନ୍ମ ସଂସ୍କାରରଉଦ୍ଦୀପନ,ଅନୁସ୍ମରଣ କୌଣସି କାରଣବଶତଃ ପୁନଃପୁନଃ ସ୍ମରଣ ।

ଉଦ୍‌ବୋଧକ-ବିଂ(ଉତ୍ + ବୋଧ୍ + ଅକ) ପ୍ରକାଶକ, ଜ୍ଞାପକ, ଉଦ୍ଦୀପକ, ଯେ ଉଦ୍‌ବୋଧ ଜନ୍ମାଏ, ସ୍ମାରକ, ଯେ ନିଦ ଭଙ୍ଗାଏ, (ପୁଂ ବି) ସୂର୍ଯ୍ୟ ।

ଉଦ୍‌ବୋଧନ-କ୍ଲୀ.ବି(ଉତ୍ + ବୋଧ୍ + ଅନ) ବୋଧୋତ୍ପାଦନ ଜ୍ଞାପନ,ସ୍ମରଣରେ ଆଣିବା, ଜାଗ୍ରତକରଣ, (ବିଂ, ଜ୍ଞାପକ, ଜ୍ଞାନୋତ୍ପାଦକ ।

ଉଦ୍ଭଟ—ବିଂ ଉତ୍ + ଭଟ୍ + ଅ) ଗ୍ରନ୍ଥ ବହିର୍ଭୂତ କିନ୍ତୁ ସୂକ୍ତିତ, ମହାଶୟ, ଉଦାର, ଶ୍ରେଷ୍ଠ, ଉଚ୍ଚ, ଉତ୍କଟ, (ପୁଂ. ବି.)—କଚ୍ଛପ, ସୂର୍ଯ୍ୟ, (ସ୍ତ୍ରୀ) ଉଦ୍ଭଟା ।

ଉଦ୍ଭବ—ପୁଂ. ବି. (ଉତ୍ + ଭୂ + ଅ) ଅଭ୍ୟୁଦୟ, କାରଣ, ଉତ୍ପତ୍ତି, ବସ୍ତୁର ଯୋନି, ଜନ୍ମ, କଳ୍ପନା, (ବିଂ) ଉତ୍ପତ୍ତିମାନ୍, ସଂଜାତ, ଉତ୍ପନ୍ନ ।

ଉଦ୍ଭାବ—ବି. ( ଉତ୍ + ଭୂ + ଅ) ଉପରକୁ ଉଠିବା ପଦାର୍ଥ, ଗରମି, ବାଷ୍ପ, ବାମ୍ଫ ।

ଉଦ୍ଭାବକ—ପୁଂ. ବିଂ. (ଉତ୍ + ଭୂ + ଣି + କ, ଅକ) ଆବିଷ୍କର୍ତ୍ତା, ପରିକଳ୍ପକ, (ସ୍ତ୍ରୀ) ଉଦ୍ଭାବିକା ।

ଉଦ୍ଭାବନ-କ୍ଲୀ.ବି. (ଉତ୍ + ଭାବ + ଅନ) କଳ୍ପନ, ଉତ୍ପାଦନ, ଚିନ୍ତନ, ଉତ୍ପ୍ରେକ୍ଷଣ, ଅଜ୍ଞାତବିଷୟ ପ୍ରକାଶ, (ବିଂ) ପ୍ରକାଶକ, ଚିନ୍ତାକାରକ ।

ଉଦ୍ଭାବନା—ସ୍ତ୍ରୀ.ବି. ଉଦ୍ଭାବନ(ଦେଖ) ।

ଉଦ୍ଭାବନୀୟ—ବିଂ. (ଉତ୍ + ଭାବ + ଅନୀୟ ) କଳ୍ପନୀୟ, ଚିନ୍ତନୀୟ, ସମ୍ପାଦନୀୟ ।

ଉଦ୍ଭାବୟିତା—ପୁଂ ବିଂ.(ଉତ୍ + ଭାବ + ତ) ଉତ୍ପାଦକ, ଉନ୍ନୟନକାରକ, (ସ୍ତ୍ରୀ) ଉଦ୍ଭାବୟିତ୍ରୀ ।

ଉଦ୍ଭାବିତ —ବିଂ (ଉତ୍ + ଭୂ + ଣି + ତ) ଚିନ୍ତିତ, କଳ୍ପିତ, ଉତ୍ପାଦିତ ।

ଉଦ୍ଭାସ—ପୁଂ ବି. (ଉତ୍ + ଭାସ୍ + ଅ) ଉଦ୍ଦୀପ୍ତି, ପ୍ରକାଶ, ଶୋଭା ।

ଉଦ୍ଭାସକ—ବିଂ. (ଉତ୍ + ଭାସ୍ + ଣ, ଅକ) ଉଦ୍ଦୀପକ, ଉଜ୍ଜ୍ୱଳକର, ଯେ ଉଦ୍ଭାସ କରେ ।

ଉଦ୍ଭାସନ—କ୍ଳୀ. ବି. (ଉତ୍ + ଭାସ୍ + ଣ, ଅନ) ଉଦ୍ଦୀପନ, ଉଜ୍ଜ୍ୱଳକରଣ, ଦୀପ୍ତି, ଚନ୍ଦ୍ରାଦିଦ୍ୱାରା ପ୍ରକାଶନ, (କ.ଅନ) ବିଂ. ପ୍ରକାଶକ, ଦୀପ୍ତିକାରକ ।

ଉଦ୍ଭାସିତ – ବିଂ. (ଉତ୍ + ଭାସ୍ + ତ) ଦୀପ୍ତ, ଶୋଭିତ, ଚନ୍ଦ୍ରାଦିଦ୍ୱାରା ପ୍ରକଟିତ, ଉଜ୍ଜ୍ୱଳ, ଝକଝକ କରୁଥିବା ।

ଉଦ୍ଭାସୀ— ପୁଂ. ବିଂ. (ଉଦ୍ଭାସ + ଇନ୍) ସମୁଜ୍ଜ୍ୱଳ ।

ଉଦ୍ଭାସୁର—ବିଂ. (ଉଦ୍ଭାସ + ଉର) ସମୁଜ୍ଜ୍ୱଳ ।

ଉଦ୍ଭାସ୍ୱର— ବିଂ. (ଉତ୍ + ଭାସ୍ + ବର) ଉଦ୍ଭାସୁର, ସମୁଜ୍ଜ୍ୱଳ, ବି) ଗାଡ଼ମେଁଟନ, ହୀରା ଇତ୍ୟାଦି ।

ଉଦ୍ଭିଜ—ବିଂ. (ଉତ୍ + ଭିଦ୍ + ଜନ୍ + ଅ) ଉଦ୍ଭିଜ୍ଜ, ତରୁ, ଗୁଳ୍ମାଦି ।

ଉଦ୍ଭିଜ୍ଜ—ବିଂ. (ଉତ୍ + ଭିଦ୍ + ଜନ୍ + ଅ) ଯାହା ଭୂମିଭେଦ କରି ଜନ୍ମେ, ତରୁ-ଗୁଳ୍ମାଦି ।

ଉଦ୍ଭିଜ୍ଜାଣୁ ପୁଂ. ବି. (୬ତତ୍) ଚକ୍ଷୁର ଅଗୋଚର କ୍ଷୁଦ୍ର ଉଦ୍ଭିଜ୍ଜ ।

ଉଦ୍ଭିତ୍—ବିଂ. (ଉତ୍ + ଭିଦ୍ + କ୍ୱିପ୍) ଉଦ୍ଭିଜ୍ଜ, ବୃକ୍ଷ, ଲତା, ଗୁଳ୍ମ, ତୃଣାଦି, ଯାଗଭେଦ ।

ଉଦ୍ଭିଦ୍‌ବିଦ୍ୟା, ଉଦ୍ଭିଜ୍ଜବିଦ୍ୟା—ସ୍ତ୍ରୀ ବି. ଯେଉଁ ଶାସ୍ତ୍ରଦ୍ୱାରା ଉଦ୍ଭିଦବିଷୟକ ସକଳ ତତ୍ତ୍ୱ ଜଣାଯାଏ ।

ଉଦ୍ଭିଦ—ପୁଂ. ବି. (ଉତ୍ + ଭିଦ୍ + ଅ) ତରୁ ବୃକ୍ଷାଦି (କ୍ଳୀ) ପାଂଶୁ, ଲବଣ, ପଙ୍କାଲୁଣ ।

ଉଦ୍ଭିଦଜଳ— କ୍ଳୀ. ବି. ଶୀତଳ ଜଳବିଶେଷ, ପଥିକର ତୃଷାନିବାରକ ମରୁଭୂମିସ୍ଥ ପାନ୍ଥ ପାଦପର ଜଳ ।

ଉଦ୍ଭିଦବିଜ୍ଞାନ—ସ୍ତ୍ରୀ. ବି. ଯେଉଁ ବିଜ୍ଞାନଦ୍ୱାରା ତରୁଲତାଦି ସମ୍ବନ୍ଧରେ ଜ୍ଞାନଲାଭ ହୁଏ ।

ଉଦ୍ଭିନ୍ନ—ବିଂ. (ଉତ୍ + ଭିଦ୍ + ମିଁ, ତ) ଅଙ୍କୁରିତ, ପ୍ରତିଫଳିତ, କ୍ଷରିତ, ପରିବ୍ୟାପ୍ତ ସ୍ଫୁଟିତ, ଉତ୍ପନ୍ନ, ଦଳିତ, ଦ୍ୱିଧାକୃତ, ଉତ୍ଥିତ, ପ୍ରକାଶିତ (ସ୍ତ୍ରୀ) ଉଦ୍ଭିନ୍ନା ।

ଉଦ୍ଭୂତ—ବିଂ. (ଉତ୍ + ଭୂ + ତ) ଉତ୍ପନ୍ନ, ଜାତ, ଉଦ୍‌ଗତ, ପ୍ରତ୍ୟକ୍ଷ୍ୟ, ଯୋଗ୍ୟ, ପ୍ରକାଶିତ, ଉନ୍ନିତ, (ନ୍ୟାୟମତେ) ପ୍ରତ୍ୟକ୍ଷ୍ୟ ଯୋଗ୍ୟ, ସ୍ପଷ୍ଟ, ବ୍ୟକ୍ତ, (ସ୍ତ୍ରୀ) ଉଦ୍‌ଭୂତା

ଉଦ୍ଭୂତରୂପ—କ୍ଳୀ. ବି (କ.ଧା) ସଙ୍ଘାତରୂପ, ଯେପରି ଚକ୍ଷୁର ସମକ୍ଷେ ପ୍ରକାଶିତ ହୁଏ ।

ଉଦ୍ଭୂତି—ସ୍ତ୍ରୀ. ବି. (ଉତ୍ + ଭୂ + ଣ, ତି) ଉତ୍ପତ୍ତି, ଉଦ୍ଭବିଭୂତି, ଉନ୍ନତି, ଆବିର୍ଭାବ, ଉତ୍କର୍ଷ ।

ଉଦ୍ଭେଦ—ପୁଂ. ବି. (ଉତ୍ + ଭିଦ + ଣ, ଅ) ଫୁଟିବା, ଉଦ୍‌ଗମ, ଭେଦକରି ପ୍ରକାଶହେବା, ଉଦସ୍ଥ ସ୍ଫୁର୍ତ୍ତି, ଆବିଷ୍କାର ରୋମାଞ୍ଚ, ମେଳନ, ବ୍ୟାଦାନ ।

ଉଦ୍ଭେଦନ—କ୍ଳୀ. ବି. (ଉତ୍ + ଭିଦ୍ + ଣ, ଅନ) ପ୍ରକାଶନ ।

ଉଦ୍ଭ୍ରମ—ପୁଂ. ବି (ଉତ୍ + ଭ୍ରମ + ଣ, ଅ) ଉଦ୍‌ବେଗ, ବୁଦ୍ଧିଲୋପ, ବ୍ୟାକୁଳତା, ଊର୍ଦ୍ଧ୍ୱଭ୍ରମଣ, ପର୍ଯ୍ୟଟନ, ଆବର୍ତ୍ତନ, ଶିବଗଣବିଶେଷ, ଉଦ୍‌ଭ୍ରମଣ ।

ଉଦ୍‌ଭ୍ରାନ୍ତ—ବିଂ. (ଉତ୍ + ଭ୍ରମ୍ + କ, ତ) ବ୍ୟାକୁଳ, ଭ୍ରାନ୍ତିଯୁକ୍ତ, ହତବୁଦ୍ଧି ଆଘୂର୍ଣ୍ଣିତ, ବ୍ୟସ୍ତ, ଉଚ୍ଛୃଙ୍ଖଳ, ଉଚ୍ଚ, ପାଗଳ, ଉତ୍ସାହ, ବିଗତ, ଉନ୍ମତ୍ତ ।

ଉଦ୍ୟ—ବିଂ. (ବଦ + ଯ) କଥନୀୟ, (ପୁଂ. ବି) ନଦ ।

ଉଦ୍ୟତ୍—ବିଂ. (ଉତ୍ + ଇନ୍ + ଅତ୍) ଗମନଶୀଳ, ଉଦୟଶୀଳ ।

ଉଦ୍ୟତ—ବିଂ. (ଉତ୍ + ଯମ୍ + କ, ତ) ଉଦ୍‌ଯୁକ୍ତ, ଉଦ୍‌ଗୂର୍ଣ୍ଣ, ଉତ୍ତୋଳିତ, ଉଦ୍ୟମିତ, ତତ୍ପର, ପ୍ରବୃତ୍ତ, ଉନ୍ନତ, ସ୍ୱୟଂ ଆଗତ ମୁତ୍ତେଜ, (କ୍ଳୀ ବି. ଉଦ୍ୟମ (ପୁଂ) କାଳପରମ ଶବ୍ଦଶେଷ, ଅଧ୍ୟାୟ ।

ଉଦ୍ୟତଦଣ୍ଡ—ବି. (ବ.ବ୍ରୀ) ଦଣ୍ଡାଦିକାରୁ ଉଦ୍ୟତ, ଉଦ୍ଦଣ୍ଡ, ଯେ ବାଡ଼ି ଟେକିଅଛି ।

ଉଦ୍ୟତି – ସ୍ତ୍ରୀ ବି. (ଉତ୍ + ଯମ + ଣ, ତି) ଉଦ୍ୟମ, ଉଦ୍‌ଯୋଗ, ପ୍ରବୃତ୍ତି ।

ଉଦ୍ୟମ—ପୁଂ. ବି. (ଉତ୍ + ଯମ୍ + ଣ, ଅ) ପ୍ରୟାସ, ଯତ୍ନ, ଉଦ୍ୟୋଗ, ଉତ୍ତୋଳନ, ଉତ୍ସାହ, ଉତ୍ଥାନ, ଅନୁପୂର୍ବିକ ଚେଷ୍ଟା, ଚେଷ୍ଟା, ଅଧ୍ୟବସାୟ, ସ୍ଫୂର୍ତ୍ତି, ତତ୍ପରତା ।

ଉଦ୍ୟମନ—କ୍ଳୀ. ବି. (ଉତ୍ + ଯମ + ଣି + ଅନ) ଉତ୍‌କ୍ଷେପଣ, ଉତ୍ତୋଳନ ।

ଉଦ୍ୟମଶୀଳ—ବିଂ. (ବ.ବ୍ରୀ) ଉତ୍ସାହଶୀଳ, ଉଦ୍ୟୋଗୀ, ସଚେଷ୍ଟ, ଅଧ୍ୟବସାୟୀ, ଉଦ୍ୟମୀ, ଯୋଗାଡ଼ିଆ, (ସ୍ତ୍ରୀ) ଉଦ୍ୟମଶୀଳା ।

ଉଦ୍ୟମିତ—ବିଂ. (ଉତ୍ + ଯମ୍ + ଣି + ମିଁ. ତ) ଉତ୍ତୋଳିତ, ଯତ୍ନରେ ପ୍ରେରିତ ।

ଉଦ୍ୟମୀ – ପୁଂ. ବିଂ. ଉଦ୍‌ଯୋଗୀ, ସଚେଷ୍ଟ, ଅଧ୍ୟବସାୟୀ, ଯୋଗାଡ଼ିଆ (ସ୍ତ୍ରୀ) ଉଦ୍ୟମିନୀ ।

ଉଦ୍ୟାନ—ପୁଂ. କ୍ଳୀ. ବି. (ଉତ୍ + ଯା + ଅନ) ଆକ୍ରୀଡ଼, ଆଶ୍ରମ, କେଳିବନ, ନିଃସରଣ, ପ୍ରୟୋଜନ, ଅର୍ଯ୍ୟାବର୍ତ୍ତିସ୍ଥିତ ଦେଶବିଶେଷ, ଉପବନ, ବଗିଚା, ଉଦୟ, ଗ୍ରହଣ, ଗ୍ରନ୍ଥନସୂତ୍ର ।

ଉଦ୍ୟାନବାଟିକା—ସ୍ତ୍ରୀ. ବି. (ଉଦ୍ୟାନ + ବାଟିକା) ବଗିଚାରେ ଥିବା ପ୍ରମୋଦଗୃହ

ଉଦ୍ୟାନପାଳ—ପୁଂ. ବିଂ. (୬ତତ୍) (ଉଦ୍ୟାନ + ପାଳ + ଅ) ଉଦ୍ୟାନରକ୍ଷକ, ମାଳୀ, ଉଦ୍ୟାନପାଳକ, ବଗିଚାମାଳୀ, (ସ୍ତ୍ରୀ) ଉଦ୍ୟାନପାଳିକା ।

ଉଦ୍ୟାନରକ୍ଷକ—ପୁଂ. ବି. (୬ତତ୍) ଉଦ୍ୟାନପାଳ, ବଗିଚାମାଳୀ ।

ଉଦ୍ୟାପନ—ପୁଂ କ୍ଳୀ. (ଉତ୍ + ଯା + ଣି + ଣ. ଅନ) ଆରମ୍ଭ, ବ୍ରତସମାପନ, ନିର୍ବାହ, ଶେଷ, ସମାପ୍ତି ।

ଉଦ୍‌ଯାପିତ—ବିଂ. (ଉତ୍ + ଯା + ଣି + ମିଁ, ତ) ସମାପିତ, ପରିସମାପ୍ତ, ଉଜୁଆଁ ହୋଇଥିବା ।

ଉଦ୍ୟମ—ପୁଂ. ବି. (ଉତ୍ + ଯମ + ଅ) ବଜ୍ରପ୍ରଭୃତି, ଯାହାଦ୍ୱାରା ଉପରକୁ ନିଆଯାଏ ।

ଉଦ୍ୟାବ—ପୁଂ. ବ. (ଉତ୍ + ଯୁ + ଅ) ଊର୍ଦ୍ଧ୍ୱରେ ମିଶ୍ରଣ ।

ଉଦ୍ୟାସ—ପୁଂ. ବ. (ଉତ୍ + ଯସ୍ + ଅ) ଉଦ୍ୟମକର୍ତ୍ତା, ଦେବତା ଭେଦ ।

ଉଦ୍ୟୁକ୍ତ—ବି. (ଉତ + ଯୁଜ + କ. ତ) ଉଦ୍ୟମଯୁକ୍ତ, ଉତ୍ସାହିତ, ଚେଷ୍ଟିତ, ଯତ୍ନବାନ୍, ଯତ୍ନଶୀଳ ।

ଉଦ୍ୟୁକ୍ତା—ପୁଂ. ବିଂ. (ଉତ୍ + ଯୁଜ୍ + କ. ତ) ଉତ୍ସାହୀ, ଆୟୋଜନକାରୀ ।

ଉଦ୍‌ଯୋଗ—ପୁଂ.କ୍ଲୀ.ବ (ଉତ୍ + ଯୁଜ୍ + ଅ ) ଚେଷ୍ଟା, ଉତ୍ସାହ, ଅଧ୍ୟବସାୟ, ଆୟୋଜନ, ଉଦ୍ୟମ, ଯତ୍ନ, ଉପକ୍ରମ ମହାଭାରତର ପର୍ବବିଶେଷ ।

ଉଦ୍‌ଯୋଗପର୍ବ—କ୍ଲୀ. ବ ମହାଭାରତର ଷଷ୍ଠପର୍ବ ।

ଉଦ୍‌ଯୋଗୀ—ପୁଂ. ବିଂ. (ଉଦ୍‌ଯୋଗ + ଇନ୍) ଉଦ୍‌ଯୋଗଯୁକ୍ତ, ସଚେଷ୍ଟ, ଉତ୍ସାହୀ, ଯତ୍ନଶୀଳ, ଉଦ୍ୟମୀ (ସ୍ତ୍ରୀ) ଉଦ୍‌ଯୋଗିନୀ ।

ଉଦ୍‌ଯୋଜକ—ବିଂ. (ଉତ୍ + ଯୁଜ୍ + ଣି + କ, ଅକ) ପ୍ରବର୍ତ୍ତକ ।

ଉଦ୍ୟୋତ—ପୁଂ. ବ. ଆଲୋକ ।

ଉଦ୍ୟୋତକର—ଜଣେ ବିଖ୍ୟାତ ପଣ୍ଡିତ ଓ ନ୍ୟାୟଗ୍ରନ୍ଥର ଟୀକାକାର ।

ଉଦ୍ର—ପୁଂ. ବ (ଉନ୍ଦ + ର) ଜଳଚର, ଉଦ୍‌ବିଡ଼ାଳ, ଓଧ (ଗ୍ରା.ବ.) ଲେଉଦର ।

ଉଦ୍ରଥ—ପୁଂ. ବ. (ଉତ୍ + ରଥ) ରଥ-କୋଳ, ରଥକୀଳ, ତାମ୍ରଚୂଡ଼ପକ୍ଷୀ କୁକ୍‌କୁଟ କୁକୁଡ଼ା, କାନକଲ, ଅନକଲ ।

ଉଦ୍ରପାରକ—ପୁଂ. ବ. ନାଗବିଶେଷ ।

ଉଦ୍ରଶ୍ମି—ପୁଂ. ବିଂ. (ବ.ବ୍ରୀ) ଉଦ୍‌ଗତ କିରଣ ।

ଉଦ୍ରାବ—ପୁଂ. ବ. ( ଉତ୍ + ରୁ + ଅ ) ଉଚ୍ଚଧ୍ୱନି, ପଳାୟନ, ଚିତ୍କାର ।

ଉଦ୍ରୀ—ବିଂ. ଜଳଯୁକ୍ତ, ଜଳୀୟ ।

ଉଦ୍ରିକ୍ତ—ବିଂ. (ଉତ୍ + ରିଚ୍ + ର୍ମ ତ) ସ୍ଫୁଟ, ହୃଷ୍ଟ, ଅତିଶଯିତ, ଗର୍ବିତ, ଚଞ୍ଚଳିତ, ଉଦାର, ଉତ୍ତେଜିତ, ଘୋଟିଥିବା, ବ୍ୟକ୍ତ, ଉତ୍‌ଥିତ, କାର୍ଯ୍ୟୋନ୍ମୁଖ, ଉଚ୍ଛୃଙ୍ଖଳ ।

ଉଦ୍ରେକ—ପୁଂ. ବ. (ଉତ୍ + ରିଚ୍ + ଘ, ଅ) ବୃଦ୍ଧି, ଅତିଶୟ, ଉପକ୍ରମ, ଉତ୍ତେଜନ, ସଞ୍ଚାର, ଉତ୍‌ଥାନ, ଉଦୟ, ଆରମ୍ଭ, ଆବିର୍ଭାବ ।

ଉଦ୍ରେକା—ସ୍ତ୍ରୀ. ବ. (ଉତ୍ + ରିଚ୍ + ଅ + ଆ) ମହାନିମ୍ବ ।

ଉଦ୍ରେକୀ—ପୁଂ. ବିଂ. (ଉଦ୍ରେକ + ଇନ୍) ଉଦ୍ରେକଯୁକ୍ତ, ଅଧିକ ।

ଉଦ୍‌ବଂଶୀୟ—କ୍ଲୀ.ବ ସାମଭେଦ ।

ଉଦ୍‌ବତ୍ସର—ପୁଂ ବ. ବତ୍ସର, ଉଦାବତ୍ସର, ବର୍ଷଭେଦ ।

ଉଦ୍‌ବପନ—କ୍ଲୀ. ବ. ( ଉତ୍ + ବପ୍ + ଅନ ) ଦାନ, ଉତ୍ତୋଳନ, ତୋଳିବା, ଉତ୍ପାଟନ ।

ଉଦ୍‌ବସ୍ୟୁଃ—ବିଂ. ଅନ୍ନୋତ୍ପାଦକ ବାୟୁ ।

ଉଦ୍‌ବର୍ତ୍ତ—ପୁଂ ବ (ଉତ୍ + ବୃତ୍ + ଘ ଅ) ଅତିରିକ୍ତ, ଆଧିକ୍ୟ, ଉପଗ୍ରହ. ବଳି ପଡ଼ିବା ଅଂଶ, (ବିଂ.ର୍ମ.ଅ) ଅତ୍ୟଧିକ, ପ୍ରୟୋଜନାତିରିକ୍ତ ।

ଉଦ୍‌ବର୍ତ୍ତକ—ବିଂ. (ଉତ୍ + ବୃତ୍ + କ, ଅକ ) ବର୍ଦ୍ଧକ, ଚୂର୍ଣ୍ଣାଦିଦ୍ୱାରା ଗାତ୍ରସଂସ୍କାରକ ।

ଉଦ୍‌ବର୍ତ୍ତନ—କ୍ଲୀ. ବ. (ଉତ୍ + ବୃତ୍ + ଘ, ଅନ) ବଳିପଡ଼ିବା, ଉତ୍ପତନ, ଘର୍ଷଣ, ବିଲେପନ, ସେବନ, ଶରୀରନିର୍ମଳୀକରଣ, ଗନ୍ଧଦ୍ରବ୍ୟାଦି, ଉଲ୍ଲୁଣ୍ଠନ, ଆଉଟିବା, ଓଲଟ-ପାଲଟକରିବା ।

ଉଦ୍‌ବର୍ତ୍ତିମାସ୍ୟ—ବିଂ. ( ଉତ୍ + ବର୍ତ୍ତି + ଅମାସ୍ୟ ) ମାର୍କଣ୍ଡେୟ, ଗୋଧୂମଚୂର୍ଣ୍ଣାଦି, ଉଦ୍‌ବର୍ତ୍ତନ ସାଧନ (ବୈଦ୍ୟ) ।

ଉଦ୍‌ବର୍ତ୍ତିତ—ବିଂ. ( ଉତ୍ + ବର୍ତ୍ତି + ର୍ମ ତ) ଜୋରଦ୍ୱାରା ମର୍ଦ୍ଦିତ, ଦୁଷ୍ଟକୃତ, ଉତ୍ତୋଳିତ, ଆଉଟାହେବା, ବଳାଗିତ, ଘୂର୍ଣ୍ଣିତ, ଉତ୍କ୍ଷିପ୍ତ ।

ଉଦ୍‌ବର୍ଦ୍ଧନ—କ୍ଲୀ.ବ.(ଉତ୍ + ବୃଧ୍ + ଘ. ଅନ) ଅନ୍ତର୍ହାସ, ବୃଦ୍ଧିସାଧନ, (ବିଂ) ବୃଦ୍ଧିସାଧକ, ମନେମନେ ହସିବା ।

ଉଦ୍‌ବର୍ହଣ—କ୍ଲୀ.ବ.(ଉତ୍ + ବର୍ହ + ଅନ) ଉନ୍ମୂଳନ, ଉତ୍ପାଟନ, ଉଦ୍ଧରଣ ।

ଉଦ୍‌ବର୍ହିତ—ବିଂ.(ଉତ୍ + ବର୍ହ + ର୍ମ.ତ) ଉଦ୍ଧୃତ, ଉତ୍ତୋଳିତ, ଉନ୍ମୂଳିତ, ଉତ୍ପାଟିତ ।

ଉଦ୍‌ବହ—ପୁଂ ବ. (ଉତ୍ + ବହ୍ + କ, ଅ) ସନ୍ତାନ, ବଂଶଧର, ପୁତ୍ର, ବିବାହ, ବର, ନାୟକ, ସପ୍ତବିଧ ବାୟୁ ମଧ୍ୟରୁ ବାୟୁବିଶେଷ, ( ବିଂ. ) ଅଂଶକାରକ, ଉତ୍ପାଦକ, ଅଗ୍ନିଙ୍କର ଏକଜିହ୍ୱା ।

ଉଦ୍‌ବହନ—କ୍ଲୀ ବ (ଉତ୍ + ବହ୍ + ଘ, ଅନ) ସ୍କନ୍ଧରେ ବହନ, ବିବାହ, ଉପରେ ବହିବା, ଧାରଣ, ଉତ୍ତୋଳନ ।

ଉଦ୍‌ବହା—ସ୍ତ୍ରୀ.ବ (ଉତ୍ + ବହ୍ + ଅ + ଆ) କନ୍ୟା, ପୁତ୍ରୀ ।

ଉଦ୍‌ବାଦନ—କ୍ଲୀ.ବ.(ଉତ୍ + ବଦ୍ + ଣି + ଅନ ) ଉଚ୍ଚୈଃସ୍ୱରରେ ଆବେଦନ, ଉଚ୍ଚବାଦ୍ୟକରଣ ।

ଉଦ୍‌ବାନ୍—ବିଂ. (ଘ) ଉତ୍କର୍ଷ, ଉନ୍ନତ ।

ଉଦ୍‌ବାନ—ପୁଂ.ବ. (ଉତ୍ + ବନ + ଅ) ଉଦ୍ୟମ, ଚୁଲ୍ଲୀ, ଉଦ୍‌ଗାର, ଉଦ୍‌ବମନ, (ବିଂ) ଉଦ୍‌ବମିତ, ଉଦ୍‌ବାନ୍ତ ।

ଉଦ୍‌ବାନ୍ତ—ବିଂ. ( ଉତ୍ + ବମ୍ + ତ ) କୃତବମନ, ଉଦ୍‌ବମିତ, ଉଦ୍‌ବାନ୍ତ, ଉଦ୍‌ଗତ, ଉଦ୍‌ଗୀର୍ଣ୍ଣ (ପୁଂ.ବ) ମଦସ୍ରାବୀ ଗଜ, ନିର୍ମଦ ହସ୍ତୀ ।

ଉଦ୍‌ବାପ—ପୁଂ ବ(ଉତ୍ + ବପ୍ + ଘ,ଅ) ଉନ୍ମୂଳନ, ଉଦ୍ଧରଣ, ଶ୍ମଶ୍ରୁମାଣ, ମୁଣ୍ଡନ, ଓଲଟ-ପାଲଟ, ଲେଉଟ-ପାଉଟ ।

ଉଦ୍‌ବାସ୍ୟ—ପୁଂ. ବ. (ଉତ୍ + ବା + ଅ) ଉଦ୍‌ବାସନ, ଉପଶମ, ଉତ୍‌ବାସନ ।

ଉଦ୍‌ବାସ୍ତୀ—ପୁଂ.ବିଂ.ଯାହା ଉଡ଼ିଯାଏ ।

ଉଦ୍‌ବାସ—ପୁଂ.ବ. (ଉତ୍ + ବାସି + ଅ) ସ୍ୱସ୍ଥାନ ଅତିକ୍ରମ କରି ଅନ୍ୟତ୍ରଯିବା (ବିଂ) ଉଦ୍‌ବାସୀ, ଉଦ୍‌ବାସବାନ୍ ।

ଉଦ୍‌ବାସନ—କ୍ଲୀ ବ. ( ଉତ୍ + ବାସି + ଅନ) ସଂସ୍କାରଭେଦ, ମାରଣ, ବିସର୍ଜ୍ଜନ, ନିଷ୍କାଶନ, ଅଗ୍ନ୍ୟାଧାନର ଅଙ୍ଗସ୍ୱରୂପ ସଂସ୍କାରବିଶେଷ ।

**ଉଦ୍‌ବାଷ୍ପ**—ପୁଂ. ବିଂ. (ବ.ବ୍ରୀ.) ଗଳଦଶ୍ରୁ, ଉଦ୍‌ଗତନେତ୍ରନୀର ।

**ଉଦ୍‌ବାସ୍ତୁ**—କ୍ଲୀ.ବ. (ଉତ୍‌ + ବାସ୍ତୁ)ବାସ-ଭୂମିର ସଙ୍କୁଚିତ ସ୍ଥାନ, ଘର ବାଡ଼ିର ଗୃହପାର୍ଶ୍ୱଭୂମି ।

**ଉଦ୍‌ବାସ୍ୟ**—ଅବ୍ୟ.(ଉତ୍‌ + ବାସି + ର୍ମି.ଯ) ବିସର୍ଜ୍ଜନକର, (ବିଂ)ଉଦ୍ଧରଣୀୟ, ଉତ୍ତୋଳନଯୋଗ୍ୟ, ବିସର୍ଜନୀୟ, ସ୍ଥାପନୀୟ, ସ୍ଥାନାନ୍ତରକୁ ନେଇଯାଇ ଥିବା ।

**ଉଦ୍‌ବାହ**—ପୁଂ.ବ (ଉତ୍‌ + ବହ + ଘ,ଅ) ବିବାହ, ବହନ ।

**ଉଦ୍‌ବାହନ**—କ୍ଲୀ. ବ.(ଉତ୍‌ + ବହ + ଣି + ଅନ) ବିବାହ,ଦାନ, ଦ୍ୱିବାର କର୍ଷିତ ଭୂମି, ଉଦ୍‌ବର୍ତ୍ତନ,ଉଦ୍‌ବାରସାଧନ ।

**ଉଦ୍‌ବାହନୀ**—ସ୍ତ୍ରୀ.ବ. (ଉଦ୍‌ବାହନ + ଈ) ବରାଟକ, କଉଡ଼ି, ରଜ୍ଜୁ, ଖରସିକା ।

**ଉଦ୍‌ବାହସୂତ୍ର**—କ୍ଲୀ.ବ. ବିବାହବନ୍ଧନ ।

**ଉଦ୍‌ବାହିକ**—ବିଂ. ( ଉଦ୍‌ବାହ + ଇକ ) ବିବାହ ସମ୍ବନ୍ଧୀୟ (ମନ୍ତ୍ରାଦି), ବୈବାହିକ, (ସ୍ତ୍ରୀ) ଉଦ୍‌ବାହିକା ।

**ଉଦ୍‌ବାହିତ**--ବିଂ.(ଉତ୍‌ + ବାହି + ର୍ମି,ତ) ବିବାହିତ, ଉନ୍ନିତ, ଯେ ବିବାହ ହୋଇଥାଏ, ଉନ୍ମୂଳିତ. (ସ୍ତ୍ରୀ) ଉଦ୍‌ବାହିତା ।

**ଉଦ୍‌ବାହିନୀ**—ସ୍ତ୍ରୀ ବ.(ଉଦ୍‌ବାହ + ଇନ୍‌ + ଈ)ରଜ୍ଜୁ, ଦଉଡ଼ୀ, (ବିଂ)ଊର୍ଦ୍ଧ୍ୱବହନକାରିଣୀ ।

**ଉଦ୍‌ବାହୀ**—ପୁଂ.ବିଂ.(ଉତ୍‌ + ବହ + କ, ଇନ୍‌) ଉପରକୁ ବହୁଥିବା, ବହନକର୍ତ୍ତା, ବାହକ, ଉତ୍ତୋଳକ,ବିବାହକାରୀ, (ସ୍ତ୍ରୀ) ଉଦ୍‌ବାହିନୀ ।

**ଉଦ୍‌ବାହୁ**—ପୁଂ. ବିଂ. ( ଉତ୍‌ + ବାହୁ ) ବ.ବ୍ରୀ; ଊର୍ଦ୍ଧ୍ୱବାହୁ, ଉଦ୍‌ବେଗ, ଉତ୍‌କଣ୍ଠିତ, ପ୍ରେମରେ ଉନ୍ମତ୍ତ, ଆନନ୍ଦରେ ଅଧୀର, ଯାହାର ବାହୁ ଉପରକୁ ଟେକା ହୋଇଅଛି ।

**ଉଦ୍‌ବାହୁଲକ**—କ୍ଲୀ. ବ. ଊର୍ଦ୍ଧ୍ୱବାହୁ ।

**ଉଦ୍‌ବାହ୍ୟ**—ସ୍ତ୍ରୀ.ବ.(ଉଦ୍‌ବାହ + ଯ + ଆ) ବିବାହଯୋଗ୍ୟା କନ୍ୟା, କୁମାରୀ, କଣ୍ଠିତରୁଣୀ ।

**ଉଦ୍‌ବିଗ୍ନ**—ବିଂ. (ଉତ୍‌ + ବିଜ + କ, ତ) ଉଦ୍‌ବେଗଯୁକ୍ତ,ଚିନ୍ତିତ,ଚଞ୍ଚଳ, ଉତ୍‌କଣ୍ଠିତ, ବ୍ୟାକୁଳିତ, ଭୀତ, କ୍ଷୁଭିତ, ମ୍ଳାନ ।

**ଉଦ୍‌ବିଗ୍ନମନା**—ପୁଂ. ବିଂ. ( ବ.ବ୍ରୀ ) (ଉଦ୍‌ବିଗ୍ନ + ମନଃ) ଉତ୍‌କଣ୍ଠିତ ।

**ଉଦ୍‌ବିବର୍ହଣ**—କ୍ଲୀ.ବ.(ଉତ୍‌ + ବି + ବୃହ + ଅନ) ଉଦ୍ଧାରକରଣ ।

**ଉଦ୍‌ବିଡ଼ାଲ**—ପୁଂ.ବ. (ଉତ୍‌ + ବିଡ଼ାଲ) ଭୂଚର ଓ ଜଳଚର ଜନ୍ତୁ ବିଶେଷ, ଜଳମାର୍ଜ୍ଜାର, ଜଳବିଡ଼ାଲ, ଓଧ, ଉଧ, (ସ୍ତ୍ରୀ) ଉଦ୍‌ବିଡାଲୀ ।

**ଉଦ୍‌ବିଦ୍ଧ**—ବିଂ.(ଉତ୍‌ + ବ୍ୟଧ + କ, ତ) ବେଧକ, ଅଭ୍ରଂଲିହ ।

**ଉଦ୍‌ବିଲ**—ବିଂ. (ବ.ବ୍ରୀ) କୃତବିଲ, ଯେ ଗାତ ଖୋଳେ, (ମୂଷିକ) ।

**ଉଦ୍‌ବୀକ୍ଷଣ**—କ୍ଲୀ.ବିଂ. (ଉତ୍‌ + ବି + ଈକ୍ଷ + ଅନ) ଊର୍ଦ୍ଧ୍ୱଦୃଷ୍ଟି, ଯେ ଉପରକୁ ଚାହିଁଅଛି, (ବି) ଦର୍ଶନ; ନେତ୍ର, ଉପରକୁ ଚାହିଁବା, ପର୍ଯ୍ୟବେକ୍ଷଣ ।

**ଉଦ୍‌ବୀତ**—ବିଂ.(ଉତ୍‌ + ବି + ଇ + ର୍ମି.ତ) ଉଦ୍‌ଗତ, ପ୍ଲାବିତ, ଉଦ୍‌ବେଳିତ, ଉଚ୍ଛଳିତ ।

**ଉଦ୍‌ବୁଦ୍ଧ**—ବିଂ. (ଉତ୍‌ + ବୁଧ + କ,ତ) ଫଳୋନ୍ମୁଖ, ମନେପଡ଼ିଥିବା, ଜାଗରିତ, ବିକସିତ, ପ୍ରସ୍ଫୁଟିତ ।

**ଉଦ୍‌ବୃତ୍ତ**—ବିଂ. (ଉତ୍‌ + ବୃତ୍‌ + କ.ତ) ଉତ୍‌କ୍ଷିପ୍ତ, ଉତ୍ତୋଳିତ, ଜାତ, କ୍ଷୁଭିତ, ଅତିରିକ୍ତ, ଉଦ୍‌ବାନ୍ତ, ଉଦ୍‌ବମିତ, ଭୁକ୍ତବର୍ଜିତ, ଦୁର୍ବୃତ୍ତ, ଶୋଧିତ, ବଳକା, ବେଶୀ ।

**ଉଦ୍‌ବୃଦ୍ଧ**—ବିଂ.(ଉତ୍‌ + ବୃଧ + କ,ତ)ଅତିବୃଦ୍ଧିପ୍ରାପ୍ତ, ଅତ୍ୟନ୍ତରେ ବଢ଼ିଥିବା ।

**ଉଦ୍‌ବେଗ** - ପୁଂ.ବ. (ଉତ୍‌ + ବିଜ + ଅ) ଚିନ୍ତା, ଉତ୍‌କଣ୍ଠା, ଭୟ, ଶଙ୍କା, ଭାବନା, କମ୍ପନ, ଉଦ୍‌ବର୍ଜନ, ଉଦ୍‌ଭ୍ରମ, ଚମତ୍କାର, ବିରହଜନିତଦୁଃଖ, ଊର୍ଦ୍ଧ୍ୱବାହୁ, ଉଦ୍‌ଗମନ, (କ୍ଲୀ) ଗୁବାକ, ଗୁଆ, ସୁପାରି, (ବିଂ) ଦ୍ରୁତଗାମୀ, ସ୍ଥିର, ସ୍ତମ୍ଭିତ ।

**ଉଦ୍‌ବେଗୀ**—ପୁଂ.ବିଂ.(ଉଦ୍‌ବେଗ + ଇନ୍‌) ଉଦ୍‌ବେଗଯୁକ୍ତ, ଉଦ୍‌ବିଗ୍ନ, ଉତ୍‌କଣ୍ଠିତ, ବ୍ୟାକୁଳ, ଦୁଃଖିତ ।

**ଉଦ୍‌ବେଜକ**--ବିଂ.(ଉତ୍‌ + ବିଜ + କ,ଅକ) ଉଦ୍‌ବେଗଜନକ, ଉଦ୍‌ବେଗକାରକ, ଭୟପ୍ରଦର୍ଶକ ।

**ଉଦ୍‌ବେଜନ**—କ୍ଲୀ. ବ. (ଉତ୍‌ + ବିଜ + ଅନ) ଉଦ୍‌ବେଗ, ଭୟ, କମ୍ପନ, କଷ୍ଟ, କ୍ଲେଶ, ଚିନ୍ତା, ବିରକ୍ତି, (ବିଂ) ଭୟପ୍ରଦର୍ଶକ, ଉଦ୍‌ବେଗକାରକ ।

**ଉଦ୍‌ବେଜୟିତା**—ପୁଂ.ବିଂ. (ଉତ୍‌ + ବିଜ + ଇ + ତୃ) ଉଦ୍‌ବେଗଜନକ, ତ୍ରାସକ, (ସ୍ତ୍ରୀ) ଉଦ୍‌ବେଜୟିତ୍ରୀ ।

**ଉଦ୍‌ବେଜିତ**—ପୁଂ.ବ. (ଉତ୍‌ + ବିଜ + ଇତ + ତ) କ୍ଲେଶିତ, ଉଦ୍‌ବିଗ୍ନ, ଭୟାକୁଳ, କୃତୋଦ୍‌ବେଗ, ଉତ୍‌କଣ୍ଠିତ, ଉତ୍ତେଜିତ ।

**ଉଦ୍‌ବେଜୀ**—ପୁଂ.ବିଂ.(ଉତ୍‌ + ବିଜ + କ, ଇନ୍‌) ତ୍ରାସକ, ଉଦ୍‌ବେଜୟିତା ।

**ଉଦ୍‌ବେଦ**—ବିଂ. ( ବ.ବ୍ରୀ ) ଉନ୍ନତ ବେଦୀଯୁକ୍ତ, ଉନ୍ନତବେଦିବିଶିଷ୍ଟ ।

**ଉଦ୍‌ବେୟ**—ବିଂ. (ଉତ୍‌ + ବେ + ର୍ମି,ଯ) ବାୟୁ ସହିତ ମିଶ୍ରଣଯୋଗ୍ୟ, ଯାହା ଖର ବା ପବନରେ ଉଡ଼ିଯାଏ ।

**ଉଦ୍‌ବେଲ**—ବିଂ. (ଉତ୍‌ + ବେଲ + ଅ) ସୀମାତିକ୍ରାନ୍ତ, କୂଳାତିକ୍ରାନ୍ତ, ଉଚ୍ଛଳିତ, ବେଳ, ବିପୁଳ, ଉଲ୍ଲଙ୍ଘିତ ।

**ଉଦ୍‌ବେଲିତ**—ବିଂ.(ଉଦ୍‌ବେଲ + ଣି + ତ) କୂଳାତିକ୍ରାନ୍ତ. ସୀମାତିକ୍ରାନ୍ତ. ଉଦ୍‌ବେଲ ( ଦେଖ )

**ଉଦ୍‌ବେଷ୍ଟ**—ପୁଂ.ବ.(ଉତ୍‌ + ବେଷ୍ଟ + ଅ) ଅବରୋଧ, ଆକ୍ରମଣ, (ବିଂ) ବେଷ୍ଟକ, (ସ୍ତ୍ରୀ) ଉଦ୍‌ବେଷ୍ଟା ।

**ଉଦ୍‌ବେଷ୍ଟନ**—କ୍ଲୀ.ବ. (ଉତ୍‌ + ବେଷ୍ଟ + ଅନ) ବନ୍ଧନ-ମୋଚନ, ଉନ୍ମୋଚନ, ଆଲିଙ୍ଗନ, ଉପଶ୍ଳେଷ, ଉଷ୍ଣୀଷ,ବେଷ୍ଟନ, ସାଧନ, ଆବରଣ, ପରିବୃତ, ହସ୍ତୀପାଦବନ୍ଧନ,(ବିଂ)ବନ୍ଧନମୁକ୍ତ, ବେଷ୍ଟନରହିତ ।

**ଉଦ୍‌ବେଷ୍ଟନୀୟ**—ବିଂ. (ଉତ୍‌ + ବେଷ୍ଟ + ର୍ମି, ଅନୀୟ) ମୋଚନୀୟ ।

ଉଦ୍‌ବେଷ୍ଟିତ--ବିଂ.(ଉତ୍ + ବେଷ୍ଟ + ର୍ମି,ତ) ଅବରୁଦ୍ଧ ।

ଉଦ୍‌ବୋଢ଼ା—ପୁଂ. ବିଂ.(ଉତ୍ + ବହ + ତୃ) ବର, ବିବାହକାରୀ ।

ଉଧଃ - କ୍ଳୀ.ବି (ବହ + ଅସ୍) ଗୋରୁର-ସ୍ତନ, ଗୋରୁର ପହ୍ନା, ଗାଈର ସ୍ତନ-ମଣ୍ଡଳ ।

ଉଧ, ଓଧ—ଗ୍ରା. ବି. ଜଳମାର୍ଜ୍ଜାର ।

ଉଧଟ—ଗ୍ରା. ବି. ଆନନ୍ଦରେ ବା ଦୁଃଖରେ ପାଗଳ, ଉନ୍ମତ୍ତ ।

ଉଧରିବା—ଗ୍ରା. କ୍ରି. (ସଂ. ଉଦ୍ଧାର) ଉଦ୍ଧାର ପାଇବା । [ଦେଶ୍ୟ ।

ଉଧଲ—ପ୍ରା.(ସିଂହ) ବି.ଶଗଡ଼ର ଯୋଡ଼ି-

ଉଧାଇବା,ଉଧେଇବା—ଗ୍ରା.କ୍ରି.ବଢ଼ିବା, ଆଘାତ, ବଥାଇବା, ଘୋଳିହେବା, ଉନ୍ନତକରିବା, ସ୍ଫୀତ ହେବା, ସତେଜରେ ବଢ଼ିବା ।

ଉଧାଣି--ଗ୍ରା. ବି. (ସଂ.ଦହଧାତୁ) ଭାତ-ରାନ୍ଧିବାପାଇଁ ଚୁଲ୍ଲୀରେ ବସାଇବା ପାଣିହାଣ୍ଡି ।

ଉଧାର—ଗ୍ରା. ବି. ଋଣ, ବିନା ସୁଧରେ ଋଣ, ମୁକ୍ତ, ଧାର ।

ଉଧାରଧାର—ଗ୍ରା. ବି. (ସହଚରଶବ୍ଦ) କାଳିବାସି ବେଭାର ।

ଉଧି—ଗ୍ରା.ବି. କଦଳୀପୁଆ, ଶଗଡ଼ଦଣ୍ଡା ।

ଉଧୁରିବା—ଗ୍ରା. କ୍ରି. ଉଦ୍ଧାରପାଇବା, ବିପଦରୁ ପାର ପାଇବା ।

ଉଧୁଲଙ୍ଗଲା—ଗ୍ରା. ବିଂ. ଉଦୁଲଙ୍ଗଲା ।

ଉଧେଇହେବା—ଗ୍ରା. କ୍ରି. ଆଉଜିବା, ଗାଈ ଋତୁମତୀ ହେବା,ବତରପଡ଼ିବା ।

ଉନ୍‌ମୁନ—ପ୍ର.(ସମ୍ବ) ଏକୁଟିଆ, ନିଛାଟିଆ,

ଉନ—ଗ୍ରା. ବିଂ. ଊଣା, ନ୍ୟୂନ ।

ଉନେ—ପ୍ରା. (ପୁରୀ) ଅ. (ସଂ. ପୁନଃ) ଆଉଥରେ, ପୁନର୍ବାର ।

ଉନ୍ଦୁର, ଉନ୍ଦୁରୁ—ପୁଂ.ବିଂ.(ଉନ୍ଦ + ଉର ବା ଉରୁ) ଇନ୍ଦୁର, ମୂଷା, ମୂଷିକ ।

ଉନ୍ଦୁରକର୍ଣ୍ଣୀ—ସ୍ତ୍ରୀ. ବି. ଇନ୍ଦୁରକାନୀ. ମୂଷାକାନୀ ।

ଉନ୍ଦରୁ—ପୁଂ.ବି. (ଉନ୍ଦ + ଉରୁ)ଇନ୍ଦୁର. ମୂଷା, ମୂଷିକ, ଆଖୁ, ଗିରିକ, ବାଲ-ମୂଷିକ, ମୂଷା, ବିଲେଶୟ, ଖନକ, ବଭ୍ରୁ, ବୃଷ, ଆଖନକ, ବୃଶ, ଧାନା, ମୂଷୀକା, ଶୁଷିର ।

ଉନ୍ନ—ବିଂ. (ଉନ୍ଦ + ତ) କ୍ଲିନ୍ନ, ସିକ୍ତ, ଆର୍ଦ୍ର, ଓଦା, ସୁରତ, ଦୟାଳୁ ।

ଉନ୍ନତ—ବିଂ.(ଉତ୍ + ନମ୍ + ତ) ଉଚ୍ଚ, ଉତ୍ତୁଙ୍ଗ, ଶ୍ରେଷ୍ଠ, ମହାନ୍, ବର୍ଦ୍ଧିତ, ଗୌରବାନ୍ୱିତ, ଉପଚିତ, ଡେଙ୍ଗା, ଉପରକୁ ଉଠିଥିବା ।

ଉନ୍ନତକାଳ—ପୁଂ. ବି. ଉନ୍ନତ ଛାୟା-ଦ୍ୱାରା କାଳନିରୂପକ ପ୍ରାଚୀନ ଯନ୍ତ୍ର ବିଶେଷ ।

ଉନ୍ନତଚିତ୍ତ—ବିଂ.(ବ.ବ୍ରୀ)ଉଦାରହୃଦୟ, ମହାଶୟ, (ସ୍ତ୍ରୀ) ଉନ୍ନତଚିତ୍ତା ।

ଉନ୍ନତଚେତା—ପୁଂ. ବିଂ (ବ. ବ୍ରୀ.) ଉନ୍ନତମନା, ଉଦାରହୃଦୟ ।

ଉନ୍ନତନାଭି—ବିଂ. (ବ.ବ୍ରୀ) ଉଚ୍ଚନାଭି-ଯୁକ୍ତ, ବୃଦ୍ଧ, ଯାହାର ନାଭି ଗାଣ୍ଡୁପରି ବାହାରିଥାଏ, (ବି. କ.ଧା) ଉଚ୍ଚନାଭି, ଗାଣ୍ଡୁ, ଉଦ୍‌ଗତନାଭି ।

ଉନ୍ନତଶୀର୍ଷ—ବିଂ. (ବ.ବ୍ରୀ) ଉଚ୍ଚମସ୍ତକ, ଯଶଃପ୍ରଭୃତିଦ୍ୱାରା ସମ୍ଭ୍ରମଶାଳୀ ।

ଉନ୍ନତହୃଦୟ—ବିଂ. (ବ.ବ୍ରୀ) ଉଚ୍ଚମନା. ମହାତ୍ମା, (ସ୍ତ୍ରୀ) ଉନ୍ନତହୃଦୟା (କ୍ଳୀ.ବି.) ଉଚ୍ଚ ଅନ୍ତଃକରଣ, ପ୍ରଶସ୍ତଚିତ୍ତ ।

ଉନ୍ନତାନତ—ବିଂ. (କ.ଧା) ଉନ୍ନତ ଆନତ, ଉଚ୍ଚନୀଚ, ବନ୍ଧୁର, ଆବଡ଼ା ଖାବଡ଼ା ।

ଉନ୍ନତି—ସ୍ତ୍ରୀ.ବି. (ଉତ୍ + ନମ + କ୍ତି,ତି) ବୃଦ୍ଧି, ଉଦୟ, ସମୃଦ୍ଧି, ଉଦ୍‌ଗମ, ଗରୁଡ଼-ପତ୍ନୀ, ଗୌରବ, ଔନ୍ନତ୍ୟ, ଶ୍ରୀବୃଦ୍ଧି, ସୌଭାଗ୍ୟ, ଉଚ୍ଚତା, ଉପରକୁ ଉଠିବା

ଉନ୍ନତୀଶ—ପୁଂ. ବି. ଉନ୍ନତିର ସ୍ୱାମୀ, ଗରୁଡ଼ ।

ଉନ୍ନଦ୍ଧ—ବିଂ.(ଉତ୍ + ନହ + ତ)ଉଚ୍ଛ୍ରିତ, ଉଦ୍‌ବଦ୍ଧ, ଉର୍ଦ୍ଧ୍ୱରେ ସଂଯତ, ଉତ୍କଟ, ସ୍ଫୀତ, ଖୋଲା, ବନ୍ଧନମୁକ୍ତ, ଆଗରେ ବନ୍ଧା ହୋଇଥିବା ବା ଗଣ୍ଠି ପଡ଼ିଥିବା ।

ଉନ୍ନମନ—କ୍ଳୀ.ବି. (ଉତ୍ + ନମ + ଅନ) ଉନ୍ନତି,ଉତ୍ତୋଳନ,ଉପରକୁ ଉଠାଇବା, ଉତ୍ଥାପନ, ସୁଶ୍ରୁତୋକ୍ତ ଯନ୍ତ୍ର ଦ୍ୱାରା ବ୍ରଣ ରୁଧିର ସ୍ରାବ ସାଧକ ଚିକିତ୍ସାକର୍ମ-ବିଶେଷ ।

ଉନ୍ନମିତ—ବିଂ. (ଉତ୍ + ନମ + ଣି + ର୍ମି,ତ) ଉତ୍ତୋଳିତ, ଊର୍ଦ୍ଧ୍ୱୀକୃତ, ଆହୃତଗୁଣ, ଉପରକୁ ଉଠା ହୋଇ-ଥିବା, ଉପରକୁ ଟଣା ହୋଇଥିବା ।

ଉନ୍ନମ୍ର—ବିଂ.(ଉତ୍ + ନମ + ର)ଉନ୍ନତ, ଉଚ୍ଚ, ସରଳ, (ସ୍ତ୍ରୀ) ଉନ୍ନମ୍ରା ।

ଉନ୍ନୟ—ପୁଂ. ବି. (ଉତ୍ + ନୀ + ଘ.ଅ) ଉତ୍ପ୍ରେକ୍ଷା, ବିତର୍କ, ଉତ୍ତୋଳନ, କୂପା-ଦିରୁ ଜଳ ଆଣିବା,ଉତ୍ଥାନ, ସାଦୃଶ୍ୟ, ଉନ୍ନତି ।

ଉନ୍ନୟନ—କ୍ଳୀ. ବି. (ଉତ୍ + ନୀ + ଘ, ଅନ) ଉତ୍ତୋଳନ, ଉଠାଇବା, ପରାମର୍ଶ, ବିତର୍କ, ପୂର୍ବମୃତ୍ୟୁ, ଅନୁମାନ, ଉନ୍ନତି, ଆଲୋଚନା, ଉଦ୍ଭାବନ, ନ୍ୟାୟଶାସ୍ତ୍ର, (ବିଂ) ଉନ୍ନମିତ (ଚକ୍ଷୁ) ।

ଉନ୍ନବଷ୍ଟ—କାଠିୟାବାଡ଼ଅନ୍ତର୍ଗତ ଗିର୍ଣ୍ଣାର ପାହାଡ଼ ନିକଟସ୍ଥ ଗୋଟିଏ ଗ୍ରାମ, ଶ୍ରୀମ ଏହିଠାରେ ଉନ୍ନକ ନାମକ ଅସୁରକୁ ମାରିଥିଲେ; ବର୍ତ୍ତମାନ ନାମ ଓସମ୍ ।

ଉନ୍ନସ—ବିଂ. (ବ.ବ୍ରୀ) ଉଚ୍ଚନାସାଯୁକ୍ତ, ଉଗ୍ରନାସିକ, ଯାହାର ନାକ ଉଚ୍ଚ, (ସ୍ତ୍ରୀ) ଉନ୍ନାସା । [ ଙ୍ଗଲ ।

ଉନ୍ନହନ—ବିଂ. (ବ. ବ୍ରୀ) ଉଦ୍ଧାମ. ଉଚ୍ଛୃ-

ଉନ୍ନାଦ—ପୁଂ. ବି. (ଉତ୍ + ନଦ + ଘ, ଅ) ଉଚ୍ଚଶବ୍ଦ. ନିକଟଶବ୍ଦ, ଗର୍ଜନ ।

ଉନ୍ନାଭ—ପୁଂ. ବି. ରଘୁବଂଶୀୟ ରାଜା-ବିଶେଷ ।

ଉନ୍ନାମିତ—ବିଂ. (ଉତ୍ + ନମି + ର୍ମି,ତ) ଊର୍ଦ୍ଧ୍ୱକୁ ଉତ୍ଥାପିତ ।

ଉନ୍ନାୟ—ପୁଂ. ବି. (ଉତ୍ + ନୀ + ଅ) ଉତ୍ତୋଳନ, ଉଠାଇବା, ତୋଳିବା; ଉନ୍ନୟ (ଦେଖ) ।

ଉନ୍ନାୟକତ୍ୱ—କ୍ଳୀ.ବି. ନ୍ୟାୟମତେ ଜ୍ଞାପ-କତ୍ୱ, ଜନକ ଜ୍ଞାନ ବିଷୟତ୍ୱ ।

**ଉନ୍ନାହ**—ପୁଂ.ବି. (ଉତ୍ + ନହ୍ + ଅ) କାଞ୍ଜିକ, କାଞ୍ଜି, ଉତ୍ତୋଳନ ପୂର୍ବକ ବନ୍ଧନ ।

**ଉନ୍ନିଦ୍ର**—ପୁଂ.ବିଂ. (ଉତ୍ + ନିଦ୍ରା + ଅ) ପ୍ରଫୁଲ୍ଲ, ବିକସିତ, ନିଦ୍ରାରୁ ଉଠିଥିବା, ନିଦ୍ରାରହିତ, ସତର୍କ, ଜାଗରିତ, ଅନୁମିତ, ତର୍କିତ ।

**ଉନ୍ନୀତ**—ବିଂ. (ଉତ୍ + ନୀ + ତ) ବିତର୍କିତ, ଊର୍ଦ୍ଧ୍ୱକୁ ନୀତ, ଉନ୍ନତିପ୍ରାପ୍ତ, ଅନୁମିତ, ବିସ୍ତୋଳିତ ।

**ଉନ୍ନେତବ୍ୟ**—ବିଂ. (ଉତ୍ + ନୀ + ର୍ମ, ତବ୍ୟ) ଉତ୍ତୋଳନୀୟ, ଅନୁମେୟ ।

**ଉନ୍ନେତା**—ପୁଂ.ବିଂ. (ଉତ୍ + ନୀ + କ.ତୃ) ଯେ ଊର୍ଦ୍ଧ୍ୱକୁ ନେଇଯାଏ, ଉଦ୍ଭାବକ, ସମ୍ବର୍ଦ୍ଧକ, ଶ୍ରୀବୃଦ୍ଧି ସମ୍ପାଦକ, (ବି) ଋତ୍ୱିକ୍‌ଭେଦ ।

**ଉନ୍ନେୟ**—କ୍ଲୀ. ବି. ଉନ୍ନେତୃ ନାମକ ଋତ୍ୱିକର କାର୍ଯ୍ୟ (ବିଂ) ଊର୍ଦ୍ଧ୍ୱନେୟ ।

**ଉନ୍ନେୟ**—ବିଂ. (ଉତ୍ + ନୀ + ର୍ମ, ଯ) ଊର୍ଦ୍ଧ୍ୱରେ ନେଇଯିବାର ଯୋଗ୍ୟ, ଉଦ୍ଭାବନୀୟ, ଅନୁମେୟ ।

**ଉନ୍ନେୟତ୍ୱ**—କ୍ଲୀ.ବି. ନ୍ୟାୟମତରେ ଜ୍ଞାପନଯୋଗ୍ୟ, ଜନ୍ୟଜ୍ଞାନ ବିଷୟତ୍ୱ ।

**ଉନ୍ମଗ୍ନ**—ପୁଂ.ବିଂ. (ଉତ୍ + ମସଜ୍ + କ, ତ) ଜଳପ୍ରଭୃତିରୁ ଉତ୍ଥିତ, ପ୍ରାଦୁର୍ଭୂତ, ପ୍ରକଟ, (ସ୍ତ୍ରୀ) ଉନ୍ମଗ୍ନା ।

**ଉନ୍ମଜ୍ଜକ**—ପୁଂ. ବିଂ. (ଉତ୍ + ମସଜ୍ + ଅକ) ଯେ ଜଳରେ ଭାସୁଥାଏ, ଯେ ଜଳରେ ବୁଡ଼ି ଗାଧୋଇ ଥାଏ, ଯେ ଜଳରେ ଭସାଏ, (ବି) ତପସ୍ୱୀଭେଦ ।

**ଉନ୍ମଜ୍ଜନ**—କ୍ଲୀ.ବି. (ଉତ୍ + ମସଜ୍ + ଘ, ଅନ) ପ୍ଲବନ, ଭାସିବା, ଜଳରୁ ଉତ୍ଥାନ ।

**ଉନ୍ମଣ୍ଡଳ**—କ୍ଲୀ. ବି. ଜ୍ୟୋତିଷୋକ୍ତ ଦିନରାତ୍ରି କ୍ଷୟବୃଦ୍ଧି ଜ୍ଞାପକ ମଣ୍ଡଳବିଶେଷ ।

**ଉନ୍ମଣ୍ଡଳବର୍ତ୍ମ**—ପୁଂ. ବି. ଜ୍ୟୋତିଷୋକ୍ତ ଉନ୍ମଣ୍ଡଳସ୍ଥ ସୂର୍ଯ୍ୟର ଛାୟାକର୍ଣ୍ଣ ।

**ଉନ୍ମଣ୍ଡଳନ୍ତୁ**—ପୁଂ. ବି. ଜ୍ୟୋତିଷୋକ୍ତ ଅକ୍ଷକ୍ଷେତ୍ର ପ୍ରଦର୍ଶନାର୍ଥ ଉନ୍ମଣ୍ଡଳର ଶଙ୍କୁ ।

**ଉନ୍ମତ୍ତ**—ବିଂ. (ଉତ୍ + ମଦ୍ + କ, ତ) ଉନ୍ମାଦଗ୍ରସ୍ତ, କ୍ଷିପ୍ତ, ପାଗଳ, ଉତ୍ତେଜନାବଶତଃ କାଣ୍ଡଜ୍ଞାନହୀନ, ଗ୍ରହାବିଷ୍ଟ, ଉଗ୍ର, ହିଂସ୍ର, ତରଙ୍ଗାକୁଳ, ବାହ୍ୟଜ୍ଞାନଶୂନ୍ୟ, ତନ୍ମୟ, ଆତ୍ମବିସ୍ମୃତ, ମାତାଲ, (ପୁ.ବି.)(ଉତ୍ + ମଦ + ଣ, ତ) ଧୂତୁରା, ମୁଚୁକୁନ୍ଦବୃକ୍ଷ, (ସ୍ତ୍ରୀ) ଉନ୍ମତ୍ତା ।

**ଉନ୍ମତ୍ତକ**—ପୁଂ. ବିଂ. (ଉନ୍ମତ୍ତ + କ) ମାତାଲ, ଉନ୍ମାଦଗ୍ରସ୍ତ, ପାଗଳ, ବାତୁଳ ।

**ଉନ୍ମତ୍ତଗଙ୍ଗ**—କ୍ଲୀ. ବି. ଦେଶବିଶେଷ ।

**ଉନ୍ମତ୍ତଗୀତ**—ବିଂ. ପ୍ରଳାପପୂର୍ବକ ଗାନ କରିବା, ପ୍ରଳାପବଚନ, ପାଗଳଗୀତ ।

**ଉନ୍ମତ୍ତତା**—ସ୍ତ୍ରୀ.ବି. (ଉନ୍ମତ୍ତ + ଘ, ତା) ରୋଗବିଶେଷ, ଉନ୍ମାଦ, ବୁଦ୍ଧିଭ୍ରଂଶ, ବାତୁଳତା, କ୍ଷିପ୍ତତା, ପାଗଳାମି, ଆତ୍ମବିସ୍ମୃତି, ତନ୍ମୟତା ।

**ଉନ୍ମତ୍ତପ୍ରଳାପ**—ପୁଂ.ବି. (୬ତତ୍) ବାତୁଳଜଳ୍ପନା, ଅର୍ଥଶୂନ୍ୟ ପ୍ରଳାପ ।

**ଉନ୍ମତ୍ତବେଶ**—ପୁଂ. ବି. ଶିବ । [ରାଜା ।

**ଉନ୍ମତ୍ତାବନ୍ତ**—ପୁଂ. ବି. କାଶ୍ମୀରର ଜଣେ

**ଉନ୍ମଥ**—ପୁଂ.ବି. (ଉତ୍ + ମଥ୍ + ଅ) ବଧ, ମର୍ଦ୍ଦନ, ମାରଣ, ମନ୍ଥନ, ହନନ, ଘର୍ଷଣ ।

**ଉନ୍ମଥନ**—କ୍ଲୀ. ବି. (ଉତ୍ + ମଥ୍ + ଘ, ଅନ) ଉନ୍ମର୍ଦ୍ଦନ, ହିଂସା, ନିଧନ, ସୁଶ୍ରୁତୋକ୍ତ ଯନ୍ତ୍ରକର୍ମଭେଦ, (ବିଂ) ମର୍ଦ୍ଦନକାରକ, ବ୍ୟଥୟିତା ।

**ଉନ୍ମଥିତ**—ବିଂ. (ଉତ୍ + ମଥ୍ + ର୍ମ, ତ) ମର୍ଦ୍ଦିତ, ବିନଷ୍ଟ, ଅଭିଭୂତ, ବ୍ୟାକୁଳ, ଉତ୍ସୃଷ୍ଟ, ହତ, ମିଶ୍ରିତ, ଉତ୍ପାଟିତ ।

**ଉନ୍ମଦ**—ବିଂ. ବ.ବ୍ରୀ, (ଉତ୍ + ମଦ୍ + କ, ଅ) ଉନ୍ମାଦଯୁକ୍ତ, ପାଗଳ, ଉଦ୍ରିକ୍ତ, ହର୍ଷଜନକ, (ବି) ଉନ୍ମାଦ ।

**ଉନ୍ମଦିଷ୍ଣୁ**—ବିଂ. (ଉତ୍ + ମଦ୍ + ଇଷ୍ଣୁ) ଉନ୍ମଦ, ଉନ୍ମାଦଯୁକ୍ତ, ମତ୍ତ, ବାହ୍ୟଜ୍ଞାନଶୂନ୍ୟ ।

**ଉନ୍ମନାଃ**—ପୁଂ. ବିଂ.(ବ.ବ୍ରୀ) ଉଦ୍‌ବିଗ୍ନ, କିଂକର୍ତ୍ତବ୍ୟବିମୂଢ଼, ବ୍ୟାକୁଳ, ବିମନା, ଅନ୍ୟମନସ୍କ, ଚକିତ, ଅସୁଖୀ ।

**ଉନ୍ମନୀ**—ସ୍ତ୍ରୀ. ବି. ଯୋଗୀମାନଙ୍କ ଅବସ୍ଥା ବିଶେଷ, ମୌନ ।

**ଉନ୍ମନ୍ଥ**—ପୁଂ. ବି. (ଉତ୍ + ମଥ୍ + ଅ) ହିଂସା, ନିର୍ଯ୍ୟାତନ, ମାରଣ, ମନ୍ଥନ, ହନନ, ମାର୍ଜନ, ସୁଶ୍ରୁତୋକ୍ତ କର୍ଣ୍ଣପାଲି ରୋଗବିଶେଷ ।

**ଉନ୍ମନ୍ଥନ**—କ୍ଲୀ. ବି. (ଉତ୍ + ମଥ୍ + ଅନ) ମଥନ, ହନନ, ମାରଣ ।

**ଉନ୍ମର୍ଦ୍ଦନ**—କ୍ଲୀ. ବି. (ଉତ୍ + ମୃଦ୍ + ଘ, ଅନ) ଉଦ୍‌ଘର୍ଷଣ, ବାୟୁ ବା ଶୂଳପ୍ରଭୃତି ନିବାରଣାର୍ଥ କ୍ରିୟାବିଶେଷ, ମର୍ଦ୍ଦନ ଯୋଗ୍ୟ ଦ୍ରବ୍ୟାଦି, ଯାହା ଦେହରେ ଲେପନ କରାହୁଏ ।

**ଉନ୍ମା**—ସ୍ତ୍ରୀ. ବି. ଊର୍ଦ୍ଧ୍ୱମାନ, ବର୍ଦ୍ଧମାନ ।

**ଉନ୍ମାଥ**—ପୁଂ.ବି. (ଉତ୍ + ମଥ୍ + ଅ) ମୃଗବଧ ଯୋଗ୍ୟ ଯନ୍ତ୍ର, କୂଟଯନ୍ତ୍ର, ଫାନ୍ଦ, ଫାଶ, ବିଲୋଡ଼ନ, ମାରଣ (ବିଂ.) ଘାତକ ।

**ଉନ୍ମାଥୀ**—ପୁଂ.ବିଂ. (ଉତ୍ + ମଥ୍ + କ, ଇନ୍) ବିଲୋଡ଼କ, ମର୍ମପୀଡ଼କ ।

**ଉନ୍ମାଦ**—ପୁଂ.ବି. (ଉତ୍ + ମଦ୍ + ଅ) ମତ୍ତତାରୋଗବିଶେଷ, ଚିତ୍ତବିଭ୍ରମ, ବାତରୋଗବିଶେଷ, ବିକାଶ, ସ୍ୱନାମଖ୍ୟାତ ରୋଗବିଶେଷ, କାମାବେଶ, ଉତ୍ସାହବିଶେଷ ।

**ଉନ୍ମାଦ**—ପୁଂ. ବି. (ଉନ୍ମାଦ + ଅ) ଉନ୍ମତ୍ତ, କ୍ଷିପ୍ତ, ବାତୁଳ, ପାଗଳ, ଉନ୍ମାଦରୋଗଯୁକ୍ତ, ହିତାହିତଜ୍ଞାନଶୂନ୍ୟ, (ସ୍ତ୍ରୀ) ଉନ୍ମାଦା ।

**ଉନ୍ମାଦକ**—ପୁଂ.ବିଂ. (ଉତ୍ + ମଦ୍ + ଣି + କ, ଅ) ଉନ୍ମତ୍ତକାରୀ, ଉନ୍ମାଦଜନକ, ଧୂତୁରାଦି, ଚିତ୍ତବିଭ୍ରମକାରୀ, ବୁଦ୍ଧିଭ୍ରଂଶ ଘଟାଇବା, ଯାହାଦ୍ୱାରା ଉନ୍ମାଦ ରୋଗ ହୁଏ, (ବି.) ଧୂତୁରାଗଛ ।

**ଉନ୍ମାଦଗ୍ରସ୍ତ**—ପୁଂ.ବିଂ.(୭ମ୍ୟାତତ୍) ବାତୁଳ ରୋଗାକ୍ରାନ୍ତ, ଉନ୍ମତ୍ତ, କ୍ଷିପ୍ତ, (ସ୍ତ୍ରୀ) ଉନ୍ମାଦଗ୍ରସ୍ତା ।

**ଉନ୍ମାଦନ**—କ୍ଲୀ.ବି. (ଉତ୍ + ମଦ୍ + ଣି + ଘ, ଅନ) ତାନ୍ତ୍ରିକ ଅଭିଚାର ବିଶେଷ, ଉନ୍ମତ୍ତ କରଣ, ଉନ୍ମାଦ, କାମଦେବଙ୍କ

ପଞ୍ଚବାଣାନ୍ତର୍ଗତ ବାଣବିଶେଷ, ଚିତ୍ତର ବିଭ୍ରମ ଜାତହେବା ।

**ଉନ୍ମାଦନା**—ସ୍ତ୍ରୀ. ବି. (ଉନ୍ମାଦନ+ଆ) ଉନ୍ମାଦନ, ଉନ୍ମାଦକ, ପ୍ରବଳ, ଉତ୍ତେଜନା ।

**ଉନ୍ମାଦବାନ୍**—ପୁଂ.ବି. (ଉନ୍ମତ୍ତ+ବତ୍) ଉନ୍ମତ୍ତ, ପାଗଳ ।

**ଉନ୍ମାଦୀ**—ପୁଂ. ବିଂ. (ଉତ୍+ମାଦ୍+କ, ଇନ୍) ଉନ୍ମାଦଯୁକ୍ତ, ଉନ୍ମତ୍ତ, ମତ୍ତତାକାରକ, ଉନ୍ମାଦକ, ଉନ୍ମାଦଜନକ,(ସ୍ତ୍ରୀ) ଉନ୍ମାଦିନୀ ।

**ଉନ୍ମାନ**—କ୍ଲୀ.ବି. (ଉତ୍+ମା+ଘ,ଅନ) ପରିମାଣ, ଓଜନ, ଦ୍ରୋଣ ପରିମାଣ, ଉଚ୍ଚତାନିର୍ଣ୍ଣୟ, ଭାରନିର୍ଣ୍ଣୟ ।

**ଉନ୍ମାର୍ଗ**—ପୁଂ. ବିଂ.କୁପଥଗାମୀ, (ପୁଂ.ବି) ଅସତ୍‌ପଥ, ବିପଥ, ଗର୍ହିତ ଆଚରଣ, ଅସତ୍ ବ୍ୟବହାର ।

**ଉନ୍ମାର୍ଗଗାମୀ**—ପୁଂ.ବି., (ଉନ୍ମାର୍ଗ+ଗମ୍ +କ, ଇନ୍) ଅସଦାଗ୍ରହୀ, ଅନ୍ୟାଯ୍ୟ ଆଚରଣକାରୀ, ଯେ ଗର୍ହିତ ଆଚରଣ କରେ, (ସ୍ତ୍ରୀ) ଉନ୍ମାର୍ଗଗାମିନୀ ।

**ଉନ୍ମାର୍ଜନ**—କ୍ଲୀ.ବି. (ଉତ୍+ମୃଜ୍+ଘ, ଅନ) ପ୍ରକ୍ଷାଳନ, ପରିଷ୍କରଣ,ଦୂରୀକରଣ ।

**ଉନ୍ମିତ**—ବିଂ. (ଉତ୍+ମା+ର୍ମ,ତ)ପରିମିତ, ଯାହା ମାପ କରା ହୋଇଅଛି ।

**ଉନ୍ମିତି**—ସ୍ତ୍ରୀ. ବି. (ଉତ୍+ମଦ୍+ତି) ଉନ୍ମାନ, ଓଜନ ।

**ଉନ୍ମିଷ**—ବିଂ.(ଉତ୍+ମିଷ+ଅ)ପ୍ରକାଶ, ଉଦୟ, ବିକାଶ, ଅଳ୍ପ ଚକ୍ଷୁ ମେଲିବା ।

**ଉନ୍ମିଷିତ**—ବିଂ. (ଉତ୍+ମିଷ୍+ତ) ପ୍ରଫୁଲ୍ଲ, ବିକସିତ, (ବି) ଉନ୍ମୀଳନ, ପ୍ରସ୍ଫୁଟନ, ଅବଲୋକନ ।

**ଉନ୍ମୀଳନ**—କ୍ଲୀ.ବି. (ଉତ୍+ମିଲ୍+ଘ, ଅନ) ବିକାଶ, ଉନ୍ମେଷ, ଚକ୍ଷୁମେଲିବା, ଅନାଇବା, ଉଦ୍ଭାସନ, ଖୋଲାଗୁହିଁବା ।

**ଉନ୍ମୀଳିତ**—ବିଂ. (ଉତ୍+ମିଲ୍+ତ) ବିକସିତ, ପ୍ରସ୍ଫୁଟିତ ପ୍ରକାଶିତ, ଅମୁଦ୍ରିତ, ଯେ ଚକ୍ଷୁ ମେଲିଇଥାଏ ।

**ଉନ୍ମୁକ୍ତ**—ବିଂ. (ଉତ୍+ମୁଚ୍+ର୍ମ,ତ) ବନ୍ଧନରହିତ, ବାଧାଶୂନ୍ୟ, ଅନାବୃତ, ସରଳ, ଉତ୍ସୃଷ୍ଟ, ଖୋଲସ, ସ୍ୱାଧୀନ, ବନ୍ଧନରୁ ମୁକ୍ତ, ମୁକୁଳା, ନିଃସୃତ ।

**ଉନ୍ମୁଖ**—ବିଂ.(ବ.ବ୍ରୀ)ଊର୍ଦ୍ଧ୍ୱମୁଖ, ଉଦ୍ୟତ, ବ୍ୟଗ୍ର, ଉତ୍ସୁକ, ଯତ୍ନବାନ୍, ଉଦ୍ୟୁକ୍ତ, ପ୍ରବୃତ୍ତ, ପ୍ରାପ୍ତକାଳ, ସମ୍ମୁଖ, ତତ୍ପର, (ସ୍ତ୍ରୀ) ଉନ୍ମୁଖୀ ।

**ଉନ୍ମୁଗ୍ଧ**—(ଉତ୍+ମୁହ୍+କ,ତ) ଅତିମୁଗ୍ଧ, ମୂର୍ଖ ।

**ଉନ୍ମୁଦ୍ର**—ବିଂ.(ବ.ବ୍ରୀ) ବିକସିତ, ପ୍ରସ୍ଫୁଟିତ, ମୁଦ୍ରାରହିତ, ମୁଦ ଫିଟାଯାଇଥିବା ।

**ଉନ୍ମୂର୍ଦ୍ଧ**—ବି. (ବ.ବ୍ରୀ) ଉନ୍ନତମସ୍ତକ ।

**ଉନ୍ମୂଳ**—ବିଂ. ଯାହାର ମୂଳ ଉଦ୍‌ଗତ ହୋଇଥାଏ, ନିର୍ମୂଳ, ଯାହା ଉପାଡ଼ି ଫିଙ୍ଗି ଦିଆହୋଇଥାଏ ।

**ଉନ୍ମୂଳକ**—ବିଂ.(ଉତ୍+ମୂଳ+କ,ଅକ) ଉନ୍ମୂଳନକର୍ତ୍ତା, ଉନ୍ମୂଳୟିତା, ଉତ୍ପାଟକ, ମୂଳରୁ ଉପାଡ଼ୁଥିବା, ମୂଳୋତ୍ପାଟନକାରୀ ।

**ଉନ୍ମୂଳନ**—କ୍ଲୀ.ବି. (ଉତ୍+ମୂଳ+ଘ, ଅନ) ଉତ୍ପାଟନ, ନିର୍ମୂଳକରଣ, ସମୂଳେ ବିନାଶକରଣ, ମୂଳସହିତ ଉପାଡ଼ି ଫିଙ୍ଗିଦେବା ।

**ଉନ୍ମୂଳୟିତା**—ପୁଂ. ବିଂ. (ଉତ୍+ମୂଳ +ତୃ) ଉନ୍ମୂଳନକର୍ତ୍ତା, ଉତ୍ପାଟକ, (ସ୍ତ୍ରୀ) ଉନ୍ମୂଳନୟିତ୍ରୀ ।

**ଉନ୍ମୂଳିତ**—ବିଂ. (ଉତ୍+ମୂଳ+ର୍ମ,ତ) ଉତ୍ପାଟିତ,ଉପଡ଼ା ହୋଇଥିବା, ବିନଷ୍ଟ ।

**ଉନ୍ମୃଜାବମୃଜା**—ସ୍ତ୍ରୀ. ବି. ଉନ୍ମାର୍ଜ୍ଜନ, ଅବମାର୍ଜ୍ଜନକ୍ରିୟା, ମଜା, ଘଷା ।

**ଉନ୍ମୃଶ୍ୟ**—ବିଂ. (ଉତ୍+ମୃଶ୍+ଯ)ହାତ ଟେକିକରି ସ୍ପର୍ଶ କରିବାର ଯୋଗ୍ୟ ।

**ଉନ୍ମୃଷ୍ଟ**—ବିଂ. ମାର୍ଜ୍ଜିତ, ମର୍ଦ୍ଦିତ, ପରିଷ୍କୃତ, ବିମଳୀକୃତ ।

**ଉନ୍ମେୟ**—ବିଂ. (ଉତ୍+ମା+ର୍ମ,ଯ) ପରିମେୟ, ପରିମାଣଯୋଗ୍ୟ, ଯାହା ପରିମାଣ କରାଯାଇପାରେ ।

**ଉନ୍ମେଷ**—ପୁଂ. ବି. (ଉତ୍+ମିଷ୍+ଅ) ଉଦ୍ଭବ, ପ୍ରକାଶ, ଉଦୟ, ଚକ୍ଷୁମେଲିବା, ଉନ୍ମୀଳନ ।

**ଉନ୍ମେଷୀ**—ପୁଂ. ବି. (ଉତ୍+ମିଷ୍+କ,ଇନ୍) ଉଡ୍ଡୀନ ।

**ଉନ୍ମୋଚକ**—ପୁଂ.ବି. (ଉତ୍+ମୁଚ୍+କ, ଅକ) ଯେ ବନ୍ଧନରୁ ମୁକ୍ତ କରେ, (ସ୍ତ୍ରୀ) ଉନ୍ମୋଚକା ।

**ଉନ୍ମୋଚନ**—କ୍ଲୀ. ବି. (ଉତ୍+ମୁଚ୍+ଘ,ଅନ) ମୋଚନ, ବନ୍ଧନରୁ ମୁକ୍ତ କରିଦେବା, କାରାମୁକ୍ତ, ଖୋଲିବା, ଛଡ଼ାଇଦେବା ।

**ଉନ୍ମୋଚିତ**—ବିଂ.(ଉତ୍+ମୋଚ+ତ) ଯାହାକୁ ବନ୍ଧନରୁ ଫିଟାଇ ଦିଆଯାଇଛି ।

**ଉପ**—ଅ. ସହିତ, ତଳେ,ଗୁପ୍ତ,ନ୍ୟୂନତା, ନିକୃଷ୍ଟ, ଅଧସ୍ତନ, ପ୍ରତିନିଧି, ଉପସ୍ଥିତ, ସାହାଯ୍ୟ, ନିନ୍ଦା, ପାର୍ଶ୍ୱ, ଦୃଢ଼ରୂପେ, ଅଧିକା, ସମ୍ମୁଖରେ, ଛାମୁରେ, ଘୃଣା, ଇଚ୍ଛା, ଉଚ୍ଚୈଃସ୍ୱରରେ, ପ୍ରାୟ, ଆନୁକୂଲ୍ୟ, କ୍ରମ, ପଶ୍ଚାତ୍, ଅନୁଜ, କଳନା, ପର୍ଯ୍ୟାୟକ୍ରମେ, ଅଧୀନ, ଅର୍ଜ୍ଜିତ, ଆଡ଼କୁ ।

**ଉପ**—ଅ. (ବପ+ଅ) ଉପସର୍ଗବିଶେଷ, ଆଧିକ୍ୟ, ହୀନତା, ସାମୀପ୍ୟ, ଆସନ୍ନତା, ଅନୁଗତ, ପଶ୍ଚାଦ୍ଭାବ, ଅନୁକମ୍ପା, ସାଦୃଶ୍ୟ, ଆରମ୍ଭ, ସାମର୍ଥ୍ୟ, ବ୍ୟାପ୍ତି, ଶକ୍ତି, ପୂଜା, ଦାନ, ଦୋଷାଖ୍ୟାନ, ମାରଣ, ଆଶ୍ଚର୍ଯ୍ୟକରଣ, ନିଦର୍ଶନ, ଲିପ୍‌ସା, ଉପଲମ୍ଭନ, ଉଦ୍‌ଯୋଗ, ଭୂଷଣ ।

**ଉପଇନ୍ଦ୍ର**—ପୁଂ. ବି. ଉପେନ୍ଦ୍ର (ଦେଖ) ।

**ଉପକଣ୍ଠ**—ବି. ନିକଟ,ସମୀପ,(ବି)ଗ୍ରାମାନ୍ତ, ଘୋଡ଼ାର ପଞ୍ଚମ ଗତି, ଆସ୍କନ୍ଦିତ, କଣ୍ଠସମୀପ, ଗଳାର ଗୁରିପାଖ ।

**ଉପକଥା**—ସ୍ତ୍ରୀ.ବି. (ଉପ+କଥା)ଆଖ୍ୟାୟିକା, କାହାଣୀ, ସାଧାରଣ ସନ୍ତୋଷ ନିମିତ୍ତ ଉପନ୍ୟାସ, କଳ୍ପିତକଥା ।

**ଉପକନିଷ୍ଠିକା**—ସ୍ତ୍ରୀ. ବି.ଅନାମିକାଅଙ୍ଗୁଳି ।

**ଉପକନ୍ୟା**—ସ୍ତ୍ରୀ.ବି.(ଉପଗତା+କନ୍ୟା) କନ୍ୟାର ସଖୀ ।

**ଉପକରଣ**—କ୍ଲୀ. ବ. (ଉପ + କୃ + ଅନ) ସାମଗ୍ରୀ, ଅଙ୍ଗଦ୍ରବ୍ୟ, ଯେଉଁ କାର୍ଯ୍ୟରେ ଯେ ଦ୍ରବ୍ୟ ଅତି ପ୍ରୟୋଜନ, ଉପାଦାନ, ରାଜାଙ୍କର ଛତ୍ରାଦିଚହ୍ନ, ପରିଚ୍ଛଦ, ଉପକାର, (ବିଂ) ଇନ୍ଦ୍ରିୟାନୁଗତ, (ଅ) ଇନ୍ଦ୍ରିୟରେ, ଇନ୍ଦ୍ରିୟ ନିକଟରେ ।

**ଉପକଣ୍ଠ**—ଅବ୍ୟ. କଣ୍ଠରେ, କଣ୍ଠ ନିକଟରେ ।

**ଉପକର୍ତ୍ତା**—ପୁଂ. ବିଂ. (ଉପ + କୃ + କ, ତୃ) ଉପକାରକ, ସାହାଯ୍ୟକାରୀ, ହିତକାରୀ, (ସ୍ତ୍ରୀ) ଉପକର୍ତ୍ତ୍ରୀ ।

**ଉପକଲାପ**—ଅବ୍ୟ. କଲାପରେ, କଲାପ ନିକଟରେ ।

**ଉପକଲ୍ପ**—ବିଂ. (ଉପଗତଃ + କଲ୍ପଂ) କଳ୍ପୋପଗତ, (ବି) ଉପବଧି, ଅନୁକଳ୍ପ ।

**ଉପକଳ୍ପନ**—କ୍ଲୀ. ବ. (ଉପ + କଳ୍ପ + ଣି + ଅନ) ସମ୍ପାଦନ, ଆୟୋଜନ ।

**ଉପକଳ୍ପନା**—ସ୍ତ୍ରୀ. ବ. (ଉପ + କଳ୍ପ + ଅନ + ଆ) ଖାଦ୍ୟର ଉପସ୍ଥାପନ, ପରଷିବା ।

**ଉପକଳ୍ପିତ**—ବିଂ. (ଉ + କଳ୍ପି + ର୍ମ, ତ ) ସଂଗୃହୀତ, ଅନୁଷ୍ଠିତ, ସମର୍ପିତ, ଉପକାର ରୂପେ ଦତ୍ତ, ସଜ୍ଜୀକୃତ ।

**ଉପକାଦ**—ପାଣିନି କଥିତ ଗୋଟିଏ ଗଣ ।

**ଉପକାନ୍ତା**—ସ୍ତ୍ରୀ. ବ. ଉପଜାୟା, ଉପପତ୍ନୀ ।

**ଉପକାର**—ପୁଂ. ବ. (ଉପ + କୃ + ଅ) ଉପକୃତ, ସାହାଯ୍ୟ, ଆନୁକୂଲ୍ୟ, ଅନୁଗ୍ରହ, ଉପଭୋଗ, ପ୍ରସାଧନ, ଉପକରଣ, ବିକୀର୍ଣ୍ଣ, କୁସୁମାଦି, ମଙ୍ଗଳ, ହିତ, ମହାଦେବ ।

**ଉପକାରକ**—ପୁଂ. ବିଂ. (ଉପ + କୃ + କ, ଅକ) ଉପକାରକର୍ତ୍ତା, ଯେ ଉପକାର କରେ, ଆବଶ୍ୟକ, ଫଳୋତ୍ପାଦକ, ହିତକର, ମଙ୍ଗଳ ଜନକ, କାର୍ଯ୍ୟକାରକ, କାରଣ ।

**ଉପକାରପରାୟଣ**—ପୁଂ. ବିଂ. (ବ. ବ୍ରୀ) ଅନ୍ୟର ଇଷ୍ଟ ସାଧନରେ ଏକାନ୍ତ ଅନୁରକ୍ତ, ପରହିତବ୍ରତ, ଉପଚିକୀର୍ଷୁ ।

**ଉପକାରଜ୍ଞ**—ପୁଂ. ବିଂ. (ଉପକାର + ଜ୍ଞା + କ ଅ) କୃତଜ୍ଞ, ପରକୃତ ଉପକାରକୁ ଯେ ପାଶୋରେ ନାହିଁ ।

**ଉପକାରିକା**—ସ୍ତ୍ରୀ. ବିଂ. (ଉପ + କୃ + ଅକ + ଆ) ଉପକର୍ତ୍ତ୍ରୀ, ଉପକାରିଣୀ (ବି) ପିଷ୍ଟଭେଦ, କୁଣ୍ଡଳ, ମରେଇ, ରାଜଭବନ ।

**ଉପକାରିଣୀ**—ସ୍ତ୍ରୀ. ବ. (ଉପକାର + ଇନ୍ + ଈ) ରାଜାଙ୍କ ବାସଯୋଗ୍ୟ ଗୃହ, ପଟ୍ଟଭବନ, ତମ୍ବୁ ।

**ଉପକାରିତା**—ସ୍ତ୍ରୀ ବ. (ଉପକାରିନ୍ + ତା) ଉପକାର, ସାହାଯ୍ୟ, ଉପଯୋଗିତା, ଆବଶ୍ୟକତା ।

**ଉପକାରୀ**—ପୁଂ. ବିଂ. (ଉପ + କୃ + କ, ଇନ୍) ଉପକାରକ, ସାହାଯ୍ୟକାରୀ, ହିତକର, ସହାୟ, ପ୍ରତ୍ୟୁପକାର ସମର୍ଥ, (ସ୍ତ୍ରୀ) ଉପକାରିଣୀ ।

**ଉପକାର୍ଯ୍ୟ**—ବିଂ. (ଉପ + କୃ + ର୍ମ, ଯ) ଉପକାରଯୋଗ୍ୟ, ଯାହାର ଉପକାର କରିବା ଉଚିତ ।

**ଉପକାର୍ଯ୍ୟା**—ସ୍ତ୍ରୀ. ବ. ରାଜଗୃହ, ପଟ୍ଟଭବନ, ଅମାର, ମରେଇ, ରାଜଭବନ, ଶିବିର, ନୃପବାସ ଯୋଗ୍ୟ ଗୃହ ।

**ଉପକିରଣ**—କ୍ଲୀ. ବ. (ଉପ + କୃ + ଅନ) ବ୍ୟାପ୍ତି, ଚତୁର୍ଦ୍ଦିଗେ ବିକ୍ଷେପ, ଛଡ଼ା ଛଡ଼ି କରି ପଡ଼ିବା ।

**ଉପକୀଚକ**—ପୁଂ. ବ. ବିରାଟ ରାଜାଙ୍କର ଶଳା, କୀଚକର ଅନୁଜ ।

**ଉପକୁଞ୍ଚି**—ସ୍ତ୍ରୀ.ବ. (ଉପ + କୁଞ୍ଚ + ଇ) ଛୋଟ ଛୋଟ କଳାଜୀରା, ସୂକ୍ଷ୍ମଅଳାଇଚ ।

**ଉପକୁଞ୍ଚିକା**—ସ୍ତ୍ରୀ. ବ. (ଉପ + କୁଞ୍ଚି + ଅକ + ଆ) ସୂକ୍ଷ୍ମଅଳାଇଚ, କୃଷ୍ଣଜୀରକ, କଳାଜୀରା ।

**ଉପକୁମ୍ଭ**—ବିଂ, ସମୀପ, ନିକଟ ( ବି ) କୁମ୍ଭର ସମୀପ, ମାଠିଆ ନିକଟ ।

**ଉପକୁର୍ବାଣ**—ପୁଂ. ବ. (ଉପ + କୃ + ର୍ମ, ଆନ) କୃତୋପକାର, ବ୍ରହ୍ମଚାରୀ, ବ୍ରହ୍ମଚର୍ଯ୍ୟାନନ୍ତର ଯେ ଗୃହସ୍ଥ ହୁଏ, (ବିଂ) ଉପକାରଶୀଳ ।

**ଉପକୁଲ୍ୟା**—ସ୍ତ୍ରୀ. ବ. (ଉପ + କୁଲ + ଯ + ଆ) ପିପ୍‌ପଳୀ, ମାଗଧୀ, ବୈଦେହୀ, କଣାଖାଲ, ନାଳ, ଖାଇ, ଜଳନାଳୀ, ମାହାରି ।

**ଉପକୁଶ**—ପୁଂ. ବ. ସୁଶ୍ରୁତୋକ୍ତ ଦନ୍ତମୂଳ ଗତ ରୋଗବିଶେଷ ।

**ଉପକୂଜିତ**—ବିଂ. (ଉପ + କୂଜ୍ + ର୍ମ, ତ) କିଳ ଦିତ ।

**ଉପକୂପ**—କ୍ଲୀ.ବ. କୂପସମୀପ, କୂପନିକଟ, (ପୁଂ) କୂପନିକଟ ଜଳାଶୟ, କୂପନିକଟରେ ଥିବା ଜଳାଶୟ ।

**ଉପକୂଳ**—କ୍ଲୀ. ବ. ବେଳାଭୂମି, ତଟଭୂମି, ସମୁଦ୍ର ଓ ନଦୀର ଭୂପ୍ରାନ୍ତଭାଗ, କୂଳର ସମୀପ ।

**ଉପକୃତ**—ବିଂ. (ଉପ + କୃ + ର୍ମ, ତ) ଉପକାରପ୍ରାପ୍ତ, ବାଧିତ, ଅନୁଗୃହୀତ, କୃତୋପକାର (ବି) ଉପକାର, (ସ୍ତ୍ରୀ) ଉପକୃତା ।

**ଉପକୃତି**—ସ୍ତ୍ରୀ.ବ. (ଉପ + କୃ + ଭା, ତି) ଉପକାର, ସାହାଯ୍ୟ, ଅନୁଗ୍ରହ ।

**ଉପକୃଷ୍ଣ** ବିଂ. କୃଷ୍ଣସମୀପ, କୃଷ୍ଣଙ୍କ ନିକଟ ।

**ଉପକ୍ଳୃପ୍ତ**—ବିଂ. (ଉପ + କ୍ଳପ + ର୍ମ, ତ) ନିଯୁକ୍ତ, ବିନ୍ୟସ୍ତ, ଉପଭୋଗସମର୍ଥ, ଉଚିତ, ସମର୍ଥ, ଅନୁରକ୍ତ ।

**ଉପକେଶ**—କ୍ଲୀ. ବ. ( ଉପ + କେଶ ) କଳ୍ପିତକେଶ, ଧାଆରିକେଶ, ସ୍ତ୍ରୀନାଙ୍ଗର କେଶ ।

**ଉପକୋଶା**—ସ୍ତ୍ରୀ. ବ. ଉପବର୍ଷର କନ୍ୟା, ବରରୁଚିଙ୍କର ପତ୍ନୀ ।

**ଉପକୋଶଳ** ପୁଂ. ବ. କମଳାପତ୍ୟ, ଋଷିପୁତ୍ର ବିଶେଷ, କମଳାସ୍ଥାନ ।

**ଉପକୋଷ**—ପୁଂ. ବ. ଶରୀରର ମଧ୍ୟସ୍ଥ ଚର୍ମକୋଷ ବିଶେଷ ।

**ଉପକ୍ୱଣ**—ବି. ( ଉପ + କ୍ୱଣ + ଭା, ଅ ) ବୀଣାଧ୍ୱନି, ପକ୍ୱଣ, ବୀଣାର ଶବ୍ଦ ।

**ଉପକ୍ରାନ୍ତ**—ପୁଂ.ବିଂ. (ଉପ + କ୍ରମ୍ + କ, ତୃ) ଉପକ୍ରମକର୍ତ୍ତା, ଆରମ୍ଭକାରୀ (ସ୍ତ୍ରୀ) ଉପକ୍ରାନ୍ତୀ ।

**ଉପକ୍ରମ**—ପୁଂ.ବ. (ଉପ + କ୍ରମ୍ + ଭା, ଅ)

ଆରମ୍ଭ, ଉପାୟ, ବାଣୀକରଣ, ଜ୍ଞାନ ପୂର୍ବକ କଥାଆରମ୍ଭ ବୁଦ୍ଧିବଶେଷ,ହେତୁ ଭେଦ, ସୂଚନା,ସାମାଦ ଉପାୟ,ଉପଧ, ଗମନ, ପଲାୟନ, ବକ୍ରମ, ଚକତ୍ସା, ଉପାୟ, ଉଦ୍ୟମ ।

ଉପକ୍ରମଣ—କ୍ଲୀ.ବ (ଉପ + କ୍ରମ୍ + ଭା, ଅନ) ଗମନ, ପଲାୟନ, ଉପାୟ, ସୂଚନା, ଆରମ୍ଭକରଣ, ଚକତ୍ସା, ଚେଷ୍ଟା, ବଶୀକରଣ, ଧର୍ମାଦ ଦ୍ୱାରା ଭୃତ୍ୟପରୀକ୍ଷା, ପାଦକ୍ଷେପ, ପାହୁଣ୍ଡ ।

ଉପକ୍ରମଣିକା—ସ୍ତ୍ରୀ.ବ. (ଉପ + କ୍ରମ୍ + ଅନ + କ + ଆ) ଭୂମିକା, ପ୍ରଥମ ସୂତ୍ର-ପାତ, ପ୍ରସ୍ତାବନା, ଆରମ୍ଭଯୋଗ୍ୟ, ଶିକ୍ଷା, କୌଣସି ବାହୁଲ୍ୟ ବଷୟ ଲେଖା ଲେଖିବାର ପୂର୍ବେ ସଂକ୍ଷେପରେ ତାହାର ପରଚୟ ।

ଉପକ୍ରମଣୀ—ସ୍ତ୍ରୀ. ବ.(ଉପ + କ୍ରମ + ଅନ + ଈ) ଭୂମିକା ।

ଉପକ୍ରମଣୀୟ—ବଂ. (ଉପ + କ୍ରମ୍ + ମଁ, ଅନୀୟ ) ଆରମ୍ଭଣୀୟ, ଆରମ୍ଭଯୋଗ୍ୟ, ଅଭିଗମ୍ୟ, ଚକତ୍ସାଙ୍ଗ ଲକ୍ଷଣବଶେଷ ।

ଉପକ୍ରମମାଣ-ବଂ.(ଉପ + କ୍ରମ୍ + କ,ଆନ) ଉପକ୍ରମ କରଥିବା, ଆୟୋଜନକାରୀ ।

ଉପକ୍ରମିତବ୍ୟ—ବଂ.(ଉପ + କ୍ରମ୍ + ମଁ, ତବ୍ୟ) ଆରମ୍ଭଣୀୟ ।

ଉପକ୍ରମିତ—ପୁଂ. ବଂ. (ଉପ + କ୍ରମ୍ + ତୃ) ଆରମ୍ଭକ ।

ଉପକ୍ରମ୍ୟ—ବଂ. (ଉପ + କ୍ରମ୍ + ଉ,ଯ) ଆରମ୍ଭଣୀୟ, ଚକତ୍ସନୀୟ ।

ଉପକ୍ରାନ୍ତ—ବଂ. (ଉପ + କ୍ରମ୍ + କ,ତ) ଆରମ୍ଭ, ଯାହା ଆରମ୍ଭ କରା ହୋଇ-ଥାଏ, ବସ୍ତୃତ, ଚେଷ୍ଟିତ, ଚକତ୍ସିତ, ଉଦ୍ୟତ, ଉଦ୍ୟୁକ୍ତ, ଉଦ୍ୟୋଗୀ ।

ଉପକ୍ରିୟା—ସ୍ତ୍ରୀ. ବ. ( ଉପ + କ୍ରିୟା ) ଉପକାର, କାର୍ଯ୍ୟ,ନଯୋଗ, ସାହାଯ୍ୟ ।

ଉପକ୍ରୀଡ଼ା – ସ୍ତ୍ରୀ. ବ. (ଉପ + କ୍ରୀଡ଼ା + ଅ + ଆ) ଉପଭୋଗ, କ୍ରୀଡ଼ା, କେଳି ।

ଉପକ୍ରୁଷ୍ଟ—ବଂ. (ଉପ + କ୍ରୁଶ୍ + ମଁ,ତ) ନନ୍ଦତ, ଗର୍ହିତ ।

ଉପକ୍ରୋଶ—ପୁଂ.ବ.(ଉପ + କ୍ରୁଶ୍ + ଅ) ପରବାଦ, ଅପବାଦ, ଭର୍ତ୍ସନା, ସୋଧନ, ଗ୍ଳାନ, ନନ୍ଦା (ବଂ) ଆସନ୍ନ କ୍ରୋଶ, ଉପଗତ କ୍ରୋଶ ।

ଉପକ୍ରୋଶକ – ପୁଂ.ବଂ.(ଉପ + କ୍ରୁଶ୍ + ଅକ) ନନ୍ଦାକାରକ (ବ) ଗର୍ଦ୍ଦଭ, ଗଧ ।

ଉପକ୍ରୋଷ୍ଟା—ପୁଂ. ବଂ.(ଉପ + କ୍ରୁଶ୍ + କ, ତୃ) ଅପବାଦକ, ନନ୍ଦକ ( ବ ) ଗର୍ଦ୍ଦଭ ଚକତ୍ସକ (ସ୍ତ୍ରୀ) ଉପକ୍ରୋଷ୍ଟ୍ରୀ ।

ଉପକ୍ଳେଶ—ପୁଂ. ବ. (ଉପ + କ୍ଲଶ୍ + ଅ) ମଦାଦ, କ୍ଳେଶ ସାଧନ ।

ଉପକ୍ଷୟ—ପୁଂ.ବ. (ଉପ + କ୍ଷି + ଭା,ଅ) ଅପଚୟ, ହାନ, ବ୍ୟୟ, ନବାସ ସମୀ-ପାଦ, (ବଂ) କ୍ଷୟପ୍ରାପ୍ତ ।

ଉପକ୍ଷିତ୍—ବଂ. ( ଉପ + କ୍ଷି + କ୍ୱିପ୍ ) ଅଧିବାସୀ, ନକଟବାସୀ, ପଡ଼ୋଶୀ ।

ଉପକ୍ଷୀଣ—ବଂ. (ଉପ + କ୍ଷି + କ, ତ) ହାନଗ୍ରସ୍ତ, ଅପଚୟପ୍ରାପ୍ତ, କ୍ଷୟପ୍ରାପ୍ତ, କାର୍ଯ୍ୟରେ ଅସମର୍ଥ, ଅନ୍ତର୍ହିତ ।

ଉପକ୍ଷେପ— ପୁଂ.ବ. (ଉପ + କ୍ଷିପ୍ + ଅ) ଆକ୍ଷେପ,ନକଟରେ ନକ୍ଷେପ, ଉଲ୍ଲେଖ ପ୍ରସ୍ତାବ, ମନଃକ୍ଷୋଭ ।

ଉପକ୍ଷେପଣ—କ୍ଲୀ. ବ. (ଉପ + କ୍ଷିପ୍ + ଭା, ଅନ) ଶୂଦ୍ର ସ୍ୱାମୀକ ଅପକ୍ୱ ଦ୍ରବ୍ୟ ବ୍ରାହ୍ମଣ ଘରେ ପାକ ନମନ୍ତ ସମର୍ପଣ, ସୂଚନା, ସମର୍ପଣ ।

ଉପଖାତ —( ଅବ୍ୟ. ) ଖାତସମୀପରେ, ଖାତନକଟରେ, ଖାତରେ ।

ଉପଗ—ବଂ. (ଉପ + ଗମ୍ + କ,ଅ)ଉପ-ଗତ,ଉପଗନ୍ତା, ସମୀପଗତ, ଯୋଗ୍ୟ ।

ଉପଗତ—ବଂ. (ଉପ + ଗମ୍ + ମଁ, ତ) ସ୍ୱୀକୃତ, ଉପସ୍ଥିତ, ଜ୍ଞାତ, ପ୍ରାପ୍ତ,ଆସକ୍ତ, କୃତମୈଥୁନ, ମୃତ, ସଙ୍ଘଟିତ, ସନ୍ନି-ହତ, ପ୍ରାପ୍ତି, ଅନୁରକ୍ତ, (କ୍ଲୀ.ବ)ପ୍ରାପ୍ତି-ସୂଚକ ପତ୍ର, ରସିଦ ।

ଉପଗତି—ସ୍ତ୍ରୀ.ବ. (ଉପ + ଗମ୍ + ଭା,ତ) ପ୍ରାପ୍ତି, ଜ୍ଞାନ, ସ୍ୱୀକାର, ଆସକ୍ତ, ଗମନ, ଆଗମନ ।

ଉପଗନ୍ତା—ପୁଂ. ବଂ.(ଉପ + ଗମ୍ + ତୃ) ସ୍ୱୀକାରକାରୀ, ଯେ ପାଇଅଛି, ଜ୍ଞାତା, ଯେ ଜାଣିଅଛି ।

ଉପଗମ—ପୁଂ.ବ.(ଉପ + ଗମ୍ + ଭା,ଅ) ଘଟନ, ଅଙ୍ଗୀକାର, ନକଟକୁ ଗମନ, ଜ୍ଞାନ, ଆସକ୍ତି, ଆରମ୍ଭ, ଉପଗମନ, ଲେଭ, ସନ୍ନିଧି, ଅନୁରକ୍ତି, ସ୍ତ୍ରୀସମ୍ଭୋଗ, ପ୍ରାପ୍ତି, ସେବା, ଉପାସନା ।

ଉପଗମନ କ୍ଲୀ.ବ. (ଉପ + ଗମ + ଭା, ଅନ)ସମୀପକୁ ଯିବା,ପ୍ରାପ୍ତି,ଅନୁଷ୍ଠାନ,ଜ୍ଞାନ

ଉପଗମ୍ୟ—ବଂ. (ଉପ + ଗମ୍ + ମଁ,ଯ) ଉପସର୍ପଣୀୟ, ପ୍ରାପ୍ୟ ।

ଉପଗହନ—ପୁଂ. ବ. ଋଷିଭେଦ ।

ଉପଗା—ପୁଂ.ବ.(ଉପ + ଗୈ + କ୍ୱିପ୍) ଯଜ୍ଞରେ ଗାନକାରୀ ଋତ୍ୱିକ୍‌ବଶେଷ ।

ଉପାଗାତା—ପୁଂ.ବ. (ଉପ + ଗୈ + ତୃ) ଯଜ୍ଞସ୍ଥଳେ ଉଦ୍‌ଗାତା, ସମୀପେ ଗାନକାରୀ ଋତ୍ୱିକ୍‌ବଶେଷ ।

ଉପଗାନ—ବ. (ଉପ + ଗୈ + ଭା,ଅନ) ସଙ୍ଗୀତ ପୂର୍ବରୁ ରାଗ ଆଳାପନ (ବଂ) ଉପଗୀତ ।

ଉପଗାମୀ—ପୁଂ.ବଂ.(ଉପ + ଗମ୍ + କ, ଇନ୍) ଉପସର୍ପୀ, ଜ୍ଞାତା, ଅଙ୍ଗୀକାରକ ।

ଉପଗାର – ଗ୍ରା. ବ. ( ସଂ – ଉପକାର ) ଉପକାର (ଦେଖ) ।

ଉପଗିର—ଅବ୍ୟ.ପର୍ବତସମୀପେ (ପୁଂ.ବ) ଦେଶବଶେଷ, ଛୋଟ ପାହାଡ଼, କୃତ୍ରିମ ପାହାଡ଼, ପର୍ବତସଦୃଶ ।

ଉପଗୀତ—ବଂ. (ଉପ + ଗୈ + ମଁ,ତ) ସମୀପରେ ଗାନ କରୁଥିବା, ବର୍ଣ୍ଣିତ, ଅଭିଷ୍ଟୁତ, (ସ୍ତ୍ରୀ) ଉପଗୀତା ।

ଉପଗୀତି—ସ୍ତ୍ରୀ.ବ.ଛନ୍ଦୋବଶେଷ, ମାତ୍ରା-ବୃତ୍ତଭେଦ,ଆର୍ଯ୍ୟାଛନ୍ଦର ପ୍ରକାରବଶେଷ ।

ଉପଗୀୟମାନ—ବଂ.(ଉପ + ଗୈ + ମଁ, ଆନ ) ଉଚ୍ଚୈଃସ୍ୱରରେ ବୋଲାଯାଉ-ଥିବା (ଗୀତ) ।

ଉପଗୁ—ପୁଂ. ବଂ. ସତ୍ୟରଥପୁତ୍ର, ରାଜା-ବଶେଷ, (ଅବ୍ୟ)ଗୋରୁସମୀପେ, (ବଂ) ପ୍ରାପ୍ତକରଣାଦ ।

ଉପଗୁପ୍ତ—ବି॰. (ଉପ + ଗୁପ୍ + ର୍ମ,ତ) ସୁରକ୍ଷିତ, ଗୂଢ଼, (ବି॰) ଜଣେ ବୌଦ୍ଧ ସିଦ୍ଧପୁରୁଷ, ଏ ମଥୁରାରେ ୧୮ ଲକ୍ଷ ଲୋକଙ୍କୁ ବୌଦ୍ଧ କରିଥିଲେ ।

ଉପଗୁରୁ—ପୁଂ. ବି. ଉପଦେଷ୍ଟା, ଶିକ୍ଷାଗୁରୁ, ଗୁରୁତୁଲ୍ୟ ବା ଗୁରୁସ୍ଥାନୀୟ ବ୍ୟକ୍ତି ।

ଉପଗୂଢ଼—ବି॰. (ଉପ + ଗୁହ୍ + ର୍ମ,ତ) ପ୍ରଚ୍ଛନ୍ନ, ଆଲିଙ୍ଗିତ,ଗୁପ୍ତ, ଲୁକ୍କାୟିତ, ଗୃହୀତ, (ବି) ଆଲିଙ୍ଗନ, ଗ୍ରହଣ ।

ଉପଗୂହନ—କ୍ଲୀ. ବି.(ଉପ + ଗୁହ୍ + ଘ, ଅନ) ଆଲିଙ୍ଗନ, ଗ୍ରହଣ, ଗୋପନ, ବିସ୍ମୟ ।

ଉପଗୋହ୍ୟ—ବି॰. (ଉପ + ଗୁହ୍ + ର୍ମ, ଯ) ଆଲିଙ୍ଗନଯୋଗ୍ୟ, ଗ୍ରାହ୍ୟ ।

ଉପଗୃହୀତ—ବି॰.(ଉପ + ଗ୍ରହ୍ + ର୍ମ,ତ) ଅନୁଗୃହୀତ ।

ଉପଗ୍ରନ୍ଥି—ପୁଂ.ବି.(ଉପ + ଗ୍ରନ୍ଥି) ଆମନାଡ଼ୀ, ଅଣ୍ଡକୋଷକୁ ତଳପେଟ ସହିତ ସଂଯୋଗ କରୁଥିବା ନାଡ଼ି, ଅଙ୍ଗର କୌଣସି ଗ୍ରନ୍ଥି ନିକଟରେ ବା ଉପରେ ଯେଉଁ ଗ୍ରନ୍ଥି ହୁଏ ।

ଉପଗ୍ରହ—ପୁଂ. ବି. (ଉପ + ଗ୍ରହ + ଅ) ବନ୍ଦୀ, କାରାବନ୍ଦ, ଉପଯୋଗ, କ୍ଷୁଦ୍ରଗ୍ରହ, ରୋଧ, ଉପକାର, ଗ୍ରହଣ, କଏଦ, ଆନୁକୂଲ୍ୟ, ସାହାଯ୍ୟ, ଜ୍ୟୋତିଷୋକ୍ତ ଗ୍ରହତୁଲ୍ୟ ଭ୍ରମଣକାରୀ ଜ୍ୟୋତିଃପଦାର୍ଥ, ରାହୁ କେତୁ ଇତ୍ୟାଦି ।

ଉପଗ୍ରହଣ—କ୍ଲୀ. ବି.(ଉପ + ଗ୍ରହ୍ + ଘ, ଅନ) ନିକଟଗ୍ରହଣ, ସ୍ୱୀକାର, ସଂସ୍କାରପୂର୍ବକ ବେଦ ଗ୍ରହଣ ବା ଅଧ୍ୟୟନ, ଯଜ୍ଞାଦିସାଧକ ଆଧାରକରଣ ।

ଉପଗ୍ରାହ—ପୁଂ. ବି. (ଉପ + ଗ୍ରହ + ଣି, ଅ) ଉପଢୌକନ, ଭେଟିଦେବା, ଉପହାର ସ୍ୱରୂପ ଯାହା ଦିଆଯାଏ ।

ଉପଗ୍ରାହ୍ୟ—ବି॰(ଉପ + ଗ୍ରହ୍ + ଣି + ଯ) ସମୀପକୁ ନେଇ ରଖିବାର ଯୋଗ୍ୟ, ଭେଟି ଦେବାର ଉପଯୁକ୍ତ, (ବି) ଉପଢୌକନ, ଭେଟି ।

ଉପଘାତ—ପୁଂ. ବି. (ଉପ + ହନ୍ + ଘ, ଅ) ବିନାଶ, ରୋଗ, କ୍ଷତ, ଆଘାତ, କ୍ଷୟ, ଉପଦ୍ରବ, ବିକୃତ, ଅପକାର, ପାପସ୍ପୃହା, ହୋମଭେଦ, କର୍ମର ଅଯୋଗ୍ୟତା ସମ୍ପାଦନ, ଇନ୍ଦ୍ରିୟମାନଙ୍କର ନିଜ କାର୍ଯ୍ୟ ଅକ୍ଷମତା ।

ଉପଘାତକ—ପୁଂ. ବି॰.(ଉପ + ହନ୍ + କ, ଅକ) ନାଶକ, ପୀଡକ, ଅନିଷ୍ଟକାରକ, (ସ୍ତ୍ରୀ) ଉପଘାତକା ।

ଉପଘୁଷ୍ଟ—ପୁଂ. ବି॰.(ଉପ + ଘୁଷ୍ + ର୍ମ, ତ) ନାଦିତ, ପ୍ରତିଧ୍ୱନିତ ।

ଉପଘୋଷଣ—କ୍ଲୀ.ବି. (ଉପ + ଘୁଷ୍ + ଘ,ଅନ) ଉଦ୍‌ଘୋଷଣ, ଶବ୍ଦ ଦ୍ୱାରା ପ୍ରକଟୀକରଣ ।

ଉପଘ୍ନ—ପୁଂ. ବି. (ଉପ + ହନ୍ + ର୍ମ, ଅ) ନିକଟାଶ୍ରୟ, ଆଶ୍ରୟ, ସମୀପସ୍ଥ, ସାହାଯ୍ୟ, ଅବଲମ୍ବନ ।

ଉପଘ୍ର—ବି॰. (ଉପ + ଘ୍ରା + ଅ) ସମ୍ବନ୍ଧୀୟ, ସମ୍ପର୍କୀୟ ।

ଉପଘ୍ରାତ—ବି॰. (ଉପ + ଘ୍ରା + ର୍ମ,ତ) କୃତଘ୍ରାଣ, ଯାହା ସୁଙ୍ଘା ହୋଇଅଛି ।

ଉପଚ—ବି॰. (ଉପ + ଚି + ଅ) ଅଳ୍ପମାଷମିଶ୍ରିତ ପିଷ୍ଟକ, ଅନନ୍ତରଜାତ ।

ଉପଚକ୍ର—ପୁଂ. ବି. ଚକ୍ରବାକ ସଦୃଶ ପକ୍ଷୀବିଶେଷ ।

ଉପଚକ୍ଷୁ—କ୍ଲୀ. ବି. (ଉପ + ଚକ୍ଷୁସ୍) ଦିବ୍ୟଚକ୍ଷୁ, ଚଷମା, ଚକ୍ଷୁର ନିକଟ, ଉପନେତ୍ର, ଅନ୍ତର୍ଦୃଷ୍ଟି ।

ଉପଚୟ—ପୁଂ. ବି. (ଉପ + ଚି + ଘ,ଅ) ବୃଦ୍ଧି, ଉନ୍ନତି, ଆଧିକ୍ୟ, ପୁଷ୍ଟି, ସମୃଦ୍ଧି, ସଂଗ୍ରହ, ଜ୍ୟୋତିଷ ମତେ ଲଗ୍ନର ୩ୟ, ୬ଷ୍ଠ, ୧୦ମ ଓ ୧୧ଶ ସ୍ଥାନ ।

ଉପଚର—ପୁଂ. ବି. (ଉପ + ଚର୍ + ଅ) ଉପଚାର, ଦୂତର ନିକଟ, ଉପଚୟ, ଉନ୍ନତି,ବୃଦ୍ଧି,ପୁଷ୍ଟି, ସମୃଦ୍ଧି, ଜ୍ୟୋତିଷମତେ ଲଗ୍ନର ୩ୟ, ୬ଷ୍ଠ, ୧୦ମ ଓ ୧୧ଶ ସ୍ଥାନ ।

ଉପଚରିତ—ବି॰. (ଉପ + ଚର୍ + ର୍ମ, ତ) ଆରାଧିତ, ସେବିତ, ଲକ୍ଷଣ ଦ୍ୱାରା ବୋଧିତ, ଉପସ୍ଥିତ, (ସ୍ତ୍ରୀ) ଉପଚରିତା ।

ଉପଚରିତବ୍ୟ—ବି॰.(ଉପ + ଚର୍ + ର୍ମ, ତବ୍ୟ) ଉପାସ୍ୟ, ସେବନୀୟ, ଚିକିତ୍ସନୀୟ ।

ଉପଚର୍ମ—ଅବ୍ୟ. (ଉପ + ଚର୍ + ମନ୍) ଚର୍ମ ସମୀପରେ, (ବି॰) ଚର୍ମ୍ମୋପଗତ ।

ଉପଚର୍ଯ୍ୟ—ବି॰. (ଉପ + ଚର + ର୍ମ ଯ) ସେବନୀୟ, ଚିକିତ୍ସନୀୟ, (ବି) ଶୁଶ୍ରୂଷା, ସେବା ଚିକିତ୍ସା ।

ଉପଚର୍ଯ୍ୟା—ସ୍ତ୍ରୀ.ବି. (ଉପ + ଚର୍ + ଯ + ଆ) ଉପଚାର, ଚିକିତ୍ସା, ପରିଚର୍ଯ୍ୟା, ଶୁଶ୍ରୂଷା, ସେବା ।

ଉପଚାୟୀ—ପୁଂ.ବି॰.(ଉପ + ଚି + ଇନ୍) ଉପଚୟକାରକ,ବୃଦ୍ଧିକାରକ,ବର୍ଦ୍ଧକ ।

ଉପଚାଯ୍ୟ—ପୁଂ.ବି. (ଉପ + ଚି + ର୍ମ,ଯ) ଯଜ୍ଞାଗ୍ନି ଧାରଣାର୍ଥ କୁଣ୍ଡ ବିଶେଷ, ଯଜ୍ଞାଗ୍ନି, ମନ୍ତ୍ରସଂସ୍କୃତ ଅଗ୍ନି ।

ଉପଚାର—ପୁଂ.ବି. (ଉପ + ଚର୍ + ଘ, ଅ) ଚିକିତ୍ସା, ରୋଗ ପ୍ରତୀକାର, ସେବା, ବ୍ୟବହାର, ଉତ୍କୋଚ, ଧର୍ମାନୁଷ୍ଠାନ, ପରସନ୍ତୋଷ ନିମିତ୍ତ ମିଥ୍ୟାକଥନ, ପୂଜାର ଉପଯୋଗୀ ଦ୍ରବ୍ୟ ଭେଦ, ଛଳନ, ରାଜନୀତିଯୁକ୍ତମାର୍ଗ, ବିଧାନ, ଜୀବନୋପାୟ, ଲକ୍ଷଣାଦ୍ୱାରା ଅର୍ଥ ବୋଧ, ପ୍ରାର୍ଥନା, ଛଳ, ଶୁଶ୍ରୂଷା, ସମ୍ମାନ, ସଜ୍ଜା, ଗୃଷ୍ଟୁ, ମନୋରଞ୍ଜନ, ଶ୍ରେଷ୍ଠାଚାର ।

ଉପଚାରଚ୍ଛଳ—କ୍ଲୀ. ବି. (୬ତତ୍) ନ୍ୟାୟ ମତେ ଅଯଥାର୍ଥ ପ୍ରୟୋଗେ ଅର୍ଥ ନିରାକରଣ ।

ଉପଚାରୀ—ପୁଂ.ବି॰.(ଉପ + ଚର୍ + ଣି, ଇନ୍) ପରିଚାରକ, (ସ୍ତ୍ରୀ) ଉପଚାରିଣୀ ।

ଉପଚାର୍ଯ୍ୟ—ପୁଂ ବି. (ଉପ + ଚର୍ + ଯ) ଚିକିତ୍ସା, ସେବା, (ବି॰) ସେବନୀୟ, ଚିକିତ୍ସନୀୟ ।

ଉପଚିକୀର୍ଷା—ସ୍ତ୍ରୀ.ବି. (ଉପ + କୃ + ସନ + ଅ + ଆ)ଉପକାର କରିବାର ଇଚ୍ଛା, ପରଦୁଃଖ ନିବାରଣ ପ୍ରବୃତ୍ତି ।

ଉପଚିକୀର୍ଷୁ—ପୁଂ. ବି॰ (ଉପ + କୃ +

ସନ୍ + ଉ) ଉପକାର କରିବାକୁ ଇଚ୍ଛୁକ, ହିତୈଷୀ ।
ଉପଚତ୍ନ—ବିଂ. (ଉପ + ଚ + କ୍ୱିପ୍) ଦେହବର୍ଦ୍ଧକ, ସମୃଦ୍ଧି, ସଂସ୍କୃତ ।
ଉପଚିତ— ବିଂ. (ଉପ + ଚ + ର୍ମ,ତ) ସମୃଦ୍ଧ, ବୃଦ୍ଧିପ୍ରାପ୍ତ,ଦଗ୍ଧ,ଲିପ୍ତ,ଲେପନାଦି ଦ୍ୱାରା ବର୍ଦ୍ଧିତ, ଦଗ୍ଧ, ଉଦ୍ରିକ୍ତ, ସମାହୃତ, ସଞ୍ଚିତ,ଉଚିତ, ପୁଷ୍ଟ, ବିସ୍ତାରିତ, ଅନ୍ୱିତ ।
ଉପଚିତି— ସ୍ତ୍ରୀ. ବି. (ଉପ + ଚ + କ୍ତି,ତି) ବୃଦ୍ଧି, ଉନ୍ନତି,ସମୀପରେ ଦାହାର୍ଥକାଷ୍ଠ ସଞ୍ଚୟ ।
ଉପଚିତ୍ର—କ୍ଲୀ. ବି. ସମବୃତ୍ତବର୍ଣ୍ଣ ଛନ୍ଦୋବୃତ୍ତଭେଦ, ଅର୍ଦ୍ଧସମବର୍ଣ୍ଣ ବୃତ୍ତଭେଦ, (ପୁଂ) ଧୃତରାଷ୍ଟ୍ରଙ୍କର ପୁତ୍ରବିଶେଷ ।
ଉପଚିତ୍ରା—ସ୍ତ୍ରୀ. ବି. ମୂଷିକପର୍ଣ୍ଣୀ, ମୂଷାକାନୀ, ସ୍ୱାତି, ହସ୍ତାନକ୍ଷତ୍ର, ଦନ୍ତୀବୃକ୍ଷ, ଷୋଡ଼ଶମାତ୍ରାତ୍ମକ ବୃତ୍ତଭେଦ ।
ଉପଚୀୟମାନ—ପୁଂ.ବିଂ.(ଉପ + ଚ + କ, ଆନ)ବର୍ଦ୍ଧମାନ, ସଞ୍ଚୀୟମାନ, (ସ୍ତ୍ରୀ) ଉପଚୀୟମାନା ।
ଉପଚୀର୍ଣ୍ଣ—ବିଂ. (ଉପ + ଚର + ର୍ମ,ତ) ଉପଚରିତ, ଶୁଶ୍ରୂଷିତ । [ଦହନ ।
ଉପଚୁଲନ—କ୍ଲୀ. ବି. ଚୁଲ୍ଲୀରେ ସ୍ଥାପନ,
ଉପଚେୟ—ବିଂ. (ଉପ + ଚ + ର୍ମ, ଯ) ଚୟନୀୟ ।
ଉପଚ୍ଛଦ — ପୁଂ. ବି. (ଉପ + ଛାଦ + ଅ) ଆଚ୍ଛାଦନ ସାଧନ, ଢାଙ୍କୁଣୀ ।
ଉପଚ୍ଛନ୍ଦ—କ୍ଲୀ. ବି. (ଉପ + ଛନ୍ଦ୍ + ଅ) ପ୍ରାର୍ଥନା, ଉପମନ୍ତ୍ର, ଉପମନ୍ତ୍ରଣ, ଫୁସୁଲେଇବା, ପରାମର୍ଶଦେବା, ଅନୁରୋଧ ।
ଉପଚ୍ଛନ୍ଦନ — କ୍ଲୀ. ବି. (ଉପ + ଛନ୍ଦ + ଣି + ଅନ) ଉପଚ୍ଛନ୍ଦ (ଦେଖ) ।
ଉପଚ୍ୟବ—ପୁଂ. ବି. (ଉପ + ଚ୍ୟୁ + ଅ) ଗୃହରୁ ବାହାରିଯିବା ।
ଉପଚ୍ଛନ୍ନ—ବିଂ.(ଉପ + ଛଦ + ଣି + ର୍ମ, ତ) ଆବୃତ, ଗୂଢ଼ ଉପାଗତ ।
ଉପଚ୍ଛାୟା— ସ୍ତ୍ରୀ. ବି. ଉପଗମ୍ୟ, ଛାୟା, ଛାୟାନିକଟରେ, ଛଇରେ ।

ଉପଜ—ବିଂ. (ଉପ + ଜନ୍ + କ, ଅ ) ପରେଜାତ,ସଙ୍ଗୀତକାଳେ ବାଦକ ବା ଗାୟକର ଇଚ୍ଛାଧୀନ କ୍ଷୁଦ୍ର କ୍ଷୁଦ୍ର ତାନ, ଅନୁଜ, କନିଷ୍ଠ, (ବି)କନିଷ୍ଠ ଭାଇ, (ସ୍ତ୍ରୀ) ଉପଜା ।
ଉପଜଲେର—ଗ୍ରା. (ବସ୍ତ୍ରର) ଅକୃତ୍ରିମ, ପ୍ରାକୃତିକ ।
ଉପଜନ—କ୍ଲୀ. ବି. (ଉପ + ଜନ୍ + ଅ) ଦେହ, ଶରୀର, (ପୁଂ) ଲୋମାଦି ବୃଦ୍ଧି, ଉତ୍ପତ୍ତି ।
ଉପଜନନ—କ୍ଲୀ. ବି. ( ଉପ + ଜନ୍ + ଣି, ଅନ) ଉତ୍ପତ୍ତି, ଉଦ୍ଭିଦ, ଉତ୍ପାଦନ ।
ଉପଜପ୍ୟ—ବିଂ. ( ଉପ + ଜପ୍ + ଯ ) ଭେଦାର୍ହ, ଭେଦନୀୟ ।
ଉପଜଳା—ସ୍ତ୍ରୀ. ବି. (ଉପ + ଜଲ୍ + ଆ) ଜଲମଗ୍ନାଭୂମି, ଯମୁନା ପାର୍ଶ୍ୱସ୍ଥ ନଦୀବିଶେଷ ।
ଉପଜଳ୍ପିତ—ବିଂ. (ଉପ + ଜଲ୍ପ + ର୍ମ, ତ) କଥିତ ।
ଉପଜଳ୍ପୀ—ପୁଂ.ବି. (ଉପ + ଜଲ୍ପ + ଇନ୍) ଉପଦେଶକ, ଅଯାଚିତଭାବେ ଜଳ୍ପନାକାରୀ ।
ଉପଜା—ସ୍ତ୍ରୀ.ବିଂ. ଅନୁଜା, (ବି) କନିଷ୍ଠା ଭଗିନୀ, ସାନଭଉଣୀ ।
ଉପଜାତ—ବି. ଅନନ୍ତର ଜାତ, ପରେ ଉତ୍ପନ୍ନ, ଉଦ୍ରିକ୍ତ, ସଂଘଟିତ, ଉତ୍ଥିତ, ଅନୁଜ, କୌଣସି ପଦାର୍ଥରୁ ବା ତତ୍ସଂଶ୍ରବରେ ଉଦ୍ଭୂତ, (ସ୍ତ୍ରୀ) ଉପଜାତା ।
ଉପଜାତି—ସ୍ତ୍ରୀ. ବି. ଛନ୍ଦବିଶେଷ,ଶାଖାଜାତି, ଗଣ, ବର୍ଣ୍ଣ, ସଂସ୍କୃତ,ଉପେନ୍ଦ୍ରବଜ୍ର ଓ ଇନ୍ଦ୍ରବଜ୍ରାର ମିଶ୍ରଣଛନ୍ଦ ।
ଉପଜାନ—ପ୍ରା. ବି. ଜନ୍ମାନ, ଘଟିବା, ଉତ୍ପନ୍ନହୋଇ ।
ଉପଜାପ — ପୁଂ.ବି. (ଉପ + ଜପ୍ + ଆ) ଭେଦ, ବିଚ୍ଛେଦ, କୁଚକ୍ର, ଉପାଂଶୁଜପ, ଫତୁରି, ଅନୈକ୍ୟ, ବିବାଦ, ମନୋମାଳିନ୍ୟ, ଫୁସୁଲେଇବା ।

ଉପଜାପକ—ପୁଂ.ବିଂ. (ଉପ + ଜପ୍ + କ, ଅକ) ଭେଦକ,ପ୍ରୋତ୍ସାହକ,ବୈରବୃଦ୍ଧିକାରୀ ।
ଉପଜାୟା—ସ୍ତ୍ରୀ. ବି. ଉପପତ୍ନୀ ।
ଉପଜିହୀର୍ଷା—ସ୍ତ୍ରୀ. ବି. (ଉପ + ହୃ + ସନ୍ + ଅ + ଆ) ଅନ୍ୟଲୋକର ଦ୍ରବ୍ୟାଦି ଗ୍ରହଣ କରିବାର ଇଚ୍ଛା ।
ଉପଜିହ୍ୱା—ସ୍ତ୍ରୀ. ବି. (ଉପ + ଜିହ୍ୱା)କୀଟବିଶେଷ, ଉପଦେହିକା, ଜିହ୍ୱାଗତ ରୋଗବିଶେଷ, କ୍ଷୁଦ୍ରଜିହ୍ୱା, ଘଣ୍ଟିକା ।
ଉପଜିହ୍ୱିକା—ସ୍ତ୍ରୀ. ବି. ଘଣ୍ଟିକା. କୀଟଭେଦ, ରୋଗବିଶେଷ ।
ଉପଜୀବ—ବିଂ. ଜୀବନୋପଗତ ।
ଉପଜୀବକ—ବିଂ.(ଉପ + ଜୀବ୍ + କ,ଅକ) ଯେ ଜୀବିକା ନିର୍ବାହ କରିବାକୁ ଅନ୍ୟକୁ ଆଶ୍ରୟକରେ, ଆଶ୍ରୟୀ, ଆଲମ୍ବକାରକ, (ବି) ବୃତ୍ତି, ସେବକ ।
ଉପଜୀବକତ୍ୱ କ୍ଲୀ. ବି. ନ୍ୟାୟମତେ କାର୍ଯ୍ୟତ୍ୱ, ପ୍ରୟୋଜ୍ୟତ୍ୱ ।
ଉପଜୀବନ—କ୍ଲୀ. ବି. (ଉପ + ଜୀବ୍ + ଅନ) ଜୀବିକା, ଜୀବନୋପାୟ, ଆଜୀବ, ବୃତ୍ତି,ଜୀବର ଆଶ୍ରୟସ୍ଥଳ, ବ୍ୟବସାୟ ।
ଉପଜୀବନୀୟ—ପୁଂ.ବି. (ଉପ + ଜୀବ୍ + ର୍ମ, ଅନୀୟ) ବୃତ୍ତ୍ୟର୍ଥ ଆଶ୍ରୟଣୀୟ,ଉପଜୀବ୍ୟ ।
ଉପଜୀବିକା—ସ୍ତ୍ରୀ. ବି. (ଉପ + ଜୀବ୍ + ଅକ + ଆ) ଉପଜୀବନ, ଜୀବନୋପାୟ, ବୃତ୍ତି, ଆଜୀବ,ପେଷା, ଭରଣପୋଷଣ ।
ଉପଜୀବୀ—ପୁଂ.ବିଂ. (ଉପ + ଜୀବ୍ + କ, ଇନ୍) ଆଶ୍ରିତ, ଜୀବିକାଶ୍ରୟୀ, ଜୀବନଧାରକ, ଅଧୀନ, ପ୍ରତିପାଳ୍ୟ, ବେତନଭୋଗୀ, ଆଶ୍ରୟକାରୀ, ଅବଲମ୍ବୀ, ଯେ ପୋଷିହେବାକୁ ଅନ୍ୟକୁ ଆଶ୍ରୟକରେ ।
ଉପଜୀବ୍ୟ—ବିଂ.(ଉପ + ଜୀବ୍ + ଯ)ଆଶ୍ରୟ, ଶରଣ, ପାଳକ, ଜୀବିକାପ୍ରଦ, ଆଶ୍ରୟଦାତା, (ସ୍ତ୍ରୀ) ଉପଜୀବ୍ୟା ।
ଉପଜୁଷ୍ଟ—ପୁଂ.ବିଂ. (ଉପ + ଜୁଷ୍ + ର୍ମ, ତ) ସେବିତ, ଆଶ୍ରିତ ।
ଉପଜୋଷ—ପୁଂ. ବି. (ଉପ + ଜୁଷ୍ + ଅ) ପ୍ରୀତି, ଆନନ୍ଦ, ସୁଖ ।

**ଉପକ୍ରୋଷମ୍** — ଅବ୍ୟ (ଉପ + କ୍ରୁଷ୍ + ଣ, ଅ)ଆନନ୍ଦ, କ୍ରୁଷ୍ଟୀଭାବ,ଚପ୍ମାରନ୍ଥବା ।
ଉପକ୍ରୋଷଂ — ଅବ୍ୟ. (ଉପ + କ୍ରୁଷ୍ + ଅମ୍)ଯଥାକର୍ମ ଭୋଗ, ପ୍ରୀତି, କଲ୍ୟାଣ ।
ଉପଜ୍ଞା — ସ୍ତ୍ରୀ. ବି. (ଉପ + ଜ୍ଞା + ଅ)ଆଦ୍ୟ ଜ୍ଞାନ, ବିନା ଉପଦେଶରେ ନିଜେ ନିଜେ ଯେଉଁ ଜ୍ଞାନ ଜନ୍ମେ, ଆବିଷ୍କାର ।
ଉପଡ଼ଙ୍ଗର — ଗ୍ରା.ପୁଂ ବିଂ. ଯେ ଆପଣାର ଭାଗ୍ୟ ବା ବିଭବ ଦେଖାଇ ହୁଏ, (ସ୍ତ୍ରୀ) ଉପଡ଼ଙ୍ଗରୀ, (ବି) ବାହ୍ୟାଡ଼ମ୍ବର, ଆପଣାର ସୌଭାଗ୍ୟ ପ୍ରକଟନ ।
ଉପଡ଼ା — ଗ୍ରା. ବି. (ସଂ-ଉତ୍ପାଟନ) ଉତ୍ପାଟନ, ଅଙ୍ଗରୁ ଅଙ୍ଗଗରାଦି ଛଡ଼ାଇବା, (ବିଂ) ଉତ୍ପାଟିତ, ଦେହରୁ ହଳଦୀ ଆଦି ଛଡ଼ାଇଥିବା ।
ଉପଜ୍ଞାତ — ବିଂ. (ଉପ + ଜ୍ଞା + ତ) ଉପଦେଶବିନା ଜାତ ।
ଉପଜ୍ୟୋତିଷ — କ୍ଲୀ.ବି. ଜ୍ୟୋତିଷଶାସ୍ତ୍ରାନୁଗତ ଗଣିତାଦି ଶାସ୍ତ୍ର, ଦେଶବିଶେଷ ।
ଉପଢୌକନ — କ୍ଲୀ. ବି. (ଉପ + ଢୌକ + ଣ.ଅନ) ଉପହାର, ଭେଟିଦେବା, ଉତ୍କୋଚ,ନଜର, ଭେଟ, ପାରିତୋଷିକ, ଉପାୟନ ।
ଉପତନୁ — କ୍ଲୀ. ବି. (ଉପ + ତନୁ) ପରସୂତା, ସରୁସୂତା ।
ଉପତନ୍ତ୍ର — କ୍ଲୀ.ବି. ଶିବୋକ୍ତ ତନ୍ତ୍ରପର ଋଷିକୃତ ତନ୍ତ୍ର,କପିଳ,ଜୈମିନ,ବଶିଷ୍ଠାଦି ଋଷିକୃତ ତନ୍ତ୍ର ।
ଉପତପନ — ବିଂ.(ଉପ + ତପ୍ + କ,ଅନ) ସନ୍ତାପକର ।
ଉପତପ୍ତ — ବିଂ. ( ଉପ + ତପ୍ + ତ ) ସନ୍ତପ୍ତ, ଅଭ୍ୟୁଷ୍ଣ, ପୀଡ଼ିତ, କାତର, ଉତ୍ପୀଡ଼ିତ, ଉଷ୍ଣ, (ସ୍ତ୍ରୀ) ଉପତପ୍ତା ।
ଉପତପ୍ତା — ପୁଂ. ବି. (ଉପ + ତପ୍ + ତୃ) ଉପପାତକ, ଉପତାପ,ରୋଗ,ବ୍ୟାପାର, (ବିଂ) ଦୁଃଖପ୍ରଦ, ସନ୍ତାପଦାୟକ ।
ଉପତାପ — ପୁଂ. ବି. (ଉପ + ତପ୍ + ଅ) ତ୍ୱରା, ଉତ୍ତାପ, ରୋଗ, ଅଶୁଭ, ପୀଡ଼କ, ଦୁଃଖ, ଦୁର୍ଦୈବ, କ୍ଳେଶ, ମନସ୍ତାପ, ଖେଦ ।
ଉପତାପକ — ପୁଂ. ବିଂ. (ଉପତାପ + ଅକ ) ସନ୍ତାପଜନକ, କଷ୍ଟଦାୟକ, ଦୁଃଖପ୍ରଦ, (ସ୍ତ୍ରୀ) ଉପତାପିକା ।
ଉପତାପନ — କ୍ଲୀ.ବିଂ. ( ଉପ + ତାପ୍ + ଣ, ଅନ ) ସନ୍ତାପକ, (ବି) ପୀଡ଼ନ ।
ଉପତାପିତ — ବିଂ.(ଉପ + ତାପି + ମଁ,ତ) ସନ୍ତାପିତ, ପୀଡ଼ିତ ।
ଉପତାପୀ — ପୁଂ. ବିଂ. (ଉପ + ତପ୍ + ଇନ୍ ) ସନ୍ତାପୀ, ରୋଗୀ, ପୀଡ଼ୟିତା, ସନ୍ତାପକାରକ ।
ଉପତାରକ — ବିଂ.(ଉପ + ତୃ + ଣି + ଅକ) ସନ୍ତାରକ ।
ଉପତାରା — ବିଂ. ( ଉପ + ତାରା ) ଆଖି ପୁଅର ଚାରିପାଖେ ଥିବା କଳାଅଂଶ, କଳାଡ଼ୋଳା ।
ଉପତିଷ୍ୟ — କ୍ଲୀ. ବି. ପୁନର୍ବସୁ, ଅଶ୍ଳେଷା, ବୌଦ୍ଧଶାସ୍ତ୍ରୋକ୍ତ ସିଦ୍ଧଭେଦ ।
ଉପତୀର — ଅବ୍ୟ. ତୀରସମୀପେ, ତଟନିକଟେ ।
ଉପତୈଳ — ବିଂ. ଅଭ୍ୟକ୍ତ ତୈଳ ।
ଉପତ୍ୟକା — ସ୍ତ୍ରୀ.ବି. (ଉପ + ତ୍ୟକନ୍ + ଆ ) ପର୍ବତର ନିକଟସ୍ଥ ଭୂମି, ପର୍ବତର ତଳଦେଶସ୍ଥ ସମତଳ ଭୂମି ।
ଉପଦଂଶ — ପୁଂ.ବି. (ଉପ + ଦଂଶ୍ + ମଁ, ଅ ) ମେଢ୍ର ରୋଗବିଶେଷ, ଗରମୀ, ଆମ୍ରରସ, ଦଂଶନ, ମଦ୍ୟପାନକାଳୀନ ଗୃହୀ, ଶୋଭାଞ୍ଜନ, ସଜନା ।
ଉପଦର୍ଶକ — ପୁଂ. ବି. ( ଉପ + ଦର୍ଶି + ଅକ ) ଅଧ୍ୟକ୍ଷ, ଦ୍ୱାରପାଳ, ଦ୍ୱାରୀ(ବିଂ) ଦର୍ଶକ, ସାକ୍ଷୀ, ତତ୍ତ୍ୱାବଧାୟକ, ପଥପ୍ରଦର୍ଶକ, ସାକ୍ଷାଦ୍ଦ୍ରଷ୍ଟା ।
ଉପଦର୍ଶନ — କ୍ଲୀ.ବି.(ଉପ + ଦର୍ଶି + ଣ,ଅନ) (ପଥାଦି) ପ୍ରଦର୍ଶନ (ଉପ + ଦୃଶ + ଣ, ଅନ ) ତତ୍ତ୍ୱାବଧାନ ।
ଉପଦର୍ଶିତ — ବିଂ. ( ଉପ + ଦର୍ଶି + ମଁ,ତ ) ପ୍ରଦର୍ଶିତ, ଦେଖେଇଥିବା, ବର୍ଣ୍ଣିତ ।
ଉପଦଳ — ବି.(ଉପ + ଦଳ)ଫୁଲପାଖୁଡ଼ା ତଳେ ଡେମ୍ଫ ଉପରେ ଥିବା ପାଖୁଡ଼ାପରି ଅଂଶ ।
ଉପଦା — ସ୍ତ୍ରୀ.ବି. (ଉପ + ଦା + ଅ + ଆ) ଉତ୍କୋଚ, ଲାଞ୍ଚ,ଉପଢୌକନ, ଭେଟି, ଉପାୟନ (ବିଂ) ଉପଢୌକନଦାତା, ଯେ ଭେଟ କରେ ।
ଉପଦାନ — କ୍ଲୀ.ବି.(ଉପ + ଦା + ମଁ,ଅନ) ଉତ୍କୋଚ, ଲାଞ୍ଚ ।
ଉପଦାନକ — କ୍ଲୀ. ବି. (ଉପଦାନ + କ) ଉତ୍କୋଚ, ଲାଞ୍ଚ, ଘୁଷ ।
ଉପଦାନବୀ — ସ୍ତ୍ରୀ. ବି. ବୃଷପର୍ବା ଓ ପୁଲୋମାର କନ୍ୟା, ଦୁଷ୍ମନ୍ତଙ୍କ ମାତା ।
ଉପଦିକ — ଅବ୍ୟ. ବିଦିକ୍ (ସ୍ତ୍ରୀ.ବି) ଦୁଇ ପ୍ରଧାନଦିଗର ମଧ୍ୟସ୍ଥିତ ଦିଗ, ବିଦିଗ, ଦିକ୍‌କୋଣ ।
ଉପଦିଗ୍ଧ — ବିଂ. (ଉପ + ଦିହ + ମଁ,ତ) ଆଚ୍ଛନ୍ନ, ଉପଲିପ୍ତ, ରୁଦ୍ଧ ।
ଉପଦିଶ — ପୁଂ. ବି. ବସୁଦେବଙ୍କ ପୁତ୍ରଭେଦ ।
ଉପଦିଶ୍ୟମାନ — ବିଂ. (ଉପ + ଦିଶ୍ + ମଁ. ମାନ ) ଯାହାକୁ ଉପଦେଶ ଦିଆହୋଇଥାଏ, ଯେ ବିଷୟରେ ଉପଦେଶ ଦିଆଯାଇଥାଏ, (ସ୍ତ୍ରୀ) ଉପଦିଶ୍ୟମାନା ।
ଉପଦିଷ୍ଟ — ବିଂ. ( ଉପ + ଦିଶ୍ + ମଁ,ତ) ଉପଦେଶପ୍ରାପ୍ତ. ଯାହାକୁ ଉପଦେଶ ଦିଆଯାଇଥାଏ, କଥିତ, ଜ୍ଞାପିତ, ଆଦିଷ୍ଟ, ପ୍ରଦର୍ଶିତ, (ବି) ଉପଦେଶ (ସ୍ତ୍ରୀ) ଉପଦିଷ୍ଟା । [ ବିଦାକ ।
ଉପଦୀ — ସ୍ତ୍ରୀ.ବି.(ଉପ + ଦୋ + ଅ + ଈ)
ଉପଦୀକା — ସ୍ତ୍ରୀ. ବି. (ଉପ + ଦୋ + ଅ + କ + ଆ) ଉପଜିହ୍ୱା,ଉପଦେହିକା, ଉଈ, କୀଟବିଶେଷ ।
ଉପଦୀକ୍ଷ — ବିଂ. ଦୀକ୍ଷାପ୍ରାପ୍ତ, ଯଜ୍ଞସ୍ଥଳେ ଦୀକ୍ଷିତର ନିକଟସ୍ଥ ।
ଉପଦୃକ୍ — ବିଂ. ( ଉପ + ଦୃଶ୍ + କ୍ୱିପ୍) ଉପଦ୍ରଷ୍ଟା,ଉପରେ ଥାଇ ଯେ ଦେଖେ ।
ଉପଦେବ — ପୁଂ. ବି. ଆଙ୍କୂର ପୁତ୍ର, ଦେବକରାଜପୁତ୍ର, ଭୂତପ୍ରେତାଦି ।

ଉପଦେବତା — ସ୍ତ୍ରୀ.ବି.(ଉପ + ଦେବତା) ଯକ୍ଷଭୂତାଦି, ଭୂତ,ପ୍ରେତ, ଦେବତାଙ୍କ ପାର୍ଶ୍ୱଦେବତା ।

ଉପଦେବୀ — ସ୍ତ୍ରୀ. ବି. (ଉପ + ଦେବୀ) ବସୁଦେବର କନିଷ୍ଠା ସ୍ତ୍ରୀ,କ୍ଷୁଦ୍ରଦେବୀ, ବିଦ୍ୟାଧରୀ ପ୍ରଭୃତି ।

ଉପଦେଶ — ପୁଂ. ବି. ( ଉପ + ଦିଶ୍ + ର୍ମି,ଅ ) ପରାମର୍ଶ, ଶିକ୍ଷାଦାନ, ହିତ-କଥନ, ଆଦେଶ, ଅନୁଶାସନ, ମନ୍ତ୍ର-କଥନ, ଦୀକ୍ଷା, ଉଦ୍ଦେଶ ।

ଉପଦେଶକ — ପୁଂ. ବିଂ. ( ଉପ + ଦିଶ୍ + କ,ଅକ ) ଶିକ୍ଷକ, ଉପଦେଶକର୍ତ୍ତା, ସତ୍ପରାମର୍ଶଦାତା ( ବି ) ଗୁରୁ (ସ୍ତ୍ରୀ) ଉପଦେଶିକା ।

ଉପଦେଶନୀୟ — ବିଂ. (ଉପ + ଦିଶ୍ + ର୍ମି. ଅନୀୟ ) ଉପଦେଶର ଯୋଗ୍ୟ, ଶିକ୍ଷଣୀୟ (ସ୍ତ୍ରୀ) ଉପଦେଶନୀୟା ।

ଉପଦେଶୀ — ପୁଂ. ବିଂ. ( ଉପ + ଦିଶ୍ + କ.ଇନ୍ ) ଉପଦେଷ୍ଟା,ଉପଦେଶକ, ଶିକ୍ଷକ, (ସ୍ତ୍ରୀ) ଉପଦେଶିନୀ ।

ଉପଦେଶ୍ୟ — ବିଂ. ( ଉପ + ଦିଶ୍ + ଯ ) ଉପଦେଶ ଦେବାର ଯୋଗ୍ୟ, ଶିକ୍ଷଣୀୟ, ଉପଦେଷ୍ଟବ୍ୟ (ସ୍ତ୍ରୀ) ଉପ-ଦେଶ୍ୟା ।

ଉପଦେଷ୍ଟବ୍ୟ — ବିଂ. ( ଉପ + ଦିଶ୍ + ତବ୍ୟ ) ଉପଦେଶ୍ୟ (ଦେଖ). (ସ୍ତ୍ରୀ) ଉପଦେଷ୍ଟବ୍ୟା ।

ଉପଦେଷ୍ଟା — ପୁଂ.ବିଂ. (ଉପ + ଦିଶ୍ + ତୃ) ଉପଦେଶକର୍ତ୍ତା, ଉପଦେଶଦାତା, ଆଚାର୍ଯ୍ୟ, ଶିକ୍ଷକ, ଶିକ୍ଷାଗୁରୁ, (ବି) ଗୁରୁ (ସ୍ତ୍ରୀ) ଉପଦେଷ୍ଟ୍ରୀ ।

ଉପଦେହ — ପୁଂ.ବିଂ.(ଉପ + ଦିହ୍ + ଅ) ଦେହ ବୃଦ୍ଧି, ସ୍ଫୀତତା, ଗଣ୍ଡମାଳା, ଅର୍ବୁଦପ୍ରଭୃତି, ଅଙ୍ଗରୋଗ ।

ଉପଦେହିକା — ସ୍ତ୍ରୀ.ବି. ବମ୍ରୀ ନାମକ କୀଟ-ବିଶେଷ, ଉପଦିକା, ଉଈ ।

ଉପଦୋହ — ପୁଂ.ବି. (ଉପ + ଦୁହ୍ + ଅ) ଗୋ-ସ୍ତନାଗ୍ର,ଗୋରୁର ଚର, ଦୋହନ ପାତ୍ର, ଯେ ପାତ୍ରରେ ଦୁଗ୍ଧଦୁହାଁଯାଏ ।

ଉପଦ୍ରବ — ପୁଂ. ବି. (ଉପ + ଦ୍ରୁ + ଣ,ଅ) ଆକସ୍ମିକ ଉତ୍ପାତ, ଅମଙ୍ଗଳ, ବିଦ୍ରୋହ, ଉପସର୍ଗ, ଅତ୍ୟାଚାର, ଦୌରାତ୍ମ୍ୟ, ବିକାର ବିଶେଷ, ରୋଗ ଥିଲେ ଦୋଷ ଜନିତ ଯେଉଁ ଉପସର୍ଗ ଜାତ ହୁଏ ।

ଉପଦ୍ରବୀ — ପୁଂ.ବିଂ. (ଉପ + ଦ୍ରୁ + କ + ଇନ୍) ଅତ୍ୟାଚାରୀ (ସ୍ତ୍ରୀ) ଉପଦ୍ରବିଣୀ ।

ଉପଦ୍ରଷ୍ଟା — ପୁଂ. ବିଂ. (ଉପ + ଦୃଶ୍ + କ, ତୃ) ସାକ୍ଷୀ, ଉପଦର୍ଶକ, ତତ୍ତ୍ୱାବଧାୟକ, ଯେ ନିକଟରେ ଥାଇ ସବୁ ଦେଖିଥାଏ (ବି) ଦ୍ୱାରରକ୍ଷକ, ଦ୍ୱାରୀ ।

ଉପଦ୍ରୁତ — ବିଂ. (ଉପ + ଦ୍ରୁ + ର୍ମି, ତ) ଜାତୋପଦ୍ରବ, ବ୍ୟାକୁଳ, ଉପଦ୍ରବଗ୍ରସ୍ତ, ଉତ୍ପୀଡ଼ିତ, ଉତ୍ପାତଗ୍ରସ୍ତ, ଯାହା ଉପରେ ଉପଦ୍ରବ କରାଯାଇଥାଏ ।

ଉପଦ୍ୱୀପ — ପୁଂ.କ୍ଲୀ. ବି. (ଉପ + ଦ୍ୱୀପ) କ୍ଷୁଦ୍ରଦ୍ୱୀପ,ପ୍ରାୟ ଦ୍ୱୀପପରି,ଯେଉଁ ଭୂମିର ତିନି କମ୍ବା ଚାରିପାଖରେ ଜଳବେଷ୍ଟିତ ହୋଇଥାଏ ।

ଉପଧର୍ମ୍ମ — ପୁଂ.ବି. (ଉପ + ଧୃ + ମନ୍) ଅପ୍ରଧାନଧର୍ମ୍ମ, ଜଘନ୍ୟଧର୍ମ, ଗୌଣ କର୍ତ୍ତବ୍ୟ, କୁସଂସ୍କାର, ପାଷଣ୍ଡ, କାଳ୍ପ-ନିକ ଧର୍ମ୍ମ ।

ଉପଧା — ସ୍ତ୍ରୀ.ବି. (ଉପ + ଧା + ଅ)ଛଳ, ଉପାଧାନେ ସ୍ଥାପନ, ଅନ୍ତ୍ୟବର୍ଣ୍ଣର ପୂର୍ବ ବର୍ଣ୍ଣ, ଉପାୟ, ଧର୍ମକାମାର୍ଥ ପ୍ରଭୃତିର ଭୟ ଦେଖାଇ ରାଜାଙ୍କ ଦ୍ୱାରା ମନ୍ତ୍ରୀ-ମାନଙ୍କ ପରୀକ୍ଷା ।

ଉପଧାତୁ — ପୁଂ.ବି. (ଉପ + ଧାତୁ) ସ୍ୱର୍ଣ୍ଣ ମାକ୍ଷିକ, ତୁତିଆ,କଂସା,ପିତ୍ତଳ,ସିନ୍ଦୁର, ଶିଳାଜତୁ, ଅପ୍ରଧାନ ଧାତୁପରି ଅପର ଧାତୁ, ଶରୀରସ୍ଥ ଧାତୁସଦୃଶ ଦ୍ରବ୍ୟ ।

ଉପଧାନ — କ୍ଲୀ. ବି. (ଉପ + ଧା + ଅନ) ଶିରୋଧାନ, ମାଣ୍ଡିବିଶେଷ, ପ୍ରଣୟ, ବ୍ରତ, ବିଷ, ତକିଆ, ସମୀପରେ ସ୍ଥାପନ(ପୁଂ) ଉପଧାନସାଧନ ।

ଉପଧାନୀୟ — କ୍ଲୀ.ବି. (ଉପ + ଧା + ଅନୀୟ) ଉପଧାନ, ମାଣ୍ଡି (ବିଂ)ସମୀପେ ସ୍ଥାପନ-ଯୋଗ୍ୟ ।

ଉପଧାଭୃତ୍ — ପୁଂ. ବି. କରବିଶେଷ ।

ଉପଧାୟକ — ବିଂ. (ଉପ + ଧା + କି, ଅକ) ଜନକ, ପ୍ରକାଶକ, ଉଦ୍ଭାବକ, ଉପଯୋଗୀ (ସ୍ତ୍ରୀ) ଉପଧାୟିକା ।

ଉପଧାୟୀ — ପୁଂ. ବି. (ଉପ + ଧା + କ, ଇନ୍)ଉତ୍ପାଦକ,ଜନକ,ଉପଧାନକାରୀ ।

ଉପଧାରଣ — କ୍ଲୀ.ବି. (ଉପ + ଧୃ + ଣି + ଅନ) ଅଙ୍କୁଶଦ୍ୱାରା ଆକର୍ଷଣ, ସମ୍ୟକ୍ ଚିନ୍ତନ ।

ଉପଧାବନ — କ୍ଲୀ. ବି. (ଉପ + ଧାବ + ଅନ) ଉପସରଣ, ଅନୁଚିନ୍ତନ, ଭଜନ, ଅଭିଗମନ ।

ଉପଧାସ୍ୱର — ପୁଂ.ବି. ଉପଧାବର୍ଣ୍ଣସ୍ଥ ସ୍ୱର-ବିଶେଷ ।

ଉପଧି — ପୁଂ. ବି. (ଉପ + ଧା + ଣ,ଇ) କପଟ, ଯୁଗୁପ୍ସା, ଛଳ, ଭୟ ( କ୍ଲୀ ) ରଥଚକ୍ର, ଚକ୍ର, ପଇ ।

ଉପଧୂପିତ — ବି. (ଉପ + ଧୂପ୍ + ର୍ମି,ତ) ଆସନ୍ନମରଣ, ମୁମୂର୍ଷୁ, ପରିଧୂପିତ, ସୁଗନ୍ଧୀକୃତ, ସନ୍ତାପିତ, ଉତ୍ତପ୍ତ, ଧୁକ୍ ଧୁକ୍ କରୁଥିବା ।

ଉପଧୂମିତ ବିଂ. ଜାତଧୂମ, ଧୂଆଁ ।

ଉପଧୂମିତା — ସ୍ତ୍ରୀ. ବି. ଜ୍ୟୋତିଷୋକ୍ତ ଯାତ୍ରାବର୍ଜ୍ଜନୀୟ ସୂର୍ଯ୍ୟଗନ୍ତବ୍ୟ ଦିକ୍ ।

ଉପଧୃତି — ସ୍ତ୍ରୀ. ବି. ( ଉପ + ଧୃ + ତି ) ଜ୍ୟୋତିଃ, କିରଣ, ସନ୍ଧାରଣ ।

ଉପଧେୟ — ବିଂ. (ଉପ + ଧା + ଯ)ମନ୍ତ୍ର ଦ୍ୱାରା ସ୍ଥାପନୀୟ ଇଷ୍ଟକାଦି ।

ଉପଧ୍ମାନ — ପୁଂ.ବି.(ଉପ + ଧ୍ମା + ଅନ) ଓଷ୍ଠ ( କ୍ଲୀ. ବି. ) ମୁଖ ମରୁତ ଦ୍ୱାରା ପରିପୂରଣ ।

ଉପଧ୍ମାନୀୟ — ପୁଂ.ବି. (⌣ପ ଓ ⌣ଫ) ବିସର୍ଗପରେ ପ ଓ ଫ ବର୍ଣ୍ଣକୁ ଉପଧ୍ମା-ନୀୟ କହନ୍ତି ।

ଉପଧ୍ୱସ୍ତ — ବିଂ. ( ଉପ + ଧ୍ୱଂସ୍ + ତ ) ନଷ୍ଟ, ଅଧଃପାତ. ମିଶ୍ରିତ ।

ଉପନ — ଗ୍ରା. ବି. ( ଉପାୟନ ଶବ୍ଦଜ ) ଉପହାର, କ୍ଷୌର, ଶାରଦୀୟ ଦୁର୍ଗା-ପୂଜାରେ ଦୁର୍ଗାଙ୍କ ନିକଟରେ ପାଳକର ଯେଉଁ ଭୋଗଦଅନ୍ତି, ଯଜମାନୀ ଭୋଗ ।

ଉପନକ୍ଷତ୍ର—କ୍ଳୀ.ବ. ରାଶିଚକ୍ରସ୍ଥ ତାରକା ଭେଦ, ଅଶ୍ୱିନ୍ୟାଦି ନକ୍ଷତ୍ରମାନଙ୍କର ଆନୁଗାମୀ ପ୍ରତ୍ୟେକରେ ୨୭ଟି ଲେଖାଏଁ ଯେ ନକ୍ଷତ୍ର ଥାନ୍ତି ।

ଉପନଖ—କ୍ଳୀ. ବ. ସୁଶ୍ରୁତୋକ୍ତ ଚପ୍ପ ନାମକ କ୍ଷୁଦ୍ର ରୋଗବିଶେଷ ।

ଉପନଗର—କ୍ଳୀ. ବ. କ୍ଷୁଦ୍ର ନଗର, ଛୋଟ ସହର, ନଗରର ସଦୃଶ, ସହରତଳି ।

ଉପନତ – ବିଂ. ( ଉପ + ନମ୍ + ତ ) ନମ୍ର, ଶରଣାଗତ, ଉପସ୍ଥିତ, ନିକଟାଗତ, ଉପଗତ, ପ୍ରାପ୍ତ ।

ଉପନତି—ସ୍ତ୍ରୀ. ବ. (ଉପ + ନମ୍ + ତି) ନମନ, ଉପଗମ, ଉପସ୍ଥିତି ।

ଉପନଦ—ଅବ୍ୟ, ନଦୀସମୀପେ, ନଦୀ ନିକଟରେ (ବି) କ୍ଷୁଦ୍ରନଦ, ଶାଖାନଦ ।

ଉପନଦୀ—ସ୍ତ୍ରୀ. ବ. କ୍ଷୁଦ୍ରନଦୀ, ଶାଖାନଦୀ, କୋଡ଼ ଇତ୍ୟାଦି ।

ଉପନନ୍ଦ—ପୁଂ. ବ. (ଉପ + ନନ୍ଦ୍ + ଅ) ମଦିରାଗର୍ଭଜାତ, ଗୋପପତି ନନ୍ଦଙ୍କ କନିଷ୍ଠ ଭ୍ରାତା, ବୌଦ୍ଧଶାସ୍ତ୍ରୋକ୍ତ ନାଗରାଜ ବିଶେଷ, କାଶୀରାଜ ବ୍ରହ୍ମଦତ୍ତ ପୁତ୍ର, (ବିଂ) ଆନନ୍ଦପ୍ରାପ୍ତ, ଜାତାହ୍ଲାଦ ।

ଉପନନ୍ଦକ—ପୁଂ.ବ. (ଉପ + ନନ୍ଦ୍ + ଣି + ଅକ) ଧୃତରାଷ୍ଟ୍ରଙ୍କର ପୁତ୍ରଭେଦ, ଉର୍ଣ୍ଣନାଭ, ବୁଢ଼ିଆଣୀ, ନନ୍ଦଙ୍କଭାଇ,(ବିଂ) ଆନନ୍ଦଜନକ ।

ଉପନମ୍ର—ବିଂ. (ଉପ + ନମ୍ + କ, ର) ଉପନତ (ସ୍ତ୍ରୀ) ଉପନମ୍ରା ।

ଉପନୟ – ପୁଂ. ବ. (ଉପ + ନୀ + ଭା,ଅ) ଉପନୟନ, ସଂସ୍କାରକର୍ମ ବିଶେଷ, ପୈତାନେବା, ଜ୍ଞାନ,ଆନୟନ, ନ୍ୟାୟାବୟବଭେଦ ।

ଉପନୟନ—କ୍ଳୀ. ବ. (ଉପ + ନୀ + ଭା, ଅନ) ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟମାନଙ୍କର ଯଜ୍ଞସୂତ୍ର ଧାରଣରୂପ ପ୍ରଧାନ ସଂସ୍କାର, ଉପସ୍ଥିତ, ସମୀପକୁ ଆନୟନ, ଆଗମନ, ପ୍ରାପ୍ତି, ଉପନେତ୍ର ।

ଉପନହନ—କ୍ଳୀ. ବ.(ଉପ + ନହ୍ + ଭା, ଅନ) ବନ୍ଧନ କରଣ, ବନ୍ଧନଯୋଗ୍ୟ ବସ୍ତ୍ରାଦି ।

ଉପନାମ—କ୍ଳୀ. ବ. (ଉପ + ନମ୍ + ଅ) କଳ୍ପିତନାମ, କୃତ୍ରିମନାମ, ପ୍ରାପ୍ତଉପାଧି ।

ଉପନାଗରିକା ସ୍ତ୍ରୀ. ବ. ବୃତ୍ତ୍ୟନୁପ୍ରାସ ଛନ୍ଦୋବୃତ୍ତିଭେଦ ।

ଉପନାୟ—ପୁଂ. ବ. (ଉପ + ନୀ + ଅ) ଉପନୟନ, ବ୍ରତକର୍ମ ବିଶେଷ, ଯଜ୍ଞସୂତ୍ର ଧାରଣ ।

ଉପନାୟକ – ପୁଂ. ବ. (ଉପ + ନୀ + କ, ଅକ) ନାୟକର ଗୁଣୋତ୍କର୍ଷ କଥନ, ଆନନ୍ଦଯୁକ୍ତ, ଉପପତି (ବି) ସମୀପକୁ ଆସିଥିବା ।

ଉପନାୟନ—କ୍ଳୀ. ବ. (ଉପ + ନୀ + ଣି + ଅନ) ଉପନୟନ ( ବିଂ ) ଉପନୟନ ଯୋଗ୍ୟ ।

ଉପନାହ—ପୁଂ.ବ. (ଉପ + ନହ୍ + ର୍ମ, ଅ) ବନ୍ଧନ, ନିବନ୍ଧନ, ବୀଣାଯନ୍ତ୍ର, ସ୍ୱେଦ, ପ୍ରଲେପ, ପୁଲଟିସ୍ ।

ଉପନାହନ—କ୍ଳୀ. ବ. (ଉପ + ନହ + ଣି + ଅନ) ପ୍ରଲେପାଦି ବନ୍ଧନ ।

ଉପନିକ୍ଷେପ—ପୁଂ.ବ. (ଉପ + ନି + କ୍ଷିପ + ଅ) ନ୍ୟାସ, ଗଚ୍ଛିତରଖିବା, ସଂଖ୍ୟା ଓ ନାମାଦି ବର୍ଣ୍ଣନପୂର୍ବକ ସ୍ଥାପିତ, ଗଚ୍ଛିତ ଦ୍ରବ୍ୟ ବି ୨୦ ବର୍ଷ ଅତୀତ ହେଲେ ମଧ୍ୟ ଏହି ଦ୍ରବ୍ୟରୁ ସ୍ୱାମୀର ସ୍ୱତ୍ୱ ଯାଏନାହିଁ ।

ଉପନିଧାତା—ପୁଂ. ବିଂ. (ଉପ + ନି + ଧା + କ,ତୃ) ସ୍ଥାପକ, ଉପନିଧାୟକ, ଉପନିଧିରୂପେ ଅନ୍ୟ ନିକଟରେ ନିଜ ଦ୍ରବ୍ୟ ସ୍ଥାପନକାରୀ ।

ଉପନିଧାନ—କ୍ଳୀ. ବ.(ଉପ + ନି + ଧା + ଭା,ଅନ) ସ୍ଥାପନ, ଗଚ୍ଛିତ ରଖିବା, ନ୍ୟାସ ।

ଉପନିଧି—ପୁଂ. ବ. (ଉପ + ନି + ଧା + ର୍ମ,ଇ) ଉପନ୍ୟସ୍ତ ଦ୍ରବ୍ୟ, ବସୁଦେବର ପୁତ୍ର ଭଦ୍ରାଗର୍ଭଜାତ ।

ଉପନିପାତ—ପୁଂ. (ଉପ + ନି + ପତ୍ + ଭା,ଅ) ଆକସ୍ମିକ ଘଟନା, ସମୀପାଗମନ, ହଠାତ୍ ଆଗମନ, ବଧ ।

ଉପନିବଦ୍ଧ—ବିଂ. (ଉପ + ନି + ବଧ୍ + ର୍ମ,ତ) ଗ୍ରଥିତ, ପ୍ରଣୀତ ।

ଉପନିବନ୍ଧ—ପୁଂ. ବ. (ଉପ + ନିବନ୍ଧ) ପ୍ରତିଜ୍ଞା ସମୟ ।

ଉପନିବନ୍ଧନ – କ୍ଳୀ.ବ.(ଉପ + ନି + ବନ୍ଧ + ଅନ)ସମ୍ପାଦନ,ଗ୍ରନ୍ଥନ, ଗୁନ୍ଥା,ରଚନା ।

ଉପନିମନ୍ତ୍ରଣ—କ୍ଳୀ.ବ. (ଉପ + ନି + ମନ୍ତ୍ର + ଭା,ଅନ)ନିଯୋଗକରଣ, ଆବଶ୍ୟକ ସ୍ଥଳେ ନିଯୁକ୍ତୀକରଣ ।

ଉପନିବିଷ୍ଟ—ବିଂ. (ଉପ + ନି + ବିଶ୍ + କ,ତ) ପ୍ରତିଷ୍ଠିତ, ଅଧିଷ୍ଠିତ ।

ଉପନିବେଶ—କ୍ଳୀ.ବ.(ଉପ + ନି + ବିଶ୍ + ଅ)ଉପନଗର, ଦେଶାନ୍ତର ନିବାସ, ସ୍ୱଦେଶ ଛାଡ଼ି ଅନ୍ୟ ରାଜ୍ୟରେ ବାସସ୍ଥାନ, କୃଷି ବାଣିଜ୍ୟ ନିମିତ୍ତ କୌଣସି ଦୂର ଦେଶରେ ଯେ ରହେ ।

ଉପନିବେଶିତ—ବି. (ଉପ + ନି + ବିଶ୍ + ଣି + ର୍ମ,ତ)ନିବାସିତ, ଉପସ୍ଥାପିତ ।

ଉପନିବେଶୀ – ପୁଂ. ବିଂ (ଉପ + ନି + ବିଶ + କ, ଇନ୍) ଏକଦେଶରେ ନୂଆ ହୋଇ ଘରକରି ରହିବା ବ୍ୟକ୍ତି (ସ୍ତ୍ରୀ) ଉପନିବେଶିନୀ ।

ଉପନିର୍ଗମ—ପୁ.ବ.(ଉପ + ନିର୍ + ଗମ୍ + ଭା,ଅ) ନିର୍ଗମନ, ନିର୍ଗମନପଥ ।

ଉପନିର୍ବାଚନ—ବ.କୌଣସି ବ୍ୟବସ୍ଥାପକ ସଭାରୁ କୌଣସି କାରଣବଶତଃ ଜଣେ ସଭ୍ୟ ତାଙ୍କ କାର୍ଯ୍ୟକାଳ ନ ପୁରୁଣୁ ଇସ୍ତଫା ଦେଲେ କିମ୍ବା ମୃତ୍ୟୁ ହେଲେ ଅବଶିଷ୍ଟ ସମୟପାଇଁ ଏହି ସ୍ଥାନରେ ଅନ୍ୟବ୍ୟକ୍ତିଙ୍କର ନିର୍ବାଚନ ।

ଉପନିବପନ—କ୍ଳୀ. ବ.(ଉପ + ନି + ବପ + ଅନ) ଅଗ୍ନିପ୍ରଣୟନ କର୍ମାଙ୍ଗଭୂତ ଅଗ୍ନ୍ୟାଧାନାଦି ବ୍ୟାପାର ।

ଉପନିଷଦ୍—ସ୍ତ୍ରୀ. ବ. (ଉପ + ନି + ସଦ୍ + ଣ, କ୍ୱିପ୍ )ସମୀପସଦନ, ରହସ୍ୟ ନିର୍ଜନସ୍ଥାନ, ଧର୍ମ, ତତ୍ତ୍ୱ, ବେଦାନ୍ତ, ଦ୍ୱିଜାତକର୍ତ୍ତବ୍ୟ ବ୍ରତବିଶେଷ, ବେଦଶିରୋଭାଗ ।

ଉପନିଷାଦୀ—ପୁଂ.ବିଂ.(ଉପ + ନି + ସଦ୍ + କ, ଇନ୍)ନିକଟେ ସ୍ଥାୟୀ ।

ଉପନିଷ୍କର—କ୍ଳୀ. ବ.(ଉପ + ନିର୍ + କୃ + ଅ) ପୁରପଥ, ରାଜପଥ, ରାଜମାର୍ଗ ।

ଉପନିଷ୍କ୍ରମଣ—କ୍ଲୀ. ବି. (ଉପ + ନିସ୍ + କ୍ରମ୍ + ଅନ)ରାଜପଥ, ନିଷ୍କ୍ରମଣ ନାମକ ସଂସ୍କାର ।

ଉପନିହିତ— ବିଂ.(ଉପ + ନି + ଧା + ତ) ଗଚ୍ଛିତ, ସ୍ଥାପିତ, ଅନ୍ୟ ନିକଟରେ ଯାହା ରଖାଯାଇଥାଏ (ସ୍ତ୍ରୀ)ଉପନିହିତା ।

ଉପନୀତ— ପୁଂ.ବି. (ଉପ + ନୀ + ମିଂ,ତ) ସଂସ୍କୃତ, କୃତୋପନୟନ, ଜ୍ଞାନ ଲକ୍ଷଣା ସନ୍ନିକର୍ଷଦ୍ୱାରା ଜ୍ଞାତ, ନିକଟେ ପ୍ରାପିତ, ଆଗତ, ଉପସ୍ଥିତ, ଆନୀତ, (କ୍ଲୀ.ବି) ଉପନୟନ (ସ୍ତ୍ରୀ) ଉପନୀତା ।

ଉପନୀତା—ସ୍ତ୍ରୀ. ବି. ପତ୍ନୀ, ସହଧର୍ମିଣୀ ।

ଉପନୀତଜ୍ଞାନ—କ୍ଲୀ.ବି.ନ୍ୟାୟମତେ ଉପନୀତତତ୍ତ୍ୱାଦିବିଷୟକ, ଲୌକିକ ଓ ଅଲୌକିକ ଉଭୟସନ୍ନିକର୍ଷଜନ୍ୟ ଜ୍ଞାନ ।

ଉପନୀତି—ସ୍ତ୍ରୀ.ବି. (ଉପ + ନୀ + ଭା,ତି) ଉପନୟନ, ଉପସ୍ଥିତି. ଆଗମନ ।

ଉପନୃତ୍ତ – ବିଂ. (ଉପ + ନୃତ୍ + ମିଂ,ତ) ସମୀପରେ କୃତ ନର୍ତ୍ତନ ।

ଉପନେତବ୍ୟ—ବିଂ.(ଉପ + ନୀ + ମିଂ.ତବ୍ୟ) ସମୀପରେ ପ୍ରାପଣୀୟ, ବିଜ୍ଞାପନୀୟ ।

ଉପନେତା—ପୁଂ.ବିଂ. (ଉପ + ନୀ + ତୃ) ଉପନୟନକର୍ତ୍ତା, ଗୁରୁ, ଉପଢୌକନକାରୀ, ସ୍ଥାପକ, ଉପାୟନଦାତା, ଆନୟନକାରୀ, (ସ୍ତ୍ରୀ) ଉପନେତ୍ରୀ ।

ଉପନେତ୍ର—କ୍ଲୀ. ବି. ( ଉପ + ନେତ୍ର ) ଚଷମା, ପ୍ରତିଚକ୍ଷୁ ।

ଉପନ୍ୟସ୍ତ— ବିଂ. (ଉପ + ନି + ଅସ୍ + ମିଂ.ତ) ବିନ୍ୟସ୍ତ, ଆରବ୍ଧ, ଉଲ୍ଲିଖିତ, ଉପୋଦ୍ଘାତ, ରଖାଯାଇଥିବା, ଗଚ୍ଛିତ, ଦତ୍ତ, ନ୍ୟସ୍ତ, (ସ୍ତ୍ରୀ) ଉପନ୍ୟସ୍ତା ।

ଉପନ୍ୟାସ – ପୁଂ.ବି. (ଉପ + ନି + ଅସ୍ ଭା + ଅ) ବାକ୍ୟୋପକ୍ରମ, କଥାରମ୍ଭ, ବାକ୍ୟପ୍ରୟୋଗ, ବିଚାର, ଉପନିଧି, ପ୍ରସ୍ତାବ, ଦାନ, ଗଳ୍ପ, କଳ୍ପିତକଥା, ବନ୍ଧକ ।

ଉପପତି — ପୁଂ.ବିଂ.(ଉପ + ପତି) ଗୁପ୍ତପତି, ଭିନ୍ନପତି, ଜାରପୁରୁଷ, ଉପନାୟକ, ନିଜ ପତି ଛାଡ଼ି ସ୍ତ୍ରୀ ଯେଉଁ ପୁରୁଷ ସହିତ ସମ୍ଭୋଗ କରେ ।

ଉପପତ୍ତି—ସ୍ତ୍ରୀ. ବି. (ଉପ + ପଦ + ଭା, ତି) ଯୁକ୍ତି, ସଙ୍ଗତି, ପ୍ରମାଣ, ସଂସ୍ଥାନ, ମୀମାଂସା, ନିବୃତ୍ତି, ହେତୁ, ଉତ୍ପତ୍ତି, ଉପାୟ, କାରଣ, ପ୍ରାପ୍ତି, ସିଦ୍ଧି, ଜ୍ଞାନ, ଯୋଗ୍ୟତା ।

ଉପପତ୍ତିମାନ୍ – ପୁଂ. ବିଂ. (ଉପପତ୍ତି + ମତ୍) ଯୁକ୍ତିଯୁକ୍ତ, ଯୌକ୍ତିକ, ଯଥୋଚିତ, ସଲଗ୍ନ, ସଙ୍ଗତିବିଶିଷ୍ଟ (ସ୍ତ୍ରୀ) ଉପପତ୍ତିମତୀ ।

ଉପପତ୍ନୀ —ସ୍ତ୍ରୀ.ବି.(ଉପ + ପତ୍ନୀ)ଉପ ସ୍ତ୍ରୀ. ନିଜ ସ୍ତ୍ରୀ ଛାଡ଼ି ପୁରୁଷ ଯେଉଁ ସ୍ତ୍ରୀଠାରେ ଆସକ୍ତ ହୁଏ, ରକ୍ଷିତା ସ୍ତ୍ରୀ ପ୍ରଭୃତି ।

ଉପପଥ—ପୁଂ. ବି. (ଉପ + ପଥ) ଗଳିରାସ୍ତା, ସଙ୍କୀର୍ଣ୍ଣପଥ, ଗୁପ୍ତପଥ ।

ଉପପଦ — କ୍ଲୀ.ବି. (ଉପ + ପଦ) ଲେଶ, ସମୀପୋଚ୍ଚାରଣୀୟପଦ,ଉପାଧି, ବ୍ୟାକରଣେ ପ୍ରତ୍ୟୟାଦିବିଧାୟକ ସୂତ୍ର, ସମଭିବ୍ୟାହୃତ ସ୍ୱାର୍ଥପୋଷକ ପଦ, ପୂର୍ବପଦ ।

ଉପପନ୍ନ — ବିଂ.( ଉପ + ପଦ୍ + କ୍ତ.ତ ) ଯୁକ୍ତିଯୁକ୍ତ,ସଙ୍ଗତ, ପ୍ରାପ୍ତ, ଉତ୍ପନ୍ନ,ଉଚିତ ସମ୍ପନ୍ନ, ଆଗତ,ଅନ୍ୱିତ, ଲବ୍ଧ, ସପ୍ରମାଣିତ, ମିଳିତ, ସିଦ୍ଧାନ୍ତ, ସମ୍ଭାବିତ, ସାଧିତ ।

ଉପପରୀକ୍ଷା — ସ୍ତ୍ରୀ.ବି.ନିକଟେ ଆଣି ପରୀକ୍ଷା ।

ଉପପର୍ଶୁକା – ସ୍ତ୍ରୀ. ବି. କୃତ୍ରିମ ପଞ୍ଜର, ପଞ୍ଜରା ପାଖ ହାଡ଼ ।

ଉପପାତ—ପୁଂ. ବି.(ଉପ + ପତ୍ + ଭା, ଅ) ହଠାତ୍ ଆଗମନ, ଫଳୋନ୍ମୁଖ, ନାଶ, ଅକସ୍ମାତ୍ ଘଟିବା ।

ଉପପାତକ – କ୍ଲୀ.ବି. (ଉପ + ପତ୍ + ଣି + ଅକ ) ପାପବିଶେଷ, ଅଗମ୍ୟାଗମନାଦି ୪୯ ପ୍ରକାର ପାପ ।

ଉପପାତକୀ – ପୁଂ. ବି. (ଉପପାତକ + ଇନ୍ ) ଉପପାତକଯୁକ୍ତ (ସ୍ତ୍ରୀ) ଉପପାତକିନୀ ।

ଉପପାତୀ—ପୁଂ.ବିଂ.(ଉପ + ପତ୍ + ଇନ୍) ହଠାତ୍ ଆଗତ,ଅତର୍କିତଭାବେ ଉପସ୍ଥିତ ।

ଉପପାଦ – ପୁଂ. ବି. (ଉପ + ପଦ + ଅ) ଆବିର୍ଭାବ, ସଂଘଟନ, ପ୍ରାପ୍ତି, ସଙ୍ଗତି, ସମ୍ପାଦନ,ମୀମାଂସା(ବିଂ)ପାଦୋପଗତ ।

ଉପପାଦକ—ପୁଂ. ବି. (ଉପ + ପଦ୍ + ଣି + ଅକ) ଉପପତ୍ତିକାରକ,ମୀମାଂସକ, ସମ୍ପାଦକ. ଉପପତ୍ତିଯୁକ୍ତ, (ସ୍ତ୍ରୀ) ଉପପାଦିକା ।

ଉପପାଦନ – କ୍ଲୀ. ବିଂ. (ଉପ + ପାଦ + ଅନ) ସମ୍ପାଦନ, ସମ୍ୟକ୍ ପ୍ରତିପାଦନ, ଯୁକ୍ତି ଦ୍ୱାରା ସମର୍ଥନ, ମୀମାଂସାକରଣ, ଅଭିବ୍ୟକ୍ତି, ସାଧନ ।

ଉପପାଦନୀୟ—ବିଂ. (ଉପ + ପାଦ + ମିଂ, ଅନୀୟ)ଯୁକ୍ତି ଦ୍ୱାରା ସମର୍ଥନୀୟ, ପ୍ରାମାଣ୍ୟ, ଉତ୍ପାଦନୀୟ ।

ଉପପାଦିତ—ବିଂ. (ଉପ + ପାଦ + ମିଂ,ତ) କର୍ଷଣାଦିସଂସ୍କୃତ, ପ୍ରାପିତ, ଯୁକ୍ତି ଦ୍ୱାରା ସମର୍ଥିତ, ସମ୍ପାଦିତ, ସାଧିତ,କଳ୍ପିତ, ଚକର୍ଷିତ, ଉତ୍ପାଦିତ, ଆନୀତ ।

ଉପପାଦୁକ—ପୁଂ.ବିଂ.(ଉପ + ପାଦ + କ, ଉକ) ଉତ୍ପତ୍ତିଶୀଳ, ଦୃଷ୍ଟକାରଣ, ମାତାପିତାଦି ବିନା ଉତ୍ପନ୍ନ ।

ଉପପାଦ୍ୟ – ବିଂ. (ଉପ + ପଦ୍ + ମିଂ,ଯ) ଯୁକ୍ତି ଦ୍ୱାରା ସମର୍ଥନ ଯୋଗ୍ୟ, ଉଦ୍ଦେଶ୍ୟ. ଯୁକ୍ତି ଦ୍ୱାରା ମୀମାଂସ୍ୟ, ନିର୍ବାହଣୀୟ ।

ଉପପାର୍ଶ୍ୱ—କ୍ଲୀ.ବି.ସ୍କନ୍ଧ, ବିପରୀତ ପାର୍ଶ୍ୱ, କ୍ଷୁଦ୍ରତର ପଞ୍ଜରାସ୍ଥି ।

ଉପପୀଡ଼ନ—କ୍ଲୀ.ବି.(ଉପ + ପୀଡ଼ + ଭା, ଅନ) ଅତିପୀଡ଼ନ, ବ୍ୟଥା, ଅତ୍ୟାଚାର, ଉପଦ୍ରବ ।

ଉପପୀଡ଼ିତ—ପୁଂ.ବିଂ. (ଉପ + ପୀଡ଼୍ + ମିଂ.ତ) ପରିକ୍ଳିଷ୍ଟ, ବ୍ୟଥିତ,ଅତ୍ୟାଚାରିତ

ଉପପୁର—କ୍ଲୀ. ବି. (ଉପ + ପୁର)ନଗରର ନିକଟବର୍ତ୍ତୀ ଶାଖାନଗର, ଉପନଗର, ପୁରର ସମୀପ ।

ଉପପୁରାଣ—କ୍ଲୀ. ବି. ( ଉପ + ପୁରାଣ ) କ୍ଷୁଦ୍ରପୁରାଣ, ବ୍ୟାସଙ୍କଛଡ଼ା ଅପରାପର ଋଷିକୃତ କ୍ଷୁଦ୍ରପୁରାଣବିଶେଷ ।

ଉପପୁଷ୍ପିକା—ସ୍ତ୍ରୀ. ବି. (ଉପ+ପୁଷ୍ପିକା) ବିକାଶଭାବ, ଜୃମ୍ଭା, ହାଇ ।

ଉପପ୍ରଦାନ-କ୍ଳୀ. ବି.(ଉପ+ପ୍ର+ଦା+ଘ,ଅନ) ଉତ୍କୋଚ, ଭକ୍ଷ୍ୟାଦି, ଉପହାର ଲାଞ୍ଚ, ସନ୍ଧି ନିମିତ୍ତ ଭୂମ୍ୟାଦି ଦାନ, ସମର୍ପଣ ।

ଉପପ୍ରଲୋଭନ-କ୍ଳୀ.ବି.(ଉପ+ପ୍ର+ଲୁଭ+ଣି+ଅନ) ପ୍ରଲୋଭନ, ସମ୍ୟକ୍ ପ୍ରଲୋଭନ, ଲୋଭ ଉତ୍ପାଦନ, ପ୍ରଲୋଭନ ସାଧନ,ଉତ୍କୋଚାଦି, ପ୍ରଲୋଭନ ଯୋଗ୍ୟ ଦ୍ରବ୍ୟ ।

ଉପପ୍ରାପ୍ତ—ବି°.(ଉପ+ପ୍ର+ଆପ୍+ର୍ମ, ତ) ସମୀପାଗତ ।

ଉପପ୍ରେକ୍ଷଣ—କ୍ଳୀ. ବି (ଉପ+ପ୍ର+ଈକ୍ଷ୍+ଘ ଅନ) ଉପେକ୍ଷା, ଅବହେଳନ ।

ଉପପ୍ଳବ—ପୁଂ. ବି. (ଉପ+ପ୍ଳୁ+ଅ) ଅରାଜକତା, ଆକାଶରୁ ଉଲ୍କାପାତାଦି ରୂପ ଉପଦ୍ରବ, ରାହୁଗ୍ରହ, ବିପ୍ଳବ, ସୂର୍ଯ୍ୟ-ଗ୍ରହଣ, ଉପରୋଧ, ଭୟ, ଅଶୁଭ, ଅମଙ୍ଗଳ, ବିପତ୍ତି, ରାଜବିପ୍ଳବ, ବିକଳ୍ପ, ଚନ୍ଦ୍ରାଦିଗ୍ରହଣ, ଉପରେ ବେଷ୍ଟନ,ଔପ-ସର୍ଗିକ ନରକ ପୀଡ଼ନ, ପ୍ରତିବନ୍ଧ ।

ଉପପ୍ଳବୀ—ପୁଂ.ବି°. (ଉପ+ପ୍ଳୁ+ଇନ୍) ଭୟଯୁକ୍ତ, ଭୀତ, (ବି) ଉପପ୍ଳବଯୁକ୍ତ, ଭୟାନ୍ୱିତ, ଉପରକ୍ତ, ପ୍ଲାବନ,ପୀଡ଼ିତ ।

ଉପପ୍ଳବ୍ୟ—କ୍ଳୀ. ବି. (ଉପ+ପ୍ଳୁ+ଯ) ବିରାଟ ନଗର ନିକଟବର୍ତ୍ତୀ ନଗର-ବିଶେଷ ।

ଉପପ୍ଳୁତ—ପୁଂ. ବି°. (ଉପ+ପ୍ଳୁ+ତ) ବ୍ୟାପ୍ତ, ନିମଗ୍ନ, ଦୁର୍ଗତ, ଉପଦ୍ରବଯୁକ୍ତ, ରାହୁଗ୍ରସ୍ତ, ଭୀତ, ପୀଡ଼ିତ, ବିପଦଗ୍ରସ୍ତ ।

ଉପବନ୍ଧ—ପୁଂ.ବି°.(ଉପ+ବନ୍ଧ+ଅ) ରତିବନ୍ଧବିଶେଷ, ବସ୍ତ୍ୱନ୍ତର ବନ୍ଧନ, ପଦ୍ମାସନ, କୌଣସିର ବନ୍ଧନ ଉଦ୍ଦେଶ୍ୟେ ତନ୍ନିକଟସ୍ଥ ଅପରର ବନ୍ଧନ, ବାକ୍ୟବିଶେଷଦ୍ୱାରା ସମ୍ବନ୍ଧ ପ୍ରତିପାଦନ ।

ଉପବର୍ହ—ପୁଂ.ବି. (ଉପ+ବର୍ହ+ଅ) ଉପାଧାନ, ମାଣ୍ଡି, ଉପପୀଡ଼ନ, ତକିଆ ।

ଉପବର୍ହଣ-କ୍ଳୀ.ବି.(ଉପ+ବର୍ହ+ଅନ) ଉପାଧାନ, ମାଣ୍ଡି, ତକିଆ ।

ଉପବାଧା—ସ୍ତ୍ରୀ.ବି.(ଉପ+ବାଧ+ଅ+ଆ) ସମ୍ପୀଡନ ।

ଉପବାହୁ—ପୁଂ. ବି. ବାହୁସମୀପବର୍ତ୍ତୀ ଅଙ୍ଗଭେଦ. (ଅବ୍ୟ) ବାହୁର ନିକଟେ ।

ଉପବିନ୍ଦୁ—ପୁଂ. ବି. ଅଭିଷବ ଶବ୍ଦ ।

ଉପବିନ୍ଦୁ—ପୁଂ.ବି, ବିନ୍ଦୁ,ଶବ୍ଦ,ଶ୍ରବଣାର୍ହ ।

ଉପଭଙ୍ଗ—ପୁଂ. ବି (ଉପ+ଭନ୍ଜ୍+ଘ, ଅ) ପୃଷ୍ଠ ପ୍ରଦର୍ଶନ, ଛନ୍ଦଭଙ୍ଗ, ଯୁଦ୍ଧାଦିରୁ ପଳାୟନ ।

ଉପଭାଷା—ସ୍ତ୍ରୀ.ବି. ସ୍ଥାନଭାଷା, ଅପଭାଷା, ପ୍ରଦେଶ ବିଶେଷର ଭାଷା, ବିଭାଷା, କଥ୍ୟଭାଷା ।

ଉପଭୁକ୍ତ—ବି°. (ଉପ+ଭୁଜ୍+ର୍ମ,ତ) ବ୍ୟବହୃତ, ଭକ୍ଷିତ, ଯାହା ଉପଭୋଗ କରାହୋଇଅଛି ।

ଉପଭୁକ୍ତି—ସ୍ତ୍ରୀ.ବି. (ଉପ+ଭୁଜ୍+ତି) ଉପଭୋଗ ।

ଉପଭୁଜ୍ୟମାନ—ବି°. (ଉପ+ଭୁଜ୍+ର୍ମ, ଆନ) ଯାହା ଉପଭୋଗ କରା-ହୋଇଅଛି ।

ଉପଭୁଞ୍ଜାନ—ବି°. (ଉପ+ଭୁନ୍ଜ୍+କ, ଆନ) ଉପଭୋଗ କରା ହୋଇଥିବା ।

ଉପଭୂଷଣ—କ୍ଳୀ.ବି.(ଉପ+ଭୂଷ୍+ଅନ) ଘଣ୍ଟା ଘୁମୁରାଦି ଉପକରଣବିଶେଷ, ଗୌଣ ବା ଆନୁଷଙ୍ଗିକ ଅଳଙ୍କାର ।

ଉପଭୃତ୍—ସ୍ତ୍ରୀ.ବି (ଉପ+ଭୃ+କ୍ୱିପ୍) ଚନ୍ଦ୍ରାକାର ଯଜ୍ଞ ପାତ୍ର, ବଟ କାଷ୍ଠ-ନିର୍ମିତ ଗୋଲାକାର ଯଜ୍ଞପାତ୍ର ।

ଉପଭୃତ—ବି°. (ଉପ+ଭୃ+ର୍ମ, ତ) ସମର୍ପିତ, ସମ୍ମର୍ଦ୍ଦିତ, ସଞ୍ଚିତ ।

ଉପଭୋକ୍ତା—ପୁଂ.ବି°. (ଉପ+ଭୁଜ୍+କ, ତୃ) ଉପଭୋଗକାରୀ, (ସ୍ତ୍ରୀ) ଉପ-ଭୋକ୍ତ୍ରୀ ।

ଉପଭୋଗ-ପୁଂ.ବି.(ଉପ+ଭୁଜ୍+ଘ,ଅ) ନିର୍ଦ୍ଦେଶ, ଭୋଜନାଦିଜନ୍ୟ ଭୋଗ, ବ୍ୟବହାର, ଭକ୍ଷଣ, ଇନ୍ଦ୍ରିୟ ତୃପ୍ତି, ସଂଯୋଗ, ଅର୍ପଣ, ସୁଖାଦି ଭୋଗ ।

ଉପଭୋଗୀ—ପୁଂ.ବି°.(ଉପ+ଭୋଗ+ଇନ) ଭୋଗକାରୀ, ଉପଭୋଗକାରୀ, (ସ୍ତ୍ରୀ) ଉପଭୋଗିନୀ ।

ଉପଭୋଗ୍ୟ—ବି° (ଉପ+ଭୁଜ+ର୍ମ.ଯ) ଉପଭୋଗଯୋଗ୍ୟ, ଯାହା ଉପଭୋଗ କରାଯିବ ।

ଉପଭୋକ୍ତା—ପୁଂ. ବି. (ଉପ+ଭୁଜ୍+କ,ଇନ୍) ଉପଭୋଗକାରୀ, ଉପଭୋଗ-କାରକ ।

ଉପଭୋଜ୍ୟ—ବି.(ଉପ+ଭୁଜ୍+ର୍ମ,ଯ) ଭୋଜନାର୍ହ ଦ୍ରବ୍ୟ, ଭୋଜନଯୋଗ୍ୟ ପଦାର୍ଥ ।

ଉପମ - ବି°. (ଉପ+ମା+କ, ଅ) ଉପମେୟ, ଅନ୍ତିକ, ନିକଟ, ଅନ୍ତିକସ୍ଥିତ, ସମୀପସ୍ଥ, ତୁଲ୍ୟତା, ସାଦୃଶ୍ୟ ।

ଉପମଦ୍ଗୁ—ପୁଂ. ବି. ଶ୍ୱଫଲ୍କର ପୁତ୍ର, ଅକ୍ରୂରର କନିଷ୍ଠ ଭ୍ରାତା ।

ଉପମନ୍ତ୍ରଣ—କ୍ଳୀ ବି. (ଉପ+ମନ୍ତ୍ର+ଭା, ଅନ) ଆମନ୍ତ୍ରଣ, ପ୍ରାର୍ଥନା ପୂର୍ବକ ପ୍ରବ-ର୍ତ୍ତିନରୂପ ବ୍ୟାପାର, ଆହ୍ୱାନ, କର୍ତ୍ତବ୍ୟ କର୍ମରେ ନିୟୋଗ, ଖୋସାମଦ, ଉପଚ୍ଛନ୍ଦନ ।

ଉପମନ୍ତ୍ରିତ—ବି.(ଉପ+ମନ୍ତ୍ର+ର୍ମ,ତ) ଆହୂତ, ପ୍ରାର୍ଥିତ, ପ୍ରସାଦିତ ।

ଉପମନ୍ତ୍ରୀ—ପୁଂ.ବି°.(ଉପ+ମନ୍ତ୍ର+ଇନ୍) ଖୋସାମଦକାରୀ (ବି) ଅପ୍ରଧାନ ବା ସହ-କାରୀ ମନ୍ତ୍ରୀ ।

ଉପମନ୍ଥନୀ—ସ୍ତ୍ରୀ. ବି. (ଉପ+ମନ୍ଥ+ଅନ+ଈ) ଅଗ୍ନି ମନ୍ଥନସାଧକ ଦ୍ରବ୍ୟ ।

ଉପମନ୍ୟୁ—ପୁଂ. ବି. ଆୟୋଦ, ଧୌମ୍ୟ ମୁନିଙ୍କର ଜଣେ ପ୍ରଧାନ ଶିଷ୍ୟ ।

ଉପମର୍ଦ୍ଦ—ପୁଂ.ବି. (ଉପ+ମର୍ଦ୍ଦ+ଅ) ଆଲୋଡ଼ନ,ବିନାଶ, ଧ୍ୱଂସନ, ନିଷ୍ପୀଡ଼ନ, ଧାନ ମଳିବା, ଚପିବା, ନିସ୍ତୁଷୀକରଣ (ବି°) ଉପମର୍ଦ୍ଦକ ।

ଉପମର୍ଦ୍ଦକ—ପୁଂ. ବି°. (ଉପ+ମୃଦ୍+କ, ଅକ) ଉପମର୍ଦ୍ଦକାରୀ ।

ଉପମର୍ଦ୍ଦନ—କ୍ଳୀ ବି.(ଉପ+ମୃଦ୍+ଭା ଅନ) ଉପମର୍ଦ୍ଦ (ଦେଖ) ।

ଉପମା—ସ୍ତ୍ରୀ. ବି. ( ଉପ + ମା + ଅ ) ତୁଲ୍ୟତା, ସାଦୃଶ୍ୟ, ଅର୍ଥାଲଙ୍କାର ଭେଦ, ତୁଲନା ।
ଉପମାତା—ସ୍ତ୍ରୀ. ବି.(ଉପ + ମାତା)ଧାତ୍ରୀ, ଧାଈ, ମାତୃ ତୁଲ୍ୟା, ମାଉସୀ, ପିଉସୀ ଇତ୍ୟାଦି ।
ଉପମାତା—ପୁଂ. ବିଂ. ( ଉପ + ମା + କ, ତୃ) ଚନ୍ଦ୍ରକର, ଉପମାନକର୍ତ୍ତା, ତୁଳନାକାରୀ ।
ଉପମାଦ—ବିଂ.(ଉପ + ମଦ + ଣି + ଅ) ଉପମାଦକ, ହର୍ଷଜନକ ।
ଉପମାନ—କ୍ଲୀ. ବି. (ଉପ + ମା + ଭା, ଅନ) ପ୍ରମାଣ ବିଶେଷ, ଯାହା ସଙ୍ଗେ ଉପମା ଦିଆଯାଏ, ତୁଳନା, ସାଦୃଶ୍ୟ, ନ୍ୟାୟମତରେ ସାଦୃଶ୍ୟ ଜ୍ଞାନ ସାଧନ, ପ୍ରତିକୃତି, ଉପମା, ଦୃଷ୍ଟାନ୍ତ ।
ଉପମାରଣ—କ୍ଲୀ ବି. ( ଉପ + ମୃ + ଣି + ଭା, ଅନ) ଯଜ୍ଞରେ ଅବଭୃଥୋଦକ ନିକଟକୁ ଯାଇ ଘୃତରେ ଜଳ ନିକ୍ଷେପ ।
ଉପମାଲଙ୍କାର—ପୁଂ.ବି.ସାମ୍ୟାଲଂକାର ।
ଉପମାସ୍ୟ—କ୍ଲୀ.ବି. ପିତୃମାନଙ୍କର ତୃପ୍ତି ନିମିତ୍ତ ପ୍ରତି ମାସରେ କରଣୀୟ ଶ୍ରାଦ୍ଧ ।
ଉପମିତ୍—ବିଂ.(ଉପ + ମି + କ୍ୱିପ୍)ଉପନିଖାତ, ଉପସ୍ଥାପସ୍ଥିତ, ସ୍ଥୂଣା,ଉପମାକାରୀ ।
ଉପମିତ—ବିଂ. ( ଉପ + ମା + ମ୍ମ, ତ ) ଉପମା ଦ୍ୱାରା ଅର୍ଥ ପ୍ରକାଶିତ, ସଦୃଶ, ଅନୁରୂପ, ତୁଳିତ ।
ଉପମିତି—ସ୍ତ୍ରୀ. ବି. (ଉପ + ମା + ଭା,ତି) ଉପମାଲଂକାର, ଉପମିତସମାସ,ନୈୟାୟିକ ମତରେ ଅନୁଭବସିଦ୍ଧ ଜାତିବିଶେଷ, ସଂଜ୍ଞାସଂଜ୍ଞି ସମ୍ବନ୍ଧଜ୍ଞାନ, ସାଦୃଶ୍ୟ ।
ଉପମିତସମାସ—ବି. ( ମଧ୍ଯ ) ଯେଉଁ ସମାସରେ ଏକ ବସ୍ତୁ ସଙ୍ଗେ ଅନ୍ୟ ବସ୍ତୁର ତୁଳନା କରାଯାଇଥାଏ ।
ଉପମେତ—ପୁଂ. ବି. ଶାଳବୃକ୍ଷ ।
ଉପମେୟ—ବିଂ. (ଉପ + ମା + ମ୍ମ,ଯ) ସାଦୃଶ୍ୟଯୋଗ୍ୟ, ଉପମାର ବିଷୟୀଭୂତ, ତୁଳନୀୟ ।
ଉପମେୟୋପମା—ସ୍ତ୍ରୀ. ବି. ( ଉପମେୟ + ଉପମା) ଅର୍ଥାଲଂକାର ବିଶେଷ ।
ଉପଯଟ୍—ପୁଂ. ବି. ପଶୁଯାଗାଙ୍ଗ ଯଜ୍ଞବିଶେଷ ।
ଉପଯନ୍ତା-ପୁଂ.ବି (ଉପ + ଯମ + କ,ତୃ ) ପତି, ସ୍ୱାମୀ (ବିଂ)ସଂଯମନକର୍ତ୍ତା,ବିବାହକର୍ତ୍ତା, (ସ୍ତ୍ରୀ) ଉପଯନ୍ତ୍ରୀ ।
ଉପଯନ୍ତ୍ର—କ୍ଲୀ. ବି. ଶଲ୍ୟୋଦ୍ଧାରଣାର୍ଥ ଯନ୍ତ୍ରବିଶେଷ,ଶାଖାଯନ୍ତ୍ର,ଆନୁଷଙ୍ଗିକ ଯନ୍ତ୍ର ।
ଉପଯନ୍ତ୍ରିତ—ବିଂ.(ଉପ + ଯନ୍ତ୍ର + ମ୍ମ,ତ) ଅଭ୍ୟର୍ଥିତ, ପ୍ରାର୍ଥିତ ।
ଉପଯମ—ପୁଂ. ବି. (ଉପ + ଯମ + ଅ) ବିବାହ, ଉଦ୍‌ବାହ, ସଂଯମ, ନିଗ୍ରହ ।
ଉପଯମନ – କ୍ଲୀ.ବି. (ଉପ + ଯମ + ଭା, ଅନ) ବିବାହ, ସଂଯମନ, ଅଗ୍ନିର ଅଧଃ ସ୍ଥାପନ, ବନ୍ଧନସାଧକକୁଶାଦିବୈବାହିକ ମନ୍ତ୍ର ।
ଉପଯମନୀ—ସ୍ତ୍ରୀ ବି.(ଉପ + ଯମ + ଅନ + ଈ) ଅଗ୍ନ୍ୟାଧାନାଙ୍ଗ ସିକତାଦି,ସଂଯମନୀ ।
ଉପଯଷ୍ଟା—ପୁଂ. ବି. (ଉପ + ଯଜ + ତୃ) ଷୋଡ଼ଶ ପ୍ରକାର ଋତ୍ୱିକମଧ୍ୟରୁ ପ୍ରତିପସ୍ଥାତା ନାମକ ଋତ୍ୱିକ୍ ବିଶେଷ, ଉପଯାଜ ।
ଉପଯାଚକ—ପୁଂ. ବିଂ. (ଉପ + ଯାଚ୍ + କ, ଅକ) ସ୍ୱୟଂଯାଚକ, ଯେ ନିକଟକୁ ଆସି ଯାଚ୍ଞାକରେ(ମାଗେ)ପ୍ରାର୍ଥୀ, ଯାଚ୍ଞାକର୍ତ୍ତା, (ସ୍ତ୍ରୀ) ଉପଯାଚକା ।
ଉପଯାଚନ—କ୍ଲୀ. ବି. (ଉପ + ଯାଚ୍ + ଭା, ଅନ) ଦେବତାପ୍ରଭୃତିଙ୍କ ନିକଟରେ ଅଭୀଷ୍ଟାଦି ପ୍ରାର୍ଥନା, ଯାଚ୍ଞା ।
ଉପଯାଚିତ—ପୁଂ.ବିଂ.(ଉପ + ଯାଚ୍ + ମ୍ମ, ତ) ପ୍ରାର୍ଥିତ, ଅଭୀଷ୍ଟସିଦ୍ଧି ନିମିତ୍ତ ଅର୍ପିତ, ସମର୍ପିତ, ଅନୁରୁଦ୍ଧ (ବି) ମାନସିକ କରିବା ।
ଉପଯାଚିତକ—ବିଂ. (ଉପଯାଚିତ + କ) ଅଭୀଷ୍ଟସିଦ୍ଧି ନିମିତ୍ତ ଦେବତାଦିର ଦେୟ ପାର୍ଥିତ, (କ୍ଲୀ. ବି) ଦେବଦେୟ ବସ୍ତୁ, ମାନସିକ ପଦାର୍ଥ ।
ଉପଯାଜ—ପୁଂ.ବି.(ଉପ + ଯଜ୍ + ଅ) ଯଜ୍ଞାଙ୍ଗଯାଗବିଶେଷ,ଏକାଦଶପ୍ରକାର ଅଟେ, କାଶ୍ୟପଗୋତ୍ରଋଷିବିଶେଷ ।
ଉପଯାତ—ବିଂ. (ଉପ + ଯା + କତ) ଆଗତ,ସମୀପ ଆଗତ, ପ୍ରାପ୍ତ,ଉପଗତ, ଶରଣଗତ, କୃତମୈଥୁନ ।
ଉପଯାନ—କ୍ଲୀ. ବି. (ଉପ + ଯା + ଭା, ଅନ)ନିକଟେ ଗମନ, ଉପାସର୍ପଣ,ପ୍ରାପ୍ତି ।
ଉପଯାମ – ପୁଂ.ବି(ଉପ + ଯମ + ଭା,ଅ) ବିବାହ, ଯଜ୍ଞାଙ୍ଗପାତ୍ରବିଶେଷ ।
ଉପଯାୟୀ – ପୁଂ ବିଂ.(ଉପ + ଯା + କ, ଇନ୍) ସମୀପଗାମୀ, ଉପସର୍ପୀ ।
ଉପଯୁକ୍ତ – ବିଂ. (ଉପ + ଯୁଜ + କ,ତ) ଯୋଗ୍ୟ, ନ୍ୟାଯ୍ୟ, ଯଥେଷ୍ଟ, ଭୁକ୍ତ, ଉଚିତ, ସମର୍ଥ,ସୌଷ୍ଠବସମ୍ପନ୍ନ, ଦଗ୍ଧ, ପୀତ (ଗ୍ରା) ଉପାର୍ଜନକ୍ଷମ ।
ଉପଯୁକ୍ତତା – ସ୍ତ୍ରୀ. ବି.(ଉପଯୁକ୍ତ + ତା) କର୍ମଣ୍ୟତା, କାର୍ଯ୍ୟଦକ୍ଷତା, ଔଚିତ୍ୟ ।
ଉପଯୋକ୍ତବ୍ୟ—ପୁଂ. ବିଂ. (ଉପ + ଯୁଜ + ମ୍ମ, ତବ୍ୟ) ପ୍ରଯୋଜ୍ୟ, ଭୋକ୍ତବ୍ୟ ।
ଉପଯୋଗ—ପୁଂ.ବି. (ଉପ + ଯୁଜ + ଭା,ଅ) ଆଚରଣ,ଭୋଜନ, ଜଳଯୋଗ, ସାହାଯ୍ୟ, ଇଷ୍ଟସିଦ୍ଧି ନିମିତ୍ତ ଧର୍ମକାର୍ଯ୍ୟ, ବ୍ୟୟ, ଆବଶ୍ୟକତା, ଉପଯୋଗିତା, ଭୋଗ, ବ୍ୟବହାର, ବିନିଯୋଗ ।
ଉପଯୋଗିତା – ସ୍ତ୍ରୀ. ବି. (ଉପଯୋଗ + ଇନ୍ + ତା) ଆବଶ୍ୟକତା,ପ୍ରୟୋଜନ, କାର୍ଯ୍ୟକାରିତା ସାହାଯ୍ୟ, ଉପଯୁକ୍ତତା, ଆନୁକୂଲ୍ୟ,ହିତକରତ୍ୱ,ପ୍ରୟୋଜନୀୟତା ।
ଉପଯୋଗୀ – ପୁଂ. ବିଂ. (ଉପଯୋଗ + ଇନ୍) ଉପଯୁକ୍ତ, ଉପକାରୀ, ସହାୟ, ଅନୁକୂଳ, ଯୋଗ୍ୟ, ଅନୁରୂପ, କାର୍ଯ୍ୟକାରକ ।
ଉପଯୋଷଂ – ଅବ୍ୟ, ଆନନ୍ଦ ।
ଉପର – ପ୍ରା(ସମ୍ପୃ)ବି. ଉଦ୍‌ଗାର, ବମନ, ବାନ୍ତି ।
ଉପର – ଗ୍ରା.ବି. (ସଂ + ଉପରି)ଅଗ୍ରଭାଗ, ଊର୍ଦ୍ଧ୍ୱତା. ଊର୍ଦ୍ଧ୍ୱଭାଗ,ଉପରଭାଗ,ପୃଷ୍ଠ, ବାହାର,ଭବିଷ୍ୟତ, ଅତୀତକାଳ, ଶୂନ୍ୟ ଆକାଶ, କୋଠାଛାତ ବା ଘରଉପରି (ବିଂ) ଉପରେ ଥିବା,ବାହାରେ ଥିବା,

ଊର୍ଦ୍ଧ୍ୱରେ ଥିବା, ତଳ, ଉଚ୍ଚତର, ଅନ୍ୟ ସ୍ୱର୍ଗୀୟ, ଅତୀତ, ଭବିଷ୍ୟତ୍, ଐଶ୍ୱରିକ, ଅଗ୍ରଜ, ଆଗଆଡ଼ରେ ଥିବା, ପୂର୍ବ (ଗ୍ରା. କ୍ରି.ବିଂ.) ଉପରେ, ଉଚ୍ଚରେ, ଅଗ୍ରଭାଗରେ, ପୃଷ୍ଠରେ, ଠାରେ (ଦାୟିତ୍ୱ) ।

ଉପରଆଡ଼—ଗ୍ରା.ବି. ଊର୍ଦ୍ଧ୍ୱପାଖ, ଊର୍ଦ୍ଧ୍ୱ-ଭାଗ, ବହିଃସ୍ଥ ଅଂଶ, ଉଚ୍ଚତରପୃଷ୍ଠ, ବହିର୍ଭାଗ, ଉପରମାଳ ।

ଉପରଉପର—ଗ୍ରା. ଅବ୍ୟ. ଭିତରକୁ ଯାଇ ବାହାରେ ବାହାରେ, ଥରକୁଥର, ତୁହାକୁତୁହା, ବାହାରପାଖରେ, ବୃଥାରେ ।

ଉପରଓଳି—ଗ୍ରା. ବି. ଅପରାହ୍ଣ, ଦିନ ଦ୍ୱିପ୍ରହରର ପରବର୍ତ୍ତୀଭାଗ ।

ଉପର୍ଯ୍ୟୁପରି—ଅବ୍ୟ. (ଉପରି + ଉପରି) ପୁନଃପୁନଃ, ଗୋଟିକ ଉପରେ ଗୋଟିଏ, ମୁହୁର୍ମୁହୁ, ଉପରେ ଉପରେ, ଥରକୁଥର ।

ଉପର—ବିଂ. (ବପ + କରନ୍) ଉପ୍ତ, ସ୍ଥାପିତ, ଉପରତ, ଉପରିକାଳୋତ୍ପନ୍ନ, ଉପଲ, ପ୍ରସ୍ତର, ପଥର, ଅନ୍ୟ ।

ଉପରକ୍ତ—ପୁଂ.ବି.(ଉପ + ରଞ୍ଜ + କ,ତ) ରାହୁ, ରାହୁଗ୍ରସ୍ତ ସୂର୍ଯ୍ୟ ଓ ଚନ୍ଦ୍ର, ରକ୍ତବର୍ଣ୍ଣ (ବିଂ) ରକ୍ତବର୍ଣ୍ଣବିଶିଷ୍ଟ, ରଞ୍ଜିତ, ବ୍ୟସନାସକ୍ତ, ପୀଡ଼ାଯୁକ୍ତ, ଅନୁରକ୍ତ ।

ଉପରକ୍ଷ—ପୁଂ. ବି. (ଉପ + ରକ୍ଷ୍ + କ, ଅ) ସୈନ୍ୟର ସମୀପସ୍ଥ ରକ୍ଷକ, ପହରାବାଲା ।

ଉପରକ୍ଷକ—ବିଂ. (ଉପ + ରକ୍ଷ୍ + କ, ଅକ) ସୈନ୍ୟମାନଙ୍କର ସମୀପବର୍ତ୍ତୀ-ରକ୍ଷକ, ସୈନ୍ୟମାନଙ୍କର ପୃଷ୍ଠପୋଷକ, ଜଗୁଆଳି, ରକ୍ଷକ ଚୌକିଦାର, ଜମାଦାର ।

ଉପରକ୍ଷଣ—କ୍ଲୀ.ବି. (ଉପ + ରକ୍ଷ୍ + ଭା. ଅନ) ସଜ୍ଜନ, ରକ୍ଷଣାର୍ଥସୈନ୍ୟ ସ୍ଥାପନ, ରକ୍ଷାକରଣ, ଚୌକି, ଜଗିବା, ହେପାଦସ୍ତ ।

ଉପରଚିତ—ବିଂ. (ଉପ + ରଚ୍ + ମି,ତ) ସୃଷ୍ଟ, କୃତ ।

ଉପରଞ୍ଜକ—ବିଂ. (ଉପ + ରନ୍ଜ୍ + କ ଅକ) ଉପରଞ୍ଜନକର୍ତ୍ତା, ଚିତ୍ରକର (ସ୍ତ୍ରୀ) ଉପରଞ୍ଜିକା ।

ଉପରଞ୍ଜନ—କ୍ଲୀ.ବି. (ଉପ + ରନ୍ଜ + ଭା, ଅନ) ରଙ୍ଗକରିବା, ପ୍ରଭାବବିସ୍ତାର କରିବା ।

ଉପରଠାଉରିଆ—ଗ୍ରା. ବିଂ. ବାହ୍ୟିକ, ଯାହା ଘନିଷ୍ଠ ନୁହେ, ଯାହା ଭିତରକୁ ନଯାଇ କେବଳ ପୃଷ୍ଠଭାଗରେ ଥାଏ, ଆନ୍ତରିକତାହୀନ, (ଲ, ଅର୍ଥ) ଯେଉଁ ଲୋକ ମର୍ମକୁ ପ୍ରବେଶ ନକରି ବାହାରେ ଭାସୁଥାଏ, ଅଗଭୀର, ଯେଉଁ କଥାର ପ୍ରସଙ୍ଗ ସଙ୍ଗେ ଦୃଢ଼ ସମ୍ବନ୍ଧ ନଥାଇ ବାହ୍ୟିକ ସମ୍ବନ୍ଧ ଥାଏ ।

ଉପରତ—ପୁଂ. ବିଂ. (ଉପ + ରମ୍ + କ୍ତ) ବିରତ, ନିବୃତ୍ତ, ମୃତ, ବିଗତ, ଉପରତିଯୁକ୍ତ, ତ୍ୟକ୍ତ, ବିରକ୍ତ ।

ଉପରତାତ—ସ୍ତ୍ରୀ. ବି.(ଉପରତ + ତାସ୍ + ତ) ଯୁଦ୍ଧ, ମେଘକରିକାଦ୍ୱାରା ଆଚ୍ଛାଦ୍ୟ-ଅନ୍ତରୀକ୍ଷ ।

ଉପରତି—ସ୍ତ୍ରୀ. ବି. (ଉପ + ରମ୍ + ଭା, ତି) ବିରତି, ବାସନାତ୍ୟାଗ, ନିବୃତ୍ତି, ବୈରାଗ୍ୟ, ମୃତ୍ୟୁ, ସନ୍ନ୍ୟାସ, ନିବାରଣ, ବୁଦ୍ଧି, ବିପକ୍ଷୋତ୍ତରତି, ପୁରୁଷାୟିତ ।

ଉପରତ୍ନ—କ୍ଲୀ. ବି. (ଉପ + ରତ୍ନ) ମଣି-ସଦୃଶ କାଗୃଦ, କାଚ, କର୍ପୂର, ପସ୍ତର, ·ମୁକ୍ତା, ଶୁକ୍ତି, ଶଙ୍ଖଇତ୍ୟାଦି ଉପରତ୍ନ ।

ଉପରନ୍ତୁ—ଗ୍ରା. ଅବ୍ୟ. (ସଂ—ପରନ୍ତୁ) ଏହାଛଡ଼ା, ପରନ୍ତୁ, ପୁଣି, ଏଥିପରେ ।

ଉପରପଡ଼ା—ଗ୍ରା. ବି. (ଗାଳି) ଯେ ଅନାହୂତ ହୋଇ ପରର କାର୍ଯ୍ୟକରେ, ହସ୍ତକ୍ଷେପ କରେ, ବଳପଣା ।

ଉପରପାହିଆ—ଗ୍ରା. ବି. ଉଚ୍ଚତର ସ୍ଥାନ, ଉଚ୍ଚତର ମର୍ଯ୍ୟାଦାଯୁକ୍ତ ପଦ ।

ଉପରମ—ପୁଂ. ବି. (ଉପ + ରମ୍ + ଭା, ଅ) ଉପରତି, ବୈରାଗ୍ୟ, ନିବୃତ୍ତି, ମୃତ୍ୟୁ, ସମାପ୍ତି, ଉପଶମ ।

ଉପରମୁଁହା—ଗ୍ରା.ବିଂ. ଅମାନିଆ, ଥେଣ୍ଟା, ଅବିନୀତ, ଉତ୍ତରଦାୟକ ଭୃତ୍ୟ, ମୁହଁଟେକା ।

ଉପରହାକିମ—ଗ୍ରା.ବି. ଉଚ୍ଚତର କ୍ଷମତା-ଯୁକ୍ତକର୍ମଚାରୀ, ଉପରସ୍ଥ ହାକିମ, ବଡ଼ବାବୁ ବା ହାକିମ ।

ଉପରବ—ପୁଂ. ବି. (ଉପ + ରୁ + ଅ) ଗର୍ତ୍ତାକାର ପ୍ରଦେଶ, ସୋମାଭିଷବର, ଅଙ୍ଗବିଶେଷ ।

ଉପରସ—ପୁଂ. ବି. ପାରଦ ତୁଲ୍ୟ ଗନ୍ଧକାଦି, କଙ୍କୁଷ୍ଠ, ହୀରାକସ, ଶଙ୍ଖ, ଗୈରିକ, ନୀଳାଞ୍ଜନ, ଶୁକ୍ତି, ବରାଟକାଦି ଉପରସ ।

ଉପରାଗ ପୁଂ. ବି. (ଉପ + ରନ୍ଜ + ଭା, ଅ) ରାହୁଗ୍ରସ୍ତ ଚନ୍ଦ୍ର ଓ ସୂର୍ଯ୍ୟ, ସଂସାର-ବିଶେଷ, ଅନ୍ଧକାର, ବିପଦ, ଉପଦ୍ରବ, ରାହୁ, ନିନ୍ଦା, ପ୍ରବୃତ୍ତି, ରକ୍ତବର୍ଣ୍ଣ, ବିଗାନ, ଦୁର୍ଣ୍ଣୟ, ପରୀବାଦ, ଦୁଷ୍ଟନୀତ, ଅପବାଦ, ଗ୍ରହକଲ୍ଲୋଳ, ବ୍ୟସନ, ସମ୍ବନ୍ଧ ।

ଉପରାଜ—ପୁଂ.ବି. ରାଜପ୍ରତିନିଧି, ରାଜାର ଅଧୀନସ୍ଥ ରାଜତୁଲ୍ୟ ମାନ୍ୟ ବ୍ୟକ୍ତି, (ଅବ୍ୟ) ରାଜାଙ୍କନିକଟରେ (ବିଂ) ରାଜତୁଲ୍ୟ ।

ଉପରଣ—ଗ୍ରା.ବି. (ସଂ—ଉପରି + ଆବରଣ) ଓଢ଼ଣବସ୍ତ୍ର, ସ୍ତ୍ରୀଲୋକମାନେ ପିନ୍ଧିବା ଲୁଗା ଉପରେ ଘୋଡ଼ିହେବା ଚାଦର, ବିଛଣାଉପରେ ପଡ଼ିବା ଚାଦର, ସାଧାରଣ ଶପଥ ।

ଉପରାମ—ପୁଂ. ବି. (ଉପ + ରମ୍ + ଅ) ଉପରତ, ମୃତ୍ୟୁ, ବିକୃତ, ସନ୍ନ୍ୟାସ, ବୈରାଗ୍ୟ, (ଅବ୍ୟ) ଗ୍ରାମସମୀପେ ।

ଉପରି—ଅବ୍ୟ, ଊର୍ଦ୍ଧ୍ୱେ, ଉପରେ (ଗ୍ରା.ବି) ଅନନ୍ତର, ପରେ ଅତିରିକ୍ତ, ମାଗଣା, ଊର୍ଦ୍ଧ୍ୱତଳ, ଛଡ଼ା, ପୃଷ୍ଠଦେଶରେ ଅବୈତନିକ, ଇତର, ଅସ୍ଥାୟୀ, ଦୈବୀ, ବାହ୍ୟ, ଊର୍ଦ୍ଧ୍ୱଦିଗକୁ, ଉଚ୍ଚରେ ।

ଉପରିଗତ—ପୁଂ ବିଂ. (ତତ୍) ଊର୍ଦ୍ଧ୍ୱେ-ଗତ, ଉପରେ ଯାଇଥିବା, ଆରୂଢ଼ ।

ଉପରିଚର—ପୁଂ.ବି. ପୁରୁବଂଶୀୟ ଜଣେ ରାଜା, ଅପରନାମ ବସୁ (ବିଂ) ଊର୍ଦ୍ଧ୍ୱ-ଚର, ଆକାଶଗାମୀ ।

ଉପରିଜ—ପୁଂ.ବିଂ. (ଉପରି + ଜନ୍ + କ ଅ) ଊର୍ଦ୍ଧ୍ୱେଜାତ, ଉଚ୍ଚ, ଉଚ୍ଛ୍ରିତ, ଉନ୍ନତ, (ସ୍ତ୍ରୀ) ଉପରିଜା ।

ଉପରତନ—ବିଂ. (ଉପରି + ତନ) ଯାହା ଉପରେ ଅଛି, ଊର୍ଦ୍ଧ୍ୱତନ, ଉପରସ୍ଥ, ପୂର୍ବବର୍ତ୍ତୀ (ସ୍ତ୍ରୀ) ଉପରତନୀ ।

ଉପରଭାଗ – ପୁଂ.ବି.(କ.ଧା) ଊର୍ଦ୍ଧ୍ୱଭାଗ, ବହିର୍ଭାଗ, ଊର୍ଦ୍ଧ୍ୱତନ, ପୃଷ୍ଠ ।

ଉପରମେଖଳ—ପୁଂ.ବି. ଗୋତ୍ରପ୍ରବର୍ତ୍ତକ, ଋଷିଭେଦ ।

ଉପରବୃହତୀ—ସ୍ତ୍ରୀ. ବି. ବୈଦିକ ବୃହତୀ ଛନ୍ଦୋବିଶେଷ ।

ଉପରିଷ୍ଟଜ୍ୟୋତିଷ୍ମତୀ—ସ୍ତ୍ରୀ. ବି. ବୈଦିକ ଛନ୍ଦୋ ବୃତ୍ତିଭେଦ ।

ଉପରିଷ୍ଟାତ୍—ଅବ୍ୟ. ଊର୍ଦ୍ଧ୍ୱ, ଉପରି, ଝଣ୍ଡିଦୁରରେ, ଅନନ୍ତର, ପରେ ।

ଉପରିସଦ୍—ପୁଂ. ବି. (ଉପରି + ସଦ୍ + କ୍ୱିପ) ରାଜସୂୟଯଜ୍ଞରେ ସୋମନେତୃକ ଦୁବସ୍ୱନ ନାମକ ଦେବତା ବିଶେଷ, (ବିଂ) ଊର୍ଦ୍ଧ୍ୱସ୍ଥିତ ।

ଉପରିସଦ୍ୟ—କ୍ଲୀ.ବି (ଉପରି + ସଦ୍ + ଯ) ଊର୍ଦ୍ଧ୍ୱେ ଅବସ୍ଥାନ, ଅନ୍ତରୀକ୍ଷେ ଉପବେଶନ ।

ଉପରତକ—ପୁଂ. ବି. ଶୃଙ୍ଗାର ବନ୍ଧନବିଶେଷ, ଆସନ ବାନ୍ଧିବା, ସୁରତବନ୍ଧ ବିଶେଷ ।

ଉପରୁ—ଗ୍ରା. ଅବ୍ୟ. ଉପରଆଡୁ, ଉପର ଦିଗରୁ (ଲ ଅଁ) ଅକସ୍ମାତ୍, ଦୈବାତ୍ ।

ଉପରୁଦ୍ଧ—ପୁଂ.ବିଂ.(ଉପ + ରୁଧ୍ + କ, ତ) ଉପହୃତ, ତିରୋହିତ, ଆବୃତ, ବଦ୍ଧ, ପ୍ରତିରୁଦ୍ଧ, ମୂତ୍ରାଦିବେଗଯୁକ୍ତ, ଉତ୍ପୀଡ଼ିତ, ଅନୁରୁଦ୍ଧ, ଯାହାକୁ ଅନୁରୋଧ କରାଯାଇଥାଏ, (ସ୍ତ୍ରୀ) ଉପରୁଦ୍ଧା ।

ଉପରୂଢ଼— ପୁଂ. ବିଂ. (ଉପ + ରୁହ୍ + କ, ତ) ସଞ୍ଜାତ, ପ୍ରାପ୍ତ ।

ଉପରୂପକ—କ୍ଲୀ. ବି. ନାଟକବିଶେଷ ।

ଉପରେ—ଗ୍ରା. ଅବ୍ୟ. (ସଂ - ଉପରି) ଊର୍ଦ୍ଧ୍ୱଦେଶରେ, ପୃଷ୍ଠ ଦେଶରେ, ପିଠିରେ, ଅଗ୍ରଭାଗରେ, ସ୍ୱର୍ଗରେ, ଉଚ୍ଚତର ସ୍ଥାନରେ, ଅଧିକତର, ଛଡ଼ା, ଅଧିକା ହୋଇ, ଅପିଲ ଅଦାଲତରୂପେ ଆଗରୁ ଜନ୍ମିଥିବା, ନିକଟ ଭବିଷ୍ୟତରେ ଠାରେ, କର୍ତ୍ତୃପକ୍ଷ ବା ହାକିମ ରୂପେ, ପ୍ରତି, ଅତିକ୍ରମ କରି, ଅନ୍ୟ କ୍ରିୟାପରେ ବ୍ୟବହୃତ—ପ୍ରାୟ, ଆସନ୍ନ ଅବସ୍ଥାଯୁକ୍ତ ।

ଉପରେ ଉପରେ—ଗ୍ରା.କ୍ରି.ବିଂ.ଉପର୍ଯ୍ୟୁପରି, ମାରଣାରେ, ବିନାବ୍ୟୟରେ. ଉପର ଠାଉରିଆ ଭାବରେ ।

ଉପରେଉପରେ ଯିବା—ଗ୍ରା.କ୍ରି. ନଈ ବା ପାଣି ଭିତରକୁ ନ ଯାଇ କୂଳେ କୂଳେ ଶୁଖିଲା ବାଟରେ ଯିବା (ଲ.ଅଁ) କୌଣସି ବିଷୟକୁ ବହିର୍ଦୃଷ୍ଟିରେ ବିଗ୍ରହ କରିବା

ଉପରୋଧ—ପୁଂ.ବି. (ଉପ + ରୁଧ + ଭା. ଅ) ଆବରଣ, ଆଚ୍ଛାଦନ, ଅନୁଗ୍ରହ, ପ୍ରତିବନ୍ଧ, ବ୍ୟାଘାତ, ଅଟକ ଜଗର. ଅନୁରୋଧ ପୀଡ଼ନ, ଗୌରବ, ସୁପାରସ. ଖାତିର ।

ଉପରୋଧକ—କ୍ଲୀ. ବି. (ଉପ + ରୁଧ୍ + ଅକ) ଅନ୍ତର୍ଗୃହ, ପ୍ରତିବନ୍ଧକ. ପୀଡ଼କ ଗର୍ଭାଗାର, ବାସ୍ତଗୃହ (ବିଂ) ଉପରୋଧକର୍ତ୍ତା ଅନୁରୋଧକାରୀ (ସ୍ତ୍ରୀ) ଉପରୋଧିକା ।

ଉପରୋଧନ—କ୍ଲୀ. ବି. (ଉପ + ରୁଧ + ଭା.ଅନ) ପ୍ରତିବନ୍ଧ. ଅବରୋଧ ।

ଉପର୍ଯ୍ୟୁକ୍ତ—ବିଂ. (୭ତତ୍) କ୍ରମାଗତ, ପ୍ରତ୍ୟାସନ୍ନ, ଅତ୍ୟୁର୍ଦ୍ଧ୍ୱ ।

ଉପଲ—ପୁଂ. ବି. (ଉପ + ଲା + କ, ଅ) ଲେଠାମାଛ, ପାଷାଣ, ରତ୍ନ, ପଥର, ଶିଳା, (ଗ୍ରା.ବି.) ଶର୍କରା, ଏକପ୍ରକାର ମିଠାପଣା ।

ଉପଲକ୍ଷ-ଉପଲକ୍ଷ୍ୟ—ପୁଂ. ବି (ଉପ + ଲକ୍ଷ + ଅ) ଅବଲମ୍ବନ. ପ୍ରୟୋଜନ. ଉଦ୍ଦେଶ୍ୟ, ତୁଳନାତ୍ମକ, ସୂଚନା, ସୂତ୍ର, ନିମିତ୍ତ, ବ୍ୟପଦେଶ (ଉପ + ଲକ୍ଷ + ଯ) ଛଳ, ଚିହ୍ନ, ଲକ୍ଷଣ, ସଙ୍କେତ, ଅନୁମାନ, ତୁଳନା, ସାଦୃଶ୍ୟ (ବି) ତୁଳନୀୟ, ଉଲ୍ଲେଖଯୋଗ୍ୟ. ଅନୁମେୟ ।

ଉପଲକ୍ଷକ—ବିଂ. (ଉପ + ଲକ୍ଷ୍ + କ. ଅକ) ଉଦ୍ଭାବକ, ଦର୍ଶକ, ପରୀକ୍ଷକ, ଉପାଦାନ, ଲକ୍ଷଣସଙ୍କେତ ଇତରବୋଧକ ଶବ୍ଦ (ସ୍ତ୍ରୀ) ଉପଲକ୍ଷିକା ।

ଉପଲକ୍ଷଣ—କ୍ଲୀ. ବି. (ଉପ + ଲକ୍ଷ + ଭା. ଅନ) ଅଜହତ୍ସ୍ୱାର୍ଥା ଲକ୍ଷଣା, ଅନ୍ୟ ଉଦ୍ବୋଧକ ଲକ୍ଷଣ, ଚିହ୍ନ, ବିଶିଷ୍ଟଲକ୍ଷଣ, ସୂଚନା, ଉପକ୍ରମ, ପରିଜ୍ଞାନ, ବିଶେଷଣ ।

ଉପଲକ୍ଷଦେବା— ଗ୍ରା.କ୍ରି.ସୂଚନାକରିବା, ସୂଚେଇବା, ଉଲ୍ଲେଖଦେବା, ଅନ୍ୟବସ୍ତୁର ସମ୍ବନ୍ଧ ଦେଖାଇ କହିବା, ତୁଳନା କରିବା ।

ଉପଲକ୍ଷରେ—ଗ୍ରା. କ୍ରି. ବିଂ. କୌଣସି ଘଟନାକ୍ରମେ, କୌଣସି ଘଟନା ସମ୍ବନ୍ଧରେ, ଫଳରେ. କୌଣସି ବିଶେଷ ଘଟନା ଘଟୁଥିବାର ଅବସର ବା ସୁଯୋଗ ପାଇ ।

ଉପଲଖଣ୍ଡ—ବି. (୬ତତ୍) ପ୍ରସ୍ତରଖଣ୍ଡ, ବାଲିଗରଡ଼ା, କଙ୍କର ।

ଉପଲକ୍ଷିତ—ବିଂ.(ଉପ + ଲକ୍ଷ + ମିଁ, ତ) ସୂଚିତ, ଯୁକ୍ତପ୍ରାପ୍ତ, ଆଶ୍ରିତ, ଅନୁମିତ, ବିଶିଷ୍ଟ, ଦୃଷ୍ଟ, ଯୁକ୍ତ, ତୁଳିତ, କଳ୍ପିତ ଉପଲକ୍ଷଣ ସୂଚନାଦ୍ୱାରା ବୋଧଗମ୍ୟ ହୋଇଥିବା ।

ଉପଲଧିପ୍ରିୟ—ପୁଂ. ବି. ଚମର ନାମକ ଜନ୍ତୁ, ଗ୍ରୀମରୀ ଗାଈ, ଚମରୀ ମୃଗ ।

ଉପଲବ୍ଧ—ବିଂ.(ଉପ + ଲଭ + ମିଁ, ତ) ଅର୍ଜିତ, ଅଭ୍ୟସ୍ତ, ଅନୁମିତ, ସୂଚିତ, ମର୍ମ ବୁଝା ଯାଇଥିବା, ପ୍ରାପ୍ତ, ଜ୍ଞାତ, ଅନୁଭୂତ ।

ଉପଲବ୍ଧା—ପୁଂ. ବିଂ. (ଉପ — ଲଭ + କ, ତୃ) ପ୍ରାପକ, ଜ୍ଞାତା (ବି) ଆତ୍ମା (ସ୍ତ୍ରୀ ଉପଲବ୍ଧ୍ରୀ ।

ଉପଲବ୍ଧାର୍ଥ—ପୁଂ ବି.(କ.ଧା.) ଅନୁମିତ ଅର୍ଥ, ବୁଝାଯିବା ଅର୍ଥ, ଫଳରେ, ପ୍ରାପ୍ତ ଉଦ୍ଦେଶ୍ୟ (ପୁଂ.ବିଂ.ବ.ବ୍ରୀ) ଯେଉଁଉଦ୍ଦେଶ୍ୟ ଅନୁରୂପ ଫଳପାଇଅଛି, ଯେ ଅର୍ଥ ବୁଝି ପାରିଅଛି, ଯେ ଉଦ୍ଦେଶ୍ୟ ହୃଦୟଙ୍ଗମ କରିଅଛି, ଯାହାର ଅର୍ଥ ବୁଝାଯାଇଅଛି, (ସ୍ତ୍ରୀ) ଉପଲବ୍ଧାର୍ଥା ।

ଉପଲବ୍ଧାର୍ଥା—ସ୍ତ୍ରୀ.ବି. (ବ.ବ୍ରୀ) ଆଖ୍ୟାୟିକା, ଅନୁଭୂତାର୍ଥ ପ୍ରତିପାଦକ କଥା, ଅଙ୍ଗେ ନିଭାଇଥିବା କଥା ।

ଉପଲବ୍ଧି—ସ୍ତ୍ରୀ. ବି.(ଉପ + ଲଭ୍ + ତି) ବୋଧ, ଜ୍ଞାନ, ମତ, ପ୍ରାପ୍ତି, ଲାଭ,ଅନୁଭବ, ବୁଝିବା, ହୃଦୟଙ୍ଗମ କରିବା, ବୃଦ୍ଧି । [ବୃକ୍ଷ ।

ଉପଲଭେଦୀ—ପୁଂ. ବି. ପାଷାଣଭେଦୀ

ଉପଲଭ୍ୟ—ବିଂ. (ଉପ + ଲଭ୍ + ଯ) ଅନୁଭବନୀୟ, ଅନୁମେୟ, ପ୍ରାପ୍ୟ, ଜ୍ଞେୟ, ସାଧ୍ୟ,(ସ୍ତ୍ରୀ) ଉପଲଭ୍ୟା (ଗା.ବି) ଲାଭ, ଆୟ ।

ଉପଲମ୍ଭ—ପୁଂ.ବି.(ଉପ + ଲଭ୍ + ଘ, ଅ) ଅନୁଭବ, ବୋଧ, ଅବଗତ, ଉପଲବ୍ଧି, ଲାଭ, ତିରସ୍କାର, ପ୍ରାପ୍ତି ।

ଉପଲମ୍ଭକ—ପୁଂ. ବିଂ.(ଉପ + ଲଭ୍ + ଅକ) ଅନୁଭାବକ, ଅନୁଭବକାରୀ, ବୋଧକ, ଲାଭବାନ୍ ।

ଉପଲମ୍ଭନ—କ୍ଲୀ ବି. (ଉପ + ଲଭ୍ + ଘ, ଅନ) ଜ୍ଞାନ, ବୁଦ୍ଧି ।

ଉପଲମ୍ଭ୍ୟ—ପୁଂ. ବିଂ. (ଉପ + ଲଭ୍ + ମ୍,ଯ)ସ୍ତବ୍ୟ,ସ୍ତବଯୋଗ୍ୟ, ପ୍ରଶଂସନୀୟ ।

ଉପଲା—ସ୍ତ୍ରୀ.ବି.(ଉପ + ଲା + ଅ + ଆ) ଶର୍କରା, ପ୍ରସ୍ତରମୟ ଭୂମି ।

ଉପଲିଙ୍ଗ—କ୍ଲୀ. ବି. (ଉପ + ଲିଙ୍ଗ୍ + କ,ଅ)ଉପସର୍ଗ, ଉପଦ୍ରବ, ଅରିଷ୍ଟ ।

ଉପଲିପ୍ତ—ବିଂ. (ଉପ + ଲିପ୍ + ମ୍,ତ) ଉପରିଭାଗରେ କୃତଲେପନ, ଦେହରେ ବୋଳା ହୋଇଥିବା, ଉପରେ ବୋଳା ହୋଇଥିବା, ଲିପାହୋଇଥିବା ।

ଉପଲେପ—ପୁଂ.ବି. (ଉପ + ଲିପ୍ + ଅ) ରଙ୍ଗ ଆଦିର ପୋଚ, ବୋଳିବା, ଲିପିବା,ମଲମ,ଅଞ୍ଜନ,ଗୋମୟାଦି ଦ୍ୱାରା ଲେପନ,ସକଳ ଇନ୍ଦ୍ରିୟର ଅବସାଦନ ।

ଉପଲେପନ—କ୍ଲୀ. ବି. (ଉପ + ଲିପ୍ + ଭା ଅନ) ଲେପନ, ମର୍ଦ୍ଦନ, ଉପଲେପ (ଦେଖ) ।

ଉପବକ୍ତା—ପୁଂ.ବିଂ. (ଉପ + ବଚ୍ + ତୃ) ଯଜ୍ଞରେ ପର୍ଯ୍ୟବେକ୍ଷକ, ଋତ୍ୱିକ୍‌ବିଶେଷ, ଯଜ୍ଞତତ୍ତ୍ୱାବଧାୟକ, ସଦସ୍ୟ, ଉପଦେଷ୍ଟା, ଯେ ଉପଦେଶ ଦିଏ ।

ଉପବଙ୍ଗ—ପୁଂ. ବି ବଙ୍ଗଦେଶର ସମୀପସ୍ଥ ଦେଶଭେଦ ।

ଉପବଞ୍ଚିତ—ପୁଂ.ବିଂ. (ଉପ + ବଞ୍ଚ୍ + ମ୍,ତ) ପ୍ରତାରିତ, ଛଳିତ, ତ୍ୟକ୍ତ ।

ଉପବଟ—ପୁଂ. ବି. ପିୟାଳବୃକ୍ଷ, ପିଆଶାଳଗଛ, ପିଆଳଗଛ ।

ଉପବନ—କ୍ଲୀ. ବି. (ଉପ + ବନ) ବାଡ଼ି, ତୋଟା, କୁଞ୍ଜବନ, ଉଦ୍ୟାନ, ବଗିଚା, (ଅବ୍ୟ) ବନସମୀପେ ।

ଉପବନ୍ଧ—ପୁଂ.ବି.(ଉପ + ବନ୍ଧ୍ + ଘ,ଅ) ବସ୍ତ୍ରାଦିର ବନ୍ଧନ, କୌଣସିର ବନ୍ଧନ ଉଦ୍ଦେଶ୍ୟେ ତନ୍ତ୍ରକଥିତ ଅପରର ବନ୍ଧନ, ସାଂଖ୍ୟ ବିଶେଷ ଦ୍ୱାରା ସମ୍ବନ୍ଧ ପ୍ରତିପାଦନ, ପଦ୍ମାସନ, ରତିବନ୍ଧବିଶେଷ

ଉପବର୍ଣ୍ଣ—ବି. ବ୍ରାହ୍ମଣାଦି ଭିନ୍ନ ଅପ୍ରଧାନ ବର୍ଣ୍ଣ,ଉପଜାତି,ଶୂଦ୍ରବର୍ଣ୍ଣେତରଜାତି ।

ଉପବର୍ଣ୍ଣନ—କ୍ଲୀ. ବି. (ଉପ + ବର୍ଣ୍ଣ + ଅନ) ବିବରଣ, ସମ୍ୟକ୍ କୀର୍ତ୍ତନ, ଠିକ୍ ବର୍ଣ୍ଣନା, ସ୍ୱରୂପ ଲକ୍ଷଣ,ଗୁଣାଦି କଥନ ।

ଉପବର୍ତ୍ତନ—କ୍ଲୀ. ବି. (ଉପ + ବୃତ୍ + ଅନ) ବିଷୟ, ଜନପଦ,ବ୍ୟାୟାମସ୍ଥାନ, ଦେଶର ଏକାଂଶ, ସଜଳ ନିର୍ଜଳ ସ୍ଥାନ ମାତ୍ର ।

ଉପବର୍ଷ—ପୁଂ.ବି. ପାଣିନି, କାତ୍ୟାୟନ, ବ୍ୟାଡ଼ି ପ୍ରଭୃତି ବୈୟାକରଣମାନଙ୍କର ଅଧ୍ୟାପକ ଋଷିବିଶେଷ ।

ଉପବର୍ହ—ପୁଂ. ବି.(ଉପ + ବର୍ହ୍ + ଅ) ଉପଧାନ, ଶିରୋଧାନ, ମାଣ୍ଡି, ତକିଆ ।

ଉପବଲ୍ଲିକା—ସ୍ତ୍ରୀ.ବି.ଅମୃତସ୍ରବା ଲତା ।

ଉପବସଥ—ପୁଂ.ବି.(ଉପ + ବସ୍ + ଅଥ) ଗ୍ରାମ, ଯାଗ ପୂର୍ବଦିବସ ।

ଉପବସ୍ତ—କ୍ଲୀ. ବି. (ଉପ + ବସ୍ + ତ) ଉପବାସ, ଅନାହାର ।

ଉପବସ୍ତି—ସ୍ତ୍ରୀ. ବି. (ଉପ + ବସ୍ + ତି) ସ୍ତମ୍ଭ, ଉପସ୍ତମ୍ଭ ।

ଉପବାକ—ପୁଂ. ବି. (ଉପ + ବଚ୍ + ଅ) ପରସ୍ପର ଆଳାପ, ଯବ ।

ଉପବାକ୍କା—ସ୍ତ୍ରୀ. ବି. ଇନ୍ଦ୍ରଜବ, କୁରେଇ ମଞ୍ଜି ।

ଉପବାକ୍ୟ—ବିଂ. (ଉପ + ବଚ୍ + ଯ) ସମ୍ଭାଷଣୀୟ, ପ୍ରଣମ୍ୟ, ପ୍ରଣାମଯୋଗ୍ୟ ।

ଉପବାଦ—ପୁଂ.ବି.(ଉପ + ବଦ୍ + ଘ,ଅ) ଅପବାଦ, ନିନ୍ଦା ।

ଉପବାଦୀ—ପୁଂ.ବିଂ(ଉପ + ବଦ୍ + ଇନ) ନିନ୍ଦୁକ, ଅପବାଦକ ।

ଉପବାସ—ପୁଂ.ବି.(ଉପ + ବସ୍ + ଘ,ଅ) ଅନଶନ, ଲଙ୍ଘନ, ଭୋଜନାଭାବ, ଅନାହାର, ବାସ, ଅଗ୍ନ୍ୟାଧାନ,ଉପାସ ।

ଉପବାସକ—ପୁଂ. ବିଂ. (ଉପ + ବସ୍ + ଅକ) ଅନାହାରୀ, ଉପବାସକାରୀ ।

ଉପବାସନ—କ୍ଲୀ. ବି. (ଉପ + ବାସ + ଅନ) ଉପସେବନ ।

ଉପବାସୀ—ପୁଂ.ବିଂ.(ଉପ + ବସ୍ + କ, ଇନ୍) ଉପୋଷିତ, ଅନାହାରୀ, ଯେ ଉପବାସ କରିଥାଏ, ବ୍ରତାର୍ଥ ଉପବାସ କରିଥିବା, (ସ୍ତ୍ରୀ) ଉପବାସିନୀ ।

ଉପବାହନ—କ୍ଲୀ ବି.(ଉପ + ବହ୍ + ଣି + ଅନ) ସମୀପଗମନ ।

ଉପବାହୀ—ବିଂ.(ଉପ + ବହ୍ + କ,ଇନ୍) ସମୀପେ ପ୍ରବହମାଣ (ନଦନଦୀଇତ୍ୟାଦି)

ଉପବାହ୍ୟ—ପୁଂ.ବି.(ଉପ + ବହ୍ + ଯ) ରାଜଯାନ, ପାଟହାତୀ, ରାଜବାହକ ହସ୍ତୀ,(କ୍ଲୀ) ରାଜପଥ ।

ଉପବିଦ୍—ସ୍ତ୍ରୀ.ବି.(ଉପ + ବିଦ୍ + କ୍ୱିପ୍) ପ୍ରାପ୍ତି, ଜ୍ଞାନ (ବିଂ) ପ୍ରାପ୍ତା, ଜ୍ଞାତା, ବୋଦ୍ଧା ।

ଉପବିଦ୍ୟା—ସ୍ତ୍ରୀ. ବି. ହୀନବିଦ୍ୟା, ଅପବିଦ୍ୟା, ଶିଳ୍ପବିଦ୍ୟା, କଳାବିଦ୍ୟା, ବ୍ୟାବହାରିକ ବିଦ୍ୟା ।

ଉପବିଧି—ପୁଂ. ବି. କୌଣସି ନିୟମର ଆନୁଷଙ୍ଗିକ ବିଧାନ ।

ଉପବିଷ—କ୍ଲୀ. ବି. (ଉପ + ବିଷ) ଗୁର, ବାର, କୃତ୍ରିମବିଷ, ଅରଖ ଗଛର ଅଠା ପ୍ରଭୃତି ପଞ୍ଚଦ୍ରବ୍ୟ,(ପୁଂ) ବିଷବିଶେଷ ।

ଉପବିଷା—ସ୍ତ୍ରୀ. ବି. ଅତିବିଷା ।

ଉପବିଷ୍ଟ—ପୁଂ. ବିଂ. (ଉପ + ବିଶ୍ + କ,ତ) ଆସୀନ, ଯେ ବସିଥାଏ, ବସିଛି, ସିଂହାସନରେ ବସିଥିବା ।

ଉପବୀତ—କ୍ଲୀ.ବି.(ଉପ + ବି + ଇ + କ,ତ) ବାମସ୍କନ୍ଧସ୍ଥାପିତ ଯଜ୍ଞସୂତ୍ର, ପଇତା, ପୈତା, ଯଜ୍ଞସୂତ୍ର, ଯଜ୍ଞୋପବୀତ ।

ଉପବୀଣ୍ଠ—ପୁଂ. ବି. ଯଜ୍ଞସୂତ୍ରଧାରୀ, ପଇତାଧାରୀ, ଯଜ୍ଞୋପବୀତଧାରୀ, ପଇତାପକା ।

ଉପବୃଂହିତ-ବିଂ.(ଉପ + ବୃହ + ଣି + ତ) ଉଚ୍ଛ୍ବସିତ, ବର୍ଦ୍ଧିତ, ଫୁଲିଥିବା, ଯୁକ୍ତ, ଅଙ୍ଗବବର୍ଦ୍ଧିତ, ସମାପ୍ତ ।

ଉପବେଣୀ—ସ୍ତ୍ରୀ. ବି. ନଦୀବିଶେଷ ।

ଉପବେଦ—ପୁଂ. ବି. (ଉପ + ବେଦ) ବେଦ ସଦୃଶ, ବେଦଠାରୁ ନିକୃଷ୍ଟ ବିଦ୍ୟା,ଆୟୁର୍ବେଦ,ଧନୁର୍ବେଦ ପ୍ରଭୃତି ।

ଉପବେଶ—ପୁଂ.ବି. (ଉପ + ବିଶ୍ + ଅ, ଅ) ସ୍ଥିତି, ବସିବା, ଆସକ୍ତ, ବେଶ, ଆସନଗ୍ରହଣ ।

ଉପବେଶକ—ପୁଂ. ବିଂ.(ଉପ + ବିଶ୍ + କ,ଅକ)ଉପବେଷ୍ଟା, ଉପବେଶନକର୍ତ୍ତା, ଯେ ବସେ ।

ଉପବେଶନ—କ୍ଲୀ. ବି. (ଉପ + ବିଶ୍ + ଅ,ଅନ) ସ୍ଥିତି, ଆସନ, ସ୍ଥାପନ,ବସାଇବା,ନିବେଶନ,ଆସନଗ୍ରହଣ,ରଖିବା ।

ଉପବେଶୟିତା—ପୁଂ.ବିଂ. (ଉପ + ବିଶ୍ + ଣି + ତୃ) ଯେ ବସାଇଦିଏ ।

ଉପବେଶିତ—ପୁଂ.ବିଂ. (ଉପ + ବିଶ୍ + ଣି + ମିଂ,ତ) ଯାହାକୁ ବସାହୋଇଅଛି, ସ୍ଥାପିତ, ଉପସ୍ଥାପିତ ।

ଉପବେଶି—ପୁଂ.ବି. (ଉପ + ବିଶ୍ + ଇ) ଯଜୁର୍ବେଦ ସମ୍ପ୍ରଦାୟ ପ୍ରବର୍ତ୍ତକ ଋଷିବିଶେଷ ।

ଉପବେଶୀ—ପୁଂ. ବିଂ. (ଉପ + ବିଶ୍ + କ, ଇନ୍) ଉପବେଶନକାରୀ, ଅବସ୍ଥିତ, ମଳତ୍ୟାଗବେଗଯୁକ୍ତ ।

ଉପବେଷ—ପୁଂ.ବିଂ.(ଉପ + ବିଷ୍ + ଅ) ପ୍ରାଦେଶମାତ୍ର ଅଙ୍ଗାର ଭାଗ କରିବାର କାଷ୍ଠ ।

ଉପବୈଣବ—କ୍ଲୀ. ବି. (ଉପବେଣୁ + ଅ) ତ୍ରିସନ୍ଧ୍ୟା,ପ୍ରାତଃ,ମଧ୍ୟାହ୍ନ ଓ ସାୟଂକାଳ ।

ଉପବ୍ୟାଖ୍ୟାନ—କ୍ଲୀ.ବି.(ଉପ + ବି + ଆ + ଖ୍ୟା + ଅନ) ଫଳ, ମାହାତ୍ମ୍ୟ ଓ ଉପାସନାଦି କଥନ ।

ଉପବ୍ୟାଘ୍ର—ପୁଂ. ବି. (ଉପ + ବ୍ୟାଘ୍ର) ଚିତକ, ଚିତାବାଘ, ହେଣ୍ଟାବାଘ, କଣ୍ଡିକାରିଗଛ, (ଅବ୍ୟ) ବ୍ୟାଘ୍ରସମୀପରେ ।

ଉପବ୍ୟୁଷସ୍ - (ଅବ୍ୟ) କର୍କାଗୃର୍ଯ୍ୟମତ, ଉଷାବିଗତେ ।

ଉପଶମ—ପୁଂ.ବି.(ଉପ + ଶମ୍ + ଅ,ଅ) ଇନ୍ଦ୍ରିୟନିଗ୍ରହ, ତୃଷ୍ଣାନାଶ, ଶାନ୍ତି, ରୋଗୋପଦ୍ରବ ଶାନ୍ତି, ନିବୃତ୍ତି ।

ଉପଶମକ—ବିଂ.(ଉପ + ଶମ୍ + କ,ଅକ) ଯେ ଉପଶମ କରେ, ଯଦ୍ଦ୍ୱାରା ଉପଶମ ହୁଏ ।

ଉପଶମନ—କ୍ଲୀ. ବି. (ଉପ + ଶମ୍ + ଅ, ଅନ) ଉପଶମ, ନିବାରଣ, ଶାନ୍ତ୍ୱନା, ପ୍ରତିକାର ।

ଉପଶମନୀୟ—ବିଂ. (ଉପ + ଶମ୍ + ମିଂ, ଅନୀୟ) ଉପଶମର ଯୋଗ୍ୟ, ଯାହାର ଉପଶମ କରିହେବ, ପ୍ରତିକାର୍ଯ୍ୟ, ଶାନ୍ତ୍ୱନୀୟ (ସ୍ତ୍ରୀ) ଉପଶମନୀୟା ।

ଉପଶମିତ — ବିଂ.(ଉପ + ଶମ୍ + ମିଂ,ତ) କୃତୋପଶମ, ଯାହାର ଉପଶମ କରା ହୋଇଅଛି, ନିବୃତ୍ତ, ଉପଶାନ୍ତ, ନିଗୃହୀତ, ରୋଗନିବୃତ୍ତ ।

ଉପଶୟ—ପୁଂ.ବି.(ଉପ + ଶୀ + ଅ,ଅ) ସମୀପଶୟନ, ଅନୁକୂଳ ଔଷଧ ବା ପଥ୍ୟ, ପାଖରେ ଥୋଇବ, ଦୋଡ଼, ଗର୍ଭବିଶେଷ, ମୃଗମାରିବା ନିମିତ୍ତ ବ୍ୟାଧର ଲୁଚି ରହିବା ସ୍ଥାନ, ନିଦାନୋକ୍ତ ପୀଡ଼ାଜନ୍ୟ ବିପରୀତ ଅର୍ଥକାରୀ ଔଷଧ ଓ ଅନ୍ନାଦି ଦ୍ୱାରା ସୁଖାବହ ଉପଯୋଗ ।

ଉପଶଲ୍ୟ—କ୍ଲୀ. ବି.(ଉପ + ଶଲ + ଯ) ଗ୍ରାମପ୍ରାନ୍ତଭାଗ, ଗ୍ରାମାନ୍ତ, ଗାଁମୁଣ୍ଡ ।

ଉପଶାଖା—ସ୍ତ୍ରୀ. ବି. ଶାଖାନିଃସୃତ ଶାଖା, ଶାଖାର ଶାଖା ।

ଉପଶାନ୍ତ — ବିଂ. (ଉପ + ଶମ୍ + କ,ତ) ଉପଶମପ୍ରାପ୍ତ, ନିବୃତ୍ତ, ସଂଯତ,ତେଜୋହୀନ, ନିର୍ବାଣ, ବିଗତ, ସଂଯତେନ୍ଦ୍ରିୟ ।

ଉପଶାନ୍ତି—ସ୍ତ୍ରୀ.ବି.(ଉପ + ଶମ୍ + ଭା,ତି) ନିବୃତ୍ତି,ଆରୋଗ୍ୟ, ଉପଶମ (ବିଂ) ଉପଶାନ୍ତ ।

ଉପଶାୟ—ପୁଂ.ବି.(ଉପ + ଶୀ + ଅ,ଅ) ବିଶାୟ, ପ୍ରହରୀମାନଙ୍କର ପାଳିକ୍ରମେ ଶୟନ ।

ଉପଶାୟୀ — ପୁଂ.ବିଂ. (ଉପ + ଶୀ + କ, ଇନ୍) ସମୀପଶାୟୀ, ଶୟନଶୀଳ ।

ଉପଶିଙ୍ଘନ — କ୍ଲୀ. ବି. (ଉପ + ଶିଙ୍ଘି + ଅନ) ଆଘ୍ରାଣ, ଆଘ୍ରାପଣ, ଶୁଙ୍ଘିବା ।

ଉପଶିଷ୍ୟ — ପୁଂ. ବି. ଶିଷ୍ୟର ଶିଷ୍ୟ ।

ଉପଶୋଭ — କ୍ଲୀ.ବି .ଆରୋପିତ ଶୋଭା ।

ଉପଶୋଭନ — କ୍ଲୀ. ବି. (ଉପ + ଶୋଭ + ଭା,ଅନ) ଶୋଭନକରିବା, ମଣ୍ଡନ ।

ଉପଶୋଭା — ସ୍ତ୍ରୀ.ବି. (ଉପ + ଶୁଭ୍ + ଅ + ଆ) ଅଧିଶୋଭା, ଅଧିଶୟ ଶୋଭା ।

ଉପଶୋଭିତ — କ୍ଲୀ.ବିଂ (ଉପ + ଶୁଭ୍ + ତ) ଶୋଭାଯୁକ୍ତ, ଅଳଙ୍କୃତ, ଶୋଭିତ, ବିଭୂଷିତ ।

ଉପଶୋଷଣ — କ୍ଲୀ. ବି. (ଉପ + ଶୋଷି + କ,ଅନ) ଶୋଷୟିତା ।

ଉପଶୋଷିତ — ବିଂ.(ଉପ + ଶୁଷ + ଣି + କ,ତ) ନୀରସୀକୃତ ।

ଉପଶ୍ରୟ — ପୁଂ. ବି.(ଉପ + ଶ୍ରୀ + ଭା,ଅ) ଅବଲମ୍ବନ । [ ଯଜ୍ଞ ।

ଉପଶ୍ରୁତ୍ — ପୁଂ.ବି.(ଉପ + ଶ୍ରୁ + କ୍ୱିପ୍)

ଉପଶ୍ରୁତ — ପୁଂ.ବିଂ.(ଉପ + ଶ୍ରୁ + ମିଂ,ତ) ଅଙ୍ଗୀକୃତ, ପ୍ରତିଶ୍ରୁତ, ସ୍ୱୀକୃତ, (ବି) ଉପଶ୍ରୁତି ।

ଉପଶ୍ରୁତି - ସ୍ତ୍ରୀ.ବି.(ଉପ + ଶ୍ରୁ + ଭା.ତି) ଅଙ୍ଗୀକାର, ଉପକାର, କିମ୍ବଦନ୍ତୀ, ଦୈବପ୍ରଶ୍ନ, ସମୀପ ଶ୍ରବଣ, ସନ୍ଦେହ ନିର୍ଣ୍ଣୟିକା ଦେବୀ, ରାତ୍ରିରେ ବହିର୍ଗମନ କାଳେ ଯାହା କିଛି ଶୁଭାଶୁଭ ବାକ୍ୟ ଶୁଣାଯାଏ ସେହି ଦୈବପ୍ରଶ୍ନ ଉପଶ୍ରୁତି ।

ଉପଶ୍ଳିଷ୍ଟ - ବିଂ. ( ଉପ + ଶ୍ଳିଷ୍ + ତ ) ସନ୍ନିକୃଷ୍ଟ, ସଂଶ୍ଳିଷ୍ଟ, ଆଲିଙ୍ଗିତ, ବନ୍ଧିତ ।

ଉପଶ୍ଳେଷ—ପୁଂ.ବି. (ଉପ + ଶ୍ଳିଷ୍ + ଅ) ଆଧାର ଆଧେୟର ଏକଦେଶ ସମ୍ବନ୍ଧ, ଆଲିଙ୍ଗନ, ବନ୍ଧନା, ଆଶ୍ଳେଷ ।

ଉପଶ୍ଳେଷଣ—କ୍ଲୀ. ବି. (ଉପ + ଶ୍ଳିଷ୍ + ଅନ) ଆଧାନ, ଆଧାର ଓ ଆଧେୟର ଏକଦେଶ ।

ଉପଷ୍ଟମ୍ଭ—ପୁଂ.ବି. (ଉପ+ସ୍ତମ୍ଭ୍+ଅ) ପତନପ୍ରତିରୋଧ, ଉପକ୍ରମ, ଆରମ୍ଭ, ସ୍ତମ୍ଭନ, ଆଲମ୍ବନ,ଆଡ଼ମ୍ବର, ଉଦ୍ରେକ, ପ୍ରୟୋଜନ, ଉପଲକ୍ଷ ।

ଉପଷ୍ଟମ୍ଭକ—ବିଂ.(ଉପ+ସ୍ତମ୍ଭ୍+ଅକ) ପତନନିବାରକ, ସ୍ତମ୍ଭାଦି, ଆଧିକ୍ୟ, ଆତିଶଯ୍ୟ ।

ଉପସଂକ୍ରମଣ—କ୍ଲୀ. ବି. (ଉପ+ସମ୍+କ୍ରମ+ଭା,ଅନ) ସନ୍ନିବେଶ, ଉପଗମନ

ଉପସଂକ୍ରାନ୍ତ—ବିଂ.(ଉପ+ସମ୍+କ୍ରମ୍+କ,ତ) ଉପଗତ, ପ୍ରାପ୍ତ ।

ଉପସଂକ୍ଷେପ—ପୁଂ. ବି. ସଂକ୍ଷେପ, ସାର, ଚୁମ୍ବକ ।

ଉପସଂଖ୍ୟାତ—ବିଂ. (ଉପ+ସମ୍+ଖ୍ୟା+ର୍ମି,ତ) ସଂଗୃହୀତ, ଗଣିତ ।

ଉପସଂଖ୍ୟାନ —କ୍ଲୀ. ବି. (ଉପ+ସମ୍+ଖ୍ୟା+ଭା,ଅନ) ଗଣନା, ସଂଗ୍ରହ,ବିଶେଷଣ, ବ୍ୟାକରଣ ସୂତ୍ର ଅନୁକ୍ତ ବାକ୍ୟର ଅର୍ଥ ବାର୍ତ୍ତିକାଦିଦ୍ୱାରା କଥନ ।

ଉପସଂଗ୍ରହ—ପୁଂ.ବି.(ଉପ+ସମ୍+ଗ୍ରହ୍+ଭା,ଅ) ପାଦଗ୍ରହଣ, ଅଭିବାଦ,ଉପକରଣ,ସମ୍ୟକ୍ ଗ୍ରହଣ, ସଞ୍ଚୟ, ଗୋଡ଼ତଳେ ପଡ଼ିବା ।

ଉପସଂଗ୍ରହଣ—କ୍ଲୀ.ବି.(ଉପ+ସମ୍+ଗ୍ରହ୍+ଭା,ଅନ) ପାଦଗ୍ରହଣ ପୂର୍ବକ ପ୍ରଣାମ, ସମ୍ୟକ୍ ସଂଗ୍ରହ, ଗୋଡ଼ତଳେ ପଡ଼ିବା ।

ଉପସଂଗ୍ରାହ୍ୟ ପୁଂ. ବିଂ. (ଉପ+ସମ୍+ଗ୍ରହ୍+ଯ) ବନ୍ଦନୀୟ,ଅଭିବାଦ୍ୟ, ପାଦଧାରଣ ପୂର୍ବକ ପ୍ରଣାମଯୋଗ୍ୟ ।

ଉପସଂଯମ—ପୁଂ. ବି.(ଉପ+ସମ୍+ଯମ୍+ଅ)ଉପସଂହାର,ସମ୍ୟକ୍‌ନିୟମ,ବନ୍ଧନ, ବନ୍ଧନସାଧନ, ଇନ୍ଦ୍ରିୟଦମନ,ପ୍ରଳୟ ।

ଉପସଂଯୋଗ—ପୁଂ. ବି. (ଉପ+ସମ୍+ଯୁଜ୍+ଅ) ନିକଟ ସମ୍ବନ୍ଧ ।

ଉପସଂରୋହ—ପୁଂ. ବି. (ଉପ+ସମ୍+ରୁହ୍+ଅ) ନିକଟପ୍ରରୋହ ।

ଉପସମ୍ବାଦ—ପୁଂ.ବି.(ଉପ+ସମ୍+ବଦ୍+ଅ) ପଣବନ୍ଧଦ୍ୱାରା ଅଙ୍ଗୀକାର ପୂର୍ବକ କଥନ, ପ୍ରତିଶ୍ରୁତ ବର୍ଣ୍ଣନ, ପରିଭାଷା ।

ଉପସଂବ୍ୟାନ—କ୍ଲୀ. ବି. (ଉପ+ସମ୍+ବ୍ୟେ+ଅନ)ପରିଧାନ ବସ୍ତ୍ର,ପିନ୍ଧାଲୁଗା, ଉତ୍ତରୀୟ ବସ୍ତ୍ର ।

ଉପସଂହରଣ,ଉପସଂହାର—କ୍ଲୀ.ବି. (ଉପ+ସମ୍+ହୃ+ଅନ) ସମାପ୍ତି, ଶେଷ, ସଂଗ୍ରହ, ସମ୍ୟକ୍ ହରଣ, ନାଶ, ମୃତ୍ୟୁ, ସଙ୍କୋଚ (ପୁଂ. ବି.) (ଉପ+ସମ+ହୃ+ଅ)ସାରସଙ୍କଳନ,ମୀମାଂସା,ଆରବ୍ଧ ବା ପ୍ରସ୍ତାବିତ ବିଷୟର ଶେଷ,ଆକ୍ରମଣ, ନିବର୍ତ୍ତନ ।

ଉପସଂହୃତ—ବିଂ. (ଉପ+ସମ+ହୃ+ର୍ମି,ତ) ସମାପିତ, ଯାହାର ଉପସଂହାର ହୋଇଅଛି, ନିଗୃହୀତ, ବିନାଶିତ, ଅପନୀତ, ଉପଶ୍ଳେଷିତ, ସଙ୍କୁଚିତ ।

ଉପସଂହୃତି—ସ୍ତ୍ରୀ. ବି. (ଉପ+ସମ୍+ହୃ+ତି) ବିନାଶ, କ୍ଷୟ, ସଙ୍କୋଚ, ଉପସଂହାର (ଦେଖ) ।

ଉପସଙ୍ଗତ—ବିଂ. (ଉପ+ସମ+ଗମ+କ,ତ) ସମବେତ, ମିଳିତ ।

ଉପସତ୍ତା—ପୁଂ. ବିଂ. (ଉପ+ସଦ୍+ତୃ) ଆସନ୍ନ, ନିକଟସ୍ଥ, ଅନୁଗତ, ସେବକ ।

ଉପସତ୍ତି—ସ୍ତ୍ରୀ. ବି.(ଉପ+ସଦ୍+ଭା,ତି) ସଙ୍ଗ, ସେବା, ନିକଟକୁ ଯିବ, ପ୍ରତିପାଦନ, ଅନୁରକ୍ତି, ଉପାସନା, ଦାନ, ଉପସ୍ଥିତି, ପାଖଦେଇ ଯିବା ।

ଉପସଦ୍—ପୁଂ.ବି. (ଉପ+ସଦ୍+କ୍ୱିପ୍) ଅଗ୍ନି ବିଶେଷ (ବିଂ) ସମୀପସ୍ଥିତ (ସ୍ତ୍ରୀ) ଯାଗଭେଦ ।

ଉପସଦ—ପୁଂ. ବି. (ଉପ+ସଦ୍+ଅ) ଉପସଦ୍ ଯାଗର ଦିନ, ଯେଉଁ ଦିବସ ଯଜ୍ଞକାରୀ ଅଳ୍ପାହାର କରିବାକୁ ପାଏ, ନିକଟବର୍ତ୍ତିତା, ପାଖଦେଇ ଯିବା, (ବିଂ) ନିକଟବର୍ତ୍ତୀ, ସମୀପଗାମୀ ।

ଉପସଦନ—କ୍ଲୀ.ବି.(ଉପ+ସଦ୍+ଅନ) ଗୃହସମୀପ, ଉପସେବନ, ସେବା, ପ୍ରାପ୍ତି, ଉପସ୍ଥିତି, ପାଦଗ୍ରହଣ, ନିକଟବର୍ତ୍ତିତା (ଅବ୍ୟ) ଗୃହ ନିକଟରେ ।

ଉପସଦୀ—ସ୍ତ୍ରୀ.ବି. (ଉପ+ସଦ୍+ଅ+ଈ) ସନ୍ତତି, ଧାରା ।

ଉପସଦ୍ୟ—ବିଂ. ( ଉପ+ସଦ୍+ଯ ) ସେବନୀୟ, ନିକଟରେ ପ୍ରାପ୍ୟ ।

ଉପସଦ୍‌ବନ୍—ବିଂ. (ଉପ+ସଦ୍+ବନ୍) ଉପସନ୍ନ, ସେବକ, ସେବ୍ୟ ।

ଉପସଦ୍‌ବ୍ରତ—କ୍ଲୀ.ବି. ଜଳବ୍ରତବିଶେଷ, କେବଳ ମାତ୍ର ଜଳପାନ କରି ଏହି ବ୍ରତ କରିବାକୁ ହୁଏ ।

ଉପସନ—କ୍ଲୀ. ବି. ରୋଜଗାର,ଅର୍ଜନ ।

ଉପସନ୍ତାନ—ପୁଂ. ବି. ସନ୍ତାନତୁଲ୍ୟ ବ୍ୟକ୍ତି, ଏକବଂଶୋଦ୍ଭବ, ସଗୋତ୍ର, ଉତ୍ତରପୁରୁଷ ।

ଉପସନ୍ନ—ବିଂ. (ଉପ+ସଦ୍+କ, ତ) ଉପସ୍ଥିତ, ନିକଟାଗତ, ଉପସେବକ, ଆସନ୍ନ, ସମୀପସ୍ଥ ।

ଉପସନ୍ନ୍ୟାସ—ପୁଂ.ବି. (ଉପ+ସମ୍+ନି+ଅସ୍+ଭା,ଅ) ଯଥାବିଧି ତ୍ୟାଗ, ଅନାସଙ୍ଗ ।

ଉପସମାଧାନ—କ୍ଲୀ. ବି. (ଉପ+ସମ୍+ଆ+ଧା+ଭା,ଅନ) ରାଶୀକରଣ, ସମିଧନିକ୍ଷେପ ପୂର୍ବକ ଜଳାଇବା ବା ଜାଳିବା ।

ଉପସମ୍ପତ୍ତି—ସ୍ତ୍ରୀ. ବି. (ଉପ+ସମ୍+ପଦ+ଭା,ତି) ଅଭିନବସମ୍ପତ୍ତି, ନୂତନ ସମ୍ପତ୍ତି, ଉପଶ୍ଳେଷ, ସମ୍ବନ୍ଧ ।

ଉପସମ୍ପନ୍ନ—ବିଂ.(ଉପ+ସମ୍+ପଦ୍+କ,ତ) ପ୍ରାପ୍ତ, ମୃତ, ବିଶିଷ୍ଟ, ଯୁକ୍ତ, ଯଜ୍ଞାର୍ଥମୃତ (ପଶୁ), ମିଳିତ,ପାକସମ୍ପନ୍ନ, ପକ୍ୱ, ପର୍ଯ୍ୟାପ୍ତ, ପ୍ରସ୍ତୁତ,ଲବ୍ଧ, ଅନ୍ୱିତ, ଆଢ୍ୟ, ସମୀପବର୍ତ୍ତୀ ।

ଉପସମ୍ଭାଷା—ସ୍ତ୍ରୀ. ବି. (ଉପ+ସମ୍+ଭାଷ୍+ଅ+ଆ)ସାନ୍ତ୍ୱନା, ଆଶ୍ୱାସନା ।

ଉପସର—ପୁଂ. ବି. (ଉପ+ସୃ+ଭା,ଅ) ନିର୍ଗମନ, ଅଭିଗମନ, ନିରନ୍ତର, ପେଟରେ ହେବା, ଗାଈମାନଙ୍କର ଗର୍ଭାଧାନାର୍ଥ ବୃଷାଦିର ମୈଥୁନାଭିଯୋଗ ।

ଉପସରଣ—କ୍ଲୀ. ବି. (ଉପ+ସୃ+ଭା, ଅନ) ଉପସର, ସମୀପଗମନ, ହୃତ୍‌ପିଣ୍ଡାଭିମୁଖେ ରକ୍ତର ଦ୍ରୁତଗତି ।

ଉପସର୍ଗ—ପୁଂ. ବି. (ଉପ+ସୃଜ୍+ଅ) ମୃତ୍ୟୁସୂଚକ ଲକ୍ଷଣ, ଭୂତାଦିର ଆବେଶ,

ଉପରାଗ, ଗ୍ରହଣ, ବିପଦ୍, ଅଶକୁନ, ଭୂକମ୍ପାଦି ଉତ୍ପାତ, ଉପଦ୍ରବ, ଅନିଷ୍ଟ, ବ୍ୟାଘାତ,ରୋଗବିକାର,ବ୍ୟାକରଣୋକ୍ତ ପ୍ର, ପରା ଆଦି ଅବ୍ୟୟ ଶବ୍ଦ ।

ଉପସର୍ଜ୍ଜନ—କ୍ଳୀ.ବି.(ଉପ + ସୃଜ୍ + ଣ, ଅନ) ସମୀପକୁ ଗମନ, ବର୍ଜନ, ପରିହାର, ଗ୍ରହଣ, ଉପରାଗ, ଅତିକ୍ରମ, ଉପସର୍ଗ, ଉତ୍ପାତ, ଉପଦ୍ରବ, ଅପ୍ରଧାନ ବ୍ୟକ୍ତି ବା ବସ୍ତୁ, ପ୍ରତିନିଧି, ଗୌଣ ବିଶେଷଣ, ଅପ୍ରଧାନ ପଦ,(ବିଂ) ଗୌଣ, ଅପ୍ରଧାନ ।

ଉପସର୍ପ—ପୁଂ. ବି. (ଉପ + ସୃପ୍ + ଣ, ଅ) ସମୀପକୁ ଗମନ, ଅନୁସରଣ,ପଶ୍ଚାଦ୍‌ଗମନ ।

ଉପସର୍ପକ—ପୁଂ. ବି. (ଉପ + ସୃପ୍ + କ, ଅକ) ସମୀପଗାମୀ, ନିକଟବର୍ତ୍ତୀ, ଅନୁସରଣକର୍ତ୍ତା,ପଶ୍ଚାଦ୍‌ଗାମୀ(ସ୍ତ୍ରୀ)ଉପସର୍ପିକା ।

ଉପସର୍ପଣ—କ୍ଳୀ. ବି. (ଉପ + ସୃପ୍ + ଣ, ଅନ ) ସମୀପକୁ ଗମନ, ଆନୁଗତ୍ୟ, ତୋଷାମଦ,ଉପନୀତ,ଉପସ୍ଥିତି,ନର୍ତ୍ତନ, ଉପାସନା ।

ଉପସର୍ପୀ—ପୁଂ. ବିଂ. ( ଉପ + ସୃପ୍ + ଇନ୍) ସମୀପଗନ୍ତା ନିକଟକୁ ଆସିଥିବା

ଉପସର୍ଯ୍ୟା—ସ୍ତ୍ରୀ. ବି. (ଉପ + ସୃ + ଯ + ଆ)ଗର୍ଭଯୋଗ୍ୟା ଋତୁମତୀ ଗୌ,ଯୁବତୀ, ବତର ପଡ଼ିଥିବା ଗାଈ, ଋତୁମତୀ ସ୍ତ୍ରୀ ।

ଉପସାଗର—ପୁଂ.ବି.ଯେଉଁ ସାଗରାଂଶର ପ୍ରାୟ ଚତୁର୍ଦ୍ଦିଗ ସ୍ଥଳଦ୍ୱାରା ବେଷ୍ଟିତ ।

ଉପସାର୍ଯ୍ୟ—ବିଂ. ( ଉପ + ସୃ + ଣିଂ,ଯ ) ପ୍ରାପଣୀୟ, ଯାହା ନିକଟକୁ ନିବାର ଆବଶ୍ୟକ (ସ୍ତ୍ରୀ) ଉପସାର୍ଯ୍ୟା ।

ଉପସୁନ୍ଦ—ପୁଂ. ବି. ନିକୁମ୍ଭ ନାମକ ଦୈତ୍ୟପୁତ୍ର, ସୁନ୍ଦର, କନିଷ୍ଠ ଭ୍ରାତା ।

ଉପସୂର୍ଯ୍ୟକ—କ୍ଳୀ. ବି. (ଉପସୂର୍ଯ୍ୟ + କ) ସୂର୍ଯ୍ୟମଣ୍ଡଳ, ସୂର୍ଯ୍ୟ ନିକଟରେ ମଣ୍ଡଳାକାର ପରିଧି, ଚନ୍ଦ୍ରମଣ୍ଡଳ, ଏକ ପ୍ରକାର କ୍ଷୁଦ୍ର ଜୁଳୁଜୁଳିଆପୋକ ।

ଉପସୃଷ୍ଟ—କ୍ଳୀ.ବି. (ଉପ + ସୃଜ୍ + ତ) ମୈଥୁନ (ବିଂ)ଉପସର୍ଗଗ୍ରସ୍ତ,ଉତ୍ପାତଗ୍ରସ୍ତ, ବିସୃଷ୍ଟ, ପୀଡ଼ିତ, କାମୁକ,ବ୍ୟ.ପ୍ର, ଯୁକ୍ତ, ଆକ୍ରାନ୍ତ (ପୁଂ.ବି.)ରାହୁୋପରାଗ୍ରସ୍ତ ଚନ୍ଦ୍ର ଆଦି ।

ଉପସେକ—ପୁଂ.ବି. (ଉପ + ସିଚ୍ + ଣ, ଅ) ଜଳାଦିସେଚନ ଦ୍ୱାରା ମୃଦୁକରଣ, ପାଣି ଦେଇ କଅଁଳ କରିବା ।

ଉପସେଚନ—କ୍ଳୀ. ବି. (ଉପ + ସିଚ୍ + ଣ,ଅନ) ଜଳସେକ (ବିଂ) ଉପସେକକର୍ତ୍ତା ।

ଉପସେନ—ପୁଂ. ବି. ବୁଦ୍ଧଦେବଙ୍କର ଜଣେ ପ୍ରଧାନ ଶିଷ୍ୟ ।

ଉପସେବକ—ପୁଂ. ବିଂ. (ଉପ + ସେବ୍ + କ,ଅକ) ଉପଭୋଗକାରୀ, ପର ସ୍ତ୍ରୀ ଠାରେ ଆସକ୍ତ, ପରଗୃହକ, ପୂଜକ, (ସ୍ତ୍ରୀ) ଉପସେବିକା ।

ଉପସେବନ—କ୍ଳୀ. ବି.(ଉପ + ସେବ୍ + ଣ,ଅନ ) ପର ସ୍ତ୍ରୀଠାରେ ଆସକ୍ତି, ନିକଟେ ଥାଇ ସେବା, ସେବା, ପରିଚର୍ଯ୍ୟା, ଉପାସନା, ଆରାଧନା, ସମ୍ଭୋଗ, ଆଶ୍ରୟ ।

ଉପସେବା ସ୍ତ୍ରୀ. ବି. ପୂଜା, ଶୁଶ୍ରୂଷା, ସମ୍ଭୋଗ, ଶୁଶ୍ରୂଷା, ପାଳନ, ସମ୍ମାନ, ଅନୁସରଣ ।

ଉପସେବିତ— ବିଂ.(ଉପ + ସେବ୍ + ଣିଂ,ତ) ସେବିତ, ଆରାଧିତ, ପୂଜିତ, ଉପାସିତ, ସମ୍ଭୁକ୍ତ, ଉପଭୁକ୍ତ, ଚର୍ଚ୍ଚିତ, ପାଳିତ, (ସ୍ତ୍ରୀ) ଉପସେବିତା ।

ଉପସେବୀ—ପୁଂ.ବିଂ. (ଉପ + ସେବ୍ + କ,ଇନ୍) ପରିଚର୍ଯ୍ୟାକାରୀ, ଯେ ସେବା କରେ, ଅନୁଷ୍ଠାତା, ( ବି ) ସେବକ, ଅନୁସରଣିଆ, ଉମେଦୁଆର, (ସ୍ତ୍ରୀ) ଉପସେବିନୀ ।

ଉପସେବ୍ୟ—ପୁଂ.ବିଂ.(ଉପ + ସେବ୍ + ଣିଂ,ଯ ) ସମ୍ମାନାର୍ହ, ମାନ୍ୟାସ୍ପଦ, (ସ୍ତ୍ରୀ) ଉପସେବ୍ୟା ।

ଉପସ୍କର,ଉପସ୍କାର—ପୁଂ.ବି. (ଉପ + କୃ + ଅ) ବଟା ମସଲା, ହାତହତିଆର, ଉପକରଣ, ବାସନ, ବରତନ, ଘରକରଣା ଜିନିଷ, ବ୍ୟଞ୍ଜନାଦିର ବାଟିବା ବେସରାଦି, ଅସମ୍ପୂର୍ଣ୍ଣ ବାକ୍ୟ ବୋଧକ ଶବ୍ଦର ଅଧ୍ୟାହାର, ଯତ୍ନ, ଗୃହସଂସ୍କାର, ଗୁଣାନ୍ତରାଧାନ, ଅଧ୍ୟାହାର, ଅଳଙ୍କାର, କରଣ, ନିନ୍ଦା, ଅତିରିକ୍ତ ବସ୍ତୁ ବା ବିଷୟ ।

ଉପସ୍କରଣ—କ୍ଳୀ.ବି. (ଉପ + କୃ + ଅନ) ଭୂଷଣ, ଉପକରଣ, ସଂଘାତ, ଗୁଣାନ୍ତରାଧାନ ରୂପ ସଂସ୍କାର, ହିଂସା,ବିକାର, ଅଧ୍ୟାହାର, ଗୃହସ୍ଥର ପ୍ରୟୋଜନୀୟ ଦ୍ରବ୍ୟ, ସାମଗ୍ରୀ ।

ଉପସ୍କୀର୍ଣ୍ଣ- ବିଂ.(ଉପ + କୃ + ତ)ହିଂସିତ ।

ଉପସ୍କୃତ—ବିଂ. ( ଉପ + କୃ + ଣିଂ,ତ ) ଭୂଷିତ, ସଂହୃତ, ସଂସ୍କୃତ, ବିକୃତ, ଅଧ୍ୟାହୃତ, ସମବେତ,ନିନ୍ଦିତ, ଜଘନ୍ୟ-ପ୍ରୟୋଜନାପେକ୍ଷ୍ୟ ।

ଉପସ୍ତମ୍ଭ—ପୁଂ.ବି. (ଉପ + ସ୍ତମ୍ଭ + କ,ଅ) ଅବଲମ୍ବ, ସ୍ତମ୍ଭନ, ଆଶ୍ରୟ, ସ୍ଥିତ, ଜୀବନର ପ୍ରଧାନ ଅବଲମ୍ବନ, ଆହାର ନିଦ୍ରାଦି ।

ଉପସ୍ତମ୍ଭକ—ପୁଂ.ବିଂ.(ଉପ + ସ୍ତମ୍ଭ + କ, ଅକ) ସ୍ଥିତିକର, ସହକାରୀ ।

ଉପସ୍ତମ୍ଭନ—କ୍ଳୀ.ବି.(ଉପ + ସ୍ତମ୍ଭ + ଅନ) ଅବଲମ୍ବନ, ଆଧାର କାଷ୍ଠ ।

ଉପସ୍ତରଣ—କ୍ଳୀ. ବି. (ଉପ + ସ୍ତୃ + ଣ, ଅନ) ଆସ୍ତରଣ, ଭୂମିରେ ସମୀକରଣ, ବିଛେଇବା, ଶେଯ ପାରିବା ।

ଉପସ୍ତି—ପୁଂ. ବି. (ଉପ + ସ୍ତ୍ୟୈ + ଇ) ବୃକ୍ଷ ।

ଉପସ୍ତୁତ—ସ୍ତ୍ରୀ. ବି. (ଉପ + ସ୍ତୁ + ଣ,ତ) ସମୀପସ୍ତବ, ଶ୍ରବଣଯୋଗ୍ୟ ସ୍ତୁତିବାକ୍ୟ, ସାକ୍ଷାତ୍ ପ୍ରଶଂସା ।

ଉପସ୍ତ୍ରୀ—ସ୍ତ୍ରୀ. ବିଂ. (ଉପ + ସ୍ତ୍ରୀ) ଉପପତ୍ନୀ, ରକ୍ଷିତା ସ୍ତ୍ରୀ ।

ଉପସ୍ଥ—ପୁଂ. ବି.(ଉପ + ସ୍ଥା + ଅ)ମେଢ୍ର, ପୁଂଲିଙ୍ଗ, ଯୋନି, ସ୍ତ୍ରୀଲିଙ୍ଗ, ପାୟୁ, ଗୁହ୍ୟଦ୍ୱାର, ଅଙ୍କ, କୋଡ଼, ଉପରିଭାଗ, ଜଙ୍ଘ, ଅନ୍ତରାଳ, ସ୍ଥିତ, (ବିଂ) ସମୀପସ୍ଥିତ, ନିକଟସ୍ଥ, ନିମ୍ନସ୍ଥ । [ ଶିଶ୍ନ ।

ଉପସ୍ଥକ—ବି. (ଉପସ୍ଥ + କ) ପୁଂଲିଙ୍ଗ,

ଉପସ୍ଥକୃତ—ବ. ଚେକା ପକାଇ ବସିବା ।
ଉପସ୍ଥନିଗ୍ରହ—ପୁଂ.ବ. (୬ତତ୍) ଇନ୍ଦ୍ରିୟ-ନିଗ୍ରହ, ଇନ୍ଦ୍ରିୟ ସଂଯମ, ଆତ୍ମଶାସନ ।
ଉପସ୍ଥପତ୍ର—ପୁଂ. ବ. ଅଶ୍ୱତ୍ଥବୃକ୍ଷ ।
ଉପସ୍ଥାତା—ପୁଂ. ବିଂ.(ଉପ + ସ୍ଥା + କ. ତୃ) ଭୃତ୍ୟ, ଉପାସକ, ଉପନତ, ଯଥୋକ୍ତକାଳେ ଉପଗତ, ରକ୍ତ,ପ୍ରେଷ୍ୟ (ବ) ଋତ୍ୱିକ୍‌ବିଶେଷ, (ସ୍ତ୍ରୀ) ଉପସ୍ଥାତ୍ରୀ ।
ଉପସ୍ଥାନ—କ୍ଲୀ.ବ.(ଉପ + ସ୍ଥା + ଭା,ଅନ) ବାସସ୍ଥାନ, ଉପସ୍ଥିତ, ଆଗମନ, ଅନୁସନ୍ଧାନ, ଉପାସନା, ଉପସେବା, ହାଜର, ଦେବତାଗାର ଉପସର୍ପଣ, ଉଦ୍ଧରଣ, ସଭା ।
ଉପସ୍ଥାନୀୟ—ବିଂ (ଉପ + ସ୍ଥା + ମିଂ, ଅନୀୟ) ଉପାସକ, ଉପାସ୍ୟ ।
ଉପସ୍ଥାପକ—ପୁଂ.ବିଂ. (ଉପ + ସ୍ଥାପି + ଅକ) ପ୍ରସ୍ତାବକ, ପ୍ରସ୍ତାବକର୍ତ୍ତା, ସ୍ମାରକ, ଅନୁଭବ ଦ୍ୱାରା ମନରେ ଅନୁସନ୍ଧାନ-କାରକ (ସ୍ତ୍ରୀ) ଉପସ୍ଥାପିକା ।
ଉପସ୍ଥାପନ—କ୍ଲୀ. ବ. (ଉପ + ସ୍ଥାପି + ଅନ) ଉପସ୍ଥିତକରଣ, ପ୍ରସ୍ତାବ, ଆନୟନ, ଉତ୍ଥାପନ, ସ୍ମରଣ, ଅବଧାରଣା ।
ଉପସ୍ଥାପୟିତା—ପୁଂ.ବିଂ.(ଉପ + ସ୍ଥା + ଣି + ତୃ) ଉପସ୍ଥାପକ (ଦେଖ), (ସ୍ତ୍ରୀ) ଉପସ୍ଥାପୟିତ୍ରୀ ।
ଉପସ୍ଥାପିତ—ବିଂ. (ଉପ + ସ୍ଥାପି + ମିଂ, ତ) ପ୍ରସ୍ତାବିତ, ଆନୀତ, ବୋଧିତ ।
ଉପସ୍ଥାବର—ସ୍ତ୍ରୀ. ବ. (ଉପ + ସ୍ଥା + ବରଚ୍) ପୁରୁଷମେଧ ଯଜ୍ଞରେ ଉପାସ୍ୟ ଦେବତାବିଶେଷ ।
ଉପସ୍ଥିତ—ବିଂ. (ଉପ + ସ୍ଥା + କ,ତ) ସମୀପସ୍ଥିତ, ସମୀପାଗତ, ପ୍ରାପ୍ତ, ବର୍ତ୍ତମାନ, ବିଦ୍ୟମାନ, ପ୍ରକ୍ରାନ୍ତ, ବେଦାର୍ଥ ପ୍ରକ୍ତ, ସ୍ମୃତ, ସେବିତ, ଆନୀତ, ଆଗନ୍ତୁକ, (ବ) ସେବନ, ଉପସ୍ଥାନ ।
ଉପସ୍ଥିତବୁଦ୍ଧି—ସ୍ତ୍ରୀ. ବ. (କ.ଧା) ନବନବୋନ୍ମେଷଶାଳିନୀ ବୁଦ୍ଧି, ପ୍ରତିଭା, ଫିକର, ପ୍ରତ୍ୟୁତ୍ପନ୍ନମତି, (ବିଂ) ଯାହାର ପ୍ରତ୍ୟୁତ୍ପନ୍ନମତି ଅଛି, ଫନ୍ଦିବାଜ୍, ଫିକରିଆ

ଉପସ୍ଥିତା—ସ୍ତ୍ରୀ. ବିଂ. (ଉପ + ସ୍ଥା + ତ + ଆ) ଆଗତା, ପ୍ରାପ୍ତା, ମିଳିତା, (ବ) ଦଶାକ୍ଷରପାଦକ ଛନ୍ଦୋବିଶେଷ ।
ଉପସ୍ଥିତି—ସ୍ତ୍ରୀ. ବ. (ଉପ + ସ୍ଥା + ତି) ଉପସ୍ଥାନ, ବର୍ତ୍ତମାନତା ବିଦ୍ୟମାନତା, ଉପାସନା, ସ୍ମୃତି, ପ୍ରବେଶ, ଉଦ୍ଧରଣ, ପହଞ୍ଚିବା, ନିକଟକୁ ଆଗମନ, ହାଜର ।
ଉପସ୍ଥୂଳ—ବିଂ. କ୍ଷରିତ,ଗଳିତ,ତ୍ୟକ୍ତ ।
ଉପସ୍ଥେୟ—ବିଂ. (ଉପ + ସ୍ଥା + ମିଂ.ଯ) ଉପସେବ୍ୟ, ପୂଜ୍ୟ ।
ଉପସ୍ନାତ-ପୁଂ.ବିଂ(ଉପ + ସ୍ନା ତ)ଦେହରେ ପାଣି ସିଞ୍ଚ ହୋଇଥିବା, ଅର୍ଦ୍ଧସ୍ନାତ ।
ଉପସ୍ନାନ—କ୍ଲୀ. ବ. (ଉପ + ସ୍ନାନ)ଅଙ୍ଗବିଶେଷ ଧୋଇବା,ଅର୍ଦ୍ଧସ୍ନାନ,ଦେହରେ ପାଣିସିଞ୍ଚା । [ଗଳିତ ।
ଉପସ୍ନୁତ—ବିଂ. (ଉପ + ସ୍ନୁ ତ)କ୍ଷରିତ,
ଉପସ୍ନେହ—ପୁଂ.ବ.(ଉପ + ସ୍ନିହ୍ + ଭା. ଅ) କ୍ଲେଦ, ସଞ୍ଚରଣ, ସ୍ନେହ, ଆର୍ଦ୍ର ଦ୍ରବ୍ୟର ସଂସ୍ପର୍ଶରେ ଆର୍ଦ୍ରତା ।
ଉପସ୍ପର୍ଶ—ପୁଂ. ବ. (ଉପ + ସ୍ପୃଶ୍ + ଅ) ସ୍ପର୍ଶ, ସ୍ନାନ, ଆଚମନ, ଆଞ୍ଚୋଇବା, ଉପସ୍ପର୍ଶନ, ଛୁଇଁବାର, ପ ନ,ଦାନ ।
ଉପସ୍ପର୍ଶନ—କ୍ଲୀ. ବ. (ଉପ + ସ୍ପୃଶ୍ + ଭା,ଅନ) ଉପସ୍ପର୍ଶ (ଦେଖ) ।
ଉପସ୍ପୃଷ୍ଟ—ବିଂ. (ଉପ + ସ୍ପୃଶ୍ + କ,ତ) ଆଚମନ କରିଥିବା, କୃତାଚମନ,ସ୍ନାତ, ସଂସ୍ପୃଷ୍ଟ (ବ) ଉପସ୍ପର୍ଶ, ଆଚମନ ।
ଉପସ୍ରବଣ—କ୍ଲୀ.ବ.(ଉପ + ସ୍ରୁ + ଅନ) ସମ୍ୟକ୍‌କ୍ଷରଣ ।
ଉପସ୍ୱତ୍ୱ—କ୍ଲୀ. ବ. ଖଜଣା, ଆୟ, ଲାଭ, ଭୂମି ପ୍ରଭୃତି ସମ୍ପତ୍ତିରୁ ଯାହା ପାଇବାକୁ ହୁଏ, ଅଧିକାର ।
ଉପସ୍ୱାବାନ୍—ପୁଂ. ବ. ସବାଜିତଙ୍କର ଦ୍ୱିତୀୟ ପୁତ୍ର ।
ଉପସ୍ୱେଦ—ପୁଂ. ବ. (ଉପ + ସ୍ୱିଦ୍ + ଅ) ଅଗ୍ନ୍ୟାଦି ନିକଟସ୍ଥ ତାପ, ଉଷ୍ମା, ଉତ୍ତାପ, ସେକଦେବା ପ୍ରଭୃତି ।
ଉପସ୍ମୃତି—ବ. ଅପ୍ରଧାନ ଧର୍ମ୍ମ ଶାସ୍ତ୍ର, ଅପ୍ରଧାନ ସ୍ମୃତି ।

ଉପହତ—ପୁଂ.ବିଂ.(ଉପ + ହନ୍ + ମିଂ,ତ) ଆହତ, ଉତ୍ପାତଗ୍ରସ୍ତ, ଉପସୃଷ୍ଟ, ଅଭିଭୂତ, ଦୂଷିତ, ହତ,ଆବିଷ୍ଟ, ନଷ୍ଟ, ବିନାଶିତ, ପ୍ରତିବନ୍ଧ,ବିଘଟିତ,ଆକ୍ରାନ୍ତ, ଭେଲ ।
ଉପହତକ—ପୁଂ. ବିଂ. (ଉପହତ + କ) ହତଭାଗ୍ୟ, ମନ୍ଦଭାଗ୍ୟ ।
ଉପହତି-ସ୍ତ୍ରୀ.ବ. (ଉପ + ହନ୍ + ଭା,ତି) ଉପଘାତ, କାର୍ଯ୍ୟରେ ଅସାମର୍ଥ୍ୟ, ପ୍ରତିହନନ, ଉପଦ୍ରବ, ବିନାଶ ।
ଉପହତ୍ନୁ—ପୁଂ.ବିଂ.(ଉପ + ହନ୍ + ତ୍ନୁ) ଉପହନ୍ତା, ବୈଦିକ ।
ଉପହନ୍ତା—ପୁଂ.ବ.(ଉପ + ହନ୍ + କ,ତୃ) ଉପଘାତକ, ଅପକାରକ, ନାଶକ ।
ଉପହରଣ—କ୍ଲୀ.ବ.(ଉପ + ହୃ + ଭା,ଅନ) ଖାଦ୍ୟବଣ୍ଟନ, ପରିବେଷନ, ସମୀପକୁ ଆନୟନ, ଦେବୋଦ୍ଦେଶ୍ୟେ ଅର୍ପଣ, ବଳ ପୂର୍ବକ ଗ୍ରହଣ, ବଳିପ୍ରଦାନ, ଉପଗ୍ରହ ପ୍ରଦାନ ।
ଉପହର୍ତ୍ତା—ପୁଂ. ବିଂ. (ଉପ + ହୃ + କ,ତୃ) ପରିବେଷକ, ଉପହାରଦାତା, ବଳିପ୍ରଦାନକାରୀ, ଖାଦ୍ୟବଣ୍ଟକ (ସ୍ତ୍ରୀ) ଉପହର୍ତ୍ତ୍ରୀ ।
ଉପହବ—ପୁଂ. ବ. (ଉପ + ହ୍ୱେ + ଭା,ଅ) ଆହ୍ୱାନ,ଯଜ୍ଞୀୟ ସମିଧ,ଆହ୍ୱାନମନ୍ତ୍ର, (ବିଂ) ଉପହୂତ ।
ଉପହବ୍ୟ—ପୁଂ. ବ. (ଉପ + ହୁ + ଯ) ସପ୍ତଦଶ ସୋମାତ୍ମକ ପଞ୍ଚଯଜ୍ଞ ମଧ୍ୟରେ ଯଜ୍ଞବିଶେଷ ।
ଉପହସନୀୟ—ପୁଂ. ବିଂ. (ଉପ + ହସ + ମିଂ, ଅନୀୟ) ଉପହାସଯୋଗ୍ୟ, ଥଟ୍ଟାକରିବାର ଯୋଗ୍ୟ ।
ଉପହସିତ—କ୍ଲୀ.ବ.(ଉପ + ହସ୍ + ଭା,ତ) ଉପହାସ, ଥଟ୍ଟା, ହାସ୍ୟ, ନିନ୍ଦାପୂର୍ବକ-ହାସ୍ୟ (ବିଂ) ଯାହାକୁ ଉପହାସକରାଯାଇଥାଏ ।
ଉପହସ୍ତ—ପୁଂ. ବ. ହସ୍ତଦ୍ୱାରା ଗ୍ରହଣ, ପ୍ରତିଗ୍ରହ. (ବିଂ) ଯେ ପ୍ରତିଗ୍ରହଦ୍ୱାରା ଜୀବନ ଧାରଣକରେ ।

ଉପହସ୍ତିକା—ସ୍ତ୍ରୀ. ବ. (ଉପହସ୍ତ + କ + ଆ) ତାମ୍ବୂଳାଧାର, ପାନବଟା, ପାନଡ଼ବା ।
ଉପହାର—ପୁଂ.ବ.(ଉପ + ହୃ + ଘ,ଅ) ନଜର, ଭେଟି, ସମର୍ପଣ, ବଳି,ଧନାଦି-ଦ୍ୱାରା କୃତ ସନ୍ଧିବିଶେଷ, ଉପଢୌକନ, ଉପଢୌକନଦ୍ରବ୍ୟ (ବିଂ) ଦ୍ୱାରସମୀପସ୍ଥ ତଦୁପଶୋଭକ ଦ୍ରବ୍ୟ (ଅବ୍ୟ) ଦ୍ୱାର-ସମୀପରେ ।
ଉପହାରୀ—ପୁଂ. ବିଂ. (ଉପ + ହୃ + କ, ଇନ) ଉପହର୍ତ୍ତା (ଦେଖ) ।
ଉପହାଳକ—ପୁଂ. ବ. କୁନ୍ତଳ ଦେଶ ।
ଉପହାସ - ପୁଂ. ବ. (ଉପ + ହସ୍ + ଘ,ଅ) ଥଟ୍ଟା, ନିନ୍ଦାସୂଚକ ହାସ୍ୟ, ବିଦ୍ରୁପହାସ୍ୟ, କୌତୁକ ।
ଉପହାସକ—ପୁଂ. ବିଂ. (ଉପ + ହସ୍ କ, ଅକ) ଉପହାସକର୍ତ୍ତା, ପରହାସ-କାରୀ, ହାସ୍ୟପ୍ରିୟ ।
ଉପହାସାସ୍ପଦ—କ୍ଲୀ. ବ. (ଷତତ୍ପ)ଯାହାକୁ ଉପହାସ କରାଯାଏ, ଉପହାସ୍ୟ ।
ଉପହାସ୍ୟ—ବିଂ.(ଉପ + ହସ୍ + ର୍ମ,ଯ) ଉପହାସାସ୍ପଦ, ଯାହାକୁ ଉପହାସ କରାଯାଏ ।
ଉପହିତ—ବିଂ. (ଉପ + ଧା + ର୍ମ,ତ) ମିଶ୍ରିତ, ପ୍ରଯୁକ୍ତ, ପ୍ରତିବର୍ତ୍ତିତ, ବର୍ଦ୍ଧିତ, ଜନିତ, ନିହିତ, ଅର୍ପିତ, ସମୀପସ୍ଥାପିତ, ଆରୋପିତ, ଉପାଧିସଙ୍ଗତ, ମିଳିତ, ଉପଲକ୍ଷିତ, ଦତ୍ତ, ଗୃହୀତ, ବିନ୍ୟସ୍ତ ।
ଉପହୂତ—ପୁଂ.ବିଂ.(ଉପ + ହ୍ୱେ + ତ) ସମାହୂତ । [ଆହ୍ୱାନ ।
ଉପହୂତି—ସ୍ତ୍ରୀ.ବ.(ଉପ + ହ୍ୱେ + ଭ,ତି)
ଉପହୃତ—ବିଂ. (ଉପ + ହୃ ତ)ଉପ-ହାରସ୍ୱରୂପ ଦତ୍ତ, ଆନୀତ, ଆହୃତ, ଉତ୍ସୃଷ୍ଟ, ଅର୍ପିତ,ଭେଟି ଦିଆଯାଇଥିବା, ପରିବେଷିତ, ନିକ୍ଷିପ୍ତ, ଅପନୀତ,ନିବେ-ଦିତ ।
ଉପହୋମ—ପୁଂ.ବ.ପ୍ରଧାନ ଯଜ୍ଞସମୀପେ ଅଗ୍ନିସୋମାଦିଦଶଦେବତା ପ୍ରତ୍ୟେକଙ୍କ ଉଦ୍ଦେଶ୍ୟେ ଦେୟ ଦଶାହୂତି ଓ ଦଶ ଦକ୍ଷିଣାଯୁକ୍ତ ହୋମବିଶେଷ ।
ଉପହ୍ୱର—କ୍ଲୀ. ବ. (ଉପ + ହ୍ୱୃ + ଅ) ନିର୍ଜ୍ଜନସ୍ଥାନ, ଏକାନ୍ତ, ସମୀପ, ରଥ, ପ୍ରାନ୍ତ, ଗନ୍ତବ୍ୟ, ଭୂପ୍ରଦେଶ ମାତ୍ର ।
ଉପହ୍ୱାନ—କ୍ଲୀ.ବ.(ଉପ + ହ୍ୱେ + ଅନ) ଆହ୍ୱାନ,ମନ୍ତ୍ରୋଚ୍ଚାରଣପୂର୍ବକ ଆହ୍ୱାନ ।
ଉପାଂଶୁ—ପୁଂ. ବ. ଜପବିଶେଷ, ଗୁଣା-ଗୁଣି, ତୁନିହୋଇ ମାଳିଜପିବା,(ଅବ୍ୟ) ନିର୍ଜ୍ଜନରେ, ଅପ୍ରକାଶ, ଅନୁଚ୍ଚାରଣ, ମୌନ, ନିଗୂଢ଼, ଗୋପନ ।
ଉପାଂଶୁଯାଜ—ପୁଂ. ବ. ଯଜ୍ଞବିଶେଷ ।
ଉପାଂଶୁବଧ—ପୁଂ.ବ.(ଉପାଂଶୁ + ବଧ) ନିର୍ଜ୍ଜନରେ ବଧ, ଗୁପ୍ତଭାବେ ବଧ ।
ଉପାକ—ବିଂ.ପରସ୍ପର ସନ୍ନିହିତ,ନିକଟ, ଅନ୍ତିକ ।
ଉପାକରଣ—କ୍ଲୀ. ବ. (ଉପ + ଆ + କୃ + ଭ, ଅନ) ସଂସ୍କାର ପୂର୍ବକ ବେଦ-ଗ୍ରହଣ, ସଂସ୍କାରପୂର୍ବକ ପଶୁବଧ,ଆରମ୍ଭ, ବଳିଦାନ ।
ଉପାକର୍ମ—କ୍ଲୀ.ବ.(ଉପ + ଆ + କୃ + ମନିନ୍) ଉପାକରଣ, ସଂସ୍କାର ପୂର୍ବକ ବେଦଗ୍ରହଣ ।
ଉପାକୃତ—ବିଂ.(ଉପ + ଆ + କୃ + ତ) ଯଜ୍ଞେ ହନନାର୍ଥ କୃତସଂସ୍କାର,ଦେବୋ-ଦ୍ଦେଶ୍ୟେ ବଧପଶୁ, ଆରବ୍ଧ, ସ୍ତବସ୍ତୁତି ଦ୍ୱାରା ପ୍ରେରିତ, ଉପଦ୍ରୁତ,ବୋଧାଦିଆ-ଯାଇଥିବା (ବ) ଉପାକରଣ, ଆରମ୍ଭ, ଯଜ୍ଞୀୟ ପଶୁସଂସ୍କାର ।
ଉପାକ୍ଷ—କ୍ଲୀ. ବ. (ଉପ + ଅକ୍ଷି) ଉପ-ନେତ୍ର, ଚଷମା, (ଅବ୍ୟ) ଚକ୍ଷୁ ସମୀପେ, ଆଖିପାଖରେ ।
ଉପାଖ୍ୟ—ବିଂ. (ଉପ + ଆ + ଖ୍ୟା + ର୍ମ,ଅ)ପ୍ରତ୍ୟକ୍ଷ ଉପଲବ୍ଧ, ଅନୁମେୟ ।
ଉପାଖ୍ୟା—ସ୍ତ୍ରୀ. ବ. (ଉପ + ଆ + ଖ୍ୟା + ଅ + ଆ) ପ୍ରତ୍ୟକ୍ଷ, ଶବ୍ଦାଦି ଦ୍ୱାରା ନିର୍ବାଚନ ।
ଉପାଖ୍ୟାନ—କ୍ଲୀ.ବ. (ଉପ + ଆ + ଖ୍ୟା + ଅନ) ପୂର୍ବବୃତ୍ତାନ୍ତ କଥନ, ବିଶେଷ-କଥନ, ଗପ, ଗଳ୍ପ, ଆଖ୍ୟାୟିକା, ଉପନ୍ୟାସ, କଳ୍ପିତବୃତ୍ତାନ୍ତ, ଇତିବୃତ୍ତ ।
ଉପାଗତ—ପୁଂ. ବିଂ. (ଉପ + ଆ + ଗମ୍ + ର୍ମ,ତ)ସ୍ୱୟଂ ଉପସ୍ଥିତ,ଅନୁଭୂତ, ସ୍ୱୀକୃତ, ପ୍ରାପ୍ତ, ଅନୁମୋଦିତ,ଘଟିଥିବା ।
ଉପାଗମ—ପୁଂ. ବ. (ଉପ + ଆ + ଗମ୍ + ଅ) ସ୍ୱୀକାର, ନିକଟଗମନ, ଅନୁ ମୋଦନ, ପ୍ରାପ୍ତି, ଉପସ୍ଥିତି ।
ଉପାଗ୍ର—କ୍ଲୀ. ବ. ଅଗ୍ରର ସମୀପସ୍ଥ ଭାଗ, ଉପଶାଖା ।
ଉପାଗ୍ରହଣ—କ୍ଲୀ.ବ. (ଉପ + ଆ + ଗ୍ରହ + ଅନ) ସଂସ୍କାରପୂର୍ବକ ବେଦାରମ୍ଭ, ଉପାକର୍ମ ।
ଉପାଙ୍ଗ—କ୍ଲୀ. ବ. ( ଉପ + ଅଙ୍ଗ ) ତିଳକ, ପ୍ରତ୍ୟଙ୍ଗ, ଅଙ୍ଗର ଅଙ୍ଗ, ଅପ୍ରଧାନ ଅଂଶ,ପ୍ରଧାନ ବିଷୟର ଉପଯୋଗୀ ଅଂଶ, ଆର୍ଯ୍ୟଧର୍ମାନୁସାରେ ୪ ପ୍ରକାର ଉପାଙ୍ଗ-ପୁରାଣ, ନ୍ୟାୟ, ଧର୍ମଶାସ୍ତ୍ର ଓ ମୀମାଂସା, ଜୈନଧର୍ମଶାସ୍ତ୍ରବିଶେଷ ।
ଉପାଗ୍ନୀର୍ଯ୍ୟ—ପୁଂ. ବ. (ଉପ + ଆଗ୍ନୀର୍ଯ୍ୟ) ଆଗ୍ନୀର୍ଯ୍ୟର ସହକାରୀ, ସହକାରୀ ମନ୍ତ୍ରୀ, ସହକାରୀ ଶିକ୍ଷକ ।
ଉପାଜେ—ଅବ୍ୟ (ଉପ + ଅଜ + ଏ) ଦୁର୍ବଳର ବଳାଧାନ ବିଷୟରେ,ଦୁର୍ବଳର ବଳାଧାନ ।
ଉପାଞ୍ଜନ—କ୍ଲୀ.ବ.(ଉପ + ଅଞ୍ଜ + ଅନ) ଲେପନ,ଗୋମୟ ଦ୍ୱାରା ଅନୁଲେପନ, ଅଞ୍ଜନାଧାର ହସ୍ତାଦି ।
ଉପାଡ଼ ଗ୍ରା. ବ. ଉତ୍ପାଟନ,ଉନ୍ମୂଳନ ।
ଉପାଡ଼ା—ଗ୍ରା. ବ. ଏକପ୍ରକାର ଦକ୍ଷିଣୀ ଲୁଗା,ଗୁଡ଼ର ବା ଯୋଡ଼ ।
ଉପାଡ଼ିବା—ଗ୍ରା.କି. (ଉତ୍ପାଟନ ଶବ୍ଦଜ) ଉଖାଡ଼ିବା, ଉତ୍ପାଟନ କରିବା, ମୂଳରୁ ମାରିବା ।
ଉପାତ୍ତ—ବିଂ. (ଉପ + ଆ + ଦା + ତ) ଗୃହୀତ, ପ୍ରାପ୍ତ, ଅର୍ଜିତ,ଲବ୍ଧ, ସ୍ୱୀକୃତ, (ବ) ନିର୍ମଦ ହସ୍ତୀ ।
ଉପାତ୍ତବିଦ୍ୟ—ପୁଂ. ବିଂ. (ବ. ବ୍ରୀ) ଯେ ବିଦ୍ୟା ଅର୍ଜନ କରିଅଛି, କୃତବିଦ୍ୟ ।
ଉପାତ୍ୟୟ-ପୁଂ.ବ.(ଉପ + ଅତି + ଇ + ଅ) ଲୋକାଚାରର ଅତିକ୍ରମ, ବ୍ୟତିକ୍ରମ, ନାଶ, ଉଲ୍ଲଙ୍ଘନ ।

ଉପାଦ – ଗ୍ରା.ବିଂ.(ପୁଂ ଓ ସ୍ତ୍ରୀ)ସେରେନ୍ଦ୍ରା, ଗେହ୍ଲା, ଉତ୍ପାତକାରୀ, ଦୁଷ୍ଟ ।

ଉପାଦାନ – କ୍ଲୀ.ବି.(ଉପ + ଆ + ଦା + ଅନ) ସ୍ୱସ୍ୱବିଷୟରୁ ଇନ୍ଦ୍ରିୟମାନଙ୍କର ଆକର୍ଷଣ ବା ପ୍ରତ୍ୟାହାର, ସାଂଖ୍ୟମତ-ସିଦ୍ଧ ଆଧ୍ୟାତ୍ମିକତତ୍ତ୍ୱବିଶେଷ,ମୂଳସାମଗ୍ରୀ, ଉପକରଣ, (ବିଂ) ଉପାଦେୟ ।

ଉପାଦାନକାରଣ – କ୍ଲୀ. ବି. କାର୍ଯ୍ୟର ଅବ୍ୟବହିତ କାରଣ ।

ଉପାଦାନଭୂତ – ବିଂ. ମୂଳବସ୍ତୁ ସ୍ଥାନୀୟ, (ସ୍ତ୍ରୀ) ଉପାଦାନଭୂତା ।

ଉପାଦାନଲକ୍ଷଣା – ସ୍ତ୍ରୀ. ବି. ଅଜହତ୍ସ୍ୱାର୍ଥା ରୂପ ଲକ୍ଷଣା ବିଶେଷ ।

ଉପାଦ୍ଦକ – ପୁଂ.ବି. (ଉପ + ଅଦ୍ + ଇନ୍ + କ) କୀଟଭେଦ, ଉଇ ।

ଉପାଦେୟ – ବିଂ.(ଉପ + ଆ + ଦା + ମି, ଯ) ଗ୍ରାହ୍ୟ, ଉତ୍ତମ, ଉତ୍କୃଷ୍ଟ, ଯୁକ୍ତିଯୁକ୍ତ, ଯୌକ୍ତିକ,ବିଧେୟ (କର୍ମ), ମନୋହର, ରମଣୀୟ (ବି) ସୁଖାଦ୍ୟ ।

ଉପାଧାନ – କ୍ଲୀ.ବି.(ଉପ + ଆ + ଧା + ଅନ)ତକିଆ,ମୁଣ୍ଡଚୁଳା,ଶିରୋଧାନ,ମାଣ୍ଡି, ବିଧାନ, ବିଧି ।

ଉପାଧି – ପୁଂ.ବି.(ଉପ + ଆ + ଧା + ଇ) ଧର୍ମଚିନ୍ତା, ବିଶେଷଣ,କୁଟୁମ୍ବ,ବ୍ୟାପୃତ, ଛଳ, ଅଧାର, କାରଣ, ପଦବୀ,ସମୃଦ୍ଧି, ଜାତିଭିନ୍ନଧର୍ମ, ଅଲଂକାରମତେ ଜାତି, ଗୁଣ, କ୍ରିୟା, ଯଦୃଚ୍ଛାସ୍ୱରୂପ,ଭେଦକର୍ମ, ଉପନାମ, ଭେଦାର୍ଥକ ଜ୍ଞାନ, ସାଧ୍ୟ-ବ୍ୟାପକ ଓ ସାଧନବ୍ୟାପକ ଧର୍ମ ।

ଉପାଧିକ – ପୁଂ. ବିଂ. (ଉପାଧି + କ) ଉପାଧିଧାରୀ, ସ୍ୱଭାବଜରୂପାଦିଠାରୁ ଭିନ୍ନ, ସଗୁଣ, ଆରୋପିତ, ଆଗନ୍ତୁକ, ଉପାଦେୟ ଦେଖ, (ସ୍ତ୍ରୀ) ଉପାଧିକା ।

ଉପାଧିଧାରୀ – ପୁଂ. ବିଂ. (୭.ତତ୍ପୁ)ଉପାଧି ବିଶିଷ୍ଟ,ଯେ ଉପାଧି ଲାଭକରିଥାଏ,(ସ୍ତ୍ରୀ) ଉପାଧିଧାରିଣୀ ।

ଉପାଧିପତ୍ର – କ୍ଲୀ. ବି. (ଉପାଧି + ପତ୍ର) ବିଦ୍ୟାଳୟାଦିରପ୍ରଶଂସାପତ୍ର,ସାର୍ଟିଫିକେଟ୍, ସନନ୍ଦ, ଯୋଗ୍ୟତାନିଦର୍ଶନ ।

ଉପାଧେୟ – ବିଂ. (ଉପ + ଆ + ଧା + ମି,ଯ) ଅଭିନିବେଶନୀୟ, ଆରୋପ-ଯୋଗ୍ୟ, ଉପାଧିର ଯୋଗ୍ୟ,ଅଭିହିତ, ଉପାଧିଦ୍ୱାରା ବିଶେଷଣୀୟ (ସ୍ତ୍ରୀ) ଉପାଧେୟା ।

ଉପାଧ୍ୟାୟ – ପୁଂ.ବି. (ଉପ + ଅଧି + ଇ + ଅ)ଭୂକସା ନାମକ ପ୍ରମାରରାଜପୁତ-ମାନଙ୍କର ଉପାଧିବିଶେଷ, ଶିକ୍ଷକ,ଅଧ୍ୟାପକ,ବେଦର ଏକଦେଶାଧ୍ୟାପକ,କନୌଜିୟା ପ୍ରଭୃତି ବ୍ରାହ୍ମଣମାନଙ୍କର ଉପାଧି-ବିଶେଷ, ବେଦାଧ୍ୟାପକ, ଉପଦେଷ୍ଟା, ମନ୍ତ୍ରଗୁରୁ ।

ଉପାଧ୍ୟାୟା ସ୍ତ୍ରୀ. ବି. (ଉପାଧ୍ୟାୟ + ଆ) ଶିକ୍ଷୟିତ୍ରୀ,ଯେଉଁ ସ୍ତ୍ରୀ ନିଜେ ଶିକ୍ଷା ଦିଏ ।

ଉପାଧ୍ୟାୟାନୀ – ସ୍ତ୍ରୀ. ବି. (ଉପାଧ୍ୟାୟ + ଆନୀ) ଉପାଧ୍ୟାୟପତ୍ନୀ, ଗୁରୁପତ୍ନୀ ।

ଉପାନଃ—ବି. ଶକଟସଦୃଶ, ପିଣ୍ଡସଦୃଶ, ପିଣ୍ଡବ୍ୟାଧି ।

ଉପାନତ୍ – ସ୍ତ୍ରୀ.ବି (ଉପ + ଆ + ନହ + କ୍ୱିପ୍ )ଚର୍ମପାଦୁକା,ଚମଡ଼ାର ଜୋତା ।

ଉପାନତ୍କାର—ପୁଂ. ବି. (ଉପାନତ୍ + କୃ + କ,ଅ)ମୋଚି,ଜୋତାତିଆରିକଲା-ବାଲା, ଚର୍ମକର୍ତ୍ତା ।

ଉପାନୁବାକ୍ୟ – ବିଂ.(ଉପ + ଅନୁ + ବଚ + ଯ) ପଶ୍ଚାତ୍କଥନଯୋଗ୍ୟ, (କ୍ଲୀ) ବେଦୋକ୍ତବାକ୍ୟଭେଦ ।

ଉପାନ୍ତ—ବି. ( ଉପ + ଅନ୍ତ ) ନିକଟ, ସମୀପ, ପ୍ରାନ୍ତଭାଗ, ଶେଷ, ପରିସର, କାନି, ବସ୍ତ୍ରାଞ୍ଚଳ ।

ଉପାନ୍ତବର୍ଣ୍ଣ—ପୁଂ.ବି. (ଉପାନ୍ତ + ବର୍ଣ୍ଣ) ପୂର୍ବବର୍ଣ୍ଣ,ଅନ୍ତ୍ୟବର୍ଣ୍ଣର ପୂର୍ବବର୍ଣ୍ଣ, ଶବ୍ଦର ଶେଷ ଅକ୍ଷରର ପୂର୍ବବର୍ତ୍ତୀ ବର୍ଣ୍ଣ ।

ଉପାନ୍ତିକ – କ୍ଲୀ. ବି. ନିକଟ, ସମୀପ ।

ଉପାନ୍ତ୍ୟ – ବିଂ. ( ଉପ + ଅନ୍ତ + ଯ ) ନିକଟବର୍ତ୍ତୀ, ସମୀପସ୍ଥ, ଅନ୍ତ୍ୟର ଅବ୍ୟବହିତ ପୂର୍ବବର୍ଣ୍ଣ (ବି) ଚକ୍ଷୁର କୋଣ, ସମୀପ ।

ଉପାପରାଧ – ପୁଂ. ବି. (ଉପ + ଅପରାଧ) ମିଥ୍ୟାସାକ୍ଷ, ପ୍ରତାରଣା, ହିଂସା ପ୍ରଭୃତି କ୍ଷୁଦ୍ର କ୍ଷୁଦ୍ର ଅପରାଧ । [ପ୍ରାପ୍ତି ।

ଉପାପ୍ତି—ସ୍ତ୍ରୀ. ବି. (ଉପ + ଆପ୍ + ତି)

ଉପାଭୃତ୍ – ସ୍ତ୍ରୀ.ବି.(ଉପ + ଆ + ଭୃ + କ୍ୱିପ୍ ) ଉପାହରଣ ।

ଉପାମ—ବି. (ପ୍ରାଚୀନପଦ୍ୟ) ଉପମା ।

ଉପାୟ – ପୁଂ. ବି. (ଉପ + ଅୟ୍ + ଅ) ଉପଗମ, ରାଜାଙ୍କର ଶତ୍ରୁ ବଶୀଭୂତ କରିବାର ହେତୁସାଧନ, ସାମ, ଦାନ, ଭେଦ,ଦଣ୍ଡ,କାର୍ଯ୍ୟସାଧନପନ୍ଥା,କୌଶଳ ଅବଲମ୍ବନ, ଗତ୍ୟନ୍ତର, ଜୀବିକା, ଧନ-ଉପାର୍ଜନ, ଆୟ, ଔଷଧ, ପ୍ରତିକାର, ମନ୍ତ୍ରଯନ୍ତ୍ରାଦିପ୍ରୟୋଗ, ଉପାଗମ, ବୃତ୍ତି, ଚେଷ୍ଟା ।

ଉପାୟକ୍ଷମ – ପୁଂ. ବିଂ. ଉପାର୍ଜ୍ଜନସମର୍ଥ, ପ୍ରତିକାରତତ୍ପର, (ସ୍ତ୍ରୀ) ଉପାୟକ୍ଷମା ।

ଉପାୟଜ୍ଞ – ବିଂ.(ଉପାୟ + ଜ୍ଞା + କ,ଅ) କାର୍ଯ୍ୟସାଧନର ଓ ଅନିଷ୍ଟ ନିବାରଣର ଉପାୟବିତ୍, କୌଶଳୀ ପ୍ରତିକାରକ୍ଷମ, (ସ୍ତ୍ରୀ) ଉପାୟଜ୍ଞା ।

ଉପାୟନ – କ୍ଲୀ.ବି. (ଉପ + ଇ + ଣି + ଅନ)ଉପଢୌକନ, ଭେଟି, ଉପଗମନ, ନିକଟେଗମନ,ବ୍ରତାଦିପ୍ରତିଷ୍ଠା,ଉପହାର, ପାରିତୋଷିକ ।

ଉପାୟାତ – ବିଂ. (ଉପ + ଆ + ଯା + କ, ତ) ସମୀପାଗତ ।

ଉପାୟାନ୍ତର – କ୍ଲୀ. ବି ଅନ୍ୟଉପାୟ, ଗତ୍ୟନ୍ତର ।

ଉପାୟୀ ପୁଂ. ବିଂ. (ଉପାୟ + ଇନ୍) ସାଧନଯୁକ୍ତ, ଉପାୟଯୁକ୍ତ, ଉପଗନ୍ତା, ଉପଗମନକାରୀ, ଉଦ୍ୟମୀ, କୌଶଳୀ (ସ୍ତ୍ରୀ) ଉପାୟିନୀ ।

ଉପାୟୁ – ବିଂ. ( ଉପ + ଆ + ଇନ୍ + ଉନ୍ )ଉପଗନ୍ତା,ଯେ ଉପଗମନକରେ ।

ଉପାର – ପୁଂ. ବି (ଉପ + ଋ + ଅ) ସମୀପ ।

ଉପାରଣ – କ୍ଲୀ.ବି. (ଉପ + ଆ + ଋ + ଅନ) ଅନୁପଯୁକ୍ତସ୍ଥାନ ।

ଉପାରତ—ବିଂ. (ଉପ+ଆ+ରମ+କ,ତ ) ପ୍ରତ୍ୟାବୃତ୍ତ, ବିରତ, ନିଶ୍ଚଳ, ସ୍ଥିର ।
ଉପାରମ—ବି.(ଉପ+ଆ+ରମ୍+ଘ, ଅ) ବିରାମ ।
ଉପାରମ୍ଭ—ପୁଂ.ବି.(ଉପ+ଆ+ରଭ୍+ଅ) ଆରମ୍ଭ, ପ୍ରାରମ୍ଭ,ସୂତ୍ରପାତ, ଉପକ୍ରମ ।
ଉପାରୂଢ଼—ବିଂ. (ଉପ+ଆ+ରୁହ୍+ତ) ଆରୂଢ଼, ପ୍ରାପ୍ତ, ସମାଗତ, ଉପରେ ଚଢ଼ିଥିବା ।
ଉପାର୍ଜ୍ଜକ—ବିଂ. ( ଉପ+ଅର୍ଜ୍ଜ+କ, ଅନ) ଉପାର୍ଜ୍ଜନ କର୍ତ୍ତା, ଅର୍ଜ୍ଜନକାରୀ, ଧନାଦିର ଆହରକ, ରୋଜଗାରୀ, (ସ୍ତ୍ରୀ) ଉପାର୍ଜ୍ଜିକା ।
ଉପାର୍ଜ୍ଜନ - କ୍ଲୀ.ବି. (ଉପ+ଅର୍ଜ୍ଜ+ଘ, ଅନ) ଅର୍ଜ୍ଜନକରିବା, ସେବା, କୃଷି ବାଣିଜ୍ୟାଦି କରି ଧନଲାଭ, ଉପାୟ, ରୋଜଗାର (ବିଂ) ଉପାର୍ଜ୍ଜକ,ଉପାର୍ଜ୍ଜନକର୍ତ୍ତା ।
ଉପାର୍ଜ୍ଜିତ—ବିଂ.(ଉପ+ଅର୍ଜ୍ଜ+ଣିଁ,ତ) ପ୍ରାପ୍ତ, ଲବ୍ଧ, ସଞ୍ଚିତ, କୃତ, ସଂଗୃହୀତ ।
ଉପାଲବ୍ଧ—ବିଂ.(ଉପ+ଆ+ଲଭ୍+ତ) ତିରସ୍କାର ପୂର୍ବକ ନିନ୍ଦିତ, ଭର୍ତ୍ସିତ ।
ଉପାଲମ୍ଭ—ପୁଂ.ବି.(ଉପ+ଆ+ଲଭ୍+ଅ) ନିନ୍ଦାପୂର୍ବକ ତିରସ୍କାର, ସଶ୍ଳେଷବାକ୍ୟ, ଗାଳି, ଭର୍ତ୍ସନା, ପ୍ରାପ୍ତି ।
ଉପାଲମ୍ଭନ—କ୍ଲୀ. ବି.(ଉପ+ଆ+ଲଭ୍+ଘ, ଅନ)ଭର୍ତ୍ସନା, ଗାଳି ।
ଉପାଲି—ପୁଂ. ବି. ବୁଦ୍ଧଦେବଙ୍କର ଜଣେ ପ୍ରିୟଶିଷ୍ୟ ।
ଉପାବର୍ତ୍ତନ—କ୍ଲୀ.ବି. (ଉପ+ଆ+ବୃତ+ଘ, ଅନ ) ପୁନର୍ବାର ଆଗମନ, ଭୂମିରେ ଗଡ଼ିବା, ପ୍ରତ୍ୟାବର୍ତ୍ତନ, ଆଉଜିବା, ପାର୍ଶ୍ୱପରିବର୍ତ୍ତନ ।
ଉପାବାସୀ—ପୁଂ.ବିଂ.(ଉପ+ଆ+ବସ୍+ଇନ୍) ଉପକାରୀ ।
ଉପାବୃତ୍ତି ସ୍ତ୍ରୀ. ବି. (ଉପ+ଆ+ବୃତ୍+କ୍ତିପ୍) ଉପାବର୍ତ୍ତନ, ନିବୃତ୍ତି, (ବିଂ) ପ୍ରତ୍ୟାଗତ, ସମ୍ପାଦିତ ।
ଉପାବୃତ୍ତ—ବିଂ.(ଉପ+ଆ+ବୃତ୍ତ+କ, ତ) ବିରତ, କ୍ଷାନ୍ତ,ଆଉଟାହୋଇଥିବା, ସମ୍ପାଦିତ, ଘୂର୍ଣ୍ଣିତ, ପ୍ରତନବୃତ୍ତ, କ୍ଲାନ୍ତିନିବାରଣ ନିମିତ୍ତ ଭୂମିରେ ଲୁଣ୍ଠିତ (ଅଶ୍ୱ), କଡଲେଉଟାଇଥିବା (ପଶୁଆଦି)
ଉପାଶ୍ରୟ—ପୁଂ. ବି. (ଉପ+ଆ+ଶ୍ରି+ଣିଁ,ଅ)ସ୍ଥାନ, ଆଶ୍ରୟସ୍ଥାନ, ଆଶ୍ରୟସ୍ଥଳ, ଆସ୍ପଦ, ଶୟନ ।
ଉପାଶ୍ରିତ—ପୁଂ. ବିଂ. (ଉପ+ଆ+ଶ୍ରି+ଣିଁ,ତ) ଅବଲମ୍ବୀ,ଗତ, ପ୍ରାପ୍ତ, ଯେ ଆଶ୍ରୟ ଗ୍ରହଣ କରିଥାଏ, ଅବଲମ୍ବିତ, ଧୃତ, ଆଶ୍ରୟକାରୀ ।
ଉପାସ—ପୁଂ.ବି.ଏକ ପ୍ରକାର ବିଷବୃକ୍ଷ ।
ଉପାସ—ପ୍ରା. କ୍ଲୀ. ବି. (ସଂ—ଉପବାସ) ଅନାହାର,ଅନଶନ,ଓଷା,ବ୍ରତାନୁଷ୍ଠାନ ।
ଉପାସକ—ପୁଂ. ବିଂ. (ଉପାସ+ଅକ) ସେବକ, ଉପାସନାକାରକ, ପୂଜକ, ସାଧକ, ଶୂଦ୍ର, ଅନୁସରଣିଆଁ (ସ୍ତ୍ରୀ) ଉପାସିକା ।
ଉପାସକଦଶ—ପୁଂ.ବି. ଜୈନମାନଙ୍କର ଅଷ୍ଟମ ଅଙ୍ଗ ।
ଉପାସଙ୍ଗ—ପୁଂ.ବି.(ଉପ+ଆ+ସନ୍ଜ୍+ଅ) ବାଣାଧାର, ଆସକ୍ତି, ତୂଣୀର, ନୈକଟ୍ୟ ।
ଉପାସନ—କ୍ଲୀ.ବି. (ଉପ+ଆସ୍+ଘ. ଅନ) ବାଣ ନିକ୍ଷେପଅଭ୍ୟାସ,ଗୃହ୍ୟାଗ୍ନି, ଚିନ୍ତା, ସେବା, ଉପକାର, ଆରାଧନା, ପୂଜା, ବିହିଂସନ,ବନ୍ଦନ, ଧର୍ମ୍ମାନୁଷ୍ଠାନ, ଆସନ ।
ଉପାସନା—ସ୍ତ୍ରୀ. ବି. (ଉପାସନ+ଆ) ପୂଜା, ସେବା ଶୁଶ୍ରୂଷା, ପରିଚର୍ଯ୍ୟା, ଧନାଦି ଦ୍ୱାରା ଇଷ୍ଟଦେବତାର ଚିନ୍ତାନାଦି ।
ଉପାସନାର୍ହ -ବି. (୬ତତ୍ପୁ)ସେବାଯୋଗ୍ୟ, ଆରାଧନାଯୋଗ୍ୟ, ପୂଜ୍ୟ (ସ୍ତ୍ରୀ) ଉପାସନାର୍ହା ।
ଉପାସନୀୟ—ବିଂ. (ଉପ+ଆସ୍+ଣିଁ, ଅନୀୟ ) ଉପାସ୍ୟ, ଆରାଧ୍ୟ, ପୂଜ୍ୟ, ପୂଜାର୍ହ (ସ୍ତ୍ରୀ) ଉପାସନୀୟା ।
ଉପାସନେୟ—ବିଂ. ( ଉପାସନ+ଣିଁ, ଏୟ) ଉପାସନାଦ୍ୱାରା ଲଭ୍ୟ ।
ଉପାସା—ସ୍ତ୍ରୀ ବି. (ଉପ+ଆସ+ଅ+ଆ) ଉପାସନା ଆରାଧନା ।
ଉପାସାଦିତ—ବିଂ. (ଉପ+ଆ+ସଦ ଣି+ତ) ପ୍ରାପ୍ତ, ସମାସାଦିତ, ପ୍ରାପ୍ତି,
ଉପାସିଆ--ଗ୍ରା.ବିଂ. ଉପବାସୀ,ନିରାହାରୀ, ଅନାହାରୀ.                [ ଶୂଦ୍ର ।
ଉପାସିକା—ସ୍ତ୍ରୀ. ବି. (ଉପାସକ+ଆ)
ଉପାସିତ—ପୁଂ.ବିଂ.(ଉପ+ଆସ୍+ଣିଁ, ତ) ପୂଜିତ, ସେବିତ, ଆରାଧିତ (ବି) ଉପାସନା ।
ଉପାସୀନ—ବିଂ. ( ଉପ+ଆସ୍+କ, ଆନ) ନିକଟରେ ଉପବିଷ୍ଟ ।
ଉପାସ୍ତି—ସ୍ତ୍ରୀ.ବି.(ଉପ+ଆସ+ଘ,ତି) ଉପାସନା, ଶରକ୍ଷେପର ଅଭ୍ୟାସ ।
ଉପାସ୍ତ୍ର—କ୍ଲୀ.ବି. ଅସ୍ତ୍ରୋପକରଣ, ଛୁରୀଆଦି ଅପ୍ରଧାନ ଅସ୍ତ୍ର ।
ଉପାସ୍ଥି—କ୍ଲୀ.ବିଂ.(ଉପ+ଅସ୍ଥି)ଶରୀରାଭ୍ୟନ୍ତରସ୍ଥ ଅସ୍ଥିପରି ପଦାର୍ଥ ବିଶେଷ, ମାଂସଖଣ୍ଡ ।
ଉପାସ୍ଥିକ—ପୁଂ.ବି. ମତ୍ସ୍ୟଶ୍ରେଣୀବିଶେଷ, ଯେଉଁ ମତ୍ସ୍ୟର କଙ୍କାଳରେ କଣ୍ଟା ନଥାଏ ।
ଉପାସ୍ୟ—ବିଂ. (ଉପ+ଆସ୍+ଣିଁ,ଯ) ସେବ୍ୟ, ଆରାଧ୍ୟ, ପୂଜ୍ୟ, ଚିନ୍ତନୀୟ, (ସ୍ତ୍ରୀ) ଉପାସ୍ୟା ।
ଉପାସ୍ୟଦେବତା—ବି.(କ.ଧା) କୌଣସି ବିଶେଷ ନୁଷ୍ଠାନରେ ଯେଉଁ ଦେବତାଙ୍କ ଉପାସନା କରିବା ଉଚିତ, ଇଷ୍ଟଦେବତା ।
ଉପାସ୍ୟମାନ—ବିଂ.(ଉପ+ଆସ୍+ଣିଁ, ଆନ ) ଯାହାର ଉପାସନା କରାହୋଇଅଛି, ସେବ୍ୟମାନ, ଆରାଧ୍ୟମାନ, (ସ୍ତ୍ରୀ) ଉପାସ୍ୟମାନା ।
ଉପାହୃତ—ବିଂ. (ଉପ+ଆ+ଧା+ତ) ଆରୋପିତ, ଅଭ୍ୟୁପ୍ଗତ, ଯୋଜିତ, ବିନ୍ୟସ୍ତ, ଜନିତ, ପରିହୃତ, (ବି) ଉଲ୍କାପାତ,ଧୂମକେତୁ ଆଦି ଉପଦ୍ରବ ।

ଉପାହୃତ—ବିଂ. (ଉପ+ଆ+ହୃ+ର୍ମ, ତ) ସଞ୍ଚିତ, ଗୃହୀତ, କଳ୍ପିତ, ଆନୀତ, ଅର୍ପିତ ।

ଉପାଡ଼ିବା—(ସଂ—ଉତ୍ପାଟନ) ଉତ୍ପାଟନ, ଚେର ସହିତ ଉପାଡ଼ିବା ।

ଉପି—ଗ୍ରା.ବି. (ରୁପି) ରୋଗହେତୁରୁ ମସ୍ତକର କେଶ ମୂଳରେ ଜାତହେବା ଶୁକ୍ଳବର୍ଣ୍ଣ ମଳଚମ ବା ମଳଚମ ।

ଉପିବା—ଗ୍ରା.କ୍ରି.ମାଠିବା,ଚକ୍‌କଣକରିବା, ବେ'ଲିବା ।

ଉପୁଚିବା—ଗ୍ରା. କ୍ରି. ଉପରକୁ ଉଠିବା, ପ୍ରକାଶ ପାଇବା, ଜଳର ଉପରକୁ ଭାସି ଉଠିବା ।

ଉପୁଜା—ଗ୍ରା. କ୍ରି. (ଉପଜାତ ଶବ୍ଦଜ) ଜନ୍ମିବା, ଜାତହେବା, ଉତ୍ପନ୍ନହେବା ।

ଉପୁଜିବା—ଗ୍ରା.କ୍ରି.(ଉପଜାତ ଶବ୍ଦଜ) ଜନ୍ମିବା, ଜାତହେବା, ଘଟିବା ।

ଉପୁଡ଼ିଙ୍ଗର—ପ୍ରା. ବିଂ. ଯେ ଆପଣାର ଭାଗ୍ୟ ବା ବିଭବ ଦେଖାଇ ହୁଏ, (ବି) ବାହ୍ୟାଡ଼ମ୍ବର (ସ୍ତ୍ରୀ) ଉପୁଡ଼ିଙ୍ଗରି ।

ଉପୁଡ଼ା—ଗ୍ରା. ବିଂ. ନ୍ୟୁବ୍‌ଜ, ଓଲଟା, ବିପରୀତ, ଓଲଟାଇବା ।

ଉପୁଡ଼ିବା—ଗ୍ରା. କ୍ରି. ଉପୁଡ଼ିପଡ଼ିବା, ଉତ୍ପାଟିତ ହେବା, ମୂଳଭ୍ରଷ୍ଟ ହେବା ।

ଉପୁଡ଼େଇବା - ଗ୍ରା. କ୍ରି. (ଉପାଡ଼ିବା କ୍ରିୟାର ଣିଜନ୍ତରୂପ) ଉତ୍ପାଟନକରିବା, ଅନ୍ୟ ଦ୍ୱାରା ଉତ୍ପାଟିତ କରାଇବା ।

ଉପୁରି—ଗ୍ରା.ବିଂ. ଅଧିକା, ଅତିରିକ୍ତ ମାଗଣା, ଉଦ୍‌ବୃତ୍ତ, ଅବୈତନିକ, ଇତର, ସାମୟିକ, ଠିକା, ଅସାଧାରଣ, ଅସ୍ଥାୟୀ, ଉପରଠାଉରିଆ, ଦୈବୀ, ଅପ୍ରତ୍ୟାଶିତ ।

ଉପେକ୍ଷ—ପୁଂ. ବି. ଅଶ୍ୱଫଲ୍‌କର ପୁତ୍ର, ଅକ୍ରୂରର ଭ୍ରାତା, ତୁଚ୍ଛ ବା ତ୍ୟାଗକରିବା ।

ଉପେକ୍ଷକ—ବିଂ. (ଉପ+ଈକ୍ଷ୍+ଅକ) ଉପେକ୍ଷାକାରକ, ଉଦାସୀନ, ଅବଜ୍ଞାତା, ଅନାଦରକାରୀ ।

ଉପେକ୍ଷଣ—କ୍ଲୀ.ବି.(ଉପ+ଈକ୍ଷ୍+ଅନ୍) ଅନାଦର, ଔଦାସୀନ୍ୟ, ତ୍ୟାଗ, ରାଜାମାନଙ୍କର ଉପାୟବିଶେଷ ।

ଉପେକ୍ଷଣୀୟ—ବିଂ. (ଉପ+ଈକ୍ଷ୍+ଅନୀୟ) ତ୍ୟାଜ୍ୟ, ପ୍ରତିକାରଚେଷ୍ଟାର ଅଯୋଗ୍ୟ, ଉପେକ୍ଷାର ଯୋଗ୍ୟ; (ସ୍ତ୍ରୀ.) ଉପେକ୍ଷଣୀୟା ।

ଉପେକ୍ଷା—ସ୍ତ୍ରୀ.ବି. (ଉପ+ଈକ୍ଷ୍+ଅ+ଆ) ଘୃଣା, ତ୍ୟାଗ, ଅନାଦର, ଔଦାସୀନ୍ୟ,ସାମାନ୍ୟଉପାୟ,ଅସ୍ୱୀକାର, ଅବଜ୍ଞା, ତାଚ୍ଛିଲ୍ୟ, ଅବହେଳା, ଧୈର୍ଯ୍ୟ, ଅପେକ୍ଷା, ଆଶା ।

ଉପେକ୍ଷିତ—ବିଂ.(ଉପ+ଈକ୍ଷ୍+ର୍ମ,ତ) ଅନାଦୃତ, ତ୍ୟକ୍ତ, ଅସ୍ୱୀକୃତ, ଅବଜ୍ଞାତ, ଅସମ୍ମାନିତ ।

ଉପେକ୍ଷିବା—ଗ୍ରା. କ୍ରି. ତ୍ୟାଗ କରିବା, ବେଖାତିର କରିବା, ଅନାଦର କରିବା, ଅସ୍ୱୀକାର କରିବା, ମନରୁ ଛାଡ଼ିବା, ଦୂରକରିବା ।

ଉପେତ—ବିଂ.(ଉପ+ଇ+ତ) ଉପାଗତ, ସମୀପଗତ, ପ୍ରାପ୍ତ, ଉପନୀତ, ଗର୍ଭାଧାନ ନିମିତ୍ତ ସ୍ତ୍ରୀଠାରେ ଉପଗତ, ସମ୍ମୁଖ, ଯୁକ୍ତ, ମିଳିତ ।

ଉପେନ୍ଦ୍ର—ପୁଂ.ବି.(ଉପ+ଇନ୍ଦ୍ର) ବିଷ୍ଣୁ, ବାମନ, ଇନ୍ଦ୍ରଙ୍କର ସାନଭାଇ ।

ଉପେନ୍ଦ୍ରବଜ୍ରା—ସ୍ତ୍ରୀ.ବି.ପ୍ରତିପାଦରେ ଏକାଦଶାକ୍ଷର ବିଶିଷ୍ଟ ସଂସ୍କୃତ ଛନ୍ଦୋବିଶେଷ ।

ଉପେନ୍ଦ୍ରଭଞ୍ଜ—ପୁଂ. ବି. ଉତ୍କଳଦେଶାନ୍ତର୍ଗତ ଘୁମୁସର ରାଜ୍ୟର ରାଜା,ଓଡ଼ିଆ ସାହିତ୍ୟ ରାଜ୍ୟରେ ସର୍ବଶ୍ରେଷ୍ଠ ପ୍ରାଚୀନ କବିଚକ୍ରବର୍ତ୍ତୀ, ବୈଦେହୀଶବିଳାସ, ଲାବଣ୍ୟବତୀ, ପ୍ରେମସୁଧାନିଧି, କୋଟିବ୍ରହ୍ମାଣ୍ଡସୁନ୍ଦରୀ, ରସପଞ୍ଚକ ପ୍ରଭୃତି ଗ୍ରନ୍ଥ ରଚନା କରିଯାଇଅଛନ୍ତି ।

ଉପେୟ—ବିଂ. (ଉପ+ଇ+କ,ଯ) ଉପାୟସାଧ୍ୟ, ପ୍ରାପ୍ତବ୍ୟ, ଗମ୍ୟ, ଗମନଯୋଗ୍ୟ ।

ଉପେୟୁସ୍—ବିଂ. ଉପଗତ ।

ଉପେୟିବାନ୍—ପୁଂ.ବିଂ. (ଉପ+ଇ+ବସ୍) ଉପଗତ, ପ୍ରାପ୍ତ ।

ଉପୋଢ଼—ବିଂ. (ଉପ+ବହ୍+ର୍ମ,ତ) ନିକଟସ୍ଥ, ବିବାହିତ, ଊଢ଼, ବ୍ୟୂହାକାରରେ ସଜ୍ଜିତ, ଶ୍ରେଣୀବଦ୍ଧ, ଧୃତ, ପ୍ରତ୍ୟାସନ୍ନ, ବି.(ଭା.ତ) ସୈନ୍ୟବ୍ୟୂହ ।

ଉପୋତୀ—ସ୍ତ୍ରୀ.ବି.(ଉପ+ବେ+ତ+ଈ) ପୂତିକା, ପୁଇଶାଗ ।

ଉପୋଦକ—ପୁଂ.ବି. ଉଦକ ସମୀପସ୍ଥ, (ଅବ୍ୟ) ଉଦକ ନିକଟରେ ।

ଉପୋଦକୀ—ସ୍ତ୍ରୀ.ବି. ପୂତିକା, ପୁଇଶାଗ, ପୋଇଗଛ, ଉପୋତୀ ।

ଉପୋଦିକା—ସ୍ତ୍ରୀ.ବି.ଉପୋଦକୀ(ଦେଖ) ।

ଉପୋଦିକାତୈଳ—କ୍ଲୀ. ବି. ବୈଦ୍ୟୋକ୍ତ ତୈଳବିଶେଷ ।

ଉପୋଦ୍‌ଗ୍ରହ—ପୁଂ. ବି. (ଉପ+ଉଦ୍+ଗ୍ରହ+ଅ) ଜ୍ଞାନ ।

ଉପୋଦ୍‌ଘାତ—ପୁଂ. ବି. (ଉପ+ଉଦ୍+ହନ୍+ଭା,ଅ) ଆରମ୍ଭ, ଉଦାହରଣ, ଉପକ୍ରମ,ମୁଖବନ୍ଧ, ଗ୍ରନ୍ଥରଅବତରଣିକା, ସୂଚନା, ପ୍ରସ୍ତାବନା ।

ଉପୋଦ୍‌ବଳନ—କ୍ଲୀ. ବି.(ଉପ+ଉଦ୍+ବଲ+ଅନ) ଉତ୍ତେଜନ, ଉଦ୍ଦୀପନ ।

ଉପୋଷ—ପୁଂ. ବି. (ଉପ+ବସ୍+ଅ) ଉପବାସ, ଅହୋରାତ୍ର ଅନାହାରରେ ରହିବା, ଉପାସ ।

ଉପୋଷଣ—କ୍ଲୀ.ବି.(ଉପ+ବସ୍+ଅନ) ଉପୋଷ (ଦେଖ) ।

ଉପୋଷିତ—କ୍ଲୀ. ବି. (ଉପ+ବସ୍+ଭା,ତ) ଉପବାସ, (ବିଂ.କ,ତ) କୃତୋପବାସ, ଉପବାସୀ, ଅଭୁକ୍ତ, ଅନାହାରୀ, ବ୍ରତରୂପେ ପାଳିତ ।

ଉପୋଷଧ—ପୁଂ. ବି. ବୌଦ୍ଧଶାସ୍ତ୍ରୋକ୍ତ ଉପବାସ ବ୍ରତ ।

ଉପୋଷ୍ୟ—ବିଂ. (ଉପ+ବସ୍+ଯ) ଉପବାସ କରିବାର ଯୋଗ୍ୟ, ଉପବାସେପାଳନୀୟ (ତିଥି), ଉପବାସେ ଯାପନୀୟ (ତିଥି) ।

ଉପ୍ତ—ବିଂ. (ବପ୍+ତ) କୃତବପନ, ମୁଣ୍ଡିତ, ପରିଷ୍କୃତ, ନିକ୍ଷିପ୍ତ, ବୁଣାଯାଇ ଥିବା ।

ଉପ୍ତକୃଷ୍ଟ—ବି°. ବୀଜବପନପରେ କର୍ଷିତ କ୍ଷେତ୍ର । [କ୍ଷୌରକର୍ମ ।

ଉପ୍ତି—ସ୍ତ୍ରୀ.ବି.(ବପ୍ + ତି)ବପନ, ବୁଣିବା,

ଉପ୍ତିବିତ୍—ପୁଂ.ବି.(ଉପ୍ତି + ବିଦ୍ + କ୍ୱିପ୍) ବପନବିଧିଜ୍ଞ, କୃଷିକର୍ମରେ ଅଭିଜ୍ଞ, ଯେ ଭଲ କରି ବୁଣିବା କୌଶଳ ଜାଣେ ।

ଉପ୍ତ୍ରିମ—ବି°. ବପନଜାତ ।

ଉପ୍ୟ—ବି°. (ବପ + ଯ) ବପନୀୟ ।

ଉପ୍ରାସ୍ତ—ବେଗିରଇଲଚପୁର ଜିଲାନ୍ତର୍ଗତ ଦରସ୍ଥୀ ପୁରମଧ୍ୟବର୍ତ୍ତୀ ଗୋଟିଏ ଗ୍ରାମ, ଶାହଦାବଲ ମନ୍ଦିର ନିମିତ୍ତ ଖ୍ୟାତ ।

ଉପ୍ରୋଧ—ଗ୍ରା. (ପଦ୍ୟ) ବି. ଉପରୋଧ, ଅନୁରୋଧ, ମମତା, ସ୍ନେହ ।

ଉପ୍ରୋଧୀ—ପୁଂ.ବି°. ଉପରୋଧୀ,ସ୍ନେହୀ ।

ଉଫଲ—ଗ୍ରା.(ସମ୍ବ) ବି°. ଆତ୍ମପ୍ରଶଂସାକାରୀ (ବ୍ୟକ୍ତି) ।

ଉଫାଉଠା—ଗ୍ରା.ବି. ମିଥ୍ୟା, ଅପବାଦ, ଜନରବ । [ବିଶେଷ ।

ଉଫୁର୍ତ୍ତି—ଗ୍ରା.ବି. ଚନ୍ଦ୍ରମାନଙ୍କର ଯନ୍ତ୍ର-

ଉଫେର—ଗ୍ରା (ସମ୍ବ)ବି. ବଡ଼ବନସିକଣ୍ଟା

ଉବ୍‌ଜକ—ବି°.(ଉବ୍‌ଜ + ଅକ)ରଜୁତାଯୁକ୍ତ

ଉବାଏବସ୍ତ—ଗ୍ରା.ବି. ଉବାବସ୍ତ, ଅବାବସ୍ତ, ଚଳାଚଳସମ୍ପତ୍ତି । [କହିଥିଲେ ।

ଉବାଚ—କ୍ରି. (ସଂ.ବଚ-ଧାତୁ) କହିଲେ,

ଉବାବ—ଗ୍ରା.ବି°. ବୃଥା,ଅକାରଣ, ଅକସ୍ମାତ୍ ଘଟିବା, ଅପ୍ରତ୍ୟାଶିତ ।

ଉବାର—ଗ୍ରା.ବି°.ଅଜ୍ଞାତ,ଅଜଣା,ନିଷିଦ୍ଧ, ଗୁପ୍ତ, (ବି) ନିଷେଧ, ମନା, ଗୋପନ, ନିବାରଣ ।

ଉବୁ—ଗ୍ରା.ବି°. ଉଚ୍ଚ, ଉନ୍ନତ, ଠିଆ ।

ଉବୁକିଆ—ଗ୍ରା. କ୍ରି. କୌଣସି ପଦାର୍ଥ ତଳୁଉପରକୁ ଜୋରରେ ଉଠିଆସିବା ।

ଉବୁଡ଼ା—ଗ୍ରା.ବି°. ଉଗଡ଼ା, ମୁହଁମାଡ଼ି ଶୋଇଥିବା, ଅନ୍ୟମାନଙ୍କ ଆଗବଳି ଠିଆ ହୋଇଥିବା, ଏକ ଉପରେ ଅନ୍ୟ ଜଣେ ପଡ଼ିବା,ମୁହଁ ତଳକୁକରି ରଖିବା

ଉବୁଡ଼ାଉବୁଡ଼ି—ଗ୍ରା.ବି. ଜଣକ ଉପରେ ଜଣେ ପଡ଼ିବା, ଅନ୍ୟକୁ ଅତିକ୍ରମ କରି ଅଗ୍ରସର ହେବା ।

ଉବୁଡ଼ିପଡ଼ିବା—ଗ୍ରା.କ୍ରି.ଅନଧିକାରଚର୍ଚ୍ଚା କରିବା,ଜବରଦସ୍ତି କଥାବାର୍ତ୍ତାକରିବା, ଉପର୍ଯ୍ୟୁପରି ବହୁତ ଲୋକ କୌଣସି ସ୍ଥଳରେ ଜମା ହୋଇପଡ଼ିବା, ଆଗବଳିବା । [ଆଣ୍ଠୁମାଡ଼ି ବସିବା ।

ଉବୁଡ଼ିବସିବା—ଗ୍ରା. କ୍ରି. ଆଣ୍ଠୋଇବା,

ଉବୁଡ଼ିବା—ଗ୍ରା.କ୍ରି.ମୁହଁମାଡ଼ିପଡ଼ିବା,ଆଣ୍ଠୁମାଡ଼ି ବସିବା, ଆଣ୍ଠୁରେ ଗୁଳିବା ।

ଉବୁରିବା—ଗ୍ରା.କ୍ରି.ବଳିପଡ଼ିବା,ଉଦ୍‌ବୃତ୍ତ, ବିପଦରୁ ଉଦ୍ଧାର ପାଇବା, ବାହାରି ଆସିବା,ଚଳିବା, ସମ୍ଭାଳିହୋଇରହିବା, ବଞ୍ଚିବା, ଉପରେ ପଡ଼ିବା, କୌଣସି କାର୍ଯ୍ୟକୁ ଆଦରିବା, ସମ୍ଭାଳିବା, ନ ମରି ବଞ୍ଚିଯିବା ।

ଉଭ—(ଧାତୁ) ପୂର୍ତ୍ତି, ପରିପୂର୍ଣ୍ଣ କରିବା,

ଉଭ—ସର୍ବ (ଉଭ + ଅ) ଉଭୟ, ଦୁଇ ଜଣ, (ଦ୍ୱିବଚନାନ୍ତ ଶବ୍ଦ)

ଉଭୟ—ସର୍ବ (ଉଭ + ଅୟ)ଦୁଇ,ଦ୍ୱିତ୍ୱବିଶିଷ୍ଟ, ଦୁଇଜଣ, ଦୁହେଁ, ଦୁଇସଂଖ୍ୟକ

ଉଭୟକାଳ—ବି.ଇହକାଳ ଓ ପରକାଳ, ଅନ୍ନ, ତନ୍ନ ।

ଉଭୟଚର—ପୁଂ.ସ୍ତ୍ରୀ.ବି.(ଉଭୟ + ଚର + ଅ)ଯେଉଁମାନେ ଜଳରେ ଓ ସ୍ଥଳରେ ବାସ କରନ୍ତି । କଇଁଛ, କୁମ୍ଭୀର ବେଙ୍ଗ ଓ ଜଳଚର ପକ୍ଷୀ ପ୍ରଭୃତି ।

ଉଭୟତଃ—ଅବ୍ୟ. (ଉଭୟ + ତସ୍)ଦୁଇ ପାର୍ଶ୍ୱେ, ଦୁଇଦଗରେ, ଉଭୟ ପକ୍ଷରେ

ଉଭୟତୋମୁଖ—ପୁଂ.ବି°.ଦ୍ୱିମୁଖଗୃହାଦି, ଦୁଇମୁହାଁ, ଦୁଇଆଡ଼କୁ ମୁହଁକରିଥିବା ।

ଉଭୟତ୍ର—ଅବ୍ୟ. (ଉଭୟ + ତ୍ର) ଦୁଇ ସ୍ଥାନରେ, ଦୁଇଦଗରେ, ଦୁଇଆଡ଼େ, ଦୁଇପକ୍ଷରେ ।

ଉଭୟଥା—ଅବ୍ୟ. (ଉଭୟ + ଥା) ଦୁଇ ପ୍ରକାର ।

ଉଭୟଦଗ—ବି. ଦୁଇଦଗ, ଅଗ ଓ ମୂଳ ଦୁଇପାଖ, ଦୁଇ ବିପକ୍ଷିତଦଳ ।

ଉଭୟଦ୍ୟୁଃ—ଅବ୍ୟ. ଉଭୟ ଦିନରେ, ଦୁଇଦିନେ, ଦୁଇଦିନଯାକ ।

ଉଭୟପଦୀ—ଆତ୍ମନେପଦ ଓ ପରସ୍ମୈପଦଯୁକ୍ତ ।

ଉଭୟବିଧ—ବି°. (ବ.ବ୍ରୀ) ଦ୍ୱିବିଧ ।

ଉଭୟବେତନ—ପୁଂ.ବି. ଦୂତବିଶେଷ, ସ୍ୱାମୀ ଓ ଶତ୍ରୁ ଉଭୟଙ୍କନିକଟରୁ ବେତନଗ୍ରାହୀ, ବିଶ୍ୱାସଘାତକ, କପଟସେବକ ।

ଉଭୟସଙ୍କଟ—ବି. ଦୋଘାଇ, ଦୁବିଧା, ବିଷମସମସ୍ୟା, ଏପରି ଅବସ୍ଥା ଯେ ଯେଉଁଆଡ଼େ ଗଲେ ମଧ୍ୟ ବିପଦର ଆଶଙ୍କା ଅଛି ।

ଉଭୟାନୁମତ—ବି°. (ତତ୍ପୁ) ପରସ୍ପର ବା ଉଭୟେ ରାଜି ହୋଇଥିବା (ବିଷୟ)

ଉଭୟାର୍ଥ—କ୍ଲୀ.ବି.(କ.ଧା.) ଦୁଇଅର୍ଥ ବା ତାତ୍ପର୍ଯ୍ୟ,ଦୁଇପ୍ରୟୋଜନ, ଦୁଇଉଦ୍ଦେଶ୍ୟ ବିଶିଷ୍ଟ, ଦୁଇଅର୍ଥବୋଧକ ।

ଉଭୟେଦ୍ୟୁ—ଅବ୍ୟ. ଉଭୟଦିନରେ, ଦୁଇଦିନରେ, ଦୁଇଦିନଯାକ ।

ଉଭା—ଗ୍ରା.ବି°. (ସଂ—ଆବିର୍ଭାବ) ଠିଆ, ଛିଡ଼ା, ଆବିର୍ଭୂତ, ଠାକୁରାଣୀ ଲାଗିଥିବା (ବି) ଠିଆହେବା ଭୂମିପତନରୁ ଉଚ୍ଚତା ଡେରି, ଭୂମି ଉପରେ ଭୂମିକୁ ନଲାଗି କରି ରହିବା,ଘରଭିଶେଣୀ ଆଦି,ଗ୍ରା.କ୍ରି. ବି°.ଠିଆବାଗରେ,ଉଚ୍ଚରେ,ଠିଆଠିଆ ।

ଉଭାକରାଇବା—ଗ୍ରା.କ୍ରି.ଦେବତାଙ୍କୁ ପୂଜା କରି ମନୁଷ୍ୟ ଦେହରେ ଆବିର୍ଭୂତ କରାଇବା,ବଢ଼ିକେରାଇବା,ଚଳାଇବା ।

ଉଭାକରିବା—ଗ୍ରା.କ୍ରି.ଠିଆକରିବା,ଡେରି କରିରଖିବା ।

ଉଭାବ୍ୟଞ୍ଜନ—ଗ୍ରା. ବି. ( ଶ୍ଲେଷାର୍ଥକପ୍ରୟୋଗ)ଖଡ଼ାଶାଗ ତଅଣ ।

ଉଭାରତ—ଗ୍ରା. ବି. ଦୁଇଜଣଙ୍କର ଠିଆ ହେବା ଅବସ୍ଥାରେ ରମଣ ବା ସଙ୍ଗମ ବା ମିଳନ ।

ଉଭାରିବା—ଗ୍ରା.କ୍ରି.(ଆବିର୍ଭାବ)ଠିଆହେବା, ଟେକିବା, ଆକ୍ରମଣ କରିବା, ଉଠିବା, ଭୂମିରୁ ଉଠାଇବା,ଉତ୍ତୋଳନ କରିବା ।

ଉଭାହେବା—ଗ୍ରା.କ୍ରି. ଠିଆହେବା, (ବି) ଠାକୁରାଣୀ ଲାଗିବା, ମନୁଷ୍ୟଠାରେ ଦେବତାଙ୍କର ଆବିର୍ଭାବ ହେବା ।

ଉଭୁଜା—ଗ୍ରା.ବି.(ସଂ-ଭଜନ)ମୁଢ଼ି କରିବା ପାଇଁ ଗୁଡ଼ୁଲ ଆଦିକୁ ଭାଜିବା ।
ଉଭୁଜାଇବା—ଗ୍ରା.କ୍ରି. ଓଦା ଧାନ ବା ଗୁଡ଼ୁଲକୁ ନିଆଁରେ ଭାଜି ଶୁଖାଇବା ବା ଖରଡ଼ିବା ।
ଉଭେଇବା—ଗ୍ରା.କ୍ରି. ଅଦୃଶ୍ୟ ହେବା, ଲୁପ୍ତହେବା, ଲୋପହେବା, ଅନ୍ତର୍ଗତ ହେବା, ତିରୋହିତ ହେବା ।
ଉଭେଇଯିବା—ଗ୍ରା.କ୍ରି. ଅଦୃଶ୍ୟ ହୋଇ ଯିବା, ତିରୋହିତ ହେବା ।
ଉମ୍‌ଦା—ଯା. ବିଂ. ଉଦ୍ଧା, ଅତିଉତ୍କୃଷ୍ଟ, ଅତିଉତ୍ତମ, ଧନୀ ।
ଉମ୍ମତ୍ର—ଯା.ବି. ଶିଷ୍ୟ ।
ଉମ—ଅବ୍ୟ, ରୋଗ, ଅଙ୍ଗୀକାର, ପ୍ରଶ୍ନ, ସ୍ୱୀକାର, ଉଁ । [କାଲ ।
ଉମର—ଯା.ବି. ବୟସ,ପରମାଣ,ଜୀବିତ-
ଉମରକୋଟ—ଅମରକୋଟ, ସିନ୍ଧୁପ୍ରଦେଶାନ୍ତର୍ଗତ ପାରକର ଜିଲ୍ଲାର ଗୋଟିଏ ନଗର । କୋରାପୁଟଜିଲ୍ଲା ନବରଙ୍ଗପୁର ନିକଟସ୍ଥ ସ୍ଥାନ ବିଶେଷ ।
ଉମରଶେଖର—ବେରାରଅନ୍ତର୍ଗତ ପୁସାର ତାଲୁକା ମଧ୍ୟବର୍ତ୍ତୀ ପ୍ରଧାନ ନଗର ।
ଉମରପୁର—ଭାଗଲପୁର ଜିଲ୍ଲାର ଅଧୀନସ୍ଥ ବାଙ୍କାପୁର ମଧ୍ୟସ୍ଥିତ ଗୋଟିଏ ନଗର ।
ଉମରା—ଯା. ବି. ଧନୀ, ବଡ଼ଲୋକ ।
ଉମା—ସ୍ତ୍ରୀ. ବି. (ଉ+ମା) ଶିବପତ୍ନୀ, ଦୁର୍ଗା, ହରିଦ୍ରା, ହଳଦୀ, ଅତସୀ, କୀର୍ତ୍ତି, କାନ୍ତି, ଶାନ୍ତି,ରାତ୍ରି ।
ଉମାକଟ—ପୁଂ. ବି. (ଉମା+କଟର) ମସିଣାର ଧୂଳି, ଅତସୀ ଧୂଳି, ହଳଦୀ-ଗୁଣ୍ଡା, ଦେହରେ ଲଗାଇବା ନିମନ୍ତେ ସୁଗନ୍ଧ ଦ୍ରବ୍ୟ ବିଶେଷ ।
ଉମାକାନ୍ତ—ପୁଂ. ବି. (୬ତତ୍ପୁ) ଶିବ, ଉମାଙ୍କର ପତି ।
ଉମାକିଙ୍କର—ପୁଂ.ବି.(୬ତତ୍ପୁ) ପାର୍ବତୀଙ୍କ ଭକ୍ତ, ସିଂହ, ପାର୍ବତୀଙ୍କ ବାହନ ।
ଉମାଗୁରୁ—ପୁଂ. ବି. (୬ତତ୍ପୁ) ହିମାଳୟ ପର୍ବତ, ଗୌରୀଗୁରୁ ।
ଉମାଚତୁର୍ଥୀ—ସ୍ତ୍ରୀ. ବି. ଜ୍ୟେଷ୍ଠମାସର ଶୁକ୍ଳ ଚତୁର୍ଥୀ ତିଥି ।

ଉମାଧବ—ପୁଂ. ବି. (୬ତତ୍ପୁ) ଶିବ, ମହାଦେବ ।
ଉମାନନ୍ଦ—ପୁଂ. ବି. ଶିବ, ବ୍ରହ୍ମପୁତ୍ର ନଦ ମଧ୍ୟସ୍ଥିତ ଗୋଟିଏ କ୍ଷୁଦ୍ରଦ୍ୱୀପ,ଶିବମନ୍ଦିର ନିମିତ୍ତ ପ୍ରସିଦ୍ଧ ।
ଉମାପତି—ଶିବ, ମହାଦେବ, ମିଥିଳାର ଜଣେ ପ୍ରଧାନ କବି, ରାଜା ଶିବସିଂହଙ୍କର ସଭାପଣ୍ଡିତ ।
ଉମାପତି ତ୍ରିପାଠୀ—ଜଣେ ବିଖ୍ୟାତ ହିନ୍ଦୁସ୍ଥାନୀ ପଣ୍ଡିତ-ସଂସ୍କୃତ ଭାଷାରେ ଅନେକ ଗ୍ରନ୍ଥ ରଚନା କରିଥିଲେ ।
ଉମାସାଇଁ—ଗ୍ରା.ବି. ପୁଂ. ଶିବ,ଉମାପତି, ମହାଦେବ ।
ଉମାସୁତ—ପୁଂ.ବି. (୬ତତ୍ପୁ)କାର୍ତ୍ତିକେୟ ।
ଉମାସ୍ୱତିବାଚକ—ପୁଂ. ବି. ଜଣେ ପ୍ରସିଦ୍ଧ ଜୈନଗ୍ରନ୍ଥକର୍ତ୍ତା, ତତ୍ତ୍ୱାର୍ଥସୂତ୍ରପ୍ରଣେତା ।
ଉମି—ଯା. ବି. ମୂର୍ଖ ।
ଉମିଚନ୍ଦ—ପୁଂ. ବି. ଜଣେ ବିଖ୍ୟାତ ବଣିକ ଥିଲେ ।
ଉମିଦ—(ଯା.)ବି. ଆଶା, ଆକାଙ୍କ୍ଷା ।
ଉମେଦ—(ଯା.) ବି. ଇଚ୍ଛା, ଅଭିଳାଷ, ଉଦ୍ଦେଶ୍ୟ, କାର୍ଯ୍ୟପ୍ରାର୍ଥିତ୍ୱ ।
ଉମେଦାର—(ଯା.) ବି. ଚାକିରିପ୍ରାର୍ଥୀ, ଅନୁଗ୍ରହପ୍ରାର୍ଥୀ,ଅନୁସରଣିଆଁ,ଆକାଙ୍କ୍ଷୀ ପ୍ରତ୍ୟାଶାକାରୀ, ଯେ ଉପକାରର ପ୍ରତ୍ୟାଶାକରେ ।
ଉମେଦାରି—(ଯା.) ବି. କୌଣସି ଅନୁଗ୍ରହ ନିମନ୍ତେ ଅନୁସରଣ ବା ଉପାସନା ।
ଉମେଶ—ପୁଂ.ବି. (ଉମା+ଈଶ)୬ତତ୍ପୁ, ଶିବ, ମହାଦେବ, ଉମାପତି (ଦ୍ୱନ୍ଦ୍ୱ). ହରପାର୍ବତୀ ।
ଉମେଶଚନ୍ଦ୍ର ସରକାର—ଗ୍ରା. ବି. ବଙ୍ଗଳାର ପ୍ରଥମ ଉପନ୍ୟାସ ଲେଖକ, ପଦ୍ମମାଳୀ ନାମକ ଐତିହାସିକ ଉପନ୍ୟାସ ରଚୟିତା ।
ଉମ୍ବର—ପୁଂ. ବି. (ଉଭ+ବୃ+ଅ) ଦେହଳୀ, ଗୋବରାଠର ଉପର କାଠ, ଦ୍ୱାରବନ୍ଧର ଉପର କାଠ ।

ଉମ୍ବୀ—ସ୍ତ୍ରୀ. ବି. ତୃଣାଗ୍ନି ଦ୍ୱାରା ପୋଡ଼ିବା, ଅର୍ଦ୍ଧପକ୍ୱ ଯବଗୋଧୂମମଞ୍ଜରୀ (ଓ.ଗ୍ରା.ବି) ଡ଼ହୁଣୀ ।
ଉମ୍ବାଇ—ଗ୍ରା. ବି. (ସଂ-ଅଗ୍ନିଷ୍ଠ) ନିଆଁ ରଖିବାର କ୍ଷୁଦ୍ରକୁଣ୍ଡ,ହସନ୍ତୀ, ଅଙ୍ଗାରଧାନିକା ।
ଉମ୍ବେଇ—ଗ୍ରା. ବି. ଉମ୍ବାଇ (ଦେଖ) ।
ଉମ୍ୟ—କ୍ଳୀ. ବି. ଉମାମିନ, ଅତସୀ ବା ହରିଦ୍ରାର କ୍ଷେତ୍ର ।
ଉମ୍ଲୋଚା—ସ୍ତ୍ରୀ. ବି. ଅପ୍ସରା ବିଶେଷ ।
ଉର—(ଧାତୁ) ଗତି, ଗମନ କରିବା ।
ଉର—ପ୍ରା. (ସମ୍ପ) ବରଓହଳ ।
ଉର—ପୁଂ. ବି. (ଉର୍+ଅ) ମେଷ,(ସ୍ତ୍ରୀ) ମେଷୀ (ବିଂ) ଗମନକାରୀ ।
ଉରଃ—(ଅବ୍ୟ) ବି. ବକ୍ଷଃ, ବକ୍ଷସ୍ଥଳ, ହୃଦୟ, (ବିଂ) ଉତ୍ତମ, ଶ୍ରେଷ୍ଠ ।
ଉରଃକ୍ଷତ—ବି. (୬ତତ୍ପୁ) ରୋଗ ବିଶେଷ, ଯକ୍ଷ୍ମାରୋଗ, ଯେଉଁ ରୋଗରେ ଛାତି ଭିତର ଘା ହୋଇ ମୁହଁ ବାଟରେ ରକ୍ତ ପଡ଼େ ।
ଉରଃସୂତ୍ରିକା—ସ୍ତ୍ରୀ. ବି. (ଉରସ୍+ସୂତ୍ର କ+ଆ) ମୁକ୍ତାହାର, ମୁକ୍ତାମାଳା ।
ଉରସ୍ତମ୍ଭ—ପୁଂ. ବି. ବକ୍ଷରୋଧକ ଶ୍ୱାସ ରୋଗ । [ଭୁଜଙ୍ଗ ।
ଉରସ୍ଥଳ—କ୍ଳୀ. ବି. (କ.ଧ) ବକ୍ଷସ୍ଥଳ,
ଉରଗ—ପୁଂ. ବି. (ଉରସ୍+ଗମ୍+ଅ) ସର୍ପ, ସୀସକ, ଅଶ୍ଳେଷା ନକ୍ଷତ୍ର ।
ଉରଗଭୂଷଣ—ପୁଂ. ବିଂ. (ଉରଗ+ଭୂଷଣ) ମହାଦେବ, ଶିବ ।
ଉରଗରାଜ—ପୁଂ. ବି. (ଉରଗ+ରାଜା) ୬ତତ୍ପୁ; ସର୍ପରାଜା, ବାସୁକୀ ।
ଉରଗସ୍ଥାନ—କ୍ଳୀ. ବି. (ଉରଗ+ସ୍ଥାନ) ୬ତତ୍ପୁ; ପାତାଳ, ନାଗଲୋକ ।
ଉରଗାରି—ପୁଂ. ବି. (ଉରଗ+ଅରି) ମୟୂର, ନେଉଳ, ଗରୁଡ଼ ।
ଉରଗାଶନ-ପୁଂ.ବି.(ଉରଗ+ଅଶ୍+ଅନ) ବ.ବ୍ରୀ; ସର୍ପଭକ୍ଷକ, ଗରୁଡ଼, ମୟୂର, ନକୁଳ ।
ଉରଗାସନ—ପୁଂ. ବି. (ବ.ବ୍ରୀ) ଅନନ୍ତଶାୟୀ, ବିଷ୍ଣୁ ।

ଉରଗେନ୍ଦ୍ର—ପୁଂ. ବି. (ଉରଗ+ଇନ୍ଦ୍ର) ସର୍ପରାଜ, ବାସୁକୀ ।

ଉରଙ୍ଗ—ପୁଂ. ବି. (ଉରସ୍+ଗମ୍+ଅ) ସର୍ପ, ଉରଗ (ସ୍ତ୍ରୀ) ଉରଙ୍ଗୀ ।

ଉରଙ୍ଗମ—ପୁଂ. ବି. (ଉରସ୍+ଗମ୍+ଖଶ୍) ସର୍ପ ।

ଉରଜ—ବି. (ଉରସ୍+ଜନ୍+ଅ) ସ୍ତନ, କୁଚ, ବକ୍ଷୋଜ ।

ଉରଣ—ପୁଂ. ବି. ମେଷ, ମେଘ, ଯାଦୁମାରି ଗଛ, ଦଦ୍ରୁଘ୍ନବୃକ୍ଷ, ଗୃଞ୍ଜୁଣ୍ଡାଗଛ, ବେଦୋକ୍ତ ଅସୁର ବିଶେଷ ।

ଉରଣା—ବି. ଉରଃକବଚ, ବକ୍ଷୋରକ୍ଷକ ଆବରଣ ।

ଉରଣାକ୍ଷ—ପୁଂ, ବି. ( ଉରଣ+ଅକ୍ଷ ) ଗୃଞ୍ଜୁଣ୍ଡାଗଛ ।

ଉରଣାକ୍ଷକ—ପୁଂ.ବି.ଦଦ୍ରୁଘ୍ନବୃକ୍ଷ, ଯାଦୁମାରି ଗଛ ।

ଉରପୁଟି—ଗ୍ରା.ବି. (ସଂ—ଉରଃ+ପୁଟ) ବାଦ୍ୟବିଶେଷ, କଂସ ବାଦ୍ୟ ।

ଉରବାସ—ଗ୍ରା.ବି. ଛାତିଉପରର ଲୁଗା, ସ୍ତ୍ରୀ ଲୋକଙ୍କ ପିନ୍ଧା ଲୁଗାର ଯେଉଁ ଅଂଶ ଛାତି ଉପରେ ଥାଏ ।

ଉରଭ୍ରମ—ପୁଂ.ସ୍ତ୍ରୀ.ବି.(ଉର+ଭ୍ରମ୍+କ.ଅ)ମେଷ,ବିଷଧର କୀଟବିଶେଷ,ମେଘ ।

ଉରଭ୍ରସାରିବା—ସ୍ତ୍ରୀ.ବି. ସୁଶ୍ରୁତୋକ୍ତ କୀଟବିଶେଷ ।

ଉରରୀ—ଅବ୍ୟ. (ଋ+ରୀକ,ନିପାତନ) ଅଙ୍ଗୀକାର, ସ୍ୱୀକାର, ବିସ୍ତାର, ପ୍ରତିଶ୍ରୁତି, ପରିତ୍ୟାଗ ।

ଉରରୀକାର—ପୁଂ.ବି.(ଉରରୀ+କୃ+ଅ) ଅଙ୍ଗୀକାର, ସ୍ୱୀକାର ।

ଉରରୀକୃତ—ବିଂ. (ଉରରୀ+କୃ+ତ) ପ୍ରସାରିତ,ବିସ୍ତାରିତ, ପରିତ୍ୟକ୍ତ,ପ୍ରତିଶ୍ରୁତ ସ୍ୱୀକୃତ ।

ଉରୀକୃତ—ବିଂ. ପ୍ରସାରିତ, ଉରରୀକୃତ (ଦେଖ)

ଉରଲ—ପୁଂ.ବି.(ଉର+କଳଚ୍) ଗଡ଼ଯୁକ୍ତ, ଗଡ଼ବିଶିଷ୍ଟ ।

ଉରଲ୍ୟ—ବିଂ. (ଉରଲ+ଯ) ଉରଲସନ୍ନିହିତଦେଶୀୟ (ବି)ମାନ୍ଦ୍ରାଜ ପ୍ରଦେଶସ୍ଥ ଅସଭ୍ୟ ଜାତି ବିଶେଷ ।

ଉରଶ—ପୁଂ.ବି. ଗୋଟିଏ ଅତି ପ୍ରାଚୀନ ପ୍ରସିଦ୍ଧ ଜନପଦ (ଦେଶ) ।

ଉରଶଲ—ଗ୍ରା.ବିଂ.(ସଂ—ଉରଃ+ଶଲ୍ୟ) ବୀରତ୍ୱ ବ୍ୟଞ୍ଜକ ଉପାଧିବିଶେଷ,ଅଧିପତି, ଶ୍ରେଷ୍ଠବ୍ୟକ୍ତି (ବିଂ) ଶ୍ରେଷ୍ଠ ।

ଉରଶ୍ଛଦ—ପୁଂ.ବି.(ଉରସ୍+ଛଦ୍+ଅ) କବଚ, ବର୍ମ, ସାଞ୍ଜୁ ।

ଉରସ୍—କ୍ଲୀ.ବି. (ଋ+କ,ଅସ୍) ଉରଃ, ବକ୍ଷସ୍ଥଳ, ହୃଦୟ, ଛାତି (ବିଂ) ପ୍ରଧାନ, ଉତ୍ତମ ।

ଉରସ—ଗ୍ରା. ବି. (ସଂ-ଉରସ୍) ଉରସ୍ (ଦେଖ)

ଉରସି—ଅବ୍ୟ, ସ୍ୱୀକାର ।

ଉରସିଜ—ପୁଂ.ବି.(ଉରସି+ଜନ୍+ଅ) ସ୍ତ୍ରୀଲୋକମାନଙ୍କରସ୍ତନ, କୁଚ,ବକ୍ଷୋଜ ।

ଉରସିରୁହ-ପୁଂ.ବି.(ଉରସି+ରୁହ୍+ଅ) ସ୍ତନ, କୁଚ, ବକ୍ଷୋଜ ।

ଉରସିଲ—ବିଂ. (ଉରସ୍+ଇଲ)ଯାହାର ବକ୍ଷସ୍ଥଳ ପ୍ରଶସ୍ତ, କପାଟବକ୍ଷା, ଯାହାର ଛାତି ଚୌଡ଼ା ।

ଉରସ୍କଟ—ପୁଂ.ବି.(ଉରସ୍+କଟ୍+ଅ) ବାଳକମାନଙ୍କର ଯଜ୍ଞୋପବୀତ, ପଇତା, ବକ୍ଷୋଲମ୍ବିତ ଯଜ୍ଞସୂତ୍ର ।

ଉରସ୍ତଃ—ଅବ୍ୟ (ଉରସ୍+ତସ୍)ହୃଦୟଜାତ, (ପୁତ୍ରାଦି) ।

ଉରସ୍ତ୍ର—କ୍ଲୀ. ବି. (ଉରସ୍+ତ୍ରୈ+ଅ) ବକ୍ଷରକ୍ଷକ, କବଚ, ବର୍ମ୍ମ ।

ଉରସ୍ତ୍ରାଣ—କ୍ଲୀ. ବି. (ଉରସ୍+ତ୍ରୈ+ଅନ) କବଚ, ବର୍ମ୍ମ, ସାଞ୍ଜୁ ।

ଉରସ୍ଥଳ—କ୍ଲୀ.ବି, (କ.ଧା) ଉରଃସ୍ଥଳ, ବକ୍ଷ, ବୁକୁ ।

ଉରସ୍ୟ—ବିଂ.(ଉରସ୍+ଯ)ହୃଦୟଜାତ ଔରସଜାତ, ହୃଦୟଯୋଗ୍ୟ (ବି) ଔରସସନ୍ତାନ,ଔରସପୁତ୍ର(ସ୍ତ୍ରୀ)ଉରସ୍ୟା

ଉରସ୍ୱାନ୍—ପୁଂ.ବିଂ.(ଉରସ୍+ବତ୍)ଉରସିଲ, ଯାହାର ବକ୍ଷ ପ୍ରଶସ୍ତ, ବଳବାନ୍, ବିଶାଳବକ୍ଷ ।

ଉରା—ସ୍ତ୍ରୀ.ବି. ଉରଣ, ମେଷ ।

ଉରା—ଗ୍ରା.ବି. (ସଂ-ଆରୋହଣ) ଶ୍ରେଣୀକୁ ଠିକ ଭାବରେ ଅଟକାଇବା ପାଇଁ ଆଡ଼ବାଗରେ ଯେଉଁ ଧାରଣା କାଠଖଣ୍ଡ ପକାଯାଇଥାଏ,ଗୃହରଉପରିସ୍ଥକାଷ୍ଠୋପକରଣବିଶେଷ, କାଠ ।

ଉରାନଘାଇ—ଗ୍ରା.ବି. ବୃଥା ଆପତ୍ତି ।

ଉରାପାଣି—ଗ୍ରା.ବି. ଯେଉଁ ପାଣି ଉରାରେ ଥାଏ, ଛାଞ୍ଚ, ଖଜୁରୀରସ ।

ଉରାଲଆ—ଗ୍ରା.ବିଂ.(ପୁଂ.ସ୍ତ୍ରୀ) ଅଲବଲିଆ (ଦେଖ) ।

ଉରାହ—ପୁଂ.ବି.ଈଷତ୍ ପାଣ୍ଡୁବର୍ଣ୍ଣ କୃଷ୍ଣଜଙ୍ଘବିଶିଷ୍ଟ ଅଶ୍ୱ ।

ଉରି—ପ୍ରା. (ସମ୍ଭ) ବି.ବନ୍ଧୁବାନ୍ଧବମାନଙ୍କ ଘରକୁ ବିବାହ ବ୍ରତ ଆଦି ଶୁଭାନୁଷ୍ଠାନମାନଙ୍କରେ ପଠାଯିବା ଭେଟିର ।

ଉରିଆ—ଗ୍ରା.ବି. ଘୃତଲିପ୍ତ ପକ୍ୱାନ୍ନ,ଖରୁଗୃଡ଼ିଲ ।

ଉରୀ—ଅବ୍ୟ, (ଉର+ଈକ୍)ଅଙ୍ଗୀକାର, ବିସ୍ତାର, ସ୍ୱୀକାର ।

ଉରୁ—ବିଂ.(ଊର୍ଣ୍ଣୁ+ଉ) ଗରିଷ୍ଠ, ପ୍ରବଳ, ଉତ୍ତମ, ପ୍ରଚୁର, ମହାନ୍, ବଡ଼,ବହୁଳ, ବିସ୍ତୀର୍ଣ୍ଣ, ବ୍ୟାପ୍ତ, ବିଶାଳ, (ବି) ଜଙ୍ଘ, ରାଜ, ମଞ୍ଜି ।

ଉରୁକାଲ—ପୁଂ. ବି, ମହାକାଲ, ମହାକାଲଗଛ ।

ଉରୁକାଲକ—ପୁଂ. ବି. (ଉରୁକାଲ+କ) ମହାକାଲଲତା ।

ଉରୁକ୍ରମ—ପୁଂ.ବିଂ. (ଉରୁ+କ୍ରମ)ପାଦବିକ୍ଷେପଯୁକ୍ତ,ବାମନରୂପୀ ବିଷ୍ଣୁ,ଋଷଭଭେଦ।

ଉରୁକ୍ଷୟ—ପୁଂ. ବି. ଭରଦ୍ୱାଜବଂଶୀୟ ମହାବୀର୍ଯ୍ୟ ରାଜପୁତ୍ର ।

ଉରୁକ୍ଷେପ—ପୁଂ.ବି.ଇକ୍ଷ୍ୱାକୁବଂଶୀୟରାଜବିଶେଷ, ବୃହଦ୍‌କ୍ଷଣର ପୁତ୍ର ।

ଉରୁଗାୟ—ପୁଂ. ବିଂ.(ଉରୁ+ଗୈ+ଅ) ସର୍ବଜନଗେୟ, ବହୁଦେଶେ ସ୍ତୁତ,ଯାହାର ମହିମା ବହୁଲୋକ ଗାନ କରନ୍ତି (ପୁଂ.

ବ) ବକ୍ଷୁ, ବସ୍ତ୍ରୀଣ୍ଣିଗଡ, ବହୁକ୍ଷାତ୍ରିନ, ଅର୍ଣ୍ଣି ମାକୁମାର ଦ୍ରବ୍ୟ ।

ଉରୁଶୂଳା—ସ୍ତ୍ରୀ. ବ. ସର୍ପବିଶେଷ ।

ଉରୁଚକ୍ଷୁ—ବି°. ମହାଦର୍ଶନ, ଭଲକରି ଦେଖିବା, (ପୁଂ.ବ) ସୂର୍ଯ୍ୟ ।

ଉରୁଗୁରୁ—ଗ୍ରା. ବ. (ସଂ-ଉରୁ ଓ ଗୁରୁ) ଜଙ୍ଘର ଶୋଭା, ସୁନ୍ଦର ଜଙ୍ଘ ।

ଉରୁଜନ୍ମା ବି°. (ବ.ବ୍ରୀ) ଶ୍ରେଷ୍ଠଜନ୍ମା, କୁଳୀନ, ସତ୍କୁଳଜାତ ।

ଉରୁଜଣନ୍—ବି°. ବହୁଭୂମିଯୁକ୍ତ ।

ଉରୁଜ୍ରସ୍ଃ—ବି°.(ଉରୁ+ଜ୍ର+ଅସୁନ୍) ବହୁବେଗଯୁକ୍ତ । [ଶାଳୀ

ଉରୁଜ୍ର-ବି°.ବହୁବେଗବାନ୍, ବହୁବେଗ-

ଉରୁଞ୍ଜିର—ସ୍ତ୍ରୀ. ବ. ବିପାଶା ନଦୀର ପ୍ରାଚୀନ ନାମ ।

ଉରୁଣ୍ଡ—ପୁଂ. ବ. ବେଦୋକ୍ତ ଉପଦ୍ରବକାରୀ ଅସୁରବିଶେଷ, ଗୋତ୍ର ପ୍ରବର୍ତ୍ତକ ବ୍ୟକ୍ତିବିଶେଷ ।

ଉରୁତା—ସ୍ତ୍ରୀ. ବ. ବହୁତା, ବିସ୍ତାର ।

ଉରୁଧାର—ବି°.ବହୁବେଗରେ ନିଃସୃତ ।

ଉରୁବିକ୍ରମ—ପୁଂ.ବି°.(ବ.ବ୍ରୀ) ମହାପରାକ୍ରମଶାଳୀ, ଅତି ପରାକ୍ରମୀ, (ସ୍ତ୍ରୀ) ଉରୁବିକ୍ରମା ।

ଉରୁବିଲ—ବି°. ବୃହଚ୍ଛିଦ୍ରଯୁକ୍ତ ପାତ୍ର ।

ଉରୁବ୍ଜ—ବି°. ବହୁଜଳଜନକ ।

ଉରୁମାଲ—ଯା. ଗ୍ରା. ବ. ରୁମାଲ ।

ଉରୁମୁଣ୍ଡ—ପୁଂ. ବ. ମଥୁରା ପ୍ରଦେଶାନ୍ତର୍ଗତ ଗୋଟିଏ ପାହାଡ଼ ।

ଉରୁମ୍ଭି-ଗ୍ରା.ବି°.(ସଂ—ରୁଦ୍ଧ)ହାମ୍ପି ଥିବା, ଉର୍ଦ୍ଧ୍ୱଶ୍ୱାସ, ଅମୁହାଁ, ରୁଦ୍ଧଶ୍ୱାସ (ବ) ହାମ୍ପିବା, ରୁଦ୍ଧଶ୍ୱାସ ଅବସ୍ଥା ।

ଉରୁମ୍ଭିବା-ଗ୍ରା.କ୍ରି.(ସଂ—ରୁଦ୍ଧ)ରୁନ୍ଧିବା, (ଶ୍ୱାସ) ରୋଧହେବା ।

ଉରୁମ୍ଭି ଲାଗିବା—ଗ୍ରା.ବ.ଶ୍ୱାସରୋଧହେଲ ପରି ଜଣାଯିବା । [ବିସ୍ତାର ।

ଉରୁରୀ—ଅବ୍ୟ. ଉରରୀ, ଅଙ୍ଗୀକାର,

ଉରୁଲୋକ—କ୍ଲୀ. ବ. ଅନ୍ତରୀକ୍ଷ, ଶ୍ରେଷ୍ଠଲୋକ ।

ଉରୁବୁ—ପୁଂ.ବ.ଏରଣ୍ଡବୃକ୍ଷ, ଜଡ଼ାଗଛ ।

ଉରୁବୂକ—ପୁଂ.ବ.(ଉରୁ+ବେ+ଉକ) ରକ୍ତ ଏରଣ୍ଡ,ରଙ୍ଗଜଡ଼ାଗଛ,ଗବଗଛ ।

ଉରୁବିଲ୍ୱ—ସ୍ତ୍ରୀ. ବ. ବୃକ୍ଷଗସ୍ୱା ।

ଉରୁବ୍ୟଗ୍ରଃ—ପୁଂ.ବ. (ଉରୁ+ବ୍ୟଚ+ଅସ୍)ଗ୍ରକ୍ଷସ,(ବି°)ଅତବ୍ୟାପକ,ବସ୍ତ୍ରୀର୍ଣ୍ଣ

ଉରୁଷା—ବି°.ମହାଦାତା,ବହୁଦାନକାରୀ

ଉରୁଷ୍ୟା—ସ୍ତ୍ରୀ. ବ. ରକ୍ଷଣେଚ୍ଛା, ରକ୍ଷାକରିବାର ଇଚ୍ଛା ।

ଉରୂଚୀ—ସ୍ତ୍ରୀ. ବ. ଅତବ୍ୟାପିକା ସ୍ତ୍ରୀ ।

ଉରୁଣସ୍—ବି°. (ଉରୁ+ଣସ୍) ଯାହାର ନାସିକା ଦୀର୍ଘ ।

ଉରୂଣାଃ—ବି°. ଦୀର୍ଘନାସାଯୁକ୍ତ ।

ଉରେଗମ—ବ. (ତନ୍ତ୍ର) ସର୍ପ ।

ଉରେଗାମୀ—ପୁଂ. ବି°.(ଉରସ୍+ଗମ୍+କ,ଇନ୍)ଯେ ଛାତି ଉପରେ ଭର ଦେଇ ଚାଲେ, (ସାପ, ଜୋକ, କେଞ୍ଚୁଆ ପ୍ରଭୃତି) (ସ୍ତ୍ରୀ) ଉରେଗାମିନୀ ।

ଉରେଗ୍ରହ—ପୁଂ. ବ. (ତନ୍ତ୍ର)ବକ୍ଷୋବ୍ୟଥା, ଛାତିର ବେଦନା ।

ଉରେଜ—ପୁଂ.ବ.(ଉରଃ+ଜନ୍+ଅ) କୁଚ,ପୟୋଧର,ସ୍ତ୍ରୀମାନଙ୍କରସ୍ତନ,ହାର

ଉରେଭୂ—ପୁଂ. ବ. (ଉରସ୍+ଭୂ+କ୍ୱିପ୍) ସ୍ତନ, ବକ୍ଷୋଜ, କୁଚ ।

ଉରେଭୂଷଣ—କ୍ଲୀ. ବ. (ଉରସ୍+ଭୂଷ୍+ଅନ) ହାର, ବକ୍ଷର ଅଳଂକାର ।

ଉରେବୃହତୀ - ସ୍ତ୍ରୀ.ବ.ଯାସ୍କମତେ ଦ୍ୱିତୀୟ ଚରଣର ଜଗତାତ୍ମକ ବୈଦିକ ଛନ୍ଦୋବିଶେଷ ।

ଉରୋହସ୍ତ—କ୍ଲୀ. ବ. (ଉରସ୍+ହସ୍ତ) ବାହୁଯୁଦ୍ଧବିଶେଷ,ବକ୍ଷସ୍ଥଳରେ ଗୁପୁଡ଼ା ପ୍ରହାର ।

ଉର୍କ୍ଷ—ଗ୍ରା. ବ. ଉଙ୍ଗ,ଛଟକ (ସଂ.ଉର୍କ୍ଷ) କାର୍ତ୍ତିକମାସ ।

ଉର୍ଜ୍ଜିତ—ବି°. (ଉର୍ଜ୍ଜ+ମି, ତ)ତ୍ୟକ୍ତ, ବର୍ଦ୍ଧିତ,ଶକ୍ତିସମ୍ପନ୍ନ,ଅମୋଘ(ସ୍ତ୍ରୀ),ଉର୍ଜ୍ଜିତା

ଉର୍ଣ୍ଣୁ—ଧାତୁ, ଆଚ୍ଛାଦନ କରିବା ।

ଉର୍ଣ୍ଣନାଭ—ପୁଂ.ବ(ଉର୍ଣ୍ଣ+ନାଭି)ମର୍କଟକ, ମାକଡ଼ସା, ବୁଢ଼ିଆଣୀପୋକ ।

ଉର୍ଣ୍ଣା—ସ୍ତ୍ରୀ.ବ.(ଉର୍ଣ୍ଣୁ+ଅ+ଆ)ମେଷାଦିଲୋମ,ପଶମ, ଲଲାଟର ଲୋମସମୂହାତ୍ମକ ଚକ୍ରବିଶେଷ,ବୁଢ଼ିଆଣୀ ସୂତା ।

ଉର୍ଣ୍ଣାବସ୍ତ୍ର—ବ. ପଶୁଲୋମ ନିର୍ମିତ ଲୁଗା, ପଶମ କପଡ଼ା ।

ଉର୍ଦ୍ଦ୍—ଧାତୁ, ଦାନକରିବା,ଆସ୍ୱାଦକରିବା, କ୍ରୀଡ଼ା କରିବା ।

ଉର୍ଦ୍ଦି—ଯା. ବ. ପ୍ରହରୀପ୍ରଭୃତିଙ୍କର ରାଜନିର୍ଦ୍ଦିଷ୍ଟ କୁରୁତା, କର୍ମଚାରୀମାନଙ୍କର ପୋଷାକ ।

ଉର୍ଦ୍ଦୁ,ଉର୍ଦ୍ଦୁ—ଯା. ବ.ଆରବୀ,ପାରସୀ ଓ ହିନ୍ଦୀ ଏହି ତିନିଭାଷାର ମିଶ୍ରଣରେ ଉତ୍ପନ୍ନଭାଷା,ଏହାରଅର୍ଥ ସେନା ବା ସେନାନିବେଶ ।

ଉର୍ଦ୍ଧ—ପୁଂ.ବ.(ଉର୍ଦ୍ଦ+ର) ଉଦ୍‌ବିଡାଳ, ଜଳବିଡ଼ାଳ, ଓଧ, ଉଧ ।

ଉର୍ବ—ଧାତୁ, ହିଂସାକରିବା ।

ଉର୍ବ—ପୁଂ.ବ.(ଉର୍ବ+ଅ),ମୁନିବିଶେଷ, ଋଷିବିଶେଷ ।

ଉର୍ବଟ—ପୁଂ. ବ. (ଉରୁ+ଅଟ+ଅ) ବତ୍ସର, ବର୍ଷ ।

ଉର୍ବର—ବି°. (ଉ+ଋ+କ,ଅ)ସର୍ବଶସ୍ୟୋତ୍ପାଦିକା (ଭୂମି) ନବନବୋନ୍ମେଷଶାଳିନୀ(ବୁଦ୍ଧି),ନବନବୋଦ୍ଭାବନଶୀଳ (ମନ) ।

ଉର୍ବରା—ସ୍ତ୍ରୀ. ବ. (ଉର୍ବ+ରା+କ୍ୱିପ୍) ଶସ୍ୟଶାଳିନୀଭୂମି,ଭୂମିମାତ୍ର,ବସୁନ୍ଧରା, ଅପ୍ସରାବିଶେଷ,(ବି°)ଅଧିକ ଖାଉଥିବା ।

ଉର୍ବରାସା—ବି°.ଭୂମିବିଭାଗକାରୀ(ପୁଷ୍ପାଦି)

ଉର୍ବର୍ଯ୍ୟ—ବି°. (ଉର୍ବର+ଯତ୍) ଶସ୍ୟଶାଳୀ ଭୂମିଜାତ ।

ଉର୍ବଶୀ—ସ୍ତ୍ରୀ.ବ. (ଉରୁ+ବଶ୍+ଅ+ଈ)ସ୍ୱନାମଖ୍ୟାତା ସ୍ୱର୍ଗବେଶ୍ୟା, ଅପ୍ସରାବିଶେଷ, ନାରାୟଣଙ୍କର ଉରୁସମ୍ଭବା ।

ଉର୍ବଶୀତୀର୍ଥ—କ୍ଲୀ. ବ. ମହାଭାରତୋକ୍ତ ତୀର୍ଥବିଶେଷ, ସୋମାଶ୍ରମ ।

ଉର୍ବଶୀରମଣ—ପୁଂ. ବ.(ଉର୍ବଶୀ+ରମ୍+ଅନ) ଚନ୍ଦ୍ରବଂଶ ସମ୍ଭୂତ ବୁଧପୁତ୍ର, ପୁରୁରବା ।

ଉର୍ବଶୀବଲ୍ଲଭ—ପୁଂ. ବି. ପୁରୁରବା, ଏ ଚନ୍ଦ୍ରବଂଶୀୟ ରାଜା ଥିଲେ ।

ଉର୍ବାରୁ—ପୁଂ.ବି.(ଉରୁ + ଆରୁ)ଉର୍ବାରୁ, କାଙ୍କଡ଼, କାକୁଡ଼ି ।

ଉର୍ବୀ—ସ୍ତ୍ରୀ.ବି.(ଉରୁ + ଈ)ପୃଥିବୀ,କ୍ଷିତି, ଭୂମି (ବିଂ) ମହତୀ,ବୃହତୀ, ବିପୁଳା ।

ଉର୍ବୀତଳ—କ୍ଲୀ.ବି.(ଉର୍ବୀ + ତଳ)ପୃଥିବୀର ଉପରଭାଗ, ମହୀତଳ, ପୃଥ୍ୱୀତଳ ।

ଉର୍ବୀଧର—ପୁଂ. ବି.(ଉର୍ବୀ + ଧୃ + ଅ) (୬ତତ୍ପୁ) ପର୍ବତ,ମହୀଧର,ଅଚଳ,ସର୍ପରାଜ ବାସୁକି ।

ଉର୍ବୀଧବ—ପୁଂ. ବି. (ଉର୍ବୀ + ଧବ) ପୃଥିବୀପତି, ରାଜା ।

ଉର୍ବୀଭୃତ୍—ପୁଂ.ବିଂ. (ଉର୍ବୀ + ଭୃ + କ୍ୱିପ୍)ପର୍ବତ,ରାଜା, ନୃପତି, ଭୂଧର ।

ଉର୍ବୀରୁହ—ପୁଂ.ବି.(ଉର୍ବୀ + ରୁହ୍ + ଅ) ବୃକ୍ଷ, ତରୁ ।

ଉଷଣ—ବି.କୌଣସିଛିଦ୍ରଦେଇ ନିଗିଡ଼ିବା, ପାଣିଝରିବା ।

ଉଷଣଯନ୍ତ୍ର—ବି.ପାଣିକୁ ଛାଣି ଓ ନିଗାଡ଼ି ସଫାକରିବା ଯନ୍ତ୍ର, ପାଣିଛାଣିବା ଯନ୍ତ୍ର ।

ଉର୍ଷଣି—ବିଂ. ଛାତ ଉପରସ୍ଥ ଛିଦ୍ରବାଟେ ଝରୁଥିବା(ପାଣି),ଛଣାହୋଇ ପରିଷ୍କାର ହୋଇଥିବା (ଜଳ) ।

ଉଲ୍—ଯା.ବି.(ସଂ-ଉର୍ଣ୍ଣା) ମେଷାଦିଙ୍କର ଲୋମ, ଊର୍ଣ୍ଣା ।

ଉଲ୍କୋବି-ଯା.ଗ୍ରା.ବି.ଏକପ୍ରକାରକୋବି

ଉଲ—ଧାତୁ, ଦାହକରିବା, ପୋଡ଼ିବା ।

ଉଲ—ପୁଂ.ବି.(ଉଲ + ଅ)ମୃଗବିଶେଷ, (ଗ୍ରା.ବିଂ) ଉଲୁବୁଲିଆ, ଜଡ଼ା ଗୁଲୁକାମୁହାଁ ।

ଉଲଙ୍ଗ—ଗ୍ରା. ବିଂ. (ଉତ୍ + ଲଗି + ଅ) ବସ୍ତ୍ରହୀନ,ବିବସ୍ତ୍ର,ଲଙ୍ଗଳା,ଆବରଣହୀନ, ଖୋଲା, ଲଙ୍ଘା (ଖଣ୍ଡା) ।

ଉଲଗ୍ନ—ପୁଂ. ବିଂ.(ଉତ୍ + ଲଗି + ତ) ଉଲଙ୍ଗ (ଦେଖ) ।

ଉଲଚ୍ଛ—ପ୍ରା.(ସମ୍ବ)ବି.ଗୃଳର ଓଲ ।

ଉଲଟ—ବିଂ.ବିପରୀତ ।

ଉଲଟି—ପ୍ରା.(ସମ୍ବ) ବି.ବାନ୍ତ(ଗ୍ରା.ଅବ୍ୟ) ଓଲଟି,ପଛାନ୍ତରେ, ବିପରୀତଭାବରେ ।

ଉଲଟିଆ—ଗ୍ରା. ବିଂ. ଓଲଟ,ବିପର୍ଯ୍ୟସ୍ତ, ପ୍ରତିକୂଳ, ବିପରୀତ ।

ଉଲଟିବା—ଗ୍ରା.ବି.ଓଲଟିବା,ଚିତହେବା, ଲେଉଟିବା,ବିପର୍ଯ୍ୟସ୍ତହେବା,ଅସ୍ତବ୍ୟସ୍ତ ହେବା, ଉଦ୍ହେବା, କଡ଼ଲେଉଟିବା, ମତପରିବର୍ତ୍ତିନକରିବା, ବ୍ୟର୍ଥହେବା, ଆଶାକରାଯାଇଥିବା ଫଳବିପରୀତହେବା

ଉଲପ—ପୁଂ.ବି.(ଉଲ + ଅପ)ଛତ୍ରୀଣ୍ଟି-ଲତା, କୋମଳ ତୃଣ,ଉଲୁଖଡ଼ ।

ଉଲପ୍ୟ—ପୁଂ.ବି. ରୁଦ୍ରବିଶେଷ ।

ଉଲମ୍—ପ୍ରା.(ସମ୍ବ)ବି. ଓହଳ, ବରଆଦି ଗଛର ଓହଳଥିବା ଚେର ।

ଉଲମ୍ ବିଲମ୍—ଗ୍ରା.ବି. (ସଂ—ଅନୁଲୋମ + ବିଲୋମ) ପରିବର୍ତ୍ତିନ, ଗୋଳମାଳ, ପୂର୍ବାପର ସମ୍ବନ୍ଧରହିତ ଅବସ୍ଥା(ଗ୍ରା.ବିଂ.) ଆଗକଥା ପଛରେ ପଛକଥା ଆଗରେ କୁହାଯିବା (ବିଷୟ) ।ଓଲଟପାଲଟ, ଅନନୁମିତ, ଅଶୃଙ୍ଖଳ ।

ଉଲମା-ଗ୍ରା.ବିଂ.ବୁଦ୍ଧିହୀନ, ବୋକା,ଓଲୁ (ସ୍ତ୍ରୀ) ଓଲମୀ ।

ଉଲର—ଗ୍ରା.ବି.କାଶ୍ମୀରର ହ୍ରଦବିଶେଷ

ଉଲସିବା—ଗ୍ରା. କ୍ରି, ଉଲ୍ଲସିତ ହେବା, ଆନନ୍ଦରେଫୁଲିବା,ହର୍ଷୋତ୍ଫୁଲ୍ଲହେବା, ରୋମଟାଙ୍କୁରିବା ।

ଉଲ୍ଲ—ଗ୍ରା. ବିଂ. ପୁଂ. ଓଲୁ (ଦେଖ) ସ୍ତ୍ରୀ. ଉଲ୍ଲୀ (ଯା.ବି.) ମୁସଲମାନଙ୍କରଉପାଧି-ବିଶେଷ, (ବି)ଓଲୁପଣ,ଓଲୁ,ଭୋଜନ-ଲାଲସା ।

ଉଲଇ—ଗ୍ରା. ସ୍ତ୍ରୀ. ବିଂ. ଉଲର ସ୍ତ୍ରୀଲିଙ୍ଗ, (ପୁଂ.ଉଲ) ଖାଦ୍ୟଦ୍ରବ୍ୟପ୍ରତି ବିଶେଷ ଲାଳାୟିତ, (ପୁଂ) ଉଲିଆ ।

ଉଲେଖ—ଗ୍ରା. ବି. (ସଂ—ଉଲ୍ଲେଖ) ବସ୍ତୁର ଉପରେ ନାମଲେଖିବା, ଗାତ୍ରୋପରିସ୍ଥ-ଚିହ୍ନ, ତୁଳନା, ଉଲ୍ଲେଖ,ସମକକ୍ଷତା, ଦୃଷ୍ଟାନ୍ତ,ଉପଲକ୍ଷ୍ୟ,ପଦାଦିରେ ଲେଖା-ଯିବା ଠିକଣା, ଖୁଲାସା ।

ଉଲଗି—ଗ୍ରା.ବି.(ସଂ—ଉଲଙ୍ଗ) ଦେହରୁ ବସନ,ବେଶ ବା ମାଳଆଦି କାଢ଼ିବା, ଦେବତାଦେହରୁ ବସ୍ତ୍ରାଭରଣାଦି କାଢ଼ିବା,(ବିଂ) ପିନ୍ଧାହୋଇଥିବାପରେ କଢ଼ା ଯାଇଥିବା ।

ଉଲଗିକରିବା—ଗ୍ରା. କ୍ରି. ଦେହରୁ ବସ୍ତ୍ର ମାଳ ବେଶଆଦି କାଢ଼ିବା ବାହ୍ୟତ୍ୟାଗରିବା, ବନ୍ଧନମୁକ୍ତକରିବା, ଛାଡ଼ିବା ।

ଉଲର—ଗ୍ରା. ବି. ଦ୍ୱିଚକିଆ ଶଗଡ଼ର ପଛ ପାଖର ଭାର ଆଗପଟର ଭାର ଅପେକ୍ଷା ଅଧିକ ହେବାରୁଗାଡ଼ିର ଜୁଆଳି ବଳଦଙ୍କ କାନ୍ଧରୁ ଉଠିଯିବା, ପଛ ଭାରହେବା, କଣ୍ଟ୍ରୁ, ଝଡ଼ତୋଫାନ ।

ଉଲରିବା—ଗ୍ରା. କ୍ରି. ଉଲିବା, ତଳକୁ-ଆଣିବା, ତ୍ୟାଗକରିବା, ଘରଚାଲରୁ ଛଣ କାଢ଼ିବା ବା ଉଲିବା ।

ଉଲଲିଆ—ଗ୍ରା. ବିଂ. ପୁଂ. ଅଲବଲିଆ, ବୋକା, ନିର୍ବୁଦ୍ଧିଆ ।

ଉଲି—ଗ୍ରା. ବି. ଏକପ୍ରକାର ବଡ଼ପିଆଜ ।

ଉଲିଆ—ଗ୍ରା.ବିଂ. ଚାହକା, ଖାଦ୍ୟଦ୍ରବ୍ୟ ପ୍ରତି ବିଶେଷ ଲାଳାୟିତ,ତାହାଣ (ସ୍ତ୍ରୀ) ଉଲଇ ।

ଉଲିନ୍ଦ—ପୁଂ. ବି. (ବଲ + ଇନ୍ଦ)ଦେଶ-ବିଶେଷ, କୁଲିନ୍ଦଦେଶ, ଶିବ ।

ଉଲିବା—ଗ୍ରା. କ୍ରି. ତୁଲିବା, ଘିଞ୍ଚିବା, ଯଥା—ଘରଛାଆଣିବେଳେ ଘରଚାଲରୁ ନଡ଼ା ଛଣ ଆଦି ଉଲିବା ।

ଉଲୁ—ଗ୍ରା. ପୁଂ. ବିଂ. ଓଲୁ, ନିର୍ବୋଧ, ନିର୍ବୁଦ୍ଧିଆ, ବୋକା ।

ଉଲୁଅ—ଗ୍ରା. ବି. ମୂଳଜାତୀୟ ଗୁଳ୍ମ-ବିଶେଷ, ଓଲୁଅ ।

ଉଲୁଆ—ଗ୍ରା. ବି. ଶଗଡ଼ଚକର ତୁମ୍ବରେ ଅଖ ବୁଲିବାପାଇଁ ଲାଗିଥିବାଗୋଲାକୃତି ଲୁହାପାତ୍ର ।

ଉଲୁକ୍ପାତ୍-ଗ୍ରା. ବି. (ସଂ-ଉଲ୍କାପାତ) ଅତ୍ୟାଗ୍ରର, ଅତିଅଥୟହେବା, ଅସ୍ଥି-ରତା, ଉପଦ୍ରବ, ଅତିଗୋଳମାଳ ।

ଉଲୁକ୍ପାତିଆ—ଗ୍ରା. ପୁଂ.ବିଂ.ଅତ୍ୟାଗ୍ରୀ, ଅଥୟ, ଧ୍ୱଂସ ଓ ନାଶକରିବା (ବ୍ୟକ୍ତି), ଉଚ୍ଛୃଙ୍ଖଳ, ଉଦ୍ଦାମ ।

ଉଲୁକା—ଗ୍ରା.ବି.(ସଂ-ଉଲ୍କା)ଉତ୍ପାତାଗ୍ନି, ଆକାଶରୁ ପତିତ ଅଗ୍ନିପିଣ୍ଡ, ଅଗ୍ନିବୃଷ୍ଟି,

ଉଲ୍‌କା, ନିଆଁ ହୁଲା, ଏକପ୍ରକାର ଅଗ୍ନି ବର୍ଷକ ଯୁଦ୍ଧାସ୍ତ୍ର, ବନୋଟି, ଦୁଇମୁଣ୍ଡରେ ନିଆଁ ହୁଲା ଲଗିଥିବା ବାଡ଼ି (ଗ୍ରା.ପୁଂ.ବି) କାବୋଧ, ଓଲୁ (ସ୍ତ୍ରୀ) ଉଲୁକ୍ସା ।

ଉଲୁକ—ପ୍ରା. (ମେଦ) ବି. ସ୍ତ୍ରୀମାନଙ୍କର ଦେହରେ ଚୁଞ୍ଚ ସାହାଯ୍ୟରେ ସ୍ଥାୟୀ, ଚନ୍ଦ୍ରସ୍ୱରୂପ କୁଟାଯିବା ଚିତା, ଝୁଣ୍ଟିଗୁଦା ଚିତାକୁଟା ।

ଉଲୁକ୍ଷା—ଗ୍ରା. ବି. ଉଲୁଗୁଣା (ଦେଖ), ଉଲୁଖ ।

ଉଲୁଖଲ—ଗ୍ରା. ବି. ମେଖଳା, ଉଦୁଖଳ, (ଦେଖ) ।

ଉଲୁଖା—ଗ୍ରା. ବି. (ସଂ-ଉଲ୍ଲେଖ) ଉଲୁଗୁଣା ( ଦେଖ ) ।

ଉଲୁଗି—ପ୍ରା.(ମେଦ) ବି.ଉଲୁକ (ଦେଖ)

ଉଲୁଗୁଣା—ଗ୍ରା.ବି. (ସଂ—ଉଲ୍ଲେଖ, ଉପଲମ୍ବନ,ଅବଲମ୍ବନ)ଅନ୍ୟର ଛିଦ୍ର, କଥା କହି ତାକୁ ଛିଛିକାର କରିବା ବା ଗାଳି ଦେବା, କୌଣସି ବ୍ୟକ୍ତିର ଅପ୍ରକାଶ୍ୟ ଦୁର୍ଗୁଣ ବା ଦୁଷ୍କ୍ରିୟା ପ୍ରକାଶକରି ତାକୁ ଗଞ୍ଜିବା,ଗଞ୍ଜଣା, ଖୁଣ୍ଟୁଣା, ଉଘାଣ, ଦୋଷ ବାଛିବା ।

ଉଲୁଗୁଣି—ଗ୍ରା. ସ୍ତ୍ରୀ. ବିଂ. ଅନ୍ୟବ୍ୟକ୍ତିକୁ ଗଞ୍ଜଣା ବା ଖୁଣ୍ଟୁଣାଦେବା, ଯାହାର ଅଭ୍ୟାସ, ଯେଉଁ ସ୍ତ୍ରୀ ପରକୁ ସବୁବେଳେ ଖୁଣ୍ଟୁଣା ଦିଏ ।

ଉଲୁଗୁଣିଆଁ—ଗ୍ରା. ପୁଂ.ବିଂ. ଅବଗୁଣିଆ, ସାମାନ୍ୟରେ ଅଭିମାନୀ (ବ୍ୟକ୍ତି) ।

ଉଲୁଣ୍ଠ ବା-ପ୍ରା.(ସମ୍ବ)କି. (ସଂ-ଉଲ୍ଲୁଣ୍ଠନ) ଉଲୁଣ୍ଠିତ ହେବା, ଭୂମିରେ ପଡ଼ିବା ।

ଉଲୁଣ୍ଠିବା—ଗ୍ରା.କି. ଉଲୁଣ୍ଠିବା(ଦେଖ), ବିପରୀତ ଢଙ୍ଗରେ ଲେଉଟି ପଡ଼ିବା ।

ଉଲୁଧ୍ୱନି—ବି. ମଙ୍ଗଳକାର୍ଯ୍ୟ ସମୟରେ ସ୍ତ୍ରୀମାନେ ଦେବା ହୁଳହୁଳି ।

ଉଲୁପୀ—ଗ୍ରା. ସ୍ତ୍ରୀ. ବି. ( ସଂ-ଉଲୂପୀ ) ନାଗକନ୍ୟା,ଅର୍ଜୁନପତ୍ନୀ ।

ଉଲୁପୀ ସୁଲୁପୀ—ଗ୍ରା. ସ୍ତ୍ରୀ. ବି. (ବ୍ୟଙ୍ଗ) ସବୁବେଳେ ସାଙ୍ଗହେବା ବାଳକାଚୟ ।

ଉଲୁଫା—ପ୍ରା.(ଗଞ୍ଜା) ବି. ମାହାଳଆରେ ମିଳିବା ପଦାର୍ଥ ।

ଉଲୁମା—ପ୍ରା. (ବାଲେ) ବି. ବସଣୀ ।

ଉଲୁର—ଗ୍ରା.ବିଂ.(ସଂ-ଉଲୁଲାୟିତ) ଯେଉଁ ଗୁଳରୁ ବା ଗଦାରୁ ନଡ଼ାଆଦି ଓଟରି ଯାଇଥାଏ, ସ୍ୱସ୍ଥାନଭ୍ରଷ୍ଟ (ନଡ଼ାଆଦି), ଆଲୁଲାୟିତ, ଉଲର(କେଶାଦି),ଅଲଅାତଲଆ ହୋଇଥିବା,ଇତସ୍ତତଃ ବିକ୍ଷିପ୍ତ ।

ଉଲୁରି—ଗ୍ରା.ବି. ଆଜ୍ଞାପତ୍ର, ଆଦେଶପତ୍ର, ହୁକୁମନାମା ।

ଉଲୁରିବା—ଗ୍ରା.କି.(ଅକର୍ମକ) ଇତସ୍ତତଃ ବିକ୍ଷିପ୍ତହେବା, ମୁକୁଳାହେବା, ସ୍ୱସ୍ଥାନରୁ ଅନବସ୍ଥିତଭାବେ ଚ୍ୟୁତ ହେବା, ସ୍ୱସ୍ଥାନରୁ ଖସି ପଡ଼ିବା ।

ଉଲୁସା—ଗ୍ରା. ବି. (ସଂ-ଉଲ୍ଲାସ)ରୋମାଞ୍ଚ, ରୋମଟାଙ୍କୁରିବା, ଉଲ୍ଲାସ, ଅତ୍ୟନ୍ତହର୍ଷ, ( ଗ୍ରା.ବିଂ. ) ଉଲ୍ଲାସଜନକ, ରୋମହର୍ଷଣକାରୀ ।

ଉଲୁସାଇବା—ଗ୍ରା. କି. (ସଂ-ଉଲ୍ଲସନ) ଉଲୁସିବାର ଣିଜନ୍ତ ରୂପ, ଉଲ୍ଲସିତ କରିବା,ଫୁଲାଇବା, ରୋମାଞ୍ଚିତକରାଇବା

ଉଲୁସିବା—ଗ୍ରା.କି.(ସଂ-ଉଲ୍ଲସନ)ଆନନ୍ଦୋତ୍ଫୁଲ୍ଲହେବା, ଆନନ୍ଦରେ ଫୁଲିଉଠିବା, (ଦେହ), ରୋମାଞ୍ଚିତ ହେବା, ରୋମ ଟାଙ୍କୁରିବା ।

ଉଲୂକ—ବି.(ବଲ୍+କ,ଉକ)ପେଚକ, ପେଚା, ଗୃହିତର ପକ୍ଷୀବିଶେଷ, ଇନ୍ଦ୍ର, ଶକୁନିଙ୍କ ପୁତ୍ର, ଦେଶବିଶେଷ ।

ଉଲୂକବିଦ୍ୟା—ଗ୍ରା. ବି. କୁହୁକ ବିଦ୍ୟାବିଶେଷ,ଯେଉଁ ବିଦ୍ୟା ସାଧନ କରିଥିବା ବ୍ୟକ୍ତିକୁ ରାତିରେ ବାଟ ଦିଶେ ।

ଉଲୂଖଳ—ବି.(ଉର୍ଦ୍ଧ+ଖଲ୍+ଅ)ଉଦୁଖଳ (ଦେଖ), ଗୁଗ୍‌ଗୁଲ, ବୃକ୍ଷନିର୍ଯାସ ।

ଉଲୂପୀ—ବି. ( ଉତ୍‌+ଲୂପ+ଇନ୍ ) ଶୁଶୁକ, ଶିଶୁମାର ନାମକ ଜଳଜନ୍ତୁ, ନାଗକନ୍ୟା, ଅର୍ଜୁନଙ୍କ ପତ୍ନୀ ।

ଉଲୁଲୁ—ବି. (ଉରୁ+ଉରୁ) କପୋତନ, ଉଲୁଧ୍ୱନି, ହୁଳହୁଳି ।

ଉଲେଇବା—ପ୍ରା. (ମେଦ)କି. ଉଲ୍ଲାଇବା (ଦେଖ) ।

ଉଲେଇ—ଗ୍ରା. ସ୍ତ୍ରୀ. ବିଂ. (ସଂ-ଲୋଲୁପ) ଓଲେଇ, ଖାଦ୍ୟଦ୍ରବ୍ୟ କାମନାରେ ଲାଳାୟିତା (ସ୍ତ୍ରୀ),ଉଲୁର ସ୍ତ୍ରୀଲିଙ୍ଗ, ଓଲମୀ ।

ଉଲୋମବିଲୋମ—ଗ୍ରା. ବି. ବିଂ. ଉଲମ୍‌ବିଲମ୍ ( ଦେଖ ) ।

ଉଲ୍‌କା—ସ୍ତ୍ରୀ. ବି. (ଉଷ୍‌ଭଷ୍+କ+ଅ +ଆ) ଆକାଶରୁ ପତିତ ଅଗ୍ନି ଗ୍ରଣି, ଅଗ୍ନି କଣା, ସ୍ଫୁଲିଙ୍ଗ,ତେଜଃପୁଞ୍ଜ,ମଶାଲ, ନିଆଁ ହୁଳା ।

ଉଲ୍‌କାପାତନ—ବି.(୬ତତ୍) ଆକାଶରୁ ଅଗ୍ନି ପତନ ।

ଉଲ୍‌କାପାତ—ବି. (୬ତତ୍) ଉଲ୍‌କାପତନ (ଦେଖ) ।

ଉଲ୍‌କାପିଣ୍ଡ—ବି. (୬ତତ୍) ଆକାଶରୁ ପତିତ ଅଗ୍ନି ଗ୍ରଣି ବା ଜ୍ୟୋତିର୍ମୟଧାତବ ଖଣ୍ଡ ।

ଉଲ୍‌କାପୁଞ୍ଜ—ବି. (୬ତତ୍) ଆକାଶରୁ ଏକ ସମୟରେ ପତିତ ଅନେକ ତାରା ବା ଜ୍ୟୋତିର୍ମୟ ପଦାର୍ଥ ।

ଉଲ୍‌କାବୃଷ୍ଟି—ବି. (୬ତତ୍ ) ଆକସ୍ମିକ ଅଗ୍ନି ବୃଷ୍ଟି, ତାରା ଖସିବା ।

ଉଲ୍‌କାମୁଖୀ—ସ୍ତ୍ରୀ.ବି. (ଉଲ୍‌କା+ମୁଖ +ଈ) ବ.ବ୍ରୀ. ମୁହଁ ଆଁ କରିଦେଲେ ଆଲୁଅଦେଖାଯିବା ଏକଜାତୀୟ ଶୃଗାଳ, କୋକଶିଆଳ, ଚରଗୁଣୀ,(ଲ.ଅ)କ୍ରୋଧ ସ୍ୱଭାବ, ସ୍ତ୍ରୀ (ସ୍ତ୍ରୀ.ବିଂ.ଲ.ଅ) ଯେଉଁସ୍ତ୍ରୀର ମୁଖମଣ୍ଡଳ ସର୍ବଦା କ୍ରୋଧରେ ରକ୍ତବର୍ଣ୍ଣ ହୋଇଥାଏ, କ୍ରୋଧନ ସ୍ୱଭାବା ।

ଉଲ୍‌କୁପାତ—ବି.(ଉଲୁକାପାତ ଦେଖ) ।

ଉଲ୍‌କେଇବା—ପ୍ରା. (ସମ୍ବ) କି. ଉକବା (ଦେଖ) ।

ଉଲ୍ଲ—ବି.(ବଲ୍+କ,ବ) ଜରାୟୁ,ଗର୍ଭାଶୟ, ଭ୍ରୂଣଉପରେ ଥିବା ସୂକ୍ଷ୍ମ ପରଦା

ଉଲ୍ବଣ—ବିଂ. (ଉତ୍‌+ଲ୍ବୀ+ଅନ)ସ୍ପଷ୍ଟ ପ୍ରତୀୟମାନ, ପରିସ୍ଫୁଟ, ବିଶଦ, ବ୍ୟକ୍ତ, ପ୍ରବଳ, ଉତ୍କଟ,ଉଦ୍ଭଟ, ବ୍ୟାପ୍ତ, ତୀକ୍ଷ୍ଣ, (ବି. ଉଲ୍ବ ଦେଖ) ବାତପିତ୍ତାଦି ପ୍ରାବଲ୍ୟ ଜନିତ ରୋଗ, ବାହାରେ ପ୍ରକାଶିତ ଲକ୍ଷଣ ।

ଉଲ୍ମୁକ — ବି. (ଉଷ + କ, ମୁକ) ଜ୍ୱଳନ୍ତ ଅଙ୍ଗାର, ମଶାଲ, ନିଆଁ ଖୁଣ୍ଟା, ବଳରାମଙ୍କର ଏକତମ ପୁତ୍ର ।

ଉଲ୍ଲି — ବି. ଓଲୁଅ ।

ଉଲ୍ଲଙ୍ଘନ — ବି. (ଉତ୍ + ଲଙ୍ଘନ) ନିୟମଭଙ୍ଗ, ସୀମାଲଙ୍ଘନ, ଆଦେଶଭଙ୍ଗ, ଅମାନ୍ୟ କରିବା ।

ଉଲ୍ଲଙ୍ଘନୀୟ — ବିଂ. (ଉତ୍ + ଲଙ୍ଘ + ର୍ମ, ଅନୀୟ) ଡିଆଁ ଯିବାର ଯୋଗ୍ୟ, ଲଙ୍ଘିତ ହେବାର ଯୋଗ୍ୟ, ଯାହା ମାନିବା ଉଚିତ ନୁହେଁ ।

ଉଲ୍ଲଙ୍ଘିତ — ବି. (ଉତ୍ + ଲଙ୍ଘିତ) ଡିଆଁ ହୋଇଥିବା, ଯାହାକୁ କେହି ଟପିଥାଏ, ଅମାନ୍ୟ କରାଯାଇଥିବା ।

ଉଲ୍ଲଙ୍ଘ୍ୟ — ବିଂ. (ଉତ୍ + ଲଙ୍ଘ + ର୍ମ, ଯ) ଉଲ୍ଲଙ୍ଘନୀୟ (ଦେଖ) ।

ଉଲ୍ଲମ୍ଫ — ବି. (ଉତ୍ + ଲମ୍ଫ) ଉପରକୁ ଡେଇଁବା, କୁଦିବା, କୌଣସି ବସ୍ତୁର ଉପର ଦେଇ ଡେଇଁଯିବା, ଟପିଯିବା ।

ଉଲ୍ଲମ୍ଫନ — ବି. (ଉତ୍ + ଲମ୍ଫନ) ଉଲ୍ଲମ୍ଫ (ଦେଖ) ।

ଉଲ୍ଲଳ — ବିଂ. (ଉତ୍ + ଲଲ୍ + କ, ଅ) ବାଲୁଆ, ରୋମଯୁକ୍ତ, ଲୋମଶ, କମ୍ପମାନ ।

ଉଲ୍ଲଳିତ — ବିଂ. (ଉତ୍ + ଲଲ୍ + କ, ତ) ବ୍ୟାକୁଳିତ, ଉଚ୍ଛଳିତ, ତରଳିତ, କମ୍ପିତ, ଗଳିତ, ଆନ୍ଦୋଳିତ, (ସ୍ତ୍ରୀ) ଉଲ୍ଲଳିତା ।

ଉଲ୍ଲସତ୍ — ବିଂ. (ଉତ୍ + ଲସ୍ + ଅତ୍) ଶୋଭମାନ, ପ୍ରଫୁଲ୍ଲ ।

ଉଲ୍ଲସନ — କ୍ଲୀ. ବି. (ଉତ୍ + ଲସ୍ + ଣ୍ଣ, ଅନ) ହର୍ଷଜନକ ବ୍ୟାପାର, ରୋମାଞ୍ଚ ।

ଉଲ୍ଲସିତ — ବିଂ. (ଉତ୍ + ଲସ + କ, ତ) ସ୍ଫୁରିତ, ହୃଦ୍‌ଗତ, ରୋମାଞ୍ଚିତ, ଉଜ୍ଜ୍ୱଳ, ଆନନ୍ଦିତ, ଶୋଭିତ, ପ୍ରକାଶିତ ।

ଉଲ୍ଲାଘ — ପୁଂ. ବିଂ. (ଉତ୍ + ଲାଘ୍ + ଅ) ଦକ୍ଷ, ଶୁଚି, ହୃଷ୍ଟ, ନୀରୋଗ, ସୁସ୍ଥ, ସବଳ ।

ଉଲ୍ଲାଘନ — ବି. (ଉତ୍ + ଲାଘ୍ + ଅନ) ରୋଗମୁକ୍ତ, ଜ୍ୱରମୁକ୍ତ ।

ଉଲ୍ଲାପ — ବି. (ଉତ୍ + ଲପ୍ + ଣ୍ଣ, ଅ) ଉଚ୍ଚୈଃସ୍ୱରରେ କ୍ରନ୍ଦନ, ଶୋକ, ରୋଗାଦିକ ଆର୍ତ୍ତନାଦ, ଉଚ୍ଚୈଃସ୍ୱରରେ ଆହ୍ୱାନ, ଉପହାସ ।

ଉଲ୍ଲାପନ — ବି. (ଉତ୍ + ଲପି + ଣ୍ଣ, ଅନ) ସ୍ତୁତିବାକ୍ୟରେ ସନ୍ତୋଷ, କାକୁବାକ୍ୟ, ବକ୍ରୋକ୍ତିଶର, ଗୂଢ଼ବାକ୍ୟ କହି ଖୁସିକରିବା ବୃତ୍ତି ପ୍ରଭୃତି ଦ୍ୱାରା ଶାସ୍ତ୍ରର ପ୍ରକୃତ ବ୍ୟାଖ୍ୟା କରିବା ।

ଉଲ୍ଲାପ୍ୟ — ବି. (ଉତ୍ + ଲପି + ର୍ମ, ଯ) ପ୍ରେମ ଓ ହାସ୍ୟ ବିଷୟକ ନାଟକବିଶେଷ ।

ଉଲ୍ଲାସ — ବି. (ଉତ୍ + ଲସ୍ + ଣ୍ଣ, ଅ) ଗ୍ରନ୍ଥର ପରିଚ୍ଛେଦ, ବୃଦ୍ଧି, ଉଜ୍ଜ୍ୱଳତା, ଆହ୍ଲାଦ, ପ୍ରକାଶ, ଶୋଭା, ଉଦ୍‌ଗମନ ।

ଉଲ୍ଲାସକର — ବିଂ. (ଉଲ୍ଲାସ + କୃ + କ, ଅ) ଆନନ୍ଦଜନକ, ସୁଖପ୍ରଦ, (ସ୍ତ୍ରୀ)....କରୀ ।

ଉଲ୍ଲସନ — ବି. (ଉତ୍ + ଲସ୍ + ଣିଚ୍ + ଣ୍ଣ, ଅନ) ଆନନ୍ଦିତକରଣ, ରୋମାଞ୍ଚ ।

ଉଲ୍ଲାସମୟ — ବିଂ. ଆନନ୍ଦପୂର୍ଣ୍ଣ, ଆନନ୍ଦମୟ, ସୁଖମୟ ।

ଉଲ୍ଲାସହେବା — ଗ୍ରା. କ୍ରି. ଆନନ୍ଦୋତ୍ଫୁଲ୍ଲ ହେବା, (ଫୁଲଆଦି) ଫୁଟିବା ।

ଉଲ୍ଲାସିତ — ପୁଂ. (ଉତ୍ + ଲସ୍ + ଣିଚ୍ + କ, ତ) ହର୍ଷୋତ୍ଫୁଲ୍ଲ ।

ଉଲ୍ଲାସୀ — ପୁଂ. ବିଂ. (ଉତ୍ + ଲସ୍ + ଇନ୍) ଉଲ୍ଲାସଯୁକ୍ତ, ପ୍ରଭାବିଶିଷ୍ଟ, ଆହ୍ଲାଦିତ, (ସ୍ତ୍ରୀ) ଉଲ୍ଲାସିନୀ ।

ଉଲ୍ଲାସ୍ବର — ଗ୍ରା. ବିଂ. (ସଂ — ଉଲ୍ଲାସକର) ଉଲ୍ଲାସକର (ଦେଖ) ।

ଉଲ୍ଲିଖିତ — ବିଂ. (ଉତ୍ + ଲିଖ୍ + ତ) ଉତ୍କୀର୍ଣ୍ଣ, ପୂର୍ବେ କଥିତ, ଉପରୋକ୍ତ, ବର୍ଣ୍ଣିତ, ଉତ୍କ୍ଷିପ୍ତ, ଚିତ୍ରିତ, ତଳିଆ ହୋଇଥିବା, ଉଙ୍କୁଡ-ଚର୍ଚ୍ଚିତ, ପୃଷ୍ଠଦେଶରେ ଅଙ୍କିତ, ଉପର ଲିଖିତ, ପ୍ରକାଶିତ ।

ଉଲ୍ଲୀଢ଼ — ବିଂ. (ଉତ୍ + ଲିହ୍ + ର୍ମ ତ) ଅନୁକୃତ, ଶାଣିତ, ଶାଣଦିଆ ହୋଇଥିବା ।

ଉଲ୍ଲୁ — ବିଂ. (ଉତ୍ + ଲୁ + କ୍ୱିପ୍) ହସ୍ତୀଟନକାରୀ, (ଗ୍ରା. ବିଂ.) ବୋକା, ନିର୍ବୋଧ, ଓଲୁ ।

ଉଲ୍ଲୁକ — ବି. ପାଡ଼ିମାକଡ଼, ପେଚା, ଉଲୁକ, ବୋକା, ବେକୁବ୍ ।

ଉଲ୍ଲେଖ — ବି. (ଉତ୍ + ଲିଖ୍ + ଅ) କଥନ, ଖନନ, ବମନ, ଉଚ୍ଚାରଣ, ଅର୍ଥାଲଙ୍କାରବିଶେଷ, ପ୍ରସଙ୍ଗ, ଲେଖିବା, ଚାଞ୍ଛିବା, ଘର୍ଷିବା, ଉଲ୍ଲେଖନ (ଦେଖ) ।

ଉଲ୍ଲେଖନ — ବି. (ଉତ୍ + ଲିଖ୍ + ଣ୍ଣ, ଅନ) ଲେଖିବା, ଖୋଦାଇ କରିବା, ବର୍ଣ୍ଣନ, ଖନନ, ଖୋଳିବା, ବମନ, ନିର୍ଦ୍ଦେଶ, କୀର୍ତ୍ତନ, କଥନ, ଚାଞ୍ଛିବା, ଚେଲିବା, ଚର୍ଷଣ, ଘର୍ଷିବା, ଉପରେ ଲେଖିବା, ଶାସ୍ତ୍ରାଦିରୁ ବାକ୍ୟାଦିର ଉଦ୍ଧାର, ସୂଚନା, କୁନ୍ଦିବା ।

ଉଲ୍ଲେଖନୀୟ — ବିଂ. (ଉତ୍ + ଲିଖ୍ + ଅନୀୟ) ଉଲ୍ଲେଖଯୋଗ୍ୟ, (ଦେଖ) ।

ଉଲ୍ଲେଖଯୋଗ୍ୟ — ବିଂ. (ଷତତ୍) ବର୍ଣ୍ଣନୀୟ, ପ୍ରକାଶଯୋଗ୍ୟ ସୁସ୍ପଷ୍ଟ ଭାବରେ ଚର୍ଚ୍ଚିତ ହେବାର ଉପଯୁକ୍ତ, କଥିତ ହେବାର ଯୋଗ୍ୟ ।

ଉଲ୍ଲେଖାଲଙ୍କାର — ବି. ଅର୍ଥାଲଙ୍କାର

ଉଲ୍ଲେଖିତ — ବିଂ. (ଉତ୍ + ଲେଖିତ) ଉଲ୍ଲିଖିତ (ଦେଖ) ।

ଉଲ୍ଲେଖ୍ୟ — ବିଂ. (ଉତ୍ + ଲେଖ୍ୟ + ର୍ମ, ଯ) ଉଲ୍ଲେଖ ଯୋଗ୍ୟ, କଥନୀୟ, ବର୍ଣ୍ଣନୀୟ ।

ଉଲ୍ଲୋଚ — ବିଂ. (ଉତ୍ + ଲୋଚ + ର୍ମ, ତ) ଚନ୍ଦ୍ରାତପ, ଚାନ୍ଦୁଆ, ବିତାନ ।

ଉଲ୍ଲୋଚ — ବି. (ଉତ୍ + ଲୋଚ୍ + ଅ) ଚନ୍ଦ୍ରାତପ, ଚାନ୍ଦୁଆ ।

ଉଲ୍ଲୋପ୍ୟ — ବି. (ଉତ୍ + ଲୁପ୍ + ଯ) ଗୀତବିଶେଷ ।

ଉଲ୍ଲୋଳ — ବି. (ଉତ୍ + ଲୋଡ଼ + କ, ଅ) ବୃହତ୍ ତରଙ୍ଗ, ବଡ଼ ଢେଉ, କଲ୍ଲୋଳ, (ବିଂ) ଦୋଦୁଲ୍ୟମାନ, ଦୋହଲୁଥିବା, ଚଞ୍ଚଳ, ଗତିଶୀଳ ।

ଉବଟ — ବିଂ. ପ୍ରସିଦ୍ଧ ବେଦଭାଷ୍ୟକାର ।

ଉଶତ୍ — ପୁଂ. ବିଂ. (ବଶ + କ, ତ) ଆକାଙ୍କ୍ଷାକାରୀ ।

ଉଶଗ୍ରୀ—ସ୍ତ୍ରୀ. ବ. ( ବଶ + ଗୃ + ଈ ) ଆକାଙ୍କ୍ଷିଣୀ, ଅମଙ୍ଗଳବାକ୍ୟ, ଅଭିଶାପ ।
ଉଶନାଃ—ପୁଂ. ବ. (ବଶ + ଅନସ୍) ଦୈତ୍ୟଗୁରୁ, ଶୁକ୍ରାଚାର୍ଯ୍ୟ, ଶୁକ୍ରଗ୍ରହ ।
ଉଶାନା—ସ୍ତ୍ରୀ.ବ. (ବଶ + ଆନ + ଆ) ପର୍ବତଜାତ ଯଜ୍ଞୀୟ ଔଷଧିବିଶେଷ ।
ଉଶିକ୍—ବିଂ.(ବଶ + କନ୍) କମନୀୟ, ମେଧାବୀ, (ବି) ମତ, ଅଗ୍ନି, ଘୃତ (ସ୍ତ୍ରୀ) କକ୍ଷିବାନରର ମାତା ।
ଉଶୀ—ସ୍ତ୍ରୀ. ବ.(ବଶ + ଈ) ଅଭିଳାଷ, ଇଚ୍ଛା, ବାସନା ।
ଉଶୀକ୍—ବିଂ. କମନୀୟ ।
ଉଶୀନର—ପୁଂ.ବ. (ବ.ବ୍ରୀ) ଗାନ୍ଧାର-ଦେଶ, ତଜ୍ଜନପଦବାସୀ, କ୍ଷତ୍ରିୟବିଶେଷ, ଚନ୍ଦ୍ରବଂଶୀୟ ରାଜବିଶେଷ ।
ଉଶୀର—ପୁଂ. କ୍ଳୀ. ବ.(ବଶ + ମି.ଈର) ବେଣାମୂଳ, ବେଣାଚେର, ଖସଖସ, (ପର୍ଯ୍ୟା) ଅଭୟ, ନଳଦ, ସେବ୍ୟ, ଅମୃଣାଳ, ଜଳାଶୟ, ବୀରତରୁ, ଶିଶିର, ଶୀତମୂଳକ, ସୁଗନ୍ଧକ ।
ଉଶୀରକ—କ୍ଳୀ. ବ. (ଉଶୀର + କ) ଉଶୀର, ବେଣାମୂଳ ।
ଉଶୀରବୀଜ—ପୁଂ.ବ.ବେଣାମୂଳର ବୀଜ, ହିମାଳୟର ଉତ୍ତରସ୍ଥ ପର୍ବତବିଶେଷ, ମୈନାକପର୍ବତ ।
ଉଶୀରସ୍ତମ୍ଭ—ପୁଂ. ବ. ବେଣା, ମାଚ୍ଛୀ, ବେଣାଗଛ, ବେଣାଗେଛ ।
ଉଶୀରାଦ୍ୟଚୂର୍ଣ୍ଣ—କ୍ଳୀ. ବ. ବୈଦ୍ୟକୋକ୍ତ ଚୂର୍ଣ୍ଣବିଶେଷ ।
ଉଶୀରାଦ୍ୟପାଚନ—କ୍ଳୀ.ବ. ବୈଦ୍ୟକପାଚନ-ବିଶେଷ । [ବିଶେଷ ।
ଉଶୀରାସବ—କ୍ଳୀ. ବ. ବୈଦ୍ୟକ ଆସବ
ଉଶୀରକ—ପୁଂ.ବ. ଉଶୀର ବ୍ୟବସାୟୀ, ଉଶୀରସମ୍ବନ୍ଧୀୟ ।
ଉଶୀସା—ସ୍ତ୍ରୀ. ବ. ଛେଚକାଉଁଶି ।
ଉଶ୍ୱାସ—ଗ୍ରା. ବିଂ. ହାଲୁକା, ଭାରହୀନ, ସହଜ, ଉଣା, ଅଳ୍ପ, ହୀନ, ତୁଚ୍ଛ, ରୋଗମୁକ୍ତ, ଯନ୍ତ୍ରଣାହୀନ, ମୁକ୍ତ, ଧୀର, (ବି) ହାଲୁକାପଣ, କଷ୍ଟଲାଘବ, ସହଜ-ଭାବ, ଅଳ୍ପତା, ରୋଗୋପଶମନ, ମୁକ୍ତ ।
ଉଶ୍ୱାସିଆ—ଗ୍ରା.ବିଂ.ଭାରହୀନ, ହାଲୁକା ।
ଉଶେନ୍ୟ—ବିଂ. (ବଶ + କେନ୍ୟ) କମନୀୟ, ସୁନ୍ଦର ।
ଉଷ—ଧାତୁ, ପୋଡ଼ିବା, ଦହନକରିବା, ବଧ କରିବା, ଶେଷକରିବା ।
ଉଷ—ପୁଂ.ବ.(ଉଷ + ଅ) କ୍ଷାରମୃତ୍ତିକା, ପ୍ରଭାତ, ରାତ୍ରିର ଶେଷ ସମୟ, କାମୀ, ଗୁଗୁଗୁଳ । [ଶ୍ୱର ।
ଉଷଙ୍ଗୁ—ପୁଂ. ବ.ସଂହାରକର୍ତ୍ତା, ମହେ-
ଉଷଣ—କ୍ଳୀ. ବ. (ଉଷ + ଅନ) ମରିଚ, ପିପ୍ପଳୀମୂଳ, ଶୁଣ୍ଠି, ଗୁଇଁକାଠ, ବଣ-ପିମ୍ପଳୀମୂଳ ।
ଉଷଣା—ସ୍ତ୍ରୀ. ବ. (ଉଷ + ଅନ + ଆ) ପିପ୍ପଳୀ, ଶୁଣ୍ଠି, ଗୁଇଁକାଠ, ଚବକ ।
ଉଷଣାଦ୍ୟଚୂର୍ଣ୍ଣ—କ୍ଳୀ.ବ. ବୈଦ୍ୟକ ଚୂର୍ଣ୍ଣ-ବିଶେଷ ।
ଉଷଦ୍ଗୁ—ପୁଂ. ବ. ଯଦୁବଂଶୀୟ ଜଣେ ରାଜା, ସୁଯଜ୍ଞ ରାଜାଙ୍କର ପୁତ୍ର ।
ଉଷତ—ବିଂ. (ବସ + କ,ତ) ଆନନ୍ଦିତ, ଇଚ୍ଛୁକ (ଗ୍ରା. ବି.) ଆନନ୍ଦ, ଆହ୍ଲାଦ ।
ଉଷତୀ—ସ୍ତ୍ରୀ. ବ. (ଉଷ + ଅତ + ଈ) ଅମଙ୍ଗଳବାକ୍ୟ, ଯାହା ଶୁଣିଲେ ଅପରର ମନ କଷ୍ଟ ହୁଏ ।
ଉଷଦ୍ଗୁ—ପୁଂ. ବ. ଯଦୁବଂଶୀୟ ରାଜା-ବିଶେଷ, ସ୍ୱାହିରାଜାର ପୁତ୍ର ।
ଉଷଦ୍ରଥ—ପୁଂ. ବ. ପୁରୁବଂଶୀୟ ରାଜା-ବିଶେଷ, ତିତକ୍ଷୁର ପୁତ୍ର ।
ଉଷପ—ପୁଂ.ବ.(ଉଷ + ପା + ଅ) ଅଗ୍ନି, ସୂର୍ଯ୍ୟ, ଚିତାଗଛ, ଧଳାଚିତାଗଛ ।
ଉଷର—କ୍ଳୀ. ବ. କ୍ଷାରମୃତ୍ତିକା, ଲୁଣିଆ ମାଟି ।
ଉଷର୍ବୁଧ—ପୁଂ.ବ. (ଉଷସ୍ + ବୁଧ + ଅ) ଅଗ୍ନି, ରକ୍ତଚିତା, ବାଳକ ।
ଉଷସ୍—କ୍ଳୀ. ବ. (ଉଷ + ଅସ୍) ପ୍ରତ୍ୟୁଷ-କାଳ, ପ୍ରଭାତ, ପ୍ରାତଃକାଳ ।
ଉଷସୀ—ସ୍ତ୍ରୀ.ବ. (ଉପ + ସୋ + ଅ + ଈ) ସନ୍ଧ୍ୟାକାଳ, ଗୋଧୂଳିସମୟ ।
ଉଷସ୍ତ—ପୁଂ. ବ. ଚାକ୍ରାୟଣ ଋଷି ।
ଉଷସ୍ତି—ପୁଂ. ବ. ଚାକ୍ରାୟଣଋଷି ।
ଉଷସ୍ୟ—ବିଂ. (ଉଷସ୍ + ଯ) ପ୍ରାଭାତିକ, ଉଷାକାଳୀନ, ପ୍ରାତ୍ୟୂଷିକ ।
ଉଷା—ସ୍ତ୍ରୀ. ବ. ( ଉଷ + ଅ + ଆ) ବେଦୋକ୍ତ ଦେବତାବିଶେଷ, ପ୍ରତ୍ୟୂଷ, ବାଣରାଜାର କନ୍ୟା, ଅନିରୁଦ୍ଧର ପତ୍ନୀ, ଗାଈ, ପ୍ରଭାତକାଳ, ବ୍ରାହ୍ମମୁହୂର୍ତ୍ତ (ଗ୍ରା.ବି) ପଲସ୍ତରାକୁ ସମତୁଲ କରିବା ପାଇଁ ରାଜମିସ୍ତ୍ରୀମାନଙ୍କର ଯନ୍ତ୍ର ବା ପଟା, ଉଷା, ଉପାସ ।
ଉଷାକଲ—ପୁଂ.ବ.(ଉଷା + କଲ + ଅ) କୁକ୍କୁଟ, ଚରଣାୟୁଧ ।
ଉଷାପତି—ପୁଂ. ବ. (୬ତତ୍) ଅନିରୁଦ୍ଧ, ପ୍ରଦ୍ୟୁମ୍ନପୁତ୍ର, କାମଦେବପୁତ୍ର ।
ଉଷାରମଣ—ପୁଂ.ବ. (୬ତତ୍) ଶ୍ରୀକୃଷ୍ଣଙ୍କ ନାତି, ଅନିରୁଦ୍ଧ ।
ଉଷିତ—ବିଂ.(ଉଷ + ମି,ତ) ପର୍ଯ୍ୟୁଷିତ, ଦଗ୍ଧ, ନିବିଷ୍ଟ, ତ୍ୱରିତ, ବାସୀ, ସ୍ଥିତ, ସତା ।
ଉଷିତଙ୍ଗବୀନ—ବିଂ. ଗୋଗୋଷ୍ଠ, ଯେଉଁଠାରେ ଗାଈମାନେ ଭୋଜନ କରିଥାନ୍ତି ।
ଉଷୀର—ପୁଂ. କ୍ଳୀ.ବ. (ଉଷ୍ + କୀରଚ୍) ଉଶୀର, ବେଣାମୂଳ, ଗନ୍ଧତୃଣ ।
ଉଷୁନା—ଗ୍ରା. ବ. (ଉଷ୍ଣନ୍ଶବ୍ଦଜ) ସିଝା, ସିଝା (ଧାନ) । [ଉଷ୍ମ ।
ଉଷୁମ—ଗ୍ରା. ବିଂ. (ସ—ଉଷ୍ମ) ଉଷ୍ଣ,
ଉଷୁମଟାଣିବା—ଗ୍ରା.କ୍ରି. ଶୀତସମୟରେ ଘୋଡ଼ି ହୋଇ ଏକ ସ୍ଥାନରେ ବସି ରହିବା, ନିଆଁ ପାଖରେ ବସିରହିବା ।
ଉଷୁମାଇବା—ଗ୍ରା.କ୍ରି. ଅଗ୍ନିରେ ତାପିତ କରିବା, ଅଣ୍ଡା ଫୁଟିବା ନିମନ୍ତେ ପକ୍ଷି-ମାତା ଡିମ୍ବଉପରେ ବସି ଡିମ୍ବକୁ ତାପ-ଦେବା ।
ଉଷୁମୁ—ଗ୍ରା.ବ. (ସ-ଉଷ୍ମ) ତବଦ, ତାତ, ବାମ୍ଫ, ବାଷ୍ପ (ବିଂ) ଗରମ, ଉଷ୍ଣ ।
ଉଷୁମୁଳିଆ—ଗ୍ରା. ବିଂ. ଉଷ୍ମତାଯୁକ୍ତ, ଈଷତ୍‌ଉଷ୍ଣ, ଅଳ୍ପ ତାତଥିବା [ରୁଦ୍ଧ ।
ଉଷେଶ—ପୁଂ. ବ. (ଉଷା + ଈଶ) ଅନି-
ଉଷ୍ଟ୍ର—ପୁଂ. ବ. (ଉପ + ଷ୍ଟ୍ରନ୍) ପଶୁ-ବିଶେଷ, ଦୀର୍ଘଗ୍ରୀବ, ଓଟ, ଉଟ ।

ଉଷ୍ଟ୍ରକଣ୍ଟକଭୋଜନନ୍ୟାୟ—ଓଟ ଯେପରି ଶମୀଗଛର କଣ୍ଟାଯୁକ୍ତ ସହ୍ୟକର ସାମାନ୍ୟ ପତ୍ର ଖାଇ ସନ୍ତୋଷ ହୁଏ— ସେହିପରି ଯେ ଅଳ୍ପଲଭ୍ୟ ସକାଶେ କଠିନକଷ୍ଟ ପାଏ, ତାହାକୁ ଏହି ନ୍ୟାୟ କହନ୍ତି ।

ଉଷ୍ଟ୍ରଗ୍ରୀବ—ପୁଂ. ବି. ( ଉଷ୍ଟ୍ର + ଗ୍ରୀବା ) ଭଗନ୍ଦର ରୋଗବିଶେଷ (ବିଂ) ଓଟ-ବେକପରି ଯାହାର ବେକ ଲମ୍ବ ।

ଉଷ୍ଟ୍ରଧୂସରପୁଚ୍ଛିକା—ସ୍ତ୍ରୀ. ବି. ବିଛୁଆତି ନାମକ ଲତାବିଶେଷ, ଉଷ୍ଟ୍ରପାଦୀ ବୃକ୍ଷ-ବିଶେଷ ।

ଉଷ୍ଟ୍ରପକ୍ଷୀ—ପୁଂ. ବି. ଦ୍ରୁତଗାମୀ ଭୂଚର ପକ୍ଷୀବିଶେଷ, ଓଟପକ୍ଷୀ ।

ଉଷ୍ଟ୍ରଶିରୋଧର—କ୍ଲୀ.ବି.ଭଗନ୍ଦର ରୋଗ-ବିଶେଷ, ଓଟବେକ ।

ଉଷ୍ଟ୍ରସ୍ଥାନ—କ୍ଲୀ. ବି. ଉଷ୍ଟ୍ରମାନଙ୍କର ଆବାସସ୍ଥାନ ।

ଉଷ୍ଟ୍ରସିକା—ସ୍ତ୍ରୀ. ବି. ଉଷ୍ଟ୍ରମାନେ ଯେପରି ଉପବେଶନ କରନ୍ତି, ସେହିପରି ଆସନ ।

ଉଷ୍ଟ୍ରିକା—ସ୍ତ୍ରୀ. ବି. ମୃଣ୍ମୟ ସୁରାପାତ୍ର ବିଶେଷ, ଉଷ୍ଟ୍ରୀ, ମାଇଓଟ ।

ଉଷ୍ଟ୍ରୀ—ସ୍ତ୍ରୀ. ବି. (ଉଷ + ଷ୍ଟ୍ରନ୍ + ଈ) ମଦ୍ୟପାତ୍ର, ଉଷ୍ଟ୍ରର ସ୍ତ୍ରୀ, ମାଇଓଟ ।

ଉଷ୍ଣ—ପୁଂ. କ୍ଲୀ.ବି. (ଉଷ୍ + ଣ)ଗ୍ରୀଷ୍ମ, ଆତପ, ପଳାଣ୍ଡୁ, ଉଷ୍ମା, ଅଗ୍ନି,ସୂର୍ଯ୍ୟ, ନରକବିଶେଷ, ପିତ୍ତ, ଘର୍ମ, ବାଷ୍ପ, ରୌଦ୍ର, କ୍ରୌଞ୍ଚଦ୍ୱୀପସ୍ଥ ବର୍ଷ ବିଶେଷ, (ବିଂ) ଗରମ, ତପ୍ତ, ନିଦାଘ, ଅଶୀ-ତଳ, ତୀବ୍ର,କ୍ଷିପ୍ର,ଆଳସ୍ୟରହିତ,ଚତୁର, ଦକ୍ଷ, ପଟୁ, ଦକ୍ଷ ।

ଉଷ୍ଣକ—ବିଂ. (ଉଷ୍ଣ + କ) ଯାହା ଶରୀ-ରର ଉଷ୍ଣତା ସମ୍ପାଦନ କରେ, କ୍ଷିପ୍ର-କାରୀ, ପୀଡ଼ିତ, ପ୍ରଣତ, କ୍ରୋଧୋଦ୍ଦୀପ୍ତ, ଚତୁର, ଦକ୍ଷ (ବି) ଆବର୍ତ୍ତନ, ଜ୍ୱର, ଗ୍ରୀଷ୍ମ କାଳ, ନିଦାଘ, ଉଷ୍ଣୀଷ ।

ଉଷ୍ଣକଟିବନ୍ଧ—ପୁଂ. ବି. କର୍କଟକ୍ରାନ୍ତି ଓ ମକରକ୍ରାନ୍ତିର ମଧ୍ୟବର୍ତ୍ତୀ ସ୍ଥାନ ।

ଉଷ୍ଣକର—ପୁଂ. ବି. (ଉଷ୍ଣ + କୃ + ଅ) ଅଗ୍ନି, ସୂର୍ଯ୍ୟ (ବିଂ) ଉଷ୍ଣକାରୀ, ଉଷ୍ଣତା ଜନକ ।

ଉଷ୍ଣକାଳ—ପୁଂ. ବି.(କ.ଧା)ଗ୍ରୀଷ୍ମକାଳ ।

ଉଷ୍ଣଗୁ—ପୁଂ. ବି. ସୂର୍ଯ୍ୟ ।

ଉଷ୍ଣତା—ସ୍ତ୍ରୀ. ବି. (ଉଷ୍ଣ + ତା) ଗରମୀ, ତପତ, ତାପ, ତୀବ୍ରତା, ଫୁର୍ତ୍ତି ।

ଉଷ୍ଣଦୀଧିତି—ପୁଂ. ବି. (ବି.ବ୍ରୀ) ସୂର୍ଯ୍ୟ ।

ଉଷ୍ଣନଦୀ—ସ୍ତ୍ରୀ. ବି. (କ.ଧା) ବୈତରଣୀ ନଦୀ ।

ଉଷ୍ଣପ୍ରଧାନ—ବିଂ. (ବି.ବ୍ରୀ) ଅଧିକାଂଶ ସମୟ ଉଷ୍ଣ ଥିବା (ସ୍ଥାନ) ।

ଉଷ୍ଣପ୍ରସ୍ରବଣ—କ୍ଲୀ.ବି. ଯେଉଁ ପ୍ରସ୍ରବଣରୁ ଉଷ୍ଣଜଳ ନିଃସୃତ ହୁଏ ।

ଉଷ୍ଣବାରଣ—ପୁଂ. କ୍ଲୀ. ବି. (ଉଷ୍ଣ + ବାରଣ) ଛତ୍ର, ଛତା, ଆତପତ୍ର ।

ଉଷ୍ଣବୀର୍ଯ୍ୟ—ବିଂ. (ଉଷ୍ଣ + ବୀର୍ଯ୍ୟ)ବି.ବ୍ରୀ; ରାଗୀ, ତୀବ୍ର, ସ୍ୱାଦଯୁକ୍ତ, କଷା, ଯେଉଁ ପଦାର୍ଥର ସତ୍ତ୍ୱ ଅତି ଗରମ, ଉଗ୍ରବୀର୍ଯ୍ୟ, ତୀକ୍ଷ୍ଣତେଜୋଯୁକ୍ତ, ତୀବ୍ର, ଖର, ଉତ୍ତେ-ଜକ ( ଦ୍ରବ୍ୟ ) ପୁଂ. ବି. ଶିଶୁମାର, ଶୃଙ୍ଗକ (କ୍ଲୀ.ବି) ତୀକ୍ଷ୍ଣତେଜ, ଉଗ୍ରବୀର୍ଯ୍ୟ, ଖୁବ୍‌ଝାଞ୍ଜି, ବଳବାନ୍ (ବ୍ୟକ୍ତି) ।

ଉଷ୍ଣରଶ୍ମି—ପୁଂ. ବି. (ବି.ବ୍ରୀ.) ସୂର୍ଯ୍ୟ, ଅର୍କଗଛ ।

ଉଷ୍ଣା—ସ୍ତ୍ରୀ.ବି. (ଉଷ + ନକ୍ + ଆ)କ୍ଷୟ ରୋଗ, ଯକ୍ଷ୍ମା, ସନ୍ତାପ, ପିତ୍ତ ।

ଉଷ୍ଣାଂଶୁ—ପୁଂ.ବି.(ବି.ବ୍ରୀ)ସୂର୍ଯ୍ୟ, ତପନ ଅର୍କଗଛ ।

ଉଷ୍ଣାଗମ—ପୁଂ.ବି. (ବି.ବ୍ରୀ)ଗ୍ରୀଷ୍ମକାଳ ।

ଉଷ୍ଣୋଦ୍‌ଗମ—ପୁଂ ବି.(ବି.ବ୍ରୀ)ଗ୍ରୀଷ୍ମକାଳ ।

ଉଷ୍ଣାର୍ତ୍ତ—ବିଂ.(ଉଷ୍ଣ + ଆର୍ତ୍ତ) ଯେ ଉତ୍ତାପ ସହ୍ୟ କରିବାକୁ ଅସମର୍ଥ, ଆତପକ୍ଲାନ୍ତ, ଶୀତଳପ୍ରିୟ ।

ଉଷ୍ଣାସହ-ପୁଂ.ବି. (ଉଷ୍ଣ + ଆ + ସହ + ଅ) ଶୀତର୍ତ୍ତୁ; ହେମନ୍ତକାଳ, (ବିଂ) ଯେ ଉତ୍ତାପ ସହି ପାରେନାହିଁ ।

ଉଷ୍ଣିକ—ସ୍ତ୍ରୀ.ବି.(ଉତ୍ + ସ୍ନିହ + କ୍ୱିପ୍) ଉଷ୍ଣୀଷ, ପଗଡ଼ି, ବୈଦିକ ଛନ୍ଦୋ-ବିଶେଷ ।

ଉଷ୍ଣିକା—ସ୍ତ୍ରୀ. ବି. (ଉଷ୍ଣ + କ + ଆ) ଯବାଗୁ,ଯାଉ,ଅଠକାଳି, କ୍ଷୀରିଇତ୍ୟାଦି ।

ଉଷ୍ଣୀଷ—ପୁଂ. କ୍ଲୀ.ବି.(ଉଷ୍ଣ + ଈଷ + ଅ) ଶିରୋବେଷ୍ଟନ, ପଗଡ଼ି, କିରୀଟ, ମୁକୁଟ, ଠେକା, ପାଗ, ଟୋପି, ଚିହ୍ନ-ବିଶେଷ । [ବିଶେଷ ।

ଉଷ୍ଣୀଗଙ୍ଗ—କ୍ଲୀ. ବି. ଭୃଗୁପର୍ବତସ୍ଥ ତୀର୍ଥ

ଉଷ୍ଣୀଷଧାରୀ—ପୁଂ.ବି. (ଉଷ୍ଣୀଷ + ଧୃ + ଇନ୍) ଯେ ଉଷ୍ଣୀଷ ଧାରଣ କରେ, ମୁକୁଟଧାରୀ, ପଗଡ଼ି ପିନ୍ଧିଥିବା ।

ଉଷ୍ଣୀଷୀ—ପୁଂ. ବିଂ. (ଉଷ୍ଣୀଷ + ଇନ୍) ଉଷ୍ଣୀଷଧାରୀ, ମହାଦେବ ।

ଉଷ୍ଣୋଦକ—କ୍ଲୀ. ବି. ଉଷ୍ଣଜଳ, ଗରମ ଜଳ, ତାତିଲାପାଣି ।

ଉଷ୍ଣୋପଗମ—ପୁଂ. ବି. (ଉଷ୍ଣ + ଉପ + ଗମ୍ + ଅ) ଗ୍ରୀଷ୍ମକାଳ, ଖରାଦିନ ।

ଉଷ୍ମ—ପୁଂ. ବି.(ଉଷ + ମ)ଗ୍ରୀଷ୍ମକାଳ, ଉତ୍ତାପ, ତୀବ୍ରତା, ବାମ୍ପ, ନିଃଶ୍ୱାସ,ଘର୍ମ, ଅଗ୍ନି, ଉତ୍ସାହ, କ୍ରୋଧ, ଶ ଷ ସ ହ ଏହି ଚାରିବର୍ଣ୍ଣ ।

ଉଷ୍ମକ—ପୁଂ.ବି. (ଉଷ୍ମ + କ)ଗ୍ରୀଷ୍ମ-କାଳ, ଖରାଦିନ ।

ଉଷ୍ମତା—ସ୍ତ୍ରୀ. ବି. ଉଷ୍ଣତା ।

ଉଷ୍ମନ୍—ବି.(ଉଷ + ମନ୍)ଉଷ୍ମ (ଦେଖ)

ଉଷ୍ମପା—ପୁଂ.ବି. (ଉଷ୍ଣ + ପା + କ୍ୱିପ୍) ପିତୃଲୋକ ବିଶେଷ, ଉଷ୍ମପାନକାରୀ ତପସ୍ୱୀ ବିଶେଷ ।

ଉଷ୍ମବର୍ଣ୍ଣ-ବି.(ଉଷ୍ମ + ବର୍ଣ୍ଣ) ଶ,ଷ,ସ,ହ ଏହି ବର୍ଣ୍ଣମାନଙ୍କୁ ଉଷ୍ମବର୍ଣ୍ଣ କହନ୍ତି, ଉଷ୍ମା ନାମକ ବାୟୁର ସଂଯୋଗରେ ଏମାନେ ଉଚ୍ଚାରିତ ହୁଅନ୍ତି ।

ଉଷ୍ମଭାଃ—ପୁଂ. ବି. (ବି. ବ୍ରୀ) ସୂର୍ଯ୍ୟ ।

ଉଷ୍ମସ୍ୱେଦ—ପୁଂ. ବି. ଗରମଝାଳ,ଉଷ୍ଣ-ସ୍ୱେଦ ।

ଉଷ୍ମା-ପୁଂ.ବି.(ଉଷ + ମନିନ୍)ମନସ୍ତାପ, ତେଜ, ଉତ୍ସାହ, ଉଷ୍ଣବୀର୍ଯ୍ୟ, ପିତ୍ତଜ ତାପ, ସ୍ମରଜ୍ୱର, ଗ୍ରୀଷ୍ମକାଳ, ଉତ୍ତାପ, ନିଦାଘ, ତୀବ୍ରତା, କ୍ରୋଧ, ବାଷ୍ପ, ଜଠ-ରାଗ୍ନି ।

ଉଷ୍ଣାଗମ—ପୁଂ. ବି. (ଉଷ୍ଣ+ଆ+ଗମ୍ +ଅ) ଗ୍ରୀଷ୍ମକାଳ, ଖରାକାଳ ।

ଉସ୍—ଗ୍ରା. (ଅବ୍ୟ) ଉଃ (ଦେଖ) ।

ଉସତ—ଗ୍ରା. ବିଂ. ଆନନ୍ଦିତ, ଉଲ୍ଲସିତ ।

ଉସୁଆଁ—ଗ୍ରା. ବି. ଉସୁନାଚାଉଳ କରିବା ପାଇଁ ଧାନକୁ ପାଣିରେ ଅର୍ଦ୍ଧସିଦ୍ଧ କରିବା, ( ଗ୍ରା. ବିଂ. ) ଉସୁନା ଚାଉଳ କୁଟାଯିବା ନିମନ୍ତେ ଜଳରେ ଅର୍ଦ୍ଧସିଦ୍ଧ ହୋଇଥିବା (ଧାନ),ଜଳରେ ନାମମାତ୍ର ସିଦ୍ଧ ହୋଇଥିବା (ଶସ୍ୟାଦି) ।

ଉସୁନା—ଗ୍ରା. ବିଂ. ଉସୁଆଁ ହୋଇଥିବା (ଧାନ), ଉସୁଆଁ ଧାନରୁ ପ୍ରସ୍ତୁତ ହୋଇଥିବା ( ଚାଉଳ, ଚୂଡ଼ାଆଦି), ଗ୍ରା. ବି. ଉସୁନା ଚାଉଳ, ଚୂଡ଼ା ।

ଉସୁନାଓଲ—ଗ୍ରା. ବି. ଚାଉଳଘରର ମଝାନ ଠାରୁ ଓଳଛ ପର୍ଯ୍ୟନ୍ତ ଚାଲୁଥିଲ ।

ଉସୁନାଧାନର ଗଜାବାହାରିବା(ନ୍ୟାୟ) ଉସୁନା ଧାନରୁ ଗଜା ବାହାରିବା ଅସମ୍ଭବ, ତେଣୁ କୌଣସି ଅସମ୍ଭବ ବିଷୟ ସମ୍ଭବ ହେଲେ ଏହା ଲୋକମାନେ କହିଥାନ୍ତି, ଅସମ୍ଭବ ସମ୍ଭବ ହେବା ।

ଉସୁମୁଳିଆ—ଗ୍ରା. ବିଂ. ପଗ୍ର (ଗନ୍ଧ),ପଚ ଯାଇଥିବା, ଉଷ୍ମତା ମିଶ୍ରିତ, ପଗ୍ରଗନ୍ଧଯୁକ୍ତ ।

ଉସୁରୁ—ପ୍ରା. (ଗଞ୍ଜାମ)ଅଭିଶାପ, ପରର ଅମଙ୍ଗଳ ବାଦନ ।

ଉସ୍କେଇବା—ଗ୍ରା.କ୍ରି. ତେଜିବା, ଉତ୍ତେଜିତ କରିବା, ଉତ୍ସାହିତ କରିବା,ମଡ଼ାଇବା, ପ୍ରବର୍ତ୍ତାଇବା, କୌଣସି କଥାକୁ ଇଙ୍ଗିତ ଦ୍ୱାରା ଉତ୍‌ଥାପନ କରିବା,ଗୁପ୍ତ କରି କାନରେ କହିଦେବା, ଉପାଡ଼ିବା, (ଶସ୍ୟ) ।

ଉସେଇରୁଣୀ—ସ୍ତ୍ରୀ.ବିଂ. ଯେଉଁ ସ୍ତ୍ରୀମାନେ କୌଣସି ବ୍ରତୋପବାସାଦି କରିଥାନ୍ତି ।

ଉସ୍ତ—ଗ୍ରା. ବି. (ସଂ-ଅଶ୍ୱତ୍ଥ) ଓସ୍ତ, ଅଶ୍ୱତ୍ଥ ବୃକ୍ଷ, ହେଲା, ଅବହେଳା ।

ଉସ୍ତବକା—ଗ୍ରା.ବିଂ. ନିତାନ୍ତ ଓଲୁ, ଅଜ୍ଞନବୁଦ୍ଧିଆ ।

ଉସ୍ତାର—ପ୍ରା.(ସମ୍ବ)ବି. ତର,ଫୁରୁସେତ୍ ସମୟ, ବେଳ । [ହିନ ।

ଉସ୍ୱାସ—ଗ୍ରା.ବିଂ. ଲଘୁ, ହାଲୁକା,ଖର-

ଉସ୍ର—ପୁଂ.ବି. (ବସ୍+ର)ଷଣ୍ଢ, ବୃଷ, ରଶ୍ମି, କରଣ, ସୂର୍ଯ୍ୟ, ଆଲୋକ, ଅଶ୍ୱିନୀକୁମାରଦ୍ୱୟ, ଦେବ ।

ଉସ୍ରା—ସ୍ତ୍ରୀ. ବି. (ଉସ୍ର+ଆ) ଗାଈ, ପୃଥିବୀ, ମୂଷାକାନୀଲତା, ଇନ୍ଦ୍ରୁରୁପର୍ଣ୍ଣୀଲତା । [କାରିଣୀ ।

ଉସ୍ରି—ସ୍ତ୍ରୀ. ବି. (ଉସ୍ର+ଇ) ଗମନ-

ଉସ୍ରିକ—ପୁଂ.ବି.(ଉସ୍ର+ଇକ)ଜୀର୍ଣ୍ଣବୃକ୍ଷ

ଉସ୍ରିକା—ସ୍ତ୍ରୀ.ବି. (ଉସ୍ରିକ+ଆ)ଅଳ୍ପଦୁଗ୍ଧବତୀ ଗୋ, ଅଳ୍ପ ଦୁଗ୍ଧ ଦେଉଥିବା ଗାଈ ।

ଉସ୍ରିୟ—ପୁଂ. ବି. ଜୀର୍ଣ୍ଣବୃକ୍ଷ ।

ଉସ୍ରିୟା—ସ୍ତ୍ରୀ.ବି. (ଉସ୍ରିୟ+ଆ)ଗାଈ, ଗାଭି, ଗୋ । [କରିବା ।

ଉହ—ଧାତୁ, ପୀଡ଼ିତକରିବା, ତର୍କଣା

ଉହ—ଅବ୍ୟ, ସମ୍ବୋଧନବାଚକ, କଷ୍ଟସ୍ୱାର୍ଥବାଣୀ ।

ଉହଳିବା--ପ୍ରା.(ସମ୍ବ) କ୍ରି.(ସଂ-ବହଧାତୁ) (ଜଳୀୟ ପଦାର୍ଥ) ତଳକୁ ବହିଯିବା, ନଦୀରେ ଭାସିଯିବା ।

ଉହା—ଗ୍ରା.ବି.ଅନୁମାନ,ବିଚାର,ତର୍କଣା, ମୃତ୍‌ପାତ୍ରବିଶେଷ, କୋଇ, କୁମ୍ଭାରଚୁଲ୍ଲୀ, ନାକରୋଗବିଶେଷ, ମଦଭାଟି, ରୁହା ନାମକ ଲୁହାଘଷା ହତିଆର ।

ଉହାଏତ୍—ପ୍ରା.(ସମ୍ବ) ବି. ବୃଥା, ପଣ୍ଡ, (କ୍ଲୀ. ବି.) ବୃଥାରେ ।

ଉହାକର—ଗ୍ରା. ବି. ( ସଂ-ଆହ୍ନିକଜ୍ୱର ) ଏକାହିକ କମ୍ପଜ୍ୱର ବିଶେଷ, ଏଥିରେ ନାକପୁଡ଼ା ଭିତରେ ଗୋଟିଏ ଫୁଲ ହୁଏ ଓ ସେହି ଫୁଲକୁ କଣ୍ଟାରେ ବା ପଦ୍ମ କାହାଲରେ ଫୁଟାଇ ରକ୍ତସ୍ରାବ କରାଇଲେ ଜ୍ୱର ଛାଡ଼ିଯାଏ ।

ଉହାଡ଼—ଗ୍ରା. ବି. ଅନ୍ତରାଳ, ଆବରଣ, ସନ୍ଧି, କଡ଼ବାଗ, ଖୋଲ, ଖାପ,ଆଚ୍ଛାଦନ, ଆଶ୍ରୟ, ଛାୟା, ପର୍ଦ୍ଦା, ତକିଆ ବା ଶେଯର ଖୋଲ, ଆଚ୍ଛନ୍ନ କରିବା, (ଲ.ଅ) ବିପଦରୁ ଆଶ୍ରୟ ଦେବା, (ବିଂ) ଆଚ୍ଛାଦିତ, ଆବୃତ, ଘୋଡ଼ିଆ ହୋଇଥିବା, କଡ଼ବାଗରେ ସ୍ଥିତ, ଆଶ୍ରୟପ୍ରଦତ୍ତ ।

ଉହାଡ଼ିବା—ଗ୍ରା. କ୍ରି. (ସଂ—ଆବରଣ) ଆଡ଼କରିବା, କଡ଼ ବାଗରେ ଧରିବା, ଘୋଡ଼ାଇବା, ଆଶ୍ରୟଦେବା, କାଡ଼ିନେବା, ଆଡ଼ିବା ।

ଉହାଢ—ଗ୍ରା.(ସମ୍ବ) ସ୍ତ୍ରୀ. ବିଂ. ଅଧବ, ଜୀବତ୍‌ଭର୍ତ୍ତୃକା, ଯେଉଁ ସ୍ତ୍ରୀର ସ୍ୱାମୀ ବଞ୍ଚିଥାଏ ।

ଉହାଶାଳ—ଗ୍ରା. ବି. କୁମ୍ଭାରର ହାଣ୍ଡି ପୋଡ଼ିବା ଘର, କମାରଶାଳ ।

ଉହିବା—ଗ୍ରା.କ୍ରି.(ସଂ-ଉହଧାତୁ)ତର୍କିବା, ଅନୁମାନ କରିବା, ଅଟକଳ କରିବା ।

ଉହୁ—ଗ୍ରା.ଅବ୍ୟ, କ୍ଲେଶ ଓ ଦୁଃଖସୂଚକ ଆଃ, ଉଃ ।

ଉହୁଁ—ବିଂ. ବାହକ (ଗ୍ରା.ଅବ୍ୟ) ଉହୁଁ, ନିଷେଧସୂଚକ ଶବ୍ଦ, ନା, ନାହିଁ ।

ଉହୁଁକା—ଗ୍ରା.ବି.(ସଂ-ହୁଙ୍କାର) ଉପରକୁ ଲମ୍ଫଦେବା, ବଳପୂର୍ବକ କୁଦିବା ।

ଉହୁଁକିବା—ଗ୍ରା.କ୍ରି. ଉପରକୁ ଡେଇଁବା, ଆକ୍ରମଣ କରିବାକୁ ମୁସ୍ତେଜ ହେବା, ମାରିବାକୁ ଉଙ୍କେଇବା ।

ଉହୁଟି—ପ୍ରା. (ସମ୍ବ) ବି. କାଆଁଶ ।

ଉହ୍ନେଇ—ବିଂ. ଅଗ୍ନି ରଖିବାର ପାତ୍ରବିଶେଷ, ଉମ୍ନେଇ ।

ଉହ୍ୟମାନ—ବିଂ. ( ବହ+ମ,ଆନ ) ଯାହାକୁ ବହନକରାଯାଏ, ଆକୃଷ୍ୟମାଣ ।

ଉହ୍ର—ପୁଂ. ବିଂ. (ବହ+ରକ୍) ବୃଷ ।

ଉହ୍ଲାଇବା—ଗ୍ରା.କ୍ରି. ଓହ୍ଲାଇବା, ଅବତରଣ କରିବା ।

ଉହ୍ଲେଇବା—ଗ୍ରା.କ୍ରି,ଉହ୍ଲାଇବା(ଦେଖ)

# ଊ

ଊ — ଦୀର୍ଘଉକାର, ଷଷ୍ଠସ୍ୱରବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ଓଷ୍ଠ, ଦୀର୍ଘସ୍ୱର ।

ଊ—ଅବ୍ୟ. (ଅବ + କ୍ୱିପ୍) ସମ୍ବୋଧନ, ବାକ୍ୟାରମ୍ଭ, ଦୟା, ରକ୍ଷା, ବିରକ୍ତି, କ୍ଲେଶ, ଶିବ, ଚନ୍ଦ୍ର, ହଠାତ୍‌ଭୟ, ଆଶ୍ଚର୍ଯ୍ୟ, ଶିଶୁମାନଙ୍କୁ ଜୁଆଁ ଓ ବିଛା ଆଦି ଦେଖାଇବାରେ ବ୍ୟବହୃତ ।

ଊକାର—ବି. ଊବର୍ଣ୍ଣ, ବ୍ୟଞ୍ଜନ ବର୍ଣ୍ଣ ତଳରେ ହୁଆସିବା ଊମାତ୍ରା ( ୂ ) ।

ଊଖଲ—ଗ୍ରା. ବି, ଉଦୂଖଳ, ହାଡ଼ିପାହା-ରୁଣୀ, ଏକପ୍ରକାର ଠିଙ୍କି ।

ଊଢ଼—ବି. (ବହ + ତ)ବିବାହିତ, ଧୃତ, ଅଙ୍ଗୀକୃତ, ଯାହା ବହନ କରାହୋଇ-ଥାଏ, ବହନୀୟ, ଆନୀତ, ପରିହୃତ, ପିନ୍ଧାଯାଇଥିବା ।

ଊଢ଼କଙ୍କଟ—ବିଂ. ବର୍ମ୍ମଯୁକ୍ତ, ସନ୍ନଦ୍ଧ, ବର୍ମିତ, ସଜ୍ଜ, ଦଂଶିତ ।

ଊଢ଼ଭାର୍ଯ୍ୟ—ପୁ. ବି. ବିବାହିତ ।

ଊଢ଼ା—ସ୍ତ୍ରୀ. ବି. ( ଊଢ଼ + ଆ ) ଭାର୍ଯ୍ୟା, ବିବାହିତା କନ୍ୟା ।

ଊଢ଼ି—ସ୍ତ୍ରୀ. ବି. ( ବହ + ତି ) ବହନ, ବିବାହ ।

ଊଣ—ବି. ପରିଣୀତ, ବିବାହିତ ।

ଊଣା—ବିଂ. (ଊନଶବ୍ଦଜ) ଅଳ୍ପ, କମ୍, କ୍ଷୁଦ୍ରତର, କମିଥିବା, ନୀଚ, ତୁଚ୍ଛ, ସାମାନ୍ୟ, ନିକୃଷ୍ଟ, ନ୍ୟୂନ, ଲଜ୍ଜାଜନକ, ଦୁର୍ବଳ, ଅଭିମାନଯୁକ୍ତ, ବିରକ୍ତ, (ବି) ଲଜ୍ଜା, ଲୋକସାନ, ନିଅଣ୍ଟ ହେବା, ତୁଳନାରେ ନିକୃଷ୍ଟତା ।

ଊତ—ବିଂ. (ବେ + ର୍ମି,ତ) କୃତବୟନ, ଗ୍ରଥିତ, ସ୍ୟୂତ, ରକ୍ଷିତ, ବିଖ୍ୟାତ, ଯେ ସକଳ ବସ୍ତ୍ର ବୁଣାହୋଇଥାଏ, ଗୁନ୍ଥା ହୋଇଥିବା, ସିଆଁ ହୋଇଥିବା ।

ଊତପ୍ରୋତ— ବି.(ଊତ + ପ୍ରୋତ) ନିବିଡ଼ ରୂପେ ବୁଣାହୋଇଥିବା, ଛନ୍ଦଣି-ମନ୍ଦଣି ।

ଊତି—ସ୍ତ୍ରୀ. ବି. (ବେ + କ୍ତି,ତି) ବୁଣା-ହେବା, ଗୁନ୍ଥାହେବା, ସିଲାଇହେବା, ରକ୍ଷା, ଲୀଳା, କ୍ଷରଣ, କର୍ମ୍ମବାସନା ।

ଊଧନ୍—କ୍ଲୀ. ବି. ( ବହ + ଅସ ) ପଶୁ-ମାନଙ୍କର ସ୍ତନ, ପହ୍ଲା ।

ଊଧନ୍ୟ—କ୍ଲୀ. ବି. (ଊଧନ୍ + ଯ)ଦୁଗ୍ଧ, କ୍ଷୀର, ପୟଃ । [ପହ୍ଲା ।

ଊଧର—କ୍ଲୀ. ବି. ପଶୁମାନଙ୍କର ସ୍ତନ,

ଊଧଃ—କ୍ଲୀ. ବି. ( ଉନ୍ଦ + ଅସୁନ୍) ପଶୁ-ସ୍ତନ, ଆପୀନ, ପହ୍ଲା ।

ଊଧସ୍ୟ—କ୍ଲୀ. ବି. (ଊଧସ୍ + ଯ)ଦୁଗ୍ଧ, ଦୁଗ୍ଧକର ଦ୍ରବ୍ୟ ।

ଊଧସ୍ୱତୀ—ସ୍ତ୍ରୀ.ବି. ଯେ ଗାଈର ପହ୍ଲାରେ ଅଧିକ ଦୁଗ୍ଧ ଥାଏ, ସ୍ଥୂଳୋଧ୍ନୀ, ପୀନା-ପୀନା ।

ଊନ—ବିଂ. ( ଊନ + ର୍ମି,ଅ ) ଈଷତ୍-ଅସମାପ୍ତ, ଏକୋନ, ହୀନ, ନ୍ୟୂନ,ଅସ-ମ୍ପୂର୍ଣ୍ଣ, କମ୍, କ୍ଷୁଦ୍ରତର, ଦୁର୍ବଳ ।

ଊନ—(ଧାତୁ) ଊଣାକରିବା,କମ୍‌କରିବା, କମେଇବା ।

ଊନକ—ବିଂ. (ଊନ + କ) ହୀନ ।

ଊନଚତ୍ୱାରିଂଶ—ବିଂ. ଅଣଚାଳିଶ, ଚାଳି-ଶରୁ ଏକ ଊଣା ।

ଊନତ୍ରିଂଶ—ବି. ( କ.ଧା ) ଏକଊଣା ତିରିଶ, ଅଣତିରିଶ ।

ଊନନବତି—ବି. ( କ.ଧା ) ଏକଊଣା ନବେ, ଅଣନବେ ।

ଊନପଞ୍ଚାଶ—ବିଂ.(କ.ଧା) ଅଣଚାଶ,ଏକ ଊଣା ପଚାଶ । [ ଏକଊଣା ।

ଊନବିଂଶତି—ସ୍ତ୍ରୀ.ବି.ଊଣିଶ, କୋଡ଼ିଏରୁ

ଊନଷଷ୍ଟି—ବିଂ. ବି. (କ.ଧା) ଷାଠିଏରୁ ଏକ କମ୍, ଅଣଷାଠିଏ ।

ଊନସପ୍ତତି—ବିଂ. ବି. (କ.ଧା) ଏକଊଣା ସତୁରି, ଅଣସ୍ତରି ।

ଊନାଶୀତି—ବିଂ. ବି. ଏକଊଣା ଅଶୀ, ଅଣାଅଶୀ ।

ଊମ୍—ଅବ୍ୟ(ଊୟ + ମୁକ୍) କୋଧୋକ୍ତି, ଡାକବାର ଉତ୍ତର, ଜିଜ୍ଞାସା, ନିନ୍ଦା, ସ୍ପର୍ଦ୍ଧା, ଗର୍ବ, ଭର୍ତ୍ସନା, ପ୍ରଶ୍ନ ।

ଊମ—କ୍ଲୀ. ବି. ନଗର, ଦେଶବିଶେଷ, ରକ୍ଷକ ।

ଊୟ—(ଧାତୁ) ସିଲେଇ କରିବା ।

ଊରରୀ—(ଅବ୍ୟ) ବିସ୍ତାର, ଅଙ୍ଗୀକାର ।

ଊରବ୍ୟ—ପୁଂ. ବି. ବ୍ରହ୍ମାଙ୍କର ଊରୁଜାତ ବୈଶ୍ୟଜାତି । [ସ୍ୱୀକାର ।

ଊରୀ—ଅବ୍ୟ. ( ଊରୁ + ଈକ୍ ) ବିସ୍ତାର,

ଊରୀକୃତ—ବିଂ.(ଊରୀ + କୃ + ତ)ଅଙ୍ଗୀ-କୃତ, ସ୍ୱୀକୃତ, ବିସ୍ତୃତ ।

ଊରୁ—ପୁଂ.ବି.(ଊର୍ଣ୍ଣୁ + ଉ)ଜାନୁରଉପର ଭାଗ, ଜଙ୍ଘ, ଉରତ୍, ସକ୍ଥି ।

ଊରୁଗ୍ରାହ—ପୁଂ. ବି.(ଊରୁ + ଗ୍ରହ + ଅ) ଊରୁସ୍ତମ୍ଭ ରୋଗ ।

ଊରୁଜ—ପୁଂ, ବି. (ଊରୁ + ଜନ୍ + ଅ) ବୈଶ୍ୟ,ଭୃଗୁବଂଶୀୟ ଔର୍ବନାମକ ମୁନି, ତୃତୀୟବର୍ଣ୍ଣ ।

ଊରୁଦଘ୍ନ—ବିଂ. (ଊରୁ + ଦଘ୍ନଚ୍) ଊରୁ-ପରିମିତ(ଜଳାଦି), ଊରୁପର୍ଯ୍ୟନ୍ତ ଉଚ୍ଚ ।

ଊରୁପର୍ବା—ପୁଂ. ବି. (ଊରୁ + ପର୍ବାନ୍) ଜାନୁ, ଆଣ୍ଠୁ, ଜଙ୍ଘ ।

ଊରୁଫଲକ—କ୍ଲୀ, ବି. ନିତମ୍ବଦେଶ ।

ଊରୁରୀ—ଅବ୍ୟ.(ଊରୁ + ଊରୀକ୍)ବିସ୍ତାର, ଅଙ୍ଗୀକାର ।

ଊରୁସମ୍ଭବ—ପୁଂ. ବି.ବୈଶ୍ୟ(ବିଂ) ଯାହା ଊରୁରୁ ଜାତ ହୁଏ ।

ଊରୁସ୍ତମ୍ଭ—ପୁଂ.ବି.(ଊରୁ + ସ୍ତମ୍ଭ + ଅ) ଊରୁରୋଗ ବିଶେଷ, ଜଙ୍ଘଉପରେ ବୃହତ୍ ସ୍ଫୋଟକ । [ବୃକ୍ଷ ।

ଊରୁସ୍ତମ୍ଭା—ସ୍ତ୍ରୀ. (ଊରୁ + ସ୍ତମ୍ଭା) କଦଳୀ

ଊର୍ଜ୍ଜ—(ଧାତୁ) ବଳିଷ୍ଠ ହେବା, ଜୀବିତ ହେବା, ମୋଟ ହେବା ।

ଊର୍ଜ୍ଜ—ପୁଂ. ବି. (ଊର୍ଜ୍ଜ + ଅ) କାର୍ତ୍ତିକ-ମାସ, ଉତ୍ସାହ, ବଳ, ନିଃଶ୍ୱାସ, ଜୀବନ, ପ୍ରାଣ, ବୀର୍ଯ୍ୟ, ଚେଷ୍ଟା, ଦ୍ୱିତୀୟ ମନ୍ୱନ୍ତର, ସପ୍ତର୍ଷି ମଧ୍ୟରୁ ଜଣେ ଋଷି ।

ଊର୍ଜ୍ଜଃ—କ୍ଲୀ.ବି. (ଊର୍ଜ୍ଜ + ଅସ୍)ଖାଦ୍ୟ, ବୀର୍ଯ୍ୟ, ବଳ, ଉତ୍ସାହ, ତେଜ, ଯତ୍ନ, ପ୍ରାଚୀନ, ଚେଷ୍ଟା, ବର୍ଦ୍ଧିବା ।

ଊର୍ଜ୍ଜଯୋନ—ପୁଂ. ବି. ଋଷିବିଶେଷ ।

ଊର୍ଜ୍ଜସ୍ୱଳ—ବିଂ. ( ଊର୍ଜ୍ଜସ୍ + ବଳ ) ଅତଏବ ବଳବାନ୍, ତେଜସ୍ୱୀ, କ୍ଷମତା-ଶୀଳ(ସ୍ତ୍ରୀ) ଊର୍ଜ୍ଜସ୍ୱଳା ।

ଊର୍ଜ୍ଜସ୍ୱାନ୍—ପୁଂ. ବିଂ. (ଊର୍ଜ୍ଜସ୍ + ବତ୍) ବଳବାନ୍, ବଳିଷ୍ଠ, କ୍ଷମତାଶୀଳ, ତେଜସ୍ୱୀ ।

ଊର୍ଜ୍ଜସ୍ୱୀ—ପୁଂ. ବିଂ. (ଊର୍ଜ୍ଜସ୍ + ବିନ୍) ଅତିଶୟ ବଳବାନ୍, ତେଜସ୍ୱୀ, କ୍ଷମତାଶାଳୀ (ସ୍ତ୍ରୀ) ଊର୍ଜ୍ଜସ୍ୱିନୀ ।

ଊର୍ଜ୍ଜା—ସ୍ତ୍ରୀ.ବି.(ଊର୍ଜ୍ଜ + ଆ) ଜଳ, ଉତ୍ସାହ, ବୃଦ୍ଧି, ଅନ୍ନରସବିକୃତିବିଶେଷ, ଖାଦ୍ୟ ।

ଊର୍ଜ୍ଜାବାନ୍—ପୁଂ. ବିଂ. (ଊର୍ଜ୍ଜା + ବତୁ) ବଳବାନ, ବୃଦ୍ଧିଯୁକ୍ତ ।

ଊର୍ଜ୍ଜିତ—ବିଂ. (ଊର୍ଜ୍ଜ + ତ) ଉଦାର, ଅଧିକ, ଉତ୍କୃଷ୍ଟ, ଉନ୍ନମିତ, ବଳଶାଳୀ, ବୃଦ୍ଧିଯୁକ୍ତ, ବିଖ୍ୟାତ, ତେଜସ୍ୱୀ, (ବି) ବଳ, ସାମର୍ଥ୍ୟ, ଉତ୍ସାହ, ତେଜ ।

ଊର୍ଣ୍ଣ—କ୍ଳୀ.ବି.(ଊର୍ଣ୍ଣା + ଅ) ମେଷଲୋମନିର୍ମିତ ବସ୍ତ୍ରାଦି, କମ୍ବଳପ୍ରଭୃତି, (ବିଂ) ଊର୍ଣ୍ଣାଯୁକ୍ତ, ମେଷଲୋମରଚିତ ।

ଊର୍ଣ୍ଣନାଭ—ପୁଂ. ବି. (ଊର୍ଣ୍ଣ + ନାଭି) କୀଟବିଶେଷ, ଲୂତା, ତନ୍ତୁବାୟ, ମର୍କଟକ, ବୁଢ଼ିଆଣୀ, ମାଙ୍କଡ଼ସା ।

ଊର୍ଣ୍ଣନାଭି—ପୁଂ.ବି.ଊର୍ଣ୍ଣନାଭ (ଦେଖ) ।

ଊର୍ଣ୍ଣମ୍ରଦ—ବିଂ. କମ୍ବଳାଦିପରି କୋମଳ ବସ୍ତୁ ।

ଊର୍ଣ୍ଣନାଭି—ପୁଂ.ବି. ଊର୍ଣ୍ଣନାଭ, ଲୂତା, ବୁଢ଼ିଆଣୀ ।

ଊର୍ଣ୍ଣା—ସ୍ତ୍ରୀ. ବି. ( ଊର୍ଣ୍ଣୁ + ଅ + ଆ ) ମେଷାଦିର ଲୋମ, ପଶମ, ଚିତ୍ରରଥ-ନାମକ ଗନ୍ଧର୍ବର ପତ୍ନୀ, ଭ୍ରୂଦ୍ୱୟ ମଧ୍ୟ-ବର୍ତ୍ତୀ ସୂକ୍ଷ୍ମରୋମରାଜିର ଚିହ୍ନବିଶେଷ ।

ଊର୍ଣ୍ଣାମୟ—କ୍ଳୀ. ବିଂ.ମେଷଲୋମନିର୍ମିତ, ପଶମୀ, (ବି) ମେଷଲୋମବିକାରସୂତାଦି ।

ଊର୍ଣ୍ଣାୟୁ—ପୁଂ. ବି. (ଊର୍ଣ୍ଣା + ୟୁ) ମେଷ-ଲୋମନିର୍ମିତ କମ୍ବଳାଦି, ମେଷ, ଊର୍ଣ୍ଣ-ନାଭ, ଝିଣଭଙ୍ଗ, ଗନ୍ଧର୍ବବିଶେଷ, ମାଙ୍କଡ଼ସା ।

ଊର୍ଣ୍ଣାବନ—ବିଂ. ( ଊର୍ଣ୍ଣା + ବନଚ୍ ) ଊର୍ଣ୍ଣାଯୁକ୍ତ, ମେଷଲୋମନିର୍ମିତ ।

ଊର୍ଣ୍ଣାସୂତ୍ର—କ୍ଳୀ. ବି. ମେଷାଦିଲୋମ, ବୁଢ଼ିଆଣୀ ସୂତା ।

ଊର୍ଣ୍ଣାସୁକ—ବିଂ. ଊର୍ଣ୍ଣାଯୁକ୍ତ, ମେଷାଦି-ଲୋମରଚିତ ।

ଊର୍ଣ୍ଣୁ—ଧାତୁ, ଆଚ୍ଛାଦନ କରିବା ।

ଊର୍ଣ୍ଣୁବନ—ବିଂ. ଯେ ଆଚ୍ଛାଦନ କରି-ଥାଏ ।

ଊର୍ଦ୍ଦ—ବିଂ. (ଊର୍ଦ୍ଦ + ଅ) କ୍ରୀଡ଼ାଯୁକ୍ତ ।

ଊର୍ଦ୍ଦର—ପୁଂ. ବି. (ଊର୍ଦ୍ଦ + ଅ) ଧୀର, ରାକ୍ଷସ, ଧାନ୍ୟାଦି ରଖିବାର ପାତ୍ର-ବିଶେଷ, କୁଶୂଳ, ମରେଇ ।

ଊର୍ଦ୍ଧ୍ୱ—ବିଂ. (ଉତ୍ + ହା + ବ) ଉଚ୍ଚ, ଉତ୍କୃଷ୍ଟ, ଉପରସ୍ଥ, ଉତ୍ପାଟିତ, ଅନନ୍ତର, ପରତ୍ୟକ୍ତ, ଉପର, ଉତ୍ଥିତ, ଦଣ୍ଡାୟ-ମାନ, (ବି) ଉଚ୍ଚତା, ଊର୍ଦ୍ଧ୍ୱଦେଶ, ମୃଦଙ୍ଗବିଶେଷ, ଦେବଲୋକ ।

ଊର୍ଦ୍ଧ୍ୱକ—ପୁଂ.ବି. (ଊର୍ଦ୍ଧ୍ୱ + କୈ + ଅ) ମୃଦଙ୍ଗବିଶେଷ, ବଡ଼କାଠ ।

ଊର୍ଦ୍ଧ୍ୱକଚ—ପୁଂ.ବି. ଉତ୍ପାଟିତ, କେଶ, କେତୁ, ଯାହାର କେଶ ଉପାଡ଼ି ଫିଙ୍ଗି-ଦିଆଯାଇଥାଏ ।

ଊର୍ଦ୍ଧ୍ୱକର୍ଣ୍ଣୀ—ସ୍ତ୍ରୀ.ବି. (ଊର୍ଦ୍ଧ୍ୱ + କର୍ଣ୍ଣୀ) ମହାଶତାବରୀ, ଶତମୂଳୀ ବିଶେଷ, ଛତୁଆରି ।

ଊର୍ଦ୍ଧ୍ୱକଣ୍ଠ—ପୁଂ.ବିଂ. (ବ.ବ୍ରୀ) ଯାହାର କଣ୍ଠ ଉଚ୍ଚ ହୋଇଥାଏ, ଉଦ୍‌ଗ୍ରୀବ ।

ଊର୍ଦ୍ଧ୍ୱକର୍ଣ୍ଣ—ବିଂ. (ବ.ବ୍ରୀ) ଉତ୍କର୍ଣ୍ଣ, କାନ ଠିଆ କରିଥିବା ।

ଊର୍ଦ୍ଧ୍ୱକର୍ମ୍ମ—କ୍ଳୀ. ବି. ମୃତ ବ୍ୟକ୍ତି ଉଦ୍ଦେଶ୍ୟରେ ଯେଉଁ ଶ୍ରାଦ୍ଧାଦି କରାଯାଏ, ଉତ୍ତରକ୍ରିୟା ।

ଊର୍ଦ୍ଧ୍ୱକାୟ—ପୁଂ.କ୍ଳୀ. ବି. କଟୀଦେଶର ଉପରସ୍ଥ ଅବୟବ, (ବିଂ. ବ.ବ୍ରୀ) ଯାହାର ଉନ୍ନତ ଦେହ ।

ଊର୍ଦ୍ଧ୍ୱକେତୁ—ବିଂ. ଯାହାର ପତାକା ଉଚ୍ଚରେ ଉଡ଼ୁଥାଏ, ଯେଉଁ ନଗର ବା ଗୃହରେ ଉଡ଼ୁଥାଏ, (ବି) ଜନକ-ବଂଶୀୟ ରାଜାବିଶେଷ ।

ଊର୍ଦ୍ଧ୍ୱକେଶ—ପୁଂ.ବି.(ଊର୍ଦ୍ଧ୍ୱ + କେଶ) ସ୍ମୃତିଶାସ୍ତ୍ରୋକ୍ତ କୁଶମୟ ବ୍ରାହ୍ମଣ, ବ୍ରହ୍ମା, (ବିଂ) ଯାହାର କେଶ ଉନ୍ନତ ।

ଊର୍ଦ୍ଧ୍ୱକ୍ରିୟା—ସ୍ତ୍ରୀ. ବି. ଊର୍ଦ୍ଧ୍ୱକର୍ମ, ଶ୍ରାଦ୍ଧ-କ୍ରିୟା ।

ଊର୍ଦ୍ଧ୍ୱଗ—ବିଂ. (ଊର୍ଦ୍ଧ୍ୱ + ଗମ୍ + ଅ) ଊର୍ଦ୍ଧ୍ୱଗାମୀ, ଶିରୋଗ, ସ୍ୱର୍ଗଗାମୀ, ସତ୍‌ପଥାବଲମ୍ବୀ, ସାତ୍ତ୍ୱିକ, ଧାର୍ମ୍ମିକ, (ପୁଂ. ବି.) ପରମେଶ୍ୱର, ବିଷ୍ଣୁ ।

ଊର୍ଦ୍ଧ୍ୱଗତ—ବିଂ. (୨ତତ୍) ଉପରଗତ, ଉପରକୁ ଉଠିଥିବା, ଆରୂଢ଼, (ସ୍ତ୍ରୀ) ଊର୍ଦ୍ଧ୍ୱଗତା ।

ଊର୍ଦ୍ଧ୍ୱଗତି—ସ୍ତ୍ରୀ. ବି. ଉଚ୍ଚଗତି, ଉନ୍ନତ-ସ୍ଥାନ, ଆରୋହଣ, ସ୍ୱର୍ଗାରୋହଣ, ସଦ୍‌ଗତି, (ବିଂ) ଉଚ୍ଚଗତିପ୍ରାପ୍ତ, ମୋକ୍ଷ ।

ଊର୍ଦ୍ଧ୍ୱଗପୁର—କ୍ଳୀ.ବି.(ଊର୍ଦ୍ଧ୍ୱଗ + ପୁର) କ.ଧା, ଆକାଶସ୍ଥ ଗୃହ, ପୁର ନାମକ ଅସୁରର ଗୃହ, ହରିଶ୍ଚନ୍ଦ୍ରରାଜାର ପୁରୀ ।

ଊର୍ଦ୍ଧ୍ୱଗମନ—କ୍ଳୀ.ବି. ସ୍ୱର୍ଗଗମନ, ଉଦୟ, ସପ୍ତସ୍ୱରର ଆରୋହ, ଆରୋହଣ ।

ଊର୍ଦ୍ଧ୍ୱଗାମୀ—ପୁଂ. ବିଂ. (ଊର୍ଦ୍ଧ୍ୱ + ଗମ୍ + ଇନ୍) ଯେ ଊର୍ଦ୍ଧ୍ୱରେ ଗମନକରେ, ସ୍ୱର୍ଗଗମନଶୀଳ, (ସ୍ତ୍ରୀ) ଊର୍ଦ୍ଧ୍ୱଗାମିନୀ ।

ଊର୍ଦ୍ଧ୍ୱଚରଣ—ବିଂ. ଯାହାର ଚରଣ ଊର୍ଦ୍ଧ୍ୱଗତ, ଅଷ୍ଟଚରଣ ଶରଭ, ଉନ୍ନତ ପଦରେ ତପସ୍ୟାକାରୀ ତପସ୍ୱୀବିଶେଷ ।

ଊର୍ଦ୍ଧ୍ୱଜାନୁ—ବିଂ.(ବ.ବ୍ରୀ) ଉନ୍ନତଜାନୁ ଯାହାର, ଜାନୁଦ୍ୱୟ ଅଧିକ ଉଚ୍ଚ, ଊର୍ଦ୍ଧ୍ୱଜ୍ଞ, ଉନ୍ନତଜଙ୍ଘ, ଆଣ୍ଠୁଟେକି-ହୋଇ ବସିଥିବା ।

ଊର୍ଦ୍ଧ୍ୱଜ୍ଞ—ବିଂ. ଊର୍ଦ୍ଧ୍ୱଜାନୁ (ଦେଖ) ।

ଊର୍ଦ୍ଧ୍ୱଜ୍ଞୁ—ବିଂ. ଊର୍ଦ୍ଧ୍ୱଜାନୁ (ଦେଖ) ।

ଊର୍ଦ୍ଧ୍ୱତନ—ବିଂ.(ଊର୍ଦ୍ଧ୍ୱ + ତନ) ଉପ-ରିସ୍ଥ, ଉଠାଣିଆଁ, ପଦମର୍ଯ୍ୟାଦା ଶ୍ରେଷ୍ଠ, ଉତ୍କୃଷ୍ଟତର, ପୂର୍ବତନ (ପୁରୁଷ,) (ସ୍ତ୍ରୀ) ଊର୍ଦ୍ଧ୍ୱତନୀ ।

ଊର୍ଦ୍ଧ୍ୱତଳ—କ୍ଳୀ.ବି.(ମଧ୍ୟ-କ.ଧା) କୋଠାର ଉପର ମହଲ, ଉଚ୍ଚତରସ୍ତର ।

ଊର୍ଦ୍ଧ୍ୱତିଳକୀ—ବିଂ. ( ଊର୍ଦ୍ଧ୍ୱ + ତିଳକ + ଇନ୍ ) ଉନ୍ନତତିଳକବିଶିଷ୍ଟ ।

ଊର୍ଦ୍ଧ୍ୱଥା—ଅବ୍ୟ, ଊର୍ଦ୍ଧ୍ୱପ୍ରକାର, ଊର୍ଦ୍ଧ୍ୱରେ, ଉପରେ ।

ଊର୍ଦ୍ଧ୍ୱଦଂଷ୍ଟ୍ରକେଶ — ପୁଂ. ବି. ( ବ.ବ୍ରୀ ) ମହାଦେବ ।

ଊର୍ଦ୍ଧ୍ୱଦୃଷ୍ଟି — ବିଂ. ( ବ.ବ୍ରୀ ) ଊର୍ଦ୍ଧ୍ୱଦେଶରେ ଦୃଷ୍ଟି ନିକ୍ଷେପକାରୀ, ଊର୍ଦ୍ଧ୍ୱନେତ୍ର, (ସ୍ତ୍ରୀ) ଭ୍ରୂଦ୍ୱୟ ମଧ୍ୟବର୍ତ୍ତୀ ଦୃଷ୍ଟି, ଉତ୍କ୍ଷିପ୍ତଦୃଷ୍ଟି, ମୃତ୍ୟୁକାଳଦୃଷ୍ଟି, ଲୋକେ ଯାହାକୁ ଶିବ ଦୃଷ୍ଟି କହନ୍ତି, ଯୋଗବିଶେଷ ।

ଊର୍ଦ୍ଧ୍ୱଦେବ — ପୁଂ.ବି. (କ.ଧା) ପରମେଶ୍ୱର, ବିଷ୍ଣୁ । [ଭାଗ ।

ଊର୍ଦ୍ଧ୍ୱଦେଶ — ପୁଂ.ବି.ଉପରଭାଗ,ଉପର-

ଊର୍ଦ୍ଧ୍ୱଦେହ — ପୁଂ. ବି. ମରଣାନନ୍ତର ଯେଉଁ ଦେହ ପ୍ରାପ୍ତ ହୁଏ, ଲିଙ୍ଗଦେହ, ପ୍ରେତଶରୀର ।

ଊର୍ଦ୍ଧ୍ୱଦମ — ବିଂ. (ଊର୍ଦ୍ଧ୍ୱ + ଦମ୍ + ଅ) ଊର୍ଦ୍ଧ୍ୱସ୍ଥ । [ବାୟୁ ।

ଊର୍ଦ୍ଧ୍ୱନଭ — ପୁଂ.ବି.ଆକାଶ ମଧ୍ୟଦେଶସ୍ଥ

ଊର୍ଦ୍ଧ୍ୱପାତ୍ର — କ୍ଳୀ. ବି. ଉଦୂଖଳ ପ୍ରଭୃତି ଯଜ୍ଞପାତ୍ର ।

ଊର୍ଦ୍ଧ୍ୱପାଦ - ପୁଂ. ବି. ଶରଭନାମକ ମୃଗବିଶେଷ, (ବିଂ) ଉତ୍ତାନପାଦ, ଗୋଡ଼ ଉପରକୁ ଟେକିଥିବା, ଯାହାର ପାଦ ଊର୍ଦ୍ଧ୍ୱଦେଶେ ଥାଏ, (ସ୍ତ୍ରୀ)ଊର୍ଦ୍ଧ୍ୱପାଦୀ ।

ଊର୍ଦ୍ଧ୍ୱପୁଣ୍ଡ୍ର — ପୁଂ. ବି. ଚନ୍ଦନାଦି ଦ୍ୱାରା କୃତ ଲଲାଟସ୍ଥ ତିଳକବିଶେଷ, ଠିଆଚିତା, ଲମ୍ବାତିଳକ, ସ୍ୱନାମପ୍ରସିଦ୍ଧ ତିଳକବିଶେଷ ।

ଊର୍ଦ୍ଧ୍ୱପୃଶ୍ନି — ପୁଂ. ବି. ପଶୁବିଶେଷ ।

ଊର୍ଦ୍ଧ୍ୱବର୍ତ୍ମ — କ୍ଳୀ.ବି.ଗଗନମାର୍ଗ,ଆକାଶପଥ, ଆକାଶ ।

ଊର୍ଦ୍ଧ୍ୱବର୍ହି — ବି. ପିତୃଲୋକ ।

ଊର୍ଦ୍ଧ୍ୱବାଟ — ପୁଂ. ବି. ସ୍ୱର୍ଗଲଭର ପଥ, ସ୍ୱର୍ଗପଥ ।

ଊର୍ଦ୍ଧ୍ୱବାତ — ପୁଂ. ବି. (କ.ଧା) ମୂତ୍ରାଦିବେଗଧାରଣଜନିତ ଦେହସ୍ଥ ଊର୍ଦ୍ଧ୍ୱଗତ ବାୟୁ ।

ଊର୍ଦ୍ଧ୍ୱବାହୁ — ପୁଂ.ବି. (ଊର୍ଦ୍ଧ୍ୱ + ବାହୁ) ଉତ୍ତୋଳିତହସ୍ତ, ( ବିଂ ) ଯେ ବାହୁ ଉତ୍ତୋଳନକରିଥାଏ,ଉର୍ଦ୍ଧ୍ୱବାହୁ,(ବି)ପଞ୍ଚମ ମନ୍ୱନ୍ତରର ସପ୍ତର୍ଷି ମଧ୍ୟରୁ ଜଣେ ଋଷି, ସନ୍ନ୍ୟାସୀସମ୍ପ୍ରଦାୟବିଶେଷ, ବଶିଷ୍ଠଙ୍କର ପୁତ୍ରଭେଦ । [ବୋଧନ ।

ଊର୍ଦ୍ଧ୍ୱବୁଧ — ବିଂ. ଊର୍ଦ୍ଧ୍ୱବନ୍ଧନ, ଊର୍ଦ୍ଧ୍ୱ-

ଊର୍ଦ୍ଧ୍ୱଭାକ୍ - ବିଂ.(ଊର୍ଦ୍ଧ୍ୱ + ଭଜ + ଣ୍ୱ) ଉପରଭାଗସ୍ଥ, ଊର୍ଦ୍ଧ୍ୱଦେଶସ୍ଥ, (ପୁଂ.ବି) ଅଗ୍ନି ବିଶେଷ ।

ଊର୍ଦ୍ଧ୍ୱଭାଗ - ପୁଂ.ବି.(କ.ଧା) ଉପରଭାଗ, ଉପରଭାଗ, ଊର୍ଦ୍ଧ୍ୱତଳ, ଉପରପୀଠ, ଶ୍ରେଷ୍ଠଅଂଶ ।

ଊର୍ଦ୍ଧ୍ୱଂ — ଅବ୍ୟ. ଉପର, ଉଚ୍ଚ ।

ଊର୍ଦ୍ଧ୍ୱମନ୍ଥ — ପୁଂ. ବି. ପୌରାଣିକ ଜନପଦବିଶେଷ ।

ଊର୍ଦ୍ଧ୍ୱମନ୍ଥୀ — ପୁଂ. ବିଂ. (ଊର୍ଦ୍ଧ୍ୱ + ମଥ୍ + ଇନ୍) ନୈଷ୍ଠିକ ବ୍ରହ୍ମଚାରୀ ।

ଊର୍ଦ୍ଧ୍ୱମାନ — କ୍ଳୀ. ବି. (ଊର୍ଦ୍ଧ୍ୱ + ମା + ଅନ) ଓଜନ କରିବା ନିମିତ୍ତ ପଥର କିମ୍ବା ଲୌହନିର୍ମିତ ବଟକରା, ଉପର ଦିଗର ପରିମାଣ ବଟକରା ।

ଊର୍ଦ୍ଧ୍ୱମୁଖ — ବିଂ. (ବ.ବ୍ରୀ) ଯାହାର ମୁଖ ଊର୍ଦ୍ଧ୍ୱଦିଗରେ ଥାଏ,ଉନ୍ନତମୁଖ,ଉପର ମୁହାଁ(କ୍ଳୀ,ବି)ମୁଖର ଊର୍ଦ୍ଧ୍ୱଭାଗ,ନରକବିଶେଷ ।

ଊର୍ଦ୍ଧ୍ୱମୁଖୀ — ପୁଂ. ବି. (କ.ଧା) ସନ୍ନ୍ୟାସୀ ସମ୍ପ୍ରଦାୟ ବିଶେଷ ।

ଊର୍ଦ୍ଧ୍ୱରେତାଃ ପୁଂ.ବିଂ.(ଊର୍ଦ୍ଧ୍ୱ + ରେତସ୍) ଯାହାର ରେତ ବା ଶୁକ୍ର ସ୍ଖଳିତହୋଇନାହିଁ, ଇନ୍ଦ୍ରିୟସଂଯମକାରୀ, ଯୋଗାଭ୍ୟାସ କରୁଥିବା (ବ୍ୟକ୍ତି), ବ୍ରହ୍ମଚର୍ଯ୍ୟବ୍ରତଧାରୀ, (ବି) ଶିବ, ଭୀଷ୍ମ, ଇନ୍ଦ୍ରିୟସଂଯମୀ ଋଷି, ବ୍ରହ୍ମଚାରୀ, ଯୋଗୀ, ସନକାଦିଋଷିଗଣ ।

ଊର୍ଦ୍ଧ୍ୱରୋମା — ପୁଂ. ବି. (ବ.ବ୍ରୀ) ଯମଦୂତପ୍ରଭୃତି, କୁଶଦ୍ୱୀପସ୍ଥ ପର୍ବତବିଶେଷ, (ବିଂ)ଯାହାରରୋମହର୍ଷିତ ହୋଇଥାଏ ।

ଊର୍ଦ୍ଧ୍ୱଲିଙ୍ଗ — ପୁଂ.ବି. (ଊର୍ଦ୍ଧ୍ୱ + ଲିଙ୍ଗ) ବ.ବ୍ରୀ. ମହାଦେବ, ଶିବ, ବ୍ରହ୍ମଚାରୀ ।

ଊର୍ଦ୍ଧ୍ୱଲୋକ — ପୁଂ. ବି. (କ.ଧା) ସ୍ୱର୍ଗ, ସ୍ୱର୍ଗଲୋକ ।

ଊର୍ଦ୍ଧ୍ୱବୃତ — କ୍ଳୀ. ବି. ଊର୍ଦ୍ଧ୍ୱଦିଗରେ ଆବର୍ତ୍ତିତ ଯଜ୍ଞୋପବୀତ ।

ଊର୍ଦ୍ଧ୍ୱବୃହତୀ — ସ୍ତ୍ରୀ.ବି. ବୈଦିକ ଛନ୍ଦୋବିଶେଷ ।

ଊର୍ଦ୍ଧ୍ୱଶାୟୀ — ପୁଂ.ବିଂ.(ଊର୍ଦ୍ଧ୍ୱ + ଶୀ + କ,ଇନ୍ )ଉତ୍ତାନଶାୟୀ ( ବ୍ୟକ୍ତି ) ଯେ ଚିତ୍ତହୋଇ ଶୁଏ, ବାଳକ, (ବି) ମହାଦେବ, (ସ୍ତ୍ରୀ) ଊର୍ଦ୍ଧ୍ୱଶାୟିନୀ ।

ଊର୍ଦ୍ଧ୍ୱଶୋଷଂ — ଅବ୍ୟ, ଉପରେ ଥାଇ ଯେଉଁ ସକଳବୃକ୍ଷ ଶୁଷ୍କ ହୁଅନ୍ତି ସେମାନଙ୍କର ଶୋଷଣ ।

ଊର୍ଦ୍ଧ୍ୱଶ୍ୱାସ - ପୁଂ.ବି.ଦୀର୍ଘଶ୍ୱାସ,ମୃତ୍ୟୁକାଳୀନ ଶ୍ୱାସ,ଦ୍ରୁତଗମନାଦିଜନିତଘନଘନଶ୍ୱାସ, ଧକାଇବା, ଖରନିଃଶ୍ୱାସ, ଧଇଁଉଠିବା ।

ଊର୍ଦ୍ଧ୍ୱଶ୍ଳେଷ୍ମା — ବି. (ଊର୍ଦ୍ଧ୍ୱ + ଶ୍ଳେଷ୍ମନ୍) ମଥାରେ ଶରଦି ଓ ପେଟରେ ଗରମ ଥିବା ଅବସ୍ଥା ।

ଊର୍ଦ୍ଧ୍ୱସାନୁ — ପୁଂ. କ୍ଳୀ. ପର୍ବତାଦିର ଉପରସ୍ଥ ସମତଳ ପ୍ରଦେଶ, ଉପର୍ଯ୍ୟୁପର ଉଚ୍ଚସ୍ଥାନ ।

ଊର୍ଦ୍ଧ୍ୱସ୍ଥିତି — ସ୍ତ୍ରୀ. ବି. (୭ତତ୍ପୁ) ଉପରେ ଅବସ୍ଥାନ,ଅଶ୍ୱରପୃଷ୍ଠଦେଶ,ଊର୍ଦ୍ଧ୍ୱସ୍ଥାନ ।

ଊର୍ଦ୍ଧ୍ୱସ୍ରୋତା — ପୁଂ. ବିଂ. (ବ.ବ୍ରୀ) ଊର୍ଦ୍ଧ୍ୱରେତା ମୁନିବିଶେଷ, ଯୋଗବିଶେଷ, ମହାଦେବ,ବୃକ୍ଷାଦି, ବନସ୍ପତିଔଷଧିଲତା ପ୍ରଭୃତି ।

ଊର୍ଦ୍ଧ୍ୱାବର୍ତ୍ତ — ପୁଂ.ବି. (ଊର୍ଦ୍ଧ୍ୱ + ଆ + ବୃତ୍ + ଅ) ଅଶ୍ୱପୃଷ୍ଠ, ଆବର୍ତ୍ତବିଶେଷ, ଦକ୍ଷିଣାବର୍ତ୍ତ ।

ଊର୍ଦ୍ଧ୍ୱାମ୍ନାୟ — ପୁଂ.ବି. (ଊର୍ଦ୍ଧ୍ୱ + ଆ + ମ୍ନା + ଅ) ବେଦମାର୍ଗର ଅତଶକ୍ତିବୋଧକ ତନ୍ତ୍ରବିଶେଷ, ଏଥିରେ ଗୁରୁଭକ୍ତି, କୃଷ୍ଣପୂଜା ଇତ୍ୟାଦି ବର୍ଣ୍ଣିତ ହୋଇଅଛି ।

ଊର୍ଦ୍ଧ୍ୱାୟନ - ବିଂ.(ବ.ବ୍ରୀ) ଊର୍ଦ୍ଧ୍ୱଗତପକ୍ଷୀ, ପ୍ଳକ୍ଷଦ୍ୱୀପସ୍ଥପକ୍ଷିବିଶେଷ,(ବି)ଊର୍ଦ୍ଧ୍ୱଗତ ।

ଊର୍ଦ୍ଧ୍ୱାସିତ — ପୁଂ. ବି. (ବ.ବ୍ରୀ) କଳଗା, କାରବେଲ୍ଲ, (ବିଂ) ଊର୍ଦ୍ଧ୍ୱୋପବିଷ୍ଟ ।

ଊର୍ମି — ସ୍ତ୍ରୀ. ବି. (ଶରୀରଭେଦ) ପ୍ରଭୃତି ଓ ଦେହର ପାଞ୍ଚକଳା ମଧ୍ୟରୁ ଏକତମ ।

ଊର୍ମି—ପୁଂ.ସ୍ତ୍ରୀ. ବ. (ଋ+ମି) ଲହରୀ, ସ୍ରୋତ, ତରଙ୍ଗ, ପ୍ରକାଶ, ବେଗ, ଭଙ୍ଗ, ପୀଡ଼ା, ବେଦନା, ଉତ୍କଣ୍ଠା, ଶୋକ, ମୋହ, ଜରା, ମୃତ୍ୟୁ, କ୍ଷୁଧା, ପିପାସା, ରେଖା, କୋଷ, ଅଶ୍ୱଗତିବିଶେଷ, ଭ୍ରାନ୍ତି, ସଙ୍ଗସମୂହ, ଶୀଘ୍ର, ଅଙ୍ଗୁଳୀୟ, ମୁଦ୍ର, ମୁଦ୍ରିକା ।

ଊର୍ମିକା—ସ୍ତ୍ରୀ. ବ. (ଊର୍ମି+କ+ଆ) ଅଙ୍ଗୁଳୀୟକ, ଊର୍ମି, ଉତ୍କଣ୍ଠା, ବସ୍ତ୍ରକୁଞ୍ଚ, ଭ୍ରମରଗୁଞ୍ଜନ ।

ଊର୍ମିମାନ୍—ପୁଂ. ବିଂ. (ଊର୍ମି+ମତୁ) ତରଙ୍ଗଯୁକ୍ତ, ଆନ୍ଦୋଳିତ, ବକ୍ର, ତରଙ୍ଗିତ ।

ଊର୍ମିମାଳା—ସ୍ତ୍ରୀ. ବ. (୬ ତତ୍) ଲହରୀମାଳା, ତରଙ୍ଗଶ୍ରେଣୀ ।

ଊର୍ମିମାଳୀ—ବ. (ଊର୍ମି+ମାଳା+ଇନ୍) ସମୁଦ୍ର, ସାଗର, ଅବ୍ଧି, ଜଳଧି ।

ଊର୍ମିଳା—ସ୍ତ୍ରୀ.ବ.(ଋ+ମିଲ+ଅ+ଆ) ଲକ୍ଷ୍ମଣଙ୍କର ପତ୍ନୀ, ଜନକଙ୍କର ଔରସକନ୍ୟା ।

ଊର୍ମୀ—ବିଂ.(ଊର୍ମି+ଇନ୍) ତରଙ୍ଗଯୁକ୍ତ ନଦୀ ପ୍ରଭୃତି ।

ଊର୍ମ୍ୟ—ବିଂ. (ଊର୍ମି+ଯ) ତରଙ୍ଗୋତ୍ପନ୍ନ, ରାତ୍ରି, ଚୁଦ୍ରବିଶେଷ ।

ଊର୍ବ—ପୁଂ.ବ.ଜଣେ ଋଷି, ବାଡ଼ବାନଳ, ମହତ୍, ବିସ୍ତୃତ, ବାଡ଼ବାନଳଯୁକ୍ତ-ସମୁଦ୍ର ।

ଉର୍ବରା—ସ୍ତ୍ରୀ. ବିଂ. ସର୍ବଶସ୍ୟାଢ୍ୟା ଭୂମି ।

ଉର୍ବଶର—ପୁଂ. ବ. ଭରତବଂଶୀୟ ମହାବୀର୍ଯ୍ୟଙ୍କର ପୁତ୍ର ।

ଉର୍ବଶୀ—ସ୍ତ୍ରୀ. ବ. ଅପ୍ସରା ବିଶେଷ, ସ୍ୱନାମଖ୍ୟାତା ସ୍ୱର୍ଗବେଶ୍ୟା ।

ଉର୍ବସୀ—ସ୍ତ୍ରୀ.ବ.ଉର୍ବଶୀ,ଅପ୍ସରାବିଶେଷ ।

ଉର୍ବଷ୍ଠୀବ—କ୍ଲୀ. ବ. ଊରୁ ଓ ଜାନୁ, ଅଣ୍ଡୁ ଓ ଜାନୁ ।

ଊର୍ବସ୍ଥି—କ୍ଲୀ. ବ. ଊରୁଦେଶର ହାଡ଼ ।

ଉର୍ବୀ—ସ୍ତ୍ରୀ. ବ. ଊରୁଦେଶର ମଧ୍ୟସ୍ଥ, ପୃଥିବୀ ।

ଊର୍ବ୍ୟ—ପୁଂ. ବ. (ଊର୍ବ+ଯ) ବଡ଼ବାନଳର ଅଧିଷ୍ଠାତ୍ରୀଦେବତା, ରୁଦ୍ର, ଶିବ ।

ଊର୍ବ୍ୟଙ୍ଗ—କ୍ଲୀ.ବ.ଗୋବରଛତୁ, ଦଣ୍ଡୀର, ଶଲୀନ୍ଧ୍ରକ, ବଣାରୋହ, ଗୋଲାସ ।

ଊର୍ଯ୍ୟା—ସ୍ତ୍ରୀ. ବ. ଦେବତାଡ଼କ ତୃଣ, ଦେବତାଡ଼କ ।

ଊଲୂକ—ପୁଂ. ବ. ଉଲୂକ, ରାତ୍ରିଚର ପକ୍ଷୀବିଶେଷ ।

ଊଲୁପୀ—ପୁଂ, ବ. ଶିଶୁମାର ନାମକ ଜଳଜନ୍ତୁ, ମତ୍ସ୍ୟବିଶେଷ ।

ଊଷ୍—(ଧାତୁ)ରୋଗଯୁକ୍ତ ହେବା,ପୀଡ଼ା-ଦେବା ।

ଊଷ—ବ. (ଊଷ୍+ଅ) କ୍ଷାରମୃତ୍ତିକା, କର୍ଣ୍ଣରନ୍ଧ୍ର, ମଳୟ ପର୍ବତ, ଚନ୍ଦନାଦ୍ରି, ପ୍ରତ୍ୟୁଷକାଳ, ଶୁକ୍ର, ପ୍ରଭାତ ।

ଊଷକ—କ୍ଲୀ. ବ. (ଊଷ୍+କ)ପ୍ରତ୍ୟୁଷକାଳ, କ୍ଷାର, ମରିଚ ।

ଊଷଣ—କ୍ଲୀ. ବ. (ଊଷ୍+ଅନ)ମରିଚ, ଶୁଣ୍ଠି, ପିପ୍ପଳୀମୂଳ,ଚିତା,ଧଳାଚିତା ।

ଊଷଣା—ସ୍ତ୍ରୀ. ବ. (ଊଷ୍+ଅନ+ଆ) ପିପ୍ପଳୀ, ଗୁଈଁକାଠ ।

ଊଷର—ବିଂ. (ଊଷ+ର)ଲୁଣିଆଁ ସ୍ଥାନ, କ୍ଷାର ମୃତ୍ତିକା ।

ଊଷରଜ—କ୍ଲୀ.ବ.(ଊଷର+ଜନ୍+ଅ) ପାଂଶୁଲବଣ, ରୋମକ ନାମକ ଅସ୍ଥି-ସ୍ଥାନ୍ତ ।

ଊଷବାନ୍—ବିଂ.(ଊଷ+ବତୁ)ସାଜିମାଟି, ଲୁଣିଆଁ ସ୍ଥାନ, ଅନୁର୍ବର, (ବିଂ)ଖରିଆ, ଲୁଣିଆ ।

ଊଷା—ସ୍ତ୍ରୀ. ବ. (ଊଷ+ଆ)ଊଷାକାଳ, ପ୍ରାତଃକାଳ, ଭବ ନାମକ ରୁଦ୍ରଙ୍କ ପତ୍ନୀ, ବାଣକନ୍ୟା ।

ଊଷାକାଳୀନ—ବିଂ.(ଊଷାକାଳ+ଈନ) ପ୍ରାତଃକାଳରେ ସଙ୍ଘଟିତ, ପ୍ରାତଃକାଳ ବିହିତ (ସ୍ତ୍ରୀ) ଊଷାକାଳୀନା ।

ଊଷାମହୁଡ଼—ଗ୍ରା. ବ. (୬ତତ୍) ସୂର୍ଯ୍ୟ ।

ଊଷ୍ମ—ପୁଂ. ବ. ଉଷ୍ମ, ଗ୍ରୀଷ୍ମ ତାପ ।

ଊଷ୍ମଣ—ବିଂ. (ଊଷ୍ମ+ନ) ଊଷ୍ମଯୁକ୍ତ ପଦାର୍ଥ ।

ଊଷ୍ମଣ୍ୟ—ବିଂ. (ଊଷ୍ମନ+ଯ)ଊଷ୍ମନିବାରକ ଦ୍ରବ୍ୟ ।

ଊଷ୍ମାନ୍—ପୁଂ. ବ.(ଊଷ୍ମ+ମନନ୍)ଊଷ୍ମ-ଯୁକ୍ତ ପଦାର୍ଥ ।

ଊହ—ପୁଂ. ବ. (ଊହ+ଘ,ଅ) ବିତର୍କ, ଅଧ୍ୟାହାର, ପରୀକ୍ଷା, ସିଦ୍ଧାନ୍ତ, ଆରୋପ, ସନ୍ଧିବିଶେଷ,ଅନୁମାନ, ସମୂହ, ଧୀଗୁଣ-ବିଶେଷ, ଲୁପ୍ତ ବାକ୍ୟ ।

ଊହଗାନ—କ୍ଲୀ. ବ. ସାମଗାନର ଗ୍ରନ୍ଥବିଶେଷ ।

ଊହନୀ—ସ୍ତ୍ରୀ. ବ. (ଊହ୍+ଅନ+ଈ) ସମ୍ମାର୍ଜନୀ, ଝାଡ଼ୁଣୀ, ଝାଡ଼ୁ, ବଢ଼ଣି ।

ଊହନୀୟ—ବିଂ. (ଊହ+ମି, ଅନୀୟ) ବିତର୍କ୍ୟ,ଊହ୍ୟ, ଅନୁମେୟ ।

ଊହା—ସ୍ତ୍ରୀ.ବ.(ଊହ+ଅ+ଆ)ବିତର୍କ, ଅଧ୍ୟାହାର, ରୋଗବିଶେଷ ।

ଊହାପୋହ—ବିଂ. ତର୍କଶୂନ୍ୟ, ତର୍କଦ୍ୱାରା ଯାହାର ସଂଶୟ ନଷ୍ଟ ହୋଇଥାଏ, ନିଃସନ୍ଦେହ, ସୁବାଦପ୍ରାପ୍ତି ବିଷୟରେ କୃତନିଶ୍ଚୟ,ଦାନାଦିରେଦ୍ୱିଧାମତଶୂନ୍ୟ ।

ଊହିନୀ—ସ୍ତ୍ରୀ. ବ. (ଊହ୍+ଇନ୍+ଈ) ସମୂହ ।

ଊହିତ—ବିଂ. (ଊହ+ତ) ତର୍କିତ, ଅଧ୍ୟାହୃତ,ଅନୁମିତ,ସମ୍ଭାବିତ ।

ଊହିବା—ଗ୍ରା. କ୍ରି, ଅନୁମାନ କରିବା, ତର୍କଣା କରିବା ।

ଊହ୍ୟ—ବିଂ.(ଊହ+ମି, ଯ) ତର୍କଣୀୟ, ପ୍ରଯୋଜ୍ୟ, ବ୍ୟବହାର୍ଯ୍ୟ, ଅନୁକ୍ତ, ଅନୁମେୟ, ମୀମାଂସାଶାସ୍ତ୍ରୋକ୍ତ ଊହବିଶେଷ, ଅନୁସନ୍ଧେୟ, ଅଧ୍ୟାହାର୍ଯ୍ୟ ।

ଊହ୍ୟଗାନ—କ୍ଲୀ. ବ. ସାମଗାନର ଗ୍ରନ୍ଥ-ବିଶେଷ ।

ଏକମନେ—ଗ୍ରା.ଅବ୍ୟ. ନିବିଷ୍ଟ ଚିତ୍ତରେ, ଏକାନ୍ତ ମନୋଯୋଗ ସହକାରେ ।

ଏକମାତ୍ର—ବିଂ. ବ. ସ୍ତ୍ରୀ, (ଏକ+ମାତ୍ର) ଗୋଟିଏ ମାତ୍ର, ଏକାକୀ କେବଳ ଏକ

ଏକମାତୃକ-ପୁଂ.ବିଂ.(ଏକ+ମାତୃନ୍+କ) ଏକମାତାଙ୍କଠାରୁ ଜାତ ପୁତ୍ରଗଣ, ସୋଦର ।

ଏକମୁଖ—ବିଂ. ଗୋଟିଏ ଦ୍ୱାରବିଶିଷ୍ଟ ଗୃହାଦି, ଗୋଟିଏ ମାତ୍ର ବଦନବିଶିଷ୍ଟ, ଗୋଟିଏ ମୁହଁଥିବା, (ବି) ରୁଦ୍ରାକ୍ଷବିଶେଷ, ଗୋଟିଏ ପ୍ରଧାନ ଦ୍ୟୂତକ୍ରୀଡ଼ାବିଶେଷ ।

ଏକମୁଖୀରୁଦ୍ରାକ୍ଷ—ବି. ଯେଉଁ ରୁଦ୍ରାକ୍ଷ ମଞ୍ଜିରେ ଗୋଟିଏ ମାତ୍ର ମୁହଁ ଥାଏ ।

ଏକମୁନା-ଗ୍ରା.ବି. ତେଣ୍ଟା, ତୀକ୍ଷ୍ଣାଗ୍ରବିଶିଷ୍ଟ ଶସ୍ତ୍ର ବିଶେଷ ।

ଏକମୁହାଁ—ଗ୍ରା.ବିଂ. ଏକମାତ୍ରଦ୍ୱାରବିଶିଷ୍ଟ (ଗୃହାଦି),ଏକଦିଗକୁ ମୁହଁ କରିଥିବା ।

ଏକମୂଳା—ସ୍ତ୍ରୀ. ବି. ଶାଳପର୍ଣ୍ଣୀ,ଅତସୀ, (ବିଂ) ଏକମୂଳବିଶିଷ୍ଟ ।

ଏକମେଣ୍ଟ—ଗ୍ରା.ବି.ବିଂ.ଏକଜୁଟ୍(ଦେଖ) ।

ଏକମେଳ—ଗ୍ରା. ବି. ବିଂ. ଏକଜୁଟ୍ (ଦେଖ) ।

ଏକଯଷ୍ଟିକା—ସ୍ତ୍ରୀ. ବି. ହାରବିଶେଷ, ହାରାବଳୀ, ଏକସରିଆ ହାରବିଶେଷ ।

ଏକଯୋନି—ବିଂ. ଏକଜାତି, ଏକସ୍ଥାନରୁ ଉତ୍ପନ୍ନ, ଏକମାତାଠାରୁ ଜାତ ।

ଏକର—ଯା.ବି.ଦମଂଖ୍ୟାରେ ପ୍ରାୟମାଣେ ଜମି,୪୮୪୦ ବର୍ଗଗଜ ବା ୪୩୫୬୦ ବର୍ଗଫୁଟ୍ ପରିମିତ ଭୂମି ।

ଏକରଙ୍ଗୀ—ଗ୍ରା. ବିଂ.ଗୋଟିଏ ମାତ୍ରରଙ୍ଗ ବା ବର୍ଣ୍ଣବିଶିଷ୍ଟ, ସମାନ ରଙ୍ଗବିଶିଷ୍ଟ, (ପ୍ରା.ଗଞ୍ଜାମ) ଗନ୍ଧଶୁଣ୍ଠୀ ।

ଏକରଜ—ପୁଂ. ବି. ଭୃଙ୍ଗରାଜ, କେଶରଞ୍ଜନ ଦ୍ରବ୍ୟ ବିଶେଷ ।

ଏକରତ—ପୁଂ. ବିଂ. ଏକବ୍ୟକ୍ତି ବା ବିଷୟପ୍ରତି ଅନୁରକ୍ତ ।

ଏକରତି—ଗ୍ରା. କ୍ରି. ବିଂ. ରତିଏମାତ୍ର, ଅତିସାମାନ୍ୟରେ,ଏକରତିପରିମାଣରେ ।

ଏକରସ—ପୁଂ. ବି. ଏକାଭିପ୍ରାୟ, ଏକ ବିଷୟରେ ଅନୁରକ୍ତ, (ବିଂ) ଅଭିନ୍ନସ୍ୱଭାବ ନାଟକାଦି ।

ଏକରାଜ୍--ପୁଂ.ବି.(ଏକ+ରାଜ୍+କ୍ୱିପ୍) ସାର୍ବଭୌମ ରାଜା,ସମ୍ରାଟ୍ ,ପରମେଶ୍ୱର ।

ଏକରାଜ—ପୁଂ. (ଏକ+ରାଜନ୍+ଅ) ଏକରାଜା, ପ୍ରଧାନରାଜା ।

ଏକରାତ୍ର—କ୍ଲୀ. ବି. ଏକ ଅହୋରାତ୍ର ।

ଏକରାର (ଲ)—ଯା. ବି. ଅଙ୍ଗୀକାର ସ୍ୱୀକାର, କବୁଲ ।

ଏକରାରନାମା—ଯା. ବି. ଅଙ୍ଗୀକାରପତ୍ର, ସ୍ୱୀକାରପତ୍ର ।

ଏକରାରୀ—ଯା ବିଂ. ଦୋଷ ସ୍ୱୀକାର କରୁଥିବା, ଅଙ୍ଗୀକାରକାରୀ ।

ଏକରାଶି—ପୁଂ. ବି. ମେଷାଦି ମଧ୍ୟରୁ ଗୋଟିଏ ରାଶି, ଅଧିକ, କୌଣସି ବସ୍ତୁର ଗୋଟିଏ ସ୍ତୂପ ।

ଏକରିକ୍ଥୀ—ପୁଂ.ବିଂ. ଏକପିତୃସମ୍ପତ୍ତିର ଅଂଶୀଦାର, ଅବିଭକ୍ତ ଧନୀ ।

ଏକରୁଣ୍ଡ—ଗ୍ରା. ବିଂ. ଏକଠୁଳ, ଏକତ୍ର ।

ଏକରୂପ ବିଂ. ସମାନରୂପବିଶିଷ୍ଟ, ତୁଲ୍ୟରୂପ,(ବି) ସମାନ ଆକାର, (କ୍ରି. ବିଂ) ଯେ କୌଣସି ପ୍ରକାରରେ ସମାନ ରୂପରେ ।

ଏକରୂପ୍ୟ—ବିଂ. ଏକ ସ୍ଥାନରୁ ଆଗତ, ଏକମାତ୍ର ରୌପ୍ୟ, ଏକମାତ୍ର ରୌପ୍ୟବିଶିଷ୍ଟ ।

ଏକରେଖା—ଗ୍ରା.ବିଂ. ଶତ ଅନୁରୋଧରେ ମଧ୍ୟ ଯେ ନିଜର ଅଭିଳାଷ ତ୍ୟାଗକରେ ନାହିଁ, ଏକବାଗୀ, ଅବୁଝା, ଅବାଧ ।

ଏକର୍ଚ—ପୁଂ. ବି. କ୍ଳୀ. ଏକଋକ୍ , ଏକଋକ୍‌ଯୁକ୍ତ ସୂକ୍ତ, (ବିଂ) ଏକଋକ୍ ଆରାଧ୍ୟ ଦେବବିଶେଷ ।

ଏକର୍ଷି—ପୁଂ. ବି. ଏକଋଷି ।

ଏକଲ—ପୁଂ. ବିଂ. (ଏକ+ଲା+ଅ) ଏକାକୀ, ଏକଲା, ଅସହାୟ, ଏକୁଟିଆ ।

ଏକଲସେକଲକରିବା—ଗ୍ରା.କ୍ରି ପାକୁଳା ଇବା, ଖାଦ୍ୟ ପଦାର୍ଥକୁ ଏକ କଲରୁ ଅନ୍ୟ କଲକୁ ପାଳି ଭିତରେ ଗୋଳନ କରିବା, ଗୁଳୁଳେଇବା ।

ଏକଲଗାଡ଼୍—ଗ୍ରା. ବିଂ. ଏକତ୍ରେ, ଲଗିଲଗି ।

ଏକଲବ୍ୟ—ପୁଂ.ବି.ନିଷାଦରାଜ ହିରଣ୍ୟଧନୁର ପୁତ୍ର, ଏ ଦ୍ରୋଣାଚାର୍ଯ୍ୟଙ୍କ ମୂର୍ତ୍ତି ସ୍ଥାପନକରି ତାହାକୁ ଗୁରୁ ବୋଲି ମନେ କରି ଧନୁର୍ବିଦ୍ୟା ଶିକ୍ଷାରେ ବିଶେଷ ପାରଙ୍ଗମ ହୋଇଥିଲେ ।

ଏକଲା—ଗ୍ରା. ବିଂ. ଏକାକୀ, ଏକୁଟିଆ, ଏକା, (କ୍ରି.ବିଂ) ଏକୁଟିଆ ହୋଇ ।

ଏକଲିଙ୍ଗ—କ୍ଳୀ. ବି. ସିଦ୍ଧିସାଧନ ସ୍ଥାନବିଶେଷ, ଅଜହଲ୍ଲିଙ୍ଗ, ରାଜପୁତମାନଙ୍କର ପ୍ରଧାନ ଉପାସ୍ୟ ଦେବତା,(ପୁଂ.ବି) କୁବେର, ମେବାର ।

ଏକଲିଙ୍ଗଶୁକ୍—ବିଂ. ଯେଉଁ ବୃକ୍ଷର ପୃଷ୍ଠ ସକଳ ଏକଜାତୀୟ କେଶରବିଶିଷ୍ଟ ହୁଏ ।

ଏକଲୂ—ପୁଂ. ବି. (ଏକ+ଲୂ+କ୍ୱିପ) ଋଷିବିଶେଷ ।

ଏକବକ୍ତ୍ର—ପୁଂ. ବି. ଅସୁରବିଶେଷ, (କ୍ଳୀ ବି) ଏକମୁଖୀ ରୁଦ୍ରାକ୍ଷ ।

ଏକବଚନ—କ୍ଳୀ. ବି. (ଏକ+ବଚ୍+ଅନ) ବ୍ୟାକରଣୋକ୍ତ ଏକସଂଖ୍ୟା ବୋଧକ ବଚନ ।

ଏକବତ୍—ବିଂ. (ଏକ+ବତୁ) ଏକସଂଖ୍ୟାବିଶିଷ୍ଟ, (ଅବ୍ୟ) ଏକପରି, ଗୋଟିଏ ପରି ।

ଏକବଦ୍ଭାବ—ପୁଂ. ବି. ଶବ୍ଦଦ୍ୱନ୍ଦ୍ୱ, ଏକ ବଚନାନ୍ତରୂପ କାର୍ଯ୍ୟ ।

ଏକବୟସିଆ—ଗ୍ରା. ବିଂ ପୁଂ. ସ୍ତ୍ରୀ. ସମବୟସ୍କ (ପୁରୁଷ),ସମବୟସ୍କା (ସ୍ତ୍ରୀ) ।

ଏକବର୍ଗ—ଗ୍ରା. ବିଂ. ଏକଆକୃତିବିଶିଷ୍ଟ, ଏକଛାଞ୍ଚରେ ଗଢ଼ା, ବ୍ୟଞ୍ଜନ ବର୍ଣ୍ଣର ଏକବର୍ଗର ଅନ୍ତର୍ଗତ ।

ଏକବର୍ଣ୍ଣ—ବିଂ. ଏକମାତ୍ର ବର୍ଣ୍ଣବିଶିଷ୍ଟ, ଏକରୂପ, ଏକସ୍ୱରୂପ, ବ୍ରାହ୍ମଣାଦି ଜାତି ଭେଦଶୂନ୍ୟକାଳ, (ପୁଂ.ବି) ବ୍ରାହ୍ମଣାଦି ମଧ୍ୟରେ ଗୋଟିଏ ଜାତି,ଗୋଟିଏ ଅକ୍ଷର, ଅଜ୍ଞାତ ରାଶି ବୀଜଗଣିତୋକ୍ତ ତୁଲ୍ୟବର୍ଣ୍ଣ ବିଶିଷ୍ଟ, ସଜାତୀୟ ଦ୍ରବ୍ୟ, ଶ୍ରେଷ୍ଠବର୍ଣ୍ଣ, ଶ୍ରେଷ୍ଠଜାତି ।

**ଏକବର୍ଣ୍ଣସମୀକରଣ**—କ୍ଲୀ.ବି. ବୀଜଗଣିତୋକ୍ତ ବୀଜ ଚତୁଷ୍ଟୟ ମଧ୍ୟବର୍ତ୍ତୀ ବୀଜ ବିଶେଷ, ଯେଉଁ ସମୀକରଣରେ ଗୋଟିଏ ମାତ୍ର ଅଜ୍ଞାତ ରାଶି ନିର୍ଣ୍ଣୀତ ହୁଏ ।

ଏକବର୍ଣ୍ଣିକ—ବିଂ. ( ଏକବର୍ଣ୍ଣ + ଇକ ) ଅସାଧାରଣ, ଏକମାତ୍ର ବ୍ରାହ୍ମଣମାନଙ୍କର ପ୍ରତିପାଳ୍ୟ ସତ୍ୟଧର୍ମ ।

ଏକବର୍ଣ୍ଣୀ—ସ୍ତ୍ରୀ.ବି.(ଏକବର୍ଣ୍ଣ + ଅ + ଈ) ବାଦ୍ୟବିଶେଷ, କରତାଳି ।

ଏକବର୍ଷିଆ—ଗ୍ରା. ବିଂ. ବର୍ଷକିଆ, ଏକ ବର୍ଷ ବୟସ୍କ, ସମବୟସ୍କ, ଏକବର୍ଷ-କାଳ ସ୍ଥାୟୀ,ଯାହା ସମାହିତ ହେବାକୁ ଏକବର୍ଷ ଲାଗେ, ସମସାମୟିକ, ଏକାବର୍ଷରେ ଘଟିଥିବା ।

ଏକବର୍ଷିକା—ସ୍ତ୍ରୀ.ବି.(ଏକବର୍ଷ + ଅ + ଆ) ଏକବର୍ଷବୟସ୍କା, ଏକହାୟନୀ (ଦେଖ) ।

ଏକବସନ—ପୁଂ. ବିଂ. ଉତ୍ତରୀୟ ବସ୍ତ୍ରଶୂନ୍ୟ, ଏକକାନିଆ, ଯାହାର ଖଣ୍ଡିଏ ମାତ୍ର ଲୁଗା,(କ୍ଲୀ.ବି) ଏକଜାତୀୟ ବସ୍ତ୍ର, ଖଣ୍ଡିଏ ଲୁଗା, (ବିଂ) ଏକଜାତୀୟ ବସ୍ତ୍ର ବିଶିଷ୍ଟ ।

ଏକବସ୍ତ୍ର—ବିଂ.(ବ.ବ୍ରୀ) ଏକବସ୍ତ୍ର, ଏକକାନିଆ, ଯାହାର ଖଣ୍ଡିଏ ମାତ୍ର ଲୁଗା ।

ଏକବାକ୍ୟ—କ୍ଲୀ. ବି. ଏକାର୍ଥବୋଧକ ବାକ୍ୟ, ଅବିସମ୍ବାଦୀ ବାକ୍ୟ, ଗୋଟିଏ କଥା, ଏକମାତ୍ର ଜବାବ, (ବିଂ) ଏକ ମତାନୁସାର ବାକ୍ୟଯୁକ୍ତ,ଏକପରାମର୍ଶରେ ଗୃହୀତ ।

ଏକବାକ୍ୟତା—ସ୍ତ୍ରୀ.ବି.(ଏକବାକ୍ୟ + ତା) ବାକ୍ୟର ଐକ୍ୟ ।

ଏକବାଗିଆ—ଗ୍ରା. ବିଂ. ପୁଂ. ମନୁଆ, ଏକଗୁଆଁ, ଏକଜିଦିଆ ।

ଏକବାଗେ—ଗ୍ରା.କ୍ରି.ବିଂ. ଏକପ୍ରକାରରେ, ଏକାଥରକେ ।

ଏକବାହୁ—ଗ୍ରା. ବି. ଗୋଟିଏ ମାତ୍ର ପ୍ରତିଜ୍ଞା, ଅଟଳପ୍ରତିଜ୍ଞା ( ବିଂ. ) ଦୃଢ଼ପ୍ରତିଜ୍ଞ ।

ଏକବାଦ—ପୁଂ. ବି. (ବ.ବ୍ରୀ) ଡିଣ୍ଡିମ ନାମକ ବାଦ୍ୟବିଶେଷ, (ତତ୍ପୁ) ଏକମାତ୍ର ବ୍ରହ୍ମକଥନ, ଏକମାତ୍ର ବ୍ରହ୍ମବ୍ୟତିରେକେ ଅନ୍ୟ କିଛି ନାହିଁ,ବେଦାନ୍ତର ମତ ।

ଏକବାଦ୍ୟ—କ୍ଲୀ. ବି. ଡିଣ୍ଡିମ ।

ଏକବାପ୍—ଗ୍ରା. ବିଂ ଯାହାର ଏକପିତା, ନିର୍ଦ୍ଦିଷ୍ଟପିତୃକ,ଯେ ଜାରଜ ନୁହେ ।

ଏକବ ବୁଆ—ଗ୍ରା.ବିଂ. ଏକବାପ୍(ଦେଖ)

ଏକବାର୍—ଗ୍ରା.(ଅବ୍ୟ)ଏକବାର(ଦେଖ)

ଏକବାର—ଗ୍ରା.ବି.ଏକଥର, ଥରେମାତ୍ର, କୌଣସି ବ୍ରତ ବା ଉପବାସର ପୂର୍ବଦିନ କୃତ ହବିଷ୍ୟ, (ଅବ୍ୟ) ଏକାଥରକେ, ହଠାତ୍, ଏକ ସମୟରେ, ଏକ ନିଃଶ୍ୱାସରେ ।

ଏକବାରକ୍(କ)—ଗ୍ରା. କ୍ରି. ( ଅବ୍ୟ ) ଏକବାର, (ଦେଖ) ।

ଏକବାରେ—ଗ୍ରା. ( ଅବ୍ୟ ) ଏକବାର (ଦେଖ) ।

ଏକବିଂଶ—ବି. ବିଂ. ଏକବିଂଶତିର ପୂରଣ, ଏକୋଇଶ, କୋଡ଼ିଏରୁ ଏକ ବେଶୀ ।

ଏକବିଂଶତି—ବି. ବିଂ. ଏକୋଇଶ, କୋଡ଼ିଏରୁ ଏକ ବେଶୀ ।

ଏକବିଂଶତିତମ—ବିଂ. ( ଏକବିଂଶତି + ତମ) ଏକବିଂଶତିର ପୂରଣ, ଏକୋଇଶିର ପୂରଣ ସଂଖ୍ୟା ।

ଏକବିଂଶତିଧା—ଅବ୍ୟ. (ଏକବିଂଶତି + ଧା) ଏକବିଂଶତି ପ୍ରକାର, ଏକୋଇଶ ପ୍ରକାର ।

ଏକବିଂଶସ୍ତୋମ—ପୁଂ. ବି. ଏକବିଂଶତି ମନ୍ତ୍ରପରିମିତ ସାମବେଦୋକ୍ତସ୍ତୁତିବିଶେଷ

ଏକବିଚାର—ଗ୍ରା. ବି. ବହୁ ଲୋକଙ୍କ ମତର ଏକତା, ବହୁ ଲୋକଙ୍କର ଏକମାତ୍ର ପରାମର୍ଶ, (ବିଂ) ଏକମତବିଶିଷ୍ଟ ।

ଏକବିଧ—ବିଂ. ଏକପ୍ରକାର,ଏକରକମ ।

ଏକବିଲୋଚନ—ବିଂ. କଣା (ପୁଂ. ବି) ଜନପଦବିଶେଷ କୁବେର,(କ୍ଲୀ )ଗୋଟିଏ ଚକ୍ଷୁ, (ପୁଂ.ସ୍ତ୍ରୀ.) କାକ ।

ଏକବିଷୟୀ—ବିଂ. ଗୋଟିଏ ବିଷୟରେ ଆସକ୍ତ, ଏକମାତ୍ର ବିଷୟବିଶିଷ୍ଟ ।

ଏକବୀଜପତ୍ରିକ—ବିଂ. ଯେଉଁ ବୃକ୍ଷମାନଙ୍କର ଅଙ୍କୁରୋତ୍ପତ୍ତି କାଳେ ଗୋଟିଏ ପତ୍ର ଜାତହୁଏ, ଏକପର୍ଣ୍ଣିକ ।

ଏକବୀର—ପୁଂ. ବି. ବୃକ୍ଷବିଶେଷ, ମହାବୀର, ସୁବୀରକ, (ବିଂ) ପ୍ରଧାନବୀର, ଅତିଶୟ ବୀର୍ଯ୍ୟବାନ୍ ।

ଏକବୀରକଳ୍ପ—ପୁଂ.ବି. ତନ୍ତ୍ରଶାସ୍ତ୍ରବିଶେଷ ।

ଏକବୁଝା—ଗ୍ରା. ବିଂ. ଏକବାଗିଆ, ଯେ ଯାହା ବୁଝିଥାଏ ଆଉ ହଜାର କହିଲେ ଅନ୍ୟକଥା ଶୁଣେନାହିଁ ।

ଏକବୃକ୍ଷ—ପୁଂ. ବି. ସ୍ଥାନବିଶେଷ, ଗୋଟିଏ ମାତ୍ର ବୃକ୍ଷ ।

ଏକବୃତ୍—ସ୍ତ୍ରୀ. (ଏକ + ବୃତ୍ + କ୍ୱିପ୍) ଏକରୂପ ବର୍ତ୍ତମାନ, ସ୍ୱର୍ଗଲୋକ, ଏକରୂପ ଆବର୍ତ୍ତନ ।

ଏକବୃନ୍ଦ—ପୁଂ.ବି.ସୁଶ୍ରୁତୋକ୍ତ କଣ୍ଠଗତ ମୁଖରୋଗ ବିଶେଷ (କ୍ଲୀ) ଏକରାଶି ।

ଏକବୃଷ—ପୁଂ.ବି. ଗୋଟିଏ ବୃଷ,ଯାହାର ଗୋଟିଏ ମାତ୍ର ବୃଷ ।

ଏକବେଣୀ—ସ୍ତ୍ରୀ. ବି. ପ୍ରୋଷିତ ଭର୍ତ୍ତୃକାର ବେଣୀ ।

ଏକବେଶ୍ମ—କ୍ଲୀ.ବି. ଯେଉଁଘରେ ଗୋଟିଏ ମାତ୍ର ପ୍ରାଣୀ ଥାଏ ।

ଏକଶତ—କ୍ଲୀ.ଏକଶ,୧୦୦,(ବିଂ.)ଏକାଧିକଶତ, ଏକଶତ ସଂଖ୍ୟାଯୁକ୍ତ ।

ଏକଶତକ—ବିଂ. ଏକଶତ ପରିମାଣବିଶିଷ୍ଟ (ବି) ଏକଶତ ।

ଏକଶତଧା—ଅବ୍ୟ. (ଏକଶତ + ଧା) ଏକଶତ ପ୍ରକାର, ଶହେ ପ୍ରକାର ।

ଏକଶଫ—ପୁଂ. କ୍ଲୀ, ବି. (ଏକ + ଶଫ) ଅଶ୍ୱ, ଗଧ, (ବିଂ.) ଯାହାର ଗୋଟିଏ ମାତ୍ର ଖୁରା ଥାଏ,ଏକଖୁରାବିଶିଷ୍ଟ ।

ଏକଶରଣ—ବି.ଏକମାତ୍ର ଆଶ୍ରୟ,ଭରସା ସ୍ଥଳ, (ପୁଂ. ବିଂ. ବ.ବ୍ରୀ) ଏକମାତ୍ର ଆଶ୍ରୟବିଶିଷ୍ଟ ।

ଏକଶଃ—ଅବ୍ୟ, (ଏକ + ଶଃ) ଏକବାର

ଏକଶାଖ—ବିଂ.ଦେବଦାରୁଲ୍ୟ ଶାଖାବିଶିଷ୍ଟ, ଗୋଟିଏ ଶାଖାବିଶିଷ୍ଟ ବୃକ୍ଷାଦି ।

ଏକଶାଳ — ପୁଂ.ବି. ଗ୍ରାମବିଶେଷ(ପୁରାଣ ଲିଖିତ) ।

ଏକଶିତିପାଦ—ପୁଂ. ବି. ଅଶ୍ୱବିଶେଷ, ଅଶ୍ୱମେଧ ଯଜ୍ଞରେ ଏହି ଅଶ୍ୱ ବରୁଣ ଦେବତା ଉଦ୍ଦେଶ୍ୟରେ ଦିଆଯାଏ ।

ଏକଶିଗ୍ର — ଗ୍ରା. ବି. କୋଷବୃଦ୍ଧି, ଜଳ-ବୃଦ୍ଧି, ଗୋଟିଏ ଅଣ୍ଡକୋଷର ବୃଦ୍ଧି-ରୋଗ ।

ଏକଶୃଙ୍ଗ — ପୁଂ.ବି.ବିଷ୍ଣୁ, ଗୋଟିଏଶୃଙ୍ଗ-ବିଶିଷ୍ଟ ପଶୁ,ପିତୃଗଣବିଶେଷ, ଗୋଟିଏ ଶିଖରବିଶିଷ୍ଟ, ପର୍ବତ, ଗଣ୍ଡା, ବୌଦ୍ଧ ଶାସ୍ତ୍ରୋକ୍ତ-ଋଷିବିଶେଷ ।

ଏକଶୃଙ୍ଗୀ—ବୌଦ୍ଧ ଶାସ୍ତ୍ରୋକ୍ତ ଜଣେ ଋଷିକୁମାର ।

ଏକଶେଷ—ପୁଂ.ବି. ( ଏକ + ଶେଷ ) ଦ୍ୱନ୍ଦ୍ୱସମାସବିଶେଷ, ଏକମୂଳବିଶିଷ୍ଟ ବୃକ୍ଷବିଶେଷ, ଯାହା କେବଳ ମାତ୍ର ବାକି ରହିଯାଏ, ଅତଏବ,ଶେଷସୀମା, ପରାକାଷ୍ଠା, ଏକଦିଗର ଶେଷଭାଗ ।

ଏକଶୈଳ — କ୍ଳୀ. ବି.ବଙ୍ଗଳର ପ୍ରାଚୀନ ନାମ ।

ଏକଶ୍ରୁତି — ବିଂ. ଉଦାତ୍ତ, ଅନୁଦାତ୍ତ ଓ ସ୍ୱରିତ ଏହି ତ୍ରିବିଧ ସ୍ୱରମିଶ୍ରିତ ଶବ୍ଦ, ଏକମାତ୍ର ସ୍ୱରଶ୍ରୁତି, ଏକବର୍ଣ୍ଣବିଶିଷ୍ଟ, (ସ୍ତ୍ରୀ) ଏକବେଦ ।

ଏକଷଠି—ଗ୍ରା. ବି. ୬୧ ସଂଖ୍ୟା,ଷାଠିଏରୁ ଏକ ଅଧିକ ସଂଖ୍ୟା ।

ଏକଷଷ୍ଟ— ବିଂ. (ଏକଷଷ୍ଟି + ଅ)ଯେଉଁ ସଂଖ୍ୟା ଦ୍ୱାରା ଏକଷଠି ସଂଖ୍ୟା ପୂର୍ଣ୍ଣ ହୁଏ ।

ଏକଷଷ୍ଟି - ସ୍ତ୍ରୀ.ବି.ଷାଠିଏ ଅପେକ୍ଷା ଏକ ସଂଖ୍ୟା ଅଧିକ, ୬୧ ଏକଷଠୀ ।

ଏକସପ୍ତତି—ସ୍ତ୍ରୀ. ବି. ଏକସ୍ତୁରୀ ସଂଖ୍ୟା, ୭୧, ସତୁରୀ ଅପେକ୍ଷା ଏକସଂଖ୍ୟା ଅଧିକ ।

ଏକସଭ — ପୁଂ.ବି.ଜଗଦୀଶ୍ୱର, ବିଂ.ଏକ ସଭାବିଶିଷ୍ଟ ।

ଏକସମାନ — ଗ୍ରା. ବିଂ. ପ୍ରାୟ ଏକାପରି, ସମ୍ପୂର୍ଣ୍ଣରୂପେ ସମାନ, ସଦୃଶ, ସବୁ ଅଂଶରେ ତୁଲ୍ୟ,ଯହିଁରେ ସବୁଠାରେ ଏକ ପ୍ରକାର ଉପାଦାନ ଥାଏ, ସମତଳ ।

ଏକସରିଆ — ଗ୍ରା. ବିଂ. ଏକସରି, ଏକ ମାଳଥିବା (ହାର), ଗୋଟିଏମାତ୍ର ସୂତ୍ର ବିଶିଷ୍ଟ ।

ଏକସରଣୀ — ଗ୍ରା.ବିଂ(ସ + ଏକଓସଦୃଶ) ଏକାପରି, (ଅନେକ ବର୍ଣ୍ଣ) ଏକସମାନ

ଏକସର୍ଗ — ବିଂ.(ଏକ + ସର୍ଗ)ଏକନିଷ୍ଠସ୍ୱ, ଏକାଗ୍ରଚିତ୍ତ, (ପୁଂ.ବି.)ଗୋଟିଏ ସୃଷ୍ଟି, ଗୋଟିଏ ମାତ୍ର ଅଧ୍ୟାୟ ।

ଏକସହସ୍ର — ବି. ବିଂ. ଏକହଜାର ବା ହଜାରେ,ଏକପରିମାଣବିଶିଷ୍ଟ,ଏକାଧିକ ହଜାର ।

ଏକସାଥି — ଗ୍ରା. (ଅବ୍ୟ) ଏକ ସଙ୍ଗରେ, ଏକତ୍ରରେ ସମଭିବ୍ୟାହାରରେ ।

ଏକସାଲିଆ — ଗ୍ରା.ବିଂ. ଏକବର୍ଷ ବୟସ୍କ, ଏକବର୍ଷସମ୍ବନ୍ଧୀୟ, ଏକବର୍ଷ ସ୍ଥାୟୀ, ବାର୍ଷିକ । [ବାଦ୍ୟ ।

ଏକସୂତ୍ର — ପୁଂ.ବି. (ଏକ + ସୂତ୍ର)ଡମରୁ

ଏକସୂନୁ — ବିଂ. ଯାହାର ଗୋଟିଏ ମାତ୍ର ପୁତ୍ର, (ବି.) ଗୋଟିଏ ପୁତ୍ର ।

ଏକସ୍ଥ — ବିଂ. (ଏକ + ସ୍ଥା + ଅ) ଏକ-ସ୍ଥାନେ ସ୍ଥିତ, ଏକତ୍ର ମିଳିତ, ଏକ-ସ୍ଥାନରେ ସମବେତ ।

ଏକହଂସ — କ୍ଳୀ.ବି.ତୀର୍ଥସରୋବରବିଶେଷ (ପୁଂ.ବି) ଜୀବାତ୍ମା, ଗୋଟିଏ ହଂସ ।

ଏକହାତିଆ — ଗ୍ରା. ବିଂ. ଏକହାତ ଲମ୍ବ ବା ଦୀର୍ଘ, ଜଣକ ହାତରେ କରାଯିବା, ଏକ ଜଣକର ଅଧୀନ, ଏକ ଗୋଟି ହାତରେ କରାଯିବା ।

ଏକହାୟନ—ବିଂ. ଏକବର୍ଷର ବାଛୁରୀ, ବର୍ଷେ ବୟସର ଗାଈ ।

ଏକହାୟନୀ — ସ୍ତ୍ରୀ. ବି. ଏକ ବର୍ଷୀୟା, ବର୍ଷିକିଆ ମାଈ ବାଛୁରୀ,ଉଦ୍ଭିଦବିଶେଷ

ଏକହାରା — ବିଂ. କୃଶ,ଦୁର୍ବଳ,ଏକମାତ୍ର, ଏକସରିଆ । [ଚିତ୍ତ ।

ଏକହୃଦୟ—ବିଂ.ଅଭିନ୍ନ ହୃଦୟ,ଏକାଗ୍ର

ଏକା—ସ୍ତ୍ରୀ. ବିଂ. (ଏକ + ଆ)ଏକର ସ୍ତ୍ରୀଲିଙ୍ଗ, (ଗ୍ରା.ବିଂ.)ଏକାକୀ,ଅସହାୟ, ଏକମାତ୍ର,ଏକସମାନ,(ବି.)ଜଣେମାତ୍ର, (ଅବ୍ୟ,) ଏକମାତ୍ର, ବାକ୍ୟ-ପୂରଣାର୍ଥକ ନିଶ୍ଚେ,ସିନା, କେବଳ ସେହିକଥା ବା ଘଟନା ଘଟିଲେ, ତାହାହିଁ ହେଲେ, ପକ୍ଷାନ୍ତରେ ଯାହାହେଉ, ପୁନଶ୍ଚ, (ଗଞ୍ଜାମ)ବାକ୍ୟଶେଷରେ ପ୍ରଯୁକ୍ତ ।

ଏକାଂଶ—ପୁଂ. ବି. ଏକଭାଗ ।

ଏକାଅଶୀ—ବି. ୮୧ ସଂଖ୍ୟା ବିଂ. ୮୧ ସଂଖ୍ୟକ ।

ଏକାଏକ — ଗ୍ରା. କ୍ରି. ବିଂ. ଏକାଏକା, ଏକାକୀ ହୋଇ, ଜଣେମାତ୍ର, ହଠାତ୍, ସିଧାଏ ସିଧାଏ ।

ଏକାକଡ଼କେ--ଗ୍ରା.କ୍ରି,ବିଂ.ଏକପାର୍ଶ୍ୱରେ (ଶୋଇ),ଗୋଟିଏ କଡ଼ମାଡ଼ି (ଶୋଇ)

ଏକାକର — ଗ୍ରା.କ୍ରି.ବିଂ.ଏକ ଜଣକୁ ମାତ୍ର, ଏକାକେ ।

ଏକାକାର-ବିଂ.(ଏକ + ଆକାର) ମିଶ୍ରିତ, ସମାନ ଆକାରବିଶିଷ୍ଟ, ଯାହା ପରସ୍ପର ଠାରୁ ବାରହୋଇ ପ ରେନାହିଁ,ଗୋଳିଆ ପୋଳିଆ, ଏକ ଶ୍ରେଣୀକୁ ଆନୀତ,ଏକ-ଜାତିରେ ମିଳିତ (ବି:) ଏକଆକୃତି, ସମାନାକୃତି, ଗଣ୍ଡଗୋଳ ।

ଏକାକୀ—ପୁଂ.ବିଂ. ( ଏକ + ଆକିନ୍ ) ଅସହାୟ, ଏକା, ଏକକ, ଏକଲା,ଏକୁ-ଟିଆ, (ସ୍ତ୍ରୀ)ଏକାକିନୀ,(କ୍ରି.ବିଂ.)ଏକ-ହୋଇ, କେବଳମାତ୍ର ।

ଏକାକ୍ଷ — ପୁଂ. ବି. (ଏକ + ଅକ୍ଷି + ଅ) କାକ,କୁଆ,ବାୟସ, (ବିଂ.) ଏକଚକ୍ଷୁ, କଣା, ଏକଆଖିଆ ।

ଏକାକ୍ଷର—କ୍ଳୀ.ବି.ଗୋଟିଏବର୍ଣ୍ଣ,ଓଁକାର, (ବିଂ.)ଏକଅକ୍ଷରବିଶିଷ୍ଟ (ଶବ୍ଦ) ।

ଏକାକ୍ଷରକୋଷ-ପୁଂ.ବି.ଅଭିଧାନବିଶେଷ

ଏକାଗ୍ର — ବିଂ.(ଏକ + ଅଗ୍ର)ଅନନ୍ୟଚିତ୍ତ, ଏକବିଷୟରେ ଆସକ୍ତ,ଅନାକୁଳ(ଚିତ୍ତ) ଏକନିଷ୍ଠ, ନିବିଷ୍ଟ ।

ଏକାଗ୍ରଚିତ୍ତ-ବିଂ.ବି.ସ୍ତ୍ରୀ (ଏକାଗ୍ର + ଚିତ୍ତ) ଏକମନାଃ, ଏକମାତ୍ର ବିଷୟରେ ଯାହାର ଚିତ୍ତ ଆସକ୍ତ, (ବି.କ.ଧା),ଏକ ବିଷୟରେ ଆସକ୍ତଚିତ୍ତ ।

ଏକାଗ୍ରତା—ସ୍ତ୍ରୀ. ବ. (ଏକାଗ୍ର + ଭା,ତା) ଏକ ବିଷୟରେ ଆସକ୍ତି, ତ୍ରିଗୁଣାତ୍ମକ ଚିତ୍ତେ ସତ୍ତ୍ୱଗୁଣର ଉଦ୍ରେକ, ରଜ ଓ ତମ ଗୁଣର ବିକ୍ଷେପ ।

ଏକାଗ୍ରତ୍ୱ—କ୍ଲୀ. ବ.(ଏକାଗ୍ର + ତ୍ୱ)ଏକାଗ୍ରତା, ଏକବିଷୟରେ ମନୋନିବେଶ, ଦୃଢ଼ ଅଭିନିବେଶ ।

ଏକାଗ୍ରଦୃଷ୍ଟି—ପୁଂ. ବିଂ. (ବ.ବ୍ରୀ)ଏକମାତ୍ର ବିଷୟରେ ଯାହାର ଦୃଷ୍ଟି, ବିଂ. (ସ୍ତ୍ରୀ) ଏକ ବିଷୟରେ ଦୃଷ୍ଟି ।

ଏକାଗ୍ରମନାଃ—ପୁଂ. ବ. ଏକାଗ୍ରଚିତ୍ତ ।

ଏକାଗ୍ର୍ୟ—ବିଂ. (ଏକାଗ୍ର + ଯ) ଏକାଗ୍ର, ଏକତାନ,ଅନନ୍ୟବୃତ୍ତି,(ବ.) ଏକାଗ୍ରତା (ଦେଖ) ।

ଏକାଘାଆକେ—ଗ୍ରା.କ୍ରି.ବିଂ.(ସଂ—ଏକ + ଘାତ) ଏକଘାଏ (ଦେଖ) ।

ଏକାଘ୍ନୀ—ସ୍ତ୍ରୀ.ବ. (ଏକ + ହନ୍ + ଅ + ଈ) ଗୋଟିଏମାତ୍ର ମାରଘାତକ ବାଣ ବିଶେଷ, ସାଂଘାତିକ ଅସ୍ତ୍ରବିଶେଷ, ଏକପ୍ରକାର ଅବ୍ୟର୍ଥ ଶର ।

ଏକାଙ୍ଗ—ପୁଂ.ବ.ବ.ବ୍ରୀ, (ଏକ + ଅଙ୍ଗ) ବୁଧଗ୍ରହ, (ବ. କ୍ଲୀ.) ଚନ୍ଦନ,ଏକଅଙ୍ଗ, ମସ୍ତକ,ଉତ୍ତମାଙ୍ଗ, (ପୁଂ.ସ୍ତ୍ରୀ) ଦମ୍ପତି ।

ଏକାଙ୍ଗଚକ୍ରବର୍ତ୍ତୀ—ଗ୍ରା. ବ. ଏକଛତ୍ର ସମ୍ରାଟ, ଜଗତରେ ଏକମାତ୍ର ରାଜା, (ବିଂ.) ମହାପରାକ୍ରମ ବା କ୍ଷମତାଶାଳୀ ।

ଏକାଙ୍ଗବାତ—ବ. ଏକ ଅଙ୍ଗକୁ ଆକ୍ରମଣ କରିଥିବା ବାତରୋଗବିଶେଷ ।

ଏକାଙ୍ଗୀ—ସ୍ତ୍ରୀ. ବ. ( ଏକାଙ୍ଗ + ଈ ) ସୁଗନ୍ଧ ଔଷଧି ବିଶେଷ ।

ଏକାଘେଟେ (କେ)—ଗ୍ରା.ଅବ୍ୟ,ଏକଘାଏ (ଦେଖ) ।

ଏକାଠି—ଗ୍ରା.ଅବ୍ୟ.ଏକସ୍ଥାନରେ,ଏକାଠେଇଁ (ଦେଖ) ।

ଏକାଠେଇଁ—ଗ୍ରା. ଅବ୍ୟ. (ସଂ—ଏକତ୍ର) (ଏକ ଓ ସ୍ଥାନ)ଏକସ୍ଥାନରେ, ଏକସମୟରେ,ଏକତ୍ରଭାବରେ,ଏକାନ୍ତବାସରେ, (ବିଂ.) ସମ୍ମିଳିତ, ପ୍ରଭେଦରହିତ, ଏକାନ୍ତରେ ଥିବା ।

ଏକାଣୋଇ—ଗ୍ରା. ବ୍. ବିଂ. (ସଂ—ଏକ ନବତି) ଏକାନବେ ।

ଏକାଣ୍ଡ—ପୁଂ. ବ. ବ.ବ୍ରୀ (ଏକ + ଅଣ୍ଡ) ଏକବୃଷଣବିଶିଷ୍ଟ, ଅଶ୍ୱବିଶେଷ ।

ଏକାତପତ୍ର—ବିଂ. ( ଏକ + ଆତପତ୍ର ) ବ.ବ୍ରୀ. ଜଣେ ରାଜାଙ୍କ ଦ୍ୱାରା ଶାସିତ, ଏକଛତ୍ର, ଏକାଧିପତ୍ୟବିଶିଷ୍ଟ ।

ଏକାତ୍ମ—ପୁଂ. ବ. (ଏକ + ଆତ୍ମା)ପରଂବ୍ରହ୍ମ, ଅଦ୍ୱିତୀୟ ଆତ୍ମା, ଅଭିନ୍ନଚିତ୍ତ, ଏକପ୍ରାଣ, (ବିଂ. ବ.ବ୍ରୀ) ଅଭିନ୍ନହୃଦୟ, ଏକରୂପ ଅନ୍ତଃକରଣବିଶିଷ୍ଟ ।

ଏକାତ୍ମତା—ବ. ସ୍ତ୍ରୀ. ( ଏକାତ୍ମନ୍ + ତା) ଅଭିନ୍ନହୃଦୟ, ସଖ୍ୟ, ସୌହୃଦ୍ୟ, ପରମାତ୍ମାଙ୍କର ଏକୀଭାବ ବା ଐକ୍ୟ ।

ଏକାତ୍ମବାଦ—ବ (ଏକ + ଆତ୍ମନ୍ + ବାଦ)ଏକମାତ୍ର ପରମାତ୍ମା ବା ପରଂବ୍ରହ୍ମ ସମଗ୍ରବିଶ୍ୱକୁ ବ୍ୟାପି ରହିଛନ୍ତି ଏପରି ବିଶ୍ୱାସ, ବେଦାନ୍ତମତ ।

ଏକାତ୍ମବାଦୀ—ପୁଂ. ବିଂ. (ଏକ + ଆତ୍ମନ + ବଦ୍ + ଇନ୍ )ବେଦାନ୍ତମତାବଲମ୍ବୀ, ବେଦାନ୍ତଶାସ୍ତ୍ରଜ୍ଞ ।

ଏକାଥରେ(ରକେ)—ଗ୍ରା.କ୍ରି. ବିଂ.ଏକାପଦକେ (ଦେଖ)

ଏକାଦଶ—ବିଂ. ( ଏକ + ଦଶନ୍ )ଦଶଠାରୁ ଏକ ଅଧିକ, ଏଗାର, ଏକାଦଶ ସଂଖ୍ୟାଯୁକ୍ତ ।

ଏକାଦଶକ—ବିଂ. ( ଏକ + ଦଶ + କ ) ଏକାଦଶ ପରିମାଣବିଶିଷ୍ଟ ।

ଏକାଦଶଇନ୍ଦ୍ରିୟ—ବ. ଚକ୍ଷୁ, ନାସିକା, ଚର୍ମ, କର୍ଣ୍ଣ, ଜିହ୍ୱା,ବଚନ,ଗୁଦ, ପାଦ, ପାଣି, ଉପସ୍ଥ ଓ ମନ ଏହିମାନଙ୍କୁ ଏକାଦଶ ଇନ୍ଦ୍ରିୟ କହନ୍ତି ।

ଏକାଦଶକୃତ୍ୱସ୍—ଅବ୍ୟ ( ଏକାଦଶ + କୃତ୍ୱସ୍) ଏକାଦଶବାର, ଏଗାରଥର ।

ଏକାଦଶ ତନୁ—ପୁଂ.ବ. (ବ.ବ୍ରୀ),ମହାଦେବ । ଏକାଦଶବାର ଭିନ୍ନ ମୂର୍ତ୍ତି ପରିଗ୍ରହ ହେତୁରୁ ଏହାଙ୍କୁ ଏକାଦଶ ତନୁ ଓ ଏକାଦଶରୁଦ୍ର କହନ୍ତି,ଏକାଦଶ ନାମ ଯଥା,—ଅଜ,ଏକପାଦ,ଅହିବ୍ରଧ୍ନ, ପିନାକୀ,ଅପରାଜିତ,ତ୍ର୍ୟମ୍ବକ,ମହେଶ୍ୱର, ବୃଷାକପି, ଶମ୍ଭୁ, ହର ଓ ଈଶ୍ୱର ।

ଏକାଦଶଦ୍ୱାର କ୍ଲୀ.ବ. ଶରୀର, (ଏକାଦଶ ଦ୍ୱାର) ।

ଏକାଦଶରୁଦ୍ର—ପୁଂ. ବ. ଏକାଦଶ ତନୁ (ଦେଖ) ।

ଏକାଦଶସ୍କନ୍ଧ—ବ. ଭାଗବତ ପୁରାଣର ଏକାଦଶ ଖଣ୍ଡ ।

ଏକାଦଶାହ—ପୁଂ. ବ. ଏଗାରଦିନର ସମାହାର, ଏକାଦଶ ଦିବସସାଧ୍ୟ ଯଜ୍ଞବିଶେଷ, ମୃତବ୍ୟକ୍ତିର ଏକାଦଶ ଦିବସେ କର୍ତ୍ତବ୍ୟ ଶ୍ରାଦ୍ଧ ।

ଏକାଦଶିନ—ବିଂ. ( ଏକାଦଶ + ଇନ୍ ) ଏକାଦଶ ସଂଖ୍ୟାପରିମିତ ।

ଏକାଦଶୀ—ସ୍ତ୍ରୀ. ବ. (ଏକାଦଶ + ଅ + ଈ) ତିଥିବିଶେଷ, ହରିବାସର, (ବିଂ) ଏଗାରସଂଖ୍ୟା ବିଶିଷ୍ଟ ।

ଏକାଦଶୀତତ୍ତ୍ୱ—କ୍ଲୀ. ବ. ସ୍ମୃତି ଶାସ୍ତ୍ରର ଅଂଶ ବିଶେଷ, ଏହି ଅଂଶରେ ଏକାଦଶୀବିଷୟ ବର୍ଣ୍ଣିତ ହୋଇଅଛି ।

ଏକାଦଶୀବ୍ରତ—କ୍ଲୀ. ବ. ଏକାଦଶୀତିଥିରେ ଅନୁଷ୍ଠିତ ଉପବାସାଦି ଧର୍ମକାର୍ଯ୍ୟ ।

ଏକାଦି—ବିଂ. ଏକଠାରୁ ପରାର୍ଦ୍ଧ ପର୍ଯ୍ୟନ୍ତ ସଂଖ୍ୟା, ଏହି ସଂଖ୍ୟାବିଶିଷ୍ଟ ।

ଏକାଦିକ୍ରମ—ବିଂ. ଆନୁପୂର୍ବିକ,ଅନୁକ୍ରମ ।

ଏକାଦିକ୍ରମେ—ଗ୍ରା.କ୍ରି.ବିଂ. ଏକଠାରୁ । ପ୍ରଥମରୁ ଆରମ୍ଭକରିବାବର, ପୂର୍ବାପର ଆନୁପୂର୍ବିକରୂପେ, କ୍ରମାଗତ, ନିରନ୍ତର ଅବିଚ୍ଛିନ୍ନରୂପେ ।

ଏକାଦେଶ—ପୁଂ.ବ. ଏକଆଜ୍ଞା, ବ୍ୟାକରଣୋକ୍ତ ଉଭୟ ଶବ୍ଦ ବା ଉଭୟ ସ୍ଥାନ ଗ୍ରହଣକରି ଗୋଟିଏ ମାତ୍ର ଆଦେଶ ।

ଏକାଧାର—ବ. (ଏକ + ଆଧାର)କ.ଧା, ଅନେକବସ୍ତୁ ରହିଥିବା ଏକମାତ୍ର ପାତ୍ର ।

ଏକାଧାରରେ—ଗ୍ରା. କ୍ରି. ଅବ୍ୟ ଏକ ସ୍ଥାନରେ, ଏକ ବ୍ୟକ୍ତିଠାରେ ।

ଏକାଧିପତି—ପୁଂ. ବି. (କ.ଧା) ପ୍ରଧାନ ଅଧିପତି, ଚକ୍ରବର୍ତ୍ତୀରାଜା, ସମ୍ରାଟ୍, ମଣ୍ଡଳେଶ୍ୱର ।

ଏକାଧିପତ୍ୟ—କ୍ଲୀ. ବି. (ଏକାଧିପତି+ଷ୍ଣ୍ୟ) ସମସ୍ତଙ୍କ ଉପରେ ପ୍ରଭୁତ୍ୱ ।

ଏକାନଂଶା—ସ୍ତ୍ରୀ. ବି. ପାର୍ବତୀ ।

ଏକାନବେ—ବି. ବିଂ. ଏକାନବେସଂଖ୍ୟା, ଏକାନବେ ସଂଖ୍ୟକ ।

ଏକାନୁଦ୍ଦିଷ୍ଟ—ବିଂ. ଜଣକର ଉଦ୍ଦେଶ୍ୟ ପ୍ରଦତ୍ତ ଶ୍ରାଦ୍ଧ ।

ଏକାନ୍ତ—(ଏକ+ଅନ୍ତ)ଅତ୍ୟନ୍ତ, ଅତିଶୟ, ଭରି, ଅତିବେଳ, ଭୃଶ,ଅତ୍ୟର୍ଥ, ଅତିମାତ୍ର,ଉଦ୍‌ଗାଢ଼,ନିର୍ଭର,ତୀବ୍ର ନିତାନ୍ତ ଗାଢ, ବାଢ, ଦୃଢ଼, ଅତ୍ୟନ୍ତବିଶିଷ୍ଟ, ଯାହା ନିଶ୍ଚୟକରି କୁହାଯାଏ,ନିର୍ଜନ ।

ଏକାନ୍ତଚାରୀ—ବିଂ.(ଏକାନ୍ତ+ଚର୍+ଇନ୍) ନିର୍ଜନେ ଭ୍ରମଣକାରୀ ।

ଏକାନ୍ତତଃ—କ୍ରି.ବିଂ.(ଏକାନ୍ତ+ତସ୍) ଏକାନ୍ତରେ,ନିଶ୍ଚିତରେ, ନିଶ୍ଚିତରୂପେ, ଏକପାଖରେ ।

ଏକାନ୍ତତା—ସ୍ତ୍ରୀ. ବି. (ଏକାନ୍ତ+ତା) ଆତିଶଯ୍ୟ, ନିର୍ଜନତା ।

ଏକାନ୍ତତ୍ୟାଗବାଦ—ପୁଂ. ବି. ବୌଦ୍ଧମାନଙ୍କର ବାଦବିଶେଷ ।

ଏକାନ୍ତଦୁଃଷମା—ସ୍ତ୍ରୀ.ବି. ବୌଦ୍ଧକଳ୍ପିତ କାଳବିଶେଷ ।

ଏକାନ୍ତର—ବିଂ.ଏକାନ୍ତରବର୍ତ୍ତୀ ଗୋଟିଏ ଛାଡ଼ି ଗୋଟିଏ ଥିବା (ବି.) ଏକଦିନ ବ୍ୟବଧାନରେଭୋଜନରୂପ ବ୍ରତବିଶେଷ, ପାଳିଜ୍ୱର, ତୃତୀୟକଜ୍ୱର ।

ଏକାନ୍ତେ(ନ୍ତରେ)—ଗ୍ରା.କ୍ରି.ବିଂ. ଜନାନ୍ତିକେ,ନିରୋଳାରେ,ଏକୁଟିଆଭାବରେ, ଏକପାଖରେ,ନିତାନ୍ତ,ଅତ୍ୟନ୍ତ ଗୋପନରେ, ଗୁପ୍ତଭାବରେ ।

ଏକାନ୍ତସୁଷମା—ସ୍ତ୍ରୀ. ବି. ବୌଦ୍ଧୋକ୍ତ-ମତାନୁଯାୟୀକାଳବିଶେଷ,(ବିଂ)ଅତ୍ୟନ୍ତ ଶୋଭା ।

ଏକାନ୍ତୀ—ବିଂ.(ଏକାନ୍ତ+ଇନ୍) ଅତିଶୟଯୁକ୍ତ, ବିଷ୍ଣୁଭକ୍ତବିଶିଷ୍ଟ ।

ଏକାନ୍ନ—ବିଂ.(ଏକ+ଅନ୍ନ) ଏକାଥରେ ଖାଇକରି ବ୍ରତପାଳନ, ଏକାନ୍ନଭୁକ୍ତ ପରିବାର, ବହୁବ୍ୟକ୍ତିଙ୍କର ଏକସ୍ଥାନରେ ଭୋଜନ,ବ୍ରତ ବିଶେଷ, (ବିଂ)ଏକବଖତିଆ, ଏକବାର ଭୋଜୀ, ସହଭୋଜୀ, ଏକଚୁଲିରେ ଖାଉଥିବା ।

ଏକାନ୍ନବର୍ତ୍ତିତା—ସ୍ତ୍ରୀ.ବି.(ଏକାନ୍ନବର୍ତ୍ତିନ୍+ଭା. ତା) ଏକପରିବାରର ଅନ୍ତର୍ଗତ ହୋଇ ରହିବା ଅବସ୍ଥା, ଏକାନ୍ନରେ ଥିବା ଅବସ୍ଥା ।

ଏକାନ୍ନବର୍ତ୍ତୀ—ବିଂ. (ଏକାନ୍ନ+ବୃତ୍+ଇନ୍) ଯେଉଁମାନେ ଏକତ୍ରିତରେଥାନ୍ତି, ଏକାନ୍ନଭୋଜୀ, ଏକପାକରେ ଭୋଜନକରୁଥିବା ।

ଏକାନ୍ନଭୁକ୍—ବିଂ.(ଏକାନ୍ନ+ଭୁଜ୍+କ୍ୱିପ୍)ଏକାନ୍ନଭୁକ୍ତପରିବାର,ଏକବାର ଭୋଜୀ,ସହଭୋଜୀ, ଏକବକ୍ତଖାଇ ବ୍ରତପାଳନ ।

ଏକାପଦେ(ପଦକେ)—ଗ୍ରା. କ୍ରି. ବିଂ. ତ୍ୱରିତପତ୍ରେ, ଏକାବେଳକେ, ଥରେମାତ୍ର, ପଦେମାତ୍ର କହିବାଦ୍ୱାରା ।

ଏକାମାଥିଆ ବତିଶପଲ—ଗ୍ରା. (ପ୍ରବଚନ) ଯେଉଁ ବ୍ୟକ୍ତି ଦଳ ମଧ୍ୟରେ ସମସ୍ତଙ୍କ ଅପେକ୍ଷା ପ୍ରଧାନ, ବଡ଼ ବା ଗରିଷ୍ଠ,ଯେ ପରାପେକ୍ଷୀ ନୁହେ । ବତିଶପଳ ପରିବର୍ତ୍ତେ, 'ବାଇଶ ପଲ' ମଧ୍ୟ ପ୍ରଯୁକ୍ତ ହୁଏ ।

ଏକାମୁହାଁ—ଗ୍ରା.ବିଂ. ପ୍ରଧାନ,ସର୍ବଶ୍ରେଷ୍ଠ, ଏକଆଡ଼କୁ ମୁହଁ ବୁଲାଇ ଥିବା ।

ଏକାମୁହାକେ—ଗ୍ରା.କ୍ରି.ବିଂ. ଏକଦିଗକୁ ମୁଖକରି, ଏକାବେଳକେ, ଏକାଥରକେ ।

ଏକାମ୍ର—କ୍ଲୀ. ବି. ଉତ୍କଳଦେଶରେ ଗୋଟିଏ ପବିତ୍ର ତୀର୍ଥସ୍ଥାନ, ଉତ୍କଳରେ ପୁରାଣପ୍ରସିଦ୍ଧ ତୀର୍ଥସ୍ଥାନ, ବର୍ତ୍ତମାନ ନାମ ଭୁବନେଶ୍ୱର,(ବିଂ)ଏକଆମ୍ବଗଛଥିବା ।

ଏକାମ୍ରକାନନ—ବି. (ଏକ+ଆମ୍ର+କାନନ) ଭୁବନେଶ୍ୱର ତୀର୍ଥ ।

ଏକାମ୍ରକ୍ଷେତ୍ର—ବି.ହିନ୍ଦୁମାନଙ୍କରଗୋଟିଏ ତୀର୍ଥ, ପୁରୀଜିଲ୍ଲାର ଭୁବନେଶ୍ୱର କ୍ଷେତ୍ର

ଏକାମ୍ରନାଥ—ଗ୍ରା ବି. ଦାକ୍ଷିଣାତ୍ୟରେ କାଞ୍ଚି ନଗରସ୍ଥ ପ୍ରତିଷ୍ଠିତ ଶିବଲିଙ୍ଗ ।

ଏକାମ୍ରପୁରାଣ—ଗ୍ରା. ବି. ଭୁବନେଶ୍ୱର-ମାହାତ୍ମ୍ୟ ବର୍ଣ୍ଣନାତ୍ମକ ଆଧୁନିକ ସଂସ୍କୃତ ଗ୍ରନ୍ଥ ବିଶେଷ ।

ଏକାମ୍ରବନ—କ୍ଲୀ. ବି. ଏକାମ୍ର କାନନ, (ଦେଖ) ।

ଏକାମ୍ରେଶ୍ୱର—ବି. ଭୁବନେଶ୍ୱରର ଅଧିଷ୍ଠିତ ଲିଙ୍ଗରାଜମହାପ୍ରଭୁ, ଭୁବନେଶ୍ୱରରେ ବିରାଜିତ ଏହି ନାମରେ ଶିବଲିଙ୍ଗ ବିଶେଷ ।

ଏକାୟନ—ପୁଂ. ବିଂ. ବି.ବ୍ରୀ, (ଏକ+ଆୟନ) ଏକାଗ୍ର,ଏକ ବିଷୟାସକ୍ତଚିତ୍ତ, ଏକତାନବିଶିଷ୍ଟ, ଏକମାତ୍ର ଅବଲମ୍ବନୀୟ, (କ୍ଲୀ. ବି.) ଏକସ୍ଥାନ, ଏକମାତ୍ର ଗମନଯୋଗ୍ୟ ପଥ ।

ଏକାୟନଗତ—ପୁଂ. ବିଂ. ଏକାଗ୍ର, ଏକସ୍ଥାନଗତ ।

ଏକାର—ପୁଂ. ବି. ସ୍ୱରବର୍ଣ୍ଣର ଏକାଦଶ ଅକ୍ଷର ( ଏ ) ।

ଏକାରଣ୍ଟି(ଣେ)—ଗ୍ରା. କ୍ରି. ବିଂ. ଏହି ନିମିତ୍ତ, ଏଥିସକାଶେ, ଏଥିପାଇଁ, ଏହି ହେତୁରୁ ।

ଏକାର୍ଣ୍ଣବ—ବି. (ଏକ+ଅର୍ଣ୍ଣବ) ମହାପ୍ରଳୟ, ଚତୁର୍ଦ୍ଦିଗ ବ୍ୟାପ୍ତ, ଅସୀମ ଜଳରାଶି, (ଗ୍ରା.ବିଂ) ଚାରିଆଡ଼େ ସମ୍ପୂର୍ଣ୍ଣରୂପେ ବ୍ୟାପିଥିବା ।

ଏକାର୍ଣ୍ଣବୀକୃତ—ବି. ଜଳବୃଦ୍ଧି ହୋଇ ଚାରିଆଡ଼େ ଜଳପୂର୍ଣ୍ଣ ହୋଇଥିବା (ଶୁଖିଲା ସ୍ଥାନ) ।

ଏକାର୍ଥ—ପୁଂ. ବି. (ଏକ+ଅର୍ଥ) ଏକପ୍ରୟୋଜନ, ଏକଅଭିଧେୟ ଶବ୍ଦ,ଏକପଦାର୍ଥ, ଏକ ମାନେ ବୁଝା ଯାଉଥିବା, (ବି) ଏକପ୍ରୟୋଜନଯୁକ୍ତ ।

ଏକାର୍ଥକ—ବିଂ. (ବି.ବ୍ରୀ)ଏକରୂପ ଅଭିଧେୟଯୁକ୍ତ, ଅଭିନ୍ନାର୍ଥ, ଏକରୂପ ଉଦ୍ଦେଶ୍ୟ ବା ପ୍ରୟୋଜନ ବିଶିଷ୍ଟ ।

ଏକାର୍ଥତା—ସ୍ତ୍ରୀ. ବି. (ଏକାର୍ଥ+ତା) ଅର୍ଥର ବା ଉଦ୍ଦେଶ୍ୟର ବିଭିନ୍ନତା ନ ଥିବା, ସମାର୍ଥତା, ସମପ୍ରୟୋଜନତା ।

ଏକାର୍ଥପ୍ରତିପାଦକ—ବିଂ.(ତତ୍ପୁ) ଏକମାତ୍ର ଅର୍ଥ ବୁଝାଯାଉଥିବା, ଯଥା—ଅଶ୍ବ, ଜଳ, ଗୃହ ।

ଏକାର୍ଥବୋଧକ—ବିଂ. (ତତ୍ପୁ) ଏକାର୍ଥପ୍ରତିପାଦକ (ଦେଖ) ।

ଏକାର୍ଥସମୁପେତ—ବିଂ. ଏକଅର୍ଥବିଶିଷ୍ଟ, ଏକ ଉଦ୍ଦେଶ୍ୟଯୁକ୍ତ ।

ଏକାବନ—ବିଂ. ଏକାବନ ସଂଖ୍ୟକ, (ବି) ୫୧ ସଂଖ୍ୟା, ପଚାଶ ଅପେକ୍ଷା ଏକ ଅଧିକ ସଂଖ୍ୟା ।

ଏକାବୟବ—ବିଂ. ଏକଶରୀରବିଶିଷ୍ଟ, ତୁଲ୍ୟଶରୀରବିଶିଷ୍ଟ, (କ୍ଲୀ) ଗୋଟିଏ ମାତ୍ର ଅଙ୍ଗ ।

ଏକାବଳୀ – ସ୍ତ୍ରୀ. ବି. ( ଏକ + ଆବଳି ) ଅଳଙ୍କାରବିଶେଷ, ଏକାଦଶାକ୍ଷର ଛନ୍ଦୋବୃତ୍ତିବିଶେଷ । ଜ୍ୟୋତିଷଶାସ୍ତ୍ରୋକ୍ତ ଯୋଗ ବିଶେଷ ।

ଏକାବେଳକେ(ବେଳେ) – ଗ୍ରା. କ୍ରି. ବିଂ. ଏକସମୟରେ, ଯୁଗପତ୍ , ଏକବାରକେ, ଏକାଥରକେ, ସମ୍ପୂର୍ଣ୍ଣରୂପେ ।

ଏକାବ୍ଦ—ବି. (ଏକ + ଅବ୍ଦ) ଏକ ସନ,

ଏକାବର୍ଷ – (ବିଂ) ଏକବର୍ଷବୟସ୍କ, ଏକସାଲି (ଦେଖ) ।

ଏକାବ୍ଦୀ—ସ୍ତ୍ରୀ. ବିଂ. (ବ.ବ୍ରୀ) ଏକବର୍ଷର ବୟସ୍କା, (ବି) ଏକସାଲିଆ ଗାଈ ।

ଏକାଶୀତି - ସ୍ତ୍ରୀ. ବି. ଏକାଧିକ ଅଶୀତି, ଏକାଅଶୀ, ୮୧ ସଂଖ୍ୟା ।

ଏକାଶୀତିପଦ—କ୍ଲୀ. ବି. ବାସ୍ତୁମଣ୍ଡଳ ।

ଏକାଶ୍ରୟ – ବିଂ. ଅନନ୍ୟଗତ, ଏକଜଣର ଆଶ୍ରିତ, ଏକକାର୍ଯ୍ୟାବଲମ୍ବୀ, ଯାହାର ଅନ୍ୟ କେହି ଆଶ୍ରୟ ନାହିଁ, (ପୁଂ) ଏକ ଆଧାର ।

ଏକାଶ୍ରିତ—ବିଂ. ଅନନ୍ୟ ଗତ, ଏକଜଣର ଶରଣାପନ୍ନ, ଏକାଶ୍ରୟ ।

ଏକାଶ୍ରିତଗୁଣ – ପୁଂ. ବି. ଏକବୃତ୍ତି ଧର୍ମ, ରୂପ, ରସ, ଗନ୍ଧ, ସ୍ପର୍ଶାଦି, ସାମାନ୍ୟ ଗୁଣ, ସାଧାରଣ ଗୁଣ ।

ଏକାଷ୍ଟକା—ସ୍ତ୍ରୀ. ବି. ମାଘ ମାସର କୃଷ୍ଣାଷ୍ଟମୀ, ଶଚୀ, ପ୍ରଜାପତିଙ୍କର କନ୍ୟାବିଶେଷ ।

ଏକାଷ୍ଠୀଲ – ପୁଂ. ବି. (ଏକ + ଅଷ୍ଠି + ଲା + ଅ) ବକ ବୃକ୍ଷ, ଗଇଣ ଗଛ ।

ଏକାଷ୍ଠୀଲା – ସ୍ତ୍ରୀ, ବି. (ଏକାଷ୍ଠୀଲ + ଆ) ଅଗସ୍ତି ବୃକ୍ଷ,ବକବୃକ୍ଷ,ଗଇଣଗଛ,ଅମ୍ବଷ୍ଠା, କୁଚେଲା, ପାପଚେଲିକା, କୁଚଲା, ଶିବାବୁକା, ବଗ ।

ଏକାସନିକ— ପୁଂ. ବିଂ. (ଏକାସନ + ଇକ) ଏକାସନର ଉପଯୁକ୍ତ ।

ଏକାହ—ପୁଂ, ବି.(ଏକ + ଅହନ୍ + ଅ) ଏକଦିନ, ଏକଦିନସାଧ୍ୟ ଅଗ୍ନିଷ୍ଟୋମାଦି ଯଜ୍ଞବିଶେଷ ।

ଏକାହଗମ୍ୟ—ବିଂ. (ଏକାହ + ଗମ୍ୟ)ଏକ ଦିନରେ ଗମ୍ୟ (ସ୍ଥାନ), ଯେଉଁସ୍ଥାନରେ ପହଞ୍ଚିବାକୁ ଏକଦିନ ଲାଗେ ।

ଏକାହାର – ପୁଂ. ବି. (ଏକ + ଆହାର) ଏକ ଦିନରେ ଥରେ ମାତ୍ର ଭୋଜନ କରିବା ।

ଏକାହାରୀ – ପୁଂ.ବିଂ.(ଏକାହାର + ଇନ୍) ଯେ ଦିନ ମଧ୍ୟରେ ଥରେ ମାତ୍ର ଭୋଜନ କରେ ।

ଏକାହିକ—ବିଂ. (ଏକାହ + ଇକ) ଏକ ଦିନସାଧ୍ୟ, ଏକ ଦିନରେ ସମ୍ପନ୍ନ, ଏକ ଦିନରେ ଜାତ, ଦୈନନ୍ଦିନ, ପ୍ରତିଦିନ ଘଟୁଥିବା ।

ଏକାହିକଜ୍ୱର—ବି. ପ୍ରତିଦିନ ହେଉଥିବା ଜ୍ୱର ।

ଏକି—ଗ୍ରା.ବିଂ.ଏକମାତ୍ର, ତୁଲ୍ୟ,ସମାନ, (ଅବ୍ୟ) ଆଶ୍ଚର୍ଯ୍ୟସୂଚକ, (ପ୍ରଶ୍ନ) ଏହା କଅଣ ?

ଏକୀକରଣ – କ୍ଲୀ. ବି. (ଏକ + ଚ୍ୱି + କୃ + ଅନ) ଏକତ୍ରୀକରଣ, ଅନେକ ପଦାର୍ଥ ଏକତ୍ର କରି ରଖିବା ।

ଏକୀଭବନ—କ୍ଲୀ. ବି. (ଏକ + ଚ୍ୱି + ଭୂ + ଅନ) ଏକତ୍ର ମିଳିତ ହେବା,ସମ୍ମିଶ୍ରଣ ।

ଏକୀଭାବ—ପୁଂ.ବି.(ଏକ + ଚ୍ୱି + ଭୂ + ଅ) ମିଳିତ ହେବା, ଏକାହେବା ।

ଏକୀଭୂତ – ବିଂ.(ଏକ + ଚ୍ୱି + ଭୂ + ତ) ମିଳିତ(ବହୁତ ପଦାର୍ଥ)ଏକହୋଇଥିବା ।

ଏକୀୟ—ବିଂ.(ଏକ + ଈୟ)ଏକପକ୍ଷୀୟ, ସହାୟ,ଏକସମ୍ବନ୍ଧୀୟ,ଏକପକ୍ଷାବଲମ୍ବୀ ।

ଏକୁ—ଅବ୍ୟ, ଏକେ, ପ୍ରଥମତଃ, ଏକରୁ, ଏକଠାରୁ ଆରମ୍ଭକରି ।

ଏକୁ ଅନେକ—ଗ୍ରା. ଅବ୍ୟ. ଗୋଟି ଗୋଟି କରି ସମସ୍ତଙ୍କୁ, ଏକରୁ ବେଶି, ଏକାଧିକ ।

ଏକୁଆ – ଗ୍ରା. ବିଂ. ଏକ ଦିନ ଅନ୍ତର, ଏକଥର, ଏକାହିକ (ଜ୍ୱର), ଏକ ଦିନ ଅନ୍ତରରେ ଘଟୁଥିବା, ଥରେ ବନ୍ଧା ହୋଇଥିବା (ହଳଦୀ), ଏକଯୁଣିଆ, (ଗୃହଲ) ।

ଏକୁଆରକ (କେ)—ଗ୍ରା.ବି.ଏକକୁ ଆରକ (ଦେଖ), ଅନ୍ୟୋନ୍ୟରେ ।

ଏକୁଆରେକ – ଗ୍ରା.ସର୍ବ. ଅନ୍ୟୋନ୍ୟରେ, ଏକକୁ ଆରେକ (ଦେଖ) ।

ଏକୁଏକ—ଗ୍ରା. ବିଂ. ଏକଅପେକ୍ଷା ଅନ୍ୟ, ପ୍ରଥମ ଅପେକ୍ଷା ଅନ୍ୟଟି, ଏହିପରି, ଅଦ୍ଭୁତାସ୍ୱ,ପ୍ରତ୍ୟେକ,(ଅବ୍ୟ) ତାକୁ ବଳି ସେ, ତାକୁ ବଳି ସେ ।

ଏକୁଟିଆ—ଗ୍ରା. ବିଂ. ଏକାକୀ, ଅସହାୟ, (କ୍ରି.ବିଂ.) ଏକାକୀହୋଇ ।

ଏକୁଟିଆବାରହା-ଗ୍ରା.ବି.(ଗାଳି)ଜଙ୍ଗଲରେ ବାର୍‌ହାମାନେ ଦଳ ବାନ୍ଧି ରହିବାକୁ ସୁଖ ପାଆନ୍ତି ନାହିଁ,ସେପରି ଯେ ଏକାକୀ ରହିବାକୁ ସୁଖ ପାଏ, ଯେଉଁ ବ୍ୟକ୍ତି ଅନ୍ୟର ଶ୍ରୀ ଦେଖିପାରେ ନାହିଁ ।

ଏକୁନ୍—ଗ୍ରା. ବି. ସର୍ବସ୍ୱ ( କ୍ରି. ବିଂ ) ମୋଟରେ, ସମୁଦାୟ ।

ଏକୁଣକର୍ଣ୍ଣି—ପ୍ରା. ସମୁ. (କ୍ରି. ବିଂ.) କ୍ରମବର୍ଦ୍ଧିତଭାବରେ,ଏକାଦିକ୍ରମେ ।

ଏକେ—ଗ୍ରା. (ଅବ୍ୟ) ପ୍ରଥମତଃ, ଏକପକ୍ଷରେ ।

ଏକେ ଏକେ—ଗ୍ରା. କ୍ରି. ବିଂ. ଗୋଟିଏ ଗୋଟିଏ କରି,ଜଣ ଜଣ କରି,ପ୍ରତ୍ୟେକ, ପୃଥକ୍ ପୃଥକ୍ ।

ଏକେକ୍ଷଣ—ପୁଂ. ବି. ( ଏକ + ଈକ୍ଷଣ ) କାକ, କଣା ଲୋକ, ଶୁକ୍ରାଚାର୍ଯ୍ୟ ।

ଏକେକତ – ଗ୍ରା.କ୍ରି.ବିଂ. ଏକେ,ପ୍ରଥମତଃ, ଏକ ପକ୍ଷରେ ।

ଏକେଶ୍ୱର—ପୁଂ. ବି. ପ୍ରଧାନଅଧିପତି, ମାଲିକ, ଜଗଦୀଶ୍ୱର ( ବିଂ ) ଏକଲା, ଏକାକୀ, ଏକମାତ୍ର ପ୍ରଭୁ ବା ରାଜାଙ୍କ ଅଧିକାରରେ ଥିବା ।

ଏକେଶ୍ୱର—ଗ୍ରା. ବି. ଏ ପୃଥିବୀର ପ୍ରଭୁ ଏକମାତ୍ର ଈଶ୍ୱର ଏବଂଭୂତ ମତ ବା ବିଶ୍ୱାସ ।

ଏକେଶ୍ୱରବାଦୀ—ପୁଂ. ବିଂ. ( ଏକେଶ୍ୱର + ବଦ + ଇନ୍ )ପୃଥିବୀରକର୍ତ୍ତା,ଏକମାତ୍ର ଈଶ୍ୱର ବୋଲି ଯେ ବିଶ୍ୱାସ କରେ,(ସ୍ତ୍ରୀ) ଏକେଶ୍ୱରବାଦିନୀ ।

ଏକୈକ—ପୁଂ. ବି. ଏକ ଏକଜଣ, ଜଣେ ଜଣେ, ଗୋଟିଏ ଗୋଟିଏ,(ବିଂ) ଧାରାବାହିକ, ( କ୍ରି. ବିଂ ) ଏକଏକ କରି, ଏକଏକ ହୋଇ, ପୃଥକ୍‌ଭାବରେ ।

ଏକୈକଶଃ—(ଅବ୍ୟ) ଗୋଟିଏ ଗୋଟିଏ କରି, ଏକ ଏକ ବାର, ପର୍ଯ୍ୟାୟକ୍ରମେ, ଧାରାବାହିକରୂପେ ।

ଏକୈଷିକା—ସ୍ତ୍ରୀ. ବି. ଅକାନବନ୍ଧ ଲତା ।

ଏକୋଇଶ—ଗ୍ରା. ବି. ବିଂ. ଏକବିଂଶ ସଂଖ୍ୟା, ଏକବିଂଶ ସଂଖ୍ୟକ ।

ଏକୋଇଶା—ଗ୍ରା. ବି. ପିଲାର ଜନ୍ମର ଏକୋଇଶ ଦିନରେ କରାଯିବା ନାମ କରଣାଦି ଉତ୍ସବ ।

ଏକୋଜୀ—ତାଞ୍ଜୋରର ପ୍ରଥମ ମହାରାଷ୍ଟ୍ର ରାଜା, ଶିବାଜୀଙ୍କର ବୈମାତ୍ରେୟ ।

ଏକୋଦକ—ପୁଂ.ବିଂ. ବି.ସ୍ତ୍ରୀ, (ଏକ+ଉଦକ) ଏକଗୋତ୍ରଜ, ଊର୍ଦ୍ଧ୍ୱତନ ସପ୍ତମ ପୁରୁଷ ପର୍ଯ୍ୟନ୍ତ ସଗୋତ୍ର, ସମାନୋଦକ ।

ଏକୋଦର—ବି.ପୁଂ.ସ୍ତ୍ରୀ. ବି.ସ୍ତ୍ରୀ,ସହୋଦର,ସହୋଦରା, (କ୍ଲୀ.ବି) ତୁଲ୍ୟଉଦର, (ବିଂ) ଏକମାତୃଗର୍ଭଜାତ ।

ଏକୋଦ୍ଦିଷ୍ଟ—କ୍ଲୀ. ବି. ମୃତ ବ୍ୟକ୍ତିର ଉଦ୍ଦେଶ୍ୟରେ ପ୍ରତିବର୍ଷ ଯେଉଁ ଶ୍ରାଦ୍ଧ କରାଯାଏ,(ବିଂ.)ଏକ ବସ୍ତୁ ବା ବ୍ୟକ୍ତିକୁ ଲକ୍ଷ୍ୟକରି ଅନୁଷ୍ଠିତ ହୋଇଥିବା ।

ଏକୋଦ୍ଦେଶ—ପୁଂ. ବି. ଏକର ଉଦ୍ଦେଶ, ଏକବିଷୟ ଲକ୍ଷ୍ୟକରିବା ।

ଏକୋନ—ବିଂ. ଏକସଂଖ୍ୟା କମ୍, ଯହିଁରୁ ଏକ ଊଣା ।

ଏକୌଶିକା—ସ୍ତ୍ରୀ. ବିଂ. ( ଆକାଶାଦି ) ଅକାନବନ୍ଧ ଲତା ।

ଏକୌଷ—ପୁଂ. ବି. ଅବିଚ୍ଛିନ୍ନ ପ୍ରବାହ ।

ଏକ୍କା—ଗ୍ରା. ବି. ଏକଘୋଡ଼ା ଟାଣିବା ଦୁଇଚକିଆ ଗାଡ଼ି ।

ଏକ୍ଷଣ—ଗ୍ରା.କ୍ରି. ବିଂ. ଏହି ମୁହୂର୍ତ୍ତରେ, ବର୍ତ୍ତମାନ ।

ଏକ୍ଷଣି—ଗ୍ରା. କ୍ରି.ବିଂ. (ଏ+କ୍ଷଣ+ଇ) ଏହିକ୍ଷଣି, ବର୍ତ୍ତମାନ, ଏହି ମୁହୂର୍ତ୍ତରେ

ଏଖ୍‌ନି—ଯା. ବି. ପଲଉ ପାଇଁ ଗୃହଳ ସିଦ୍ଧ କରିବା ନିମନ୍ତେ ମସଲାମିଶ୍ରିତ ସିଦ୍ଧଜଳ ।

ଏଗାନା—ଯା.ପୁଂ.ଏକେ,ଏକଅଣା,ଏକେଲ, କେବଳ ।

ଏଗାର—ଗ୍ରା. ବି. ଏକାଦଶ, ଏଗାର ସଂଖ୍ୟା, ଏକାଦଶାଦି ।

ଏଗୁଡ଼ା(କ)—ଗ୍ରା. ସର୍ବ. (ଅନାଦରାର୍ଥକ) ଏ ପଦାର୍ଥ ବା ବ୍ୟକ୍ତିଗଣ ।

ଏଗୁଡ଼ି(କ)—ଗ୍ରା. ସର୍ବ. (ଆଦରାର୍ଥକ) ଏ ବସ୍ତୁ ବା ବ୍ୟକ୍ତିମାନେ ।

ଏଗୁମତ ଦଗୁମତ—ପ୍ରା. ( ଗଞ୍ଜାମ ) ବି. ଆମଦାନୀ ଓ ରପ୍ତାନୀ ।

ଏଗ୍ରିମେଣ୍ଟ—ଯା. ବି. ଚୁକ୍ତି, ଚୁକ୍ତିପତ୍ର, ସମ୍ମତି ।

ଏଘାନ୍ତ—ଗ୍ରା.ଅବ୍ୟ.(ସଂ-ଏତଦ୍ ଓ ଘାତ) ଏଥରକ, ଏକ୍ଷଣି, ବର୍ତ୍ତମାନ ।

ଏଘେନ(ଘେନି)—ଗ୍ରା.ଅବ୍ୟ.ଏହିହେତୁରୁ, ଏଥିଲାଗି, ଏହିଯୋଗୁଁ ।

ଏଛନ—ପ୍ରା. (ସମ୍ବ), ଅବ୍ୟ, ଏହିକ୍ଷଣି, ବର୍ତ୍ତମାନ ।

ଏଜ୍—(ଧାତୁ) ଦୀପ୍ତି, କମ୍ପିବା ।

ଏଜ୍‌ମାନ—ପ୍ରା. (ଗଞ୍ଜାମ) ବି. ଉପରସ୍ଥ କର୍ମଚାରୀ ।

ଏଜାତି(ଆ)କା—ଗ୍ରା.ବିଂ. କ୍ରି. ବିଂ. (ସଂ-ଏତଦ୍ ଓ ଜାତି) ଏହିପରି, ଏହି ପ୍ରକାରର, ଏହିଶ୍ରେଣୀର, ଏକଜାତୀୟ ।

ଏଜନ୍—ଗ୍ରା. (ସର୍ବ) ଏ, ଏହା, ଏହି, ଉପରୋକ୍ତ ବିଷୟ ।

ଏଜଥ—ପୁଂ.ବି.(ଏଜ+ଅଥୁ) କମ୍ପ ।

ଏଜନ—କ୍ଲୀ. ବି. (ଏଜ+ଅନ)କମ୍ପନ, ଉତ୍ତେଜନ, ଏହି, ଏହା ।

ଏଜଲାସ—ଯା. ବି. କଚେରୀ, ମେଜଲ, ଧର୍ମାଧିକରଣ, ବିଚାରପତିଙ୍କ ବୈଠକ ସ୍ଥାନ ।

ଏଜି—ବିଂ.(ଏଜ+ଇନ୍) ବାତରୋଗଗ୍ରସ୍ତ

ଏଜିତ—ବିଂ. ( ଏଜ+ଣିଚ୍+ତ )କମ୍ପିତ, କମ୍ପାନ୍ୱିତ, କମ୍ପମାନ ।

ଏଜେଣ୍ଟ—ଯା. ଗୁମାସ୍ତା, ତହସିଲଦାର, କର୍ମଚାରୀ, ପ୍ରତିନିଧି,ଉକିଲ ।

ଏଜ୍ୟ—ବିଂ.(ଆ+ଯଜ୍+ଯ) ସମ୍ୟକ୍ ରୂପେ ଯଜନୀୟ ।

ଏଟା—ଗ୍ରା. ସର୍ବ, (ଅନାଦରାର୍ଥକ) ଏହି ବସ୍ତୁ ବିଷୟ ବା ବ୍ୟକ୍ତି ।

ଏଟି—ଗ୍ରା. ସର୍ବ. ( ଆଦରାର୍ଥକ ) ଏହି ବସ୍ତୁ ବିଷୟ ବା ବ୍ୟକ୍ତି ।

ଏଠ—(ଧାତୁ) ବାଧାଦେବା ।

ଏଠଉଁ(ଠୁଁ)—ଗ୍ରା. ଅବ୍ୟ, ଏହି ସ୍ଥାନରୁ, ଏଠାରୁ ।

ଏଠୁଁ ସେଠୁଁ—ଗ୍ରା. ଅବ୍ୟ. ଏଠାରୁ ସେଠାରୁ, ଅନିର୍ଦ୍ଦିଷ୍ଟ ସ୍ଥାନରୁ ।

ଏଠା—ଗ୍ରା. ବି. ଏସ୍ଥାନ ଏହିସ୍ଥାନ ।

ଏଠାଇଁ—ଗ୍ରା. ଅବ୍ୟ, ଏସ୍ଥାନରେ ।

ଏଠାକା(ର)—ଗ୍ରା.ବିଂ. ଏ ସ୍ଥାନୀୟ, ଏହି ସ୍ଥାନର ।

ଏଠାକୁ(ସ୍କେ)—ଗ୍ରା. ଅବ୍ୟ.ଏଠାକୁ,ଏସ୍ଥାନକୁ

ଏଠାରେ—ଗ୍ରା. ଅବ୍ୟ, ଏହି ସ୍ଥାନରେ, ଏସ୍ଥଳରେ ।

ଏଠାସେଠା—ଗ୍ରା.ବି. ଏସ୍ଥାନ ସେସ୍ଥାନ, ନିର୍ଦ୍ଦେଶାଭାବ, ନିର୍ଦ୍ଦିଷ୍ଟ ସ୍ଥିତିର ଅଭାବ, (ବିଂ.) ଅସଂନ୍ୟସ୍ତ,ଅବିନ୍ୟସ୍ତ,ବିଚଳିତ, ଅସ୍ଥିର, ସ୍ଥାନଭ୍ରଷ୍ଟ ।

ଏଠିକା (ର)—ଗ୍ରା.ବିଂ.ଏସ୍ଥାନର,ଏଠାକାର, ସ୍ଥାନୀୟ ।

ଏଠେଇ(ଇଁ)—ଗ୍ରା. ଅବ୍ୟ. ଏଠାରେ, ଏସ୍ଥାନରେ, ଏପ୍ରସଙ୍ଗରେ ।

ଏଡ଼—ପୁଂ. ବିଂ. (ଆ+ଇଡ଼+ଅ) ବଧିର,କାଲ,(ବି.ପୁଂ.) ମେଷ,ମେଣ୍ଢା

ଏଡ଼କ—ପୁଂ. ବି. (ଇଳ+ଅକ)ମେଷ, ବଣଛେଳି, ବନ୍ୟଛଗଳ, (ସ୍ତ୍ରୀ)ଏଡ଼କା।
ଏଡ଼କା—ସ୍ତ୍ରୀ. ବି. ମେଷୀ, ମେଣ୍ଢୀ।
ଏଡ଼ଗଜ-ପୁଂ.ବି.ଚକ୍ରମର୍ଦ୍ଦକ,ଗୃଞ୍ଜୁଣ୍ଡାଗଛ।
ଏଡ଼ମୂକ—ପୁଂ.ବିଂ.ଦ୍ୱନ୍ଦ୍ୱ,(ଏଡ଼+ମୂକ) ବାକ୍‌ଶକ୍ତି ଓ ଶ୍ରବଣ ଶକ୍ତିଶୂନ୍ୟ, କାଲ ଓ ବୋବା, ଶଠ, ପ୍ରତାରକ।
ଏଡ଼ା—ଗ୍ରା. ବି. ତ୍ୟାଗ, ବର୍ଜନ, ଅବମାନନା, ଆଦେଶଲଙ୍ଘନ।
ଏଡ଼ି—ଗ୍ରା.ବି. (ସଂ—ଅଙ୍ଘ୍ରି) ଗୋଡ଼ର ଗୋଇଠି, ଜୋତାର ଗୋଇଠିତଳର ଅଂଶ, ଗୋଇଠିଦ୍ୱାରା ଆଘାତ।
ଏଡ଼ିକ—ଗ୍ରା.ବିଂ.(ସଂ—ଏତାଦୃଶ)ଏଡ଼େ ବଡ଼, ଏହି ଆକାରର, ଏହିପ୍ରକାରର, (କ୍ରି.ବିଂ.) ଏଡ଼େ, ଏତେ ପରିମିତ।
ଏଡ଼ିବା—ଗ୍ରା. କ୍ରି. ପରିହାର କରିବା, ଛାଡ଼ିବା, ତ୍ୟାଗକରିବା, ପଳାଇଯିବା, ଅତିକ୍ରମକରିବା, ଲଙ୍ଘନକରିବା, ଅମାନ୍ୟକରିବା, ଅବଜ୍ଞାକରିବା,(ବାଣ, ଶର) ପ୍ରୟୋଗକରିବା, ଖେଳରେ ପଣ ବା ବାଜି ରଖିବା, ଆଡ଼ିବା।
ଏଡୁକ—ବି. (ଇଡ଼+ଉକ) କବର, ସମାଧି, ଶ୍ମଶାନ, ଚୈତ୍ୟ, ପୂଜାଯୋଗ୍ୟ ବସ୍ତୁପୂର୍ଣ୍ଣ, ବୌଦ୍ଧସ୍ତୂପ ବା ଚୈତ୍ୟ, ଭିତ୍ତି, ମୂଳଦୁଆ, ହଂସା, ସମାଧି ମନ୍ଦିର ଅନ୍ତର୍ଗତ ଅସ୍ଥି, ଅନ୍ତର୍ଗତକଠିନଦ୍ରବ୍ୟ।
ଏଡ଼ୂକ—ପୁଂ. ବି. (ଇଡ଼+ଊକ)ଅନ୍ତର୍ଗତ ଅସ୍ଥି, ଅନ୍ତର୍ଗତ କଠିନ ଦ୍ରବ୍ୟ, ଏଡୁକ (ଦେଖ)।
ଏଡ଼େ—ଗ୍ରା.ବିଂ ଓ ବିଂ. ର ବିଂ.(ସଂ—ଇଦୃଶ) ଏତେପରିମାଣର, ଏପରି ଆକୃତିବିଶିଷ୍ଟ।
ଏଡ଼େଉଁ ଏଡ଼େକରିବା—ଗ୍ରା. କ୍ରି. ଶିଶୁକାଳରୁ ଶିଶୁକୁ ପାଳି ବଢ଼ାଇବା।
ଏଡ଼େକ—ଗ୍ରା. ପଦ୍ୟ. ବିଂ.ବିଂ. ର ବିଂ. ଏଡ଼େ (ଦେଖ)।
ଏଡ଼େବଡ଼—ଗ୍ରା, ବିଂ. ଏଡ଼େ ବୃହତ୍।
ଏଡ଼େରୁ ଏଡ଼େ କରିବା—ଗ୍ରା.କ୍ରି.ସାହାଯ୍ୟ କରି କୌଣସି ଲୋକକୁ ଅତି ନଗଣ୍ୟ ଅବସ୍ଥାରୁ ଉନ୍ନତ ଅବସ୍ଥାକୁ ଆଣିବା, ଏଡ଼େଉଁ ଏଡ଼େ କରିବା (ଦେଖ)।
ଏଡ଼େରୁ ଏଡ଼େହେବା—ଗ୍ରା. କ୍ରି. ଅତି-ହୀନ ନଗଣ୍ୟ ଅବସ୍ଥାରୁ ଉନ୍ନତ ଅବସ୍ଥାକୁ ଆସିବା, ଶିଶୁଅବସ୍ଥା ଲଙ୍ଘନ କରି ବଡ଼ ହେବା।
ଏଡ଼ିକ—ବିଂ.ଏତାବନ୍ତ ପରିମାଣବିଶିଷ୍ଟ।
ଏଡୋକ—କ୍ଳୀ.ବି.ଅନ୍ତର୍ଗତ ଅସ୍ଥି,ଏଡ଼ୂକ (ଦେଖ)।
ଏଣ—ପୁଂ. ବି. (ଇ+ଣ) କୃଷ୍ଣସାରମୃଗ,ମୃଗ,ହରିଣ,(ସ୍ତ୍ରୀ) ଏଣୀ,(ଗ୍ରା.ସଂ) ଏହି ସ୍ଥାନ,ଏହିଅଞ୍ଚଳ,(ବିଂ)ଏଠାକାର, ଏହିଆଡ଼ର।
ଏଣକ—ପୁଂ.ବି. (ଏଣ+କ)କୃଷ୍ଣ ମୃଗ, ଏଣ (ଦେଖ)।
ଏଣତିଳକ—ପୁଂ.ବି.ବ.ବ୍ରୀ,ମୃଗାଙ୍କ,ଚନ୍ଦ୍ର
ଏଣଦୃକ୍—ବିଂ.ବ.ବ୍ରୀ.ମୃଗନେତ୍ର,ଯାହାର ନେତ୍ର ମୃଗନେତ୍ର ପରି।
ଏଣନୟନା—ସ୍ତ୍ରୀ. ବି. (ଏଣ+ନୟନ+ଆ) ମୃଗନୟନା, ଯେଉଁ ସ୍ତ୍ରୀର ନେତ୍ର ମୃଗନେତ୍ରପରି ସୁନ୍ଦର।
ଏଣଫଳ—ଗ୍ରା.ବି.ମିରିଗାକୋଲି(ଦେଖ)
ଏଣଭୃତ୍—ପୁଂ.ବି.(ଏଣ+ଭୃ+କ୍ୱିପ୍) ଚନ୍ଦ୍ର।
ଏଣରିପୁ—ପୁଂ. ବି. ସିଂହ, ମୃଗେନ୍ଦ୍ର।
ଏଣାଜିନ—କ୍ଳୀ.ବି. ମୃଗଚର୍ମ, କୃଷ୍ଣସାର ଚର୍ମ।
ଏଣିକି—(ଅବ୍ୟ) ଏ ଆଡ଼କୁ, ଏବକୁ, ବର୍ତ୍ତମାନକୁ, ଆଜକାଲି, ଅତଃପର, ଆଜଠାରୁ, ଏଥିପରେ, ଭବିଷ୍ୟତ୍‌ରେ।
ଏଣିକ ତେଣିକ—ଗ୍ରା.କ୍ରି. ବିଂ.(ସଂ—ଏତତ୍ ଓ ତତ୍)ଘୃରଆଡ଼କୁ,ଘୃରଆଡ଼େ, ଏଣେତେଣେ।
ଏଣିକତେଣିକହେବା—ଗ୍ରା. କ୍ରି.ଅସ୍ଥିର ହେବା, ଇତସ୍ତତଃ।
ଏଣୀ—ସ୍ତ୍ରୀ. ବି.(ଇ+ଣ+ଈ)ହରିଣୀ।
ଏଣୀନୟନା—ସ୍ତ୍ରୀ.ବି.ଏଣନୟନା(ଦେଖ)
ଏଣୀପଚନ—କ୍ଳୀ. ବି. (ଏଣୀ+ପଚ+ଅନ) ଦେଶବିଶେଷ।
ଏଣୀପଦ—ବିଂ. ମୃଗୀପଦାକାର ପଦବିଶିଷ୍ଟ।
ଏଣୁ—ଗ୍ରା. (ଅବ୍ୟ)(ସଂ—ଏତଦ୍)ଏହିଠାରୁ, ଏହି ସ୍ଥାନରୁ, ଏହି ବାଗରୁ, ଏହି ପକ୍ଷରୁ, ଏହି କାରଣରୁ, ଏ ହେତୁ, ଏ ହେତୁରୁ।
ଏଣୁଆସୁଁ ତେଣୁଆସୁଁ—ଗ୍ରା. କ୍ରି. ବିଂ. ଅନବରତ, ଅବିଶ୍ରାନ୍ତଭାବରେ, ପୁନଃପୁନଃ।
ଏଣୁକରି—ଗ୍ରା. (ଅବ୍ୟ)ଏହି କାରଣରୁ, ଏଥିଲାଗି, ଏହେତୁ,ଅତଏବ।
ଏଣୁତେଣୁ—ଗ୍ରା. ଅବ୍ୟ. ଏଆଡ଼ୁସେଆଡ଼ୁ, (ବି) ଗୋଳମାଳ, ଅନନ୍ତସ୍ୟ, ଅନନ୍ୱୟ, ଅବକ୍ତବ୍ୟ କଥା, ଅଖାଦ୍ୟ, ଅକଥା, ମନ୍ଦକାର୍ଯ୍ୟ, ଅସମ୍ବନ୍ଧ, ପ୍ରଲାପ, ଆଲମାଲକା (ବିଂ) ଅନର୍ଥିତ, ଅନନ୍ୱୟିତ, ଅସମ୍ବଦ୍ଧ, ଅଲାଆତଲଆ, ଅସଂନ୍ୟସ୍ତ, ଗୋଳମାଳଆ, ବାଜେ।
ଏଣୁତେଣୁଆ—ଗ୍ରା.ବିଂ.ଯାହାର କଥାରେ ବା କାର୍ଯ୍ୟରେ ଠିକଣା ନାହିଁ, ଯାହାର ପିତାମାତାର ଠିକଣା ନାହିଁ।
ଏଣୁଯାଉଁତେଣୁଯାଉଁ—ଗ୍ରା. କ୍ରି. ବିଂ. ଏଣୁଆସୁଁ ତେଣୁଆସୁଁ (ଦେଖ)।
ଏଣେ—ଗ୍ରା. (ଅବ୍ୟ) ଏ ଆଡ଼େ,ଏବକ୍ଷସ୍ଥଳରେ, ଏହିବାଗରେ, ଏପକ୍ଷରେ, ଏହି ପ୍ରକାରେ,ଏହିବାଗକୁ,ଏଠାକୁ, ଏତଦ୍‌ଦ୍ୱାରା, ଏଥିରେ, ଏମାନଙ୍କ ସଙ୍ଗେ।
ଏଣେତେଣେ—ଗ୍ରା. (ଅବ୍ୟ) ଇତସ୍ତତଃ, ଏଆଡ଼େ ସେଆଡ଼େ, ଚତୁର୍ଦ୍ଦିଗରେ,ଘୃରି ଆଡ଼େ।
ଏଣ୍ଟଲା—ଯା. ବି.(ତୈଲିଙ୍ଗ)ଡମକାଠ।
ଏଣ୍ଡରି—ପ୍ରା. (ସମ୍ବ)ବିଂ. ଅଣ୍ଡିରି।
ଏଣ୍ଡରାଇବା—ପ୍ରା. ( ସଂହ ) କ୍ରୀ, ତଡ଼ିଚିଗୃହିଁବା।
ଏଣ୍ଡ୍ରକେରି—ପ୍ରା. ( ସମ୍ବ ) ବର୍ଷାହେଉଥିବା ସମୟରେ ବିଲରେ ଧାନ ବୁଣାଯିବା ପ୍ରଣାଳୀ,ବନ୍ୟଫୁଲବିଶେଷ।
ଏଣ୍ଡି—ଗ୍ରା. ବି.(ସଂ-ଏରଣ୍ଡ,ଗବ)ଆସାମ ଦେଶଜାତ ଏକପ୍ରକାର ଟସର ବା ରେଶମ ବସ୍ତ୍ର।

ଏଣ୍ଡିଗୃଷ—ଗ୍ରା. ବି. ଏଣ୍ଡି ପୋକଙ୍କୁ ପାଳି ସେମାନଙ୍କଠାରୁ ଏଣ୍ଡି ନାମକ ସୂତା ଆମଦାନି କରିବାର ଗୃହ ।

ଏଣ୍ଡୁରି—ଗ୍ରା.ବି.ବିରି ଓ ଗୁଡ଼ଲବଟାଦ୍ୱାରା ଅଥାରରେ ସିଝିବା ପିଷ୍ଟକବିଶେଷ ।

ଏଣ୍ଡୁଲା—ଗ୍ରା.ବି.କଳା କେରଣ୍ଡା ମାଛ ।

ଏତବାର—ଯା. ବି. ରବିବାର,ବିଶ୍ୱାସୀ ।

ଏତକ—ଗ୍ରା. ସର୍ବ. ଏହିପରିମାଣରେ ବସ୍ତୁ, ଏହି ସାମାନ୍ୟକାର୍ଯ୍ୟ,ଏହାମାତ୍ର କଥା ।

ଏତମାମ୍‌ଦାର—ଯା. ବି. କୃଷକ ।

ଏତମାମଦାରି—ଯା.ବି.କୃଷକର କାର୍ଯ୍ୟ ।

ଏତ-ବିଂ. (ଆ+ଇଣ+ତ)ପ୍ରାପ୍ତ,ମିଶ୍ରିତ ବର୍ଣ୍ଣବିଶିଷ୍ଟ, ଇନ୍ଦ୍ରଧନୁ ରଙ୍ଗବିଶିଷ୍ଟ, ଆଗତ, (ବି) କବରବର୍ଣ୍ଣ, ମୃଗ, କୃଷ୍ଣସାର ମୃଗ ।

ଏତଗ୍ୱ—ପୁଂ.ବି.ବିଚିତ୍ର ଅଶ୍ୱ,ସାଧାରଣ ଅଶ୍ୱମାତ୍ର ।

ଏତତ୍—(ସର୍ବ) ଏହି,ଅଗ୍ରବର୍ତ୍ତୀ ବିଷୟବୋଧକ ସର୍ବନାମ ଶବ୍ଦ, ବିଗ୍ରର କଥା ଯାଉଥିବା, ସମ୍ମୁଖସ୍ଥ, ଉପସ୍ଥିତ ।

ଏତତ୍ତୁଲ୍ୟ—ବିଂ.ଏହାର ତୁଲ୍ୟ,ଏହାପରି

ଏତତ୍ସମ—ବିଂ. ଏହାର ସମାନ ।

ଏତଦ୍—(ସର୍ବ) ଏହି,ଅଗ୍ରବର୍ତ୍ତୀ ବୋଧକ ସର୍ବନାମ ଶବ୍ଦ, ଏତତ୍ (ଦେଖ) ।

ଏତଦତିରିକ୍ତ-ବିଂ. ଏହାଅପେକ୍ଷା ଅଧିକ ।

ଏତଦନ୍ତର—ବିଂ. ଏହାର ପର ।

ଏତଦପେକ୍ଷା—ଅବ୍ୟ, ଏହା ଅପେକ୍ଷା, ଏହାଠାରୁ ।

ଏତଦବଧି—ବିଂ. ଏହି ପର୍ଯ୍ୟନ୍ତ ।

ଏତଦବସ୍ଥ—ବିଂ. ଏହିରୂପ ଅବସ୍ଥା ପ୍ରାପ୍ତ

ଏତଦରିକ୍ତ—ବିଂ.ଅନ୍ତତଃ, ଶେଷପକ୍ଷେ ।

ଏତଦର୍ଥ—ବିଂ. ଏହି ନିମିତ୍ତ ।

ଏତଦର୍ଥେ—ଅବ୍ୟ. ଏକାରଣେ ।

ଏତଦାତ୍ମ୍ୟ—ବିଂ. ଏତଦ୍ରୂପତା, ଏହି ରୂପର ଭାବ ।

ଏତଦାଦି-ବିଂ. ଏହିଠାରୁଯାହାର ଆଦି ।

ଏତଦିତର—ବିଂ. ଏହାଭିନ୍ନ ।

ଏତଦୀୟ—ବିଂ.(ଏତଦ୍+ଈୟ) ଏତତ୍ସମ୍ବନ୍ଧୀୟ, ଏହାର,ଏତଦ୍ ସମ୍ବନ୍ଧୀୟ ।

ଏତଦୁତ୍ତମ—ବିଂ.ଏହା ଅପେକ୍ଷା ଉତ୍ତମ ।

ଏତଦେବ—ଅବ୍ୟ.ଏହି, ଏହି କେବଳ ।

ଏତଦ୍‌ଗତ—ବିଂ. ଏହାର ମଧ୍ୟବର୍ତ୍ତୀ ।

ଏତଦ୍ଧେତୁକ—ବିଂ. ଏହିକାରଣବିଶିଷ୍ଟ ।

ଏତଦ୍ଭିନ୍ନ—ଗ୍ରା. ଅବ୍ୟ. (ଏତଦ୍+ଭିନ୍ନ) ଏହାଭିନ୍ନ, ଏହାଛଡ଼ା, ପକ୍ଷାନ୍ତରରେ, ଆହୁରି, ଏବଂ ।

ଏତଦ୍ରୂପ—ବିଂ. ଏହିରୂପ ।

ଏତଦ୍ୱତ୍—ବିଂ. ଏତଦ୍‌ବିଶିଷ୍ଟ (ଅବ୍ୟ) ଏହିରୂପ, ଏହିପରି, ଏହିରକମ ।

ଏତନ—ପୁଂ. ବି. (ଆ+ଇ+ତନ) ନିଃଶ୍ୱାସ ।

ଏତନ୍ମଧ୍ୟରେ(ନ୍ମଧ୍ୟରେ)-ଗ୍ରା.(ଅବ୍ୟ)ଇତିମଧ୍ୟରେ, ଏହି ଅବସରରେ, ଏମାନଙ୍କ ମଧ୍ୟରେ ।

ଏତନ୍ମଧ୍ୟେ—ଅବ୍ୟ. ଏହା ମଧ୍ୟରେ, ଏହି ଅବସରରେ, ଏମାନଙ୍କ ମଧ୍ୟରେ,ଏଥି ଭିତରେ ।

ଏତନ୍ମାତ୍ର—ବିଂ. (ଏତତ୍+ମାତ୍ର) ଏହି ପରିମାଣ, (କ୍ରିଂ. ବିଂ.) ଏତିକମାତ୍ର, ବର୍ତ୍ତମାନ ।

ଏତଲା—ଯା. ବିଂ.ସମ୍ବାଦ,ଜଣାଇବାର, ଜ୍ଞାପନ, ଇସ୍ତାହାର,ଜ୍ଞାତସାର ।

ଏତଲାକରିବା—ଗ୍ରା. କ୍ରି. ଜଣାଇବା, ସମ୍ବାଦଦେବା, ଥାନାରେ ଅପରାଧ ଘଟନାର ସମ୍ବାଦଦେବା ।

ଏତଲାନାମା—ଯା. ବିଂ. ଅଦାଲତର ବିଜ୍ଞାପନ ପତ୍ର ବା ଆଦେଶପତ୍ର ।

ଏତର୍ହି—ଅବ୍ୟ. ଏହିକାଳେ, ସମ୍ପ୍ରତି ।

ଏତଶ—ବିଂ.ପୁଂ.(ଇ+ତଶନ୍)ବ୍ରାହ୍ମଣ ।

ଏତଶସ୍—ବିଂ. ପୁଂ. ବ୍ରାହ୍ମଣ ।

ଏତସ—ବିଂ. ପୁଂ. (ଇଣ+ତସନ୍) ବ୍ରାହ୍ମଣ ।

ଏତହୁଁ—ଗ୍ରା. ଅବ୍ୟ. ଏହାଛଡ଼ା ।

ଏତା—ଗ୍ରା. ସର୍ବ. (ସଂ—ଏତତ୍) ଏହି, ଏହା, ଏଇଟା, ଏକଥା ।

ଏତାକେତା—ଗ୍ରା. ବିଂ:ଟିକଟିକ, ଛିନ୍ନଭିନ୍ନ ।

ଏତାଦୃକ୍—କ୍ରି. ବିଂ.(ଏତତ୍+ଦୃଶ୍+କ୍ୱିପ୍)ଏହାପରି,ଏହାରପରି,(ବିଂ)ଏହିପ୍ରକାରର, ଏହି ରୂପର ।

ଏତାଦୃକ୍ଷ—ବିଂ.(ଏତଦ୍+ଦୃଶ୍+କସ୍) ଏହିରୂପ, ଏହିପରି ।

ଏତାଦୃଶ—ବିଂ. (ଏତତ୍+ଦୃଶ୍+ଅ) ଏହାର ପରି, ଏପ୍ରକାରର ।

ଏତାବତ୍—ବିଂ. (ଏତଦ୍+ବତୁ)ଏହିପରିମାଣର, ଏତେବଡ଼, ଏତିକି, ଅବ୍ୟ. ଏହିପର୍ଯ୍ୟନ୍ତ, ଆଜଯାକେ ।

ଏତାବତ୍‌କାଳ—ବି. ଆଜ ପର୍ଯ୍ୟନ୍ତ ସମୟ ।

ଏତାବତା—ଅବ୍ୟ. ଏହାଦ୍ୱାରା, ଏଥିରୁ ।

ଏତାବନ୍ମାତ୍ର—ବିଂ. (ଏତାବତ୍+ମାତ୍ର) ଏହି ପରିମାଣ ମାତ୍ର ।

ଏତାବା—ଉତ୍ତର ପଶ୍ଚିମାଞ୍ଚଳର ଆଗ୍ରାବିଭାଗର ଗୋଟିଏ ଜିଲ୍ଲା ।

ଏତାବାନ୍—ବିଂ.ଏହି ପରିମାଣର,ଏତେ, ଏହିମାତ୍ର, ଏତିକ, ଏହାହିଁ ।

ଏତିକ—ଗ୍ରା. ସର୍ବ. (ସଂ-ଇୟତ୍) ଏହି ପରିମାଣ ମାତ୍ର, ଏହି ବିଷୟ ମାତ୍ର,(ବିଂ) ଏହି ପରିମିତ,(ଅବ୍ୟ) ଏହି ପର୍ଯ୍ୟନ୍ତ ।

ଏତେ—ଗ୍ରା.ସର୍ବ ଓ ବିଂ.ଏହି ପରିମାଣ, ଏହି ସଂଖ୍ୟକ, ଏହି ପରିମାଣରେ, ଏହି ପ୍ରକାରେ, ଏହା ।

ଏତେକ, (ତକ)—ଗ୍ରା.ସର୍ବ.ବିଂ. ଅବ୍ୟ. ଏହି ପରିମାଣ, ଏତେ (ଦେଖ) ।

ଏତେକାଳ—ଗ୍ରା. ବି. (ସଂ—ଏତତ୍+କାଳ) ଏତେ ସମୟ, ଏପର୍ଯ୍ୟନ୍ତ କାଳ, ଏସମୟ, ବର୍ତ୍ତମାନ, ଏତେ ବହୁତ ସମୟ ।

ଏତେକାଳେ(କେ)—ଗ୍ରା.ବି. ଏତେ ସମୟରେ, ଏତେ ସମୟ ପରେ, ଏତେ ବିଳମ୍ବରେ ।

ଏତେଗୁଡ଼ାଏ—ଗ୍ରା.ବିଂ. (ଅନାଦରାର୍ଥକ) ଏତେ ପରିମିତ, ଏତେ ସଂଖ୍ୟାରେ,(ବି) ଏତେ ପରିମିତ ବସ୍ତୁ ବା ବ୍ୟକ୍ତି ।

ଏତେଗୁଡ଼ିଏ—ଗ୍ରା. ବିଂ. ( ଆଦରାର୍ଥକ ) ଏତେ ଗୁଡ଼ାଏ (ଦେଖ) ।

ଏତେଘାନ୍ତ — ଗ୍ରା. ଅବ୍ୟ.(ସଂ — ଏତଦ୍ ଓ ଘାତ ) ଏତେବେଳପର୍ଯ୍ୟନ୍ତ, ଏତେ ଶୀଘ୍ର, ଏତେବେଗରେ, ଏତେଯୋରରେ ।

ଏତେଦୂର — ଗ୍ରା. ଅବ୍ୟ. ଏହିପରି ଅବସ୍ଥା, ଏତେସର ।

ଏତେବେଳକୁ — ଗ୍ରା.ଅବ୍ୟ. ଏହିସମୟକୁ, ଏତେସମୟ ଅତୀତ ହେବା ପରେ ।

ଏତେବେଳୁଁ — ଗ୍ରା.ଅବ୍ୟ. ଏହି ସମୟରୁ, ବର୍ତ୍ତମାନଠାରୁ ।

ଏତେବେଳେ -- ଗ୍ରା.ଅବ୍ୟ,ଏହିସମୟରେ, ବର୍ତ୍ତମାନ ।

ଏତେମାତ୍ର — ଗ୍ରା. ଅବ୍ୟ. ଏତେକମାତ୍ର (ଦେଖ) ।

ଏତେସର — ଗ୍ରା. ଅବ୍ୟ. (ସଂ-ଏତଦ୍ + ସଦୃଶ ) ଏପରି ଅବସ୍ଥା, ଏହିପ୍ରକାରେ, ଏହିପରି, ଏସନ, (କ୍ରି.ବିଂ.) ଏରୂପେ, ଏହିପରି,(ଗ୍ରା.ବି.) ଏତେପର୍ଯ୍ୟନ୍ତଅବସ୍ଥା, (ବିଂ)ଏତାଦୃଶ ଅବସ୍ଥାପନ୍ନ,ଏତେବଡ଼ ।

ଏତେସରକ — ଗ୍ରା.କ୍ରି.ବିଂ. ଏହି ଅବସ୍ଥା ପର୍ଯ୍ୟନ୍ତ, ଏତେବଡ଼, ଆଜିପର୍ଯ୍ୟନ୍ତ, ଏତେଦିନ ପର୍ଯ୍ୟନ୍ତ ।

ଏଥ — ଗ୍ରା. ଅବ୍ୟ. ( ସଂ-ଅତ୍ର ) ଏଠାକୁ, ଏଠାରେ,ଏଥିରେ, ଏଥିର ।

ଏଥକୁ — ଗ୍ରା. ଅବ୍ୟ.(ସଂ-ଅତ୍ର) ଏଠାକୁ, ଏଥିକୁ, ଏସମ୍ବନ୍ଧେ, ଏବିଷୟରେ, ଏଥିଲାଗି ।

ଏଥର — ଗ୍ରା. ଅବ୍ୟ, ଏଣିକି, ଏବେ, ଏହି ଥରେମାତ୍ର, ଏହିଥର, ଏହିବାର, ବର୍ତ୍ତମାନ, ଅତଃପର ।

ଏଥରକୁ — ଗ୍ରା. ଅବ୍ୟ. ଏଥର (ଦେଖ) ।

ଏଥି — ଗ୍ରା. ଅବ୍ୟ. ଏଥିରେ, ଏଠାରେ ।

ଏଥିକି (କୁ) — ଗ୍ରା. ଅବ୍ୟ. (ସଂ-ଅତ୍ର)ଏ ବିଷୟକୁ, ଏବିଷୟପାଇଁ,ଏବିଷୟରେ, ଏ ସମ୍ବନ୍ଧେ ।

ଏଥିକଗ୍ରହିଁ — ଗ୍ରା. ଅବ୍ୟ. ଏ ବିଷୟକୁ ସ୍ୱୀକାର କର ।

ଏଥିକପ୍ରତି — ଗ୍ରା. ଅବ୍ୟ. ଏହାଅପେକ୍ଷା ।

ଏଥିପାଇଁ(କି)ଲାଗି - ଗ୍ରା.ଅବ୍ୟ.ଏନିମନ୍ତେ, ଏ ହେତୁ ରୁ ।

ଏଥୁ (ଥୁଁ) — ଗ୍ରା. ( ଅବ୍ୟ ) ଏଠାରୁ, ଏବିଷୟରୁ, ଏଠାକୁ. ଏହିଠାରୁ ।

ଏଥୁଅନ୍ତେ(ନ୍ତରେ,ନନ୍ତରେ)-- ଗ୍ରା.(ଅବ୍ୟ) ଏ ଉତ୍ତାରୁ ।

ଏଥୁଁ ବଳି — ଗ୍ରା. ଅବ୍ୟ. ଏହା ଅପେକ୍ଷା, ଏଥିକ ପ୍ରତି, ଏ ବିଷୟରୁ ଅଧିକ ।

ଏଥେ -- ଗ୍ରା. ଅବ୍ୟ. ଏଥିମଧ୍ୟରେ, ଏଥିରେ,ଏଠାରେ,ଏହାଦ୍ୱାରା,ଏଠାକୁ ।

ଏଦର — ଗୁଜରାଟର କାଥିୟାବାଡ଼ ଅନ୍ତର୍ଗତ ଗୋଟିଏ ପ୍ରଧାନ ରାଜପୁତ ରାଜ୍ୟ ।

ଏଧ — ପ୍ରା. ( ସମ୍ପ ) ଅବ୍ୟ. ଏଣେ, ଏଠାରେ, ଏଦେଗରେ ।

ଏଧ୍ — (ଧାତୁ) ବୃଦ୍ଧି ପାଇବା ।

ଏଧ — ପୁଂ. ବି. ( ଏଧ୍ + ଅ ) ଇନ୍ଧନ, ଜାଳିବାକାଠ,ତୃଣ,କୁଟା, ଶୁଖିଲାଘାସ ।

ଏଧଃ — କ୍ଲୀ. ବି. (ଏଧ + ଅସ) ଇନ୍ଧନ, ଜାଳେଣି କାଠ, ଶୁଖିଲା ଘାସ ।

ଏଧତୁ — ପୁଂ.ବି. (ଏଧ +.ଚତୁଃ)ପୁରୁଷ, ଅଗ୍ନି, (ବିଂ) ବୃଦ୍ଧିଯୁକ୍ତ ।

ଏଧମାନ — ବିଂ.(ଏଧ + ମାନ)ବର୍ଦ୍ଧମାନ, ଯେ ବର୍ଦ୍ଧିତହୋଇଅଛି,(ସ୍ତ୍ରୀ)ଏଧମାନା ।

ଏଧା — ବି.ସ୍ତ୍ରୀ.(ଏଧ + ଅ + ଆ)ସମୃଦ୍ଧି, ଉପଚୟ, ବୃଦ୍ଧି ।

ଏଧିତ — ବିଂ. (ଏଧ + କ.ତ)ବୃଦ୍ଧିପ୍ରାପ୍ତ, ବର୍ଦ୍ଧିତ, ବିସ୍ତାରିତ, ପ୍ରଜ୍ୱଳିତ ।

ଏନ — ପ୍ରା. ( ସମ୍ପ ) ସ୍ତ୍ରୀ ପ୍ରତ୍ୟୟ, ସ୍ତ୍ରୀଲିଙ୍ଗ ପ୍ରତ୍ୟୟ ଯଥା — ଭିଖାରେନ୍ — ଭିକାରୁଣୀ ।

ଏନଃ — ବି. କ୍ଲୀ. ( ଇ + ଅସ୍ ) ପାପ, ଅପରାଧ, ନିନ୍ଦା ।

ଏନସ୍ — ବି. ଏନଃ (ଦେଖ) ।

ଏନ୍ତା — ଗ୍ରା. କ୍ରି. ବିଂ. ଏପରି, ଏଭଳି, ଏମନ୍ତ, (ବିପ — ସେନ୍ତା) ।

ଏନୁଡ଼ — ଗ୍ରା. ବି. ଅନୁଡ଼ (ଦେଖ) ।

ଏପଟସେପଟ — ଗ୍ରା.ଅବ୍ୟ,ଏକୂଳସେକୂଳ, ଏଦଗ ସେଦଗ,ଏପକ୍ଷ ସେପକ୍ଷ, ଏପାଖ ସେପାଖ ।

ଏପରି — ଗ୍ରା.ବିଂ. (ସଂ-ଏତଦ୍ + ପ୍ରକାର) ଏବଂଭୂତ, ଏପରି ଉତ୍ତମ ।

ଏପରି — ଗ୍ରା.ଅବ୍ୟ(ସଂ — ଏତଦ୍ + ପ୍ରାୟ) ଏହିପ୍ରକାରେ, ଏବଂଭୂତ ।

ଏପର୍ଯ୍ୟନ୍ତ — ଗ୍ରା.ଅବ୍ୟ.ଏହିସମୟପର୍ଯ୍ୟନ୍ତ, ଏତେଦୂରଯାଏ ।

ଏପାର — ଗ୍ରା. ବି. ଏପଟ,ଏତଟ,ଏପାଖ, ଏକୂଳ ।

ଏପାଳି - ଗ୍ରା.ଅବ୍ୟ. ଏବେ,ଏଣିକି,ଏଥରକ

ଏଭଳି — ଗ୍ରା. ଅବ୍ୟ. ଏପରି, ଏବଂଭୂତ ।

ଏଭଳିଆ(କା) — ଗ୍ରା.ବିଂ. ଏହିପ୍ରକାରର, (ଅବ୍ୟ)ଏଭଳି, ଏପରି ।

ଏଭିତରେ — ଗ୍ରା.ଅବ୍ୟ. ଏଥିମଧ୍ୟରେ,ଏହି ସମୟ ମଧ୍ୟରେ ।

ଏଭେ — ଗ୍ରା. ଅବ୍ୟ. ଏବେ ।

ଏମ — ବିଂ. (ଇଣ + ମ) ପ୍ରାପ୍ୟବିଷୟ ।

ଏମତ — ଗ୍ରା. ଏହିପରି,ଏହିରୂପ,ଏମନ୍ତ ।

ଏମନ୍ତ(ନ୍ତ)କା — ଗ୍ରା. ଅବ୍ୟ. ଏପରି, ଏହି ପ୍ରକାର,ଏତାଦୃଶ,ଏଭଳି,ଏହିପ୍ରକାରରେ, ଏହି ଭାବରେ ।

ଏମନ୍ — କ୍ଲୀ.(ଇଣ + ମନ୍ )ପଥ,ଅବସ୍ଥିତ, [ ସ୍ଥାନ,ଗମନ ।

ଏମାନ — ଗ୍ରା.ସର୍ବ. (ବହୁବଚନ)ଏସମସ୍ତ ବସ୍ତୁ ବା ବିଷୟ ।

ଏମା — ଗ୍ରା. ଭୟସୂଚକ ଶବ୍ଦ ।

ଏମାନେ — ଗ୍ରା.ସର୍ବ. (ବହୁବଚନ)(ମନୁଷ୍ୟଙ୍କପ୍ରତି ପ୍ରଯୁଜ୍ୟ) ଏ ମନୁଷ୍ୟମାନେ ।

ଏମାରତ — ଯା. ବି. ଅଟ୍ଟାଳିକା, ପକ୍କା କୋଠାବାଡ଼ି ।

ଏମାରତି — ଯା. ବି. ଅଟ୍ଟାଳିକାର କାର୍ଯ୍ୟ, ରାଜ ମିସ୍ତ୍ରୀର ବ୍ୟବସାୟ ।

ଏମାରମଠ — ଉତ୍କଳର ଶ୍ରୀକ୍ଷେତ୍ରସ୍ଥ(ପୁରୀ) ପ୍ରଧାନ ମଠ ।

ଏମିତି (କା) — ଗ୍ରା. ଅବ୍ୟ.ଏମନ୍ତ(ଦେଖ)

ଏସ୍ତା — ଗ୍ରା.ସର୍ବ. (ସଂ — ଏତଦ୍)ଏହିତା, ଏହି ବିଷୟ, ଏହାହିଁ ।

ଏଯାଏ—ଗ୍ରା. ଅବ୍ୟ. (ଏ—ଏତତ୍ ଓ ଯାବତ୍) ଏହିସ୍ଥାନ, ଅବସ୍ଥା ବା କାଳପର୍ଯ୍ୟନ୍ତ ।

ଏଯାକେ—ଗ୍ରା.ଅବ୍ୟ. ଏଯାଏ (ଦେଖ) ।

ଏଯାବତ୍(କାଳ)-ଗ୍ରା. ଅବ୍ୟ.ଅବଧି,ଆଜ ପର୍ଯ୍ୟନ୍ତ, ବର୍ତ୍ତମାନ ପର୍ଯ୍ୟନ୍ତ ।

ଏରକମ—ଗ୍ରା.ବି. ଏହି ବସ୍ତୁ,ଏହି ପ୍ରକାରର ବସ୍ତୁ, (ବିଂ) ଏହି ପ୍ରକାରର ।

ଏରକା- ବି.ସ୍ତ୍ରୀ.(ଇ+ରକ୍+ଆ)ସନ୍ତରା, ଶରଗଛ, ଗ୍ରନ୍ଥିହୀନ ତୃଣବିଶେଷ ।

ଏରଙ୍ଗ—ବି. ପୁଂ. (ଆ+ଈର+ଅଙ୍ଗ) ମତ୍ସ୍ୟବିଶେଷ, ରଙ୍ଗାମାଛ ।

ଏରଙ୍ଗିଆ—ଗ୍ରା. (ସମ୍ବ) ବିଂ. ଅଙ୍କଟ, ଅବୁଝା, ଏକବାଗିଆ ।

ଏରଣ—ମଧ୍ୟପ୍ରଦେଶାନ୍ତର୍ଗତ ସାଗର ଜିଲ୍ଲାର ଗୋଟିଏ ପ୍ରାଚୀନ ନଗର, ଏଠାରେ ଚମତ୍କାରଜନକ ପ୍ରକାଣ୍ଡ ଶିଳାସ୍ତମ୍ଭ ଅଛି ।

ଏରଣ୍ଡ—ବି.ପୁଂ. (ଆ—ଈର+ଅଣ୍ଡଚ୍) ବୃକ୍ଷବିଶେଷ, ଜଡ଼ାଗଛ, ଗବଗଛ ।

ଏରଣ୍ଡଜ—ବିଂ. (ଏରଣ୍ଡ+ଜନ୍+ଅ) ଏରଣ୍ଡବୃକ୍ଷଜାତ ।

ଏରଣ୍ଡତୈଳ—ଏରଣ୍ଡବୀଜୋତ୍ପନ୍ନ ତୈଳବିଶେଷ, ଜଡ଼ାତେଲ ।

ଏରଣ୍ଡପତ୍ରିକା—ବି. ସ୍ତ୍ରୀ. ଦନ୍ତୀ ବୃକ୍ଷ ।

ଏରଣ୍ଡଫଳା – ବି.ସ୍ତ୍ରୀ. ଦନ୍ତୀ ବୃକ୍ଷ, ଲଘୁଦନ୍ତୀ, ବିଶଲ୍ୟା, ଉଦୁମ୍ବରପର୍ଣ୍ଣୀ, ଶୀଘ୍ରା, ମକୂଳକ,ନକୁମ୍ଭ ।

ଏରଣ୍ଡା—ବି.ସ୍ତ୍ରୀ.(ଆ-ଈର+ଅଣ୍ଡ+ଆ) ପିପ୍‌ପଳୀ ।

ଏରଣ୍ଡବନ୍ଧ—ଗ୍ରା.ବି.ଇରୁଣ୍ଡିବନ୍ଧ (ଦେଖ)

ଏରା—ଗ୍ରା. ବି. ଏକପ୍ରକାର ଜଳଚର ଶୁକ୍ଳ ପକ୍ଷୀବିଶେଷ,(ନୀଚଭାଷା)ଏଚୁଡ଼ା ।

ଏରଆ—ଯା. ଭୂମିର କ୍ଷେତ୍ରଫଳ ।

ଏରୁଣ୍ଡି—ଗ୍ରା.ବି. ଦ୍ୱାରବନ୍ଧର ନିମ୍ନଅଂଶୀ, ଇରୁଣ୍ଡି । [ କାଶୀ ।

ଏରୁ-ବିଂ.(ଆ—ଈର+ଉ)ଗନ୍ତା,ଗମନ

ଏରୂପ— ଗ୍ରା. ବି. ଏବଂବିଧ, (କ୍ରି.ବିଂ.) ଏ ପ୍ରକାରେ ।

ଏରୂପେ—ଗ୍ରା. କ୍ରି.ବିଂ. ଏପ୍ରକାରେ ।

ଏରେ—ଗ୍ରା. ଅବ୍ୟ. (ସଂ—ହରେ) ସମ୍ବୋଧନ ହେ ।

ଏରୋପ୍ଲେନ୍— ଯା. ବି. ଉଡ଼ାଜାହାଜ, ବ୍ୟୋମଯାନ, ବାୟୁରେ ଉଡ଼ିବା କଳ ।

ଏଲ.ଇ.—( ସାଙ୍କେତିକ ) ଆଇ. ଏ. ପରୀକ୍ଷାର ପୂର୍ବତନ ନାମ ।

ଏଲଗିନ—ଭାରତବର୍ଷର ଜଣେ ଗଭର୍ଣ୍ଣର ଜେନେରାଲ ଓ ରାଜପ୍ରତିନିଧି ବଡ଼ଲାଟଙ୍କ ନାମ ।

ଏଲକ—ବି. ପୁଂ (ଏଲ+ଅକ) ମେଷ ।

ଏଲଗଜ—ବି. ଚକ୍ରୁଣ୍ଡା (ଗଛ) ।

ଏଲଗାଏତ୍—ଗ୍ରା. ଅବ୍ୟ. ଏହିଠାରୁ ଆରମ୍ଭ କରି ।

ଏଲବାଳୁ—ବି.କ୍ଲୀ (ଏଲା+ବଲ+ଉଣ୍) ଗନ୍ଧଦ୍ରବ୍ୟବିଶେଷ, ଗନ୍ଧଲାଳୁକା ।

ଏଲବାଳୁକ(କା)—ବି. କ୍ଲୀ. ଗନ୍ଧଦ୍ରବ୍ୟବିଶେଷ, ଗନ୍ଧଲାଳୁକା ।

ଏଲବାସ—ଯା. ଯାବନିକ ପରିଚ୍ଛଦବିଶେଷ ।

ଏଲବିଲ— ବି. ପୁଂ. କୁବେର ।

ଏଲା—ବି.ସ୍ତ୍ରୀ. (ଇଲ+ଅ+ଆ)ଅଳାଇଚ, ବହୁଲଗନ୍ଧା, ଐନ୍ଦ୍ରୀ, ଦ୍ରାବିଡ଼ୀ, କପୋତପର୍ଣ୍ଣୀ, ବାଲା, ବଲବତୀ, ହିମା, ଚନ୍ଦ୍ରିକା ।

ଏଲାଇଚ—ଗ୍ରା. ବି. ଅଳାଇଚ (ଦେଖ) ।

ଏଲାକ—ବି. ପୁଂ. ମୁନିବିଶେଷ ।

ଏଲାକା—ଯା.ବି.ସୀମାନା,ଅଧିକୃତସ୍ଥାନ, ଇଲାକା ।

ଏଲାକାଦାର—ଯା.ବିଂ. ସୀମାନାଦାର ।

ଏଲାଗେ-ଏହିଲାଗେ—ଗ୍ରା. ଅବ୍ୟ. ବର୍ତ୍ତମାନ, ଏକ୍ଷଣି, ଏହିକ୍ଷଣି ।

ଏଲାଚ—ଗ୍ରା. ବି. ଅଳାଇଚ, ଏଲା ।

ଏଲାଦିଗଣ—ବି.ପୁଂ. ଅଳାଇଚ ପ୍ରଭୃତି ଔଷଧିଗଣବିଶେଷ ।

ଏଲାଦିଗୁଡ଼ିକା-ବି.ସ୍ତ୍ରୀ. ରକ୍ତପିତ୍ତାଧିକାରର ଔଷଧବିଶେଷ ।

ଏଲାପର୍ଣ୍ଣୀ—ବି. ସ୍ତ୍ରୀ. ରାସ୍ନା, ସୁବହା, ସୁବହା ।

ଏଲାପତ୍ର—ବି. ପୁଂ. ସର୍ପବିଶେଷ ।

ଏଲାପୁର—ଗୋଟିଏ ପ୍ରାଚୀନ ଗିରି ବା ଗିରିଦୁର୍ଗ ।

ଏଲାବଲ୍ଲୀ—ବି. ସ୍ତ୍ରୀ ଏଲାଲତା ।

ଏଲାହିସ୍ଥତ—ଯା. ବି. ସ୍ୱର୍ଗ ।

ଏଲିଜାବେଥ—ଯା. ମୋଗଲ ସମ୍ରାଟ୍ ଆକବରଙ୍କ ସମସାମୟିକ ଷୋଡ଼ଶ ଶତାବ୍ଦୀର ଇଂଲଣ୍ଡର ପ୍ରସିଦ୍ଧ ରାଣୀ ।

ଏଲୀକା-ଏଲକା—ବି.ସ୍ତ୍ରୀ.(ଆ+ଇଲ+ଇକ+ଆ) ଛୋଟଅଳାଇଚ,ସୂକ୍ଷ୍ମୈଲା, ଗୁଜରାଟ ।

ଏଲୁକ—ବି.କ୍ଲୀ.(ଇଲ+ଉକ) ଗନ୍ଧଦ୍ରବ୍ୟ ବିଶେଷ, ଏଲବାଳୁକ ।

ଏଲେନବରା—ଭାରତବର୍ଷର ଜଣେ ଗଭର୍ଣ୍ଣର ଜେନେରାଲ, ବଡ଼ଲାଟ ।

ଏଲେମ—ଯା. ଗୁରୁତ୍ୱ, ସ୍ମୃତିଶକ୍ତି, ବୁଝିବାର କ୍ଷମତା ।

ଏଲେମଦାର—ଯା. ବୁଦ୍ଧିମାନ, ଚତୁର, କାର୍ଯ୍ୟନିପୁଣ ।

ଏଲ୍ୱାଳୁକ—ବି. କ୍ଲୀ. ଏଲବାଳୁକ, ଗନ୍ଧଦ୍ରବ୍ୟବିଶେଷ ।

ଏବ—ଅବ୍ୟ. (ଇ+ବ)ନିଶ୍ଚୟ,ସାଦୃଶ୍ୟ, ନିୟୋଗ, ବାକ୍ୟପୂରଣ, ଦୃଢ଼ପ୍ରୟୋଗ, ବିନିଗ୍ରହ, ଅନବେଗ,ପରିଭବ,ଈଷଦର୍ଥ, ଏବଂ, ତୁ, ପୁନଃ, (ବିଂ) ଗମନକାରୀ, (କ୍ଲୀ) ଗମନ ।

ଏବଂ—ଅବ୍ୟ. ସାମ୍ୟ, ସାଦୃଶ୍ୟ, ବନ୍ତୁ, ବା, ଯଥା, ତଥା, ଇବ, ଅଙ୍ଗୀକାର, ଅର୍ଥପ୍ରଶ୍ନ, ପରିକୃତ, ଜିଜ୍ଞାସା, ଏହି ପ୍ରକାର, ଅନୁପ୍ରଶ୍ନ, ନିଶ୍ଚୟ, ନିର୍ଦ୍ଦେଶ ।

ଏବଂଗୁଣ—ବିଂ. ଏହିରୂପ ଗୁଣଯୁକ୍ତ, ଏହିପରି ଗୁଣବାନ୍ ।

ଏବଂବିଧ—ବିଂ. କ୍ରି.ବି. ଏହି ପ୍ରକାରେ, ଏହିରୂପ, ଇଦୃଶ, ଏପରି ।

ଏବଂଭୂତ — ବି°. (ଏବଂ + ଭୂ + ତ) ଏହିରୂପ, ଏହିପରି, ଇଦୃଶ, (ସ୍ତ୍ରୀ) ଏବଂଭୂତା ।

ଏବଂରୂପ — ବି°. ଏହିପ୍ରକାରେ (କ୍ଲୀ) ଏହିପ୍ରକାର ରୂପ ।

ଏବକା — ଗ୍ରା. ବି°. ବର୍ତ୍ତମାନ ସମୟର, ଆଧୁନିକ ।

ଏବକାଳ — ଗ୍ରା. ବି. ଏବ (ଦେଖ) ।

ଏବକାଳକୁ — ଗ୍ରା ଅବ୍ୟ. ଏବେ (ଦେଖ) ।

ଏବକୁ — ଗ୍ରା ଅବ୍ୟ ଏବେ (ଦେଖ) ।

ଏବକୁଏବେ — ଗ୍ରା, ଅବ୍ୟ, ଗୃହି ଗୃହିଁ, ହଠତ୍ ।

ଏବମାଦି — ବି°. ଏହିନମିତ୍ତ, ଏହିଠାରୁ ।

ଏବଯାଏ — ଅବ୍ୟ, ଆଜଯାଏ, ଏବତକ, ବର୍ତ୍ତମାନ ପର୍ଯ୍ୟନ୍ତ ।

ଏବସ୍ଥା — ବି°. ( ଏବଂ + ସ୍ଥା + କ୍ୱିପ୍ ) ରକ୍ଷକ ।

ଏବୟାମରୁତ୍ — ବି°.ପୁଂ. ଋଷିବିଶେଷ ।

ଏବୟାବନ — ବି°. ପୁଂ. ( ଏବଂ + ଯା + ବନ୍ ) ରକ୍ଷକ, ବିଷ୍ଣୁ, ଏହିପରି ଗମନଶୀଳ ।

ଏବର — ଗ୍ରା. ବି. ଏବକା ( ଦେଖ ), (ଗ୍ରା. ଗଞ୍ଜାମ) ଏହିକ୍ଷଣି, ଏହିମାତ୍ର ।

ଏବର୍ — ଯା. ନାମଞ୍ଜୁର ।

ଏବହୁଁ — ଗ୍ରା.ଅବ୍ୟ.ଆଜଠାରୁ, ବର୍ତ୍ତମାନ ଠାରୁ ।

ଏବାଗେ — ଗ୍ରା. ଅବ୍ୟ ଏହି ପ୍ରକାରରେ ।

ଏବାର — ପୁଂ. ବି. ( ଏବଂ + ଋ + ଅ ) ସୋମବିଶେଷ ।

ଏବାର(କ) — ଗ୍ରା.ଏହିସମୟ,ଏହିଥରକ ।

ଏବାରତ୍ — ଯା. ବି. ଭାଷାର ପଦ୍ଧତି, ବାକ୍ୟାଂଶ, କୌଣସି ଦଲିଲର ବର୍ଣ୍ଣିତ ବିଷୟ ।

ଏବାବଦ — ପୁଂ. ବି. (ଏବ + ଆ + ବଦ + ଅ) ଋତୁବିଶେଷ,(ଯା.) ଏହି ନମିତ୍ତ, ଏଥିପାଇଁ ।

ଏବିଧି — ଗ୍ରା. (ଅବ୍ୟ) ଏପରି ।

ଏଷ୍ — (ଧାତୁ) ଗମନ ।

ଏଷ — ସ୍ତ୍ରୀ.ବି.(ଏଷ + କ୍ୱିପ) ଗତି, ଇଚ୍ଛା ।

ଏଷ — ପୁଂ. ବି. ଅଗ୍ରବର୍ତ୍ତୀ ପୁରୁଷ, ଏହି ।

ଏଷଣ — କ୍ଲୀ. ବି. (ଆ + ଇଷ + ଅନ) ଗମନ, ଅନ୍ୱେଷଣ, (ପୁଂ) ଲୌହନିର୍ମ୍ମିତ ବାଣ, ଇଚ୍ଛା, ନାଳ ।

ଏଷଣା — ସ୍ତ୍ରୀ. ବି. (ଆ + ଇଷ୍ + ଅତ + ଅ) ଇଚ୍ଛା, ପ୍ରେରଣ, ଅନ୍ୱେଷଣ ।

ଏଷଣିକା — ସ୍ତ୍ରୀ. ବି. (ଏଷଣା + ଇକ + ଆ) ନାଳ, ଅସ୍ତ୍ରବିଶେଷ, ଏଷଣୀ ।

ଏଷଣୀ — ସ୍ତ୍ରୀ. ବି. (ଆ + ଇଷ୍ + ଅନ + ଈ) ନାଳ, ସୁଶ୍ରୁତୋକ୍ତ ଅସ୍ତ୍ରବିଶେଷ, ଏଷଣିକା ।

ଏଷଣୀୟ — ବି°. (ଇଷ + ଅନୀୟ) ଗମ୍ୟ, ବାଞ୍ଛନୀୟ, ବିଚାର୍ଯ୍ୟ ।

ଏଷା — ସ୍ତ୍ରୀ.ବି. (ଇଷ୍ + ଅ + ଆ) ଇଚ୍ଛା, ଅଗ୍ରବର୍ତ୍ତିନୀ (ସ୍ତ୍ରୀ) ।

ଏଷାବୀର — ପୁଂ. ସ୍ତ୍ରୀ. ସ୍ଥାନାସ୍ଥାନବିବେଚନାଶୂନ୍ୟ ହୋଇ ପ୍ରତିଗ୍ରାହକ, ନିନ୍ଦିତବ୍ରାହ୍ମଣବିଶେଷ ।

ଏଷିତା — ପୁଂ.ବି°(ଇଷ + କ,ତୃ) ଇଚ୍ଛୁକ, ଅଭିଳାଷୀ, (ସ୍ତ୍ରୀ) ଏଷିତ୍ରୀ ।

ଏଷୀ — ପୁଂ. ବି°.(ଇଷ୍ + ଇନ୍) ଇଚ୍ଛୁକ, ଅଭିଳାଷକାରୀ, (ସ୍ତ୍ରୀ) ଏଷିଣୀ ।

ଏଷ୍ଟବ୍ୟ — ବି°. (ଇଷ୍ + ମି, ତବ୍ୟ) ବାଞ୍ଛନୀୟ, ଅଭିଲଷଣୀୟ ।

ଏଷ୍ଟା — ପୁଂ.ବି°.(ଇଷ୍ + ତୃ) ଅଭିଳାଷୁକ ।

ଏଷ୍ଟି — ସ୍ତ୍ରୀ.ବି.( ଇଷ୍ + ତି) ଅଭିଯଜାନ, ଅଭିକାମନା ।

ଏଷ୍ୟ — ବି°.(ଇଷ୍ + ଯ) ବାଞ୍ଛନୀୟ, ଗନ୍ତବ୍ୟ, ଏଷଣକାର୍ଯ୍ୟସାଧ୍ୟ ରୋଗବିଶେଷ ।

ଏଷ୍ଟିମେଟ୍ — ଯା. କାର୍ଯ୍ୟପୂର୍ବରୁ କାର୍ଯ୍ୟର ଆନୁମାନିକ ବ୍ୟୟ ନିର୍ଦ୍ଧାରଣ ।

ଏଷ୍ଟେଟ୍ — ଯା. ବଡ଼ଜମିଦାରି, ଦେଶୀୟ ରାଜ୍ୟ ।

ଏସ.ପି, — ଯା. ପୁଲିସସୁପରିଂଟେଣ୍ଡେଣ୍ଟ, ଜିଲାର ପ୍ରଧାନ ପୁଲିସ୍ ହାକିମ ।

ଏସରାଜ୍ — ଯା. ବି. ସୁତଙ୍ଗୀ ବାଦ୍ୟ ।

ଏସକାସାତ୍ — ଗ୍ରା. (ଅବ୍ୟ) ଏଥିପାଇଁ ।

ଏସକାସୁଁ ଗ୍ରା. (ଅବ୍ୟ) ଏସକାସାତ୍, ଏଥିପାଇଁ ।

ଏସକାସେ — ଗ୍ରା. ଅବ୍ୟ. ଏସକାସାତ୍, ଏଥିପାଇଁ ।

ଏସନ(କ) — ଗ୍ରା.ବି. ଏକପ୍ରକାର, ଏହିପରି, ଏବଂଭୂତ ।

ଏସମ — ଗ୍ରା.ଅବ୍ୟ.(ସଂ — ଏତତ୍ + ସମ) ଏପରି, ଏମନ୍ତ ।

ଏସରାର ଓ ଏସରାଜ — ଯା. ସଙ୍ଗୀତବାଦ୍ୟଯନ୍ତ୍ରବିଶେଷ ।

ଏସରି — ଗ୍ରା. ଅବ୍ୟ. ଏହିପରି ।

ଏସରିକି — ଗ୍ରା. ଅବ୍ୟ. ଏତେସରିକି, ଏସ୍ଥାନପର୍ଯ୍ୟନ୍ତ, ଏକାଳପର୍ଯ୍ୟନ୍ତ, ଏପରି ।

ଏସାକୁତେସା, ଏସାତେସା — ଗ୍ରା.କ୍ରି. ବି°. ଏପରି, ସେପରି, ଏପ୍ରକାରେ କିମ୍ବା ସେପ୍ରକାରେ (ବି) ଅନିର୍ଦ୍ଦିଷ୍ଟ ଉତ୍ତର, ଯଥା ବୋଇଲେ ତା, 'ଯେସାକୁ ତେଷା' ମଧ୍ୟ ପ୍ରୟୋଗ କରାଯାଏ ।

ଏସିଆ — ଯା. ବି. ପୃଥିବୀର ଚାରି ମହାଦ୍ୱୀପ ମଧ୍ୟରୁ ଗୋଟିଏ ମହାଦ୍ୱୀପ, ଆସିୟା ମହାଦେଶ ।

ଏସିଡ଼ — ଯା. ବି ଅମ୍ଳରସଯୁକ୍ତ ରସାୟନିକ ଦ୍ରବ୍ୟ ବା ବାଷ୍ପ ।

ଏସୁଁ — ଗ୍ରା. ବି. ଏସନ୍, ଏହିସନ, ଏବର୍ଷ ।

ଏସେ — ଯା. ବି. ରଚିତପ୍ରବନ୍ଧ ।

ଏସେନ୍ସ — ଯା. ବୈଜ୍ଞାନିକ ପ୍ରଣାଳୀରେ ପୁଷ୍ପାଦି ସୁଗନ୍ଧ ଦ୍ରବ୍ୟରୁ ନିଷ୍କାସିତ ନିର୍ଯ୍ୟାସ ।

ଏସ୍ତାହାର — ଯା. ବି. ବିଜ୍ଞାପନ ପତ୍ର ।

ଏହ — ବି°. (ଆ + ଇହ + ଅ) ସମ୍ୟକ୍ ଚେଷ୍ଟାଯୁକ୍ତ (ପୁଂ) କ୍ରୋଧ ।

ଏହା — ଗ୍ରା. ସର୍ବ. (ସଂ — ଏତତ୍) ଇଦମ୍ ଓ ଅଦସ୍ ଶବ୍ଦର ରୂପାନ୍ତର, ଏ ପଦାର୍ଥ,

ଏହାରି (ହିଁ) — ଗ୍ରା.ସର୍ବ. (ସଂ — ଏତତ୍ + ହି) ଏହାନିକଟେ, ଏହାମଧ୍ୟ ।

ଏହାଯେନ — ଗ୍ରା. ଅବ୍ୟ. ଏଥି ହେତୁରୁ । ଏଥିଲାଗି ।

ଏହାଠୁଁ (ଠଉଁ) — ଗ୍ରା.ସର୍ବ. ଏହାଅପେକ୍ଷା

ଏହାତହୁଁ — ଗ୍ରା. ସର୍ବ. ଏହା ଅପେକ୍ଷା ।

ଏହାନ୍ତ — ଗ୍ରା. ସର୍ବ (ପ୍ରା — କ) ଏହାଙ୍କୁ

ଏହି — ସ୍ତ୍ରୀ.ବି. (ଆ + ଇହ + ଇ) ସମ୍ୟକ୍ ଚେଷ୍ଟାଶୀଳା (ସ୍ତ୍ରୀ) ।

ଏହ — (ଧାତୁ) ଆସ, ଆସନ୍ତୁ ।

ଏହ୍ବ—ଗ୍ରା. ସର୍ବ.(ସଂ—ଏତଦ୍)ଏ,ଏଇ, ଉଲ୍ଲିଖିତ ବା ସମ୍ମୁଖରେ ଦେଖାଯିବା ବସ୍ତୁ ବା ବ୍ୟକ୍ତି।

ଏହ୍ବକ୍ଷଣି—ଗ୍ରା. ଅବ୍ୟ. ବର୍ତ୍ତମାନ (ସଂ— ଏତଦ୍ କ୍ଷଣ) ଏହ୍ବକ୍ଷଣରେ।

ଏହ୍ବଟା-ଗ୍ରା.ସର୍ବ.(ଅନାଦରାର୍ଥକ)ଏହ୍ବ,ଏ।

ଏହ୍ବଟି—ଗ୍ରା.ସର୍ବ(ଆଦରାର୍ଥକ)ଏହ୍ବ, ଏ।

ଏହ୍ବଠଇଁ—ଗ୍ରା. ସର୍ବ, ଏହ୍ବଠୁଁ।

ଏହ୍ବଠା—ଗ୍ରା. ସର୍ବ, ଏସ୍ଥାନ।

ଏହ୍ବଠିକା(ର)-ଗ୍ରା.ବିଂ.ଏସ୍ଥାନର,ଏଠାର, ସ୍ଥାନୀୟ।

ଏହ୍ବଠକ(କୁ)—ଗ୍ରା. ସର୍ବ.ଏହ୍ବ ସ୍ଥାନକୁ।

ଏହ୍ବଠୁଁ(ଠିରୁ)—ଗ୍ରା. ସର୍ବ. ଏହ୍ବ ସ୍ଥାନରୁ, ଆଜଠାରୁ।

ଏହ୍ବତା—ଗ୍ରା. ସର୍ବ. ଏହାଇଁ।

ଏହ୍ବଧାପେ—ଗ୍ରା. ସର୍ବ. ଏହ୍ବକ୍ଷଣି।

ଏହ୍ବନଗଦ—ଗ୍ରା.ଅବ୍ୟ. ବର୍ତ୍ତମାନ, ଏହ୍ବକ୍ଷଣି, ଏହ୍ବ ମୁହୂର୍ତ୍ତରେ।

ଏହ୍ବପର—ଗ୍ରା. ଅବ୍ୟ. ଏହ୍ବପ୍ରକାରେ।

ଏହ୍ବମାତ୍ର—ଗ୍ରା. ଅବ୍ୟ. (ସଂ—ଏତଦ୍+ ମାତ୍ର) ବର୍ତ୍ତମାନ, ଏତିକିମାତ୍ର।

ଏହ୍ବରୂପ—ଗ୍ରା.ବି.ବିଂ.ଏହ୍ବପ୍ରକାରରେ।

ଏହ୍ବଲଗେ—ଗ୍ରା. ଅବ୍ୟ. ଠିକ୍ ପୂର୍ବବର୍ତ୍ତୀ ମୁହୂର୍ତ୍ତରେ, ଏହ୍ବକ୍ଷଣରେ, ବର୍ତ୍ତମାନ, ଠିକ୍ ପରବର୍ତ୍ତୀ ମୁହୂର୍ତ୍ତରେ।

ଏହ୍ବସମୟରେ—ଗ୍ରା.ଅବ୍ୟ. ଏହ୍ବକାଳେ।

ଏହାର—ଗ୍ରା. ସର୍ବ. ଏହ୍ବଲୋକର।

ଏହୁ—ଗ୍ରା.ସର୍ବ.(ସଂ-ଏତଦ୍+ହୁ) ଏହ୍ବ।

ଏହେ—ଗ୍ରା. ସମ୍ବୋଧନ, ଆହେ, ହେ।

ଏହେଁ—ଗ୍ରା.ଅବ୍ୟ.ଅସମ୍ମତିଅର୍ଥକ ଅବ୍ୟୟ, ନା, ଉହୁଁ, ଘୃଣାବ୍ୟଞ୍ଜକ।

ଏହେନ—ଗ୍ରା. ବିଂ. (ପଦ୍ୟ) ଏସନ, ଏତାଦୃଶ, ଏପରି, (ଅବ୍ୟ) ଏହାଦ୍ୱାରା, ଏରୂପେ, ଏହ୍ବଯୋଗୁଁ, ଏପରି।

ଏହ୍ନେ—ଗ୍ରା.ଅବ୍ୟ.(ପଦ୍ୟ)ଏପରି,ଏହେନ (ଦେଖ)।

ଏହ୍ନେକ—ଗ୍ରା. ବିଂ. ଅବ୍ୟ. ଏହେନ, (ଦେଖ)।

# ଐ

ଐକାର—ଦ୍ୱାଦଶ ସ୍ୱରବର୍ଣ୍ଣ, ଦୀର୍ଘସ୍ୱର, ଏହାର ଉଚ୍ଚାରଣ ସ୍ଥାନ କଣ୍ଠ ଓ ତାଳୁ, ଦୀର୍ଘ ଓ ପ୍ଲୁତ,ଅନୁଦାତ୍ତ,ଉଦାତ୍ତ,ସ୍ୱରିତ, ଅନୁନାସିକ, ନିରନୁନାସିକ ଭେଦରେ ଦ୍ୱାଦଶପ୍ରକାର, ତନ୍ତ୍ରମତେ ଐକାର ପରମ ଦ୍ରବ୍ୟ ମହା କୁଣ୍ଡଳିନୀ, କୋଟି-ଚନ୍ଦ୍ରତୁଲ୍ୟ, ପଞ୍ଚପ୍ରାଣମୟ, ବ୍ରହ୍ମା, ବିଷ୍ଣୁ ଓ ରୁଦ୍ରମୟ, ବିନ୍ଦୁତ୍ରୟଯୁକ୍ତ ସଦା ଶିବ-ମୟ, ବର୍ଣ୍ଣ, ତନ୍ତ୍ରୋକ୍ତନାମ—ଲଜ୍ଜା, ଭୌତିକ, କାନ୍ତ, ବାୟବୀ, ମୋହିନୀ, ବିଭୁ, ଦକ୍ଷା, ଅଧର, ବିକୃତମୁଖୀ, କ୍ଷମାତ୍ମକ, ଜଗଦ୍‌ଯୋନି, ପରଞ୍ଜନ, ଅମୃତା, କପର୍ଦ୍ଦିଶ୍ରୀ, ପୀଠେଶ, ଅଗ୍ନି-ସମାତ୍ମକ, ତ୍ରିପୁରା, ଲୋହିତା, ରଜ୍ଜୀ, ବାଗ୍‌ଭବ, ଭୌତିକାସନ, ମହେଶ୍ୱର, ଦ୍ୱାଦଶୀ, ସରସ୍ୱତୀ, ବାମଜାନୁ, ବିମଳା, କାମକୋଟ, ବିଜୟ, ଅଂଶୁମାନ, ଜଟା ଦନ୍ତାନ୍ତ, ଯୋନି, ଅଧର, ଦାମୋଦର ପ୍ରଜ୍ଞା, ଧାତୁର ଅନୁବନ୍ଧ ବିଶେଷ।

ଐ—ଅବ୍ୟ, ଆହ୍ୱାନ, ଆମନ୍ତ୍ରଣ, ସ୍ମରଣ, ସମ୍ବୋଧନ, ଦୂରସ୍ଥବସ୍ତୁବୋଧକ।

ଐ—ପୁଂ.ବି. (ଆ+ଇଣ+ବିଚ)ମହେଶ୍ୱର, ଗ୍ରା. ବି. (ଧ୍ୱନ୍ୟନୁକରଣ)ବମନ, ବମନେଚ୍ଛା।

ଐକ—ବିଂ. (ଏକ+ଅ) ଏକାର୍ଥବୋଧକ, ଏକସମ୍ବନ୍ଧୀୟ।

ଐକତାନ—କ୍ଲୀ. ବି. (ଏକତାନ+ଅ) ବାଦ୍ୟବିଶେଷ, ଅନେକ ବାଦ୍ୟମାନଙ୍କର ସମୂହବାଦନ।

ଐକତାନବାଦନ—କ୍ଲୀ ବି. ଭିନ୍ନଜାତୀୟ ଅନେକ ବାଦ୍ୟମାନଙ୍କର ବିଭିନ୍ନ ଗ୍ରାମ ସ୍ୱରସଂଯୋଗରେ ଏକାବେଳେ ବାଦିତ ହେଲେ ତାହାକୁ ଐକତାନବାଦନ କହନ୍ତି।

ଐକତାନିକ—ବିଂ. (ଏକତାନ+ଇକ) ଏକଲୟବିଶିଷ୍ଟ ଏକସମୟରେ ବାଦିତ।

ଐକଧ୍ୟଂ—ଅବ୍ୟ.ଏକକାଳେ, ଏକବାରେ

ଐକପତ୍ୟ—କ୍ଲୀ. ବି. (ଏକପତି+ଷ୍ୟ,ଯ) ଚକ୍ରବର୍ତ୍ତିତ୍ୱ, ଏକାଧିପତ୍ୟ, ଏକଚ୍ଛତ୍ରଶାସନ।

ଐକପଦିକ—ବିଂ. (ଏକ+ପଦ+ଇକ) ଏକପଦଜ,ଏକବିଭକ୍ତ୍ୟନ୍ତପଦରୁଉତ୍ପନ୍ନ।

ଐକପଦ୍ୟ—କ୍ଲୀ. ବି. (ଏକପଦ+ଯ) ଅନେକ ପଦର ଏକରୂପ ଅର୍ଥବୋଧକରିବା।

ଐକଭାଗ୍ୟ—କ୍ଲୀ. ବି. (ଏକଭାଗ+ଯ) ଏକସ୍ୱଭାବତା।

ଐକମତ୍ୟ—କ୍ଲୀ. ବି. (ଏକମତ+ଷ୍ୟ,ଯ) ଏକରୂପ ଅଭିପ୍ରାୟ, ସମାନସମ୍ମତ, ସର୍ବସମ୍ମତ, (ବିଂ) ଏକମତଯୁକ୍ତ।

ଐକରାଜ୍ୟ—କ୍ଲୀ.ବି. (ଏକରାଜ+ଷ୍ୟ,ଯ) ଏକାଧିପତ୍ୟ, ଚକ୍ରବର୍ତ୍ତିତା, ସାର୍ବଭୌମତ୍ୱ।

ଐକଲବ୍ୟ—ପୁଂ. ବି. (ଏକଲବ୍ୟ+ଅ) ଏକଲୁ ନାମକ ଋଷିଙ୍କ ପୁତ୍ର, ଏକମତ ଅବଲମ୍ବନ, କଥାର ମେଳ।

ଐକଲ୍ୟ—କ୍ଲୀ. ବି. (ଏକଲ+ଷ୍ୟ,ଯ) ଏକକତ୍ୱ, ଏକାକିତ୍ୱ, ଅସଙ୍ଗିତା।

ଐକବାକ୍ୟ—କ୍ଲୀ. ବି. (ଏକବାକ୍ୟ+ଅ) ଏକବାକ୍ୟତା,ମେଳ,ଏକମତାବଲମ୍ବନ, ସମୋକ୍ତି।

ଐକଶତିକ—ପୁଂ.ବି. (ଏକଶତ+ଇକ) ଯାହାର ଏକଶତ ସଂଖ୍ୟକ ପଦାର୍ଥ ଥାଏ।

ଐକଶଫ—ବିଂ.(ଏକଶଫ+ଅ)ଏକଶଫ (ଖୁରା) ଯୁକ୍ତ ପଶୁସମ୍ବନ୍ଧୀୟ।

ଐକଶ୍ରୁତ୍ୟ—କ୍ଲୀ. ବି. (ଐକଶ୍ରୁତି+ଯ) ଉଦାତ୍ତ, ଅନୁଦାତ୍ତ ଓ ସ୍ୱରିତ ଏହି ତ୍ରିବିଧ ସ୍ୱରର ସନ୍ନିକର୍ଷ ସ୍ୱରବିଶେଷ।

ଐକସହସ୍ରିକ—ପୁଂ.ବିଂ. (ଏକସହସ୍ର+ ଇକ) ଯାହାର ଏକହଜାର ସଂଖ୍ୟକ ବସ୍ତୁ ଅଛି।

ଏହ୍ବ — ଗ୍ରା. ସର୍ବ.(ସଂ — ଏତଦ୍)ଏ,ଏଇ, ଉଲ୍ଲିଖିତ ବା ସମ୍ମୁଖରେ ଦେଖାଯିବା ବସ୍ତୁ ବା ବ୍ୟକ୍ତି ।

ଏହ୍ବକ୍ଷଣି — ଗ୍ରା. ଅବ୍ୟ. ବର୍ତ୍ତମାନ (ସଂ— ଏତଦ୍ କ୍ଷଣ) ଏହ୍ବକ୍ଷଣରେ ।

ଏହ୍ବଟା-ଗ୍ରା.ସର୍ବ.(ଅନାଦରାର୍ଥକ)ଏହ୍ବ,ଏ ।

ଏହ୍ବଟି — ଗ୍ରା.ସର୍ବ(ଆଦରାର୍ଥକ)ଏହ୍ବ, ଏ ।

ଏହ୍ବଠଇଁ—ଗ୍ରା. ସର୍ବ, ଏହ୍ବଠୁଁ ।

ଏହ୍ବଠା — ଗ୍ରା. ସର୍ବ, ଏସ୍ଥାନ ।

ଏହ୍ବଠିକା(ର)-ଗ୍ରା.ବିଂ.ଏସ୍ଥାନର,ଏଠାର, ସ୍ଥାନୀୟ ।

ଏହ୍ବଠିକ(କୁ) — ଗ୍ରା. ସର୍ବ.ଏହ୍ବ ସ୍ଥାନକୁ ।

ଏହ୍ବଠୁଁ(ଠିରୁ)—ଗ୍ରା. ସର୍ବ. ଏହ୍ବ ସ୍ଥାନରୁ, ଆଜଠାରୁ ।

ଏହ୍ବତା—ଗ୍ରା. ସର୍ବ. ଏହାଇଁ ।

ଏହ୍ବଧାପେ — ଗ୍ରା. ସର୍ବ. ଏହ୍ବକ୍ଷଣି ।

ଏହ୍ବନଗଦ—ଗ୍ରା.ଅବ୍ୟ. ବର୍ତ୍ତମାନ, ଏହ୍ବକ୍ଷଣି, ଏହ୍ବ ମୁହୂର୍ତ୍ତରେ ।

ଏହ୍ବପର — ଗ୍ରା. ଅବ୍ୟ. ଏହ୍ବପ୍ରକାରେ ।

ଏହ୍ବମାତ୍ର— ଗ୍ରା. ଅବ୍ୟ. (ସଂ — ଏତଦ୍ + ମାତ୍ର) ବର୍ତ୍ତମାନ, ଏତିକିମାତ୍ର ।

ଏହ୍ବରୂପ — ଗ୍ରା. ବି. ବିଂ.ଏହ୍ବପ୍ରକାରରେ ।

ଏହ୍ବଲଗେ—ଗ୍ରା. ଅବ୍ୟ. ଠିକ୍ ପୂର୍ବବର୍ତ୍ତୀ ମୁହୂର୍ତ୍ତରେ, ଏହ୍ବକ୍ଷଣରେ, ବର୍ତ୍ତମାନ, ଠିକ୍ ପରବର୍ତ୍ତୀ ମୁହୂର୍ତ୍ତରେ ।

ଏହ୍ବସମୟରେ—ଗ୍ରା.ଅବ୍ୟ. ଏହ୍ବକାଳେ ।

ଏହାର — ଗ୍ରା. ସର୍ବ. ଏହ୍ବଲୋକର ।

ଏହୁ—ଗ୍ରା.ସର୍ବ.(ସଂ-ଏତଦ୍ + ହୁ) ଏହ୍ବ ।

ଏହେ—ଗ୍ରା. ସମ୍ବୋଧନ, ଆହେ, ହେ ।

ଏହେଁ—ଗ୍ରା.ଅବ୍ୟ.ଅସମ୍ମତଅର୍ଥକ ଅବ୍ୟୟ, ନା, ଉହୁଁ, ଘୃଣାବ୍ୟଞ୍ଜକ ।

ଏହେନ — ଗ୍ରା. ବିଂ. ( ପଦ୍ୟ ) ଏସନ, ଏତାଦୃଶ, ଏପରି, (ଅବ୍ୟ) ଏହାଦ୍ୱାରା, ଏରୂପେ, ଏହ୍ବଯୋଗୁଁ, ଏପରି ।

ଏହ୍ନେ—ଗ୍ରା.ଅବ୍ୟ.(ପଦ୍ୟ)ଏପରି,ଏହେନ (ଦେଖ) ।

ଏହ୍ନେକ—ଗ୍ରା. ବିଂ. ଅବ୍ୟ. ଏହେନ, (ଦେଖ) ।

# ଐ

ଐକାର—ଦ୍ୱାଦଶ ସ୍ୱରବର୍ଣ୍ଣ, ଦୀର୍ଘସ୍ୱର, ଏହାର ଉଚ୍ଚାରଣ ସ୍ଥାନ କଣ୍ଠ ଓ ତାଳୁ, ଦୀର୍ଘ ଓ ପ୍ଲୁତ,ଅନୁଦାତ୍ତ,ଉଦାତ୍ତ,ସ୍ୱରିତ, ଅନୁନାସିକ, ନିରନୁନାସିକ ଭେଦରେ ଦ୍ୱାଦଶପ୍ରକାର, ତନ୍ତ୍ରମତେ ଐକାର ପରମ ଦ୍ରବ୍ୟ ମହା କୁଣ୍ଡଳିନୀ, କୋଟି-ଚନ୍ଦ୍ରତୁଲ୍ୟ, ପଞ୍ଚପ୍ରାଣମୟ, ବ୍ରହ୍ମା, ବିଷ୍ଣୁ ଓ ରୁଦ୍ରମୟ, ବିନ୍ଦୁତ୍ରୟଯୁକ୍ତ ସଦା ଶିବ-ମୟ, ବର୍ଣ୍ଣ, ତନ୍ତ୍ରୋକ୍ତନାମ — ଲଜ୍ଜା, ଭୌତିକ, କାନ୍ତ, ବାୟବୀ, ମୋହିନୀ, ବିଭୁ, ଦକ୍ଷା, ଅଧର, ବିକୃତମୁଖୀ, କ୍ଷମାତ୍ମକ, ଜଗଦ୍ୟୋନି, ପରଞ୍ଜନ, ଅମୃତା, କପର୍ଦ୍ଦିଶ୍ରୀ, ପୀଠେଶ, ଅଗ୍ନି-ସମାତ୍ମକ, ତ୍ରିପୁରା, ଲୋହିତା, ରଞ୍ଜୀ, ବାଗ୍ଭବ, ଭୌତିକାସନ, ମହେଶ୍ୱର, ଦ୍ୱାଦଶୀ, ସରସ୍ୱତୀ, ବାମଜାନୁ, ବିମଳା, କାମକୋଟ, ବଜସ୍ତ, ଅଂଶୁମାନ, ଜଟା ଦନ୍ତାନ୍ତ, ଯୋନି, ଅଧର, ଦାମୋଦର ପ୍ରଜ୍ଞା, ଧାତୁର ଅନୁବନ୍ଧ ବିଶେଷ ।

ଐ—ଅବ୍ୟ, ଆହ୍ୱାନ, ଆମନ୍ତ୍ରଣ, ସ୍ମରଣ, ସମ୍ବୋଧନ, ଦୂରସ୍ଥବସ୍ତୁବୋଧକ ।

ଐ—ପୁଂ.ବି. (ଆ + ଇଣ + ବିଚ)ମହେଶ୍ୱର, ଗ୍ରା. ବି. (ଧ୍ୱନ୍ୟନୁକରଣ)ବମନ, ବମନେଚ୍ଛା ।

ଐକ—ବିଂ. (ଏକ + ଅ) ଏକାର୍ଥବୋଧକ, ଏକସମ୍ବନ୍ଧୀୟ ।

ଐକତାନ—କ୍ଳୀ. ବି. ( ଏକତାନ + ଅ ) ବାଦ୍ୟବିଶେଷ, ଅନେକ ବାଦ୍ୟମାନଙ୍କର ସମୂହବାଦନ ।

ଐକତାନବାଦନ—କ୍ଳୀ ବି. ଭିନ୍ନଜାତୀୟ ଅନେକ ବାଦ୍ୟମାନଙ୍କର ବିଭିନ୍ନ ଗ୍ରାମ ସ୍ୱରସଂଯୋଗରେ ଏକାବେଳେ ବାଦିତ ହେଲେ ତାହାକୁ ଐକତାନବାଦନ କହନ୍ତି ।

ଐକତାନିକ— ବିଂ. (ଏକତାନ + ଇକ) ଏକଲୟବିଶିଷ୍ଟ ଏକସମୟରେ ବାଦିତ ।

ଐକଧ୍ୟଂ—ଅବ୍ୟ.ଏକକାଳେ, ଏକବାରେ

ଐକପତ୍ୟ—କ୍ଳୀ. ବି. (ଏକପତି + ଷ୍ଣ,ଯ) ଚକ୍ରବର୍ତ୍ତିତ୍ୱ, ଏକାଧିପତ୍ୟ, ଏକତନ୍ତ୍ର-ଶାସନ ।

ଐକପଦିକ — ବିଂ. (ଏକ + ପଦ + ଇକ) ଏକପଦଜ,ଏକବିଭକ୍ତ୍ୟନ୍ତପଦରୁଉତ୍ପନ୍ନ ।

ଐକପଦ୍ୟ—କ୍ଳୀ. ବି. ( ଏକପଦ + ଯ ) ଅନେକ ପଦର ଏକରୂପ ଅର୍ଥବୋଧ-କରିବା ।

ଐକଭାଗ୍ୟ—କ୍ଳୀ. ବି. ( ଏକଭାଗ + ଯ ) ଏକସ୍ୱତ୍ୱବତ୍ତା ।

ଐକମତ୍ୟ — କ୍ଳୀ. ବି. (ଏକମତ + ଷ୍ଣ,ଯ) ଏକରୂପ ଅଭିପ୍ରାୟ, ସମାନସମ୍ମତ, ସର୍ବସମ୍ମତ, (ବିଂ) ଏକମତଯୁକ୍ତ ।

ଐକରାଜ୍ୟ — କ୍ଳୀ.ବି. (ଏକରାଜ + ଷ୍ଣ,ଯ) ଏକାଧିପତ୍ୟ, ଚକ୍ରବର୍ତ୍ତିତା, ସାର୍ବ-ଭୌମତ୍ୱ ।

ଐକଲବ୍ୟ — ପୁଂ. ବି. (ଏକଲବ୍ୟ + ଅ) ଏକଲୁ ନାମକ ଋଷିଙ୍କ ପୁତ୍ର, ଏକମତ ଅବଲମ୍ବନ, କଥାର ମେଳ ।

ଐକଲ୍ୟ — କ୍ଳୀ. ବି. ( ଏକଲ + ଷ୍ଣ,ଯ ) ଏକକତ୍ୱ, ଏକାକିତ୍ୱ, ଅସଙ୍ଗିତା ।

ଐକବାକ୍ୟ — କ୍ଳୀ. ବି. (ଏକବାକ୍ୟ + ଅ) ଏକବାକ୍ୟତା,ମେଳ,ଏକମତାବଲମ୍ବନ, ସମୋକ୍ତି ।

ଐକଶତିକ — ପୁଂ.ବି. (ଏକଶତ + ଇକ) ଯାହାର ଏକଶତ ସଂଖ୍ୟକ ପଦାର୍ଥ ଥାଏ ।

ଐକଶଫ — ବିଂ.(ଏକଶଫ + ଅ)ଏକଶଫ (ଖୁରା) ଯୁକ୍ତ ପଶୁସମ୍ବନ୍ଧୀୟ ।

ଐକଶ୍ରୁତ୍ୟ — କ୍ଳୀ. ବି. (ଐକଶ୍ରୁତି + ଯ) ଉଦାତ୍ତ, ଅନୁଦାତ୍ତ ଓ ସ୍ୱରିତ ଏହି ତ୍ରିବିଧ ସ୍ୱରର ସନ୍ନିକର୍ଷ ସ୍ୱରବିଶେଷ ।

ଐକସହସ୍ରିକ — ପୁଂ.ବିଂ. (ଏକସହସ୍ର + ଇକ) ଯାହାର ଏକହଜାର ସଂଖ୍ୟକ ବସ୍ତୁ ଅଛି ।

ଐକାଗାରିକ—ପୁଂ. ବି. ( ଏକାଗାର + ଇକ) ଚୋର, ଏକଗୃହବାସୀ, (ସ୍ତ୍ରୀ) ଐକାଗାରିକୀ, (ବି.) ଦସ୍ୟୁ, ଏକ-ଗୃହସମ୍ବନ୍ଧୀୟ ।

ଐକାଗ୍ର—ପୁଂ.ବିଂ.(ଏକାଗ୍ର + ଅ)ଏକାଗ୍ର ଚିତ୍ତ, ଯାହାର ଚିତ୍ତ ଏକ ବିଷୟରେ ଆସକ୍ତ ।

ଐକାଗ୍ର୍ୟ—କ୍ଲୀ. ବି. ( ଏକାଗ୍ର + ଷ୍ଣ,ଯ ) ଏକାଗ୍ରଚିତ୍ତତା, ଏକାଗ୍ରତା ।

ଐକାଙ୍ଗ—କ୍ଲୀ.(ଏକାଙ୍ଗ + ଅ)ଏକାଙ୍ଗତା, ଶରୀରର ସାଦୃଶ୍ୟ ।

ଐକାତ୍ମ୍ୟ—କ୍ଲୀ. ବି. (ଏକାତ୍ମ + ଯ)ଐକ୍ୟ, ଏକସ୍ୱରୂପତା, ଦୁଇ ଜଣଙ୍କ ମଧ୍ୟରେ ଅଭେଦତ୍ୱ ।

ଐକାର୍ଥ୍ୟ—କ୍ଲୀ.ବି, (ଏକାର୍ଥ + ଯ) ଏକ-ପ୍ରୟୋଜନ, ଏକାର୍ଥର ସ୍ଥାପନା ।

ଐକାଦଶିନ୍—ବିଂ. (ଏକାଦଶ + ଇନ୍) ଦେବତା ସହିତ ଏକାଦଶ ଯାଜ୍ଞିକ ପଶୁବିଶେଷ ।

ଐକାଧିକରଣ୍ୟ—କ୍ଲୀ. ବି. ସମାନାଧି-କରଣତା,ତୁଲ୍ୟ ବିଭକ୍ତିଯୁକ୍ତ ପଦଦ୍ୱୟର ଅର୍ଥର ଅଭେଦ ବୋଧକତ୍ୱ ।

ଐକାନ୍ତିକ—ବିଂ.(ଏକାନ୍ତ + ଇକ)ନିଶ୍ଚିନ୍ତ ପ୍ରଗାଢ଼, ଦୃଢ, ଆତ୍ୟନ୍ତିକ, ଅଧିକ, (ସ୍ତ୍ରୀ) ଐକାନ୍ତିକୀ ।

ଐକାନ୍ତିକତା—ସ୍ତ୍ରୀ. ବି. ( ଏକାନ୍ତିକ + ତା) ଆତିଶଯ୍ୟ,ପ୍ରଗାଢ଼ତା,ଅଧ୍ୟବସାୟ ।

ଐକାନ୍ୟିକ—ପୁଂ.ବିଂ.(ଏକ + ଅନ୍ୟ + ଇକ) ଯେଉଁ ଛାତ୍ର ଏକପ୍ରକାର ପଢ଼େ ଓ ପରୀକ୍ଷା ସମୟରେ ଅନ୍ୟ ପ୍ରକାର ଉତ୍ତର ଦିଏ ।

ଐକାର—ପୁଂ. ବି. (ଐ + କାର) "ଐ" ଏହି ଅକ୍ଷରର ମାତ୍ରା ।

ଐକାହିକ—ବିଂ. (ଏକାହ + ଇକ)ଏକ-ଦିନସାଧ୍ୟ, ଏକଦିନ ଅନ୍ତରେ ଉତ୍ପନ୍ନ, ଏକ ଦିନରେ ନିଷ୍ପାଦ୍ୟ, ଏକଦିନ ବ୍ୟାପକ (ଜ୍ୱର) ।

ଐକାହିକ ଜ୍ୱର—ପୁଂ. ବି. ପାଳିଜ୍ୱର, ତୃତୀୟକ ଜ୍ୱର, ଦିନେ ଛାଡ଼ି ଦିନେ ଯେଉଁ ଜ୍ୱର ହୁଏ, କେହି କେହି ପ୍ରତି-ଦିନ ଆସୁଥିବା ଜ୍ୱରକୁ ଏକାହିକ ଜ୍ୱର କହନ୍ତି ।

ଐକୁଣ୍ଠ—ଗ୍ରା. ବି. (ଏକ + ଶ୍ରେଷ୍ଠ)ସର୍ବ-ଶ୍ରେଷ୍ଠ, ସର୍ବୋତ୍ତମ ।

ଐକ୍ୟ—କ୍ଲୀ. ବି. (ଏକ + ଷ୍ଣ,ଯ)ଏକତା, ସାଦୃଶ୍ୟ, ଏକଭାବ, ଅବିରୋଧ,ମେଳ ।

ଐକ୍ଷବ—ବିଂ. (ଇକ୍ଷୁ + ଅ)ଇକ୍ଷୁବିକାର, ଆଖୁ ସମ୍ବନ୍ଧୀୟ, (ବି) ଇକ୍ଷୁଜାତ ଗୁଡ଼ ବା ଚିନି ।

ଐକ୍ଷୁକ—ବିଂ. (ଇକ୍ଷୁ + ଅକ)ଇକ୍ଷୁବର୍ଦ୍ଧକ କ୍ଷେତ୍ରାଦି, ଯହିଁରେ ଆଖୁ ଭଲ ହୁଏ ।

ଐକ୍ଷୁଭାରିକ—ପୁଂ.ବିଂ.(ଇକ୍ଷୁଭାର + ଇକ) · ଇକ୍ଷୁବାହକ ।

ଐକ୍ଷ୍ୱାକ—ପୁଂ.ବିଂ.(ଇକ୍ଷ୍ୱାକୁ + ଅ)ଇକ୍ଷ୍ୱାକୁ ବଂଶୀୟ, ଇକ୍ଷ୍ୱାକୁ ସମ୍ବନ୍ଧୀୟ, ଇକ୍ଷ୍ୱାକୁଙ୍କ ଅଧିକୃତ (ଜନପଦ) ।

ଐଙ୍ଗୁଦ—କ୍ଲୀ.ବି. (ଇଙ୍ଗୁଦ + ଅ) ଇଙ୍ଗୁଦୀ ବୃକ୍ଷର ଫଳ ।

ଐଚ୍ଛିକ—ବିଂ.(ଇଚ୍ଛା + ଇକ)ଇଚ୍ଛାଧୀନ ଯାହା ଇଚ୍ଛାପୂର୍ବକକରାଯାଏ,ଇଚ୍ଛାନୁରୂପ (ସ୍ତ୍ରୀ) ଐଚ୍ଛିକୀ ।

ଐଡ଼—ପୁଂ. ବି. (ଏଡ଼ା + ଅ) ଏଡ଼ାଶବ୍ଦ ଯୁକ୍ତ ଅଧ୍ୟାୟ ବା ଅନୁବାକ ।

ଐଡ଼କ—ପୁଂ. ବି. (ଏଡକ + ଅ)ମେଷା-କାର ପଶୁବିଶେଷ,(ବିଂ) ମେଷସମ୍ବନ୍ଧୀୟ

ଐଡବିଡ଼—ପୁଂ. ବି. କୁବେର, ସୂର୍ଯ୍ୟ ରାଜବିଶେଷ ।

ଐଡ଼ୂକ—କ୍ଲୀ.ବି (ଏଡ଼ୂକ + ଅ)ଏଡ଼ୂକ, ଅନ୍ତର୍ଗତ ଅସ୍ଥି,ଅନ୍ତର୍ଗତ କଠିନଦ୍ରବ୍ୟ ।

ଐଣ—ବିଂ. (ଏଣ + ଅ) କୃଷ୍ଣମୃଗଜାତ, ମୃଗ ସମ୍ବନ୍ଧୀୟ,(ବି) ମୃଗଚର୍ମ (ପ୍ରଭୃତି) (ସ୍ତ୍ରୀ) ଐଣୀ ।

ଐଣିକ—ବିଂ. (ଏଣ + ଇକ) ମୃଗହନ୍ତା ବ୍ୟାଧ, ସିଂହ ପ୍ରଭୃତି,(ସ୍ତ୍ରୀ) ଐଣିକୀ ।

ଐଣୀପଚନ—ବିଂ. (ଏଣୀପଚନ + ଅ) ଏଣୀପଚନଦେଶୀୟ ।

ଐଣେୟ—ବିଂ. (ଏଣ + ଏୟ)ମୃଗ ସମ୍ବ-ନ୍ଧୀୟ (ଚର୍ମାଦି), ବି. ରତିବନ୍ଧବିଶେଷ, (ସ୍ତ୍ରୀ) ଐଣେୟୀ ।

ଐଣିନେୟ—ପୁଂ. ବି. ବେଦର ଶାଖା ବିଶେଷ ।

ଐତରେୟ—ପୁଂ. ବି. (ଇତର + ଏୟ) ଋଗ୍‌ବେଦର ଶାଖାବିଶେଷ, ଇତରାର ପୁତ୍ର, ଐତରେୟ ଉପନିଷଦର ପ୍ରବକ୍ତା ।

ଐତଶ—ପୁଂ ବି. ଭୃଗୁ ବଂଶୀୟ ମୁନି-ବିଶେଷ,ଐତଶ ପ୍ରଳାପ ନାମକ ବୈଦିକ ଗ୍ରନ୍ଥର ପ୍ରଣେତା ।

ଐତିକାୟନ-ପୁଂ.ବି. ଇତିକଋଷି ବଂଶୀୟ ।

ଐତିଶାୟନ—ପୁଂ.ବି.ଇତିଶଋଷିବଂଶୀୟ ।

ଐତିହାସିକ—ବିଂ. (ଇତିହାସ + ଇକ) ଇତିହାସ ପାଠକ, ଇତିହାସବେତ୍ତା, ଇତିହାସ ସମ୍ବନ୍ଧୀୟ, ଇତିହାସ ଗ୍ରନ୍ଥରୁ ଯାହା ଜାଣିବାକୁ ହୁଏ ।

ଐତିହ୍ୟ—କ୍ଲୀ.ବି. (ଇତିହ + ଯ) ପାର-ମ୍ପର୍ଯ୍ୟ, ଉପଦେଶବାକ୍ୟ, ପରମ୍ପରା ଗତ ପ୍ରମାଣ ବାକ୍ୟ, ପ୍ରବାଦ ବାକ୍ୟ, ପ୍ରମାଣ ।

ଐଦଂଯୁଗୀନ—ବିଂ. (ଇଦଂଯୁଗ + ଈନ) ଏହି ଯୁଗର ଉପଯୋଗୀ, ଏହି କାଳର ଉପଯୋଗୀ ।

ଐନସ—କ୍ଲୀ. ବି. (ଏନଃ + ଅ)ପାପ ।

ଐନ୍ଦବ—କ୍ଲୀ. ବି. (ଇନ୍ଦୁ + ଅ) ମୃଗଶିରା ନକ୍ଷତ୍ର, (ବିଂ) ଚନ୍ଦ୍ର ସମ୍ବନ୍ଧୀୟ, (କ୍ଲୀ) ଚାନ୍ଦ୍ରାୟଣ ନାମକ ବ୍ରତବିଶେଷ ।

ଐନ୍ଦବୀ—ସ୍ତ୍ରୀ.ବି. (ଐନ୍ଦବ + ଈ)ସୋମ-ରାଜୀ ନାମକ ବୈଦ୍ୟୋକ୍ତ ଦ୍ରବ୍ୟ-ବିଶେଷ, ଚନ୍ଦ୍ରିକା, ଜ୍ୟୋତ୍ସ୍ନା ।

ଐନ୍ଦ୍ର—କ୍ଲୀ. ବି. (ଇନ୍ଦ୍ର + ଅ) ଜ୍ୟେଷ୍ଠା ନକ୍ଷତ୍ର,ମୂଳ ବିଶେଷ,ବଣଅଦା,ବନଜା, ବନାର୍ଦ୍ରକା, ଅରଣ୍ୟଜାର୍ଦ୍ରକା, ଇନ୍ଦ୍ରଙ୍କ ଉଦ୍ଦେଶ୍ୟେ ଆହୃତ ହବିଃ ପ୍ରଭୃତି,ଇନ୍ଦ୍ର-ଙ୍କର ପୁତ୍ର ଜୟନ୍ତ, ସୁଗ୍ରୀବ, ଅର୍ଜୁନ, ବାଲି ପ୍ରଭୃତି, ଇନ୍ଦ୍ରକୃତ ବ୍ୟାକରଣ, ବୃଷ୍ଟି ଜଳ,(ବିଂ) ଇନ୍ଦ୍ର ସମ୍ବନ୍ଧୀୟ,ପୂର୍ବ-ଦିଗ ସମ୍ବନ୍ଧୀୟ ।

ଐନ୍ଦ୍ରଜାଲିକ—ପୁଂ.ବିଂ. (ଇନ୍ଦ୍ରଜାଲ + ଇକ) ଇନ୍ଦ୍ରଜାଲିକାରକ, ବାଜୀକର, ପ୍ରତାରକ, ମାୟାକାରକ, ମାୟାବି-ବାସକ, ମାୟୀ, କୌତୁକ ।

ଐନ୍ଦ୍ରଦ୍ୟୁମ୍ନ— କ୍ଲୀ. ବି. ଇନ୍ଦ୍ରଦ୍ୟୁମ୍ନ ରାଜାର ବୃତ୍ତାନ୍ତ ଘଟିତ ମହାଭାରତର ଆଖ୍ୟାନ ବିଶେଷ ।

ଐନ୍ଦ୍ରଦ୍ୟୁମ୍ନ— କ୍ଲୀ.ବି ଉତ୍କଳ ସମ୍ରାଟ୍ ଇନ୍ଦ୍ରଦ୍ୟୁମ୍ନଙ୍କ କୃତ ପୁଷ୍କରଣୀ ଓ ଦେଉଳ (ପୁଂ) ଇନ୍ଦ୍ରଦ୍ୟୁମ୍ନଙ୍କ ପୁତ୍ର ।

ଐନ୍ଦ୍ରଲୁପ୍ତିକ— ବିଂ.(ଇନ୍ଦ୍ରଲୁପ୍ତ + ଇକ) ରୋଗବିଶିଷ୍ଟ, ଚନ୍ଦାମୁଣ୍ଡ ରୋଗସମ୍ବନ୍ଧୀୟ, ଟାଙ୍ଗରା ।

ଐନ୍ଦ୍ରବାରୁଣିକା— ବି. କଇଁଚ କାକୁଡ଼, ବିମ୍ବଫଳ, ଗୋରେଖକାକୁଡ଼ ।

ଐନ୍ଦ୍ରବାୟବ-ବିଂ.(ଇନ୍ଦ୍ରବାୟୁ + ଅ)ଇନ୍ଦ୍ରବାୟୁ ସମ୍ବନ୍ଧୀୟ, ହବିଃ ପ୍ରଭୃତି ।

ଐନ୍ଦ୍ରଶର୍ମି— ପୁଂ. ବି. (ଇନ୍ଦ୍ରଶର୍ମ + ଇ) ଇନ୍ଦ୍ରଶର୍ମ ରାଜାଙ୍କର ପୁତ୍ର ।

ଐନ୍ଦ୍ରଶିର— ପୁଂ. ବି. ହସ୍ତି ବିଶେଷ ।

ଐନ୍ଦ୍ରସେନ— ପୁଂ. ବି. (ଇନ୍ଦ୍ରସେନ + ଇ) ଇନ୍ଦ୍ରସେନ ନାମକ ନରପତିର ପୁତ୍ର

ଐନ୍ଦ୍ରା— ସ୍ତ୍ରୀ. ବି. ( ଇନ୍ଦ୍ର + ଅ + ଆ ) ଇନ୍ଦ୍ରାଣୀ, ଶଚୀ, ପୁରନ୍ଦର, ଶଲ୍ଲୁବିଶେଷ, ଜ୍ୟେଷ୍ଠା ନକ୍ଷତ୍ର ।

ଐନ୍ଦ୍ରାଗ୍ନ— ବିଂ.(ଇନ୍ଦ୍ରଅଗ୍ନି + ଅ)ଇନ୍ଦ୍ରାଗ୍ନି ସମ୍ବନ୍ଧୀୟ, ଇନ୍ଦ୍ର ଓ ଅଗ୍ନି ଉଦ୍ଦେଶ୍ୟେ ଆହୁତ ହବିଃ ପ୍ରଭୃତି ।

ଐନ୍ଦ୍ରାପୌଷ୍ଣ ବିଂ.ଇନ୍ଦ୍ର ଓ ସୂର୍ଯ୍ୟସମ୍ବନ୍ଧୀୟ,ଇନ୍ଦ୍ର ଓ ସୂର୍ଯ୍ୟଉଦ୍ଦେଶ୍ୟେ ଆହୁତ ହବିଃ ପ୍ରଭୃତି ।

ଐନ୍ଦ୍ରାୟଣ—ପୁଂ. ବି. (ଇନ୍ଦ୍ର + ଆୟଣ) ଇନ୍ଦ୍ରଙ୍କର ପୁତ୍ର ।

ଐନ୍ଦ୍ରାସ୍ତ୍ରଧ—ବିଂ. ଇନ୍ଦ୍ରପ୍ରଦତ୍ତ ଅସ୍ତ୍ରବିଶିଷ୍ଟ ।

ଐନ୍ଦ୍ରାବୈଷ୍ଣବ— ବିଂ. ଇନ୍ଦ୍ର ଓ ବିଷ୍ଣୁ ସମ୍ବନ୍ଧୀୟ ଚରୁ ପ୍ରଭୃତି ।

ଐନ୍ଦ୍ରାସୌମ୍ୟ—ବିଂ.(ଇନ୍ଦ୍ରସୋମ + ଯ) ଇନ୍ଦ୍ର ଓ ସୋମ ସମ୍ବନ୍ଧୀୟ ।

ଐନ୍ଦ୍ରି—ପୁଂ. ବି.(ଇନ୍ଦ୍ର + ଇ)ଇନ୍ଦ୍ରପୁତ୍ର ଜୟନ୍ତ, ଅର୍ଜୁନ,ବାଲି ବାନର,କାକ, ବହୁଆଡ, ବିମ୍ବଫଳ,ଗୋରଖ, କାକୁଡ଼ ସୁଗ୍ରୀବ ।

ଐନ୍ଦ୍ରିୟ—ବିଂ. (ଇନ୍ଦ୍ରିୟ + ଅ) ଇନ୍ଦ୍ରିୟ ଦ୍ୱାରା ପ୍ରକାଶ୍ୟ (ବସ୍ତୁ), ପ୍ରତ୍ୟକ୍ଷ (ବସ୍ତୁ), ଇନ୍ଦ୍ରିୟଗୋଚର ।

ଐନ୍ଦ୍ରିଲ— ସ୍ତ୍ରୀ. ବି. ବୃତ୍ରାସୁରର ପତ୍ନୀ ।

ଐନ୍ଦ୍ରିୟକ— ବିଂ. ( ଇନ୍ଦ୍ରିୟ + ଅକ ) ପ୍ରତ୍ୟକ୍ଷ,ଇନ୍ଦ୍ରିୟ ଗ୍ରାହ୍ୟ,(ପୁଂ)ଇନ୍ଦ୍ରିୟାଶ୍ରିତ ବ୍ୟାଧିବିଶେଷ ।

ଐନ୍ଦ୍ରୀ—ସ୍ତ୍ରୀ. ବି. ( ଇନ୍ଦ୍ର + ଅ + ଈ ) ଶଚୀ, ଦୁର୍ଗା, ଇନ୍ଦ୍ରବାରୁଣୀ, ପୂର୍ବଦିଗ୍, ଅଳାଇଚ, ବଜ୍ର, ଐକାର ।

ଐନ୍ଧନ— ବିଂ. (ଇନ୍ଧନ + ଅ) ଇନ୍ଧନ ସମ୍ବନ୍ଧୀୟ, କାଷ୍ଠ ସମ୍ବନ୍ଧୀୟ ।

ଐଦ୍ଧାୟନ—ପୁଂ.ବି. (ଇଦ୍ଧ + ଆୟନଣ୍) ଇଦ୍ଧ ନାମକ ଋଷିଙ୍କର ପୁତ୍ର, ଋଷିବଂଶୀୟ ।

ଐନ୍ୟ— ବିଂ. (ଇନ + ଯ) ସୂର୍ଯ୍ୟଭବ, ସ୍ୱାମିଭବ, ସ୍ୱାମିଠାରୁ ଜାତ ।

ଐନ୍ୟ—ପୁଂ. ବି. ବାବଦଗ ଜାତି, ଦାକ୍ଷିଣାତ୍ୟ କୁର୍ଗ ପ୍ରଦେଶରେ ଏହି ଜାତିର ଲୋକ ଅଛନ୍ତି ।

ଐଲ୍ବବତ—ପୁଂ.ବି. ( ଇଲ୍ବବତ + ଅ ) ଇଲ୍ବବତ ଋଷିଙ୍କ ପୁତ୍ର ।

ଐଭୀ— ସ୍ତ୍ରୀ.ବି. (ଇଭ + ଅ + ଈ)ହସ୍ତିଘୋଷା ଲତା । [ ବିଶେଷ ।

ଐମୁକୁଲ—ଦାକ୍ଷିଣାତ୍ୟର ନୀଚ ଜାତି

ଐୟା—ପୁଂ. ବି. ନୀଚ ଜାତିବିଶେଷ, ଏମାନେ ଦାକ୍ଷିଣାତ୍ୟର ମଦୁରା ପ୍ରଦେଶରେ ବାସ କରନ୍ତି ।

ଐର—ବିଂ. (ଇରା + ଅ) ଅନ୍ନମଣ୍ଡ,କ୍ଲୀ. ବ୍ରହ୍ମଲୋକସ୍ଥ ସରୋବର ବିଶେଷ, ବିଂ. ଭୂମିଜାତ, ଜଳଜାତ ।

ଐର—ପୁଂ. ବି. ସ୍ୱନାମଖ୍ୟାତ ଉତ୍କଳ ଦେଶର ଅତି ପ୍ରାଚୀନ ମଣ୍ଡଳେଶ୍ୱର ସମ୍ରାଟ୍,ରାଜବଂଶବିଶେଷ । [ଜାତି ।

ଐରକ୍ୟ—ବିଂ. (ଏରକା + ଯ)ଏରକା

ଐରାବଣ—ପୁଂ. ବି. ( ଐରାବତ + ଅ) ଐରାବତ ହସ୍ତୀ, ଜୈନମତେ ଜମ୍ବୁଦ୍ୱୀପର ସପ୍ତମବର୍ଷ, ସ୍ତ୍ରୀ. ବିଜୁଳି ।

ଐରାବତ—ପୁଂ. ବି. ଇନ୍ଦ୍ରଙ୍କର ହସ୍ତୀ, ପୂର୍ବଦିଗ୍‌ଗଜ, ଶ୍ୱେତହସ୍ତୀ, ମଲନାଗ, ଅଭ୍ରମୁବଲ୍ଲଭ, ଅଭ୍ରମାତଙ୍ଗ, ଐରାବଣ, ନାଗରଙ୍ଗ, ଲକୁଚ ବୃକ୍ଷ, ନାଗବିଶେଷ, ଜେଉଠ,(କ୍ଲୀ)ଇନ୍ଦ୍ରଧନୁ,(ବିଂ.)ଇରାବତୀ ନଦୀର ସନ୍ନିକୃଷ୍ଟ ଦେଶ ।

ଐରାବତ କ୍ଷେତ୍ର—କ୍ଲୀ.ବି. କାବେରୀ ନଦୀ ତୀରସ୍ଥ ଗୋଟିଏ ପ୍ରାଚୀନ ତୀର୍ଥସ୍ଥାନ ।

ଐରାବତୀ—ସ୍ତ୍ରୀ. ବି. (ଇରା + ବତ + ଅ + ଈ) ଐରାବତ ସ୍ତ୍ରୀ, ବଟପତ୍ରୀ ବୃକ୍ଷ, ବିଦ୍ୟୁତ୍, ବିଜୁଳି,ପଞ୍ଚାଳଦେଶୀୟ ନଦୀବିଶେଷ ।

ଐରି— ଗ୍ରା. ବି. ଅରି, ଶତ୍ରୁ ।

ଐରିକନ— କ୍ଲୀ. ବି. ଏରଣ ନଗରର ପ୍ରାଚୀନ ନାମ ।

ଐରିଗଉଡ଼— ଗ୍ରା. ବି. ଅଇର ଗଉଡ଼ ।

ଐରିଣ— କ୍ଲୀ.ବି.(ଇରିଣ + ଅ) ପଙ୍ଗାଲୁଣ

ଐରିତା—ଗ୍ରା.ବି. ଶତ୍ରୁତା ।

ଐରିମଲ୍ଲି— ଗ୍ରା.ବି.ଏକ ପ୍ରକାର ପତାକା ।

ଐରେୟ—କ୍ଲୀ. ବି. (ଇରା + ଏୟ)ମଦ୍ୟ, ମଙ୍ଗଳ, ଅରିଷ୍ଟମଦ୍ୟ,(ବିଂ.) ଅନ୍ନାଦ୍ୟ ।

ଐର୍ମ୍ୟ—କ୍ଲୀ.ବି. (ଇର୍ମ + ଯ) ସୁତ୍ରୁଭୋଗ୍ୟ ଅଞ୍ଜନ ବିଶେଷ ।

ଐଳ—ପୁଂ. ବି. (ଇଳା + ଅ)ଇଳାପୁତ୍ର, ପୁରୁରବା,ଚନ୍ଦ୍ରବଂଶୀୟ ରାଜା ଥିଲେ ।

ଐଳବାଳୁକ—କ୍ଲୀ, ତ. (ଏଳ + ବାଳୁକ + ଅ)ଏଳବାଳୁକ, ଗନ୍ଧଦ୍ରବ୍ୟବିଶେଷ ।

ଐଲବିଲ— ପୁଂ. ବି. (ଇଲାବିଲା + ଅ) କୁବେର ।

ଐଳା— ସ୍ତ୍ରୀ. ବି. ନଦୀବିଶେଷ ।

ଐଲାକ—ବି.(ଐଲାକ୍ୟ + ଅ)ଐଲାକ୍ୟର ଛାତ୍ର ।

ଐଲିକ—ପୁଂ. ବି. (ଇଲିନୀ + ଅକ) ଇଲିନୀର ପୁତ୍ର, ତଂସୁନାମକ ରାଜା, ଏ ଦୁଷ୍ମନ୍ତଙ୍କର ପିତାମହ ଥିଲେ ।

ଐଲେୟ—କ୍ଲୀ. ବି. ଏଲବାଳୁକ, ଗନ୍ଧଦ୍ରବ୍ୟବିଶେଷ,(ପୁଂ.)ପୁରୁରବା, ମଙ୍ଗଳ ।

ଐଶ—ବିଂ.(ଈଶ + ଅ)ଈଶ ସମ୍ବନ୍ଧୀୟ, ଶିବ ସମ୍ବନ୍ଧୀୟ, ସର୍ବପ୍ରଧାନ, (ସ୍ତ୍ରୀ.)ଐଶୀ

ଐଶାନୀ—ସ୍ତ୍ରୀ. ବି. (ଈଶାନ+ଅ+ଈ) ଈଶାନ କୋଣ, ଶକ୍ତିବିଶେଷ, ଦୁର୍ଗା, ପାର୍ବତୀ ।

ଐଶାନ୍ୟ—ବି. (ଈଶାନ+ଯ) ଈଶାନ କୋଣ, ଉତ୍ତର-ପୂର୍ବ କୋଣ ।

ଐଶିକ—ବିଂ. (ଈଶୀ+ଇକ) ଈଶ୍ୱର ସମ୍ବନ୍ଧୀୟ ।

ଐଶୀ—ସ୍ତ୍ରୀ.ବି.(ଈଶ ଅ+ଈ)ଈଶ୍ୱର ସମ୍ବନ୍ଧିନୀ, ଦୁର୍ଗା, ଦୈବୀ । [ଦେଖ ।

ଐଶ୍ୱର—ବିଂ. (ଈଶ୍ୱର+ଅ) ଐଶ

ଐଶ୍ୱରିକ—ବିଂ. (ଈଶ୍ୱର+ଇକ) ଈଶ୍ୱର ସମ୍ବନ୍ଧୀୟ ।

ଐଶ୍ୱର୍ଯ୍ୟ—କ୍ଳୀ.ବି.(ଈଶ୍ୱର+ଯ)ଈଶ୍ୱର, ଧର୍ମ, ବିଭୂତି, ଭୂତି, ସମ୍ପତ୍ତି, ପ୍ରଭୁତ୍ୱ, ଶାସକ, କର୍ତ୍ତୃତ୍ୱ, ବଡ଼ତି, ମହିମା, ପ୍ରତାପ, ଈଶ୍ୱରଙ୍କର ଅଣିମାଦି ଅଷ୍ଟବିଭୂତି ।

ଐଶ୍ୱର୍ଯ୍ୟକର୍ମୀ—ପୁଂ. ବିଂ. ଈଶ୍ୱରକର୍ମଯୁକ୍ତ ।

ଐଶ୍ୱର୍ଯ୍ୟ ଗର୍ବ—ବି. (କର୍ମଧା) ବିଭବଜନିତ ଅହଂକାର, ଧନଗର୍ବ ।

ଐଶ୍ୱର୍ଯ୍ୟବାନ୍—ବିଂ. (ଐଶ୍ୱର୍ଯ୍ୟ+ବତ୍) ଐଶ୍ୱର୍ଯ୍ୟବିଶିଷ୍ଟ, ଐଶ୍ୱର୍ଯ୍ୟଶାଳୀ ।

ଐଶ୍ୱର୍ଯ୍ୟମଦ—ବି. (କର୍ମଧା) ଐଶ୍ୱର୍ଯ୍ୟ ଗର୍ବ (ଦେଖ) ।

ଐଶ୍ୱର୍ଯ୍ୟଶାଳୀ—ପୁଂ. ବିଂ. (ଐଶ୍ୱର୍ଯ୍ୟ+ଶାଳିନ୍) ସମ୍ପତ୍ତିବାନ୍, ଧନଶାଳୀ, ପ୍ରତାପପୂର୍ଣ୍ଣ, ତେଜୋମୟ, ଆଢ୍ୟ ।

ଐଷମଃ—ଅବ୍ୟ, ବର୍ତ୍ତମାନ ସମ୍ବତ୍ସରେ, ଏହି ବର୍ଷରେ, ଏ ସନ ।

ଐଷମସ୍ତନ—ବିଂ. (ଐଷମସ୍+ତନ) ଐଷମ ସମ୍ବନ୍ଧୀୟ, ଏହି ବର୍ଷର ।

ଐଷମସ୍ତ୍ୟ—ବିଂ. (ଐଷମସ୍+ତ୍ୟ) ଏହିବର୍ଷର ।

ଐଷାକାର—ବିଂ. ଶକ୍ତିହୀନ, ଦୁର୍ବଳ ।

ଐଷୀକ, ଐଷିକ—କ୍ଳୀ. ବି. (ଈଷୀକ+ଅ) ହସ୍ତୀର ଚକ୍ଷୁଗୋଲକ, ମୁଞ୍ଜା, କାଶତୃଣ, ଅସ୍ତ୍ରବିଶେଷ, ଫୁଲଶର, (ବିଂ.) ଇଷିକାତୃଣ ନିର୍ମିତ, ମହାଭାରତୋକ୍ତ ପର୍ବ ବିଶେଷ ।

ଐଷୁକାରି—ପୁଂ. ବି. (ଇଷୁ+କୃ+ଣି+ଅ+ଇ) ବାଣ ନିର୍ମାତାର ପୁତ୍ର, କଣ୍ଡରା ପୁଅ ।

ଐଷୁକାରଭକ୍ତ—କ୍ଳୀ.ବି. ଐଷୁକାର ବିଷୟ, ଐଷୁକାରଦେଶ । [ବିଶେଷ ।

ଐଷୁକାର୍ଯ୍ୟାଦି—ପାଣିନି ଉକ୍ତ ଗଣ

ଐଷ୍ଟିକ—ପୁଂ.ବି. (ଇଷ୍ଟି+ଇକ) ଇଷ୍ଟିର ବ୍ୟାଖ୍ୟାନ ଗ୍ରନ୍ଥ, ଯଜ୍ଞର ହିତକର ବିଷୟ, ଅଗ୍ନ୍ୟାଧେୟକ କର୍ମବିଶେଷ, (ବିଂ.) ଯଜ୍ଞ ସାଧନେ ସମର୍ଥ, ଯାଗ ସମ୍ବନ୍ଧୀୟ । [ଦେଖ

ଐଷୁଲକ୍ଷଣୀ—ଗ୍ରା. ବିଂ. ଅଇସୁଲକ୍ଷଣୀ

ଐହ—ଗ୍ରା. ବିଂ. ଅହିଅ (ଦେଖ) ।

ଐହଲୌକିକ—ବିଂ. (ଇହଲୋକ+ଇକ) ମର୍ତ୍ତ୍ୟ ଲୋକ ସମ୍ବନ୍ଧୀୟ, ବର୍ତ୍ତମାନ, ଜନ୍ମ ସମ୍ବନ୍ଧୀୟ ।

ଐହିକ—ବିଂ. (ଇହ+ଇକ) ଇହଲୋକ ଜାତ, ଇହଲୋକର, ଇହକାଳ ସଂକ୍ରାନ୍ତ, ଇହଲୋକ ସମ୍ବନ୍ଧୀୟ ।

ଐହିକଦର୍ଶୀ—ପୁଂ.ବିଂ.(ଉତ୍ପ) ସଂସାରାସକ୍ତ, ସାଂସାରିକ, (ସ୍ତ୍ରୀ) ଐହିକଦର୍ଶିନୀ ।



ଓକାର—ସ୍ୱରବର୍ଣ୍ଣର ତ୍ରୟୋଦଶ ଅକ୍ଷର, ଦୀର୍ଘସ୍ୱର, ଉଚ୍ଚାରଣ ସ୍ଥାନ କଣ୍ଠ ଓ ଓଷ୍ଠ, ଓକାର ପଞ୍ଚଦେବମୟ, ରକ୍ତ ବିଦ୍ୟୁତାକାର, ତ୍ରିଗୁଣାତ୍ମକ, ଈଶ୍ୱର, ପଞ୍ଚପ୍ରାଣମୟ, ଦେବମାତା ଏବଂ ପରମକୁଣ୍ଡଳୀ, ତନ୍ତ୍ରୋକ୍ତ ନାମ—ସତ୍ୟ, ପୀୟୂଷ, ପଶ୍ଚିମାସ୍ୟ, ଶ୍ରୁତି, ସ୍ଥିରା, ସଦ୍ୟୋଜାତ, ବାସୁଦେବ, ଗାୟତ୍ରୀ, ଊର୍ଦ୍ଧ୍ୱଦନ୍ତ, ଲକ୍ଷ୍ମୀ, ବାଣୀ, ମୁଖୀ, ଦ୍ୱିଜ, ଦର୍ଶକ, ତୀବ୍ର, କୈଳାସ, ବ୍ରହ୍ମସୂତ୍ର, ସର୍ବମଙ୍ଗଳା, ତ୍ରୟୋଦଶୀ, ଦୀର୍ଘନାସା, ରତିନାଥ, ବିଜୟା, ପ୍ରଜ୍ଞା, ପ୍ରୀତି, ଧାତୁର ଅନୁବନ୍ଧ ବିଶେଷ ।

ଓ—ଅବ୍ୟ. ସମ୍ବୋଧନ ଅଭିପ୍ରାୟ, ଆହ୍ୱାନ, ସ୍ମରଣ, ଅନୁକମ୍ପା ଏବଂ ଆଉ ମାନେ ।

ଓ—ବି.ପୁଂ.ବ୍ରହ୍ମା. ଗ୍ରା. ଅଗ୍ରବର୍ତ୍ତୀ ବ୍ୟକ୍ତିବିଶେଷ, ଉତ୍ତରଶ୍ରେଣୀସ୍ଥ ସ୍ତ୍ରୀମାନେ ସ୍ୱାମୀ ଉଦ୍ଦେଶ୍ୟେ 'ଓ' ଶବ୍ଦ ପ୍ରୟୋଗକରିଥାନ୍ତି ।

ଓଁ-ଅବ୍ୟ. ଓଁକାର, ପ୍ରଣବ, ମନ୍ତ୍ରର ଆଦ୍ୟବୀଜ ।

ଓଆକ—ଅବ୍ୟ. ବମନ ବେଗର ଶବ୍ଦ, ବକବିଶେଷ, ବକବିଶେଷର ଅବ୍ୟକ୍ତ ଶବ୍ଦ ।

ଓଆକବ(କ)—ଗ୍ରା. ବକ ବିଶେଷ ।

ଓଉ—ଗ୍ରା.ବି. ଅମ୍ଳଫଳବିଶେଷ ।

ଓଉମୁଣ୍ଡିଆ—ଗ୍ରା.ବିଂ. ଓମୁଣ୍ଡିଆ(ଦେଖ)

ଓଃ—ଗ୍ରା.ଅବ୍ୟ.(ଅ-ଅହୋ) ଖେଦ, ବିସ୍ମୟ, ଅବଜ୍ଞାତ, ବିରକ୍ତିସୂଚକ ଧ୍ୱନି ।

ଓକ—ବି.କ୍ଳୀ. (ଉଚ+ଅ) ଗୃହ, ଆଶ୍ରୟ (ପୁଂ.) ପକ୍ଷୀ, ଶୂଦ୍ର, ବୃଷଳ, ସ୍ଥାନ ।

ଓକଃ—ବି.କ୍ଳୀ. (ଉଚ+ଅସ୍) ଆଶ୍ରୟ ଗୃହ, ସ୍ଥାନ, ପକ୍ଷୀ, ଶୂଦ୍ର, ବୃଷଳ ।

ଓକଣି—ବି.ପୁଂ. ମତ୍କୁଣ, ଉକୁନ ।

ଓକର—ଗ୍ରା.ବି. ଗୋଇ, ହରିଦ୍ରା, ଇଜ୍ଜତ, ବଳ, କ୍ଷମତା, ଶକ୍ତି, ଅଭ୍ୟାସ ।

ଓକରିବା—ଗ୍ରା. କ୍ରି. ଡାକିଲେ ଉତ୍ତର ଦେବା, କାମରେ ଆସିବା ।

ଓକସ୍ତ—ବି.ସ୍ତ୍ରୀ. ରାଜଗୃହାନ୍ତର୍ଗତ ଗୋଟିଏ ପ୍ରାଚୀନ ଗ୍ରାମ ।

ଓକାର—ବି.ପୁଂ."ଓ" ବର୍ଣ୍ଣ, ବ୍ରହ୍ମା ।

ଓକାଳ—ଗ୍ରା.ବି.(ଅ+ଉଦ୍‌ଗାର) ବାନ୍ତି, ବମନେଚ୍ଛା, (ବିଂ.) ବମିତ, ବାନ୍ତି କରା ଯାଇଥିବା ।

ଓକାଲତି—(ଯା.) ଓକିଲର କାର୍ଯ୍ୟ ।

ଓକାଲତନାମା—ଯା. ଉକିଲର ନିଯୋଗ ପତ୍ର ।

ଓକାଲତି—ଯା. ଉକିଲର ବ୍ୟବସାୟ, ପକ୍ଷସମର୍ଥନ । [ହିଇକା ।

ଓକାହଗା—ପ୍ରା.(ବଙ୍ଗର) ବି. ଝାଡାକଇ,

ଓକିଲ—ଯା. ବି. ଆଇନ ବ୍ୟବସାୟୀ, ବିଚାରାଳୟରେ ନିଜନିଜ ପକ୍ଷ ସମର୍ଥନ କରିବା ନିମନ୍ତେ ପକ୍ଷମାନଙ୍କ ଦ୍ୱାରା ନିଯୁକ୍ତ ପ୍ରତିନିଧି, ରାଜାମାନେ ବନ୍ଧୁଘରକୁ ବେଭାର ନେଇ ଯିବାକୁ ପଠାଉ ଥିବା ପ୍ରତିନିଧି, କ୍ଷମତାପ୍ରାପ୍ତ ଦୂତ ।

ଐଶାନୀ—ସ୍ତ୍ରୀ. ବି. (ଈଶାନ+ଅ+ଈ) ଈଶାନ କୋଣ, ଶକ୍ତିବିଶେଷ, ଦୁର୍ଗା, ପାର୍ବତୀ ।

ଐଶାନ୍ୟ—ବି. (ଈଶାନ+ଯ) ଈଶାନ କୋଣ, ଉତ୍ତର-ପୂର୍ବ କୋଣ ।

ଐଶିକ—ବିଂ. (ଈଶ+ଇକ) ଈଶ୍ୱର ସମ୍ବନ୍ଧୀୟ ।

ଐଶୀ—ସ୍ତ୍ରୀ.ବି.(ଈଶ ଅ+ଈ)ଈଶ୍ୱର ସମ୍ବନ୍ଧିନୀ, ଦୁର୍ଗା, ଦେବୀ । [ଦେଖ ।

ଐଶ୍ୱର—ବିଂ. ( ଈଶ୍ୱର+ଅ ) ଐଶ

ଐଶ୍ୱରିକ—ବିଂ. ( ଈଶ୍ୱର+ଇକ ) ଈଶ୍ୱର ସମ୍ବନ୍ଧୀୟ ।

ଐଶ୍ୱର୍ଯ୍ୟ—କ୍ଲୀ.ବି.(ଈଶ୍ୱର+ଯ)ଈଶ୍ୱର, ଧର୍ମ, ବିଭୂତି, ଭୂତି, ସମ୍ପତ୍ତି, ପ୍ରଭୁତ୍ୱ, ଶାସକ, କର୍ତ୍ତୃତ୍ୱ,ବଡ଼ତି,ମହିମା,ପ୍ରତାପ, ଈଶ୍ୱରଙ୍କର ଅଣିମାଦି ଅଷ୍ଟବିଭୂତି ।

ଐଶ୍ୱର୍ଯ୍ୟକର୍ମୀ—ପୁଂ. ବିଂ. ଈଶ୍ୱରକର୍ମ-ଯୁକ୍ତ ।

ଐଶ୍ୱର୍ଯ୍ୟ ଗର୍ବ—ବି. ( କର୍ମଧା ) ବିଭବ-ଜନିତ ଅହଂକାର,ଧନଗର୍ବ ।

ଐଶ୍ୱର୍ଯ୍ୟବାନ୍—ବିଂ. (ଐଶ୍ୱର୍ଯ୍ୟ+ବତ୍) ଐଶ୍ୱର୍ଯ୍ୟବିଶିଷ୍ଟ, ଐଶ୍ୱର୍ଯ୍ୟଶାଳୀ ।

ଐଶ୍ୱର୍ଯ୍ୟମଦ—ବି. ( କର୍ମଧା ) ଐଶ୍ୱର୍ଯ୍ୟ ଗର୍ବ (ଦେଖ) ।

ଐଶ୍ୱର୍ଯ୍ୟଶାଳୀ—ପୁଂ. ବିଂ. (ଐଶ୍ୱର୍ଯ୍ୟ+ଶାଳିନ୍) ସମ୍ପତ୍ତିବାନ୍, ଧନଶାଳୀ, ପ୍ରତାପପୂର୍ଣ୍ଣ, ତେଜେମୟ, ଆଢ୍ୟ ।

ଐଷମଃ—ଅବ୍ୟ,ବର୍ତ୍ତମାନ ସମ୍ବତ୍ସରରେ,ଏହି ବର୍ଷରେ,ଏ ସନ ।

ଐଷମସ୍ତନ—ବିଂ. ( ଐଷମସ୍+ତନ) ଐଷମ ସମ୍ବନ୍ଧୀୟ, ଏହି ବର୍ଷର ।

ଐଷମସ୍ତ୍ୟ—ବିଂ. ( ଐଷମସ୍+ତ୍ୟ ) ଏହିବର୍ଷର ।

ଐଷାକାର—ବିଂ. ଶକ୍ତିହୀନ, ଦୁର୍ବଳ ।

ଐଷୀକ,ଐଷିକ—କ୍ଲୀ. ବି. (ଇଷୀକ+ଅ) ହସ୍ତୀର ଚକ୍ଷୁଗୋଲକ,ମୁଞ୍ଜା,କାଶତୃଣ, ଅସ୍ତ୍ରବିଶେଷ, ଫୁଲଶର,(ବିଂ.)ଇଷିକା-ତୃଣ ନିର୍ମିତ, ମହାଭାରତୋକ୍ତ ପର୍ବ ବିଶେଷ ।

ଐଷୁକାରି—ପୁଂ. ବି. (ଇଷୁ+କୃ+ଣି +ଅ+ଇ) ବାଣ ନିର୍ମାତାର ପୁତ୍ର, କଣ୍ଡରା ପୁଅ ।

ଐଷୁକାରଭକ୍ତ—କ୍ଲୀ.ବି.ଐଷୁକାର ବିଷୟ, ଐଷୁକାରଦେଶ । [ବିଶେଷ ।

ଐଷୁକାର୍ଯ୍ୟାଦି—ପାଣିନି ଉକ୍ତ ଗଣ

ଐଷ୍ଟିକ—ପୁଂ.ବି. (ଇଷ୍ଟି+ଇକ)ଇଷ୍ଟିର ବ୍ୟାଖ୍ୟାନ ଗ୍ରନ୍ଥ, ଯଜ୍ଞର ହୋତାକର ବିଷୟ, ଅଗ୍ନ୍ୟାଧେୟକ କର୍ମବିଶେଷ, (ବିଂ.) ଯଜ୍ଞ ସାଧନେ ସମର୍ଥ, ଯାଗ ସମ୍ବନ୍ଧୀୟ । [ଦେଖ

ଐସୁଲକ୍ଷଣୀ—ଗ୍ରା. ବିଂ. ଅଇସୁଲକ୍ଷଣୀ

ଐହ—ଗ୍ରା. ବିଂ. ଅହିଅ (ଦେଖ) ।

ଐହଲୌକିକ-ବିଂ. (ଇହଲୋକ+ଇକ) ମର୍ତ୍ତ୍ୟ ଲୋକ ସମ୍ବନ୍ଧୀୟ,ବର୍ତ୍ତମାନ,ଜନ୍ମ ସମ୍ବନ୍ଧୀୟ ।

ଐହିକ—ବିଂ. (ଇହ+ଇକ)ଇହଲୋକ ଜାତ,ଇହଲୋକର,ଇହକାଳ ସଂକ୍ରାନ୍ତ, ଇହଲୋକ ସମ୍ବନ୍ଧୀୟ ।

ଐହିକଦର୍ଶୀ—ପୁଂ.ବିଂ.(ତତ୍ପୁ)ସଂସାର-ସକ୍ତ,ସାଂସାରିକ,(ସ୍ତ୍ରୀ) ଐହିକଦର୍ଶିନୀ ।



ଓକାର—ସ୍ୱରବର୍ଣ୍ଣର ତ୍ରୟୋଦଶ ଅକ୍ଷର, ଦୀର୍ଘସ୍ୱର,ଉଚ୍ଚାରଣ ସ୍ଥାନ କଣ୍ଠ ଓ ଓଷ୍ଠ, ଓକାର ପଞ୍ଚଦେବମୟ, ରକ୍ତ ବିଦ୍ୟୁତା-କାର, ତ୍ରିଗୁଣାତ୍ମକ, ଈଶ୍ୱର, ପଞ୍ଚପ୍ରାଣ-ମୟ, ଦେବମାତା ଏବଂ ପରମକୁଣ୍ଡଳୀ, ତନ୍ତ୍ରୋକ୍ତ ନାମ—ସତ୍ୟ,ପୀୟୂଷ,ପଶ୍ଚି-ମାସ୍ୟ, ଶ୍ରୁତି, ସ୍ଥିର, ସଦ୍ୟୋଜାତ, ବାସୁଦେବ, ଗାୟତ୍ରୀ,ଉର୍ଦ୍ଧ୍ୱଦନ୍ତ,ଲକ୍ଷ୍ମୀ, ବାଣୀ, ମୁଖୀ, ଦ୍ୱିଜ, ଦର୍ଶକ, ଖଡ୍ଗ, କୈଳାସ,ବ୍ରହ୍ମସୂତ୍ର, ସର୍ବମଙ୍ଗଳା,ତ୍ରୟୋ-ଦଶୀ, ଦୀର୍ଘନାସା, ରତିନାଥ, ବିଜୟା, ପ୍ରଜ୍ଞା,ପ୍ରୀତି, ଧାତୁର ଅନୁବନ୍ଧ ବିଶେଷ ।

ଓ—ଅବ୍ୟ.ସମ୍ବୋଧନ ଅଭିପ୍ରାୟ,ଆହ୍ୱାନ, ସ୍ମରଣ, ଅନୁକମ୍ପା ଏବଂ ଆଉ ମାନେ ।

ଓ—ବି.ପୁଂ.ବ୍ରହ୍ମା ଗ୍ରା. ଅଗ୍ରବର୍ତ୍ତୀ ବ୍ୟକ୍ତି-ବିଶେଷ,ଉତ୍ତରଶ୍ରେଣୀସ୍ଥ ସ୍ତ୍ରୀମାନେ ସ୍ୱାମୀ ଉଦ୍ଦେଶ୍ୟେ 'ଓ' ଶବ୍ଦ ପ୍ରୟୋଗକରିଥାନ୍ତି ।

ଓଁ-ଅବ୍ୟ. ଓଁକାର, ପ୍ରଣବ, ମନ୍ତ୍ରର ଆଦ୍ୟବୀଜ ।

ଓଆକ—ଅବ୍ୟ. ବମନ ବେଗର ଶବ୍ଦ, ବକବିଶେଷ, ବକବିଶେଷର ଅବ୍ୟକ୍ତ ଶବ୍ଦ ।

ଓଆକବ(କ)—ଗ୍ରା. ବକ ବିଶେଷ ।

ଓଉ—ଗ୍ରା.ବି. ଅମ୍ଳଫଳବିଶେଷ ।

ଓଉମୁଣ୍ଡିଆ—ଗ୍ରା.ବିଂ. ଓମୁଣ୍ଡିଆ(ଦେଖ)

ଓଃ—ଗ୍ରା.ଅବ୍ୟ.(ଅ-ଅହୋ)ଖେଦ,ବିସ୍ମୟ, ଅବଜ୍ଞାତ, ବିରକ୍ତିସୂଚକ ଧ୍ୱନି ।

ଓକ—ବି.କ୍ଲୀ. (ଉଚ+ଅ) ଗୃହ,ଆଶ୍ରୟ (ପୁଂ.) ପକ୍ଷୀ, ଶୂଦ୍ର, ବୃଷଳ, ସ୍ଥାନ ।

ଓକଃ—ବି.କ୍ଲୀ. (ଉଚ+ଅସ୍) ଆଶ୍ରୟ ଗୃହ, ସ୍ଥାନ, ପକ୍ଷୀ, ଶୂଦ୍ର, ବୃଷଳ ।

ଓକଣି—ବି.ପୁଂ. ମତ୍କୁଣ, ଉକୁଣ ।

ଓକର—ଗ୍ରା.ବି. ଗୋଇ,ହରିଦ୍ରା,ଇଜତି, ବଳ, କ୍ଷମତା, ଶକ୍ତି, ଅଭ୍ୟାସ ।

ଓକରିବା—ଗ୍ରା. କ୍ରି. ଡାକିଲେ ଉତ୍ତର ଦେବା, କାମରେ ଆସିବା ।

ଓକଷ୍ଟ—ବି.ସ୍ତ୍ରୀ.ରାଜଗୃହାନ୍ତର୍ଗତଗୋଟିଏ ପ୍ରାଚୀନ ଗ୍ରାମ ।

ଓକାର—ବି.ପୁଂ.''ଓ'' ବର୍ଣ୍ଣ, ବ୍ରହ୍ମା ।

ଓକାଳ—ଗ୍ରା.ବି.(ଅ+ଉଦ୍‌ଗାର)ବାନ୍ତି, ବମନେଚ୍ଛା, (ବିଂ.) ବମିତ,ବାନ୍ତି କରା ଯାଇଥିବା ।

ଓକାଲତି—(ଯା.) ଓକିଲର କାର୍ଯ୍ୟ ।

ଓକାଲତନାମ—ଯା. ଉକିଲର ନିୟୋଗ ପତ୍ର ।

ଓକାଲତି—ଯା. ଉକିଲର ବ୍ୟବସାୟ, ପକ୍ଷସମର୍ଥନ । [ହିଇକା ।

ଓକାହଗା—ଗ୍ରା.(ବସ୍ତ୍ରର) ବି.ଝାଡାକଇ,

ଓକିଲ—ଯା. ବି. ଆଇନ ବ୍ୟବସାୟ, ବିଚାରାଳୟରେ ନିଜନିଜ ପକ୍ଷ ସମର୍ଥନ କରିବା ନିମନ୍ତେ ପକ୍ଷମାନଙ୍କ ଦ୍ୱାରା ନିଯୁକ୍ତ ପ୍ରତିନିଧି,ରାଜାମାନେ ବନ୍ଧୁଘରକୁ ବେଭାର ନେଇ ଯିବାକୁ ପଠାଉ ଥିବା ପ୍ରତିନିଧି, କ୍ଷମତାପ୍ରାପ୍ତ ଦୂତ ।

ଓଜକବସ୍—ବିଂ.(ଉଚ+ବସୁ)ସମବେତ, ଏକତ୍ରିତ ।
ଓଜୁଳ—ବି.ପୁଂ. (ଉଚ+ଉଳ) ଅର୍କ, ଗନ୍ଧ, ଅପକ୍ୱଗୋଧୂମ ।
ଓକୋଦନୀ—ବି.ସ୍ତ୍ରୀ. (ଓକସ୍+ଅଦ+କ,ଅନ+ଈ) ଯୂକ, ଉକୁଣୀ ।
ଓକୋଦଶାନୀ—ବି.ସ୍ତ୍ରୀ. ପ୍ରାଚୀର ।
ଓକ୍କଣୀ—ବି. ସ୍ତ୍ରୀ. ଉକୁଣୀ ।
ଓଖ—ଗ୍ରା. ବି. ଅଭ୍ୟାସ, ଖୋଇ, ବଦ-ଅଭ୍ୟାସ, ଛଳନା ।
ଓଖର—ଗ୍ରା.ବି.(ଫ+ଗୋକ୍ଷୀର)ଦୁଗ୍ଧ, ଗୋଦୁଗ୍ଧ ।
ଓଖଲଡ଼ଙ୍ଗା-ଗ୍ରା. ଉତ୍ତର ପଶ୍ଚିମକୁମାୟୁନ ପ୍ରଦେଶ ମଧ୍ୟବର୍ତ୍ତୀ ଗୋଟିଏ ଗ୍ରାମ,ଉତ୍କୃଷ୍ଟ ଗୁଡ଼ଳ ନିମିତ୍ତ ଖ୍ୟାତ ।
ଓଗଣ—ବିଂ (ଅବ+ଗଣ+ଅ) ଅବଗଣ୍ୟ, ଅଶ୍ରଦ୍ଧା ସହକାରେ ଯାହାକୁ ଗଣନା କରାହୁଏ ।
ଓଗର—(ଯା) ଓଗେର ଇତ୍ୟାଦ, ଏବଂ ଏହିପରି ଅନ୍ୟ ସବୁ ।
ଓଗୀୟସ୍—ବି.ଉଗ୍ର, ଅତ୍ୟନ୍ତ ତେଜସ୍ୱୀ ।
ଓଗେର—ଯା. ଇତ୍ୟାଦ, ପ୍ରଭୃତ ।
ଓଗୋ—ଗ୍ରା.ଅବ୍ୟ. ସମ୍ବୋଧନ ସୂଚକ ଶବ୍ଦ ।
ଓଗ୍ରେସର—ଯା. ବି. ଯେ ପୁଲିସ୍‌ବିଭାଗର କାର୍ଯ୍ୟ ତତ୍ତ୍ୱାବଧାନ କରନ୍ତି ।
ଓଘ—ପୁଂ.ବି. (ଉଚ+କ.ଅ) ସମୂହ, ନଦୀବେଗ, ତରଙ୍ଗ, ସ୍ରୋତ, ବହୁ ପରିମାଣ, ପରମ୍ପରା, ଉପଦେଶ, ଦ୍ରୁତନୃତ୍ୟ ।
ଓଘଦେବ—ପୁଂ.ବି. ପ୍ରାଚୀନଶୀଳାଲିପି ବର୍ଣ୍ଣିତ ଉତ୍କଳର ଜଣେ ମହାରାଜ ।
ଓଘରଥ—ପୁଂ.ବି. ରାଜବିଶେଷ, ଓଘବାନ୍ ରାଜାଙ୍କର ପୁତ୍ର ।
ଓଘବାନ୍—ପୁଂ.ବିଂ. (ଓଘ+ବତୁ)ଜଳ ବେଗାଦିଯୁକ୍ତ, (ବି) ରାଜବିଶେଷ,ଓଘରଥ ରାଜାଙ୍କ ପିତା ।
ଓଘବତୀ—ସ୍ତ୍ରୀ.ବି.ମହାଭାରତୋକ୍ତ ଓଘବାନ୍ ରାଜାଙ୍କର କନ୍ୟା, କୁରୁକ୍ଷେତ୍ରସ୍ଥ ନଦୀ ବିଶେଷ ।
ଓଗର—ପୁଂ.ବି. ଏକ ପ୍ରକାର ସନ୍ନ୍ୟାସୀ, ଏମାନେ ଯୋଗୀବୋଲି ପରିଚୟ ଦିଅନ୍ତି
ଓଁକାର—ପୁଂ.ବି. (ଓଁ+କାର)ପ୍ରଣବ, ଆରମ୍ଭ, ସପ୍ତସାମାବୟବର ପ୍ରଥମ ଅବୟବ, ଓଁ ଅକ୍ଷର,ମନ୍ତ୍ରରଆଦ୍ୟବୀଜ, ଲିଙ୍ଗବିଶେଷ ।
ଓଁକାରମାନ୍ଧାତା—ପୁଂ.ବି. ମଧ୍ୟପ୍ରଦେଶ ନିମାର ଜିଲ୍ଲା ଅନ୍ତର୍ଗତ ନର୍ମଦା ନଦୀ ମଧ୍ୟବର୍ତ୍ତୀ ଗୋଟିଏ ପ୍ରଧାନ ଦ୍ୱୀପ ।
ଓଁକାରୀ—ସ୍ତ୍ରୀ. ବି. ବୁଦ୍ଧଶକ୍ତିବିଶେଷ ।
ଓଛ—ଗ୍ରା.ବିଂ.(ଫ-ଉଚ୍ଛନ୍ନ)ଛିନ୍ନ,ଅସ୍ତ,ମ୍ଳାନ, ନଷ୍ଟ, ହ୍ରସ୍ୱ, ସାନ, ଅଳ୍ପ, ନୀଚ,ତୁଚ୍ଛ ।
ଓଛା—ଗ୍ରା. କୁତ୍ସିତ,ସର୍ବାପେକ୍ଷା ମନ୍ଦ ।
ଓଗ୍ଳଳ—ଗ୍ରା. ବି. ବିରେଚନ, ପତଳା-ଝାଡ଼ା, ବାନ୍ତି, ବମନ, (ଗ୍ରା-ବିଂ) ବାନ୍ତି କରାଯାଇ ଥିବା ।
ଓଜ—(ଧାତୁ) ବଳ, ତେଜ ।
ଓଜ—ପୁଂ. ବି. (ଓଜ+ଅ) ମେଷାଦି ରାଶିଗଣ ମଧ୍ୟରୁ ଅଯୁଗ୍ମରାଶି, ଅଯୁଗ୍ମମାତ୍ର
ଓଜ—ଗ୍ରା.ବି.(ଫ-ଓଜନଃ+ଓଜଃ)ବିଷମ ସଂଖ୍ୟା, ପରିମାଣ ବଦଳ, ବ୍ୟବହାର, ମହତ୍ତ୍ୱ,ଓଜନ,ଗୁରୁତା,ରାଶିରବର୍ଗମୂଳ ।
ଓଜତୁଲିବା—ଗ୍ରା. କ୍ରି. ଦୁଇ ପଦାର୍ଥର ଓଜନକୁ ତୁଳନା କରିବା ।
ଓଜନ—ଯା. ତୌଲ କରିବା,ଦ୍ରବ୍ୟାଦିର ପରିମାଣ,ଭାର, ମୂଲ୍ୟ, ଗାମ୍ଭୀର୍ଯ୍ୟ,(ବିଂ) ଭାରୀ । [ତଉଲିବା ।
ଓଜନକରିବା—ଗ୍ରା. କ୍ରି.ତୁଳନାଦଣ୍ଡିରେ
ଓଜନଦଣ୍ଡ-ଗ୍ରା.ବି.ତୁଳାଦଣ୍ଡ,ବଣାକାଠି ।
ଓଜନଆଁ—ଗ୍ରା. ବିଂ. ଭାରୀ ।
ଓଜର—ଯା. ବି. ଆପତ୍ତି, ଛଳ, ବାଧା, ବିରୋଧ, ବକ୍ତବ୍ୟ ବିଷୟ ।
ଓଜସ୍—କ୍ଳୀ.ବି. ପରାକ୍ରମ, ପ୍ରତାପ,ବଳ, ଦୀପ୍ତି, ଅବଲମ୍ବନ, ପ୍ରକାଶ, କାବ୍ୟର ଗୁଣ, ସ୍ଫୂର୍ତ୍ତି, ଶରୀରର ଧାତୁବିଶେଷ, ମେଷାଦି ଦ୍ୱାଦଶରାଶିମଧ୍ୟରୁ ଅଯୁଗ୍ମରାଶି, ଜ୍ଞାନେନ୍ଦ୍ରିୟ ପଟୁତା,ଶାସ୍ତ୍ରାଦି କୌଶଳ ।
ଓଜସ୍ୱଳ—ପୁଂ. ବିଂ. (ଓଜସ୍+ବଳ) ତେଜସ୍ୱୀ, ବଳବାନ୍, କ୍ଷମତାଶାଳୀ, ଓଜୋଗୁଣବିଶିଷ୍ଟ ।
ଓଜସ୍ୱାନ୍—ପୁଂ. ବିଂ. (ଓଜଃ+ବତୁ) ବଳବାନ୍, ତେଜସ୍ୱୀ, ଦୀପ୍ତିଶାଳୀ ।
ଓଜସ୍ୱିତା-ସ୍ତ୍ରୀ.(ଓଜସ୍ୱି+ତା) ବଳବତ୍ତା, ତେଜସ୍ୱିତା,ଓଜଃ,ତେଜଃ,ବଳ,ଦୀପ୍ତି ।
ଓଜସ୍ୱୀ—ପୁଂ. ବିଂ. (ଓଜସ୍+ବିନ୍) ତେଜସ୍ୱୀ,ବଳବାନ୍, ଦୀପ୍ତିମାନ୍,କ୍ଷମତାଶାଳୀ, ଓଜୋଗୁଣବିଶିଷ୍ଟ ।
ଓଜମନ୍—ବିଂ. (ଓଜ+ମନ୍) ପ୍ରେରକ, ବେଗ ।
ଓଜିଷ୍ଠ—ବିଂ.(ଓଜସ୍+ଇଷ୍ଠ)ତେଜସ୍ୱୀ, ବଳବାନ୍, ଦୀପ୍ତିଶାଳୀ ।
ଓଜୀୟାନ୍—ପୁଂ.ବିଂ.(ଓଜସ୍+ଈୟସ୍) ତେଜସ୍ୱୀ, ବଳବାନ୍, ଓଜସ୍ୱୀ, ଦୀପ୍ତ ।
ଓଟ୍—ଗ୍ରା. ବି. ବର୍ଗମୂଳ ବାହାରକରିବା ପରିମାଣ, ବଦଳ, ପ୍ରତିବଦଳ ।
ଓଟ୍ଟ—ଗ୍ରା. ଅଳ୍ପ ।
ଓଟ୍ଳା—ଗ୍ରା.ବି.(ଫ—ଉଙ୍କାର) ଉଟ୍ଳା (ଦେଖ) ।
ଓଝା—ଗା. ବି. ଗାରଡ଼ୀୟା, ମୈଥିଳୀ ବ୍ରାହ୍ମଣମାନଙ୍କରଉପାଧିବିଶେଷ, ଶିକ୍ଷକ, ଅବଧାନ, ସାପୁଆକେଳା, ଭୂତବୈଦ୍ୟ, ଯେ ମନ୍ତ୍ରଦ୍ୱାରା ସର୍ପଦଂଶନ ଓ ଭୂତଗ୍ରସ୍ତାଦି ଆରୋଗ୍ୟ କରେ ।
ଓଝାଳି—ଗ୍ରା. (ଗଞ୍ଜାମ) ଗଞ୍ଜାମର ପାଟକ ବିଶେଷ ।
ଓଝାଳିବା—ଗ୍ରା.କ୍ରି.ଉଝାଳିବା (ଦେଖ) ।
ଓଟ-ଗ୍ରା.ବି.ଉଷ୍ଟ୍ର,ପଶୁବିଶେଷ,ଉଟ, ଓଟ ।
ଓଟମୁହିଁରେଜୀରା—ଗ୍ରା. (ନ୍ୟାୟ)ଓଟପରି ବଡ଼ଜୀବର ମୁହଁକୁ ଜୀରାପରି ସାମାନ୍ୟ ବସ୍ତୁ ଦେଲେ ତାହା ନଗଣ୍ୟ ହୁଏ,ସେହିପରି ବହୁ ବସ୍ତୁ ଲୋଡ଼ାଥିବାସ୍ଥଳେ ଅତ୍ୟଳ୍ପ ବସ୍ତୁ ଦିଆଗଲେ ଏ ପ୍ରବଚନ ପ୍ରଯୁଜ୍ୟ ହୁଏ,ସମୁଦ୍ରକୁ ଶଙ୍ଖେପାଣିପରି ।
ଓଟମୁହାଁ—ଗ୍ରା. ବିଂ. ପୁଂ. ଉପରମୁହାଁ, ଯେ ଉପରକୁ ମୁହଁଟେକି ବାଟ ଚାଲେ, (ସ୍ତ୍ରୀ) ଓଟମୁହାଁ ।

ଓଟଗ୍ର—ଗ୍ରା. ବ. ଟଣା, ଝିଙ୍କା, ବାଉଁଶ କାମଡ଼ା, ଆକର୍ଷଣ ।
ଓଟଗ୍ରଓଟଗ—ଗ୍ରା. କ୍ରି. ଅନ୍ୟୋନ୍ୟରେ ଟଣାଟଣି ବା ଝିଙ୍କାଝିଙ୍କି ହେବା ।
ଓଟଗ୍ରପଡ଼ିବା—ଗ୍ରା. ବ. ନଈବଢ଼ି ଛଡ଼ାଛଡ଼ି ଯାଉଥିବା ସମୟରେ ସ୍ରୋତର ବେଗ ଅଧିକ ହେବା, ମରୁଡ଼ି ଯୋଗୁଁ ଫସଲ ମରିଯିବାର ଅବସ୍ଥା ଘଟିବା, ଆବଶ୍ୟକ ଅର୍ଥପାଇଁ ଅନାଟନ ଅବସ୍ଥା ଘଟିବା ।
ଓଟାର—ଗ୍ରା. ବ. ବମନେଚ୍ଛା. (ବିଂ) ଓଟାରିଆ (ଦେଖ) ।
ଓଟାରିଆ—ଗ୍ରା.ବିଂ. ଉଠାଣିଆଁ (ବାଟ), ବୁଲାଣିଆଁ (ବାଟ), ଶ୍ରମସାଧ୍ୟ, ଅର୍ଥାଭାବଯୁକ୍ତ (ଅବସ୍ଥା) ।
ଓଟାରିବା—ଗ୍ରା. କ୍ରି. ଟାଣିବା, ଆକର୍ଷଣ କରିବା, ଝିଙ୍କିବା, କୂଅ ଆଦିରୁ ପାଣି (କାଢ଼ିବା) ।
ଓଟାରିହେବା—ଗ୍ରା. କ୍ରି (ସ୍ୱାସରୋଗୀ) ଦୀର୍ଘଶ୍ୱାସ ମାରିବା, ବମନେଚ୍ଛା ପ୍ରକାଶକରିବା, କଥା କହିଲାବେଳେ କ୍ଳାନ୍ତ ବୋଧ କରିବା, କୌଣସି ଶ୍ରମସାଧ୍ୟ କାର୍ଯ୍ୟପାଇଁ ଶାରୀରିକ ବଳ କ୍ଷୟକରିବା ବା ଜୋର ଖର୍ଚ୍ଚ କରିବା ।
ଓଠ—ଗ୍ରା. ବି. ଓଷ୍ଠ, ଉଠ, ଓଠ, ଅଧର, ଚିବୁକ, ଥୋଡ଼ ।
ଓଡ଼କନା—ପ୍ରା. (ଲରିଆ) ବ. ଓଡ଼ଣ, ଛରପୋକ ।
ଓଡ଼—ବ. (ସଂ—ଓଡ୍ର) ଜବା, ମନ୍ଦାର ଫୁଲ, (ଗ୍ରା.ବ.)ଉତ୍କଳର ଆଦିମନିବାସୀ ଜାତିବିଶେଷ, ଓଡ଼ିଆ, ଚଷାମାନଙ୍କର ଜାତିବିଶେଷ, ଓଡ଼ଚଷା, ବିଶାଖାପଟଣା ଜୟପୁରନିବାସୀ ପାଇକଜାତି, (ସଂ—ହୋଡ଼—ଧାତୁ) ଭୂମିରେ ହଳକରିବା ଗୋଟିଏଥର, (ଲ.ଅ) ମୂର୍ଖ ଅଖାଡ଼ୁଆ ଲୋକ ।
ଓଡ଼ଚଷା—ଗ୍ରା.ବ. (ସଂ—ଓଡ଼+ଚଷା) ଶୂଦ୍ର ବା ଚଷାମାନଙ୍କରଶ୍ରେଣୀବିଶେଷ ।
ଓଡ଼ପା—ଗ୍ରା. ବ. (ପ୍ରାଚୀନ ନାମ) ବ୍ୟାସସରୋବର; ହିନ୍ଦୁଙ୍କ ତୀର୍ଥବିଶେଷ ।
ଓଡ଼ପାଇକ—ଗ୍ରା. ବ. ଖୋରଧାର ପାଇକମାନଙ୍କର ଏକଶ୍ରେଣୀ ।
ଓଡ଼ଫୁଲ—ଗ୍ରା.ବ.ମନ୍ଦାରଫୁଲ,ଜବାପୁଷ୍ପ ।
ଓଡ଼ବ—ପୁଂ.ବ.ପାଞ୍ଚଟିସ୍ୱରବିଶିଷ୍ଟ ରାଗ ।
ଓଡ଼ରାଷ୍ଟ୍ର—ଗ୍ରା.ବ. (ସଂ—ଓଡ୍ର ଓ ରାଷ୍ଟ୍ର) ଓଡ଼ିଶାଦେଶ, ଉତ୍କଳଦେଶ ।
ଓଡ଼ଣ—ଗ୍ରା. ବ. ଛରପୋକ, ମକ୍କୁଣ, (ସଂ—ଉଦ୍ଦଂଶ) ଖଟମଲ୍ଲ ।
ଓଡ଼ଣମାରି—ଗ୍ରା.ବ. ଏକଜାତୀୟ ବନ୍ୟଗଛ ଓ ତାହାଁରଫଳ, ସ୍ୱର୍ଣ୍ଣକ୍ଷୀରଣୀ, ପଟୁପର୍ଣ୍ଣୀ, ଶୃଗାଳକଣ୍ଟକ ।
ଓଡ଼ଣୀ—ଗ୍ରା. ବିଂ. (ସଂ-ଉଡ୍ରଦେଶୀୟ) ଓଡ଼ିଶାଦେଶବାସୀ, ଓଡ଼ିଆଭାଷା ସମ୍ବନ୍ଧୀୟ, ଓଡ଼ିଶାଦେଶଜାତ, ଓଡ଼ିଆ ।
ଓଡ଼ା—ଗ୍ରା. ବ. ବ୍ୟଞ୍ଜନବର୍ଣ୍ଣରେ ଯୁକ୍ତହେବା ଏକାରର ଚିହ୍ନ ( େ) ।
ଓଡ଼ାଙ୍କ—ଗ୍ରା. ବ. ନିର୍ଦ୍ଦିଷ୍ଟ ପ୍ରଣାଳୀରେ ମିଶାଣ ।
ଓଡ଼ାଙ୍କଧରିବା—ଗ୍ରା. କ୍ରି. ମୂଳସଂଖ୍ୟା ସଙ୍ଗେ କ୍ରମୋର୍ଦ୍ଧ୍ୱ ସଂଖ୍ୟାମାନ ମିଶାଇ ମିଶାଇ ଅଙ୍କ କଷିବା ।
ଓଡ଼ାଛଟଣି—ଗ୍ରା. ବ. ( ଗ୍ରନ୍ଥଶାଳୀରେ ବ୍ୟବହୃତ) ଐକାରର ଚିହ୍ନ, ବ୍ୟଞ୍ଜନ ବର୍ଣ୍ଣରେ ଐ ଯୁକ୍ତହେବା ଚିହ୍ନ (ୈ) ।
ଓଡ଼ାଣ—ଗ୍ରା.ବ.ଉଡ଼ାଇଦେବା,ଗୋପନ କରିବା, ଓଡ଼ାଙ୍କରୀତିରେ ସଂଖ୍ୟାମାନଙ୍କର ଯୋଗକରଣ, ନିର୍ଦ୍ଦିଷ୍ଟ କ୍ରମୋଚ୍ଚ ନିୟମରେ ଅଙ୍କ ବା ମିଶାଣ ।
ଓଡ଼ାବାଡ଼ି—ଗ୍ରା. ବ. ( ଗ୍ରନ୍ଥଶାଳୀରେ ବ୍ୟବହୃତ) ଓକାର, ବ୍ୟଞ୍ଜନବର୍ଣ୍ଣରେ "ଓ" ଯୁକ୍ତହେବା ଚିହ୍ନ (ୋ) ।
ଓଡ଼ାବାଡ଼ି ଛଟଣି—ଗ୍ରା.ବ. (ଗ୍ରନ୍ଥଶାଳୀରେ ବ୍ୟବହୃତ) ଔକାର, ଔକାରର ଚିହ୍ନ, (ୌ) ।
ଓଡ଼ାମଡ଼ା—ଗ୍ରା.ବ. ଏକପ୍ରକାର ରାଗ ଓ ଗାଳି (ଶିଶୁବଚନ) ।
ଓଡ଼ି—ଗ୍ରା. ବ.(ସଂ—ଉଦ୍‌ଗାର) ଏଓଡ଼ି, ଆଉଡ଼ି, ହାକୁଟି, ଢକାର ।
ଓଡ଼ିଆ—ଗ୍ରା.ବ. ଓଡ଼ିଶା ଦେଶବାସୀ, ଉତ୍କଳଭାଷା, ଅନାର୍ଯ୍ୟ ଜାତିବିଶେଷ ।
ଓଡ଼ିଆଣୀ—ଗ୍ରା. ବ. କଟିସୂତ୍ର, ମେଖଳା, ଅଣ୍ଟାସୂତା, ଓଡ଼ିଆ ଜାତିର ସ୍ତ୍ରୀ ।
ଓଡ଼ିକା—ସ୍ତ୍ରୀ.ବ.ଧାନ୍ୟବିଶେଷ,ନୀବାର ।
ଓଡ଼ିଶା—ଗ୍ରା. ବ. (ସଂ—ଉଡ୍ର ଓ ଓଡ୍ର) ଉତ୍କଳଦେଶ, ଓଡ଼ିଶାଦେଶ ।
ଓଡ଼ିସ୍ଥ—ଉତ୍କଳଭାଷା,ଉତ୍କଳଦେଶବାସୀ
ଓଡ଼ୀ—ସ୍ତ୍ରୀ. ବ. ଉଡ଼ିଧାନ, ନୀବାର ।
ଓଡ୍ର—ପୁଂ. ବ. ( ଆ+ଉଡ଼୍+ର ) ମନ୍ଦାରଗଛ. ଉତ୍କଳଦେଶ, ଓଡ଼ିଶା, (ବିଂ) ଓଡ଼ିଶାଦେଶବାସୀ ।
ଓଡ୍ରଦେଶ—ପୁଂ. ବ. ଓଡ଼ିଶାଦେଶ ।
ଓଡ୍ରପୁଷ୍ପ—କ୍ଳୀ.ବ. ଜବାଗଛ, ମନ୍ଦାରଗଛ, ମନ୍ଦାରପୁଷ୍ପ ।
ଓଡ୍ରାଖ୍ୟା—ସ୍ତ୍ରୀ.ବ.ଜବାପୁଷ୍ପବୃକ୍ଷ,ଓଡ଼ିଶା ।
ଓଢ଼—ବିଂ. ( ଆ+ବହ+ତ ) ଯାହା ସମ୍ୟକ୍‌ରୂପେ ବହନ ହୋଇଥାଏ ।
ଓଢ଼ଣଷଷ୍ଠୀ—ଗ୍ରା.ବ. ମାର୍ଗଶିର ଶୁକ୍ଳଷଷ୍ଠୀ, ପ୍ରାବରଣଷଷ୍ଠୀ ।
ଓଢ଼ଣା—ଗ୍ରା. ବ. ସ୍ତ୍ରୀ. (ସଂ-ଅବଗୁଣ୍ଠନ) ସ୍ତ୍ରୀମାନଙ୍କର ମୁଖାଚ୍ଛାଦନ ବସ୍ତ୍ର, ସ୍ତ୍ରୀମାନଙ୍କର ଉପରଣି ବସ୍ତ୍ର ।
ଓଢ଼ଣୀ—ଗ୍ରା. ବ. ସ୍ତ୍ରୀ. (ସଂ-ଅବଗୁଣ୍ଠନ) ଓଢ଼ଣା (ଦେଖ) ।
ଓଣି—ବିଂ.(ଓଣ+ଇନ୍)ଅପନୟନକାରୀ ।
ଓଣୀ—ସ୍ତ୍ରୀ.ବ. (ଓଣି+ଇ)ସ୍ୱର୍ଗ,ମର୍ତ୍ତ୍ୟ ।
ଓତ—ଗ୍ରା. ଅନ୍ତରାଳ, ଆଡ଼ୁଆଳ ।
ଓତ—ବିଂ. (ଆ+ବେ+ମ୍,ତ) ଅନ୍ତର୍ବ୍ୟାପ୍ତ,ଯେ ବସ୍ତ୍ର ବୁଣାହୋଇଥାଏ,(ବ) ବସ୍ତ୍ରର ଟାଣିସୂତା ।
ଓତନ—ଯା. ବାଡ଼ୀ, ଘର,ଧନ,ସମ୍ପତ୍ତି, ନିକଟରକ୍ତସମ୍ପର୍କୀୟ ବ୍ୟକ୍ତି ।
ଓତପ୍ରୋତ—ବିଂ.(ଦ୍ୱନ୍ଦ୍ୱ)ସର୍ବସ୍ଥାନବ୍ୟାପ୍ତ, ଟାଣୀଭରଣୀ, ଦୁଇବାଗରେ ବୁଣା ହୋଇଥିବା ।
ଓତା—ଗ୍ରା. ବ. ଉରଶୀୟବନ୍ଧ, ବ୍ରାହ୍ମଣମାନଙ୍କର ସଙ୍ଘ ବିଶେଷ, (ପ୍ର-ସମ୍ଭ) ଦନରଓଲ ।

ଓତୁ—ପୁଂ.ସ୍ତ୍ରୀ. (ଅବ+ଊ) ବିଡାଲ, ମାର୍ଜାର, ଜାଲର ଆଡ଼ବାଗର ସୂତା, ଜାଲର ଭରଣୀ ସୂତା ।

ଓଥଗ୍ର—ଗ୍ରା. ବିଂ. ପୁଂ. (ସଂ-ଅବସ୍ଥ) ଅକୃତଦାର, ଅବିବାହିତ, ଅଭିଆଡ଼ା ।

ଓଦନ—ପୁଂ. କ୍ଳୀ. (ଉନ୍ଦ+ଅନ) ଅନ୍ନ, ଭକ୍ଷ୍ୟ, ସିଦ୍ଧତଣ୍ଡୁଲ ।

ଓଦନପାକୀ—ସ୍ତ୍ରୀ.ବି. ନୀଳଝିଣ୍ଟୀ, ଦାସ-କେରେଣ୍ଟା ।

ଓଦନାହ୍ୱୟା—ସ୍ତ୍ରୀ. ବି. ମହାସମଙ୍ଗା ।

ଓଦନିକା—ସ୍ତ୍ରୀ. ବି. ବଳା, ବାଡ଼ିଅଁଳା

ଓଦନୀୟ—ବିଂ. (ଓଦନ+ଯତ୍) ଭକ୍ଷଣୀୟ ।

ଓଦର—ଗ୍ରା. ବି.(ସଂ-ଉର୍ଦ୍ଧ୍ୱ) ଶଗଡ଼ ଉପରେ ଧାନ ଗୁଉଳ ଖଡ ଆଦି ବୋହି ନେବାପାଇଁ ବାଉଁଶରେ ନିର୍ମିତ ବଡ଼ ଓ ଲମ୍ବ ଆଧାରବିଶେଷ, ଲେଦର ।

ଓଦା—ଗ୍ରା.ବିଂ.ଆର୍ଦ୍ର, ତିନ୍ତା, ସିକ୍ତ, ଉଦା ।

ଓଦାଳିଆ—ଗ୍ରା.ବିଂ. (ସଂ-ଆର୍ଦ୍ର) ଈଷତ୍ ଆର୍ଦ୍ର, ଅଳ୍ପ ଓଦାଥିବା ।

ଓଦର—ଅସଭ୍ୟ ଜାତି ବିଶେଷ ।

ଓଦ୍ମ—ପୁଂ. ବି. (ଉନ୍ଦ+ମନ୍) କ୍ଳେଦ ।

ଓଦ୍ମନ୍—ବିଂ. ଔଷଧ ।

ଓଧ—ଗ୍ରା. ବି. ଜଳମାର୍ଜାର, ଉଧ ।

ଓଧସ୍—କ୍ଳୀ. ବି. ପଶୁସ୍ତନ, ପହ୍ଲା ।

ଓଧନ—ପୁଂ. ବି. ମଙ୍ଗଳ, କଳସ ।

ଓଧଳ—ପ୍ରା. (ସିଂହ) ବି. ଶଗଡ଼ର ଦଣ୍ଡା ।

ଓଧାଣି—ଗ୍ରା. ବି. (ସଂ-ଓଦନ) ଭାତ ରାନ୍ଧିବା ପାଇଁ ଚୁଲ୍ଲୀ ଉପରେ ବସାଯିବା ପାଣିହାଣ୍ଡି ।

ଓଧି—ଗ୍ରା. ବି. କଦଳୀ ଗଛର ମୂଳପିଣ୍ଡ, ଶଗଡ଼ର ଝୁଲମୁଣ୍ଡ ।

ଓଫଗ—ପ୍ରା. (ସମ୍ବ) ବିଂ. ଉପୁର, ଯେଉଁ ଲୁଗା ବା ଅନ୍ୟ ପଦାର୍ଥ ଥରେ ବ୍ୟବହୃତ ହୋଇ ଫିଙ୍ଗା ହୋଇଥାଏ ।

ଓମ୍—(ଅବ+ମ) ପ୍ରଣବ, ସୂପକାର, ପ୍ରଶ୍ନ, ଦ୍ୱେଷ, ଅନୁମତି, ଆରମ୍ଭ, ଅପାକରଣ, ଅବଧାରଣ ଓ ମଙ୍ଗଳ ଅର୍ଥରେ ବ୍ୟବହୃତ ।

ଓଁ—ଅବ୍ୟ. (ଅବ+ମ) ପ୍ରଣବ, ସେତୁ, ମନ, କାୟ, ରଥ, ଉଦ୍ଗୃ, ଉଦ୍ଗୀଥ, ଶ୍ୱାସ, ଅଗ୍ନି, ତେଜ, ଜ୍ୟୋତିଃ, ବାକ୍, ଶବ୍ଦ, ରସ, ଜଳ, ମିଥୁନ, କ୍ଷେତ୍ର, ଯୂପ, ସଂସାରମ୍ଭ, ସ୍ୱୀକାରବାକ୍ୟ, ଅନୁମତି, ପ୍ରଶ୍ନ, ଅପାକୃତ, ଅସ୍ୱୀକାର ।

ଓମୁଣ୍ଡି—ଗ୍ରା.ବିଂ. ଲମ୍ବଭାବରେ ସ୍ଥିତ, (କ୍ରି.ବିଂ) ସିଧାଏ ସିଧାଏ, ଲମ୍ବଭାବେ ।

ଓମୁଣ୍ଡିଆ—ଗ୍ରା. ବିଂ. କ୍ରି. ବିଂ.ଓମୁଣ୍ଡି (ଦେଖ) ।

ଓୟେଲିଂଟନ—ଇଂଲଣ୍ଡରଜଣେ ବିଖ୍ୟାତ ଯୋଦ୍ଧା, ମରହଟ୍ଟାମାନଙ୍କୁ ଯୁଦ୍ଧରେ ପରାଜୟ କରିଥିଲେ ।

ଓୟେଲେସ୍‌ଲି—ଭାରତବର୍ଷର ଜଣେ ଗଭର୍ଣ୍ଣର ଜେନେରଲ୍, ଇଂଲଣ୍ଡର ବିଖ୍ୟାତ ଯୋଦ୍ଧା ।

ଓର—ଗ୍ରା. ବି. (ସଂ—ଅବସର) ସୀମା, ଶେଷ, ସୁବିଧା, ଖଞ୍ଜା, କନ୍ଦର, ସୂତ୍ର, କଳ, ଔଦ୍ଧତ୍ୟ, ସୁଯୋଗ, ପନ୍ଥା, ଉପାୟ ।

ଓରଉଣ୍ଡିବା—ଗ୍ରା. କ୍ରି. ଛିଦ୍ର ଖୋଜିବା, ସୁବିଧା ଅନୁସନ୍ଧାନ କରିବା । [ଓଳି ।

ଓରଛ—ପ୍ରା. (ବସ୍ତର) ବି. ଘର ଚାଳର

ଓରଦା—ଗ୍ରା. ବି.(ସଂ-ଆର୍ଦ୍ର) ସ୍ରୋତ-ସ୍ୱତୀ ନଦୀର ସ୍ରୋତସ୍ଥାନ ସ୍ଥାନ ବା ସ୍ଥିର ପାଣି ଥିବା ଅଂଶ, ଆଉଣ୍ଡି, କୃଷିର ପାଗ-ବିଶେଷ, ବିଂ. ସ୍ଥିର ପାଣିଥିବା (ସ୍ଥାନ) ।

ଓରପଟିବା—ଗ୍ରା. ବି. ସୁବିଧା ଘଟିବା ।

ଓରଫ(ଫ୍)—ଯା.ଅବ୍ୟ.ଅଥବା, ପ୍ରତିନାମ, ମାରଫତ୍, ଉପନାମ, ନାମାନ୍ତର, ଅପର ନାମ ।

ଓରବଣା—ଗ୍ରା. ବିଂ. ବାଟବଣା ।

ଓରମା—ଗ୍ରା. ବି. (ଦରଜିଙ୍କଭାଷା)ଏକ ପ୍ରକାର ସିଲେଇ, ଲୁଗାରଧଡ଼ିକୁ ମୋଡ଼ି ଉକ୍ତ ମୋଡ଼ା ସ୍ଥାନକୁ ସିଲାଇ କରିବାର ଢଙ୍ଗ, ପ୍ରା. (ବସ୍ତର) ଓଇ ।

ଓରମାଲ—ଯା.ବି.ରୁମାଲ, ଝେଣ୍ଟଗୃଦର, ଗୁରିକଣିଆଁ ବଡ଼ପତାକା ।

ଓରମ୍ବା—ଗ୍ରା.ବିଂ. ଯେ ନିଜର କର୍ତ୍ତବ୍ୟ ବୁଝେନାହିଁ, ଯେ ଅକାର୍ଯ୍ୟରେ ସମ୍ପତ୍ତି ନଷ୍ଟକରେ, ଅପବ୍ୟୟୀ, ଲମ୍ପଟ, ଅସୀମ ସାହସିକ, ଅଖାଡୁଆ, ନିୟମବହିର୍ଭୂତ ।

ଓରସା—ଗ୍ରା. ବିଂ. ସିକ୍ତ, ଓଦା ।

ଓରାଲିଆ—ଗ୍ରା. ବିଂ. ପୁଂ. ଅଲବଲିଆ (ଦେଖ) ।

ଓରିଆ—ଗ୍ରା. ବି. ଅନ୍ନ, ଭାତ, ଉଆ ।

ଓରିଆଣି—ପ୍ରା (ଗଞ୍ଜାମ) ବି. ଫୁଟିଆଣି (ଦେଖ) ।

ଓରିବା—ପ୍ରା. କ୍ରି. (ସଂ—ଆ+ବୃତ) ପଶ୍ଚାତ୍‌ପଦହେବା, ପଛଘୁଞ୍ଚାଦେବା, ନିବର୍ତ୍ତିବା, ହଟିଯିବା, ଦୁର୍ବଳ ହେବା, ବିମର୍ଷ ହେବା ।

ଓଲ—ବିଂ.(ଆ+ଉଲ+ଅ)ଆର୍ଦ୍ର, ଓଦା ଭିଜା, (ଗ୍ରା.ବିଂ.)ନିର୍ବୋଧ, ବୋକା ।

ଓଲ୍—ପୁଂ.ବି.ସ୍ୱନାମଖ୍ୟାତ ମୂଳବିଶେଷ, ଶୂରଣ, କନ୍ଦ, କନ୍ଦଳ, ଅର୍ଶଘ୍ନ, ଓଲୁଅ ।

ଓଲଗ(ଲକ)—ଗ୍ରା.ବି.ନମସ୍କାର, ଓଲଗି ।

ଓଲକତ—ଗ୍ରା.ବିଂ. (ସଂ—ଅଲୌକିକ) ଅଲୌକିକ, ଅଲେକତ ।

ଓଲକୋବ—ଗ୍ରା.ବି.ଉଲକୋବ(ଦେଖ) ।

ଓଲଗି—ଗ୍ରା.ବି. (ସଂ-ଭୂଲଗ୍ନ) ନମସ୍କାର, ପ୍ରଣାମ, ସ୍ତ୍ରୀଲୋକମାନେ ମାନ୍ୟବ୍ୟକ୍ତିଙ୍କୁ କରିବା ପ୍ରଣାମ ।

ଓଲଟକଟିବା—ପ୍ରା. (ସମ୍ବ) କ୍ରି. ବର୍ଷା ହେବାପରେ ଓଦାଭୂଇଁ ଶୁଖିଯିବା ।

ଓଲଜ—(ଧାତୁ) ନିକ୍ଷେପ କରିବା ।

ଓଲଟ—ଗ୍ରା.ବି. ବିଂ. ଉପରପାଖ ତଳକୁ ଓ ତଳପାଖ ଉପରକୁ କରାଯାଇଥିବା, ବିପରୀତ, ଅବଗ୍ଭର ଓ ଅନ୍ୟାୟପୂର୍ଣ୍ଣ, ପ୍ରତିକୂଳ ।

ଓଲଟକମଲ—ଗ୍ରା. ବି. ସ୍ୱନାମପ୍ରସିଦ୍ଧ ବୃକ୍ଷ ଓ ପୁଷ୍ପବିଶେଷ ।

ଓଲଟକୁହା—ଗ୍ରା.ବିଂ.ପୁଂ. ଯେଉଁ ଭୃତ୍ୟ ସ୍ୱାମୀଙ୍କ ଆଦେଶକୁ ଶିରୋଧାର୍ଯ୍ୟ ନକରି ଓଲଟି କରି ଜବାବ ଦିଏ, ଉତ୍ତର ଦାୟକ (ଭୃତ୍ୟ), ମଗର୍, ଯେ ସ୍ପଷ୍ଟ ଛଡ଼ା କଥା କହେ ।

ଓଲଟପାଲଟ — ଗ୍ରା.ବ. ଘଣ୍ଟାଘଣ୍ଟି,ଘଣ୍ଟାଚକଟା, ବଦଳା ବଦଳି, ବିଶୃଙ୍ଖଳ, ଲେଉଟା ପାଉଟା, ଗୋଳମାଳ (ବିଂ.) ଘଣ୍ଟାଘଣ୍ଟି ହୋଇଥିବା, ବଦଳା ଯାଇଥିବା, ଲେଉଟା ହୋଇଥିବା, ଗୋଳମାଳ ହୋଇଥିବା ।

ଓଲଟା — ଗ୍ରା.ବ.ବିପରୀତ,ଓଲଟ(ଦେଖ), (ଅବ୍ୟ) ଅପରନ୍ତୁ, ପରନ୍ତୁ ।

ଓଲଟାଇବା-ଗ୍ରା.କି.ଉଲଟାଇବା (ଦେଖ)

ଓଲଟାକାଳ — ଗ୍ରା. ବ. କଳିକାଳ, ଯେଉଁ ସମୟରେ ଅଧର୍ମ, ଅସତ୍ୟ, ଅବିଚାର ଓ ଅନ୍ୟାୟମାନ ଘଟେ, କଳିଯୁଗ ।

ଓଲଟାଘୋଡ଼ାଚଢ଼ିବା—ଗ୍ରା. (ନ୍ୟାୟ) ଯେଉଁ ବ୍ୟକ୍ତି ଅନ୍ୟାୟ ବା ଦୋଷକରିଥାଏ, ସେ ଆପଣାକୁ ନିର୍ଦ୍ଦୋଷ ବୋଲି ଦେଖାଇ ନିର୍ଦ୍ଦୋଷକୁ ଦୋଷୀ କରିବାକୁ ବସିଲେ କିମ୍ବା ଯାହାଉପରେ ମୋର ପାଉଣା ଅଛି, ସେ ଓଲଟି କରି ମୋ ଉପରେ ଦାବୀକଲେ ଏ ପ୍ରବଚନ ବୋଲିଯାଏ ।

ଓଲଟାନିଷାପ,(ନ୍ୟାୟ)-ଗ୍ରା.ବ.ଅବିଚାର, ଅବୁଝାମଣା ।

ଓଲଟି — ଗ୍ରା. ଅବ୍ୟ. ପରନ୍ତୁ ।

ଓଲଟିପଡ଼ିବା—ଗ୍ରା. କି. ତଳକୁ ମୁହଁହୋଇ ପତିତ ହେବା, ଅନ୍ୟଥାହେବା, ଆଶାର ବିପରୀତ କର୍ମ କରିବା, ବିପର୍ଯ୍ୟସ୍ତ ହେବା, ବିପରୀତ ମତ ପୋଷଣକରିବା ।

ଓଲଟିଯିବା—ଗ୍ରା. କି. ଓଲଟି ପଡ଼ିବା (ଦେଖ) ।

ଓଲଟେଇବା — ଗ୍ରା.କି.ଓଲଟିବା କ୍ରିୟାର ଣିଜନ୍ତ ରୂପ ।

ଓଲନ—ଗ୍ରା.ବ.(ସଂ—ଅଧୋଲମ୍ବ)ଓଲମ, ରାଜମିସ୍ତ୍ରୀଙ୍କ ବ୍ୟବହୃତ ମୁଣ୍ଡରେ ସୀସା ଦିଆଯାଇଥିବା ସୂତା, ସୂତାର ଅଗରେ ଝୁଲୁଥିବା ସିସା ବା ଲୁହାର ଗୋଲାକାର ପିଣ୍ଡ ।

ଓଲନ୍ଦାଜ—ୟୁରୋପାନ୍ତର୍ଗତ ହଲାଣ୍ଡ ବା ନେଦରଲାଣ୍ଡ ଦେଶର ଅଧିବାସୀମାନଙ୍କୁ ଓଲନ୍ଦାଜ କହନ୍ତି ।

ଓଲମବିଲେମ—ଗ୍ରା.ବ. ଓ.ବିଂ. ଉଲମ୍ବିଲମ୍ (ଦେଖ) ।

ଓଲମ—ଗ୍ରା.ବ. ଲମ୍ବମାନ ରଜ୍ଜୁ, ଓଲନ (ଦେଖ) ।

ଓଲମା--ଗ୍ରା.ପୁଂ.ବିଂ.ନିର୍ବୁଦ୍ଧିଆ,ଅସିଆଣା

ଓଲମିଚ(ଝି)-ଗ୍ରା.ବ.ଶିଶୁମାନଙ୍କର ଡାଳମାଙ୍କୁଡ଼ି ଖେଳ ।

ଓଲମିବା—ଗ୍ରା. (ଗଞ୍ଜାମ) ଓହଳିବା, ତଳକୁ ଲମ୍ବିବା ।

ଓଲି — ଗ୍ରା.ପୁଂ. ବିଂ. ନିର୍ବୁଦ୍ଧିଆ ।

ଓଲା — ଗ୍ରା. ବ. ଓଲାଇବା, ଝାଡ଼ୁଦ୍ୱାରା ଅଳିଆ ସଫା କରିବା ।

ଓଲାଇବା-ଗ୍ରା.କି.ଝାଡ଼ୁକରିବା,ଛାଞ୍ଚୁଣିଦ୍ୱାରା ଅଳିଆ ସଫା କରିବା ।

ଓଲଉଠା---କଠିନ ରୋଗବିଶେଷ, ବିସୂଚିକା, ହଇଜା ।

ଓଲଗିବା ଗ୍ରା. କ୍ରି. ( ସଂ – ଉଲଗ୍ନ ) ଓହ୍ଲାଇବା, ଦେହରୁ କାଢ଼ିବା ।

ଓଲଦ—ଯା.ବ.(ସଂ — ବାଲ) ପୁଅ,ପୁଅ ।

ଓଲର— ଗ୍ରା. ବ. ଉଲର (ଦେଖ) ।

ଓଲରିବା- ଗ୍ରା. କ୍ରି. ଛପରରୁ ନଡ଼ା ବା ଆବରଣ ଉନ୍ମୁକ୍ତ କରିବା, ବନ୍ଧନରୁ ମୁକ୍ତ କରିବା ।

ଓଳି-ଗ୍ରା.ବ.ଛପରର ଶେଷଭାଗ,ଧନାର୍ଦ୍ଧ, ଧନର ଶେଷଭାଗ,ଛୋଟକୁଡ଼ିଆ,ଆକୃତ, ପ୍ରକୃତ, ଅଭ୍ୟାସ, ବିଶେଷତ୍ୱ, (ବିଂ.) ଆକୃତବିଶିଷ୍ଟ ।

ଓଳିଆ — ଗ୍ରା. ବ. ଶସ୍ୟାଦି ବାନ୍ଧିବାର ପାଳନିର୍ମିତବୁଜୁଲା, ଓଳାଇବା, (ବିଂ.) ପରିଷ୍କାର ହୋଇଥିବା ।

ଓଳିଆ—ଗ୍ରା . ବିଂ. ( ସଂ — ଲାଳାୟିତ ) ଖାଦ୍ୟଦ୍ରବ୍ୟ ନିମନ୍ତେ ଅତ୍ୟନ୍ତ ଲାଳାୟିତ, ଯେଉଁ ଗୋରୁ ଖାଇବାକୁ ବାଡ଼ ଖର୍ଚ୍ଚ ପଶେ, ଯେ ଖାଇବାକୁ ସବୁବେଳେ ହାଉଁପାଉଁ ହେଉଥାଏ, (ସ୍ତ୍ରୀ) ଓଲେଇ ।

ଓଳିଆଓଳି — ଗ୍ରା. ବ. ଏକାଧିକ ଥର ଛାଞ୍ଚୁଣିରେ ପରିଷ୍କାର କରିବା ।

ଓଳିଆଗାଣ୍ଡି—ଗ୍ରା. ବିଂ. ଯାହାର ପିଚ୍ଛ ଓଳିଆପରି ବଡ଼ ଓ ବର୍ତ୍ତୁଳ ।

ଓଳିଆରୁ ଗଜା — ଗ୍ରା.କ୍ରି. (ବ୍ୟଙ୍ଗୋକ୍ତି) ଅକାଳପକ୍ୱ ବା ଅଳ୍ପବୟସରେ ଅତିଧୃଷ୍ଟତା ବା ଗୁଣ୍ଡାମି ଦେଖାଇବା ବାଳକକୁ ଲକ୍ଷ୍ୟକରି ଏ ବାକ୍ୟ ବୋଲାଯାଏ ।

ଓଳିକିଆ—ଗ୍ରା.ବିଂ. (ସଂ—ବେଳା) ଏକଓଳି ବା ଦିନାର୍ଦ୍ଧସମ୍ବନ୍ଧୀୟ, ଏକଓଳି ସମୟରେ କରାଯିବା, ଏକବକ୍ତ ଖାଉଥିବା, ଦିନ ମଧ୍ୟରେ ଏକଓଳିମାତ୍ର କାର୍ଯ୍ୟ କରୁଥିବା ।

ଓଳିତଳ — ଗ୍ରା. ବ. ଗୃହରୁ ପାଣିଗଡ଼ି ଯେଉଁଠାରେ ଭୂମିରେ ପଡ଼େ, ଘର ଗୃହର ନିମ୍ନଭୂମି ।

ଓଳିତଳିଆ—ଗ୍ରା. ବିଂ: ବଡ଼ଲୋକ ଆଦିଙ୍କ ଅତିସନ୍ନିକଟରେ ବାସକରୁଥିବା, ବଡ଼ ଲୋକମାନଙ୍କ ଆଶ୍ରିତ ବା ଅନୁସରଣିଆଁ (ବ୍ୟକ୍ତି) ।

ଓଲୁ— ଗ୍ରା.ବିଂ. ବଗା, ଅଧମ, ନିର୍ବୋଧ, ଅସିଆଣା, ଓଲି ।

ଓଲୁଅ — ଗ୍ରା.ବ.(ସଂ—ଓଲ୍ବ)ଓଲ(ଦେଖ)

ଓଲୁଆ — ଗ୍ରା. ବ. ଶଗଡ଼ ଚକର ହାଣ୍ଡିମଧ୍ୟସ୍ଥ ଛିଦ୍ର ଅକ୍ଷଦ୍ୱାରା ଘଷି ହୋଇ ଘୋର ହୋଇ ନ ଯିବା ପାଇଁ ସେହି ଛିଦ୍ରରେ ଦିଆଯାଇଥିବା ବୃତ୍ତାକାର ଲୌହ ବଳୟ, ସମା, ଏକ ଜାତୀୟ ଛୋଟମାଛ, ଆଖୁଘଣା ।

ଓଲୁବନିବା — ଗ୍ରା.କ୍ରି.ଠକାମିରେପଡ଼ିବା ।

ଓଲ୍ଲ—ପୁଂ. ବ. ଓଲ, ଓଲୁଅ ।

ଓଷ — ପୁଂ.ବ. (ଉଷ + ଅ) ଦାହ,ପାକ, ଶୀଘ୍ର, ପୋଡ଼ାଜଳା,କୁହୁଡ଼ି, କାକର ।

ଓଷଣ-ପୁଂ.ବ.(ଉଷ + କ,ଅନ)କଟୁରସ, ଝାଳ, (ବିଂ ) ଦାହକାରକ, ରାଗ ।

ଓଷଣୀ — ସ୍ତ୍ରୀ. ବ. (ଓଷଣ + ଈ) ଶାକଭେଦ ।

ଓଷଧି — ସ୍ତ୍ରୀ.ବ. (ଓଷ + ଧା + ଇ)ଉଦ୍ଭିଦବିଶେଷ, ଜୋଡଲତା ।

ଓଷଧିଗର୍ଭ—ପୁଂ.ବି.(ବ.ବ୍ରୀ)ଚନ୍ଦ୍ର, ସୂର୍ଯ୍ୟ ।
ଓଷଧିଜ—ବିଂ. ଔଷଧି, (ପୁଂ) ଔଷଧିରୁ ଉତ୍ପନ୍ନ ଅଗ୍ନି । [ଚନ୍ଦ୍ର ।
ଓଷଧିନାଥ,ଓଷଧୀନାଥ- ପୁଂ.ବି.(ଷତତ୍)
ଓଷଧିପତି—ପୁଂ ବି. (ଷତତ୍) ଚନ୍ଦ୍ର, କର୍ପୂର, ସୋମଲତା ।
ଓଷଧିପ୍ରସ୍ଥ—ପୁଂ. ବି.' ହିମାଳୟ, ହିମାଳୟସ୍ଥ ନଗରବିଶେଷ ।
ଓଷଧୀ—ସ୍ତ୍ରୀ. ବି. (ଓଷଧି + ଈ)ଓଷଧି ।
ଓଷଧୀପତି—ପୁଂ. ବି. ଚନ୍ଦ୍ର, କର୍ପୂର ।
ଓଷଧୀଶ—ପୁଂ.ବି.ଚନ୍ଦ୍ର, କର୍ପୂର, ନିଶାକର, (ସ୍ତ୍ରୀ) ଓଷଧୀଶା, ସୋମଲତା ।
ଓଷା—ଗ୍ରା. ବି. (ସଂ—ଉପବାସ)ଉପାସ, ଅନଶନ ବ୍ରତ, ବ୍ରତ, ରାଜମିସ୍ତ୍ରୀଙ୍କ ବ୍ୟବହୃତ କାନ୍ଥ ଆଦିର ପଲସ୍ତରା ଠିକ୍ କରିବାର କାଷ୍ଠନିର୍ମିତ ଯନ୍ତ୍ରବିଶେଷ ।
ଓଷାଉଜେଇବା—ଗ୍ରା. କ୍ରି. ବ୍ରତ ଉଦ୍ୟାପନ କରିବା ।
ଓଷାବା—ଗ୍ରା. ବି. ( ଅନର୍ଥକ ଦ୍ୱିତ୍ୱସ୍ଥ ସହଚର ) ଉତ୍ସବ ଓ ଉପବାସାଦି ।
ଓଷିଷ୍ଠ—ବିଂ. ( ଓଷ + ଇଷ୍ଠ ) ଅତିଶୟ ଦାହକାରକ ।
ଓଷ୍ଠାବନ୍—ବିଂ. ଦାହକାରୀ ।
ଓଷ୍ଠ—ପୁଂ.ବି. (ଉଷ + ଠ) ଦନ୍ତଚ୍ଛଦ, ଦନ୍ତବାସ, ରଦଚ୍ଛଦ, ଓଠ, ଥୋଡ଼, ଚବୁକ ।
ଓଷ୍ଠକ—ବିଂ. (ଓଷ୍ଠ + କ)ଓଷ୍ଠେ ବ୍ୟାପ୍ତ ।
ଓଷ୍ଠକର୍ଣ୍ଣକ—ପୁଂ. ବି. ଜନପଦବିଶେଷ ।
ଓଷ୍ଠକୋପ—ପୁଂ. ବି. ଓଷ୍ଠରୋଗ ।
ଓଷ୍ଠଜାହ—କ୍ଲୀ. ବି. ( ଓଷ୍ଠ + ଜାହଚ୍ ) ଓଷ୍ଠମୂଳ ।
ଓଷ୍ଠପୁଟ—ବି. (ଓଷ୍ଠ + ପୁଟ) ଦୁଇ ଓଷ୍ଠର ମଧ୍ୟବର୍ତ୍ତୀ ପାର୍ଶ୍ୱକୃତ ବ୍ୟବଧାନ ।
ଓଷ୍ଠପୁଷ୍ପ—ପୁ ବି (ଓଷ୍ଠ + ପୁଷ୍ପ) ବନ୍ଧୁକ-ଫୁଲଗଛ,(କ୍ଲୀ)ବନ୍ଧୁକପୁଷ୍ପ, ବଧୂଲିଫୁଲ ।
ଓଷ୍ଠପ୍ରକୋପ—ପୁଂ. ବି. ଓଷ୍ଠରୋଗ ।
ଓଷ୍ଠବ୍ରଣ—ବି. ଉପର ଓଷ୍ଠରେ ହେବା ଦୁଷ୍ଟବ୍ରଣ ।

ଓଷ୍ଠରୋଗ—ପୁଂ. ବି. ଓଷ୍ଠଗତ ରୋଗ ।
ଓଷ୍ଠାଗତପ୍ରାଣ—ବିଂ.(ବ.ବ୍ରୀ) ମୃତପ୍ରାୟ, ଯାହାର ପ୍ରାଣ ବହିର୍ଗତ ହେବାର ଉପକ୍ରମ ହୋଇଥାଏ ।
ଓଷ୍ଠାଧର—ପୁଂ.ବି.(ଦ୍ୱନ୍ଦ୍ୱ)ଓଷ୍ଠ ଓ ଅଧର, ଉପର ଓ ତଳ ଓଷ୍ଠ ।
ଓଷ୍ଠୀ—ସ୍ତ୍ରୀ.ବି.(ଓଷ୍ଠ + କ୍ୱିପ୍ + ଅ + ଈ) ବିମ୍ବଫଳ ।
ଓଷ୍ଠୋପମଫଳା—ସ୍ତ୍ରୀ.ବି.ବିମ୍ବଫଳ ଲତା ।
ଓଷ୍ଠ୍ୟ—ବିଂ. (ଓଷ୍ଠ + ଯ)ଓଷ୍ଠରୁ ଯାହାର ଉତ୍ପତ୍ତି, ଓଷ୍ଠ ସାହାଯ୍ୟରେ ଉଚ୍ଚାରିତ ।
ଓଷ୍ଠ୍ୟବର୍ଣ୍ଣ—ପୁଂ. କ୍ଲୀ. ଉ, ଊ, ଓ, ଔ, ପ, ଫ, ବ, ଭ, ମ, ଯେଉଁ ବର୍ଣ୍ଣମାନଙ୍କର ଉଚ୍ଚାରଣରେ ଓଷ୍ଠର ସାହାଯ୍ୟ ଆବଶ୍ୟକ ।
ଓଷ୍ଣ—ବିଂ.(ଆ + ଉଷ୍ଣ) ଈଷତ୍ ଉଷ୍ଣ ।
ଓସର—ପ୍ରା. (ବସ୍ତର) ବି. ଦାମୁଡ଼ି ।
ଓସରୀ—ପ୍ରା. (ବସ୍ତର) ବି. ଛଡ଼ା ।
ଓସାର—ଗ୍ରା. ବି. ପ୍ରସ୍ଥ, ପରିସର, (ବିଂ) ବିସ୍ତୃତ, ଚୌଡ଼ା ।
ଓସାରିଆ—ଗ୍ରା. ବିଂ. ଚୌଡ଼ା, ବିସ୍ତୃତ ।
ଓସାରିଆ—ଗ୍ରା. କ୍ରି. ଟାଣିକରି ବେଶି ଓସାର କରିବା, ବିସ୍ତୃତ କରିବା ।
ଓସ୍ତ—ଗ୍ରା. ବି. ଅଶ୍ୱସ୍ଥ ବା ଅଶ୍ୱତ୍ଥ ।
ଓସ୍ତାଦ୍—ଯା. ବି. ଗୁରୁ, କୁଶଳ, କୌଣସି ବିଦ୍ୟାରେ ସିଦ୍ଧହସ୍ତ ବ୍ୟକ୍ତି ।
ଓସ୍ତାନ—ଗ୍ରା. ବି. କୌଣସି ପରିବାରରେ ପୁରୁଷାନୁକ୍ରମେ ସୁରକ୍ଷିତ ଦରକାରୀ କାଗଜପତ୍ର ଥିବା ବସ୍ତାନି ।
ଓସ୍ତାନ ପୋସ୍ତାନ - ଗ୍ରା. ବି. କୌଣସି ବ୍ୟକ୍ତିର ପୂର୍ବପୁରୁଷାନୁକ୍ରମିକ ପାରିବାରିକ ଗୃହଚ୍ଛିଦ୍ର ।
ଓହ—ପୁଂ. ବି. ( ଆ + ବହ + ଘ, ଅ ) ସମ୍ୟକ୍‌ବହନ, (ବି.) ବାହକ, ପ୍ରାପକ ଉଭୟ ।

ଓହବ୍ରହ୍ମନ୍ ପୁଂ. ବି. ଉହବ୍ରହ୍ମସୂକ୍ତ ।
ଓହମୁଣ୍ଡିଆ—ଗ୍ରା. ବିଂ.ବରାବର ସିଧା ଓ ଲମ୍ବ,(କ୍ରି.ବିଂ) ଲମ୍ବେ ଲମ୍ବେ,ବରାବର ଲମ୍ବଭାବରେ ବହୁଦୂର ପର୍ଯ୍ୟନ୍ତ ।
ଓହରିବା—ଗ୍ରା. କ୍ରି. (ବଳ) କମିଯିବା, ପଶ୍ଚାତ୍‌ପଦହେବା, ନିରସ୍ତହେବା,ପଛକୁ ପଳାଇବା, ଶଙ୍କିଯିବା, ଉହୁଙ୍କିବା ।
ଓହଳ—ଗ୍ରା. ବି. ବର ପ୍ରଭୃତି ଗଛରୁ ଯେଉଁଅଂଶତେରପରିତଳକୁ ବାହାରେ ।
ଓହଳା—ଗ୍ରା. ବିଂ. ( ସଂ-ଅବ + ରୁହ ) ଓହଳଥିବା,ଝୁଲୁଥିବା,ତଳକୁ ଲମ୍ବିଥିବା, ଆଗ୍ରହଭ୍ରଷ୍ଟ ହୋଇ ସମାଜରେ ନିମ୍ନକୁ ଖସିଥିବା (ଉଚ୍ଚଜାତିସ୍ଥ ବ୍ୟକ୍ତି) ।
ଓହଳାଇବା—ଗ୍ରା.କ୍ରି.ବିଂ ଲଟକାଇବା, ଝୁଙ୍କି ନତକରିବା ।
ଓହଳିବା—ଗ୍ରା. କ୍ରି. ବି. ଦୋଳିବା, ଝୁଲିବା, ଲମ୍ବିବା ।
ଓହସ୍—ବିଂ.(ଆ + ଉହ + ଅସୁନ୍)ବହନ, ସାଧନ, ସ୍ତୋତ୍ରାଦି ।
ଓହାଡ଼—ଗ୍ରା. ବି. ( ସଂ-ଉଦ୍‌ଘାଟ )କାଠ ବାଉଁଶ ଆଦିରେ ପ୍ରସ୍ତୁତ ମଞ୍ଚା, ଉଘାଡ, ଗୁପ୍ତସ୍ଥାନ, ଶେଯ ବା ତକିଆର ଖୋଳ, ଆଢ଼ୁଆଳ, ଉହାଡ ।
ଓହାବୀ-ମୁସଲମାନଧର୍ମସମ୍ପ୍ରଦାୟବିଶେଷ ।
ଓହେ—ଅବ୍ୟ. ସମ୍ବୋଧନସୂଚକ ଶବ୍ଦ, ଆହେ, ହେ ।
ଓହୋ—ଗ୍ରା.ଅବ୍ୟ.ଖେଦସୂଚକ ଅବ୍ୟୟ, ଓଃ, ହାୟ ।
ଓହ୍ଲା—ଗ୍ରା. ବି. (ସଂ-ଅବରୋହଣ) ଅବତରଣକରିବା, ନିମ୍ନକୁ ଆସିବା, ଶରୀରରୁ ଆଭରଣ ବା ବସ୍ତ୍ରାଦି କାଢ଼ିବା ।
ଓହ୍ଲାଇବା—ଗ୍ରା. କ୍ରି. ବି. ଅବତୀର୍ଣ୍ଣ ହେବା, ତଳକୁ ଅବତରଣ କରିବା ।

# ଔ

ଔକାର—ସ୍ୱରବର୍ଣ୍ଣର ଚତୁର୍ଦ୍ଦଶ ଅକ୍ଷର, ଉଚ୍ଚାରଣସ୍ଥାନ କଣ୍ଠ ଓ ଓଷ୍ଠ, ତନ୍ତ୍ରମତେ ଔକାର ରକ୍ତବିଦ୍ୟୁଲ୍ଲତାକାର କୁଣ୍ଡଳୀ ପଞ୍ଚପ୍ରାଣ ଓ ସଦାଶିବମୟ ଚତୁର୍ବର୍ଗ ଫଳପ୍ରଦ, ଏହି ବର୍ଣ୍ଣରେ ବ୍ରହ୍ମାଦିଦେବଗଣ ସର୍ବଦା ଅବସ୍ଥାନ କରନ୍ତି, ତନ୍ତ୍ରୋକ୍ତ ନାମ—ଶକ୍ତିକ, ନାଦ, ତୈଜସ, ପ୍ରକୃତ ବାମଜଙ୍ଘକ, ମନୁଶଙ୍କୁ କଣ୍ଠି, ସଦାଶିବ, ଅଧୋଦନ୍ତ, କଣ୍ଠୋଷ୍ଠ, ସଙ୍କର୍ଷଣ, ସରସ୍ୱତୀ, ଆଜ୍ଞା, ଭୃଗୁଜ୍ୱାଳା, ଊର୍ଦ୍ଧ୍ୱମୁଖୀ, ଶାନ୍ତ, ବ୍ୟାପିନୀ, ପୟଃ, ଅନନ୍ତ ଚତୁର୍ଦ୍ଦଶୀ, ରତିପ୍ରିୟ, ଧାତୁର ଅନୁବନ୍ଧ ବିଶେଷ ।

ଔ—ଅବ୍ୟ. ଆହ୍ୱାନ, ସମ୍ବୋଧନ, ବିରୋଧ, ନିର୍ଣ୍ଣୟ, ଶୂଦ୍ରମାନଙ୍କର ପ୍ରଣବ ।

ଔ—ପୁଂ.ବି. ଅନନ୍ତ, ନିସ୍ୱନ, (ସ୍ତ୍ରୀ) ପୃଥିବୀ

ଔକ୍ଥିକ-ପୁଂ.ବି. (ଔକ୍ଥ+ଇକ) ଉକ୍ଥ ନାମକ ସାମବେଦାଙ୍ଗର ଅଧ୍ୟେତା, ଉକ୍ଥ-ବିଜ୍ଞାତା ।

ଔକ୍ଥ୍ୟ-ବି. (ଉକ୍ଥ+ଯ) ଗର୍ଗମୁନିଙ୍କ ପୁତ୍ର, ଗାର୍ଗବର୍ଷି, ସାମବେଦର ଅର୍ଥବିଶେଷ ।

ଔକ୍ଷ—କ୍ଲୀ.ବି. (ଉକ୍ଷନ୍+ଅ) ବୃଷସମୂହ, ବଳଦ, (ବିଂ) ବୃଷସମ୍ବନ୍ଧୀୟ, ବଳଦ-ସମ୍ବନ୍ଧୀୟ । [ ବୃଷସମୂହ ।

ଔକ୍ଷକ—କ୍ଲୀ.ବି. (ଉକ୍ଷ+ଅକ) ବୃଷବୃନ୍ଦ,

ଔଖୀୟ—ବିଂ. ଉଖଲିଖିତ ବ୍ରାହ୍ମଣାଧାୟୀ

ଔଖ୍ୟ—ବିଂ. (ଉଖା+ଯ) ଯାହା ସ୍ଥାଳୀରେ ପାକ କରାହୋଇଥାଏ, ଅନ୍ନାଦ, ନଗର-ବିଶେଷ, ହାଣ୍ଡି ଦ୍ୱାରା ସିଦ୍ଧ ।

ଔଖେୟକ—ବିଂ. (ଉଖ୍ୟା+ଇୟକ) ସ୍ଥାଳୀପକ୍ୱ ।

ଔଗ୍ରସେନ—ପୁଂ. ବି. (ଉଗ୍ରସେନ+ଇ) ଉଗ୍ରସେନପୁତ୍ର, କଂସ ।

ଔଘ—ପୁଂ.ବି. (ଓଘ+ଅ) ଜଳସମୂହ, ଜଳରାଶି ।

ଔଚିତୀ—ସ୍ତ୍ରୀ. ବି. (ଉଚିତ+ଅ+ଈ) ଔଚିତ୍ୟ, ଉପଯୁକ୍ତତା, ସତ୍ୟ ।

ଔଚିତ୍ୟ—କ୍ଲୀ.ବି. (ଉଚିତ+ଯ) ଉପଯୁକ୍ତତା, ଯୋଗ୍ୟତା, ସତ୍ୟ ।

ଔଚ୍ଚ—ବିଂ. (ଉଚ୍ଚ+ଅ) ଉଚ୍ଚତା, ଉନ୍ନତ, ଉଚ୍ଚସ୍ଥ । [ ଉଚ୍ଚସ୍ଥ ।

ଔଚ୍ଚ୍ୟ—ବିଂ. (ଉଚ୍ଚ+ଯ) ଉଚ୍ଚତା, ଉନ୍ନତ

ଔଚ୍ଚୈଃଶ୍ରବସ—ପୁଂ.ବି. (ଉଚ୍ଚୈଃଶ୍ରବସ୍+ଅ) ଇନ୍ଦ୍ରଙ୍କ ଅଶ୍ୱ ।

ଔଜସ—କ୍ଲୀ. ବି. (ଓଜସ୍+ଅ) ଓଜ, ବଳ, ଶରୀରର ଧାତୁ ବିଶେଷ ।

ଔଜସିକ—ପୁଂ. ବି. (ଓଜସ୍+ଇକ) ତେଜସ୍ୱୀ, ବଳବାନ୍, ଶୂର ।

ଔଜସ୍ୟ—କ୍ଲୀ. ବି. (ଓଜସ୍+ଯ) ତେଜସ୍ୱିତା, ଉଗ୍ରତା, ପ୍ରାଖର୍ଯ୍ୟ, ଦୀପ୍ତି ।

ଔଜ୍ଜୟନକ—ବିଂ. (ଉଜ୍ଜୟିନୀ+ଅକ) ଉଜ୍ଜୟିନୀ ସମ୍ବନ୍ଧୀୟ ।

ଔଜ୍ଜିହାନି—ପୁଂ. କ୍ଲୀ (ଉଜ୍ଜିହାନ+ଇ) ଉଜ୍ଜିହାନର ପୁତ୍ରାଦି । [ ଦୀପ୍ତି ।

ଔଜ୍ଜ୍ୱଲ୍ୟ—କ୍ଲୀ.ବି. (ଉଜ୍ଜ୍ୱଳ+ଯ) ଉଜ୍ଜ୍ୱଳତା,

ଔଡ଼—ବିଂ. (ଉନ୍ଦ+ଅ+ଅ) ଆର୍ଦ୍ର ।

ଔଡ଼ବ—ପୁଂ. ବି. (ଓଡବ+ଅ) ପଞ୍ଚସ୍ୱରମିଶ୍ରିତ ରାଗ ।

ଔଡ଼ବି—ବିଂ. (ଓଡବ+ଇ) ଓଡବ ରାଗର ଅନୁଶୀଳନକାରୀ ।

ଔଡୁପ—ବିଂ. (ଉଡୁପ+ଅ) ଚନ୍ଦ୍ର-ଦ୍ୱାରା ଉତ୍ପନ୍ନ, ଭେଲା ଦ୍ୱାରା ନିଷ୍ପନ୍ନ ।

ଔଡୁପିକ—ବିଂ. (ଉଡୁପ+ଇକ) ଉଡୁପସମ୍ବନ୍ଧୀୟ, ଯେ ଭେଲାଦ୍ୱାରାପାର ହୋଇଥାଏ ।

ଔଡୁମ୍ବର—କ୍ଲୀ. ବି. କୁଷ୍ଠରୋଗବିଶେଷ, ତାମ୍ର, (ବିଂ) ତାମ୍ର ବା ରଜତନିର୍ମିତ, ଉଡୁମ୍ବର କାଷ୍ଠ ସମ୍ବନ୍ଧୀୟ, (ପୁଂ) ଚତୁର୍ଦ୍ଦଶ ନାମାନ୍ତର୍ଗତ ଯମବିଶେଷ, ତପସ୍ୱୀବିଶେଷ, ଦେଶବିଶେଷ ।

ଔଡୁଲୋମି—ପୁଂ.ସ୍ତ୍ରୀ. (ଉଡୁଲୋମ+ଇ) ଉଡୁଲୋମଙ୍କର ପୁତ୍ରାଦି ।

ଔଡ୍ର—ପୁଂ. ବି. (ଓଡ୍ର+ଅ) ଓଡ୍ର-ଦେଶର ରାଜା, ଓଡ୍ରଦେଶବାସୀ, ପ୍ରାଚୀନ ଉଡ୍ର ଦେଶବାସୀ, ପତିତ କ୍ଷତ୍ରିୟ ।

ଔତଥ୍ୟ—ପୁଂ. ବି. (ଉତଥ୍ୟ+ଯ) ଔତଥ୍ୟ, ଉତଥ୍ୟଋଷିଙ୍କର ପୁତ୍ର, ଦୀର୍ଘତମା ।

ଔତ୍କଟ୍ୟ—ବି.(ଉତ୍କଟ+ଷ୍ଣ,ଯ) ଉତ୍କଟତା, ଉଗ୍ରତା, ପ୍ରଖରତା, ତୀବ୍ରତା ।

ଔତ୍କଣ୍ଠ୍ୟ—କ୍ଲୀ. ବି. (ଉତ୍କଣ୍ଠା+ଯ) ଉଦ୍‌ବେଗ ଜନ୍ୟ କ୍ଲେଶ, ଚଉଗୃଙ୍ଖଳ୍ୟ, ମନର ଅସ୍ଥିରତା ।

ଔତ୍କଳ—ବିଂ. (ଉତ୍କଳ+ଅ) ଉତ୍କଳ-ଦେଶସମ୍ବନ୍ଧୀୟ, ଓଡ଼ିଆ ।

ଔତ୍କଳୀ—ସ୍ତ୍ରୀ. (ଉତ୍କଳ+ଅ+ଈ) ଓଡ଼ିଆ ଭାଷା ।

ଔତ୍କର୍ଷ୍ୟ—କ୍ଲୀ. ବି. (ଉତ୍କର୍ଷ+ଯ) ଉତ୍କର୍ଷତା, ଶ୍ରେଷ୍ଠତା, ସମ୍ପୁଷ୍ଟତା, ଉନ୍ନତ ।

ଔତ୍ତମି—ପୁଂ.ବି. (ଉତ୍ତମ+ଇ) ଉତ୍ତମର ପୁତ୍ର, ମନୁବିଶେଷ, ବିଂ. ଉତ୍ତମ-ସମ୍ବନ୍ଧୀୟ ।

ଔତ୍ତମେୟ—ପୁଂ. ବି. ଉତ୍ତମ ସମ୍ବନ୍ଧୀୟ, ଉତ୍ତମ-ପୁତ୍ର, ମନୁ ବିଶେଷ ।

ଔତ୍ତର—ପୁଂ. ବିଂ. (ଉତ୍ତ+ତୃ+ଅ+ଅ) ଉତ୍ତୀର୍ଣ୍ଣକାରୀ ।

ଔତ୍ତରପଥିକ—ପୁଂ.ବିଂ. (ଉତ୍ତରପଥ+ଇକ) ଉତ୍ତରପଥେ ଗମନକାରୀ, ଉତ୍ତରପଥଦ୍ୱାରା ଆହୃତ ବସ୍ତୁ, ଉପାସକ ବିଶେଷ ।

ଔତ୍ତରପଦିକ—ପୁଂ.ବିଂ. (ଉତ୍ତରପଦ+ଇକ) ଯେ ଉତ୍ତରପଦ ଗ୍ରହଣ କରେ, ଉତ୍ତର ପଦ ସମ୍ବନ୍ଧୀୟ ।

ଔତ୍ତରବେଦିକ—ବିଂ. (ଉତ୍ତରବେଦି+ଇକ) ଉତ୍ତର ବେଦିରେ ଉତ୍ପନ୍ନ କର୍ମାଦି । [ ଉର୍ଦ୍ଧ୍ୱନମ୍ରତା ।

ଔତ୍ତରାଧର୍ଯ୍ୟ—କ୍ଲୀ. ବି. (ଉତ୍ତରାଧର+ଯ)

ଔତ୍ତରାହ—ବିଂ. (ଉତ୍ତର+ଆହ) ଉତ୍ତର କାଳାଦିରେ ଉତ୍ପନ୍ନ ।

ଔତ୍ତରକାପ୍ରଭା—ବି. (ଆଧୁନିକ ପ୍ରୟୋଗ) ପୃଥିବୀର ଉତ୍ତର କେନ୍ଦ୍ର ସନ୍ନିହିତ ପ୍ରଦେଶରେ ବର୍ଷ ଛଅ ମାସ ମଧ୍ୟରେ ଦେଖାଯିବା ନୈସର୍ଗିକ ଆଲୋକ ।

ଔତ୍ତରେୟ—ପୁଂ. ବ. (ଉତ୍ତର+ଇୟ) ଉତ୍ତର ପୁତ୍ର, ପରୀକ୍ଷିତ ।

ଔତ୍ତାନପାଦ—ପୁଂ. ବ. (ଉତ୍ତାନପାଦ+ଅ) ଉତ୍ତାନପାଦ ରାଜାଙ୍କ ପୁତ୍ର, ଧ୍ରୁବ ।

ଔତ୍ତାନପାଦି—ପୁଂ.ବ. (ଉତ୍ତାନପାଦ+ଇ) ଉତ୍ତାନପାଦ ରାଜାଙ୍କ ପୁତ୍ର, ଧ୍ରୁବ ।

ଔତ୍ପତ୍ତିକ—ବିଂ. ( ଉତ୍ପତ୍ତି+ଇକ ) ନିତ୍ୟ ସମ୍ବନ୍ଧ, ସ୍ୱଭାବ ।

ଔତ୍ପାତ—ବିଂ. ( ଉତ୍ପାତ+ଅ) ଉତ୍ପାତ ସମ୍ବନ୍ଧୀୟ,ଉତ୍ପାତଜ୍ଞାପକ ଶାସ୍ତ୍ରବିଶେଷ ।

ଔତ୍ପାତିକ—ବିଂ.(ଉତ୍ପାତ+ଇକ)ଦୈବ-ବିପତ୍ତିଜାତ, ଉତ୍ପାତସମ୍ପାଦକ, ଅଶୁଭ-ସୂଚକ ।

ଔତ୍ପାଦ—ବିଂ. (ଉତ୍ପାଦ+ଅ) ଉତ୍ପାଦ-ବେତ୍ତା, ଉତ୍ପାଦଜ୍ଞାପକ, ଗ୍ରନ୍ଥାଧାୟୀ, ଉତ୍ପାଦଜାତ । [ ପ୍ରସ୍ଫୁଟିତ ।

ଔତ୍ପୁଟ—ବିଂ. (ଉତ୍ପୁଟ+ଅ) ପ୍ରଫୁଲ୍ଲ,

ଔତ୍ପୁଟିକ—ବିଂ. ( ଉତ୍ପୁଟ+ଇକ ) ଓଷ୍ଠ ବା ମୁଖଦ୍ୱାରା ହରଣକର୍ତ୍ତା ।

ଔତ୍ସ—ବିଂ. ( ଉତ୍ସ+ଅ ) ପ୍ରସ୍ରବଣରୁ ଜାତ, ଉତ୍ପନ୍ନ,ଉତ୍ସ ସମ୍ବନ୍ଧୀୟ ।

ଔତ୍ସଙ୍ଗିକ—ବିଂ. (ଉତ୍ସଙ୍ଗ+ଇକ)ଯେ କୋଡ଼ ଦ୍ୱାରା ହରଣ କରେ, କୋଳ-ସମ୍ବନ୍ଧୀୟ ।

ଔତ୍ସର୍ଗିକ—ବିଂ.(ଉତ୍ସର୍ଗ+ଇକ)ସାମାନ୍ୟ ବିଧିଯୋଗ୍ୟ, ଛାଡ଼ିଦେବା, ଦେବପୂଜାଦି ଶେଷ, ଉତ୍ସର୍ଗସମ୍ବନ୍ଧୀୟ, ପ୍ରାକୃତିକ, ସ୍ୱଭାବସଂକ୍ରାନ୍ତ । [ ଉତ୍ସଋଷିବଂଶୀୟ ।

ଔତ୍ସାୟନ—ପୁଂ. ବ. (ଉତ୍ସ+ଆୟନ)

ଔତ୍ସୁକ୍ୟ—କ୍ଲୀ. ବ. ( ଉତ୍ସୁକ+ଯ ) ଉତ୍କଣ୍ଠା, ଇଚ୍ଛା, ଆଗ୍ରହ, ଅଳଙ୍କାର-ଶାସ୍ତ୍ରୋକ୍ତ ବ୍ୟଭିଚାରୀ ଭାବବିଶେଷ ।

ଔଦକ—ବିଂ. (ଉଦକ+ଅ) ଜଳପୂର୍ଣ୍ଣ ଜଳସଂଯୁକ୍ତ, ଜଳୀୟ, ଜଳ ସମ୍ବନ୍ଧୀୟ ।

ଔଦକି—ପୁଂ. ବ. (ଉଦକ+ଇ)ଉଦକ ନାମକ ଋଷିଙ୍କର ପୁତ୍ରାଦି ।

ଔଦଙ୍କି—ପୁଂ. ସ୍ତ୍ରୀ.(ଉଦଙ୍କ+ଇ)ଉଦଙ୍କ ନାମକ ଋଷିଙ୍କର ପୁତ୍ରାଦି ।

ଔଦଙ୍କାୟନ—ପୁଂ.ବ. (ଉଦଙ୍କ+ଆୟନ +ଇ) ଉଦଙ୍କ ଋଷିଙ୍କର ପୁତ୍ରାଦି ।

ଔଦଞ୍ଚନ—ବିଂ.(ଉଦଞ୍ଚନ+ଅ)ଜଳାଧାର ସ୍ଥିତ ଜଳ ।

ଔଦଞ୍ଚନକ—ବିଂ. ( ଉଦଞ୍ଚନ+ଅକ ) ଜଳାଧାର ନିକଟସ୍ଥ ସ୍ଥାନାଦି ।

ଔଦଞ୍ଚବ—ପୁଂ.ସ୍ତ୍ରୀ.(ଉଦଞ୍ଚୁ+ଇ)ଉଦଞ୍ଚୁ ଋଷିଙ୍କର ପୁତ୍ରାଦି ।

ଔଦଞ୍ଚି—ପୁଂ. ବ. (ଉଦଞ୍ଚ+ଇ) ଉଦଞ୍ଚ ଋଷିଙ୍କର ପୁତ୍ର ।

ଔଦନିକ—ପୁଂ. ବିଂ. (ଓଦନ+ଇକ) ପାଚକ, ସୂପକାର, (ସ୍ତ୍ରୀ) ଔଦନିକା ।

ଔଦନ୍ୟ—ପୁଂ. ବ. ମୁଣ୍ଡିଭ ଋଷି ।

ଔଦନ୍ୟି—ବ. (ଓଦନ୍ୟ+ଇ) ଓଦନ୍ୟ ଋଷିଙ୍କର ପୁତ୍ର ।

ଔଦପାନ—ବିଂ. (ଉଦପାନ+ଅ) ରାଜ ଗ୍ରାହ୍ୟକରାଦି, ଉଦପାନ ଗ୍ରାମ ସମ୍ବନ୍ଧୀୟ, ଜଳାଧାର ସମ୍ବନ୍ଧୀୟ ।

ଔଦମେଧୀୟ—ବିଂ. (ଉଦମେଧି+ଇୟ) ଉଦମେଧି ସମ୍ବନ୍ଧୀୟ ।

ଔଦମେୟି—ପୁଂ. ବ. (ଉଦମେୟ+ଇ) ଉଦମେୟର ପୁତ୍ର । [କାଳୋତ୍ପନ୍ନ ।

ଔଦୟିକ—ବିଂ. (ଉଦୟ+ଇକ) ଲଗ୍ନ-

ଔଦରିକ—ବିଂ. ( ଉଦର+ଇକ ) ପେଟୁକ, ପେଟୁ, ଉତ୍କର୍ଷେଚ୍ଛାବିରହିତ, ଯେ କେବଳ ଖାଇବା ଛଡ଼ା ଅନ୍ୟ କିଛି ଜାଣେ ନାହିଁ ।

ଔଦର୍ଯ୍ୟ—ବିଂ. ( ଉଦର+ଯ+ଅ ) ଉଦରସ୍ଥିତ ଅନଳାଦି, ଅଭ୍ୟନ୍ତର-ପ୍ରବିଷ୍ଟ ।

ଔଦଳ—ପୁଂ. ବ. ଋଷି ବିଶେଷ ।

ଔଦବାପି—ପୁଂ. ବ. ( ଉଦବାପ+ଇ) ଉଦବାପର ପୁତ୍ରାଦି ।

ଔଦବାପୀୟ—ବିଂ. (ଔଦବାପି+ଇୟ) ଔଦବାପି ସମ୍ବନ୍ଧୀୟ ।

ଔଦବାହି—ପୁଂ, ବ. (ଉଦବାହ+ଇ) ଋଗ୍‌ବେଦମାନଙ୍କର ତର୍ପଣୀୟ ଋଷି-ବିଶେଷ ।

ଔଦଶ୍ୱିତ—କ୍ଲୀ. ବ. ଲବଣ ଜଳଦ୍ୱାରା ସଂସ୍କୃତ ଘୋଳ ।

ଔଦଶ୍ୱିତକ—କ୍ଲୀ. ବ. ( ଉଦଶ୍ୱିତ+ଅକ) ଅର୍ଦ୍ଧଜଳ ମିଶ୍ରିତ ଘୋଳ ।

ଔଦସ୍ଥାନ—ପୁଂ. ବିଂ. (ଉଦସ୍ଥାନ+ଅ) ଜଳ ବାସଶୀଳ, ଯେ ଜଳରେ ବାସ କରେ ।

ଔଦାର୍ଯ୍ୟ—କ୍ଲୀ. ବିଂ ( ଉଦାର+ଯ) ଉଦାରତା, ଦାତୃତ୍ୱ, ବଦାନ୍ୟତା, ବାକ୍ୟର ଗୁଣ ବିଶେଷ, ସାତ୍ତ୍ୱିକ-ନାୟକର ଗୁଣ ବିଶେଷ, ବେଦାନ୍ତୋକ୍ତ ମନୋବୃତ୍ତି ବିଶେଷ ।

ଔଦାସୀନ୍ୟ—କ୍ଲୀ. ବ.(ଉଦାସୀନ+ଯ) ଉଦାସୀନତା, ବିପଦ ସମ୍ପଦରେ ଉପେକ୍ଷା,ନିରହଙ୍କାରିତା, ଅନୁରାଗର ନିବୃତ୍ତି, ବୈରାଗ୍ୟ ।

ଔଦାସ୍ୟ—କ୍ଲୀ. ବ. ( ଉଦାସ+ଯ ) ବୈରାଗ୍ୟ, ଅନୁରାଗାଦି ଶୂନ୍ୟତା, ଅମନୋଯୋଗ, ଅବଜ୍ଞା, ଉପେକ୍ଷା ।

ଔଦୀଚ୍ୟ—ଗୁଜୁରାଟର ବ୍ରାହ୍ମଣ ଶ୍ରେଣୀ-ବିଶେଷ, ଏମାନେ ଏଗାର ଶ୍ରେଣୀରେ ବିଭକ୍ତ ।

ଔଦୁମ୍ବର—ବିଂ. (ଉଦୁମ୍ବର+ଅ)ଯଜ୍ଞ-ଡିମିରି ସମ୍ବନ୍ଧୀୟ, ଯେ ଦେଶରେ ଉଦୁମ୍ବର ଜନ୍ମେ, ବ. ଉଦୁମ୍ବର ପାତ୍ର, ଉଲୂଖଳ, ମହାଭାରତୋକ୍ତ ଦେଶ-ବିଶେଷ, କୌଶିକ ମୁନିର ଶାଖା, ଯମର ମୂର୍ତ୍ତିବିଶେଷ, କ୍ଲୀ. ଯଜ୍ଞଡ଼ୁମ୍ବୁରୁ କାଷ୍ଠ, ଡିମିରି ଫଳ, କୁଷ୍ଠ ବିଶେଷ, ତମ୍ବୁ, ଉଦୁମ୍ବର ଶାଖା ।

ଔଦୁମ୍ବରକ—ପୁଂ, ବ. (ଉଦୁମ୍ବର+ଅକ) ଉଦୁମ୍ବରବିଷୟ ଦେଶ, (କ୍ଲୀ) ଉଦୁମ୍ବର ସମୂହ ।

ଔଦୁମ୍ବରାୟଣ—ପୁଂ. ବ. (ଉଦୁମ୍ବର+ଆୟନ) ଉଦୁମ୍ବର ବଂଶୀୟ ।

ଔଦ୍‌ଗାତ୍ର—କ୍ଲୀ.ବ. ( ଉଦ୍‌ଗାତୃ+ଅ ) ଉଦ୍‌ଗାତା ନାମକ ଋତ୍ୱିକର କର୍ତ୍ତବ୍ୟ, ଉଦ୍‌ଗାତାର କର୍ମ ।

ଔଦ୍‌ଗାହ୍ମମାନି—ପୁଂ. ବ.(ଉଦ୍‌ଗାହ୍ମମାନ +ଇ)ଉଦ୍‌ଗାହ୍ମମାନ ବଂଶୀୟ ।

ଔଦଗ୍ରହଣ—ବିଂ. ( ଉଦ୍‌ଗ୍ରହଣ + ଅ ) ଉଦ୍‌ଗ୍ରହଣର ଉପଯୁକ୍ତ ।

ଔଦଣ୍ଡିକ—ବିଂ. ( ଉଦଣ୍ଡ + ଅକ ) ଉଦଣ୍ଡର ନିକଟବର୍ତ୍ତୀ ଦେଶାଦି ।

ଔଦ୍ଦାଲକ—କ୍ଳୀ. ବି. (ଉଦ୍ଦାଲ + ଅଣ୍ + କ) ବଲ୍ମୀକକୀଟସଞ୍ଚିତ ମଧୁ, ତୀର୍ଥବିଶେଷ, (ପୁଂ. ବି ) ଜଣେ ମୁନି ।

ଔଦ୍ଦାଲକାୟନ—ପୁଂ.ବି. (ଉଦ୍ଦାଲକ + ଆୟନ) ଉଦ୍ଦାଲକ ଋଷିବଂଶୀୟ ।

ଔଦ୍ଦାଲକି—ପୁଂ. ବି. (ଉଦ୍ଦାଲକ + ଇ) ଉଦ୍ଦାଲକ ଋଷିପୁତ୍ର, ଗୌତମ ଋଷି ।

ଔଦ୍ଦେଶିକ—ବିଂ. ( ଉଦ୍ଦେଶ + ଇକ ) ଉଦ୍ଦେଶ ସମ୍ବନ୍ଧୀୟ ।

ଔଦ୍ଧତ୍ୟ—କ୍ଳୀ.ବି.(ଉଦ୍ଧତ + ଯ)ଅବିନୀତଭାବ,ଧୃଷ୍ଟତା,ଦମ୍ଭ, ଦାମ୍ଭିକ,ଅଶିଷ୍ଟତା ।

ଔଦ୍ଧାରିକ - ବିଂ. ( ଉଦ୍ଧାର + ଇକ ) ଉଦ୍ଧାର ନିମିତ୍ତ ଯାହା ପ୍ରଦତ୍ତ ହୁଏ, ( କ୍ଳୀ. ବି. ) ଦାୟଧନ ।

ଔଦ୍ଧାରି—ପୁଂ.ବି.(ଉଦ୍ଧାର + ଇ)ଉଦ୍ଧାର ଋଷିଙ୍କ ପୁତ୍ର, ଖଣ୍ଡିକ ଋଷି ।

ଔଦ୍ଭିଜ୍ଜ - କ୍ଳୀ.ବି. (ଉତ୍ + ଭିଦ + ଜନ + ଅ + ଅ) ପଙ୍ଗାଲୁଣ, ସୈନ୍ଧବଲୁଣ, (ବିଂ) ଉଦ୍ଭିଦ ବା ବୃକ୍ଷଲତାସମ୍ବନ୍ଧୀୟ ।

ଔଦ୍ଭିଦ—କ୍ଳୀ.ବି. (ଉଦ୍ଭିଦ + ଅ)ପଙ୍ଗାଲୁଣ, ସନ୍ତର ଲବଣ, ଜଳ ବିଶେଷ, ବୃକ୍ଷାଦିଜାତ ଦ୍ରବ୍ୟ ।

ଔଦ୍ଭିଦ୍ୟ—କ୍ଳୀ. ବି. ( ଉଦ୍ଭିଦ + ଯ ) ବୃକ୍ଷାଦିର ଉତ୍ପତ୍ତି ।

ଔଦ୍ୟାବ—ବିଂ. (ଉଦ୍ୟାବ + ଅ)ଉଦ୍ୟାବ ବ୍ୟାଖ୍ୟାଗ୍ରନ୍ଥ, ଉଦ୍ୟାବଜାତ ।

ଔଦ୍‌ବାହିକ—କ୍ଳୀ.ବି.(ଉଦ୍‌ବାହ + ଇକ) ବିବାହରେ ପ୍ରାପ୍ତ ବସ୍ତୁ, ଯୌତୁକ ଧନ, ସ୍ତ୍ରୀଧନ, ( ବିଂ ) ବିବାହ କାଳରେ ଲବ୍ଧ ଯୌତୁକ ।

ଔଦ୍‌ବେପ—ବିଂ. (ଉଦ୍‌ବେପ + ଅ) ଉଦ୍‌ବେପ ସମ୍ପାଦିତ, ଉଦ୍‌ବେପର ନିକଟବର୍ତ୍ତୀ ଦେଶାଦି ।

ଔଧସ—ବିଂ.(ଉଧସ୍ + ଅ) ଉଧସ୍ ସମ୍ବନ୍ଧୀୟ, (କ୍ଳୀ) ପଶୁଦୁଗ୍ଧ ।

ଔଧସ୍ୟ—କ୍ଳୀ.ବି.(ଉଧସ୍ + ଯ)ପଶୁଦୁଗ୍ଧ, ପଶୁର ସ୍ତନ୍ୟ । [ ଉଚ୍ଚତା ।

ଔନ୍ନତ୍ୟ—କ୍ଳୀ.ବି.(ଉନ୍ନତ + ଯ)ଉନ୍ନତ,

ଔନ୍ମେତ୍ର—କ୍ଳୀ. ବି. ( ଉନ୍ନେତୃ + ଅ ) ଉନ୍ନେତାର କାର୍ଯ୍ୟ, ଉନ୍ନୟନ, ଉତ୍ତୋଳନ, ଉନ୍ନେତୃତ୍ୱ ।

ଔପକର୍ଣ୍ଣିକ—ବିଂ. ( ଉପକର୍ଣ୍ଣ + ଇକ ) କର୍ଣ୍ଣର ଶେଷ ପର୍ଯ୍ୟନ୍ତ ବିସ୍ତୃତ, କର୍ଣ୍ଣ ନିକଟରେ ଜାତ ।

ଔପକଲାପ୍ୟ—ବିଂ. (ଉପକଲାପ + ଯ) କଲାପସମୀପବର୍ତ୍ତୀ ।

ଔପକାୟନ—ପୁଂ.ବି.(ଉପକ + ଆୟନ) ଉପକ ବଂଶୀୟ ।

ଔପକୂଲିକ—ବିଂ. ( ଉପକୂଳ + ଇକ ) ଉପକୂଳ ସମ୍ବନ୍ଧୀୟ, ଉପକୂଳ ସ୍ଥିତ, ଉପକୂଳଜାତ ।

ଔପଗବ—ପୁଂ. ବି. (ଉପଗୁ + ଅ)ଉପଗୁର ପୁତ୍ର, ଉପଗୁବଂଶୀୟ, ଉପଗୁ ସମ୍ବନ୍ଧୀୟ ।

ଔପଗବକ—କ୍ଳୀ.ବି. (ଔପଗବ + ଅକ) ଔପଗବ ସମୂହ ।

ଔପଗବି—ପୁଂ. ବି. ( ଉପଗବ + ଇ ) ଗୌଷ୍ଠପୁତ୍ର, ବୃହସ୍ପତି ପୁତ୍ର, ଉଦ୍ଧବ ।

ଔପଗ୍ରସ୍ତିକ—ପୁଂ.ବି.(ଉପଗ୍ରସ୍ତ + ଇକ) ରାହୁଗ୍ରସ୍ତ ଚନ୍ଦ୍ର, ରାହୁଗ୍ରସ୍ତ ସୂର୍ଯ୍ୟ,ଗ୍ରହଣ ।

ଔପଗ୍ରହିକ—ପୁଂ. ବି. (ଉପଗ୍ରହ + ଇକ) ରାହୁଗ୍ରସ୍ତ ଚନ୍ଦ୍ର ବା ସୂର୍ଯ୍ୟ ।

ଔପଚାରିକ—ବିଂ. (ଉପଚାର + ଇକ) ଉପଚାରର ବା ଆରୋପସମ୍ବନ୍ଧୀୟ,ଚିକିତ୍ସା ସମ୍ବନ୍ଧୀୟ,ସେବାସମ୍ବନ୍ଧୀୟ,ପୂଜାଆଦର ଇତ୍ୟାଦି ସମ୍ବନ୍ଧୀୟ, (ବି) ଚିକିତ୍ସା,ସେବା ଉପକରଣ, ବ୍ୟବସାୟ, ଆରୋପ, ଉତ୍କୋଚ, ସଜ୍ଜା, ସମ୍ମାନ, ପୂଜା ଆଦର ଅଙ୍ଗ ।

ଔପଛନ୍ଦସିକ—ବିଂ.(ଉପଛନ୍ଦସ୍ + ଇକ) ପ୍ରିୟବାକ୍ୟ ଦ୍ୱାରା ନିଷ୍ପନ୍ନ, ମାତ୍ରାବୃତ୍ତ ବିଶେଷ, ପୁଷ୍ପିତାଗ୍ରା ନାମକ ଛନ୍ଦ ।

ଔପଜାନୁକ—ବିଂ.( ଉପଜାନୁ + କ ) ଜାନୁର ସମୀପବର୍ତ୍ତୀ, ଆଜାନୁଲମ୍ବିତ ।

ଔପତସ୍ୱିନି—ପୁଂ. ବି. (ଉପତସ୍ୱିନ୍ + ଇ) ଉପତସ୍ୱିନ ପୁତ୍ର, ରାମ ନାମକ ଋଷି ବିଶେଷ ।

ଔପଦେଶିକ—ବିଂ. (ଉପଦେଶ + ଇକ) ଉପଦେଶୋପଜୀବୀ, ଉପଦେଶାନୁସାରେ ପ୍ରାପ୍ତ ।

ଔପଦ୍ରବିକ—ବିଂ.(ଉପଦ୍ରବ + ଇକ)ଉପଦ୍ରବ ବିଷୟକ ଗ୍ରନ୍ଥ,ଯହିଁରେ ଉପଦ୍ରବର ବିଷୟ ବର୍ଣ୍ଣିତ ହୋଇଥାଏ ।

ଔପଦ୍ରଷ୍ଟ୍ୟ—ପୁଂ. ବି. (ଉପଦ୍ରଷ୍ଟୃ + ଯ ) ପୁରୁଷମେଧଯଜ୍ଞୀୟ ଦେବ ବିଶେଷ ।

ଔପଧର୍ମ୍ମ୍ୟ—କ୍ଳୀ.ବିଂ.(ଉପଧର୍ମ୍ମ + ଯ)ଉପଧର୍ମ୍ମ ସମ୍ବନ୍ଧୀୟ, (ପୁଂ) ଉପଧର୍ମ୍ମ ।

ଔପଧେନବ—ପୁଂ.ବି.(ଉପଧେନୁ + ଅ) ଧନ୍ୱନ୍ତରର ଶିଷ୍ୟ, ଋଷି ବିଶେଷ ।

ଔପଧେୟ—କ୍ଳୀ. ବି. ରଥର ଅବୟବ ବିଶେଷ ।

ଔପନାୟନିକ—ବିଂ. ( ଉପନାୟନ + ଇକ) ଉପନୟନ ସାଧକ ଦ୍ରବ୍ୟାଦି, ଉପନୟନେ ପ୍ରୟୋଜନୀୟ ବିଧାନ, ବି. ଯେଉଁ ବ୍ୟକ୍ତି ପିଲାଙ୍କୁ ବ୍ରତ କରାଏ ।

ଔପନାସିକ—ବିଂ. (ଉପନାସ + ଇକ) ନାସିକାର ସମୀପଜାତ, ନାସିକା ନିକଟରେ ଜାତ ।

ଔପନିଧିକ—କ୍ଳୀ. ବି. (ଉପନିଧି + କ) କୌଣସି ଦ୍ରବ୍ୟ ପ୍ରକାଶ ନ କରି ଅନ୍ୟ ଲୋକର ନିକଟରେ ଯାହା ରଖାଇ ଦିଆଯାଏ,ଭୋଗ କରିବା ନିମିତ୍ତ ପ୍ରୀତିପୂର୍ବକ ଯେ ଦ୍ରବ୍ୟ ଅର୍ପିତ ହୁଏ ।

ଔପନିବେଶିକ—ବିଂ. (ଉପନିବେଶ + ଇକ) ଉପନିବେଶ ସମ୍ବନ୍ଧୀୟ, ଉପନିବେଶ ସ୍ଥାପନକାରୀ ।

ଔପନିବେଶିକ ଶାସନ—ବି. (ଆଧୁନିକ ପ୍ରୟୋଗ) ବ୍ରିଟିଶ୍ ସାମ୍ରାଜ୍ୟ ଉପନିବେଶ ରାଜ୍ୟମାନଙ୍କରେ ଚଳୁଥିବା ଶାସନ ପ୍ରଣାଳୀ ।

ଔପନିଷଦିକ—ବିଂ.(ଉପନିଷଦ୍ + ଅକ) ଉପନିଷଦୁକ୍ତ ଉପଦେଶାନୁସାରେ ଯେ ଜୀବନ ନିର୍ବାହ କରେ ।

ଔପନିଷଦ—ପୁଂ.ବି. (ଉପନିଷଦ+ଅ) ଉପନିଷଦମାତ୍ରବେଦ୍ୟ ପରମାତ୍ମା(ବିଂ.) ବ୍ରହ୍ମବିଦ୍ୟାସମ୍ବନ୍ଧୀୟ, ବ୍ରହ୍ମପ୍ରତିପାଦିତ, ବ୍ରହ୍ମପ୍ରତିପାଦକ ବାକ୍ୟାଦି, (ବି.)ଉପନିଷଦ ବ୍ରହ୍ମ, ଉପନିଷଦର ବ୍ୟାଖ୍ୟା ଗ୍ରନ୍ଥ ।

ଔପନୀବିକ—ବିଂ.(ଉପ+ନୀବି+ଇକ) କଟିଦେଶର ସମୀପବର୍ତ୍ତୀ, ନୀବି ସମୀପରେ ସ୍ଥିତ ।

ଔପନ୍ୟାସିକ—କି.ବିଂ. (ଉପନ୍ୟାସ+ଇକ) ଉପନ୍ୟାସସମ୍ବନ୍ଧୀୟ, ଉପନ୍ୟାସମୟ, ଉପନ୍ୟାସାତ୍ମକ, ଉପନ୍ୟାସତୁଲ୍ୟ, ଉପନ୍ୟାସକର ।

ଔପପକ୍ଷ୍ୟ—ବିଂ. (ଉପପକ୍ଷ+ଯ) ବାହୁମୂଳ ସମ୍ବନ୍ଧୀୟ ।

ଔପପତ୍ତିକ—ବିଂ. (ଉପପତ୍ତି+ଇକ)ଯୁକ୍ତିଯୁକ୍ତ,ପ୍ରତିପାଦକ, (ସ୍ତ୍ରୀ) ଔପପତ୍ତିକୀ ।

ଔପପାତକ—ବିଂ.(ଉପ+ପାତ+ଇକ) ଗୋବଧାଦି ଉପପାତକେ ଯେ ଲିପ୍ତ ।

ଔପପାଦୁକ-ବିଂ. ଦେବଦେହ ସମ୍ବନ୍ଧୀୟ, ନାରକୀ ଦେହ ସମ୍ବନ୍ଧୀୟ ।

ଔପବାହବି—ପୁଂ.ବି. (ଉପବାହୁ+ଇ) ଉପବାହୁ ବଂଶୀୟ ।

ଔପଭୃତ—ବିଂ. (ଉପଭୃତ୍+ଅ) ଅଶ୍ୱତ୍ଥ କାଷ୍ଠର ଯଜ୍ଞପାତ୍ରେ ସଞ୍ଚିତ ଉପଭୃତ୍‌ସମ୍ବନ୍ଧୀୟ ।

ଔପମନ୍ୟବ—ପୁଂ.ବି. (ଉପମନ୍ୟୁ+ଅ) ଉପମନ୍ୟୁ ପୁତ୍ର ।

ଔପମିକ—ବିଂ.(ଉପମା+ଇକ)ଉପମା ସମ୍ବନ୍ଧୀୟ, ଉପମାଦ୍ୱାରା ନିର୍ଦ୍ଦିଷ୍ଟ (ବିଷୟ), (ସ୍ତ୍ରୀ) ଔପମିକୀ ।

ଔପମ୍ୟ—କ୍ଲୀ. ବି. (ଉପମା+ଯ) ସାଦୃଶ୍ୟ, ଅନୁକାର, ଅନୁହାର,ସାମ୍ୟ, ତୁଲ୍ୟତା, ଉପମା, କକ୍ଷଉପମାନ ।

ଔପଯଜ—ବିଂ. (ଉପଯଜ+ଅ) ପଶୁଯଜ୍ଞ ସମ୍ବନ୍ଧୀୟ ।

ଔପୟିକ—ବିଂ. (ଉପାୟ+ଇକ) ନ୍ୟାଯ୍ୟ, ଉପଯୁକ୍ତ, (କ୍ଲୀ.ବି.) ଉପାୟ, ଯୁକ୍ତ, (ସ୍ତ୍ରୀ) ଔପୟିକୀ ।

ଔପଯୌଗିକ—ବିଂ.(ଉପଯୋଗ+ଇକ) ଉପଯୋଗଜନ୍ୟ, ଉପଯୋଗସମ୍ବନ୍ଧୀୟ ।

ଔପରାଜିକ—ବିଂ. (ଉପରାଜ+ଇକ) ରାଜସମୀପ ସମ୍ବନ୍ଧୀୟ, ରାଜ ସଦୃଶ ସମ୍ବନ୍ଧୀୟ ।

ଔପରାଧଯ୍ୟ—କ୍ଲୀ. ବି. ଉପସେବକର କାର୍ଯ୍ୟ, ଉପସେବକତା ।

ଔପରିଷ୍ଟ—ବିଂ. (ଉପରିଷ୍ଟ+ଅ)ଉପରେ ଉତ୍ପନ୍ନ ।

ଔପରୈଧିକ—ପୁଂ. ବି. (ଉପରୋଧ+ଇକ) ପିଲୁଦଣ୍ଡ ।

ଔପରୋଧିକ—ପୁଂ. ବି. (ଉପରୋଧ+ଇକ)ପିଲୁଦଣ୍ଡ, (ବିଂ) ଉପରୋଧ ସମ୍ବନ୍ଧୀୟ, ଅନୁରୋଧ ସଞ୍ଜାତ, (ସ୍ତ୍ରୀ) ଔପରୋଧିକୀ ।

ଔପଲ—ବିଂ. (ଉପଲ+ଅ) ପଥରର ତିଆରି, ପ୍ରସ୍ତର ସମ୍ବନ୍ଧୀୟ, ଉପଲରୁ ପ୍ରାପ୍ତ, (ସ୍ତ୍ରୀ) ଔପଲୀ ।

ଔପବସଥିକ—ବିଂ. (ଉପବସଥ+ଇକ) ଉପବସଥେ କର୍ତ୍ତବ୍ୟ କର୍ମାଦି ।

ଔପବସଥ୍ୟ—ବିଂ.(ଉପବସଥ+ଯ)ଉପବସଥେ କର୍ତ୍ତବ୍ୟ, ଉପବାସ ସମ୍ବନ୍ଧୀୟ ।

ଔପବସ୍ତ—କ୍ଲୀ. ବି. (ଉପବସ୍ତ+ଅ) ଉପବାସ ।

ଔପବାସ—ବିଂ.(ଉପବାସ+ଅ)ଉପବାସ ବ୍ରତେ ଦେୟବସ୍ତୁ, ଉପବାସ ସମ୍ବନ୍ଧୀୟ ।

ଔପବାସିକ—ବିଂ. (ଉପବାସ+ଇକ)ଉପବାସର ଉପଯୋଗୀ, ଉପବାସ ସମର୍ଥ ।

ଔପବାସ୍ୟ—କ୍ଲୀ. ବି. (ଉପବାସ+ଯ) ଉପବାସ । [ ବାହନ, ରଥାଦି ।

ଔପବାହ୍ୟ—ପୁଂ. (ଉପବାହ୍ୟ+ଅ)ଉପ

ଔପବିନ୍ଦବି—ପୁଂ. ବି. (ଉପବିନ୍ଦୁ+ଇ) ଉପବିନ୍ଦୁ ପୁତ୍ର ।

ଔପବେଶିକ—ବିଂ. (ଉପବେଶ+ଇକ) ବେଶଦ୍ୱାରା ଯେ ଜୀବିକା ନିର୍ବାହକରେ, ବହୁରୂପୀ ।

ଔପଶ୍ଳେଷିକ—ବିଂ. (ଉପ+ଶ୍ଳେଷ+ଇକ) ଆଧାର ବିଶେଷ ।

ଔପସଂକ୍ରମଣ—ବିଂ. ଉପସଂକ୍ରମଣେଦେୟ ବସ୍ତୁ ।

ଔପସଂଖ୍ୟାନିକ—ବିଂ. (ଉପସଂଖ୍ୟାନ+ଇକ) ଉପସଂଖ୍ୟାନ ସମ୍ବନ୍ଧୀୟ ।

ଔପସଦ—ପୁଂ. (ଉପସଦ୍+ଅ)ଉପସଦ ଶବ୍ଦଯୁକ୍ତ ସ୍ୱାଧ୍ୟାୟ ବା ଅନୁବାକ୍ ଦ୍ୱନ୍ଦ୍ୱ ।

ଔପସର୍ଗିକ—ପୁଂ. ବି. (ଉପସର୍ଗ+ଇକ) ସନ୍ନିପାତଜ ରୋଗ, ପାପରୋଗାଦି, ଭୂତାବେଶଜ ରୋଗ, (ବିଂ) ଉପସର୍ଗ ସମ୍ବନ୍ଧୀୟ । [ ଲିଙ୍ଗଲୋପୃନ୍ନ ।

ଔପସୀର୍ଯ୍ୟ—ବିଂ. (ଉପସୀର+ଯ)

ଔପସ୍ଥାନ—ବିଂ. (ଉପସ୍ଥାନ+ଅ) ଉପସ୍ଥାନଶୀଳ, ଉପାସକ ।

ଔପସ୍ଥାନିକ—ବିଂ. (ଉପସ୍ଥାନ+ଇକ) ସେବା ବ୍ୟବସାୟୀ, ଭୃକର ।

ଔପସ୍ଥିକ—ବିଂ. (ଉପସ୍ଥ+ଇକ) ଜାରକର୍ମ ଜୀବୀ, (ସ୍ତ୍ରୀ) ବେଶ୍ୟା ।

ଔପସ୍ଥ୍ୟ—ବିଂ.(ଉପସ୍ଥ+ଯ)ଜନନେନ୍ଦ୍ରିୟଜ ସୁଖାଦି ।

ଔପହାରିକ—ବିଂ. (ଉପହାର+ଇକ) ଉପହାରର ଉପଯୋଗୀ ।

ଔପାଧିକ—ବିଂ. (ଉପାଧି+ଇକ) ନାମ ମାତ୍ର, ମାୟାମୂର୍ତ୍ତି, ଉପାଧି ସମ୍ବନ୍ଧୀୟ, ବୈଦେଶିକ, ଅସ୍ଥାୟୀ ।

ଔପାଧ୍ୟାୟକ—ପୁଂ.ବିଂ.(ଉପାଧ୍ୟାୟ+କ) ଉପାଧ୍ୟାୟଠାରୁ ଯାହା ଲାଭ କରାଯାଏ ।

ଔପାନହ୍ୟ—ପୁଂ. ବି. (ଉପାନହ+ଯ) ମୁଞ୍ଜ, ଚର୍ମ ।

ଔପାୟିକ—ବିଂ.(ଉପାୟ+ଇକ)ନ୍ୟାଯ୍ୟ, ଉପଯୁକ୍ତ, ଉପାୟଲଭ୍ୟ, ଉପାୟନିଷ୍ପନ୍ନ, ଉପାୟ ସାଧ୍ୟ, (ସ୍ତ୍ରୀ) ଔପାୟିକୀ ।

ଔପାବି—ପୁଂ. ବି. ଉପାବ ଋଷିର ପୁତ୍ର, ଉପାବ ବଂଶୀୟ ।

ଔପାସନ—ବିଂ.(ଉପାସନ+ଅ)ବିବାହାଗ୍ନିରେ ନିତ୍ୟ କର୍ତ୍ତବ୍ୟ ହୋମାଦି ।

ଔପୋଦିତ—ପୁଂ.ବି.(ଉପୋଦିତ+ଇ) ଉପୋଦିତ ଋଷିର ପୁତ୍ର ।

ଔଁ—ଅବ୍ୟ. ଓଁ ପ୍ରଣବ ।

ଔମକ—କ୍ଲୀ. ( ଉମା+ଅକ ) ମସିନା ବିକାର, ମସିଣା ବିକାର ।
ଔମାସ୍ତନ—ବି°. ମସିନା ସଂଯୋଗ ।
ଔମୀନ—ବି°.ମସିନାପୂର୍ଣ୍ଣ ଗୃହ, ମସିନାର ଭୂମି ।
ଔର—ପ୍ରା. (ଭକ୍ତି) ଏବଂ, ଆଉ ।
ଔରଗ—କ୍ଲୀ.ବି. (ଉରଗ+ଅ)ଅଶ୍ଳେଷା ନକ୍ଷତ୍ର, (ପୁଂ.ବି.) ଉରଗ,ସର୍ପ, (ବି°.) ସର୍ପସମ୍ବନ୍ଧୀୟ, ସାପ ।
ଔରତ୍—ଯା. ବି. ସ୍ତ୍ରୀଲୋକ, ଜନାନା ।
ଔରଭ୍ର—ପୁଂ.ବି.(ଉରଭ୍ର+ଅ)କମ୍ବଳ, ମେଷମାଂସ,ମେଷଦୁଗ୍ଧ, ଧନ୍ୱନ୍ତରିଙ୍କର ଅନ୍ୟତମ ଶିଷ୍ୟ, ଉର୍ଣ୍ଣାୟୁ, ଆବିକ, ଅଲ୍ପକ,(ବି°.) ମେଷସମ୍ବନ୍ଧୀୟ, ମେଷ-ଲୋମଜାତ ।
ଔରଭ୍ରକ—ବି. (ଉରଭ୍ର+ଅକ) ମେଷ ସମୂହ ।
ଔରଭ୍ରିକ—ବି°.(ଉରଭ୍ର+ଇକ) ମେଷ-ବିକ୍ରୟୋପଜୀବୀ, ଯେ ମେଷ ବିକ୍ରୟ କରି ଜୀବିକା ନିର୍ବାହ କରେ ।
ଔରଣ—ପୁଂ. ବି.ଉରଣଜନପଦବାସୀ ।
ଔରସ—ପୁଂ. ସ୍ତ୍ରୀ, ବି, ସମାନ ଜାତୀୟ ବିବାହିତା ଭାର୍ଯ୍ୟା ଗର୍ଭେ ଯେଉଁ ପୁତ୍ର ଉତ୍ପାଦିତହୁଏ ତାହାକୁ ଔରସକହନ୍ତି, (ବି°.) ହୃଦୟୋତ୍ପନ୍ନ ।
ଔରସିକ—କ୍ଲୀ.ବି.(ଉରସ+ଇକ) ବକ୍ଷ ।
ଔରସ୍ୟ—ପୁଂ.ସ୍ତ୍ରୀ. (ଉରସ+ଯ) ଔରସ ପୁତ୍ର, କ୍ଲୀ.ବି. ବକ୍ଷସ୍ଥଳଜାତ, ବୀର୍ଯ୍ୟ, ପିତୃତ୍ୱ,(ବି°) ଲିଙ୍ଗକ ।
ଔର୍ଣ୍ଣ—ବି°. (ଉର୍ଣ୍ଣା+ଅ) ମେଷ ଲୋମ-ଜାତ (କମ୍ବଳ), ପଶମରୁ ପ୍ରସ୍ତୁତ,ଉର୍ଣ୍ଣା ସମ୍ବନ୍ଧୀୟ, ପଶମୀ ।
ଔର୍ଣ୍ଣାବତ—ବି. ଋଷିବିଶେଷ ।
ଔର୍ଣ୍ଣନାଭ—ବି°. (ଊର୍ଣ୍ଣନାଭ+ଅ)ଊର୍ଣ୍ଣ ନାଭ ସମ୍ବନ୍ଧୀୟ ।
ଔର୍ଣ୍ଣିକ—ବି°.(ଉର୍ଣ୍ଣା+ଇକ)ଉର୍ଣ୍ଣାନିମିତ୍ତ ସଂଯୋଗ, ଉର୍ଣ୍ଣା ନିମିତ୍ତ ଉତ୍ପାତ ।
ଔର୍ଦ୍ଧ୍ୱକାଳିକ-ବି°.(ଉର୍ଦ୍ଧ୍ୱକାଳ+ଇକ) ଊର୍ଦ୍ଧ୍ୱକାଳୋତ୍ପନ୍ନ,ଊର୍ଦ୍ଧ୍ୱକାଳସମ୍ବନ୍ଧୀୟ

ଔର୍ଦ୍ଧ୍ୱଦେହ—ବି°.ଊର୍ଦ୍ଧ୍ୱଦେହସମ୍ବନ୍ଧୀୟ
ଔର୍ଦ୍ଧ୍ୱଦେହିକ—ବି°. ମରଣାନନ୍ତର ଶାସ୍ତ୍ରୋକ୍ତ କାର୍ଯ୍ୟାଦି ।
ଔର୍ଦ୍ଧ୍ୱଦୈହିକ—ବି°.ମୃତ୍ୟୁପରେ ପ୍ରେତୋଦ୍ଦେଶେ ଯେଉଁ ସମସ୍ତ କାର୍ଯ୍ୟ କରାଯାଏ, (ବି) ଅନ୍ତ୍ୟେଷ୍ଟି ପ୍ରେତକୃତ୍ୟ ଅଗ୍ନିସଂସ୍କାରାଦି ।
ଔର୍ଦ୍ଧ୍ୱଦମିକ—ବି°. ଊର୍ଦ୍ଧ୍ୱଦମୋତ୍ପନ୍ନ ।
ଔର୍ଦ୍ଧ୍ୱସ୍ରୋତସିକ—ବି°. ଶୈବ, ଶିବ-ଭକ୍ତ ।
ଔର୍ବ—କ୍ଲୀ.ବି. (ଉର୍ବୀ+ଅ) ପଙ୍ଗାଲୁଣ, ଉର୍ଭିଦଲବଣ, (ପୁଂ.ବି.) ପାର୍ଥିବ, ଉର୍ବଋଷିପୁତ୍ର, ଭୂମିଜାତ, ଭୃଗୁବଂଶୀୟ ଋଷିବିଶେଷ, ବଡ଼ବାନଳ, ଭାରତା-ନ୍ତର୍ଗତ ଉପାଖ୍ୟାନବିଶେଷ ।
ଔର୍ବଶ—ବି°. ( ଉର୍ବଶୀ+ଅ )ଉର୍ବଶୀ ସମ୍ବନ୍ଧୀୟ, (ପୁଂ.) ଉର୍ବଶୀ ପୁତ୍ର, ପଞ୍ଚପ୍ରବରାନ୍ତର୍ଗତ ମୁନିବିଶେଷ ।
ଔର୍ବଶେୟ-ପୁଂ. ବି. (ଉର୍ବଶୀ+ଇୟ) ଅଗସ୍ତ୍ୟ ମୁନି, ଉର୍ବଶୀପୁତ୍ର ।
ଔର୍ବାନଳ—ପୁଂ.ବି. କ.ଧା; ବଡ଼ବାଗ୍ନି ।
ଔଲପି—ପୁଂ. ବି. (ଉଲପ+ଇ)ଉଲପ ପୁତ୍ର ।
ଔଲପୀ+ପୁଂ.ବି. ଉଲପଲିଖିତ,ଛନ୍ଦୋ-ଗ୍ରନ୍ଥ ପାଠକ ।
ଔଲାନ—କ୍ଲୀ. ବି. ଅବଲମ୍ବନ ।
ଔଲୂକ-କ୍ଲୀ.ବି.(ଉଲୂକ+ଅ) ଉଲୂକ-ସମୂହ, ପେଚାସକଳ ।
ଔଲୂକ୍ୟ—ପୁଂ. ବି. ( ଉଲୂକ+ଯ ) ଉଲୂକ ଋଷିଙ୍କର ପୁତ୍ର, କଣାଦ, ବୈଶେଷିକ ଦର୍ଶନଙ୍କ ଓ ପ୍ରଣେତା ।
ଔଲଖଲ-ବି°.(ଉଲଖଲ+ଅ)ଉଲୂଖଳେ କୁଟିତ ବସ୍ତୁ,ଉଲୂଖଲ ଉତ୍ପନ୍ନ ଶବାଦି
ଔବେଣକ—କ୍ଲୀ. ବି. ଗୀତବିଶେଷ ।
ଔଶନସ—କ୍ଲୀ. ବି. (ଉଶନସ+ଅ) ଶୁକ୍ରାଚାର୍ଯ୍ୟପ୍ରଣୀତ ଗ୍ରନ୍ଥ, (ବି°) ଶୁକ୍ରା-ଚାର୍ଯ୍ୟ ସମ୍ବନ୍ଧୀୟ ।
ଔଶନସୀ—ସ୍ତ୍ରୀ.ବି.(ଉଶନସ+ଅ+ଈ) ଶୁକ୍ରାଚାର୍ଯ୍ୟଙ୍କର କନ୍ୟା, ଦେବଯାନୀ ।

ଔଶିଜ—ପୁଂ.ବି. (ଉଶିଜ+ଅ) ପଞ୍ଚ-ପ୍ରବରାନ୍ତର୍ଗତଋଷି ବିଶେଷ, ଇଚ୍ଛାଯୁକ୍ତ ।
ଔଶୀନର—ପୁଂ. ବି. (ଉଶୀନର+ଇ) ଉଶୀନରର ପୁତ୍ର, ଶିବି ପ୍ରଭୃତି ।
ଔଶୀର—ପୁଂ. ବି. (ଉଶୀର+ଅ)ଚାମର ଦଣ୍ଡ (ବି°.) ଉଶୀର ସଂକ୍ରାନ୍ତ, ବେଣା-ମୂଳରେ ନିର୍ମିତ ।
ଔଷଣ—କ୍ଲୀ.ବି (ଉଷଣ+ଅ)କଟୁରସ, ଝାଳ ।
ଔଷଣଶୌଣ୍ଡୀ—ସ୍ତ୍ରୀ.ବି. ଶୁଣ୍ଠୀ ।
ଔଷଦଶ୍ୱି—ପୁଂ. ବି. (ଉଷଦଶ୍ୱ+ଇ) ଉଷଦଶ୍ୱ ରାଜାର ପୁତ୍ର, ବସୁମାନ୍ ।
ଔଷଧ—କ୍ଲୀ.ବି. (ଓଷଧି+ଅ) ରୋଗ-ନାଶକ ଦ୍ରବ୍ୟ, ଭେଷଜ, ଭୈଷଜ୍ୟ, ଅଗଦ, ଜୈତ୍ର, ଅମୃତ,ବୈଦ୍ୟଙ୍କ ନାମା-ନ୍ତର, ଆୟୁର୍ବେଦ୍ୟ (ବି°) ଔଷଧିଜାତ ତଣ୍ଡୁଳାଦି ।
ଔଷଧାଜୀବ—ପୁଂ.ବି. (ଔଷଧ+ଆ+ଜୀବ+ଅ) ଔଷଧ ବିକ୍ରେତା, ଔଷଧ ବିକ୍ରୟ ଯାହାର ଉପଜୀବିକା ।
ଔଷଧାଳୟ—ପୁଂ.ବି. (୬ତତ୍) ଯେଉଁ-ଠାରେ ନାନାବିଧ ଔଷଧ ବିକ୍ରୟ ନିମିତ୍ତ ରକ୍ଷିତ ଥାଏ ।
ଔଷଧି—ସ୍ତ୍ରୀ.ବି. ସମ୍ୟକ୍ ଓଷଧି, ଓଷଧି ସମ୍ବନ୍ଧୀୟ, ଓଷଧି ।
ଔଷଧୀଶ—ଗା.ବି. (୬ତତ୍) ଚନ୍ଦ୍ର ।
ଔଷର—କ୍ଲୀ. ବି. (ଉଷର+ଅ)ପାଂଶୁ ଲବଣ, ଅମ୍ଳସ୍ୱାଦୁବିଶେଷ, ବି°. ଉଷର ମୃତ୍ତିକୋତ୍ପନ୍ନ, କ୍ଷାରଯୁକ୍ତ ।
ଔଷରକ—କ୍ଲୀ.ବି.(ଉଷର+କ)ମୃତ୍ତିକା ଲବଣ, ଖାରିଲବଣ, ସର୍ବସଂସର୍ଗଲବଣ ଉଷରକ, ସାମ୍ଭର,ବହୁଲବଣ, ମେଳକ ଲବଣ ଓ ମିଶ୍ର ।
ଔଷସ—ବି°. ( ଉଷସ୍+ଅ ) ଉଷା-କାଳୋତ୍ପନ୍ନ, ଉଷା ସମ୍ବନ୍ଧୀୟ, (ସ୍ତ୍ରୀ) ଔଷସୀ ।
ଔଷସ୍ୟ—ବି°. (ଉଷସ୍+ଯ) ଉଷା-ସମ୍ବନ୍ଧୀୟ ।

ଔଷସ୍ତ—ବି. (ଉଷସ୍ତି + ଅ) ଉଷସ୍ତି ଋଷି ସମ୍ବନ୍ଧୀୟ, ଛାନ୍ଦୋଗ୍ୟୋପନିଷଦର ଉଷସ୍ତି ଚରିତ ନାମକ ବ୍ରାହ୍ମଣକାଣ୍ଡ ବିଶେଷ ।

ଔଷସ୍ତ୍ୟ—ବି. (ଉଷସ୍ତି + ଯ) ଉଷସ୍ତି ଋଷି ସମ୍ବନ୍ଧୀୟ, ଔଷସ୍ତ ।

ଔଷସିକ—ବି. (ଉଷସ୍ + ଇକ) ଉଷା ସମ୍ବନ୍ଧୀୟ ।

ଔଷିକ—ବି. ଉଷାକାଳୋତ୍ପନ୍ନ ।

ଔଷ୍ଟ୍ର—କ୍ଲୀ. ବି. (ଉଷ୍ଟ୍ର + ଅ) ଉଷ୍ଟ୍ରସମୂହ, ଉଷ୍ଟ୍ରଜାତ, ଉଷ୍ଟ୍ରଦୁଗ୍ଧ ।

ଔଷ୍ଟ୍ରକ—କ୍ଲୀ. ବି. ( ଉଷ୍ଟ୍ର + କ ) ଉଷ୍ଟ୍ର-ସମୂହ, ଉଷ୍ଟ୍ରସମ୍ବନ୍ଧୀୟ ।

ଔଷ୍ଟ୍ରରଥ—କ୍ଲୀ. ବି. ଉଷ୍ଟ୍ରର ରଥସମ୍ବନ୍ଧୀୟ ।

ଔଷ୍ଟ୍ରାୟଣ—ପୁଂ. ବି. ( ଉଷ୍ଟ୍ର + ଆୟନ) ଉଷ୍ଟ୍ରବଂଶୀୟ ।

ଔଷ୍ଟ୍ରିକ—ବି. (ଉଷ୍ଟ୍ର + ଇକ) ଉଷ୍ଟ୍ରଜାତ ଦୁଗ୍ଧ ପ୍ରଭୃତି ।

ଔଷ୍ଠ—ବି. (ଓଷ୍ଠ + ଅ) ଓଷ୍ଠ ଆକାର ପତ୍ର କାଷ୍ଠାବୟବଯୁକ୍ତ ଆଶ୍ୱିନଗ୍ରହପାତ୍ର ।

ଔଷ୍ଠ୍ୟ—ବି. ( ଓଷ୍ଠ + ଯ ) ଓଷ୍ଠଜାତ, ଓଷ୍ଠଦ୍ୱାରା ଉଚ୍ଚାର୍ଯ୍ୟବର୍ଣ୍ଣ, ଉ, ଊ, ପ, ଫ, ବ, ଭ, ମ, ଓ, ଔ ।

ଔଷ୍ମ—କ୍ଲୀ. ବି. (ଉଷ୍ମ + ଅ) ଉଷ୍ମତା, ଉତ୍ତାପ, ସନ୍ତାପ ।

ଔଷ୍ମିକ—କ୍ଲୀ. ବି. (ଉଷ୍ମଜ + ଅ) ପଗଡ଼ି, (ବି) ପଗଡ଼ିସମ୍ବନ୍ଧୀୟ ।

ଔଷ୍ଣୀଷକ—ପୁଂ. ବି. (ଉଷ୍ଣୀଷ + କ) ଉଷ୍ଣୀଷଧାରୀ, ମୁକୁଟଧାରୀ (ବି.) ରାଜା ।

ଔଷ୍ଣିହ—ବି. (ଉଷ୍ଣିହ + ଅ) ଉଷ୍ଣିକ୍-ଛନ୍ଦୋଜାତ, ଉଷ୍ଣିକ୍‌ଛନ୍ଦସମ୍ବନ୍ଧୀୟ, ଉଷ୍ଣିକ୍‌ଛନ୍ଦଦ୍ୱାରା ଯେଉଁ ଦେବତାର ସ୍ତବ କରାହୁଏ, ସୂର୍ଯ୍ୟ ।

ଔଷ୍ଣିକ—ବି. (ଉଷ୍ଣି + ଅ) ଉଷ୍ଣୀଷଧାରୀ, ଉଷ୍ଣୀଷଧାରୀ ଦେଶବିଶେଷ, ଉଷ୍ଣୀଷଧାରୀ ନୃପତି ।

ଔଷ୍ଣ୍ୟ—କ୍ଲୀ. ବି. (ଉଷ୍ଣ + ଯ) ଉଷ୍ଣତା, ଉଷ୍ଣସ୍ପର୍ଶ ।

# ଅଂ

ଅଂ—ତନ୍ତ୍ରମତେ ପଞ୍ଚଦଶ ସ୍ୱରବର୍ଣ୍ଣ, ଏହାର ନାମ ଅନୁସ୍ୱାର, ବିନ୍ଦୁମାତ୍ର ଏହାର ଆକୃତି, ଏହାକୁ ଅନୁନାସିକ ବର୍ଣ୍ଣ କହନ୍ତି, ଅଂକାର ବିନ୍ଦୁଯୁକ୍ତ ପୀତ ବର୍ଣ୍ଣ ବିଦ୍ୟୁତ୍‌ତୁଲ୍ୟ ପଞ୍ଚପ୍ରାଣାତ୍ମକ ବ୍ରହ୍ମାଦି ଦେବମୟ ସର୍ବଜ୍ଞାନମୟ ଓ ବିନ୍ଦୁତ୍ରୟ-ଯୁକ୍ତ, ତନ୍ତ୍ରୋକ୍ତ ନାମ—ଅଂକାର, ଚକ୍ଷୁଷ, ଦନ୍ତ, ଘଣ୍ଟିକା, ସମଗୁହ୍ୟକ, ପ୍ରଦ୍ୟୁମ୍ନ, ଶ୍ରୀମୁଖ, ପ୍ରୀତି, ବୀଜଯୋନି, ବୃଷଧ୍ୱଜ, ପର, ଶଶୀ, ପ୍ରମାଣୀଶ, ସୋମ-ବିନ୍ଦୁ, କଲାନିଧି, ଅକ୍ରୂର, ଚେତନା, ମାଦପୂର୍ଣ୍ଣା, ଦୁଃଖହର, ଶିବ, ନରେଶ, ସୁଖ ଦୁଃଖ ପ୍ରବର୍ତ୍ତିକ, ପୂର୍ଣ୍ଣିମା, ରେବତୀ, ଶୃଙ୍ଗ, କନ୍ୟାଚର, ଅମୃତାକର୍ଷିଣୀ, ଶୂନ୍ୟ, ବିଚାରୀ, ବ୍ୟୋମରୂପିଣୀ, କେଦାର, ଗର୍ବନାଶ, କୁବ୍ଜିକା, ଶ୍ରୁତିବୁଦ୍ଧ ।

ଅଂ—କ୍ଲୀ. ବି. ପରବ୍ରହ୍ମ, ମହେଶ୍ୱର ।

# ଅଃ

ଅଃ—ବିସର୍ଗ, (ଃ) ତନ୍ତ୍ରମତେ ଷୋଡ଼ଶ ସ୍ୱରବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ କଣ୍ଠ, ର ଓ ସ ସ୍ଥାନେ ଏହି ବର୍ଣ୍ଣର ଉତ୍ପତ୍ତି, କାମଧେନୁମତେ ଅଃକାର ପରମେଶ ରକ୍ତବର୍ଣ୍ଣ ବିଦ୍ୟୁତ୍‌ତୁଲ୍ୟ ପଞ୍ଚଦେବମୟ, ପଞ୍ଚପ୍ରାଣମୟ, ସର୍ବଜ୍ଞାନମୟ, ଆତ୍ମାଦି ତତ୍ତ୍ୱସଂଯୁକ୍ତ, ମୂର୍ତ୍ତିମାନ କୁଣ୍ଡଳୀ ବିନ୍ଦୁ-ତ୍ରୟବିଶିଷ୍ଟ, ଶକ୍ତିତ୍ରୟଯୁକ୍ତ ଏହି ସକଳ ଶକ୍ତି କିଶୋରବୟସ୍କା ଶିବପତ୍ନୀ, ତନ୍ତ୍ରୋକ୍ତନାମ-ଅଃ. କଣ୍ଠକ, ମହାସେନ କାଳାପୂର୍ଣ୍ଣା, ଅମୃତା, ହର, ଇଚ୍ଛା, ତନ୍ଦ୍ରା, ଗଣେଶ, ରତି, ବିଦ୍ୟାମୁଖୀ, ସୁଖ, ଦ୍ୱିବିନ୍ଦୁ, ରସନା, ସୋମ, ଅନିରୁଦ୍ଧ ଦୁଃଖସୂଚକ, ଦ୍ୱିଜିହ୍ୱ, କୁଣ୍ଡଳ, ବକ୍ର, ସର୍ପଶକ୍ତି, ନିଶାକର, ସୁନ୍ଦର, ସୁଯଶା, ଅନନ୍ତା, ଗଣନାଥ ଓ ମହେଶ୍ୱର ।

ଅଃ—ପୁଂ. ବି. ମହେଶ୍ୱର, ଗଣନାଥ ।

# କ

କ-ବ୍ୟଞ୍ଜନବର୍ଣ୍ଣର ପ୍ରଥମ ଅକ୍ଷର, ଏହାର ଉଚ୍ଚାରଣ ସ୍ଥାନ କଣ୍ଠ ।

କ—କ୍ଲୀ. ବି. ୧—ମସ୍ତକ, ଜଳ, ସୁଖ, କେଶ, ଚୂଳ, ମନ, ଧନ, ରୋଗ (ପୁଂ. ବି) (କୈ + ଅ) ବ୍ରହ୍ମା, ବିଷ୍ଣୁ, ପ୍ରଜାପତି, ଦକ୍ଷ, କନ୍ଦର୍ପ, ଅଗ୍ନି, ବାୟୁ, ଯମ, ସୂର୍ଯ୍ୟ, ଆତ୍ମା, ରାଜା, ଗ୍ରନ୍ଥି, ମୟୂର, ଶରୀର, କାଳ, ଶବ୍ଦ, ପ୍ରକାଶ, ପକ୍ଷୀ, ରୁଦ୍ର, ପରଲୋକ, କାରଣ, ସର୍ବନାମ ଶବ୍ଦ ।

କଁକ (କଅଁ, କଅଁ)—ଗ୍ରା. ଅବ୍ୟ. ଅନୁ-କରଣ, ଅବ୍ୟୟ, ଧ୍ୱନିର ଅନୁକରଣ, ଶବ୍ଦବିଶେଷ ।

କଅଁଣ—ଗ୍ରା. ସର୍ବ, (ସଂ-କିମ୍) କି, କିସ, (ପ୍ରଶ୍ନାର୍ଥକ) ବି. କି, କିସ, (ଅବ୍ୟ) ପ୍ରଶ୍ନାର୍ଥକ, ବିସ୍ମୟାର୍ଥକ, ଡାକିଲେ ଜବାବ ଦେବା କଅଣ ।

କଅଁର—ଗ୍ରା. ବି. ପାଣ୍ଡୁର ବର୍ଣ୍ଣବିଶିଷ୍ଟ, କହରା, କପିଶ ବର୍ଣ୍ଣ ।

କଅଁଳ—ଗ୍ରା. ବି. କୋମଳ, ମୃଦୁ, ନରମା, ମୁଲାଏମ୍, ମଧୁର, ସୁକୁମାର ।

କଅଁଳା, କଅଁଳିଆ—ଗ୍ରା. ବି. (ସଂ-କୋମଳ) ସଦ୍ୟୋଜାତ, କୋମଳ, ଅଳ୍ପ-ବୟସ୍କ (ଶିଶୁ) ।

କଅଁଳେଇବା, କଅଁଳାଇବା—ଗ୍ରା. କ୍ରି. (ଗାଈ) ବାଛୁରୀ ଜନ୍ମ କରିବା ।

କଅଁଳିବା—ଗ୍ରା. କ୍ରି. ପଲ୍ଲବିବା, ଗାଈ ପ୍ରସବ କରିବା, ଗଜୁରିବା, ଅଙ୍କୁରିବା ।

କଇ—ଗ୍ରା. ବି. ମତ୍ସ୍ୟବିଶେଷ, ବାନ୍ତି, ବମନ, ଓକାଳ ।

କଇଁ—ଗ୍ରା. ବି. କୁମୁଦ, ଜଳଜ ପୁଷ୍ପ ବିଶେଷ, କୈରବ ।

କଇଁଆଁ—ଗ୍ରା. ବି. ତେନ୍ତୁଳି ।

କଇଁ କଇଁ—ଗ୍ରା. ଅବ୍ୟ. ଅନୁକରଣ ଅବ୍ୟୟ, କୋହୋରେଇହୋଇ(କ୍ରନ୍ଦନ କରିବା), ହିକାଛଡ଼ିକାନ୍ଦୁଥିବା ଅବସ୍ଥାରେ, ମୁହୁର୍ମୁହୁ ନିଃଶ୍ୱାସ ବନ୍ଦକରି (କାନ୍ଦିବା)

ଔଷସ୍ତ—ବିଂ. (ଉଷସ୍ତି + ଅ) ଉଷସ୍ତି ଋଷି ସମ୍ବନ୍ଧୀୟ, ଛାନ୍ଦୋଗ୍ୟୋପନିଷଦର ଉଷସ୍ତି ଚରିତ ନାମକ ବ୍ରାହ୍ମଣକାଣ୍ଡ ବିଶେଷ ।

ଔଷସ୍ତ୍ୟ—ବିଂ. (ଉଷସ୍ତି + ଯ) ଉଷସ୍ତି ଋଷି ସମ୍ବନ୍ଧୀୟ, ଔଷସ୍ତ ।

ଔଷସିକ—ବିଂ. (ଉଷସ୍ + ଇକ) ଉଷା ସମ୍ବନ୍ଧୀୟ ।

ଔଷିକ—ବିଂ. ଉଷାକାଳୋତ୍ପନ୍ନ ।

ଔଷ୍ଟ୍ର—କ୍ଲୀ. ବି. (ଉଷ୍ଟ୍ର + ଅ) ଉଷ୍ଟ୍ରସମୂହ, ଉଷ୍ଟ୍ରଜାତ, ଉଷ୍ଟ୍ରଦୁଗ୍ଧ ।

ଔଷ୍ଟ୍ରକ—କ୍ଲୀ. ବି. ( ଉଷ୍ଟ୍ର + କ ) ଉଷ୍ଟ୍ର-ସମୂହ, ଉଷ୍ଟ୍ରସମ୍ବନ୍ଧୀୟ ।

ଔଷ୍ଟ୍ରରଥ—କ୍ଲୀ. ବି. ଉଷ୍ଟ୍ରର ରଥସମ୍ବନ୍ଧୀୟ ।

ଔଷ୍ଟ୍ରାୟଣ—ପୁଂ. ବି. ( ଉଷ୍ଟ୍ର + ଆୟନ) ଉଷ୍ଟ୍ରବଂଶୀୟ ।

ଔଷ୍ଟ୍ରିକ—ବିଂ. (ଉଷ୍ଟ୍ର + ଇକ) ଉଷ୍ଟ୍ରଜାତ ଦୁଗ୍ଧ ପ୍ରଭୃତି ।

ଔଷ୍ଠ—ବିଂ. (ଓଷ୍ଠ + ଅ) ଓଷ୍ଠ ଆକାର ପତ୍ର କାଷ୍ଠାବୟବଯୁକ୍ତ ଆଶ୍ୱିନଗ୍ରହପାତ୍ର ।

ଔଷ୍ଠ୍ୟ—ବିଂ. ( ଓଷ୍ଠ + ଯ ) ଓଷ୍ଠଜାତ, ଓଷ୍ଠଦ୍ୱାରା ଉଚ୍ଚାର୍ଯ୍ୟବର୍ଣ୍ଣ, ଉ, ଊ, ପ, ଫ, ବ, ଭ, ମ, ଓ, ଔ ।

ଔଷ୍ଣ—କ୍ଲୀ. ବି. (ଉଷ୍ଣ + ଅ) ଉଷ୍ଣତା, ଉତ୍ତାପ, ସନ୍ତାପ ।

ଔଷ୍ଣିକ—କ୍ଲୀ. ବି. (ଉଷ୍ଣିକ + ଅ) ପଗଡ଼ି, (ବିଂ) ପଗଡ଼ିସମ୍ବନ୍ଧୀୟ ।

ଔଷ୍ଣୀଷକ—ପୁଂ. ବିଂ. (ଉଷ୍ଣୀଷ + କ) ଉଷ୍ଣୀଷଧାରୀ, ମୁକୁଟଧାରୀ (ବି.) ରାଜା ।

ଔଷ୍ଣିହ—ବିଂ. (ଉଷ୍ଣିହ + ଅ) ଉଷ୍ଣିକ୍-ଛନ୍ଦୋଜାତ, ଉଷ୍ଣିକ୍ଛନ୍ଦସମ୍ବନ୍ଧୀୟ, ଉଷ୍ଣିକ୍ଛନ୍ଦଦ୍ୱାରା ଯେଉଁ ଦେବତାର ସ୍ତବ କରାହୁଏ, ସୂର୍ଯ୍ୟ ।

ଔଷ୍ଣିକ—ବିଂ. (ଉଷ୍ଣି + ଅ) ଉଷ୍ଣୀଷଧାରୀ, ଉଷ୍ଣୀଷଧାରୀ ଦେଶବିଶେଷ, ଉଷ୍ଣୀଷଧାରୀ ନୃପତି ।

ଔଷ୍ଣ୍ୟ—କ୍ଲୀ. ବି. (ଉଷ୍ଣ + ଯ) ଉଷ୍ଣତା, ଉଷ୍ଣସ୍ପର୍ଶ ।

# ଅଂ

ଅଂ—ତନ୍ତ୍ରମତେ ପଞ୍ଚଦଶ ସ୍ୱରବର୍ଣ୍ଣ, ଏହାର ନାମ ଅନୁସ୍ୱାର, ବିନ୍ଦୁମାତ୍ର ଏହାର ଆକୃତି, ଏହାକୁ ଅନୁନାସିକ ବର୍ଣ୍ଣ କହନ୍ତି, ଅଂକାର ବିନ୍ଦୁଯୁକ୍ତ ପୀତ ବର୍ଣ୍ଣ ବିଦ୍ୟୁତ୍ତୁଲ୍ୟ ପଞ୍ଚପ୍ରାଣାତ୍ମକ ବ୍ରହ୍ମାଦି ଦେବମୟ ସର୍ବଜ୍ଞାନମୟ ଓ ବିନ୍ଦୁତ୍ରୟ-ଯୁକ୍ତ, ତନ୍ତ୍ରୋକ୍ତ ନାମ—ଅଂକାର, ଚକ୍ଷୁଷ, ଦନ୍ତ, ଘଣ୍ଟିକା, ସମଗୁହ୍ୟକ, ପ୍ରଦ୍ୟୁମ୍ନ, ଶ୍ରୀମୁଖ, ପ୍ରୀତି, ବୀଜଯୋନି, ବୃଷଧ୍ୱଜ, ପର, ଶଶୀ, ପ୍ରମାଣୀଶ, ସୋମ-ବିନ୍ଦୁ, କଳାନିଧି, ଅକ୍ରୂର, ଚେତନା, ମାଦପୂର୍ଣ୍ଣା, ଦୁଃଖହର, ଶିବ, ନରେଶ, ସୁଖ ଦୁଃଖ ପ୍ରବର୍ତ୍ତିକ, ପୂର୍ଣ୍ଣିମା, ରେବତୀ, ଶ୍ରୁତି, କନ୍ୟାଚର, ଅମୃତାକର୍ଷିଣୀ, ଶୂନ୍ୟ, ବିଚନ୍ଦ୍ରା, ବ୍ୟୋମରୂପିଣୀ, କେଦାର, ସର୍ବନାଶ, କୁର୍ଦ୍ଦିକା, ଶ୍ରୁଦବୁଦ ।

ଅଂ—କ୍ଲୀ. ବି. ପରବ୍ରହ୍ମ, ମହେଶ୍ୱର ।

# ଅଃ

ଅଃ—ବିସର୍ଗ, (ଃ) ତନ୍ତ୍ରମତେ ଷୋଡ଼ଶ ସ୍ୱରବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ କଣ୍ଠ, ର ଓ ସ ସ୍ଥାନେ ଏହି ବର୍ଣ୍ଣର ଉତ୍ପତ୍ତି, କାମଧେନୁମତେ ଅଃକାର ପରମେଶ ରକ୍ତବର୍ଣ୍ଣ ବିଦ୍ୟୁତ୍ତୁଲ୍ୟ ପଞ୍ଚଦେବମୟ, ପଞ୍ଚପ୍ରାଣମୟ, ସର୍ବଜ୍ଞାନମୟ, ଆତ୍ମାଦି ତତ୍ତ୍ୱସଂଯୁକ୍ତ, ମୂର୍ତ୍ତିମାନ କୁଣ୍ଡଳୀ ବିନ୍ଦୁ-ତ୍ରୟବିଶିଷ୍ଟ, ଶକ୍ତିତ୍ରୟଯୁକ୍ତ ଏହି ସକଳ ଶକ୍ତି କିଶୋରବୟସ୍କା ଶିବପତ୍ନୀ, ତନ୍ତ୍ରୋକ୍ତନାମ-ଅଃ. କଣ୍ଠକ, ମହାସେନ କାଳାପୂର୍ଣ୍ଣା, ଅମୃତା, ହର, ଇଚ୍ଛା, ତନ୍ଦ୍ରା, ଗଣେଶ, ରତି, ବିଦ୍ୟାମୁଖୀ, ସୁଖ, ଦ୍ୱିବିନ୍ଦୁ, ରସନା, ସୋମ, ଅନିରୁଦ୍ଧ ଦୁଃଖସୂଚକ, ଦ୍ୱିଜିହ୍ୱ, କୁଣ୍ଡଳ, ବକ୍ତ୍ର, ସର୍ପଶକ୍ତି, ନିଶାକର, ସୁନ୍ଦର, ସୁଯଶା, ଅନନ୍ତା, ଗଣନାଥ ଓ ମହେଶ୍ୱର ।

ଅଃ—ପୁଂ. ବି. ମହେଶ୍ୱର, ଗଣନାଥ ।

# କ

କ-ବ୍ୟଞ୍ଜନବର୍ଣ୍ଣର ପ୍ରଥମ ଅକ୍ଷର, ଏହାର ଉଚ୍ଚାରଣ ସ୍ଥାନ କଣ୍ଠ ।

କ—କ୍ଲୀ. ବି. ୧ —ମସ୍ତକ, ଜଳ, ସୁଖ, କେଶ, ଚୂଳ, ମନ, ଧନ, ରୋଗ (ପୁଂ. ବି) (କୈ + ଅ) ବ୍ରହ୍ମା, ବିଷ୍ଣୁ, ପ୍ରଜାପତି, ଦକ୍ଷ, କନ୍ଦର୍ପ, ଅଗ୍ନି, ବାୟୁ, ଯମ, ସୂର୍ଯ୍ୟ, ଆତ୍ମା, ରାଜା, ଗ୍ରନ୍ଥି, ମୟୂର, ଶରୀର, କାଳ, ଶବ୍ଦ, ପ୍ରକାଶ, ପକ୍ଷୀ, ରୁଦ୍ର, ପରଲୋକ, କାରଣ, ସର୍ବନାମ ଶବ୍ଦ ।

କଁକଁ (କଅଁ, କଅଁ)—ଗ୍ରା. ଅବ୍ୟ. ଅନୁ-କରଣ, ଅବ୍ୟୟ, ଧ୍ୱନିର ଅନୁକରଣ, ଶବ୍ଦବିଶେଷ ।

କଅଁଣ—ଗ୍ରା. ସର୍ବ, (ସଂ-କିମ୍) କି, କିସ, (ପ୍ରଶ୍ନାର୍ଥକ) ବିଂ. କି, କିସ, (ଅବ୍ୟ) ପ୍ରଶ୍ନାର୍ଥକ, ବିସ୍ମୟାର୍ଥକ, ଡାକିଲେ ଜବାବ ଦେବା କଅଣ ।

କଅଁର—ଗ୍ରା. ବିଂ. ପାଣ୍ଡୁର ବର୍ଣ୍ଣବିଶିଷ୍ଟ, କହରା, କପିଶ ବର୍ଣ୍ଣ ।

କଅଁଳ—ଗ୍ରା. ବିଂ. କୋମଳ, ମୃଦୁ, ନରମ, ମୁଲାଏମ୍, ମଧୁର, ସୁକୁମାର ।

କଅଁଳା, କଅଁଳିଆ—ଗ୍ରା. ବିଂ. (ସଂ-କୋମଳ) ସଦ୍ୟୋଜାତ, କୋମଳ, ଅଳ୍ପ-ବୟସ୍କ (ଶିଶୁ) ।

କଅଁଳେଇବା, କଅଁଳାଇବା—ଗ୍ରା. କ୍ରି. (ଗାଈ) ବାଛୁରୀ ଜନ୍ମ କରିବା ।

କଅଁଳିବା—ଗ୍ରା. କ୍ରି. ପଲ୍ଲବିବା, ଗାଈ ପ୍ରସବ କରିବା, ଗଜୁରିବା, ଅଙ୍କୁରିବା ।

କଇ—ଗ୍ରା. ବି. ମତ୍ସ୍ୟବିଶେଷ, ବାନ୍ତି, ବମନ, ଓକାର ।

କଇଁ—ଗ୍ରା. ବି. କୁମୁଦ, ଜଳଜ ପୁଷ୍ପ ବିଶେଷ, କୈରବ ।

କଇଁଆଁ—ଗ୍ରା. ବି. ତେନ୍ତୁଳି ।

କଇଁ କଇଁ—ଗ୍ରା. ଅବ୍ୟ. ଅନୁକରଣ ଅବ୍ୟୟ, କୋହୋରେଇହୋଇ (କ୍ରନ୍ଦନ କରିବା), ହିକାଛଡ଼ିକାନ୍ଦୁଥିବା ଅବସ୍ଥାରେ, ମୁହୁର୍ମୁହୁ ନିଃଶ୍ୱାସ ବନ୍ଦକରି (କାନ୍ଦିବା)

କଣ୍ଟାକଣ୍ଟି—ଗ୍ରା. ବିଂ. କ୍ରି.ବିଂ. ପରସ୍ପର ସହିତ ସର୍ବାଂଶରେ ସମାନ, ମାପରେ ଠିକ୍ ସମାନ । [କର୍ମ ।
କଣ୍ଟାକର୍ଣ୍ଟି—ଗ୍ରା.ବି.ଅନେକ ବସ୍ତୁ କଣ୍ଟିବା
କଣ୍ଟାକୁସୁମ—ଗ୍ରା.ବି. ବବୁରଗଛ,ଅଗଗ୍ର-ଗୁଳ୍ମ, ଗାଁଘଉଡ଼ାଗଛ ।
କଣ୍ଟାଖୁଞ୍ଚୁ—ଗ୍ରା. ବି. (ସହଚର) ଯେଉଁ କଣ୍ଟା ଲାଗିଲେ ଲୁଗାଆଦି ଚିରଯାଏ ।
କଣ୍ଟାଚଗ—ଗ୍ରା. ବି. ପାକଡ଼ାଖଇର, ଧଳାଖଇର । [ ପ୍ରଭୃତି ।
କଣ୍ଟାଫଳ—ପୁଂ.ବି. କଣ୍ଟାଳବୃକ୍ଷ, ପଣସ
କଣ୍ଟାବାଉଁଶ—ଗ୍ରା.ବି. କଣ୍ଟକଯୁକ୍ତ ଏକ-ପ୍ରକାର ବାଉଁଶ ।
କଣ୍ଟାବାଡ଼ରେ ଲୁଗାପକାଇ କଳିକରିବା-ଗ୍ରା.କ୍ରି. ପରକୁ କଳି କରିବାକୁ ପ୍ରଥମେ ଉତ୍ତେଜିତ କରି ନିଜେ ବୃଥା ଉତ୍ତେଜିତ ବ୍ୟକ୍ତି ସହିତ କଳି ଲାଗିବା ।
କଣ୍ଟାଭରନ୍—ଗ୍ରା.(ସମ୍ବ) ବିଂ.ଦୀର୍ଘସୂତ୍ରୀ ।
କଣ୍ଟାମାରିଷ—ଗ୍ରା. ବି. କଣ୍ଟକଯୁକ୍ତ ବନ୍ୟ-ଶାକଗୁଳ୍ମ ।
କଣ୍ଟାରହିବା—ଗ୍ରା.ବି.ରୋଗ ବା ଅନଶନ ଯୋଗୁଁ ମନୁଷ୍ୟର କଙ୍କାଳମାତ୍ର ଅବଶିଷ୍ଟ ରହିବା ।
କଣ୍ଟାଲିଆ—ଗ୍ରା. ବିଂ. କଣ୍ଟକମୟ ।
କଣ୍ଟାଳୁ—ପୁଂ. ବି. ବାଉଁଶ ବିଶେଷ, ବାଇଗଣ ।
କଣ୍ଟାସିଝୁ—ଗ୍ରା.ବି. ଏକପ୍ରକାର କଣ୍ଟକ-ଯୁକ୍ତ ସିଝୁଗଛ । [ବିଶେଷ ।
କଣ୍ଟି—ଗ୍ରା.ବି. ଲଙ୍ଗଳସ୍ଥ ବକ୍ର କାଷ୍ଠଖଣ୍ଡ-
କଣ୍ଟିଆ—ଗ୍ରା. ବି. (ସଂ-ତ୍ରିକଣ୍ଟକ)ଗାଲ-ନିକଟରେ ଓ ବେକ ଉପରେ ମୁନିଆଁ କଣ୍ଟାଥିବା ଏକପ୍ରକାର ମାଛ,ଏକପ୍ରକାର ବିଷାକ୍ତ ବିଛା ।
କଣ୍ଟି ଆଳି—ଗ୍ରା. ବି.(ସଂ-କଣ୍ଟକୀ) ଏକ-ପ୍ରକାର କାକୁଡ଼ି ।
କଣ୍ଟିକପାଳି—ଗ୍ରା.ବି.ଏକପ୍ରକାର ବନ୍ୟ-ଗୁଳ୍ମ, କଣ୍ଟେଇକୋଳି ।

କଣ୍ଟିକିଳା—ଗ୍ରା.ବି. ଲଙ୍ଗଳସଂଯୁକ୍ତ କଣ୍ଟିର କୀଳକ, ଲଙ୍ଗଳକୁ କଣ୍ଟିସଙ୍ଗେ ଯୋଗ-କରି ଦୃଢ଼ବଦ୍ଧ କରିବା ପାଇଁ ବାଡ଼ିଆ ହୋଇଥିବା ଖିଲ ।
କଣ୍ଟିବା—ଗ୍ରା.କ୍ରି.ମାପିବା,କଚ୍ଛିବା,ଦଂଶିବା ଝାଳବାହିବାର ଉପକ୍ରମ ହେବା ।
କଣ୍ଟିଲ—(ଲୋ)—ଗ୍ରା. ବି. ପୁରୀଜିଲା ଖଣ୍ଡପଡ଼ା ଅନ୍ତର୍ଗତ ଗୋଟିଏ ପ୍ରସିଦ୍ଧ ଗ୍ରାମ
କଣ୍ଟିଲିଆ—ଗ୍ରା. ବିଂ. କଣ୍ଟିଲ ଗ୍ରାମରେ ପ୍ରସ୍ତୁତ (ବାସନ) ।
କଣ୍ଟୀ—ପୁଂ. ବି. (କଣ୍ଟ+ଇନ୍) ଖଦିର, ଗୋକ୍ଷୁର, ଅପାମାର୍ଗ, କୋଇଲେଖା ଗୁଳ୍ମ, (ବିଂ) କଣ୍ଟକଯୁକ୍ତ ।
କଣ୍ଟେଇକୋଳି—ଗ୍ରା. ବି. ଏକପ୍ରକାର ଛୋଟ ବନ୍ୟକୋଳି ।
କଣ୍ଟେଇମୁଣ୍ଡି—ଗ୍ରା. ବି. ଏକପ୍ରକାର ଛୋଟ ବାଇଗଣ ।
କଣ୍ଟ୍ରାକ୍ଟ—ଯା,ବି.ଠିକା,ଇଜରା,ଚୁକ୍ତି, ପରସ୍ପର ସ୍ୱୀକାର ।
କଣ୍ଟ୍ରାକ୍ଟର—ଯା. ଠିକାଦାର ।
କଣ୍ଠ—ପୁଂ.ବି.(କଣ୍+କ.ଠ)ଗଳାଦେଶ ଗ୍ରୀବାର ସମ୍ମୁଖଭାଗ,ମଦନବୃକ୍ଷ, ନିକଟ, କୌଣସି ପଦାର୍ଥର ମୁଣ୍ଡପାଖର ସରୁଆ ଅଂଶ, (ବିଂ) କଣ୍ଠ୍ୟ ।
କଣ୍ଠଗତ-କଣ୍ଠାଗତ—କ୍ରି.ବିଂ. (କଣ୍ଠ+ଗମ+କ.ଅ) କଣ୍ଠସ୍ଥ, କଣ୍ଠପର୍ଯ୍ୟନ୍ତ ଆସିଥିବା, ବହିର୍ଗମନୋଦ୍ୟତ ।
କଣ୍ଠଗତପ୍ରାଣ—ପୁଂ.ବିଂ. (ବ.ବ୍ରୀ)ପ୍ରାଣା-ନ୍ତକ ଅବସ୍ଥାପ୍ରାପ୍ତ, ମୁମୂର୍ଷୁ ।
କଣ୍ଠଘଣ୍ଟ—ଗ୍ରା. ବି. ଏକତ୍ର ସମବେତ ବହୁଲୋକଙ୍କର ମୁଖଧ୍ୱନି, କଳରବ ।
କଣ୍ଠତଟ—ବି.(ତତ୍ପୁ) ବେକ ଓ କାନ୍ଧର ମଧ୍ୟବର୍ତ୍ତୀ ଅଂଶ ।
କଣ୍ଠତରୁଣୀ—ସ୍ତ୍ରୀ. ବି. ଯୁବତୀ ହେବାର ପୂର୍ବାବସ୍ଥାରେ ଯୁବାବସ୍ଥାର ଲକ୍ଷଣପ୍ରାପ୍ତ ବାଳିକା ।
କଣ୍ଠତାଲବ୍ୟ—ବିଂ. (କଣ୍ଠ+ତାଳୁ+ଯ) ଯେଉଁ ବର୍ଣ୍ଣର ଉଚ୍ଚାରଣ ସ୍ଥାନ କଣ୍ଠ ଓ ତାଳୁ ।

କଣ୍ଠଲାସିକା—ସ୍ତ୍ରୀ.ବି.ଘୋଡ଼ାରବେକରେ ବନ୍ଧା ହୋଇଥିବା ଚର୍ମ୍ମରଜ୍ଜୁ ପ୍ରଭୃତି ।
କଣ୍ଠଦଘ୍ନ—କ୍ରି. ବିଂ. କଣ୍ଠ ପରିମାଣ ।
କଣ୍ଠଦାସ—ପୁଂ.ବି.ପ୍ରାଚୀନ ଓଡ଼ିଆ କବି ।
କଣ୍ଠଦେଶ—ବି. ଶରୀରରେ କଣ୍ଠ ଥିବା ଅଂଶ, ବେକ ।
କଣ୍ଠଧାନ—ପୁଂ. ବି. ଦେଶବିଶେଷ ।
କଣ୍ଠନାଳୀ—ସ୍ତ୍ରୀ.ବି.(କଣ୍ଠ+ନାଳୀ) କଣ୍ଠ ଦେଶସ୍ଥିତ ସ୍ଥୂଳଧମନୀ, ଗଳାମଧ୍ୟସ୍ଥ ଛିଦ୍ର, ତଣ୍ଟିଭିତରର ଶଙ୍ଖନଳୀ ।
କଣ୍ଠନୀଡ଼କ—ପୁଂ.ବି.(କଣ୍ଠ+ନୀଡ଼+କ) ଚିଲପକ୍ଷୀ ।
କଣ୍ଠନୀଳକ—ପୁଂ.ବି. ଚିଲପକ୍ଷୀ,ମଶାଲ ।
କଣ୍ଠପାଶକ—ପୁଂ.ବି. (କଣ୍ଠ+ପାଶ+କୈ+କ)କଣ୍ଠରଜ୍ଜୁ,ହସ୍ତୀର ଗଳାରେ ବନ୍ଧାହେବା ଦଉଡ଼ି ।
କଣ୍ଠଫିଟିବା—ଗ୍ରା. ବି. ଗଳାରଅସ୍ପଷ୍ଟସ୍ୱର ସୁସ୍ପଷ୍ଟ ହେବା,ବୟସ ବୃଦ୍ଧି ସଙ୍ଗେ ବାଳ-କର ସରୁସ୍ୱର ମୋଟା ବା ଉଚ୍ଚହେବା ।
କଣ୍ଠବନ୍ଧ—ପୁଂ.ବି. ଗଳାର ଫାଶ (ବିଂ) (ତତ୍ପୁ) ଗଳଦେଶଧାରଣପୂର୍ବକ ଆଲିଙ୍ଗନକାରୀ ।
କଣ୍ଠଭୂଷା—ଭୂଷଣ—ବି.(କଣ୍ଠ+ଭୂଷା) କଣ୍ଠରେ ପିନ୍ଧାଯିବା ଅଳଙ୍କାର ବିଶେଷ, ହାର, କଣ୍ଠି, ମାଳା ।
କଣ୍ଠମଣି—ପୁଂ.ବି.(ତତ୍ପୁ)ଗଳାଦେଶରେ ଧାରଣ ଉପଯୋଗୀ ମଣି, କଣ୍ଠହାରର ମଧ୍ୟମଣି, ଘୋଡ଼ାର କଣ୍ଠପାଖେ ଥିବା ଭଉଁରୀ ।
କଣ୍ଠମାଳା—ସ୍ତ୍ରୀ.ବି. ଗଳାରେ ପିନ୍ଧାଯିବା ଅଳଙ୍କାର ବିଶେଷ ।
କଣ୍ଠରତ୍ନ—ବି.କଣ୍ଠଦେଶେ ଧାରଣୀୟରତ୍ନ
କଣ୍ଠରୋଧ—ବି. ( ତତ୍ପୁ ) ଗଳାରସ୍ୱର ଅଟକିଯିବା, ଗଳାରସ୍ୱର କମିଯିବା ।
କଣ୍ଠରୋଗ—ପୁଂ.ବି.କଣ୍ଠନାଳୀର ଅଭ୍ୟ-ନ୍ତରଜାତ ରୋଗସକଳ ।
କଣ୍ଠଲଗ୍ନ—ବିଂ. ( ତତ୍ପୁ ) ଯାହା ଗଳାରେ ଲାଗିଅଛି, ଗଳଲଗ୍ନ, କଣ୍ଠବନ୍ଧ

କଣ୍ଠଲତା—ବି. ଅଶ୍ୱର ଗଳାଦେଶରେ ଥିବା ରଜ୍ଜୁ ପ୍ରଭୃତି ।
କଣ୍ଠଶୁଣ୍ଡୀ—ସ୍ତ୍ରୀ.ବି. ତାଳୁଗତ ମୁଖରୋଗବିଶେଷ ।
କଣ୍ଠଶ୍ୱାସ—ବି. ( ୬ତତ୍ପୁ ) ଗଳଦେଶରୁ ଆଗତ ନିଶ୍ୱାସ, ମୁମୂର୍ଷୁ ଅବସ୍ଥା ।
କଣ୍ଠସଜ୍ଜନ—କ୍ଲୀ. ବି. କଣ୍ଠରେ ଲଗି ଆଲିଙ୍ଗନ କରିବା, ବେକର ମାଳ ।
କଣ୍ଠସୂତ୍ର—କ୍ଲୀ.ବି.ମାଳା,ଆଲିଙ୍ଗନବିଶେଷ, ବେକ କୁଣ୍ଢାଇବା ।
କଣ୍ଠସ୍ଥ—ବି. ବିଂ. (କଣ୍ଠ+ସ୍ଥା+ଅ) ମୁଖସ୍ଥ,କଣ୍ଠରେ ଯାହା ପ୍ରବେଶକରିଅଛି, ଉତ୍ତମରୂପେ ଅଭ୍ୟସ୍ତ ବା ଆୟତ୍ତୀକୃତ ।
କଣ୍ଠସ୍ଥକରିବା—ଗ୍ରା. କ୍ରି. ମୁଖସ୍ଥକରିବା, ପଇଠାଇବା ।
କଣ୍ଠସ୍ଥଳ—ବି. (୬ତତ୍ପୁ) କଣ୍ଠଦେଶ ।
କଣ୍ଠସ୍ୱର—ପୁଂ. ବି. ( ୬ତତ୍ପୁ ) ଗଳାର ଆୱାଜ ।
କଣ୍ଠହାର—ପୁଂ.ବି(୬ତତ୍ପୁ)କଣ୍ଠଦେଶରେ ପରିହିତ ମାଳ, କଣ୍ଠଭୂଷଣ ।
କଣ୍ଠା—ଗ୍ରା.ବି. ବେକର ହାର, ଭିତରେ ମଳଗୁଣ୍ଡିଥିବା ମଳିଧାନ,ବଡ଼ ଗୋଲାକାର କଣ୍ଠି, ବୟସ୍କ ଶୁଆପକ୍ଷୀଙ୍କ ବେକ ଗୁରିପାଖେ ଦେଖାଯିବା ନାଲି ନୀଳ ରେଖା, କୁରୁତାରେ ବେକ ଗୁରିପାଖେ ବୁଲିବା ପଟି (କାଲର), ତଣ୍ଟିଆମାଳ, (ସଂ-ବି. ସ୍ତ୍ରୀ) (କଣ+ଣ+ଠ+ଆ) ଗଳଦେଶ, ଗଳା, ତଣ୍ଟି, କଣ୍ଠରବ, ନିକଟ ।
କଣ୍ଠାଗତ—ଗ୍ରା. ବିଂ. ( ସଂ-କଣ୍ଠାଗତ ) ଅତଶୟ ବ୍ୟସ୍ତ ବା ଆକ୍ରାନ୍ତ, ବିପନ୍ନ, ଆସନ୍ନ ମୃତ୍ୟୁ ।
କଣ୍ଠାଗ୍ନି—ପୁଂ. ବି. (ବ.ବ୍ରୀ) ପକ୍ଷୀ ।
କଣ୍ଠାବରୋଧ(ନ)—ବି. (୬ତତ୍ପୁ) କଣ୍ଠରୋଧ (ଦେଖ) ।
କଣ୍ଠାଭରଣ—କ୍ଲୀ. ବି. ( ୬ତତ୍ପୁ ) ଗଳାଦେଶର ଅଳଙ୍କାର, ବେକରେ ଲଗାଇବା ମାଳ ବା ହାର ।
କଣ୍ଠାଳ—ପୁଂ. ବି. (କଣ୍ଠ+ଆଲ+ଅ) ଯୁଦ୍ଧ,ନୌକା, ଓଟ, ଗୁଣ, ବୃକ୍ଷବିଶେଷ, ଓଳୁଅ, ଶୂରଣ, ଖଣତି ।
କଣ୍ଠାଳା—ସ୍ତ୍ରୀ.ବି.(କଣ୍ଠାଳ+ଆ)ଜାଲର ଦହିଡ଼ ।
କଣ୍ଠାସ୍ଥି—ବି. (୬ତତ୍ପୁ) କଣ୍ଠର ହାଡ଼ ।
କଣ୍ଠି—ଗ୍ରା.ବି.ଗଳାରେ ପିନ୍ଧାଯିବା ଏକସରିଆ ହାର, ହାରର ଗୋଲାକାର ଦାନା, ବୈଷ୍ଣବମାନଙ୍କର ତୁଳସୀମାଳ, ଏକପ୍ରକାର ନାକଚଣା ।
କଣ୍ଠିକା—ସ୍ତ୍ରୀ. ବି. (କଣ୍ଠ+କ+ଆ) କଣ୍ଠାଭରଣବିଶେଷ ।
କଣ୍ଠୀ—ସ୍ତ୍ରୀ. ବି. (କଣ୍ଠ+ଈ)ଏକସରିଆ କଣ୍ଠାଭରଣ, ଗଳାଦେଶ, ଅଶ୍ୱର ଗଳାବେଷ୍ଟନ କରିବାର ଚର୍ମରଜ୍ଜୁ ପ୍ରଭୃତି, ବୈଷ୍ଣବମାନଙ୍କ କଣ୍ଠସ୍ଥ ତୁଳସୀ ବା କାଠର ମାଳା । [ ବୈଷ୍ଣବ ।
କଣ୍ଠୀଧାରୀ—ଗ୍ରା. ବି. ମାଳାଧାରୀ, ହିନ୍ଦୁ
କଣ୍ଠୀରବ—ପୁଂ.ବି. ( ବ.ବ୍ରୀ ) ସିଂହ, ମତ୍ତହସ୍ତୀ, କପୋତ, ପାର ।
କଣ୍ଠୀରବମଧ୍ୟା—ସ୍ତ୍ରୀ. ବି. (ବ.ବ୍ରୀ) ସିଂହକଟି ପରି ସରୁକଟିବିଶିଷ୍ଟା ସ୍ତ୍ରୀ ।
କଣ୍ଠୀରବୀ—ସ୍ତ୍ରୀ. ବି. (କଣ୍ଠୀରବ+ଈ) ବାସକ ବୃକ୍ଷ, ବାସଙ୍ଗ ଗଛ ।
କଣ୍ଠେକାଳ—ପୁଂ.ବି.(ବ.ବ୍ରୀ)ମହାଦେବ, ନୀଳକଣ୍ଠ, କାଳକଣ୍ଠ ।
କଣ୍ଠୋଷ୍ଠ୍ୟ—ବିଂ. ( କଣ୍ଠ+ଓଷ୍ଠ+ଯ ) କଣ୍ଠୌଷ୍ଠ୍ୟ (ଦେଖ) ।
କଣ୍ଠ୍ୟ—ବି.ବିଂ.(କଣ୍ଠ+ଯ)କଣ୍ଠରୁଜାତ, କଣ୍ଠସମ୍ବନ୍ଧ, କଣ୍ଠସ୍ୱରର ଉପକାରୀ (ଔଷଧ) ।
କଣ୍ଠ୍ୟବର୍ଣ୍ଣ—ପୁଂ.ବି. ଅ, ଆ, କ, ଖ,ଗ, ଙ, ହ, ଃ, ଏମାନେ କଣ୍ଠ୍ୟବର୍ଣ୍ଣ ।
କଣ୍ଠୌଷ୍ଠ୍ୟ—ବିଂ. (କଣ୍ଠ୍ୟ+ଓଷ୍ଠ+ଯ) ଯେଉଁ ବର୍ଣ୍ଣର ଉଚ୍ଚାରଣ ସ୍ଥାନ କଣ୍ଠ ଓ ଓଷ୍ଠ ।
କଣ୍ଡ—( ଧାତୁ ) ବିତୁଷୀକରଣ, ରକ୍ଷାକରିବା, ସାଇତିବା ।
କଣ୍ଡନ—କ୍ଲୀ.ବି.ଗୁଣ୍ଡିଲ ନିର୍ମଳ କରିବା, କାଣ୍ଡିବା ।
କଣ୍ଡନୀ—ସ୍ତ୍ରୀ.ବି.(କଣ୍ଡନ+ଈ)ଉଦୂଖଳ, ଢିଙ୍କିଭଗାଣୀ, ମୂଷଳ ।
କଣ୍ଡରା—ସ୍ତ୍ରୀ.ବି.ଶରୀର ମଧ୍ୟସ୍ଥ ମହାନାଡ଼ୀ (ବି) ନୀଚଜାତିବିଶେଷ ।
କଣ୍ଡା—ଗ୍ରା.ବି. (ସଂ—କଣ୍ଡନ) ଲୁଗାକୁ ବୁଣିବା ପାଇଁ ଭରଣୀ ସୂତା ଗୁଡ଼ିଆ ହୋଇଥିବା କାଠି, କନ୍ଦମାନଙ୍କ କଥିତ ଭାଷା, ଘର୍ଷଣ,ମର୍ଦ୍ଦନ, (ବିଂ)ତୁଷ ଆଦି ପରିଷ୍କୃତ ହୋଇଥିବା ।
କଣ୍ଡାଗ୍ନି—ପୁଂ. ବି. ପକ୍ଷୀ ।
କଣ୍ଡାନକ-ପୁଂ.ବି.ମହାଦେବଙ୍କଅନୁଚର ।
କଣ୍ଡିକା—ସ୍ତ୍ରୀ. ବି. ବେଦର ଅଧ୍ୟାୟ ।
କଣ୍ଡୂ—ପୁଂ.ବି.(କଣ୍ଡ+ଉ)ଋଷିବିଶେଷ, (ବି) କୁଣ୍ଡିଆ, କାଛୁ, କୁଣ୍ଡେଇହେବା, ଗଲୁ, ( ଲକ୍ଷଣାର୍ଥ ) କୌଣସି କାର୍ଯ୍ୟ କରିବା ସକାଶେ ମନ ଖଜବଜ ହେବା, (ଗ୍ରା. ବି)କାମୋନ୍ମାଦ, ସଙ୍ଗମାଭିଳାଷ ।
କଣ୍ଡୂକ—ପୁଂ. ବି. କଣ୍ଟକ, କଣ୍ଡୂ ।
କଣ୍ଡୂର—ପୁଂ.ବି.(କଣ୍ଡୂ+ର+ଅ)ମାଣସାରୁଗଛ, କରଲା ଲତା ।
କଣ୍ଡୁରା—ସ୍ତ୍ରୀ.ବି.(କଣ୍ଡୁର+ଆ)ଶୂକଶିମ୍ବୀ, ବାଇଡଙ୍କ, ବିଛୁଆତି । [ (ଦେଖ) ।
କଣ୍ଡୂ—ସ୍ତ୍ରୀ.ବି. (କଣ୍ଡୂ+ଭ୍ର.କ୍ୱିପ୍)କଣ୍ଡୂ
କଣ୍ଡୂକ—କ୍ଲୀ.ବି.(କଣ୍ଡୂ+କ)କଣ୍ଡୂ ।
କଣ୍ଡୂକଣ୍ଡୀ—ସ୍ତ୍ରୀ. ବି. ( କଣ୍ଡୂ+କୃ+ଅ +ଈ) ବାଇଡଙ୍କ ।
କଣ୍ଡୂଘ୍ନ—ପୁଂ. ବି. (କଣ୍ଡୂ+ହନ୍+ଅ) ଆରଗ୍ୱଧ, ସୁନାରି, ଶ୍ୱେତସର୍ଷପ ।
କଣ୍ଡୂଘ୍ନବର୍ଗ—ପୁଂ.ବି. ଚନ୍ଦନ, ବେଣାମୂଳ, କରଞ୍ଜ,ନିମ୍ବ, ଦାରୁହରିଦ୍ରା,ମୁଥା, ସୁନାରି, ସୋରିଷ, କୁରେଇ ।
କଣ୍ଡୂତି—ସ୍ତ୍ରୀ.ବି. କଣ୍ଡୂୟନ,କାଛୁ,ଖସୁ ।
କଣ୍ଡୂମକା—ସ୍ତ୍ରୀ. ବି. କୀଟବିଶେଷ ।
କଣ୍ଡୂୟନ—କ୍ଲୀ.ବି. (କଣ୍ଡୂ+ଯ+ଅନ) କଣ୍ଡୂ, କୁଣ୍ଡାଇବା, କୁଣ୍ଡିଆ, କାଛୁ, କୁଣ୍ଡେଇ ହେବା ।
କଣ୍ଡୂୟନକ—କ୍ଲୀ. ବି.(କଣ୍ଡୂୟନ+କ) କଣ୍ଡୂୟନ, ଗଲୁହେବା ।

କଣ୍ଡୂୟନୀ—ସ୍ତ୍ରୀ. ବି. (କଣ୍ଡୂୟନ+ଈ) କୃଷ୍ଣଶଙ୍ଖ ।

କଣ୍ଡୂୟମାନ-ପୁଂ. ବିଂ. (କଣ୍ଡୂୟ+ମାନ+ଅ) ଘର୍ଷଣକାରୀ, କଣ୍ଡୂୟନକାରୀ, ଗଲୁ ମାରିବାକୁ ଗଲୁସ୍ଥାନକୁ ଘର୍ମ ଥିବା ବା ଘଷୁଥିବା ।

କଣ୍ଡୂୟା—ସ୍ତ୍ରୀ.ବି.କୁଣ୍ଡେଇହେବା, ଗଲୁ ।

କଣ୍ଡୂର—ବି. (କଣ୍ଡୂ+ର+ଅ) ମାଣସାରୁଗଛ, ବାଇଡଙ୍କ (ଦେଖ), ବିଂ. କଣ୍ଡୂଦାୟକ, ଯାହା ଲାଗିଲେ ଦେହ କୁଣ୍ଡେଇ ହୁଏ ।

କଣ୍ଡୂରା—ସ୍ତ୍ରୀ.ବି.(କଣ୍ଡୂ+ର+ଆ)ବାଇଡଙ୍କ, ବିଚୁଆତି ଗଛ ।

କଣ୍ଡୂଲ—ପୁଂ.ବିଂ.(କଣ୍ଡୂ+ଲ) କଣ୍ଡୂଯୁକ୍ତ, ଗାତ୍ର କଣ୍ଡୂୟନକାରୀ, କୁଣ୍ଡିଆରୋଗୀ ।

କଣ୍ଡୋଇ—ଗ୍ରା. ବି. କୁଣ୍ଡେଇ, କୁଣ୍ଡେଇ, ପାକପାତ୍ର ବିଶେଷ, ହାଣ୍ଡି ।

କଣ୍ଡୋଘ—ପୁଂ.ବି.ଶୂକକୀଟ,ସଅଁବାଳୁଆ ପୋକ ।

କଣ୍ଡୋଳ—ପୁଂ.ବି. ନଳ-ବାଉଁଶ ପ୍ରଭୃତି ନିର୍ମିତ ଧାନ୍ୟାଦି ରଖିବାର ପାତ୍ର ବିଶେଷ । ଡୋଲ, ଚଣ୍ଡାଳର ବୀଣା, କେନ୍ଦରା ।

କଣ୍ଡୋଳକ—ପୁଂ.ବି. ଗୁରୁଣ୍ଡି, ଡୋଲି ।

କଣ୍ଡୋଳବୀଣା—ସ୍ତ୍ରୀ.ବି. ଚଣ୍ଡାଳମାନଙ୍କର ବୀଣାବିଶେଷ ।

କଣ୍ଡୋଳୀ—ସ୍ତ୍ରୀ. ବି. କଣ୍ଡୋଳ ବୀଣା ।

କଣ୍ଢାଇ—ଗ୍ରା. ବି. ଶିଶୁମାନଙ୍କର କ୍ରୀଡ଼ା କରିବା ପାଇଁ କାଠ ଆଦିରେ ନିର୍ମିତ ପିତୁଳା, କ୍ରୀଡ଼ାପୁତ୍ତଳୀ, ଖେଳନା, ପୁଅ ପିଲା ।

କଣ୍ଢିରା—ଗ୍ରା. (ବାଲେଶ୍ୱର) ବି. ଜାଳହେବା ଯୋଗ୍ୟ ଏକପ୍ରକାର ଲଟି ।

କଣ୍ଢେଇ—ଗ୍ରା.ବି. କଣ୍ଢାଇ (ଦେଖ), ଗ୍ରା. (ପାଉଁଲୁଡ଼) ମଇର ଦୁଇମୁଣ୍ଡ ଫାଳରେ ଦିଆଯିବା କାଳା ।

କାଣ୍ୱ—କ୍ଳୀ.ବି. (କଣ+ବ) ପାପଭୂତ ଯୋନିବିଶେଷ, ମୁନିବିଶେଷ, ମଦ୍ୟ ବୀଜବିଶେଷ, ବାଖର, ପୁରୁବଂଶୀୟ ରାଜବିଶେଷ,ତୀର୍ଥବିଶେଷ,(ବିଂ) ବନ୍ଧ୍ୟାର୍ଦ୍ଧି ସ୍ଥା, କୁଶଳ, ମେଧାବୀ,ସ୍ତୁତିକାରକ ।

କଣ୍ୱରଥନ୍ତର—କ୍ଳୀ. ବି. ସାମଗାନବିଶେଷ

କଣ୍ୱସୁତା-ସ୍ତ୍ରୀ.ବି(କଣ୍ୱ+ସୁତା) ଶକୁନ୍ତଳା

କଣ୍ୱାଶ୍ରମ—ପୁଂ. ବି. (୬ତତ୍) କଣ୍ୱମୁନିଙ୍କ ଆଶ୍ରମ ।

କଣ୍ୱସୂତ୍ର—ସ୍ତ୍ରୀ. ବି. କଣ୍ୱମୁନି ସଂଗୃହୀତ ଧର୍ମଶାସ୍ତ୍ରବିଶେଷ ।

କତ—ଅବ୍ୟ. ଈଷତ୍, ଅଳ୍ପ, କୁତ୍ସିତ, ଖଇର, ଖଦିର ।

କତ—ପୁଂ.ବି. (କୈ+କ.ଅତ)ନିର୍ମଳୀ ବୃକ୍ଷ, ମୁନିବିଶେଷ, ଲେଖିବା ପାଇଁ ପକ୍ଷୀକଲମ ଗଠା କଟାଗିବା ।

କତକ—ପୁଂ.ବି.(କତ+କ)ବୃକ୍ଷବିଶେଷ, ନିର୍ମଳୀ ଗଛ ଓ ଫଳ, ବିଟଲବଣ ।

କତକଳ—ଗ୍ରା. ବି. ଏକ ପ୍ରକାର ଛତ୍ରାକାର ଚକ୍‌ଚକ୍ ଫଳ ଓ ତାହାର ବୃକ୍ଷ ।

କତଚେତା-ପୁଂ.ବି.ମୁନିବିଶେଷଙ୍କ ନାମ ।

କତଦ୍ରୋଣ—ପୁଂ. ବି. ସିନ୍ଧୁ ରାଜ୍ୟାନ୍ତର୍ଗତ ନଗରବିଶେଷ ।

କତଫଳ—ପୁଂ.ବି.—ନିର୍ମଳି ଫଳ ।

କତମ—ବି. ବି. ବହୁ ପଦାର୍ଥ ମଧ୍ୟରୁ ଗୋଟିଏ,ସଂ.(କିମ୍+ଡତମ୍)କୌଣସି ।

କତମାଲ—ପୁଂ. ବି. (କ+ତମ+ଅଲ+ଅ) ଅଗ୍ନି ।

କତର—ବି. (କିମ୍+ତର) ଦୁଇଟି ପଦାର୍ଥ ମଧ୍ୟରୁ କୌଣସି ଗୋଟିଏ ।

କତରା—ଗ୍ରା.ବି. ଛୁଣ୍ଡା ମସିଣା ।

କତରାଗଡ—ଗ୍ରା.ବି.ଘର ମଧ୍ୟରେ ଡଳ ଗଡ଼

କତରାଲଗା—ଗ୍ରା. ବି. ମନ୍ତ୍ରତନ୍ତ୍ର ପ୍ରୟୋଗ ଦ୍ୱାରା ଶତ୍ରୁକୁ ଶଯ୍ୟାଗତ କରାଇବା, (ଗ୍ରା.ବି.)ବହୁକାଳ ରୋଗ ହେତୁ ଶଯ୍ୟାଗତ ।

କତଲ—ଯା. ବିଂ. ଖଣ୍ଡ ଖଣ୍ଡ, ଛିନ୍ନ, ହତ୍ୟା, ମନୁଷ୍ୟ କାଟିବା, ମୁସଲମାନମାନଙ୍କ ମହରମ ପର୍ବର ତୃତୀୟ ଦିବସ ଓ ରାତ୍ରି ।

କତଲ କରିବା—ଗ୍ରା. କି. ମନୁଷ୍ୟକୁ ହାଣିଦେବା, କାଟିଦେବା ।

କତା—ଗ୍ରା.ବି. ନଡ଼ିଆର ଉପର ଗ୍ରେପା, କଇଁଚ, କାତ, ଛେଲା, (ଗ୍ରା. ବିଂ) ଅତି ଶୁଷ୍କ ଓ ନୀରସ ।

କତାଳିଆ—ଗ୍ରା. ବିଂ. କତାପରି ଚେମଡ଼, ଯାହା ଦାନ୍ତରେ ଛୁଣ୍ଡେ ନାହିଁ ।

କତି—ବି. (କିମ୍+ଅତି)କିଛି ପରିମାଣ, ବିଶ୍ୱାମିତ୍ରଙ୍କ ଏକତମ ପୁତ୍ର, ନିକଟ, ପାଖ, ପାର୍ଶ୍ୱ (ଗ୍ରା.ବି) ହିଡ଼ କାନ୍ଥରୁ ବିଲ ଭିତରକୁ ଲାଗିରହିଥିବା, ଘାସୁଆ ପଡ଼ିଆ ମାଟି ।

କତିକ—ଗ୍ରା.କି.ବିଂ. ନିକଟକୁ,ପାଖକୁ, କୁ, ଠାକୁ ।

କତିଚତ୍—ଅବ୍ୟ. (କତି+ଚତ୍) ଅନିର୍ଦ୍ଦିଷ୍ଟ ପରିମାଣ, କେତେକ ।

କତିଥ—କି. ବିଂ. କତିପୟ, କେତେ ପ୍ରକାରର ।

କତିଧା—ଅବ୍ୟ. କେତେକ ପ୍ରକାର, କେତେ ସ୍ଥାନରେ,ବାରଂବାର, କେତେ ଭାବରେ ।

କତିପୟ—ବିଂ. କି. କିଛି, କେତେକ ।

କତିବିଧ—ବିଂ. କି. (କତି+ବିଧ) କେତେକ ପ୍ରକାର ।

କତିବୁଲାଇବା—ଗ୍ରା. କି. କୋଡ଼ିରେ ହିଡ଼ ପାଖରୁ ପାଲି ହଟାଇବା ବା ଗୁଞ୍ଜିବା ।

କତିଶଃ—ଅବ୍ୟ.(କତି+ଶସ୍)କେତେକ ।

କତିସଂଖ୍ୟ—ପୁଂ. ବି. (ବ.ବ୍ରୀ) କେତେ ସଂଖ୍ୟକ ।

କତି ହାଣିବା—ଗ୍ରା.କି. ବହନ ପଡ଼ିଥିବା ମାଟି ଓ ଘାସକୁ କାଟି ହିଡ଼ ପରିଷ୍କାର କରିବା ।

କତିହାୟନ—ପୁଂ. ବିଂ. କେତେ ବର୍ଷ ବୟସ୍କ, (ସ୍ତ୍ରୀ) କତିହାୟନା ।

କତୀରା—ଯା. ବି. ଏକ ପ୍ରକାର ବନ୍ୟ ଗଛର ଅଠା ।

କତୁରା—ବିଂ.ଛିନ୍ନ,ଯାହା କଟାଯାଇଅଛି ।

କତୁରିଆ—ଗ୍ରା. ବି. ସ୍ତ୍ରୀ ଲୋକମାନେ

ହାତର କହୁଣୀ ପାଖରେ ପିନ୍ଧିବା ଅଳଙ୍କାରବିଶେଷ ।
କତୁରିବା—ଗ୍ରା. କ୍ରି. କର୍ତ୍ତନକରିବା, କତୁରି ଦ୍ୱାରା କାଟିବା ।
କତାସମ୍ବତ୍ସର—ପ୍ରା. ( ଗଞ୍ଜାମ ) ବି. ଗଞ୍ଜାମ ଓଡ଼ିଆଙ୍କର ମାର୍ଚ୍ଚମାସ ଶେଷ-ସପ୍ତାହରେ ପଡ଼ିବା ଏକ ଉତ୍ସବ ।
କତ୍ତୃଣ—ପୁଂ.ବି. ଗ୍ରମ, କର୍ପୂର, ପାନ, ସୁଗନ୍ଧ ବୃକ୍ଷ, ଧନନ୍ତ୍ରୀ ।
କତ୍ତୋୟ—କ୍ଳୀ.ବି.(କୁ+ତୋୟ)ମଦ୍ୟ ।
କତ୍ରି—କ୍ରି. ବିଂ, କୁତ୍ସିତ ତନୋଟି ପଦାର୍ଥ ।
କତ୍‌ପୟ—ପୁଂ. ସୁଖକର, ଜଳାଶୟ, ସୁଖକର ଜଳ । [ ସ୍କନ୍ଦ ।
କତ୍‌ସବର—କ୍ଳୀ.ବି.(କତ୍‌ସ+ବୃ+ଅ)
କଥଂ—ଅବ୍ୟ. (କିମ୍+ଥଂ) କାହିଁକି, ହର୍ଷ, ଯତ୍ନ, ଘୃଣା, ଆହ୍ଲାଦ,ସମ୍ଭାବନା, କିପ୍ରକାର, ପ୍ରଶ୍ନ, ସମ୍ଭ୍ରମ ।
କଥକ—ପୁଂ. ବି. (କଥ୍+ଅକ) ବକ୍ତା, ନାଟକର ବର୍ଣ୍ଣନାକାରୀ, ଯେ ପୌରା-ଣିକ କଥା କହି ଜୀବିକା ନିର୍ବାହକରେ ।
କଥକତା—ସ୍ତ୍ରୀ. ବି. (କଥକ+ତା) ବାକ୍ୟାଳାପ,ଧର୍ମ ବିଷୟକ ଆଲୋଚନା, ବାଗ୍ମିତା ।
କଥଙ୍କଥିକ—କ୍ରି.ବିଂ. ଯେ ପ୍ରଶ୍ନ କରେ ଜିଜ୍ଞାସିକ,(ସ୍ତ୍ରୀ) କଥଙ୍କଥିକା ।
କଥଙ୍କାର ଅବ୍ୟ.(କଥଂ+କୃ+ଅ)କିରୂପେ
କଥଞ୍ଚନ—ଅବ୍ୟ. (କଥଂ+ଚନ) କେଉଁ ଅଂଶରେ,କୌଣସି ଉପାୟରେ ।
କଥଞ୍ଚିତ୍—ଅବ୍ୟ. କିଞ୍ଚିତ୍, କୌଣସି ରୂପେ, ଯେ କୌଣସି ଉପାୟରେ, ଅତି କଷ୍ଟରେ ।
କଥନ—କ୍ଳୀ.ବି.(କଥ+ଣି+ଅନ)ଉକ୍ତି, କହିବା, କଥା, ବାକ୍ୟ, (ବିଂ) କଥିତ ।
କଥନୀୟ—କ୍ରି.ବିଂ. (କଥ+ମି.ଅନୀୟ) ଉଲ୍ଲେଖ ଯୋଗ୍ୟ, ବର୍ଣ୍ଣନୀୟ, ବକ୍ତବ୍ୟ, କହିବାର ଉପଯୁକ୍ତ ।
କଥମପି—ଅବ୍ୟ. କୌଣସି ପ୍ରକାରେ, ଅତିଯତ୍ନେ, ଅତିକଷ୍ଟେ, ଦୃଢ଼ରୂପେ ।
କଥମ୍ଭାବ—ପୁଂ.(କଥମ୍+ଭୂ+ଅ) କି-ପ୍ରକାର, (ବିଂ) କଥ ଭୂତ ।
କଥମ୍ଭୂତ—କ୍ରି (କଥମ୍+ଭୂତ) ଅତି ଆଶ୍ଚର୍ଯ୍ୟଜନକ, କିରୂପ, କି ପ୍ରକାର, କିରୂପେ ଉତ୍ପନ୍ନ ।
କଥୟନ୍ତି—କ୍ରି. କହନ୍ତି, କହୁଅଛନ୍ତି ।
କଥୟିତବ୍ୟ—କ୍ରି. ( କଥ+ଣିଚ୍+ତବ୍ୟ) କହିବାର ଯାହା ଯୋଗ୍ୟ ।
କଥା—ସ୍ତ୍ରୀ. ବି. (କଥ+ଣି+ଅ+ଆ) ଗଳ୍ପ,କାହାଣି,କଥାବର୍ତ୍ତା, ବାକ୍ୟାଳାପ, ଉକ୍ତି, ସମ୍ବାଦ, ବାର୍ତ୍ତା, ସମାଚାର, ଉଚ୍ଚାରଣ, ନିର୍ଭରଜବାବ, ଭାଷ୍ୟ, ତଥ୍ୟ, ବିଷୟ, ପ୍ରବାଦ, ପ୍ରବଚନ, କିଛି ପଦାର୍ଥ,କୌଣସି ବସ୍ତୁ, ଘଟନା, ଉପ-ଦେଶ, ଅନୁରୋଧ, ଅବସ୍ଥା, ଆଦେଶ, ନିରର୍ଥକ ପ୍ରସଙ୍ଗ, କର୍ମ, କାର୍ଯ୍ୟ, ବାକ୍ୟ, ପଦ, ପ୍ରସଙ୍ଗ, ତର୍କବିତର୍କ, ଆଲୋଚନା, ପ୍ରସ୍ତାବ, ଜନରବ, ବିବରଣ, ଗୁପ୍ତ ରହସ୍ୟ, ମୌଖିକ ଚୁକ୍ତି, ଅଙ୍ଗୀକାର, ଚୁକ୍ତି,ସତ୍ୟ, ପ୍ରତିଜ୍ଞା, କୀର୍ତ୍ତି ବା ଅକୀର୍ତ୍ତି ଆଚରଣ ।
କଥାଉପରେ କଥାକହିବା—ଗ୍ରା.କ୍ରି.ଜଣକର ବାକ୍ୟ ଶେଷ ନ ହେଉଣୁ କଥା କହିବା, ଅବାଧଭାବରେ ଗୁରୁଜନଙ୍କୁ ଉତ୍ତର ଦେବା ।
କଥାଏ କଥାଏ—ଗ୍ରା. କ୍ରି. ବିଂ. ପ୍ରତି କଥାରେ, ପ୍ରତି ବିଷୟରେ ।
କଥା କଥାକେ—ଗ୍ରା. କ୍ରି. ବିଂ. କଥାଏ କଥାଏ (ଦେଖ) ।
କଥା କରିବା—ଗ୍ରା.କ୍ରି. ଚୁକ୍ତି କରିବା, ଶେଷ ଜବାବ କରିବା, କୌଣସି କାର୍ଯ୍ୟ କରିବା ।
କଥା କହିବା—ଗ୍ରା. କ୍ରି. ଗଳ୍ପ କରିବା, ଉପାଖ୍ୟାନ କହିବା, ମୁହଁଫିଟାଇ ବାକ୍ୟ ଉଚ୍ଚାରଣ କରିବା ।
କଥାକୁ—ପ୍ରା.(ସମ୍ବ) ବାଚାଳ, ଗପଲତି ।
କଥାକୁ କଥା—ଗ୍ରା.ବି. କୌଣସି ବ୍ୟକ୍ତିର ପ୍ରତ୍ୟେକ କଥାରେ ଦିଆଯିବା ଉତ୍ତର, କଥାପ୍ରସଙ୍ଗ ।
କଥାକୁହା(ଳିଆ)—ଗ୍ରା. ବିଂ. ଯେ କଥା କହିପାରେ, ଯେ କାହାଣୀ ବା ଗଳ୍ପ କହେ,ଗପଡ଼ି, ଯେ ଏଣ୍ଡୁ ତେଣ୍ଡୁ ଗୁଡାଏ କହେ, ବାଚାଳ, ବକୁଆ, ବାବଦୂକ ।
କଥାକ୍ରମ—ପୁଂ. ବି. କଥାପ୍ରସଙ୍ଗ ।
କଥା ଛିଣ୍ଡାଇବା—ଗ୍ରା. କ୍ରି. କୌଣସି ବିଷୟରେ ଶେଷ ନିଷ୍ପତ୍ତି କରିବା, ଚୁକ୍ତି କରିବା । [ଗଳ୍ପ ।
କଥାଣି—ଗ୍ରା. ବି. କାହାଣି, ଉପାଖ୍ୟାନ,
କଥାଦେହରେ ନଯିବା—ଗ୍ରା.ବି.ଜଣକର ବାକ୍ୟ ଅନ୍ୟର ଅସହ୍ୟ ହେବା ।
କଥା ଧରିବା—ଗ୍ରା.କ୍ରି.କୌଣସି ବ୍ୟକ୍ତିର କଥିତ ବାକ୍ୟ ପ୍ରତି ଆପତ୍ତି କରିବା ବା ତୀବ୍ର ସମାଲୋଚନା କରିବା ।
କଥାନକ—କ୍ଳୀ.ବି. ଗଳ୍ପ କଥାବିଶେଷ ।
କଥାନ୍ତର—କ୍ଳୀ.ବି. (୬ତତ୍)ଅନ୍ୟକଥା, କଳହ, କଥାବସର, ବାକ୍ୟାନ୍ତର, ଅନ୍ୟବିଷୟ ।
କଥାପ୍ରବନ୍ଧ—ପୁଂ.ବି. ଗଳ୍ପ ପୁସ୍ତକ ।
କଥାପ୍ରସଙ୍ଗ—ପୁଂ. ବି.(କଥା+ପ୍ରସଙ୍ଗ) ନାନାବିଧ କଥୋପକଥନ, ରଚିତ ସନ୍ଦର୍ଭ ବା ଉପନ୍ୟାସ, ଉପାଖ୍ୟାନ, ବିଷବୈଦ୍ୟ, (ବିଂ) ବାତୁଳ, ଗପଡ଼ି ।
କଥାପ୍ରସଙ୍ଗରେ—ଗ୍ରା. କ୍ରି. ବିଂ. କଥା କହୁକହୁ, କଥାଛଳରେ,କଥୋପକଥନ କ୍ରମେ ।
କଥାପ୍ରାଣ—କ୍ରି.ବିଂ.(କଥା+ପ୍ର+ଅଣ+ଅ) କଥକ, ନାଟକ ରଚୟିତା ।
କଥାବଢାଇବା—ଗ୍ରା. କ୍ରି. କୌଣସି ବିଷୟର ବାରଂବାର ଆଲୋଚନା ବା ପୁନରାବୃତ୍ତିଦ୍ୱାରା ତାହାକୁ ଗୁରୁତର ବା ଜଟିଳତର କରିବା ।
କଥାବଳେଇବା—ଗ୍ରା. ବି. ନିର୍ଦ୍ଦିଷ୍ଟ ସୀମା ଅତିକ୍ରମ କରିବା,ବିପନ୍ନଅବସ୍ଥା ଘଟିବା, କ୍ଷମତାକୁ ଅତିକ୍ରମ କରିବା ଅବସ୍ଥା ।
କଥାବାର୍ତ୍ତା—ସ୍ତ୍ରୀ. ବି. (କଥା+ବାର୍ତ୍ତା) ବିବିଧକଥା,ପରସ୍ପରମନ୍ତ୍ରଣା,ବାକ୍ୟାଳାପ, ସମ୍ଭାଷଣ ।

କଥାବାହାରକରବା—ଗ୍ରା. କ୍ରି. ଅନ୍ୟ ବ୍ୟକ୍ତିଠାରୁ ଗୁପ୍ତ ବିଷୟ ପ୍ରକାଶ କରାଇବା, କୌଣସି ନୂତନ ପ୍ରସ୍ତାବ ଉପସ୍ଥାପିତ କରିବା ।

କଥାଭାଙ୍ଗିବା—ଗ୍ରା.କ୍ରି. ଆଦେଶ ବା ଅନୁରୋଧକୁ ରକ୍ଷା ନ କରିବା ।

କଥାଭାଷା—ଗ୍ରା.ବି.କଥାବାର୍ତ୍ତା (ଦେଖ) ।

କଥାମସ୍ତ—ବି. ବି॰. କଥାପୂର୍ଣ୍ଣ ।

କଥାମାଡ଼ିବା—ଗ୍ରା. କ୍ରି. କଥାବଢ଼ାଇବା (ଦେଖ) । [(ଦେଖ)

କଥାମାତ୍ର—ବି॰. (ବି. ସ୍ତ୍ରୀ.) କଥାସାର

କଥାମାନିବା—ଗ୍ରା. କ୍ରି. ଉପଦେଶ ବା ଅନୁରୋଧ ଅନୁସାରେ କାର୍ଯ୍ୟ କରିବା, ଆଜ୍ଞା ପାଳନ କରିବା ବା ଆଦେଶ ମାନିବା ।

କଥାମୁଖ—କ୍ଲୀ.ବି. (୬ତତ୍ପୁ) କଥାରମ୍ଭ, ଗ୍ରନ୍ଥର ଅବତରଣିକା, ମୁଖବନ୍ଧ, ପ୍ରସ୍ତାବନା ।

କଥାମୋଡ଼କରିବା—ଗ୍ରା. କ୍ରି.କଥାବଢ଼ାଇବା (ଦେଖ) ।

କଥାଯୋଗ—ପୁଂ. ବି. କଥା ପ୍ରସଙ୍ଗ ।

କଥାରମ୍ଭ—ପୁଂ. ବି. କଥାର ଆରମ୍ଭ, ଗଳ୍ପର ଆରମ୍ଭ, ପ୍ରସଙ୍ଗର ସୂତ୍ରପାତ ।

କଥାରହିବା—ଗ୍ରା.ବି.(କୌଣସି ବ୍ୟକ୍ତିର) ଉପଦେଶ ବା ଅନୁରୋଧ ପାଳିତହେବା, ଭବିଷ୍ୟତ୍‌କୁ ସୁନାମ ବା ଦୁର୍ନାମ ରହିବା ଦୁଇଜଣଙ୍କ ମଧ୍ୟରେ ଜବାବ ସ୍ଥିର ହେବା ।

କଥାରୁବାହାର—ଗ୍ରା. ବି॰. ଆଦେଶ ବା ଉପଦେଶ ଲଙ୍ଘନକାରୀ ।

କଥାରେ ଅଛି (କହନ୍ତି)—ଗ୍ରା. ଅବ୍ୟ. ଦେଶରେ ଗୋଟିଏ ପ୍ରବଚନ ଅଛି ଯେ, ଜନରବ ହୁଏ ଯେ ।

କଥାରେ ଜିଣିବା—ଗ୍ରା. କ୍ରି. ଯୁକ୍ତିରେ ବା ତର୍କରେ ପରାସ୍ତ କରିବା, ଯୁକ୍ତିରେ ଜୟୀହେବା ।

କଥାଲାପ—ପୁଂ. ବି. କଥୋପକଥନ ।

କଥାଶେଷ—ବି. ବି॰. ମୃତ, ମୃତ୍ୟୁପରେ ଯେଉଁ ବ୍ୟକ୍ତିର କଥାମାତ୍ର ଅବଶିଷ୍ଟ ଥାଏ, (ବି) କଥାସମାପ୍ତି ।

କଥାସଚିବ—ପୁଂ. ବି. (୬ତତ୍) ଓକିଲ, ବାରିଷ୍ଟର, ମୁକ୍ତାର, ବିଚାରାଳୟରେ କଥା ସମର୍ଥକ ବ୍ୟକ୍ତି ।

କଥାସରିତ୍‌ସାଗର—ପୁଂ.ବି. ସଂସ୍କୃତକଥା ଗ୍ରନ୍ଥବିଶେଷ ।

କଥାସରିବା—ଗ୍ରା. ବି. କଥିତ ଗଳ୍ପର ସମାପ୍ତି ହେବା, ସର୍ବନାଶ ଘଟିବା ।

କଥାସାର—ବି॰. (ବି.ସ୍ତ୍ରୀ) ବଚନସର୍ବସ୍ୱ, ଯେ ଲମ୍ବାଚଉଡ଼ା କଥାଗୁଡ଼ିଏ କହେ, ମାତ୍ର କାର୍ଯ୍ୟରେ କିଛିଶକ୍ତି ବା ଯୋଗ୍ୟତା ଦେଖାଇ ପାରେ ନାହିଁ ।

କଥାହେବା—ଗ୍ରା କ୍ରି. ପରସ୍ପର ମଧ୍ୟରେ ଶେଷ ଜବାବ କରିବା, ପରସ୍ପର ମଧ୍ୟରେ ଚୁକ୍ତିହେବା ।

କଥିକ—ପୁଂ. ବି. କଥକ, ପୁରାଣବକ୍ତା ।

କଥିତ—ବି. ବି. (କଥ+ତ) ବର୍ଣ୍ଣିତ, ଉଚ୍ଚାରିତ, ବ୍ୟାଖ୍ୟାତ(ବି),ପରମେଶ୍ୱର, ବିଷ୍ଣୁ, କଥନ ।

କଥିତଅଛି—ଗ୍ରା. କଥାରେ ଅଛି, ଏହି ପ୍ରବାଦ ଅଛି ଯେ,ଶୁଣାଅଛି ଯେ,କିମ୍ବଦନ୍ତୀ ଅଛି ଯେ, ଉକ୍ତଅଛି ଯେ ।

କଥିତପଦତା—ସ୍ତ୍ରୀ. ବି. ଅଳଙ୍କାର ଶାସ୍ତ୍ରୋକ୍ତ ଦୋଷବିଶେଷ, ପୁନରୁକ୍ତି ।

କଥିତଭାଷା—ଗ୍ରା.ବି. ଜୀବିତଭାଷା,ମାତୃଭାଷା, ଚଳୁଥିବାଭାଷା ।

କଥୀକୃତ—ବି. ବି॰. (କଥା+ଚ୍ୱି+କୃ +ତ) କଥାମାତ୍ରାବଶିଷ୍ଟ, କେବଳ ଗଳ୍ପରୂପରେ ଚଳୁଥିବା ।

କଥୁ—ଗ୍ରା.ବି. ଚକ୍ଷୁରୋଗ ବିଶେଷ, ଦୀର୍ଘକାଳ ଆଖିବଥ ରୋଗ ।

କଥୋଦୟ—ବି. କଥାରୁ ଉତ୍ପନ୍ନ ।

କଥୋଦ୍‌ଘାତ—ପୁଂ.ବି. (କଥା+ଉଦ୍‌ଘାତ) ନାଟକର ପ୍ରସ୍ତାବନାବିଶେଷ, ଉପକ୍ରମଣିକା, କଥାର ଆରମ୍ଭ ।

କଥୋପକଥନ—କ୍ଲୀ. ବି. (କଥ+ଉପକଥା) ବିବିଧକଥା, କଥାବାର୍ତ୍ତା, ଉକ୍ତି ପ୍ରତ୍ୟୁକ୍ତି, ବାଦାନୁବାଦ ।

କଥ୍ୟ—ବି.ବି॰. (କଥ୍+ଣି,ଯ)ବୋଲିବାର ଉପଯୁକ୍ତ, ବକ୍ତବ୍ୟ, କହିବାର ଉପଯୁକ୍ତ, କଥନୀୟ ।

କଥ୍ୟମାନ—ବି. ବି॰. (କଥ୍+ଯ+ଆନ) ଯାହା କୁହା ହୋଇଅଛି ।

କଦ୍—ବିହ୍ୱଳିହେବା, ବ୍ୟାକୁଳ ହେବା ।

କଦ—ପୁଂ. ବି. ( କେ+ଦା+କ,ଅ ) ମେଘ, (ବି॰) ଜଳଦାତା,ସୁଖଦାୟକ ।

କଦକ—ପୁଂ. ବି. (କଦ+କ) ଚାନ୍ଦୁଆ, ବିତାନ ।

କଦକ୍ଷର—କ୍ଲୀ.ବି. (କୁ+ଅକ୍ଷର)କୁତ୍ସିତ ଅକ୍ଷର,(ବି॰)ଯାହାର ହସ୍ତାକ୍ଷର କୁତ୍ସିତ ।

କଦଗ୍ନି—ପୁଂ.ବି. (କ.ଧା) ମନ୍ଦାଗ୍ନି, (ବି॰) ମନ୍ଦାଗ୍ନିଯୁକ୍ତ ।

କଦଧ୍ୱା—ପୁଂ. ବି. କ.ଧା;(କୁ+ଅଧ୍ୱନ୍) ନିନ୍ଦିତପଥ,କୁମାର୍ଗ,(ବି॰) କୁମାର୍ଗଗାମୀ ।

କଦନ—କ୍ଲୀ. ବି. (କଦ+ଅନ) ପାପ, ଯୁଦ୍ଧ, ମାରଣ,ବିନାଶ,ଅବସାଦ,ପୀଡ଼ନ, ମର୍ଦ୍ଦନ, କଷ୍ଟ ।

କଦନ୍ନ—କ୍ଲୀ. ବି. (କୁ+ଅନ୍ନ) କୁତ୍ସିତ ଆହାର, ଅଖାଦ୍ୟ,ଅତି ଅପକୃଷ୍ଟ ଆହାରୀୟ ପଦାର୍ଥ ।

କଦନ୍ନଭୋଜୀ—ବି.ବି॰. (କଦନ୍ନ+ଭୁଜ୍ +ଇନ୍) ଯେ ଜଘନ୍ୟ ଭୋଜନକରେ ।

କଦପତ୍ୟ—ବି. କ.ଧା. (କୁ+ଅପତ୍ୟ) କୁପୁତ୍ର, କୁସନ୍ତାନ, କୁଳାଙ୍ଗାର ପୁତ୍ର ।

କଦବା—ଗ୍ରା. ଅବ୍ୟ. ( ସଂ—କଦାବା ) କୌଣସି ସମୟରେ,କ୍ୱଚିତ୍, ସମ୍ଭବତଃ, କେବେକେବେ ।

କଦଭ୍ୟାସ—ପୁଂ.ବି.(କ.ଧା)ମନ୍ଦଅଭ୍ୟାସ ।

କଦମ—ଯା. ବି. କଦମ୍ବବୃକ୍ଷ, ଘୋଡ଼ାର ଗତିବିଶେଷ, ପାଦ, ମହିମା, ପଦକ୍ଷେପ, ପାହୁଣ୍ଡ, ଚାଲିଲାବେଳେ ଦୁଇଗୋଡ଼ ମଧ୍ୟରେ ଥିବା ଅନ୍ତର ।

କଦମା—ଗ୍ରା.ବି. ମିଷ୍ଟଖାଦ୍ୟଦ୍ରବ୍ୟବିଶେଷ, ଦାମୁଡ଼ି, ତରୁଣ ।

କଦମୀ—ପ୍ରା. (ସମ୍ଭ.) ବି. ଘୋଡ଼ାର କଦମ ଚାଲ, (ସଂ-ବି. ପ୍ରା-କ)ସହଚର, ଅନୁଚର, ଭୃତ୍ୟ ।

କଦମ୍ବ — ପୁଂ.ବି.(କଦ୍ + ଅମ୍ବର) ବର୍ଷା କାଳରେ ଫୁଟିବା ଲେମ୍ବୁ ପରି ଚତୁର୍ଦ୍ଦିଗରେ କେଶର ବିଶିଷ୍ଟ ଗୋଲକାର ଫୁଲ ଓ ତାହାର ଗଛ; ନୀପ ବୃକ୍ଷ, ଷୋରଷ,ଦେବତାଡ଼ ତୃଣ,(କ୍ଳୀ)ସମୂହ, ପଲ୍ଲବ, ପଞ୍ଝା, ଦଳ, ରବିମାର୍ଗର ଉତ୍ତର ଦକ୍ଷିଣରେ ଥିବା ମେରୁ ବିନ୍ଦୁ ଦ୍ୱୟ, (ଗ୍ରା. ବି) ଦୈତ୍ୟ ବିଶେଷ, ବିଂ. ହର୍ଷୋତ୍ଫୁଲ୍ଲ ।

କଦମ୍ବକ—କ୍ଳୀ.ବି.(କଦମ୍ବ + କ) ସମୂହ, କଦମ୍ବବୃକ୍ଷ, ଷୋରଷ । (ଦେଖ)।

କଦମ୍ବଗୋଲକ ନ୍ୟାୟ — ପୁଂ.ବି. ନ୍ୟାୟ

କଦମ୍ବଦ — ପୁଂ. ବି. (କଦମ୍ବ + ଦୋ + ଅ) ଷୋରଷ । [ମୁଣ୍ଡିରୀ।

କଦମ୍ବପୁଷ୍ପା—ସ୍ତ୍ରୀ. ବିଂ. ମୁଣ୍ଡିତିକା ବୃକ୍ଷ,

କଦମ୍ବପୁଷ୍ପିକା — ସ୍ତ୍ରୀ. ବି. ( ବୈଦ୍ୟକ ) ମହାମୁଣ୍ଡୀ, ବଡ଼ ଖାଲକୁଣି ଲତା ।

କଦମ୍ବମୂଳଆ — ଗ୍ରା. ବିଂ. ଯେ କଦମ୍ବ ବୃକ୍ଷ ମୂଳରେ ବିହାର କରିବାକୁ ଭଲ ପାଆନ୍ତି, (ବି) ଶ୍ରୀକୃଷ୍ଣ ।

କଦମ୍ବୀ — ସ୍ତ୍ରୀ.ବି. (କଦମ୍ବ + ଈ)ଦେବଦାଲୀ ଲତା ।

କଦର୍ — ଯା. ବି. ମର୍ଯ୍ୟାଦା, ସମ୍ମାନ, ଗୁପ୍ତ କାରଣ,ଦୋଷ, ତ୍ରୁଟି, ଦୁର୍ବଳତା, ସୁବିଧାଜନକ ସ୍ଥାନ, ଉପାୟ, କୌଶଳ, ସୁଯୋଗ, ଖଞ୍ଜ, ରହସ୍ୟ ।

କଦର୍ଦ୍ଦାନ — ଯା. ବିଂ. ଯେଉଁ ଲୋକ ଆପଣାର ଦୋଷ ସ୍ୱୀକାର କରେ, କାଇଲ (ଲୋକ), ଗୁଣଗ୍ରାହୀ ।

କଦର — କ୍ଳୀ.ବିଂ (କ + ଦୃ + ଅ)ପାୟସ ବିଶେଷ, (ପୁଂ) ଶ୍ୱେତ,ଖଦିର,ଅଙ୍କୁଶ, କରତ, କରେଇ, ଉପାୟ, କ୍ଷୁଦ୍ର ରୋଗବିଶେଷ,ଖଞ୍ଜ,କୌଶଳ, ଉପାୟ, ଅଗସ୍ତି, ଗାଁଘଉଡ଼ା ଗଛ, ସମାଦର ।

କଦର୍ଥ—ପୁଂ. ବି. (କୁ + ଅର୍ଥ) କୁତ୍ସିତ ଅର୍ଥ, ବିଂ. ବ୍ୟର୍ଥ, ନିରର୍ଥକ, କୁତ୍ସିତ ଅର୍ଥକାରୀ ।

କଦର୍ଥନ — କ୍ଳୀ. ବିଂ. (କୁ + ଣିଚ୍ + ଅର୍ଥ + ଅନ)ବିଡ଼ମ୍ବନା,ପୀଡ଼ନ,ଅବମାନନା ଅପମାନ ଦେବା, ଦୁର୍ଗତି, ଦୁର୍ଦ୍ଦଶା, (ବିଂ.) କଦର୍ଥିତ ।

କଦର୍ଥନା — ବି.(କୁ + ଅର୍ଥ୍ + ଅନ + ଆ) କଦର୍ଥନ (ଦେଖ) ।

କଦର୍ଥିତ — ବିଂ. (କୁ + ଅର୍ଥିତ)ଦୂଷିତ, ବିଡ଼ମ୍ବିତ,କ୍ଲେଶିତ, ଘୃଣିତ, ନିର୍ଯାତିତ

କଦର୍ଥୀକୃତ—ବି .ବିଂ.(କଦର୍ଥ + ଚ୍ୱି + କୃ + ତ) ବିଫଳୀକୃତ, ମନ୍ଦୀକୃତ, ବିକଳୀକୃତ,କୁତ୍ସିତ ଅର୍ଥରେ ବ୍ୟାଖ୍ୟାତ ବା ଗୃହୀତ ।

କଦର୍ଯ୍ୟ—ବି .ବିଂ. (କୁ + ଅର୍ଯ୍ୟ) କ୍ଷୁଦ୍ର, କୃପଣ, କୁତ୍ସିତ, ନୀଚ,ଲୋଭୀ,ଜଘନ୍ୟ ।

କଦର୍ଯ୍ୟଭାବ — ପୁଂ.ବି. (ତତ୍ତ୍ୱ) କୁତ୍ସିତ ଭାବ, ଅଶ୍ଳୀଳ ଭାବ ।

କଦଲ—ପୁଂ. ବି. (କ + ଦଲ + ଅ) କଦଳୀ ବୃକ୍ଷ, ଶିମୁଳ ଗଛ, ଗୃହଳିଆ ଗଛ,ରମ୍ଭାବୃକ୍ଷ,ଅସ୍ପୃଶ୍ୟ ଜାତି ବିଶେଷ ।

କଦଲକ—ପୁଂ. ବି. (କଦଲ + କ) କଦଳୀ ଗଛ, ରମ୍ଭାବୃକ୍ଷ ।

କଦଲକା — ସ୍ତ୍ରୀ.ବି.(କଦଳୀ + କ + ଆ) କଦଳୀ ଗଛ, ରମ୍ଭାଗଛ ।

କଦଳୀ,(ଲି) — ରମ୍ଭା ଗଛ ଓ ଫଳ,ମୃଗୀ ବିଶେଷ, ପତାକା, ହସ୍ତୀ ଉପର ନିଶାଣ ।

କଦଳୀକାନ୍ଧ—ଗ୍ରା. ବି. କଦଳୀ ଗଛର ଅଗରୁ ବାହାରଥିବା କାଣ୍ଡରେ ସଂଲଗ୍ନ ବହୁ ଫେଣାଯୁକ୍ତ କଦଳୀପେଣ୍ଡା ।

କଦଳୀ ପୁଅ — ଗ୍ରା. ବି. କଦଳୀ ଗଛ ମୂଳରୁ ବାହାର ଥିବା ଗଜାଗଛ ।

କଦଳୀଫେଣା—ଗ୍ରା.ବି. କଦଳୀକାନ୍ଧରେ ଏକାଠି ଲାଗିଥିବା କଦଳୀଫଳର ପୁଞ୍ଜ ।

କଦଳୀବାଞ୍ଝ — ଗ୍ରା.ବି.କଦଳୀଗଛଗୋଟିଏ କାନ୍ଧ ପକାଇଲାପରି ଯେଉଁ ସ୍ତ୍ରୀ ଗୋଟିଏ ମାତ୍ର ସନ୍ତାନ ଜନ୍ମ କରିଥାଏ ।

କଦଳୀମଞ୍ଜା — ଗ୍ରା. ବି. କଦଳୀଗଛର ମଝିରେ ଥିବା କୋମଳଦଣ୍ଡ, ଏହାକୁ ଲୋକେ ତରକାରୀ କରି ଖାଆନ୍ତି ।

କଦଶ୍ୱ—ପୁଂ. ବିଂ. (କ.ଧା) କୁତ୍ସିତ ଅଶ୍ୱ, ଦୁଷ୍ଟ ଘୋଟକ, ମନ୍ଦ ଘୋଡ଼ା ।

କଦା — ଅବ୍ୟ. (କିମ୍ + ଦା) କେବେ, କେଉଁସମୟରେ, ଆଦୌ,କେବେହେଁ ।

କଦାକାର(କୃତ)—ବିଂ. (କୁ + ଆକାର) ବିଶ୍ରୀ, ଯାହାର ଆକାର କୁତ୍ସିତ, (ବି) ବିଶ୍ରୀ ଚେହେରା, କୁତ୍ସିତ ଆକୃତି ।

କଦାଚ — ଅବ୍ୟ. କଦାଚିତ୍, କେବେ, କେତେବେଳେହେଲେ, କଦବା,ଖୁବ୍ କମ୍ ସମୟରେ ବା ସ୍ଥଳରେ ।

କଦାଚନ(ଚିତ୍) — ଅବ୍ୟ (କଦା + ଚନ) କେବେହେଁ,କୌଣସି ସମୟରେ,କେବେ ହେଲେ, ଜମାରୁ, ଆଦୌ, କେବେ, କ୍ୱଚିତ୍, କଦବା ।

କଦାଗ୍ରହ — ପୁଂ.ବି. (କୁ + ଆଗ୍ରହ)ମନ୍ଦ ଆଗ୍ରହ, କୁତ୍ସିତ ବ୍ୟବହାର, ଅନ୍ୟାୟ ଆଚରଣ, ଅଭଦ୍ର ଆଚରଣ, (ବିଂ) କଦାଗ୍ରହୀ ।

କଦାଗ୍ରହୀ — ପୁଂ. ବିଂ. (କୁ + ଆଗ୍ରହ + ଇନ୍) ମନ୍ଦ ବ୍ୟବହାରକାରୀ, ଅସଦାଗ୍ରହୀ, ଅନାଗ୍ରହୀ,ଅସନ୍ମାର୍ଗାବଲମ୍ବୀ,(ସ୍ତ୍ରୀ) କଦାଗ୍ରହିଣୀ ।

କଦାଚିତ୍—ଅବ୍ୟ. କେବେ ।

କଦାପି—ଅବ୍ୟ.(କଦା + ଅପି)କେବେହେଁ, କେଭେଁ, କୌଣସି ଏକସମୟରେ ।

କଦାହାରୀ — ପୁଂ.ବି.(କଦାହାର + ଇନ୍) କୁତ୍ସିତ ଖାଦ୍ୟର ଖାଦକ,ନିଷେଧ ଦ୍ରବ୍ୟ ଭକ୍ଷକ ।

କଦିନ୍ଦ୍ରିୟ—କ୍ଳୀ. ବି. କୁତ୍ସିତ ଇନ୍ଦ୍ରିୟ ।

କଦୁ — ଯା. ବି. ଲାଉ, ତୁମ୍ବୀ, ଅଲାବୁ ।

କଦୁକ୍ତି — ସ୍ତ୍ରୀ. ବି. (କୁ + ଉକ୍ତି)କଟୁଉକ୍ତି, ଅଶ୍ଳୀଳଉକ୍ତି, କଟୁବାକ୍ୟ ।

କଦୁତ୍ତର—କ୍ଳୀ.ବି.କୁତ୍ସିତଉତ୍ତର,କଦର୍ଯ୍ୟ ଜବାବ ।

କଦୁଷ୍ଠ — ପୁଂ. ବି. ମନ୍ଦ ଓଠ ।

କଦୁଷ୍ଣ—ବିଂ.(କୁ + ଉଷ୍ଣ) ଈଷତ୍ ଉଷ୍ଣ, ଈଷଦୁଷ୍ଣ, ଅଳ୍ପୋଷ୍ଣ, ନାତିଉଷ୍ଣ ।

କଦୁହ — ପୁଂ. ବି. ଗୋତ୍ର ପ୍ରବର, ଋଷି ବିଶେଷ ।

କଦ୍ରଥ—ପୁଂ. ବି. (କୁ + ରଥ) କୁତ୍ସିତ ରଥ, ଖରାପ ଗାଡ଼ି ।

କଦ୍ରୁ — ପୁଂ.ବି. (କଦ୍ + ରୁ)ପିଙ୍ଗଳବର୍ଣ୍ଣ (ସ୍ତ୍ରୀ.ବି) ନାଗମାତା, (ବିଂ) ପିଙ୍ଗଳବର୍ଣ୍ଣ ଯୁକ୍ତ । [ବର୍ଣ୍ଣଯୁକ୍ତ ।
କଦ୍ରୁଣ — ବି.ବିଂ. (କଦ୍ରୁ + ନ)ପିଙ୍ଗଳ
କଦ୍ରୁପୁତ୍ର (ସୁତ) — ପୁଂ.ବି. ନାଗ, ସର୍ପ ।
କଦ୍ଵଦ — ପୁଂ.ବିଂ.(କୁ + ବଦ୍ + କ,ଅ) କର୍କଶଭାଷୀ, କୁତ୍ସିତବକ୍ତା, ମନ୍ଦକଥକ, କଟୁଭାଷୀ, (ସ୍ତ୍ରୀ) କଦ୍ଵଦା ।
କଦ୍ଵର-ବି.ବିଂ.(କଡ୍ + ବି + ଅ)କଟ୍ଵର, ଅଡକୁତ୍ସିତ,ଲହୁଣୀଥିବା(ଘୋଳଦହି), ଦଧିସ୍ନେହଯୁକ୍ତ (ତକ୍ରବିଶେଷ) ।
କଧପ୍ରିୟ — ବି. ସ୍କନ୍ଧପ୍ରିୟ ।
କନ୍ — (ଧାତୁ)ପ୍ରୀତହେବା, ସନ୍ତୁଷ୍ଟହେବା, ଇଚ୍ଛାକରିବା, ଆକାଙ୍କ୍ଷା କରିବା, ଶରଣ ଦେବା, ଖୋଜିବା ।
କନଉଜ — ଗ୍ରା. ବି. (ସଂ-କାନ୍ୟକୁବ୍ଜ) କାନ୍ୟକୁବ୍ଜ ।
କନକ — ବି. (କନ୍ + ଅକ)ସ୍ଵର୍ଣ୍ଣ,ପଳାଶ, ଧୂତୁରା, ଚମ୍ପାଫୁଲଗଛ, ମହାଦେବ, ରାଜାବିଶେଷ, କାଞ୍ଚନଗଛ, ରକ୍ତବର୍ଣ୍ଣ, ଫୁଲଗଛ, ନାଗେଶ୍ଵର ।
କନକକଟକ — ବି. (କ.ଧା) ସ୍ଵର୍ଣ୍ଣକଙ୍କଣ, ସ୍ଵର୍ଣ୍ଣମୟପୁର, ଲଙ୍କାପୁରୀ ।
କନକକୁମ୍ଭ — ବି. (କ.ଧା) ସ୍ଵର୍ଣ୍ଣକଳସ, ସୁନାର ଘଟ, ଭୃଙ୍ଗାର ।
କନକକୂଟ — ବି.(ବ.ବ୍ରୀ)ପର୍ବତ ବିଶେଷ, ସୁମେରୁପର୍ବତ, କୈଳାସଶୃଙ୍ଗବିଶେଷ ।
କନକକ୍ଷାର — ପୁଂ. ବି. (କନକ + କ୍ଷାର) ସୋହାଗା, ଟାଙ୍ଗଣା ।
କନକଗିରି — ପୁଂ.ବି. ସ୍ଵର୍ଣ୍ଣପର୍ବତ,ସୁମେରୁ ପର୍ବତ ।
କନକଗୋରୀ — ଗ୍ରା. ବିଂ. ସ୍ତ୍ରୀ. ସୁନାପରି ଗୌରବର୍ଣ୍ଣା (ସ୍ତ୍ରୀ) ।
କନକଗୌର — ପୁଂ.ବିଂ.ସୁନାପରିଗୋରା ।
କନକଚମ୍ପା — ଗ୍ରା. ଫୁଲବିଶେଷ,କନଅର, ଏକପ୍ରକାର ଭୃଣଜାତୀୟ ବୃକ୍ଷ,ଏହାର, ପତ୍ର ଗାଈ ମଇଁଷିଙ୍କୁ ବେଙ୍ଗାହେଲେ ଖାଇବାକୁ ଦେଲେ ବେଙ୍ଗାରୋଗ ଭଲ ହୋଇଯାଏ ।
କନକଟଙ୍କ — ବି. ସ୍ଵର୍ଣ୍ଣ କୁଠାର, ସୁନାର ଟାଙ୍ଗିଆ ।
କନକତୈଳ — କ୍ଲୀ. ବୈଦ୍ୟୋକ୍ତ ତୈଳ ବିଶେଷ ।
କନକଦଣ୍ଡକ — କ୍ଲୀ. ବି. ରାଜଛତ୍ର ।
କନକଦୁର୍ଗା — ବି. ସୁନାରେ ତିଆରି ଦୁର୍ଗା ପ୍ରତିମା ।
କନକଧୂତୁରା — ଗ୍ରା. ବି. ଧୂତୁରାବିଶେଷ ।
କନକଧ୍ଵଜ — ପୁଂ.ବି. ଧୃତରାଷ୍ଟ୍ରର ପୁତ୍ର ବିଶେଷ,(ବିଂ) ଯାହାର ଧ୍ଵଜା ସ୍ଵର୍ଣ୍ଣମୟ ।
କନକନ — ଗ୍ରା.ଅବ୍ୟ. ବ୍ୟାକୁଳ,ଦୁଃଖରେ ଚଞ୍ଚଳ, ଅସ୍ଥିର, ସନ୍ଦେହରେ ଅସ୍ଥିର, ଏଣେତେଣେ ଆଖି ବୁଲାଉଥିବା,ଚକିତ, ତ୍ରସ୍ତ । [ବିଶେଷ ।
କନକପତ୍ର — କ୍ଲୀ. ବି. କାନର ଅଳଙ୍କାର
କନକପାଗ — ଗ୍ରା. ବି. ଦେଉଳର ଅଂଶ ବିଶେଷ, ଓଡ଼ିଶାର ଦେଉଳମାନଙ୍କର ବିମାନ ଅଂଶରେ ଥିବା ତିନୋଟି ପାଗ ମଧ୍ୟରୁ ଗୋଟିଏ ପାଗ ।
କନକପୁରୀ — ବି. ସ୍ଵର୍ଣ୍ଣପୁରୀ. ଲଙ୍କା ।
କନକପ୍ରଭ — ବିଂ. (ବ. ବ୍ରୀ) ସୁବର୍ଣ୍ଣପରି ଦୀପ୍ତିଶାଳୀ, ସୁନାପରି ଉଜ୍ଜ୍ଵଳ ।
କନକପ୍ରଭା — ସ୍ତ୍ରୀ. ବି. (କନକ + ପ୍ରଭା) ମହାଜ୍ୟୋତିଷ୍ମତୀ ଲତା, ସୁବର୍ଣ୍ଣପ୍ରତିମା, ନାରୀବିଶେଷ ।
କନକପ୍ରସବା — ସ୍ତ୍ରୀ.ବି.(କନକ + ପ୍ରସବା) ସ୍ଵର୍ଣ୍ଣକେତକୀ ।
କନକମୟ — ବି. ବିଂ. (କନକ + ମୟ) ସ୍ଵର୍ଣ୍ଣନିର୍ମିତ, ସ୍ଵର୍ଣ୍ଣାଭ ।
କନକମହୀଧର — ପୁଂ. ବି. (କନକ + ମହୀଧର ) ସୁବର୍ଣ୍ଣ ପର୍ବତ, ସୁମେରୁ ପର୍ବତ, ଅସ୍ତପର୍ବତ ।
କନକମୃଗ — ପୁଂ. ବି. ସ୍ଵର୍ଣ୍ଣବର୍ଣ୍ଣ ମୃଗ ।
କନକରମ୍ଭା — ସ୍ତ୍ରୀ. ବି. ସୁବର୍ଣ୍ଣ କଦଳୀ, ଚମ୍ପାକଦଳୀ ।
କନକରସ — ପୁଂ. ବି. (କନକ + ରସ) ହରିତାଳ, ଗଳିତସୁନା ।
କନକରେତା — ବି. ବ.ବ୍ରୀ, ( କନକ + ରେତଃ) ଅଗ୍ନି ।
କନକଲୋଭବ — ପୁଂ.ବି. (କନକଲା + ଉଦ୍ + ଭୂ + ଅ)ଧୂନା,ଝୁଣା,ସର୍ଜରସ ।
କନକବତୀ — ସ୍ତ୍ରୀ. ବି. ସ୍ଵର୍ଣ୍ଣଭୂଷିତ ସ୍ତ୍ରୀ, କନକବର୍ଣ୍ଣ ରାଜ୍ୟର ରାଜଧାନୀ ।
କନକବାହିନୀ — ସ୍ତ୍ରୀ. ବି. କାଶ୍ମୀର ରାଜ୍ୟର ଅନ୍ତର୍ଗତ ନଦୀବିଶେଷ । [ରାଜା ।
କନକବିଗ୍ରହ — ପୁଂ.ବିଶାଳପୁରୀର ଏକଜଣ
କନକଶକ୍ତି — ସ୍ତ୍ରୀ. ବି. କାର୍ତ୍ତିକେୟ ।
କନକସୁନ୍ଦର — ପୁଂ. ବି. ଅତିସାରାଦି ରୋଗର ଔଷଧବିଶେଷ ।
କନକସୂତ୍ର — କ୍ଲୀ. ବି. ସୁନାର ତାର ।
କନକା — ଗ୍ରା. ବି. ଜୟପାଳ, ଏଥିରେ ଭେଦୀ ତିଆରି ହୁଏ ।
କନକା(କେ)ଇ — ଗ୍ରା. ବି. ଗ୍ରାମଦେବତା ଦୁର୍ଗାଙ୍କ ନାମ ।
କନକାକ୍ଷତ — ଗ୍ରା. ବି. ବ୍ରାହ୍ମଣମାନଙ୍କ ବିବାହରେ ବରକନ୍ୟାମାନଙ୍କୁ ସନ୍ଧ୍ୟା- ପରେ ପାଦପୀଡ଼ାନିବାରଣାର୍ଥ ସବୁରେ ଚୂନା ଓ ତେଲ ସଙ୍ଗେ ପାଥେୟସ୍ଵରୂପ ଯେଉଁ ଧନ ଦିଆଯାଏ ।
କନକାଙ୍ଗଦ — କ୍ଲୀ. ବି. (କ.ଧା) ସ୍ଵର୍ଣ୍ଣ- ନିର୍ମିତ କେୟୁର, ସୁନାରବାଜୁ, (ସ୍ତ୍ରୀ) କନକାଙ୍ଗଦୀ ।
କନକାଚଳ — ପୁଂ.ବି. (କ.ଧା) ସୁମେରୁ ପର୍ବତ, ଦାନବିଶେଷ, ଅସ୍ତାଚଳ ।
କନକାଞ୍ଜଳୀ — ସ୍ତ୍ରୀ.ବି. (କ.ଧା)ମାଙ୍ଗଳିକ ଦାନବିଶେଷ ।
କନକାଦ୍ରି — ପୁଂ. ବି. ସୁମେରୁ ପର୍ବତ ।
କନକାଧ୍ୟକ୍ଷ — ପୁଂ. ବି. ସ୍ଵର୍ଣ୍ଣରକ୍ଷକ, ଧନ ରକ୍ଷକ । [ବିଶେଷ ।
କନକାୟୁ — ପୁଂ. ବି. ଧୃତରାଷ୍ଟ୍ରଙ୍କର ପୁତ୍ର
କନକାରକ — ପୁଂ.ବି. କାଞ୍ଚନଫୁଲଗଛ, ରକ୍ତକାଞ୍ଚନ ବୃକ୍ଷ ।
କନକାଳୁକା — ସ୍ତ୍ରୀ. ବି. (କନକ + ଆଳୁ + କା) ସ୍ଵର୍ଣ୍ଣନିର୍ମିତ ଜଳପାତ୍ର ବିଶେଷ, ସୁବର୍ଣ୍ଣଘଟ ।
କନକାହ୍ଵ — କ୍ଲୀ. ବି. (କନକ + ଆହ୍ଵା) ନାଗକେଶରଫୁଲ, ଚମ୍ପକ, ଧୁତୁରା, ନାଗକେଶର ବୃକ୍ଷ ।

କନକାହ୍ୱୟ—ପୁଂ. ବି. ଧୂତୁରା ନାଗକେଶର ଫୁଲ, ଧୁଦୁରା, ଚମ୍ପକ ।
କନଖଲ—ପୁଂ. ବି. ହରଦ୍ୱାର ସମୀପସ୍ଥ ତୀର୍ଥବିଶେଷ ।
କନଖଲା—ଗଙ୍ଗାନଦୀର ଶାଖାବିଶେଷ ।
କନଡ଼ା—ଗ୍ରା.ବି.(ସଂ—କର୍ଣ୍ଣାଟ) ଗୀତ ଓ ଛନ୍ଦର ରାଗବିଶେଷ ।
କନନ—କ୍ରି. ବିଂ. (କନ+ଅନ) କଣା ।
କନରା—ଗ୍ରା.ବି. ବିଲରେ ଧାନସଙ୍ଗେ ଉଠିବା ଶୁଆଁ ପରିଏକଜାତୀୟ ଘାସଗଛ ।
କନଲ—କ୍ରି.ବିଂ. (କନ୍+ଅଲ)ପ୍ରଦୀପ୍ତ ।
କନା—ସ୍ତ୍ରୀ. କନିଷ୍ଠା (ବୈଦିକ) କନ୍ୟା, (ଗ୍ରା.ବି) ଛିଣ୍ଡାଲୁଗା, କନ୍ଥା ।
କନାକତରା—ଗ୍ରା.ବି.ଛିଣ୍ଡାକନା,ଲେଙ୍ଗୁଡ଼ି ।
କନାକବଟା—ଗ୍ରା.ବି.ଛିଡ଼ାକନା,ଲେଙ୍ଗୁଡ଼ି ।
କନାଟ—(ଯା.) ବିଂ. ବସ୍ତ୍ରନିର୍ମିତ ।
କନାମୁଠିଆ(ଭଣ୍ଡାରୀ)—ଗ୍ରା.ବି. କ୍ଷୌରକାର ଜାତିବିଶେଷ ।
କନିଅର—ଗ୍ରା. ବି. (ସଂ—କର୍ଣ୍ଣିକାର) କର୍ଣ୍ଣିକାର ।
କନିଆ—ଗ୍ରା. ବି. କୁମାରୀ, ମଙ୍ଗଳପାକଠାରୁ ବିବାହ ଶେଷ ପର୍ଯ୍ୟନ୍ତ ଝିଅକୁ କନ୍ୟା କହନ୍ତି, କନ୍ୟାପାତ୍ର, ଦ୍ୱିତୀୟ ପକ୍ଷର ସ୍ତ୍ରୀ, ଅପ୍ରାପ୍ତବୟସ୍କା ବାଳିକା ।
କନିଆରୀ—ଗ୍ରା. ବି. ବିବାହ ଉପଯୁକ୍ତା ବାଳିକା ।
କନିକା—ଗ୍ରା. ବି. ଜୟପାଳ ମଞ୍ଜି, ବାଲେଶ୍ୱର ଓ କଟକ ସମୁଦ୍ର ଉପକୂଳସ୍ଥ ମୋଗଲବନ୍ଦି ଅନ୍ତର୍ଗତ ଜମିଦାରୀ ରାଜ୍ୟବିଶେଷ ।
କନିଶିର—ଗ୍ରା.ବି. (ସଂ-କଣ୍ଟଟ)ଅପରାେପୃକ୍ତ ଶାକବିଶେଷ ।
କନିଷ୍ଠ—ବିଂ. (ଯୁବନ୍‌ବାଅଲ୍ପ+ଇଷ୍ଠ) ସାନ, ଛୋଟ,କ୍ଷୁଦ୍ର, ଅନୁଜ,ବୟସରେ ସାନ,(ବି) ସାନଭାଇ, ସାନପୁଅ, ମହାଦେବ, କାଣିଆଙ୍ଗୁଳି ।
କନିଷ୍ଠକ—କ୍ଳୀ. ବି. ଶୁକତୃଣ ।
କନିଷ୍ଠା—ସ୍ତ୍ରୀ. ବି. (କନିଷ୍ଠ+ଆ) କାଣିଅଙ୍ଗୁଳି, ଅନୁଜା, (ବିଂ) ଅତିକ୍ଷୁଦ୍ର ।

କନୀ—ସ୍ତ୍ରୀ.ବି. (କନ୍+ଅ+ଈ)କନ୍ୟା, ଦୁହିତା ।
କନୀଚ—ସ୍ତ୍ରୀ. ବି. ଗୁଞ୍ଜା, କାଇଞ୍ଚ, ରଥ, ଶକଟ, ଗାଡ଼ି, ପୁଷ୍ପିତା ଲତା ।
କନୀନିକା—ସ୍ତ୍ରୀ. ବି. (କନ୍+ଈନ+କ+ଆ) ଚକ୍ଷୁର ତାରା, କନିଷ୍ଠାଙ୍ଗୁଳି, କନିଷ୍ଠା ଭଗିନୀ, ଆଖିର କଳାଡୋଳା ।
କନୀୟସ୍—କ୍ଳୀ.ବି. ତମ୍ବା, ତାମ୍ର ।
କନୀୟସୀ—ସ୍ତ୍ରୀ. ବି. (କନ+ଈୟସ୍+ଈ) କନିଷ୍ଠା ଭଗିନୀ, ସବ କନିଷ୍ଠା ।
କନୀୟାନ୍—ବିଂ(ଯୁବନ୍-ଅଲ୍ପ+ଈୟସ୍) ସବ କନିଷ୍ଠ, ଅତିକ୍ଷୁଦ୍ର, ଯୁବତର, ଅତିଅଳ୍ପ, ବି. କନିଷ୍ଠଭ୍ରାତା ।
କନୌଜ(ନାମ)—ଗ୍ରା.ବି. କାନ୍ୟକୁବ୍ଜ ।
କନ୍ତ—କ୍ରି. ବିଂ (କଂ+ତ) ସୁଖୀ ।
କନ୍ତାର—ଗ୍ରା. ବିଂ. ଏକ ପ୍ରକାର ଆଖୁ ।
କନ୍ତି—କ୍ରି.ବିଂ. (କଂ+ତି) ସୁଖଶାଳୀ ।
କନ୍ତୁ—ପୁଂ. ବି. (କମ୍+ତୁ)କାମଦେବ, ଚିତ୍ତ,ହୃଦୟ,(ବିଂ)ସୁଖୀ, ସୁଖାନ୍ୱିତ ।
କନ୍ଥା—ସ୍ତ୍ରୀ.ବି. (√କନ୍ଥ+ଆ) କେତେଗୁଡ଼ିଏ ଚିରା ଲୁଗା ଏକାଠି ମିଳାଇ ସିଲେଇ କରି କରାଯାଇଥିବା ଶୀତବସ୍ତ୍ର, ଶେଯ ବା ଆଚ୍ଛାଦନବିଶେଷ, ମାଟିର କ୍ଷୁଦ୍ର ପ୍ରାଚୀର, ଗୋଦଡ଼ୀ, କନା, ଜୀର୍ଣ୍ଣବସ୍ତ୍ରରଚିତ ଆଚ୍ଛାଦନ ।
କନ୍ଥାଧାରୀ—କ୍ରି. ବିଂ. (କନ୍ଥା+ଧୃ+ଇନ୍) ଭିକ୍ଷୁକ ।
କନ୍ଥାରୀ—ସ୍ତ୍ରୀ. ବି. ବୃକ୍ଷବିଶେଷ ।
କନ୍ଦ—ପୁଂ.କ୍ଳୀ.ବି.(କନ୍ଦ+ଅ) କନ୍ଦମୂଳ, ଓଲୁଅ, ଗୋଲ ବା ଲମ୍ବମୂଳ, ସକରକନ୍ଦ, କର୍ପୂର, ମେଘ, ଖଣ୍ଡ, ନବାତ, କନ୍ଦର, ଦୁଃଖ, ମୂଳ, ଯୋନିରୋଗ ବିଶେଷ, (ଗ୍ରା. ବି.) କନ୍ଦଜାତ (ବିଂ) ଶ୍ରେଷ୍ଠ ।
କନ୍ଦକ—ପୁଂ.ବି. (କନ୍ଦ+କନ୍) ବିତାନ, ଗୁନ୍ଦୁଆ ।
କନ୍ଦଟ—କ୍ଳୀ.ବି. (କନ୍ଦ+ଅଟ) ଶ୍ୱେତପଦ୍ମ, ମୁଦ୍ରା ନାମକ ସୁଗନ୍ଧ ଦ୍ରବ୍ୟ ।

କନ୍ଦପଣା—ଗ୍ରା. ବିଂ. ନବାତରେ ପ୍ରସ୍ତୁତ ପ୍ରପାନକ, ନବାତର ସରବତ ।
କନ୍ଦମାଳ—ବିଂ.କନ୍ଧମାନଙ୍କର ବାସସ୍ଥାନ, ଓଡ଼ିଶା ପ୍ରଦେଶର ବୌଦ୍ଧ ଜିଲାର ଗୋଟିଏ ମହକୁମା, ଫୁଲବାଣୀ ।
କନ୍ଦମୂଳ—କ୍ଳୀ. ବି. (କନ୍ଦ+ମୂଳ) ମିଷ୍ଟ ଖାଦ୍ୟମୂଳବିଶେଷ, ଗଣ୍ଠି ଆଳୁ ।
କନ୍ଦର—ପୁଂ.ବି.(କଂ+ଦୃ+ଅ)ଅଙ୍କୁଶ, ଗୁହା, ଦରୀ, ଓଲୁଅ, ଅଦା, ଅଙ୍କୁର, ଗାଜର, ଦୁଇ ପର୍ବତର ମଧ୍ୟସ୍ଥିତ ପଥ, (ସ୍ତ୍ରୀ) କନ୍ଦରୀ । [ପର୍ବତ ।
କନ୍ଦରବାନ୍—ପୁଂ.ବି. (କନ୍ଦର+ବତ୍)
କନ୍ଦରା—ସ୍ତ୍ରୀ. ବି. (କନ୍ଦର+ଆ) ଗୁହା, ପର୍ବତ ଗହ୍ୱର, ଦରୀ ।
କନ୍ଦରାକର—ପୁଂ. ବି. ପର୍ବତ ।
କନ୍ଦରୀ—ସ୍ତ୍ରୀ. ବି. (କନ୍ଦର+ଈ) ଗୁହା, ପୁଂ. (କନ୍ଦରା+ଇନ୍) ପର୍ବତ ।
କନ୍ଦରୋଦ୍ଭବା—ସ୍ତ୍ରୀ. ବିଂ. (କନ୍ଦର+ଉତ୍+ଭୂ+ଅ+ଆ) ଗୁଡୁଚୀ ବିଶେଷ, ଛୋଟ ପାଷାଣଭେଦୀ ବୃକ୍ଷ ।
କନ୍ଦର୍ପ—ପୁଂ. ବି. (କଂ+ଦୃପ୍+ଅ) କାମଦେବ, ଚିତ୍ତଜ,ମଦନ, (ଗ୍ରା. ବି.) ପୁରୁଷର ବୀର୍ଯ୍ୟ, ରେତଃ ।
କନ୍ଦର୍ପକୂପ—ପୁଂ. ବି. (୬ତତ୍) ଯୋନି, ସ୍ତ୍ରୀଚିହ୍ନ, ଭଗ ।
କନ୍ଦର୍ପକେଳି—ବି. ପୁଂ. (୬ତତ୍) କାମକ୍ରୀଡ଼ା, ମୈଥୁନ, ପ୍ରହସନ, ଫାରସ ।
କନ୍ଦର୍ପଜୀବ—ବି. ପୁଂ. (କନ୍ଦର୍ପ+ଜୀବ+ଣ,ଅ)ପଣସଫଳ, କାମବୃଦ୍ଧିକାରକ ଦ୍ରବ୍ୟ ।
କନ୍ଦର୍ପଜ୍ୱର—ବି.ପୁଂ.(କ.ଧା) କାମଜ୍ୱର, କାମୋଦ୍‌ବେଗ, କାମଚିନ୍ତା ବା ଉଦ୍‌ବେଗଜନିତ ପୀଡ଼ା ।
କନ୍ଦର୍ପଦହନ—ବି. ପୁଂ. ମହାଦେବ ।
କନ୍ଦର୍ପନାଶନ—ବି. (୬ତତ୍) ଶିବ ।
କନ୍ଦର୍ପବାଣ—ବି. କାମଦେବଙ୍କ ଧୃତ କାମୀଜନଙ୍କ ପ୍ରତି ପ୍ରେରିତ କଳ୍ପିତ ଶର, ପଞ୍ଚବାଣ ।

କନ୍ଦର୍ପମଥନ—ବି.ପୁଂ.ମହାଦେବ, କାମନିବାରକ ବସ୍ତୁ ।

କନ୍ଦର୍ପମୁଷଳ—ବି. ଲିଙ୍ଗ, ଉପସ୍ଥ ।

କନ୍ଦର୍ପରସ—ବୈଦ୍ୟୋକ୍ତ ଔଷଧବିଶେଷ (ମେହରୋଗର) ।

କନ୍ଦର୍ପଶୃଙ୍ଖଳ—ବି.ପୁଂ,ରତିବନ୍ଧବିଶେଷ, 'ନାରୀପଦଦ୍ୱୟଂ ନ୍ୟସ୍ୟ କାନ୍ତସ୍ୟୋରୁଦ୍ୱୟୋପରି, କଟିଶ୍ଚେତ ଦୋଲୟେଦାଶୁ ବନ୍ଧଃ କନ୍ଦର୍ପଶୃଙ୍ଖଳଃ' ।

କନ୍ଦର୍ପସନ୍ଦୀପକ—ବିଂ. (୬ତତ୍) କାମବୃତ୍ତିର ଉତ୍ତେଜନକାରୀ (ଔଷଧ ବିଶେଷ), (ବି) କାମୋଦ୍ରେକ ।

କନ୍ଦର୍ପସାର ମରିଚ୍ୟାଦିତୈଳ—ବି. ଆୟୁର୍ବେଦୋକ୍ତ ତୈଳବିଶେଷ ।

କନ୍ଦଳ—ବି.(କଂ+ଦଲ+କ,ଅ) କଳଧ୍ୱନି (କନ୍ଦ+ମି. ଅଲ) ଗଣ୍ଡଦେଶ, କପାଳ,(ଖି,ଅଲ)ଉପରାଗ,(କମ୍+ଦଲ) ନୂତନ ଅଙ୍କୁର, ଗଜା, (ଅଧି+ଅଲ) କଳହ, ଯୁଦ୍ଧ, ସ୍ୱର୍ଣ୍ଣସମୂହ; (କଂ+ଦଲ+ଅ) ଭୂମିକଦଳୀ ଗଛ, ପାଣିକେନ୍ଦୁଲୀ ଗୁଳ୍ମ, ପତାକା, ପଦ୍ମବୀଜ, ଶୂରଣ, ଓଲୁଅ, କଦଳୀ ପୁଷ୍ପ, କଦଳୀଗଛ, (ଗ୍ରା.ବି.) ଘାଆ ଦଲଦଲେଇବା,(ପ୍ରା. ଗଞ୍ଜାମ) ଚଣାଫଳ ।

କନ୍ଦଳିଆ—ଗ୍ରା.ବିଂ.ପୁଂ. କଳିହା, କଳିହୁଡ଼ା, କଳହପ୍ରିୟ ।

କନ୍ଦଳିବା—ଗ୍ରା.କ୍ରି.ଗଜୁରିବା,(ଲକ୍ଷଣାର୍ଥ) ଜାତହେବା ।

କନ୍ଦଳୀ—ସ୍ତ୍ରୀ.(କନ୍ଦଳ+ଈ)ମୃଗବିଶେଷ, ପକ୍ଷୀବିଶେଷ, ଭୂମିକଦଳୀବୃକ୍ଷ,ପତାକା, ପଦ୍ମବୀଜ, ପାଣିକେନ୍ଦୁଲୀଫୁଲ, ଉର୍ବଋଷିଙ୍କର ଜାନୁସମ୍ଭୂତା କନ୍ୟା ।

କନ୍ଦଳୀକୁସୁମ—କ୍ଲୀ. ବି. ଭୂମିକଦଳୀର ଫୁଲ ।

କନ୍ଦବର୍ଦ୍ଧନ—ବି.ପୁଂ. (କନ୍ଦ+ବୃଧ+ଅନ) ଶୂରଣ, ଓଲୁଅ ।

କନ୍ଦବଲ୍ଲୀ—ସ୍ତ୍ରୀ. ବି. ବନ୍ଧ୍ୟାକର୍କୋଟକୀ ।

କନ୍ଦଶାକ—କ୍ଲୀ. ବି. ଆଳୁ, ଓଲ, ମୂଳା, ଗାଜର ପ୍ରଭୃତି ।

କନ୍ଦସାର—କ୍ଲୀ.ବି. (ବ.ବ୍ରୀ)ଚନ୍ଦନବନ, ଓଲୁଅ ପ୍ରଭୃତି ମୂଳ ସମୂହ ।

କନ୍ଦା—ବି. ଅଙ୍ଗୁଳି ପ୍ରଭୃତି ସନ୍ଧିସ୍ଥାନ ଜାତ କ୍ଷତରୋଗବିଶେଷ, ନଡ଼ିଆ ପ୍ରଭୃତି ବୃକ୍ଷର ଅଗ୍ରସ୍ଥ କୋମଳ ଅଂଶବିଶେଷ, ଖଜୁରି କନ୍ଦାଦି, ଝେଟମାଛ, କାନ୍ଦ, କ୍ରନ୍ଦନ ।

କନ୍ଦାକନ୍ଦି—ଗ୍ରା. ବି. କାନ୍ଦବୋବାଳି, ଅନେକଲୋକଙ୍କର କ୍ରନ୍ଦନରୋଳ, ବହୁସମୟବ୍ୟାପୀ କ୍ରନ୍ଦନ ।

କନ୍ଦାଜାଦୁ—ଗ୍ରା.ବି. ଲସାଦେବା ଏକପ୍ରକାର ଜାଦୁ, ଗୋରୁଙ୍କ କାନ୍ଧରେ ହେବା ଏକ ପ୍ରକାର ଜାଦୁ ।

କନ୍ଦାଳୁ—ବି. (କନ୍ଦ+ଆଳୁ) କାସାଳୁ' ସକରକନ୍ଦା, ଗସ୍ତିଆଳୁ ।

କନ୍ଦି-କନ୍ଧୀ—ଗ୍ରା.ବି. ଗଳି, ଦୁଇ ଘରର ମଧ୍ୟବର୍ତ୍ତୀ ସଙ୍କୀର୍ଣ୍ଣ ସ୍ଥାନ ।

କନ୍ଦିକନ୍ଦି—ଗ୍ରା.ବି. ପ୍ରତ୍ୟେକ ଗୁପ୍ତ ସ୍ଥାନ ।

କନ୍ଦୀ—ପୁଂ. ବି. (କନ୍ଦ+ଇନ୍)ଯାହାର ମୂଳ ଅଛି, କନ୍ଦଯୁକ୍ତ,(ସ୍ତ୍ରୀ.ବି) କନ୍ଦୀନୀ, ଓଲୁଅ ।

କନ୍ଦୁ—ପୁଂ.ସ୍ତ୍ରୀ.(ସ୍କନ୍ଦ+ଅଧି.ଉ)ଲୌହନିର୍ମିତ ପାକପାତ୍ର, ମଦରାନ୍ଧିବା ପାତ୍ରବିଶେଷ, ତାଉଆ, କରେଇ ।

କନ୍ଦୁକ—ପୁଂ. ବି. ( କନ୍ଦ+ଉ+କ ) ପେଣ୍ଡୁ,ଖେଳିବାର ଗୋଲି,ବଲ,ଡକଆ, କ୍ରୀଡ଼ାବସ୍ତୁ ।

କନ୍ଦୁକେଶ୍ୱର—ପୁଂ. ବି. କାଶୀଧାମର ଶିବଲିଙ୍ଗ ବିଶେଷ ।

କନ୍ଦୁପକ୍ୱ—କ୍ଲୀ. ବି. କଡ଼େଇ, ତାଉଆ ପ୍ରଭୃତି ପାତ୍ରରେ ଯେ ବସ୍ତୁ ଭଜାହୁଏ, ଭଜା ଜିନିସ । [କରାଇବା ।

କନ୍ଦେଇବା—ଗ୍ରା. କ୍ରି. ବିଂ. ରୋଦନ

କନ୍ଦୋଟ-ପୁଂ.ବି.(କନ୍ଦ+ଉଟ)ଶ୍ୱେତୋତ୍ପଳ, ଧଳାକଇଁ, ନୀଳକଇଁ ।

କନ୍ଦୋତ—ପୁଂ. ବି. ( କନ୍ଦ+ଉତ ) କୁମୁଦ, କଇଁ ।

କନ୍ଧ—ପୁଂ. ବି. (କମ୍+ଧା+କ,ଅ) ମେଘ, ମୁଥାବିଶେଷ ( ଗ୍ରା.ବି. ) କାନ୍ଧ, ବଣୁଆ ଜାତିବିଶେଷ ।

କନ୍ଧମାଳ—ଗ୍ରା. ବି. କନ୍ଧମାଳ (ଦେଖ) ।

କନ୍ଧମାଳିଆ—ଗ୍ରା.ବି. କନ୍ଧମାଳ ଅଞ୍ଚଳସମ୍ବନ୍ଧୀୟ, କନ୍ଧମାଳରେ ହେଉଥିବା, (ହଳଦୀ ଇତ୍ୟାଦି) ।

କନ୍ଧର—ପୁଂ. ବି. (କଂ+ଧୃ+କ.ଅ) ମେଘ,ମୁଥା, ମାରିଷ, ବେଶ,ଲେଉଟିଆ ଶାଗ, ବେକ, ଗ୍ରୀବା ।

କନ୍ଧରା—ବି.(କନ୍ଧର+ଆ)କନ୍ଧର(ଦେଖ) (ଗ୍ରା.ବିଂ.) କନ୍ଧଆଦି ବନ୍ୟଜାତିମାନଙ୍କ ଦ୍ୱାରା ଅଧ୍ୟୁଷିତ । [ପ୍ରାନ୍ତର ।

କନ୍ଧା—ପ୍ରା. ( ଭୁଜଙ୍ଗ ତଳମାଳ ) ବି.

କନ୍ଧି—ସ୍ତ୍ରୀ. ବି. (କଂ+ଧ+ଇ) ଗ୍ରୀବା, ସ୍କନ୍ଧ, (ପୁଂ.ବି.) ସମୁଦ୍ର,(ଗ୍ରା.ବି)ଅପ୍ରଶସ୍ତ ସନ୍ଧିସ୍ଥଳ, ସନ୍ଧି, କ୍ଷୁଦ୍ର ଗଳି ।

କନ୍ଧୁଣୀ—ଗ୍ରା.ବି.ସ୍ତ୍ରୀ. କନ୍ଧଜାତୀୟା ସ୍ତ୍ରୀ ।

କନ୍ନ—କ୍ଲୀ. ବି. ( କନ+ତ ) ପାତକ, ମୂର୍ଚ୍ଛା, ଅଚୈତନ୍ୟ ।

କନ୍‌ଫୁଂଚ-(କଂ+ଫୁଂ+ଚ)ଚୀନଦେଶର ପ୍ରତିଷ୍ଠାତା ଓ ଶିକ୍ଷାଦାତା ।

କନ୍ୟ—ବି. ( କନ୍+ଣ+ଯ )କନ୍ୟାରାଶି, ଆଶ୍ୱିନ ମାସ ।

କନ୍ୟକ-ବିଂ.(କନ୍+ଯ+କ)କ୍ଷୁଦ୍ରତମ ।

କନ୍ୟକା—ସ୍ତ୍ରୀ. ବି. (କନ୍ୟ+କ+ଆ) ପୁତ୍ରୀ, ଝିଅ,କନ୍ୟା, ଘୃତକୁମାରୀ, କ୍ଷପୁରାଶି, ଗୌରୀ, ଚକ୍ଷୁମଧ୍ୟସ୍ଥ ପିତୁଳା ।

କନ୍ୟକାଜାତ—ପୁଂ. ବିଂ. ଅବିବାହିତ କନ୍ୟାର ଗର୍ଭଜାତ(ସନ୍ତାନ), ବି.କର୍ଣ୍ଣ, ବ୍ୟାସଦେବ, କାନୀନ ।

କନ୍ୟକାପତି—ପୁଂ.ବି.(୬ତତ୍)ଜାମାତା ।

କନ୍ୟଲା—ସ୍ତ୍ରୀ. ବି. (କନ୍ୟା+ଲା+ଅ+ଆ) କନ୍ୟା ।

କନ୍ୟସ—ପୁଂ.ବି. (କନ୍ୟ+ସୀ+କ.ଅ) କନିଷ୍ଠଭ୍ରାତା. (ବିଂ) ଅଧମ,ତନିଅଙ୍ଗୁଳି ପରିମାଣ ।

କନ୍ୟସା(ସୀ)—ସ୍ତ୍ରୀ. ବି. (କନ୍ୟସ+ଆ) କନିଷ୍ଠା ଭଗିନୀ ।

କନ୍ୟା—ସ୍ତ୍ରୀ. ବି. (କନ+ର୍ଯ, ଯ+ଆ) ଦଶମ ବର୍ଷୀୟା କୁମାରୀ, ଅବିବାହିତା ବାଳିକା, ଘିଅକୁଆଁରି, ବଡ଼ଅଳାଇଚ, ମହୌଷଧି ବିଶେଷ, ଚତୁରକ୍ଷରୀ ଛନ୍ଦବିଶେଷ, ଝିଅ, ଅଷାଢ଼ୁଆଗଛ, କନ୍ୟାରାଶି, ନବବିବାହିତା ବାଳିକା ।

କନ୍ୟାକର୍ତ୍ତା—ବି. ବିବାହରେ କନ୍ୟାସମ୍ପ୍ରଦାତା, ବିବାହରେ କନ୍ୟାପକ୍ଷର ଅଭିଭାବକ ।

କନ୍ୟାକାଳ—ପୁଂ.ବି.ଅବିବାହିତା ରହିବାର ନିୟମ କାଳ, ଦଶବର୍ଷ ପର୍ଯ୍ୟନ୍ତ ।

କନ୍ୟାକୁବ୍ଜ—ପୁଂ.ବି.(କନ୍ୟା+କୁବ୍ଜ) କାନ୍ୟକୁବ୍ଜ ଦେଶ ।

କନ୍ୟାକୁମାରୀ—ବି. କୁମାରିକା ଅନ୍ତରୀପ, କୁମାରିକା ଅନ୍ତରୀପରେ ପୂଜିତ ଦେବୀବିଶେଷ ।

କନ୍ୟାଗତ—ବିଂ.(୨ତତ୍) କନ୍ୟାଠାରେ ଦୃଷ୍ଟ ବା ଜାତ, କନ୍ୟାର ଅଧିକୃତ, କନ୍ୟାରାଶିରେ ଅବସ୍ଥିତ ।

କନ୍ୟାଗ୍ରହଣ—କ୍ଳୀ.ବି. (୬ତତ୍) ବିବାହ, କନ୍ୟାକୁ ବିବାହ କରିବା ।

କନ୍ୟାଟ—ପୁଂ.ବି. (କନ୍ୟା+ଅଟ୍+ଅ) ବାସଗୃହ, ନାରୀମାନଙ୍କର ବାସଗୃହ, ଅନ୍ଦର ମହଲ ।

କନ୍ୟାଦାତା—ପୁଂ.ବି.(କନ୍ୟା+ଦାତୃନ୍) କନ୍ୟାର ପିତା, (ବିଂ) ଯେ କନ୍ୟାଦାନ କରେ ।

କନ୍ୟାଦାନ—କ୍ଳୀ. ବି. (କନ୍ୟା+ଦାନ) ପାତ୍ରହସ୍ତେ କନ୍ୟାଦାନ, ବିଧିପୂର୍ବକ କନ୍ୟାସମ୍ପ୍ରଦାନ, ବିବାହବେଦୀରେ କନ୍ୟାଦାତାଙ୍କର କନ୍ୟାକୁ ବରହାତରେ ସମର୍ପଣରୂପ କର୍ମ ।

କନ୍ୟାଦାୟ—ବି. (କ.ଧା) କନ୍ୟା ଅବିବାହିତ ହୋଇ ଘରେ ରହିବା ଯୋଗୁଁ ପିତା ମାତାଙ୍କର କଷ୍ଟ ବା ସଙ୍କଟ ।

କନ୍ୟାଦୂଷକ—ପୁଂ.ବି.(କନ୍ୟା+ଦୂଷକ) ଯେଉଁ ପୁରୁଷ ଅବିବାହିତା ବାଳିକାକୁ ରମଣକରେ, ଯେ କୁମାରୀର ଅପବାଦ ଘଟାଏ ।

କନ୍ୟାଦୂଷଣ—କ୍ଳୀ. ବି. (୬ତତ୍) ଅବିବାହିତାସ୍ତ୍ରୀର ବ୍ୟଭିଚାର, କୁମାରୀର ଅପବାଦ ରଟନା କରିବା ।

କନ୍ୟାଧନ—କ୍ଳୀ. ବି. (କନ୍ୟା+ଧନ) ଅବିବାହିତା ସ୍ତ୍ରୀରଧନ, କନ୍ୟକାବସ୍ଥାରେ ଲବ୍ଧ ଧନ ।

କନ୍ୟାନ୍ତଃପୁର-କ୍ଳୀ. ବି. (କନ୍ୟା+ଅନ୍ତଃପୁର) ଅନ୍ତଃପୁରର ଯେଉଁ ସ୍ଥାନରେ ରାଜକୁମାରୀମାନେ ବାସ କରନ୍ତି ।

କନ୍ୟାପକ୍ଷ—ବି. (୬ତତ୍) ବିବାହ ଉତ୍ସବରେ ଯୋଗ ଦେଇଥିବା କନ୍ୟାପକ୍ଷର ବାନ୍ଧବଗଣ ।

କନ୍ୟାପାତ୍ର—ଗ୍ରା. ବି. ସ୍ତ୍ରୀ. ବିବାହାର୍ଥ ପ୍ରସ୍ତାବିତ ବା ସ୍ଥିରୀକୃତ କନ୍ୟା ।

କନ୍ୟାପାଳ—ପୁଂ.ବି.ପାଳନାମକବୈଶିକ ଜାତି, କନ୍ୟାରପତି, ଜାମାତା, (ବିଂ) କନ୍ୟାର ପ୍ରତିପାଳକ ।

କନ୍ୟାପ୍ରଦାନ—କ୍ଳୀ. ବି. କନ୍ୟାଦାନ (ଦେଖ) ।

କନ୍ୟାବ୍ରତସ୍ଥା—ସ୍ତ୍ରୀ. ବି. (କନ୍ୟା+ବ୍ରତ+ସ୍ଥା+ଅ+ଆ) ଋତୁମତୀ ସ୍ତ୍ରୀ ।

କନ୍ୟାଭର୍ତ୍ତା—ପୁଂ. ବି. କାର୍ତ୍ତିକେୟ, ଜାମାତା ।

କନ୍ୟାଭରଯା—ଗ୍ରା. ବି. ସ୍ତ୍ରୀ. ପୁରୁଷର ଦ୍ୱିତୀୟ ପକ୍ଷୀୟା ବା ତହିଁପର ସ୍ତ୍ରୀ ।

କନ୍ୟାମାଆ—ଗ୍ରା. ବି. ସ୍ତ୍ରୀ. ବିମାତା ।

କନ୍ୟାରତ୍ନ—କ୍ଳୀ.ବି. ଶ୍ରେଷ୍ଠକନ୍ୟା, ଅସାଧାରଣ ରୂପବତୀ ବା ଗୁଣବତୀ କନ୍ୟା ।

କନ୍ୟାରାଶି—ପୁଂ.ବି. ରାଶିବିଶେଷ, ଷଷ୍ଠରାଶି ।

କନ୍ୟାବେଦୀ-ପୁଂ.ବି.(କନ୍ୟା+ଆ+ବିଦ୍+ଇନ୍) ଜାମାତା ।

କନ୍ୟାଶାଶୁ—ଗ୍ରା. ବି. ସ୍ତ୍ରୀ. ନିଜର ସ୍ୱାମୀ ବା ସ୍ତ୍ରୀର ବିମାତା ।

କନ୍ୟାଶୁଳ୍କ—କ୍ଳୀ. ବି. କନ୍ୟାର ମୂଲ୍ୟ, କନ୍ୟାପିତା ବରଠାରୁ କନ୍ୟାର ମୂଲ୍ୟସ୍ୱରୂପ ଗ୍ରହଣ କରିବା ଧନ ।

କନ୍ୟାସମ୍ପ୍ରଦାନ—କ୍ଳୀ. ବି. (୬ତତ୍) କନ୍ୟାଦାନ, ବିବାହବେଦୀରେ କନ୍ୟାକର୍ତ୍ତା କନ୍ୟାକୁ ବରହାତରେ ସମର୍ପଣ ରୂପ କର୍ମ ।

କନ୍ୟାସ୍ୱୟମ୍ବର—କ୍ଳୀ. ବି. କନ୍ୟା କର୍ତ୍ତୃକ ସ୍ୱୟଂ ପତିଗ୍ରହଣ ।

କନ୍ୟାହରଣ—କ୍ଳୀ. ବି. କନ୍ୟାର ଅଭିଭାବକର ଅଜ୍ଞାତସାରେ ଅଥବା ତାଙ୍କ ଆଗରେ ବଳପ୍ରକାଶକରି କନ୍ୟାଗ୍ରହଣ ।

କପ୍—ଯା. ପିଆଲା, ଗିନା, କ୍ରିକେଟ ଓ ଫୁଟବଲ ମ୍ୟାଚରେ ଜିତିବା ଦଳକୁ ସମ୍ମାନାର୍ଥ ଉପହାର ଦିଆଯିବା ପାତ୍ର ।

କପ୍‌କପ୍—ଗ୍ରା.ଅବ୍ୟ. ଘା ଓ ବିଥ ପ୍ରଭୃତି ବିଆଇବା ପୀଡ଼ାସୂଚକ ଶବ୍ଦାନୁକରଣ ।

କପ—ପୁଂ. ବି. (କ+ପା+ଅ) ବରୁଣ ଦେବ, ଅସୁରବିଶେଷ, (ବିଂ) ଜଳପାୟୀ ।

କପଟ-ପୁଂ.କ୍ଳୀ.ବି.(କ.+ପଟ+କ.ଅ) ଶଠତା, ବଞ୍ଚନା, ମାୟା, ମିଥ୍ୟାବ୍ୟବହାର, ଛଳ, ଜନୁଦେବୀଙ୍କପୁତ୍ର ବିଶେଷ, (ବିଂ) କପଟୀ ।

କପଟକମଲ-ପୁଂ.ବି.(କ+ପଟ୍+ଅ+କମଲ) ମାୟାମୃଗ ।

କପଟଚାରୀ—ତ୍ରି.ବିଂ. (କପଟ+ଚର୍+ଇନ୍) ଯେ କପଟ ବ୍ୟବହାର କରେ, ଛଦ୍ମବେଶୀ, କାପଟିକ, (ସ୍ତ୍ରୀ) କପଟଚାରିଣୀ ।

କପଟତା—ସ୍ତ୍ରୀ. ବି. (କପଟ+ତ+ଆ) କପଟଭାବ, ଛଳନା, ପ୍ରତାରଣା ।

କପଟତାପସ—ପୁଂ. ବି. କପଟସନ୍ନ୍ୟାସୀ, ବିଡ଼ାଳବୈଷ୍ଣବ, ଯେ ତପସ୍ୱୀ ବୋଲି ଦେଖାଇ ହୁଏ ।

କପଟଧାରୀ—ପୁଂ. ବିଂ. (କପଟ+ଧୃ+ଇନ୍) କପଟଯୁକ୍ତ ।

କପଟପଟୁ—ତ୍ରି. ବିଂ.(୭ତତ୍)ପ୍ରତାରଣା କରିବାରେ ଯେ ନିପୁଣ, ଐନ୍ଦ୍ରଜାଲିକ, ଇନ୍ଦ୍ରଜାଲକାରୀ ।

କପଟପାଶା—ଗ୍ରା.ବି. ଯୁଧିଷ୍ଠିରଙ୍କ ସଙ୍ଗେ ଦୁର୍ଯ୍ୟୋଧନ ଖେଳିଥିବା ଛଳଦ୍ୟୁତକ୍ରୀଡ଼ା, ଭୀମାଧୀବର ରଚିତ କୁରୁପାଣ୍ଡବଙ୍କର ଛଳଦ୍ୟୁତକ୍ରୀଡ଼ା ବିଷୟକ ଗ୍ରନ୍ଥବିଶେଷ

କପଟପ୍ରବନ୍ଧ—ପୁଂ.ବି. (କ.ଧା) କପଟ-ଭାବ, ଛଳ, ଛଳନା, ପ୍ରତାରଣା ।
କପଟବେଶ—ବି.ଛଦ୍ମବେଶ,(ବିଂ)କପଟ-ବେଶୀ ।
କପଟବେଶଧାରୀ—ପୁଂ. ବିଂ.କପଟବେଶୀ (ଦେଖ) ।
କପଟବେଶୀ—ପୁଂ.ବିଂ.(କପଟବେଶ+ଇନ୍) ଛଦ୍ମବେଶୀ ବହୁରୂପୀ ।
କପଟଲେଖ୍ୟ—ବି. (ମଧ୍ୟ. କ.ଧା) ଜାଲ ଦଲିଲ ।
କପଟିଆ—ଗ୍ରା.ପୁଂ.ବିଂ.କପଟୀ (ବ୍ୟକ୍ତି), କପଟଯୁକ୍ତ (କାର୍ଯ୍ୟ) ।
କପଟିକ—ବି.ବିଂ.(କପଟ+ଇକ)କପଟ ବିଶିଷ୍ଟ, ପ୍ରତାରଣାପୂର୍ଣ୍ଣ, କପଟୀ ।
କପଟିନୀ—ସ୍ତ୍ରୀ.ବି.(କପଟ+ଇନ୍+ଈ) ଗନ୍ଧଦ୍ରବ୍ୟବିଶେଷ ।
କପଟୀ—ସ୍ତ୍ରୀ.ବି.(କପଟ+ଈ)ପରିମାଣ-ବିଶେଷ, ପୁଂ. ବିଂ. (କପଟ+ଇନ୍) ପ୍ରତାରକ, ଠକ, ଧୂର୍ତ୍ତ, ଅନ୍ତର୍ଭାବ-ଗୋପନକାରୀ ।
କପଟେଶ୍ୱରୀ—ସ୍ତ୍ରୀ. ବି.ଶ୍ୱେତ କଣ୍ଟକାରୀ ।
କପଡ଼ା—ଗ୍ରା.ବି. (ସଂ—କର୍ପଟ) ଲୁଗା, ବସ୍ତ୍ର ।
କପଡ଼ାଛଣା—ଗ୍ରା. ବି. କନାରେ ଛଣା-ହୋଇଥିବା ଗୁଣ୍ଡ ପଦାର୍ଥ ।
କପଡ଼ାଛଡ଼ା—ଗ୍ରା. ବି. କନାଛଡ଼ା ।
କପଡ଼ାଲତା—ଗ୍ରା. ବି. ଲୁଗାପଟା ।
କପନ—ପୁଂ.ବି (କପ୍+ଅନ) କମ୍ପନ, ଘୁଣ୍ଡିଆଦି କୀଟବିଶେଷ ।
କପର୍ଦ୍ଦ—ପୁଂ. ବି. (କ+ପୃ+ଦ)ଶିବ-ଜଟା, କଉଡ଼ି, ବରାଟକ ।
କପର୍ଦ୍ଦକ-ପୁଂ.ବି.(କପର୍ଦ୍ଦ+କ)କଉଡ଼ି, ପଇସା ।
କପର୍ଦ୍ଦିନୀ—ସ୍ତ୍ରୀ.ବିଂ. ଜଟାଧାରିଣୀ, (ବି) ଶିବପତ୍ନୀ, ପାର୍ବତୀ ।
କପର୍ଦ୍ଦିଯାନ—ବି.(୬ତତ୍ପୁ) ବୃଷଭ,ଶିବ-ବାହନ ।
କପର୍ଦ୍ଦୀ-ପୁଂ.ବି.(କପର୍ଦ୍ଦ+ଇନ୍)ମହା-ଦେବ, ଶିବ (ବିଂ) ଜଟାଯୁକ୍ତ ।
କପର୍ଦ୍ଦୀଶ—ପୁଂ. ବି. କାଶୀସ୍ଥ ଶିବଲିଙ୍ଗ ବିଶେଷ ।
କପା—ବି.(କାର୍ପାସ ଶବ୍ଦଜ) ତୁଳାବୃକ୍ଷ, ତୁଳା, ସମସ୍ତ ସମୟରେ ଦେଖାଯିବା ନଖର ଝିପିଝିପି ଧଳାଚକ୍ଷୁ ।
କପାଖାଇ—ଗ୍ରା.ବି.ଯେଉଁ ଖାଇ ବାଯନ୍ତ୍ର ଦ୍ୱାରା ମଞ୍ଜି ଯୁକ୍ତ କପାଫୁଟରୁ ମଞ୍ଜି ଅଲଗା କରାଯାଏ ।
କପାଟ—ବି.(କ+ପଟ୍+ଣିଚ୍+କ.ଅ) କବାଟ, ଦ୍ୱାରର ଆବରଣ ।
କପାଟଘ୍ନ—ପୁଂ.ବି. (କପାଟ+ହନ+କ.ଅ) ହସ୍ତୀ, ଚୌର । [କବାଟ ।
କପାଟିକା—ବି. (କପାଟ+କ+ଆ)
କପାଟୋଦ୍‌ଘାଟନ—କ୍ଲୀ. ବିଂ କବାଟ ଖୋଲିବା ।
କପାତୂଳା-ଗ୍ରା.ବି. କପାଠାରୁ ବାହାରିବା ତୂଳା ।
କପାଫୁଟ—ଗ୍ରା.ବି. କପାବକଡ଼ା ମଧ୍ୟରେ ଥିବା ମଞ୍ଜିଯୁକ୍ତ କପା ।
କପାଳ—ପୁଂ. କ୍ଲୀ.ବି.(କ+ପାଳ+ଅ) ମସ୍ତକର ଅସ୍ଥି, ଖପୁରି, ଲଲାଟ ଦେଶ, ଭାଗ୍ୟ,କଳସଅର୍ଦ୍ଧାଂଶ,ଭିକ୍ଷାପାତ୍ର,ମୃତ୍ତିକା ପାତ୍ର, କୁଷ୍ଠରୋଗବିଶେଷ, ଯଜ୍ଞୀୟ ଘୃତ ସମୂହ, (ବିଂ) କପାଳିଆ ।
କପାଳକୋର—ଗ୍ରା.ବି.ସୌଭାଗ୍ୟ, ଭାଗ୍ୟ ପ୍ରସନ୍ନ ହେବା ।
କପାଳପାଣି—ବି. ବିଂ. (ବ.ବ୍ରୀ) ଯେ ଲଲାଟରେ ହାତ ଦେଇଅଛି ।
କପାଳଫଟା—ଗ୍ରା.ପୁଂ. ବିଂ. ହତଭାଗ୍ୟ, କର୍ମହୀନ, ହତଭାଗ୍ୟ କରିବାକୁ ସମର୍ଥ ।
କପାଳଫାଟିବା—ଗ୍ରା.ବି.ଦୁର୍ଦ୍ଦଶା ଘଟିବା, ଦୁରଦୃଷ୍ଟ ।
କପାଳବନ୍ତ—ଗ୍ରା.ବିଂ. ଭାଗ୍ୟବାନ୍, (ସ୍ତ୍ରୀ) କପାଳବନ୍ତୀ ।
କପାଳଭୃତ୍—ପୁଂ.ବି.(କପାଳ+ଭୃ+କ.କ୍ୱିପ୍) ଶିବ, ଭିକ୍ଷୁକ, (ବିଂ) ନର-କପାଳଧାରୀ ।
କପାଳମାଳିନୀ—ସ୍ତ୍ରୀ.ବି.(କପାଳ+ମାଳା+ଇନ୍+ଈ) ଦୁର୍ଗା, କାଳୀ ।
କପାଳମାଳୀ—ପୁଂ.ବି.(କପାଳ+ମାଳା+ଇନ୍) ଶିବ ।
କପାଳମୋଚନ—କ୍ଲୀ.ବି.(କପାଳ+ମୁଚ+ଅନ) କାଶୀସ୍ଥ ତୀର୍ଥବିଶେଷ ।
କପାଳରେ କରମାରିବା-ଗ୍ରା.କ୍ରି.ଅତ୍ୟନ୍ତ ଦୁଃଖିତ ହୋଇ ମୁଣ୍ଡରେ ହାତ ବାଡ଼େ-ଇବା, କର୍ମ ଆଦର ଦୁଃଖ ସହିବା ।
କପାଳଲିଖନ—ଗ୍ରା.ବି. (୬ତତ୍ପୁ) ଅଦୃଷ୍ଟ ଲେଖନ, ଯାହା ଭୋଗ କରିବାକୁ କପାଳରେ ବିଧାତା ଲେଖିଥାଏ ।
କପାଳଶିର—ପୁଂ.ବି. (କପାଳ+ଶିରଃ) (ବ.ବ୍ରୀ) ମହାଦେବ ।
କପାଳସନ୍ଧି—ପୁଂ.ବି. (କ.ଧା) ମସ୍ତକା-ସ୍ଥିରେ ଯେଉଁ ସକଳ ମିଳନ ସ୍ଥାନଅଛି ।
କପାଳହୀନ-ପୁଂ.ବିଂ.(ବ.ବ୍ରୀ)ହତଭାଗ୍ୟ, (ସ୍ତ୍ରୀ) କପାଳହୀନା ।
କପାଳି—ପୁଂ.ବି. (କ+ପାଳ+ଇ) ମହାଦେବ ।
କପାଳିଆ (ଆ)—ପୁଂ.ବିଂ. ଅଦୃଷ୍ଟବନ୍ତ, ଭାଗ୍ୟବନ୍ତ ।
କପାଳିକା—ସ୍ତ୍ରୀ.ବି.(କପାଳ+ଇକ+ଆ) ଖପରା, କ୍ଷୁଦ୍ରକପାଳ, ଦାନ୍ତ ଉପରେ ଥିବା ଶୁକ୍ଳଆବରଣ,ଦନ୍ତରୋଗବିଶେଷ ।
କପାଳିନୀ—ସ୍ତ୍ରୀ.ବିଂ.ଖର୍ପରଧାରିଣୀ, ଭାଗ୍ୟ ବତୀ, (ବି) ଦୁର୍ଗା ।
କପାଳୀ—ପୁଂ. ବି. (କପାଳ+ଇନ୍) ଶିବ,(ସ୍ତ୍ରୀ) ଦୁର୍ଗା, (ବିଂ) କପାଳବନ୍ତ ।
କପାଳେ ନଥିଲେ ଭୂପାଳେ ନ ଦିଅନ୍ତ—ଗ୍ରା.(ପ୍ରବଚନ)ଯେବେ ଭୋଗ କରିବାକୁ ଆପଣା କର୍ମରେ ନଥାଏ, ତାହାହେଲେ ରାଜା ଦେଲେ ମଧ୍ୟ ତାହା ଭୋଗ ହୋଇ ପାରେ ନାହିଁ ।
କପାଳେଶ୍ୱର—ପୁଂ. ବି. ଶିବଲିଙ୍ଗ-ବିଶେଷ,(ସ୍ତ୍ରୀ) କପାଳେଶ୍ୱରୀ ।
କପାସିଆ—ଗ୍ରା.ବି. (ସଂ—କାର୍ପାସ)ଏକ ପ୍ରକାର ଗୁଳ୍ମଜାତୀୟ ବୃକ୍ଷ ।
କପି—ପୁଂ. ବି. (କପ+ଇ) ବାନର, ମଧୁସୂଦନ,କରଞ୍ଜବିଶେଷ, ରକ୍ତଚନ୍ଦନ,

ବଗ୍ରହ, ପିଙ୍ଗଳବର୍ଣ୍ଣ, ଆମଳକୀ, ଗନ୍ଧବ ବିଶେଷ, ଶିଳାରସ, (ଇଂ) ନକଲ କରିବା ।
କପିକଚ୍ଛୁ—ସ୍ତ୍ରୀ.ବି.ବୃକ୍ଷବିଶେଷ,ବାଇଡଙ୍କ ।
କପିକଚ୍ଛୁର—ସ୍ତ୍ରୀ. ବି. ବାଇଡଙ୍କ ।
କପିକନ୍ଦୁକ—କ୍ଲୀ. ବି. ମସ୍ତକର ଅସ୍ଥି, ଖପୁରି ।
କପିକା—ସ୍ତ୍ରୀ. ବି. ନୀଳସିନ୍ଧୁରୀ ବୃକ୍ଷ.ନୀଳ ବେଗୁନିଆ ଗଛ ।
କପିକେତନ—ପୁଂ. ବି. (ବ.ବ୍ରୀ) ଅର୍ଜୁନ, କପି ଚିହ୍ନିତ ଧ୍ୱଜ, ଅର୍ଜୁନରଥ ।
କପିକୋଲ—ପୁଂ. ବି. କୋଲବିଶେଷ ।
କପିଚୂଡ଼ା—ସ୍ତ୍ରୀ. ବି. ଆମ୍ବଡ଼ା ଗଛ ।
କପିଜ—ପୁଂ. ବି. (କପି+ଜନ୍+ଅ) ଶିଳାରସ, (ବିଂ) ବାନରଜାତ ।
କପିଜଙ୍ଘିକା—ସ୍ତ୍ରୀ. ବି. ତୈଳପିପିଲିକା, ଅସରପା ପୋକ ।
କପିଞ୍ଜଳ—ପୁଂ.ବି. (କ+ପିଜ୍ଜ+ଲ) ଗୃଡକପକ୍ଷୀ, ତିତିରପକ୍ଷୀ, ଋଷିକୁମାର-ବିଶେଷ ।
କପିତନ୍ଦୁକ—ବି. ମାଙ୍କଡ଼କେନ୍ଦୁ ।
କପିତୈଳ—କ୍ଲୀ. ବି. ଶିଳାରସ ।
କପିତ୍ଥ—ପୁଂ. ବି. (କପି+ସ୍ଥ+ଅ) କଇଥ,ଗଛବିଶେଷ, କଇଥ ଫଳ ।
କପିତ୍ଥତ୍ୱକ୍—କ୍ଲୀ.ବି. ( କ.ଧା. ) ଏଲବାଳୁକ ।
କପିତ୍ଥାଷ୍ଟକ—କ୍ଲୀ.ବି ଅତିସାର ରୋଗର ଔଷଧ ବିଶେଷ ।
କପିତ୍ଥାସ୍ୟ—ପୁଂ. ବି. ବାନରବିଶେଷ, ମୃଗବିଶେଷ ।
କପିଧ୍ୱଜ—ପୁଂ.ବି. (ବ.ବ୍ରୀ) ଅର୍ଜୁନ ।
କପିନାମା—ପୁଂ. ବି. (ବ.ବ୍ରୀ)ଶିଳାରସ
କପିପିପ୍ପଳୀ—ସ୍ତ୍ରୀ.ବି. ରକ୍ତ ଅପାମାର୍ଗ, ସୂର୍ଯ୍ୟାବର୍ତ୍ତ ବୃକ୍ଷ । [ଅପାମାର୍ଗ ।
କପିପ୍ରଭା—ସ୍ତ୍ରୀ.ବି. (ବ.ବ୍ରୀ) ଆଲକୁଶୀ,
କପିପ୍ରଭୁ—ପୁଂ. ବି. (୬ତତ୍) ରାମଚନ୍ଦ୍ର, ବାଲି, ସୁଗ୍ରୀବ ।
କପିପ୍ରିୟ—ପୁଂ.ବି. (କପି+ପ୍ରିୟ)କଇଥ ଗଛ, ଆମ୍ବଡ଼ା ଗଛ ।
କପିବକ୍ତ୍ର—ପୁଂ. ବି. ଦେବର୍ଷି ନାରଦ ।
କପିବଲ୍ଲୀ—ବି. ଗଜପିପ୍ପଳୀ ।
କପିଭକ୍ଷ—ବିଂ. ବିଂ. ବାନରମାନଙ୍କର ଭକ୍ଷ୍ୟଦ୍ରବ୍ୟ,କଦଳୀ,ବାଇଗଣଇତ୍ୟାଦି ।
କପିରକ—ପୁଂ.ବି. (କପିଳ+କ. ଲର-ଇତ୍ୱ) କପିଳ ବର୍ଣ୍ଣ, ପିଙ୍ଗଳବର୍ଣ୍ଣ ।
କପିରଥ—ପୁଂ.ବି. (କପି+ରଥ)(ବ.ବ୍ରୀ) ରାମଚନ୍ଦ୍ର, ଅର୍ଜୁନ ।
କପିରୋମଫଳା—ସ୍ତ୍ରୀ. ବି. ( କ.ଧା ) ବାଇଡଙ୍କ ।
କପିଳ—ପୁଂ. ବି. (କପ+ଇଲ)ପିଙ୍ଗଳ ବର୍ଣ୍ଣ, ଅଗ୍ନି, କୁକୁର, ମହାଦେବ, ବିଷ୍ଣୁ, ସର୍ପବିଶେଷ, ଦାନବବିଶେଷ, ବରୁଣ ବୃକ୍ଷ, ବ୍ରାହ୍ମଣ ସମ୍ପ୍ରଦାୟବିଶେଷ, ସ୍ୱନାମଖ୍ୟାତ ମୁନିବିଶେଷ,(ବିଂ) ପିଙ୍ଗଳ ବର୍ଣ୍ଣ ଯୁକ୍ତ ।
କପିଳକ—ବିଂ. ବି. କର୍ମାନ୍ୱିତ, (ବି.ପୁଂ) ପିଙ୍ଗଳ ବର୍ଣ୍ଣ ।
କପିଳକ୍ଷେତ୍ର—ନର୍ମଦା ଓ ମହାସାଗର ମଧ୍ୟବର୍ତ୍ତୀ ଉପକୂଳ ।
କପିଳଗଙ୍ଗିକା—ସ୍ତ୍ରୀ. ବି. କାମରୂପସ୍ଥ ନଦୀ ବିଶେଷ ।
କପିଳଦେବ—ପୁଂ. ବି. ସାଂଖ୍ୟ ଶାସ୍ତ୍ର ବିଶେଷର ପ୍ରଣେତା ।
କପିଳଦ୍ୟୁତ—ପୁଂ. ବି. (ବ.ବ୍ରୀ) ସୂର୍ଯ୍ୟ, (କ.ଧା) ପିଙ୍ଗଳବର୍ଣ୍ଣ ।
କପିଳଦ୍ରାକ୍ଷା—ସ୍ତ୍ରୀ. ବି. ଦ୍ରାକ୍ଷାବିଶେଷ, କିସ୍‌ମିସ୍ ।
କପିଳଦ୍ରୁମ—ପୁଂ. ବି. କାଷ୍ଠନାମକ ସୁଗନ୍ଧ କାଷ୍ଠ ବୃକ୍ଷ ।
କପିଳଧାରା—ସ୍ତ୍ରୀ.ବି. ଗଙ୍ଗାତୀର୍ଥ ବିଶେଷ, କପିଳା ଗାଈର ଦୁଗ୍ଧଧାରା ।
କପିଳଫଳା—ସ୍ତ୍ରୀ.ବି. (ବ.ବ୍ରୀ) ଦ୍ରାକ୍ଷା ।
କପିଳବାସ୍ତୁ—କ୍ଲୀ. ବି. ନଗର ବିଶେଷ, ବୁଦ୍ଧଦେବଙ୍କର ଜନ୍ମସ୍ଥାନ ।
କପିଳ ମତ—କ୍ଲୀ. ବି. କପିଳ ମୁନିଙ୍କ ମତ, ସାଂଖ୍ୟ ଦର୍ଶନର ମତ ।
କପିଳମୁନି—ପୁଂ. ବି. ଋଷି ବିଶେଷ ।
କପିଳଶିଂଶପା—ସ୍ତ୍ରୀ. ବି. ( କର୍ମଧା ) ଶିଂଶପା ବୃକ୍ଷ, ଯେଉଁ ଶିଶୁଗଛର କାଠ ଓ ଫୁଲ କପିଳ ବର୍ଣ୍ଣ । [ବିଶେଷ ।
କପିଳସଂହିତା—ସ୍ତ୍ରୀ. ବି. ଉପପୁରାଣ-
କପିଳ ସୂତ୍ର—ସ୍ତ୍ରୀ. ବି. ସାଂଖ୍ୟ ଶାସ୍ତ୍ର ।
କପିଳା—ସ୍ତ୍ରୀ.ବି. ( କପିଳ+ଅ+ଆ) ସ୍ୱର୍ଣ୍ଣବର୍ଣ୍ଣ ଗାଈ ବିଶେଷ, ଦକ୍ଷକନ୍ୟା, ଗୃହକନ୍ୟା, ଶୃଆଳଇ, ଘିଅକୁଆଁରୀ, ଜୋକ, କାମଧେନୁ,ଶିଂଶପା,ରାଜରୀତ, କାମରୂପସ୍ଥ ନଦୀବିଶେଷ, ପୁଣ୍ଡରୀକ ନାମ ଦିଗ୍‌ଗଜର ପତ୍ନୀ,ରେଣୁକା ନାମକ ଗନ୍ଧଦ୍ରବ୍ୟ ବିଶେଷ, (ବିଂ) କପିଳବର୍ଣ୍ଣ-ଯୁକ୍ତ ।
କପିଳାଗୃଷ୍ଟି—ପୁଂ.ବି. କପିଳଋଷି,ବିଷ୍ଣୁ ।
କପିଳାଞ୍ଜନ—ପୁଂ. ବି. (ବ.ବ୍ରୀ) ଶିବ, ମହାଦେବ ।
କପିଳାବଟ—ପୁଂ. ବି. ତୀର୍ଥ ବିଶେଷ ।
କପିଳାଶ—ଗ୍ରା.ବି. ମହାଦେବଙ୍କ ନିବାସ ସ୍ଥଳ, ଓଡ଼ିଶା ଢେଙ୍କାନାଳ ରାଜ୍ୟସ୍ଥ ପର୍ବତ ବିଶେଷ ।
କପିଳାଶ୍ୱ—ପୁଂ.ବି. (କପିଳ+ଅଶ୍ୱ)ଇନ୍ଦ୍ର ରାଜବିଶେଷ, ପିଙ୍ଗଳ ବର୍ଣ୍ଣର ଘୋଡ଼ା, ସୂର୍ଯ୍ୟବଂଶୀୟ କପିଳାଶ୍ୱଙ୍କ ପୁତ୍ର ।
କପିଳାସଙ୍ଗମ—କପିଳା ଓ ନର୍ମଦା ନଦୀର ସଙ୍ଗମ ସ୍ଥାନ ।
କପିଳାହ୍ରଦ—ପୁଂ.ବି. ତୀର୍ଥବିଶେଷ ।
କପିଳୀ—ନଦୀ ବିଶେଷ ।
କପିଳେନ୍ଦ୍ରଦେବ—ଉତ୍କଳର ଏକଜଣ ପ୍ରସିଦ୍ଧ ରାଜା । [ବିଶେଷ ।
କପିଳେଶ—କ୍ଲୀ. ବି. କାଶୀସ୍ଥ ଶିବଲିଙ୍ଗ
କପିଳେଶ୍ୱର—କପିଳେଶ୍ୱର ଠାକୁର ଥିବା ଭୁବନେଶ୍ୱର ନିକଟରେ ଗୋଟିଏ ପ୍ରାଚୀନ ଗ୍ରାମ । [ଗନ୍ଧଦ୍ରବ୍ୟ ।
କପିଳୋମା—ସ୍ତ୍ରୀ. ବି. ରେଣୁକା ନାମକ
କପିଳୋହ—କ୍ଲୀ. ବି. (କପିଳ+ଲୋହ) ପିତ୍ତଳ ଧାତୁବିଶେଷ, ଉପଧାତୁବିଶେଷ ।
କପିଶ—ପୁଂ. ବି. ( କପି+ଶ) ନୀଳ ପୀତ ମିଶ୍ରିତ ବର୍ଣ୍ଣ, ମାଟିଆ ରଙ୍ଗ,ଶିବ

ଶିଳାରସ, ମଦ୍ୟବିଶେଷ, ଜନପଦ-ବିଶେଷ, (ବିଂ) ମାଟିଆବର୍ଣ୍ଣଯୁକ୍ତ, ପାଉଁଶିଆବର୍ଣ୍ଣବିଶିଷ୍ଟ ।

କପିଶା—ସ୍ତ୍ରୀ. ବି. (କପିଶ+ଆ) ମଦ୍ୟ-ବିଶେଷ, ମାଧବୀ ଲତା, ନଦୀ ବିଶେଷ, ପିଶାଚ ମାତା ।

କପିଶାଞ୍ଜନ—ପୁଂ. ବି. (ବଂ.ବ୍ରୀ) ଶିବ ।

କପିଶାପୁତ୍ର—ପୁଂ. ବି. ପିଶାଚ ।

କପିଶାସ୍ୟନ—ପୁଂ. ବି. ଦେବତା, ମଦ୍ୟ-ବିଶେଷ ।

କପିଶୀ—ସ୍ତ୍ରୀ. ବି. (କପିଶ+ଈ)ମାଧବୀ ଲତା, ମଦ୍ୟବିଶେଷ, ମଦିରା ।

କପିଶୀର୍ଷକ—କ୍ଳୀ. ବି. ( କପି+ଶୀର୍ଷକ ) ହିଙ୍ଗୁଳ, ପ୍ରାଚୀରର ଅଗ୍ରଭାଗ ।

କପିତକ—ବି. ( କପି+ତକ ) ଦାରୁ ହରିଦ୍ରା ।

କପିତନ—ବି. ( କପି+ତନ+ଅ ) ଗର୍ଦ୍ଦଭାଣ୍ଡ ବୃକ୍ଷ, ଫାରସୀ କୋଳି ଓ ଗଛ, ଶିରୀଷ, ଅଶ୍ୱତ୍ଥ, ବେଲଗଛ, ଆମ୍ବଡ଼ାଗଛ, ଗନ୍ଧପିପ୍‌ପଳୀ, ପ୍ରସାରଣୀ ଲତା, ଗୁଆଗଛ ।

କପିବାନ୍—ପୁଂ.ବି. ବଶିଷ୍ଠଋଷିଙ୍କର ପୁତ୍ର

କପୀନ୍ଦ୍ର—ପୁଂ.ବି.(କପି+ଇନ୍ଦ୍ର)ହନୁମାନ୍, ବାଳି, ସୁଗ୍ରୀବ, ବିଷ୍ଣୁ ।

କପୀଷ୍ଟ—ପୁଂ. ବି. କଇଥ, ରାଜାଦନୀ ବୃକ୍ଷ ।

କପୁଚ୍ଛଳ—କ୍ଳୀ.ବି. (କ+ପୁଚ୍ଛ+ଲା+ଅ) କେଶଚୂଡ଼ା,ସ୍ତବର ଅଗ୍ରସ୍ଥାନ ।

କପୁଷ୍ଟିକା—ବି. (କ+ପୁଷ୍ଟି+କ+ଆ) ମସ୍ତକର ଉଭୟପାର୍ଶ୍ୱସ୍ଥ କେଶସମୂହ ।

କପୂୟ—ବି.ବିଂ. ( କ+ପୂୟ+ଅ ) କୁତ୍ସିତ, ଦୁର୍ଗନ୍ଧ ।

କପୂର—ଗ୍ରା. ବି. କର୍ପୂର, ଭୀମ୍ବର ।

କପୂରକାନ୍ତ—ଗ୍ରା. ବି. ଏକ ପ୍ରକାର କର୍ପୂର, ସୁଗନ୍ଧଯୁକ୍ତ ପାନ, ଏକପ୍ରକାର ଧାନ ।

କପୂରଦାନା—ଗ୍ରା. ବି. କର୍ପୂର ପରି ବାସିବା ଏକ ପ୍ରକାର ମସଲା ।

କର୍ପୂରମାଳୀ—ଗ୍ରା. ବି. କର୍ପୂର ବା ଭୀମ୍ବରର ଗୁଳରେ ତିଆରି ହୋଇଥିବା ଏକ ପ୍ରକାର ମାଳୀ ।

କପୂରୀ—ଗ୍ରା.ବି. ହଳଦୀ ପରି ଏକପ୍ରକାର ମୂଳ, ଆମ୍ବକସି ଅଦା ।

କପୃଥ୍—ବି.ବିଂ. (କୁ+ପୃଥ୍+କ୍ୱିପ୍) କୁତ୍ସିତ ପ୍ରକାଶକ ।

କପୋତ—ପୁଂ. ବି. ( କ+ପୋତ ) ପାରା, ( ସ୍ତ୍ରୀ ) କପୋତୀ, କାବତ, ଚଢ଼େଇ, ପକ୍ଷୀ ।

କପୋତକ—ପୁଂ. ବି. (କପୋତ+କ) କପୋତ,ସୌବୀରାଞ୍ଜନ(ସ୍ତ୍ରୀ) କପୋତିକା

କପୋତଚରଣା—ସ୍ତ୍ରୀ. ବି. ନଳୀନାମକ ଗନ୍ଧଦ୍ରବ୍ୟ, କ୍ଷୀରକା, କପୋତର ପାଦ ।

କପୋତପାକ—ପୁଂ. ବି. ( ୬ତତ୍ ) ପାରାର ଶିଶୁ, କାବତ ଛୁଆ ।

କପୋତପାଳୀ (କା)—ପାରାର ବସା, ବିଟଙ୍କ, ପାରାଭାଡ଼ି, ଚଢ଼ଆଖାନା ।

କପୋତବଙ୍କା—ସ୍ତ୍ରୀ. ବି. ଆଲକୁଶି, ବ୍ରାହ୍ମୀଶାକ ।

କପୋତବର୍ଣ୍ଣୀ—ସ୍ତ୍ରୀ.ବି.ଛୋଟ ଅଳାଇଚ ।

କପୋତବଲ୍ଲୀ—ସ୍ତ୍ରୀ. ବି. ବ୍ରାହ୍ମୀଶାକ ।

କପୋତବୃତ୍ତି—ବି. (୬ତତ୍) ସଞ୍ଚୟଶୂନ୍ୟ ଜୀବିକା, ଭବିଷ୍ୟତ ପାଇଁ ଖାଦ୍ୟ ସଞ୍ଚୟ ନ କରି ପ୍ରତିଦିନ ଯାହା ମିଳେ ତାହା ଖାଇବା ରୀତି ।

କପୋତବାଣୀ—ସ୍ତ୍ରୀ. ବି. ନଳୀ ନାମକ ଗନ୍ଧଦ୍ରବ୍ୟ ବିଶେଷ ।

କପୋତସାର—କ୍ଳୀ.ବି. ଅଞ୍ଜନ ବିଶେଷ ।

କପୋତହସ୍ତ—କ୍ଳୀ. ବି. ପୂଜା ସମୟେ ହାତ ଯୋଡ଼ିବା ।

କପୋତାକ୍ଷ—ପୁଂ. ବି. (ବ. ବ୍ରୀ) ବଙ୍ଗ ଦେଶର ନଦ ବିଶେଷ ।

କପୋତାଙ୍ଘ୍ରି—ସ୍ତ୍ରୀ. ବି. ନଳୀ ନାମକ ଗନ୍ଧଦ୍ରବ୍ୟ (ପୁଂ) ପାରାର ପାଦ ।

କପୋତାଞ୍ଜନ—ବି. ସୌବୀରାଞ୍ଜନ ।

କପୋତାଭ—ପୁଂ. ବି. କପୋତବର୍ଣ୍ଣ, ମୂଷିକ ବିଶେଷ ।

କପୋତାରି—ପୁଂ.ବି.(କପୋତ+ଅରି) ଶ୍ୟେନ ପକ୍ଷୀ, ବାଜପକ୍ଷୀ, ଚିଲ,ଛଞ୍ଚାଣ ।

କପୋତେଶ୍ୱର—ପୁଂ. ବି. ମହାଦେବ, ପୁରୀ ନଗରର ପଶ୍ଚିମରେ କିଛିଦୂରରେ ଥିବା ଶିବ ମୂର୍ତ୍ତିଙ୍କ ନାମ (ସ୍ତ୍ରୀ) କପୋତେଶ୍ୱରୀ, ଦୁର୍ଗା ।

କପୋଳ—ପୁଂ. ବି. (କ+ପୋଲ+ଅ) ଗଣ୍ଡସ୍ଥଳ, ଗାଲ ।

କପୋଳକଳ୍ପନା—ସ୍ତ୍ରୀ. ବି. (କପୋଳ+କଳ୍ପନା) ମିଥ୍ୟା ଗଳ୍ପ, ମନଗଢ଼ା ଭାବ, ଅସାର ପ୍ରଳାପ, (ବିଂ) କପୋଳ କଳ୍ପିତ ।

କପୋଳକଳ୍ପିତ—ବିଂ. (କପୋଳ+କଳ୍ପିତ) ମନଗଢ଼ା, ଯାହାର ଅସ୍ତିତ୍ୱ ନାହିଁ । କେବଳ କଳ୍ପନାଦ୍ୱାରା ବର୍ଣ୍ଣିତ ।

କପୋଳ ଦେଶ—ପୁଂ. ବି. ( କ.ଧା ) ଗଣ୍ଡଦେଶ, ଗାଲ ।

କପୋଳଫଳକ—ପୁଂ.ବି.ବିସ୍ତୃତ କପାଳ ।

କପୋଳ ଭିତ୍ତି—ସ୍ତ୍ରୀ.ବି.ବିସ୍ତୃତ କପାଳ ।

କପୋଳରାଗ—ବି.(୬ତତ୍) ଗଣ୍ଡଦେଶର ରକ୍ତିମା ।

କପୋଳୀ—ସ୍ତ୍ରୀ. ବି. ଜାନୁର ଅଗ୍ରଭାଗ ।

କପ୍ୟାଶ୍ୟ—କ୍ଳୀ. ବି. ବାନର, ମାଙ୍କଡ଼ ।

କପ୍ୟାସ—କ୍ଳୀ.ବି. ମାଙ୍କଡ଼ମାନଙ୍କରପିଠିର ପ୍ରାନ୍ତଭାଗ, କପିର ଗୁଦ ପ୍ରଦେଶ ।

କଫ—ପୁଂ. ବି. (କ+ଫଲ+କ.ଅ) ଶରୀରସ୍ଥ ଧାତୁବିଶେଷ, ସର୍ଦ୍ଦି ଶ୍ଳେଷ୍ମା, (ବିଂ) କଫୁଆ । [(ଦେଖ) ।

କଫକଭୁରୀ—ଗ୍ରା. ବି. ଅକରକରା

କଫକର—ବିଂ. ( କଫ+କୃ+କ.ଅ ) ଶରୀରର ଶ୍ଳେଷ୍ମାବର୍ଦ୍ଧକ [ ଖଙ୍କାର ।

କଫକୂର୍ଚ୍ଚିକା—ସ୍ତ୍ରୀ.ବି. ଲାଳ, ସିଙ୍ଘାଣି,

କଫକେତୁ—ପୁଂ. ବି. ଔଷଧବିଶେଷ ।

କଫକ୍ଷୟ—ପୁଂ. ବି. ଶରୀରସ୍ଥ ସ୍ୱାଭାବିକ କଫର ନାଶ ।

କଫଘ୍ନ—ବି. ବିଂ. (କଫ+ହନ୍+ଅ) କଫନାଶକ ଦ୍ରବ୍ୟ, ଶ୍ଳେଷ୍ମାନାଶକ ।

କଫଜ—ବି.ବିଂ.(କଫ+ଜନ୍+କ.ଅ) ଶ୍ଳେଷ୍ମାରୁ ଉତ୍ପନ୍ନ ।

କଫଜ୍ୱର—ପୁଂ. ବି. କଫଜନିତ ଜ୍ୱର ।

କଫ(ଫୋ) ଣି—ବି. କର୍ପୂର, କହୁଣି ।

କଫନାଶକ—ବି. ବିଂ.ଶ୍ଳେଷ୍ମା ନାଶକ ।

କଫବର୍ଦ୍ଧକ—ବି. ବିଂ. ( କଫ + ବୃଧ୍ + ଣିଚ + ଅକ) ଯାହା ଦ୍ୱାରା ଶ୍ଳେଷ୍ମା ବୃଦ୍ଧି ହୁଏ ।

କଫବର୍ଦ୍ଧନ—ପୁଂ. ବି. ( କଫ + ବୃଧ୍ + ଣିଚ + ଅନ) ପିଣ୍ଡୀତଗର ବୃକ୍ଷ, (ବିଂ) କଫ ବୃଦ୍ଧିକାରକ ଦ୍ରବ୍ୟାଦି ।

କଫହର—ବି. ବିଂ. ଶ୍ଳେଷ୍ମାନାଶକ ।

କଫାଣି—ପୁଂ. ବି. (କଫ + ଅଣି)ଶ୍ଳୁଣ୍ଣୀ ।

କଫୀ—ବିଂ. (କଫ + ଇନ୍) କଫଯୁକ୍ତ, (ବି) ଗଜ, ହସ୍ତୀ ।

କଫୁଆ - ଗ୍ରା.ପୁଂ.ବିଂ. ଶ୍ଳେଷ୍ମାରୋଗଗ୍ରସ୍ତ ।

କବ୍—(ଧା ତୁ)ପଦ୍ୟରଚନା କରିବା ।

କବ୍ଜା—ଯା.ବି. କବାଟ ଯୋଜକ କଳ, ମଣିବନ୍ଧ ନିକଟସ୍ଥ ଗ୍ରନ୍ଥି, କଚଟି ।

କବକ—ପୁଂ.ବି. ଛତାକ, ଛତୁ, କବଳ, ଗ୍ରାସ ।

କବଚ—ପୁଂ.ବି.(କୁ + କ.ଅଚ୍ )ସାଞ୍ଜୁ, ବୈଦିକ ଶରୀରରକ୍ଷକ ମନ୍ତ୍ରବିଶେଷ, ନାଗରାବାଦ୍ୟ, ପ୍ଲକ୍ଷ ବୃକ୍ଷର ଛାଲି ।

କବ୍ଜ—(ଯା)ବି.ଅଟକ, ଅଟକା,ରୋଧ, ଅଙ୍ଗୀକାର, ରସିଦ୍ ।

କବଜବା—ଗ୍ରା. ବି. ଜୋରକରି ଧରିବା, ଜାବୁଡ଼ିଧରିବା ।

କବଟା—ଗ୍ରା. ବି. ଛିଣ୍ଡାଲୁଗା, କନ୍ଥା, ବସ୍ତ୍ରଖଣ୍ଡ, ସ୍ତ୍ରୀମାନଙ୍କର ପରିଧେୟ ଖେଟ ଖଦି । [କବିତା ।

କବନ—ବି. (କବ୍ + ଣି,ଅନ) ରଚନା,

କବନ୍ଧ—ବି. (କ + ବଧ୍ + ଅ) ଜଳ, ଉଦର, ପେଟ, ରାହୁ, ଧୂମକେତୁ,ରାକ୍ଷସ ବିଶେଷ,ଶିବଙ୍କ ଅବତାରବିଶେଷ,କ୍ରିୟା ଯୁକ୍ତ ମସ୍ତକହୀନ ଦେହ, ଗଣ୍ଡି, ଗନ୍ଧର୍ବ ବିଶେଷ, ଋଷିବିଶେଷ (ସ୍ତ୍ରୀ) କବନ୍ଧୀ ।

କବର—ବିଂ.(କୁ + କ.ଅର)କର୍ବୁରବର୍ଣ୍ଣ ଯୁକ୍ତ, ସଂପୃକ୍ତ, ଖଚିତ, ବିଚିତ୍ରବର୍ଣ୍ଣ ବିଶିଷ୍ଟ,(ସ୍ତ୍ରୀ)କବରୀ,(ବି)(କ + ବୃ + ଅ) କେଶବିନ୍ୟାସ, କେଶପାଶ, ଲବଣ, ଅମ୍ଳ, ଝାଙ୍ଗି, ଟୋପର,ଗୋଛ, (ଯା. ବି.) ମୁର୍ଦ୍ଦାର ପୋତିବାର ଗାତ, ମୃତ ଶରୀରକୁ ଭୂଇଁରେ ପୋତିବା ।

କବରଖାନା—(ଯା) ବି. ସମାଧିକ୍ଷେତ୍ର, ଶବ ପୋତିବାର ନିର୍ଦ୍ଦିଷ୍ଟ ସ୍ଥାନ ।

କବରଦେବା—ଗ୍ରା. କ୍ରି, ମୃତବ୍ୟକ୍ତିର ଶବକୁ ପୋତିବା ।

କବରୀ—ବି. ବେଣୀ, ଦୁଲ୍କିଆ ଗୁଳ୍ମ ।

କବରୀ—ପୁଂ. ବି. ଜାତିବିଶେଷ, (ସ୍ତ୍ରୀ) କେଶବିନ୍ୟାସ, ବେଣୀ, ଜୁଡ଼ା, ଖୋସା, ବେଣୀ, ଦୁଲ୍କିଆ ।

କବର୍ଗ—କ.ଖ.ଗ.ଘ.ଙ.ଏହିପାଞ୍ଚୋଟିବର୍ଣ୍ଣ

କବଳ—ପୁଂ.ବି.(କ + ବଲ + ଅ)ଗ୍ରାସ, ଗିଳିବା, ବାଲିଆମାଛ, କର୍ଷ, କରିଷି (ଓଜନ), କୌଶଳରେ ଅଧିକାର ବା ଦଖଲ, କୁଲକୁଚ ।

କବଲ—ଯା. ବି. ଭୂମି ଆଦିର ବିକ୍ରୟ-ପତ୍ର, କବାଲା ।

କବଲିକା—ବି. ପୁଲଟିସ୍, କ୍ଷତଉପରେ ବନ୍ଧାଯିବା ପଟି ।

କବଳିତ—ବିଂ.(କବଳ + ମିଁ,ତ)ଭକ୍ଷିତ, ଯାହା ଗ୍ରାସ କରା ଯାଇଅଛି, ଗ୍ରସ୍ତ, କୃତଗ୍ରାସ ।

କବଳୀକୃତ—ବିଂ. (କବଳ + ଚ୍ୱି + କୃ ମିଁ,ତ) ଗ୍ରସ୍ତ, ଭକ୍ଷିତ, ଛଳେ ବଳେ କୌଶଳେ ଦଖଲୀକୃତ ।

କବାଟ—ବି. (କ + ପାଟି + ଅ)ଦୁଆର, କପାଟ ।

କବାଟକଣ—ଗ୍ରା. ବି. କବାଟ ମେଲା-କରିଦେଲେ କବାଟ ଓ କାନ୍ଥ ମଧ୍ୟରେ ରହିବା କୋଣ, (ଲକ୍ଷଣାର୍ଥ) ଗୃହମଧ୍ୟସ୍ଥ ଗୁପ୍ତସ୍ଥାନ, ଅନ୍ତଃପୁର ।

କବାଟୀ-ବି.(କବାଟ + ଇ)ଦ୍ୱାର,କବାଟ, ଗ୍ରା. ବି. ଖେଟକବାଟ ।

କବାଡ଼ି—ଗ୍ରା. ପୁଂ ଓ ସ୍ତ୍ରୀ. ବିଂ. ଓଲୁ, ନିର୍ବୁଦ୍ଧିଆ ।

କବାବ୍-ଯା.ବି. ଲୁହା,ଖଡ଼ିକା ବା ଶିକରେ ଗୁନ୍ଥି ଉହ୍ନିକ ନିଆଁ ଉପରେ ଧରି ସିଦ୍ଧ-କରିଥିବା ବା ଭାଜିଥିବା ମାଂସଖଣ୍ଡ ।

କବାବଚିନି—ଗ୍ରା.ବି. ଶୀତଳ ଚିନି,ଏକ-ଜାତୀୟ ମରିଚ ଆକୃତିର ଫମ୍ପାମସଲା ।

କବାର—ପ୍ରା.(ସମ୍ବ.) ବି. କର୍ମ, କାର୍ଯ୍ୟ, କାରବାର,ବେପାର, (ବି.କ୍ଲୀ) ପଦ୍ମ ।

କବାରି—ପ୍ରା. (ଗଡ଼ଜାତ) ବି. ଯେଉଁ ବ୍ୟକ୍ତି ଜଙ୍ଗଲରୁ ଗଛକାଟି ଅଙ୍ଗାର ତିଆରି କରେ, ଯେ କାମ କାର୍ଯ୍ୟ ବା ମୂଲିଆ ହଳିଆ କାମ କରେ ।

କବି—ପୁଂ ଓ ସ୍ତ୍ରୀ.ବି. (କୁ + ଇ)କାବ୍ୟ-ରଚକ,ପଦ୍ୟରଚକ,ଭବିଷ୍ୟଦ୍ରଷ୍ଟାବ୍ୟକ୍ତି, ବିଦ୍ୱାନ୍,ପଣ୍ଡିତ,ସୂର୍ଯ୍ୟ, ପେଚକ, ଶୁକ୍ରା-ଚାର୍ଯ୍ୟ,ଶୁକ୍ରଗ୍ରହ, ବ୍ରହ୍ମା,ବାଲ୍ମୀକି, କଳି-ଆର,ଲଗାମ(ବିଂ)ସର୍ବଜ୍ଞ,ଭବିଷ୍ୟଦ୍ରଷ୍ଟା, ଚିନ୍ତାଶୀଳ,ଜ୍ଞାନବାନ୍,ବହୁଦର୍ଶୀ,ପ୍ରଶଂସ୍ୟ ଚତୁର, ପାରଗ, (ସ୍ତ୍ରୀ) କବୀ ।

କବିକ—ବି. ( କବି + କ ) ଘୋଡ଼ାର ଲଗାମ, କଉମାଛ, ପୁଷ୍ପବିଶେଷ, (ସ୍ତ୍ରୀ) କବିକା ।

କବିକା—ବି. (କବିକ + ଆ) ଲଗାମ, କଉମାଛ, କିଆ ଫୁଲ ଓ ଗଛ ।

କବିଗୁରୁ—ବି. (ଷ.ତତ୍) ସଂସ୍କୃତଭାଷାର ଆଦି କବି ବାଲ୍ମୀକି ଋଷି, ଶ୍ରେଷ୍ଠକବି ।

କବିତା—ସ୍ତ୍ରୀ. ବି. (କବି + ତା) କବିତ୍ୱ, କବିକୃତି, ପଦ୍ୟ ।

କବିତ୍ଥ—(କପି + ସ୍ଥା + ଅ) କପିତ୍ଥ, କଇଥ ।

କବିତ୍ୱ—ବି.(କବି + ତ୍ୱ)କବିପଣ,କବିତା-ରଚନା କରିବାର ସାମର୍ଥ୍ୟ, କବିର ଭାବ ବା ଗୁଣ ।

କବିୟ—ବି.(କୁ + ଇୟ)କବିକ(ଦେଖ) ।

କବିରବି—ବି. (ଷତତ୍) କବିଶ୍ରେଷ୍ଠ ।

କବିରାଜ—ବି. ( ଷତତ୍ ) ଶ୍ରେଷ୍ଠକବି, ବୈଦ୍ୟ, ଆୟୁର୍ବେଦୀୟ ଚିକିତ୍ସକ, ଆୟୁର୍ବେଦିକ ପଣ୍ଡିତ, ଭାଟ ।

କବିରାଜି-ଗ୍ରା.ବି.ବୈଦ୍ୟବୃତ୍ତି,ଆୟୁର୍ବେଦୀୟ ଚିକିତ୍ସା ପଦ୍ଧତି ।

କବିଲା—ଗ୍ରା. ବି. ପରିବାର, ଭାର୍ଯ୍ୟା ।

କବୀ—ବି. (କୁ + ଇ) ଲଗାମ ।

କବୀର—ପୁଂ. ବି. କବୀରପନ୍ଥୀ ନାମକ ଧର୍ମ୍ମସମ୍ପ୍ରଦାୟର ପ୍ରବର୍ତ୍ତକ, ଏ ରାମାନନ୍ଦଙ୍କର ଶିଷ୍ୟ ଥିଲେ ।

କସାରପତ୍ନୀ—ବୈଷ୍ଣବସମ୍ପ୍ରଦାୟ ବିଶେଷ
କବୁତର—ବି. କପୋତ, ପାରା ।
କବୁଲ୍—ଯା. ବି. ସ୍ୱୀକାର, ଅଙ୍ଗୀକାର, ମଞ୍ଜୁରୀ ।
କବୁଲି—ସ୍ତ୍ରୀ. ବି. ଜନ୍ତୁର ଦେହର ପଶ୍ଚାଦ୍ଭାଗ ।
କବୁଲିୟତ୍—ଗ୍ରା. ବି. କୌଣସି ଦାବୀକୃତ ବିଷୟର ସ୍ୱୀକାର, ରଇତବୃତ୍ତିକୁ ଦଖଲ କରି ଖଜଣା ଦେବାପାଇଁ ଜମିଦାରକୁ ଲେଖିଦେବା ପ୍ରକାର-ଅଙ୍ଗୀକାରପତ୍ର ।
କବୋଷ୍ଣ—ବିଂ. (କ.ଧା.) (କୁ+ଉଷ୍ଣ) ଈଷଦୁଷ୍ଣ, ଅଳ୍ପଉଷୁମ, ନଅଉଷୁମ ।
କଭଭି—ଯା.ଅବ୍ୟ, କେବେହେଁ, କଦାପି ।
କବ୍ୟ—ବି. (କୁ+ମଁ.ଯ) ପିତୃଲୋକଙ୍କୁ ଦେୟ ଖାଦ୍ୟଦ୍ରବ୍ୟ, ପିଣ୍ଡ, ପିତୃଲୋକ ବିଶେଷ ।
କବ୍ୟବାଳ—ବି.ଅଗ୍ନି, ପିତୃଲୋକବିଶେଷ ।
କବ୍ୟବାହ—ବି. (କବ୍ୟ+ବହ+କ.ଅ) ଅଗ୍ନି ।
କବ୍ୟବାହନ—ପୁଂ. ବି. (କବ୍ୟ+ବାହ +କ.ଅ) ଅଗ୍ନି ।
କମ୍—(ଧାତୁ) ଇଚ୍ଛାକରିବା, ଲାଳାୟିତ ହେବା, ସଙ୍ଗମ କରିବା, ସ୍ନେହକରିବା ।
କମ୍—ଯା. ବିଂ. ସାମାନ୍ୟ, ଅଳ୍ପବୟସ୍କ, ଅଳ୍ପ, ତୁଚ୍ଛ, ଅଳ୍ପତର, ଊଣା, ଅପ୍ରଚୁର ।
କମ୍‌ଜୋର୍—ଯା. ବି. ଦୁର୍ବଳ ।
କମ୍‌ଜୋରି—ଗ୍ରା. ବି. ଦୁର୍ବଳତା, ବଳହୀନତା । [ଜିନ୍ତୁକୁଭେ ।
କମ୍‌ରେ କମ୍—ଅବ୍ୟ. ଅନ୍ତତଃରେ, ଅନ୍ତ
କମ୍—ଅବ୍ୟ, ଜଳ, ମସ୍ତକ, ମୁଖ, ସୁଖ, ମଙ୍ଗଳ, ପାଦପୂରଣାର୍ଥ ନିରର୍ଥକ ଶବ୍ଦ, ଗ୍ରା.ବି. (ସଂ-କର୍ମ) କାରୁକାର୍ଯ୍ୟ, ସୂକ୍ଷ୍ମ ଶିଳ୍ପ, ହାତର ଅଳଙ୍କାରବିଶେଷ, ବାଦ୍ୟ ବିଶେଷ, (ବିଂ) କମନୀୟ, ସୁନ୍ଦର, କାରୁକାର୍ଯ୍ୟବିଶିଷ୍ଟ ।
କମକ—ବି.ବିଂ. (କମ୍+ଅକ) କାମୁକ, (ପୁଂ) ଗୋତ୍ରପ୍ରବର୍ତ୍ତକ ଋଷିବିଶେଷ ।

କମଞ୍ଚା—ଯା. ବି. ବଢ଼େଇଙ୍କର ଧନୁକାକାର ଭଅଁର ଘିଞ୍ଚିବା ଯନ୍ତ୍ର ।
କମଠ—ବି.ପୁଂ. (କମ+ଅଠ) କଚ୍ଛପ, ବିଷ୍ଣୁଙ୍କ ଦ୍ୱିତୀୟ ଅବତାର, ଶଲ୍ଲକୀ ବୃକ୍ଷ, ବଂଶ, ଦୈତ୍ୟବିଶେଷ, (କ୍ଲୀ) ଭାଣ୍ଡବିଶେଷ, ମୁନିମାନଙ୍କର ଜଳପାତ୍ରବିଶେଷ, ବାଦ୍ୟବିଶେଷ, କମଣ୍ଡଳୁ, (ସ୍ତ୍ରୀ) କମଠୀ ।
କମଠୀ—ବି. ସ୍ତ୍ରୀ. ମାଈ କଇଁଛ ।
କମଣ—ଗ୍ରା. ବି. ପୁନଃପୁନଃ ଚଷ ବା ହଳ କରିବା, କୃଷିକର୍ମ ।
କମଣ୍ଡଳ(ଳୁ)—ବି.ପୁଂ.କ୍ଲୀ.ଗଡୁ, ସନ୍ନ୍ୟାସୀମାନଙ୍କର ମୃତ୍ତିକାଦିନିର୍ମିତ ଜଳପାତ୍ର, ଅଶ୍ୱତ୍ଥବୃକ୍ଷ, ବାଦ୍ୟବିଶେଷ, ପ୍ଳକ୍ଷ ବୃକ୍ଷ ।
କମଣ୍ଡଳୁତରୁ—ବି. ପୁଂ. ଅଶ୍ୱତ୍ଥ ବୃକ୍ଷ, ଗଦ୍ଦଭାଣ୍ଡ ବୃକ୍ଷ ।
କମତି—ଗ୍ରା. ବି. ନ୍ୟୂନତା, ଅଳ୍ପତା ।
କମନ—ବିଂ.ତ୍ରି.(କମ୍+ଅନ) କମନୀୟ, କାମୁକ, (ବି) କନ୍ଦର୍ପ, ଅଶୋକ ବୃକ୍ଷ, ବ୍ରହ୍ମା ।
କମନୀୟ—ବିଂ.ତ୍ରି. (କମ୍+ମଁ,ଅନୀୟ) ସୁନ୍ଦର, ସୁରୁ, ମଞ୍ଜୁଳ, (ବି) କମନୀୟତା ।
କମନ୍ଧ—ବି. କ୍ଲୀ. କବନ୍ଧ, ଜଳ ।
କମର—ତ୍ରି. (କମ୍+ଅର+ଅ) କଟି, ଅଣ୍ଟା, କାମୁକ, ଅଭିଳାଷୀ ।
କମରୀ—ଯା.ବି. ଅଣ୍ଟାଧରିବେମାରି, (ବିଂ) ଯାହାର ଅଣ୍ଟା ଦରଜଗମ୍ ହୋଇଅଛି ବା ଯାହାର ଅଣ୍ଟାହାଡ଼ ଭାଙ୍ଗିଯାଇଅଛି ।
କମ୍‌ରାଣ—ସୁଲତାନ, ବାବରଙ୍କ ପୁତ୍ର ହୁମାୟୁନଙ୍କ ଭାଇ ।
କମଳ—କ୍ଲୀ. ବି. (କମ୍+ଅଳ) ପଦ୍ମ, ଜଳ, ତାମ୍ର, ଔଷଧ, ଆଣ୍ଡୁ, ଆକାଶ, ନାରଙ୍ଗଫଳ, ମୃଗବିଶେଷ, ଗର୍ଭାଶୟର ଅଗ୍ରଭାଗ ବା ମୁହଁ, ଗୁଳକପକ୍ଷୀବିଶେଷ, ସାରସପକ୍ଷୀ, ଗୋରୁର ଗଳକମଳ, ଆଖି ଡୋଳା, (ବି.ପୁଂ) ବିଷ୍ଣୁ, (ସ୍ତ୍ରୀ) କମଳିନୀ, (ଗ୍ରା. ବି.) କମ୍ବଳ ।
କମଳକ—କ୍ଲୀ.ବି. କମଳ, ପଦ୍ମ, ଜଳ ।
କମଳକୀରକ—( କମଳ+କୀର+କୈ +ଅ) କୀଟବିଶେଷ ।

କମଳକୋରକ—ପୁଂ.ବି. ପଦ୍ମର କଢ଼ି ।
କମଳକୋଷ—ପୁଂ. ବି. ପଦ୍ମର କଢ଼ି ।
କମଳଖଣ୍ଡ—କ୍ଲୀ. ବି. (କମଳ+ଖଣ୍ଡ) ପଦ୍ମସମୂହ । [କୋଷ ।
କମଳଘଣ୍ଟା—ଗ୍ରା. ବି. ପଦ୍ମଫୁଲ ଘାଞ୍ଜ-
କମଳଚ୍ଛଦ—ପୁଂ. ବି. କଙ୍କପକ୍ଷୀ, ପଦ୍ମର ଦଳ ।
କମଳଜ—ପୁଂ. ବି. ବ୍ରହ୍ମା, ଚନ୍ଦ୍ର, (ନ) ରୋହିଣୀନକ୍ଷତ୍ର ।
କମଳଣୀ—ଗ୍ରା.ବି. ସ୍ତ୍ରୀ. ଲକ୍ଷ୍ମୀ, କମଳା ।
କମଳନୟନ—କ୍ଲୀ. ବି. ପଦ୍ମପତ୍ର ବିଶାଳ ବା ସୁନ୍ଦର ଚକ୍ଷୁ, (ବିଂ.) କମଳାକ୍ଷ ।
କମଳପତ୍ରାକ୍ଷ—ତ୍ରି. ବିଂ. ପଦ୍ମପତ୍ରତୁଲ୍ୟ ଚକ୍ଷୁବିଶିଷ୍ଟ ।
କମଳଭବ—ବି.(କମଳ+ଭୂ+ଅ)ବ୍ରହ୍ମା, ଜଣେ ଜୈନଗ୍ରନ୍ଥକାର ।
କମଳଯାକବାଳ—ଗ୍ରା.(ପ୍ରବଚନ) କମ୍ବଳ ଲୋମନିର୍ମିତ ଥିବାରୁ ଏଥିରୁ ଲୋମ ବାଛିବା ବାତୁଳତା ମାତ୍ର, ସେହିପରି ଯାହା ଅସଂଖ୍ୟ ଦୋଷରେ ପୂର୍ଣ୍ଣ ସେଥିରୁ ଗୋଟିଏ ଦୋଷ ବାଛିବା ବାତୁଳତାମାତ୍ର, ବହୁଦୋଷ କରିଥିବା ପକ୍ଷରେ ଏପରି କୁହାଯାଏ ।
କମଳଯୋନି—ପୁଂ.ବି.(କମଳ+ଯୋନି) ବ୍ରହ୍ମା, ପଦ୍ମଯୋନି ।
କମଳରୁ ବାଳ ବାଛିବା—ଗ୍ରା.(ନ୍ୟାୟ) କେଶ ବା ଲୋମମୟ କମ୍ବଳରୁ ଗୋଟିଏ ଲୋମ ବାଛିବାଭଳି ଦୋଷମୟବ୍ୟକ୍ତି ବା ବସ୍ତୁର ଗୋଟିଏ ଦୋଷ ପୃଥକ୍ କରି ଦେଖାଇବା ।
କମଳବଦନ—ତ୍ରି. ବି. ପଦ୍ମମୁଖ ।
କମଳଷଣ୍ଡ—ବି. (ତତ୍) ପଦ୍ମସମୂହ ।
କମଳା ସ୍ତ୍ରୀ.ବି. ଲକ୍ଷ୍ମୀ, ସୁନ୍ଦରୀ ସ୍ତ୍ରୀ, ଗଙ୍ଗା, ପ୍ରହ୍ଲାଦଙ୍କ ଜନନୀ, ନର୍ତ୍ତକୀବିଶେଷ, ଛନ୍ଦବିଶେଷ, ନାରଙ୍ଗୀବିଶେଷ, କମଳା ଲେମ୍ବୁ । [କର ।
କମଳାକର—ପୁଂ. ବି. ପଦ୍ମ ସମୂହ, ପଦ୍ମା

**କର୍ଷଣୀୟ**—ବି. ବୀଂ. (କୃଷ୍ + ଅନୀୟ) ଚାଷ କରିବାର ଯୋଗ୍ୟ ।

**କର୍ଷଫଳ**—ପୁଂ. ବି. ବିଭୀତକ,ବାହାଡ଼ା ଗଛ ।

**କର୍ଷଫଳା**—ବି. ଅଁଳା ଗଛ ।

**କର୍ଷାପଣ**—ପୁଂ.ଦୁଇତୋଳାପରିମିତମୂଲ୍ୟ ଦ୍ୱାରା ଯାହା କିଣାଯାଏ(ବି)ଷୋଳପଣ, କାହାଣ, ୧୨୮ କଡ଼ା କଉଡ଼ି ।

**କର୍ଷିତ**—ବୀଂ. (କର୍ଷି + ତ) କୃଷ୍ଟ, ଯେ ଭୂମି କର୍ଷଣ କରାହୋଇଅଛି, ଚାଷ କରାଯାଇଥିବା ।

**କର୍ଷୀ**—ବୀଂ. (କୃଷ + କ.ଇନ୍)ଆକର୍ଷଣ-କାରୀ, ହୃଦୟଗ୍ରାହୀ, ସୁନ୍ଦର ।

**କର୍ଷୂ**—ପୁଂ. ବି. ( କୃଷ୍ + ଊ ) କୃଷି, ଜୀବିକା,(ସ୍ତ୍ରୀ) କୃତ୍ରିମ କ୍ଷୁଦ୍ର ଜଳାଶୟ, ନଦୀମାନ, ଘସିଅଁ ।

**କର୍ହି**—ଅବ୍ୟ. ( କିଂ + ହି ) କେବେ, କେଉଁ ସମୟରେ ।

**କର୍ହିଚତ୍**—ଅବ୍ୟ.(କିମ୍ + ହି + ଚତ୍) କଦାଚିତ୍, କେବେହେଁ, କୌଣସି ସମୟରେ ।

**କଳ**—(ଧାତୁ) ଧ୍ୱନି କରିବା,ଉଦ୍‌ଭାବିବା, ଗମନ କରିବା, ଗଣିବା ।

**କଳ**—ବି. (କଳ + ଅ) ଅବ୍ୟକ୍ତ ମଧୁର ଧ୍ୱନି, ଭ୍ରମରାଦିର ଗୁଞ୍ଜନ, ଶାଳବୃକ୍ଷ, ଶୁକ୍ର, ଅଙ୍କୁର, ଗଙ୍ଗା, (ବୀଂ) ଅଜୀର୍ଣ୍ଣ (ଗ୍ରା.ବି.) (ସଂ—କଳା)ଯନ୍ତ୍ର,କୌଶଳ, (ସଂ—କବଳ) ଗ୍ରାସ, ଦାନ୍ତ ଓ ଗାଲ ମଧ୍ୟରେଥିବା ଗହ୍ୱରର ଦ୍ରବ୍ୟ,ସୁବିଧା,ଉଦର, ଶୃଙ୍ଖଳ, ବଶ୍ୟତା, ଅଧୀନତା, ସୁଯୋଗ, ଯନ୍ତ୍ର, କାମୁଡ଼ିବାର ଅର ବା ପୁଳା ।

**କଳକଣ୍ଠ**—ବି.ପୁଂ. (କଳ + କଣ୍ଠ)ହଂସ, ପାରା ମୟୂର,କୋକିଳ, (ସ୍ତ୍ରୀ)କଳକଣ୍ଠୀ, ସୁସ୍ୱରବତୀ, (ବୀଂ) କଳଧ୍ୱନିଯୁକ୍ତ, ମଧୁର ସ୍ୱରବିଶିଷ୍ଟ, ସୁସ୍ୱର ।

**କଳକଳ**—ବି. ପୁଂ. କୋଳାହଳ, ଜଳସ୍ରୋତର ଶବ୍ଦ, ଅବ୍ୟକ୍ତ ମଧୁର ଧ୍ୱନି, ଶାଳ ନିର୍ଯ୍ୟାସ, (ଗ୍ରା)ପେଟରେ ଅଜୀର୍ଣ୍ଣ, ଦୋଷ ଯୋଗୁଁ ପେଟ ଫୁଟିବା ଶବ୍ଦ, କ୍ଷୁଧା ଯୋଗୁଁ ପେଟ ମଧ୍ୟରେ ହେବା କଅଁ କଅଁ ଶବ୍ଦ ।

**କଲ୍‌କଲ୍**—ଗ୍ରା. (ଅବ୍ୟ, ଧ୍ୱନ୍ୟର୍ଥକ) ବୀଂ. ଅସ୍ଥିର, ଚଞ୍ଚଳ, କନକନ ।

**କଲକଲା**—ଗ୍ରା.ବି. କଣ୍ଟକ ଜଳର କ୍ଷୁଦ୍ର ଗୁଳ୍ମବିଶେଷ, (ବୀଂ) କଲ କଲ ଶବ୍ଦ କରୁଥିବା ।

**କଲକାରଖାନା** ଗ୍ରା. ବି. ଯେଉଁ କାରଖାନାରେ କଳଦ୍ୱାରା କାମ ହୁଏ ।

**କଲ୍ଲାଟ**—ପୁଂ. ବି. ସଙ୍ଗୀତର ଗ୍ରାମବିଶେଷ ।

**କଳକୂଜିକା**—ସ୍ତ୍ରୀ. ବି. (କଳ—କୁଜ + ଇନ୍ + ଆ) ମଧୁର ଧ୍ୱନିକାରିଣୀ ।

**କଳକୂଣିକା**—ବି. ସ୍ତ୍ରୀ. କାମୁକୀ ।

**କଳଘୋଷ**—ବି. ପୁଂ. (କଳ + ଘୁଷ୍ + ଅ) କୋକିଳ ।

**କଳଙ୍କ**—ବି.ପୁଂ.(କଳ + ଅଙ୍କ)ଅଖ୍ୟାତି, ଦୋଷ, ମରିଚ, ଚିହ୍ନ, ଦାଗ, ଦୁର୍ଗୁଣ, ଦୁର୍ନାମ, ଅପଲକ୍ଷଣ, ଧାତୁ ଦ୍ରବ୍ୟାଦିର ମଳିନତା, (ସ୍ତ୍ରୀ)କଳଙ୍କୀ(ବୀଂ) କଳଙ୍କିତ ।

**କଳଙ୍କକର**—ବୀଂ.ବି. (କଳଙ୍କ + କୃ + ଅ)କଳଙ୍କଜନକ, ଯାହାଠାରୁ ଅପବାଦ ଉତ୍ପନ୍ନ ହୁଏ ।

**କଳଙ୍କକାଳିମା**—ବି. (ଷତତ୍) କଳଙ୍କର କଳାଦାଗ,ବିଷମ ଅଖ୍ୟାତି,ଅତି ଦୁର୍ନାମ ।

**କଳଙ୍କଭଞ୍ଜନ**—କ୍ଳୀ.ବି.(ଷତତ୍) କୌଣସି ବ୍ୟକ୍ତିକୁ ଅପବାଦଜନିତ ଦୋଷରୁ ମୁକ୍ତ କରିବା,ଅଖ୍ୟାତିର ଅପନୋଦନ, ଅପବାଦର ନିରସନ ।

**କଳଙ୍କଷ**—ବି. (କଳଂ + କଷ୍ + ଅ) ସିଂହ, (ସ୍ତ୍ରୀ) କରତାଳି ।

**କଳଙ୍କଷା**—ବି. ସ୍ତ୍ରୀ. (କଳଙ୍କଷ + ଆ) ହାତତାଳି ।

**କଳଙ୍କହୃତ୍**—ପୁଂ.ବି. (କଳଙ୍କ + ହୃ + କ୍ୱିପ୍) ଶିବ ।

**କଳଙ୍କୀ**—ଗ୍ରା.ବୀଂ. (ସଂ—କଳଙ୍କୀ)କଳଙ୍କୀ (ଦେଖ) ।

**କଳଙ୍କିତ**—ବି. ବୀଂ. (କଳଙ୍କ + ଇତ) ଯାହାର କଳଙ୍କ ଅଛି,ପାପଯୁକ୍ତ, ଦାଗଲଗା, ଅପଯଶଭାଗୀ, ଅପବାଦୀକୃତ, ଅପବାଦଗ୍ରସ୍ତ, ମଳଯୁକ୍ତ (ଧାତୁ) ।

**କଳଙ୍କୀ**—ବୀଂ. ପୁଂ. ( କଳଙ୍କ + ଇନ୍ ) କଳଙ୍କଯୁକ୍ତ, ନିନ୍ଦାଗ୍ରସ୍ତ, ଦାଗବିଶିଷ୍ଟ, ମଳଯୁକ୍ତ (ଧାତୁ), (ସ୍ତ୍ରୀ) କଳଙ୍କିନୀ ।

**କଳଙ୍କୁର**—ପୁଂ.ବି.(କଳଂ + କୁର + ଅ) ଜଳଭଉଁରି, ଜଳାବର୍ତ୍ତ ।

**କଳଞ୍ଜ**—ପୁଂ. ବି. (କ + ଲନ୍‌ଜ + ଅ) ବିଷାକ୍ତ ଅସ୍ତ୍ରରେ ମୃତ ମୃଗ, ବିଷାକ୍ତ ଅସ୍ତ୍ରହତ ପକ୍ଷୀ, ପରିମାଣବିଶେଷ, ପଳ, ତାମ୍ରକୂଟ, ଧୂମ୍ରବିଶେଷ, ତମାଖୁ, ଅମେଧ, ଦୋକତା, ବେତଲତା ।

**କଳଟ**—କ୍ଳୀ.ବି.(କ + ଲଟ୍ + ଅ)ଗୃହାଚ୍ଛାଦନ, ଚାଳ ।

**କଳଣା**—ଗ୍ରା.ବି.(ସଂ—କଳନା)ଗଣନା, ଇସ୍ତ୍ରୀ, କୁତ ।

**କଳତୂଲିକା**—ସ୍ତ୍ରୀ. ବି. (କଳ + ତୂଲ + ଅକ + ଆ) ଇଚ୍ଛାବତୀ, କାମୁକୀ ।

**କଳତ୍ର**—କ୍ଳୀ. ବି. ( କଳ + ତ୍ରୈ + ଅ) ସ୍ତ୍ରୀ-ନିତମ୍ବ, ଦୁର୍ଗସ୍ଥାନ, କଟି, ଜଘନ, ପୁନର୍ବସୁ ନକ୍ଷତ୍ର । [ ସସ୍ତ୍ରୀକ ।

**କଳତ୍ରବାନ୍**—ପୁଂ.ବୀଂ. (କଳତ୍ର + ବତ୍)

**କଳତ୍ରୀ**—ପୁଂ. ବୀଂ. (କଳତ୍ର + ଇନ୍) ସ୍ତ୍ରୀଯୁକ୍ତ, ସସ୍ତ୍ରୀକ ।

**କଳଦାନ୍ତ**—ଗ୍ରା.ବି. ପାଟି କଡ଼ରେ ଥିବା ଦାନ୍ତ, ଚକଦାନ୍ତ ।

**କଳଧୂତ**—କ୍ଳୀ.ବି.(ଷତତ୍)(କଳ + ଧୂତ) ସୁନା, ରୁପା ।

**କଳଧୌତ**—କ୍ଳୀ. ବି. (କଳ + ଧୌତ) ସୁନା, ରୁପା, କଳଧ୍ୱନି, ଅବ୍ୟକ୍ତ ମଧୁର ଧ୍ୱନି ।

**କଳଧ୍ୱନି**—ପୁଂ. ବି. (ବି.ବ୍ରୀ) ଅବ୍ୟକ୍ତ ମଧୁରଧ୍ୱନି,କପୋତ,ମୟୂର, କୋକିଳ, ହଂସ ।

**କଳନ**—କ୍ଳୀ.ବି.(କଳ + ଣ,ଅନ)ଗଣନ, ଧାରଣ, ମ.ପିବା, ଗ୍ରହଣ, ଦର୍ଶନ, ଅନୁମାନ, ଗ୍ରାସ, ଲଙ୍ଘନ, ଚିହ୍ନ,ଜ୍ଞାନ, ସ୍ତ୍ରୀଗର୍ଭରେ ମିଶ୍ରିତ ଉକ୍ରୋଷାର୍ଥ,

ଦୋଷ,ଶବ୍ଦାୟମାନ, ତୁଳନା, ଧାରଣ, ବେଷ୍ଟଲତା, ବଶୀଭୂତତ୍ୱ, ଆଚରଣ, ଘଟଣା, ସଞ୍ଚାଳନ ।

କଳନା — ବି.ସ୍ତ୍ରୀ. (କଳନ+ଆ) ଅବଧାରଣା, କଳ୍ପନା, ବଶୀଭୂତତା, ଗଣନା, ଦର୍ଶନ,ଗ୍ରହଣ, ଗ୍ରାସିବା, ଶବ୍ଦକରିବା, ଲଙ୍ଘନ, ଦୋଷ, ଚିହ୍ନ ।

କଳନାଦ—ପୁଂ.ସ୍ତ୍ରୀ. ବି. ମଧୁର ରବ, ରାଜହଂସ, (ବିଂ) କଳଧ୍ୱନିଯୁକ୍ତ ।

କଳାନ୍ତର — ଗ୍ରା. ବି. (ସଂ — କଳାନ୍ତର) ଋଣ ଦିଆଯିବା ଧନ ଉପରେ ହେବା ସୁଧ, କୁସୀଦ, ବିଆଜ ।

କଳନ୍ଦର — ଯା. ବି. ବର୍ଣ୍ଣଶଙ୍କର ଜାତି ବିଶେଷ, ଏକଶ୍ରେଣୀୟ ମୁସଲମାନ ଫକୀର ବା ସନ୍ନ୍ୟାସୀ, ପୀର ।

କଳପ — ଯା.ବି. ଧୋବାମାନେ ଲୁଗାରେ ଯେଉଁ ମଣ୍ଡ ଦିଅନ୍ତି, ମଣ୍ଡବାକୁଟୀ, (ସଂ — କଳ୍ପ) ବହୁଯୁଗ, ଅଜର ଅମର ହେବାର ଔଷଧ ।

କଳଭ — ପୁଂ. ବି. (କଲ+ଭା+କ,ଅ) ହସ୍ତିଶାବକ, ଧୁତୁରାଗଛ, ଓଟଶାବକ ।

କଳଭୈରବ—ପୁଂ. ବି. ଭୟଙ୍କର ଅବ୍ୟକ୍ତ ଶବ୍ଦ ।

କଲମ୍ — ଯା. ବି. ଛପା ପୁସ୍ତକ ବା ଲେଖାର ସ୍ତମ୍ଭ ।

କଳମ — ବି. (କଲ+ମି,ଅମ) ଶାରଦ ଧାନ୍ୟ, ଚୌର,ଧୂର୍ତ୍ତବ୍ୟକ୍ତି,ଠକ, (ଗ୍ରା. ବି) ଜଳଜାତ ଖାଦ୍ୟ ଶାକ ବିଶେଷ, ଏକ ଜାତୀୟ ଲତା ।

କଲମ—ଗ୍ରା. ବି. ଲେଖନୀ, ପୁରୁଣା ଗଛ ଡାଳରୁ ଉପାୟରେ ଚେର ଉତ୍ପାଦନ କରାଇ କଟାଯିବା ଡାଳକୁ ନୂଆ ଗଛ କରାଯିବା । [ତୁଳସୀ ।

କଲମକର୍ତ୍ତିନୀ — ସ୍ତ୍ରୀ. ବି. କଲମ କାଟିବାର

କଲମକରି—ଗ୍ରା. ବି. ସ୍ୱତନ୍ତ୍ର ଗଛ କରିବା ନିମନ୍ତେ ଅସଲ ଗଛରୁ କଟାହୋଇ ପ୍ରସ୍ତୁତ ହୋଇଥିବା ନୂତନ ଗଛ ।

କଲମଜାରି—ଯା. ବି. ଆଦେଶ, କ୍ଷମତା ବିସ୍ତାର ।

କଲମଜୋର—ଯା. ବି. ଲେଖିବାର କ୍ଷମତା, ଲେଖିବାଦ୍ୱାରା କାର୍ଯ୍ୟ ଚଳାଇବାର ଶକ୍ତି, ଲେଖାଲେଖି କରି କୌଣସି କାର୍ଯ୍ୟ ବା ପ୍ରସ୍ତାବକୁ ଉପରସ୍ଥ ହାକିମମାନଙ୍କଠାରୁ ମଞ୍ଜୁର କରାଇ ଆଣିବାର କ୍ଷମତା । [ତୁଳସୀ ।

କଲମତରାସ — ଯା. କଲମ କାଟିବାର

କଳମତ୍ତ — ବିଂ. (କଲ+ମତ୍ତ)ମଦମତ୍ତ, ଉନ୍ମତ୍ତ, ମତୁଆଲ ।

କଲମଦାନ — ଯା. ବି. କଲମ ରଖିବାର ପାତ୍ର, ବାକସ ।

କଲମପେଷା—ଯା. ବି. ଲେଖକବୃତ୍ତି, କେରାନିଗିରି । [ଉପାସନା ।

କଲମା — ଯା. ବି. ମୁସଲମାନ୍‌ମାନଙ୍କର

କଲମୀ—( ଯା ) ବିଂ. ଗଛରୁ କଲମ କରିବା ପ୍ରଣାଳୀ ଦ୍ୱାରା ସମ୍ପାଦିତ(ଗଛ), ଦାନାଦାର, ଲିପିବଦ୍ଧ, କଲମ ଆକୃତି ବିଶିଷ୍ଟ ।

କଲମୀ,ଇଜାହାର—(ଯା)ବି.ମାଜିଷ୍ଟ୍ରେଟଙ୍କର କୋର୍ଟରେ ମୁଦେଇ ଫୌଜଦାରି ଦରଖାସ୍ତ ଦାଖଲ କରିବା ପରେ ତାହାଠାରୁ ଯେଉଁ ହଲପାନ୍ ଜବାନ୍‌ବନ୍ଦି ଗ୍ରହଣକରି ମାଜିଷ୍ଟ୍ରେଟ୍ ସେ ଦରଖାସ୍ତ ପଛରେ ତାହାଲେଖି ସେଥିରେ ତାହାର ଦସ୍ତଖତ୍ତ ନିଅନ୍ତି । [ଧାନ୍ୟ ।

କଳମୋତ୍ତମ — ପୁଂ.ବି. ଗନ୍ଧଶାଳୀ,ସୁଗନ୍ଧ

କଲମ୍ବ—ପୁଂ. ବି. ଶର, ବାଣ, କଦମ୍ବ ଗଛ, ଶାଗର ଡେମ୍ଫ ବା ଡାଙ୍ଗ ।

କଲମ୍ବସ୍— ଯା.ବି. ଆମେରିକା ଆବିଷ୍କାର କରିଥିବା ପ୍ରସିଦ୍ଧ ସ୍ପେନଦେଶୀୟ ନାବିକ ।

କଲମ୍ବିକା—ସ୍ତ୍ରୀ. ବି. (କ+ଲମ୍ବ+ଅ+ଇକ+ଆ ) କଲମଶାଗ, ଗ୍ରୀବାର ପଛପଟର ନାଡ଼ୀ ।

କଲମ୍ବୁଟ — କ୍ଲୀ.ବି. ସଦ୍ୟଦୁଗ୍ଧଜାତ ଘୃତ, ଲହୁଣୀ, ମଖନ ।

କଲର—(ଯା) ରଙ୍ଗ, ବର୍ଣ୍ଣ ।

କଲରକଲର—ଗ୍ରା. (ଅବ୍ୟ) କଲ କଲ (ଦେଖ) ।

କଳରବ—ପୁଂ. ବି. (କଳ+ରବ)ମଧୁର ଅସ୍ଫୁଟଧ୍ୱନି, ପାରା, କପୋତ,କୋକିଳ ମୟୂର ।

କଲରା—ଗ୍ରା. ବି. କୃଷିଜାତ ଲତା ଓ ତହିଁର ତିକ୍ତ ଖାଦ୍ୟଫଳ, ଏକପ୍ରକାର କୃଷ୍ଣ ଜାରା, (ଯା) ହଇଜା, ବିସୂଚିକା ।

କଲରାପତୁରିଆ—ଗ୍ରା. ବି. ଚିତାବାଘ, (ବିଂ) କଲରା ପତ୍ରପରି ଚିହ୍ନଯୁକ୍ତ ।

କଳରୋଳ—ପୁଂ. ବି. କଳଧ୍ୱନି, ଅସ୍ଫୁଟ ମଧୁରଧ୍ୱନି ।

କଳଲ—ପୁଂ. କ୍ଲୀ. ବି. (କଲ୍+ଅଲ) ଜରାୟୁ, ଗର୍ଭବେଷ୍ଟନୀ ଚର୍ମ, ଶୁକ୍ରଶୋଣିତର ପ୍ରଥମବିକାର, ଭ୍ରୂଣ ।

କଳଲଜ—ପୁଂ. ବି. (କଳଲ+ଜନ୍+ଅ) ରାଳ, ଗର୍ଭ, ଧୂଣା ।

କଲବଲ—ଗ୍ରା. ବି. ଆକୁଳ, ବ୍ୟାକୁଳ, ଦୁଃଖ, ପୀଡ଼ା, ଯନ୍ତ୍ରଣା, ( ବି ) ଆର୍ତ୍ତ, ପୀଡ଼ିତ, ଅସ୍ତବ୍ୟସ୍ତ, ବିକଳ, କଷ୍ଟ, ଦହଗଞ୍ଜ ।

କଲବିଙ୍କ—ପୁଂ.ବି. (କଲ+ବଙ୍କ୍+ଅ) ଘରଚଟିଆ ଚଢ଼େଇ, ବୃକ୍ଷବିଶେଷ, ଗୁଳୁଚୀଲତା, ଇନ୍ଦ୍ରଯବ ବୃକ୍ଷ, ଶ୍ୱେତ ଚାମର, କଳଙ୍କ, ଚିହ୍ନ, ଦାଗ, ପିତାକୋରୁଆ ଗଛ ।

କଳଶ—ବି. (କଳ+ଶୃ+ଅ)ଜଳାଧାର ବିଶେଷ, କଳଶୀ, ମାଠିଆ, ମାଙ୍ଗଳିକ କାର୍ଯ୍ୟରେ ସର୍ବାରମ୍ଭରେ ସ୍ଥାପିତ ହୋଇ ପୂଜାହେବା ପୂର୍ଣ୍ଣକୁମ୍ଭ, ଘଡ଼ା ।

କଳଶପୋତକ—ପୁଂ. ବି. ସର୍ପବିଶେଷ ।

କଳଶବସାଇବା—ଗ୍ରା.କ୍ରି.ବୈଦିକକ୍ରିୟା ବା ମାଙ୍ଗଳିକ ଅନୁଷ୍ଠାନରେ ସର୍ବାଦ୍ୟ ପୂର୍ଣ୍ଣକୁମ୍ଭ ସ୍ଥାପନ କରିବା ।

କଳଶା—ଗ୍ରା.ବି.ପରସ୍ପର ସହିତ ଯୋଡ଼ ଲଗାଯିବା ଦୁଇପଟାର ଢାଡ଼ରେ ଲମ୍ବ ହୋଇ ହତିଆରରେ ଖୋଳଯିବା ଖାଲ, ସଙ୍ଗୀତର ରାଗବିଶେଷ ।

କଳଶି—ସ୍ତ୍ରୀ. ବି. (କଳ+ଶୋ+ଇ) ଜଳପାତ୍ର, ମାଠିଆ ।

କଳଶୀ—ସ୍ତ୍ରୀ. ବି. (କଳଶ+ଈ)ଛୋଟ ଜଳପାତ୍ର, ତୀର୍ଥବିଶେଷ ।
କଳଶୀମୁଖ—ପୁଂ. ବି. ବାଦ୍ୟଯନ୍ତ୍ରବିଶେଷ ।
କଳଶୀସୁତ—ପୁଂ. ବି. ଅଗସ୍ତି ଋଷି, କୁମ୍ଭଯୋନି ।
କଳଶୋଦଧି—ପୁଂ. ବି. ସମୁଦ୍ର ।
କଳଶୋଦର—ପୁଂ.ବି.ଦାନବ ବିଶେଷ, କଳସତୁଲ୍ୟ ଯାହାର ପେଟ ।
କଳସ୍—ବି. (କ+ଲସ୍+ଅ) କଳସ, ମାଠିଆ, ଗର୍ଭଜାତ ନାଗବିଶେଷ, ଜଳପାତ୍ର,ମାଙ୍ଗଳିକ ଉତ୍ସବରେ ସ୍ଥାପିତ ପୂର୍ଣ୍ଣ କୁମ୍ଭ ।
କଳସକ୍ଷେତ୍ର—କର୍ଣ୍ଣାଟକ ଅନ୍ତର୍ଗତ ଗୋଟିଏ ପବିତ୍ର ତୀର୍ଥ ।
କଳସି(ସୀ)-ସ୍ତ୍ରୀ.ବି.(କ+ଲସ୍+ଅ+ଈ) ଜଳପାତ୍ର ବିଶେଷ, ଛୋଟ ମାଠିଆ କମ୍ବା କୁମ୍ଭ ।
କଳସୀକ—କ୍ଲୀ. ବି. (କଳସୀ+କ) ଛୋଟ ଜଳପାତ୍ର ।
କଳସୀସୁତ—ପୁଂ. ବି. ଅଗସ୍ତି ମୁନି ।
କଳସୋଦଧି—ପୁଂ. ବି. ସମୁଦ୍ର ।
କଳସୋଦରୀ—ସ୍ତ୍ରୀ. ବି. ଜଳପାତ୍ର ତୁଲ୍ୟ ଉଦରବିଶିଷ୍ଟା (ସ୍ତ୍ରୀ) ।
କଳସ୍ୱର—ପୁଂ. ବି. କଳରବ, ଅବ୍ୟକ୍ତ ମଧୁର ଶବ୍ଦ ।
କଳହ—ପୁଂ. କ୍ଲୀ. ବି. (କଳ+ହନ୍+କ,ଅ) ବିବାଦ, କଳି,ଯୁଦ୍ଧ,ଖଡ୍ଗକୋଷ, ପଥ, ଭଣ୍ଡତା ।
କଳହକାର—ବି. ବିଂ. (କଳହ+କୃ+କ,ଅ) ବିବାଦକାରକ ।
କଳହକାରକ—ବି. ବିଂ. (କଳହ+କୃ+ଅକ) ଯାହା କଳିକଜିଆ ସୃଷ୍ଟିକରେ, ବିବାଦକାରୀ ।
କଳହକାରୀ—ବି. (କଳହ+କୃ+ଇ) ଯେ କଳିକରେ, କଳହୀ, (ସ୍ତ୍ରୀ) କଳହକାରିଣୀ ।
କଳହନାଶନ—ପୁଂ.ବି. (କଳହ+ନଶ୍+ଣିଚ୍+ଅନ)ପୂତିକରଞ୍ଜ,ଯେ ବିବାଦ ମେଣ୍ଟନ କରିଦିଏ ।

କଳହପ୍ରିୟ—ପୁଂ.ବି. (ବ.ବ୍ରୀ) ନାରଦ (ବିଂ)ବିବାଦ କରିବାକୁ ଯେ ଭଲପାଏ ।
କଳହପ୍ରିୟା—ସ୍ତ୍ରୀ.ବି. ଶାରିକାପକ୍ଷୀ,(ବିଂ) ବିବାଦାନୁରାଗିଣୀ ! [ବିଶେଷ ।
କଳହର—ମଧ୍ୟପ୍ରଦେଶବାସୀ ବଣିକଜାତି
କଳହଂସ—ପୁଂ. ବି. (କଳ+ହଂସ) ରାଜହଂସ, ବ୍ରାହ୍ମଣ, ଉତ୍ତମରାଜା, ପରମାତ୍ମା, ସଙ୍କର ରାଗିଣୀବିଶେଷ ।
କଳହଂସକେଦାର—ବି. ଉତ୍କଳ ପଦ୍ୟର ରାଗ ବା ବୃତ୍ତବିଶେଷ ।
କଳହାନ୍ତ—ଗ୍ରା. ବିଂ. କଳହାନ୍ତରିତା (ଦେଖ) ।
କଳହାନ୍ତରିତା—ସ୍ତ୍ରୀ.ବି. ନାୟିକାବିଶେଷ, ନାୟକ ବା ସ୍ୱାମୀ ସହିତ ଯେ କଳହ କରେ, ପଶ୍ଚାତ୍ ଅନୁତପ୍ତ ନାୟିକା ।
କଳହାପହୃତ—ବି. ବିଂ. ବିବାଦ ଦ୍ୱାରା ଯାହା ଅପହୃତ ହୋଇଅଛି, ଅର୍ଥାତ୍ ଚୋରି ।
କଳହୀ—ପୁଂ. ବିଂ. (କଳହ+ଇନ୍) କଳହଯୁକ୍ତ, ବିବାଦକାରୀ ।
କଳା—ସ୍ତ୍ରୀ.ବି.(କଳ+ଣି.ଅ+ଆ)ଅଂଶ ଚନ୍ଦ୍ରଙ୍କର ଷୋଡ଼ଶ ଭାଗରୁ ଏକଭାଗ, ଗୀତ ବାଦ୍ୟାଦି, ୬୪ ଗୋଟି ଶିଳ୍ପ-ବିଦ୍ୟା, ଅତି ଅଳ୍ପ ସମୟ, ପ୍ରାୟ ଆଠ ସେକେଣ୍ଡ, କାଞ୍ଚଂସ୍ତା (ଗଣିତ), ଏକ ଡିଗ୍ରୀର ଷୋଳ ଭାଗରୁ ଏକଭାଗ, (ଜ୍ୟୋତିଷ)ରାଶିର ଭା୧୮୦ଗ, ଭାଗେ, ସୁଧ, କଳାନ୍ତର,ଚନ୍ଦ୍ର,କଳନ, ଜ୍ୟୋତି, ତେଜ, କପଟ, ବିଭୂତି, ସାମର୍ଥ୍ୟ, ଶୌର୍ଯ୍ୟାଦି ଗୁଣ, ନୌକା, ସଙ୍ଖ୍ୟା, ସ୍ତ୍ରୀରଜଃ, ବିଭୀଷଣଙ୍କ ଜ୍ୟେଷ୍ଠା କନ୍ୟା, ମରୀଚିଋଷିଙ୍କ ପତ୍ନୀ, ଶରୀରର ଯେଉଁ ସମସ୍ତ ଅଂଶ ସ୍ନାୟୁସମୂହ ଦ୍ୱାରା ଆଚ୍ଛାଦିତ, ଜରାୟୁ ଦ୍ୱାରା ପରିବ୍ୟାପ୍ତ ଏବଂ ଶ୍ଳେଷ୍ମା ଦ୍ୱାରା ପରିବେଷ୍ଟିତ ତା ସମାନଙ୍କୁ କଳା କହନ୍ତି, ଜଗତରେ ଯେଉଁ ସତ୍ୟ ଓ ସୌନ୍ଦର୍ଯ୍ୟ ରହିଛି ଆଉ ମଧ୍ୟ ସାଧାରଣ ଦୃଷ୍ଟିରେ ଅଗୋଚର ରହିଅଛି, ତାହାକୁ ନିଜର କଳ୍ପନା ଛାଞ୍ଚରେ ଢାଳି ଜଗତ୍ ସମକ୍ଷରେ ପ୍ରକାଶ କରିବା ରୀତି, ସୂର୍ଯ୍ୟଙ୍କ ତେଜର ବାରଗୋଟି ଭାଗ ବା ଅଂଶ, ଅଗ୍ନି ମଣ୍ଡଳର ଦଶ ଭାଗରୁ ଏକଭାଗ, ଚରକସ୍ଥ ଶାସ୍ତ୍ରାନୁସାରେ ଶରୀରସ୍ଥ ସାତଧାତୁ ମଧ୍ୟରୁ ଏକ, କୌଶଳ, ଜିହ୍ୱା, ବର୍ତ୍ତି, ଅକ୍ଷର, ଯନ୍ତ୍ର, (ଗ୍ରା.ବି) କୃଷ୍ଣବର୍ଣ୍ଣ, ପାପକଳା, କଳଙ୍କ, କଳାଦାଗ, ଅଳନ୍ଧୁ ।
କଳା—ଗ୍ରା.ବିଂ, କୃତ, କରିଥିବା, (କର୍ମ) କରିଥିବା (ବ୍ୟକ୍ତି) ।
କଳାଇ,କଳେଇ—ଗ୍ରା.ବି.କଅଁଆରୁ କଠା ହୋଇ ବନ୍ଧା ହୋଇଥିବା ଧାନବିଡ଼ା, ଗ୍ରାମଦେବୀବିଶେଷ, ଧାନହୁଲା ।
କଳାଇ—ଗ୍ରା.ବି.ତମ୍ବାପାତ୍ର ଉପରେ ଟିଣ ତରଳାଇ ଢାଳିବା ।
କଳାଇନ୍ଦୀବର—ଗ୍ରା.ବି.ଗାଢ଼ ନୀଳବର୍ଣ୍ଣର କଇଁଫୁଲ । [ବିଶିଷ୍ଟ ।
କଳାକଟ୍‌କଟ୍—ଗ୍ରା.ବି. ଘୋର କୃଷ୍ଣବର୍ଣ୍ଣ
କଳାକନା-ଗ୍ରା.ବି.କୃଷ୍ଣବର୍ଣ୍ଣବିଶିଷ୍ଟକପଡ଼ା ।
କଳାକନା ବୁଲାଇଦେବା—ଗ୍ରା. କ୍ରି. (ଲକ୍ଷଣାର୍ଥ) ଗୃହରୁ ଟିକିକଠାରୁ ନଖକ ପର୍ଯ୍ୟନ୍ତ ସବୁପଦାର୍ଥ ଚୋରିକରିନେବା ।
କଳାକର—ବି. (କଳା+ଆକର)ଚନ୍ଦ୍ର, ବୃକ୍ଷବିଶେଷ ।
କଳାକାଠ-ଗ୍ରା.ବିଂ.ଅତିକୃଷ୍ଣବର୍ଣ୍ଣ,ବିବର୍ଣ୍ଣ ।
କଳାକାନ୍ତି—ଗ୍ରା.ସ୍ତ୍ରୀ.ବିଂ. କୁତ୍ସିତା (ସ୍ତ୍ରୀ), କାଳିକାନ୍ତି ।
କଳାକାଶୁନ୍ଦ—ଗ୍ରା. ବି. କାଶମର୍ଦ୍ଦ ।
କଳାକାହ୍ନୁ—ଗ୍ରା. ବି. ଶ୍ରୀକୃଷ୍ଣଙ୍କ ନାମ, ଏକଜାତୀୟ ଶାରଦ ଧାନ ।
କଳାକୁ ଧଳାକରିବା—ଗ୍ରା. (ପ୍ରବଚନ ଲକ୍ଷଣାର୍ଥ) କୌଣସି ବିଷୟକୁ ଭିନ୍ନ ଭାବରେ ବା ବିପରୀତ ଥିବାର ପ୍ରମାଣିତ କରିବା ।
କଳାକୁଶଳ—ବି.ବିଂ. (କଳା+କୁଶଳ) ଗୀତାଦି ୬୪ କଳାରେ ନିପୁଣ, (ସ୍ତ୍ରୀ) କଳାକୁଶଳା । (ହଳାହଳ ।
କଳାକୂଳ—କ୍ଲୀ.ବି.(କଳା+ଆକୁଳ)ବିଷ,
କଳାକେରେଣ୍ଡି—ଗ୍ରା. (ବାଲେଶ୍ୱର) ଗଇଡ଼ୁଣୀ ପୋକ ।

କଳାକେଳି—ପୁଂ. ବ. (କଳା + କେଳି) କନ୍ଦର୍ପ, କାମଦେବ ।
କଳାକୋଚଗ୍ର—ଗ୍ରା. ବିଂ. କୃଷ୍ଣବର୍ଣ୍ଣ ଓ ଅପରିଷ୍କୃତ (ବସ୍ତ୍ର ବା ବ୍ୟକ୍ତି), (ସ୍ତ୍ରୀ) କଳାକୋଚଗ୍ରୀ ।
କଳାକୌଶଳ—ବି(୬ତତ୍ତ୍ୱ)ନୃତ୍ୟଗୀତାଦି କଳା ବିଦ୍ୟାରେ ନୈପୁଣ୍ୟ ।
କଳାକ୍ଷେତ୍ର--କ ମରୁପସ୍ଥ(ଆସାମ)ରୋଛିଏ ପ୍ରାଚୀନ ତୀର୍ଥସ୍ଥାନ ।
କଳାଙ୍କୁର—ପୁଂ.ବି. (କଳା + ଅଙ୍କୁର) ସାରସପକ୍ଷୀ, ଚୌରଶାସ୍ତ୍ର ପ୍ରବର୍ତ୍ତକ କର୍ଣ୍ଣୀସୁତ, କଂସାସୁର ।
କଳାଗୁନ୍ଦ—ଗ୍ରା. ବି. ଶ୍ରୀକୃଷ୍ଣଙ୍କ ନାମ ।
କଳାଚକା—ସ୍ତ୍ରୀ. ବି (କଳା + ଅଚ + ଅ କ + ଆ) ପ୍ରକୋଷ୍ଠ, ମଣିବନ୍ଧ ।
କଳାଚଢ—ଗ୍ରା.ବି. ପାଣିକଷ ହେଉଥିବା ସମୟରେ ଗାମୁଛରେ ଦେଖାଯିବା କୃଷ୍ଣବର୍ଣ୍ଣ ଛିପାଛିପା ଦାଗ, ଏକପ୍ରକାର ଚଢସାପ ।
କଳାଚୀନ—ପୁଂ.ସ୍ତ୍ରୀ.ବି. କର୍କାଙ୍ଗ ନାମକ ପକ୍ଷୀବିଶେଷ ।
କଳାଜାଇ—ଗ୍ରା.ବି. କୌଣସି କୌଣସି ମନୁଷ୍ୟଙ୍କ ଶରୀରରେ ଜନ୍ମ କାଳରୁ ଦେଖାଯିବା କୃଷ୍ଣବର୍ଣ୍ଣ ଦାଗ ।
କଳାଜୀରା—ଗ୍ରା. ବି. କୃଷ୍ଣଜୀରକ ।
କଳାତୁଳସୀ—ଗ୍ରା. ବି. କୃଷ୍ଣବର୍ଣ୍ଣ ଦଳ-ବିଶିଷ୍ଟ ତୁଳସୀଗଛ ।
କଳାଦ—ପୁଂ. ବି. (କଳା + ଦା + ଅ) ସ୍ୱର୍ଣ୍ଣକାର, ସୁନାରୀବଣିଆ ।
କଳାଦାଗ—ଗ୍ରା.ବି.ଔଷଧରେ ବ୍ୟବହୃତ ଏକପ୍ରକାର କଳାବୀଜ ।
କଳାଧର—ପୁଂ.ବି. (କଳା + ଧର) ଚନ୍ଦ୍ର ।
କଳାଧାତୁରା—ଗ୍ରା. ବି. କଳାରଙ୍ଗବିଶିଷ୍ଟ ଫୁଲ ଓ ଡେମ୍ପ ଥିବା ଧୁତୁରାଗଛ ।
କଳାଧାର—ପୁଂ. ବି. (୬ତତ୍ତ୍ୱ)ଚନ୍ଦ୍ର, ଗ୍ରା. ବି. ନଦୀ ।
କଳାନାଗ—ଗ୍ରା. ପୁଂ. ବି. କାଳୀୟସର୍ପ, ଅତ୍ୟୁଗ୍ର ବିଷଧର କୃଷ୍ଣବର୍ଣ୍ଣ ସର୍ପବିଶେଷ ।
କଳାନାଥ—ପୁଂ. ବି. (୬ତତ୍ତ୍ୱ) ଚନ୍ଦ୍ର, ସଙ୍ଗୀତଶାସ୍ତ୍ରବିଶାରଦ, ଗନ୍ଧର୍ବବିଶେଷ ।
କଳାନିଧି—ପୁଂ.ବି. (୬ତତ) ଚନ୍ଦ୍ର ।
କଳାନିଧିବହନ-ପୁଂ.ବି.ଶିବ,ମହାଦେବ ।
କଳାନିଧିବହନବଳାପହ—ପୁଂ.ବି.ମଦନ, କାମଦେବ ।
କଳାନୁନାଦୀ—ପୁଂ. ବି.(କଳ + ଅନୁ + ନଦ + କ. ଇନ୍) ଭ୍ରମର, ଚଟକ, ଚାତକ । [ନ୍ତର, ସୁଧ ।
କଳାନ୍ତର—ବି. (କଳା + ଅନ୍ତର)କଳ-
କଳାପ-ପୁଂ.ବି.(କଳା + ଆପ୍ + କ.ଅ) ସମୂହ, ମୟୂରପୁଚ୍ଛ, ଭୂଷଣ,ଧନୁ, କାଞ୍ଚୀ, ତୂଣ, ଚନ୍ଦ୍ର, ବିଦଗ୍ଧ ବ୍ୟକ୍ତି, ସ୍ୱନାମ-ଖ୍ୟାତ ସଂସ୍କୃତ ବ୍ୟାକରଣ ।
କଳାପକ—ବି. (କଳାପ + କ)ମିଶ୍ରିତ ଚାରିଗୋଟି ଶ୍ଳୋକ, ହସ୍ତୀ କଣ୍ଠବନ୍ଧନ ରଜ୍ଜୁ, ସମୂହ, ରତ୍ନମାଳା, କଳାପ, (ଦେଖ) ।
କଳାପଗ୍ରାମ—ପୁଂ. ବି. ହିମାଳୟର ଉତ୍ତରସ୍ଥ ଗ୍ରାମବିଶେଷ ।
କଳାପାଣି—ଗ୍ରା. ବି. କୃଷ୍ଣବର୍ଣ୍ଣ ଜଳୀୟ ପଦାର୍ଥ, ଉପକୂଳଠାରୁ ଦୂରରେ ଥିବା ସମୁଦ୍ରର ଗଭୀର ଅଂଶ, ମହିଦିରଆ, ଆଣ୍ଡାମାନ୍ ଓ ନିକୋବର ଦ୍ୱୀପପୁଞ୍ଜ । ପୂର୍ବେ ଇଂରେଜ ରାଜତ୍ୱରେ ଏହାକୁ କଳାପାଣି କୁହା ଯାଉଥିଲା ।
କଳାପାଣିପାର—ଗ୍ରା. ବି. ଦ୍ୱୀପାନ୍ତର ଦଣ୍ଡ (ବିଂ)ଦ୍ୱୀପାନ୍ତର ଦଣ୍ଡରେ ଦଣ୍ଡିତ ।
କଳାପାତ—ଗ୍ରା.ବି.କଜ୍ଜଳପାତ ଚଟେଇ, କଜ୍ଜଳ ବା ନେତ୍ରାଞ୍ଜନ ରଖିବାର ଆଧାର, କଜ୍ଜଳପାତ, (ଯା.ବି) ଜାହାଜ ବା ନୌକାର ପଟ ମାନଙ୍କ ସନ୍ଧିରେ ବା ଫାଟରେ ଅଠାପ୍ରଭୃତି ବାଢ଼େଇ ଫାଟ ବନ୍ଦକରିବା କର୍ମ । [ସେନାପତି ।
କଳାପାହାଡ଼—ଗ୍ରା. ବି. ବଙ୍ଗସୁଲତାନଙ୍କ
କଳାପାହାଡ଼ିଆ ସଂସ୍କାର—କୌଣସି ଉଗ୍ର ସଂସ୍କାର, ପୁରାତନ ରୀତି ନୀତିକୁ ଭାଙ୍ଗି ସେଇଁ ସମାଜ ସଂସ୍କାରବିଧି କରାଯାଏ ।
କଳାପିନୀ—ସ୍ତ୍ରୀ.ବି.(କଳାପ + ଇନ୍ + ଈ) ମୟୂରୀ, କୋକିଳା, ରାତ୍ରି, ନାଗରମୁଥା ।
କଳାପୀ—ପୁଂ. ବିଂ. (କଳାପ + ଇନ୍) ମାୟୂରୀ, କପଟୀ,ଷଡ଼ଯନ୍ତ୍ରକାରୀ,(ପୁଂବି) ମୟୂର, କୋକିଳ, (ସ୍ତ୍ରୀ) କଳାପିନୀ ।
କଳାପୂର୍ଣ୍ଣ—ପୁଂ. ବି, (୬ତତ୍ତ୍ୱ) ଚନ୍ଦ୍ର ।
କଳାଭୃତ—ପୁଂ.ବି.(କଳା + ଭୃ + କ, କ୍ୱିପ୍) ଚନ୍ଦ୍ର, ଶିବ, ଶିଳ୍ପୀ ।
କଳାମଞ୍ଜି—ଗ୍ରା.ବି. ବେଢ଼ଷଣପରେ ନୂଆ ଚେରମାର ଧାନରଛ ସବୁ କଳାବର୍ଣ୍ଣ ହେବା ହେତୁରୁ ତାହା ଉପରେ ଚଳାଇ ଉଆସିବା ମଇ ।
କଳାମାଣିକ—ଗ୍ରା.ବି.କୃଷ୍ଣ,ଯଶୋଦାଙ୍କର ଶ୍ରୀକୃଷ୍ଣଙ୍କପ୍ରତି ବାତ୍ସଲ୍ୟ ସମ୍ବୋଧନ ।
କଳାମୁଗ—ଗ୍ରା. ବି. ଏକପ୍ରକାର ସୁସ୍ୱାଦୁ କୃଷ୍ଣବର୍ଣ୍ଣ ମୁଗ ।
କଳାମେଘ—ଗ୍ରା. ବି. କଳାମେଘ ପରି ବର୍ଣ୍ଣବିଶିଷ୍ଟ, ଏକପ୍ରକାର ଶାଢ଼ୀ ।
କଳାୟ—ପୁଂ.ବି. (କ + ଲ + ଯ)ମଟର ଜାତୀୟ ନାନାପ୍ରକାର ଶସ୍ୟ,ବଡ଼ଚଣାଦି ।
କଳାୟଖଞ୍ଜ—ପୁଂ.ବି. ବାତବ୍ୟାଧିବିଶେଷ ।
କଳାୟନ—ପୁଂ. ବି. ନର୍ତ୍ତକ ।
କଳାରଙ୍ଗ—ଗ୍ରା. ବି. କୃଷ୍ଣବର୍ଣ୍ଣ ।
କଳାରାଆଟ—ଗ୍ରା. ବି. ଶ୍ରୀ ଜଗନ୍ନାଥ ମହାପ୍ରଭୁ ।
କଳାରାଆଟଘର—ଗ୍ରା. ବି. ଶ୍ରୀଜଗନ୍ନାଥଙ୍କ ଶ୍ରୀମନ୍ଦିର ଓ ଜଗମୋହନର ମଧ୍ୟବର୍ତ୍ତୀ ସ୍ଥାନ ।
କଳାଳାପ—ପୁଂ. ବି. (ବ.ବ୍ରୀ) ମଧୁରା-ଳାପ, ମଧୁର ଅବ୍ୟକ୍ତ ଧ୍ୱନି, ଭ୍ରମର, କୋକିଳ ।
କଳାଲୁଣ—ଗ୍ରା. ବି. ଏକପ୍ରକାର କୃଷ୍ଣବର୍ଣ୍ଣ ଖଣିଜ ଲବଣ, ବିଟଲବଣ ।
କଳାବତୀ—ସ୍ତ୍ରୀ. ବି. (କଳାବତ୍ + ଈ) କଳାବିଦ୍ୟାରେ କୁଶଳା, ରସିକା, ଛଇଳୀ, ସୁଲକ୍ଷଣା, (ଗ୍ରା.ବି) ବେଶ୍ୟା, ନର୍ତ୍ତକୀ, ଅପ୍ସରାବିଶେଷ, ନୀଳଶାଢ଼ୀ, ଗଙ୍ଗା, ତୁମ୍ବୁରୁ, ଗନ୍ଧର୍ବଙ୍କ ବୀଣା ।
କଳାବଦାଳଆ—ଗ୍ରା.ବି.ଦୁରେଇକୋଳି ।

କଳାବନ୍ତ—ଗ୍ରା. ପୁଂ. ବିଂ. କଳାବିଦ୍ୟା-କୁଶଳ, ରସିକ, ଶ୍ରୀମାନ୍, ବିଶେଷ ଶୁଭ ଲକ୍ଷଣଯୁକ୍ତ, ସଙ୍ଗୀତକୁଶଳ, ଶିଳ୍ପନିପୁଣ ।

କଳାବ ଦତନ୍ତ୍ର—କ୍ଲୀ. ବି. ତନ୍ତ୍ରବିଶେଷ ।

କଳାବାନ୍—ପୁଂ. ବିଂ. (କଳା + ବତ୍) ସଙ୍ଗୀତ ବିଦ୍ୟାବିତ୍, କଳାବିଶିଷ୍ଟ, (ପୁଂ. ବି) ଚନ୍ଦ୍ର, (ସ୍ତ୍ରୀ) କଳାବତୀ ।

କଳାବାହୁଡ଼ିଆ—ଗ୍ରା. ବି. କୃଷ୍ଣସାରମୃଗ, (ଏହାର ପିଠି କଳା, କଡ଼ ଓ ପେଟ ଧଳା, ଅଣ୍ଡିରି ହରିଣର ଶିଙ୍ଘଥାଏ, ମାଈର ନ ଥାଏ ।)

କଳାବିକ—ବି. (କଳା + ଅବ + କ, ଇକ) କୁକ୍କୁଟ, ଚରଣ ଯୁଧ ।

କଳାବିଟ୍‌ବିଟ—ଗ୍ରା ବିଂ.ଘୋର କୃଷ୍ଣବର୍ଣ୍ଣ, କଳ.କଟ୍‌କଟ୍, ନିପଟ୍ଟକଳା ।

କଳାବିଧିତନ୍ତ୍ର—କ୍ଲୀ.ବି.ତନ୍ତ୍ରଶାସ୍ତ୍ରବିଶେଷ ।

କଳାବୁଆ—ଗ୍ରା. ବି. ବୈଷ୍ଣବ ହେବା ପରେ ଈଷତ୍ କୃଷ୍ଣବର୍ଣ୍ଣ ଦେଖାଯିବା ଧାନଗଛ ।

କଳାବୁଡ଼ିଆଣୀ—ସ୍ତ୍ରୀ.ବି.ଗ୍ରା.ପକ୍ଷୀବିଶେଷ ।

କଳାବେଠିଆ—ଗ୍ରା. ବି. ରଥଯାତ୍ରାରେ ରଥଟାଣିବା ଲୋକ, ପୁରୀ ଜଗନ୍ନାଥଙ୍କ ରଥ ଟାଣିବା ନିମନ୍ତେ ନିଯୁକ୍ତ ପୁରୀରେ ବହୁକାଳରୁ ରହିଥିବା ଶବରଜାତି-ବିଶେଷ ।

କଳାଶିରା—ଗ୍ରା. ବି. ପ୍ରହାର ବା ରୋଗ ଯୋଗୁଁ ବନ୍ଦ ବା ବାଧାପ୍ରାପ୍ତ ହେବା ହେତୁରୁ ଶିରାର କୃଷ୍ଣବର୍ଣ୍ଣପ୍ରାପ୍ତି ।

କଳାସାରତନ୍ତ୍ର—କ୍ଲୀ.ବି.ତନ୍ତ୍ରଶାସ୍ତ୍ରବିଶେଷ ।

କଳାହକ—ପୁଂ.ବି. (କଳ + ଆ + ହନ୍ + ଅକ) କାହାଳ ନାମକ ବାଦ୍ୟଯନ୍ତ୍ର-ବିଶେଷ ।

କଳାହାଣ୍ଡି—ଗ୍ରା. ବି. ଓଡ଼ିଶା ପ୍ରଦେଶର ଜିଲ୍ଲା ବିଶେଷ, ଯାହାଁରେ ବସାଯାଇ-ଥିବା ହାଣ୍ଡି, କଥାରେ ଲଗାଇବା ଉପକଥା, କେଶଭଙ୍ଗୀବିଶେଷ ।

କଳି—ପୁଂ. ବି. (କଳ + ଇ) କଳିଯୁଗ, ଦ୍ୱେଷ, କଳହ, ବିବାଦ, ଯୁଦ୍ଧ, ଶର, (ସ୍ତ୍ରୀ.ବି) କଳିକା, କଢ଼ି, ସଦାକଳିଯୁକ୍ତ ଲକନାବିଶେଷ, ରାଜା, ନୂଆପନ ।

କଳି—ଗ୍ରା. ବି. କଳିଚୂନ, ଶିପଚୂନ, କୁରୁତାର କାଖ ଓ ପକେଟ ପାଖରେ ଦିଆଯିବା ତ୍ରିକୋଣ ବା ଚତୁଷ୍କୋଣ-ବିଶିଷ୍ଟ ପୃଥକ୍ ବସ୍ତ୍ରଖଣ୍ଡ, ସୂକ୍ଷ୍ମାଗ୍ରଚଟା, କଳିକା, କଢ଼, ଟଞ୍ଜାଇ ଗଛର ଶୁଷ୍କ ମଞ୍ଜରୀ ।

କଳିଆସ—ଗ୍ରା.ବି. ହାତଖଡ଼ୁ ବା ବଳୟ ବିଶେଷ ।

କଳିକ—ପୁଂ. ବି. (କଳ + ଇକ) କ୍ରୌଞ୍ଚ ପକ୍ଷୀ, ବଗପକ୍ଷୀ ।

କଳିକଜ୍ଜଆ—ଗ୍ରା.ବି. ବିଶେଷ କଳି ।

କଳିକଉଡ଼ି—ଗ୍ରା.ବି. ଏକପ୍ରକାର ପୋକ, କଳିଆବ୍ୟକ୍ତି ।

କଳିକତା—ଗ୍ରା. ବି. ହୁଗୁଳୀନଦୀ ତୀରସ୍ଥ ପଶ୍ଚିମବଙ୍ଗପ୍ରଦେଶର ଆଧୁନିକ ରାଜଧାନୀ ।

କଳିକତି—ଗ୍ରା.ବି. କଳିକତା ସମ୍ବନ୍ଧୀୟ, କଳିକତାରୁ ଆନୀତ, କଳିକତା ନିର୍ମିତ ।

କଳିକତିଆ—ଗ୍ରା. ବିଂ. (କଳିକତାଦେଖ) କଳିକତାବାସୀ, କଳିକତାରୁ ଆଗତ ବ୍ୟକ୍ତି । [ ପାପ ।

କଳିକଳୁଷ—ବି. (ଷତତ୍) କଳିଯୁଗର

କଳିକଳ୍ମଷ—ବି.(ଷତତ୍)କଳିଯୁଗରପାପ ।

କଳିକା—ସ୍ତ୍ରୀ. ବି. (କଳ + କ + ଆ) ଫୁଲର କଢ଼, ବୀଣାର ମୂଳଦେଶ, ରଚନା ବିଶେଷ, ଛନ୍ଦୋବିଶେଷ, କଳଅର ଫୁଲ ।

କଳିକା—ଗ୍ରା. ବି. ହୁକାଉପରେ ଗୁଡ଼ାଖୁ ରହିବା ଆଧାର, ହୁକାଚଲମ, ଗୁଡ଼ାଖୁ ଚଲମ ।

କଳିକାଢ଼ିବା—ଗ୍ରା. କ୍ରି. କଥାକହିବା ସମୟରେ ବ୍ୟଙ୍ଗବାକ୍ୟ ଓ ଟୀକାପ୍ରୟୋଗ ପୂର୍ବକ କଥାକୁ ବଢ଼ାଇବା ।

କଳିକାଳ—ବି. (କଳିଯୁଗ ଦେଖ) ।

କଳିକାଳିଆ—ଗ୍ରା. ବିଂ. କଳିଯୁଗ ସମ୍ବନ୍ଧୀୟ, ଆଧୁନିକ ।

କଳିକ ବାନା ବାନ୍ଧିବା—ଗ୍ରା.କ୍ରି.କଳହ କରିବାପାଇଁ ପ୍ରସ୍ତୁତ ହେବା ।

କଳିଖୁଣ୍ଟିଆ ବେହେରା—ଗ୍ରା. ବି. କଳହ ପ୍ରିୟ ମୁନି, ନାରଦଙ୍କ ପୁଅ ।

କଳିଗୋଳ—ବି.(କଳି + ଗୋଳ) ବାକ୍-ଯୁଦ୍ଧ, କଳହ, କଜିଆ ।

କଳିଙ୍ଗ—ପୁଂ.ବି.(କଳି + ଗମ + କ.ଅ) ପୁତିକରଞ୍ଜ, ଶିରୀଷଗଛ, ବରପୋଲ ଗଛ, ଗିଲଗଛ, ପ୍ଲକ୍ଷଗଛ, କୁରେଇ-ଗଛ, ସୁନିଆ ଚଢ଼େଇ, ଗୋବରା ଚଢ଼େଇ, ଦେଶବିଶେଷ, ଉତ୍ତରରେ ବୈତରଣୀ ନଦୀଠାରୁ ଦକ୍ଷିଣରେ ଗୋଦାବରୀ ନଦୀ ପର୍ଯ୍ୟନ୍ତ ବିସ୍ତୃତ ପ୍ରାଚୀନ ରାଜ୍ୟ, କଳିଙ୍ଗ ଦେଶୀୟ ଲୋକ, ସୁଦେ-ଷ୍ଣାଙ୍କ ପୁତ୍ର ବଳି, କଳିଙ୍ଗଦେଶର ରାଜା (ପୁଂ.ବିଂ)ଚତୁର ।

କଳିଙ୍ଗା—ଗ୍ରା.ବି. ଦାକ୍ଷିଣାତ୍ୟରୁ ଦେଶକୁ ଅଣାଯିବା ବଡ଼ ବଳଦ ଓ ଗାଈ, (ସ୍ତ୍ରୀ. ବି) ନତମୂର୍ତ୍ତିନୀ ସ୍ତ୍ରୀ, ସୁନ୍ଦରୀ ସ୍ତ୍ରୀ, ଉଚ୍ଛୁଡ଼ି ଲତା ।

କଳିଙ୍ଗାଦ୍ୟଗୁଡ଼ିକା—ସ୍ତ୍ରୀ.ବି. ଜ୍ୱରାତିସାର ରୋଗର ଔଷଧବିଶେଷ ।

କଳିଗୁ—ଗ୍ରା.ବି. ଏକପ୍ରକାର ବନ୍ୟ ବଡ଼ କାଠଗଛ ।

କଳିଚୂନ—ଗ୍ରା.ବି. ସିପ ପୋଡ଼ା ହୋଇ ତହିଁରୁ ଉତ୍ପନ୍ନ ଏକପ୍ରକାର ଖୁବ୍ ଧଳା ଚୂନ ।

କଳିଜା—ଗ୍ରା. ବି. ମନୁଷ୍ୟର ହୃତ୍ପିଣ୍ଡ, ବକ୍ଷସ୍ଥଳ, ମର୍ମସ୍ଥାନ, (ଲ.ଅର୍ଥ) ମନ, ସାହସ ।

କଳିଜାକରତହେବା—ଗ୍ରା.ବି. (ଲ.ଅର୍ଥ) ହୃଦୟରେ ବେଦନା ଅନୁଭୂତ ହେବା ।

କଳିଜାଥରିବା—ଗ୍ରା.ବି. ହୃଦୟ ଧଡ଼ପଡ଼ ହେବା, ଛାତି ଥରିବ, ଭୟରେ ଅସ୍ଥି-ରତା ଜାତହେବା ।

କଳିଜାପାଣିହୋଇଯିବା—ଗ୍ରା. ବି.(ଲ. ଅର୍ଥ)ଦମ୍ଭ ଭାଙ୍ଗିଯିବା,ଭୟଗ୍ରସ୍ତ ହେବା ।

କଳିଞ୍ଜ—ପୁଂ. ବି.(କ + ଲଜ + ଅ)ପଟୀ ତୃଣନିର୍ମିତ ଆସ୍ତରଣ ବା ପରଦା ।

କଳିତ—ତ୍ରି.ବିଂ.(କଳ୍ + ମ ତ)ପୃଥକ୍-କୃତ, ବଦ୍ଧ, ଗୃହୀତ, ଉଚ୍ଚାରିତ, ଜ୍ଞାତ, ଧୃତ, ପ୍ରାପ୍ତ, ଉପାର୍ଜିତ, ଗଣିତ, ବିସ୍ମରିତ

କଥିତ, ଦୃଷ୍ଟ, ହୃଷ୍ଟ, ଆଶ୍ରିତ,ଅନୁଗତ, ସୁନ୍ଦର, ମନୋହର ।
କଳାଚକଗ୍ର-ଗ୍ରା.ବି. ବିଶେଷକଳାକଟ୍ଟଆ ।
କଳାଦ୍ରୁମ—ପୁଂ. ବି (କଳ+ଦ୍ରୁମ) ବାହ୍ୱାଡ଼ାଗଛ ।
କଳାଧୋକଡ଼—ଗ୍ରା.ବି (କଳାମୁଣିଦେଖ) ।
କଳାନାଥ—ପୁଂ.ବି. କଳୟୁଗର ପ୍ରଭୁ, ମୁନିବିଶେଷ ।
କଳାଦ—ପୁଂ.ବି. (କଳ+ଦା+କ.ଅ) ସୂର୍ଯ୍ୟ, ପର୍ବତବିଶେଷ, ବାହ୍ୱାଡ଼ା ଗଛ ।
କଳାଦକନ୍ୟା—ସ୍ତ୍ରୀ. ବି. (୬ତତ୍ପୁ) ଯମୁନା ନଦୀ ।
କଳାଦନନ୍ଦନୀ—ସ୍ତ୍ରୀ. ବି. ଯମୁନାନଦୀ ।
କଳାଦର—ପ୍ରା. (ବସ୍ତର) ବି.ତରଭୁଜ ।
କଳାଦଶୈଳଜା – ( କଳାଦ+ଶୈଳ+ଜନ୍+ଅ+ଆ ) ଯମୁନାନଦୀ ।
କଳାଦିକା—ସ୍ତ୍ରୀ. ବି. ସର୍ବବିଦ୍ୟା ।
କଳାପ୍ରିୟ—ପୁଂ.ବି. ନାରଦମୁନି,ବାନର, ଦୁଷ୍ଟପ୍ରକୃତି, ବିଗ୍ରୀତକବୃକ୍ଷ, ବାହ୍ୱାଡ଼ା-ଗଛ ।
କଳାମଞ୍ଜ—ଗ୍ରା. ବି. ମଞ୍ଜୀ, କଦଳୀମଞ୍ଜା ।
କଳାମଞ୍ଜି—ଗ୍ରା.ବି-କଳହର ଅସଲକାରଣ, କଳହ ଉତ୍ପାଦକ ବିଷୟ ।
କଳାମାରକ ଓ କଳାମାଲକ—ପୁଂ. ବି. (କଳ+ମୃ+ଣିଚ୍,ଅକ)ପୂତିକରଞ୍ଜ ।
କଳାମୁଣି- ଗ୍ରା.ବି. ନାରଦଙ୍କ କଳାବଟୁଆ, କଳହପ୍ରିୟ ବ୍ୟକ୍ତି ।
କଳାସ୍ୱାଭ- ଗ୍ରା.ବି. ଘୋଡ଼ାର ବାଗ,ଲଗାମ ।
କଳାଯୁଗ—କ୍ଲୀ. ବି. ଚତୁର୍ଥଯୁଗ ।
କଳାଯୁଗାଦ୍ୟା—ସ୍ତ୍ରୀ.ବି.ମାଘୀପୂର୍ଣ୍ଣିମା, ଏହି ତିଥିଠାରୁ କଳାଯୁଗର ଉତ୍ପତ୍ତି ।
କଳାବର୍ଜ୍ୟ—ବିଂ.(୬ତତ୍) ଶାସ୍ତ୍ରାନୁସାରେ କଳାଯୁଗରେ ଯେଉଁସବୁ କର୍ମ ବର୍ଜନୀୟ ବା କରିବା ଉଚିତ ନୁହେ ।
କଳାଳ—ବି.ବିଂ. (କଳ+ଇଲ)ମିଶ୍ରିତ, ଗହନ,ନିବିଡ଼,ଦୁର୍ଭେଦ୍ୟ ।[ନାମାନ୍ତର ।
କଳାବଲ୍ଲଭ—ଗୃଲୁକ୍ୟରାଜ ଧ୍ରୁବର
କଳାବା—ଗ୍ରା.କ୍ରି.କଳନା କରିବା,ଗଣନା କରିବା,ଇୟତ୍ତାକରିବା,ମାପିବା,ଜାଣିବା, ଉଦଳନ୍ତ ଦ୍ୱାରା ଦେଶର ଓ ଶତ୍ରୁ ସୈନ୍ୟ-ମାନଙ୍କର ଅବସ୍ଥା ଠିକଣାକରିବା, ହିଣ୍ଡିବା, କଳ କରିବା, ପରୀକ୍ଷା କରିବା, ବାନ୍ଧିବା,ଠକ୍ଦେଇବା, ଅଟକଳ କରିବା ।
କଳାବର୍ତ୍ତୀ—ଦକ୍ଷିଣାପଥର ଜଣେ ପ୍ରାଚୀନ ଗୃଲୁକ୍ୟ ରାଜା ।
କଳାବୃକ୍ଷ— ପୁଂ. ବି. ବାହ୍ୱାଡ଼ାଗଛ ।
କଳାଷଠୀ—ଗ୍ରା.ବିଂ.କଳାକାଳରେ ସାଧାରଣତଃ ମନୁଷ୍ୟର ଜୀବିତକାଳ ଷାଠିଏ ବର୍ଷ ।
କଳାସଂଶ୍ରୟ—ପୁଂ. ବି. ଜଳର ଆକୃତି, ଶରୀରରେ ଜଳ ପ୍ରବେଶ କରିବା ।
କଳାହା—ଗ୍ରା.ପୁଂ.ବି. କଳିହୁଡ଼, କଳହ-ପ୍ରିୟ (ସ୍ତ୍ରୀ) କଳେସୀ ।
କଳୀ—ସ୍ତ୍ରୀ.ବି.(କଳ+ଈ) ଫୁଲରକଢ଼ି ।
କଳ୍ପାଜା—ଗ୍ରା. ବି. ବକ୍ଷସ୍ଥଳ ।
କଳୁ—ପ୍ରା.(ମେଦନୀ) ନିମ୍ନଶ୍ରେଣୀ, ତେଲି, ବର୍ଣ୍ଣସଙ୍କର ଜାତିବିଶେଷ ।
କଳୁଷ—କ୍ଲୀ.ବି.(କ+ଲୁଷ+ଅ)ମଇଳା. ଅପବିତ୍ରୀକୃତ ଅବସ୍ଥା, ରୋଗ, ତାପ, ଅପରାଧ, କଳାବିଷ, ପାପ, ମଳିନତା, ନିନ୍ଦା,(ବିଂ)କଳୁଷିତ,ଆବିଳ,ଗୋଳିଆ, ପଙ୍କିଳ,ଆରକ୍ତ,ଅସମର୍ଥ,ଦୁଃଖିତ,ଗର୍ହିତ, ପାପୀ, କ୍ଷୁଦ୍ର ।
କଳୁଷନାଶକ,କଳୁଷନାଶୀ—ପୁଂ.ବିଂ.ପାପ ନାଶକ ପରମେଶ୍ୱର ।
କଳୁଷିତ—ବି. ବିଂ. (କଳୁଷ+ଇତ) ପାପଯୁକ୍ତ, ଗୋଳିଆ, ପଙ୍କିଳ, ଅପବିତ୍ର, ଆରକ୍ତ ଦୁଃଖିତ, ଖଳ,ଅସମର୍ଥ, କ୍ଷୁବ୍ଧ ।
କଳୁଷୀ—ପୁଂ.କ୍ଲୀ.(କଳୁଷ+ଇନ୍)ପାପୀ, ମଳିନ ।
କଲେଇ—ପୁଂ.ବି.ଧାନବିଡ଼ା,ଧାନହିନା ।
କଲେଇ—ଗ୍ରା. ବି. କଳାଇ, ଝିଙ୍କପୋକ, କଲେଇପୋକ । [ଦେଖ ) ।
କଲେଇବଲେଇ—ଗ୍ରା. ବି. ( କଲବଲ
କଲେକ୍ଟର—ଯା. ବି. ଜିଲାର ଶାସନ-ବିଭାଗର ପ୍ରଧାନ କର୍ମଗୃରୀ ।
କଲେଜ—ଯା. ବି. ବିଶ୍ୱବିଦ୍ୟାଳୟର ଉଚ୍ଚତମ ବିଦ୍ୟାଳୟ ।
କଲେବର—( କଲେ+ବର ) (କ୍ଲୀ.ବି) ଶରୀର, ଗାତ୍ର, ଦେହ, ଆକୃତି, ଆକାର ଦେବତାଙ୍କ ବିଗ୍ରହ ।
କଲେବଲେକୌଶଳେ—ଗ୍ରା.କ୍ରି.ବିଂ. ସେ କୌଣସି ଉପାୟରେ ।
କଲେସ—ଯା.ବି. ଝାଡ଼ାବାନ୍ତି,ଉଲଉଠା, ବିସୂଚିକା ରୋଗ । [ ଗଛ ।
କଲ୍କଫଳ—ପୁଂ.ବି.ଡାଳିମ୍ବଫଳ, ଡାଳିମ୍ବ
କଲ୍କା—ଯା.ବିଂ, କୃତ୍ରିମ, ଅସ୍ଥାୟୀ ଗ୍ରଥିତ-ମ.ର ଗୃଲିଆ ଉପରେ ଉଆସିବା ଚକ-ଚକିଆ ରଙ୍ଗର ବନ୍ଧକଲଣ, ଶାଲର ସୂଚିକର୍ମର ଚିହ୍ନ ।
କଲ୍କି—ବି ବିଷ୍ଣୁଙ୍କର କଳାଯୁଗରଶେଷା-ବତାର, ବାହ୍ୱାଡ଼ାଗଛ, ଚୂନା,ଉତ୍ତମ-ରୂପେ ପେଷା ଯାଇଥିବା ଅବଲେହ ।
କଲ୍କିପୁରାଣ—ବି. ପୁରାଣବିଶେଷ ।
କଲ୍କିପ୍ରାଦୁର୍ଭାବ--ପୁଂ.ବି. କଲ୍କିଅବତାର ଉତ୍ପତ୍ତି ।
କଲ୍କି—ପୁଂ.ବି.(କଲ୍କ+ଇନ୍) କଲ୍କି ଅବତାର, (ବିଂ) କଲ୍କଯୁକ୍ତ, ଆବିଳ, ମଳିନ, ଗୋଳିଆ ।
କଳ୍ପ—ପୁଂ.ବି. (କୃପ୍+କ,ଅ) ଗୃରିଶହ ବତିଶକୋଟି ବର୍ଷକାଳ, ପ୍ରଳୟ, ଧର୍ମ ସାଧନନିୟମ, ବୈଦିକ କର୍ମକାଣ୍ଡ ବିଷ-ୟକ ନିୟମଚୟ, ଅଗ୍ରବପକ୍ଷେ କର୍ତ୍ତବ୍ୟ ବିଧି, କଳ୍ପବୃକ୍ଷ, ପ୍ରତିଜ୍ଞା, ଅଭିପ୍ରାୟ, ଇଚ୍ଛା, ସଂକଳ୍ପ,ପ୍ରାୟ, ସମାନ,ବିକଳ୍ପ ।
କଳ୍ପକ—(କୃପ୍+କ,ଅକ)ପୁଂ.ବି.ନାପିତ, ଭଣ୍ଡାରି, ବର୍ଦ୍ଧକି, ଆରୋପକ, (ବିଂ) ଛେଦନକାରୀ, କଳ୍ପନାକାରୀ ।
କଳ୍ପକାର—ପୁଂ. ବି. ନାପିତ, ବେଶ କାରକ, ଛେଦକ, କଳ୍ପସୂତ୍ରକାରକ ।
କଳ୍ପକାରକ—ପୁଂ.ବି. କଳ୍ପସୂତ୍ରକାରକ, ଭଣ୍ଡାରି,ଛେଦକ ।
କଳ୍ପକ୍ଷୟ—ପୁଂ. ବି ପ୍ରଳୟ ।
କଳ୍ପଗା—ସ୍ତ୍ରୀ. ବି. (କଳ୍ପ+ଗମ୍+ଅ+ଆ) ଗଙ୍ଗାନଦୀ ।
କଳ୍ପତରୁ—ପୁଂ. ବି. ( କ.ଧା ) ଦେବ ଲୋକର ବୃକ୍ଷବିଶେଷ, ଏହିବୃକ୍ଷ ନିକ-

ଟରେ କୌଣସି ପଦାର୍ଥ ପ୍ରାର୍ଥନାକଲେ ମିଳିପାରେ, ଅତଏବ ଦାତା ।
କଳ୍ପବାଦ—ବି. ରଙ୍ଗସଂକ୍ରାନ୍ତ ବା ଭୂଇଁ-ଦଅଁଣ ।
କଳ୍ପଦ୍ରୁ—ପୁଂ.ବି. କଳ୍ପତରୁ (ଦେଖ) ।
କଳ୍ପନ—କ୍ଲୀ.ବି.(କ୍ଳୃପ+ଅନ)ଅନୁମାନ. ମନଗଢ଼ା ବିଷୟ, ସଂକଳ୍ପ, ନିର୍ଦ୍ଧାରଣ, ଅପ୍ରକୃତ, ପର୍ଯ୍ୟାପ୍ତ, ହସ୍ତୀସଜ୍ଜା, ମାନସ, ଛେଦନ, ରଚନାବିଧାନ, ଆରୋପ ।
କଳ୍ପନାଶକ୍ତି—ସ୍ତ୍ରୀ ବି. (୬ତତ୍) ନୂତନ ବିଷୟ ଉଦ୍‌ଭାବନ କରିବାର କ୍ଷମତା, ନବନବୋଦ୍ଭାବନ ଶକ୍ତି, ଅନୁମାନ କରିବାର କ୍ଷମତା ।
କଳ୍ପନାସଂଭୂତ—ବିଂ. ୫ତତ୍; କଳ୍ପନା-ପ୍ରସୂତ (ଦେଖ) ।
କଳ୍ପନୀ—ସ୍ତ୍ରୀ.ବି. (କ୍ଳୃପ୍+ଣ+ଅନ+ଈ) କର୍ତ୍ତରୀ, କଉଁରୀ ।
କଳ୍ପମାସ୍ଯ—ବି. ବିଂ. (କଲ୍ପ+ଅମାସ୍ଯ) ଅନୁମାନ କରିବାର ଯୋଗ୍ୟ,ଆରୋପଣର ଉପଯୋଗୀ ।
କଳ୍ପପାଦପ—ପୁଂ.ବି.କଳ୍ପତରୁ(ଦେଖ) ।
କଳ୍ପପାଦପଦାନ—କ୍ଲୀ. ବି. ମହାଦାନ ବିଶେଷ ।
କଳ୍ପପାଲ—ପୁଂ. ବି. (କଲ୍ପ+ପାଲ+ଅ) ଶୁଣ୍ଡି, ଶୌଣ୍ଡିକ ।
କଳ୍ପବଟ—ବି. ( ମଧ୍ୟ-କ.ଧା ) ଲ୍-ଅର୍ଥ. ମହାଦାତାବ୍ୟକ୍ତି,ଇନ୍ଦ୍ରଙ୍କ ନନ୍ଦନକାନନସ୍ଥ ଅଭୀଷ୍ଟ ଫଳଦ ବଟବୃକ୍ଷ, କଳ୍ପାନ୍ତସ୍ଥାୟୀ ବଟବୃକ୍ଷ ।
କଳ୍ପମହୀରୁହ—ପୁଂ. ବି. କଳ୍ପଦ୍ରୁମ ।
କଳ୍ପଲତା—ସ୍ତ୍ରୀ. ବି. ବ୍ରହ୍ମାଙ୍କ ମୁଖଜାତ ଅପ୍‌ସରା ବିଶେଷ । [ବିଶେଷ ।
କଳ୍ପଲତାଦାନ—କ୍ଲୀ. ବି. ମହାଦାନ
କଳ୍ପବର୍ଷ—ପୁଂ. ବି. ଉଗ୍ରସେନର ଭ୍ରାତା, ଦେବକୀ ପୁତ୍ର ।
କଳ୍ପବଲ୍ଲୀ—ସ୍ତ୍ରୀ. ବି. କଳ୍ପଲତା ।
କଳ୍ପବାୟୁ—ପୁଂ. ବି. (୬ତତ୍) ପ୍ରଳୟ କାଳେ ଯେଉଁ ବାୟୁ ପ୍ରବାହିତ ହୁଏ ।
କଳ୍ପସୂତ୍ର—କ୍ଲୀ.ବି. ବୈଦିକ କର୍ମବିଧାୟକ ଗ୍ରନ୍ଥ, ବ୍ୟବସ୍ଥାଶାସ୍ତ୍ର ।
କଳ୍ପାଗତ—ପୁଂ. ବି. (ବ.ବ୍ରୀ) ଜନ୍ତୁ, ଦେବତାବିଶେଷ, କଳ୍ପକାଳ ଅପେକ୍ଷା ଯେ ବେଶିଦିନ ବଞ୍ଚିପାରେ ।
କଳ୍ପାଦି—ପୁଂ.ବି. ସୃଷ୍ଟିର ପୂର୍ବସମୟ ।
କଳ୍ପାନୁପଦ—ପୁଂ.ବି. ସାମବେଦାନ୍ତର୍ଗତ ଗ୍ରନ୍ଥବିଶେଷ ।
କଳ୍ପାନ୍ତ—ପୁଂ.ବି. (କଲ୍ପ+ଅନ୍ତ)୬ତତ୍; ପ୍ରଳୟ, ବ୍ରହ୍ମାଙ୍କଦିନାନ୍ତ, ଯୁଗାନ୍ତ ।
କଳ୍ପାନ୍ତଜୀବୀ—ପୁଂ. ବିଂ. ( କଳ୍ପାନ୍ତ+ଜୀବିନ୍) କଳ୍ପାନ୍ତସ୍ଥାୟୀ (ଦେଖ) (ସ୍ତ୍ରୀ) କଳ୍ପାନ୍ତଜୀବିନୀ ।
କଳ୍ପାନ୍ତର—କ୍ଲୀ. ବି. କ.ଧା; (ଅନ୍ୟ+କଲ୍ପ) ଅନ୍ୟଯୁଗ, ଅନ୍ୟବିଧି ।
କଳ୍ପାନ୍ତସ୍ଥାୟୀ—ପୁଂ. ବି. (କଳ୍ପାନ୍ତ+ସ୍ଥାୟିନ୍) ଚିରସ୍ଥାୟୀ, ଅମର,ଅବିନାଶୀ, କଳ୍ପକାଳର ଶେଷପର୍ଯ୍ୟନ୍ତ ଯେ ରହେ ।
କଳ୍ପିକ—ବି. ବିଂ. ଉପଯୁକ୍ତ, ଯୋଗ୍ୟ ।
କଳ୍ପିତ—ବି. ବିଂ.(କଲ୍ପ+ତ)ରଚିତ, ଉଦ୍ଭାବିତ, ସମ୍ପାଦିତ, ସଜ୍ଜିତ, ଦତ୍ତ, ଆରୋପିତ,ଅବଧାରିତ, ନିର୍ଣ୍ଣିତ (ପୁଂ.ବି) ଆରୋହଣାର୍ଥ ସଜ୍ଜିତହସ୍ତୀ ।
କଳ୍ପିତଧର୍ମ—ପୁଂ.ବି.(କ.ଧା)ଅନୀଶ୍ୱରେ ଈଶ୍ୱରଜ୍ଞାନ, ଯେଉଁଧର୍ମ କୌଣସି ସିଦ୍ଧ ପୁରୁଷ କର୍ତ୍ତୃକ ପ୍ରବର୍ତ୍ତିତ ହୋଇନାହିଁ ।
କଳ୍ପିତାର୍ଘ୍ୟ—ବି. ବିଂ. ଯାହାକୁ ଅର୍ଘ୍ୟ ଦିଆଯାଇଅଛି ।
କଳ୍ପିବା—କ୍ରି.କ୍ରି.ରଚନା କରିବା,ଅନୁମାନ ବା କଳ୍ପନାଦ୍ୱାରା ପ୍ରତିଷ୍ଠା କରିବା, ଆକାଙ୍‌କ୍ଷା କରିବା, ନିର୍ମାଣ କରିବା, ଜଳ୍ପକରିବା, ଚଳ୍ପାକରିବା, ତୁଳନା କରିବା, ମନରେ ସ୍ଥିର କରିବା ।
କଳ୍ପୀ—ବି.ବିଂ. (କ୍ଳୃପ୍+ଣିଚ୍+ଇନ୍) ରଚନାକାରକ, ଆରୋପକ, ବେଶ କାରକ (ପୁଂ) ନାପିତ, ଭଣ୍ଡାରି ।
କଳ୍ପ୍ୟ—ବି.ବିଂ.(କ୍ଳୃପ୍+ଣିଚ୍+ଯ,ଯ) ରଚନୀୟ, ଆରୋପ୍ୟ, ବିଧେୟ ।
କଲ୍ମଲୀକ—କ୍ଲୀ. ବି. ତେଜ ।
କଲ୍ମଲୀକୀ—ପୁଂ.ବି. (କଲ୍ମଲୀକ+ଇନ୍) ନାଗ, ନକ୍ଷତ୍ରନୃପ, ପପଚନ୍ତ୍ରା,ମଇଳା, କଳଙ୍କ, ଦୋଷ, କଚଟିଭଳେ ଥିବା ହାତର ଅଂଶ, ( ବି ) ମଳିନ, ପାପୀ, କଳଙ୍କିତ,ଦୁଷ୍ଟ,ଖଳ, (ଗ୍ରା.ବି.) ସାମାନ୍ୟ ଦୋଷ, ରୁଦ୍ର ।
କଲ୍ମଷ—ବି. (କଲ+ମଷ୍+ଅ)କଲୁଷ, ପାପ, କାଣ୍ଡି, କାଟି, ନରକର ଅଂଶ ବିଶେଷ, କାଞ୍ଜିକ, ପାବକ ।
କଲ୍ମାଷ—ପୁଂ. ବି. (କଲ+ମଷ୍+ଅ) ଯେ ଅନ୍ୟବର୍ଣ୍ଣକୁ ନଷ୍ଟକରେ, ବିଚିତ୍ର ବର୍ଣ୍ଣ, କୃଷ୍ଣବର୍ଣ୍ଣ,ରାକ୍ଷସ, ଦୈତ୍ୟବିଶେଷ, ନାଗବିଶେଷ, ଯମ,ଅଗ୍ନିବିଶେଷ, ହରିଣ ବିଶେଷ, ପୂର୍ବଜନ୍ମରେ ଶାକ୍ୟମୁନିଙ୍କ ନାମ, (ବିଂ) ବିଚିତ୍ରବର୍ଣ୍ଣବିଶିଷ୍ଟ, ଚିପି-ଚିପିଆ ।
କଲ୍ମାଷକଣ୍ଠ—ପୁଂ.ବି.(ବ.ବ୍ରୀ)(କଲ୍ମାଷ+କଣ୍ଠ) ଶିବ, ନୀଳକଣ୍ଠ, ମହାଦେବ ।
କଲ୍ମାଷତା—ସ୍ତ୍ରୀ. ବି. ଚିତ୍ରବର୍ଣ୍ଣତା, କୃଷ୍ଣ-ପାଣ୍ଡୁରବର୍ଣ୍ଣତା ।
କଲ୍ମାଷପାଦ—ପୁଂ.ବି. ସୌଦାସରାଜା ।
କଲ୍ମାଷୀ—ସ୍ତ୍ରୀ.ବି. (କଲ୍ମାଷ+ଈ)ଚିତ୍ର-ବର୍ଣ୍ଣା ସ୍ତ୍ରୀ, କୃଷ୍ଣବର୍ଣ୍ଣା, ଯମୁନା, ରାକ୍ଷସୀ, ଯମଦଗ୍ନିଙ୍କ ଛଉଆ କାମଧେନୁ ।
କଲ୍ମେଶ୍ୱର—ମଧ୍ୟପ୍ରଦେଶର ନାଗପୁର ଜିଲ୍ଲାନ୍ତର୍ଗତ ଗୋଟିଏ ନଗର ।
କଲ୍ୟ—କ୍ଲୀ.ବି. (କଲ+ଯ,ଯ) ପ୍ରାତଃ-କାଳ, ସ୍ୱାସ୍ଥ୍ୟ,ଗତକାଲି, ଆଗାମୀକାଲି, ସୁସମ୍ବାଦ, କଲ୍ୟାଣ, ମଧୁ, ମଦ୍ୟ, (ବିଂ) ପ୍ରସ୍ତୁତ, ସଜ୍ଜିତ, ନିରୋଗ, ସମର୍ଥ, ଦକ୍ଷ, ଚତୁର, ଅଖିନ୍ନ, କାଲ, ବଧିର, ପବିତ୍ର,କୋକା, କଲ୍ୟାଣକର (ଗ୍ରା.ଅବ୍ୟ) ସକାଳେ,ଆଗାମୀକାଲି, (ସ୍ତ୍ରୀ) କଲ୍ୟା ।
କଲ୍ୟଜଗ୍ଧି—ସ୍ତ୍ରୀ. ବି. ପ୍ରାତଃକାଳର ଭୋଜନ, ସକାଳ ଭୋଜନ ।
କଲ୍ୟତ୍ୱ—କ୍ଲୀ.ବି. ଆରୋଗ୍ୟ; ନିରୋଗତା; କଲ୍ୟତା ।
କଲ୍ୟପାଳ; କଲ୍ୟପାଳକ—ପୁଂ. ଶୁଣ୍ଡି, ଶୌଣ୍ଡିକ ।

କଲ୍ୟବର୍ତ୍ତ—ପୁଂ.ବି.(କଲ୍ୟ + ବୃତ୍ + ଅ) ପ୍ରାତର୍ଭୋଜନ, ଜଳଖିଆ, ସାମାନ୍ୟ ବିଷୟ ।

କଲ୍ୟା—ସ୍ତ୍ରୀ.ବି.(କଲ + ଯ + ଆ) ମଦ୍ୟ, କଲ୍ୟାଣ ବାକ୍ୟ, ହରତକୀ, ପ୍ରଶଂସା, ଅଁଳା ।

କଲ୍ୟାଣ—କ୍ଲୀ.ବି. (କଲ୍ୟ + ଅଣ୍ + ମି, ଅ) ମଙ୍ଗଳ, ସୁଖ, ସୌଭାଗ୍ୟ, ଶୁଭ, ସ୍ୱର୍ଣ୍ଣ, ସମୃଦ୍ଧି, ରାଗିଣୀବିଶେଷ, ଉପକାର, ଅକ୍ଷୟସ୍ୱର୍ଗ, (ବିଂ) ଶୁଭଦ, ସୁଖୀ, ସାଧୁ, (ଗ୍ରା.ବି) ଶୁଭବାଞ୍ଛା ଓ ଆଶୀର୍ବାଦ ।

କଲ୍ୟାଣଉପାଧ୍ୟାୟ— ବାଲତନ୍ତ୍ରନାମକ ହସ୍ତ୍ତ ଗ୍ରନ୍ଥ-ପ୍ରଣେତା ।

କଲ୍ୟାଣକ—କ୍ଲୀ. (କଲ୍ୟାଣ + କ) କଲ୍ୟାଣ କର (ଦେଖ) ବି. କଲ୍ୟାଣଯୁକ୍ତ ।

କଲ୍ୟାଣକର—ବିଂ. (କଲ୍ୟାଣ + କୃ + କ, ଅ) ମଙ୍ଗଳକର, ମଙ୍ଗଳସୂଚକ ।

କଲ୍ୟାଣ କରିବା—ଗ୍ରା. କ୍ରି. ଆଶୀର୍ବାଦ କରିବା ।

କଲ୍ୟାଣକୃତ୍—ବି. ବିଂ. (କଲ୍ୟାଣ + କୃ + କ, କ୍ୱିପ୍) କଲ୍ୟାଣକାରକ, ଯେ ମଙ୍ଗଳ କରେ, ଶାସ୍ତ୍ରବିହିତ କାର୍ଯ୍ୟକାରକ, ଶୁଭକର୍ମର ଅନୁଷ୍ଠାନକାରୀ ।

କଲ୍ୟାଣଚନ୍ଦ୍ର—ପୁଂ. ବି. (କ,ଧା) ଏ ଜଣେ ଜ୍ୟୋତିଃଶାସ୍ତ୍ରକାର, ଜ୍ୟୋତିଷୋକ୍ତ ଶୁଭଚନ୍ଦ୍ର । [ସ୍ତ୍ରୀ ।

କଲ୍ୟାଣଦେବୀ—ସ୍ତ୍ରୀ.ବି. କାଶ୍ମୀରରାଜାଙ୍କ

କଲ୍ୟାଣଧର୍ମ୍ମୀ—ବି. ବିଂ. (କଲ୍ୟାଣ + ଧର୍ମ୍ମ + ଇନ୍) ମଙ୍ଗଳକର ଧର୍ମ୍ମବିଶିଷ୍ଟ ।

କଲ୍ୟାଣପ୍ରଦ—ପୁଂ. ବିଂ. (କଲ୍ୟାଣ + ପ୍ର + ଦା + କ ଅ) ସୁଖପ୍ରଦ, ଶୁଭକର, ମଙ୍ଗଳକର, ସମୃଦ୍ଧିଜନକ ।

କଲ୍ୟାଣଭାଜନ—ପୁଂ. ବିଂ. (୬ତତ୍) ମଙ୍ଗଳାସ୍ପଦ, କଲ୍ୟାଣକାମନାର ପାତ୍ରୀଭୂତ ।

କଲ୍ୟାଣମୟ—ପୁଂ. ବିଂ. ମଙ୍ଗଳମୟ, ଶୁଭପୂର୍ଣ୍ଣ, ଶୁଭକର, ସୌଭାଗ୍ୟଶାଳୀ, (ସ୍ତ୍ରୀ) କଲ୍ୟାଣମୟୀ ।

କଲ୍ୟାଣମିତ୍ର—କ୍ଲୀ. ବି. ମହର୍ଷି ସୁତପାଙ୍କ ପୁତ୍ର ।

କଲ୍ୟାଣଯୋଗ—ପୁଂ. ବି. ଯାହାର ଶୁଭ ଯୋଗ (ଜ୍ୟୋତିଷକ) ।

କଲ୍ୟାଣବଚନ—କ୍ଲୀ. ବି. ମଙ୍ଗଳବାକ୍ୟ ।

କଲ୍ୟାଣବର୍ମ୍ମା—ପୁଂ.ବି. ଏକଜଣ ପ୍ରସିଦ୍ଧ ଜ୍ୟୋତିର୍ବିତ୍ (ଜ୍ୟୋତିଷୋକ୍ତ) ।

କଲ୍ୟାଣବାଦୀ—ପୁଂ. ବିଂ. (କଲ୍ୟାଣ + ବଦ୍ + ଇନ୍) କଲ୍ୟାଣବକ୍ତା, ଯେ କଲ୍ୟାଣ କହେ ।

କଲ୍ୟାଣବୀଜ—ପୁଂ. ବି. ମଙ୍ଗଳର କାରଣ ।

କଲ୍ୟାଣସିଂହ—ବିକାନୀରର ଜଣେ ରାଜା ।

କଲ୍ୟାଣଚାର—ପୁଂ. ବି. ମଙ୍ଗଳକର ଆଚରଣ ।

କଲ୍ୟାଣଚାରୀ—ପୁଂ. ବିଂ. ମଙ୍ଗଳମୟ ଆଚରଣଯୁକ୍ତ ।

କଲ୍ୟାଣାଭିଜନନ—କ୍ଲୀ. ବି. ମଙ୍ଗଳକର ଜନ୍ମ ।

କଲ୍ୟାଣାଳୟ—ବି,ବି. (୬ତତ୍) ମଙ୍ଗଳର ଆଶ୍ରୟ, ଯାହାର ନିକଟରେ ମଙ୍ଗଳ ପ୍ରାର୍ଥନା କରାଯାଏ,(ପୁଂ.) ପରମେଶ୍ୱର, କଲ୍ୟାଣର ଯୋଗ୍ୟ ।

କଲ୍ୟାଣାସ୍ପଦ—ବି. ବିଂ. ମଙ୍ଗଳର ପାତ୍ର, (ପୁଂ.) ଜଗଦୀଶ୍ୱର ।

କଲ୍ୟାଣିନୀ—(କଲ୍ୟାଣ + ଇନ୍ + ସ୍ତ୍ରୀ + ଈ) କଲ୍ୟାଣବିଶିଷ୍ଟା ସ୍ତ୍ରୀ ।

କଲ୍ୟାଣୀ—ପୁଂ, ବିଂ, (କଲ୍ୟାଣ + ଇନ୍) କଲ୍ୟାଣଯୁକ୍ତ, ଶୁଭଯୁକ୍ତ, ସୁଖୀ, (ବି) ରାଗବିଶେଷ, (ସ୍ତ୍ରୀ.ବି) (କଲ୍ୟାଣ + ଈ) ମାଷପର୍ଣ୍ଣୀ, ଗାଈ, ମାଇବାଛୁରୀ,ଛଡ଼ା, (ବିଂ)କଲ୍ୟାଣପ୍ରଦା, ଶୁଭନୟନକାରିଣୀ, ଶୁଭଯୁକ୍ତା ।

କଲ୍ୟାଣୀୟ—ବି.ବିଂ. (କଲ୍ୟାଣ + ଈୟ) କଲ୍ୟାଣର ଯୋଗ୍ୟପାତ୍ର, ମଙ୍ଗଳାସ୍ପଦ ।

କଲ୍ୟାପାଳ—ପୁଂ. ବି. (କଲ୍ୟାପାଳ + ଣିର୍ + ଅ) ଶୁଣ୍ଡି ।

କଲ୍ଲ—(ଧାତୁ) ଅବ୍ୟକ୍ତ ଧ୍ୱନିକରିବା, ଘୁଙ୍ଗାହେବା, କଥା ନ କହିବା ।

କଲ୍ଲ—ବିଂ. (କଲ + ଅ) ବଧିର, କାଲ, ଶ୍ରବଣେନ୍ଦ୍ରିୟହୀନ, (ସ୍ତ୍ରୀ) କଲ୍ଲା ।

କଲ୍ଲତ୍ୱ—(କଲ୍ଲ + ତ୍ୱ) ସ୍ୱରଭେଦ, ବଧିରତା ।

କଲ୍ଲମୂକ—ପୁଂ.ବିଂ. (ଦ୍ୱନ୍ଦ୍ୱ) ବଧିର ଓ ମୂକ, କାଲ ଓ ଜଡ଼ା ।

କଲ୍ଲା—ପ୍ରା. (ମେଦିନୀ) ବାହାନା,ଆଳ ।

କଲ୍ଲି—(ଅବ୍ୟ) କାଲି, ଆଗାମୀଦିନ ।

କଲ୍ଲୁ—ପ୍ରା. (ମେଦିନୀ) ବି. ତେଲ୍ଲି ।

କଲ୍ଲୋଲ—ପୁଂ. ବି. (କଲ୍ଲ + କ, ଓଲ) ମହାତରଙ୍ଗ, ବଡ଼ଢେଉ, ହର୍ଷ, ଶତ୍ରୁ, ବୁଦାବୁଦ, (ଦେ.ବିଂ.) ହର୍ଷଗଦ୍‌ଗଦ, ଆନନ୍ଦୋତ୍‌ଫୁଲ୍ଲ, କୋଲାହଳମୟ ।

କଲ୍ଲୋଳିତ—ବି.ବିଂ. (କଲ୍ଲୋଲ + ଇତ) ତରଙ୍ଗଯୁକ୍ତ, ତରଙ୍ଗଦ୍ୱାରା ଆଲୋଡ଼ିତ ।

କଲ୍ଲୋଲିନୀ—ସ୍ତ୍ରୀ.ବି.(କଲ୍ଲୋଲ + ଇନ୍ + ଈ) ତରଙ୍ଗିଣୀ, ନଦୀ ।

କଲ୍ଲୋଲିନୀବଲ୍ଲଭ—ପୁଂ.ବି. ସମୁଦ୍ର ।

କଲ୍ହଣ—ପୁଂ.ବି. ରାଜତରଙ୍ଗିଣୀନାମକ ପ୍ରସିଦ୍ଧ ହସ୍ତ୍ତ ଇତିହାସ ରଚୟିତା ।

କହ୍ଲୋରା—ସିନ୍ଧୁ ପ୍ରଦେଶୀୟ ବେଲୁଚୀ ମୁସଲମାନ ଜାତି ।

କହ୍ଲାର—ବି. ଧଳାକଇଁ ।

କଲହୁଆ—ଗ୍ରା. ପୁଂ. ବିଂ. କହଳପ୍ରିୟ, କଳିହୁଡ଼ା ।

କବ—(ଧାତୁ) ପଦ୍ୟରଚନା କରିବା ।

କଶ୍—(ଧାତୁ) ଗମନକରିବା, ବଧକରିବା, ଶବ୍ଦକରିବା, ଦଣ୍ଡଦେବା ।

କଶ୍—ଗ୍ରା.ବିଂ.ଭିଡ଼ି ହୋଇ ଚପିହୋଇ ଦେହରେ ବସିଥିବା, ଟେସ୍ତ, ଦୃଢ଼ ।

କଶ୍‌କଶ୍—ଗ୍ରା. (ଅବ୍ୟ) ବେଗ ଆକ୍ରମଣ କରିବା ପୂର୍ବରୁ ବ୍ୟଥାଯୁକ୍ତ (ଶରୀର) ।

କଶ୍‌ମଶ୍—ଗ୍ରା. ଅବ୍ୟ. (କଶ୍‌କଶ୍‌ଦେଖ) ।

କଶ—ପୁଂ.ବି.(କଶ୍ + କ.ଅ) ଜଳ, ଘୋଡ଼ା ପ୍ରଭୃତିଙ୍କୁ ତାଡ଼ନ କରିବାର ପଦାର୍ଥବିଶେଷ, ଚାବୁକ, କୋରଡ଼ା ।

କଶସ୍—କ୍ଲୀ. ବି. ଜଳ ।

କଶା—ସ୍ତ୍ରୀ. ବି.(କଶ + ଅ + ଆ) ଚାବୁକ, ପ୍ରତୋଦ, ମାଂସ, କୋରଡ଼ା, ଲଗାମ, ଗୁଣ, ଦଉଡ଼ି, ମୁହଁ, ପାହି ।

କଶାଇ—ଗ୍ରା.ବି.(ସ—କପିଶା) ମେଦିନୀପୁରର ନଦୀବିଶେଷ, କଂସାଇ ନଦୀ ।

କଶାଘାତ—ପୁଂ.ବି. (୩ ତତ୍) ଚାବୁକ ମାରିବା ।

କଶାହସ୍ତ — କ୍ଲୀ.ବ. ତନ୍ତ୍ରପ୍ରକାର କଶାଘାତ ମୃଦୁ, ମଧ୍ୟ ଓ ନିଷ୍ଠୁର ।

କଶାନିପାତ — ବ. (ଷତତ୍ପୁ) ଚାବୁକଦ୍ୱାରା ପ୍ରହାର ।

କଶାର୍ହ — ତ୍ରି. ବଂ. (କଶା + ଅର୍ହ + କ, ଅ) ଚାବୁକ ମାଡ଼ ଖାଇବାର ଉପଯୁକ୍ତ, କଶାଘାତଯୋଗ୍ୟ, (ସ୍ତ୍ରୀ) କଶାର୍ହା ।

କଶୀକ — ପୁଂ.ବ.ନେଉଳ,(ସ୍ତ୍ରୀ)କଶୀକା ।

କଶୀକପାଦ — ତ୍ରି. ବ. ନେଉଳଭଳି ପାଦବିଶିଷ୍ଟ ଜନ୍ତୁ ।

କଶିପୁ — ପୁଂ. ବି. (କଶ + କ.ଯୁ)ଗ୍ରାସା-ଛାଦନ, ଖୋରାକପୋଷାକ, ଅନ୍ନବସ୍ତ୍ର, ଶଯ୍ୟା, ଆସନ,ଖଦ, ମସିଣା, ତକିଆ, ଖଟ, ଖାଦ୍ୟ, ପୋଷାକ ।

କଶେରୁ—ପୁଂ. କ୍ଲୀ. (କ + ଶୃ + କ.ଉ) ପୃଷ୍ଠସ୍ଥ ମେରୁହାଡ଼, କେଶୁର ନାମକ ତୃଣବିଶେଷ,ଭାରତର ଗୋଟିଏ ବିଭାଗ ।

କଶେରୁକ — କ୍ଲୀ. ବଂ. ମେରୁଦଣ୍ଡବିଶିଷ୍ଟ ପ୍ରାଣୀ ।

କଶେରୁକା — ସ୍ତ୍ରୀ. ବ. (କଶେରୁକ + ଆ) ମେରୁଦଣ୍ଡ, ପୃଷ୍ଠାସ୍ଥି ।

କଶେରୁମାନ୍ — ପୁଂ.ବ.ଯବନରାଜବିଶେଷ, ଭାରତବର୍ଷର ଖଣ୍ଡବିଶେଷ ।

କଶୋକ — ତ୍ରି. ବ. ହିଂସକ, ରାକ୍ଷସାଦି ।

କଶ୍ଚନ — (ସର୍ବ) ପୁଂ. (କଃ + ଚନ)ଯେ କେହି, କୌଣସି ବ୍ୟକ୍ତି,(ସ୍ତ୍ରୀ)କାଂଚନ, (କ୍ଲୀ) କଂଚନ ।

କଶ୍ଚିତ୍ — ସର୍ବ.ପୁଂ.(କଃ + ଚିତ୍)କେହି, ବା କୌଣସିବ୍ୟକ୍ତି, (ସ୍ତ୍ରୀ)କାଚିତ୍, (କ୍ଲୀ) କଂଚିତ୍ ।

କଶ୍ମଳ — କ୍ଲୀ.ବ.(କଶ + କ.ମଲ)ମୂର୍ଚ୍ଛା, ମୋହ, ଅବସାଦ, ଦୁର୍ଦଶା, ଛନଛନିଆ, ଘାବରା, ଦୁର୍ବଳତା,ଭୀରୁତା,ଅପବିତ୍ରତା, ପାପ, (ପୁଂ.ବି) କୁତ୍ସିତ, ମଳିନ, ଅପବିତ୍ର, ପାପୀ, ଭୀରୁ, ଅବସାଦଗ୍ରସ୍ତ, (ସ୍ତ୍ରୀ) କଶ୍ମଳା ।

କଶ୍ମୀର — ବ. (କଶ୍ମ + ଈର) କାଶ୍ମୀର-ରାଜ୍ୟ ।

କଶ୍ମୀରଜ-କ୍ଲୀ. ବ.(କଶ୍ମୀର + ଜନ୍ + ଅ) କୁଙ୍କୁମ, ଜାଫ୍ରାନ,(ବଂ)କାଶ୍ମୀରଦେଶ-ଜାତ ।

କଶ୍ମୀରଜନ୍ମ — କ୍ଲୀ. ବ. (ବ.ବ୍ରୀ)କୁଙ୍କୁମ-ବିଶେଷ, ଜାଫ୍ରାନ ।

କଶ୍ୟ — କ୍ଲୀ.ବ. (କଶ୍ + ମି.ଯ)ଘୋଡ଼ାର କଟିପାର୍ଶ୍ୱଦେଶ, ମଦ୍ୟବିଶେଷ ।

କଶ୍ୟପ — ପୁଂ.ବ. (କଶ୍ୟ + ପା + କ.ଅ) ମୁନିବିଶେଷ, କଚ୍ଛପ, ମୃଗବିଶେଷ, କର୍କଟରାଶି, (ଦେ.ବ)ହିରଣ୍ୟକଶିପୁ ।

କଶ୍ୟପନନ୍ଦନ — ପୁଂ. ବ. ଗରୁଡ଼,ଦେବ, ସୁରାଦି ।

କଶ୍ୟପପୁର — କ୍ଲୀ.ବ.ବର୍ତ୍ତମାନ କାଶ୍ମୀର ।

କଶ୍ୟପସଂହିତା — ସ୍ତ୍ରୀ. ବ. କଶ୍ୟପଋଷି ପ୍ରଣୀତ ଧର୍ମଶାସ୍ତ୍ରବିଶେଷ ।

କଶ୍ୟପସ୍ମୃତି — ସ୍ତ୍ରୀ.ବ.କଶ୍ୟପପ୍ରଣୀତ ଧର୍ମ-ଶାସ୍ତ୍ରବିଶେଷ ।

କଷ୍ — ଧାତୁ,(କଷ୍ + ଅ)ଘଷିବା,ଘର୍ଷିବା, ଛେଲିବା, କୁଣ୍ଡେଇହେବା, ଆଘାତ କରିବା,ବଧ କରିବା, କଷଟି ପଥରରେ ସୁନା ପରୀକ୍ଷା କରିବା ।

କଷ୍ଣା — ଗ୍ରା.(ସମ୍ପୃ.) ବ.(ସଂ — କର୍ଷଣ) ଲଙ୍ଗଳ, ଲୁହା ।

କଷ — ପୁଂ. ବ. (କଷ୍ + ଅ) ଘଷିବା ଘର୍ଷିବା, କଷ୍ଟିପଥର, ମୂଲ୍ୟ ନିରୂପଣା-ର୍ଥକ ପରୀକ୍ଷା, (ଦେ.ବ.) କଷାୟରସ, ରଙ୍ଗ, ଈଷତ୍ ନାଲିଆ ପାଣି, ବଳା ହୋଇ ପ୍ରସ୍ତୁତ ହୋଇଥିବା ରଙ୍ଗ ,କଷ ଦାହଡ଼, ବର୍ଣ୍ଣବିଶିଷ୍ଟ ଦାଗ ।

କଷକରିବା — ଗ୍ରା. କ୍ରି. (ସଂ — କଷାୟ) ବସ୍ତ୍ରାଦିକୁ ରଙ୍ଗାଇବା, ରଙ୍ଗମଡ଼ାଇବା ।

କଷକୁଆସିବା — ଗ୍ରା.କ୍ରି.ଫଳପ୍ରଦହେବା, ଲାଭଜନକହେବା ।

କଷଟି — ଗ୍ରା. ବ. କଷ୍ଟିପଥର ।

କଷଟିଆ — ଗ୍ରା. ବଂ. ଈଷତ୍କଷାୟ, ସାମାନ୍ୟ କଷା ଲାଗୁଥିବା, କୃପଣ ।

କଷଣ — କ୍ଲୀ. ବ. (କଷ + ଭା.ଅନ)କଷ୍ଟ, ବ୍ୟଥା, ଚନ୍ଦ୍ର, ଘର୍ଷଣ, ଛାପ, କଷିବା, ସୁନାକୁ କଷ୍ଟି ପଥରରେ ଘଷି ପରୀକ୍ଷା କରିବା, ଆଦରିବା, କାୟିକ ପରିଶ୍ରମ, ପରଖ, ଚମଡ଼ାଆଦିକୁ କଷାଇବା,(ବଂ) ଅପକ୍ୱ ।

କଷପାଷାଣ — ପୁଂ.ବ. କଷ୍ଟିପଥର ।

କଷଣୀ — ଗ୍ରା.ବ. (ସଂ — କର୍ଷଣୀ)ଗୋଡ଼-ଆଙ୍ଗୁଠିରେ ପିନ୍ଧିବା ଛୋଟ ମୁଦି,ଅଗୁଆ, ମୁଦିଆ, ଧନୁର୍ଗୁଣ ଟାଣିବାପାଇଁ ଆଙ୍ଗୁଳିରେ ପିନ୍ଧିବା ମୁଦିଆ,କଷିବା, ଟାଣିବା ।

କଷା — ସ୍ତ୍ରୀ.ବ. (କଷ + ଅ + ଆ)(କଶା ଦେଖ) ଗ୍ରା. ବ. (ସଂ — କର୍ଷଣ) ଗଣିତ ସମସ୍ୟାର ସମାଧାନ, ଚାବୁକଦ୍ୱାରା ମାଡ଼, ଯାନବାହନାଦି ସଜ୍ଜୀକରଣ, କଷିବା, ଭିଡ଼ିବା, ଦୃଢ଼ବନ୍ଧନ, ବରୁ-ରାଇବା, କଷିବା(ପ୍ରା.ବାଲେଶ୍ୱର ବ.) ଆମ୍ଭକେ ଇଲ୍,(ଗ୍ରା.ବଂ) ସଙ୍କୁଚିତ,ସାଧିତ, କଷାୟସ୍ୱାଦଯୁକ୍ତ, ରଞ୍ଜିତ, ଗେରୁଆ, ମୁଦ୍ରିତ, (ଚକ୍ଷୁ) କୃପଣ, ମସଲା ଦ୍ୱାରା ନରମ ଓ କାର୍ଯ୍ୟର ଉପଯୋଗୀ କରା-ଯାଇଥିବା (ଚମଡ଼ା) ।

କଷାଇବା — ଗ୍ରା. କ୍ରି. କଷିବା (ଦେଖ) କଷିବା କ୍ରିୟାର ଣିଜନ୍ତରୂପ,ବସ୍ତ୍ରକୁରଙ୍ଗ କରିବା, ଚମଡ଼ାକୁ ମସଲା ଦେଇ ନରମ ଓ କର୍ମଯୋଗ୍ୟ କରିବା ।

କଷାକଷି — ଗ୍ରା.ବ.ଘୋଡ଼ା ଆଦିକୁ ସଜ୍ଜିତ କରିବା କର୍ମ, ଦରଦାମରେ ଧିକ୍‌ମାନ ହେବା, ଟଣାଓଟରା, ଟଣାଟଣି, ଭିଡ଼ା-ଭିଡ଼ି ଅନାଟନ, କଷ୍ଟରେ ଚଳିବା, କୃପଣତା, ପରୀକ୍ଷା ପରଖ, ପରଖି ।

କଷାକୁ — ପୁଂ.ବ ସୂର୍ଯ୍ୟ, ଅଗ୍ନି ।

କଷାୟ-ବ.(କଷ + କ, ଆୟ)ରସବିଶେଷ, କ୍ୱାଥ, ପାଚନ, ନିର୍ଯ୍ୟାସ, ବିଲେପନ, ସୁଗନ୍ଧଲେପନ ଦ୍ରବ୍ୟ, ସୌରଭ, ଫଣ-ଫଣାଗଛ, କଳିଯୁଗ, ରାଗ, ଆସକ୍ତି, ନିର୍ବିକଳ୍ପ ସମାଧିର ବିଘ୍ନବିଶେଷ, ଉଧ ବୃକ୍ଷ,(ବଂ) କଷାୟ ରସବିଶିଷ୍ଟ,ଲୋହିତ-ରଞ୍ଜିତ, ଲୋହିତ ରକ୍ତବର୍ଣ୍ଣବିଶିଷ୍ଟ, ରକ୍ତପୀତବର୍ଣ୍ଣବିଶିଷ୍ଟ, ସୁଗ୍ରାବ୍ୟ, ଆସକ୍ତ, ଅପଟୁ,କଷା-ଆସ୍ୱାଦବିଶିଷ୍ଟ(ସ୍ତ୍ରୀ)କଷାୟା ।

କଷାୟକୃତ୍‌—ପୁଂ.ବି. (କଷାୟ+କୃ+କ୍ୱିପ୍‌) ରକ୍ତଲୋଧ୍ର (ବିଂ)କଷାୟପ୍ରସ୍ତୁତକାରୀ ।
କଷାୟଯାବନାଲ—ପୁଂ. ବି. (କ.ଧା) କଷାୟରସବିଶିଷ୍ଟ ଯାବନାଲ ଧାନ୍ୟ ।
କଷାୟବର୍ଗ—ବି.(ତତ୍ପୁ)ଅମ୍ବଷ୍ଠାଦି,ପ୍ରିୟଙ୍ଗ୍ୱାଦି,ଲୋଧ୍ରାଦି ତିଫଳା, ସଲ୍ଲକୀ,ଜାମ୍ବୁ, ଆମ୍ବ, ବଉଳ,କେନ୍ଦୁ, ଫଳଶ, କତକ, ପାଷାଣଭେଦୀ, ବନଖର୍ଜୁରଫଳ, କୁରୁବକ, କୋବିଦାର, ଜୀବନ୍ତୀ, ଚିଲ୍ଲି, ପାଲଙ୍କୀ, ସୁନୁସୁନୁଆଶାଗ, ହରିଡା ଓ ମୁଦ୍ଗ ପ୍ରଭୃତିଦ୍ରବ୍ୟ କଷାୟବର୍ଗର ଅନ୍ତର୍ଭୁକ୍ତ ।
କଷାୟିତ—ବି. ବି. (କଷାୟ+ତ) ରକ୍ତାଦିବର୍ଣ୍ଣିକୃତ, ବିଲେପିତ,ରକ୍ତପୀତ ମିଶ୍ରିତ, ରଞ୍ଜିତ ।
କଷାୟୀ—ପୁଂ. ବି. (କଷାୟ+ଇନ୍‌) ଶାଳ, ଖଜୁରିଗଛ, (ବି.ବିଂ)କଷାରସ ଯୁକ୍ତ ।
କଷାଳିଆ, କଷାଟିଆ—ଗ୍ରା. ବିଂ. ଅଳ୍ପ-କଷା,ଈଷତ୍‌କଷାୟ ସ୍ୱାଦଯୁକ୍ତ,ସାମାନ୍ୟ ରଞ୍ଜିତ, (ବିଂ)ଅଳ୍ପ, କୃପଣ, ହିସାବ-ହୋଇଥିବା ।
କଷି—ବି. ବିଂ. (କଷ+ଇ) ହିଂସକ, (ଗ୍ରା. ବି) ଛୋଟ, କଞ୍ଚାଫଳ, କଷିଗଛ, ଆମ୍ବକଷି, ଲେମ୍ବୁକଷି, ନୂଆଫଳ ।
କଷିତ—ବି.ବିଂ. (କଷ+ଇ,ତ)ଯାହା କଷା ଅର୍ଥାତ୍‌ ପରୀକ୍ଷା କରାଯାଇଅଛି, (କ୍ର) କଷଣ ।
କଷିବା—ବି. ବି. (ଗ୍ରା) ପରୀକ୍ଷାକରିବା, ଭିଡ଼ିବା, ଟାଣିବା ଇତ୍ୟାଦି, କର୍ଷିବା, ସୁନାପରଖିବା ।
କଷୀକା—ସ୍ତ୍ରୀ. ବି. (କଷ+ଈକ+ଆ) ପକ୍ଷିଜାତି, ଝିଲ୍ଲୀ, ଖଣ୍ଡ ।
କଷୀଡା—ପୁଂ. ଶକ୍ତକରି ବାନ୍ଧିବା ।
କଷେରୁକା—ସ୍ତ୍ରୀ. ବି. (କଷ+ଏର+ଉକ.ଆ) ପୃଷ୍ଠାସ୍ଥି, ମେରୁହାଡ଼ ।
କଷୋଟ—ଗ୍ରା. ବି. ଅଲ୍ପତା, ଗଣନା, ହିସାବ, ନଅଣ୍ଟିବା ଅବସ୍ଥା, ଅନଟନ, (ବିଂ)ଅଳ୍ପ,କୃପଣ, ହିସାବହୋଇଥିବା ।
କଷ୍କଷ—ପୁଂ.ବି. ବିଷଧର କ୍ରିମିବିଶେଷ ।
କଷ୍ଟ—ବି.ବିଂ. (କଷ୍‌+ତ)ପୀଡ଼ାଯୁକ୍ତ, ଗହନ, କଷ୍ଟସାଧ୍ୟ,କୁତ୍ସିତ, ଦୁଃଖପ୍ରଦ, ନୀଚ, ହୀନ, କଠୋର,(ବି)ଅଲଙ୍କାର-ଶାସ୍ତ୍ରୋକ୍ତ ଦୋଷବିଶେଷ, ଦୁଃଖ, ଅମଙ୍ଗଳ, ପରିଶ୍ରମ ।
କଷ୍ଟକର—ବି. ବିଂ. (କଷ୍ଟ+କୃ+କ.ଅ) ପୀଡ଼ାଜନକ, ଦୁଃଖଜନକ, (ସ୍ତ୍ରୀ) କଷ୍ଟକାରୀ ।
କଷ୍ଟକଳ୍ପନା—ସ୍ତ୍ରୀ. ବି. (କ.ଧା) ଯାହା ସହଜେ କଳ୍ପନା କରି ହୁଏନାହିଁ,ଯାହା ଭାବି ଭାବି ସ୍ଥିର କରିବାକୁ କଷ୍ଟବୋଧ ହୁଏ,(ବିଂ) କଷ୍ଟକଳ୍ପିତ ।
କଷ୍ଟକଳ୍ପିତ—ବିଂ. (ତତ୍ପୁ)ବହୁ ଆୟାସରେ କଳ୍ପିତ,ଯାହା କଷ୍ଟରେ ରଚନା କରାହୋଇଛି ।
କଷ୍ଟାକାର—ପୁଂ. ବି. (କଷ୍ଟ+କୃ+ଅ) ସଂସାର,(ବି.ବିଂ) ଦୁଃଖଦାୟକ ।
କଷ୍ଟକାରିକ—ପୁଂ.ବି. ତତ୍ପୁ, ( କଷ୍ଟ+କୃ+ଅକ)ସଂସାର,(ବି.ବିଂ)ଦୁଃଖଜନକ
କଷ୍ଟଜନକ—ବିଂ. (ତତ୍ପୁ) କ୍ଲେଶକର, ଦୁଃଖଦାୟକ,(ସ୍ତ୍ରୀ) କଷ୍ଟଜନିକା ।
କଷ୍ଟଜୀବୀ—ପୁଂ.ବିଂ. (କଷ୍ଟ+ଜୀବ୍‌+କ, ଇନ୍‌)ଯେ କଷ୍ଟରେଜୀବିକାନିର୍ବାହ କରେ, ଯେ ଅନେକ କଷ୍ଟଭୋଗକରି ବଞ୍ଚିଥାଏ ।
କଷ୍ଟତପା—ପୁଂ. ବିଂ. (ବ.ବ୍ରୀ)ଅତିକଷ୍ଟ-କରି ତପସ୍ୟାକାରକ ।
କଷ୍ଟଦ—ବି. ବିଂ. (କଷ୍ଟ+ଦା+ଅ) କଷ୍ଟଦାୟକ, ଯେ କଷ୍ଟଦିଏ ।
କଷ୍ଟଦାୟକ—ବିଂ. (ତତ୍ପୁ)କ୍ଲେଶଜନକ, ଦୁଃଖପ୍ରଦ,(ସ୍ତ୍ରୀ) କଷ୍ଟଦାୟିକା ।
କଷ୍ଟଦେବା—ଗ୍ରା.କ୍ରି.ଅନ୍ୟକୁ ଦୁଃଖ ଦେବା
କଷ୍ଟପାଇବା—ଗ୍ରା. କ୍ରି. ଦୁଃଖଭୋଗ କରିବା, ପ୍ରସବବେଦନା ଅନୁଭବ କରିବା, ଶୂଳଖାଇବା ।
କଷ୍ଟଫେଡ଼—ଗ୍ରା. ବି. ମଧୁରସ୍ୱନକାରୀ ବନ ପକ୍ଷୀବିଶେଷ ।
କଷ୍ଟମଷ୍ଟେ—ଗ୍ରା. କ୍ରି ବିଂ. ଅତିକଷ୍ଟରେ, ଅତିଆୟାସସହକାରେ, ଯେକୌଣସି-ମତେ ।
କଷ୍ଟଯୋନ—ବି. ( କ.ଧା ) ନୀଚଯୋନି, ନୀଚଜନ୍ମ ।
କଷ୍ଟବପୁ—ପୁଂ.ବି. (କ.ଧା) ଯେଉଁଶରୀରକୁ କଷ୍ଟରେ ପରିଜୟ କରାଯାଏ ।
କଷ୍ଟଲଭ୍ୟ—ବି. ବିଂ. ଯାହା କଷ୍ଟରେ ପାଇବାକୁ ହୁଏ ।
କଷ୍ଟଶ୍ରିତ—ବି. ବିଂ. (ବ.ବ୍ରୀ) ଯେ କଷ୍ଟ ପାଇଅଛି, କଠୋର ବ୍ରତକାରକ ।
କଷ୍ଟସହ—ବି. ବିଂ. (କଷ୍ଟ+ସହ୍‌—ଅ) କଷ୍ଟସହିଷ୍ଣୁ, ଯେ କ୍ଲେଶ ସହିପାରେ, ଧୈର୍ଯ୍ୟଶୀଳ ।
କଷ୍ଟସହିଷ୍ଣୁ—ବିଂ.( ତତ୍ପୁ)କ୍ଲେଶସହନ-ଶୀଳ,ଯେ ନିରନ୍ତର କ୍ଲେଶ ସହିପାରେ ।
କଷ୍ଟସାଧ—ବି. ବିଂ. (ତତ୍ପୁ)ଦୁଃସାଧ୍ୟ, ଯାହା କଷ୍ଟରେ ସାଧନ କରାଯାଏ,(ସ୍ତ୍ରୀ) କଷ୍ଟସାଧ୍ୟା ।
କଷ୍ଟସ୍ଥଳ, କଷ୍ଟସ୍ଥାନ—କ୍ଲୀ. ବି. (କ.ଧା) ଦୁଃଖଜନକସ୍ଥାନ,ଦୁଃଖର ଜାଗା,ଦୁଃଖର ବିଷୟ ।
କଷ୍ଟହରଣୀ—କଟକ ଜିଲାସ୍ଥ ଗୋଟିଏ ନଦୀ, ଅଙ୍ଗଦେଶର ପ୍ରତିଷ୍ଠିତ ଗୋଟିଏ ପ୍ରାଚୀନ ଦେବମୂର୍ତ୍ତି ।
କଷ୍ଟାର୍ଜ୍ଜିତ—ବିଂ. (ତତ୍ପୁ) ଦୁଃଖଲବ୍ଧ, ବହୁକଷ୍ଟରେ ପ୍ରାପ୍ତ, ଆପଣାକୁ ବା ଅନ୍ୟକୁ କଷ୍ଟଦେଇ ଲବ୍ଧ ହୋଇଥିବା ।
କଷ୍ଟି—ସ୍ତ୍ରୀ. ବି. (କଷ୍‌+ଗ୍ର,ତି) ପରୀକ୍ଷା କରିବା, କଷିବାର ପଥର ।
କଷ୍ଟିପଥର—ଗ୍ରା.ବି. ସୁନାପ୍ରଭୃତି ପରୀକ୍ଷା କରିବାର ପଥର ।
କଷ୍ଟୀ—ପୁଂ. ବିଂ. (କଷ୍ଟ+ଇନ୍‌) କଷ୍ଟ ଭୋଗ କରିଥିବା, ଦୁଃଖଭୋଗକାରୀ,(ସ୍ତ୍ରୀ) କଷ୍ଟିନୀ ।                [ କଷ୍ଟରେ ।
କଷ୍ଟେମଷ୍ଟେ—ଗ୍ରା. କ୍ରି. ବିଂ. ବିଶେଷ-
କଷ୍ଟେସୃଷ୍ଟେ—ଗ୍ରା. କ୍ରି. ବିଂ. କଷ୍ଟେ-ମଷ୍ଟେ(ଦେଖ) ।
କସ—ପୁଂ. ବି. (କସ୍‌+ଅ) କଷ୍ଟିପଥର, ଯହିଁରେ ସୁନାପ୍ରଭୃତି କଷନ୍ତି ।
କସନ—ପୁଂ.ବି.(କସ୍‌+ଅନ)କାସରୋଗ ।

କସନା — ସ୍ତ୍ରୀ. ବ. (କସନ + ଆ) କୃଷ୍ଣବର୍ଣ୍ଣ ମାଙ୍କଡ଼ସାବିଶେଷ, ଲତାବିଶେଷ ।
କସନୋତ୍ପାଟନ—ପୁଂ.ବ. ବାସକବୃକ୍ଷ ।
କସପିଆ — ଗ୍ରା. ପୁଂ. ବିଂ. ବେଶ୍ୟାସକ୍ତ ।
କସପିକରିବା — ଗ୍ରା. କ୍ରି. ବେଶ୍ୟାସ୍ତ୍ରବଣ୍ଡା ରଜସ୍ୱଳାହୋଇ ବେଶ୍ୟାବୃତ୍ତି ଆରମ୍ଭ କରିବାର ପ୍ରଥମ ରଜନୀରେ ବେଶି ପଇସାଦେଇ ତାକୁ ଉପଭୋଗକରିବା ।
କସପିଗିରି - ଯା. ବ. ବେଶ୍ୟାବୃତ୍ତି ।
କସପୀ — ଯା. ବ. ଦାସୀ, ବେଶ୍ୟା, ବେଧେଇ, ନଷ୍ଟାସ୍ତ୍ରୀ,ଖାନ୍‌ଗୀ. ନର୍ତ୍ତକୀ, କୁଳଟା,(ଗ୍ରା.ବିଂ) କୃପଣ, କଞ୍ଜୁସ୍ ।
କସପୀ ନସୁଇବା—ଗ୍ରା. କ୍ରି. ଅତି ଅଲ୍ପକୁକୁ ହେବା ।
କସବ୍ — ଯା. ବାଣିଜ୍ୟ, ବ୍ୟବସାୟ ।
କସମ୍ — ଯା. ବ. ଶପଥ ।
କସର୍ଣ୍ଣୀର — ପୁଂ. ବ. ସର୍ପବିଶେଷ ।
କସା — ସ୍ତ୍ରୀ,ବ.(କସ୍ + ଅ + ଆ)ସ୍ୱରୁକ, ଭିତ୍ତିବ , କଷ୍ଟରେ ଚଳିବା, କଷାରସ, (ଗ୍ରା.ବ) ମୁଖର ପ୍ରାନ୍ତଦେଶ ।
କସାଇ — ଯା.ବ. ପଶୁଘାତକ, କଂସାଇ, ଗ୍ରା.ଗୋଟିଏ ନଦୀର ନାମ ।
କସାଇଖାନା — ଗ୍ରା. ବ. ଖାଦ୍ୟାର୍ଥ ପଶୁହତ୍ୟା କରିବାର ସ୍ଥାନ ।
କସାକସ୍ — ଗ୍ରା, ବିଂ. ନଅଣ୍ଟ ଦେହକୁ ଖୁବ୍‌ଗ୍ରେସ୍ତ ହେଉଥିବା,(ବ) କୃପଣତା, ନଅଣ୍ଟ ଅବସ୍ଥା ।
କସାକସି — ଗ୍ରା. ବ. ଅନ୍ୟୋନ୍ୟରେ ବଳଆଦର ପରୀକ୍ଷା କରିବା କର୍ମ୍ମମାନ, ଅନାଟନ, ଅଭାବ, ବ୍ୟୟସଙ୍କୋଚ, (ବିଂ) ଟଣାଟଣି, ପରସ୍ପର ଘଷାଘଷି ।
କସାଘାତ-ବ,(ଅଶୁଦ୍ଧ)କଶାଘାତ(ଦେଖ) ।
କସାମ୍ବୁ — କ୍ଲୀ. ବ. ପିତୃଲୋକମାନଙ୍କୁ ପିଣ୍ଡଦେବା ସମୟରେ ଯେଉଁ ଜଳ ଦାନ କରାଯାଏ ।
କସାସ୍ତ୍ରୀ — ଯା. କଂସାଇ, ପଶୁଘାତକ ।
କସି — ଗ୍ରା. ବି· କଷି(ଦେଖ) ।
କସିଆ — ଗ୍ରା.ବ. (ଶିଶୁବଚନ) ପୁଂଲିଙ୍ଗ, ପୁଂ ଚିହ୍ନ, ଲିଙ୍ଗ ।

କସିକାସିହେବା,କସିଲୁସାହେବା- ଗ୍ରା.କ୍ରି କୃପଣହେବା, କ୍ଷୁର୍ଣ୍ଣ ଭହେବା, କୌଣସି ଶ୍ରମସାଧ କାମପାଇଁ ଲୁଗା ପଟା ଭିଡ଼ି ପ୍ରସ୍ତୁତହେବା । [କଡ଼ି ।
କସିଦ — ଗା. ବ. (ଫ — କଷାସ୍ୟ) କଢ଼,
କସିପୁ — ପୁଂ. ବ. ଶଯ୍ୟା, ଆସନ,ଅନ୍ନ ।
କସିପେନ୍ଦୁଗ୍ରୀ — ଗ୍ର . ବ. ସ୍ତ୍ରୀ ଯୁଦ୍ର, ପଦ୍ମରୋଗବିଶିଷ୍ଟା (ସ୍ତ୍ରୀ) ।
କସିବୀ — ଗ୍ରା. ବ. (କସପୀ ଦେଖ) ।
କସିଭୂଆସୁଣୀ — ଗ୍ରା. ସ୍ତ୍ରୀ. ବ. ଯୁବତୀ, କୁଳବଧୂ, ନବବଧୂ ।
କସୁର୍ — ଗ୍ରା.ବ. ତ୍ରୁଟି, ଦୋଷ, ଅପରାଧ, ସାମାନ୍ୟଦୋଷ,ନ୍ୟୂନତା ।
କସୁରୁ — ଗ୍ରା.(ସମ୍ବ) ବ.କେଶୁର ତୃଣ ଓ ତହିଁର ଖାଦ୍ୟ ମୂଳ ।
କସୂର୍—ଯା. ବ. ନ୍ୟୂନତା, ସାମାନ୍ୟ ଦୋଷ, ଅପରାଧ, ଅବଶିଷ୍ଟ, ଅଳ୍ପ ।
କସେରା — ବିହାର ଅଞ୍ଚଳର ଏକପ୍ରକାର ବଣିକ ଜାତି ।
କସେଲ୍ଲ— ପ୍ରା. (ବସ୍ତର) ବ. ଢାଲ ।
କସୋର୍ — ଯା.ବ. (କସୂର ଦେଖ ) ।
କସ୍ତା — ଗ୍ରା. ବ. (ଫ—କଷାସ୍ୟ) ନାଲିସୂତା, ରଙ୍ଗିନ୍ ସୂତାର ଲୁଗା ।
କସ୍ତୁରୀ — ଗ୍ରା. ବ. (ଫ—କସ୍ତୂରୀ) ଏକପ୍ରକାର କସ୍ତୁରୀ-ଗନ୍ଧଯୁକ୍ତ ଶାକଗୁଳ୍ମ ଓ ତହିଁର ମଞ୍ଜି, ଏକଜାତୀୟ ଶାମୁକା ।
କସ୍ତୁରିକା — ସ୍ତ୍ରୀ. ବ. କସ୍ତୁରୀ,ସୁଗନ୍ଧଦ୍ରବ୍ୟବିଶେଷ ।
କସ୍ତୂରିକାମୃଗ — ପୁଂ,ବ.ଏକଜାତୀୟହରିଣ
କସ୍ତୂରୀ — ସ୍ତ୍ରୀ.ବ. (କସ୍ + କ,ଉରୀ)ମୃଗନାଭି, ସୁଗନ୍ଧଯୁକ୍ତ ଦ୍ରବ୍ୟବିଶେଷ ।
କସ୍ତୂରୀକାଣ୍ଡଜ — ପୁଂ. ବ. ମୃଗନାଭି ।
କସ୍ତୁରୀମଲ୍ଲିକା,କସ୍ତୁରୀମଲ୍ଲୀକା—ସ୍ତ୍ରୀ. ବ. ଲତାକସ୍ତୂରୀ । (ହଂସକ ।
କସ୍ୱର — ବିଂ.(କସ + କ,ବର)ଗମନଶୀଳ,
କସ୍ମନ — କ୍ଲୀ.ବ.(କସ୍ + ମନ୍ + ଅ)ମୂର୍ଚ୍ଛା, ମୋହ, ଅଚେତା, ଘାବରା, ଦୁର୍ଘଟର ।
କସ୍ମାତ୍ — ଗ୍ରା. ବ. ବିପଦ, ବିଘ୍ନ ।
କସ୍ମିନ୍‌କାଲେ — ଗ୍ରା. କ୍ରି. ବ. (କସ୍ମିନ୍ + କାଲେ) କଦାପି, କେବେହେଲେ ।

କସ୍ୟ — ସର୍ବ.(କିମ୍‌ଶବ୍ଦରୁଷ୍ଠ.ତତ୍ତ୍ୱ),କାହାର ଦଲିଲ ଶିରୋନାମାରେ ଲେଖାହେବା ନିରର୍ଥକ ଶବ୍ଦ ।
କହ — (ଧାତୁ) କହିବା, ପ୍ରକାଶକରିବା, ଅନୁରୋଧ କରିବା, ବାକ୍ୟ ଉଚ୍ଚାରଣ କରିବା ।
କହ — ପ୍ରା. (ସମ୍ବ.) ବ. ଅର୍ଜୁନଗଛ ।
କହକହ — ଗ୍ରା. (ଅବ୍ୟ) ଲୋକଗହଳର ଶବ୍ଦ, ଗହଗହ ଶବ୍ଦ, ବାହାରକୁ ନ ବାହାର ଭିତରେ କାନ୍ଦୁଥିବାର ଭାବ ।
କହଣା — ଗ୍ରା. ବ. କଥା, କାମ୍ବଦନ୍ତୀ ।
କହର — ପ୍ରା.(ସମ୍ବ.)ବ. ସୁବାସ, ସୁଗନ୍ଧ ।
କହରା — ଗ୍ରା. ବିଂ. ପିଙ୍ଗଳବର୍ଣ୍ଣବିଶେଷ, କପିଳ,(ସ୍ତ୍ରୀ) କହରୀ ।
କହରିବା — ପ୍ରା. (ସମ୍ବ). କ୍ରି. ବାସିବା, ସୁବାସିତ ହେବା ।
କହଲ୍ — ପ୍ରା.(ସମ୍ବ).ବିଂ.କଅଁଳ,ନରମ, କୋମଳ ।
କହା — ଗ୍ରା. ବ. ବିଂ. କୁହା(ଦେଖ) ।
କହାକହି — ଗ୍ରା.ବ.ପରସ୍ପର କଥାକହିବା ।
କହାଯିବା — ଗ୍ରା. କ୍ରି. ବୋଲଯିବା, କୁହାଯିବା, କଥିତହେବା ।
କହାହ — ପୁଂ.ବ. କଟାହ, ହଣ୍ଡା, ହାଣ୍ଡି ।
କହିବା — ଗ୍ରା. କ୍ରି. ( ଫ — କଥଧାତୁ ) ଉପଦେଶଦେବା,ବାକ୍ୟଦ୍ୱାରାଜଣାଇବା, ପ୍ରକାଶକରିବା,ବର୍ଣ୍ଣନାକରିବା, ମୌଖିକ ଆଜ୍ଞା କରିବା ।
କହୁଣି — ଗ୍ରା. ବ. ବାହୁ ଏବଂ ହାତର ମିଳନ ସ୍ଥାନ,ଗଣ୍ଠି,କହୁଣିଦ୍ୱାରା ପ୍ରହାର ବା ଆଘାତ, (ବିଂ) କହୁଣିଆ ।
କହୁଣିଆ — ଗ୍ରା.ବିଂ.କହୁଣି ମାଡ଼ଖାଇବା ଯୋଗ୍ୟ, ମାଡ଼ୁଆ, (ବ) କହୁଣିମାଡ଼, କହୁଣିଦ୍ୱାରା ଆଘାତ ବା ଠେଲା ।
କହ୍ନା — ଗ୍ରା.ବ. (ଫ — କୃଷ୍ଣ) ଶ୍ରୀକୃଷ୍ଣଙ୍କର ଆଦରନାମ । [ଆଦରନାମ ।
କହ୍ନେଇ,କହ୍ନାଇ—ଗ୍ରା. ବ. ଶ୍ରୀକୃଷ୍ଣଙ୍କର
କହ୍ଲାର—କ୍ଲୀ.ବ.ଧଳାପଦ୍ମ,ଶ୍ୱେତୋତ୍ପଳ ।

କହ୍ୱ—ପୁଂ. ବି. (କ+ହ୍ୱେ+ଅ)ବକ, ବଗ, କ୍ରୌଞ୍ଚପକ୍ଷୀ ।

କା—(ଅବ୍ୟୟ) କାକର ଶବ୍ଦ,ମନ୍ଦ,ପାପ, କେଉଁ ସ୍ତ୍ରୀ. (ଗ୍ରା—ସର୍ବ) କାହାର ।

କାଆ—ଗ୍ରା.ବି. କାକପକ୍ଷୀର ଶବ୍ଦ,ଶ୍ରୁତି-କଟୁ ଶବ୍ଦ, ଅନୁପସ୍ଥିତ ଖେଳାଳିର ପ୍ରତିନିଧି ।

କାଇ—ଗ୍ରା.ବି.ଗଛରେ ଥିବା ନାଲିକନ୍ଦା, ପୀତବର୍ଣ୍ଣ ମୃତ୍ତିକାବିଶେଷ ।

କାଇଁ—ଗ୍ରା. (ଅବ୍ୟ)(କାହିଁଦେଖ) ।

କାଇଁଚ—ଗ୍ରା. ବି. କାଇଁଞ୍ଚ, କାଇଁଶ ।

କାଇଁଚମାଳିଆ—ଗ୍ରା. ବିଂ. ଗୁଞ୍ଜାଫଳ-ଗ୍ରଥିତ ମାଳାପରିଧାନକାରୀ ।

କାଇଁଶିଲ—ଗ୍ରା. (ସମ୍ବ) ସର୍ବ. ବିଂ. କୌଣସିଲ,କଣ୍ଠିମାତ୍ର, କଣ୍ଠନା କଣ୍ଠ ।

କାଇଜର—ଯା. ବି. (ଲାଟିନ୍) ସିଜର୍, ସମ୍ରାଟ୍, ବାଦଶାହ, ଜର୍ମାନୀରଭୂତପୂର୍ବ ସମ୍ରାଟଙ୍କ ଉପାଧି ।

କାଇଞ୍ଚ—ଗ୍ରା. ବି. (ସଂ—କାକଚଞ୍ଚୁ) ଗୁଞ୍ଜାଫଳ ଓ ଲତା, ଏକରତି ଓଜନ ।

କାଇତ୍—ଗ୍ରା. (ସମ୍ବ.) ବିଂ. ଲୋଭୀ, ସ୍ୱାର୍ଥପର ।

କାଇଥି—ଗ୍ରା. ବି. ବିହାର ଓ ଛୋଟ-ନାଗପୁରରେ ପ୍ରଚଳିତ ସଂସ୍କୃତମୂଳକ ଭାଷା ବିଶେଷ ।

କାଇଦା—ଗ୍ରା. ବି. ନିୟମ, ବିଧି, କଟ-କଣା, ବନ୍ଦୋବସ୍ତ, ରୀତି, ଅଧୀନତା, ଇଜ୍ଜତ୍, ଆକଟ, ବାରଣ, ନିଷେଧ, ଦସ୍ତୁର, (ବିଂ)ନିୟମାଧୀନ, ସୀମାବଦ୍ଧ ।

କାଇଦାକଟକଣା—ଗ୍ରା. ବି. ଦୃଢ଼ନିୟମ, କଠୋର ନିୟମ ।

କାଇନହାଉସ—ଯା. ବି. କାଞ୍ଜି ଆହୁଡା, କାଞ୍ଜିହାଉସ, କ୍ଷେତନଷ୍ଟ କରିବା ଗୋ ମହିଷାଦିଙ୍କୁ ଆବଦ୍ଧକରି ରଖିବା ସ୍ଥାନ ।

କାଇପଦର—ଗ୍ରା.ବି. ପୁରୀଜିଲା ଖୋରଧା ସବ୍‌ଡିଭିଜନରେ ଥିବା ପୀରଙ୍କର ଏକ ପ୍ରସିଦ୍ଧ ଆସ୍ଥାନ ଓ ଉକ୍ତ ଆସ୍ଥାନ ଥିବା ଗ୍ରାମ ।

କାଇମାଟି—ଗ୍ରା.ବି. ସାଜମାଟି, ଫିକା ବା ପାଣ୍ଡୁରବର୍ଣ୍ଣର ମାଟି, ପୀତବର୍ଣ୍ଣମୃତ୍ତିକା-ବିଶେଷ ।

କାଇଲ—ଯ. ବି. ଦୋଷ, ତ୍ରୁଟି,ଦୋଷ-ଜନକ କାର୍ଯ୍ୟ, ଭୁଲ, (ବିଂ) ଦୋଷୀ, ଅପରାଧୀ ।

କାଇଲମାକୁଲ—ଗ୍ରା, ବିଂ. ନ୍ୟାୟ ନିଷାପରେ ଦୋଷୀରୂପେ ସାବ୍ୟସ୍ତ, (ବି) ତ୍ରୁଟି ବା ଦୋଷ ଆଦି ।

କାଇଲା—ଗ୍ରା.ବି କ୍ଳାନ୍ତ,ଅବସାଦ, ରୋଗୀ, ମଳୁ, (ବିଂ)ଶୀର୍ଣ୍ଣ,ଅସୁସ୍ଥ,ରୁଗ୍ଣ, କ୍ଳାନ୍ତ ।

କାଉ—ଗ୍ରା.ବି. (ସଂ—କାକ)କାକ,କୁଆ ।

କାଉଆଜ୍—ଯା.ବି.ସୈନ୍ୟଶିକ୍ଷା,ପରେଡ୍ ।

କାଉଆଲ—ଯା. ବି. ଫକୀର ବା ଦର-ବେଶମାନଙ୍କ ଗୀତ, ବାଦ୍ୟର ତାଳ-ବିଶେଷ ।

କାଉଁ—ଗ୍ରା.(ଅବ୍ୟ)କାମୁଡ଼ିବାକୁ ଉଦ୍ୟତ, କୁକ୍କୁର ଶବ୍ଦ ।

କାଉଁ କାଉଁ ହେବା—ଗ୍ରା. କ୍ରି. ବିରକ୍ତ ହେବା, ଚଡ଼ି କରି କଥା କହିବା ।

କାଉଁଦା—ଯା.ବିଂ. ସାମାନ୍ୟଆର୍ଦ୍ର,ଓଦା ।

କାଉଁଗ—ଗ୍ରା. ବି. ଏକପ୍ରକାର ଘାସ, ଅସ୍ପୃଶ୍ୟ ଜାତିବିଶେଷ, ଶିଶୁମାନଙ୍କର ଗୋଡ଼ର ଏକପ୍ରକାର ବାଇଶିରୋଗ ।

କାଉଁର—ଗ୍ରା. ବି. (ସଂ—ସ୍କନ୍ଧ+ଭାର) ଗୌଡ଼ମାନଙ୍କ ବ୍ୟବହୃତ ଏକପ୍ରକାର ବାଡ଼, କୁମାରୀ, (ସଂ-କାମରୂପ) ଆସା-ମର କାମରୂପ ଦେଶ, ଶାକବିଶେଷ, (ବିଂ) କାମରୂପ ଦେଶସମ୍ବନ୍ଧୀୟ ।

କାଉଁରିଆ—ଗ୍ରା.ବି. ଧଣିଗୁ, ନଳିତା, ଛଣପଟ ପ୍ରଭୃତି, ଗଛର ତ୍ୱକ୍‌ସ୍ଥାନ ଭଙ୍ଗପ୍ରବଣ କାଣ୍ଡ । [ବାଲିକା ।

କାଉଁରକନ୍ୟା—ଗ୍ରା. ବି. ଅବିବାହିତା

କାଉଁରକାମଚଣ୍ଡୀ—ଗ୍ରା. ବି. କାମରୂପ ଦେଶରେ ଥିବା କାମାଖ୍ୟା ବା କାମଚଣ୍ଡୀ ଠାକୁରାଣୀ । [ଚନ୍ଦ୍ର ।

କାଉଁରଗୃହ—ଗ୍ରା. ବି. ପ୍ରତିପଦ୍ ତିଥିର

କାଉଁରବର—ଗ୍ରା.ବି. କୁମାରୀ ପୋତିଥିବା ବଟବୃକ୍ଷ, ପୁରୀଜିଲାରେ କାଉଁରବର ଥିବା ସ୍ଥାନର ନାମ ।

କାଉଁରଖର—ଗ୍ରା. ବି. ଯାତ୍ରୀମାନେ ଗଙ୍ଗୋତ୍ରୀଠାରୁ ଯେଉଁ ଭାରରେ ଗଙ୍ଗାଜଳ କାନ୍ଧରେ ବହି ରାମେଶ୍ୱର ପର୍ଯ୍ୟନ୍ତ ନିଅନ୍ତି,ସେହି ଭାର ।

କାଉଁରମଣ୍ଡଳ—ଗ୍ରା.ବି. ମୂର୍ଦ୍ଧା-ଦେଶସ୍ଥ ସ୍ଥାନବିଶେଷ, ଯେଉଁଠାରୁ ଶବ୍ଦବ୍ରହ୍ମ ଜାତହୁଏ, ବ୍ରହ୍ମରନ୍ଧ୍ର ।

କାଉଁରମନ୍ତ୍ର—ଗ୍ରା. ବି. ଗାରୁଡ଼ମନ୍ତ୍ରରେ ସାର ପଦ ।

କାଉଁରସୂତା—ଗ୍ରା. ବି. କୁମାରୀମାନେ କାଟିଥିବା ସୂତା, ଅବିବାହିତ ସୂତା ।

କାଉଁରହାଡ଼—ଗ୍ରା.ବି. କୁମାରୀର ଅସ୍ଥି ।

କାଉକାଉ—ଗ୍ରା. (ଅବ୍ୟ) କାକର ଧ୍ୱନି, ଘୋଷା, ଗୋଳମାଳ, ବହୁଲୋକ ମୁଖରୁ ଉଦ୍ଭୂତ କର୍କଶ ଧ୍ୱନି ।

କାଉକାଉହେବା—ଗ୍ରା. କ୍ରି. କୁଆଭଳି ଶବ୍ଦ କରିବା, କା'କା'ହେବା, ଗୋଳ-ମାଳିଆ, ପାଟିକରିବା, ଗୋଳକରିବା, ବହୁଭାଷଣ କରିବା ।

କାଉଗୋଡ଼ିଆ—ଗ୍ରା. ବି. ସନ୍ତସନ୍ତିଆ ଛାୟାଯୁକ୍ତ ସ୍ଥାନରେ ହେବା ଘାସ, (ବିଂ) ଯାହାର ଗୋଡ଼ କୁଆଗୋଡ଼ ପରି କ୍ଷୀଣ ଓ ସରୁ ।

କାଉଚଆ—ଗ୍ରା.ବି.କୋଚଆ,ଏକଜାତୀୟ ନିର୍ବିଷ ସାପ, ଘୋଡ଼ାର ଗତିବିଶେଷ, ଲତାବିଶେଷ, ଏକପ୍ରକାର ବୃକ୍ଷ, ଏକ ପ୍ରକାର ପକ୍ଷୀ ।

କାଉନ୍‌ସିଲ୍—ଯା.(ଇଂରାଜୀ) ବି. କାର୍ଯ୍ୟ-କାରୀ ସଭା, ବ୍ୟବସ୍ଥାପକସଭା ।

କାଉଳା—ଗ୍ରା.ବି. (ସଂ—ଆକୁଳ) ମନର ବ୍ୟସ୍ତତା,ଉଦ୍‌ବେଗ, ମାନସିକ ଶୃଙ୍ଖଳ୍ୟ, ମନର ଅସ୍ଥିରତା,ବ୍ୟସ୍ତ,କ୍ଷୁବ୍ଧ, ସନ୍ତ୍ରସ୍ତ, ଶୃଙ୍ଖଳ୍ୟଯୁକ୍ତ ।

କାଉଳି—ଗ୍ରା.ବି. ବିଂ (କାଉଳାଦେଖ) ।

କାଉସାପ—ଗ୍ରା.ବି.ଏକପ୍ରକାର ସରୀସୃପ ।

କାଏ—ଗ୍ରା. ସର୍ବ. କ ? କ'ଣ ? କିଏ ?

କାଏଁଟା—ଗ୍ରା.(ସମ୍ବ.)ସର୍ବ.କେଉଁ ? କେଉଁ ଗୋଟା ? କିଅଣ କ ?

କାଏଁଡଙ୍ଗର—(ଗ୍ରା.ସମ୍ବ.) ବିଂ. କି ପ୍ରକାରର, କମ୍ଭୃତ, କିମାକାର,ଅଡୁଆ, ଅଖାଡ଼ୁଆ ।

କାଏଁଥି — ଗ୍ରା. ( ସମ୍ବ. ) ଅବ୍ୟ, କେଉଁଠାରେ, କାହାଦ୍ୱାରା ।
କାଏଦା — ଯା.ବି. ଅଧିକାର, (କାଇଦ ଦେଖ), ବଶ, ସୁଶୃଙ୍ଖଳ, ବନ୍ଦୋବସ୍ତ ।
କାଏମ — ଯା.ବି. ଅପରିବର୍ତ୍ତିତ, ସ୍ଥାୟିତ୍ୱ, (ବି°)ସ୍ଥାୟୀ, ଅପରିବର୍ତ୍ତିତ, ନିର୍ଦ୍ଧାରିତ, ନିଶ୍ଚିତ ।
କାଏମମୁକାଏମ — ଯା. (କଚେରୀଅଭାଷା) ପ୍ରତିନିଧି, କୌଣସିପକ୍ଷ ସ୍ଥାନରେ ପ୍ରତିଷ୍ଠିତ ଅନ୍ୟବ୍ୟକ୍ତି ।
କାଏମୀ — ଯା.ବି.ବି°. (କାଏମ ଦେଖ) ।
କାଂସି — ପୁଂ.ବି. କଂସର ପାତ୍ର ।
କାଂସବାଂସ — ଗ୍ରା. ବି. (ସଂ-କଂସାବତୀ) ବାଲେଶ୍ୱର ଜିଲ୍ଲାର ଉତ୍ତରରେ ପ୍ରବାହିତ ନଦୀବିଶେଷ ।
କାଂସ୍ୟ — କ୍ଲୀ.ବି. ତାମ୍ର ଓ ରଙ୍ଗ ମିଶ୍ରିତ ଧାତୁ, କଂସାଧାତୁ ।
କାଆଁଳ — ଗ୍ରା. ବି. କାମଳରୋଗ, ପାଣ୍ଡୁରୋଗ, ମେଦୁଆରୋଗ, କୁହୁଡ଼ିରୋଗ ।
କାଁଚମାଉ — (ପ୍ରା—ଲରିଆ) ବି. ଲଙ୍କାମରିଚ ।
କାଁଚ — ଗ୍ରା. ବି. ମାଟି ବା ପିତଳ ନିର୍ମିତ ଛୋଟ ଗିନା, ଗଜ୍ୟବିଶେଷ ।
କାଁଧ — (ପ୍ରା—ବସ୍ତର) ବି. କାନ୍ଧ ।
କାଁଇଁ — ଗ୍ରା.(ଅବ୍ୟ) କହାଁଚନ୍ତି,କିପରି, କିମ୍ବା ।
କାଁସୁଲ — କଂସାର ତିଆରି ଯନ୍ତ୍ରବିଶେଷ ।
କାକ — ବି°.(କୈ + କ,ଅ)ଗୁଳ୍ମବିଶେଷ, ବାୟସ,କୁଆ, ଈଷତ୍ ଜଳ, ଖଞ୍ଜବ୍ୟକ୍ତି (ବି°) ବନ୍ଧ, (ସ୍ତ୍ରୀ) କାକୀ ।
କାକଚକ୍ଷୁ — ପୁଂ. ବି°. (ବ.ବ୍ରୀ) ଟେଗ ।
କାକଚରିତ — ବି. ସର୍ବଜ୍ଞାଣ ବିଦ୍ୟା ।
କାକଚରିତ — ବି. ସର୍ବଜ୍ଞାଣ ବିଦ୍ୟା ।
କାକଚଞ୍ଚୁ — ବି. (ବ.ବ୍ରୀ) ଗୁଞ୍ଜଫଳ ଓ ଲତା, କାଇଞ୍ଚ, କାକମାଚ, କଣ୍ଟେଇକୋଳି ଗୁଳ୍ମ ।
କାକଚଞ୍ଚୁ (ଞ୍ଚୀ) — ବି. କାକଚଞ୍ଚୁ (ଦେଖ)
କାକଛଦ — ପୁଂ.ବି°. ଖଞ୍ଜନ ।
କାକଜଙ୍ଘା — ବି. ବନ୍ୟ ଲତାବିଶେଷ, କାଇଁଚଫଳ ଓ ଲତା ।
କାକଜମ୍ବୁ — ସ୍ତ୍ରୀ.ବି.(କ.ଧା) ଗିଲରିଜାମ୍ବୁ ।
କାକଜାତ — ପୁଂ.ବି°.କୋକିଳ,(ବି.ବି°) କାକଠାରୁ ଉତ୍ପନ୍ନ ।
କାକତନ୍ଦ୍ରା — ସ୍ତ୍ରୀ. ବି. (ଷତତ୍) କାକର ନିଦ୍ରାପରି ଈଷତ୍ ନିଦ୍ରା ।
କାକତା — ସ୍ତ୍ରୀ.ବି. ( କାକ + ତ + ଆ ) କାକର ସ୍ୱଭାବ, କାକର ଧର୍ମ ।
କାକତାଳକନ୍ୟାୟ — ( ନ୍ୟାୟ ) କୁଆ ଉଡ଼ିବା ବେଳକୁ ତାଳ ପଡ଼ିବା ନ୍ୟାୟ ।
କାକତାଳୀୟ — ବି°.(କାକ + ତାଳ + ଇୟ) ଯେଉଁ ସ୍ଥାନରେ କାର୍ଯ୍ୟ-କାରଣ-ସମ୍ବନ୍ଧରହିତ ସମସାମୟିକ ଦୁଇଟି ଘଟନା ମଧ୍ୟରେ କାର୍ଯ୍ୟ-କାରଣ-ସମ୍ବନ୍ଧ ଆରୋପ କରାଯାଏ, ହଠାତ୍କୃତ, ଯୁଗପତ୍ଜାତ, (ଦୁଇ ଘଟନା)
କାକତାଳୁକୀ — ବି.ବି.(କାକ + ତାଳୁକ + ଇନ୍) କାକତୁଲ୍ୟ ତାଳୁବିଶିଷ୍ଟ ।
କାକତିକ୍ତା — ସ୍ତ୍ରୀ. ବି. ବନ୍ୟଲତାବିଶେଷ, କାଇଞ୍ଚ ।
କାକତିନ୍ଦୁକ — ପୁଂ. ବି. ବୃକ୍ଷବିଶେଷ, ମାଙ୍କଡ଼କେନ୍ଦୁ ।
କାକତୁଆ — ଗ୍ରା. ବି. କାକତୁଆ, ଏକପ୍ରକାର ବଡ଼ ଶୁଆଜାତୀୟ ପକ୍ଷୀ ।
କାକତୁଣ୍ଡିକା — ସ୍ତ୍ରୀ. ବି. କୁଆମଇତା, ଗୁଳ୍ମବିଶେଷ ।
କାକତୁଣ୍ଡୀ — ସ୍ତ୍ରୀ. ବି. ଗଜଯୋଗ୍ୟ ପିତ୍ତଳ, ଗୁଳ୍ମବିଶେଷ, ଗିଲିଟିକରା ଯାଇଥିବା ପିତ୍ତଳ । [ଅଗ୍ନି ।
କାକଧ୍ୱଜ — ପୁଂ.ବି. ବାଡ଼ବାଗ୍ନି , ସମୁଦ୍ରସ୍ଥ
କାକନନ୍ତୀ,କାକଣନ୍ତୀ — ସ୍ତ୍ରୀ.ବି. କାଇଁଚ, ଗୁଞ୍ଜା ।
କାକନାସ — ପୁଂ.ବି. ଭଇଁଚଗଛ ।
କାକନାସ — ସ୍ତ୍ରୀ.ବି. କାକଜଙ୍ଘା ଗଛ ।
କାକନାସିକା — ସ୍ତ୍ରୀ. ବି. କାକଜଙ୍ଘାଗଛ, ରକ୍ତନିବୃତ, ନାଲି ତିହୁଡ଼ିଗଛ ।
କାକନେତ୍ର — ପୁଂ.ବି°.(ବ.ବ୍ରୀ) ଟେଗ ।
କାକପକ୍ଷ — ପୁଂ.ବି.(ଷତତ୍)ଝୁମ୍ପି ଲୁଚବାଳ, ଝୁଲୁପବାଳ, ଶିଖଣ୍ଡକ ।
କାକପାଦ — ବି.(ଷତତ୍) କୁଆଗୋଡ଼ପରି ବକ୍ରଚିହ୍ନ, ପାଣ୍ଡୁଲିପିଆଦିରେ କୌଣସି ଶବ୍ଦ ବା ବାକ୍ୟ ଯୋଗ କରିବାକୁ ହେଲେ ଯୋଗ କରାଯିବା ସ୍ଥାନରେ ଦିଆଯିବା କାକପଦବତ୍ ଚିହ୍ନ, ଲିପିବନ୍ଧବିଶେଷ ।
କାକପୁଚ୍ଛ — ପୁଂ.ବି. (ବ.ବ୍ରୀ) କୋକିଳ, କେଇଲି । [କୋକିଳ ।
କାକପୁଷ୍ଟ — ବି.(ଷତତ୍)କାକଦ୍ୱାରାବର୍ଦ୍ଧିତ
କାକପୋଇ — ଗ୍ରା.ବି. ଏକପ୍ରକାର ଛୋଟ କୁଆ ।
କାକଫଳ — କ୍ଳୀ. ବି. ଜମ୍ବୁଗଛ ଓ ଫଳ ।
କାକପେୟ — ବି.ବି. ପୂର୍ଣ୍ଣଜଳାଶୟ ।
କାକବନ୍ଧ୍ୟା — ସ୍ତ୍ରୀ. ବି°. (ମଧ — କ.ଧା ) ଏକପ୍ରସବିନୀ (ସ୍ତ୍ରୀ). ଯେ ସ୍ତ୍ରୀ ଏକମାତ୍ର ସନ୍ତାନ ପ୍ରସବ କରି ଆଉ ପ୍ରସବ କରେ ନାହିଁ ।
କାକବଳ — ପୁଂ. ବି. (ଷତତ୍) କୁଆଙ୍କ ଅଧାର, କାକମାନେ ଖାଇବା ଉଦ୍ଦେଶ୍ୟରେ ଦିଆଯିବା ବୈଶ୍ୱଦେବ ବଳି ।
କାକବଲ୍ଲରୀ — ବି. ଏକପ୍ରକାର ବନ୍ୟ ଔଷଧ ଲତା ।
କାକବିଷ୍ଠା — ବି. ପେଚ୍ଚ, ପେଚକ ।
କାକଭଣ୍ଡୀ — ସ୍ତ୍ରୀ.ବି. ମହାକରଞ୍ଜ ।
କାକଭୀରୁ — ବି.ପେଚ୍ଚ, ପେଚକ ।
କାକଭୁଷଣ୍ଡୀ — ବି. କାକରୂପଧାରୀ ଋଷିବିଶେଷ ।
କାକମଦ୍ଗୁ — ପୁଂ.ବି. ଡାହୁକ ପକ୍ଷୀ ।
କାକମଦ — ପୁଂ. ବି. ମହାକାଳ ଲତା ।
କାକମୋଚକା — ସ୍ତ୍ରୀ.ବି. କାକମାଚୀ ବୃକ୍ଷ ।
କାକମାଚୀ — ସ୍ତ୍ରୀ.ବି. (କାକ + ମଚ୍ + ଅ + ଈ) କ୍ଷୁଦ୍ର ବୃକ୍ଷବିଶେଷ, ଅକଣ୍ଟକ ଗୁଳ୍ମବିଶେଷ, ଗୁଞ୍ଜା, କାଇଁଚ, କଣ୍ଟେଇକୋଳି ଗୁଳ୍ମ ।
କାକମାତା — ସ୍ତ୍ରୀ. ବି. (ଷତତ୍) ବାୟସଜନନୀ, କାକମାଚୀ (ଦେଖ) ।
କାକମାସୀ — ବି. କଳାବତୀ ଲଇ, କାଳବେତ ଲତା ।

**କାକଯବ**—ପୁଂ. ବି. (କାକ+ଯବ) ତଣ୍ଡୁଲଶୂନ୍ୟଧାନ, ଅଗାଡ଼ ।

**କାକର**—ଗ୍ରା. ବି. ଶିଶିର, (ବିଂ.) ଶୀତଳ, ଥଣ୍ଡା । [ଶୀତକର ।

**କାକରକର**—ଗ୍ରା. ବି. (ବ.ବ୍ରୀ) ଚନ୍ଦ୍ର,

**କକରା**—ଗ୍ରା. ବି. ଏକପ୍ରକାର ଘୃତପକ୍ୱ ପିଷ୍ଟକ, ଏହାକୁ ଚାଉଳ ବା ଗହମ ଚୂନାରେ ଗୁଡ଼ସହିତ ଖଲ କରି ଚକା-ଚକା କରି ଘିଅରେ ଛଣାଯାଏ ।

**କାକରଆ, କାକରଆ**—ଗ୍ରା. ବିଂ. ଥଣ୍ଡା, କାକରଯୁକ୍ତ ।

**କାକରୁତ**—କ୍ଲୀ.ବି. କାଉର ରବ, କୁଆ-ମାନଙ୍କର ରବ ।

**କାକରୁହା**—ସ୍ତ୍ରୀ.ବି.(କାକ+ରୁହ୍+କ, ଅ+ଆ)ଅନ୍ୟଗଛ ଉପରେ ଜନ୍ମିଥିବା ଗଛ, ମଲ୍ଲଙ୍ଗ ।

**କାକରୁକ**—ତ୍ରି.ବିଂ. (କୁ+କୃ+ଉକ) ସ୍ତ୍ରୀବଶୀଭୂତ, ଭୀରୁ, ଦରିଦ୍ର, ନଗ୍ନ, ଉଲ୍ଲଙ୍ଗ, ନିର୍ଧନ, ସ୍ତ୍ରୀଜିତ ପୁରୁଷ,(ପୁଂ) ଦାମ୍ଭିକ, ପେଚା ।

**କାକଲ**—କ୍ଲୀ. ବି. (କୁ+କଲ୍+କ,ଅ) କଣ୍ଠମଣି, କଣ୍ଠଭୂଷଣ, ଗ୍ରୀବାର ଉନ୍ନତ-ଦେଶ, (ପୁଂ) ଡାମରାକାଉ, ଦ୍ରୋଣ କାକ ।

**କାକଲକ**—ପୁଂ.ବି.(କାକଲ+କ)କଣ୍ଠ-ମଣି,ବେକରଉପରଭାଗ,ଧାନ୍ୟବିଶେଷ ।

**କାକଲଦ**—ପ୍ରା. (ଗଞ୍ଜାମ) ବି. ଆଦର ।

**କାକଲି**—କ୍ଲୀ.ସ୍ତ୍ରୀ.ବି.(କୁ+କଲ୍+କ,ଇ) ରତ୍ନବିଶେଷ, ମଧୁରଅସ୍ପଷ୍ଟଧ୍ୱନି, ପକ୍ଷୀ-ମାନଙ୍କର ସୂକ୍ଷ୍ମ ମଧୁରଧ୍ୱନି, ମଯୂରଧ୍ୱନି, ବାଦ୍ୟଯନ୍ତ୍ରବିଶେଷ ।

**କାକଲିକ**—ପୁଂ.କ୍ଲୀ.ଅସ୍ପଷ୍ଟ ମଧୁର ଧ୍ୱନି ।

**କାକଲୀଦ୍ରାକ୍ଷା**—ସ୍ତ୍ରୀ.ବି. (ମଧ୍ୟ—କ,ଧା) ଦ୍ରାକ୍ଷାବିଶେଷ, କିସ୍‌ମିସ୍ ।

**କାକଲୀରବ**—ପୁଂ.ବି.(ବ.ବ୍ରୀ)କୋକିଳ, (କ.ଧା) ସୂକ୍ଷ୍ମ ଓ ଅସ୍ପଷ୍ଟଧ୍ୱନି ।

**କାକବର୍ମ୍ମା**—ନେପାଳର ସୋମବଂଶୀୟ ରାଜାବିଶେଷ । [ବନଜାମ୍ବୁ ।

**କାକବଲ୍ଲଭା**—ସ୍ତ୍ରୀ.ବି.(ଜଟାଧ)କାକଜମ୍ବୁ,

**କାକବଲ୍ଲରୀ**—ସ୍ତ୍ରୀ.ବି. ଏକପ୍ରକାର ବନ୍ୟ ଔଷଧିଲତା । [ଗଛ ।

**କାକଶୀର୍ଷ**—ପୁଂ.ବି. ବକବୃକ୍ଷ, ଅଗସ୍ତି-

**କାକସ୍ୱୀ**—ସ୍ତ୍ରୀ. ବି. ବକଫୁଲର ଗଛ, ଅଗସ୍ତି ଗଛ ।

**କାକସ୍ଫୂର୍ଜ**—ପୁଂ.ବି.(କାକ+ସ୍ଫୁର୍ଜ୍+ଅ) କାକତିନ୍ଦୁକ, ମାଙ୍କଡ଼କେନ୍ଦୁ ।

**କାକସ୍ୱର**—ପୁଂ.ବିଂ.(ବ.ବ୍ରୀ)କାଉସ୍ୱରପରି ଯାହାର ସ୍ୱର, (ଜଟାଧ) ବି. କାଉର ରବ ।

**କାକା**—ବି. କାଆ କାଆ ଶବ୍ଦ,କାକୋଲୀ ଗଛ, କାକନାସାଲତା,କାକମାଚୀଗଛ, (ସ୍ତ୍ରୀ) କାକୀ, କାକଭଙ୍ଗା (ଦେଖ) ।

**କାକାକ୍ଷିଗୋଲକନ୍ୟାୟ**—ପୁଂ. ବି. ଏକ ବିଷୟଦ୍ୱାରା ଉଭୟ କାର୍ଯ୍ୟ ସମ୍ପାଧା-ହେବାର ନ୍ୟାୟ ।

**କାକାଙ୍ଗା, କାକାଙ୍ଗୀ**—ସ୍ତ୍ରୀ.ବି.(କାକ+ଅଙ୍ଗ+ଆ) କାକଜଙ୍ଘାଗଛ ।

**କାକାଞ୍ଚୀ**—ସ୍ତ୍ରୀ.ବି.(କାକ+ଅଚ୍+ଅ+ଈ) କାକଜଙ୍ଘା ଗଛ ।

**କାକାଣ୍ଡ**—ପୁଂ. ବି. (ଜଟାଧ) କୁଆଅଣ୍ଡା, ମହାନିମ୍ବ,କାକତିନ୍ଦୁକ,ମାଙ୍କଡକେନ୍ଦୁ ।

**କାକାଣ୍ଡକ**—ପୁଂ. ବି. କାକର ଡିମ୍ବ, କୁଆଅଣ୍ଡା ।

**କାକଶ୍ରୀ**—ସ୍ତ୍ରୀ.ବି.ମହାଜ୍ୟୋତିଷ୍ମତୀଲତା ।

**କାକତୁଆ**—ଗ୍ରା. ବି. ଶୁକଜାତୀୟ ପକ୍ଷୀ ବିଶେଷ ।

**କାକାମ୍ବୁ**—ପୁଂ. ବି. ସ୍ୱର୍ଣ୍ଣବଲ୍ଲୀଲତା ।

**କାକାରି**—ପୁଂ.ବି. (କାକ+ଅରି)ଜଟାଧ ପେଚା, ପେଚକ ।

**କାକାଲ**—ପୁଂ. ବି. (କା+କଲ+ଅ) ଡାମରାକାଉ ।

**କାକାବଳି**—ସ୍ତ୍ରୀ. ବି. ଶ୍ରେଣୀବଦ୍ଧ ବହୁ-ସଂଖ୍ୟକ କାଉ, କାକସମୂହ ।

**କାକଣିକା**—ସ୍ତ୍ରୀ. ବି. ପଣର ଚତୁର୍ଥାଂଶ, ପାଞ୍ଚଗଣ୍ଡା କଉଡ଼ି, ଏକ ବୋଡ଼ି ।

**କାକଣୀ,କାକନୀ**—ସ୍ତ୍ରୀ. ବି. ଏକପଣ କଉଡ଼ିର ଚତୁର୍ଥାଂଶ, ପାଞ୍ଚଗଣ୍ଡା, ଏକବୋଡ଼ି, ଆଡ଼କର ପଚିଶ ଭାଗରୁ ଏକଭାଗ,ମାନଦଣ୍ଡ,କାଇଁଚ,ଗୁଞ୍ଜା, ରତି, ପଦକାର ଏକଚତୁର୍ଥାଂଶ, ଏକହାତ, ମୁଦ୍ରାରୂପେ ପ୍ରଚଳିତ କଉଡ଼ି ।

**କାକୀ**—ବି. (କାକ+ଈ)ମାଈକୁଆ ।

**କାକୁ**—ସ୍ତ୍ରୀ. ବି. (କକ+ଉ)ବକ୍ରୋକ୍ତି, ଦୈନ୍ୟୋକ୍ତି, ଗୁଣୁଗୁଣୁ ସ୍ୱର କରିବା, ଶୋକ-ଭୟାଦିଦ୍ୱାରା ସ୍ୱର ବିକାର, ବିରୁଦ୍ଧଅର୍ଥବୋଧକ ସ୍ୱରବିଶେଷ,ଜିହ୍ୱା ।

**କାକୁଡ଼ି**—ଗ୍ରା.ବି. (ସଂ—କର୍କଟୀ) କୁଷ୍ମ-ଜାତି ବର୍ଷଜୀବୀ ଲତାଫଳବିଶେଷ ।

**କାକୁଡ଼ିଆ**—ଗ୍ରା.ବି.ଆର୍ଦ୍ରଭୂମିରେ ଜନ୍ମିବା ଏକପ୍ରକାର ଘାସ ।

**କାକୁଡ଼ିଖାଇ**—ପ୍ର. (ପୁରୀ) ବି. ଗୋସାଣୀ ଜାତରେ ବାହାରିବା ଦେବୀ ପ୍ରତିମା-ବିଶେଷ ।

**କାକୁତ୍ସ୍ଥ**—ପୁଂ. ବି. (କକୁତ୍ସ୍ଥ+ଅ) ରାମଚନ୍ଦ୍ର ପ୍ରଭୃତି ଦିଲ୍ଲୀପବଂଶୀୟ ବା ସୂର୍ଯ୍ୟବଂଶୀୟ ରାଜା ।

**କାକୁତି**—ଗ୍ରା.ବି.(ସଂ—କାକୂକ୍ତି)କାତର ବଚନ ବା ସ୍ୱର, ଦୁଃଖାର୍ତ୍ତିସ୍ୱର, ଅନୁ-ନୟ, ବିନତି,(ଗ୍ରା.ବିଂ)ତ୍ରସ୍ତ, କାତର ।

**କାକୁତିମିନତି**—ଗ୍ରା.ବି.କାତର ପ୍ରାର୍ଥନା, (ବିଂ) ବିକଳ, କାତର, ଆର୍ତ୍ତ ।

**କାକୁଦ**—କ୍ଲୀ. ବି. (କାକୁ+ଦା+ଅ) ତାଳୁ ।

**କାକୁଭ**—ତ୍ରି. ବିଂ. (କୁକୁଭ୍+ଅ)ଦିଗ-ସମ୍ବନ୍ଧୀୟ, କକୁଭର ପୁଅ ।

**କାକୁବାଦ**—କ୍ଲୀ.ବି. ଦୀନ ସ୍ୱରରେ ଉକ୍ତି, କାତରବାକ୍ୟ, ବିନୀତ ପ୍ରାର୍ଥନା, ଅନୁ-ନୟ ବିନୟ, କାକୁତିମିନତି ।

**କାକୁସ୍ଥ, କାକୁସ୍ତ**—ଗ୍ରା. ବିଂ. ବିନୀତ, ଉତ୍କଣ୍ଠିତ, ଭୟତ୍ରସ୍ତ, କାତର, (ବି) (କାକୁତି ଦେଖ) ।

**କାକୂକ୍ତି**—ସ୍ତ୍ରୀ. ବି (କାକୁ+ଉକ୍ତି)କାତ-ରୋକ୍ତି, ଖେଦୋକ୍ତି, ବିନତି, ଦୁଃଖାର୍ତ୍ତିସ୍ୱର, ବକ୍ରୋକ୍ତି ।

**କାକୂତ**—ପୁଂ. ବି. ଗ୍ରା. କାତର ଉକ୍ତି, ଦୀନଭାବେ ଅନୁରୋଧ ଫଳବିଶେଷ ।

**କାକେନ୍ଦୁ**—ପୁଂ.ବି. (କ.ଧା)ତୃଣବିଶେଷ, କାଶତୃଣବିଶେଷ ।

କାକେନ୍ଦୁ—ପୁଂ. ବି. ମାଙ୍କଡ଼କେନ୍ଦୁଗଛ, ଅବୁଲୁସ୍ କାଠ ।
କାକେଷ୍ଟ — ପୁଂ.ବିଂ.ନିମଗଛ, ଲିମ୍ବବୃକ୍ଷ ।
କାକୋଡ଼ୁମ୍ବର — ପୁଂ.ବି.ଡମ୍ବୁରିବିଶେଷ ।
କାକୋଡୁମ୍ବରକା-କାକୋଡୁମ୍ବରିକା--ସ୍ତ୍ରୀ. ବି. ଡମ୍ବୁରିବିଶେଷ । [ଉରଗ ।
କାକୋଦର — ବି.(କାକ+ଉଦର)ସର୍ପ,
କାକୋଲ — ପୁଂ.କ୍ଲୀ.ବି. (କକ୍+କ.ଓଲ) ବନ୍ୟଶୂକର, ନରକବିଶେଷ, କୃଷ୍ଣବର୍ଣ୍ଣ ସ୍ଥାବର ବିଷ, ଡାମରାକାଉ,ସର୍ପକୁମ୍ଭୀର, (କାକୋଲୀଦେଖ) ।
କାକୋଲି (ଲୀ) — ସ୍ତ୍ରୀ. ବି. ଅଷ୍ଟବର୍ଗର ଅନ୍ତର୍ଗତ ଔଷଧବିଶେଷ, ଜ୍ୱରନାଶକ ଔଷଧବିଶେଷ ।
କାକୋଲୂକ—କ୍ଲୀ. ବି. କୁଆ ଓ ପେଚା ।
କାକୋଲୂକିକା — ସ୍ତ୍ରୀ.ବି କାକ ଓ ପେଚକର ସ୍ୱାଭାବିକ ଶତ୍ରୁତା ।
କାକୋଲୂକୀୟ — ପୁଂ.ବି.କୁଆ ଓ ପେଚକର ଆଖ୍ୟାନ ଅବଲମ୍ବନରେ ଲିଖିତ ପୁସ୍ତକବିଶେଷ ।
କାକୋଷ୍ଠକ — ପୁଂ.ବି. (କାକ+ଓଷ୍ଠ+କ) ମୂଳରୁ ମୋଟା ହୋଇ ଅଗଆଡ଼କୁ ସରୁ ହୋଇଥିବା କନାପଟୀ ।
କାକ୍ଷ — ପୁଂ.ବି.(କୁ+ଅକ୍ଷି+ଅ)କଟାକ୍ଷ, ଭ୍ରୂକୁଟୀ, ଗୁଳ୍ମବିଶେଷ, (ବିଂ. ବି.ସ୍ତ୍ରୀ) କୁଞ୍ଚିତ ଚକ୍ଷୁବିଶିଷ୍ଟ, ଭ୍ରୂକୁଟୀକାରୀ ।
କାକ୍ଷୀ — ସ୍ତ୍ରୀ.ବି ଗୁଳ୍ମବିଶେଷ, ସୌରାଷ୍ଟ୍ରମୃତ୍ତିକା, ଫରଡ଼ଡ଼ ଲି ।
କାକ୍ଷୀବ,କାକ୍ଷୀବକ — ପୁଂ.ବି. ସଜନାଗଛ ଓ ଋଷି, ଗୌତମ ଔରସରେ ଶୂଦ୍ରାଗର୍ଭଜାତ ପୁତ୍ର ।
କାଖ — ଗ୍ରା. ବି. (ସଂ — କକ୍ଷ) ଶରୀରର ପାର୍ଶ୍ୱଭାଗ, ବାହୁମୂଳ ।
କାଖକରିବା—ଗ୍ରା. ବି. ଶିଶୁକୁ କାଖ କରିବା,କାଖରେ ଧରିବା,କାଖେଇବା ।
କାଖଗୁଲି — ଗ୍ରା.ବି.କାଖସନ୍ଧିରେ ଉଠିବା ବ୍ରଣ ।

କାଖବାଳୁଆ, କାଖବାଲିଆ — ଗ୍ରା. ବିଂ. ଯାହାର କାଖରେ ବାଳ ଥାଏ, ଅଧିକ ବୟସ୍କ, (ସ୍ତ୍ରୀ) କାଖବାଳେଇ ।
କାଗ — ପୁଂ. ବି.(କ+ଗୈ+ଅ)କାକ, ବାୟସ ।
କାଗଜ—ଯା.ବି.ତୁଳାଦିରେ ନିର୍ମିତପଦାର୍ଥ, ଯାହା ଉପରେ କାଳିରେ ଲେଖନ୍ତି, ଲିପିପତ୍ର, ହିସାବ, ରିପୋର୍ଟ, ଖବରକାଗଜ, ପତ୍ର ।
କାଗଜକରିବା — ଗ୍ରା.କ୍ରି. କାଗଜ ପ୍ରସ୍ତୁତ କରିବା, ହିସାବପତ୍ର ପ୍ରସ୍ତୁତ କରିବା, ରେଜେଷ୍ଟ୍ରି ଆଦି ବହିରେ କୌଣସି ବ୍ୟକ୍ତିର ନାମ ପୂରଣ କରିବା,କୌଣସି ଦଲିଲ ସମ୍ପାଦନ କରିବା, କୌଣସି ବିଷୟକୁ ଲେଖିବା ।
କାଗଜଗଡ଼ାଇବା — ଗ୍ରା.କ୍ରି.ପୂର୍ବର ହିସାବ ତାଲିକା ପରବର୍ତ୍ତୀ ସମସ୍ତଙ୍କୁ କାଗଜରେ ଉଠାଇ ଆଣିବା ।
କାଗଜତଲବ—ଗ୍ରା. ବି. କୌଣସି ନ ଥିବା ହିସାବ ପଠାଇବା ପାଇଁ କର୍ତ୍ତୃପକ୍ଷଙ୍କ ଆଦେଶ ।
କାଗଜପଠାଇବା — ଗ୍ରା. କ୍ରି. ଉପରସ୍ଥ ହାକିମଙ୍କ ନିକଟ ହିସାବ ବା ରିପୋର୍ଟ ପ୍ରେରଣ କରିବା । [ ଆଦି ।
କାଗଜପତ୍ର—ଗ୍ରା. ବି. ନଥିଆଦି, ହିସାବ
କାଗଜବାଲା—ଗ୍ରା.ବି. ଯେ ଖବରକାଗଜ ବିକ୍ରି କରେ, ଯେ କାଗଜ ସମ୍ପାଦନ କରେ । [ ସମୂହ ।
କାଗଜାତ — ଯା.ବି.କାଗଜପତ୍ର, କାଗଜ
କାଗଜି — ଗ୍ରା.ବି.କାଗଜଲେମ୍ବୁ,(ଯା.ବି.) କାଗଜ ପ୍ରସ୍ତୁତକାରୀ ବ୍ୟକ୍ତି, କାଗଜ ବିକ୍ରେତା ବ୍ୟକ୍ତି, ଧଳାରଙ୍ଗର ପାରା, ଏକ ପ୍ରକାର ବାଦାମ, (ବିଂ) କାଗଜ ପ୍ରସ୍ତୁତକାରୀ, କାଗଜବିକ୍ରେତା.(ଗ୍ରା.ବି.) ହିସାବପତ୍ର କାଗଜାଦିରେ ପୂର୍ଣ୍ଣ ଦଖଲ ଥିବା ବ୍ୟକ୍ତି । [ଲେମ୍ବୁ ।
କାଗଜିଲେମ୍ବୁ—ଗ୍ରା. ବି. ଏକଜ ଜାସ୍
କାଗାରି—ପୁଂ.ବି.(୬ତତ୍.କାଗ+ଅରି) ପେଚା, ପେଚକ ।

କାଗ୍ନି — ପୁଂ. ବି. ଅଳ୍ପ ଅଗ୍ନି ।
କାଙ୍ଗର—ଗ୍ରା(ସମ୍ଭ)ବି. ପୁରୁଣାକାନ୍ଥରେ ପାଣି ପଡ଼ିବାରୁ ଜାତହୋଇଥିବା ସବୁଜ ବର୍ଣ୍ଣର ଶିଉଳ ।
କାଙ୍କ — ଗ୍ରା. ବି. ମାଟି ହାଣିବାପାଇଁ ଚଉଡ଼ାମୁହାଁ ଲୁହାର ଏକ ପ୍ରକାର ହତିଆର, ବଡ଼ିଆ କାଙ୍କ ପକ୍ଷୀ ।
କାଙ୍କଡ଼ — ଗ୍ରା.ବି. (ସଂ — କର୍କୋଟକ)ଏକ ପ୍ରକାର ବର୍ଷାଜାତୀ ବନ୍ୟଲତା ଓ ତାହାର ଖାଦ୍ୟଫଳବିଶେଷ ।
କାଙ୍କର — ଗ୍ରା.ବି.(ସଂ — କର୍କର)ଗୋଡ଼ି ।
କାଙ୍କୁଆ — ଗ୍ରା. ବି. କାଙ୍କଦ୍ୱାରା ମାଟି ହାଣିବା ମୂଲିଆ ।
କାଙ୍କୁଲ — ଗ୍ରା.ବି. (ସଂ—କାକ୍‌କୋଲ) କାକୋଲ (ଦେଖ) ।
କାଙ୍କ୍ଷ —(ଧାତୁ) କୌଣସି ବସ୍ତୁ ପାଇଁ ଇଚ୍ଛା ବା ଅଭିଳାଷ କରିବା,ସ୍ପୃହାନ୍ୱିତ ହେବା ।
କାଙ୍କ୍ଷଣୀୟ — ବି. ବିଂ. (କାଙ୍କ୍ଷ+ଅନୀୟ) ବାଞ୍ଛନୀୟ, ଅଭିଲଷଣୀୟ, ସ୍ପୃହଣୀୟ, ଇଚ୍ଛାର ଉପଯୁକ୍ତ, ( ସ୍ତ୍ରୀ ) କାଙ୍କ୍ଷଣୀୟା ।
କାଙ୍କ୍ଷା—ସ୍ତ୍ରୀ.ବି. (କାଙ୍କ୍ଷ+ଅ+ଆ) ଇଚ୍ଛା, ଅଭିଳାଷ,ଲୋଭ, ବାଞ୍ଛା ।
କାଙ୍କ୍ଷିତ — ବି. ବିଂ. (କାଙ୍କ୍ଷ+ତ) ଅଭିଲଷିତ, ବାଞ୍ଛିତ, (ବି)ଇଚ୍ଛା, ବାଞ୍ଛା, (ସ୍ତ୍ରୀ) କାଙ୍କ୍ଷିତା ।
କାଙ୍କ୍ଷୀ—ପୁଂ. ବିଂ. ( କାଙ୍କ୍ଷ+କ, ଇନ୍ ) କୌଣସି ବସ୍ତୁ ପାଇବାପାଇଁ ଅଭିଳାଷୀ, (ସ୍ତ୍ରୀ) କାଙ୍କ୍ଷିଣୀ ।
କାଙ୍ଗା—ସ୍ତ୍ରୀ. ବି. (ବି.ସ୍ତ୍ରୀ) ବଚନାମକ ଔଷଧବିଶେଷ, ହାଡ଼ଗିଲା ପକ୍ଷୀ ।
କାଙ୍ଗାଳ — ଗ୍ରା. ବିଂ. ଦରିଦ୍ର, ଗରିବ, ଅଭାବବିଶିଷ୍ଟ, ରଙ୍କୀ, ଦୁଃଖୀ, ଧନହୀନ, ପ୍ରାର୍ଥୀ, ଭିକ୍ଷୁକ ।
କାଙ୍ଗାଳିଆ—ଗ୍ରା. ବି. ରଙ୍କ, ଯାହାର କିଛି ସମ୍ବଳ ନାହିଁ, କଙ୍ଗାଳପଣ ।
କାଙ୍ଗାଳୀ — ଗ୍ରା. ବି. ଗରିବ, ଦୁଃସ୍ଥ, ଦରିଦ୍ର, ( କାଙ୍ଗାଳ ଦେଖ ), (ସ୍ତ୍ରୀ) କାଙ୍ଗାଳିମ ।

କାଙ୍ଗାଳୁଣୀ—ଗ୍ରା. ସ୍ତ୍ରୀ. ବିଂ. କାଙ୍ଗାଳିନୀ, ଭିକାରୁଣୀ ।

କାଙ୍ଗୁ—ଗ୍ରା. ବି. କଙ୍ଗୁଧାନ, ଭଣ୍ଡାର ଜାତିର ଶାଖାବିଶେଷ, ସୁଆଁ ଜାତୀୟ ଶସ୍ୟ ।

କାଙ୍ଗୁକ-କ୍ଲୀ.ବି.କଙ୍ଗୁଧାନ,କାଙ୍ଗୁ (ଦେଖ)।

କାଙ୍ଗୂଲ—(ଯା) ବି. ସ୍ୱର୍ଣ୍ଣ ରୌପ୍ୟାଦିର କୋଣବିଶିଷ୍ଟ କାରୁକାର୍ଯ୍ୟବିଶେଷ, ଦେଉଳାଦିରେ ତ୍ରିକୋଣାକାର ଚୂନ-କାମ, ସ୍ୱର୍ଣ୍ଣାର କାରୁକାର୍ଯ୍ୟ, ବୁରୁଜ, ଦୁର୍ଗ ପ୍ରାଚୀରମଧ୍ୟସ୍ଥ ଉଚ୍ଚସ୍ଥାନ ।

କାଙ୍ଗୂଲପଡ଼ି—ଗ୍ରା.ବିଂ.ଧଡ଼ିରେ କାଙ୍ଗୂଲ ବା ଛକ ପଡ଼ିଥିବା (ଶାଢ଼ୀ) ।

କାଚ—କ୍ଲୀ.ବି. (କଚ୍ + ଅ) କାଚମଣି, ନେତ୍ରରୋଗବିଶେଷ, ମହମ, କୃଷ୍ଣବର୍ଣ୍ଣ ଲୁଣ, ସ୍ତ୍ରୀଲୋକ ହାତରେ ପିନ୍ଧିବା ଧାତୁର ସରୁ ଅଳଙ୍କାର, ଶିକା, ବାଲି ଏବଂ କ୍ଷାରରୁ ଅଗ୍ନି ସଂଯୋଗରେ ଉତ୍ପନ୍ନ ସ୍ୱଚ୍ଛଦ୍ରବ୍ୟ ।

କାଚକଡ଼ା—ଗ୍ରା. ବି. କଇଁଛଖୋଳ, ସମୁଦ୍ରଜ ଜନ୍ତୁର ଅସ୍ଥି, ରବରରୁ ପ୍ରସ୍ତୁତ ଭଲ୍କାନାଇଟ୍‌ନାମକ ଦ୍ରବ୍ୟ ।

କାଚକାଚୁଆ—ଗ୍ରା. ବିଂ. କର୍ଦ୍ଦମାକ୍ତ, ଚୋବାଇବାକୁ କଠିନ ବା ଖାସଖାସୁଆ ପିଚ୍ଛିଳ ।

କାଚକୂପୀ—ସ୍ତ୍ରୀ.ବି. କାଚର ବୋତଲ ।

କାଚଘଟୀ.—ସ୍ତ୍ରୀ.ବି. କାଚନିର୍ମିତଜଳପାତ୍ର ।

କାଚନ—କ୍ଲୀ.ବି. (କଚ + ଣିଚ୍ + ଅନ) ପତ୍ର ବା ପୁସ୍ତକବାନ୍ଧିବାର ଉପକରଣ ।

କାଚନକ—କ୍ଲୀ. ବି. ( କଚ + ଣିଚ୍ + ଅନ + କ) ପତ୍ର ବା ପୁସ୍ତକ ବାନ୍ଧିବାର ଉପକରଣ ।

କାଚନକୀ—ପୁଂ.ବି.(କାଚନକ + ଇନ୍ ) ପତ୍ର ବା ଚଠି, ଲିପି ।

କାଚନାର—କ୍ଲୀ. ବି. କାଞ୍ଚନଫୁଲ ।

କାଚବନ୍ଧହେବ—ଗ୍ରା. ବି. ଆଜୀବନ ସଧବାଚିହ୍ନ ଧାରଣ କରିବା, ହାତରେ କାଚ ଚିରସ୍ଥାୟୀ ହେବା,ଅର୍ଥାତ୍ ଚିର-କାଳ ସଧବା ବା ଅହିଅହୋଇ ରହିବା ।

କାଚଭାଜନ—କ୍ଲୀ. ବି. କାଚର ପାତ୍ର ।

କାଚମଣି—ପୁଂ. ବି. କାଚର ତୁଲ୍ୟ ଅଳ୍ପ ଉଜ୍ଜ୍ୱଳମଣି, କାଚ,ମାର୍ବଲ, ଶଙ୍ଖମର୍ମର ।

କାଚମଲ—କ୍ଲୀ. ବି. କାଚଲବଣ ।

କାଚମାରିବା—ଗ୍ରା.କ୍ରି. ଦେହରୁ ବଦରକ୍ତ ବାହାର କରିବା ନିମିତ୍ତ ମୁନିଆ କାଚଦ୍ୱାରା ଶରୀରରେ ରକ୍ତ ଜମିଥିବା ସ୍ଥାନ ବିନ୍ଧ କରିବା ବା ଫୋଡ଼ିବା ।

କାଚମାଳିଆ—ଗ୍ରା. ବିଂ. ଯେ କାଚ ମାଳି ପିନ୍ଧିଥାଏ ।

କାଚର—ତ୍ରି.ବିଂ. (କୁ + ଚର + ଘ,ଅ) ପୀତବର୍ଣ୍ଣ ।

କାଚରି—ପୁଂ. ବି. କାଚ ବ୍ୟବସାୟୀ, (ସ୍ତ୍ରୀ) କାଚରୁଣୀ

କାଚରୁ—ପୂର୍ବବଙ୍ଗର ଏକପ୍ରକାର କାୟସ୍ଥ ଜାତି ।

କାଚଲବଣ—କ୍ଲୀ. ବି. ଲୁଣବିଶେଷ ।

କାଚବଳୟଯନ୍ତ୍ର—କ୍ଲୀ. ବି. କାଚନିର୍ମିତଯନ୍ତ୍ର ।

କାଚସମ୍ଭବ—କ୍ଲୀ.ବି. କାଚଲବଣ ।

କାଚ୍ଚା—ଯା. ଗ୍ରା. (ବସ୍ତ୍ର) ବିଂ. କଞ୍ଚା ।

କାଚ୍ଚୁଷ—ପୁଂ. ବି. ବଗବିଶେଷ ।

କାଚ୍ଚାଭେରେ—ଗ୍ରା.(ବସ୍ତ୍ର)ବି.ପଇଡ଼ ।

କାଚଘ—କ୍ଲୀ. ବି. (କାଚ + ହନ୍ + ଅ) ସ୍ୱର୍ଣ୍ଣ, ମୁଷା ।

କାଚକୁଚଧୋଇବା—ଗ୍ରା. କ୍ରି. ବସ୍ତ୍ରାଦିକୁ ପିଟି ଉତ୍ତମରୂପେ ଧୋଇବା ।

କାଚନ୍ତୁ—(ଅବ୍ୟ)କୌଣସିଅନିର୍ଦ୍ଦିଷ୍ଟା(ସ୍ତ୍ରୀ)।

କାଚିତ୍—ତ୍ରି.ବିଂ.(କଚ + ଣିଚ୍ + ମଁ,ତ) ଶିକାରେ ରଖାଯାଇଥିବା ।

କାଚିବା—କ୍ରି. ବସ୍ତ୍ରକୁ କାଠ ବା ପଥର ଉପରେ ପିଟି ଧୋଇବା ।

କାଚିମ—ପୁଂ.ବିଂ. (କଚ୍ + ଇମ)ଦେବ-କୁଳୋତ୍ପନ୍ନ ।

କାଚୁମାଚୁ—ଗ୍ରା.(ଅବ୍ୟ) କଞ୍ଚା ଟାଣୁଆଫଳ ଚୋବାଇବାରେ ଉତ୍ପନ୍ନ ଶ୍ରୁତିକଟୁଶବ୍ଦ, ଯଥା—ମୂଳାଦି ।

କାଚୂକ—ପୁଂ.ବି.(କଚ + ଉକ)କୁକ୍କୁଟ, ଚକ୍ରବାକ ।

କାଚେଗ୍ର—ଗ୍ରା. ( ସମ୍ବ. ) ବି. ଗୋରୁ ଆଦିଙ୍କ ପଲ୍ଲା ।

କାଛ, କାଚ୍ଛ—ଗ୍ରା. ବି. କ୍ଷୁଦ୍ର ବସ୍ତ୍ରଖଣ୍ଡ, କାଛ, କରିଆ, ଛୋଟ ଖଦି ।

କାଛଟା—ଗ୍ରା. ବି. କାଛ (ଦେଖ) ।

କାଛଟି—ଗ୍ରା. ବି. ( ସଂ—କଚ୍ଛୋଟିକା ) କାଛ (ଦେଖ) ।

କାଛର—ପ୍ରା. (ସମ୍ବ.) ଗୋସ୍ତନ, ଗାଈଙ୍କ ପଲ୍ଲା ।

କାଛା—ଗ୍ରା. ବି. ମଲ୍ଲମାନଙ୍କ ପରିହିତ କୌପୀନ, ଲେଙ୍ଗୁଟି, କର୍ପଟ ।

କାଛାକାଛି—ଗ୍ରା. ( ମେଦିନୀ ) ବିଂ. ଅତିନିକଟବର୍ତ୍ତୀ, ସନ୍ନିକଟ, ପରସ୍ପରର ନିକଟବର୍ତ୍ତୀ ।

କାଛୁଆ—ଗ୍ରା. ବି. (କାଛା ଦେଖ) ।

କାଛୁ—ଗ୍ରା.ବି. ଏକପ୍ରକାର ବ୍ରଣ ରୋଗ, କୁଣ୍ଡିଆ, ଖୁଜୁଲି ।

କାଛୁଆ—ଗ୍ରା. ପୁଂ. ବିଂ. କାଛୁରୋଗ-ବିଶିଷ୍ଟ ।

କାଛୁକୁଣ୍ଡିଆ—ଗ୍ରା. ବି. କଣ୍ଡୁରୋଗ ।

କାଛେଣୀ—ଗ୍ରା. ବି. (କାଛଦେଖ)ବସ୍ତ୍ରକୁ ସୁନ୍ଦରରୂପେ ପିନ୍ଧିବାର ରୀତି ।

କାଜ—ଯା. ବି. ବୋତାମର ଛିଦ୍ର, (ଗ୍ରା—ଆଳ)ଏକପ୍ରକାର ଚଢ଼େଇ;ଜଳ ନିସୋରଣର ନିମ୍ନଭୂମି ।

କାଜକୋଟ—ଯା. ବି. ଛୋଟ ଛୋଟ ନିର୍ଦ୍ଦିଷ୍ଟ ଶ୍ରେଣୀର ମକଦ୍ଦମା ବିଚାର କରିବା ନିମିତ୍ତ ଦେଓ୍ୱାନି ବିଚାରାଳୟ ।

କାଜପଟୀ—(ଯା) ବି. କୁର୍ତ୍ତାର ଯେଉଁ ଦ୍ୱିଗୁଣିତ ପଟୀରେ ବୋତାମ ଗଳିବା-ପାଇଁ ଛିଦ୍ରମାନ ହୋଇଥାଏ ।

କାଜର—ଗ୍ରା. ବି. କଜ୍ଜ୍ୱଳ, ନେତ୍ରାଞ୍ଜନ ।

କାଜି(ଜୀ)—ଯା.ବି.ମୁସଲମାନବିଚାରପତି, ମୁସଲମାନ ବିବାହକୁ ରେଜେଷ୍ଟରୀ କରିବାପାଇଁ ନିଯୁକ୍ତ ବ୍ୟକ୍ତି ।

କାଜିଖାନା—ଯା.ବି.ରେଜେଷ୍ଟରିଅଫିସ ।

କାଜିନିଶାପ—ଯା. ବି. ମୋଟ ମୋଟି ନ୍ୟାୟବିଚାର, ସାଦା ସାଦା ବୁଝାମଣା ।

କାଜିୟା—ଯା. ବି. କଳହ, ବିବାଦ ।

କାଜିୟାତି—ଯା. ବି. କାଜିର କାର୍ଯ୍ୟ, ବିଚାର ।

କାଜୁ—ଯା. ବି. ଲଙ୍କାଆମ୍ବ ।

କାଞ୍ଚନ—ବି. (କଞ୍ଚ + କ + ଅନ)କାଞ୍ଚନ ଗଛ, ହରିତାଳ, କଳାଦୁଦୁରା, ସ୍ୱର୍ଣ୍ଣ,

ଧନ, ଏକଜାତୀୟ ଧାନ୍ୟ, ନାଗେଶ୍ୱର ଗଛ, ଚମ୍ପାଫୁଲ, (ବଂ) ସ୍ୱର୍ଣ୍ଣମୟ ।
କାଞ୍ଚନକ—କ୍ଳୀ. ବି. ହରିତାଳ, ଧାନ୍ୟବିଶେଷ, (ପୁଂ.ବି) କୋବିଦାର ବୃକ୍ଷ ।
କାଞ୍ଚନକଟକ—ବି. (ମଧ୍ୟ-କ. ଧା) ସ୍ୱର୍ଣ୍ଣାଲଙ୍କାରବିଶେଷ, ଲଙ୍କା, ସିଂହଳ ।
କାଞ୍ଚନକଦଳୀ—ବି.(ମଧ୍ୟ-କ.ଧା) ଚମ୍ପାକଦଳୀ ।
କାଞ୍ଚନକନ୍ଦର-ପୁଂ.ବି.(୬ତତ୍ପୁ) ସୁନାଖଣି ।
କାଞ୍ଚନକାରିଣୀ—ସ୍ତ୍ରୀ. ବି. (କାଞ୍ଚନ+କୃ+ଇନ୍+ଈ) ଶତମୂଳୀ, ଶତାବରୀ ।
କାଞ୍ଚନଗିରି—ପୁଂ. ବି. (କାଞ୍ଚନ+ଗିରି) ସୁମେରୁପର୍ବତ,ସ୍ୱର୍ଣ୍ଣନିର୍ମିତ କୃତ୍ରିମପର୍ବତ ।
କାଞ୍ଚନଗୌର—ପୁଂ. ବଂ. ଯାହାର ଦେହର ବର୍ଣ୍ଣ ସ୍ୱର୍ଣ୍ଣପରି ।
କାଞ୍ଚନପୁର—କ୍ଳୀ. ବି. କଳିଙ୍ଗ ରାଜ୍ୟର ନଗରବିଶେଷ ।
କାଞ୍ଚନପ୍ରଭ—ପୁଂ. ବି. ଐଲବଂଶୀ ରାଜାବିଶେଷ, (ବଂ.ବ.ବ୍ରୀ) ସୁବର୍ଣ୍ଣପରି ପ୍ରଭାସମ୍ପନ୍ନ ।
କାଞ୍ଚନଫୁଲ—ଗ୍ରା. ବି. ଫୁଲବିଶେଷ ।
କାଞ୍ଚନମୟ—ତ୍ରି.ବଂ. (କାଞ୍ଚନ+ମୟ) ସ୍ୱର୍ଣ୍ଣନିର୍ମିତ ।
କାଞ୍ଚନମାଳୀ-ପୁଂ.ବି. (କାଞ୍ଚନ+ମାଳା+ଇନ୍) ସୂର୍ଯ୍ୟ ।
କାଞ୍ଚନଲତା, କାଞ୍ଚନଲତିକା—ସ୍ତ୍ରୀ. ବି. ସ୍ୱର୍ଣ୍ଣଲତା ସଦୃଶ ଗୌରବର୍ଣ୍ଣା କୃଶାଙ୍ଗୀ ସ୍ତ୍ରୀ,(କବିକଳ୍ପନା) କାଞ୍ଚନ ଫୁଲର ଗଛ ।
କାଞ୍ଚନବପ୍ର—ପୁଂ.ବି. ସ୍ୱର୍ଣ୍ଣନିର୍ମିତ ପ୍ରାଚୀର ସୁମେରୁ ପର୍ବତର ସାନୁଦେଶ ।
କାଞ୍ଚନସନ୍ଧି—ପୁଂ. ବି. (କ.ଧା) ଉଭୟ ବନ୍ଧୁମଧ୍ୟରେ ମିଳନରୂପ ସନ୍ଧି, ଯେଉଁ ସନ୍ଧି ସ୍ୱର୍ଣ୍ଣପରି ଦୁର୍ଭେଦ୍ୟ, ଅର୍ଥାତ୍ ସହଜେ ଭଙ୍ଗ ହୁଏ ନାହିଁ ।
କାଞ୍ଚନା—ସ୍ତ୍ରୀ.ବି. ମହୀରାବଣର ରାଜଧାନୀ, ଏହାର ଅପର ନାମ ସ୍ୱର୍ଣ୍ଣଭୂମି ।
କାଞ୍ଚନାକ୍ଷ—ପୁଂ. ବି. ଦାନବବିଶେଷ, (ବଂ-ବ.ବ୍ରୀ) ସ୍ୱର୍ଣ୍ଣବର୍ଣ୍ଣ ନେତ୍ରବିଶିଷ୍ଟ ।
କାଞ୍ଚନାକ୍ଷୀ—ସ୍ତ୍ରୀ. ବି. ସରସ୍ୱତୀ ନଦୀ ।
କାଞ୍ଚନାଙ୍ଗ—ତ୍ରି. ବଂ. ସ୍ୱର୍ଣ୍ଣତୁଲ୍ୟ ସୁନ୍ଦର ଅଙ୍ଗବିଶିଷ୍ଟ,(କ୍ଳୀ) ସ୍ୱର୍ଣ୍ଣନିର୍ମିତ ଅବୟବ ।
କାଞ୍ଚନାର—ପୁଂ. ବି.(କାଞ୍ଚନ+ଋ+ଅ) କାଞ୍ଚନଫୁଲର ଗଛ, କୋବିଦାର ବୃକ୍ଷ ।
କାଞ୍ଚନାଳ—ପୁଂ.ବି. (କାଞ୍ଚନ+ଅଲ+ଅ) କାଞ୍ଚନଗଛ, କୋବିଦାର ।
କାଞ୍ଚନାରକ—ପୁଂ. ବି. (କାଞ୍ଚନାର+କ) କାଞ୍ଚନଫୁଲର ଗଛ, କୋବିଦାର ବୃକ୍ଷ ।
କାଞ୍ଚନାହ୍ୱୟ—ପୁଂ. ବି. (କାଞ୍ଚନ+ହ୍ୱେ+ଅ) ନାଗକେଶର ଗଛ ।
କାଞ୍ଚନୀ—ସ୍ତ୍ରୀ.ବି.(କାଞ୍ଚନ+ଈ) ହଳଦୀ, ହରିଦ୍ରା, ସ୍ୱର୍ଣ୍ଣକ୍ଷୀରୀ ଗଛ, ଗୋରୋଚନା, ନର୍ତ୍ତକୀ, ଗାୟିକା, ଗୋସ୍ୱାମୀ ସମ୍ପ୍ରଦାୟ ବିଶେଷ ।
କାଞ୍ଚରା—ପ୍ରା. (ବାଲେଶ୍ୱର)ବି. କଂସାର (ଦେଖ) ।
କାଞ୍ଚନୀୟା—ବି. (କାଞ୍ଚନ+ଈୟ+ଆ) ଗୋରୋଚନା ।
କାଞ୍ଚଲା—ଗ୍ରା. ବି. ସ୍ତ୍ରୀମାନଙ୍କର ପରିଧେୟ କୁର୍ତ୍ତି ।
କାଞ୍ଚି-ସ୍ତ୍ରୀ.ବି. (କଚ+ଇ) ସ୍ତ୍ରୀମାନଙ୍କର କଟିଭୂଷଣ, ଚନ୍ଦ୍ରହାର, ଅଣ୍ଟାସୂତା, ଖେଳନା, ନଗରବିଶେଷ, (ଗ୍ରା.) ମାଟି ବା ପିତ୍ତଳର କ୍ଷୁଦ୍ର ଗିନା, ଏକଫାଳ ନଡ଼ିଆ ସଢ଼େଇ ।
କାଞ୍ଚିଆ—ପ୍ରା. (ଯାଜପୁର) ବଂ. ଛଇକା, କର୍ବୁର, କହରା ବା କପିଳ ବର୍ଣ୍ଣବିଶିଷ୍ଟ, କାଳରା, ଶରୀରରେ ଧଳାଛିଟବିଶିଷ୍ଟ ।
କାଞ୍ଚୀ—ସ୍ତ୍ରୀ. ବି. (କାଞ୍ଚିଦେଖ) ।
କାଞ୍ଚୀଗୁଣ—ବି. (୬ତତ୍ପୁ) (କାଞ୍ଚିଦେଖ) ।
କାଞ୍ଚୀଗୁଣସ୍ଥାନ—ବି. (୬ତତ୍ପୁ)ଅଣ୍ଟାକଟି, ପିଚ୍ଛ, ନିତମ୍ବ ।
କାଞ୍ଚୀଦାମ—ବି. (କାଞ୍ଚୀ+ଦାମ) କାଞ୍ଚି (ଦେଖ) ।
କାଞ୍ଚୀନଗର—କ୍ଳୀ. ବି. କାଞ୍ଚୀପୁର ।
କାଞ୍ଚୀପଦ—ବି. ନିତମ୍ବ, କଟି, ପିଚ୍ଛ ।
କାଞ୍ଚୀପୁର—ମାନ୍ଦ୍ରାଜପ୍ରଦେଶର ଚେଙ୍ଗଲପୁଟ ଜିଲ୍ଲାର ମଧ୍ୟବର୍ତ୍ତୀ କାଞ୍ଚିରମ୍ ତାଲୁକାନ୍ତର୍ଗତ ଗୋଟିଏ ପ୍ରସିଦ୍ଧ ନଗର ।
କାଞ୍ଚୁଲି—ଗ୍ରା. ବି. କାଞ୍ଚଲା, ସ୍ତ୍ରୀମାନଙ୍କର ପରିଧେୟ କୁର୍ତ୍ତି ।
କାଞ୍ଜି—ଗ୍ରା. ବି. ଅନ୍ନରେ ଜଳଦେଇ ବାସିକଲେ ତାହା ଅମ୍ଳ ହୋଇଯାଏ, ତାକୁ ରାନ୍ଧିଲେ କାଞ୍ଜି କହନ୍ତି ।
କାଞ୍ଜିଅଁଳା—ଗ୍ରା. ବି. ମାର୍ଗଶିରମାସ କୃଷ୍ଣ ନବମୀର ଉତ୍ସବ ।
କାଞ୍ଜିଆ—ଗ୍ରା. ବଂ. ଯେ ବେଶି କାଞ୍ଜି ଖାଏ, କାଞ୍ଜିପରି ଖଟା, (ଲ. ଅର୍ଥ) ବୃଥା, ନଷ୍ଟ ।
କାଞ୍ଜିଆହାଉସ୍—ଯା. ବି. ପରର ଫସଲ ନଷ୍ଟକାରୀ ଗୋମହିଷାଦିଙ୍କ ଆବଦ୍ଧସ୍ଥାନ ।
କାଞ୍ଜିଆହୁଦା—ଗ୍ରା.ବି. (କାଞ୍ଜିଆହାଉସ୍ ଦେଖ) ।
କାଞ୍ଜିକ—କ୍ଳୀ.ବି କାଞ୍ଜୀ (ଦେଖ) ।
କାଞ୍ଜିକା—ସ୍ତ୍ରୀ.ବି. ଜୀବନ୍ତୀଲତା, ପାଳଙ୍ଗ ଲତା,କାଞ୍ଜୀ (ଦେଖ) ।
କାଞ୍ଜିଗାତ—ଗ୍ରା. ବି. ସ୍ତ୍ରୀଲୋକମାନଙ୍କର ଗିଲ୍‌ଖେଳ ।
କାଞ୍ଜିତୋରାଣି—ଗ୍ରା. ବି. ଦୁଇଦିନରୁ ବେଶି ବାସିତୋରାଣି, ଯହିଁରୁ କାଞ୍ଜି ତିଆରି ହୁଏ ।
କାଞ୍ଜିପାଣି—ଗ୍ରା. ବି. କାଞ୍ଜି ତୋରାଣି (ଦେଖ)ବହୁଦିନର ବାସିତୋରାଣିରେ ପ୍ରତିଦିନ ବା ମଝିରେମଝିରେ ପାଣିମିଶାଇ ରଖାଯାଇଥିବା ଈଷତ୍ ଶୁଭ୍ର ପାନୀୟ ।
କାଞ୍ଜୀ—ବି. (କ+ଅନ୍ଜ+ଅ+ଈ) ପର୍ଯ୍ୟୁଷିତ ଅନ୍ନର ତୋରାଣିଦ୍ୱାରା ପାକ କରାଯାଇ ପ୍ରସ୍ତୁତହେବା ବ୍ୟଞ୍ଜନ, ମହାଦ୍ରୋଣୀବୃକ୍ଷ ।
କାଟ୍‌କସୋର—ଯା. ବି. କମାଇଦେବା, ସଙ୍କୋଚନ ।
କାଟ୍‌କୁଟ୍—ଗ୍ରା ବି. ସଂଶୋଧନ କରିବା ଉଦ୍ଦେଶ୍ୟରେ ଲେଖାଉପରେ ଗାର ଟାଣିବା, କଟାକଟି, ଅସ୍ପଷ୍ଟଲେଖା ।
କାଟ୍‌ଛାଟ୍—ଗ୍ରା. ବି. ପୋଷାକ ଆଦିର ଗଢ଼ଣ, କଟାହେବାର ଢଙ୍ଗ, ରୂପ, ଆକୃତ, ଅନ୍ତିମ ସାଜସଜ୍ଜା, ଚେହେରା, ଚାଲିଚଳଣ,ଧରଣ,(କାଟ୍‌କୁଟ୍ ଦେଖ) ।

କାଟକସୋର, (ବ୍ରଂ) କଟାକଟି ହୋଇ ସଜ୍ଜିତ ।
କାଟ୍‌ଗୁଣ୍ଡ—ଗ୍ରା.ବ.ବ୍ରଂ.(କାଟ୍‌ଗୁଟ୍ ଦେଖ) ।
କାଟ୍‌ଣୀ—ଗ୍ରା. ( ସମ୍ବ ) ସ୍ତ୍ରୀ. ବ୍ରଂ. ବ୍ୟୟସଂକୋଚକାରଣୀ (ସ୍ତ୍ରୀ) ।
କାଟ୍‌ତି—ଯା. ବ. ପଣ୍ୟ ଦ୍ରବ୍ୟାଦିର ବଜାରରେ ବନ୍ଦସ୍ତ ।
କାଟ୍‌ଲଗ୍—ଯା.ପୁସ୍ତକାଗାରର ତାଲିକା । ପୁସ୍ତକତାଲିକା ବିଷୟବସ୍ତୁର ବର୍ଣ୍ଣ ଆକାରର ତାଲିକା, ପଣ୍ୟାଦିର ତାଲିକା ।
କାଟ—ଗ୍ରା. ବ. କାଟିବା, କର୍ତ୍ତନ,କଟା-ହେବା,ଫସଲ ବା ଶାକଆଦି କାଟିବାର ଥର, ଲଗୁଆ, ସାଦୃଶ୍ୟ, ଆକାର,କଟା-ଯିବା ମୂଲ୍ୟାଂଶ, ଯାହା ନଗଦଦେବାକୁ ମାଫ୍‌ହୋଇଯାଏ, ଢଙ୍ଗ, ଧରଣ, ଖଣ୍ଡ-କରିବା, କମାଇବା, ଗଢ଼ଣ, ଗଠନ, ମୁଣ୍ଡହଣା, ଶିରଚ୍ଛେଦ, ଦାଦନ ଦିଆ-ଯିବା ଟଙ୍କା ।
କାଟକରିବା—ଗ୍ରା. କ୍ରି. ଲଗୁଆ କରିବା, ପ୍ରତିଦାନ ନିମିତ୍ତରୂପେ ବ୍ୟବହାର୍ଯ୍ୟ ବସ୍ତୁ କୌଣସି ବ୍ୟକ୍ତିଠାରୁ ଆଣିବାପାଇଁ ଚୁକ୍ତିକରିବା,ପଦାର୍ଥର ଖଣ୍ଡ ଧାର୍ଯ୍ୟକରି ଲେଖିଦେବା ।
କାଟଖାଇବା—ଗ୍ରା. କ୍ରି. ହାଣଖାଇବା, ଶିରଚ୍ଛେଦ ହେବା, କର୍ତ୍ତିତ ହେବା, ଦୋକାନାଦିରୁ ସୌଦା ଲଗୁଆକରିବା ।
କାଟଣ—ଗ୍ରା. ବ. ଗଢ଼ଣ, କାଟିବାକର୍ମର ଉପଯୁକ୍ତ, କର୍ମଠ, ପରିଶ୍ରମୀ ।
କାଟଣା—ଗ୍ରା. ବ. ତରକାରି ପାଇଁ କଟାହେବା ପରିବାପତ୍ର, କାଟିବାର କ୍ରିୟା ।
କାଟଣୀ—ଗ୍ରା. ବ, ସୂତାକାଟିବା, କଟା ସୂତାର ବେଧ ।
କାଟପାଣି—ଗ୍ରା. ବ. କୌଣସି ରୋଗ ନିବାରଣାର୍ଥ କମ୍ବା କାମନାପୂରଣନିମିତ୍ତ ଅଭିମନ୍ତ୍ରିତ ଜଳ, ମନ୍ତ୍ରପାଣି ।
କାଟବାଛ—ଗ୍ରା. ବ. ରନ୍ଧନାର୍ଥ ପରିବା କାଟିବା ଓ ଶାକାଦି ବାଛିବା ।
କାଟବ୍ୟ—କ୍ଲୀ.ବ,(କଟ+ଷ୍ଣ,ଯ)କଟୁତା, କର୍କଶତା ।
କାଟସି—ଗ୍ରା. ବ. ପ୍ରତିଦାନ ଯେଉଁ ବସ୍ତୁରେ ଜମାଖର୍ଚ୍ଚ ଚଳେ ।
କାଟା—ପ୍ରା.(ଗଞ୍ଜାମ) ଚଠିପତ୍ରାଦିବଡ଼ା, ଚଠିରଡାକ, ଶନ୍ଦେଶପତ୍ର, ପୋଷ୍ଟକାର୍ଡ ।
କାଟାମାଣ୍ଡୁ—ଗ୍ରା. ବ. ନେପାଳ ରାଜ୍ୟର ରାଜଧାନୀ ।
କାଟିକାଟିହେବା(ପେଟ)—ଗ୍ରା.ବ.ଉଦର ମଧ୍ୟରେ ଆମଜନିତ ପୀଡ଼ାହେବା ବା ପେଟ କାମୁଡ଼ିବା ।
କାଟିଣୀ—ଗ୍ରା. ବ. (କାଟେଣୀ ଦେଖ) ।
କାଟିବା-ଗ୍ରା.କ୍ରି.(ସକ)ଅସ୍ତ୍ରାଦିଦ୍ୱାରାଛେଦନ କରିବା, କର୍ତ୍ତନ କରିବା,ଖଣ୍ଡ କରିବା, କମାଇବା, କାଟ୍‌କରିବା,ଖସିବା,ଫଳ-ପ୍ରଦହେବା, ପୀଡ଼ାଦାୟକ ହେବା,କଷ୍ଟ-ହେବା, ଦୁଃଖହେବା, ପୀଡ଼ାହେବା, ଗାଲଦେବା, ସର୍ପିବା, (କାଳ) ଯାପନ କରିବା,(ସୂତା)କପାଆଦିରୁସୂତାପ୍ରସ୍ତୁତ କରିବା,(ଚିତ୍ର)ଆଙ୍କିବା,(ଗାର)ଟାଣିବା, (ବୁଢ଼ିଆଣୀ),ନିଜଦେହରୁ ସୂତାବାହାର କରି ଜାଲବୁଣିବା,(କଥା)ଖଣ୍ଡିଦେବା, ଉପଦେଶ ଅନୁସାରେ କାର୍ଯ୍ୟ ନକରିବା, ନ ମାନିବା, (ବନ୍ଧୁସମ୍ପର୍କ) ତୁଟାଇବା, (ପ୍ରାର୍ଥନା) ନାମଞ୍ଜୁର କରିବା (ପାଣି), ଆଡ଼େଇବା,କୌଣସି ବ୍ୟକ୍ତିର ଖାଦ୍ୟ-ଦ୍ରବ୍ୟ କମାଇବା,ଫେଡ଼ିବା,ବାଦ୍‌ଦେବା, (ବାଲ)କାଟୁରିବା,କର୍ତ୍ତନକ୍ରିୟାସମ୍ପାଦନ କରିବା, ( କରଣୀ ବା ପ୍ରସ୍ତାବ ) ବଳ ବଢ଼ାଇବା, (ବାଟ) ଦେଖି ବା ଖୋଳି ସ୍ଥିରକରି ସେହିବାଟେ ଯିବା, (ଶର ବା ପ୍ରହାର ) ଅଟକାଇବା ବା ନିବାରଣ କରିବା, ଗାର୍ତ୍ତତା କମାଇବା, ( ସାପ ) ଦଂଶନ କରିବା, ପ୍ରତିଷେଧ କରିବା, ପ୍ରତିବଧାନ କରିବା, (ଲୁଗାଦିର) ମୂଲ୍ୟ ସ୍ଥିରକରିବା, ଯୁକ୍ତିଦ୍ୱାରା ଖଣ୍ଡନ କରିବା-କାଟିବା, ନିଃଶେଷିତହେବା, ହାଣିବା, ଖୋଳିବା, ବାଧିବା, କଷ୍ଟବୋଧହେବା, ଏକ ବାଟଛାଡ଼ି ଅନ୍ୟ ବାଟେ ଯିବା, ଭେଦିବା, ବିଦାରଣ କରିବା, ଲଘବ କରିବା ।
କାଟୁ—ଗ୍ରା. ବ. ଲକ୍ଷ୍ୟଭେଦତ୍ୱ, ଫଳ-ପ୍ରଦତ୍ୱ, ବନ୍ଧୁକାଦିର ଲକ୍ଷ୍ୟଭେଦ କରି-ବାରପରିମାଣ ବା ଦୂରତ୍ୱ,(ପ୍ରା.)ଖୋର୍ଦ୍ଧା ଓ ଗଞ୍ଜାମ ଶଗଡ଼ର ହାଲ, ଚକ ଗୁରି-ପାଖ ବୁଲିଥିବା ଲୁହା, (ଗ୍ରା.ବ୍ରଂ) ଗୁଣାନ୍ୱିତ, ସଗୁଣ, ଫଳପ୍ରଦ ।
କାଟୁଆ—ଗ୍ରା. ବ. ନୈନିତାଲୀଆଳୁ ।
କାଟୁକରିବା—ଗ୍ରା. କ୍ରି. ଫଳପ୍ରଦହେବା, ଲକ୍ଷ୍ୟବସ୍ତୁରେ ବାଜିବା, ଲକ୍ଷ୍ୟଭେଦ କରିବା ।
କାଟୁଣୀ—ଗ୍ରା. ବ୍ରଂ. ଯେ ସୂତା କାଟେ, (ବ) ସୂତାକାଟିବାର ମଜୁରି ବା ପାରିଶ୍ରମିକ ।
କାଟେଣି—ଗ୍ରା. ବ. (ସଂ-କର୍ତ୍ତନ) ସୂତା କାଟିବା,ସୂତାକାଟିବାରଧରଣ,ଲୁଗାରେ ବୁଣା ହୋଇଥିବା ସୂତାର ବେଧ, କାଟୁଣୀ, ଯେ ସୂତାକାଟେ, ସ୍ତ୍ରୀଲୋକ ମାନଙ୍କର ମହଣ ଓ ତେଲଦ୍ୱାରା ପାନିଆ ସାହାଯ୍ୟରେ କପାଳ ଉପରସ୍ଥ ପ୍ରସାଧିତ କେଶର ବିନ୍ୟାସ, ଫିରେଇ ।
କାଟ୍ୟ—ତ୍ରି. ବ୍ରଂ. (କଟ+ଣି,ଯ) ଯୁକ୍ତି-ଦ୍ୱାରା ଖଣ୍ଡନୀୟ, ପ୍ରତିକରଣୀୟ, ଛେଦ-ନୀୟ,ଉଲ୍ଲଙ୍ଘନୀୟ,ଉପେକ୍ଷଣୀୟ, (ବିପ) ଅକାଟ୍ୟ ।
କାଠ—ପୁଂ. ବ. (କଠ+ଅ) ଦାରୁ, ଜାଳଣି କାଠ, ଲଠି, ଘରରଖୁଣ୍ଟ, କଡ଼ିଇତ୍ୟାଦି, (ବ୍ରଂ) ଶୁଷ୍କ, ଟାଣୁଆ, କଠିନ, ବହଳିଆ, ନୀରବ, ନିଶ୍ଚଳ, ଉଦ୍ଭୂ ବା ବସ୍ତୁରେ କଂକର୍ତ୍ତବ୍ୟବିମୂଢ଼ ।
କାଠଆମ୍ବିଳପିଠ—ଗ୍ରା. ବ. ( ସଂ-କାଷ୍ଠ ଅମ୍ଳପିଷ୍ଟ) କାଠୁଆ ଅମ୍ଳପିଠ (ଦେଖ) ।
କାଠକଟା—ଗ୍ରା. ବ. କାଠହଣା, କାଠ ହାଣିବା ବ୍ୟକ୍ତି, କାଠୁରିଆ, କାଠହଣା ଚଢ଼େଇ ।
କାଠଖମ୍ବା—ଗ୍ରା.ବ. କାଠହଣାଚଢ଼େଇ ।
କାଠଗଡ଼ା—ଗ୍ରା. ବ. କାଠଖୁଣ୍ଟଦ୍ୱାରା ବେଷ୍ଟିତ ସ୍ଥାନ ।

କାଠଗଡ଼—ଗ୍ରା.ବି.ଲମ୍ବା ମୋଟ କାଠଖଣ୍ଡ।
କାଠଗଣ୍ଡି—ଗ୍ରା. ବି. ଡାଳ ଓ ଚେର ଅଂଶ ବାଦ୍ ଦିଆଯାଇଥିବା ବୃକ୍ଷର ମୋଟ ଲମ୍ବ ଅଂଶ, ଲମ୍ବ ଓ ମୋଟା କାଠଖଣ୍ଡ ।
କାଠଗୋଲ—ଗ୍ରା. ବି. ବ୍ୟବସାୟାର୍ଥ ବଡ଼ ବଡ଼ କାଠ ରଖାଯିବାର ସ୍ଥାନ ।
କାଠଘୋଡ଼ା—ଗ୍ରା.ବି.କାଷ୍ଠନିର୍ମିତ କ୍ରୀଡ଼ନକ ଘୋଡ଼ା, କାଠର ବେଞ୍ଚ ।
କାଠଚମ୍ପା—ଗ୍ରା.ବି. ଧଳା ଓ ନାଲି ଦୁଇ ଜାତିର ଫୁଲ ଓ ଡହିର ଗଛ,ଗୁଳବାସି, ଚମ୍ପାବିଶେଷ, ଏକପ୍ରକାର ଘଣ୍ଟବାଣ ।
କାଠଚିରା—ଗ୍ରା. ବି. କାଠକୁ କରତରେ ଚିରିବା କର୍ମ, କାଠ କରତିବା କର୍ମ ।
କାଠଛତୁ—ଗ୍ରା. ବି. ପାଣିଖିଆ ପୁରୁଣା, କାଠ ଉପରେ ଜନ୍ମିବା ଏକପ୍ରକାର ଛତୁ ।
କାଠଜଡ଼ା—ଗ୍ରା. ବି. ଗଛରେ ରହୁଥିବା ଏକଜାତୀୟ ପିପ୍ପୀଲିକା ।
କାଠପଟାଲି,କାଠଭେଲା—ଗ୍ରା.ବି. ଜଳ ପଥରେ ସ୍ଥାନାନ୍ତରକୁ ନିଆଯିବା ଦାଉଣ୍ଡ ପ୍ରଭୃତିରେ ଏକତ୍ରସମ୍ବଦ୍ଧ ବହୁ କାଷ୍ଠଖଣ୍ଡ । [ ପଦ୍ୟ ।
କାଠପଣ,କାଠପଡର—ଗ୍ରା. ବି. ସାଳ-
କାଠପୋଙ୍ଗ୍—ଗ୍ରା.ବି. ବନ୍ୟବୃକ୍ଷବିଶେଷ ।
କାଠବରଣ,କାଠବଣ୍ଡ—ଗ୍ରା.ବି. ଯୁବା-କାଳରେ ମୁହଁରେ ବାହାରିବା ବ୍ରଣ-ବିଶେଷ । [ଗୁଣ୍ଡୁଚିମୂଷା ।
କାଠବିରାଡ଼ି—ଗ୍ରା. (ମେଦିନୀ) ବି.
କାଠବେଙ୍ଗ—ଗ୍ରା.ବି.ଏକପ୍ରକାର ବେଙ୍ଗ ।
କାଠମଲ୍ଲି (ଲି)—ଗ୍ରା. ବି. ବଣମଲ୍ଲି ।
କାଠମାଳ—ଗ୍ରା. ବି. କାଠ ଖୁଦାହୋଇ ପ୍ରସ୍ତୁତ କରାଯିବା ମାଳ ।
କାଠମାଳିଆ—ଗ୍ରା. ବିଂ. 'କାଷ୍ଠମାଳା ପରିହିତ, (ବି) କପଟ ସନ୍ନ୍ୟାସୀ ।
କାଠମୁହାଁ—ଗ୍ରା. ପୁଂ. ବିଂ. (ଲକ୍ଷଣାର୍ଥ) ନିର୍ଲଜ୍ଜ, ବେହିଆ, (ସ୍ତ୍ରୀ) କାଠମୁହାଁ ।
କାଠରକ୍ତଆ—ଗ୍ରା.ବି. ଉତ୍କଳର ଉତ୍କୃଷ୍ଟ କ୍ଷତ୍ରିୟ ଜାତିବିଶେଷ ।

କାଠରିଆ (କାଠୁରିଆ)—ଗ୍ରା. ବିଂ. ଯେ କାଠବିକ୍ରୟକରି ଜୀବିକା ନିର୍ବାହକରେ ।
କାଠହଣା—ଗ୍ରା.ବି.ଏକପ୍ରକାର ଚଢ଼େଇ ନିଜ ଅଣ୍ଟରେ ଯେ କାଠ କାଟିପକାଏ ।
କାଠହାରିଆ—ଗ୍ରା. (କଟକ) ବିଂ.କଟକ ଜିଲ୍ଲା କାଠହାରନାମକ ଗ୍ରାମର ତନ୍ତ୍ରୀମାନଙ୍କଦ୍ୱାରା ବୁଣାହୋଇଥିବା ଉତ୍କୃଷ୍ଟ (ଲୁଗା) ।
କାଠହାଉଇ—ଗ୍ରା. ବି. ଭିତର ଖୋଳି-ଯାଇ ଫମ୍ପା କରାଯାଇଥିବା କାଠର ନଳିଭିତରେ ବାରୁଦ ପୁରାଯାଇ ତିଆର କରାଯିବା ହାଉଇବାଣ ।
କାଠା—ଗ୍ରା.ବି. ଭୂମିର ପରିମାଣବିଶେଷ, ବିଘାର କୋଡ଼ିଏ ଭାଗରୁ ଏକଭାଗ, ୬୨୦ ହସ୍ତ ବର୍ଗ ପରିମିତ ଭୂମି ।
କାଠି—ଗ୍ରା.ବି. (କାଠ+କ୍ଷୁଦ୍ରାର୍ଥେ ଇ) କ୍ଷୁଦ୍ରକାଷ୍ଠଖଣ୍ଡ, ଗୁବାକାଠି, କଣ୍ଟିକାଠି, ସର୍ବୋଚ୍ଚତମ ସଂଖ୍ୟାବାଚକ ଗୁଟି,ସାପ, ବଣାକାଠି, ଓଟ ଉପରେ ପକାଯିବା ଜିନ, ଦିଆସିଲିକାଠି, ପଣାକାଠି,ଦାନ୍ତ-କାଠି,ଗୋଜିକାଠି,ପୁଂ. ଜନନେନ୍ଦ୍ରିୟ, ଉପସ୍ଥ, ଝିଙ୍କକାଠି, ଝଁଗାକାଠି, (ବିଂ) କାଠିର ପରିମାଣ ।
କାଠିଆ—ଗ୍ରା. ବି. କାଠିଆକଦଳୀ, ଏକଜାତୀୟ କଦଳୀ ।
କାଠିଆବାଡ଼—ଗ୍ରା.ବି.ଗୁଜରାଟ ଅନ୍ତର୍ଗତ ଦେଶବିଶେଷ ।
କାଠିଏ—ଗ୍ରା. ବି. ଅପରିମିତ,ଅସଂଖ୍ୟ ।
କାଠିକରପାଠ—ଗ୍ରା. ବି. ବହୁକଷ୍ଟସାଧ୍ୟ ବିଷୟ ।
କାଠିକରବଳ—ଗ୍ରା.ବି. ଅପରିମିତବଳ ।
କାଠିକଲମ—ଗ୍ରା. ବି ଶର ଓ କଲମ ଜାତୀୟ ତୃଣର ପବରୁ ପ୍ରସ୍ତୁତ ଲେଖିବା କଲମ ।
କାଠିଖାଇ—ଗ୍ରା.ସ୍ତ୍ରୀ.ବିଂ.ଯେ ସର୍ପଦଂଶନ ଦ୍ୱାରା ମରିବ, ସବାଖାଇ, ମାଡ଼ୋଇ, କୁଳଟା, ବେଶ୍ୟା, ଅସତୀ ।

କାଠିଖିଆ—ଗ୍ରା. ପୁଂ.ବିଂ. ଗାଳିବିଶେଷ, (ସ୍ତ୍ରୀ) କାଠିଖାଇ ।
କାଠିନ୍ୟ—କ୍ଲୀ ବି. ( କଠିନ+ଭା.ଯ ) କଠିନତା,ଦୃଢ଼ତା, ନିର୍ଦ୍ଦୟତା, ନିଷ୍ଠୁରତା, ନିଷ୍ଠୁରତା,କଠୋରତା,ରୁକ୍ଷତା, ଦୁରୂହତା, ଆଧିକ୍ୟ, ପ୍ରକୋପ ।
କଠିନାଫଳ—ପୁଂ.ବି.କଇଥବୃକ୍ଷ,କଇଥ ।
କାଠିଲାଗି—ଗ୍ରା. ବି. ଦେବତା ଓ ରାଜା-ମାନଙ୍କର ଦନ୍ତଧାବନ ସେବା । [ ଜନ୍ ।
କାଠୀ—ଗ୍ରା.ବି.ଓଟ ପିଠିରେ କଶାହେବା
କାଠୁଆ—ଗ୍ରା. ବିଂ. ବହଳିଆ, କାଠପରି ଟାଣୁଆ, ଅଲସୁଆ, ନିଷ୍ଠୁର, କାଠ-ବ୍ୟବସାୟୀ,ହାଡ଼ୁଆ,(ବି) ହଳଦି ରଖି-ବାର କାଠକାଡ଼ି ।
କାଠେକାଠେରହିବା—ଗ୍ରା. କ୍ରି.ଶରୀର-ଦୁର୍ବଳ ହୋଇ ରହିବା ।
କାର୍ଡ—ଯା. ବି. ଡାକଚିଠି, ପତ୍ର ।
କାଡ଼େ—ପ୍ରା.କେଉଁଆଡ଼େ,କେଉଁଦିଗକୁ ।
କାଡ଼ା—ଗ୍ରା. ବି. ସର୍ଦ୍ଦିରୋଗରେ ପ୍ରଯୁଜ୍ୟ ଶୁଣ୍ଠି ପିପ୍ପଳୀ ଆଦିର ଚୂର୍ଣ୍ଣ, ପାଚନ-ବିଶେଷ ।
କାଢ଼ି—ଗ୍ରା.ବି. ଶାରୀରିକ କ୍ଷମତା, ବଳ, ଶକ୍ତି, ପରିଶ୍ରମ, ସାମର୍ଥ୍ୟ, ପରାକ୍ରମ, (ଗ୍ରା.ବିଂ)ଶୃଙ୍ଖଳ,ନିରସ,ବାହାରକରିବା ।
କାଢ଼ି—ପ୍ରା.ବି.ଉଠାଣିବାଟେ ବଳପୂର୍ବକ ଝିଙ୍କି ଆଣିବା କାଠବୋଝ ।
କାଢ଼ିଆ—ଗ୍ରା.ବି.ରୁଣ,ଧାର, ଦୋକାନ-ଠାରୁ ନିଆଯିବା କାଳି ସଉଦା, (ବିଂ) କାଳିଆଣିବା, ବଳୁଆ, ଧାରିକରାଯିବା ।
କାଢ଼ିବା—ଗ୍ରା.କ୍ରି.ପଦାକୁବାହାରକରିବା, ଝିଙ୍କିନେବା, ବଳପୂର୍ବକ ଟାଣିନେବା, ଦମନ କରିବା, ଅନ୍ତର କରିବା,ଗାଳି-ଦେବା, ତଡ଼ିଦେବା, ଦୂର କରିବା, ଉଠାଇବା ।
କାଢ଼ୁ—ଗ୍ରା. ବି. (କାଢ଼ଦେଖ) ।
କାଢ଼ୁଆ—ଗ୍ରା.ବିଂ.ପରିଶ୍ରମୀ, କର୍ମକୁଶଳ, ବଳୁଆ, ଶକ୍ତିଶାଳୀ, ଜବରଦସ୍ତ, ଯେ କାଢ଼େ ।

କାଣ—ପୁଂ.ବି. କାଣ୍ଡ,(ବିଂ)(କଣ+କ. ଅ)ଏକଚକ୍ଷୁବିଶିଷ୍ଟପ୍ରାଣୀ, (ସ୍ତ୍ରୀ) କାଣା ।

କାଣାଦ—ଦ୍ଧି.ବିଂ.କଣାଦ ଋଷିକୃତଶାସ୍ତ୍ର ।

କାଣାନଦୀ—ସ୍ତ୍ରୀ. ବି. ହୁଗୁଳୀ ଜିଲ୍ଲାର ଗୋଟିଏ ସ୍ରୋତସ୍ୱତୀ ନଦୀବିଶେଷ ।

କାଣିଆଙ୍ଗୁଠି—ଗ୍ରା. ବି. କନିଷ୍ଠା ଅଙ୍ଗୁଳି ।

କାଣିଗୁ—ଗ୍ରା. ବି. କ୍ଷୁଦ୍ର କଣା, ଅତି-ସାମାନ୍ୟ ।

କାଣିଚଆ—ଗ୍ରା. ବିଂ. ଅତିକ୍ଷୁଦ୍ର, ଅତି-ସାମାନ୍ୟ, କ୍ଷୁଦ୍ର କଣାବିଶିଷ୍ଟ ।

କାଣିନଳି—ଗ୍ରା. ବି. ଜମିର କ୍ଷେତଫଳ ବାହାର କରିବାର ନିୟମବିଶେଷ ।

କାଣିନଳ—ଗ୍ରା. ବି. ଜଳ ବହିଯିବାର କ୍ଷୁଦ୍ର ଶାଖାନାଳ ।

କାଣିବନ୍ଧ—ଗ୍ରା. ବି. ଛୋଟବନ୍ଧ ।

କାଣୀ—ଗ୍ରା.ସ୍ତ୍ରୀ.ବିଂ. ଏକଚକ୍ଷୁହୀନା ସ୍ତ୍ରୀ ।

କାଣୁକ—ପୁଂ.ବି.(କଣ+ଉକ) ବାୟସ, କାକ ।

କାଣେୟ,କାଣେର—ପୁଂ. ବି. ଏକଚକ୍ଷୁ-ହୀନର ପୁତ୍ର, କାକଶାବକ ।

କାଣେଲୀ—ସ୍ତ୍ରୀ.ବି. ଅବିବାହିତା କନ୍ୟା, ବ୍ୟଭିଚାରିଣୀ ।

କାଣ୍ଡି—ଗ୍ରା. ବି. ଭାଣ୍ଡତଳରେ ବସିଥିବା ତେଲାଦିର ମଳି, ବଳି, ପଗାଦମ ।

କାଣ୍ଡିଆ—ଗ୍ରା. ବି. କାଣ୍ଡିଯୁକ୍ତ, ମଇଳା, ରେସମ ବା ପାଟର ମୋଟ ଅସାର ଅଂଶରେ ବୁଣା ହୋଇଥିବା ମଠା, ଧୂସୁରା ।

କାଣ୍ଡିବଗ—ଗ୍ରା.ବି.ଧୂସରବର୍ଣ୍ଣର ବଗପକ୍ଷୀ

କାଣ୍ଡ—ପ୍ରା.(ସମ୍ବ)ବି.କାଣ୍ଡଶର,ଗୁଖଣ୍ଡ

କାଣ୍ଡ—ପୁଂ.କ୍ଲୀ.ବି. (କନ+କ,ଡ଼)ବୃନ୍ତ, ଡେମ୍ଫ,ଗଛର ଗଣ୍ଡି, ଗୁଚ୍ଛ, ସ୍ତମ୍ଭ,ନିର୍ଜ୍ଜନ ସ୍ଥାନ,ରାମାୟଣର ଅଂଶବିଶେଷ,ବେଦର ଭିନ୍ନବିଭାଗ, ନଳ, ବାଣ, ଶର, ଦଣ୍ଡ, ଗ୍ରନ୍ଥଅଧ୍ୟାୟ, ଅବସର, ପ୍ରସ୍ତାବ, ଗଦା, ବିଷମବ୍ୟାପାର, ପବ, ସମୂହ, ଛନ୍ଦ, ଜଳ, ଘଟଣା, ମିଥ୍ୟାପ୍ରଶଂସା ବ୍ୟାପାର, ଅଶ୍ୱ,(ପୁଂ.ବି)ଆଙ୍କୁଲଗଛ,(ବିଂ)ନିର୍ଜ୍ଜନ, ନୀଚ, (ଗ୍ରା. ବି. ) ଆଚରଣ,ଧନୁ,ଗୃହ-ଘରର କୋଣରେଥିବା ବଡରୁଅ, ପୁରୁଷଚନ୍ଦ୍ର । [କଲଗ ।

କାଣ୍ଡକଟୁକ—ପୁଂ.ବି(ବି.ବୀ )କାରବେଲ୍ଲି,

କାଣ୍ଡକରିବା—ଗ୍ରା. କ୍ରି. ବିଷମ ଘଟନା ଘଟାଇବା ।

କାଣ୍ଡକାର—କ୍ଲୀ.ବି. (କାଣ୍ଡ+କୃ+ଅ) ଗୁଆଗଛ, ସୁପାରି, (ପୁଂ) ବାଣ ନିର୍ମାଣ କରିବା ।

କାଣ୍ଡକାଣ୍ଡକ—ବି. (କାଣ୍ଡ+କାଣ୍ଡ+କ) କାଶତୃଣ, କାଉଁଶି ।

କାଣ୍ଡକାରଖାନା—ଗ୍ରା.ବି. ବିଷମବ୍ୟାପାର, ଆଶ୍ଚର୍ଯ୍ୟ ଘଟନା, ଘଟନାସମୂହ ।

କାଣ୍ଡକୀଲକ—ପୁଂ.ବି.ଲୋଧ୍ର,ଲୋଧକାଠ ।

କାଣ୍ଡଗୋଚର—ପୁଂ.ବି. ନାରାଚନାମକ ଲୌହନିର୍ମିତ ଅସ୍ତ୍ରବିଶେଷ ।

କାଣ୍ଡଗ୍ରହ—ପୁଂ. ବି. (ତନ୍ତ୍ର) ପ୍ରକରଣ ବୋଧ, ଉପସ୍ଥିତ ବ୍ୟାପାର ବା ସମସ୍ୟା ସମ୍ବନ୍ଧେ ସମ୍ୟକ୍ ଜ୍ଞାନବୋଧ ।

କାଣ୍ଡଗ୍ରହରହିତ—ତ୍ରି. ବିଂ. ଯାହାର କୌଣସି ଅର୍ଥବୋଧ ହୁଏ ନାହିଁ ।

କାଣ୍ଡଘର—ଗ୍ରା. ବି. ପୁରୁଷର ଉପସ୍ଥ, ବାଳିକାର ପ୍ରଥମ ରଜ ଦର୍ଶନ ହେଲେ ସେ ପ୍ରଥମ ସାତଦିନବସିବା ଶୋଇବା-ପାଇଁ ବାସଗୃହ ମଧ୍ୟରେ ଗୋଟିଏ ଚତୁଷ୍କୋଣ ସ୍ଥାନର ଚାରିପାଖରେ କାଣ୍ଡ ବା ଶର ପୋତା ଯାଇ ଯେଉଁ ଖେଳ-ଘର ପରି ଘର ତିଆରି କରାଯାଏ ।

କାଣ୍ଡଚାରୀ—ପୁଂ.ବିଂ.(କାଣ୍ଡ+ଚର୍+କ.ଇନ୍) ଯେ ବୃକ୍ଷର ଶାଖାରେ ବିଚରଣ କରେ ।

କାଣ୍ଡଜ୍ଞାନ—କ୍ଲୀ.ବି. ବିଷୟଜ୍ଞାନ, ମୋଟା-ମୋଟି ଜ୍ଞାନ, ବିବେଚନା, ହିତାହିତ ବୋଧ, ସ୍ଥୂଳଜ୍ଞାନ ।

କାଣ୍ଡଜ୍ଞାନଶୂନ୍ୟ—ତ୍ରି. ବିଂ. (ତନ୍ତ୍ର) ପ୍ରକରଣ-ବୋଧରହିତ, ସ୍ଥୂଳବୋଧ ବର୍ଜ୍ଜିତ, ମୂର୍ଖ, (ସ୍ତ୍ରୀ.) କାଣ୍ଡଜ୍ଞାନଶୂନ୍ୟା ।

କାଣ୍ଡତିକ୍ତ,କାଣ୍ଡତିକ୍ତକ—ପୁଂ. ବି. ଚିରେ-ଇତା, ଭୂଇଁନିମ୍ବ ।

କାଣ୍ଡନଳ—ଗ୍ରା. ବି. ଏକପ୍ରକାର ଛୋଟ ନିର୍ବିଷ ସାପ ।

କାଣ୍ଡନୀଳ—ବି.(ବି.ବୀ )ଲୋଧ,ଲୋଧକାଠ ।

କାଣ୍ଡପଟ—ପୁଂ. ବି. ଯବନିକା, ପରଦା, ତମ୍ବୁ, ରାହୁଟି, (ଗ୍ରା.ବି.) ଗୋଟିଏ ଶର ଏକପଟକାଣ୍ଡ ।

କାଣ୍ଡପୂରାଇବା—ଗ୍ରା. କ୍ରି. ପ୍ରକୃତତର୍କ ମଝିରେ ହଠାତ୍ ଗୋଟାଏ ଅଖାଡୁଆ କଥା ଆଗତ କରିବା ।

କାଣ୍ଡପୃଷ୍ଠ—ବି. ( କାଣ୍ଡ+ପୃଷ୍+ଥକ୍) ବ୍ୟାଧ,ବେଶ୍ୟାପତି, କର୍ଣ୍ଣଙ୍କ ଧନୁ,(ବିଂ) ଶସ୍ତ୍ରାଜୀବ, ନିନ୍ଦ୍ୟଜୀବୀ,ଧାନୁଷ୍କ,ଦୁଷ୍ଟରକ୍ଷ, ଯେ ଆପଣା କୁଳକୁ ଛାଡ଼ି ପରକୁଳରେ ପଶେ ।

କାଣ୍ଡପୁଷ୍ପ—କ୍ଲୀ. ବି. କ୍ଷୁଦ୍ର ସୁଗନ୍ଧପୁଷ୍ପ-ବିଶେଷ, ଦ୍ରୋଣପୁଷ୍ପ, ଗଇଣଫୁଲ ।

କାଣ୍ଡବାନ୍—ପୁଂ. ବିଂ. ଯେ ତୀର ଓ ଧନୁ ଧରି ଯୁଦ୍ଧ କରିବାକୁ ଯାଏ ।

କାଣ୍ଡବାରଣୀ—ସ୍ତ୍ରୀ. ବି. (କାଣ୍ଡ+ବୃ+ଣିଚ୍+ଇନ୍+ଈ) ଦୁର୍ଗା ।

କାଣ୍ଡବିଭା—ଗ୍ରା. ବି. ଓଡ଼ିଶାରେ ଶୂଦ୍ର-ଜାତୀୟା କନ୍ୟାବିବାହ ପୂର୍ବରୁ ରଜୋ-ବତୀ ହେଲେ ପ୍ରଥମେ ଗୋଟିଏ କାଣ୍ଡ ସଙ୍ଗେ ତା'ର ଯେଉଁ ବିବାହ ହୁଏ ।

କାଣ୍ଡବୀଣା—ସ୍ତ୍ରୀ. ବି. କଣ୍ଡୋଲନାମକ ବୀଣାବିଶେଷ, ଚାଣ୍ଡାଲ ବୀଣା, ଶର-ନିର୍ମିତ ବୀଣା ।

କାଣ୍ଡଭଗ୍ନ—କ୍ଲୀ. ବି. ଆଘାତଦ୍ୱାରା ହାତ ବା ଗୋଡ଼ର ନଳହାଡ଼ ଭାଙ୍ଗିଯିବା ।

କାଣ୍ଡଭରଣୀ—ସ୍ତ୍ରୀ.ବି. ଶରମୁଣା, ତୂଣୀର, ଶରଧି ।

କାଣ୍ଡର୍ଷି—ପୁଂ. ବି. ବେଦାଂଶ ପ୍ରକାଶକ ବା ବିବରକ ମୁନି ।

କାଣ୍ଡଲବ—ତ୍ରି. ବିଂ. (କାଣ୍ଡ+ଲୂ+ଅ) ବୃକ୍ଷସ୍କନ୍ଧର ଛେଦନକାରକ ।

କାଣ୍ଡଶର—ଗ୍ରା.ବି. ଶରତୃଣ, ଜୁଣ୍ଡ, ଏକ ଜାତୀୟ ମୁଞ୍ଜିତୃଣ । [ପର୍ବ, ପବ ।

କାଣ୍ଡସନ୍ଧି—ପୁଂ.ବି. ଗଛଡାଲର ଗଣ୍ଠି,

କାଣ୍ଡସ୍ପୃଷ୍ଟ—ତ୍ରି.ବିଂ,(କାଣ୍ଡ+ସ୍ପୃଶ୍+ତ) ଶସ୍ତ୍ର ବ୍ୟବହାରଦ୍ୱାରା ଯେ ଜୀବିକା ନିର୍ବାହ କରେ, ଶସ୍ତ୍ରାଜୀବ ।

କାଣ୍ଡସ୍ଥାନ—କ୍ଲୀ. ବ. (କାଣ୍ଡ+ସ୍ଥା+ଅ) ମୁଖ ବିଶେଷ, (ବିଂ) ମୋଟାମୋଟି ଜ୍ଞାନଶୂନ୍ୟ ।

କାଣ୍ଡାକାଣ୍ଡ—ବ. (ନ.ତତ୍ପୁ) କର୍ତ୍ତବ୍ୟା-କର୍ତ୍ତବ୍ୟ, ହିତାହିତ ବୋଧ ।

କାଣ୍ଡାକାଣ୍ଡଜ୍ଞାନ—କ୍ଲୀ. ବ. (୬ତତ୍ପୁ) ଭଲ ମନ୍ଦ ବିଷୟକ ବିବେଚନା, ହିତାହିତବୋଧ ।

କାଣ୍ଡାନୁକ୍ରମ—ପୁଂ. ବ. ତୈତ୍ତିରୀୟସଂହିତାର କାଣ୍ଡ ସମୂହର ସୂଚୀପତ୍ର ।

କାଣ୍ଡାନୁକ୍ରମଣିକା, କାଣ୍ଡାନୁକ୍ରମଣୀ—ସ୍ତ୍ରୀ. ବ. ତୈତ୍ତିରୀୟସଂହିତାର ସୂଚୀପତ୍ର ।

କାଣ୍ଡାର—ଗ୍ରା. ପୁଂ. ବ. କର୍ଣ୍ଣଧାର, ନାବିକ, ମାଝି ।

କାଣ୍ଡାରି—ଗ୍ରା. ପୁଂ. ବ. ନାବିକ, ମାଝି ଯେ ଡଙ୍ଗାର କେଲୁଆର ଧରଥାଏ ।

କାଣ୍ଡି—ଗ୍ରା.ବ. (ସଂ—କାଣ୍ଡ)ରାଶି,ସ୍ତୂପ, ଗଦା,ପଣ୍ୟଦ୍ରବ୍ୟର ଭଣ୍ଡାର, ଗୋଦାମ, ଗଞ୍ଜ, ବେଦର ମନ୍ତ୍ରପ୍ରକରଣ, ଲଙ୍କାର ନଗରବିଶେଷ,ଗ୍ରାମସ୍ଥ ଛୋଟଦୋକାନ, ଶୂଦ୍ରଙ୍କ ବଂଶୋପାଧିବିଶେଷ, ହାତଙ୍କ ତଳପାରେ ହେବା ଏକ ପ୍ରକାର ରୋଗ (ପ୍ରା-ହିନ୍ଦି)ବ. ଡେଙ୍ଗିମୁଣ୍ଡା ।

କାଣ୍ଡିଆ—ଗ୍ରା.ବ. ଅଠାକାଣ୍ଡିଆ, ପକ୍ଷୀଙ୍କୁ ନଳଦ୍ୱାରା ଧରିବାପାଇଁ ବ୍ୟବହୃତ ଅଠାଯୁକ୍ତ କାଠି,ଗୁଳଘରର ଲୁଅମାନଙ୍କୁ ଶୃଙ୍ଖଳାବଦ୍ଧଭାବରେ ରଖିବାପାଇଁଫୋଡ଼ ଭିତରେ ଦିଆଯାଇଥିବା ସରୁ ବାଉଁଶ-କାଠି, (ବିଂ) ଭୂଷାଦି ପରିଷ୍କୃତ ହୋଇ ଥିବା (ଶସ୍ୟାଦି) ।

କାଣ୍ଡିଆକୁଣ୍ଡା—ଗ୍ରା.ବ. ସରୁ କୁଣ୍ଡା ।

କଣ୍ଡିଆଳ—ଗ୍ରା (ଭଦ୍ରଖ) ବିଂ. କୁଚର୍ଣୀ, ଷଡ଼୍‌ଯନ୍ତ୍ରକାରୀ ।

କାଣ୍ଡିବା—ଗ୍ରା.କ୍ରି. (ଶସ୍ୟାଦି) ପରିଷ୍କୃତ କରିବା, ପ୍ରହାର କରିବା, କୁଟକାଣ୍ଡ କରିବା, ବୃକ୍ଷର ବା ଡାଳରୁ କୁଣ୍ଡା ଓ ବୋଳ ବାହାର କରିବା ନିମିତ୍ତ କୁଟିବା, (ଲ.ଅର୍ଥ) ମାର୍ଜିତ କରିବା, ଉନ୍ନତ କରିବା, (ମେଘ) ଗୁଡ଼ାଏ ବର୍ଷାକରିବା, ଗଦା କରିବା, ପରାଭବ ଦେବା ।

କାଣ୍ଡୀ—ବ. (କାଣ୍ଡ+ଇନ୍) ପ୍ରଶସ୍ତ ଗୁଳ୍ମ ଯୁକ୍ତ, ସିଂହଳର ମଧ୍ୟବର୍ତ୍ତୀ କାଣ୍ଡୀ-ନାମକ ଅଧିତ୍ୟକାର ପ୍ରଧାନ ନଗର. (ବିଂ)ଶରପ୍ରୟୋଗ କରିବାର ବିଚକ୍ଷଣ ।

କାଣ୍ଡୀର—ପୁଂ.ବିଂ.(କାଣ୍ଡ+ଈର) ଶର-ଧାରୀ, ଧାନୁଷ୍କ, କୁତ୍ସିତ ଜନ୍ୟଙ୍ଘା, ଗିରନ୍ଧାଳ, (ବି) ଶରଧାରୀ ସୈନିକ, ଅପାମାର୍ଗଗଛ, କଲରାଗଛ ।

କାଣ୍ଡୀରା,କାଣ୍ଡାରୀ—ବ. ମଞ୍ଜିଷ୍ଠା ।

କାଣ୍ଡୁ—ଗ୍ରା.ବ. (ସଂ—କଣ୍ଡୂ) ଗଲୁ, କାମୁକତା, ଦୁଷ୍ଟାମୀ, ଦୁର୍ବୃତ୍ତତା, ମନକାଣ୍ଡୁ ।

କାଣ୍ଡୁଆ—ଗ୍ରା. ପୁଂ. ବିଂ. ଦୁଷ୍ଟ, କଳହା, କାମାତୁର,ଜନ୍ୟଙ୍ଘା,କାଣ୍ଡୁଆ,ଧନୁର୍ଦ୍ଧର, ଖେଚଡ଼ା, (ସ୍ତ୍ରୀ) କାଣ୍ଡୋଇ ।

କାଣ୍ଡୁଛୁଟିବା—ଗ୍ରା. କ୍ରି. କଣ୍ଡୁଛୁଟିବା, କାମୋନ୍ମାଦହେବା, ଗଲୁ କରିବା ।

କାଣ୍ଡୁମାରିବା (ମରିବା)—ଗ୍ରା.କ୍ରି. କଣ୍ଡୂ-ମରିବା, ଅନ୍ୟଲୋକର ମନର ଗଲୁକୁ କାର୍ଯ୍ୟ ବା ଦଣ୍ଡଦ୍ୱାରା ଅଣ୍ଡା କରଦେବା, କାମୋନ୍ମାଦ ସଙ୍ଗମଦ୍ୱାରା ପ୍ରଶମିତ କରିବା ।

କାଣ୍ଡେକ୍ଷୁ—ପୁଂ.ବ.କାଶତୃଣ, କୁଇଲେଖା ଗଛ ।

କାଣ୍ଡେକ୍ଷା—ସ୍ତ୍ରୀ.ବ. ନାଗଦନ୍ତୀ ବୃକ୍ଷ ।

କାଣ୍ଡେରୁହା—ସ୍ତ୍ରୀ. ବ. କଟୁକୀ ।

କାଣ୍ଡୋଳ—ପୁଂ.ବିଂ.ଡ଼ୋଲା,(ଏହା ଶସ୍ୟ ରଖିବାପାଇଁ ବାଉଁଶରେ ତିଆରିହୁଏ) ।

କାଣ୍ୱ—ପୁଂ. ବ. (କଣ୍ୱ+ଅ) କଣ୍ୱଋଷିଙ୍କ ପୁତ୍ର, ଯଜୁର୍ବେଦୀୟ ଶାଖାବିଶେଷ (ତ୍ରି. ବିଂ.) କଣ୍ୱଋଷିସମ୍ବନ୍ଧୀୟ ।

କାଣ୍ୱକ—ତ୍ରି.ବ.କଣ୍ୱଦୃଷ୍ଟ ସାମବିଶେଷ ।

କାଣ୍ୱଶାଖା—ବ.ଯଜୁର୍ବେଦର ଶାଖାବିଶେଷ ।

କାଣ୍ୱାୟନ—ପୁଂ.ବ.କଣ୍ୱବଂଶୀୟ ବେଦୋକ୍ତ ପ୍ରାଚୀନଋଷି, କଣ୍ୱବଂଶୀୟ ରାଜାଗଣ, କଣ୍ୱଋଷିଙ୍କ ବଂଶୋଦ୍ଭବ ବା ସଗୋତ୍ର ।

କାଣ୍ୱୀୟ—ତ୍ରି. ବିଂ. କଣ୍ୱବଂଶୀୟଗଣର ସମ୍ବନ୍ଧୀୟ ।

କାଣ୍ୱ୍ୟ—ପୁଂ. ବ. କଣ୍ୱପୁତ୍ର, (ବିଂ) କଣ୍ୱ-ବଂଶୀୟ, କଣ୍ୱସମ୍ବନ୍ଧୀୟ ।

କାଣ୍ୱ୍ୟାୟନ—ପୁଂ. ବିଂ. କଣ୍ୱବଂଶୀୟ ।

କାତ୍—ଅବ୍ୟ. (କୁ+ଅତ୍+କ୍ୱିପ୍) ତିରସ୍କାର ।

କାତ—ଗ୍ରା. ବ. ହାତଗୋଡ଼,ନୌକାଦି ବନ୍ଧନେବାପାଇଁ ବ୍ୟବହୃତ ଲମ୍ବବାଂଶ, ଫୋଲାଦିରେ ହୁଡ଼କରି ବାନ୍ଧିବାପଇସା-କୁଢ଼ ବା କାଟଖୁଣ୍ଟ ।

କାତନ୍ତ୍ର—କ୍ଲୀ. ବ. କଳାପ ବ୍ୟାକରଣ ।

କାତନ୍ତ୍ରପଞ୍ଜିକା, କାତନ୍ତ୍ରପାଞ୍ଜୀ—ସ୍ତ୍ରୀ. ବ. ତ୍ରିଲୋଚନଦାସକୃତ କାତନ୍ତ୍ରବ୍ୟାକରଣ ଟୀକା ।

କାତପକାଇବା—ଗ୍ରା.କ୍ରି. କାତମାରିବା ।

କାତମାରିବା—ଗ୍ରା. କ୍ରି. ଡଙ୍ଗାକୁ ଚଳା-ଇବା ନିମିତ୍ତ ଡଙ୍ଗାଉପରେ ଠିଆହୋଇ ଜଳର ତଳଦେଶରେ ବାଉଁଶ ଲଗାଇ ଠେଲିବା ।

କାତର—ପୁଂ. ବିଂ. (କୁ+ତୃ+ଅ) ବିହ୍ୱଳ, ଅର୍ଦ୍ଧିର,ଦୁଃଖିତ, ଭୀତ,ଅସ୍ଥିର, (ବି) ଭେଳା, ଡଙ୍ଗା, ଖାକୁଡ଼ମାଛ, ବିବଶ, ବ୍ୟାକୁଳ, ଚଞ୍ଚଳ ।

କାତରକଣ୍ଠ—ପୁଂ.ବ.(କ.ଧା)କାତରତା-ପ୍ରକାଶକ କଣ୍ଠଧ୍ୱନି,ଦୁଃଖାର୍ତ୍ତସ୍ୱର, (ବିଂ) ଯାହାର କଣ୍ଠସ୍ୱର କାତରତା-ପ୍ରକାଶକ ।

କାତରତା—ସ୍ତ୍ରୀ.ବ. (କାତର+ତା) ଦୁଃଖ, ଭୀରୁତା,ବ୍ୟାକୁଳତା,ଅଧୀରତା ।

କାତରତ୍ୱ—କ୍ଲୀ. ବ. (କାତର+ତ୍ୱ) ବ୍ୟାକୁଳତା, ଭୀରୁତା ।

କାତରୋକ୍ତି—ସ୍ତ୍ରୀ. ବ. (କାତର+ବଚ୍+ତି) କାତରବ୍ୟକ୍ତିର ବାକ୍ୟ,ଦୁଃଖାର୍ତ୍ତ ବଚନ, (ବିଂ, ବ. ସ୍ତ୍ରୀ) କାତରତା-ପ୍ରକାଶକ ବାକ୍ୟଭଙ୍ଗୀ ।

କାତର୍ଯ୍ୟ—କ୍ଲୀ. ବ. (କାତର+ଯ) କାତରତା, ଦୁଃଖ, ଭୀରୁତା ।

କାତଳ—ପୁଂ. ବି. କାତଳାମାଛ, ରୁଷିବିଶେଷ, ଭାକୁଡ଼ମାଛ ।

କାତାରି—ଗ୍ରା. ବି. ସୁନାରୁପା ପାତିଆ କାଟିବାର ବଣିଆକରୁଣ୍ଡି ।

କାତି—ଗ୍ରା. ବି. (କୈ+ତି) କଟୁରି, ସାପଖୋଳ, ମାଛପ୍ରଭୃତିଙ୍କ ଦେହ ଉପରସ୍ଥ ଆବରଣ, ତୁଷ ।

କାତିଆଳ—ଗ୍ରା. ବିଂ. କାତିବିଶିଷ୍ଟ ମାଛ ।

କାତିଛାଡ଼ିବା—ଗ୍ରା. ବି. କାତି ଆକୃତିବିଶିଷ୍ଟ ଚର୍ମରେ ଉଠିବାରୂପ ରୋଗ, ସାପ ଦେହରୁ ଖୋଳ ତ୍ୟାଗକରିବା ।

କାତୀୟ—ତ୍ରି.ବିଂ. କାତ୍ୟାୟନସମ୍ବନ୍ଧୀୟ (ପୁଂ.ବି) କାତ୍ୟାୟନଙ୍କ ଛାତ୍ର ।

କାତିବ—ଯା. ଶିକ୍ଷକ, ଲେଖକ ।

କାତୃଣ—କ୍ଲୀ. ବି. ରୋହିଷନାମକ ତୃଣ, ବିଶେଷ, ଗନ୍ଧତୃଣ, ଧନହରୀ ।

କାତ୍ୟ—ପୁଂ. ବି. (କତ୍ର+ଅ+ଯ) କାତ୍ୟାୟନଋଷି, ବରରୁଚି ।

କାତ୍ୟାୟନ—ପୁଂ.ବି. (କାତ୍ୟ+ଆୟନ) ଅତି ପ୍ରାଚୀନ ଋଷିବିଶେଷ, ଧର୍ମଶାସ୍ତ୍ରକାର ଋଷିବିଶେଷ, ବିଶ୍ୱାମିତ୍ର ଋଷିବଂଶୀୟ କାତ୍ୟାୟନମୁନି, (ସ୍ତ୍ରୀ) କାତ୍ୟାୟନୀ ।

କାତ୍ୟାୟନବୀଣା ସ୍ତ୍ରୀ. ବି. କାତ୍ୟାୟନସୃଷ୍ଟ ଶତତନ୍ତ୍ରୀଯୁକ୍ତ ବୀଣାବିଶେଷ ।

କାତ୍ୟାୟନୀ—ସ୍ତ୍ରୀ.ବି.ଦୁର୍ଗା,ଗେରୁଆଲୁଗା ପିନ୍ଧିଥିବା ଦରବୁଢ଼ୀବିଧବା,ଯାଜ୍ଞବଲ୍କ୍ୟ ଋଷିଙ୍କ ସ୍ତ୍ରୀ ଭୈରବୀ ।

କାତ୍ୟାୟନୀ ପୁତ୍ର—ପୁଂ.ବି. କାର୍ତ୍ତିକେୟ, ଜଣେ ପ୍ରସିଦ୍ଧ ବୌଦ୍ଧାଚାର୍ଯ୍ୟ ।

କାଥଞ୍ଚିତ୍କ—କ୍ଲୀ.ବି. କୌଣସିପ୍ରକାରେ ।

କାଥିଆବାର—ଗ୍ରା.ବି.ଗୁଜ୍‌ରାଟ୍ ପ୍ରଦେଶର ଅନ୍ତର୍ଗତ ଗୋଟିଏ ଉପଦ୍ୱୀପ ।

କାଥିକ—ପୁଂ. ବିଂ. (କଥା+ଇକ) କଥାକହିବା ବା ରଚନା କରିବାରେ ପଟୁ, ବାକ୍‌ପଟୁ, ବାଚାଳ ।

କାଦ—ଗ୍ରା. ବି. କାତ, ନୌକା ବାହିବା ବାଉଁଶ, କାଦୁଅ, ପଙ୍କ ।

କାଦପାଣି—ଗ୍ରା. ବି. କର୍ଦ୍ଦମାକ୍ତ ଜଳ, ପଙ୍କୁଆପାଣି, ବିବାହର ପଞ୍ଚମଦିନ ।

କାଦମ୍ବକ—ପୁଂ.ବି.(କାଦମ୍ବ+କ)ବାଣ ।

କାଦମ୍ବର—କ୍ଲୀ.ବି (କଦମ୍ବ+ର+ଅ) ଦହିରସର,ଏକପ୍ରକାର ମଦ୍ୟ,ଇକ୍ଷୁଗୁଡ଼ ।

କାଦମ୍ବରୀ—ସ୍ତ୍ରୀ. ବି. (କାଦମ୍ବର+ଈ) ଏକପ୍ରକାର ମଦ୍ୟ, ସରସ୍ୱତୀ, ପକ୍ଷିଣୀ, ଶାରିକା, ମାଇକୋଇଲି, ସଂସ୍କୃତ ଗଦ୍ୟ କାବ୍ୟବିଶେଷ ।

କାଦମ୍ବର୍ଯ୍ୟ—ପୁଂ.ବି. କଦମ୍ବ ବୃକ୍ଷ ।

କାଦମ୍ବା—ସ୍ତ୍ରୀ.ବି (କଦମ୍ବ+ଆ)କଦମ୍ବପୁଷ୍ପୀଲତା, ମୁଣ୍ଡିରିଲତା, ଶ୍ୟାମପକ୍ଷୀ, କଲହଂସୀ ।

କାଦମ୍ବିନୀ—ସ୍ତ୍ରୀ.ବି.(କଦମ୍ବ+ଇନ୍+ଈ) ମେଘମାଳା ।

କାଦର—ଭାଗଲପୁର ସାନ୍ତାଲ ପ୍ରଗଣାର ଏକଶ୍ରେଣୀୟ ଅନାର୍ଯ୍ୟ ଜାତି ।

କାଦଲେୟ—ତ୍ରି. ବିଂ. କଦଳୀନିର୍ମିତ ।

କାଦାଚିତ୍କ—ବିଂ. କଦାଚିତ୍ ବା ଅକସ୍ମାତ୍ ଯାହା ଘଟିଥାଏ ।

କାଦୟାନ—ବର୍ଣ୍ଣିଓ ଦ୍ୱୀପବାସୀ ଅନାର୍ଯ୍ୟ ଜାତିବିଶେଷ ।

କାଦୁଅ—ଗ୍ରା. ବି. କର୍ଦ୍ଦମ, ପଙ୍କ, (ବିଂ) କାଦୁଅ, କର୍ଦ୍ଦମମୟ, କର୍ଦ୍ଦମାକ୍ତ ।

କାଦୁଆ—ଗ୍ରା.ବିଂ.କର୍ଦ୍ଦମମୟ,କର୍ଦ୍ଦମାକ୍ତ, କାଦୁଅ ପରି ଅଠାଳିଆ,(ବି)ଏକପ୍ରକାର ପଣସ, ଏକପ୍ରକାର ବୋଡ଼ାସାପ ।

କାଦେର—ଯା.ବି. ଶକ୍ତିଶାଳୀ, କ୍ଷମତାବାନ୍ ।

କାଦୋକଦାଇବା—ପ୍ରା.(ସମ୍ବ.) ମାଟିରେ ପାଣି ମିଶାଇ ଚକଟି କାଦୁଅ କରିବା ।

କାଦୋକଣିଆ—ପ୍ରା. (ସମ୍ବ)ବି. ହଳିଆଙ୍କୁ ବର୍ଷାଋତୁରେ ଦିଆଯିବା ଖାଦ୍ୟ ।

କାଦୋପିଚ୍ଛିଲ—ପ୍ରା. (ସମ୍ବ.) ବିଂ. ଖସଡ଼ା ହୋଇଥିବା (ବାଟ) ।

କାଦୋବରଷ୍ଟ—ପ୍ରା.(ସମ୍ବ.) ବି. ଶ୍ରାବଣମାସର ଚତୁର୍ଦ୍ଦଶୀ ଅମାବାସ୍ୟାଦିନ ସମ୍ବଲପୁରଅଞ୍ଚଳର ଅନୁଷ୍ଠିତ ପର୍ବ ।

କାଦ୍ରବେୟ—ପୁଂ.ବି. କଦ୍ରୁପୁତ୍ର, ଶେଷ ଅନନ୍ତ, ବାସୁକି, ତକ୍ଷକ, ଭୁଜଙ୍ଗମ, ସର୍ପ ଓ କୁଳିକ ଏମାନଙ୍କୁ କାଦ୍ରବେୟ ବୋଲାଯାଏ ।

କାନ—ଗ୍ରା.ବି. କର୍ଣ୍ଣ, କାନକୁ ଘୋଡ଼ାଇ ରଖିବା କାନର ଆକାରବିଶିଷ୍ଟ ସୁନାର ଅଲଙ୍କାର, ଅସଭ୍ୟ ବାଦ୍ୟକାର ଜାତିବିଶେଷ, ମୁସଲମାନ କମାରଜାତିବିଶେଷ, ତୋପ ବା ବନ୍ଧୁକର ଯେଉଁ ସ୍ଥାନରେ ନିଆଁ ଧରାଇଦିଆଯାଏ, ରଞ୍ଜକ ଧାନୀ, (ହିନ୍ଦି) କନ୍ଧାଇ, କଷ୍ଟ ।

କାନ୍‌ଉଜ—ଗ୍ରା. ବି. କାନ୍ୟକୁବ୍ଜ ।

କାନକ—କ୍ଲୀ.ବି. ଜୟପାଳବୀଜ, କନକା ମଞ୍ଜି, (ତ୍ରି) ବିଂ. କନକସମ୍ବନ୍ଧୀୟ, ସ୍ୱର୍ଣ୍ଣନିର୍ମିତ ।

କାନକଟା—ଗ୍ରା.ବି. (କାନକଟୁରିଦେଖ) କାନ ଓ ମୁଣ୍ଡର ସନ୍ଧି ସ୍ଥଳରେ ହେବା କ୍ଷତରୋଗ, ଛୋଟ ପିଲମାନେ ଅବୁଝା ହେଲବେଳେ ସାଧାରଣ କାନକଟା ବୋଲି ପିଲଙ୍କୁ ଡରାଇ ବୋଧ କରନ୍ତି ।

କାନକରିବା—ଗ୍ରା. କ୍ରି. ଶୁଣାଇବା ।

କାନକାଟିଲେ ବଚନ ବାହାରିବନାହିଁ—ଗ୍ରା. (ବାକ୍ୟ) ଅତିସୁଧୀର ଓ ଶାନ୍ତଲୋକପ୍ରତି ଏହା ପ୍ରଯୁକ୍ତ ହୁଏ ।

କାନକୁ ଆସିବା—ଗ୍ରା.କ୍ରି.ଶ୍ରୁତିଗୋଚର ହେବା ।

କାନକୁଟୁରି—ଗ୍ରା.ବି.ଦୃଢ଼ପକ୍ଷଯୁକ୍ତ କଳା କୀଟବିଶେଷ ।

କାନକୁହା—ଗ୍ରା. ପୁଂ. ବିଂ. ଝଗୁଆ, ଯେ ଅନ୍ୟନାମରେ ମିଛକଥା କହେ ।

କାନକୋଳି—ବି. କ୍ଷୁଦ୍ର କୋଳି, ବନ୍ୟକଣ୍ଟକୀ, ଲଟାଳିଆ, ଗୁଳ୍ମ ।

କାନଖଡ଼ିବା—ବି. କାନକୁଣ୍ଡାକାଠି(ବିଂ) ଶ୍ରବଣ କରିବାପାଇଁ ଜାଗରିତ,ଶୁଣିବାପାଇଁ ଜାଗରୁକ ।

କାନଖାଇ—ଗ୍ରା.ବି. ଶୀତଦିନରେ ମୁଣ୍ଡ ଓ କାନକୁ ଶୀତରୁ ରକ୍ଷା କରିବାପାଇଁ ବ୍ୟବହୃତ କନାଟୋପି ।

କାନଗୁଇ—ଯା ବି. କାନୁନ୍‌ଗୋ ।

କାନଗୁହ, କାନଗଇ—ଗ୍ରା. ବି. କର୍ଣ୍ଣମଳ
କାନଡ଼ନଟ—ପୁଂ.ବି. କାନଡ଼ା ଓ ନଟ-ରାଗ ସଂଯୋଗଜାତ ରାଗବିଶେଷ ।
କାନଡ଼ା—ସ୍ତ୍ରୀ.ବି. ରାଗିଣୀବିଶେଷ ।
କାନଡେରିବା—ଗ୍ରା. କ୍ରି. ମନୋଯୋଗ-ପୂର୍ବକ କୌଣସି ଶବ୍ଦ ବା କଥା ଶୁଣିବା-ପାଇଁ ଉତ୍କଣ୍ଠ ହେବା ।
କାନ୍ତରାଟ—ଗ୍ରା. (ଯା.) ଯେ ଚୁକ୍ତି-ମୂଲ୍ୟବାବଦ କୌଣସି କାର୍ଯ୍ୟ ସମ୍ପାଦନ କରେ, କୌଣସି କର୍ମ୍ମ ନିର୍ଦ୍ଦିଷ୍ଟ ମୂଲ୍ୟରେ ସମ୍ପନ୍ନକରିବା ନିମନ୍ତେ ଚୁକ୍ତି, ଠିକାଦାର ।
କାନଦେବା—ଗ୍ରା.କ୍ରି.ମନୋଯୋଗପୂର୍ବକ ଶୁଣିବା, କାନେଇବା ।
କାନନ—କ୍ଲୀ.ବି.(କାନ + ଣି,ଅନ)ବନ, ଅରଣ୍ୟ, ବ୍ରହ୍ମାଙ୍କ ମୁଖ, ଉଦ୍ୟାନ,ଗୃହ ।
କାନଚନ୍ଦ୍ର—ଟିକାଲିର ଏକଜଣ ବିଖ୍ୟାତ ରାଜା ।
କାନନାଉଲ, କାନନାଉରି—ଗ୍ରା, ବି. ଶିଶୁମାନଙ୍କର କର୍ଣ୍ଣବେଧ ଉତ୍ସବ ।
କାନନାକଧରିବା—ଗ୍ରା. କ୍ରି. ଦଣ୍ଡସ୍ୱରୂପ ନିଜର କାନ ଓ ନାକ ନିଜେ ଧରିବା, କାନ-ନାକ ମୋଡ଼ିହେବା, (ଲ.ଅର୍ଥ) ଅପମାନିତ ହେବା ।
କାନନାଗ୍ନି—ପୁଂ.ବି.ଦାବାନଳ,ବନାଗି ।
କାନନାରି—ପୁଂ.ବି. ଶମୀବୃକ୍ଷ ।
କାନନୌକାଃ—ପୁଂ.ବି. ବନବାସୀ ।
କାନପତଳା—ଗ୍ରା.ବି. ଯେଉଁବ୍ୟକ୍ତି ଚୁପ କରି ଶୁଣେ, ଯେ ସାମାନ୍ୟ ମୃଦୁଶବ୍ଦ ଶୁଣିପାରେ ।
କାନପତା—ଗ୍ରା. ବି. କାନର ତଳଭାଗ, କାନପାତିବା । [ହେବା ।
କାନପାଚବା ଗ୍ରା. କ୍ରି. କାନରେ ପୂଜ
କାନପାତିବା—ଗ୍ରା.କ୍ରି.କାନଦେଇ ମନୋଯୋଗପୂର୍ବକ ଶୁଣିବା, ଅନ୍ୟଲୋକର କଥାବାର୍ତ୍ତାକୁ ଗୁପ୍ତଭାବେ ଶୁଣିବା ।
କାନପୁର—ଉତ୍ତର-ପଶ୍ଚିମ ପ୍ରଦେଶର ଗୋଟିଏ ଜିଲ୍ଲା ଓ ନଗରର ନାମ ।
କାନଫୁଙ୍କିବା—ଗ୍ରା.କ୍ରି.ବେହୋସ ହେବା ଲୋକକୁ ସଚେତ କରିବାପାଇଁ ତା କାନରେ ମୁହଁଦ୍ୱାରା ଫୁଙ୍କିବା, (ଲ.ଅର୍ଥ) (ଗୁରୁ) ଶିଷ୍ୟଙ୍କୁ ମନ୍ତ୍ରଦେବା ।
କାନଫୁଲ—ଗ୍ରା. ବି. ଫୁଲର ଆକୃତି-ବିଶିଷ୍ଟ କର୍ଣ୍ଣର ଅଳଙ୍କାରବିଶେଷ,କାପ ।
କାନଫୋଡ଼—ଗ୍ରା. ବି. ନୋଲି ଆଦି ପିନ୍ଧିବାପାଇଁ କର୍ଣ୍ଣରେ ଫୋଡ଼ା ହୋଇଥିବା ରନ୍ଧ୍ର ।
କାନଫୋଡ଼ା—ଗ୍ରା. ବି. କର୍ଣ୍ଣବେଧନ, ହିନ୍ଦୁଶିଶୁର କର୍ଣ୍ଣବେଧନାମକ ସଂସ୍କାର ।
କାନବାହଲି—ଗ୍ରା.ବି.କର୍ଣ୍ଣରେ ପିନ୍ଧାଯିବା ସ୍ୱର୍ଣ୍ଣାଲଙ୍କାରବିଶେଷ ।
କାନବିଛା—ଗ୍ରା. ବି. ଏକପ୍ରକାର ବୃଶ୍ଚିକ, ଏହା ଦଳିଦେଲେ ଏହା ଦେହରୁ ଏକ-ପ୍ରକାର ଆଲୋକ ଜ୍ୟୋତି ବାହାରେ ।
କାନମୁଣ୍ଡା—ଗ୍ରା. ବି. ଗଣ୍ଡ ନିକଟସ୍ଥ କାନମୂଳ ।
କାନମୁଣ୍ଡାଆଉଁଷିବା—ଗ୍ରା. କ୍ରି. ପ୍ରହାର ବା ଅପମାନ ସହି ତୁନିହେବା ।
କାନମୋଡ଼ା—ଗ୍ରା. ବି. ଦଣ୍ଡ ବା କଷ୍ଟ ଦେବାପାଇଁ ଅନ୍ୟର କାନକୁ ହାତଦ୍ୱାରା ଟାଣିବା, ଦଣ୍ଡସ୍ୱରୂପ ନିଜର କାନକୁ ନିଜେ ମୋଡ଼ିବା ।
କାନମୋଡ଼ିହେବା—ଗ୍ରା. କ୍ରି. ଅନ୍ୟ ବ୍ୟକ୍ତିର କାନକୁ ମୋଡ଼ିବା, (ଲ.ଅର୍ଥ) ଅନ୍ୟଲୋକକୁ ଶିକ୍ଷାଦେବା ଓ ନିଜେ ମଧ୍ୟ ଶିକ୍ଷା ପାଇବା, ନିଜର ତ୍ରୁଟି ନିଜେ ସ୍ୱୀକାର କରିବା ।
କାନରେଆଙ୍ଗୁଳିଦେବା—ଗ୍ରା.କ୍ରି.ଅଶ୍ରାବ୍ୟ କଥା ନ ଶୁଣିବାକୁ କାନରେ ଆଙ୍ଗୁଠି ଦେଇ କାନଛିଦ୍ରକୁ ବୁଜିଧରିବା ।
କାନରେ କହିବା—ଗ୍ରା. କ୍ରି. ଗୁପ୍ତବିଷୟ ଚୁପ୍ କରି ଅନ୍ୟବ୍ୟକ୍ତିର କାନରେ କହିବା,ପରନାମରେ ଚଗୁଲିକହିବା ।
କାନରେପଡ଼ିବା—ଗ୍ରା. କ୍ରି. ଶୁଣାଯିବା, ଶ୍ରୁତିଗୋଚର ହେବା ।
କାନରେପଶିବା—ଗ୍ରା. କ୍ରି. (କୌଣସି ବିଷୟ ପ୍ରତି) ମନ ଆକର୍ଷିତ ହେବା, ମନୋଯୋଗପୂର୍ବକ ଶୁଣିବା ।
(୨)କାନରେପଶିସେକାନରେବାହାରିଯିବା ।—ଗ୍ରା. କ୍ରି. (କଥିତ ବିଷୟ) ଆଦୌ ମନୋଯୋଗପୂର୍ବକ ନ ଶୁଣିବା ।
କାନରେବଜାଇବା—ଗ୍ରା.କ୍ରି. ଜଣାଇବା, କର୍ଣ୍ଣଗୋଚର କରିବା ।
କାନରେବାଜିବା—ଗ୍ରା. କ୍ରି. କାନରେ ପଡ଼ିବା ।
କାନରେସିସାଢ଼ାଳିବା—ଗ୍ରା. କ୍ରି.ପ୍ରାଚୀନ କାଳରେ ଅପରାଧୀଙ୍କୁ ଦିଆଯିବା ଦଣ୍ଡ-ବିଶେଷ ।
କାନାକାନିକରିବା, କାନାକାନିହେବା—ଗ୍ରା. କ୍ରି. ଚୁପ୍‌ଚୁପ୍ କଥାଭାଷା ହେବା ।
କାନାଡ଼ି—ଗ୍ରା. ବି.(ସଂ—କର୍ଣ୍ଣାଟୀ)ମାନ୍ଦ୍ରାଜ ପ୍ରଦେଶର ମାଲବ ଅଞ୍ଚଳର କଥିତ ଦ୍ରାବିଡ଼ଭାଷା ।
କାନି—ଗ୍ରା. ବି. (ସଂ—କୋଣ ବା କର୍ଣ୍ଣ) ପିନ୍ଧିବା ଲୁଗାର ପ୍ରାନ୍ତଭାଗ, ପଣନ୍ତ, ବସ୍ତ୍ରର କୋଣ,ଛିଣ୍ଡାକନା, କନ୍ଥା,କୋଣ ପାଖ ।
କାନିଆଁ—ଗ୍ରା. ବିଂ. କର୍ଣ୍ଣବିଶିଷ୍ଟ, କାନି-କିଆ, କାନିବିଶିଷ୍ଟ,ଶେଷଆଡ଼କୁ ଥିବା ।
କାନିକା—ଗ୍ରା. ବି. ଘୃତପକ୍ୱଖେଚୁଡ଼ି,ମିଶ୍ରି କନ୍ଦ ରଖିବାପାଇଁ ଛୋଟ ମାଟିହାଣ୍ଡି, ଘୃତପକ୍ୱ ମହାପ୍ରସାଦ ଖେଚୁଡ଼ି, ମାଟି କାନ୍ଥରେ ଗୁଣ୍ଡବଣା ବା ମାଟିଆ ପୋତା ଯାଇଥିବା ଠଣା ।
କାନିକିଆ—ଗ୍ରା. ବିଂ. ଗୋଟିଏ ମାତ୍ର କାନି ବା ଲୁଗା ପିନ୍ଧିବା, ଏକକାନିଆଁ-ଏକବସ୍ତ୍ର । [(ଦେଖ) ।
କାନିକଳି,କାନିଗଲା—ଗ୍ରା. ବି. ଅଣକଳି
କାନିଘୋଡ଼ାଇବା—ଗ୍ରା. କ୍ରି, ଆପଣା ପିନ୍ଧିଥିବା ଲୁଗାର ଏକପ୍ରାନ୍ତଦ୍ୱାରା ଅନ୍ୟକୁ ଆବୃତ କରିବା, (ଲ. ଅର୍ଥ) ଅନ୍ୟକୁ ବିପଦରୁ ନିରାପଦ ରଖିବା ।
କାନି ଘୋଡ଼ିହେବା—ଗ୍ରା. କ୍ରି. ଆପଣା ପିନ୍ଧିଥିବା ଲୁଗାର ଏକପ୍ରାନ୍ତଦ୍ୱାରା ନିଜ ଶରୀରକୁ ଆବୃତ କରିବା ।
କାନିଟାଣିବା, କାନିଧରିବା—ଗ୍ରା କ୍ରି. କୌଣସି ଲୋକର ପିନ୍ଧିବା ଲୁଗାର ଏକ ପ୍ରାନ୍ତକୁ ଧରି ଟାଣିବା ।

କାନପଣତ — ଗ୍ରା. ବି. ପିନ୍ଧିବା ଲୁଗାର ପୃଷ୍ଠଭାଗରେ ଥିବା ଶେଷ ଅଂଶ ।

କାନପତେଇବା — ଗ୍ରା. କ୍ରି. କୌଣସି ପଦାର୍ଥ ନେବା ସକାଶେ ପିନ୍ଧା ବା ବେଢ଼ାଣର ଏକ ପ୍ରାନ୍ତକୁ ବିସ୍ତୃତ କରି ଦେଖାଇବା ।

କାନବନ୍ଧା — ଗ୍ରା. ବି. ଋତୁମତୀ ସ୍ତ୍ରୀର ଶୁଦ୍ଧ ସ୍ନାନପରେ ସେ ଋତୁକାଳରେ ପିନ୍ଧିଥିବା ଲୁଗାକୁ କାଚିବା ପାଇଁ ଧୋବଣୀ ନେଲା-ବେଳେ ତାକୁ ଦିଆଯିବା ତଣ୍ଡୁଳାଦି ।

କାନରେ ଗଣ୍ଠି ପକାଇବା — ଗ୍ରା. କ୍ରି. ବାଜି ମାରିବା, ଜିଦ୍‌ ମାରିବା, ଭବିଷ୍ୟତରେ କୌଣସି କଥାକୁ ସ୍ମରଣକରିବା ଉଦ୍ଦେଶ୍ୟରେ ସେ କଥାକୁ ଭାବ କାନରେ ଗଣ୍ଠି ପକାଇବା ।

କାନରେ ବାନ୍ଧିବା — ଗ୍ରା. କ୍ରି. ଆତ୍ମସାତ୍ କରିବା, ଅତିସ୍ନେହ ଯୋଗୁଁ କୌଣସି ବ୍ୟକ୍ତିକୁ ପାଖେ ପାଖେ ରଖିବା, କଣସ୍ତ ବିଷୟକୁ ସ୍ମରଣ ରଖିବା ।

କାନଶିର — ଗ୍ରା. ବି. ଏକ ପ୍ରକାର ଅଳ୍ପମୂ-ଲ୍ୟ ଶାକ ।

କାନସ୍ଟିନେସ୍ — ପୁଂ. ବି. କନଷ୍ଟାର ପୁତ୍ର ।

କାନହସ୍ — ପ୍ରା. ( ସିଂହଭୂମ୍ )ବି' କାଞ୍ଚି ହାଡ଼ସ ।

କାନୀନ — ପୁଂ. ବି. ( କନ୍ୟା + ଈନ ) ଅବିବାହିତା କନ୍ୟାର ଗର୍ଭଜାତ ପୁତ୍ର, କର୍ଣ୍ଣ, ବ୍ୟାସଦେବ ।

କାନୀୟସ୍ — ବି. ବିଂ. କନଷ୍ଠ ସମ୍ବନ୍ଧୀୟ ।

କାନୁ — ଗ୍ରା. ବି. ପୁଂ. କାହ୍ନୁ, ଶ୍ରୀକୃଷ୍ଣ ।

କାନୁନ୍ — ଯା.ବି. ଆଇନ୍, ନିୟମ, ବ୍ୟବସ୍ଥା, କାଇଦା ।

କାନୁନ୍‌ଗୋ — ଯା. ବି. ରାଜସ୍ୱ କର୍ମଚାରୀ ବିଶେଷ, ଭୂମିର ପରିମାଣ ଓ କର-ନିର୍ଦ୍ଧାରକ କର୍ମଚାରୀ ।

କାନେଇବା — ଗ୍ରା. କ୍ରି. ( ଦେ — କର୍ଣ୍ଣ ) ଗୁପ୍ତଭାବରେ ଶୁଣିବା, କୌଣସି ବିଷୟ ଶୁଣିବାକୁ କାନଦେବା ।

କାନେକାନେ କହିବା — ଗ୍ରା.କ୍ରି.କୌଣସି ବ୍ୟକ୍ତିକୁ କୌଣସି ବିଷୟରେ ଉପର୍ଯ୍ୟୁ-ପରି ଶିକ୍ଷାଦେବା, ଚୁପ୍‌କରି କହିବା ।

କାନେକାନେ ଶିଖାଇବା — ଗ୍ରା.କ୍ରି.କୌଣସି ବ୍ୟକ୍ତିକୁ ବାରମ୍ବାର କୌଣସି ବିଷୟ ଉପଦେଶ ଦେବା ।

କାନେଡ଼ା, କାନୋଡ଼ା — ସ୍ତ୍ରୀ. ବି ସଙ୍ଗୀତର ରାଗବିଶେଷ, ସ୍ତ୍ରୀମାନଙ୍କର କେଶ ବିନ୍ୟାସ ବିଶେଷ ।

କାନ୍ତ — ବିଂ. (କମ୍ + ମଁ,ତ) ଯେଉଁ ଶବ୍ଦ ଶେଷରେ 'କ' ଅକ୍ଷର ଥାଏ, କମନୀୟ, ମନୋହର, ଶୋଭନ, ପ୍ରିୟ, କୋମଳ, (ବି) ସ୍ୱାମୀ, ଶ୍ରୀକୃଷ୍ଣ, ପ୍ରଣୟୀ, କାନ୍ତି, ବସନ୍ତଋତୁ, କାର୍ତ୍ତିକ, ଚଳାଲୁହା, ଲୁହା ପ୍ରସ୍ତର ।

କାନ୍ତକରେଇ — ଗ୍ରା.ବି. ଏକପ୍ରକାର ଚଳା ଲୁହ କରେଇ ।

କାନ୍ତତା — ସ୍ତ୍ରୀ.ବି. (କାନ୍ତ + (ଭା)ତ + ଆ) ସୌନ୍ଦର୍ଯ୍ୟ, ସ୍ୱାମିତ୍ୱ ।

କାନ୍ତପକ୍ଷୀ — ପୁଂ. ବି.(କ.ଧା) (କାନ୍ତ + ପକ୍ଷ + ଇନ୍) ମୟୂର ।

କାନ୍ତପାଷାଣ — ବି. ଅୟସ୍କାନ୍ତମଣି, ଚୁମ୍ବକ ପଥର ।

କାନ୍ତପୁଷ୍ପ — ପୁଂ. ବି. ରକ୍ତକାଞ୍ଚନଗଛ ।

କାନ୍ତଭସ୍ମ — ବି.(୬ତତ୍ତ୍ୱ) ଶୋଧିତଲୌହଭସ୍ମ ।

କାନ୍ତର — ଗ୍ରା. (ଅବ୍ୟ) ପ୍ରାୟ, ଯଥା — ମୋତେ ଗୃହଲ ମାଣେ କାନ୍ତର ଉଧାର ଦିଅ ।

କାନ୍ତଲୌହ — କ୍ଳୀ. ବି. ଅୟସ୍କାନ୍ତ, ଲୌହ ବିଶେଷ, ଚୁମ୍ବକ, ଇସ୍ପାତ, ଚଳାହୋଇ-ଥିବା ଲୁହା ।

କାନ୍ତା — ସ୍ତ୍ରୀ. ବି. (କାନ୍ତ + ଆ) ଭାର୍ଯ୍ୟା, ପତ୍ନୀ, ସୁନ୍ଦରୀ ସ୍ତ୍ରୀ, ପ୍ରିୟଙ୍ଗୁ, ବଡ଼ଅଳାଇଚ, ରେଣୁକା, ନାଗରମୁଥା, ଗଙ୍ଗା ।

କାନ୍ତାଙ୍ଘ୍ରିଦୋହଦ — ପୁଂ.ବି. ଅଶୋକଗଛ ।

କାନ୍ତାନି — ଗ୍ରା. ସ୍ତ୍ରୀ.,ବି. ଦୁର୍ଗା, କାତ୍ୟାୟନି, ଯୋଗିନି, ଡାକିନି, ଡାହାଣୀ, ଅଲକ୍ଷଣା ସ୍ତ୍ରୀ, କଙ୍କାଳମାତ୍ରବିଶିଷ୍ଟା ସ୍ତ୍ରୀ, କୁରୂପା ସ୍ତ୍ରୀ, ଦୁଷ୍ଟା ସ୍ତ୍ରୀ ।

କାନ୍ତାୟସ — କ୍ଳୀ. ବି. ଅୟସ୍କାନ୍ତ, ଚୁମ୍ବକ ଲୌହ, କାନ୍ତଲୌହ ।

କାନ୍ତାର — କ୍ଳୀ. ବି.(କାନ୍ତ + ଋ + କ,ଅ) ଗହନବନ, କାନନ, ପଥବିଶେଷ, - ମହାବନ, ଦୁର୍ଗମପଥ, ଗର୍ତ୍ତ, ଛିଦ୍ର, ଦୁର୍ଭିକ୍ଷ, ମରୁଭୂମି, ନିର୍ଜ୍ଜନ ପ୍ରଦେଶ କାନ୍ତାର ଆଖୁ, ବାଉଁଶ ।

କାନ୍ତାରିକ — ପୁଂ.ବି. ଇକ୍ଷୁବିଶେଷ, ଏକ-ପ୍ରକାର ଆଖୁ, (ଏହା ଖାଇବାକୁ ଖୁବ୍ ନରମ) ।

କାନ୍ତାରଗ — ବି. ବିଂ. (କାନ୍ତାର + ଗମ୍ + ଅ) ଯେ ବନକୁ ଗମନ କରେ ।

କାନ୍ତାରପଥ — ପୁଂ. ବି. ବନ ମଧ୍ୟବର୍ତ୍ତୀ ପଥ ।

କାନ୍ତାରପଥିକ — ବି. ବିଂ. ବନପଥର ଗମନକାରୀ ।

କାନ୍ତାରବାସିନୀ — ସ୍ତ୍ରୀ. ବି. (କାନ୍ତାର + ବାସ + ଇନ୍ + ଈ) ଦୁର୍ଗା, ବନବାସିନୀ ।

କାନ୍ତାରୀ — ସ୍ତ୍ରୀ. ବି. (କାନ୍ତାର + ଈ) ଆଖୁ ବିଶେଷ ।

କାନ୍ତାରୁ — ପ୍ରା. (ଗଞ୍ଜାମ) ବି. ବୈଦିକ ବ୍ରାହ୍ମଣ ବିଶେଷ ।

କାନ୍ତି — ସ୍ତ୍ରୀ. ବି. (କନ୍ + ଭା,ତି) ଦୀପ୍ତି, ଶୋଭା, ଔଜ୍ଜ୍ୱଲ୍ୟ, କମନୀୟ ସ୍ତ୍ରୀ., ଇଚ୍ଛା, କାମଶକ୍ତି ବିଶେଷ, ଦୁର୍ଗା, ଗଙ୍ଗା, ଚନ୍ଦ୍ର-କଳା ବିଶେଷ, ଚନ୍ଦ୍ରଙ୍କ ସ୍ତ୍ରୀ ବିଶେଷ ।

କାନ୍ତିକ — କ୍ଳୀ.ବି (କାନ୍ତି + କୈ + କ,ଅ) କାନ୍ତଲୌହ, ଇସ୍ପାତ ।

କାନ୍ତିକର — ପୁଂ. ବିଂ. (କାନ୍ତି + କୃ + କ,ଅ) କାନ୍ତିବର୍ଦ୍ଧକ ଦ୍ରବ୍ୟାଦି, ସୁନ୍ଦର, ଯାହା ସୌନ୍ଦର୍ଯ୍ୟ ବୃଦ୍ଧି କରେ, (ସ୍ତ୍ରୀ) କାନ୍ତିକରୀ ।

କାନ୍ତିଦ — କ୍ଳୀ. ବି. ( କାନ୍ତି + ଦା + ଅ ) ପିତ୍ତ (ବି·ବିଂ.) କାନ୍ତିଦାୟକ, ଶୋଭା ବର୍ଦ୍ଧକ,(ପୁଂବି) ଘୃତ ।

କାନ୍ତିଦା — ସ୍ତ୍ରୀ. ବି. (କାନ୍ତିଦ + ଆ) ସୋମରାଜୀ ।

କାନ୍ତିଦାୟକ — କ୍ଳୀ.ବିଂ. (କାନ୍ତି + ଦା + ୟ + କ) ଶୋଭାଦାୟକ, (ବି) ଗନ୍ଧଦ୍ରବ୍ୟ ବିଶେଷ ।

କାନ୍ତନଗର୍ଷେ—ସ୍ତ୍ରୀ.ବ. କାଞ୍ଚୀନଗର୍ଷା ।

କାନ୍ତପୁର—କ୍ଳୀ.ବ. ନେପାଳର ଅନ୍ତର୍ଗତ ନଗର ବିଶେଷ ।

କାନ୍ତପ୍ରଦ—ବିଂ. ( କାନ୍ତ+ପ୍ର+ଦା+କ.ଅ)କାନ୍ତକର (ଦେଖ), (ସ୍ତ୍ରୀ) କାନ୍ତପ୍ରଦା ।

କାନ୍ତବର୍ଦ୍ଧକ—ବିଂ. (ତ୍ରତତ୍ର) କାନ୍ତକର (ଦେଖ),(ସ୍ତ୍ରୀ) କାନ୍ତବର୍ଦ୍ଧିକା ।

କାନ୍ତବା—ପ୍ରା. (ସମ୍ବ) ବ. ତୁଳାରୁ ସୂତା କାଟିବା ।

କାନ୍ତଭୂତ—ବି.ବିଂ.(କାନ୍ତ+ଭୂ+କ୍ତ୍ପ) କାନ୍ତିବିଶିଷ୍ଟ, (ପୁଂ.ବ.) ଚନ୍ଦ୍ର ।

କାନ୍ତମତୀ—ସ୍ତ୍ରୀ.ବ. (କାନ୍ତ+ମତ୍+ଈ) ଚନ୍ଦ୍ରକଳା ଅପ୍ସରାବିଶେଷ, (ବିଂ) ଶୋଭାଶାଳିନୀ, ସୌନ୍ଦର୍ଯ୍ୟବିଶିଷ୍ଟା ।

କାନ୍ତମାନ୍—ପୁଂ. ବ. ( କାନ୍ତ+ମତ୍ ) ଚନ୍ଦ୍ର, କାମଦେବ, (ବି. ବିଂ) କାନ୍ତିଯୁକ୍ତ,ସୁନ୍ଦର,ଶୋଭାଯୁକ୍ତ(ସ୍ତ୍ରୀ)କାନ୍ତମତୀ ।

କାନ୍ତମତ୍ତା—ସ୍ତ୍ରୀ. ବ.(କାନ୍ତ+ମତ୍+(ଭା +ତା) କାନ୍ତିବିଶିଷ୍ଟତା ।

କାନ୍ତହର—ବି.ବ.(କାନ୍ତ+ହୃ+କ.ଅ) କାନ୍ତିନାଶକ, ଶୋଭାନାଶକ ।

କାନ୍ଥ—ଗ୍ରା.ବ. ଭିତ୍ତି, ଗୃହର ବାଡ଼ ।

କାନ୍ଥକୁରା—ବ, ଠଣା, କୁଲଙ୍ଗୀ, ଥାକ, କାନ୍ଥରେ ତିଆର ହୋଇଥିବା ଖୋପ ।

କାନ୍ଥଖୁରା—ଗ୍ରା.ବ. (କାନ୍ଥକୁରା ଦେଖ) ।

କାନ୍ଥଛଟିବା—ଗ୍ରା. କ୍ରି. କାନ୍ଥରେ ମାଟି ବୋଳିବା ।

କାନ୍ଥଡ଼ା—ଗ୍ରା.ବ.ଭଙ୍ଗାକାନ୍ଥ,ଭଙ୍ଗା ଘରର ଜୀର୍ଣ୍ଣକାନ୍ଥ ଆଦି,ଭଗ୍ନଗୃହର ଜୀର୍ଣ୍ଣାବଶେଷ, (ବିଂ.) ଯେଉଁ ଗୃହର କାନ୍ଥ ଭାଙ୍ଗି ଗଲଣି ।

କାନ୍ଥବାଡ଼—ଗ୍ରା.ବ.କାନ୍ଥସ୍ୱରୂପ ବାଡ଼ ବା କାନ୍ଥରୂପକ ବାଡ଼ ।

କାନ୍ଥି—ଗ୍ରା.ବ.(ସଂ—କନ୍ଥ) ଛୋଟକାନ୍ଥ, ଅଧାକାନ୍ଥ,ଅଳ୍ପ ଉଚ୍ଚ କାନ୍ଥ,ଦରବଳସ୍ଥ ସଲଗ୍ନ ଆକାଶ, ଅଡଡ଼ା ।

କାନ୍ଥିକ—ବି.ବିଂ.(କନ୍ଥା+ଇକ)କାନ୍ଥ ଜାତ ।

କାନ୍ଦବା—ପ୍ରା. (ସମ୍ବ ) କ୍ରି. (ସଂ-କ୍ରନ୍ଦ୍) କାନ୍ଦିବା, କ୍ରନ୍ଦନ କରିବା ।

କାନ୍ଦୁରା—ପ୍ରା.(ସମ୍ବ) ପୁଂ.ବିଂ. କାନ୍ଦୁରା, (ସ୍ତ୍ରୀ) କାନ୍ଦୁଣୀ ।

କାନ୍ଦ—ବି. ବିଂ, ( କନ୍ଦ+ଅ ) କନ୍ଦସମ୍ବନ୍ଧୀୟ, କନ୍ଦଜାତ, ( ଗ୍ରା. ବ. ) ରୋଦନ, କାନ୍ଦଣା, କ୍ରନ୍ଦନ ।

କାନ୍ଦର୍କ—ଗ୍ରା.ବ. (ପାନବରଜିଆ) ବରଜର ଦୁଆରମୁହଁ ଛାଟି ।

କାନ୍ଦକାନ୍ଦ—ଗ୍ରା.ବିଂ. କ୍ରନ୍ଦନୋଦ୍ୟତ ।

କାନ୍ଦଣା—ଗ୍ରା. ବ. ରୋଦନ, ରଡ଼ିବୋବାଳି, କ୍ରନ୍ଦନ ।

କାନ୍ଦର୍ପ—ପୁଂ.ବିଂ.(କନ୍ଦର୍ପ+ଅ)କନ୍ଦର୍ପର ପୁତ୍ର, ଅନିରୁଦ୍ଧ, (ସ୍ତ୍ରୀ) କାନ୍ଦର୍ପୀ, (ବି. ବିଂ.) କାମଦେବ ସମ୍ବନ୍ଧୀୟ ।

କାନ୍ଦର୍ପିକ—କ୍ଳୀ.ବ.(କନ୍ଦର୍ପ+ଇକ)କାମବୃଦ୍ଧିକାରକ ଦ୍ରବ୍ୟ ଓ ନସ୍ୟମାଦ ।

କାନ୍ଦବ—କ୍ଳୀ.ବ. (କନ୍ଦୁ+ଅ) ପିଷ୍ଟକାଦି ଖେଜ୍ୟବସ୍ତୁ, ମିଷ୍ଟାନ୍ନ, ମିଠାଇ ।

କାନ୍ଦବିକ—ବି.ବ.(କାନ୍ଦବ+ଇକ) ଯେ ପିଠା ବିକେ, ମିଠାଇବାଲା, ରୁଟିବାଲା, ହାଲୁଇ, ଗୁଡ଼ିଆ । [କାନ୍ଦବା ।

କାନ୍ଦବୋବା—ଗ୍ରା. ବ. ଉଚ୍ଚସ୍ୱରରେ

କାନ୍ଦବୋବାଳି—ଗ୍ରା. ବ. କାନ୍ଦବୋବା (ଦେଖ) ବିଳାପ କରିବା । [ହେବା ।

କାନ୍ଦମାଡ଼ିବା—ଗ୍ରା.ବ. କ୍ରନ୍ଦନର ଉପକ୍ରମ

କାନ୍ଦରବେଣ୍ଟ—ଗ୍ରା. ବ. ଶିକାରୀ ବନ୍ଦିକ ପୂଜାକରି ଶିକାରକୁ ଯିବାବେଳେ ପରିବାରମଧ୍ୟରୁ ଜଣକୁ କନ୍ଦାଇଯିବା ରୀତି ।

କାନ୍ଦାହାର—ଆଫଗାନ ସ୍ଥାନର ଗୋଟିଏ ପ୍ରଦେଶ ।

କାନ୍ଦି—ଗ୍ରା. ବ. ଅନେକଗୁଚ୍ଛ ଫେଣା ଲାଗିଥିବା କଦଳୀର ବୃନ୍ତ, ଅନେକଗୁଚ୍ଛ ନଡ଼ିଆ ବା ତାଳ ଲାଗିଥିବା ବୃନ୍ତ, ଗୃଷ ଆଦି ପାଇଁ ବଳଦ ଭଡ଼ା ଦେଲେ ଯେଉଁଧାନ ମୂଲ ମିଳେ ।

କାନ୍ଦକୁନ୍ଥେଇହେବା—ଗ୍ରା. କ୍ରି. କାନ୍ଦବା ଓ କାକୁତି ମିନତି କରିବା, କାନ୍ଦକଟା କରିବା, କାନ୍ଦିବା ବା ନିଜର ଅନିଚ୍ଛା ପ୍ରକାଶକରିବା, କୌଣସି କାର୍ଯ୍ୟ କରିବାକୁ ନିଜର ଅନିଚ୍ଛା ଓ ଅସମ୍ମତି ପ୍ରକାଶକରିବା ।

କାନ୍ଦିଗଭୂତ—ପୁଂ.ବିଂ.(କାନ୍ଦିଶ୍+ଭୂ+ତ) (କେଉଁ ଦିଗକୁ ଯିବ ବୋଲି) ଭୟରେ କିଂକର୍ତ୍ତବ୍ୟବିମୂଢ଼, ପଳାୟିତ, ଖିନ୍ନ ।

କାନ୍ଦିବ—ଗ୍ରା. କ୍ରି. କ୍ରନ୍ଦନକରିବା, ଜଳ ବୁହାଇବା, ବିଳାପକରିବା, (ପ୍ରା—ଗଞ୍ଜାମ) ଖେଳରେ ହାରି ବୃଥା ଗୋଳକରିବା,(ଣିଜନ୍ତ)କନ୍ଦାଇବା ।

କାନ୍ଦିଶୀକ—କ୍ରି.ବିଂ. ଭୟପ ଇ ପଳାୟନ କାରୀ, ବୈକ୍ଳବ୍ୟଯୁକ୍ତ, ଭୟତ୍ରସ୍ତ ।

କାନ୍ଦୁ—ବଙ୍ଗ ଓ ବିହାର ନିବାସୀ ନୀଚଜାତି ବିଶେଷ ।

କାନ୍ଦୁଣୀ ମାନ୍ଦୁଣୀ—ଗ୍ରା.ବ କାନ୍ଦୁଣୀ ମାନ୍ଦୁଣୀ (ଦେଖ) ।

କାନ୍ଦୁଣିଆ—ଗ୍ରା.ବ, କ୍ରନ୍ଦନଶୀଳ ।

କାନ୍ଦୁଣିମାନ୍ଦୁଣି—ଗ୍ରା. ବ. କାନ୍ଦକାନ୍ଦ, କ୍ରନ୍ଦନୋଦ୍ୟତ, କାନ୍ଦିଲପରି ହେବା, କ୍ରନ୍ଦନସ୍ୱରରେ ଅଭିଯୋଗ ପ୍ରକାଶକାରୀ ।

କାନ୍ଦୁରା—ଗ୍ରା.ବିଂ. ପୁଂ. କ୍ରନ୍ଦନଶୀଳ, ଯାହାର କାନ୍ଦିବାର ଅଭ୍ୟାସ, ( ସ୍ତ୍ରୀ. ) କାନ୍ଦୁରୀ ।

କାନ୍ଦୁରିବା—ଗ୍ରା. ବ. (ସଂ—କ୍ରନ୍ଦ) ଅଆଇରେ ବସିଥିବା ବେଶି ସିଝିଯିବା ପିଠାରୁ ରସ ବହିବା ।

କାନ୍ଦୁରୁ—ପ୍ରା.(ସମ୍ବ) ବ. କନ୍ଦମୂଳ(ବିଂ) କାନ୍ଦିରା (ଦେଖ) ।

କାନ୍ଦୁରୁ ମାନ୍ଦୁରୁ—ଗ୍ରା. ବିଂ. ( କାନ୍ଦୁଣୀ ମାନ୍ଦୁଣୀ ଦେଖ )

କାନ୍ଦୁଲ—ପ୍ରା. ( ସମ୍ବ ଓ ଗଞ୍ଜାମ ) ଏକ ପ୍ରକାର ହରଡ଼ ।

କାନ୍ଧ—ଗ୍ରା.ବ. (ସଂ—ସ୍କନ୍ଧ) ସ୍କନ୍ଧ ।

କାନ୍ଧକରିବା—ଗ୍ରା.କ୍ରି କୌଣସି ପଦାର୍ଥ ବା ବ୍ୟକ୍ତିଙ୍କୁ କାନ୍ଧରେ ବହିବା,କାନ୍ଧେଇବା ।

କାନ୍ଧକୁ କାନ୍ଧଦେବା—ଗ୍ରା. କ୍ରି. ସବାରିକାନ୍ଧିଆ ଗହଡ଼ମାନେ ଏକାଠି କାନ୍ଧକୁ ସବାରିବାଡ଼ରେ ସମାନଭାବରେ ଲଗା-

ଇବା(ଲ.ଅଥ) ପରଶ୍ରମ ପୂର୍ବକ ଏକ ଯୋଗହୋଇ କର୍ମ କରିବା ।

କାନ୍ଧକୁକାନ୍ଧପକାଇବା—ଗ୍ରା. କ୍ରି. (କାନ୍ଧ ପଡ଼ିବା (ଦେଖ)(ଲ.ଅଥ)ସମକକ୍ଷହେବା ସମାନହେବା ।

କାନ୍ଧଧରାଧରି—ଗ୍ରା. ବି°. ବନ୍ଧୁତା ବା ସହଚରତ୍ୱର ନିଦର୍ଶନ ସ୍ୱରୂପ ପରସ୍ପର କାନ୍ଧରେ ହାତ ପକାଇ ଠିଆ ହୋଇଥିବା ବା ଚାଲୁଥିବା (ଦୁଇବ୍ୟକ୍ତି) ।

କାନ୍ଧପଡ଼ିବା—ଗ୍ରା. କ୍ରି. ଏକ ପାଖର ସବାରି ବାଉଁଶରେ ଲାଗିଥିବା ଏକାଧିକ ଗଉଡ଼ଙ୍କ କାନ୍ଧ ସମାନ ଉଚ୍ଚତାଯୁକ୍ତ ହେବା ।

କାନ୍ଧବଦଳ, କାନ୍ଧବଦଳା—ଗ୍ରା.ବି.ସବାରି କାନ୍ଧଆ ବେହେରାମାନଙ୍କ ମଧ୍ୟରୁ କାନ୍ଧେଇଥିବା ଗଉଡ଼ମାନଙ୍କୁ ଅବସର ଦେଇ ଅନ୍ୟ ପାଞ୍ଚାଗଉଡ଼ମାନେ ସବାରି ବହିବା ।

କାନ୍ଧବଳି—ଗ୍ରା.ବି.ସର୍ବଦା କାନ୍ଧରେ ଭାର ବହନ କରିବାଦ୍ୱାରା ଯେଉଁ ମାଂସପେଶୀ ଓ ଚମଡ଼ା ଶକ୍ତ ହୋଇ ଶ୍ରମସହିଷ୍ଣୁ ହୋଇଆସେ ।

କାନ୍ଧଭାରକରିନେବା—ଗ୍ରା. କ୍ରି. ମଲେ ଶବକୁ ଭାଇ କୁଟୁମ୍ବମାନେ ଶ୍ମଶାନକୁ କୋକେଇରେ ବୋହିନେବା ।

କାନ୍ଧଭେଣ୍ଡା, କାନ୍ଧଭେଣ୍ଡିଆ—ଗ୍ରା. ବି°. ନିର୍ଭୀକିଆ ବଳୁଆ ଓ ହୃଷ୍ଟପୁଷ୍ଟ(ଯୁବକ) ।

କାନ୍ଧସନ୍ଧି—ଗ୍ରା. ବି. ଦୁଇକାନ୍ଧର ମିଳନ ସ୍ଥାନ, ପିଠିର ଊର୍ଦ୍ଧ୍ୱ ଅଂଶ ।

କାନ୍ଧହେବା—ଗ୍ରା. କ୍ରି. ଅନ୍ୟ ବ୍ୟକ୍ତିର କାନ୍ଧରେ ବାହିତ ହେବା ।

କାନ୍ଧ—ଗ୍ରା. ବି°. (କଦଳୀକାନ୍ଧ ଦେଖ) ସବାରି କାନ୍ଧଆ ଗଉଡ଼ମାନଙ୍କ ମଧ୍ୟରୁ ଯେଉଁମାନେ ଏକ ସଙ୍ଗରେ ବା ଏକ ବାଉଁଶକୁ କାନ୍ଧାନ୍ତି ।

କାନ୍ଧଆ—ଗ୍ରା. ବି. ବଡଲେମ୍ବୁ, କାନ୍ଧଦ୍ୱାରା ଭାରବହନ କର୍ମ, (ବି°) କାନ୍ଧରେ ଭାରବାହୀ, ଯେଉଁ ଭୂମି ଅତି ଉଚ୍ଚ ବା ନୀଚ ନୁହେ ।

କାନ୍ଧଆଗଡ଼—ଗ୍ରା.ବି.(ସଂ—ସ୍କନ୍ଧ)ଗ୍ରାମର ମଝିଗଡ଼ ।

କାନ୍ଧୁଆ—ଗ୍ରା. ବି°. (କାନ୍ଧଆ ଦେଖ) ।

କାନ୍ଧେଇବା, କାନ୍ଧେ ଇବା—ଗ୍ରା. କ୍ରି. କୌଣସି ବ୍ୟକ୍ତିକୁ କାନ୍ଧରେ ବହନ କରିବା, କାନ୍ଧଦ୍ୱାରା ଭାର ବହନକରିବା ।

କାନ୍ଧେବଳଦ—ଗ୍ରା.ବି. ଗୋଟିଏ ବଳଦ, ପଟେ ବଳଦ ।

କାନ୍ୟକୁବ୍ଜ—କ୍ଳୀ. ବି. ଦେଶବିଶେଷ, କନୌଜ ଦେଶ, କାନ୍ୟକୁବ୍ଜରୁ ଆଗତ ଓଡ଼ିଶାରେ ଉପନିବେଶ ସ୍ଥାପନ କରିଥିବା ବ୍ରାହ୍ମଣ ।

କାନ୍ୟକୁବ୍ଜୀ—ସ୍ତ୍ରୀ.ବି. (କାନକୁବ୍ଜ+ଈ) କାନ୍ୟକୁବ୍ଜ ଦେଶୀୟା ସ୍ତ୍ରୀ ।

କାନ୍ୟଜା—ସ୍ତ୍ରୀ.ବି. (କ+ଅନ୍ୟ+ଜନ୍ +ଅ+ଆ) ନଳୀ ନାମକ ଗନ୍ଧଦ୍ରବ୍ୟ ବିଶେଷ ।

କାହ୍ନୁ—ଗ୍ରା. ବି. ଶ୍ରୀକୃଷ୍ଣ, ଦେଶପ୍ରଚଳିତ ବ୍ୟକ୍ତିର ନାମବିଶେଷ ।

କାପ୍‌କାପ୍—ଗ୍ରା. (ସମ୍ବ)ଅବ୍ୟ, ଜୀବ ମଲା ପୂର୍ବରୁ ପାଟିକୁ ମେଲକରିବା ଓ ବୁଜିବା, ଶୋଚନୀୟ ମୁମୂର୍ଷୁ ଅବସ୍ଥାପନ୍ନ ।

କାପ୍‌କାପି—ଗ୍ରା. (ସମ୍ବ)ବି. ପ୍ରଜାପତି ।

କାପ୍‌ଡ଼ା—ଗ୍ରା. (ସମ୍ବ) ବି. ଲୁଗା, ବସ୍ତ୍ର ।

କାପ୍‌ରି—ଗ୍ରା. (ସମ୍ବ) ବି. ଚେମିଡ଼ି ଲଇ ମୂଳ, ତେରମାରୁ ।

କାପ—ଗ୍ରା.ବି. (ସଂ—କର୍ଣ୍ଣପାଲ)ଚଟକା ବା ବର୍ତ୍ତୁଳ କାନର ଅଳଙ୍କାରବିଶେଷ ଛଳନା, ଛଦ୍ମବେଶ, ବଙ୍ଗଦେଶରେ ବାରେନ୍ଦ୍ର ଶ୍ରେଣୀର ବ୍ରାହ୍ମଣମାନଙ୍କର କୌଳିନ୍ୟ ଘଟିତ ଦୋଷରୁ ଘଟିବା ନିକୃଷ୍ଟତା, ପୁରୁଣା ଶଗଡ଼ର ଚକ୍ରମୂଳରେ ଅଖଦ୍ୱାରା ଘୋଷି ହୋଇ ବଡ଼କଣା ହୋଇଗଲେ ସରୁକଣା ଥିବା ଖଣ୍ଡିଏ ଗୋଲକାଠ, ଯାହାକୁ ତାହା ମଧ୍ୟରେ ଭୁଞ୍ଜାଇ ଦିଆଯାଏ, (ଗ୍ରା.ବି°) କପଟବେଣୀ, କୌତୁକକାରୀ ।

କାପଟବ—ପୁଂ.ବି°.(କାପଟ+ଅ)କାପଟ ଋଷିବଂଶୀୟ, (କ୍ଳୀ.ବି.) କପଟପଟୁତା ।

କାପଟିକ—ପୁଂ.ବି.(କପଟ+ଇକ)ଛାତ୍ର, ଚାଟୁକାର, (ବି°) ପ୍ରତାରକ, କପଟାଚାରୀ, ଅନ୍ୟର ମର୍ମଜ୍ଞ, ବଞ୍ଚକ, କପଟୀ, ଶଠ, (ସ୍ତ୍ରୀ) କାପଟିକୀ ।

କାପଟ୍ୟ—କ୍ଳୀ.ବି. (କପଟ+ଯ)ଶଠତା, ପ୍ରତାରଣା, ଧୂର୍ତ୍ତତା, ଅସଦ୍ୱ୍ୟବହାର, କୁଟିଳତା ।

କାପଡ଼—ଗ୍ରା. ବି. ବସ୍ତ୍ର, କପଡ଼ା ।

କାପଡ଼ି—ଗ୍ରା. ବି. (ସଂ—କାର୍ପଟିକ)ବସ୍ତ୍ର ବିକେତା, ଯେ ବୁଲାଇକରି ଲୁଗା ବିକେ, ପାଟରା, କନ୍ଥାଧାରୀ ଭିକ୍ଷୁକବିଶେଷ ।

କାପଡ଼ିଆ—ଗ୍ରା.ବି.(କାପଡ଼ି ଦେଖ)ବସ୍ତ୍ରବ୍ୟବସାୟୀ ଜାତିବିଶେଷ ।

କାପଥ—ପୁଂ.ବି.କ.ଧା, (କୁ+ପଥିନ୍+ଅ) କୁତ୍ସିତ ପଥ, ଦାନବବିଶେଷ, ବେଣାମୂଳ, (ବି°) କୁମାର୍ଗାବଲମ୍ବୀ, ନିନ୍ଦିତାଚାରୀ ।

କାପରଗାଦି—ବିହାର ପ୍ରଦେଶର ଅନ୍ତର୍ଗତ ସିଂହଭୂମି ଜିଲ୍ଲାସ୍ଥ ଗିରିମାଳା ।

କାପା—ସ୍ତ୍ରୀ.ବି. (କ+ଆପ+ଅ+ଆ) ବଦ୍ଧମାନଙ୍କର ପ୍ରାତଃକାଳୀନ ସ୍ତୁତିପାଠ ।

କାପାଟିକ—କ୍ଳୀ.ବି.(କପାଟ+ଇକ)କ୍ଷୁଦ୍ର କବାଟ ।

କାପାଲ—କ୍ଳୀ.ବି. (କପାଲ+ଅ) କୁଷ୍ଠରୋଗବିଶେଷ,(ବି°)କପାଳ ବା ମୁଣ୍ଡର ଖପୁରି ସମ୍ବନ୍ଧୀୟ,(ପୁଂ.ବି)ନଟ, ଭଣ୍ଡାରି (ସ୍ତ୍ରୀ) କାପାଳୀ ।

କାପାଳୀ—ପୁଂ.ବି. (କାପାଲ+ଇନ୍)ଶିବ, ବସୁଦେବ ପୁତ୍ରବିଶେଷ, ଶିଳ୍ପଜୀବୀ ହିନ୍ଦୁଶୂଦ୍ର ଜାତିବିଶେଷ, (ବି°) ବ୍ରତାର୍ଥ ନରକପାଳଧାରୀ,(ସ୍ତ୍ରୀ) କାପାଳିନୀ ।

କାପାଳୀ—ସ୍ତ୍ରୀ.ବି.(କାପାଲ+ଈ)ନଟୀ, ବେଶ୍ୟା, ଭଣ୍ଡାରୁଣୀ, ବଡ଼ଙ୍ଗ, ଗୁଳ୍ମବିଶେଷ, ଚତୁରା ସ୍ତ୍ରୀ. (ପୁଂ) କାପାଳ ।

କାପିକ—ପୁଂ.ବି.(କପି+ଇକ)ବାନର, ମାଙ୍କଡ଼, କପି ।

କାପିଞ୍ଜଳ—ପୁଂ.ବି.(କପିଞ୍ଜଳ+ଅ)କପିଞ୍ଜଳଋଷିଙ୍କ ପୁତ୍ର ।

କାପିଞ୍ଜଳାଦ—ପୁଂ.ବି.(କାପିଞ୍ଜଳ+ଅଦ୍ +ଅ+ଇ) ଗୃଧ୍ରକ ଓ ତିତ୍ତିରିପକ୍ଷୀର ମାଂସଭକ୍ଷକ ।

କାପିତ୍ଥ—କ୍ଲୀ. ବି. (କପିତ୍ଥ+ଅ) କପିତ୍ଥ ଦ୍ୱାରା ନିର୍ମିତ ବସ୍ତୁ ।
କାପିତ୍ଥକ—କ୍ଲୀ. ବି. ଦେଶବିଶେଷ ।
କାପିଳ—ପୁଂ.ବି. (କପିଳ+ଅ)କପିଳ ମୁନିପ୍ରଣୀତ ସାଂଖ୍ୟଦର୍ଶନ, ସାଂଖ୍ୟ-ମତାବଲମ୍ବୀ ବ୍ୟକ୍ତି, କପିଳମୁନିଙ୍କ ସନ୍ତାନ, ପିଙ୍ଗଳବର୍ଣ୍ଣ;(ବିଂ)ପିଙ୍ଗଳବର୍ଣ୍ଣ-ଯୁକ୍ତ, କପିଳମୁନିପ୍ରଣୀତ,(ସ୍ତ୍ରୀ.)କାପିଳୀ ।
କାପିଳକ—ପୁଂ.ବି.କପିଳବର୍ଣ୍ଣାର ପୁତ୍ର ।
କାପିଳେୟ—ପୁଂ. ବି. (କପିଳା+ଏୟ) କପିଳାନାମ୍ନୀ ବ୍ରାହ୍ମଣୀର ଗର୍ଭ-ଜାତ ପୁତ୍ର, କପିଳଋଷିଙ୍କ ଶିଷ୍ୟ, ପଞ୍ଚଶିଖନାମକ ଋଷି ।
କାପୁଡ଼ିଆ,କାପୁଡ଼-ଗ୍ରା.ବି କାପଡ଼(ଦେଖ) ।
କାପୁରୁଷ—ପୁଂ. ବି. (କୁ+ପୁରୁଷ)ଯେ ନତମସ୍ତକରେ ଅପମାନ ସହେ, ଭୀରୁ ବ୍ୟକ୍ତି, ନିନ୍ଦିତବ୍ୟକ୍ତି, ଯେଉଁ ବ୍ୟକ୍ତି ନାରୀର ମର୍ଯ୍ୟାଦା ରକ୍ଷାକରିପାରେନାହିଁ ।
କାପୁରୁଷତା—ସ୍ତ୍ରୀ. ବି. ଭୀରୁତାଆଦି ।
କାପୁରୁଷତ୍ୱ—କ୍ଲୀ. ବି. ନିନ୍ଦିତ ପୁରୁଷର କାର୍ଯ୍ୟ, ଭୀରୁତା ଆଦି ।
କାପୁରୁଷିକ—ବିଂ.(କା+ପୁରୁଷ+ଇକ) କାପୁରୁଷଦ୍ୱାରା କରଣୀୟ, ଭୀରୁ ବ୍ୟକ୍ତିର କରାଯିବା (କର୍ମ) ।
କାପୁରୁଷୋଚିତ—ବିଂ.(ତତ୍ର)କାପୁରୁ-ଷିକ (ଦେଖ) ।
କାପୁରୁଷ୍ୟ—କ୍ଲୀ. ବି. କାପୁରୁଷତା ।
କାପେଡ଼, କାପେଡ଼ିଆ—ବି.ଲୁଗା ବ୍ୟବ-ସାୟୀ (କାପଡ଼ଦେଖ) ।
କାପେୟ—ବି.(କପି+ଏୟ)କପିସମୂହ, ବାନରର ଅପତ୍ୟ, ମାଙ୍କଡ଼ଛୁଆ,ବାନ-ରୋଚିତକର୍ମ୍ମ, ଶୌନକଋଷି, (ବିଂ) ବାନର ସମ୍ବନ୍ଧୀୟ, ବାନରବଂଶୀୟ, ବାନରଠାରୁ ଜାତ ।
କାପୋତ—ବି.(କପୋତ+ଅ)କପୋତ ସମୂହ, କପୋତବୃତ୍ତି, ଉଞ୍ଛବୃତ୍ତି, ଜାତ ଯାହା ପାଇବ ତାହା ଗୋଟେଇ ଖାଇବାବୃତ୍ତି, ସୁର୍ମା,ସୌବୀରାଞ୍ଜନ, କ୍ଷାର ବିଶେଷ, ସାଜିମାଟି, କପୋତବର୍ଣ୍ଣ, କର୍ବୁରବର୍ଣ୍ଣ, (କୁ+ପୋତ) କୁତ୍ସିତ ଶିଶୁ,ଅତିଦୁର୍ବଳ ବାଳକ,ଦାଦରା, ଡଙ୍ଗା, (ବିଂ) କର୍ବୁରବର୍ଣ୍ଣ ବିଶିଷ୍ଟ, କପୋତ ସମ୍ବନ୍ଧୀୟ ।
କପୋତକ—ବି. ବିଂ. କପୋତବିଶିଷ୍ଟ ।
କପୋତପାକ୍ୟ—ପୁଂ. ବି. ପାରାଡିମ୍ବ ସବୁ, କପୋତର ଡିମ୍ବସବୁ ।
କପୋତବୃତ୍ତି—ବିଂ.(ତତ୍ର)ଆକାଶବୃତ୍ତି, ଜୀବିକା ନିର୍ବାହାର୍ଥ ଆକାଶକୁ ଦୃଷ୍ଟି-ଦେବା ରୀତି, ଜାତ ଯାହା ମିଳିବ ତାହା ଖାଇବାବୃତ୍ତି, (ବିଂ) ଜୀବିକାଶୂନ୍ୟ, ଯେ ଜାତ ଯାହା ପାଏ ତାହା ଖାଏ, କାଲିପାଇଁ ଯେ କିଛିମାତ୍ର ସଞ୍ଚୟ ନ କରେ ।
କପୋତାଞ୍ଜନ—କ୍ଲୀ. ବି. ସୌବୀରାଞ୍ଜନ, ସୁର୍ମ୍ମା । [କପୋତସମ୍ବନ୍ଧୀୟ ।
କାପୋତ—ନ. ବିଂ. (କପୋତ+ଷ୍ଣ)
କାପ୍ୟ—ପୁଂ.ବିଂ.(କପି+ଯ) କପିଋଷି-ବଂଶୀୟ, ବାନରବଂଶୀୟ, (ବି) ପାପ, ଅଙ୍ଗିରସ ଋଷି ।
କାପ୍ୟକର,କାପ୍ୟକାର—ପୁଂ.ବିଂ. (କାପ୍ୟ+କୃ+ଅ) ସ୍ୱକୃତ ପାପ ଯେ ପ୍ରକାଶ-କରେ, ପାପକାରକ ।
କପ୍ୟାୟନୀ—ସ୍ତ୍ରୀ.ବି.(କପି+ଯ+ଅୟନ+ଈ) କପିବଂଶୀୟା ।
କାପ୍ତା—ଯା. ବି. କପୋତପକ୍ଷୀ ।
କାପ୍ତାକାପ୍ତି—ଗ୍ରା. ବି. କପୋତଦ୍ୱୟ, ପୁରାଣୋକ୍ତ କପୋତ କପୋତୀ ।
କାପ୍ତାକାପ୍ତି ହୁଡ଼ାଇବା—ଗ୍ରା. କ୍ରି.କାର୍ତ୍ତିକ ମାସର ଦାମୋଦର ବ୍ରତ ଉଜାଇବା ।
କାପ୍ତାନ୍—ଯା. ଜାହାଜର ଅଧ୍ୟକ୍ଷ, ନୌସୈନିକ,ଏକଦଳ ସେନାର ନାୟକ, ସେନାଧ୍ୟକ୍ଷ ।
କାପ୍ତାନି—ଗ୍ରା. ବି. କାପ୍ତାନର କର୍ମ୍ମ ।
କାପ୍ତେ—ଗ୍ରା. ବି. କପୋତୀ ।
କାଫଡ଼—ଗ୍ରା. ବି. ବୃକ୍ଷବିଶେଷର ଛାଲି, (କଟଫଳ ଦେଖ) ।
କାଫର—ଯା.ବିଂ.ନାସ୍ତିକ, ଯେ ଏକେ-ଶ୍ୱରବାଦୀ ନୁହେ, ଅନ୍ୟଧର୍ମ୍ମାବଲମ୍ବୀ ବ୍ୟକ୍ତି ।
କାଫରି—ଯା.ବି.ଆଫ୍ରିକାଦେଶର କୃଷ୍ଣାଙ୍ଗ କୁଞ୍ଚିତକେଶ ଆଦିମନିବାସୀ, ନିଗ୍ରୋ ।
କାଫଲ୍ କାଫଲ୍—ପ୍ରା. (ସମ୍ବ) ଅବ୍ୟ, ଗଫ୍ ଗଫ୍, ଖାଦ୍ୟକୁ ଚଞ୍ଚଳ ଚଞ୍ଚଳ ପାଟିରେ ପୂରାଇ ଖାଇବା ପ୍ରକାର ।
କାଫଳ—କ୍ଲୀ.ବି.(କ.ଧା) (କୁ+ଫଳ, କୁତ୍ସିତ ଫଳ, ଖରାପଫଳ, କଟଫଳ ଓ ତାର ଗଛ ।
କାଫଲା—ଯା. ବି. ତୀର୍ଥଯାତ୍ରୀଙ୍କ ଦଳ, ପଥିକଙ୍କ ଦଳ, ଦଳ ।
କାଫି—ଯା. ବି. ଆରବ ଓ ଆଫ୍ରିକା-ଦେଶର ଅଳ୍ପ ଗଛ ଜାତୀୟ ଗଛ ଓ ତହିଁର ବୀଜ,କାଫିଗଛର ଫଳ,କାଫିଗଛ ଫଳର ଚୂନା,ଗରମପାଣିରେ କାଫିଚୂର୍ଣ୍ଣ ମିଶାଇ ତାକୁ ଛାଣି ତହିଁରୁ ପ୍ରସ୍ତୁତ ପାନୀୟ, (ଯା)ବିଂ. (କାଫୀ) କାର୍ଯ୍ୟକାରୀ, ଫଳ-ପ୍ରଦ, ପ୍ରୟୋଜନୀୟ, ଯଥେଷ୍ଟ,(ଗ୍ରା.ବି) ସଙ୍ଗୀତର ରାଗିଣୀବିଶେଷ ।
କାଫିବ—ଗ୍ରା.କ୍ରି.ସଫଳହେବା,ପ୍ରୟୋ-ଜନୀୟହେବା, ଅଣ୍ଟିବା, ଉପଯୁକ୍ତହେବା
କାଫେ—ଯା. ବି. ଗୃ, କାଫି ବା ମଦ ଆଦିର ପାନାଳୟ ।
କାଫ୍ରି—ଯା. ବି. ଆଫ୍ରିକାର ଦକ୍ଷିଣସ୍ଥ କାଫ୍ରେରିଆ ନାମକ ସ୍ଥାନର ଅଧିବାସୀ ।
କାବକାଣ—ପ୍ରା. (ଗଞ୍ଜାମ) ବିଂ. ଦୁର୍ବଳ, ନିର୍ବଳ, ନିରାଶ୍ରୟ, ଦୃଷ୍ଟିହୀନ ।
କାବକାଣିଆ—ପ୍ରା.(ଗଞ୍ଜାମ)ବିଂ.ଗାବେବ, ଅଦୃଶ୍ୟ ହୋଇଥିବା ।
କାବଚକ—ବିଂ. (କବଚ+ଇକ)କବଚ-ଧାରୀ (ଯୋଦ୍ଧା), ବି. କବଚଧାରୀ ବ୍ୟକ୍ତିସମୂହ ।
କାବତା—ଗ୍ରା. ବି. (କାପ୍ତା ଦେଖ) ।
କାବରା—ପ୍ରା.(ଗଞ୍ଜାମ)ବି. ଚଟି ଲମ୍ଫାପା ବା ବହିର ଆବରଣ, ମଲାଟ ।
କାବା—ଗ୍ରା. ବିଂ. ପୁଂ. ସ୍ତ୍ରୀ. ବିସ୍ମିତ, ଆଶ୍ଚର୍ଯ୍ୟାନ୍ୱିତ, କିଂକର୍ତ୍ତବ୍ୟବିମୂଢ଼, ଘାବରା,ଓଲ୍ଲୁ,ନିର୍ବୁଦ୍ଧିଆ,(ବିଂ)ମକ୍କାରେ

ଥିବା ମୁସଲମାନମାନଙ୍କ ଚତୁଷ୍କୋଣ ପୂଜାମନ୍ଦିର ଓ ତୀର୍ଥ ।
କାବାଖେଞ୍ଚ – ଗ୍ରା. ବିଂ. (କାବାଦେଖ) ।
କାବାଡ଼ – ଗ୍ରା. ପୁଂ. ବିଂ. ନିର୍ବୁଦ୍ଧିଆ, ଓଲୁ, ନୀଚ, ହୀନ(ବ୍ୟକ୍ତି), (ସ୍ତ୍ରୀ) କାବାଡ଼ୀ ।
କାବାଡ଼ଆ- ଗ୍ରା.ବିଂ.ସ୍ତ୍ରୀ.କାବାଡ଼ (ଦେଖ) ।
କାବାଡ଼ୀ – ଗ୍ରା. ସ୍ତ୍ରୀ. ବିଂ. ଓଲୁ ସ୍ତ୍ରୀ ।
କାବାଣୀ – ଗ୍ରା. ସ୍ତ୍ରୀ. ବିଂ. ନିର୍ବୁଦ୍ଧି, ଓଲମୀ (ସ୍ତ୍ରୀ) ।
କାବାର – ବି. (କ + ଅ + ବୃ + କ,ଅ) ଶିଉଳି, ଶୈବାଳ ।
କାବାର – ଗ୍ରା. (ସମ୍ବ.) ବିଂ.ନିର୍ବୁଦ୍ଧିଆ, ଓଲୁ । [ ଖିମ୍ମ ।
କାବାସ୍ତ୍ରୀ—ସ୍ତ୍ରୀ. ବି. ବେଣ୍ଟ ନଥିବା ଛତା,
କାବାବ – ଯା, ବି. ଜଳୀୟ ଦ୍ରବ୍ୟ ପରିମାଣ ବିଶେଷ, ପାଚିଲାମାଂସବିଶେଷ ।
କାବଲ୍ – ଯା. ବିଂ. ଯୋଗ୍ୟ, ଉପଯୁକ୍ତ, ଲାଏକ, ଉଚିତ ।
କାବୁ—ଯା. ବିଂ. କ୍ଷମତାହୀନ, ଅନାୟତ୍ତ, ଅଭିଭୂତ, ଆୟତ୍ତ, ପରାସ୍ତ, ବଶୀଭୂତ, ପୀଡ଼ିତ, ଦୁର୍ବଳୀକୃତ, (ଗ୍ରା.ବି) ଅଧିକାର, କ୍ଷମତା, ବଶତା ।
କାବୁକରିବା – ଗ୍ରା.କ୍ରି କ୍ଷମତାହୀନ କରିବା, ଅନାୟତ୍ତ କରିବା, ଦୃଢ଼ଭାବରେ ଧରିବା ପରାଜିତ କରିବା ।
କାବୁତ – ଯା.ବିଂ. ପରର ଆୟତ୍ତ, ପରାଜିତ, ଅଧୀନ ।
କାବୁପାଇବା—ଗ୍ରା.ବିଂ.ସାଧାରଣ ବୋଲି ଜଣାଯିବା, (ମୋତେ) ସୁବିଧା ବା ଦାଉ ମିଳିବା ।
କାବୁଲ—ଯା. ବିଂ. ଆଫଗାନିସ୍ଥାନର ରାଜଧାନୀ, ସିନ୍ଧୁନଦୀର ଉପନଦୀ, ଏହା ହିନ୍ଦୁକୁଶପର୍ବତର ଶାଖା କୋହବାବରୁ ବାହାର ପେଶବାର ନିକଟରେ ସିନ୍ଧୁନଦୀରେ ମିଶିଅଛି ।
କାବୁଲୀ—ଯା. ବିଂ. କାବୁଲଦେଶୀୟ (ବ୍ୟକ୍ତି), କାବୁଲଦେଶୋତ୍ପନ୍ନ, (ବି) କାବୁଲୀମାନଙ୍କର ଭାଷା ।
କାବେର – ବି. (କବ + ଣି,ଏର) କୁଙ୍କୁମ, ଜାଫ୍‌ରାନ୍ ।
କାବେରୀ – ସ୍ତ୍ରୀ. ବି. (ବି.ସ୍ତ୍ରୀ) ବେଶ୍ୟା, ହରିଦ୍ରା, (ଗ୍ରା.ବି) ଦାକ୍ଷିଣାତ୍ୟର ନଦୀବିଶେଷ, ଦେଶବିଶେଷ ।
କାମ–ବି.(କମ + ଣିଚ୍ + କ ଅ) କାମଦେବ, କନ୍ଦର୍ପ, ରେତଃ, ଶୁକ୍ର,(କାମ + ଅ) କାମପାଳ, ବଳରାମ, (କମ + ଘ,ଅ) ଅଭିଳାଷ, ଇଚ୍ଛା, କାମନା, ଅନୁରାଗ, ରମଣେଚ୍ଛା, ସ୍ତ୍ରୀ ପୁରୁଷର ସଙ୍ଗମପ୍ରବୃତ୍ତି, ଉଦ୍ଦେଶ୍ୟ, ଅଭିଳଷିତ ବସ୍ତୁ, (ଗ୍ରା. ବି. ସଂ + କର୍ମ) ବ୍ୟବହାର, କର୍ମ, କାର୍ଯ୍ୟ, ଜାଡ଼ିଆଣ କାମ, କାରୁକାର୍ଯ୍ୟ, କାରଗର, ଗୃହକର୍ମ, ମୂଲଆର ପରିଶ୍ରମସାଧ୍ୟ ଦୈନିକ କାର୍ଯ୍ୟ, ପରିଶ୍ରମ, ରମଣ, ଉପକାର, ଗରଜ, ଦରକାର, ଆବଶ୍ୟକତା, ଜୀବିକା, ବ୍ୟବସାୟ, ବୃତ୍ତି, ପେଶା ।
କାମକରୁଣ୍ଡ – ଗ୍ରା.ବି. କାମରୂପ କରୁଣ୍ଡ ।
କାମକରିବା – ଗ୍ରା. କ୍ରି କାର୍ଯ୍ୟସାଧନ କରିବା, ପରିଶ୍ରମ କରିବା, ଉପକାର କରିବା, ଫଳଦର୍ଶାଇବା ।
କାମକଳା–ସ୍ତ୍ରୀ.ବି.(କାମ + କଳା) (୬ତତ୍ପୁ) କାମଦେବଙ୍କ ପତ୍ନୀ ରତି, ଚନ୍ଦ୍ରଙ୍କ ଷୋଡ଼ଶ କଳା ।
କାମକଳାବିଳାସ – ପୁଂ. ବି. ତନ୍ତ୍ରଶାସ୍ତ୍ର ବିଶେଷ ।
କାମକା— ଗ୍ରା. ବି. କାମିକା ।
କାମକାନ୍ତ – କ୍ରି. ବିଂ. (କାମ + କୈ + ତ) କାମଶବ୍ଦଯୁକ୍ତ ।
କାମକାମ – କ୍ରି.ବିଂ. ଅଭିଳଷିତ ବସ୍ତୁ ଯେ ପ୍ରାର୍ଥନା କରେ ।
କାମକାମୀ–(କାମ + କମ୍ + ଣିଚ୍ + ଇନ୍) ଅଭୀଷ୍ଟପ୍ରାର୍ଥୀ ।
କାମକାର—ବିଂ. (କାମ + କୃ + କ,ଅ) ଯଥେଚ୍ଛକ୍ରିୟା, ଯେ ଆପଣାର ଖୁସି ମୁତାବକ କାମ କରେ, କାର୍ଯ୍ୟନିଷ୍ପାଦକ (ବି) ଇଚ୍ଛାର ପ୍ରସର, ଫଳାଭିସନ୍ଧି, ଅଭିଳାଷର ଗତି, ମନର ଦଉଡ଼ ।
କାମକାର୍ଯ୍ୟ – ଗ୍ରା. ବି. (ଏକାର୍ଥକ ସହଚର ଶବ୍ଦ) ବ୍ୟବସାୟ, ବୃତ୍ତି, ଅବଲମ୍ବନ, ଜୀବିକା, ଗୃହକର୍ମ, କୌଣସି ପ୍ରକାର କର୍ମ ।
କାମକୂଟ – ପୁଂ. ବି. ବି.ସ୍ତ୍ରୀ, (କାମ + କୂଟ) କାମାସକ୍ତ ବ୍ୟକ୍ତି, ଜାର, ଲମ୍ପଟ, ଉପପତି, ବେଶ୍ୟାର ହାବଭାବ, କାମରାଜ ନାମକ ଶ୍ରୀବିଦ୍ୟାର ମନ୍ତ୍ରବିଶେଷ ।
କାମକୂପ—ପୁଂ. ବି. ଭଗ, ଯୋନିରନ୍ଧ୍ର ।
କାମକୃତ୍ତ – କ୍ରି.ବିଂ.(କାମ + କୃ + କ୍ୟପ୍) ଅଭୀଷ୍ଟ ସମ୍ପାଦକ (ପୁଂ) ବିଷ୍ଣୁ ।
କାମକେଳି – ପୁଂ. ବି. (୬ତତ୍ପୁ) ରମଣ, ରତିକ୍ରୀଡ଼ା, ରମଣ ସମ୍ବନ୍ଧୀୟ ପ୍ରକ୍ରିୟା, ଲମ୍ପଟବ୍ୟକ୍ତି, ଉପପତି, ଜାର, (ବିଂ. ବି.ସ୍ତ୍ରୀ) କାମୁକ, ଲମ୍ପଟ ।
କାମକୋଢ଼ିଆ-ଗ୍ରା.ବିଂ.କର୍ମକୁଣ୍ଠି, ଅଳସୁଆ ।
କାମକ୍ରୀଡ଼ା—ସ୍ତ୍ରୀ ବି. ରତିକ୍ରୀଡ଼ା, ରମଣ, ଚନ୍ଦ୍ରକ, ଚଞ୍ଚୁଆଚକୋଇ, ପଞ୍ଚଦଶାକ୍ଷର ଛନ୍ଦବିଶେଷ ।
କାମଖଣ୍ଡଦଳ—ସ୍ତ୍ରୀ. ବି. ସ୍ୱର୍ଣ୍ଣକେତକୀ ଫୁଲର ଗଛ ।
କାମଗ – ପୁଂ.ବିଂ.(କାମ + ଗମ୍ + ଡ,ଅ) ଆପଣା ଇଚ୍ଛାନୁସାରେ ସର୍ବତ୍ର ବିଚରଣ କରିବାକୁ ସମର୍ଥ, ସ୍ୱେଚ୍ଛାବିହାରୀ, (ସ୍ତ୍ରୀ) କାମଗା ।
କାମଗତ – ବିଂ. ( କାମ + ଗମ୍ + ତ ) ଇଚ୍ଛାନୁସାରେ ଯେଉଁ ସବୁ ସ୍ଥାନ ଯାଏ, ଯଥେଷ୍ଟ ସ୍ତ୍ରୀଗାମୀ ।
କାମଗମ—ପୁଂ. ବିଂ. ( କାମ + ଗମ୍ + କ,ଅ)(କାମଗଦେଖ)(ସ୍ତ୍ରୀ) କାମଗମା ।
କାମଗନ୍ଧ – ପୁଂ. ବି. (୬ତତ୍ପୁ) କାମର ଗନ୍ଧ, ଅତ୍ୟଳ୍ପ ଅଳ୍ପ କାମରାଗ ।
କାମଗା—ସ୍ତ୍ରୀ. ବି. '(କାମ + ଗମ୍ + ଅ ଆ) ଯଥେଷ୍ଟ ପୁରୁଷଗାମିନୀ ସ୍ତ୍ରୀ, କୁଳଟା ।
କାମଗାମୀ – ପୁଂ. ବିଂ. (କାମ + ଗମ୍ + କ, ଇନ୍) ସ୍ୱେଚ୍ଛାବିହାରୀ,( ସ୍ତ୍ରୀ ) କାମଗାମିନୀ ।
କାମଗାର—ଗ୍ରା. (ସମ୍ବ.) ବି. କାମକଲା ଲୋକ, ମଜୁରିଆ, ମୁଲିଆ ।
କାମଗିରି--ପୁଂ.ବି. ଦାକ୍ଷିଣାତ୍ୟର ଗୋଟିଏ ପର୍ବତ ।

କାମଗୁଣ—ପୁଂ.ବି.ଅନୁରାଗବିଷୟ ଭୋଗ ।
କାମଗାମୀ—ବି. ବିଂ. ଯଥେଷ୍ଟ ସ୍ତ୍ରୀଗାମୀ ।
କାମଚଣ୍ଡୀ—ସ୍ତ୍ରୀ. ବି. କାମରୂପ ଦେଶର ଠାକୁରାଣୀ, କାମଚେଷ୍ଟା ଜର୍ଜରିତା ସ୍ତ୍ରୀ ।
କାମଚର—ପୁଂ. ବିଂ. (କାମ+ଚର+କ,ଅ) ସ୍ୱେଚ୍ଛାଗାମୀ, ଯେ ନିଜ ଇଚ୍ଛାରେ ସ୍ୱଚ୍ଛନ୍ଦ ବିଚରଣ କରେ,(ସ୍ତ୍ରୀ) କାମଚରୀ, କାମଚାରୀ ।
କାମଚରଣ—କ୍ଲୀ.ବି. ସ୍ୱେଚ୍ଛା ଭ୍ରମଣ (ପୁଂ.ବି) ଗରୁଡ଼ ।
କାମଚାର—ପୁଂ.ବି.(କାମ+ଚର୍+କ, ଅ) ସ୍ୱେଚ୍ଛାଚାର,ଗରୁଡ଼, ସ୍ୱେଚ୍ଛା ବିହାର, (ପୁଂ.ବିଂ) ସ୍ୱେଚ୍ଛାଚାରୀ,ଯଥେଚ୍ଛାଭାବରେ ବିଚରଣକାରୀ, ଯେ ଯଥେଚ୍ଛାଭାବେ ଗୋରୁପ୍ରଭୃତି ପଶୁ ଚରାଏ ।
କାମଚାରୀ—ପୁଂ. ବିଂ. (କାମ+ଚର୍+କ,ଇନ୍) ସ୍ୱେଚ୍ଛାବିହାରୀ, ସ୍ୱେଚ୍ଛାଚାରୀ, ଲମ୍ପଟ ସ୍ୱଭାବ,(ସ୍ତ୍ରୀ) କାମଚାରିଣୀ ।
କାମଚିନ୍ତା—ବି.(ଷତନ୍ତ୍ର) ଉଦ୍ଦେଶ୍ୟ ସିଦ୍ଧି ସମ୍ବନ୍ଧେ ଭାବନା, ପ୍ରଣୟିବ୍ୟକ୍ତି ସମ୍ବନ୍ଧେ ଚିନ୍ତା ।
କାମଚେଷ୍ଟା—ବି. (ଷତନ୍ତ୍ର) କାମପ୍ରବୃତ୍ତି ଚରିତାର୍ଥକରିବାପାଇଁ ଇଚ୍ଛା ବା ଆଗ୍ରହ, ପ୍ରଣୟୀ ସଙ୍ଗେ ମିଳିତ ହେବାପାଇଁ ଚେଷ୍ଟା, କାମକ୍ରୀଡ଼ା ।
କାମଚୋର—ଗ୍ରା. (ସମ୍ବ.) ଅଳସୁଆ, କାର୍ଯ୍ୟ କରିବାକୁ ଅନିଚ୍ଛୁକ, ଯେ କାର୍ଯ୍ୟରେ ଫାଙ୍କିକରେ ।
କାମଜ—ବିଂ. ( କାମ+ଜନ୍+କ,ଅ ) ଅଭିଳାଷଜାତ, କାମଜନିତ ବ୍ୟସନାଦି, ଯଥା—ମୃଗୟା, ଅକ୍ଷକ୍ରୀଡ଼ା, ଦିବାନିଦ୍ରା, ପରନିନ୍ଦା, ସ୍ତ୍ରୀସମ୍ଭୋଗ, ମଦ୍ୟପାନ, ଗୀତ, ବାଦ୍ୟ,ନୃତ୍ୟ, ବୃଥାଭ୍ରମଣ, (ପୁଂ.ବି) କାମଦେବଙ୍କ ପୁତ୍ରାଦି, (ଗ୍ରା.ବି) କାମୋଦ୍ଦୀପକ ବାଦ୍ୟ ।
କାମଜଜ୍ୱର—ପୁଂ.ବି.(କ.ଧା) ଜ୍ୱରବିଶେଷ, କାମଜ୍ୱର ଆଧିକ୍ୟହେଲେ, ଏହି ଜ୍ୱର ଉତ୍ପନ୍ନ ହୁଏ ।
କାମଜନି—ପୁଂ.ବି. (କାମ+ଜନ୍+ଇ) କୋକିଳ, କୋଇଲି, (ବି.ବିଂ) ସୁଗନ୍ଧିମାଳା, ଚନ୍ଦନପ୍ରଭୃତି ବସ୍ତୁ ।
କାମଜାନ—ପୁଂ.ବି.(କାମ+ଜନ୍+ଅ) କୋକିଳ, (ବିଂ) କାମୋଦ୍ଦୀପକ ।
କାମଜିତ୍—ପୁଂ. ବି. (କାମ+ଜି+କ, କ୍ୱିପ୍) ମହାଦେବ, କାର୍ତ୍ତିକେୟ, ଜିନ୍‌ଦେବ, ବୁଦ୍ଧ ।
କାମଜ୍ୱର—ପୁଂ.ବି. (କ.ଧା) କାମାନଳ, ପ୍ରବଳ କାମପ୍ରବୃତ୍ତି, ଅସିଦ୍ଧ କାମପ୍ରବୃତ୍ତିଜନିତ ଶରୀରତାପ ।
କାମଜ୍ୱାଳା—ଗ୍ରା.ବି. କାମପ୍ରବୃତ୍ତି ଉଦ୍ରେକ ହେବାରୁ ଶରୀରରେ ଅନୁଭୂତ ବ୍ୟଥା ବା ପୀଡ଼ା, ଅଚରିତାର୍ଥ କାମପ୍ରବୃତ୍ତିଜନିତ ବେଦନା ।
କାମଠ—ବି. ବିଂ. (କମଠ+ଅ)କଚ୍ଛପସମ୍ବନ୍ଧୀୟ, କମଣ୍ଡଳୁ ସମ୍ବନ୍ଧୀୟ ।
କାମଠକ—ପୁଂ. ବି. (କମଠ+ଅକ) ସର୍ପବିଶେଷ ।
କାମଡ଼—ଗ୍ରା. ବିଂ. ବିରକ୍ତିକର, ଏକଜିଦିଆ, କାମୁଡ଼ା, (ବି) ଦଂଶନ, ଦନ୍ତାଘାତ ।
କାମଡ଼ା—ଗ୍ରା. ବି. ଗୃହର ଅଂଶ ବିଶେଷ, କାନ୍ଥ ଲମ୍ବା ଗୃହ ବା ବାଡ଼ ଦୁଇପାଖରେ ଥିବା ବତାକୁ ଏକତ୍ର ଦୃଢ଼ଭାବରେ ବାନ୍ଧିବା ଗଣ୍ଠି, ଦନ୍ତଦ୍ୱାରା କ୍ଷତକରିବା. ପେଟ ମଧ୍ୟରେ ବ୍ୟଥା ।
କାମଡ଼ାକାମଡ଼ି—ଗ୍ରା. ପରସ୍ପର ଦନ୍ତାଘାତ କରିବା, ବହୁବାର କାମୁଡ଼ିବା ।
କାମଡ଼ାଦେବା—ଗ୍ରା.କ୍ରି.କାନ୍ଥ ବା ଗୃହର ଦୁଇପାଖ ବତାକୁ ଦଉଡ଼ିଦ୍ୱାରା ଭିଡ଼ିବା ।
କାମଡ଼ିଆ—ଗ୍ରା. ପୁଂ. ବିଂ. କାମୁଡ଼ା,ଯେ ଅନ୍ୟକୁ କାମୁଡ଼େ, (ଲ.ଅର୍ଥ)ଉଗ୍ରସ୍ୱଭାବବିଶିଷ୍ଟ, ଅଳ୍ପକେ ବିରକ୍ତ, ରୁଚ୍ଛରେ ବିରକ୍ତ ହେଉଥିବା (ବ୍ୟକ୍ତି) ।
କାମଣ୍ଡଳବ—ବି. ବିଂ. (କମଣ୍ଡଳୁ+ଅ) କମଣ୍ଡଳୁ ସମ୍ବନ୍ଧୀୟ,କମଣ୍ଡଳୁର କାର୍ଯ୍ୟ ।
କାମଣ୍ଡଳେୟ—ବି.ବିଂ.କମଣ୍ଡଳୁ ସମ୍ବନ୍ଧୀୟ ।
କାମତନ୍ତ୍ର—କ୍ଲୀ. ବି. (ଷତନ୍ତ୍ର)କାମଶାସ୍ତ୍ର, ରତିଶାସ୍ତ୍ର(ବିଂ) କାମପରତନ୍ତ୍ର,କାମୁକ ।
କାମତରୁ—ପୁଂ.ବି.(କ.ଧା)ବୃକ୍ଷବିଶେଷ ।
କାମତିଥି—ସ୍ତ୍ରୀ.ବି.(ଷତନ୍ତ୍ର) ତ୍ରୟୋଦଶୀ, ଏହି ତିଥିରେ କାମଦେବଙ୍କର ପୂଜାହୁଏ ।
କାମଦ—ବି.ବିଂ. (କାମ+ଦା+କ,ଅ) କାମଦାତା, କାମପ୍ରଦ, ଅଭୀଷ୍ଟଦାତା, (ପୁଂ.ବି) କାର୍ତ୍ତିକେୟ, (ସ୍ତ୍ରୀ) କାମଦା ।
କାମଦମିନୀ—ସ୍ତ୍ରୀ. ବି. (କାମ+ଦମ+ଇନ୍+ଈ) ଯେଉଁନାରୀ କାମରିପୁକୁ ବଶ କରିଅଛି ।
କାମଦଶା—ବି.(କ.ଧା)କାମାସକ୍ତଲୋକର ଅନୁଭୂତ ଦଶଗୋଟି ଅବସ୍ଥା ।
କାମଦର୍ଶନ—ବି. ବିଂ. (ବ.ବ୍ରୀ) ମନୋରମ ଦର୍ଶନ, ସୁନ୍ଦର ।
କାମଦହନ—ବି.(ବ.ବ୍ରୀ)ଶିବ,ମହାଦେବ ।
କାମଦା—ସ୍ତ୍ରୀ. ବି, (କାମ+ଦା+ଅ+ଆ) କାମଧେନୁ, ଚୈତ୍ରଶୁକ୍ଳ ଏକାଦଶୀ (ବିଂ) ଅଭୀଷ୍ଟଦାତ୍ରୀ ।
କାମଦାନି—ଗ୍ରା. ବି. ଲୁଗାରେ ଚୁମ୍ଫିକାମ ଦ୍ୱାରା ଫୁଲଆଦି ଚିତ୍ରଣକର୍ମ, ଜରିକାମ କରାଯାଇଥିବା ଲୁଗା ।
କାମଦାମ—ଗ୍ରା.ବି. ବ୍ୟବସାୟ, ବୃତ୍ତି, ଦୈନିକ ବା ସାଧାରଣ କାର୍ଯ୍ୟ,ଗୃହକର୍ମ ।
କାମଦାର—ଗ୍ରା. (ସମ୍ବ.) ବିଂ. କର୍ମଠ, କର୍ମକୁଶଳ, କୌଣସି କର୍ମର ଭାରପ୍ରାପ୍ତ (ବ୍ୟକ୍ତି) ।
କାମଦାର—ଗ୍ରା. ବିଂ. ସୂଚିକାର୍ଯ୍ୟବିଶିଷ୍ଟ, ଶିଳ୍ପକର୍ମଶୋଭିତ ।
କାମଦାରିଆ—ଗ୍ରା. ବିଂ. କାରୁକାର୍ଯ୍ୟ [ବିଶିଷ୍ଟ ।
କାମଦୁଘ—ବି.ବିଂ. (କାମ+ଦୁହ+ଅ) ଅଭୀଷ୍ଟ ସମ୍ପାଦକ, ( ସ୍ତ୍ରୀ ) କାମଦୁଘା, କାମଧେନୁ ।
କାମଦୁଘା,କାମଦୁହା—ସ୍ତ୍ରୀ.ବିଂ.(କାମ+ଦୁହ+ର୍ମି, ଅ+ଆ) ଅଭିଳାଷପୂରଣକାରିଣୀ ସର୍ବାର୍ଥଦାୟିନୀ, ( ବି. ) କାମଧେନୁ, ସୁରଭୀ, ପୃଥିବୀ । [କୋକିଳ ।
କାମଦୂତ—ବି. ( ଷତନ୍ତ୍ର ) କୋଇଲି,
କାମଦୂତିକା—ସ୍ତ୍ରୀ.ବି. ନାଗଦନ୍ତୀ ।
କାମଦୂତୀ—ସ୍ତ୍ରୀ.ବି. ପାରୁଳଗଛ; କାମନା ପୂରଣ କରିବାରେ ସାହାଯ୍ୟକାରିଣୀ ।

କାମଦେବ—ପୁଂ. ବି. କ.ଧା. (କାମ+ଦେବ) କନ୍ଦର୍ପ, ବ୍ରହ୍ମାଙ୍କ ମାନସ ପୁତ୍ର ।
କାମଦେବକବିବଲ୍ଲଭ—ଚଣ୍ଡୀର ପ୍ରାଚୀନ ଟୀକାକାର ।
କାମଦେବଘୃତ—କ୍ଲୀ.ବି ବୈଦ୍ୟଶାସ୍ତ୍ରୋକ୍ତ ଘୃତବିଶେଷ ।
କାମଦେବା—ଗ୍ରା.କ୍ରି. କୌଣସି ବ୍ୟକ୍ତିଙ୍କୁ ଅବଲମ୍ବନ ବା ଜୀବିକା ଯୋଗାଇବା, ଦରକାରବେଳେ କାମରେ ଲଗିବା ।
କାମଦୋହୀ—ପୁଂ.ବିଂ. (କାମ+ଦୁହ୍+ଇନ୍) ଅଭୀଷ୍ଟପ୍ରଦ, ଯାହା କାହୁ ପ୍ରାର୍ଥନା କଲେ ଯାହାଙ୍କ ନିକଟରୁ ମିଳେ ।
କାମଧନୁ—ବିଂ. (୬ତତ୍ପୁ) କାମଦେବଙ୍କ ଧୃତ କଳ୍ପିତ ପୁଷ୍ପଧନୁ ।
କାମଧର—ପୁଂ.ବି. ଆସାମ ପ୍ରଦେଶାନ୍ତର୍ଗତ ମଣ୍ଡଧିକ ପର୍ବତସ୍ଥ ସରୋବର-ବିଶେଷ, ଏଥିରେ ସ୍ନାନକଲେ ଲୋକ ନିଷ୍ପାପ ହୋଇ ଶିବଲୋକକୁ ଗମନ କରେ ।
କାମଧରିବା—ଗ୍ରା.କ୍ରି. କୌଣସି କାର୍ଯ୍ୟରେ ହସ୍ତକ୍ଷେପ କରିବା ।
କାମଧାମ—ଗ୍ରା. ବି. (କାମଦାମ ଦେଖ) ।
କାମଧୂ—ଗ୍ରା. ବି. ପୁଷ୍ପବିଶେଷ ।
କାମଧୁକ୍—ସ୍ତ୍ରୀ. ବି. (କାମ+ଦୁହ୍+କ, କ୍ୱିପ୍) କାମଧେନୁ ।
କାମଧେନୁ—ସ୍ତ୍ରୀ. ବି. (ମଧ୍ୟ-କ.ଧା) ଅଭୀଷ୍ଟ-ଫଳପ୍ରଦା, ପୁରାଣୋକ୍ତ ଗାଈ, ଯେଉଁ ଗାଈକୁ ଯେତେବେଳେ ଇଚ୍ଛା ଦୁହାଁ-ଯାଏ, ଦାନାର୍ଥ ସ୍ୱର୍ଣ୍ଣନିର୍ମିତ ଗାଈ, ଦେବଗବୀ, ସୁରଭୀ, (ଲ-ଅର୍ଥ) ଯଥେଚ୍ଛା ପ୍ରାର୍ଥନା ପୂରଣକାରୀ ବ୍ୟକ୍ତି ।
କାମଧ୍ୱଜ—ବି. (ଦ.ଗ୍ରା) ମାଛ ।
କାମଧ୍ୱଂସୀ—ପୁଂ.ବି. (କାମ+ଧ୍ୱନ୍ସ୍-ଣିଚ୍+ଇନ୍) ଶିବ ।
କାମନ—ବିଂ. (କମ୍+ଣିଚ୍+ଅନ) ଅଭିଲାଷୁକ, କାମୁକ, ଲମ୍ପଟ, ଲୋଭୀ, (କ୍ଲୀ.ବି) ଅଭିଳାଷ, ଇଚ୍ଛା ।
କାମନା—ସ୍ତ୍ରୀ. ବି. (କମ୍+ଣିଚ୍+ଅନ+ଆ) ମନୋରଥ, ବାଞ୍ଛା, ଇଚ୍ଛା, ବାସନା ।

କାମନାକରିବା—ଗ୍ରା.କ୍ରି. ଇଚ୍ଛା କରିବା, ଅଭିଲଷିତବସ୍ତୁ ମନରେ କଳ୍ପନା କରିବା, ମନାସିବା ।
କାମନାଦଣ୍ଡ—ଗ୍ରା.ବି.(ଦଣ୍ଡନାଟ ଦେଖ) ।
କାମନାସ୍ତୁକ—କ୍ଲୀ. ବି. ରମଣୀସ୍ତବ୍ଧା, ସୌନ୍ଦର୍ଯ୍ୟ । [ସଂସାର ।
କାମନ୍ଧମୀ—ପୁଂ.ବି.(କାମ+ଧ୍ମା+ଇନ୍)
କାମପକ୍ଷୀ—ବି. ଚକ୍ରବାକପକ୍ଷୀ, ଚକୁଆ, କାଦମ୍ବ, କଳହଂସ ।
କାମପଡ଼ିବା—ଗ୍ରା. ବି. ଆବଶ୍ୟକ ଉପସ୍ଥିତହେବା ।
କାମପତ୍ନ—ସ୍ତ୍ରୀ.ବି.ରତି,(ପୁଂ)ଚନ୍ଦ୍ରବଂଶୀୟ ପୃଥୁବଂଶଧର ଜଣେ ରାଜା ।
କାମପତ୍ନୀ—ସ୍ତ୍ରୀ. ବି. ରତି, କନ୍ଦର୍ପ ସ୍ତ୍ରୀ ।
କାମପାଲ—ପୁଂ.ବି.(କାମ+ପାଲ+ଅ) ବଳଦେବ,ଶ୍ରୀକୃଷ୍ଣ, ମହାଦେବ,ଶ୍ରୀକୃଷ୍ଣଙ୍କ ଅଗ୍ରଜ ।
କାମପୀ—ପୁଂ.କ୍ଲୀ.ବି. କୃପାଦର ଉପରିଭାଗରେ ବନ୍ଧସ୍ଥାନ ।
କାମପୀଡ଼ା—ବି. (ମଧ୍ୟ—କ.ଧା)(କାମ-ଜ୍ୱାଳାଦେଖ) ।
କାମପୀଡ଼ିତ—ବି.ବିଂ.(୩ତତ୍ପୁ)କାମପ୍ରବୃତ୍ତି ଦ୍ୱାରା ପୀଡ଼ାଗ୍ରସ୍ତ ବା ଜର୍ଜରିତ ।
କାମପୂର—ବି.ବିଂ.(କାମ+ପୂର+କ. ଅ)ଅଭୀଷ୍ଟପ୍ରଦ,ବାସନା ପୂରଣକାରୀ, (ବି) ପରମେଶ୍ୱର, ଭଗବାନ୍ । [ପ୍ରଦ ।
କାମପ୍ର—ବି.ବିଂ(କାମ+ପ୍ର+ଅ) ଅଭୀଷ୍ଟ
କାମପ୍ରଦ—ବିଂ. (କାମ+ପ୍ର+ଦା+କ. ଅ)ଅଭୀଷ୍ଟଦାତା,(ପୁଂ.ବି.) ପରମେଶ୍ୱର, ରତିବନ୍ଧବିଶେଷ, (ସ୍ତ୍ରୀ) କାମପ୍ରଦା ।
କାମପ୍ରବେଦନ—କ୍ଲୀ.ବି. (୬ତତ୍ପୁ) ଅଭିଲାଷପ୍ରକାଶ ।
କାମପ୍ରଭ—ପୁଂ.ବିଂ.(ବହୁ)କାମଦେବଙ୍କ ପରି ସୁନ୍ଦର, (ସ୍ତ୍ରୀ) କାମପ୍ରଭା ।
କାମବଲ୍ଲଭ—ବି.ବି.(୬ତତ୍ପୁ)ଆମ୍ର,ବସନ୍ତ, କନ୍ଦର୍ପର ପ୍ରିୟବସ୍ତୁ ।
କାମବଲ୍ଲଭୀ—ସ୍ତ୍ରୀ. ବି. (୬ତତ୍ପୁ)ଚନ୍ଦ୍ରିକା, ଚନ୍ଦ୍ରକିରଣ, ଜ୍ୟୋତ୍ସ୍ନା ।

କାମପ୍ରଶ୍ନ—ପୁଂ. ବି. ଇଚ୍ଛାନୁସାରେ ଯେ କୌଣସି ପ୍ରଶ୍ନ ।
କାମପ୍ରସ୍ଥ—ପୁଂ. କ୍ଲୀ. କାମଗିରିର ସାନୁ-ଦେଶ, (ପୁଂ) ନଗରବିଶେଷ ।
କାମପ୍ରି-ବି.ବିଂ.(କାମ+ପ୍ରୁ+ଇ)ଅଭୀଷ୍ଟ-ପୂରକ ।
କାମଫଳ—ପୁଂ. ବି. ମହାରାଜାମ୍ରବୃକ୍ଷ ।
କାମବନ୍ଧ—ବି. ବିଂ. କନ୍ଦର୍ପଦ୍ୱାରେ ଆବଦ୍ଧ ।
କାମବାଇ—ଗ୍ରା.ପୁଂ.ବି.କାମପୀଡ଼ାଯୋଗୁ ବାଉଳପ୍ରାପ୍ତ, କାମୋନ୍ମାଦଗ୍ରସ୍ତ, (ସ୍ତ୍ରୀ) କାମବାଇ,କାମଚେଷ୍ଟା ଅପୂରଣ ରହିବା ଯୋଗୁଁ ବାଉଳା ହୋଇଥିବା (ସ୍ତ୍ରୀ) ।
କାମଭକ୍ଷ୍ୟ—ବି.ବିଂ.ଯେ ଭୋଜନସମ୍ବନ୍ଧେ କୌଣସି ବସ୍ତୁର ନ କରି ଯେ କୌଣସି ବସ୍ତୁ ଭୋଜନ କରେ ।
କାମଭଦ୍ରବଟ—ବି, ହିନ୍ଦୁମାନଙ୍କର ପୌରାଣିକ ବଟବୃକ୍ଷବିଶେଷ ।
କାମଭାକ୍—ବି.ବିଂ. (କାମ+ଭଜ+ଅ ଯଥେଚ୍ଛା ଭୋଗକାରକ, କାମଭୋଗ-କାରକ ।
କାମଭେଷୀ—ଗ୍ରା.ବି.ଜୁଗାର.ଦ୍ୟବିଶେଷ ।
କାମଭୋଗ—ପୁଂ.ବି, ସମ୍ଭୋଗ, ଯଥେଷ୍ଟ ଭୋଗ ।
କାମମ୍—(ଅବ୍ୟ) ଅନୁମତ,ଯଥେଷ୍ଟ,ଅଧିକ ଅସୂୟା, ସ୍ୱଚ୍ଛନ୍ଦ, ଅନଷ୍ଟ, ଆଗମେ ସ୍ୱୀକାର ।
କାମମଞ୍ଜରୀ—ସ୍ତ୍ରୀ. ବି. ନାୟିକାବିଶେଷ ।
କାମମସ୍ତ—ବି.ବିଂ.(କାମ+ମସ୍ତ)କାମ-ବିକାର, କାମପୁଷ୍ଟି ।
କାମମର୍ଦ୍ଦନ—ପୁଂ.ବି. (କାମ+ମୃଦ୍+ଅନ)ମହାଦେବ ।
କାମମହ—ପୁଂ.ବି.୬ତତ୍ପୁ,(କାମ+ମହ) ମଦନୋତ୍ସବ, ଚୈତ୍ର ପୂର୍ଣ୍ଣିମା ତିଥିରେ ଏହି ଉତ୍ସବ କରାଯାଏ ।
କାମମାଳୀ—ପୁଂ.ବି. ଗଣେଶ ।
କାମମୁଦ୍ରା—ସ୍ତ୍ରୀ.ବି.ତନ୍ତ୍ରଶାସ୍ତ୍ରୋକ୍ତ ମୁଦ୍ରା-ବିଶେଷ ।

କାମମୂଢ଼ – ବି. ବିଂ. ୬ତତ୍ପୁ, କାମ + ମୁହ୍ + ତ) କାମପୀଡ଼ାର ହିତାହିତ ବିବେଚନା ରହିତ ।

କାମମୂର୍ତ୍ତ – ବି ବିଂ. (କାମ + ମୂ + ତ) କାମମୂର୍ଚ୍ଛିତ, ଅତ୍ୟନ୍ତ କାମପୀଡ଼ିତ ।

କାମମୋହିତ – ବି.ବିଂ. (୩ତତ୍ପୁ)କାମପୀଡ଼ାଦ୍ୱାରା ହିତାହିତ ଜ୍ଞାନଶୂନ୍ୟ, ସୁରତାସକ୍ତ ।

କାମୟମାନ – ପୁଂ.ବିଂ.(କାମି + କ.ମାନ) କାମୁକ, (ସ୍ତ୍ରୀ) କାମୟମାନା ।

କାମୟାନ – ପୁଂ. ବିଂ. (କାମି + ଆନ) କାମୁକ ।

କାମୟିତା – ପୁଂ. ବିଂ. (କମ୍ + ଣିଚ୍ + କ.ତୃ)କାମୁକ, କାମନାକାରୀ ।

କାମର – ଗ୍ରା. ବିଂ. କାମିକା, ପରିଶ୍ରମୀ, ବ୍ୟବସାୟସମ୍ବନ୍ଧୀୟ, ପ୍ରୟୋଜନୀୟ (ବ୍ୟକ୍ତି ବା କଥା) ।

କାମରା – ଯା. ବି. କୋଠରୀ, ପ୍ରକୋଷ୍ଠ, ଲମ୍ବଘର, ଦାଲାଣ, ବଖରା ।

କାମରସ – ପୁଂ. ବି. ସୁରତ ।

କାମରସିକ – ପୁଂ. ବିଂ. ସୁରତ ଆଦି ବିଷୟରେ ସୁନିପୁଣ ।

କାମରାଜଦୀକ୍ଷିତ – ଶୃଙ୍ଗାରକଲିକା କାବ୍ୟ ପ୍ରଭୃତି ପ୍ରଣେତା ।

କାମରିପୁ – ପୁଂ. ବି. ଶରୀରସ୍ଥ ଷଡ଼ରିପୁ ମଧ୍ୟେ ପ୍ରଥମ ରିପୁ, ଶିବ ।

କାମରୂପ – ପୁଂ.ବିଂ.(ବ.ବ୍ରୀ) ଇଚ୍ଛାନୁରୂପ ରୂପଧାରୀ, ସୁନ୍ଦରରୂପବିଶିଷ୍ଟ, (ବି) ଆସାମର ଗୋଟିଏ ବିସ୍ତୃତ ଜିଲ୍ଲା, ସୁନ୍ଦର ରୂପ, ସ୍ୱେଚ୍ଛାପୂର୍ବକ ଧାରଣ କରାଯିବା ରୂପ, ରାମାୟଣ ବାଲକାଣ୍ଡୋକ୍ତ ବିଶ୍ୱାମିତ୍ରଙ୍କ ମନ୍ତ୍ରାତ୍ମକ ଶରବିଶେଷ, ଦେବତା ।

କାମରୂପଧର – ବି.ବିଂ.(କାମ + ରୂପ + ଧୃ + ଅ) ଇଚ୍ଛାନୁସାରେ ବିବିଧ ରୂପଧାରୀ ।

କାମରୂପପତି – ପୁଂ.ବି.“ଶାରଦାତିଲକ” ନାମକ ତନ୍ତ୍ରର ଟୀକାକାର ।

କାମରୂପିଣୀ—ସ୍ତ୍ରୀ. ବି. (କାମ + ରୂପ + ଇନ୍ + ଈ) ଯେଉଁ ସ୍ତ୍ରୀ ଇଚ୍ଛାନୁସାରେ ବିବିଧ ରୂପ ଧାରଣ କରିପାରେ, ଅଶ୍ୱଗନ୍ଧାଗଛ, ସୁନ୍ଦରୀ ସ୍ତ୍ରୀ ।

କାମରୂପୀ – ପୁଂ.ବି. (କାମରୂପ + ଇନ୍) ବିଦ୍ୟାଧର, ଜାହକ ଜନ୍ତୁ, (ବିଂ) ଇଚ୍ଛାନୁସାରେ ବିବିଧ ରୂପଧାରୀ ।

କାମରେ ଆସିବା – ଗ୍ରା. କ୍ରି. କାର୍ଯ୍ୟପ୍ରତି ଉପଯୁକ୍ତ ହେବା ।

କାମରେଖା – ସ୍ତ୍ରୀ. ବି. (କାମ + ରେଖା) ବ.ବ୍ରୀ, ବେଶ୍ୟା ।

କାମରେ ଲଗାଇବା – ଗ୍ରା. କ୍ରି. କୌଣସି ବ୍ୟକ୍ତିକୁ କୌଣସି କାର୍ଯ୍ୟରେ ନିଯୁକ୍ତ କରିବା, କୌଣସି ବସ୍ତୁକୁ ବ୍ୟବହାରରେ ଲଗାଇବା ।

କାମଲ – ପୁଂ. ବି. (କାମ + ଅଲ୍) ରୋଗବିଶେଷ, ବସନ୍ତକାଳ, ମରୁଭୂମି, (ପୁଂ.ବିଂ.) କାମୁକ, କାମୀ, (ସ୍ତ୍ରୀ) କାମଲା ।

କାମଲତା – ସ୍ତ୍ରୀ. ବି. (୬ତତ୍ପୁ) ଉପସ୍ଥ, ଲତାବିଶେଷ । [ବିଶେଷ ।

କାମଲା – ସ୍ତ୍ରୀ. ବି. (କାମଲ + ଆ) ରୋଗ

କାମଲାକ୍ଷୀ – ସ୍ତ୍ରୀ. ବି. (କାମ + ଲା + ଅକ୍ଷ + ଈ) ଆକର୍ଷଣକାରକ, ଦେବମୂର୍ତ୍ତିବିଶେଷ । [ବଣିଆ ।

କାମଲିଆ – ପ୍ରା. (ମେଦିନୀ)ବିଂ. ସୁନାରୀ

କାମଲିକା – ସ୍ତ୍ରୀ. ବି. କଙ୍ଗୁଧାନ ।

କାମଲୀ – ବି.ବିଂ.(କମଲ + ଇନ୍) କାମଲରୋଗପୀଡ଼ିତ, (ପୁଂ.ବି) ବୈଶାଖମାସ ।

କାମଲେଖା – ସ୍ତ୍ରୀ. ବି. ବେଶ୍ୟା ।

କାମଲୋଲ – ବି. ବିଂ. କାମପୀଡ଼ାରେ ଆକୁଳ ।

କାମବତୀ – ସ୍ତ୍ରୀ. ବି. (କମ + ବତ୍ + ଈ) ଦାରୁହରିଦ୍ରା, ମୈଥୁନଅଭିଳାଷଯୁକ୍ତ ।

କାମବର – ବି. ବିଂ. ଅତିସୁନ୍ଦର, ଅତିରୂପବାନ୍ ।

କାମବଲ୍ଲଭା – ସ୍ତ୍ରୀ. ବି. ରତି, ଜ୍ୟୋତ୍ସ୍ନା ।

କାମବଶ – ବି.ବିଂ. (୬ତତ୍ପୁ) କାମରିପୁର ବଶୀଭୂତ କାମରେ ଜର୍ଜରିତ ।

କାମବଶ୍ୟ – ବି.ବିଂ.(କାମ + ବଶ + ଯ) କନ୍ଦର୍ପ ପୀଡ଼ାର ବଶୀଭୂତ ।

କାମବାଣ – ପୁଂ. ବି, (୬ତତ୍ପୁ) କନ୍ଦର୍ପର ବାଣ, କାମ ପ୍ରବୃତ୍ତିର ଆକ୍ରମଣ, ପୁଷ୍ପବାଣ ।

କାମବାନ୍ – ପୁଂ. ବିଂ. (କାମ + ବତ୍) ଅଭିଳାଷଯୁକ୍ତ, ମୈଥୁନେଚ୍ଛାଯୁକ୍ତ ।

କାମବାୟୁ-ଗ୍ରା.ପୁଂ ବି.କାମବାଈ(ଦେଖ)।

କାମବାସୀ – ବି. ବିଂ. (କାମ + ବସ + ଇନ୍)ଯେ ଇଚ୍ଛାନୁସାରେ ନାନା ସ୍ଥାନରେ ଅସ୍ଥିର ଭାବେ ବାସକରେ ।

କାମବିଦ୍ଧ – ପୁଂ.ବିଂ.(୩ତତ୍ପୁ)କନ୍ଦର୍ପବାଣ ବିଦ୍ଧ, ମୈଥୁନ ଇଚ୍ଛାରେ ଆକୁଳ ।

କାମବିହନ୍ତା – ପୁଂ. ବି, (କାମ + ବି + ହନ୍ + ତୃ)ମହାଦେବ, (ବି. ବିଂ)କାମରିପୁଜୟକାରୀ ।

କାମବୀର୍ଯ୍ୟ – ବି. ବିଂ. ଅପରିମିତ ବୀର୍ଯ୍ୟଶାଳୀ, (କ୍ଲୀ) କନ୍ଦର୍ପର ଶକ୍ତି ।

କାମବୃତ୍ତ – ବି.ବିଂ.(ବ.ବ୍ରୀ) ଯଥେଚ୍ଛାଚାରୀ, (ସ୍ତ୍ରୀ) କାମବୃତ୍ତା ।

କାମବୃତ୍ତି – ସ୍ତ୍ରୀ. ବି. ସ୍ୱେଚ୍ଛାଚାର, କାମରିପୁର କାର୍ଯ୍ୟ, (ବି)ଯଥେଚ୍ଛାଚାରଯୁକ୍ତ ।

କାମବୃଦ୍ଧି – ପୁଂ.ବି. ଗୁଳ୍ମବିଶେଷ, କାମରିପୁର ବୃଦ୍ଧି ।

କାମବେଦନା – ବି. (ମଧ୍ୟ-କ.ଧା) କାମଜ୍ୱାଲା (ଦେଖ) ।

କାମଶକ୍ତି – ସ୍ତ୍ରୀ.ବି. (୬ତତ୍ପୁ)କାମଦେବଙ୍କ ପତ୍ନୀ, ରତି. କାମର୍କି ସ୍ୱାସମ୍ପାଦନ କ୍ଷମତା ।

କାମଶର – ପୁଂ.ବି.(କାମ + ଶର)୬ତତ୍ପୁ କନ୍ଦର୍ପବାଣ, ପୁଷ୍ପବାଣ, କାମ ପ୍ରବୃତ୍ତିର ଆକ୍ରମଣ, ଆମ୍ରବୃକ୍ଷ ।

କାମଶରାଳି – ଗ୍ରା. ବି. ହଂସପକ୍ଷୀ, (ବି) (କାମ + ଶର + ଆଳି)କାମଶରସମୂହ, “ଅଶୋକମରବିନ୍ଦଞ୍ଚ ଚୂତଞ୍ଚ ନବମଲ୍ଲିକା ନୀଲୋତ୍ପଳଞ୍ଚ ପଞ୍ଚୈତେ କାମଦେବସ୍ୟ ସାୟକାଃ ।” (କାମାୟୁଧ ଦେଖ)

କାମଶାସ୍ତ୍ର – କ୍ଲୀ.ବି (କ.ଧା)ଅଭୀଷ୍ଟ ସମ୍ପାଦକ ଶାସ୍ତ୍ର, ରତିଶାସ୍ତ୍ର ।

କାମସଖ – ପୁଂ. ବି. ୬ତତ୍ପୁ; (କାମ + ସଖିନ୍ + ଅ)କନ୍ଦର୍ପସଖା, ବସନ୍ତକାଳ, ଆମ୍ରଗଛ ।

**କାମସୁତ** — ପୁଂ. ବ. (କାମ + ସୁତ) ପ୍ରଦ୍ୟୁମ୍ନପୁତ୍ର ଅନିରୁଦ୍ଧ ।
**କାମସୂ** — ତ୍ରି. ବଂ. (କାମ + ସୂ + କ୍ୱିପ୍) ଅଭୀଷ୍ଟପ୍ରଦ, (ପୁଂ) ଶ୍ରୀକୃଷ୍ଣ ।
**କାମସୂତ୍ର** — କ୍ଳୀ. ବ. ବାତ୍ସ୍ୟାୟନ ପ୍ରଣୀତ କାମବ୍ୟାପାରବୋଧକ ଶାସ୍ତ୍ରବିଶେଷ, (ସ୍ତ୍ରୀ) ରୁକ୍ମିଣୀ ।
**କାମସେଣା** — ଗ୍ରା. ବ. ଅପ୍ସରାବିଶେଷ ।
**କାମସେନା** — ସ୍ତ୍ରୀ. ବ. ଅପ୍ସରାବିଶେଷ ।
**କାମସେମା** — ସ୍ତ୍ରୀ. ବ. ଦୁର୍ଗା ।
**କାମସ୍ତୁତି** — ସ୍ତ୍ରୀ.ବ.ପ୍ରତିଗ୍ରହ ଶାନ୍ତି ନିମିତ୍ତ କାମଦେବଙ୍କ ସ୍ତୁତିରୂପ ମନ୍ତ୍ରବିଶେଷ ।
**କାମହା** — ପୁଂ.ବ.(କାମ + ହନ୍ + କ୍ୱିପ୍) ମହାଦେବ, ବିଷ୍ଣୁ ।
**କାମହେତୁକ** — ତ୍ରି.ବଂ.(କାମହେତୁ + କ) କାମରପୁ ଯୋଗୁଁ, ଅଭିଲାଷବଶତଃ ।
**କାମାଇ** — ଗ୍ରା. ବ. ନିୟମିତ କାର୍ଯ୍ୟରେ ଅନୁପସ୍ଥିତି, ଅବସର, ବିଶ୍ରାମ, ଛୁଟି ।
**କାମାଇତ** — ଗ୍ରା. ବ. (ବ୍ୟଙ୍ଗ) ବୈଷ୍ଣବ ଭେକଧାରୀ, ଲମ୍ପଟ ବ୍ୟକ୍ତି, କପଟ ବୈଷ୍ଣବ ।
**କାମାକ୍ଷ** — ପୁଂ. ବ. ରାଜପୁତ୍ରବିଶେଷ ।
**କାମାକ୍ଷୀ** — ସ୍ତ୍ରୀ. ବ. (କାମ + ଅକ୍ଷି + ଈ) ଦେବୀମୂର୍ତ୍ତିବିଶେଷ, ତନ୍ତ୍ରୋକ୍ତ ପୀଠବିଶେଷ, ଦୁର୍ଗା, ନଦୀବିଶେଷ ।
**କାମାଖ୍ୟ** — କ୍ଳୀ. ବ. ହିନ୍ଦୁ ତୀର୍ଥବିଶେଷ ।
**କାମାଖ୍ୟା** — ସ୍ତ୍ରୀ. ବ. ( କାମ + ଆଖ୍ୟା ) ଆସାମର କାମରୂପ ଦେଶରେ ପ୍ରତିଷ୍ଠିତ ଠାକୁରାଣୀ, ପୀଠସ୍ଥାନବିଶେଷ ।
**କାମାଗ୍ନି** — ପୁଂ. ବ କାମରୂପକ ଅଗ୍ନି, ପ୍ରବଳ ଶୃଙ୍ଗାରାଭିଳାଷ, କାମରପୁଜନିତ ଯନ୍ତ୍ରଣା ।
**କାମାଗ୍ନିସନ୍ଦୀପନ** — କ୍ଳୀ. ବ. କାମୋଦ୍ଦୀପକ ଔଷଧବିଶେଷ, କାମପ୍ରବୃତ୍ତିର ଉଦ୍ରେକ କରଣ ।
**କାମାଙ୍କୁଶ** — ପୁଂ.ବ. (କାମ + ଅଙ୍କୁଶ) ନଖ,ଉପସ୍ଥ,ପୁଂ ଚିହ୍ନ,(ତ୍ରି)କାମଶାନ୍ତିକାରକ ।
**କାମାଙ୍ଗ** — ପୁଂ.ବ. (ବ.ବ୍ରୀ)ଆମ୍ରଗଛ ।
**କାମାତୁର** — ତ୍ରି.ବଂ.(୩ତତ୍)କାମପୀଡ଼ିତ, ସଙ୍ଗମ ଇଚ୍ଛାଯୋଗୁଁ ଉଦ୍‌ବିଗ୍ନ, (ସ୍ତ୍ରୀ) କାମାତୁରା ।
**କାମାତ୍ମଜ** — ପୁଂ.ବ. (କାମ + ଆତ୍ମନ୍ + ଜନ୍ + ଅ) କନ୍ଦର୍ପଙ୍କ ପୁତ୍ର, ଅନିରୁଦ୍ଧ ।
**କାମାତ୍ମତା** — ସ୍ତ୍ରୀ.ବ. (କାମ + ଆତ୍ମନ୍ + ତ + ଆ) କାମାକୁଳ ଚରିତ, ଅନୁରାଗ ପ୍ରଧାନ ଚରିତ୍ର ।
**କାମାତ୍ମା** — ପୁଂ.ବଂ. (ବ.ବ୍ରୀ)ଅନୁରାଗୀ, କାମବଶୀଭୂତ, କାମମଗ୍ନ, ଫଳାଭିଳାଷୀ ।
**କାମାଧିକାର** — ପୁଂ.ବ. (୬ତତ୍) କାମଶରର ଅଧିକାର ।
**କାମାଧିଷ୍ଠାନ** — କ୍ଳୀ.ବ. (୬ତତ୍) କାମର ଅଧିଷ୍ଠାନ ସ୍ଥାନ, ଅର୍ଥାତ୍ ମନ ।
**କାମାଧିଷ୍ଠିତ** — ତ୍ରି.ବଂ. (୩ତତ୍) କନ୍ଦର୍ପ କର୍ତ୍ତୃକ ଅଧିକୃତ ଇନ୍ଦ୍ରିୟାଦି ।
**କାମାନ୍** — ଗ୍ରା.ବ.ଆଗ୍ନେୟ ଅସ୍ତ୍ର ବିଶେଷ, ତୋପ, ବନ୍ଧୁକ ।
**କାମାନଳ** — ପୁଂ.ବ. କାମରୂପକ ଅଗ୍ନି, ପ୍ରବଳ କାମପ୍ରବୃତ୍ତି ।
**କାମାନଶନ** — କ୍ଳୀ. ବ. ଇଚ୍ଛାପୂର୍ବକ ଅନାହାରେ ତପସ୍ୟାବିଶେଷ, ରାଗଦ୍ୱେଷାଦି ରହିତ ଇନ୍ଦ୍ରିୟଗଣଦ୍ୱାରା ବିଷୟ-ଭୋଗ ।
**କାମାନ୍ଧ** — ପୁଂ.ବ. (କାମ + ଅନ୍ଧ + ଅ) କୋକିଳ, ତ୍ରି. ବଂ. (୩ତତ୍) କାମ ବେଗହେତୁ ହିତାହିତ ଜ୍ଞାନଶୂନ୍ୟ, କାମମୁଗ୍ଧ, (ସ୍ତ୍ରୀ) କାମାନ୍ଧା ।
**କାମାନ୍ଧା** — ସ୍ତ୍ରୀ.ବ. କସ୍ତୁରୀ,କାମବେଗଦ୍ୱାରା ହିତାହିତ ଜ୍ଞାନଶୂନ୍ୟା ସ୍ତ୍ରୀ ।
**କାମାନ୍ନୀ** — ତ୍ରି.ବଂ. ଇଚ୍ଛାଭୋଗୀ, ଇଚ୍ଛା ମାତ୍ର ଆହାରଭୋଗକର୍ତ୍ତା ।
**କାମାବଶାୟିତା** — ପୁଂ.ବ.(କାମ + ଶୋ ଇନ୍ + ତା) ଈଶ୍ୱରଙ୍କର ଓ ଯୋଗୀମାନଙ୍କର ଐଶ୍ୱର୍ଯ୍ୟବିଶେଷ, ବାସନା ଶକ୍ତି, ଆପଣାର ଇଚ୍ଛା ପୂର୍ଣ୍ଣକରିବାର କ୍ଷମତା ବା ସିଦ୍ଧି, ଇନ୍ଦ୍ରିୟନିଗ୍ରହ ଶକ୍ତି ।
**କାମାଭିକାମ** — ତ୍ରି.ବଂ. କାମଭୋଗେଚ୍ଛୁ, କାମଭୋଗ ଅଭିଳାଷୀ ।
**କାମାୟୁଧ** — କ୍ଳୀ.ବ. (୬ତତ୍)କନ୍ଦର୍ପବାଣ, ଯଥା—ଆମ୍ରମୁକୁଳ,ଅରବିନ୍ଦ, ଅଶୋକ, ନବମଲ୍ଲିକା, ନୀଳୋତ୍ପଳ ।
**କାମାୟୁଃ** — ପୁଂ. ବ. (କାମ + ଆୟୁସ୍) ଗରୁଡ଼ ।
**କାମାରଣ୍ୟ** — କ୍ଳୀ.ବ. (କ.ଧା) ମନୋହର ବନ, କନ୍ଦର୍ପ ବନ ।
**କାମାରି** — ପୁଂ. ବ. (୬ତତ୍)ମହେଶ୍ୱର, ଶିବ, ବିଟମାକ୍ଷିକ ଧାତୁବିଶେଷ ।
**କାମାର୍ତ୍ତ** — ପୁଂ.ବଂ. (କାମ + ଋତ)୩ତତ୍ କାମପୀଡ଼ିତ,ନିତାନ୍ତ କାମାଭିଳାଷୀ ।
**କାମାର୍ଥୀ** — ପୁଂ.ବଂ.(କାମ + ଅର୍ଥ + ଇନ୍) କାମପ୍ରବୃତ୍ତି ଚରିତାର୍ଥକରିବା ନିମନ୍ତେ ଇଚ୍ଛୁକ, ଅଭୀଷ୍ଟପ୍ରାର୍ଥୀ,କାମପ୍ରାର୍ଥୀ, (ସ୍ତ୍ରୀ) କାମାର୍ଥିନୀ ।
**କାମାଲିକା** — ସ୍ତ୍ରୀ. ବ. (କାମ + ଅଲ + ଇକ + ଆ) ମଦ୍ୟ ।
**କାମାଳୁ** — ପୁଂ.ବ. (କାମ + ଅଲ + ଉ) ରକ୍ତକାଞ୍ଚନଗଛ,(ବଂ)ଅତ୍ୟନ୍ତକାମୁକ ।
**କାମାବଚର** — ପୁଂ. ବଂ. (କାମ + ଅବ + ଚର + କ.ଅ) ସ୍ୱେଚ୍ଛାଗ୍ରସ୍ତ ।
**କାମାବତାର** — ପୁଂ. ବ. (୬ତତ୍)କାମଦେବଙ୍କର ଅବତାର ।
**କାମାବଶା(ସା)ୟିତା** — ସ୍ତ୍ରୀ.ବ. (କାମ + ଅବ + ଶୀ + ଣିଚ୍ + ଇନ୍ + ତ + ଆ) ସତ୍ୟସଙ୍କଳ୍ପତା ।
**କାମାବସାୟ** — ପୁଂ.ବ.ଇଚ୍ଛାମତେ ପଦାର୍ଥସମୂହ ନିଷ୍ପନ୍ନ କରିବା ।
**କାମାବସାୟିତା** — ସ୍ତ୍ରୀ ବ.ସତ୍ୟସଙ୍କଳ୍ପତା ।
**କାମାବସାୟୀ** — ତ୍ରି. ବଂ. (କାମ + ଅବ + ସୋ + ଣିଚ୍ + ଇନ୍)ସତ୍ୟସଙ୍କଳ୍ପ, ଇଚ୍ଛାନୁସାରେ ଯେ ପଦାର୍ଥ ସମୂହର ନିଷ୍ପନ୍ନ କରିପାରେ ।
**କାମାଶନ** — କ୍ଳୀ.ବ. ଇଚ୍ଛାମତେ ଭୋଜନ, ପର୍ଯ୍ୟାପ୍ତ ଭୋଜନ ।
**କାମାଶ୍ରମ** — ପୁଂ. ବ. (କ.ଧା) ରମଣୀୟ ଆଶ୍ରମ ।
**କାମାଶ୍ରମପଦ** — କ୍ଳୀ.ବ. ରମଣୀୟ ଆଶ୍ରମସ୍ଥାନ ।

କାମାସକ୍ତ — ପୁଂ. ବିଂ. (୬ତତ୍ପୁ) କାମ-ଶରପୁର ବଶୀଭୂତ, ଅଭିଳାଷ ମାତ୍ରର ବଶୀଭୂତ,ବିଷୟାନୁରାଗୀ,ସମ୍ଭୋଗପ୍ରିୟ, (ସ୍ତ୍ରୀ) କାମାସକ୍ତା ।

କାମାସକ୍ତି—ସ୍ତ୍ରୀ ବି. କାମବିଷୟକ କାର୍ଯ୍ୟ ବା ଚିନ୍ତାରେ ଅତି ଅନୁରାଗ ।

କାମାସନ — କ୍ଳୀ. ବି. (କାମ + ଆସ୍ + ଅନ) ଆସନବିଶେଷ ।

କାମି — ପୁଂ. ବି. (କାମ + ଇ) କାମୁକ-ବ୍ୟକ୍ତି, (ସ୍ତ୍ରୀ) ରତି, କନ୍ଦର୍ପପତ୍ନୀ ।

କାମିଆ—ଗ୍ରା. (ସମ୍ବ) ବି. ଖାମିନ୍ଦଠାରୁ ଟଙ୍କା ଋଣକରି କେବଳ ସୁଧ ବାବଦରେ ଭୃତ୍ୟତ୍ୱକରିବା ଲୋକ, ଧନମୂଲିଆ ।

କାମିକ — ପୁଂ. ବି. (କାମ + ଇକ) କାର-ଣ୍ଡବପକ୍ଷୀ, ବନ୍ୟହଂସ,(ବିଂ) କାମନା-ଯୁକ୍ତ, କର୍ମଦକ୍ଷ,ପ୍ରୟୋଜନୀୟ, ପରଶ୍ରମୀ, କାମୁକ, ବାଞ୍ଛିତ ଇଚ୍ଛାପୂରଣକାରୀ, ଇଚ୍ଛାସମ୍ବନ୍ଧୀୟ ।

କାମିକା—ଗ୍ରା. ବି. କାମିକ (ଦେଖ) ।

କାମିକୀ — ସ୍ତ୍ରୀ.ବି.(କାମିକ + ଈ)କାରଣ୍ଡବ ପକ୍ଷିଣୀ, କାମନାଜନକ କାର୍ଯ୍ୟାଦି ।

କାମିଜ୍ — ଯା. ବି. ଜାମାବିଶେଷ, ଏକ-ପ୍ରକାର କୁର୍ତ୍ତା ।

କାମିଜନ — ପୁଂ. ବିଂ. (କ.ଧା) ପ୍ରେମିକ ବ୍ୟକ୍ତି, ପ୍ରଣୟୀ ବ୍ୟକ୍ତି ।

କାମିଣୀ — ସ୍ତ୍ରୀ.ବି. ଗ୍ରା. (ସିଂହ) ମୂଲିଆଣୀ (ପୁଂ) କାମିଆଁ ।

କାମିତ—ବି. ବିଂ. (କାମ୍ + ଣିଚ୍ + ମଁ, ତ) ଅଭିଲଷିତ,ପ୍ରାର୍ଥିତ,ଇପ୍ସିତ,(ବି) ଇଚ୍ଛା ।

କାମିଦାର — ଗ୍ରା. (ସମ୍ବ) ବି. କାମଦାର (ଦେଖ) ।

କାମିନୀ — ସ୍ତ୍ରୀ. ବି. (କାମ + ଇନ୍ + ଈ) ନାରୀ, ସ୍ତ୍ରୀ, ମଦିରା, ମନୋହାରିଣୀ ସ୍ତ୍ରୀ, ଦାସୀ, ମଲ୍ଲଙ୍ଗ, ଦାରୁହରିଦ୍ରା, ଭୀରୁ, (ସ୍ତ୍ରୀ) ଆମ୍ବଅଦା, ଗୁଳ୍ମବିଶେଷ, ଏକ-ପ୍ରକାର ଫୁଲ ଓ ଗଛ,ପ୍ରଣୟିନୀ, (ବିଂ) କାମୁକୀ, ଭୋଗାଭିଳାଷିଣୀ ।

କାମିନୀକାଞ୍ଚନ — ବି. (ଦ୍ୱନ୍ଦ୍ୱ) ପୃଥିବୀରେ ଭୋଗବିଳାସର ଦୁଇଟି ପ୍ରଧାନ ଉପ-କରଣ, କିନ୍ତୁ ମୁକ୍ତି ଅଭିଳାଷୀ ବ୍ୟକ୍ତି-ଙ୍କର ଅବଶ୍ୟ ତ୍ୟାଗକରିବା ଯୋଗ୍ୟ ଦୁଇଟି ବସ୍ତୁ ।

କାମିନୀପ୍ରିୟ — ପୁଂ.ବିଂ. (ବ.ବ୍ରୀ) ଯେ ସ୍ତ୍ରୀଲୋକମାନଙ୍କର ସଂସର୍ଗରେ ସର୍ବଦା କାଳଯାପନ କରେ, ସ୍ତ୍ରୈଣ ।

କାମିନୀବଶ — ପୁଂ. ବିଂ. (୬ତତ୍ପୁ) ସ୍ତ୍ରୀର ଆଜ୍ଞାନୁବର୍ତ୍ତୀ, (ଗ୍ରା.ବି) ପୌରାଣିକ ବୃକ୍ଷ ବିଶେଷ ।

କାମିନୀଶ — ପୁଂ.ବି. ସଜନାଗଛ ।

କାମିନୀସୁଲଭ — ବିଂ. (୭ତତ୍ପୁ) ଯାହା ସମସ୍ତ ସ୍ତ୍ରୀଲୋକଙ୍କଠାରେ ଦେଖାଯାଏ ।

କାମିଲ୍ — ଯା. ବିଂ. ସ୍ଥାୟୀ, ପୂର୍ଣ୍ଣ,ପୁରା, ସମୁଦାୟ, ଯୋଗ୍ୟ, ଉପଯୁକ୍ତ ।

କାମିଲ୍‌ବାଜ୍ୟାପ୍ତି -ଯା.ବି.ଯେଉଁବାଜ୍ୟାପ୍ତି ଲାଖରାଜ ଜମିଉପରେ ପୁରାଜମା ଧାର୍ଯ୍ୟ ହୋଇଅଛି ।

କାମିଲା — ଯା. ବି. ଶିଳ୍ପୀ,କାରୁକର ବା କାରଗର ।

କାମୀ — ପୁଂ.ବିଂ.(କାମ + ଇନ୍)କାମୁକ, ଫଳାଭିଳାଷୀ, ଅଭିଳାଷୁକ, ଲୋଭୀ, କର୍ମୀ.(ସ୍ତ୍ରୀ) କାମିନୀ,(ବି) କାମୁକବ୍ୟକ୍ତି, ଚନ୍ଦ୍ର, କପୋତ, ପାରାବତ, ଚଟକ, ଘରଚଟିଆ,ଚକ୍ରବାକ,ଚକୁଆ, ଚକୋଇ, ଋଷଭ ନାମକ ଔଷଧ ବିଶେଷ,ସାରସ, କକଡ଼ାଶୃଙ୍ଗୀ, ବିଷ୍ଣୁ, (ସ୍ତ୍ରୀ.ବି) କୌଣସି ପତଳାଜିନିଷକୁ ଟାଣ କରିବା ନିମନ୍ତେ ତା' ପଛରେ ଜୋର ଦିଆଯିବା ପଟା ବା କାଠ ବା ପଟି, ମୁଲିଆ, ଶଗଡ଼ର ହାଲ, ଓଲୁଆ ।

କାମୀନ — ପୁଂ. ବି. ରାମଗୁଆ,ରାମସୁପାରି, (ବିଂ) କାମଦେବର ଅନୁଗତ, କାମ-ଶରପୁର ବଶୀଭୂତ ।

କାମୀଲ — ପୁଂ. ବି, ରାମସୁପାରି, (ବିଂ) କାମଦେବ ବା କାମଶରପୁର ଅନୁଗତ, (ପୁଂ.ବିଂ) କାମୁକ, ଅଭିଳାଷୀ ।

କାମୁକ — ପୁଂ. ବିଂ. (କମ୍ + ଣିଚ) ଉକ କାମୀ,କାମାତୁର,ରମଣାଭିଳାଷୀ,ବିଳାସୀ, (ସ୍ତ୍ରୀ) କାମୁକୀ,(ବି)ଅଶୋକବୃକ୍ଷ,ମାଧବୀ ଲତା,ଘରଚଟିଆ ପକ୍ଷୀ,ଅତିମୁକ୍ତଲତା ।

କାମୁକକାନ୍ତା—ସ୍ତ୍ରୀ.ବି. ମାଧବୀଲତା,ଅତି ମୁକ୍ତଲତା, ଅଶୋକବୃକ୍ଷ ।

କାମୁକତ୍ୱ — କ୍ଳୀ. ବି. କାମାତୁରତା, କାମପ୍ରବଣତା ।

କାମୁକା — ସ୍ତ୍ରୀ. ବି. (କାମ + ଉକ + ଆ) ଇଚ୍ଛାବତୀ, ଭୋଗ ବିଳାସବିଶିଷ୍ଟା, ରମଣେଚ୍ଛାଯୁକ୍ତା ।

କାମୁକୀ—ସ୍ତ୍ରୀ.ବିଂ. କା + ମୁକ(ସ୍ତ୍ରୀ) — ଈ ମୈଥୁନେଚ୍ଛାବିଶିଷ୍ଟା ।

କାମୁଡ଼ା — ଗ୍ରା. ବି. ଦଂଶନ, ଦନ୍ତଦ୍ୱାରା କ୍ଷତ କରିବା,ପେଟଭିତରେ କାମୁଡ଼ିବା-ପରି ଯନ୍ତ୍ରଣା, ଯେ କାମୁଡ଼େ, କାମଡ଼ା (ଦେଖ,)(ବିଂ)ଯେ କାମୁଡ଼େ, କାମୁଡ଼ା ହୋଇଥିବା, ଦଷ୍ଟ ।

କାମୁଡ଼ାଇବା — ଗ୍ରା. କ୍ରି. କାମୁଡ଼ିବାର ଣିଜନ୍ତରୂପ ।

କାମୁଡ଼ା କାମୁଡ଼ି ହେବା-ଗ୍ରା.କ୍ରି.ପରସ୍ପର ଦଂଶନ କରିବା, ପରସ୍ପର ମଧ୍ୟରେ କଳି କଜିଆ କରିବା ।

କାମୁଡ଼ିଆ — ଗ୍ରା.ବିଂ.ପୁଂ.ଅନ୍ୟକୁ କାମୁଡ଼ି ବାରେ ଅଭ୍ୟସ୍ତ(ଜୀବ),କାମୁଡ଼ା (ଲ.ଅର୍ଥ) ଯେ ଅଯଥା ବିରକ୍ତହୁଏ, ଚଡ଼ଲ, (ସ୍ତ୍ରୀ) କାମୁଡ଼େଇ ।

କାମୁଡ଼ିଧରିବା-ଗ୍ରା.କ୍ରି.ଦନ୍ତଦ୍ୱାରା କାମୁଡ଼ି କାମୁଡ଼ା ସ୍ଥାନକୁ କିଛି ସମୟ ପର୍ଯ୍ୟନ୍ତ ଦାନ୍ତରେ ଧରିବା,ଜାବୁଡ଼ିକରି ଧରିବା ।

କାମୁଡ଼ିବା — ଗ୍ରା.କ୍ରି.ବି. ଦନ୍ତଦ୍ୱାରା ଚିରିବା ବା କ୍ଷତ କରିବା,(ପେଟ)ଶୂଳ ରୋଗା-କ୍ରାନ୍ତହେବା, ପେଟ ବ୍ୟଥିତ ହେବା ।

କାମୁଡ଼ିହେବା — ଗ୍ରା.କ୍ରି. (ପେଟ) ଶଳ-ଦ୍ୱାରା ପୀଡ଼ାଗ୍ରସ୍ତ ହେବା, ଘାଣ୍ଟିଚକଟି ହେବା, ଖେଙ୍କିହେବା ।

କାମେଖବର—ଗ୍ରା. ଅବ୍ୟ, କାମପ୍ରତି ମନୋଯୋଗ ଦିଅ ।

କାମେରା — ଯା. ବି. ଫଟୋଗ୍ରାଫ ବା ଆଲୋକ ଚିତ୍ରର ଯନ୍ତ୍ରବିଶେଷ ।

କାମେଶ୍ୱର — ପୁଂ. ବି. (୬ତତ୍ପୁ)କାମର ଈଶ୍ୱର,ପରମେଶ୍ୱର,(ସ୍ତ୍ରୀ)କାମେଶ୍ୱରୀ ।

**କାମେଶ୍ବରୀ**—ସ୍ତ୍ରୀ.ବି. (କ.ଧା.)କାମାଖ୍ୟା-ସ୍ଥିତା ଦେବୀବିଶେଷ, ଭୈରବୀ ବିଶେଷ, କାମଦାୟିକା ଈଶ୍ବରୀ ।

**କାମୋଦ**—ପୁଂ. ବି. ରାଗିଣୀବିଶେଷ ।

**କାମୋଦକ**—କ୍ଲୀ ବି. (କାମ+ଉଦକ) କ.ଧା; ମୃତବ୍ୟକ୍ତିର ଉଦ୍ଦେଶ୍ୟେ ଇଚ୍ଛାନୁସାରେ ଯେଉଁ ଜଳ ପ୍ରଦତ୍ତ ହୁଏ ।

**କାମୋଦକଲ୍ୟାଣ**—ପୁଂ. ବି. କାମୋଦ ଓ କଲ୍ୟାଣ ମିଶ୍ରିତ ରାଗିଣୀ ।

**କାମୋଦନଟ**—ପୁଂ. ବି. କାମୋଦ ଓ ନଟ ମିଶ୍ରିତ ରାଗ ।

**କାମୋଦା**—ସ୍ତ୍ରୀ. ବି. ରାଗିଣୀବିଶେଷ ।

**କାମୋଦୀ**—ସ୍ତ୍ରୀ. ବି. ରାଗିଣୀ ବିଶେଷ ।

**କାମୋଦ୍ଦୀପକ**—ବିଂ. (ଷତତ୍ପୁ) କାମର ଉଦ୍ଦୀପନକାରୀ, ଯାହାଦ୍ବାରା ମନୁଷ୍ୟର ସହବାସ ପାଇଁ ଇଚ୍ଛା ବଳବତୀ ହୁଏ ।

**କାମୋପହତ**—ପୁଂ.ବିଂ.(୩ତତ୍ପୁ)କାମାନ୍ଧ, କାମାତୁର, (ପୁଂ. ବି. ବ.ବ୍ରୀ.) ଶିବ, ମହାଦେବ ।

**କାମ୍ପ**—ଯା.ବି.ତମ୍ବୁ,ରାଉଟି,ଅସ୍ଥାୟୀବାସ ।

**କାମ୍ପ**—ପ୍ରା.(ଗଞ୍ଜାମ) ବି. ଓଡ଼ିଆ ଶୂଦ୍ର-ଜାତିବିଶେଷ ।

**କାମ୍ପର**—ପ୍ରା.(ସମ୍ବ)ବି.ଶିହଳ,ସ୍ରୋତ-ହୀନ ଜଳଉପରେ ପଡ଼ିବା ମଳ,ନେଳୀ ।

**କାମ୍ପିଲ୍ଲ**—ପୁଂ.ବି.(କମ୍ପିଲ+ଯ)ସୁଗନ୍ଧ ଦ୍ରବ୍ୟବିଶେଷ, ଜନପଦବିଶେଷ, ଲତା ଓ ଗୁଳ୍ମବିଶେଷ ।

**କାମ୍ପିଲ୍ଲକ**—ତ୍ରି. ବିଂ. କାମ୍ପିଲ୍ଲ ଦେଶଜାତ, (ପୁଂ. ବି.) କମଳା ଗୁଣ୍ଡି ନାମକ ସୁଗନ୍ଧ ଦ୍ରବ୍ୟବିଶେଷ ।

**କାମ୍ପିଲ୍ଲ,(ଲ୍ଲକ)**—ସୁଗନ୍ଧଦ୍ରବ୍ୟ ବିଶେଷ, କମଳାଗୁଣ୍ଡୀ ।

**କାମ୍ପିଲ**—ପୁଂ. ବି. କାମ୍ପିଲ୍ଲ ନଗର, ପଳାଶଗଛ ।

**କାମ୍ପି**—ଗ୍ରା.ବିଂ.(ସଂ-କୃପଣ)ବ୍ୟୟକୁଣ୍ଠ, କୃପଣ ।

**କାମ୍ବଳ**—ବି. (କମ୍ବଳ+ଅ)କମ୍ବଳଦ୍ବାରା ଆବୃତ ରଥ, (ବିଂ.)କମ୍ବଳସମ୍ବନ୍ଧୀୟ ।

**କାମ୍ବଳକ**—ପୁଂ. ବି. ବୈଦ୍ୟଶାସ୍ତ୍ରୋକ୍ତ ଯୂଷବିଶେଷ ।

**କାମ୍ବବିକ**—ବି. (କମ୍ବୁ+ଇକ) ଶଙ୍ଖାରି, ଶଙ୍ଖ ତିଆରିକରିବା ବ୍ୟକ୍ତି ।

**କାମ୍ବୁକା**—ସ୍ତ୍ରୀ. ବି. ଅଶ୍ବଗନ୍ଧା ।

**କାମ୍ବେ**—ସ୍ଥା. ବି. ଗୁଜୁରାଟ ପ୍ରଦେଶର ଦକ୍ଷିଣରେ ଓ ଭାରତର ପଶ୍ଚିମ ଉପକୂଳରେ ଥିବା ଉପସାଗର ଓ ବନ୍ଦରବିଶେଷ ।

**କାମ୍ବୋଜ**—ପୁଂ. ବି. (କମ୍ବୋଜ+ଅ) କମ୍ବୋଜଦେଶୀୟ ଅଶ୍ବ, ପୁନ୍ନାଗବୃକ୍ଷ, ଗୁଜୁରାଟ ନିକଟସ୍ଥ ଦେଶବିଶେଷ, ପ୍ରାଚୀନ ଯବନଜାତିବିଶେଷ, ଶ୍ବେତ-ଖଇର ।

**କାମ୍ବୋଜକ**—ବିଂ. କାମ୍ବୋଜଦେଶବାସୀର ହାସ୍ୟାଦି । [ଖଇର ।

**କାମ୍ବୋଜି**—ସ୍ତ୍ରୀ. ବି. ମାଷପର୍ଣ୍ଣୀ, ପାକଡ଼ା

**କାମ୍ବୋଜୀ**—ସ୍ତ୍ରୀ. ବି. ମାଷପର୍ଣ୍ଣୀ, ପାକଡ଼ା ଖଇର ।

**କାମ୍ୟ**—ତ୍ରି.ବିଂ.(କାମ୍+ଣି,ଯ)ବାଞ୍ଛିତ, ଅଭୀଷ୍ଟ, ସୁନ୍ଦର, ଅଭିଲଷଣୀୟ, ଯାହା କରିବା ନ କରିବା ମନୁଷ୍ୟର ଇଚ୍ଛା ଉପରେ ନିର୍ଭର କରେ,ଫଳାକାଙ୍କ୍ଷାର ଅନୁଷ୍ଠେୟ, (ବି) ଅଭୀଷ୍ଟକର୍ମ ।

**କାମ୍ୟକ**—ବି. କାମ୍ୟକ ବନ ।

**କାମ୍ୟକବନ**—କ୍ଲୀ. ବି. ବନବିଶେଷ, ସରସ୍ବତୀ ନଦୀତୀରସ୍ଥ ବନ ।

**କାମ୍ୟକର୍ମ**—କ୍ଲୀ. ବି. (କ.ଧା.) ଯେଉଁ କାର୍ଯ୍ୟ ବା ଦୈନିକ କର୍ମ କୌଣସି କାମନାସିଦ୍ଧି ପ୍ରତି ଲକ୍ଷ୍ୟ ରଖି ଅନୁଷ୍ଠିତ ହୁଏ ।

**କାମ୍ୟତା**—ସ୍ତ୍ରୀ. ବି. (କାମ୍ୟ+ତ+ଆ) ଭୋଗ୍ୟତା,କମନୀୟତା, ବାଞ୍ଛନୀୟତା ।

**କାମ୍ୟଦାନ**—କ୍ଲୀ. ବି. ସୁନ୍ଦର ବସ୍ତୁର ଦାନ, ପୁତ୍ର, ଐଶ୍ବର୍ଯ୍ୟ, ଜୟ ପ୍ରଭୃତି ଲାଭ କରିବାକୁ ଯେ ଦାନ ଦିଆଯାଏ ।

**କାମ୍ୟଧର୍ମ** ବି.(କ,ଧା)ଯେଉଁ ଧର୍ମ ଆଚରଣ କରିବାକୁ ମନୁଷ୍ୟ ବାଧ୍ୟ ନୁହେ ଓ ଯାହା ମନୁଷ୍ୟ ଇଚ୍ଛାକଲେ କରିପାରେ ।

**କାମ୍ୟଫଳ**—କ୍ଲୀ.ବି.(ଷତତ୍ପୁ)ବାଞ୍ଛିତଫଳ, ମନାସିଥିବା ଉଦ୍ଦେଶ୍ୟ, କାମ୍ୟକର୍ମର ଫଳ ।

**କାମ୍ୟମରଣ**—କ୍ଲୀ.ବି.(୩ତତ୍ପୁ)(କାମ୍ୟ+ମୃ+ଅନ) ବାଞ୍ଛନୀୟ ମୃତ୍ୟୁ, ମୁକ୍ତି, ସୁଖମୟ ମରଣ ।

**କାମ୍ୟମାନ୍**—ବିଂ. (କାମି+(କ.) ମାନ) ପ୍ରାର୍ଥ୍ୟମାନ, ଯାହାପାଇଁ ପ୍ରାର୍ଥନା କରାଯାଏ, (ସ୍ତ୍ରୀ) କାମ୍ୟମାନା ।

**କାମ୍ୟବ୍ରତ**—କ୍ଲୀ.ବି.ଅଭୀଷ୍ଟଫଳପ୍ରଦ ବ୍ରତ ।

**କାମ୍ୟା**—ସ୍ତ୍ରୀ.ବି.(କମ୍+ଣିଚ୍+ଯ+ଆ) କାମନା,କମନୀୟତା,ପ୍ରିୟବ୍ରତର ପତ୍ନୀ ।

**କାମ୍ୟାଭିପ୍ରାୟ**—ପୁଂ. ବି. ବାଞ୍ଛନୀୟ ଅଭିପ୍ରାୟ ।

**କାମ୍ୟେକ**—ସ୍ଥା.ବି. କାମ୍ୟକବନ ନିକଟସ୍ଥ ପର୍ବତବିଶେଷ ।

**କାମ୍ୟୋପାସନା**—ସ୍ତ୍ରୀ.ବି. ବାସନା ସିଦ୍ଧି ନିମନ୍ତେ ଯେଉଁ ଉପାସନା କରାଯାଏ ।

**କାମ୍ଳ**—କ୍ଲୀ.ବି.(କୁ+ଅମ୍ଳ) ସାମାନ୍ୟଖଟା ସ୍ବାଦୁ, (ବିଂ) ଖଟାଳିଆ ।

**କାୟ**—କ୍ଲୀ.ବି. (ଚି+ଣି,ଅ) (କାକ+ଇ+କ+ଅ) କରତଳସ୍ଥ କନିଷ୍ଠା ଓ ଅନାମିକା ଅଙ୍ଗୁଳିର ମୂଳଦେଶ, ମନୁଷ୍ୟତୀର୍ଥ, (ପୁଂ.ବି.) ଦେହ, ଶରୀର, ସମୂହ,ପ୍ରସାର, ବିସ୍ତୃତ, ଲକ୍ଷ୍ୟ, ସ୍ବଭାବ, ଆବାସ,ଗୃହ, ବୃକ୍ଷ, ସ୍ବାଭାବିକ ଅବସ୍ଥା, ମୂଳଧନ, ପ୍ରାଜାପତ୍ୟ ବିବାହ ।

**କାୟକ୍ଲେଶ**—ପୁଂ. ବି. (ଷତତ୍ପୁ)ଶାରୀରିକ ପରିଶ୍ରମ, ଉପବାସାଦି କାର୍ଯ୍ୟ ।

**କାୟଦା**—ଯା. ବି. ନିୟମ, ଚତୁରତା, ବଶବର୍ତ୍ତିତା, (ବିଂ) ଆୟତ୍ତ, ପରାଭୂତ, ଜବଦ୍ଦ ।

**କାୟଫଳ**—ବିଂ. କଟଫଳ ।

**କାୟମନୋବାକ୍ୟ**—ବି. (କାୟ+ମନଃ+ବାକ୍ୟ) ଶରୀର, ମନ ଓ ବାକ୍ୟ ।

କାୟମନୋବାକ୍ୟରେ—କ୍ରି.ବିଂ.ସର୍ବାନ୍ତଃ କରଣରେ, ଶାରୀରିକ ମାନସିକ ଓ ବାଚନିକଉପାୟ ଦ୍ୱାରା ।

କାୟମାନ—କ୍ଳୀ. ବି. (କାୟ+ମାନ) ତୃଣକୁଟୀର, ପର୍ଣ୍ଣକୁଟୀର, ରାଜାଙ୍କ ଆବାସଯୋଗ୍ୟ ପଟ୍ଟଭବନାଦି ।

କାୟରୁପସଂଯମ—ପୁଂ. ବି. ପାତଞ୍ଜଳ କଥିତ ଧ୍ୟାନବିଶେଷ ।

କାୟବନ୍ଧନ—କ୍ଳୀ. ବି. କବଚ, ବର୍ମ ।

କାୟବ୍ୟ—ପୁଂ. ବି. ମହାଭାରତୋକ୍ତ ଦସ୍ୟୁରାଜାବିଶେଷ ।

କାୟସମ୍ପଦ—ସ୍ତ୍ରୀ. ବି. ରୂପ, ଲାବଣ୍ୟ, ବଳ, ସୁଗଠନ ପ୍ରଭୃତି ଶରୀର, ସମ୍ପତ୍ତି ବୋଲି ଅଭିହିତ ।

କାୟସ୍ଥ—ପୁଂ.ବି.(କାୟ+ସ୍ଥା+କ,ଅ) ଅନ୍ତର୍ଯାମୀ, ପରମେଶ୍ୱର ଆତ୍ମା,ଜାତିବିଶେଷ, (ବିଂ) ଶାରୀରିକ,ଦେହସ୍ଥ ।

କାୟସ୍ଥା—ସ୍ତ୍ରୀ.ବି.(କାୟସ୍ଥ+ଆ)କାୟସ୍ଥଜାତୀୟା ସ୍ତ୍ରୀ, ହରଡ଼ା,ଅଁଳାଫଳଗଛ, ତୁଳସୀ, କାକୋଲି, ବଡ଼ଅଲେଇଚ ଓ ଛୋଟ ଅଲେଇଚ ।

କାୟସ୍ଥୈର୍ଯ୍ୟ—କ୍ଳୀ.ବି.(ବୈଦ୍ୟ) ରସାୟନ ଔଷଧାଦିଦ୍ୱାରା ଶରୀରର ସ୍ଥିରତା, ଦୀର୍ଘକାଳ ଶରୀରର ଅବସ୍ଥିତି ।

କାୟା—ଗ୍ରା. ବି. ଶରୀର, ଦେହ ।

କାୟାଗ୍ନି—ପୁଂ.ବି.ଶରୀରସ୍ଥଅଗ୍ନି ବିଶେଷ, ପାଚକାଗ୍ନି, ପିତ୍ତ ।

କାୟାଭ୍ରଷ୍ଟକରିବା—ଗ୍ରା. କ୍ରି. ନୀଚଜାତିର ପାକରେ ବା ନିଷିଦ୍ଧ ଖାଦ୍ୟ ଖାଇ ଦେହକୁ ଅପବିତ୍ରକରିବା,ନୀଚସହ ବାସ ଦ୍ୱାରା ଦେହକୁ ଅପବିତ୍ର କରିବା,ଦୈହିକ ପାପ କରିବା ।

କାୟିକ—ତ୍ରି. ବିଂ. (କାୟ+ଇକ) ଶାରୀରିକ, ଶରୀର ସମ୍ବନ୍ଧୀୟ ।

କାୟିକପରିଶ୍ରମ—ବି. ଶାରୀରିକ ପରିଶ୍ରମ, ଦେହପରିଶ୍ରମ ।

କାୟିକା—ସ୍ତ୍ରୀ.ବି. (କାୟିକ+ଆ)ଧନର ବୃଦ୍ଧିବିଶେଷ, ମୂଳଧନର ହାନି ନ ହୋଇ ଯେ ଲାଭ ହୁଏ ।

କାୟିକାବୃଦ୍ଧି—ସ୍ତ୍ରୀ. ବି. ଗୋରୁ, ବଳଦ ପ୍ରଭୃତିଙ୍କର କାୟିକ ପରିଶ୍ରମଦ୍ୱାରା ଯେ ବୃଦ୍ଧି ଉତ୍ପାଦିତ ହୁଏ, ଅର୍ଥାତ୍ ଦେଣାଦାର ଋଣ କରିଥିବା ମୂଳଧନର ସୁଧ ମହାଜନଙ୍କୁ ପରିଶୋଧ କରିବା ପାଇଁ ନିଜ ଗାଈ ବଳଦ ଆଦିକୁ ଖଟାଇ ଯେଉଁ ପରିଶ୍ରମ କରେ ।

କାୟୋତ୍ଥଜ—ପୁଂ. ବିଂ. (କାୟ+ଉତ୍+ଜନ+ଅ) ପ୍ରାଜାପତ୍ୟ ବିବାହସମ୍ଭୂତ (ସନ୍ତାନ) ।

କାୟୋତ୍ସର୍ଗ—ଗ୍ରା.ବି.ପରାର୍ଥେ ଶରୀରଦାନ ବା କଷ୍ଟଭୋଗ ।

କାର୍—ଯା ବି.କର୍ମ,କାର୍ଯ୍ୟ, ବ୍ୟବସାୟ, କର୍ତ୍ତବ୍ୟକାର୍ଯ୍ୟ ।

କାର୍କୁନ୍—ଯା. ବି. ବିଷୟ ସମ୍ପତ୍ତିର ତତ୍ତ୍ୱାବଧାରକ,ଗୁମାସ୍ତା, ହିସାବ ରଖିବା ଲୋକ ।

କାରଗୁଜାରି—ଯା. ବି. କାର୍ଯ୍ୟନିର୍ବାହ ।

କାରଚୋବି—ଯା. ବି. କସୀଦାକାମ, ଛୁଞ୍ଚିଦ୍ୱାରା ଲୁଗାଉପରେ ଜରିର ଫୁଲ ଓ ବୁଟି ଆଦି କରିବା କର୍ମ ।

କାର୍‌ଜୀ—ଗ୍ରା.ବି.(ସଂ-କାର୍ଯ୍ୟୀ)କାର୍ଯ୍ୟକାରୀ ବ୍ୟକ୍ତି, ସରବରାକାରୀ, କାର୍ଯ୍ୟର ଭାରପ୍ରାପ୍ତ ବ୍ୟକ୍ତି, ଜମୁକରଣ, ଗ୍ରାମର ଦଳପତି ।

କାରତୁଷ୍—ଯା. ବି. ବାରୁଦଗୁଳା ବା ଛର୍‌ରାଭର୍ତ୍ତି ଲମ୍ବନଳି,ଯାହା ବନ୍ଧୁକରେ ଭରିଯାଇ ଫାଏର କରାଯାଏ ।

କାର୍‌ଦାନୀ—ଯା., ବି. ସାମର୍ଥ୍ୟ, ଶକ୍ତି, କ୍ଷମତା,କାରାମତ,ନିପୁଣତା, ପ୍ରବୀଣତା ।

କାର୍‌ପର୍‌ଦାର୍‌ଦାଜ୍—ଯା. ବି. କୌଣସି ବିଷୟର ଭାରପ୍ରାପ୍ତ କର୍ମଚାରୀ,ପ୍ରତିନିଧି ।

କାରପାଟ୍—ଯା. ଗାଲିଚା, ଅଖା,ବସ୍ତା ।

କାର୍‌ବାଇଡ଼୍—ଯା.ବି.ଦାହ୍ୟବସ୍ତୁ ଉତ୍ପନ୍ନକାରୀ,ରାସାୟନିକ ଦ୍ରବ୍ୟବିଶେଷ ।

କାରମିତାନ—ପ୍ରା. (ସମ୍ବ) କ୍ରି. ବିଂ. କାହାପରି ।

କାର୍‌ରେଜ—ଯା. ବି. କୌଶଳ, ଛଳ, ଚାତୁରୀ,କୂଟତତ୍ତ୍ୱ,କାରର୍‌ବାଇ ।

କାରସାଜିଆସାଜି—ଯା. ବି.ଛଳ,ଶଠତା, ଚାତୁରୀ, ଚାଲାକି, କୌଶଳ, ଷଡ଼ଯନ୍ତ୍ର, ନଟଖଟ୍,ଗୋପନକାର୍ଯ୍ୟ,(ବିଂ)କୌଶଳୀ (ବ୍ୟକ୍ତି), ଚାଲବାଜ ଇତ୍ୟାଦି ।

କାର—ବି.(କୃ+ର୍ମ,ଅ) କାର୍ଯ୍ୟ,ନିଶ୍ଚୟ, ଯତ୍ନ, ପୂଜୋପହାର, ବଳି (ଭା, ଅ) କରଣ, (କ,ଅ) କରିବା କର୍ମର କର୍ତ୍ତା, ପତି, ନିର୍ମାତା, ହିମାଳୟପର୍ବତ, (କୃ-ଭା,ଅ)ବଧ, ଧ୍ୱଂସ,(ପୁଂ.ବି) କାରିଗର, ସ୍ୱରବର୍ଣ୍ଣରଚିହ୍ନ,ବର୍ଣ୍ଣ,ଅକ୍ଷର,(ଗ୍ରା.ସର୍ବ) କାହାର, ଅମୁକ ସ୍ଥାନର ।

କାରୟିଷ୍ଣୁ—ପୁଂ. ସ୍ତ୍ରୀ.ବିଂ. (କୃ+ଣିଚ୍ ଇଷ୍ଣୁ) ଅନ୍ୟଦ୍ୱାରା କର୍ମାକର୍ମ କରାଇବା-(ବ୍ୟକ୍ତି) ।

କାରକ—ପୁଂ. ବିଂ. (କୃ+କ,ଅକ)ଯେ କରାଏ ବା ଘଟାଏ, କାର୍ଯ୍ୟ କରୁଥିବା, (ବି)କ୍ରିୟାସହିତ ଯାହାର ଅନ୍ୱୟଥାଏ ।

କାରକବାନ୍—ତ୍ରି. ବିଂ. କାରକବିଶେଷ, କର୍ତ୍ତୃଯୁକ୍ତ ।

କାରକବିଭକ୍ତି—ସ୍ତ୍ରୀ.ବି. କର୍ତ୍ତାଦି କାରକବୋଧିକା ପ୍ରଥମା ପ୍ରଭୃତି ବିଭକ୍ତି ।

କାରକର—ତ୍ରି. ବିଂ. (କାର+କୃ+ଅ) କ୍ରିୟାକାରକ, ଭୃତ୍ୟପ୍ରଭୃତି ।

କାରଖାନା—ଯା.ବି.କାର୍ଯ୍ୟଶାଳା, ଶିଳ୍ପଶାଳା,ଆଡମ୍ବରପୂର୍ଣ୍ଣକାର୍ଯ୍ୟ,ଯେଉଁଠାରେ କର୍ମ କରାଯାଏ ।

କାରଜ—ଗ୍ରା. ବି. କାର୍ଯ୍ୟ, ବ୍ୟାବସାୟିକ କାର୍ଯ୍ୟ,ମୃତାହ,ଶ୍ରାଦ୍ଧକ୍ରିୟା, ଆବଶ୍ୟକ, ଅଳ୍ପବୟସ୍କ ହାତୀ ।

କାରଞ୍ଜ—ତ୍ରି.ବିଂ. (କରଞ୍ଜ+ଅ)କରଞ୍ଜ ଫଳଜାତ ତୈଳାଦି,କରଞ୍ଜ ସମ୍ବନ୍ଧୀୟ ।

କାରଣ - କ୍ଳୀ. ବି. (କୃ+ଣିଚ୍+ଅନ) କାର୍ଯ୍ୟର ହେତୁ ନିମିତ୍ତ, ମୂଳବୀଜ, ମଦ୍ୟ,ଉଦ୍ଦେଶ୍ୟ, ପ୍ରୟୋଜନ, ଇନ୍ଦ୍ରିୟ, ଦେହ, (କୃ+ଭା,ଅନ) ବଧ, ସର୍ଜନ, ଗୀତବିଶେଷ,ବାଦ୍ୟବିଶେଷ,ଉପାଦାନ, ଉପକରଣ,ଯନ୍ତ୍ରାଦି(କରଣ+ଅ) କରଣ ବା କାୟସ୍ଥ ସମୂହ, ପ୍ରମାଣ, ପିତା, ଦେବତା,(ବିଂ)ସୃଷ୍ଟି କର୍ତ୍ତା,କାର୍ଯ୍ୟକାରକ, (ଗ୍ରା.ବି) ମୁକ୍ତି,ନିଷ୍କୃତି,ମୋକ୍ଷ, ସାଧନ,

ବ୍ୟବହାର, ପ୍ରତିକାର,ଫଳ,ସଫଳତା, ଉଦ୍ଦେଶ୍ୟ, ସିଦ୍ଧି, ଉପାସ୍ୟ,(ବିଂ) ମୁକ୍ତ, ଶ୍ରେଷ୍ଠ, ମୋକ୍ଷପ୍ରାପ୍ତ, ପ୍ରତିକାର କର୍ତ୍ତା, (ଅବ୍ୟ) ଯେହେତୁ, କାରଣରୁ,ଯୋଗୁଁ, ପାଇଁ ।

କାରଣକରିବା—ଗ୍ରା. କ୍ରି. ମୁକ୍ତକରିବା, କ୍ଷମାକରିବା. ମାର୍ଜନା କରିବା ।

କାରଣକାରଣ—ବି. (ତନ୍ତ୍ର) କାରଣରୁ କାରଣ, ଯଥା—ଯେପରି ପୁତ୍ରର ଜନ୍ମ ବିଷୟରେ ତାହାର ପିତାମହ ଇତ୍ୟାଦି ।

କାରଣକାର୍ଯ୍ୟ—ବି. (ତନ୍ତ୍ର) ଉପକରଣ ବା ସାଧନାର କୁଶଳତା, ବ୍ୟୟସଙ୍କୋଚ ।

କାରଣଗୁଣ—ପୁଂ. ବି. (ତନ୍ତ୍ର) ଉପାଦାନ, କାରଣର ଗୁଣ ।

କାରଣଜଳ—ବି. ସୃଷ୍ଟିର ଆଦିକାରଣରୂପେ ସୃଷ୍ଟଜଳ ।

କାରଣତା(ତ୍ୱ)—ବି. କାରଣର ଧର୍ମ, ହେତୁତା, ହେତୁ ହେବାର ଭାବ ।

କାରଣଧ୍ୱଂସ—ପୁଂ.ବି. କାରଣ ନାଶକ ।

କାରଣବାଦୀ—ପୁଂ, ବିଂ.(କାରଣ+ବଦ+ଇନ୍)ଯେ ସକଳ ବିଷୟରେ କାରଣ ସ୍ୱୀକାର କରେ ।

କାରଣମାଳା—ସ୍ତ୍ରୀ. ବି. ଅର୍ଥାଲଙ୍କାର [ବିଶେଷ ।

କାରଣଶରୀର—କ୍ଲୀ.ବି. (କ.ଧା) ଆତ୍ମାକୁ ଆବରଣ କରିଥିବା ଶରୀର, ସୂକ୍ଷ୍ମଶରୀର, ପରମାତ୍ମାଙ୍କଠାରେ ଅବହିତ ଜୀବାତ୍ମାଙ୍କର ସତ୍ତା, ଅବିଦ୍ୟା ।

କାରଣା—ସ୍ତ୍ରୀ. ବି. (କାରି+ଅନ+ଆ) ତୀବ୍ରବେଦନା,ନରକର ଅଂଶବିଶେଷ, ଗାଢ଼ବେଦନା ।

କାରଣାଭାବ—ପୁଂ.ବିଂ. କାରଣ ନଥିବା, ମୂଳକାରଣର ଅନୁପସ୍ଥିତି ।

କାରଣିକ—ପୁଂ. ବିଂ. (କାରଣ+ଇକ) ବିଚାରକ, ପରୀକ୍ଷକ, କାରଣ ସମ୍ବନ୍ଧୀୟ (ବି) ବିଚାରପତି, ଶିକ୍ଷକ, ଗୁରୁ ।

କାରଣୀଭୂତ—ବିଂ. ( କାରଣ+ଭୂତ ) କାରଣ ସ୍ୱରୂପ ।

କାରଣ୍ଡୁ(ଣ୍ଡୁ.)—ଗ୍ରା.ଅବ୍ୟ.କାରଣ,କାରଣରୁ, ସକାଶେ, ହେତୁରୁ ।

କାରଣେ—ଗ୍ରା. ଅବ୍ୟ (ସଂ-କାରଣାତ୍) କାରଣରେ, ଯୋଗେ ।

କାରଣୋତ୍ତର—ବି.(କ.ଧା) ମକଦ୍ଦମାରେ ଦାବୀ କରାଯାଇଥିବା ଅଭିଯୋଗର ଉତ୍ତର, ମକଦ୍ଦମାର କାରଣାଭାବ ଘଟି ଅଛି ବୋଲି ପ୍ରତିବାଦୀଙ୍କର ଜବାବ ।

କାରଣ୍ଡ—ବି. (କ+ରି+ଡ,ଅ) ଏକ ପ୍ରକାର ହଂସ ।

କାରଣ୍ଡବ—ପୁଂ. ବି. (କ+ରି+ଅଣ୍ଡ+ଅ) ଏକପ୍ରକାର ହଂସ ।

କାରଣ୍ଡବବଳୀ—ସ୍ତ୍ରୀ. ବି. ନଦୀବିଶେଷ ।

କାରଣ୍ଡବବ୍ୟୂହ—ପୁଂ.ବି. ବୌଦ୍ଧବିଶେଷ, ବୌଦ୍ଧଶାସ୍ତ୍ର ବିଶେଷ ।

କାରନ୍ଧମ—ପୁଂ. ବିଂ. (କରନ୍ଧମ+ଅ) କରନ୍ଧମ ରାଜାରପୁତ୍ର, ଅବୀକ୍ଷିତ୍, (କ୍ଲୀ) ତୀର୍ଥବିଶେଷ ।

କାରନ୍ଧମୀ—ପୁଂ. ବି. (କାରମ୍+ଧମିନ୍) କଂସାରି,ଅଟାରି,ବାଣିଜ୍ୟବିଦ୍ୟାପଣ୍ଡିତ ।

କାରପଚବ—ପୁଂ. ବି. ଯମୁନା ନଦୀର ନିକଟବର୍ତ୍ତୀ ଦେଶବିଶେଷ ।

କାରଭ—କ୍ରି.ବିଂ. (କରଭ+ଅ)ହସ୍ତୀଶାବକ ସମ୍ବନ୍ଧୀୟ, ହସ୍ତ ସମ୍ବନ୍ଧୀୟ ।

କାରଭୂ—ସ୍ତ୍ରୀ, ବି. ରାଜା ଯେଉଁ ସବୁ ସ୍ଥାନର କର ଗ୍ରହଣ କରନ୍ତି ।

କାରମଦ—ବି. କରଡ଼ାକୋଳି ।

କାରମର୍ଦ୍ଦ—ବି. କରଡ଼ାକୋଳି ।

କାରମିହିକା—ସ୍ତ୍ରୀ. ବି.(କାର+ମିହ+ଇକ+ଆ) କର୍ପୂର ।

କାରମ୍ଭା—ସ୍ତ୍ରୀ. ବି. ପ୍ରିୟଙ୍ଗୁ ବୃକ୍ଷ ।

କାରୟିତବ୍ୟ—କ୍ରି. ବିଂ. (କୃ+ଣିଚ୍+ର୍ମ, ତବ୍ୟ) କରାଇବାର ଉପଯୁକ୍ତ, ଯାହା ଅନ୍ୟଦ୍ୱାରା କରାଇବାକୁ ହେବ ।

କାରୟିତା—ପୁଂ. ବିଂ. (କୃ+ଣିଚ୍+କ,ତୃ) ଅନ୍ୟଦ୍ୱାରା କର୍ମ କରାଇବା ଲୋକ ।

କାରବ—ପୁଂ. ବି. (କ+ରବ) କାକ, [କୁଆ ।

କାରବର—ବି.ନିଷାଦପିତା ଓ ବୈଦେହୀ ମାତାଠାରୁ ଉତ୍ପନ୍ନ, ନୀଚ ଚମଡ଼ା ବ୍ୟବସାୟୀ ଜାତି, ମୋଚଜାତି ।

କାରବଲ୍ଲୀ—ସ୍ତ୍ରୀ.ବି. କଲରାଗଛ ଓ ଫଳ ।

କାରବାର—ଯା.ବି. ବେପାର, ବାଣିଜ୍ୟ, ପେଶା, କର୍ମ,କାର୍ଯ୍ୟ, ବ୍ୟବସାୟ,ଧନର ନେଣଦେଣ,(ବିଂ) କାରବାରୀ ।

କାରବାରକରିବା—ଗ୍ରା. କ୍ରି. ବ୍ୟବସାୟ କରିବା, ବ୍ୟବହାର କରିବା ।

କାରବାରହେବା—ଗ୍ରା.କ୍ରି. ସର୍ବଦା ଚଳ ପ୍ରଚଳହେବା, ପ୍ରଚଳିତହେବା ।

କାରବାରୀ—ଯା.ପୁଂ.ବିଂ. ବ୍ୟବସାୟରେ ନିପୁଣ,ବ୍ୟବସାୟ ନିଯୁକ୍ତ, ବ୍ୟବସାୟ ସମ୍ବନ୍ଧୀୟ, (ଗ୍ରା.ବି) ବଣିକ, ବ୍ୟବସାୟ ବିଷୟ, କର୍ମକରିବା ବ୍ୟକ୍ତି, ଗୁମାସ୍ତା, ଗୃହର ସମସ୍ତ ମାମଲତ ବୁଝିବା ବ୍ୟକ୍ତି ।

କାରବୀ—ସ୍ତ୍ରୀ.ବି.(କ+ଆ+ରି+ଆ+ଈ) ରୁଦ୍ରଜଟା, ମୟୂରଶିଖା, ଅଜପ, ଛୋଟକଲରା, କଳାଜିରା, ମହୁରି ହିଙ୍ଗୁପତ୍ରି, ସ୍ତ୍ରୀ ଜାତି କାକ ।

କାରବେଲ୍ଲ—ପୁଂ.କ୍ଲୀ.ବି(କାର+ବେଲ୍ଲ) କଲରାଗଛ ଓ ଫଳ ।

କାରବେଲ୍ଲୀ—ସ୍ତ୍ରୀ. ବି. ଛୋଟ କଲରା ।

କାରବ୍ୟ—କ୍ରି. ବି. କାରୁ,(ଗାୟକ)ସମ୍ବନ୍ଧୀୟ, ଅଥର୍ବ ବେଦର ମନ୍ତ୍ରବିଶେଷ ।

କାରସାଜି—ଗ୍ରା. ବି. ଛଳ, କପଟତା, ଫନ୍ଦିବାଜି, କୂଟ, କୌଶଳ, କୁହୁକ, ଭେଲକି, ଗୁରୁସି ।

କାରସ୍କର—ପୁଂ. ବି. ବୃକ୍ଷବିଶେଷ ।

କାରା—ସ୍ତ୍ରୀ. ବି. ( କୃ+ଅ+ଆ)ଜେଲ୍‌ଖାନା, ବନ୍ଦୀଶାଳା, ପୀଡ଼ା, ଦୂତୀ,ବଣିଆଣୀ, ବନ୍ଧନ, ନଗରବିଶେଷ, ବୀଣାର ଅଧଃସ୍ଥିତ କାଷ୍ଠମୟ ଖଣ୍ଡ, ( ଯା.ବି ) ଉତ୍ତମ, (ବିପରୀତ-ନାକରା) ।

କାରାକୋରମ—ଗ୍ରା.ବି.କାଶ୍ମୀର ରାଜ୍ୟର ଉତ୍ତର ପଶ୍ଚିମ କୋଣରେ ଥିବା ହିମାଳୟର ଶାଖାବିଶେଷ ।

କାରାଗାର—କ୍ଲୀ. ବି.(କାରା+ଆଗାର ) ବନ୍ଧନଗୃହ, ବନ୍ଦୀଶାଳା, ଜେଲଖାନା ।

କାରାଗୁପ୍ତ—କ୍ରି.ବି.କାରାରୁଦ୍ଧ, କଏଦୀ ।

କାରାଗୃହ—କ୍ଲୀ.ବି, କାରାଗାର, ଜେଲ୍‌ଖାନା ।

କାରାଦଣ୍ଡ—ବି. (ରୂପକ-କ.ଧା) କାରା-ଗୃହରେ ରୁଦ୍ଧହେବା ରୂପ ଦଣ୍ଡ,ଜେଲ-ଦଣ୍ଡ । [ ଶଙ୍ଖ ।
କାରାଧୁନୀ—ସ୍ତ୍ରୀ. ବି. ବାଦ୍ୟଯନ୍ତ୍ରବିଶେଷ,
କାରାଧ୍ୟକ୍ଷ—ପୁଂ.ବି. (୬ତତ୍ପୁ) ବନ୍ଦଶାଳାର କର୍ତ୍ତା ବା ପ୍ରଧାନ କର୍ମଚାରୀ, ଜେଲର ।
କାରାପଥ—ପୁଂ. ବି. ଦେଶବିଶେଷ, ଏହି ସ୍ଥାନରେ ରାମାନୁଜ, ଲକ୍ଷ୍ମଣଙ୍କ ପୁତ୍ର ଚନ୍ଦ୍ରକେତୁ ଓ ଅଙ୍ଗଦ ରାଜତ୍ୱ କରି-ଥିଲେ ।
କାରାପାଳ—ପୁଂ.ବି (କାରା + ପାଳ + ଅ) କାରାଗାରରକ୍ଷକ ।
କାରାବଦ୍ଧ—ବିଂ. (୭ତତ୍ପୁ) କାରାରୁଦ୍ଧ ।
କାରାବନ୍ଧନ—ବି. (୭ତତ୍ପୁ) କାରାରୋଧ ।
କାରାବର—ପୁଂ. ବି. ଚର୍ମକାର ଜାତି-ବିଶେଷ,ନିଷାଦ ଜାତିର ଔରସେ ଏବଂ ବୈଦେହୀ ଜାତି ସ୍ତ୍ରୀର ଗର୍ଭେ ଏହି ଜାତିର ଉତ୍ପତ୍ତି ।
କାରାବାସ—ପୁଂ.ବି.(କାରା + ବାସ)କାରା-ରୋଧ, କାରାଗାର, ଜେଲଖାନା ।
କାରାବାସୀ—ପୁଂ.ବିଂ.(କାରାବାସ + ଇନ୍ କାରାରୁଦ୍ଧ (ବ୍ୟକ୍ତି) ।
କାରାବିଧାନ—ବି. (୬ତତ୍ପୁ)କାରାଦଣ୍ଡ ।
କାରାବେଶ୍ମ—କ୍ଲୀ.ବି. (କାରା + ବେଶ୍ମନ୍) କାରାଗାର, ଜେଲଖାନା ।
କାରାଭୂ—ସ୍ତ୍ରୀ.ବି.ବନ୍ଧନସ୍ଥାନ,ଜେଲଖାନା ।
କାରାମ୍ବିକା—ସ୍ତ୍ରୀ. ବି, ବକ, ବଳାକା ।
କାରାରକ୍ଷକ-ପୁଂ ବି. (୬ତତ୍ପୁ) କାରାବଦ୍ଧ ବ୍ୟକ୍ତିମାନଙ୍କର ଜଗୁଆଳ ।
କାରାରୁଦ୍ଧ—ବିଂ. (୭ତତ୍ପୁ) କାରାଗୃହରେ ଅବରୁଦ୍ଧ, ବନ୍ଦୀହୋଇଥିବା ।
କାରାଷ୍ଟ୍ର—ପୁଂ.ବି.କାରାଷ୍ଟ୍ରଦେଶୀୟବ୍ରାହ୍ମଣ, କାରାଷ୍ଟ୍ରଦେଶ ।
କାରି—ଧାତୁ.(କୃ + ଣିଚ୍)କରାଇବା,(ବି) କାର୍ଯ୍ୟକର୍ମ, ଶିଳ୍ପକର୍ମ, ପ୍ରଶ୍ନାଖ୍ୟାନ-ବିଷୟ,(ବିଂ) ଶିଳ୍ପକାରୀ ।
କାରିକ-କ୍ଲୀ.ବି.(କାରି + କ)କ୍ରିୟା,କାର୍ଯ୍ୟ
କାରିକର—ତ୍ରି.ବିଂ (କାରି + କର)ଶିଳ୍ପ-କାର, ଯେ ଶିଳ୍ପ କାର୍ଯ୍ୟ କରିପାରେ, (ବି) ଶିଳ୍ପକାର୍ଯ୍ୟ ।

କାରିକରୀ—ଗ୍ରା. ବି. ଶିଳ୍ପକଳା ପୂର୍ଣ୍ଣ, (ସ୍ତ୍ରୀ – ଈ) ଶିଳ୍ପକାରିଣୀ, ଶିଳ୍ପକାରୀ ।
କାରିକା—ସ୍ତ୍ରୀ.ବି.(କୃ + ଅକ + ଆ)ସୂତ୍ର, ବିବରଣ ଜ୍ଞାପକ ଶ୍ଳୋକ, ସ୍ୱଳ୍ପାକ୍ଷର ବୃତ୍ତିଦ୍ୱାରା ବହ୍ୱର୍ଥ ଜ୍ଞାପିକା କବିତା, ବୈଦିକ କ୍ରିୟାକାଣ୍ଡର ବିବରଣ ଜ୍ଞାପକ ଶାସ୍ତ୍ରବାକ୍ୟ, ନଟୀ, ବାଣିଜ୍ୟ,ବ୍ୟବସାୟ, ସୁଧ, ଉତ୍ପୀଡ଼ନ,ଶିଳ୍ପକ୍ରିୟା, ବୃଦ୍ଧି (ବିଂ) କର୍ମକର୍ତ୍ତ୍ରୀ, (ଅବ୍ୟ) ମର୍ଯ୍ୟାଦା, ଯନ୍ତ୍ର, ଯାତନା ।
କାରିଗର—ଯା.ବିଂ.ଶିଳ୍ପକାରକ,ଚତୁର ।
କାରିଗରୀ—ଯା. ଶିଳ୍ପବିଦ୍ୟାରେ ଯେ ନିପୁଣତା ଲାଭ କରିଅଛି ।
କାରିଣୀ-ସ୍ତ୍ରୀ.ବିଂ.(କୃ + ଇନ୍ + ଈ)ଅମୁକ କାର୍ଯ୍ୟ କରିଥିବା (ସ୍ତ୍ରୀ), (ଗ୍ରା.ପୁଂ.ବିଂ) ରଚୟିତା, ସ୍ରଷ୍ଟା, (ଗ୍ରା. ସ୍ତ୍ରୀ. ବିଂ) ରଚୟିତ୍ରୀ, ସୃଷ୍ଟିକର୍ତ୍ତ୍ରୀ ।
କାରିତ—ତ୍ରି.ବିଂ.(କୃ + ଣିଚ୍ + ତ)ଅନ୍ୟ ଦ୍ୱାରା ଯାହା ସମ୍ପନ୍ନ ହୋଇଅଛି ।
କାରିତା—ସ୍ତ୍ରୀ.ବି.(କାରିନ୍ + ତା)କରିବା ବ୍ୟକ୍ତିର ଗୁଣ ବା ଭାବ ।
କାରୀ—ପୁଂ.ବିଂ.(କୃ + ଇନ୍)ଅନ୍ୟ ଶବ୍ଦ ପରେ ପ୍ରୟୁକ୍ତହୁଏ, ଯଥା—ଆଜ୍ଞାକାରୀ, ଅମୁକ କର୍ମ କରିବା ଲୋକ,କର୍ତ୍ତାକାରକ, (ସ୍ତ୍ରୀ) କାରିଣୀ, (ବି) କାର୍ଯ୍ୟ ଶିଳ୍ପ ।
କାରୀର—କ୍ଲୀ.ବି.(କାରୀର + ଅ)ବାଉଁଶର ଗଜା ସମ୍ବନ୍ଧୀୟ,ବାଉଁଶର କାଣ୍ଡ,ବାଉଁ-ଶର ଭସ୍ମ ।
କାରୀରୀ—ସ୍ତ୍ରୀ.ବି.(କାର + ଈର + ଅ + ଈ)ବୃଷ୍ଟିନିମିତ୍ତ କର୍ତ୍ତବ୍ୟ, ଯଜ୍ଞବିଶେଷ ।
କାରୀଷ—କ୍ଲୀ.ବି.(କାରୀଷ + ଅ)ଘଷିଗଦା, ଘଷିରାଶି । [ଗନ୍ଧଯୁକ୍ତ ।
କାରୀଷଗନ୍ଧି—ତ୍ରି. ବି. ଶୁଷ୍କ ଗୋମୟ-
କାରୀଷି—ପୁଂ. ବି. ବ୍ୟକ୍ତିବିଶେଷ,ବାଉଁଶ ବିଶେଷ ।
କାରୁ—ପୁଂ.ବି.(କୃ + ଉ) କାର୍ଯ୍ୟଭାର ପ୍ରାପ୍ତ ବ୍ୟକ୍ତି, ଭୃତ୍ୟ, ବିଶ୍ୱକର୍ମା, ଶିଳ୍ପ-ବିଦ୍ୟା, ବିଜ୍ଞାନ, ଗାୟକ, କବି, (ବିଂ) ଶିଳ୍ପକର, ଭୟଙ୍କର, ନିର୍ମାଣକାରୀ, କର୍ତ୍ତା, (ଗ୍ରା.ବି.) କାଚୁ, କଣ୍ଡୂରୋଗ-ବିଶେଷ ।
କାରୁଆ—ଗ୍ରା.ବିଂ. କାଚୁରୋଗଗ୍ରସ୍ତ, କର୍ମ କୁଶଳ, ଯେ କରେ ।
କାରୁକ—ତ୍ରି.ବିଂ.(କାରୁ + କ)ଶିଳ୍ପୀ,(ବି) କରମଙ୍ଗା ।
କାରୁକର୍ମ (୬ତତ୍ପୁ)କାରୁକାର୍ଯ୍ୟ (ଦେଖ) ।
କାରୁକାର୍ଯ୍ୟ—ବି.(୬ତତ୍ପୁ)ଶିଳ୍ପକର୍ମ,ନକ୍ସା ତାରକସି କାମ, ସୂକ୍ଷ୍ମଶିଳ୍ପ କର୍ମ ।
କାରୁକ୍ରିୟା—ସ୍ତ୍ରୀ. ବି. ଶିଳ୍ପକାର୍ଯ୍ୟ ।
କାରୁଚୌର—ପୁଂ.ବି.(କାରୁ + ଚୁର + ଅ) ଯେ ସିନ୍ଧ କରି ଚୋରିକରେ ।
କାରୁଜ—ପୁଂ. ବି. (କାରୁ + ଜନ୍ + ଅ) ହୁଙ୍କା, ଛୁଆହାତୀ, କାରୁକାର୍ଯ୍ୟ, ଫେଣ, ସିନ୍ଦୂର, ଗେରୁ, ବଲ୍ମୀକ, ନାଗେଶ୍ୱର ।
କାରୁଣ—ବିଂ.(କରୁଣ + ଅ)କରୁଣାଶୀଳ, ଦୁଃଖୀ, କ୍ଳିଷ୍ଟ, ଦୟାଶୀଳ (ବି) କରୁଣ ସ୍ୱରଯୁକ୍ତ ରୋଦନ, ଦୁଃଖ, କଷ୍ଟ ।
କାରୁଣସିନ୍ଧୁ—ଗ୍ରା. ବି. ପାତାଳରେ ଥିବା ସମୁଦ୍ର ।
କାରୁଣିକ—ପୁଂ. ବି. (କରୁଣା + ଇକ) ଦୟାଳୁ, ସହୃଦୟ, (ସ୍ତ୍ରୀ) କାରୁଣିକୀ ।
କାରୁଣ୍ଡିକା-ସ୍ତ୍ରୀ. ବି. ଜଳୌକା,ଜୋକ ।
କାରୁଣ୍ଡୀ—ସ୍ତ୍ରୀ. ବି.ଜଳୌକା, ଜୋକ ।
କାରୁଣ୍ୟ—କ୍ଲୀ. ବି.(କରୁଣା + ଯ)ଦୟା, ସହାନୁଭୂତି, (ଗ୍ରା) କରୁଣସ୍ୱରଯୁକ୍ତ ରୋଦନ, ବିଳାପ, ବିନୟ, କାରଣ ।
କାରୁଷ—ପୁଂ.ବି.କରୁଷଦେଶର ରାଜା, ଦନ୍ତବକ୍ର, ପୁରୁଷାନୁକ୍ରମେ କରୁଷ ଦେଶବାସୀ, ମନୁର ପୁତ୍ର ।
କାରୁଷକ—ତ୍ରି. (କାରୁଷ + କ) କରୁଷ ଦେଶବାସୀ,(ପୁଂ)କରୁଷଦେଶର ରାଜା ।
କାରୁଷ୍ୟ—ପୁଂ.ବି. (କରୁଷ + ଯ)କାରୁ-ଷର ରାଜା, ଦନ୍ତବକ୍ର,(କ୍ଲୀ.ବି.)ନେତ୍ର-ମଳ, ଲେଞ୍ଚେରା ।
କାରେ—ଗ୍ରା.ସର୍ବ.କାହାଦ୍ୱାରା, କାହାକୁ ।
କାରେଣବ—ତ୍ରି.ବିଂ. (କାରେଣୁ + ଅ) ହସ୍ତିନୀ ସମ୍ବନ୍ଧୀୟ ।

କାରେଣୀ—ଗ୍ରା.ପୁଂ.ବିଂ. ମାଲିକ, କର୍ତ୍ତା, ଅଧକ୍ଷ, ସୃଷ୍ଟିକର୍ତ୍ତା, ମୋକ୍ଷଦାତା, ଦଣ୍ଡାର୍ହ, ସୁଖଦାୟକ, (ସ୍ତ୍ରୀ)ରକ୍ଷାକର୍ତ୍ତ୍ରୀ, ସୁଖବଧାର୍ଣୀ ।

କାରେଣୁପାଲ—ପୁଂ. ବି. ହସ୍ତିପାଳନର ଗୁଣ ।

କାରୋତ୍ତମ—କ୍ଲୀ.ବି. ସୁରାମଣ୍ଡ, କୂପ ।

କାରୋତ୍ତର—ପୁଂ. ବି. ସୁରାମଣ୍ଡ, କୂପ, କଂସାଦି ନିର୍ମିତ ପାତ୍ରବିଶେଷ, ଗଲୁଣୀ ।

କାର୍କଟେନବ—କ୍ଲୀ.ବି. କର୍କଟୁ ପକ୍ଷୀର ନିବାସ ସ୍ଥଳ ।

କାର୍କଣ—ବି.ବିଂ. (କୃକଣ+ଅ) କୃମି ସମ୍ବନ୍ଧୀୟ, ଦେହସ୍ଥ ବାୟୁ ସମ୍ବନ୍ଧୀୟ, କୃକଣ ପକ୍ଷୀ ସମ୍ବନ୍ଧୀୟ ।

କାର୍କନ୍ଧବ—ବି.ବିଂ. କର୍କନ୍ଧୁର ଅବୟବ, କର୍କନ୍ଧୁର ବିକାର ।

କାର୍କଲାସେୟ—ବିଂ.(କୃକଲାସ+ଏୟ) କୃକଲାସ ସମ୍ବନ୍ଧୀୟ ।

କାର୍କବାକର—ବି.ବିଂ.କୁକ୍କୁଟସମ୍ବନ୍ଧୀୟ ।

କାର୍କଶ୍ୟ-କ୍ଲୀ.ବି.(କର୍କଶ+ଯ) କର୍କଶତା । କଠିନତା; ନିର୍ଦୟତା ।

କାର୍କଷ—ପୁଂ. ବି. ବ୍ୟକ୍ତି ବିଶେଷ ।

କାର୍କଷି—ପୁଂ.ବି. କାର୍କଷର ପୁତ୍ର ।

କାର୍କୋନ—ବି. ବିଂ. ଶ୍ୱେତଅଶ୍ୱତୁଲ୍ୟ ।

କାର୍କୋଟନ—କ୍ଲୀ.ବି. ନଗର ବିଶେଷ, ଆଧୁନିକ ନାମ କାସି ।

କାର୍ଡ—ଯା.ବି. ପୋଷ୍ଟକାର୍ଡ, ଖେଳିବା ତାସ୍, ନିମନ୍ତ୍ରଣ ପତ୍ର, ପ୍ରବେଶାନୁମତି ପତ୍ର,ଦର୍ଶନକାର୍ଡ ।

କାର୍ଣ୍ଣ—ପୁଂ.ବି.(କର୍ଣ୍ଣ+ଅ)କର୍ଣ୍ଣର ପୁତ୍ର ବୃଷକେତୁ, କାନଗୁହା, କାନକୋଲି, (ବି) କର୍ଣ୍ଣେନ୍ଦ୍ରିୟ ସମ୍ବନ୍ଧୀୟ ।

କାର୍ଣ୍ଣଗାହକ—ପୁଂ. ବି. ନାବିକ ପୁତ୍ର ମାଝିର ଶିଶୁ ।

କାର୍ଣ୍ଣଛିଦ୍ରକ—ବି.ବିଂ.କର୍ଣ୍ଣଛିଦ୍ରସମ୍ବନ୍ଧୀୟ ।

କାର୍ଣ୍ଣାଟକ -ପୁଂ.ବି. କର୍ଣ୍ଣାଟଦେଶବାସୀ ବି. କର୍ଣ୍ଣାଟଦେଶ ସମ୍ବନ୍ଧୀୟ ।

କାର୍ଣ୍ଣି—ବି. ବିଂ. କର୍ଣ୍ଣସମ୍ବନ୍ଧୀୟ ।

କାର୍ତ୍ତ—ବି.ବି. (କୃତ୍ର+ଅ) କୃତ୍ରପ୍ରତ୍ୟୟର ବ୍ୟାଖ୍ୟାଗ୍ରନ୍ଥବିଶେଷ, ସତ୍ୟଯୁଗ ।

କାର୍ତ୍ତଯୁଗ—ପୁଂ.ବି. ସତ୍ୟଯୁଗ ।

କାର୍ତ୍ତବୀର୍ଯ୍ୟ—ପୁଂ.ବି.(କୃତ+ବୀର୍ଯ୍ୟ+ଅ) ଚନ୍ଦ୍ରବଂଶୀୟ କୃତବୀର୍ଯ୍ୟ ରାଜାର ପୁତ୍ର ସହସ୍ରାର୍ଜୁନ ।

କାର୍ତ୍ତବୀର୍ଯ୍ୟାର୍ଜୁନ—ପୁଂ.ବି ସହସ୍ରାର୍ଜୁନ ।

କାର୍ତ୍ତବୀର୍ଯ୍ୟାର—ପୁଂ. ବି. (୬ତତ୍) ପରଶୁରାମ ।

କାର୍ତ୍ତସ୍ୱର—କ୍ଲୀ.ବି. (କୃତସ୍ୱର+ଅ)ସ୍ୱର୍ଣ୍ଣ, କନକ, ଧୁତୁରା ।

କାର୍ତ୍ତାନ୍ତିକ—ପୁଂ.ବି. (କୃତାନ୍ତ+ଇକ) ଦୈବଜ୍ଞ, ଜ୍ୟୋତର୍ବିଦ୍ ।

କାର୍ତ୍ତାୟନି—ପୁଂ. ବି. କର୍ତ୍ତାର ପୌତ୍ର ।

କାର୍ତ୍ତିକ—ପୁଂ, ବି. ( କୃତ୍ତିକା+ଅ ) ବୈଶାଖାଦି ଦ୍ୱାଦଶ ମାସମଧ୍ୟେ ସପ୍ତମ ମାସ, କାର୍ତ୍ତିକେୟ, ଷଡ଼ାନନ ।

କାର୍ତ୍ତିକକୃତ୍ୟ—ବି. କାର୍ତ୍ତିକ ବ୍ରତ ।

କାର୍ତ୍ତିକଛଷ୍ଟା—ଗ୍ରା. ବି. କାର୍ତ୍ତିକମାସରେ ମେଘ ଘୋଡ଼ାଇବା ପାଗ ।

କାର୍ତ୍ତିକଦୀପ—ବି. ଆକାଶ ଦୀପ ।

କାର୍ତ୍ତିକନଗିଡ଼ା—ଗ୍ରା.ବି. କାର୍ତ୍ତିକନଗିଡ଼ା ଜ୍ୱର, କାର୍ତ୍ତିକ ମାସରେ ଦେଶରେ ବ୍ୟାପିବା ମ୍ୟାଲେରିୟା ଜ୍ୱର ।

କାର୍ତ୍ତିକପାଳକ—ବି.କାର୍ତ୍ତିକବ୍ରତ(ଦେଖ)

କାର୍ତ୍ତିକପୂଜା—ବି. ମାର୍ଗଶିର ମାସର କୃଷ୍ଣ ଦ୍ୱାଦଶୀଦିନ କାର୍ତ୍ତିକେୟଙ୍କ ପୂଜା ।

କାର୍ତ୍ତିକମହିମା—ପୁଂ.ବି. କାର୍ତ୍ତିକ ମାସର ମାହାତ୍ମ୍ୟ, କାର୍ତ୍ତିକେୟଦେବଙ୍କ ମାହାତ୍ମ୍ୟ

କାର୍ତ୍ତିକମାହାତ୍ମ୍ୟ—ବି.( ୬ତତ୍ ) କାର୍ତ୍ତିକ ବ୍ରତପାଳନର ଫଳ ବର୍ଣ୍ଣିତ ହୋଇଥିବା ଗ୍ରନ୍ଥବିଶେଷ ।

କାର୍ତ୍ତିକବ୍ରତ—କ୍ଲୀ. ବି, ପ୍ରାତଃ ସ୍ନାନାଦି କାର୍ତ୍ତିକ ମାସରେ କର୍ତ୍ତବ୍ୟ ନିୟମ ।

କାର୍ତ୍ତିକଶାଳୀ—ପୁଂ.ବି, ଯେଉଁ ସରୁଧାନ୍ୟ କାର୍ତ୍ତିକ ମାସରେ ପାଚେ ।

କାର୍ତ୍ତିକସିଦ୍ଧାନ୍ତ—ପୁଂ, ବି. ମୁଗ୍ଧବୋଧ ବ୍ୟାକରଣର ଜଣେ ଟୀକାକାର ।

କାର୍ତ୍ତିକସ୍ନାନ—ବି. କାର୍ତ୍ତିକମାସରେ ଅନୁଷ୍ଠେୟ ପ୍ରାତଃସ୍ନାନ ।

କାର୍ତ୍ତିକବ୍ରତବିଷ୍ୟା—ବି. ବିଧବା ଓ ନୈଷ୍ଠିକ ହିନ୍ଦୁମାନଙ୍କର କାର୍ତ୍ତିକ ମାସରେ କରିବା ଏକାଶନ ବ୍ରତ ।

କାର୍ତ୍ତିକିକ—ପୁଂ. ବି. (କାର୍ତ୍ତିକ+ଇକ) କାର୍ତ୍ତିକମାସ, କାର୍ତ୍ତିକଯୁକ୍ତ, କାର୍ତ୍ତିକ ନାମକ ବର୍ଷବିଶେଷ ।

କାର୍ତ୍ତିକୀ—ସ୍ତ୍ରୀ. ବି. (କାର୍ତ୍ତିକ+ଅ+ଈ) ଦେବଶକ୍ତି ବିଶେଷ ନବପତ୍ରିକାର ଜୟନ୍ତୀସ୍ଥ ଦେବୀବିଶେଷ, କୃତ୍ତିକା ନକ୍ଷତ୍ରଯୁକ୍ତ ପୂର୍ଣ୍ଣିମା ।

କାର୍ତ୍ତିକେୟ—ପୁଂ.ବି. (କୃତ୍ତିକା+ଏୟ) ଶିବପୁତ୍ର, କୁମାର, ଷଡ଼ାନନ ।

କାର୍ତ୍ତିକେୟପ୍ରସୂ—ସ୍ତ୍ରୀ.ବି.(କାର୍ତ୍ତିକେୟ+ପ୍ର+ସୃ+କ୍ୱିପ୍) ଦୁର୍ଗା, ପାର୍ବତୀ ।

କାର୍ତ୍ତିକୋତ୍ସବ—ପୁଂ. ବି. କାର୍ତ୍ତିକୀପୂର୍ଣ୍ଣିମାର ପର୍ବ । [ ସାକଲ୍ୟ ।

କାର୍ତ୍ସ୍ନ୍ୟ—କ୍ଲୀ.ବି. ସମୁଦାୟ, ସମ୍ପୂର୍ଣ୍ଣତା,

କାର୍ଦ୍ଦମ—ବିଂ. ( କର୍ଦ୍ଦମ+ଅ ) କର୍ଦ୍ଦମମୟ, କାଦୁଆ,କାଦୁଅ ସରସର ।

କାର୍ଦ୍ଦମିକ—ବିଂ. ( କାର୍ଦ୍ଦମ+ଇକ ) କାର୍ଦ୍ଦମ (ଦେଖ) ।

କାର୍ପଟ—ପୁଂ. ବି. (କର୍ପଟ+ଅ) କାର୍ଯ୍ୟପ୍ରାର୍ଥୀ,ଜୀର୍ଣ୍ଣବସ୍ତ୍ରଖଣ୍ଡ,ଜତୁ,(ବିଂ)କାର୍ଯ୍ୟାର୍ଥ ଉମେଦୁଆର, (ସ୍ତ୍ରୀ) କାର୍ପଟୀ ।

କାର୍ପଟିକ—ପୁଂ. ବି. ( କର୍ପଟ+ଇକ ) ମର୍ମଭେଦୀ, ତୀର୍ଥଯାତ୍ରୀ ସେବକ, ଯାତ୍ରୀ, ପଥ୍ରାନ୍ତଭେଦୀ ।

କାର୍ପଣ୍ୟ—କ୍ଲୀ. ବି. (କୃପଣ+ଯ) କୃପଣତା, ଦୀନତା,ଅବିବେଚକତ୍ୱ,ଅବସାଦ, ଦାରିଦ୍ର୍ୟ, ବିନୟ, କାତରତା ।

କାର୍ପାଟିକ—ପୁଂ. ବି. କର୍ପଟିକ, (ସ୍ତ୍ରୀ) କାର୍ପାଟିକା ।

କାର୍ପାଣ—କ୍ଲୀ.ବି. ଯୁଦ୍ଧ ।

କାର୍ପାସ—ବି. (କୃ+ପାସ) କପାଗଛ, କପା ତୁଳା,(ବିଂ) କପାନିର୍ମିତ,କାର୍ପାସଜାତ ।

କାର୍ପାସସୌତ୍ରିକ—ବି. ବିଂ. କପାର ସୂତ୍ରନିର୍ମିତ ବସ୍ତ୍ରାଦି ।

କାର୍ପାସାସ୍ଥି—କ୍ଲୀ.ବି. କପାମଞ୍ଜି ।

କାର୍ପାସିକ—ତ୍ରି.ବିଂ. ( କର୍ପାସ+ଇକ ) କପାଦ୍ୱାରା ନିର୍ମିତ ।

କାର୍ପାସିକା—ସ୍ତ୍ରୀ.ବି. କପାଗଛ ।

କାର୍ପାସୀ—ସ୍ତ୍ରୀ. ବି. କପାଗଛ, କପାତୂଳା, (ବିଂ) କାର୍ପାସଜାତ ।

କାର୍ପଣ୍ୟ—ଗ୍ରା.ବି. ଦୈନ୍ୟ, ବିନୟ ।

କାର୍ବନ—ଯା.ଅଙ୍ଗାର,ଅଙ୍ଗାରକ୍ଷୁଦ୍ର କଣା ।

କାର୍ବନକପି—ଯା. କାର୍ବନ ପେପର ସାହାଯ୍ୟରେ କରାଯାଇଥିବା ଲେଖାର ନକଲ ।

କାର୍ବନପେପର—ଯା. ବି. ଏକାଥରକେ ଏକାଧିକବାର ଏକବିଷୟକୁ ଲେଖିବାକୁ ହେଲେ ପ୍ରଥମ କାଗଜରେ ଥରେ ଲେଖିଲେ ଯେଉଁ କାଳି ଲାଗିଥିବା କାଗଜ ସାହାଯ୍ୟରେ ଏକାଧିକ ନକଲ କାଗଜ କରିବାକୁ ହୁଏ ।

କାର୍ବଲିକ ଏସିଡ୍—ଯା. ବି, କୀଟାଣୁନାଶକ ରାସାୟନିକ ଅମ୍ଳବିଶେଷ ।

କାର୍ମ୍ମ—ତ୍ରି.ବିଂ (କର୍ମନ୍+ଅ) ଫଳର ଆକାଙ୍କ୍ଷା ନ କରି ଯେ କର୍ମକରେ କର୍ମଶୀଳ, ପରିଶ୍ରମୀ, କାମିକା, (ସ୍ତ୍ରୀ) କାର୍ମ୍ମୀ ।

କାର୍ମ୍ମଣ—କ୍ଲୀ. ବି. (କର୍ମଣ+ଅ)ଗାରୁଡ଼ି ବିଦ୍ୟା, ମୂଳକର୍ମ, ମନ୍ତ୍ରତନ୍ତ୍ର ପ୍ରୟୋଗ, (ବିଂ) କାର୍ଯ୍ୟଦକ୍ଷ, କର୍ମଠ ।

କାର୍ମଣେୟକ—ପୁଂ. ବି. କ୍ଲୀ. ଜନପଦ ବିଶେଷ । [ କର୍ମକାର ।

କାର୍ମ୍ମାର—ପୁଂ.ବି.(କାର୍ମର+ଅ)କମାର,

କାର୍ମ୍ମାରକ—ତ୍ରି. ବିଂ. କମାରଦ୍ୱାରା କୃତ କାର୍ଯ୍ୟ ।

କାର୍ମ୍ମାର୍ଯ୍ୟ—ପୁଂ.ବି.କମାରର ପୁତ୍ର,(ତ୍ରି) କର୍ମ୍ମକାର ସମ୍ବନ୍ଧୀୟ ।

କାର୍ମ୍ମାର୍ଯ୍ୟାୟଣି—ପୁଂ.ବି.କମାରର ପୁତ୍ର ।

କାର୍ମ୍ମିକ,କାର୍ମୀକ—ବି. ବିଚିତ୍ରବସ୍ତ୍ର, ଯେଉଁ ବସ୍ତ୍ରାଦି ଉପରେ ସୂଚି ଓ ସୂତାଦ୍ୱାରା ବୁଣାଯିବା ଫୁଲ୍‌କାମ ଥାଏ ।

କାର୍ମ୍ମିକ୍ୟ—କ୍ଲୀ.ବି. କର୍ମଶୀଳତା,ପରିଶ୍ରମ ।

କାର୍ମ୍ମୁକ—ବି.ଧନୁ, ବାଉଁଶ,ଘୋଡ଼ାନିମ୍ବ, ଶ୍ୱେତ ଖଇର, ମହାନିମ୍ବ, ହିଜ୍ଜଳ,ଧନୁରାଶି, ମାହାଲଗଛ, ( ବିଂ ) କାର୍ଯ୍ୟକ୍ଷମ, କର୍ମଠ ।

କାର୍ମ୍ମୁକଭୃତ୍-ତ୍ରି.ବିଂ.(କାର୍ମୁକ+ଭୃ+ +କ୍ୱିପ୍ ]ଧନୁର୍ଦ୍ଧାରୀ ।

କାର୍ମ୍ମୁକାସନ—କ୍ଲୀ. ବି. ଆସନବିଶେଷ ।

କାର୍ମ୍ମୁକୀ—ପୁଂ.ବିଂ. (କର୍ମୁକ+ଇନ୍) ଧନୁର୍ଦ୍ଧାରୀ ।

କାର୍ଯ୍ୟ—ବି.(କୃ+ଯ)କର୍ମନିମିତ୍ତ, ହେତୁ, ପ୍ରୟୋଜନ,ଫଳ,ଉପକାର, ଉଦ୍ଦେଶ୍ୟ, କର୍ତ୍ତବ୍ୟ କାର୍ଯ୍ୟ, ବ୍ୟବସାୟ, ବେପାର, ଚାକିରି, ବିବାଦ, ଦୈବକାର୍ଯ୍ୟ, ନିମିତ୍ତ, ବିବାହାଦି କ୍ରିୟା ।

କାର୍ଯ୍ୟଉଠାଇବା—ଗ୍ରା. କ୍ରି. ଅଭିଳଷିତ କର୍ମସମ୍ପନ୍ନ କରିବା ।

କାର୍ଯ୍ୟକର-ପୁଂ.ବିଂ. (କାର୍ଯ୍ୟ+କୃ+ଅ) ଯେ କାର୍ଯ୍ୟ ନିର୍ବାହ କରେ, କାର୍ଯ୍ୟର ଉପଯୁକ୍ତ, କର୍ମଣ୍ୟ ।

କାର୍ଯ୍ୟକରିବା—ଗ୍ରା. କ୍ରି. କାମ କରିବା, ପରିଶ୍ରମ କରିବା, ଚାକିରି କରିବା, ଉପକାର କରିବା ।

କାର୍ଯ୍ୟକର୍ତ୍ତା—ପୁଂ.ବିଂ.(କାର୍ଯ୍ୟ+କୃ+ତୃ) କାର୍ଯ୍ୟକାରକ, କାର୍ଯ୍ୟକାରୀ ବ୍ୟକ୍ତି ।

କାର୍ଯ୍ୟକଳାପ—ବି. (ତତ୍) କର୍ମସମୂହ ।

କାର୍ଯ୍ୟକାରଣକର୍ତ୍ତୃତ୍ୱଭାବ,ସମ୍ବନ୍ଧ ବି(ନ୍ୟାୟ) ଫଳ. ଉପାୟ ଓ କର୍ତ୍ତାଙ୍କ ମଧ୍ୟରେ ବିଦ୍ୟମାନଥିବା ସମ୍ବନ୍ଧ ।

କାର୍ଯ୍ୟକାରଣଭାବ—ବି. ଫଳ ଓ ତାହାର ନିମିତ୍ତ ମଧ୍ୟରେ ସମ୍ବନ୍ଧ ।

କାର୍ଯ୍ୟକାରଣ—କ୍ଲୀ.ବି. ମିଳିତ କାର୍ଯ୍ୟ ଓ କାରଣ, କର୍ମ ଓ ତାହାର ହେତୁ, (ଗ୍ରା. ବି) କାର୍ଯ୍ୟର ପ୍ରସଙ୍ଗ ବା ପ୍ରୟୋଜନ ।

କାର୍ଯ୍ୟକାରୀ-ପୁଂ.ବିଂ.(କାର୍ଯ୍ୟ+କୃ+ଇନ୍) କାର୍ଯ୍ୟକାରକ, କାମିକା, ପ୍ରୟୋଜନୀୟ, ଫଳପ୍ରଦ, ଯେ କାର୍ଯ୍ୟକରେ ।

କାର୍ଯ୍ୟକାଳ—ପୁଂ. ବି. (କାର୍ଯ୍ୟ+କାଳ) ତତ୍, କାର୍ଯ୍ୟର ଉପଯୁକ୍ତ ସମୟ ।

କାର୍ଯ୍ୟକୁଶଳ—ପୁଂ.ବି.°(କାର୍ଯ୍ୟ+କୁଶଳ) କାର୍ଯ୍ୟଦକ୍ଷ,କର୍ମଠ,ଯେ ଉତ୍ତମକାର୍ଯ୍ୟକରିବାରେ ନିପୁଣଅଟେ,(ସ୍ତ୍ରୀ)କାର୍ଯ୍ୟ କୁଶଳା ।

କାର୍ଯ୍ୟକ୍ରମ—(ତତ୍) ପୂର୍ବରୁ ନିରୂପିତ କରାଯାଇଥିବା, କାର୍ଯ୍ୟର ଧାରାବାହିକ ଅଂଶ ବା ଅଙ୍ଗ, କାର୍ଯ୍ୟର ଅବୟବ ।

କାର୍ଯ୍ୟକ୍ଷମ—ପୁଂ. ବିଂ. ( କାର୍ଯ୍ୟ+କ୍ଷମ ) କାର୍ଯ୍ୟ ସମ୍ପାଦନ କରିବାରେ କ୍ଷମତାଯୁକ୍ତ, କାର୍ଯ୍ୟପଟୁ ।

କାର୍ଯ୍ୟକ୍ଷେତ୍ର—ବି (ତତ୍) କାର୍ଯ୍ୟ କରିବାର ସ୍ଥାନ,(ଲକ୍ଷଣାର୍ଥ) କାର୍ଯ୍ୟକରିବାର ଉପଯୁକ୍ତ ଅବସର ବା ସୁଯୋଗ ।

କାର୍ଯ୍ୟଗୁରୁତା—ସ୍ତ୍ରୀ. ବି. କାର୍ଯ୍ୟର ନିତାନ୍ତ ଆବଶ୍ୟକତା, କାର୍ଯ୍ୟର ଗୁରୁତ୍ୱ ।

କାର୍ଯ୍ୟଗୌରବ—କ୍ଲୀ.ବି. କାର୍ଯ୍ୟଗୁରୁତା, କାର୍ଯ୍ୟର ମର୍ଯ୍ୟାଦା ।

କାର୍ଯ୍ୟଗ୍ରାହୀ—ପୁଂ.ବି.(କାର୍ଯ୍ୟ+ଗ୍ରହ+କ. ଇନ୍) ଅନ୍ୟଠାରୁ କାର୍ଯ୍ୟ କରାଇନେବା ବ୍ୟକ୍ତି, କାର୍ଯ୍ୟ ନିମନ୍ତେ ଅନ୍ୟମାନଙ୍କ ଉପରେ ନିର୍ଭର କରୁଥିବା ବ୍ୟକ୍ତି,କାର୍ଯ୍ୟ ନିମନ୍ତେ ବହୁଲୋକଙ୍କ ସାହାଯ୍ୟ ଲୋଡ଼ୁଥିବା ବ୍ୟକ୍ତି ।

କାର୍ଯ୍ୟଚିନ୍ତକ—ତ୍ରି. ବିଂ. କର୍ତ୍ତବ୍ୟ ବିଷୟରେ ଚିନ୍ତା କରୁଥିବା ବ୍ୟକ୍ତି ।

କାର୍ଯ୍ୟଚିନ୍ତା—ସ୍ତ୍ରୀ.ବି. କର୍ତ୍ତବ୍ୟ ବିଷୟରେ ଚିନ୍ତା ।

କାର୍ଯ୍ୟଚ୍ୟୁତ—ପୁଂ.ବିଂ. (ତତ୍ )କାର୍ଯ୍ୟଭ୍ରଷ୍ଟ, କୌଣସି କର୍ମ ବା ଚାକିରିରୁ ଅନ୍ତରିତ ବା ବରଖାସ୍ତ ହୋଇଥିବା, ବେକାର, ନିକମା,(ସ୍ତ୍ରୀ) କାର୍ଯ୍ୟଚ୍ୟୁତା ।

କାର୍ଯ୍ୟଚ୍ୟୁତି—ବି.(ତତ୍) କର୍ମରୁ ବରଖାସ୍ତ ହେବା, ବେକାର ଅବସ୍ଥା ।

କାର୍ଯ୍ୟଜାଗେ—ଗ୍ରା. ବି. ଏ ଦଲିଲ ବା ପତ୍ରର କାର୍ଯ୍ୟ ବା ବିଷୟ ଏହିକି ।

କାର୍ଯ୍ୟତଃ—ଅବ୍ୟ.(କାର୍ଯ୍ୟ+ତସ୍)ଫଳତଃ ବସ୍ତୁତଃ, ପ୍ରକୃତପକ୍ଷେ ।

କାର୍ଯ୍ୟତତ୍ପର—ବିଂ. ( ତତ୍ ) କାର୍ଯ୍ୟକୁଶଳ, କର୍ମପଟୁ, କ୍ରିୟାନିପୁଣ, କ୍ଷିପ୍ରକାରୀ, ଚଟ୍‌ପଟିଆ ।

କାର୍ଯ୍ୟଭୁଲାଇବା—ଗ୍ରା.କ୍ରି.କାର୍ଯ୍ୟଉଠାଇବା (ଦେଖ) ।

କାର୍ଯ୍ୟତ୍ୱ-କ୍ଳୀ.ବି.(କାର୍ଯ୍ୟ + ତ୍ୱ)କର୍ତ୍ତବ୍ୟତା ।

କାର୍ଯ୍ୟଦକ୍ଷ—ବିଂ. (୭ତତ୍) କର୍ମପଟୁ, କ୍ରିୟାକୁଶଳ ।

କାର୍ଯ୍ୟଦକ୍ଷତା—ବି.(୭ତତ୍)କର୍ମପଟୁତା, କ୍ରିୟାକୁଶଳତା ।

କାର୍ଯ୍ୟଦର୍ଶକ—ପୁଂ. ବିଂ. କାର୍ଯ୍ୟର ତତ୍ତ୍ୱାବଧାରକ, କାର୍ଯ୍ୟର ପରୀକ୍ଷକ ।

କାର୍ଯ୍ୟଦର୍ଶନ—କ୍ଳୀ. ବି. କାର୍ଯ୍ୟର ତତ୍ତ୍ୱାବଧାନ ।

କାର୍ଯ୍ୟଦର୍ଶୀ—ପୁଂ.ବି.(କାର୍ଯ୍ୟ + ଦୃଶ୍ + ଣ.ଇନ୍) କାର୍ଯ୍ୟଦର୍ଶକ, ତତ୍ତ୍ୱାବଧାରକ, ଯେଉଁ ଶ୍ରେଣୀ ବିଚାରକର ଯେ କାର୍ଯ୍ୟକରେ, (ସ୍ତ୍ରୀ) କାର୍ଯ୍ୟଦର୍ଶିନୀ ।

କାର୍ଯ୍ୟଦେବା—ଗ୍ରା. କ୍ରି. ଅନ୍ୟଠାରେ କାର୍ଯ୍ୟର ଭାରଦେବା,କାର୍ଯ୍ୟରେ ନିଯୁକ୍ତ କରିବା, ବେକାର ବା ନିକମା ବ୍ୟକ୍ତିଙ୍କୁ କାମରେ ଲଗାଇବା ।

କାର୍ଯ୍ୟଦ୍ୱେଷ—ପୁଂ.ବି.କାର୍ଯ୍ୟ କରିବାରେ ଅନିଚ୍ଛା, ଆଳସ୍ୟ ।

କାର୍ଯ୍ୟନାଶ—ବି. ( ୭ତତ୍ ) କାର୍ଯ୍ୟରେ ନିଷ୍ଫଳତା, କାର୍ଯ୍ୟଚ୍ୟୁତ ।

କାର୍ଯ୍ୟନାଶକ—କୌଣସିକାର୍ଯ୍ୟର ଧ୍ୱଂସ ବା ନାଶକରିବା (ବ୍ୟକ୍ତି), କାର୍ଯ୍ୟରେ ବିଘ୍ନ ଘଟାଇବା (ବ୍ୟକ୍ତି), କାର୍ଯ୍ୟରେ ବାଧା ବା ହସ୍ତକ୍ଷେପ କରିବା (ବ୍ୟକ୍ତି) ।

କାର୍ଯ୍ୟନିଯୁକ୍ତ—ବି. (୭ତତ୍) କାର୍ଯ୍ୟରେ ଲାଗିଥିବା, ମୁକରର ହେବା ।

କାର୍ଯ୍ୟନିଯୁକ୍ତ—ବି. (୭ତତ୍) କୌଣସି କାର୍ଯ୍ୟରେ ମୁକରର ହେବା ।

କାର୍ଯ୍ୟନିର୍ଣ୍ଣୟ—ପୁଂ.ବି. (୭ତତ୍)ନିର୍ଣ୍ଣୟ ରୂପେ କାର୍ଯ୍ୟ ସ୍ଥିରକରିବା ।

କାର୍ଯ୍ୟନିର୍ବାହ—ପୁଂ.ବିଂ.(କାର୍ଯ୍ୟ + ନିର୍ବାହ) କାର୍ଯ୍ୟ ନିଷ୍ପତ୍ତି, କର୍ମନିର୍ବାହ ।

କାର୍ଯ୍ୟନିର୍ବାହକ—ପୁଂ. ବିଂ. (କାର୍ଯ୍ୟ + ନିର୍ + ବହ + ଅକ)ଯେ କାର୍ଯ୍ୟ ନିର୍ବାହ କରେ, କାର୍ଯ୍ୟ ସମ୍ପାଦନ,(ସ୍ତ୍ରୀ) ହିକା ।

କାର୍ଯ୍ୟନିଷ୍ପତ୍ତି—ସ୍ତ୍ରୀ.ବି.କାର୍ଯ୍ୟର ସମାଧାନ, କାର୍ଯ୍ୟ ଶେଷହେବା ।

କାର୍ଯ୍ୟପଟୁ—ବି. ବିଂ. କାର୍ଯ୍ୟକୁଶଳ, କର୍ମଦକ୍ଷ, ପାରଙ୍ଗମ ।

କାର୍ଯ୍ୟପଦ୍ଧତି ପ୍ରଣାଳୀ - ବି.(୬ତତ୍)କର୍ମର ରୀତି, କାର୍ଯ୍ୟର ଧାରା ।

କାର୍ଯ୍ୟପୁଟ—ପୁଂ.ବିଂ. (କାର୍ଯ୍ୟ + ପୁଟ + କ, ଅ) ନିର୍ଲଜ୍ଜ, ଉନ୍ମତ୍ତ, ଅନର୍ଥକର ।

କାର୍ଯ୍ୟପ୍ରଦ୍ୱେଷ—ପୁଂ. ବି. ଆଳସ୍ୟ, କାର୍ଯ୍ୟରେ ନିତାନ୍ତ ଅନିଚ୍ଛା ।

କାର୍ଯ୍ୟପ୍ରସର—ବି. (୬ତତ୍) କାର୍ଯ୍ୟକରିବାର ସୀମା । [ପାଇବା ।

କାର୍ଯ୍ୟ-ପ୍ରାପ୍ତି—ବି. କାର୍ଯ୍ୟଲାଭ, ଗୁଜର

କାର୍ଯ୍ୟପ୍ରେଷ୍ୟ—ବି. ଦୂତକାର୍ଯ୍ୟ ସମ୍ପାଦନ କରିବା ନିମନ୍ତେ ନିଯୁକ୍ତ କରିବାର ଉପଯୁକ୍ତ ।

କାର୍ଯ୍ୟଭାଜନ—ବିଂ.କାର୍ଯ୍ୟେ ଉପଯୋଗୀ ।

କାର୍ଯ୍ୟଭାର—ପୁଂ.ବି.(୬ତତ୍) କୌଣସି କାର୍ଯ୍ୟ କରିବାର ଦାୟିତ୍ୱ ।

କାର୍ଯ୍ୟଭ୍ରଷ୍ଟ—କ୍ରି.ବିଂ. କାର୍ଯ୍ୟଚ୍ୟୁତ ।

କାର୍ଯ୍ୟରେ ଆସିବା—ଗ୍ରା.କ୍ରି.ଉପକାରରେ ଆସିବା, ବ୍ୟବହାରରେ ଆସିବା, ଆବଶ୍ୟକ ହେବା, ଦରକାର ବେଳେ ବ୍ୟବହୃତ ହେବା ।

କାର୍ଯ୍ୟରେ ଲଗିବା—ଗ୍ରା. କ୍ରି. (କୌଣସି ବ୍ୟକ୍ତି) କାମରେ ମନଦେବା, କାର୍ଯ୍ୟରେ ନିଯୁକ୍ତ ହେବା, (କୌଣସି ବସ୍ତୁ) ଦରକାରରେ ଆସିବା, କାର୍ଯ୍ୟରେ ଆସିବା ।

କାର୍ଯ୍ୟଲଗିବା—ଗ୍ରା. ବି.କୌଣସି କାର୍ଯ୍ୟ ଚଳୁଥିବା ଅବସ୍ଥା ।

କାର୍ଯ୍ୟଲାଭ—ବି.(୬ତତ୍) ଉଦ୍ଦିଷ୍ଟକାର୍ଯ୍ୟସିଦ୍ଧି, ମୁକରର, କାର୍ଯ୍ୟରେ ନିଯୁକ୍ତ ।

କାର୍ଯ୍ୟବତ୍ତା—କ୍ଳୀ. ବି. କାର୍ଯ୍ୟବିଶିଷ୍ଟତା, କାର୍ଯ୍ୟବାନ୍‌ର ଧର୍ମ ।

କାର୍ଯ୍ୟବଶତଃ—ଅବ୍ୟ. ( କାର୍ଯ୍ୟ + ବଶ + ତସ୍ ) କାର୍ଯ୍ୟଅନୁରୋଧରେ, କାର୍ଯ୍ୟର ବନ୍ଧନରେ ପଡ଼ି, କର୍ମବଶତଃ ।

କାର୍ଯ୍ୟବଶ—ପୁଂ. ବି. (କାର୍ଯ୍ୟ + ବଶ ) କାର୍ଯ୍ୟର ଅନୁରୋଧ, (ବିଂ) କାର୍ଯ୍ୟର ବଶୀଭୂତ ।

କାର୍ଯ୍ୟବସ୍ତୁ—କ୍ଳୀ. ବି. କାର୍ଯ୍ୟ ନିଷ୍ପାଦନ ପାଇଁ ଆବଶ୍ୟକ ଦ୍ରବ୍ୟ ।

କାର୍ଯ୍ୟବାନ୍—ପୁଂ. ବିଂ. କାର୍ଯ୍ୟବିଶିଷ୍ଟ, କାର୍ଯ୍ୟରେ ଆବଦ୍ଧ ।

କାର୍ଯ୍ୟବିଧି—ବି.(୬ତତ୍)କୌଣସି କାର୍ଯ୍ୟ ସାଧନ କରିବାର ପନ୍ଥା ବା ପଦ୍ଧତି, ପରମ୍ପରା, ( ଗ୍ରା.ବି ) ଫୌଜଦାରୀ ବା ଦେଓ୍ୱାନୀ ଆଦର ଧାରାବାହିକ ରୀତିବା ପଦ୍ଧତି ।

କାର୍ଯ୍ୟବିପତ୍ତି—ସ୍ତ୍ରୀ. ବି. କାର୍ଯ୍ୟ ସମ୍ପାଦନ ବିଷୟରେ ଯେଉଁ ସକଳ ବିପତ୍ତି ଉପସ୍ଥିତ ହୁଏ ।

କାର୍ଯ୍ୟବିଭାଗ—ବି. (୬ତତ୍) ଭିନ୍ନ ଭିନ୍ନ କାର୍ଯ୍ୟ ଭିନ୍ନ ଭିନ୍ନ ବ୍ୟକ୍ତିଙ୍କଦ୍ୱାରା କରାଯିବାର ବିଧାନ, ବହୁଲୋକଙ୍କ ମଧ୍ୟରେ କାର୍ଯ୍ୟବଣ୍ଟନ, କାର୍ଯ୍ୟର ଭିନ୍ନ ଭିନ୍ନ ଭାଗକରା ।

କାର୍ଯ୍ୟବିଶେଷ - ପୁଂ.ବି.(୬ତତ୍)କୌଣସି ବିଶିଷ୍ଟ କର୍ମ ବା ପ୍ରୟୋଜନ ।

କାର୍ଯ୍ୟବ୍ୟସ୍ତ—ବିଂ. (୭ତତ୍) କାର୍ଯ୍ୟରେ ବ୍ୟାକୁଳ, କାର୍ଯ୍ୟରେ ସର୍ବଦା ବ୍ୟାପୃତ ।

କାର୍ଯ୍ୟଶେଷ - ପୁଂ. ବି. ଆରବ୍ଧକାର୍ଯ୍ୟର ନିଷ୍ପତ୍ତି, କାର୍ଯ୍ୟର ଅବଶିଷ୍ଟ ଅଂଶ ।

କାର୍ଯ୍ୟସନ୍ଦେହ—ପୁଂ. ବି. କାର୍ଯ୍ୟନିଷ୍ପତ୍ତି ବିଷୟରେ ଅନିଶ୍ଚିତତା ।

କାର୍ଯ୍ୟସମ—ପୁଂ.ବି. ନ୍ୟାୟମତେ ଚତୁର୍ବିଂଶ ଜାତିର ଅନ୍ତର୍ଗତ ଜାତିବିଶେଷ ।

କାର୍ଯ୍ୟସମାଧାନ—ବି.(କାର୍ଯ୍ୟ + ସମାଧାନ) କାର୍ଯ୍ୟନିଷ୍ପାଦନ, କାର୍ଯ୍ୟ ସାଧନ, କାର୍ଯ୍ୟଶେଷ (ଦେଖ) ।

କାର୍ଯ୍ୟସମାଧାୟକ—ବିଂ. ଯେ କାର୍ଯ୍ୟ ସମାଧାନ କରେ ।

କାର୍ଯ୍ୟସମ୍ପାଦନ—କ୍ଳୀ.ବି. (୬ତତ୍)କାର୍ଯ୍ୟ ନିର୍ବାହ, ଆପଣାର କାର୍ଯ୍ୟ ହାସଲ କରିବା ।

କାର୍ଯ୍ୟସାଧକ—ବିଂ. (କାର୍ଯ୍ୟ + ସାଧ + ଅକ) ଯାହାଦ୍ୱାରା କାର୍ଯ୍ୟ ସିଦ୍ଧ ହୁଏ, କାର୍ଯ୍ୟ ସମ୍ପାଦକ । [ନିଷ୍ପତ୍ତି ।

କାର୍ଯ୍ୟସାଧନ—କ୍ଳୀ.ବି. କାର୍ଯ୍ୟସିଦ୍ଧି,କାର୍ଯ୍ୟ

କାର୍ଯ୍ୟସିଦ୍ଧି—ସ୍ତ୍ରୀ. ବି. (କାର୍ଯ୍ୟ + ସିଦ୍ଧି) କର୍ତ୍ତବ୍ୟ କର୍ମର ନିଷ୍ପତ୍ତି, ଅଭୀଷ୍ଟସିଦ୍ଧି ।

କାର୍ଯ୍ୟସ୍ଥାନ—କ୍ଳୀ.ବି. କାର୍ଯ୍ୟସାଧନ କରିବାର ଜାଗା ।
କାର୍ଯ୍ୟା—ସ୍ତ୍ରୀ.ବି.(କୃ+ଘ+ଆ)କାଶବୃକ୍ଷ
କାର୍ଯ୍ୟାକାର୍ଯ୍ୟବିଚାର—ପୁଂ. ବି. ଏହା କର୍ତ୍ତବ୍ୟ ଏହା ଅକର୍ତ୍ତବ୍ୟ ଏହିରୂପ ବିଚାର ।
କାର୍ଯ୍ୟାକ୍ଷମ—ପୁଂ. ବିଂ. କାର୍ଯ୍ୟ କରିବାକୁ ଅପାରଗ ବା ଅସମର୍ଥ ।
କାର୍ଯ୍ୟାଙ୍କ—ପୁଂ. ବି. (ଷତତ୍) କର୍ମର ନିଦର୍ଶନ, କାର୍ଯ୍ୟର ପରିଚାୟକ ଚିହ୍ନ, (ଚପରାଶି ପ୍ରଭୃତି) ।
କାର୍ଯ୍ୟାତ୍ମକ—ବିଂ. ( ବି.ବ୍ରୀ ) କର୍ମପ୍ରାଣ, କର୍ମଗର୍ଭ, କର୍ମମୟ, କର୍ମବିଶିଷ୍ଟ, (ସ୍ତ୍ରୀ) କାର୍ଯ୍ୟାତ୍ମିକା ।
କାର୍ଯ୍ୟାଧିପ—ପୁଂ. ବିଂ. କାର୍ଯ୍ୟାଧ୍ୟକ୍ଷ, ଜ୍ୟୋତିଷୋକ୍ତ କାର୍ଯ୍ୟ ସାଧନର ଅଧୀଶ୍ୱର, ଅର୍ଥାତ୍ ଲଗ୍ନ ସ୍ଥାନଠାରୁ ଦଶମସ୍ଥାନର ଅଧିପତି ।
କାର୍ଯ୍ୟାଧୀଶ—ପୁଂ.ବି. (ଷତତ୍) କାର୍ଯ୍ୟାଧିପ, କାର୍ଯ୍ୟରେ ମାଲିକ ।
କାର୍ଯ୍ୟାଧ୍ୟକ୍ଷ—ପୁଂ. ବି, (ଷତତ୍) ଯାହାର ତତ୍ତ୍ୱାବଧାନରେ କାର୍ଯ୍ୟ ନିଷ୍ପନ୍ନ ହୁଏ ।
କାର୍ଯ୍ୟାନୁବନ୍ଧ—ବିଂ. (ଷତତ୍) କାର୍ଯ୍ୟଯୋଗୁଁ ବାଧିହେବା ଅବସ୍ଥା, କାର୍ଯ୍ୟଯୋଗୁଁ ବନ୍ଧନ ।
କାର୍ଯ୍ୟାନୁରୋଧ—ପୁଂ. ବି. ( ·ତତ୍ ) କାର୍ଯ୍ୟର ଅବଶ୍ୟ କର୍ତ୍ତବ୍ୟତା ଯୋଗୁଁ ବନ୍ଧନ, କର୍ମର ଆୟୋଜନ ।
କାର୍ଯ୍ୟାନ୍ତ—ପୁଂ. ବି. (ଷତତ୍) କାର୍ଯ୍ୟର ଶେଷ ।
କାର୍ଯ୍ୟାନ୍ତର—ପୁଂ.ବି. (କାର୍ଯ୍ୟର+ଅନ୍ତର) ଅନ୍ୟକାର୍ଯ୍ୟ, କର୍ମାନ୍ତର ।
କାର୍ଯ୍ୟାନ୍ୱିତ—ବିଂ. (କାର୍ଯ୍ୟ+ଅନ୍ୱିତ) କାର୍ଯ୍ୟଯୁକ୍ତ, କର୍ମବିଶିଷ୍ଟ ।
କାର୍ଯ୍ୟାରମ୍ଭ—ପୁଂ.ବି. (କାର୍ଯ୍ୟ+ଆରମ୍ଭ) କାର୍ଯ୍ୟର ପ୍ରଥମ ଅନୁଷ୍ଠାନ, କର୍ମାରମ୍ଭ ।
କାର୍ଯ୍ୟାର୍ଥସିଦ୍ଧି—ସ୍ତ୍ରୀ.ବି, (ଷତତ୍) ଉଦ୍ଦେଶ୍ୟ ସିଦ୍ଧି ।
କାର୍ଯ୍ୟାର୍ଥୀ—ପୁଂ. ବିଂ. (କାର୍ଯ୍ୟ+ଅର୍ଥ+ଇନ୍) କାର୍ଯ୍ୟ କରିବା ନିମନ୍ତେ ପ୍ରାର୍ଥନାକାରୀ, ଚାକିରିପ୍ରାର୍ଥୀ, ଅନୁସରଣିଆ, ଉଦ୍ଦେଶ୍ୟ ସାଧନାର୍ଥ ତତ୍ପର ।
କାର୍ଯ୍ୟାର୍ପଣ—ବି.(ଷତତ୍) କୌଣସି ବ୍ୟକ୍ତି ଉପରେ କାର୍ଯ୍ୟର ଭାରଦେବା ।
କାର୍ଯ୍ୟାଳୟ—ବି. (ଷତତ୍) ଅଫିସ, ଯେଉଁଠାରେ କୌଣସି କର୍ମ କରାଯାଏ, କାରଖାନା ।
କାର୍ଯ୍ୟିକ—ବିଂ. ବିଂ. କାର୍ଯ୍ୟବିଶିଷ୍ଟ ।
କାର୍ଯ୍ୟୀ—ପୁଂ. ବିଂ. (କାର୍ଯ୍ୟ+ଇନ୍) କାର୍ଯ୍ୟପ୍ରାର୍ଥୀ, ବ୍ୟାକରଣୋକ୍ତ ଆଦେଶ ସ୍ଥାନ, ଗୁମାସ୍ତା, କର୍ମଚାରୀ । ଧ୍ୟକ୍ଷ ।
କାର୍ଯ୍ୟେଶ—ପୁଂ. ବି. (ଷତତ୍) କାର୍ଯ୍ୟା-
କାର୍ଯ୍ୟୈକ୍ୟ—କ୍ଳୀ.ବି. (ଷତତ୍) ନ୍ୟାୟମତରେ ଛଅପ୍ରକାର ସଙ୍ଗୀତର ଅନ୍ତର୍ଗତ ସଙ୍ଗୀତବିଶେଷ ।
କାର୍ଯ୍ୟୋତ୍ସୁକ—ବି.ବିଂ. (ଷତତ୍)କାର୍ଯ୍ୟନିର୍ବାହ ବିଷୟରେ ବ୍ୟଗ୍ର, ଉଦ୍‌ଯୋଗୀ ।
କାର୍ଯ୍ୟୋଦ୍ୟମ—ପୁଂ. ବି. (ଷତତ୍)କାର୍ଯ୍ୟ ସମ୍ପାଦନ ବିଷୟରେ ଚେଷ୍ଟା ।
କାର୍ଯ୍ୟୋଦ୍ୟୁକ୍ତ—ବିଂ. (ଷତତ୍) କାର୍ଯ୍ୟ ସାଧନେ ଉଦ୍ୟମବିଶିଷ୍ଟ ।
କାର୍ଯ୍ୟୋଦ୍ୟୋଗ—ପୁଂ. ବି. (ଷତତ୍) କାର୍ଯ୍ୟାରମ୍ଭର ଚେଷ୍ଟା ।
କାର୍ଯ୍ୟୋଦ୍ଧାର—ପୁଂ.ବି. ଷତତ୍ (କାର୍ଯ୍ୟ+ଉଦ୍ଧାର ) କାର୍ଯ୍ୟ ସାଧନ କରିବା, କର୍ତ୍ତବ୍ୟକାର୍ଯ୍ୟ ସମ୍ପାଦନ, ଉଦ୍ଦେଶ୍ୟ ସାଧନ, ଅନ୍ୟମାନଙ୍କଠାରୁ କାମନେବା ।
କାର୍ଣବେଷ୍ଟୀପୁତ୍ର—ପୁଂ. ବି. କୃଷକରଷିର ନାତି, ଜନୈକ ଶିକ୍ଷକ ।
କାର୍ଶାନବ—ବିଂ. ବିଂ. (କୃଶାନୁ+ଅ) କୃଶାନୁ ସମ୍ବନ୍ଧୀୟ, ଅଗ୍ନି ସମ୍ବନ୍ଧୀୟ ।
କାର୍ଶ୍ମର୍ଯ୍ୟ—ସ୍ତ୍ରୀ.ବି. ଗମ୍ଭାରୀଗଛ, ଶ୍ରୀପର୍ଣ୍ଣୀ ଗଛ ।
କାର୍ଶ୍ୟ—ପୁଂ. ବି. (କୃଶ+ଯ)ଲକୁଚବୃକ୍ଷ, ଜେଉଠ,ଶାଳବୃକ୍ଷ,କର୍ଚ୍ଚୂରବୃକ୍ଷ, (କ୍ଳୀ) କ୍ଷୀଣତା, କୃଶତା ।
କାର୍ଷ—ବି. ବିଂ. (କୃଷି+ଅ)କୃଷିକର୍ମକାରକ ।
କାର୍ଷକ—ପୁଂ.ବି.(କାର୍ଷ+କ) କୃଷିକର୍ମକାରକ, କୃଷକ ।
କାର୍ଷାପଣ—ପୁଂ.କ୍ଳୀ ବି. (କର୍ଷ+ଆପଣ) ଷୋଡ଼ଶପଣ ବା ଏକକାହାଣ (କଉଡ଼ି) ।
କାର୍ଷାପଣକ—ପୁଂ. କ୍ଳୀ. ବି. କାହାଣ ।
କାର୍ଷି—ବି. ବିଂ. କୃଷକ, ଅନ୍ତର୍ଗତ ମଳନାଶକ ।
କାର୍ଷିକ—ପୁଂ.ବି. (କର୍ଷ+ଇକ) କୃଷକ ଶାସ୍ତ୍ରୀୟ ପଣର ଚତୁର୍ଥାଂଶ, କର୍ଷ ପରିମିତ ମୂଲ୍ୟଦ୍ୱାରା ଯେଉଁବସ୍ତୁ କଣାଯାଇ ଅଛି, ବୋଝିଏ,ପାଞ୍ଚଗଣ୍ଡା,ଏକତୋଳା ।
କାର୍ଷିବନ—ପୁଂ.ବି. କୃଷକ, ଚାଷୀ ।
କାର୍ଷ୍ଣ୍ୟ—ବି. କୃଷ୍ଣତା,କର୍ଷିତସ୍ଥାନର ଭାବ ।
କାର୍ଷ୍ଣ—ବି.ବିଂ. (କୃଷ୍ଣ+ଅ) କୃଷ୍ଣମୃଗସମ୍ବନ୍ଧୀୟ, କୃଷ୍ଣଭକ୍ତ, (ପୁଂ.ବି)କୃଷ୍ଣସାର ମୃଗ, କାମଦେବ ।
କାର୍ଷ୍ଣାଜିନ—ପୁଂ. ବି. କୃଷ୍ଣାଜିନ ମୁନିଙ୍କ ପୁତ୍ର, ଶିକ୍ଷକବିଶେଷ, ଜନୈକ ବିଜ୍ଞାନବିତ୍ ।
କାର୍ଷ୍ଣାୟନ—ପୁଂ. ବି. (କୃଷ୍ଣ+ଆୟନ) ବ୍ୟାସବଂଶୀୟ ବ୍ରାହ୍ମଣ, ବଶିଷ୍ଠବଂଶୀୟ ।
କାର୍ଷ୍ଣାୟସ—ବିଂ.କୃଷ୍ଣଲୌହନିର୍ମିତ ଦ୍ରବ୍ୟ
କାର୍ଷ୍ଣି—ପୁଂ. ବି. କାମଦେବ, ଗନ୍ଧର୍ବବିଶେଷ, ବ୍ୟାସପୁତ୍ର, ଶୁକଦେବ ।
କାଲ୍—ପ୍ରା. (ସମ୍ବ) ବି. କାଳ,କୃଷ୍ଣବର୍ଣ୍ଣ (ବିଂ) କୃଷ୍ଣ, କଳା ।
କାଳ—ବିଂ. (କଳ+କ,ଅ) କୃଷ୍ଣବର୍ଣ୍ଣ, କଳାରଙ୍ଗ, ସମୟ, ଅବସର,ଶିବ,ଯମ, ଶନିଗ୍ରହ, ମୃତ୍ୟୁ, କୋକିଳ, ଲୌହ, ଋତୁ, ଯୁଗ, ସୁବିଧା, ସଂହାରକ, ଯମଦୂତଙ୍କ ମଧ୍ୟରୁ ଜଣେ, ପରମାତ୍ମା,ଅନନ୍ତମୂର୍ତ୍ତି, ରକ୍ତଚିତା ଗଛ, କାସମର୍ଦ୍ଦଗଛ, କାଳସର୍ପ,ପ୍ରକୃତି, (ବ୍ୟାକରଣ)କୌଣସି ଘଟନା କିମ୍ବା ଘଟନାର ସମୟ ଜ୍ଞାପନାର୍ଥ ବିଭାଗ,ବର୍ତ୍ତମାନ,ଅତୀତ,ଭବିଷ୍ୟତାଦି କାଳ, ମନୁଷ୍ୟର ବୟସ ଘଟିତ ଅବସ୍ଥା,(ଗ୍ରା.ବି.) ମରୁଡ଼ି,ଦୁର୍ଭିକ୍ଷ, ଶନିପ୍ରଭାବବିସ୍ତାରର ସମୟ, ସଙ୍କଟ କାଳ, (ଲ.ଅର୍ଥ) ଚକ୍ଷୁର କଣ୍ଟକ ସ୍ୱରୂପ ବସ୍ତୁ ବା ବ୍ୟକ୍ତି, (ବିଂ) କୃଷ୍ଣବର୍ଣ୍ଣବିଶିଷ୍ଟ ।

କାଲ୍ — ଗ୍ରା. ବି°. ବଧିର, କାଲ, ସ୍ତବ୍ଧ, ଜର୍ଜ୍ଜ୍ୱ, ଶୀତଳ, କାଲୁଆ, ସ୍ପର୍ଶ ବା ଅନୁଭୂତି ରହିତ, (ବି) ଗବଗଛ, ଜଡ଼ାଗଛ ।

କାଲଆସି ଲଙ୍କାରେ ପଶିଲଣି — ଗ୍ରା. (ପ୍ରବଚନ) ବର୍ତ୍ତମାନ ସମୟରେ ଅସମ୍ଭବ ବା ବିପରୀତ କାର୍ଯ୍ୟ ଘଟିଲଣି ।

କାଲକ — କ୍ଲୀ.ବି.(କଳ + ଅକ) ଦେହରେ କଳାଦାଗ ଥିବା, କଳାଶାଗ, ସର୍ପବିଶେଷ, ଖଣ୍ଡ, ଯକୃତ୍‌ରୋଗ, ଜଉ, ଲାଖ, ହେଙ୍ଗୁ, (ବି°.) କୃଷ୍ଣବର୍ଣ୍ଣଯୁକ୍ତ, (ଗ୍ରା.ଅବ୍ୟ) ବହୁକାଳ, କାଲଯାକ, ଆବହମାନ, ଗତ ବହୁଦିବସ, ବହୁକାଳରୁ, ଚିରକାଳ ପାଇଁ, ଦିନକ, ପୁରୁଷକ, ଜୀବନଯାକ ।

କାଲକଞ୍ଜ — କ୍ଲୀ. ବି. (କ.ଧା) ନୀଳପଦ୍ମ, (ପୁଂ.) ଦାନବବିଶେଷ ।

କାଲକଣ୍ଟଙ୍କ — ପୁଂ.ବି. (କ.ଧା) ଶିବ, ମହାଦେବ ।

କାଲକଟିବା — ଗ୍ରା.ବି. ସମୟ ଅତିବାହିତ ହେବା, କାଲଯାପନ ।

କାଲକଣ୍ଟକ — ତ୍ରି°. ବି°. କାଲ କଣ୍ଟାଯୁକ୍ତ ବୃକ୍ଷାଦି, (ଗ୍ରା.ବି.) ଗୋଇଣ୍ଡୁ ।

କାଲକଣ୍ଠ — ପୁଂ.ବି ମୟୂର, ଶିବ, କଜ୍ଜଳପାତି ଚଢ଼େଇ, ଡାହୁକପକ୍ଷୀ, ନୀଳକଣ୍ଠ, ଚଟକପକ୍ଷୀ, ଖଞ୍ଜନପକ୍ଷୀ ।

କାଲକନ୍ଦକ — ପୁଂ.ବି. (କାଳ + କନ୍ଦ୍ + କୈ + ଅ) ଜଳସର୍ପ, ଧଣ୍ଡସାପ ।

କାଲକବଳ — ବି. (୬ତତ୍) କାଳ ଗ୍ରାସ, ସମୟକ୍ରମେ ବସ୍ତୁର ବିନାଶ, ମୃତ୍ୟୁ ।

କାଲକବଳିତ — ତ୍ରି. ବି°. ମୃତ୍ୟୁ ମୁଖରେ ପତିତ ।

କାଲକର୍ଣ୍ଣିକା-(କର୍ଣ୍ଣୀ) — ସ୍ତ୍ରୀ.ବି. ଅଲକ୍ଷ୍ମୀ ।

କାଲକର୍ମ — କ୍ଲୀ ବି.ଅନିଷ୍ଟକାରକ କାର୍ଯ୍ୟ, ମୃତ୍ୟୁ ।

କାଲକାଲ — ଗ୍ରା.ବି°.ଚିରକାଲ, ବହୁକାଲ, ପରମେଶ୍ୱର, ମହାଦେବ ।

କାଲକଯାକ — ଗ୍ରା. ଅବ୍ୟ. ଚିରଜୀବନ, ଆଜୀବନ, ବହୁକାଳାବଧି, ଆବହମାନକାଲରୁ ।

କାଲକଲାସ୍ତ — ପୁଂ. ବି. କଳା ମଟର ।

କାଲକଲ୍ପ — ବି. ଈଷତ୍ ଅସମ୍ପୂର୍ଣ୍ଣକାଳ, କାଳସଦୃଶ, ଯମତୁଲ୍ୟ ।

କାଲକସ୍ତୁରୀ — ସ୍ତ୍ରୀ. ବି, କସ୍ତୁରୀବିଶେଷ, ଲଟାକସ୍ତୁରୀ ।

କାଲକା — କାଲକେୟ ନାମକ ଅସୁରଗଣର ମାତା, ପକ୍ଷୀବିଶେଷ, ଦକ୍ଷମାତା, ବୈଶ୍ୱାନରର କନ୍ୟା ।

କାଲକାକ୍ଷ — ପୁଂ. ବି. ଅସୁରବିଶେଷ ।

କାଲକାଟିବା — ଗ୍ରା.କ୍ରି.ସମୟ ଅତିବାହିତ କରିବା, ବିତେଇବା ।

କାଲକାଲକୁ — ଗ୍ରା. ବି. ଚିରଦିନକୁ, ସବୁଦିନକୁ ।

କାଲକୀଟ — ପୁଂ. ବି. ଦେଶବିଶେଷ ।

କାଲକୀର୍ତ୍ତି — ପୁଂ. ବି. ମହାଭାରତୋକ୍ତ ଅସୁରରାଜାବିଶେଷ ।

କାଲକୀଳ — ପୁଂ.ବି.(କାଳ + କୀଳ + ଅ) କୋଳାହଳ ।

କାଲକୁ — ଗ୍ରା. ଅବ୍ୟ. କେବେହେଲେ, ଭବିଷ୍ୟତରେ । [ଟିଟିପଟି ।

କାଲକୁଟୁ — ପ୍ରା. (କାଳହାଣ୍ଡି-ଖଣ୍ଡଆଳ)

କାଲକୁଣ୍ଡ — ପୁଂ.ବି.(କାଳ + କୁଣ୍ଡ) ଯମ ।

କାଲକୁଷ୍ଠ — କ୍ଲୀ.ବି.(କାଳ + କୁଷ + ତ) କଙ୍କୁଷ୍ଠ ନାମକ ପର୍ବତଜାତ ମୃତ୍ତିକାବିଶେଷ ।

କାଲକୂଟ — କ୍ଲୀ.ବି.(କାଳକୂଟ + ଅ) ବିଷ, ହଳାହଳ, ସ୍ଥାବର ବିଷବିଶେଷ ।

କାଲକୂଟକ — ପୁଂ.ବି. (କାଳ + କୂଟ + କୈ + ଅ) କାରସ୍କର ବୃକ୍ଷ, ବିଷ ।

କାଲକୂଟଙ୍କ — ପୁଂ. ବି. ଶିବ ।

କାଲକୃତ୍ — ପୁଂ.ବି.(କାଳ + କୃତ୍) ସୂର୍ଯ୍ୟ ପରମେଶ୍ୱର ।

କାଲକୃତ — ପୁଂ.ବି. (କାଳ + କୃତ) ସୂର୍ଯ୍ୟ, (ତ୍ରି°) କାଳଜାତ, ପାପବିଶେଷ, ଯଥା ସମୟେ କୃତ ବା ସମ୍ପାଦିତ ।

କାଲକେତୁ — ପୁଂ. ବି. ଇନ୍ଦ୍ରଙ୍କର ପୁତ୍ରବିଶେଷ ।

କାଲକେୟ — ପୁଂ. ବି.(କାଳକା + ଏୟ) କାଳକା ନାମକ ରାକ୍ଷସୀ ଗର୍ଭଜାତ ଅତି ଦୁର୍ଦ୍ଧର୍ଷ ଷଷ୍ଟିସହସ୍ର ଅସୁରଗଣ ।

କାଲକେଶୀ — ସ୍ତ୍ରୀ. ବି. ନୀଳଗଛ, କାଳକେଶଯୁକ୍ତା ସ୍ତ୍ରୀ, କାଳଦେବୀ ।

କାଲକୋଟି — ସ୍ତ୍ରୀ.ବି. ଜନପଦବିଶେଷ ।

କାଲକ୍ରମ — ବି. (କାଳ + କ୍ରମ) ସମୟର ଗତି, କ୍ରମେ କ୍ରମେ ଗତ ହେଉଥିବା ସମୟ ।

କାଲକ୍ରମେ — ଗ୍ରା. ଅବ୍ୟ. ସମୟକ୍ରମେ, କ୍ରମେ କ୍ରମେ ଗତ ହେଉଥିବା ସମୟ ଅନୁସାରେ ଉପଯୁକ୍ତ ସମୟ ଉପସ୍ଥିତ ହେଲେ ।

କାଲକ୍ରିୟା — ସ୍ତ୍ରୀ. ବି. ଯଥାକାଳେ ସମ୍ପାଦିତ କାର୍ଯ୍ୟ ।

କାଲକ୍ଲୀତକ — କ୍ଲୀ. ବି. ନୀଳଗଛ ।

କାଲକ୍ଷେପ — ବି. (୬ତତ୍) କାଲକ୍ଷେପଣ (ଦେଖ) ।

କାଲକ୍ଷେପଣ — ବି. (୬ତତ୍) କର୍ତ୍ତବ୍ୟକର୍ମର ନିର୍ଦ୍ଦିଶିତ କାଲର ଲଙ୍ଘନ ବା ଅତିକ୍ରମଣ, ସମୟ କଟାଇବା, କାଲ ଗୁଜାରିବା, ବୃଥା ସମୟ ଦଂସ ।

କାଲଖଞ୍ଜ — ପୁଂ. ବି. ଦାନବବିଶେଷ, (କ୍ଲୀ.ବି) ଯକୃତ୍ ।

କାଲଖଞ୍ଜନ — କ୍ଲୀ.ବି.ଯକୃତ୍‌ରୋଗବିଶେଷ ।

କାଲଖଣ୍ଡ — କ୍ଲୀ.ବି.(କାଳ + ଖଣ୍ଡ) କାଲ ପ୍ରତିପାଦକ ଗ୍ରନ୍ଥବିଶେଷ, ଯକୃତ୍‌ରୋଗବିଶେଷ । [କାଳିନ୍ଦୀ ।

କାଲଗଙ୍ଗା — ସ୍ତ୍ରୀ.ବି.(କ.ଧା) ଯମୁନାନଦୀ,

କାଲଗଡ଼ାଇବା — ଗ୍ରା.କ୍ରି.ନିରୂପିତ ସମୟ ଅତିବାହିତ କରିବା, ସମୟକୁ ବୃଥା ନଷ୍ଟକରିବା ।

କାଲଗଡ଼ିବା — ଗ୍ରା.ବି.ନିରୂପିତ ସମୟରେ କାର୍ଯ୍ୟ ନିଷ୍ପନ୍ନ ନ ହେବା, ନିର୍ଦ୍ଦିଶିତ ସମୟର ଅତିକ୍ରମ, ଭବିଷ୍ୟତ୍ ସମୟରେ କୌଣସି ନିରୂପିତ କାର୍ଯ୍ୟକରିବା ପାଇଁ ରଖାଯିବା, ସମୟର ବୃଥାକ୍ଷେପଣ ।

କାଲଗଣ୍ଡିକା — ସ୍ତ୍ରୀ. ବି. ନଦୀବିଶେଷ ।

କାଳଗତି—ବି. (୬ତତ୍) କାଳକ୍ରମ, ସମୟର ପାରମ୍ପର୍ଯ୍ୟ, ଆଗପଛ, ଯଥାକ୍ରମ ସମୟ, ସୁଗୋଚର ଘଟନା ।
କାଳଗନ୍ଧ—ପୁଂ.ବି.(୬ତତ୍)କାଳଅଗୁରୁ ନାମକ ଔଷଧ, କୃଷ୍ଣଚନ୍ଦନ, ଅଳ୍ପ କାଳ ।
କାଳଗ୍ରନ୍ଥି—ପୁଂ.ବି.(୬ତତ୍)ବତ୍ସର,ବର୍ଷ
କାଳଗ୍ରାସ—ପୁଂ. ବି. (୬ତତ୍) କାଳର ଗ୍ରାସ, ମୃତ୍ୟୁମୁଖ, ମୃତ୍ୟୁ, ବିନାଶ ।
କାଳଘଟ—ପୁଂ. ବି. ବ୍ରାହ୍ମଣବିଶେଷ ।
କାଳଘଣ୍ଟ—ବି. ରାକ୍ଷସବିଶେଷ, ରାବଣର ପୁତ୍ର ।
କାଳଘାତୀ—ତ୍ରି.ବିଂ. (କାଳ+ହନ୍+ଇ) ଯଥାକାଳେ ବିନାଶକାରକ ।
କାଳଘୋଟିବା(ଗ୍ରାସିବା)—ଗ୍ରା.କ୍ରି.କାଳଗ୍ରାସିବା, ମୃତ୍ୟୁର ସମୟ ନିକଟବର୍ତ୍ତୀ ହେବା, ଆସନ୍ନ ମୃତ୍ୟୁ ଅବସ୍ଥା ଘଟିବା, ମରଣ ଘଟିବା ।
କାଳଚକ୍ର—କ୍ଲୀ.ବି.(କାଳ+ଚକ୍ର) ଚକ୍ରବତ୍ ଭ୍ରମଣଶୀଳ କାଳ, ସମୟରୂପ ଚକ୍ରାକାର ମୃତ୍ୟୁଜ୍ଞାପକ ଚକ୍ରାସ୍ତ୍ର । [ବିଦ୍ ।
କାଳଚକ୍ରକ—ପୁଂ.ବି.(୬ତତ୍)ଜ୍ୟୋତି-
କାଳଚନ୍ଦ୍ର—କ୍ଲୀ.ବି.(କାଳ+ଚନ୍ଦ୍ର)ମୃତ୍ୟୁଜ୍ଞାପକ ଲକ୍ଷଣ ବିଶେଷ ।
କାଳଚୋଦିତ—ତ୍ରି.ବିଂ.ଯଥାକାଳେ,ବିଧାତେଷ୍ଟାରେ ଉପସ୍ଥିତ, କାଳକର୍ତ୍ତୃକ ପ୍ରେରିତ ।
କାଳଜୋଷକ—ତ୍ରି. ବିଂ.(କାଳ+ଜୁଷ୍+ଅକ)ଯଥା ସମୟେ,ଅଳ୍ପ ଆହାରାଦି ଦ୍ୱାରା ସନ୍ତୁଷ୍ଟ, (ପୁଂ.) ଗୋପବିଶେଷ ।
କାଳଜ୍ଞ—ପୁଂ. ବି. (କାଳ+ଜ୍ଞା+ଅ) କୁକ୍କୁଟ, ଜ୍ୟୋତିଷ, (ବିଂ) ଯେ ବୃଥା କାଳ କ୍ଷେପଣ କରେନାହିଁ, ଉଚିତ ସମୟବେତ୍ତା, କାଳବିଦ୍ୟା ଜାଣିଥିବା (ବ୍ୟକ୍ତି), ଜ୍ୟୋତିଷିକ ।
କାଳଜ୍ଞାନ—କ୍ଲୀ.ବି.୬ତତ୍; (କାଳ+ଜ୍ଞା+ଅନ୍) ଜ୍ୟୋତିଷଶାସ୍ତ୍ର, ଉପଯୁକ୍ତ ସମୟ ଜ୍ଞାନ, ମୃତ୍ୟୁବୋଧକ ଚକ୍ର ।
କାଳଞ୍ଜର—ପୁଂ.ବି.ଯୋଗୀ ଚକ୍ରମେଳକ, ଭୈରବବିଶେଷ, ନଗରବିଶେଷ,ଶିବ, କାଳଞ୍ଜର, ପର୍ବତବିଶେଷ, (ବିଂ)ମୃତ୍ୟୁନିବାରକ, ସର୍ବସକଳ ପରିତ୍ୟାଗକର ସତ୍ତ୍ୱଗୁଣମାନେ ମନୋନିବେଶକାରକ ।
କାଳଞ୍ଜରକ—ତ୍ରି.ବିଂ. କାଳଞ୍ଜର ନାମକ ଜନପଦ ସମ୍ବନ୍ଧୀୟ ।
କାଳଞ୍ଜରୀ—ସ୍ତ୍ରୀ.ବି.(କାଳ+ଜୃ+ଅ+ଆ) ଚଣ୍ଡିକା ।
କାଳଞ୍ଜରୀ—ସ୍ତ୍ରୀ. ବି. (କାଳଞ୍ଜର+ଈ) ଶିବପତ୍ନୀ, ଚଣ୍ଡୀ ।
କାଳତମ—ତ୍ରି.ବି. ଅତିଶୟ କୃଷ୍ଣବର୍ଣ୍ଣ ।
କଳତର—ତ୍ରି. ବିଂ. କାଳୀ ଅପେକ୍ଷା ଅଧିକ କୃଷ୍ଣବର୍ଣ୍ଣ ।
କାଳତଲ—ପୁଂ. ବିଂ. ତମାଲ ଗଛ ।
କାଳତିତିର—ଗ୍ରା. ବି. ପକ୍ଷୀବିଶେଷ ।
କାଳତିଲ—କ୍ଲୀ. ବି. କୃଷ୍ଣତିଳ ।
କାଳତୀର୍ଥ—କ୍ଲୀ. ବି. ତୀର୍ଥବିଶେଷ ।
କାଳତୁଳସୀ—ସ୍ତ୍ରୀ. ବି. କଳାରଙ୍ଗର ତୁଳସୀ । [ପଦବିଶେଷ ।
କାଳତୋୟକ—ପୁଂ.ବି. ପ୍ରାଚୀନ ଜନ-
କାଳତ୍ରୟ—କ୍ଲୀ.ବି.(କାଳ+ତ୍ରୟ)ତ୍ରିକାଳ ବର୍ତ୍ତମାନ, ଅତୀତ ଓ ଭବିଷ୍ୟତ୍ ।
କାଳତ୍ରୟଜ୍ଞ—ତ୍ରି.ବିଂ.(କାଳତ୍ରୟ+ଜ୍ଞା କ,ଅ)ଯେଉଁ ବ୍ୟକ୍ତିକୁ ଭୂତ ଭବିଷ୍ୟତ ଓ ବର୍ତ୍ତମାନ ତିନିକାଳର ବିଷୟ ଜଣାଅଛି ।
କାଳତ୍ରୟଦର୍ଶକ—କ୍ଲୀ. ବି. ତିନିକାଳ ପ୍ରତ୍ୟକ୍ଷେ ଦେଖିବା ।
କାଳତ୍ରୟଦର୍ଶୀ—ପୁଂ. ବି. (୬ତତ୍) ଯେ ତ୍ରିକାଳ ଦର୍ଶନ କରେ, ତ୍ରିକାଳଜ୍ଞ, (ସ୍ତ୍ରୀ) କାଳତ୍ରୟଦର୍ଶିନୀ ।
କାଳତ୍ରୟବେଦୀ—ପୁଂ. ବିଂ. (କାଳତ୍ରୟ+ବିଦ୍+କ,ଇନ୍) ଯେଉଁ ବ୍ୟକ୍ତି ତ୍ରିକାଳବିଷୟ ଅବଗତଅଛି,ତ୍ରିକାଳଜ୍ଞ ।
କାଳଦଣ୍ଡ—ପୁଂ. ବି. କାଳପ୍ରାପ୍ତ ଦଣ୍ଡ, ଜ୍ୟୋତିଷୋକ୍ତ ବାରାଦି ଯୋଗବିଶେଷ, ଯମଦଣ୍ଡ, ଶିବଙ୍କ ଦଣ୍ଡ, ଯମରାଜାଙ୍କ ହସ୍ତରେ କଳ୍ପିତ ଦଣ୍ଡ, (ଗ୍ରା.ବି.) ମୃତ୍ୟୁରୂପ ଐଶ୍ୱରିକ ଦଣ୍ଡ ।
କାଳଦନ୍ତକ—ପୁଂ.ବି.ସର୍ପବିଶେଷ,(ବିଂ) କୃଷ୍ଣବର୍ଣ୍ଣ ଦନ୍ତଯୁକ୍ତ । [ବିଶେଷ ।
କାଳଦମନ—ଗ୍ରା.ବି. କାଳଯବନ,ରାକ୍ଷସ
କାଳଦମନୀ—ସ୍ତ୍ରୀ.ବି.ମୃତ୍ୟୁନିବାରଣୀଦୁର୍ଗା ।
କାଳଦୋଷ—ଗ୍ରା.(ଗଞ୍ଜାମ)ବି. ମକଦ୍ଦମା ଆଦିରେ ତମାଦିଦୋଷ(ସ.ବି)(୬ତତ୍) କାଳଶୁଦ୍ଧି ।
କାଳଧର୍ମ—ପୁଂ.ବି. (କାଳ+ଧର୍ମ) ମୃତ୍ୟୁ ସମୟର ସ୍ୱଭାବ, ଋତୁଧର୍ମ, ଯେଉଁ କାଳରେ ଯେଉଁ କଥା ବା ଆଗ୍ରର ଅବଶ୍ୟ ଘଟିବ, ପ୍ରକୃତ ସିଦ୍ଧ ନିୟମ, ଋତୁ ପରିବର୍ତ୍ତନ, ଦଶାପରିବର୍ତ୍ତନ ।
କାଳଧାରଣ—ସ୍ତ୍ରୀ.ବି. ସମୟ ନିର୍ଦ୍ଧାରଣ, କାଳର ଅବସ୍ଥା ଜ୍ଞାନ ।
କାଳନର—ଅନୁବଂଶୀୟ ରାଜାବିଶେଷ ।
କାଳନା—ବଙ୍ଗଦେଶେ ବର୍ଦ୍ଧମାନଜିଲ୍ଲାର ଅନ୍ତର୍ଗତ ଗୋଟିଏ ବନ୍ଦର ।
କାଳନାଗ—ପୁଂ. ବି. (କ.ଧା) ଜନ୍ମସୃତ, ମୃତ୍ୟୁକାରକ ସର୍ପବିଶେଷ ନାଗ ଜାତିର ଶ୍ରେଣୀ ଭେଦ, ସେ ଯାହାକୁ ଦଂଶନ କରେ ତାହାର ମୃତ୍ୟୁ ଘଟେ, (ସ୍ତ୍ରୀ)କାଳନାଗିନୀ,(ଲ.ଅ.)ଖଳବ୍ୟକ୍ତି ।
କାଳନାଥ—ପୁଂ. ବି. ମହାଦେବ, ଜଣେ ଗ୍ରନ୍ଥକାରଙ୍କ ନାମ ।
କାଳନାଭ—ପୁଂ.ବି. ହିରଣ୍ୟକ ଅସୁରର ପୁତ୍ରବିଶେଷ ।
କାଳନିଧି—ପୁଂ.ବି. ଶିବ, ମହାଦେବ ।
କାଳନିୟୋଗ—ପୁଂ.ବି.କାଳକୃତନିୟମ, ଯମଙ୍କ ଆଜ୍ଞା । [କରିବା ।
କାଳନିରୂପଣ—କ୍ଲୀ.ବି.ସମୟ ନିର୍ଦ୍ଧାରଣ
କାଳନିର୍ଣ୍ଣୟ—ପୁଂ.ବି. ସମୟ ନିରୂପଣ ।
କାଳନିର୍ଯ୍ୟାସ—ପୁଂ.ବି.(କାଳ+ନିର୍ଯ୍ୟାସ) ଗୁଗ୍ଗୁଳ ।
କାଳନିର୍ବାହ—ପୁଂ.ବି. ସମୟ ଯାପନ ।
କାଳନିଶା—ବି. (କାଳ+ନିଶା) କାଳରାତ୍ରି (ଦେଖ) ।
କାଳନେତ୍ର—ବି. ମୃତ୍ୟୁ ଲକ୍ଷଣଯୁକ୍ତ-ନେତ୍ରବିଶିଷ୍ଟ କୃଷ୍ଣବର୍ଣ୍ଣ ଚକ୍ଷୁବିଶିଷ୍ଟ ।

କାଳନେମି — ପୁଂ. ବି. (ଷତତ୍ର) କାଳ ଚକ୍ରର ପରିଧି, ରାକ୍ଷସବିଶେଷ, ରାବଣର ମାଉଳ ।
କାଳନେମିଶତ୍ରୁ-ପୁଂ.ବି.ବିଷ୍ଣୁ, ହନୁମାନ ।
କାଳନେମିହା — ପୁଂ.ବି. (କାଳନେମି + ହନ୍ + କ୍ୱିପ୍) ବିଷ୍ଣୁ, ହନୁମାନ ।
କାଳନେମ୍ୟରି — ପୁଂ ବି.ବିଷ୍ଣୁ, ହନୁମାନ ।
କାଳନ୍ଦୀ — ଗ୍ରା.ବି.କାଳିନ୍ଦୀନଦୀ,ଯମୁନା ନଦୀ ।
କାଳପଡ଼ିବା — ଗ୍ରା. ବି. ଦେଶରେ ଦୁର୍ଭିକ୍ଷ ଘୋଟିବା ।
କାଳପକ୍ୱ — ବି.ଯଥାସମୟେ ପକ୍ୱ ହୋଇଯିବା ।
କାଳପଥ — ପୁଂ. ବି. ବିଶ୍ୱାମିତ୍ରଙ୍କ ପୁତ୍ର ବିଶେଷ ।
କାଳପର୍ଣ୍ଣ — ପୁଂ.ବି.ଟଗରବୃକ୍ଷ,ତଗରବୃକ୍ଷ ।
କାଳପର୍ଣ୍ଣୀ — ବି. (କାଳ + ପର୍ଣ୍ଣ + ଇନ୍) କୃଷ୍ଣ ତୁଳସୀବୃକ୍ଷ ।
କାଳପର୍ଯ୍ୟାୟ — ପୁଂ.ବି. (ଷତତ୍ର)କାଳର ବିପରୀତ ଗତି, କାଳକ୍ରମ ।
କାଳପର୍ବତ — ପୁଂ. ବି, ତ୍ରିକୂଟ ପର୍ବତର ନିକଟସ୍ଥ ପର୍ବତବିଶେଷ ।
କାଳପାତ — ପୁଂ.ବି.(ଷତତ୍ର)କାଳଯାପନ ।
କାଳପାତ୍ରିକ — ପୁଂ. ବି. ଭିକ୍ଷୁଭେଦ, ଏହି ଭିକାରି କୃଷ୍ଣବର୍ଣ୍ଣ ପାତ୍ର ହାତରେ ଧରି ଭିକ୍ଷା କରେ ।
କାଳପାଶ — ପୁଂ. ବି. (ଷତତ୍ର) ଯମଦେବଙ୍କର ପାଶ, ଯମଦୂତ ଆସନ୍ନ ମୃତଜୀବଙ୍କ ବେକରେ ଲଗାଇ ମୃତ୍ୟୁପାଇଁ ଟାଣନ୍ତି, ମୃତ୍ୟୁ ସମୟ ବନ୍ଧନ ।
କାଳପାଶିକ — ପୁଂ. ବି. (କାଳପାଶ + ଇକ) ଯାହାର ହସ୍ତେ ମୃତ୍ୟୁ ଧ୍ରୁବ ।
କାଳପୁଚ୍ଛ — ପୁଂ.ବି. ମୃଗବିଶେଷ ।
କାଳପୁର — ବି. (ଷତତ୍ର) ଯମଭୁବନ ।
କାଳପୁରୁଷ — ପୁଂ.ବି.(କାଳ + ପୁରୁଷ) କୃଷ୍ଣବର୍ଣ୍ଣ ଶରୀରବିଶିଷ୍ଟ ବିକଟାକାର ଯମଙ୍କ କିଙ୍କର, ସେ ଆସନ୍ନ ମୃତ୍ୟୁ ବ୍ୟକ୍ତିଙ୍କୁ ପରଲୋକକୁ ନେବାପାଇଁ ଯମଙ୍କଠାରୁ ଆଦେଶ ଆଣି ଆସେ ଓ ଯାହାକୁ ସ୍ୱପ୍ନରେ ଦେଖିବା ବ୍ୟକ୍ତିର ଅଳ୍ପ ଦିନରେ ମୃତ୍ୟୁଘଟିବ ବୋଲି ଲୋକର ବିଶ୍ୱାସ, ଯମ, ପୁରୁଷାକୃତି ନକ୍ଷତ୍ର ପୁଞ୍ଜ, ଶୁଭାଶୁଭ ଜ୍ଞାନାର୍ଥ ପୁରୁଷ ରୂପରେ ଅଙ୍କିତ ଜନ୍ମ ଲଗ୍ନାଦି କଳ୍ପିତ ଦ୍ୱାଦଶ ରାଶି ।
କାଳପୁଷ୍ପ — କ୍ଲୀ. ବି. ମଟର ।
କାଳପୂଗ — ପୁଂ.ବି, କାଳ ସୁପାରି ।
କାଳପୂରାଇବା — ଗ୍ରା. କ୍ରି. ମାରପକାଇବା, ମାରିବା ।
କାଳପୂରିବା — ଗ୍ରା. ବି. ଜୀବନାନ୍ତ ସମୟ ଉପସ୍ଥିତ ହେବା, ମୃତ୍ୟୁ ଘଟିବା ।
କାଳପୂର୍ଣ୍ଣ — ବିଂ. (ବ.ବ୍ରୀ) ଆସନ୍ନ ମୃତ୍ୟୁ, ଯାହାର ମୃତ୍ୟୁ ସନ୍ନିହିତ, (ସ୍ତ୍ରୀ) କାଳପୂର୍ଣ୍ଣା, (ବି) କାଳର ପୂର୍ଣ୍ଣତା, ଜୀବନକାଳାବସାନ ।
କାଳପୃଷ୍ଠ — କ୍ଲୀ.ବି.କର୍ଣ୍ଣର ଧନୁ,ଧନୁମାତ୍ର, (ପୁଂ.ବି) ମୃଗବିଶେଷ, କଙ୍କପକ୍ଷୀ ।
କାଳପୃଷ୍ଠକ — ପୁଂ.ବି. କଙ୍କପକ୍ଷୀ ।
କାଳପ୍ରବାହ — ପୁଂ. ବି. ସମୟର ସ୍ରୋତ, କାଳରୂପ ପ୍ରବାହ, ଅବିଚ୍ଛିନ୍ନ ଭାବରେ କାଳର ଗତି ।
କାଳପ୍ରଭାତ — କ୍ଲୀ. ବି. (ଷତତ୍ର) ଶରତ୍ ଋତୁ, ଅନିଷ୍ଟକାରକ ପ୍ରଭାତ ।
କାଳପ୍ରଭାବ — ବି. (ଷତତ୍ର) ସମୟର ଶକ୍ତି, କାଳର ପ୍ରଭୁତ୍ୱ ବା ପ୍ରାଧାନ୍ୟ, କାଳ ମାହାତ୍ମ୍ୟ ।
କାଳପ୍ରିୟନାଥ — ହିନ୍ଦୁ ଦେବତାବିଶେଷ ।
କାଳଫଣୀ — ପୁଂ. ବି. (କ.ଧା) କୃଷ୍ଣସର୍ପ, (ସ୍ତ୍ରୀ) କାଳଫଣିନୀ ।
କାଳବଶ — ବିଂ. (ଷତତ୍ର) କାଳ ବା ସମୟର ଅଧୀନ,ମୃତ୍ୟୁର ଅଧୀନ,(ଗ୍ରା.ବି) କାଳକ୍ରମ, ସମୟକ୍ରମ, ଘଟନାକ୍ରମ, ସମୟଗତି, ମୃତ୍ୟୁ ।
କାଳବଶେ — ଗ୍ରା.ଅ. କାଳକ୍ରମେ,ସମୟର ଗତି ଅନୁସାରେ ।
କାଳଭକ୍ଷ — ପୁଂ. ବି. ଶିବ, ମହାଦେବ ।
କାଳଭୁଜଙ୍ଗ — ପୁ. ବି. (କ.ଧା) କୃଷ୍ଣ ସର୍ପ, ମାରାତ୍ମକ ବିଷଧର ସର୍ପ, (ସ୍ତ୍ରୀ) କାଳଭୁଜଙ୍ଗୀ ।
କାଳଭୃତ୍ — ପୁଂ.ବି.(କାଳ + ଭୃ + କ୍ୱିପ୍) ସୂର୍ଯ୍ୟ ।
କାଳଭୈରବ-ପୁଂ.ବି.(କାଳ + ଭୈରବ) କାଶୀସ୍ଥ ଶିବଙ୍କ ଅଂଶଜାତ ଭୈରବବିଶେଷ ।
କାଳମରଚ — କ୍ଲୀ ବି.କଳାରଙ୍ଗର ମରଚ ।
କାଳମସୀ — ସ୍ତ୍ରୀ. ବି. ନଦୀବିଶେଷ ।
କାଳମହର୍ଘ — ଗ୍ରା . ବି. ଦୁର୍ଭିକ୍ଷ ।
କାଳମହିମା — ପୁଂ.ବି. ସମୟର ମାହାତ୍ମ୍ୟ, ସମୟର ଶକ୍ତି ।
କାଳମାଧବୀୟ — ପୁଂ. ବି. ମାଧବାଚାର୍ଯ୍ୟ ପ୍ରଣୀତ କାଳଜ୍ଞାନବୋଧକ ସ୍ମୃତି ଗ୍ରନ୍ଥବିଶେଷ ।
କାଳମାନ — ପୁଂ, ବି. (କାଳ + ମାନ) କଳା ତୁଳସୀ, କାଳର ପରିମାଣ ।
କାଳମାରିଷ — ପୁଂ.ବି ଶାକବିଶେଷ ।
କାଳମାଳ — ପୁଂ. ବି. କଳା ତୁଳସୀ ।
କାଳମୁଖ — ପୁଂ. ବି. କୃଷ୍ଣମୁଖ ବାନରବିଶେଷ,ବିଂ,କୃଷ୍ଣବର୍ଣ୍ଣ ମୁଖ ବା ଅଗ୍ରଭାଗ ଯୁକ୍ତ ।
କାଳମୂଳ — ପୁଂ ବି. ରକ୍ତଚିତା ।
କାଳମୂର୍ତ୍ତି — ସ୍ତ୍ରୀ. ବି. ଯମ ମୂର୍ତ୍ତି, ମୃତ୍ୟୁକାରକ ଜନ୍ତୁର ମୂର୍ତ୍ତି, ଜ୍ୟୋତିଷଶାସ୍ତ୍ରୋକ୍ତ କାଳପୁରୁଷର କୃଷ୍ଣବର୍ଣ୍ଣମୂର୍ତ୍ତି ।
କାଳମେଘ — ପୁଂ.ବି. କ୍ଷୁଦ୍ର ବୃକ୍ଷ ବିଶେଷ, ଏହା ଅତ୍ୟନ୍ତ ତିକ୍ତ, ଏ ଜଣେ ବିଖ୍ୟାତ ତାମିଲ କବି ।
କାଳୟ — ବି. ପୀତଚନ୍ଦନ ।
କାଳଯବନ — ପୁଂ. ବି. ଯବନମାନଙ୍କର ଅଧିପତିବିଶେଷ ।
କାଳଯମ — ବି. ମୃତ୍ୟୁ, ମୃତ୍ୟୁଦେବତା ।
କାଳଯାପ — ପୁଂ. ବି. ସମୟ ଅତିବାହିତ କରିବା ।
କାଳଯାପନ — କ୍ଲୀ.ବି. ସମୟ କଟାଇବା, ଦିନପାତ କରିବା, ଲୋକ ଯାହା ଉର୍ଦ୍ଧାହି କରିବା, ଗୁଜରାଣ ମେଣ୍ଟାଣ, ହୁଁ କରିବା ହୁଁ କରିବା ବୋଲି ବେଳ ଗଡ଼ାଇବା ।
କାଳଯୁକ୍ତ — ତ୍ରି.,ବିଂ. ମୃତ୍ୟୁଯୁକ୍ତ ଅପରବର୍ତ୍ତିନୀୟ କାଳ ନିୟମଯୁକ୍ତ ।
କାଳଯୋଗ — ପୁଂ.ବି. ସମୟର ସମ୍ବନ୍ଧ ।
କାଳଯୋଗିନୀ — ବି. (ଜ୍ୟୋତିଷ) ଯୋଗିନୀ (ଦେଖ) ।

କରଣତନ୍ତ୍ର—କ୍ଳୀ. ବ. ମାଧବାଚାର୍ଯ୍ୟଙ୍କର ସର୍ବଦର୍ଶନୋଲ୍ଲିଖିତ ଏକଖଣ୍ଡ ଶୈବତନ୍ତ୍ର ।

କରଣଦେବା—ଗ୍ରା.କ୍ରି. ଆଟଳକ ବିସ୍ତାର କରିବା ।

କରଣମସ୍ତ—ବିଂ. (କରଣ+ମସ୍ତ) ଜ୍ୟୋତିର୍ମୟ, କିରଣସ୍ୱରୂପ, କିରଣ-ବିଶିଷ୍ଟ ।

କରଣମାଳୀ—ପୁଂ.ବ.(କିରଣ+ମାଳା+ଇନ୍) ସୂର୍ଯ୍ୟ, ରବି, ଅଂଶୁମାଳୀ (ସ୍ତ୍ରୀ) କିରଣମାଳିନୀ ।

କରଣାବଳୀ—ସ୍ତ୍ରୀ. ବ. କିରଣଶ୍ରେଣୀ, ଦାଦାଭାଇବିରଚିତ କିରଣାବଳୀନାମକ ସୂର୍ଯ୍ୟସିଦ୍ଧାନ୍ତ ଟୀକା ।

କିରନ୍—ପ୍ରା. (ବହୁର) ବ. (ସଂ-କିରଣ) କିରଣ, ରଶ୍ମି ।

କିରସ୍ତାନ—ଗ୍ରା.ଯା.ପୁଂ. ବ. (ଇଂ-ଖ୍ରୀଷ୍ଟିୟାନ ଓ କ୍ରିଶ୍ଚିଆନ) ଖ୍ରୀଷ୍ଟିଆନ ।

କିରା—ପ୍ରା, ବି. ଶପଥ, ରାଣ, (ଗ୍ରା.ସର୍ବ) କିସ, କଅଣ ?

କିରାଟିକା—ସ୍ତ୍ରୀ.ବ. (କିର+ଅଟ+ଇକ ଆ) ଶାରିକା, ଶାରି ।

କିରାଣିଗିରି—ଯା. ବ. କିରାଣିର କାର୍ଯ୍ୟ, ଲେଖକବୃତ୍ତି ।

କିରାତ—ପୁଂ.ବ.(କିର+ଅତ+କ,ଅ) ବନ୍ୟ ଅସଭ୍ୟ ଜାତିବିଶେଷ, ବ୍ୟାଧ, ଚିରେଇତା, ଘୋଟକରକ୍ଷକ, ବାମନ, ମତ୍ସ୍ୟବିଶେଷ, ସହସ, (ସ୍ତ୍ରୀ) କିରାତୀ ।

କିରାତକ—ପୁଂ.ବ.ଚିରେଇତା, ଭୂନିମ୍ବ ।

କିରାତତିକ୍ତ(କ)—ପୁଂ. ବ. ଚିରେଇତା, ଭୂନିମ୍ବ, ଭୂଇଁଲିମ୍ବ ।

କିରାତତିକ୍ତକ—ପୁଂ. ବ. ଚିରେଇତା, ଭୂନିମ୍ବ, ଭୂଇଁଲିମ୍ବ ।

କିରାତାର୍ଜୁନୀୟ—କ୍ଳୀ. ବ. ଭାରବି କବି-ପ୍ରଣୀତ ମହାକାବ୍ୟବିଶେଷ ।

କିରାତାଦିକ୍ୱାଥ—ବୈଦ୍ୟୋକ୍ତ ଔଷଧ-ବିଶେଷ । [ବିଶେଷ ।

କିରାତାଦିତୈଳ—ବୈଦ୍ୟୋକ୍ତ ତୈଳ-

କିରାତାଶୀ—ପୁଂ.ବ. (କିରାତ+ଅଶ୍+ଇନ୍) ଗରୁଡ଼ ।

କିରାତି—ସ୍ତ୍ରୀ.ବ.(କିର+ଅତ+ଇ)ଗଙ୍ଗା ।

କିରାତିନୀ—ସ୍ତ୍ରୀ.ବ.(କିରାତ+ଇନ+ଈ) ଜଟାମାଂସୀ, ଗଙ୍ଗା, ସଉରୁଣୀ, ଦୁର୍ଗା, କିରାତ-ସ୍ତ୍ରୀ, ସ୍ୱର୍ଗଗଙ୍ଗା ।

କିରାତୀ—ସ୍ତ୍ରୀ.ବ.(କିରାତ+ଈ)ବ୍ୟାଧ ସ୍ତ୍ରୀ, ସଉରୁଣୀ, କୁଟ୍ଟିନୀ, ଦୁର୍ଗା, କିରାତ-ସ୍ତ୍ରୀ, ସ୍ୱର୍ଗଗଙ୍ଗା ।

କିରାନି—ଯା. ବ. କିରାଣି (ଦେଖ)

କିରାର—ପୁଂ.ବ. ଲଳିତବସ୍ତ୍ରବିକ୍ରେତା ବ୍ୟକ୍ତି-ବିଶେଷ ।

କିରାପାଇଁକି—ପ୍ରା, (ବାମଣ୍ଡା) ଅବ୍ୟ, କାହିଁକି, କିପାଇଁ (ଯଥା-କିରାପାଇଁକି ଡାକୁଛ ବୋ)

କିରାସିନ—ଯା. ବ. ଗନ୍ଧଯୁକ୍ତ ଜାଳିବା ତେଲ ।

କିରି—ପୁଂ.ବ.(କୃ+ଇ) ବରାହ,ମେଘ, ଏକପ୍ରକାର ଆଳୁ,ଗଦା,ସ୍ତୂପ,(ପ୍ରା.ସମ୍ବ) କପାର ମଇଳାଅଂଶ ।

କିରି—ଗ୍ରା.କ୍ରି.ଅସମାପିକା,(ସଂ-କୃ.ଧାତୁ) କରି, ସମାପ୍ତ କରି ।

କିରିଆ—ଗ୍ରା.ବିଂ. ସମସ୍ତକ୍ରମେ କିମ୍ବା ମାରି ନଷ୍ଟ ହୋଇଯାଇଥିବା (ଗୁହଳ ଅଟା-ଆଦି),କୀଟନଷ୍ଟ, (ଶସ୍ୟାଦି,)(ପ୍ରା.ବ ସଂ-କ୍ରିୟା)ମୃତାହ ଶ୍ରାଦ୍ଧି ଶ୍ରାଦ୍ଧ,(ପ୍ରା.ସମ୍ବ.ବ) ଶପଥ, ରାଣ, (ଯା. ବ) କିରସ୍ତା, କେରେସ୍ତା, ଭଡ଼ା ।

କିରିକ—ପୁଂ. ବ. (କିରି+କୈ+ଅ) ରୁଦ୍ରବିଶେଷ, ଅଗ୍ନି, ବାୟୁ, ସୂର୍ଯ୍ୟ ।

କିରିଚ—ଯା.ବ. କମରପଟିରୁ ଝୁଲୁଥିବା ଛୋଟ ସାଧା ତରବାରି, ଛୋରା, ବନ୍ଧୁକ ଅଗ୍ରଭାଗରେ ସଂଯୁକ୍ତ ତରବାରି,ସଙ୍ଗୀନ୍, କରେଞ୍ଚ ।

କିରିକଣ୍ଠିକା—ସ୍ତ୍ରୀ.ବ. ସଙ୍ଗୀତବିଦ୍ୟା ବିଷ-ୟକ ଯନ୍ତ୍ରବିଶେଷ ।

କିରିଟି—କ୍ଳୀ. ବ. ଜଳଜମିରେ ଜାତ ଖଜୁରିଗଛର ଫଳ, ହିନ୍ତାଳଫଳ ।

କିରୀଟ—ପୁଂ. କ୍ଳୀ. ବ. (କୃ+ଈଟ) ମୁକୁଟ, ପଗଡ଼ି, ଶିରୋବେଷ୍ଟନ, ଶିରୋ-ଭୂଷଣ ।

କିରୀଟଧାରୀ—ପୁଂ. ବ. (କିରୀଟ+ଧୃ+ଇନ୍) ଅର୍ଜୁନ, (ବିଂ) ମୁକୁଟଧାରୀ ।

କିରୀଟମାଳୀ—ପୁଂ. ବ. ଅର୍ଜୁନ ।

କିରୀଟୀ—ପୁଂ. ବ. (କିରୀଟ+ଇନ୍) ଅର୍ଜୁନ, ବିଷ୍ଣୁ, (ବିଂ) ମୁକୁଟଧାରୀ, କିରୀଟଧାରୀ, (ସ୍ତ୍ରୀ) କିରୀଟିନୀ ।

କିରୂପ—ଗ୍ରା. ବିଂ. କିପ୍ରକାର,କିପରି ।

କିରୂପେ—ଗ୍ରା. ଅବ୍ୟ, କେଉଁପ୍ରକାରେ, କିପରି ।

କିରେ—ଗ୍ରା. ଅବ୍ୟ. (ସଂ-କିଂ+ଆରେ, ରେ) ହଇରେ, ରେ, ଆରେ, ଓଃ, (ପ୍ରା.ସମ୍ବ) ବ. ଶପଥ, ରାଣ ।

କିର୍ମୀ—ସ୍ତ୍ରୀ.ବ. (କିର୍+ମା—ଅ—ଈ) ପ୍ରକୋଷ୍ଠ,ଗୃହ, କାମରା,ସ୍ୱର୍ଣ୍ଣ ବା ଲୌହ-ମୂର୍ତ୍ତି,ପଳାଶବୃକ୍ଷ,ପଲ୍ଲଳ,ପୁଆଳ. ପ.ଲ ।

କିର୍ମୀର—ପୁଂ.ବ. (କୃ+ମୀର) ନାରଙ୍ଗ ଲେମ୍ବୁର ଗଛ,ରାକ୍ଷସ ବିଶେଷ,ବିଚିତ୍ର-ବର୍ଣ୍ଣ, (ବି') ବିଚିତ୍ରବର୍ଣ୍ଣଯୁକ୍ତ, ଟିପିଟିପି-କିଆ ।

କିର୍ମୀରଜିତ୍—ପୁଂ.ବ. (କିର୍ମୀର+ଜି+କ୍ୱିପ୍) ଭୀମସେନ ।

କିର୍ମୀରତ୍ୱକ୍—ସ୍ତ୍ରୀ. ବ. ନାରଙ୍ଗଗଛ ।

କିର୍ମୀରଭିତ୍—ପୁଂ. ବ. (କିର୍ମୀର+ଭିଦ୍+କ୍ୱିପ୍) ଭୀମସେନ, ବୃକୋଦର ।

କିର୍ମୀରସୂଦନ—ପୁଂ. ବ. ଭୀମ ।

କିର୍ମୀରହା,କିର୍ମୀରାରି—ପୁଂ.ବ.ଭୀମସେନ ।

କିର୍ମୀରିତ—ବିଂ.(କିର୍ମୀର+ଇତ)ବିଚିତ୍ର ବର୍ଣ୍ଣଯୁକ୍ତ, ନାନାବର୍ଣ୍ଣବିଶିଷ୍ଟ ।

କିଲ୍‌ଇବା—ପ୍ରା.(ସମ୍ବ) କ୍ରି. ଚିତ୍କାର କରିବା ।

କିର୍ଷି—ପ୍ରା.(ସମ୍ବ) ବ. ରବିଶସ୍ୟ,ଫସଲ ।

କିର୍ଣ୍ଣିଆ—ପ୍ରା. (ସମ୍ବ) ବ. ଉପକାରୀର ପ୍ରତ୍ୟୁପକାର କରିବାପାଇଁ ବିରକ୍ତ ବା ଅନିଚ୍ଛା ପ୍ରକାଶ ।

କିଲ୍‌କାଲିଆ—ଗ୍ରା.ବିଂ.କିଲ୍‌କିଲ୍ (ଦେଖ)

କିଲ୍‌କିଲ୍—ଗ୍ରା. ବିଂ. ଗଡସହ ଅବ୍ୟକ୍ତ ମଧୁର ଶବ୍ଦକରି, କିଲିକିଲି ଶବ୍ଦକରି ।

କିଲ—(ଧାତୁ)ଧଳାହେବା(ଜଳ),ତରଙ୍ଗ-ରୂପେ ଜମିଯିବା,କ୍ରୀଡାକରିବା, ହରେ-

ଉତ୍ତେଜିତକରିବା, ଫୋପାଡ଼ିବା, ପ୍ରେରଣ କରିବା, ପ୍ରବେଶ କରିବା, ଆଦେଶ କରିବା ।
କିଲ—ଅବ୍ୟ. ବାର୍ତ୍ତା, ସମ୍ଭାବନା, ଅନୁନୟ, ନିଶ୍ଚୟ, ପ୍ରସିଦ୍ଧି, ଔଚିତ୍ୟ, ସତ୍ୟ, ଅଳୀକ, ହେତୁ, ଅରୁଚି, ତିରସ୍କାର, (କିଲ୍ + କ,ଅ) ବି. କ୍ରୀଡ଼ା, ବିଲାସ ।
କିଳକିଞ୍ଚିତ୍—କ୍ଳୀ.ବି. ଶୃଙ୍ଗାରଭାବବିଶେଷ କ୍ରିୟାବିଶେଷ ।
କିଲକିଲ—ପୁଂ.ବି. ମହାଦେବ, ନଗରୀବିଶେଷ, ହାସ୍ୟଶବ୍ଦ, ହର୍ଷଧ୍ୱନି,ଅବ୍ୟକ୍ତଶବ୍ଦ, ଯବନଜାତିବିଶେଷ ।
କିଲକିଲା—ସ୍ତ୍ରୀ.ବି. ହର୍ଷଧ୍ୱନି, ବୀରମାନଙ୍କର ସିଂହନାଦ, (ଗ୍ରା. ବିଂ.) ବିକଟ ଚିତ୍କାରଯୁକ୍ତ,(ବି) ଘୋରଉଚ୍ଚଧ୍ୱନି,ବିକଟ ଶବ୍ଦ ବା ରଡ଼ି, ଭୀଷଣଗର୍ଜ୍ଜନ ।
କିଲକିଲାୟମାନ—ପୁଂ.ବି.ହର୍ଷରେ ଉଚ୍ଚଧ୍ୱନି କରୁଥିବା,(ସ୍ତ୍ରୀ)କିଲକିଲାୟମାନା ।
କିଲଟର—ଯା. ବି. (ଇଂ-କଲେକ୍ଟର) ରାଜ୍ୟ ବା ଜିଲାର ସର୍ବୋଚ୍ଚ ରାଜସ୍ୱସଂକ୍ରାନ୍ତ ହାକିମ ।
କିଲଟରୀ—ଯା.ବି. (ଇଂ କଲେକ୍ଟରେଟ୍) ଜିଲାର କମ୍ପଙ୍କ କଚେରୀ ।
କିଲଣି—ଗ୍ରା. ବି. କବାଟ କିଲବାର କାଠ ବା ଲୁହାର ଦଣ୍ଡ । [ରାଜ୍ୟ ।
କିଲା—ଯା. ବି. ଗଡ଼, ଦୁର୍ଗ, ଗଡ଼ଜାତ
କିଲାଗି—ଗ୍ରା. ଅବ୍ୟ କେଉଁ କାରଣରୁ, କିପାଇଁ ।
କିଲାଜାତ—ଗ୍ରା. ବି. ଗଡ଼ଜାତ ।
କିଲାଟ—ପୁଂ. ବି. (କିଲ + ଅଟ + ଅ) ଦୁଧଛେନା ।
କିଲାଟକ—ପୁଂ. ବି. ଛେନା ।
କିଲାଟୀ—ସ୍ତ୍ରୀ. ବି. ଦୁଗ୍ଧବିକୃତି, ଛେନା, (ପୁଂ.ବି) ବାଉଁଶଗଛ ।
କିଲାତ—ପୁଂ. ବି. (କିଲ + ଅତ + ଅ) ଋଷିବିଶେଷ, ଅସୁରବିଶେଷ ।
କିଲାଦାର—ଗ୍ରା.ବି.କିଲା ବା ଗଡ଼ରକ୍ଷକ ।
କିଲାଫତେକରିବା—ଗ୍ରା. କ୍ରି. ଗଡ଼ଜୟ କରିବା ।
କିଲାସ—କ୍ଳୀ. ବି. (କିଲ + ଅସ + ଅ) ଛିତ୍ରରୋଗ, କୁଷ୍ଠରୋଗବିଶେଷ ।
କିଲାସଘ୍ନ—ପୁଂ. ବି. (କିଲାସ + ହନ୍ + ଅ) କାଙ୍କଡ଼, କିଲାସରୋଗନାଶକ ବୃକ୍ଷବିଶେଷ ।
କିଲାସନାଶନ—ବିଂ. (କିଲାସ + ନଶ୍ + ଣିଚ୍ + ଅନ) କୁଷ୍ଠରୋଗ ନାଶକ ।
କିଲାସୀ—ବିଂ.(କିଲାସ + ଇନ୍) କିଲାସ ରୋଗଯୁକ୍ତ ।
କିଲିକାଲିଆ—ଗ୍ରା. ବିଂ. କିଲ୍‌କିଲ୍ (ଦେଖ) ।
କିଲିକିଲା—ଗ୍ରା. ବି. କିଲକିଲା (ଦେଖ) ।
କିଲିକିଲିଆ—ଗ୍ରା. ବି. ନାତିଦ୍ରୁତ ବା ନାତିଧୀର ଗତିବିଶିଷ୍ଟ, (ବ୍ୟକ୍ତି, ଜୀବ ବା ପବନ),କିଲକିଲ ଶବ୍ଦ କରୁଥିବା ।
କିଲିଞ୍ଚ—କ୍ଳୀ. ବି. ସୂକ୍ଷ୍ମଦାରୁ ।
କିଲିଞ୍ଜ—କ୍ଳୀ. ବି. ସୂକ୍ଷ୍ମକାଠ, ସରୁକାଠି ।
କିଲିଞ୍ଜକ-ବି.(କିଲ + ଜ + ଅକ)ପରଦା, କଞ୍ଚା କାଠର ପଟା, ମସିଣା, କଟ ।
କିଲିବା—ଗ୍ରା. କ୍ରି. ବନ୍ଦକରିବା ।
କିଲିବିଲି—ଗ୍ରା.ବି. ବ୍ୟସ୍ତ କରିବା,(ବିଂ) ଅତିବ୍ୟସ୍ତ, (କ୍ଳୀ.ବିଂ)ଅତିବ୍ୟସ୍ତଭାବରେ ।
କିଲିମ—କ୍ଳୀ.ବି.(କିଲ + ଇମ)ଦେବଦାରୁ ।
କିଲେ—ଗ୍ରା.ଅବ୍ୟ. ଲୋ,ଆଲୋ, ଆପଣାଠାରୁ ନିମ୍ନସ୍ଥାନୀୟା ବା ସୁପରିଚିତା ସ୍ତ୍ରୀ ପ୍ରତି ସମ୍ବୋଧନ ଓ ପ୍ରଶ୍ନ ।
କିଲ୍ବିଷ—କ୍ଳୀ. ବି. (କିଲ + ବିଷ) ପାପ, ଅପରାଧ, ଦୋଷ, ରୋଗ, ଅନ୍ୟାୟ, କ୍ଷତି, (ଗ୍ରା.ବି.)ସନ୍ଦେହ, କପଟ,ମନୋଦୁଃଖ, ଅଭିମାନ ।
କିଲ୍ବିଷୀ—ପୁଂ.ବିଂ. ପାପୀ, ପାପଯୁକ୍ତ ।
କିଲ୍ବୀ—ପୁଂ.ବି.(କିଲ୍ + ବନ୍) ଘୋଟକ, ଅଶ୍ୱ ।
କିଲ୍ଲା—ଯା. ବି. ଦୁର୍ଗ, ଗଡ ଗଡ଼ଜାତ-ରାଜ୍ୟ, ଦୁର୍ଗମସ୍ଥାନ, ଅନଧିଗମ୍ୟବିଷୟ ।
କିଲ୍ଲାଦାର—ଯା.ବି.ଦୁର୍ଗରକ୍ଷକ,ଦୁର୍ଗସ୍ୱାମୀ ।
କିଲ୍ଲାଦାରୀ—ଯା.ବି.ଦୁର୍ଗରକ୍ଷକର କାର୍ଯ୍ୟ ।
କିଶ୍ମିଶ୍—ଯା. ବି. ଶର୍କରାପକ୍ୱ ଦ୍ରାକ୍ଷା ।
କିଶାରୁ—ପୁଂ. କ୍ଳୀ ବି. (କିମ୍ + ଶୃ + ଅ) ସୁଗନ୍ଧଦ୍ରବ୍ୟବିଶେଷ । [ଶର୍କରା ।
କିଶରା—ସ୍ତ୍ରୀ.ବି. (କିମ୍ + ଶୃ + ଅ + ଆ)
କିଶଳ—ପୁଂ. କ୍ଳୀ ବି. (କି + ଶଲ + ଅ) ପଲ୍ଲବ, ପତ୍ର, ନବପଲ୍ଲବ, ନୂତନପତ୍ର ।
କିଶଳୟ—କ୍ଳୀ.ପୁଂ.ବି.(କି + ଶଲ + କ.) ଅୟ ) ନବପଲ୍ଲବ, କଅଁଳଆପତ୍ର, କଅଁଳଗଜା, ନବପଲ୍ଲବ ବା ଅଙ୍କୁର ।
କିଶଳୟତଳ୍ପ—କ୍ଳୀ. ବି. ପଲ୍ଲବ-ନିର୍ମିତ ବିଛଣା ।
କିଶଳୟଶୟନ—କ୍ଳୀ. ବି. ପତ୍ର ନିର୍ମିତ ବିଛଣା ବା ଶେଯ ।
କିଶୋର—ପୁଂ ବିଂ.(କିଂ + ଶ + କ.ଓର) ନବଯୁବକ, ଅପ୍ରାପ୍ତବୟସ୍କ, ଏଗାର ବର୍ଷଠାରୁ ଷୋହଳବର୍ଷବୟସ୍କ (ବାଳକ), ନବୀନ, (ବି) ଶିଶୁ, ହସ୍ତୀଶାବକ,ସୂର୍ଯ୍ୟ, ଦାନବବିଶେଷ, ପଶୁଶିଶୁ, ଲେବାନ୍, ଗୁଗ୍ଗୁଳ, (ସ୍ତ୍ରୀ) କିଶୋରୀ ।
କିଶୋରଚନ୍ଦ୍ର—ପୁଂ. ବି. ଶ୍ରୀକୃଷ୍ଣ ।
କିଶୋରଚନ୍ଦ୍ର ବୀରବର ହରିଚନ୍ଦନ—ପ୍ରଖ୍ୟାତନାମା ତାଳଚେରର ନରପତି ।
କିଶୋରଚନ୍ଦ୍ର ରାଜେନ୍ଦ୍ରଦେବ - ବି.ଜଣେ ଉତ୍କଳୀୟ କବି ଚକ୍ରବର୍ତ୍ତୀ ରାଜ୍ୟର ରାଜା, ବିଦଗ୍ଧମାଧବ ନାଟକ ଏହାଙ୍କ ଦ୍ୱାରା ଅନୂଦିତ ।
କିଶୋରଚନ୍ଦ୍ରାନନ୍ଦ (ନ) ଚମ୍ପୂ—ଗ୍ରା. ବି. କବିସୂର୍ଯ୍ୟ ବଳଦେବରଥ ରାସ୍ୱଗୁରୁଙ୍କ ରଚିତ ସଂସ୍କୃତ ଗଦ୍ୟ ଓ ଓଡ଼ିଆ ଗୀତିମୟ ରାଧାକୃଷ୍ଣଲୀଳାତ୍ମକ ଚମ୍ପୂକାବ୍ୟ ।
କିଶୋରୀ—ସ୍ତ୍ରୀ. ବି. ( କିଶୋର + ଈ ) ଯୁବତୀ ସ୍ତ୍ରୀ, କୁମାରୀ,ରାଧିକା, ଘୋଡ଼ାର ମାଈଛୁଆ, (ବିଂ) ନବଯୁବତୀ, ଯୁବତୀ, କିଶୋରବୟସ୍କା ସ୍ତ୍ରୀ ।
କିଶୋରିକା—ସ୍ତ୍ରୀ.ବିଂ. (କିଶୋର + କ + ଆ) କିଶୋରୀ, ଯୁବତୀ ।
କିଶୋରୀପୂଜା—ବି. (ତନ୍ତ୍ର) ଶ୍ରୀକୃଷ୍ଣଙ୍କଠାରେ ଏକାନ୍ତ ଦତ୍ତମନା କୌଣସି ଯୁବତୀକୁ ରାଧିକାରୂପେ କଳ୍ପନା କରି

ତାହାଙ୍କୁ ପୂଜାକରିବାଦ୍ୱାରା କୃଷ୍ଣଭକ୍ତିର-ସାସ୍ୱାଦନ ( ଏହା ବୈଷ୍ଣବ ସାଧନାର ଅଙ୍ଗବିଶେଷ ) ।

କିଷାନ୍—ପ୍ରା.(ସମ୍ଭ) ବି. କୃଷକ, ଚଷା, ଚଷା ଶୂଦ୍ର ଜାତି, ମାଟିଖୋଳା ବ୍ୟବସାୟୀ, ଜାତିଜାତିବିଶେଷ, କୁଡ଼ାଜାତି ।

କିଷ୍କିନ୍ଧ—ପୁଂ.ବି.ମହୀଶୂରଦେଶୀସ୍ଥ ପର୍ବତବିଶେଷ । [ କାଣ୍ଡ ।

କିଷ୍କିନ୍ଧାକାଣ୍ଡ—କ୍ଲୀ. ବି. ରାମାୟଣର ୪ର୍ଥ

କିଷ୍କିନ୍ଧୀ—ସ୍ତ୍ରୀ.ବି.(କିଷ୍କିନ୍ଧ+ଈ)କିଷ୍କିନ୍ଧ ପର୍ବତର ଗୁହା ବା ଗୁମ୍ଫା ।

କିଷ୍କିନ୍ଧ୍ୟ—ପୁଂ. ବି. କିଷ୍କିନ୍ଧପର୍ବତ ।

କିଷ୍କିନ୍ଧ୍ୟା—ସ୍ତ୍ରୀ.ବି.କିଷ୍କିନ୍ଧ୍ୟପର୍ବତର ଗୁହା, କିଷ୍କିନ୍ଧ୍ୟ ରାଜ୍ୟର ଅରଣ୍ୟ, ବାଳିର ରାଜଧାନୀ ।

କିଷ୍କିନ୍ଧ୍ୟାଧିପ-ପୁଂ.ବି.(୬ତତ୍ପୁ)କିଷ୍କିନ୍ଧ୍ୟାର ରାଜା, ବାଳି, ସୁଗ୍ରୀବ ।

କିଷ୍କୁ—ପୁଂ. ସ୍ତ୍ରୀ. ବି. (କୈ+କ.ଇଷ୍କୁ) ବାରଅଙ୍ଗୁଳି ପରିମାଣ, ପ୍ରକୋଷ୍ଠ, ହସ୍ତ, (ବିଂ)କୁତ୍ସିତ, ଘୃଣ୍ୟ, ମନ୍ଦ ।

କିଷ୍କୁପର୍ବା—ପୁଂ.ବି.ଇକ୍ଷୁ, ଆଖୁ, ବାଉଁଶ, ନଳ, ଶର, ଖଡ଼ ।

କିସ୍‌ବନ୍—ପ୍ରା. ବି. କସବି, ବେଶ୍ୟା ।

କିସ୍—ଗ୍ରା. ଅ. କଅଁଣ ।

କିସ୍‌ମତ୍—ଯା.ବି.ଅଂଶ,ଭାଗ,ଅଦୃଷ୍ଟ,ଭାଗ୍ୟ ।

କିସ୍‌ମତ୍‌ଦାର—ଯା, ବିଂ. ଅଂଶୀଦାର, ଭାଗୁଆଳି ।

କିସ୍‌ମସ୍—ଯା. ବି. ଖ୍ରୀଷ୍ଟିଆନମାନଙ୍କର ବଡ଼ଦିନପର୍ବ, ଖ୍ରୀଷ୍ଟମାସ ପର୍ବ ।

କିସ୍‌ମିସ—ଯା.ବି. ବୀଜଶୂନ୍ୟ ଶୁଷ୍କ ଦ୍ରାକ୍ଷାଫଳ, ଅଙ୍ଗୁର ।

କିସମୀ—ପ୍ରା.(ସମ୍ଭ) ବି.ବେଶ୍ୟା,କସବି, (ଗାଳି) ଭ୍ରଷ୍ଟା ସ୍ତ୍ରୀ ।

କିସ—ଗ୍ରା, ସର୍ବ. ବିଂ. ( ସଂ-କିମ୍ ) କି, କଅଁଣ, (ପ୍ରା,ସମ୍ଭ ବି.) ଈର୍ଷା ।

କିସକରିବା—ଗ୍ରା.କ୍ରି.ଈର୍ଷାକରିବା,କଅଣ କରିବା ।

କିସମ—ଯା.ବି, ପ୍ରକାର, ଶ୍ରେଣୀ, ଢଙ୍ଗ ।

କିସରିକ—ପୁଂ.ବିଂ.କିସରିନାମକ ସୁଗନ୍ଧ ଦ୍ରବ୍ୟବିଶେଷ ।

କିସଲ—ପୁଂ. କ୍ଲୀ. (କିଂ+ସଲ+ଅ) କଅଁଳଆପତ୍ର, ନୂତନ ପତ୍ରର ଗଜା ।

କିସଲୟ—ପୁଂ.କ୍ଲୀ ବି. (କିମ୍+ସଲ+ଅୟ୍) କଅଁଳଆପତ୍ର,ନୂତନପତ୍ରର ଗଜା ।

କିସଲୟିତ—ବିଂ, ନୂତନ ପଲ୍ଲବବିଶିଷ୍ଟ ।

କିସ୍ତି (କିସ୍ତୀ)—ଯା ବି.ନୌକା, ରାଜସ୍ୱ-ଆଦି ଦେୟ ଦାଖଲ କରିବାର ନିର୍ଦ୍ଧାରିତ ସମୟ, ଲାଟବନ୍ଦୀ, ଦେୟ ପଏଠ କରିବାର ଥର, ସତରଞ୍ଜି ଖେଳରେ ନୌକାସୂଚକ ଗୋଟି ।

କିସ୍ତିଓ୍ୱାରମାପ,କିସ୍ତିଓ୍ୱାରମାପ—ଯା.ବି ମୌଜାର ପ୍ରତ୍ୟେକ ଖଣ୍ଡ ଜମିକୁ ଗୋଟି ଗୋଟି କରି ମାପିବା କାମ ।

କିସ୍ତିଉଆଶ,କିସ୍ତିଓ୍ୱାଶ—ଯା. ବିଂ.ଦଫା ଦଫା କରି ଦଆଯିବା (ଧନଆଦି) ।

କିସ୍ତିଖିଲାପ—ଯା.ବି.ନିର୍ଦ୍ଧାରିତସମୟରେ ଦେୟଟଙ୍କା ଦାଖଲ ନ କରିବା ।

କିସ୍ତିଦେବା—ଗ୍ରା.କ୍ରି.ସତରଞ୍ଜି ଖେଳରେ ରାଜାକୁ ଆକ୍ରମଣ କରି ହାରଚଲାଇବା, ଦେୟଟଙ୍କା କିସ୍ତି ଅନୁସାରେ ଦାଖଲ କରିବା ।

କିସ୍ତିବନ୍ଦୀ—ଯା. ବି. ଦେୟ ଟଙ୍କାକୁ ଏକାକିସ୍ତି ବା ଥରକେ ନ ଦେଇ ଏକାଧିକ କିସ୍ତିରେ ଦାଖଲ କରିବାପାଇଁ ନିର୍ଦ୍ଧାରଣ ବା କଟକଣା, ( ବିଂ. ) କିସ୍ତିରେ ପଏଠ ହେବାନିମିତ୍ତ ନିର୍ଦ୍ଧାରିତ ।

କିସ୍ତିମାତ୍—ଯା. ବି, ସତରଞ୍ଜ ଖେଳରେ ଅନ୍ୟାନ୍ୟ ହାରଦ୍ୱାରା ରାଜା ଅବରୁଦ୍ଧ ଓ ଗତିରହିତ ହେବାର ଅବସ୍ଥା (ଏହାହେଲେ ଅବରୁଦ୍ଧର ପକ୍ଷ ଖେଳାଳି ହାରିଯାଏ ) ଶତ୍ରୁକୁ ସମ୍ପୂର୍ଣ୍ଣରୂପେ ପରାଜୟ କରିବା । [ ସ ରେ ।

କିସ୍ତିମାଫିକ—ଯା.କ୍ରି. ବିଂ. କିସ୍ତି ଅନୁ-

କିହେ—ଗ୍ରା. ( ଅବ୍ୟ ) ( ମାନ୍ୟାର୍ଥକ ସମ୍ବୋଧନ ଓ ପ୍ରଶ୍ନାର୍ଥକ ) ହେ, ଆହେ ଆହୋ ।

କିହେତୁ, କିହେତୁରୁ—ଗ୍ରା. ( ଅବ୍ୟ ) କେଉଁକାରଣରୁ ? କାହିଁକି ? କିଆଁ ?

କିହେଲା—ଗ୍ରା. (ଅବ୍ୟ) ଆଶ୍ଚର୍ଯ୍ୟ ଘଟନା ଘଟିଲା ।

କିହେଲେ—ପ୍ରା. (ସମ୍ଭ) ଅବ୍ୟ. ଅର୍ଥାତ୍ ।

କୀକଟ—ପୁଂ. ବି. ( କିମ୍+କଟ୍+ଅ ) ଘୋଡ଼ା, ଦେଶବିଶେଷ, ମଗଧର ବୈଦିକ ନାମ, (ବିଂ) ଗରିବ, କୃପଣ, ନିଃସ୍ୱ, ନିର୍ଧନ, (ସ୍ତ୍ରୀ) କୀକଟା ।

କୀକଶ—ପୁଂ ବି. (କୀ+କଶ୍+କ,ଅ) ଚଣ୍ଡାଳ,(ବିଂ) କର୍କଶ, କଠିନ ।

କୀକସ—ପୁଂ. ବି. ( କୀ+କସ୍+ଅ ) କୀଟଜାତି, କୃମି, ହାଡ଼, ଅସ୍ଥି, (ବିଂ) କର୍କଶ, କଠିନ ।

କୀକସମୁଖ—ପୁଂ.ବି. ପକ୍ଷୀ ।

କୀକସାସ୍ୟ—ପୁଂ.ବି. ପକ୍ଷୀ ।

କୀକସେଶ୍ୱର—ପୁଂ.ବି. ଶିବ ।

କୀକି—ପୁଂ.ବି.କି କି; ଚାଷପକ୍ଷୀ,ନୀଳକଣ୍ଠ, ଭଦାଳିଆ ।

କୀଚକ—ପୁଂ. ବି. (କୀଚ+କ.ଅକ) ବାଉଁଶବିଶେଷ, ରାକ୍ଷସବିଶେଷ, ଛିଦ୍ରଥିବା ପୋଲବାଉଁଶ, ବିରାଟରାଜାଙ୍କର ଶଳା ଓ ସେନାପତି, ବୃକ୍ଷବିଶେଷ ।

କୀଚକଜିତ୍—ପୁଂ.ବି. (କୀଚକ+ଜି+କ୍ୱିପ୍) ଭୀମସେନ, ଭୀମ ।

କୀଚକନିସୂଦନ—ପୁଂ.ବି.(କୀଚକ+ନି+ସୂଦ୍+ଅନ) ଭୀମସେନ, ଭୀମ ।

କୀଚକବଧ—ପୁଂ. ବି. କୀଚକ ରାକ୍ଷସର ବିନାଶ ।

କୀଚକଭିତ୍—ପୁଂ.ବି.(କୀଚକ+ଭିଦ୍+କ୍ୱିପ୍) ଭୀମସେନ, ବୃକୋଦର ।

କୀଜ—ପୁଂ.ବିଂ. ଅଦ୍ଭୁତ ।

କୀଟ—(ଧାତୁ) ବାନ୍ଧିବା, ରଙ୍ଗକରିବା ।

କୀଟ—ପୁଂ.ବି (କୀଟ+କ;ଅ)କ୍ଷୁଦ୍ର ଜୀବଭେଦ, କୃମି, ପୋକ (ଲ.ଅର୍ଥ) ତୁଚ୍ଛଜୀବ ବା ପ୍ରାଣୀ । [(ବିଂ) ନିଷ୍ଠୁର ।

କୀଟକ—ପୁଂ.ବି. ମାଗଧଜାତି କୀଟଜାତି,

କୀଟଘ୍ନ—ପୁଂ,ବି.(କୀଟ+ହନ୍+କ.ଅ) । ଗନ୍ଧକ (ବିଂ) କୀଟନାଶକ, (ସ୍ତ୍ରୀ) କୀଟଘ୍ନୀ ।

କୀଟଜ—କ୍ଲୀ.ବି. (କୀଟ+ଜନ୍+ଡ,ଅ) ରେଶମ, ବସ୍ତ୍ରାଦି କୀଟଜାତ (ବିଂ) ରେଶମନିର୍ମିତ।

କୀଟଜା—ସ୍ତ୍ରୀ.ବି. (କୀଟ+ଜନ+ଅ+ଆ) ଲକ୍ଷା, ଲାଖ। [ପୋକରା।

କୀଟଦଷ୍ଟ—ବି. (୭ତତ୍) ପୋକଖିଆ,

କୀଟପାଦିକା—ସ୍ତ୍ରୀ.ବି. (କୀଟ+ପାଦ+ଇକ+ଆ) ହଂସପାଦୀ ଗଛ।

କୀଟଭୁକ୍—ବିଂ. (କୀଟ+ଭୁଜ୍+କ୍ୱିପ୍) କ୍ଷୁଦ୍ରକୀଟ ଭକ୍ଷଣ କରି ପ୍ରାଣଧାରଣ କରୁଥିବା (ଜୀବ), (ବି) କୀଟଭକ୍ଷକ ପ୍ରାଣୀ। [ଖଦ୍ୟୋତ।

କୀଟମଣି—ପୁଂ.ବି. ଜୁଳୁଜୁଳିଆପୋକ,

କୀଟମର୍ଦ୍ଦରସ—ବୈଦ୍ୟୋକ୍ତ କୃମିରୋଗର ଔଷଧ ଭେଦ।

କୀଟମାରି—ଗ୍ରା. ବି. କ୍ଷୁଦ୍ର ବନ୍ୟ ଶାକ ବିଶେଷ, ହଂସପାଦିଲତା।

କୀଟସ୍ୟକୀଟ—ଗ୍ରା.ବିଂ. (କୀଟଅପେକ୍ଷା ମଧ୍ୟ ଅଧମ ବା କ୍ଷୁଦ୍ର (ଲ.ଅର୍ଥ) ଅତିତୁଚ୍ଛ ବା ନଗଣ୍ୟ (ବ୍ୟକ୍ତି)

କୀଟାକୁଳିତ—ବିଂ. (୩ତତ୍) ପୋକା, ପୋକରା, ପୋକଖିଆ।

କୀଟାଣୁ—ପୁଂ.ବି. (କୀଟ+ଅଣୁ) କୀଟସମୂହମଧ୍ୟରେ ଅତି ସୂକ୍ଷ୍ମକୀଟ।

କୀଟାଦ—ବିଂ. (କୀଟ+ଅଦ୍+କ.ଅ) ଯେଉଁସବୁଜନ୍ତୁ କୀଟ ଭକ୍ଷଣ କରନ୍ତି, କୃମିଭକ୍ଷଣକାରୀ, (ସ୍ତ୍ରୀ) କୀଟାଦୀ।

କୀଟାରି—ପୁଂ.ବି. ବୃକ୍ଷବିଶେଷ, ଗନ୍ଧକ (ବିଂ) କୀଟନାଶକ।

କୀଟାରିରସ—ବୈଦ୍ୟୋକ୍ତ କୃମିରୋଗର ଔଷଧବିଶେଷ।

କୀଟାଶୀ—ପୁଂ.ବିଂ. (କୀଟ+ଅଶ୍+କ.ଇନ୍) କୀଟାଦ,କୀଟଭୋଜୀ, କୃମିଭକ୍ଷକ, (ସ୍ତ୍ରୀ) କୀଟାଶିନୀ।

କୀଡ଼ା—ଦେଶ.ବି. କୀଟ, ପୋକ, ଶସ୍ୟ ଓ କାଠରେ ଲାଗିବା କ୍ଷୁଦ୍ରପୋକ, ଘୁଣ, ଅଂଶେଇ।

କୀଡ଼ୀ—ପ୍ରା. (ଦନ୍ତୁର) ବି. ପୋକ।

କୀଦୃଶ—ବିଂ. (କିମ୍+ଦୃଶ୍+ର୍ମି.କ୍ୱିପ୍) କେଉଁପ୍ରକାର,କେଉଁପରି,କିପରିକା।

କୀଦୃକ୍ଷ—ବିଂ. (କିମ୍+ଦୃଶ୍+ର୍ମି.ସ) କିରୂପ, କିପରି, କେଉଁପ୍ରକାରର।

କୀଦୃଶ—ପୁଂ.ବିଂ. (କିମ୍+ଦୃଶ୍+ର୍ମି.ଅ) କେଉଁପ୍ରକାରର, କିପରି, କେଉଁପରି।

କୀନ୍—କ୍ଲୀ.ବି. ମାଂସ।

କୀନାର—ପୁଂ.ବି. କୃଷକ, ଶ୍ରମଜୀବୀ।

କୀନାଶ—ପୁଂ.ବି. (କିମ୍+ନଶ୍+ଅ) ଯମ, ରାକ୍ଷସ, କଂସେଇ, ଗୁପ୍ତହତ୍ୟାକାରୀ ବ୍ୟକ୍ତି, କୃଷକ, ବାନରବିଶେଷ, ବଣମନୁଷ୍ୟ, (ବିଂ) ପଶୁଘାତୀ, ନୀଚ, କ୍ଲେଶୀ, ଗୁପ୍ତଘାତୀ।

କୀମ୍ମତ୍—ଯା.ବି. ଦ୍ରବ୍ୟର ମୂଲ୍ୟ।

କୀର—କ୍ଲୀ.ବି. (କୀ+ଈର୍+କ.ଅ) ମାଂସ (ପୁଂ) ଶୁକପକ୍ଷୀ,ଦେଶବିଶେଷ।

କୀରକ—ପୁଂ.ବି. ବୃକ୍ଷବିଶେଷ, ବୌଦ୍ଧସନ୍ନ୍ୟାସୀ, ଶୁକପକ୍ଷୀ। [ଖ୍ୟାତ।

କୀରତ—ଗ୍ରା. ବି. କୀର୍ତ୍ତି, ଯଶଃ, ସୁନାମ,

କୀରବର୍ଣ୍ଣକ—କ୍ଲୀ. ବି. ସୁଗନ୍ଧ ଦ୍ରବ୍ୟବିଶେଷ। [ଦେଶୀୟ ବ୍ୟକ୍ତି।

କୀର—ପୁଂ.ବି. କାଶ୍ମୀରଦେଶ, କାଶ୍ମୀର।

କୀରଷ୍ଟ—ପୁଂ.ବିଂ. କୃପଣ, କର୍ମୀ।

କୀରି—ପୁଂ. ବି. ସ୍ତବ,(ବିଂ) ସ୍ତବପାଠାଦିରେ ଆସକ୍ତ ସ୍ତୋତା, ସ୍ତାବକ, ସ୍ତବକାରକ।

କୀରେଷ୍ଟ—ପୁଂ.ବି. ଆମ୍ବଗଛ, ଆଖରୋଟ ଗଛ, ଜଳଯଷ୍ଟି, ମଧୁଗଛ (ବିଂ) ବ୍ୟାପ୍ତ

କୀର୍ଣ୍ଣ—ବିଂ. (କୃ+ର୍ମି,ତ) ଆଚ୍ଛନ୍ନ, ବିକ୍ଷିପ୍ତ, ପୂର୍ଣ୍ଣ, ନିହତ, ହିଂସିତ।

କୀର୍ଣ୍ଣି—ସ୍ତ୍ରୀ.ବି. (କୃ+ଭା,ତି) ଆଚ୍ଛାଦନ, ବିକ୍ଷେପ, ହିଂସାକରିବା।

କୀର୍ତ୍ତିକ—ପୁଂ. ବିଂ, (କୃତ୍+କ, ଅକ) ବର୍ଣ୍ଣନକାରକ, କଥକ,ଗୁଣକଥକ,(ସ୍ତ୍ରୀ) କୀର୍ତ୍ତିକା।

କୀର୍ତ୍ତନ—କ୍ଲୀ. ବି. (କୃତ୍+ଭା, ଅନ) ବର୍ଣ୍ଣନ, କଥନ, ଉଲ୍ଲେଖ, ଯଶୋଗାନ, ପ୍ରଶଂସାବାଦ, ହରିନାମଗାନ, ଗୋଳମାଳ,(ଗ୍ରା.ବି) ଝାଞ୍ଜ ଓ ମୃଦଙ୍ଗ ସାହାଯ୍ୟରେ କୃଷ୍ଣ ଓ ଚୈତନ୍ୟାଦି ମହାପ୍ରଭୁଙ୍କର ସ୍ତୁତିଗୀତ ଗାନ।

କୀର୍ତ୍ତନମଣ୍ଡଳୀ—ଗ୍ରା. ବି. ନାମ ସଂକୀର୍ତ୍ତନ କରିବାସକାଶେ ଗଠିତ ଏକାଧିକ ବ୍ୟକ୍ତିଙ୍କର ସଂଘ ବା ସମାଜ।

କୀର୍ତ୍ତନା—ସ୍ତ୍ରୀ. ବି. ଯଶଃ।

କୀର୍ତ୍ତନିଆଁ—ଗ୍ରା. ବି. ସଂକୀର୍ତ୍ତନଦଳର ବ୍ୟକ୍ତି,କୀର୍ତ୍ତନର ଗାୟକ,(ବିଂ)ସଂକୀର୍ତ୍ତନକାରୀ।

କୀର୍ତ୍ତନୀୟ—ବିଂ. (କୃତ୍+ଅନୀୟ) ବର୍ଣ୍ଣନୀୟ,ଗଣନୀୟ, କଥନୀୟ,ପ୍ରଶଂସନୀୟ।

କୀର୍ତ୍ତନ୍ୟ—ବିଂ.(କୃତ୍+ଅନ+ଯ)କୀର୍ତ୍ତନ ହେବାର ଉପଯୁକ୍ତ।

କୀର୍ତ୍ତି—ସ୍ତ୍ରୀ.ବି. (କୃତ୍+ଭା,ତି) ଲୋକମୁଖରୁ ପ୍ରଶଂସା,ସୁନାମ, ନାଆଁ,ପୁଣ୍ୟ, ଯଶଃ, ନାମ, ପ୍ରସାଦ, ଶବ୍ଦ, ଦୀପ୍ତି, ବିସ୍ତାର,କାଦୁଅ, ବୃତ୍ତିବିଶେଷ,ସୁଖ୍ୟାତି, ସୀତାଙ୍କର ଏକ ସଖୀ, ଦକ୍ଷଙ୍କର କନ୍ୟା ଓ ଧର୍ମଙ୍କପତ୍ନୀ, ଆର୍ଯ୍ୟାଛନ୍ଦର ଏକଭେଦ, ଜ୍ୟୋତି, ମଇଳା,ମଳ, ମାତୃକାବିଶେଷ, (ଗ୍ରା.ବି)ଯଶୋଜନକକାର୍ଯ୍ୟ,(ବ୍ୟଙ୍ଗାର୍ଥ) ନିନ୍ଦିତକର୍ମ, ଗର୍ହିତକାର୍ଯ୍ୟ, ଅଯଶଃ।

କୀର୍ତ୍ତିକର—ବିଂ.(କୀର୍ତ୍ତି+କୃ+କ, ଅ) ଯଶସ୍କର, କୀର୍ତ୍ତିଜନକ।

କୀର୍ତ୍ତିକରିବା—ଗ୍ରା. କ୍ରି. କୀର୍ତ୍ତିଜନକ କାର୍ଯ୍ୟ କରିବା।

କୀର୍ତ୍ତିକଳାପ—ପୁଂ. ବି. (୬ତତ୍) ଯଶଃସମୂହ, ନାନାପ୍ରକାର ସୁଖ୍ୟାତି।

କୀର୍ତ୍ତିକୂଟ—ପୁଂ. ବି. ପର୍ବତବିଶେଷ।

କୀର୍ତ୍ତିଚନ୍ଦ୍ର—ପୁଂ. ବି. ବର୍ଦ୍ଧମାନର ଜଣେ ରାଜା, (ବିଂ) ଦିଗନ୍ତ ବିସ୍ତୃତ ଯଶଃ, ଯାହାର କୀର୍ତ୍ତି ଚନ୍ଦ୍ରଙ୍କପରି ପୃଥିବୀ ବ୍ୟାପିଛି।

କୀର୍ତ୍ତିତ—ବିଂ. (କୃତ୍+ର୍ମି,ତ) କଥିତ, ଖ୍ୟାତ, ନିର୍ଦ୍ଦିଷ୍ଟ, ଉକ୍ତ, ବର୍ଣ୍ଣିତ, (ସ୍ତ୍ରୀ) କୀର୍ତ୍ତିତା।

କୀର୍ତ୍ତିତବ୍ୟ—ବିଂ. (କୃତ୍+ତବ୍ୟ) କୀର୍ତ୍ତନ କରିବାର ଉପଯୁକ୍ତ, ବର୍ଣ୍ଣନାଯୋଗ୍ୟ।

କୀର୍ତ୍ତିଧର—ପୁଂ.ବିଂ. (କୀର୍ତ୍ତି+ଧୃ+ଅ) କୀର୍ତ୍ତିମାନ୍, (ବି) ଜଣେ ସଙ୍ଗୀତଶାସ୍ତ୍ର ରଚୟିତା।

କୀର୍ତ୍ତିଧ୍ୱଜା — ସ୍ତ୍ରୀ.ବି.(କ.ଧା)ଯଶଃପତାକା, ସୁଖ୍ୟାତିର ନିଶାନ୍ ।

କୀର୍ତ୍ତିପତାକା — ବି. (କ.ଧା) ପତାକାପରି ବହୁଦୂରରୁ ଶୋଭିତା କୀର୍ତ୍ତି, ଜଗଦ୍‌ବିସ୍ତୃତ ଯଶୋରାଶି, ପ୍ରସୃତ ସୁନାମ ।

କୀର୍ତ୍ତିବାସ — ବିଂ. ବ.ବ୍ରୀ;(କୀର୍ତ୍ତି + ବାସ) ପରମଯଶସ୍ୱୀ କୀର୍ତ୍ତିମାନ୍, (ବି) ସ୍କନ୍ଦ ପୁରାଣୋକ୍ତ ଅସୁରବିଶେଷ, ଗ୍ରନ୍ଥକାର-ବିଶେଷ ।

କୀର୍ତ୍ତିଭାକ୍—ପୁଂ. ବି. (କୀର୍ତ୍ତି + ଭଜ୍ + କ୍ୱିପ୍) ଦ୍ରୋଣାଚାର୍ଯ୍ୟ, (ବିଂ)·କୀର୍ତ୍ତିଯୁକ୍ତ, ଯଶୋଭାଗୀ, ସୁଖ୍ୟାତିଭାଜନ ।

କୀର୍ତ୍ତିମନ୍ଦିର -- କ୍ଲୀ.ବି. (ଷତତ୍) ସୁଖ୍ୟାତ ଦେବୀଙ୍କର ଆଳୟ, (କ.ଧା) ଯଶୋ-ରୂପଭବନ, କୀର୍ତ୍ତିପ୍ରକାଶକ ମନ୍ଦିର ।

କୀର୍ତ୍ତିମନ୍ତ—ବିଂ. କୀର୍ତ୍ତିଯୁକ୍ତ ।

କୀର୍ତ୍ତିମାନ୍ — ପୁଂ.ବିଂ.(କୀର୍ତ୍ତି + ମତ.)ନାମଜାଦା, ବିଖ୍ୟାତ, ଯଶସ୍ୱୀ, (ବି) ଦ୍ରୋଣାଚାର୍ଯ୍ୟ,ବସୁଦେବର ଜ୍ୟେଷ୍ଠପୁତ୍ର

କୀର୍ତ୍ତିମୁଖ—ସ୍ତ୍ରୀ. ବି. ଶିବମନ୍ଦିରର ଦ୍ୱାରଦେଶରେ ଥିବା ଖୋଦିତ ବା ଚିତ୍ରିତ ମୁଣ୍ଡ ।

କୀର୍ତ୍ତିମେଖଳା—ସ୍ତ୍ରୀ. ବି. (କ.ଧା) ଯଶଃ-କାଞ୍ଚୀ, ସୁଖ୍ୟାତିରୂପ କଟିଭୂଷଣ ।

କୀର୍ତ୍ତିରଖିବା — ଗ୍ରା.କ୍ରି. ଯେଉଁକାର୍ଯ୍ୟଦ୍ୱାରା ଭବିଷ୍ୟତରେ ଯଶ ରହିବ ଏପରି ସ୍ଥାୟୀ-କାର୍ଯ୍ୟ କରିବା,ପୂର୍ବବଂଶଧରଙ୍କର ଯଶକୁ ଅକ୍ଷୁଣ୍ଣ ରଖିବା ।

କୀର୍ତ୍ତିରଖିଯିବା — ଗ୍ରା. କ୍ରି କୀର୍ତ୍ତିଜନକ କାର୍ଯ୍ୟ କରି ମରିବା ।

କୀର୍ତ୍ତିରଥ- ପୁଂ.ବି. ବିଦେହରାଜ ଜନକ-ବଂଶୀୟ ପ୍ରତୀନ୍ଧକ ରାଜପୁତ୍ର ।

କୀର୍ତ୍ତିଶାଳୀ — ପୁଂ.ବିଂ (କୀର୍ତ୍ତି + ଶାଳିନ୍) ଯେ କୀର୍ତ୍ତିଜନକ କାର୍ଯ୍ୟ କରିଥିବା ଯୋଗୁଁ ସଂସାରରେ ଯଶ ପାଏ, ( ସ୍ତ୍ରୀ ) କୀର୍ତ୍ତିଶାଳିନୀ ।

କୀର୍ତ୍ତିଶେଷ — ପୁଂ. ବି. ମୃତ, ମୃତ୍ୟୁପରେ କୀର୍ତ୍ତିମାତ୍ର ଅବଶିଷ୍ଟ ରହେ ।

କୀର୍ତ୍ତିସେନ — ପୁଂ.ବି. ବାସୁକିଙ୍କ ଭାଗିନେୟ ପୁତ୍ର ।

କୀର୍ତ୍ତିସ୍ତମ୍ଭ—ପୁଂ.ବି. (କୀର୍ତ୍ତି + ସ୍ତମ୍ଭ)ମଧ୍ୟ-କ.ଧା; କୀର୍ତ୍ତିସ୍ମରଣାର୍ଥ ନିର୍ମିତସ୍ତମ୍ଭ, ବ୍ୟକ୍ତିବିଶେଷଙ୍କ କୀର୍ତ୍ତିକର କାର୍ଯ୍ୟମାନ ଯେଉଁଖମ୍ବରେ ଲିପିବଦ୍ଧ ହୋଇଥାଏ, ସ୍ମୃତିମନ୍ଦିର ।

କୀର୍ଣ୍ଣୀ—ସ୍ତ୍ରୀ. ବି. ପକ୍ଷିବିଶେଷ ।

କୀଲ—(ଧାତୁ) ବନ୍ଧନକରିବା, ଦୃଢ଼ କରିବା, ବନ୍ଦକରିବା, କଣ୍ଟାଫୋଡ଼ିବା, କୀଳାପୋତିବା ।

କୀଲ—ପୁଂ.ବି.(କୀଲ + ଅ)ଖିଲ,ଗେଞ୍ଜଣା, ମେଖ, ସରୁ ଓ ଛେଚମୁନିଆଁ କାଠ ବା ଧାତୁ, ଲେଣ,ଖୁଣ୍ଟା, ଖୁଣ୍ଟି, ଖୁଣ୍ଟ,ମୁଷ୍ଟି, ଆଘାତ, ମୁଥ, ମୁଠୀ, ଅଗ୍ନିଶିଖା,କବାଟର ଶଙ୍କୁ, କିଳଣୀ, କହୁଣି, କଣ୍ଟା, ସୂର୍ଯ୍ୟଘଟିକାରଛାୟାଦର୍ଶକକଣ୍ଟା,ଚକର ମାଣିଖୁଣ୍ଟି,ଗୋରୁଖୁଣ୍ଟ,(ସୁଶ୍ରୁତ) ପ୍ରସବ ପୂର୍ବରୁ ଭ୍ରୂଣ ଯୋନିଦ୍ୱାରରେ ଅଟକିବା ଅବସ୍ଥା, କୁମ୍ଭାରଚକର ମଝିଖୁଣ୍ଟ, ପଦ୍ମ-କଣ୍ଟାରୋଗ, ଆସନବିଶେଷ ।

କୀଲକ—ପୁଂ. ବି. ସ୍ତମ୍ଭବିଶେଷ, ଗୋରୁ-ପ୍ରଭୃତି ଯେଉଁ ଖୁଣ୍ଟରେ ବନ୍ଧାହୁଅନ୍ତି, କୀଳା, ଖୁଣ୍ଟି, ତନ୍ତ୍ରୋକ୍ତ ଦେବତା-ବିଶେଷ, ( କ୍ଲୀ ) ମନ୍ତ୍ରବିଶେଷ, ସ୍ତବ-ବିଶେଷ ।

କୀଲଣୀ — ଗ୍ରା ବି. (ସଂ-କୀଲନ) କିଳଣୀ ହୁଡୁକା, ଅର୍ଗଳ, ଘରର କବାଟକୁ ଭିତରଆଡ଼ୁ ବନ୍ଦକରିବାପାଇଁ କବା-ଟରେ ଲାଗିଥିବାଲୁହା ବା କାଠରଦଣ୍ଡ ।

କୀଲନ—କ୍ଲୀ. ବି. (କୀଲ + ଣ, ଅନ) ବନ୍ଧନ,ତନ୍ତ୍ରମନ୍ତ୍ରବିଶେଷ,କବାଟ କିଳିବା କର୍ମ, ଦୃଢ଼ୀକରଣ,ସ୍ଥିରୀକରଣ, କୀଳା-ପୋତା, ରୋକ, ୯କେସଯୋଡ଼ିବା କର୍ମ ।

କୀଲସଂସ୍ପର୍ଶ—ପୁଂ. ବି. (କୀଲ + ସଂସ୍ପୃଶ୍ + ଅ) ବୃକ୍ଷବିଶେଷ ।

କୀଲା — ସ୍ତ୍ରୀ. ବି. ( କୀଲ + ମି ଅ + ଆ) ବାଡ଼ି.ଖିଲ, ବନ୍ଧନଖୁଣ୍ଟ,ଅଷ୍ଟକୁଳାଚଳ, ଅଗ୍ନିଶିଖା,କହୁଣୀମୁଷ୍ଟ୍ୟାଘାତ,ରତିବନ୍ଧ-ବିଶେଷ, ଖୋବା, ଭାଗ, ଝୁଣ୍ଟା,ଖୁଣ୍ଟି, (ଗ୍ରା.ବି.) କୀଳିବାକାର୍ଯ୍ୟ,(ବିଂ)କୀଳିତ, କୀଳାଯାଇଥିବା,ଗାରପଡ଼ି ଲେଖାଯାଇ-ଥିବା (ଲେଖା) । [ଶିଙ୍କଲିରୂପ ।

କୀଲାଇବା — ଗ୍ରା. କ୍ରି. କୀଳିବା କ୍ରିୟାର

କୀଲାଲ — କ୍ଲୀ. ବି. ( କୀଲା + ଅଲ୍ + ଅ, (ଅ) ଜଳ, ଅମୃତ,ରକ୍ତ, ମଧୁ, ପଶୁ ।

କୀଲାଲଜ — କ୍ଲୀ. ବିଂ. ( କୀଲାଲ + ଜନ୍ + ଅ) ଜଳଜାତ ।

କୀଲାଲଧି — ପୁଂ. ବି. ( କୀଲାଲ + ଧା + ଇ) ସମୁଦ୍ର ।

କୀଲାଲପ — ପୁଂ. ବି. ( କୀଲାଲ + ପା + + କ,ଅ) ରାକ୍ଷସ,ଜୋକ,(ବିଂ)ରୁଧିର-ପାୟୀ, ରୁଧିରପାନକାରୀ ।

କୀଲାଲପା — ପୁଂ. ବି. ଅଗ୍ନି, ଯମ ।

କୀଲାଲୀ — ବି. (କୀଲାଲ + ଇନ୍)ଝିଟିପିଟି, ଏଣ୍ଡୁଅ ।

କୀଲିକା — ସ୍ତ୍ରୀ. ବି. ନାଗଚଭେଦ ।

କୀଳଣୀ — ଗ୍ରା. ବି. କବାଟ ବନ୍ଦକରିବାର କଳା, କିଳଣୀ (ଦେଖ) ।

କୀଲିତ — ବିଂ. (କୀଲ + ମି ତ) ବଦ୍ଧ, ରୁଦ୍ଧ, ବନ୍ଧାଯାଇଥିବା, କୀଳାଯାଇଥିବା, ଭୂମିରେ ପୋତାଯାଇଥିବା (ମେଖ ଆଦି) । (ବି) ବନ୍ଧନ । [ (ଦେଖ) ।

କୀଲିନୀ--ବି.(କୀଲ୍ + ଇନ୍ + ଈ) କୀଲଣୀ

କୀଳିବା — ଗ୍ରା. କ୍ରି. (ସଂ-କୀଲନ) ଦ୍ୱାର ରୁଦ୍ଧ କରିବା, ଦେହକୁ ଔଷଧ ବା ମନ୍ତ୍ରାଦିଦ୍ୱାରା ଭୂତପ୍ରେତ ଇତ୍ୟାଦିଙ୍କ ଠାରୁ ରକ୍ଷା କରିବା, ଅକାଟ୍ଟ କରିବା, ଦୁଷ୍ଟ ଭୂତପ୍ରେତ ଓ ବ୍ୟାଘ୍ର-ସର୍ପାଦିଙ୍କୁ ମନ୍ତ୍ରବଳରେ ଏକସ୍ଥାନରେ ରୁଦ୍ଧ କରିବା, ଲେଖା ଆଦିକୁ କାଟିଦେବା, କୀଳା ମାରିବା, ଝୁଣ୍ଟା ମାରିବା ।

କୀଶ — ପୁଂ.ବି.(କୀ + ଈଶ + ଅ)ବ.ବ୍ରୀ, ପକ୍ଷୀ, ବାନର, ସୂର୍ଯ୍ୟ, (ବିଂ) ବିବସ୍ତ୍ର, ନିଃସ୍ୱ, ଦୀନ ଦରିଦ୍ର, ଉଲଗ୍ନ, ଲଙ୍ଗଳା ।

କୀଶପର୍ଣ୍ଣ — ପୁଂ. ବି. (କୀଶ + ପର୍ଣ୍ଣ) ଅପାମାର୍ଗ ଗଛ । [ ଖଣ୍ଡି ଗଛ ।

କୀଶପର୍ଣ୍ଣୀ — ସ୍ତ୍ରୀ.ବି.ଅପାମାର୍ଗଗଛ, ତିବତ-

କାଶାଳ—ପୁଂ.ବି. ଚଷା ଜାତି ବିଶେଷ ।
କାସା—ଯା.ବି. ଖୀସା, ଥଳି, ଗାଣ୍ଡିଆ ।
କାସ୍ତ—ପୁଂ. ବି. ସ୍ତବ, ସ୍ତୁତି ।
କୁ—(ଧାତୁ) ଶବ୍ଦ କରିବା ।
କୁ—ଅବ୍ୟ. (କୁ+କ.ଡୁ) ପାପ, ନିନ୍ଦା, ଅମଙ୍ଗଳ, ଅଶୁଭ, ଈଷତ୍, ନିବାରଣ, ମନ୍ଦ, (ବିଂ) କଦମ୍ବିସ୍ତ, (ସ୍ତ୍ରୀ) ପୃଥିବୀ, ଆଗମନିଗମାଦିବେଦାଙ୍ଗବ୍ୟାଖ୍ୟା(ଗ୍ରା.ବି) କେଉଁ, (ଗ୍ରା. ଅବ୍ୟ) 'ସ୍ୱ' ଏକବଚନ ଚିହ୍ନ,(ଯଥା-ମୁଁ ଘରକୁ ଯିବି)(ହେତ୍ୱର୍ଥରେ କିମ୍ବା ସଙ୍ଗେ ବ୍ୟବହୃତ) ଯୋଗୁଁ, ହେତୁରୁ, ନିମନ୍ତେ, ସକାଶେ, ପାଇଁ, ଚତୁର୍ଥୀବିଭକ୍ତି ଏକବଚନର ଚିହ୍ନ ।
କୁଅ—ଗ୍ରା ବି. କୂପ, କୂଅ ।
କୁଅନ୍ତୁ—ଅବ୍ୟ, ଶବ୍ଦ ।
କୁଅଁର-ଗ୍ରା.ବି.ପୁଂ. (ସଂ-କୁମାର)କ୍ଷତ୍ରିୟଜାତି ଓ କ୍ଷତ୍ରିୟମାନଙ୍କର ବଂଶୋପାଧି, ପୁତ୍ର, କୁମାର, ଅବିବାହିତ ଯୁବକ, ରାଜାଙ୍କ ଦ୍ୱିତୀୟପୁତ୍ରଙ୍କ ଉପାଧି, (ସ୍ତ୍ରୀ)କୁଅଁରୀ ।
କୁଆ—ଗ୍ରା. ବି. କାଉ, କାକ, ବାୟସ, ତେଲକୁମ୍ପା, ଚର୍ମନିର୍ମିତ ତୈଳପାତ୍ର, (ଲ.ଅର୍ଥ) କୁଆପରି ଗୋଲମାଲକରିବା ବ୍ୟକ୍ତି,ଅଇଣ୍ଠା ଓ ଅମେଧ୍ୟ ଖାଇବାବ୍ୟକ୍ତି
କୁଆଁ—ଗ୍ରା. ବି. ସଦ୍ୟୋଜାତ ଶିଶୁର କ୍ରନ୍ଦନଧ୍ୱନି,କଢ଼ା; (ଗଛଆଦିରୁ ବାହାରିବା ନୂଆ କୋମଳ ଶାଖା ।)
କୁଆଁକୁଆଁ—ଗ୍ରା. (ଅବ୍ୟ) ସଦ୍ୟୋଜାତ ଶିଶୁର କ୍ରନ୍ଦନଧ୍ୱନି ।
କୁଆଁର—ଗ୍ରା. ବି. ଅବିବାହିତ ଯୁବକ, ଗମ୍ଭାରି, (ପ୍ରା.ସମ୍ବ. ବି) କାର୍ତ୍ତିକ ମାସ, (ସ୍ତ୍ରୀ) କୁଆଁରୀ ।
କୁଆଁରପୁରିଆ—ଗ୍ରା. ବି. ଏକଜାତୀୟ ଦେଶୀୟ କଦଳୀ ।
କୁଆଁରପୁନେଇଁ—ଗ୍ରା.ବି. ଆଶ୍ୱିନପୂର୍ଣ୍ଣିମା, କୁମାରପୂର୍ଣ୍ଣିମା ।
କୁଆଁରା—ପ୍ରା. (ବସ୍ତର)ପୁଂ.ବି. ଅକୃତ ଦାର, ଅବିବାହିତ ।
କୁଆଁରୀଆ ଗାଈ—ଗ୍ରା.ବି. ଯେଉଁ ଗାଈକୁ ଷଣ୍ଢ ଗୋଟରେ ଛଡ଼ାଇଦିଆ ଯାଇଥାଏ ।
କୁଆଁରୀ—ଗ୍ରା.ସ୍ତ୍ରୀ.ବି.(ସଂ-କୁମାରୀ) ଅବିବାହିତା କନ୍ୟା, ଝିଅକୁଆଁରୀ, (ବିଂ) ଅବିବାହିତା, ଅଭୁଆଡ଼ୀ । [ବାଳିକା ।
କୁଆଁରୀକନିଆଁ—ଗ୍ରା.ସ୍ତ୍ରୀ.ବି. ଅବିବାହିତା
କୁଆଁରୀଖରା—ଗ୍ରା.ବି.ନବୋଦିତ ସୂର୍ଯ୍ୟଙ୍କ କିରଣ, କଅଁଳ ଖରା ।
କୁଆଁରୀଚନ୍ଦ୍ର—ଗ୍ରା. ବି. ନବୋଦିତ କୁମାରପୂର୍ଣ୍ଣିମାଚନ୍ଦ୍ର, ପ୍ରତିପଦାର କ୍ଷୀଣ ଚନ୍ଦ୍ର । [(ଦେଖ) ।
କୁଆଁରୀଜହ୍ନ—ଗ୍ରା. ବି. କୁଆଁରୀଚନ୍ଦ୍ର
କୁଆଁରୀସୂତା—ଗ୍ରା. ବି. ଅଖାଡ଼ୁଆସୂତା, କୌତୁକସୂତ୍ର, କୁମାରୀକାଟିଥିବାସୂତା ।
କୁଆଁରୀହାଡ଼—ଗ୍ରା. ବି. ଅବିବାହିତା କନ୍ୟାର ହାତର ଅସ୍ଥି,କାଉଁରୀହାଡ଼ ।
କୁଆକୁଟା—ଗ୍ରା. ବି. ହଟହଟା ଅବସ୍ଥା, ଲେକଲେସା, (ବିଂ) ହଟହଟା, ଲେକ-ଲେସା ।
କୁଆକେନ୍ଦୁ—ଗ୍ରା. ବି. ତମାଲ ବର୍ଣ୍ଣର ଧୂସର କେନ୍ଦୁ, ମାଙ୍କଡ଼କେନ୍ଦୁ ।
କୁଆଗାଧୁଆ—ଗ୍ରା.ବି. କାକସ୍ନାନ, କୁଆ ଗାଧୋଇବା ପରି ସାମାନ୍ୟ ସ୍ନାନ ।
କୁଆଚୁଆ—ଗ୍ରା. ବିଂ. ବାରମ୍ବାର ଭୀଷଣ ଆଘାତରେ ବ୍ୟତିବ୍ୟସ୍ତ ।
କୁଆଚୁଆହଡ଼ାଇଦେବା—ଗ୍ରା.କ୍ରି. ବିଶେଷ ପରିମାଣରେ ବେତାଦିଦ୍ୱାରା ଆଘାତ କରିବା ।
କୁଆଜର—ଗ୍ରା. ବି. ବରଗଛ ଜାତୀୟ ବୃହତ୍ ବୃକ୍ଷ ବିଶେଷ, ପ୍ଲକ୍ଷ ।
କୁଆଡ଼—ଗ୍ରା.ବି.(ସଂ-କ୍ୱଂ ଓ ଅର୍ଦ୍ଧ) କେଉଁ ଆଡ଼, କେଉଁଦିଗ, ଅନିର୍ଦ୍ଦିଷ୍ଟ ଦିଗ ବା ଦେଶ, କେଉଁଅଞ୍ଚଳ ବା ଦେଶ ।
କୁଆଡ଼କା,କୁଆଡ଼କାର—ଗ୍ରା. ବି. କେଉଁ ଆଡ଼ର, କେଉଁ ଦିଗର,କେଉଁ ଅଞ୍ଚଳର, କାହୁଁ ଅଇଲା ଅପରିଚିତ, ଅଜ୍ଞାତ-କୁଳଶୀଳ, ଆଶ୍ଚର୍ଯ୍ୟଜନକ ।
କୁଆଡ଼ୁ—ଗ୍ରା. ଅବ୍ୟ. କେଉଁଆଡ଼ୁ,କେଉଁ ଦିଗରୁ, କୌଣସି କାରଣରୁ (ପ୍ରଶ୍ନାର୍ଥକ) କାହିଁକି ? କ ହେତୁରୁ କେଉଁଠାରୁ ।
କୁଆଡ଼େ—ଗ୍ରା. ଅବ୍ୟ, କେଉଁଦିଗରେ, କେଉଁଦିଗକୁ, କ ? କାହିଁକି ? (ଅନୁ-ମାନାର୍ଥକ) କେଜାଣି, ମୁଁ ଅନୁମାନ କରୁଛି, ମୁଁ ଶୁଣୁଛି ।
କୁଆଁତାରା, କୁଆତରା—ଗ୍ରା. ବି. ପାହାନ୍ତିଆ ତାରା, ଶୁକ୍ରନକ୍ଷତ୍ର, ଶୁକ୍ରଗ୍ରହ ।
କୁଆପଥର—ଗ୍ରା.ବି. ବର୍ଷୋପଳ,କରକା, କଇଁପଥର ।
କୁଆବାବୁର—ପ୍ରା.(ସମ୍ବ) ବି.ଗନ୍ଧତୁଳସୀ-ଜାତୀୟ କ୍ଷୁଦ୍ର ଗୁଳ୍ମ ବିଶେଷ, ବଟଖଦିର ଗଛ,ଅଗସ୍ତିଗୁଳ୍ମ,ବବୁର ଜାତୀୟ ଗଛ ।
କୁଆରୁଆ—ଗ୍ରା.ବି. ବ୍ୟସ୍ତ, ଆକୁଳ, ଅସ୍ଥିର, ଆଶ୍ରୟହୀନ, ହଟହଟା, ଦୁଃଖ-ଜର୍ଜରିତ ।
କୁଆମଇତା—ଗ୍ରା.ବି. (ସଂ-କାକମର୍ଦ୍ଦ) ବିମ୍ବଜାତୀୟ ଲତା ଓ ତାହାର ଫଳ ବିଶେଷ ।
କୁଆଶା—ଗ୍ରା. ବି. ମନ୍ଦଆଶା, ଦୁରାଶା, (ଗ୍ରା.ମେଦ) କୁହୁଡ଼ି ।
କୁଆଶାଗୁଣା—ଗ୍ରା.ବି. ପୋଡ଼ା ବା ପୋତା ନ ହେବା ଶବକୁ ବେଢ଼ିବା କୁଆ ଓ ଶାଗୁଣାଗଣ ।
କୁଂଶା—ସ୍ତ୍ରୀ.ବି.ଶୋଭା,ଜ୍ଞାପନକରିବା ।
କୁଆସାପ—ଗ୍ରା.ବି. ଏକପ୍ରକାର ସରୀସୃପ ଜାତୀୟ ପ୍ରାଣୀ, ଦୁଧିଆବୋଡ଼ା ।
କୁଇ—ପ୍ରା. ( ବାଲେ ଓ ମେଦ ) ବି. ଦଧିଖଣ୍ଡ, କୋଇ, ବଣିଆଁମାନଙ୍କ ଧାତୁ ଆଉଟିବା ପାତ୍ର, କନ୍ଧମାନଙ୍କ ମାତୃଭାଷା ।
କୁଇନାଇନ—ଯା. ବି, ବୈଦେଶିକ ସିନ୍‌କୋନା ଗଛର ବଳ୍କଳରୁ ପ୍ରସ୍ତୁତ ଜ୍ୱରନାଶକ ଗନ୍ଧହୀନ ଅତିପିତା ଏକ ପ୍ରକାର ଧଳାଗୁଣ୍ଡା ।
କୁଉଁକୁଉଁ—ଗ୍ରା. ଅବ୍ୟ କେନ୍ଦେରା ବେହେଲାଦି ତାରଯୁକ୍ତ ବାଦ୍ୟର ଘର୍ଷଣଜ ମଧୁର ଧାରାବାହିକ ଶବ୍ଦ ।
କୁଇନ୍ତୀ—ଗ୍ରା. ବି. ପାଣ୍ଡୁରାଜାଙ୍କ ସ୍ତ୍ରୀ, କୁନ୍ତୀ, ପାଣ୍ଡବଙ୍କ ମାତା ।
କୁଉକୁଉ—ଗ୍ରା. ଅବ୍ୟ, କୋଇଲିର ଡାକ, କୁହୁଡାକ ।

କୁଁଅଳ—ଗ୍ରା. (ସମ୍ବ) ବିଂ. କୋମଳ, ନରମ । [ କରିବା ।
କୁକ୍—(ଧାତୁ) ନିର୍ଗତହେବା, ଗ୍ରହଣ
କୁକ—ବିଂ. (କୁକ୍+ଅ) ସମର୍ଥ, ଯେ କର ଆଦାୟ କରେ ।
କୁକଥା—ସ୍ତ୍ରୀ. ବି. ମନ୍ଦକଥା,ଅଶ୍ଳୀଳକଥା ପୃଥିବୀସମ୍ବନ୍ଧୀୟ କଥା ।
କୁକଭ—କ୍ଲୀ.ବି.(କୁକ+ଭ+ଅ)ମଦ୍ୟ ।
କୁକର—ବିଂ.(କୁ+କର)ବ.ବ୍ରୀ, କୁତ୍ସିତ ହସ୍ତବିଶିଷ୍ଟ, ହାତଖଣ୍ଡିଆ,(ବି) ଶୈବ-ସମ୍ପ୍ରଦାୟର ଶାଖାବିଶେଷ,କୁତ୍ସିତହସ୍ତ, ଗ୍ରନ୍ଥିପର୍ଣ୍ଣୀ ।
କୁକର୍ମ—କ୍ଲୀ.ବି. (କ.ଧା) ଲୋକ ନିନ୍ଦିତ କାର୍ଯ୍ୟ, ପାପାଚରଣ, ପାପ, ଗର୍ହିତ କାର୍ଯ୍ୟ, ଦୁଷ୍କ୍ରିୟା ।
କୁକର୍ମକାରୀ—ପୁଂ.ବିଂ. (କୁ+କର୍ମ+କୃ +ଇନ୍) ଯେ ଖରାପ କାମକରେ, ଯେ ଅସତ୍ କାର୍ଯ୍ୟ କରେ ।
କୁକର୍ମବେଦ,କୁକୁରବେଦ—ଗ୍ରା. ବି.ବିବାହ ବେଦି ନିକଟରେ ତିଆରି ହୋଇଥିବା ଛୋଟ ବେଦି, ଏହି ବେଦିରେ ଅହ୍ନିକ-କର୍ମ କରାଯାଏ ।
କୁକର୍ମଶାଳୀ—ପୁଂ.ବିଂ.(କୁ+କର୍ମନ୍+ଶାଲ+ଇନ୍) କୁକର୍ମଯୁକ୍ତ ।
କୁକର୍ମା—ପୁଂ.ବି. (କୁ+କର୍ମନ୍)କୁତ୍ସିତ କାର୍ଯ୍ୟକାରୀ ।
କୁକର୍ମୀ—ପୁଂ.ବିଂ.(କୁ+କର୍ମନ୍+ଇନ୍) କୁତ୍ସିତ କାର୍ଯ୍ୟକାରୀ, କୁକାର୍ଯ୍ୟରେ ଲିପ୍ତ (ସ୍ତ୍ରୀ) କୁକର୍ମିଣୀ ।
କୁକାଠିଆ—ପୁଂ. ବିଂ. କୁତ୍ସିତ (ବ୍ୟକ୍ତି) ନୀଚ, ଅସମ୍ମାନିତ, ଅମାନିଆ ।
କୁକାପ—ଗ୍ରା.ବିଂ.ଝଞ୍ଜଟ,ମନ୍ଦ, କୁତ୍ସିତ ।
କୁକାପନ୍ଥୀ—ଗୋଟିଏ ଶିଖ ସମ୍ପ୍ରଦାୟ-ବିଶେଷ ।
କୁକାର୍ଯ୍ୟ—କ୍ଲୀ. ବି. (କ.ଧା) ମନ୍ଦକାର୍ଯ୍ୟ, ଦୁଷ୍କର୍ମ, ଦୁଷ୍କ୍ରିୟା ।
କୁକି—ଭାରତର ପୂର୍ବପ୍ରାନ୍ତବାସୀ ଗୋଟିଏ ଅସଭ୍ୟ ଜାତି । [ଭୂଧର ।
କୁକୀଳ—ପୁଂ. ବି. (କୁ+କୀଳ) ପର୍ବତ,
କୁକୁଣ୍ଡି—ସ୍ତ୍ରୀ. ବି. ନିଦ୍ରା ।
କୁକୁଟ—ପୁଂ.ବି. ସିନ୍ଧୁବାରବୃକ୍ଷ, ଶାଲ୍ମଳି ବୃକ୍ଷ, ଶିମିଳିଗଛ, ସୁନୁସୁନିଆ ଶାଗ ।
କୁକ୍କୁଟବ୍ରତ—କ୍ଲୀ ବି.ଭାଦ୍ରଶୁକ୍ଳ ସପ୍ତମୀଦିନ ଶିବ ପାର୍ବତୀଙ୍କ ପୂଜା ଓ ଉପବାସ ରୂପ ବ୍ରତ ।
କୁକୁଟମୁଣ୍ଡିନୀ—ସ୍ତ୍ରୀ.ବି.ନିନ୍ଦିତ ଆତ୍ମୀୟପର-ବାରର ଗୃହିଣୀ ।
କୁକୁଡ଼—ଗ୍ରା.ବି. (ଇତର) କୁକ୍କୁର ।
କୁକୁଡ଼ା—ଗ୍ରା. ବି. ମୁରଗୀ, କୁକ୍କୁଟ, କୁକ୍କୁଟପକ୍ଷୀ ।
କୁକୁଡ଼ାଅଣ୍ଡା—ଗ୍ରା.ବି. କୁକ୍କୁଟୀର ଡିମ୍ବ ।
କୁକୁଡ଼ାଅଣ୍ଡାଭଳିଆ—ଗ୍ରା. ବିଂ. (କୁକୁଡ଼ା ଡିମ୍ବର ଖୋଳ ଭଳି) ଅତିପତଳା ଓ ଭଙ୍ଗପ୍ରବଣ ।
କୁକୁଡ଼ା ଡାକବେଳ—ଗ୍ରା.ବି. ବଡ଼ଭୋର, ରାତି ପାହାନ୍ତା ସମୟ, ଅତିପ୍ରଭାତ ।
କୁକୁଦ—ପୁଂ. ବିଂ. (କୁକୁ+ଦା+ଅ) ସତ୍କାର ପୂର୍ବକ ଅଳଂକୃତ କନ୍ୟା-ସମ୍ପ୍ରଦାନକାରୀ ।
କୁକୁନ୍ଦର—କ୍ଲୀ.ବି. (କୁ+ସ୍କୁନ୍ଦ+ଅର) ମେରୁଦଣ୍ଡର ନିମ୍ନଭାଗରେ ନିତମ୍ବସ୍ଥାନ-ସ୍ଥିତ ଗର୍ତ୍ତଦ୍ୱୟ, କ୍ଷୁଦ୍ରବୃକ୍ଷ ବିଶେଷ, ପୋକଶୁଙ୍ଘା ଗଛ ।
କୁକୁନ୍ଦ—ପୁଂ. ବି. ଭୂତଯୋନିବିଶେଷ ।
କୁକୁବଳୁଆ—ଗ୍ରା.(ସମ୍ବ)ବି.ବଳଆକୁକ୍କୁର କୁକ୍କୁର ଜାତୀୟ ବନ୍ୟହିଂସ୍ରଜାତି-ବିଶେଷ ।
କୁକୁଭା—ସ୍ତ୍ରୀ. ବି. ରାଗିଣୀବିଶେଷ ।
କୁକ୍କୁର—ପୁଂ. ବି.(କୁକ୍+ଉର)ଶ୍ୱାନ, କୁକୁର, ଗ୍ରନ୍ଥିପର୍ଣ୍ଣୀଗୁଳ୍ମ, ଗଣ୍ଠିଅନା, ଦେଶବିଶେଷ, ଯଦୁବଂଶୀୟ ଅନ୍ଧକ-ରାଜପୁତ୍ର ।
କୁକୁରଛଳିଆ—ଗ୍ରା. ବି. କୁକୁରଛଦ (ଦେଖ) ।
କୁକୁରଜିହ୍ୱା—ସ୍ତ୍ରୀ. ବି. ମତ୍ସ୍ୟବିଶେଷ, କ୍ଷୁଦ୍ରବୃକ୍ଷବିଶେଷ ।
କୁକୁନ୍ଦରମେଚକ—ପୁଂ. ବି. ଗୋରକ୍ଷ, ଗୃହଳିଆ, ଗରଗଡ଼ ।
କୁକୁନ୍ଦନୀ—ସ୍ତ୍ରୀ.ବି. ଜ୍ୟୋତିଷ୍ମତୀ ଲତା ।
କୁକୁରନିଦ—ଗ୍ରା. ବି. କୁକୁର ନିଦଭଳି ଅତି ଚଞ୍ଚଳ ଭାଙ୍ଗିଯିବା ନିଦ ।
କୁକୁରଫୁଲିଆ—ଗ୍ରା.ବି.ଘା'ର ଉପର ଶୁଖି-ଯିବା ପରେ ଭିତରର କ୍ଷତ ଭଲ ନ ହୋଇଥିବାଯୋଗୁଁ ଘା ଉପରେ ବାହା-ରିବା ଫୁଲ ।
କୁକୁରବିଆଣ—ଗ୍ରା.ବି. କୁକ୍କୁରୀପରି ବର୍ଷକୁ ବର୍ଷ ଏକାଧିକ ଶିଶୁ ପ୍ରସବ କରିବା ।
କୁକୁରବିଆଣୀ—ଗ୍ରା. ସ୍ତ୍ରୀ.ବିଂ.ବର୍ଷକୁ ଏକା-ଧିକ ( ଯଥା-ଯମଜ ) ଶିଶୁ ପ୍ରସବ କରିବା (ସ୍ତ୍ରୀ) ।
କୁକୁରମାଛି—ଗ୍ରା.ବି. କୁକ୍କୁରଙ୍କୁ ଦଂଶନ କରିବା ଏକ ପ୍ରକାର ଡାଆଁଶ ।
କୁକୁରମୁତା—ଗ୍ରା.(ଛତିଶଗଡ଼)ବି ତୁଳସୀ-ଗୁଳ୍ମ ।
କୁକୁରାଧିନାଥ—ପୁଂ. ବି. ଯାଦବଗଣର ଅଧିପତି, ଶ୍ରୀକୃଷ୍ଣ ।
କୁକୁରିଆ—ଗ୍ରା.ବିଂ. କୁକ୍କୁର ସମ୍ବନ୍ଧୀୟ, (ବି) କୁକ୍କୁର ପାଳିବା ବ୍ୟକ୍ତି,(ଲ.ଅର୍ଥ) କୁକ୍ରିୟା ରତ ବ୍ୟକ୍ତି ।
କୁକୁରୀ—ସ୍ତ୍ରୀ.ବି.ସ୍ତ୍ରୀ କୁକ୍କୁର,ମାଈକୁତା ।
କୁକୁରୁନ୍ଦ—ପୁଂ. ବି. କୁକ୍କୁର ଦ୍ରୁମ, ପୋକଶୁଙ୍ଘା ଗଛ ।
କୁକୂଟ—କ୍ଲୀ. ବି. ମୟୂରପୁଚ୍ଛ ।
କୁକୂଟୀ—ସ୍ତ୍ରୀ. ବି. ଶାଲ୍ମଳୀବୃକ୍ଷ ।
କୁକୂଣକ—ପୁଂ.ବି. ନେତ୍ରରୋଗବିଶେଷ, କଥୁ । [ପତନଶୀଳ ।
କୁକୂନାନ—ବିଂ. ଅତ୍ୟନ୍ତ ଶବ୍ଦର ସହିତ
କୁକୂରଭ—ପୁଂ.ବି. ଭୂତଯୋନିବିଶେଷ ।
କୁକୂଳ—ବି. (କୁ+କୂଳ) ଶଙ୍କୁଦ୍ୱାରା ସଙ୍କୀର୍ଣ୍ଣଗର୍ତ୍ତ, ବର୍ମ, ତନୁତ୍ରାଣ ଚର୍ମ, (ପୁଂ) ତୁଷାନଳ, ତଷୁନିଆଁ ।
କୁକେଳ—କ୍ଲୀ. ବି. (କୁ+କୁଲ୍+ଅ) କେଳିବୃକ୍ଷ, ବଦରୀ ।
କୁକ୍କୁଟ—ପୁଂ.ବି. (କୁ+କୁଟ୍+କ ଅ) ପକ୍ଷିବିଶେଷ, କୁକୁଡ଼ା, ( ଏହା ଗ୍ରାମ୍ୟ ଓ ବନ୍ୟ ଭେଦରେ ଦୁଇପ୍ରକାର ) ତୃଣୋଲ୍କା, ଅଗ୍ନିକଣା, ନିଷାଦପୁତ୍ର, ଶୂଦ୍ରଜାତି ।

**କୁକ୍କୁଟକ**—ପୁଂ.ବି.(କୁକ୍କୁଟ+କ) ନିଷାଦ-ପିତା ଓ ଶୂଦ୍ରା ମାତାଠାରୁ ଉତ୍ପନ୍ନ ସନ୍ତାନ, ନୀଚଜାତିବିଶେଷ, କୁକୁଡ଼ା ।

କୁକ୍କୁଟଧ୍ୱନି—ପୁଂ.ବି.(୬ତତ୍) କୁକୁଡ଼ାର ଡାକ ।

କୁକ୍କୁଟବ୍ରତ—କ୍ଲୀ.ବି.କୁକୁଟବ୍ରତ(ଦେଖ), ଲଳିତାସପ୍ତମୀ ବ୍ରତ ।

କୁକ୍କୁଟମଣ୍ଡପ -ପୁଂ.ବି.କାଶୀସ୍ଥପୁଣ୍ୟମଣ୍ଡପ ।

କୁକ୍କୁଟମସ୍ତକ—କ୍ଲୀ. ବି. କୁକୁଡ଼ାର ମୁଣ୍ଡ, ଚବ୍ୟ, ଚଇ ।

କୁକ୍କୁଟଶିଖ—ବି. କୁସୁମଫୁଲର ଗଛ ।

କୁକ୍କୁଟାଣ୍ଡ—କ୍ଲୀ. ବି. (୬ତତ୍) କୁକୁଡ଼ା ବା ମୁରଗୀର ଡିମ୍ବ । [ବିଶେଷ ।

କୁକ୍କୁଟାଣ୍ଡକ— ପୁଂ. କ୍ଲୀ.ବି. ବ୍ରୀହିଧାନ୍ୟ

କୁକ୍କୁଟାଭ—ପୁଂ.ବି. (କୁକ୍କୁଟ+ଆ+ ଭା+ଅ) କୁକ୍କୁଟବତ୍ତୁଲ୍ୟ ବର୍ଣ୍ଣ ଓ ରବ ବିଶିଷ୍ଟ, ସର୍ପବିଶେଷ । [ବିହାର ।

କୁକ୍କୁଟାରାମ—ପୁଂ. ବି. ଗୋଟିଏ ବୌଦ୍ଧ-

କୁକ୍କୁଟାର୍ମ—କ୍ଲୀ. ବି. କେଶବିଶେଷ ।

କୁକ୍କୁଟାସନ—କ୍ଲୀ. ବି. ଆସନବିଶେଷ ।

କୁକ୍କୁଟାହି—ପୁଂ. ବି. କୁକୁଟାଭସର୍ପ ।

କୁକ୍କୁଟି—ସ୍ତ୍ରୀ. ବି. ଦମ୍ଭ ଆଚରଣ, ଅହଙ୍କାର ପ୍ରକାଶ ।

କୁକ୍କୁଟୀ—ସ୍ତ୍ରୀ.ବି.(କୁକ୍କୁଟ+ଈ) ମିଥ୍ୟା ଆଚରଣ, ଝିଟିପିଟି, କୀଟବିଶେଷ, କୁକ୍କୁଟଜାତୀୟା ସ୍ତ୍ରୀ, ଶିମିଳିଗଛ ।

କୁକ୍କୁଟୀବ୍ରତ—କ୍ଲୀ. ବି. ବ୍ରତବିଶେଷ, କୁକ୍କୁଟବ୍ରତ (ଦେଖ) ।

କୁକ୍‌କୁଟେଶ୍ୱରତନ୍ତ୍ର—କ୍ଲୀ. ବି. ତନ୍ତ୍ରସାର ଧୃତ ଖଣ୍ଡିଏ ତନ୍ତ୍ର ।

କୁକ୍କୁଭ—ପୁଂ.ବି.(କୁକ୍+କୁ+ଭ+ଅ) ପକ୍ଷୀବିଶେଷ, କୁକ୍କୁଟ, ବନ୍ୟକୁକ୍କୁଟ ।

କୁକ୍କୁର—ପୁଂ.ବି.(କୁକ୍+କୁର+କ,ଅ) ଗଣ୍ଠିଅନା ଗଛ; ଶ୍ୱାନ, କୁତ୍ତା, କୁକ୍କୁର, ଯଦୁବଂଶୀୟ କ୍ଷତ୍ରିୟଜାତିବିଶେଷ, ନୀଚ, ସଙ୍କର, ଶ୍ୱାନବ୍ୟାଘ୍ର, ଅନ୍ଧକପୁତ୍ର, (ସ୍ତ୍ରୀ) କୁକ୍କୁରୀ ।

କୁକ୍କୁରଚ୍ଛଦ—ବି.(କୁକ୍କୁର+ଛଦ୍+ଅ) ଛୋଟ ବନ୍ୟ ତରୁବିଶେଷ, କୁକୁର-ଛଲିଆ ଗଛ ।

କୁକ୍କୁରଦ୍ରୁ—ପୁଂ.ବି ପୋକଶୁଙ୍ଘା ଗଛ ।

କୁକ୍କୁରଦ୍ରୁମ—ପୁଂ. ବି. ପୋକଶୁଙ୍ଘା (ଦେଖ) ।

କୁକ୍କୁରୀ—ସ୍ତ୍ରୀ. ବି. କୁକ୍କୁର ଜାତୀୟା ସ୍ତ୍ରୀ, କୁତୀ, ମାଈ କୁକୁର ।

କୁକ୍କୁବାନ୍—ପୁଂ, ବିଂ. ସାରଙ୍ଗ ମୃଗ ।

କୁକ୍କୋକ - ପୁଂ. ବି. ରତିରହସ୍ୟ ନାମକ ସଂସ୍କୃତଗ୍ରନ୍ଥପ୍ରଣେତା ।

କୁକ୍ରିୟ—ପୁଂ. ବିଂ. (ବ.ବ୍ରୀ) କୁକର୍ମ-କାରୀ, ଦୁଷ୍କର୍ମରତ, ପାପୀ । [ପାପ ।

କୁକ୍ରିୟା—ସ୍ତ୍ରୀ. ବି. (କ.ଧା) ମନ୍ଦକାର୍ଯ୍ୟ,

କୁକ୍ଷ—ପୁଂ.ବି. (କୁଷ+କ୍ସ) ପେଟ, ଅନ୍ତଃସ୍ଥଳ,କୁକ୍ଷି, ଉଦର । [ସମସ୍ତ ।

କୁକ୍ଷଣ—ବି. (କ.ଧା) ମନ୍ଦମୁହୂର୍ତ୍ତ,ଅଶୁଭ

କୁକ୍ଷି—ସ୍ତ୍ରୀ. ବି. (କଷ+ସି) ଗର୍ଭ, ଉପସାଗର, ମଧ୍ୟ, ଅଭ୍ୟନ୍ତର, ଉଦର, ପେଟ, ଗୁହା, ଅନ୍ତଃସ୍ଥଳ, ଉପତ୍ୟକା, ଖଡ୍ଗଧାର, ଖଣ୍ଡାରଖୋଳ,ରାଜବିଶେଷ ।

କୁକ୍ଷିଗତ—ବିଂ. (କୁକ୍ଷି+ଗତ) ୭ତତ୍, ଉଦରପ୍ରବିଷ୍ଟ, ଉଦରମଧ୍ୟଗତ, ଗର୍ଭାଶୟସ୍ଥିତ ।

କୁକ୍ଷିଜ—ପୁଂ.ବିଂ. (କୁକ୍ଷି+ଜନ୍+ଅ) ଗର୍ଭଜାତ (ସନ୍ତାନ) ।

କୁକ୍ଷିଜା-ସ୍ତ୍ରୀ.ବିଂ.(କୁକ୍ଷି+ଜନ+ଅ+ଆ ଗର୍ଭଜାତା (କନ୍ୟା) ।

କୁକ୍ଷିମ୍ଭରି—ବିଂ. (କୁକ୍ଷି+ଭୃ+କ.ଇ) ପେଟୁ, ଉଦରମ୍ଭରି, କୃପଣ, ସ୍ୱାର୍ଥପର ।

କୁକ୍ଷିରନ୍ଧ୍ର—ପୁଂ.ବି.(ବ.ବ୍ରୀ) ନଳ, ଶର ।

କୁକ୍ଷିଶୂଳ—ପୁଂ. କ୍ଲୀ.ବି. (୬ତତ୍) ପେଟ-ବେଦନା, ପେଟମରୁ ରୋଗ ।

କୁକ୍ଷେମୃ—ପୁଂ. ବି. ଭଗବଦ୍‌ଭକ୍ତ ରୌଦ୍ରାଶ୍ୱର ପୁତ୍ର । [ନିନ୍ଦିତ ।

କୁଖ୍ୟାତ—ପୁଂ.ବିଂ.ମନ୍ଦ ବୋଲି ପ୍ରସିଦ୍ଧ,

କୁଖ୍ୟାତି—ସ୍ତ୍ରୀ. ବି. (କ.ଧା) ନିନ୍ଦା, ଅଖ୍ୟାତି, ଅପଯଶ ।

କୁଗଠନ—ଗ୍ରା.ବିଂ. ମନ୍ଦ ଆକୃତି ବିଶିଷ୍ଟ, ଅସୁନ୍ଦର, ଅଘଟଣ ।

କୁଗଣୀ—ପୁଂ.ବିଂ. କୁସଙ୍ଗୀ, କୁଲୋକ ମଧ୍ୟେ ଯାହାଙ୍କୁ ଗଣନା କରାଯାଏ ।

କୁଗତି—ସ୍ତ୍ରୀ. ବି. ମନ୍ଦ ଅବସ୍ଥା, ମନ୍ଦ ଉପାୟ ।

କୁଗୋ—ପୁଂ.ବି. ମନ୍ଦ ଗୋରୁ ।

କୁଗ୍ରହ—ପୁଂ. ବି. ( କ.ଧା ) ଯେଉଁ ସବୁ ଗ୍ରହ ଅଶୁଭ ଫଳ ପ୍ରଦାନ କରନ୍ତି ।

କୁଗ୍ରାମ—ପୁଂ.ବି. ନିନ୍ଦିତ ଗ୍ରାମ, କୁତ୍ସିତ ଗ୍ରାମ ।

କୁଘଟନ—ଗ୍ରା. ବି. (ସଂ-କୁଗଠନ) ଅସୁନ୍ଦର, ଅଘଟଣ ।

କୁଘୋଷଣ—କ୍ଲୀ. ବି. ନିନ୍ଦା ବା ଅଖ୍ୟାତି ରଟନା, କୁସୁମଫୁଲ ।

କୁଙ୍କଡ଼ିବା—ଗ୍ରା. କ୍ରି. ( ସଂ କୁଞ୍ଚନ ) ସଙ୍କୁଚିତ ହେବା, ମୋଡ଼ି ହୋଇଯିବା, ସାଙ୍କୁଡ଼ି ଯିବା, ଲଇଁଯିବା ।

କୁଙ୍କୁମ—କ୍ଲୀ. ବି. ହଳଦି, ଗନ୍ଧଦ୍ରବ୍ୟ-ବିଶେଷ, ଜାଫ୍‌ରାନ୍, କାଶ୍ମୀର ଦେଶଜ ଗୁଳ୍ମ ଓ ତହିଁର ଫଳର ସୁଗନ୍ଧକେଶର ।

କୁଙ୍କୁମତାମ୍ର—ବିଂ. ହଳଦୀ ତୁଲ୍ୟ ରକ୍ତ-ବର୍ଣ୍ଣ ଯୁକ୍ତ ।

କୁଙ୍କୁମପାଣ୍ଡ୍ୟ—ଜଣେ ପାଣ୍ଡ୍ୟ ରାଜା ।

କୁଙ୍କୁମରଙ୍ଗ—ଗ୍ରା. ବି. ସିନ୍ଦୂରରଙ୍ଗ ।

କୁଙ୍କୁମରେଣ୍ଡ—ପୁଂ.ବି. ହଳଦଗୁଣ୍ଡା ।

କୁଙ୍କୁମ କ୍ତ—ବିଂ. ହଳଦୀଯୁକ୍ତ ।

କୁଙ୍କୁମାଦ୍ରି—ପୁଂ. ବି. କାଶ୍ମୀରଦେଶୀୟ ପର୍ବତବିଶେଷ ।

କୁଙ୍କୁମାରୁଣ—କ୍ଲୀ.ବି. ହଳଦପର ଜଳ ।

କୁଙ୍କୁମୀ—ସ୍ତ୍ରୀ.ବି. ମହାଜ୍ୟୋତିଷ୍ମତୀ ଲତା ।

କୁଙ୍ଗନୀ—ସ୍ତ୍ରୀ. ବି. ମହାଜୋତିଷ୍ମତୀଲତା ।

କୁଚ୍—(ଧାତୁ) ପକ୍ଷୀ ପରି ରାବିବା, ବକ୍ର ହେବା, ମିଶାଇବା, ଯିବା, ପାଲିସ କରିବା,ସଙ୍କୁଚିତହେବା,ସମ୍ପୃକ୍ତ କରିବା, ଜମାଇବା, ବଙ୍କାଇବା, ବାଧାଦେବା, ଅଙ୍କିତ ହେବା ।

କୁଚ୍‌କୁଚ୍—ଗ୍ରା. ବିଂ. ଚିକଟିକି ହୋଇ ଖୁବ୍ ଛୋଟ ହୋଇ ଯାଇଥିବା ।

କୁଚ୍‌କୁଚିଆ—ଗ୍ରା.ବିଂ କୁଞ୍ଚିତ, ସଙ୍କୁଚିତ, ଅତଶସ୍ଥ ମଇଳା, (ପାଣିଆଦି) ।

କୁଚ୍‌କୁଟି — ପ୍ରା.(ସମ୍ବ) ବ, ଶ୍ଳେଷ୍ମ ମଶା ।
କୁଚ୍‌ନ — ପ୍ରା.(ସମ୍ବ)ବ.ଯେଉଁପଣ୍ୟ ଦ୍ରବ୍ୟକୁ କୋଗ୍ଧ ବନ୍ଦି କରେ, ଯେ ଅତ୍ୟଧିକ ଲାଭରେ ପଣ୍ୟ ଦ୍ରବ୍ୟ ବନ୍ଦି କରେ ।
କୁଚବିହାର — ବ. ଉତ୍ତରବଙ୍ଗର ପାର୍ବତ୍ୟ ରାଜ୍ୟ ବିଶେଷ ।
କୁଚ — ପୁଂ, ବ. (କୁଚ୍‌+କ,ଅ) ସ୍ତନ, ପୟୋଧର,ଜାତିବିଶେଷ(ବିଂ)ସଙ୍କୁଚିତ ।
କୁଚକଳସ — ବ. କଳସ ପରି ବଡ଼ କୁଚ ବା ସ୍ତନ ।
କୁଚକଳିକା — ସ୍ତ୍ରୀ. ବ. ସ୍ତନକୋରକ, ନବୋଦ୍ଭିନ୍ନ ସ୍ତନ, ପଦ୍ମ କଢ଼ପରି ସ୍ତନ ।
କୁଚକୁଙ୍କୁମ — କ୍ଳୀ. ବ. ଯେଉଁ ହଳଦୀ ସ୍ତନରେ ଲେପନ କରାଯାଏ ।
କୁଚକୁମ୍ଭ — ପୁଂ.ବ. (କ.ଧା) ପୀନୋନ୍ନତ ପୟୋଧର, କଳସ ତୁଲ୍ୟ ଉଚ୍ଚ କୁଚ ।
କୁଚକୋରକ — ପୁଂ କ୍ଳୀ. ବ. ପଦ୍ମାଦିର ମୁକୁଳ ତୁଲ୍ୟ ସ୍ତନ ।
କୁଚକ୍ର — ପୁଂ. ବ. (କୁ+ଚକ୍ର) କ, ଧା, ଚକ୍ରାନ୍ତ, କୁପରାମର୍ଶ, କୁମନ୍ତ୍ରଣା, ଷଡ଼ଯନ୍ତ୍ର ।
କୁଚକ୍ରୀ — ପୁଂ. ବ. (କୁଚକ୍ର+ଇନ) କୁମନ୍ତ୍ରଣାକାରୀ, ଚକ୍ରାନ୍ତକାରୀ, କୁପରାମର୍ଶକାରୀ,(ସ୍ତ୍ରୀ) କୁଚକ୍ରିଣୀ ।
କୁଚଟିଆ — ଗ୍ରା. ବିଂ. କୁତ୍ସିତ, କୁଟିଳ, କୁଚକ୍ରୀ । [ ବିଶେଷ ।
କୁଚଣ୍ଡିକା — ସ୍ତ୍ରୀ.ବ.ମୂର୍ବା ନାମକ ଲତା
କୁଚତଟ — କ୍ଳୀ.ବ.(ଷତତ୍ପୁ) ବିସ୍ତୃତ ସ୍ତନ, ସ୍ତନର କୌଣସି ସ୍ଥାନ, କୁଚ ପାର୍ଶ୍ୱ-ଦେଶ, କୁଚର ଉପ ଅଂଶ ବା ଢାଲୁ ଅଂଶ । [ ଅଗ୍ରଭାଗ ।
କୁଚତଟାଗ୍ର — କ୍ଳୀ. ବ. କୁଚାଗ୍ର, ସ୍ତନର
କୁଚତଟୀ — ବ. (ଷତତ୍ପୁ) କୁଚତଟ (ଦେଖ) ।
କୁଚନାଗ୍ରମ୍ଭୀ — ଗ୍ରା.ପୁଂ.ବ. ଦାକ୍ଷିଣାତ୍ୟର ତୈଲଙ୍ଗୀୟ ସାରଣୀଗ୍ରନ୍ଥ ବା ପଞ୍ଜି କାକାର ।
କୁଚନ୍ଦନ — ବ. (କୁ+ଚନ୍ଦନ) ରକ୍ତ ଚନ୍ଦନ, କୁଙ୍କୁମ, ବକମ କାଠ, ବୃକ୍ଷ-ବିଶେଷ ।
କୁଚଫଳ — ବ. ଡାଳିମ୍ବ, କଇଥ ଗଛ ।
କୁଚମୁଖ — କ୍ଳୀ. ବ. (ଷତତ୍ପୁ) ସ୍ତନର ଅଗ୍ରଭାଗ, ସ୍ତନର ଭୁଣ୍ଡି, ଚୁଚୁକ ।
କୁଚର — ଙ-ବିଂ. (କୁ+ଚର+ଅ) ଯେ ପରର ନିନ୍ଦା କରେ,କୁତ୍ସିତ କର୍ମକର୍ତ୍ତା, କୁସ୍ଥାନେ ବିଚରଣକାରୀ ।
କୁଚରଣ — କ୍ଳୀ.ବ. (କ.ଧା) ମନ୍ଦଚରଣ, କୁତ୍ସିତ ଆଚରଣ,ଦୁଃଶୀଳତା,କଦାଚାର, (ବ. ବ୍ରୀ ବିଂ.) ଦୁଷ୍ଟଚରଣ, କଦାଚାରୀ, ଦୁଃଶୀଳ, ଅସତ୍, ଅସାଧୁ ।
କୁଚର୍ଯ୍ୟା — ସ୍ତ୍ରୀ. ବ- (କୁ+ଚର୍ଯ୍ୟା) ମନ୍ଦ ଆଚରଣ, କୁପ୍ରଥା, ନୀଚ ପୁରୁଷ-ସେବା, କୁଶୀଳ ।
କୁଚ୍ଚ — ଗ୍ରା.ବ.ମୁଷ୍ଟ୍ୟାଘାତ, କୋରଧ ବନ୍ଦ ।
କୁଚୂଚ୍ଚ — କ୍ଳୀ. ବ.(ଷତତ୍ପୁ) ସ୍ତନର ଅଗ୍ରଭାଗ, ଚୁଚୁକ, ସ୍ତନବୃନ୍ତ ।
କୁଚ୍ଚୁଙ୍ଗର କୁଚ୍ଚାକରିବା — ପ୍ରା. (ସମ୍ବ) କ୍ର. ଅଜ୍ଞାତସାରରେ ଲୁଚିବା, ଲୁଚିବା, ଏଣେତେଣେ ଲୁଚିବା । [ଦୁଷ୍ଟପଣ ।
କୁଚାଲ — ଗ୍ରା.ବ. ମନ୍ଦଆଚରଣ, ବଦମାଇସି ।
କୁଚିଆ — ଗ୍ରା.ବ. ଏକପ୍ରକାରଢୋଡ଼ମାଛ, ଜଆ, କେଞ୍ଚୁଆ ।
କୁଚିକ — ପୁଂ. ସ୍ତ୍ରୀ. ବ. (କୁଚ+ଇକ) ମତ୍ସ୍ୟବିଶେଷ, କୋଚିଆ, ଈଶାନ୍ୟ ଦିଗ୍‌ଭାଗର ଦେଶ ବିଶେଷ ।
କୁଚିକଣ୍ଟକ — ପୁଂ.ବିଂ. ନିନ୍ଦିତ ଚିକିତ୍ସକ, ମନ୍ଦ ବୈଦ୍ୟ, ଖରାପ ଚିକିତ୍ସକ ।
କୁଚିକିତ୍ସା — ସ୍ତ୍ରୀ. ବ. ମନ୍ଦ ଚିକିତ୍ସା,ଖରାପ ଚିକିତ୍ସା ।
କୁଚିତ — ବିଂ. (କୁଚ+ମ୍ପ.ତ) କୁଞ୍ଚିତ, ସଙ୍କୁଚିତ, କ୍ଷୁଦ୍ର, ଅଳ୍ପ ।
କୁଚିନ୍ତା — ସ୍ତ୍ରୀ. ବ. ମନ୍ଦଚିନ୍ତା, ଅସତ୍‌-ଭାବନା, ମନ୍ଦକଳ୍ପନା ।
କୁଚିବା — ଗ୍ରା. କ୍ର. ପୂରାଇବା, ପ୍ରବେଶ କରାଇବା ।
କୁଚିରା — ସ୍ତ୍ରୀ. ବ. ନଦୀବିଶେଷ ।
କୁଚିଲା — ଗ୍ରା.ବ.ଔଷଧବିଶେଷ,କୋଚିଲା, କୋଚିଲାଗଛ ଓ ଫଳ ।
କୁଚୁମାର — ପୁଂ.ବ.ଜଣେ ପ୍ରାଚୀନ କାମ ଶାସ୍ତ୍ର ପ୍ରଣେତା । [ବିଶେଷ ।
କୁଚୁରୁମୁଚୁରୁ — ଗ୍ରା.ବ. ଅବ୍ୟକ୍ତ ଶବ୍ଦ-
କୁଚେଲ - ପୁଂ.ବିଂ. (କୁ+ଚେଲ) ମନ୍ଦ ପରିଚ୍ଛଦଧାରୀ, କୁତ୍ସିତବସ୍ତ୍ରଯୁକ୍ତ, (କ୍ଳୀ. ବ) ଜୀର୍ଣ୍ଣବସ୍ତ୍ର ।
କୁଚେଲକ — ବ. (କୁ+ଚେଲ+କ) ଜୀର୍ଣ୍ଣ ବା ମଳିନ ବସନ ପରିଧାୟୀ କୋଚିଲା, କୁଚିଲା ।
କୁଚେଲା — ସ୍ତ୍ରୀ. ବ. ବନ୍ଧକର୍ଣ୍ଣୀନାମକ ଔଷଧ ବିଶେଷ, (ବିଂ) ମନ୍ଦପରିଚ୍ଛଦ-ଧାରିଣୀ ।
କୁଚେଷ୍ଟ, କୁଚେଷ୍ଟକ — ପୁଂ. ବିଂ. ମନ୍ଦ କାର୍ଯ୍ୟକାରୀ, କୁତ୍ସିତ କାର୍ଯ୍ୟକାରକ ।
କୁଚେଷ୍ଟା — ସ୍ତ୍ରୀ. ବ, (କ.ଧା) ମନ୍ଦଚେଷ୍ଟା, ମନ୍ଦକାର୍ଯ୍ୟ, ଦୁରଭିସନ୍ଧି ।
କୁଚ୍ଛ — କ୍ଳୀ. ବ. (କୁ+ଛେ+ଅ)କୁମୁଦ, କଇଁଫୁଲ,(ଗ୍ରା.ବ) ନିନ୍ଦା, କୁତ୍ସା, କୁଚ୍ଛା ।
କୁଚ୍ଛାବାଦୀ — ଗ୍ରା.ବିଂ.ନିନ୍ଦୁକ, ନିନ୍ଦାବାଦୀ ।
କୁଚ୍ଛ୍‌ — ଗ୍ରା. ବିଂ. ଅଳ୍ପ, କିଛି, ଥୋଡ଼ା ।
କୁଜ୍‌ — ପୁଂ.ବ.(କୁ+ଜନ୍+ଅ)ମଙ୍ଗଳ-ଗ୍ରହ, ନରକାସୁର, ବୃକ୍ଷ (ଗ୍ରା. ବ) କୁବ୍ଜ, ପଦାକୁ ବାହାରିଥିବା ପୃଷ୍ଠଦେଶର ବକ୍ରତା ବା ବକ୍ରାଂଶ,(ବିଂ) ପୃଥିବୀଜାତ, କୁବ୍ଜା, (ସ୍ତ୍ରୀ) କୁଜା ।
କୁଜକ — ପୁଂ.ବ.(କୁଜ+କ)କୁଜ (ଦେଖ)
କୁଜଙ୍ଗ — ଗ୍ରା. ବ. ଓଡ଼ିଶାର କଟକଜିଲ୍ଲା ଅନ୍ତର୍ଗତ ଅଞ୍ଚଳ ବିଶେଷ ।
କୁଜନ — ପୁଂ.ବ.ମନ୍ଦଲୋକ, ଅସତ୍‌ଜନ ।
କୁଜନକ — ପୁଂ.ବ ମନ୍ଦଲୋକ,ଅସତ୍‌ଜନ ।
କୁଜନକ — ପୁଂ. ବ. ମନ୍ଦପିତା, ଅସତ୍‌-ଜନକ, ଅସତ୍‌ପିତା ।
କୁଜନନୀ — ସ୍ତ୍ରୀ.ବ.ମନ୍ଦଜନନୀ,ଖରାପମାତା ।
କୁଜପ — ପୁଂ.ବିଂ.(କୁ+ଜପ୍+ଅ)ବ.ବ୍ରୀ; କୁତ୍ସିତ ଜପକାରକ, କୁଚକ୍ରକ,ନିନ୍ଦିତ, କଳ୍ପନାକାରୀ, (ସ୍ତ୍ରୀ) କୁଜପା ।
କୁଜବାର — ବ. (ଷତତ୍) ମଙ୍ଗଳବାର ।

କୁଜମ୍ଭନ,କୁଜମ୍ଭଳ--ପୁଂ.ବ. ସିନ୍ଧଚୋର, ଯେଉଁ ଚୋର ସିନ୍ଧକରି ଚୋରାଏ ।

କୁଜମ୍ଭା—ପୁଂ. ବଂ. କୁକ୍ଷି ଛିଦ୍ରବିଶିଷ୍ଟ, (ପୁଂ.ବ) ଅସୁରବିଶେଷ,ପ୍ରହ୍ଲାଦରପୁତ୍ର ।

କୁଜା—ସ୍ତ୍ରୀ.ବ. (କୁ+ଜନ୍+ଅ+ଆ) ସୀତାଦେବୀ, କାତ୍ୟାୟନୀ, ଦୁର୍ଗା,(ପୁଂ. ବଂ( କୁଜାପିଠିଆ, କୁବ୍ଜ, (ସ୍ତ୍ରୀ) କୁଜୀ ।

କୁଜାତ—ପୁଂ. ବଂ. ନୀଚବଂଶଜାତ,(ଗ୍ରା. ବଂ) ଦୁଷ୍ଟ, ବଜାତ୍, ଖେଚଡ଼ା ।

କୁଜାତଫଳ—ଗ୍ରା. ବଂ. କୁଳାଙ୍ଗାର, କୁଳକଣ୍ଟକ ।

କୁଜାତିଆ—ଗ୍ରା.ବଂ. କୁଜାତ (ଦେଖ) ।

କୁଜାଷ୍ଟମ—ପୁଂ. ବ. ଜ୍ୟୋତିଃଶାସ୍ତ୍ରୋକ୍ତ ଜନ୍ମଲଗ୍ନଠାରୁ ଅଷ୍ଟମସ୍ଥାନସ୍ଥିତ ମଙ୍ଗଳ-ଗ୍ରହରୁ ପଯୋଗବିଶେଷ ।

କୁଜି—ଗ୍ରା.ବଂ.ଛୋଟ, କ୍ଷୁଦ୍ରାବୟବବିଶିଷ୍ଟ, ବନକାୟ ସ୍ତ୍ରୀ ।

କୁଜିବେଙ୍ଗ—ଗ୍ରା. ବ. ଏକଜାତୀୟ କୁଞ୍ଚ-ପିଠିଆ ମଧ୍ୟମାକୃତି ବେଙ୍ଗ ।

କୁଜିସାରୁ—ଗ୍ରା.ବ.ଏକଜାତୀୟଛୋଟସାରୁ ।

କୁଜିହଂସ—ଗ୍ରା, ବ. ଏକଜାତୀୟ ଛୋଟ ହଂସ,ପାତିହଂସ ।

କୁଜ୍ଝଟି—ସ୍ତ୍ରୀ. ବ. (କ+ଉଜ୍ଝ+ଅଟ୍+କ.ଇ) କୁହୁଡ଼ି । [କୁହୁଡ଼ି ।

କୁଜ୍ଝଟିକା—ସ୍ତ୍ରୀ. ବ.( କୁଜ୍ଝଟି+କ.ଆ )

କୁଜ୍ଝଟୀ—ସ୍ତ୍ରୀ.ବ.(କୁଜ୍ଝଟି+ଈ) କୁହୁଡ଼ି ।

କୁଜ୍ଞାନ—ଗ୍ରା. ବ. ଗାରଡ଼ିବିଦ୍ୟା, ପରର ଅନିଷ୍ଟସାଧକ ମନ୍ତ୍ରଯନ୍ତ୍ର, କୁଯନ୍ତ୍ର ।

କୁଜ୍ଞାନୀ—ଗ୍ରା. ବଂ. ମନ୍ତ୍ରଯନ୍ତ୍ରଦ୍ୱାରା ପରର ଅନିଷ୍ଟ ସାଧକ । [ହେବା ।

କୁଞ୍ଚ—ଧାତୁ.ବକ୍ରଗମନ କରିବା,ସଙ୍କୁଚିତ

କୁଞ୍ଚ—ଗ୍ରା.ବ. (ସ-କୁଞ୍ଚନ) ସଙ୍କୋଚନ, ପିନ୍ଧିବା ଲୁଗାର କୁଞ୍ଚିତ ଫେର ବା ଅଂଶ, ବସ୍ତ୍ରର କୁଞ୍ଚା ହୋଇଥିବା ଧଡ଼ି, ଲୁଗା କୁଞ୍ଚିବାର ପ୍ରଣାଳୀ, ଆଖି ଖୁଞ୍ଚି ହେବା ରୋଗ,(ଗ୍ରା.ବଂ)କୁଞ୍ଚିତହୋଇଥିବା ବସ୍ତ୍ର ।

କୁଞ୍ଚକାନ—ଗ୍ରା. ବ. ପରଧାନ ବସ୍ତ୍ରର ଯେଉଁଅଂଶ କୁଞ୍ଚିତ ହୋଇ ନାହିପାଖରେ ଖୋସା ହୋଇଥାଏ,(ବ) କପଟକାନ ।

କୁଞ୍ଚକୁଞ୍ଚିଆ—ଗ୍ରା.ବଂ.କୁଞ୍ଚିତ, କୁଟିଳ ।

କୁଞ୍ଚନ-କ୍ଲୀ.ବ(କୁଞ୍ଚ+ଭା.ଅନ)ସଙ୍କୋଚ, ବଶୀକରଣ, ଅନାଦର, ନେତ୍ର-ରୋଗବିଶେଷ ।

କୁଞ୍ଚଫଳା—ସ୍ତ୍ରୀ. ବ. କୁଷ୍ମାଣ୍ଡୀଲତା ।

କୁଞ୍ଚ—ଗ୍ରା.ବ.କୁଞ୍ଚନ କ୍ରିୟା ବା ପ୍ରଣାଳୀ, ପିନ୍ଧିବା ଲୁଗାର କୁଞ୍ଚିତ ଅଂଶ, କୁଞ୍ଚ-କାନ, ଆଠମୁଠା ପରିମାଣରେ ମାପପାତ୍ର ବା ମାଣ, ମାଟିର ଠେକି ବା ଘଡ଼ି(ପ୍ରା. ସମ୍ବ)ଶସ୍ୟର ନିର୍ଦ୍ଦିଷ୍ଟ ମାପପାତ୍ରବିଶେଷ ।

କୁଞ୍ଚାଇବା--ଗ୍ରା.କ୍ରି.କୁଞ୍ଚିବାରଣିଜନ୍ତରୂପ ।

କୁଞ୍ଚାକୁଞ୍ଚି—ଗ୍ରା.ବ. ଲୁଗାକୁଞ୍ଚିବା କ୍ରିୟା, (ବଂ) କୁଞ୍ଚା ହୋଇଥିବା (ଲୁଗା) ।

କୁଞ୍ଚି—ପୁଂ.ବ.(କୁଞ୍ଚ+ଆ+ଇ) ଶସ୍ୟା-ଦିର ଆଠମୁଠା ପରିମାଣ ମାପମାତ୍ର, କୁଞ୍ଚନ,(ଗ୍ରା.ବ.)ଚାବିକାଠି,ଛୋଟ ମାଟି-ପାତ୍ର ବା ମାଣ ।

କୁଞ୍ଚିକା—ସ୍ତ୍ରୀ. ବ. ( କୁଞ୍ଚ+ଅକ+ଆ ) କାଇଞ୍ଚ, ତାଲି, କଞ୍ଚି, କୃଷ୍ଣଜୀରା, ମେଥୀ, ମାଛବିଶେଷ ।

କୁଞ୍ଚିତ—ବଂ.(କୁଞ୍ଚ+ମଂ.ତ) କୁଞ୍ଚକୁଞ୍ଚିଆ, ବଶୀକୃତ, ସଙ୍କୁଚିତ, ବକ୍ର, ଅନାଦୃତ, (କ୍ଲୀ.ବ) ଟଗର ଫୁଲ ।

କୁଞ୍ଚିବା—ଗ୍ରା.କ୍ରି. କୁଞ୍ଚିତକରିବା, ବସ୍ତ୍ରକୁ କୁଞ୍ଚେଇବା ।

କୁଞ୍ଚିମୁଦ—ଗ୍ରା. ବ. ଘରର କବାଟ ବା ବାକ୍‌ସକୁ କୋଲପ ପକାଇ ବନ୍ଦକରି ତହିଁରେ ଜଉମୁଦଦେବା ।

କୁଞ୍ଚିମୋଡ଼ିବା—ଗ୍ରା.କ୍ରି.(ଲ.ଅର୍ଥ)କୌଣସି କାର୍ଯ୍ୟ କରିବାକୁ ଭିତରେ ଭିତରେ ଅନ୍ୟ ବ୍ୟକ୍ତିକୁ ସୁତୁରେଇବା ।

କୁଞ୍ଚୀ—ସ୍ତ୍ରୀ. ବ. କୁଞ୍ଚି (ଦେଖ) ।

କୁଞ୍ଜ—ପୁଂ. କ୍ଲୀ. ବ. (କୁ+ଜନ+ଅ) ଲତାଗୃହ, କୁଞ୍ଜବନ, ପର୍ବତଗୁମ୍ଫା, ହାତୀଦାନ୍ତ, ତଳପାଟି, ଋଷିବିଶେଷ, ହସ୍ତୀଶୁଣ୍ଡ ।

କୁଞ୍ଜକାନନ—କ୍ଲୀ.ବ. (କ.ଧା)ଲତାଗୃହ ପୂର୍ଣ୍ଣ ଉପବନ ।

କୁଞ୍ଜକୁକ୍ଷି—ବ, ( ୭ ତତ୍ପୁ ) କୁଞ୍ଜବନର ଅନ୍ତର୍ଦ୍ଦେଶ ବା ଭିତର ।

କୁଞ୍ଜକୁଟୀର—ପୁଂ. ବ. (କ.ଧା) ନିକୁଞ୍ଜ ମଧ୍ୟରେ ଲତାପତ୍ରର ନିର୍ମିତ ଘର ।

କୁଞ୍ଜକେଳି-ପୁଂ.ବ.ନିକୁଞ୍ଜମଧ୍ୟରେ କ୍ରୀଡ଼ା ।

କୁଞ୍ଜକ୍ରୀଡ଼ା—ସ୍ତ୍ରୀ.ବ.କୁଞ୍ଜମଧ୍ୟରେ କ୍ରୀଡ଼ା ।

କୁଞ୍ଜଗଳି—ଗ୍ରା.ବ. ଉପରେ ଲତା ମାଡ଼ି-ଥିବା ଗଳିର ଗୋହିରି ।

କୁଞ୍ଜଗୃହ—ବ.(ମଧ୍ୟ-କ.ଧା) ଲତା ମାଡ଼ି-ଥିବା ଘର ।

କୁଞ୍ଜର—ପୁଂ. ବ. (କୁଞ୍ଜ+ର) ହସ୍ତୀ, ହାତୀ,କେଶ,ଦେଶବିଶେଷ,(ସ୍ତ୍ରୀ)କୁଞ୍ଜରୀ, (ବଂ) ଶ୍ରେଷ୍ଠ, ଅନ୍ୟ କୌଣସି ପ୍ରାଣି-ବାଚକ ଶବ୍ଦ ସଙ୍ଗେ ଲଗିଲେ ଏହା 'ଶ୍ରେଷ୍ଠ' ଅର୍ଥ ପ୍ରକାଶ କରେ, କୃଷକ ଜାତିବିଶେଷ ।

କୁଞ୍ଜରକଣା—ସ୍ତ୍ରୀ. ବ. ଗଜପିପ୍ପଳୀ ।

କୁଞ୍ଜରକର—ପୁଂ. ବ. ହାତୀର ଶୁଣ୍ଢ ।

କୁଞ୍ଜରକ୍ଷାର ମୂଳ—କ୍ଲୀ. ବ. ମୂଳା ।

କୁଞ୍ଜରଗମନା,କୁଞ୍ଜରଗମନୀ—ସ୍ତ୍ରୀ. ବଂ. (ବ.ବ୍ରୀ) ହାତୀର ଗତିପରି ଯେଉଁ ସ୍ତ୍ରୀର ଗତି ଧୀର ମନ୍ଥର, ଧୀରଗମନା ।

କୁଞ୍ଜରଗ୍ରହ—ପୁଂ. ବ. ମାହୁନ୍ତ ।

କୁଞ୍ଜରଚ୍ଛାୟ—କ୍ଲୀ.ବ. ଜ୍ୟୋତିଃଶାସ୍ତ୍ରୋକ୍ତ ଯୋଗବିଶେଷ । [ବିଶେଷ ।

କୁଞ୍ଜରଦରୀ—ସ୍ତ୍ରୀ. ବ. ଦକ୍ଷିଣଦିଗସ୍ଥ ଦେଶ

କୁଞ୍ଜରପିପ୍ପଳୀ—ସ୍ତ୍ରୀ. ବ. ଗଜପିପ୍ପଳୀ ।

କୁଞ୍ଜରରୂପୀ—ବଂ.ହସ୍ତୀତୁଲ୍ୟ ରୂପଯୁକ୍ତ ।

କୁଞ୍ଜରସିକ—ପୁଂ.ବ (୭ତତ୍ପୁ) ଶ୍ରୀକୃଷ୍ଣ ।

କୁଞ୍ଜରସିକା—ସ୍ତ୍ରୀ.ବ. (୭ତତ୍ପୁ) ରାଧିକା ।

କୁଞ୍ଜରା—ସ୍ତ୍ରୀ.ବ. (କୁଞ୍ଜର+ଆ)ଧାତକୀ, ଧାଇଫୁଲ, ଧାତକୀଫୁଲ ।

କୁଞ୍ଜରାରାତି—ପୁଂ. ବ. (୬ତତ୍) ସିଂହ, ଶରଭନାମକ ଅଷ୍ଟପଦଯୁକ୍ତ ପଶୁବିଶେଷ ।

କୁଞ୍ଜରାଲୁକ—କ୍ଲୀ. ବ. ଆଳୁବିଶେଷ ।

କୁଞ୍ଜରାଶନ—ପୁଂ. ବ. (କୁଞ୍ଜର+ଅଶ+ଅନ) ୬ତତ୍ପୁ, ଅଶ୍ୱତ୍ଥବୃକ୍ଷ, ଅଶ୍ୱତ୍ଥ-ଗଛ ।

କୁଞ୍ଜାସନ—କ୍ଲୀ. ବ. ଆସନବିଶେଷ ।

କୁଞ୍ଜରୀ — ସ୍ତ୍ରୀ.ବ. (କୁଞ୍ଜର + ଈ) ହାତୁଣୀ, ହସ୍ତିନୀ, ମାଈହାତୀ. ଧାତକୀବୃକ୍ଷ ।

କୁଞ୍ଜଲ — କ୍ଲୀ. ବ. (କ.ଧା) କାଞ୍ଜି, କାଞ୍ଜିପାଣି ବା ଖଟା ତୋରାଣି ।

କୁଞ୍ଜଲତା — ସ୍ତ୍ରୀ. ବ. କୁଞ୍ଜବନ ଉପରେ ମାଡ଼ିଥିବା ଲତା, ଲତାମଣ୍ଡପ, ପୁଷ୍ପଲତାବିଶେଷ ।

କୁଞ୍ଜବନ — କ୍ଲୀ.ବ. (କୁଞ୍ଜ + ବନ) ଲତାଗୃହ, ଲତାଗୃହଯୁକ୍ତ ବନ ।

କୁଞ୍ଜବିହାରୀ — ପୁଂ,ବ. ଶ୍ରୀକୃଷ୍ଣ, ଓଡ଼ିଶାର ଜଣେ କବିଙ୍କ ନାମ ।

କୁଞ୍ଜିକା — ସ୍ତ୍ରୀ. ବ. କୃଷ୍ଣଜୀରା, କଳାଜୀରା ।

କୁଟ୍ — (ଧାତୁ) ବକ୍ରଗମନକରିବା, ଶଠତା କରିବା, କୁଟିବା, ଖଣ୍ଡଖଣ୍ଡ କରିବା, ବକହେବା, ନଇଁବା ।

କୁଟ୍‌କାଟ୍ — ଗ୍ରା. ଅବ୍ୟ. କୁଟ୍‌କୁଟ୍ (ଦେଖ) ।

କୁଟ୍‌କୁଟ୍ — ଗ୍ରା. ଅବ୍ୟ. ମୂଷାପ୍ରଭୃତିଜୀବ କୌଣସି ଖାଣପଦାର୍ଥକୁ କାଟିଲେ ଯେଉଁ ଅନୁଚ୍ଚ ଶବ୍ଦ ହୁଏ ।

କୁଟ୍‌କୁଟା — ଗ୍ରା.ବ. ଟିକିନିକି, ଖଣ୍ଡଖଣ୍ଡ, (ବିଂ) ଟିକିଟିକିକରି ଚୂର୍ଣ୍ଣହୋଇଥିବା ।

କୁଟ୍‌ନା — ଗ୍ରା. (ସମ୍ବ) ବ. ତମା, ଗୋରୁମାନଙ୍କ ଖାଇବା କୁଣ୍ଡ ।

କୁଟ୍‌ରା — ଗ୍ରା.ବ. ବନ୍ୟଛେଳି, ମୃଗଜାତୀୟ ଜନ୍ତୁବିଶେଷ । (ଦେଖ) ।

କୁଟ୍‌ରୁକୁଟ୍‌ରୁ — ଗ୍ରା. ଅବ୍ୟ. କୁଟ୍‌କୁଟ୍

କୁଟ — ବ. (କୁଟ + କ,ଅ) ଦୁର୍ଗ, ବୃକ୍ଷ, ଗୃହ, ମାଠିଆ, ପର୍ବତ, ପର୍ବତାଦିର ଶୃଙ୍ଗ, ପଥର ଭାଙ୍ଗିବାର ଛୋଟହାତୁଡ଼ି ।

କୁଟକ — ପୁଂ. ବ. ଦକ୍ଷିଣସ୍ଥ ଜନପଦବିଶେଷ, ଘରର ଛାତ, ଚାଳ, ଗୃହବିଶେଷ ।

କୁଟକାଚଳ — ପୁଂ.ବ. କୁଟକ ଦେଶୀୟ ପର୍ବତବିଶେଷ ।

କୁଟଙ୍ଗ — ପୁଂ. ବ. (କୁଟଙ୍ଗ + ଅ) ଚାଳ, ଗୃହରଆଚ୍ଛାଦନ, ଇଷ ନଥିବା ଲଙ୍ଗଳ, କୁଟୀର ।

କୁଟଙ୍ଗକ — ପୁଂ. ବ. ( କୁଟଙ୍ଗ + କ ) ଦଧିଖିଆରଖୁଣ୍ଟା, ମନ୍ଥନସ୍ତମ୍ଭ, କୁଡ଼ିଆ, କୁଟୀର ।

କୁଟଙ୍ଗକ — ପୁଂ. ବ. ଗଛଲତା ପ୍ରଭୃତିଦ୍ୱାରା ଆଚ୍ଛାଦିତ ଗହନସ୍ଥାନ, ଗୃହାଚ୍ଛାଦନ, ଚାଳ, ଗୃହବିଶେଷ ।

କୁଟଜ — ପୁଂ. ବି. (କୁଟ + ଜନ୍ + ଅ) ଗିରିମଲ୍ଲିକା, ଇନ୍ଦ୍ରଯବ, ଦ୍ରୋଣଙ୍କ ନାମ, ପିଟାକୋରୁଆ, କୁରେଇ, ଅଗସ୍ତି ଋଷି, (ବିଂ) ପର୍ବତରୁ ଜାତ, ବୃକ୍ଷରୁ ଉତ୍ପନ୍ନ ।

କୁଟଜପୁଟପାକ — ପୁଂ. ବ. ବୈଦ୍ୟଶାସ୍ତ୍ରୋକ୍ତ ଅତିସାର ରୋଗନାଶକ ଔଷଧବିଶେଷ ।

କୁଟଜରସ — ପୁଂ. ବ. ବୈଦ୍ୟକୋକ୍ତ ଅର୍ଶରୋଗନାଶକ ଔଷଧବିଶେଷ ।

କୁଟଜଲେହ — ପୁଂ. ବ. ବୈଦ୍ୟକୋକ୍ତ ଅତିସାର ରୋଗନାଶକ ଅବଲେହବିଶେଷ ।

କୁଟଜବୀଜ - କ୍ଲୀ.ବ.ଇନ୍ଦ୍ରଜବ, କରେଇମଞ୍ଜି ।

କୁଟଜାଦ୍ୟଘୃତ — କ୍ଲୀ.ବ. ବୈଦ୍ୟଶାସ୍ତ୍ରୋକ୍ତ ଶୂଳରୋଗନାଶକ ଘୃତବିଶେଷ ।

କୁଟଜାରିଷ୍ଟ — ପୁଂ. ବ, ଅଗ୍ନିଦୀପକ ଓ ଜ୍ୱରନାଶକ ଅରିଷ୍ଟବିଶେଷ ।

କୁଟଣ — ଗ୍ରା. ବ. କୁଟିବାକ୍ରିୟା, ମାଡ଼ ।

କୁଟଣା — ଗ୍ରା. ପୁଂ.ବ. ଭଡ଼ୁଆ, ବେଶ୍ୟାପତି, ଯେ ପରପୁରୁଷକୁ ସ୍ତ୍ରୀ ଯୋଗାଏ, ଯେଉଁ ବ୍ୟକ୍ତି ଆପଣା ସ୍ତ୍ରୀକୁ ପରପୁରୁଷ ନିକଟରେ ପଠାଏ ।

କୁଟଣୀ — ସ୍ତ୍ରୀ. ବ. ବେଶ୍ୟା, ନଷ୍ଟାସ୍ତ୍ରୀ, ଯେ ପରପୁରୁଷ ନିକଟରେ ଅନ୍ୟ ସ୍ତ୍ରୀକୁ ଆଣିପଠାଏ, ଦୂତୀ, ଢିଙ୍କିଭରଣି, ଢେଙ୍କିର ପୁଆ ବା ପାହାର ।

କୁଟରୁଣୀ, କୁଟୁରୁଣୀ — ଗ୍ରା.ବ. ସ୍ତ୍ରୀ. କୁଟୁରୁଣୀ, ଯେଉଁସ୍ତ୍ରୀର ଧାନକୁଟିବା ଜୀବିକା ।

କୁଟନ୍ନଟ — କ୍ଲୀ. ବ. କୈବର୍ତ୍ତୀମୁସ୍ତକ, କେଶୁର, (ପୁଂ.ବ) ଶ୍ୟୋନାକବୃକ୍ଷ, ଫଣଫଣ ଗଛ ।

କୁଟପ — ପୁଂ. ବ. (କୁଟ + ପା + କ,ଅ) ମୁନି, କ୍ଷେତ୍ରବିଶେଷ, ପରିମାଣବିଶେଷ, ଗୃହନିକଟସ୍ଥ ଉପବନ, ଶସ୍ୟାଦି ମାପବିଶେଷ, (କ୍ଲୀ.ବ) ପଦ୍ମବିଶେଷ ।

କୁଟର — ବ. (କୁଟ୍ + କ, ଅର) ଦହିଖିଆରଖୁଣ୍ଟା, ସର୍ପବିଶେଷ ।

କୁଟରୁ — ପୁଂ. ବ. (କୁଟ + ଅରୁ) ଲୁଗାର ଗୃହ, ତମ୍ବୁ, ରାହୁଟି ।

କୁଟଲ — କ୍ଲୀ. ବ. (କୁଟ + ଲା + କ,ଅ) ଘରରଚାଳ, ଛାତ, ପଟଳ ।

କୁଟହାରିକା — ସ୍ତ୍ରୀ.ବ. (କୂଟ + ହାରିକା) ଦାସୀ, ଚାକରାଣୀ ।

କୁଟା — ଗ୍ରା. ବ. ପାଳ, ଶୃଙ୍ଖଳନଡ଼ା, କ୍ଷୁଦ୍ରନଡ଼ାଖଣ୍ଡ, ଧାନକୁଟିବା, ଛେଚା, ମାଡ଼, ତୃଣ, କୁଟିବାକ୍ରିୟା ।

କୁଟାଇବା — ଗ୍ରା.କ୍ରି. ଅନ୍ୟଦ୍ୱାରା କୁଟିବା କ୍ରିୟା କରାଇବା, ଅନ୍ୟଦ୍ୱାରା ମାଡ଼ ମରାଇବା, ( ସ୍ତ୍ରୀଲୋକମାନେ ) ହାତଆଦିରେ ଚଟା କୁଟାଇବା, ଧାନରୁ ଚାଉଳ ବାହାରକରିବା ନିମନ୍ତେ କୁଟିବା କର୍ମ ଅନ୍ୟଦ୍ୱାରା କରାଇବା ।

କୁଟାକଣ୍ଡା — ଗ୍ରା. ବ. ଧାନକୁଟିବା ଓ କାଣ୍ଡିବାରୂପ କର୍ମ ।

କୁଟାକାଠି — ଗ୍ରା.ବ. କୁଟା ଓ କ୍ଷୁଦ୍ରଘାସ ବା କାଡ଼ିକାଆଦିର ଖଣ୍ଡମାନ, ଅଳିଆ, ଅସନା । [ ଚାକରାଣୀ ।

କୁଟାକାରିକା — ସ୍ତ୍ରୀ. ବ. ପରିଚାରିକା,

କୁଟାକୁଟି — ଗ୍ରା. ବ. ଅନେକ ପଦାର୍ଥ କୁଟିବାର କର୍ମ ।

କୁଟାଖଣ୍ଡିକ ଦି ଖଣ୍ଡ ନ କରିବା — ଗ୍ରା.କ୍ରି. (ବ୍ୟଙ୍ଗ) କିଛିସାମାନ୍ୟ କାର୍ଯ୍ୟ ମଧ୍ୟ ନ କରିବା ।

କୁଟାଘାତ — ଗ୍ରା.ବ. ହାତୁଡ଼ିଦ୍ୱାରାଆଘାତ ।

କୁଟି — ବିଂ. (କୁଟ + ଇ) ବକ୍ର, ବଙ୍କା, (ବ) ବୃକ୍ଷ, କୁଟୀର, କୁଡ଼ିଆଘର, ଶରୀର, ବାଙ୍କ ।

କୁଟିକ — ବିଂ. କୁଟିଳ ।

କୁଟିକା — ସ୍ତ୍ରୀ. ବ. ନଦୀବିଶେଷ ।

କୁଟିକମ — ଗ୍ରା. ବ. ବିବିଧଚିତ୍ର ଓ କାରୁକର୍ମ, (ବିଂ) କାରୁକର୍ମ ଓ ରଙ୍ଗଯୁକ୍ତ ।

କୁଟିକୁଟି — ଗ୍ରା.ବ. ଅତି କ୍ଷୁଦ୍ର କ୍ଷୁଦ୍ର ଖଣ୍ଡ, ଏକାଧିକ କ୍ଷୁଦ୍ର ଖଣ୍ଡ ।

କୁଟିକୋଷ୍ଟିକା — ସ୍ତ୍ରୀ. ବ. ନଦୀବିଶେଷ ।

କୁଟିଚକ — ପୁଂ.ବ. ସନ୍ନ୍ୟାସ ସମ୍ପ୍ରଦାୟବିଶେଷ, ସନ୍ନ୍ୟାସୀ ।

କୁଟିଚର — ପୁଂ. ବି. ( କୁଟି + ଚର୍ + କ,ଅ) ଶିଶୁମାର, ଶୁଶୁମାର, ଜଳଶୂକର, ସାମୁଦ୍ରିକ ଜୀବବିଶେଷ, ଶୁଶୁକ, ସନ୍ନ୍ୟାସୀ ବିଶେଷ ।

କୁଟିତ — ବିଂ. (କୁଟ + ଇତ) କୁଟିଳ ।

କୁଟିବା — ଗ୍ରା. କ୍ରି. ଛେଚିବା, ପ୍ରହାର କରିବା, ଖଣ୍ଡଖଣ୍ଡ ବା ଚୂର୍ଣ୍ଣ କରିବା, ସ୍ତ୍ରୀଲୋକଙ୍କ ଅଙ୍ଗରେ ଚଟାକୁଟିବା, ମୃଦଙ୍ଗାଦି ବାଦ୍ୟରେ ଘନଘନ ହସ୍ତଦ୍ୱାରା ତାଳଦେବା; ଖୁବ୍ ବର୍ଷାକରିବା ।

କୁଟିର — କ୍ଲୀ. ବି. (କୁଟ + ଇର) କ୍ଷୁଦ୍ର ଗୃହ, ପର୍ଣ୍ଣଶାଳା, କୁଡ଼ିଆ, କୁଡ଼ିଆଘର, ମଢ଼ିଆ ।

କୁଟିଳ — ବିଂ. ବକ୍ର, ବଙ୍କା, ଖଳ, ଦୁଷ୍ଟପ୍ରକୃତି, କପଟୀ, ଧୂର୍ତ୍ତ, କୁଞ୍ଚିତ, କୃପଣ, (ବି) ତଗରଗୁଳ୍ମ, ଟିଣଧାତୁ, ଦେବନାଗରାକ୍ଷରଭେଦ ।

କୁଟିଳଗ — ପୁଂ. ବିଂ. (କୁଟିଳ + ଗମ୍ + ଅ) ବକ୍ରଗାମୀ (ବି) ସର୍ପ, (ସ୍ତ୍ରୀ) କୁଟିଳଗା ।

କୁଟିଳଗତି — ପୁଂ. ବିଂ. (କୁଟିଳ + ଗମ + ତି) ବକ୍ରଗମନକାରୀ, (ବି) ସର୍ପ, (ସ୍ତ୍ରୀ) ଉତ୍ପଳିନୀ, କଇଁଫୁଲ ।

କୁଟିଳଗାମୀ — ପୁଂ. ବିଂ. (କୁଟିଳ + ଗମ୍ + କ, ଇନ୍) ଯେ ବକ୍ରଭାବରେ ଗତି କରେ, (ସ୍ତ୍ରୀ) କୁଟିଳଗାମିନୀ ।

କୁଟିଳତା — ବି. (କୁଟିଳ + ତା) ବକ୍ରତା, ଶଠତା, ମନର ଅସରଳତା, କପଟଗାଢ, କୁଞ୍ଚିତହେବା ଅବସ୍ଥା ।

କୁଟିଳବନ୍ଧନୀ — ବି (କ.ଧା) ଯେଉଁ ବନ୍ଧନୀ ଚିହ୍ନ ବକ୍ରଭାବରେ ଅଙ୍କିତ ହୁଏ, ଯଥା — { }

କୁଟିଳା — ସ୍ତ୍ରୀ.ବି. (କୁଟିଳ + ଆ) ସରସ୍ୱତୀ ନଦୀ, ଗନ୍ଧଦ୍ରବ୍ୟବିଶେଷ, ତଗରକାଷ୍ଠ, ପୁଷ୍ପବିଶେଷ, କୁଟିଳସ୍ୱଭାବର ସ୍ତ୍ରୀ, ରାଧାଙ୍କ ନଣନ୍ଦ, ଚନ୍ଦ୍ରସେଣାଙ୍କ ଭଗିନୀ ।

କୁଟିଳାକ୍ଷର — କ୍ଲୀ.ବି.(କ.ଧା) ବ୍ରାହ୍ମୀଲିପିର ପରବର୍ତ୍ତୀ ଓ ଦେବନାଗରୀ ଲିପିର ପୂର୍ବବର୍ତ୍ତୀ ବର୍ଣ୍ଣଲିପିବିଶେଷ ।

କୁଟିଳାଚରଣ — କ୍ଲୀ.ବି. (କ.ଧା) ଅସରଳ ବ୍ୟବହାର, କପଟବ୍ୟବହାର ।

କୁଟିଳାଗ୍ରହୀ — ପୁଂ.ବିଂ. (ବ.ବ୍ରୀ) କପଟାଗ୍ରହୀ (ସ୍ତ୍ରୀ) କୁଟିଳାଗ୍ରହଣୀ ।

କୁଟିଳାଶୟ — ପୁଂ.ବିଂ. (ବ.ବ୍ରୀ) ଶଠବୁଦ୍ଧି, କପଟିଆ, (ସ୍ତ୍ରୀ) କୁଟିଳାଶୟା ।

କୁଟିଳିଆ — ପୁଂ. ବିଂ. କପଟୀ, ଅତି ଦୁର୍ଗନ୍ଧଯୁକ୍ତ ।

କୁଟିଳିକା — ସ୍ତ୍ରୀ.ବି. (କୁଟିଳ + କ + ଆ) କମାରର ଖଡ଼ି ।

କୁଟିହେବା — ଗ୍ରା. କ୍ରି. ପୁନଃପୁନଃ ଦୃଢ଼ ପ୍ରତିଘାତକରିବା, ଢିଙ୍କି ପ୍ରଭୃତି ଭାର ବସ୍ତୁ ଦ୍ୱାରା ଛେଚହୋଇଯିବା, କୁଟିବା କ୍ରିୟାର କର୍ମବାଚ୍ୟ ।

କୁଟୀ — ସ୍ତ୍ରୀ. ବି. ( କୁଟ + ଈ ) ଗୃହ, କୁଡ଼ିଆ, କୁଟୀର, ଝାଙ୍କ, ଫୁଲଟୋଡ଼ା, ସୁରାନାମକ ଗନ୍ଧଦ୍ରବ୍ୟ, ସୁରା, କୁଟ୍ଟଣୀ, ଅସ୍ଥାୟୀ ବାସଗୃହ (ଗ୍ରା.ବି) ଆଟୁଖଣ୍ଡ ।

କୁଟୀକା — ବି.(କୁଟୀ + କ + ଆ) କୁଟୀର, ଛୋଟଘର, କୁଟୀକା ।

କୁଟୀକୃତ — କ୍ଲୀ. ବି. ଯେଉଁ ବସ୍ତ୍ରଦ୍ୱାରା ଗୃହ କିମ୍ବା ତମ୍ବୁ ପ୍ରସ୍ତୁତ କରାଯାଇଅଛି ।

କୁଟୀଚକ — ପୁଂ.ବି.(କୁଟୀ + ଚକ୍ + ଅ) ସନ୍ନ୍ୟାସୀବିଶେଷ, ସନ୍ନ୍ୟାସୀ ।

କୁଟୀଚର — ପୁଂ. ବି. ଯତିବିଶେଷ, ବାନପ୍ରସ୍ଥାଶ୍ରମୀ ବ୍ୟକ୍ତି, ଆତୁରସନ୍ନ୍ୟାସୀ ।

କୁଟୀଚରକ — ପୁଂ. ବି. ଯତିବିଶେଷ ।

କୁଟୀବାନ୍ଧିବା — ଗ୍ରା. କ୍ରି. ଆଟୁକରିବା, ଖଣ୍ଡବାନ୍ଧିବା, ଗୁପ୍ତସ୍ଥାନରେ ଲୁଚିବା ।

କୁଟୀମୟ — ବିଂ. କୁଟୀରର ଅବୟବ, କୁଟୀରର ବିକାର ।

କୁଟୀମୁଖ — ପୁଂ. ବି. ମହାଦେବଙ୍କ ପାରିଷଦବିଶେଷ ।

କୁଟୀର — ପୁଂ.ବି.(କୁଟୀ + ର) କ୍ଷୁଦ୍ର ଗୃହ, କୁଡ଼ିଆଘର, ପର୍ଣ୍ଣଶାଳା, (କ୍ଲୀ) କେବଳ, ରତି, ମୈଥୁନ, ସଙ୍ଗମ ।

କୁଟୀରକ — ପୁଂ.ବି.କୁଟୀର, କୁଡ଼ିଆଘର ।

କୁଟୀସ୍ୱେଦ — ପୁଂ. ବି. ବୈଦ୍ୟକୋକ୍ତ ସ୍ୱେଦବିଧି ବିଶେଷ ।

କୁଟୁକୁଟା — ଗ୍ରା.ବି.କଟ୍‌କୁଟା (ଦେଖ) ।

କୁଟୁକୁଟିଆ — ଗ୍ରା. ବିଂ. ମାୟାବୀ, କପଟିଆ, ସନ୍ଦିଗ୍ଧ, ଟିକିଟିକିଆ, ଛନ୍ନଛନ୍ନ ।

କୁଟୁଙ୍ଗକ — ପୁଂ. (କୁଟୁଙ୍ଗ + କ) ଶସ୍ୟାଗାର, କୋଠି, ବୃକ୍ଷଲତା-ଆଚ୍ଛାଦିତ ଗହ୍ୱର, ଡେଲିଘରର ଚାଳ, ଗଛଲତା ପ୍ରଭୃତି, କୁଡ଼ିଆଘର ।

କୁଟ୍ଟଣୀ — ସ୍ତ୍ରୀ.ବି. ବ୍ୟଭିଚାରରେ ସାହାଯ୍ୟକାରିଣୀ ସ୍ତ୍ରୀ, କୁଟଣୀ (ଦେଖ) ।

କୁଟ୍ଟଣୀମନ୍ଦିର — କ୍ଲୀ. ବି. ବେଶ୍ୟାଘର ।

କୁଟ୍ଟଣୀଶାଳା — ଗ୍ରା. ସ୍ତ୍ରୀ. ବି. (କୁଟ୍ଟନ + ଶାଳ) ଢିଙ୍କିଶାଳ ।

କୁଟ୍ଟୁଣୀ — ଗ୍ରା. ସ୍ତ୍ରୀ.ବି.ଯେଉଁ ସ୍ତ୍ରୀ ଢେଙ୍କି ଆଦିଦ୍ୱାରା କୌଣସି ପଦାର୍ଥ କୁଟେ, କେବଳ ଧାନଆଦି କୁଟିବା ଯାହାର ଜୀବିକା ।

କୁଟ୍ଟନୀ — ସ୍ତ୍ରୀ. ବି. (କୁଟ୍ଟ + ଅନ + ଈ) କୁଟଣୀ ( ଦେଖ ), ଦୂତୀ, ଯେଉଁ ସ୍ତ୍ରୀ ପରପୁରୁଷ ନିକଟରେ ଅନ୍ୟ ସ୍ତ୍ରୀକୁ ଆଣି ଯୁଟାଏ, ଢେଙ୍କିମୁଣ୍ଡା ।

କୁଟୁମ୍ — ଗ୍ରା.(ସମ୍ବ)ବି.କୁଟୁମ୍ବ(ଦେଖ) ।

କୁଟୁମବାଟୁମ — ଗ୍ରା.(ସମ୍ବ)ବି. କୁଟୁମ୍ବାଦି ପରିବାର ଓ ବନ୍ଧୁ ।

କୁଟୁମ୍ — ଗ୍ରା. ବି. କୁଟୁମ୍ବ (ଦେଖ) ।

କୁଟୁମ୍ବିଆ — ଗ୍ରା. ବିଂ. କପଟୀ (ବ୍ୟକ୍ତି), ଶଠ ।

କୁଟୁମ୍ବ — (ଧାତୁ) ପୋଷିବା, ଗ୍ରାସାଚ୍ଛାଦନ [ଯୋଗାଇବା ।

କୁଟୁମ୍ବ — ପୁଂ. ବି. ( କୁଟୁମ୍ବ + କ,ଅ ) ରକ୍ତସମ୍ବନ୍ଧୀୟ ଆତ୍ମୀୟ ସ୍ୱଜନ, ଜ୍ଞାତି, ବାନ୍ଧବ, ପୋଷ୍ୟବର୍ଗ, ଗୋତ୍ର, ବଂଶ, ପରିବାର, ବଂଶଧର, ସମୂହ, ଦଳ ।

କୁଟୁମ୍ବକ — ପୁଂ. ବି. ( କୁଟୁମ୍ବ + କ ) କୁଟୁମ୍ବ, ପରିବାର, ଜ୍ଞାତି, ବଂଶ ।

କୁଟୁମ୍ବକଳହ — ପୁଂ. କ୍ଲୀ. ବି. ଜ୍ଞାତି ସହିତ ବିବାଦ, ପାରିବାରିକ କଳହ, ଗୃହବିବାଦ ।

କୁଟୁମ୍ବବ୍ୟାପୃତ — ବିଂ. କୁଟୁମ୍ବ ପୋଷଣରେ ଆସକ୍ତ, ବହୁ ପରିବାରବିଶିଷ୍ଟ ।

କୁଟୁମ୍ବିକ — ପୁଂ.ବି. (କୁଟୁମ୍ବ + ଇକ) ଗୃହସ୍ଥ, ଗୃହକର୍ତ୍ତା, ପରିବାର ମଧ୍ୟସ୍ଥ

ଜନୈକବ୍ୟକ୍ତି, ବିବାହିତ ବ୍ୟକ୍ତି,କୃଷକ, (ବିଂ) ପାରିବାରିକ ।
କୁଟୁମ୍ବିତା—ସ୍ତ୍ରୀ.ବି. (କୁଟୁମ୍ବିନ୍+ତା) ସଗୋତ୍ରତା, ବନ୍ଧୁସମ୍ପର୍କ, କୁଟୁମ୍ବ ବିଶିଷ୍ଟବ୍ୟକ୍ତିର କାର୍ଯ୍ୟ, ପାରିବାରିକ ସମ୍ବନ୍ଧ, କୁଟୁମ୍ବପ୍ରତି ବ୍ୟବହାର ।
କୁଟୁମ୍ବିନୀ—ସ୍ତ୍ରୀ.ବି.(କୁଟୁମ୍ବ+ଇନ୍+ଈ) କୁଟୁମ୍ବବିଶିଷ୍ଟ ଗୃହିଣୀ; ପତିପୁତ୍ରକନ୍ୟା ପ୍ରଭୃତି ଆତ୍ମୀୟବିଶିଷ୍ଟା (ସ୍ତ୍ରୀ) ।
କୁଟୁମ୍ବୀ—ପୁଂ. ବିଂ. (କୁଟୁମ୍ବ+ଇନ୍) ଗୃହସ୍ଥ,ଗୃହସ୍ଥ,କୁଟୁମ୍ବବିଶିଷ୍ଟ,(ବି) କୃଷକ, (ସ୍ତ୍ରୀ) କୁଟୁମ୍ବିନୀ ।
କୁଟୁମ୍ବୋକ—କ୍ଲୀ.ବି.କୁଟୁମ୍ବରବାସସ୍ଥାନ ।
କୁଟୁମ୍ବୀୟ—ବିଂ. (କୁଟୁମ୍ବ+ଈୟ) କୁଟୁମ୍ବସମ୍ବନ୍ଧୀ, ପରିବାରସହିତ ସମ୍ବନ୍ଧଯୁକ୍ତ, ସଗୋତ୍ର ।
କୁଟୁରୁ—ଗ୍ରା.ବି.କ୍ଷୁଦ୍ରକାୟ ମୃଗବିଶେଷ ।
କୁଟୁରୁକୁଟୁରୁ—ଗ୍ରା.ଅବ୍ୟ.ଧ୍ୱନ୍ୟନୁକରଣ, ଚୁଡ଼ିଆମୁଢ଼ି ଟାଣ ପଦାର୍ଥକୁ ଦାନ୍ତଦ୍ୱାରା ଅଳ୍ପଅଳ୍ପ କରି କାଟିବାର ଧ୍ୱନି ।
କୁଟେଇରୁଣୀ—ଗ୍ରା. ସ୍ତ୍ରୀ. ବି. କୁଟୁରୁଣୀ (ଦେଖ) ।
କୁଟ୍ଟକ—ପୁଂ. ବି. (କୁଟ୍ଟ+କ+ଅକ) ମାଛରଙ୍କାପକ୍ଷୀ, ଅଙ୍କବିଶେଷ, (ବିଂ) ଛେଦନକାରକ, ଚୂର୍ଣ୍ଣକାରକ ।
କୁଟ୍ଟଣୀ—ବି.(କୁଟ୍ଟ+ଅନ+ଈ) ଢିଙ୍କି ।
କୁଟ୍ଟଣଶାଳକ—ବି. (୬ତତ୍ପୁ) ଢିଙ୍କିଶାଳ ।
କୁଟ୍ଟନ—କ୍ଲୀ. ବି. (କୁଟ୍+ଭା, ଅନ) ଛେଦନ, ଗାଳିଦେବା, ନିନ୍ଦାକରିବା, ପ୍ରତାରଣା,ଖଣ୍ଡୁଆ, କାଟିବା, ଦୂଷଣ ।
କୁଟ୍ଟନଦଣ୍ଡ—ବି. କୁଟିବାର ମୂଷଳ ବା ପାହାର, ଢିଙ୍କିପାହାର, ଖଳପୁଆ ।
କୁଟ୍ଟନୀ—ସ୍ତ୍ରୀ. ବି. (କୁଟ୍ଟ+ଅନ+ଈ) ନାୟକନାୟିକାରସଂଯୋଗକାରିଣୀ(ସ୍ତ୍ରୀ) ବାଞ୍ଛଗ୍ରାହିଣୀ ସ୍ତ୍ରୀ, ଦୂତୀ, ଢିଙ୍କିପାହାର ।
କୁଟ୍ଟନ୍ତୀ—ସ୍ତ୍ରୀ.ବି.ଛେଦନକାରିଣୀ (ସ୍ତ୍ରୀ) ।
କୁଟ୍ଟମିତ—କ୍ଲୀ.ବି.(କୁଟ୍ଟ+ଅମ୍+ଇତ) ସ୍ତ୍ରୀଲୋକମାନଙ୍କର ବିଳାସବିଶେଷ, ନାୟକର ପ୍ରେମକୁ ପ୍ରତ୍ୟାଖ୍ୟାନ କରିବା ରୂପ ନାୟିକାର ବାହ୍ୟଭଙ୍ଗୀ ହାବଭାବ ।
କୁଟ୍ଟାକ—ପୁଂ ବି. ଛେଦକ, ଯେ ଛେଦନ କରେ ।
କୁଟ୍ଟାର—ପୁଂ. ବି. (କୁଟ୍ଟ+ଆର)ପର୍ବତ, (କ୍ଲୀ) କମ୍ବଳ, ଅନୁଗତ, କେବଳ, ରତି, ମୈଥୁନ ।
କୁଟ୍ଟିତ—ବିଂ. (କୁଟ୍ଟ+ମ.ତ) ଛିନ୍ନ, ଚୂର୍ଣ୍ଣୀକୃତ, ଖଣ୍ଡୀକୃତ, ଖଣ୍ଡିତ, କୁଟା ହୋଇଥିବା । (ଦେଖ) ।
କୁଟ୍ଟିନୀ—ସ୍ତ୍ରୀ. ବି. (କୁଟ୍ଟନ+ଈ)କୁଟ୍ଟନୀ-
କୁଟ୍ଟିମ—ପୁଂ. କ୍ଲୀ. ବି. (କୁଟ୍ଟ+ମ.ଇମ) ମଣିଖଚିତ ସ୍ଥାନ, କୁଟୀର, ସମତଳ କରାଯିବାଭୂମି,ପକ୍କାଘରର ତଳ,ବନ୍ଧର ଖଣି, ଡାଳିମ୍ବ, ଚଟାଣଭୂମି, କୋଠାଘର, ଚକ୍କଣଭୂମି,ଖସଡ଼ାଜମି, ପ୍ରସ୍ତର ନିର୍ମିତ ବନ୍ଧ ବା କାନ୍ଥ, ପ୍ରାସାଦତଆର ନିମନ୍ତେ ପ୍ରସ୍ତୁତ ମୂଳଦୁଆ,ପ୍ରାସାଦ,(ବିଂ) କ୍ଷୁଦ୍ରକ୍ଷୁଦ୍ର ପ୍ରସ୍ତରଖଣ୍ଡ ବା ରତ୍ନାଦିଦ୍ୱାରା ଖଚିତ ।
କୁଟ୍ଟହାରିକା—ସ୍ତ୍ରୀ.ବି. ଦାସୀ, ଗୃହକାରିଣୀ ।
କୁଟ୍ଟୀର—ପୁଂ. ବି. (କୁଟ୍ଟ+ଈର)କ୍ଷୁଦ୍ର ପର୍ବତ, ପାହାଡ଼ ।
କୁଟ୍ଟୀରକ—ପୁଂ. କ୍ଲୀ. ବି. କ୍ଷୁଦ୍ର ପର୍ବତ, କୁଟୀର, କୁଡ଼ିଆଘର ।
କୁଟ୍ମଲ—କ୍ଲୀ.ବି.(କୁଟ+କ ମଲ) ନରକ ବିଶେଷ,ମୁକୁଳ,କୋରକ,ଫୁଲରକଢ଼ି ।
କୁଟ୍ମଲିତ—ବିଂ. (କୁଟ୍ମଲ+ଇତ) ଅର୍ଦ୍ଧମୁଦ୍ରିତ, ଅର୍ଦ୍ଧପ୍ରସ୍ଫୁଟିତ, ମୁକୁଳିତ, ଈଷଦ୍ଧାସ୍ୟଯୁକ୍ତ, ପ୍ରଫୁଲ୍ଲ, ଫୁଟିଥିବା ।
କୁଠ୍—(ଧାତୁ) ଛେଦିବା, କାଟିବା ବେଷ୍ଟନକରିବା । [ପାଦପ ।
କୁଠ—ପୁଂ.ବି.(କୁଠ+ମ.ଅ)ବୃକ୍ଷ, ଗଛ
କୁଠର—ପୁଂ.ବି.(କୁଠ+ମ.ଅର)ଦହିଖୁଆ, ଖୁଣ୍ଟ, ମନ୍ଥନସ୍ତମ୍ଭ ।
କୁଠାକୁ—ବି.(କୁଠ୍+ଆକୁ) କାଠହଣା ଚଢେଇ. (ଗ୍ରା. ବି.) ପ୍ରାସାଦକୁ ।
କୁଠାଣ୍ଟକ—ବି. (କୁଠ୍+ଣ+ଅଣ୍ଟକ) କୁରାଢ଼ି, ଟାଙ୍ଗିଆ ।
କୁଠାର—ପୁଂ. କ୍ଲୀ. ବି. (କୁଠ+ଣ+ଆର) ଅସ୍ତ୍ରବିଶେଷ, କୁରାଢ଼ି, କାଠ ଛେଦିବା ହତିଆର, ଟାଙ୍ଗିଆ, କାଙ୍କ, ଗଛ ।
କୁଠାରକ—ପୁଂ.ବି.ଟାଙ୍ଗିଆ,ଛୋଟକୁରାଢ଼ି ।
କୁଠାରପାଣି—ପୁଂ. ବି. (ବ.ବ୍ରୀ)ଶବର, (ବିଂ)କୁରାଢ଼ି ବା ଟାଙ୍ଗିଆ ଯାହା ହାତରେ ଥାଏ ।
କୁଠାରିକ—ପୁଂ. ବି. (କୁଠାର+ଇକ) କାଠୁରିଆ, ଶବର, (ସ୍ତ୍ରୀ) କୁଠାରିକା ।
କୁଠାରିକା—ସ୍ତ୍ରୀ. ବି. (କୁଠାରିକ+ଆ) ଶବରୁଣୀ, ଟାଙ୍ଗିଆ ।
କୁଠାରୀ—ପୁଂ.ବି.(କୁଠାର+ଈ)କୁରାଢ଼ି, (ଗ୍ରା. ବି) କୋଷାଧ୍ୟକ୍ଷ, ଭଣ୍ଡାରରକ୍ଷକ ।
କୁଠାରୁ—ପୁଂ. ବି. (କୁଠ+ମ.ଆରୁ) କମାର,ଶସ୍ତ୍ରକାର,ବୃକ୍ଷ,ବାନର,ମାଙ୍କଡ଼ ।
କୁଠି—ପୁଂ. ବି. (କୁଠ+ଇ) ପର୍ବତ, ବୃକ୍ଷ, (ଗ୍ରା.ବି.) କୋଠି ।
କୁଠିଆ—ଗ୍ରା.ବି.କୋଠିଆ, ସାନହଳିଆ, ହଳିଆଟୋକା । [ ତୁଳସୀ ।
କୁଠେର—ପୁଂ.ବି.(କୁଠ+କ.ଏର)ଅଗ୍ନି,
କୁଠେରକ—ପୁଂ.ବି.ତୁଳସୀ,ଶ୍ୱେତତୁଳସୀ ।
କୁଠେରୁ—ପୁଂ. ବି. (କୁଠ+କ, ଏରୁ) ପଙ୍ଖା ବା ଚାମରଦ୍ୱାରା ପ୍ରବର୍ତ୍ତିତ ପବନ ।
କୁଡ଼କ—ଗ୍ରା. ବି. ସ୍ତ୍ରୀଲୋକମାନଙ୍କର ନୋଳି ବା କାନଫୁଲର ତଳେ ଝୁଲୁଥିବା କେୟାଗଛ ଫୁଲ, କାନର ଅଳଙ୍କାର ବିଶେଷ ।
କୁଡ଼୍କୁଡ଼୍—ଗ୍ରା. ଅବ୍ୟ. ଖୁଡ଼୍ଖୁଡ଼୍ ଶବ୍ଦ, ସୋଲ ବା ଚଣାଇତ୍ୟାଦି ଚୋବାଇବା ଶବ୍ଦ ।
କୁଡ଼—(ଧାତୁ)ଖେଳିବା, ପିଲାପରି କାମ କରିବା, ଏକାଠି କରିବା, ଗଦାଇବା ।
କୁଡ଼ଙ୍କ—ଗ୍ରା. (ସମ୍ବ) ବି. ଗେହ୍ମାଛ ।
କୁଡ଼ଙ୍ଗଲ—ଗ୍ରା.ବିଂ.କଦାକାର, ଅସୁନ୍ଦର, କୁତ୍ସିତ ।
କୁଡ଼ଙ୍କ—ଗ୍ରା. ବି. ପାଦବିଶେଷ ।
କୁଡଙ୍ଗ—ବି. (କୁଟ୍+ଅଙ୍ଗ) କୁଞ୍ଜ, ଲତାଗୃହ,କୁଳାଙ୍ଗାର, ବାସୁରା, କୁଳର ନିନ୍ଦା-

ସନ୍ତାନ, କୁଳକାଳୁଙ୍ଗା,(ବିଂ)ଅଯୋଗ୍ୟ, କୁତ୍ସିତ, ବଗୁଲିଆ, (ସ୍ତ୍ରୀ) କୁଡ଼ଙ୍ଗୀ ।

କୁଡ଼ପ—ବି.(କୁଡ଼୍+ଅପ) ବାରପୋସ୍ ଶସ୍ୟର ପରିମାଣ ।

କୁଡ଼ବ—ପୁଂ. ବି. (କୁଡ଼୍+ଅବ) ପରିମାଣବିଶେଷ, କୁଡ଼ପ (ଦେଖ) ।

କୁଡ଼ା—ଗ୍ରା.ବି.ମାଟି ଖୋଳିବା ନୀଚଜାତିବିଶେଷ ।

କୁଡ଼ାଳ—ଗ୍ରା. ବି. କୁରାଢ଼ି, ଟାଙ୍ଗିଆ ।

କୁଡ଼ି—ପୁଂ.ବି.(କୁଡ଼୍+ଇ)ଶରୀର,(ଗ୍ରା. ବି) କୁଡ଼, ମାଟିହାଣିବାର ହତିଆରବିଶେଷ । [ କୁଟୀର ।

କୁଡ଼ିଆ—ଗ୍ରା. ବି. ପର୍ଣ୍ଣଶାଳା, ଛୋଟଘର,

କୁଡ଼ିକା—ବି. (କୁଡ଼୍+ଅ+କ+ଆ) କ.ଠ ବା ମାଟିର ଜଳପାତ୍ର,ଗିନା,ଡାଟିଆ

କୁଡ଼ିବା—ଗ୍ରା. ବି. କୋଡ଼ିବା (ଦେଖ) ।

କୁଡ଼ୀ—ବି.(କୁଡ଼୍+ଈ)କୁଟୀର,କୁଡ଼ିଆ ।

କୁଡ଼ୁଆ—ଗ୍ରା.ବି.ମହାପ୍ରସାଦ ଅନ୍ନବ୍ୟଞ୍ଜନାଦି ପାକ କରିବାର ମାଟି ପାତ୍ର ବା ହାଣ୍ଡି, ଓଳି, ଅଭଡ଼ା ହାଣ୍ଡି ।

କୁଡ଼ୁକା—ପ୍ରା. (ବାଲେ)ବି.ଅଣକ,ଡଙ୍କି, (ଗ୍ରା.ବି.) କୁଡ଼ୁଆ (ଦେଖ) ।

କୁଡ଼ୁକି—ଗ୍ରା. ବି. ମାଟିର ଭୋଜନ ପାତ୍ର ବା ଡାଟିଆ, ଛୋଟହାଣ୍ଡି, ରନ୍ଧନପାତ୍ର ।

କୁଡ଼ୁମାଲି—ଗ୍ରା.ବି.କୁଡ଼ୁମିଭାଷା,କୁରୁମୀମାନଙ୍କ ମାତୃଭାଷା ।

କୁଡ଼ୁମି—ପ୍ରା.ବି.ସିଂହଭୂମ,ସମ୍ବଲପୁର ଓ ଗଡ଼ଜାତର କୃଷିଜୀବୀ ଜାତିବିଶେଷ, କୁରୁମୀଜାତି ।

କୁଡ଼ୁ—ପ୍ରା.(ସମ୍ବ)ବି.ପଟାମଇ, ଚାଷଜମିକୁ ସମତଳ କରିବା ପାଇଁ ବ୍ୟବହୃତ କାଷ୍ଠଯନ୍ତ୍ରବିଶେଷ । [ (ଦେଖ) ।

କୁଡ଼୍ମଳ—ବି. (କୁଡ଼୍+କ.ମଲ) କୁଟ୍ମଳ

କୁଡ଼୍ମଳିତ—ବିଂ.(କୁଡ଼୍ମଳ+ଇତ)କୁଟ୍ମଳିତ (ଦେଖ) ।

କୁଡ଼୍ୟ—କ୍ଲୀ.ବି.(କୁଡ଼୍+ଯ)ଭିତ୍ତି,କାନ୍ଥ, ବ୍ୟଗ୍ରତା, କୌତୂହଳ, ଲିପିବା, ବିଲେପନ, କାନ୍ଥଆଦି ପଲସ୍ତରା କରିବା ।

କୁଡ଼୍ୟକ—କ୍ଲୀ. ବି. ଭିତ୍ତି, କାନ୍ଥ, କୁଡ଼ ।

କୁଡ଼୍ୟଚ୍ଛେଦୀ—ପୁଂ.ବି. (କୁଡ଼୍ୟ+ଛିଦ୍+କ.ଇନ୍) ଚୋର, ଯେ ଘରର କାନ୍ଥ ଭାଙ୍ଗି ଚୋରି କରେ, ସିନ୍ଧିଆ ଚୋର ।

କୁଡ଼୍ୟଚ୍ଛେଦ୍ୟ—ବି. (କୁଡ଼୍ୟ+ଛିଦ୍+କ.ଯ) ଯେ ଗାତ ଖୋଳେ, ସିନ୍ଧିଗାତ, କେନାଲ । [ ଟିକଟିକି ।

କୁଡ଼୍ୟମତ୍ସ୍ୟ—ପୁଂ. ବି. ଗୃହଗୋଧିକା,

କୁଢ଼—ଗ୍ରା. ବି. (ସଂ—କୁଷ୍ଠ) କାଶ୍ମୀରଦେଶଜ ଔଷଧ-ଦ୍ରବ୍ୟବିଶେଷ, ଗଦା, ରାଶି, ସ୍ତୂପ, କୁଷ୍ଠରୋଗ ।

କୁଢ଼କୁଢ଼—ଗ୍ରା. ବି. ସ୍ତୂପୀକୃତ, ବହୁସଂଖ୍ୟକ ସ୍ତୂପ, ଗଦାଗଦା ।

କୁଢ଼ଙ୍ଗ—ଗ୍ରା.ବି.ମନ୍ଦରୀତି, ମନ୍ଦଆଚରଣ, (ବିଂ) ମନ୍ଦ ଆଚରଣବିଶିଷ୍ଟ ।

କୁଢ଼ଙ୍ଗା—ଗ୍ରା. ବିଂ. କୁଢ଼ଙ୍ଗ (ଦେଖ), (ସ୍ତ୍ରୀ) କୁଢ଼ଙ୍ଗୀ ।

କୁଢ଼ା—ଗ୍ରା.ବି. ଗଦାକରିବା, ଗଦା,(ବିଂ) ଗଦା ହୋଇଥିବା ।

କୁଢ଼ାଇବା—ଗ୍ରା.କ୍ରି.ଗଦାକରିବା, ଏକତ୍ର କରିବା, କୌଣସି ବସ୍ତୁ ବହୁପରିମାଣରେ ଅଜାଡ଼ିବା ।

କୁଢ଼ି—ଗ୍ରା.ବିଂ. ଅଳସୁଆ, କୁଷ୍ଠରୋଗାକ୍ରାନ୍ତ, ପଙ୍ଗୁ, ବିକଳାଙ୍ଗ,(ବି) ଅଳସୁଆ ଲୋକ, କୁଷ୍ଠରୋଗୀବ୍ୟକ୍ତି ।

କୁଢ଼ିଆ—ଗ୍ରା. ବିଂ. କୁଢ଼ି (ଦେଖ) ।

କୁଢ଼ିପଣ—ଗ୍ରା, ବି. ଆଳସ୍ୟ ।

କୁଣ୍—(ଧାତୁ) ସାହାଯ୍ୟକରିବା, ଶବ୍ଦକରିବା, ପରାମର୍ଶଦେବା, କଥା କହିବା, ନିମନ୍ତ୍ରଣ କରିବା, ନମସ୍କାର କରିବା ।

କୁଣ—ପୁଂ. ବି. (କୁଣ୍+ଅ)ଅଶ୍ୱତ୍ଥବୃକ୍ଷ, (ଗ୍ରା.ବି.) କୋଣ ।

କୁଣକ—ପୁଂ.ବି. (କୁଣ୍+କ.ଅକ) ନବଜାତଶିଶୁ, ସଦ୍ୟୋଜାତ ଜନ୍ତୁ ।

କୁଣଞ୍ଜର—ପୁଂ. ବି. ଶାକ ବିଶେଷ, ବୃକ୍ଷ ବିଶେଷ ।

କୁଣନ—କ୍ଲୀ.ବି.(କୁଣ୍+ଭା.ଅନ) ଶବ୍ଦ, (ପ୍ରା.ମେଦି) ଶାରୀରିକ ବେଦନା ।

କୁଣନଖ—ଗ୍ରା. ବି. କଣନଖା (ଦେଖ) ।

କୁଣପ—ପୁଂ. ବି. (କୁଣ୍+ଅପ) ଶବ, ମୃତଦେହ, ବର୍ଚ୍ଛା,ଦୁର୍ଗନ୍ଧ, ଅସ୍ତ୍ରବିଶେଷ, (ବିଂ)ପୂତିଗନ୍ଧ,ଚେତନାଶୂନ୍ୟ ଦେହ ।

କୁଣପଗନ୍ଧ—ପୁଂ.ବି.ଶବଦେହପର ଗନ୍ଧ ।

କୁଣପୀ—ସ୍ତ୍ରୀ. ବି. (କୁଣପ+ଈ) ବିଟ୍ଶାରିକା, ପକ୍ଷିବିଶେଷ ।

କୁଣରବାଡବ—ପୁଂ.ବି.ଏକଜଣ ପ୍ରାଚୀନ ବୈୟାକରଣ ।

କୁଣବାର ପଣ୍ଡିତ—ଦାକ୍ଷିଣାତ୍ୟର ଜଣେ ବିଖ୍ୟାତ ପଣ୍ଡିତ ।

କୁଣାରୁ—ପୁଂ. ବିଂ. ଶବ୍ଦକାରକ ।

କୁଣାଳ—ପୁଂ.ବି.ଦେଶବିଶେଷ, ଅଶୋକ ରାଜପୁତ୍ର, ବୌଦ୍ଧବିଶେଷ ।

କୁଣି—ପୁଂ.ବି. (କୁଣ+କ.ଇ) ହାତକେମ୍ପା, କୁନ୍ଦବୃକ୍ଷ, ଅଙ୍ଗୁଳିଆଙ୍ଗୁଳି, ଆଙ୍ଗୁଠିରେ ଉଠିବା ଦୁଷ୍ଟବ୍ରଣ, ରୋଗବିଶେଷ, (ଗ୍ରା.ବି.) କଣି, ରଗଡ଼ାମୁଗ ଆଦିର କଣି ।

କୁଣିଆଁ—ଗ୍ରା. ବିଂ. ଏକକୋଣରେ ଅବସ୍ଥିତ, (ବି) ଅଭ୍ୟାଗତ, ବନ୍ଧୁ, ଅତିଥି, ନିମନ୍ତ୍ରିତ ବ୍ୟକ୍ତି ବା ବାନ୍ଧବ ।

କୁଣିକ-ପୁଂ.ବି,ଜଣେ ଧର୍ମଶାସ୍ତ୍ରପ୍ରଣେତା ।

କୁଣିବାହୁ—ପୁଂ. ବି. ଜଣେ ଧର୍ମଶାସ୍ତ୍ରପ୍ରଣେତା ।

କୁଣିଦ—ପୁଂ. ବି. ଶବଦ, ଶବ୍ଦ ।

କୁଣିପଦୀ—ସ୍ତ୍ରୀ. ବି. ଯେଉଁ ସକଳ ସ୍ତ୍ରୀର ଗମନଶକ୍ତି କମ୍ ।

କୁଣିଆପର ବସିବା—ଗ୍ରା. କ୍ରି. ଘରକୁ ଆସିଥିବା ଅଭ୍ୟାଗତ ବନ୍ଧୁପର କାର୍ଯ୍ୟ ନ କରିବା । [ଓ ମଇତ୍ର ।

କୁଣିଆଁମଇତ୍ର—ଗ୍ରା.ବି. ବାନ୍ଧବ, ସଙ୍ଗାତ

କୁଣିବାହୁ—ପୁଂ.ବି. ମୁନିବିଶେଷ ।

କୁଣ୍ଠକ—ବିଂ (କୁଣ୍ଠ+କ,ଅକ)ଯାହାର ଶରୀର ଅତ୍ୟନ୍ତମୋଟା,ସ୍ଥୂଳକାୟ।(ସ୍ତ୍ରୀ), କୁଣ୍ଠକୀ ।

କୁଣ୍ଠ୍—(ଧାତୁ) ଧାଡ଼ି ଦନ୍ତୁରା ହେବା, ଛୋଟା ବା ପଙ୍ଗୁ ହେବା,ଜଡ଼ ଧହେବା, ନିଶ୍ଚେଷ୍ଟ ବା ଅଳସୁଆ ହେବା, ହୁଗାଳିବା,ଅକ୍ଷମହେବା,ପଶ୍ଚାତ୍ପଦ ହେବା ।

କୁଣ୍ଠ—ପୁଂ. ବିଂ. (କୁଣ୍ଠ୍ + କ.ଅ) ଜଡ଼, ନିଶ୍ଚେଷ୍ଟ, ଅକର୍ମଣ୍ୟ, କାର୍ଯ୍ୟକରିବାକୁ ଅକ୍ଷମ, କାତର, ନିର୍ବୋଧ, ଦନ୍ତୁରୀ, ଅଲସୁଆ, ମୂର୍ଖ, ସଙ୍କୁଚିତ, ପ୍ରତିବନ୍ଧ, ଧାରଶୂନ୍ୟ, କୃପଣ, (ସ୍ତ୍ରୀ) କୁଣ୍ଠା ବା କୁଣ୍ଠୀ।

କୁଣ୍ଠକ—ପୁଂ. ବିଂ. (କୁଣ୍ଠ + କ, ଅକ) ମୂର୍ଖ, ସଙ୍କୋଚ ବିଶିଷ୍ଟ, କୁଣ୍ଠିତ କର୍ମକାରୀ, (ସ୍ତ୍ରୀ) କୁଣ୍ଠିକା।

କୁଣ୍ଠତା—ସ୍ତ୍ରୀ.ବି. (କୁଣ୍ଠ + ତା) ଅକ୍ଷମତା, ମୂର୍ଖତା, ଜଡ଼ତା, ଦନ୍ତୁରୀ ହେବା, ଦୁର୍ବଳତା।

କୁଣ୍ଠା—ବି. (କୁଣ୍ଠ୍ + ଅ + ଆ) ସଙ୍କୋଚ, ପଶ୍ଚାତ୍‌ପଦତା, କୃପଣତା, ଲଜ୍ଜା, ଭୟ, ବିତୃଷ୍ଣା।

କୁଣ୍ଠିତ—ପୁଂ. ବି. (କୁଣ୍ଠ୍ + କ, ତ) ଅପ୍ରତିଭ, ଅସମର୍ଥ, ସଙ୍କୁଚିତ, ଲଜ୍ଜିତ, ଅକ୍ଷମ, ଲେଖୀ, କୁନ୍ଥୁ କୁନ୍ଥୁ, ଧୂର୍ତ୍ତ, ରୁଦ୍ଧ, କାତର, ଚତୁର୍ଦ୍ଦିଗରେ ଆବୃତ, (ଗ୍ରା. ବିଂ) ବ୍ୟସ୍ତକୁଣ୍ଠ, କୃପଣ।

କୁଣ୍ଡ୍—(ଧାତୁ) ଜାଳିବା, ଖାଇବା, ଗଦା କରିବା, ବିକଳାଙ୍ଗ କରିବା ରକ୍ଷା କରିବା, ଶୋଷପାଇବା।

କୁଣ୍ଡ—କ୍ଲୀ.ବି. (କୁନ୍ଡ୍ + ମି, ଅ) ଜାରଜ ସନ୍ତାନ, ଜଳପାତ୍ର, ହମ୍ମେଇ, ଅଗ୍ନିକୁଣ୍ଡ, ପରିମାଣବିଶେଷ, ଜଳାଧାରବିଶେଷ, ହାଣ୍ଡି, ଗୋରୁକୁଣ୍ଡ, ଗର୍ଭ, ମାପିବାପାତ୍ର, ଭିକ୍ଷାପାତ୍ର, ପତିସତ୍ତ୍ୱେ ଜାରଜ ସନ୍ତାନ, ଚୌବାଚ୍ଚା, ଦେବଜଳାଶୟ।

କୁଣ୍ଡକର୍ଣ୍ଣ—ପୁଂ. ବି. ମୁନିଭେଦ।

କୁଣ୍ଡକୀଟ—ପୁଂ.ବି. (କୁଣ୍ଡ + କୀଟ) ଦାସୀକାମୁକ, ବ୍ରାହ୍ମଣୀଗର୍ଭରୁ ନୀଚଜାତୀୟ ପୁରୁଷ ଔରସରେ ଜାତ ଜାରଜ ସନ୍ତାନ, ଚାର୍ବାକ-ମତାବଲମ୍ବୀ, ପତିତ ବ୍ରାହ୍ମଣୀର ପୁତ୍ର।

କୁଣ୍ଡକୀଳ—ପୁଂ. ବିଂ. ନାଗର, ଦୁଷ୍ଟ, ନୀଚ, ହୀନ, (ବ୍ୟକ୍ତି)।

କୁଣ୍ଡଗୋଳ—ବି. (କୁଣ୍ଡ + ଗୋଳ) ଜାହ୍ନ, ବ୍ୟଭିଚାରିଣୀ ସଧବା ଓ ବିଧବା ଗର୍ଭଜାତ ସନ୍ତାନଗଣ, କାଞ୍ଜି, ବାସିପଖାଳ।

କୁଣ୍ଡଗୋଲକ—ବି. ନ. (କୁଣ୍ଡ + ଗୁଡ଼୍ + ଅକ) କାଞ୍ଜି, ବାସିପଖାଳ, ଖଟା ତୋରାଣି, (ପୁଂ. ବି) ବ୍ୟଭିଚାରିଣୀ ସଧବା ଓ ବିଧବାର ଗର୍ଭଜାତ ସନ୍ତାନଗଣ।

କୁଣ୍ଡଙ୍ଗ—ପୁଂ.ବିଂ. (କୁଣ୍ଡ + ଗମ୍ + ଅ) କୁଞ୍ଜ, ବୃକ୍ଷସମୂହ ଦ୍ୱାରା ଆଚ୍ଛାଦିତ ସ୍ଥାନ।

କୁଣ୍ଡଜ—ପୁଂ. ବି. ଧୃତରାଷ୍ଟ୍ରଙ୍କର ଏକ ପୁତ୍ର।

କୁଣ୍ଡଜଠର—ବିଂ. (ବ. ବ୍ରୀ) କୁଣ୍ଡତୁଲ୍ୟ ଉଦର ବିଶିଷ୍ଟ, (ପୁଂ.ବି) ମୁନିବିଶେଷ।

କୁଣ୍ଡଧାର-ପୁଂ. ବି. (କୁଣ୍ଡ + ଧୃ + ଣି + ଅ) ସର୍ପବିଶେଷ, ଧୃତରାଷ୍ଟ୍ରଙ୍କ ପୁତ୍ରବିଶେଷ।

କୁଣ୍ଡପାୟ୍ୟ—ପୁଂ. ବି. ସୋମଲତା।

କୁଣ୍ଡପାୟିନାମୟନ-କ୍ଲୀ. ବି. ଯଜ୍ଞ ବିଶେଷ।

କୁଣ୍ଡପାୟୀ-ପୁଂ.ବିଂ. (କୁଣ୍ଡ + ପା + ଇନ୍) କୁଣ୍ଡ ଦ୍ୱାରା ସୋମପାନକାରୀ।

କୁଣ୍ଡଭେଦୀ—ପୁଂ. ବି. ଧୃତରାଷ୍ଟ୍ରଙ୍କର ଜଣେ ପୁତ୍ର।

କୁଣ୍ଡର—ପ୍ରା. (ସମ୍ବ) ବି. ମାଟିର ବଡ଼କୁଣ୍ଡ।

କୁଣ୍ଡଳ—କ୍ଲୀ.ବି. (କୁଣ୍ଡ + ଅଳ) କାନର ଅଳଙ୍କାର ବିଶେଷ, କର୍ଣ୍ଣବେଷ୍ଟନ, ପାଶ, ବଳୟ, କଙ୍କଣ, ବଳୟାକୃତିବନ୍ଧନୀ, ରକ୍ତକାଞ୍ଚନ ଗଛ, ସମୂହ, ବିବାହିତା ସ୍ତ୍ରୀର ଜାରଜ ସନ୍ତାନ।

କୁଣ୍ଡଳନା—ସ୍ତ୍ରୀ.ବି. (କୁଣ୍ଡଳ + ଅନ + ଆ) ବଳୟାକୃତି ବେଷ୍ଟନ, ପକ୍ୱାନ୍ନ, ଜିଲେପୀ, ମିଷ୍ଟାନ୍ନବିଶେଷ।

କୁଣ୍ଡଳଶିଙ୍ଗା, କୁଣ୍ଡଳିଶିଙ୍ଗା—ଗ୍ରା. ବିଂ. ଯେଉଁ ଗୋରୁର ଶିଙ୍ଗଦୁଇଟି କୁଣ୍ଡଳପରି ବୁଲିଥାଏ।

କୁଣ୍ଡଳା—ସ୍ତ୍ରୀ.ବି. ନଦୀବିଶେଷ, ପ୍ରାଚୀନ ଗ୍ରାମବିଶେଷ। [ ବିଶିଷ୍ଟ।

କୁଣ୍ଡଳାକାର—ବିଂ. କୁଣ୍ଡଳତୁଲ୍ୟ ଆକାର

କୁଣ୍ଡଳିଆ—ଗ୍ରା.ବିଂ. ଯେ କାନରେ କୁଣ୍ଡଳ ପିନ୍ଧିଥାଏ, କୁଣ୍ଡଳ ପରି ମୋଡ଼ିମୋଡ଼ିଆ।

କୁଣ୍ଡଳିକା—ସ୍ତ୍ରୀ.ବି. ମାତ୍ରା, ଛନ୍ଦବିଶେଷ।

କୁଣ୍ଡଳିନୀ—ସ୍ତ୍ରୀ.ବି. (କୁଣ୍ଡଳ + ଇନ୍ + ଈ) କାଞ୍ଚନଗଛ, ଶକ୍ତିବିଶେଷ, ବାଇଡ଼ଙ୍କ, ସର୍ପିଣୀ, ମାଈସାପ, ଗୁଳୁଚିଲତା, ଜିଲପୀ, (ମିଷ୍ଟାନ୍ନବିଶେଷ), ଶରୀର ମଧ୍ୟସ୍ଥ କୁଳକୁଣ୍ଡଳିନୀ।

କୁଣ୍ଡଳୀ—ପୁଂ.ବି. (କୁଣ୍ଡଳ + ଇନ୍) ସର୍ପ, ମୟୂର, ଶିବ, ବରୁଣ, ଚିତ୍ରମୃଗ, ଜନ୍ମକୁଣ୍ଡଳୀ, ସୁନାରିବଣିଆଁ, ଶ୍ୱେତକାଞ୍ଚନବୃକ୍ଷ, ଗୁଳୁଚିଲତା, (ବିଂ) କୁଣ୍ଡଳାକାରବିଶିଷ୍ଟ।

କୁଣ୍ଡଳୀ—ସ୍ତ୍ରୀ.ବି. (କୁଣ୍ଡଳ + ଈ) ଜିଲେପୀ, କୁଳକୁଣ୍ଡଳିନୀ ଶକ୍ତି।

କୁଣ୍ଡଳୀକୃତ—ବିଂ. (କୁଣ୍ଡଳ + ଚ୍ୱି + କୃ + ମି, ତ) କୁଣ୍ଡଳାକାରରେ ପରିଣତ, ଯାହା ମଣ୍ଡଳାକାର କରାହୋଇଛି।

କୁଣ୍ଡଳୀଭୂତ—ବିଂ. (କୁଣ୍ଡଳ + ଚ୍ୱି + ଭୂ + ତ) କୁଣ୍ଡଳରୂପେ ପରିଣତ, ସାପପରି ଗୁଡ଼ାଇ ହୋଇଥିବା।

କୁଣ୍ଡଶାୟୀ—ପୁଂ.ବି. (କୁଣ୍ଡ + ଶି + କ, ଇନ୍) ଧୃତରାଷ୍ଟ୍ରଙ୍କ ପୁତ୍ରବିଶେଷ (ବିଂ) କୁଣ୍ଡରେ ଶୟନକାରୀ, (ସ୍ତ୍ରୀ) କୁଣ୍ଡଶାୟିନୀ।

କୁଣ୍ଡା—ସ୍ତ୍ରୀ. ବି. ଦୁର୍ଗା, ଜାରଜାକନ୍ୟା, (ଗ୍ରା.ବି.) ଚକ୍ଷୁ, ତୁଷ, (ଧାନରୁ ଚାଉଳ ବାହାରିଗଲାପରେ ବାକିରହିବା ଅଂଶ)।

କୁଣ୍ଡାଇବା—ଗ୍ରା.କ୍ରି. ଘର୍ଷଣ କରିବା, କେଶକୁ ପାନିଆଁରେ ଚିରି ପରିଷ୍କାରକରିବା, ନଖଦ୍ୱାରା ଦେହର ଚର୍ମକୁ ଘର୍ଷଣ କରିବା।

କୁଣ୍ଡାଇହେବା—ଗ୍ରା. କ୍ରି. ନଖଦ୍ୱାରା ନିଜ ଦେହରେ କଣ୍ଡୁ ବାରଣ କରିବା, ଶରୀରରେ କଣ୍ଡୁବୋଧ ହେବା, ଦେହଗଲୁହେବା, କାମପ୍ରବୃତ୍ତିର ଉଦ୍ରେକ ଅନୁଭବ କରିବା।

କୁଣ୍ଡାଖାଇ—ଗ୍ରା.ବି. ପକ୍ଷିବିଶେଷ।

କୁଣ୍ଡାଖିଆ—ଗ୍ରା.ବିଂ. ଯେଉଁ ପଶୁ କୁଣ୍ଡା ଖାଏ, (ବି) କୁଣ୍ଡାଖାଇବାର କ୍ରିୟା।

କୁଣ୍ଡାଗ୍ନି—ପୁଂ.କ୍ଲୀବ. ତୁଷାନଳ, ସ୍ଥାନ, [ବିଶେଷ।

କୁଣ୍ଡାଟିଡ଼ି, କୁଣ୍ଡାଟିଗ—ଗ୍ରା. ବି. ଅତି କ୍ଷୁଦ୍ର କଣାରେ ବର୍ଷା, ଅତିସୂକ୍ଷ୍ମବର୍ଷା।

କୁଣ୍ଡାଦେଇ ପାଠପଢ଼ିବା—ଗ୍ରା. କ୍ରି. (ଅବଧାନଙ୍କୁ ବା ଗୁରୁଙ୍କୁ) କିଛି ଦକ୍ଷିଣା

ନ ଦେଇ (ଯଥା-କୁଣ୍ଡାଦକ୍ଷିଣା ଦେଇ) ତାଙ୍କଠାରୁ ବିଦ୍ୟାଶିକ୍ଷା କରିବା, ମୂର୍ଖ ହେବା ।

କୁଣ୍ଡାପିଠା—ଗ୍ରା. ବି. କାଣ୍ଡିଆ ସୂକ୍ଷ୍ମ କୁଣ୍ଡାକୁ ବାଟି ଯେଉଁ ପିଠା ତିଆରି କରାଯାଏ ।

କୁଣ୍ଡାଶୀ—ପୁଂ.ବି. (କୁଣ୍ଡା + ଅଶ୍ + କ, ଇନ୍) ଯେଉଁ ବ୍ୟକ୍ତି ଜାରଜ ସନ୍ତାନ-ଦ୍ୱାରା ପୋଷିତହୁଏ,ଭଗଭକ୍ଷକ, କୁଟ୍ଟଣା, ଧୃତରାଷ୍ଟ୍ରଙ୍କର ଜଣେ ପୁତ୍ର, କୁଣ୍ଡିଆ ।

କୁଣ୍ଡି—ଗ୍ରା.ବି.କ୍ଷୁଦ୍ରପ୍ରସ୍ତରନିର୍ମିତ ପାତ୍ର, ଲୁଣ ରାନ୍ଧିବା ସମୟରେ ଲୁଣ ପାଣିକୁ ନିଗାଡ଼ି ରଖିବାର ଗର୍ତ୍ତ ।

କୁଣ୍ଡିଆ—ଗ୍ରା. ବି. କଣ୍ଡୁରୋଗ, ଶୁଖିଲା କାଛୁରୋଗ, କଣ୍ଡୁ, ଗଲୁ ।

କୁଣ୍ଡିକ—ପୁଂ. ବି. (କୁଣ୍ଡ + ଇକ) କୁରୁବଂଶୀୟ ଧୃତରାଷ୍ଟ୍ରଙ୍କର ଜଣେପୁତ୍ର, (କ୍ଲୀ) କମଣ୍ଡଳୁ, ତାମ୍ରକୁଣ୍ଡ, ଥାଳ ।

କୁଣ୍ଡିକା—ସ୍ତ୍ରୀ. ବି. (କୁଣ୍ଡିକ + ଆ) ମାଠିଆ, କମଣ୍ଡଳୁ, ଥାଳ, ହାଣ୍ଡି, ସାମ-ବେଦାନ୍ତର୍ଗତ ଉପନିଷଦବିଶେଷ, ତାମ୍ରକୁଣ୍ଡକ, ସ୍ଥାଳୀ ।

କୁଣ୍ଡିନ—କ୍ଲୀ.ବି. ନଗରବିଶେଷ, ଋତ୍ନ-ଭଣ୍ଡାର, ବିଦର୍ଭନଗର, (ପୁଂ) ମୁନିବିଶେଷ ।

କୁଣ୍ଡୀ—ପୁଂ. ବି. (କୁଣ୍ଡ + ଇନ୍) ଶିବ, ଘୋଡ଼ା, ଜାରଜ, ଥାଳ, କମଣ୍ଡଳୁ, (ଗ୍ରା.ବି.) ଲଙ୍ଗଘୋଟିବାପାତ୍ର, (ବିଂ) ସ୍ଥୂଳକାୟ, (ସ୍ତ୍ରୀ) କୁଣ୍ଡିନୀ, କୁଣ୍ଡୀ ।

କୁଣ୍ଡୀ—ସ୍ତ୍ରୀ.ବି. (କଣ୍ଡ + ଈ) କମଣ୍ଡଳୁ, ସ୍ଥାଳୀ, କଳସୀ, ଘଟୀ, ଘଡ଼ି, ଥାଳ ।

କୁଣ୍ଡିନୀ—ସ୍ତ୍ରୀ. ବି. (କୁଣ୍ଡିନ୍ + ଈ) ଋତ୍ନ-ଖଣ୍ଡବିଶେଷ ।

କୁଣ୍ଡୀର—ପୁଂ.ବି.(କୁଣ୍ଡ + ଇର)ମନୁଷ୍ୟ, (ବିଂ) ବଳବାନ୍, ବଳୁଆ ।

କୁଣ୍ଡୁ—ପୁଂ.ବି. ଉପାଧିବିଶେଷ,ପାଟରା, ଢଳୀ,କୈବର୍ତ୍ତ,ତେଲି, କଂସାରି, ସୂତ୍ର-ଧାର ପ୍ରଭୃତି ଜାତିମାନଙ୍କ ମଧ୍ୟରେ ଏହି ଉପାଧି ଦୃଷ୍ଟ ହୁଏ ।

କୁଣ୍ଡୁଣାଟୀ—ସ୍ତ୍ରୀ.ବି. କୁଟିଳଗତି ।

କୁଣ୍ଡେଇକାଣ୍ଡେଇହେବା—ଗ୍ରା. କ୍ରି.ଗଳୁ ମାରିବାକୁ ପରସ୍ପର ଦେହ ରମାରମି ହେବା ।

କୁଣ୍ଡୋଦ୍ଧ—ପୁଂ. ବି. ମହାଭାରତୋକ୍ତ ପର୍ବତବିଶେଷ ।

କୁଣ୍ଡୋଦର—ପୁଂ.ବି.(ବି.ସ୍ତ୍ରୀ)ସର୍ପବିଶେଷ, ଜନମେଜୟଙ୍କର ପୁତ୍ର ଓ ଧୃତରାଷ୍ଟ୍ରଙ୍କର ଭ୍ରାତା, ଧୃତରାଷ୍ଟ୍ରଙ୍କର ପୁତ୍ରବିଶେଷ, (ବିଂ) କୁଣ୍ଡତୁଲ୍ୟ ଉଦରଯୁକ୍ତ ।

କୁଣ୍ଡୋଧ୍ନୀ—ସ୍ତ୍ରୀ.ବି.(କୁଣ୍ଡ + ଊଧସ)ବି.ସ୍ତ୍ରୀ ବିପୁଳନିତମ୍ବା ସ୍ତ୍ରୀ,ବଡ଼ପହ୍ଲାଥିବା ଗାଈ ।

କୁଣ୍ଢ—ଗ୍ରା. ବି. ବିସ୍ତାରିତ ବାହୁଦ୍ୱୟ ମଧ୍ୟସ୍ଥ ବୃତ୍ତାକାର ବ୍ୟବଧାନ, ବାହୁପାଶ ଦ୍ୱାରା ବେଷ୍ଟିତ ବୃତ୍ତ ।

କୁଣ୍ଢନପାଇବା—ଗ୍ରା. ବି. କୌଣସି ବସ୍ତୁ (କାଠଗଛଆଦି) ଏତେ ବେଶି ମୋଟା ହେବ ଯେ ତାକୁ କୁଣ୍ଢାଇଲେ ଦୁଇ-ହାତରଅଗ୍ର ପରସ୍ପରକୁ ସ୍ପର୍ଶ ନ କରିବା, (ଲ.ଅର୍ଥ) କୌଣସି ବ୍ୟକ୍ତିର ମନ ଗର୍ବ ବା ଆନନ୍ଦରେ ଅତ୍ୟଧିକ ବିସ୍ତାରିତ ହେବାରୁ ତା ମନର କଳନା କରି ନ ହେବା, ଗର୍ବ ବା ଆନନ୍ଦରେ ସ୍ଫୀତ ହେବା ।

କୁଣ୍ଢା—ଗ୍ରା.ବି.ଗାଢ଼ଆଲିଙ୍ଗନ,(ପୁଂ.ବିଂ.) ମୋଟା ବା ସ୍ଥୂଳକାୟବିଶିଷ୍ଟ, ଗବ୍‌ଦଲ୍-ଖାସୁ ।

କୁଣ୍ଢାଇ,କୁଣ୍ଢେଇ—ଗ୍ରା. ବି. ଖେଳିବା ପିଲା, ପ୍ରତିମା, ଅତିସୁନ୍ଦର, କୁଣ୍ଢେଇ ପରି ମନୋହର ଶିଶୁ ।

କୁଣ୍ଢାଇଧରିବା—ଗ୍ରା. କ୍ରି. ଜୋରପୂର୍ବକ ଆଲିଙ୍ଗନ କରିବା ।

କୁଣ୍ଢାଇ ପକାଇବା—ଗ୍ରା. କ୍ରି. ଦେଖିବା ମାତ୍ରକେ ହଠାତ୍ ଗାଢ଼ ଆଲିଙ୍ଗନ କରିବା ।

କୁଣ୍ଢାଇବା—ଗ୍ରା.କ୍ରି. ଆଲିଙ୍ଗନ କରିବା ।

କୁଣ୍ଢାଇବିଭା—ଗ୍ରା. ବି. ଦୁଇଶିଶୁଙ୍କର ଦୁଇଟି କୁଣ୍ଢେଇଙ୍କ ମଧ୍ୟରେ କାଳ୍ପନିକ ବିବାହରୂପ ଶିଶୁକ୍ରୀଡ଼ାବିଶେଷ ।

କୁଣ୍ଢାକୁଣ୍ଢି—ଗ୍ରା. ବି. ପରସ୍ପର ଗାଢ଼ ଆଲିଙ୍ଗନ, (ବିଂ) ପରସ୍ପରକୁ ଆଲିଙ୍ଗନ କରିଥିବା ।

କୁଣ୍ଢି କୁଣ୍ଢିଉଆଁସ—ପ୍ରା. (ଗଞ୍ଜାମ) ବି. ଭାଦ୍ରବଅମାବାସ୍ୟା,ସାତପୁରୀଅମାବାସ୍ୟା, (ଗଞ୍ଜାମରେ ଏହି ଅମାବାସ୍ୟାରେ ବନ୍ଧୁ-ମାନଙ୍କର ପରସ୍ପରକୁ ଆଲିଙ୍ଗନ କରିବା ରୀତି ପ୍ରଚଳିତ ଅଛି) ।

କୁଣ୍ଢି—ଗ୍ରା.ସ୍ତ୍ରୀ.ବିଂ. ସ୍ଥୂଳକାୟା, ମୋଟୀ ସ୍ତ୍ରୀ. (ପ୍ରା.ଗଞ୍ଜାମ) ଝୋକେଇ, ଢବାଙ୍ଗ, ଲୁଣିମାଟି ସଂଗ୍ରହପାଇଁ ଖୋଳାଯାଇଥିବା ଗର୍ତ୍ତ ।

କୁଣ୍ଢେମୋଟ—ଗ୍ରା. ବିଂ. ଯାହାର ପରିଧି ବା ଗୋଲେଇର ଚାରିପାଖରେ ବାହୁ ବୁଲାଇଲେ ଦୁଇହାତର ଅଗ ପରସ୍ପରକୁ ସ୍ପର୍ଶ କରେ, (ଲ.ଅର୍ଥ) ଗର୍ବସ୍ଫୀତ,ଅହଂ-କାରଯୁକ୍ତ, ଆନନ୍ଦ ଗଦ୍‌ଗଦ ।

କୁତ୍‌କୁତ୍—ଗ୍ରା. ବି. ଦେହର ସନ୍ଧି-ସ୍ଥଳରେ ଅଙ୍ଗୁଳିର ଚାଳନ, ଦେହର ସନ୍ଧିସ୍ଥଳରେ ଅଙ୍ଗୁଳିଚାଳନଜନିତ ହର୍ଷ ବା ରୋମାଞ୍ଚ ।

କୁତ୍‌କୁତ୍‌କରିବା, କୁତୁକୁତୁ କରିବା—ଗ୍ରା. କ୍ରି.ଦେହର ସନ୍ଧିସ୍ଥାନବିଶେଷରେ ଅଙ୍ଗୁଳି ଚାଳନକରିବା, କୁତୁରୁ କୁତୁରୁ କରି ରୋମାଞ୍ଚ ଓ ହାସ୍ୟ ଉତ୍ପାଦନ କରିବା ।

କୁତ୍‌କୁତାଇବା, କୁତ୍‌କୁତାଇବା—ଗ୍ରା. କ୍ରି. କୁତ୍‌କୁତ୍‌କରିବା (ଦେଖ) ।

କୁତ୍‌କୁତି,କୁତୁକୁତି—ଗ୍ରା. ବି. ଦେହର ଯେଉଁ ସନ୍ଧିସ୍ଥଳରେ ଅଳ୍ପମାତ୍ର ଅଙ୍ଗୁଳି ଚାଳନକରିବାମାତ୍ରକେ ହର୍ଷ ଓ ରୋମାଞ୍ଚ ଉତ୍ପାଦିତ ହୁଏ, ଅଳ୍ପମାତ୍ରାରେ କୁତ୍‌କୁତ୍ କଲେ ଶୀଘ୍ର ବା ଅକ୍ଲେଶରେ ରୋମାଞ୍ଚିତ ବା ହୃଷ୍ଟହେବାର ପ୍ରକୃତି ।

କୁତ୍‌କୁତିଆ,କୁତୁକୁତିଆ—ଗ୍ରା. ପୁଂ. ବିଂ. ଯେଉଁ ପୁରୁଷ ସାମାନ୍ୟ କୁତ୍‌କୁତ୍‌ରେ ହସିଉଠେ ଓ ଅସ୍ଥିର ହୋଇପଡ଼େ, (ସ୍ତ୍ରୀ) କୁତୁକୁତେଇ ।

କୁତଃ—ଅବ୍ୟ. (କିମ୍ + ତସ୍) କେଉଁ-ଠାରୁ, କାହିଁରୁ, ଗୋପନପ୍ରଶ୍ନ ।

କୁତ—ଗ୍ରା.ବି. ଫଳଥିବା ଫଳ ବା ଫସଲ ସଂଗୃହୀତ ହେବାପୂର୍ବରୁ ତାହା ଗଣନା ବା ମାପ ନ କରି ତହିଁର ଆନୁମାନିକ ପରିମାଣ ନିରୂପଣ, ପାତ୍ରମଧ୍ୟସ୍ଥିତ ପଦାର୍ଥର ଆନୁମାନିକ ପରିମାଣ ନିରୂପଣ, ସିଂଗ୍ରଖେଳର (ବାଟିଆଦି) ନିର୍ଦ୍ଦିଷ୍ଟସୀମା।

କୁତକରିବା—ଗ୍ରା. କ୍ରି. ଫଳ ବା ଶସ୍ୟ ବା ମାଛ ବା କୌଣସି ପଦାର୍ଥର ଆନୁମାନିକ ପରିମାଣ ବା ମୂଲ୍ୟଧାର୍ଯ୍ୟ କରିବା।

କୁତଦେବା—ଗ୍ରା.କ୍ରି. କୌଣସି ଜମି ବା ବୃକ୍ଷର ଫଳକୁ କୁତକରି ତାହା ଭୋଗ କରିବା ନିମନ୍ତେ ଅନ୍ୟବ୍ୟକ୍ତିକୁ ଇଜରା ଦେବା। [ମନ୍ଦପୁଅ।

କୁତନୟ—ପୁଂ.ବି. କୁପୁତ୍ର,ମନ୍ଦତନୟ,

କୁତନୁ—ପୁଂ. ବି. (ବ.ବ୍ରୀ) କୁବେର, (ବିଂ) ଯାହାର ଶରୀର କୁତ୍ସିତ।

କୁତନ୍ତ୍ର—କ୍ଲୀ. ବି. (କୁ+ତନ୍ତ୍ର) କ.ଧା; ଲୋକଙ୍କର ଅହିତକର ଶାସନ ପ୍ରଣାଳୀ ବା ରୀତି, କୁପରାମର୍ଶ, ଚକ୍ରାନ୍ତ, ଷଡ଼ଯନ୍ତ୍ର।

କୁତନ୍ତ୍ରୀ—ସ୍ତ୍ରୀ. ବି. କୁତ୍ସିତବୀଣା, (ଗ୍ରା. ବିଂ) କୁମନ୍ତ୍ରଣାକାରୀ,କୁପରାମର୍ଶଦାତା।

କୁତପ—ପୁଂ. ବି. (କୁ+ତପ୍+ଅ) ସୂର୍ଯ୍ୟ, ଅଗ୍ନି, ବ୍ରାହ୍ମଣ, ଅତିଥି, ଗୋରୁ, ଭଣଜା, ଦୌହିତ୍ର, କୁଶ, ଛାଗଲୋମର କମ୍ବଳ,ଝିଅର ପୁଅ,ଦିନମାନର ଅଷ୍ଟମଅଂଶ, ବାଦ୍ୟବିଶେଷ,ଶ୍ରାଦ୍ଧସମୟ ଦିବସର ୧୫ ଭାଗରୁ ଅଷ୍ଟମଭାଗ ସମୟ, ବେଳଗଡ଼ିଯିବା ସମୟ, ଅତିଶସ୍ୟ ଦ୍ୱୀପ।

କୁତପକାଳ—ପୁଂ.ବି. ଦିନମାନର ଅଷ୍ଟମ ଅଂଶ, ଦିବସର ୧୫ ଭାଗରୁ ଆଠଭାଗ ସମୟ।

କୁତପସପ୍ତକ—କ୍ଲୀ. ବି. ଶ୍ରାଦ୍ଧବିଶେଷ।

କୁତପସ୍ୱୀ—ପୁଂ.ବି.ଭଣ୍ଡସନ୍ନ୍ୟାସୀ, ନିନ୍ଦିତ ତପସ୍ୱୀ।

କୁତବ୍‌ମିନାର୍—ଯା.ବି. ଦିଲ୍ଲୀରେ କୁତବୁଦ୍ଦିନ କରିଥିବା ଅତ୍ୟୁଚ୍ଚ ପକା, ଜୟସ୍ତମ୍ଭ ବା କୀର୍ତ୍ତିସ୍ତମ୍ଭ।

କୁତବନ୍ଦି—ଗ୍ରା.ବି. ଜମିର ଫସଲଆଦିର ଆନୁମାନିକ ପରିମାଣ ନିରୂପଣ କିମ୍ବା, (ବିଂ) କୁତ କରାଯାଇଥିବା (ଜମିଆଦି)।

କୁତବନ୍ଦୀ—ପ୍ରା. (ସମ୍ବ) ବିଂ. ଅନ୍ଦାଜ ନିର୍ଦ୍ଧାରିତ, ନିର୍ଦ୍ଦିଷ୍ଟ।

କୁତରି—ପ୍ରା (ଭଜି)କୁତ୍ତି, କୁକୁରୀ, ମାଇ କୁକୁର।

କୁତର୍କ—ପୁଂ.ବି. (କୁ+ତର୍କ)ମନ୍ଦତର୍କ, ବିତଣ୍ଡା, ଅଯୌକ୍ତିକ ବାଦାନୁବାଦ, ପରର ଅନିଷ୍ଟ ନିମନ୍ତେ ଷଡ଼ଯନ୍ତ୍ର।

କୁତର୍କପଥ—ପୁଂ. ବି. ଖରାପ ବାଗ୍‌ବିତଣ୍ଡାର ବାଟ।

କୁତସ୍ତ୍ୟ—ବିଂ. (କୁତସ୍+ତ୍ୟ) କେଉଁ ସ୍ଥାନର,କେଉଁସ୍ଥାନରେ ଜାତ, କିରୂପେ ଜାତ, କେଉଁ ସ୍ଥାନରୁ ଆଗତ।

କୁତା—ଗ୍ରା. ପୁଂ. ବି. କୁକୁର, କୁତ୍ତା।

କୁତାଖାଲ୍—ପ୍ରା.(ସମ୍ବ) ବି. କୋଡ଼ଦ୍ୱାରା କରାଯାଇଥିବା ଗଣ୍ଡି। [ସନ୍ନ୍ୟାସୀ।

କୁତାପସ—ପୁଂ. ବି. ମନ୍ଦସନ୍ନ୍ୟାସୀ, ଭଣ୍ଡ

କୁତାରହାଲ୍—ଯା. ବି. ଅତ୍ୟନ୍ତ ବ୍ୟତିବ୍ୟସ୍ତ ଦଶା, ଅବସ୍ଥା।

କୁତି—ପ୍ରା.(ସମ୍ବ)ଅବ୍ୟ. ଆଡ଼କୁ, ଦିଗକୁ, (ଯଥା--ଏକୁତି ସେକୁତି)(ଗ୍ରା.ବି)ମାଇକୁକୁର।

କୁତିବା—ଗ୍ରା.କ୍ରି .କୁତକରିବା, ଫଳଆଦିର ଆନୁମାନିକ ପରିମାଣ ନିରୂପଣକରିବା।

କୁତ୍ତି—ଗ୍ରା. ବି. ମାଇକୁକୁର, କୁକୁରୀ।

କୁତ୍ତିପାଦ—ପୁଂ.ବି.ସାମବେଦୋକ୍ତ ଋଷି ବିଶେଷ।

କୁତୀର୍ଥ—ପୁଂ.ବି. (କ.ଧା)ମନ୍ଦତୀର୍ଥ, ମନ୍ଦ ଆଚାର୍ଯ୍ୟ ବା ଗୁରୁ, ଅପରିଷ୍କୃତ ତୀର୍ଥ।

କୁତୁକ—କ୍ଲୀ.ବି (କୁତ+ଉକ)କୌତୁକ, କୌତୂହଳ, ଇଚ୍ଛା, ଔତ୍ସୁକ୍ୟ, ଆନନ୍ଦ, (ବିଂ) କୌତୁକୀ, ଆମୋଦପ୍ରିୟ।

କୁତୁପ—କ୍ଲୀ. ବି. (କୁତ+ଉପ) କୁତପ (ଦେଖ),(ପୁଂ)ଚର୍ମନିର୍ମିତ ଛୋଟ ତୈଳାଦି ପାତ୍ର, ଛୋଟକୁମ୍ପା, ତେଲକୁମ୍ପା।

କୁତୁମ୍ବୁରୁ—କ୍ଲୀ.ବି. କୁତ୍ସିତ ତୁମ୍ବିରଫଳ, କୁତ୍ସିତ ତୁମ୍ବୁରୁ ନାମକ ବାଦ୍ୟ, ମନ୍ଦ ତମ୍ବୁରା।

କୁତୁରୁ କୁତୁରୁ-ଗ୍ରା.ବି କୁତୁକୁତୁ(ଦେଖ)।

କୁତୂ—ସ୍ତ୍ରୀ. ବି. (କୁ+ତନ+ଊ)ଚମଡ଼ାରେ ତିଆରି ତେଲକୁମ୍ପା, ଚର୍ମନିର୍ମିତ ତେଲକୁମ୍ପା।

କୁତୃଣକ—ପୁଂ.ବି. (କୁ+ତୃଣ+ଅକ) ବାଳକମାନଙ୍କ ଚକ୍ଷୁରୋଗବିଶେଷ,କଥୁ।

କୁତୂହଳ—କ୍ଲୀ. ବି (କୁତୂ+ହଳ+ଅ) ଔତ୍ସୁକ୍ୟ, ଇଚ୍ଛା, ଆନନ୍ଦ, ବିଳାସ, ଆଶ୍ଚର୍ଯ୍ୟ ଓ ଆନନ୍ଦ ଉତ୍ପାଦକ ବସ୍ତୁ, ଅଜ୍ଞାତ ବିଷୟ ଜାଣିବାର ଇଚ୍ଛା,କୌତୂହଳ, କ୍ରୀଡ଼ା, (ବିଂ) ଆଶ୍ଚର୍ଯ୍ୟଜନକ, ପ୍ରସିଦ୍ଧି, କୌତୁକପ୍ରଦ, ପ୍ରଶଂସିତ।

କୁତୂହଳବାନ୍—ପୁଂ. ବିଂ. (କୁତୂହଳ+ବତ୍) କୌତୂହଳବିଶିଷ୍ଟ।

କୁତୂହଳିତ—ବିଂ.କୌତୂହଳଯୁକ୍ତ,ଅଛିଳ।

କୁତୂହଳୀ—ପୁଂ.ବିଂ.(କୁତୂହଳ+ଇନ୍) ଉତ୍ସୁକ, ବିଳାସୀ,ଆନନ୍ଦ ଭୋଗ କରୁଥିବା, ଅଧୀର, ଅଛିଳ, ତତ୍ତ୍ୱସନ୍ଧାନାର୍ଥ ଉତ୍ସୁକ, କୌତୂହଳଯୁକ୍ତ।

କୁତୃଣ—କ୍ଲୀ. ବି. (କୁ+ତୃଣ) ମନ୍ଦତୃଣ, ତୃଣବିଶେଷ, ବୋଡ଼ଙ୍ଗଞ୍ଜି।

କୁତୋନିମିତ୍ତ-ବିଂ.କି ନିମିତ୍ତ? କିପାଇଁ?

କୁତୋମୂଳ—ବିଂ. କି କାରଣ?

କୁତ୍ତ—ଯା. ବି. କୁକୁର।

କୁତ୍ତୀ—ଯା. ବି. କୁକୁରୀ, ମାଇକୁକୁର।

କୁତ୍ତୁ—ପୁ. ବି. ଜ୍ୟୋତିଷଶାସ୍ତ୍ରୋକ୍ତ ପଞ୍ଚଦଶ ଯୋଗବିଶେଷ।

କୁନ—ଅବ୍ୟ.(କିମ୍+ନ) କେଉଁଠାରେ, କୌଣସିଠାରେ ହେଲେ, କୌଣସି ବିଷୟରେ।

କୁନଚିତ୍,କୁନଚନ-ଅବ୍ୟ,କେଉଁସ୍ଥାନରେ, ଅନିର୍ଦ୍ଦିଷ୍ଟ ସ୍ଥାନରେ।

**କୁତ୍ରତ୍ୟ**—ବିଂ. କେଉଁଠାରେ ଜାତ, କେଉଁ ସ୍ଥାନରେ ସ୍ଥିତ, କେଉଁସ୍ଥାନରୁ ଆଗତ ।

**କୁତ୍ରମ**—ଗ୍ରା. ବ. ବିଂ. କୁତ୍ରିମ (ଦେଖ) ।

କୁତ୍ରମୀ—ଗ୍ରା. ବିଂ. ଛନ୍ଦୁଆ ।

କୁତ୍ରାପି—କ୍ରି. ବିଂ. ( କୁତ୍ର + ଅପି ) କେଉଁଠାରେ ହେଲେ, କୌଣସି କୌଣସି ସ୍ଥାନରେ, କେବେହେଁ, ଅଳ୍ପସ୍ଥାନରେ ।

କୁତ୍ରି—ପ୍ରା. ( ସମ୍ବ. ) ଅତଳ୍ପେଟ ମାଛ, ଝିମିମାଛ, ଚୂନାମାଛ ।

କୁତ୍ସ—(ଧାତୁ) ନିନ୍ଦାକରିବା, ଅପବାଦ ଦେବା । [ପିତା ।

କୁତ୍ସ—ପୁଂ. ବ. ଋଷିବିଶେଷ କୌତ୍ସଙ୍କ

କୁତ୍ସନ—କ୍ଳୀ. ବ. (କୁତ୍ସ + ଣ୍ଚ, ଅନ) ନିନ୍ଦା, ଘୃଣା, ଭର୍ତ୍ସନା, ଦୋଷକୀର୍ତ୍ତନ, ନିନ୍ଦାର ଉପାୟ, (ବିଂ) ନିନ୍ଦକ ।

କୁତ୍ସା—ସ୍ତ୍ରୀ. ବ, (କୁତ୍ସ + ଅ + ଆ) ନିନ୍ଦା, ଅପବାଦ, ଘୃଣା, ଭର୍ତ୍ସନା, କୁତ୍ସିତପଣ, ଦୋଷବର୍ଣ୍ଣନା ।

କୁତ୍ସାକରିବା—ଗ୍ରା. କ୍ରି. ନିନ୍ଦାକରିବା, ଦୋଷାରୋପକରିବା, ପରନିନ୍ଦାବାଦ-କରିବା ।

କୁତ୍ସିତ—ବିଂ. (କୁତ୍ସ + ମ, ତ)- ନିନ୍ଦିତ, ମନ୍ଦ, ମ୍ଳାନ, ଘୃଣ୍ୟ, ଦୋଷଯୁକ୍ତ, ହେୟ, କଦାକାର, ଜଘନ୍ୟ, କଦର୍ଯ୍ୟ, କୁରୂପ, (ଗ୍ରା, ବିଂ) କୃପଣ, ସାନଦୃଷ୍ଟିଆ, ସାନ-ନଜରଆ ।

କୁତ୍ସ୍ୟ—ବିଂ. (କୁତ୍ସ + ଯ) ନିନ୍ଦନୀୟ, କୁପରୀକ୍ଷକ, କଦର୍ଯ୍ୟ, ଘୃଣ୍ୟ ।

କୁଥ—ପୁଂ, ସ୍ତ୍ରୀ. ବ. (କୁଥ୍ + ଅ) ହାତୀ-ଝୁଲ, ହାତୀପିଠିରେ ପକାଯିବା ଚିତ୍ର କମ୍ବଳ, ରଙ୍ଗିନକମ୍ବଳ, ଗାଲିଚ୍, କୁଶ-ତୃଣ, କନ୍ଥା, କୀଟ, ପ୍ରାତଃସ୍ନାୟୀ ବ୍ରାହ୍ମଣ, ଶାକ୍ୟମୁନିଙ୍କ ପୂର୍ବ ଅବତାର ।

କୁଥକ—ଯା.ବ.କନ୍ଥା, ହାତୀପିଠିର ଝୁଲ, ହାତୀପିଠିରେ ପକାଯିବା କମ୍ବଳ ।

କୁଥଲ—ଗ୍ରା.ବିଂ. ଅକର୍ମଣ୍ୟ (ପୁରୁଷ), ଅଳସୁଆ, ବସିଖିଆ ।

**କୁଥଲୀ**—ଗ୍ରା.ବ. ଝୁଲମୁଣି, କୋଥଳି ।

କୁଥମ—ପୁଂ. ବ. ସାମବେଦର ଗୋଟିଏ ଶାଖାର ନାମ ।

କୁଥୁମି—ପୁଂ.ବ. ବୈଦିକ ମୁନିବିଶେଷ ।

କୁଥୁଳି—ଗ୍ରା.ବ. କୋଥଲି, କୁଥଳୀ, ମୁଣି, ଝୁଲମୁଣି ।

କୁଥୋଦରୀ-ସ୍ତ୍ରୀ.ବ. (କୁଥ + ଉଦର + ଈ) ଜଣେ ରାକ୍ଷସୀ ।

କୁଦ୍—ପ୍ରା. (ସମ୍ବ.) ବ. କୁଦ, କୁଦି, ଢିପ, ମାଟିକୁଦା ।

କୁଦ୍ରତ—ଯା. ବ. ଐଶୀଶକ୍ତି, ମହିମା, କ୍ଷମତା, ଶକ୍ତି, ବଳ, ବେଗ, ପ୍ରଭୃତି ।

କୁଦ—ପ୍ରା. ବ. (ସଂ-କକୁଦ) ଢିପ, ଉଚ୍ଚଭୂମିଖଣ୍ଡ, ବାଲିସ୍ତୂପ, ପାହାଡ଼, ମୁଣ୍ଡିଆ, ସମୁଦ୍ର, ଉଚ୍ଚପଦା ।

କୁଦଣ୍ଡ—ପୁଂ.ବ. ଅନୁଚିତଦଣ୍ଡ ।

କୁଦର୍ଥ—ଗ୍ରା. ଅବ୍ୟ. କଦାପି, କେବେ-ହେଲେ ।

କୁଦା—ଗ୍ରା. ବ. କୁଦ (ଦେଖ), (ବିଂ) ବଡ଼ମୋଟା, ଦଳପଦା (ମାଙ୍କଡ଼) ।

କୁଦାଇବା, କୁଦେଇବା—ଗ୍ରା. କ୍ରି. କୁଦି-ବାର ଣିଜନ୍ତରୂପ ।

କୁଦାକୁଦା—ଗ୍ରା. ଅବ୍ୟ. ସ୍ତୂପୀକୃତ, ରାଶୀକୃତ, ବହୁଗଦା, କୁଢ଼କୁଢ଼ହୋଇ, ଦଳଦଳହୋଇ ।

କୁଦାକୁଦିକରିବା—ଗ୍ରା. କ୍ରି. ଲମ୍ଫଦେବା ତିଆଁ ଡେଇଁକରିବା, ନାଚିବା, କୌଣସି ବସ୍ତୁକୁଗୋଡ଼ତଳରେ ମାଡ଼ିଚକଟିଦେବା ।

କୁଦାମାରିବା—ଗ୍ରା. କ୍ରି. ନାଚିବା, ଡେଇଁବା, ଗୋଡ଼ଦ୍ୱାରା ଚକଟିବା, ଡେଇଁ କରି ଦୌଡ଼ିପଳାଇବା ।

କୁଦାର—ପୁଂ. ବ. (କୁ + ଦୃ + କ.ଅ) କୁଦାଲ, କାଞ୍ଚନ (ଗଛ), କୋଡ଼ି, କାଙ୍କୋଆଦ ମାଟିକାଟିବା ଅସ୍ତ୍ର ।

କୁଦାର—ପୁଂ.ବିଂ. (କୁ + ଦାର) ବ.ବ୍ରୀ, ଯାହାର ସ୍ତ୍ରୀ କୁତ୍ସ ବା ମନ୍ଦ ।

କୁଦାଲ—ପୁଂ.-ବ.(କୁ + ଦଳ + କ,ଅ) ଭୂମିକାଟିବା ଶସ୍ତ୍ର, କାଙ୍କ କୋଡ଼ିଆଦି, କାଞ୍ଚନ (ଗଛ) ।

କୁଦିଆ—ଗ୍ରା.ବିଂ.(ସଂ-କକୁଦ) ଢିପଥିବା (ସ୍ଥାନ), ବଡ଼ ଚୂଳଥିବା (ବୃଷ ଇତ୍ୟାଦି) ।

କୁଦିକାଦିହେବା—ଗ୍ରା. କ୍ରି. କୁଦାକୁଦି କରିବା (ଦେଖ) ।

କୁଦିନ—କ୍ଳୀ. ବ. (କ.ଧା) ଅଶୁଭଦିନ, ଦୁର୍ଦ୍ଦିନ, ମେଘାଚ୍ଛନ୍ନଦିବସ, ସାବନଦିନ, (ଗୋଟିଏ ଦିନରାତିକୁ ସାବନଦିବସ କୁହାଯାଏ) ଦିବାରାତ୍ର ।

କୁଦିବା—ଗ୍ରା. କ୍ରି. ବିଂ. ଡେଇଁବା, ଲମ୍ଫପ୍ରଦାନକରିବା, ଏକସ୍ଥାନରେ ପୁନଃ ପୁନଃ ଡେଇଁବା, ନାଚିବା, (ଗ୍ରା.ଗଞ୍ଜାମ) ଗୋଡ଼ରେ ପିଟିବା, (ପ୍ରା. ସମ୍ବ.) କ୍ରି. ଦୌଡ଼ିବା, ଗାଳିଦେବା ।

କୁଦୃଶ୍ୟ—ବିଂ. ( କ.ଧା ) ଦେଖିବାର ଅଯୋଗ୍ୟ, ଚକ୍ଷୁର ଅପ୍ରୀତିକର ଦୃଶ୍ୟ ।

କୁଦୃଷ୍ଟି—ସ୍ତ୍ରୀ.ବ.(କ.ଧା) ଖରାପ ନଜର, ମିଥ୍ୟା ବା ଭ୍ରାନ୍ତଦୃଷ୍ଟି, ଦୁର୍ବଳ ଦୃଷ୍ଟିଶକ୍ତି, ବିଷଦୃଷ୍ଟି, ବେଦବିରୁଦ୍ଧମତ, (ବିଂ.ବ.ବ୍ରୀ) ମନ୍ଦଚକ୍ଷୁଯୁକ୍ତ, କୁତ୍ସିତ ଦର୍ଶନ ।

କୁଦେଇହେବା—ଗ୍ରା. କ୍ରି. ସକଳକାର୍ଯ୍ୟରେ ଗର୍ବ ଦେଖାଇ ହେବା ।

କୁଦେଶ—ପୁଂ.ବ. (କ. ଧା) ମନ୍ଦଦେଶ, ଅରାଜକ ଦେଶ, ଅସୁବିଧାଜନକ ଦେଶ, ଯେଉଁଦେଶରେ ରାଜା, ଧନୀ, ନଦୀ, ବୈଦ୍ୟ, ବ୍ରାହ୍ମଣ ଓ ଫଳବୃକ୍ଷ ନ ଥାନ୍ତି ।

କୁଦେହ—ପୁଂ. ବ. (କ.ଧା) ଅସୁନ୍ଦର-ଶରୀର, କୁତ୍ସିତଦେହ, (ବିଂ-ବବ୍ରୀ) କୁତ୍ସିତ ଦେହଯୁକ୍ତ ବ୍ୟକ୍ତି (ବ.ପୁଂ) କୁବେର ।

କୁଦ୍ଦନ—ପୁଂ.ବ.ପାର୍ବତୀୟ ବୃକ୍ଷବିଶେଷ ।

କୁଦ୍ଦାର—ପୁଂ.ବ. (କୁ + ଦୃ + ଣି + ଅ) କାଞ୍ଚନବୃକ୍ଷ, ଭୂମିଖୋଳିବା ଯନ୍ତ୍ର, କାଙ୍କ କୋଡ଼ିଆଦି । [କୋଦାଳ ।

କୁଦ୍ଦାଲ—ପୁଂ. ବ. କାଞ୍ଚନ ଗଛ,

କୁଦ୍ମଲ—କ୍ଳୀ. ବ. ବିକାଶୋନ୍ମୁଖ, ପୁଷ୍ପମୁକୁଳ, ଫୁଲକଢ଼ ।

କୁଦ୍ରମି—ପ୍ରା. (ତାମିଲ) ଶିଖା ।

କୁଦ୍ରଙ୍କ, କୁଦ୍ରଙ୍ଗ—ପୁଂ.ବ. ଗୃହବିଶେଷ, ମଞ୍ଚୋପର ମଣ୍ଡପ ।

କୁଦ୍ରି—ପୁଂ. ବ. ଗୋତ୍ର ପ୍ରବର୍ତ୍ତକ ଋଷିଭେଦ ।

କୁଦ୍‌ବଳ—ଯା. ବି. କ୍ଷମତା, ଦକ୍ଷତା, ପୌରୁଷ ।
କୁଦ୍ୱାର—ବି. ବାଡ଼ଦୁଆର, କୁତ୍ସିତଦ୍ୱାର ।
କୁଧର—ପୁଂ. ବି. (କୁ+ଧୃ+କ.ଅ) ପର୍ବତ, ଭୂଧର ।
କୁଧାକୁଧା—ଗ୍ରା. ଅବ୍ୟ. କୁଦା କୁଦା (ଦେଖ) ।
କୁଧାନ୍ୟ—କ୍ଲୀ. ବି. କେତେକ ପ୍ରକାର ଧାନ୍ୟବିଶେଷ ।
କୁଧାର—ସ୍ତ୍ରୀ.ବି. (କ.ଧା) ମନ୍ଦ ନିୟମ, କୁରୀତି, ମନ୍ଦଆଚରଣ ।
କୁଧୀ—ପୁଂ. ବିଂ. (ବ.ବ୍ରୀ) ନିର୍ବୋଧ, ନିର୍ଲଜ୍ଜ, ଖଳ ।
କୁଧ୍ର—ପୁଂ. ବି. (କୁ+ଧୃ+କ,ଅ) ପର୍ବତ, ଭୂଧର ।
କୁନକ—ପୁଂ. ବି. ଜନପଦବିଶେଷ ଓ ସେହିଜନପଦବାସୀ ।
କୁନଖ—ପୁଂ. ବି. (କୁ+ନଖ) ରୋଗବିଶେଷ, କଣନଖା, ଖରାପ ନଖ, (ବିଂ) କୁତ୍ସିତନଖଯୁକ୍ତ ବ୍ୟକ୍ତି, ଯାହାର ନଖଗୁଡ଼ିକ ମନ୍ଦ ।
କୁନଖୀ—ପୁଂ.ବିଂ. କୁନଖ ରୋଗବିଶିଷ୍ଟ, ମଳିନନଖ ବିଶିଷ୍ଟ (ବ୍ୟକ୍ତି) ।
କୁନଟ—ବି.(କୁ+ନଟ୍+ଅ)ମନଃଶିଳା। ବୃକ୍ଷବିଶେଷ, ଧାତୁଦ୍ରବ୍ୟବିଶେଷ, ଏକପ୍ରକାର ଧନିଆ, ମନ୍ଦନର୍ତ୍ତକ, ଜନପଦବିଶେଷ ଓ ସେହି ଜନପଦ ବାସୀଜାତିବିଶେଷ, (ସ୍ତ୍ରୀ) କୁନଟୀ ।
କୁନଟୀ—ସ୍ତ୍ରୀ. ବି. ମନୋଜ୍ଞ,ମନ୍ଦନର୍ତ୍ତକୀ, ଧାନ୍ୟବିଶେଷ । [ଅବାଧ ।
କୁନନ୍ଦମ—କ୍ଲୀ. ବିଂ. ଅପରବର୍ତ୍ତିନୀସ୍ଥ,
କୁନଲୀ—ପୁଂ. ବି. (କୁ+ନଳ+ଇନ୍) ବକବୃକ୍ଷ ବିଶେଷ, ଗଇଶଗଛ, ଅଗସ୍ତି ଗଛ ।
କୁନବୀ—ସ୍ତ୍ରୀ.ବି.କୃଷିଜୀବୀ ଜାତିବିଶେଷ, କୁଡ଼ମିଜାତି ।
କୁନକ୍ଷ—ପୁଂ. ବି. ଐଶାନକୋଣସ୍ଥ ଜନପଦବିଶେଷ ଓ ତଦ୍ଦେଶବାସୀ, (ବିଂ) କୁତ୍ସିତ ବନ୍ଧନକାରକ ।
କୁନା—ଯା.ବି. ଦ୍ୱେଷ, ଅସୌହୃଦ,ଈର୍ଷା, କ୍ରୋଧ, ଅଭିମାନ, ମନୋମାଳିନ୍ୟ ।

କୁନାଥ—ପୁଂ. ବି. (କ.ଧା) ମନ୍ଦସ୍ୱାମୀ, କୁତ୍ସିତସ୍ୱାମୀ । [ଇତ୍ୟାଦ ।
କୁନାଶିକା—ସ୍ତ୍ରୀ. ବି, କ୍ଷୁଦ୍ରନଦୀ, ସୋଡ଼-
କୁନାଭି—ପୁଂ.ବି. ଘୂର୍ଣ୍ଣୀବାୟୁ, ବତାସ, ବାତମଣ୍ଡଳୀ, କୁବେରଙ୍କ ନିଧିବିଶେଷ ।
କୁନାମ—କ୍ଲୀ. ବି. (କ.ଧା)କୁତ୍ସିତନାମ, ଦୁର୍ନାମ, ଅଯଶ, ଅଖ୍ୟାତି, ବଦ୍‌ନାମ, (ବିଂ.) ଅତିପାପକାର୍ଯ୍ୟକାରୀ ବ୍ୟକ୍ତି ।
କୁନାମା—ପୁ. ସ୍ତ୍ରୀ. ବି. (ବ.ବ୍ରୀ)କୁତ୍ସିତ ନାମ ବିଶିଷ୍ଟ, ଅତିକୃପଣ ।
କୁନାୟକ—ପୁଂ.ବିଂ. ଯାହାର ପରିଚାଳକ ମନ୍ଦ. (ବି)ମନ୍ଦନାୟକ,(ସ୍ତ୍ରୀ) ଯାହାରସ୍ୱାମୀ ମନ୍ଦ । [ଅସତ୍ତ୍ୱ ସ୍ତ୍ରୀ ।
କୁନାରୀ—ସ୍ତ୍ରୀ.ବି.(କ.ଧା)ମନ୍ଦସ୍ତ୍ରୀ,କୁଭାର୍ଯ୍ୟା,
କୁନାଳ—ପୁଂ. ବି. ହିମାଳୟଜାତ ଏକ ପ୍ରକାରପକ୍ଷୀ, ମହାରାଜ ଅଶୋକଙ୍କର ଜଣେ ପୁତ୍ର । [କୋକିଳ ।
କୁନାଳିକ—ପୁଂ.ବି.(କୁ+ନାଳ+ଇକ)
କୁନାଶକ—ପୁଂ. ବି. (କୁ+ନଶ୍+ଣି +ଅକ) ଆଲକୁଶୀ, ବାଇଡଙ୍କ, (ପୁଂ. ବିଂ) କୁତ୍ସିତରୂପେ ନାଶକାରୀ ।
କୁନି—ଗ୍ରା. ବିଂ. ଛୋଟ ଓ ସୁନ୍ଦର,କ୍ଷୁଦ୍ର, ଟିକିପିଲା, (ପ୍ରା.ହିନ୍ଦୁ.ବି.) ବାଳିକା ।
କୁନିକାନିଆଁ—ଗ୍ରା. ବି. କାନରେ ଲୁଚି- କରି କହିବା କଥା, ଚୁଗୁଲି ।
କୁନିଗଞ୍ଜ—ପୁଂ. ବି. ଦଶମ ମନୁରପୁତ୍ର ।
କୁନୀତି—ସ୍ତ୍ରୀ.ବି. (କ.ଧା) ମନ୍ଦରୀତି,ମନ୍ଦ- ଆଚରଣ, ଅନୀତି, ପାପ ।
କୁନେତ୍ରକ—ପୁଂ. ବି. ମୁନିବିଶେଷ ।
କୁନନ୍ଦ—ପୁଂ. ବି. ପୁରାଣୋକ୍ତ ଭାରତର ଉତ୍ତରଦିଗ୍‌ବର୍ତ୍ତୀଜନପଦ ଓ ଜାତିବିଶେଷ ।
କୁନୁମୁନ—ଗ୍ରା. ବିଂ. କ୍ଷୁଦ୍ର ଓ ସୁନ୍ଦର ।
କୁନୁମୁନିଆଁ-ଗ୍ରା.ବିଂ. କୁନୁମୁନ(ଦେଖ) ।
କୁନ୍ତ—ପୁଂ.ବି. (କୁ+ଅନ୍ତ)କ୍ଷୁଦ୍ରକୀଟ, ଉକୁଣୀ, କୋପନସ୍ୱଭାବ, ମୁନିଆଁ ଅସ୍ତ୍ରବିଶେଷ, ଭଲ୍ଲ, ପକ୍ଷଯୁକ୍ତ ଶର, ଚେଷ୍ଟା, ବରଛା, ଶସ୍ୟବିଶେଷ, କାମକ୍ରୋଧାଦି ଶାରୀରିକ ରିପୁ ।

କୁନ୍ତନ—ଯା.ବି. ପ୍ରତିଲୋମ, ବର୍ଣ୍ଣସଙ୍କର ଜାତିବିଶେଷ, ବୈଶ୍ୟ ଔରସରେ ବ୍ରାହ୍ମଣୀଗର୍ଭରୁ ଏହି ଜାତିର ଉତ୍ପତ୍ତି ।
କୁନ୍ତଳ—ପୁଂ. ବି. (କୁନ୍ତ+ଲା+କ, ଅ) କେଶ, ବାଳର କେରା, ଲଙ୍ଗଳ, ଯବ, ଚଷକ, ପାନପାତ୍ରବିଶେଷ,ସୁଗନ୍ଧ ଦ୍ରବ୍ୟ ବିଶେଷ, ଦେଶବିଶେଷ ।
କୁନ୍ତଳା—ବି. ଦେଶବିଶେଷ ଓ ତହିଁର ଅଧିବାସୀ ।
କୁନ୍ତଳିକା—ବି. (କୁନ୍ତଳ+ଇକ+ଆ) ଏକପ୍ରକାର ଛୁରୀ ।
କୁନ୍ତି—ପୁଂ. ବି, ଧର୍ମରାଜାଙ୍କପୁତ୍ର, ଜନପଦ ଓ ସେହି ଜନପଦବାସୀ କ୍ଷତ୍ରିୟ ଜାତିବିଶେଷ, ପକ୍ଷିରାଜ ଗରୁଡ଼ଙ୍କ ପ୍ରପୌତ୍ର ଓ ସମ୍ପାତିଙ୍କ ପୁତ୍ର ।
କୁନ୍ତିଭୋଜ-ପୁଂ. ବି. ଜଣେ ଯାଦବରାଜା, ଏ କୁନ୍ତୀଙ୍କୁ ପୋଷ୍ୟା କନ୍ୟାକରି ପାଳିଥିଲେ ।
କୁନ୍ତଳିକା—ସ୍ତ୍ରୀ.ବି.ଦହି କାଟିବା ନିମନ୍ତେ ଯେଉଁଛୁରୀ ବ୍ୟବହୃତ ହୁଏ ।
କୁନ୍ତୀ—ସ୍ତ୍ରୀ.ବି. (କୁନ୍ତ+ଈ)ପାଣ୍ଡୁରାଜାଙ୍କ ପ୍ରଥମା ସ୍ତ୍ରୀ, କର୍ଣ୍ଣଯୁଧିଷ୍ଠିରାଦିଙ୍କ ମାତା, ବ୍ରାହ୍ମଣପତ୍ନୀ, ସୁଗନ୍ଧ ତୃଣବିଶେଷ ।
କୁନ୍ତାପ—ପୁଂ.ବି. ଅଥର୍ବ ବେଦର ମନ୍ତ୍ରଭେଦ,(କ୍ଲୀ) ପେଟର ୨୧ଗୋଟି ନାଡ଼ି ।
କୁନ୍ଥ—(ଧାତୁ) କଷ୍ଟପାଇବା,କୁନ୍ଥାଇବା, ଆଘାତକରିବା, କ୍ଲେଶଦେବ, ଗୁଡ଼େଇ ହେବା, ଆଲିଙ୍ଗନ କରିବା ।
କୁନ୍ଥକାନ୍ଥ—ଗ୍ରା.ବି.ଅନିଚ୍ଛା ପ୍ରକାଶ,ପଶ୍ଚାତ୍ପଦତା, ବାଇମ୍ବାର, (ବିଂ) କୁନ୍ଥୁକୁନ୍ଥୁ (ଦେଖ) ।
କୁନ୍ଥନ—କ୍ଲୀ. ବି. (କୁନ୍ଥ+ଭା, ଅନ) କୁନ୍ଥେଇବା, କ୍ଲେଶଦ୍ୟୋତନ,କାତରତା, କୁନ୍ଥାଣ, ସ୍ତନନ, (କୁନ୍ଥନ ଶବ୍ଦ) ।
କୁନ୍ଥା—ଗ୍ରା. ବି. କୁନ୍ଥନ, (ପ୍ରା.ବାଲେ.ବି) ଦନ୍ତରୋଗ, ସର୍ବଦା ପୀଡ଼ିତ, ଦାଢ଼ଅସ୍ତ୍ର), କୃପାଣ ।
କୁନ୍ଥାଇବା, କୁନ୍ଥେଇବା—ଗ୍ରା. କ୍ରି.କୁନ୍ଥନ କରିବା, ପ୍ରସବ ସମୟରେ ଶୂଳଖାଇବା,

ରୋଗର ଛଳନା କରି ରୋଗୀର ଅଭିନୟ କରିବା, (ଲ.ଅର୍ଥ) ଅନିଚ୍ଛା-ପ୍ରକାଶ କରିବା ।

କୁନ୍ଥାକୁନ୍ଥି—ଗ୍ରା.ବି.ଉପର୍ଯ୍ୟୁପରି କୁନ୍ଥନ, ବହୁବାର କୁନ୍ଥାଇବା କର୍ମ ।

କୁନ୍ଥଣ—ଗ୍ରା. ବି. ପ୍ରସବ କରିବା ବା କୋଷ୍ଠବଦ୍ଧମଳ ନିଷ୍କାସନ କରିବା ଚେଷ୍ଟାରେ ଜୋରପୂର୍ବକ ନିଃଶ୍ୱାସରୋଧ ଓ ତ୍ୟାଗ, ଗର୍ଭବେଦନା ।

କୁନ୍ଥାହଗା—ଗ୍ରା. ବି. ଅତିସାର, ନାଳ-ରକ୍ତଝାଡ଼ା ।

କୁନ୍ଥାହଗୁରା—ଗ୍ରା.ବିଂ.ନାଳରକ୍ତ ଝାଡ଼ା-ଦ୍ୱାରା ଆକ୍ରାନ୍ତବ୍ୟକ୍ତି, କୋଷ୍ଠବଦ୍ଧହେତୁ ହଗିଲାବେଳେ କୁନ୍ଥାଇବା ଯାହାର ଅଭ୍ୟାସ ।

କୁନ୍ଥୁକୁନ୍ଥୁ—ଗ୍ରା.ବିଂ.ବାରମ୍ବାର ସାମାନ୍ୟ କୁନ୍ଥାଉ ଥିବା, (ଲ.ଅର୍ଥ) କାର୍ଯ୍ୟକରିବା ବିଷୟରେ ଅନିଚ୍ଛୁକ,ନାରାଜ,କୁଣ୍ଠିତ ।

କୁନ୍ଥେଇ କାନ୍ଥେଇହେବା—ଗ୍ରା.କ୍ରି.କୁନ୍ଥୁ କୁନ୍ଥୁ (ଦେଖ) ।

କୁନ୍ଥେଇକୁନ୍ଥୁରହେବା—ଗ୍ରା.କ୍ରି. ମୁଖରେ ଅତି ବ୍ୟସ୍ତଭାବ ପ୍ରକାଶ କରିବା, କୁନ୍ଥୁକୁନ୍ଥୁ (ଦେଖ) ।

କୁନ୍ଦ—ପୁଂ. ବି. (କୁ+ଉନ୍ଦ+ଅ) ମଲ୍ଲି ଜାତୀୟ ଗୁଳ୍ମ ଓ ତାହାର ଧଳାଫୁଲ, କୁନ୍ଦବାରଯନ୍ତ୍ର, ନିଧିବିଶେଷ, ଲେଦାନ୍, ବିଷ୍ଣୁଙ୍କର ନାମ, ନଅସଂଖ୍ୟା, ପଦ୍ମ, କଣିଅର ଫୁଲ ଓ ଗଛ ।

କୁନ୍ଦକ—ପୁଂ. ବି. ଗନ୍ଧଦ୍ରବ୍ୟ ବିଶେଷ, କୁନ୍ଦୁରୁ ବୃକ୍ଷ ।

କୁନ୍ଦକର—ପୁଂ.ବି.(କୁନ୍ଦ+କୃ+କ,ଅ) କୁନ୍ଦବା ଯନ୍ତ୍ରରେ କାମ କଲାବାଲା, କାରିଗର ।

କୁନ୍ଦଚତୁର୍ଥୀ—ବି. ବରଦା ଚତୁର୍ଥୀ, ମାଘ ଶୁକ୍ଳଚତୁର୍ଥୀ ।

କୁନ୍ଦଦତୀ—ସ୍ତ୍ରୀ.ବିଂ.(ବ.ବ୍ରୀ.)କୁନ୍ଦଦନ୍ତୀ, (ଦେଖ) ।

କୁନ୍ଦଦନ୍ତ—ପୁଂ.ବି. (କ.ଧା) କୁନ୍ଦପୁଷ୍ପପରି ଶୁଭ୍ରଦନ୍ତ, (ବିଂ.ବ.ବ୍ରୀ) କୁନ୍ଦପୁଷ୍ପବତ୍ ଶୁଭ୍ରଦନ୍ତବିଶିଷ୍ଟ ।

କୁନ୍ଦଦନ୍ତୀ—ସ୍ତ୍ରୀ.ବିଂ.(ବ.ବ୍ରୀ)କୁନ୍ଦକଳିକା ପରି ସରୁ ଓ ସୁନ୍ଦରଦନ୍ତବିଶିଷ୍ଟା (ସ୍ତ୍ରୀ) ।

କୁନ୍ଦଦଶନା—ସ୍ତ୍ରୀ.ବି.(ବ.ବ୍ରୀ) କୁନ୍ଦଦନ୍ତୀ, (ଦେଖ) ।

କୁନ୍ଦନ—କ୍ଲୀ. ବି. (କୁନ୍ଦ+ଖ, ଅନ) କୁନ୍ଦବାକାମ,କୁନ୍ଦାଯନ୍ତ୍ରରେ ପ୍ରସ୍ତୁତପଦାର୍ଥ, (ଗ୍ରା.ବି.) ସୁବର୍ଣ୍ଣବିଶେଷ,ସୁନାରେ ପଥର ଖଚିତହେବା କର୍ମ ।

କୁନ୍ଦନକାମ—ଗ୍ରା. ବି. ସୁନା ଅଲଙ୍କାର ଉପରେ ବହୁମୂଲ୍ୟ ରତ୍ନାଦି ବସାଯିବା କାରିଗରି ।

କୁନ୍ଦନସୁନା—ଗ୍ରା. ବି. (ବଣିଆଁ ଶବ୍ଦ) ବିଶୁଦ୍ଧସୁନାକୁ ପତଳାପାତକରି ତାହାଁରେ ଘଷିପାଉଁଶ ଏବଂ ଲେମ୍ବୁଲରସ ଓ ମସଲାଦ୍ୱାରା ପୁଟଦେଇ ତପ୍ତରେ ° ଅରି ବିଶୁଦ୍ଧଜଳରେ ଧୋଇଲେ ଯେଉଁ ସୁନା ହୁଏ ।

କୁନ୍ଦପୁଷ୍ପ—କ୍ଲୀ. ବି. କୁନ୍ଦଗଛର ଫୁଲ, କରବୀଫୁଲ । [ଫରୁଆ ।

କୁନ୍ଦଫରୁଆ—ଗ୍ରା. ବି.କୁନ୍ଦଯନ୍ତ୍ରରେ ପ୍ରସ୍ତୁତ

କୁନ୍ଦମ—ପୁଂ.ବି. (କୁଂ+ଦମ+କ,ଅ) ବିରାଡ଼ି, ବଲେଇ, ବିଡ଼ାଲ ।

କୁନ୍ଦମାଳା—ସ୍ତ୍ରୀ. ବି. କୁନ୍ଦଫୁଲର ହାର ବା ମାଳା, ଗ୍ରନ୍ଥବିଶେଷ ।

କୁନ୍ଦର—ପୁଂ. ବି. (କୁଂ+ଦୃ+କ, ଅ) ବିଷ୍ଣୁ, କଳିଙ୍ଗ ଦେଶୀୟ ତୃଣବିଶେଷ ।

କୁନ୍ଦରଦନା—ସ୍ତ୍ରୀ.ବି. ବ.ବ୍ରୀ, (କୁନ୍ଦ+ରଦନ+ଆ)କୁନ୍ଦଦନ୍ତୀ (ଦେଖ) ।

କୁନ୍ଦଳକେଶରୀ—ପୁଂ ବି. କେଶରୀବଂଶୀୟ ଓଡ଼ିଶାର ଜଣେ ରାଜା ।

କୁନ୍ଦା—ଗ୍ରା. ବିଂ. କୁନ୍ଦ ଯନ୍ତ୍ରରେ ପାଲିସ୍ କରାଯାଇଥିବା, କୁନ୍ଦରେ ଗଢ଼ାଯାଇ-ଥିବା, (ବିଂ) କୁନ୍ଦବାଯନ୍ତ୍ର, ଭ୍ରାମ୍ୟମାଣ ଗୋଲକାରଯନ୍ତ୍ର, ଶାଆଣ ଚକ, ପ୍ରହାର, ମାଡ଼, କୁନ୍ଦନ, କୁନ୍ଦବା, ଛୋଟ ଓ ବଡ଼ ଠେଙ୍ଗୁଣି, (ଯା.ବି.) ବନ୍ଧୁକର ମୂଳକାଠ ନିର୍ମିତ ଅଂଶ ।

କୁନ୍ଦାକୁନ୍ଦକରିବା—ଗ୍ରା. କ୍ରି. ବିଶେଷ ଭାବରେ ପ୍ରହାରାଦିଦ୍ୱାରା ଅଘାତକରିବା, କୁନ୍ଦେ ମାଡ଼ଦେବା, ଟାଙ୍କେ ଛେଚିବା, କୁନ୍ଦଯନ୍ତ୍ର ଦ୍ୱାରା ପାଲିସ କରିବା ।

କୁନ୍ଦିନୀ—ସ୍ତ୍ରୀ. ବି. (କୁନ୍ଦ+ଅନ+ଈ) ପଦ୍ମିନୀ, ପଦ୍ମସମୂହ ।

କୁନ୍ଦିବା—ଗ୍ରା. କ୍ରି. କୁନ୍ଦଯନ୍ତ୍ରଦ୍ୱାରା ଚକ୍କଣ କରିବା, ଟାଙ୍କେ ମାଡ଼ଦେବା ଓ ପ୍ରହାର କରିବା, ଠେଙ୍ଗାମୁଣ୍ଡଦ୍ୱାରା ଛେଚିମାଡ଼ ଦେବା ।

କୁନ୍ଦୁ—ପୁଂ.ବି. (କୁ+ଦୃ+ଉ) ମୂଷା, (ସ୍ତ୍ରୀ) କୁନ୍ଦୁରୁଗଛର ଅଠା, ଗନ୍ଧଦ୍ରବ୍ୟ ବିଶେଷ ।

କୁନ୍ଦୁର—ପୁଂ. ବି. (କୁ+ଦୃ+ଉର) କୁନ୍ଦୁରୁନାମକ ଗନ୍ଧଦ୍ରବ୍ୟ ବିଶେଷ ।

କୁନ୍ଦୁରୀ—ଗ୍ରା. ବି. ଗୋଲପାତ ବିଶେଷ, ପରିବା ବିଶେଷ,(ପ୍ରା.ମେଦ) ପାଣି-କଖାରୁ, (ଗ୍ରା.ବିଂ.) ଦୁଷ୍ଟ, କଳହୀ ।

କୁନ୍ଦୁରୁ—ପୁଂ. ବି. ଗନ୍ଧଦ୍ରବ୍ୟବିଶେଷ, (ଗ୍ରା.ବି) ଏକପ୍ରକାର ପଟୋଳ ଜାତୀୟ ଫଳ, (ମଟକା ଫଳପରି), କୁନ୍ଦୁରୁ-ଖଣ୍ଡି (ଦେଖ) ।

କୁନ୍ଦୁରୁକ—ପୁଂ.ସ୍ତ୍ରୀ. ବି. କୁନ୍ଦୁରୁବୃକ୍ଷ ।

କୁନ୍ଦୁରୁକୀ—ବି. (କୁ+ଉନ୍ଦ+ଉକ+ଈ) କୁନ୍ଦୁରୁ(ଦେଖ), ଶଲ୍ଲକୀବୃକ୍ଷ ।

କୁନ୍ଦୁରୁଖଣ୍ଡି—ଗ୍ରା. ବି. (ସଂ-କୁନ୍ଦୁରୁ) ଲୋବାନ୍, ଏକପ୍ରକାର ଝୁଣା, ସୁଗନ୍ଧ ଧୂପଦ୍ରବ୍ୟ । (ଦେଖ) ।

କୁନ୍ଦୁରୁକିଆ—ଗ୍ରା.(ପୁଷ୍ପ) କୁନ୍ଦୁରୁଖଣ୍ଡି

କୁନ୍ଦେନ୍—ପ୍ରା.(ସମ୍ପ)ବି. ପ୍ରେତଯୋନି-ବିଶେଷ ।

କୁପ୍—(ଧାତୁ) ରାଗିବା, ରାଗକରିବା, କ୍ରୋଧଜର୍ଜରିତହେବା, ଚଢ଼ିବା, ପ୍ରବଳ ହେବା, କଥାକହିବା ।

କୁପ୍‌କୁପ୍—ଗ୍ରା. ଅବ୍ୟ. ମୁହଁକୁ ଛୋଟ-କରି ପାକୁ ପାକୁ କରିବା, (ଗ୍ରା. ବିଂ) ମୁହଁକୁ ଛୋଟକରି ପାକୁପାକୁ କରିବା ।

କୁପଟ—ପୁଂ.ବି.ଛଦ୍ମବସ୍ତ୍ର, ଦାନବଭେଦ ।

କୁପଥ—ବି.(କୁ+ପଥ)ମନ୍ଦବାଟ,ଅବାଟ, ଅସୁରଭେଦ, ଜଘନ୍ୟପଥ, ନିନ୍ଦିତ-କାର୍ଯ୍ୟ, ମନ୍ଦକାର୍ଯ୍ୟ, ଅସଦାଚରଣ ।

କୁପଥଗାମୀ—ପୁଂ. ବଂ. (କୁ+ପଥ+ଗମ୍+ଇନ୍) ଅସଦାଗ୍ରସ୍ତ, ମନ୍ଦକର୍ମ କରୁଥିବା (ବ୍ୟକ୍ତି) ।
କୁପଥପ୍ରଦର୍ଶକ—ପୁଂ.ବଂ.(କୁପଥ+ପ୍ରଦର୍ଶକ) ଲୋକମାନଙ୍କୁ ଅସତ୍କାର୍ଯ୍ୟରେ ପ୍ରବର୍ତ୍ତାଇବା (ବ୍ୟକ୍ତି) ।
କୁପଥ୍ୟ—କ୍ଳୀ. ବ. (କୁ+ପଥ୍ୟ) ମନ୍ଦଖାଦ୍ୟ, ଅହିତକରଖାଦ୍ୟ, (ବଂ)ଅହିତକର, ଅସ୍ୱାସ୍ଥ୍ୟକର, ଯାହା ଖାଇଲେ ରୋଗ ଜନ୍ମେ ।
କୁପନ—ପୁଂ, ବ. ଅସୁରଭେଦ ।
କୁପସ୍ଥ—ବଂ. ଗୋପନୀୟ ।
କୁପରୀକ୍ଷକ—ପୁଂ. ବ. ଯେ ବିଗ୍ରହକାଳେ ଉଚିତାନୁଚିତ ବିବେଚନା କରେ ନାହିଁ ଓ ଗୁଣର ଯଥୋପଯୁକ୍ତ ସମ୍ମାନ କରେନାହିଁ ।
କୁପା—ଗ୍ରା. ବ. ପାତ୍ରବିଶେଷ, କୁମ୍ଭା ।
କୁପାଞ୍ଚ—ଗ୍ରା. ବ. ମନ୍ଦପାଞ୍ଚ, ଷଡ଼ଯନ୍ତ୍ର ।
କୁପାଣି—ପୁଂ. ବ. (ବ.ବ୍ରୀ) ବକ୍ରହସ୍ତ, କେମ୍ପାହାତିଆ ।
କୁପାତ୍ର—ପୁଂ.ବ.(କୁ+ପାତ୍ର)ଅଯୋଗ୍ୟକର,ଦାନର ଅଯୋଗ୍ୟପାତ୍ର, ଅଯୋଗ୍ୟ ମନ୍ତ୍ରୀ, ମନ୍ଦପାତ୍ର ବା ଆଧାର ।
କୁପି-ଯା.ବ.ରେଲଗାଡ଼ିର ଛୋଟ କାମରା, ଯେଉଁ ରେଲ କୋଠରେ ଦୁଇଜଣ ମନୁଷ୍ୟ ପାଇଁ ସ୍ଥାନ ଥାଏ, ଜଙ୍ଗଲର ସୀମା ନିର୍ଦ୍ଦିଷ୍ଟ କ୍ଷୁଦ୍ର ଅଂଶ, ଜଙ୍ଗଲରେ ଛୋଟ ଛୋଟ ସୀମା ମଧ୍ୟରେ ବଡ଼ ବଡ଼ ଗଛ ଲଗାଇବା ରୀତିବିଶେଷ, (ଗ୍ରା.ବ.) କୁମ୍ପି, ତେଲଘଡ଼ି ।
କୁପିଞ୍ଜଳ—ପୁଂ. ସ୍ତ୍ରୀ. ବ. ପକ୍ଷିବିଶେଷ ।
କୁପିତ—ବଂ.(କୁପ୍+କ.ତ)କୋଧାନ୍ୱିତ, କ୍ରୋଧୀ,ବିରକ୍ତ, (ବାତପିତ୍ତାଦି)ବର୍ଦ୍ଧିତ ।
କୁପିତା—ପୁଂ.ବ. (କ.ଧା) ଯେଉଁ ପିତା ସନ୍ତାନ ପ୍ରତି ଅସଦ୍ ବ୍ୟବହାର କରେ ।
କୁପିତାନ୍ତକ—ବ. ( କୁପିତ+ଅନ୍ତକ ) ଆସନ୍ନ ମୃତ୍ୟୁ ।
କୁପିନ୍ଦ—ବ. କୁବିନ୍ଦ (ଦେଖ) ।

କୁପିନୀ—ସ୍ତ୍ରୀ.ବ. (କୁପ୍+କ.ଇନ୍+ଈ) ଛୋଟ ଛୋଟ ମାଛଧରିବା ଜାଲ,ମାଛର ଖାଲୋଇ, (ପୁଂ.ବ) କେଉଟ, ମତ୍ସ୍ୟଜୀବୀ ବ୍ୟକ୍ତି । [ତିନ୍ତ୍ରୀ ।
କୁପିଲ—ପୁଂ.ବ.(କୁପ୍+ଇଲ)ତନ୍ତୁବାଦ୍ୟ,
କୁପିବା—ଗ୍ରା. କ୍ରି. କୋପନ କରିବା, ରାଗକରିବା ।
କୁପୀଲୁ—ପୁଂ. ବ. ମାଙ୍କଡ଼କେନ୍ଦୁ ।
କୁପୁକୁପୁ—ଗ୍ରା.ବଂ. କୁପକୁପ(ଦେଖ) ।
କୁପୁତ୍ର—ପୁଂ.ବ. (କୁ+ପୁତ୍ର)କୁଳାଙ୍ଗାର ପୁତ୍ର, ଯେଉଁ ପୁତ୍ର ମାତାପିତା ପ୍ରତି ଅସତ୍ ବ୍ୟବହାର କରେ; ଯେଉଁ ପୁତ୍ର ବଂଶଗୌରବ ନଷ୍ଟ କରେ, ନରକାପୁର,କ୍ଷେତ୍ରଜ ପ୍ରଭୃତି ପୁଅ,ଅସତ୍ପୁତ୍ର ।
କୁପୁରୁଷ—ପୁଂ.ବ.(କୁ+ପୁରୁଷ)କୁତ୍ସିତ ବ୍ୟକ୍ତି, କାପୁରୁଷ ।
କୁପୂସ୍ତ-ପୁଂ.ବଂ.(କୁ+ପୁସ୍ତ+ଅ)କୁତ୍ସିତ ଜାତି ଓ ଆଚାରର ନିନ୍ଦିତ, ହୀନ, ଘୃଣ୍ୟ, ହେୟ, ନିନ୍ଦିତ ।
କୁପୋଷ୍ୟ—ବଂ. (କୁ+ପୋଷ୍ୟ) ଦୁରସମ୍ପର୍କୀୟ ହେଲେ ମଧ୍ୟ ଯାହାକୁ ପୋଷିବାକୁ ହୁଏ, ଉପାର୍ଜନେ ଅସମର୍ଥ ଖଞ୍ଜାବାରିଷ୍ଠ ମାନବ ।
କୁପ୍ୟ—କ୍ଳୀ. ବ. (କୁପ୍+ମଁ.ଯ)ନିକୃଷ୍ଟଧାତୁ, ସୁନା ରୁପା ଛଡ଼ା ଅନ୍ୟ ଧାତୁ ।
କୁପ୍ୟଶାଳା—ସ୍ତ୍ରୀ. ବ. (କୁପ୍ୟ+ଶାଳା) ବାସନ କୁସନର ଦୋକାନ, ଅଠାରଦୋକାନ ।
କୁପ୍ରାବରଣ—ପୁଂ,ବଂ.ଯାହାର ପୋଷାକ ପତ୍ର ମଳିନ ।
କୁପ୍ଳବ—ପୁଂ.ବ. ତୃଣାଦିନିର୍ମିତ ଭେଳା ।
କୁଫଳ—ବ. (କ.ଧା) ମନ୍ଦପରିଣାମ, ମନ୍ଦଫଳ, ଅଶୁଭ ପରିଣାମ ।
କୁବ୍—ବଂ. କଇଁ, କୁମୁଦ, ପଦ୍ମ ।
କୁବକ୍ତା—ପୁଂ. ବଂ. (କୁ+ବଚ୍+ତୃ) ଅଯୋଗ୍ୟବକ୍ତା, ଯେ ମୁହଁରେ ମନ୍ଦ କଥା କହେ,(ବ)ବକ୍ତୃତା କରିବାରେ ଅଯୋଗ୍ୟ ବ୍ୟକ୍ତି ।

କୁବେର—ପୁଂ.ବଂ. (କୁ+ବେର)କୁରୂପ, ଅଳସୁଆ, (ବ) ଧନାଧିପ, ଯକ୍ଷରାଜ, ନନ୍ଦୀବୃକ୍ଷ ।
କୁବେରାକ୍ଷ—ପୁଂ.ବ.ସଙ୍କରଜାତବିଶେଷ ।
କୁବ୍ଜ—ପୁଂ, ବଂ. (କୁ+ଉବ୍ଜ+ଋ.ଅ) ଉନ୍ନତପୃଷ୍ଠ, କୁଜା, ଆକୁଆ, ରୋଗବିଶେଷ, (ବ) ପିଠିର କୁଜ, ବକ୍ରପୃଷ୍ଠ, ଖଡ୍ଗ, ଅପାମାର୍ଗ ।
କୁବ୍ଜକ—ପୁଂ.ବ. (କୁବ୍ଜ+କ) ପୁଷ୍ପବୃକ୍ଷବିଶେଷ, ଶିଙ୍ଗଡ଼ା ।
କୁବ୍ଜକଣ୍ଟକ—ପୁଂ.ବ.ବୃକ୍ଷବିଶେଷଶିଙ୍ଗଡ଼ା ।
କୁବ୍ଜା—ସ୍ତ୍ରୀ. ବଂ. ( କୁବ୍ଜ+ଆ ) କୁଜୀ, (ବ)କୈକେୟୀଙ୍କ ଦାସୀ,ମନ୍ଥରା(ରାମା°) ମଥୁରାର ଜଣେ ସ୍ତ୍ରୀ, କଂସ ରାଜାର ଜଣେ ବେଶକାରିଣୀ ଭୃତ୍ୟା ।
କୁବ୍ଜିକା—ସ୍ତ୍ରୀ. ବ. ( କୁବ୍ଜ+କ+ଆ ) ଅଷ୍ଟମବର୍ଷୀୟା କୁମାରୀ, ଗୌରୀକନ୍ୟା, ଦେବୀବିଶେଷ, ଦୁର୍ଗା ।
କୁବ୍ଜିତ—ବଂ.(କୁବ୍ଜ+ଇତ)ବକ୍ର, ନତ ।
କୁବ୍ର—କ୍ଳୀ. ବ. ଅରଣ୍ୟ, ନୋଲ, ସୂତ୍ର, ଶଗଡ଼, ମୃଦ, କୁଣ୍ଡଳ ।
କୁବ୍ରହ୍ମ—ପୁଂ.ବ.(କୁ+ବ୍ରହ୍ମନ୍) କୁତ୍ସିତ ବ୍ରାହ୍ମଣ, ଅପକୃଷ୍ଟ ବ୍ରାହ୍ମଣ ।
କୁଭ—ବ. ପାଣି, ଉଦକ ।
କୁଭନ୍ୟୁ—ବଂ. ଜଳାର୍ଥୀ,ଉଦକପ୍ରାର୍ଥୀ ।
କୁଭା—ସ୍ତ୍ରୀ.ବ.ନଦୀବିଶେଷ, କୁତ୍ସିତଦୀପ୍ତି, ପୃଥିବୀର ଛାଇ, ରାହୁ, କାବୁଲନଦୀ, (ଗ୍ରା.ବ.) ମନ୍ଦଶୋଭା,ଏକାଠୀଭୂତ,ରାଶୀକୃତ ବା ଗଦା ହୋଇଥିବା ।
କୁଭାଣ୍ଡକ—ଗ୍ରା. ବ. ବନବିଶେଷ ।
କୁଭାର୍ଯ୍ୟ—ପୁଂ.ବ. (ବ.ବ୍ରୀ) ଯାହାର ସ୍ତ୍ରୀ କୁତ୍ସିତା ଅଥବା ଦୁଷ୍ଟଚରିତ୍ରା ।
କୁଭୁକ୍ତ—କ୍ଳୀ. ବ. (କୁ+ଭୁଜ୍+ତ) କୁଖାଦ୍ୟ, ଅଖାଦ୍ୟ ।
କୁଭୃତ୍—ପୁଂ.ବ.(କୁ+ଭୃ+କ.କ୍ୱିପ୍) ପର୍ବତ, ଭୂଧର, ରାଜା, ସଂଖ୍ୟାଗଣନାର ସାତସଂଖ୍ୟା ।
କୁଭୃତ୍ୟ—ପୁଂ. ବ ମନ୍ଦଭୃତ୍ୟ, ଯେଉଁ ଭୃତ୍ୟ ପ୍ରଭୁର ମଙ୍ଗଳ ଚେଷ୍ଟା କରେନାହିଁ ।

କୁଭୋଜନ—କ୍ଲୀ. ବ. (କ.ଧା) ମନ୍ଦଦ୍ରବ୍ୟ ଭକ୍ଷଣ, କୁତ୍ସିତ ଆହାର ।
କୁମ୍—ଅବ୍ୟ. ବସ୍ତୁସ୍ୱାଦସୂଚକ ।
କୁମ୍‌କା—ଯା.ବ.ସାହାଯ୍ୟ, ସାହାଯ୍ୟକାରୀ ଓ ତତ୍ତ୍ୱପକ୍ଷାବଲମ୍ବୀ । [କନ୍ଧାରୁ ।
କୁମଡ଼ା—ଗ୍ରା.ବ.(କୁଷ୍ମାଣ୍ଡ ଶବ୍ଦଜ) ପାଣି-
କୁମତି—ସ୍ତ୍ରୀ.ବ. (କ.ଧା)କୁଅଭିପ୍ରାୟ,ମନ୍ଦ ବୁଦ୍ଧି, ଅଳ୍ପବୁଦ୍ଧି,(ବି°.ବ.ସ୍ତ୍ରୀ)କୁବୁଦ୍ଧି-ଯୁକ୍ତ (ବ୍ୟକ୍ତି), ଦୁର୍ମତି ।
କୁମଦ—ଗ୍ରା.ବ.ସୁଗନ୍ଧ,ମଧୁରଗନ୍ଧ,(ବି°) ସୁବାସିତ, (ପ୍ରା. ସମ୍ବ. ବି°.) ପ୍ରସନ୍ନ, ହର୍ଷୋତ୍ଫୁଲ ।
କୁମନୀଷ—ପୁଂ. ବ. ( କୁ + ମନୀଷା ) ବ.ସ୍ତ୍ରୀ; ଦୁଷ୍ଟବୁଦ୍ଧି, ଅଳ୍ପବୁଦ୍ଧି ।
କୁମନୀଷୀ—ପୁଂ. ବି°. (କୁ + ମନୀଷା + ଇନ୍) କୁତ୍ସିତବୁଦ୍ଧିଯୁକ୍ତ ।
କୁମନ୍ତ୍ର—ପୁଂ. ବ. ( କ.ଧା ) କୁମନ୍ତ୍ରଣା, ଅସଦୁପଦେଶ,ପରର ଅନିଷ୍ଟସାଧନମନ୍ତ୍ର ।
କୁମନ୍ତ୍ରଣା—ବ. (କ.ଧା) ଷଡ଼ଯନ୍ତ୍ର, ମନ୍ଦ-ଉପଦେଶ ।
କୁମନ୍ତ୍ରୀ—ପୁଂ. ବି°.ବ.(କ.ଧା)ମନ୍ଦମନ୍ତ୍ରୀ, ଅହିତ ପରାମର୍ଶକାରୀ, ଅଯୋଗ୍ୟ ମନ୍ତ୍ରଣା-ଦାତା, ଷଡ଼ଯନ୍ତ୍ରକାରୀ, (ସ୍ତ୍ରୀ)କୁମନ୍ତ୍ରିଣୀ ।
କୁମର—ଗ୍ରା.ବ. ପୁଅ, ପୁତ୍ର, ଯୁବରାଜ, କାର୍ତ୍ତିକେୟ, ବାଳକ, ହରତାଳରେ ଭଇଅଠା ମିଶାଇ ଗଞ୍ଜାପା ସାର ରଙ୍ଗ କରିବାର ହଳଦିଆ ରଙ୍ଗ । [ଘର ।
କୁମା—ଗ୍ରା. ବ. ଛୋଟ ଅସ୍ଥାୟୀ କୁଡ଼ିଆ-
କୁମ୍ପା—ଯା. ବ. ଗଞ୍ଜାପା ଖେଳର ରଙ୍ଗ ବିଶେଷ ।
କୁମାଉନ୍ (କୁମାୟୁନ୍)—ଭାରତର ପଶ୍ଚିମ ପ୍ରଦେଶାନ୍ତର୍ଗତ ବିସ୍ତୃତ ଜନପଦ ।
କୁମାତା—ସ୍ତ୍ରୀ.ବ.(କ.ଧା) ବାତ୍ସଲ୍ୟରହିତ-ଜନନୀ, ଯେଉଁ ମାତାର ସନ୍ତାନ-ବାତ୍ସଲ୍ୟ ନାହିଁ ,ଜଗନ୍ମାତା, ଜଗଜ୍ଜନନୀ ।
କୁମାର—ପୁଂ,ବ. (କୁମାର + ଅ) ବ.ସ୍ତ୍ରୀ, ଶିଶୁ, ପୁତ୍ର, ଯୁବରାଜ, କାର୍ତ୍ତିକେୟ, ଶୁକପକ୍ଷୀ,ସହିସ, ପର୍ବତବିଶେଷ, ଖାଣ୍ଟି ସୁନା,ତୀର୍ଥବିଶେଷ, ପାଞ୍ଚବର୍ଷଠାରୁ ଦଶ-ବର୍ଷ ପର୍ଯ୍ୟନ୍ତ ବୟସ୍କ ବାଳକ, ଅଗ୍ନିଙ୍କର ଗୋଟିଏ ପୁତ୍ରର ନାମ, ବରୁଣବୃକ୍ଷ, ସିନ୍ଧୁ ପ୍ରଦେଶର ଗୋଟିଏ ନାମ, ଅଶ୍ୱ-ବାରକ ବୃକ୍ଷ,ଅଗ୍ନି, ସନକପ୍ରଭୃତି ଋଷି, ମଙ୍ଗଳଗ୍ରହ, ମନ୍ତ୍ରବିଶେଷ, ଭାରତବର୍ଷର ନାମାନ୍ତର, ପ୍ରଜାପତିବିଶେଷ ।
କୁମାରକ—ପୁଂ. ବ. ( କୁମାର + କ ) ବରୁଣବୃକ୍ଷ, ବାଳକ, ରାଜକୁମାର, ଆଖିର ପୁଅ, କୌରବବଂଶୀୟ ନାଗ-ବିଶେଷ ।
କୁମାରକଲ୍ପଦ୍ରୁମ—ପୁଂ. ବ.ବୈଦ୍ୟକୋକ୍ତ ଘୃତବିଶେଷ, ଏହା ସ୍ତ୍ରୀରୋଗର ମହୌଷଧ ।
କୁମାରକଲ୍ୟାଣ—କ୍ଲୀ. ବ. ଆୟୁର୍ବେଦ-ଶାସ୍ତ୍ରୋକ୍ତ ଘୃତବିଶେଷ ।
କୁମାରକୋଟିତୀର୍ଥ—କ୍ଲୀ. ବ. ହନୁମାନ-ଙ୍କର ତୀର୍ଥବିଶେଷ ।
କୁମାରକ୍ଷେତ୍ର—କ୍ଲୀ. ବ. ମାଳବର ଉପ-କୂଳରେ ଗୋଟିଏ ପବିତ୍ରସ୍ଥାନ ।
କୁମାରଗୁପ୍ତ—ପୁଂ.ବ.ଗୁପ୍ତବଂଶୀୟ ଜଣେ ମହାରାଜାଧିରାଜ ।
କୁମାରଘାତୀ—ପୁଂ.ବ. (କୁମାର + ହନ୍ + ଇନ୍ ) ଶିଶୁମାରକ, ଯେ ବାଳକ ହତ୍ୟା କରେ । [ଚୀନ୍ ପଣ୍ଡିତ ।
କୁମାରଜୀବ—ପୁଂ. ବ. ଜଣେ ବିଖ୍ୟାତ
କୁମାରତନ୍ତ୍ର—କ୍ଲୀ.ବ. ତନ୍ତ୍ରଗ୍ରନ୍ଥ ବିଶେଷ, ବାଳକମାନଙ୍କର ଚାନ୍ଦ୍ରିକବଳଚକ୍ରସ୍ତ୍ରା ଗ୍ରନ୍ଥବିଶେଷ ।
କୁମାରଦେବୀ—ସ୍ତ୍ରୀ.ବ.ସମୁଦ୍ରଗୁପ୍ତଙ୍କମାତା ।
କୁମାରଧାରା—ସ୍ତ୍ରୀ. ବ. ନଦୀବିଶେଷ ।
କୁମାରପାଳ—ପୁଂ. ବ. ଚାଲୁକ୍ୟବଂଶୀୟ ଗୁଜରାଟର ଜଣେ ରାଜା,ଶାଳିବାହନଙ୍କ ନାମ ।
କୁମାରପୂର୍ଣ୍ଣିମା—ବ. କୁଆଁରପୁନେଇଁ, ଆଶ୍ୱିନ ପୂର୍ଣ୍ଣିମା ।
କୁମାରବାହନ—ବ. (ଷତତ୍ପୁ) କାର୍ତ୍ତି-କେୟଙ୍କର ବାହନ, ମୟୂର ।
କୁମାରବାହୀ—କ୍ଲୀ.ବ. ( କୁମାର + ବହ୍ + ଣ.ଇନ୍)ମୟୂର ।
କୁମାରବ୍ରତ—ବ. (ମଧ୍ୟ-କ,ଧା) ଅବି-ବାହିତ ରହିବାରୂପ ବ୍ରତ ।
କୁମାରଭଟ୍ଟ—ପୁଂ. ବ. ମୀମାଂସକ କୁମାରିଲ ଭଟ୍ଟଙ୍କର ନାମାନ୍ତର ।
କୁମାରଭୃତ୍ୟା—ସ୍ତ୍ରୀ. ବ. ( କୁମାର + ଭୃ + କ୍ୟପ୍ + ଆ) ବାଳଚିକିତ୍ସା,ଗର୍ଭିଣୀର ପରିଚର୍ଯ୍ୟା, ଧାତ୍ରୀବିଦ୍ୟା ।
କୁମାରସ୍ଥ—ପୁଂ, ବ. (କୁମାର + ସ୍ଥା) ରାଜପୁତ୍ର, ଯୁବରାଜ, ଟିକାୟତ ।
କୁମାରରକ୍ଷଣ—କ୍ଲୀ.ବ. ସନ୍ତାନର ଲାଳନ ପାଳନ ।
କୁମାର ଲଳିତା—ସ୍ତ୍ରୀ.ବ. ଛନ୍ଦବିଶେଷ ।
କୁମାରବନ—କ୍ଲୀ. ବ. କାର୍ତ୍ତିକେୟଙ୍କ ବିହାର ବନ ।
କୁମାରସମ୍ଭବ—ବ. ମହାକବି କାଳି-ଦାସଙ୍କ ପ୍ରଣୀତ କାର୍ତ୍ତିକେୟଙ୍କ ଜନ୍ମ ବିବରଣ ବିଷୟକ କାବ୍ୟଗ୍ରନ୍ଥବିଶେଷ ।
କୁମାରସୂ—ପୁଂ.ବ.(କୁମାର + ସୂ + କ୍ୱିପ୍) କାର୍ତ୍ତିକେୟଙ୍କ ପିତା, ଅଗ୍ନି, (ସ୍ତ୍ରୀ) କାର୍ତ୍ତିକେୟଙ୍କ ମାତା, ଦୁର୍ଗା, ଗଙ୍ଗା ।
କୁମାରସେନ—ପୁଂ.ବ.ପ୍ରାଚୀନ କାଳରେ ଉତ୍ତରଭାରତର ଶତଦ୍ରୁନଦୀର ପୂର୍ବ-ଉପକୂଳରେ ଅବସ୍ଥିତ ଗୋଟିଏ ରାଜ୍ୟ । [ଧର୍ମଶାସ୍ତ୍ର ।
କୁମାରସ୍ମୃତି—ସ୍ତ୍ରୀ. ବ. ଖଣ୍ଡିଏ ପ୍ରାଚୀନ
କୁମାରହାରୀତ—ପୁଂ. ବ. ଯଜୁର୍ବେଦ ସମ୍ପ୍ରଦାୟପ୍ରବର୍ତ୍ତକ ଋଷିବିଶେଷ. ଜଣେ ଧର୍ମଶାସ୍ତ୍ରକାର ।
କୁମାରାଭିଷେକ—ପୁଂ.ବ. ରାଜପୁତ୍ରମାନଙ୍କର ଅଭିଷେକ କାର୍ଯ୍ୟ ।
କୁମାରିକା—ସ୍ତ୍ରୀ ବ.(କୁମାର + ଇ + କ + ଆ) ବାରବର୍ଷର ବାଳିକା, ଅବିବାହିତା ବାଳିକା,କୁମାରୀ, କଅଁଳୀ, ନବମଲ୍ଲିକା, ଭାରତର ଦକ୍ଷିଣସ୍ଥ ଅନ୍ତରୀପ ।
କୁମାରିକାକ୍ଷେତ୍ର—କ୍ଲୀ. ବ. (କୁମାର + କ + ଆ) ତୀର୍ଥବିଶେଷ ।
କୁମାରିଲଭଟ୍ଟ—ପୁଂ. ବ. ବିଖ୍ୟାତ ମୀମାଂସା ବାର୍ତ୍ତିକ ପ୍ରଣେତା ।
କୁମାରୀ—ସ୍ତ୍ରୀ.ବ. (କୁମାର + ଈ) ଦୁର୍ଗା, ଅବିବାହିତା ବାଳିକା, କନ୍ୟା, ବାର-

ବର୍ଷର କନ୍ୟା, ଷୋଡ଼ଶବର୍ଷୀୟା ଯୁବତୀ, ଘୃତକୁମାରୀଗୁଳ୍ମ,ଘିକୁଆଁରି,ଛନ୍ଦୋବିଶେଷ, ସୀତାଙ୍କର ନାମବିଶେଷ, ବଡ଼ଅଳାଇଚ, ଶ୍ୟାମାପକ୍ଷୀ, ଅପରାଜିତା, କୁମାରିକାନ୍ତ-ଦ୍ୱୀପ, ନଆଳୀଫୁଲ, ଭାରତବର୍ଷର ମଧ୍ୟ-ଭାଗ, ନଦୀବିଶେଷ ।

କୁମାରୀକ୍ରୀଡ଼ନକ — କ୍ଳୀ. ବ. ବାଳିକା-ମାନଙ୍କର ଖେଳନାବିଶେଷ ।

କୁମାରୀପାଳ — ପୁଂ. ବ. ଅବିବାହିତା କନ୍ୟାର ଅଭିଭାବକ ।

କୁମାରୀପୁତ୍ର — ପୁଂ. ବ. କନ୍ୟା ସମୟରେ ଉତ୍ପନ୍ନ ପୁତ୍ର, କର୍ଣ୍ଣ, ଶାଳିବାହନ ।

କୁମାରୀପୁର — କ୍ଳୀ. ବ. ଅନ୍ତଃପୁର ।

କୁମାରୀପୂଜା — ସ୍ତ୍ରୀ.ବ. ବାଳିକାର ପୂଜା, ତନ୍ତ୍ରମତେ ଋତୁମତୀ ନ ହେଲେ ଷୋଡ଼ଶ ବର୍ଷ ପର୍ଯ୍ୟନ୍ତ ଅବିବାହିତା କନ୍ୟାକୁ କୁମାରୀ-ତାହାର ପୂଜା ।

କୁମାର୍ଗ — ପୁଂ.ବ. କୁପଥ, ମନ୍ଦବୁଦ୍ଧିର କାର୍ଯ୍ୟ ।

କୁମି — ବ. ଆରାକାନ୍‌ବାସୀ ଜାତିବିଶେଷ ।

କୁମିତ୍ର — କ୍ଳୀ.ବ. ଅପକାରୀ ବନ୍ଧୁ, କୁତ୍ସିତ ମିତ୍ର, ମନ୍ଦସୁହୃତ୍ ।

କୁମିସ — ( ଯା. ) ବ. ମଦ୍ୟବିଶେଷ, ଏହି ମଦ୍ୟ ଘୋଟକୀର ଦୁଗ୍ଧରେ ପ୍ରସ୍ତୁତ ହୁଏ ।

କୁମୁଖ — ପୁଂ.ବ. ଶୂକର, ବରାହ, ବାରୁଆ

କୁମୁଟି — ଗ୍ରା. ବ. ଉତ୍କଳର ଦକ୍ଷିଣାଂଶ-ବାସୀ,ବ୍ୟବସାୟୀ,ବୈଶ୍ୟଜାତିବିଶେଷ ।

କୁମୁଟିଆ — ଗ୍ରା. ବ, କୁମ୍ଭାଟୁଆ ପକ୍ଷୀ, କୁମୁଟିଆ ପକ୍ଷୀ ।

କୁମୁଣ୍ଡା ପ୍ରା.(ଯାଜପୁର)ବୋଇତକଖାରୁ ।

କୁମୁତ୍ — କ୍ଳୀ. ବ. (କୁ + ମୁଦ୍ + କ୍ୱିପ୍) ରକ୍ତପଦ୍ମ, ନାଲିକଇଁ, କୈରବ, (ବିଂ) ଅର୍ଦ୍ଧସ୍ୱ, ପ୍ରତିକୂଳ, କୃପଣ ।

କୁମୁଦ୍ୱତୀ — ସ୍ତ୍ରୀ.ବ.(କୁମୁତ୍ + ବତ୍ + ଈ) କୁମୁଦସମୂହ, କଇଁଲତା, କୁମୁଦବନ, ପୁଷ୍କରଣୀ, କୁଶର ସ୍ତ୍ରୀ ।

କୁମୁଦ — ପୁଂ. କ୍ଳୀ. ବ. ( କୁ + ମୁଦ୍ + କ୍ୱିପ୍ + ଅ) ରକ୍ତପଦ୍ମ, କଇଁ, ରୌପ୍ୟ, ପଦ୍ମ,କର୍ପୂର,ନୈଋତକୋଣର ଦିଗ୍‌ଗଜ, ବିଷ୍ଣୁ, ହସ୍ତୀ, ସର୍ପବିଶେଷ, କାର୍ତ୍ତିକ-ମାସ, ଗରୁଡ଼ପୁତ୍ର, ଶୁକ୍ଳପକ୍ଷ, ବାଦ୍ୟର ତାଳଭେଦ, (ଗ୍ରା.ବ.) ଆନନ୍ଦ ।

କୁମୁଦକାନ୍ତ — ପୁଂ. ବ. (୬ତତ୍) ଚନ୍ଦ୍ର, କୁମୁଦବାନ୍ଧବ (ଦେଖ) ।

କୁମୁଦଖଣ୍ଡ — କ୍ଳୀ. ବ. କୁମୁଦସମୂହ, କୁମୁଦାଂଶ । [ଗନ୍ଧଯୁକ୍ତା ସ୍ତ୍ରୀ ।

କୁମୁଦଗନ୍ଧା — ସ୍ତ୍ରୀ. ବ. କୁମୁଦ ପରି

କୁମୁଦଘ୍ନୀ — ସ୍ତ୍ରୀ.ବ.ବୃକ୍ଷବିଶେଷ, ଏହାର ରସ ଦୁଗ୍ଧପରି ଓ ବିଷାକ୍ତ ।

କୁମୁଦନାଥ — ପୁଂ. ବ. (୬ତତ୍) ଚନ୍ଦ୍ର, କୁମୁଦବାନ୍ଧବ । [ସମୂହ ।

କୁମୁଦନିକର (୬ତତ୍)--ବ.ଶ୍ୱେତୋତ୍ପଳ-

କୁମୁଦପ୍ରେୟ — ପୁଂ.ବ. (୬ତତ୍) କୁମୁଦ-ବନ୍ଧୁ (ଦେଖ) ।

କୁମୁଦବାନ୍ଧବ, କୁମୁଦବନ୍ଧୁ — ପୁଂ. ବ (୬ତତ୍) କୁମୁଦବାନ୍ଧବ, ଚନ୍ଦ୍ର ।

କୁମୁଦସୁହୃତ୍ — ପୁଂ. ବ. ଚନ୍ଦ୍ର, ଇନ୍ଦୁ, କୁମୁଦବାନ୍ଧବ । [ଆନନ୍ଦହାସ୍ୟ ।

କୁମୁଦହାସ୍ୟ — ଗ୍ରା. ବ. ପ୍ରସ୍ଫୁଟିତ କଇଁ,

କୁମୁଦା — ସ୍ତ୍ରୀ. ବ. ଘୋରଖାଞ୍ଜୀ, ଶାଳ-ପର୍ଣ୍ଣୀ, କଟଫଳ, ଗମ୍ଭାରୀଗଛ, ଧାତକୀ ବୃକ୍ଷ, ଦେବୀବିଶେଷ ।

କୁମୁଦାକର — ପୁଂ. ବ. (୬ତତ୍) ଯେଉଁ ସ୍ଥାନରେ ଅନେକ ପଦ୍ମ ବା କଇଁ ଜନ୍ମେ, ପୁଷ୍କରଣୀ ହ୍ରଦ ପ୍ରଭୃତି ।

କୁମୁଦାକ୍ଷ — ପୁଂ.ବ.ନାଗବିଶେଷ, ବିଷ୍ଣୁଙ୍କର ଜଣେ ପାରିଷଦ ।

କୁମୁଦାନନ୍ଦ — ପୁଂ.ବ.ଜଣେ ଖ୍ୟାତନାମା ପଣ୍ଡିତ,(ବି.ଶା.) କୁମୁଦବାନ୍ଧବ,ଚନ୍ଦ୍ର ।

କୁମୁଦାଭିଖ୍ୟ — କ୍ଳୀ. ବ. ରୌପ୍ୟ ।

କୁମୁଦାଲୀ — ପୁଂ.ବ.ମହର୍ଷି ପଥ୍ୟଙ୍କ ଶିଷ୍ୟ, ଏ ଅଥର୍ବବେଦର କୌଣସି ଶାଖା ପ୍ରଚାର କରିଥିଲେ ।

କୁମୁଦାବାସ — ପୁଂ.ବ.କଇଁପୂର୍ଣ୍ଣସରୋବର ।

କୁମୁଦିକ — ବିଂ. (କୁମୁଦ + ଇକ) କୁମୁଦରେ ପୂର୍ଣ୍ଣ, କଇଁରେ ଭରା (ଜଳାଶୟ) ।

କୁମୁଦିକା — ସ୍ତ୍ରୀ. ବ. କଟ୍‌ଫଳ, ସୁଗନ୍ଧ ବୀଜବିଶିଷ୍ଟ ଗୁଳ୍ମବିଶେଷ ।

କୁମୁଦିନୀ — ସ୍ତ୍ରୀ.ବ.(କୁମୁଦ + ଇନ୍ + ଈ) କଇଁଯୁକ୍ତ ପୁଷ୍କରଣୀ, କଇଁସମୂହ, କଇଁଫୁଲ, ରକ୍ତକଇଁ ।

କୁମୁଦିନୀକାନ୍ତ,କୁମୁଦିନୀନାୟକ,କୁମୁଦିନୀ-ନାଥ,କୁମୁଦିନୀପତି — ପୁଂ.ବ. କୁମୁଦ-ବାନ୍ଧବ, ଚନ୍ଦ୍ର ।

କୁମୁଦିନୀବର୍ଦ୍ଧିତା — ସ୍ତ୍ରୀ. ବ. ସୁନ୍ଦରୀ ସ୍ତ୍ରୀ ।

କୁମୁଦୀ — ସ୍ତ୍ରୀ.ବ.(କୁମୁଦ + ଈ) ଗମ୍ଭାରୀ-ଗଛ, କଟ୍‌ଫଳ ।

କୁମୁଦେଶ — ପୁଂ.ବ. (୬ତତ୍) ଚନ୍ଦ୍ର ।

କୁମୁଦ୍ୱତ୍ — ବିଂ. କଇଁଯୁକ୍ତ ଦେଶ ।

କୁମୁଦ୍ୱତୀ — ସ୍ତ୍ରୀ. ବ. ବହୁପଦ୍ମଯୁକ୍ତ ଜଳା-ଶୟ, କୁମୁଦିନୀ ।

କୁମୁଦ୍ୱତୀଶ — ପୁଂ. ବ. (୬ତତ୍) ଚନ୍ଦ୍ର, କୁମୁଦବାନ୍ଧବ ।

କୁମୁଦ୍ୱାନ୍ — ପୁଂ. ବ. (କୁମୁଦ + ବତୁ) କୁମୁଦବହୁଳ (ଜଳାଶୟ) ।

କୁମେଦ୍ — ଯା. ବ. ଲଖପରି ନାଲିଆ ରଙ୍ଗର ଘୋଡ଼ା ।

କୁମେଧସ୍ — ପୁଂ. ବିଂ. (କୁ + ମେଧସ୍) ମନ୍ଦବୁଦ୍ଧି ଯୁକ୍ତ ।

କୁମେରୁ — ପୁଂ. ବ. ପୃଥିବୀର ଦକ୍ଷିଣପ୍ରାନ୍ତ ଅର୍ଥାତ୍ ଧ୍ରୁବତାରାର ଠିକ୍ ନିମ୍ନସ୍ଥାନ ।

କୁମେରୁବୃତ୍ତ — ବ. ଦକ୍ଷିଣମେରୁଠାରୁ ସାଢ଼େ ୨୩ ଅଂଶ ଉତ୍ତରର ଯେଉଁ ଅକ୍ଷ-ରେଖା ଅଛି ।

କୁମେରୁସମୁଦ୍ର — ପୁଂ. ବ. ଦକ୍ଷିଣମେରୁର ଚାରିପାଖରେ ଥିବା ସମୁଦ୍ର ।

କୁମୋଦ — ଗ୍ରା ବ. ଶ୍ୱେତକଇଁ, (ବିଂ) ଆନନ୍ଦଜନକ, ଆନନ୍ଦବର୍ଦ୍ଧକ ।

କୁମୋଦକ — ପୁଂ. ବ. (କୁ + ମୁଦ + ଣି + ଅକ) (୬ତତ୍) ବିଷ୍ଣୁ ।

କୁମ୍ପ — ବିଂ, (କୁନ୍ପ + ଅ) ବକ୍ରହସ୍ତ, କେମ୍ପା, ବକ୍ରପଦ, ଖଞ୍ଜ ।

କୁମ୍ପା — ବ. (ଯା) ଚୀନ୍‌ବାସୀଙ୍କ ଏକ ଆରାଧ୍ୟାଦେବୀ, (ଗ୍ରା.ବ) ତରଳପଦାର୍ଥ ରଖିବାନିମନ୍ତେ ସରୁମୁହାଁ ପାତ୍ରବିଶେଷ ।

କୁର୍ମି—ଗ୍ରା. ବ. ଛୋଟକୁମ୍ଭା, ସରୁମୁହାଁ ଛୋଟ ତେଲଘଡ଼ା, ଘଣ୍ଟବାଣ ବା ସ୍ୱନାମ ଖ୍ୟାତ ବାଣ ।

କୁମ୍ବ—ପୁଂ.ବଂ. (କୁବ+ଅ)ବାହୁକୁଣ୍ଡ, ମୁଣ୍ଡର ଆଚ୍ଛାଦନ ବସ୍ତୁ ।

କୁମ୍ବା—ସ୍ତ୍ରୀ. ବ. ଛଦ୍ମରୂପେ ଆଚ୍ଛାଦନ, ବେଷ୍ଟନ, ସ୍ଥୂଳଅଂଶରକ୍ଷିଣୀ, ଯଜ୍ଞସ୍ଥାନ, ଅସ୍ପୃଶ୍ୟବ୍ୟକ୍ତିମାନଙ୍କ ଦର୍ଶନବାରଣାର୍ଥେ ଦିଆଯାଇଥିବାଜନବଜ୍ରବେଷ୍ଟନୀ ବା ବାଡ଼ ।

କୁମ୍ବିକ—ପୁଂ. ବ. ଜନପଦବିଶେଷ ।

କୁମ୍ବ ସ୍ୱା—ସ୍ତ୍ରୀ. ବ. ବୃକ୍ଷବିଶେଷ ।

କୁଡମ୍ବା-ଗଞ୍ଜାମବାସୀ ଶୂଦ୍ରଜାତିବିଶେଷ ।

କୁମ୍ଭ—ବି. (କୁ+ଉନ୍ଭ୍+କ,ଅ)ଘଟ, କଳସ, ଗଜକୁମ୍ଭ, ମୃତ୍ତିକାନିର୍ମିତ ଜଳପାତ୍ର, ଗୁଗ୍ଗୁଲ, ଫାଲ୍ଗୁନମାସ (ସୌରମାନ), ବୃକ୍ଷମୂଳବିଶେଷ, ଯୋଗର ପ୍ରକ୍ରିୟାବିଶେଷ, ଦୈତ୍ୟ ଓ ରାକ୍ଷସବିଶେଷ, ବେଶ୍ୟାପତି, ହୃଦ୍ରୋଗ-ବିଶେଷ, ରାଗିଣୀବିଶେଷ, ମେଷାଦି ଦ୍ୱାଦଶ ରାଶିମଧ୍ୟରୁ ଏକାଦଶରାଶି,ପରି-ମାଣପାତ୍ର ବିଶେଷ, ମିବାରର ଜଣେ ରାଜା (ଗ୍ରା.) ବସ୍ତ୍ରଧଡ଼ିରେ କୁମ୍ଭାକୃତି ସୂତାରେ ବୁଣାହୋଇଥିବା କାରୁକାର୍ଯ୍ୟ ।

କୁମ୍ଭଋଷି—ପୁଂ. ବ. ମୁନିବିଶେଷ, ଅଗସ୍ତି ମୁନିଙ୍କ ପିତା ।

କୁମ୍ଭକ—ପୁଂ. ବ. (କୁମ୍ଭ+କ)ସ୍ତନର-ମୂଳଦେଶ, ଦୁଇନାସାପୁଟ ବନ୍ଦକରି ବାୟୁସ୍ତମ୍ଭନରୂପଯୋଗାଙ୍ଗ,ପ୍ରାଣାୟାମରେ ବାୟୁନିରୋଧକ୍ରିୟା ।

କୁମ୍ଭକଭଟ୍ଟ—ଶ୍ରାଦ୍ଧସାଗର ନାମକ ସ୍ମୃତି ସଂଗ୍ରହକାର ।

କୁମ୍ଭକର୍ଣ୍ଣ—ପୁଂ. ବ. (ବ.ବ୍ରୀ) ରାକ୍ଷସ ବିଶେଷ, ରାବଣର ମଧ୍ୟମଭ୍ରାତା, ଶିବ, (ଗ୍ରା.ବ) ଦାକ୍ଷିଣାତ୍ୟର ଗୋଟିଏ ନଗ-ରର ନାମ ।

କୁମ୍ଭକର୍ଣ୍ଣନିଦ୍ରା—ବ. କୁମ୍ଭକର୍ଣ୍ଣର ଘୋର ନିଦ୍ରାପରି ଦୀର୍ଘକାଳସ୍ଥାୟୀ ଗଭୀରନିଦ୍ରା ।

କୁମ୍ଭକଣ୍ଟି—ଗ୍ରା, ବ. ଏକପ୍ରକାର ସୂତା ଶାଢ଼ୀ ।

କୁମ୍ଭକାମଳା—ସ୍ତ୍ରୀ. ବ.ପାଣ୍ଡୁରୋଗ,ସର୍ପ-ବିଶେଷ, କୁକ୍କୁଭପକ୍ଷୀ, ବନ୍ୟକୁକ୍କୁଟ-ବିଶେଷ, ପାତ୍ର, ଜଣେ ପ୍ରାଚୀନ କବି ।

କୁମ୍ଭକାମୋଦ—ଗ୍ରା. ବ. ରାଗବିଶେଷ ।

କୁମ୍ଭକାର—ପୁଂ.ବ. (କୁମ୍ଭ+କୃ+ଅ) ଶୂଦ୍ରଜାତିବିଶେଷ, ବିପ୍ର ଔରସରେ ବେଶ୍ୟାଗର୍ଭଜାତ ସନ୍ତାନ, କୁମ୍ଭାର ।

କୁମ୍ଭକାରକ—ପୁଂ. ବ. କୁକୁଭପକ୍ଷୀ ।

କୁମ୍ଭକାରକୀଟ—ବ. ମାଟିରେ ବସାବାନ୍ଧି ରହୁଥିବା ଏକପ୍ରକାର ଭ୍ରମର, କୁମ୍ଭାର-ପୋକ ।

କୁମ୍ଭକାରିକା—ସ୍ତ୍ରୀ. ବ. (କୁମ୍ଭକାର+କ +ଆ) ଅଞ୍ଜନବିଶେଷ, କୁଳତ୍ଥବୃକ୍ଷ, କୁମ୍ଭାରୁଣୀ ।

କୁମ୍ଭକାରୀ—ସ୍ତ୍ରୀ. ବ. କୁମ୍ଭାରୁଣୀ, କୁଳତ୍ଥ-ବୃକ୍ଷ, କୁମ୍ଭାରର ସ୍ତ୍ରୀ,ମନଃଶିଳା ।

କୁମ୍ଭକେତୁ—ପୁଂ. ବ. ଅସୁରବିଶେଷ ।

କୁମ୍ଭକୋଣ—ପୁଂ. ବ. କୁମ୍ଭର କୋଣ, ଜନପଦବିଶେଷ ।

କୁମ୍ଭଘୋଣ—କ୍ଲୀ. ବ. ମାନ୍ଦ୍ରାଜ ଅନ୍ତର୍ଗତ ଗୋଟିଏ ତୀର୍ଥ । [ଚକ୍ର ।

କୁମ୍ଭଚକ୍ର—କ୍ଲୀ.ବ.ଚକ୍ରବିଶେଷ,କୁମ୍ଭାର-

କୁମ୍ଭଜ—ପୁଂ.ବ. (କୁମ୍ଭ+ଜନ୍+ଅ) ଅଗସ୍ତିମୁନି, ବୃକ୍ଷବିଶେଷ, ବଶିଷ୍ଠ, ଦ୍ରୋଣାଚାର୍ଯ୍ୟ, (ସ୍ତ୍ରୀ) କୁମ୍ଭଜା ।

କୁମ୍ଭଜନ୍ମା—ପୁଂ.ବ.(ବ.ବ୍ରୀ)ଅଗସ୍ତିଋଷି, ଦ୍ରୋଣାଚାର୍ଯ୍ୟ, ବଶିଷ୍ଠ । [ଲାଉ ।

କୁମ୍ଭତୁମ୍ବୀ—ସ୍ତ୍ରୀ.ବ. ଗୋଲ ଲାଉ,ମାଠିଆ,

କୁମ୍ଭଦାସୀ—ସ୍ତ୍ରୀ. ବ. (କୁମ୍ଭ+ଦାସୀ) ଦୂତୀ, କୁଟ୍ଟନୀ ।

କୁମ୍ଭଧର—ପୁଂ. ବ. କୁମ୍ଭରାଶି ।

କୁମ୍ଭନାଭ—ପୁଂ. ବ, (କୁମ୍ଭ+ନାଭି+ ଅ) ଦୈତ୍ୟରାଜ ବଳିର ପୁତ୍ର ।

କୁମ୍ଭପଡସ୍ୱା-ଉପାସକ ସମ୍ପ୍ରଦାୟବିଶେଷ ।

କୁମ୍ଭପାଦ—ବଂ. (ବ.ବ୍ରୀ) ସ୍ଫୀତପାଦ, ଗୋଦର, (ସ୍ତ୍ରୀ) କୁମ୍ଭପାଦୀ ।

କୁମ୍ଭମଣ୍ଡୂକ—ପୁଂ.ବଂ. (ଲ.ଅର୍ଥ) ସ୍ୱଳ୍ପ-ଜ୍ଞାନବିଶିଷ୍ଟ, ଅଦୂରଦର୍ଶୀ ।

କୁମ୍ଭମାସ-ବ. ସୌରମାନ୍ ଫାଲ୍ଗୁନମାସ ।

କୁମ୍ଭମୁଦ୍ରା—ସ୍ତ୍ରୀ.ବ.ତାନ୍ତ୍ରିକମୁଦ୍ରାବିଶେଷ ।

କୁମ୍ଭମୂର୍ଦ୍ଧା—ପୁଂ. ବ. ହରିବଂଶ ବର୍ଣ୍ଣିତ ଦାନବବିଶେଷ ।

କୁମ୍ଭମେଳା—କୁମ୍ଭ ବା ପୁଷ୍କରଯୋଗ ଉପଲକ୍ଷେ ଯେଉଁ ମେଳା ହୁଏ, ପ୍ରୟା-ଗରେ, ହରିଦ୍ୱାରରେ ପ୍ରତି ୨ ବର୍ଷରେ ଥରେ ଫାଲ୍ଗୁନମାସରେ ହିନ୍ଦୁମାନଙ୍କର ଯେଉଁ ଗଙ୍ଗାସ୍ନାନ ମେଳା ହୁଏ ।

କୁମ୍ଭଯୋନି—ପୁଂ. ବ. (ବ.ବ୍ରୀ)ଅଗସ୍ତି-ଋଷି, ବଶିଷ୍ଠ, ଦ୍ରୋଣାଚାର୍ଯ୍ୟ, ଗଇଣ-ଫୁଲଗଛ, ଦ୍ରୋଣପୁଷ୍ପୀବୃକ୍ଷ, (ସ୍ତ୍ରୀ)ଅପ୍ସରା ବିଶେଷ ।

କୁମ୍ଭଯୋନିକା—ସ୍ତ୍ରୀ.ବ. ଦ୍ରୋଣପୁଷ୍ପୀବୃକ୍ଷ ।

କୁମ୍ଭରାଣା—ପୁଂ. ବ. ଚତୋରର ଜଣେ ରାଜା, ମୁକୁଲଜୀଙ୍କ ପୁତ୍ର ।

କୁମ୍ଭରାଶି—ପୁଂ. ବ. ଦ୍ୱାଦଶରାଶିମଧ୍ୟରୁ ଏକାଦଶ ରାଶି ।

କୁମ୍ଭରା—ସ୍ତ୍ରୀ.ବି. ଦୁର୍ଗାଙ୍କ ଗୋଟିଏ ନାମ ।

କୁମ୍ଭରେତାଃ—ପୁଂ.ବ. (ବ.ବ୍ରୀ)ଅଗସ୍ତ୍ୟ, ଅଗ୍ନି ଭେଦ, ବଶିଷ୍ଠମୁନି । [କାଳ ।

କୁମ୍ଭଲଗ୍ନ—କ୍ଲୀ. ବ. କୁମ୍ଭରାଶିର ଉଦୟ

କୁମ୍ଭଲା—ସ୍ତ୍ରୀ. ବ ମୁଣ୍ଡିତିକାବୃକ୍ଷ,ମୁଣ୍ଡିରୀ ।

କୁମ୍ଭବୀଜକ—ପୁଂ.ବ. (କୁମ୍ଭ+ବୀଜ+ କ) କରଞ୍ଜବୀଜ, ଘିଠାକରଞ୍ଜ ।

କୁମ୍ଭଶାଳା—ସ୍ତ୍ରୀ.ବ. (ଷତତ୍ପୁ)କୁମ୍ଭାରର ହାଣ୍ଡିମାଠିଆ ପ୍ରସ୍ତୁତ ତିଆରକରିବା ସ୍ଥାନ, କୁମ୍ଭାରଶାଳ । [(ଦେଖ) ।

କୁମ୍ଭଶ୍ରବଣ—ପୁଂ.ବ. (ବ.ବ୍ରୀ) କୁମ୍ଭକର୍ଣ୍ଣ

କୁମ୍ଭଶ୍ରୁତି—ପୁଂ. ବ. (ବ.ବ୍ରୀ) କୁମ୍ଭକର୍ଣ୍ଣ (ଦେଖ) ।

କୁମ୍ଭସନ୍ଧି—ପୁଂ. ବ. (କୁମ୍ଭ+ସନ୍ଧି) ହସ୍ତୀର କୁମ୍ଭଦ୍ୱୟର ମଧ୍ୟସ୍ଥାନ ।

କୁମ୍ଭସମ୍ଭବ—ପୁଂ. ବ. ବ.ବ୍ରୀ; (କୁମ୍ଭ+ ସଂ+ଭୂ+ଅ) ଅଗସ୍ତ୍ୟମୁନି,ବଶିଷ୍ଠମୁନି, ଦ୍ରୋଣାଚାର୍ଯ୍ୟ, ବିଷ୍ଣୁ ।

କୁମ୍ଭସର୍ପିଃ—କ୍ଲୀ. ବ. ଆୟୁର୍ବେଦୋକ୍ତ ଘୃତବିଶେଷ ।

କୁମ୍ଭସୁତ—ପୁଂ.ବ. ଅଗସ୍ତ୍ୟ,ଅଗସ୍ତିମୁନି ।

କୁମ୍ଭସ୍ଥଳ—ବି. ହାତୀର ମସ୍ତକସ୍ଥିତ, କୁମ୍ଭାକୃତ ମାଂସଳସ୍ଥାନ ।

କୁମ୍ଭହନୁ—ପୁଂ.ବି. ରାକ୍ଷସବିଶେଷ ।

କୁମ୍ଭା—ସ୍ତ୍ରୀ. ବି. (କୁମ୍ଭ+ଆ) ବେଶ୍ୟା, (ଗ୍ରା.ବି) ଅପରିପକ୍ୱ ନାରିକେଳ, ପଇଡ଼ର ପୂର୍ବାବସ୍ଥାର ନଡ଼ିଆ, କୁମ୍ଭାବାଡ଼ (ଦେଖ) ।

କୁମ୍ଭାଟୁଆ—ଗ୍ରା. ବି. ପକ୍ଷୀବିଶେଷ, ଲାଲରଙ୍ଗର କାକ ଓ କୋକିଳଜାତିର ପକ୍ଷୀ, ଏକପ୍ରକାର କଣ୍ଟକଯୁକ୍ତ ବନ୍ୟଗୁଳ୍ମ ।

କୁମ୍ଭାଣ୍ଡ—ପୁଂ.ବି. ଦୈତ୍ୟଜାତିବିଶେଷ, ବାଣାସୁରର ଜଣେମନ୍ତ୍ରୀ, (କ୍ଳୀ.ବି) କୁଷ୍ମାଣ୍ଡ

କୁମ୍ଭାଧିପ—ପୁଂ.ବି. ଶନିଗ୍ରହ, କୁମ୍ଭରାଶିର ଅଧିପତି ।

କୁମ୍ଭାବାଡ଼—ଗ୍ରା. ବି. ଭୟଙ୍କର ମାରାତ୍ମକ ହଇଜା, ମରୁଡ଼ି ।

କୁମ୍ଭାର—ଗ୍ରା. ବି. ମାଟିପାତ୍ର ତିଆରି କରିବା ବ୍ୟକ୍ତି ବା ଜାତି ।

କୁମ୍ଭାରଉହା—ଗ୍ରା. ବି. କୁମ୍ଭାରମାନେ ଯେଉଁ ସ୍ତୂପାକାର ଚୁଲ୍ଲୀରେ ହାଣ୍ଡି ପୋଡ଼ନ୍ତି ।

କୁମ୍ଭାରଚକ—ଗ୍ରା. ବି. ଯେଉଁ ଚକ ସାହାଯ୍ୟରେ କୁମ୍ଭାର ମାଟିପାତ୍ରମାନ ତିଆରି କରେ । [(ଦେଖ) ।

କୁମ୍ଭାରପୋକ—ଗ୍ରା. ବି. କୁମ୍ଭାରକୀଟ,

କୁମ୍ଭାରଶାଳ—ଗ୍ରା.ବି. କୁମ୍ଭଶାଳା (ଦେଖ) ।

କୁମ୍ଭି—ଗ୍ରା.ବି. କ୍ଷେତକୁ ଜଳଉତ୍ତୋଳନ କରିବା ଯନ୍ତ୍ରବିଶେଷ, ଟେଣ୍ଡା, ଜାମୁ-ଜାତୀୟ ବନ୍ୟତରୁ ।

କୁମ୍ଭିକା—ସ୍ତ୍ରୀ.ବି. (କୁମ୍ଭିକ+ଆ) କ୍ଷୁଦ୍ର ଘଟ, ଠେକି, ଘଡ଼ି, ଶୈବାଳ, ବୋରୁଖାଙ୍ଗି ।

କୁମ୍ଭିନରକ—ବି. (କୁମ୍ଭିନ୍+ନରକ) କୁମ୍ଭୀପାକ (ଦେଖ) ।

କୁମ୍ଭିନୀ—ସ୍ତ୍ରୀ. ବି. ବୃକ୍ଷବିଶେଷ, କନକା, ଜୟପାଳବୃକ୍ଷ, ପୃଥିବୀ, କୁମ୍ଭଯୁକ୍ତାସ୍ତ୍ରୀ, ବେଶ୍ୟା, ନେତ୍ରରୋଗବିଶେଷ ।

କୁମ୍ଭିପଟ—ଗ୍ରା. ବି. କୁମ୍ଭିଗଛର ବଲ୍କଳ ବା ଛେଲି ।

କୁମ୍ଭିପଟିଆ, କୁମ୍ଭିପଟୁଆ—ଗ୍ରା.ବି. ଓଡ଼ିଶା ଗଡ଼ଜାତରେଥିବା ଏକଜାତୀୟ ବୌଦ୍ଧ ସନ୍ନ୍ୟାସୀ, ଅଲେଖଧର୍ମାବଲମ୍ବୀ ।

କୁମ୍ଭିମଦ—ପୁଂ. ବି, (ଷତତ୍) ହସ୍ତୀର-ମଦ, ହସ୍ତୀର ମଦଜଳ ।

କୁମ୍ଭିଲ—ପୁଂ.ବି. (କୁମ୍ଭ+ଇଲ) ଶାଳ-ଗଛ, ଶେଉଳମାଛ, ଶାଲମାଛ, ଶଳା, ଚୋର, ଲିପିଚୋର, ଯେ ଅନ୍ୟର ରଚନା ଚୋରିକରେ, ଗର୍ଭକାଳପୂର୍ଣ୍ଣ ନହେଉଣୁ ପ୍ରସୂତ ବାଳକ ।

କୁମ୍ଭିଲକ—ପୁଂ. ବି. କୁମ୍ଭିଲ (ଦେଖ) ।

କୁମ୍ଭୀ—ପୁଂ. ବି. (କୁମ୍ଭ+ଇନ୍) ହସ୍ତୀ, କୁମ୍ଭୀର, ଟଭ, ମତ୍ସ୍ୟବିଶେଷ, ରାକ୍ଷସ ବିଶେଷ, କୁମ୍ଭାରପୋକ, (ସ୍ତ୍ରୀ) କ୍ଷୁଦ୍ର-କଳସୀ, ଘଡ଼ି, (କ୍ଳୀ) ଗୁଗ୍ଗୁଳ, ଚୁଲ୍ଲୀ, ମାଟିହାଣ୍ଡି, ପାକହାଣ୍ଡି, କଟଫଳ, କାଫଡ଼, ବୋରଖାଙ୍ଗି, ପୃଷ୍ଟିପର୍ଣ୍ଣୀ, ଜାମୁଜାତୀୟ ବନ୍ୟତରୁ ।

କୁମ୍ଭୀକ—ପୁଂ ବି. (କୁମ୍ଭୀ+କ) ପୁନ୍ନାଗ-ପୁଷ୍ପବୃକ୍ଷ, ପୁଂ. ମୈଥୁନାର୍ଥ ନିଯୋଜିତ ବାଳକ, ନାଗକେଶର ବୃକ୍ଷ ।

କୁମ୍ଭୀକପିଡ଼କା—ସ୍ତ୍ରୀ.ବି. ବୈଦ୍ୟକଚିତ୍ୟ-ଜାତିବିଶେଷ ।

କୁମ୍ଭୀକା—ସ୍ତ୍ରୀ. ବି. (କୁମ୍ଭୀକ+ଆ) ଶୂଳ ରୋଗର ଉପଦ୍ରବ ଭେଦ, ଏଥିରେ ରକ୍ତ ପିତ୍ତହୁଏ, ନେତ୍ରରୋଗ ବିଶେଷ ।

କୁମ୍ଭୀକାଦ୍ୟତୈଳ—କ୍ଳୀ. ବି. ବୈଦ୍ୟ-କୋକ୍ତ ତୈଳବିଶେଷ ।

କୁମ୍ଭୀଧାନ୍ୟ, କୁମ୍ଭୀଧାନ୍ୟକ—କ୍ଳୀ. ବି. ମନୁ-ଯାଜ୍ଞବଲ୍କ୍ୟ ସଂହିତାକାରଙ୍କ ମତରେ ଆତ୍ମୀୟ କୁଟୁମ୍ବ ପାଳନ ନିମିତ୍ତ ଗୃହସ୍ଥର ଅନ୍ତତଃ ଏକବର୍ଷ ପାଇଁ ଧାନ୍ୟ ସଞ୍ଚୟ ଓ ମେଧାତିଥିଙ୍କ ମତରେ ଛଅ ମାସର ଧାନ ସଞ୍ଚୟ କରିବା ଉଚିତ, ଏହାକୁ କୁମ୍ଭୀଧାନ୍ୟ କହନ୍ତି ।

କୁମ୍ଭୀନସ—ପୁଂ.ବି. (କୁମ୍ଭୀ+ନାସିକା+ଅ, ବ.ବ୍ରୀ) ବିଷଧର ସର୍ପବିଶେଷ, ସର୍ପ, ବିଷକୀଟବିଶେଷ ।

କୁମ୍ଭୀନସି—ପୁଂ.ବି. ଦୈତ୍ୟରାଜ ବଳି ।

କୁମ୍ଭୀନସୀ—ସ୍ତ୍ରୀ.ବି. (କୁମ୍ଭୀ+ନସ୍+ଈ) ରାବଣର ଭଉଣୀ, ଲବଣ ରାକ୍ଷସର ମାତା, ଅଙ୍ଗାରପର୍ଣ୍ଣ ଗନ୍ଧର୍ବର ସ୍ତ୍ରୀ ।

କୁମ୍ଭୀପାକ—ପୁଂ.ବି. ସନ୍ନିପାତଜ୍ୱରବିଶେଷ ନରକଭେଦ, ଯମଦୂତମାନେ ତପ୍ତ-ତୈଳରେ ପାପୀମାନଙ୍କୁ ନିକ୍ଷେପ କରି ପାକ କରନ୍ତି ।

କୁମ୍ଭୀମୁଖ—ପୁଂ. ବି. ନରକୋକ୍ତ ବ୍ରଣ-ରୋଗବିଶେଷ ।

କୁମ୍ଭୀର—ପୁଂ.ବି. (କୁମ୍ଭିନ୍+ଈ+ର.ଅ) ନକ୍ର, ଜଳଜନ୍ତୁବିଶେଷ, କୁମ୍ଭୀର, ଚୋର ।

କୁମ୍ଭୀରକ—ପୁଂ. ବି. ଚୋର, କୁମ୍ଭୀର ।

କୁମ୍ଭୀରଚିତ୍ୟ—ଗ୍ରା.ବି. ରାକ୍ଷସବିଶେଷ ।

କୁମ୍ଭୀରମକ୍ଷିକା—ସ୍ତ୍ରୀ.ବି. ମକ୍ଷିକାବିଶେଷ, କୁମ୍ଭୀରପୋକ ।

କୁମ୍ଭୀରାସନ—କ୍ଳୀ.ବି. ଯୋଗୀଙ୍କ ଆସନ-ବିଶେଷ, ଏକ ପାଦ ଉପରେ ଅନ୍ୟ ପାଦ ରଖି ଏବଂ ମସ୍ତକ ଉପରେ ହସ୍ତଦ୍ୱୟ ରଖି ଦଣ୍ଡାକାରରେ ଅବସ୍ଥାନ ।

କୁମ୍ଭୀରୁ—ପୁଂ.ବି. ସୁରଗୁନ୍ନାଗ ଚୁରଅନା ।

କୁମ୍ଭୀଲ—ପୁଂ. ବି. (କୁମ୍ଭୀ+ଲା+କ.ଅ) କୁମ୍ଭୀର ।

କୁମ୍ଭୀଲକ—ପୁଂ.ବି. ଚୋର ।

କୁମ୍ଭୀବୀଜ—କ୍ଳୀ. ବି. ଜୟପାଳବୀଜ, କନକା ମଞ୍ଜି ।

କୁମ୍ଭେଶ୍ୱର—ପୁଂ. ବି. ତୀର୍ଥବିଶେଷ ।

କୁମ୍ଭୋଦର—ପୁଂ. ବି. ଶିବଙ୍କ ଅନୁଚର-ବିଶେଷ, (ବିଂ) ଯାହାର ପେଟ କୁମ୍ଭ ଅର୍ଥାତ୍ ମାଠିଆତୁଲ୍ୟ ବୃହତ୍ ।

କୁମ୍ଭୋଦ୍ଭବତରୁ—ପୁଂ.ବି. ବକଫୁଲଗଛ, ଅଗସ୍ତିଗଛ ।

କୁମ୍ଭୋଲୂ—ପୁଂ. ବି. ଗୁଗ୍ଗୁଲୁ, ଗୁଗ୍ଗୁଳ ।

କୁମ୍ଭୋଲୂକ—ପୁଂ.ବି ଉଲୂକଭେଦ, ପେଚା ।

କୁମ୍ଭୋଲୂଖନକ-ପୁଂ.ବି. ଗୁଗ୍ଗୁଳ, ଗୁଗ୍ଗୁଳ ।

କୁଯଜ୍ୱୀ—ପୁଂ.ବିଂ. (କୁ+ଯଜ୍+ଙ୍ୱନିପ୍) କୁଯାଜ୍ଞିକ ।

କୁଯବ—ପୁଂ.ବି. ଜଣେ ଅସୁରର ନାମ, (କ.ଧା) ମନ୍ଦଯବ ।

କୁଯବାଚ୍—ପୁଂ. ବିଂ. ମିଥ୍ୟାବାଦୀ, (ବି) ବେଦୋକ୍ତ ଅସୁରବିଶେଷ ।

କୁଯାଜୀ—ପୁଂ.ବିଂ. (କୁ+ଯଜ୍+ଇନ୍) କୁଯାଜ୍ଞିକ, ମନ୍ଦଯଜ୍ଞକର୍ତ୍ତା ।

କୁଯାତ୍ରା—ସ୍ତ୍ରୀ. ବ. (କ.ଧା) ଅମଙ୍ଗଳ-ସୂଚକ ଗମନ ।
କୁଯୁକ୍ତି—ସ୍ତ୍ରୀ. ବ. (କ.ଧା) ଅସତ୍‌ଯୁକ୍ତି, କୁଚକ୍ର, କୁମନ୍ତ୍ରଣା, ଦୁଷ୍ଟପରାମର୍ଶ ।
କୁଯୋଗ—ପୁଂ.ବ.ଗ୍ରହନକ୍ଷତ୍ରାଦିର ଅନିଷ୍ଟକର ସଂଯୋଗ, କୁଲଗ୍ନ ।
କୁର୍‌-(ଧାତୁ)ଶବ୍ଦକରିବା,ଛେଦନକରିବା ।
କୁର୍‌କୁଟି—ପ୍ରା. (ସମ୍ବ) ବ. ଛୋଟମଣା, ଗୁଣ୍ଡା, ଟିକିଟିକି ଖଣ୍ଡମାନ ।
କୁର୍‌କୁଟିକରିବା—ପ୍ରା.(ସମ୍ବ)କି.ଟିକିଟିକି କରି ଛିନ୍ନ କରିବା ।
କୁର୍‌କୁର୍‌—ଗ୍ରା.ଅବ୍ୟ. ମଧୁର ଧ୍ୱନି ଯୁକ୍ତ ହାସ୍ୟର ଶବ୍ଦ, (ବି) କୁକୁର ।
କୁର୍‌କୁନ୍ଦ—ଗ୍ରା. ବ. ଘୋଡ଼ାଙ୍କର ପେଟ-ଫୁଲା ରୂପ ମାରାତ୍ମକ ରୋଗ ।
କୁର୍‌ଚ—ଯା. ବ. ଚୌକି, କାଷ୍ଠାସନ ।
କୁର୍‌ନିସ୍‌—ଯା.ବ.ନଇଁପଡ଼ି ସଲାମକରିବା, ରାଜାଆଦିଙ୍କୁ କରାଯିବା ସଲାମ ।
କୁର୍‌ମା—ପ୍ରା.(ସମ୍ବ)ବ.ଛୋଟକୁଡ଼ିଆଘର
କୁର୍‌ସିନାମା—ଯା. ବ. ବଂଶବୃକ୍ଷ, ବଂଶ-ତାଲିକା, ବଂଶାନୁଚରିତ ।
କୁର—ପ୍ରା.(କଟକ)ବ. ଯେତେ ପରିମିତ କଟା ଧାନକେଣ୍ଡା ହାତର ରେକାରେ ସମ୍ଭାଏ, ଖାବଲା, ରେକା ।
କୁର,କୁରକୁ—ବ. କୋଲ ଜାତିର ଭୂମି ଜାତିବିଶେଷ ।
କୁରଙ୍କର,କୁରଙ୍କୁର—ପୁଂ.ବ.(କୁରଂ+କୃ+କ.ଅ)ସାରସପକ୍ଷୀ, ବଡ଼ିଆକାଙ୍କ ।
କୁରଙ୍ଗ—ପୁଂ.ବ. (କୁର୍‌+ଅଙ୍ଗ)ମୃଗ, ଖୁରଙ୍ଗ, ଚନ୍ଦନହରିଣ, ବାହୁଟିଆ,ପର୍ବତ-ବିଶେଷ, ତୀର୍ଥଭେଦ, ତାରଲୌହ, (ଗ୍ରା ବ.) କୁତ୍ସିତ ରଙ୍ଗ,କୁତ୍ସିତସ୍ୱଭାବ, ବଦରଙ୍ଗ । [କୁରଙ୍ଗ ।
କୁରଙ୍ଗକ—ପୁଂ.ବ.(କୁରଙ୍ଗ+କ)ହରିଣ,
କୁରଙ୍ଗଜାତକ—ବୌଦ୍ଧଜାତକବିଶେଷ ।
କୁରଙ୍ଗଦୃଶା—ସ୍ତ୍ରୀ. ବଂ. (ବ.ବ୍ରୀ) ମୃଗ-ନୟନା, (ସ୍ତ୍ରୀ) ସୁନ୍ଦରଚକ୍ଷୁଯୁକ୍ତା (ସ୍ତ୍ରୀ) ।
କୁରଙ୍ଗନୟନା—ସ୍ତ୍ରୀ.ବଂ.(ବ.ବ୍ରୀ) ଯାହାର ଚକ୍ଷୁ ଦୁଇଟି ହରିଣ ଆଖିପରି ସୁନ୍ଦର ।
କୁରଙ୍ଗନାଭି—ପୁଂ.ବ.(କୁରଙ୍ଗ+ନାଭି) ଚତ୍ତା, ଗନ୍ଧଦ୍ରବ୍ୟବିଶେଷ, ମୃଗନାଭି, କସ୍ତୂରି ।
କୁରଙ୍ଗମ—ପୁଂ.ବ. (କୁରଂ+ଗମ୍‌+କ.ଅ) ମୃଗ, ହରିଣ ।
କୁରଙ୍ଗାକ୍ଷୀ—ସ୍ତ୍ରୀ.ବ.(କୁରଙ୍ଗ+ଅକ୍ଷି+ଈ) ମୃଗନୟନା ସ୍ତ୍ରୀ,(ବଂ)କୁରଙ୍ଗଦୃଶା (ଦେଖ) ।
କୁରଙ୍ଗୀ—ସ୍ତ୍ରୀ ବ. (କୁରଙ୍ଗ+ଈ)ମୃଗୀ, ହରିଣୀ ।
କୁରଚଲ୍ଲ—ପୁଂ. ବ. କର୍କଟ, କଙ୍କଡ଼ା ।
କୁରଟ—ପୁଂ. ବ. (କୁ+ରଟ୍‌+କ.ଅ) ଚର୍ମକାର, ମୋଚି, ଜନପଦ ଓ ସେହି ଜନପଦବାସୀ ଜାତିବିଶେଷ ।
କୁରଣ୍ଟ,କୁରଣ୍ଟକ—ପୁଂ. ବ. ଅଁଲେଇ ଫୁଲର ଗୁଳ୍ମ, ହଳଦିଆ ଫୁଲବିଶିଷ୍ଟ ଗୁଳ୍ମ, ନାଲିଫୁଲବିଶିଷ୍ଟଗୁଳ୍ମ,ଦାସକୁରଣ୍ଟି ଗଛ, ଅଁଲେଇ, ଦାସକେରେଣ୍ଟା ।
କୁରଣ୍ଟିକା—ସ୍ତ୍ରୀ.ବ. (କୁରଣ୍ଟ+କ+ଆ) କୁରଣ୍ଟ (ଦେଖ) ।
କୁରଣ୍ଡ—ପୁଂ. ବ. (କୁ+ରମ୍‌+କଡ.) କୋଷବୃଦ୍ଧି, ବିଶେଷବୃଦ୍ଧିପ୍ରାପ୍ତ ଅଣ୍ଡ-କୋଷ, କୋରଣ୍ଡ, ସାଲ୍ପରଣ୍ଡ ବୃକ୍ଷ ।
କୁରଣ୍ଡକ—ପୁଂ. ବ. କୁରଣ୍ଟ (ଦେଖ) ।
କୁରଣ୍ଡଗୁଣ—କ୍ଲୀ.ବ.ନାଗଦଅଁଣା,ଦଅଁଣା ।
କୁରର—ପୁଂ. ବ. (କୁର+କ.ଅର)ଏକ-ପ୍ରକାର ଛଞ୍ଚାଣ ପକ୍ଷୀ, କୌଞ୍ଚପକ୍ଷୀ, ଉତ୍କ୍ରୋଶପକ୍ଷୀ, ମେଣ୍ଢା ।
କୁରରୀ—ସ୍ତ୍ରୀ.ବ. (କୁରର+ଈ)ମାଟିଆ-ଚଲ, କୌଞ୍ଚପକ୍ଷୀ, କପୋତୀ, ମେଣ୍ଢୀ, ଟେଣ୍ଟେଇପକ୍ଷୀ ।
କୁରଲ—ପୁଂ.ବ.(କୁର+କ.ଅଲ) କୁରର ପକ୍ଷୀ, କୌଞ୍ଚପକ୍ଷୀ, ଅଳକ, କପାଳ-ଉପରେ ଝୁଲିପଡ଼ିଥିବା ଛୋଟ ବାଲ ।
କୁରବ—ପୁଂ.ବ. (କୁ+ରବ) ଶ୍ୱେତ-ମନ୍ଦାରଗଛ, କଳଙ୍କ, ନିନ୍ଦାବାଦ,କର୍କଶ ସ୍ୱର, ତିଲକଗଛ, ଦାସକେରେଣ୍ଟା ।
କୁରବକ—ପୁଂ. ବ. (କୁ+ରୁ+ଅକ) ଘଣ୍ଟିମଧୁ, କୁରୁଣ୍ଟକବୃକ୍ଷ,(କ୍ଲୀବ)କୁର-ବକଫୁଲ ।
କୁରବଲ—ପୁଂ. ବ. ବାଜପକ୍ଷୀ ।
କୁରବାହୁକ—ପୁଂ. ବ. ପକ୍ଷୀବିଶେଷ ।
କୁରସ—ପୁଂ. ବ. ମଦ୍ୟବିଶେଷ, (ବଂ) ମନ୍ଦ ରସଯୁକ୍ତ ।
କୁରସା—ସ୍ତ୍ରୀ ବ. ଗୋଜିହ୍ୱା ଲତା ।
କୁରାଜା—ପୁଂ.ବ.ମନ୍ଦରାଜା,ଯେଉଁ ରାଜା ପ୍ରଜା ପାଳନ କରେନାହିଁ ।
କୁରାଜ୍ୟ—କ୍ଲୀ.ବ.ମନ୍ଦରାଜ୍ୟ,କୁତ୍ସିତରାଜ୍ୟ ।
କୁରାଢ଼,କୁରାଢ଼ି—ଗ୍ରା.ବ.କୁଠାର,ଟାଙ୍ଗିଆ, ବଡ଼ ଟାଙ୍ଗିଆ ।
କୁରାଳ—ପୁଂ.ବ.ସାମୁଦ୍ରିକ ଅଶ୍ୱବିଶେଷ, କଳା ଗୋଡ଼ଥିବା ଫିକା ନାଲିଆଘୋଡ଼ା (ଗ୍ରା.ବ.) କୁମ୍ଭକାର, ପକ୍ଷିବିଶେଷ ।
କୁରାଳଚନ୍ଦ୍ର—କ୍ଲୀ.ବ.କୁମ୍ଭାରଚକ, କୁମ୍ଭା-ରର ମୃତ୍‌ପାତ୍ର ତିଆରି କରିବା ଚକ୍ର ।
କୁରାଳପଞ୍ଚମୀ—ଗ୍ରା.ସ୍ତ୍ରୀ.ବଂ. କୁମ୍ଭାରଙ୍କର ପର୍ବଦିନ, ପୌଷ ଶୁକ୍ଳପଞ୍ଚମୀ ।
କୁରାଳି—ଗ୍ରା. ବ. ହାସ୍ୟ ବା କ୍ରୋଧର ଗର୍ଜନ ଧ୍ୱନି ।
କୁରିବା—ଗ୍ରା.କି. କୋରିବା (ଦେଖ) ।
କୁରି—ସ୍ତ୍ରୀ. ବ. ତୃଣଧାନ୍ୟଭେଦ ।
କୁରୀର—କ୍ଲୀ.ବ. ସ୍ତ୍ରୀଲୋକମାନଙ୍କର ମୁହଁ ଘୋଡ଼ାଇବା ବସ୍ତ୍ରବିଶେଷ, ଓଢ଼ଣା, ମୈଥୁନ ।
କୁରୁ—ପୁଂ.ବ. (କୁର+କ.ଉ) ଅଗ୍ନୀଧ୍ର-ରାଜାର ପୁତ୍ର, ଚନ୍ଦ୍ରବଂଶୀୟ ନୃପବିଶେଷ, ବର୍ଷବିଶେଷ, ହସ୍ତିନାର ପ୍ରାଚୀନ ରାଜା-ବିଶେଷ, ପୁରୋହିତ, ଅନ୍ନ, ଭାତ, କଣ୍ଟକାରିକା, ଭାରତର ଚନ୍ଦ୍ରବଂଶୀୟ ରାଜନ୍ୟ ।
କୁରୁର—ଗ୍ରା. ବ. ଦାସକେରେଣ୍ଟା,ଏକ-ପ୍ରକାର ଶାକ, ଏଥିର ଫୁଲ ହଳଦିଆ ।
କୁରୁକ—ପୁଂ. ବ. ରାଜବିଶେଷ ।
କୁରୁକଟ—ପୁଂ.ବ. କୁରୁଦେଶବାସୀ ଓ କଟଦେଶବାସୀ ।

କୁରୁକନ୍ଦକ—କ୍ଲୀ. ବ. ମୂଳକ, ମୂଳା ।
କୁରୁକୁରୁ—ଗ୍ରା. ଅବ୍ୟ. ଅଳ୍ପଧ୍ୱନିକର ହସିବାର ଶବ୍ଦ ।
କୁରୁକୁଲ—କ୍ଲୀ.ବ. (୬ତତ୍ପୁ) କୁରୁବଂଶ, କୌରବଗଣ ।
କୁରୁକୁଲ୍ଲା—ସ୍ତ୍ରୀ.ବ. କାଳୀଙ୍କର ଗୋଟିଏ ନାମ, କାଳୀଙ୍କର ପାର୍ଶ୍ୱଦେବତା ।
କୁରୁକ୍ଷେତ୍ର—କ୍ଲୀ. ବ. ଅତିପ୍ରାଚୀନ ପୁଣ୍ୟ ସ୍ଥାନବିଶେଷ, କୁରୁ ଓ ପାଣ୍ଡବମାନଙ୍କର ରଣଭୂମି ।
କୁରୁକ୍ଷେତ୍ରବ୍ୟାପାର—ଗ୍ରା.ବ. କୁରୁକ୍ଷେତ୍ର ଯୁଦ୍ଧପର ପୃଥିବୀବ୍ୟାପୀବିସ୍ମୃତଯୁଦ୍ଧ, ଗଣ୍ଡଗୋଳ, ଘଣ୍ଟାଚକଟା, ଘୋର କଳକଜିଆ ।
କୁରୁକ୍ଷେତ୍ରଯୁଦ୍ଧ—ଗ୍ରା.ବ. ମହାଭାରତୋକ୍ତ କୁରୁ ଓ ପାଣ୍ଡବମାନଙ୍କମଧ୍ୟରେ ଅଷ୍ଟାଦଶ ଦିନ ପର୍ଯ୍ୟନ୍ତ ଯେଉଁ ମହାଯୁଦ୍ଧ ହୋଇଥିଲା ।
କୁରୁକ୍ଷେତ୍ରଯୋଗ,କୁରୁକ୍ଷେତ୍ରୀଯୋଗ—ବ. ପୁ.(କୁରୁକ୍ଷେତ୍ର+ଯୋଗ) ଏକେକଦିବସରେ ତିଥିତ୍ରୟ,ନକ୍ଷତ୍ରତ୍ରୟ ଏବଂ ଯୋଗତ୍ରୟ ଯଦି ସଂଘଟିତ ହୁଏ ।
କୁରୁଚ—ସ୍ତ୍ରୀ. ବ.(କ.ଧା)ଅଶ୍ଳୀଳସ୍ପୃହା, ମନ୍ଦବିଷୟଶୀଳସ୍ପୃହା,(ବିଂ.ବ.ଗ୍ରା) କୁତ୍ସିତାଭିଳାଷୀ, (ଯା.ବ.) କୁରୁଚ, ଚୌକି ।
କୁରୁଜାଙ୍ଗଲ—ପୁଂ. ବ. ଗଙ୍ଗାଯମୁନାର ଅନ୍ତର୍ବେଦୀର ଉତ୍ତରଭାଗସ୍ଥିତ ଜଙ୍ଗଲମୟ ପ୍ରଦେଶ । [ମହୁଡ଼ି ।
କୁରୁଜାତ (କ)—ଗ୍ରା.ବ. ସୁନାମୋହର,
କୁରୁଟ—ପୁଂ.ବ.ସିତାବରଶାକ,(ଗ୍ରା.ବ) ତାଳଗଛର ବାହୁଙ୍ଗା, ଏହାକୁ ଛେଚି ଘରର ଚାଳଆଦିବାନ୍ଧିବାରେ ବ୍ୟବହାର କରନ୍ତି ।
କୁରୁଟୀ—ପୁଂ. ବ. ଘୋଡ଼ା, ଅଶ୍ୱ ।
କୁରୁଡ଼—ଗ୍ରା.ବ.ହଳହୋଇ ଥିବା ବିଲର ବନ୍ଧୁର ମାଟିକୁ ଚଳାଇ ବିଲକୁ ସମତଳ କରିବାପାଇଁ ବ୍ୟବହୃତ ମଇ ।
କୁରୁଡ଼ା—ଗ୍ରା. ବ. କୋରଡ଼ା (ଦେଖ ।
କୁରୁଣା—ଗ୍ରା. ବ. ଦୁଧକୋରଣା, ନଡ଼ିଆ କୋରିବାର ଲୌହମୟ ଯନ୍ତ୍ରବିଶେଷ ।

କୁରୁଣି—ଗ୍ରା. ବ. ସନ୍ନ୍ୟାସୀ, ବ୍ରହ୍ମଚାରୀ ପ୍ରଭୃତିଙ୍କର ବ୍ୟବହୃତ ପାତ୍ରବିଶେଷ ।
କୁରୁଣ୍ଟ, କୁରୁଣ୍ଟକ—ପୁଂ. ବ. ପୀତ ଦାସକେରେଣ୍ଟା ଗଛ, କାଠପିଚୁଲା, କଠକଣ୍ଟେଇ ।
କୁରୁଣ୍ଟିକା—ସ୍ତ୍ରୀ.ବ.ହସ୍ତିମୀବୃକ୍ଷ,ହାତୀଶୁଣ୍ଢ଼ି
କୁରୁଣ୍ଡୀ—ସ୍ତ୍ରୀ. ବ. କାଠର କୁଣ୍ଢେଇ ବା କଣ୍ଢେଇ, ବ୍ରାହ୍ମଣପତ୍ନୀ ଅଥବା ଶିକ୍ଷକପତ୍ନୀ ।
କୁରୁଣ୍ଡ—ଗ୍ରା.ବ.କୁରୁଣ୍ଡ,ଅଣ୍ଡବୃଦ୍ଧିରୋଗ, ବିଶେଷବୃଦ୍ଧିପ୍ରାପ୍ତ ଅଣ୍ଡକୋଷ ।
କୁରୁଣ୍ଡିଆ--ଗ୍ରା.ପୁଂ.ବିଂ.କୁରୁଣ୍ଡରୋଗଗ୍ରସ୍ତ, ଯାହାର କୋଷବୃଦ୍ଧି ହୋଇଅଛି ।
କୁରୁତ—ପୁଂ. ବ. ବାଉଁଶନିର୍ମିତ ବୃହତ୍ ପାତ୍ର ।
କୁରୁତା—ଯା. ବ. କୁର୍ତ୍ତା, ଅଙ୍ଗରକ୍ଷିଣୀ, ଜାମା, ଗଞ୍ଜି ।
କୁରୁତୀର୍ଥ—କ୍ଲୀ. ବ. କୁରୁକ୍ଷେତ୍ରର ଅନ୍ତର୍ଗତ ତୀର୍ଥବିଶେଷ ।
କୁରୁନନ୍ଦିକା—ସ୍ତ୍ରୀ. ବ. କ୍ଷୁଦ୍ରନଦୀ ।
କୁରୁନନ୍ଦନ—ପୁଂ. ବ. ଯୁଧିଷ୍ଠିରାଦି କୁରୁବଂଶୀୟ ନୃପତିଗଣ । [ଧୃଷ୍ଟ ।
କୁରୁପତି—ପୁଂ. ବ. (କୁରୁ+ପତି)ଧୃତ
କୁରୁପାଞ୍ଚାଳ—ପୁଂ. ବ. କୁରୁ ଓ ପଞ୍ଚାଳ ଦେଶବାସୀଗଣ ।
କୁରୁପାଣ—ଗ୍ରା. ବ.ପ୍ରଳୟଉଦ୍ଭୂତ ସ୍ଥାନ ।
କୁରୁମ—ଗ୍ରା.ବ. ବଡ଼କଇଁଛ, ଏକପ୍ରକାର ହାଲୁକାକାଠ, ବନ୍ୟବୃକ୍ଷବିଶେଷ, ଘୁମୁସରରେ ଥିବା ଶୂଦ୍ରଜାତିବିଶେଷ ।
କୁରୁମା—ଗ୍ରା. ବ. ଦଧିଭାଣ୍ଡ, ଦହିହାଣ୍ଡି ।
କୁରୁମ୍ବ—କ୍ଲୀ.ବ.କୁଳପାଳକ,କମଳାଲେମ୍ବୁ ।
କୁରୁମ୍ବର—ଦାକ୍ଷିଣାତ୍ୟର ହୀନ ଜାତିବିଶେଷ ।
କୁରୁମ୍ବା,କୁରୁମ୍ବିକା—ସ୍ତ୍ରୀ ବ. ଦ୍ରୋଣପୁଷ୍ପୀ, ଗଇଣଫୁଲର ଗଛ ।
କୁରୁରାଜ,କୁରୁରାଜ୍ୟ—ପୁଂ. ବ. (୬ତତ୍ପୁ) ଦୁର୍ଯ୍ୟୋଧନ ।
କୁରୁରୀ—ସ୍ତ୍ରୀ.ବ.ସ୍ତ୍ରୀ. ଶ୍ୟେନପକ୍ଷୀ,ମେଣ୍ଢା ।

କୁରୁଳ—ପୁଂ. ବ. ଯେଉଁ ଅଳପ ବାଳ କପାଳର ଉପରେ ପଡ଼େ,ଚୂର୍ଣ୍ଣକୁନ୍ତଳ ।
କୁରୁଳ—ଗ୍ରା. ବ. କୁରଳ, ଅଳକ, ଚୂର୍ଣ୍ଣକୁନ୍ତଳ, ହାସ୍ୟଯୁକ୍ତଚକ୍କାର, ହାସ୍ୟ ଓ ଚକ୍କାର ଯୁକ୍ତ ଲମ୍ଫନ, କପାଳ ଉପରେ ଝୁଲିପଡ଼ିଥିବା ଛୋଟ ବାଳ ।
କୁରୁବକ—ପୁଂ.ବ.(କୁ+ରୁ+ଉବ+କ) ରକ୍ତଝିଣ୍ଟି ବୃକ୍ଷ ବା ଫଳ, କୁରୁଣ୍ଟକ ।
କୁରୁବସ୍ତ—ପୁଂ. ବ. ରାଜପୁତ୍ର ବିଶେଷ ।
କୁରୁବର୍ଣ୍ଣକ—ପୁଂ.ବ. ଜନପଦବିଶେଷ ।
କୁରୁବର୍ଷ—କ୍ଲୀ. ବ. (୬ତତ୍ପୁ) ଜମ୍ବୁଦ୍ୱୀପାନ୍ତର୍ଗତ ଉତ୍ତର କୁରୁଦେଶ ।
କୁରୁବଳ—ବ. ( ୬ତତ୍ପୁ ) ମହାଭାରତ ଯୁଦ୍ଧରେ କୌରବପକ୍ଷୀୟ ସୈନ୍ୟତତ୍ତ୍ୱ ।
କୁରୁବଂଶ—ବ. (୬ତତ୍ପୁ) ଚନ୍ଦ୍ରଙ୍କରଶାଖା ବିଶେଷ, ନୃପତିବିଶେଷ ।
କୁରୁବାଜପେୟ—ପୁଂ. ବ. କ୍ଷୁଦ୍ରବାଜପେୟ ଯଜ୍ଞ ।
କୁରୁବାନ—ଯା.ବ. କୁର୍ବାନ (ଦେଖ) ।
କୁରୁବିନ୍ଦ—ପୁଂ.ବ.(କୁରୁ+ବିନ୍ଦ୍+ଅ) ପଦ୍ମରାଗମଣି,ମୁଥା,ଫୁଲର କଢ଼,ଦର୍ପଣ, ବିଗ୍ଭି, ମାଳଗୁଚ୍ଛ, ଶସ୍ୟ, ଶିଳା ହିଙ୍ଗୁଳ, କଳାଲୁଣ, ଗୁଳ୍ମବିଶେଷ ।
କୁରୁବିନ୍ଦକ—ପୁଂ.ବ. କୁଧାନ୍ୟବିଶେଷ ।
କୁରୁବିଲ୍ୱ—ପୁଂ. ବ. (କୁରୁ+ବିଲ୍ୱ) ପଦ୍ମରାଗମଣି ।
କୁରୁବିସ୍ତ—ପୁଂ. ବ. ( କୁରୁ+ବିସ୍ତ ) ସୁବର୍ଣ୍ଣର ଓଜନ ରଚନା ।
କୁରୁବୃଦ୍ଧ—ପୁଂ.ବ.(କୁରୁ+ବୃଦ୍ଧ)ଭୀଷ୍ମ ।
କୁରୁବେଲ—ଗ୍ରା. ବ. ସୁଗନ୍ଧପୁଷ୍ପ ଗୁଳ୍ମବିଶେଷ । [ନୃପତିବିଶେଷ ।
କୁରୁଶ୍ରବଣ—ପୁଂ ବ. ବେଦପ୍ରସିଦ୍ଧ
କୁରୁଶ୍ରେଷ୍ଠ—ବ. କୁରୁବଂଶର ଶ୍ରେଷ୍ଠ ରାଜା ଧୃତରାଷ୍ଟ୍ର ।
କୁରୁସୁତ,କୁରୁସୁତ—ପୁଂ. ବ. ବୈଦିକ ମନ୍ତ୍ର ପ୍ରକାଶକ ଋଷିବିଶେଷ ।
କୁରୂପ—ପୁଂ.ବିଂ.(ବ.ବ୍ରୀ)କୁତ୍ସିତ ରୂପଯୁକ୍ତ,କୁତ୍ସା,(ସ୍ତ୍ରୀ)କୁରୂପା । (କ୍ଲୀ.ବ.କ.ଧା) ମନ୍ଦରୂପ ।

କୁରୁପ୍ୟ – କ୍ଳୀ. ବି. ଦସ୍ତା, ରଙ୍ଗ ।

କୁରୁରୁ—ପୁଂ. ବି. କୀଟବିଶେଷ ।

କୁର୍କୁଟ – ପୁଂ. ବି. କୁକ୍କୁଟ, କୁଲୁଡ଼ା, ଅଳିଆ ।

କୁର୍କୁଟାହି – ପୁଂ. ବି. (କୁର୍କୁଟ + ଅହି + ଇ) ପକ୍ଷୀବିଶେଷ, ଯାହାର ରବ ଓ ବର୍ଣ୍ଣ କୁକ୍କୁଟ ତୁଲ୍ୟ, ସର୍ପବିଶେଷ ।

କୁର୍କୁର—ପୁଂ. ବି. (କର + କୁର୍ + ଅ) କୁକ୍କୁର ଅଥବା କୁକ୍କୁର ।

କୁର୍ଗ – ବି.ଦାକ୍ଷିଣାତ୍ୟର ଗୋଟିଏ ରାଜ୍ୟ ।

କୁର୍ଚ୍ଚ—ଯା.ବି.ଚଉକି,ଚୌକି,ଚେୟାର ।

କୁର୍ଚ୍ଚିକା – ସ୍ତ୍ରୀ. ବି.ଚକ୍ଷୁଦୁଗ୍ଧ, ସୂଚୀ, କୁଞ୍ଚି, ତୂଳିକା ।

କୁର୍ଚ୍ଚୁଣ୍ଡା – ଗ୍ରା. ବିଂ. ଚଗଲା, ବଗୁଲିଆ, ଯେ କାମଦାମ ନକରି ସର୍ବଦା ବୁଲେ ।

କୁର୍ତ୍ତୀ—ଯା. ବି. ଛୋଟଜାମା ।

କୁର୍ଦ୍ଦ – (ଧାତୁ) କୁଦିବା ।

କୁର୍ଦ୍ଦନ—କ୍ଳୀ. ବି. ( କୁର୍ଦ୍ଦ + ଭା.ଅନ) କ୍ରୀଡ଼ାକରିବା, ଆସ୍ଫାଳନ,କୁଦାମାରିବା, ଡେଇଁବା । [ସ୍ଥାନ ।

କୁର୍ଦ୍ଦସ୍ଥାନ—କ୍ଳୀ.ବି. କୁର୍ଦ୍ଦଜାତିର ବାସ-

କୁର୍ପର – ପୁଂ. ବି. (କୁର୍ + ପର)ଜାନୁ, କହୁଣି, ଆଣ୍ଠୁ, କଫୋଣି ।

କୁର୍ପାସ – ପୁଂ. ବି. ନ. (କୁର୍ପ + ଅସ୍ + କ.ଅ) କାଞ୍ଚୁଲି, କାଞ୍ଚଲା, ଜାକେଟ ।

କୁର୍ପାସକ – ବି. କୁର୍ପାସ(ଦେଖ),କୁରୁତା, ଅଙ୍ଗରଖା ।

କୁର୍ବଦ୍‌-ବିଂ.(କୃ + ଅତ୍) କର୍ତ୍ତା, ଭୃତ୍ୟ ।

କୁର୍ବାନ – ଯା. ବି. ବଳି,ଆତ୍ମଦାନ, ବଳି ପାଇଁ ଉତ୍ସୃଷ୍ଟ ଜୀବ ।

କୁର୍ବାନ – ଯା.ବି. ଈଶ୍ୱରଙ୍କ ଉଦ୍ଦେଶ୍ୟରେ ଗୋମେଷାଦି ବଳିଦାନ କ୍ରିୟା ।

କୁଲ୍ – ( ଧାତୁ ) ଏକତ୍ରହେବା, ଗଦା-କରିବା, ସଂଗ୍ରହକରିବା, ରକ୍ତସମ୍ପର୍କରେ ସମ୍ପୃକ୍ତହେବା, ଗଣିବା, ଗଠିତକରିବା, ବିସ୍ତାରକରିବା ।

କୁଲ୍ – ଯା.ବିଂ.ବିବାକ୍,ସମୁଦାୟ,ସମଗ୍ର ।

କୁଲ୍‌କବା – ଗ୍ରା କ୍ରି.ଝିଞ୍ଜିବୁଦ୍ଧି ଦ୍ୱାରା ଧାନ ଗୋଟାଇବା, କଆରରେ ଧାନକଟାଲୀଙ୍କଠାରୁ ଖସିପଡ଼ିଥିବା ଓ କଟା ବାଦ୍ ରହିଯାଇଥିବା ଧାନ୍ୟାଦି ଶସ୍ୟକୁ ଗୋଟାଇବା ।

କୁଲ୍‌ତା—ଗ୍ରା. (ସମ୍ବ) ବି. ସମ୍ବଲପୁର ବାସୀ, ଚଷା ବା ଖଣ୍ଡାଏତ ଶ୍ରେଣୀର ଜାତିବିଶେଷ । [ଫଲ ।

କୁଲ୍‌ମେଟ – ଯା.ବି. ବହୁବସ୍ତୁର ଯୋଗ

କୁଲ୍‌ହକୁକ୍‌ଦାର – ଯା.ବି. କୌଣସି ସମ୍ପତ୍ତିରେ ଥିବା କୌଣସି ବ୍ୟକ୍ତିର ସମଗ୍ର ସ୍ୱତ୍ୱ ଓ ସ୍ୱାମିତ୍ୱ ।

କୁଲ୍‌ହାଲ—ଯା.ବି. ସମସ୍ତ ବିବରଣ ବା ସମ୍ବାଦ, ସବୁ ସମାଚାର ।

କୁଳ – କ୍ଳୀ.ବି. (କୁଲ୍ + ଅ)ବଂଶ,ପରିବାର, ଗୋଷ୍ଠୀ, ଗୋତ୍ର, ଜାତି,ପାଟକ ଦେଶ, ଶରୀର, ଦେହ, ଗୃହ, ବଂଶର ବାସଗୃହ,ଜାତିବେହେରା, ସମୂହ, ଦଳ (ବିଂ)ଶ୍ରେଷ୍ଠ,(ବି) ଶକ୍ତି,ବଂଶମର୍ଯ୍ୟାଦା, (ଗ୍ରା.ବି) ଏକଜାତି ବା ପାଟକର ଜାତି ଭାଇମାନେ, ଆଡ଼, ପକ୍ଷ, ପାଖ ।

କୁଳକ—ବି. (କୁଳ + କ) ଏକକର୍ତ୍ତା ଓ ଏକକ୍ରିୟା ପଦଘଟିତ ଚତୁରଧିକ ଶ୍ଳୋକ ସମୁଦାୟ, ସଙ୍କୁଳପ୍ରସିଦ୍ଧଶିଳ୍ପୀ, ବଲ୍ମୀକ, ହୁଙ୍କା,ଜାତିବେହେରା, ସମୂହ, କୁଳଶ୍ରେଷ୍ଠ, ପଟୋଲଲତା, କୋଚଲା, ମାଙ୍କଡ଼କେନ୍ଦୁଗଛ, ସଂସ୍କୃତରେ ଗଦ୍ୟ ରଚନା ପ୍ରଣାଳୀ ବିଶେଷ, (ବିଂ) ସତ୍‌କୁଳ ପ୍ରସୂତ ।

କୁଳକଜ୍ଜ୍ୱଳ – ପୁଂ.ବିଂ. ଯେଉଁ ବ୍ୟକ୍ତି କୁକାର୍ଯ୍ୟକରି ବଂଶ ଗୌରବ ନଷ୍ଟକରେ ।

କୁଳକଣ୍ଟକ – ପୁଂ.ବି. (୬ତତ୍ପୁ) ଯେଉଁ ବ୍ୟକ୍ତି କୁଳର କଣ୍ଟକ ସ୍ୱରୂପ ଅଟେ, ଯେଉଁ ଲୋକ କୁଳର ଗୌରବ ନାଶ କରେ ।

କୁଳକନ୍ୟା – ସ୍ତ୍ରୀ.ବି. (କ.ଧା) ସଦ୍‌ବଂଶ ଜାତା କନ୍ୟା, କୁଳସ୍ତ୍ରୀ ।

କୁଳକର – ପୁଂ.ବିଂ. (କୁଳ + କୃ + ଅ) ବଂଶ ପ୍ରବର୍ତ୍ତକ, କୁଳଶ୍ରେଷ୍ଠ ।

କୁଳକର୍ତ୍ତା—ପୁଂ.ବିଂ. (୬ତତ୍) କୁଳପ୍ରବର୍ତ୍ତକ,ବଂଶସ୍ଥାପକ, ବଂଶଶ୍ରେଷ୍ଠ ।

କୁଳକର୍ମ – କ୍ଳୀ. ବି. ( ମଧ୍ୟ, କ.ଧା ) ବଂଶାନୁଗତ କର୍ତ୍ତବ୍ୟକର୍ମ, କୁଳାଚାର, ଭିନ୍ନ ଭିନ୍ନ ବଂଶରେ ବିବାହାଦିକାର୍ଯ୍ୟକାଳେ ପୃଥକ ପୃଥକ ଅନୁଷ୍ଠେୟ କର୍ମ ।

କୁଳକଳଙ୍କ – ପୁଂ. ବିଂ. ଯେଉଁ ବ୍ୟକ୍ତି ବଂଶର କଳଙ୍କ ରଟାଏ, କୁଳାଙ୍ଗାର, ( ବି ) କୁଳର ସୁନାମ ଲୋପଜନକ ଦୂଷିତକର୍ମ, କୁଳନିନ୍ଦା ।

କୁଳକଳଙ୍କିନୀ – ସ୍ତ୍ରୀ. ବି. ଯେଉଁ ସ୍ତ୍ରୀ ବ୍ୟଭିଚାରାଦିଦ୍ୱାରା ପିତୃ ବା ଶ୍ୱଶୁର କୁଳର ନିନ୍ଦାବାଦ କରେ ।

କୁଳକଳଙ୍କୀ – ପୁଂ.ବିଂ. (କୁଳକଳଙ୍କ + ଇନ୍) ଚରିତ୍ରହୀନ ( ପୁରୁଷ ), ଯେଉଁ ବ୍ୟକ୍ତିର ଚରିତ୍ର ଦୋଷରେ କୁଳ କଳଙ୍କିତ ହୁଏ ।

କୁଳକାମିନୀ – ସ୍ତ୍ରୀ. ବି. (୬ତତ୍) କୁଳଭୂଆସୁଣୀ, ଗୃହିଣୀ, ସତୀ ସ୍ତ୍ରୀ ।

କୁଳକୁଚି—ଗ୍ରା.ବି. ତୁଣ୍ଡଭିତରେ ପାଣି ପୂରେଇ ଏକଲ ସେକଲ କରିବା କର୍ମ, କୁଳିକରିବା ।

କୁଳକୁଟୁମ୍ବ—ଗ୍ରା.ବି. ବଂଶ ବା ପରିବାର ।

କୁଳକୁଣ୍ଡଳିନୀ – ସ୍ତ୍ରୀ.ବି. (କୁଳ + କୁଣ୍ଡଳିନୀ) ତନ୍ତ୍ରଶାସ୍ତ୍ର ପ୍ରସିଦ୍ଧ ମୂଳାଧାରସ୍ଥ ସର୍ପାକୃତି ଶକ୍ତିବିଶେଷ ।

କୁଳକେତନ – ପୁଂ. ବି. ଦାକ୍ଷିଣାତ୍ୟ ପ୍ରସିଦ୍ଧ କଳିଙ୍ଗର ଜଣେ ପୁରାତନ ରାଜା ।

କୁଳକ୍କ – ପୁଂ. ବି. (କୁ + ଲ + ଭା,ଅ) ହାତତାଳି, ଝାଞ୍ଜ ତାଳ, କରତାଳ ।

କୁଳକ୍ରମାଗତ – ବି. (୭ତତ୍) ବଂଶ ପରମ୍ପରାରେ ଆଗତ, କୁଳ ଅନୁସାରେ ଚଳି ଆସୁଥିବା କୌଳିକ ପ୍ରଥା ।

କୁଳକ୍ରିୟା – ସ୍ତ୍ରୀ.ବି, (ମଧ୍ୟ,କ.ଧା)ବଂଶର କାର୍ଯ୍ୟ, କୁଳକର୍ମ (ଦେଖ ) ।

କୁଲକ୍ଷଣ—କ୍ଳୀ.ବି. (କୁ + ଲକ୍ଷଣ) ଖରାପ ଲକ୍ଷଣ, ମନ୍ଦ ସୂଚକଚିହ୍ନ, (ବିଂ.ବି.ସ୍ତ୍ରୀ) ଅଶୁଭ ଲକ୍ଷଣଯୁକ୍ତ,(ସ୍ତ୍ରୀ) କୁଲକ୍ଷଣା ।

କୁଲକ୍ଷଣା—ସ୍ତ୍ରୀ.ବିଂ. ( କୁ + ଲକ୍ଷଣା ) ଦୁର୍ଭାଗା, ମନ୍ଦଭାଗ୍ୟା (ସ୍ତ୍ରୀ) ।

କୁଲକ୍ଷଣୀ—ଗ୍ରା.ସ୍ତ୍ରୀ. ବିଂ. କୁଲକ୍ଷଣଯୁକ୍ତା (ସ୍ତ୍ରୀ), ଅଲକ୍ଷଣୀ, ଦୁରାଚାରିଣୀ (ସ୍ତ୍ରୀ) ।

କୁଳକ୍ଷୟ—ପୁଂ.ବି. ( କୁଳ+କ୍ଷି+ଅ) (୬ତତ୍) ପୁତ୍ରନାତି ଆତ୍ମୀୟ ସ୍ୱଜନ ପ୍ରଭୃତିର ବିନାଶରେ ବଂଶର ଅବନତି ଓ ଧ୍ୱଂସ ।

କୁଳଗରବୀ—ଗ୍ରା. ପୁଂ. ବି. ବଂଶର ଗୌରବରେ ଗର୍ବିତ ।

କୁଳଗରିମା—ପୁଂ.ବି. ବଂଶଗୌରବ ।

କୁଳଗିରି—ପୁଂ.ବି. କୁଳପର୍ବତ, ଭାରତ-ବର୍ଷର ସପ୍ତପ୍ରଧାନ ପର୍ବତ ମଧ୍ୟରେ ଗୋଟିଏ ପର୍ବତ ।

କୁଳଗୁରୁ—ପୁଂ.ବି. (୬ତତ୍) କୌଣସି ବଂଶର ବଂଶାନୁଗତ ଗୁରୁ, କୁଳ-ପୁରୋହିତ ।

କୁଳଗୃହ—କ୍ଲୀ.ବି. ବାସ ଘର, ପ୍ରଧାନ ଶାକ୍ତ ବା କୌଳମାନଙ୍କର ଘର ।

କୁଳଗୋପ—ପୁଂ.ବି. (କୁଳ+ଗୁପ୍+ଅ) ବଂଶର ଓ କୁଳର ରକ୍ଷକ ।

କୁଳଗୌରବ—ବି. (୬ତତ୍) କୁଳର ଗରିମା, ଉଚ୍ଚବଂଶଜନିତ ଅଭିମାନ ।

କୁଳଘ୍ନ—କ୍ଲୀ. ବି. (କ,ଧା) ଅଶୁଭଲଗ୍ନ, ଅଶୁଭଲକ୍ଷଣ ।

କୁଳଘ୍ନ—ପୁଂ. ବିଂ. (କୁଳ+ହନ୍+ଅ) ବଂଶନାଶକ, କୁଳବୁଡ଼ା, ଯେଉଁ ବ୍ୟକ୍ତି କୁକର୍ମାଚରଣ କରି ବଂଶ ଲୋପର କାରଣ ହୁଏ, (ସ୍ତ୍ରୀ) କୁଳଘ୍ନୀ ।

କୁଳଙ୍ଗୀ—ସ୍ତ୍ରୀ.ବି. କଣ୍ଟକୀ ଲତା ।

କୁଳଚଣ୍ଡୀ—ସ୍ତ୍ରୀ.ବି. ଦେବୀଭେଦ ।

କୁଳଚନ୍ଦ୍ର—ପୁଂ.ବି.କଳାପ ବ୍ୟାକରଣର ଦୁର୍ଗାବାକ୍ୟ ପ୍ରବୋଧକାନାମକ ଜଣେ ଟୀକାକାର, ମଣିପୁରର ଶେଷସ୍ୱାଧୀନ ରାଜା ।

କୁଳଚୂଡ଼ାମଣି—ପୁଂ. ବି. ଘଟକ, ଯେ ବିବାହ ସମ୍ବନ୍ଧ ସ୍ଥିର କରେ, ଖଣ୍ଡେ ପ୍ରାଚୀନତନ୍ତ୍ର, ଜଣେ ପାଣ୍ଡ୍ୟ ରାଜା ।

କୁଳଚ୍ୟୁତ—ପୁଂ.ବିଂ.(୫ତତ୍)ଜାତିଭ୍ରଷ୍ଟ, ସମାଜଚ୍ୟୁତ, ଯେଉଁ ବ୍ୟକ୍ତି ଅକାର୍ଯ୍ୟ କରି ଜାତି ବଂଶ ବା ସମାଜରୁ ବହି-ଷ୍କୃତ ହୁଏ ।

କୁଳଜ—ପୁଂ, ବି. ( କୁଳ+ଜନ୍+ଅ) ସତ୍‌କୁଳୋଦ୍ଭବ ବ୍ୟକ୍ତି, କୁଳୀନ ।

କୁଳଜନ—ପୁଂ.ବି. ମହତ୍ ବଂଶୋଦ୍ଭବ ବ୍ୟକ୍ତି ।

କୁଳଜା—ସ୍ତ୍ରୀ.ବି.(କୁଳ+ଜନ୍+ଅ+ଆ)ଗୁଣବତୀ ସତୀ ସ୍ତ୍ରୀ,(ପୁଂ.ବି)କୁଳଜ ।

କୁଳଜାତ—ପୁଂ.ବିଂ. (୭ତତ୍) ସତ୍‌କୁଳ ଜାତ, (ସ୍ତ୍ରୀ) କୁଳଜାତା ।

କୁଳଜ୍ଞ—ପୁଂ. ବିଂ. ( କୁଳ+ଜ୍ଞା+ଅ) ଯେଉଁ ବ୍ୟକ୍ତି କୁଳବୃତ୍ତାନ୍ତ ଜାଣେ ।

କୁଳଞ୍ଜ—ପୁଂ.ବି. ଗନ୍ଧମୂଳ ବୃକ୍ଷ ।

କୁଳଞ୍ଜନ—ପୁଂବି. ସ୍ୱନାମ ପ୍ରସିଦ୍ଧ ବୃକ୍ଷ ବିଶେଷ ।

କୁଳଟ—ପୁଂ.ବି. (କୁଳ+କ,ଅଟ)ଯେଉଁ ବ୍ୟକ୍ତି ପିତୃକୁଳ ପରିତ୍ୟାଗ କରି ଅନ୍ୟ କୁଳ ଆଶ୍ରୟ ନିଏ ।

କୁଳଟା—ସ୍ତ୍ରୀ.ବିଂ.(କୁଳ+ଅଟ୍+କ.ଅ+ଆ) ବ୍ୟଭିଚାରିଣୀ (ସ୍ତ୍ରୀ), ଅସତୀ, ଭ୍ରଷ୍ଟା, କୁଳତ୍ୟକ୍ତା, ଭିକ୍ଷୁକୀ ।

କୁଳଟାପତି—ପୁଂ.ବି. (୬ତତ୍) ଷାରଣ୍ଡା, ବେଶ୍ୟାପତି ।

କୁଳଟୀ—ସ୍ତ୍ରୀ.ବି.ଗେରୁମାଟି,ମନଃଶିଳା ।

କୁଳତତ୍ତ୍ୱବିତ୍—ପୁଂ. ବି. (କୁଳ+ତତ୍ତ୍ୱ+ବିଦ+କ୍ୱିପ୍) କୁଳତତ୍ତ୍ୱଜ୍ଞ, ଯେଉଁ-ବ୍ୟକ୍ତି କୁଳବୃତ୍ତାନ୍ତ ଜାଣେ ।

କୁଳତନ୍ତୁ—ପୁଂ.ବି. (କ.ଧା) ବଂଶରସୂତ୍ର ସ୍ୱରୂପ, ସନ୍ତାନ, ଅପତ୍ୟ ।

କୁଳତିଥି—ସ୍ତ୍ରୀ. ବି. ତନ୍ତ୍ରମତେ ଚତୁର୍ଥୀ, ଅଷ୍ଟମୀ,ଦ୍ୱାଦଶୀ ଓ ଚତୁର୍ଦ୍ଦଶୀ ଏହି କୁଳ ତିଥି ।

କୁଳତିଳକ—ପୁଂ.ବି.(୬ତତ୍)ବଂଶଶ୍ରେଷ୍ଠ, ବଂଶର ଉନ୍ନତି ବା ସୁନାମକାରୀ(ବ୍ୟକ୍ତି), (ବି) ସୁପୁତ୍ର, ବଂଶରଶ୍ରେଷ୍ଠପୁତ୍ର, କୁଳ-ମଣ୍ଡନକାରୀବ୍ୟକ୍ତି ।

କୁଳତ୍ଥ—ପୁଂ. ବି. (କୁଳ+ସ୍ଥା+କ.ଅ) ଶସ୍ୟବିଶେଷ, କୋଳଥ ।

କୁଳତ୍ଥ—ସ୍ତ୍ରୀ. ବି. ବଣକୋଳଥ, ଚକ୍ଷୁ-ରୋଗର ଉପକାରୀ ନୀଳ ପ୍ରସ୍ତରବିଶେଷ ଛନ୍ଦବିଶେଷ ।

କୁଳତ୍ଥାଞ୍ଜନ—କ୍ଲୀ. ବି. ଅଞ୍ଜନବିଶେଷ ।

କୁଳତ୍ଥାଦ୍ୟଘୃତ—କ୍ଲୀ. ବି. ଆୟୁର୍ବେଦ ସମ୍ମତ ଘୃତବିଶେଷ ।

କୁଳତ୍ଥିକା—ସ୍ତ୍ରୀ. ବି. କୋଳଥ ଆକାର ନୀଳବର୍ଣ୍ଣ ପ୍ରସ୍ତରବିଶେଷ,ବନକୋଳଥ ।

କୁଳତ୍ୟାଗ—ପୁଂ.,ବି. (୬ତତ୍) କୁଳରୁ ନିର୍ଗମନ ।

କୁଳତ୍ୟାଗୀ—ପୁଂ. ବିଂ. (୬ତତ୍) ଯେ କୁଳରୁ ବାହାରହୋଇ ଯାଇଅଛି, (ସ୍ତ୍ରୀ) କୁଳତ୍ୟାଗିନୀ ।

କୁଳଥଳ—ଗ୍ରା.ବି. ନିକଟବର୍ତ୍ତୀ ଓ ଦୂର-ବର୍ତ୍ତୀ ସ୍ଥାନମାନ ବଂଶ ଓ ଜନ୍ମସ୍ଥାନ ।

କୁଳଦତ୍ତ—ପୁଂ. ବି. ଜଣେ ନେପାଳୀ ବୌଦ୍ଧଗ୍ରନ୍ଥକାର ।

କୁଳଦମନ—ପୁଂ. ବି. (କୁଳ+ଦମ+ଅନ) ବଂଶଶାସକ, ଯେଉଁ ବ୍ୟକ୍ତି ନିଜ-ବଂଶରେ ବ୍ୟଭିଚାରାଦି ଦୋଷଘଟିବାକୁ ଦିଏ ନାହିଁ ।

କୁଳଦାନ—ଆରାକାନ୍‌ରାଜ୍ୟରେ ପ୍ରବାହିତ ଗୋଟିଏ ନଦୀ ।

କୁଳଦୀପ—ପୁଂ. ବି. ତନ୍ତ୍ରସାରୋକ୍ତ କୁଳ-ଆଚାରର ଅଙ୍ଗଦୀପବିଶେଷ, କୁଳଶ୍ରେଷ୍ଠ. ଯେଉଁପୁତ୍ର ସତ୍‌କାର୍ଯ୍ୟକରି ବଂଶ ଉଜ୍ଜ୍ୱଳ କରେ ।

କୁଳଦୁହିତା—ସ୍ତ୍ରୀ. ବି. ସୁବଂଶୀୟକନ୍ୟା, ସତ୍‌ବଂଶୀୟକନ୍ୟା ।

କୁଳଦୂଷକ—ପୁଂ. ବିଂ.(କୁଳ+ଦୁଷ୍+ଅକ) ୬ତତ୍; ଯେଉଁ ବ୍ୟକ୍ତି ବ୍ୟଭିଚାରାଦି ଦ୍ୱାରା ବଂଶଦୋଷ ଉତ୍ପନ୍ନ କରେ ଅଥବା ବଂଶର ନିନ୍ଦାକରେ, ବଂଶର କଳଙ୍କ ସ୍ୱରୂପ କୁଳାଙ୍ଗାର, (ସ୍ତ୍ରୀ)କୁଳଦୂଷିକା ।

କୁଳଦୂଷଣ—ପୁଂ.ବିଂ. କୁଳାଙ୍ଗାର କୁଳ-ଦୂଷକ(ଦେଖ), (ବି) କୁଳର ନିନ୍ଦା, ବଂଶର ଅଖ୍ୟାତି ।

କୁଳଦେବତା—ସ୍ତ୍ରୀ. ବି. ( ମଧ୍ୟ-କ.ଧା) ବଂଶରେ ପରମ୍ପରା କ୍ରମେ ପୂଜା ପାଉ-ଥିବା ଦେବ, କୁଳର ଆରାଧ୍ୟ ଦେବତା,

ଇଷ୍ଟଦେବତା, ଷୋଡ଼ଶ ମାତୃକା ମଧ୍ୟରୁ ମାତୃକାବିଶେଷ ।
**କୁଳଦେବୀ** — ସ୍ତ୍ରୀ.ବ.ବଂଶପରମ୍ପରା କ୍ରମରେ ପୂଜିତା ଦେବୀ । [ଦେବତା ।
**କୁଳଦୈବ** — କ୍ଲୀ.ବ.ବଂଶର କୁଶଳ,କୁଳ-
**କୁଳଦ୍ରବ୍ୟ** — କ୍ଲୀ. ବ. ମଦ୍ୟ ।
**କୁଳଦ୍ରୁମ** — ପୁଂ. ବ. ଶ୍ଳେଷ୍ମାନ୍ତକ ବୃକ୍ଷ, କରଞ୍ଜ, ବିଲ୍ୱ, ଅଶ୍ୱତ୍ଥ, କଦମ୍ବ, ଜମ୍ବୁ, ଉଡ଼ୁମ୍ବର, ଧାତ୍ରୀ ଓ ତେନ୍ତୁଳି, ଏହି ଦଶଗୋଟି କୁଳଦ୍ରୁମ ।
**କୁଳଧନ** — କ୍ଲୀ.ବ.(୬ତତ୍ପୁ) ବଂଶର ସର୍ବଶ୍ରେଷ୍ଠ ସମ୍ପତ୍ତି, (ବ୍ୟ.ବ.ସ୍ତ୍ର) ବଂଶର ଗୌରବ ରକ୍ଷା ହିଁ ଯାହାର ସମ୍ପତ୍ତି ।
**କୁଳଧର** — ପୁଂ. ବ. (କୁଳ + ଧୃ + କ.ଅ) ପୁତ୍ର, ପୁଅ ।
**କୁଳଧର୍ମ** — ପୁଂ.ବ.(କୁଳ + ଧର୍ମ) ବଂଶର ଆଚରଣୀୟ ଧର୍ମ, କୁଳାଚାର ।
**କୁଳଧାରକ** — ପୁଂ.ବ (କୁଳ + ଧୃ + ଅକ) ଯେ ବଂଶ ରକ୍ଷାକରେ, ପୁତ୍ର ।
**କୁଳଧୁର୍ଯ୍ୟ** — ପୁଂ. ବିଂ. କୁଳଶ୍ରେଷ୍ଠ, ବଂଶଶ୍ରେଷ୍ଠ, କୁଳପ୍ରଧାନ ।
**କୁଳଧ୍ୱଜ** — ପୁଂ.ବ. ଦାକ୍ଷିଣାତ୍ୟର ଜଣେ ପାଣ୍ଡ୍ୟ ରାଜା ।
**କୁଳଧ୍ୱଂସ** — ବ. ( ୬ତତ୍ପୁ ) ବଂଶଲୋପ. ବଂଶର ପ୍ରତିଷ୍ଠା-ଲୋପ ।
**କୁଳନକ୍ଷତ୍ର** — କ୍ଲୀ.ବ.ନକ୍ଷତ୍ରବିଶେଷ,ଯଥା-ଦ୍ୱିକା,ରୋହିଣୀ, ପୁଷ୍ୟା, ମଘା, ଉତ୍ତରଫାଲ୍‌ଗୁନୀ, ଚିତ୍ରା, ବିଶାଖା, ଜ୍ୟେଷ୍ଠା, ପୂର୍ବାଷାଢ଼ା, ଶ୍ରବଣା ଓ ଉତ୍ତର ଭାଦ୍ରପଦ ଇତ୍ୟାଦି ନକ୍ଷତ୍ର ସମୂହ ।
**କୁଳନନ୍ଦନ** — ପୁଂ. ବ. (୬ତତ୍ପୁ)ଯେଉଁ-ବ୍ୟକ୍ତି ସତ୍କାର୍ଯ୍ୟ କରି ବଂଶର ଆନନ୍ଦଦାୟକ ହୁଏ, (ବିଂ)ବଂଶର ମର୍ଯ୍ୟାଦାବର୍ଦ୍ଧକ । [କାର ।
**କୁଳନାଥ** — ପୁଂ.ବ.ଜଣେ ବିଖ୍ୟାତ ଟୀକା-
**କୁଳନାୟକ** — ପୁଂ. ବ. (୬ତତ୍ପୁ) ବଂଶର ଶ୍ରେଷ୍ଠବ୍ୟକ୍ତି ।
**କୁଳନାୟିକା** — ସ୍ତ୍ରୀ. ବ. କୌଳିକଗଣର ପୂଜନୀୟା ନାୟିକା, ବାମମାର୍ଗ ବା ତନ୍ତ୍ରୋକ୍ତ କୌଳଧର୍ମାନୁସାରେ ପଞ୍ଚମକାର ପୂଜାରେ ଯେଉଁ ସ୍ତ୍ରୀମାନଙ୍କୁ ପୂଜା କରିବାର ବିଧି ଅଛି ।
**କୁଳନାରୀ** — ସ୍ତ୍ରୀ.ବ.(କୁଳ + ନାରୀ)ଉଚ୍ଚ-ବଂଶଜାତା, ସତୀ ଗୁଣବତୀ ସ୍ତ୍ରୀ,କୁଳ ସ୍ତ୍ରୀ ।
**କୁଳନାଶ** — ପୁଂ.ବ.(କୁଳ + ନାଶ, ୬ତତ୍ପୁ) ବଂଶଲୋପ,କୁଳଧ୍ୱଂସ,ଉଷ୍ଟ୍ର, ଓଟ,(ବିଂ) କୁଳନାଶକ ।
**କୁଳନାଶକ** — ପୁଂ. ବିଂ. (୬ତତ୍ପୁ) କୁଳନାଶକାରକ, ବଂଶଧ୍ୱଂସକାରୀ, (ସ୍ତ୍ରୀ) କୁଳନାଶିକା ।
**କୁଳନାଶନ** — କ୍ଲୀ.ବିଂ. ୬ତତ୍,(କୁଳ + ନାଶି + ଅନ ) ବଂଶନାଶର କାରଣ, ଯାହା ହେତୁରୁ ବଂଶ ଧ୍ୱଂସ ହୁଏ ।
**କୁଳନ୍ଧର** — ପୁଂ.ବ. ( କୁଳ + ଧୃ + ଅ ) ପୁତ୍ର, ବଂଶଧର, ସନ୍ତାନ । [ଶ୍ରେଷ୍ଠ ।
**କୁଳପ** — ପୁଂ.ବିଂ.(କୁଳ + ପା + ଅ,କୁଳ-
**କୁଳପଞ୍ଜୀ** — ବ. (୬ତତ୍ପୁ) କୁର୍‌ସିନାମା, ବଂଶବୃତ୍ତାନ୍ତ ।
**କୁଳପତି** — ପୁଂ. ବ. (କୁଳ + ପା + ତି) ୬ତତ୍, ବଂଶରକ୍ଷକ, ପୂର୍ବକାଳରେ ଦଶସହସ୍ର ବିଦ୍ୟାର୍ଥୀଙ୍କୁ ନିଜ ପାଖରେ ରଖି ଗ୍ରାସାଚ୍ଛାଦନ ଦେଇ ଶିକ୍ଷା ଦାନ କରୁଥିବା ବିପ୍ରର୍ଷି ।
**କୁଳପତ୍ର** — ପୁଂ. ବ. ଦମନକ ବୃକ୍ଷ ।
**କୁଳପରମ୍ପରା** — ବ. ( ୬ତତ୍ ) ବଂଶକ୍ରମ, କୁଳର ଅନୁକ୍ରମ,ପୂରୁଷାନୁକ୍ରମରେ ଚଳି ଆସୁଥିବା ବଂଶ ।
**କୁଳପର୍ବତ** — ପୁଂ. ବ. (କୁଳ + ପର୍ବତ) ପର୍ବତବିଶେଷ, ଅଷ୍ଟକୁଳାଚଳ, ସହ୍ୟ, ଶୁକ୍ତିମାନ୍, ବିନ୍ଧ୍ୟ,ଋକ୍ଷ,ମହେନ୍ଦ୍ର,ମଳୟ, ପରିପାତ୍ର ଓ ହିମାଳୟ ଏହି ଆଠଟି ପର୍ବତ ।
**କୁଳପା** — ସ୍ତ୍ରୀ.ବ. କୁଳଶ୍ରେଷ୍ଠା,ବଂଶପ୍ରଧାନ ।
**କୁଳପାଉଁଶ** — ଗ୍ରା.ବିଂ.କୁଳାଙ୍ଗାର(ଦେଖ) ।
**କୁଳପାଂଶୁ(କ), କୁଳପାଂଶୁକ** — ବିଂ. ବ. (କ.ଧା) କୁଳାଙ୍ଗାର (ଦେଖ) ।
**କୁଳପାଂଶୁକା** — ସ୍ତ୍ରୀ.ବ.(କୁଳ + ପାଂଶୁ + କ.ଆ) ଯେଉଁ ସ୍ତ୍ରୀ ବ୍ୟଭିଚାରାଦିଦ୍ୱାରା ବଂଶରେ କଳଙ୍କାର୍ପଣକରେ, ଅସତୀ ସ୍ତ୍ରୀ ।
**କୁଳପାଂଶୁକ** — ବିଂ .(୬ତତ୍ପୁ)କୁଳଦୂଷକ, କୁଳକଳଙ୍କ, କୁଳାଙ୍ଗାର (ସ୍ତ୍ରୀ) କୁଳପାଂଶୁଳା ।
**କୁଳପାଂଶୁଳା** — ସ୍ତ୍ରୀ.ବିଂ. (୬ତତ୍ପୁ) କୁଳକଳଙ୍କିନୀ, କୁଳଟା, ଭ୍ରଷ୍ଟା, ଅସତୀ ।
**କୁଳପାଳକ** — ପୁଂ.ବିଂ.(କୁଳ + ପାଳ + ଅକ) ୬ତତ୍ପୁ, ବଂଶ ପ୍ରତିପାଳକ, ବଂଶରକ୍ଷକ, (କ୍ଲୀ.ବ) କମଳାଲେମ୍ବୁ, (ସ୍ତ୍ରୀ) କୁଳପାଳିକା ।
**କୁଳପାଳି** — ସ୍ତ୍ରୀ.ବ. କୁଳବଧୂ, ପତିବ୍ରତା ।
**କୁଳପାଳିକା** — ସ୍ତ୍ରୀ. ବ. (କୁଳ + ପାଳି + ଅକ + ଆ)ସତ୍‌କୁଳ ପ୍ରସୂତା ସ୍ତ୍ରୀ, ସତୀ ସ୍ତ୍ରୀ, କୁଳଭୂଆସୁଣୀ ।
**କୁଳପୁତ୍ର** — ପୁଂ. ବ. ସଦ୍‌ବଂଶଜାତ ପୁତ୍ର, ଦମନକ ବୃକ୍ଷ ।
**କୁଳପୁତ୍ରୀ** — ସ୍ତ୍ରୀ ବ.ସଦ୍‌ବଂଶୋଦ୍ଭବା କନ୍ୟା, ସତ୍‌କୁଳଜାତା କନ୍ୟା ।
**କୁଳପୁରୁଷ** -- ପୁଂ.ବ.ସଦ୍‌ବଂଶୋଦ୍ଭବବ୍ୟକ୍ତି, ପୂର୍ବପୁରୁଷ ।
**କୁଳପୁରୋହିତ** — ପୁଂ.ବ.ଯେ ଏକବଂଶରେ ବଂଶାନୁକ୍ରମ ପୌରୋହିତ୍ୟ କରେ, ପୁରୁଷାନୁକ୍ରମେ କୌଣସି ବଂଶର ପୌରୋହିତ୍ୟ କରୁଥିବା ବ୍ୟକ୍ତି ।
**କୁଳପୂର୍ବଗ** — ପୁଂ. ବ. (କୁଳ + ପୂର୍ବ + ଗମ୍ + ଅ) ପୂର୍ବପୁରୁଷ, ବଂଶର ପିତୃପିତାମହ, (ସ୍ତ୍ରୀ) କୁଳପୂର୍ବଗା ।
**କୁଳପ୍ରଥା** — ସ୍ତ୍ରୀ. ବ. ବଂଶପରମ୍ପରା କ୍ରମେ ଆଗତ ପ୍ରଥା ।
**କୁଳପ୍ରଦୀପ** — ପୁଂ.ବ. କୁଳଦୀପ (ଦେଖ) ।
**କୁଳବତୀ** — ସ୍ତ୍ରୀ. ବିଂ.(କୁଳ + ବତ୍ + ଈ) କୁଳାନୁସାରିଣୀ. ଯେଉଁ ସ୍ତ୍ରୀ ବଂଶର ନିୟମାନୁସାରେ ଚଳେ, କୁଳକାମିନୀ, ସାଧ୍ୱୀ ସ୍ତ୍ରୀ ।
**କୁଳବଧୂ** — ସ୍ତ୍ରୀ. ବ. (୬ତତ୍ପୁ) ଲଜ୍ଜାଶୀଳା ସାଧ୍ୱୀ ସ୍ତ୍ରୀ, କୁଳକାମିନୀ ।
**କୁଳବର୍ଦ୍ଧନ** — ପୁଂ.ବ.(୬ତତ୍ପୁ)ବଂଶବୃଦ୍ଧି-କାରକ, (ବିଂ) ବଂଶବୃଦ୍ଧି ।
**କୁଳବାର** — ବ. ସପ୍ତାହର ଶ୍ରେଷ୍ଠବାର, ଶୁକ୍ରବାର ବା ମଙ୍ଗଳବାର ।

କୁଳବାଳା—ସ୍ତ୍ରୀ. ବି. କୁଳବାଳିକା, ସଦ୍‌ବଂଶୋଦ୍ଭବା ସତୀ(ସ୍ତ୍ରୀ),କୁଳକନ୍ୟା ।
କୁଳବିଦ୍ୟା—ସ୍ତ୍ରୀ.ବି. (ମଧ୍ୟ,କ.ଧା) ବଂଶର ପୁରୁଷାନୁକ୍ରମେ ଅନୁଶୀଳିତ ବିଦ୍ୟା, ତନ୍ତ୍ରବିଦ୍ୟା । [ ହିତ ।
କୁଳବିପ୍ର—ପୁଂ.ବି.(ଷତତ୍) କୁଳପୁରୋ-
କୁଳବୁଡ଼ା—ଗ୍ରା.ବିଂ. କୁଳଗୌରବ ଲୋପ-କାରୀ, ଯେ ଅକ୍ରିୟାଦ୍ୱାରା ନିଜର ଓ ପରର ବଂଶ ଲୋପ କରେ ।
କୁଳବୁଡ଼ାଇବା—ଗ୍ରା. କ୍ରି. ଅନ୍ୟର ବଂଶ ଲୋପ କରିବାର ଉପାୟ କରିବା,ଅନ୍ୟର ବଂଶମର୍ଯ୍ୟାଦା ଲୋପ କରାଇବା ।
କୁଳବୁଡ଼ିବା—ଗ୍ରା. ବି. କୁଳଧର୍ମ ନାଶ-ହେବା,ଜାତିଯିବା, ବଂଶ ଲୋପହେବା ।
କୁଳବୃଦ୍ଧ—ପୁଂ.ବି. (ଷତତ୍) ବଂଶର ବା ପରିବାର ମଧ୍ୟରେ ସର୍ବାପେକ୍ଷା ବୁଢ଼ା ବ୍ୟକ୍ତି ।
କୁଳବୃଦ୍ଧି—ବି.(ଷତତ୍) ବଂଶର ବୃଦ୍ଧି ।
କୁଳବ୍ରତ—ବି. ବଂଶର ପରମ୍ପରାକ୍ରମେ ପାଳିତ ବ୍ରତ, କୁଳାଚାର,କୁଳମର୍ଯ୍ୟାଦା ।
କୁଳବ୍ରାହ୍ମଣ—ପୁଂ. ବି. କୁଳପୁରୋହିତ ।
କୁଳବ୍ରୀଡ଼ା—ସ୍ତ୍ରୀ. ବି. କୁଳକାମିନୀ ମାନ-ଙ୍କର ଲଜ୍ଜା ।
କୁଳଭ—ପୁଂ. ବି. ବଳିରାଜାଙ୍କ ସୈନ୍ୟ, ଦୈତ୍ୟବିଶେଷ ।
କୁଳଭଙ୍ଗ—ପୁ. ବିଂ. ବଂଶନାଶ ।
କୁଳଭର—ପୁଂ.ବି. ଜ୍ୟେଷ୍ଠ । [ ପତ୍ନୀ ।
କୁଳଭାର୍ଯ୍ୟା—ସ୍ତ୍ରୀ. ବି. ଧାର୍ମିକା ସୁଶୀଳା
କୁଳଭୂଭୃତ୍—ପୁଂ.ବି. କୁଳପର୍ବତ, କୁଳ-ଗିରି, ଅଷ୍ଟକୁଳାଚଳ ।
କୁଳଭୂଷଣ—ବିଂ. କୁଳତିଳକ, ଯେଉଁ ବ୍ୟକ୍ତି କୁଳାତିଳକ, ଯେଉଁବ୍ୟକ୍ତି କୁଳର ଅଳଙ୍କାର ସ୍ୱରୂପ ।
କୁଳଭୃତ୍ୟା—ସ୍ତ୍ରୀ. ବି. ଗର୍ଭିଣୀର ପରି-ଚର୍ଯ୍ୟା, ବଂଶର ପ୍ରତିପାଳନ ।
କୁଳଭ୍ରଷ୍ଟ—ପୁଂ. ବିଂ. ( ୫ତତ୍ ) ବଂଶ-ଚ୍ୟୁତ ଅଥବା ଜାତିଚ୍ୟୁତ, ପତିତ ।
କୁଳମଣି—ବି. ( ଷତତ୍ ) କୁଳତିଳକ (ଦେଖ) ।

କୁଳମର୍ଯ୍ୟାଦା—ବି. ( ଷତତ୍ ) କୁଳର ମହତ୍ତ୍ୱ, ସତ୍‌କୁଳ ପ୍ରସୂତ ବ୍ୟକ୍ତିଙ୍କୁ ପ୍ରଦତ୍ତ ସମ୍ମାନ ।
କୁଳମାର୍ଗ—ପୁଂ. ବି. ସୁପଥ, ସଦୁପାୟ, କୁଳାଚାର, ବାମମାର୍ଗ । [ବନ୍ଧୁ ।
କୁଳମିତ୍ର—କ୍ଲୀ. ବି. ବଂଶ-ପରମ୍ପରାଗତ
କୁଳମୁନି—ପୁଂ. ବି. ଜଣେ ବିଖ୍ୟାତ ସଂସ୍କୃତ ଗ୍ରନ୍ଥକାର ।
କୁଳମୂଳ—ଗ୍ରା.ବି.କୁଳମର୍ଯ୍ୟାଦା (ଦେଖ) । ବଂଶର ଜନ୍ମମାତ୍ର ଚିହ୍ନ ।
କୁଳମ୍ପୁନ—କ୍ଲୀ. ବି. କୁରୁକ୍ଷେତ୍ରସ୍ଥ ତୀର୍ଥ ବିଶେଷ ।
କୁଳମ୍ପୁନା—ସ୍ତ୍ରୀ. ବି. ନଦୀବିଶେଷ ।
କୁଳମ୍ଭର—ପୁଂ.ବି.ବଂଶ ପାଳନକରିବାକୁ ସମର୍ଥ ପୁତ୍ର, ସିନ୍ଧିଆ ଚୋର ।
କୁଳଯୋଷିତ୍—ସ୍ତ୍ରୀ. ବି. କୁଳସ୍ତ୍ରୀ ।
କୁଳରକ୍ଷକ—ପୁଂ.ବି. ବଂଶର ରକ୍ଷାକର୍ତ୍ତା ।
କୁଳରମଣୀ—ସ୍ତ୍ରୀ. ବି. (କ.ଧା) କୁଳସ୍ତ୍ରୀ, ସତ୍‌କୁଳ ପ୍ରସୂତା ରମଣୀ ।
କୁଳଲକ୍ଷଣ—କ୍ଲୀ. ବି. (କୁଳ+ଲକ୍ଷଣ) ନଅପ୍ରକାର କୁଳଚିହ୍ନ, ଯଥା— ଆଚାରୋ ବିନୟୋ ବିଦ୍ୟା ପ୍ରତିଷ୍ଠା, ତୀର୍ଥଦର୍ଶନଂ, ନିଷ୍ଠାବୃତ୍ତିସ୍ତପୋଦାନଂ ନବଧା କୁଳଲକ୍ଷଣଂ ।
କୁଳଲକ୍ଷ୍ମୀ—ସ୍ତ୍ରୀ.ବି. ଭଦ୍ରଲୋକର ଗୃହ-ସ୍ଥିତା ରମଣୀ, ସାଧ୍ୱୀ ସ୍ତ୍ରୀ ।
କୁଳଲୋପ—ବି. ବଂଶରେ କେହି ବଂଶ-ଧର ନ ଥିବା ଅବସ୍ଥା, ବଂଶନାଶ ।
କୁଳଶୀଳ—କ୍ଲୀ. ବି. (ଦ୍ୱନ୍ଦ୍ୱ) ବଂଶ ଓ ଆଚରଣ, ସଦ୍‌ବଂଶ ଓ ସଦାଚରଣ ।
କୁଳଶେଖର—ପୁଂ. ବି. ଆଶ୍ଚର୍ଯ୍ୟମାଳା ନାମକ ଗ୍ରନ୍ଥକାର ।
କୁଳଶ୍ରେଷ୍ଠ—ପୁଂ. ବି. (ଷତତ୍ ) ବଂଶର ପ୍ରଧାନ ବ୍ୟକ୍ତି ।
କୁଳଶ୍ରେଷ୍ଠୀ—ପୁଂ.ବିଂ.(କୁଳ+ଶ୍ରେଷ୍ଠିନ୍) ସତ୍‌କୁଳ-ପ୍ରସୂତ, ବଂଶମଧ୍ୟରେ ଶ୍ରେଷ୍ଠ, (ବ୍ୟକ୍ତି)(ପୁଂ,ବି) ଶିଳ୍ପକୁଳପ୍ରଧାନ ।
କୁଳସଂଖ୍ୟା—ସ୍ତ୍ରୀ. ବି. କୁଳକୀର୍ତ୍ତି, ବଂଶର ଶ୍ରେଷ୍ଠତା ।

କୁଳସତ୍ର—କ୍ଲୀ. ବି. ସହସ୍ରବର୍ଷସାଧ୍ୟ ଯଜ୍ଞବିଶେଷ ।
କୁଳସନ୍ତତି—ସ୍ତ୍ରୀ.ବି.ବଂଶବୃଦ୍ଧି ,ବଂଶଧର, ବଂଶର ପରପୁରୁଷ ।
କୁଳସନ୍ନିଧି—ସ୍ତ୍ରୀ. ବି. ସାକ୍ଷୀ ଅଥବା ସଦ୍‌ବଂଶୀୟ ବ୍ୟକ୍ତିବର୍ଗର ଉପସ୍ଥିତି ।
କୁଳସମୁଦ୍ଭବ—ପୁଂ. ବି. ସଦ୍‌ବଂଶଜାତ ।
କୁଳସମ୍ଭବ—ପୁଂ.ବିଂ.(୫ତତ୍) ସତ୍‌କୁଳ ସମ୍ଭୂତ,ଯେକୌଣସି ସଦ୍‌ବଂଶରୁ ଉତ୍ପନ୍ନ ।
କୁଳସାଧକ—ପୁଂ. ବି. ତନ୍ତ୍ରମତାନୁଯାୟୀ ସାଧକବିଶେଷ ।
କୁଳସୁନ୍ଦରୀ—ସ୍ତ୍ରୀ. ବି. ଦେବୀବିଶେଷ ।
କୁଳସେବକ—ପୁଂ.ବି. ବଂଶପରମ୍ପରାଗତ ଭୃତ୍ୟ ।
କୁଳସ୍ତ୍ରୀ—ସ୍ତ୍ରୀ. ବି. (ଷତତ୍) ସାଧ୍ୱୀ ସ୍ତ୍ରୀ, କୁଳକାମିନୀ, କୁଳବଧୂ ।
କୁଳସ୍ଥିତି—ସ୍ତ୍ରୀ.ବି. (ଷତତ୍) କୁଳାଚାର, କୁଳମର୍ଯ୍ୟାଦା,ବଂଶର ଉତ୍ପତ୍ତି ବୃଦ୍ଧି ପ୍ରଭୃତି ।
କୁଳହଣ୍ଡକ—ପୁଂ. ବି. ଜଳର ଆବର୍ତ୍ତ, ଜଳଭଉଁରି ।
କୁଳା—ଗ୍ରା. ବିଂ. ଉତ୍କୃଷ୍ଟ କୁଳସମ୍ଭୂତ, କୁଳୀନ ।
କୁଲା—ଗ୍ରା. ବି. ଶସ୍ୟାଦି ପାଛୁଡ଼ି ତୁଷ ଧୂଳି ଇତ୍ୟାଦି ବାହାର କରିବା ନିମିତ୍ତ ବାଉଁଶପାତିଆରେ ତିଆରି ହାତକାନ ପରି ଚଉଡ଼ା ପାତ୍ରବିଶେଷ, ସୂର୍ପ ।
କୁଲାଇ,କୁଲେଇ—ଗ୍ରା. ବି. ଛୋଟକୁଲା, ମାଇକିନିଆଁ ପିଲାଙ୍କର ଧୂଳିଘର କରି ଖେଳିବାବେଳେ ବ୍ୟବହୃତ ସାନକୁଲା ।
କୁଲାଇବା—ଗ୍ରା. କ୍ରି. ପର୍ଯ୍ୟାପ୍ତହେବା, ଅଣ୍ଟିବା, ପୋଷେଇବା ।
କୁଲାକୁଲ-ବିଂ.ମିଶ୍ରବଂଶୀୟ,ଦୋନୋସଲା, ସଙ୍କର,(ବି)ତନ୍ତ୍ରୋକ୍ତ ବାର ନକ୍ଷତ୍ର ଓ ଓ ତିଥି ବିଶେଷରେ ପାରିଭାଷିକ ଶବ୍ଦ ।
କୁଲାକ୍ଷୁତା—ସ୍ତ୍ରୀ.ବି.କୁକୁଡ଼ୀ,ମାଈକୁକୁଡ଼ା ।
କୁଳାଙ୍କୁର—ପୁଂ.ବି. (ଷତତ୍) ବଂଶଧର ।
କୁଳାଙ୍ଗନା—ସ୍ତ୍ରୀ. ବି. କୁଳ ସ୍ତ୍ରୀ ସତ୍‌କୁଳୋଦ୍ଭବା ସାଧ୍ୱୀ ସ୍ତ୍ରୀ ।

କୁଳାଙ୍ଗାର—ପୁଂ. କ୍ଲୀ. ବ. (କ.ଧା) ଯେଉଁ ବ୍ୟକ୍ତି କୁଳଗୌରବ ନଷ୍ଟକରେ, ଅସଚ୍ଚରିତ୍ର, କୁଳାଧମ, ଯାହାଯୋଗୁଁ କୁଳରେ କଳଙ୍କ ଲାଗେ, (ବିଂ) କୁଳର ମର୍ଯ୍ୟାଦାନାଶକ ।

କୁଳାଚଳ—ପୁଂ. ବ. ପର୍ବତବିଶେଷ, କୁଳପର୍ବତ (ଦେଖ) ।

କୁଳାଚାର—ପୁଂ. ବ. (ମଧ୍ୟ,କ.ଧା)(କୁଳ + ଆଚାର)କୁଳୋଚିତ ଧର୍ମ,କୁଳଧର୍ମ, ତନ୍ତ୍ରୋକ୍ତ ଜ୍ଞାନଭେଦ ।

କୁଳାଚାର୍ଯ୍ୟ—ପୁଂ. ବ. (କୁଳ + ଆଚାର୍ଯ୍ୟ) ଭଟ୍ଟ, କୁଳଗୁରୁ, କୁଳପୁରୋହିତ, ଘଟକ ।

କୁଳାଟ—ପୁଂ. ବ. (କୁଳ + ଅଟ୍ + ଅ) କ୍ଷୁଦ୍ରମତ୍ସ୍ୟ, ଚଙ୍ଗ୍ ଡ୍ରିମାଛ ।

କୁଳାଦର୍ଶ—ପୁଂ.ବ. (ବ.ସ୍ତ୍ରୀ) ବଂଶାବଳୀ ଓ ବଂଶପରମ୍ପରାସୂଚକ ତତ୍ତ୍ୱବିଷୟକ ଶାସ୍ତ୍ର ।

କୁଳାଦ୍ୟ—ପୁଂ. ବ. ଜନପଦବିଶେଷ, (ପୁଂ. ବିଂ) ବଂଶର ପ୍ରଥମ ପୁରୁଷ ବା ଶ୍ରେଷ୍ଠପୁରୁଷ । [ (ଦେଖ) ।

କୁଳାଦ୍ରି—ପୁଂ.ବ. (କ.ଧା) କୁଳପର୍ବତ

କୁଳାଧାରକ—ପୁଂ.ବ.(କୁଳ + ଧୃ + ଅକ) ଯେ ବଂଶ ରକ୍ଷାକରେ, ପୁତ୍ର ।

କୁଳାନ୍ୱିତ—ପୁଂ. ବିଂ.(କୁଳ + ଅନ୍ୱିତ) ସତ୍କୁଳୋତ୍ପନ୍ନ, କୁଳାଚାରଯୁକ୍ତ ।

କୁଳାବା—ଗ୍ରା.ବ.ରୁଷଆଦି ମିଶାଣସମ୍ବାଦରୁ ରୁଷପ୍ରଭୃତି ଉଡ଼ାଇ ପରସ୍କାର କରିବା ପାଇଁ କୁଲାରେ ବନ୍ଧିବା, ଦଣ୍ଡସ୍ୱରୂପ କୌଣସି ବ୍ୟକ୍ତିକୁ ଅଧ ଅଣ୍ଟାପାଣିରେ ବୁଡ଼ାଇ ତାକୁ କୁଲାଦ୍ୱାରା ବନ୍ଧିବା ।

କୁଲବୁଲ—ଗ୍ରା. ବ. କୌଣସିବସ୍ତୁ ଚୋରି ଗଲେ ଚୋରର ନାମ ଜାଣିବା ନିମନ୍ତେ ଗୋଟିଏ କୁଲାକୁ କଇଁଚ ବା କଣ୍ଠାମୁନ ଉପରେ ରଖି ମନ୍ତ୍ର ପଢ଼ି ଯାହା ନାମ ଧରିଲାକ୍ଷଣି କୁଲା ବୁଲିଯାଏ, ସେହିବ୍ୟକ୍ତି ଚୋର ବୋଲି ପ୍ରକାଶିତ ହୁଏ, ଏପରି ଯାଦୁରେ ଯେ ଚୋର ଧରେ ।

କୁଲବୁଲଇବା—ଗ୍ରା. କ୍ରି. ଚୋର ଧରିବାକୁ ସନ୍ତୋଷକାରଣ ପୂର୍ବକ କୁଲବୁଲ କାର୍ଯ୍ୟକରିବା ।

କୁଳାଭ—ପୁଂ. ବ. ଧନଭଣ୍ଡାର ।

କୁଳାଭିମାନ—ପୁଂ. ବ. ସଦ୍ବଂଶ ବୋଲି ଅହଂକାର ।

କୁଳାଭିମାନୀ—ପୁଂ. ବିଂ. ଯେଉଁ ବ୍ୟକ୍ତି ନିଜବଂଶର ଗୌରବ କରେ ।

କୁଳାୟ—କ୍ଲୀ. ବ. (କୁଳ + ଅୟ + ଅ) ଶରୀର, ନୀଡ଼, ପକ୍ଷୀମାନଙ୍କବସା, ସ୍ଥାନ, ଜାଲ,ଆଧାର,କୁକୁରରହିବାକୋଠରି ।

କୁଳାୟନ—ପୁଂ. ବ. ଗୋତ୍ର ପ୍ରବର୍ତ୍ତକ ଋଷିଭେଦ । [କରେ ।

କୁଳାୟବାନ୍—ପୁଂ. ବିଂ.ଯେ ବସାନିର୍ମାଣ

କୁଳାୟସ୍ଥ—ପୁଂ. ସ୍ତ୍ରୀ. ବ. ( କୁଳାୟ + ସ୍ଥା + ଅ) ପକ୍ଷୀ, (ବିଂ) ନୀଡ଼ସ୍ଥିତ ।

କୁଳାୟିକା—ସ୍ତ୍ରୀ. ବ. (କୁଳାୟ + କ + ଆ)ପକ୍ଷିଶାଳା, ଚଢ଼େଇଖାନା, ପିଞ୍ଜର ।

କୁଳାୟୀ—ପୁଂ. ବିଂ. ଗୃହନିର୍ମାଣକାରୀ ।

କୁଳାର୍ଣ୍ଣବ—ଖଣ୍ଡିଏ ପ୍ରାଚୀନ ତନ୍ତ୍ରଗ୍ରନ୍ଥ ।

କୁଳାଲ—ପୁଂ. ବ. ( କୁଲ + ଆଲ ) କୁକ୍କୁଭପକ୍ଷୀ,ପେଚା,କୁମ୍ଭାର,କୁମ୍ଭକାର ।

କୁଳାଲଚକ୍ର—କ୍ଲୀ. ବ.(ଭଟ୍ଟ) କୁମ୍ଭାରର ଚକ ।

କୁଳାଲିକା—ବ. ( କୁଳାଲ + କ + ଆ ) ଚଢ଼େଇଖାନା, ପକ୍ଷିଶାଳା ।

କୁଳାଳୀ—ସ୍ତ୍ରୀ. ବ. ( କୁଳାଲ + ଈ ) କୁଳାଲପତ୍ନୀ,କୁମ୍ଭାରୁଣୀ,ଅଞ୍ଜନ ପ୍ରସ୍ତରବିଶେଷ, ବନକୋଳଥ ବୃକ୍ଷ ।

କୁଳାହ—ପୁଂ. ବ. ଈଷତ୍ପୀତବର୍ଣ୍ଣ, ସାମୁଦ୍ରିକ ଅଶ୍ୱ, ପାଣ୍ଡୁର ଘୋଡ଼ା ।

କୁଳାହକ—ପୁଂ. ବ. ( କୁଳ + ଆ + ହନ୍ + କ) କୃକଲାସ, ଝିଟିପିଟି,ପୋକଶୁଙ୍ଘାଗୁଲ୍ମ, ରକ୍ତବର୍ଣ୍ଣକୋକିଲାକ୍ଷୀଶାକ, ଏଣ୍ଡୁଅ ।

କୁଳାହଳ—ପୁଂ. ବ. କ୍ଷୁଦ୍ରବୃକ୍ଷବିଶେଷ, ପୋକଶୁଙ୍ଘାଗଛ ।

କୁଳି—ପୁଂ. ବ. ହାତ, ସ୍ତ୍ରୀ. ବ. ( କୁଳ + ଇ)କଣ୍ଟକାରୀଗଛ,(ଗ୍ରା.ବ)କୁଳଗୁଆ ।

କୁଲି—ଗ୍ରା. ବିଂ. କ୍ଷୁଦ୍ର, ଛୋଟ, (ବ) ମଜୁରିଦାର, ମୂଲିଆ ।

କୁଲିଆ—ଗ୍ରା. ବ. ପଦାରେହେବା ଏକପ୍ରକାର ଧାନବିଶେଷ ।

କୁଲିଆ—ପ୍ରା.(ସମ୍ବ.)ବ.ଶୃଗାଳ,ବିଲୁଆ, (ଗ୍ରା.ବ) ମୂଲିଆ ।

କୁଳିକ—ବିଂ. (କୁଳ + ଇକ) ଶିଳ୍ପିକୁଳ ପ୍ରଧାନ, କୁଳଶ୍ରେଷ୍ଠ, (ପୁଂ) ଅଷ୍ଟମହାନାଗାନ୍ତର୍ଗତ ଗୋଟିଏ ନାଗ,କୁଳକାର କର୍କଟ, ଅଶୁଭସମୟ, କୁଇଲେଖା, କୋକିଲାକ୍ଷ୍ୟ,ଶିକାରୀ,ବାଣ୍ଡୁଆ,ସଗୋତ୍ର ବ୍ୟକ୍ତି,ଜ୍ଞାତ,ହାଟୁଆଙ୍କ ଜାତର ସର୍ଦ୍ଦାର ।

କୁଳିକବେଳା—ସ୍ତ୍ରୀ. ବ. ଶୁଭକାର୍ଯ୍ୟେ ନିଷିଦ୍ଧ କାଳ ।

କୁଲିକରିବା—ଗ୍ରା. କ୍ରି. ପାଣିକୁ ପାଟିରେ ପୁରାଇ କୁଳୁ କୁଳୁ କରିବା, କୁଳୁକୁଞ୍ଚା କରିବା ।

କୁଳିକା—ସ୍ତ୍ରୀ. ବ. (କୁଳ + ଇକ + ଆ) ହାଡ଼ଯୋଡ଼ା,ଅସ୍ଥିସଂହାରୀ,କୁଇଲେଖା, କୋକିଲାକ୍ଷ୍ୟ ।

କୁଳିକାକ୍ଷ୍ୟ—ପୁଂ. ବ.କୋଳିବୃକ୍ଷ, କୁଇଲେଖାଗଛ ।

କୁଲିକାମ—ଗ୍ରା. ବ. ମୂଲକାମ ।

କୁଲିଗିରି—ଯା.ବ. କୁଲିର କର୍ମ,ମଜୁରିଆ ରୂପେ ନିଯୁକ୍ତି ।

କୁଳିଙ୍ଗ—ପୁଂ. ବ. (କୁଳ + ଇଙ୍ଗ) ମୂଷିକବିଶେଷ,କକଡ଼ାଶୃଙ୍ଗୀ,ଚଟିଆପକ୍ଷୀ, ପକ୍ଷୀମାତ୍ର, (କ୍ଲୀ) କୁତ୍ସିତ ଲିଙ୍ଗ,(ବିଂ) କୁତ୍ସିତ ଲିଙ୍ଗଯୁକ୍ତ ।

କୁଳିଙ୍ଗକ—ପୁଂ. ବ. (କୁଳିଙ୍ଗ + କ) ଘରଚଟିଆପକ୍ଷୀ,ମୂଷିକବିଶେଷ,ପକ୍ଷୀମାତ୍ର ।

କୁଲିଙ୍ଗା—ସ୍ତ୍ରୀ. ବ. (କୁ + ଲିଙ୍ଗ + ଆ) ନଗରବିଶେଷ, ଉତ୍ତରପ୍ରଦେଶର ଅନ୍ତର୍ଗତ ଗଡ଼ବାଲର ନିକଟବର୍ତ୍ତୀ ନଗରବିଶେଷ ।

କୁଳିଙ୍ଗାକ୍ଷୀ-ସ୍ତ୍ରୀ.ବ.ପେଟିକାବୃକ୍ଷ, ପେଠାରୀ ।

କୁଳିଜ—ପୁଂ. କ୍ଲୀ. ବ. (କୁଳି + ଜନ୍ + ଅ) ନଖ, ପରିମାଣବିଶେଷ ।

କୁଳିଞ୍ଜନ—ବ. ମହାଭରୀବଚ୍ଚ, ହରିଦ୍ରାଦି ବର୍ଗର ଶାକବିଶେଷ ।

କୁଳିନ୍ଦ—ପୁଂ. ବ. ଜନପଦବିଶେଷ, ସେହି ଦେଶର ରାଜା ।

କୁଳିର,କୁଳୀର—ପୁଂ.ବ. (କୁଳ + ଇର) କର୍କଟ, କଙ୍କଡ଼ା, କର୍କଟରାଶି ।

କୁଳଶ—ପୁଂ.କ୍ଳୀ. ବି. (କୁଳ+ଶୋ+ଅ) ବଜ୍ର, ଇନ୍ଦ୍ରଙ୍କ ବଜ୍ରାସ୍ତ୍ର, କୁଠାର, ଚଡ଼କ,ଅଗ୍ରଭାଗ, ସ୍ୱାରକ, ଗୁଳ୍ମବିଶେଷ ।

କୁଳଶଦ୍ରୁମ—ପୁଂ. ବି. ଶିଶୁଗଛ ।

କୁଳଶଧର—ପୁଂ. ବି. (କୁଳଶ+ଧୃ+ଅ) ଇନ୍ଦ୍ର, (ବିଂ) ବଜ୍ରଧାରୀ । [ବିଶେଷ

କୁଳଶନାସ୍ଥକ—ପୁଂ. ବି. ଶୃଙ୍ଗାରବନ୍ଧ

କୁଳଶଧର—ପୁଂ.ବି. (ବ.ବ୍ରୀ) ବଜ୍ରଧର, ଇନ୍ଦ୍ର ।

କୁଳଶପାତ—ପୁଂ.ବି.(୬ତତ୍ପୁ)ବଜ୍ରପତନ ।

କୁଳଶାସନ—ପୁଂ. ବି. ବୁଦ୍ଧଙ୍କର ନାମାନ୍ତର, ଶାକ୍ୟମୁନି ।

କୁଳଶୀ—ସ୍ତ୍ରୀ.ବି.ବେଦୋକ୍ତ ନଦୀବିଶେଷ ।

କୁଳହ୍ୱା—ପ୍ରା. (ସମ୍ବ)ବି. ବୃହତୀ,ଲତା, ବେଙ୍ଗ କୋଳି ଗୁଳ୍ମ ।

କୁଳୀ—ପୁଂ. ବି. କଣ୍ଟେଇକୋଳି ଗୁଳ୍ମ, ପର୍ବତ,ବିଂ.(କୁଳ+ଇନ)ଉଚ୍ଚବଂଶୀୟ ।

କୁଳୀ—ସ୍ତ୍ରୀ. ବି. (କୁଳ+ଈ) ବୃହତୀ, କଣ୍ଟକାରିବୃକ୍ଷ, କୋକିଳାକ୍ଷ୍ୟ, କୁଇଲେଖାଗୁଳ୍ମ, ପତ୍ନୀର ଜ୍ୟେଷ୍ଠାଭଗିନୀ, ଦେଢ଼ଶାଶୁ ।

କୁଳୀକ—ପୁଂ. ବି. ପକ୍ଷୀ ।

କୁଳୀନ—ପୁଂ. ବିଂ. (କୁଳ+ଈନ)ସତ୍‌କୁଳୋଦ୍ଭବ,ଉଚ୍ଚଜାତର(ଘୋଡ଼ାହାତୀ) (ପୁଂ.ବି) ଶ୍ରେଷ୍ଠଅଶ୍ୱ ।

କୁଳୀନକ—ପୁଂ. ବିଂ. (କୁଳୀନ+କ) ସତ୍‌କୁଳସମ୍ଭୂତ, ସତ୍‌କୁଳୋଦ୍ଭବ, (ପୁଂବି.) ଏକପ୍ରକାର ଶିମ୍ବ ।

କୁଳୀନତା—ସ୍ତ୍ରୀ. ବି. (କୁଳୀନ+ତା) ସତ୍‌କୁଳରେ ଜନ୍ମିବା ଅବସ୍ଥା, (ଗ୍ରା.ବି) ଉଚ୍ଚବଂଶ ମର୍ଯ୍ୟାଦା । [ଜଳ ।

କୁଳୀନସ+କ୍ଳୀ.ବି.(କୁଳୀନ+ସୋ+ଅ)

କୁଳୀନା—ସ୍ତ୍ରୀ. ବି. କେତେକ ପ୍ରକାର ଆର୍ଯ୍ୟାଛନ୍ଦର ନାମ ।

କୁଳୀପୟ—ପୁଂ.ବି.(ବୈଦିକ)ଜଳଚର ।

କୁଳୀର—ପୁଂ.ବି.(କୁଳ+ଈର)କର୍କଟ, କଙ୍କଡ଼ା, କର୍କଟସ୍ୱର୍ଗି, କର୍କଟଶୃଙ୍ଗୀ, କକଡ଼ାଶୃଙ୍ଗୀ ।

କୁଳୀରକ—ପୁଂ. ବି. (କୁଳୀର+କ) କର୍କଟ, କଙ୍କଡ଼ା, କର୍କଟସ୍ୱର୍ଗି ।

କୁଳୀରଶୃଙ୍ଗୀ—ସ୍ତ୍ରୀ. ବି. କର୍କଟଶୃଙ୍ଗୀ, କକଡ଼ାଶୃଙ୍ଗୀ ।

କୁଳୀରାଦ—ପୁଂ. ବି.(କୁଳୀର+ଅଦ୍+କ୍ୱିପ୍) କ୍ଷୁଦ୍ରକର୍କଟ, କଙ୍କଡ଼ାଛୁଆ ।

କୁଳୀଶ—ପୁଂ.କ୍ଳୀ. ବି. (କୁଳ+ଶୋ+ଣ+ଅ) ବଜ୍ର, କଳାବଇଁଶି ମାଛ, ଅଗ୍ରଭାଗ ।

କୁଳୁକ—କ୍ଳୀ.ବି.(କୁଳ+ଉକ)ଜିହ୍ୱାମଳ, ଜିଭଉପରମଇଳା ।

କୁଳୁକଗୁଞ୍ଜି—ବି. ମସାଲ, ନିଆଁ ଖୁଣ୍ଟା, ନିଆଁ ହୁଲା ।

କୁଳୁକୁଞ୍ଚା—ଗ୍ରା. ବି. କୁଳକୁଞ୍ଚା(ଦେଖ) ।

କୁଳୁକୁଳ—ଗ୍ରା.ବି.ପାଣିରେ ଘାଉଁଘାଉଁ ପହଁରିବା ଏକପ୍ରକାର ପୋକ, କୁଳୁକୁଳିଆ ।

କୁଳୁକୁଳିଆ—ଗ୍ରା. ବିଂ. ( ସ୍ନେହସୂଚକ ପ୍ରୟୋଗ) ଯେ (ଯେଉଁ ଶିଶୁ) କୁଳୁକୁଳୁ କରି ବୁଲେ, ଖଜବଜିଆ, ଅସ୍ଥିର ଓ ସୁନ୍ଦର (ଶିଶୁ), (ଗ୍ରା. ବି) ଏକପ୍ରକାର ପାଣିରେଥିବା ପୋକ ।

କୁଳୁକୁଳୁ—ଗ୍ରା. ବି. ନଦୀର ପ୍ରବାହଧ୍ୱନି, କଳକଳଧ୍ୱନି, ପାତ୍ରରେ ପାଣିପୂରାଇ ଏକଲ ସେକଲ କରିବା ଧ୍ୱନି ।

କୁଳୁଙ୍ଗ—ପୁଂ.ବି. ହରିଣ, କୁରଙ୍ଗ,ମୃଗ ।

କୁଳୁଚ—ଗ୍ରା. ବି. ଗୋରୁଙ୍କୁ ପାଣି ବା ତୋରାଣି ସଙ୍ଗେ ଗୋଳାଇ ଖାଇବାକୁ ଦେବାପାଇଁ ଦରକୁଟା ଧାନ, ଦରକୁଟା ଓ ଦରସିଝା ଧାନ ।

କୁଳୁଞ୍ଚ—ପୁଂ. ବି. ଚୌରଭେଦ ।

କୁଳୁଥ—ଗ୍ରା. ବି. କୋଳଥ, ଶସ୍ୟଖାଦ୍ୟ ବିଶେଷ ।

କୁଳୁପ—ଯା.ବି. ତାଲା, କୋଲପ,କୁଞ୍ଚି ।

କୁଳୁପାଣ—ପ୍ରା.(ସମ୍ବ)ବି.ଶୃଗାଳ,ବିଲୁଆ ।

କୁଳୁପି—ଯା. ବି. ଦୁଧଆଦିକୁ ବରଫ ସାହାଯ୍ୟରେ ଜମାଟକରି ରଖିବା ଛାଞ୍ଚ, ଜମାଟ୍‌ଦୁଧ ।

କୁଳୁମ୍ବି—ଗ୍ରା. ବି. ଏକପ୍ରକାର ଲିହୁଣ ।

କୁଳୁମୁଳୁ—ଗ୍ରା.ବିଂ.ଅତିହଚ୍ଛନ୍ନ, ଅତ୍ୟଧିକ ଆଗ୍ରହାନ୍ୱିତ, ପ୍ରଚୁର, ବ୍ୟାକୁଳ ।

କୁଳୂତ—ପୁଂ. ବି. ଜନପଦବିଶେଷ ।

କୁଳେଇ—ଗ୍ରା. ବି. କ୍ଷୁଦ୍ର କୁଳା, ପିଲାମାନଙ୍କ ଖେଳିବା ଛୋଟକୁଳା ।

କୁଳେଚର—ପୁଂ.ବି. (କୁଳେ+ଚର+ଅ) କ୍ଷୁଦ୍ରଶାକଭେଦ, ଗୁଳ୍ମବିଶେଷ ।

କୁଳେସ୍ଥ—ପୁଂ. ବିଂ. କୁଳୀନ, ସତ୍‌କୁଳସମ୍ଭୂତ ।

କୁଳେର—ପ୍ରା. (ସମ୍ବ) ବି. ଏକପ୍ରକାର ଜଳଜ ଶାକ ।

କୁଳେଶ୍ୱର—ପୁଂ.ବି. (କୁଳ+ଈଶ୍ୱର) ୬ତତ୍, ମହାଦେବ, ବଂଶର ନେତା, କୁଳପତି ।

କୁଳେଶ୍ୱରୀ—ସ୍ତ୍ରୀ. ବି. ଦୁର୍ଗା, ପାର୍ବତୀ ।

କୁଳୋତ୍କଟ—ପୁଂ. ବି. (କୁଳ+ଉତ୍କଟ) ସତ୍‌କୁଳଜାତ ଘୋଡ଼ା,ଜାତିଆଘୋଡ଼ା, (ବି.) ଶ୍ରେଷ୍ଠ, ସତ୍‌କୁଳ ପ୍ରସୂତ ।

କୁଳୋଦ୍ଗତ—ପୁଂ.ବିଂ. (୫ତତ୍)ଉଚ୍ଚବଂଶୀୟ, ସତ୍‌କୁଳରେ ଜାତ ।

କୁଳୋଦ୍ୱହ—ପୁଂ. ବିଂ. (କୁଳ+ଉଦ୍ୱହ) (୬ତତ୍) କୁଳଶ୍ରେଷ୍ଠ, ବଂଶପ୍ରତିପାଳକ, କୁଳର ପ୍ରତିଷ୍ଠାତା ।

କୁଳୋପାଧି—ବି. (୬ତତ୍)ବଂଶ ପରିଚାୟକ ଆଖ୍ୟା ।

କୁଳୋଦ୍ଭବ—ବିଂ. ( ୬ତତ୍,୫ତତ୍ ) କୁଳୋଦ୍ଗତ (ଦେଖ) ।

କୁଲ୍‌ଫ—ବି. ରୋଗବିଶେଷ,ବଳାଗଣ୍ଠି, ଗୁଳ୍ଫ, ଗୁଳ୍ମ ।

କୁଲ୍ୱକ-ବି.(କୁଳ+ବକ)କୁଳୁକ (ଦେଖ) ।

କୁଲ୍ମଳ—କ୍ଳୀ. ବି. (କୁଳ+ମଳ) ଶରର ମୂନ କାଠିସଙ୍ଗେ ଯୋଗହେବା ଅଂଶ ।

କୁଲ୍ମଳବର୍ହିଷ—ପୁଂ. ବି. ବୈଦିକଋଷି ବିଶେଷ ।

କୁଲ୍ମାଷ—ପୁଂ.ବି, (କୁଳ+ମଷ) ଅର୍ଦ୍ଧସିଦ୍ଧ ମାଂସାଦି ମିଶ୍ରିତ ଅନ୍ନ, ସିଝାବୁଟ, ଖେଚଡ଼ି, କାଞ୍ଜି,ଅର୍ଦ୍ଧପକ୍ୱ ଯବ, ରାଜମାଷ, ବଣକୋଳଥ, ଖଟାତୋରାଣି ।

କୁଲ୍ୟ — କ୍ଲୀ. ବି, (କୁଲ+ର୍ଯ,ଯ) ଅସ୍ଥି, ମାଂସ, ପରିମାଣବିଶେଷ, ସୂର୍ପ, କୁଳ, (ପୁଂ) ମାନ୍ୟବ୍ୟକ୍ତି, (ବିଂ) ସତ୍‌କୁଳଜାତ, ମାନନୀୟ; (ସ୍ତ୍ରୀ) କୁଲ୍ୟା ।

କୁଲ୍ୟା — ସ୍ତ୍ରୀ. ବି. (କୁଲ୍ୟ+ଆ) ପ୍ରସ୍ତୁତ କରାହୋଇଥିବା କ୍ଷୁଦ୍ର ନଦୀ, ପରିଖା, ଗଡ଼ଖାଇ, ପ୍ରବାହ, ବୃହତ୍‌ଗଣ୍ଡି,ପୟଃ-ପ୍ରଣାଳୀ, ନର୍ଦ୍ଦମା, କୁଳସ୍ତ୍ରୀ, ଭୂଆସୁଣୀ, କୁଳବଧୂ, ସ୍ଥୂଳବାଣ୍ଡିାକୁ ।

କୁଲ୍ୟାଳି— ଗ୍ରା. ବି.ପାଣିପାଖରେ ହେବା ଏକପ୍ରକାର ଶାଗ ।

କୁଲ୍ଲୁକ — ପୁଂ. ବି. ମନୁସଂହିତାର ଜଣେ ବିଖ୍ୟାତ ଟୀକାକାର ।    [ରୋଗ ।

କୁଲ୍ମ — କ୍ଲୀ. ବି. ଲେମସ୍ଥାନତା, ଟାଙ୍ଗରା-

କୁବ୍ — କ୍ଲୀ.ବି.ପଦ୍ମ,ଜଳଜାତ ଫୁଲମାନ ।

କୁବ୍‌ବାଲୁକା — ସ୍ତ୍ରୀ. ବି. ଶାକବିଶେଷ ।

କୁବଙ୍ଗ — କ୍ଲୀ. ବି. ସୀସା, ସୀସକ ।

କୁବଚ — ପୁଂ.ବିଂ.(କୁ+ବଚ)କଟୁଭାଷୀ, ପରନିନ୍ଦକ ।

କୁବଚନ — କ୍ଲୀ. ବି. ( କ.ଧା ) କୁକଥା, ଦୁର୍ବାକ୍ୟ, ନିନ୍ଦା, ଭର୍ତ୍ସନା ତିରସ୍କାର ।

କୁବକ୍ରକ — କ୍ଲୀ. ବି. ବୈକାନ୍ତମଣି ।

କୁବଦ — କ୍ଲୀ. ବି. ( କୁ+ବଦ୍+ଅ ) କୁତ୍ସିତବାକ୍ୟ, ନିନ୍ଦା,(ବିଂ)ନିନ୍ଦାକାରୀ ।

କୁବମ — ପୁଂ. ବି. ( କୁ+ବମ୍+ଅ ) ସୂର୍ଯ୍ୟ (ବିଂ) ନିନ୍ଦିତ, ବମନକାରକ ।

କୁବର-ପୁଂ. ବି. (କୁ+ବୃ+ଅ)କଷାୟ, (ବିଂ) କଷାୟ ରସଯୁକ୍ତ ।

କୁବର୍ଷ — ପୁଂ. ବି. ( କୁ+ବୃଷ୍+ଅ ) ଅଜସ୍ର ବର୍ଷ,ଅତ୍ୟନ୍ତ ବୃଷ୍ଟି ।

କୁବଲ — ପୁଂ.ବି. (କୁ+ବଲ୍+କ.ଅ) ବରକୋଳି ଗଛ, ବଉକୋଳି ଫଳ, ଡାଳିମ୍ବ, ଉତ୍ପଳ, କୁମୁଦ, କଇଁ,ମୁକ୍ତା-ଫଳ,ଜଳ,ସର୍ପୋଦର ।

କୁବଲକୁଣ — ପୁଂ. ବି. କୋଳିପ ଚବାର ସମୟ ।

କୁବଲପ୍ରସ୍ଥ — ପୁଂ. ବି. ନଗରବିଶେଷ ।

କୁବଲୟ — କ୍ଲୀ. ବି.(କୁ+ବଲ+ଅୟ) ପଦ୍ମ, ନୀଳପଦ୍ମ, ମୁକ୍ତା, ସମୁଦ୍ର, ହସ୍ତୀ ପୃଥିବୀ, (ପୁଂ) କୁବଲୟାଶ୍ୱ ରାଜାଙ୍କ ଘୋଡ଼ାର ନାମ, ଅସୁରଭେଦ ।

କୁବଲୟପୁର — କ୍ଲୀ. ବି. ନଗରବିଶେଷ ।

କୁବଲୟଫଳ — ବି. (ଷତତ୍) ମୁକ୍ତା ।

କୁବଲୟାଦତ୍ୟ — ପୁଂ. ବି. ସ୍ୱନାମଖ୍ୟାତ ନୃପତିବିଶେଷ ।

କୁବଲୟାନନ୍ଦ — ପୁଂ. ବି. (କୁବଲୟ+ଆ+ନନ୍ଦ+ଅ)ଅଳଂକାର ଗ୍ରନ୍ଥବିଶେଷ ।

କୁବଲୟାପୀଡ଼ — ପୁଂ. ବି. (କୁବଲୟ+ଆପୀଡ଼) କଂସାସୁରର ହସ୍ତୀରୂପୀଦୈତ୍ୟ ବିଶେଷ, କାଶ୍ମୀରର ଜଣେ ରାଜା ।

କୁବଲୟାଶ୍ୱ— ପୁଂ.ବି' ରାଜା ଧୁନ୍ଧୁମାରଙ୍କ ନାମବିଶେଷ ।

କୁବଲୟାଶ୍ୱୀୟ — କ୍ଲୀ. ବି. କୁବଲୟାଶ୍ୱ ନୃପସମ୍ବନ୍ଧୀୟ ଗଳ୍ପ ।

କୁବଲୟିତ — ବିଂ. ( କୁବଲୟ+ଇତ) କୁବଲୟ ଦ୍ୱାରା (କୁମୁଦଦ୍ୱାରା) ଅଳଂ-କୃତ ବା ମଣ୍ଡିତ ।

କୁବଲୟିନୀ — ସ୍ତ୍ରୀ.ବି.(କୁବଲୟ+ଇନ୍+ଈ) ପଦ୍ମସମୂହ, ପଦ୍ମିନୀ, ପଦ୍ମପୂର୍ଣ୍ଣ ସରୋବର ।

କୁବେଲୟେଶ — ପୁଂ. ବି. ପୃଥିବୀପତି ।

କୁବଲାଶ୍ୱ — ପୁଂ.ବି.ଇକ୍ଷ୍ୱାକୁବଂଶର ରାଜା, ଧୁନ୍ଧୁମାର ରାଜା ।

କୁବଲୀ — ସ୍ତ୍ରୀ.ବି.କୋଳିଗଛ,କୋ'ଳିବୃକ୍ଷ ।

କୁବଲେଶୟ—ପୁଂ. ବି. (କୁବଲେ+ଶୀ+ଅ) ବିଷ୍ଣୁ ।

କୁବାକ୍ୟ — କ୍ଲୀ.ବି.(କ.ଧା)ମନ୍ଦକଥା,ନିନ୍ଦା ଅଶ୍ଳୀଳକଥା, ରୂଢ଼ବାକ୍ୟ, ଗାଳିମନ୍ଦ ।

କୁବାଚ — କ୍ଲୀ. ବି. କୁତ୍ସିତବାକ୍ୟ, ମନ୍ଦ-ବଚନ ।

କୁବାଟ — ବି. (କୁ+ବଟ+ଅ)କବାଟ, ଦ୍ୱାର,କବାଟର ଗୋଟିଏ ପଟ (ଗ୍ରା.ବି) କୁପଥ, କୁମାର୍ଗ ।

କୁବାଦ--ବିଂ.(କୁ+ବଦ+କ.ଅ)ନିନ୍ଦୁକ ନୀଚ, ହୀନ, କୁଭାଷୀ, ପରଦୋଷକଥନ-ଶୀଳ,(ବି) ଦୁର୍ନାମ, କୁତ୍ସିତବାକ୍ୟ,କଟୁ-ଭାଷା ।

କୁବାଦକ — ପୁଂ.ବି. ( କୁବାଦ+ଇକ ) ଅସଦକ୍ତା, ମିଥ୍ୟାବାଦୀ, ବଞ୍ଚକ ।

କୁବାସ — ପୁଂ.ବି.(କ.ଧା)ଦୁର୍ଗନ୍ଧ, ବାସର ଅଯୋଗ୍ୟ ଗୃହ, ଖରାପ ବାସନା ।

କୁବାହୁଲ -- ପୁଂ.ବି.(କୁ+ବହ୍+ଉଲ) ଓଟ, ଉଟ, ଉଷ୍ଟ୍ର ।

କୁବି — ଗ୍ରା. ବି. କୋ'ବି ।

କୁବିଗ୍ରହ—ବି.(କ.ଧା) ଅନ୍ୟାୟବିଗ୍ରହ ।

କୁବିତ୍ — ଅବ୍ୟ. ବହୁବାର, ପ୍ରଶଂସା ।

କୁବିତ୍ସ — ପୁଂ.ବି.କୌଣସି ଏକ ବ୍ୟକ୍ତିର ନାମ ।

କୁବିଧା — ସ୍ତ୍ରୀ.ବି.(କ.ଧା) ଅସୁବିଧା, ମନ୍ଦ ଗତି, ଅନ୍ତରାୟ, ବିଘ୍ନ ।

କୁବିନ୍ଦ—ପୁଂ.ବି.(କୁ+ବିନ୍ଦ)ତନ୍ତି,ତନ୍ତୁ-ବାୟ, ଭୁପତି ।

କୁବିନ୍ଦକ — ପୁଂ. ବି. ( କୁବିନ୍ଦ+କ ) କଂସେଇ ।

କୁବିମ୍ବ—ପୁଂ. କ୍ଲୀ, ବି. ନିନ୍ଦିତ ମଣ୍ଡଳ, କୁତ୍ସିତ ଛାୟା, ଭୂମଣ୍ଡଳ ।

କୁବିବାହ- ପୁଂ.ବି. (କୁ+ବି+ବହ୍+ଅ) ଅଯୋଗ୍ୟ ବିବାହ, ଆସୁରିକ ବିବାହ ।

କୁବୀଣା — ସ୍ତ୍ରୀ. ଝଁ. ଚଣ୍ଡାଳର ବୀଣା ।

କୁବୁଜ — ଗ୍ରା. ବି. କୁଜା ।

କୁବୁଜା — ସ୍ତ୍ରୀ.ବିଂ. କୁବୁଜୀ, ମଥୁରାର ଜଣେ କୁଜୀ ଯୁବତୀ,(ଗ୍ରା.ବି)ଛୋଟଝାଞ୍ଜ କୁଜା ।

କୁବୁଜୀ — ଗ୍ରା.ସ୍ତ୍ରୀ.ବିଂ.କୁଜୀ ସ୍ତ୍ରୀ, (ବି)ଛୋଟ କଂସା ଝାଞ୍ଜ ବା ତାଳ ।

କୁବୁଦ୍ଧି — ବି. (କ.ଧା.) ମନ୍ଦବୁଦ୍ଧି,(ବିଂ) ମନ୍ଦବୁଦ୍ଧି ବିଶିଷ୍ଟ, ଅବୋଧ ।

କୁବୃତ୍ତି — ସ୍ତ୍ରୀ. ବି. ନିନ୍ଦିତାଚରଣ, ମନ୍ଦ-ବ୍ୟବସାୟ, କୁତ୍ସିତଜୀବିକା, କୁବ୍ୟବ-ହାର.(ବିଂ)କୁବ୍ୟବସାୟୀ,କୁବୃତ୍ତିଯୁକ୍ତ ।

କୁବୃତ୍ତିକୃତ୍ — ପୁଂ.ବି. (କୁ+ବୃତ୍ତି+କୃ+କ୍ୱିପ୍) କରଞ୍ଜଭେଦ, (ବିଂ) ଯେଉଁ ବ୍ୟକ୍ତି ନିନ୍ଦିତାଚରଣ କରେ ।

କୁବେଣା — ସ୍ତ୍ରୀ.ବି. ନଦୀବିଶେଷ, ମାଛର ଖାଲୋଇ ।

କୁବେଣୀ — ସ୍ତ୍ରୀ.ବି. (କୁ+ବେଣ+ଇନ୍) ମାଛର ଖାଲୋଇ,କୁତ୍ସିତବେଣୀବିଶିଷ୍ଟା ସ୍ତ୍ରୀ, ସ୍ତ୍ରୀ. ହିଙ୍ଗୁଳାଧୀଶ୍ୱରୀ, ଏକ ଯକ୍ଷିଣୀ ।

କୁବେର—ପୁଂ. ବି. (କୁ + ବେର) ଯକ୍ଷରାଜ, ଧନାଧିପ, ନରବାହନ,(ବିଂ)ଅଳସ, କୁରୂପ,ଅଳସୁଆ,କୁତ୍ସିତ ଶରୀରବିଶିଷ୍ଟ ।
କୁବେରଦିକ୍--ବି(ମଧ୍ୟ-କ.ଧା)ଉତ୍ତରଦିଗ ।
କୁବେରନଳିନୀ—ସ୍ତ୍ରୀ. ବି. ତୀର୍ଥବିଶେଷ ।
କୁବେରପୁତ୍ର—ଗ୍ରା. ବି. ଚୈତ୍ରଜାତ ।
କୁବେରବନ—କ୍ଲୀ. ବି. କୁବେରାଧିଷ୍ଠିତ ଜଙ୍ଗଲ ବା ଅରଣ୍ୟ ।
କୁବେର ବାନ୍ଧବ—ପୁଂ.ବି. ଶିବ ।
କୁବେରବଲ୍ଲଭ—ପୁଂ.ବି.ବୈଶ୍ୟଭେଦ ।
କୁବେରାକ୍ଷି—ସ୍ତ୍ରୀ.ବି.ଲତାକରଞ୍ଜ, ପାଟଳି-ଗଛ ।
କୁବେରାଚଳ--ପୁଂବି.(କୁବେର + ଅଚଳ) ୬ତତ୍; କୈଳାସ ପର୍ବତ, କୈଳାସର ନାମାନ୍ତର ।
କୁବେରାଦ୍ରି—ବି.(କ.ଧା)କୈଳାସପର୍ବତ ।
କୁବେଳ—କ୍ଲୀ.ବି. (କୁ + ବେଳ + କ.ଅ) କୁବଳୟ, ପଦ୍ମ, (ଗ୍ରା, ବି) ମନ୍ଦସମୟ ।
କୁବେଳା—ବି.(କ.ଧା)ମନ୍ଦସମୟ, ଅଶୁଭ ମୁହୂର୍ତ୍ତ ।
କୁବୈଦ୍ୟ—ପୁଂ. ବି. କୁତ୍ସିତ ବୈଦ୍ୟ ।
କୁବ୍ର--କ୍ଲୀ.ବି.(କୁନବ୍ + ର) ଅରଣ୍ୟ,ବନ ।
କୁଶ୍-(ଧାତୁ)ଆଲିଙ୍ଗନକରିବା,ବେଢ଼ିବା ।
କୁଶ୍—ପ୍ରା.(ସମ୍ବ)ବି. କୋଶ,ଦୁଇମାଇଲ ଦୂରତ୍ୱ ।
କୁଶ୍ନା—ପ୍ରା.(ସମ୍ବ)ବି. ହାଣ୍ଡିଆ ମଦ ।
କୁଶ୍ରି—ପ୍ରା.(ସମ୍ବ)ବି.କଳାବାଇଁଶିମାଛ ।
କୁଶ—ପୁଂ. କ୍ଲୀ. ବି.(କୁ + ଶୀ + ଅଧି + ଅ)ଶ୍ରାଦ୍ଧତର୍ପଣାଦି ବୈଦିକ ଅନୁଷ୍ଠାନରେ ବ୍ୟବହୃତ ହେଉଥିବା ଏକପ୍ରକାର ତୃଣ, ପୁରାଣୋକ୍ତ ଦ୍ୱୀପବିଶେଷ,ଶ୍ରୀରାମଚନ୍ଦ୍ରଙ୍କର ଜ୍ୟେଷ୍ଠ ପୁତ୍ର, (ବିଂ) ମତ୍ତ, ମ୍ଳାନ,ଖଳ, ମାତାଲ, ପାପିଷ୍ଠ,(ଲ.ଅର୍ଥ) ବ୍ରାହ୍ମଣ, (ଗ୍ରା.ବି) କୋଶ, ଦୁଇମାଇଲ୍ ଦୂରତ୍ୱ ।                [ବିଶେଷ ।
କୁଶକଣ୍ଡିକା—ସ୍ତ୍ରୀ.ବି. ବୈଦିକ ସଂସ୍କାର-
କୁଶଗଣ୍ଠି—ଗ୍ରା.ବି(ସଂ-କୁଶଗ୍ରନ୍ଥି)କୁଶରେ ପକାଯିବା ଗଣ୍ଠି, ବିବାହରେ ବର-କନ୍ୟାଙ୍କ ଦୁଇ ଡାହାଣହାତକୁ ଯୋଡ଼ି-କରି ପକାଯିବା କୁଶର ଗ୍ରନ୍ଥି, ମୁକୁଳା କେଶରୁ କେରାଏ ଧରି ତହିଁରେ ପକାଯିବା କ୍ଷୁଦ୍ର ଗ୍ରନ୍ଥି ।                [ହେବା ।
କୁଶଗଣ୍ଠି ପଡ଼ିବା—ଗ୍ର.ବି. ବିବାହସମ୍ପନ୍ନ
କୁଶଚୀର—କ୍ଲୀ. ବିଂ. କୁଶନିର୍ମିତ ବସ୍ତ୍ର ।
କୁଶଚୀରା—ସ୍ତ୍ରୀ, ବି. ନଦୀବିଶେଷ ।
କୁଶଜ-ପୁଂ.କ୍ଲୀ.ବି.(କୁଶ (ଜଳ) + ଜନ + ଅ) ଜନପଦବିଶେଷ, ପଦ୍ମ ।
କୁଷଣ୍ଠ—ପୁଂ. ବି. ଜନପଦବିଶେଷ ।
କୁଶଣ୍ଡିକା—ସ୍ତ୍ରୀ.ବି. ବ୍ରାହ୍ମଣଙ୍କର ବିବାହ-କାଳୀନବୈଦିକକ୍ରିୟାବିଶେଷ,ହୋମାଗ୍ନି ସଂସ୍କାରକ୍ରିୟା ।
କୁଶଦାହ—ବି. ( କୁଶ + ଦାହ )ଦୂର-ବିଦେଶରେ ଅନଦ୍ଧେଶ୍ୟ ମୃତ ବ୍ୟକ୍ତିର ଶବ ପରିବର୍ତ୍ତେ କଳ୍ପିତ କୁଶନିର୍ମିତ ପ୍ରତିମାକୁ ଶ୍ମଶାନରେଚିତାରେ ପୋଡ଼ିବା
କୁଶଦ୍ୱୀପ—ପୁଂ. ବି. ସପ୍ତପ୍ରଧାନ ଦ୍ୱୀପର ଅନ୍ତର୍ଗତ ଗୋଟିଏ ଦ୍ୱୀପ ।
କୁଶଧାରା—ସ୍ତ୍ରୀ. ବି. ନଦୀବିଶେଷ ।
କୁଶଧ୍ୱଜ—ପୁଂ. ବି. ରାଜବିଶେଷ, ଋଷି-ବିଶେଷ, ବେଦବତୀର ପିତା, ଜନକ ରାଜାଙ୍କ ସାନଭାଇ ।
କୁଶନାଭ—ପୁଂ. ବି. ଅଯୋଧ୍ୟାଧିପତି କୁଶଙ୍କ ପୁତ୍ର ।
କୁଶନାମା—ପୁଂ.ବି. ଓଟ, ଉଟ, ଓଷ୍ଟ୍ର ।
କୁଶନେତ୍ର—ପୁଂ. ବି. ଦୈତ୍ୟବିଶେଷ ।
କୁଶପ—ପୁଂ.ବି (କୁଶ + ପା + ଅ)ଜଳ ପାନ ପାତ୍ର, ପାଣିଗିଲାସ ।
କୁଶପତ୍ର, କୁଶପତ୍ରକ—କ୍ଲୀ. ବି. ବ୍ରଣ କାଟିବାର ଅସ୍ତ୍ରବିଶେଷ ।
କୁଶପାତ୍ରୀ—ଗ୍ରା.ବି.ଧର୍ମାନୁଷ୍ଠାନରେ କୁଶ ଓ ଜଳାଦି ରଖିବା ନିମନ୍ତେ ତମ୍ବାନିର୍ମିତ ପାତ୍ରୀ ।
କୁଶପୁର—କ୍ଲୀ. ବି. ଗୋମତୀନଦୀତୀର-ବର୍ତ୍ତୀ ଗୋଟିଏ ଅତି ପ୍ରାଚୀନ ନଗର ।
କୁଶପୃଷ୍ଠ—କ୍ଲୀ.ବି.ଗ୍ରନ୍ଥି ପୃଷ୍ଠ, ଗଣ୍ଠି ଅନା ।
କୁଶପ୍ଲବନ—କ୍ଲୀ. ବି. ତୀର୍ଥବିଶେଷ ।
କୁଶଭଦ୍ରା—ଗ୍ରା.ବି. ପୁରୀଜିଲ୍ଲାରେ ପ୍ରବାହିତା ନଦୀବିଶେଷ ।
କୁଶମ—ପୁଂ.ବି.ପାନଖଣ୍ଡି, ପାଣିଗିଲାସ, (ଗ୍ରା.ବି) ମଦ୍ୟବିଶେଷ ।
କୁଶମସିଣା—ଗ୍ରା. ବି. କୁଶରେ ବୁଣା ହୋଇଥିବା ଆସନ ।
କୁଶମୁଦ୍ରା—ସ୍ତ୍ରୀ.ବି. (କ.ଧା)କୁଶାଙ୍ଗୁରୀ ।
କୁଶମୁଷ୍ଟି—ପୁଂ. ବି.° ଯାହାର ହାତରେ ମୁଠାଏ କୁଶ ଅଛି ।
କୁଶମ୍ପ—ଗ୍ରା.ବିଂ. ଆଶଙ୍କିତ, ନାଗର, ଖିନ୍ନ ଓ ତୁଷ୍ଟୀଭୂତ ।                [(ଦେଖ) ।
କୁଶସ୍ଥ—ବି. (କୁଶ + ସ୍ଥା + ଅ) କୁଶପ
କୁଶର—ପୁଂ. ବି. (କ.ଧା) ଶରତୁଲ୍ୟ ମଞ୍ଚୁଚ୍ଛଦ୍ର ତୃଣବିଶେଷ, ମଦନବାଣ ।
କୁଶଳ—ପୁଂ. ବି. (କୁ + ଶୋ + ଲା + ଅ) ମଙ୍ଗଳ,କଲ୍ୟାଣ, ପୁଣ୍ୟ, ନୈପୁଣ୍ୟ, ସାମର୍ଥ୍ୟ, (ବିଂ)ଉତ୍ତମ, ଉଚିତ, ଚତୁର, ଶିକ୍ଷିତ, ସୁଖୀ, କଲ୍ୟାଣଯୁକ୍ତ, ନିରାପଦ, (ସ୍ତ୍ରୀ) କୁଶଳା ।
କୁଶଳକାମୀ—ପୁଂ.ବିଂ.(କୁଶଳ + କାମ + ଇନ୍) ମଙ୍ଗଳ କାମନାକାରୀ, ଶୁଭକାମୀ ।
କୁଶଳପୃଚ୍ଛା—ବି.(ମଧ୍ୟ କ.ଧା)କୁଶଳପ୍ରଶ୍ନ ।
କୁଶଳପ୍ରଶ୍ନ—ପୁଂ. ବି. ମଙ୍ଗଳସମ୍ବନ୍ଧୀୟ ଜିଜ୍ଞାସା ।
କୁଶଳବ—ପୁଂ.ବି.ରାମଚନ୍ଦ୍ରଙ୍କ ପୁତ୍ରଦ୍ୱୟ, ସୀତାଙ୍କ ଗର୍ଭଜାତ ଯମଜପୁତ୍ର ।
କୁଶଳବାର୍ତ୍ତା—ସ୍ତ୍ରୀ. ବି. କୁଶଳ ସମ୍ବାଦ, (ଦେଖ) ।                [ ବିଚକ୍ଷଣ ।
କୁଶଳବୁଦ୍ଧି—ପୁଂ. ବିଂ. ଚତୁର,ଶିକ୍ଷିତ,
କୁଶଳସମ୍ବାଦ—ବି. (ମଧ୍ୟ,କ.ଧ)ମଙ୍ଗଳ ସମାଚାର, ଶୁଭଖବର ।
କୁଶଳସାଗର—ପୁଂବି. ଜଣେ ଗ୍ରନ୍ଥକାର, ଲାବଣ୍ୟବତୀଙ୍କ ଶିଷ୍ୟ ।
କୁଶଳି—ଗ୍ରା. ବି. ମଧ୍ୟମାକୃତି ଡଙ୍ଗା, କୋଶଳ ।
କୁଶଳୀ—ପୁଂ. ବିଂ. ( କୁଶଳ + ଇନ୍ ) ସୁଖୀ, କଲ୍ୟାଣଯୁକ୍ତ, ସମୃଦ୍ଧିବନ୍ତ, ନିରାପଦ ।
କୁଶବଟୁ—ପୁଂ. ବି. ( କ.ଧା ) କୁଶରେ ମୋଡ଼ାହୋଇ ତଆରହୋଇଥିବା ବଟ ।

କୁଶବସ୍ଥା—ସ୍ତ୍ରୀ. ବି. ନଗରବିଶେଷ ।
କୁଶବଟାଲୀ—ଗ୍ରା. ବି. ସ୍ତ୍ରୀ. ରଜସ୍ୱଲା ହୋଇ ଶାଶୂଘରକୁ ଯିବାପୂର୍ବରୁ ବିଧବା ହୋଇଥିବା ଶୂଦ୍ରକନ୍ୟା ।
କୁଶବଟାଳିବା—ଗ୍ରା. କ୍ରି. ଅରଜସ୍ୱାଶୂଦ୍ର କନ୍ୟାର ନାମମାତ୍ର ବିବାହବିଧି ସମ୍ପାଦନ କରିବା ।
କୁଶବନ୍ଧୁ—ପୁଂ. ବି. ଜନପଦବିଶେଷ, କୁଶାଗ୍ରନ୍ଥିତ ଜଳବିନ୍ଦୁ ।
କୁଶବାଗ—ସ୍ତ୍ରୀ.ବି. ନଦୀବିଶେଷ ।
କୁଶବେଣ୍ଡି—ଗ୍ରା.ବି. କୁଶଗଣ୍ଡି (ଦେଖ), କୁଶପରି କେସ୍ୱେ ମୁଣ୍ଡବାଳ ।
କୁଶସ୍ତମ୍ଭ—ପୁଂ.ବି. (୬ତତ୍ପୁ) କୁଶବିଡ଼ା, (କ୍ଲୀ.ବି) ତୀର୍ଥବିଶେଷ ।
କୁଶସ୍ଥଳ—କ୍ଲୀ.ବି.(୭ତତ୍) କାନ୍ୟକୁବ୍ଜର ନାମାନ୍ତର । [ ନଗରୀ ।
କୁଶସ୍ଥଳୀ—ସ୍ତ୍ରୀ.ବି. ଗୋଟିଏ ଅତିପ୍ରାଚୀନ
କୁଶହସ୍ତ—ଗ୍ରା.ବି. ଦାନ କର୍ମ୍ମ ଶ୍ରାଦ୍ଧାଦି ସମୟରେ ହାତରେ କୁଶ ଗ୍ରହଣକରିବା (ବିଂ)ହାତରେ କୁଶଧରିଥିବା (ବ୍ୟକ୍ତି) ।
କୁଶା—ସ୍ତ୍ରୀ.ବି.(କୁଶ + ଆ)ମଧୁକର୍କଟିକା, ଘୋଡ଼ାର ଲଗାମ, ଦଉଡ଼ା, ଲଙ୍ଗଳ ଲୁହା, କାଷ୍ଠଖଣ୍ଡ ।
କୁଶା—ପ୍ରା. (ସମ୍ବ) ବି. ଖୋଷା, ଟସର ପୋକଙ୍କ ଗୋଟି । [ ସଙ୍ଗୁର୍ଦ୍ଧି ।
କୁଶାକର—ପୁଂ. ବିଂ. (କୁଶ + ଆକର)
କୁଶାକାର—ପୁଂ. ବି. (କୁଶ + ଆ + କୃ ଅ) ଅଗ୍ନି, ଯଜ୍ଞ କାରକ ।
କୁଶାକ୍ଷ—ପୁଂ.ବି. (କୁଶ + ଅକ୍ଷ)ବାନର, ମାଙ୍କଡ଼ ।
କୁଶାଗ୍ର—କ୍ଲୀ. ବି. ( ୬ତତ୍ ) କୁଶର ଅଗ୍ରଭାଗ,କୁଶରମୁନିଆଁ ଅଂଶ,(ପୁଂ.ବି.) ରାଜା ବୃହଦ୍ରଥଙ୍କ ପୁତ୍ର ।
କୁଶାଗ୍ରଧୀ—ବି.(କ.ଧା) ଅତି ତୀକ୍ଷ୍ଣବୁଦ୍ଧି, (ବିଂ) ଅତି ସୂକ୍ଷ୍ମବୁଦ୍ଧିବିଶିଷ୍ଟ ।
କୁଶାଗ୍ରୀୟ—ବିଂ. (କୁଶ + ଅଗ୍ର + ଈୟ) କୁଶାଗ୍ରତୁଲ୍ୟ, ଅତିତୀକ୍ଷ୍ଣ, କୁଶାଗ୍ରପରି ସୂକ୍ଷ୍ମ ।
କୁଶାଙ୍କୁର—ପୁଂ. ବି. (କୁଶ + ଅଙ୍କୁର) ୬ତତ୍; ଗଜୁରିଥିବା କୁଶ, କୁଶର ଅଗ୍ରଭାଗ ।
କୁଶାଙ୍ଗୁରୀକ—ପୁଂ.କ୍ଲୀ.ବି. ଶ୍ରାଦ୍ଧାଦିକାର୍ଯ୍ୟ ସମୟରେ ଯେଉଁ କୁଶନିର୍ମିତ ଅଙ୍ଗୁରୀ ହାତରେ ଧାରଣ କରାଯାଏ, କୁଶବଟି ।
କୁଶାରଣି—ପୁଂ. ବି. (କୁଶ + ଅରଣି) ଦୁର୍ବାସାମୁନି ।
କୁଶାସି—ପ୍ରା. (ସମ୍ବ) ବି. ଆଖି, କଲାର-ଆଖି, ମୃଦଙ୍ଗରେ ଟଣା ହୋଇଥିବା ଚମ ଦଉଡ଼ି ।
କୁଶାଳ୍ମଳି—ପୁଂ. ବିଂ. ରୋହିତ ବୃକ୍ଷ ।
କୁଶାବତୀ—ସ୍ତ୍ରୀ. ବି.(କୁଶ + ବତୁ + ଈ) ନଗରବିଶେଷ, ରାମଚନ୍ଦ୍ରଙ୍କପୁତ୍ର କୁଶଙ୍କ ରାଜଧାନୀ ।
କୁଶାବର୍ତ୍ତ—ପୁଂ. ବି. ତୀର୍ଥବିଶେଷ,ଋଷଭ ନୃପତିଙ୍କ ଶତପୁତ୍ର ମଧ୍ୟରେ ଭରତର କନିଷ୍ଠ ।
କୁଶାବନ୍ଧ—ଗ୍ରା.ବି.ରାଜପୁତଜାତିବିଶେଷ ।
କୁଶାଶ୍ୱ—ପୁଂ. ବି. ସୂର୍ଯ୍ୟବଂଶର ରାଜାବିଶେଷ ।
କୁଶାସନ—କ୍ଲୀ.ବି.(କୁଶ + ଆସନ)କୁଶତୃଣ ନିର୍ମିତ ଆସନ,ନିକୃଷ୍ଟ ଉପାୟଦ୍ୱାରା ରାଜ୍ୟଶାସନ ।
କୁଶାସ୍ତରଣ—କ୍ଲୀ. ବି. କୁଶତୃଣର ଆଚ୍ଛାଦନ, ହୋମାର୍ଥ କୁଶାଚ୍ଛାଦିତ ସ୍ଥାନ ।
କୁଶିଂଶପା—ସ୍ତ୍ରୀ.ବି.କପିଳ ଶିଂଶପାବୃକ୍ଷ ।
କୁଶି—ପୁଂ. ବି. ପେଗ ।
କୁଶିକ—ପୁଂ.ବିଂ. (କୁଶ + ଇକ)ଟେରା, (ବି.) ବିଶ୍ୱାମିତ୍ରଙ୍କ ପିତାମହ, ଗାଧିଙ୍କ-ପିତା,ଲଙ୍ଗଳର ଲୁହା,ତେଲର ଭାଣ୍ଡି, ବାହାଡ଼ାଗଛ,ଶାଳଗଛ, ଅଶ୍ୱକର୍ଣ୍ଣବୃକ୍ଷ ।
କୁଶିକନ୍ଧର—ପୁଂ. ବି. ମୁନିବିଶେଷ ।
କୁଶିକା—ସ୍ତ୍ରୀ. ବି. ଗୋଡ଼ ଭାଙ୍ଗିଗଲେ ଭଙ୍ଗାହାଡ଼କୁ ଯୋଡ଼ି ବାନ୍ଧିବାପାଇଁ କାଠର ପଟା ।
କୁଶିଗ୍ରାମକ—ପୁଂ. ବି. ମଲ୍ଲରାଜ୍ୟାନ୍ତର୍ଗତ ବୁଦ୍ଧଦେବଙ୍କ ନିର୍ବାଣସ୍ଥାନ, କୁଶିନଗର ।
କୁଶିତ—କ୍ଲୀ. ବିଂ. (କୁଶ + ଇତ)ଜଳମିଶ୍ରିତ ବସ୍ତୁ, ଈଷତ୍ ଶୁଭଯୁକ୍ତ ।
କୁଶିନଗର—କ୍ଲୀ.ବି. ବୁଦ୍ଧଦେବଙ୍କ ନିର୍ବାଣ ସ୍ଥାନ ।
କୁଶୀ—ସ୍ତ୍ରୀ. ବି. (କୁ + ଶୋ + ଅ + ଈ) ଲୌହବିକାର, ଲଙ୍ଗଳ ଲୁହା ।
କୁଶୀ—ବିଂ (କୁଶ + କ, ଇନ୍)କୁଶଯୁକ୍ତ, (ଗ୍ରା.ବି) ନଦୀବିଶେଷ, ବାଲ୍ମୀକିମୁନି, କୁଶିନଗର ।
କୁଶୀଦ—କ୍ଲୀ. ବି. (କୁଶ + ଈଦ) ଋଣପ୍ରଦାନ, ଧନର ସୁଧ ବା ବୃଦ୍ଧି, ଟଙ୍କାକୁ ସୁଧରେ ଲଗାଇବା, ରକ୍ତଚନ୍ଦନ, ବୃଦ୍ଧିଜୀବିକା ।
କୁଶୀଦକ—ପୁଂ. ବିଂ. (କୁଶୀଦ + କ) ଯେ ସୁଧପାଇଁ ଟଙ୍କା କରଜ ଦିଏ, ଯେ ଟଙ୍କା ଦେଇ ସୁଧ ନିଏ ।
କୁଶୀଦଗ୍ରାହୀ—ବିଂ. (କୁଶୀଦ + ଗ୍ରାହିନ୍) କୁଶୀଦକ (ଦେଖ) ।
କୁଶୀଦଜୀବୀ—ପୁଂ.ବିଂ. (କୁଶୀଦ + ଜୀବୀ) ବୃଦ୍ଧିଜୀବୀ, ଟଙ୍କାଧାର ଦେଇ ସୁଧ ନେବା ଯାହାର ବ୍ୟବସାୟ ।
କୁଶୀଦବ୍ୟବହାର—ପୁଂ.ବି. ସୁଧକଷିବା, ସୁଧନେଇ ଟଙ୍କା କରଜ ଦେବା ।
କୁଶୀଳ—ବି. ( କୁ + ଶୀଳ ) ଦୁଃଶୀଳ, ଅସତ୍‌ସ୍ୱଭାବ, ଦୁଷ୍ଟପ୍ରକୃତି, (ବିଂ,ବି.ଗ୍ରା) ଅସତ୍‌ସ୍ୱଭାବବିଶିଷ୍ଟ, ମନ୍ଦ ଆଚରଣବିଶିଷ୍ଟ ।
କୁଶୀଳବ—ପୁଂ. ବି. (କୁଶୀଳ + ବା + କ,ଅ)କଥକ,ଚାରଣ,ଯାଚକ, ଲବକୁଶ, କବି, ନଟ, ଗାୟକ, ବାଲ୍ମୀକିଋଷି, ରାମଚନ୍ଦ୍ରଙ୍କ ଯାଆଁଳା ପୁଅଦୁହେଁ, ଲବ ଓ କୁଶ ।
କୁଶୀବଶ—ପୁଂ.ବି. ବାଲ୍ମୀକିମୁନି ।
କୁଶୀସ୍—ଗ୍ରା. ବି. ଚେଷ୍ଟା, ପ୍ରଯତ୍ନ ।
କୁଶୁମ୍ଭ—ପୁଂ. ବି. (କୁଶ + ଉମ୍ଭ)ସନ୍ନ୍ୟାସୀଙ୍କ ଜଳପାତ୍ର, କମଣ୍ଡଳୁ, ଜଳକୁମ୍ଭ ।
କୁଶୁଲି—ଗ୍ରା. ବି. ବଡ଼ନାହା, କୋଶଳ (ଦେଖ) ।
କୁଶୂଳ—ପୁଂ.ବି. ଧାନ୍ୟାଗାର, ଭଣ୍ଡାର, ଅମାର, ଚଷୁରିନିଆଁ, କରେଇ, ଭୃତ୍ୟ

ସଞ୍ଚୟକରିବା ଆଧାର, ଗୋଲାଘର, ଦୁଃଖଦାୟକ ଶଲବେଗ ।
କୁଶୂଳଧାନ୍ୟ—କ୍ଳୀ. ବ. ତିନବର୍ଷ ଆହାରୋପଯୋଗୀ ସଞ୍ଚିତଧାନ୍ୟ ।
କୁଶୂଳଧାନ୍ୟକ—ପୁଂ. ବିଂ. ଯେଉଁ ଗୃହସ୍ଥର ତିନବର୍ଷ ଆହାରୋପଯୋଗୀ ଧାନ ସଞ୍ଚିତ ଅଛି ।
କୁଶେର—ପ୍ରା.(ସମ୍ପ)ବି.କୁଶାସି (ଦେଖ) ।
କୁଶେଳୟ—କ୍ଳୀ. ବ. ପଦ୍ମ, ଜଳଜ ।
କୁଶେଶୟ—ବି. (କୁଶେ+ଶୀ+କ,ଅ) ପଦ୍ମ, ହଂସ, କଇଁ, ସାରସପକ୍ଷୀ, କନିଅରଗଛ, କୁଶଦ୍ୱୀପସ୍ଥିତ ପର୍ବତ ବିଶେଷ, (ପୁଂ.ବି)ବ୍ରତାଦି ନିୟମପାଳନ ନିମନ୍ତେ ଯେ କୁଶାସନରେ ଶୁଏ ।
କୁଶୋଦକ—କ୍ଳୀ. ବ. (କୁଶ+ଉଦକ) ଦାନାର୍ଥ କୁଶସହିତ ଜଳ ।
କୁଶୋଦକା—ସ୍ତ୍ରୀ. ବ. ଦେବୀବିଶେଷ ।
କୁଶ୍ରି—ପୁଂ. ବ. ଅଧ୍ୟାପକବିଶେଷର ନାମ ।
କୁଶ୍ରୁତ—ବିଂ. ଅପରିଷ୍କୃତଭାବେ ଶ୍ରୁତ ।
କୁଷ୍ଟିଭ୍—କ୍ଳୀ. ବ. କ୍ଷୁଦ୍ର ଛିଦ୍ର ।
କୁଷ୍—(ଧାତୁ) ଛିଣ୍ଡାଇବା,ଚିରିବା,ଟାଣି ପକାଇବା, ପରୀକ୍ଷାକରିବା, ଶୋଭାପାଇବା, ଚମକିବା ।
କୁଷଣ୍ଡ—ପୁଂ. ବ. ପୁରୋହିତ ବିଶେଷ ।
କୁଷଲ—(କୁଷ+ଲା+ଅ) ଚତୁର, ଦକ୍ଷ, ପଟୁ ।
କୁଷବା—ସ୍ତ୍ରୀ.ବ. ରାକ୍ଷସୀବିଶେଷ ।
କୁଷାକୁ—ପୁଂ.ବ. (କୁଷ+ଆକୁ) ଅଗ୍ନି, ବାନର, ସୂର୍ଯ୍ୟ, (ବିଂ) ଉତ୍ତାପକ, ଘୃଣ୍ୟ, ଦୁଷ୍ଟ, ଯାହା ପୋଡ଼ିପକାଏ ।
କୁଷାର—ପୁଂ. ବ. ବାଦ୍ୟବିଶେଷ ।
କୁଷିତ—ବିଂ.(କୁଷ+ତ) ଜଳମିଶ୍ରିତ, ସୁଖୀ, ହୃଷ୍ଟ, ସନ୍ତୋଷିତ, ଭାଗ୍ୟବାନ୍, ପ୍ରସନ୍ନ । [ ଋଷିଭେଦ ।
କୁଷୀତକ—ପୁଂ. ବ. ପକ୍ଷିଜାତିବିଶେଷ,
କୁଷୀଦ—କ୍ଳୀ. ବ. ସୁଧରେ ଟଙ୍କା ଖଟାଇବା, (ବିଂ) ଜଡ଼,ନିର୍ମମ, ବିରାଗୀ ।
କୁଷୀବୀ—ପୁଂ. ବ. ଅଧ୍ୟାପକବିଶେଷ ।

କୁଷୁମ୍ଭ—ପୁଂ. (ବୈଦିକ)ବିଷାକ୍ତପୋକର ଦେହରେ ଥିବା ବିଷଥଳୀ ।
କୁଷୁମ୍ଭକ—ପୁଂ. ବ. ନେଉଳ, ନକୁଳ ।
କୁଷ୍ଠ—ପୁଂ.କ୍ଳୀ.(କୁଷ+କ,ଠ) ଉତ୍ସାଦକ ଚର୍ମ ଓ ମାଂସବ୍ୟାଧିବିଶେଷ,ମହାବ୍ୟାଧି କୁଡ଼, ବିଷଭେଦ ।
କୁଷ୍ଠକେତୁ—ପୁଂ. ବ. ମାର୍କଣ୍ଡିକାବୃକ୍ଷ ।
କୁଷ୍ଠା—ସ୍ତ୍ରୀ.ବ. ଏକଶ୍ରେଣୀର ଲୁଗାବୁଣିବା ତନ୍ତ୍ରଜାତ ।
କୁଷ୍ଠଗନ୍ଧିନୀ—ସ୍ତ୍ରୀ. ବ. ଅଶ୍ୱଗନ୍ଧା ।
କୁଷ୍ଠଘ୍ନ—ବିଂ. (କୁଷ୍ଠ+ହନ୍+ଅ) କୁଷ୍ଠନାଶନ ଔଷଧ, (ପୁଂ.ବି) ଔଷଧିବୃକ୍ଷ ବିଶେଷ ।
କୁଷ୍ଠନାଶନ - କ୍ଳୀ. ବ. (କୁଷ୍ଠ+ନଶ୍+ଅନ) କ୍ଷୀରୀଶବୃକ୍ଷ, କ୍ଷୀରକାଞ୍ଚନ, ଶ୍ୱେତସର୍ଷପ,(ବିଂ) କୁଷ୍ଠନାଶକ ଔଷଧି ।
କୁଷ୍ଠନାଶିନୀ—ସ୍ତ୍ରୀ.ବ.ସୋମରାଜୀ,ବାକୁଚ ।
କୁଷ୍ଠନୋଦନ—ପୁଂ.ବ.(କୁଷ୍ଠ+ନୁଦ୍+ଣି+ଅନ) ରକ୍ତଖଇର ।
କୁଷ୍ଠଳ—କ୍ଳୀ. ବ. କୁତ୍ସିତସ୍ଥାନ, ଅପବିତ୍ର ସ୍ଥାନ, ପୃଥିବୀର ଉପବିଭାଗ ।
କୁଷ୍ଠବନ୍ଧ—ସ୍ତ୍ରୀ. ବ.କୁଷ୍ଠବନ୍ଧ୍ୟା, (ବିଂ) ଯେଉଁ ବ୍ୟକ୍ତି ଲକ୍ଷଣାଦିଦ୍ୱାରା କୁଷ୍ଠରୋଗ ବୁଝିପାରେ ।
କୁଷ୍ଠବୈରୀ—ପୁଂ. ବ. ଫଳବୃକ୍ଷବିଶେଷ, ଗୁଳମୁଗୁରୁ ।
କୁଷ୍ଠସୂଦନ—ପୁଂ.ବ. (କୁଷ୍ଠ+ସୂଦ+ଣି+ଅନ) ଆରଗ୍ବଧ, ସୁନାରିଗଛ ।
କୁଷ୍ଠହନ୍ତା—ପୁଂ.ବ. (କୁଷ୍ଠ+ହନ+ତୃ) ହାତୀକନ୍ଦା, (ବିଂ) କୁଷ୍ଠନାଶକ ।
କୁଷ୍ଠହନ୍ତ୍ରୀ—ସ୍ତ୍ରୀ.ବ ବାକୁଚୀବୃକ୍ଷ ।
କୁଷ୍ଠହର—ପୁଂ. ବ. (କୁଷ୍ଠ+ହୃ+ଅ) ବିଟଖଇର,(ବିଂ) କୁଷ୍ଠନାଶକ ।
କୁଷ୍ଠହା—ପୁଂ. ବ. (କୁଷ୍ଠ+ହନ୍+କ୍ୱିପ୍) ପଟୋଳ,ସପ୍ତପର୍ଣ୍ଣୀ, ସଚନାଗଛ, ଗନ୍ଧକ, କୁଷ୍ଠନାଶକ ।
କୁଷ୍ଠହୃତ୍—ପୁଂ.ବ.(କୁଷ୍ଠ+ହୃ+କ୍ୱିପ୍) ଖଇର,ବିଟଖଦିର,(ବିଂ) କୁଷ୍ଠନାଶକ ।
କୁଷ୍ଠାଙ୍ଗ—ବିଂ, କୁଷ୍ଠବ୍ୟାଧିଯୁକ୍ତ ।

କୁଷ୍ଠାର—ପୁଂ. ବ. ଖଇର, ବିଟଖଦିର, ଭୃଙ୍ଗରମାସୀ,ପୁଷ୍କରବୃକ୍ଷ,ପଟୋଳ, ଅର୍କପତ୍ର, ଗନ୍ଧକ ।
କୁଷ୍ଠିକା—ସ୍ତ୍ରୀ ବ.ପାଦର ଅବୟବଭେଦ, ଯଜ୍ଞୀୟପଶୁର ପାଦଦେଶର ଅଂଶ ବିଶେଷ, ଯେଉଁ ଅଂଶ ଯଜ୍ଞରେ ପରିତ୍ୟାଜ୍ୟ ।
କୁଷ୍ଠିତ—ପୁଂ.ବିଂ. କୁଷ୍ଠରୋଗଗ୍ରସ୍ତ ।
କୁଷ୍ଠୀ—ପୁଂ.ବି.° (କୁଷ୍ଠ+ଇନ୍) କୁଷ୍ଠରୋଗୀ । [ ମୁକୁଳ ।
କୁଷ୍ମଲ—କ୍ଳୀ.ବ. ପତ୍ରଚ୍ଛେଦନ,(ପୁଂ.ସ୍ତ୍ରୀ)
କୁଷ୍ମାଣ୍ଡ—ବ. (କ+ଉଷ୍ମନ୍+ଅଣ୍ଡ) ପାଣିକଖାରୁ, ବୋଇତାଳୁ, ଶିବାନୁଚର ବିଶେଷ, ମନ୍ତ୍ରବିଶେଷ, ଗର୍ଭିଣୀର ଗର୍ଭସ୍ଥଳୀ, ଜରାୟୁ, ମୃତଗର୍ଭ, ମିଥ୍ୟାଗର୍ଭ, ଭୂତଯୋନିବିଶେଷ ।
କୁଷ୍ମାଣ୍ଡକ—ବ. ଫଳଲତାବିଶେଷ, ନାଗବିଶେଷ, ଶିବଙ୍କ ପାରିଷଦବିଶେଷ ।
କୁଷ୍ମାଣ୍ଡକଗ୍ରାମୀଯଣ, କୁଷ୍ମାଣ୍ଡଖଣ୍ଡ—କ୍ଳୀ. ବ. ଔଷଧବିଶେଷ ।
କୁଷ୍ମାଣ୍ଡା—ସ୍ତ୍ରୀ.ବ. ଦୁର୍ଗା ।
କୁଷ୍ମାଣ୍ଡିକା—ସ୍ତ୍ରୀ.ବ. କୁଷ୍ମାଣ୍ଡୀ (ଦେଖ) ।
କୁଷ୍ମାଣ୍ଡୀ - ସ୍ତ୍ରୀ.ବ. (କୁଷ୍ମାଣ୍ଡ+ଈ)ପାଣିକଖାରୁ, ବୋଇତକଖାରୁ, କାଙ୍କଡ଼, ଯାଗକର୍ତ୍ତ୍ରୀବିଶେଷ, ପ୍ରାୟଶ୍ଚିତ୍ତବିଶେଷ, ଦୁର୍ଗା ।
କୁସ—(ଧାତୁ) ଆଲିଙ୍ଗନ କରିବା, ଘେରିବା, ଦୀପ୍ତିପାଇବା । [ଦାତା ।
କୁସଚିବ—ପୁଂ.ବ. ଅନୁପଯୁକ୍ତ ମନ୍ତ୍ରଣା-
କୁସଂସର୍ଗ—ପୁଂ.ବ. (କ.ଧା) କୁସଙ୍ଗ, ଅସତ୍‌ସଙ୍ଗ, ଦୋଷୀର ସଂସ୍ରବ ।
କୁସଂସର୍ଗୀ—ପୁଂ.ବିଂ (କୁସଂସର୍ଗ+ଇନ୍) ଯେ ମନ୍ଦବ୍ୟକ୍ତି ସଙ୍ଗେ ସହବାସ କରେ । (ସ୍ତ୍ରୀ) କୁସଂସର୍ଗିଣୀ ।
କୁସଂସ୍କାର—ପୁଂ.ବ. ମିଥ୍ୟା ବା ଭ୍ରାନ୍ତ ଧାରଣା, ପ୍ରତିକୂଳମତ, ଅନ୍ଧବିଶ୍ୱାସ, ବିପରୀତ ସଂସ୍କାର ।
କୁସଂସ୍କାରୀ—ପୁଂ.ବ. (କୁସଂସ୍କାର+ଇନ୍) ଭ୍ରାନ୍ତ ଧାରଣାଯୁକ୍ତ (ବ୍ୟକ୍ତି) ।

କୁସଂସ୍କାରଚ୍ଛନ୍ନ—ବିଂ. (୬ତତ୍ପୁ) ଭ୍ରାନ୍ତ-ସଂସ୍କାରଦ୍ୱାରା ଅଭିଭୂତ, କୁସଂସ୍କାରରେ ପରିପୂର୍ଣ୍ଣ ।

କୁସଙ୍ଗ—ବିଂ. (କ.ଧା) ମନ୍ଦଲୋକ ସଙ୍ଗେ ସମ୍ପର୍କ (ଗ୍ରା.ବି) କୁସଙ୍ଗୀ, ମନ୍ଦ ବା ଖଳ ସହଚର, ଅସତ୍‌ସଙ୍ଗ ।

କୁସଙ୍ଗୀ—ପୁଂ. ବିଂ. ଯେ ମନ୍ଦବ୍ୟକ୍ତିଙ୍କ ସହବାସ କରେ, ମନ୍ଦ ସହଚର ।

କୁସନା—ପ୍ରା. (ସମ୍ବ) ବି. ହାଣ୍ଡିଆ ମଦ ।

କୁସରତ୍—ସ୍ତ୍ରୀ.ବି. ଅଗଭୀର ନଦୀ, ଜଳ ଶୂନ୍ୟ ନଦୀ ।

କୁସଲ—କ୍ଳୀ.ବି. କୁଶଲ, ମଙ୍ଗଳ ।

କୁସହାୟ—ପୁଂ.ବି. କୁତ୍ସିତ ସଙ୍ଗୀ ।

କୁସାଙ୍ଗୀ—ଗ୍ରା.ବି. ବାଉଁଶର କଣ୍ଟା ।

କୁସାରଥି—ପୁଂ. ବି. ମନ୍ଦସାରଥି, ଅସତ୍ ରଥଚାଳକ ।

କୁସିତ—ପୁଂ. ବି. (କୁସ+ଇତ) ଜନ-ପଦ, ଦେଶବିଶେଷ, ଯେଉଁ ବ୍ୟକ୍ତି ସୁଧଯୋଗୁଁ ଟଙ୍କା ଧାର ଦିଏ ।

କୁସିତାୟୀ—ସ୍ତ୍ରୀ. ବି. କୁସୀଦ ବ୍ୟବ-ସାୟୀର ପତ୍ନୀ । [ପତ୍ନୀ ।

କୁସୀଦାୟୀ—ସ୍ତ୍ରୀ. ବି. କୁସୀଦଜୀବୀର

କୁସିନ୍ଧ—କ୍ଳୀ. ବି. ମସ୍ତକଶୂନ୍ୟ ଦେହ, କବନ୍ଧ ।

କୁସିମ୍ବା,କୁସିମ୍ବୀ—ସ୍ତ୍ରୀ.ବି.ଶିମ୍ବବିଶେଷ ।

କୁସିସ୍—ଯା.ବି.ପ୍ରଯତ୍ନ,ଚେଷ୍ଟା,ଉଦ୍ୟୋଗ ।

କୁସୀଦ—ପୁଂ. ବି. ଯେଉଁ ବ୍ୟକ୍ତି ଏକ ସ୍ଥାନରେ ଅଧିକକ୍ଷଣ ବସିରହେ, ଧନ-ବୃଦ୍ଧି ନିମନ୍ତେ ଯାହା ଦିଆଯାଏ ।

କୁସୀଦର ପଥ—ପୁଂ. ବି. ଶାସ୍ତ୍ର ନିୟମରୁ ଅଧିକ ସୁଧ ଗ୍ରହଣ ।

କୁସୀଦବୃଦ୍ଧି—ସ୍ତ୍ରୀ. ବି. କୁସୀଦ ବ୍ୟବ-ସାୟରେ ଧନବୃଦ୍ଧି ।

କୁସୀଦାୟୀ—ପୁଂ.ବି. କୁସୀଦଜୀବୀ ।

କୁସୀଦିକ—ପୁଂ.ସ୍ତ୍ରୀ.ବି.(କୁସୀଦ+ଇକ) କୁସୀଦଜୀବୀ ।

କୁସୀଦୀ—ପୁଂ. ବିଂ. କୁସୀଦଜୀବୀ (ପୁଂ. ବି) କନ୍ୱବଂଶୀୟ ଋଷିବିଶେଷଙ୍କ ନାମ ।

କୁସୁନା—ପ୍ରା.(ସମ୍ବ)ବି.ହାଣ୍ଡିଆ (ମଦ) ।

କୁସୁମ—ପୁଂ.କ୍ଳୀ.ବି. (କୁସ୍+ଉମ)ଫୁଲ, ସ୍ତ୍ରୀମାନଙ୍କର ଋତୁସମୟ, ଫଳ, ନେତ୍ର-ରୋଗବିଶେଷ, ଡମ୍ବୁର ଫୁଲରହିଆ ଅଂଶ ବା କେଶର ।

କୁସୁମକଳିକା—ସ୍ତ୍ରୀ.ବି (୬ତତ୍ପୁ) ଫୁଲର କଢ଼, ପୁଷ୍ପକୋରକ ।

କୁସୁମକାର୍ମୁକ—ପୁଂ.ବି. (ବ.ବ୍ରୀ) କାମ, କନ୍ଦର୍ପ, ପୁଷ୍ପଧନ୍ୱା ।

କୁସୁମକୋଦଣ୍ଡ—ବି. ( ମଧ୍ୟ-କ.ଧା ) ପୁଷ୍ପଧନୁ, କାମଦେବଙ୍କ ଧନୁ ।

କୁସୁମକୋମଳ—ବିଂ. (କ.ଧା) ପୁଷ୍ପବତ୍ ନରମ, ଫୁଲପରି କଅଁଳ । [କଢ଼ି ।

କୁସୁମକୋରକ—ପୁଂ.ବି. (୬ତତ୍ପୁ)ଫୁଲର

କୁସୁମକୋଲି—ଗ୍ରା.ବି. ଏକପ୍ରକାର ବନ୍ୟ ଗଛ, କୁସୁମଗଛ, କୁସୁମଗଛର ଫଳ ।

କୁସୁମଗୃଷ—ପୁଂ. ବି. (ବ.ବ୍ରୀ) କାମ, କନ୍ଦର୍ପ, ପୁଷ୍ପଧନ୍ୱା । [ପୁଷ୍ପସମୂହ ।

କୁସୁମଦାମ—କ୍ଳୀ.ବି. (୬ତତ୍ପୁ)ଫୁଲମାଳ,

କୁସୁମଧନୁ—ବି. (ମଧ୍ୟ—କ.ଧା ) ମଦନ ବା କାମଦେବ ଯେଉଁ କଳ୍ପିତ ଧନୁ ଦ୍ୱାରା ପ୍ରେମିକ ପ୍ରେମିକାଙ୍କୁ ଲକ୍ଷ୍ୟକରି କୁସୁମ ଶର ପ୍ରୟୋଗ କରନ୍ତି ।

କୁସୁମଧନୁଃ—ପୁଂ.ବି. (କୁସୁମ+ଧନୁସ୍) (ବ.ବ୍ରୀ) କାମଦେବ, କନ୍ଦର୍ପ ।

କୁସୁମଧନ୍ୱା—ପୁଂ.ବି. କନ୍ଦର୍ପ,କାମଦେବ ।

କୁସୁମପଞ୍ଚକ—କ୍ଳୀ. ବି. ପଦ୍ମପ୍ରଭୃତି କନ୍ଦ-ର୍ପର ପାଞ୍ଚୋଟି ବାଣ,(ଅଶୋକ,ଅରବିନ୍ଦ, ଚୂତ, ନବମଲ୍ଲିକା, ନୀଳୋତ୍ପଳ ଏହି-ପାଞ୍ଚଟି ) ।

କୁସୁମପୁର—କ୍ଳୀ. ବି. ପାଟଳିପୁତ୍ର ନଗ-ରର ନାମାନ୍ତର, ବର୍ତ୍ତମାନ ପାଟନା ।

କୁସୁମପେଲବ—ବିଂ. ( କ.ଧା ) କୁସୁମ କୋମଳ, ଫୁଲପରି କୋମଳ ।

କୁସୁମମଧ୍ୟ—କ୍ଳୀ. ବି. ( କୁସୁମ+ମଧ୍ୟ ) ଓଆଉଗଛ ।

କୁସୁମମୟ—ବିଂ. ପୁଷ୍ପମୟ, ପୁଷ୍ପରଚିତ, ପ୍ରଚୁରଫୁଲ, (ସ୍ତ୍ରୀ) କୁସୁମମୟୀ ।

କୁସୁମରାଜ—ପୁ. ବି. ( କୁସୁମ+ରାଜା ) କାମ ।

କୁସୁମବତୀ—ସ୍ତ୍ରୀ. ବିଂ. (କୁସୁମ+ବତ୍+ଈ) ଋତୁମତୀ, ପୁଷ୍ପବତୀ (ଲତା) ।

କୁସୁମବାଣ—ପୁଂ.ବି. (ବ.ବ୍ରୀ) କନ୍ଦର୍ପ, (କ.ଧା.) କାମଦେବଙ୍କ ପଞ୍ଚପୁଷ୍ପବାଣ ।

କୁସୁମବିଚିତ୍ରା—ସ୍ତ୍ରୀ.ବି. ଛନ୍ଦୋବିଶେଷ ।

କୁସୁମଶୟନ—କ୍ଳୀ.ବି.ଫୁଲନିର୍ମିତ ଶଯ୍ୟା, ଫୁଲଶେଯ । [ଶେଯ ।

କୁସୁମଶଯ୍ୟା—ସ୍ତ୍ରୀ. ବି. ପୁଷ୍ପଶଯ୍ୟା, ଫୁଲ-

କୁସୁମଶର—ପୁଂ. ବି. କାମ, କନ୍ଦର୍ପର ପୁଷ୍ପବାଣ ।

କୁସୁମସମୟ—ପୁଂ.ବି. (କୁସୁମ+ସମୟ) ବସନ୍ତକାଳ, ଫୁଲଫୁଟିବା ଋତୁ, ସ୍ତ୍ରୀ-ମାନଙ୍କ ଋତୁକାଳ ।

କୁସୁମସ୍ତବକ—ପୁଂ.ବି.(୬ତତ୍)ଫୁଲଗୁଚ୍ଛ, ଫୁଲପେଣ୍ଡା,ଛନ୍ଦୋବିଶେଷ(ସଂସ୍କୃତ) ।

କୁସୁମା—ଗ୍ରା. ବିଂ.ଅଫିମ ଓ ଭାଙ୍ଗମିଶ୍ରିତ ପାନୀୟ, ଦୁଗ୍ଧମିଶ୍ରିତ ଭାଙ୍ଗ,ଏକପ୍ରକାର ଧାନ, (ଗ୍ରା.ବିଂ) କୁସୁମଫୁଲର ବର୍ଣ୍ଣ ବିଶିଷ୍ଟ ।

କୁସୁମାକର—ପୁଂ.ବି. (୬ତତ୍ ) ଯେଉଁ-ଠାରେ ଅନେକ ଫୁଲ ଫୁଟେ,ଉଦ୍ୟାନ, କୁଞ୍ଜ, ବସନ୍ତକାଳ ।

କୁସୁମାଗମ—ପୁଂ.ବି.(ବ.ବ୍ରୀ)ବସନ୍ତଋତୁ ବସନ୍ତକାଳ ।

କୁସୁମାଞ୍ଜଳି—ପୁଂ.ବି. (କ.ଧା)ପୁଷ୍ପାଞ୍ଜଳି, ପୁଷ୍ପପୂର୍ଣ୍ଣ ଅଞ୍ଜଳି, ଦର୍ଶନଗ୍ରନ୍ଥବିଶେଷ ।

କୁସୁମାସ୍ତ୍ରକ—କ୍ଳୀ. ବି. (କୁସୁମ+ଆସ୍ତ୍ର+କ) କୁଙ୍କୁମ,ହଳଦୀ, (ବିଂ)ପୁଷ୍ପଗର୍ଭ, ପୁଷ୍ପମୟ, ପୁଷ୍ପରଚିତ ।

କୁସୁମାଧିପ—ପୁଂ. ବି. (କୁସୁମ+ଅଧି+ପା+ଅ) ଚମ୍ପାଗଛ ।

କୁସୁମାଧିରାଟ୍—ପୁଂ. ବି. (କୁସୁମ+ଅଧି ରାଜ+କ୍ୱିପ୍)୬ତତ୍. ଚମ୍ପକବୃକ୍ଷ ।

କୁସୁମାୟୁଧ—ପୁଂ.ବି.(କୁସୁମ+ଆୟୁଧ ) କାମଦେବ, କନ୍ଦର୍ପ, ମଦନ ।

କୁସୁମାରଙ୍ଗ—ଗ୍ରା. ବି. ନାଲି ଓ ହଳଦିଆମିଶ୍ରିତ ରଙ୍ଗ, କୁସୁମଫୁଲର ରଙ୍ଗ ।

କୁସୁମାଳ—ପୁଂ. ବି. ( କୁସୁମ+ଆ+ଲା+ଅ) ଚୋର ।

କୁସୁମାବଚୟ—ପୁଂ.ବି. ଫୁଲତୋଳିବା ।

କୁସୁମାବତୀ—ଗ୍ରା.ବି. ଘୁମୁସରଆଡୁ ଆସି ଖଣ୍ଡପଡ଼ାରେ କଣ୍ଟିଲୋ ନିକଟରେ ମହାନଦୀରେ ପଡ଼ିଥିବା ଉପନଦୀ ।

କୁସୁମାବତଂସକ—କ୍ଲୀ.ବି. ଫୁଲର ମୁକୁଟ ।

କୁସୁମାବଳୀ—ସ୍ତ୍ରୀ.ବି.ବୈଦ୍ୟକ ଗ୍ରନ୍ଥବିଶେଷ ।

କୁସୁମାସବ—କ୍ଲୀ. ବି. (କୁସୁମ+ଆସବ) ମଧୁ, ମଦ୍ୟ, ମକରନ୍ଦ ।

କୁସୁମାସ୍ତ୍ର—ପୁଂ. ବି.(ବି.ସ୍ତ୍ରୀ)କାମଦେବ, (କ୍ଲୀ) କାମଶର ।

କୁସୁମିତ—ବିଂ.(କୁସୁମ+ଇତ) ପୁଷ୍ପିତ, ଫୁଲଧରିଥିବା ଗଛ । [(ଲତା) ।

କୁସୁମିତା—ସ୍ତ୍ରୀ.ବି.ଋତୁମତୀ(ସ୍ତ୍ରୀ),ପୁଷ୍ପିତା

କୁସୁମେଷୁ—ପୁଂ. ବି. କାମଦେବ ।

କୁସୁମୋତ୍ସବ—ପୁଂ.ବି. ସ୍ତ୍ରୀର ଋତୁକାଳ ।

କୁସୁମୋଦ୍ୟାନ—କ୍ଲୀ. ବି. ଫୁଲବଗିଚା ।

କୁସୁମ୍ଭ—କ୍ଲୀ. ବି. (କୁସ+ଉମ୍ଭ) ପୁଷ୍ପବିଶେଷ,କୁସୁମଫୁଲ, ଜାଫ୍ରାନ୍‌କେଶର, ଗେଣ୍ଡୁଫୁଲ,ସ୍ୱର୍ଣ୍ଣ,ବାହ୍ୟସ୍ନେହ,କମଣ୍ଡଳୁ, ଅଗ୍ନିଶିଖା ।

କୁସୁମ୍ଭବାନ୍—ବିଂ. ( କୁସୁମ୍ଭ+ବତ୍ ) କମଣ୍ଡଳୁଧାରୀ ।

କୁସୁମ୍ଭା—ଗ୍ରା.ବି. ବିଂ, କୁସୁମା (ଦେଖ) ।

କୁସୂ—ପୁଂ. ବି. (କୁସ୍+ଊ) କେଞ୍ଚୁଆ, ଜିଆ ।

କୁସୂଲ—ପୁଂ. ବି. (କୁସ—ଊଲ)ଧାନ୍ୟାଗାର, ଅମାର, ଖମାର, ଭଣ୍ଡାର ।

କୁସୃତି—ସ୍ତ୍ରୀ.ବି.(କୁ+ସୃ+କ୍ତି,ତି)ଶଠତା, ଧୂର୍ତ୍ତତା,ଇନ୍ଦ୍ରଜାଲବିଦ୍ୟା,(ବିଂ)କୁତ୍ସିତାଗୃହୀ, ଶଠ ।

କୁସ୍ତଗିରିକାମ—ଗ୍ରା.ବି.ବନ୍ଧୁକ,ତରବାରି, ଛୁରୀ, କଟାରି ଓ ଷମ ଦାଢ଼ୁଆଆଦି ହତିଆରମାନଙ୍କର କେବଳ ବେଣ୍ଟରେ ସୁନା ଓ ରୁପାର ତାରଦ୍ୱାରା କରାଯିବା କାରୁକାର୍ଯ୍ୟ ।

କୁସ୍ତାକୁସ୍ତି—ଗ୍ରା.ବି. ଦୁଇଜଣଙ୍କ ମଧ୍ୟରେ ହେବା ମଲ୍ଲଯୁଦ୍ଧ ।

କୁସ୍ତି—ଯା ବି. ମଲ୍ଲବିଦ୍ୟା, ମଲ୍ଲଯୁଦ୍ଧ, ବ୍ୟାୟାମ, ଦଣ୍ଡ, କସରତ୍ ।

କୁସ୍ତିବାଜ୍—ଯା. ବି.କୁସ୍ତି ବା କସରତ୍ କରିବା ବ୍ୟକ୍ତି, ପହିଲମାନ ।

କୁସ୍ତୁଭ—ପୁଂ.ବି. (କୁ+ସ୍ତୁଭ୍+ମିଁ,ଅ) ବିଷ୍ଣୁ, ସମୁଦ୍ର ।

କୁସ୍ତୁମ୍ବୁରୀ—ସ୍ତ୍ରୀ.ବି.ଧନିଆଁ ଗୁଳ୍ମ,ଧନ୍ୟାକ ।

କୁସ୍ତୁମ୍ବୁରୁ—କ୍ଲୀ.ବି. ଧନିଆଁ ମଞ୍ଜି, (ପୁଂ) ଯକ୍ଷରାଜ କୁବେରଙ୍କ ପାରିଷଦବିଶେଷ ।

କୁସ୍ତ୍ରୀ—ସ୍ତ୍ରୀ. ବି. ମନ୍ଦସ୍ତ୍ରୀ, ବ୍ୟଭିଚାରିଣୀ ଅଥବା ନିନ୍ଦିତାଚରଣଯୁକ୍ତା ସ୍ତ୍ରୀ ।

କୁସ୍ୱପ୍ନ—ପୁଂ. ବି. (କ.ଧା) ମନ୍ଦସ୍ୱପ୍ନ, ଖରାପ ସ୍ୱପ୍ନ, ଦୁଃସ୍ୱପ୍ନ ।

କୁସ୍ୱଭାବ—ବି. (କ.ଧା)ମନ୍ଦ ପ୍ରକୃତି,(ବିଂ, କ.ସ୍ତ୍ରୀ) ମନ୍ଦପ୍ରକୃତିକ, ଦୁଷ୍ଟ ।

କୁସ୍ୱାମୀ—ପୁଂ.ବି.(କ.ଧା) କୁତ୍ସିତ ପ୍ରଭୁ ।

କୁହ୍—(ଧାତୁ)ବିସ୍ମୟୋତ୍ପାଦନ କରିବା, ପ୍ରତାରଣା କରିବା ।

କୁହ—(ଅବ୍ୟ) (କୁ+ହ+ଅ) କେଉଁଠାରେ, କୁଜ, କେଉଁଜାଗାରେ ।

କୁହ—ପୁଂ. ବି. (କୁହ+ଅ) କୁବେର, ପ୍ରତାରକ,ଐନ୍ଦ୍ରଜାଲିକ ।

କୁହକ—ବିଂ. (କୁହ୍+କ,ଅକ)ଦାମ୍ଭିକ ପ୍ରତାରକ, ଐନ୍ଦ୍ରଜାଲିକ,(ପୁଂ.ବି)ବେଙ୍ଗ, ସର୍ପରାଜବିଶେଷ,(କ୍ଲୀ.ବି)ଇନ୍ଦ୍ରଜାଲବିଦ୍ୟା ପ୍ରତାରଣା, ମାୟା ।

କୁହକକାର—ପୁଂ. ବିଂ. ( କୁହକ+କୃ+ଅ) ଐନ୍ଦ୍ରଜାଲିକ, ପ୍ରତାରକ ।

କୁହକଚକିତ—ବିଂ. ଇନ୍ଦ୍ରଜାଲବିଦ୍ୟା ପ୍ରଭାବେ ବିସ୍ମିତ ।

କୁହକଜୀବୀ—ପୁଂ. ବିଂ. ( କୁହକ+ଜୀବ୍+ଇନ୍ ) ଯେ କୁହକବିଦ୍ୟାକରି ପେଟ ପୋଷେ, ମାୟାବୀ, ବାଜିକର, ମାୟାଜୀବୀ,ଐନ୍ଦ୍ରଜାଲିକ ।

କୁହକବୃତ୍ତି—ସ୍ତ୍ରୀ. ବି. ଇନ୍ଦ୍ରଜାଲବିଦ୍ୟା, ଭଣ୍ଡାମି, ହସ୍ତଲଘୁତା, ଭେଲିକି ।

କୁହକସ୍ୱନ,କୁହକସ୍ୱର—ପୁଂ.ବି. ( କୁହକ+ସ୍ୱନ)କୁକୁଟପକ୍ଷୀ, କୁକୁଡ଼ା ।

କୁହକା—ବି. (କୁହକ+ଆ)ଇନ୍ଦ୍ରଜାଲ, ଭେଲିକି ।

କୁହକୀ—ପୁଂ. ବିଂ. (କୁହକ+ଇନ୍ ) ମାୟାବୀ, ପ୍ରତାରକ, ଐନ୍ଦ୍ରଜାଲିକ, କପଟୀ, ପଣ୍ଡ ।

କୁହକ—ପୁଂ. ବି. ତାଳଭେଦ ।

କୁହନ—ପୁଂ. ବି. (କୁ+ହନ୍+ଅ) ମୂଷିକ, ଚୋର, ସର୍ପ, ମହାଗର୍ବତୋକ୍ତ ବ୍ୟକ୍ତିବିଶେଷ, (କ୍ଲୀ)କାଚପାତ୍ର,ମୃଦ୍‌ଭାଣ୍ଡ, (ବିଂ.) ଈର୍ଷାଯୁକ୍ତ, କପଟ ଗୃହୀ ।

କୁହନା—ସ୍ତ୍ରୀ. ବି. (କହ+ଅନ+ଆ) ପ୍ରତାରଣା, ଛଳ, କପଟସାଧୁତା, ସକାମ, ଧର୍ମାଚରଣ ।

କୁହନିକା—ସ୍ତ୍ରୀ.ବି. (କୁହନା+କ+ଆ) ଦମ୍ଭ, କପଟାଚାର ।

କୁହର—ବି. (କୁ+ହୃ+ଅ) ଗହ୍ୱର, ଗାତ, କଣ୍ଠଧ୍ୱନି, ନାଗବିଶେଷ, କଣା, କାନ, ତଣ୍ଟି,ସଙ୍ଗମ,ନୈକଟ୍ୟ,ସାମୀପ୍ୟ ।

କୁହରିତ—ବିଂ. ମୁଖରିତ, ଶବ୍ଦାୟମାନ, (ବି.) ଶବ୍ଦ,କୋକିଳର ରବ, ମୈଥୁନରତଦ୍ୱୟଙ୍କର ଧ୍ୱନି ।

କୁହରିବା—ଗ୍ରା. କ୍ରି. ପିକପରି କୁହୁକୁହୁ ଶବ୍ଦ କରିବା, ଅତ୍ୟନ୍ତ କୋହ ସହିତ କାନ୍ଦିବା ।

କୁହଳ—ପୁଂ. ବି. ପାନଖିଲି, ପାନଖିଲ ।

କୁହସ୍ୱପ୍ନ—ପୁଂ. ବି. କୁକ୍କୁଟ, କୁକୁଡ଼ା ।

କୁହା—ଗ୍ରା. ବି. କହିବା, କଥା, ବାକ୍ୟ, ଆଜ୍ଞା, (ବିଂ) କଥିତ, କଥକ, କହିବା ବ୍ୟକ୍ତି ।

କୁହାକୁହି—ଗ୍ରା.ବି.କଥାବାର୍ତ୍ତା,କଥାଭାଷା, ଅନ୍ୟୋନ୍ୟର କଥାବାର୍ତ୍ତା ହେବା, ପ୍ରାର୍ଥନା ।

କୁହାଟ—ଗ୍ରା.ବି.ଉଚ୍ଚଡାକ, ପ୍ରହରୀମାନଙ୍କ ଡାକ, ଉଚ୍ଚଧ୍ୱନି କଥା, କିମ୍ବଦନ୍ତୀ ।

କୁହାଟଛାଡ଼ିବା—ଗ୍ରା.କ୍ରି. କୁହାଟ ମାରିବା (ଦେଖ) । [ ଦେବା ।

କୁହାଟମାରିବା—ଗ୍ରା. କ୍ରି. ଉଚ୍ଚଡାକ

କୁହାଟିବା—ଗ୍ରା.କ୍ରି, ଉଚ୍ଚ ଡାକଦେବା, ପ୍ରହରୀମାନେ ଲୋକଙ୍କୁ ଚେତାଇବା ପାଇଁ ଦୂରରୁ ଉଚ୍ଚ ଡାକଦେବା,ଚିତ୍କାର କରିବା ।
କୁହାବତୀ—ସ୍ତ୍ରୀ.ବି. ଦୁର୍ଗାଙ୍କ ନାମାନ୍ତର ।
କୁହାବୁଲା—ଗ୍ରା. ବି.ନାନାପ୍ରକାର କହିବା, ଅନୁନୟ, ବିନୟ, ସୁପାରସ୍ ।
କୁହାଯିବା—ଗ୍ରା. କ୍ରି. କଥିତହେବା ।
କୁହାର—ପ୍ରା.(ଗଞ୍ଜାମ) ବି.ଗାଈ ରଖିବା ସ୍ଥାନ, ଗୁହାଳ, ଗୋଠ ।
କୁହାଳିଆ—ଗ୍ରା. ବି. ଯେ ବେଶି କଥ କହିପାରେ ।
କୁହିବା—ଗ୍ରା.କ୍ରି.ସଢ଼ିଯିବା,ପଚିଯିବା ।
କୁହୁ—ସ୍ତ୍ରୀ.ବି.(କୁହ+ଉ) ଅମାବାସ୍ୟା, କୋକିଳର ରବ, ଶରୀରସ୍ଥ ଦଶ ନାଡ଼ୀ ମଧ୍ୟରୁ ଏକତମ,ନଦୀବିଶେଷ, କୁହୁଡ଼ି ।
କୁହୁଁଚିଆ—ଗ୍ରା. ବି. କଜ୍ଜଳପାତି ପକ୍ଷୀ, କୋଚିଆ, ସର୍ପାକୃତି ମତ୍ସ୍ୟବିଶେଷ ।
କୁହୁକ—ଗ୍ରା.ବି.ମାୟା, ଛଳ,ଇନ୍ଦ୍ରଜାଲ, ଭୋଜବିଦ୍ୟା, ଭୋଜବାଜି, ଭେଲକି ।
କୁହୁକଲଗାଇବା—ଗ୍ରା. ବି. (ଆଖିରେ) ଭେଲକି ଲଗାଇଦେବା, ମାୟାଦ୍ୱାରା ଦୃଷ୍ଟିଶକ୍ତିରେ ଭ୍ରମ ଜନ୍ମାଇଦେବା, ଗୁହିଁ ଜଳକା ବନାଇବା ।
କୁହୁକମା—ସ୍ତ୍ରୀ. ବିଂ.ମୁଗ୍ଧକାରିଣୀ (ସ୍ତ୍ରୀ) ମାୟାବିନୀ (ସ୍ତ୍ରୀ) । [ଧ୍ୱନି ।
କୁହୁକୁହୁ—ସ୍ତ୍ରୀ ବି.ଅମାବାସ୍ୟା, କୋକିଳ-
କୁକୁଡ଼ି-ଗ୍ରା. ବି. କୁଜ୍ଝଟିକା, ଶୁଆଁ ପରି ଏକପ୍ରକାର ଲଘୁ ଶସ୍ୟ ।
କୁହୁଡ଼ିଆ—ଗ୍ରା.ବିଂ.କୁହୁଡ଼ିଯୁକ୍ତ, କୁହୁଡ଼ି ଡାଙ୍କିଲା ପରି ବିଗମାନ ଦେଖାଯିବା ।
କୁହୁଡ଼ିପହଁରିବା- ଗ୍ରା.ବି.କୁହୁଡ଼ିରେପହଁରିବା ପରି ଅସାଧ୍ୟ ଓ ଅସମ୍ଭବ କାର୍ଯ୍ୟର ଚେଷ୍ଟା, ଅବାସ୍ତବ ବିଷୟ ସାଧନପାଇଁ ଚେଷ୍ଟା ।
କୁହୁଡ଼ିପହଁରିବା-ଗ୍ରା.କ୍ରି.କୁହୁଡ଼ି ପହଁରିବା ପରି ଅନର୍ଥକ ଓ ଅସମ୍ଭବ କାର୍ଯ୍ୟ କରିବାକୁ ଯିବା ।
କୁହୁଣ୍ଡା—ଗ୍ରା. ବି. ଶିକୁଳି ଅଟକାଇବା ନିମନ୍ତେ ଦ୍ୱାରରେ ଦିଆଯାଇଥିବା ଲୁହାକଣ୍ଟା ।

କୁହୁରବ—ଗ୍ରା. ବି. (କୁହୁ+ରବ) କୋକିଳ, କୁହୁଧ୍ୱନି ।
କୁହୁରିବା—ଗ୍ରା. କ୍ରି. ବେଦନାସୂଚକ କୁଜନ ଧ୍ୱନି କରିବା, କୁହୁକୁହୁ ରବ କରିବା,ପଣସ ଗଛର ଫଳ ବାହାରିବା ।
କୁହୁଳ—ବି. (କୁହ+କ.ଉଳ) ଗର୍ତ୍ତ ପୂର୍ଣ୍ଣଗର୍ତ୍ତି, (ଗ୍ରା.ବି.) ଛିଦ୍ର, ହୁଗୁଳା ।
କୁହୁଳା—ଗ୍ରା. ବି. ନିଆଁ ଲଗି ଜଳିବା ପୂର୍ବରୁ ବାହାରିବା ଧୂଆଁ,ଧୂମ,ଚୁଲ୍ଲୀରେ ନିଆଁ ଲଗାଇବା ପାଇଁ ପ୍ରଥମେ ଦିଆ-ଯିବା ନିଆଁ ଲୁଣ୍ଡା ।
କୁହୁଳିବା—ଗ୍ରା. କ୍ରି. ପ୍ରଧୂମିତ ହେବା, ପୋଡ଼ିଯିବା, (ଲ. ଅର୍ଥ) ବାହାରେ ପ୍ରକାଶ ନ କରି ଭିତରେ ବିଦ୍ୟମାନ-ଥିବା, ଆନ୍ତରିକ କ୍ରୁଦ୍ଧ ହେବା ।
କୁହୁଳିଯିବା—ଗ୍ରା.କ୍ରି.ପୋଡ଼ିଯିବା(ଲ.ଅର୍ଥ) ଲଜ୍ଜାବନତ ହେବା,ଲଜ୍ଜା ବା ଈର୍ଷାରେ ମୁହଁ ବିବର୍ଣ୍ଣ ହେବା ।
କୁହୂ—ସ୍ତ୍ରୀ. ବି, ଅମାବାସ୍ୟା, କୋକିଳର ଧ୍ୱନି,ଅମାବାସ୍ୟାର ଅଧିଷ୍ଠାତ୍ରୀ,ଅଙ୍ଗିରାଙ୍କ କନ୍ୟା, ନାଡ଼ୀବିଶେଷ ।
କୁହୂକ—ପୁଂ. ବି. କୋକିଳ ।
କୁହୂକଣ୍ଠ—ପୁଂ. ବି. (କୁହୂ+କଣ୍ଠ) ବ.ବ୍ରୀ, କୋକିଳ, ପିକ ।
କୁହୁଜାଲ—ପୁଂ.ବି. କଚ୍ଛପ, କଇଁଛ ।
କୁହୂମୁଖ—ପୁଂ.ବି. (ବ. ବ୍ରୀ)କୋକିଳ ।
କୁହୂରବ—ପୁଂ. ବି. (ବ.ବ୍ରୀ) କୋକିଳ, କୋକିଳର ଧ୍ୱନି ।
କୁହୂଲ—କ୍ଲୀ. ବି (କୁହୁ+ଉଲ) ସାପର-ଗାତ, ଶଲ୍ୟଯୁକ୍ତଗର୍ତ୍ତି ।
କୁହେଳିକା—ସ୍ତ୍ରୀ. ବି. (କୁ+ହେଡ଼+ଅକ+ଆ)କୁହୁଡ଼ି, କୁହେଳିକା,ମେଘ ।
କୁହେଡ଼ୀ—ସ୍ତ୍ରୀ. ବି. (କୁ+ହେଡ଼+କ. ଈ) କୁହୁଡ଼ି, ମେଘ ।
କୁହେଳିକା—ସ୍ତ୍ରୀ. ବି. (କୁ+ହେଳ+ଅକ+ଆ) କୁଜ୍ଝଟିକା,କୁହୁଡ଼ି,ମେଘ ।
କୁହ୍ୱା—ବି.(କୁହ+କ.ବ) କୁହୁ (ଦେଖ)
କୁହ୍ୱାନ—କ୍ଲୀ.ବି.(କୁହ+ଅନ) କୁତ୍ସିତ-ଶବ୍ଦ, ଅପ୍ରିୟ ଧ୍ୱନି ।

କୁହ୍ଲିଆ—ଯା. ବି. ବିଲୁଆ, ଶୃଗାଳ ।
କୂ—(ଧାତୁ)ରବକରିବା,ଆର୍ତ୍ତଧ୍ୱନିକରିବା ।
କୂ—ସ୍ତ୍ରୀ. ବି. (କୂ+କ୍ୱିପ୍)ପିଶାଚୀ ।
କୂଅ—ଗ୍ରା.ବି. କୂପ, ପାଣି ଜନ୍ମିବାପାଇଁ ଭୂମିରେ ଖୋଳା ହେବା ଗଭୀର ଗର୍ତ୍ତ ।
କୂଅକଣ୍ଟା, କୂଅବିରଡ଼ି—ଗ୍ରା.ବି. କୂଅରେ ଖସି ପଡ଼ିଥିବା ଡାଳଆଦିକୁ ବାହାର କରିବା ପାଇଁ ବ୍ୟବହୃତ ଲୌହ ନିର୍ମିତ ଅଙ୍କୁଶପୁଞ୍ଜ ।
କୂଅଦଉଡ଼ା—ଗ୍ରା. ବି. ମାଠିଆ ଗରାଆଦି ଦ୍ୱାରା ପାଣି କାଢ଼ିବା ପାଇଁ ବ୍ୟବହୃତ ରଜ୍ଜୁ ।
କୂଅନନ୍ଦି—ଗ୍ରା. ବି. କୂଅରେ ବସିବାମାଟି ବା ପଥରର ଗୋଲାକାର ବଳୟ ।
କୂଅଫନ୍ଦ—ଗ୍ରା.ବି.କୂଅର ଦାଢ଼ ବା ତଟ ।
କୂଆକୁଟ—ଗ୍ରା.ବିଂ.କଲବଲ,ବ୍ୟତିବ୍ୟସ୍ତ ।
କୂକୁଦ—ପୁଂ. ବି.(କୁ+ଦା+ଅ) ଯେଉଁ ବ୍ୟକ୍ତି ଯଥାବିଧି ନିୟମାନୁସାରେ ଅଳଂ-କୃତା କନ୍ୟା ଦାନ କରେ ।
କୂଚ—ପୁଂ. ବି. ସ୍ତନ, କୁଚ ।
କୂଚକା—ସ୍ତ୍ରୀ.ବି. ବୃକ୍ଷବିଶେଷର ଦୁଗ୍ଧ-ବତ୍ ରସ ।
କୂଚକି—ପୁଂ.କ୍ଲୀ.ବି.ବୈଦିକଯୁଗୀୟବିଲସ୍ତ ।
କୂଚବାର—ପୁଂ. ବି.(କୂଚ+ବୃ+ଅ) ଦେଶବିଶେଷ, ବ୍ୟକ୍ତିବିଶେଷ ।
କୂଚିକା—ସ୍ତ୍ରୀ. ବି. (କୂଚ+ଅକ+ଆ) ପେନ୍‌ସିଲ୍, ଚିତ୍ରକରର ତୂଳୀ, କଣ୍ଠ-କାଠି, ତୂଳିକା ।
କୂଚଦର୍ଥୀ—ପୁଂ.ବିଂ. (ବୈଦିକ) ଯେଉଁ ବ୍ୟକ୍ତି କୌଣସି ସ୍ଥାନର ପ୍ରାର୍ଥନା କରେ ।
କୂଚୀ—ସ୍ତ୍ରୀ.ବି. (କୂଚ+ଈ) ଚିତ୍ରଲେଖି-ବାର ତୂଳିକା, ଚିତ୍ରକରର ତୂଳୀ, ପେନ୍‌ସିଲ ।
କୂଚୀକାନ୍ତ—ପୁଂ. ବି. ବୃକ୍ଷବିଶେଷ ।
କୂଚ୍ଛଲିଙ୍ଗ—ପୁଂ. ବି. କୁକୁନ୍ଦର ବୃକ୍ଷ, ପୋକଶୁଙ୍ଘା ।
କୂଜ୍—(ଧାତୁ) ଅବ୍ୟକ୍ତ ଧ୍ୱନି କରିବା, କୁହୁକୁହୁ ରବକରିବା, ବଂଶୀ ଓ ଶିଙ୍ଗା ଆଦି ଫୁଙ୍କିବା ।

କୂଜ—ପୁଂ.ବି. (କୂଜ୍+କ.ଅ)ପକ୍ଷିଧ୍ୱନି, କୁହୁକୁହୁ ରବ, ଅବ୍ୟକ୍ତ ଧ୍ୱନି, (ବିଂ) ଶବ୍ଦକାରୀ । [ଶବ୍ଦକାରୀ ।

କୂଜକ—ପୁଂ.ବିଂ. (କୂଜ୍+ଅକ)ଅବ୍ୟକ୍ତ

କୂଜନ—କ୍ଲୀ.ବି.(କୂଜ୍+ଭା.ଅନ) ପକ୍ଷିଧ୍ୱନି,ଅବ୍ୟକ୍ତ ଶବ୍ଦବିଶେଷ, ଉଦରଧ୍ୱନି, କୋକିଳର କୁହୁକୁହୁ ରବ ।

କୂଜିତ—କ୍ଲୀ. ବି. (କୂଜ୍+ମଁ. ତ)ପକ୍ଷିଧ୍ୱନି, ଚଢ଼େଇଙ୍କ ଡାକ, (ବିଂ.)ଶବ୍ଦାୟମାନ, ପକ୍ଷିଧ୍ୱନିଦ୍ୱାରା ପୂରିତ, ଶବ୍ଦିତ ।

କୂଜୀ—ବିଂ. (କୂଜ+ଇନ୍) ଅବ୍ୟକ୍ତ ଶବ୍ଦ ଯୁକ୍ତ, ଉଦରଧ୍ୱନିକାରୀ ।

କୂଁଟ—ଗ୍ରା. ବି. ଅଳି, ପ୍ରାର୍ଥନା, ବ୍ୟତିବ୍ୟସ୍ତ, (ବିଂ) କୂଁଟିଆ ।

କୂଟ୍—(ଧାତୁ) ନ ଦେବା, କଷ୍ଟଦେବା, ଦେବାରୁ ବିରତ ହେବା, ଗାଳିଦେବା, ପୋଡ଼ିବା, ନିମନ୍ତ୍ରଣ କରିବା, କଷ୍ଟପାଇବା, ପରାମର୍ଶ ଦେବା, ଗୋଳମାଳକରିବା, ହତାଶହେବା, ବନ୍ଦହେବା ।

କୂଟ—ପୁଂ.କ୍ଲୀ.ବି. (କୂଟ୍+କ.ଅ)ସମୂହ, ମୁକୁଟ, ଅଗ୍ରଭାଗ, ଊର୍ଦ୍ଧ୍ୱ, ଯନ୍ତ୍ରଭେଦ, ପର୍ବତଶୃଙ୍ଗ, କଳସ, ଆବୁ, ନଗରଦ୍ୱାର, ଶସ୍ୟରାଶି, ଗଦା, ମାୟା, କପଟ, ଲଙ୍ଗଳ କଣ୍ଟି, ମୁଦ୍‌ଗର, ଶିଙ୍ଗଭଙ୍ଗା ବଳଦ, ମୃଗାଦି ଧରିବା ଯନ୍ତ୍ର, ପାଶ, ଲଙ୍ଗଳଲୁହା, ଗୃହ, କଷ୍ଟପ୍ରଶ୍ନ, ଗୁପ୍ତି ,ଗୁପ୍ତଶସ୍ତ୍ର, କପଟପ୍ରଶ୍ନ, ଅଗସ୍ତ୍ୟଋଷି, ଜଳପାତ୍ର, ଲଙ୍ଗଳର ଅବୟବ, ମଣ୍ଡପ ।

କୂଟ—ବିଂ.(କୁଟ୍+ଅ)ମିଥ୍ୟା, ଛଳପୂର୍ଣ୍ଣ, ଅଚଳ, କଷ୍ଟସାଧ୍ୟ, ଅନେକାର୍ଥକ ବୋଧକ, ସ୍ଥିର, ଘୃଣିତ, ଜଟିଳ,କୃତ୍ରିମ, (ସ୍ତ୍ରୀ)କୂଟା,କବରୀ,ମୁରାନାମକ ଗନ୍ଧଦ୍ରବ୍ୟ ।

କୂଟକ--କ୍ଲୀ.ବି.(କୂଟ+ଅକ)ଛଳ,ଲଙ୍ଗଳ ଲୁହା, ପର୍ବତବିଶେଷ, ମାୟା, (ବିଂ) ପ୍ରତାରଣାମୟ, ମିଥ୍ୟା, ଚିପ, ବେଙ୍ଗି ।

କୂଟକରିବା—ଗ୍ରା. କ୍ରି. କପଟ କରିବା, ମାୟାକରିବା ।

କୂଟକର୍ମ—କ୍ଲୀ. ବି. (କ.ଧା) ଜାଲ, ପ୍ରତାରଣା, ଧପାବାଜି ।

କୂଟକଳ୍ପନା—ବି. (କ.ଧା) କ୍ଲିଷ୍ଟକଳ୍ପନା ପରର ଅନିଷ୍ଟକାମନା, ଷଡ଼ଯନ୍ତ୍ର ।

କୂଟକାର—ପୁଂ.ବିଂ. (କୂଟ+କୃ+ଅ) ମିଥ୍ୟାସାକ୍ଷୀ, ଦୁଷ୍ଟ, ଠକୁଆ, ପ୍ରତାରକ (ବ୍ୟକ୍ତି) । [ (ଦେଖ) ।

କୂଟକାରକ—ପୁଂ. ବିଂ. କୂଟକାର,

କୂଟକାରୀ—ପୁଂ. ବିଂ.(କୂଟ+କୃ+ଇନ୍) କପଟାଚରଣକାରୀ ।

କୂଟକୁଟିଆ—ଗ୍ରା. ବିଂ. କୁଟିଳ,ଅସରଳ, କଷ୍ଟସାଧ୍ୟ ।

କୂଟକୃତ୍—ପୁଂ.ବିଂ.(କୂଟ+କୃ+କ.କ୍ୱିପ୍) ମିଥ୍ୟାବାଦୀ, କପଟ ଆଚରଣକାରୀ ।

କୂଟକୃତ୍ୟ—ବି.(କ.ଧା) କୂଟକର୍ମ(ଦେଖ) ।

କୂଟଖଡ୍ଗ—ପୁଂ. ବି. ଗୁପ୍ତଖଣ୍ଡା, ଗୁପ୍ତି ।

କୂଟଚକ୍ର—ବି. (କ. ଧା) ବିଷମ ସମସ୍ୟା, ଷଡ଼ଯନ୍ତ୍ର,ଦୁର୍ଭେଦ୍ୟ ବକ୍ରପଥ ବା ଜାଲ ।

କୂଟଛଦ୍ମ—ପୁଂ. ବିଂ. କପଟିଆ, ଧୂର୍ତ୍ତ, ପ୍ରବଞ୍ଚକ, ଠକ ।

କୂଟଜ—ପୁଂ. ବି. ( କୁଟ+ଜନ୍+ଅ ) କୂଟଜବୃକ୍ଷ, କୁରେଇଁଗଛ ।

କୂଟତର୍କ—ବି. (କ. ଧା) କପଟତର୍କ, ମିଥ୍ୟାଯୁକ୍ତି, ଜଟିଳ ତର୍କ ।

କୂଟତାପସ—ବି,(କ.ଧା)କପଟସନ୍ନ୍ୟାସୀ, ବିରାଡ଼ିବୈଷ୍ଣବ ।

କୂଟତୁଳା—ସ୍ତ୍ରୀ. ବି.(କ.ଧା)ମିଛ ତରାଜୁ, ଠକାଇବା ନିମିତ୍ତ ଯେଉଁ ତୁଳାଦଣ୍ଡ ବ୍ୟବହୃତ ହୁଏ ।

କୂଟଧର୍ମ୍ମା—ପୁଂ.ବିଂ. କପଟଧର୍ମାଚରଣକାରୀ, ଯେଉଁ ଦେଶରେ ବା ଗୃହରେ ମିଥ୍ୟା ବ୍ୟବହାର ଧର୍ମବୋଲି ପରିଗଣିତ ହୁଏ ।

କୂଟନୀତି—ସ୍ତ୍ରୀ. ବି. (କ.ଧା) କପଟନୀତି, କୁଟିଳନୀତି ବା ଉପାୟ ।

କୂଟପର୍ବ—ପୁଂ. ବି. ହସ୍ତୀମାନଙ୍କର ତ୍ରିଦୋଷଜ ଜ୍ୱର ।

କୂଟପାଞ୍ଚିବା—ଗ୍ରା. କ୍ରି. ଷଡଯନ୍ତ୍ରକରିବା, କୌଣସି ବ୍ୟକ୍ତିର ଅନୁପସ୍ଥିତିରେ ତାହାର ଅନିଷ୍ଟ କାମନା କରିବା ।

କୂଟପାଳକ—ପୁଂ. ବି. କୁମ୍ଭାର, କୁମ୍ଭାର ଉହ୍ମା, ପିତ୍ତଜ୍ୱର ।

କୂଟପାଶ—ପୁଂ. ବି. (କ.ଧା) ଗୁପ୍ତପାଶ, ଜାଲ, ପଶୁପକ୍ଷୀ ପ୍ରଭୃତି ଧରିବାର ଯନ୍ତ୍ର ବିଶେଷ ।

କୂଟପ୍ରଶ୍ନ—ପୁଂ. ବି. ( କ.ଧା ) କଷ୍ଟସାଧ୍ୟ ସମସ୍ୟା, ବିଷମସମସ୍ୟା, ଅଦାଲତରେ ଅପରପକ୍ଷଦ୍ୱାରା ସାକ୍ଷୀକୁ କରାଯିବା ପ୍ରଶ୍ନ, (ଜେରା) ।

କୂଟବନ୍ଧ—ପୁଂ. ବି. ( କୂଟ+ବନ୍ଧ ) (କ.ଧା) ପାଶ, ଜାଲ,ବାଗୁରା,ପଶୁପକ୍ଷୀ ଧରିବାର ଜାଲ ।

କୂଟବୁଦ୍ଧି—ସ୍ତ୍ରୀ.ବି. (କ.ଧା)କପଟବୁଦ୍ଧି, ଦୁଷ୍ଟବୁଦ୍ଧି, କୁଟିଳବୁଦ୍ଧି, (ବିଂ.ବ.ବ୍ରୀ) କୁଟିଳବୁଦ୍ଧିଯୁକ୍ତ, ଦୁଷ୍ଟବୁଦ୍ଧିବିଶିଷ୍ଟ ଦୁର୍ବୁଦ୍ଧି ।

କୂଟଭାଷୀ—ପୁଂ. ବିଂ. (କୂଟ+ଭାଷ୍+ଇନ୍)କପଟଭାଷୀ, ଅବୋଧ୍ୟକଥା-କହିବା ବ୍ୟକ୍ତି, ମିଥ୍ୟାବାଦୀ ।

କୂଟମାନ—କ୍ଲୀ. ବି. ମିଥ୍ୟାପରିମାଣ, କମ୍ ଓଜନ ।

କୂଟମୁଦ୍‌ଗର—ପୁଂ. ବି. (କ.ଧା) ଗୁପ୍ତମୁଦ୍‌ଗର,ଯେଉଁ ଲୁହାମୁଦ୍‌ଗର ବାହାରେ କାଠର ଢଆଁର ବୋଲି ଜଣାଯାଏ ।

କୂଟମୁଦ୍ରା—ସ୍ତ୍ରୀ.ବି.କୃତ୍ରିମଟଙ୍କା,ଜାଲଟଙ୍କା ।

କୂଟମୋହନ—ପୁଂ. ବି. କାର୍ତ୍ତିକେୟଙ୍କର ଗୋଟିଏ ନାମ ।

କୂଟଯନ୍ତ୍ର—କ୍ଲୀ. ବି. ( କ.ଧା ) ପଶୁପକ୍ଷୀ ଧରିବାର ଜାଲ, ଷଡ଼ଯନ୍ତ୍ର ।

କୂଟଯୁଦ୍ଧ—କ୍ଲୀ. ବି. (କ.ଧା) କପଟଯୁଦ୍ଧ, ଅନ୍ୟାୟ ପ୍ରଣାଳୀରେ ଯୁଦ୍ଧ, ମାୟାଯୁଦ୍ଧ ।

କୂଟଯୋଧୀ—ପୁଂ. ବିଂ. (କୂଟ+ଯୁଧ୍+ଇନ୍) କପଟଯୁଦ୍ଧକାରୀ ।

କୂଟରଚନା—ସ୍ତ୍ରୀ. ବି. (ବ. ବ୍ରୀ) ମୃଗାଦି ଧରିବାନିମନ୍ତେ ବିସ୍ତୃତଫାନ୍ଦ, ବାଗୁରା, ଜାଲ । [ଜାଲଟଠି ।

କୂଟଲେଖ—ବି. (କ. ଧା) ଜାଲଦଲିଲ,

କୂଟଶଃ—କ୍ରି. ବି. ବହୁପରିମାଣ,ଗଦା ଗଦାହୋଇ, ଦଳ ଦଳ ହୋଇ ।

କୂଟଶାଲ୍ମଳି,କୂଟଶାଲ୍ମଳିକ—ବି. କୂଟ-ଶାଲ୍ମଳିବୃକ୍ଷ, ଅସ୍ତ୍ରବିଶେଷ, ରୋହିତକ, କଣ୍ଟକୀବୃକ୍ଷ ।

କୂଟଶାସନ—କ୍ଲୀ. ବି. (କୂଟ+ଶାସ୍+ +ଅନ)ମିଥ୍ୟାଶାସନ, ଅବିଚାର,ଜାଲ-ସନନ୍ଦ ।

କୂଟଶୈଳ—ପୁଂ. ବି. ପର୍ବତବିଶେଷ ।

କୂଟସଂକ୍ରାନ୍ତି—ସ୍ତ୍ରୀ.ବି. ଯେଉଁ ସଂକ୍ରାନ୍ତିରେ ସୂର୍ଯ୍ୟ ଅର୍ଦ୍ଧରାତ୍ରି ସମୟରେ ଅନ୍ୟରାଶିକୁ ସଞ୍ଚରଣ କରନ୍ତି ।

କୂଟସାକ୍ଷୀ—ପୁଂ. ବିଂ. (କୂଟ+ସାକ୍ଷିନ୍) ମିଥ୍ୟାବାଦୀ ସାକ୍ଷୀ, ଜାଲ ସାକ୍ଷୀ, ମିଥ୍ୟାସାକ୍ଷୀ ।

କୂଟସ୍ଥ—ପୁଂ. ବିଂ. (କୂଟ+ସ୍ଥା+ଅ) ଶ୍ରେଷ୍ଠ, ସର୍ବୋପରିସ୍ଥିତ, ଏକଭାବେ ଚିରସ୍ଥାୟୀ, ଗୂଢ଼,ନିତ୍ୟ,(ବିଂ)ପରଂବ୍ରହ୍ମ. ନଖୀନାମକ ଗନ୍ଧଦ୍ରବ୍ୟ, ନିର୍ବିକାର, ମୂଳପୁରୁଷ, ଉଦାସୀନ ।

କୂଟସ୍ଥଚୈତନ୍ୟ—ବି. ପରମାତ୍ମା ।

କୂଟସ୍ୱର୍ଣ୍ଣ—କ୍ଲୀ.ବି.(କ.ଧା)କୃତ୍ରିମ ସୁନା । ଭେଲସୁନା ।

କୂଟାଗାର—କ୍ଲୀ. ବି. (କୂଟ+ଆଗାର) (କ.ଧା) ଗୃହୋପରିସ୍ଥିତ ମଣ୍ଡପ, କ୍ରୀଡ଼ା-ଘର, ଚନ୍ଦ୍ରଶାଳା,ଖେଳିବାର ଘର ।

କୂଟାୟୁଧ—କ୍ଲୀ. ବି. (କୂଟ+ଆୟୁଧ) କୂଟଅସ୍ତ୍ର, କାଷ୍ଠାଦି ଆବରଣ ମଧ୍ୟରେ ଲୁକ୍କାୟିତ ତୀକ୍ଷ୍ଣଅସ୍ତ୍ର, ଗୁପ୍ତି ।

କୂଟାର୍ଥ—ବି. (କୂଟ+ଅର୍ଥ) (କ.ଧା) ଅବୋଧଅର୍ଥ,ବିରୁଦ୍ଧଅର୍ଥ, ଗୁପ୍ତଅର୍ଥ ।

କୂଟାର୍ଥଭାଷା—ସ୍ତ୍ରୀ. ବି. କଳ୍ପିତ ପ୍ରବନ୍ଧ, ରଚିତ କଥା, କ୍ଳିଷ୍ଟାର୍ଥବୋଧକ ଭାଷା ।

କୂଟୀ—ବି. (କୁଟ୍+ଈ) ଗୃହ, ଘର ।

କୂଟୀବାସୀ—ପୁଂ. ବିଂ. (କୂଟୀ+ବସ +ଇନ୍)ଗୃହସ୍ଥ,ଗୃହରେ ବାସକାରୀ ।

କୂଡ୍—(ଧାତୁ)ଘାସଚରିବା,ମୋଟହେବା ଦୃଢ଼ ବା ଘନୀଭୂତ ହେବା ।

କୂଡ୍ୟ—କ୍ଲୀ.ବି.(କୂଡ୍+ଯ) ଭିତ୍ତି,କାନ୍ଥ ।

କୂଢ଼—ବି. କୁଢ଼ (ଦେଖ) ।

କୂଣ୍—(ଧାତୁ) କହିବା,ସଙ୍କୁଚିତ ହେବା, ମୁଦ୍ରିତହେବା, ମୁଦିହେବା ।

କୂଣକୁଚ—ପୁ. ବି. ଶିବଙ୍କ ଅନୁଚର ବିଶେଷ ।

କୂଣି—ବିଂ. (କୂଣ୍+ଇନ୍) ବକ୍ରହସ୍ତ, ସଙ୍କୁଚିତ ହସ୍ତ,କେମ୍ପା, କଣନଖାରୋଗୀ ।

କୂଣିକା—ସ୍ତ୍ରୀ. ବି. (କୂଣ୍+ଇକ+ଆ) ପଶୁରଶୃଙ୍ଗ, ସିତାରର ଖିଲ, ଶିଙ୍ଗ, କଳିକା ।

କୂଣିତ—ବିଂ. (କୂଣ୍+କ,ତ) ମୁଦ୍ରିତ, ସଙ୍କୁଚିତ ।

କୂଣିତେକ୍ଷଣ -ପୁଂ.ବି.(ବ.ବ୍ରୀ)ବାଜପକ୍ଷୀ ।

କୂଥଳୀ—ଗ୍ରା. ବି. ଝୁଲି, ଝୁଲିମୁଣି ।

କୂଦର—ପୁଂ.ବି. ରୁରୁର ପ୍ରଥମଦିବସରେ ବ୍ରାହ୍ମଣୀଠାରୁ ଉତ୍ପନ୍ନ ଋଷିପୁତ୍ର ।

କୂଦୀ—ସ୍ତ୍ରୀ.ବି.ଗୋଡ଼ର ବେଡ଼ି, କାଠିର-ଗୋଛ ।

କୂଦାନ—ପୁଂ. ବି. ଏକପ୍ରକାର ଗଛ, ଶିମ୍ବିଗଛ, ରକ୍ତକାଞ୍ଚନଫୁଲର ଗଛ ।

କୂପ—ପୁଂ. ବି. (କୁ+ଅପ+ଅ) କୂଅ, ଗାତ, ମାସ୍ତୁଲ, ତେଲକୁମ୍ପା, ଛିଦ୍ର, ନଦୀଶଯ୍ୟାରେ ଥିବା ବୃକ୍ଷ ବା ପାହାଡ ।

କୂପକ—ପୁଂ. ବି. (କୂପ+କ)ନୌକା-ବନ୍ଧନ ସ୍ତମ୍ଭ,ନିତମ୍ବର ଭଉଁରି, କୂଅ, ଗାତ, ମାସ୍ତୁଲ, ଖୁଣ୍ଟ, ଚଡା,ତେଲପିମ୍ପା ଡଙ୍ଗା, ଚଡାଗଣ୍ଡି, ଡଙ୍ଗାପାର ମାସ୍ତୁଲ ।

କୂପକଚ୍ଛପ—ପୁଂ. ବି. କୂଅରେ ଥିବା କଇଁଛ ।

କୂପକାର—(କୂପ+କୃ+ଅ)କୂପଖନକ, ଯେ କୂଅ ଖୋଳେ ।

କୂପଜ—ପୁଂ. ବି. (କୂପ+ଜନ୍+ଅ) ଲୋମ, କେଶ ।

କୂପଜଳ—କ୍ଲୀ. ବି.(ଷତତ୍)କୂଅପାଣି ।

କୂପତ୍ତୁ—ଅବ୍ୟ, ପ୍ରଶ୍ନ, ପ୍ରଶଂସା ।

କୂପଦ—ପୁଂ. ବି କୁକୁଦ ।

କୂପଦଣ୍ଡ—ପୁଂ. ବି. (କ.ଧା) ନୌକା-ବାନ୍ଧିବାର ଖୁଣ୍ଟି, ମାସ୍ତୁଲ ।

କୂପଦର୍ଦ୍ଦୁର--ପୁଂ.ବି. (କୂପ+ଦର୍ଦ୍ଦୁର କୂପମଧ୍ୟସ୍ଥିତ ବେଙ୍ଗପରି ଅଳ୍ପଜ୍ଞାନ ବିଶିଷ୍ଟବ୍ୟକ୍ତି,(ବିଂ) ଅନଭିଜ୍ଞ,ନିନ୍ଦନୀୟ, ଅଳ୍ପଜ୍ଞାନବିଶିଷ୍ଟ(ଲ.ଅର୍ଥ)ନିଜ ସୀମାବଦ୍ଧ-ଭୂ'ତ ସଂସାରର ବିଷୟ ସମ୍ବନ୍ଧରେ ଯାହାଙ୍କର ଅଭିଜ୍ଞତା ବା ଅନୁଭୂତି ଆଦୌ ହୋଇ ନଥାଏ ।

କୂପମଣ୍ଡୂକ-ପୁଂ.ବି.କୂଅରେ ଥିବା ବେଙ୍ଗ, କୂଅବେଙ୍ଗ ।

କୂପଯନ୍ତ୍ର—ବି. କୂଅରୁ ପାଣି ଉଠାଇବା ଯନ୍ତ୍ର, ଟେଣ୍ଡା ।

କୂପରାଜ୍ୟ—କ୍ଲୀ.ବି. ଦେଶବିଦେଷ ।

କୂପାଙ୍କ--ପୁଂ.ବି.(କୂପ+ଅଙ୍କ)ରୋମାଞ୍ଚ, ରୋମହର୍ଷଣ ।

କୂପାଙ୍ଗ—ପୁଂ.ବି. ରୋମାଞ୍ଚ,ରୋମହର୍ଷଣ ।

କୂପାର—ପୁଂ. ବି. (କୂ+ପୃ+ଅ) ସମୁଦ୍ର । [ଯୋନ ।

କୂପିକ—କ୍ଲୀ. ବି. (କୂପ+ଇକ)

କୂପିକା—ସ୍ତ୍ରୀ. ବି. (କୂପ+ଇକ+ଆ) ଜଳମଧ୍ୟସ୍ଥିତ ପଥର ଅଥବା କ୍ଷୁଦ୍ରପର୍ବତ ।

କୂପୀ—ବିଂ. କୂପସନ୍ନିକଟସ୍ଥ ଦେଶାଦି, (ସ୍ତ୍ରୀ)କ୍ଷୁଦ୍ରକୂପ, ତୈଳ ଘୃତାଦି ସ୍ନିଗ୍ଧବସ୍ତୁ ଧାରଣାର୍ଥେ ପାତ୍ର ବିଶେଷ ।

କୂପୁଷ—କ୍ଲୀ. ବି. ମୂତ୍ରାଶୟ ।

କୂପୋଦକ—କ୍ଲୀ.•ବି. (ଷତତ୍) କୂଅ-ପାଣି, କୂପଜଳ ।

କୂପ୍ୟ—ବିଂ. (କୂପ+ଯ) କୂପଜାତ ।

କୂବର-ବିଂ, ମନୋହର, ସୁନ୍ଦର,କୁହୁଳା, କୁଜା, (ବି)ଗାଡ଼ିର ଆଗଦଣ୍ଡା,ଯୁଆଳି, କୁଜା ମନୁଷ୍ୟ ।

କୂବରୀ—ପୁଂ. ବି. (କୂବର+ଈ) ରଥ, ଶକଟ, ବଳଦଗାଡ଼ି, (ସ୍ତ୍ରୀ) ବସ୍ତ୍ର ବା କମ୍ବଳାଚ୍ଛାଦିତ ଗାଡ଼ି ବା ରଥ, କୁଜୀ ।

କୂମ-କ୍ଲୀ. ବି. ସରୋବର, ହ୍ରଦ, ଚୁଆ ।

କୂମ୍ପା—ଯା. ବି. ତୈଳପାତ୍ର ।

କୂର—ପୁଂ.ବିଂ. (କୂ+ଉର+ଅ)ଭାତ, ଖାଦ୍ୟ । [ଗ୍ରନ୍ଥପ୍ରଣେତା ।

କୂରନାରାୟଣ—ଯମକରତ୍ନାକର ନାମକ

କୂରେଶ—ପୁଂ. ବି. ପଞ୍ଚ ସ୍ତବ ରଚୟିତା ଜଣେ ଗ୍ରନ୍ଥକାର ।

କୂକୁ'ର—ପୁଂ. ବି. ବାଳକମାନଙ୍କର ଅନିଷ୍ଟକାରୀ ଦୈତ୍ୟବିଶେଷ ।

କୂର୍ଚ୍ଚ—ପୁଂ. କ୍ଲୀ. ବି. (କୂର୍ଚ୍ଚ+ଅ)ଆମ୍ବ ବଉଳ, ବାଲକ୍ଷି ,ଭ୍ରୂଲତାଦ୍ୱୟର ମଧ୍ୟ-ସ୍ଥାନ, କପଟ, ଛଳ, ଗୋଛା, ଦାଢ଼ି , କୁଶର ମୁଠାଏ ଝିପ, କର୍କଶଶ୍ଳେଷ୍ମ, ହୂଂ-ବୀଜମନ୍ତ୍ର, ବ୍ରତ, ତୁଳିକା, ଦମ୍ଭ,ମୟୂର-ପୁଚ୍ଛ, ଭଣ୍ଡାର, ମୁଣ୍ଡ ।

କୂର୍ଚ୍ଚକ—ପୁଂ. ବି. ଶରୀରର ପରିମାଣ ବିଶେଷ, ତୂଳି, ଦାଲ୍ଲକାଠି ।

କୂର୍ଚ୍ଚଖା—ପୁଂ. ବିଂ. ପୁଷ୍ଟି, ସ୍ଥୂଳ ।

କୂର୍ଚ୍ଚଳ—ପୁଂ.ବି. ଦ୍ୱିଶତବର୍ଷୀୟ ଦନ୍ତୋ-ଦ୍ଗମର କାଳପ୍ରାପ୍ତ ପ୍ରାଣୀ ।

କୂର୍ଚ୍ଚଶିରଃ—କ୍ଲୀ.ବି. ହାତ ଓ ପାଦତଳର ଉପରଭାଗ ।

କୂର୍ଚ୍ଚଶୀର୍ଷ—ପୁଂ. ବି. (ବ.ବ୍ରୀ) ନଡ଼ିଆ ଗଛ, ଅଷ୍ଟବର୍ଗାନ୍ତର୍ଗତ ଔଷଧବୃକ୍ଷ ।

କୂର୍ଚ୍ଚଶୀର୍ଷକ—ପୁଂ. ବି. ଜୀବକବୃକ୍ଷ, ନଡ଼ିଆଗଛ ।

କୂର୍ଚ୍ଚଶେଖର—ପୁଂ.ବି. (କୂର୍ଚ୍ଚ+ଶେଖର ବ.ବ୍ରୀ, ନଡ଼ିଆଗଛ ।

କୂର୍ଚ୍ଚାମୁଖ—ପୁଂ. ବି.ବିଶ୍ୱାମିତ୍ର ବଂଶଜାତ ଋଷିବିଶେଷ ।

କୂର୍ଚ୍ଚିକା—ସ୍ତ୍ରୀ.ବି. (କୂର୍ଚ୍ଚ+ଅକ+ଆ) ତୁଳିକା, ପେନ୍‌ସିଲ, ସରୁ ଲମ୍ବକାଠି, ଗୁଡ଼କାଠି, କୁଞ୍ଚି, ବସାଦହି, କଢ଼ି ।

କୂର୍ଦ୍ଦ—ପୁଂ.ବି. (କୂର୍ଦ୍ଦ+ଅ) ଲମ୍ଫ, କ୍ରୀଡ଼ା, ନୃତ୍ୟ, ସାମଭେଦ ।

କୂର୍ଦ୍ଦନ—କ୍ଲୀ. ବି. (କୂର୍ଦ୍ଦ+ଭା, ଅନ) କୁଦିବା, କ୍ରୀଡ଼ା, ନର୍ତ୍ତ-କୁଦା ।

କୂର୍ଦ୍ଦନୀ—ସ୍ତ୍ରୀ. ବି. (କୂର୍ଦ୍ଦ+ଅନ+ଈ) ଚୈତ୍ରମାସର ପୂର୍ଣ୍ଣିମାତିଥି, ଏହି ତିଥିରେ କନ୍ଦର୍ପଦେବଙ୍କର ଉତ୍ସବ ହୁଏ ।

କୂର୍ପ—କ୍ଲୀ. ବି. ( କୂର+ପା+ଅ ) ଭ୍ରୂଲତାଦ୍ୱୟର ମଧ୍ୟସ୍ଥାନ, ନାସିକାର ଊର୍ଦ୍ଧ୍ୱଭାଗ, ଦାଢ଼ି, ଜଣ ।

କୂର୍ପର—ପୁଂ.ବି.ଜାନୁ,(ସ୍ତ୍ରୀ)କୂର୍ପରୀ ।

କୂର୍ପରୀ—ସ୍ତ୍ରୀ. ବି. ଆଣ୍ଠୁ, କହୁଣି ।

କୂର୍ପସ—ବି. ନଡ଼ିଆର ରସ ।

କୂର୍ପାସ—ପୁଂ. ବି. (କୂର୍ପ+ଅସ+ଅ) ସ୍ତ୍ରୀଲୋକମାନଙ୍କର ଅଙ୍ଗରକ୍ଷିଣୀ,କଞ୍ଚୁକ, କାଞ୍ଚୁଲି ।

କୂର୍ପାସକ—ପୁଂ. ବି. ( କୂର୍ପାସ+କ ) କଞ୍ଚୁକ, କାଞ୍ଚଲି ।

କୂର୍ମ—ପୁଂ. ବି ( କୂ+ଊର୍ମି+ଅ ) କଚ୍ଛପ, ବଡ଼କଇଁଛ, ବିଷ୍ଣୁଙ୍କ ଦ୍ୱିତୀୟ ଅବତାର, ପୃଥିବୀ, ପ୍ରଜାପତିଙ୍କ ଅବ-ତାର ବିଶେଷ, ଶରୀରର ବାହ୍ୟବାୟୁ ବିଶେଷ, ପୂଜାସମୟରେ ବ୍ୟବହୃତ ଆସନବିଶେଷ ଓ ମୁଦ୍ରାବିଶେଷ ।

କୂର୍ମକାୟ—ବିଂ. ( ବ.ବ୍ରୀ ) କୂର୍ମବତ୍ ଶରୀର ବିଶିଷ୍ଟ, (ପୁଂ.ବି) ବିଷ୍ଣୁ ।

କୂର୍ମଚକ୍ର—କ୍ଲୀ.ବି. (ମଧ୍ୟ, କ.ଧା) ଗୃହ ଶୀର୍ଷ ମନ୍ତ୍ରର ଶୁଭାଶୁଭ ସୂଚକ କୂର୍ମାକାର ଚକ୍ରବିଶେଷ ।

କୂର୍ମପିଣ୍ଡ—କ୍ଲୀ. ବି. କଇଁଛ ଶରୀରରେ ଥିବା ପିଣ୍ଡଧାତୁ ।

କୂର୍ମଦ୍ୱାଦଶୀ—ବିଂ. ପୌଷଶୁକ୍ଳଦ୍ୱାଦଶୀ ।

କୂର୍ମପୁରାଣ—କ୍ଲୀ.ବି.ବ୍ୟାସଦେବ ପ୍ରଣୀତ ଅଷ୍ଟାଦଶପୁରାଣ ମଧ୍ୟରୁ ପଞ୍ଚଦଶପୁରାଣ ।

କୂର୍ମପୃଷ୍ଠ—କ୍ଲୀ. ବି,କଚ୍ଛପର ପିଠି,ପାତ୍ରର ଢାଙ୍କୁଣି, (ପୁଂ.ବି) ଅମ୍ଳାନବୃକ୍ଷ ।

କୂର୍ମପୃଷ୍ଠକ—କ୍ଲୀ. ବି. (କୂର୍ମ+ପୃଷ୍ଠ+କ) କଇଁଛର ପିଠି, ପାତ୍ରର ଢାଙ୍କୁଣି, ଶରା, ପିଧାନ ।

କୂର୍ମପୃଷ୍ଠାସ୍ଥି—କ୍ଲୀ.ବି. କଇଁଛପିଠିର ହାଡ଼ ।

କୂର୍ମପ୍ରସ୍ଥ—କୁରୁକ୍ଷେତ୍ର ନିକଟସ୍ଥ ଗୋଟିଏ ନଗର । [ ବିଶେଷ ।

କୂର୍ମମୁଦ୍ରା—ସ୍ତ୍ରୀ. ବି. କୂର୍ମାକାର ମୁଦ୍ରା-

କୂର୍ମରାଜ—ପୁଂ. ବି. କଚ୍ଛପରାଜ, କୂର୍ମ ଅବତାର ।

କୂର୍ମାକାର—ପୁଂ.ବି. (ତତ୍ପୁ) କଚ୍ଛପର ଆକୃତି,(ବିଂ.,ବ.ବ୍ରୀ) କଚ୍ଛପପରି ଆକୃତି ବିଶିଷ୍ଟ ।

କୂର୍ମାଙ୍ଗନ୍ୟାୟ—ପୁଂ.ବି.କଇଁଛ ଯେପରି ନିଜର ଦେହକୁ ସଙ୍କୁଚିତ ଓ ପ୍ରସାରିତ କରିପାରେ ସେହିରୂପ ।

କୂର୍ମାବତାର—ପୁଂ. ବି. ବିଷ୍ଣୁଙ୍କ ଦ୍ୱିତୀୟ ବା କଚ୍ଛପ ଅବତାର ।

କୂର୍ମୋନ୍ନତା—ସ୍ତ୍ରୀ. ବି. ଯୋନିଭେଦ ।

କୂଳ-(ଧାତୁ)ଆବରଣକରିବା, ବେଢ଼ିବା, ବାଧାଦେବା, ପୋତିଦେବା ।

କୂଳ—କ୍ଲୀ. ବି. ତୀର, ଢାଲୁ, ଗଦା, ଧାର, ଶ୍ରେଣି, ତଟ, ଦାଢ଼, ସୀମା,ସମୀପ ସ୍ଥାନ,କ୍ଷୁଦ୍ରଜଳାଶୟ, ସେନାରପଛଭାଗ, ଉପକଣ୍ଠ, ଆଶ୍ରୟ ।

କୂଳକ ବି. ( କୂଳ+କ ) ନଦୀ ପ୍ରଭୃତିର ତଟ, ଗଦା, କ୍ଷୁଦ୍ରଜଳାଶୟ, ଉଇହୁଙ୍କା, ସ୍ତୂପ, ଦାଢ଼, ଧାର ।

କୂଳକନାସ୍—ଗ୍ରା. ବି. ସୀମା, ଇସ୍ତଣ୍ଡ, ନିଶ୍ଚିତ ଖବର, ଠିକଣା, ପନ୍ଥା ।

କୂଳଙ୍କଷ—ବିଂ. (କୂଳଂ+କଷ୍+ଅ) କୂଳ ବ୍ୟାପକ,ଯାହା କୂଳକୁ ଖାଇଯାଏ । (ପୁଂ. ବି.) ନଦୀର ସ୍ରୋତ, ସମୁଦ୍ର, ନିଶ୍ଚିତଖବର, ଠିକଣା, ପନ୍ଥା ।

କୂଳଙ୍କଷା—ସ୍ତ୍ରୀ. ବି. (କୂଳଙ୍କଷ+ଆ) ନଦୀ ।

କୂଳଚର—ପୁଂ.ବିଂ. (କୂଳ+ଚର୍+ଅ) ନଦୀତୀରରେ ବିଚରଣକାରୀ ।

କୂଳଥଳ—ଗ୍ରା. ବି. ଜଳସ୍ଥଳର ତୀର ଓ ଗଭୀରତା, କୌଣସି ଆଶ୍ରୟ,ଇସ୍ତଣ୍ଡ ।

କୂଳଦ୍ରୁମ—ବିଂ. କୂଳସ୍ପର୍ଶୀ, ବନ୍ୟାଦି ।

କୂଳପାଇବା—ଗ୍ରା.କ୍ରି. କୌଣସି ମୀମାଂ-ସାରେ ଉପସ୍ଥିତ ହେବା,ପନ୍ଥାପାଇବା, ଅସ୍ତକର ଜାଣିବା ।

କୂଳପ୍ଲାବୀ—ପୁଂ. ବିଂ. ( କୂଳ+ପ୍ଲୁ+ କ,ଇନ୍) ତଟଭୂମି ପ୍ଲାବନକାରୀ, ତୀରଦେଶ ସମାଚ୍ଛନ୍ନକାରୀ ।

କୂଳବତୀ—ସ୍ତ୍ରୀ. ବି. (କୂଳ+ବତ୍+ଈ) ନଦୀ, ସଦ୍‌କୁଳସମ୍ଭୂତା ସ୍ତ୍ରୀ ।

କୂଳଭୂ—ସ୍ତ୍ରୀ. ବି. (କୂଳ+ଭୂ) କ.ଧା; ତୀରଭୂମି, ତଟପ୍ରଦେଶ, ପାର ।

କୂଳମୁଦ୍ରୁହ—କ୍ଲୀ. ବିଂ. ଯାହା କୂଳକୁ ଭାଙ୍ଗି ବୋହିନିଏ ବା ଅତଡ଼ାଖସାଏ, ଜଳସ୍ରୋତ ।

କୂଳମୂଳ-ଗ୍ରା.ବି. ବଂଶ ଓ ବଂଶର ଚିହ୍ନ ।

କୂଳହଣ୍ଡକ—ପୁଂ. ବି. ( କୂଳ+ହଣ୍ଡ୍+ଅକ) ଜଳାବର୍ତ୍ତ, ପାଣିଭଉଁରୀ ।

କୂଳଆ—ଗ୍ରା. ବିଂ. କୂଳରେ ଅବସ୍ଥିତ, କୂଳସମ୍ବନ୍ଧୀୟ, କୂଳରେ ଜାତ ।
କୂଳିକା—ସ୍ତ୍ରୀ. ବ. ବୀଣାର ତଳଦେଶ ।
କୂଳିନୀ—ସ୍ତ୍ରୀ ବ. ( କୂଳ+ଇନ୍+ଈ) ନଦୀ ।
କୂଳୀ—ବିଂ. (କୂଳ+ଇନ୍) କୂଳଯୁକ୍ତ, ତୀର ବା ତଟବିଶିଷ୍ଟ ।
କୂଳେଚର—ପୁଂ. ବ. (କୂଳେ+ଚର +ଅ) ନଦୀଆଦିର ତୀର ବିହାରୀ ପଶୁ, ଚମରୀ ବାରଣାଦି ।
କୂବାର—ପୁଂ. ବ. ସମୁଦ୍ର ।
କୂଷ୍ମାଣ୍ଡ—ପୁଂ. ବ. ମନ୍ତ୍ରବିଶେଷ,କୁଷ୍ମାଣ୍ଡ, (ଦେଖ) ।
କୂଷ୍ମାଣ୍ଡିନୀ—ସ୍ତ୍ରୀ. ବ. ଦେବୀବିଶେଷ ।
କୂହନା—ସ୍ତ୍ରୀ. ବ. ପ୍ରତାରଣା, ପ୍ରବଞ୍ଚନା, କପଟ, ଛଳ ।
କୂହା—ସ୍ତ୍ରୀ. ବ. ( କୁ+ଉହ+ଆ ) କୁହୁଡ଼ି, (ଗ୍ରା. ବିଂ) ଯେ ବହୁତ କହି-ପାରେ, ବଡ଼କୁହା ।
କୃ—(ଧାତୁ) କରିବା, ଆଦେଶ କରିବା, ଆଘାତ କରିବା, ବନ୍ଦୋବସ୍ତ କରିବା, ମାରିପକାଇବା, ନିର୍ମାଣକରିବା, ପ୍ରସ୍ତୁତ କରିବା, ସୃଷ୍ଟିକରିବା ଇତ୍ୟାଦି ।
କୃକ—ପୁଂ. ବ. (କୃ+କ) ଗଳଦେଶ, ଘଣ୍ଟି, କଣ୍ଠ, ଶିର, ମୁଣ୍ଡ, ନାଭି ।
କୃକଣ—ପୁଂ.ବ. (କୃ+କଣ+ଅ)ପକ୍ଷି-ବିଶେଷ, କୃମି, କୀଟ, ସ୍ଥାନବିଶେଷ ।
କୃକଣେୟୁ—ପୁଂ.ବ.ପୁରୁବଂଶୀୟରୌଦ୍ରା-ଶ୍ୱର ଗୋଟିଏ ପୁତ୍ର ।
କୃକଦାଶୁ—ପୁଂ.ବିଂ.ହିଂସାକାରକ,ଶତ୍ରୁ ।
କୃକର—ପୁଂ. ବ. (କୃ+କୃ+ଅ)ଶିବ, କ୍ଷୁଧାକାରକ,ବାୟୁବିଶେଷ, କୃକଣପକ୍ଷୀ, କର୍ପୂରପକ୍ଷୀ, କନିଅର ଗଛ ।
କୃକଲା—ସ୍ତ୍ରୀ. ବ. (କୃକ+ଲା+ଅ+ ଆ) ପିପ୍ପଳୀ ।
କୃକଲାଶ, କୃକଲାସ—ପୁଂ. ବ. ( କୃକ+ ଲସ୍+ଅ) ଏଣ୍ଡୁଅ,ଟିଟିପିଟି,ଚମ୍ପେଇ-ନେଉଳ, କେରକଣ୍ଟା, ସରୀସୃପଜାତୀୟ ଜନ୍ତୁବିଶେଷ ।
କୃକଲାସଦୀପିକା—ସ୍ତ୍ରୀ. ବ. ଇନ୍ଦ୍ରଜାଲ ସମ୍ବନ୍ଧୀୟ ଗ୍ରନ୍ଥବିଶେଷ ।
କୃକବାକୁ—ପୁଂ.ବ. (କୃକ+ବଚ୍+ଉ) କୁକ୍କୁଟ, ମୟୂର, ଏଣ୍ଡୁଅ, ସରୀସୃପ ଜାତୀୟ ଜନ୍ତୁବିଶେଷ ।
କୃକବାକୁଧ୍ୱଜ—ପୁଂ.ବ. କାର୍ତ୍ତିକେୟଙ୍କର ଗୋଟିଏ ନାମ ।
କୃକଷା—ସ୍ତ୍ରୀ. ବ. ପକ୍ଷିଜାତିବିଶେଷ ।
କୃକାଟ—(ବୈଦିକ)କ୍ଲୀ. ବ.(କୃକ+ଅଟ +ଅ) ଗଳଦେଶର ସନ୍ଧିସ୍ଥଳ ।
କୃକାଟକ—କ୍ଲୀ.ବ. (କୃକାଟ+କ)ଗଳ-ଦେଶ, ସ୍କନ୍ଧାଂଶ ।
କୃକାଟିକା—ସ୍ତ୍ରୀ.ବ. (କୃକ+ଅଟ୍+ଅକ +ଆ) ଗ୍ରୀବାର ଉନ୍ନତ ପ୍ରଦେଶ, ବେକସନ୍ଧି, ସ୍କନ୍ଧର ଗ୍ରୀବାଗ୍ର ।
କୃକାଲକା—ସ୍ତ୍ରୀ. ବ. ପକ୍ଷିଜାତିବିଶେଷ ।
କୃକୀ—ପୁଂ.ବ. ବୌଦ୍ଧଶାସ୍ତ୍ରୋକ୍ତ ପ୍ରାଚୀନ ରାଜବିଶେଷ ।
କୃଚ୍ଛ୍ର—ପୁଂ. କ୍ଲୀ. ବ. ( କୃଶ+ର ) ଦୁଃଖ, କଷ୍ଟ, କ୍ଲେଶ, ଅପବାଦ, ବ୍ରତ, କଷ୍ଟସାଧ୍ୟ ଉପବାସ, ପ୍ରାୟଶ୍ଚିତ୍ତ, ପାପ, ମୂତ୍ରକୃଚ୍ଛ୍ରରୋଗ, (ବିଂ) ପାପଯୁକ୍ତ, ଖଳ, ମନ୍ଦ, କଷ୍ଟଯୁକ୍ତ, ଦୁଃଖମୟ ।
କୃଚ୍ଛ୍ରକର୍ମ—କ୍ଲୀ. ବ.କଷ୍ଟସାଧ୍ୟ କର୍ମ, ପରିଶ୍ରମ ସାଧ୍ୟ କାର୍ଯ୍ୟ ।
କୃଚ୍ଛ୍ରଗତ—ବିଂ. ( ତତ୍ର ) କଷ୍ଟପ୍ରାପ୍ତ, କ୍ଲେଶଭୋଗ କରୁଥିବା, ବ୍ରତପାଳନ କରୁଥିବା ।
କୃଚ୍ଛ୍ରପ୍ରାଣ—ବିଂ. ( ବ.ବ୍ରୀ ) ବିପଦଗ୍ରସ୍ତ, ଯେ କଷ୍ଟରେ ଜୀବିକା ନିର୍ବାହ କରେ ।
କୃଚ୍ଛ୍ରଲବ୍ଧ—ବିଂ. (କୃଚ୍ଛ୍ର+ଲଭ୍+ତ) ଅତି କଷ୍ଟରେ ପ୍ରାପ୍ତ ବା ଅର୍ଜ୍ଜିତ ।
କୃଚ୍ଛ୍ରଲଭ୍ୟ—ବିଂ. (କୃଚ୍ଛ୍ର+ଲଭ୍+ଯ) ଯାହା ଅତି କଷ୍ଟରେ ମିଳିପାରେ ।
କୃଚ୍ଛ୍ରବ୍ରତ—କ୍ଲୀ. ବ. ଗୃହ୍ୟସୂତ୍ରାଦି କଷ୍ଟ-ସାଧ୍ୟ ବ୍ରତବିଶେଷ ।
କୃଚ୍ଛ୍ରସାଧ୍ୟ—ବିଂ. ଯେଉଁ ରୋଗ ବହୁ-କଷ୍ଟରେ ଆରୋଗ୍ୟହୁଏ, କଷ୍ଟରେ ପ୍ରାପ୍ୟ ବା ଯାହା ବହୁକଷ୍ଟରେ କରିଯାଏ ।
କୃଚ୍ଛ୍ରସାନ୍ତପନ—କ୍ଲୀ.ପୁଂ.ବ.ବ୍ରତବିଶେଷ ।
କୃଚ୍ଛ୍ରାତିକୃଚ୍ଛ୍ର—ପୁଂ. ବ. କଷ୍ଟକର ବ୍ରତ-ବିଶେଷ, ୩।୧୨।୨୧ ବା ୨୧ଦିନ ପର୍ଯ୍ୟନ୍ତ ଜଳଛଡ଼ା ଅନ୍ୟ କିଛି ନ ଖାଇ କରି-ଯିବା କଠୋର ବ୍ରତବିଶେଷ ।
କୃଚ୍ଛ୍ରାନ୍ମୁକ୍ତ—ବିଂ. କଷ୍ଟମୁକ୍ତ ।
କୃଚ୍ଛ୍ରାରି—ପୁଂ. ବ. ବେଲଗଛ ।
କୃଚ୍ଛ୍ରାର୍ଦ୍ଧ—ପୁଂ. ବ. ଛଅଦିନ ସାଧ୍ୟବ୍ରତ ବିଶେଷ ।
କୃଚ୍ଛ୍ରୀ—ପୁଂ. ବିଂ. ବିପଦାପନ୍ନ, ଦରିଦ୍ର ।
କୃଚ୍ଛ୍ରେଶିତ—ପୁଂ. ବିଂ. ବିପଦ୍‌ଗ୍ରସ୍ତ ।
କୃଚ୍ଛ୍ରୋନ୍ମୀଲ,କୃଚ୍ଛ୍ରୋନ୍ମୀଲନ—ପୁଂ.ବ.ନେତ୍ର ରୋଗବିଶେଷ, ଚକ୍ଷୁରୋଗବିଶେଷ ।
କୃଣ୍ଣ—ପୁଂ.ବ.(କୃ+ନୁ)ଚିତ୍ରକରଜାତି ।
କୃତ୍—ପୁଂ.ବିଂ.(କୃ+କ୍ୱିପ୍)ଯେକରେ, କାର୍ଯ୍ୟକାରୀ, ( ପୁଂ.ବ ) ବ୍ୟାକରଣର ପ୍ରତ୍ୟୟ ଭେଦ, କୃତ୍‌ଯୁକ୍ତ ହୋଇ ନିଷ୍ପନ୍ନ ବିଶେଷ୍ୟପଦ ।
କୃତ୍ ପ୍ରତ୍ୟୟ—ବ. ଧାତୁରୁ ଭିନ୍ନ ଭିନ୍ନ ବାଚ୍ୟରେ ଯୁକ୍ତ ହେବା ପ୍ରତ୍ୟୟମାନ ।
କୃତ—ବିଂ. (କୃ+ମିଂ.ତ)ସୃଷ୍ଟ, ରଚିତ, ପ୍ରସ୍ତୁତ, ବିହିତ, ଉପଯୁକ୍ତ, ସମ୍ପାଦିତ, ନିକଟସ୍ଥିତ, ଅଭ୍ୟସ୍ତ,ପର୍ଯ୍ୟାପ୍ତ, ହିଂସିତ, କୃତୋପକାର,ଯଥେଷ୍ଟ, ଗୃହୀତ, ଲବ୍ଧ, (କୃ+କତ) ବ. ବସୁଦେବଙ୍କ ଜଣେ ପୁଅ, ଚ୍ୟବନ ଋଷିଙ୍କ ପୁତ୍ର, ସତ୍ୟଯୁଗ, କର୍ମ, କାର୍ଯ୍ୟ, ହିଂସା, ଫଳ,ନୈବେଦ୍ୟ, ଉଦ୍ଦେଶ୍ୟ, ଯୁଦ୍ଧରୁ ପ୍ରାପ୍ତଧନାଦି, ଗୁର-ସଂଖ୍ୟା, ପଶାକାଠିର ଯେଉଁ ପାଖରେ ଗୁରଗୋଟି ବିନ୍ଦୁଥାଏ, ସେବା, ଉପକାର, ଇନ୍ଦ୍ରଜାଲ, ଖେଳରେ ବାଜିବା ହୁଡ଼ ।
କୃତକ—ବିଂ. କୃତ୍ରିମ, ନକଲ, ମିଥ୍ୟା, ଭେଲ, କଳ୍ପିତ, ନିର୍ମିତ, ସୃଷ୍ଟ, (କ୍ଲୀ. ବ.) ବିଟଲବଣ, (ପୁଂ.ବ) ପଶାକାଠିର ଯେଉଁ ପାଖରେ ଗୁରଗୋଟି ଚିପ ଥାଏ, ବସୁଦେବଙ୍କର ଗୋଟିଏ ପୁତ୍ର ।
କୃତକକନ୍ୟା—ସ୍ତ୍ରୀ.ବ.(କ.ଧା)ମାତାପିତା ବ୍ୟତୀତ ଅନ୍ୟଦ୍ୱାରାପାଳିତା କନ୍ୟା, ପୋଷିଅ କନ୍ୟା ।

କୃତକପୁତ୍ର—ପୁଂ. ବ. (କୃତକ+ପୁତ୍ର) କଳ୍ପିତପୁତ୍ର; ଅନ୍ୟଦ୍ୱାରା ପାଳିତ ପୁତ୍ର, ପୋଷ୍ୟପୁତ୍ର ।

କୃତକର୍ତ୍ତବ୍ୟ—ପୁଂ.ବିଂ. (ବ.ଗ୍ରା) ଯେଉଁ ବ୍ୟକ୍ତି ନିଜର କର୍ତ୍ତବ୍ୟ କରିଅଛି; କୃତକାର୍ଯ୍ୟ ।

କୃତକର୍ମା—ପୁଂ. ସ୍ତ୍ରୀ. ବିଂ. କୃତକାର୍ଯ୍ୟ, ଚତୁର, ଦକ୍ଷ, ଯେଉଁ ବ୍ୟକ୍ତି ନିଜର କର୍ତ୍ତବ୍ୟ କରିଅଛି, (ବି) ପରମେଶ୍ୱର; ମୁକ୍ତପୁରୁଷ, ସନ୍ନ୍ୟାସୀ ।

କୃତକଲ୍ପ—ପୁଂ. ବି.ଂ ଯେ ଲୌକିକ ବ୍ୟବହାରରେ ଅଭିଜ୍ଞ ।

କୃତକାମ—ପୁଂ.ବି. (ବ.ଗ୍ରା) ଯାହାର କାମନା ସିଦ୍ଧ ହୋଇଅଛି ।

କୃତକାରି-ପୁଂ.ବିଂ. (କୃତ+କୃ+ଇନ୍) କରାଯାଇଥିବା କର୍ମକୁ ପୁଣି ଥରେ କରିବା (ବ୍ୟକ୍ତି) ।

କୃତକାର୍ଯ୍ୟ—କ୍ଲୀ. ବି. (କୃତ+କାର୍ଯ୍ୟ) ଯେଉଁ କାର୍ଯ୍ୟ ସମ୍ପନ୍ନ ହୋଇଅଛି, କୃତାର୍ଥ, ଚରିତାର୍ଥ, (ପୁଂ.ବିଂ) ଯେ କାର୍ଯ୍ୟ ସାଧନ କରିଅଛି, ପାଶ ।

କୃତକାର୍ଯ୍ୟତା—ସ୍ତ୍ରୀ. ବି. ଚରିତାର୍ଥତା, ସଫଳଚେଷ୍ଟିତା, ସାଫଲ୍ୟ ।

କୃତକାଳ—ପୁଂ. ବି. ନିର୍ଦ୍ଧାରିତ ସମୟ, ମିଆଦ,(ପୁଂ.ବିଂ) ଯେ ନିର୍ଦ୍ଧାରିତ ସମୟ ପର୍ଯ୍ୟନ୍ତ ଅପେକ୍ଷା କରିଅଛି, ନିର୍ଦ୍ଧାରିତ କାଳପାଇଁ ଗଚ୍ଛିତ ବା ନ୍ୟସ୍ତ ।

କୃତକୀର୍ତ୍ତି—ପୁଂ. ବିଂ. ଯେଉଁ ବ୍ୟକ୍ତି ଯଶୋଲାଭ କରିଅଛି ।

କୃତକୃତ—ଗ୍ରା. ବିଂ. କୃତାର୍ଥ, ସନ୍ତୁଷ୍ଟ, ଚରିତାର୍ଥ, କୃତକର୍ମା, ବିଦ୍ୱାନ୍ ।

କୃତକୃତାର୍ଥ—ଗ୍ରା.ବିଂ.କୃତକୃତ୍ୟ (ଦେଖ) ।

କୃତକୃତ୍ୟ—ପୁଂ.ବିଂ.(ବ.ଗ୍ରା)ଯେ ସମ୍ପୂର୍ଣ୍ଣ ରୂପେ ସ୍ୱକାର୍ଯ୍ୟ ସାଧନ କରିଅଛି, ଯେଉଁ ବ୍ୟକ୍ତିର କର୍ତ୍ତବ୍ୟ କିଛି ନାହିଁ, ଚତୁର, ସନ୍ତୁଷ୍ଟ ମୁକ୍ତପୁରୁଷ, କୃତାର୍ଥ,ବିଦ୍ୱାନ୍, ସନ୍ତୁଷ୍ଟ ।

କୃତକୃତ୍ୟତା—ସ୍ତ୍ରୀ.ବି.(କୃତକୃତ୍ୟ+ତା) କାର୍ଯ୍ୟସିଦ୍ଧି, କାମନାପୂରଣ, କର୍ତ୍ତବ୍ୟର ସମାଧାନ ।

କୃତକୋଟି—ପୁଂ.ବି.କାଶ୍ୟପ ମୁନି, ଉପବର୍ଷ ମୁନିର ନାମାନ୍ତର ।

କୃତକସ୍ୱ—ପୁଂ. ବିଂ. ଯେ କିଣିଅଛି, ଖରିଦଦାର ।

କୃତକ୍ରିୟ—ପୁଂ.ବିଂ.କୃତକୃତ୍ୟ(ଦେଖ), କୃତକାର୍ଯ୍ୟ, ସମାପ୍ତକାର୍ଯ୍ୟ, ଯେ ଶାସ୍ତ୍ରବିହିତ ନିୟମ ପାଳନ କରିଅଛି, ଯେ କୌଣସି ଧର୍ମାନୁଷ୍ଠାନ ସମ୍ପାଦନ କରିଅଛି ।

କୃତକ୍ଷଣ—ପୁଂ. ବିଂ. ଯେ ଠିକ୍ ବେଳ ପର୍ଯ୍ୟନ୍ତ ଅପେକ୍ଷା କରିଥାଏ,ଯେ କୌଣସି ବସ୍ତୁ ବା ବ୍ୟକ୍ତିପାଇଁ ଅଧୀର ହୋଇ ଅପେକ୍ଷା କରିଥାଏ । ଯେ କୌଣସି ଉତ୍ସବ ସମ୍ପନ୍ନ କରିଅଛି ।

କୃତଘ୍ନ—ପୁଂ. ବିଂ. (କୃତ+ହନ୍+ଅ) ବିଶ୍ୱାସଘାତୀ, ଯେ ଉପକାରୀର ଅପକାର କରେ, ନିମକହାରାମ, ଯେ ପୂର୍ବକୃତ ଉପକାରକୁ ସ୍ମରଣ ନ କରି ବିଗାଡ଼େ ବା ବିଫଳ କରେ, (ସ୍ତ୍ରୀ) କୃତଘ୍ନୀ ।

କୃତଘ୍ନତା—ସ୍ତ୍ରୀ.ବି.ଉପକାରୀର ଅପକାର ଚେଷ୍ଟା, ଅକୃତଜ୍ଞତା, ନିମକହାରାମୀ ।

କୃତଚିହ୍ନ—ବିଂ. (ବ.ଗ୍ରା) ଚିହ୍ନିତ, ମାର୍କା ମରାଯାଇଥିବା ।

କୃତଚୂଡ଼—ପୁଂ. ବିଂ. (ବ.ଗ୍ରା. ଯାହାର) ଚୂଡ଼ାକର୍ମସଂସ୍କାର ସମ୍ପନ୍ନ ହୋଇଅଛି ।

କୃତଜ୍ଞ—ପୁଂ. ବିଂ. (କୃତ+ଜ୍ଞା+ଅ) ଯେଉଁ ବ୍ୟକ୍ତି ଉପକାରୀର ପ୍ରତ୍ୟୁପକାର କରେ, କର୍ତ୍ତବ୍ୟରେ ମନୋଯୋଗୀ, (ପୁଂ.ବି) ମହାଦେବ, ଶିବ, କୁକ୍କୁର ।

କୃତଜ୍ଞଚିତ୍ତ—କ୍ଲୀ. ବି. (କ.ଧା)କୃତଜ୍ଞତା ପୂର୍ଣ୍ଣ ଅନ୍ତଃକରଣ, (ବିଂ.ବ.ଗ୍ରା) କୃତଜ୍ଞତାପୂର୍ଣ୍ଣ ଅନ୍ତଃକରଣବିଶିଷ୍ଟ ।

କୃତଜ୍ଞତା—ସ୍ତ୍ରୀ.ବି. (କୃତଜ୍ଞ+ତା)ଉପକାର ସ୍ମରଣ ବା ସ୍ୱୀକାର କରିବା, ପ୍ରତ୍ୟୁପକାର ସାଧନାରେ ଚେଷ୍ଟା ବା ପ୍ରବୃତ୍ତି ।

କୃତଜ୍ଞତାଭାଜନ—ପୁଂ. ବିଂ. କୃତଜ୍ଞତା ଲାଭର ଉପଯୁକ୍ତ ପାତ୍ର ।

କୃତଜ୍ୱର—ପୁଂ.ବି.(କୃତ+ଜ୍ୱର)ଶିବ, ଶିବଙ୍କର ଗୋଟିଏ ନାମ, କୁକୁର ।

କୃତଞ୍ଜୟ—ପୁଂ. ବି. ସପ୍ତଦଶ ବ୍ୟାସଙ୍କ ନାମ,ଇକ୍ଷ୍ୱାକୁ ବଂଶୀୟ ବର୍ହିରାଜାର ପୁତ୍ର, ଜଣେ ଋଷି ।

କୃତତୀର୍ଥ—ପୁଂ.ବିଂ,(ବ.ଗ୍ରା)ଯେଉଁ ବ୍ୟକ୍ତି ଅନେକ ତୀର୍ଥ ଭ୍ରମଣ କରିଅଛି, ପଥଚାଳକ, ପଥପ୍ରଦର୍ଶକ, ଉପଦେଶକ ।

କୃତତ୍ରା—ସ୍ତ୍ରୀ. ବି. ବୃକ୍ଷବିଶେଷ, ବାଲିଡିମିରି ଗଛ ।

କୃତଦାର—ପୁଂ.ବିଂ.(ବ.ଗ୍ରା)ବିବାହିତ, ଯେ ଦାରପରିଗ୍ରହ କରିଅଛି ।

କୃତଦାସ—ପୁଂ. ବି. (କ.ଧା) ପଞ୍ଚଦଶପ୍ରକାର ଦାସ ମଧ୍ୟରୁ ଏକପ୍ରକାର ଦାସ, ଯେ ସମୟ ନିର୍ଦ୍ଦିଷ୍ଟ କରି ଦାସତ୍ୱ ସ୍ୱୀକାର କରେ,ଠିକାଚାକର, ଗୋଲାମ,ମୂଲିଆ ।

କୃତଦ୍ୟୁତି—ସ୍ତ୍ରୀ. ବି. ଚିତ୍ରକେତୁ ରାଜାଙ୍କ ପତ୍ନୀ । [ କୃତ୍ରିମ ।

କୃତଦ୍ୱିଷ୍ଟ—ବିଂ. ଅପରର କାର୍ଯ୍ୟରେ

କୃତଧନ୍ୱା—ପୁଂ.ବି. ଜଣେ ଖ୍ୟାତନାମା ବୀର ନରପତି, କନକର ଗୋଟିଏ ପୁତ୍ର ।

କୃତଧୀ—ପୁଂ. ବିଂ. (କୃତ+ଧୀ) କୃତସଙ୍କଳ୍ପ, ପ୍ରତିଜ୍ଞାବଦ୍ଧ, ଶିକ୍ଷିତ, ସୁବିବେଚକ, ବିଦ୍ୱାନ୍ ।

କୃତନ—କ୍ଲୀ. ବି. ( କୃତ୍+ଭା. ଅନ ) କର୍ତ୍ତନ, କାଟିବା ।

କୃତନାଶକ—ପୁଂ.ବିଂ.କୃତଘ୍ନ,ଅବିଶ୍ୱାସୀ ।

କୃତନିତ୍ୟକ୍ରିୟ—ପୁଂ.ବିଂ. ଯେଉଁ ବ୍ୟକ୍ତି ସନ୍ଧ୍ୟା ବନ୍ଦନାଦି ନିତ୍ୟକ୍ରିୟା ସମ୍ପନ୍ନ କରିଅଛି ।

କୃତନିର୍ଣ୍ଣେଜନ—ପୁଂ. ବି. ଧୌତ, ଯେ ଧୌତ କରିଅଛି,ଯେ ପାପମୁକ୍ତି ନିମନ୍ତେ ପ୍ରାୟଶ୍ଚିତ୍ତ କରିଅଛି ।

କୃତନିଶ୍ଚୟ—ପୁଂ.ବିଂ.(ବ.ଗ୍ରା)ସିଦ୍ଧାନ୍ତ ବିଷୟରେ ଅଟଳସ୍ଥିତ,ଯେକର୍ତ୍ତବ୍ୟନିଶ୍ଚୟ କରିଅଛି । ଦୃଢ଼ପ୍ରତିଜ୍ଞ ।

କୃତନିଶ୍ଚ—ପୁଂ.ବିଂ.(କୃତ+ନିଷ୍ଠା+ଅ) ଅଧ୍ୟବସାୟୀ, (ସ୍ତ୍ରୀ) କୃତନିଷ୍ଠା ।

କୃତାନ୍ତ—ବି. (କୃତ+ଅନ୍ତ) ଝୁଙ୍କୁରି, ଲଙ୍ଗଳ ।
କୃତପର୍ବ—କ୍ଲୀ. ବି. ସତ୍ୟଯୁଗ ।
କୃତପୁଙ୍ଖ—ପୁଂ.ବିଂ. (ବ.ବ୍ରୀ)ଶରାଭ୍ୟାସ ନିପୁଣ, ଯେଉଁ ବ୍ୟକ୍ତି ଶରଚାଳନାରେ ଦକ୍ଷ ।
କୃତପୁଣ୍ୟ—ପୁଂ.ବିଂ.(ବ.ବ୍ରୀ) ପୁଣ୍ୟବାନ୍ (ସ୍ତ୍ରୀ) କୃତପୁଣ୍ୟା ।
କୃତପୂର୍ବ—ବିଂ. (ତତ୍ପୁ)ଅଗ୍ରେନିଷ୍ପାଦିତ, ଯାହା ଆଗରୁ କରାଯାଇଅଛି ।
କୃତପୂର୍ବନାଶନ—ପୁଂ. ବିଂ.ଯେଉଁ ବ୍ୟକ୍ତି ପୂର୍ବକୃତ ଉପକାରକୁ ସ୍ମରଣକରେନାହିଁ ।
କୃତପୂର୍ବୀ—ପୁଂ.ବିଂ. ( କୃତ+ପୂର୍ବ+ଇନ୍) ଯେ ପୂର୍ବେ କର୍ମସମ୍ପନ୍ନ କରିଅଛି, ନିଷ୍ପନ୍ନ କର୍ତ୍ତା ।
କୃତପୌରୁଷ—ବିଂ. (କୃତ+ପୌରୁଷ) ଯେ ପୁରୁଷତ୍ୱ ଦେଖାଇଅଛି, ଯେ ପରା-କ୍ରମ ପ୍ରକାଶ କରିଅଛି ।
କୃତପ୍ରତିକୃତ—କ୍ଲୀ. ବି.ଆଘାତର ପ୍ରତି-କ୍ରିୟା, ଆକ୍ରମଣର ପ୍ରତ୍ୟାକ୍ରମଣ, (ବିଂ ବ.ବ୍ରୀ) ଯେ ପ୍ରତିକାର କରିଅଛି ।
କୃତପ୍ରତିଜ୍ଞ—ପୁଂ. ବିଂ. (ବ.ବ୍ରୀ) କୃତ-ନିଶ୍ଚୟ, ଯେ ଆପଣାର ପ୍ରତିଜ୍ଞା ପାଳନ କରିଅଛି ।
କୃତଫଳ—କ୍ଲୀ. ବି. କରିଥିବା କାର୍ଯ୍ୟର ଫଳ, କରିଥିବା କର୍ମର ପରିଣାମ ।
କୃତବ—ପ୍ରା. (ସମ୍ବ.) ବି. ଚାଳକି,ଛଳ
କୃତମ୍—ଅବ୍ୟ.(କୃତିମ + ତନ୍)ପର୍ଯ୍ୟାପ୍ତ ନିଷେଧ, ବ୍ୟର୍ଥ, ସତ୍ୟଯୁଗ ।
କୃତମତି—ପୁଂ. ବିଂ. କୃତନିଶ୍ଚୟ, ଦୃଢ଼ ପ୍ରତିଜ୍ଞ, ସ୍ଥିରପ୍ରତିଜ୍ଞ ।
କୃତମାର୍ଗା—ସ୍ତ୍ରୀ. ବି. ନଦୀବିଶେଷ ।
କୃତମାଳ—ପୁଂ. ବି. ଆରଗ୍ୱଧବୃକ୍ଷ, ସୁନାରିବୃକ୍ଷ, କନିଅରଗଛ, ଚିତ୍ରମୃଗ ବିଶେଷ ।
କୃତମାଳା—ସ୍ତ୍ରୀ. ବି. ମଳୟପର୍ବତୋ-ଦ୍ଭୂତା ନଦୀବିଶେଷ ।
କୃତମୁଖ—ପୁଂ.ବି. (କୃତ+ମୁଖ)ବ.ବ୍ରୀ; ପଣ୍ଡିତ, କୃତୀ, ବିଜ୍ଞ, ଦକ୍ଷ,ବାକ୍‌ଚତୁର ।

କୃତମୈତ୍ର—ପୁଂ. ବିଂ. (ବ.ବ୍ରୀ) ଯେ ମିତ୍ରତା କରିଅଛି, ଯେ ବନ୍ଧୁଭାବ ଦେଖାଇଅଛି ।
କୃତଯଜୁଃ—ପୁଂ.ବିଂ. ଯେଉଁବ୍ୟକ୍ତି ଯଜୁ ର୍ବେଦର ମନ୍ତ୍ର ଅଭ୍ୟାସ କରିଅଛି ।
କୃତଯଜ୍ଞ—ପୁଂ.ବି. ଚ୍ୟବନଋଷିଙ୍କ ପୁତ୍ର, (ବିଂ) ଯେ ଯଜ୍ଞ କରିଅଛି ।
କୃତଯତ୍ନ—ପୁଂ. ବିଂ. (ବ.ବ୍ରୀ) କୌଣସି କାର୍ଯ୍ୟ କରିବାକୁ ଯେ ଚେଷ୍ଟାକରିଥାଏ
କୃତଯଶା—ପୁଂ. ବି. ଅଙ୍ଗିରସ ବଂଶୀୟ ବ୍ୟକ୍ତିବିଶେଷ, (ବିଂ) ଯେ ଯଶୋଲାଭ କରିଅଛି ।
କୃତଯୁଗ—କ୍ଲୀ.ବି. ସତ୍ୟଯୁଗ ।
କୃତରଥ—କ୍ଲୀ. ବି. ନିମିବଂଶୀୟ ମରୁର ପୁତ୍ର, (ବିଂ) ରଥକାର ।
କୃତଲକ୍ଷଣ—ପୁଂ. ବିଂ. (ବ.ବ୍ରୀ) ସୁଗୁଣ-ଦ୍ୱାରା ବିଖ୍ୟାତ, ଉତ୍କୃଷ୍ଟ, କୃତସଙ୍କ, ଲବ୍‌ଧପ୍ରତିଷ୍ଠ.ଯାହାର ଦେହରେ କୌଣସି ପ୍ରକାର ଚିହ୍ନକରିଦିଆଯାଇଅଛି ( ପୁଂ. ବି) ବିଶ୍ୱକ୍‌ସେନର ପୁତ୍ର,ବିଷ୍ଣୁ ।
କୃତବର୍ମା—ପୁଂ.ବି. ( କୃତ+ବର୍ମନ୍ ) ଯଦୁବଂଶୀୟ କନକର ପୁତ୍ର, ଧୃତରାଷ୍ଟ୍ରର-ପୁତ୍ର ।
କୃତବାପ—ପୁଂ. ବିଂ. (ବ. ବ୍ରୀ) ଯେଉଁ ବ୍ୟକ୍ତିର କ୍ଷୌର କାର୍ଯ୍ୟଶେଷ ହୋଇ ଅଛି, ଯେଉଁବ୍ୟକ୍ତି ଶ୍ମଶ୍ରୁ ଓ ମସ୍ତକ କ୍ଷୌରପୂର୍ବକ ପ୍ରାୟଶ୍ଚିତ୍ତ କରିଅଛି ।
କୃତବିଦ୍ୟ—ପୁଂ.ବି. ( କୃତ+ବିଦ୍ୟା ) (ବ.ବ୍ରୀ) ପଣ୍ଡିତ, ଜ୍ଞାନୀ, ବିଦ୍ୱାନ୍,ଯେ ଶିକ୍ଷା ସମାପ୍ତ କରିଅଛି । [ହିତ ।
କୃତବିବାହ—ପୁଂ.ବିଂ. (ବ.ବ୍ରୀ) ବିବା-
କୃତବୀର୍ଯ୍ୟ—ପୁଂ ବି. (ବ.ବ୍ରୀ)ବଳବାନ୍, ବଳୁଆ,(ପୁଂ.ବି) ଯଦୁବଂଶୀୟ କନକର ପୁତ୍ର, କାର୍ତ୍ତବୀର୍ଯ୍ୟାର୍ଜୁନଙ୍କ ପିତା ।
କୃତବୁଦ୍ଧି—ପୁଂ. ବିଂ. (ବ.ବ୍ରୀ) କର୍ତ୍ତବ୍ୟ କରିବା ନିମନ୍ତେ ସ୍ଥିରପ୍ରତିଜ୍ଞ,ବିଦ୍ୱାନ୍, ଶିକ୍ଷିତ, ବିଜ୍ଞ ।
କୃତବେଗ—ପୁଂ. ବି. ରାଜପୁତ୍ରବିଶେଷ ।

କୃତବେତନ—ପୁଂ. ବିଂ. ( କୃତ+ବେତନ) ଦରମା ନିରୂପିତ ହୋଇ ଯେଉଁ ଚାକରମାନେ ନିଯୁକ୍ତ ହୁଅନ୍ତି, ଦରମାଖିଆ ଚାକର ।
କୃତବେଦୀ—ପୁଂ. ବିଂ. ଯେ ଉପକାରୀର ଉପକାର କରେ, କୃତଜ୍ଞ (ସ୍ତ୍ରୀ) କୃତ-ବେଦିନୀ ।
କୃତବେଧକ—ପୁଂ.ବି. କୋଷାତକୀଲତା, ଶ୍ୱେତଘୋଷା, ଜହ୍ନିଫଳ ଓ ଲତା, ଲତାଫଟକୀ, ଫୁଟିଫୁଟିକ ଲତା ।
କୃତବେଧନ—ସ୍ତ୍ରୀ. ବିଂ. ଶ୍ୱେତକୋଷା-ତକୀ,ଲତାଫଟକୀ ଜହ୍ନି ଫଳ ଓ ଲତା
କୃତବେଧନା—ପୁଂ. କୋଷାତକୀଲତା, ଜହ୍ନି ଫଳ ଓ ଲତା, ପଟୋଳ ।
କୃତବେଶ—ପୁଂ.ବିଂ. (ବ.ବ୍ରୀ) ଭୂଷିତ, ଅଳଂକୃତ, ଯେ ବେଶ ହୋଇସାରିଅଛି, (ସ୍ତ୍ରୀ) କୃତବେଶା ।
କୃତବ୍ୟଧନ—ପୁଂ.ବିଂ. ଅସ୍ତ୍ରଯୁକ୍ତ,ସଶସ୍ତ୍ର ।
କୃତବ୍ରତ—ପୁଂ.ବି. (ବ.ବ୍ରୀ)ଲୋମହର୍ଷଣ ମୁନିଙ୍କ ଜଣେ ଶିଷ୍ୟ, (ବିଂ. ବ.ବ୍ରୀ) ଯେଉଁବ୍ୟକ୍ତି ବ୍ରତାନୁଷ୍ଠାନ କରିଅଛି ।
କୃତଶିର—ଗ୍ରା.ବି. (ସଂ—କୃତ+ଶିରସ୍ କବନ୍ଧ (ଦେଖ) ।
କୃତଶିଳ୍ପ—ପୁଂ. ବିଂ. ଶିଳ୍ପକାର୍ଯ୍ୟରେ ସିଦ୍ଧହସ୍ତ, କାରୁକାର୍ଯ୍ୟ ଦକ୍ଷ ।
କୃତଶୋଭ—ପୁଂ.ବିଂ.(ବ.ବ୍ରୀ) ଅତ୍ୟନ୍ତ ଶୋଭନୀୟ, ଉଜ୍ଜ୍ୱଳ ।
କୃତଶୌଚ—ପୁଂ. ବିଂ. (ବ. ବ୍ରୀ) ଯେ ଶୌଚକର୍ମ କରି ଶୁଦ୍ଧହୋଇଅଛି ।
କୃତଶ୍ରମ—ପୁଂବିଂ. (କୃତ+ଶ୍ରମ)ବ.ବ୍ରୀ; ଯେଉଁବ୍ୟକ୍ତି ପରିଶ୍ରମ କରିଅଛି, ଶ୍ରାନ୍ତ, ଅତ୍ୟୁଦ୍ୟମଶୀଳ (ପୁଂ.ବି) ମୁନିବିଶେଷ, (ସ୍ତ୍ରୀ) କୃତଶ୍ରମା ।
କୃତସଂକଳ୍ପ—ପୁଂ. ବିଂ. (ବ.ବ୍ରୀ) ଯେ କୌଣସି କାର୍ଯ୍ୟ କରିବାକୁ ଦୃଢ଼ସଂକଳ୍ପ କରିଅଛି, ସଂକଳ୍ପକାରୀ, ସ୍ଥିରନିଶ୍ଚୟ, (ସ୍ତ୍ରୀ) କୃତସଙ୍କଳ୍ପା ।
କୃତସଙ୍କେତ—ପୁଂ. ବିଂ. ବ.ବ୍ରୀ) ଯେ ପୂର୍ବରୁ ସଂକେତ ସ୍ଥିରକରିଅଛି, ଯାହାର

ସହିତ କୌଣସି ପ୍ରକାର ସଙ୍କେତ ରଖା ଯାଇଅଛି, ଇଙ୍ଗିତଦ୍ୱାରା ଯେ ନିଜର ମନୋଭାବ ଜଣାଇଅଛି ।

କୃତସଂଜ୍ଞ—ପୁଂ.ବିଂ. (ବ.ବ୍ରୀ) ସଂଜ୍ଞା ବା ଚେତନା ପ୍ରାପ୍ତ, ପ୍ରତ୍ୟୁତ୍ପନ୍ନମତି ନିଦରୁ-ଉଠିଥିବା, ଯାହାକୁ କୌଣସି ସଙ୍କେତ ବା ଚିହ୍ନ ଦିଆଯାଇଅଛି ।

କୃତସପତ୍ନିକା-ସ୍ତ୍ରୀ.ବି. (କୃତ+ସପତ୍ନୀ+କ. ଆ) ଯେଉଁ ସ୍ତ୍ରୀର ସ୍ୱାମୀ ଅନ୍ୟସ୍ତ୍ରୀ ବିବାହ କରିଅଛି ।

କୃତସାପତ୍ନୀକା—ସ୍ତ୍ରୀ.ବି.(କୃତ+ସାପତ୍ନୀକ+ଆ) ଯାହାର ସ୍ୱାମୀ ପୁନର୍ବାର ବିବାହ କରିଅଛି ।

କୃତସାପତ୍ନୀ—ସ୍ତ୍ରୀ. ବିଂ. (ବ.ବ୍ରୀ) କୃତସପତ୍ନିକା (ଦେଖ) ।

କୃତସ୍ମର— ପୁଂ.ବି. ପର୍ବତ ବିଶେଷ ।

କୃତସ୍ୱର—ପୁଂ.ବି (କୃତ+ସ୍ୱର) ସୁନା-ଖଣି,(ବିଂ. ବ.ବ୍ରୀ) ଯେ ଶବ୍ଦକରିଅଛି ।

କୃତହସ୍ତ—ପୁଂ. ବିଂ. (କୃତ+ହସ୍ତ) (ବ.ବ୍ରୀ) ଶରକ୍ଷେପନିପୁଣ, କ୍ଷିପ୍ରହସ୍ତ, ଦକ୍ଷ, ପଟୁ, ଚତୁର, ପାରଙ୍ଗମ,(ସ୍ତ୍ରୀ) କୃତହସ୍ତା । [କୃତହସ୍ତ (ଦେଖ) ।

କୃତହସ୍ତକ—ପୁଂ. ବିଂ. (କୃତହସ୍ତ+କ)

କୃତହା—ପୁଂ. ବିଂ. କୃତ+ହନ୍+କ୍ୱିପ୍) କୃତଘ୍ନ ।

କୃତାକୃତ—ବିଂ. (କୃତ+ଅକୃତ)କରା-ଯାଇଥିବା ଓ କରାଯାଇ ନଥିବା,ସମ୍ପନ୍ନ ଓ ଅସମ୍ପନ୍ନ, ଅଂଶତଃ କୃତ କିନ୍ତୁ ଅସମାପ୍ତ (ବି) କାର୍ଯ୍ୟାକାର୍ଯ୍ୟ, ଭଲ ଓ ମନ୍ଦକର୍ମ-ମାନ, ସମ୍ପନ୍ନ ଓ ଅସମ୍ପନ୍ନ କାର୍ଯ୍ୟମାନ, ସ୍ୱର୍ଣ୍ଣ ଓ ରଜତ ।

କୃତାକୃତବିଚାର—ବି.(ମଧ୍ୟ,କ,ଧା)ଭଲ-ମନ୍ଦ ସମ୍ବନ୍ଧୀୟ ବିଚାର ।

କୃତାଗମ—ବିଂ. (କୃତ+ଆଗମ)ଯେଉଁ ବ୍ୟକ୍ତି ଉନ୍ନତି କରିଅଛି, ବେଦାଦି ଆଗମ ଶାସ୍ତ୍ରରେ କୃତବିଦ୍ୟ, (ପୁଂ.ବି) ବେଦପ୍ରଣେତା, ପରମେଶ୍ୱର ।

କୃତାଗାଃ—ପୁ.ବିଂ. (କୃତ+ଆଗସ୍) ଅପରାଧୀ, ଦୋଷୀ, ପାପୀ ।

କୃତାଗ୍ନି—ପୁଂ.ବି. ରାଜପୁତ୍ରବିଶେଷ ।

କୃତାଙ୍କ—ବିଂ. (କୃତ+ଅଙ୍କ) (ବ.ବ୍ରୀ) ଚିହ୍ନିତ ।

କୃତାଞ୍ଜଳି—ପୁଂ. ବିଂ. (କୃତ+ଅଞ୍ଜଳି) (ବ.ବ୍ରୀ) ବଦ୍ଧାଞ୍ଜଳି, କିଛିପ୍ରାର୍ଥନା କରିବା ନିମିତ୍ତ ଅଥବା ସମ୍ମାନ ପ୍ରକାଶ କରିବା-ପାଇଁ ଯେ ହସ୍ତଦ୍ୱୟ ଅଞ୍ଜଳିବଦ୍ଧ କରି-ଅଛି, (ପୁଂ. ବି) ଔଷଧିଭେଦ, ବଣହିଡ଼ କାନ୍ତା, (ସ୍ତ୍ରୀ.ବି. କ. ଧା) ବଦ୍ଧାଞ୍ଜଳି, ଯୋଡ଼ହସ୍ତ ।

କୃତାଞ୍ଜଳିପୁଟ—ପୁଂ.ବିଂ. (ବ.ବ୍ରୀ )(କୃତ+ଅଞ୍ଜଳି+ପୁଟ) ଯୋଡ଼ହସ୍ତ, ବଦ୍ଧା-ଞ୍ଜଳି,(ବି.କ.ଧା)ବଦ୍ଧାଞ୍ଜଳିଦ୍ୱାରା ରଚିତ ପାତ୍ର ଅର୍ଥାତ୍ ହାତଯୋଡ଼ ।

କୃତାଞ୍ଜଳିପୁଟରେ—ଗ୍ରା. କ୍ରି.ବିଂ. ହାତ, ଯୋଡ଼ି ।

କୃତାଞ୍ଜଳିପୁଟେ—କ୍ରି. ବିଂ.(ବ.ବ୍ରୀ)ବଦ୍ଧା ଞ୍ଜଳିକରି, ହାତଯୋଡ଼ିକରି ।

କୃତାତିଥ୍ୟ—ପୁଂ. ବିଂ. (ବ. ବ୍ରୀ) ଯେ ସତ୍କାର କରିଅଛି, ଯେ ଅନ୍ୟଠାରୁ ଅତିଥିସତ୍କାର ପାଇଅଛି, (ସ୍ତ୍ରୀ) କୃତା-ତିଥ୍ୟା ।

କୃତାତ୍ମ—ପୁଂ. ବିଂ. ( କୃତ+ଆତ୍ମନ୍ ) ବ.ବ୍ରୀ. ଶୁଦ୍ଧଚିତ୍ତ,ଶିକ୍ଷିତବୁଦ୍ଧି, କୃତକୃତ୍ୟ

କୃତାତ୍ୟୟ—ପୁଂ. ବିଂ. ଭୋଗଦ୍ୱାରା କର୍ମର ନାଶ ।

କୃତାଧିଷ୍ଠାନ—ବିଂ. (କୃତ+ଅଧିଷ୍ଠାନ) (ବ.ବ୍ରୀ) ଅଧିଷ୍ଠିତ, ଯେ ଅଧିଷ୍ଠାନକରି-ଅଛି ।

କୃତାନୁକର—ପୁଂ.ବିଂ. (ବ.ବ୍ରୀ)ଅନ୍ୟର ଅନୁକରଣକାରୀ, ବଶ, ବଶମ୍ବଦ ।

କୃତାନୁକୃତ—କ୍ଳୀ. ବି. ଯେଉଁପରି କରା-ଯାଇଅଛି ତାହାର ଅନୁକରଣ, କୃତର ଅନୁକରଣ ।

କୃତାନ୍ତ-ପୁଂ.ବିଂ. (କୃତ+ଅନ୍ତ)(ବ.ବ୍ରୀ) ସମାପ୍ତି କାରକ, ସିଦ୍ଧାନ୍ତକାରୀ (ବି) ଭାଗ୍ୟ, ଯମ, ପାପକାର୍ଯ୍ୟ, ଶନିବାର, ସିଦ୍ଧାନ୍ତ, ମୃତ୍ୟୁ, ଶନି, ନକ୍ଷତ୍ରଭେଦ, ବୈଦ୍ୟ, ଦୁଇସଂଖ୍ୟା, ପୂର୍ବଜନ୍ମାର୍ଜିତ ଫଳୋନ୍ମୁଖ କର୍ମ, ଯମଦେବତାଧିଷ୍ଠିତ, ଭରଣୀନକ୍ଷତ୍ର ।

କୃତାନ୍ତକୃତ୍—ପୁଂ.ବି. (କୃତାନ୍ତ+କୃ+କ୍ୱିପ୍) ଭଗବାନ, ବିଷ୍ଣୁ ।

କୃତାନ୍ତକ—ପୁଂ.ବି. (କୃତାନ୍ତ+କ)ଯମ

କୃତାନ୍ତଜନକ—ପୁଂ. ବି. (କୃତାନ୍ତ+ଜନକ)ସୂର୍ଯ୍ୟ, ଯମଙ୍କ ପିତା । [ଦ୍ରବ୍ୟ ।

କୃତାନ୍ତା—ସ୍ତ୍ରୀ.ବି. ରେଣୁକାନାମକ ଗନ୍ଧ-

କୃତାନ୍ନ—କ୍ଳୀ.ବି.(କ.ଧା)ପକ୍ୱାନ୍ନ,ସିଦ୍ଧଅନ୍ନ ବିଷ୍ଠା, (ବିଂ) ଯେ ଅନ୍ନପାକ କରିଅଛି ।

କୃତାପକାର-ପୁଂ.ବିଂ (କୃତ+ଅପକାର) ଅପକାରୀ, ଅପକୃତ, ଯେ ଅନ୍ୟର ଅପ କାର କରିଅଛି ।

କୃତାପଦ୍ମ—ପୁଂ. ବିଂ. ଯେ କୌଣସି ମହତ୍ କାର୍ଯ୍ୟ କରିଅଛି ।

କୃତାପରାଧ—ପୁଂ. ବି. (କୃତ+ଅପରାଧ) (ବ.ବ୍ରୀ) ଦୋଷୀ, ଅପରାଧୀ, (ସ୍ତ୍ରୀ) କୃତାପରାଧା ।

କୃତାବଧାନ—ପୁଂ.ବିଂ. (ବ. ବ୍ରୀ) ଯେ ମନୋଯୋଗ ଦେଇଅଛି ମନୋଯୋଗୀ ସଯତ୍ନ, ଯତ୍ନବାନ୍ (ସ୍ତ୍ରୀ) କୃତାବଧାନା ।

କୃତାବଧି—ବିଂ (ବ.ବ୍ରୀ) ପୂର୍ବରୁସ୍ଥିରୀକୃତ ନିର୍ଦ୍ଧାରିତ, ଅସୀମ, ସୀମାବିଶିଷ୍ଟ ।

କୃତାଭିଷେକ—ପୁଂ.ବିଂ. (ବ.ବ୍ରୀ)ଯାହାର ଅଭିଷେକ କିମ୍ବା ସମ୍ପନ୍ନ ହୋଇଅଛି, (ପୁଂ.ବି)ଅଭିଷିକ୍ତ ରାଜପୁତ୍ର । [ପଶା ।

କୃତାସ୍ତ୍ର—ପୁଂ.ବି. ଏକପ୍ରକାର ଖେଳିବାର

କୃତାର୍ଥ—ପୁଂ.ବିଂ. (ବ.ବ୍ରୀ) କୃତକାର୍ଯ୍ୟ, ସଫଳ, ଦକ୍ଷ, ନିପୁଣ, କାର୍ଯ୍ୟସିଦ୍ଧି ଯୋଗୁଁ ସନ୍ତୁଷ୍ଟ, ମୁକ୍ତପୁରୁଷ, ଚରିତାର୍ଥ ।

କୃତାର୍ଥତା—ସ୍ତ୍ରୀ. ବି.(କୃତାର୍ଥ+ତା)କୃତ କାର୍ଯ୍ୟତା,ଚରିତାର୍ଥତା,ମନୋରଥସିଦ୍ଧି

କୃତାର୍ଥମ୍ମନ୍ୟ—ପୁଂ.ବିଂ.(କୃତାର୍ଥ+ମନ+କ,ଯ)ଯେ ଆପଣାକୁ କୃତାର୍ଥ ମନେ କରେ, (ସ୍ତ୍ରୀ) କୃତାର୍ଥମ୍ମନ୍ୟା ।

କୃତାର୍ଥିତ—ବିଂ. ( କୃତାର୍ଥ+ଇତ ) କୃତାର୍ଥକୃତ । [ବିଶେଷ ।

କୃତାଳକ—ପୁଂ. ବି. ଶିବଙ୍କର ଅନୁଚର

କୃତାଳସ୍ୟ—ପୁଂ. ବି. (କୃତ+ଆଳସ୍ୟ) କୌଣସି ସ୍ଥାନରେ ଯେ ନିଜର ଘର ନିର୍ମାଣ କରିଅଛି, (ବି) ଭେକ, ବେଙ୍ଗ ।

କୃତାବସକ୍ଥିକ—ପୁଂ.ବିଂ.(ବ.ବ୍ରୀ)ଯେଉଁ ବ୍ୟକ୍ତି ବସ୍ତ୍ରଦ୍ୱାରା ନିଜର ପୃଷ୍ଠସହିତ ଜାନୁ ଓ ଜଙ୍ଘା ବାନ୍ଧିଅଛି ।

କୃତାବନ୍ତ—ପୁଂ.ବିଂ. ନିର୍ଦ୍ଧାରିତ, ସ୍ଥିରୀକୃତ, ରାଜଦ୍ୱାରେ ଆହୂତ, ଅଭିଯୁକ୍ତ ।

କୃତାଶ—ପୁଂ. ବିଂ. (ବ.ବ୍ରୀ) ଯେ କୌଣସି ବିଷୟରେ ଆଶା କରିଅଛି ।

କୃତାସ୍ତ୍ର—ପୁଂ.ବିଂ.(କୃତ+ଅସ୍ତ୍ର)ବ.ବ୍ରୀ, ଯେଉଁବ୍ୟକ୍ତି ଅସ୍ତ୍ରଶିକ୍ଷା କରିଅଛି ।

କୃତାହ୍ନିକ—ପୁଂ.ବିଂ.(କୃତ+ଆହ୍ନିକ) ବ.ବ୍ରୀ, ଯେଉଁବ୍ୟକ୍ତି ସନ୍ଧ୍ୟାବନ୍ଦନାଦି ଦୈନିକ କାର୍ଯ୍ୟ ସାଧନ କରିଅଛି, ଯେ ଦୈନିକ କର୍ମ ସମ୍ପନ୍ନ କରିଅଛି ।

କୃତି—ସ୍ତ୍ରୀ. ବି. (କୃ+ଭା,ତି) କରଣ, କ୍ରିୟା, ହିଂସା, ରଚନା, ଯତ୍ନ, ଚେଷ୍ଟା, ଆଘାତ, କ୍ଷତି, ମାୟା, ଇନ୍ଦ୍ରଜାଲ, ମାୟାବିନୀ, ଡାକିନୀ, ଛନ୍ଦୋବିଶେଷ, କର୍ତ୍ତିନୀ,ଅସ୍ତ୍ରଭେଦ,ବିଷ୍ଣୁ,ବିଂଶତିସଂଖ୍ୟା ।

କୃତିଆ—ଗ୍ରା.ବି. (ସ—କୃତ୍ୟା) ଦାନବମାନଙ୍କ ହୋମରୁ ବାହାରିଥିବା ପୁରୁଷ ।

କୃତିକର—ପୁଂ. ବି. କୋଡ଼ିଏ ହାତଥିବା ରାବଣାସୁର ।

କୃତିତା (କୃତିତ୍ୱ)—ସ୍ତ୍ରୀ. (କ୍ଲୀ)ବି. (କୃତ+ତା (ତ୍ୱ) କ୍ଲୀ. ବି. କାର୍ଯ୍ୟସିଦ୍ଧି, ସୁଖ୍ୟାତି, କୌଶଳ, କ୍ଷମତା, ଦକ୍ଷତା. ଉପଯୁକ୍ତତା ।

କୃତିମାନ୍—ପୁଂ. ବି. (କୃତି+ମତ୍) ଯେ ଅନେକ କାର୍ଯ୍ୟ କରିଅଛି, କାର୍ଯ୍ୟ ସ୍ଥାପନକର୍ତ୍ତା, କୁଶଳ, କୃତୀ ।

କୃତିରାତ—ପୁଂ. ବି. ବିଦେହ ବଂଶୀୟ ବୃହଦ୍ରଥ ପୁତ୍ର ।

କୃତିରୋମା—ପୁଂ. ବି. କୃତିରାତର ଜଣେ ପୁତ୍ରର ନାମ ।

କୃତିସାଧ୍ୟ—ବିଂ. (୬ତତ୍) ଚେଷ୍ଟାଦ୍ୱାରା ସାଧିତ ହେବାର ଯୋଗ୍ୟ ।

କୃତୀ—ପୁଂ.ବିଂ. (କୃତ+ଇନ୍)କର୍ମକର୍ତ୍ତା କାର୍ଯ୍ୟକ୍ଷମ, ସମର୍ଥ, ନ୍ୟାୟପର, ଚତୁର, ଶିକ୍ଷିତ, ପଣ୍ଡିତ,କବି,ସାଧୁ, ପୁଣ୍ୟବାନ୍, କୁଶଳ, କୃତାର୍ଥ, (ବି) ଚ୍ୟବନରପୁତ୍ର, (ସ୍ତ୍ରୀ) କୃତିନୀ ।

କୃତେ—ଅବ୍ୟ. ନିମିତ୍ତ କାର୍ଯ୍ୟାର୍ଥ,(ଗ୍ରା.ବି) ଦ୍ୱାରା, କରିକି ।

କୃତେନ—ଅବ୍ୟ. ନିମିତ୍ତ, କାର୍ଯ୍ୟାର୍ଥ ।

କୃତୋଦକ—ପୁଂ.ବିଂ. (କୃତ+ଉଦକ) ବ.ବ୍ରୀ, ଯେ, ସ୍ନାନ କରିଅଛି, ଯେ ଜଳ ତର୍ପଣ ସାରିଅଛି, (ସ୍ତ୍ରୀ) କୃତୋଦକା ।

କୃତୋଦ୍ୱାହ—ପୁଂ.ବିଂ.(କୃତ+ଉଦ୍ୱାହ) ବିବାହିତ,ପରିଣୀତ,(ସ୍ତ୍ରୀ)କୃତୋଦ୍ୱାହା ।

କୃତୋପକାର—ପୁଂ.ବିଂ. (କୃତ+ଉପକାର)ବ.ବ୍ରୀ, ଉପକାରୀ,ଉପକୃତ,ଅନୁଗୃହୀତ, ଅନୁଗ୍ରହକାରୀ ।

କୃତୋପଭୋଗ—ପୁଂ. ବି. (ବ.ବ୍ରୀ) ଉପଭୁକ୍ତ, ଯାହାକୁ ଉପଭୋଗ କରାଯାଇଅଛି ।

କୃତ୍ତ—ବିଂ. (କୃତ+ର୍ମ, ତ) ଛିନ୍ନ, କଟାଯାଇଥିବା, ଯାହା ଛେଦନ କରାଯାଇଅଛି, ବିଚ୍ଛିନ୍ନ, ବିଭକ୍ତ, ବେଷ୍ଟିତ, ଅଭିପ୍ରେତ ।

କୃତ୍ତି—ସ୍ତ୍ରୀ. ବି. (କୃତ୍+ଭା,ତି) ଚର୍ମ, ଛାଲ, ଭୂର୍ଜପତ୍ର, କୃତ୍ତିକା, ତ୍ୱକ୍ ।

କୃତ୍ତିକା—ସ୍ତ୍ରୀ. ବି. (କୃତ୍+ତିକ+ଆ) ତୃତୀୟନକ୍ଷତ୍ର, ଚନ୍ଦ୍ରଙ୍କ ସ୍ତ୍ରୀ,କାର୍ତ୍ତିକେୟଙ୍କ ଧାତ୍ରୀମାତା, ଶକଟ, ରଥ ।

କୃତ୍ତିକାତନୟ—ପୁଂ. ବି. (୬ତତ୍) କାର୍ତ୍ତିକେୟ, ଷଡ଼ାନନ, କୁମାର ।

କୃତ୍ତିକାଭବ—ପୁଂ. (କୃତ୍ତିକା+ଭୂ+କ.ଅ) କାର୍ତ୍ତିକେୟ, ଷଡ଼ାନନ ।

କୃତ୍ତିକାସୁତ—ପୁଂ. ବି. (କୃତ୍ତିକା+ସୁତ) ୬ତତ୍, କାର୍ତ୍ତିକେୟ, ଷଡ଼ାନନ ।

କୃତ୍ତିବାସ—ପୁଂ.ବି. (କୃତ୍ତି+ବସ୍+ଅ) ଶିବ, ବ୍ୟକ୍ତିର ନାମ ।

କୃତ୍ତିବାସାଃ—ପୁଂ. ବି. (ବ.ବ୍ରୀ) ଶିବ, ମହାଦେବ ।

କୃତ୍ନୁ—ପୁଂ.ବିଂ.(କୃ+କ.ନୁ)କର୍ତ୍ତନଶୀଳ, କାର୍ଯ୍ୟଦକ୍ଷ, କାରୁକାର୍ଯ୍ୟକାରୀ, ଚତୁର, ପାରଙ୍ଗମ, (ବି) ଶିଳ୍ପୀ, କାରିଗର ।

କୃତ୍ୟ—କ୍ଲୀ. ବି. (କୃତ+ର୍ମ,ଯ)କାରଣ, ପ୍ରୟୋଜନ, ଉଦ୍ଦେଶ୍ୟ, କାର୍ଯ୍ୟ, ବ୍ୟାକରଣର ପ୍ରତ୍ୟୟଭେଦ, (ବିଂ) କର୍ତ୍ତବ୍ୟ, ଯାହାକରିବା ଉଚିତ, ବିଶ୍ୱାସଘାତକ, ସାଧ୍ୟ, (ଗ୍ରା ବି) ସାମର୍ଥ୍ୟ, ଅଧିକାର, ସ୍ୱର, କାଣ୍ଡ, ଛଳ, ଗୁରୁତ୍ୱ, ଗୋଳମାଳ, ଜୀବନଧାରଣୋପାୟ,ସାଂସାରିକ କର୍ତ୍ତବ୍ୟମାନ । [କାରକ ।

କୃତ୍ୟକ—ପୁଂ. ବିଂ. ବିଦ୍ୱେଷକ, କ୍ଷତି-

କୃତ୍ୟକା—ସ୍ତ୍ରୀ.ବି. ମାୟାବିନୀ, ଡାହାଣୀ ।

କୃତ୍ୟଚଳିବା—ଗ୍ରା.ବି. ସାଂସାରିକ କାର୍ଯ୍ୟ ଚଳିବା ।

କୃତ୍ୟବାନ୍—ପୁଂ. ବିଂ. (କୃତ୍ୟ+ବତ୍) କାର୍ଯ୍ୟବାନ୍, ଯେ କର୍ତ୍ତବ୍ୟକାର୍ଯ୍ୟ କରେ ବା କରିଅଛି ।

କୃତ୍ୟବିତ୍—ପୁଂ. ବିଂ. (କୃତ୍ୟ+ବିଦ୍+କ୍ୱିପ୍) କାର୍ଯ୍ୟଜ୍ଞ, ବିଧିଜ୍ଞ,ପଣ୍ଡିତ ଜ୍ଞାନୀ ।

କୃତ୍ୟବିଧି—ପୁଂ.ବି. (୬ତତ୍) କାର୍ଯ୍ୟପ୍ରଣାଳୀ, କର୍ତ୍ତବ୍ୟକାର୍ଯ୍ୟର ନିୟମ ।

କୃତ୍ୟା—ସ୍ତ୍ରୀ.ବି.(କୃତ୍+ଯ+ଆ)କ୍ରିୟା କାର୍ଯ୍ୟ, ସ୍ତମ୍ଭନ ମାରଣାଦି ଆଭିଚାରିକ ବ୍ୟାପାର,ପରର ଅନିଷ୍ଟକରିବା ଉଦ୍ଦେଶ୍ୟରେ ତାନ୍ତ୍ରିକପ୍ରୟୋଗ; ନଦୀବିଶେଷ, ଦେବତା, ଦେବତାକୁ ଦିଆଯିବା ବଳି ।

କୃତ୍ୟାକୃତ୍—ପୁଂ. ବି. (କୃତ୍ୟା+କୃ+କ୍ୱିପ୍)ଯେ ଅଭିଚାର (ତାନ୍ତ୍ରିକ)କାର୍ଯ୍ୟ କରେ ।

କୃତ୍ୟାପୁରୁଷ—ଗ୍ରା.ବି.ଅଭିଚାରାର୍ଥେଯେଉଁ ଦେବତାଙ୍କୁ ବଳି ଦିଆଯାଏ ।

କୃତ୍ୟାସୁର—ଗ୍ରା. ବି. ଦୈତ୍ୟବିଶେଷ ।

କୃତ୍ରିମ—କ୍ଲୀ. ବିଂ.(କୃ+ଣ,ତ୍ରିମ) ଅସ୍ୱାଭାବିକ, କାଳ୍ପନିକ, ମନଗଢ଼ା, ଫନ୍ଦେଇ, ଅବିଶ୍ୱସ୍ତ, ନକଲବାହ୍ୟ, ଜାଲ୍, ଭେଜାଲ, ଅଯଥାର୍ଥ, ପୌଷ୍ୟ, ଦତ୍ତକ (ପୁତ୍ର), (ଗ୍ରା.ବି) ମିଥ୍ୟାମକଦ୍ଦମା, ଷଡ଼ଯନ୍ତ୍ର ।

କୃତ୍ରିମଦନ୍ତ—କ୍ଲୀ. ବି. (କ.ଧା) ନକଲଦାନ୍ତ ।

କୃତ୍ରିମଧୂପ—ପୁଂ. ବି. (କ.ଧା) ଧୂପ, ଗୁଗ୍ଗୁଳ, ଲବଣବିଶେଷ ।
କୃତ୍ରିମଧୂପକ—ପୁଂ. ବି. ମିଶ୍ରିତଗନ୍ଧଦ୍ରବ୍ୟ ବିଶେଷ ।
କୃତ୍ରିମପୁତ୍ର—ପୁଂ. ବି. (କ.ଧା) ପୋଷ୍ୟପୁତ୍ର, ପୋଷିଆଁ ପୁଅ, ବସନାଦି ନିର୍ମିତ କୃତ୍ରିମ ପୁତ୍ତଳିକା ।
କୃତ୍ରିମ ପୁତ୍ରକ—ପୁଂ.ବି ପିତୁଳା, କଣ୍ଢେଇ ।
କୃତ୍ରିମବନ—କ୍ଳୀ. ବି. (କ.ଧା) କ୍ରୀଡ଼ାବନ ଉଦ୍ୟାନ, ବଗିଚ୍ଚ ।
କୃତ୍ରିମରାଶି—ପୁଂ. ବି. (କ.ଧା) ଗୁଣନଜାତ ରାଶି ବା ସଂଖ୍ୟା, ଗୁଣଫଳ ।
କୃତ୍ରିମା—ସ୍ତ୍ରୀ. ବିଂ. ପରର ଅନିଷ୍ଟଚିନ୍ତା କରିବା ବ୍ୟକ୍ତି, ଯେ ଜାଲ୍ କରେ, ଯେ ମିଥ୍ୟାମକଦ୍ଦମା ସୃଷ୍ଟିକରେ ।
କୃତ୍ରିମାଞ୍ଜନ—ବି. ଆୟୁର୍ବେଦୋକ୍ତ ସ୍ୱର ପ୍ରକାର ଅଞ୍ଜନମଧ୍ୟରୁ ଏକପ୍ରକାର ଅଞ୍ଜନ
କୃତ୍ୱରୀ—ସ୍ତ୍ରୀ. ବିଂ. କାର୍ଯ୍ୟକାରଣୀ ।
କୃତ୍ୱା—ପୁଂ.ବିଂ. କାର୍ଯ୍ୟକାରୀ, କର୍ମବାନ୍, (ଅବ୍ୟ) କାର୍ଯ୍ୟ ସାଧନକର, କାର୍ଯ୍ୟକରସାର । [ କନ୍ୟା ।
କୃତ୍ୱୀ—ସ୍ତ୍ରୀ. ବିଂ. ବ୍ୟାସପୁତ୍ର ଶୁକଦେବଙ୍କ
କୃତ୍ୱୀ—ପୁଂ.ବିଂ.ଯୁଦ୍ଧକର୍ମକୁଶଳ, ଯୋଦ୍ଧା, କର୍ତ୍ତବ୍ୟ । [ ସମୂହ ।
କୃତ୍ସ—ବି. (କୃତ୍+କ, ସ)ଜଳ, ପାପ-
କୃତ୍ସ୍ନ—ବିଂ. (କୃତ୍+କ,ସ୍ନ) ସମୁଦାୟ, ସକଳ,(ବି) ପାର୍ଶ୍ୱ,ପିଣ୍ଡ, ପେଟ,ଜଳ ।
କୃତ୍ସ୍ନକ-ବିଂ.ଅବ୍ୟ. ସମୁଦାୟ, ପ୍ରତ୍ୟେକ ।
କୃତ୍ସ୍ନବିତ୍—ପୁଂ. ବିଂ. (କୃତ୍ସ୍ନ+ବିଦ+କ୍ୱିପ୍) ସର୍ବଜ୍ଞ ।
କୃତ୍ସ୍ନଶଃ—ଅବ୍ୟ. ସମ୍ପୂର୍ଣ୍ଣରୂପେ ।
କୃତ୍ସ୍ନହୃଦୟ—କ୍ଳୀ. ବି. (କ.ଧା) ସମସ୍ତ ହୃଦୟ ।
କୃତ୍ସ୍ନାୟତ—ବିଂ. ସମ୍ପୂର୍ଣ୍ଣରୂପେ ବିସ୍ତୃତ ।
କୃଦନ୍ତ—ପୁଂ.ବିଂ. (କୃତ୍+ଅନ୍ତ)ବ.ବ୍ରୀ, କୃତ୍ପ୍ରତ୍ୟୟକର ଯେଉଁ ଶବ୍ଦ ନିଷ୍ପନ୍ନ ହୋଇଅଛି ।
କୃଦନ୍ତପଦ—ବି. କୃତ୍ପ୍ରତ୍ୟୟାନ୍ତ ଶବ୍ଦ ।
କୃଦନ୍ତପ୍ରକରଣ—ବି. କୃତ୍ପ୍ରତ୍ୟୟ ସମ୍ବନ୍ଧରେ ଆଲୋଚନା ହୋଇଥିବା ବ୍ୟାକରଣର ଅଂଶ ।
କୃନ୍ଦର—କ୍ଳୀ. ବି. (କୃତ୍+ଅର) ଗୃହ, ଭଣ୍ଡାର, ଉଦର, ପେଟ, ପାପବିଶେଷ, ଧାନ୍ୟାଗାର, ଗୋଲା ।
କୃଧୁ—ବିଂ. କ୍ଷୁଦ୍ର, ଅଳ୍ପ, ହ୍ରସ୍ୱ ।
କୃଧୁକ—ବିଂ. ଅଳ୍ପ, ହ୍ରସ୍ୱ । (ଛୋଟ ।
କୃଧୁକର୍ଣ୍ଣ—ପୁଂ.ବିଂ. ଯାହାର କାନଦୁଇଟି
କୃନ୍ତନ—କ୍ଳୀ. ବି. ଭାଗ, ଅଂଶ, ଛେଦନ, ଲଙ୍ଗଳ ।
କୃନ୍ତନ—କ୍ଳୀ. ବି. (କୃତ୍+ଣ, ଅନ) ଛେଦନ, କର୍ତ୍ତନ ସିତାର ବଜାଇବା ସମୟରେ ବାମହାତରେ ତାରି ଟିପି ଛାଡ଼ିଦେବାକର୍ମ ।
କୃନ୍ତନକାରୀ—ପୁଂ. ବିଂ. (କୃନ୍ତନ+କୃ+କ,ଇନ୍) କର୍ତ୍ତନକାରୀ, ଛେଦନଶୀଳ, ଛେଦନ (ସ୍ତ୍ରୀ) କୃନ୍ତନ କାରଣୀ ।
କୃନ୍ତନି—ସ୍ତ୍ରୀ. ବି. (କୃତ୍+ଅନ+ଇ) ଛେଦନାସ୍ତ୍ର, ଛେଦନୀ, କଇଞ୍ଚି, ଛୁରୀ ।
କୃନ୍ତନିକା—ସ୍ତ୍ରୀ ବି. କୃନ୍ତନ+କ+ଆ) ଛୁରିକା, ଛୁରୀ, କଇଞ୍ଚି, କତୀ ।
କୃପ୍—(ଧାତୁ)ଦୟାକରିବା,ଦୁର୍ବଳହେବା ଦୁଃଖକରିବା ପାରଗହେବା ।
କୃପ୍—ସ୍ତ୍ରୀ.ବି. ସୁନ୍ଦରଆକୃତି, ସୌନ୍ଦର୍ଯ୍ୟ, କଳ୍ପନା ।
କୃପ—ପୁଂ.ବି. (କୃପ୍+ଅ) ଅଶ୍ୱତ୍ଥାମାଙ୍କ ମାମୁ, ବ୍ୟାସଦେବ, ଦେବସଖ ଇନ୍ଦ୍ରଙ୍କ ବନ୍ଧୁ,ଶରଦ୍ୱାନ୍‌ଋଷିଙ୍କ ପୁତ୍ର, ଗୌତମଙ୍କ ପୁତ୍ର ।
କୃପଣ—ପୁଂ.ବି. (କୃପ+କ,ଅନ) ଦୀନ, ଅଦାତା, ଲୋଭୀ, କ୍ଷୁଦ୍ର, କାମୀ,ବ୍ୟସ୍ତ-କାତର, କୁଣ୍ଠିତ, ଅନୁଦାର, ନୀଚ, କୁତ୍ସିତ, (ପୁଂ.ବି) କୃମି, (କ୍ଳୀ) ଦୈନ୍ୟ ଦୟା, ଅନୁକମ୍ପା, (ସ୍ତ୍ରୀ) କୃପଣା ।
କୃପଣକାରୀ—ବିଂ. ଯେ କାହା ଅଭିପ୍ରାୟ ପ୍ରକାଶ କରିଅଛି ।
କୃପଣତା—ସ୍ତ୍ରୀ. ବି. ବ୍ୟୟକୁଣ୍ଠା ।
କୃପଣଧୀ—ବିଂ.କ୍ଷୁଦ୍ରମନା,ନୀଚମନା ।
କୃପଣବତ୍ସଳ—ପୁଂ. ବିଂ. ଦୟାଳୁ, ଦରିଦ୍ରର ଦୁଃଖମୋଚନେ ତତ୍ପର ।
କୃପଣୀ—ପୁଂ. ବି. କୃପଣତାଯୁକ୍ତ, ଦୀନ, ଗରିବ, ଲୋଭୀ ।
କୃପଣ୍ୟ—ପୁଂ ବି. ସ୍ତୋତା,ଯେ ସ୍ତବକରେ, ଯେ ଗୁଣଗାନ କରେ ।
କୃପନୀଳ—ବିଂ. କର୍ମସ୍ଥାନ ।
କୃପା—ସ୍ତ୍ରୀ.ବି. ( କୃପ୍+ଅ,ଆ ) ଦୟା, ଅନୁଗ୍ରହ, ସ୍ନେହ, ସହାନୁଭୂତି, କରୁଣା, ନଦୀବିଶେଷ ।
କୃପାକଟାକ୍ଷ—କ୍ଳୀ. ବି. (କ.ଧା)ଦୟାପୂର୍ଣ୍ଣ ଈଷତ୍‌ଦୃଷ୍ଟି, ଦୟା, ଅନୁଗ୍ରହ ।
କୃପାକର—ପୁଂ.ବିଂ. ଦୟାଳୁ, ସ୍ନେହବାନ୍ ।
କୃପାଚାର୍ଯ୍ୟ—ବି. (ନାମ) ଅଶ୍ୱତ୍ଥାମାଙ୍କ ମାମୁଁ, ଦ୍ରୋଣାଚାର୍ଯ୍ୟଙ୍କ ଶଳା ।
କୃପାଣ—ପୁଂ. ବି. (କୃପ୍+ଅନ) ଖଡ୍ଗ, ଖଣ୍ଡା, କରବାଳ, ଛୋରା, ଛୁରୀ, କଟୁରି ।
କୃପାଣକ—ପୁଂ.ବି.(କୃପାଣ+କ)ଖଡ୍ଗ
କୃପାଣଦ୍ୱିତୀୟ—ପୁଂ. ବିଂ. (ବ.ବ୍ରୀ) ଅସି ଯାହାର ଏକମାତ୍ର ସଙ୍ଗୀ ।
କୃପାଣପାଣି—ପୁଂ. ବିଂ. (ବ.ବ୍ରୀ)ଖଡ୍ଗହସ୍ତ, ଅସିଧାରୀ ।
କୃପାଣିକା—ସ୍ତ୍ରୀ. ବି. (କୃପାଣିକ+ଆ) ଛୁରିକା, ଛୋଟଖଣ୍ଡା, ଛୁରି, କଟୁରି ।
କୃପାଣୀ—ସ୍ତ୍ରୀ.ବି. (କୃପାଣ+ଈ)କର୍ତ୍ତରୀ, କଚୁରି, ଛୁରୀ ।
କୃପାଦୃଷ୍ଟି—ସ୍ତ୍ରୀ.ବି. (କ.ଧା) ଦୟାଦୃଷ୍ଟି ଦୟାପୂର୍ଣ୍ଣଦୃଷ୍ଟି ।
କୃପାଦ୍ୱୈତ—ପୁଂ.ବି. ଯୁଦ୍ଧଭେଦ ।
କୃପାନିଧାନ—ବି. ( ୬ତତ୍ପୁ ) କୃପାନିଧି (ଦେଖ) ।
କୃପାନିଧି—ପୁଂ.ବି. ଦୟାସାଗର, ଯୋଗ୍ୟ ବ୍ୟକ୍ତି, (ବିଂ)ଦୟାବାନ୍, ଦୟାଶୀଳ ।
କୃପାନେତ୍ର—କ୍ଳୀ. ବି.(କ.ଧା)କୃପାକଟାକ୍ଷ କରୁଣାନୟନ ।
କୃପାନ୍ୱିତ—ପୁଂ.ବିଂ. (୩ତତ୍ପୁ) ଦୟାଳୁ, କୃପାଳୁ, (ସ୍ତ୍ରୀ) କୃପାନ୍ୱିତା ।
କୃପାପାତ୍ର—ପୁଂ.ବି. ଜନୈକ ଗ୍ରନ୍ଥକାର, ଦୟାର ଯୋଗ୍ୟ ବ୍ୟକ୍ତି ।
କୃପାଭିକ୍ଷା—ବି.(୬ତତ୍ପୁ)ଅନୁଗ୍ରହପ୍ରାର୍ଥନା ।

କୃପାମୟ—ପୁଂ. ବିଂ. ( କୃପା + ମୟ ) କୃପାବାନ୍ (ଦେଖ) ।
କୃପାମୟୀ—ସ୍ତ୍ରୀ. ବିଂ. (କୃପାମୟ + ଈ) କୃପାମୟର ସ୍ତ୍ରୀଲିଙ୍ଗ,(ବି)ଦୁର୍ଗାଙ୍କର ନାମ
କୃପାରାମ—ପୁଂ. ବି. ବିଖ୍ୟାତ ସଂସ୍କୃତ ଗ୍ରନ୍ଥକାର । [କୃପାବାନ୍ ।
କୃପାଳୁ—ପୁଂ.ବିଂ.(କୃପା + ଆଳୁ)ଦୟାଳୁ,
କୃପାବଲୋକନ—କ୍ଳୀ. ବି. ( ୬ତତ୍ ) କୃପାଦୃଷ୍ଟି, କରୁଣାକଟାକ୍ଷ ।
କୃପାବାନ୍—ପୁଂ. ବିଂ. (କୃପା + ବତ୍) ଦୟାଳୁ, କରୁଣାମୟ,(ସ୍ତ୍ରୀ) କୃପାବତୀ ।
କୃପାସାଗର—ବି.ବିଂ. କୃପାନିଧି(ଦେଖ)
କୃପସିନ୍ଧୁ—ଗ୍ରା. ପୁଂ. ବି. ସିଦ୍ଧକବି ବଳରାମଦାସ ।
କୃପାସିନ୍ଧୁ—ପୁଂ. ବି. ଦୟାସାଗର (ବିଂ), ଦୟାମୟ ।
କୃପାସିନ୍ଧୁଦାସ—ପୁଂ.ବି. ପ୍ରସିଦ୍ଧଉତ୍କଳୀୟ ଭକ୍ତ କବିବିଶେଷ ।
କୃପୀ—ସ୍ତ୍ରୀ.ବି.(କୃପ + ଈ)ଦ୍ରୋଣାଚାର୍ଯ୍ୟଙ୍କ ପତ୍ନୀ, ଅଶ୍ୱତ୍ଥାମାଙ୍କ ମାତା ।
କୃପୀଟ—କ୍ଳୀ. ବି.(କୃପ୍ + ଈଟ)ଉଦର, ଜଳ, ଜଙ୍ଗଲ, ଗର୍ଭ, କାଷ୍ଠ, ଜାଳେଣି-କାଠ, ବନ ।
କୃପୀଟପାଳ—ପୁଂ.ବି.(କୃପୀଟ + ପାଳ + କ.ଅ)ସମୁଦ୍ର,ପବନ, ବାୟୁ, ନୌକାର ଆହୁଲା ।
କୃପୀଟଯୋନି—ପୁଂ.ବି.(କୃପୀଟ + ଯୋନି) ବ.ବ୍ରୀ, ଅଗ୍ନି, ବୈଶ୍ୱାନର ।
କୃପୀପତି—ପୁଂ. ବି. ଦ୍ରୋଣାଚାର୍ଯ୍ୟ ।
କୃପୀପୁତ୍ର, କୃପୀସୁତ—ପୁଂ. ବି.ଅଶ୍ୱତ୍ଥମା
କୃମି—ପୁଂ. ବି. (କ୍ରମ + ଇ)କୀଟ,ଜୀବ, ଲାକ୍ଷା, ପୋକ, ଗଧ, ରୋଗବିଶେଷ, ଉଦର ଜାତରୋଗ,ତସର ବା ରେଶମ-ପୋକ, ବୁଢ଼ିଆଣୀ, ଗ୍ରହଣର ଭାଇ ।
କୃମିକ—ପୁଂ.ବି. (କୃମି + କ)କୃମି କୀଟ, କୃଷ୍ଣସର୍ପ, ଗୁଆ, କମୁକ ।
କୃମିକଣ୍ଟକ—କ୍ଳୀ ବି.ବିଡ଼ଙ୍ଗ,ଯଜ୍ଞଡ଼ୁମ୍ବୁର, ଚକ୍ରାଙ୍ଗ, ଚିତା ।
କୃମିକର—ପୁଂ. ବି. (କୃମି + ଅ) କୀଟ ବିଶେଷ ।
କୃମିକର୍ଣ୍ଣ,କୃମିକର୍ଣ୍ଣକ—ପୁଂ.ବି.କର୍ଣ୍ଣରୋଗ ବିଶେଷ, କାନରେ ଜନ୍ମିବା ପୋକ ।
କୃମିକୋଷ,କୃମିକୋଷ—ପୁଂ.ବି.(୬ତତ୍) ଫଳବିଶେଷ, ମାଜୁଫଳ, ରେଶମ ପୋକଙ୍କ କୋଶୀ ।
କୃମିକୋଷୋତ୍ଥ—ବିଂ. (କୃମିକୋଷ + ଉଦ୍ + ସ୍ଥା + କ.ଅ) କୌଷେୟ ବସ୍ତ୍ର, ରେଶମି ଲୁଗା ।
କୃମିଗ୍ରନ୍ଥି—ପୁଂ.ବି.ସନ୍ଧିଗତ ରୋଗବିଶେଷ
କୃମିଘାତକ—ପୁଂ.ବିଂ. (୬ତତ୍)ଯାହା ଦ୍ୱାରା କୃମି ନଷ୍ଟ ହୁଅନ୍ତି (ଔଷଧ),(ବି) ବିଡ଼ଙ୍ଗ, ବାଇବିଡ଼ଙ୍ଗ ।
କୃମିଘାତୀ—ବିଂ. ( କୃମି + ହନ୍ + ଈ ) କୃମିନାଶକ, (ପୁଂ.ବି.)ବିଡ଼ଙ୍ଗ ।
କୃମିଘ୍ନ—ପୁଂ. ବି. (କୃମି + ହନ୍ + ଅ) ବିଡ଼ଙ୍ଗ, ପଳାଣ୍ଡୁ, ପିଆଜ, ମନ୍ଦାର, ଭାଲିଆ,(ବିଂ) କୃମିନାଶକ,କୀଟମାରକ ।
କୃମିଘ୍ନା—ସ୍ତ୍ରୀ. ବି. ହଳଦୀ, ହରଡ଼ା ।
କୃମିଘ୍ନୀ—ସ୍ତ୍ରୀ.ବି.(କୃମିଘ୍ନ + ଈ)ଧୂମପତ୍ରା-ବୃକ୍ଷ, ବିଡ଼ଙ୍ଗ, ହରିଦ୍ରା, ହଳଦୀ ।
କୃମିଜ—କ୍ଳୀ. ବି. (କୃମି + ଜନ୍ + ଅ) ଅଗୁରୁକାଠ, (ବିଂ) କୃମିରୁ ଜାତ, କୀଟୋଦ୍ଭବ, (ସ୍ତ୍ରୀ) କୃମିଜା ।
କୃମିଜଗ୍ଧ—କ୍ଳୀ. ବି. ଅଗୁରୁଚନ୍ଦନ ।
କୃମିଜଲଜ—ପୁଂ. ବି. କୃମିଶଙ୍ଖ ।
କୃମିଜା—ସ୍ତ୍ରୀ. ବି. ଲାକ୍ଷା, ଲାଖ ।
କୃମିଣ—ବିଂ. ( କୃମି + ନ ) କୃମିଯୁକ୍ତ, କୃମିପୂର୍ଣ୍ଣ । [ଦାନ୍ତବନ୍ଧ.ରୋଗ ।
କୃମିଦନ୍ତ,କୃମିଦନ୍ତକ—ପୁଂ.ବି.ଦନ୍ତଶୂଳ,
କୃମିନାଶକ—ବିଂ. (୬ତତ୍)କୃମିଘାତକ (ଦେଖ) । [ଉଇହୁଙ୍କା ।
କୃମିପର୍ବତ—ପୁଂ.ବି.(ମଧ୍ୟ,କ.ଧା)ବଲ୍ମୀକ,
କୃମିଫଳ—ପୁଂ.ବି.(ବ.ବ୍ରୀ)ଯଜ୍ଞଡ଼ୁମ୍ବୁର ଗଛ, ଉଦୁମ୍ବରଗଛ ।
କୃମିବର୍ଦ୍ଧକ—ବିଂ. ଯେଉଁ ଖାଦ୍ୟଦ୍ୱାରା ପେଟରେ ବେଶି କୃମି ହୁଅନ୍ତି ।
କୃମିଭକ୍ଷ—ପୁଂ. ବି. ନରକବିଶେଷ ।
କୃମିଭୋଜନ—ପୁଂ.ବି. ନରକବିଶେଷ ।
କୃମିମାନ୍—ପୁଂ. ବିଂ. ( କୃମି + ମତୁ ) କୃମିଯୁକ୍ତ, କୃମିବିଶିଷ୍ଟ ।
କୃମିରାଗ—ବିଂ. (କୃମି + ରାଗ) ଲାକ୍ଷା-ରଞ୍ଜିତ, ନାଲିରଙ୍ଗ କରାଯାଇଥିବା ।
କୃମିରୁ—ପୁଂ.ବି କୃମି ଯୋଗୁଁ ରୋଗ ।
କୃମିଲ—ବିଂ. (କୃମି + ଲ) କୃମିଯୁକ୍ତ, (ପୁଂ.ବି) ଗୋଟିଏ ପ୍ରାଚୀନ ଜନପଦ ।
କୃମିଲା—ସ୍ତ୍ରୀ. ବି. (କୃମି + ଲା + ଅ + ଆ)ବହୁପ୍ରସବିନୀ ସ୍ତ୍ରୀ, ଯେଉଁ ସ୍ତ୍ରୀ ବେଶି ସନ୍ତାନ ଜନ୍ମ କରେ ।
କୃମିଲାଶ୍ୱ—ପୁଂ. ବି. ଆଜମୀର ବଂଶୀୟ ଜଣେ ରାଜା ।
କୃମିଲିକା—ସ୍ତ୍ରୀ.ବି. (କୃମିଲ + ଇକ + ଆ) ରକ୍ତବର୍ଣ୍ଣ କୌଷେୟ ବସ୍ତ୍ର, ଲାକ୍ଷା-ରଞ୍ଜିତ ବସ୍ତ୍ର, ସାଲୁ କନା ।
କୃମିବୃକ୍ଷ—ପୁଂ. ବି. କୋଷାମ୍ରବୃକ୍ଷ ।
କୃମିଶଙ୍ଖ—ପୁଂ. ବି. ଶଙ୍ଖବିଶେଷ ।
କୃମିଶତ୍ରୁ—ପୁଂ.ବି. ବିଡ଼ଙ୍ଗ, ରକ୍ତପୁଷ୍ପକ ।
କୃମିଶୁକ୍ତି—ସ୍ତ୍ରୀ. ବି. ଜଳଶୁକ୍ତି, ଶାମୁକା ।
କୃମିଶୈଳ,କୃମିଶୈଳକ—ପୁଂ. ବି.(କୃମି + ଶୈଳ)କ.ଧା, ବଲ୍ମୀକ,ଉଇହୁଙ୍କା ।
କୃମିସରସ—ସ୍ତ୍ରୀ.ବି.ବିଷାକ୍ତକୀଟବିଶେଷ ।
କୃମିସେନ—ପୁଂ. ବି. ଯକ୍ଷଭେଦ ।
କୃମିହର । ପୁଂ. ବି. (କୃମି + ହୃ + ଅ) ବିଡ଼ଙ୍ଗ ।
କୃମିହା—ପୁଂ.ବି.କୃମିହର, ବିଡ଼ଙ୍ଗ ।
କୃମୀଳକ—ପୁଂ. ବି. (କୃମି + ଇର + ଅକ)ବନମୁଦ୍ଗ, ବଣମୁଗ ।
କୃମୀଳିକା—ସ୍ତ୍ରୀ.ବି.ଧଳାଶିମ୍ବ, ଶୁକ୍ଲଶିମ୍ବ ।
କୃମୀଶ—ପୁଂ. ବି. ନରକଭେଦ ।
କୃମୁକ—ପୁଂ.ବି. ଗୁବାକବୃକ୍ଷ,ଗୁଆଗଛ ।
କୃବି—ପୁଂ.ବି (କୃ + ବି)ଲୁଗା ବୁଣିବାର ଯନ୍ତ୍ର, ତନ୍ତ ।
କୃଶ୍—(ଧାତୁ)ଦୁର୍ବଳହେବା, (ତନୂପଣ) କମେ କ୍ଷୟ ହେବା, କମାଇବା ।
କୃଶ—ବିଂ. (କୃଶ + ଅ) ନଗଣ୍ୟ, କ୍ଷୁଦ୍ର କ୍ଷୀଣ, ଦୁର୍ବଳ, ପାତଳା ସରୁଆ, ଅଳ୍ପ,

ସୂକ୍ଷ୍ମ, ଅସମର୍ଥ, ଦରିଦ୍ର, ମନ୍ଦବୀର୍ଯ୍ୟ, (ପୁଂ.ବ) ବିଷ୍ଣୁ, ଜଣେ ଋଷିକୁମାର, ଐରାବତକୁଳୋତ୍ପନ୍ନ ନାଗବିଶେଷ ।
କୃଶକଟୀ—ପୁଂ.ସ୍ତ୍ରୀ ବିଂ. (ବ.ବ୍ରୀ)କୃଶମଧ୍ୟ (ଦେଖ) । [ଗୋରୁ ଅଛି ।
କୃଶଗୁ—ପୁଂ.ବିଂ.(ବ.ବ୍ରୀ) ଯାହାର କ୍ଷୀଣ
କୃଶଣ—ବ.(କୃଶ + ଖ ଅନ)ନାଭିଦେଶ
କୃଶତା—ସ୍ତ୍ରୀ.ବ. କ୍ଷୀଣତା,କୃଶତ୍ୱ,କୃଶର ଧର୍ମ ।
କୃଶନ—କ୍ଳୀ. ବ. ସୁବର୍ଣ୍ଣ, ସ୍ୱର୍ଣ୍ଣ ।
କୃଶନାବାନ୍—ପୁଂ. ବିଂ. ସ୍ୱର୍ଣ୍ଣମୟ ନାନା ଆଭରଣଯୁକ୍ତ ।
କଶନୀ—ବିଂ. (କୃଶନ୍ + ଇନ୍) ସୁବର୍ଣ୍ଣ-ଅଳଙ୍କାରବିଶିଷ୍ଟ ।
କୃଶଭୃତ୍ୟ—ପୁଂ. ବିଂ. (ବ.ବ୍ରୀ) ଯେଉଁ ବ୍ୟକ୍ତି ଭୃତ୍ୟମାନଙ୍କୁ ଅତି ସାମାନ୍ୟପରିମାଣରେ ଖାଇବାକୁ ଦିଏ ।
କୃଶମଧ୍ୟ—ପୁଂ.ବିଂ.(ବ.ବ୍ରୀ)ଯାହା ଦେହର ମଧ୍ୟ ଅଂଶ ସରୁ, କୃଶକଟୀ ।
କୃଶର—ପୁଂ.ବ. (କୃଶ + ର + ଅ)ତିଳ-ମିଶ୍ରିତାନ୍ନ, ଖିସର, ଖେଚୁଡ଼ୀ ।
କୃଶରା—ସ୍ତ୍ରୀ.ବ.(କୃଶର + ଆ) ଖେଚୁଡ଼ୀ କୃଶର (ଦେଖ) ।
କୃଶଲା—ସ୍ତ୍ରୀ. ବ.(କୃଶ + ଲା + ଅ + ଆ) କେଶ, ବାଳ, କୁନ୍ତଳ ।
କୃଶଶାଖ—ପୁଂ. ବ. ପର୍ପଟ, ପାମ୍ପଡ଼ା, କ୍ଷୁଦ୍ର ଶାଖାବିଶିଷ୍ଟ ।
କୃଶା—ସ୍ତ୍ରୀ.ବ. କୃଶର ସ୍ତ୍ରୀଲିଙ୍ଗ, (ଗ୍ରା.ବ) କ୍ଷୀଣ, ବଲ୍ଲୁପ୍ତ, ବିନଷ୍ଟ ।
କୃଶାକୁ—ପୁଂ. ବ. ଅଗ୍ନି ।
କୃଶାକ୍ଷ—ବ. (ବ.ବ୍ରୀ)ମାଙ୍କଡ଼ସା ।
କୃଶାଙ୍ଗ—ପୁଂ. ବ (ବ.ବ୍ରୀ) କ୍ଷୀଣକାୟ, କ୍ଷୀଣ ଦେହ ବିଶିଷ୍ଟ,(ବ) ଶିବ, (ସ୍ତ୍ରୀ) କୃଶାଙ୍ଗୀ, (ପୁଂ.ବ.) ଲୂତା, ମାକଡ଼ସା ।
କୃଶାଙ୍ଗୀ—ସ୍ତ୍ରୀ. ବ. ପ୍ରିୟଙ୍ଗୁଲତା, (ବିଂ. ବ.ବ୍ରୀ) କ୍ଷୀଣାଙ୍ଗୀ, କ୍ଷୀଣକାୟା ।
କୃଶାଣ୍ଡ-ପୁଂ.ବ.(ବ.ବ୍ରୀ)ଅଗ୍ନି,ବୈଶ୍ୱାନର
କୃଶାନୁ—ପୁଂ. ବ. (କୃଶ + ଆନୁ)ଅଗ୍ନି, ଚିତ୍ରକବୃକ୍ଷ, ସୋମପାଳକ, ବାମପାର୍ଶ୍ୱସ୍ଥ ଉଷ୍ଣୀଧାରକ, ଧଳାଚିତାଗଛ ।
କୃଶାନୁକ—ବିଂ. ଅଗ୍ନିଯୁକ୍ତ ।
କୃଶାନୁରେତଃ—ପୁଂ. ବ. (କୃଶାନୁ + ରେତସ୍)ମହାଦେବ, (କ୍ଳୀ) ଅଗ୍ନିଙ୍କର ତେଜ ।
କୃଶାଶ୍ୱ-ପୁଂ.ବ.ମୁନିବିଶେଷ, ବିଶ୍ୱାମିତ୍ରଙ୍କ ଗୁରୁ, ଦକ୍ଷଙ୍କର ଜାମାତା, (ବିଂ.ବବ୍ରୀ) ଯାହାର କ୍ଷୁଦ୍ର ଅଶ୍ୱ ଅଛି ।
କୃଶାଶ୍ୱୀ—ପୁଂ. ବ. (କୃଶାଶ୍ୱ + ଇନ) ନାଟୁଆ, ନର୍ତ୍ତକ, ନଟ ।
କୃଶୋଦର—ପୁଂ. ବିଂ. (ବ.ବ୍ରୀ) କ୍ଷୀଣ-କଟୀଯୁକ୍ତ,(ବ)କ୍ଷୀଣଉଦର,ସରୁଆପେଟ
କୃଶୋଦରୀ—ସ୍ତ୍ରୀ.ବ. କ୍ଷୀଣୋଦରବିଶିଷ୍ଟା ସ୍ତ୍ରୀ, କ୍ଷୀଣକଟୀଯୁକ୍ତା ସ୍ତ୍ରୀ ।
କୃଶିକା—ସ୍ତ୍ରୀ. ବ. ଆଖୁକର୍ଣ୍ଣୀଲତା, ମୂଷାକାନଲତା ।
କୃଷ—(ଧାତୁ) ହଳକରିବା, ଚାଷକରିବା, ଟାଣିବା, ଆପଣାଆଡ଼କୁ ଟାଣିବା,ସେନା ଚାଳନ କରିବା, ଧନୁକୁ ଲୁଆଁଇବା, ପରାସ୍ତକରିବା, କଷ୍ଟଦେବା ।
କୃଷକ—ପୁଂ. ବ. (କୃଷ୍ + କ) ଚଷା, ବଳଦ, ବୃଷ, (କ୍ଳୀ) ଫାଳ, ଲଙ୍ଗଳ, (ବିଂ) କର୍ଷକ, ଆକର୍ଷଣକାରୀ ।
କୃଷର—ପୁଂ. ବ. ଖେଚୁଡ଼ୀ ।
କୃଷାଣ—ବ. (କୃଷ୍ + ଆନ) କୃଷକ, ଚଷା, କର୍ଷଣ, ହଳକରିବା ।
କୃଷାଣ୍ଡୁ—ପୁଂ. ବ. (କୃଷ୍ + ଆନୁ) ଅଗ୍ନି
କୃଷି—ସ୍ତ୍ରୀ. ବ.(କୃଷ୍ + ଖଇ) କୃଷିକର୍ମ, କୃଷିଦ୍ୱାରା ଉତ୍ପାଦିତଫସଲ,ବୈଶ୍ୟବୃତ୍ତି, ଚାଷବାସ,ପୃଥିବୀ,(ଗ୍ରା.ବ.)କ୍ଷେତ୍ର, ଭୂମି
କୃଷିକ—ପୁଂ. ବ. (କୃଷ୍ + କ + ଇକ) କୃଷକ, (ଦେଖ) ।
କୃଷିକର୍ମ—କ୍ଳୀ.ବ. ଚାଷକାମ,ଚାଷବାସ ।
କୃଷିଜାତ—ବିଂ. (ତତ୍ପୁ) ଚାଷହୋଇ ଆମଦାନି କରାଯିବା, କୃଷିଦ୍ୱାରାଉତ୍ପନ୍ନ. (ଫସଲ ଓ ଶସ୍ୟାଦି) ।
କୃଷିଜୀବୀ—ପୁଂ.ବ.(କୃଷି + ଜୀବ୍ + ଇନ) ଯେଉଁ ବ୍ୟକ୍ତି ଚାଷକରି ଜୀବନ ଧାରଣ କରେ, କୃଷକ, ଚାଷୀ ।
କୃଷ୍ଣର—ପୁ. ବ. ଶିବ ।
କୃଷ୍ଣ—ବ.(କୃଷ୍ + ଣ)ଶ୍ରୀଭଗବାନ,ବିଷ୍ଣୁ, ପରଂବ୍ରହ୍ମ, ବେଦବ୍ୟାସ, ଅର୍ଜ୍ଜୁନ, ମଧ୍ୟମ ପାଣ୍ଡବ, କାକ, କୋକିଳ, କରଞ୍ଜଗଛ, ନୀଳବର୍ଣ୍ଣ, ମରିଚ, ଲୌହ,କାଳାଗୁରୁ, ନୀଳାଞ୍ଜନ, ନୀଳାବୃକ୍ଷ, ପିପ୍ପଳୀ, ପାପ, ଦ୍ରାକ୍ଷା, ନୀଳପୁନର୍ଣ୍ଣବା,କୃଷ୍ଣଜୀରା, ଗମ୍ଭାରୀ, କଟୁକା, ସାରିକାବିଶେଷ, ରାଜସର୍ଷପ, ପର୍ପଟୀ କାକୋଳୀ, ସୋମରାଜୀ, ଧାନ-ବିଶେଷ, ଅର୍ଦ୍ଧମାସ, ଏକପକ୍ଷ, ଯେଉଁ ପକ୍ଷରେ ଚନ୍ଦ୍ରଙ୍କର ହ୍ରାସହୁଏ, କୃଷ୍ଣପକ୍ଷା-ଭିମାନୀ ଦେବତା, କୃଷ୍ଣସାର ମୃଗ, ବେଦୋକ୍ତ ଅସୁରବିଶେଷ, ଋଷିବିଶେଷ ଆଖିଡୋଳା,ଜଣେ ନାଗରାଜ,କଳିଯୁଗ, ଅନ୍ଧକାର,ଅଶୁଭକର୍ମ,ଅଗ୍ନି, ଶୂଦ୍ର,ସୀମା ସୁରୁମା, (ବିଂ) କାଳିଆ, କଳା, ମନ୍ଦ ଖଳ, ଗାଢ଼ନୀଳ ଅନ୍ଧକାରମୟ, (ବ୍ୟଙ୍ଗ୍ୟାର୍ଥେ) ଗ୍ରା. ବ. ଅଫିମ ।
କୃଷ୍ଣକ—ପୁଂ. ବ (କୃଷ୍ଣ + କ)କୃଷ୍ଣସର୍ଷପ କଳା ସୋରିଷ, (କ୍ଳୀ. ବ) କୃଷ୍ଣସାର, ଚର୍ମ ।
କୃଷ୍ଣକଥା—ସ୍ତ୍ରୀ. ବ. (ତତ୍ପୁ) କୃଷ୍ଣଲୀଳା, ଶ୍ରୀକୃଷ୍ଣଙ୍କର ଗୁଣ ବର୍ଣ୍ଣନା, ଶ୍ରୀକୃଷ୍ଣ ପ୍ରବର୍ତ୍ତିତ ଧର୍ମକଥା ।
କୃଷ୍ଣକନ୍ଦ—କ୍ଳୀ.ବ. (ବ.ବ୍ରୀ) ରକ୍ତପଦ୍ମ ।
କୃଷ୍ଣକର୍କଟ(କ)—ପୁଂ. ବ.(କ.ଧା) କଳା କଙ୍କଡ଼ା, ମାଣ୍ଡିଆ କଙ୍କଡ଼ା ।
କୃଷ୍ଣକର୍ମ—କ୍ଳୀ. ବ. (କ.ଧା) ଦୁଷ୍କର୍ମ, ପାପ କାର୍ଯ୍ୟ, ବ୍ରଣର ଚିକିତ୍ସା ପ୍ରକ୍ରିୟା-ବିଶେଷ । [ପାପୀ, ଦୋଷୀ ।
କୃଷ୍ଣକର୍ମା—ପୁଂ. ସ୍ତ୍ରୀ. ବିଂ. ଦୁଷ୍କର୍ମାନ୍ୱିତ,
କୃଷ୍ଣକଳି—ପୁଂ. ବ. (ବ.ବ୍ରୀ) ସ୍ୱନାମ ଖ୍ୟାତ ପୁଷ୍ପବୃକ୍ଷବିଶେଷ ।
କୃଷ୍ଣକାକ—ପୁଂ. ବ. (କ.ଧା)ଦ୍ରୋଣ, କାକ, ଡାମରାକାଉ, (ସ୍ତ୍ରୀ. ବ) କାକୀ ।
କୃଷ୍ଣକାୟ—ପୁଂ.ବିଂ. (ବ.ବ୍ରୀ) କୃଷ୍ଣବର୍ଣ୍ଣ ଶରୀର ବିଶିଷ୍ଟ, ଯାହାର ଦେହର ବର୍ଣ୍ଣ କଳା, (ସ୍ତ୍ରୀ) କୃଷ୍ଣକାୟା, (ପୁଂ. ବ) ମହିଷ ।

କୃଷ୍ଣକାଷ୍ଠ—କ୍ଲୀ.ବି. (ବ.ବ୍ରୀ) କଳାଗୁରୁ ।

କୃଷ୍ଣକେଳି—ବି. ଏକ ଜାତୀୟ ଫୁଲଗଛ, ରଙ୍ଗଣୀ ଫୁଲଗଛ ।

କୃଷ୍ଣକୋହଳ—ପୁଂ. ବିଂ. (କୃଷ୍ଣକୋହ + ଲା + ଅ) ଦ୍ୟୁତକ୍ରୀଡ଼କ, ଜୁଆଡ଼ି ।

କୃଷ୍ଣଗଙ୍ଗା-ବି.କୃଷ୍ଣାନଦୀର ନାମବିଶେଷ ।

କୃଷ୍ଣ ଗତି—ପୁଂ.ବି. (ବ.ବ୍ରୀ) ଅଗ୍ନି ।

କୃଷ୍ଣଗନ୍ଧା—ସ୍ତ୍ରୀ.ବି. (ବ.ବ୍ରୀ) ଶୋଭାଞ୍ଜନ ବୃକ୍ଷ, ସଜନା ଗଛ ।

କୃଷ୍ଣଗନ୍ଧିକା—ସ୍ତ୍ରୀ. ବି. ଶୋଭାଞ୍ଜନ ବୃକ୍ଷ

କୃଷ୍ଣଗର୍ଭ—ପୁଂ. ବି. (ବ.ବ୍ରୀ) କଟଫଳ ବୃକ୍ଷ ।

କୃଷ୍ଣଗିରି—ପୁଂ. ବି. ନୀଳଗିରି, (ସ୍ଥା.ବି) ଖଲ୍ଲିକୋଟର ଦକ୍ଷିଣପୂର୍ବରେ ଅବସ୍ଥିତ ଖଲ୍ଲିକୋଟ ରାଜ୍ୟର ଉଚ୍ଚତମ ପର୍ବତ ।

କୃଷ୍ଣଗୀତ-ସ୍ତ୍ରୀ.ବି. (କଧା) କୃଷ୍ଣ ବିଷୟକ ଗାନ ।

କୃଷ୍ଣଗ୍ରୀବ—ତ୍ରି. ବିଂ. (ବ.ବ୍ରୀ)କୃଷ୍ଣ ବର୍ଣ୍ଣ ଗଳଦେଶବିଶିଷ୍ଟ (ଅଜାଦି), (ପୁଂ.ବି) ନୀଳକଣ୍ଠ, ଶିବ ।

କୃଷ୍ଣଚତୁର୍ଦ୍ଦଶୀ—ସ୍ତ୍ରୀ. ବି. (କର୍ମଧା) କୃଷ୍ଣ ପକ୍ଷର ଚତୁର୍ଦ୍ଦଶୀ ତିଥି ।

କୃଷ୍ଣଚନ୍ଦନ - କ୍ଲୀ. ବି. (କ.ଧା) ପୀତ ଚନ୍ଦନ, ହରିଚନ୍ଦନ ।

କୃଷ୍ଣଚନ୍ଦ୍ର - ପୁଂ.ବି.ଚନ୍ଦ୍ର ତୁଲ୍ୟମନୋହର କୃଷ୍ଣ, ବାସୁଦେବ ।

କୃଷ୍ଣଚର—ବି. ଭୂତପୂର୍ବ, କୃଷ୍ଣସମ୍ବନ୍ଧୀୟ ଗବାଦି ।

କୃଷ୍ଣଚୂଡ଼ା - ସ୍ତ୍ରୀ. ବି.(ବ.ବ୍ରୀ) ପୁଷ୍ପବିଶେଷ ବା ତାହାର ଗଛ, ଗୁଞ୍ଜା, କାଇଁଅ ।

କୃଷ୍ଣଚୂଡ଼ିକା - ସ୍ତ୍ରୀ. ବି. କାଇଁଅଲତା, ଗୁଞ୍ଜା ।

କୃଷ୍ଣଚୈତନ୍ୟ—ପୁଂ. ବି. ଚୈତନ୍ୟ ଦେବଙ୍କର ନାମାନ୍ତର ।

କୃଷ୍ଣଛବି—ପୁଂ. ବି. (ବ.ବ୍ରୀ)କଳାବର୍ଣ୍ଣ, କୃଷ୍ଣଙ୍କ ସଦୃଶ ବର୍ଣ୍ଣ ।

କୃଷ୍ଣଜନ୍ମାଷ୍ଟମୀ—ବି. କୃଷ୍ଣାଷ୍ଟମୀ, ଭାଦ୍ରବ କୃଷ୍ଣ ଅଷ୍ଟମୀ, ଏ ଦିନ ଶ୍ରୀକୃଷ୍ଣ ଜନ୍ମ ହୋଇଥିଲେ ।

କୃଷ୍ଣଜୀରକ(ଜୀରା)—ବି. କଳାଜୀରା ।

କୃଷ୍ଣତାମ୍ର—କ୍ଲୀ. ବି. ଗୋଶୀର୍ଷ ଚନ୍ଦନ ।

କୃଷ୍ଣତାର—ପୁଂ. ସ୍ତ୍ରୀ.ବି. କୃଷ୍ଣସାର ମୃଗ, ସାଧାରଣ ହରିଣ ।

କୃଷ୍ଣଦତ୍ତ—ଜଣେ ସଙ୍ଗୀତଶାସ୍ତ୍ରକାର ।

କୃଷ୍ଣଦନ୍ତ—ତ୍ରି. ବିଂ. (ବ.ବ୍ରୀ) କୃଷ୍ଣବର୍ଣ୍ଣ ଦନ୍ତ ବିଶିଷ୍ଟ, କଳା ଦନ୍ତ ଯାହାର(ବି) କାଶ୍ମୀରବୃକ୍ଷ, ଗମ୍ଭାରୀ ଗଛ ।

କୃଷ୍ଣଦଶନ—ବିଂ. (ବ.ବ୍ରୀ) କୃଷ୍ଣଦନ୍ତ ବିଶିଷ୍ଟ ।

କୃଷ୍ଣଦର୍ଶନ—ପୁଂ ବି. ଶଙ୍କରାଚାର୍ଯ୍ୟଙ୍କର (ଜଣେ ଶିଷ୍ୟ ।

କୃଷ୍ଣଦାସ—ଜଣେ ସଂସ୍କୃତ ଅଭିଧାନ ରଚୟିତା ।

କୃଷ୍ଣଦେହ—ତ୍ରି.ବିଂ.(ବ.ବ୍ରୀ)କଳାଦେହ ବିଶିଷ୍ଟ, (ବି) ଭ୍ରମର ।

କୃଷ୍ଣ ଦ୍ୱୈପାୟନ-ପୁଂ.ବି.ବେଦବ୍ୟାସ ।

କୃଷ୍ଣଧତ୍ତୂର-କୃଷ୍ଣଧୃସ୍ତୁର—ପୁଂ.ବି. କନକ, ଧୂତୁରା, କଳାଦୁଦୁରା ।

କୃଷ୍ଣଧନ କ୍ଲୀ. ବି. ନିନ୍ଦିତ ଧନ, କୃଷ୍ଣ ରୂପ ଧନ ।

କୃଷ୍ଣାଧ୍ୱା—ବିଂ. କୃଷ୍ଣବର୍ତ୍ମ (ଦେଖ) ।

କୃଷ୍ଣନାଥ—ସ୍ମୃତିଗ୍ରନ୍ଥର ଜଣେ ବିଖ୍ୟାତ ଟୀକାକାର । [ନାମ ।

କୃଷ୍ଣନାମ—କ୍ଲୀ. ବି. (ଷତତ୍ପୁ) କୃଷ୍ଣଙ୍କର

କୃଷ୍ଣପକ୍ଷ—ପୁଂ. ବି. ଯେଉଁ ପକ୍ଷରେ ଚନ୍ଦ୍ରକ୍ଷୟ ହୁଏ, ଅନ୍ଧାରପକ୍ଷ ।

କୃଷ୍ଣପର୍ଣ୍ଣୀ—ସ୍ତ୍ରୀ. ବି. କଳା ତୁଳସୀ, ପୃଶ୍ନିପର୍ଣ୍ଣୀ । [କୃଷ୍ଣବର୍ଣ୍ଣ ।

କୃଷ୍ଣପବି—ତ୍ରି. ବିଂ. ଯାହାର ଗମନପଥ

କୃଷ୍ଣପାକ ପୁଂ. ବି. କରମର୍ଦ୍ଦ ଗଛ, କରଞ୍ଜ ଗଛ ।

କୃଷ୍ଣପାକଫଳ—ବି.କରମର୍ଦ୍ଦ, କରଞ୍ଜଗଛ ।

କୃଷ୍ଣପିଙ୍ଗଳ—ତ୍ରି.ବିଂ. କଳା ଓ ପିଙ୍ଗଳ (ବର୍ଣ୍ଣ),ସ୍ତ୍ରୀ.ବି) ଦୁର୍ଗା । [ବିଶେଷ ।

କୃଷ୍ଣ ପିଣ୍ଡୀତକ—ପୁଂ. ବି. ବରାହ, ବୃକ୍ଷ-

କୃଷ୍ଣ ପିପୀଲିକା—ସ୍ତ୍ରୀ. ବି. କଳା ପିମ୍ପୁଡ଼ି ।

କୃଷ୍ଣ ପିପୀଲୀ—ସ୍ତ୍ରୀ. ବି. କଳା ପିମ୍ପୁଡ଼ି ।

କୃଷ୍ଣପୁଚ୍ଛ—ପୁଂ. ବି. ରୋହିମାଛ ।

କୃଷ୍ଣପୁଷ୍ପ—ପୁଂ. ବି. କଳା ଧୂତୁରା ଫୁଲ ।

କୃଷ୍ଣପୁଷ୍ପୀ—ସ୍ତ୍ରୀ. ବି. ପ୍ରିୟଙ୍ଗୁ ବୃକ୍ଷ ।

କୃଷ୍ଣପ୍ରାପ୍ତି—ବି. (୬ତତ୍ପୁ) ମୃତ୍ୟୁ,ସ୍ୱର୍ଗ ବା ବୈକୁଣ୍ଠ ଲାଭ ।

କୃଷ୍ଣପ୍ରିୟା—ସ୍ତ୍ରୀ.ବି. (୬ତତ୍ପୁ) ରାଧିକା ।

କୃଷ୍ଣପ୍ସୁତ-ବିଂ.(କୃଷ୍ଣ + ପ୍ର + ଆପ୍ + କ୍ୱିପ୍) କୃଷ୍ଣବର୍ଣ୍ଣ ପ୍ରାପ୍ତ, କୃଷ୍ଣବର୍ଣ୍ଣ ପ୍ରାପକ, ଯେ ଅପରକୁ କୃଷ୍ଣବର୍ଣ୍ଣ କରେ ।

କୃଷ୍ଣଫଳ—ପୁଂ. ବି. କରମର୍ଦ୍ଦ, କରମର୍ଦ୍ଦ, କରଞ୍ଜ ଫଳ ।

କୃଷ୍ଣବଲକ୍ଷ—ପୁଂ.ବି. (କ.ଧା) ନୀଳବର୍ଣ୍ଣ ମିଶ୍ରିତ ଶ୍ୱେତବର୍ଣ୍ଣ,(ବି)କୃଷ୍ଣବର୍ଣ୍ଣବିଶିଷ୍ଟ ।

କୃଷ୍ଣଭକ୍ତ—ବିଂ. (୭ତତ୍ପୁ) ଶ୍ରୀକୃଷ୍ଣଙ୍କ ପ୍ରତି ଭକ୍ତିଯୁକ୍ତ, ଶ୍ରୀକୃଷ୍ଣଉପାସକ, କୃଷ୍ଣାରାଧକ

କୃଷ୍ଣଭକ୍ତି—ବି.(୭ତତ୍)କୃଷ୍ଣଙ୍କଠାରେ ଭକ୍ତି, ଶ୍ରୀକୃଷ୍ଣଙ୍କର ଉପାସନା ।

କୃଷ୍ଣଭସ୍ମ—କ୍ଲୀ. ବି. କୃଷ୍ଣବର୍ଣ୍ଣ ଭସ୍ମ ।

କୃଷ୍ଣଭୂମ—ତ୍ରି.ବି. କୃଷ୍ଣବର୍ଣ୍ଣମୃତ୍ତିକାଯୁକ୍ତ-ଦେଶ ।

କୃଷ୍ଣଭୂମି—ସ୍ତ୍ରୀ. ବି. ସ୍ଥାନ ବିଶେଷ, ଯେଉଁ ସ୍ଥାନର ମାଟି କଳା ।

କୃଷ୍ଣଭୂମିକା—ସ୍ତ୍ରୀ. ବି. (କୃଷ୍ଣ + ଭୂମି + ଜନ୍ + ଅ + ଆ) ଗୋମୂତ୍ରିକା ତୃଣ, (ବିଂ) କୃଷ୍ଣଭୂମିଜାତ ।

କୃଷ୍ଣଭେଦା—ସ୍ତ୍ରୀ. ବି. କଟୁକୀ ।

କୃଷ୍ଣଭେଦିକା—ସ୍ତ୍ରୀ. ବି. କଟୁକୀ ।

କୃଷ୍ଣଭେଦୀ—ସ୍ତ୍ରୀ. ବି. କଟୁକୀ ।

କୃଷ୍ଣଭୋଗୀ--ପୁଂବି. କୃଷ୍ଣସର୍ପ,କାଳିୟସର୍ପ ।

କୃଷ୍ଣମଣ୍ଡଳ—କ୍ଲୀ. ବି. ଚକ୍ଷୁର ଅବୟବ ।

କୃଷ୍ଣମଲ୍ଲିକା—ସ୍ତ୍ରୀ. ବି କଳାତୁଳସୀ ।

କୃଷ୍ଣମିଶ୍ର—ବି. (ନାମ) ପ୍ରବୋଧ ଚନ୍ଦ୍ରୋଦୟ ନାମକ ସଂସ୍କୃତବ୍ୟାକରଣକାର,- ( ଏ ହିନ୍ଦୁକାଳୀୟ ଥିଲେ ) ।

କୃଷ୍ଣମୁଖ—ତ୍ରିଂ.ବିଂ.(ବ.ବ୍ରୀ)କୃଷ୍ଣବର୍ଣ୍ଣମୁଖ ବିଶିଷ୍ଟ, କୃଷ୍ଣବର୍ଣ୍ଣ ଅଗ୍ରଭାଗବିଶିଷ୍ଟ, (ବି) ବାନରଭେଦ, ମାଙ୍କଡ଼ ।

କୃଷ୍ଣମୁଦ୍ଗ—ବି. (କ.ଧା) କଳାମୁଗ ।

କୃଷ୍ଣମୁନି—ବି. ଜନ୍ତୁପତିଙ୍କ ନାମବିଶେଷ ।

କୃଷ୍ଣମୂଳୀ—ସ୍ତ୍ରୀ. ବି ଶ୍ୟାମାଲତା,ସାରିକା ଲତା ।

କୃଷ୍ଣମୃଗ—ପୁଂ. ସ୍ତ୍ରୀ. କୃଷ୍ଣସାର ।
କୃଷ୍ଣମୃତ୍ (ମୃତ୍ତିକା)—ସ୍ତ୍ରୀ. (ବ. କଳାମାଟି, କୃଷ୍ଣବର୍ଣ୍ଣ ମୃତ୍ତିକା ।
କୃଷ୍ଣଯଜୁର୍ବେଦ—ବ. ଯଜୁର୍ବେଦର ଅଂଶ ବିଶେଷ, ତୈତ୍ତିରୀୟସ୍ତ ଉପନିଷଦ ।
କୃଷ୍ଣଯାମ—ବିଂ (ବ.ଗ୍ରା) ଯାହାର ଗମନ ପଥ କୃଷ୍ଣବର୍ଣ୍ଣ, କୃଷ୍ଣବର୍ତ୍ମା ।
କୃଷ୍ଣଯୋନି—ତ୍ରି. ବିଂ. (ବ.ଗ୍ରା) ନିକୃଷ୍ଟ-ଜାତୀୟ, ସ୍ଲେଚ୍ଛଲୋକ ।
କୃଷ୍ଣରକ୍ତ—ପୁଂ. ବିଂ, କଳାମିଶା ନାଲି ରଙ୍ଗର, ବାଇଗଣୀରଙ୍ଗର ।
କୃଷ୍ଣରଥ—ବ.ଶ୍ରୀକୃଷ୍ଣଙ୍କର କପିଧ୍ୱଜ ରଥ ।
କୃଷ୍ଣରସ—ପୁଂ. ବ. କୃଷ୍ଣଭକ୍ତ, କଜ୍ଜଳୀ, ପାରଦଭସ୍ମ ।
କୃଷ୍ଣରାମ—ଏକଜଣ ପ୍ରସିଦ୍ଧ ନୈୟାୟିକ ।
କୃଷ୍ଣରୁହା—ସ୍ତ୍ରୀ. ବ. (କୃଷ୍ଣ + ରୁହ୍ + ଅ ଆ) ଜତୁକାଲତା ।
କୃଷ୍ଣଲ—ପୁଂ. ବ. ଗଞ୍ଜେଇଗଛ, କାଇଁଞ୍ଚ ଗଛ ଓ ଫଳ ।
କୃଷ୍ଣଲକ—ପୁଂ. ବ. ଗୁଞ୍ଜା, ପରିମାଣ ବିଶେଷ, ରତି ।
କୃଷ୍ଣଲବଣ—କ୍ଲୀ. ବ. ସୌବର୍ଚ୍ଚଳଲବଣ, କଳାଲୁଣ, ବିଟଲବଣ ।
କୃଷ୍ଣଲା—ବ. ସ୍ତ୍ରୀ. (କୃଷ୍ଣ + ଲ + ଆ) ଗୁଞ୍ଜା, ଶ୍ୱେତ କାଇଁଞ୍ଚ, ପରିମାଣ ବିଶେଷ ରତି ।
କୃଷ୍ଣଲୀଳା—ବ. (ଚଳିତ) ବିଷ୍ଣୁଙ୍କର ଅଷ୍ଟମ ଅବତାରରେ ଶ୍ରୀକୃଷ୍ଣ ପୃଥିବୀରେ ଜନ୍ମଗ୍ରହଣକରି କରିଥିବା କର୍ମମାନ, କୃଷ୍ଣଙ୍କର ଲୀଳା ସମ୍ବନ୍ଧୀୟ ବୃତ୍ତାନ୍ତର ଅଭିନୟ ବା ନାଟକ । [ପଥର ।
କୃଷ୍ଣଲୋହ - କ୍ଲୀ.ବ.ଅୟସ୍କାନ୍ତମଣି,ଚୁମ୍ବକ
କୃଷ୍ଣଲୋହିତ—ପୁଂ. ବ. ରକ୍ତବର୍ଣ୍ଣ, ଧୂମ୍ର ବର୍ଣ୍ଣ, ବାଇଗଣୀରଙ୍ଗ ।
କୃଷ୍ଣବକ୍ତ୍ର—ପୁଂ.ବ.ବାନର,(ସ୍ତ୍ରୀ)କୃଷ୍ଣବକ୍ତ୍ରୀ (ବିଂ.ବ.ଗ୍ରା) ଯାହାର ମୁହଁ କଳା ।
କୃଷ୍ଣବର୍ଣ୍ଣ—ପୁଂ. ବ. (କ.ଧା) ମଳବର୍ଣ୍ଣ, ରାହୁ, ଶୂଦ୍ର, କଳାରଙ୍ଗ,(ବିଂ)କଳାରଙ୍ଗ ବିଶିଷ୍ଟ, (ସ୍ତ୍ରୀ) ବର୍ଣ୍ଣା ।
କୃଷ୍ଣବର୍ତ୍ମନ—ତ୍ରି. ବିଂ. ଯାହାର ଗମନ ପଥ କୃଷ୍ଣବର୍ଣ୍ଣ, (ବ) ଅଗ୍ନି ।
କୃଷ୍ଣବର୍ତ୍ମା—ପୁଂ. (କୃଷ୍ଣ + ବର୍ତ୍ମନ୍) ଅଗ୍ନି, ଚିତ୍ରକବୃକ୍ଷ, ରାହୁଗ୍ରହ, ଭଲ୍ଲାଆଗଛ(ବିଂ) କୁତ୍ସିତ କର୍ମକାରକ, ଦୁରାଚାର, (କ୍ଲୀ) କୃଷ୍ଣ ସ୍ୱରୂପଗତି ।
କୃଷ୍ଣବର୍ବର—ପୁଂ. ବ. କଳାତୁଳସୀ ।
କୃଷ୍ଣବଲ୍ଲୀ—ସ୍ତ୍ରୀ.ବ.କୃଷ୍ଣତୁଳସୀ, ଶ୍ୟାମାଲତା, ବାନରବିଶେଷ ।
କୃଷ୍ଣବିଷାଣ-ବ.(ଚଳିତ)କୃଷ୍ଣସାରର ଶିଙ୍ଗ
କୃଷ୍ଣବୀଜ—କ୍ଲୀ. ବ. କଳିଙ୍ଗ, ତରଭୁଜ, (ପୁଂ) ଲାଲ ସଜନାଗଛ ।
କୃଷ୍ଣବୃନ୍ତା (ବୃନ୍ତିକା)—ସ୍ତ୍ରୀ.ବ. ଗମ୍ଭାରୀବୃକ୍ଷ, ପାରୁଲଗଛ, ମାଷପର୍ଣ୍ଣୀଲତା, ବଣବରି, ପାଟଳିବୃକ୍ଷ ।
କୃଷ୍ଣବେଣା—ସ୍ତ୍ରୀ.ବ.ଦାକ୍ଷିଣାତ୍ୟର ପ୍ରସିଦ୍ଧ ନଦୀ ବିଶେଷ ।
କୃଷ୍ଣବେଣୀ—ସ୍ତ୍ରୀ. ବ. କୃଷ୍ଣବେଣୀ ନଦୀ ।
କୃଷ୍ଣବ୍ରୀହି—ପୁଂ. ବ. ଧାନ୍ୟବିଶେଷ, କଳାଧାନ ।
କୃଷ୍ଣଶ—କ୍ଲୀ. ବ. କୃଷ୍ଣବର୍ଣ୍ଣ ଦଶାପ୍ରାପ୍ତ ବସ୍ତୁ, (ବିଂ) ଅତିଶୟ କଳା ।
କୃଷ୍ଣଶକୁନ—ପୁଂ. ସ୍ତ୍ରୀ. ବ. କାକ, କୁଆ
କୃଷ୍ଣଶାଣ—ପୁଂ. ବ. ଶଣବୃକ୍ଷବିଶେଷ, ଯାହାର ପୁଷ୍ପ କୃଷ୍ଣବର୍ଣ୍ଣ ।
କୃଷ୍ଣଶାର—ପୁଂ. ବ. କୃଷ୍ଣସାର ମୃଗ ।
କୃଷ୍ଣଶାରିକା—ସ୍ତ୍ରୀ.ବ.(କ.ଧା) ଶ୍ୟାମଲତା
କୃଷ୍ଣଶାଳି—ପୁଂ. ବ. (କ.ଧା) କଳାଧାନ ହେମନ୍ତିକ ଧାନ୍ୟବିଶେଷ ।
କୃଷ୍ଣଶିଗ୍ରୁ—ପୁଂ.ବ. (କ.ଧା)କଳାସଜନା କୃଷ୍ଣଶୋଭାଞ୍ଜନ ।
କୃଷ୍ଣଶିମ୍ବିକା—ସ୍ତ୍ରୀ.ବ.(କ.ଧା) କଳାଶିମ୍ବ
କୃଷ୍ଣଶୃଙ୍ଗ—ପୁଂ. ସ୍ତ୍ରୀ. ବ. ମହିଷ ।
କୃଷ୍ଣସଖ—ପୁଂ. ବ. ମଧ୍ୟମ ପାଣ୍ଡବ, ଅର୍ଜ୍ଜୁନ, ଅର୍ଜ୍ଜୁନବୃକ୍ଷ, (ବ.ସ୍ତ୍ରୀ)କୃଷ୍ଣଜୀରା
କୃଷ୍ଣସମୁଦ୍ଭବା—ସ୍ତ୍ରୀ. ବ. କୃଷ୍ଣଗଙ୍ଗା, କୃଷ୍ଣ ନଦୀ, —(ବ.ଗ୍ରା) କୃଷ୍ଣଙ୍କରପୁତ୍ର, କାମଦେବ ପ୍ରଭୃତି ।
କୃଷ୍ଣସର୍ପ—ପୁଂ.ସ୍ତ୍ରୀ.ବ. କାଳସର୍ପ,କାଳୀୟ ନାଗ,(ସ୍ତ୍ରୀ)ବସନ୍ତକାଳୀନ ଶସ୍ୟବିଶେଷ
କୃଷ୍ଣସର୍ଷପ—ବ. (କ.ଧା)କଳାସୋରିଷ ।
କୃଷ୍ଣସାର—ପୁଂ. ବ. ହରିଣ ଭେଦ, କଳାବାହୁଟିଆ,ଚନ୍ଦ୍ରମୃଗ, ଖଇରଗଛ, ସିଂଘୁଗଛ,ଶିଶୁଗଛ,(ବିଂ)କଳା ଓ ଧଳା, ଯାହା ପ୍ରଧାନତଃ କଳା ।
କୃଷ୍ଣସାରଙ୍ଗ—ପୁଂ. ବ. ହରିଣଭେଦ, କୃଷ୍ଣସାର (ଦେଖ) ।
କୃଷ୍ଣସାରଥି—ପୁଂ. ବ. (ଚଳିତ)କୃଷ୍ଣଙ୍କ ରଥଚାଳକ, ଦାରୁକ, (ବ.ଗ୍ରା) ମଧ୍ୟମ ପାଣ୍ଡବ ଅର୍ଜ୍ଜୁନ, ଅର୍ଜ୍ଜୁନ ବୃକ୍ଷ ।
କୃଷ୍ଣସାରା—ସ୍ତ୍ରୀ.ବ.ଶିଶପା ବୃକ୍ଷ,ଶିଶୁଗଛ ।
କୃଷ୍ଣସିଂହ—ବ. (ନାମ) ବିଖ୍ୟାତ ଓଡ଼ିଆ ମହାଭାରତ ପ୍ରଣେତା, ଏ ଗଞ୍ଜାମଜିଲ୍ଲାନ୍ତର୍ଗତ ଧରାକୋଟ ରାଜ୍ୟର ରାଜାଥିଲେ, ଏହାଙ୍କର ଜନ୍ମ ଖ୍ରୀ୧୭୨୮ ଓ ମୃତ୍ୟୁ ଖ୍ରୀ ୧୭୮୮ରେ ଘଟିଥିଲା ।
କୃଷ୍ଣସୀତା—ତ୍ରି. ବ. ଯାହାର ଗମନପଥ କୃଷ୍ଣବର୍ଣ୍ଣ ।
କୃଷ୍ଣସୁନ୍ଦର—ପୁଂ. ବ. ଯେ କୃଷ୍ଣବର୍ଣ୍ଣ ହୋଇ ସୁନ୍ଦରବିଶେ, ଶ୍ରୀକୃଷ୍ଣ ।
କୃଷ୍ଣସ୍କନ୍ଧ—ପୁଂ. ବ. ତମାଳ ବୃକ୍ଷ ।
କୃଷ୍ଣସ୍ୱସା—ସ୍ତ୍ରୀ. ବ. (ଚଳିତ) ଦୁର୍ଗା ।
କୃଷ୍ଣା—ସ୍ତ୍ରୀ. ବ. (କୃଷ୍ + ନ + ଆ) ଦ୍ରୌପଦୀ, ସ୍ୱରଶୋକ୍ତ ଏକନଦୀ, ନୀଳ-ଗଛ,ଦ୍ରାକ୍ଷା,ପିପଳୀ, କସ୍ମିସ୍,କଳାଜୀରା ଗମ୍ଭାରୀ, କଟୁକୀ, ଶ୍ୟାମାପକ୍ଷୀ, କଳା ପୁରୁଣୀ,-ସାରିକା, ଶୁଆଁଲଇ, କଳା-ସୋରିଷ, ପର୍ପଟୀ, କାକୋଲୀ, ସୋମ-ରାଜୀ, ବିଷପୁଷ୍ପ,ଜଳୌକା, ଏକପ୍ରକାର ଜୋକ,ଅଗ୍ନିଙ୍କର ସପ୍ତଜିହ୍ୱାମଧ୍ୟରୁ ଏକ, ଦାକ୍ଷିଣାତ୍ୟର ଏକନଦୀ,ମାନ୍ଦ୍ରାଜର ଏକ-ଜିଲ୍ଲା, ଦୁର୍ଗା ।
କୃଷ୍ଣାଗୁରୁ—କ୍ଲୀ. ବ. (କ.ଧା) କୃଷ୍ଣବର୍ଣ୍ଣ ସୁଗନ୍ଧ କାଷ୍ଠବିଶେଷ, କାଳଗୁରୁ, କୃଷ୍ଣ ଚନ୍ଦନ ।
କୃଷ୍ଣାଚଳ—ପୁଂ. ବ. (କୃଷ୍ଣା + ଅଚଳ) ରୈବତକ ପର୍ବତ ।

କୃଷ୍ଣାଜନ—କ୍ଲୀ.ବ. କୃଷ୍ଣସାରମୃଗର ଚର୍ମ, ଜଣେ ଋଷିଙ୍କର ନାମ ।

କୃଷ୍ଣାଜନୀ—ପୁଂ.ବଂ.(କୃଷ୍ଣାଜନ+ଇନ୍) କୃଷ୍ଣାଜନବିଶିଷ୍ଟ ।

କୃଷ୍ଣାଞ୍ଜନ--କ୍ଲୀ. ବ. ସ୍ରୋତାଞ୍ଜନ, କଳା ସୁରୁମା ।

କୃଷ୍ଣାଞ୍ଜନୀ—ସ୍ତ୍ରୀ. ବ. କାଲାଞ୍ଜନୀ ବୃକ୍ଷ ।

କୃଷ୍ଣାଞ୍ଜି—ବ.ମୃଗବିଶେଷ, ଯାହାଦେହରେ କଳା ଟିପ ମାନ ଥାଏ ।

କୃଷ୍ଣାତ୍ରେୟ—ପୁଂ.ବ. ଋଷିବିଶେଷ ।

କୃଷ୍ଣାଧ୍ୱା—ପୁଂ.ବ. (ବ.ବ୍ରୀ) ଅଗ୍ନି ।

କୃଷ୍ଣାଦିଗଣ—ପୁଂ. ବ. ପିପ୍‌ପଳୀପ୍ରଭୃତି ଔଷଧ ଦ୍ରବ୍ୟ ।

କୃଷ୍ଣାନଦୀ—ସ୍ତ୍ରୀ. ବ. କୃଷ୍ଣବେଣୀନଦୀ, କୃଷ୍ଣରଙ୍ଗ୍ୟ ।

କୃଷ୍ଣାବେଣୀ—ସ୍ତ୍ରୀ. ବ. କୃଷ୍ଣାନଦୀ ।

କୃଷ୍ଣାଭ—ବଂ. (ବ.ବ୍ରୀ) କୃଷ୍ଣ ଆଭାଷପ୍ରୁକ୍ତ ଆକୃଷ୍ଣ, ଈଷତ୍ କଳାବର୍ଣ୍ଣ,(ସ୍ତ୍ରୀ)କୃଷ୍ଣାଭା ।

କୃଷ୍ଣାଭା—ସ୍ତ୍ରୀ. ବ. କାଲାଞ୍ଜନୀ ବୃକ୍ଷ ।

କୃଷ୍ଣାଭ୍ର—ପୁଂ.ବ. କଳାମେଘ ।

କୃଷ୍ଣାମିଷ—କ୍ଲୀ. ବ. (କ.ଧା) କଳାବର୍ଣ୍ଣ ଲୁହା, ଚମ୍ବକ ଲୁହା ।

କୃଷ୍ଣାୟସ (ସ)—କ୍ଲୀ.ବ. (କ.ଧା) କଳାବର୍ଣ୍ଣ ଲୁହା, ଚୁମ୍ବକ ।

କୃଷ୍ଣାର୍ଚ୍ଚି—ପୁଂ.ବ. (ବ.ବ୍ରୀ) ଅଗ୍ନି ।

କୃଷ୍ଣାର୍ଜକ—ପୁଂ.ବ. କଳା ତୁଳସୀ ।

କୃଷ୍ଣାଳୁ—ପୁଂ.ବ. (କ.ଧା) କଳାଆଳୁ ।

କୃଷ୍ଣାବତାର—ପୁଂ. ବ. ଭଗବାନଙ୍କର ଅବତାର ଭେଦ ।

କୃଷ୍ଣାବାସ—ପୁଂ. ବ. (କୃଷ୍ଣ+ଆବାସ) ଅଶ୍ୱତ୍ଥ ବୃକ୍ଷ, ଦ୍ୱାରକାପୁରୀ ।

କୃଷ୍ଣାଶ୍ରିତ—ବଂ. (୭ତତ୍) ଶ୍ରୀକୃଷ୍ଣଙ୍କର ଆଶ୍ରୟପ୍ରାପ୍ତ, ଶ୍ରୀକୃଷ୍ଣଙ୍କଦ୍ୱାରା ରକ୍ଷିତ, କୃଷ୍ଣଭକ୍ତ, (ସ୍ତ୍ରୀ) କୃଷ୍ଣାଶ୍ରିତା ।

କୃଷ୍ଣାଷ୍ଟମୀ—ସ୍ତ୍ରୀ, ବ. (କ.ଧା) କୃଷ୍ଣପକ୍ଷର ଅଷ୍ଟମୀତିଥି, କୃଷ୍ଣଙ୍କର ଜନ୍ମଦିନ ।

କୃଷ୍ଣାହ୍ୱା—ସ୍ତ୍ରୀ.ବ. ପିପ୍ପଳୀ ।

କୃଷ୍ଣିକା—ସ୍ତ୍ରୀ. ବ. (କୃଷ୍ଣ+ଇକ+ଆ) କଳା ସୋରିଷ, ଶ୍ୟାମାପକ୍ଷୀ ।

କୃଷ୍ଣିମା—ପୁଂ. ବ. (କୃଷ୍ଣ+ଭା, ଇମନ୍) କୃଷ୍ଣତ୍ୱ, କୃଷ୍ଣବର୍ଣ୍ଣ ।

କୃଷ୍ଣୀ—ସ୍ତ୍ରୀ. ବ. (କୃଷ୍ଣ+ଈ) ଅନ୍ଧାରରାତି

କୃଷ୍ଣୀକରଣ—ପୁଂ.ବ. କଳାବର୍ଣ୍ଣ ହୋଇ ନଥିବା ପଦାର୍ଥକୁ କଳାକରିବା, ଷଷ୍ଠ-ସ୍ଥାନ କଳାକରିବା ଜମଲ୍ଲେ ଯାହା ପ୍ରୟୋଗ କରାଯାଏ । [ଆଖୁ ।

କୃଷ୍ଣେକ୍ଷୁ—ପୁଂ.ବ.(କୃଷ୍ଣ+ଇକ୍ଷୁ) କଳଲା

କୃଷ୍ଣେସ୍ୱକ—କ୍ଲୀ.ବ. ପଦ୍ମପୁଷ୍ପ ।

କୃଷ୍ଣେତ—ବି. ବଂ. ଯହିଁରେ କୃଷ୍ଣବର୍ଣ୍ଣ ଅଧିକାଅଛି, କର୍ବୁର ବର୍ଣ୍ଣବିଶିଷ୍ଟ, (ବ) କୃଷ୍ଣବର୍ଣ୍ଣ ହରିଣ ।

କୃଷ୍ଣୋଦର—ପୁଂ. ବ. ସ୍ତ୍ରୀ. (ବ.ବ୍ରୀ)ସର୍ପ ବିଶେଷ ।

କୃଷ୍ୟ—ବି. ବଂ. (କୃଷ+ର୍ମ, ଯ) ଚାଷ କରିବାର ଉପଯୁକ୍ତ କ୍ଷେତ୍ର, କର୍ଷଣ-ଯୋଗ୍ୟ, (ସ୍ତ୍ରୀ) କୃଷ୍ୟା ।

କୃସର—କ୍ଲୀ. ବ. (କୃ+ସର) ଖେଚୁଡ଼ୀ ତିଳଜାଉ ।

କ୍ଳୃପ୍ତ—ବି.ବଂ. (କୃପ+ର୍ମ, ତ) କୃତ, ନିର୍ଦ୍ଧାରିତ, ରଚିତ, ପ୍ରସ୍ତୁତ, କଳ୍ପିତ, ସ୍ୱୀକୃତ, ନିରୂପିତ, ଅଳଙ୍କୃତ, ଛିନ୍ନିତ ।

କ୍ଳୃପ୍ତକୀଲା—ସ୍ତ୍ରୀ.ବ.(କ୍ଳୃପ୍ତ+କୀଲ+ଆ) ବ୍ୟବସ୍ଥାପତ୍ର, ସମ୍ପତ୍ତିରେ ସ୍ୱତ୍ୱପ୍ରବର୍ତ୍ତି-ବା ନିଦର୍ଶନ ପତ୍ର ।

କ୍ଳୃପ୍ତି—ସ୍ତ୍ରୀ.ବ. (କ୍ଳୃପ+ଭା,ତି)ରଚନା, କଳ୍ପନା, ଅବଧାରଣ, ନିୟମ ।

କ୍ଳୃପ୍ତିକ—ବି.ବଂ.(କ୍ଳୃପ୍ତ+ଇକ)କ୍ରୀତ ।

କେ—ଗ୍ରା.ସର୍ବ. (ସଂ କମ୍)କେଉଁବ୍ୟକ୍ତି ? କିଏ ? ଜଣେକେହି ? ଆଉଜଣକ ? ଆଉଜଣେ, ଜଣକ, (ବଂ) କେଉଁ, କୌଣସି ।

କେଇ—ଗ୍ରା. ସର୍ବ. କେହି, କେତେ, କେତେକ, କତିପୟ ।

କେଇଟା(ଟି)—ଗ୍ରା. ସର୍ବ. ବଂ. (ଅନା ଦରାର୍ଥକ) କେତେଗୋଟା, ଅଳ୍ପସଂଖ୍ୟକ କେତେକ, କେତେଘଣ୍ଟା (ସମସ୍ତ) ।

କେଉଁ—ଗ୍ରା. ସର୍ବ.(ସଂ-କମ୍) କିଏ, କି, କୌଣସି ।

କେଉଁକନ୍ଦା—ଗ୍ରା. (ସମ୍ବ) ବ. ଗୁଳ୍ମ-ବିଶେଷ, କନ୍ଦକନ୍ଦଆ ।

କେଉଁକେଉଁ—ଗ୍ରା. ସର୍ବ. କୌଣସି କୌଣସି, (ବସ୍ତୁ ବା ବ୍ୟକ୍ତିଗଣ) ।

କେଉଁଝର—ଗ୍ରା. ବ. କେନ୍ଦୁଝର,ପୂର୍ବତନ ଓଡ଼ିଶାର ଗଡ଼ଜାତବିଶେଷ, ବର୍ତ୍ତମାନ ଏକ ଜିଲ୍ଲାବିଶେଷ ।

କେଉଁଟା—ଗ୍ରା. ସର୍ବ. କେଉଁଟି (ଦେଖ) ।

କେଉଁଟି—ଗ୍ରା. ସର୍ବ. ( ଆଦରାର୍ଥକ ) କେଉଁବ୍ୟକ୍ତି ବା ବସ୍ତୁଟି,କେଉଁଗୋଟିକ, କେଉଁଜଣକ ।

କେଉଁଠଉଁ—ଗ୍ରା. ସର୍ବ. କେଉଁସ୍ଥାନରୁ ।

କେଉଁଠା—ଗ୍ରା. ସର୍ବ. କେଉଁସ୍ଥାନ କୌଣସିସ୍ଥାନ ।

କେଉଁଠାକୁ—ଗ୍ରା. ସର୍ବ. କେଉଁସ୍ଥାନକୁ ।

କେଉଁଠାର—ଗ୍ରା. ବଂ. କେଉଁସ୍ଥାନର, ଅଜ୍ଞାତ ସ୍ଥାନର ।

କେଉଁଠାରୁ—ଗ୍ରା. ସର୍ବ. କେଉଁସ୍ଥ ନରୁ ।

କେଉଁଠାରେ—ଗ୍ରା.ସର୍ବ.କେଉଁସ୍ଥାନରେ ।

କେଉଁଠି—ଗ୍ରା. ସର୍ବ. କେଉଁଠାରେ (ଦେଖ) ।

କେଉଁଠିକା—ଗ୍ରା. ବଂ. କେଉଁଠିକାର ।

କେଉଁଠିକାର—ଗ୍ରା.ବଂ. କେଉଁସ୍ଥାନର ।

କେଉଁଠିକି—ଗ୍ରା. ସର୍ବ. କେଉଁଠାକୁ (ଦେଖ) ।

କେଉଁଠିକୁ—ଗ୍ରା.ସର୍ବ.କେଉଁଠାକୁ(ଦେଖ)

କେଉଁଠିର—ଗ୍ରା. ବଂ. କେଉଁସ୍ଥାନର ।

କେଉଁଠିରୁ—ଗ୍ରା.ସର୍ବ. କେଉଁସ୍ଥାନରୁ ।

କେଉଁଠିରେ—ଗ୍ରା.ସର୍ବ. କେଉଁସ୍ଥାନରେ ।

କେଉଁଠୁ—ଗ୍ରା. ସର୍ବ. କେଉଁସ୍ଥାନରୁ ।

କେଉଁଠେଇଁ-ଗ୍ରା. ସର୍ବ. କେଉଁସ୍ଥାନରେ ।

କେଉଁଠେଇଁକି—ଗ୍ରା. ସର୍ବ. କେଉଁଠାକୁ (ଦେଖ) ।

କେଉଁପରି—ଗ୍ରା.ବଂ.କପ୍ରକାରେ,କମ୍ଭୁତ ।

କେଉଟ—ଗ୍ରା. ବ. ମାଛମାରିବା, ଚୁଡ଼ା କୁଟିବା ଓ ଡଙ୍ଗାବାହିବା ଶୂଦ୍ର ଜାତି-ବିଶେଷ ।

କେଉଟପୋକ—ଗ୍ରା.ବ. ଜଳୀୟଷଟ୍‌ପଦ ଦୃଢ଼ପୃଷ୍ଠ କୀଟବିଶେଷ ।

କେଉଟମୁଥା — ଗ୍ରା.ବି.ଏକପ୍ରକାର(ବଡ଼) ମୁଥା, କେଶୁରମୂଳ ।

କେଉତି — ପ୍ରା. (ସମ୍ବ) ବି. ଏକପ୍ରକାର ଦୀର୍ଘଲତା ।

କେଉଟିଆ—ଗ୍ରା.ବି.ଜଳରେ ଥିବା ପୋକବିଶେଷ, କେଉଟପୋକ,ବିଷଧର ସର୍ପବିଶେଷ, (ବିଂ) କେଉଟସମ୍ବନ୍ଧୀୟ ।

କେଉଟିଆନାଗ — ଗ୍ରା. ବି. ବିଷଧର ସର୍ପବିଶେଷ ।

କେଉଟୁଣୀପୋକ—ଗ୍ରା. ବି. ଦୀର୍ଘପଦବିଶିଷ୍ଟ ଝିଣ୍ଟିକାଜାତୀୟ ପୋକ ।

କେଉଡ଼ା — ଗ୍ରା. ବି. କିଆଗଛ, ଫୁଲ ଓ ଅର୍କ ।

କେଁ — ଗ୍ରା. ଅବ୍ୟ. ଶଗଡ଼ଚକର ମଝି (ତୁମ୍ବଷ୍ଠ)ଗାତରେ ଅଖବୁଲିବାର ଶବ୍ଦ ।

କେଁଏଁକଟର—ଗ୍ରା. ଅବ୍ୟ. କେଁକଟର (ଦେଖ) ।

କେଏଁକାଆଁ—ଗ୍ରା.ଅବ୍ୟ.କେଁକାଁ(ଦେଖ) ।

କେଁକଟର—ଗ୍ରା.ଅବ୍ୟ. ବେଙ୍ଗବୋବାଇବାର ଧ୍ୱନି, କେଁକାଁ ଶବ୍ଦ ।

କେଁକାଁ — ଗ୍ରା. ଅବ୍ୟ, ବହୁତ ପକ୍ଷୀ ଏକତ୍ର ହୋଇ କରିବା ରବ ।

କେଁକେଁ — ଗ୍ରା. ବି. ଚକରନ୍ଧ୍ରରେ ଅଖ ଘଷିହେବାପରି ଦୁଇ ମସୃଣ ବସ୍ତୁ ଘଷି ହେବାର ଧ୍ୱନି, ବେଙ୍ଗ ଶବ୍ଦ କରିବାର, କାନ୍ଦିବାର, ବେହେଲା, କେନ୍ଦେରାଆଦି ବଜାଇବାର ଧ୍ୱନି ।

କେଁକେଁଚୁଁା — ଗ୍ରା. ବିଂ. କେଁକେଁ ଶବ୍ଦ କରୁଥିବା, ସରୁଗଳା ବା ସ୍ୱରବିଶିଷ୍ଟ ।

କେଁକେଁହେବା — ଗ୍ରା.କ୍ରି. କେଁ କେଁ ଶବ୍ଦ କରିବା, ସାମାନ୍ୟ ଉଚ୍ଚ ଅନୁନାସିକ ସ୍ୱରରେ କାନ୍ଦିବା ।

କେଁଟା — ପ୍ରା. (ସମ୍ବ) ବି. ଏଣ୍ଡୁଅ ।

କେଁବ — ପ୍ରା. (ସମ୍ବ) ଗଳା, ବେକ ।

କେକୟ — ପୁଂ. ବି. ଉତ୍ତର ଭାରତର ପ୍ରାଚୀନ ଦେଶ ଓ ତଦ୍ଦେଶବାସୀ ଜାତି, ଭରତ-ଜନନୀ କେକୟୀଙ୍କ ପିତା ।

କେକୟୀ—ସ୍ତ୍ରୀ.ବି. (କେକୟ + ଅ + ଈ) ଦଶରଥ ରାଜାଙ୍କର ମଧ୍ୟମା ପତ୍ନୀ ।

କେକର—ପୁଂ.ବିଂ.(କେ + କୃ + କ.ଅ) ବକ୍ରାକ୍ଷି,ଟେରା,(କ୍ଳୀ)ବକ୍ରଚକ୍ଷୁ,(ପୁଂ.ବି) ମନ୍ତ୍ରବିଶେଷ ।

କେକରାକ୍ଷ—ପୁଂ. ବିଂ. (ବ.ବ୍ରୀ)ଟେରା ।

କେକଲ — ପୁଂ. ବି. ନର୍ତ୍ତକ ।

କେକହୁ — ଗ୍ରା. ଅବ୍ୟ. କିଏ କହିପାରିବ ? ଅକଥନୀୟ ।

କେକା — ସ୍ତ୍ରୀ.ବି. (କେ + କୈ + ଭା.ଅ) ମୟୂରଧ୍ୱନି ।

କେକାବଳ-ପୁଂ.ବି(କେକା + ବଳ)ମୟୂର

କେ କାହାକୁ କହିଲା ପ୍ରକାରେ—ଗ୍ରା.କ୍ରି. ବିଂ.ପରୋକ୍ଷଭାବରେ, ଅପ୍ରତ୍ୟକ୍ଷରୂପେ ।

କେକିନୀ — ସ୍ତ୍ରୀ. ବି. ମୟୂରୀ ।

କେକୀ — ପୁଂ.ବି.(କେକା + ଇନ୍)ମୟୂର

କେକୟୀ — ସ୍ତ୍ରୀ. ବି. ଦଶରଥ ରାଜାଙ୍କର ପତ୍ନୀ, ଭରତଙ୍କର ମାତା ।

କେଙ୍କଡ଼ — ପ୍ରା. (ସିଂହ)ବି. ଏଣ୍ଡୁଅ ।

କେଙ୍ଗଟା — ପ୍ରା.(ସମ୍ବ)ବି.କେଣ୍ଟା(ଦେଖ)

କେଙ୍ଗରୁ — ଚତୁଷ୍ପଦ ଜନ୍ତୁବିଶେଷ, (ଯା. ବି. ଅଷ୍ଟ୍ରେଲିଆ ଦେଶଭାଷା) କଙ୍ଗାରୁ, ଅଷ୍ଟ୍ରେଲିୟାଦେଶୀୟ ଦ୍ୱିଗର୍ଭ ଜନ୍ତୁ ।

କେଚକେଚ୍ — ଗ୍ରା.ବି.ବିରକ୍ତି, (ବିଂ)ବିରକ୍ତ ନଷ୍ଟ ।

କେଚନ,କେଚନ୍—ସର୍ବ. ପୁଂ. କେଉଁ ପୁରୁଷମାନେ, କେତେକ ପୁରୁଷ ।

କେଚନ୍—ସର୍ବ. ପୁଂ. କେଉଁ କେଉଁ, କେତେକ ।

କେଚୁକ — କ୍ଳୀ. ବି. କଚୁ, ସାରୁ ।

କେଛୁ — ପ୍ରା.(ସମ୍ବ) ବି.କଚ୍ଛପ, କଇଁଛ ।

କେଛୁଖପୁଲି—ପ୍ରା(ସମ୍ବ)ବି.କଇଁଛଖୋଳ ।

କେଜାଣି--ଗ୍ରା.ଅବ୍ୟ. କିଜାନନ୍ତି,କାହିଁକି ମୁଁ କହିପାରିବ ନାହିଁ, ମତେ ଜଣା-ନାହିଁ, ଅନ୍ୟ କେହି ଅବା ଜାଣିଥିବ, ଏହା ଅଜ୍ଞାତ ଅଟେ ।

କେଞ୍ଚ — ଗ୍ରା. ବି. ଅତିକଷ୍ଟ ।

କେଞ୍ଚା — ଗ୍ରା. ବି. ତେଣ୍ଟା,ବରଛା,ମୁନିଆ, ଅସ୍ତ୍ରଦ୍ୱାରା କେଞ୍ଚିବାର ଆଘାତ, (ଲ.ଅର୍ଥ) କଷ୍ଟ, ପୀଡ଼ା, ଦାଉ, ବିପତ୍ପାତ ।

କେଞ୍ଚାଇବା — ଗ୍ରା.କ୍ରି.କେଞ୍ଚିବାର ପ୍ରୟୋଜକ ରୂପ ।

କେଞ୍ଚାଏ ନଇଲେ ମେଞ୍ଚାଏ — ଗ୍ରା.(ପ୍ରବଚନ)ହୁଏତ କିଛି ନ ପାଇବା, ନଚେତ୍ ବହୁତ ପାଇବା ଅବସ୍ଥା ।

କେଞ୍ଚାକେଞ୍ଚି — ଗ୍ରା.ବି.ପରସ୍ପରକୁ କେଞ୍ଚିବା, (ବିଂ) ପରସ୍ପରକୁ କେଞ୍ଚୁଥିବା ।

କେଞ୍ଚିପକାଇବା—ଗ୍ରା. କ୍ରି. କୌଣସି ବ୍ୟକ୍ତିର ଅନିଷ୍ଟ କରି ନ ପାରିବା, କୃତକାର୍ଯ୍ୟ ହେବା, ବାଞ୍ଛିତ ଫଳ ଦେଖାଇବା, ମୂଳଜାତୀୟ ପଦାର୍ଥ ଖୋଳି ଖୋଳି ଖଣ୍ଡେ ବା ଲୁହାଦ୍ୱାରା ଝଣ୍ଟିଆ କରି ପକାଇବା ।

କେଞ୍ଚିବା—ଗ୍ରା. କ୍ରି. ଅସ୍ତ୍ରଦ୍ୱାରା ହାଣିବା ବା ଆଘାତ କରିବା, ମୁନିଆ ଓ ଲମ୍ବା ପଦାର୍ଥରେ କୌଣସି ପଦାର୍ଥକୁ ଭୁଷିବା ।

କେଞ୍ଚୁଆ — ଗ୍ରା.ବି.ଜିଆ, ମହୀଲତା,ଜିଆନାଡ଼, କାଚୁଟି, ପେଟରୁ ପଡ଼ିବା ବଡ଼ କୃମି । [ ଗଳା ମାଟି ।

କେଞ୍ଚୁଆଉଗାର (ଭୁଡ଼ୁଭୁଡ଼ି) — ଗ୍ରା.ବି.ଜିଆ

କେଞ୍ଚୁଡ଼ି—ବିଂ.ଅପକ୍ୱ,ଅପରିଣତ.ଅକାଳପକ୍ୱ, ଅପ୍ରାପ୍ତବୟସ୍କ ।

କେଞ୍ଚୁଡ଼ିପୋକ — ଗ୍ରା.ବି.ଢେଲୁଣୀପୋକ ।

କେଞ୍ଜେର-ପ୍ରା.(ସମ୍ବ)ବି. ଅସଭ୍ୟ,ବର୍ବର ।

କେଡ଼ା—ପ୍ରା(ସମ୍ବ)ବିଂ. ମୂର୍ଖ,ଅଜ୍ଞ (ପ୍ରା. ମେଦିନୀ. ବି) ଅଣ୍ଡିରା ମଇଁଷି ।

କେଡ଼ି — ପ୍ରା.(ଗଞ୍ଜାମ) ବି. ଦାଗୀ,କାରାମୁକ୍ତଲୋକ ।

କେଡ଼େଟାଏ, କେଡ଼ୁଟାଏ — ଗ୍ରା. ସର୍ବ. ( ଅନାଦରାର୍ଥକ ) କେତେ ବଡ଼ ? କି ଆକାରର ? (ଆଶ୍ଚର୍ଯ୍ୟସୂଚକ)ଖୁବ୍ ବଡ଼ ।

କେଡ଼େ — ଗ୍ରା. ବିଂ.ବିଂର ବିଂ. କେଉଁ ଆକାରର ? କେତେବଡ଼ ? କେତେ ଉଚ୍ଚ, କି ପରିମିତ ।

କେଣିକା — ସ୍ତ୍ରୀ.ବି.ବସ୍ତ୍ରନିର୍ମିତ ଘର, ତମ୍ବୁ ।

କେଣିକି — ଗ୍ରା. ଅବ୍ୟ. କେଉଁ ଦିଗକୁ ? କେଉଁ ସ୍ଥାନକୁ ? କେଉଁଠାକୁ ?

କେଣୁ— ଗ୍ରା.କ୍ରି. ବିଂ. କେଉଁଠାରୁ,କେଉଁ ଦିଗରୁ ।

କେଣେ ଯିବା — ଗ୍ରା. କ୍ରି. ହଜିଯିବା, କେଉଁଠାକୁ ଯିବା ।

କେଣ୍ଟା—ପ୍ରା.(ସମ୍ବ)ବି. କୃକଲାସ,ଏଣ୍ଡୁଅ, (ସର୍ବ) କେଉଁଠା ।

କେଣ୍ଟିଆ--ପ୍ରା(ସମ୍ବ)ବି.କେଉଟିଆ(ଦେଖ)

କେଣ୍ଡା—ଗ୍ରା. ବି. ଶସ୍ୟଗୁଚ୍ଛ, କାଠିରେ ଗୁନ୍ଥା ହୋଇଥିବା ପୁଷ୍ପଗୁଚ୍ଛ, ବୃନ୍ତସହିତ ଲାଗିଥିବା ଫୁଲ ।

କେତ୍‌କେତାଇବା—ଗ୍ରା. କ୍ରି. ଟିକିଟିକି କରି କାଟିବା, କେତେକେତା କରିବା

କେତ୍‌ରା—ପ୍ରା. (ସମ୍ବ.) ବି. ଏକପ୍ରକାର ଏଣ୍ଡୁଅ ।

କେତ—ପୁଂ. ବି. (କିତ୍+ଅ) ଗୃହ, ବସତି, ବୁଦ୍ଧି, ଚିହ୍ନ, ସଂକଳ୍ପ, (ପୁଂ) ଧ୍ୱଜ, ଅନ୍ନ, ମନ୍ତ୍ରଣା, (ବିଂ) ପ୍ରଜ୍ଞତା, ଯେ ଭଲରୂପେ ଜାଣେ ।

କେତକ—ପୁଂ. ବି. (କିତ୍+ଅକ) କେତକୀବୃକ୍ଷ, କିଆଗଛ,(କ୍ଲୀ)କିଆଫୁଲ ଓ ଫଳ ।

କେତକୀ—ସ୍ତ୍ରୀ. ବି. (କିତ୍+ଅକ+ଈ) ପୁଷ୍ପବୃକ୍ଷବିଶେଷ, ଉତ୍କୃଷ୍ଟ କିଆଜାତୀୟ ଗଛ ଓ ତାହାର ଫୁଲ ।

କେତକୀଗୋରୀ—ସ୍ତ୍ରୀ. ବି. (କେତକୀ+ଗୌରୀ)ହଳଦିଆମିଶା ଗୌରବର୍ଣ୍ଣ(ସ୍ତ୍ରୀ) ।

କେତକୀଚମ୍ପା—ସ୍ଥା.ବି. କନକଚମ୍ପାଫୁଲ, ମୁଚୁକୁନ୍ଦଫୁଲ ।

କେତନ—କ୍ଲୀ. ବି. (କିତ୍+ଅନ)ନିମନ୍ତ୍ରଣ, ଧ୍ୱଜ,ପତାକା, ଚିହ୍ନ, ଗୃହସ୍ଥାନ, କୃତ୍ୟ, ଦେହ, କାର୍ଯ୍ୟ ।

କେତପା—ବି. ପ୍ରଚ୍ଛଦପଟ, ଓଢ଼ଣା ।

କେତପୁ—କ୍ରି. ବିଂ. (କେତ+ପୂ+ଣିଚ୍+ପ୍) ଅନ୍ନପବିତ୍ର କାରକ ।

କେତରା—ଗ୍ରା.ବି. ବର୍ଷାକାଳରେ ଗୋଡ଼ର ଆଙ୍ଗୁଳିସନ୍ଧିରେ ହେବା ବାଲିଜନିତାରୋଗ, ଟିକିଟିକିଖଣ୍ଡ,ଫଡ଼ାଫଡ଼ା,ଚିରୁଡ଼ାଚିରୁଡ଼ା

କେତଲକାର୍ତ୍ତି—ପୁଂ. ବି. ମେଘମାଳା-ନାମକ ଗ୍ରନ୍ଥରଚୟିତା ।

କେତାକେତା—ଗ୍ରା. ଅବ୍ୟ ଟିକିଟିକି, ଚିରୁଡ଼ା ଚିରୁଡ଼ା ।

କେତାପ—(ବ)ଯା.ବି. ପୁସ୍ତକ, ବହି ।

କେତୁ—ପୁଂ.ବି. (ଚାୟ+ତୁ)ଅମଙ୍ଗଳ-ସୂଚକ ଗ୍ରହବିଶେଷ, ଅଗ୍ନିମନ୍ତ୍ର; ପନଆରି ଗଛ, ପତାକା,ଚିହ୍ନ,ଉତ୍ପାତଚିହ୍ନ, ଶତ୍ରୁ, ରୋଗ, ଧୂମକେତୁ, ହିଲ୍ଲା ।

କେତୁକରିବା—ଗ୍ରା. କ୍ରି.ଗଣ୍ଡିମୁଣ୍ଡ ଅଲଗା ଅଲଗା କରିଦେବା ।

କେତୁକୁଣ୍ଡଳୀ—ସ୍ତ୍ରୀ. ବି. ଚକ୍ରବିଶେଷ, ଏହାଦ୍ୱାରା ଜନ୍ମ ପ୍ରଭୃତି ଏକ ଏକବର୍ଷର ଅଧିପତି ଗ୍ରହ ଜାଣିପାରି ହୁଏ ।

କେତୁଗ୍ରହ—ପୁଂ. ବି. ନବଗ୍ରହ ମଧ୍ୟରୁ ଏକ ଗ୍ରହ ।

କେତୁତାରା—ସ୍ତ୍ରୀ. ବି. ଗୋଟିଏ ନକ୍ଷତ୍ର ।

କେତୁଧର୍ମା—ପୁଂ. ବି. ଏକଜଣ ରାଜା ।

କେତୁପତାକା—ସ୍ତ୍ରୀ.ବି. ମନୁଷ୍ୟର ଶୁଭା-ଶୁଭ ଜ୍ଞାପକ ବର୍ଷଫଳର ଚକ୍ରବିଶେଷ ।

କେତୁଭ—ପୁଂ. ବି. (ବି.ସ୍ପ) ମେଘ ।

କେତୁମତୀ—ସ୍ତ୍ରୀ.ବି. ସୁମାଳୀରାକ୍ଷସର ସ୍ତ୍ରୀ, ଛନ୍ଦୋବିଶେଷ ।

କେତୁମାନ୍—ପୁଂ. ବିଂ. (କେତୁ+ମତ୍) ରୋଗୀ, ଚିହ୍ନଯୁକ୍ତ, ପ୍ରଜ୍ଞା ଯୁକ୍ତ ।

କେତୁମାନ୍—ପୁଂ. ବି. ଜଣେ ରାଜାଙ୍କର ନାମ, ଧନ୍ୱନ୍ତରିଙ୍କ ପୁତ୍ର,ଦାନବବିଶେଷ, ଶ୍ରୀକୃଷ୍ଣଙ୍କର ପତ୍ନୀ, ସୁନନ୍ଦାର ନିବାସ ଗୃହ ।

କେତୁମାଳ--ପୁଂ.ବି.ଅଗ୍ନୀଧ୍ରରାଜାଙ୍କରପୁତ୍ର, ଅବନ୍ତୀଦେଶସ୍ଥ ନଦୀବିଶେଷ,ଜମ୍ବୁଦ୍ୱୀପା-ନ୍ତର୍ଗତ ନଅଟି ଖଣ୍ଡ ମଧ୍ୟରୁ ଗୋଟିଏ ଖଣ୍ଡ ।

କେତୁମାଳୀ—ପୁଂ.ବି. ଶମ୍ବର ଦୈତ୍ୟର ଜଣେ ସେନାପତି ।

କେତୁମୁଣ୍ଡ—ପୁଂ.ବି.(୬ତତ୍ର)ରାହୁଗ୍ରହ ।

କେତୁଯଷ୍ଟି—ସ୍ତ୍ରୀ.ବି.ପତାକାଦଣ୍ଡ, ଧ୍ୱଜଧଣ୍ଡ

କେତୁରଙ୍ଗା—ଗ୍ରା.ବି. କାଠଗଛବିଶେଷ ।

କେତୁରତ୍ନ—କ୍ଲୀ.ବି.(କ.ଧା)ବୈଦୂର୍ଯ୍ୟମଣି

କେତୁବସନ—ପୁଂ. ବି. ପତାକା ।

କେତୁବୃକ୍ଷ—ପୁଂ.ବି ମେରୁରଚତୁର୍ଦ୍ଦିଗସ୍ଥିତ ମନ୍ଦରପ୍ରଭୃତି ପର୍ବତର ଚିହ୍ନସ୍ୱରୂପ ବୃକ୍ଷ, ଯଥା—ମନ୍ଦରପର୍ବତରେ କଦମ୍ବ, ଗନ୍ଧମାଦନରେ ଜମ୍ବୁ, ବିପୁଳେ (ମେରୁ ପର୍ବତ) ବଟ ଏବଂ ସୁପାର୍ଶ୍ୱେ (ବିଷ୍କମ୍ଭ ପର୍ବତ) ପିପ୍ପଳ କେତୁବୃକ୍ଷ ବୋଲିପ୍ରସିଦ୍ଧ ।

କେତେ—ଗ୍ରା. ସର୍ବ. କି ପରିମାଣ ? କି ସଂଖ୍ୟକ ? ଅନେକ, ଅଗଣିତ,ଅଳ୍ପ, ଅତ୍ୟଧିକ ସଂଖ୍ୟକ ।

କେତେଆଡ଼—ଗ୍ରା.ଅବ୍ୟ. ଅନେକ ସ୍ଥାନ ।

କେତେକ—ଗ୍ରା. ସର୍ବ. କେତେ ମାତ୍ର, କି ପରିମିତ ।

କେତେକଡାରେ ଗଣ୍ଡାଏ—ଗ୍ରା. ବିଂ. ଅତି ନଗଣ୍ୟ (ବ୍ୟକ୍ତି) । [ନଗଣ୍ୟ ।

କେତେକମାତର—ଗ୍ରା. ବିଂ. ଅତିହେୟ,

କେତେକ'ଣ—ଗ୍ରା.ସର୍ବ.ଅନେକ, ବହୁ ।

କେତେକର—ଗ୍ରା.ବିଂ. କେତେମୂଲ୍ୟର ? କେତେକ ପରିମାଣର ? ଅଳ୍ପ ପରିମାଣ ବା ମୂଲ୍ୟବିଶିଷ୍ଟ, ଅତି ସାମାନ୍ୟ ।

କେତେକେ—ଗ୍ରା.ଅବ୍ୟ. ଅତି ସହଜରେ ନୁହେ, କେତେ ପରିମାଣରେ ।

କେତେଗୁଡ଼ାଏ—ଗ୍ରା. ସର୍ବ. ଅନେକ, କେତେକ ସଂଖ୍ୟକ ? କେତେ ପରିମିତ ।

କେତେଗୁଡାକ—ଗ୍ରା.ସର୍ବ.କେତେଗୁଡାଏ (ଦେଖ) । (ଦେଖ) ।

କେତେଗୁଣ୍ଡାଏ—ଗ୍ରା.ସର୍ବ. କେତେଗୁଡ଼ାଏ

କେତେଟା—ଗ୍ରା. ସର୍ବ. ଅଳ୍ପସଂଖ୍ୟକ, ସଂଖ୍ୟାରେ କେତେ ? କେତେଟା ।

କେତେଟି—ଗ୍ରା.ସର୍ବ. କେତେଟା(ଦେଖ)

କେତେଦୂର—ଗ୍ରା.ଅବ୍ୟ. କେତେବାଟ ?

କେତେକକେତେ—ଗ୍ରା.ବିଂ. ବହୁସଂଖ୍ୟକ, (ବିଂର ବିଂ) ଅତ୍ୟନ୍ତ, ଖୁବ୍ ।

କେତେପରି—ଗ୍ରା.ଅବ୍ୟ.କେତେପ୍ରକାରେ, ବହୁତ ପ୍ରକାରେ ।

କେତେବେଳ—ଗ୍ରା.ବି. କେତେ ସମୟ ? କେଉଁ ସମୟ ।

କେତେମାତର—ଗ୍ରା. ବିଂ. ଓ. କ୍ରି. ବିଂ. କେତେମାତ୍ର (ଦେଖ) ।

କେତେମାତ୍ର—ଗ୍ରା. କ୍ରି. ବିଂ. କଦାପି, (ବିଂ) ଅତିସାମାନ୍ୟ । (ଦେଖ) ।

କେତେହେଁ(କ)—ଗ୍ରା. ସର୍ବ, କେତେକ

କେତେହେଲେ—ଗ୍ରା.କ୍ରି.ବିଂ. କଦାପି ।

କେତୋଟା(ଟି)—ଗ୍ରା.ସର୍ବ.କେତେଗୋଟା ଅଳ୍ପସଂଖ୍ୟକ (ବସ୍ତୁ ବା ବ୍ୟକ୍ତି)।

କେଦର—ପୁଂ. ବି°. ଟେକା, କେକର, (ସ୍ତ୍ରୀ) କେଦରୀ।

କେଦାର—ବି.(କେ+ଦୃ+ଅ)କ୍ୟାରୀ, ଶସ୍ୟକ୍ଷେତ୍ର, ହୁଡ଼ା, ପର୍ବତ, ଆଳବାଳ, ଗଛର ମୂଳ ମଣ୍ଡା, ଶିବଲିଙ୍ଗବିଶେଷ। ହିମାଳୟର ଶୃଙ୍ଗବିଶେଷ, କେଦାରନାଥ ଶୃଙ୍ଗରେ ଥିବା ମହାଦେବ; (ଗ୍ରା.ବି) ଓଡ଼ିଆ ରାଗବିଶେଷ,ଅଳଙ୍କାରବିଶେଷ।

କେଦାରକୁଣ୍ଡ—ଗ୍ରା. ବି. ଭୁବନେଶ୍ୱର କେଦାରେଶ୍ୱରଙ୍କ ନିକଟସ୍ଥ ଗୋଟିଏ ସ୍ୱଚ୍ଛ ନିର୍ଝରର କୁଣ୍ଡ।

କେଦାରଖଣ୍ଡ—ବି.(୬ତତ୍ପୁ)ବିଲର ହୁଡ଼ା

କେଦାରଗୌରୀ-ଗ୍ରା.ବି. ଭୁବନେଶ୍ୱରରେ ବିରାଜିତ କେଦାରେଶ୍ୱର ମହାଦେବ, ଓ ଗୌରୀଦେବୀ, କବିବର ରାଧାନାଥଙ୍କ ରଚିତ ଓଡ଼ିଆ କାବ୍ୟ।

କେଦାର ଚନ୍ଦ୍ରକେଳି—ଗ୍ରା.ବି.ରାଗବିଶେଷ

କେଦାରଜ—ବି°. (କେଦାର+ଜନ+ଅ) କ୍ଷେତ୍ରଜାତ, ଯାହା ବିଲରୁ ଉତ୍ପନ୍ନ ହୁଏ, (ବି) ପଦ୍ମକାଠ।

କେଦାରନାଥ—ବି.(୬ତତ୍ପୁ) କାଶ୍ମୀରର ଉତ୍ତରରେ ହିମାଳୟର ଉଚ୍ଚଶୃଙ୍ଗବିଶେଷ, ବଦ୍ରିନାଥ ନିକଟ,କେଦାରନାଥ ଶୃଙ୍ଗରେ ଥିବା ଶିବଲିଙ୍ଗ।

କେଦାରବାହିନୀ—ସ୍ତ୍ରୀ. ବି°. କ୍ଷେତ୍ର ମଧ୍ୟଦେଇ ପ୍ରବାହିତ ହେଉଥିବା (କ୍ଷୁଦ୍ରନଦୀ)

କେଦାରୀ—ସ୍ତ୍ରୀ. ବି. ରାଗିଣୀବିଶେଷ, (ଯା.ବି) ଆଗମଚୌକି।

କେଦାରିକା—ସ୍ତ୍ରୀ.ବି.(କେଦାର+କ+ଆ) କ୍ଷେତ୍ରର ଆଳି, କ୍ଷେତ୍ର।

କେଦାରେଶ(ଶ୍ୱର)—ବି.କେଦାରନାଥ, ଭୁବନେଶ୍ୱରରେ ବିରାଜିତ ଶିବଲିଙ୍ଗବିଶେଷ।

କେନ୍—ପ୍ରା.(ସମ୍ବ)ସର୍ବ.କଅଣ ?କେଉଁ ?

କେନ୍ଆଡ଼େ—ପ୍ରା.(ସମ୍ବ)କ୍ରି.ବି. କେଉଁଆଡ଼େ।

କେନ୍କୁତ—ପ୍ରା. (ସମ୍ବ) ସର୍ବ. କେଉଁଆଡ଼େ ? କେଉଁଆଡ଼କୁ ?

କେନ୍ଟା—ପ୍ରା.(ସମ୍ବ) ସର୍ବ. କେଉଁଟା ? କଅଣ ?

କେନ୍ଦ୍—ପ୍ରା(ସମ୍ବ)ଅବ୍ୟ.କେଉଁଆଡ଼େ ? କେଉଁଆଡ଼କୁ ?

କେନ୍ଦକେ—ପ୍ରା(ସମ୍ବ)ଅବ୍ୟ. କେଣିକି।

କେନ୍ନେ—ପ୍ରା(ସମ୍ବ)ଅବ୍ୟ. କିପରି।

କେନ୍ୟେ—ପ୍ରା. (ସମ୍ବ) ଅବ୍ୟ. କେଉଁଠାରେ ? କାହିଁ ?

କେନ୍ରକମ୍—ପ୍ରା.(ସମ୍ବ) ଅବ୍ୟ. କିପରି, କେଉଁପ୍ରକାରର।

କେନ୍ସି—ପ୍ରା. (ସମ୍ବ)ସର୍ବ. କୌଣସି।

କେନ୍—(କମ୍ଣଭଞ୍ଜ) କାହେରୁ, କାହାଦ୍ୱାରା, କୌଣସିବ୍ୟକ୍ତି, ଉପନିଷଦ୍ବିଶେଷ।

କେନସୀ—ସ୍ତ୍ରୀ. ବି. ରଜସ୍ୱଳା।

କେନା—ଗ୍ରା. ବି. ସରୁସରୁ ଫଡ଼ା,ବୃକ୍ଷରୁ ବାହାରିଥିବା ଶାଖା।

କେନା କରିବା—ଗ୍ରା.କ୍ରି. ଝମ୍ପରେଣ୍ଟୁଣୀ ରହିବା ପାଇଁ ସାଲ କରିବା।

କେନାକେନା—ଗ୍ରା. ଅବ୍ୟ. ଚିକିଟିକି, କେଡ଼ାକେଡ଼ା, ବହୁ ଶାଖା ପ୍ରଶାଖାରେ ବାହାରିବା ପ୍ରକାରେ।

କେନାର—ବି.(କେ+ନୃ+ଣି.ଅ)ମସ୍ତକ, ଗାଲ, ମୁଣ୍ଡର ଖପୁରୀ, ଗଣ୍ଠି,କପାଳ, ସନ୍ଧିସ୍ଥାନ, ନରକବିଶେଷ।

କେନାଲ—ଯା. ଗ୍ରା. ବି. କୃତ୍ରିମନଦୀ।

କେନାଶିଙ୍ଘୁ—ଗ୍ରା.ବି.ବହୁଶାଖାଯୁକ୍ତ ଶିଙ୍ଘୁ

କେନିପ—ପୁଂ. ବି°. (କେ+ନି+ପତ୍ର+ଉଅ) ମେଧାବୀ।

କେନିପାତ—ପୁଂ. ବି. (କେ+ନିପାତ) ଆହୁଲା, ମଙ୍ଗଧରା।

କେନେ—ପ୍ରା.(ବାଲେଶ୍ୱର)ଅବ୍ୟ.କାହିଁକି ? କେଉଁଠାରେ ?

କେନ୍ସା—ପ୍ରା.(ସମ୍ବ)ଅବ୍ୟ.କିପ୍ରକାରର ? କିମାକାର ? କଅଣ ? କିପରି ?

କେନ୍ସେ—ପ୍ରା.(ସମ୍ବ)କ୍ରି.ବି°.କେମନ୍ତେ ? କିପ୍ରକାରେ ? କେଉଁ ଉପାୟରେ।

କେନ୍ଦ୍ରେଇବା—ଗ୍ରା. କ୍ରି. ଖେଳରେ ଜିତିବା ସକାଶେ ଗୋଳାଇବା ବା ଧପାବାଜି କରିବା, ଗେନ୍ଦେରେଇବା, ଯାଦୁ କାରୁଆଦି ପାତ ପୂଜାପାଣିଦେବା, ପ୍ରା, (ସମ୍ବ)କୋଣରୁଙ୍କି ଗତି କରିବା।

କେନ୍ଦରା—ଗ୍ରା. ବି.(ସଂ-କନ୍ଦୋଳ)ବାଦ୍ୟଯନ୍ତ୍ରବିଶେଷ, ଭିକମଗାଯୋଗୀଙ୍କ ବୀଣା, ଚଣ୍ଡାଳବୀଣା।

କେନ୍ଦ୍ରାପଡ଼ା—ଗ୍ରା. ବି. (ସଂ—କେନ୍ଦରାଗ୍ରାମ୍) କଟକ ଜିଲ୍ଲାର ଗୋଟିଏ ସବ୍ଡିଭିଜନ ଓ ସହର, କେନ୍ଦ୍ରାପଡ଼ା।

କେନ୍ଦର—ଗ୍ରା.ବି°.ବିବର୍ଣ୍ଣ ଘା ବା ଦେହର କୌଣସି ଅଙ୍ଗ ବହୁସମୟ ପାଣିରେ ବୁଡ଼ାଇରଖିବା ଯୋଗୁଁ ଶେତାପଡ଼ିଯିବା।

କେନ୍ଦରିବା--ପ୍ରା.(ସମ୍ବ)କ୍ରି.ଘୂରିଘୂରିଗତି କରିବା,ଏକସ୍ଥାନକୁ କେନ୍ଦ୍ରକରି ବୁଲିବା।

କେନ୍ଦଲ—ପ୍ରା.(ଖୋର୍ଦ୍ଧା)ବି. ଜୁଆଳକୁ ଝୁଙ୍ଗାରେ ବାନ୍ଧିବାପାଇଁ ଦୁଇ ଦଣ୍ଡାର ଅଗକୁ ଯେଉଁ କାଠିରେ ଫୋଡ଼ି ଜୁଆଳ ମଝିରେ ସଂଲଗ୍ନ କରାଯାଏ।

କେନ୍ଦା—ଗ୍ରା. ବି°.ଶେତା,ଶେରୁଆ,ଝଟା ହୋଇ ନ ଥିବା(ପଖାଳ),ପାଣ୍ଡୁର ବର୍ଣ୍ଣବିଶିଷ୍ଟ(ବ୍ୟକ୍ତି),ଖଗା, ନିର୍ବୋଧ, ଖନା, ଗୋବା, (ସ୍ତ୍ରୀ) କେନ୍ଦୀ।

କେନ୍ଦାଲିଆ—ଗ୍ରା. ବି°. ବହୁକ୍ଷତବିଶିଷ୍ଟ, ରକ୍ତଶୂନ୍ୟ ହୋଇ ଘାଆ ହୋଇ ଯାଇ ଥିବା ଓ ଶେରୁଆ ହୋଇ ଯାଇଥିବା (ଶରୀରର ଅଙ୍ଗଆଦି)।

କେନ୍ଦୁ—ଗ୍ରା. ବି. ବୃକ୍ଷ ଓ ଫଳବିଶେଷ, ଏହାର ଫଳଖାଇବାକୁ ମିଠାଲାଗେ।

କେନ୍ଦୁଆ—ଗ୍ରା. ବି, ଏକପ୍ରକାର ଛୋଟ ବାଘ, ଚିତାବାଘ,ହେଟାବାଘ, ଗଧିଆ।

କେନ୍ଦୁକ—ବି. (କେନ୍ଦୁ+କ)କେନ୍ଦୁଗଛ ଓ ଫଳ, ଗାଲବ ବୃକ୍ଷ, (ଲୋଧ) ଗଛ ଗଛ,ତାଲ-ବିଶେଷ।

କେନ୍ଦୁଝର—ଗ୍ରା. ବି. ଗଡ଼ଜାତ ରାଜ୍ୟବିଶେଷ, କେଉଁଝର।

କେନ୍ଦୁଡ଼ି—ଗ୍ରା. ବି. ଏକଜାତୀୟ ଜଳଜ ପୁଷ୍ପଗୁଳ୍ମ, ପାଣିକେନ୍ଦୁଡ଼ିଗଛ।

କେନ୍ଦୁବିଲ୍ୱ—କ୍ଲୀ. ବି. ଗୀତଗୋବିନ୍ଦ-ପ୍ରଣେତା କବିଜୟଦେବଙ୍କ ଜନ୍ମସ୍ଥାନ।

**କେନ୍ଦୁଲ**—ବି. କଣ୍ଟାଥିବା ବୃକ୍ଷବିଶେଷ, ଖଜୁରିଗଛ, ତାଳଗଛ ।

**କେନ୍ଦ୍ର**—ବି. (କ+ଇନ୍ଦ୍) ବୃତ୍ତର ଠିକ୍ ମଧ୍ୟବିନ୍ଦୁ, ଜନ୍ମଲଗ୍ନର ଚତୁର୍ଥ, ସପ୍ତମ, ଓ ଦଶମସ୍ଥାନ, ପୃଥିବୀର ଉତ୍ତର ଓ ଦକ୍ଷିଣର ପ୍ରାନ୍ତବିନ୍ଦୁ, ସୂର୍ଯ୍ୟଙ୍କଠାରୁ ଗ୍ରହାଦିର ଦୂରତ୍ୱ, ମନୁଷ୍ୟର ଜନ୍ମଲଗ୍ନ, କେନ୍ଦ୍ରସ୍ଥଳ, ମଧ୍ୟବିନ୍ଦୁ, ପ୍ରଧାନସ୍ଥାନ ।

**କେନ୍ଦ୍ରକ**—କ୍ଲୀ.ବି. ମହାକାଳଲତା ।

**କେନ୍ଦ୍ରକରିବା**—ଗ୍ରା. କ୍ରି. (ଜ୍ୟାମିତି) ବୃତ୍ତ ଅଙ୍କିତ କରିବାପାଇଁ ଗୋଟିଏ କେନ୍ଦ୍ରବିନ୍ଦୁ ନିରୂପଣ କରିବା, କୌଣସି ବହୁବ୍ୟାପୀ କର୍ମ କରିବାପାଇଁ କର୍ମାରମ୍ଭ କରିବାର କେନ୍ଦ୍ରସ୍ଥଳ ନିରୂପଣ କରିବା ।

**କେନ୍ଦ୍ରଗତ**—ବିଂ. (ସ୍ୱାଭାବିକ) କେନ୍ଦ୍ରସ୍ଥ, କେନ୍ଦ୍ରପ୍ରାପ୍ତ, (ସ୍ତ୍ରୀ) କେନ୍ଦ୍ରଗତା ।

**କେନ୍ଦ୍ରବର୍ତ୍ତୀ**—ବିଂ. (କେନ୍ଦ୍ର+ବୃତ୍+କ.ଇନ୍) କେନ୍ଦ୍ରରେ ଅବସ୍ଥିତ, ଜନ୍ମ ଲଗ୍ନରେ ଅବସ୍ଥିତ, (ଗ୍ରହ), ଲଗ୍ନର ଚତୁର୍ଥ, ସପ୍ତମ ବା ଦଶମ ସ୍ଥାନରେ ଅବସ୍ଥିତ ।

**କେନ୍ଦ୍ରମୁଖବଳ**—କ୍ଲୀ. ବି. ଯେଉଁ ଶକ୍ତି-ପ୍ରଭାବରେ ପଦାର୍ଥ ସବୁ କେନ୍ଦ୍ରାଭିମୁଖରୁ ଅନ୍ତରିତ ହୁଏ ।

**କେନ୍ଦ୍ରସ୍ଥ**—ପୁଂ. ବିଂ (କେନ୍ଦ୍ର+ସ୍ଥା+କ.ଅ) କେନ୍ଦ୍ରବର୍ତ୍ତୀ, (ଦେଖ) (ସ୍ତ୍ରୀ), କେନ୍ଦ୍ରସ୍ଥା ।

**କେନ୍ଦ୍ରସ୍ଥାନ**—ବି. (କେନ୍ଦ୍ର+ସ୍ଥାନ) ମଧ୍ୟବିନ୍ଦୁ, ପ୍ରଧାନସ୍ଥାନ, ଲଗ୍ନର ଚତୁର୍ଥ, ସପ୍ତମ ଓ ଦଶମସ୍ଥାନ ।

**କେନ୍ଦ୍ରସ୍ରୋତଃ**—କ୍ଲୀ.ବି. (କ.ଧା) ମେରୁ ନିକଟସ୍ଥ ଆଗତ ସ୍ରୋତ । (ଦେଖ)

**କେନ୍ଦ୍ରାପଡ଼ା**—ଗ୍ରା ବି. କେନ୍ଦ୍ରାପଡ଼ା ।

**କେନ୍ଦ୍ରାପସାରଣୀଶକ୍ତି**—ବି. ଯେଉଁଶକ୍ତି-ପ୍ରଭାବରେ ଦ୍ରବ୍ୟକୁ କେନ୍ଦ୍ର ତ୍ୟାଗକରି ଯିବାକୁ ହୁଏ ।

**କେନ୍ଦ୍ରାପସାରୀ**—ପୁଂ.ବି. (କେନ୍ଦ୍ର+ଅପ+ସୃ+କ,ଇନ୍) କେନ୍ଦ୍ରଠାରୁ ଦୂରକୁ ଗମନଶୀଳ ।

**କେନ୍ଦ୍ରାଭିକର୍ଷଣୀଶକ୍ତି**—ବି. ଯେଉଁ ଶକ୍ତି ପ୍ରଭାବରେ ଦ୍ରବ୍ୟ କେନ୍ଦ୍ରାଭିମୁଖରେ ଆକୃଷ୍ଟ ହୁଏ, ମାଧ୍ୟାକର୍ଷଣ ।

**କେନ୍ଦ୍ରାଭିକର୍ଷୀ**—ପୁଂ.ବିଂ.(କେନ୍ଦ୍ର+ଅଭି+କୃଷ+ଇନ୍) କେନ୍ଦ୍ରାଭିମୁଖେ ଆକର୍ଷଣକ୍ଷମ, (ସ୍ତ୍ରୀ) କେନ୍ଦ୍ରାଭିକର୍ଷିଣୀ ।

**କେନ୍ଦ୍ରୀ**—ପୁଂ. ବି. (କେନ୍ଦ୍ର+ଇନ୍) କେନ୍ଦ୍ରବର୍ତ୍ତୀ(ଦେଖ), (ସ୍ତ୍ରୀ) କେନ୍ଦ୍ରୀଣୀ ।

**କେନ୍ଦ୍ରୀଭୂତ**—ବିଂ. (କେନ୍ଦ୍ର+ଭୂ+ଚ୍ୱୀ+କ.ତ) ଗୁରିଆଡ଼ରୁ ଗୋଟାଇ ହୋଇଆସି ଏକସ୍ଥାନରେ ଗଦାହେବା ।

**କେପି**—କ୍ରି. ବିଂ. କୁତ୍ସିତ କର୍ମକାରୀ ।

**କେବଡ଼ା**—ଗ୍ରା.(ସମ୍ବ) ବିଂ. ମୂର୍ଖ, ଅଜ୍ଞ ।

**କେବ**—ଗ୍ରା. ସର୍ବ. (ଙ-କମ୍+ବେଳା) କେଉଁସମୟ ? କେତେବେଳେ ? ବହୁ ପୂର୍ବବର୍ତ୍ତୀ କାଳ, ଦୂରଅତୀତ, ଦୂର ଭବିଷ୍ୟତ ।

**କେବକା(ରି)**—ଗ୍ରା.ବିଂ. କେଉଁ ସମୟର, ବହୁକାଳ ପୂର୍ବର ।

**କେବକୁ**—ଗ୍ରା. ଅବ୍ୟ. (ଙ-କମ୍) କେଉଁ ଭବିଷ୍ୟତ୍ ସମୟରେ ।

**କେବଟ**—ପୁଂ.ବି.ଜଳକୁଣ୍ଡ,କୂପ,ଚୂଆ ।

**କେବଠୁଁ**—ଗ୍ରା. ଅବ୍ୟ. କେବଠାରୁ (ଦେଖ) ।

**କେବଠାରୁ**—ଗ୍ରା. ଅବ୍ୟ କେଉଁ ସମୟରୁ, ବହୁକାଳ ପୂର୍ବରୁ ।

**କେବଠୁ**—ଗ୍ରା.ଅବ୍ୟ.କେବଠାରୁ (ଦେଖ)

**କେବଣ**—ଗ୍ରା.ସର୍ବ. (ଙ-କମ୍) କେଉଁ-ବ୍ୟକ୍ତି ବା ବିଷୟ, କେହି କୌଣସି, ଅନିର୍ଦ୍ଦିଷ୍ଟ (ବ୍ୟକ୍ତି ବା ବିଷୟ) ।

**କେବର୍ତ୍ତ**—ପୁଂ. ବି. (କେ+ବୃତ୍+କ. ଅ) କେଉଟ, ଧୀବର ।

**କେବରୁ**—ଗ୍ରା.ଅବ୍ୟ.କେବଠାରୁ (ଦେଖ)

**କେବଳ**—କ୍ରି. ବିଂ. (କେବ+କ,ଅଳ) ଏକମାତ୍ର, ଏକାକୀ, ସମ୍ପୂର୍ଣ୍ଣ, ବିଶିଷ୍ଟ, ନିଶ୍ଚିତ, ସ୍ୱାର୍ଥପର, ବିଶୁଦ୍ଧ, ପବିତ୍ର, ସର୍ବୋତ୍କୃଷ୍ଟ, ଈର୍ଷାପର, ସ୍ୱତନ୍ତ୍ର, (ବି) ନାଟୁଆ, ଚନ୍ଦ୍ରଭାଗାଙ୍କ ଲୋକ, (ଅବ୍ୟ) ଏକମାତ୍ର, ଏକାକୀ, ସମ୍ପୂର୍ଣ୍ଣରୂପେ, ଖାଲି, ନିଶ୍ଚିତରୂପେ ।

**କେବଳକର୍ମ**—ବି. ଯୋଗବିଶେଷ, ବୁଝି-ସୁଝି କରାଯିବା କର୍ମ । [ଜ୍ଞାନ ।

**କେବଳଜ୍ଞାନ**—ବି. ସର୍ବୋଚ୍ଚଜ୍ଞାନ, ତତ୍ତ୍ୱ-

**କେବଳଜ୍ଞାନୀ**—ପୁଂ.ବିଂ.(କେବଳଜ୍ଞାନ+ଇନ୍) ତତ୍ତ୍ୱଜ୍ଞାନୀ, ଈଶ୍ୱରଜ୍ଞାନସମ୍ପନ୍ନ, ଶୁଦ୍ଧଜ୍ଞାନୀ (ସ୍ତ୍ରୀ)କେବଳଜ୍ଞାନିନୀ,(ପୁଂ.ବି) ଅର୍ହତବିଶେଷ ।

**କେବଳତଃ**—ଅବ୍ୟ. (କେବଳ+ତସ୍) କେବଳ (ଦେଖ) ।

**କେବଳଦ୍ରବ୍ୟ**—ବି. ଗୋଲମରିଚ ।

**କେବଳବ୍ୟତିରେକୀ**—ବି. ଅନୁମାନ-ବିଶେଷ,ଯାହାର ସପକ୍ଷ ନାହିଁ,କେବଳ ବ୍ୟତିରେକ ବ୍ୟାପ୍ତି ଦ୍ୱାରା ଯେଉଁଅନୁମାନ କରାଯାଏ ।

**କେବଳାନନ୍ଦ**—ବି. ଅମିଶ୍ରିତ ଆନନ୍ଦ, ପରମାନନ୍ଦ, ବିଶୁଦ୍ଧାନନ୍ଦ ।

**କେବଳୀ**—ବି. (କେବଳ+ଈ) ଆତ୍ମା ଓ ଦେହ ଏକଥିବା ବିଷୟକ ମତ ବା ବିଶ୍ୱାସ, ଜ୍ୟୋତିଷବିଦ୍ୟା, ଧ୍ୟାନରତ ଯୋଗୀ, ଅର୍ହତ, ଜ୍ଞାନ, (ପୁଂ. ବିଂ) (କେବଳ+ଇନ୍) ଏକାକୀ, ଏକମାତ୍ର, ଯେଉଁ ଲୋକ ଆତ୍ମା ଓ ଦେହ ଏକ ବୋଲି ବିଶ୍ୱାସ କରେ ।

**କେବଳାତ୍ମା**—ପୁଂ. ବି. (କ.ଧା) ଈଶ୍ୱର, ଯାହାର ପୁଣ୍ୟ ପାପ ନାହିଁ ।

**କେବଳାନ୍ୱୟୀ**—କ୍ଲୀ.ବି.ଅନୁମାନବିଶେଷ, ପଦାର୍ଥବିଶେଷ, ଯାହାର ସର୍ବତ୍ର ସତ୍ତା ଅଛି, କୌଣସିଠାରେ ହେଲେ ଅଭାବ ନାହିଁ ।

**କେବହୁଁ**—ଗ୍ରା.ଅବ୍ୟ.କେବଠାରୁ(ଦେଖ) ।

**କେବା**—ଗ୍ରା. ଅବ୍ୟ (ଙ-କମ୍+ବା) କିଏଅବା,କେଉଁବସ୍ତୁଅବା,କଦା,କମ୍ବା ।

**କେବାଳ**—ପୁଂ. ବିଂ. ହିଂସୁକ ।

**କେବିକା**—ସ୍ତ୍ରୀ. ବି. ପୁଷ୍ପବିଶେଷ ।

**କେବୁ(କ)**—କ୍ଲୀ. କନ୍ଦକନ୍ଦିଆ,କଚୁ ।

**କେଦେ**—ଗ୍ରା. ଅବ୍ୟ. (ଙ-କଦା)କେତେବେଳେ ?,କୌଣସି ସମୟରେ,(କ୍ରି.ବିଂ) ବହୁକାଳପରେ ବା ପୂର୍ବେ, ଅନିର୍ଦ୍ଦିଷ୍ଟ ସମୟରେ ।

କେବେକେବେ—ଗ୍ରା. ଅବ୍ୟ. କୌଣସି କୌଣସି ସମୟରେ । [(ଦେଖ)
କେବେହେଁ-ଗ୍ରା. ଅବ୍ୟ. କେବେହେଲେ
କେବେହେଲେ—ଗ୍ରା.ଅବ୍ୟ.(ସଂ-କଦା ବା କଦାପି, କଦାକାଳେ, କେତେବେଳେ ହେଲେ, ଯେ କୌଣସି କାଳରୁ ବା ଅବସ୍ଥାରେ ମଧ୍ୟ । [(ଦେଖ) ।
କେଭେ—ଗ୍ରା. ଅବ୍ୟ. କେବେହେଲେ,
କେମନ୍ତ—ଗ୍ରା. ଅବ୍ୟ. ଦେଖିବା ଦେଖି, କ, କଅଣ ? ସତେ ?
କେମନ୍ତ—ଗ୍ରା. ବିଂ. (ସଂ-କମିତ) କେଉଁ ପ୍ରକାରର ? କପରି,କପ୍ରକାରେ,(ଅବ୍ୟ) ସତେ, ସତେକି ? । [ କପରି ? ।
କେମନ୍ତେ—ଗ୍ରା. ବିଂ. କ ପ୍ରକାରେ ?
କେମୁକ—ପୁଂ. ବି. (କେ+ଅମ୍+ଉକ) ବୃକ୍ଷବିଶେଷ, କଉକଉଆ, (ଦେଖ) ।
କେମ୍ପ—ଯା. ହାକିମମାନଙ୍କର ଅସ୍ଥାୟୀ ବାସସ୍ଥାନ, ତମ୍ବୁ ।
କେମ୍ପା—ଗ୍ରା.ପୁଂ. ବିଂ. ହସ୍ତବକ୍ରତାବିଶିଷ୍ଟ ପ୍ରାଣୀ, ହାତଗୋଡ଼ ବଙ୍କାଥିବା(ବ୍ୟକ୍ତି), (ସ୍ତ୍ରୀ) କେମ୍ପୀ । [ ଅଂଶ ।
କେମ୍ଭୁକ—ବି. କୋବି,ଗୁବାକର ଭିତର
କେୟୂର—ବି. (କେ+ୟୁ+କ, ହର) ଅନନ୍ତ, ବାଜୁ, ବାହୁଭୂଷଣ, ତାଡ଼, ରତିବନ୍ଧବିଶେଷ,ସମାଧିବିଶେଷ ।
କେୟୂରବନ୍ଧ—ବି. କାମଶାସ୍ତ୍ରୋକ୍ତ ରତିବନ୍ଧବିଶେଷ, ଶରୀରର ଯେଉଁ ସ୍ଥାନରେ କେୟୂର ପିନ୍ଧାଯାଏ, ବାହୁ ।
କେୟୂରବାନ୍—ପୁଂ. ବିଂ. (କେୟୂର+ବତ୍) ଯେ ତାଡ ପିନ୍ଧିଥାଏ ( ସ୍ତ୍ରୀ) କେୟୂରବତୀ ।
କେୟୂରୀ—ପୁଂ. ବିଂ. (କେୟୂର+ଇନ୍) ଅଙ୍ଗଦ ପିନ୍ଧିଥିବା (ବ୍ୟକ୍ତି), ଯେ ତାଡ଼ ପିନ୍ଧିଅଛି, (ସ୍ତ୍ରୀ) କେୟୂରିଣୀ ।
କେର୍‌କେରୁବା—ଗ୍ରା. କ୍ରି. ଦାନ୍ତଦ୍ୱାରା କାଟିବା, କାମୁଡ଼ି ଖାଇବା ।
କେର୍‌କେଣ୍ଡା—ପ୍ରା. ( କଳାହାଣ୍ଡି ) କୃକଳାସ, ଏଣ୍ଡୁଅ ।
କେରଖାଇବା—ପ୍ରା.(ସମ୍ବ) ବି. (ଖାଲହେତୁରୁ)କୋଡ଼ଗାତରେଘାଆ ହେବା ।
କେର୍‌ଧରିବା—ପ୍ରା. (ସମ୍ବ.) ବି. ପିଚ୍ଛିଳ ପଡ଼ିବା । (ଦେଖ) ।
କେରପା—ପ୍ରା. (ସମ୍ବ.) ପୁଂ.ବିଂ. କେର୍ପା
କେର୍‌ପାଲ—ଗ୍ରା.ବି.ଛଣପଟ ସୂତାନିର୍ମିତ ଏକପ୍ରକାର ବସ୍ତ୍ର, ଅଖା ପରି ଜିନିଷ ।
କେରକ—ପୁଂ. ବି. ଜନପଦବିଶେଷ, ତତ୍ରସ୍ଥାନବାସୀ ଲୋକ,କେରଳଦେଶ ।
କେରଣ୍ଡ—ଗ୍ରା. ଅବ୍ୟ. ଯୁଦ୍ଧକାଳରେ ଏକପକ୍ଷ ତଳେପଡ଼ି ନିଜେ ପରାସ୍ତହେଲି ଏହା ମୁହଁରେ ସ୍ୱୀକାର କରିବା(ଏହାର ଅର୍ଥ ମୁଁ ହାରିଲି),ଯୁଦ୍ଧ ଓ ଖେଳରେ କରାଯିବା ବାଜି ବା ପଣ, ମାଲଯୁଦ୍ଧରେ ପରାଜୟ ।
କେରନ୍ଧା—ଗ୍ରା. ବି. କରନ୍ଧାକୋଳି ।
କେରଳ—ପୁଂ ବି. କ୍ଷତ୍ରିୟଜାତିବିଶେଷ, କେରଳ ଦେଶର ରାଜା,କେରଳ ଦେଶବାସୀ ବ୍ୟକ୍ତି;କେଲାଜାତି,ଆର୍ଯ୍ୟାବର୍ତ୍ତରାଜାଙ୍କ ପୁତ୍ରବିଶେଷ,(ବିଂ) ମାଲବାରଦେଶବାସୀ ।
କେରଳଚକ୍ରାମଣି—ଏକଜଣ ଜ୍ୟୋତିଷର ନାମ ।
କେରଳଜାତକ—ଖଣ୍ଡିଏ ଜାତକ ଗ୍ରନ୍ଥ ।
କେରଳତନ୍ତ୍ର—ଖଣ୍ଡିଏ ପ୍ରାଚୀନତନ୍ତ୍ର ।
କେରଳୀ—ସ୍ତ୍ରୀ. ବି. ଜ୍ୟୋତିଷଶାସ୍ତ୍ରବିଶେଷ, କେରଳଦେଶ ପ୍ରଚଳିତ ଜ୍ୟୋତିଷଗଣନା, (ହୋରା-ପ୍ରାୟ ଏକଘଣ୍ଟା ସମୟ) କେରଳଦେଶୀୟା ସ୍ତ୍ରୀ ।
କେରଳୀହାତରେଅଡ଼ା-ଗ୍ରା.ବି. (ପ୍ରବଚନ) (ଫଳିତଜ୍ୟୋତିଷ) ବର୍ଷମଧ୍ୟରେ ପୃଥିବୀରେ ଜନ୍ମିବା ଶସ୍ୟାଦିର ପରିମାଣ ବେଶି କମ୍ ହେବା ସୂଚକ ଆଙ୍କ,ଉକ୍ତବର୍ଷ ଜ୍ୟୋତିଷ-ଗଣନାକ୍ରମେ କେରଳୀ ହସ୍ତରେ ଥିବା ।
କେରା—ବିଂ କେଶ ବା ତୃଣାଦିର କ୍ଷୁଦ୍ର ଗୁଚ୍ଛ(ଗ୍ରା. ସମ୍ବ ଓ ବସ୍ତର ବି) କଦଳୀ ।
କେରାକନ୍ଧା—ଗ୍ରା. (ବସ୍ତର)କଦଳୀମଞ୍ଜା ।
କେରାକେରା—ଗ୍ରା.ଅବ୍ୟ. ବହୁ କ୍ଷୁଦ୍ର କ୍ଷୁଦ୍ର ଗୁଚ୍ଛରେ ।
କେରାଞ୍ଚ—ଯା. ବି. ବଳଦଟଣାଗ୍ରୀଙ୍ଗ୍‌ଲଗା କାଠର ସବାରଗାଡ଼ି, କେରାଞ୍ଚିଗାଡ଼ି, ଘୋଡ଼ାପାଇଁ ବଡ଼ଗରୁବୁଜ, ଛୋଟ ସିଧା ତରବାରି । (ଦେଖ) ।
କେରାଟ—ପ୍ରା (ବାଲେଶ୍ୱର)ବି.କୋଇଟ
କେରାଣ୍ଡି—ଗ୍ରା. ବି. ମତ୍ସ୍ୟବିଶେଷ, ଏକପ୍ରକାର କ୍ଷୁଦ୍ର କାତଥିବା ଚେପ୍ଟାମାଛ,ପ୍ରା (ମେଦିନୀ.ବି.) ଚେଲୁଣିପୋକ ।
କେରାଣ୍ଡିଗୁଣ୍ଡି ଶହଳପାଇବାନ୍ୟାୟ—ଗ୍ରା. (ପ୍ରବଚନ)ସାମାନ୍ୟ ପଦାର୍ଥଦେଇ ବେଶି ପଦାର୍ଥ ପାଇବାକୁ ଆଶା କରିବା ।
କେରାନି—ଯା. ବି. କରାନି (ଦେଖ) ।
କେରାମତ୍—ଯା.ବି.ଶକ୍ତି,କ୍ଷମତା, କରାମତ୍ ।
କେରାୟା—ଯା. ବି. ଭଡ଼ା ।
କେରାୟାକରିବା—ଗ୍ରା. କ୍ରି. କେରାୟା ଦେବା, ଭଡ଼ା କରିବା ।
କେରାୟାଦାର—ଯା. ବି. ଭଡ଼ାଦାର,ଯେ ଭଡ଼ାରେ କୌଣସି ବସ୍ତୁ ବା ଘରଆଦି ନେଇଥାଏ ।
କେରି—ଗ୍ରା.ବି. ଛୋଟକେରା, କ୍ଷୁଦ୍ର ଗୁଚ୍ଛ ।
କେରିକେରି—ଗ୍ରା.ଅବ୍ୟ. ବହୁକ୍ଷୁଦ୍ର କ୍ଷୁଦ୍ର ଗୁଚ୍ଛରେ ।
କେରୁଆଳ—ଗ୍ରା.ବି. ଡଙ୍ଗାର ଆହୁଲା ପାଖଲଗିଥିବା ଆହୁଲା, ମଙ୍ଗଧରା (ପ୍ରା. ସମ୍ବ. ବି.) ଘୋଡ଼ାର ଲଗାମ ।
କେରୋସିନ୍—ଯା.ବି. (ଇଂ) ଏକପ୍ରକାର ଖଣିଜ ତୈଳ, କିରାସିନତେଲ ।
କେର୍ପା ଗ୍ରା.ପୁଂ.ବିଂ. କେମ୍ପାଗୋଡ଼ିଆ । ବକ୍ରପଦ (ବ୍ୟକ୍ତି), (ସ୍ତ୍ରୀ) କେର୍ପୀ ।
କେଲଖା-ପ୍ରା.(ସମ୍ବ.)ବିଂ.ଭକୁଆ,ନିର୍ବୋଧ, ଓଲୁ ।
କେଲକ—ପୁଂ.ବି.(କେଲ+ଅକ)ନର୍ତ୍ତକ, ନାଟୁଆ, ଯେ ବନ୍ଧୁସଙ୍ଗେ, ଯେ ଖଣ୍ଡା ଧାରରେ ଚାଲେ ଓ ନାଚେ ।
କେଲତି—ଗ୍ରା. ସ୍ତ୍ରୀ. ବି. ରତିଦେବୀ,ରତିକ୍ରୀଡ଼ା ।
କେଲା—ଗ୍ରା.ବି. ଔଦ୍ରଜାଲିକ, ଯାଯାବରଜାତିବିଶେଷ, ସାପଖେଳା ଇତ୍ୟାଦି

ବ୍ୟବସାୟୀଜାତ,ସ-ବି.(କେଳ+ଅ+ଆ) ବିଳାସ ।
କେଳାଇବା—ଗ୍ରା.କ୍ରି. ମାଛ ବା ପଶବା ପ୍ରଭୃତିକୁ ପରିଷ୍କାର କରି ରନ୍ଧନର ଉପଯୋଗୀକରିବା,ଅତ୍ୟନ୍ତବିରକ୍ତକରିବା, ଲଆରୁ ଧାନ ଗ୍ରେପାକୁ ଛଡ଼ାଇବ,ଡାଳ ଆଦିର ଶାଖାକୁ ହାଣି ପରିଷ୍କାରକରିବା ।
କେଳଣ୍ଡି—ଗ୍ରା. ବି.ଗୋବର ଚଢ଼ାଇପର ଏକପ୍ରକାର ପକ୍ଷୀ ।
କେଳାସ—ପୁଂ. ବି. (କେଳା+ସଦ୍+ଅଧି, ଅ) ସ୍ଫଟିକ, କୈଳାସ ପର୍ବତ ।
କେଳି—ପୁଂ. ସ୍ତ୍ରୀ ବି. (କେଳ+ଭା ଇ) କ୍ରୀଡ଼ା, ପରିହାସ, ରତି, କୌତୁକ, ପୃଥିବୀ, ଲୀଳା, କ୍ଷୁଦ୍ର ଗୋଲାକୃତି ଘୃତପକ୍ୱ ପିଷ୍ଟକବିଶେଷ ।
କେଳିକ—ପୁଂ. ବି. ଅଶୋକ ବୃକ୍ଷ ପୁଂ. ବିଂ. କ୍ରୀଡ଼ାପ୍ରିୟ, କ୍ରୀଡ଼ାରତ, ( ସ୍ତ୍ରୀ ) କେଳିକା ।
କେଳିକଦମ୍ବ—ପୁଂ. ବି. କଦମ୍ବଫୁଲ ଆକୃତିର ଛୋଟ ଛୋଟ ଫୁଲବିଶିଷ୍ଟ ବସନ୍ତ କାଳରେ ପୁଷ୍ପିତ କଦମ୍ବବୃକ୍ଷ ବିଶେଷ ।
କେଳିକଳା—ସ୍ତ୍ରୀ. ବି. (କେଳି+କଳ+ଅ+ଆ) ରତିକ୍ରୀଡ଼ା,ସରସ୍ୱତୀଙ୍କ ବୀଣା, ରତିବିଦ୍ୟା, ଚନ୍ଦ୍ର ।
କେଳିକିଳ—ପୁଂ. ବି. (କେଳି+କିଳ+ଅ)ଶିବଙ୍କର କୁଷ୍ମାଣ୍ଡକନାମକ ଅନୁଚର ବିଦୂଷକ, କାମପତ୍ନୀ, ରତି, (ବି.ବିଂ) ପରିହାସକାରକ,(ସ୍ତ୍ରୀ)କେଳିକିଳା ।
କେଳିକିଳା—ସ୍ତ୍ରୀ. ବି. (କେଳି+କିଳା) ରତିଦେବୀ, କନ୍ଦର୍ପପତ୍ନୀ ।
କେଳିକିଳାବତୀ—ସ୍ତ୍ରୀ. ବି. କାମପତ୍ନୀ, ରତିଦେବୀ ।
କେଳିକୀର୍ଣ୍ଣ—ପୁଂ. ସ୍ତ୍ରୀ ବି. ଓଟ, ଉଷ୍ଟ୍ର ।
କେଳିକୁଞ୍ଚିକା—ସ୍ତ୍ରୀ.ବି. (କେଳି+କୁଚନ୍+ଇକ+ଆ) ଶାଳୀ, ଭାର୍ଯ୍ୟାର ସାନ-ଭଉଣୀ ।
କେଳିକୁସୁମ—ଗ୍ରା. ବି. କେଳି ଓ ନାଲି-ପାଖୁଡ଼ାଯୁକ୍ତ ସାନ କୁସୁମଫୁଲ, ମାଣିକ ମଣ୍ଡଳ । [ନାଟୁଆ ।
କେଳିକୋଷ—ପୁଂ. ବି. (୬ତତ୍) ନଟ,
କେଳିଗୃହ—କ୍ଲୀ.ବି.(୬ତତ୍)କେଳିମନ୍ଦିର
କେଳିନାଗର—ପୁଂ.ବିଂ.ବିଳାସୀ, ଭୋଗା-ସକ୍ତ ।
କେଳିପର—ପୁଂ. ବିଂ. (ବି.ଗ୍ରା) କାମ କ୍ରୀଡ଼ା ରତ, କାମୁକ (ସ୍ତ୍ରୀ)କେଳିପରା ।
କେଳିପୁର—କ୍ଲୀ.ବି.(୬ତତ୍)ନାଟ୍ୟଶାଳା, କ୍ରୀଡାଗାର, ଦମ୍ପତୀଙ୍କର କାମ କ୍ରୀଡ଼ାର ରଙ୍ଗଭୂମି, ରୂପଗୃହ ।
କେଳିପ୍ରିୟ—ବିହାରୀ ପ୍ରଣୟନାମକ ସଂସ୍କୃତ କାବ୍ୟରଚୟିତା, ରତିକ୍ରୀଡ଼ାରେ ଯେ ଅନୁରକ୍ତ ।
କେଳିଭୂମି—ସ୍ତ୍ରୀ. ବି. କ୍ରୀଡାର ସ୍ଥାନ, ବିହାର ସ୍ଥାନ, (ବିଂ) କୌତୁକସ୍ଥାନୀୟ ପରିହାସ ପାତ୍ର ।
କେଳିମୁଖ—ପୁଂ. ବି. (୬ତତ୍)ପରିହାସ, କୌତୁକ ।
କେଳିମଣ୍ଡପ(ମନ୍ଦିର)—ପୁଂ.ବି.କେଳିଗୃହ
କେଳିରୈବତକ—କ୍ଲୀ. ବି. ହୃଲ୍ଲୀଶ-ଲକ୍ଷଣଯୁକ୍ତ ନାଟକବିଶେଷ ।
କେଳିବୃକ୍ଷ—ପୁଂ.ବି. କେଳିକଦମ୍ବ ଗଛ ।
କେଳିଶୟନ—କ୍ଲୀ. ବି. ( ୬ତତ୍ ) ରତି କ୍ରୀଡ଼ାର୍ଥ ଶଯ୍ୟା, ପଲଙ୍କ ।
କେଳିଶଯ୍ୟା—ବି.(୬ତତ୍) ପଲଙ୍କ ।
କେଳିଶୁଷି—କ୍ଲୀ.ବି.(କେଳି+ଶୁଷ୍+ଇ) ପୃଥିବୀ ।
କେଳିସଚିବ—ପୁଂ. ବି. (୬ତତ୍) କ୍ରୀଡ଼ା କୌତୁକପ୍ରଭୃତି ବିଷୟରେ ମନ୍ତ୍ରୀ, ବିଦୂଷକ ଆଦି ।
କେଳିସଦନ—କ୍ଲୀ. ବି. କେଳିଗୃହ ।
କେଳିସ୍ଥଳୀ—ସ୍ତ୍ରୀ. ବି. କ୍ରୀଡ଼ାଭୂମି ।
କେଳୀ—ବି.(କେଳି+ଈ)କେଳି(ଦେଖ)
କେଳିପିକ—ପୁଂ. ବି. କ୍ରୀଡ଼ାକୋକିଳ ।
କେଳୀବନ—ସ୍ତ୍ରୀ. ବି. (୬ତତ୍) ଆନନ୍ଦ କାନନ, କ୍ରୀଡ଼ୋଦ୍ୟାନ, ସୁଖଉପବନ ।
କେଳୀଶୁକ—ବି.(୬ତତ୍) କୌତୁକପାଇଁ ପୋଷାଯିବା ଶୁଆ ।
କେଳୁ—ପୁଂ. ବି. ଜଙ୍ଘୋଷ୍ଠ ପକ୍ଷୀ ।
କେଳୁଣୀ—ଗ୍ରା. ସ୍ତ୍ରୀ. ବି. କେଳାଜାତୀୟା ସ୍ତ୍ରୀ, (ଲକ୍ଷଣାର୍ଥ ଚାଳ)ନିର୍ଲଜ୍ଜା ସ୍ତ୍ରୀ ।
କେଳୁଣୀହାତରେ ଅଡ଼ା—ଗ୍ରା. (ପ୍ରବଚନ) (ଲକ୍ଷଣାର୍ଥ)ଦାନଶୀଳ ବ୍ୟକ୍ତି ହାତରେ ପରଷିବାର ଭାର ରହିବା ।
କେଶ୍—ଯା. ମକଦ୍ଦମା, ଫୌଜଦାରି ମକଦ୍ଦମା,ରୋଗ, ନଗଦ ଟଙ୍କାବାକ୍ସ ।
କେଶ—ପୁଂ. ବି.(କ+ଈଶ.ଅ ବା କେ+ଶୀ+କ,ଅ ) ମୁଣ୍ଡର ବାଳ,ବାଳ, ବରୁଣ, କୁରୁବେଲ, ଦୈତ୍ୟବିଶେଷ, ସୂର୍ଯ୍ୟ ଓ ଅଗ୍ନି ପ୍ରଭୃତିର କିରଣ, ବିଷ୍ଣୁ, ରଶ୍ମି, ପରଂବ୍ରହ୍ମଶକ୍ତି, ଚୂଳ ।
କେଶକ—ପୁଂ.ବିଂ. (କେଶ+କ)କେଶ-ରଚନା-ତତ୍ପର, ଯେ ଭଲକେଶ ବାନ୍ଧି-ପାରେ (ସ୍ତ୍ରୀ) କେଶିକା ।
କେଶକର୍ମ—କ୍ଲୀ. ବି. କେଶ-ସଂସ୍କାର, ମୁଣ୍ଡ କୁଣ୍ଡାଇବା ।
କେଶକର୍ଷଣ—ବି. (୬ତତ୍) ଚୁଟିଝିଙ୍କା ।
କେଶକଳାପ—ପୁଂ.(୬ତତ୍) ବାଳସବୁ, କେଶସମୂହ ।
କେଶକାର—ପୁଂ.ବିଂ,(କେଶ+କୃ+କ ଅ ) କେଶସଂସ୍କାରକ, କେଶ ବିନ୍ୟାସ-କାରୀ. (ପୁଂ.ବି.) ଇକ୍ଷୁବିଶେଷ ।
କେଶକୀଟ—ପୁଂ.ବି. ୬ତତ୍; (କେଶ+କୀଟ) ଉକୁଣି, ମଲୁକୁଣ ।
କେଶଗର୍ଭ(କ)—ପୁଂ ବି.ବି.ଗ୍ରା;(କେଶ+ଗର୍ଭକ)କବରୀ,ଖୋଷା, ଜୁଡ଼ା, ବାଳର ବେଣୀ, ବରୁଣଦେବ ।
କେଶଗୁଚ୍ଛ—ବି.(୬ତତ୍) ବାଳର କେରା, କେଶସମୂହ ।
କେଶଗୃହୀତ—ବିଂ.(୬ତତ୍)ଯାହାର ଚୁଟି ଧରା ବା ଝିଙ୍କା ହୋଇଥାଏ ।
କେଶଗ୍ରହ—ପୁଂ. ବି. ବଳପୂର୍ବକ ବାଳ-ଧରିବା, ଚୁଟିଝିଙ୍କା ।
କେଶଗ୍ରହଣ—ବି.(୬ତତ୍)ଯୁଦ୍ଧ ବା ରତି କାଳରେ ବଳାତ୍କାରରେ କେଶ ଧରିବା, ଚୁଟିଝିଙ୍କିବା ।
କେଶଗ୍ରାହମ୍—ଅବ୍ୟ,କେଶଗ୍ରହଣାନନ୍ତର, ବାଳ ଧରିସାରି ।
କେଶଘ୍ନ—କ୍ଲୀ.ବି.(କେଶ+ହନ୍+କ୍ୱପ୍) ଚନ୍ଦାହେବା ରୋଗ, କେଶନାଶକ ରୋଗବିଶେଷ, (ବି) କେଶନାଶକ ।

କେଶଚୁଣ—ପୁଂ.ବଂ. (କେଶ + ଚଣ) ଯାହାର ଗୁଚ୍ଛ ସୁନ୍ଦର କେଶଅଛି, ବାଲଯୋଗୁଁ ଯେ ସୁପରିଚିତ ।

କେଶଚୈତ୍ୟ-ନେପାଳରେ ଥିବା ଗୋଟିଏ ବୌଦ୍ଧପୀଠ ।

କେଶଚ୍ଛିଦ୍—ପୁଂ.ବ. (କେଶ + ଛିଦ୍ + କ୍ୱିପ୍) ଭଣ୍ଡାରି, ନାପିତ, (ବଂ) କେଶଛେଦକ

କେଶଜାସ୍ଥା—ବ. ଉଚ୍ଚ କାଳରେ ସ୍ତ୍ରୀ ବା ପୁରୁଷର କେଶଧାରଣ ।

କେଶଜାହ—କ୍ଲୀ. ବ. (୬ତତ୍) କେଶର ମୂଳ, ବାଳମୂଳ ।

କେଶଟ—ପୁଂ. ବ. (କେଶ + ଅଟ୍ + କ ଅ) ଛେଳି, ବିଷ୍ଣୁ, ଛାରପୋକ, ଓଡ଼ଶ, ଭୃକୁଟି, ଘଇ, ଗୁଳ୍ମବିଶେଷ, କନ୍ଦର୍ପର ଶୋଷଣନାମକ ବାଣ ।

କେଶଦାମ—କ୍ଲୀ. ବ. (କ.ଧା) କେଶଗୁଚ୍ଛ (ଦେଖ), କେଶସ୍ଥିତ ମାଳା ।

କେଶଦୁଦୁରୀ—ଗ୍ରା.ବ. ସୋମରାଜି ବର୍ଗର ସରୁକର୍କଶ ଝଟାଳିଆ ଶାକବିଶେଷ ।

କେଶଧର—ପୁଂ.ବଂ. (କେଶ + ଧୃ + କ ଅ) କେଶଧାରୀ, ଯେ ବାଳ ଧରେ, (ପୁଂ.ବ) ଜନପଦବିଶେଷ, ସେନାବିଶେଷ, ଫଣଫଣ, ଶ୍ୟୋନାକ ।

କେଶଧାରଣ—ବ. (୬ତତ୍) ବାଳକୁ ନ କାଟି ବଢ଼ାଇବା, ବାଳରଖିବା ।

କେଶଧାରଣୀ—ସ୍ତ୍ରୀ ବ ଦୁର୍ଗା, ପୃଶ୍ନି, କେଶ ପୃଶ୍ନି, କେଶପୃଷ୍ଟା ।

କେଶଧୂତ୍—ପୁଂ. ବ. (କେଶ + ଧୃ + କ୍ୱିପ୍) ଭୂତକେଶନାମକ ତୃଣବିଶେଷ ।

କେଶନାମ—ପୁଂ. ବ. ବାଳା ସ୍ତ୍ରୀ ।

କେଶପକ୍ଷ—ପୁଂ.ବ. (କେଶ + ପକ୍ଷ) କେଶ ସମୂହ, ଆନମୁଦୁରି, କପାଳର ଦୁଇପାଖ ।

କେଶପର୍ଣ୍ଣୀ—ସ୍ତ୍ରୀ· ବ. ଅପାମାର୍ଗ ।

କେଶପାଶ—ପୁଂ. ବ. (୬ତତ୍) କେଶସମୂହ, ବାଳର କେରା, ସଜ୍ଜିତକେଶ ।

କେଶପାଶୀ—ସ୍ତ୍ରୀ. ବ. (କେଶ + ପାଶ + ଇ) ଶିଖା, ଚୂଡ଼ା, ବାଳଗୁଚ୍ଛା ।

କେଶପୀଠ—ପୁଂ.ବ. ପୀଠସ୍ଥାନବିଶେଷ ।

କେଶପୃଷ୍ଟା—ସ୍ତ୍ରୀ. ବ. ଦୁର୍ଗପୃଷ୍ଠୀ ।

କେଶପ୍ରସାଧନ—ବ. (୬ତତ୍) ମୁଣ୍ଡକୁଣ୍ଡାଇବା କର୍ମ ।

କେଶପ୍ରସାଧନୀ—ସ୍ତ୍ରୀ.ବ. (୬ତତ୍) ପାନିଆଁ, ଯହିଁରେ ବାଳ କୁଣ୍ଡାନ୍ତି ।

କେଶପ୍ରସାର—ବ. ବାଳସଫା କରିବା ।

କେଶବନ୍ଧ—ପୁଂ. ବ. (୬ତତ୍) କବରୀ, ଖୋସା, ବାଳ ବାନ୍ଧିବାପାଇଁ ବ୍ୟବହୃତ ଫିତା, ଭଡ଼ା, ପାଟଫୁଲ ।

କେଶବନ୍ଧନ—କ୍ଲୀ.ବ. (୬ତତ୍) ବାଳରେ ଗଣ୍ଠି ପକାଇବା ।

କେଶବପନ—ବ. (୬ତତ୍) ବାଳକାଟିବା, କ୍ଷିଅରହେବା ।

କେଶଭୂ—ସ୍ତ୍ରୀ. ବ. (୬ତତ୍) ମସ୍ତକ ।

କେଶଭୂମି—ସ୍ତ୍ରୀ. ବ. ମୁଣ୍ଡ ।

କେଶମଥନୀ—ସ୍ତ୍ରୀ. ବ. ଶମୀବୃକ୍ଷ ।

କେଶମାର୍ଜକ—କ୍ଲୀ.ବ. (୬ତତ୍) ପାନିଆଁ, କଙ୍କତିକା ।

କେଶମାର୍ଜନ—କ୍ଲୀ. ବ. (୬ତତ୍) ବାଳ ସଜାଡ଼ିବା, ବାଳ କୁଣ୍ଡାଇବା ।

କେଶମାର୍ଜନୀ—ସ୍ତ୍ରୀ.ବ (୬ତତ୍) କଙ୍କତିକା ପାନିଆଁ ।

କେଶମୁଣ୍ଡନ କ୍ଲୀ.ବ. (୬ତତ୍) ବାଳକାଟିବା

କେଶମୁଷ୍ଟି—ପୁଂ.ବ. ବିଷମୁଷ୍ଟିବୃକ୍ଷ, ମହାନିମ୍ବଗଛ, ମାହାଳ ।

କେଶର, କେସର—କ୍ଲୀ. ପୁଂ.ବ. (କେ + ଶୃ + ଅ) ଫୁଲର କେଶାକାର ସୂକ୍ଷ୍ମାଂଶ, କିଞ୍ଜଳ, ଘୋଡ଼ା ଓ ସିଂହ ଆଦିଙ୍କର ବେକରେଥିବା ବାଳ, ବଉଳଫୁଲ ଓ ଗଛ, ନାଗେଶ୍ୱର, ପୁନ୍ନାଗ, କୁସୁମ, ଗୁଳ୍ମ, ଚଣ୍ଡିକେଶର, ସୁନା, (ଗ୍ରା. ବ.) ପଦ୍ମବୀଜ, ଜାଫ୍ରାନ କେଶର, ଡମ୍ବୁର ହଳଦିଆ ଅଂଶ, ଜର୍ମାନୀର ଭୂତପୂର୍ବ ସମ୍ରାଟଙ୍କର ଉପାଧି କେଶ୍ରର ।

କେଶରଙ୍ଗ—ପୁଂ. ବ. କେଶରାଜ. ଭୃଙ୍ଗରାଜ ।

କେଶରଚନା - ସ୍ତ୍ରୀ. ବ. (୬ତତ୍) କେଶବନ୍ଧାଯାଇଥିବା ଗଣ୍ଠି, ଖୋସା, ଜୁଡ଼ା ।

କେଶରଞ୍ଜନ—ପୁଂ. ବ. କେଶଦୁଦୁରୀ, (ଗଛ) ବାଳକୁ ରଞ୍ଜାଇବା ।

କେଶରଞ୍ଜନୀ—ଗ୍ରା. ବ. ପାନିଆଁ ।

କେଶରପାଣ୍ଡିଆ—ଗ୍ରା.. (ଆଳ)ବ. ବାଟଗୃପୁଲି (ଦେଖ), (ଗ୍ରା.ପୁରୀ) ଚକ୍ରବାକ ପକ୍ଷୀ । [ + ଅ) କୁଙ୍କୁମ ।

କେଶରବର—ପୁଂ. ବ. (କେଶର + ବୃ

କେଶରାଜ—ପୁଂ.ବ କେଶଦୁଦୁରୀ, କଜଳ ପାତିପରି କଳାଥିବା ପକ୍ଷୀବିଶେଷ ।

କେଶରାମ୍ଳ—ପୁଂ. ବ. ଡାଳିମ୍ବ ।

କେଶରି—ପୁଂ. ବ, ହନୁମାନଙ୍କ ପିତା ।

କେଶରି(କ)—ବ. ( କେଶର + ଇକ ) ବାସନମାଜିବା କନାପୁଡ଼ା, ମଜାମୁଠା ।

କେଶରିସୁତ—ପୁଂ.ବ. (୬ତତ୍) ହନୁମାନ

କେଶରୀ—ପୁଂ. ବ. ( କେଶର + ଇନ୍ ) କେଶର ବିଶିଷ୍ଟ, (ସ୍ତ୍ରୀ) କେଶରିଣୀ, (ବ) ସିଂହ, ରାଜା, ସମ୍ରାଟ, ଅଶ୍ୱ, ବାନର, ଓଡ଼ିଶାର ପୁରାତନ ରାଜବଂଶ ବିଶେଷ, ଶ୍ରେଷ୍ଠ, ନାଗେଶ୍ୱର, ହସ୍ତୀ, ମର୍କଟବିଶେଷ, ପୁନ୍ନାଗ, ଜଳଚର ପକ୍ଷୀବିଶେଷ, ଲେମ୍ବୁଗଛ, କୁସୁମଗୁଳ୍ମ, ନାଲିସଜନା ଗଛ ।

କେଶରୁହା—ସ୍ତ୍ରୀ. ବ. ଭଦ୍ରଦନ୍ତୀ ବୃକ୍ଷ, ମହାବଳ, ଗୋରକ୍ଷ, ଭୃଙ୍ଗରାଜ ।

କେଶରୁତ—ପୁଂ.ବ. କାସମର୍ଦ୍ଦ, (ଦେଖ) ।

କେଶରୂପା—ସ୍ତ୍ରୀ.ବ. (ବ.ବ୍ରୀ) ବନ୍ଦାକ ।

କେଶଲୁଞ୍ଚ(କ)—ପୁଂ. ବ. ଜୈନାଗୁନ୍ଥିବିଶେଷ, (ବଂ) କେଶମୁଣ୍ଡନକାରୀ ।

କେଶବ—ପୁଂ. ବ. (କ + ଈଶ + ବ) ପରମାତ୍ମା, ବିଷ୍ଣୁ, ମାର୍ଗଶିରମାସ, ପୁନ୍ନାଗ ବୃକ୍ଷ, ଜଳସ୍ଥିତ ଶବ ବା ମୃତଦେହ. ଶ୍ରୀକୃଷ୍ଣ, ଗୁଳ୍ମବିଶେଷ, ମଣ୍ଡାକୁସୁମ, (ବଂ) ପ୍ରଶସ୍ତ କେଶଯୁକ୍ତ ।

କେଶବକୋଇଲି—ଗ୍ରା· ବ. ଓଡ଼ିଶାର ଭକ୍ତକବି ବଳରାମଦାସଙ୍କକୃତ ଚୌତିଶା ବା ଗୀତବିଶେଷ ।

କେଶବଚନ୍ଦ୍ରସେନ—ଗ୍ରା. ବ. ବଙ୍ଗର ବିଖ୍ୟାତ ବ୍ରାହ୍ମଧର୍ମ-ସମାଜର ପ୍ରତିଷ୍ଠାତା-

କେଶବତୀ—ନେପାଳସ୍ଥ ଗୋଟିଏ ନଦୀ ।

କେଶବପମାସ୍ଥ—ପୁଂ. ବ. ଅତିରାତ୍ର ଯାଗବିଶେଷ ।

କେଶବପ୍ରିୟା—ସ୍ତ୍ରୀ. ବ. ରାଧିକା, ଗୋରୋଚନା ।
କେଶବଭଟ୍ଟ—ଏକଜଣ ଗ୍ରନ୍ଥକାର ।
କେଶବଭାରତୀ—ଚୈତନ୍ୟ ଦେବଙ୍କ ଦୀକ୍ଷାଗୁରୁ । [ଜ୍ୟୋତିର୍ବିଦ୍ ।
କେଶବମିଶ୍ର—ଏକଜଣ ପ୍ରାଚୀନ
କେଶବରାୟ—ଏକଜଣ ହିନ୍ଦୁ କବି ।
କେଶବର୍ଦ୍ଧନ—ବି.(କେଶ + ବୃଧ + ଅନ) ବାଳବଢ଼ିବା, ଯେଉଁ ଔଷଧ ବା ତୈଳଦ୍ୱାରା କେଶବର୍ଦ୍ଧିତହୁଏ,ଶତାବରୀଲତା ।
କେଶବର୍ଦ୍ଧିନୀ—ଅତିବଳା,ବଜ୍ରମୂଳୀ,ଗୁଳ୍ମବିଶେଷ ।
କେଶବସ୍ୱାମୀ—ଏକଜଣ ବୈୟାକରଣ ।
କେଶବାଦିତ୍ୟ-ବି. କାଶୀମଧ୍ୟସ୍ଥ ଆଦିତ୍ୟବିଶେଷ ।
କେଶବାୟୁଧ—କ୍ଲୀ. ବ. ବିଷ୍ଣୁଙ୍କର ଅସ୍ତ୍ର ।
କେଶବାଳୟ(ବାସ)—ପୁଂ. ବ.(୬ତତ୍ପୁ) ଅଶ୍ୱତ୍ଥବୃକ୍ଷ, ବିଷ୍ଣୁମନ୍ଦିର, ବୈକୁଣ୍ଠ ।
କେଶବିନ୍ୟାସ—ପୁଂ.ବ. (୬ତତ୍ପୁ)କବରୀ, ଖୋସା,ବାଳସଜାଇ ବାନ୍ଧିବା,ଜୁଡ଼ା ।
କେଶବେଶ—ପୁଂ. ବ. (୬ତତ୍ପୁ) ବାଳ ସଜାଡ଼ିବା, ଖୋସା, କବରୀ, ବେଣୀ ।
କେଶବେଷ୍ଟ—ବି. (କେଶ + ବିଶ୍ + ତ) ବାଳକୁ ବିପରୀତକରି ଫିରେଇ ଭାଙ୍ଗିବା, ଝେର ।
କେଶସଂସ୍କାର—ବି. (୬ତତ୍) ବାଳ କୁଣ୍ଡାଇବା, ବାଳବାନ୍ଧିବା ।
କେଶସ୍ପର୍ଶ—ବି. (୬ତତ୍) ସାମାନ୍ୟମାତ୍ର କ୍ଷତ, କେଶମାତ୍ର ଅନିଷ୍ଟ ।
କେଶହନ୍ତୁଫଳା—ସ୍ତ୍ରୀ. ବ. ଶମୀବୃକ୍ଷ ।
କେଶହନ୍ତ୍ରୀ—ସ୍ତ୍ରୀ. ବ. (କେଶ + ହନ୍ + ତୃ + ଈ) ଶମୀବୃକ୍ଷ ।
କେଶହସ୍ତ—ପୁଂ. ବ. (କେଶ + ହସ୍ତ) ଗୁଡ଼ାଏ ବାଳ, କେଶସମୂହ,କେଶଗୁଚ୍ଛ ।
କେଶସ୍ଥାନ—ବିଂ. (୬ତତ୍) ଟାଙ୍ଗରା, ଚନ୍ଦାଳୁଆ, ଗିଆଲଖିଆ,ପିମ୍ପୁଡ଼ିଆଖିଆ ।
କେଶା—ଗ୍ରା. ବ. କଜଳପାତିପର ଚୂଳଥିବା ପକ୍ଷୀବିଶେଷ ।
କେଶାକର୍ଷଣ—ବି. (୬ତତ୍) କୌଣସି ବ୍ୟକ୍ତିର ବାଳକୁ ଝିଙ୍କିବା କର୍ମ, ଚୁଟିଝିଙ୍କା ।
କେଶାକେଶି—କ୍ରି. ବିଂ. ପରସ୍ପର ଚୁଟି ଧରାଧରି ହୋଇ ଯେଉଁ ଯୁଦ୍ଧ ହୁଏ ।
କେଶାଦା—ସ୍ତ୍ରୀ ବ. (କେଶ + ଦା + ଅ) କୃମିଜାତିବିଶେଷ ।
କେଶାନ୍ତ—ପୁଂ. ବ. (କେଶ + ଅନ୍ତ) କେଶର ଅଗ୍ର, ଶିଶୁର ଚୂଡ଼ାକରଣ ସଂସ୍କାର, ବେଣ୍ଟି, କେଶପାଶ ।
କେଶାବମର୍ଷଣ—ବିଂ. (୬ତତ୍) କେଶାକର୍ଷଣ, କେଶସ୍ପର୍ଶ ।
କେଶାର—ପୁଂ.ବ.(୬ତତ୍)କୀଟବିଶେଷ ।
କେଶାରୁହା—ସ୍ତ୍ରୀ.ବ. (କେଶ + ରୁହ୍ + ଆ) ସହଦେବୀ ଲତା ।
କେଶାର୍ହା—ସ୍ତ୍ରୀ. ବ. ବଡ଼ମାଲ ଗଛ ।
କେଶି—ପୁଂ. ବ. ଦାନବବିଶେଷ ଭୂତକେଶି, ଔଷଧିବୃକ୍ଷବିଶେଷ ।
କେଶିକ—ପୁଂ.ବିଂ.(କେଶ + ଇକ)ଯାହାର ବେଶି ବାଳ ଥାଏ, (ସ୍ତ୍ରୀ)କେଶିକା,(ବି) ବାଳବଢ଼ାଣୀ ଲତା, ଶତାବରୀ ।
କେଶିକା—ସ୍ତ୍ରୀ. ବ. ଶତାବରୀବୃକ୍ଷ,ଶତମୂଳୀ, ବାଳବଢ଼ାଣୀ ଲତା ।
କେଶିଧ୍ୱଜ—ପୁଂ. ବ. କୃତଧ୍ୱଜର ପୁତ୍ର ।
କେଶିନିସୂଦନ—ପୁଂ. ବ. (କେଶି + ନି + ସୂଦ୍ + ଅନ)କୃଷ୍ଣଙ୍କର ନାମ,ବିଷ୍ଣୁ ।
କେଶିନୀ—ସ୍ତ୍ରୀ. ବିଂ. (କେଶିନ୍ + ଈ) କେଶର ସ୍ତ୍ରୀ(ବି)ଦୁର୍ଗା, ରାବଣର ମାତା, ଗୈରପୁଷ୍ପୀ, ଜଟାମାଂସୀ,ଦମୟନ୍ତୀଙ୍କର ଏକ ସଖୀ, ଅପ୍ସରାବିଶେଷ ।
କେଶିମଥନ—ପୁଂ. ବ. (୬ତତ୍)ଶ୍ରୀକୃଷ୍ଣ ।
କେଶିହା—ପୁଂ. ବ. (କେଶିନ୍ + ହନ୍ + କ୍ୱିପ୍) କୃଷ୍ଣ, ବିଷ୍ଣୁ ।
କେଶୀ—ପୁଂ. ବିଂ. (କେଶ + ଇନ୍) ଯାହାର ଅନେକ ବାଳଅଛି, କେଶଗୁଚ୍ଛ କୃଷ୍ଣବର୍ଣ୍ଣଯୁକ୍ତ, ବାଳୁଆ, (ବି) ବିଷ୍ଣୁ, ସିଂହ, ଘୋଡ଼ା, ଗୋଟିଏ ଦୈତ୍ୟ ।
କେଶୀ—ସ୍ତ୍ରୀ. ବ. (କେଶ + ଈ)ମସ୍ତକର ଶିଖା, ନୀଳୀବୃକ୍ଷ, ଭୂମିକେଶ ବୃକ୍ଷ, ଅଜଲୋମା, ବାଇଡ଼ଙ୍ଗ, ଗନ୍ଧମାଂସୀ, ଏକପ୍ରକାର ଜଟାମାଂସୀ ବୃକ୍ଷବିଶେଷ, ନଦୀବିଶେଷ,ଔଷଧିଗୁଳବିଶେଷ ।
କେଶୀଶ୍ୱରସୁତ—ପୁଂ.ବ.(୬ତତ୍)କନ୍ଦର୍ପ, କାମ ।
କେଶୁର—ଗ୍ରା. ବ. ମୁଥାଜାତୀୟ ତୃଣ, କେଉଟମୁଥା । [ସମୁହ ।
କେଶୋଚ୍ଚୟ—ପୁଂ.ବ. (୬ତତ୍) କେଶ
କେଶ୍ୟ—କ୍ଲୀ.ବ. କୃଷ୍ଣାଗୁରୁ,କଳାଅଗୁରୁ, ପାନିଆଁ, ଭୃଙ୍ଗରାଜ, (ବିଂ) କେଶହିତକାରକ, କେଶର କୃଷ୍ଣତା ଉତ୍ପାଦକ ପଦାର୍ଥ । [କିପରି ?
କେସନ—ଗ୍ରା. ଅବ୍ୟ, କି ପ୍ରକାରେ ?
କେସନେ—ଗ୍ରା.ଅବ୍ୟ. କେସନ(ଦେଖ) ।
କେସର—କ୍ଲୀ. ବ. (କେ + ସୃ + କ.ଅ) କେଶର (ଦେଖ) ।
କେସରକ୍ଷେତ୍ର—କାନାଡ଼ା ଦେଶର ସୌବୀର ଅନ୍ତର୍ଗତ ଗୋଟିଏ ପୁଣ୍ୟସ୍ଥାନ ।
କେସରବର—କ୍ଲୀ. ବ. କୁଙ୍କୁମ, ହଳଦି ।
କେସରାଚଳ—ପୁଂ. ବ. ସୁମେରୁ ପର୍ବତ ।
କେସରା(ମ୍ଳ)—ପୁଂ. ବ. ଟାଭ, ଲେମ୍ବୁ, ଡାଳିମ୍ବ ।
କେସରିକା—ସ୍ତ୍ରୀ. ବ. ସହଦେବୀ ଲତା, ବଜ୍ରମୂଳୀ, ଏକପ୍ରକାର ବଳା ।
କେସରିସୁତ—ପୁଂ. ବ. ହନୁମାନ୍ ।
କେସରୀ—ପୁଂ. ବ. ସିଂହ, ଘୋଡ଼ା, ପୁନ୍ନାଗବୃକ୍ଷ, ନାଗକେଶରବୃକ୍ଷ, ବାନର ଭେଦ, ହନୁମାନଙ୍କର ପିତା ।
କେସୁ—ଗ୍ରା.(ଗଞ୍ଜାମ)ବ. ଶେଯରେ ପକାଇବା ଗୁଦଡ଼ି, ବିଛଣା ଗୁଦଡ଼ି ।
କେହି—ଗ୍ରା. ଅବ୍ୟ. କିପରି ? (ସର୍ବ) କୌଣସି ବ୍ୟକ୍ତି ।
କେହିଅବା—ଗ୍ରା. ସର୍ବ. କେହି କେହି, କେହି କଦବା, ଖୁବ୍ ଅଲ୍ପସଂଖ୍ୟକ (ବ୍ୟକ୍ତି) ବୋଧହୁଏ କେହି ଜଣେ ।
କେହିକମିତ—ଗ୍ରା. ସର୍ବ. କେହି କେହି, ଖୁବ୍ କମ୍‌ସଂଖ୍ୟକ (ବ୍ୟକ୍ତି) ।
କେହିନାକେହି—ଗ୍ରା. ସର୍ବ. କେହିଜଣେହେଲେ ନିଶ୍ଚୟ । [କେହି ।
କେହୁ—ଗ୍ରା. ସର୍ବ. ଯେ କୌଣସି ବ୍ୟକ୍ତି,

କେମ୍ନେ — ଗ୍ରା. ଅବ୍ୟ. କପରି ?
କୈଂଶୁକ — କ୍ଲୀ. ବ. ( କଂଶୁକ + ଅ ) ପଳାଶଫୁଲ ।
କୈକୟ — ପୁଂ. ବ. ( କେକୟ + ଅ ) କେକୟ ନଗର, କେକୟ ଦେଶର ରାଜା ।
କୈକୟୀ-ସ୍ତ୍ରୀ. ବ. (କେକୟ + ଅ + ଈ) କେକୟଦେଶର ରାଜକନ୍ୟା,କୈକେୟୀ, ଦଶରଥ ରାଜାଙ୍କର ମଧ୍ୟମା ରାଣୀ, ଭରତଙ୍କ ମାତା ।
କୈକସ — ପୁଂ.ବ. (କୀକସ + ଅ)ରାକ୍ଷସ ।
କୈକସୀ — ସ୍ତ୍ରୀ. ବ. ( କୈକସ + ଈ ) ସୁମାଲିରାକ୍ଷସର କନ୍ୟା,ରାବଣର ମାତା ।
କୈକାଡ଼ — ଦାକ୍ଷିଣାତ୍ୟର ନୀଚ ଓ ଦରିଦ୍ର ଜାତିବିଶେଷ ।
କୈକେୟ — ପୁଂ. ବ. ( କେକୟ + ଅ ) କେକୟ ରାଜପୁତ୍ର, କେକୟୀଙ୍କ ପୁତ୍ର, ଭରତ, (କ୍ଲୀ.ବ.) ସଂସ୍କୃତର ଅପଭ୍ରଂଶ ଭାଷାବିଶେଷ ।
କୈକେୟୀ—ସ୍ତ୍ରୀ.ବ. ( କେକୟ + ଅ + ଈ) ଦଶରଥ ରାଜାଙ୍କର ପ୍ରିୟତମା ପତ୍ନୀ, ଭରତଙ୍କ ମାତା ।
କୈକୋବାଦ — ଦିଲ୍ଲୀର ଜଣେ ବାଦଶାହ ।
କୈଙ୍କର୍ଯ୍ୟ — କ୍ଲୀ. ବ. (କିଙ୍କର + ଯ) କିଂକରତ୍ୱ,ଦାସତ୍ୱ,ଚାକିରି, ଗୋଲାମି ।
କୈଙ୍କରାୟଣ — ବି.ବଂ.କିଙ୍କରବଂଶୀୟ, କିଙ୍କର ପୁତ୍ର ।
କୈଟ—ବି. ବଂ. ( କୀଟ + ଅ ) କୀଟ-ସମ୍ବନ୍ଧୀୟ । [ଗଛ ।
କୈଟଜ — ପୁଂ. ବ. କୁଟଜବୃକ୍ଷ,କୁରେଇ
କୈଟଭ—ପୁଂ. ବ. (କୀଟ + ଭା + କ.ଅ) ଦୈତ୍ୟବିଶେଷ ।
କୈଟଭଜିତ୍ — ପୁଂ. ବ. (କୈଟଭ + ଜି + କ. କ୍ୱିପ୍) ବିଷ୍ଣୁ ।
କୈଟଭଦ୍ୱିଟ୍-ପୁଂ. ବ. (କୈଟଭ + ଦ୍ୱିଷ୍ + କ. କ୍ୱିପ୍) ବିଷ୍ଣୁ ।
କୈଟଭା — ସ୍ତ୍ରୀ.ବ.(କୈଟଭ + ଆ) ଦୁର୍ଗା ।
କୈଟଭାରି—ପୁଂ. ବ. (ତତ୍ତ୍ୱ) ବିଷ୍ଣୁ ।
କୈଟଭୀ—ସ୍ତ୍ରୀ. ବ. (କୈଟଭ + ଅ + ଈ) ଦୁର୍ଗା, ମହାକାଳୀ, ଯୋଗନିଦ୍ରା ।
କୈଟଭେଶ୍ୱରୀ — ସ୍ତ୍ରୀ. ବ. ଦୁର୍ଗା ।
କୈଟର୍ଯ୍ୟ—ପୁଂ. ବ, ନିମ୍ବ, ମହାନିମ୍ବ, ମଦନବୃକ୍ଷ । [କଟଫଳବୃକ୍ଷ ।
କୈଡ଼ର୍ଯ୍ୟ—ପୁଂ. ବ. କରଞ୍ଜ, କରମଙ୍ଗ,
କୈତକ—କ୍ଲୀ. ବ. ( କେତକ + ଅ ) କେତକୀଫୁଲ, ( ବଂ ) କେତକୀ ପୁଷ୍ପ ସମ୍ବନ୍ଧୀୟ ।
କୈତବ — କ୍ଲୀ.ବ.(କିତବ + ଅ)ଶଠତା, ମିଥ୍ୟା, ଠକାମି, ବୈଦୁର୍ଯ୍ୟମଣି, ପଶାଖେଳ, ଠକ, ଜୁଆଡ଼ି, ଛଳ, କପଟ ।
କୈତବକ—କ୍ଲୀ. ବଂ. (କୈତବ + କ) ଜୁଆଖେଳ ।
କୈତବପ୍ରୟୋଗ — ପୁଂ. ବ. କୂଟ ବ୍ୟବହାର, ଛଳନା ।
କୈତବବାଦ — ପୁଂ. ବ. (କ.ଧା) ଛଳ ପୂର୍ବକ କଥନ, କାପଟ୍ୟପୂର୍ଣ୍ଣ ଉକ୍ତି, ଧୂର୍ତ୍ତର ମିଥ୍ୟାକଥା ।
କୈତବବାଦୀ — ପୁଂ.ବ. (କୈତବ + ବଦ୍ + କ.ଇନ୍) ଛଳପୂର୍ଣ୍ଣ ବାକ୍ୟକଥନ, କପଟଭାଷୀ, ମିଥ୍ୟାବାଦୀ,(ସ୍ତ୍ରୀ)କୈତବବାଦିନୀ ।
କୈତବାୟନ — ବି .ବଂ. କିତବ ବଂଶୀୟ, ଠକବଂଶୀୟ ।
କୈତବେୟ — ପୁଂ. ବ. (କିତବ + ଅ) ଅଂଶୁମାନ୍ ନୃପତିର ପୁତ୍ର,ଉଲୂକନାମକ କ୍ଷତ୍ରିୟ ।
କୈତ—ମାଳଗିରି ପର୍ବତ ଉପକଣ୍ଠସ୍ଥ ଗୋଟିଏ ନଗର ।
କୈତ୍ — ଯା.ବ. କଇଦଇତ୍ୟାଦ,କଏଦ୍ ।
କୈଦାର — କ୍ଲୀ. ବ. (କେଦାର + ଅ) କ୍ଷେତ୍ରସମୂହ, ପଦ୍ମକାଷ୍ଠ, କେଦାରସ୍ଥିତ ଜଳ, (ପୁଂ)ଶାଲିଧାନ୍ୟ, ଷଷ୍ଟିକଧାନ୍ୟବିଶେଷ ।
କୈଦାରକ(ରିକ)-କ୍ଲୀ.ବ. କେଦାରସମୂହ
କୈଦାର୍ଯ୍ୟ — କ୍ଲୀ. ବ. (କେଦାର + ଅ) କେଦାରସମୂହ ।
କୈଦେବ— ଏକଜଣ ବୈଦ୍ୟ ।
କୈନ୍ଦର୍ଭ — କ୍ଲୀ.ବ.(କନ୍ଦର୍ଭ + ଅ)କନ୍ଦର୍ଭବଂଶୀୟ ।
କୈନ୍ଦାସାୟନ — ପୁଂ.ସ୍ତ୍ରୀ.ବ.କନ୍ଦଦାସର ପୁତ୍ର ବା ସନ୍ତାନ ।
କୈନ୍ଦ୍ରିକ—ବି. ବଂ. (କେନ୍ଦ୍ର + ଇକ) କେନ୍ଦ୍ରସମ୍ବନ୍ଧୀୟ, କେନ୍ଦ୍ରାଭିମୁଖୀ (ସ୍ତ୍ରୀ) କୈନ୍ଦ୍ରିକା ।
କୈନ୍ନର — ବି.(କିନ୍ନର + ଅ)ଯେଉଁବ୍ୟକ୍ତି ବଂଶପରମ୍ପରାକ୍ରମେ କିନ୍ନର ବର୍ଷେ ବାସକରେ, କିଂପୁରୁଷସମ୍ବନ୍ଧୀୟ ।
କୈଫିୟତ — ଯା.ବ.କାରଣ, ହେତୁ ।
କୈମିତିକ—ବଂ. (କମିତି + ଇକ)ରସାୟନକ, ରସାୟନସମ୍ବନ୍ଧୀୟ, ରସାୟନ ଶାସ୍ତ୍ର ।
କୈମୁତିକ—କ୍ଲୀ. ବ. (କିମ୍ + ଉତ + ଇକ) ନ୍ୟାୟବିଶେଷ, ମୁହେଁ ମୁହେଁ ପ୍ରମାଣିତ ହେବାଭଳି ନ୍ୟାୟ ।
କୈୟଟ — ପ୍ରସିଦ୍ଧ ବୈୟାକରଣ ।
କୈର — ଗୁଜରାଟ ରାଜ୍ୟର ଇଂରାଜାଧିକୃତ ଗୋଟିଏ ଜିଲ୍ଲା, କୈର ଜିଲ୍ଲାର ପ୍ରଧାନ ନଗର ।
କୈରଣକ — ବି. ବଂ. କିରଣଜନିତ, କିରଣନିର୍ମିତ । [ରାଜା ।
କୈରଳେୟ — ପୁଂ.ବ. କେରଳଦେଶର
କୈରବ — କ୍ଲୀ. ବ. (କେ + ରବ + ଅ) ଶ୍ୱେତୋତ୍ପଳ, କୁମୁଦ,କଇଁ, (ପୁଂ)ଶଠ, ଠକ, ଶତ୍ରୁ, ଜ୍ୟୋତ୍ସ୍ନା ।
କୈରବଣୀ—ସ୍ତ୍ରୀ. ବ. (କୈରବ + ଇନ୍ + ଈ ) କୁମୁଦିନୀ, କୁମୁଦବନ, କଇଁପୂର୍ଣ୍ଣ ଜଳାଶୟ । [ସମୂହ ।
କୈରବଣୀଖଣ୍ଡ — ପୁଂ.ବ. କୁମୁଦଲତା-
କୈରବଣୀଫଳ — କ୍ଲୀ.ବ. (ତତ୍ତ୍ୱ) କୁମୁଦିନୀର ବୀଜ ।
କୈରବୀ — ପୁଂ. ବ. (କୈରବ + ଇନ୍) କୁମୁଦିନୀନାଥ, ଚନ୍ଦ୍ର ।
କୈରବୀ--ସ୍ତ୍ରୀ.ବ.(କୈରବ + ଈ)ଜ୍ୟୋତ୍ସ୍ନା, କୌମୁଦୀ, ଚନ୍ଦ୍ରକିରଣ, ମେଥି ।
କୈରାଟକ—ପୁଂ. ବ. (କିରାଟକ + ଅ) ସ୍ଥାବର ବିଷଭେଦ ।
କୈବର୍ତ୍ତ — ବି .ବଂ.(କେବର୍ତ୍ତ + ଅ)କେବର୍ତ୍ତସମ୍ବନ୍ଧୀୟ, ବ୍ୟାଧତୁଲ୍ୟ, (ବି) କେବର୍ତ୍ତ-

ମାନଙ୍କ ରାଜା, ବ୍ୟାଧତୁଲ୍ୟ ବଳବାନ୍ ମନୁଷ୍ୟ, ଚନ୍ଦନବିଶେଷ, ଚରେଇତା ଗୁଳ୍ମ, ଭୂନିମ୍ବ ।

କୈବର୍ତ୍ତକ—କ୍ଳୀ. ବି. ( କୈବର୍ତ୍ତ + କ ) ଗନ୍ଧଚନ୍ଦନ କାଠ,(ବିଂ)କୈବର୍ତ୍ତସମ୍ବନ୍ଧୀୟ ।

କୈବଲ—କ୍ଳୀ. ବି. (କର + ଅଳ + ଅ) ବିଡ଼ଙ୍ଗ ।

କେର – ଗ୍ରା.ବି. ଧାନଆଦି ରଖିବାର ବଡ଼ ଟୋକେଇ, କଇଡ, ଓଳିଆ ।

କେମୈଦୁର—କ୍ଳୀ. ବି. ଗୋଟିଏ ଦେଶର ନାମ, (ବିଂ) ଉକ୍ତଦେଶର ଅଧିବାସୀ ।

କୈଳ – ବି. (କେଳି + ଅ) କେଳିସମୂହ, କ୍ରୀଡ଼ାସବୁ, ସୁଖ ।

କୈଲକଳ—ପୁଂ.ବିଂ.କେଲକଳା ନଗର-ବାସୀ, ଯବନ ନରପତି ।

କୈଲାତ—ତ୍ରି.ବିଂ.(କଲାତ + ଅ)କଲାତ ବଂଶୀୟ ।

କୈଲାସ—ପୁଂ. ବି. (କେ + ଲସ୍ + କ + ଅ) ଶିବ ଓ କୁବେରଙ୍କ ବାସସ୍ଥାନ, ହିମାଳୟସ୍ଥ ଗିରିବିଶେଷ ।

କୈଲାସନାଥ—ପୁଂ. ବି. (କୈଲାସ + ନାଥ) ଶିବ, କୁବେର ।

କୈଲାସବାସୀ—ପୁଂ. ବି. (କୈଲାସ + ବସ୍ + କ.ଇନ୍ )ଶିବ, କୁବେର ।

କୈଲାସେଶ୍ବର – ପୁଂ. ବି. (ଷଷ୍ଠୀତ)ଶିବ, କୁବେର ।

କୈଲାସୌକାଃ—ପୁଂ ବି., (ବ.ବ୍ରୀ)ଶିବ, କୁବେର ।

କୈଲଞ୍ଜ—ତ୍ରି.ବିଂ. ସୂକ୍ଷ୍ମକାଷ୍ଠନିର୍ମିତ ।

କୈବର୍ତ୍ତ-ପୁଂ.ବି. (କେବର୍ତ୍ତ + ଅ)ଧୀବର, କେଉଟ, (ସ୍ତ୍ରୀ) କୈବର୍ତ୍ତୀ ।

କୈବର୍ତ୍ତିକ – ପୁଂ. ବି. (କେବର୍ତ୍ତି + କ) ଧୀବର, କେଉଟ ।

କୈବର୍ତ୍ତିକା – ସ୍ତ୍ରୀ.ବି. ମାଳବଦେଶପ୍ରସିଦ୍ଧ ଏକପ୍ରକାର ଲତା ।

କୈବଲ—କ୍ଳୀ.ବି. (କେବଳ + ଅ)ବିଡ଼ଙ୍ଗ ।

କୈବଲ୍ୟ – କ୍ଳୀ.ବି.(କେବଳ + ଯ)ଏକତା, ଅଖଣ୍ଡାନନ୍ଦ, ସଂସାରମୁକ୍ତି, ମୋକ୍ଷ, ପରମାତ୍ମାଙ୍କ ସହିତ ମିଳନ, (ଗ୍ରା.ବି) ଦେବତାଙ୍କ ପ୍ରସାଦ ବା ପାଦୁକ ।

କୈବଲ୍ୟଦାତା – ପୁଂ. ବି.(ଷଷ୍ଠୀତ)ମୋକ୍ଷ ଦାନକର୍ତ୍ତା, ମୁକ୍ତିପ୍ରଦ, (ସ୍ତ୍ରୀ) ଦାତ୍ରୀ ।

କୈବଲ୍ୟଦାୟୀ—ପୁଂ. ବି. ( ଷଷ୍ଠୀତ ) ମୋକ୍ଷଦାତା, (ସ୍ତ୍ରୀ) କୈବଲ୍ୟଦାୟିନୀ ।

କୈବଲ୍ୟାନନ୍ଦ—ଜଣେ ସଂସ୍କୃତଗ୍ରନ୍ଥକାର ।

କୈଶବ—ତ୍ରି ବିଂ.(କେଶବ + ଅ)ଶ୍ରୀକୃଷ୍ଣ-ସମ୍ବନ୍ଧୀୟ ।

କୈଶିକ - କ୍ଳୀ. ବି.(କେଶ + ଇକ)କେଶ-ସମୂହ, (ପୁଂ)ଶୃଙ୍ଗାର ରସ,କାମ, ନୃପ-ବିଶେଷ, (ବିଂ) କେଶସମ୍ବନ୍ଧୀୟ,କେଶ-ପରି ସରୁ, କେଶତୁଲ୍ୟ ।

କୈଶିକତା—ବି. କେଶସଦୃଶ ସୂକ୍ଷ୍ମଛିଦ୍ର ବିଶିଷ୍ଟ ନଳରେ ଯେଉଁ ବ୍ୟାପାର ଦେଖାଯାଏ,ତାହାକୁ କୈଶିକତା କହନ୍ତି ।

କୈଶିକାକର୍ଷଣ—କ୍ଳୀ.ବି.ଯେଉଁ ଶକ୍ତି ଦ୍ଵାରା ସୂକ୍ଷ୍ମ ଛିଦ୍ରବିଶିଷ୍ଟ ନଳରେ ଜଳାଦି ଉପରକୁ ଉଠେ ।

କୈଶିକାନାଡ଼ୀ—ଗ୍ରା.ବି. କେଶତୁଲ୍ୟସୂକ୍ଷ୍ମ-ଶିରା ପ୍ରଶିରା, ଏହି ନାଡ଼ୀଦେଇ ପ୍ରଥ-ମତଃ ଶିରାରେ ରକ୍ତ ସଂଚାଳିତ ହୁଏ ।

କୈଶିକାବନତି – ବି. କୈଶିକ ନଳର ଅଭ୍ୟନ୍ତରରେ କୌଣସି ତରଳ ପଦାର୍ଥ ଅବନତ ହୋଇ ପଡ଼ିଲେ ତାହାକୁ କୈଶିକାବନତି କହନ୍ତି ।

କୈଶିକୀ—ସ୍ତ୍ରୀ. ବି. (କୈଶିକ + ଈ)ନାଟ-କୀୟ ଗୋଟିଏ ବୃତ୍ତି ।

କୈଶିନ—ତ୍ରି.ବିଂ. କେଶିସମ୍ବନ୍ଧୀୟ,(ବି) କେଶିର ପୁତ୍ର ।

କୈଶିନ୍ୟ—ପୁଂ.ସ୍ତ୍ରୀ. ବି. (କେଶିନ୍ + ଯ) କେଶୀ ରାକ୍ଷସର ପୁତ୍ର ।

କୈଶୋର – କ୍ଳୀ.ବି. ( କିଶୋର + ଅ ) ନବୀନ ବୟସ, ବାଲ୍ୟାବସ୍ଥା, ଦଶବର୍ଷ-ଠାରୁ ପନ୍ଦରବର୍ଷ ପର୍ଯ୍ୟନ୍ତ କାଳ ।

କୈଶୋରକ—କ୍ଳୀ. ବି.ବାଲ୍ୟ ଅବସ୍ଥା ।

କୈଶ୍ୟ—କ୍ଳୀ.ବି. (କେଶ + ଯ ) କେଶ-ସମୂହ, ବହୁତବାଳ, କେଶଗୁଚ୍ଛ ।

କୈଷ୍କିନ୍ଧ-ତ୍ରି. ବିଂ.(କିଷ୍କିନ୍ଧା + ଅ)କିଷ୍କିନ୍ଧା ଦେଶବାସୀ ।

କୋ – ଗ୍ରା.ସର୍ବ.କେଉଁ,(ଯା.ବି)କୋମ୍ପାନୀ ବା ବଣିକ୍ୟ ସଂଘ ।

କୋଇ—ଗ୍ରା. ବି. ସୁବର୍ଣ୍ଣାଦି ଆଉଟିବା ମାଟିପାତ୍ର ।

କୋଇଲା-ଗ୍ରା. ସ୍ତ୍ରୀ,ବି. କୁନ୍ତୀ,ପାଣ୍ଡବମାତା

କୋଇଲା— ଯା. ବି. ଅଙ୍ଗାର, ଖଣିଜାତ ପଥରକୋଇଲା ।

କୋଇଲାଖଣୀ—ଗ୍ରା. ବି, ଯେଉଁ ଖଣିରୁ କୋଇଲା ବାହାରେ ।

କୋଇଲି – ଗ୍ରା.ବି କୋକିଳ, ପିକ,ଆମ୍ବ-ଟାକୁଆ ମଧ୍ୟରେ ଥିବା ଶସ ।

କୋଇଲିଖିଆ—ଗ୍ରା. ବି. (ସଂ – କୋକି-ଳାକ୍ଷ) ପାଣି କୂଳରେ ଜନ୍ମିବା ବାସ-କାଦି ବର୍ଗର ଶାକ ଗୁଳ୍ମବିଶେଷ, କୁଇ-ଲେଖା ।

କୋଇଲିପାଡ଼ା(ପାଡ଼ର)—ଗ୍ରା.ବି. ଯେଉଁ ଆମ୍ବ ଗଛରେ ଥାଇ ସୁଖା ସେମେଟି ଯାଇ ବିବର୍ଣ୍ଣ ହୋଇଥାଏ ଓ ଯାହା ଉପରେ ସ୍ଥାନେ ସ୍ଥାନେ କଳାଚେପଟା ଚେକା ଦାଗମାନ ଥାଏ ।

କୋଇଲିବୁଡ଼—ଗ୍ରା. ବି. ବିବାହର ପୂର୍ବ ପାହାନ୍ତିଆରେ (ଅର୍ଥାତ୍) ବିବାହ ଉତ୍ସ-ବର ପ୍ରତ୍ୟୁଷରେ କନ୍ୟା କରିବା ସ୍ନାନ ।

କୋଇଲିବୈକୁଣ୍ଠ—ଗ୍ରା. ବି. ପୁରୀମନ୍ଦିରର ଉତ୍ତରଦ୍ୱାର ଆଡ଼କୁ ବାହାର ବେଢ଼ା ମଧ୍ୟରେ ଥିବା ଉଚ୍ଚ ଓ ବୃକ୍ଷଗୁଳ୍ମାଦି ପୂର୍ଣ୍ଣ ଗୁପ୍ତ ସ୍ଥାନ, ଏଠାରେ ନୂଆ କଳେବର ସମୟରେ ଜୀର୍ଣ୍ଣ ଦେବବିଗ୍ରହମାନଙ୍କର ସମାଧି କରାଯାଏ ।

କୋଉ – ଗ୍ରା.ସର୍ବ. ବିଂ.(ସଂ + କିମ୍ )କେଉଁ (ବ୍ୟକ୍ତି ବା ପ୍ରାଣୀ) ଅବ୍ୟ. କି ?

କୋଏର—ଗ୍ରା. (ସମ୍ଭ) ବିଂ. କୋଡ଼ିଏ, ବିଂଶତି ସଂଖ୍ୟକ ।

କୋକ—ପୁଂ. ସ୍ତ୍ରୀ. ବି. (ବୃକ + କ.ଅ) ଚକ୍ରବାକ, ଚକୁଆ, ଚକୁଆଚକୋଇ ପକ୍ଷୀ, ଭେକ, ବେଙ୍ଗ, ଖଜୁରିଗଛ, ବିଛା, ବିଂଛିପିଚି, ଏରଣ୍ଡ, ହେଟାବାଘ ରତିଶାସ୍ତ୍ର-ପ୍ରଣେତା ପଣ୍ଡିତବିଶେଷ, ବଣଆକୁକୁର ।

କୋକଡ଼—ପୁଂ.ବ୍ୟଂ.(କୋକ+ଲା+ଅ) ମୃଗବିଶେଷ,ଚମସାମୃଗ,(ସ୍ତ୍ରୀ)କୋକଡ଼ୀ ।

କୋକଦଲ୍ଲା—ସ୍ତ୍ରୀ. ବି. ହସ୍ତରଞ୍ଜକ,ନଖରଞ୍ଜକ ।

କୋକଦେବ—ପୁଂ.ସ୍ତ୍ରୀ. ବ୍ୟଂ. (କୋକ+ଦିବ୍+ଅ) କପୋତ,ପାରା,ବନକପୋତ, କୋକଶାସ୍ତ୍ରନାମକ ରତିଶାସ୍ତ୍ରପ୍ରଣେତା

କୋକନଦ—କ୍ଲୀ.ବି. (କୋକ+ନଦ+ଅ) ରକ୍ତକଇଁ, ନାଲିକଇଁ, ରକ୍ତପଦ୍ମ ।

କୋକନଦଚ୍ଛବି—ପୁଂ.ବି.(କୋକନଦ+ଛବି)ଆରକ୍ତବର୍ଣ୍ଣ,(ବ୍ୟଂ.ବି.ଶ୍ରୀ)ରକ୍ତବର୍ଣ୍ଣବିଶିଷ୍ଟ ।

କୋକନ୍ଦ—ଗ୍ରା.( ଗଞ୍ଜାମ ) ବ୍ୟଂ. ଏଣେତେଣେ ହେଉଥିବା, କନ୍ଦକନ୍ଦ ବୁଲୁଥିବା ।

କୋକବନ୍ଧୁ—ପୁଂ. ବ୍ୟଂ. (୬ତତ୍ପୁ) ସୂର୍ଯ୍ୟ, ଦିବାକର, ରବି ।

କୋକଯାତୁ—ପୁଂ. ବ୍ୟଂ. ଗୃକ୍ଷସବିଶେଷ ।

କୋକବାଚ—ପୁଂ. ସ୍ତ୍ରୀ.ବି. କୋକଡ଼ମୃଗ ।

କୋକାମୁଖ—କ୍ଲୀ.ବି.ଭାରତ ପ୍ରସିଦ୍ଧ ତୀର୍ଥବିଶେଷ ।

କୋକଲି—ଗ୍ରା. ବି. ଏକଜାତୀୟ ଛୋଟ କାତଥିବା ପାତଳା ଲୁଣୀ ମାଛ ।

କୋକଶାସ୍ତ୍ର-ବି. (କୋକ+ଶାସ୍ତ୍ର)ଶୃଙ୍ଗାରମୂଳକ ଗ୍ରନ୍ଥବିଶେଷ, କାମଶାସ୍ତ୍ର ।

କୋକଶିଆଳ—ଗ୍ରା. ବି. ବିଲୁଆଜାତୀୟ ଜୀବବିଶେଷ, କୋକି ।

କୋକାହ--ପୁଂ.ବ୍ୟଂ.(କୋକ+ଆ+ହନ୍+କ.ଅ) ଧଳାଘୋଡ଼ା,ଶ୍ୱେତଘୋଟକ ।

କୋକ—ପୁଂ.ସ୍ତ୍ରୀ.ବ୍ୟଂ. ( କୁକ୍+ଇଲ ) କୋଇଲେଖାଗୁଲ୍ମ, କୋଇଲି, ପିକ, କଆଁଖୁଣ୍ଟା, ଦୁଳା ।

କୋକଲକ—କ୍ଲୀ. ବି. (କୋକଲ+କ) ଜ୍ୱଳନ୍ତ ଅଙ୍ଗାର, କଆଁ ଖୁଣ୍ଟା ।

କୋକଲକଣ୍ଠ—ପୁଂ.ବି. (୬ତତ୍ପୁ) ମଧୁର ଗଳା·ସ୍ୱର, (ପୁଂ.ବି.ବ.ବ୍ରୀ) ଯାହାର କଣ୍ଠସ୍ୱର କୋକଲକଣ୍ଠ ପରି ମଧୁର,(ସ୍ତ୍ରୀ) କୋକଲକଣ୍ଠୀ ।

କୋକଲବଧୂ—ସ୍ତ୍ରୀ.ବି.(୬ତତ୍ପୁ) କୋକଲା, ମାଇକୋକଲ ।

କୋକଲଭାଷିଣୀ—ସ୍ତ୍ରୀ. ବ୍ୟଂ. ମଧୁରସ୍ୱରବିଶିଷ୍ଟା ସ୍ତ୍ରୀ, (ପୁଂ) କୋକଲଭାଷୀ ।

କୋକଲରୁତ—ବି. (୬ତତ୍ପୁ) କୋକଲର କୁହୁ କୁହୁ ରବ ।

କୋକଲସ୍ନାନ—ବି. ମଙ୍ଗଲ ସ୍ନାନ ଅର୍ଥାତ୍ ବାଡ଼ଅ ଗାଧୁଆ,କୋଇଲିବୁଡ଼(ଦେଖ) ।

କୋକଲା—ରସାଳୁନାମକ ରାଜାର ରାଣୀ ।

କୋକଲାକ୍ଷ—ପୁଂ.ବି. (କୋକଲ+ଅକ୍ଷି+ଅ) କଣ୍ଟକଯୁକ୍ତ ନୀଳପୁଷ୍ପ ବିଶେଷ, କୁଇଲେଖା ।

କୋକଲାବାସ—ପୁଂ.ବି. (୬ତତ୍ପୁ)ଆମ୍ବଗଛ ।

କୋକଲାସନ—କ୍ଲୀ. ବି. ରୁଦ୍ରଯାମଳୋକ୍ତ ଆସନବିଶେଷ ।

କୋକଲେକ୍ଷ—ପୁଂ.ବ୍ୟଂ. କଜଳା ଆଖୁ ।

କୋକଲେଷ୍ଟା - ସ୍ତ୍ରୀ.ବି. ବଡ଼ ଜାମ୍ବୁ ।

କୋକଲୋତ୍ସବ—ପୁଂ. ବି. (୬ତତ୍ପୁ)ଆମ୍ବଗଛ । [ (ଦେଖ) ।

କୋକଶିଆଳି—ଗ୍ରା. ବି. କୋକଶିଆଳ

କୋକି—ଗ୍ରା.ବ୍ୟଂ. ବିଲୁଆବିଶେଷ,କୋକଶିଆଳ ।

କୋକୁଆ—ଗ୍ରା. ବି. ମଡ଼କ, ମହାମାରୀ, ଅଦୃଷ୍ଟ କାଳ୍ପନିକ ଭୟଜନକ ଜୀବବିଶେଷ ।

କୋକୁଆଭୟ—ଗ୍ରା. ବି. ଦେଶବ୍ୟାପୀ ଅତ୍ୟନ୍ତ ପ୍ରାଣଶଙ୍କାଜନକ ଭୟ, ମାରୀଭୟ, ମଡ଼କ ।

କୋକୁର—କାଶ୍ମୀର ରାଜ୍ୟସ୍ଥ ଗୋଟିଏ ହ୍ରଦ ।

କୋକେଇ—ଗ୍ରା. ବି. ଶବକୁ ଶ୍ମଶାନକୁ ବୋହିନେବା ନିମନ୍ତେ ଛାଆର ବନ୍ଧାଯିବା ନିଶୁଣି ।

କୋକେନ—(ଗ୍ରା) ବିଦେଶରୁ ଆମଦାନୀ ହେବା ଧଳା ମାଦକ ଚୂର୍ଣ୍ଣଦ୍ରବ୍ୟବିଶେଷ ।

କୋଖା—ପ୍ରା. (ବସ୍ତର) ବି. ରାଣି ।

କୋଙ୍କ—(ଣ) ପୁଂ.ବି. ଜନପଦବିଶେଷ, ମହାରାଷ୍ଟ୍ରଦେଶ, କ୍ଲୀ. ଆୟୁଧବିଶେଷ ।

କୋଙ୍କଣା—ସ୍ତ୍ରୀ. ବି. ( କୋଙ୍କଣ+ଆ ) ପରଶୁରାମଙ୍କର ମାତା, ରେଣୁକା, ଜମଦଗ୍ନିଙ୍କ ପତ୍ନୀ ।

କୋଙ୍କଣାବତୀ—ସ୍ତ୍ରୀ. ବି. ପରଶୁରାମର ମାତା, ରେଣୁକା । [ ରାମ ।

କୋଙ୍କଣାସୁତ—ପୁଂ.ବି. (୬ତତ୍ )ପରଶୁ-

କୋଙ୍କଣୀ—କୋଙ୍କଣରେ ପ୍ରଚଳିତଭାଷା ଭେଦ ।

କୋଙ୍କାର—ପୁଂ.ବି.କାକର ଶବ୍ଦ ।

କୋଙ୍ଗଦ—ଗ୍ରା. ବି. ଆଧୁନିକ ଗଞ୍ଜାମର ପ୍ରାଚୀନ ନାମ ।

କୋଙ୍ଗୁ—ଦାକ୍ଷିଣାତ୍ୟର ଗୋଟିଏ ବିସ୍ତୃତ ପ୍ରାଚୀନ ରାଜ୍ୟ ।

କୋଚ୍—ଗ୍ରା. ବି. କୋଚବିହାରର ଅଧିବାସୀ ଜାତି ।

କୋଚ୍ଭ୍ୟାନ୍—ଗ୍ରା.ବି. ଘୋଡ଼ାଗାଡ଼ିର ଚାଳକ, କଚୁଆନ୍ । [ରାଜ୍ୟ ।

କୋଚ୍ବିହାର—ଗୋଟିଏ ଦେଶୀୟ

କୋଚ—ପୁଂ..ବ୍ୟଂ. (କୁଚ+ଅ) ଯେଉଁ ବ୍ୟକ୍ତି ସଙ୍କୁଚିତ କରେ; ସଂକୋଚକ, (ବି) ସଙ୍କୋଚ ଜାତି ବିଶେଷ ଗୁଡ଼ିଯିବା ଅବସ୍ଥା, ପାଣିଆରୁ ।

କୋଚଟ—ଗ୍ରା. ବ୍ୟଂ. କୃପଣ, କଞ୍ଜୁସ୍, ଚେମଡ଼ା, ଜଗରଦାର୍, ନାଛୋଡ଼ବନ୍ଧା, ଅତି ମଳିନ ବା ମଇଳା ।

କୋଚଟିଆ—ଗ୍ରା.ବ୍ୟଂ.କୋଚଟ (ଦେଖ) ।

କୋଚଣୀ—ଗ୍ରା.ସ୍ତ୍ରୀ.ବି. କୋସ୍ଥ ବେପାର କରୁଥିବା ସ୍ତ୍ରୀ ।

କୋସ୍ଥ—ଗ୍ରା. ବି. ରେଜାବନ୍ଦି, ବଡ଼ ମହାଜନଠାରୁ ଛୋଟବେପାରୀମାନେ ବ୍ୟବସାୟ କରିବା ନିମନ୍ତେ ଅଳ୍ପପରିମିତ ପଣ୍ୟଦ୍ରବ୍ୟ ସଂଗ୍ରହ କରି ଖାଉଟିଙ୍କୁ ଅଳ୍ପଲାଭରେ ବିକି କରିବାର ରୀତି ବା ବ୍ୟବସାୟ, ଖୁଚୁରା ବିକି କରିବାର ପ୍ରଣାଳୀ ।

କୋସ୍ଥବେପାରୀ—ଗ୍ରା. ବ୍ୟଂ. ଅତି ସାମାନ୍ୟ ମୂଳଧନ ବିଶିଷ୍ଟ ଦୈନିକ ବ୍ୟବସାୟୀ, ଯେ କୋସ୍ଥବେପାର କରେ ।

କୋଚଆ—ଗ୍ରା.ବି, ସର୍ପାକୃତି ଜଳଚର କ୍ଷୁଦ୍ର ଜନ୍ତୁ ।

କୋଚଆରକତ—ଗ୍ରା. ବି. କୋଚଆ କାଟିଲେ ତା ଦେହରୁ ଯେଉଁ ଗାଢ଼ ହଳଦିଆମିଶା ଲାଲରକ୍ତ ବାହାରେ ।

କୋଚୀନ୍—କେରଳ ରାଜ୍ୟ ଅନ୍ତର୍ଗତ ପ୍ରଧାନ ବନ୍ଦର ।

କୋଚଲା—ବି. ବନ୍ୟ ବୃକ୍ଷବିଶେଷ ଓ ତାହାର ଫଳ ।

କୋଚଲଖଣ୍ଡ—ଗ୍ରା. ବି. ଏକପ୍ରକାର ଧଳା ଟାଣ ଖଣିଜ ମାଟିରୁ ତିଆରି ଖଣ୍ଡ ।

କୋଚଲଖାଇ—ଗ୍ରା. ବି. ଏକପ୍ରକାର ବନ୍ୟ ପକ୍ଷୀ ।

କୋଚଲଗୁଡ଼—ଗ୍ରା. ବି. କୋଚଲାଗଛର ଛାଲକୁ ପାଣିରେ ସିଝାଇ ପ୍ରସ୍ତୁତ କରାଯିବା ଗୁଡ଼, (କାଛୁଆଦି ଚର୍ମରୋଗରେ ବ୍ୟବହୃତ ହୁଏ) ।

କୋଚଲପିଠା—ଗ୍ରା. ବିଂ. କୋଚଲାପଦ ବା ମଞ୍ଜି ପରି ଅଚଳସ୍ଥ ଚକ୍ର ।

କୋଚଲାମଲ୍ଲଙ୍ଗ—ଗ୍ରା. ବି. କୋଚଲା ଗଛରେ ପରାଙ୍ଗପୁଷ୍ଟ ଉଦ୍ଭିଦ, ଏହା ଅନେକ ଔଷଧରେ ଲାଗେ ।

କୋଜାଗର—ବି. ଆଶ୍ୱିନ ପୂର୍ଣ୍ଣିମା, କୁମାରପୂର୍ଣ୍ଣିମା ।

କୋଜାଗରପୂର୍ଣ୍ଣିମା—ଗ୍ରା. ବି. ଆଶ୍ୱିନ ପୂର୍ଣ୍ଣିମା, କୁଆଁରପୁନେଇ ।

କୋଟ୍ଟୁଭି—ଗ୍ରା. ବି. ପ୍ରାଚୀନ କଳିଙ୍ଗର ରାଜଧାନୀବିଶେଷ ।

କୋଟ୍—ଯା. ଯେଉଁ କୁର୍ତ୍ତାର ସାମନାପାଖ ଉପରୁ ତଳ ପର୍ଯ୍ୟନ୍ତ ଖୋଲାଥାଏ, ଓ ସାମନା ଧାଡ଼ିଏ ବୋତାମଦ୍ୱାରା ବନ୍ଦ କରାଯାଏ, କୋର୍ଟ, କଚେରି, ବିଚାରାଳୟ ।

କୋର୍ଟ୍ ଅଫ୍ ୱାର୍ଡସ୍—ଯା. ବି. ନାବାଳକ, ପାଗଳ ଓ ନିଜସମ୍ପତ୍ତି ରକ୍ଷଣାବେକ୍ଷଣ କରିବାକୁ ଅସମର୍ଥ ପୁରୁଷ ଓ ସ୍ତ୍ରୀ ଭୂସ୍ୱାମୀମାନଙ୍କ ସମ୍ପତ୍ତି ସରକାରଙ୍କର ଯେଉଁ ବିଭାଗଦ୍ୱାରା ପରିଚାଳିତ ହୁଏ ।

କୋର୍ଟଫି—ଯା.ବି.ବିଚାର ପ୍ରାର୍ଥନା ନିମନ୍ତେ ଦିଆଯିବା ଦରଖାସ୍ତରେ ମରାଯିବା ଟିକଟର ନିର୍ଦ୍ଧାରିତ ମୂଲ୍ୟ, ଦରଖାସ୍ତରେ ମରାଯିବା ନିର୍ଦ୍ଧାରିତ ମୂଲ୍ୟର ସରକାରଙ୍କ ପ୍ରସ୍ତୁତ ଦିଆଯାଉଥିବା କାଗଜ ବା ଷ୍ଟାମ୍, ଟିକଟ ।

କୋଟ—ପୁଂ. ବି. (କୁଟ୍+ମଂ.ଅ)ଦୁର୍ଗ, ଗଡ଼, କିଲ୍ଲା, କୁଡ଼ିଆ, ଗୁମ୍ଫା, ଦାଢ଼ି, ଅଗମ୍ୟବନ, କୌଟିଲ୍ୟ ।

କୋଟକ—ପୁଂ. ବିଂ. (କୁଟ+କ.ଅକ) ଯେ କୌଣସି ବସ୍ତୁକୁ ବନ୍ଧକରେ, ଯେ ନୁଆଏଁ,(ବି)କୁଡ଼ିଆ ତିଆରି କଳାକାର, କୁମ୍ଭାରୁଣୀ ଗର୍ଭରେ ରାଜମିସ୍ତ୍ରୀର ଔରସରେ ଉତ୍ପନ୍ନ ଜାତିବିଶେଷ,ସୂଆଁସିଆ ।

କୋଟଗଡ଼—ମଧ୍ୟପ୍ରଦେଶର ଅନ୍ତର୍ଗତ ନଗର, ଗୋଟିଏ ଜିଲ୍ଲା ଓ ତାହାର ପ୍ରଧାନ ନଗର ।

କୋଟଗାର—ବି. ଜାତିବିଶେଷ ।

କୋଟଚକ୍ର—କ୍ଲୀ. ବି. ଦୁର୍ଗର ଶୁଭାଶୁଭ ଜାଣିବା ନିମନ୍ତେ ଅଷ୍ଟବିଧ ଚକ୍ର ।

କୋଟଣା—ଗ୍ରା. ପୁଂ. ବି. ଯେଉଁ ବ୍ୟକ୍ତି ନାୟକ ନାୟିକାଙ୍କୁ ଗୁପ୍ତଭାବେ ମିଳନ କରାଇଦିଏ ।

କୋଟଣୀ—ଗ୍ରା.ସ୍ତ୍ରୀ.ବି. କୁଟୁଣୀ(ଦେଖ) ।

କୋଟପାଳ—ବି.(କୋଟ+ପାଳ+କ. ଅ) କିଲ୍ଲାଦାର, ଦୁର୍ଗରକ୍ଷକ କର୍ମଚାରୀ ।

କୋଟର—ପୁଂ.କ୍ଲୀ.ବି. (କୋଟ+ର+କ.ଅ) ବୃକ୍ଷର ଗହ୍ୱର, ଖୋଲ, ଗାତ ଗୁମ୍ଫା, ଛୋଟଘର ।

କୋଟରଗତ—ବିଂ. (୨ଚକ୍ଷୁ)ଗାତ ଭିତରକୁ ପଶି ଯାଇଥିବା, ଭିତରକୁ ପଶି ଯାଇଥିବା (ଚକ୍ଷୁ) ।

କୋଟରା—ସ୍ତ୍ରୀ. ବି. ( କୋଟର+ଆ ) ଲଙ୍ଗଳା ସ୍ତ୍ରୀ. ବାଣାସୁରର ମାତା, (ଗ୍ରା) ମୃଗଜାତୀୟ ଜନ୍ତୁବିଶେଷ ।

କୋଟରାକ୍ଷ—ପୁଂ. ବିଂ. (ବ.ବ୍ରୀ)ଯାହାର ଆଖି କୋରଡ଼ ଭଳି ଭିତରକୁ ପଶି- ଯାଇଅଛି ।

କୋଟରୀ—ସ୍ତ୍ରୀ.ବି. (କୋଟର+ଈ)ବିବସନା ନାରୀ, ଉଲଗ୍ନା ସ୍ତ୍ରୀ, ଚଣ୍ଡିକା ।

କୋଟବୀ—ସ୍ତ୍ରୀ. ବି. (କୋଟ+ବ+ଆ) +ଈ)ଲଙ୍ଗଳା ସ୍ତ୍ରୀ, ଦୁର୍ଗା,ବାଣାସୁରର ମାତା ।

କୋଠା—ଗ୍ରା.ବି.କେତେ ଧାନରୁ କେତେ ଚାଉଳ ବାହାରେ ଏହାର ହିସାବ କରିବାର ଗାଣିତିକ ବିଧି, କୁଟା,(ଗ୍ରା, ଗଞ୍ଜାମ) ସବ, କେଉଁଠା ଭାଗପଡ଼ିଥିବା ।

କୋଟି—ସ୍ତ୍ରୀ.ବି. (କୁଟ+ଇ) ଖଡ୍ଗାଦିର ପ୍ରାନ୍ତ, ଅଗ୍ରଭାଗ, ଉତ୍କର୍ଷ, ଧାର,ଶତଲକ୍ଷ ସଂଖ୍ୟା, ଧନୁର ବକ୍ରାଗ୍ରଭାଗ, ପୂର୍ବପକ୍ଷ, ଅସମ୍ପୂର୍ଣ୍ଣ ଚନ୍ଦ୍ରଙ୍କର ଶେଷକୋଣ, ପରାକାଷ୍ଠା, ଉପାଧ୍ୟାନ୍ତର,ରାଜ୍ୟ,ବିଭାଗ, ଅଙ୍ଗୀକାର, ପ୍ରତିଜ୍ଞା, ପଶାଖେଳରେ ବନ୍ଧାଯିବା ଗୁଡ଼, ସମଶ୍ରେଣୀ,ସମକୋଣୀ ତ୍ରିଭୁଜର ଭୂମି ଓ କର୍ଣ୍ଣରେଖା ଭିନ୍ନ ଅନ୍ୟରେଖା, ପକ୍ଷାନ୍ତର ୯୦ ଡିଗ୍ରୀ ବା ସମକୋଣର ପୂର୍ଣ୍ଣ ବ୍ୟାପକ ବୃତ୍ତାଂଶ ପୂରିବାକୁ ଯେଉଁ ବୃତ୍ତାଂଶ ବାକି ଥାଏ, ୯୦ ଡିଗ୍ରି ବ୍ୟାପୀ ଚାପର ଦୁଇ ଭାଗରୁ ଏକଭାଗ, ରାଶିଚକ୍ରର ତୃତୀୟ ଅଂଶ, ଔଷଧିଗୁଳ୍ମବିଶେଷ, ସମକକ୍ଷତା, (ବିଂ) ଶହେ ଲକ୍ଷ, ଅସଂଖ୍ୟ, ଘୋର, ମଧ୍ୟ ।

କୋଟିଆ—ଗ୍ରା. (ଗଞ୍ଜାମ) ଗଞ୍ଜାମଜିଲ୍ଲାର ଶୂଦ୍ର ଜାତିବିଶେଷ ।

କୋଟିଏ—ଗ୍ରା. ବି. କୋଟିସଂଖ୍ୟା,(ବିଂ) ଏକକୋଟି ସଂଖ୍ୟକ, ବହୁତ, ଅସଂଖ୍ୟ ।

କୋଟିକ—ପୁଂ. ବି. ଇନ୍ଦ୍ରଗୋପ ନାମକ କୀଟ, ସାଧବାଣୀ ପୋକ,ପାଟପୋକ ।

କୋଟିକଳ୍ପ—ବି. ବ୍ରହ୍ମାଙ୍କର ଶତଲକ୍ଷ ଦିବସ, ବହୁବତ୍ସର, ଅନନ୍ତକାଳ,(ବିଂ) ଶତଲକ୍ଷ କଳ୍ପବ୍ୟାପୀ, ବହୁବର୍ଷ ସ୍ଥାୟୀ, ଅନନ୍ତକାଳ ସ୍ଥିତିଶୀଳ ।

କୋଟିକାସ୍ୟ—ପୁଂ. ବି. ଶିବିବଂଶୀୟ ଏକଜଣ ରାଜା ।

କୋଟିକେ ଗୋଟିଏ-ଗ୍ରା.ବିଂ. ବହୁସଂଖ୍ୟକ ବ୍ୟକ୍ତିଙ୍କମଧ୍ୟରୁ ଜଣେ ।

କୋଟିକୋଟି-ଗ୍ରା. ବିଂ. ଅସଂଖ୍ୟ,ଅଗଣ୍ୟ ।

କୋଟିଜିତ୍—ପୁଂ. ବି. (କୋଟି+ଜି+କ. କ୍ୱିପ୍) ରଘୁବଂଶାଦି କାବ୍ୟପ୍ରଣେତା କାଳିଦାସଙ୍କ ନାମାନ୍ତର ।

କୋଟିଜ୍ୟା—ସ୍ତ୍ରୀ. ବି. (କୋଟି + ଜ୍ୟା) ଧନୁରୂପ୍ୟ କ୍ଷେତ୍ରବିଶେଷ, ସମକୋଣୀ ତ୍ରିଭୁଜରେ ଥିବା କୋଣର ଗଣନା ବିଶେଷ ।

କୋଟିତୀର୍ଥ—କ୍ଲୀ. ବି. ତୀର୍ଥବିଶେଷ ।

କୋଟିନଗର—କ୍ଲୀ. ବି. ବାଣ ରାଜାର ରାଜଧାନୀ ।

କୋଟିନିଧି—ଗ୍ରା. ବି. ବହୁଧନ ।

କୋଟିପତି—ପୁଂ. ବି. (୬ତତ୍) ଯାହାର ଶତଲକ୍ଷ ଟଙ୍କା ଅଛି ।

କୋଟିପାନ—ପୁଂ. ବି. କେରୁଆଳ ।

କୋଟିପାଳ—ପୁଂ. ବି. କଟୁଆଳ, ଦୁର୍ଗରକ୍ଷକ ।

କୋଟିଫଳୀ—ଗୋଦାବରୀ ନଦୀରମୁଖରେ ଥିବା ଗୋଟିଏ ପ୍ରସିଦ୍ଧ ତୀର୍ଥ ।

କୋଟିର—ପୁଂ.ବି.(କୋଟି + ର + କ.ଅ) ଇନ୍ଦ୍ର,ନକୁଳ,ସାଧବାଣୀପୋକ,ପାଟପୋକ

କୋଟିବର୍ଷ—କ୍ଲୀ. ବି. ବାଣ ରାଜାର ରାଜଧାନୀ ।

କୋଟୀଶ—ପୁଂ. ବି. ଚାଷର ମଇ, ଅସ୍ତ୍ର ବିଶେଷ, ବାସୁକି, ନାଗବିଶେଷ, (ବିଂ) କୋଟିଯୁକ୍ତ ବଂଶୀସ୍ଥ ।

କୋଟିଶଃ—ଅବ୍ୟ.(କୋଟି + ଶସ୍)କୋଟି କୋଟି, କୋଟିଏ ଥର ।

କୋଟୀ—ସ୍ତ୍ରୀ. ବି. (କୋଟି + ଈ)କୋଟି (ଦେଖ), ପ୍ରକାଶାଡ, ପିଡ଼ଙ୍ଗ ।

କୋଟୀର—ପୁଂ. ବି. (କୋଟି + ଇର + ଅ) କିରୀଟ, ମୁକୁଟ, ଜଟା ।

କୋଟୀଶ - ପୁଂ. ବି. ୭ତତ୍;(କୋଟୀ + ଶୀ + କ.ଅ) ଚାଷର ମଇ ।

କୋଟୀଶ୍ୱର—ପୁଂ. ବି. କୋଟିପତି, କୋଟିପତି, କୋଡ଼ପତି ।

କୋଟେଶ୍ୱର—ପୁଂ.ବି. ଗୋଟିଏ ପ୍ରାଚୀନ ଶିବସ୍ଥାନ ।

କୋଟ୍ଟ—ପୁଂ. ବି. (କୋଟ + ଅ) ଦୁର୍ଗ, ଗଡ଼, ଗୃହ, ପୁରବିଶେଷ, ରାଜଧାନୀ ।

କୋଟ୍ଟପାଳ—ପୁଂ. ବି. ନଗରରକ୍ଷକ, କଟୁଆଳ ।

କୋଟ୍ଟବୀ—ସ୍ତ୍ରୀ. ବି. (କୋଟ୍ଟ + ବା + ଅ + ଈ) ଲଙ୍ଗଳା ସ୍ତ୍ରୀ, ମୁକ୍ତକେଶୀନାରୀ, ବାଣାସୁରର ମାତା, ଦୁର୍ଗା, କାଳୀ ।

କୋଟ୍ଟବୀପୁର—କ୍ଲୀ.ବି.ବାଣାସୁରରପୁର ।

କୋଟ୍ଟାର—ପୁଂ. ବି. (କୋଟ୍ଟ + ର + ଅ) ପରିଖା ଓ ପ୍ରାଚୀର ବେଷ୍ଟିତ ନଗର, କୂପନଗର, କାମୁକ ବ୍ୟକ୍ତି, ପୁଷ୍କରିଣୀ ତଟ ।

କୋଟ୍ୟର୍ଦ୍ଧ-ପୁଂ.ବି.୫୦ଲକ୍ଷ,ଅର୍ଦ୍ଧକୋଟି ।

କୋଟ୍ୟୁଦ୍ଧାର—ପୁଂ. ବି. ଚତୁର୍ଭୁଜ ବା ତ୍ରିଭୁଜକ୍ଷେତ୍ରର କୋଟି ବାହାରକରିବା ।

କୋଠ—ପୁଂ. ବି. (କୁଠ + କ. ଅ) ସାଧୁ, କୁଷ୍ଠରୋଗ, (ଗ୍ରା. ବି) ଇଜମାଲି ପାଣ୍ଠି, କୋଠଭଣ୍ଡାର, ଗ୍ରା. ବିଂ.ବଣ୍ଟା ହୋଇ ନଥିବା ସମ୍ପତ୍ତି, ଅନେକଲୋକଙ୍କ ଦ୍ୱାରା ଏକତ୍ର ବ୍ୟବହୃତ, ବହୁଶାମିଲ ।

କୋଠକରଣ—ପୁଂ.ବି.(କୋଠ + କରଣ) ଠାକୁରଙ୍କ ଭୋଗପ୍ରଭୃତିର ତତ୍ତ୍ୱ ନେଉଥିବା ରାଜକର୍ମଚାରୀ, ଛାମୁକରଣ ।

କୋଠକାଠ—ଗ୍ରା. ବି. ଗ୍ରାମବାସୀ ସକଳ ବ୍ୟକ୍ତିଙ୍କର ଏକତ୍ର ଅଧିକୃତ ସମ୍ପତ୍ତି, ଗାମର ଇଜମାଇଲ ସମ୍ପତ୍ତି ।

କୋଠଘର—ଗ୍ରା. ବି. ଯେଉଁ ଘରେ ଅନେକ ପରିବାରଙ୍କର ସ୍ୱାମିତ୍ୱ ଥାଏ, ଗ୍ରାମର ଚଉପାଢ଼ି,ଚରୁଶାଳୀ ।

କୋଠଦେଶ—ଗ୍ରା. ବି. ପୁରୀଜିଲ୍ଲାର ଗୋଟିଏ ପ୍ରଗଣା ।

କୋଠଧନ—ଗ୍ରା. ବି. ଇଜମାଲି ଧନ, ଇଜମାଲି ମୂଳଧନ ବା ପାଣ୍ଠି ।

କୋଠପୁଅ—ଗ୍ରା. ବି. ଯେଉଁ ପୁତ୍ର ଜନ୍ମ କରିଥିବା ପିତା ଓ ପାଳକ ପିତା ଉଭୟଙ୍କର ସମ୍ପତ୍ତିରେ ଅଧିକାରୀ ହୁଏ,(ଗାଳି) ଜାରଜ ସନ୍ତାନ ।

କୋଠଫଣ୍ଡ—ଗ୍ରା. ବି. ବହୁଲୋକଙ୍କର ସଞ୍ଚିତ ପାଣ୍ଠି, ଇଜମାଲି ଧନ ।

କୋଠଭଣ୍ଡାର—ଗ୍ରା. ବି. ନଗର ଧନାଗାର, ରାଜକୋଷ, ସାଧାରଣଙ୍କର ଧନ ଗଚ୍ଛିତ ଥିବା ଧନାଗାର ।

କୋଠଭୋଗ—ଗ୍ରା. ବି. ଦେବତାଙ୍କ ନିକଟରେ ପ୍ରତିଦିନ ଭୋଗ କରିବା ନିମନ୍ତେ ଖଞ୍ଜାଥିବା ନିର୍ଦ୍ଦିଷ୍ଟ ଭୋଗ,ଏହା ଦେବତାଙ୍କ ଫଣ୍ଡରୁ ଦିଆଯାଏ ।

କୋଠରି—ଗ୍ରା. ବି. ପ୍ରକୋଷ୍ଠ ଗୃହର ବିଭିନ୍ନ ବିଭାଗ, କ୍ଷୁଦ୍ର କ୍ଷୁଦ୍ର ଅଂଶ ।

କୋଠଲୋକ—ଗ୍ରା. ବି. ଦାସୀ ଗର୍ଭରେ ରାଜାଙ୍କ ଔରସରେ ଯେଉଁ ସନ୍ତାନ ଜନ୍ମିଥାଏ,ଅଧୀନବ୍ୟକ୍ତି, ନିଜରଭୃତ୍ୟ ।

କୋଠସମ୍ପତ୍ତି—ଗ୍ରା.ବି.ଇଜମାଲି ସମ୍ପତ୍ତି, ବହୁସ୍ୱାମୀଙ୍କ ସମ୍ପତ୍ତି, ସର୍ବସାଧାରଣଙ୍କର ସମ୍ପତ୍ତି ।

କୋଠା—ଗ୍ରା.ବି. (ସଂ-କୋଷ୍ଠକ) କୋଠା ଘର, ପକ୍କାଘର, ବଖରା, ପେଟ,ପଶା ଆଦିର ପାଲି, ସ୍ଥାନ, ଜାଗା, ଘରର ଚଟାଣ ।

କୋଠାଗରମ—ଗ୍ରା. ବି. ଉଦରଗରମ, ଉଦରମଧ୍ୟସ୍ଥ ବାୟୁଆଦି ପ୍ରକୁପିତ ହେବା ।

କୋଠାବାଡ଼ି—ଗ୍ରା. ବି. (ସହଚର)ପକ୍କା-କୋଠାଆଦି ସମ୍ପତ୍ତି,ଅନେକ ପକାଘର ।

କୋଠାରି—ଗ୍ରା. ବି. (ସଂ-କୋଷ୍ଠସ୍ୱାମୀ) ଦୁର୍ଗାଙ୍କର ରୂପାନ୍ତର, କୋଠଭଣ୍ଡାର ରକ୍ଷକ, ଇଜମାଲି ଧନର ରକ୍ଷକ ବା ମାରଫତଦାର ।

କୋଠି—ଗ୍ରା. ବି. ଅମାର, ଶସ୍ୟାଗାର-ବିଶେଷ, କୋଠରି,ବଖରା,ବଙ୍ଗଳାଘର, ପଶାଆଦି ଖେଳପାଲିଘର, ଡାକ-ବଙ୍ଗଳା, ରାଜା ବା ସାହେବମାନେ ରହିବା କୋଠାଘର, ମଣ୍ଡଳ,ମୁଣ୍ଡଳା ।

କୋଠିଆ—ପୁଂ.ବି. ଚାଷକରିବା ସକାଶେ ନିଯୁକ୍ତ ମୂଲିଆ, ଛୋଟ ହଳିଆ ।

କୋଠିକାଟିବା—ଗ୍ରା. କ୍ରି. ଭୂମି ବା କାନ୍ଥରେ ଚକ୍ର ତା ମୁରୁଜଦ୍ୱାରା ମୁଣ୍ଡଳା ବା ଭିନ୍ନଭିନ୍ନ ଜ୍ୟାମିତିକକ୍ଷେତ୍ର ରଚନା କରିବା, କଉଡ଼ି ଆଦି ଖେଳ ନିମନ୍ତେ ଘର ଅଙ୍କିତ କରିବା ।

କୋଠୁଁ-ଗ୍ରା. (ଗଞ୍ଜାମ)ସର୍ବ.କେଉଁଠାରୁ ।

କୋଡ଼—ଗ୍ରା. ବି. (ସଂ-କ୍ରୋଡ଼) ଉତ୍ସଙ୍ଗ,

କୋଳ, କୋଡ଼ଦ୍ୱାରା ମାଟିହାଣିବାର ପ୍ରକ୍ରିୟା ।

କୋଡ଼କରବା—ଗ୍ରା. କ୍ରି. କୋଳାଗତ କରବା, କୋଳରେ ଗ୍ରହଣ କରବା ।

କୋଡ଼କ—ଗ୍ରା.ବି. ନୋଲ, ଜାନଫଲ ଆଦରେ ଝୁଲୁଥିବା କେଉଁଲଗା ଏକ-ପ୍ରକାର ସୁନାର ଫୁଲ ।

କୋଡ଼ଖାଲିହେବା—ଗ୍ରା. ବି. ସ୍ତ୍ରୀର କୋଡ଼ ଶିଶୁଶୂନ୍ୟ ହେବା, କୋଡ଼ପୋଛ ପିଲା ମରିଯିବା,ସ୍ୱାମୀର କୋଡ଼ ସ୍ତ୍ରୀଶୂନ୍ୟ ହେବା, ପ୍ରବାସୀ ସ୍ତ୍ରୀର ମୃତ୍ୟୁ ଘଟିବା, ସ୍ତ୍ରୀ ବିଚ୍ଛେଦରେ ସ୍ୱାମୀର ବା ସ୍ୱାମୀର ବିଚ୍ଛେଦରେ ସ୍ତ୍ରୀର ଏକାକୀ ଶୟନ କରବା ଅବସ୍ଥା ।

କୋଡ଼ ଗୁଛାହେବା—ଗ୍ରା. ବି. କୋଡ଼ ଖାଲି ହେବା (ଦେଖ) ।

କୋଡ଼ପାହୁ—ଗ୍ରା. ବି. ପ୍ରଜା ଅଧୀନ ଯୋତ୍ର, ସିକମୀସ୍ୱତ୍ୱ ।

କୋଡ଼ପାହୁପ୍ରଜା—ଗ୍ରା. ବି. ପ୍ରଜାର ଅଧୀନ ପ୍ରଜା, ସିକମ ରଇତ ।

କୋଡ଼ପୋଛ—ଗ୍ରା. ବିଂ. ଯେଉଁ ଶିଶୁ ମାତାର ସର୍ବ ଶେଷ ଶିଶୁ, ଯେଉଁ ଶିଶୁ ମାତାର କୋଡ଼ ଅବଧି ଛାଡ଼ନାହିଁ, ଦୁଗ୍ଧପୋଷ୍ୟ (ଶିଶୁ) ।

କୋଡ଼ମାଡ଼—ଗ୍ରା.ବି. କୁଟକାଣ୍ଡ,ବିଶେଷ ରୂପେ ପ୍ରହାର ବା ଅତ୍ୟାଗ୍ରହ, ବିଶେଷ ଆନ୍ଦୋଳନ, ଘଣ୍ଟାଚକଟା ।

କୋଡ଼ମେଇ—ଗ୍ରା. ବି. ଚଗ୍ ବେତ ବା ବାଉଁଶରେ ବୁଣା ହୋଇଥିବା ଧାନ ଆଦ ଶସ୍ୟ ରଖିବା ନିମନ୍ତେ ପ୍ରସ୍ତୁତ ପାତ୍ର, ଛୋଟ ଡୋଲି ।

କୋଡ଼ମ୍ୱେଇ—ଗ୍ରା. ବି. କଇଁଚକାକୁଡ଼ ଫଳ ।

କୋଡ଼ର—ଗ୍ରା. ବିଂ. ଦୁଗ୍ଧପୋଷ୍ୟ, ଅଳ୍ପଶିଶୁ, ଯେ ମାତାର କୋଳ ଅବଧି ଛାଡ଼ନାହିଁ ।

କୋଡ଼ଗ—ପ୍ରା(ଭବି)ବି. ଅଣ୍ଡିରା ମୃଗ ।

କୋଡ଼ା—ଗ୍ରା. ବି. ଗୁରୁକ, ଛାଟ, ନାଲି-ପଟା, ଅନାର୍ଯ୍ୟ ମାଟିଖୋଳା ଜାତ ।

କୋଡ଼ାଇବା—ଗ୍ରା. କ୍ରି. କୋଡ଼ବାର୍-ଣିଜନ୍ତରୂପ, ଯୋଖିବା,ବିନାଶ କରବା, ଖୋଳାଇବା ।

କୋଡ଼ାକୋଡ଼ି-ଗ୍ରା.ଅବ୍ୟ. ଅନ୍ୟୋନ୍ୟରେ ମାଡ଼ମରାମାର, ପିଟାପିଟି, ଛେଚାଛେଚ, କୋଡ଼ରେ ଉଦ୍ଦମରୂପେ ଲୋକଙ୍କ ପାଳିକ କର ମାଟିଖୋଳିବା କର୍ମ ।

କୋଡ଼ି—ଗ୍ରା. ବି. କୁଦାଳ, କୋଡ଼ିଏ ସଂଖ୍ୟାର ସମାହାର, ମାଟିହାଣିବାର ଶସ୍ତ୍ରବିଶେଷ ।

କୋଡ଼ିଏ—ଗ୍ରା. ବି. ଏକକୋଡ଼ି, ବିଂଶତି ସଂଖ୍ୟା, (ବିଂ) ବିଂଶତିସଂଖ୍ୟକ, କୋଡ଼ିରେ ଥରକେ ଯେତେ ମାଟି ଧରେ ।

କୋଡ଼ିକଗୁଡ଼ିହେବା—ଗ୍ରା. କ୍ରି. ଅତିଶୟ ବିରକ୍ତ ଓ ଶୋକଗ୍ରସ୍ତ ହୋଇ ମୁଣ୍ଡ ଭୂଇଁରେ ବାଡ଼େଇବା ଓ ଅଙ୍ଗାଦ ଛଟିପିଟି ହେବା ।

କୋଡ଼ିଦାନ୍ତିଆ—ଗ୍ରା. ବିଂ. ପୁଂ. ଯାହାର ଦାନ୍ତଗୁଡ଼ିକ କୋଡ଼ି ପର ବଡ଼ ବଡ଼ ।

କୋଡ଼ିଫଣା—ଗ୍ରା. ବି. କୋଡ଼ିର ବେଣ୍ଟ ଲଗିବା କଣା ।

କୋଡ଼ିବା—ଗ୍ରା. କ୍ରି. କୋଡ଼ିଦ୍ୱାରା ମାଟି ହାଣିବା,ମୁଣ୍ଡକୁ ଭୂଇଁରେ ବାଡ଼େଇବା, ବିଶେଷଭାବରେ ବର୍ଷା କରବା, ଘାସ ଆଦକୁ ଛାଞ୍ଚିବା ।

କୋଡ଼ିବେଣ୍ଟ ଗ୍ରା. ବି. କୋଡ଼ିରେ ଲଗିଥିବା କାଠର ବେଣ୍ଟ ।

କୋଡ଼ିମାରବା—ଗ୍ରା. କ୍ରି. କୋଡ଼ିଦ୍ୱାରା ମାଟିରୁ ଘାସ ଗୁଞ୍ଜି ମାଟିକୁ ସମତୁଲ କରବା ।

କୋଡ଼ିହଣା—ଗ୍ରା. ବି. କୋଡ଼ିଦ୍ୱାରା ମାଟି ହାଣିବା କାର୍ଯ୍ୟ ।

କୋଡ଼ିହାଣିବା—ଗ୍ରା. କ୍ରି. କୋଡ଼ିରେ ମାଟିହାଣିବା ।

କୋଡ଼ିହେବା—ଗ୍ରା. କ୍ରି. କୋଡ଼ିକଗୁଡ଼ି ହେବା, ଭୂଇଁରେ ମୁଣ୍ଡକୁ ପିଟିବା ।

କୋଡ଼େଇବା, କାଖେଇବା—ଗ୍ରା. କ୍ରି. ଶିଶୁକୁ ସ୍ନେହରେ ଲାଳନ ପାଳନ କର ବଢ଼ାଇବା ।

କୋଢ଼ି—ଗ୍ରା. ବି. କୁଷ୍ଠରୋଗର ଘା ।

କୋଢ଼ି—ଗ୍ରା. ବିଂ. କୋଢ଼ିଆ (ଦେଖ) ।

କୋଢ଼ିଆ—ଗ୍ରା.ବିଂ.ଗଳିତ କୁଷ୍ଠରୋଗା-କ୍ରାନ୍ତ, ପଙ୍ଗୁ,କର୍ମବିମୁଖ ଅଳସୁଆ,କୃପଣ, ଲୋଭୀ, ଯେ ନଖାଇ ନପିଇ ସଞ୍ଚେ ।

କୋଣ—ବି.(କୁଣ+ଅ) କୌଣସିବସ୍ତୁର ଦୁଇପାଖର ଯୋଡ଼ ସ୍ଥାନ, ବୀଣାବାଦକ ଦଣ୍ଡ, ଅସ୍ତ୍ରର ଅଗ୍ରଭାଗ, ଯେଉଁ ସ୍ଥାନରେ ଦୁଇଟି ସରଳରେଖା ବକ୍ରଭାବରେ ପରସ୍ପର ମିଳିତ ହୁଏ, ଅଗ୍ନି, ନେଋତ ପ୍ରଭୃତ ଦିଗ, ଅସ୍ତ୍ରର ଧାର; ଲଗୁଡ଼, ବାଡ଼ି, ବାଇଦ ବଜାଇବାର କାଠି. ମଙ୍ଗଳଗ୍ରହ,ଶନିଗ୍ରହ,ବାଦ୍ୟଯନ୍ତ୍ରବିଶେଷ, ଢୋଲ, ଖଞ୍ଜଣୀ, ଗୃହର ଏକଦେଶ ।

କୋଣକାଣ୍ଡ—ଗ୍ରା.ବି.ମଣ୍ଡପଘରେ ଚାଳର କୋଣରେ ଥିବା କାଠ ବା ବାଉଁଶର କାଣ୍ଡ, ଚଉଖଣ୍ଡିଘରର ସନ୍ଧିସ୍ଥାନ ।

କୋଣକୁଣ—ପୁଂ. ବି. (କୋଣ+କୁଣ +ଅ) ଉକୁଣୀ, ଛାରପୋକ, କେଶ-କୀଟ, ଓଡ଼ଣ ।

କୋଣସ୍ପୃଗ୍‌ବୃତ୍ତ—କ୍ଲୀ. ବି. ଯେଉଁ ବୃତ୍ତ-କୋଣ ସ୍ପର୍ଶ କରଅଛୁ ।

କୋଣାଘାତ—ବି. (ଶଙ୍ଗତନ୍ତ୍ର) ବହୁବାଦ୍ୟର ଏକତ୍ର ବାଦନ ।

କୋଣାରକ—କୋଣାର୍କ, ସୂର୍ଯ୍ୟମନ୍ଦିର ।

କୋଣାର୍କ - ବି. ଓଡ଼ିଶାର ପୁରୀଜିଲ୍ଲାର ଅନ୍ତର୍ଗତ ଗୋଟିଏ ପ୍ରାଚୀନ ଗ୍ରାମ ଓ ସୂର୍ଯ୍ୟକ୍ଷେତ୍ର, (ମନ୍ଦିର) ତୀର୍ଥବିଶେଷ ।

କୋଣି ବିଂ. (କୁଣ+ଇ)କୁଣି,କେମ୍ପା, ଯାହାର ହାତ ବଙ୍କା ।

କୋଣିଆଁ—ଗ୍ରା. ବି. କୋଣଯୁକ୍ତ ।

କୋଣୀ—ତ୍ରି. ବିଂ. ( କୋଣ+ଈ ) କୋଣବିଶିଷ୍ଟ, କେମ୍ପା ।

କୋଣେଇଗୁହିଁବା—ଗ୍ରା. କ୍ରି. ଅପାଙ୍ଗ ଦୃଷ୍ଟିକରବା, ବାଙ୍କଗୁହାଣି କରବା ।

କୋଣ୍ଡି—ଗ୍ରା.ବି. ମାଟିରେ ତଆର ଘଣ୍ଟ ।

କୋତ—ଗ୍ରା. ବି. ଚର୍ମାଦ ନିର୍ମିତ ବଡ଼ ତୈଳପାତ୍ର, ବଡ଼ ମାଠିଆ ।

କୋତବା—ଗ୍ରା.ବ.ଘୋଟିବାର ଠେଙ୍ଗା ।
କୋତୟାନ,କୋତବାନ୍—ଯା. ନଗରପାଳ ।
କୋତର—ଗ୍ରା. ବ. ମଇଳା, ମଳ,(ବି°) ମଇଳାଯୁକ୍ତ, ମଳିନ, ଜୀର୍ଣ୍ଣ, ସାହାସିଆ (କାଠଆଦି) । [ମାଛ ।
କୋତର ପ୍ରା (ବସ୍ତର) ବ. କେଉଣ୍ଟି
କୋଥ—ବି°. (କୁଥ୍+ଅ)ଦୁଃଖ କଷ୍ଟ, ମଥିତ,(ବ) ଚକ୍ଷୁରୋଗବିଶେଷ, ମଥନ, ପଚୁଯା, ସଢ଼ିଯିବା ଘାଆ ।
କୋଥଲ—ଗ୍ରା.ବି°.ପୁଂ.ପେଟୁଆ, କୋଦା ମୋଟା, ବହୁତ,ବେଶି,ଗାଢ଼,ଅଲସୁଆ ।
କୋଥଲି—ଗ୍ରା. ବ. ମୋଟ କନାଥଳି, ଢଳକ ଓ ପୂଜାର ଉପାଦାନ ରଖିବାର ମୁଣି ।
କୋଦଣ୍ଡ—ବ. (କୁଣ୍ଡ୍+ଅଣ୍ଡ) ଧନୁ, ଧନୁର୍ବାଶି, ଭ୍ରୂଲତା, ଜନପଦବିଶେଷ ।
କୋଦଣ୍ଡଧର—ପୁଂ. ବି°. (କୋଦଣ୍ଡ+ଧୃ+କ.ଅ) ଧନୁର୍ଦ୍ଧର, (ବ) ଶ୍ରୀରାମ ।
କୋଦଣ୍ଡଧାରୀ—ପୁଂ.ବ. (କୋଦଣ୍ଡ+ଧୃ+କ, ଇନ୍) କୋଦଣ୍ଡଧର (ଦେଖ) ।
କୋଦମା—ଗ୍ରା. ପୁଂ. ବି°. ସ୍ଥୂଳକାୟ, ମୋଟା, ପେଟା, ଥାଲୁଲା । [(ଦେଖ)
କୋଦା—ଗ୍ରା. ପୁଂ. ବି°. କୋଦମା
କୋଦାର—କ୍ଲୀ. ବ. ଶସ୍ୟବିଶେଷ ।
କୋଦାଳ—ଗ୍ରା. ବ. କୋଡ଼ି, କାଙ୍କ ।
କୋଦାଲିଆ—ଗ୍ରା. ପୁଂ. ବି°. କୋଦମା (ଦେଖ) ।
କୋଦୁ—ନାଗପୁରର ଗିରିବାସୀ ଦୁର୍ଦ୍ଦାନ୍ତ ଅସଭ୍ୟ ଜାତି ।
କୋଦୁଅ—ଗ୍ରା. ବ. ତୃଣଧାନ୍ୟବିଶେଷ ।
କୋଦ୍ରବ—ପୁଂ. ବ. କୁଧାନ୍ୟବିଶେଷ, କୋଦୁଅ । [ଅନର୍ଦ୍ଧିଷ୍ଟ ।
କୋନ—ଗ୍ରା. ସର୍ବ. କୌଣସି, କେହି,
କୋନାଲକ—ପୁଂ. ସ୍ତ୍ରୀ. ବ. ଜଳଚର ପକ୍ଷୀବିଶେଷ ।
କୋନାଲି—ବ. ଔଷଧିଲତାବିଶେଷ ।
କୋନ୍ତଲ—ପୁଂ. ବ. କୁନ୍ତଳ ଜନପଦର ଅଧିବାସୀ ।
କୋନ୍ତ—ଗ୍ରା. ବ. କୁନ୍ତୀପୁତ୍ର, ଅର୍ଜୁନ ।
କୋପ—ପୁଂ. ବ. (କୁପ୍+ଅ) କ୍ରୋଧ, ରାଗ, ଅସନ୍ତୋଷ, ଅମର୍ଷ, ଉଦ୍ଦୀପନ, ଶୃଙ୍ଗାର ରସର ଅଙ୍ଗବିଶେଷ ।
କୋପକଟାକ୍ଷ—କ୍ଲୀ. ବ. (ଜ.ଧା) କ୍ରୁଦ୍ଧ ହୋଇ ବକ୍ରଭାବରେ ଦୃଷ୍ଟି କରିବା ।
କୋପକ୍ରମ—କ୍ଲୀ. ବ. (୬ତତ୍) ବ୍ରହ୍ମାଙ୍କ ସୃଷ୍ଟି, (ବି°,ବ.ସ୍ତ୍ରୀ) ରାଗାନ୍ୱିତ ।
କୋପଜ୍ୱଳିତ—ପୁଂ. ବି°. (ତତ୍) ରାଗରେ ଜଳୁଥିବା,ଅତ୍ୟନ୍ତ ରାଗିଥିବା ।
କୋପନ—ପୁଂ. ବି°. (କୁପ୍+ଅନ୍) ରାଗୁଆ, ରାଗୀ, କ୍ରୁଦ୍ଧ, କ୍ରୋଧଯୁକ୍ତ ।
କୋପନକ—ପୁଂ.ବି°. (କୋପନ+କ) ରାଗୀ, କ୍ରୁଦ୍ଧ, (ବ) ସୁଗନ୍ଧବିଶେଷ ।
କୋପନପ୍ରକୃତି—ପୁଂ. ବି°. (ବ.ସ୍ତ୍ରୀ) କ୍ରୁଦ୍ଧସ୍ୱଭାବ, ଯେ ସହଜରେ ରାଗିଯାଏ, (ବି.କ.ଧା) ରାଗୁଆ ପ୍ରକୃତି ।
କୋପନସ୍ୱଭାବ—ପୁଂ.ବ. ଯେ ସହଜରେ ରାଗିଯାଏ, (ବ) ରାଗୁଆ ପ୍ରକୃତି ।
କୋପନା—ସ୍ତ୍ରୀ. ବି°. (କୋପନ+ଆ) କ୍ରୁଦ୍ଧସ୍ୱଭାବ, ସହଜରେ ଯେଉଁ ସ୍ତ୍ରୀର ରାଗ ଜନ୍ମେ ।
କୋପନୀୟ—ତ୍ରି.ବି°. (କୁପ୍+ମି.ଅନୀୟ) ଯାହାପ୍ରତି ରାଗଜନ୍ମେ,କୋପରଯୋଗ୍ୟ ।
କୋପପଦ—ବ. (୬ତତ୍) କ୍ରୋଧର କାରଣ, କପଟକ୍ରୋଧ ।
କୋପବଶ—ବି°. (୬ତତ୍) କୋପାକୁଳ, କ୍ରୋଧାଧୀନ, କୋପନସ୍ୱଭାବ ।
କୋପବତୀ—ସ୍ତ୍ରୀ. ବ. କୋପଯୁକ୍ତା ସ୍ତ୍ରୀ ।
କୋପବାନ୍—ପୁଂ. ବ. (କୋପ+ବତ୍) କୋପଯୁକ୍ତ, କ୍ରୋଧାନ୍ୱିତ, ରୋଷାବିଷ୍ଟ, (ସ୍ତ୍ରୀ) କୋପବତୀ । [ବେଗ ।
କୋପବେଗ—ବ. (୬ତତ୍) କ୍ରୋଧର
କୋପଭର—ବି°.(କୋପ+ଭୃ+କ.ଅ) କ୍ରୁଦ୍ଧ, କୋପାନ୍ୱିତ । [ରାଗାନ୍ୱିତ ।
କୋପମନା—ଗ୍ରା. ବି°. (ବ.ସ୍ତ୍ରୀ) କ୍ରୁଦ୍ଧ,
କୋପାକୁଳ—ପୁଂ. ବି°. (୬ତତ୍)ରାଗାନ୍ୱିତ, କୋପାବିଷ୍ଟ,(ସ୍ତ୍ରୀ)କୋପାକୁଳା ।
କୋପାନଳ—ପୁଂ. ବ. (କ.ଧା) କ୍ରୋଧରୂପ ଅଗ୍ନି ।
କୋପାନ୍ଧ—ପୁଂ.ବି°. (୬ତତ୍) ରାଗଦ୍ୱାରା ଅନ୍ଧ,କ୍ରୋଧରେ ଅନ୍ଧ,(ସ୍ତ୍ରୀ)କୋପାନ୍ଧା ।
କୋପାବିଷ୍ଟ—ପୁଂ.ବି°. (୬ତତ୍) କ୍ରୁଦ୍ଧ, (ସ୍ତ୍ରୀ) କୋପାବିଷ୍ଟା ।
କୋପିତ—ପୁଂ.ବି°. (କୋପି+ତ)ରାଗି ଯାଇଥିବା,ଯାହାକୁ କେହି ରଗାଇଅଛି ।
କୋପିବା—ଗ୍ର.କ୍ରି. କ୍ରୁଦ୍ଧହେବା,କ୍ରୋଧ ପ୍ରକାଶ କରିବା ।
କୋପୀ—ପୁଂ. ବି° (କୋପ+ଇନ୍) କୋପନ ସ୍ୱଭାବଯୁକ୍ତ, କ୍ରୋଧବିଶିଷ୍ଟ, (ସ୍ତ୍ରୀ) କୋପିନୀ ।
କୋପ୍ତ—ଯା. ବ. ଲୁହାଜିନଷ ଉପରେ ସୁନାରୁପାର କାରୁକର୍ମ ।
କୋପ୍ତା—ଯ.ବ. ଟିକିଟିକି କୁଟାହୋଇଥିବା ମାଂସର କବାବ୍ ।
କୋବଲ—ଯା. ଗ୍ରା. ବ. ସ୍ୱୀକାର ।
କୋବଲା—ଯା.ଗ୍ରା.ବ.କବାଲା (ଦେଖ) ।
କୋମର—ଯା. ବ. ମଧ୍ୟ କଟିଦେଶ ।
କୋମରବନ୍ଧ—ଯା. ବ. କଟିବନ୍ଧ ।
କୋମରବାତ—ଗ୍ରା. ବ. ବାତ ପୀଡ଼ାବିଶେଷ, ଅଣ୍ଟାବାତ ।
କୋମଳ-ବି°.(କୁ+ମଲ+ଅ)କଅଁଳିଆ, ନରମ, ମୃଦୁ,ସୁକୁମାର, ମଧୁର, ମିଷ୍ଟ, ସୁନ୍ଦର, ଦୟାର୍ଦ୍ର,ମନୋହର, ଲଳିତ, (କ୍ଲୀ. ବ) ଜଳ, କାଦୁଅ ମାଟି ।
କୋମଳକ—ବ. ପଦ୍ମ ଡେମ୍ଫର ସରୁତନ୍ତୁ (ବି°) ମୁଲମ ।
କୋମଳତା (ତ୍ୱ)—ବ. ମନୋହରତ୍ୱ, ମୃଦୁତା, ନମ୍ରତା, ଅକଠିନତ୍ୱ ।
କୋମଳପ୍ରାଣ—ବି°.(ବ.ସ୍ତ୍ରୀ) କରୁଣଚିତ୍ତ, କୋମଳ ହୃଦୟ ।
କୋମଳବଚନ—ବ. (କ.ଧା) ମଧୁର କଥା, (ବି°. ବ.ସ୍ତ୍ରୀ) କଅଁଳକୁହା, ମଧୁରଭାଷୀ ।
କୋମଳବଲ୍କଳା—ସ୍ତ୍ରୀ. ବ.(ବ.ସ୍ତ୍ରୀ)ଲବଲୀ, ନଅରକୋଳି ଗଛ ।

କୋମଳମତ—ପୁଂ. ସ୍ତ୍ରୀ. ବିଂ. (ବ. ବ୍ରୀ) ସୁକୁମାର ମତ ।
କୋମଳସ୍ୱଭାବ—ପୁଂ. ବ. (କ. ଧା) ଦୟାର୍ଦ୍ର ହୃଦୟ, (ବିଂ.ବ.ବ୍ରୀ)ଦୟାଳୁ ।
କୋମଳା—ସ୍ତ୍ରୀ.ବ. କ୍ଷୀରିକା ବୃକ୍ଷ,(ବିଂ). ମୃଦ୍ୱୀ ।
କୋମଳାଙ୍ଗ—ପୁଂ.ବ. (ବ.ବ୍ରୀ) ଯାହାର ଅଙ୍ଗ ଶରୀର କୋମଳ ବା ସୁକୁମାର ।
କୋମଳାଙ୍ଗୀ—ପୁଂ.ବିଂ.(କୋମଳାଙ୍ଗ+ଇନ୍) ସୁକୁମାର ଦେହ ବିଶିଷ୍ଟ, (ସ୍ତ୍ରୀ) କୋମଳାଙ୍ଗିନୀ,(ସ୍ତ୍ରୀ ବ)(କୋମଳାଙ୍ଗ+ଈ) ସୁକୁମାରଦେହବିଶିଷ୍ଟା ସ୍ତ୍ରୀ ।
କୋମଳାସନ—କ୍ଳୀ. ବ. (କ.ଧା) ମୃଗ, ଚର୍ମନିର୍ମିତ ଆସନ ।
କୋମ୍ପାନୀ(କମ୍ପାନ)—(ଯା) ବ. ବାଣିଜ୍ୟ ନିମନ୍ତେ ଏକାଧିକ ବ୍ୟକ୍ତିଙ୍କ ମୂଳଧନରେ ଗଠିତ ବଣିକ ସମ୍ପ୍ରଦାୟ ।
କୋମ୍ୟ—ନି. ବିଂ. (କମ+ଯ)ସୁନ୍ଦର ।
କୋୟାଞ୍ଚା—ପ୍ରା. (ବସ୍ତର) ବ. ଲୁହା-ଖଣ୍ଡିକା, ପିଠାଖଣ୍ଡିକା ।
କୋୟର—ଗ୍ରା. ବ. ଗୃହକର, ଭୃତ୍ୟ, ଦାସ ।
କୋୟଷ୍ଟି(କ)—ପୁଂ. ବ. (କ+ଯଷ୍ଟି+କ)ଟିଟ୍ଟିରି ପକ୍ଷୀ, ଟିଟ୍ଟିଭପକ୍ଷୀ,ଡେଣ୍ଡାଇ ପକ୍ଷୀ ।
କୋୟା—ପ୍ରା. ଅନାର୍ଯ୍ୟ ଜାତିବିଶେଷ, କଣ୍ଡା । [ ପାଠ ।
କୋୟି—ଗ୍ରା. ବ. ସୁବର୍ଣ୍ଣାଦି ଆଙ୍କିବାର
କୋବାନ—ଯା.ବ.ମୁସଲମାନ ଶାସ୍ତ୍ରଅନୁସାରେ ବକରୀଦସମୟରେ ଦିଆଯିବା ପଶୁବଳି ।
କୋଲ୍—ପ୍ରା. (ସମ୍ବ) ବ.ଟୋକେଇ ।
କୋର—ପୁଂ.ବ. (କୁର+ଅ) ଶରୀରର ସନ୍ଧିବିଶେଷ,ଦେହର ଗଣ୍ଠି,କଡ଼ି,(ଗ୍ରା. ବ) ଓସାରିଆ ଫିତା ।
କୋରକ୍—ଯା. ହୋକ, ଯାହାର ସମ୍ପତ୍ତି ବା ମାଲ ଅଟକ ରହିଥାଏ ।
କୋରକ—କ୍ଳୀ.ବ. (କୁର+କ.ରକ)ଫୁଟି ନ ଥିବା ଫୁଲ କଢ଼ି, ମୃଣାଳର ଅଂଶ, ସୁଗନ୍ଧିବିଶେଷ, ମୁକୁଳ, କାଙ୍କୋଲ ନାମକ ଔଷଧ ଗୁଳ୍ମ, ଗ୍ରେରକ ।
କୋରକିତ—ବିଂ. କଢ଼ି ଧରିଥିବା, କଢ଼ିରେ ଆବୃତ ।
କୋରଖ—ଯା.ବ.ସରକାରୀ ଆଦେଶରେ ନିଲାମ କରାଯିବା ନିମନ୍ତେ ସମ୍ପତ୍ତି ଅଟକ ବା ଜବତ କରାଯିବା ।
କୋରଖଦାର—ଯ.ବ ସମ୍ପତ୍ତି ହୋକ କରିବାପାଇଁ ଅଧିକାର ପାଇଥିବା ରାଜ-କର୍ମଚାରୀ ।
କୋରଖନାମା—ଯା.ବ. ନିଲାମ ନିମନ୍ତେ ସମ୍ପତ୍ତି ଅଟକରଖା ଯିବାର ରାଜକୀୟ ଆଜ୍ଞାପତ୍ରିକା ।
କୋରଖି—ଯା.ବିଂ.କୋରଖ ସମ୍ବନ୍ଧୀୟ, କୋରଖ କରାଯାଇଥିବା ।
କୋରଙ୍ଗୀ—ସ୍ତ୍ରୀ.ବ.(କୁର+ଅଙ୍ଗ+ଈ) ଛୋଟ ଅଳାଇଚ, ଗୁଜୁରାତି,ପିପ୍ପଳୀ ।
କୋରଚର—ବୋମ୍ବାଇ ପ୍ରଦେଶର ଏକ ଶ୍ରେଣୀର ଅସଭ୍ୟ ଜାତି ।
କୋରଟ—ଗ୍ରା. ବ. ତାଳ ବାହୁଙ୍ଗାର ବକଳ ।
କୋରଡ଼—ଗ୍ରା. ବ. ବୃକ୍ଷରେଥିବାରନ୍ଧ୍ର, ପୋଲ, ଗୁମ୍ଫା, ଗାତ, ଏକକୋଟି ସଂଖ୍ୟା,(ବିଂ)ଗାଡ଼ୁଆ, ଭିତରକୁ ପଶି ଯାଇଥିବା ।
କୋରଡ଼ା—ଯା.ବ. ଚାବୁକ ।
କୋରଡ଼ିଆ—ଗ୍ରା. ବିଂ. କୋଟର ପରି ଗର୍ତ୍ତାରିଆ ।
କୋରଣ—ଗ୍ରା.ବ. ନାରକେଳ ପ୍ରଭୃତି କୋରିବା ଅସ୍ତ୍ରବିଶେଷ ।
କୋରଣ୍ଡା—ବ. କୋଷବୃଦ୍ଧି ରୋଗ-ବିଶେଷ, ଏକଶିରା ।
କୋରଦୂଷ—ବ. କୋଦୁଅ,କୋଦ୍ରବ୍ୟ ।
କୋରମ—ଯା. (ଇଂ) କୌଣସି ସଭାର ଅଧିବେଶନରେ ନିର୍ଦ୍ଦିଷ୍ଟ ନିମ୍ନତମସଂଖ୍ୟକ ସଭ୍ୟଙ୍କ ଉପସ୍ଥିତି ।
କୋରଲ—ଗ୍ରା.ବ. ଗୃହ ଜମିକୁ ସମତୁଲ କରିବାପାଇଁ ବ୍ୟବହୃତ ହେଲେ ଯୋଚୁଅଙ୍କଦ୍ୱାରା ଟଣାଯିବା କଣ୍ଟିଲଗି-ଥିବା ସମକୋଣୀ ପଟା ।
କୋରସ୍—ଯା.ବ.ପାଲାଆଦିରେ ଗାୟକ ଗୀତ ବୋଲିବା ପରେ ପାଳିଆମାନେ ଯେଉଁ ପାଳଧରନ୍ତି ।
କୋରା—ଗ୍ରା.ବିଂ. କୋରା ହୋଇଥିବା, କୋରା ହେବାର ଯୋଗ୍ୟ, ନୂତନ, ଛଟକା, ପରିଷ୍କୃତ, (ଗ୍ରା.ବ)ନାରକେଳ ଓ କନ୍ଦ ମିଶ୍ରିତ ଲଡ଼ୁ ବିଶେଷ,(ଯା.ବିଂ) ଅରଞ୍ଜିତ, ଅଧୌତ ।
କୋରାକୋରି—ପ୍ରା. ବ. ମଳବନ୍ଧ ପାଠ ବା ନଡ଼ିଆ ଆଦିକୁ ଉଦ୍ଦମରୂପେ କୋରିବା କର୍ମ । [ ଧର୍ମଗ୍ରନ୍ଥ ।
କୋରାଣ—ଯା. ବ. ମୁସଲମାନଙ୍କ
କୋରାନ୍—ଯା. ବ. ମୁସଲମାନ ଜାତିର ଧର୍ମପୁସ୍ତକ ।
କୋରାମୁଣ୍ଡା—ଗ୍ରା.ବ. ଗୋଟା କାଠକୁ ଫାଳ ଫାଳ କରି ଚିରିବାପାଇଁ ବ୍ୟବ-ହୃତ ବଡ଼ ଠେକା ବା ମୁଗୁର ।
କୋରାହେବା—ଗ୍ରା. କି. କୋରିବାର କର୍ମବାଚ୍ୟ ପ୍ରୟୋଗ ।
କୋରିତ—ବିଂ. (କୁର୍+ମି.ତ)କୋର-କିତ, କଢ଼ିଧରିଥିବା,ଚୂର୍ଣ୍ଣ କରାଯାଇ-ଥିବା ।
କୋରିବା—ଗ୍ରା.କି. ବିଦାରଣ କରିବା, ଘର୍ଷିବା, କୌଣସି ପଦାର୍ଥର ଅନ୍ତର୍ଗତ ବସ୍ତୁକୁ ଘର୍ଷିବା ।
କୋରିୟା—ଛୋଟନାଗପୁର ମଧ୍ୟବର୍ତ୍ତୀ ଗୋଟିଏ ରାଜ୍ୟ ।
କୋରିହେବା—ଗ୍ରା. ବ. ପେଟଭିତର କାମୁଡ଼ି କାମୁଡ଼ି ହୋଇ ପତଳା ଝାଡ଼ା ହେବା, (ଲକ୍ଷଣାର୍ଥ) ହୃଦୟ ବା ମନ ଅତ୍ୟନ୍ତ କ୍ଳିଷ୍ଟହେବା ।
କୋରୁଅ—ଗ୍ରା. ବ. ନଡ଼ିଆରସ କିମ୍ବା ଲହୁଣୀକୁ ନିଆଁରେ ବସାଇ ଘିଅ ମାରିବା ପରେ ଯେଉଁ ନରମ ମଣ୍ଡ ପାତ୍ର ଭିତରେ ବସିଯାଏ, ଆକଟା ହୋଇଥିବା ଦୁଧହାଣ୍ଡିତଳେ ଦୁଧର ଯେଉଁଗାଢ଼ ଅଂଶ ବା ସ୍ତର ଲାଗିରହେ ।
କୋରୁଆଁ—ଗ୍ରା.ବ. ବନ୍ୟ ଗୁଳ୍ମବିଶେଷ ।
କୋରୁ—ମହାଦେବ, ପର୍ବତବାସୀ କୋହ୍ଳ ଜାତିର ଶାଖାବିଶେଷ ।

କୋବାନ୍—ଗ୍ରା.ବି. ବଳଦାନ ।
କୋର୍ବା—ଛୋଟନାଗପୁର ପ୍ରଦେଶବାସୀ ଜାତିବିଶେଷ ।
କୋଦ—ଦାକ୍ଷିଣାତ୍ୟବାସୀ ଏକ ଜାତି ।
କୋଲ—ବି.(କୁଲ+ଅ) କୋଡ଼,ଉତ୍ସଙ୍ଗ, ଛାତି, ଶୂକର, ଘଷୁରି, ବଗୁଡ଼ି,ଶନିଗ୍ରହ, ଭେଳା, ଆଲିଙ୍ଗନ, ମୀତ, ଅସ୍ପୃଶ୍ୟ ଜାତୀୟ ବ୍ୟକ୍ତି, ବରକୋଳି, ଅସଭ୍ୟ-ବ୍ୟକ୍ତି, ବର୍ବର, ଜାହାଜ ଲାଗିବାର ବନ୍ଦର, ବର୍ତ୍ତୁଳ ପଦାର୍ଥର ଖାଲୁଆ ପାଖ, ନଦୀର କୂଳ, ଏକତୋଳା ଓଜନ, ଗୋଲମରିଚ, ପ୍ରାଚୀନ କଳିଙ୍ଗ ଦେଶ, ଧଳାଚନ୍ଦା, ଚଇକାଠି, କଙ୍କୋ-ଲକ, କବାବଚିନି, ପୁରୁବଂଶୀୟ ଆକ୍ରୀଡ଼ ରାଜପୁତ୍ର, ରାସ୍ତା,(ଗ୍ରା.ବି)ମଧ୍ୟ,ଅନ୍ତଃସ୍ଥଳ, ବଂଶ ।
କୋଲ୍—ଗ୍ରା.ବି. ମଧ୍ୟଭାରତରେ ବାସ କରୁଥିବା ଆଦିମ ଅନାର୍ଯ୍ୟଜାତି,ବର୍ବର, ଅନ୍ତଃଶସ୍ୟ ଅଣ୍ଡା ।
କୋଲକ—ପୁଂ. ବି. (କୁଲ+ଅକ) ଅଙ୍କୋଟବୃକ୍ଷ, ଆଖରୋଟ ଗଛ, ବହୁବାର ଗଛ, (କ୍ଲୀ) କବାବଚିନି, ମରିଚ, କାଙ୍କୋଲ, ଗନ୍ଧଦ୍ରବ୍ୟବିଶେଷ ।
କୋଲକନ୍ଦ—ବି. ବାରାହୀକନ୍ଦ, ବାରହା କନ୍ଦା, ଭୂଇଁକଖାରୁ । [ କରିବା ।
କୋଲକରିବା—ଗ୍ରା. କ୍ରି ଆଲିଙ୍ଗନ
କୋଲ କର୍କଟିକା—ସ୍ତ୍ରୀ.ବି.ମଧୁ ଖର୍ଜୁରିକ ଖଜୁରି । [ ହୁକୁଣୀ ।
କୋଲକୁଣ—ବି. ଓଡ଼ଶ, ଛାରପୋକ,
କୋଲଖାଇବା—ଗ୍ରା.କ୍ରି. ଆକୁଞ୍ଚିତହେବା (ହାତଗୋଡ଼) ଝିମିଝିମି ହେବା ।
କୋଲଥ—ଗ୍ରା.ବି. ରବିଶସ୍ୟ ବିଶେଷ ।
କୋଲଥିଆ—ଗ୍ରା.ବି. ଏକପ୍ରକାର ଲଘୁ ବସନ୍ତ ରୋଗ, ଗୁଳ୍ମବିଶେଷ ।
କୋଲଦଳ—କ୍ଲୀ.ବି. ନଖୀନାମକ ଗନ୍ଧ ଦ୍ରବ୍ୟ, କୋଳର ପାନ ।
କୋଲଦ୍ୱୟ—କ୍ଲୀ.ବି. ଦୁଇତୋଳା, କର୍ଷ-ପରିମାଣ ।
କୋଲନାସିକା—ସ୍ତ୍ରୀ. ବି. ରଙ୍ଗିଣୀବୃକ୍ଷ ।
କୋଲପ--ଗ୍ରା.ବି.ତାଲା, ଅଲଙ୍କାରର ଗୁବ ବା ଖିଲ ।
କୋଲପକାଠି—ଗ୍ରା.ବି.ଗୁବକାଠି, କଣ୍ଟି ।
କୋଲପି—ଗ୍ରା.ବି. ଅଣ୍ଡପୋଟଳି ।
କୋଲପପୁଚ୍ଛ—ପୁଂ.ବି.(ବ.ବ୍ରୀ)କଙ୍କପକ୍ଷୀ, ବକପକ୍ଷୀ, ବାରହା ଲାଙ୍ଗୁଡ଼ି ।
କୋଲମାରିବା—ଗ୍ରା.ବି. ଅତ୍ୟନ୍ତ ଶୀତ-ଯୋଗୁଁ ହସ୍ତପଦାଦି ଅବଶ ହୋଇଯିବ
କୋଲମୂଳ(ଲା)—କ୍ଲୀ.ବି. ପିପ୍ପଳୀମୂଳ ।
କୋଲମ୍ବକ—ପୁଂ. ବି. (କୁଲ+ଅମ୍ବ+କ)ତନ୍ତ୍ରିଭିନ୍ନ ବୀଣାର ସମୁଦାୟ ଅବୟବ
କୋଲବଲ୍ଲୀ—ସ୍ତ୍ରୀ.ବି.ଗଜ ପିପ୍ପଳୀ, ଚବ୍ୟ ଚଇକାଠ ।
କୋଲଶିମ୍ବି-ସ୍ତ୍ରୀ.ବି.ଲତାବିଶେଷ,ବାଇଡ଼ଙ୍କ ।
କୋଲହଲ—ବି. ପୁରାଣୋକ୍ତ ପର୍ବତ-ବିଶେଷ ।
କୋଲା—ସ୍ତ୍ରୀ.ବି. (କୁଲ+ଅ+ଆ) କୋଲବୃକ୍ଷ,ପିପ୍ପଳୀ, ଚଇକାଠ, କୋଲ-ପୁର, କଳିଙ୍ଗଦେଶ, (ଗ୍ରା.ବି) କମଳା-ଲେମ୍ବୁଆଦି ଫଳ ମଧ୍ୟରେ ଥିବା କୋଷ, ପଣସ ଆଦିର ଫୁଟ ।
କୋଲାକୋଲି-ଗ୍ରା.ବି.ପରସ୍ପର ଆଲିଙ୍ଗନ ।
କୋଲାଗ୍ରତ—ଗ୍ରା.ବି. ଆଲିଙ୍ଗନ ।
କୋଲାଚଳ—ବି. ଦାକ୍ଷିଣାତ୍ୟର ମଳୟ ପର୍ବତ ସଂଲଗ୍ନ ପର୍ବତବିଶେଷ ।
କୋଲାଞ୍ଚ—ପୁଂ. ବି. କଳିଙ୍ଗଦେଶ ।
କୋଲାବିଧ୍ୱଂସୀ—ବି. ମ୍ଳେଚ୍ଛବିଶେଷ ।
କୋଲାମ୍ବା-ଦାକ୍ଷିଣାତ୍ୟ ପ୍ରସିଦ୍ଧ ଏକଦେଶ
କୋଲାର—ଏହା ମହୀଶୂର ଅନ୍ତର୍ଗତ ବିଖ୍ୟାତ ସୁନାଖଣିର ନାମ ।
କୋଲାହଳ—ପୁଂ.ବି. (କୋଲ+ଆ+ହଲ+ଅ(ଗୋଲମାଳ, କଳକଳଧ୍ୱନି, ଅନେକ ଲୋକର ଉଚ୍ଚ ଶବ୍ଦ, ଘୋ ଘା ।
କୋଲି—ପୁଂ.ସ୍ତ୍ରୀ.ବି. ବଦରୀବୃକ୍ଷ,କୋଲ-ଗଛ, ଗୁଜରାଟ ରାଜ୍ୟର ଉତ୍ତର ପଶ୍ଚିମାଞ୍ଚଳବାସୀ ନିମ୍ନଶ୍ରେଣୀର ଜାତି-ବିଶେଷ, ଗୋଟିଏ ପ୍ରସିଦ୍ଧ ସ୍ଥାନ ।
କୋଲିଆ—ଗ୍ରା. (ସମ୍ବ) ବି. ବିଲୁଆ, ଶିଆଳ, ଗ୍ରା. ବି. ଆଖୁଘଣା ।
କୋଲିଆମ୍ବିଲ—ଗ୍ରା. ବିଂ. ସାମାନ୍ୟଖଟା (ପଖାଳ) ।
କୋଲୀ—ସ୍ତ୍ରୀ. ବି. (କୋଲ+ଈ) ବର-କୋଳି, ବଦରୀ ।
କୋଲୁବର୍ତ୍ତିନୀ—ଗ୍ରା. ବି. ପ୍ରାଚୀନ କଳି-ଙ୍ଗର ଗୋଟିଏ ରାଜଧାନୀ ।
କୋଲେଶୀୟ—ଗ୍ରା. ବି. ଭାରତୀୟ ଦ୍ରାବିଡ଼ ଭାଷାର ଏକଶାଖା ।
କୋଲ୍ଲା—ସ୍ତ୍ରୀ. ବି. ପିପ୍ପଳୀ ।
କୋବଲୟ—ଆଫ୍ରିକାନର ଏକଜଣ ମୋଗଲରାଜା ।
କୋବଲ୍ଲପତ୍ର—ଗ୍ରା. ବି. ସ୍ୱୀକାରପତ୍ର ।
କୋବା—ଗ୍ରା. ବି. କାଷ୍ଠ ନିର୍ମିତ ପିଟଣା, ଖୋବା ।
କୋବାବାଡ଼େଇବା—ଗ୍ରା.କ୍ରି. କୋବାରେ ଗୋଡ଼ଆଦିକୁ ପିଟିବା ।
କୋବି—ଗ୍ରା.ବି. ଏକପ୍ରକାର ପରିବା ଓ ବୈଦେଶିକ ସବ୍‌ଜିବିଶେଷ ।
କୋବିଦାର—ପୁଂ. ବି. (କୋ+ବି+ଦୃ+ଅ) ରକ୍ତ କାଞ୍ଚନବୃକ୍ଷ, ପାରିଜାତ, ମନ୍ଦାର । [ ନଗର ।
କୋବିଲଖଣ୍ଡୀ—ମାଲବାରର ଗୋଟିଏ
କୋବିଦ—ପୁଂ.ବିଂ.( କୁ+ବିଦ୍+ଅ ) ପଣ୍ଡିତ, ଜ୍ଞାନୀ, ଦକ୍ଷ, ଅନୁଭବୀ,ବିଦ୍ୱାନ୍ ।
କୋଶ—ପୁଂ. କ୍ଲୀ.ବିଂ. (କୁଶ୍+ଅ) ଅଣ୍ଡ ସମୂହ, ଦ୍ରବ୍ୟବିଶେଷ, କଢ଼, ଜଳପାତ୍ର, ଖଣ୍ଡାର ଖାପ, ସଞ୍ଚିତ ପଦାର୍ଥ, ତମ୍ବୁ, ସୁନା ବା ରୂପା, ସଂଗ୍ରହ, ମାଂସପେଶୀ, ଜାଇଫଳ, ଶପଥ ।
କୋଶକ—ଗ୍ରା. ବି. ୮୦୦ ହାତ ପରି-ମାଣ, କ୍ରୋଶ । [ପଥ ।
କୋଶକ—ଗ୍ରା. ବି. ଏକକୋଶ ପରିମିତ
କୋଶକାର—ପୁଂ.ବି. (କୋଶ+କୃ+ଅ)ଆଖୁ,ଝିଞ୍ଚାଦିର ଆବରଣକାରୀ, କୀଟ ବିଶେଷ, କୋଷାପୋକ ।
କୋଶକୃତ୍—( କୋଶ+କୃ+କ୍ୱିପ୍ ) ଇକ୍ଷୁଭେଦ,ଖେଳ ତିଆରି କରିବାବାଲା ।

କୋଶଚଞ୍ଚୁ—ପୁଂ.ବି.(ବ.ବ୍ରୀ)ସାରସପକ୍ଷୀ ।

କୋଶନାୟକ—ପୁଂ. ବି. କୋଷାଧ୍ୟକ୍ଷ, କୁବେର ।

କୋଶପାଳ—ପୁଂ.ବି.(୬ତତ୍ପୁ)ଅର୍ଥରକ୍ଷକ, କୋଷାଧ୍ୟକ୍ଷ, ଭଣ୍ଡାରୀ ।

କୋଶପେଟକ—ପୁଂ. କ୍ଲୀ. ବି. ଧନ ରଖା ଯିବାର ସିନ୍ଦୁକ, ବାକ୍ସ ବା ପେଡ଼ି ।

କୋଶଫଳ—ବି. ଜାଇଫଳ, ସୁଗନ୍ଧିବିଶେଷ, ବହୁବୀଜବିଶିଷ୍ଟ ଫଳ ।

କୋଶସ୍ତ୍ରୀ—ସ୍ତ୍ରୀ. ବି. ସୁବର୍ଣ୍ଣ-ପୂର୍ଣ୍ଣକୋଷ ।

କୋଶଳ—ବି (କୁ+ଶଳ+କ.ଅ)କାଶୀର ଉତ୍ତର-ଅଯୋଧ୍ୟା ସହିତ ସରଯୂ ତୀରବର୍ତ୍ତୀ ସମସ୍ତ ଭୂଭାଗ, ଅଯୋଧ୍ୟା ନଗର, କୋଶଳାଶାଗ ।

କୋଶଳା—ସ୍ତ୍ରୀ. ବି. (କୋଶଳ+ଆ) ଅଯୋଧ୍ୟା ନଗରୀ, ରାମଚନ୍ଦ୍ରଙ୍କର ରାଜଧାନୀ, କୋଶଳାଶାଗ ।

କୋଶଳାତ୍ମଜା—ସ୍ତ୍ରୀ. ବି. ( କୋଶଳ+ଆତ୍ମଜା ) କୌଶଲ୍ୟା, ଦଶରଥଙ୍କର ପ୍ରଥମ ରାଣୀ, ରାମଚନ୍ଦ୍ରଙ୍କର ମାତା ।

କୋଶଳାଶାଗ—ଗ୍ରା.ବି.ଏକପ୍ରକାର ଖାଦ୍ୟ ଶାଗ ।

କୋଶଳିକ—କ୍ଲୀ. ବି. ( କୋଶ+ଲ+ଇକ) ଉତ୍କୋଚ, ଲାଞ୍ଚ, ଘୋଷ ।

କୋଶବତୀ—ସ୍ତ୍ରୀ. ବି. କୋଶାତକୀ ଲତା, ଜହ୍ନି, ପଟୋଳଲତା ।

କୋଶବାନ୍—ପୁଂ. ବିଂ.(କୋଶ+ବତ୍) କୋଶଯୁକ୍ତ, ଧନାଗାରବିଶିଷ୍ଟ, (ସ୍ତ୍ରୀ) କୋଶବତୀ ।

କୋଶବାସୀ—ପୁଂ.ବି.(କୋଶ+ବସ୍+ଇନ୍ )ଶାମୁକା, ତନ୍ତୁକୀଟ, ସ୍ଫଟିକ ବିଶେଷ

କୋଶବୃଦ୍ଧି—ପୁଂ. ବି. କୁରଣ୍ଡକ ବୃକ୍ଷ, (ସ୍ତ୍ରୀ) ରୋଗବିଶେଷ, ଅଣ୍ଡକୋଷ ବୃଦ୍ଧି, ଅଣ୍ଡ ବୃଦ୍ଧି ।

କୋଶବେଶ୍ମ—କ୍ଲୀ. ବି. ଧନାଗାର ।

କୋଶଶାୟିକା—ସ୍ତ୍ରୀ. ବି. ଖୋଲରେ ଥିବା ଛୁରୀ, ଖିଲକାଠି ।

କୋଶସ୍ଥ—ପୁଂ.ବି. (କୋଶ+ସ୍ଥା+ଅ) ଶଙ୍ଖ ପ୍ରଭୃତି କେତେକ ଜନ୍ତୁ ।

କୋଶା—ନଦୀବିଶେଷ, ରାଜପୁତନାର ମୁସଲମାନ ଜାତିବିଶେଷ, ଆଫଗାନ ଜାତିର ଗୋଟିଏ ଶ୍ରେଣୀ, ବୃହତ୍ନୌକା, ପୂଜାର ବାସନଭେଦ, (ଏଥିରେ ଜଳ ରଖି ପୂଜା କରନ୍ତି । )

କୋଶାଗାର—କ୍ଲୀ. ବି. ଧନାଗାର ।

କୋଶାଣ୍ଡ—ବି. ( କୋଶ+ଅଣ୍ଡ ) ଅଣ୍ଡକୋଷ ।

କୋଶାତକ—ପୁଂ.ବି. (କୋଶା+ଅତ-+ଅକ ) ଯଜୁର୍ବେଦର କଠ ନାମକ ଶାଖା, ଜହ୍ନି ଗଛ, କେଶ ।

କୋଶାତକୀ—ସ୍ତ୍ରୀ. ବି. (କୋଶାତକ+ଇନ୍) ବଣିକ, ବାଣିଜ୍ୟ, ବଡ଼ବାନଳ, ଜହ୍ନିଗଛ, ପଟୋଳ ।

କୋଶାଧ୍ୟକ୍ଷ—ପୁଂ.ବି. ଧନାଗାର ରକ୍ଷକ, ଧନଦାତା, କୁବେର ।

କୋଶାମ୍ର—ପୁଂ. ବି. ଫଳବୃକ୍ଷବିଶେଷ ।

କୋଶାମ୍ବୀ—ସ୍ତ୍ରୀ. ବି. ଗୋଟିଏ ନଗର ।

କୋଶିଆ—ଗ୍ରା.ବିଂ.ଏତେ କୋଶବ୍ୟାପୀ ।

କୋଶିକା—କ୍ଲୀ. ବି. (କୋଶ+କ+ଆ) ଜଳକା ପାତ୍ର ।

କୌଶିଳା—ସ୍ତ୍ରୀ. ବି. (କୋଶ+ଇଲ+ଆ) ମୁଦ୍ଗପର୍ଣ୍ଣୀ, ବଣମୁଗ ।

କୋଶୀ—ସ୍ତ୍ରୀ. ବି. (କୋଶ+ଅ+ଈ) କ୍ଷୁଦ୍ର ଖୁଷା,ପାଦୁକା,ଯୋତା, ଧାନଶୁଙ୍କ, ଶିମ୍ବିକା ।

କୋଶୀ—ପୁଂ. ବିଂ. ( କୋଶ+ଇନ୍ ) କୋଷଯୁକ୍ତ, (ବି) ଆମ୍ରବୃକ୍ଷ ।

କୋଶ୍ୟ—କ୍ଲୀ. ବି. ହୃଦୟସ୍ଥ ମାଂସପିଣ୍ଡ ।

କୋଷ—ପୁଂ. କ୍ଲୀ. ବି. (କୁଷ୍+କ.ଅ) ଖଡ୍ଗାଦିର ଖୋଳ, କଡ଼ି, ଅର୍ଥସମୂହ, ଅଣ୍ଡା, ପାତ୍ର, ଅଭିଧାନ, ଜାଇଫଳ, ଭଣ୍ଡାର,ଜଳପାତ୍ର, ଯୋନି, ଧନ, ସଞ୍ଚିତ ଧନ, ଜରାୟୁ, ଲିଙ୍ଗ, ବସ୍ତ୍ରାଦି ରଖିବାର ବାକ୍ସ ବା ଆଧାର, ପାତ୍ର, ସୁନା ରୁପା, ଫଳର ଟାକୁଆ,ପେଣ୍ଡୁ, ସଂଗ୍ରହ,ଫଳର ଖୋଳ ବା ଚୋପା, ପଣସର କୋଷ, କୋଳା, ମାଂସପେଶୀ, ବହିରାବରଣ, ମଲାଟ, ରେଶମ ପୋକର ଖୋଷା ବା ଗୋଟି, ନଡ଼ିଆ ଗୁଆଆଦିର ଚୋପା, ଚକ୍ଷୁଗୋଲକ, ପାତ୍ରୀ, ଘୋଡ଼ଣିଗଦା, ସ୍ତୂପ, ଶପଥ, ପୋଷ ।

କୋଷକ—ପୁଂ. ବି. (କୋଷ+କ)ଅଣ୍ଡ, ଡିମ୍ବ, ଅଣ୍ଡକୋଷ ।

କୋଷକାର(କ)—ପୁଂ.ବି.(କୋଷ୍+କୃ+ଅ)ଆଖୁ,ପ୍ରଜାପତିର ପୂର୍ବପତି,ଜନବିଶେଷ,ଅଭିଧାନ ଗ୍ରନ୍ଥର ସଙ୍କଳୟିତା, ଖଣ୍ଡାର ଖାପ ତିଆରିକଲାବାଲା, ଗୋଟି ମଧ୍ୟରେ ଥିବା ରେଶମ ପୋକ ।

କୋଷକାବ୍ୟ—କ୍ଲୀ. ବି. ପରସ୍ପର ନିରପେକ୍ଷ ଶ୍ଲୋକସମୂହ, ପଦ୍ୟାକାରରେ ରଚିତ ଅଭିଧାନ ।

କୋଷକ୍ଷୟ—ବି.(୬ତତ୍)ବାହୁଲ୍ୟାଦିଯୋଗୁଁ ସଞ୍ଚିତ ଧନର କମିଯିବା ଅବସ୍ଥା ।

କୋଷଗୃହ—ବି. (୬ତତ୍) ଧନାଗାର ଭଣ୍ଡାରଘର ।

କୋଷଗ୍ରହଣ—ବି.(୬ତତ୍) ମାଣ୍ଡୁ ଧରିବା, ମାଣ୍ଡୁ ଧରି ନିୟମ କରିବା ।

କୋଷଚଞ୍ଚୁ—ପୁଂ.ବି. (କୋଷ+ଚଞ୍ଚୁ) ସାରସପକ୍ଷୀ ।

କୋଷନାୟକ—ପୁଂ.ବି.(୬ତତ୍)ଖଜାଞ୍ଚି, କୋଷାଧ୍ୟକ୍ଷ, କୁବେର ।

କୋଷପାନ—ବି. ପ୍ରାଚୀନ କାଳରେ ଦୋଷୀର ପରୀକ୍ଷାବିଧିବିଶେଷ ।

କୋଷପାଳ—ବି.(କୋଷ+ପାଲ୍+କ, ଅ) କୋଷନାୟକ (ଦେଖ) ।

କୋଷପେଟକ—ବି. (୬ତତ୍) ଧନରଖା ଯିବାର ସିନ୍ଦୁକ ବା ପେଡ଼ି ।

କୋଷଫଳ—ବି. ( କ.ଧା ) ଜାଇଫଳ, ସୁଗନ୍ଧିବିଶେଷ, ବହୁବୀଜ ବିଶିଷ୍ଟଫଳ ।

କୋଷବୃଦ୍ଧି—ସ୍ତ୍ରୀ.ବି.(୬ତତ୍) କୁରୁଣ୍ଡର ସ୍ଫୀତି, ଧନବୃଦ୍ଧି, ଅର୍ଥସଞ୍ଚୟ, କୁରୁଣ୍ଡରୋଗ ।

କୋଷଶାୟିକା—ସ୍ତ୍ରୀ.ବି. (କୋଷ+ଶୀ+ଅକ+ଆ) ଖୋଳରେ ଥିବା ଛୁରୀ ।

କୋଷଶୁଦ୍ଧି—ବି. ( ୬ତତ୍ ) ମାଣ୍ଡୁ ଧରି ଅଭିଯୁକ୍ତ ବ୍ୟକ୍ତିର ଅପରାଧ ବା ଅଭିଯୋଗରୁ ମୁକ୍ତି ।

କୋଷସଂସ୍ଥାନ—ବି. ( ୬ତତ୍ ) ଶରୀରସ୍ଥ ମାଂସପେଶୀର ଗୋଷ୍ଠୀ ।

କୋଷ(ସ୍ଥ) — ବି°. (କୋଷ + ସ୍ଥା + ଅ) ଯେଉଁ ଜୀବମାନେ ଖୋଳଭିତରେ ଆଆନ୍ତି, ଶଙ୍ଖ, ଗେଣ୍ଡା, ଶାମୁକା ।

କୋଷସ୍ଫୀନ — ପୁଂ. ବି°. (ଷତତ୍) ଅତି ଗରିବ ।

କୋଷ—ଗ୍ରା. ବି. ଖୋଷା, ରେଶମପୋକ ଆଦିଙ୍କ ଗୋଟି ।

କୋଷାକୋଶୀ — ସ୍ତ୍ରୀ.(ମେଦ)ପୂଜାତର୍ପଣାଦିରେ ବ୍ୟବହୃତ ତମ୍ବାପାତ୍ରୀ ।

କୋଷାତକ—ପୁଂ. ବି. (କୋଷ + ଅତ୍ + କ,ଅକ ) ଯଜୁର୍ବେଦର ଗୋଟିଏ ଶାଖାର ନାମ, ଜହ୍ନି ଫଳ ଓ ଲତା, ବାଳ ।

କୋଷାତକୀ — ବି. (କୋଷାତକ + ଇନ୍) ବଣିକ, ବାଣିଜ୍ୟ, ବଡ଼ବାନଳ, ଜହ୍ନି, (ଫଳ ଓ ଲତା) ତରଡ଼ା ( ଫଳ ଓ ଲତା) ଜହ୍ନିଗଛ, ପଟୋଳ, ( ଫଳ ଓ ଲତା ) ।

କୋଷାଧକ୍ଷ — ପୁଂ. ବି. (୬ତତ୍ ) ଧନରକ୍ଷକ, କୁବେର ।

କୋଷିଆ—ଗ୍ରା.ପୁଂ.ବି°. କୁରୁଣ୍ଡା,ଯାହାର କୋଷ ସ୍ଫୀତହୋଇଥାଏ, କୋଷବୃଦ୍ଧି-ରୋଗଗ୍ରସ୍ତ ।

କୋଷିକା—ବି. ( କୋଷ + କ + ଆ ) ପାନପାତ୍ର ।

କୋଷୀ — ବି°. (କୋଷ + ଇନ୍)କୋଷଯୁକ୍ତ, (ପୁଂ. ବି.) ଯୋତା, ପାଦୁକା, ଆମ୍ବଗଛ, କର୍ଣ୍ଣରୋଗବିଶେଷ ।

କୋଷ୍ଟା — ଛୋଟନାଗପୁରବାସୀ ଜାତିବିଶେଷ ।

କୋଷ୍ଟି — ଦାକ୍ଷିଣାତ୍ୟର ତନ୍ତୁବାୟଜାତି ।

କୋଷ୍ଠ—ବି. (କୁଷ୍ + ଅ) ଧନାଗାର, କୋଠି, ଦୁର୍ଗ, ଗୃହର ମଧ୍ୟକୋଠରି, ଖୋଳପା, ବସ୍ତା, ପେଟ, ଗର୍ଭ,କୋଠା, ଅନ୍ତ୍ରବୁଜୁଳି, ମଳଭଣ୍ଡ, ମଣିପୁରଚକ୍ର, ଆତ୍ମୀୟବ୍ୟକ୍ତି,(ବି°)ସ୍ୱୀୟ, ନିଜଆତ୍ମୀୟ ।

କୋଷ୍ଠକ — ବି.(କୋଷ୍ଠ + କ)ଧାନକୋଠି ଅମାର, ଶସ୍ୟାଗାର, ପାଚରି, ପରିଚ୍ଛିତ୍ ଜଳକୁଣ୍ଡ, ସାରଣୀ, ଚକ୍ର ।

କୋଷ୍ଠକାଠିନ୍ୟ — ବି. (୬ତତ୍) ଝାଡ଼ା କବଜହେବା, ଝାଡ଼ା ସଫା ନ ହେବା ।

କୋଷ୍ଠତରଳ — ଗ୍ରା. ବି. ପତଳାଝାଡ଼ା ହେବା, ପତଳାଦସ୍ତ ।

କୋଷ୍ଠପାଳ — ପୁଂ. ବି. (କୋଷ୍ଠ + ପାଲ୍ + କ,ଅ ) ନଗରରକ୍ଷକ, କଟୁଆଳ, କନଷ୍ଟେବଲ୍, ଜଗୁଆଳ,ଭଣ୍ଡାରରକ୍ଷକ ।

କୋଷ୍ଠବଦ୍ଧ—ବି°. ଝାଡ଼ା ହେଉନଥିବା, ଯାହାର କୋଷ୍ଠ ଶୁଦ୍ଧି ହୋଇନାହିଁ ।

କୋଷ୍ଠଭେଦ — ପୁଂ. ବି. (୬ତତ୍) ମଳଭେଦ, କୋଷ୍ଠଶୁଦ୍ଧି (ଦେଖ), କୋଷ୍ଠ କାଠିନ୍ୟ, ଝାଡ଼ା ବନ୍ଦହେବା ଅଂଶ ।

କୋଷ୍ଠଶୁଦ୍ଧି — ସ୍ତ୍ରୀ. ବି. ମଳଖଣ୍ଡ ଉତ୍ତମରୂପେ ପରିଷ୍କୃତଥିବା ଅବସ୍ଥା, ମଳଶୁଦ୍ଧି

କୋଷ୍ଠୀ — ଗ୍ରା. ବି. ଜାତକ,ଜନ୍ମପତ୍ରିକା, ଟିପଣା ( କୋଷ୍ଠଶବ୍ଦଜ ), ଧନାଗାର, ଉଦର,ମଳ, ଘର, ଗାତ୍ରର ଏକଅଂଶ ।

କୋଷ୍ଠାଗାର — କ୍ଳୀ. ବି. (କ.ଧା) ଗୋଲା, କୋଠି, ଭଣ୍ଡାର, ଧନାଗାର ।

କୋଷ୍ଠାଗାରିକ—ପୁଂ. ବି°. (କୋଷ୍ଠା + ଗାର + ଇକ ) ଅର୍ଥରକ୍ଷକ, ଭଣ୍ଡାରଘରିଆ,ଖୋଳମଧ୍ୟରେ ରହିବା (ଜନ୍ତୁ) ।

କୋଷ୍ଠାଗାରୀ — ପୁଂ. ବି. କୀଟବିଶେଷ ।

କୋଷ୍ଠାଗ୍ନି—ପୁଂ. ବି. ଜଠରାଗ୍ନି, ଶରୀର ଭିତରେଥିବା ଖାଦ୍ୟଜୀର୍ଣ୍ଣକାରୀ ଶକ୍ତି ।

କୋଷ୍ଠାଶ୍ରିତ — ପୁଂ. ବି. ଅଗ୍ନାଧ୍ମାନ, ପେଟଫମ୍ପା ।

କୋଷ୍ଠିକା - ବି. ( କୋଷ୍ଠି + କ + ଆ ) କୋଷ୍ଠୀ, ଜନ୍ମପତ୍ରିକା, ପଶାପାଲି ।

କୋଷ୍ଠୀ—ସ୍ତ୍ରୀ. ବି. (କୋଷ୍ଠ + ଈ) ଜନ୍ମପତ୍ରିକା, ଜାତକ, ପଶାପାଲି ।

କୋଷ୍ଠୀଗଣକ— ପୁଂ. ବି. ଜ୍ୟୋତିଷ, ଯେ କୋଷ୍ଠିଗଣନା କରେ ।

କୋଷ୍ଠୀ ଗଣନା — ସ୍ତ୍ରୀ. ବି. ଜନ୍ମକାଳରେ ଗ୍ରହନକ୍ଷତ୍ରାଦିଙ୍କର ସ୍ଫୁଟ ଓ ଲଗ୍ନାଦି ଗଣିତ ଅନୁସାରେ ସ୍ଥିରକରିବା ।

କୋଷ୍ଣ — ବି°. (କୁ + ଉଷ୍ଣ) ଅଳ୍ପଗରମ, ନଇଁଉଷୁମ, ଈଷଦୁଷ୍ଣ ।

କୋସଳ—ପୁଂ. ବି. ଅଯୋଧ୍ୟା ନଗର ।

କୋହ—ଗ୍ରା. ବି. କ୍ରୋଧ,କୋପ,ବିକଳ, କାନ୍ଦଣା, ଗମ୍ଭୀରଦୁଃଖ, ତେଜ,କୁନ୍ଦନ ।

କୋହଉଠିବା(ଉପୁଜିବା) — ଗ୍ରା.ବି.କ୍ରୋଧ ଜାତହେବା, ଶୋକ ଜାତହେବା ।

କୋହବନ୍ଧିବା — ଗ୍ରା. କ୍ରି. କ୍ରୁଦ୍ଧହୋଇ ରହିବା, ଶୋକାକ୍ରାନ୍ତ ହେବା ।

କୋହମୋହ — ଗ୍ରା. ବି°. ଅତ୍ୟନ୍ତ ଅସନ୍ତୁଷ୍ଟ ।

କୋହରି—ଗ୍ରା.ପୁଂ. ବି°. କ୍ରୋଧନସ୍ୱଭାବ, ଅସନ୍ତୁଷ୍ଟ ପ୍ରକୃତିର, ଯେ କୋହରେଇ ହୋଇ କାନ୍ଦେ, (ବି) କାନ୍ଦବୋବାଳି ।

କୋହଳ — ବି°. (କୁ + ହଲ + କ,ଅ) ଅସ୍ପଷ୍ଟରୂପେ ମିଥ୍ୟା କହୁଥିବା, (ବି)ମଦ୍ୟବିଶେଷ, ବାଦ୍ୟବିଶେଷ, (ଗ୍ରା. ବି°.) ନରମ, ହୁଗୁଳା, ଶିଥିଳ ।

କୋହଲ—ବି.(କୁ + ହଲ + ଅ) ମଦ୍ୟବିଶେଷ, ଯବରୁ ପ୍ରସ୍ତୁତ ମଦ, ସୁରାସାର କୋମଳ ଆଘାତରେ ବାଜିବା ବାଦ୍ୟବିଶେଷ,ନାଟକାଦିର ରଚୟିତାବିଶେଷ, ନାଟକର ପ୍ରଥମ ଆବିଷ୍କର୍ତ୍ତା ।

କୋହ୍ଲ — ବି. ଏକପ୍ରକାର ବାଜପକ୍ଷୀ ।

କୋହୃତ — ପୁଂ.ବି.ଏକଜଣଋଷିଙ୍କରନାମ ।

କୋହିନୂର — ଜଗତ୍ ବିଖ୍ୟାତ ଓ ଇତିହାସ ପ୍ରସିଦ୍ଧ ଖଣ୍ଡିଏ ହୀରା ।

କୋହ୍ଲ—ଗ୍ରା. ବି. ଛୋଟନାଗପୁର ଓ ମଧ୍ୟଭାରତରେ ବାସକରୁଥିବା ଅନାର୍ଯ୍ୟ ଜାତିବିଶେଷ ।

କୋହ୍ଲନ୍ — ଗ୍ରା.ବି. ସିଂହଭୂମ ପ୍ରଦେଶର କୋହ୍ଲପ୍ରଧାନ ଅଞ୍ଚଳ ।

କୌ — ଗ୍ରା. ବି. କଉ(ସର୍ବ ବି°)କେଉଁ ।

କୌକିଲ — ପୁଂ. ବି. (କୋକିଳ + ଅ) ମାଈକୋକିଳଚୁଆ, କୋକିଳ ଶାବକ (ସ୍ତ୍ରୀ) କୌକିଳୀ ।

କୌକୁଟକ—ପୁଂ.ବି. ଜନପଦବିଶେଷ ।

କୌକୁର—ପୁଂ. ବି. ଦେଶବିଶେଷ ।

କୌକୁସ୍ତ — ପୁଂ. ବି. ଏକଜଣ ଋଷି ।

କୌକୃତ୍ୟ — ପୁଂ. ବି. ଅନୁତାପ, ମନ୍ଦକାର୍ଯ୍ୟ, ଖଳତା ।

କୌକ୍କୁଟ—ପୁଂ.ବ.(କୁକ୍କୁଟ+ଅ)ଅଣ୍ଡ, ବିଷ୍ଠା, ପୁଚ୍ଛ,(ବିଂ)କୁକ୍କୁଟ ସମ୍ବନ୍ଧୀୟ ।
କୌକ୍କୁଟିକ—ପୁଂ.ବିଂ. (କୁକ୍କୁଟ+ଇକ) ଦାମ୍ଭିକ, ପୋକଯୋକଙ୍କୁ ଗୋଡ଼ରେ ମାଡ଼ି ପକାଇବା ଭୟରେ ଯେ ସବୁ ବେଳେ ତଳକୁ ଗ୍ରହିଁଗ୍ରଲେ (ସନ୍ନ୍ୟାସୀ-ବିଶେଷ), କୁକୁଡ଼ା ପାଳିବା ଯାହାର ବ୍ୟବସାୟ, ମିଥ୍ୟାଗ୍ରସ୍ତ (ବ୍ୟକ୍ତି) ।
କୌକୁଟିକନ୍ଦଲ—ପୁଂ. ବ. ଭଣ୍ଡପୁଷ୍ପ, ବୋଡ଼ାସାପ, (ସ୍ତ୍ରୀ) କୌକ୍କୁଟିକନ୍ଦଳୀ ।
କୌକ୍ଷ—ବିଂ. (କୁକ୍ଷି+ଅ) କୁକ୍ଷିବଦ୍ଧ, ଅସିଛିନ୍ନ ଅନ୍ୟପଦାର୍ଥ ।
କୌକ୍ଷିକ—ତ୍ରି.ବିଂ. (କୁକ୍ଷି+ଅକ) କୁକ୍ଷି ଦେଶରେ ଉତ୍ପନ୍ନ ।
କୌକ୍ଷେୟ(କ)—ପୁଂ.ବ. (କୁକ୍ଷି+ଏୟ+କ)କୁକ୍ଷିବଦ୍ଧ ଖଡ୍ଗ ତରବାର(ବିଂ) ପେଟନିକଟରେ ବନ୍ଧାହୋଇଥିବା ।
କୌଙ୍କ(ଣ)—ପୁଂ. ବ. ( କୋଙ୍କ+ଅ ) ଦେଶ ।
କୌଙ୍କୁମ—ତ୍ରି. ବିଂ. କୁଙ୍କୁମସମ୍ବନ୍ଧୀୟ, ହଳଦୀ ସମ୍ବନ୍ଧୀୟ ।
କୌଞ୍ଚ—ବି. କୌଞ୍ଚ ପର୍ବତ ।
କୌଞ୍ଜର—ତ୍ରି. ବିଂ.(କୁଞ୍ଜର+ଅ)ହସ୍ତୀ-ସମ୍ବନ୍ଧୀୟ ।
କୌଞ୍ଜାୟନ—ପୁଂ. ବ. କୁଞ୍ଜର ବଂଶରେ ଉତ୍ପନ୍ନ ସନ୍ତାନ ।
କୌଞ୍ଜାୟନୀ—ସ୍ତ୍ରୀ. ବ. କୁଞ୍ଜରବଂଶରେ ଉତ୍ପନ୍ନ ସ୍ତ୍ରୀ ।
କୌଟ—ପୁଂ. ବ. (କୁଟ+ଅ) କୁଟଜ ବୃକ୍ଷ, କୁରେଇଁଗଛ, (ବିଂ) କପଟୀ, ଜାଲ, ଠକ,କପଟସାକ୍ଷୀ,ସ୍ୱାଧୀନ,ମିଥ୍ୟା-କଥକ,ଗାର୍ହସ୍ଥ, କୂଟସାକ୍ଷ,(ସ୍ତ୍ରୀ)କୌଟୀ ।
କୌଟକିକ—ପୁଂ.ବିଂ. (କୁଟକ+ଇକ) ମାଂସବିକେତା, କଂସାଇ, ଫାଶରେ ଚଢ଼େଇ ଆଦ ଧରିବା ଯାହାର ଜୀବିକା ।
କୌଟଜ—ପୁଂ.ବ.(କୁଟଜ+ଅ) କୁଟଜ ବୃକ୍ଷ, କୁରେଇଁ ଗଛ ।
କୌଟତକ୍ଷ—ପୁଂ. ବ. (କ. ଧା) ସ୍ୱାଧୀନ ସୂତ୍ରଧର, ଯେଉଁ ବଢ଼େଇ ପରର ମୂଲ ନ ଲାଗି ଆପଣାଘରେ ବସି କାମକରି ଜୀବିକା ନିର୍ବାହ କରେ ।
କୌଟଲ୍ୟ—ପୁଂ. ବ. ବାତ୍ସ୍ୟାୟନ ମୁନି ।
କୌଟସାକ୍ଷୀ—ପୁଂ. ବ. (କ.ଧା) ମିଥ୍ୟା ସାକ୍ଷୀ, ଜାଲ୍ ସାକ୍ଷୀ ।
କୌଟା—ଗ୍ରା. ବ. ଛୋଟଡବା, କରଣ୍ଡ, ସମ୍ପୁଟକ ।
କୌଟାୟନ—ପୁଂ. ସ୍ତ୍ରୀ. ବ. କୂଟବଂଶୀୟ [ସନ୍ତାନ
କୌଟି—ପୁଂ.ସ୍ତ୍ରୀ.ବ. ମିଥ୍ୟାବାଦୀର ପୁତ୍ର ।
କୌଟିକ—ବିଂ. (କୁଟ+ଇକ)ପ୍ରତାରକ ମାଂସ ବିକେତା,କଂସେଇ, (ବ)ବ୍ୟାଧ ।
କୌଟିଲକ—ପୁଂ. ବ. (କୁଟିଲ+ଅକ) ବ୍ୟାଧ, ଲୌହକାର,ବଢ଼େଇ, କମାର ।
କୌଟିଲ୍ୟ—କ୍ଳୀ. ବ. ( କୁଟିଲ+ଯ ) କୁଟିଲତା, କପଟତା, କୃରତା, (ବ) ଚାଣକ୍ୟ ବ୍ରାହ୍ମଣ ।
କୌଟୀର୍ଯ୍ୟ—ବିଂ.(କୁଟୀର+ଯ)କେବଳ ଅସହାୟ (ସ୍ତ୍ରୀ.ବ) ଦୁର୍ଗା ।
କୌଟୁମ୍ବ—ବିଂ. (କୁଟୁମ୍ବ+ଅ) କୁଟୁମ୍ବ ସମ୍ବନ୍ଧୀୟ, କୁଟୁମ୍ବ ଭରଣପୋଷଣ-ଯୋଗ୍ୟ ଦ୍ରବ୍ୟ ।
କୌଟୁମ୍ବିକ-ବିଂ.(କୁଟୁମ୍ବ+ଇକ)କୁଟୁମ୍ବ ସମ୍ବନ୍ଧୀୟ, ଯେଉଁ ବ୍ୟକ୍ତି କୁଟୁମ୍ବ ପାଳନ କରିବାରେ ଲଗିଥାଏ ।
କୌଟ୍ୟା—ସ୍ତ୍ରୀ.ବ.କୂଟବଂଶୀୟ କନ୍ୟା ।
କୌଠାର—ପୁଂ. ବ. କୁଠାର ନାମକ ଋଷିର ପୁତ୍ର ।
କୌଠାରୀ—ସ୍ତ୍ରୀ. ବ. କୁଠାର ନାମକ ଋଷିର କନ୍ୟା । [ସମ୍ବନ୍ଧୀୟ
କୌଠାରକେୟ—ବିଂ. କ୍ଷୁଦ୍ର କୁଠାର
କୌଡ଼ବକ—ବିଂ. ଅଧସେର ପରିମିତ ବୀଜ ଥୋଇବାର ଉପଯୁକ୍ତ କ୍ଷେତ୍ର, ଯହିଁରେ ଅଧସେର ଅନ୍ନ ଆଇପାରେ ।
କୌଡ଼ି—ଗ୍ରା. ବ.କଉଡ଼ି, କପର୍ଦ୍ଦକ ।
କୌଣପ—ପୁଂ.ବ. (କୁଣପ+ଅ)ଅସୁର, ରାକ୍ଷସ, ବାସୁକିବଂଶୀୟ ସର୍ପବିଶେଷ ।
କୌଣପଦନ୍ତ—ପୁଂ.ବ.(ବ.ବ୍ରୀ) ଭୀଷ୍ମ ।
କୌଣପାସନ—ପୁଂ. ବ. (ବ.ବ୍ରୀ) ସର୍ପ-ବିଶେଷ ।
କୌଣସି—ଗ୍ରା. ସର୍ବ, କେହି ଜଣେ, କିଛି ବସ୍ତୁ ।
କୌଣସି କୌଣସି—ଗ୍ରା. ସର୍ବ. କେହି କେହି ବ୍ୟକ୍ତି, ଜଣେ ଜଣେ ଲୋକ, କୌଣସି ସ୍ଥାନମାନ,କୌଣସି ବସ୍ତୁମାନ ।
କୌଣସିଲ—ଗ୍ରା.ସର୍ବ କୌଣସି(ଦେଖ) ।
କୌଣିନ୍ଦ—ପୁଂ.ସ୍ତ୍ରୀ.ବ.କୁଣିନ୍ଦଜନପଦବାସୀ ।
କୌଣ୍ଡପାୟୀ—ପୁଂ. ବ.କୌଣ୍ଡ+ପା+ଇନ୍ ) ସୋମଯାଗକାରୀ ଯଜମାନ-ବିଶେଷ ।
କୌଣ୍ଡଲ—ବିଂ. (କୁଣ୍ଡଲ+ଅ) କୁଣ୍ଡଲ-ଯୁକ୍ତ, (ସ୍ତ୍ରୀ) କୌଣ୍ଡଲୀ ।
କୌଣ୍ଡଲକ—ବିଂ. କୁଣ୍ଡଲ ନିକଟବର୍ତ୍ତୀ ଦେଶାଦ ।
କୌଣ୍ଡାଗ୍ନିକ—ବିଂ. କୁଣ୍ଡାଗ୍ନି+ଇକ) କୁଣ୍ଡାଗ୍ନି ସମୁତ୍ପନ୍ନ,କୁଣ୍ଡାଗ୍ନିସମ୍ବନ୍ଧୀୟ ।
କୌଣ୍ଡିନୀ—ସ୍ତ୍ରୀ. ବ. କୁଣ୍ଡିନ ମୁନିର କନ୍ୟା ।
କୌଣ୍ଡିନେୟକ—ବିଂ. କୁଣ୍ଡିନ ନଗର-ଜାତ, କୁଣ୍ଡିନ ନଗର ସମ୍ବନ୍ଧୀୟ ।
କୌଣ୍ଡିନ୍ୟ—ପୁଂ. ବ. (କୁଣ୍ଡିନ+ଯ) କୁଣ୍ଡିନ୍ୟ ମୁନିଙ୍କ ପୁତ୍ର, ଜଣେ ପ୍ରଧାନ ବୌଦ୍ଧ ଭିକ୍ଷୁ ।
କୌଣ୍ଡିଲ୍ୟକ—ପୁଂ. ବ. କୀଟବିଶେଷ, ଏହାର ବିଷ୍ଠା ଓ ମୂତ୍ରରେ ବିଷ ଅଛି ।
କୌଣ୍ଡୋପରଥ—ପୁଂ. ବ. (କୁଣ୍ଡପରଥ+ଅ) ଅସ୍ତ୍ରଧାରୀ ଜାତିବିଶେଷ ।
କୌଣ୍ୟ—ବ. ( କୋଣି+ଯ ) ହାତ କେମା ହେବା ଅବସ୍ଥା, ବାତ ଯୋଗୁଁ ହାତର ଅଚଳ ଅବସ୍ଥା ।
କୌତପ—ବିଂ. (କୁତପ+ଅ) କୁତପ ବିଶିଷ୍ଟ । [ପାଶ୍ୱ ।
କୌତର—(କବୁତର ଶବ୍ଦଜ)ପାରାବତ,
କୌତସ୍କୁତ—ବିଂ. (କୁତଃକୁତସ୍+ଅ) କୌଣସି କୌଣସି ସ୍ଥାନରେ ଜାତ ।
କୌତସ୍ତ—ବିଂ. କୌଣସି ସ୍ଥାନଜାତ ।
କୌତୁକ—କ୍ଳୀ. ବ. (କୁତୁକ+ଅ) ଔତ୍ସୁକ୍ୟ,ବନ୍ଧୁର ଅଭିବାଦନ,କୁତୂହଳ, ମଙ୍ଗଳ, ସୁଖ, ଆମୋଦ ପ୍ରମୋଦ,

ଖେଳକାଳ, ଆଶ୍ଚର୍ଯ୍ୟ, କୌଣସି ଅଜ୍ଞାତ ବିଷୟ ଦେଖିବାର କମ୍ବା ଜାଣିବାର ଆଗ୍ରହ, ବିବାହସୂତ୍ର, ଉତ୍ସବ,ଅଭିଳାଷ, ପରିହାସ,ଆନନ୍ଦ ନୃତ୍ୟଗୀତାଦି ତାମସା ଗ୍ରା. ବିଂ. ) କୌତୁକପ୍ରଦ, କୌତୁକ-କାରୀ ।

କୌତୁକକର୍ତ୍ତା—ପୁଂ. ବିଂ. ଯେ ସର୍ବଦା କୌତୁକ କରେ ।

କୌତୁକ କରିବା—ଗ୍ରା.କ୍ରି.ଥଟ୍ଟାକରିବା, ପରିହାସ କରିବା ।

କୌତୁକକ୍ରିୟା—ସ୍ତ୍ରୀ. ବି. ଆମୋଦ-ପ୍ରମୋଦ, ବିବାହକାର୍ଯ୍ୟ ।

କୌତୁକଗୃହ—ବି. ଯେଉଁଠାରେ ମଙ୍ଗଳ ମଙ୍ଗଳସ୍ନ୍ କରାଯାଏ, ଯେଉଁ କୋଠରିରେ ବିବାହ କର୍ମ ନିଷ୍ପନ୍ନ ହୁଏ ।

କୌତୁକତୋରଣ—ପୁଂ. କ୍ଲୀ. ବି. ଉତ୍ସବ ନିର୍ମିତ ତୋରଣ ।

କୌତୁକପ୍ରଦ—ବିଂ. ( କୌତୁକ+ପ୍ର +ଦା+ଅ)ଆନନ୍ଦପ୍ରଦ,ଆହ୍ଲାଦକର ।

କୌତୁକମଙ୍ଗଳ—କ୍ଲୀ.ବି. ଉତ୍ସବମଙ୍ଗଳ ।

କୌତୁକ ଲଗାଇବା—ଗ୍ରା. କ୍ରି. ଥଟ୍ଟା କରିବା, ପରମନରେ ଆହ୍ଲାଦ ଆମୋଦ ଜନ୍ମାଇବା ।

କୌତୁକାଗାର—କ୍ଲୀ. ବି. କୌତୁକ ଗୃହ (ଦେଖ) ।

କୌତୁକିଆ—ଗ୍ରା. ବିଂ. ଆହ୍ଲାଦକର, ନୟନାନନ୍ଦକର ।

କୌତୁକିତ—ପୁଂ.ବି. କୌତୁକ+ଇତ) ଯାହା ମନରେ କୌତୂହଳ ଜନ୍ମିଥାଏ ।

କୌତୁକୀ—ବିଂ. ( କୌତୁକ+ଇନ୍ ) କୌତୂହଳୀ, ଆନନ୍ଦିତ, ଆନନ୍ଦମୟ, ଯାହାର ଆଗ୍ରହ ଜନ୍ମିଅଛି, କୌତୁକ-ବିଶିଷ୍ଟ, ଯେ କୌତୁକ କରେ, ଅଶ୍ଳୀଳ ।

କୌତୂହଳ—କ୍ଲୀ. ବି. (କୁତୂହଳ+ଅ) କୁତୂହଳ, ଆଗ୍ରହ,ଅଭିଳାଷ,ଅସାଧାରଣ ଘଟଣା ।

କୌତୂହଳୀ—ପୁଂ. ବିଂ. (କୌତୂହଳ+ଇନ୍) ଉକ୍ତ ଜ ।

କୌତୂହଲ୍ୟ—କ୍ଲୀ. ବି. (କୁତୂହଳ+ଯ) କୁତୂହଳ, ଇଚ୍ଛା ।

କୌତୋମତ—ପୁଂ. ବି. ଋଷିବିଶେଷ ।

କୌତ୍ସ—ପୁଂ.ବି. (କୁତ୍ସ+ଅ)କୁତ୍ସନାମକ ଋଷିର ପୁତ୍ର, ମହର୍ଷି ବରତନ୍ତୁଙ୍କ ଶିଷ୍ୟ (କ୍ଲୀ) କୁତ୍ସ ନାମକ ଋଷି ପ୍ରଣୀତ ସାମ-ଗାନବିଶେଷ ।

କୌତ୍ସସ—ଗ୍ରା. ବି. ( ସଂ-କୌତ୍ସ ) କୌତ୍ସମୁନିଙ୍କ ଗୋତ୍ରସମ୍ଭୂତ ବୈଦିକ ବ୍ରାହ୍ମଣ, କୌତ୍ସମୁନି ।

କୌତ୍ସାୟନ—ପୁଂ.ବିଂ.କୁତ୍ସ ସମ୍ବନ୍ଧୀୟ ।

କୌତ୍ସୀ—ସ୍ତ୍ରୀ. ବି. (କୁତ୍ସ+ଅ+ଆ) କୁତ୍ସନାମକ ଋଷିଙ୍କ କନ୍ୟା ।

କୌଥୁମ—ବି. ( କୁଥୁମ+ଅ ) କୁଥୁମ ଋଷିଙ୍କର ଶିଷ୍ୟ, ସାମବେଦାନ୍ତର୍ଗତ କୌଥୁମୀ ଶାଖାଧ୍ୟାୟୀ ବ୍ରାହ୍ମଣ ।

କୌଥୁମୀ—ସ୍ତ୍ରୀ. ବି. (କୁଥୁମ+ଅ+ଈ) କୁଥୁମମୁନି ପ୍ରବର୍ତ୍ତିତ ସାମବେଦର ଗୋଟିଏ ଶାଖା ।

କୌଦାଲକ—ପୁଂ. ବି. ବର୍ଣ୍ଣସଙ୍କର ଜାତିବିଶେଷ ।

କୌଦ୍ରବୀଣ—ବି. କ୍ଷେତ୍ରବିଶେଷ ।

କୌଦ୍ରାୟଣ—ପୁଂ. ବି. କୁଦ୍ର ନାମକ ଋଷିର ସ୍ତବକପୁତ୍ର ।

କୌଦ୍ରେକ—ପୁଂ. ବି.କୁଦ୍ର ଋଷିର ପୁତ୍ର ।

କୌଦ୍ରେୟୀ—ସ୍ତ୍ରୀ. ବି. କୁଦ୍ର ଋଷିଙ୍କର କନ୍ୟା ।

କୌନଖ୍ୟ—କ୍ଲୀ. ବି. (କୁନଖ+ଷ୍ୟ.ଯ) କୁନଖୀ ରୋଗ, କଣନଖା ରୋଗବିଶେଷ, ସୁବର୍ଣ୍ଣ ଚୋରିକଲେ ପାପ ରୋଗ ଜନ୍ମ-ପର ତାହାର ଚହ୍ନ ସ୍ୱରୂପ କଣନଖା ରୋଗ ଜନ୍ମେ ।

କୌନାମିକ—ବିଂ. କୁନାମ ସମ୍ବନ୍ଧୀୟ ।

କୌନ୍ତାୟନ—ବି.କୁନ୍ତୀନିବାସ ଦେଶାଦି

କୌନ୍ତିକ—ପୁଂ.ବି. (କୁନ୍ତ+ଇକ)ଯେଉଁ ବ୍ୟକ୍ତି କୁନ୍ତାସ୍ତ୍ର ଧାରଣକରି ଯୁଦ୍ଧକରେ ।

କୌନ୍ତୀ—ସ୍ତ୍ରୀ. ବି. ରେଣୁକା ନାମକ ଗନ୍ଧଦ୍ରବ୍ୟ ।

କୌନ୍ତେୟ—ପୁଂ. ବି. (କୁନ୍ତୀ+ଏୟ) କୁନ୍ତୀପୁତ୍ର ଯୁଧିଷ୍ଠିର ଓ ଭୀମାର୍ଜ୍ଜୁନପ୍ରଭୃତି, ଅର୍ଜ୍ଜୁନ ବୃକ୍ଷ । [ରାଜା ।

କୌନ୍ତ୍ୟ—ପୁଂ. ବିଂ. କୁନ୍ତୀ ଦେଶୀୟ

କୌପ—ବି. (କୂପ+ଅ) କୂଅର ପାଣି, (ବିଂ) କୂପ ସମ୍ବନ୍ଧୀୟ, (ସ୍ତ୍ରୀ) କୌପୀ ।

କୌପିଞ୍ଜଳ—ବି.କପିଞ୍ଜଳଋଷିଙ୍କର ପୁତ୍ର ।

କୌପିଞ୍ଜଳୀ—ସ୍ତ୍ରୀ.ବି. କପିଞ୍ଜଳ ଋଷିଙ୍କର କନ୍ୟା ।

କୌପୀନ—କ୍ଲୀ. ବି. ( କୂପ+ଈନ ) ଅନାର୍ଯ୍ୟ, ପାପ, ଗୁହ୍ୟଦେଶ,ଲେଙ୍ଗୁଟି, ମେଖଳାବଦ୍ଧ ପରିଧେୟ ବସ୍ତ୍ର ଖଣ୍ଡ, ଚିରିଲୁଗା, କଚ୍ଛ ।

କୌପୀନବାନ୍—ବିଂ. କୌପୀନଧାରୀ ।

କୌପୁତ୍ର—କ୍ଲୀ. ବି. ଖରାପ ପୁତ୍ରର ଧର୍ମ, କୁପୁତ୍ରର କାର୍ଯ୍ୟ ।

କୌପୁନ୍ୟ—ଗ୍ରା.ବି.କୌପୀନ(ଦେଖ) ।

କୌପୋଦକୀ—ସ୍ତ୍ରୀ.ବି. ବିଷ୍ଣୁଙ୍କର ଗଦା, କୌମୁଦକୀ ।

କୌପ୍ୟ—ବି, ( କୂପ+ଯ )କୂପ ମଧ୍ୟେ ଯାହା ଜାତ ହୁଏ । [କୌଟିଲ୍ୟ ।

କୌବ୍ଜ—ବି. ( କୁବ୍ଜ+ଅ ) କୁଜାପଣ

କୌବ୍ଜ୍ୟ—କ୍ଲୀ. ବି. ଶରୀରର ବକ୍ରଭାବ, କୁଜାପଣ ।

କୌମାର—ପୁଂ.ବି(କୁମାର+ଅ)କୁମାରୀ-ପତି, (କ୍ଲୀ)କୁମାର ଅବସ୍ଥା, ବାଲ୍ୟକାଳ, ଜନ୍ମଠାରୁ ପାଞ୍ଚବର୍ଷପର୍ଯ୍ୟନ୍ତ, ପର୍ବତ-ବିଶେଷ, ଅବିବାହିତ ପୁତ୍ର,କାର୍ତ୍ତିକେୟ (ବିଂ) ବାଳକ ସମ୍ବନ୍ଧୀୟ, କାର୍ତ୍ତିକେୟ-ସମ୍ବନ୍ଧୀୟ, କୋମଳ,ସୁକୁମାର ।

କୌମାରକ—କ୍ଲୀ.ବି.କୌମାର(ଦେଖ) ।

କୌମାରତନ୍ତ୍ର—ବି. (କୌମାର+ତନ୍ତ୍ର) ଶିଶୁଚର୍ଯ୍ୟାବିଷୟକବୈଦ୍ୟଗ୍ରନ୍ଥର ଅଂଶ ।

କୌମାରବନ୍ଧକୀ—ସ୍ତ୍ରୀ. ବି. (କୁମାର+ବନ୍ଧକ+ଈ) ବେଶ୍ୟା ।

କୌମାରବ୍ରତ—ବି. (କୌମାର+ବ୍ରତ) ଚିରକାଳ ଅବିବାହିତ ରହିବାର ନିୟମ ପାଳନ, ଚିରକୌମାର୍ଯ୍ୟ ।

କୌମାରଭୃତ୍ୟ—କ୍ଲୀ. ବି. (କୁମାରଭୃତ୍ୟ +ଅ) ଆୟୁର୍ବେଦର ଗୋଟିଏ ଅଂଶ, ଶିଶୁପାଳନ ।
କୌମାରରାଜ୍ୟ—କ୍ଲୀ.ବି. ଯୌବରାଜ୍ୟ ।
କୌମାରହର—ପୁଂ.ବିଂ. (କୌମାର+ ହୃ+କ.ଅ) ପିଲା କନ୍ୟାକୁ ବିବାହ କରିଥିବା (ବ୍ୟକ୍ତି) ।
କୌମାରାୟଣ—ପୁଂ. ବି. କୁମାର ନାମକ ଋଷିବଂଶୀୟ ସନ୍ତାନ ।
କୌମାରାୟଣୀ—ସ୍ତ୍ରୀ. ବି. କୁମାର ନାମକ ଋଷିବଂଶୀୟ ସ୍ତ୍ରୀ ।
କୌମାରିକ—ପୁଂ.ବିଂ.(କୁମାରୀ+ଇକ) କୁମାରୀ ସମ୍ବନ୍ଧୀୟ, ଯେ କେବଳ ଝିଅ ଜନ୍ମ କରେ, ଝିଅସୁଆଗିଆ ।
କୌମାରିକେୟ—ପୁଂ.ବି. କୁମାରୀର ପୁତ୍ର, ଅବିବାହିତା ସ୍ତ୍ରୀଠାରୁ ଜାତହେବା ସନ୍ତାନ, (ସ୍ତ୍ରୀ.)କୌମାରିକେୟୀ ।
କୌମାରୀ—ସ୍ତ୍ରୀ. ବି. (କୌମାର+ଈ) ପ୍ରଥମାପତ୍ନୀ, ଯେଉଁ ସ୍ତ୍ରୀର ପତି ଦାର-ପରିଗ୍ରହ କରିନାହିଁ, କୁମାର ସମ୍ବନ୍ଧୀୟ ଚେଷ୍ଟା, କାର୍ତ୍ତିକେୟଙ୍କର ଶକ୍ତି,ମାତୃକା-ବିଶେଷ, ରାଗିଣୀବିଶେଷ, ବାରାହୀ କନ୍ଦ, ଭୂଇଁକଖାରୁ ।
କୌମାରପୂର୍ଣ୍ଣିମା—ବି. କୁମାରପୂର୍ଣ୍ଣିମା ।
କୌମାର୍ଯ୍ୟ—ବି. (କୁମାର+ଷ୍ୟ.ଯ) କୁମାରାବସ୍ଥା, ଅବିବାହିତାବସ୍ଥା ।
କୌମୁଦ—ପୁଂ.ବି.(କୁମୁଦ+ଅ)କାର୍ତ୍ତିକ ମାସ ।
କୌମୁଦିକା—ସ୍ତ୍ରୀ ବି. (କୁମୁଦ+ଇକ+ ଆ) ଦୁର୍ଗାଙ୍କ ସଖୀବିଶେଷ ।
କୌମୁଦୀ—ସ୍ତ୍ରୀ. ବି. (କୁମୁଦ+ଅ+ଈ) ଚନ୍ଦ୍ରକିରଣ,ଜ୍ୟୋତ୍ସ୍ନା, କାର୍ତ୍ତିକ ପୂର୍ଣ୍ଣିମା, ଉତ୍ସବ, ଆଶ୍ୱିନ ପୂର୍ଣ୍ଣିମା, କଇଁଫୁଲ, ଛନ୍ଦୋବିଶେଷ ।
କୌମୁଦୀଜୀବନ—ପୁଂ.ବି.ଚକୋରପକ୍ଷୀ ।
କୌମୁଦୀପତି—ପୁଂ.ବି. ନିଶାକର,ଚନ୍ଦ୍ର ।
କୌମୁଦୀବୃକ୍ଷ--ପୁଂ.ବି. ଦୀପରୁଖା,ପିଲସୋଜ ।
କୌମୁଦ୍ଗନ୍ଧେୟ—ପୁଂ.ବି.କୁମୁଦ୍ଗନ୍ଧାରପୁତ୍ର ।
କୌମୋଦକୀ—ସ୍ତ୍ରୀ. ବି. (କୁ+ମୋଦକ +ଈ)ଶ୍ରୀକୃଷ୍ଣଙ୍କର ଗଦା ।

କୌମୋଦୀ—ସ୍ତ୍ରୀ.ବି. (କୁମୋଦ+ଅ+ ଈ) ବିଷ୍ଣୁଙ୍କ ଗଦା ।
କୌମ୍ଭ—ବି. (କୁମ୍ଭ+ଅ) କୁମ୍ଭ ମଧ୍ୟରେ ଥିବା ଏକଶତବର୍ଷର ପୁରାଣଘୃତ, (ବିଂ) କୁମ୍ଭ ବା ଘଟରେ ରକ୍ଷିତ ।
କୌମ୍ଭକାରକ—କ୍ଲୀ. ବି. କୁମ୍ଭାର ନିର୍ମିତ ଏକପ୍ରକାର ମାଟିର ପାତ୍ର ।
କୌମ୍ଭକାରି—ସ୍ତ୍ରୀ.ବିଂ. କୁମ୍ଭାରର ପୁତ୍ର । ବା କନ୍ୟା ।
କୌମ୍ଭକାରୀ—ସ୍ତ୍ରୀ.ବି. କୁମ୍ଭାରର କନ୍ୟା ।
କୌମ୍ଭକାର୍ଯ୍ୟ—ପୁଂ.ବି. କୁମ୍ଭାରର ପୁତ୍ର ।
କୌମ୍ଭକାର୍ଯ୍ୟା—ସ୍ତ୍ରୀ. ବି.କୁମ୍ଭାରର କନ୍ୟା ।
କୌମ୍ଭସର୍ପି—କ୍ଲୀ. ବି. ଏକଶତବର୍ଷର ପୁରୁଣା ଘୃତ ।
କୌମ୍ଭୀର-ପୁଂ.ବି. (କୁମ୍ଭୀର+ଅ)କୁମ୍ଭୀର ଓ ତତ୍ସଦୃଶ ଜୀବ ।
କୌରମ୍ବାଣ—ବି.ଯେଉଁବ୍ୟକ୍ତିଶକୁନିକଟକୁ ଯିବାକୁ ଉଦ୍ୟତ ।
କୌରବ—ପୁଂ.ବିଂ. (କୁରୁ+ଅ)କୁରୁ-ବଂଶୀୟ (ବି) କୁରୁମାନଙ୍କର ରାଜା (ଦୁର୍ଯ୍ୟୋଧନ ପ୍ରଭୃତି) ।
କୌରବକ-ବିଂ.କୁରୁବଂଶୋତ୍ପନ୍ନ, କୁରୁ-ବକସମ୍ବନ୍ଧୀୟ ।
କୌରବାୟଣି—ପୁଂ.ସ୍ତ୍ରୀ. କୁରୁବଂଶୀୟ ।
କୌରବୀ—ବି. ମେଥି ।
କୌରବେୟ—ପୁଂ. ବିଂ. କୁରୁବଂଶୀୟ, କୁରୁକୁଳଜାତ ।
କୌରବ୍ୟ—ପୁଂ. ସ୍ତ୍ରୀ. ବିଂ.କୁରୁବଂଶୀୟ, କୌରବ, (ନାଗବିଶେଷ) ।
କୌରୁପାଞ୍ଚାଳ—ବିଂ. କୁରୁ ଓ ପଞ୍ଚାଳ-ଦେଶପ୍ରସିଦ୍ଧ ।
କୌପ୍ୟ—ପୁଂ.ବି.ବୃଶ୍ଚିକରାଶି, ବିଛାରାଶି ।
କୌର୍ମ—କ୍ଲୀ.ବି. (କୂର୍ମ+ଅ) କୂର୍ମପୁରାଣ, ବିଷଭେଦ, କଳ୍ପ ବିଶେଷର ନାମ, (ପୁଂ) କୂର୍ମସମୂହ, କୂର୍ମଜାତୀୟ ଜନ୍ତୁ, (ବିଂ) କୂର୍ମ ସମ୍ବନ୍ଧୀୟ, ବିଷ୍ଣୁଙ୍କ କୂର୍ମ-ବତାର ସମ୍ବନ୍ଧୀୟ ।
କୌଳ—ବିଂ(କୁଳ+ଅ)ସତ୍କୁଳୋତ୍ପନ୍ନ କୁଳାଗତର ପରମ୍ପରା, କୌଳିକ, (ବି) ତନ୍ତ୍ରୋକ୍ତ ଆଚାରବିଶେଷ, ବାମାଚାର ।

କୌଳକ—ବି.(କୁଳ+ଅକ)କୁଳୋତ୍ପନ୍ନ, ଶୌଣ୍ଡିକ ।
କୌଳକ—ପୁଂ. ବି.ପ୍ରବର ଋଷିଭେଦ ।
କୌଳକେୟ—ପୁଂ. ବିଂ. ସଦ୍‌ବଂଶଜାତ, (ବି) ଅସତୀର ପୁତ୍ର ।
କୌଳଟିନେୟ—ପୁଂ.ସ୍ତ୍ରୀ.ବି. (କୁଳଟା+ ଇନ୍+ଏୟ) ଅସତୀର ପୁତ୍ର, ଜାରଜ, ଭିକ୍ଷୁଣୀର ପୁତ୍ର, (ସ୍ତ୍ରୀ) ନେୟୀ ।
କୌଳଟେୟ—ପୁଂ.ବି. (କୁଳଟା+ଏୟ) କୌଳଟିନେୟ(ଦେଖ), (ସ୍ତ୍ରୀ) କୌଳ-ଟେୟୀ ।
କୌଳଟେର—ପୁଂ.ସ୍ତ୍ରୀ.ବି. (କୁଳଟା+ ଏର) ଅସତୀର ପୁତ୍ର, ସତୀ ଭିକ୍ଷୁଣୀର ପୁତ୍ର, କୌଳଟିନେୟ (ଦେଖ) ।
କୌଳଥ—ବିଂ.କୋଳଥ ପ୍ରସ୍ତୁତ, କୋଳଥ ଡାଲିର ସିଝା ରସ ।
କୌଳପତ—ବିଂ.(କୁଳପତି+ଅ)କୁଳ-ପତିସମ୍ବନ୍ଧୀୟ ।
କୌଳପୁତ୍ରକ—କ୍ଲୀ.ବି. କୁଳପୁତ୍ରର ଧର୍ମ, କୁଳପୁତ୍ରତ୍ୱ ।
କୌଳବ—ପୁଂ.ବି.(ଜ୍ୟୋତିଷ) ବବାଦି ଏକାଦଶ କରଣ ମଧ୍ୟରୁ ତୃତୀୟକରଣ ।
କୌଲାଲକ-ବିଂ. (କୁଲାଲ+ଅକ)କୁମ୍ଭାର ସମ୍ବନ୍ଧୀୟ, କୁମ୍ଭାରନିର୍ମିତ, (ବି)କୁମ୍ଭାର ତିଆରି ମାଟିପାତ୍ର ।
କୌଲାଲଚକ୍ର—କ୍ଲୀ.ବି. କୁମ୍ଭାରର ଚକ ।
କୌଳିକ—ବିଂ. (କୁଳ+ଇକ)ବଂଶାନୁ-ଗତ, ପିତୃପିତାମହକ, କୁଳପରମ୍ପରା-ଗତ ଆଚାର ପ୍ରଭୃତି,(ବି)ତନ୍ତୀ, ବାମା-ଚାରୀ ବ୍ୟକ୍ତି, ତନ୍ତ୍ରୋକ୍ତ ଶକ୍ତିଉପାସକ-ବିଶେଷ, ଧାର୍ମିକ ବ୍ୟକ୍ତି, ଧର୍ମ ବିଶ୍ୱାସ-ଘାତକ ବ୍ୟକ୍ତି ।
କୌଳିତର—ପୁଂ.ବି. ଶମ୍ବରାସୁର ।
କୌଳିଶିକ—ତ୍ରି. ବିଂ. (କୁଳିଶ+ଇକ) ବଜ୍ରତୁଲ୍ୟ,କୁଳିଶସଦୃଶ ।
କୌଳୀକ—ପୁଂ.ବି. (କୁଳ+ଈକ)ଏକ-ପ୍ରକାର ପକ୍ଷୀ ।
କୌଲୀନ—କ୍ଲୀ. ବି. (କୁଳ+ଈନ) ବାମଗୃହ ମତରେ ଶକ୍ତି ଉପାସକ,ଲୋକ

ଅପବାଦ, ପଶୁଯୁଦ୍ଧ, କୁକୁଡ଼ା ଯୁଦ୍ଧ, ଗୁହ୍ୟଦେଶ, ଭିକ୍ଷୁକାର ପୁତ୍ର, କୁଳୀନତା, ପାପଯୋନି, ଜନଶ୍ରୁତି, (ବି°) ପ୍ରଧାନ ଓ ପ୍ରସିଦ୍ଧ ବଂଶଜାତ ।

କୌଳୀନା — କ୍ଳୀ. ବି. (କୌଳୀନ + ଆ) ପରିବାର ବୃତ୍ତକଥା, ଅନୁଚିତ କର୍ମ, ଦେହର ଗୁପ୍ତାଂଶ, ପଶୁପକ୍ଷୀଆଦିଙ୍କ ମଧ୍ୟରେ ଲଢ଼େଇ ।

କୌଳୀନ୍ୟ — କ୍ଳୀ. ବି. ( କୁଳୀନ + ଯ ) ବଂଶ ମର୍ଯ୍ୟାଦା, ଉଚ୍ଚ ବଂଶରୁ ଜାତ-ହେବା ଅବସ୍ଥା ।

କୌଳିନ୍ୟପ୍ରଥା — ବି.ବଙ୍ଗଦେଶରେ ରାଜା ବଲ୍ଲାଲସେନଙ୍କ ପ୍ରତିଷ୍ଠିତ ଉଚ୍ଚବଂଶ ମଧ୍ୟରେ ବିବାହ ପ୍ରଥା ।

କୌଳୀୟ — ବୌଦ୍ଧଶାସ୍ତ୍ରବର୍ଣ୍ଣିତ କ୍ଷତ୍ରିୟ ଜାତିବିଶେଷ । [ଶୃଙ୍ଗୀ ।

କୌଳୀର — ସ୍ତ୍ରୀ. ବି. କର୍କଟଶୃଙ୍ଗୀ, କଙ୍କଡ଼ା

କୌଲୂତ — ପୁଂ.ବି.କୁଲୁତଦେଶର ରାଜା ।

କୌଲେୟ — ବି°.(କୁଳ + ଏୟ)ସଦ୍‌ବଂଶ-ଜାତ, କୁଳୀନ, (ସ୍ତ୍ରୀ) କୌଳେୟୀ ।

କୌଳେୟକ — ପୁଂ.ବି. (କୁଳ + ଏୟକ) କୁକ୍କୁର, (ବି°) କୁଳୀନ, ସତ୍‌କୁଳୋ-ଦ୍ଭବ, (ସ୍ତ୍ରୀ) କୌଳେୟକା ।

କୌଲ୍ୟ — ବି°. (କୁଳ + ଯ) କୁଳୀନ, ସଦ୍‌ବଂଶଜାତ ।

କୌଲ୍ମାଷିକ — ବି. କୁଲ୍ମାଷରୋପଣ କରିବାର ଉପଯୁକ୍ତ କ୍ଷେତ୍ରାଦି ।

କୌଲ୍ମାଷୀ — ସ୍ତ୍ରୀ. ବି. ପୂର୍ଣ୍ଣିମାବିଶେଷ ।

କୌଲ୍ମାଷୀଣ — କ୍ଳୀ. ବି. କୁଲ୍ମାଷ ଧାନ୍ୟର ଉତ୍ପତ୍ତିଯୋଗ୍ୟ କ୍ଷେତ୍ର ।

କୌବଲ - କ୍ଳୀ. ବି. କେଳିଫଳ ।

କୌବେର — ପୁଂ. ବି°. (କୁବେର + ଅ) କୁବେରସମ୍ବନ୍ଧୀୟ, କୁବେରର ଉପା-ସକ, (କ୍ଳୀ.ବି)କୁଷ୍ଠନାଶକ ଔଷଧଦ୍ରବ୍ୟ, କୁଡ଼ ।

କୌବେରୀ—ସ୍ତ୍ରୀ. ବି. (କୁବେର + ଅ + ଈ)ଉତ୍ତରଦିଗ, କୁବେରଶକ୍ତି, ମାତୃକା-ବିଶେଷ, କୁଢ଼ଗୁଳୁ ।

କୌଶ — ବି°. (କୁଶ + ଅ) କୁଶନିର୍ମିତ, ରେଶମନିର୍ମିତ, (ବି) କାନ୍ୟକୁବ୍ଜଦେଶ, କୁଶଦ୍ୱୀପ ।

କୌଶଳ — କ୍ଳୀ.ବି.(କୁଶଳ + ଅ)ମଙ୍ଗଳ, ସମ୍ପଦ, ଦକ୍ଷତା, ଚତୁରତା, ସୁଖ, ଫନ୍ଦି, ସୌଭାଗ୍ୟ, କୋଶଳଦେଶ ।

କୌଶଳକରିବା-ଗ୍ରା.କ୍ରି. ଚତୁରତାଖେଳିବା, ଉପାୟ କରିବା, ଫନ୍ଦିକରିବା ।

କୌଶଳକ୍ରମେ — ଗ୍ରା. କ୍ରି. ବି°. ଛଳନା-କ୍ରମେ, ଚତୁରତାଦ୍ୱାରା, ନୈପୁଣ୍ୟ ସହ-କାରେ ।

କୌଶଳିକ—ବି. ( କୌଶଳ + ଇକ ) ଲାଞ୍ଚ, ଉତ୍କୋଚ, ପୁରସ୍କାର ।

କୌଶଳିକା — ସ୍ତ୍ରୀ. ବି. ( କୌଶଳିକ + ଆ ) ଭେଟି, କୁଶଳ ପ୍ରଶ୍ନ, ଅଭିବାଦନ, ନଜର ।

କୌଶଳୀ — ପୁଂ. ବି°. (କୁଶଳ + ଇନ୍ ) ଚତୁର, ଦକ୍ଷ, ଫନ୍ଦିବାଜ, ଉପାୟପଟୁ, ମଙ୍ଗଳଯୁକ୍ତ, ଶୁଭ, (ସ୍ତ୍ରୀ)କୌଶଳିନୀ ।

କୌଶଳୀ — ସ୍ତ୍ରୀ. ବି. (କୌଶଳ + ଈ) କୁଶଳପ୍ରଶ୍ନ, ସାଦର ସମ୍ଭାଷଣ, ଉପା-ୟନ, ଭେଟି, ନଜର, ଲାଞ୍ଚ ।

କୌଶଲେୟ — ପୁଂ.ବି°. (କୌଶଲ୍ୟା + ଏୟ) କୌଶଲ୍ୟାପୁତ୍ର ଶ୍ରୀରାମଚନ୍ଦ୍ର ।

କୌଶଲ୍ୟ — କ୍ଳୀ. ବି. ( କୁଶଳ + ଯ ) କୁଶଳତା, ଦକ୍ଷତା, ସମ୍ପଦ, ମଙ୍ଗଳ, ଅଭିଜ୍ଞତା, ପଞ୍ଚମଣ୍ଡପବିଶେଷ, (ପୁଂ) କୋଶଳ ରାଜାର ପୁତ୍ର,ଏକଜଣ ଋଷି ।

କୌଶଲ୍ୟା — ସ୍ତ୍ରୀ.ବି. ଦଶରଥ ରାଜାଙ୍କର ପାଟରାଣୀ, ରାମଚନ୍ଦ୍ରଙ୍କର ମାତା,ଜନମେ-ଜୟଙ୍କର ମାତା,ପାଣ୍ଡୁଙ୍କ ମାତା,ଧୃତରାଷ୍ଟ୍ରଙ୍କ ମାତା । [ଶ୍ରୀରାମଚନ୍ଦ୍ର ।

କୌଶଲ୍ୟାନନ୍ଦନ—ପୁଂ. ବି. (୬ତତ୍) କୌଶଲ୍ୟାସୂନ ସୁତ)-ପୁଂ.ବି.କୌଶଲ୍ୟା ଙ୍କର ପୁତ୍ର ଶ୍ରୀରାମଚନ୍ଦ୍ର ।

କୌଶାମ୍ବ — ବି°. (କୁଶାମ୍ବ + ଅ)କୁଶାମ୍ବ ନାମକ ରାଜକର୍ତ୍ତୃକ ନିର୍ମିତ ।

କୌଶାମ୍ବୀ — ସ୍ତ୍ରୀ. ବି. (କୁଶାମ୍ବ + ଅ + ଈ) ନଗରୀବିଶେଷ, ବତ୍ସରାଜ ନଗରୀ ।

କୌଶାମ୍ବେୟୀ — ସ୍ତ୍ରୀ. ବି. କୁଶାମ୍ବ ରାଜ-ବଂଶୀୟା ସ୍ତ୍ରୀ ।

କୌଶାମ୍ବ୍ୟ — ପୁଂ. ବି. କୌଶାମ୍ବୀ ନଗରୀର ଅଧିପତି ।

କୌଶିକ—ପୁଂ.ବି. (କୁଶିକ + ଅ)ଇନ୍ଦ୍ର, ପେଚା, କୁଶିକମୁନିଙ୍କ ପୁତ୍ର, ବିଶ୍ୱାମିତ୍ର, ନେଉଳ, ଗୁଗ୍ଗୁଳ, ସାପୁଆକେଳା, କୋଷାଧ୍ୟକ୍ଷ, ଶୃଙ୍ଗାରରସ, ଅଭିଧାନ-କର୍ତ୍ତା, ଜଣେ ତପସ୍ୱୀ,କାମ,ମଜ୍ଜା,(ବି°) କ୍ଷୌମ, ରେଶମୀ ।

କୌଶିକପ୍ରିୟ — ପୁଂ.ବି. ଶ୍ରୀରାମଚନ୍ଦ୍ର ।

କୌଶିକଫଳ—ପୁଂ. ବି. ନଡ଼ିଆ ।

କୌଶିକସୂତ୍ର — ଅଥର୍ବବେଦର ଏକଖଣ୍ଡ ସୂତ୍ର ।

କୌଶିକା — ସ୍ତ୍ରୀ. ବି.( କୌଶିକ + ଆ ) ପାନପାତ୍ର ।

କୌଶିକାତ୍ମଜ-ପୁଂ.ବି.(୬ତତ୍) ଅର୍ଜ୍ଜୁନ, ଇନ୍ଦ୍ରଙ୍କରପୁତ୍ର, ଜୟନ୍ତ ।

କୌଶିକାସୂନ — ପୁଂ.ବି. କୌଶିକବଂଶୀୟ ଋଷିବିଶେଷ ।

କୌଶିକାୟୁଧ — କ୍ଳୀ.ବି. (୬ତତ୍) ଇନ୍ଦ୍ର-ଧନୁ, ରାମଧନୁ । [କାକ ।

କୌଶିକାରାତି—ପୁଂ.ବି. (୬ତତ୍) କୁଆ,

କୌଶିକାରି—ପୁଂ. ବି. (୬ତତ୍) କାକ, କୁଆ ।

କୌଶିକୀ — ସ୍ତ୍ରୀ. ବି. ( କୌଶିକ + ଈ ) ବିଶ୍ୱାମିତ୍ର ଋଷିଙ୍କର ଜ୍ୟେଷ୍ଠା ଭଗିନୀ, ସତ୍ୟବତୀ,ଦୁର୍ଗା,ନାଟ୍ୟଶାସ୍ତ୍ରରେ ରଚନା-ବିଶେଷ, ପାର୍ବତୀଙ୍କ ଶରୀରରୁ ନିଃସୃତ ଦେଶବିଶେଷ, ବିହାରର ନଦୀବିଶେଷ ।

କୌଶିକୀସଙ୍ଗମ — କୁରୁକ୍ଷେତ୍ର ଅନ୍ତର୍ଗତ ଗୋଟିଏ ପବିତ୍ର ତୀର୍ଥ ।

କୌଶିକ୍ୟାଜ (କୋଜ୍ୟ) — ପୁଂ. ବି. ଶାଖୋଟ ବୃକ୍ଷ, ଶାହାଡ଼ା ଗଛ ।

କୌଶୀଧାନ୍ୟ — କ୍ଳୀ. ବି. କୋଷଜାତ ଧାନ୍ୟ,ରାଶିପ୍ରଭୃତି । [ବୃତ୍ତି ।

କୌଶୀଲବ—ବି.(କୁଶୀଲବ + ଅ)ନଟର

କୌଶୀଲବ୍ୟ — କ୍ଳୀ. ବି. (କୁଶୀଲବ + ଯ) ନାଟକ ଅଭିନୟ ପ୍ରଭୃତି, ନୃତ୍ୟଗୀତ-ବ୍ୟବସାୟ ।

କୌଶେୟ — ବିଂ. ( କୋଶ + ଏୟ ) ରେଶମୀ,(କ୍ଳୀ.ବ)କୃମିକୋଷଜାତ ବସ୍ତ୍ର, ରେଶମୀ ବସ୍ତ୍ର ।

କୌଶ୍ୟ — ବିଂ. (କୁଶ + ଯ) କୁଶନିର୍ମିତ, କୁଶସମ୍ବନ୍ଧୀୟ, (ପୁଂ)କୁଶବଂଶୀୟ ଜଣେ ଋଷି ।

କୌଷିକ- ପୁଂ.ବ. ପେଚା,ଇନ୍ଦ୍ର,ନେଉଳ, ଗୁଗ୍ଗୁଳ, ବିଶ୍ୱାମିତ୍ର, ସାପୁଆ,ଅଭିଧାନକାର, ଶୃଙ୍ଗାର ରସ, ମଜ୍ଜା, ( ବିଂ ) କୌଷେୟ, କ୍ଷୌମ, ରେଶମୀ ।

କୌଷିକଫଳ — ପୁଂ. ବ. ନଡ଼ିଆ ।

କୌଷିକୀ-ସ୍ତ୍ରୀ.ବ.(କୋଷ + ଇକ + ଈ) କାଳୀଙ୍କ ଦେହରୁ ନିର୍ଗତ ଦେବୀବିଶେଷ (ବିଂ) କ୍ଷୌମୀ, ରେଶମୀ ।

କୌଷୀତକି — ପୁଂ.ବିଂ.କୁଷୀତକ ଋଷିର ପୁତ୍ର,ଋକ୍‌ବେଦାନ୍ତର୍ଗତ ବ୍ରାହ୍ମଣବିଶେଷ।

କୌଷୀତକୀ — ପୁଂ. ବିଂ. (କୁଷୀତକ + ଇନ୍) ଯେ କୋଷୀତକ ପ୍ରଣୀତ ଶାସ୍ତ୍ର ଅଧ୍ୟୟନ କରେ ।

କୌଷୀତକୀ — ସ୍ତ୍ରୀ.ବ. (କୁଷୀତକ + ଈ) ଅଗସ୍ତ୍ୟମୁନିଙ୍କ ପତ୍ନୀ ।

କୌଷୀତକେୟ — ପୁଂ. ବ. କୁଷୀତକ ଋଷିର ସନ୍ତାନ ।

କୌଷେୟ-ବିଂ.(କୋଷ + ଏୟ)ରେଶମୀ, (ଲୁଗା)(ବ)ରେଶମବସ୍ତ୍ର,କୁଶଙ୍କ ବଂଶଧର।

କୌଷେୟକ—ବି. (କୌଷେୟ + କ) କୌଷେୟ (ଦେଖ) । [ବସ୍ତ୍ର ।

କୌଷେୟବସ୍ତ୍ର — ବ. ପାଟଅଁଦ, ରେଶମୀ

କୌଷ୍ଠ — ବିଂ. ଭଣ୍ଡାର ସମ୍ବନ୍ଧୀୟ ।

କୌଷ୍ଠବିତକ—ପୁଂ. ବିଂ. (କୁଷ୍ଠବିଦ୍ + ଅକ) ଯେଉଁ ବ୍ୟକ୍ତି କୁଷ୍ଠବିଦ୍ୟା ଭଲ ରୂପେ ଜାଣେ ।

କୌଷ୍ଠିଲ—କ୍ଳୀ. ବ. ଜଣେ ବୌଦ୍ଧ ଗ୍ରନ୍ଥକାର ।

କୌଷ୍ଠ୍ୟ — ତ୍ରି. ବିଂ. ଉଦରସମ୍ବନ୍ଧୀୟ ।

କୌସଲ — ବ. ମଙ୍ଗଳ, ସମ୍ପଦ, ସୁଖ, ଦକ୍ଷତା, କୌଶଳ(ଦେଖ) ।

କୌସଲେୟ — ପୁଂ. ବ. ରାମଚନ୍ଦ୍ର ।

କୌସଲ୍ୟ—ପୁଂ.ବିଂ. କୋଶଳଦେଶୀୟ ରାଜାର (ପୁତ୍ର) ।

କୌସଲ୍ୟା — ସ୍ତ୍ରୀ. ବ. କୋଶଳ ରାଜାଙ୍କ କନ୍ୟା, ରାମଚନ୍ଦ୍ରଙ୍କ ମାତା, ପୁରୁଙ୍କ ପତ୍ନୀ, ସତ୍ୱାନଙ୍କ ସ୍ତ୍ରୀ ।

କୌସୀଦ — ବିଂ.(କୁସୀଦ + ଅ)ଯେ ସୁଧ ପାଇବା ନିମନ୍ତେ ଟଙ୍କା କରଜ ଦିଏ, ଋଣ ସମ୍ବନ୍ଧୀୟ, ସୁଦଖୋର ।

କୌସୀଦ୍ୟ—କ୍ଳୀ. ବ. (କୁସୀଦ + ଯ) ଆଳସ୍ୟ, ତନ୍ଦ୍ରା, ଟଙ୍କା ସୁଧରେ ଲଗାଇବା ।

କୌସୁମ — କ୍ଳୀ.ବ. (କୁସୁମ + ଅ)କୁସୁମାଞ୍ଜନ, (ବିଂ) କୁସୁମ ସମ୍ବନ୍ଧୀୟ ।

କୌସୁମାୟୁଧ — ପୁଂ. ବ. (ବ.ବ୍ରୀ) କାମଦେବ, କନ୍ଦର୍ପ ।

କୌସୁମ୍ଭ — ପୁଂ. ବ. (କୁସୁମ୍ଭ + ଅ)ବନ କୁସୁମ, ଏକପ୍ରକାର ଶାକ, (ବିଂ)କୁସୁମ ରାଗରଞ୍ଜିତ (ବସ୍ତ୍ର),(ସ୍ତ୍ରୀ) କୌସୁମ୍ଭୀ ।

କୌସୁରୁବିନ୍ଦ — ପୁଂ. ବ. ଦଶରାତ୍ର ସାଧ୍ୟ ଯଜ୍ଞବିଶେଷ ।

କୌସୁରୁବିନ୍ଦି — ପୁଂ.ବ. କୁସୁରୁବିନ୍ଦମୁନିର ପୁତ୍ର ଉଦ୍ଦାଳକ ମୁନି ।

କୌସୃତକ — ବିଂ. (କୁସୃତ + ଇକ)ଠକ, ବାଜିକର, ଐନ୍ଦ୍ରଜାଲିକ ।

କୌସ୍ତୁଭ — କ୍ଳୀ.ବ.(କୁସ୍ତୁଭ + ଅ)ବିଷ୍ଣୁଙ୍କ ହୃଦୟସ୍ଥ ଭୂଷଣମଣି, ଅଙ୍ଗୁଳି ମୁଦ୍ରାବିଶେଷ, ଷୋଡ଼ଶ ତେଲ ।

କୌସ୍ତୁଭମଣି — ବ. କୌସ୍ତୁଭ (ଦେଖ) ।

କୌସ୍ତୁଭଲକ୍ଷକ — ପୁଂ.ବ.(ବ.ବ୍ରୀ)ବିଷ୍ଣୁ ।

କୌସ୍ତୁଭଲକ୍ଷଣ—ପୁଂ.ବ.(ବ.ବ୍ରୀ)ବିଷ୍ଣୁ ।

କୌସ୍ତୁଭବକ୍ଷା—ପୁଂ. ବ.(ବ.ବ୍ରୀ)ବିଷ୍ଣୁ ।

କୌସ୍ତୁଭପୁର — କ୍ଳୀ.ବ.ଶିଳାଲିପି ବର୍ଣ୍ଣିତ ଗୋଟିଏ ପ୍ରାଚୀନ ନଗର ।

କୌସ୍ତ୍ର — କ୍ଳୀ.ବ. (କୁସ୍ତ୍ରୀ + ଅ)କୁସ୍ତ୍ରିତାସ୍ତ୍ରୀର ଧର୍ମ, ମନ୍ଦ ସ୍ତ୍ରୀ ହେବାର ଅବସ୍ଥା ।

କୌହଲୀୟ(ଳୀୟ) — ପୁଂ.ବିଂ. କୋହଲ ପ୍ରବର୍ତ୍ତିତା ବେଦଶାଖା ।

କୌହଳୀ —ଜଣେ ଅତି ପ୍ରାଚୀନ ବୈଦିକ ବୈୟାକରଣ ।

କ୍ନୂତ - ବିଂ. (କ୍ନୂ + ତ) ଗାୟକ ।

କ୍ନୂୟିତା — ପୁଂ. ବିଂ. (କ୍ନୂୟି + ତୃ)ଶବ୍ଦକାରକ, ସେଚନଶୀଳ, ଛିଣ୍ଡିବା ଯାହାର ସ୍ୱଭାବ ।

କ୍ୟ — ବିଂ.(କ + ଯ)ବ୍ରହ୍ମାଙ୍କ ହିତକାରକ, ଯାହାଁରୁ ବ୍ରହ୍ମାଙ୍କର ହିତ ହୁଏ ।

କ୍ୟାନିଂ — ଇଂଲଣ୍ଡର ଜଣେ ପ୍ରସିଦ୍ଧ କବି, ବକ୍ତା, ଲେଖକ, ରାଜନୀତିଜ୍ଞ ଓ ମନ୍ତ୍ରୀ, ଇଂଲଣ୍ଡର ରାଜପ୍ରତିନିଧି ।

କ୍ୟାମ୍ବୁ — ସ୍ତ୍ରୀ. ବ. ଯେଉଁ ପୁଷ୍କରିଣୀରେ ଅଳ୍ପ ପାଣି ଥାଏ ।

କ୍ରକଚ — ପୁଂ.କ୍ଳୀ. ବ. (କ୍ର + କଚ୍ + ଅ) ଗ୍ରନ୍ଥିଲ ବୃକ୍ଷ, କେତକୀବୃକ୍ଷ,କରପତ୍ର, କରତ, ଯୋଗଶାସ୍ତ୍ରୋକ୍ତ ସାଧନ,ବାଦ୍ୟଯନ୍ତ୍ରବିଶେଷ ।

କ୍ରକଚଚ୍ଛଦ — ପୁଂ. ବ. (କ୍ରକଚ + ଛଦ) କେତକୀ ଫୁଲ ଓ ଗଛ ।

କ୍ରକଚପତ୍ର—ପୁଂ. ବ. ସାଗୁଆନ ଗଛ, କେତକୀ ଗଛ ଓ ପତ୍ର ।

କ୍ରକଚପାଦ — ପୁଂ.ବ.ଟିକ୍‌ଟିକି,କୃକଳାସ ।

କ୍ରକଚପୃଷ୍ଠୀ—ସ୍ତ୍ରୀ. ବ. ପିଠିରେ କରତପର କଣ୍ଟାଥିବା ମାଛବିଶେଷ,କଇମାଛ ।

କ୍ରକଚବ୍ୟବହାର — ପୁଂ. ବ. ଗଣିତ ବିଶେଷ, ଯାହାଦ୍ୱାରା କର୍ମ ଅନୁସାରେ କରତିଆମାନଙ୍କର ବେତନ ସ୍ଥିର କରାଯାଏ ।

କ୍ରକରା—ସ୍ତ୍ରୀ. ବ କେତକୀ । [ବିଶେଷ

କ୍ରକଣ — ପୁଂ. ବ.(କ୍ର + କଣ୍ + ଅ) ପକ୍ଷୀ

କ୍ରକର — ପୁଂ.ବ. (କ୍ର + କୃ + ଅ)କଣ୍ଟିଆର ବୃକ୍ଷ, ତିତିରବିଶେଷ, କରତ, ଦରିଦ୍ର ଲୋକ, ରୋଗବିଶେଷ ।

କ୍ରତୁ—ପୁଂ. ବ. ( କୃ + ଅତୁ ) ଯଜ୍ଞ, ପୂଜା, ଇନ୍ଦ୍ରିୟ, ବିଷ୍ଣୁ, ସପ୍ତର୍ଷି ମଧ୍ୟରୁ ଜଣେ, ବୁଦ୍ଧି, ଶକ୍ତିଉଦ୍ଦେଶ୍ୟସଙ୍କଳ୍ପ, ଆଷାଢ଼ମାସ, ପ୍ରଜ୍ଞା, ପରାମର୍ଶ, ଅଶ୍ୱମେଧ ଯଜ୍ଞ, ଅତିଶୟ ଅଭିଳାଷ, ସ୍ତୁତି ପ୍ରଭୃତି କର୍ମମାନ, ଦଶ ବିଶ୍ୱଦେବା ମଧ୍ୟରୁ ଜଣେ, ଏ ବ୍ରହ୍ମାଙ୍କ ମାନସପୁତ୍ର ।

କ୍ରତୁକର୍ମ—କ୍ଳୀ.ବ. ଯାଗ, ଯଜ୍ଞ ।

କ୍ରତୁଜିତ୍ — ପୁଂ.ବ. ଜଣେ ଋଷି ।

କ୍ରତୁଦୋଷନୁତ୍ — ପୁଂ.(କ୍ରତୁ + ଦୋଷ + ନୁଦ୍ + କ୍ୱିପ୍) ପ୍ରାଣାୟାମ । [ଅସୁର ।
କ୍ରତୁଦ୍ରୁହ୍-ପୁଂ.ବି.(କ୍ରତୁ + ଦ୍ରୁହ୍ + କ୍ୱିପ୍)
କ୍ରତୁଦ୍ୱିଟ୍ — ପୁଂ. ବି. (କ୍ରତୁ + ଦ୍ୱିଷ୍ + କ୍ୱିପ୍) ଅସୁର, ନାସ୍ତିକ, ରାକ୍ଷସ, ଇନ୍ଦ୍ର ।
କ୍ରତୁଧ୍ୱଂସୀ — ପୁଂ.ବି. (କ୍ରତୁ + ଧ୍ୱଂସ୍ + ଇନ୍) ଯେ ଦକ୍ଷଯଜ୍ଞ ଧ୍ୱଂସ କରିଥିଲେ, ଶିବ, (ବିଂ) ଯଜ୍ଞନାଶକ, (ସ୍ତ୍ରୀ) ଧ୍ୱଂସିନୀ ।
କ୍ରତୁପଶୁ — ପୁଂ. ବି. (୬ତତ୍) ଅଶ୍ୱ ।
କ୍ରତୁପତି — ପୁଂ.ବି. (୬ତତ୍) ଯଜ୍ଞେଶ୍ୱର, ବିଷ୍ଣୁ ।
କ୍ରତୁପା — ପୁଂ. ବିଂ. (କ୍ରତୁ + ପା + ଅ) ଯଜ୍ଞରକ୍ଷକ, ଯେ ଯଜ୍ଞ ରକ୍ଷାକରେ ।
କ୍ରତୁପୁରୁଷ — ପୁଂ.ବି. (କ.ଧା) ବିଷ୍ଣୁ ।
କ୍ରତୁଫଳ — କ୍ଲୀ.ବି. (୬ତତ୍) ସ୍ୱର୍ଗ ।
କ୍ରତୁଭୁଜ୍ — ପୁଂ.ବି.(କ୍ରତୁ + ଭୁଜ୍ + କ୍ୱିପ୍) ଦେବତା ।
କ୍ରତୁମାନ — ପୁଂ.ବିଂ.(କ୍ରତୁ + ମତ୍) କ୍ରତୁ-ଯୁକ୍ତ, ଯେଉଁ ବ୍ୟକ୍ତି ଯଜ୍ଞର ଅନୁଷ୍ଠାନ କରେ ।
କ୍ରତୁମୟ — ବିଂ. ଅଧ୍ୟବସାୟାତ୍ମକ, (ବି) କ୍ରତୁବହୁଳ, ବିଷ୍ଣୁ ।
କ୍ରତୁରାଟ୍ — ପୁଂ. ବି. (କ୍ରତୁ + ରାଜ୍ + କ୍ୱିପ୍) ଅଶ୍ୱମେଧ ଯାଗ । [ଯଜ୍ଞ ।
କ୍ରତୁରାଜ — ପୁଂ. ବି. (୬ତତ୍) ରାଜସୂୟ
କ୍ରତୁବିକ୍ରୟୀ — ପୁଂ.ବିଂ. ଯେ ଅପରଠାରୁ ଧନ ଆଣି ଯଜ୍ଞଫଳ ବିକ୍ରୟ କରେ ।
କ୍ରତୁବିଦ୍ — ପୁଂ.ବିଂ.(କ୍ରତୁ + ବିଦ୍ + କ୍ୱିପ୍) ଯେ ଯଜ୍ଞ କର୍ମ ଜାଣେ । [ଯଜ୍ଞ ।
କ୍ରତୂତ୍ତମ — ପୁଂ. ବି. (୭ତତ୍) ରାଜସୂୟ ।
କ୍ରତ୍ୱାମଘ — ପୁଂ.ବିଂ. (କ୍ରତୁ + ମହ + ଅ) ଶୀଘ୍ର ଗମନ ପ୍ରଭୃତିଦ୍ୱାରା ପ୍ରଶଂସିତ ।
କ୍ରଥକୈଶିକ — ବି. (କ୍ରଥ + କେଶ + ଇକ) ବିଦର୍ଭ ଦେଶ ।
କ୍ରଥନ — କ୍ଲୀ.ବି.(କ୍ରଥ୍ + ଭା.ଅନ) ମାରଣ, ଛେଦନ, ହନନ, (ପୁଂ) ଦାନବବିଶେଷ ।
କ୍ରଥନକ — ପୁଂ.ବି. (କ୍ରଥନ + କ) ଉଷ୍ଟ୍ର, ଓଟ, (କ୍ଲୀ) ଶ୍ୱେତଅଗୁରୁ, କୃଷ୍ଣାଗୁରୁ ।
କ୍ରନ୍ଦ୍ — ପୁଂ. ବି. (କ୍ରନ୍ଦ + ଅ) କ୍ରନ୍ଦନ, ହ୍ରେଷାରବ, ଚିତ୍କାର ।

କ୍ରନ୍ଦନ — ବି.(କ୍ରନ୍ଦ୍ + ଭା.ଅନ) କାନ୍ଦିବା, ରୋଦନ, ଆହ୍ୱାନ, ବିଗ୍ରହ, ପରସ୍ପର ବଳକଷିବାପାଇଁ ଡକାଡକି, ଆସ୍ଫାଳନ ।
କ୍ରନ୍ଦନପରାୟଣ — ବିଂ. (ବି.ଗୀ) ଅତ୍ୟନ୍ତ ରୋଦନକାରୀ, ରୋରୁଦ୍ୟମାନ ।
କ୍ରନ୍ଦନୀ — ସ୍ତ୍ରୀ. ବି. ବିଡ଼ାଳୀ ।
କ୍ରନ୍ଦନୁ — ପୁଂ. ବି. ପର୍ଜ୍ଜନ୍ୟ, ମେଘ ।
କ୍ରନ୍ଦସ୍ — କ୍ଲୀ.ବି. ଯେ ଶବ୍ଦ କରେ, ଦ୍ୟାବା ପୃଥିବୀ, ଭୂର୍ଲୋକ ଓ ଅନ୍ତରୀକ୍ଷ ଲୋକ ।
କ୍ରନ୍ଦସୀ — ସ୍ତ୍ରୀ. ବି. ଆକାଶ ଓ ପୃଥିବୀ ।
କ୍ରନ୍ଦିତ — ବି.(କ୍ରନ୍ଦ + ତ) କ୍ରନ୍ଦନ, କାନ୍ଦିବା, (ବିଂ) କାନ୍ଦୁଥିବା, ଡାକୁଥିବା, (ସ୍ତ୍ରୀ) କ୍ରନ୍ଦିତା ।
କ୍ରମ — ପୁଂ. ବି. (କ୍ରମ + ଭା.ଅ) ଆକ୍ରମଣ, ଅନୁସରଣ, ଅତିକ୍ରମ, ବିକ୍ରମ, ଅନୁକ୍ରମ, ପର୍ଯ୍ୟାୟ, ପ୍ରଣାଳୀ, ପଦ୍ଧତି, ସଙ୍କଳ୍ପ, ଅବଚ୍ଛେଦ, ପାଦବିକ୍ଷେପ, ବ୍ୟବହାର, ଗତି, ପ୍ରକାର, ରୀତି, ନିୟମ କରିବା, ଘଟନା, ରଚନା ପ୍ରଣାଳୀ, ଆରମ୍ଭବୈଦିକ ବିଧି, ଚେଷ୍ଟା, ଉଦ୍ୟମ, ବିଷ୍ଣୁଙ୍କ ନାମ, ରୁଦ୍ର, ପୂର୍ବାପର ଭାବରେ ଅବସ୍ଥାନ ।
କ୍ରମକ — ବି. (କ୍ରମ + ଅକ) ଯେଉଁ ବ୍ୟକ୍ତି ଧାରାବାହିକ ଅଧ୍ୟୟନ କରେ, (ବିଂ) କ୍ରମଜ୍ଞ, ଧାରାବାହିକ, ନିୟମିତ ଗତି କରୁଥିବା ।
କ୍ରମଜିତ୍ — ପୁଂ. ବି. ଜଣେ ରାଜା ।
କ୍ରମଜଟା — ସ୍ତ୍ରୀ.ବି. ବେଦପାଠର ପ୍ରକାର-ବିଶେଷ । [ବିକ୍ରମଗମନ ।
କ୍ରମଜ୍ୟା — ବି. (ଜ୍ୟୋତିଷ) ଗ୍ରହର କ୍ରମିକ
କ୍ରମଣ — ବି. (କ୍ରମ୍ + ଅନ) ପାଦକ୍ଷେପ, ଚରଣ, ଯଦୁବଂଶୀୟ ଜଣେ ରାଜା ।
କ୍ରମଣୀୟ — ବିଂ. ଆକ୍ରମଣଯୋଗ୍ୟ ।
କ୍ରମତଃ — ଅବ୍ୟ. କ୍ରମଶଃ (ଦେଖ) ।
କ୍ରମଦଣ୍ଡକ — ପୁଂ. ବି. ବେଦ ପଠର ପ୍ରକାରବିଶେଷ ।
କ୍ରମଦୀପିକା — ସ୍ତ୍ରୀ. ବି. ଏକଖଣ୍ଡ ତନ୍ତ୍ର, ବୈଷ୍ଣବ ଗ୍ରନ୍ଥବିଶେଷ ।
କ୍ରମଦୀଶ୍ୱର — ପୁଂ.ବି. ସଂକ୍ଷିପ୍ତସାର ବ୍ୟାକରଣ ପ୍ରଣେତା ପଣ୍ଡିତ ।

କ୍ରମନମ୍ର — ବିଂ. (କ୍ରମ + ନମ୍ର) ଢାଲୁ, ଗଡ଼ାଣିଆ, (ସ୍ତ୍ରୀ) କ୍ରମନମ୍ରା ।
କ୍ରମପଦ — ପୁଂ.ବି. ବେଦପାଠର ପ୍ରକାର-ବିଶେଷ । [ପରସ୍ପର ।
କ୍ରମପର୍ଯ୍ୟାୟ — ବିଂ. ପର୍ଯ୍ୟାୟକ୍ରମେ,
କ୍ରମପାଠ — ବି. ପୁସ୍ତକର ମୂଳରୁ ଶେଷ ପର୍ଯ୍ୟନ୍ତ ଧାରାବାହିକ ପଠନ, ବେଦ ପଠନର ରୀତି ବିଶେଷ ।
କ୍ରମପୂରକ — ପୁଂ. ବି. (କ୍ରମ + ପୃ + ଣିଚ + ଅକ) ବକବୃକ୍ଷ, ଅଗସ୍ତି ଗଛ ।
କ୍ରମପ୍ରାପ୍ତ — ବିଂ. (୩ତତ୍) କ୍ରମାଗତ, ଧାରାବାହିକ, ପୈତୃକ ।
କ୍ରମବର୍ଦ୍ଧମାନ — ବିଂ.(୩ତତ୍) କ୍ରମଶଃବର୍ଦ୍ଧନଶୀଳ, (ସ୍ତ୍ରୀ) କ୍ରମବର୍ଦ୍ଧମାନା [ନୃତ୍ୟ ।
କ୍ରମବିକାଶ — ବି.(କ୍ରମ + ବିକାଶ) କ୍ରମୋ-
କ୍ରମଭଙ୍ଗ — ପୁଂ. ବି (୬ତତ୍) ନିୟମଭଙ୍ଗ, ବିଶୃଙ୍ଖଳା, ଅନୁକ୍ରମ ବା ପର୍ଯ୍ୟାୟର ବ୍ୟତିକ୍ରମ ।
କ୍ରମମାଣ — ତ୍ରି. ବିଂ. (କ୍ରମ + କ. ଆନ) ଇତସ୍ତତଃ ଭ୍ରମଣଶୀଳ, ଇତସ୍ତତଃ ଭ୍ରମଣକାରୀ, (ସ୍ତ୍ରୀ) କ୍ରମମାଣା ।
କ୍ରମଯୋଗ — ପୁଂ. ବି. (୬ତତ୍) କ୍ରମ-ସମ୍ବନ୍ଧ ।
କ୍ରମରାଜ୍ୟ — କ୍ଲୀ. ବି. କାଶ୍ମୀର ରାଜ୍ୟର ଗୋଟିଏ ବିଭାଗ ।
କ୍ରମଶଃ — ଅବ୍ୟ. କ୍ରମେ କ୍ରମେ, ଗୋଟି ଗୋଟି କରି, ଧୀରେ ଧୀରେ, ଅନୁକ୍ରମେ, ହାଲୁକେ ହାଲୁକେ । [(ଦେଖ) ।
କ୍ରମଶରେ, କ୍ରମଶେ — ଗ୍ରା. ଅବ୍ୟ. କ୍ରମଶଃ
କ୍ରମଶାସ୍ତ୍ର — କ୍ଲୀ.ବି. କ୍ରମାନୁସାରେ ବେଦ-ପାଠ କରିବାର ଶାସ୍ତ୍ରବିଶେଷ ।
କ୍ରମସନ୍ଦର୍ଭ — ବି. ଅନୁଷ୍ଠାନଲକ୍ଷଣଜ୍ଞାପକ ଗ୍ରନ୍ଥବିଶେଷ ।
କ୍ରମସୂକ୍ଷ୍ମ — ବିଂ.(୩ତତ୍) କ୍ରମରେ ସରୁ ।
କ୍ରମାଗତ — ତ୍ରି.ବିଂ. ପିତୃପିତାମହ କ୍ରମେ ପ୍ରାପ୍ତ, ପୈତୃକ, କ୍ରମେ କ୍ରମେ ଆଗତ, (ଗ୍ରା. କ୍ରି. ବିଂ.) ପୁନଃପୁନଃ, ସର୍ବଦା ।
କ୍ରମାଦିତ୍ୟ — ପୁଂ. ବି. ଗୁପ୍ତରାଜ ସ୍କନ୍ଦ-ଗୁପ୍ତଙ୍କର ଅନ୍ୟନାମ ।

**କ୍ରମାଧ୍ୟୟନ**—କ୍ଲୀ.ବ. ଧାରାବାହିକରୂପେ ପଠନ ।

**କ୍ରମାନୁଭବୁକତା**— ସ୍ତ୍ରୀ. ବ. ( ୬ତନ୍ତ୍ର ) ପର୍ଯ୍ୟାୟ ଜ୍ଞାନଜନକା ବୃତ୍ତି,ଯେଉଁଶକ୍ତିଦ୍ୱାରା ପର୍ଯ୍ୟାୟ ଜ୍ଞାନ ଜନ୍ମେ ।

**କ୍ରମାନୁଯାୟୀ**— ବି°. (୬ତନ୍ତ୍ର) ଅନୁକ୍ରମ ବା ପର୍ଯ୍ୟାୟର ଅନୁଗାମୀ, ଧାରାବାହିକ, ଅବିଚ୍ଛେଦୀ, ଅବିଶ୍ରାନ୍ତ, (ସ୍ତ୍ରୀ) କ୍ରମାନୁଯାୟିନୀ ।

**କ୍ରମାନୁସାର**—ପୁଂ. ବ.କ୍ରମର ଅନୁସରଣ, ଧାରାବାହିକ ବନ୍ଦୋବସ୍ତ ।

**କ୍ରମାନୁସାରୀ**—ପୁଂ. ବିଂ. (କ୍ରମ+ଅନୁସାରିନ୍) ଧାରାବାହିକ, (ସ୍ତ୍ରୀ) ସାରିଣୀ ।

**କ୍ରମାନୁସାରେ**— ଗ୍ରା.କ୍ରି. ବିଂ. (ବ.ଗ୍ରା) ପର୍ଯ୍ୟାୟକ୍ରମେ ।

**କ୍ରମାନ୍ୱୟ** - ପୁଂ.ବ.(୬ତନ୍ତ୍ର) ଯଥାକ୍ରମେ, ଧାରାବାହିକରୂପେ, ଗୋଟିଏ ପରେ ଗୋଟିଏ ହେବା,(ବିଂ) ପୂର୍ବପୁରୁଷଙ୍କଠାରୁ ଧାରାବାହିକରୂପେ ଗଡ଼ିଆସୁଥିବା, ଉତ୍ତରାଧିକାରରୂପେ ପ୍ରାପ୍ତ ।

**କ୍ରମାଗତ**— ବିଂ. (ଶତନ୍ତ୍ର) ପୁରୁଷ ପରମ୍ପରା କ୍ରମେ ଆଗତ, ପରପର ଆଗମନଶୀଳ ।

**କ୍ରମି**—ପୁଂ. ବ.(କ୍ରମ+ଇ) କୃମିପୋକ, କୀଟବିଶେଷ ।

**କ୍ରମିକ**—ବି. ବିଂ. (କ୍ରମ+ଇକ) ଧାରାବାହିକ, କ୍ରମାଗତ, (ସ୍ତ୍ରୀ) କ୍ରମିକା ।

**କ୍ରମିକଣ୍ଟକ**—କ୍ଲୀ. ବ. ବିଡ଼ଙ୍ଗ ।

**କ୍ରମିଘ୍ନ**—କ୍ଲୀ. ବ. (କ୍ରମି+ହନ୍+ଅ) ବିଡ଼ଙ୍ଗ, (ବିଂ) କୃମିନାଶକ ।

**କ୍ରମିଜ**— କ୍ଲୀ. ବ. (କ୍ରମି+ଜନ୍+ଅ ) ଅଗୁରୁ ଚନ୍ଦନ । [ଲାକ୍ଷ ।

**କ୍ରମିଜା**—ସ୍ତ୍ରୀ.ବ. (କ୍ରମିଜ+ଆ) ଲାକ୍ଷା,

**କ୍ରମିତା**— ପୁଂ.ବିଂ.(କ୍ରମ+ତୃଚ୍)ପାଦବିକ୍ଷେପକାରୀ ।

**କ୍ରମିଶତ୍ରୁ**—ପୁଂ. ବ. (୬ତନ୍ତ୍ର)ବିଡ଼ଙ୍ଗ ।

**କ୍ରମୀ**— ବି. କୃମି ରୋଗ, କୀଟବିଶେଷ ।

**କ୍ରମୁ**— ପୁଂ. ବ. (କ୍ରମ+ଉ) ଗୁଆଗଛ, ଗୁଆ ।

**କ୍ରମୁକ**— ପୁଂ. ବ. (କ୍ରମ୍+ଉକ) ବ୍ରହ୍ମଦାରୁ, କପାଗଛର ମଞ୍ଜି,ଗୁଆ,ନାଗର ମୁଥା, ଲୋଧ୍ରବୃକ୍ଷ ।

**କ୍ରମୁକଫଳ**—କ୍ଲୀ. ବ. ଗୁଆ, ସୁପାରି ।

**କ୍ରମୁକୀ**— ସ୍ତ୍ରୀ. ବ. (କ୍ରମୁକ+ଈ) ଗୁଆ, ପୂଗବୃକ୍ଷ ।

**କ୍ରମେ**—ଗ୍ରା. ଅବ୍ୟ. କ୍ରମଶଃ (ଦେଖ) ।

**କ୍ରମେକ୍ରମେ**— ଗ୍ରା.କ୍ରି.ବିଂ. ଧୀରେଧୀରେ, ପରପର, କ୍ରମଶଃ,କ୍ରିୟାର ବ୍ୟାଧିକରଣ ବିଶେଷଣ ।

**କ୍ରମେତର**— ବିଂ. ବେଦପାଠର କ୍ରମଠାରୁ ଭିନ୍ନ, ଯାହା ଧାରାବାହିକ ନୁହେ ।

**କ୍ରମେଲ**— ପୁଂ. ବ. (କ୍ରମ+ଏଲ+ଅ) ଓଟ, ଉଷ୍ଟ୍ର । [ଓଟ, ଉଷ୍ଟ୍ର ।

**କ୍ରମେଲକ**— ପୁଂ.ବ. (କ୍ରମ+ଏଲ+କ)

**କ୍ରମୋଢ଼ା**—ସ୍ତ୍ରୀ.ବିଂ. (କ୍ରମ+ଊଢ଼ା)ବଡ଼ ଭଉଣୀମାନଙ୍କ ବିବାହପରେ ବିବାହିତା (ସାନ ଭଉଣୀ) ।

**କ୍ରମୋଦ୍‌ବେଗ**— ପୁଂ. ବ.ବୃଷ, ବଳଦ ।

**କ୍ରମୋନ୍ନତ**— ବିଂ.(୬ତନ୍ତ୍ର)କ୍ରମଶଃ ଉଚ୍ଚ, କ୍ରମଦ୍ୱାରା ଉନ୍ନତ, (ସ୍ତ୍ରୀ) କ୍ରମୋନ୍ନତା ।

**କ୍ରମ୍ୟ**— ବିଂ.(କ୍ରମ+ଯ)ଚକ୍ରାଙ୍କିତ ହେବା ଯୋଗ୍ୟ ।

**କ୍ରୟ**— ପୁଂ.ବ. (କ୍ରୀ+ଭା.ଅ) କିଣିବା, କଣାମୂଲ୍ୟ, ଜରସମନ ।

**କ୍ରୟକର୍ତ୍ତା**—ପୁଂ. ବିଂ. ଯେ ମୂଲ୍ୟ ଦେଇ ବସ୍ତୁ ଗ୍ରହଣ କରେ, କ୍ରେତା ।

**କ୍ରୟଣ**— କ୍ଲୀ.ବ. (କ୍ରୀ+ଭା.ଅନ)କିଣିବା କାର୍ଯ୍ୟ, କଣା । { ପଣ୍ୟଦ୍ରବ୍ୟ ।

**କ୍ରୟଣିକ**—ବି.କଣାହେବାଯୋଗ୍ୟ ବସ୍ତୁ ।

**କ୍ରୟଣୀୟ**— ବି. ବିଂ. (କ୍ରୟ+ଅନୀୟ) ଯାହାକଣାଯାଏ,କଣାହେବାରଯୋଗ୍ୟ ।

**କ୍ରୟନିୟମ**—ପୁଂ.ବ. କ୍ରେତା ଓ ବିକ୍ରେତାର ନିୟମବିଶେଷ ।

**କ୍ରୟଭୋଗ**—ଗ୍ରା.ବ.ସମ୍ପତ୍ତି ଖରଦ କରିଥିବା ହେତୁ ଭୋଗକରଣ ।

**କ୍ରୟଲେଖ୍ୟ**— ବ. ବିକ୍ରୟପତ୍ର, କବାଲା ।

**କ୍ରୟବିକ୍ରୟ**—ପୁଂ.ବ.କଣାବିକା, ବାଣିଜ୍ୟ ବ୍ୟବସାୟ, ଖରିଦବିକି ।

**କ୍ରୟବିକ୍ରୟିକ**— ପୁଂ. ବ. ବଣିକ, ମହାଜନ, ବେପାରୀ, ବ୍ୟବସାୟୀ ।

**କ୍ରୟବିକ୍ରୟୀ**— ପୁଂ. ବିଂ. ଯେ କଣେ ଓ ବିକେ, ବେପାରୀ ।

**କ୍ରୟଶୀର୍ଷ**—କ୍ଲୀ. ବ. ହିଙ୍ଗୁଳ ।

**କ୍ରୟସଦ**— ପୁଂ. ବ. ଛଗଳ, ଛେଳି ।

**କ୍ରୟାରୋହ**— ପୁଂ. ବ. ଯେଉଁ ସ୍ଥାନରେ କିଣାବିକା କାମନ୍ତେ ବହୁଲୋକ ରୁଣ୍ଡ ହୁଅନ୍ତି ।

**କ୍ରୟିକ**— ପୁଂ. ବ. ଖରିଦଦାର, ବଣିକ, କିଣିବାଲୋକ, ବେପାରୀ, (ବିଂ)କ୍ରେତା, ଯେ କଣେ । [କ୍ରେତା ।

**କ୍ରୟୀ**— ପୁଂ.ବିଂ. ଯେ କଣେ,ଖରିଦଦାର,

**କ୍ରୟ୍ୟ**— ବି. ବିଂ. (କ୍ରୀ+ର୍ମ.ଯ) ହାଟପ୍ରଭୃତିରେ କିଣିବା କାମନ୍ତେ ପକାହୋଇଥିବା (ପଣ୍ୟଦ୍ରବ୍ୟ), ବିକ୍ରୟାର୍ଥ ସ୍ଥାପିତ, କିଣିବାର ଉପଯୁକ୍ତ, କିଣିବା ଯୋଗ୍ୟ । [କରେ ।

**କ୍ରବଣ**— ବି.ବିଂ. ସ୍ତୁତିକାରକ, ଯେ ସ୍ତବ

**କ୍ରବିଷ୍ଣୁ**—ପୁଂ.ବିଂ.(କ୍ରୁ+ଇଷ୍ଣୁ)ମାଂସାଶୀ, କ୍ରବ୍ୟାଦ, ଯେ ମାଂସ ଭକ୍ଷଣ କରେ ।

**କ୍ରବ୍ୟ**— କ୍ଲୀ. ବ. ମାଂସ, କଞ୍ଚାମାଂସ ।

**କ୍ରବ୍ୟଘାତନ**-ପୁଂ.ବ.(ବ.ଗ୍ରା)ମୃଗ,ହରିଣ ।

**କ୍ରବ୍ୟଭୁକ୍**—ପୁଂ. ବ. (କ୍ରବ୍ୟ+ଭୁଜ୍+କ୍ୱିପ୍) ରାକ୍ଷସ, ମାଂସାଶୀ ଜନ୍ତୁ, (ବିଂ) ମାସଭୋଜୀ. ମାଂସାଶୀ ।

**କ୍ରବ୍ୟାତ(ଦ)**— ବିଂ ( କ୍ରବ୍ୟ+ଅଦ୍+କ୍ୱିପ୍)ମାଂସାଶୀ,ମାଂସଭୋଜୀ,(ବିଂ)ରାକ୍ଷସ ମାଂସାଶୀ ଜନ୍ତୁ, ମୃତ ଶରୀରକୁ ଯେଉଁ ଅଗ୍ନିରେ ଦଗ୍ଧ କରାଯାଏ ।

**କ୍ରବ୍ୟାଦ**— ବିଂ. (କ୍ରବ୍ୟ+ଅଦ+କ.ଅ) ମାଂସାଶୀ,(ବି) ରାକ୍ଷସ,ସିଂହ, ଶ୍ୟେନପକ୍ଷୀ, ଶବଭକ୍ଷକ, ଅଗ୍ନି, ଚିତାନଳ, ମାଂସାଶୀ ଜନ୍ତୁ । [ବିଶେଷ ।

**କ୍ରବ୍ୟାଦରସ**— ବୈଦ୍ୟକୋକ୍ତ ଔଷଧ

**କ୍ରଶ୍**— ଯା.ବ. ଶୁକ୍ରଚିହ୍ନ ପରି ଯୋଡ଼ା ଯାଇଥିବା କାଠ, ମକଦ୍ଦମାରେ ଅପର ପକ୍ଷର ଓକିଲଙ୍କଦ୍ୱାରା ସାକ୍ଷୀର ଜେରା ।

କ୍ରଶିତ—ବିଂ. (କୃଶ୍+ଣିଚ୍+ମି.ତ) ଶୀର୍ଣ୍ଣ ।

କ୍ରଶିମା—ପୁଂ.ବି.(କୃଶ୍+ଇମନ୍)କ୍ଷୀଣତା, କୃଶତା, କାର୍ଶ୍ୟ ।

କ୍ରଶିଷ୍ଠ—ବି.ବିଂ.(କୃଶ୍+ଇଷ୍ଠ)ଅତିଶୟ କୃଶ ବା କ୍ଷୀଣ, କ୍ଷୀଣତମ ।

କ୍ରଶୀୟାନ୍—ପୁଂ. ବିଂ. (କୃଶ+ଈୟସ୍) ଅପେକ୍ଷାକୃତ କ୍ଷୀଣ, (ସ୍ତ୍ରୀ) କ୍ରଶୀୟସୀ ।

କ୍ରଷ୍ଟବ୍ୟ—ବିଂ.କର୍ଷ ବା ଆକ୍ରମଣର ଯୋଗ୍ୟ, ଯାହାର କର୍ଷଣ କରାହୁଏ ।

କ୍ରା—ବି. ବିଂ. ଅତିକ୍ରମକାରୀ ।

କ୍ରାକଚିକ—ପୁଂ, ବି. (କ୍ରକଚ+ଇକ) କରତ, କରତିଆ ।

କ୍ରାଥ—ପୁଂ. ବି. (କ୍ରଥ୍+କ.ଅ)ହତ୍ୟା, ମାରଣ, ଦକ୍ଷିଣାପଥେଶ୍ୱର, ରାହୁଗ୍ରହ, ରାମସେନାପତି ଗୋଟିଏ ବାନର,ନାଗବିଶେଷ ।

କ୍ରାନ୍ତ—ପୁଂ.ବିଂ,(କ୍ରମ୍+ତ)ପଦଦଳିତ, ଅତିକ୍ରାନ୍ତ, ବ୍ୟାପ୍ତ,(ବି) ପାହୁଣ୍ଡ,ଗମନ, ଅଶ୍ୱ, ଅତିକ୍ରମଣ, ଚନ୍ଦ୍ରଙ୍କର କୌଣସି ଗ୍ରହକୁ ସଂକ୍ରମଣ, (ଗ୍ରା.ବି) ଏକକଡ଼ାର ତିନି ଭାଗରୁ ଏକଭାଗ ।

କ୍ରାନ୍ତଦର୍ଶୀ—ପୁଂ. ବିଂ.(କ୍ରାନ୍ତ+ଦୃଶ୍+ଇନ୍) ଯେ ଭୂତ, ଭବିଷ୍ୟତ, ଅତୀତ ଓ ସୂକ୍ଷ୍ମ ପଦାର୍ଥ ଦେଖିପାରେ ।

କ୍ରାନ୍ତା—ସ୍ତ୍ରୀ.ବି.(କ୍ରମ୍+ତ+ଆ)ବୃହତୀ ।

କ୍ରାନ୍ତି—ସ୍ତ୍ରୀ.ବି(କ୍ରମ୍+ଭା.ତି)ପାଦବିକ୍ଷେପ, ଅତିକ୍ରମଣ, ଆକ୍ରମଣ, ପାହୁଣ୍ଡ, ସୂର୍ଯ୍ୟଙ୍କ ଅୟନବୃତ୍ତର ବାଙ୍କ, ସୂର୍ଯ୍ୟଙ୍କର ଅୟନ ବୃତ୍ତ, ଗତି, ଗମନ, ଗ୍ରହର ଅୟନ ରେଖା, ନକ୍ଷତ୍ର ଗତି, ରାଶି ଚକ୍ରର ମଧ୍ୟରେଖା, ବିଷୁବରେଖାଠାରୁ ନିର୍ଦ୍ଦିଷ୍ଟ ଦୂରରେ କ୍ରମବକ୍ର କଳ୍ପିତ ବୃତ୍ତର ଉତ୍ତର ଓ ଦକ୍ଷିଣରେ ଅୟନକୁ ସ୍ପର୍ଶ କରିଥିବା ଅନ୍ତର,(ଗ୍ରା.ବି) କ୍ରାନ୍ତ,ଏକକଡ଼ାର ତିନି ଭାଗରୁ ଏକଭାଗ ।

କ୍ରାନ୍ତିକକ୍ଷ—ବି. କ୍ରାନ୍ତିବୃତ୍ତ(ଦେଖ) ।

କ୍ରାନ୍ତିକ୍ଷେତ୍ର—କ୍ଲୀ. ବି. କ୍ରାନ୍ତି ଜାଣିବା କ୍ରମରେ ଅଙ୍କିତ କ୍ଷେତ୍ର ।

କ୍ରାନ୍ତିଜ୍ୟା—ସ୍ତ୍ରୀ.ବି. କ୍ରାନ୍ତିବୃତ୍ତ କ୍ଷେତ୍ରସ୍ଥିତ ଅକ୍ଷକ୍ଷେତ୍ରର ଅବୟବବିଶେଷ ।

କ୍ରାନ୍ତିପାତ—ପୁଂ. ବି. (କ୍ରାନ୍ତି+ପାତ) ବିଷୁବରେଖା ଓ ଅୟନ ମଣ୍ଡଳର ସଂଯୋଗସ୍ଥଳ ।

କ୍ରାନ୍ତିପାତଗତି—ସ୍ତ୍ରୀ. ବି. କ୍ରାନ୍ତିପାତର ଚଳାଚଳ, ଏକ ସ୍ଥାନଠାରୁ ଅନ୍ୟସ୍ଥାନକୁ ଚଳିବା ।

କ୍ରାନ୍ତିପାତବିନ୍ଦୁ—ପୁଂ.ବି. (କ.ଧା)କ୍ରାନ୍ତିପାତ ଜାତ ବିନ୍ଦୁ, କ୍ରାନ୍ତିପାତରୁ ଯେଉଁ ବିନ୍ଦୁଦ୍ୱୟ ଉତ୍ପତ୍ତି ହୁଏ ।

କ୍ରାନ୍ତିବଳୟ—ପୁଂ.ବି.(୬ତତ୍)କ୍ରାନ୍ତିବୃତ୍ତ

କ୍ରାନ୍ତିବୃତ୍ତ—କ୍ଲୀ. ବି. (୬ତତ୍) ଯେଉଁ କଳ୍ପିତ ବୃହତ୍‌ରେଖା ଭୂମଣ୍ଡଳକୁ ବେଷ୍ଟନ କରି ବିଷୁବରେଖାର ମଧ୍ୟଦେଇ ତିର୍ଯ୍ୟକ୍ ଭାବେ କର୍କଟ ଓ ମକର କ୍ରାନ୍ତିର ସହିତ ସଂଲଗ୍ନ ହୋଇଅଛି ।

କ୍ରାନ୍ତିମଣ୍ଡଳ--ବି. (୬ତତ୍) କ୍ରାନ୍ତିବୃତ୍ତ (ଦେଖ) ।

କ୍ରାନ୍ତିସୂତ୍ର—କ୍ଲୀ. ବି. ସୂତାପରି କ୍ରାନ୍ତି ସମୂହର ଯୋଗବିଶେଷ ।

କ୍ରାନ୍ତୁ—ପୁଂ.ସ୍ତ୍ରୀ.ବି.(କ୍ରମ+କ.ତୁ)ପକ୍ଷୀ ।

କ୍ରାମିକ—ଗ୍ରା. ବିଂ. କ୍ରମିକ (ଦେଖ) ।

କ୍ରାୟକ—ପୁଂ. ବି. (କ୍ରି+କ.ଅକ)ଯେ କିଣେ, ଖରିଦ୍‌ଦାର, ବେପାରୀ, ବଣିକ, (ସ୍ତ୍ରୀ) କ୍ରାୟିକା । [ଦେଖ ।

କ୍ରାୟିକ—ପୁଂ.ବି.(କ୍ରୀ+କ.ଇକ)କ୍ରାୟକ

କ୍ରାବରୀ—ସ୍ତ୍ରୀ. ବି. ଅତିକ୍ରମକାରିଣୀ ସ୍ତ୍ରୀ ।

କ୍ରାବା—ପୁଂ. ବିଂ. ଅତିକ୍ରମକାରୀ ।

କ୍ରିଗାସୁ—ବୌଦ୍ଧବିଦ୍ୱେଷୀ ଜାତକାତି-ବିଶେଷ । [ବିଶେଷ ।

କ୍ରିମି—ପୁଂ.ବି.କୀଟ,ପୋକବିଶେଷ,ରୋଗ-

କ୍ରିମିକଣ୍ଟକ—କ୍ଲୀ.ବି.ବିଡ଼ଙ୍ଗ,ଯଜ୍ଞଡୁମ୍ବୁର ।

କ୍ରିମିକାଳାନଳ ରସ—ବୈଦ୍ୟକୋକ୍ତ ଔଷଧବିଶେଷ । [ବିଶେଷ ।

କ୍ରିମିକୁଠାନଳ—ବୈଦ୍ୟକୋକ୍ତ ଔଷଧ-

କ୍ରିମିଗ୍ରନ୍ଥି—ପୁଂ. ବି. ସନ୍ଧିସ୍ଥାନ ଜାତ, ନେତ୍ର ରୋଗ ।

କ୍ରିମିଘ୍ନ—ପୁଂ. ବି. ବିଡଙ୍ଗ,(ବିଂ)କ୍ରିମିନାଶକ ଔଷଧବିଶେଷ ।

କ୍ରିମିଘ୍ନରସ—ବୈଦ୍ୟକୋକ୍ତ ଔଷଧବିଶେଷ ।

କ୍ରିମିଘ୍ନୀ—ସ୍ତ୍ରୀ. ବି. ସୋମରାଜୀ ।

କ୍ରିମିଜ—କ୍ଲୀ. ବି. ଅଗୁରୁ, ଚନ୍ଦନ ।

କ୍ରିମିଶତ୍ରୁ—ପୁଂ. ବି. ପାଳଧା ମନ୍ଦାର ।

କ୍ରିମିଶୈଳ—ପୁଂ.ବି.(କ.ଧା) ଉଇହୁଙ୍କା, ବଲ୍ମୀକ, ସ୍ତୂପ ।

କ୍ରିମିହର—ପୁଂ. ବି. ବିଡ଼ଙ୍ଗ ।

କ୍ରିମିହା—ସ୍ତ୍ରୀ. ବି. ଲାକ୍ଷା, ଲାଖ ।

କ୍ରିୟ—ପୁଂ. ବି.(କୃ+ଅ) ମେଷରାଶି ।

କ୍ରିୟମାଣ-ପୁଂ.ବିଂ.(କୃ+ମି.ଆନ)ଯାହା କରାହେଉଅଛି, ସମ୍ପାଦ୍ୟମାନ, ଅନୁଷ୍ଠୀୟମାନ, (ସ୍ତ୍ରୀ) କ୍ରିୟମାଣା ।

କ୍ରିୟା—ସ୍ତ୍ରୀ.ବି. (କୃ+ଅ+ଆ)କରଣ, କରିବା, ବୈଦିକ କର୍ମ, ଗର୍ଭାଧାନାଦି ସଂସ୍କାର, ଚେଷ୍ଟା, ସତ୍କାର୍ଯ୍ୟ, ପୁଣ୍ୟ, ଅନୁଷ୍ଠାନ, ପରିଶ୍ରମ, ଧାତୁର ଅର୍ଥ, ଧାତୁର ଅର୍ଥବାଚକ ପଦ, କ୍ରିୟାବାଚକ ବିଶେଷ୍ୟ, ଗତି, ଉଦ୍ଦେଶ୍ୟ, ସାଧନାର୍ଥ ଚେଷ୍ଟା,ବେଦବିହିତ ପ୍ରାୟଶ୍ଚିତ୍ତ ହୋମ-ଆଦି, ପ୍ରତିକାର, ଉପଚାର, ଚିକିତ୍ସା, ଫଳ, ଅନ୍ତ୍ୟେଷ୍ଟିକ୍ରିୟା, ଶ୍ରାଦ୍ଧତର୍ପଣାଦି, ଉପାୟପ୍ରୟୋଗ,ପୂଜା, ଯତ୍ନ, ହତିଆର, ଅଭ୍ୟାସ, ଶିକ୍ଷା, କର୍ତ୍ତବ୍ୟ କର୍ମ, (ସ୍ମୃତି) ଧର୍ମାଧିକରଣରେ ସାକ୍ଷ ବା ମାଣ୍ଡ ଆଦି ଦ୍ୱାରା ବିଚାର ।

କ୍ରିୟାକର୍ତ୍ତା ପୁଂ.ବି.(୬ତତ୍)କ୍ରିୟାକରିବା ବ୍ୟକ୍ତି, ଯେ କ୍ରିୟା ସମ୍ପାଦନ କରେ, କାର୍ଯ୍ୟ ଓ କାର୍ଯ୍ୟ କରିବା ଲୋକ ।

କ୍ରିୟାକର୍ମ--ବି.(କ୍ରିୟା+କର୍ମ)ବୈଦିକକର୍ମ ଓ ପୁଣ୍ୟ କାର୍ଯ୍ୟ ସମ୍ପାଦନ ।

କ୍ରିୟାକଳାପ—କ୍ରିୟାସମୂହ,ଶାସ୍ତ୍ର ଓ ବେଦ ବିହିତ ଅନୁଷ୍ଠାନ ସକଳ ।

କ୍ରିୟାକଳ୍ପ—ପୁଂ.ବି.ଚିକିତ୍ସାର ନିୟମ ।

କ୍ରିୟାକାଣ୍ଡ—ବି. (କ.ଧା) କ୍ରିୟାକଳାପ କାର୍ଯ୍ୟସମୂହ, କ୍ରିୟା ବିଷୟକ ଶାସ୍ତ୍ର ପରିଚ୍ଛେଦ ।

କ୍ରିୟାକାର—ପୁଂ. ବି. (କ୍ରିୟା + କାର) ନୂତନସ୍ରଷ୍ଟା,(ବିଂ)କର୍ମକାରକ,କାର୍ଯ୍ୟକର୍ତ୍ତା।

କ୍ରିୟାକୁଶଳ—ପୁଂ.ବିଂ. (୬ତତ୍ପୁ)କାର୍ଯ୍ୟଦକ୍ଷ, କାର୍ଯ୍ୟନିପୁଣ,(ସ୍ତ୍ରୀ)କ୍ରିୟାକୁଶଳା।

କ୍ରିୟାଙ୍ଗ—କ୍ଲୀ. ବି. ପ୍ରଧାନ ଅନୁଷ୍ଠାନର ଅଂଶୀଭୂତ ଅନୁଷ୍ଠାନ, କରକ୍ରିୟାବାଦକ ଯନ୍ତ୍ର, ଡୁବ୍ରିତବଳ,ସିତାରପ୍ରଭୃତି ଯେଉଁ ଯନ୍ତ୍ର ହାତଦ୍ୱାରା ବଜାଯାଏ।

କ୍ରିୟାତନ୍ତ୍ର—ପୁଂ. ବିଂ. (୬ତତ୍ପୁ)କର୍ମାଧିକାରୀ, ଯାହାର କର୍ତ୍ତବ୍ୟ କର୍ମ ଶେଷ ହୋଇନାହିଁ,(ବି) ଖଣ୍ଡିଏ ବୌଦ୍ଧତନ୍ତ୍ର।

କ୍ରିୟାଦ୍ୱିଟ୍—ପୁଂ. ବିଂ. (କ୍ରିୟା + ଦ୍ୱିଷ୍ + କ.କ୍ୱିପ୍)କ୍ରିୟାଦ୍ୱେଷୀ (ଦେଖ)।

କ୍ରିୟାଦ୍ୱେଷୀ—ପୁଂ.ବି. (କ୍ରିୟା + ଦ୍ୱିଷ୍ + କାଇନ୍)(ସ୍ମୃତି)ଯେଉଁ ସାକ୍ଷୀ ସ୍ୱପକ୍ଷର ସ୍ୱାର୍ଥବିରୁଦ୍ଧରେ ସାକ୍ଷ୍ୟ ଦିଏ, କର୍ମଦ୍ୱେଷ୍ଟା, ଯେ କର୍ମକାଣ୍ଡ ଦ୍ୱେଷ କରେ, (ସ୍ତ୍ରୀ) କ୍ରିୟାଦ୍ୱେଷିଣୀ।

କ୍ରିୟାନିର୍ଦ୍ଦେଶ ବି. (ସ୍ମୃତି) ପ୍ରମାଣ।

କ୍ରିୟାନ୍ଧ—ବିଂ.(୭ତତ୍ପୁ) କର୍ମର ଦୋଷଗୁଣ ବିଚାରରେ ଅସମର୍ଥ, ଅତ୍ୟନ୍ତ କ୍ରିୟାସକ୍ତ ନିବନ୍ଧନ ଦୋଷଗୁଣ ବିଚାରରେ ଅଶକ୍ତ।

କ୍ରିୟାନ୍ୱିତ—ବିଂ. (୩ତତ୍ପୁ) ବେଦ ଓ ଶାସ୍ତ୍ରୋଚିତ କର୍ମକାଣ୍ଡ, (ବ୍ୟାକରଣ) କ୍ରିୟାଦ୍ୱାରା ସମ୍ପର୍କଯୁକ୍ତ (ବାକ୍ୟ)।

କ୍ରିୟାପଟୁ—ବିଂ. (୭ତତ୍ପୁ) ପ୍ରବୀଣ,ଜ୍ଞାନୀ, କାର୍ଯ୍ୟଦକ୍ଷ।

କ୍ରିୟାପଥ—କ୍ଲୀ.ବି. (୬ତତ୍ପୁ) ଚିକିତ୍ସା।

କ୍ରିୟାପଦ—ବି. (ବ୍ୟାକରଣ) ଧାତୁର ଅର୍ଥପଦ, ଯଥା—ଯିବା, ଖାଇବା, ଇତ୍ୟାଦି।

କ୍ରିୟାପର—ପୁଂ. ବିଂ. (ବ.ବ୍ରୀ) ଯେଉଁ ବ୍ୟକ୍ତି ସର୍ବଦା କର୍ମାନୁଷ୍ଠାନ କରେ, କର୍ତ୍ତବ୍ୟପରାୟଣ, କର୍ତ୍ତବ୍ୟନିଷ୍ଠ, (ସ୍ତ୍ରୀ) କ୍ରିୟାପରା।

କ୍ରିୟାପାଦ—ବି. (ସ୍ମୃତି) ବାଦୀ ଦାବିର କରିବା ମକଦ୍ଦମାର ତୃତୀୟ ପାଦ, ଦାବୀ ପ୍ରମାଣ କରିବା ନିମନ୍ତେ ଦେଖାଇବା ପ୍ରମାଣ।

କ୍ରିୟାଫଳ—କ୍ଲୀ ବି. (୬ତତ୍ପୁ) କର୍ମଫଳ, ଯଜ୍ଞାଦି ହେତୁ ପୁଣ୍ୟ ଓ ପାପ।

କ୍ରିୟାଭ୍ୟାବୃତ୍ତି—ସ୍ତ୍ରୀ.ବି.ବାରମ୍ବାର ଏକ କାର୍ଯ୍ୟ କରିବା।

କ୍ରିୟାଯୋଗ—ପୁଂ.ବି. (କ.ଧା)ଦେବତା ଆରାଧନ, କାର୍ଯ୍ୟାନୁଷ୍ଠାନ, ଦେବମନ୍ଦିର ନିର୍ମାଣ ପ୍ରଭୃତି ପୁଣ୍ୟକର୍ମ।

କ୍ରିୟାଲୋପ - ବି. (୬ତତ୍ପୁ) କାର୍ଯ୍ୟଧ୍ୱଂସ, ଧର୍ମକର୍ମର ବିନାଶ।

କ୍ରିୟାବନ୍ତ—ଗ୍ରା. ପୁଂ. ବିଂ. ବେଦବିହିତ ଆଚାର ବା ଧର୍ମାନୁଷ୍ଠାନରେ ରତ।

କ୍ରିୟାବଶ—ତ୍ରି. ବିଂ. କାର୍ଯ୍ୟର ଅଧୀନ, ଯାହାର କର୍ତ୍ତବ୍ୟକର୍ମ ଶେଷ ହୁଏନାହିଁ।

କ୍ରିୟାବସନ୍ନ--ତ୍ରି.ବିଂ.(୩ତତ୍ପୁ)ସାକ୍ଷୀ କିମ୍ବା ପ୍ରମାଣଦ୍ୱାରା ମକଦ୍ଦମା ପ୍ରମାଣ କରି ନ ପାରିବା, ପରାସ୍ତ ଆସାମୀ।

କ୍ରିୟାବାଚକ—ବିଂ. କ୍ରିୟାପଦକୁ ବୁଝାଉ ଥିବା, ଯାହାର କୌଣସି କ୍ରିୟାକୁ ବୁଝାଏ, କ୍ରିୟା ପ୍ରକାଶକ।

କ୍ରିୟାବାଚକବିଶେଷଣ—ବି. (ବ୍ୟାକରଣ) ଯେଉଁ ବିଶେଷଣପଦଦ୍ୱାରା କୌଣସି କ୍ରିୟାର ଅର୍ଥ ସୂଚିତ ହୁଏ ଏବଂ ଯାହା ସଙ୍ଗେ ହେବା ଅର୍ଥବୋଧକ କ୍ରିୟା ପ୍ରଯୁକ୍ତ ହୋଇ କ୍ରିୟା ସୃଷ୍ଟି ହୁଏ।

କ୍ରିୟାବାଚକବିଶେଷ୍ୟ—ବି. ଯେଉଁ-ବିଶେଷ୍ୟ ପଦଦ୍ୱାରା କୌଣସି କ୍ରିୟା-ବୁଝାଯାଏ ଏବଂ ବେଳେବେଳେ ଯାହା ସଙ୍ଗେ କରିବା ଅର୍ଥବୋଧକ କ୍ରିୟା-ଯୁକ୍ତ ହୋଇ ନୂତନ କ୍ରିୟା ସୃଷ୍ଟି ହୁଏ।

କ୍ରିୟାବାଚୀ—ବିଂ.କ୍ରିୟାବାଚକ(ଦେଖ)।

କ୍ରିୟାବାଦୀ—ପୁଂ. ବିଂ. (କ୍ରିୟା + ବଦ୍ + ଇନ) ବ୍ୟବସ୍ଥାପକ, ପ୍ରମାଣବାଦୀ, କାର୍ଯ୍ୟବାଦୀ, କ୍ରିୟାବାଚକ, (ବି)ଫରିୟାଦୀ, ମକଦ୍ଦମାର ବାଦୀ, ମୁଦେଇ।

କ୍ରିୟାବାନ୍—ପୁଂ. ବିଂ. (କ୍ରିୟା + ବତ୍) କ୍ରିୟାଯୁକ୍ତ,ସତ୍କାର୍ଯ୍ୟାନ୍ୱିତ, କର୍ମଶାଳୀ, କର୍ମର ଉଦ୍‌ଯୋଗୀ, (ସ୍ତ୍ରୀ) କ୍ରିୟାବତୀ।

କ୍ରିୟାବିଶେଷଣ—କ୍ଲୀ. ବି. (୬ତତ୍ପୁ)ଯେଉଁ ପଦଦ୍ୱାରା କ୍ରିୟାର ଗୁଣ ଭାବ ଅବସ୍ଥାଦି ପ୍ରକାଶିତ ହୁଏ।

କ୍ରିୟାଶକ୍ତି—ସ୍ତ୍ରୀ. ବି. (୬ତତ୍ପୁ) ପରମେଶ୍ୱରଙ୍କର ଶକ୍ତିବିଶେଷ, କର୍ମ କରିବାର ସାମର୍ଥ୍ୟ ବା ଫୁର୍ତ୍ତି।

କ୍ରିୟାଶୀଳ—ବିଂ.(ବ.ବ୍ରୀ)ନିରନ୍ତରକାର୍ଯ୍ୟକାରୀ, (ସ୍ତ୍ରୀ) କ୍ରିୟାଶୀଳା।

କ୍ରିୟାସକ୍ତ—ବିଂ.(୭ତତ୍ପୁ) କର୍ମରେ ଲିପ୍ତ, କାର୍ଯ୍ୟାନୁରାଗୀ, ଶାସ୍ତ୍ରୀୟ ଅନୁଷ୍ଠାନରେ ଆସକ୍ତ, (ସ୍ତ୍ରୀ) କ୍ରିୟାସକ୍ତା।

କ୍ରିୟାସମଭିବ୍ୟାହାର—ପୁଂ.ବି. (୬ତତ୍ପୁ) ଗୋଟିଏ କାର୍ଯ୍ୟର ବାରମ୍ବାର ଅନୁଷ୍ଠାନ, କ୍ରିୟାର ପୌନଃପୁନ୍ୟ।

କ୍ରିୟାସମାପ୍ତି—ବି.(୬ତତ୍ପୁ)କୌଣସିକ୍ରିୟା ସମାପ୍ତ ହେବା।

କ୍ରିୟାସ୍ନାନ୍—କ୍ଲୀ.ବି. ଧର୍ମଶାସ୍ତ୍ରକାର ଶଙ୍ଖ ପ୍ରଦର୍ଶିତ ସ୍ନାନବିଧି।

କ୍ରିୟାସିଦ୍ଧ-ବିଂ.(୭ତତ୍ପୁ) କ୍ରିୟାଦ୍ୱାରା ସିଦ୍ଧି ପ୍ରାପ୍ତ, ବ୍ୟବହାରାନୁଯାୟୀ କାର୍ଯ୍ୟ ସମ୍ପାଦନରେ ନିପୁଣ, (ସ୍ତ୍ରୀ)କ୍ରିୟାସିଦ୍ଧା।

କ୍ରିୟାସିଦ୍ଧି—ବି.(୬ତତ୍ପୁ)କାର୍ଯ୍ୟର ସାଫଲ୍ୟ, ଉଦ୍ଦେଶ୍ୟସାଧନ।

କ୍ରିୟେନ୍ଦ୍ରିୟ—କ୍ଲୀ. ବି. ବାକ୍‌ପାଣି ପ୍ରଭୃତି କର୍ମେନ୍ଦ୍ରିୟ।

କ୍ରିବି—ପୁଂ.ବି.(କୃବ + ଇନ୍)କୂପ,ଅସୁରବିଶେଷ, (ବିଂ) ହିଂସ୍ରକ,କର୍ତ୍ତା।

କ୍ରିବିଃ—ତ୍ରି.ବିକ୍ଷେପଣଶୀଳ,ଗମନଶୀଳ।

କ୍ରୀଡ଼ା—ପୁଂ.ବି. (କ୍ରୀଡ଼୍ + ଭା.ଅ)ଖେଳ, ପରିହାସ, ମଉଜ, ଥଟ୍ଟା।

କ୍ରୀଡ଼କ—ତ୍ରି.ବିଂ. (କ୍ରୀଡ଼୍ + କ.ଅକ)ଯେ କ୍ରୀଡ଼ା କରେ, ଖେଳାଳି, (ବି) ଦ୍ୱାରସ୍ଥିତ ରକ୍ଷକ, ଦ୍ୱାରୀ, ଦରୁଆନ।

କ୍ରୀଡ଼ଚକ୍ର—କ୍ଲୀ ବି. ଛନ୍ଦୋବିଶେଷ।

କ୍ରୀଡ଼ନ—କ୍ଲୀ.ବି.(କ୍ରୀଡ଼୍ + ଭା ଅନ)ଖେଳ, କ୍ରୀଡ଼ାସାଧନ, ଯାହାଦ୍ୱାରା ଖେଳାଯାଏ।

କ୍ରୀଡ଼ନକ—କ୍ଲୀ.ବି. (କ୍ରୀଡନ + କ)ଯ.ହା ଦ୍ୱାରା କ୍ରୀଡ଼ା କରାଯାଏ,ପରିହାସ,ଅବଜ୍ଞା, ଖେଳନା, କୁଣ୍ଢେଇ। [ଧାତ୍ରୀ।

କ୍ରୀଡନକା—ସ୍ତ୍ରୀ.ବି. (କ୍ରୀଡ଼ନ + କ + ଆ)

କ୍ରୀଡ଼ାମୟ—ତ୍ରି.ବି.(କ୍ରୀଡ଼ା + ଅନୀୟ)ଯାହାଦ୍ୱାରା କ୍ରୀଡ଼ା କରାଯାଏ, ଖେଳର ଉପାଦାନଭୂତ, ଖେଳିବାର ଯୋଗ୍ୟ।

କ୍ରୀଡ଼ନୀୟକ — ବି.କ୍ରୀଡ଼ାସାଧନ,କ୍ରୀଡ଼ନକ, ଖେଳନା, କ୍ରୀଡ଼ା ।
କ୍ରୀଡ଼ମାନ — ପୁଂ. ବି. (କ୍ରୀଡ଼୍ + ଆନ) ଯେ ଖେଳୁଅଛି ।
କ୍ରୀଡ଼ୟକ — ବି. (କ୍ରୀଡ଼୍ + ଣିଚ୍ + ଅକ) କ୍ରୀଡ଼ନକ (ଦେଖ) ।
କ୍ରୀଡ଼ା — ସ୍ତ୍ରୀ.ବି. (କ୍ରୀଡ଼୍ + ଅ + ଆ)ପରିହାସ, ଖେଳ, ତାମସା, ଆମୋଦ ପ୍ରମୋଦ, କସରତ୍, ଅବଜ୍ଞା, ଖେଳନା, ଖେଳର ସରଞ୍ଜାମ ।
କ୍ରୀଡ଼ାକନ୍ଦୁକ — ବି.(୬ତତ୍)ଖେଳପେଣ୍ଡୁ,କନ୍ଦୁ, ବଲ ଇତ୍ୟାଦି ।
କ୍ରୀଡ଼ାକଳା — ବି.(କ୍ରୀଡ଼ା + କଳା)ଖେଳିବାର ନିୟମାବଳୀ, ବିଦ୍ୟାରୂପେ ସାଧିତ ଖେଳ ।
କ୍ରୀଡ଼ାକାନନ — କ୍ଳୀ. ବି. ଉପବନ,ଆରାମ, କ୍ରୀଡ଼ୋଦ୍ୟାନ ।
କ୍ରୀଡ଼ାକୁଶଳ — ପୁଂ.ବିଂ. (୭ତତ୍)କ୍ରୀଡ଼ାର ନିୟମାଦି ଜାଣିଥିବା, ଖେଳିବା ବିଷୟରେ ପଟୁ ।
କ୍ରୀଡ଼ାକୃତ — ବି.କ୍ରୀଡ଼ାକରିବା ଉଦ୍ଦେଶ୍ୟ ।
କ୍ରୀଡ଼ାକୋପ — ପୁଂ. ବି. ଖେଳିବାଯୋଗୁ ଯେ ରାଗିଯାଏ ।
କ୍ରୀଡ଼ାକୌତୁକ — କ୍ଳୀ. ବି. (କ୍ରୀଡ଼ା + କୌତୁକ)ଆମୋଦ ପ୍ରମୋଦ,ରତିକ୍ରୀଡ଼ା, ବୃଥା କୌତୁକ,ନାନାପ୍ରକାର ତାମସା ।
କ୍ରୀଡ଼ାକ୍ରମ — ବି.(୬ତତ୍)ପର୍ଯ୍ୟାୟ କ୍ରମେ କ୍ରୀଡ଼ାର ଭିନ୍ନଭିନ୍ନ ଅଙ୍ଗ, କେଉଁ ଖେଳ ପରେ କେଉଁ ଖେଳ ହେବ ତାହାର ପଦ୍ଧତି ।
କ୍ରୀଡ଼ାକ୍ରମେ-ଗ୍ରା. କ୍ରି.ବିଂ. ଅବଲୀଳାକ୍ରମେ, ଅତି ସହଜରେ ।
କ୍ରୀଡ଼ାକ୍ଷେତ୍ର — ବି.(୬ତତ୍) ଖେଳପଡ଼ିଆ, ରଙ୍ଗଭୂମି, ମଲ୍ଲଭୂମି ।
କ୍ରୀଡ଼ାଖଣ୍ଡ — କ୍ଳୀ. ବି. ଗଣେଶ ପୁରାଣର ଦ୍ୱିତୀୟ ଭାଗର ନାମ ।
କ୍ରୀଡ଼ାଗାର — ବି. (୬ତତ୍) ଖେଳଘର, ଆଖଡ଼ା, ଯେଉଁ ଘରେ ଖେଳନ୍ତି, ପିଲାଙ୍କ ଧୂଳିଘର ।
କ୍ରୀଡ଼ାଗୃହ — କ୍ଳୀ. ବି. ଖେଳିବାଘର, କ୍ରୀଡ଼ାଗାର (ଦେଖ) ।
କ୍ରୀଡ଼ାଚଟୁ — ବି. ବାବୁଡ଼ି ।
କ୍ରୀଡ଼ାଛଳ — କ୍ଳୀ. ବି. (୬ତତ୍) କ୍ରୀଡ଼ାବ୍ୟପଦେଶ, ଖେଳର ଛଳ ।
କ୍ରୀଡ଼ାନାରୀ — ସ୍ତ୍ରୀ.ବି. (କ.ଧା) ବେଶ୍ୟା ।
କ୍ରୀଡ଼ାନିରତ — ପୁଂ. ବି. (୭ତତ୍)କ୍ରୀଡ଼ାସକ୍ତ, ଖେଳରେ ମାତିଥିବା ।
କ୍ରୀଡ଼ାପର୍ବତ — ବି. (କ.ଧା) ଯେଉଁ ପର୍ବତରେ ସୁଖଭୋଗାର୍ଥ ବିହାର କରାଯାଏ ।
କ୍ରୀଡ଼ାପୁତ୍ତଳ(କା) — ବି. (କ.ଧା) ଖେଳ କଣ୍ଢେଇ(ଲକ୍ଷଣାର୍ଥ)ପରବୁଦ୍ଧିରେ ଚାଳିତ ବ୍ୟକ୍ତି ।
କ୍ରୀଡ଼ାପୁତ୍ତଳୀ — ବି. (କ୍ରୀଡ଼ା + ପୁତ୍ତଳୀ) କ୍ରୀଡ଼ାପୁତ୍ତଳିକା (ଦେଖ) ।
କ୍ରୀଡ଼ାଭୂମି — ବି. (୬ତତ୍) କ୍ରୀଡ଼ାକ୍ଷେତ୍ର, ଖେଳପଡ଼ିଆ ।
କ୍ରୀଡ଼ାମନ୍ଦିର — ବି. (୬ତତ୍) କ୍ରୀଡ଼ାଗାର (ଦେଖ) ।
କ୍ରୀଡ଼ାମୟ — ବିଂ. (କ୍ରୀଡ଼ା + ମୟ) ଯେ ବେଶି ସମୟ ଖେଳିବାକୁ ଭଲ ପାଏ, (ସ୍ତ୍ରୀ) କ୍ରୀଡ଼ାମୟୀ ।
କ୍ରୀଡ଼ାମୟୂର — ପୁଂ. ବି. (କ.ଧା) ଖେଳିବାର ମୟୂର, କୌତୁକାର୍ଥ ପାଳିତ ମୟୂର । [ ପେ.ଶାଜାବ ।
କ୍ରୀଡ଼ାମୃଗ — ପୁଂ.ବି. ଖେଳିବାର ହରିଣ ।
କ୍ରୀଡ଼ାଯାନ — କ୍ଳୀ.ବି. ପୁଷ୍ପରଥ ।
କ୍ରୀଡ଼ାରତ — ବିଂ. (୭ତତ୍) କ୍ରୀଡ଼ାନିରତ (ଦେଖ) ।
କ୍ରୀଡ଼ାରତ୍ନ — କ୍ଳୀ. ବି. ରତିକ୍ରିୟା ।
କ୍ରୀଡ଼ାରଥ — ପୁଂ. ବି. (୬ତତ୍)ପୁଷ୍ପରଥ, ଖେଳିବାର ଗାଡ଼ି,ଖେଳିବାର ଶକଟ ।
କ୍ରୀଡ଼ାରସାତଳ — କ୍ଳୀ.ବିଂ. ଦୃଶ୍ୟ,କାବ୍ୟବିଶେଷ । (ଦେଖ) ।
କ୍ରୀଡ଼ାରାମ — ବି. (କର୍ମଧା) କ୍ରୀଡ଼ୋଦ୍ୟାନ
କ୍ରୀଡ଼ାବସର — ବି.(୬ତତ୍) କ୍ରୀଡ଼ାକରିବା ନିମନ୍ତେ ଛାତ୍ରଙ୍କୁ ଦିଆଯିବା ଅବସର, ଖେଳଛୁଟି, ଖେଳଶେଷ ।
କ୍ରୀଡ଼ାବାନ୍ — ପୁଂ. ବି. (କ୍ରୀଡ଼ା + ବତ୍) କ୍ରୀଡ଼ା ନିରତ(ଦେଖ),(ସ୍ତ୍ରୀ)କ୍ରୀଡ଼ାବତୀ ।
କ୍ରୀଡ଼ାବିଦ୍ — ପୁଂ. ବି. (କ୍ରୀଡ଼ା + ବିଦ୍ + କ୍ୱିପ୍) କ୍ରୀଡ଼ା କୁଶଳ (ଦେଖ) ।
କ୍ରୀଡ଼ାବିଦ୍ୟା — ସ୍ତ୍ରୀ.ବି. କ୍ରୀଡ଼ାକଳା।(ଦେଖ)
କ୍ରୀଡ଼ାବିଶାରଦ — ପୁଂ. ବିଂ. (୭ତତ୍) କ୍ରୀଡ଼ାକୁଶଳ (ଦେଖ) ।
କ୍ରୀଡ଼ାବେଶ୍ମ — କ୍ଳୀ.ବି.(୬ତତ୍)କ୍ରୀଡ଼ାଗୃହ, କ୍ରୀଡ଼ାଗାର (ଦେଖ) ।
କ୍ରୀଡ଼ାଶକୁନ୍ତ — ପୁଂ.ବି.ଖେଳିବାର ପକ୍ଷୀ, ପୋଷାପକ୍ଷୀ ।
କ୍ରୀଡ଼ାଶୀଳ — ବିଂ. (ବି.ସ୍ତ୍ରୀ) ନିରନ୍ତର ଖେଳିବାର ଯାହାର ସ୍ୱଭାବ ।
କ୍ରୀଡ଼ାଶୈଳ — ପୁଂ. ବି. କ୍ରୀଡ଼ାପର୍ବତ, ବିହାରପର୍ବତ । [ ଭକ୍ତ ।
କ୍ରୀଡ଼ାସକ୍ତ — ପୁଂ.ବି. (୭ତତ୍)ଖେଳରେ
କ୍ରୀଡ଼ାସରଃ — କ୍ଳୀ.ବି. ଯେଉଁ ପୁଷ୍କରିଣୀରେ ଖେଳାଯାଏ ।
କ୍ରୀଡ଼ାସ୍ଥାନ — କ୍ଳୀ.ବି. ଖେଳିବାର ଜାଗା ।
କ୍ରୀଡ଼ି — ତ୍ରି.ବିଂ. (କ୍ରୀଡ଼୍ + ଇ) କ୍ରୀଡ଼କ, ଯେ ଖେଳକରେ ।
କ୍ରୀଡ଼ିତା — ତ୍ରି.ବିଂ. (କ୍ରୀଡ଼ + ତୃ)କ୍ରୀଡ଼କ, ଯେ ଖେଳକରେ ।
କ୍ରୀଡ଼ୀ — ତ୍ରି.ବି. (କ୍ରୀଡ଼ + ଇନ୍) କ୍ରୀଡ଼ାଶୀଳ, ଯେ ସବୁବେଳେ ଖେଳିବାକୁ ଭଲପାଏ ।
କ୍ରୀଡ଼ୁ — ବି.(କ୍ରୀଡ଼୍ + ଉ)କ୍ରୀଡ଼ାକାରକ ।
କ୍ରୀଡ଼ୋଦ୍ଦେଶ — ପୁଂ. ବି.(୬ତତ୍) କ୍ରୀଡ଼ାସ୍ଥାନ, ଖେଳପଡ଼ିଆ ।
କ୍ରୀଡ଼ୋପସ୍କର — ପୁଂ.ବି. (୬ତତ୍) କାଠ ପ୍ରଭୃତିରେ ନିର୍ମିତ ଘୋଡ଼ା ।
କ୍ରୀତ — ତ୍ରି. ବିଂ. (କ୍ରୀ + ମ୍ନି,ତ) କିଣାଯାଇଥିବା (ବସ୍ତୁ), ବଶୀଭୂତ, (ସ୍ତ୍ରୀ) କ୍ରୀତା, (ବି) କ୍ରୀତପୁତ୍ର ।
କ୍ରୀତକ — ତ୍ରି. ବିଂ. (କ୍ରୀତ + କ) ଖରିଦ ଦ୍ୱାରା ପ୍ରାପ୍ତ, (ବି) କ୍ରୀତପୁତ୍ର ।
କ୍ରୀତଦାସ — ପୁଂ.ବି. (କ.ଧା) କିଣାଜନ, ଗୋଲାମ, (ସ୍ତ୍ରୀ) କ୍ରୀତଦାସୀ ।

କ୍ରୀତପୁତ୍ର—ପୁଂ.ବି. (କ.ଧା) ପିଲାର ବାପ ମାଆଙ୍କୁ କିଛି ଧନ ଦେଇ ଆଣି ଶିଶୁକାଳରୁ ଆପଣାର ପୁଅପରି ପାଳିଥିବା ପୁତ୍ର ।

କ୍ରୀତପୁତ୍ରକ—ପୁଂ.ବିଂ. (କ୍ରୀତପୁତ୍ର + କ) କ୍ରୀତପୁତ୍ର (ଦେଖ), ସ୍ତ୍ରୀ. କ୍ରୀତପୁତ୍ରିକା ।

କ୍ରୀତାନୁଶୟ—ପୁଂ. ବି. କୌଣସି ଜିନିଷ କିଣିକରି ପଛରେ ଅନୁତାପ କରିବା, ବିକେତାକୁ ଫେରାଇ ଦେବା ।

କ୍ରୁଞ୍ଚ—ପୁଂ.ବିଂ. (କୁନଚ୍ + ଅ)କାଣ୍ଡିବଗ, ହଂସ, କ୍ରୌଞ୍ଚପର୍ବତ ।

କ୍ରୁଞ୍ଚକୀୟ—ବି. ବିଂ. ବୀଣାର ନିକଟବର୍ତ୍ତୀ ଦେଶାଦି ।

କ୍ରୁଞ୍ଚା—ସ୍ତ୍ରୀ.ବି.(କ୍ରୁଞ୍ଚ + ଆ)ବୀଣାବିଶେଷ ।

କ୍ରୁଞ୍ଚାମାନ୍—ବି. ବିଂ. ବୀଣାଯୁକ୍ତ,ବକାଯୁକ୍ତ, ଯାହାର ମାଈ ବକପକ୍ଷୀ ଅଛି ।

କ୍ରୁତ୍ - ସ୍ତ୍ରୀ ବି. (କ୍ରୁଧ + ଭା.କ୍ୱିପ୍) କ୍ରୋଧ, ରାଗ ।

କ୍ରୁଦ୍ଧ—ପୁଂ.ବିଂ. ରାଗାନ୍ୱିତ, କୋପଯୁକ୍ତ, ରୁଷ୍ଟ, କୁପିତ (ବି.)କ୍ରୋଧ, ରାଗ, (ସ୍ତ୍ରୀ) କ୍ରୁଦ୍ଧା ।

କ୍ରୁଧା—ସ୍ତ୍ରୀ. ବି. ( କ୍ରୁଧ୍ + କ୍ୱିପ୍ + ଆ ) କ୍ରୋଧ, କୋପ ।

କ୍ରୁଧ୍ମୀ—ବିଂ. ବିଂ. ( କ୍ରୁଧ + ମିନ୍ ) ରାଗାନ୍ୱିତ, କ୍ରୋଧସ୍ୱଭାବ ।

କ୍ରୁନ୍ତ—(ଧାତୁ) ଆଲିଙ୍ଗନ କରିବା ।

କ୍ରୁମୁ—ବି. ବିଂ. ସର୍ବଦା ଗମନଶୀଳ, (ସ୍ତ୍ରୀ.ବି.) ସିନ୍ଧୁନଦୀର ଗୋଟିଏ ଶାଖା ନଦୀ ।

କ୍ରୁମୁକ—ପୁଂ.ବିଂ. ସୁପାରି, ଗୁଆ।

କ୍ରୁଶ୍ୱରୀ—ସ୍ତ୍ରୀ.ବି. ଶୃଗାଳୀ, ମାଈଶିଆଳ ।

କ୍ରୁଷ୍ଟା—ପୁଂ.ବି ଶୃଗାଳ ।

କ୍ରୁଷ୍ଟ—କ୍ଲୀ. ବି. (କ୍ରୁଶ୍ + ତ) ରୋଦନ। ଧ୍ୱନି, ରବ, ନାଦ, ( ବିଂ ) ଆହୂତ, ଅଭିଶପ୍ତ, କଥିତ, ଅପ୍ରିୟ ।

କ୍ରୂର—ବିଂ. (କ୍ରୁ + ର) ଦୁଷ୍ଟ, ନିର୍ଦ୍ଦୟ, ପରର ଅନିଷ୍ଟକାରକ,ଖଳ, କର୍ତ୍ତ୍ରିକଟୁ, ଭୀଷଣ, ଟାଣୁଆ, କଠିନ,ଅଶୁଭ, କଞ୍ଚା, ଘୋର, ଉଷ୍ଣ, (ପୁଂ) ବିଷମ ରାଶି,ପାପଗ୍ରହ, ଛଞ୍ଚାଣ, ଘାତ, ବଗ, ଶନିଗ୍ରହ, ରାହୁ, ହତ୍ୟା, ଯନ୍ତ୍ର, ନିଷ୍ଠୁର କର୍ମ. ରକ୍ତକନିଅର, ଭୂତାଙ୍କୁଶବୃକ୍ଷ, ତ ଉଁଶ ।

କ୍ରୂରକର୍ମା—ପୁଂ.ବି. (ବ.ବ୍ରୀ)ହିଂସାକର୍ମକାରୀ, ନିଷ୍ଠୁର କାର୍ଯ୍ୟକାରୀ, ନୃଶଂସ, ନିର୍ଦ୍ଦୟ,(ବି)କୁଟରୁମ୍ଭିଣୀବୃକ୍ଷ,ଅର୍କବୃକ୍ଷ ।

କ୍ରୂରକୃତ୍—ପୁଂ. ବି. ( କ୍ରୂର + କୃ + କ୍ୱିପ୍) ନିର୍ଦ୍ଦୟ, କ୍ରୂରକର୍ମକାରୀ ।

କ୍ରୂରକୋପ—ପୁଂ.ବି. (ବ.ବ୍ରୀ) ଯାହାର କୋପ ପରିଷ୍କୃତ ନାହିଁ ।

କ୍ରୂରଗନ୍ଧ—ପୁଂବି. (ବ.ବ୍ରୀ) ଗନ୍ଧକ, (ବିଂ) ତୀକ୍ଷ୍ଣଗନ୍ଧଯୁକ୍ତ ।

କ୍ରୂରଗନ୍ଧା—ସ୍ତ୍ରୀ.ବି. କନ୍ଥାରୀବୃକ୍ଷ ।

କ୍ରୂରତା—ସ୍ତ୍ରୀ. ବି.(କ୍ରୂର + ଭା,ତା)ପରଦ୍ରୋହ,ନିର୍ଦ୍ଦୟତା,କଠିନତା,ଘୋରତା, ତୀକ୍ଷ୍ଣତା ।

କ୍ରୂରଦନ୍ତୀ—ସ୍ତ୍ରୀ. ବି. ଦୁର୍ଗା ।

କ୍ରୂରଦୃକ୍—ପୁଂ. ବି. (କ୍ରୂର + ଦୃଶ୍ + କ୍ୱିପ୍ )ଦୁଷ୍ଟ,(ବି)ଶନିଗ୍ରହ, ମଙ୍ଗଳଗ୍ରହ, ଖେଳ, ହିଂସ୍ର, (ସ୍ତ୍ରୀ.ବି) ପାପଗ୍ରହର ଦୃଷ୍ଟି । [ଦୁଦୁରା ।

କ୍ରୂରଧୂର୍ତ୍ତ—ପୁଂ. ବି. କଳାଧୁତୁରା,କଳା-

କ୍ରୂରପ୍ରସାଦନ—କ୍ଲି. ବି. ଯେ ଦୁଷ୍ଟ ବ୍ୟକ୍ତିକୁ ସେବାଦ୍ୱାରା ସନ୍ତୁଷ୍ଟ କରେ, (ବି) କ୍ରୂର ବ୍ୟକ୍ତିର ପ୍ରସନ୍ନତା ପ୍ରୀତି ।

କ୍ରୂରମତି—ପୁଂ. ବିଂ. (ବ.ବ୍ରୀ) ନିଷ୍ଠୁର, ଯାହାର ମନରେ ଦୟାର ଲେଶ ନାହିଁ ।

କ୍ରୂରରବ—ପୁଂ. ବି (ବ.ବ୍ରୀ) ଡାମରା କାଉ ।

କ୍ରୂରରାବୀ—ପୁଂ.ବି. ଡାମରା କାଉ, ବିଂ. (କ୍ରୂରରାବ + ଇନ୍ ) ଯେ କଠୋର ଶବ୍ଦ କରେ, (ସ୍ତ୍ରୀ) ରାବିଣୀ ।

କ୍ରୂରଲୋଚନ—ପୁଂବି.(ବ.ବ୍ରୀ) ଶନିଗ୍ରହ, (ବିଂ) ଅଶୁଭ ଦୃଷ୍ଟିଯୁକ୍ତ. (ସ୍ତ୍ରୀ) କ୍ରୂରଲୋଚନା ।

କ୍ରୂରସ୍ୱର—ପୁଂ. ବିଂ. (ବ.ବ୍ରୀ) କର୍କଶ ଧ୍ୱନିଯୁକ୍ତ, ବି. (କ.ଧା) କର୍କଶ କଣ୍ଠଧ୍ୱନି. (ସ୍ତ୍ରୀ) କ୍ରୂରସ୍ୱରା ।

କ୍ରୂରସର୍ବୌଷଧି—ସ୍ତ୍ରୀ. ବି. ଗନ୍ଧମାଦନର ନିକଟବର୍ତ୍ତୀ କୈଳାସ ପର୍ବତର ଦକ୍ଷିଣରେ ଅବସ୍ଥିତ ପର୍ବତ ।

କ୍ରୂରା—ସ୍ତ୍ରୀ.ବି.ରକ୍ତ ପୁନର୍ଣ୍ଣବା,ବରାଟକ, କଉଡ଼ି ।

କ୍ରୂରାକୃତି—ବି.ବିଂ. (ବ.ବ୍ରୀ) ଯାହାର ମୂର୍ତ୍ତି ଅତିଶୟ କର୍କଶ, ଭୀଷଣାକାର, (ପୁଂ.ବି) ରାବଣ, (ସ୍ତ୍ରୀ.ବି) କଠିନମୂର୍ତ୍ତି, ଭୀଷଣ ଚେହେରା ।

କ୍ରୂରାକ୍ଷ—ପୁଂ. ବି.(ବ.ବ୍ରୀ) ଯାହାର ଆଖି ଦୁଇଟି ଅତିଶୟ କର୍କଶ ।

କ୍ରୂରାତ୍ମା—ପୁଂ.ବି. ( ବ.ବ୍ରୀ ) ଯାହାର ସ୍ୱଭାବ ଅତିଶୟ କୁଟିଳ ।

କ୍ରୂରାଶୟ—ପୁଂ. ବି (ବ.ବ୍ରୀ) ଯାହାର ଉଦ୍ଦେଶ୍ୟ ଭଲ ନୁହେ ।

କ୍ରୂଟ—ପୁଂ.ବିଂ.ପକ୍ଷୀବିଶେଷ (କ୍ଲୀ. ବି.) ଜାଡି, ଶୁଣ୍ଡ୍ରୁ ।

କ୍ରେଣି—ବି.ବି.ଂ (କ୍ରୀ + ଭା,ଣି) କେତା, ଯେ କିଣେ, (ବି) କିଣିବା, କ୍ରୟ ।

କ୍ରେତବ୍ୟ—ବି. ବିଂ. (କ୍ରୀ + ର୍ମ,ତବ୍ୟ) କିଣିବାର ଯୋଗ୍ୟ, କ୍ରୟବିଷୟ, ଯାହା କିଣାଯିବ ।

କ୍ରେତା—ପୁଂ. ବିଂ (କ୍ରୀ + ତୃ) ଯେ କ୍ରୟ କରେ, ଖରିଦଦାର, ମୁସ୍ତୁରୀ, (ସ୍ତ୍ରୀ) କ୍ରେତ୍ରୀ ।

କ୍ରେୟ—ବିଂ.ବି. (କ୍ରୀ + ର୍ମ,ଯ)କିଣିବାର ଯୋଗ୍ୟ, ଯାହା ଖରିଦକରିବାକୁ ମିଳେ, ଶସ୍ତା, (ବି) କିଣା, କ୍ରୟ ।

କ୍ରୈଡ଼ମାୟୁ—ସ୍ତ୍ରୀ. ବି. ଯଜ୍ଞବିଶେଷ ।

କ୍ରୈବ୍ୟ—ପୁଂ.ବି.ପାଞ୍ଚାଳଦେଶର ରାଜା ।

କ୍ରୋକ—ଯା. ବି. ଅଟକ, ଆବଦ୍ଧ, କୋରଖ (ଦେଖ) ।

କ୍ରୋକୀ—ଯାହା ଆବଦ୍ଧ କରାଯାଇଅଛି ।

କ୍ରୋଙ୍ଗ—ଏକପ୍ରକାର କ୍ଷୁଦ୍ରବୃକ୍ଷରନାମ ।

କ୍ରୌଞ୍ଚ—ପୁଂ. ବି. (କ୍ରୁଞ୍ଚ + ଅ) ପର୍ବତବିଶେଷ ।

କ୍ରୌଞ୍ଚକୁମାରିକା—ସ୍ତ୍ରୀ.ବି. ରାକ୍ଷସୀଭେଦ ।

କ୍ରୌଞ୍ଚଦାରଣ—ପୁଂ.ବି.(କ୍ରୌଞ୍ଚ + ଦୃ + ଣିଚ୍ + ଅନ) କାର୍ତ୍ତିକେୟ ।

କ୍ରୌଞ୍ଚପଦୀ—ସ୍ତ୍ରୀ.ବି. ତୀର୍ଥବିଶେଷ ।

କ୍ରୋଠ — ଗ୍ରା.ବି. କୋଠର (ଦେଖ) ।

କ୍ରୋଠନ — ବି. ଇସୁପାଲ, କନକା ।

କ୍ରୋଡ଼ — ପୁଂ.ବି.(କ୍ରୁଡ଼୍ + କ,ଅ) ଶୂକର, ଘଷୁରି, (କ୍ଲୀ) ବାହୁର ମଧ୍ୟଭାଗ, ଛାତି,ଗୁହା, ଗଣ୍ଡି,କୋଳ,ବୃକ୍ଷକୋଟର ।

କ୍ରୋଡ଼କନ୍ୟା — ସ୍ତ୍ରୀ. ବି. ବାରାହୀକନ୍ଦ, ବାରଆକନ୍ଦ ।

କ୍ରୋଡ଼କଶେରୁକ — ପୁଂ. ବି. ଭଦ୍ରମୁସ୍ତା, ନାଗରମୁଥା ।

କ୍ରୋଡ଼ଚୂଡ଼ା — ସ୍ତ୍ରୀ.ବି. ବଡ଼ଥାଲକୁଣିଗଛ ।

କ୍ରୋଡ଼ଚ୍ୟୁତ — ବିଂ. କୋଳରୁ ପଡ଼ି ଯାଇ ଥିବା, ହାତଛଡ଼ା ।

କ୍ରୋଡ଼ପତି — ଗ୍ରା. ବି. ଯାହାର ପାଖରେ ଏକକୋଡ଼ି ଟଙ୍କାଅଛି, କୋଡ଼ିପତି ।

କ୍ରୋଡ଼ପତ୍ର — କ୍ଲୀ. ବି. (କ.ଧା) ଅତିରିକ୍ତ ପତ୍ରିକା,ପୁସ୍ତକର କୌଣସି ଅଂଶ ପତିତ ବା ପରିତ୍ୟକ୍ତ ହେଲେ ଯେଉଁ ପତ୍ରରେ ଲେଖି ତହିଁରେ ଯୋଜନା କରାଯାଏ ।

କ୍ରୋଡ଼ପର୍ଣ୍ଣୀ — ସ୍ତ୍ରୀ.ବି. (ବ.ବ୍ରୀ) କଣ୍ଟକାରୀ ବୃକ୍ଷ । [କଇଁଛ ।

କ୍ରୋଡ଼ପାଦ — ପୁଂ.ବି. (ବ.ବ୍ରୀ) କଚ୍ଛପ,

କ୍ରୋଡ଼ମଲ୍ଲକ — ପୁଂ.ବିଂ ଭିକ୍ଷୁକ,ଭିଖାରି ।

କ୍ରୋଡ଼ସ୍ଥ — ବିଂ. (କ୍ରୋଡ଼ + ସ୍ଥା + ଅ) କୋଡ଼ରେ ଥିବା, କୋଡ଼ର, ଅବଧି ମାତୃକୋଳ ଛାଡ଼ି ନଥିବା (ଶିଶୁ), କୌଣସି ବସ୍ତୁର ଭିତରେ ଥିବା ।

କ୍ରୋଡ଼ା — ସ୍ତ୍ରୀ. ବି. (କ୍ରୋଡ଼ + ଆ) ଶୂକରୀ, ବାହୁରମଧ୍ୟ, ଅଙ୍କ, କୋଳ, ବକ୍ଷ ।

କ୍ରୋଡ଼ାଙ୍କ — ବି. (ବ.ବ୍ରୀ) କ୍ରୋଡ଼ପାଦ, (ଦେଖ)

କ୍ରୋଡ଼ାଙ୍ଗ — ପୁଂ. ବି. (ବ.ବ୍ରୀ) କଚ୍ଛପ, କଇଁଛ ।

କ୍ରୋଡ଼ାଙ୍ଘ୍ରି — ପୁଂ. ବି. (ବ.ବ୍ରୀ) କଚ୍ଛପ, କଇଁଛ ।

କ୍ରୋଡ଼ୀ — ସ୍ତ୍ରୀ.ବି. ଶୂକରୀ, ବରାହକାନ୍ତାସ୍ଥ । ସ୍ତ୍ରୀ. ବାରାହୀକନ୍ଦ ।

କ୍ରୋଡ଼ୀକରଣ — କ୍ଲୀ. ବି. (କ୍ରୋଡ଼ + ଚ୍ୱି + କୃ + ଅନ) ଆଲିଙ୍ଗନ,କୋଳକରିବା, କୁଣ୍ଢାଇବା ।

କ୍ରୋଡ଼ୀକୃତ — ପୁଂ. ବିଂ. (କ୍ରୋଡ଼ + ଚ୍ୱି + କୃ,ମିଁ,ତ) ଯାହା କୋଳକରାହୋଇ-ଅଛି, ଆଲିଙ୍ଗିତ, ଆଶ୍ଳେଷୀକୃତ ।

କ୍ରୋଡ଼ୀମୁଖ — ପୁଂ. ବି. ଗଣ୍ଡାର, ଗଣ୍ଡା ।

କ୍ରୋଡ଼ୀମୁଖୀ — ସ୍ତ୍ରୀ. ବି. ଗଣ୍ଡାରର ସ୍ତ୍ରୀ, ମାଈଗଣ୍ଡା ।

କ୍ରୋଡ଼େଷ୍ଟା — ସ୍ତ୍ରୀ.ବି. ଭଦ୍ରମୁସ୍ତା,ନାଗର-ମୁଥା, ମୁଥା ।

କ୍ରୋଥ — ପୁଂ.ବି. (କ୍ରୁଥ + ଅ) ହିଂସା, ଖନନ ।

କ୍ରୋଧ — ପୁଂ.ବି. (କ୍ରୁଧ୍ + ଭା,ଅ) ରାଗ, ଦ୍ୱେଷ, ରୋଷ, କୋପ, ରୌଦ୍ରରସ ଉଦ୍ରେକକାରୀ ମନୋଭାବ, ଶୋକର ଆବେଗ, ଲୋଭର ପୁତ୍ର, ସ୍ୱୀୟଭଗିନୀ ହିଂସାସହିତରେ ଏହାର ବିବାହ ହୁଏ, ଏହାଙ୍କର ପୁତ୍ର କଳି, କନ୍ୟା ଦୁରୁକ୍ତି ।

କ୍ରୋଧପୂଜିବା — ଗ୍ରା.କ୍ରି. ଶୋକର ହପା ଉଠିବା, କ୍ରୋଧଉଠିବା ।

କ୍ରୋଧକଷାୟ(ସ୍ୱିତ) — ବିଂ.(୩ତତ୍) ରାଗରେ ଲାଲଆ ହୋଇ ଯାଇଥିବା (ମୁହଁ ବା ଆଖି) ।

କ୍ରୋଧକୃତ୍ — କ୍ରି. ବିଂ. (କ୍ରୋଧ୍ + କୃ + କ୍ୱିପ୍) କ୍ରୋଧକାରୀ, (ବି) ପରମେଶ୍ୱର ।

କ୍ରୋଧଜ — ପୁଂ.ବିଂ. (କ୍ରୋଧ + ଜନ୍ + ଡ,ଅ) ରାଗରୁ ଉତ୍ପନ୍ନ, (ବି) ଅଷ୍ଟବିଧ ବ୍ୟସନ, ମୋହ ।

କ୍ରୋଧଜର୍ଜର — ବିଂ. (୩ତତ୍) କ୍ରୋଧ ଜର୍ଜରିତ (ଦେଖ) ।

କ୍ରୋଧଜର୍ଜରିତ — ବିଂ. (୩ତତ୍) ରାଗରେ ଜଳୁଥିବା, କ୍ରୋଧପୂର୍ଣ୍ଣ ।

କ୍ରୋଧନ — ପୁଂ. ବିଂ. (କ୍ରୁଧ୍ + କ.ଅନ) ରାଗୀ,ଚଞ୍ଚଳ, କ୍ରୋଧସ୍ୱଭାବଯୁକ୍ତ,ଦ୍ୱେଷ-ଯୁକ୍ତ, ହଠାତ୍ ଯାହାର କ୍ରୋଧଜନ୍ମେ (ବି) ମହାଦେବଙ୍କର ଅନୁଚର ଭୈରବ-ବିଶେଷ, ରାଗ, କୌଶିକଙ୍କର ଜଣେ ପୁତ୍ର, (ସ୍ତ୍ରୀ) କ୍ରୋଧନା,ଚଣ୍ଡ ପ୍ରକୃତି ସ୍ତ୍ରୀ ।

କ୍ରୋଧନା — ସ୍ତ୍ରୀ. ବି. (କ୍ରୋଧନ + ଆ) କ୍ରୋଧନର ସ୍ତ୍ରୀଲିଙ୍ଗ, (ବି) ଚଣ୍ଡପ୍ରକୃତି ସ୍ତ୍ରୀ ।

କ୍ରୋଧନବୃଦ୍ଧି — ବି. (୬ତତ୍) ରାଗ ଅଣ୍ଡା ହେବା ।

କ୍ରୋଧନୀୟ — କ୍ରି. ବିଂ. (କ୍ରୁଧ + ଅନୀୟ) ରାଗିବାର କାରଣ,ଯାହା କ୍ରୋଧ ଜନ୍ମାଏ (ବି) ଅନିଷ୍ଟ, କ୍ଷତ । [କ୍ରୋଧୀ ।

କ୍ରୋଧପରାୟଣ — କ୍ରି.ବିଂ.(ବ.ବ୍ରୀ) ଅତ୍ୟନ୍ତ

କ୍ରୋଧପୂର୍ଣ୍ଣ — ବିଂ.(୩ତତ୍) ରାଗରେ ଭରା ।

କ୍ରୋଧପ୍ରକୃତି — ବି.(କ.ଧା) ରାଗିବା ଖେଇ ବିଂ. (ବ.ବ୍ରୀ) ଯେ ସ୍ୱଭାବତଃରାଗୀ, ଚଞ୍ଚଳ ।

କ୍ରୋଧବହ୍ନି — ପୁଂ. ବି.(କ.ଧା) ନିଆଁପରି ଜଳି ଉଠୁଥିବା ରାଗ, ଭୟଙ୍କର ରାଗ ।

କ୍ରୋଧଭର — ବିଂ.(କ୍ରୋଧ + ଭୃ + କ,ଅ) କ୍ରୋଧାନ୍ୱିତ, (ସ୍ତ୍ରୀ) କ୍ରୋଧଭରା ।

କ୍ରୋଧମୟ — କ୍ରି. ବି. (କ୍ରୋଧ + ମୟ) ରାଗାନ୍ୱିତ,କ୍ରୁଦ୍ଧ,କ୍ରୋଧଭର (ବାକ୍ୟ) ।

କ୍ରୋଧମୁଖ — ବି.(କ.ଧା) କ୍ରୋଧଜର୍ଜରିତ ମୁଖ, ପୁଂ. ବି. (ବ.ବ୍ରୀ) ଯାହା ମୁହଁ କ୍ରୋଧରେ ଜଳୁଅଛି ।

କ୍ରୋଧମୂର୍ଚ୍ଛିତ — କ୍ରି. ବିଂ. ଅତିଶୟ ରାଗୀ, ରାଗରେ ଜ୍ଞାନଶୂନ୍ୟ ।

କ୍ରୋଧରଞ୍ଜିତ — ବିଂ. (୩ତତ୍) କ୍ରୋଧ-କଷାୟିତ (ଦେଖ) ।

କ୍ରୋଧବର୍ଦ୍ଧନ — ବି.ଅନିଷ୍ଟସୂଚକ ବାକ୍ୟାଦି (ପୁଂ) ଅସୁରବିଶେଷ ।

କ୍ରୋଧବଶ — ପୁଂ.ବିଂ.କ୍ରୋଧର ଅଧୀନତା, (ବିଂ) ଅତିଶୟ ରାଗୀ । (ଦେଖ) ।

କ୍ରୋଧଶାନ୍ତି — ବି. [୬ତତ୍] କ୍ରୋଧନବୃଦ୍ଧି

କ୍ରୋଧସମ୍ଭବ — ପୁଂ.ବି. ମୋହ ।

କ୍ରୋଧସ୍ଥାନ - ଗ୍ରା.ବିଂ. (କ୍ରୋଧଯୁକ୍ତ,ରାଗାନ୍ୱିତ

କ୍ରୋଧହନ୍ତା — ପୁଂ. ବି. ଗୋଟିଏ ଅସୁରର ନାମ ।

କ୍ରୋଧହା — ପୁଂ.ବି. (କ୍ରୋଧ + ହନ୍ + କ୍ୱିପ୍) ବିଷ୍ଣୁ, (ବିଂ) କୋପନାଶକ ।

କ୍ରୋଧା — ସ୍ତ୍ରୀ.ବି. ଦକ୍ଷରାଜାଙ୍କର ଗୋଟିଏ କନ୍ୟା । [କର ରାଗ ।

କ୍ରୋଧାଗ୍ନି — ପୁଂ.ବି. କ୍ରୋଧବହ୍ନି, ଭୟଂ-

କ୍ରୋଧାନଳ — ପୁଂ. ବି. କ୍ରୋଧାଗ୍ନି (ଦେଖ)

କ୍ରୋଧାନ୍ଧ — ପୁଂ, ବି. (୩ତତ୍) କ୍ରୋଧ-ଯୋଗୁଁ ବାହ୍ୟଜ୍ଞାନ ଶୂନ୍ୟ ।

କ୍ରୋଧାନ୍ୱିତ—ବି.ବଂ. (୩ତତ୍)କ୍ରୋଧ-ଯୁକ୍ତ, କ୍ରୁଦ୍ଧ, ରାଗାନ୍ୱିତ ।

କ୍ରୋଧାଳୁ—ବି.ବଂ. (ବ.ବ୍ରୀ) କୋପନ-ସ୍ୱଭାବ, ରାଗାନ୍ୱିତ, କ୍ରୋଧନ (ଦେଖ)।

କ୍ରୋଧୀ—ପୁଂ. ବ. (କ୍ରୋଧ+ଇନ୍)ଯେ ଶୀଘ୍ର ରାଗିଯାଏ, ରାଗୀ, କ୍ରୁଦ୍ଧ, (ବ) ମହିଷ ।

କ୍ରୋଧୀ—ସ୍ତ୍ରୀ.ବ. (କ୍ରୋଧ+ଈ) ଦକ୍ଷଙ୍କ କନ୍ୟା, କଶ୍ୟପଙ୍କ ଅନ୍ୟତମା ପତ୍ନୀ ।

କ୍ରୋଧୀଶଭୈରବ—ପୁଂ. ବ. ଭୈରବ ଭେଦକାର । [କୋପୋତ୍ପାଦକ ।

କ୍ରୋଧୋଦ୍ଦୀପକ—ବଂ. କ୍ରୋଧଜନକ,

କ୍ରୋଧୋଦ୍ଗମ—ବ. (୬ତତ୍) କ୍ରୋଧ ଉଠିବା ।

କ୍ରୋଧୋଦ୍ରେକ—ବ. (୬ତତ୍) କ୍ରୋଧ ଜନ୍ମି କ୍ରୋଧରବୃଦ୍ଧି ଓ କ୍ରୋଧରଉପଶମ ।

କ୍ରୋଧୋନ୍ମତ୍ତ—ବଂ.(୩ତତ୍)କ୍ରୋଧଦ୍ୱାରା ଉନ୍ମତ୍ତ, ଅତକ୍ରୋଧ ହେତୁରୁ ବିବେ-ଚନାଶୂନ୍ୟ, (ସ୍ତ୍ରୀ) କ୍ରୋଧୋନ୍ମତ୍ତା ।

କ୍ରୋଧୋପଶମ - ପୁଂ. ବଂ. (୬ତତ୍) କୋପର ଶାନ୍ତି, କ୍ରୋଧର ନିବୃତ୍ତି ।

କ୍ରୋର—ଏକଶତଲକ୍ଷ, କୋଟି, କୁରର ପକ୍ଷୀ, ଚିଲ୍ଲ ।

କ୍ରୋଶ—ପୁଂ. ବ. (କ୍ରୁଶ୍+ର୍ମ,ଅ) ଦୁଇ ମାଇଲ,(ଏକକୋଶ ବା ୮୦୦୦ହାତ) କ୍ରନ୍ଦନ, ଆହ୍ୱାନ ।

କ୍ରୋଶନ—କ୍ଲୀ. ବ. (କ୍ରୁଶ୍+ଣ, ଅନ) କ୍ରନ୍ଦନ, କାତରଧ୍ୱନି, ଆହ୍ୱାନ ।

କ୍ରୋଶଯୁଗ - କ୍ଲୀ.ବ.ଦୁଇକ୍ରୋଶ,ଗବ୍ୟୂତ ।

କ୍ରୋଶୀ—ପୁଂ. ବ. (କ୍ରୋଶ+ଇନ୍) ଶବ୍ଦକାରକ ।

କ୍ରୋଷ୍ଟା—ପୁଂ.ବ.(କ୍ରୁଶ୍+ତ,ତୃ)ଶୃଗାଳ, ବିଲୁଆ, ଶିଆଳ ।

କ୍ରୋଷ୍ଟୁ—ପୁଂ.ବ.(କ୍ରୁଶ୍+ତୁ)ଶୃଗାଳ, ଶିଆଳ, ଯଦୁବଂଶୀୟ ଜଣେ ରାଜା ।

କ୍ରୋଷ୍ଟୁକ—ପୁଂ. ବ. (କ୍ରୋଷ୍ଟୁ+କ) ଶିଆଳ, ଶୃଗାଳ ।

କ୍ରୋଷ୍ଟୁକପୁଚ୍ଛିକା—ସ୍ତ୍ରୀ.ବ. ପୃଶ୍ନିପର୍ଣ୍ଣୀ, ଗୁକୁଲିଆ, ଗୋଲେମିକା ।

କ୍ରୋଷ୍ଟୁକପୁଚ୍ଛୀ—ସ୍ତ୍ରୀ. ବ. କ୍ରୋଷ୍ଟୁକ-ପୁଚ୍ଛିକା (ଦେଖ) ।

କ୍ରୋଷ୍ଟୁକଶୀର୍ଷଃ—କ୍ଲୀ. ବ. ବାତରକ୍ତଜ ରୋଗବିଶେଷ ।

କ୍ରୋଷ୍ଟୁଫଳ—କ୍ଲୀ. ବ. ଇଙ୍ଗୁଦ୍ରୀ ବୃକ୍ଷ, ପୋଇଗୁନ୍ଦଆ ଗଛ ।

କ୍ରୋଷ୍ଟ୍ରକ୍ଷୁ—ପୁଂ.ବ ଧଳାଆଖୁ, କଲ୍ହାର ଆଖୁ ।

କ୍ରୋଷ୍ଟ୍ରୀ—ସ୍ତ୍ରୀ. ବ. ଧଳାଭୁଇଁ କଖାରୁ, କୃଷ୍ଣବିଦାରୀ, ଶୃଗାଳିକା, ଲଙ୍ଗଳୀ, ଲିଙ୍ଗଲଙ୍ଗଳିଆ ।

କ୍ରୌଞ୍ଚ—ପୁଂ.ବ. (କ୍ରୁନର୍+ଅ)ବକପକ୍ଷୀ, ବଗ, ଦ୍ୱୀପବିଶେଷ, ପର୍ବତବିଶେଷ, ଡାହୁକ,ମୟଦାନବର ପୁତ୍ର ବକାସୁର ।

କ୍ରୌଞ୍ଚଦାରକ—ପୁଂ. ବ. କାର୍ତ୍ତିକେୟ-ଙ୍କର ନାମାନ୍ତର, ପରଶୁରାମ, କୁମାର ।

କ୍ରୌଞ୍ଚଦାରଣ—ପୁଂ. ବ. କ୍ରୌଞ୍ଚଦାରକ (ଦେଖ) ।

କ୍ରୌଞ୍ଚଦ୍ୱୀପ—ପୁଂ. ବ. ସପ୍ତଦ୍ୱୀପାନ୍ତର୍ଗତ ଦ୍ୱୀପବିଶେଷ ।

କ୍ରୌଞ୍ଚପକ୍ଷ—ବ. ଘୋଟକବିଶେଷ ।

କ୍ରୌଞ୍ଚପଦା—ସ୍ତ୍ରୀ. ବ. ଛନ୍ଦୋବିଶେଷ ।

କ୍ରୌଞ୍ଚପଦୀ—ସ୍ତ୍ରୀ. ବ. ତୀର୍ଥବିଶେଷ ।

କ୍ରୌଞ୍ଚପୁର—ଯଦୁବଂଶୀୟ ସାରସ ନାମକ ରାଜାଙ୍କ ନିର୍ମିତ ଗୋଟିଏ ନଗର ।

କ୍ରୌଞ୍ଚବନ୍ଧମ୍—ଅବ୍ୟ.ବନ୍ଧବିଶେଷ ।

କ୍ରୌଞ୍ଚବଧୂ—ସ୍ତ୍ରୀ. ବ. (କ୍ରୌଞ୍ଚ+ବଧୂ) ୬ତତ୍, ମାଈବଗ, ବକ ସ୍ତ୍ରୀ ।

କ୍ରୌଞ୍ଚମିଥୁନ—କ୍ଲୀ. ବ. (୬ତତ୍) ବକ ଦମ୍ପତୀ, ବଗଲା ବଗଲୀ ।

କ୍ରୌଞ୍ଚରନ୍ଧ୍ର—କ୍ଲୀ. ବ. କ୍ରୌଞ୍ଚପର୍ବତର ଗୋଟିଏ ଛିଦ୍ର ।

କ୍ରୌଞ୍ଚରିପୁ—ପୁଂ. ବ. (ବ.ବ୍ରୀ) କାର୍ତ୍ତି-କେୟ, ପରଶୁରାମ ।

କ୍ରୌଞ୍ଚସୂଦନ—ପୁଂ. ବ. (କ୍ରୌଞ୍ଚ+ସୂଦ+ଣିଚ୍+ଅନ) କାର୍ତ୍ତିକେୟ ।

କ୍ରୌଞ୍ଚା—ସ୍ତ୍ରୀ.ବ. (କ୍ରୌଞ୍ଚ+ଆ) ବକା-ଙ୍ଗନା, ବଗୁଲୀ,ପଦ୍ମବୀଜ, ପୁଷ୍କର ମଞ୍ଜି ।

କ୍ରୌଞ୍ଚାଦନ—କ୍ଲୀ.ବ. (କ୍ରୌଞ୍ଚ+ଅଦନ) ପିପ୍ପଳୀ, ତନ୍ତୁ, ମୃଣାଳ ।

କ୍ରୌଞ୍ଚାଦନୀ—ସ୍ତ୍ରୀ. ବ. (କ୍ରୌଞ୍ଚାଦନ+ଈ) ପଦ୍ମବୀଜ ।

କ୍ରୌଞ୍ଚାରଣ୍ୟ—କ୍ଲୀ. ବ. (କ.ଧା) ଜନ ସ୍ଥାନର (ଦଣ୍ଡକାରଣ୍ୟ) ନିକଟବର୍ତ୍ତୀ ଅରଣ୍ୟବିଶେଷ ।

କ୍ରୌଞ୍ଚାରାତି—ପୁଂ.ବ.(କ୍ରୌଞ୍ଚ+ଅରାତି) ୬ତତ୍, କାର୍ତ୍ତିକେୟ, ପରଶୁରାମ ।

କ୍ରୌଞ୍ଚାରି—ପୁଂ.ବ. (୬ତତ୍) କାର୍ତ୍ତି-କେୟ, ପରଶୁରାମ ।

କ୍ରୌଞ୍ଚାରୁଣ—ପୁଂ. ବ. ବ୍ୟୂହବିଶେଷ ।

କ୍ରୌଞ୍ଚିକ—ପୁଂ. ବ. କୌଞ୍ଚକୀର ପୁତ୍ର, ଜଣେ ଋଷି । [ବଗୁଲୀ ।

କ୍ରୋଞ୍ଚୀ—ସ୍ତ୍ରୀ.ବ, (କ୍ରୋଞ୍ଚ+ଈ)ସ୍ତ୍ରୀବଗ,

କ୍ରୌଡ଼—ବଂ. (କ୍ରୋଡ଼+ଅ) ଶୂକର-ସମ୍ବନ୍ଧୀୟ ।

କ୍ରୌର୍ଯ୍ୟ—କ୍ଲୀ. ବ. (କ୍ରୁର+ଯ) ଖଳତା, କ୍ରୂରତା, ନିର୍ଦ୍ଦୟତା ।

କ୍ରୌଶଶତିକ—ପୁଂ. ବ. (କ୍ରୋଶ+ଶତ +ଇକ) ଶତକ୍ରୋଶ ଗମନକାରୀ, ଯେ ଶହେକୋଶ ଯାଇପାରେ, ଶହେ-କୋଶରୁ ଆସିଥିବା ଭିକ୍ଷୁକ ।

କ୍ର୍ୟାଦ୍ର—ପୁଂ. ବ. 'କ୍ରୀ' ଧାରୁ ଆଦ୍ୟରେ ଥାଇ ଯେଉଁ ଗଣପାଠ କରା ହୋଇଛି । (କ୍ର୍ୟାଦ୍ର ଗଣୀୟ)।

କ୍ଲବୀୟାନ୍—ପୁଂ. ବଂ. କ୍ଳେଦବିଶିଷ୍ଟ ।

କ୍ଲନ୍ଦ—ପୁଂ.ବଂ. ଯେ କାନ୍ଦେ, କାନ୍ଦୁଥିବା (ବ୍ୟକ୍ତି), (ପୁଂ.ବ) ରୋଦନ, କାନ୍ଦ ।

କ୍ଲମ—ପୁଂ.ବ. (କ୍ଲମ୍+ଅ) ପରିଶ୍ରମ, ଆୟାସ, ଶ୍ରମ, ଖେଦ ।

କ୍ଲମଥ—ପୁଂ.ବ.ପରିଶ୍ରମ,ଆୟାସ,ଚେଷ୍ଟା।

କ୍ଲମୀ—ପୁଂ.ବ. (କ୍ଲମ୍+ଇନ୍)କ୍ଲାନ୍ତଯୁକ୍ତ।

କ୍ଲାଇବ୍—ପୁଂ. ବ. ଭାରତରେ ବ୍ରିଟିଶ ସାମ୍ରାଜ୍ୟ ପ୍ରତିଷ୍ଠାତା ଓ ବଙ୍ଗଳାର ଶାସନକର୍ତ୍ତା ।

କ୍ଲାନ୍ତ—ବି.ବଂ. (କ୍ଲମ୍+ତ) କ୍ଲାନ୍ତଯୁକ୍ତ, ମ୍ଳାନ, ଶ୍ରାନ୍ତ, ପରିଶ୍ରମଜନିତ ଅବସନ୍ନ ।

କ୍ଲାନ୍ତି—ସ୍ତ୍ରୀ. ବ. (କ୍ଲମ୍+କ୍ତି,ତ) ପରି-ଶ୍ରମଜନିତ ଶ୍ରାନ୍ତି ।

କ୍ଳାନ୍ତକର—ବି॰. ( କ୍ଳାନ୍ତ+କୃ+ଅ ) ଅବସାଦକ, ଯାହା ସମ୍ପାଦନକଲେ ଶରୀରକୁ ବିଶେଷ ବାଧା ହୁଏ ।

କ୍ଳାନ୍ତଜନକ—ବି॰. ( କ୍ଳାନ୍ତ+ଜନ୍+ଅ କ) କ୍ଳାନ୍ତକର (ଦେଖ) ।

କ୍ଳାନ୍ତନାଶ—ପୁଂ.ବି.(ଷତତ୍)ଶ୍ରାନ୍ତିହରଣ, ଶ୍ରମୋପନୋଦନ ।

କ୍ଳାନ୍ତନାଶକ—ବି॰.(ଷତତ୍)ଶ୍ରାନ୍ତିହାରକ, ଶ୍ରମଲାଘବକାରୀ ।

କ୍ଳବ୍—ଯ.ଆମୋଦ ପ୍ରମୋଦ ବା କୌଣସି ବିଷୟ ଚର୍ଚ୍ଚା କରିବାପାଇଁ ସଂଘ, ଗୋଷ୍ଠୀ, ସମିତି ।

କ୍ଳାସ—ଯା.(ଇ.) ବିଦ୍ୟାଳୟର ଶ୍ରେଣୀ ।

କ୍ଳିନ୍ନ—ତ୍ରି.ବି॰.(କ୍ଳିଦ୍+ତ)ଓଦାହୋଇଥିବା, ଆର୍ଦ୍ର, ଘର୍ମାକ୍ତ ।

କ୍ଳିନ୍ନବର୍ତ୍ମା—ବି. ଚକ୍ଷୁରୋଗବିଶେଷ ।

କ୍ଳିନ୍ନାକ୍ଷ—ବି॰. (ବହୁ) ଯାହାର ଆଖିରୁ ସବୁବେଳେ ପାଣି ବହୁଥାଏ ।

କ୍ଳିବ୍—ପୁଂ.ବି. (କ୍ଳିପ୍+କ୍ଳିପ୍)କ୍ଳେକ ।

କ୍ଳିଶିତ—ତ୍ରି. ବି॰. (କ୍ଳିଶ୍+ତ) କ୍ଳେଶଯୁକ୍ତ,କ୍ଳାନ୍ତଯୁକ୍ତ, ତାପିତ,ଦୁଃଖିତ ।

କ୍ଳିଶ୍ୟମାନ—ବି॰.(କ୍ଳିଶ୍+ମିଁ,ମାନ)ଯେ କଷ୍ଟ ପାଉଅଛି, ଯାହାକୁ କ୍ଳେଶ ଦିଆହେଉଅଛି ।

କ୍ଳିଷ୍ଟ—ବି॰. ( କ୍ଳିଶ୍+ମିଁ.ତ ) କ୍ଳାନ୍ତ, କଷ୍ଟପ୍ରାପ୍ତ, କଠିନ, ଦୁର୍ବୋଧ୍ୟ ।

କ୍ଳିଷ୍ଟକଳ୍ପନା—ବି. (କ.ଧା)ଯେଉଁ ଉପମା ବୁଝିବା ନିମନ୍ତେ କଳ୍ପନାଶକ୍ତିକୁ ଅତି ଶକ୍ତ ଭାବରେ ଟଣା ଓଟରା କରାଯାଏ ।

କ୍ଳିଷ୍ଟତା(ତ୍ୱ)—ବି. ଦୁର୍ବୋଧତା,ଅଳଙ୍କାର ଶାସ୍ତ୍ରୋକ୍ତ ଗୋଟିଏ ଦୋଷ ।

କ୍ଳିଷ୍ଟା—ସ୍ତ୍ରୀ.ବି. ପାତଞ୍ଜଳ ଦର୍ଶନମତେ ଚିତ୍ତବୃତ୍ତିବିଶେଷ ।

କ୍ଳିଷ୍ଟାର୍ଥ—ବି. (କ.ଧା) ଦୁର୍ବୋଧ୍ୟଅର୍ଥ, (ବି॰) ଯହିଁର ଅର୍ଥ ଦୁର୍ବୋଧ୍ୟ ।

କ୍ଳିଷ୍ଟି—ସ୍ତ୍ରୀ.ବି.(କ୍ଳିଶ୍+ତି)କ୍ଳେଶ,ସେବା ।

କ୍ଳୀଂ—ତା. ବି. ଅଣାକାରମତାବଲମ୍ବୀମାନଙ୍କର ତିନିଗୋଟି ବୀଜମଧ୍ୟରୁ ଏକ, ତନ୍ତ୍ରୋକ୍ତ କାମବୀଜ,ମହେଶ୍ୱର,ଭଗବାନ୍ ଚନ୍ଦ୍ରାବଳୀ ଓ ସୁଭଦ୍ରାଙ୍କର ବୀଜମନ୍ତ୍ର ।

କ୍ଳୀତକ—ସ୍ତ୍ରୀ. ବି॰. ଯଷ୍ଟିମଧୁ, ଯାଠିମଧୁ, କରଞ୍ଜମଞ୍ଜି, (ପୁଂ. ବି.) ବୃକ୍ଷବିଶେଷ ।

କ୍ଳୀତକା, କ୍ଳୀତକକା—ସ୍ତ୍ରୀ. ବି. ନୀଳଗଛ, ନୀଳୀବୃକ୍ଷ ।

କ୍ଳୀତକୀ—ସ୍ତ୍ରୀ. ବି. ନୀଳୀଗଛ ।

କ୍ଳୀତନକ—କ୍ଳୀ. ବି. ଯଷ୍ଟିମଧୁ, ଯାଠିମଧୁ ।

କ୍ଳୀବ—ପୁଂ.ବି.(କ୍ଳୀବ+ଅ) ନପୁଂସକ, ଅଧୀର,ବଳହୀନ,ଅକ୍ଷମ,ଭୀରୁ,କାପୁରୁଷ, ନିଷ୍ଫଳ, ବ୍ୟର୍ଥ, ବିକମହୀନ, ଖାସିକରାଯାଇଥିବା, ହିଞ୍ଜଡ଼ା ।

କ୍ଳୀବତ୍ୱ—କ୍ଳୀ.ବି. ପୁରୁଷତ୍ୱହୀନତା ।

କ୍ଳୀବଲିଙ୍ଗ—ପୁଂ. ବି. ( କ୍ଳୀବ+ଲିଙ୍ଗ ) ସ୍ତ୍ରୀ.ପୁରୁଷ ଭିନ୍ନବାଚକ ନପୁଂସକଲିଙ୍ଗ ।

କ୍ଳୃପ୍ତ—ବି॰.(କ୍ଳୃପ୍+ତ)ରଚିତ,କଳ୍ପିତ ନିର୍ମିତ,ବ୍ୟାପିତ,ଯାହାକଟାହୋଇଅଛି ।

କ୍ଳୃପ୍ତକୀଳା—ସ୍ତ୍ରୀ.ବି.ପଟ୍ଟା ।

କ୍ଳେଦ—ପୁଂ. ବି॰ (କ୍ଳିଦ୍+ଅ) ଓଦା, ଆର୍ଦ୍ର, ଭିଜା, ମଇଳା, ମଇଳାପାଣି, ପୂଯାଦି ।

କ୍ଳେଦକ—ବି.(କ୍ଳିଦ୍+କ,ଅକ)ଶରୀରସ୍ଥ ଏକପ୍ରକାର ଶ୍ଳେଷ୍ମା, କଫ, ଜଠରାଗ୍ନି ବିଶେଷ, (ବି॰) କ୍ଳେଦକାରକ, ଯାହା ଓଦା କରେ ।

କ୍ଳେଦନ—ପୁଂ.ବି॰.(କ୍ଳିଦ୍+ଣିଚ୍+ଭା. ଅନ) ଶରୀରସ୍ଥ ଶ୍ଳେଷ୍ମା ବିଶେଷ, ଓଦା କରିବା, କଫ, ପାଣିଝରିବା ।

କ୍ଳେଦବାନ୍—ପୁଂ. ବି॰. (କ୍ଳେଦ+ବତ୍) କ୍ଳେଦଯୁକ୍ତ, ଓଦା ।

କ୍ଳେଦା—ପୁଂ. ବି॰. ଚନ୍ଦ୍ର ।

କ୍ଳେଦାକ୍ତ—ବି॰. ( ୩ତତ୍ ) କ୍ଳେଦଯୁକ୍ତ, ମଇଳାବିଶିଷ୍ଟ ।

କ୍ଳେଦିତ—ବି॰. (କ୍ଳେଦ+ଇତ) କ୍ଳେଦଯୁକ୍ତ, ଆର୍ଦ୍ର । [ସନ୍ଧିପାତ ।

କ୍ଳେଦୁ—ପୁଂ.ବି. (କ୍ଳିଦ+କ.ଉ) ଚନ୍ଦ୍ର,

କ୍ଳେଶ—ପୁଂ.ବି. ( କ୍ଳିଶ୍+ଅ ) ଦୁଃଖ, କଷ୍ଟ, ପୀଡ଼ା, ଯନ୍ତ୍ରଣା, ଅଭିନିବେଶ, ଅବିଦ୍ୟା, ଅସ୍ମିତା, ରାଗ, ଦ୍ୱେଷ, ଏହି ପାଞ୍ଚପ୍ରକାର କ୍ଳେଶ ।

କ୍ଳେଶକ—ପୁଂ.ବି॰. ( କ୍ଳିଶ+କ ଅକ ) ପୀଡ଼ାଦାୟକ ।

କ୍ଳେଶକର—ବି॰. (କ୍ଳେଶ+କୃ+କ.ଅ) ଯାହା ପୀଡ଼ା ଦିଏ, ପୀଡାଦାୟକ ।

କ୍ଳେଶକାରୀ—ପୁଂ. ବି॰. (କ୍ଳେଶ+କୃ+ଇନ୍) ଯାହା ପୀଡ଼ା ଦିଏ,ପୀଡ଼ାଦାୟକ ।

କ୍ଳେଶଦାୟକ—ବି॰. (କ୍ଳେଶ+ଦା+କ, ଅକ) କ୍ଳେଶକର (ଦେଖ) ।

କ୍ଳେଶମାର—ତ୍ରି. ବି॰. ( କ୍ଳେଶ+ମୃ+ଅ) କ୍ଳେଶନାଶକ ।

କ୍ଳେଶବାନ୍—ପୁଂ. ବି॰. (କ୍ଳେଶ+ବତ୍) ଯାହାର କ୍ଳେଶଅଛି, କ୍ଳେଶବିଶିଷ୍ଟ ।

କ୍ଳେଶାପହ—ତ୍ରି. ବି॰. (କ୍ଳେଶ+ଅପ, ହନ୍+ଅ) କଷ୍ଟନାଶକ ।

କ୍ଳେଶିତ—ବି॰. (କ୍ଳେଶ+ଇତ) କ୍ଳେଶଯୁକ୍ତ, କ୍ଳେଶପ୍ରାପ୍ତ, (ସ୍ତ୍ରୀ) କ୍ଳେଶିତା ।

କ୍ଳେଶୀ—ପୁଂ. ବି॰. ( କ୍ଳେଶ+ଇନ୍ ) କ୍ଳେଶଶୀଳ, କଷ୍ଟପ୍ରାପ୍ତ ।

କ୍ଳେଷ୍ଟା—ପୁଂ. ବି॰. ( କ୍ଳିଶ୍+ତୃ ) କ୍ଳେଶ କାରକ । [ମଦ ।

କ୍ଳୈତକିକ—କ୍ଳୀ.ବି. (କ୍ଳୀତକ+ଇକ)

କ୍ଳୈବ୍ୟ—କ୍ଳୀ.ବି. (କ୍ଳୀବ+ଯ)କ୍ଳୀବତା, ଭୀରୁତା, ଓଲମାପଣିଆଁ, ନିଷ୍ଫଳତା, ରୋଗବିଶେଷ,ନପୁଂସକତ୍ୱ, କାତରତା ।

କ୍ଳୋମ,କ୍ଳୋମା—ପୁଂ. ବି. (କ୍ଳୁ+ମନ୍) ମାଂସପିଣ୍ଡ, ଫୁସ୍‌ଫୁସ୍, ମୂତ୍ରାଶୟ, ପିତ୍ତକୋଷ ।

କ୍ଳୋଶ—ପୁଂ. ବି. ଭୟ ।

କ୍ୱ—(ଅବ୍ୟ) କେଉଁଠାରେ, ଅନିଶ୍ଚିତ ସମୟରେ ।

କ୍ୱଚିତ୍‌କ୍ୱଚନ—ଅବ୍ୟ. କେଉଁସ୍ଥାନରେ ।

କ୍ୱଣ—ପୁଂ. ବି (କ୍ୱଣ୍+ଅ) ଶବ୍ଦବିଶେଷ, ବୀଣାର ଶବ୍ଦ, ଶବ୍ଦ, ନାଦ, ଧ୍ୱନି ।

କ୍ୱଣନ—ବି.(କ୍ୱଣ+ଭା,ଅନ)ଶବ୍ଦ, ଝଣଝଣ ଶବ୍ଦ, ଲୋଟମାଟିହାଣ୍ଡି ବାଦ୍ୟଧ୍ୱନି ।

କ୍ୱଣିତ—ବି॰. ( କ୍ୱଣ+ତ ) ଶବ୍ଦଯୁକ୍ତ, ଧ୍ୱନିତ, ଶବ୍ଦାୟମାନ (ବି) ଧ୍ୱନି, ଶବ୍ଦ ।

କ୍ୱତ୍ୟ—ଅବ୍ୟ.(କ୍ୱ+ତ୍ୟ)କେଉଁସ୍ଥାନର ।

କ୍ୱଥ୍—(କ୍ୱଥ୍ ଧାତୁ) କ୍ୱାଥ ଦେଖ ।

କ୍ୱଥନ—କ୍ଲୀ. ବି. ( କ୍ୱଥ + ଭା, ଅନ ) ପାକବିଶେଷ, ସିଝାଇବା ।

କ୍ୱଥିକ—ବିଂ. ( କ୍ୱଥ୍ + ଇକ ) ଦୁଧରେ ସିଦ୍ଧ ପାଚନ ।

କ୍ୱଥିତ—ବି. ବିଂ. ( କ୍ୱଥ୍ + ର୍ମ,ତ ) ଅଗ୍ନିସିଦ୍ଧ, ଅତଶସ୍ତ ପକ୍ୱ ବ୍ୟଞ୍ଜନାଦି ଅତଶସ୍ତପକ୍ୱ,(କ୍ଲୀ.ବି) ମଧୁସହିତ ପ୍ରସ୍ତୁତ ମଦବିଶେଷ, ଦଶମୂଳ ପାଚନାଦି କ୍ୱାଥ ।

କ୍ୱଥିତଜଳ—କ୍ଲୀ. ବି. ଅତଶସ୍ତ ଉଷ୍ଣଜଳ ।

କ୍ୱଥିତା—ସ୍ତ୍ରୀ. ବି. ଔଷଧବିଶେଷ ।

କ୍ୱଳ—ପୁଂ.ବି. ଦରପାଚିଲା ବରକୋଳି, ଅଡ଼କଲା କୋଳି ।

କ୍ୱଚକ୍—ପୁଂ. ବି. ( କ୍ୱଚତ୍ + କ ) ଅକସ୍ମାତ୍ ବା କ୍ୱଚିତ୍ ଦେଖାଯିବା ।

କ୍ୱାଟର୍—ଯା.(ଇଂ) ତିନିଗୋଟି ମାସର ସମାହାର, ଭୃତ୍ୟ ଓ କର୍ମଚାରୀମାନଙ୍କ ବସାଘର, ଏକ ଚତୁର୍ଥାଂଶ ।

କ୍ୱାଟର୍ଲି—ଯା. (ଇଂ) ତ୍ରୈମାସିକ ।

କ୍ୱାଣ—ପୁଂ.ବି. (କ୍ୱଣ୍ + ଅ)ବାଦ୍ୟଧ୍ୱନି, ବୀଣାଧ୍ୱନି, ଶବ୍ଦ, ( ବିଂ ) ଶବ୍ଦକାରକ, ଯେ ଶବ୍ଦ କରେ ।

କ୍ୱାଥ—ପୁଂ. ବି. (କ୍ୱଥ୍ + ର୍ମ,ଅ) ଅଗ୍ନିପାକ, ସିଦ୍ଧବସ୍ତୁରସ, ନିର୍ଯ୍ୟାସ, ଦୁଃଖ, ବ୍ୟସନ, କ୍ଲେଶ, ପାଚନ ।

କ୍ୱାଥି—ପୁଂ. ବି. ଅଗସ୍ତି ଋଷିଙ୍କର ନାମାନ୍ତର ।

କ୍ୱାପି—ଅବ୍ୟ. ( କ୍ୱ + ଅପି ) କେଉଁସ୍ଥାନରେ ।

# କ୍ଷ

କ୍ଷ—କ + ଷ. ରୂପ ଯୁକ୍ତାକ୍ଷର, ପୁଂ ବି. (କ୍ଷି + ଅ) ପ୍ରଳୟ, ରାକ୍ଷସ, ନୃସିଂହ, ବିଜୁଳି, କ୍ଷତିସ୍ଥ, କ୍ଷେତ୍ର, କ୍ଷେତ୍ରପାଳ, ନାଶ ।

କ୍ଷଉଣୀ—ଗ୍ରା. ବି. ( ସ—ଅକ୍ଷୌହିଣୀ ) ଅକ୍ଷୌହିଣୀ ( ଦେଖ ) ।

କ୍ଷଚ୍ଛନ୍ଦ—ଗ୍ରା. ବି. ଛନ୍ଦ ।

କ୍ଷଣ—(ଧାତୁ)ଆଘାତ କରିବା,ହିଂସାକରି ଖଣ୍ଡ ଖଣ୍ଡକରି ଭାଙ୍ଗିବା ।

କ୍ଷଣ—ପୁଂ.ବି. (କ୍ଷଣ + ଅ)ସମୟ,କାଳ, ମୁହୂର୍ତ୍ତକାଳ,କେନ୍ଦ୍ର,ମଧ୍ୟସ୍ଥଳ, ଅବସର, ଆନନ୍ଦ, ଉତ୍ସବ, ଶୁଭମୁହୂର୍ତ୍ତ, ସୁଯୋଗ, ବ୍ୟାପାର,ପରାଧୀନତା,ମାରଣ, କେନ୍ଦ୍ର, ପର୍ବ ।

କ୍ଷଣକାଳ—ପୁଂ. ବି. ଏକକ୍ଷଣ, ମୁହୂର୍ତ୍ତମାତ୍ର, ଉତ୍ସବ ସମୟ, କିଛୁସମୟ ।

କ୍ଷଣକେ—ଗ୍ରା. କି. ବିଂ.ଏକମୁହୂର୍ତ୍ତରେ, କ୍ଷଣକାଳ ମଧ୍ୟରେ, ଏହିକ୍ଷଣି,ବର୍ତ୍ତମାନ ।

କ୍ଷଣକ୍ଷଣ—ଗ୍ରା. ବିଂ. ଅବିରତ,ଅବିଶ୍ରାନ୍ତ, ମୁହୁର୍ମୁହୁଃ ଘଟୁଥିବା, (ଗ୍ରା. କ୍ରି. ବିଂ.) ଅନୁକ୍ଷଣ, ପ୍ରତିକ୍ଷଣ, ଅବିରତ,ମୁହୁର୍ମୁହୁ, (ଗ୍ରା.ବି) ପ୍ରତିମୁହୂର୍ତ୍ତ ।

କ୍ଷଣଜନ୍ମା—ପୁଂ. ବିଂ. (କ୍ଷଣ + ଜନ୍ମନ୍) ବ.ବ୍ରୀ, ଯେ ଶୁଭକ୍ଷଣରେ ଜନ୍ମଗ୍ରହଣ କରିଅଛି ଅତି ସୌଭାଗ୍ୟଶାଳୀ, କୃତୀ, ଭାଗ୍ୟବାନ୍ ।

କ୍ଷଣଜୀବୀ—ପୁଂ. ବି.(କ୍ଷଣ + ଜୀବ + ଇନ୍) ଯେ ଅତି ଅଳ୍ପକାଳ ବଞ୍ଚିରହେ, (ସ୍ତ୍ରୀ) କ୍ଷଣଜୀବିନୀ । [ଘାଆ ।

କ୍ଷଣରୁ—ପୁଂ. ବି. (କ୍ଷଣ + ଅରୁ) କ୍ଷତ,

କ୍ଷଣଦ—ପୁଂ. ବି. (କ୍ଷଣ + ଦା + କ.ଅ) ଦୈବଜ୍ଞ, ଗଣକ, ଅନ୍ଧାରକଣା ରୋଗ, (କ୍ଲୀ.ବି) ଜଳ ।

କ୍ଷଣଦା—ସ୍ତ୍ରୀ. ବି. (କ୍ଷଣ + ଦା + ଅ + ଆ) ରାତ୍ରି, ହଳଦୀ, ବ୍ୟାପାର, ଶୂନ୍ୟତା ।

କ୍ଷଣଦାକର—ପୁଂ. ବି. (କ୍ଷଣଦା + କୃ + ଅ) ଚନ୍ଦ୍ର । [ପ୍ରଭୃତି ।

କ୍ଷଣଦାକ୍ଷୟ—ବି. (୬ତତ୍) ରାତ୍ରିଶେଷ,

କ୍ଷଣଦାଚର—ପୁଂ. ବି. (କ୍ଷଣଦା + ଚର୍ + ଅ) ନିଶାଚର,ରାକ୍ଷସ, (ବିଂ) ନିଶାଚର ପକ୍ଷୀପ୍ରଭୃତି, (ସ୍ତ୍ରୀ) କ୍ଷଣଦାଚରୀ ।

କ୍ଷଣଦାଚରୀ—ସ୍ତ୍ରୀ.ବି. (କ୍ଷଣଦାଚର + ଈ) ରାକ୍ଷସୀ ।

କ୍ଷଣଦାନ୍ଧ୍ୟ—କ୍ଲୀ.ବି. (୬ତତ୍) ରାତ୍ରିରେ ଦେଖି ନ ପାରେ, ରାତ୍ର୍ୟନ୍ଧ୍ୟ ।

କ୍ଷଣଦ୍ୟୁତ—ସ୍ତ୍ରୀ.ବି. (କ୍ଷଣ + ଦ୍ୟୁତ)ବ.ବ୍ରୀ ବିଦ୍ୟୁତ୍, ବିଜୁଳୀ ।

କ୍ଷଣଧ୍ୱଂସୀ—ପୁଂ.ବିଂ. (୬ତତ୍) ଅତ୍ୟଳ୍ପ କାଳମଧ୍ୟରେ ବିନାଶଶୀଳ, ଅଳ୍ପକାଳସ୍ଥାୟୀ, କ୍ଷଣଭଙ୍ଗୁର ।

କ୍ଷଣନ—କ୍ଲୀ. ବି. (କ୍ଷଣ୍ + ଅନ)ହିଂସା, ବଧ, ହତ୍ୟା, ଆଘାତ କରିବା ।

କ୍ଷଣନିଃଶ୍ୱାସ—ପୁଂ.ବି.(କ୍ଷଣ + ନିଃଶ୍ୱାସ) ଶିଶୁମାର, ଶୁଶୁକ ।

କ୍ଷଣନୁ—ପୁଂ. ବି. କ୍ଷତ, ଘାଆ, ବ୍ରଣ ।

କ୍ଷଣପତି—ପୁଂ. ବି. (୬ତତ୍) ଚନ୍ଦ୍ର ।

କ୍ଷଣପ୍ରକାଶ—ପୁଂ.ବି.(ବ.ବ୍ରୀ) ବିଦ୍ୟୁତ୍ ।

କ୍ଷଣପ୍ରକାଶା—ସ୍ତ୍ରୀ ବି. କ୍ଷଣପ୍ରଭା,ବିଜୁଳୀ ।

କ୍ଷଣପ୍ରଭା—ସ୍ତ୍ରୀ.ବି. (କ୍ଷଣ + ପ୍ରଭା)ବିଦ୍ୟୁତ୍, ବିଜୁଳୀ ।

କ୍ଷଣଭଙ୍ଗ—ପୁଂ. ବିଂ. ଅତି ଅଳ୍ପକାଳ ମଧ୍ୟରେ ଯାହା ନଷ୍ଟ ହୋଇଯାଏ ।

କ୍ଷଣଭଙ୍ଗୁର—ବି.ବିଂ.(କ୍ଷଣ + ଭଙ୍ଗୁର) ୭ତତ୍, କ୍ଷଣକାଳସ୍ଥାୟୀ, କ୍ଷଣଧ୍ୱଂସୀ, (ସ୍ତ୍ରୀ) କ୍ଷଣଭଙ୍ଗୁରା ।

କ୍ଷଣମାତ୍ର—କ୍ଲୀ.ବି.(କ୍ଷଣ + ମାତ୍ର)କେବଳ ଏକକ୍ଷଣ, ଅତ୍ୟଳ୍ପ କାଳମାତ୍ର ।

କ୍ଷଣରମୀ—ପୁଂ.ବି. (କ୍ଷଣ + ରମ୍ + ଇନ୍) ପାରା, କପୋତ ।

କ୍ଷଣରୁଚ—ବି.(ବବ୍ରୀ)କ୍ଷଣପ୍ରଭା,ବିଜୁଳୀ ।

କ୍ଷଣବିଧ୍ୱଂସୀ—ପୁଂ. ବିଂ. (କ୍ଷଣ + ବି + ଧ୍ୱଂସ୍ + ଇନ୍) କ୍ଷଣିକ, ଅଚିରସ୍ଥାୟୀ ।

କ୍ଷଣବିଲମ୍ବ—ବି. (୬ତତ୍) ଅତ୍ୟଳ୍ପକାଳ ଡେରି କରିବା । [ଶିଶୁମାର ।

କ୍ଷଣଶ୍ୱାସ—ବି.(ବ.ବ୍ରୀ) ଶୁଶୁମାର,ଶୁଶୁକ,

କ୍ଷଣସ୍ଥାୟୀ—ପୁଂ. ବିଂ. (୭ତତ୍) ଅଳ୍ପକାଳସ୍ଥାୟୀ,ଅସ୍ଥାୟୀ, (ସ୍ତ୍ରୀ)କ୍ଷଣସ୍ଥାୟିନୀ ।

କ୍ଷଣି—ଗ୍ରା.ଅବ୍ୟ (ସଂ-କ୍ଷଣଂ)ମାତ୍ରକେ ।

କ୍ୱଥନ — କ୍ଲୀ. ବି. ( କ୍ୱଥ + ଭା, ଅନ ) ପାକବିଶେଷ, ସିଝାଇବା ।

କ୍ୱଥିକ — ବିଂ. ( କ୍ୱଥ୍ + ଇକ ) ଦୁଧରେ ସିଦ୍ଧ ପାଚନ ।

କ୍ୱଥିତ — ତ୍ରି. ବିଂ. ( କ୍ୱଥ୍ + ର୍ମ,ତ ) ଅଗ୍ନିସିଦ୍ଧ, ଅତିଶୟ ପକ୍ୱ ବ୍ୟଞ୍ଜନାଦି ଅତିଶୟପକ୍ୱ,(କ୍ଲୀ.ବି) ମଧୁସହିତ ପ୍ରସ୍ତୁତ ମଦବିଶେଷ, ଦଶମୂଳ ପାଚନାଦି କ୍ୱାଥ ।

କ୍ୱଥିତଜଳ — କ୍ଲୀ. ବି. ଅତିଶୟ ଉଷ୍ଣ-ଜଳ ।

କ୍ୱଥିତା — ସ୍ତ୍ରୀ. ବି. ଔଷଧବିଶେଷ ।

କ୍ୱଲ — ପୁଂ.ବି. ଦରପାଚଲା ବରକୋଳି, ଅଢ଼କଲା କୋଳି ।

କ୍ୱଚକ୍ — ପୁଂ. ବି. ( କ୍ୱଚତ୍ + କ ) ଅକସ୍ମାତ୍ ବା କ୍ୱଚିତ୍ ଦେଖାଯିବା ।

କ୍ୱାଟର୍ — ଯା.(ଇଂ) ତିନିଗୋଟି ମାସର ସମାହାର, ଭୃତ୍ୟ ଓ କର୍ମଚାରୀମାନଙ୍କ ବସାଘର, ଏକ ଚତୁର୍ଥାଂଶ ।

କ୍ୱାଟର୍ଲି — ଯା. (ଇଂ) ତ୍ରୈମାସିକ ।

କ୍ୱାଣ — ପୁଂ.ବି. (କ୍ୱଣ୍ + ଅ)ବାଦ୍ୟଧ୍ୱନି, ବୀଣାଧ୍ୱନି, ଶବ୍ଦ, ( ବିଂ ) ଶବ୍ଦକାରକ, ଯେ ଶବ୍ଦ କରେ ।

କ୍ୱାଥ — ପୁଂ. ବି. (କ୍ୱଥ୍ + ର୍ମ,ଅ) ଅଗ୍ନି-ପାକ, ସିଦ୍ଧବସ୍ତୁରସ, ନିର୍ଯ୍ୟାସ, ଦୁଃଖ, ବ୍ୟସନ, କ୍ଲେଶ, ପାଚନ ।

କ୍ୱାଥି — ପୁଂ. ବି. ଅଗସ୍ତି ଋଷିଙ୍କର ନାମାନ୍ତର ।

କ୍ୱାପି — ଅବ୍ୟ. ( କ୍ୱ + ଅପି ) କେଉଁ-ସ୍ଥାନରେ ।

# କ୍ଷ

କ୍ଷ — କ + ଷ. ରୂପ ଯୁକ୍ତାକ୍ଷର, ପୁଂ ବି. (କ୍ଷି + ଅ) ପ୍ରଳୟ, ରାକ୍ଷସ, ନୃସିଂହ, ବିଜୁଳି, କ୍ଷତ୍ରିୟ, କ୍ଷେତ୍ର, କ୍ଷେତ୍ରପାଳ, ନାଶ ।

କ୍ଷଉଣୀ — ଗ୍ରା. ବି. ( ସଂ — ଅକ୍ଷୌହିଣୀ ) ଅକ୍ଷୌହିଣୀ ( ଦେଖ ) ।

କ୍ଷକ୍ଷଦ — ଗ୍ରା. ବି. ଛନ୍ଦ ।

କ୍ଷଣ — (ଧାତୁ) ଆଘାତ କରିବା, ହିଂସାକରି ଖଣ୍ଡ ଖଣ୍ଡକରି ଭାଙ୍ଗିବା ।

କ୍ଷଣ — ପୁଂ.ବି. (କ୍ଷଣ + ଅ) ସମୟ, କାଳ, ମୁହୂର୍ତ୍ତକାଳ, କେନ୍ଦ୍ର, ମଧ୍ୟସ୍ଥଳ, ଅବସର, ଆନନ୍ଦ, ଉତ୍ସବ, ଶୁଭମୁହୂର୍ତ୍ତ, ସୁଯୋଗ, ବ୍ୟାପାର, ପରାଧୀନତା, ମାରଣ, କେନ୍ଦ୍ର, ପର୍ବ ।

କ୍ଷଣକାଳ — ପୁଂ. ବି. ଏକକ୍ଷଣ, ମୁହୂର୍ତ୍ତ-ମାତ୍ର, ଉତ୍ସବ ସମୟ, କାର୍ଯ୍ୟସମୟ ।

କ୍ଷଣକେ — ଗ୍ରା. କ୍ରି. ବିଂ.ଏକମୁହୂର୍ତ୍ତରେ, କ୍ଷଣକାଳ ମଧ୍ୟରେ, ଏହିକ୍ଷଣି, ବର୍ତ୍ତମାନ ।

କ୍ଷଣକ୍ଷଣ — ଗ୍ରା. ବିଂ. ଅବିରତ, ଅବିଶ୍ରାନ୍ତ, ମୁହୁର୍ମୁହୁଃ ଘଟୁଥିବା, (ଗ୍ରା. କ୍ରି. ବିଂ.) ଅନୁକ୍ଷଣ, ପ୍ରତିକ୍ଷଣ, ଅବିରତ, ମୁହୁର୍ମୁହୁ, (ଗ୍ରା.ବି) ପ୍ରତିମୁହୂର୍ତ୍ତ ।

କ୍ଷଣଜନ୍ମା — ପୁଂ. ବିଂ. (କ୍ଷଣ + ଜନ୍ମନ୍) ବ.ବ୍ରୀ, ଯେ ଶୁଭକ୍ଷଣରେ ଜନ୍ମଗ୍ରହଣ କରିଅଛି ଅତି ସୌଭାଗ୍ୟଶାଳୀ, କୃତୀ, ଭାଗ୍ୟବାନ୍ ।

କ୍ଷଣଜୀବୀ — ପୁଂ. ବି.(କ୍ଷଣ + ଜୀବ + ଇନ୍) ଯେ ଅତି ଅଳ୍ପକାଳ ବଞ୍ଚିରହେ, (ସ୍ତ୍ରୀ) କ୍ଷଣଜୀବିନୀ । [ଘାଆ ।

କ୍ଷଣରୁ — ପୁଂ. ବି. (କ୍ଷଣ + ଅରୁ) କ୍ଷତ,

କ୍ଷଣଦ — ପୁଂ. ବି. (କ୍ଷଣ + ଦା + କ.ଅ) ଦୈବଜ୍ଞ, ଗଣକ, ଅନ୍ଧାରକଣା ରୋଗ, (କ୍ଲୀ.ବି) ଜଳ ।

କ୍ଷଣଦା — ସ୍ତ୍ରୀ. ବି. (କ୍ଷଣ + ଦା + ଅ + ଆ) ରାତ୍ରି, ହଳଦୀ, ବ୍ୟାପାର, ଶୂନ୍ୟତା ।

କ୍ଷଣଦାକର — ପୁଂ. ବି. (କ୍ଷଣଦା + କୃ + ଅ) ଚନ୍ଦ୍ର । [ପ୍ରଭୃତି ।

କ୍ଷଣଦାକ୍ଷୟ — ବି. (୬ତତ୍) ରାତ୍ରିଶେଷ,

କ୍ଷଣଦାଚର — ପୁଂ. ବି. (କ୍ଷଣଦା + ଚର୍ + ଅ) ନିଶାଚର, ରାକ୍ଷସ, (ବିଂ) ନିଶା-ଚର ପକ୍ଷୀପ୍ରଭୃତି, (ସ୍ତ୍ରୀ) କ୍ଷଣଦାଚରୀ ।

କ୍ଷଣଦାଚରୀ — ସ୍ତ୍ରୀ.ବି. (କ୍ଷଣଦାଚର + ଈ) ରାକ୍ଷସୀ ।

କ୍ଷଣଦାନ୍ଧ୍ୟ — କ୍ଲୀ.ବି. (୭ତତ୍) ରାତ୍ରିରେ ଦେଖି ନ ପାରେ, ରାତ୍ର୍ୟନ୍ଧ୍ୟ ।

କ୍ଷଣଦ୍ୟୁତି — ସ୍ତ୍ରୀ.ବି (କ୍ଷଣ + ଦ୍ୟୁତି) ବ.ବ୍ରୀ ବିଦ୍ୟୁତ୍, ବିଜୁଳୀ ।

କ୍ଷଣଧ୍ୱଂସୀ — ପୁଂ.ବିଂ. (୭ତତ୍) ଅତ୍ୟଳ୍ପ କାଳମଧ୍ୟରେ ବିନାଶଶୀଳ, ଅଳ୍ପକାଳ-ସ୍ଥାୟୀ, କ୍ଷଣଭଙ୍ଗୁର ।

କ୍ଷଣନ — କ୍ଲୀ. ବି. (କ୍ଷଣ୍ + ଅନ) ହିଂସା, ବଧ, ହତ୍ୟା, ଆଘାତ କରିବା ।

କ୍ଷଣନିଃଶ୍ୱାସ — ପୁଂ.ବି.(କ୍ଷଣ + ନିଃଶ୍ୱାସ) ଶିଶୁମାର, ଶୁଶୁକ ।

କ୍ଷଣନୁ — ପୁଂ. ବି. କ୍ଷତ, ଘାଆ, ବ୍ରଣ ।

କ୍ଷଣପତି — ପୁଂ. ବି. (୬ତତ୍) ଚନ୍ଦ୍ର ।

କ୍ଷଣପ୍ରକାଶ — ପୁଂ.ବି.(ବ.ବ୍ରୀ) ବିଦ୍ୟୁତ୍ ।

କ୍ଷଣପ୍ରକାଶା — ସ୍ତ୍ରୀ ବି. କ୍ଷଣପ୍ରଭା, ବିଜୁଳୀ ।

କ୍ଷଣପ୍ରଭା — ସ୍ତ୍ରୀ.ବି. (କ୍ଷଣ + ପ୍ରଭା) ବିଦ୍ୟୁତ୍, ବିଜୁଳୀ ।

କ୍ଷଣଭଙ୍ଗ — ପୁଂ. ବିଂ. ଅତି ଅଳ୍ପକାଳ ମଧ୍ୟରେ ଯାହା ନଷ୍ଟ ହୋଇଯାଏ ।

କ୍ଷଣଭଙ୍ଗୁର — ତ୍ରି.ବିଂ.(କ୍ଷଣ + ଭଙ୍ଗୁର) ୭ତତ୍, କ୍ଷଣକାଳସ୍ଥାୟୀ, କ୍ଷଣଧ୍ୱଂସୀ, (ସ୍ତ୍ରୀ) କ୍ଷଣଭଙ୍ଗୁରା ।

କ୍ଷଣମାତ୍ର — କ୍ଲୀ.ବି.(କ୍ଷଣ + ମାତ୍ର) କେବଳ ଏକକ୍ଷଣ, ଅତ୍ୟଳ୍ପ କାଳମାତ୍ର ।

କ୍ଷଣରାମୀ — ପୁଂ.ବି. (କ୍ଷଣ + ରମ୍ + ଇନ୍) ପାରା, କପୋତ ।

କ୍ଷଣରୁଚି — ବି.(ବ.ବ୍ରୀ) କ୍ଷଣପ୍ରଭା, ବିଜୁଳୀ ।

କ୍ଷଣବିଧ୍ୱଂସୀ — ପୁଂ. ବିଂ. (କ୍ଷଣ + ବି + ଧ୍ୱଂସ୍ + ଇନ୍) କ୍ଷଣିକ, ଅଚିରସ୍ଥାୟୀ ।

କ୍ଷଣବିଳମ୍ବ — ବି. (୬ତତ୍) ଅତ୍ୟଳ୍ପକାଳ ଡେରି କରିବା । [ଶିଶୁମାର ।

କ୍ଷଣଶ୍ୱାସ — ବି.(ବ.ବ୍ରୀ) ସୁସମ୍ବର, ଶୁଶୁକ,

କ୍ଷଣସ୍ଥାୟୀ — ପୁଂ. ବିଂ. (୭ତତ୍) ଅଳ୍ପ-କାଳସ୍ଥାୟୀ, ଅସ୍ଥାୟୀ, (ସ୍ତ୍ରୀ) କ୍ଷଣସ୍ଥାୟିନୀ ।

କ୍ଷଣି — ଗ୍ରା.ଅବ୍ୟ (ସଂ-କ୍ଷଣଂ) ମାତ୍ରକେ ।

କ୍ଷଣିକ—ପୁଂ. ବିଂ. (କ୍ଷଣ+ଇକ) କ୍ଷଣମାତ୍ରସ୍ଥାୟୀ, ଅସ୍ଥାୟୀ, ଯାହା ଅଳ୍ପକାଳ ରହେ। [ ବିଦ୍ୟୁତ୍।

କ୍ଷଣିକା—ସ୍ତ୍ରୀ.ବି (କ୍ଷଣିକ+ଆ) ବିଜୁଳୀ,

କ୍ଷଣିତ—ବି.ବିଂ. (କ୍ଷଣ+ଇତ) ଯାହାର କ୍ଷଣ ଅର୍ଥାତ୍ ଉତ୍ସବ ପ୍ରଭୃତି ହୋଇଅଛି।

କ୍ଷଣିନୀ—ସ୍ତ୍ରୀ. ବି. ( କ୍ଷଣ+ଇନ୍+ଈ ) ରାତ୍ରି, ରଜନୀ, ନିଶା।

କ୍ଷଣୀ—ବିଂ.(କ୍ଷଣ+ଇନ୍) ବି.ସ୍ତ୍ରୀ, ବିଶ୍ରାନ୍ତ, ଉତ୍ସବଯୁକ୍ତ, କ୍ଷଣିକ।

କ୍ଷଣେ—ଗ୍ରା. ବି. ଏକମୁହୂର୍ତ୍ତ, କ୍ଷଣମାତ୍ର, (କ୍ରି. ବି.) ଏକମୁହୂର୍ତ୍ତ ନିମନ୍ତେ।

କ୍ଷଣେକ୍ଷଣେ—ଗ୍ରା. ( ଅବ୍ୟ ) କ୍ଷଣକ୍ଷଣ (ଦେଖ)।

କ୍ଷଣେପାକ—ପୁଂ.ବି. ମୁହୂର୍ତ୍ତିକ ମଧ୍ୟରେ ଯାହା ପାକ କରାଯାଏ। [ରାମ୍ଭୁଣିବା।

କ୍ଷତ୍—ସ୍ତ୍ରୀ.ବି. (କ୍ଷଣ+କ୍ୱିପ୍) ହାଣିବା,

କ୍ଷତ—ବି. ବିଂ. (କ୍ଷଣ+ତ) ଆହତ, ନଷ୍ଟ, ଭଗ୍ନ, ନିଷ୍ପିଷ୍ଟ, ବ୍ୟଥିତ, ବିଦାରିତ, ଖଣ୍ଡିତ, (କ୍ଲୀ.ବି) ଆଘାତ, ରାମ୍ଭୁଣିବା, ବିପଦ, କଟାଘାଆ, ବ୍ରଣ, ବିଦାରଣ, (ସ୍ତ୍ରୀ) କ୍ଷତା।

କ୍ଷତକାଶ—ପୁଂ. ବି. ପାଞ୍ଚପ୍ରକାର କାଶରୋଗର ଅନ୍ତର୍ଗତ ଏକପ୍ରକାର।

କ୍ଷତଘ୍ନ—ପୁଂ.ବି.(କ୍ଷତ+ହନ୍+ଅ) କ୍ଷୁପବିଶେଷ, ପୋକଶୁଙ୍ଘା। [ଲାଖ।

କ୍ଷତଘ୍ନୀ—ସ୍ତ୍ରୀ. ବି. (କ୍ଷତଘ୍ନ+ଈ) ଲାକ୍ଷା,

କ୍ଷତଚିହ୍ନ—ବି. (ତତ୍ପୁ) ଖଣ୍ଡିଆଦାଗ, ଆଘାତର ଦାଗ।

କ୍ଷତଜ—କ୍ଲୀ.ବି. (କ୍ଷତ+ଜନ୍+କ,ଅ) ରକ୍ତ, ପୂଯ, (ବିଂ) ଆଘାତରୁ ଜାତ।

କ୍ଷତଜତୃଷ୍ଣା—ସ୍ତ୍ରୀ. ବି. କ୍ଷତଯୁକ୍ତ ବ୍ୟକ୍ତିର ପିପାସା।

କ୍ଷତବିକ୍ଷତ—ବି.ବି. (ଦ୍ୱନ୍ଦ୍ୱ) ଦେହଯାକ ରକ୍ତବୁହା, ଶସ୍ତ୍ରାଦିଦ୍ୱାରା ଛିନ୍ନଭିନ୍ନ, ଖଣ୍ଡିଆଖାବୁରା।

କ୍ଷତବିଧ୍ୱଂସୀ—ପୁଂ. ବି. (କ୍ଷତ+ବି+ଧ୍ୱନ୍ସ୍+ଇନ୍) ବୃଦ୍ଧଦାରକ ବୃକ୍ଷ।

କ୍ଷତବୃତ୍ତି—ବିଂ. ( ବ.ସ୍ତ୍ରୀ ) ଜୀବିକାହୀନ, ବେକାର।

କ୍ଷତବ୍ରଣ—ପୁଂ.ବି.(କ.ଧା) ଘାଆ ଆଦିର ଦାଗ, ଆଘାତଜନିତ ଘାଆ, ଛଅପ୍ରକାର ବ୍ରଣରୋଗର ଅନ୍ତର୍ଗତ ଏକପ୍ରକାର।

କ୍ଷତବ୍ରତ—ପୁଂ.ବିଂ. (କ୍ଷତ+ବ୍ରତ) ନଷ୍ଟବ୍ରତ, ଯାହାର ନିୟମଭଙ୍ଗ ହୋଇଛି, (ସ୍ତ୍ରୀ) କ୍ଷତବ୍ରତା।

କ୍ଷତଯୋନି—ସ୍ତ୍ରୀ. ବିଂ. (ବ.ସ୍ତ୍ରୀ) ଯେଉଁ ସ୍ତ୍ରୀ ପୁରୁଷ ସହବାସକରିଅଛି, ବଳପୂର୍ବକ ସଙ୍ଗମ କରାଯାଇଥିବା।

କ୍ଷତହର—କ୍ଲୀ. ବି. (କ୍ଷତ+ହୃ+କ.ଅ) ଅଗୁରୁ, ଗୁଗ୍ଗୁଳ, (ବିଂ) ଯେ କ୍ଷତ ନାଶ କରେ।

କ୍ଷତା—ସ୍ତ୍ରୀ. ବି. ବିବାହ ପୂର୍ବରୁ ପୁରୁଷ ସହବାସ କରିଥିବା କନ୍ୟା।

କ୍ଷତାରି—ପୁଂ.ବିଂ.ବ.ବ୍ରୀ; (କ୍ଷତ+ଅରି) ଜୟୀ, (ତତ୍ପୁ) ଘାଆ ଆରୋଗ୍ୟକାରୀ (ଔଷଧ)। [ଅପବିତ୍ରତା।

କ୍ଷତାଶୌଚ—କ୍ଲୀ.ବି. କ୍ଷତଜନିତ ଦେହର

କ୍ଷତି—ସ୍ତ୍ରୀ.ବି. (କ୍ଷଣ+ତି) ଲୋକସାନ୍, ହାନି, ଅପଚୟ, ଅର୍ଥନାଶ, କଟା, କ୍ଷୟ, ବିନାଶ, କ୍ଷତଚିହ୍ନ, ଆଘାତ, ଅଭାବ, ଦୋଷ, ଭୁଲ, ଭ୍ରମ।

କ୍ଷତିକର—ବିଂ. (କ୍ଷତି+କୃ+କ.ଅ) ଯାହାଦ୍ୱାରା କ୍ଷତି ଘଟେ।

କ୍ଷତିଗ୍ରସ୍ତ—ବିଂ. (ତତ୍ପୁ) ଯାହାର କ୍ଷତି ହୋଇଅଛି, (ସ୍ତ୍ରୀ) କ୍ଷତିଗ୍ରସ୍ତା।

କ୍ଷତିଜନକ—ବିଂ. (କ୍ଷତି+ଜନ୍+କ, ଅକ) କ୍ଷତିକର (ଦେଖ)।

କ୍ଷତିପୂରଣ—ବି. (ତତ୍ପୁ) କୌଣସିବ୍ୟକ୍ତି ଦ୍ୱାରାହୋଇଥିବା ଅନ୍ୟ ବ୍ୟକ୍ତିର କ୍ଷତିର ପରିକଳ୍ପିତ ମୂଲ୍ୟ ପ୍ରଥମବ୍ୟକ୍ତିଦ୍ୱାରା ପ୍ରଦାନ, ଲୋକସାନ୍ ଭରଣା କରିଦିବା, ଖେସାରତ୍।

କ୍ଷତିବୃଦ୍ଧି—ସ୍ତ୍ରୀ. ବି. (ଦ୍ୱନ୍ଦ୍ୱ) ଲାଭାଲାଭ, ହାନି ଓ ଲାଭ, ହାନି ବା ଲାଭ।

କ୍ଷତୋତ୍ଥ—ବି.ବିଂ. ଯାହା କ୍ଷତରୁ ଉଠେ, କ୍ଷତଜ।

କ୍ଷତୋଦର—ପୁଂ. ବି. (କ୍ଷତ+ଉଦର) ସ୍ତ୍ରୀମାନଙ୍କର ଆର୍ତ୍ତବ, ନାଳରକ୍ତ ଝାଡ଼ା, ଉଦରରୋଗବିଶେଷ।

କ୍ଷତୋଦ୍ଭବ—ବିଂ. ( କ୍ଷତ+ଉତ୍+ଭୂ+ଅ) କ୍ଷତଦ୍ୱାରା ଯାହା ଉତ୍ପନ୍ନ, (କ୍ଲୀ.ବି) ରକ୍ତ, ନାଳରକ୍ତ।

କ୍ଷତ୍ତା—ପୁଂ. ବି. (କ୍ଷଦ୍+କ,ତୃ) ଯେଉଁ କାରିଗର କୌଣସି ବସ୍ତୁକୁ କାଟେ ବା ଖୋଦେଇ କାମକରେ, ଶୂଦ୍ର ଔରସରେ କ୍ଷତ୍ରିୟା ଗର୍ଭଜାତ ବର୍ଣ୍ଣସଙ୍କର, ସାରଥି, ଦ୍ୱାରପାଳ, ବିଧାତା, ବିଦୁର, ଦାସୀପୁତ୍ର, ଯେ ରଥରେ ଥାଇ ଯୁଦ୍ଧକରେ, ମତ୍ସ୍ୟ।

କ୍ଷତ୍ର—ପୁଂ କ୍ଲୀ.ବି. (କ୍ଷତ୍+ତ୍ରୈ+ଅ) କ୍ଷତ୍ରିୟ, ରାଜ୍ୟ, (କ୍ଲୀ.ବି) ଶରୀର, ନଗର, ଜଳ, ଧନ, ବଳ, ଶକ୍ତି, ଶାସନତନ୍ତ୍ର।

କ୍ଷତ୍ରଧର୍ମ—ପୁଂ.ବି.(ତତ୍ପୁ) କ୍ଷତ୍ରିୟଜାତିର ପାଳିବାଧର୍ମ, ସାହସ, ପୁରୁଷକାର ପ୍ରଭୃତି।

କ୍ଷତ୍ରଧର୍ମା—ପୁଂ.ବି. ଜଣେରାଜା, (ବିଂ) କ୍ଷତ୍ରିୟ ଧର୍ମଯୁକ୍ତ।

କ୍ଷତ୍ରଧର୍ମାନୁଗ—ବି. ଯେ କ୍ଷତ୍ରିୟ ଧର୍ମର ଅନୁଗମନ କରେ।

କ୍ଷତ୍ରଧୃତି—ପୁଂ.ବି. ଯଜ୍ଞବିଶେଷ।

କ୍ଷତ୍ରପ—ପୁଂ. ବି. (କ୍ଷତ୍ର+ପା+କ, ଅ) ପ୍ରାଦେଶିକ ଶାସନକର୍ତ୍ତା, ସୌରାଷ୍ଟ୍ରର ପ୍ରାଚୀନ ରାଜବଂଶ।

କ୍ଷତ୍ରପତି—ପୁ. ବି. (ତତ୍ପୁ) କ୍ଷତ୍ରିୟ ପାଳକ, କ୍ଷତ୍ରିୟମାନଙ୍କର ନେତା।

କ୍ଷତ୍ରବନ୍ଧୁ—ପୁଂ.ବି.(କ୍ଷତ୍ର+ବନ୍ଧ) ନିନ୍ଦିତ କ୍ଷତ୍ରିୟ, ନୀଚ ବା ଅପକୃଷ୍ଟ କ୍ଷତ୍ରିୟ।

କ୍ଷତ୍ରଭୃତ୍—ପୁଂ. ବି (କ୍ଷତ୍ର+ଭୃ+କ, କ୍ୱିପ୍) କ୍ଷତ୍ରିୟମାନଙ୍କର ପ୍ରତିପାଳକ, (ଅଗ୍ନି)।

କ୍ଷତ୍ରଯୋଗ—ପୁଂ. ବି. ଅଥର୍ବବେଦୋକ୍ତ ରାଜଯୋଗବିଶେଷ।

କ୍ଷତ୍ରବନୀ—ବି.ବିଂ.(କ୍ଷତ୍ର+ବନ୍+ଇନ୍) କ୍ଷତ୍ରିୟଜାତିଦ୍ୱେଷୀ, ଯେ କ୍ଷତ୍ରିୟଜାତି ଅବଲମ୍ବନ କରେ।

କ୍ଷତ୍ରବାନ୍—ପୁଂ. ବିଂ. (କ୍ଷତ୍ର+ବତ୍) କ୍ଷତ୍ରିୟ ପ୍ରତିପାଳକ।

କ୍ଷତ୍ରବର୍ଦ୍ଧନ—ବିଂ. (କ୍ଷତ୍ର+ବୃଧ୍+ଣି+ଅନ) ଧନ ଓ ବଳବୃଦ୍ଧିକାରକ।

କ୍ଷତ୍ରବିଦ୍ୟ—ପୁଂ.ବି. (ବ.ବ୍ରୀ) ଯେ କ୍ଷତ୍ରିୟ ବିଦ୍ୟାଜାଣେ, ଯେ ଧନୁର୍ବେଦ ଜାଣେ।

କ୍ଷତ୍ରବୃକ୍ଷ—ପୁଂ. ବି. ମୁଚୁକୁନ୍ଦ।

କ୍ଷତ୍ରବୃଦ୍ଧ—ପୁଂ. ବି. ଆୟୁବଂଶୀୟ ଜଣେ ରାଜା, କାଶ୍ୟାଦିଗଣଙ୍କ ପୂର୍ବଜ, (ବି) କ୍ଷତ୍ରିୟଶ୍ରେଷ୍ଠ। [ବିଦ୍ୟା।

କ୍ଷତ୍ରବେଦ—ପୁଂ. ବି. ଧନୁର୍ବେଦ,କ୍ଷତ୍ର-

କ୍ଷତ୍ରଶ୍ରୀ-ବିଂ.(ବ.ବ୍ରୀ) ବଳବାନ୍,ବଳସେବୀ।

କ୍ଷତ୍ରସବ—ପୁଂ.ବି. (୬ତତ୍)କ୍ଷତ୍ରିୟମାନଙ୍କର କର୍ତ୍ତବ୍ୟ ଯଜ୍ଞବିଶେଷ।

କ୍ଷତ୍ରାନ୍ତକ—ପୁଂ. ବି. ୬ତତ୍; (କ୍ଷେତ୍ର+ଅନ୍ତକ) ପରଶୁରାମ।

କ୍ଷତ୍ରାନ୍ତକାରୀ—ପୁଂ ବି. (କ୍ଷତ୍ର+ଅନ୍ତ+କୃ+ଇନ୍) ପରଶୁରାମ।

କ୍ଷତ୍ରି—ପୁଂ. ବି. କ୍ଷତ୍ରିୟ।

କ୍ଷତ୍ରିଣୀ—ସ୍ତ୍ରୀ.ବି. (କ୍ଷତ୍ରିନ୍+ଈ)ମଞ୍ଜିଷ୍ଠା, କ୍ଷତ୍ରିୟ ସ୍ତ୍ରୀ। [ବିଶେଷ।

କ୍ଷତ୍ରିଦାସ-ଧାରବାରଜଲର ଭିକ୍ଷୁକଶ୍ରେଣୀ-

କ୍ଷତ୍ରିୟ—ପୁଂ. ବି. ଦ୍ୱିଜାତିର ଅନ୍ତର୍ଗତ ଦ୍ୱିତୀୟବର୍ଣ୍ଣ,ଯୋଦ୍ଧାଜାତି,ଆର୍ଯ୍ୟଜାତି।

କ୍ଷତ୍ରିୟକା—ସ୍ତ୍ରୀ. ବି କ୍ଷତ୍ରିୟସ୍ତ୍ରୀ, କ୍ଷତ୍ରିୟା।

କ୍ଷତ୍ରିୟହଣ, କ୍ଷତ୍ରିୟଘ୍ନ—ପୁଂ. ବି. (କ୍ଷତ୍ରିୟ+ହନ୍+ଅ) ପରଶୁରାମ, ଜାମଦଗ୍ନ୍ୟ।

କ୍ଷତ୍ରିୟା—ସ୍ତ୍ରୀ. ବି. କ୍ଷତ୍ରିୟଜାତୀୟା ସ୍ତ୍ରୀ।

କ୍ଷତ୍ରିୟାସନ—କ୍ଲୀ. ବି. ରୁଦ୍ରଯାମଳୋକ୍ତ ଆସନବିଶେଷ।

କ୍ଷତ୍ରିୟିକା—ସ୍ତ୍ରୀ.ବି.କ୍ଷତ୍ରିୟା, କ୍ଷତ୍ରିୟ ସ୍ତ୍ରୀ।

କ୍ଷତ୍ରିୟୀ-ସ୍ତ୍ରୀ ବି(କ୍ଷତ୍ରିୟ+ଈ)କ୍ଷତ୍ରିୟ ସ୍ତ୍ରୀ।

କ୍ଷତ୍ରୀ—ସ୍ତ୍ରୀ. ବି. (କ୍ଷତ୍ର+ଈ)କ୍ଷତ୍ରିୟସ୍ତ୍ରୀ, ଜଳ, ଦେହ, (ପୁଂ.ବି) କ୍ଷତ୍ରିୟ।

କ୍ଷଦ୍—(ଧାତୁ) ମାରିପକାଇବା, ଘୋଡାଇବା, ଖାଇବା, ବର୍ଣ୍ଣନ କରିବା, ଖଣ୍ଡ-ଖଣ୍ଡ କରିବା, ବିଭାଗ କରିବା।

କ୍ଷଦଣ୍ଡୋତ୍ପଳ—ବି. ଦଣ୍ଡିପୋଳା ଗଛ।

କ୍ଷଦିତ—ବି. ବିଂ. ବିଭକ୍ତ, ଖଣ୍ଡିତ, ଆହାରର ଯୋଗ୍ୟ।

କ୍ଷଦନ—ପୁଂ. କ୍ଲୀ. ବି. ଖଣ୍ଡନ, ବିଭାଗକରିବା, ଭୋଜନ।

କ୍ଷଦ୍ମ—କ୍ଲୀ. ବି. (କ୍ଷଦ୍+ମ)ଅନ୍ନ, ଜଳ।

କ୍ଷନ୍ତବ୍ୟ—ବି. ବିଂ. (କ୍ଷମ୍+ର୍ମ.ତବ୍ୟ) କ୍ଷମାର ଯୋଗ୍ୟ, କ୍ଷମାର୍ହ, କ୍ଷମଣୀୟ, କ୍ଷମାକରିବାର ଉପଯୁକ୍ତ।

କ୍ଷନ୍ତା—ପୁଂ.ବିଂ.(କ୍ଷମ+କ.ତୃ) କ୍ଷମାଶୀଳ ସହିଷ୍ଣୁ, ଧୀର, ବିନୀତ (ସ୍ତ୍ରୀ) କ୍ଷନ୍ତ୍ରୀ।

କ୍ଷପ—(ଧାତୁ) ଫୋପାଡ଼ିବା, ଉପବାସକରିବା, ଯାପନକରିବା, ବିନାଶକରିବା, ଛାଡ଼ିବା, କମାଇବା,ପ୍ରାୟଶ୍ଚିତ୍ତକରିବା।

କ୍ଷପ—ପୁଂ.ବି.(କ୍ଷପ୍+ଅ) ଜଳ, (ବିଂ) କ୍ଷମାଶୀଳ।

କ୍ଷପ୍—ସ୍ତ୍ରୀ. ବି. (କ୍ଷପ୍+କ୍ୱିପ୍) ରାତ୍ରି।

କ୍ଷପଣ—ପୁଂ. ବି. (କ୍ଷପ+କ.ଅନ)ବୌଦ୍ଧ ସନ୍ନ୍ୟାସୀ, (କ୍ଲୀ.ବି.) ତ୍ୟାଗ, ଅଶୌଚ, ଉପବାସ, ଦୁଷ୍କରଣ, ତଡାଇବା(ବିଂ) ନିର୍ଲଜ୍ଜ, ଲଜ୍ଜାହୀନ।

କ୍ଷପଣକ—ପୁଂ.ବି. (କ୍ଷପଣ+କ) ବୌଦ୍ଧ ସନ୍ନ୍ୟାସୀବିଶେଷ, ନାସ୍ତିକମତ ପ୍ରବର୍ତ୍ତକ ନିର୍ଲଜ୍ଜ ବ୍ୟକ୍ତି, ବିକ୍ରମାଦିତ୍ୟ ସଭାସ୍ଥ ନବରତ୍ନ ମଧ୍ୟରୁ ଜଣେ।

କ୍ଷପଣକତା—ସ୍ତ୍ରୀ.ବି. (କ୍ଷପଣକ+ଭା.ତ୍) କ୍ଷପଣକର ଧର୍ମ।

କ୍ଷପଣୀ—ସ୍ତ୍ରୀ.ବି. (କ୍ଷପଣ+ଈ) ଆହୁଲା, ଜାଲ, କ୍ଷେପଣୀ।

କ୍ଷପା—ସ୍ତ୍ରୀ.ବି.(କ୍ଷପ୍+ର୍ମ.ଅ+ଆ)ରାତ୍ରି, ହଳଦୀ, ଦିବାରାତ୍ରି ବ୍ୟାପୀ ୨୪ ଘଣ୍ଟା।

କ୍ଷପାକର—ପୁଂ. ବି. (କ୍ଷପା+କୃ+ଅ) ଚନ୍ଦ୍ର, କର୍ପୂର। [ଚନ୍ଦ୍ର।

କ୍ଷପାକୃତ୍—ପୁଂ.ବି.(କ୍ଷପା+କୃ+କ୍ୱିପ୍)

କ୍ଷପାଚର—ପୁଂ.ବି. (କ୍ଷପା+ଚର+କ.ଅ) ନିଶାଚର,ରାକ୍ଷସ।

କ୍ଷପାଚରୀ—ସ୍ତ୍ରୀ. ବି. (କ୍ଷପାଚର+ଈ) ରାକ୍ଷସୀ, ନିଶାଚରୀ।

କ୍ଷପାଟ—ପୁଂ. ବି. (କ୍ଷପା+ଅଟ+କ.ଅ) ନିଶାଚର, ରାକ୍ଷସ।

କ୍ଷପାନାଥ—ପୁଂ. ବି. (୬ତତ୍) ଚନ୍ଦ୍ର।

କ୍ଷପାନ୍ଧ—ପୁଂ.ବିଂ.(୭ତତ୍)ଅନ୍ଧାରକଣା।

କ୍ଷପାନ୍ଧ୍ୟ-ବି. (କ୍ଷପାନ୍ଧ+ଯ)ଅନ୍ଧାରକଣାରୋଗ।

କ୍ଷପାବାନ୍—ପୁଂ.ବି. ଯେଉଁବ୍ୟକ୍ତି କାଳକ୍ଷେପଣ କରେ, ଯେଉଁ ବ୍ୟକ୍ତି ଶତ୍ରୁକୁ ତଡ଼ାଇଦିଏ।

କ୍ଷପାବୃତ୍ତି—ବିଂ. (କ୍ଷପା+ବୃତ୍ତି)ବ.ବ୍ରୀ; ଯେ ରାତିରେ ଖାଦ୍ୟ ଖୋଜିବାକୁ ବାହାରେ।

କ୍ଷମ୍—(ଧାତୁ) ଦୋଷ ମାର୍ଜନା କରିବା, କ୍ଷମା କରିବା, ଦୋଷସହିବା, ସହ୍ୟକରିବା, ବାଧାଦେବା, କୌଣସି କାର୍ଯ୍ୟ କରିବାକୁ ସମର୍ଥ ହେବା।

କ୍ଷମ—ପୁଂ. ବିଂ. (କ୍ଷମ+କ.ଅ) ସହିଷ୍ଣୁ, ସମର୍ଥ, ଯଥେଷ୍ଟ, ନିପୁଣ, ଉପଯୁକ୍ତ, ଯୋଗ୍ୟ, ସହନୀୟ, ଅନୁକୂଳ, ଯାହା ବାଧା ଦିଏ,(ସ୍ତ୍ରୀ)କ୍ଷମା,(ବି)ଯୋଗ୍ୟତା, ସାମର୍ଥ୍ୟ,ଉପଯୋଗିତା,କ୍ଷମତା,ଔଚିତ୍ୟ, ଚଟକପକ୍ଷୀବିଶେଷ, ଶିବ।

କ୍ଷମଣୀୟ—ବିଂ.(କ୍ଷମ୍+ର୍ମ.ଅନୀୟ)କ୍ଷମାର ଯୋଗ୍ୟ, ସହିବାର ଯୋଗ୍ୟ, (ସ୍ତ୍ରୀ) କ୍ଷମଣୀୟା।

କ୍ଷମତା—ବି. (କ୍ଷମ+ଭା.ତ)ଯୋଗ୍ୟତା, ଶକ୍ତି,ସାମର୍ଥ୍ୟ, ଧୈର୍ଯ୍ୟ, ଭାର,ସହିଷ୍ଣୁତା, ଅଧିକାର।

କ୍ଷମତାତିରିକ୍ତ—ବିଂ.(୫ତତ୍) କ୍ଷମତା ବା ଶକ୍ତିର ବହିର୍ଭୂତ, ନ୍ୟସ୍ତ ଅଧିକାରର ନିୟମ ବା ସୀମାରୁ ବଳି କରାଯାଇଥିବା।

କ୍ଷମତାତୀତ—ବିଂ. ୫ତତ୍ (କ୍ଷମତା+ଅତୀତ) କ୍ଷମତାତିରିକ୍ତ (ଦେଖ)।

କ୍ଷମତାପତ୍ର—ଗ୍ରା.ବି. ମାଲିକଙ୍କ ପ୍ରତିନିଧି-ସ୍ୱରୂପ କୌଣସି ବୈଷୟିକ କାର୍ଯ୍ୟର ଭାର ଅନ୍ୟ ଉପରେ ନ୍ୟସ୍ତ କରିବାର ନିଦର୍ଶନ ପତ୍ର।

କ୍ଷମତାପନ୍ନ—ବିଂ. (୨ତତ୍) ଶକ୍ତିଶାଳୀ, ମାଲିକ ଯେଉଁ କର୍ମଚାରୀଠାରେ କୌଣସି କାର୍ଯ୍ୟ ଚଳାଇବାକୁ ଅଧିକାର ଦେଇଥାଆନ୍ତି, ଭାରପ୍ରାପ୍ତ (ପ୍ରତିନିଧି) ବିଭବଶାଳୀ।

କ୍ଷମତାପ୍ରାପ୍ତ—ଗ୍ରା. ବିଂ.କ୍ଷମତାପନ୍ନ(ଦେଖ)

କ୍ଷମତାବହିର୍ଭୂତ—ବିଂ. (୫ତତ୍) ଶକ୍ତି ବା ସାମର୍ଥ୍ୟରୁ ବାହାର।

କ୍ଷମତାବାନ୍—ପୁଂ.ବିଂ.(କ୍ଷମତା + ବତ୍) ସାମର୍ଥ୍ୟସମ୍ପନ୍ନ, ସମର୍ଥ, ଶକ୍ତିମାନ୍ (ସ୍ତ୍ରୀ) କ୍ଷମତାବତୀ ।

କ୍ଷମତାସ୍ଥାନ—ବିଂ. (କ୍ଷମତା + ସ୍ଥାନ) ଶକ୍ତି ସ୍ଥାନ, ଅକ୍ଷମ ।

କ୍ଷମା-ସ୍ତ୍ରୀ.ବି.(କ୍ଷମ + ଭା.ଅ + ଆ)ଦୋଷସହନ, ଦୋଷମାର୍ଜନା, ଧୈର୍ଯ୍ୟ, ସହିଷ୍ଣୁତା, ଦୁଃଖଶାନ୍ତି, ପୃଥିବୀ, ଦକ୍ଷକନ୍ୟା, ପୁଲହଙ୍କ ପତ୍ନୀ, ଖଦିରବୃକ୍ଷ,ଏକସଂଖ୍ୟା, ଦୁର୍ଗା,ଉଦକ୍ଷା,ନବୃତ୍ତି,(ସ୍ତ୍ରୀ.ବିଂ)ସାମର୍ଥ୍ୟ ।

କ୍ଷମାକରିବା—ଗ୍ରା. କ୍ରି. ଦୋଷ ମାର୍ଜନା କରିବା,ଛାଡ଼ିଦେବା, ଅବ୍ୟାହତିଦେବା ।

କ୍ଷମାଗୁଣ—ବି.(କ.ଧା)କ୍ଷମାନାମକ ଗୁଣ ।

କ୍ଷମାଚର—ବି. (କ୍ଷମା + ଚର୍ + ଅ) ପାତାଳବାସୀ,ଯେଉଁମାନେ ପାତାଳରେ ବାସ କରନ୍ତି ।

କ୍ଷମାଦଂଶ-ପୁଂ.ବି.ସଜନାଗଛ,ଶିଗ୍ରୁବୃକ୍ଷ ।

କ୍ଷମାନ୍ୱିତ—ବିଂ. (କ୍ଷମା + ନ + ଧା + କ ଇ) କ୍ଷମାଶୀଳ ।

କ୍ଷମାନ୍ୱିତ—ପୁଂ.ବିଂ. (୩ତତ୍)ଯେ ଅପରାଧୀକୁ କ୍ଷମା କରନ୍ତି, ଧୈର୍ଯ୍ୟଶୀଳ,(ସ୍ତ୍ରୀ) କ୍ଷମାନ୍ୱିତା । [ପ୍ରାର୍ଥନା ।

କ୍ଷମାପଣ—ବିଂ.(କ୍ଷମା + ପଣ + ଅ)କ୍ଷମା-

କ୍ଷମାପତି—ପୁଂ.ବି.କାଶ୍ମୀରର ଜଣେରାଜା (୬ତତ୍) ପୃଥିବୀପତି, ରାଜା ।

କ୍ଷମାପର—ପୁଂ.ବିଂ. (୭ତତ୍)କ୍ଷମାଶୀଳ, ମାର୍ଜନାକାରୀ, କ୍ଷମୀ, ସହିଷ୍ଣୁ, (ସ୍ତ୍ରୀ) କ୍ଷମାପରା ।

କ୍ଷମାପରାୟଣ—ବିଂ. (ବ.ବ୍ରୀ)କ୍ଷମାଶୀଳ, କ୍ଷମୀ, ସହିଷ୍ଣୁ, (ସ୍ତ୍ରୀ) ପରାୟଣା ।

କ୍ଷମାପାରାବାର—ବିଂ (୬ତତ୍)ସମସ୍ତ ପାପ ମାର୍ଜନାକାରୀ ।

କ୍ଷମାପ୍ରାର୍ଥନା—ବି. (୬ତତ୍) କ୍ଷମାଭିକ୍ଷା, କ୍ଷମା ମାଗିବା, ଯାଚ୍ଞା ।

କ୍ଷମାପ୍ରାର୍ଥୀ—ପୁଂ.ବିଂ.(କ୍ଷମା + ପ୍ରାର୍ଥିନ୍) ଯେ କ୍ଷମାପ୍ରାର୍ଥନା କରେ ।

କ୍ଷମାବାନ୍—ପୁଂ.ବିଂ.(କ୍ଷମା + ବତ୍) କ୍ଷମାଯୁକ୍ତ, ସହିଷ୍ଣୁ ।

କ୍ଷମାଭିକ୍ଷା—ବି. (୬ତତ୍) କ୍ଷମାପ୍ରାର୍ଥନା, ମାଫମାଗିବା ।

କ୍ଷମାଭିକ୍ଷୁ—ପୁଂ.ବିଂ.(୪ତତ୍ ବା ୬ତତ୍) କ୍ଷମାପ୍ରାର୍ଥୀ (ଦେଖ) ।

କ୍ଷମାଭୁକ୍—ପୁଂ. ବି. (କ୍ଷମା + ଭୁଜ୍ + କ୍ୱିପ) ରାଜା । [ରାଜା ।

କ୍ଷମାଭୁଜ-ପୁଂ.ବି.(କ୍ଷମା + ଭୁଜ + କ,ଅ)

କ୍ଷମାମଣ୍ଡଳ—ବି. (୬ତତ୍) ପୃଥିବୀ, ଭୂମଣ୍ଡଳ ।

କ୍ଷମାଯୁକ୍ତ—ପୁଂ.ବିଂ. ( ତତ)ଯେ ଅପରାଧୀକୁ କ୍ଷମା ଦିଏ । [ଦେଖ ।

କ୍ଷମାଶ୍ରୟ—ବିଂ.(୬ତତ୍)କ୍ଷମାପାରାବାର,

କ୍ଷମାଶୀଳ—ପୁଂ. ବିଂ. (ବ.ବ୍ରୀ)କ୍ଷମାଯୁକ୍ତ, ଯେ ଅପରାଧୀକୁ କ୍ଷମାଦିଏ, (ସ୍ତ୍ରୀ) କ୍ଷମାଶୀଳା ।

କ୍ଷମାସାଗର—ବିଂ. (୬ତତ୍) କ୍ଷମାପାରାବାର (ଦେଖ) ।

କ୍ଷମିତବ୍ୟ—ବିଂ.(କ୍ଷମା + ଣିଚ୍ + ତବ୍ୟ) କ୍ଷମଣୀୟ, କ୍ଷମାକରିବାର ଯୋଗ୍ୟ ।

କ୍ଷମିତା—ପୁଂ.ବିଂ. (କ୍ଷମା + ଣିଚ୍ + ତୃ) କ୍ଷମାଶୀଳ,ସହିଷ୍ଣୁ,ସମର୍ଥ,(ସ୍ତ୍ରୀ)କ୍ଷମିତ୍ରୀ ।

କ୍ଷମୀ—ପୁଂ. ବିଂ. (କ୍ଷମା + ଇନ୍)ସହନଶୀଳ, ଯେ ପରର ଦୋଷକୁ ମାର୍ଜନା କରେ, କର୍ମଠ ।

କ୍ଷମେ—ଗ୍ରା. କ୍ରି. ବିଂ. ଆନନ୍ଦରେ ।

କ୍ଷମ୍ୟ—ପୁଂ.ବିଂ. (କ୍ଷମ + ର୍ମି.ଯ)କ୍ଷନ୍ତବ୍ୟ, ପୃଥିବୀରୁ ଉତ୍ପନ୍ନ, କ୍ଷମାଯୋଗ୍ୟ, ମାର୍ଜନୀୟ, (ସ୍ତ୍ରୀ) କ୍ଷମ୍ୟା ।

କ୍ଷୟ-ପୁଂ.ବି.(କ୍ଷି + ଭା.ଅ)ଅପଚୟ,ନାଶ, ପ୍ରଳୟ, ହ୍ରାସ, ଧ୍ୱଂସ,ଗୃହ,ଯକ୍ଷ୍ମାରୋଗ, ମାସବିଶେଷ, ଯମପୁର, ବଂଶ, ଘୋର ହୋଇ କମିଯିବା,କ୍ଷୀଣତା, ବାର୍ଦ୍ଧକ୍ୟ, ୬° ବର୍ଷ ମଧ୍ୟରୁ ଶେଷବର୍ଷ, ଚନ୍ଦ୍ରକଳାର ହ୍ରାସ ।

କ୍ଷୟକର—ବିଂ. (କ୍ଷୟ + କୃ + କ. ଅ) ନାଶକାରୀ, ନାଶକ ।

କ୍ଷୟକାରୀ—ପୁଂ.ବିଂ. (କ୍ଷୟ + କୃ + କ. ଇନ୍) ବିନାଶକ, (ସ୍ତ୍ରୀ)କ୍ଷୟକାରିଣୀ ।

କ୍ଷୟକାଳ—ବି. (୬ତତ୍)ସୃଷ୍ଟିର ପ୍ରଳୟ ।

କ୍ଷୟକୃତ୍—ବିଂ. (କ୍ଷୟ + କୃ + କ୍ୱିପ୍) କ୍ଷୟ କାରକ ।

କ୍ଷୟଙ୍କର—ବିଂ.(କ୍ଷୟଂ + କୃ + ଅ)ଯାହା କ୍ଷୟ ଘଟାଏ, ବିନାଶକ ।

କ୍ଷୟଜ—ପୁଂ.ବି. (କ୍ଷୟ + ଜନ୍ + କ.ଅ) ଏକପ୍ରକାର କାଶରୋଗ, କ୍ଷୟକାଶ ।

କ୍ଷୟଣ—ବି.(କ୍ଷି + ଭା.ଅନ)ବିନାଶକରଣ, ନିଶ୍ଚଳ ଜଳାଧାର, ନିବାସ, ଗୃହ, ଉପସାଗର ।

କ୍ଷୟତରୁ—ପୁଂ. ବି. ନନ୍ଦୀବୃକ୍ଷ, ଏକପ୍ରକାର ଅଶ୍ୱତ୍ଥବୃକ୍ଷ, ଜରଗଛ ।

କ୍ଷୟଥୁ—ପୁଂ.ବି.(କ୍ଷି + ଅଥୁ)କାଶରୋଗ, ଯକ୍ଷ୍ମାରୋଗ ।

କ୍ଷୟନାଶୀ—ବିଂ. (କ୍ଷୟ + ନଶ୍ + ଣିଚ୍ + ଇନ୍) କ୍ଷୟରୋଗନାଶକ ।

କ୍ଷୟରୋଗନାଶିନୀ—ସ୍ତ୍ରୀ.ବି. ଜୀବନ୍ତୀବୃକ୍ଷ ।

କ୍ଷୟପକ୍ଷ-ପୁଂ.ବି(କ୍ଷୟ + ପକ୍ଷ)ମଧ୍ୟ.କ.ଧା; କୃଷ୍ଣପକ୍ଷ ।

କ୍ଷୟପ୍ରାପ୍ତ—ବିଂ. (୨ତତ୍)କ୍ଷୟିତ(ଦେଖ)

କ୍ଷୟମାସ—ପୁଂ.ବି. ଚାନ୍ଦ୍ରମାସବିଶେଷ ।

କ୍ଷୟରୋଗ—ପୁଂ. ବି. (କ୍ଷୟ + ରୋଗ) ଯକ୍ଷ୍ମାରୋଗ ।

କ୍ଷୟରୋଗୀ—ପୁଂ. ବିଂ. (କ୍ଷୟ + ରୋଗ + ଇନ୍)ଯାହାର କ୍ଷୟରୋଗ ହୋଇଅଛି ।

କ୍ଷୟବାୟୁ—ପୁଂ.ବି. (ମଧ୍ୟ.କ.ଧା)ପ୍ରଳୟକାଳର ପବନ ।

କ୍ଷୟିତ—ବି.ବିଂ. (କ୍ଷୟ + ଇତ)ହ୍ରାସପ୍ରାପ୍ତ, ବିନାଶପ୍ରାପ୍ତ,କ୍ଷୀଣତାପ୍ରାପ୍ତ ।

କ୍ଷୟିତ୍ୱ—କ୍ଳୀ.ବି (କ୍ଷୟ + ଭା.ତ୍ୱ) କ୍ଷୟ, ନାଶ, କ୍ଷଣତା ।

କ୍ଷୟିଷ୍ଣୁ—ବିଂ.(କ୍ଷୟ + ଇଷ୍ଣୁ)କ୍ଷୟଶୀଳ, କ୍ରମେକ୍ରମେ ଯାହା କ୍ଷୀଣ ହୋଇଥାଏ ।

କ୍ଷୟୀ—ପୁଂ.ବିଂ(କ୍ଷୟ + ଇନ୍)କ୍ଷୟଶୀଳ ନଶ୍ୱର, କ୍ଷୟରୋଗଗ୍ରସ୍ତ, (ବି) ଚନ୍ଦ୍ର ।

କ୍ଷୟ୍ୟ—ବିଂ.(କ୍ଷି + ର୍ମି.ଯ) ବିନଷ୍ଟହେବାର ଯୋଗ୍ୟ, ବିନାଶ୍ୟ ।

କ୍ଷର—ବିଂ.(କ୍ଷର + କ.ଅ) ତରଳି ବହି ଯାଉଥିବା, ନିଃସୃତ, ଚଳନ୍ତି, ବିନାଶଶୀଳ,(ବି) ମେଘ, ଜଳ,ଦେହ,ଅଜ୍ଞାନ ପରମେଶ୍ୱର,କାରଣ ଓ କାର୍ଯ୍ୟ, ନିଃସ୍ୟନ୍ଦନ, ମୂର୍ଖତା ।

କ୍ଷରଜ—ତ୍ରି.ବି°.(କ୍ଷର + ଜନ୍ + କ.ଅ) ଯାହା ମେଘରୁ ଜନ୍ମେ, ମେଘଜ ।

କ୍ଷରଣ—କ୍ଳୀ.ବି(କ୍ଷର୍ + ଭା.ଅନ)ମୋଚନ, ଆସେଇବା,ସ୍ରାବ, ଝରିବା, ତରଳିବା, ଝାଳେଇବା, ସ୍ୱେଦ, ଝାଳ, ନିଃସରଣ, ବହିବା ।

କ୍ଷରପତ୍ରା—ସ୍ତ୍ରୀ. ବି. ଦ୍ରୋଣପୁଷ୍ପୀ, ଗଇଶ-ଫୁଲଗଛ ।

କ୍ଷରିତ—ତ୍ରି. ବି°. (କ୍ଷର୍ + ତ) ନିଃସୃତ, ବିଗଳିତ, ଟୋପାଟୋପା ହୋଇପଡ଼ୁ-ଥିବା, ତରଳିଯାଇଥିବା, ଝରୁଥିବା ।

କ୍ଷରିବା—ଗ୍ରା.କ୍ରି.କ୍ଷରିତହେବା, ଝରିବା, ଟୋପାଟୋପା ହୋଇ ପଡ଼ିବା,ସ୍ରବିବା ।

କ୍ଷରୀ—ପୁଂ.ବି. (କ୍ଷର୍ + ଇନ୍) ବର୍ଷାକାଳ, (ବି°) କ୍ଷରିତ, ଝରୁଥିବା, ବହୁଥିବା, କ୍ଷରଣବିଶିଷ୍ଟ ।

କ୍ଷଲ୍—ବି°. ( କ୍ଷଲ୍ + ଅ ) ଯେ ଶୋଧନ କରେ, ଚଳ,ଯେ ଚଳିପାରେ,ଶୋଧନ-କାରୀ ।

କ୍ଷବ—ପୁଂ ବି.(କ୍ଷୁ + ଭା.ଅ)ଛିଙ୍କ, ସରିଦ, କାସ,ଗଳାଦରଜହେବା, ରାଇସୋରିଷ ।

କ୍ଷବକ—ପୁଂ.ବି.ଅପାମାର୍ଗ, ଶାକବିଶେଷ, ରାଇସୋରିଷ ।

କ୍ଷବଥୁ—ପୁଂ. ବି. (କ୍ଷୁ + ଭା.ଅଥୁ) ଛିଙ୍କ, କାସ,ସରିଦ,ଗଳାଦରଜ,ରାଇସୋରିଷ ।

କ୍ଷବପତ୍ରା, କ୍ଷବପତ୍ରୀ—ସ୍ତ୍ରୀ.ବି.ଦ୍ରୋଣପୁଷ୍ପୀ, ଗଇଶ ଫୁଲଗଛ ।

କ୍ଷବିକା—ସ୍ତ୍ରୀ.ବି. (କ୍ଷବକ + ଆ) ଧାନ୍ୟ-ବିଶେଷ, ସ୍ତ୍ରୀଲୋକ,କଣ୍ଟକୀଗୁଳ୍ମବିଶେଷ ।

କ୍ଷା—ବି°.(କ୍ଷି + ଣିଚ୍ + କ୍ୱିପ୍)କ୍ଷୟପ୍ରାପ୍ତା, (ସ୍ତ୍ରୀ.ବି) ପୃଥିବୀ ।

କ୍ଷାତି—ସ୍ତ୍ରୀ.ବି.(କ୍ଷା + ତି)ଜ୍ୱାଳା,ଅଗ୍ନିର ଶିଖା ।

କ୍ଷାତ୍ର—କ୍ଳୀ. ବି. (କ୍ଷତ୍ର + ଅ) କ୍ଷତ୍ରିୟର କର୍ମ,କ୍ଷତ୍ରିୟତ୍ୱ,(ବି°)କ୍ଷତ୍ରିୟସମ୍ବନ୍ଧୀୟ ।

କ୍ଷାତ୍ରବିଦ୍ୟା—ପୁଂ.ବି°.ଯେ କ୍ଷତ୍ରିୟ ବିଦ୍ୟା ଜାଣେ କିମ୍ବା ପଢ଼େ ।

କ୍ଷାତ୍ରି—ପୁଂ. ବି. କ୍ଷତ୍ରିୟର ପୁତ୍ର ।

କ୍ଷାତ୍ରୀ—ପୁଂ.ବି. (କ୍ଷତ୍ର + ଇନ୍) କ୍ଷତ୍ରିୟ ଔରସରେ ଅନ୍ୟ ଜାତୀୟ ସ୍ତ୍ରୀର ଗର୍ଭ-ଜାତ ପୁତ୍ର, କ୍ଷେତ୍ରୀ ।

କ୍ଷାନ୍ତ—ପୁଂ. ବି°. (କ୍ଷମ୍ + ତ) ନିବୃତ୍ତ, କ୍ଷମାପ୍ରାପ୍ତ, କ୍ଷମାଶୀଳ, ସହିଷ୍ଣୁ, ବିରତ, (ପୁଂ.ବି) ଶିବଙ୍କର ନାମାନ୍ତର, ଜଣେ ଋଷିଙ୍କ ନାମ, ଜଣେ ବ୍ୟାଧର ନାମ ।

କ୍ଷାନ୍ତା—ସ୍ତ୍ରୀ. ବି. (କ୍ଷାନ୍ତ + ଆ) ପୃଥିବୀ ।

କ୍ଷାନ୍ତାୟନ—ପୁଂବି. କ୍ଷାନ୍ତନାମକ ଋଷିଙ୍କ ପୁତ୍ର ।

କ୍ଷାନ୍ତାୟନୀ—ସ୍ତ୍ରୀ.ବି.କ୍ଷାନ୍ତ ନାମକ ଋଷିଙ୍କ କନ୍ୟା ଓ ତଦ୍‌ବଂଶୀୟା ସ୍ତ୍ରୀ ।

କ୍ଷାନ୍ତି—ସ୍ତ୍ରୀ. ବି.(କ୍ଷମ + ଭା,ତି)କ୍ଷମା,ଧୈର୍ଯ୍ୟ, ନିବୃତ୍ତି, ତିତିକ୍ଷା, ବିରତି, ଉଦାସୀନତା, ସହିଷ୍ଣୁତା ।

କ୍ଷାନ୍ତିପାରମିତା—ସ୍ତ୍ରୀ. ବି. ସହିଷ୍ଣୁତା ।

କ୍ଷାନ୍ତିମାନ୍—ପୁଂ. ବି°. (କ୍ଷାନ୍ତି + ମତ୍) କ୍ଷମାଶୀଳ, ସହିଷ୍ଣୁ ।

କ୍ଷାନ୍ତୁ—ତ୍ରି.ବି°.(କ୍ଷମ୍ + ତୃ) କ୍ଷମାଶୀଳ, (ପୁଂ. ବି°) ପିତା ।

କ୍ଷାମ—ତ୍ରି.ବି°.(କ୍ଷୈ + କ,ତ)କ୍ଷୟପ୍ରାପ୍ତ, କ୍ଷୀଣ, ଦୁର୍ବଳ, ସରୁ,ଶୁଷ୍କ, ରୁକ୍ଷ,ଦଗ୍ଧ, ପାଉଁଶ ହୋଇଥିବା, (ପୁଂ. ବି.) ବିଷ୍ଣୁଙ୍କର ନାମ, ବିନାଶ ।

କ୍ଷାମବତୀ—ସ୍ତ୍ରୀ. ବି. ଯାଗବିଶେଷ ।

କ୍ଷାମବାନ୍—ପୁଂ. ବି. ଅଗ୍ନିବିଶେଷ ।

କ୍ଷାମବର୍ଦ୍ଧନ—ବି°. (କ୍ଷାମ + ବୃଧ୍ + କ, ଅନ)ଯାହା ଦୁର୍ବଳତା ବୃଦ୍ଧି କରେ ।

କ୍ଷାମା—ତ୍ରି.ବି°.କ୍ଷୟଶୀଳ,(କ୍ଳୀ.ବି) ନିବାସ ଗୃହ ।

କ୍ଷାମାସ୍ୟ—କ୍ଳୀ. ବି. କୁପଥ୍ୟ ।

କ୍ଷାମୀ—ପୁଂ ବି°.(କ୍ଷାମ + ଇନ୍) ଦଗ୍ଧୀ-ଭୂତ,କ୍ଷିଣତ ପ୍ରାପ୍ତ, ଶୁଷ୍କ ।

କ୍ଷାମ୍ୟ-ତ୍ରି.ବି°.(କ୍ଷାମ + ଯ)କ୍ଷମାଯୋଗ୍ୟ, ଯେଉଁ ବିଷୟରେ କ୍ଷମାକରିବା ଉଚିତ ।

କ୍ଷାର—ବି.(କ୍ଷର + ଅ)ଲୁଣ,ରସ,ଟାଙ୍ଗଣା ପାଉଁଶ, ଖାର, ସାଜିମାଟି, ଖାରିମାଟି, ଜଳ, ଅରଖ, କାଚ, ପାଣିଆ ଗୁଡ଼, କଳାଲୁଣ, ଖଣ୍ଡ, ଧୂର୍ତ୍ତବ୍ୟକ୍ତି, ସୋଡ଼ା, ଚୂନ,ଚନ୍ଦ୍ର,(ବି°)ଲୁଣିଆ,ବହିଯାଉଥିବା, ଝରୁଥିବା, ଗୁଆ, କଡ଼ୁଆ, ଅସହ୍ୟ, ଖାରିଆ ।

କ୍ଷାରକ—ପୁଂ. ବି. (କ୍ଷାର + ଅକ) ଲୁଣ, ଖାଇ, ଖଲୋଇ, ପିଞ୍ଜରା, ଧୋବା, ରସ,ପାଉଁଶ,ଫୁଲ ବା କଢ଼ିର ଥୋପା (ସ୍ତ୍ରୀ) ରଜକୀ ।

କ୍ଷାରକର୍ଦ୍ଦମ—ପୁଂ. ବି. ନରକବିଶେଷ, ଲୁଣିଆ, କାଦୁଆ ।

କ୍ଷାରକର୍ମ-ବି.(କ୍ଷାର + କର୍ମନ୍)(ବୈଦ୍ୟକ) ଫୁଲିଥିବା ମାଂସକୁ କଷ୍ଟିକ୍ ବା ଲୁଣଆଦି ଦେଇ କୋରିବା, ଲୁଣଆଦି ପ୍ରୟୋଗ ଦ୍ୱାରା ଚିକିତ୍ସା ।

କ୍ଷାରକୃତ୍ୟ—ବି. ଲୁଣ ଆଦି ପ୍ରୟୋଗଦ୍ୱାରା ଚିକିତ୍ସା । [ବିଶେଷ ।

କ୍ଷାରଗୁଡ଼—ପୁଂ. ବି. କ୍ଷାରପକ୍ୱ ଗୁଡ଼-

କ୍ଷାରଗୁଡ଼ିକା-ସ୍ତ୍ରୀ.ବି.ଏକପ୍ରକାର ଔଷଧ ।

କ୍ଷାରଣ—ବି. (କ୍ଷାର + ଅନ୍)ଅଭିଯୋଗ, ପର ସ୍ତ୍ରୀ ହରଣ ସମ୍ବନ୍ଧରେ ମିଥ୍ୟା ଅଭିଯୋଗ, ପାଣିକୁ ବକ ଯନ୍ତ୍ରରେ ଅଣ୍ଡା କରିବା, କ୍ଷାରରୂପେ ପରିଣତ କରିବା, ପାଉଁଶ କରିବା ।

କ୍ଷାରଣା—ସ୍ତ୍ରୀ.ବି. ମୈଥୁନପ୍ରତି ଆକ୍ରୋଶ ।

କ୍ଷାରତ୍ରୟ,କ୍ଷାରତ୍ରିତୟ—କ୍ଳୀ.ବି.(ବୈଦ୍ୟ) ଟାଙ୍ଗଣା, ସେଡ଼ା ଓ ଯବକ୍ଷାର ।

କ୍ଷାରଦଶକ—କ୍ଳୀ.ବି. ଦଶପ୍ରକାର କ୍ଷାର ।

କ୍ଷାରଦେଶ—ପୁଂ.ବି. କ୍ଷାରପ୍ରଧାନଦେଶ ।

କ୍ଷାରଦ୍ରୁ—ପୁଂ. ବି. ଘଣ୍ଟାପାରୁଳ ଗଛ ।

କ୍ଷାରନଦୀ—ସ୍ତ୍ରୀ. ବି. (କ.ଧା) ନରକର ଗୋଟିଏ ନଦୀ ।

କ୍ଷାରପତ୍ର,କ୍ଷାରପାତ୍ରକ—ପୁଂ. ବି.(ବ.ବ୍ରୀ) ବଥୁଆଶାଗ ।

କ୍ଷାରପତ୍ରା—ସ୍ତ୍ରୀ. ବି. ଚିଲ୍ଲୀଶାକ ।

କ୍ଷାରପାକ—ପୁଂ. ବି. କ୍ଷାରଦ୍ରବ୍ୟର ପାକ-ବିଶେଷ ।

କ୍ଷାରଭୂମି—ସ୍ତ୍ରୀ.ବି.(କ୍ଷାର + ଭୂମି)ଲବଣ ମୃତ୍ତିକାଯୁକ୍ତ ଦେଶ, ଯେଉଁ ସ୍ଥାନରେ ଲୁଣ ଉତ୍ପନ୍ନ ହୁଏ,ଖାରିମାଟି,ସାଜିମାଟି ।

କ୍ଷାରମଧ୍ୟ—ପୁଂ. ବି. (ବ.ବ୍ରୀ) ଅପମାର୍ଗ ।

କ୍ଷାରମୃତ୍ତିକା—ସ୍ତ୍ରୀ. ବି. ( ମଧ୍ୟ. କ.ଧା ) ଖାରିମାଟି, ଲୁଣିମାଟି, ସାଜିମାଟି ।

କ୍ଷାରମେଳକ—ପୁଂ. ବ. କ୍ଷାରସମୂହ ।
କ୍ଷାରରସ—ବ. (କ.ଧା) ଲୁଣିଆସ୍ୱାଦ ।
କ୍ଷାରଲବଣ—କ୍ଳୀ. ବ. ଲୁଣ ବିଶେଷ ।
କ୍ଷାରବର୍ଗ—ପୁଂ. ବ. ଘଣ୍ଟାପାରୁଳଗଛ ।
କ୍ଷାରଷଟ୍କ—କ୍ଳୀ. ବ.ଛଅପ୍ରକାର କ୍ଷାର ।
କ୍ଷାରସମୁଦ୍ର, କ୍ଷାରସିନ୍ଧୁ—ପୁଂ. ବ.(ମଧ୍ୟ-କ.ଧା) ଲବଣସମୁଦ୍ର ।
କ୍ଷାରସୂତ୍ର—ବ.(ମଧ୍ୟ.କ.ଧା) ଖାରବୋଳା ହୋଇଥିବା ସୂତା, ଯାହାକୁ ଅର୍ଶ ଓ ଭଗନ୍ଦର ରୋଗର ମାଂସ ବଳରେ ବାନ୍ଧିଲେ ତାହା ଛିଣ୍ଡି ପଡ଼େ ।
କ୍ଷାରକ—କ୍ଳୀ.ବ.ସମୁଦ୍ର ଲବଣ,କରକଚ ।
କ୍ଷାରାଞ୍ଜନ—କ୍ଳୀ. ବ. ଅଞ୍ଜନବିଶେଷ ।
କ୍ଷାରାମ୍ଭଃ—କ୍ଳୀ. ବ. କ୍ଷାରଜଳ, ଲୁଣିଆ ପାଣି ।
କ୍ଷାରାଷ୍ଟକ—କ୍ଳୀ.ବ. ଆଠପ୍ରକାର କ୍ଷାର ।
କ୍ଷାରାମ୍ବୁ—କ୍ଳୀ.ବ.କ୍ଷାରଜଳ,ଲୁଣିଆପାଣି ।
କ୍ଷାରାମ୍ବୁଧି—ପୁଂ.ବ. ଲବଣସମୁଦ୍ର ।
କ୍ଷାରିକା—ସ୍ତ୍ରୀ.ବ.(କ୍ଷାରକ+ଆ)ଧୋବଣୀ, ରଜକୀ ।
କ୍ଷାରିତ—ବି.ବିଂ. (କ୍ଷାର+ଣିଂ,ତ) ଅପବାଦଗ୍ରସ୍ତ, ଦୂଷିତ, ବହିଯାଇଥିବା କ୍ଷାରରୁ ଛଣା ହୋଇଥିବା,ସ୍ରାବିତ ।
କ୍ଷାରୋଦ—ପୁଂ. ବ. ଲବଣ ସମୁଦ୍ର ।
କ୍ଷାରୋଦକ—କ୍ଳୀ.ବ.(କ.ଧା)କ୍ଷାରମିଶ୍ରିତ ଜଳ, ଲୁଣିଜଳ ।
କ୍ଷାରୋଦଧି—ପୁଂ.ବ.(କ.ଧା)ଲବଣସମୁଦ୍ର ।
କ୍ଷାଳ—ବ.(କ୍ଷଲ+ଅ)ଧୋଇବା,ଶୋଧନ କରିବା, ପରିଷ୍କାର କରିବା, ପୋଛିବା, ହକାଳିବା ।
କ୍ଷାଳନ—କ୍ଳୀ.ବ.(କ୍ଷଲ+ଅନ) ପ୍ରକ୍ଷାଳନ, ହକାଳିବା, ମୋଚନ, ଶୁଦ୍ଧି, ପରିଷ୍କାର, ଧୋଇବା, ଶୋଧନ ।
କ୍ଷାଳିତ—ବି.ବିଂ.(କ୍ଷାଳ+ଣିଚ୍+ତ) ଧୌତ, ପରିଷ୍କୃତ, ଶୋଧିତ, ପୋଛି ହୋଇଥିବା, ଦୋଷ ବା ଅପବାଦରୁ ମୁକ୍ତ ।
କ୍ଷି—ସ୍ତ୍ରୀ.ବ.(କ୍ଷି+ଇ) ଗୃହ,ଗତି କ୍ଷୟ, ନାଶ ।

କ୍ଷିଣ୍ଣ—ବି. ବ. (କ୍ଷି+ଣିଂ.ତ)ଆହତ ।
କ୍ଷିତ—ବି. ବିଂ.(କ୍ଷି+ଣିଂ.ତ)କ୍ଷୟପ୍ରାପ୍ତ, ବିନଷ୍ଟ, ଦୁଃଖୀ, ଦୁର୍ବଳୀକୃତ, (କ୍ଳୀ.ବ.) ହିଂସା ।
କ୍ଷାତା—ସ୍ତ୍ରୀ. ବ. (କ୍ଷିତ+ଆ)ପୃଥିବୀ ।
କ୍ଷିତାୟୁଃ—ବିଂ. ବ.ବ୍ରୀ, ଯାହାର ଆୟୁ କ୍ଷୀଣ ହୋଇଯାଇଅଛି ।
କ୍ଷିତି—ସ୍ତ୍ରୀ. ବ. (କ୍ଷି+ତି) ପୃଥିବୀ,ଭୂମି, ଘର, ପ୍ରଳୟକାଳ, କ୍ଷୟ ।
କ୍ଷିତିକଣ,କ୍ଷିତିକଣା—ବ.(୬ତତ୍) ଧୂଳି ।
କ୍ଷିତିକମ୍ପ—ପୁଂ. ବ. (୬ତତ୍)ଭୂମିକମ୍ପ ।
କ୍ଷିତିକ୍ଷମ—ପୁଂ.ବ.(କ୍ଷିତି+କ୍ଷମ)ଖଇରଗଛ
କ୍ଷିତିକ୍ଷିତ୍—ପୁଂ.ବ. (କ୍ଷିତି+କ୍ଷି+କ୍ୱିପ୍) ପୃଥିବୀଶ୍ୱର, ରାଜା ।
କ୍ଷିତିଚକ୍ରବାଳ—ବ. (୬ତତ୍) ଜଗତ୍, ଭୂମଣ୍ଡଳ ।
କ୍ଷିତିଜ—ପୁଂ. ବ. (କ୍ଷିତି+ଜନ୍+ଅ) ଭୂମିପୁତ୍ର, ମଙ୍ଗଳଗ୍ରହ, ନରକାସୁର, ଦିଗ୍‌ବଳୟ, ଦିଗନ୍ତବୃକ୍ଷ, ମହୀଲତା, (ବିଂ) ପୃଥିବୀରୁ ଉତ୍ପନ୍ନ ।
କ୍ଷିତିଜନ୍ତୁ—ପୁଂ. ବ. ଭୂନାଗ, ଉପରସ ବିଶେଷ ।
କ୍ଷିତିଜା—ସ୍ତ୍ରୀ.ବ.(କ୍ଷିତିଜ+ଆ)ପୃଥିବୀରୁ ଜାତ, ସୀତା ।
କ୍ଷିତିତଳ—କ୍ଳୀ. ବ. (୬ତତ୍) ଧରାପୃଷ୍ଠ, ଭୂଗର୍ଭ, ପାତାଳ ।
କ୍ଷିତିଦେବ, କ୍ଷିତିଦେବତା—ପୁଂ. ବ. (୬ତତ୍) ବ୍ରାହ୍ମଣ ।
କ୍ଷିତିଧର—ପୁଂ. ବ. (କ୍ଷିତି+ଧୃ+କ.ଅ) ପର୍ବତ, ଯେ ପୃଥ୍ୱୀ ଧାରଣ କରୁଅଛି, ଅନନ୍ତ, ରାଜା, କଚ୍ଛପ,ହାତୀ ଓ ନାଗ ।
କ୍ଷିତିନାଗ—ପୁଂ. ଭୂନାଗ ।
କ୍ଷିତିନାଥ ପୁଂ.ବ.(କ୍ଷିତି+ନାଥ, ୬ତତ୍) ରାଜା, ମହୀପତି ।
କ୍ଷିତିପ—ପୁଂ. ବ. (କ୍ଷିତି+ପା+କ.ଅ) ଭୂମିପାଳ, ରାଜା ।
କ୍ଷିତିପତି—ପୁଂ. ବ. (୬ତତ୍) ରାଜା, ଭୂମିପାଳ ।
କ୍ଷିତିପାଳ—ପୁଂ. ବ.(କ୍ଷିତି+ପାଳ+ଅ) ୬ତତ୍; ରାଜା ।

କ୍ଷିତିପାଳସ୍ତବ—ପୁଂ. ବ. ରାଜାଙ୍କର କର୍ତ୍ତବ୍ୟରେ ଦୂତ ପଠାଇବା ପ୍ରଭୃତି ।
କ୍ଷିତିପୁତ୍ର—ପୁଂ.ବ. (୬ତତ୍)ନରକାସୁର, ମଙ୍ଗଳଗ୍ରହ ।
କ୍ଷିତିବଂଶ—ଗ୍ରା.ବ.ଓଡ଼ିଆନାସ୍ତିକ(ଗଣକ) ମାନଙ୍କର ଏକଶ୍ରେଣୀ.ମାଟିବଂଶ ଅବଧାନ ।
କ୍ଷିତିଭୁକ୍—ପୁଂ. ବ.(କ୍ଷିତି+ଭୁଜ୍+କ. କ୍ୱିପ୍) ରାଜା ।
କ୍ଷିତିଭୃତ୍—ପୁଂ. ବ. (କ୍ଷିତି+ଭୃ+କ, କ୍ୱିପ୍) ପର୍ବତ, ରାଜା ।
କ୍ଷିତିରନ୍ଧ୍ର—କ୍ଳୀ. ବ.(୬ତତ୍)ଗାତ,ଗର୍ତ୍ତ ।
କ୍ଷିତିରୁହ—ପୁଂ. ବ. (କ୍ଷିତି+ରୁହ) ବୃକ୍ଷ, ଗଛ ।
କ୍ଷିତିଲଭୁକ୍—ପୁଂ. ବ. ଭୂମ୍ୟଧିକାରୀ ।
କ୍ଷିତିବର୍ଦ୍ଧନ-ପୁଂ.ବ.(କ୍ଷିତି+ବୃଧ+ଅନ) ମୃତଦେହ,ଶବ (ବିଂ)ଦେଶର ବୃଦ୍ଧିକାରୀ ।
କ୍ଷିତିବୃତ୍ତି—ସ୍ତ୍ରୀ. ବ. (୬ତତ୍) ଅପକାର ସହ୍ୟ କରିବା,ସହନଶୀଳତା,ଧୈର୍ଯ୍ୟ ।
କ୍ଷିତିବୃତ୍ତିମାନ୍—ପୁଂ. ବିଂ. ଯେ ପରର ଅହିତାଚରଣ ସହ୍ୟ କରିପାରେ ।
କ୍ଷିତିବ୍ୟୁଦାସ—ପୁଂ. ବ. ଗର୍ତ୍ତସ୍ଥିତଗୃହ ।
କ୍ଷିତିସୁତ—ପୁଂ.ବ.(୬ତତ୍) ମଙ୍ଗଳଗ୍ରହ; ନରକାସୁର ।
କ୍ଷିତୀଶ—ପୁଂ.ବ. (କ୍ଷିତି+ଈଶ) ୬ତତ୍ ରାଜା, ବିଷ୍ଣୁ ।
କ୍ଷିତୀଶ୍ୱର—ପୁଂ.ବ. (୬ତତ୍) ପୃଥିବୀପତି, ବିଷ୍ଣୁ, ରାଜା ।
କ୍ଷିତ୍ୟଦିତି—ସ୍ତ୍ରୀ. ବ. (କ୍ଷିତି+ଅଦିତି) ଦେବକୀ, ବସୁଦେବଙ୍କ ସ୍ତ୍ରୀ,କୃଷ୍ଣଙ୍କ ଗର୍ଭଧାରଣୀ ।
କ୍ଷିଦ୍ୱା—ପୁଂ. ବ. ବାୟୁ ।
କ୍ଷିଦ୍ର—ପୁଂ. ବ.(କ୍ଷିଦ୍+ର)ରୋଗ,ସୂର୍ଯ୍ୟ, ଶୃଙ୍ଗ ।
କ୍ଷିଦ୍ରକଥା—ଗ୍ରା. ବ. (ସଂ-ଛିଦ୍ର)ଗୃହଚ୍ଛିଦ୍ର, ଛୋଟ ବା ମନମନରୁ ସମ୍ଭୂତ କଥା, ଛୋଟନଜରିଆ ବା ଝଗିଡ଼ିଆ କଥା ।
କ୍ଷିପ୍—ସ୍ତ୍ରୀ.ବ.(କ୍ଷିପ୍+କ୍ୱିପ୍)ଅଙ୍ଗୁଳି ।
କ୍ଷିପ—ବ. ଫୋପାଡ଼ିବା, ପକାଇବା, ଅପମାନଦେବା, ଆଘାତକରିବା, (ବିଂ) କ୍ଷେପ୍ତା, କ୍ଷେପଣକାରୀ ।

କ୍ଷିପକ-ବି.(କ୍ଷିପ୍+ଅକ)ଧାନୁଷ୍କ,ଯୋଦ୍ଧା, (ବିଂ) କ୍ଷେପକ ।
କ୍ଷିପଣ—କ୍ଲୀ.ବି. (କ୍ଷିପ୍+ଅନ)ଫିଙ୍ଗିବା, ଆଘାତ କରିବା, ପକାଇବା ।
କ୍ଷିପଣି(ଣୀ)—ସ୍ତ୍ରୀ. ବି. (କ୍ଷିପ୍+ଅନ ବା ଇ-ଈ) ନୌକାଦଣ୍ଡ, ଆହୁଲା, ବାଟୁଳି, ଶର,ଜାଲ, ଗୁଳି,ଗୋଳା,ଢେଲା, ଅସ୍ତ୍ର, ବନ୍ଧୁଣ, ବନଶୀ । [ବ୍ୟାଧ ।
କ୍ଷିପଣୁ—ପୁଂ.ବି. (କ୍ଷିପ୍+ଅନୁ) ବାୟୁ,
କ୍ଷିପଣ୍ୟୁ—ପୁଂ. ବି. (କ୍ଷିପ୍+ଅନ୍ୟୁ) ବସନ୍ତକାଳ, ଦେହ, ସୁରଭିଗନ୍ଧ,(ବିଂ) ସୁରଭିଗନ୍ଧବିଶିଷ୍ଟ ।
କ୍ଷିପତି, କ୍ଷିପସ୍ତି—ପୁଂ.ବି. ବାହୁ ।
କ୍ଷିପା—ସ୍ତ୍ରୀ.ବି.(କ୍ଷିପ୍+ଅ+ଆ)କ୍ଷେପଣ, ଫିଙ୍ଗିବା, ରାତ୍ରି ।
କ୍ଷିପ୍ତ—ପୁଂ. ବିଂ. (କ୍ଷିପ୍+ତ) ନିକ୍ଷିପ୍ତ, ଇତସ୍ତତଃ ବିକ୍ଷିପ୍ତହୋଇଥିବା, ଅବଜ୍ଞାତ, ନିନ୍ଦିତ, ପତିତ, ଅନାସକ୍ତ, ପ୍ରେରିତ, ପରିତ୍ୟକ୍ତ, ହୃତ, ଘୃଣିତ, ଉପେକ୍ଷିତ, ବାତୁଳ, (ବି) ବାଣାଦିର ଆଘାତ ଜନିତ କ୍ଷତ । [କୁକୁର ।
କ୍ଷିପ୍ତକୁକ୍କୁର—ପୁଂ. ବି.(କ.ଧା) ବାୟା
କ୍ଷିପ୍ତଚିତ୍ତ—ପୁଂ. ବିଂ. (ବ.ବ୍ରୀ) ଚଞ୍ଚଳଚିତ୍ତ, ଅମନୋଯୋଗୀ ।
କ୍ଷିପ୍ତଦେହ—ପୁଂ. ବିଂ. (ବ.ବ୍ରୀ) ଲମ୍ବହୋଇ ଶୋଇଥିବା (ସ୍ତ୍ରୀ) କ୍ଷିପ୍ତଦେହା ।
କ୍ଷିପ୍ତନିବାସ—ପୁଂ. ବି. ( ମଧ୍ୟ-କ.ଧା ) ବାତୁଳ-ଆଶ୍ରମ, ପାଗଲଖାନା ।
କ୍ଷିପ୍ତବତ୍—କ୍ରି. ବିଂ. ବାତୁଳପରି ।
କ୍ଷିପ୍ତଭେଷଜ—ବି. ନିକ୍ଷିପ୍ତ ଅସ୍ତ୍ରାଘାତର ଉପଶମ ଔଷଧବିଶେଷ ।
କ୍ଷିପ୍ତଯୋନି—ପୁଂ. ବିଂ. (ବ.ବ୍ରୀ) ଯେଉଁ ସ୍ତ୍ରୀ ଅନ୍ୟପୁରୁଷ ସହିତ ଆସକ୍ତ ହୋଇଅଛି ।
କ୍ଷିପ୍ତଶ୍ୱାନ—ବି.(କ.ଧା) ବାୟାକୁକୁର ।
କ୍ଷିପ୍ତା—ସ୍ତ୍ରୀ. ବି. (କ୍ଷିପ୍ତ+ଆ) ରାତ୍ରି ।
କ୍ଷିପ୍ତାଶ୍ରମ—ବି. (କ୍ଷିପ୍ତ+ଆଶ୍ରମ) କ୍ଷିପ୍ତନିବାସ, ପାଗଲଖାନା ।

କ୍ଷିପ୍ନୁ—ବିଂ. (କ୍ଷିପ୍+ନୁ)କ୍ଷେପଣଶୀଳ, ହତ୍ୟାକାରୀ, ନିନ୍ଦକରିଷ୍ଣୁ ।
କ୍ଷିପ୍ୟମାଣ—ବିଂ.(କ୍ଷିପ୍+ଯ,ମାନ)ଯାହା କ୍ଷେପଣ କରାହେଉଅଛି, ଯାହାଫୋପଡ଼ା ହେଉଅଛି, (ସ୍ତ୍ରୀ) କ୍ଷିପ୍ୟମାଣା ।
କ୍ଷିପ୍ର—ବିଂ.(କ୍ଷିପ୍+ର)ତ୍ୱରିତ, ଦ୍ରୁତ, ଶୀଘ୍ର, ସ୍ଥିତିସ୍ଥାପକ, ଯାହା ଟାଣିଲେ ନଇଁଯାଏ ଓ ଛାଡ଼ିଦେଲେ ପୁଣି ପୂର୍ବ ଆକାର ଧାରଣ କରେ, (ବି) ମୁହୂର୍ତ୍ତର ଖ୍ୟ ୧୫ଗରୁ ଏକଭାଗ,ଖେଚରାନ୍ନ,(ଖେଚଡ଼ି) ବୁଢ଼ାଆଙ୍ଗୁଠି ଓ ବଷିଆଙ୍ଗୁଠିର ମଧ୍ୟବର୍ତ୍ତୀ କରତଳର ଅଂଶ, (କ୍ରି ବିଂ) ଅତିଶୀଘ୍ର ।
କ୍ଷିପ୍ରକରଣ—କ୍ଲୀ. ବି. (କ୍ଷିପ୍ର+କରଣ) କ୍ଷିପ୍ରକାରିତା, ଶୀଘ୍ର କାର୍ଯ୍ୟକରିବା ।
କ୍ଷିପ୍ରକାରିତା—ବି. (କ୍ଷିପ୍ର+କୃ+ଇନ୍+ତା) କୌଣସି କାର୍ଯ୍ୟକରିବାରେ ଫୁର୍ତ୍ତି ହାତ, ଲଘୁହସ୍ତତା, ଉତ୍ପାଦିହାତ ।
କ୍ଷିପ୍ରକାରୀ—ପୁଂ.ବିଂ.(କ୍ଷିପ୍ର+କୃ+ଇନ୍) ଯେ କୌଣସି କାର୍ଯ୍ୟ ଅତିଶୀଘ୍ର କରିପାରେ, ଶୁକ୍ଲକ, ଲଘୁହସ୍ତ ।
କ୍ଷିପ୍ରଗତି—ସ୍ତ୍ରୀ. ବି. (କ.ଧା) ତ୍ୱରିତ ବା ଦ୍ରୁତଗମନ, (ବିଂ,ବ.ବ୍ରୀ) ଦ୍ରୁତଗାମୀ, (କ୍ରି.ବିଂ.) ଅତିଶୀଘ୍ର ।
କ୍ଷିପ୍ରଗାମୀ—ପୁଂ. ବିଂ. (କ୍ଷିପ୍ର+ଗମ୍+ଇନ୍) ଶୀଘ୍ର ଗମନଶୀଳ, ଦ୍ରୁତଗମନକାରୀ, ବେଗବାନ୍, (ସ୍ତ୍ରୀ) କ୍ଷିପ୍ରଗାମିନୀ ।
କ୍ଷିପ୍ରଜବ—ପୁଂ,ବିଂ.(ବ.ବ୍ରୀ) ଅତିବେଗଶାଳୀ, ଅତିଦ୍ରୁତଗାମୀ,(ସ୍ତ୍ରୀ) କ୍ଷିପ୍ରଜବା ।
କ୍ଷିପ୍ରପାକୀ—ପୁଂ.ବି.ଗର୍ଦ୍ଦଭାଣ୍ଡବୃକ୍ଷ,ଗସ୍ୟାଶ୍ୱତ୍ଥ, ଆମ୍ରାତକ,(ବିଂ)ଶୀଘ୍ରପାକଶୀଳ ।
କ୍ଷିପ୍ରଶ୍ୟେନ୍—ପୁଂ. ବି. ପକ୍ଷିବିଶେଷ, ବାଜପକ୍ଷୀ ।
କ୍ଷିପ୍ରସନ୍ଧି—ପୁଂ. ବି. ସନ୍ଧିଭେଦ ।
କ୍ଷିପ୍ରହସ୍ତ—ପୁଂ.ବିଂ.(କ୍ଷିପ୍ର+ହସ୍ତ)ବ.ବ୍ରୀ, ଯାହାର ହାତ ଶୀଘ୍ରଚଳେ, ଫୁର୍ତ୍ତିରେ କାମ କଲାବାଲା, (ବି) ଅଗ୍ନି, ରାକ୍ଷସବିଶେଷ ।
କ୍ଷିପ୍ରହୋମ—ପୁଂ. ବି.(କ.ଧା) ସନ୍ଧ୍ୟା ଓ ସକାଳେ କରାଯିବା ହୋମ ।

କ୍ଷିୟା—ସ୍ତ୍ରୀ.ବି.(କ୍ଷି+ଅ+ଆ)ଅପଚୟ, ଧର୍ମ ବ୍ୟତିକ୍ରମ ।
କ୍ଷିରକାଲ—ଗ୍ରା.ବି. (ସଂ-କ୍ଷିରୀ) ଏକଜାତୀୟ କଣ୍ଟାବୁଦାଳିଆ ଗୁଳ୍ମ, ଏକପ୍ରକାରକଣ୍ଟାଳିଆ ବଡ଼ଗଛ, ଏହାର ଫଳ ବଢ଼ିଲଫଳ ପରି ( ଖାଇଲେ ମିଠା ଓ ଈଷତ୍ କଷା ଲାଗେ) ।
କ୍ଷିରସିଂ—ଗ୍ରା.ବି.ସିଂଜାତୀୟ ଛୋଟଗଛ ।
କ୍ଷିରା—ଗ୍ରା. ବି. କାକୁଡ଼ି ।
କ୍ଷିରି—ଗ୍ରା.ବି.(ସଂ-କ୍ଷୀର)ଦୁଧରେ ଚାଉଳ ଓ କନ୍ଦ ଦିଆଯାଇ ତିଆରି କରାଯାଇଥିବା ପାୟସ ।
କ୍ଷିରିଖେଚଡ଼ି—ଗ୍ରା.ବି. (ସହଚର), (ସଂ) କ୍ଷୀର ଓ କୃଶରା) କ୍ଷିରି ଓ ଖେଚଡ଼ି ।
କ୍ଷିରିପିଠା—ଗ୍ରା.ବି. ବିବାହାଦି କାର୍ଯ୍ୟରେ ନିମନ୍ତ୍ରିତ ବ୍ୟକ୍ତିମାନଙ୍କୁ ଦିଆଯିବା ଭୋଜନ,(ଏଥିରେ କ୍ଷିରି ଓ ପିଠା ପ୍ରଧାନ ଉଲ୍ଲେଖଯୋଗ୍ୟ ଉପକରଣ ଥିବାରୁ) ପାରିବାରିକ ମଙ୍ଗଳୋତ୍ସବ ।
କ୍ଷିରିପୁଳି—ଗ୍ରା.ବି.(ସହଚର)କ୍ଷିରି ଓ ପୁଳି ବା କ୍ଷୀରମିଶା ଚାଉଳବଟାରେ ତିଆରିହୋଇଥିବା ଏକଜାତୀୟ ପିଠା, ବିବାହଉତ୍ସବରେ ପୁଅବାହାହେବାକୁ କନ୍ୟା-ଘରକୁ ଗଲାପରେ ପୁଅର ଜନନୀ ଆତ୍ମୀୟସ୍ୱଜନସ୍ତ୍ରୀମାନଙ୍କୁ ଓ ପ୍ରତିବେଶିନୀମାନଙ୍କୁ ନିମନ୍ତ୍ରଣ କରି ଦେବା ଭୋଜୀ ।
କ୍ଷିରସା—ଗ୍ରା. ବି. (ସଂ-କ୍ଷିରଶସ୍ୟ) ମୁଗ ଚାଉଳ ପିଠଉପାଣିରେ ନଡ଼ିଆକୁରାର ରସ ଓ ଗୁଡ଼ଦେଇ ତିଆରହେବା ପତଳା ଅଟକାଳି । [କ୍ଷିରେଇ ।
କ୍ଷିରେଇ—ଗ୍ରା. ବି. ଶୁକ୍ଳବର୍ଣ୍ଣ ପଟ୍ଟବସ୍ତ୍ର,
କ୍ଷୀଜନ—ବି. (କ୍ଷୀଜ୍+ଭା, ଅନ) ପୋଲା ନଳ ବା ବାଉଁଶଆଦିରେ ପବନପଶିବା-ଯୋଗୁଁ ତହିଁରୁ ବାହାରିବା ସ୍ୱର ।
କ୍ଷୀଣ—ବିଂ. (କ୍ଷୀ+କ.ତ)ସୂକ୍ଷ୍ମ, ଶୁଷ୍କ, ଭଗ୍ନ, କୃଶ, ଦୁର୍ବଳ, ଜୀର୍ଣ୍ଣ, ଯାହାର କ୍ଷୟ ହୋଇଅଛି,କମିଯାଇଥିବା,ବିନାଶ ପ୍ରାପ୍ତ, ମୃତ, କ୍ଷୁଦ୍ର, (ସ୍ତ୍ରୀ)କ୍ଷୀଣା ।
କ୍ଷୀଣକଟି—ପୁଂ.ବିଂ.(ବ.ବ୍ରୀ) ଅଣ୍ଟାସରୁଆ (ବ୍ୟକ୍ତି), ସ୍ତ୍ରୀ) କ୍ଷୀଣକଟୀ ।

କ୍ଷୀଣକଣ୍ଠ — ପୁଂ.ବି.(କ.ଧା) ସରୁଆଡଣ୍ଟି, ଦୁର୍ବଳ କଣ୍ଠସ୍ୱର,କୃଶଗଳା,(ବି°,ବ.ବ୍ରୀ) ଯାହାର କଣ୍ଠ କୃଶ, ଦୁର୍ବଳ କଣ୍ଠଧ୍ୱନି-ବିଶିଷ୍ଟ, ଅତି ମୃଦୁସ୍ୱରଯୁକ୍ତ ।

କ୍ଷୀଣକାୟ — ପୁଂ.ବି.(କ.ଧା)କୃଶ ଦେହ; ଦୁର୍ବଳ ଶରୀର,(ବି°,ବ.ବ୍ରୀ) କୃଶଦେହ-ଯୁକ୍ତ,ଯାହାର ଦେହ ଅତି ଦୁର୍ବଳ,(ସ୍ତ୍ରୀ) କ୍ଷୀଣକାୟା ।

କ୍ଷୀଣଚନ୍ଦ୍ର — ପୁଂ.ବି.(କ.ଧା) କୃଷ୍ଣପକ୍ଷରେ କ୍ଷୟ ପାଉଥିବା ଚନ୍ଦ୍ର, ଷୋଳ କଳାରୁ ଊଣା କମ୍ କଳାଯୁକ୍ତ ଚନ୍ଦ୍ର ।

କ୍ଷୀଣଜୀବୀ—ପୁଂ. ବି°. (କ୍ଷୀଣ + ଜୀବ୍ + ଇନ୍) ବ.ବ୍ରୀ, ଅତିସୁକୁମାରିଆ, ଅଳ୍ପ-ପ୍ରାଣ, ଜର୍ଜରିତ, ଦୁର୍ବଳ, (ସ୍ତ୍ରୀ) କ୍ଷୀଣ-ଜୀବନୀ । [କ୍ଷୀଣ ।

କ୍ଷୀଣତମ-ବି°.(କ୍ଷୀଣ + ତମ) ସର୍ବାପେକ୍ଷା

କ୍ଷୀଣତମଃ — ବି°. ( କ.ଧା ) ଅଳ୍ପ ଅଳ୍ପ ଅନ୍ଧକାର ।

କ୍ଷୀଣତର — ବି°. (କ୍ଷୀଣ + ତର) ଦୁଇଟି ମଧ୍ୟରେ କ୍ଷୀଣ,ଅପେକ୍ଷାକୃତ କ୍ଷୀଣ ।

କ୍ଷୀଣତା — ସ୍ତ୍ରୀ. ବି. (କ୍ଷୀଣ + ତା) ଦୁର୍ବଳତା,କୃଶତା,ସୂକ୍ଷ୍ମତା,ଶୁଷ୍କତା,ଜୀର୍ଣ୍ଣତା ।

କ୍ଷୀଣଦୃଷ୍ଟି — ବି°.(ବ.ବ୍ରୀ)ଯାହାର ଦର୍ଶନ-ଶକ୍ତି ପ୍ରବଳ ନୁହେଁ, (ବି.କ.ଧା) ଅଳ୍ପ-ଦୃଷ୍ଟି ।

କ୍ଷୀଣଧନ — ପୁଂ. ବି°. (ବ.ବ୍ରୀ) ଯାହାର ଧନ କ୍ଷୟ ପାଇଅଛି, (ସ୍ତ୍ରୀ) କ୍ଷୀଣଧନା ।

କ୍ଷୀଣପାପ—ପୁଂ. ବି°. (ବ.ବ୍ରୀ) ପାପର ଫଳ ଭୋଗକରିସାରିବା ଯୋଗୁଁ ଯାହାର ପାପ ନଷ୍ଟ ହୋଇଅଛି ।

କ୍ଷୀଣପୁଣ୍ୟ — ପୁଂ. ବି°. (ବ.ବ୍ରୀ)ଯାହାର ପୁଣ୍ୟ କ୍ଷୟ ପାଇଅଛି, ଏ ଜନ୍ମରେ ଯାହାର ପୂର୍ବାର୍ଜିତ ପୁଣ୍ୟର ଫଳଭୋଗ ସରିଅଛି, (ସ୍ତ୍ରୀ) କ୍ଷୀଣପୁଣ୍ୟା ।

କ୍ଷୀଣପ୍ରକୃତି—ବି°. (ବ. ବ୍ରୀ) ଯାହାର ସ୍ୱଭାବ ଦୁର୍ବଳ, (କ.ଧା,ବି) ଦୁର୍ବଳ-ସ୍ୱଭାବ ।

କ୍ଷୀଣମତି—ତ୍ରି.ବି°. (ବ.ବ୍ରୀ) ସ୍ୱଳ୍ପବୁଦ୍ଧି ।

କ୍ଷୀଣମଧ୍ୟ—ପୁଂ. ବି°. (ବ.ବ୍ରୀ) ଯାହାର କଟିଦେଶ ଅତିକ୍ଷୀଣ, ସରୁଆ ଅଣ୍ଟା,(ସ୍ତ୍ରୀ) କ୍ଷୀଣମଧ୍ୟା ।

କ୍ଷୀଣମସ୍ତିଷ୍କ — ବି°. (ବ.ବ୍ରୀ) ସ୍ୱଳ୍ପବୁଦ୍ଧି, ଦୁର୍ମେଧାଃ, (ବି, କ.ଧା) ଦୁର୍ବଳମସ୍ତିଷ୍କ ବା ମଗଜ ।

କ୍ଷୀଣବଳ—ପୁଂ. ବି°. (ବ.ବ୍ରୀ) ଦୁର୍ବଳ, ଯାହାର ବଳ କ୍ଷୀଣହୋଇଅଛି, ବୀର୍ଯ୍ୟ-ହୀନ, (ସ୍ତ୍ରୀ) କ୍ଷୀଣବଳା ।

କ୍ଷୀଣବାସୀ—ପୁଂ. ବି°. ଭଗ୍ନଗୃହବାସୀ, ଭଙ୍ଗାଘରେ ବାସକରୁଥିବା, (ପୁଂ.ବି) କପୋତ,ପାରାବତ,(ସ୍ତ୍ରୀ)କ୍ଷୀଣବାସିନୀ ।

କ୍ଷୀଣବୁଦ୍ଧି —ପୁଂ.ବି°.(ବ.ବ୍ରୀ)ଅଳ୍ପବୁଦ୍ଧି, ଅଳ୍ପକ୍ଷୀଣ ବୁଦ୍ଧିବିଶିଷ୍ଟ ।

କ୍ଷୀଣବୃତ୍ତି — ପୁଂ. ବି°. (ବ.ବ୍ରୀ) ଯେଉଁ ମନୁଷ୍ୟର ଜୀବିକା ନାହିଁ, ବେକାର ।

କ୍ଷୀଣଶକ୍ତି—ପୁଂ. ବି°. (ବ.ବ୍ରୀ) ଦୁର୍ବଳ, ଯାହାର ଶକ୍ତି କ୍ଷୟ ପାଇଅଛି, ଯେଉଁ ରୋଗର ଉଗ୍ରତା କମିଯାଇଅଛି, କାର୍ଯ୍ୟ-ହୀନ ।

କ୍ଷୀଣଶରୀର — ତ୍ରି. ବି°. (ବ.ବ୍ରୀ) ରୋଗା, ଦୁର୍ବଳ,କୃଶ,ଯାହାରଦେହ ଅତି କ୍ଷୀଣ ।

କ୍ଷୀଣାଙ୍ଗ - ପୁଂ.ବି°. (ବ.ବ୍ରୀ) କୃଶାଙ୍ଗ, ଶୀର୍ଣ୍ଣ, (ସ୍ତ୍ରୀ) କ୍ଷୀଣାଙ୍ଗୀ, (କ୍ଲୀ.ବି)ଶୀର୍ଣ୍ଣ-ଦେହ ।

କ୍ଷୀଣାଲୋକ - ପୁଂ.ବି. (କ.ଧା) ଅତ୍ୟଳ୍ପ ଆଲୋକ, ଯେ ଆଲୋକ ଭଲ ଦେଖା ଯାଏ ନାହିଁ । [ ମାନ୍ଦାଳ ।

କ୍ଷୀବ — ପୁଂ. (କ୍ଷୀବ୍ + ତ) ମତ୍ତ, ପାଗଳ,

କ୍ଷୀୟମାଣ—ତ୍ରି. ବି°. (କ୍ଷି + କର୍ମ ମାନ) ଯାହା କ୍ଷୟ ପାଉଅଛି, ଜୀର୍ଣ୍ଣ ହେଉଥିବା, ଅପଚୀୟମାନ ।

କ୍ଷୀର—ପୁଂ.କ୍ଲୀ.ବି. (କ୍ଷୀ + ଈର୍ + ଅ) ଦୁଗ୍ଧ, ଜଳ,ଗଛର ରସ,ଝୁଣା,ଅଠା, ଢ଼ର୍ଷୀସ (ଗ୍ରା.ବି) ଆହଟା ହୋଇ ଗାଢ଼ କରିଯାଇ ଥିବା ଦୁଧ, ରବିଡ଼ି ।

କ୍ଷୀରକ — ପୁଂ. ବି. କ୍ଷୀରକାକୋଲୀ ।

କ୍ଷୀରକକୋଲ(କ) — ବି.କ୍ଷୀରକାକୋଲୀ ।

କ୍ଷୀରକଞ୍ଚୁକୀ — ସ୍ତ୍ରୀ. ବି, କ୍ଷୀରଣ ବୃକ୍ଷ ।

କ୍ଷୀରକଣ୍ଠ — ପୁଂ.ବି.(କ୍ଷୀର + କଣ୍ଠ)ଦୁଗ୍ଧ-ପୋଷ୍ୟଶିଶୁ, ସ୍ତନ୍ୟପାୟୀଶିଶୁ ।

କ୍ଷୀରକନ୍ଦ,କ୍ଷୀରକନ୍ଦକ — ପୁଂ. ବି. କ୍ଷୀର-ବିଦାରୀ ବୃକ୍ଷ ।

କ୍ଷୀରକନ୍ଦା—ସ୍ତ୍ରୀ. ବି. କ୍ଷୀରବଲ୍ଲୀ, କଳା ଭୂଇଁକଖାରୁ ।

କ୍ଷୀରକାକୋଲୀ,କ୍ଷୀରକାକୋଲି—ସ୍ତ୍ରୀ.ବି. ଅଷ୍ଟବର୍ଗପ୍ରସିଦ୍ଧ ଔଷଧିବିଶେଷ ।

କ୍ଷୀରକାଙ୍କୋଲି — ଗ୍ରା. ବି. ଅଷ୍ଟବର୍ଗପ୍ରସିଦ୍ଧ ଔଷଧିବିଶେଷ ।

କ୍ଷୀରକାଷ୍ଠା — ସ୍ତ୍ରୀ. ବି. (ବ.ବ୍ରୀ)ବଟବୃକ୍ଷ ନଦୀବଟ ।

କ୍ଷୀରକାଣ୍ଡକ—ପୁଂ. ବି. ଅର୍କବୃକ୍ଷ,ଅରଖ ଗଛ, ସିଜୁଗଛ ।

କ୍ଷୀରକୀଟ— ପୁଂ. ବି. ଦୁଗ୍ଧଜାତ କୀଟ, ଦୁଗ୍ଧର ପୋକ ।

କ୍ଷୀରକ୍ଷବ — ପୁଂ. ବି. ଖିରକୋଳି ଗଛ, ଦୁଗ୍ଧପାଷାଣ । [ ପୟଃ ।

କ୍ଷୀରଖଣ୍ଡ — ବି. କନ୍ଦମିଶା ଦୁଧ, ସଶର୍କର

କ୍ଷୀରଖର୍ଜୁର — ପୁଂ. ବି. ପିଣ୍ଡଖର୍ଜୁର (ଦେଖ) ।

କ୍ଷୀରଖାରଖୋଇବା—ଗ୍ରା. କ୍ରି. ଦୁଧ ଓ ଲୁଣ ଏକତ୍ରଖାଇବା,(ଲ.ଅର୍ଥ) କୌଣସି ଅସ୍ୱାଦୁ ଜନକ ଭକ୍ଷଣ କରିବା, ପରସ୍ପର ବିରୋଧୀ ଦୁଇବସ୍ତୁକୁ ମିଶାଇ ଭୋଜନ କରିବା ।

କ୍ଷୀରଘୃତ — କ୍ଲୀ. ବି. ମନ୍ଥାଯିବା ଦୁଗ୍ଧରୁ ଉତ୍ପନ୍ନ ଘୃତ ।

କ୍ଷୀରଜ — କ୍ଲୀ.ବି.(କ୍ଷୀର + ଜନ୍ + କ,ଅ) ଦହି, ଚନ୍ଦ୍ର, ଶଙ୍ଖ, (ବି°) ଦୁଗ୍ଧଜାତ ।

କ୍ଷୀରତୋୟଧି — ପୁଂ.ବି. (୬ତତ୍ପୁ) କ୍ଷୀର ସମୁଦ୍ର ।

କ୍ଷୀରଦ — ବି. ଅରଖ ଗଛ, ଏକପ୍ରକାର ରେଶମୀ ଲୁଗା ।

କ୍ଷୀରଦଳ—ପୁଂ.ବି.(ବ.ବ୍ରୀ) ଅରଖଗୁଳ୍ମ ।

କ୍ଷୀରଦାତ୍ରୀ—ସ୍ତ୍ରୀ. ବି. ଦୁଗ୍ଧବତୀ ଗାଈ, (ବି°, ସ୍ତ୍ରୀ) ଦୁହାଁଳୀ, ଦୁଧଦେଉଥିବା (ଗାଈ) ।

କ୍ଷୀରଦ୍ରୁମ—ପୁଂ. ବି. ଅଶ୍ୱତ୍ଥ ବୃକ୍ଷ ।

କ୍ଷୀରଧାତ୍ରୀ — ସ୍ତ୍ରୀ. ବି. ଧାତ୍ରୀ ଭେଦ ।
କ୍ଷୀରଧି — ପୁଂ. ବି. ( କ୍ଷୀର + ଧା + ଇ) କ୍ଷୀରସମୁଦ୍ର ।
କ୍ଷୀରଧେନୁ — ସ୍ତ୍ରୀ. ବି. (ମଧ୍ୟ-କ.ଧା)ଦାନ ନିମନ୍ତେ କଳ୍ପିତ କ୍ଷୀରନିର୍ମିତ ଧେନୁ, ବହୁଦୁଗ୍ଧଦାତ୍ରୀ ଧେନୁ ।
କ୍ଷୀରନାଶ — ପୁଂ. ବି. ସାହାଡ଼ା ଗଛ, (ଷତତ୍ପୁ) ଦୁଗ୍ଧକ୍ଷୟ ।
କ୍ଷୀରନିଧି — ବି. (ଷତତ୍ପୁ) କ୍ଷୀରସାଗର ।
କ୍ଷୀରନୀର — କ୍ଲୀ. ବିଂ. ( କ୍ଷୀର + ନୀର ) ଦ୍ୱନ୍ଦ୍ୱ; ଆଲିଙ୍ଗନ, ଦୁଗ୍ଧ ଓ ଜଳ, ଦୁଧ ସମାନ ପାଣି ।
କ୍ଷୀରପ — ବି.(କ୍ଷୀର + ପା + କ.ଅ)କ୍ଷୀର ପାୟୀ ବାଳକ,(ବିଂ) କ୍ଷୀରପାୟୀ, (ସ୍ତ୍ରୀ) କ୍ଷୀରପା ।
କ୍ଷୀରପର୍ଣ୍ଣୀ — ବି. ଅର୍କବୃକ୍ଷ, ଅରଖଗୁଳ୍ମ ।
କ୍ଷୀରପଲାଣ୍ଡୁ — ପୁଂ.ବି. ଧଳା ପିଆଜ ।
କ୍ଷୀରପାକ — ତ୍ରି. ବିଂ. ଦୁଗ୍ଧରେ ପାକ କରାଯାଇଥିବା,(ବି ବୈଦ୍ୟକ) ଦୁଗ୍ଧର ପାକବିଶେଷ ।
କ୍ଷୀରପାଣ — ବି. ଉଶୀନର ଦେଶବାସୀ ବ୍ୟକ୍ତି, ଦୁଗ୍ଧ ପିଇବା, ଯାହାଦ୍ୱାରା ଦୁଗ୍ଧ ପିଆଯାଏ ।
କ୍ଷୀରପାଣୀ — ସ୍ତ୍ରୀ.ବି.(ବ.ବ୍ରୀ)ଯେଉଁପାତ୍ରରୁ ଦୁଧ ପିଆଯାଏ ।
କ୍ଷୀରପାନ — ବି. (ଷତତ୍)ଦୁଧ ପିଇବା ।
କ୍ଷୀରପାୟୀ — ବିଂ. ( କ୍ଷୀର + ପା + କ. ଇନ୍) ଦୁଗ୍ଧପାୟୀ, ଉଶୀନର ଦେଶ-ବାସୀ, ବାରମ୍ବାର ଜଳପାନକାରୀ ।
କ୍ଷୀରଭୃତ୍ — ପୁଂ.ବି.ଗୋପାଳକ ଭୃତ୍ୟ-ବିଶେଷ ।
କ୍ଷୀରମସ୍ତୁ — ତ୍ରି.ବିଂ.(କ୍ଷୀର + ମସ୍ତୁ)ଦୁଗ୍ଧ-ମସ୍ତୁ, ଦୁଗ୍ଧରେ ପ୍ରସ୍ତୁତ ହୋଇଥିବା ।
କ୍ଷୀରମୋଚକ — ପୁଂ. ବି. ବୃକ୍ଷଭେଦ ।
କ୍ଷୀରମୋରଟ — ପୁଂ. ବି. ଲତାବିଶେଷ ।
କ୍ଷୀରମୋହନ — ଗ୍ରା. ବି. ରସଗୋଲା, ଛେନାର ତିଆରି ଏକପ୍ରକାର ଖଜା ।
କ୍ଷୀରଯଷ୍ଟିକ — ପୁଂ. ବି.ମାଦକ ଓ ଦୁଗ୍ଧ ମିଶ୍ରିତ ପାନ ।
କ୍ଷୀରଲତା — ସ୍ତ୍ରୀ.ବି.କ୍ଷୀରବିଦାରୀ(ଦେଖ) ।
କ୍ଷୀରବତୀ — ସ୍ତ୍ରୀ.ବି.ଭାରତପ୍ରସିଦ୍ଧ ଗୋଟିଏ ନଦୀ ।
କ୍ଷୀରବଲ୍ଲିକା — ବି.କ୍ଷୀରକୋଲ (ଦେଖ) ।
କ୍ଷୀରବଲ୍ଲୀ — ସ୍ତ୍ରୀ.ବି. କ୍ଷୀରବିଦାରୀ(ଦେଖ)
କ୍ଷୀରବାନ୍ — ପୁଂ.ବି. ଅଶ୍ୱତ୍ଥବୃକ୍ଷ, ବର-ଗଛ, ଡିମ୍ବିରିଗଛ, (ବିଂ) ଦୁଗ୍ଧଯୁକ୍ତ ।
କ୍ଷୀରବାରି — ପୁଂ.ବି.(ମଧ୍ୟ କ.ଧା) କ୍ଷୀର-ସମୁଦ୍ର ।
କ୍ଷୀରବିକୃତି — ସ୍ତ୍ରୀ.ବି.ବସାଦହି, ଛେନା ।
କ୍ଷୀରବିଦାରୀ, କ୍ଷୀରବିଦାରିକା — ସ୍ତ୍ରୀ. ବି. ଭୂଇଁକଖାରୁପରି ଏକପ୍ରକାର ଔଷଧ-ମୂଳ ।
କ୍ଷୀରବିଷାଣିକା — ସ୍ତ୍ରୀ.ବି.ବହୁଆଡ଼ ଲତା, କ୍ଷୀରକାକୋଲୀ ବୃକ୍ଷ ।
କ୍ଷୀରବୃକ୍ଷ — ପୁଂ.ବି. ଯଜ୍ଞଡିମ୍ବିରି, ଖଜୁରି ଗଛ, ଅଶ୍ୱତ୍ଥବୃକ୍ଷ, ମହୁଲଗଛ, ବର-ଗଛ, କ୍ଷୀରକୋଲ ।
କ୍ଷୀରବ୍ରତ — ବି.କେବଳ ଦୁଗ୍ଧ ପାନକରି ଗୋଟିଏ ବ୍ରତ ପାଳିବା ।
କ୍ଷୀରଶର — ପୁଂ.ବି. (ଷତତ୍) ଦୁଗ୍ଧ ବା ଦହିର ସର, ଆମିକ୍ଷ ।
କ୍ଷୀରଶର୍କରା — ସ୍ତ୍ରୀ.ବି (କ.ଧା) ଦୁଗ୍ଧଶର୍କରା ।
କ୍ଷୀରଶଷ୍ୟା — ବି. (କ୍ଷୀର + ଶସ୍ୟ + ଆ) ଖିରଷା (ଦେଖ) ।
କ୍ଷୀରଶାକ — କ୍ଲୀ.ବି.ନଷ୍ଟଦୁଗ୍ଧ, ଖିରଷା ।
କ୍ଷୀରଶୀର୍ଷ — ପୁଂ.ବି.ଚାର୍ପିନତେଲ,ଶ୍ରୀବାସ ।
କ୍ଷୀରଶୁକ୍ଳ — ପୁଂ. ବି. ଦୁଗ୍ଧପରି ଧଳା, ଶିଙ୍ଗଡ଼ା, ପାଣିଫଳ ।
କ୍ଷୀରଶୁକ୍ଲା — ସ୍ତ୍ରୀ.ବି. ଖିରକୋଲ, ଧଳା-ଭୂଇଁକଖାରୁ ।
କ୍ଷୀରଶ୍ରୀ — ବିଂ. ଦୁଗ୍ଧମିଶ୍ରିତ ।
କ୍ଷୀରସ — ପୁଂ. ବି. (କ୍ଷୀର + ସୋ + ଅ) ଦୁଗ୍ଧସର ।
କ୍ଷୀରସନ୍ତାନିକା — ସ୍ତ୍ରୀ.ବି. ଛେନା, ଦୁଗ୍ଧ-ବିକାରବିଶେଷ ।
କ୍ଷୀରସମୁଦ୍ର — ପୁଂ. ବି. (କ.ଧା) ଦୁଗ୍ଧ-ସମୁଦ୍ର, ପୁରାଣକଥିତ ଦୁଗ୍ଧମୟ ସାଗରବିଶେଷ ।
କ୍ଷୀରସର୍ପିଃ — ପୁଂ. ବି. କ୍ଷୀରପକ୍ୱ ଘୃତ-ବିଶେଷ, କ୍ଷୀରଘୃତ ।
କ୍ଷୀରସାଗର — ପୁଂ.ବି.ପୁରାଣୋକ୍ତ ଦୁଗ୍ଧ-ସମୁଦ୍ର ।
କ୍ଷୀରସାଗରକନ୍ୟକା, କ୍ଷୀରସାଗରସୁତା — ସ୍ତ୍ରୀ.ବି. (ଷତତ୍) ଲକ୍ଷ୍ମୀ ।
କ୍ଷୀରସାର — ପୁଂ.ବି.ଷତତ୍(କ୍ଷୀର + ସୃ + ଅ) ଲହୁଣୀ, ଛେନା, ନବନୀତ ।
କ୍ଷୀରସ୍ଫଟିକ — ପୁଂ. ବି. ଦୁଗ୍ଧପରି ଧଳା ରଙ୍ଗର ସ୍ଫଟିକବିଶେଷ ।
କ୍ଷୀରସ୍ୱାମୀ — ପୁଂ.ବି.ଅମରକୋଷ ଟୀକା-କାର ପଣ୍ଡିତ ।
କ୍ଷୀରହିଣ୍ଡୀର — ପୁଂ.ବି. (ଷତତ୍) ଦୁଧର ଫେଣ ।
କ୍ଷୀରହ୍ରଦ — ପୁଂ. ବି. ଦୁଗ୍ଧପୂର୍ଣ୍ଣ ହ୍ରଦ ।
କ୍ଷୀରା — ସ୍ତ୍ରୀ. ବି. କ୍ଷୀରକାକୋଲୀ ଗଛ, (ଗ୍ରା.ବି) କାକୁଡ଼ି ।
କ୍ଷୀରାଦ — ପୁଂ. ବି. (କ୍ଷୀର + ଅଦ୍ + କ. ଅ) ଦୁଗ୍ଧପୋଷ୍ୟ ଶିଶୁ ।
କ୍ଷୀରାବ୍ଧି — ପୁଂ.ବି.(କ.ଧା)କ୍ଷୀରସମୁଦ୍ର ।
କ୍ଷୀରାବ୍ଧିଜ — ବି.(କ୍ଷୀରାବ୍ଧି + ଜନ + କ. ଅ) ଅମୃତ, ଚନ୍ଦ୍ର, ଅନନ୍ତ, ବାସୁକି, ମୁକ୍ତା,ଲୁଣ,(ବିଂ)କ୍ଷୀରସମୁଦ୍ରରୁ ଉତ୍ପନ୍ନ ।
କ୍ଷୀରାବ୍ଧିଜା — ସ୍ତ୍ରୀ.ବି. (କ୍ଷୀରାବ୍ଧିଜ + ଆ) ଲକ୍ଷ୍ମୀ ।
କ୍ଷୀରାବ୍ଧିତନୟ — ପୁଂ. ବି. (କ୍ଷୀରାବ୍ଧି + ତନୟ)ଷତତ୍, ଚନ୍ଦ୍ର ।
କ୍ଷୀରାବ୍ଧିତନୟା — ସ୍ତ୍ରୀ.ବି. (କ୍ଷୀରାବ୍ଧି + ତନୟା)ଷତତ୍. ଲକ୍ଷ୍ମୀ ।
କ୍ଷୀରାବ୍ଧିଶାୟୀ — ପୁଂ.ବି. (କ୍ଷୀରାବ୍ଧି + ଶାୟିନ୍) ବିଷ୍ଣୁ, ବିଷ୍ଣୁଙ୍କର ନାମବିଶେଷ ।
କ୍ଷୀରାମ୍ବୁଧି — ପୁଂ. ବି. କ୍ଷୀରସମୁଦ୍ର ।
କ୍ଷୀରାହ୍ୱ — ପୁଂ.ବି. (କ୍ଷୀର + ଆହ୍ୱ + ଅ) ବ.ବ୍ରୀ; ଦେବଦାରୁ ଗଛ ।
କ୍ଷୀରାହ୍ୱୟ — ପୁଂ. ବି. ଦେବଦାରୁଗଛ ।
କ୍ଷୀରି — ବି. ଶଶକନ୍ଦ ।
କ୍ଷୀରିକ — ବି. ଖିରକୋଲ (ଦେଖ) ।
କ୍ଷୀରିକା — ସ୍ତ୍ରୀ.ବି.(କ୍ଷୀର + କ + ଆ)କ୍ଷୀରି, ପିଣ୍ଡଖର୍ଜୁର, ବଂଶଲୋଚନା, ଦାଉଣ-ଝୁଣ୍ଟ, ପାୟସ, ମିଷ୍ଟାନ୍ନ, କ୍ଷୀରବୃକ୍ଷ, କାକୁଡ଼ି ।

କ୍ଷୀରଣୀ—ସ୍ତ୍ରୀ.ବି. (କ୍ଷୀରନ୍+ଈ)କ୍ଷୀର-କାଙ୍କୋଳ, ଖିରକୋଳ,ଗମ୍ଭାରୀ ଗଛ ।
କ୍ଷୀରଣୀବନ—କାବେରୀ ନଦୀତୀରସ୍ଥ ଗୋଟିଏ ପବିତ୍ର ସ୍ଥାନ ।
କ୍ଷୀରବୃକ୍ଷ—ପୁଂ. ବି. ବଟ, ଯଜ୍ଞଡ଼ିମ୍ବିରି, ଅଶ୍ୱତ୍ଥ ବୃକ୍ଷ, ଅରଖ ଗଛ ।
କ୍ଷୀରୀ—ପୁଂ.ବି. (କ୍ଷୀର+ଇନ୍)ଦୁଧପରି ଧଳା, (ବି) ବଡ଼କ୍ଷୀରୀ, ଲଟାଳିଆଗୁଳ୍ମ-ବିଶେଷ, ବରଗଛ, ଅଶ୍ୱତ୍ଥ, ଅରଖ-ଗଛ, ଡିମିରିଗଛ, ଶତାବରୀ, କ୍ଷୀର ବାହାରିବା ଗଛ, (ଗ୍ରା.ବି.) ଦୁଧ ଓ ଗୁଡ଼ଜଳରେ ପ୍ରସ୍ତୁତ ମିଠାଦିଆ ପାଣିଆ ଯାଉ ।
କ୍ଷୀରୀଶ—ପୁଂ. ବି. କ୍ଷୀରକଞ୍ଚୁକୀ ।
କ୍ଷୀରେଷ୍ଟୀ—ବି. ପାୟସ, ମିଷ୍ଟାନ୍ନ,କ୍ଷୀରୀ ।
କ୍ଷୀରୋଦ—ପୁଂ.ବି. (କ୍ଷୀର+ଉଦ)ଦୁଗ୍ଧ ସମୁଦ୍ର ।
କ୍ଷୀରୋଦକ—ପୁଂ. ବି. (ବି.ଗ୍ରା)କ୍ଷୀରୋଦ, କ୍ଷୀରସମୁଦ୍ର ।
କ୍ଷୀରୋଦକବାସ—ପୁଂ. ବି. (ବି.ଗ୍ରା) ନାରାୟଣ, ବିଷ୍ଣୁ ।
କ୍ଷୀରୋଦତନୟ—ପୁଂ.ବି. ଚନ୍ଦ୍ର ।
କ୍ଷୀରୋଦତନୟା—ସ୍ତ୍ରୀ.ବି. (କ୍ଷୀରୋଦ+ତନୟା) ୬ତତ୍; ଲକ୍ଷ୍ମୀ ।
କ୍ଷୀରୋଦଧି—ପୁଂ.ବି. (ମଧ୍ୟ.କ.ଧା)କ୍ଷୀର ସମୁଦ୍ର ।
କ୍ଷୀରୋଦନନ୍ଦନ—ପୁଂ.ବି. (କ୍ଷୀରୋଦ+ନନ୍ଦନ) ୬ତତ୍; ଚନ୍ଦ୍ର ।
କ୍ଷୀରୋଦନ୍ୱତ୍—ପୁଂ. ବି. (ମଧ୍ୟ.କ.ଧା) କ୍ଷୀର ସମୁଦ୍ର ।
କ୍ଷୀରୋର୍ମି—ପୁଂ.ବି.(ମଧ୍ୟ.କ.ଧା) କ୍ଷୀର ସମୁଦ୍ରର ତରଙ୍ଗ ।
କ୍ଷୀରୋଦନ,କ୍ଷୀରୌଦନ—ପୁଂ.ବି. (ମଧ୍ୟ. କ.ଧା) ଦୁଗ୍ଧ ସହିତ ପକ୍ୱଅନ୍ନ,ପାୟସ ।
କ୍ଷୀବ—ବିଂ.(କ୍ଷୀବ୍+ଅ)ଉନ୍ମତ୍ତ,ପାଗଳ, ମତୁଆଲ ।
କ୍ଷୁ—କ୍ଲୀ.ବି. (କ୍ଷୁଦ୍+ଉ) ଅନ୍ନ, ଯେ ଶବ୍ଦକରେ, (ପୁଂ.ବି) ସିଂହ ।

କ୍ଷୁଣ୍ଣଜନକା—ବି. (କ୍ଷତ୍ତୁ+ଜନ୍+ଣିଚ୍ ଅକ+ଆ) ଗାଈସୋରିଷ ।
କ୍ଷୁଣ—ପୁଂ.ବି. ଅରଣ୍ଯ ବୃକ୍ଷ, ଇଠାଫଳ ଗଛ ।
କ୍ଷୁଣି—ସ୍ତ୍ରୀ. ବି. (କ୍ଷୁ+ଣି) ପୃଥିବୀ ।
କ୍ଷୁଣୀ—ସ୍ତ୍ରୀ. ବି. (କ୍ଷୁ+ଣୀ) ପୃଥିବୀ ।
କ୍ଷୁଣ୍ଣ—ବି.ବିଂ. (କ୍ଷୁଦ୍+ମ୍ପି,ତ) ଚୂର୍ଣ୍ଣ ହୋଇଥିବା, ଦୁଃଖିତ, ନିରସ୍ତ, ଖର୍ବ, ଅଭ୍ୟସ୍ତ, ଆହତ,ଷତବିକ୍ଷତ, ପରାଜିତ, ଆଲୋଡ଼ିତ, ନିପୁଣ, ଦକ୍ଷ, କୁଣ୍ଠିତ, ପ୍ରହୃତ, ଅପୂର୍ଣ୍ଣ, ଦୃଷ୍ଟିଯୁକ୍ତ, ଶାସ୍ତ୍ରବିଜ୍ଞ, ନିଜ ଅନ୍ୟଙ୍କୁ ପଢାଇବାକୁ ଅସମର୍ଥ, (ସ୍ତ୍ରୀ) କ୍ଷୁଣ୍ଣା ।
କ୍ଷୁଣ୍ଣକ—ପୁଂ.ବି. ମନୁଷ୍ୟ ମଲାବେଳେ ବଜାଯିବା ନାଗରା ।
କ୍ଷୁଣ୍ଣମନା—ପୁଂ.ବିଂ.(ବି.ଗ୍ରା)ବ୍ୟାକୁଳିତ ଚିତ୍ତ, ନିରାଶହୋଇଥିବା, ଅତଦୁଃଖିତ ।
କ୍ଷୁତ୍—ସ୍ତ୍ରୀ.ବି. (କ୍ଷୁ+କ୍ୱିପ୍ ତୁକ୍) ଛିଙ୍କ ।
କ୍ଷୁତ—କ୍ଲୀ.ବି.(କ୍ଷୁ+କ୍ତ,ତ)କ୍ଷବଥୁ,ଛିଙ୍କ, ରାଇସୋରିଷ । [ସୋରିଷ ।
କ୍ଷୁତକ—ପୁଂ. ବି. (କ୍ଷୁତ+କ) କଳା
କ୍ଷୁତା—ସ୍ତ୍ରୀ.ବି. (କ୍ଷୁତ+ଆ) ଛିଙ୍କ ।
କ୍ଷୁତାଭିଜନନ—ପୁଂ. ବି. (କ୍ଷୁତ+ଅଭି +ଜନ୍+ଅନ) ରାଇସୋରିଷ ।
କ୍ଷୁଥ—ସ୍ତ୍ରୀ.ବି. (କ୍ଷୁ+ଥ)ଛିଙ୍କ ।
କ୍ଷୁତ୍କରୀ—ସ୍ତ୍ରୀ.ବି. (କ୍ଷୁତ୍+କୃ+ଅ+ଈ) ଭୂଇଁଙ୍ଗଘାଡ଼ଣି, କଙ୍କାଳିକା ।
କ୍ଷୁତ୍କ୍ଷାମ—ପୁଂ.ବିଂ.(୩ତତ୍)କ୍ଷୁଧାତୁର, ଅତଭୋକିଲା, (ସ୍ତ୍ରୀ) କ୍ଷୁତ୍କ୍ଷାମା ।
କ୍ଷୁତ୍କ୍ଷାମକଣ୍ଠ—ପୁଂ.ବିଂ.(ବି.ଗ୍ରା)କ୍ଷୁଧାରେ ଯାହାର କଣ୍ଠ କ୍ଷୀଣ ହୋଇଅଛି,ଯାହାର ଭୋକରେ ହଂସା ଉଡ଼ିଯାଉଅଛି, (ସ୍ତ୍ରୀ) କ୍ଷୁତ୍କ୍ଷାମକଣ୍ଠୀ ।
କ୍ଷୁତ୍ପିପାସା—ସ୍ତ୍ରୀ. ବି. (କ୍ଷୁଧ୍+ପିପାସା) ଖାଇବା ଓ ପିଇବାର ଇଚ୍ଛା ।
କ୍ଷୁତ୍ପିପାସିତ—ବିଂ. (କ୍ଷୁତ୍ପିପାସା+ଇତ) କ୍ଷୁଧାର୍ତ୍ତ ଏବଂ ତୃଷାର୍ତ୍ତ ।
କ୍ଷୁତ୍ପିପାସୁ—ପୁଂ.ବିଂ. (କ୍ଷୁତ୍ପିପାସା+ଉ) ଯେ ଖାଇବା ଓ ପିଇବାକୁ ଇଚ୍ଛୁକ ।

କ୍ଷୁଦ୍—ସ୍ତ୍ରୀ.ବି. (କ୍ଷୁଧ୍+କ୍ୱିପ୍) କ୍ଷଧା ।
କ୍ଷୁଦ୍ବାଧା—(୬ତତ୍)କ୍ଷୁଧାଜନିତ ଗ୍ଳାନି ।
କ୍ଷୁଦ୍ବୋଧ—ବି. (୬ତତ୍) ଭୋକଲାଗିବା ।
କ୍ଷୁଦ—ପୁଂ.ବି. (କ୍ଷୁଦ୍+ମ୍ପି,ଅ) ତଣ୍ଡୁଳ-କଣ, ଅଟା, ମଇଦା, ଶସ୍ୟ ଚୂର୍ଣ୍ଣ,ଖୁଦ ।
କ୍ଷୁଦ୍ର—ବି.ବିଂ.(କ୍ଷୁଦ୍+ର)ଛୋଟ,ସାନ ହୀନ, ଅଳ୍ପ, ଅପ୍ରଶସ୍ତ, ଗରିବ, ନିର୍ଦ୍ଦୟ, ଅନୁଦାର (ମନ), ଅଳ୍ପବୟସ୍କ, କୃପଣ, ଲୋଭୀ, ସାମାନ୍ୟ, ନଗଣ୍ୟ, କ୍ରୂର (ବି) ତଣ୍ଡୁଳକଣ, ଖୁଦ, ମହୁମାଛି ।
କ୍ଷୁଦ୍ରକ—ବି.ବିଂ.(କ୍ଷୁଦ୍ର+କ) ଛୋଟ, ସାମାନ୍ୟ, (ପୁଂ. ବି.) ସୂର୍ଯ୍ୟବଂଶୀୟ ପ୍ରସେନଜିତଙ୍କ ପୁତ୍ର, ଏକବେଡ଼ୋଲା, ଶାକବିଶେଷ ।
କ୍ଷୁଦ୍ରକଣ୍ଟକାରୀ—ସ୍ତ୍ରୀ.ବି.ଅଗ୍ନି ଦମନୀ ବୃକ୍ଷ ଛୋଟଅଙ୍କରାନ୍ତି ।
କ୍ଷୁଦ୍ରଘଣ୍ଟିକା—ସ୍ତ୍ରୀ.ବି.(କ୍ଷୁଦ୍ର+କଣ୍ଟକ+ଈ)ବି.ଗ୍ରା: ବୃହତୀ ଟିପୁରି ବା ଭେଜି-ବାଇଗଣ ।
କ୍ଷୁଦ୍ରକମ୍ବୁ—ପୁଂ. ବି. (କ୍ଷୁଦ୍ର+କମ୍ବୁ) ଶାମୁକା ଛୋଟଶଙ୍ଖ ।
କ୍ଷୁଦ୍ରକଳ୍ପ—ପୁଂ.ବି. ସାମାନ୍ୟ ବୈଦିକ କ୍ରିୟାବିଶେଷ ।
କ୍ଷୁଦ୍ରକାରଲିକା, କ୍ଷୁଦ୍ରକାରବେଲ୍ଲୀ,କ୍ଷଦ୍ର-କାରଲିକା—ସ୍ତ୍ରୀ. ବି. (କ.ଧା) ଛୋଟ କଲରା, ଟିକି କଲରା ।
କ୍ଷୁଦ୍ରକୁଳଣ—କ୍ଲୀ. ବି. ବୈକ୍ରାନ୍ତମଣି ।
କ୍ଷୁଦ୍ରକୁଷ୍ଠ—କ୍ଲୀ. ବି. ଅଳ୍ପକୁଷ୍ଠରୋଗ, (କାଛୁ, ଯାଦୁ ପ୍ରଭୃତି) ।
କ୍ଷୁଦ୍ରକ୍ଷୁର—ପୁଂ.ବି. କ୍ଷୁଦ୍ରଗୋକ୍ଷୁର ।
କ୍ଷୁଦ୍ରଖଦିର—ପୁଂ.ବି.ଛୋଟ ଖଇରଗଛ ।
କ୍ଷୁଦ୍ରଗୋକ୍ଷୁରକ—ପୁଂ.ବି.ଗୋ.କ୍ଷୁରବୃକ୍ଷ, ଗୁଖୁରାଗଛ ।
କ୍ଷୁଦ୍ରଘଣ୍ଟିକା—ସ୍ତ୍ରୀ.ବି.(କ୍ଷଦ୍ର+ଘଣ୍ଟା+କ+ଆ) ଅଳଂକାରବିଶେଷ, ଘୁଙ୍ଗୁର, କିଙ୍କିଣୀ ।
କ୍ଷୁଦ୍ରଘଣ୍ଟୀ—ସ୍ତ୍ରୀ.ବି. କିଙ୍କିଣୀ, ଘୁଙ୍ଗୁର, ଘର୍ଘରୀ ।
କ୍ଷୁଦ୍ରଚନ୍ଦନ—ପୁଂ. ବି. ରକ୍ତଚନ୍ଦନ ।

କ୍ଷୁଦ୍ରଚଞ୍ଚିକା—ସ୍ତ୍ରୀ.ବି.କ୍ଷୁଦ୍ର ଚୁଞ୍ଚୁ,କ୍ଷୁଦ୍ର ଚୁଞ୍ଚୁକା
କ୍ଷୁଦ୍ରଚୂଡ଼—ପୁଂ. ବି. ପକ୍ଷିବିଶେଷ ।
କ୍ଷୁଦ୍ରଜନ୍ତୁ—ପୁଂ. ବି. ଛୋଟପ୍ରାଣୀ, ଶତ-ପଦୀ,ପୋକଜୋକ, (ଗ୍ରା.ବି) ଛାର ବା ଅକଞ୍ଚନ ବ୍ୟକ୍ତି,ନଗଣ୍ୟ ବ୍ୟକ୍ତି, ଯାହାର କଥାର କିଛିମୂଲ୍ୟ ନାହିଁ ।
କ୍ଷୁଦ୍ରଜମ୍ବୁ—ସ୍ତ୍ରୀ. ବି. ଜାମୁବିଶେଷ, ଚଲଙ୍ଗି ଜାମୁ ।
କ୍ଷୁଦ୍ରଜାତୀଫଳ—କ୍ଳୀ. ବି. (କ.ଧା)ଆମ-ଲକ, ଆମଲକୀ, ଅଁଳା । [ଜୀବ ।
କ୍ଷୁଦ୍ରଜୀବ,କ୍ଷୁଦ୍ରଜୀବକ—କ୍ଳୀ. ବି. ଛୋଟ-
କ୍ଷୁଦ୍ରଜୀବା—ସ୍ତ୍ରୀ. ବି. ଜୀବନ୍ତୀ ଲତା ।
କ୍ଷୁଦ୍ରଞ୍ଚର—ବିଂ. (କ୍ଷୁଦ୍ର+ଚର୍+ଅ) ମନ୍ଦଗାମୀ, ଯେ ଧୀରେ ଧୀରେ ଗମନ କରେ ।
କ୍ଷୁଦ୍ରଜ୍ଞାନ—ବି. ବିଂ. ଅଳ୍ପଜ୍ଞାନବିଶିଷ୍ଟ, ମନ୍ଦବୁଦ୍ଧି, (କ୍ଳୀ.ବି) ଘୃଣା, ଅବଜ୍ଞା, ଅଳ୍ପଜ୍ଞାନ ।
କ୍ଷୁଦ୍ରତଣ୍ଡୁଲ—ବି. ବିଡ଼ଙ୍ଗ ।
କ୍ଷୁଦ୍ରତମ—ବି. (କ୍ଷୁଦ୍ର+ତମ) ଅତ୍ୟନ୍ତ କ୍ଷୁଦ୍ର, (ସ୍ତ୍ରୀ) କ୍ଷୁଦ୍ରତମା ।
କ୍ଷୁଦ୍ରତର—ବିଂ.(କ୍ଷୁଦ୍ର+ତର)ଅପେକ୍ଷା-କୃତ କ୍ଷୁଦ୍ର ।
କ୍ଷୁଦ୍ରତା—ସ୍ତ୍ରୀ. ବି. ଅଳ୍ପତା, ଲଘୁତା ।
କ୍ଷୁଦ୍ରତୁଳସୀ—ସ୍ତ୍ରୀ. ବି. ଲଣ୍ଡାବଗୁଲି ।
କ୍ଷୁଦ୍ରତ୍ୱ—କ୍ଳୀ. ବି. ଅଳ୍ପତା, ଦରିଦ୍ରତା, ଲଘୁତା, ହୀନତା, ନିର୍ଦ୍ଦୟତା ।
କ୍ଷୁଦ୍ରଦଂଶିକା, କ୍ଷୁଦ୍ରଦଂଶୀ—ସ୍ତ୍ରୀ. ବି. (କ୍ଷୁଦ୍ର+ଦଂଶ୍+କ+ଆ) ଛୋଟ ଡାଉଁଶ । [ଦୁରାଲଭା ।
କ୍ଷୁଦ୍ରଦୁରାଲଭା—ସ୍ତ୍ରୀ. ବି. କ୍ଷୁଦ୍ରାକୃତି,
କ୍ଷୁଦ୍ରଦୁସ୍ପର୍ଶା—ସ୍ତ୍ରୀ.ବି. ଅଗ୍ନିଦମନୀ ବୃକ୍ଷ, ବନହଳଦୀ ।
କ୍ଷୁଦ୍ରଦୃଷ୍ଟି—ସ୍ତ୍ରୀ.ବି.(କ.ଧା)ଛୋଟନଜର, କୃପଣତା, ନୀଚତା, ( ବିଂ. ବ.ବ୍ରୀ ) ଛୋଟନଜରଆ, ଝଣ୍ଡିଗଣିଆ ।
କ୍ଷୁଦ୍ରଧାନ୍ୟ—ସ୍ତ୍ରୀ. ବି. କର୍କଟବୃକ୍ଷ ।
କ୍ଷୁଦ୍ରଧାନ୍ୟ—କ୍ଳୀ.ବି. କୁଧାନ୍ୟ ।

କ୍ଷୁଦ୍ରନାସିକ—ପୁଂ.ବିଂ.(ବ.ବ୍ରୀ)ଯାହାର ନାକ ଛୋଟ, ଚେପାନାକା ।
କ୍ଷୁଦ୍ରପତ୍ର—ପୁଂ. ବି. କୁବେର ।
କ୍ଷୁଦ୍ରପତ୍ରୀ—ସ୍ତ୍ରୀ.ବି.(ବ.ବ୍ରୀ)ଆମ୍ବିଳଶାକ, ଅମ୍ଳଲୋଣିକା ।
କ୍ଷୁଦ୍ରପର୍ଣୀ—ସ୍ତ୍ରୀ. ବି. (ବ.ବ୍ରୀ) ବଚ ।
କ୍ଷୁଦ୍ରପନସ—ପୁଂ. ବି. ଛୋଟ ପଣସଫଳ, ଲିକୁଚ ।
କ୍ଷୁଦ୍ରପର୍ଣ୍ଣ—ବିଂ. ଛୋଟପତ୍ରଯୁକ୍ତ, (ବି) ବି.ବୁଇରୁଳସୀ, ଲଣ୍ଡାବାଗୁଲି ।
କ୍ଷୁଦ୍ରପାଷାଣଭେଦୀ—ସ୍ତ୍ରୀ. ବି. ପାଷାଣ-ଭେଦୀ ଗଛ ।
କ୍ଷୁଦ୍ରପିପ୍ପଳୀ—ସ୍ତ୍ରୀ. ବି ବନପିପ୍ପଳୀ ।
କ୍ଷୁଦ୍ରପୃଷତୀ—ସ୍ତ୍ରୀ. ବି. ସୂକ୍ଷ୍ମବିଚିତ୍ର ବିନ୍ଦୁଯୁକ୍ତ ମୃଗୀ । [ ଶାକ ।
କ୍ଷୁଦ୍ରପୋତକା—ସ୍ତ୍ରୀ. ବି. ଛୋଟ ପୋଇ-
କ୍ଷୁଦ୍ରପ୍ରାଣ—ବି. (କ୍ଷୁଦ୍ର+ପ୍ରାଣ) କ.ଧା; କ୍ଷୀଣଜୀବନ, (ବିଂ) ଦରିଦ୍ର, କଞ୍ଜୁସ, ଲୋଭୀ, ନିର୍ଦ୍ଦୟ, କ୍ରୂର, (ସ୍ତ୍ରୀ) କ୍ଷୁଦ୍ର-ପ୍ରାଣା ।
କ୍ଷୁଦ୍ରପ୍ରାଣୀ—ବିଂ. କ୍ଷୁଦ୍ରଚେତାଃ, କ୍ଷଣ-ଭଙ୍ଗୁର, ଦରିଦ୍ର, (ବି) ଛୋଟଜୀବ ।
କ୍ଷୁଦ୍ରଫଳ,କ୍ଷୁଦ୍ରଫଳକ—ପୁଂ. ବି.ଜୀବନ-ବୃକ୍ଷ, ଜୀଅଁଳ ଗଛ ।
କ୍ଷୁଦ୍ରଫଳା—ସ୍ତ୍ରୀ. ବି. ମହାକାଳ, ଅଗ୍ନି-ଦମନୀ, ବନଜାମ୍ବୁ, କଣ୍ଟକାରୀ ।
କ୍ଷୁଦ୍ରଫେନ—ସ୍ତ୍ରୀ. ବି. ନଦୀବିଶେଷ ।
କ୍ଷୁଦ୍ରବୁଦ୍ଧି—ବି. (କ.ଧା) ନୀଚବୁଦ୍ଧି, ନଗଣ୍ୟ ବା ଅକଞ୍ଚନମତ, (ବିଂ,ବ.ବ୍ରୀ) ନୀଚମନା ।
କ୍ଷୁଦ୍ରଭଣ୍ଟାକୀ—ସ୍ତ୍ରୀ. ବି. ବୃହତୀ ।
କ୍ଷୁଦ୍ରମ—ବି. ଧାତୁଆଦି ଗୁଳିବାପାଇଁ ଛଅମସାର ବଟକରା, ଛଦାମ୍ ।
କ୍ଷୁଦ୍ରମତ୍ସ୍ୟ—ବି. ଛୋଟମାଛ ।
କ୍ଷୁଦ୍ରମୁସ୍ତା—ସ୍ତ୍ରୀ. ବି. କସେରୁ,କୋଶୁର ।
କ୍ଷୁଦ୍ରରସ—ପୁଂ. ବି. ଅଳ୍ପରସ, ମହୁ ।
କ୍ଷୁଦ୍ରରସା—ସ୍ତ୍ରୀ. ବି. ରକ୍ତଗୁଞ୍ଜାଲତା ।
କ୍ଷୁଦ୍ରରୋଗ—ପୁଂ.ବି. ସାମାନ୍ୟ ରୋଗ ।
କ୍ଷୁଦ୍ରଳ—ବିଂ. ( କ୍ଷୁଦ୍ର+ଳ ) କ୍ଷୁଦ୍ର (ଜନ୍ତୁ ଓ ରୋଗ) ବିଂ.କ୍ଷୁଦ୍ରରୋଗଯୁକ୍ତ ।

କ୍ଷୁଦ୍ରବଂଶା—ସ୍ତ୍ରୀ. ବି. ବଗବଗିଆନ୍ତା, ଅପରାଜିତା ।
କ୍ଷୁଦ୍ରବର୍ଷାଭୂ—ସ୍ତ୍ରୀ. ବି. ରକ୍ତପୁନର୍ନବା, ନାଲିପୁରୁଣୀ । [ ଶାଗ ।
କ୍ଷୁଦ୍ରବଲ୍ଲୀ—ସ୍ତ୍ରୀ. ବି. ଏକପ୍ରକାର ପୋଇ
କ୍ଷୁଦ୍ରବାରୁଣୀ—ସ୍ତ୍ରୀ. ବି. ତୁଷଧାନ୍ୟକୃତ ମଦ୍ୟ ।
କ୍ଷୁଦ୍ରବାର୍ତ୍ତାକିନୀ—ସ୍ତ୍ରୀ. ବି. ଶ୍ୱେତକଣ୍ଟ-କାରୀ ବୃକ୍ଷ, ଅଙ୍କରାନ୍ତି ଗଛ ।
କ୍ଷୁଦ୍ରବାର୍ତ୍ତାକୀ—ସ୍ତ୍ରୀ. ବି.ଛୋଟବାଇଗଣ ।
କ୍ଷୁଦ୍ରବାସ୍ତୁକୀ—ସ୍ତ୍ରୀ. ବି. ଶ୍ୱେତଚିଲ୍ଲୀ ଶାଗ, ବଥୁଆ ଶାଗ ।
କ୍ଷୁଦ୍ରଶର୍କରା—ସ୍ତ୍ରୀ. ବି. ଯାବନାଳଶର୍କରା, ଜବନାଳରୁ ଜନ୍ମିବା ଚିନି ବା ଗୁଡ଼ ।
କ୍ଷୁଦ୍ରଶାର୍ଦ୍ଦୂଳ—ପୁଂ.ସ୍ତ୍ରୀ.ବି. ଚିତାବାଘ ।
କ୍ଷୁଦ୍ରଶୀର୍ଷ—ପୁଂ. ବି. ମୟୂରଶିଖା ବୃକ୍ଷ, ଚୂଳିଆଗଛ, (ବିଂ) କ୍ଷୁଦ୍ରଶୀର୍ଷଯୁକ୍ତ ।
କ୍ଷୁଦ୍ରଶୁକ୍ତି,କ୍ଷୁଦ୍ରଶୁକ୍ତିକା—ସ୍ତ୍ରୀ. ବି. ଜଳ-ଶୁକ୍ତି, ଛୋଟ ଶାମୁକା ।
କ୍ଷୁଦ୍ରଶୃଗାଳ—ପୁଂ. ବି. କୋକଶିଆଳ ।
କ୍ଷୁଦ୍ରଶ୍ୟାମା—ସ୍ତ୍ରୀ. ବି. କଟଭୀବୃକ୍ଷ ।
କ୍ଷୁଦ୍ରଶ୍ୱାସ—ପୁଂ. ବି. ଶ୍ୱାସରୋଗବିଶେଷ ।
କ୍ଷୁଦ୍ରଶ୍ୱେତା—ସ୍ତ୍ରୀ.ବି. ଶ୍ୱେତ ଅପରାଜିତା, ରକ୍ତାପାମାର୍ଗ ।
କ୍ଷୁଦ୍ରସହା—ସ୍ତ୍ରୀ. ବି. ମୁଦ୍ଗପର୍ଣ୍ଣୀ, ଇନ୍ଦ୍ର-ବାରୁଣୀ, ମହାକାଳଲତା ।
କ୍ଷୁଦ୍ରସୁବର୍ଣ୍ଣ—କ୍ଳୀ.ବି.ନିକୃଷ୍ଟ ସୁନା, ପିତଳ ।
କ୍ଷୁଦ୍ରହା—ପୁଂ. ବି. ( କ୍ଷୁଦ୍ର+ହନ୍+କ୍ୱିପ୍) ଶିବ ।
କ୍ଷୁଦ୍ରହିଙ୍ଗୁଳିକା, କ୍ଷୁଦ୍ରହିଙ୍ଗୁଳା—ସ୍ତ୍ରୀ. ବି. ଛୋଟଭୂଇଁ, ରସ୍ୟଶ୍ଵତ୍ଥ, କଣ୍ଟକାରୀ, ଆମ୍ବୁଡ଼ା, ମକ୍ଷିକା ।
କ୍ଷୁଦ୍ରା—ସ୍ତ୍ରୀ. ବି. (କ୍ଷୁଦ୍ର+ଆ) ବେଶ୍ୟା, ନିକୃଷ୍ଟ ମହୁମାଛି,କଳହୀ ସ୍ତ୍ରୀ, ଘୃଣ୍ୟା ସ୍ତ୍ରୀ, ଅଙ୍ଗହୀନା ସ୍ତ୍ରୀ, ନଟିନୀ,ଅଙ୍କରାନ୍ତି, ହିକ୍କା, ଗରଗଡ଼, ଆମ୍ବିଳଶାଗ, ଜଟାମାଂସୀ, କୁହୁଣ ।
କ୍ଷୁଦ୍ରାକ୍ଷ—ପୁଂ.ବି. (ବ.ବ୍ରୀ) ହସ୍ତୀ,(ବିଂ) ଯାହାର ଛୋଟଚକ୍ଷୁ ।

କ୍ଷୁଦ୍ରାଗ୍ନିମନ୍ଥ—ପୁଂ. ବ. (କ.ଧା) ଛୋଟ-ଗଣିଆରି ଗଛ ।

କ୍ଷୁଦ୍ରାଞ୍ଜନ—କ୍ଲୀ. ବ.(କ.ଧା)ଚକ୍ଷୁରୋଗର ଔଷଧବିଶେଷ ।

କ୍ଷୁଦ୍ରାନ୍ତ୍ର—କ୍ଲୀ. ବ. (କ.ଧା) ହୃଦୟସ୍ଥିତ କ୍ଷୁଦ୍ର ନାଡ଼ୀ ।

କ୍ଷୁଦ୍ରାପାମାର୍ଗ—ପୁଂ.ବ. ରକ୍ତ ଅପାମାର୍ଗ, ନାଲି ଚବତ ଝଣ୍ଡା ।

କ୍ଷୁଦ୍ରାମଲକ—କ୍ଲୀ.ବ. (କ.ଧା) କାଠଆମ-ଳକୀ, କଠଅଁଳା ।

କ୍ଷୁଦ୍ରାମଲକସଂଜ୍ଞ—ପୁଂ.ବ. କର୍କଟବୃକ୍ଷ ।

କ୍ଷୁଦ୍ରାମ୍ର—ବ. କୋଷାମ୍ର, କୁସୁମଗଛ ।

କ୍ଷୁଦ୍ରାମ୍ରପନସ—ପୁଂ.ବ.(କ.ଧା)ଲକୁଚ ।

କ୍ଷୁଦ୍ରାମ୍ଳ, କ୍ଷୁଦ୍ରାମ୍ଳିକା—ସ୍ତ୍ରୀ. ବ. ଅମ୍ଳ-ଲୋଣିକା, ଆମ୍ବିଳିଶାକ ।

କ୍ଷୁଦ୍ରାସ୍ତନ—ବିଂ.(ବ.ବ୍ରୀ)ଅଳ୍ପବିସ୍ତୃତ-ବିଶିଷ୍ଟ, ଯାହାର ବିସ୍ତାର କମ୍, (ସ୍ତ୍ରୀ) କ୍ଷୁଦ୍ରାସ୍ତନା ।

କ୍ଷୁଦ୍ରାଶୟ—ପୁଂ.ବିଂ. (କ୍ଷୁଦ୍ର+ଆଶୟ) ବ.ବ୍ରୀ, ନୀଚମନା, ସଂକୀର୍ଣ୍ଣମନା, ନୀଚାଶୟ ।

କ୍ଷୁଦ୍ରାଶୟତା—ସ୍ତ୍ରୀ.ବ.(କ୍ଷୁଦ୍ର+ଆଶୟ+ଭା.ତା) ନୀଚପ୍ରକୃତିକ, କ୍ଷୁଦ୍ରସ୍ୱଭାବ ।

କ୍ଷୁଦ୍ରିକା—ସ୍ତ୍ରୀ. ବ. (କ୍ଷୁଦ୍ର+କ+ଆ) ଛୋଟଡ଼ାଉଁଶ, ଘୁଘୁରି, ଘଣ୍ଟି, ଘାଗୁଡ଼ି ।

କ୍ଷୁଦ୍ରେକ୍ଷୁ—ବି. କାଣ୍ଡଶର ।

କ୍ଷୁଦ୍ରେଙ୍ଗୁଦୀ—ସ୍ତ୍ରୀ. ବ. ଦୁରାଲଭା ।

କ୍ଷୁଦ୍ରେର୍ବାରୁ—ପୁଂ. ବ. ଗୋପାଳକର୍କଟୀ, କୁନ୍ଦୁରୁ ।

କ୍ଷୁଦ୍ରୈଲା—ସ୍ତ୍ରୀ.ବ. (କ.ଧା)ଛୋଟ ଅଳେଇଚ, ଗୁଜରାତି ।

କ୍ଷୁଦ୍ରୋପୋଦକୀ—ସ୍ତ୍ରୀ.ବ.ଛୋଟପୋଇଶାଗ

କ୍ଷୁଦ୍ରୋଲୂକ—ପୁଂ.ବ. ଛୋଟ ପେଚା ।

କ୍ଷୁଧ୍—ସ୍ତ୍ରୀ. ବ. (କ୍ଷୁଧ୍+କ୍ୱିପ୍) ଭୋଜନ କରିବାର ଇଚ୍ଛା, କ୍ଷୁଧା, ଅନ୍ନ ।

କ୍ଷୁଧା—ସ୍ତ୍ରୀ. ବ. (କ୍ଷୁଧ୍+ଆ) ଭୋକ, ଭୋଜନଲାଳସା, ବୁଭୁକ୍ଷା ।

କ୍ଷୁଧାକର—ବିଂ. (୬ତତ୍ପୁ)ଭୋଜନେଚ୍ଛାର ଉତ୍ପାଦକ, ଅଗ୍ନିବର୍ଦ୍ଧକ ।

କ୍ଷୁଧାକୁଳ—ପୁଂ. ବ. (୩ତତ୍ପୁ) ଭୋକଲା, ବୁଭୁକ୍ଷିତ, କ୍ଷୁଧାଜର୍ଜରିତ, ପେଟ-ବିକଳିଆ, (ସ୍ତ୍ରୀ)କ୍ଷୁଧାକୁଳା ।

କ୍ଷୁଧାକୁଳିତ—ପୁଂ. ବିଂ. (୩ତତ୍ପୁ) କ୍ଷୁଧା-କୁଳ (ଦେଖ) ।

କ୍ଷୁଧାକୁଶଳ—ପୁଂ. ବ. ବଲ୍ୱଜରବୃକ୍ଷ, ବୀରତରୁ ।

କ୍ଷୁଧାତୁର—ପୁଂ.ବିଂ. (୩ତତ୍ପୁ) କ୍ଷୁଧାରେ ଆତୁର, ଭୋକଲା ।

କ୍ଷୁଧାବର୍ଦ୍ଧକ—ବିଂ.(୬ତତ୍ପୁ)ଯେଉଁ ଔଷଧ ପ୍ରୟୋଗ ଦ୍ୱାରା କ୍ଷୁଧା ବୃଦ୍ଧି ପାଏ ।

କ୍ଷୁଧାଭିଜନନ—ପୁଂ. ବ. (କ୍ଷୁଧା+ଅଭି-ଜନ+ଣିଚ୍+ଅନ)ରାଇସୋରିଷ ।

କ୍ଷୁଧାମାର—ପୁଂ.ବ. (କ୍ଷୁଧା+ମୃ+ଣିଚ୍ ଅ) କ୍ଷୁଧାନାଶକ, ଅପାମାର୍ଗ ।

କ୍ଷୁଧାର୍ତ୍ତ—ବିଂ. (କ୍ଷୁଧା+ଆର୍ତ୍ତ) (୩ତତ୍ପୁ) କ୍ଷୁଧାରେ କାତର, ବୁଭୁକ୍ଷୁ ।

କ୍ଷୁଧାଳୁ—ପୁଂ. ବିଂ. (କ୍ଷୁଧା+ଆଳୁ) କ୍ଷୁଧାଯୁକ୍ତ ।

କ୍ଷୁଧାବତୀ—ସ୍ତ୍ରୀ. ବ. କ୍ଷୁଧାଜନକ ଔଷଧ[ବିଶେଷ ।

କ୍ଷୁଧାବାନ୍—ପୁଂ. ବିଂ. (କ୍ଷୁଧା+ବତ୍) କ୍ଷୁଧାଯୁକ୍ତ, ଯାହାକୁ ଭୋକ ହୋଇଅଛି ।

କ୍ଷୁଧାବିଷ୍ଟ—ପୁଂ.ବିଂ. (୩ତତ୍ପୁ)କ୍ଷୁଧାକୁଳ (ଦେଖ) ।

କ୍ଷୁଧାବୃଦ୍ଧି—ବି(୬ତତ୍ପୁ)ବେଶିଭୋକକରିବା

କ୍ଷୁଧିତ—ପୁଂ. ବିଂ. (କ୍ଷୁଧା+ଇତ) ବୁଭୁକ୍ଷିତ, ଭୋକଲା ।

କ୍ଷୁଧୁନ—ପୁଂ. ବ. ମ୍ଳେଚ୍ଛଜାତିବିଶେଷ ।

କ୍ଷୁନ୍ନିବୃତ୍ତି—ସ୍ତ୍ରୀ.ବ. (କ୍ଷୁତ୍+ନି+ବୃତ୍+ତି) ୬ତତ୍ପୁ, କ୍ଷୁଧାର ନିବୃତ୍ତି, କ୍ଷୁଧା-ଶାନ୍ତି ।

କ୍ଷୁପ—ପୁଂ.ବ. (କ୍ଷୁ+ପ)ବୁଦା, ଝୁମ୍ପୁଡ଼ି ଗଛ, କ୍ଷୁଦ୍ରଶାଖାଯୁକ୍ତବୃକ୍ଷ, ସତ୍ୟଭାମାଙ୍କ ଗର୍ଭଜାତ କୃଷ୍ଣଙ୍କର ପୁତ୍ର, ଇକ୍ଷ୍ୱାକୁଙ୍କ ପିତା, ଦ୍ୱାରକାର ପଶ୍ଚିମସ୍ଥ ଗୋଟିଏ ପର୍ବତ, ଋଷିବିଶେଷ ।

କ୍ଷୁପାଳୁ—ପୁଂ. ବ. ପାଣିଆଳୁ ।

କ୍ଷୁବ୍ଧ—ପୁଂ.ବିଂ.(କ୍ଷୁଭ୍+ତ)କ୍ଷୋଭପ୍ରାପ୍ତ, କାତର, ବ୍ୟାକୁଳ, ଆନ୍ଦୋଳିତ, ବିଚଳିତ, ଅଭିଭୂତ, କ୍ରୁଦ୍ଧ, ଦୁଃଖିତ, ଅଧୀର, ଚ୍ୟୁତ, (ବି) ଦହିଖୁଆ, ରତିବନ୍ଧବିଶେଷ ।

କ୍ଷୁଭ—ବି. ବିଂ. (କ୍ଷୁଭ୍+ଅ) ପ୍ରବର୍ତ୍ତକ, ଦୁଃଖିତ, ଅସ୍ଥିର, ସଞ୍ଚାଳକ ।

କ୍ଷୁଭା—ସ୍ତ୍ରୀ.ବ. ସୂର୍ଯ୍ୟଦେବଙ୍କର ପାରିଷଦ ଦେବତା ।

କ୍ଷୁଭିତ—ପୁଂ.ବିଂ.(କ୍ଷୁଭ+ଇତ)ବିଚଳିତ, ଦୁଃଖିତ, ଚିନ୍ତିତ, ଅସ୍ଥିର, ଆନ୍ଦୋଳିତ ।

କ୍ଷୁମା—ସ୍ତ୍ରୀ.ବ.(କ୍ଷୁ+ମ+ଆ)ଛଣପଟ, ନୀଳଗଛ, ଶରବିଶେଷ, ରେଶମ, ଉମି, ଅତସୀ ବୃକ୍ଷ ।

କ୍ଷୁମାନ୍—ପୁଂ.ବିଂ.(କ୍ଷୁ+ମତ୍) ଅନ୍ନଯୁକ୍ତ, ସ୍ତୁତିକରିବାର ଯୋଗ୍ୟ ।

କ୍ଷୁର—ପୁଂ. ବ. (କ୍ଷୁର୍+ଅ) ଭଣ୍ଡାରିର କ୍ଷିଅର କରିବାର ଶସ୍ତ୍ର, କ୍ଷୁର, ଗୋରୁ ଓ ଘୋଡ଼ା ଆଦିଙ୍କର ଖୁରା, ଖଟଆଦିର ଗୋଡ଼ ବା ଖୁରା, ଶର, ବାଣବିଶେଷ, ଛୁରା ।

କ୍ଷୁରକ—ପୁଂ. ବ, ଗୋକ୍ଷୁରା, ତିଳବୃକ୍ଷ, ଭୂତାଙ୍କୁଶ ବୃକ୍ଷ, କୁଇଲେଖାଗଛ, ଗୋଖରା ଗଛ ।

କ୍ଷୁରକର୍ମ—କ୍ଲୀ.ବ.(କ୍ଷୁର+କର୍ମ)କ୍ଷୌର, ବାଳପ୍ରଭୃତି କାଟିବା ।

କ୍ଷୁରକ୍ଲୃପ୍ତ—ପୁଂ.ବିଂ. କ୍ଷୁରଦ୍ୱାରା ଯାହାକୁ କ୍ଷୌର କରାଯାଇଅଛି ।

କ୍ଷୁରକ୍ରିୟା—ସ୍ତ୍ରୀ. ବ.କ୍ଷୌର,କେଶନଖା-ଦିର କର୍ତ୍ତନ, କ୍ଷିଅର ।

କ୍ଷୁରଧାନ—କ୍ଲୀ.ବ. (କ୍ଷୁର+ଧା+ଅନ) ଭଣ୍ଡାରିର ଅସ୍ତ୍ରଧାରି, କ୍ଷୁର ରହିବା ଖୋଳ ।

କ୍ଷୁରଧାନୀ—ସ୍ତ୍ରୀ. ବ. (କ୍ଷୁରଧାନ+ଈ) କ୍ଷୁର ରହିବାର ଖୋଳ, ଭଣ୍ଡାରିମୁଠି ।

କ୍ଷୁରଧାର—ବିଂ.(କ୍ଷୁର+ଧାର)କ୍ଷୁରପରି ଦାଢ଼ୁଆ,(ପୁଂବ)ନରକବିଶେଷ,କ୍ଷୁରର ତୀକ୍ଷ୍ଣ ଅଗ୍ରଭାଗ, ଖୁରିଦାଢ଼ ।

କ୍ଷୁରଧାରା—ସ୍ତ୍ରୀ.ବ.(୬ତତ୍ପୁ)କ୍ଷୁରର ଦାଢ଼ ।

କ୍ଷୁରପତ୍ର—ପୁଂ.ବ. (କ୍ଷୁର+ପତ୍ର)ଶର, ଶରକାଣ୍ଡତୃଣ, ଫୁଲଶର, (ବିଂ)କ୍ଷୁରପରି ପତ୍ରଯୁକ୍ତ ।

କ୍ଷୁରପତ୍ରିକା—ସ୍ତ୍ରୀ. ବ. ପାଳଙ୍ଗ ଶାକ ।

କ୍ଷୁରପବି—ବି. ବଂ. କ୍ଷୁରପରି ଯାହାର ଅଗ୍ରଭାଗ ଅତିଶୟ ତୀକ୍ଷ୍ଣ ।

କ୍ଷୁରପ୍ର—ପୁଂ.ବଂ.(କ୍ଷୁର+ପ୍ରୃ+ଅ)ବାଣ-ବିଶେଷ,ଘାସଖୋଳିବାର ଅସ୍ତ୍ର, ଖୁରୁପୀ, ଦାଢ଼ୁଆ ଛୁରୀ ।

କ୍ଷୁରପ୍ରଗ—କ୍ଳୀ.ବ.(କ୍ଷୁର+ପ୍ର+ଗମ୍+ଅ) ଖୁପ, ଖୁରପା, ଅସ୍ତ୍ରବିଶେଷ ।

କ୍ଷୁରଭଣ୍ଠ—ପୁଂ, ବ. ତୈତ୍ତିରୀୟ ସଂହିତାର ଜଣେ ପ୍ରାଚୀନ ଭାଷ୍ୟକାର ।

କ୍ଷୁରଭାଣ୍ଡ—କ୍ଳୀ.ବ. ( ୬ତତ୍ ) ଭଣ୍ଡାରିର ଖୁରିଆ ରଖିବାର ଥଳି, ମୁଠି ।

କ୍ଷୁରମର୍ଦ୍ଦୀ—ପୁଂ. ବ. (କ୍ଷୁର+ମୃଦ୍+ଇନ୍)ଭଣ୍ଡାରି,ନାପିତ ।

କ୍ଷୁରମୁଣ୍ଡୀ-ପୁଂ.ବଂ,(କ୍ଷୁର+ମୁଣ୍ଡ+ଇନ୍) ଭଣ୍ଡାରି, ନାପିତ ।

କ୍ଷୁରାଙ୍ଗ—ପୁଂ.ବ.ଗୋକ୍ଷୁର ।

କ୍ଷୁରିକା—ସ୍ତ୍ରୀ. ବ. ( କ୍ଷୁର+କ+ଆ ) ପାଳଙ୍ଗଶାଗ,ମୃତ୍ତିକା-ପାତ୍ରବିଶେଷ,ଛୁରୀ, ଛେଣି,ଯଜୁର୍ବେଦର ଅନ୍ତର୍ଗତ ଏକଖଣ୍ଡି ଉପନିଷଦ୍ ।

କ୍ଷୁରିକାପତ୍ର—ପୁଂ.ବ.ଶର ।

କ୍ଷୁରିଣୀ—ସ୍ତ୍ରୀ. ବ. (କ୍ଷୁର+ଇନ୍+ଈ) ନାପିତର ଭାର୍ଯ୍ୟା, ଭଣ୍ଡାରୁଣୀ ।

କ୍ଷୁରୀ—ପୁଂ. ବ. (କ୍ଷୁର+ଇନ୍)ନାପିତ, ଖୁରବିଶିଷ୍ଟ ପଶୁ,ଭଣ୍ଡାରି ।

କ୍ଷୁରୀ—ସ୍ତ୍ରୀ.ବ. (କ୍ଷୁର+ଈ) ଭଣ୍ଡାରୁଣୀ, ନାପିତର ସ୍ତ୍ରୀ, ଛୁରୀ ।

କ୍ଷୁଲ୍ଲ—ବି. ବଂ. (କ୍ଷୁଦ୍+ଲ+ଅ)ଅଳ୍ପ, ଲଘୁ,ସାମାନ୍ୟ,କନିଷ୍ଠ,ବୟସରେ ସାନ ।

କ୍ଷୁଲ୍ଲକ—ବି.ବଂ.(କ୍ଷୁଦ୍+ଲ+କ)କ୍ଷୁଦ୍ର, ଅଳ୍ପ, ନୀଚ, କନିଷ୍ଠ, ଦରିଦ୍ର, ପାମର, ଦୁଃଖିତ ।

କ୍ଷୁଲ୍ଲତାତ, କ୍ଷୁଲ୍ଲତାତକ—ପୁଂ. ବ. (କ୍ଷୁଲ୍ଲ+ତାତ, କ ) ପିତାଙ୍କ ଛୋଟଭାଇ, କକେଇ, ଖୁଡ଼ୁତା, ପିତୃବ୍ୟ ।

କ୍ଷେଣିକା—ଗ୍ରା.ବି.ନଦୀପ୍ରଭୃତି ନୌକାରେ ପାରହେବା ।

କ୍ଷେତ—ଗ୍ରା. ବଂ. ଜମିବାଡ଼ି,ଶସ୍ୟର,ବିଲ ଫସଲ, କୃଷି ।

କ୍ଷେତବାଡ଼ି ଗ୍ରା.ବ. ଗୃହବାସ, କୃଷି ।

କ୍ଷେତ୍ର—କ୍ଳୀ. ବ. (କ୍ଷି+ତ୍ର) କେଦାର, କିଆରି, ବିଲ, ଶସ୍ୟୋତ୍ପତ୍ତିର ସ୍ଥାନ, ଶରୀର,ମନଃ,ଅନ୍ତଃକରଣ,ଇଚ୍ଛା,କଳତ୍ର, ସିଦ୍ଧ ସ୍ଥାନ, ପତ୍ନୀ, ତୀର୍ଥସ୍ଥାନ, ମେଷାଦି ଦ୍ୱାଦଶରାଶି, ସମତଳ ଭୂମି ।

କ୍ଷେତ୍ରଆଙ୍କିବା—ଗ୍ରା. କ୍ରି. ଭୂମିରେ କିମ୍ବା କାଗଜରେ ନିର୍ଦ୍ଦିଷ୍ଟ ସୀମା ଓ ଅବୟବ-ବିଶିଷ୍ଟ ରେଖାବୃତ୍ତ ଚିତ୍ରଅଙ୍କନ କରିବା ।

କ୍ଷେତ୍ରକର—ବି.ବଂ. (କ୍ଷେତ୍ର+କୃ+ଅ) ଯେ କ୍ଷେତ୍ର ପ୍ରସ୍ତୁତ କରେ, ଯେ ଜମି ତିଆରି କରେ । [ କୃଷକ ।

କ୍ଷେତ୍ରକର୍ମ—କ୍ଳୀ.ବ. (୬ତତ୍) ବିଲକାମ,

କ୍ଷେତ୍ରକର୍ମକୃତ୍—ବ.(କ୍ଷେତ୍ରକର୍ମ+କୃ+କ୍ୱିପ୍)ଯେ କ୍ଷେତରେ କାମ କରେ ।

କ୍ଷେତ୍ରଗଣିତ—କ୍ଳୀ. ବ. କ୍ଷେତ୍ରବିଷୟକ ଅଙ୍କଶାସ୍ତ୍ର, କ୍ଷେତ୍ରପରିମାଣ, ଜ୍ୟାମିତି ।

କ୍ଷେତ୍ରଗତ—ବ. ଯେଉଁ ବ୍ୟକ୍ତି କ୍ଷେତକୁ ଯାଇଅଛି, କ୍ଷେତ୍ରସମ୍ବନ୍ଧୀୟ, ଜ୍ୟାମିତି-ବିଷୟକ ।

କ୍ଷେତ୍ରଚିର୍ଭିଟା—ସ୍ତ୍ରୀ. ବ.ଫୁଟିକାକୁଡ଼ି ।

କ୍ଷେତ୍ରଜ—ପୁଂ.ବ.(କ୍ଷେତ୍ର+ଜନ୍+ଅ) ମୃତ, ନପୁଂସକ ବା ରୋଗଗ୍ରସ୍ତ ବ୍ୟକ୍ତିର ସ୍ତ୍ରୀ ଗୁରୁଜନଙ୍କର ଆଦେଶାନୁସାରେ ଅପରପୁରୁଷଦ୍ୱାରା ଯେଉଁପୁତ୍ରଜନ୍ମ କରେ ତାହାକୁ ସେହି ସ୍ତ୍ରୀର ସ୍ୱାମୀର କ୍ଷେତ୍ରଜ ପୁତ୍ର କହନ୍ତି, (ମନୁ ୯। ୬୭) ବଂ.କ୍ଷେତ୍ର-ଜାତ, ଯାହା ବିଲରୁ ଜାତ ହୁଏ ।

କ୍ଷେତ୍ରଜା—ସ୍ତ୍ରୀ. ବ. ( କ୍ଷେତ୍ରଜ+ଆ ) ଶ୍ୱେତକଣ୍ଟକାରୀ,କର୍କଟୀବିଶେଷ, ଚମ୍ପକା ତୃଣ ।

କ୍ଷେତ୍ରଜାତ—ବି. ବଂ. (୨ତତ୍) ଯାହା ବିଲରେ ଉତ୍ପନ୍ନ ହୋଇଅଛି ।

କ୍ଷେତ୍ରଜେଟ୍—ସ୍ତ୍ରୀ.ବ.(୬ତତ୍)କ୍ଷେତ୍ରପ୍ରାପ୍ତି ।

କ୍ଷେତ୍ରଜ୍ଞ-ପୁଂ.ବ.(କ୍ଷେତ୍ର+ଜ୍ଞା+ଅ)ବଟୁକ ଭୈରବ, ଜୀବାତ୍ମା, ପରମେଶ୍ୱର, ବିଷ୍ଣୁ, ସାକ୍ଷୀ,ଅନ୍ତର୍ଯ୍ୟାମୀ,(ବଂ)ରସିକ, କୃଷକ, କାମୁକ, ବିଦଗ୍ଧ, (ସ୍ତ୍ରୀ) କ୍ଷେତ୍ରଜ୍ଞା ।

କ୍ଷେତ୍ରତତ୍ତ୍ୱ—ବ. କ୍ଷେତ୍ରସମୂହର ପ୍ରକୃତି ଓ ପରିମାଣବିଷୟକ ଶାସ୍ତ୍ର, ଜ୍ୟାମିତି ।

କ୍ଷେତ୍ରଦ—ପୁଂ. ବ. (କ୍ଷେତ୍ର+ଦା+ଅ) ବଟୁକଭୈରବ,(ବଂ) ଯେ କ୍ଷେତ୍ର ଦାନ କରେ ।

କ୍ଷେତ୍ରଦୂତୀ—ସ୍ତ୍ରୀ.ବ.ଶ୍ୱେତକଣ୍ଟକାରୀ ।

କ୍ଷେତ୍ରଦେବତା—ସ୍ତ୍ରୀ.ବ.(୬ତତ୍)କ୍ଷେତର ଅଧିଷ୍ଠାତ୍ରୀ ଦେବତା,ଯାହାଙ୍କୁ ଆରାଧନା କଲେ କ୍ଷେତ ଭଲ ହୁଏ ।

କ୍ଷେତ୍ରପ—ପୁଂ. ବଂ. (କ୍ଷେତ୍ର+ପା+ଅ) କ୍ଷେତ୍ରରକ୍ଷକ,(ପୁଂ.ବ.)ଈଶ୍ୱର, ବଟୁକ-ଭୈରବ ।

କ୍ଷେତ୍ରପତି - ପୁଂ.ବ.(କ୍ଷେତ୍ର+ପତି)୬ତତ୍ କ୍ଷେତ୍ରପାଳ, ତୀର୍ଥର ପ୍ରଧାନ ଦେବତା, ରୁଦ୍ର, କୃଷକ, ଜମିବାଡ଼ିର ମାଲିକ ।

କ୍ଷେତ୍ରପଦ—କ୍ଳୀ. ବ. କ୍ଷେତ୍ରସ୍ଥାନ ।

କ୍ଷେତ୍ରପର୍ପଟୀ—ସ୍ତ୍ରୀ. ବ. କ୍ଷେତପାପଡ଼ା, ଘରପୋଡ଼ିଆ (ଗଛ) ।

କ୍ଷେତ୍ରପାଳ—ବ. (୬ତତ୍) କ୍ଷେତ୍ରରକ୍ଷକ ଦେବତାବିଶେଷ, କ୍ଷେତଜଗୁଆଳ, ଖଳାପାଏକ ।

କ୍ଷେତ୍ରଫଳ—କ୍ଳୀ. ବ. (୬ତତ୍ ) ଭୂମିର ପରିମାଣଫଳ, କ୍ଷେତ୍ରର ଦୈର୍ଘ୍ୟ ଓ ପ୍ରସ୍ଥର ବର୍ଗଫଳ ।

କ୍ଷେତ୍ରଭକ୍ତି—ସ୍ତ୍ରୀ.ବ. (୬ତତ୍) କ୍ଷେତ୍ରର ବିଭାଗ ।

କ୍ଷେତ୍ରଭୂମି—ସ୍ତ୍ରୀ.ବ.(କ,ଧା)କର୍ଷଣଯୋଗ୍ୟ ଭୂମି, କୃଷିଭୂମି ।

କ୍ଷେତ୍ରଭେଦ—ବ.(୬ତତ୍)କ୍ଷେତ୍ରବିଶେଷ, ବିଲ ଖୋଳା କାର୍ଯ୍ୟ ।

କ୍ଷେତ୍ରମାଳିକା—ସ୍ତ୍ରୀ. ବ. ବଚ ।

କ୍ଷେତ୍ରମାହାତ୍ମ୍ୟ—ବ.(୬ତତ୍)ନିର୍ଦ୍ଦିଷ୍ଟପୁଣ୍ୟ ଭୂମିକୁ ଦର୍ଶନ କରି ପରିକ୍ରମା କଲେ ଯାତ୍ରୀ ଯେଉଁ ଫଳ ଲାଭ କରେ ଏହା ଯେଉଁ ଗ୍ରନ୍ଥରେ ବର୍ଣ୍ଣିତ ହୋଇଥାଏ, ତୀର୍ଥସ୍ଥାନର ମୁକ୍ତିଦାନ କରିବାର କ୍ଷମତା ।

କ୍ଷେତ୍ରଯମାନିକା—ସ୍ତ୍ରୀ.ବ. (କ.ଧା.) ବନ-ଜୁଆଣି, ଅଜମୋଦା ।

କ୍ଷେତ୍ରରୁହା—ସ୍ତ୍ରୀ. ବ. ବାଲୁକା କର୍କଟୀ, (ବଂ) କ୍ଷେତ୍ରଜାତ ।

କ୍ଷେତ୍ରବଞ୍ଜନ—ବି. (କ.ଧା) କ୍ଷେତ୍ରତତ୍ତ୍ୱ (ଦେଖ) ।

କ୍ଷେତ୍ରବଦ୍—ବିଂ.(କ୍ଷେତ୍ର+ବିଦ୍+କ୍ୱିପ୍) କ୍ଷେତ୍ରଜ୍ଞ, ଯାହାକୁ ପଥ ବିଷୟ ଜଣା-ଅଛି, ମାର୍ଗଜ୍ଞ, (ବି) ଜୀବାତ୍ମା ।

କ୍ଷେତ୍ରବ୍ୟବହାର—ପୁଂ. ବି. କ୍ଷେତ୍ରପରି-ମାଣ (ଦେଖ) ।

କ୍ଷେତ୍ରସମ୍ଭବ—ପୁଂ.ବି. (କ୍ଷେତ୍ର+ସମ୍+ଭୂ+ଅ) ଏକପ୍ରକାର ଶାକ, (ବିଂ) ଭୂମିଜାତ ।

କ୍ଷେତ୍ରସମ୍ଭୂତ—ପୁଂ.ବି. (୭ତତ୍) କୁନ୍ଦୁର ତୃଣ (ବିଂ) ଭୂମିଜାତ ।

କ୍ଷେତ୍ରସାଧାଃ—ତ୍ରି. ବିଂ. କ୍ଷେତ୍ରସାଧକ, ଯଜ୍ଞନିଷ୍ପାଦକ ।

କ୍ଷେତ୍ରସିଂହ—ପୁଂ. ବି. ଚଉତୋର ଅଧିପତି ମହାରଣା ହାମରଙ୍କ ପୁତ୍ର ।

କ୍ଷେତ୍ରସୀମା—ସ୍ତ୍ରୀ. ବି. ଅଙ୍ଗାର, ତୁଷ ବା ବୃକ୍ଷାଦିଦ୍ୱାରା ଚିହ୍ନିତ ଭୂମିର ସୀମା ।

କ୍ଷେତ୍ରା—ଗ୍ରା. ବିଂ. ଛତର, ବାତୁର, ବାଉଳା, କ୍ଷୟପ୍ରାପ୍ତ, ଜୀର୍ଣ୍ଣ ।

କ୍ଷେତ୍ରାଜୀବ—ବି. (କ୍ଷେତ୍ର+ଆ+ଜୀବ) ବି. ବ୍ରୀ, କୃଷକ, ଚଷା ।

କ୍ଷେତ୍ରାଧିକାରୀ—ପୁଂ. ବିଂ. (୭ ତତ୍) କ୍ଷେତ୍ରସ୍ୱାମୀ, ଭୂସ୍ୱାମୀ, ଜମିର ମାଲିକ, (ସ୍ତ୍ରୀ) କ୍ଷେତ୍ରାଧିକାରିଣୀ ।

କ୍ଷେତ୍ରାଧିଦେବତା—ସ୍ତ୍ରୀ. ବି. (୬ତତ୍) କ୍ଷେତ୍ରର ଅଧିଦେବତା, ସିଦ୍ଧସ୍ଥାନ ବା ତୀର୍ଥସ୍ଥାନର ଅଧିଷ୍ଠାତ୍ରୀ ଦେବତା ।

କ୍ଷେତ୍ରାଧିପ—ପୁଂ.ବିଂ. (କ୍ଷେତ୍ର+ଅଧି+ପା+ଅ) ୬ତତ୍, ମେଷପ୍ରଭୃତି ଦ୍ୱାଦଶ ରାଶିର ଅଧିପତିଗ୍ରହ, କ୍ଷେତ୍ରାଧିଷ୍ଠାତ୍ରୀ ଦେବତା,ଗ୍ରାମେଶ୍ୱରୀ,(ବିଂ)କ୍ଷେତ୍ରସ୍ୱାମୀ ।

କ୍ଷେତ୍ରାଧିପତି—ପୁଂ. ବି, ବିଂ. (କ୍ଷେତ୍ର+ଅଧିପତି) ୬ତତ୍, କ୍ଷେତ୍ରାଧିପ (ଦେଖ) ।

କ୍ଷେତ୍ରାମଲକୀ—ସ୍ତ୍ରୀ. ବି. ଭୁଇଁଅଁଳା, ବାଡ଼ଅଁଳା, ବହୁମୂଳୀ ।

କ୍ଷେତ୍ରିକ—ପୁଂ.ବି.(କ୍ଷେତ୍ର+ଇକ)କ୍ଷେତ୍ର-ସ୍ୱାମୀ, କ୍ଷେତ୍ରର ଅଧିକାରୀ ।

କ୍ଷେତ୍ରିୟ—ବି. (କ୍ଷେତ୍ର+ଇୟ) କ୍ଷେତ୍ରଜ ତୃଣ, ପରଶରୀରରେ ଚକିତ୍ସା, ଅସାଧ୍ୟ ରୋଗ, (ବିଂ) ପରଶରୀରରେ ଚିକିତ୍ସା-ଯୋଗ୍ୟ, କ୍ଷେତ୍ରସମ୍ବନ୍ଧୀୟ, କ୍ଷେତ୍ରସ୍ୱାମୀ ପରସ୍ତ୍ରୀରତ ।

କ୍ଷେତ୍ରୀ—ପୁଂ.ବି. (କ୍ଷେତ୍ର+ଇନ୍) ସ୍ୱାମୀ, ପତି, (ବିଂ) କ୍ଷେତ୍ରସ୍ୱାମୀ, କ୍ଷେତ୍ରର ମାଲିକ ।

କ୍ଷେତ୍ରେକ୍ଷୁ—ପୁଂ. ବିଂ. ଯାବନାଳ,ଜନରୀ ।

କ୍ଷେପ—ପୁଂ. ବିଂ. (କ୍ଷିପ+ଘ,ଅ) ନିନ୍ଦା ନିକ୍ଷେପ,ଫିଙ୍ଗିବା,ପରିତ୍ୟାଗ,ପଠାଇବା, ଲିପିବା, ଯୋଗକରିବା ସଂଖ୍ୟା, ଶର, ଫୁଲପେଣ୍ଡା, ହେଲା, ଲଙ୍ଘନ, ଗର୍ବ, ବିଳମ୍ବ,ଗୁଚ୍ଛ ।

କ୍ଷେପକ—ପୁଂ. ବିଂ. (କ୍ଷିପ୍+କ+ଅକ) ଯେ ଫୋପାଡ଼ିଦିଏ,କ୍ଷେପକେଣ୍ଡା,ବିନାଶକ ଭର୍ତ୍ସନାକାରୀ, (ପୁଂ.ବି.)ଗ୍ରନ୍ଥମଧ୍ୟରେ ପ୍ରକ୍ଷିପ୍ତପାଠ, ଗୁଚ୍ଛା, ଅଙ୍କବିଶେଷ, ମଙ୍ଗଧରା ବ୍ୟକ୍ତି ।

କ୍ଷେପଣ—କ୍ଲୀ.ବି. (କ୍ଷିପ୍+ଣି+ଅନ) ନିକ୍ଷେପ, ପ୍ରେରଣ, ଲଙ୍ଘନ, ଅପବାଦ, ମାରଣ, ବିକ୍ଷେପ, କାଳାତିକ୍ରମଣ, ଯାପନ, ଛୁଞ୍ଚିକଣି, ଦଉଡ଼ିରେ ଝୁଲାଇ ହେବା ଏକପ୍ରକାର ଶିକା, ପରିତ୍ୟାଗ, ଛାଡ଼ିଦେବା, ମଲ୍ଲମାନଙ୍କର ଯୁଦ୍ଧକୌଶଳ ବିଶେଷ ।

କ୍ଷେପଣି,କ୍ଷେପଣୀ—ସ୍ତ୍ରୀ. ବି. (କ୍ଷିପ୍+ଅନ+ଇ,ଈ)ନୌକାଦଣ୍ଡ, ଆହୁଲା,ଫିଙ୍ଗା-ଜାଲ, ଫିଙ୍ଗିବାର ଯୋଗ୍ୟ ଅସ୍ତ୍ରବିଶେଷ, ବନ୍ଧୁକର ଗୁଳି, ବାଟୁଳି ।

କ୍ଷେପଣିକ—ପୁଂ. ବି. (କ୍ଷେପଣ+ଇକ) ମଲ୍ଲା, କେଉଟ ।

କ୍ଷେପଣିକା—ସ୍ତ୍ରୀ. ବି. (କ୍ଷେପଣ+ଇକ+ଆ) ନୌକାଦଣ୍ଡ, ଆହୁଲା, ମାଛ ଧରିବାଜାଲ.ଅସ୍ତ୍ରବିଶେଷ,ଫାନ୍ଦବିଶେଷ ।

କ୍ଷେପଣୀୟ—.ପୁଂ. ବି. (କ୍ଷିପ୍+ଅନୀୟ) ଫିଙ୍ଗିବାର ଯୋଗ୍ୟ, (ବି) ଖଣ୍ଡା, ଛୁଞ୍ଚି-କଣିବିଶେଷ ।

କ୍ଷେପପାତ—ପୁଂ.ବି.ଗ୍ରହକକ୍ଷ ଓ କ୍ରାନ୍ତି-ମଣ୍ଡଳର ଯୋଗ ।

କ୍ଷେପା—ଗ୍ରା.ବି (ସଂ-କ୍ଷେପଣିକା) ଫିଙ୍ଗା-ଜାଲ, ଭଉଁରିଜାଲ, ତାଳଗଛ ଆଦିରେ ଚଢ଼ିବାର ଛେନ୍ତି,ଆମ୍ବୁଗୁଣ୍ଡିବାରଖଣ୍ଡୁଣି, ଘୋଡ଼ା ଚରିଲାବେଳେ ଘୋଡ଼ରେ ବନ୍ଧାଯିବା ଫାଶ, ଛନ୍ଦଦଉଡ଼ି, ନଦୀରୁ କାଠ ଟାଣିବାର ବ୍ୟବହୃତ ଅଙ୍କୁଶି, ଉଦୁଙ୍କ, ନିକ୍ଷେପ, ଫିଙ୍ଗିବା, ଛୁଞ୍ଚିକଣି ।

କ୍ଷେପି—ଗ୍ରା. ବି. କ୍ଷେପା (ଦେଖ) ।

କ୍ଷେପିଦେବା—ଗ୍ରା. କ୍ରି.ମୂଳଧନ ନ ଥିବା ଛୋଟ ଛୋଟ ବେପାରୀମାନେ ଏକ ସ୍ଥାନରୁ ପଣ୍ୟଦ୍ରବ୍ୟ ଖରିଦ୍ କରିନେଇ ବିଦେଶରେ ବିକ୍ରୟକରି ଫେରିଆସିଲେ ଯେତେଥର ବା କ୍ଷେପ ବାଣିଜ୍ୟକରିବେ ସେତେଥର ପାଇଁ ଟଙ୍କାମୁଣ୍ଡେ ନିର୍ଦ୍ଦିଷ୍ଟ ସୁଧଦେବେ ଏହି କରାରରେ ବେପାରୀଙ୍କୁ ଟଙ୍କା କରଜ ଦେବା ।

କ୍ଷେପିନେବା—ଗ୍ରା. କ୍ରି. ପ୍ରତ୍ୟେକ କ୍ଷେପ ବେପାରପାଇଁ ସୁଧଦେବା କରାରରେ ମୂଳଧନ କରଜ ନେବା ।

କ୍ଷେପିବା—ଗ୍ରା. କ୍ରି. କ୍ଷେପଣ କରିବା, ନିକ୍ଷେପ କରିବା, ଫିଙ୍ଗିବା, ଡିଆଁମାରିବା ନଡ଼ିଆଗଛଆଦିରେ କ୍ଷେପା ସାହାଯ୍ୟରେ ଚଢ଼ିବା, ଆମ୍ବୁଖୁଣ୍ଟିବା, ଜୋରରେ ଦୌଡ଼ିବା, ଉପରକୁ ଖାଦ୍ୟାଦି ଶୀଘ୍ର ଶୀଘ୍ର ନିକ୍ଷେପକରିବା,ଢେଙ୍କିଆଁ ମାରିବା, ଶୂନ୍ୟରେ ଚଢି ମାରିବା ।

କ୍ଷେପିମା—ପୁଂ. ବି. (କ୍ଷେପ+ଇମନ୍) ପ୍ରବଳବେଗ, ଅତି ଦ୍ରୁତଗତି ।

କ୍ଷେପିଯିବା—ଗ୍ରା. କ୍ରି. ଅତି ଦ୍ରୁତଗତି ବା ଲମ୍ଫଦ୍ୱାରା ଉର୍ଦ୍ଧ୍ୱକୁ ବା କୌଣସି ଦୂରତ୍ୱକୁ ଅତିକ୍ରମ କରିବା ।

କ୍ଷେପିଷ୍ଠ-ପୁଂ.ବି.(କ୍ଷିପ୍+ଇଷ୍ଠ)ଅତିଶୟ, ଶୀଘ୍ର, ଅତିଦ୍ରୁତ, (ସ୍ତ୍ରୀ) କ୍ଷେପିଷ୍ଠା ।

କ୍ଷେପୀୟାନ୍—ପୁଂ.ବିଂ.(କ୍ଷିପ୍+ଈୟସ୍) ଅତିଚଞ୍ଚଳ, ଅତିଦ୍ରୁତ,(ସ୍ତ୍ରୀ)କ୍ଷେପୀୟସୀ

କ୍ଷେପ୍ତବ୍ୟ—ତ୍ରି. ବିଂ. (କ୍ଷିପ୍+ତବ୍ୟ) ଫିଙ୍ଗିବାରଯୋଗ୍ୟଯାହାକୁ ଫିଙ୍ଗାହେବ ।

କ୍ଷେପ୍ତା—ପୁଂ. ବିଂ. (କ୍ଷିପ୍+କ+ତୃ) ଫିଙ୍ଗା, ପ୍ରେରଣକାରୀ, (ସ୍ତ୍ରୀ) କ୍ଷେପ୍ତ୍ରୀ ।

କ୍ଷେମ—ପୁଂ.ବ. (କ୍ଷି+ମ)ମଙ୍ଗଳ, ସୁଖ ସ୍ୱାଚ୍ଛନ୍ଦ୍ୟ, ରକ୍ଷା, ଶାନ୍ତି, ମୁକ୍ତି,ଅନନ୍ତ-ସୁଖ, ଶୁଭସୂଚକ ଚୋରବିଶେଷ, ମୂଳ-ଦୁଆ, ବାସସ୍ଥାନ, ସୁଗନ୍ଧବିଶେଷ, ସମୃଦ୍ଧି, ରକ୍ଷଣ, ଶାନ୍ତିଙ୍କ ଗର୍ଭଜାତ ଧର୍ମଙ୍କପୁତ୍ର, ଜନ୍ମନକ୍ଷତ୍ରଠାରୁ ଚତୁର୍ଥ ନକ୍ଷତ୍ର, (ବିଂ) ଶୁଭବିଶିଷ୍ଟ,(ସ୍ତ୍ରୀ)କ୍ଷେମା ।

କ୍ଷେମକ—ବି.(କ୍ଷେମ+କ)ଚୌରନାମକ ଗନ୍ଧଦ୍ରବ୍ୟ,ପ୍ଲକ୍ଷଦ୍ୱୀପର ବର୍ଷ ବା ଦେଶ-ବିଶେଷ, ନାଗବିଶେଷ (ପୁଂ. ବିଂ.) ମଙ୍ଗଳକର,ସମୃଦ୍ଧ,ନିରାପଦ, ସ୍ୱାଚ୍ଛନ୍ଦ୍ୟ-ଯୁକ୍ତ ।

କ୍ଷେମକର-ପୁଂ.ବିଂ.(କ୍ଷେମ+କୃ+କ+ଅ)ଶୁଭକର,ମଙ୍ଗଳଦାୟକ,ଶାନ୍ତିଜନକ (ସ୍ତ୍ରୀ) କ୍ଷେମକାରୀ ।

କ୍ଷେମକର୍ଣ୍ଣି—ପୁଂ.ବିଂ. ଅର୍ଜୁନଙ୍କର ନାତି, ଜନମେଜୟଙ୍କର ସହଚର, ଜଣେ ସଙ୍ଗୀତ ଶାସ୍ତ୍ରବିତ୍ । [କର୍ତ୍ତା ।

କ୍ଷେମକର୍ମ୍ମା—ପୁଂ. ବିଂ. (ବ.ବ୍ରୀ)ପାଳକ

କ୍ଷେମକାମ—ତ୍ରି. ବିଂ. (କ୍ଷେମ+କାମ+ଅ)ଯେ ମଙ୍ଗଳକାମନାକରେ,ଶୁଭାକାଙ୍କ୍ଷୀ।

କ୍ଷେମକାର—ତ୍ରି.ବିଂ. (କ୍ଷେମ+କୃ+ଅ) ମଙ୍ଗଳକାରକ ।

କ୍ଷେମକୃତ୍—ବିଂ. (କ୍ଷେମ+କୃ+କ୍ୱିପ୍) ମଙ୍ଗଳକାରକ, ଶୁଭଦାୟକ ।

କ୍ଷେମଙ୍କର—ବିଂ. (କ୍ଷେମଂ+କୃ+ଅ) ମଙ୍ଗଳବିଧାୟକ, (ପୁଂ.ବି) ଯୁଦ୍ଧଭେଦ ।

କ୍ଷେମଙ୍କରୀ—ସ୍ତ୍ରୀ. ବି. (କ୍ଷେମଙ୍କର+ଈ) ମଙ୍ଗଳଦାତ୍ରୀ ଦେବୀବିଶେଷ, ଦୁର୍ଗା, ଶଙ୍ଖଚିଲ୍ଲ ।

କ୍ଷେମଜୟ—ପୁଂ.ବିଂ. ପ୍ରବୋଧ ଚନ୍ଦ୍ରୋ-ଦୟନାମକ ସଂସ୍କୃତ ବୈଦ୍ୟକ ଗ୍ରନ୍ଥ-ପ୍ରଣେତା ।

କ୍ଷେମତର—ତ୍ରି. ବିଂ. (କ୍ଷେମ+ତର) ଅତିଶୟ ହିତକର, ପ୍ରିୟତର ।

କ୍ଷେମଦର୍ଶୀ—ପୁଂ.ବିଂ. (କ୍ଷେମ+ଦୃଶ୍+ଇନ୍)ମଙ୍ଗଳଦ୍ରଷ୍ଟା, (ସ୍ତ୍ରୀ) କ୍ଷେମଦର୍ଶିନୀ, (ବି) ଚନ୍ଦ୍ରବଂଶୀୟ ଜଣେ ରାଜା ।

କ୍ଷେମଧନ୍ୱା—ପୁଂ. ବି. ପୁଣ୍ଡରୀକଙ୍କ ପୁତ୍ର, ସୂର୍ଯ୍ୟବଂଶୀୟ ଜଣେ ରାଜା, ସାବର୍ଣ୍ଣିମନୁ-ଙ୍କର ପଞ୍ଚମ ପୁତ୍ର ।

କ୍ଷେମଧୂର୍ତ୍ତି—ପୁଂ. ବି. ଜନପଦବିଶେଷ, କେକୟ ଦେଶାଧିପତି । [ନାମ ।

କ୍ଷେମଧାରୀ, କ୍ଷେମଧୂର୍ତ୍ତି—ଜଣେ ରାଜାଙ୍କ

କ୍ଷେମଧୃତ୍ୱା—ପୁଂ. ବିଂ. ପୌଣ୍ଡ୍ରୀକଙ୍କର ନାମାନ୍ତର ।

କ୍ଷେମଫଳା—ସ୍ତ୍ରୀ. ବି. (ବ.ବ୍ରୀ) ଡିମିରି ଗଛ, ଉଦୁମ୍ବରଗଛ ।

କ୍ଷେମମୂର୍ତ୍ତି—ପୁଂ. ବି. ଧୃତରାଷ୍ଟ୍ରଙ୍କ ଶତ ପୁତ୍ରମଧ୍ୟରୁ ଜଣେ, କରୁଷଦେଶୀୟ ଜଣେ ରାଜା ।

କ୍ଷେମରାଜ—ପୁଂ. ବି. କାଶ୍ୟପଗୋତ୍ରୀୟ କାମାକ୍ଷୀ ଦେବୀଭକ୍ତ ଜଣେ ରାଜା, କ୍ଷେମବିତାନଗରୀ ପ୍ରତିଷ୍ଠାତା, କାଶ୍ମୀର-ନିବାସୀ ଜଣେ ପ୍ରସିଦ୍ଧ ଗ୍ରନ୍ଥକାର ।

କ୍ଷେମବାନ୍—ପୁଂ. ବିଂ. (କ୍ଷେମ+ବତୁ) ମଙ୍ଗଳଯୁକ୍ତ, କୁଶଳୀ, (ସ୍ତ୍ରୀ) କ୍ଷେମବତୀ ।

କ୍ଷେମବୃଦ୍ଧୀ—ପୁଂ.ବିଂ. (କ୍ଷେମ+ବୃଦ୍ଧ+ଇନ୍) ଅତିଶୟ ମଙ୍ଗଳଯୁକ୍ତ ।

କ୍ଷେମା—ସ୍ତ୍ରୀ. ବି. (କ୍ଷେମ+ଆ) ଦୁର୍ଗା, କାତ୍ୟାୟନୀ, ଅପ୍ସରାବିଶେଷ ।

କ୍ଷେମଫଳା—ସ୍ତ୍ରୀ.ବି. ଡିମିରିଗଛ, ଉଦୁ-ମ୍ବରଗଛ ।

କ୍ଷେମାର୍ହ—ପୁଂ.ବିଂ.(କ୍ଷେମ+ଅର୍ହ+ଅ) ମଙ୍ଗଳଯୋଗ୍ୟ, (ସ୍ତ୍ରୀ) କ୍ଷେମାର୍ହା ।

କ୍ଷେମାସନ—କ୍ଲୀ. ବି. ରୁଦ୍ରଯାମଳୋକ୍ତ ଏକପ୍ରକାର ଆସନ ।

କ୍ଷେମାସ୍ପଦ—ପୁଂ. ବିଂ. (୬ତତ୍) କ୍ଷେମାର୍ହ (ଦେଖ) ।

କ୍ଷେମୀ-ପୁଂ.ବିଂ. (କ୍ଷେମ+ଇନ୍)ନିରାପଦ, ସୁଖୀ, ଶାନ୍ତିରେ ଥିବା,(ସ୍ତ୍ରୀ)କ୍ଷେମିନୀ ।

କ୍ଷେମୀନ୍ଦ୍ର—ପୁଂ. ବି. ଜଣେ କାମଶାସ୍ତ୍ର-ପ୍ରଣେତା ପ୍ରାଚୀନ ଗ୍ରନ୍ଥକାର ।

କ୍ଷେମ୍ୟ—ବିଂ. (କ୍ଷେମ+ଯ) ଭାଗ୍ୟବାନ୍, ସ୍ୱାଚ୍ଛନ୍ଦ୍ୟଯୁକ୍ତ, ସ୍ୱାସ୍ଥ୍ୟକର, ଶାନ୍ତିଦାୟକ, ସମୃଦ୍ଧ, ଶୁଭଙ୍କର, (ବି) ଶିବ, ଜଣେ ରାଜା ।

କ୍ଷେୟ—ପୁଂ. ବିଂ. (କ୍ଷି+ଯ) କ୍ଷୟକର-ବାର ଯୋଗ୍ୟ ।

କ୍ଷୈଣ୍ୟ—କ୍ଲୀ. ବି. (କ୍ଷୀଣ+ଷ୍ଣ. ଯ) କ୍ଷୀଣତା, ଲଘୁତା, କ୍ଷୟ, ଦୁର୍ବଳତା, ବିନାଶ ।

କ୍ଷୈତ—ତ୍ରି. ବିଂ. (କ୍ଷିତି+ଅ) ପୃଥିବୀ-ସମ୍ବନ୍ଧୀୟ, ଯାହା ପୃଥିବୀରୁଜନ୍ମେ,(ବି) ଶ୍ଲେଷ୍ମକାଷ୍ଠ ।

କ୍ଷୈତବାନ୍—ପୁଂ. ବିଂ. ଶ୍ଲେଷ୍ମକାଷ୍ଠଯୁକ୍ତ ।

କ୍ଷୈତ୍ର—କ୍ଲୀ. ବି. (କ୍ଷେତ୍ର+ଅ) କ୍ଷେତ୍ର-ସମୂହ, ସ୍ଥାବର ସମ୍ପତ୍ତି, କ୍ଷେତ୍ର ।

କ୍ଷୈତ୍ରଜ୍ଞ—କ୍ଲୀ. ବି. (କ୍ଷେତ୍ରଜ୍ଞ+ଅ) କ୍ଷେତ୍ରଜ୍ଞର ଭାବ, ଜୀବାତ୍ମା ସମ୍ବନ୍ଧୀୟ ।

କ୍ଷୈତ୍ରପତ—ପୁଂ.ବି. (କ୍ଷେତ୍ରପତି+ଅ) କ୍ଷେତ୍ରପତିର ପୁତ୍ର ବା ଅପତ୍ୟ ।

କ୍ଷୈପ୍ର—ବି. (କ୍ଷିପ୍ର+ଷ୍ଣ,ଅ) କ୍ଷିପ୍ରତା, (ବ୍ୟାକରଣ), (ବିଂ) ଦୁଇଟି ସ୍ୱରର ଏକତ୍ର ଉଚ୍ଚାରଣଜନିତ ସନ୍ଧିଘଟିତ (ପରବର୍ତ୍ତିନ) ।

କ୍ଷୈରହ୍ରଦ—ତ୍ରି. ବିଂ. (କ୍ଷୀରହ୍ରଦ+ଅ) କ୍ଷୀରହ୍ରଦସମ୍ବନ୍ଧୀୟ ।

କ୍ଷୈରେୟ—ବିଂ. (କ୍ଷୀର+ଏୟ)କ୍ଷୀର-ନିର୍ମିତାନ୍ନ,କ୍ଷୀରସଂସ୍କୃତ,ଦୁଗ୍ଧଜାତ,(ସ୍ତ୍ରୀ) କ୍ଷୈରେୟୀ ।

କ୍ଷୋଡ଼—ପୁଂ.ବି.(କ୍ଷୋଡ଼+ଅ) ଆଲାନ, ହାତୀ ବାନ୍ଧିବା ଖୁମ୍ବ ବା ଶିକୁଳି ।

କ୍ଷୋଣ—ତ୍ରି.ବିଂ. (କ୍ଷୁ+କ,ଅନ)ଅଚଳ, ଯାହା ଏକସ୍ଥାନରୁ ଅନ୍ୟସ୍ଥାନକୁ ଯାଇ-ପାରେ ନାହିଁ, (ବି) ବୀଣାବିଶେଷ ।

କ୍ଷୋଣି(ଣୀ)—ସ୍ତ୍ରୀ. ବି.(କ୍ଷୁ+ଣି ବା ଈ) ପୃଥିବୀ, ଏକସଂଖ୍ୟା, ବସୁନ୍ଧରା ।

କ୍ଷୋଦବ୍ୟ—ବିଂ. (କ୍ଷୁଦ୍+ମଁ,ତବ୍ୟ) ଚୂନା ବା ଦଳାହେବା ଯୋଗ୍ୟ ।

କ୍ଷୋଦ୍ଧା—ସ୍ତ୍ରୀ.ବି. (କ୍ଷୁଦ୍+ତୃ) ମୂଷଳ, ପେଷଣକର୍ତ୍ତା, ହମାମଦସ୍ତାର ପୁଆ ।

କ୍ଷୋଦ—ପୁଂ.ବି. (କ୍ଷୁଦ୍+ଅ) ଚୂରିବା, ପେଷିବା, ଚୂର୍ଣ୍ଣ, ଗୁଣ୍ଡା, ଚୂର୍ଣ୍ଣକରିବାର ପାତ୍ର, ହମାମଦସ୍ତା, ଶିଳ, କଣିଖୁଦ, ଖଣ୍ଡ, ଟୋପା, ଗୁଣନ, କାଠ ଓ ପଥର ଆଦିର କାରିଗରି କାମ,ଖୋଦେଇକାମ,

କ୍ଷୋଦକ-ବି.(କ୍ଷୁଦ୍ + କ,ଅକ) ଖଣ୍ଡକ ।
କ୍ଷୋଦକାର--ପୁଂ.ବି.(କ୍ଷୋଦ + କୃ + ଅ) ଖୋଦେଇ କାମ କରିବା କାରିଗର ।
କ୍ଷୋଦକ୍ଷମ—ବି. ବିଂ. (୬ତତ୍) ବିଚୂର୍ଣ୍ଣ ସହ,ପୋଷଣଯୋଗ୍ୟ,(ସ୍ତ୍ରୀ)କ୍ଷୋଦକ୍ଷମା ।
କ୍ଷୋଦନ – କ୍ଲୀ. ବି. (କ୍ଷୁଦ୍ + ଣ, ଅନ) ଚୂର୍ଣ୍ଣକରିବା, ଅକ୍ଷରାଙ୍କନ, ଖୋଦିତ କରିବା । [ ଜଳ ।
କ୍ଷୋଦଃ – କ୍ଲୀ. ବି. (କ୍ଷୁଦ୍ + ଅସ୍) ପାଣି,
କ୍ଷୋଦିତ-କ୍ଲୀ,ବିଂ.(କ୍ଷୁଦ୍ + ଣିଚ୍ + ର୍ମ.କ୍ତ) ଚୂର୍ଣ୍ଣ, ଚୂର୍ଣ୍ଣିତ, ପେଷିତ, ପିଷ୍ଟ, (ବି) ଚୂନା, ଅଟା, କାଠ ବା ପଥରରେ ଖୋଳା ହୋଇଥିବା ।
କ୍ଷୋଦିମା – ପୁଂ. ବିଂ (କ୍ଷୁଦ୍ + ଇମନ୍) ଅତିଶୟ କ୍ଷୁଦ୍ରତା ।
କ୍ଷୋଦିଷ୍ଠ – ବି. ବିଂ. (କ୍ଷୁଦ୍ + ଇଷ୍ଠ) ଅତିଶୟ, କ୍ଷୁଦ୍ର, କ୍ଷୁଦ୍ରତମ ।
କ୍ଷୋଦୀୟାନ୍ – ପୁଂ.ବି.(କ୍ଷୁଦ୍ + ଇୟସ୍) କ୍ଷୁଦ୍ରତର, ଅତିଶୟ କ୍ଷୁଦ୍ର, (ସ୍ତ୍ରୀ) କ୍ଷୋଦୀୟସୀ ।
କ୍ଷୋଦ୍ୟ-ବି.ବିଂ. (କ୍ଷୁଦ୍ + ର୍ମ,ଘ)ଚୂର୍ଣ୍ଣ କରିବାର ଯୋଗ୍ୟ ।
କ୍ଷୋଧୁକ – ବି.ବିଂ.କ୍ଷୁଧାଯୁକ୍ତ,ଭୋକଲା ।
କ୍ଷୋଭ – ପୁଂ.ବି. (କ୍ଷୁଭ୍ + ଅ) ବାଧା, ଆଘାତ,ଧର୍ଷଣ-ଚାଞ୍ଚଲ୍ୟ,ମନସ୍ତାପ, ଶାନ୍ତିଭଙ୍ଗ,ଆନ୍ଦୋଳନ, କମ୍ପନ, ଦୁଃଖ, (ବିଂ)କ୍ଷୋଭିତ ବା କ୍ଷୁବ୍ଧ ।
କ୍ଷୋଭକ – ପୁଂ.ବି. (କ୍ଷୁଭ୍ + କ, ଅକ) ଆନ୍ଦୋଳନକାରୀ, କମ୍ପନକାରୀ, (ସ୍ତ୍ରୀ) କ୍ଷୋଭିକା ।
କ୍ଷୋଭଣ – ବି. ବିଂ., (କ୍ଷୁଭ + ଣ,ଅନ) ମନରେ ଦୁଃଖଜାତ ହେବା,ଆନ୍ଦୋଳନ, (ପୁଂ) ବି. ଶିବ, ବିଷ୍ଣୁ, କାମଦେବଙ୍କର ପଞ୍ଚଶର ମଧ୍ୟରୁ ଏକ ।
କ୍ଷୋଭଶୂନ୍ୟ – ବିଂ. ( କ୍ଷୋଭ + ଶୂନ୍ୟ ) କ୍ଷୋଭ ବା ଦୁଃଖରହିତ,ନିଶ୍ଚିନ୍ତ,ଶାନ୍ତ ।
କ୍ଷୋଭିତ—ବିଂ. (କ୍ଷୁଭ୍ + କ୍ତ) ଧର୍ଷିତ, ଚାଳିତ,ତାଡିତ,କ୍ଷୁବ୍ଧ,ଦୁଃଖିତ,ଉଦ୍‌ବିଗ୍ନ, ଚଳାୟିତ ।

କ୍ଷୋମ – କ୍ଲୀ.ବି.(କ୍ଷୁ + ମନ୍)ଘର ଉପରେ ଥିବା ଘର, ଚନ୍ଦ୍ରଶାଳା, ପାଟ ।
କ୍ଷୋମକ – ପୁଂ.ବି. ଚୋରନାମକ ଗନ୍ଧଦ୍ରବ୍ୟ । ( ପୃଥିବୀ ।
କ୍ଷୋଣି – ସ୍ତ୍ରୀ.ବି. (କ୍ଷୁ + ଣି) ଏକ ସଂଖ୍ୟା,
କ୍ଷୌଣୀ – ସ୍ତ୍ରୀ.ବି.(କ୍ଷୁ + ଣୀ) ଏକ ସଂଖ୍ୟା, ପୃଥିବୀ ।
କ୍ଷୌଣୀପ୍ରାଚୀର-ପୁଂ.ବି.(୬ତତ୍)ସମୁଦ୍ର ।
କ୍ଷୌଣୀବିଦ୍ୟା – ସ୍ତ୍ରୀ. ବି. ଭୂତତ୍ତ୍ୱବିଦ୍ୟା, ଭୂବିଜ୍ଞାନ ।
କ୍ଷୌଣୀଭୁକ୍—ପୁଂ. ବି. (କ୍ଷୌଣୀ + ଭୁଜ୍ + କ.କ୍ୱିପ୍) ରାଜା ।
କ୍ଷୌଣୀଭୃତ୍ – ବି. (କ୍ଷୌଣୀ + ଭୃ + କ. କ୍ୱିପ୍) ରାଜା ।
କ୍ଷୌଣୀମୟ – ବି. ମୃଣ୍ମୟ, ପୃଥିବ୍ୟାଶ୍ରୟ ।
କ୍ଷୌଣୀଶ – ପୁଂ. ବି. ( ୬ତତ୍ ) ରାଜା, ଭୂପତି ।
କ୍ଷୌଦ୍ର – କ୍ଲୀ. ବି. (କ୍ଷୁଦ୍ର + ଅ) ମହୁ, ଜଳ, ଚମ୍ପାଫୁଲ,ଦ୍ରାକ୍ଷାଫଳ, (ପୁଂ.ବି.) ଚମ୍ପା ଗଛ, ମଗଧ ଦେଶଜାତ ବର୍ଣ୍ଣସଙ୍କର ଜାତିବିଶେଷ, ଧୂଳି, କ୍ଷୁଦ୍ରତା ।
କ୍ଷୌଦ୍ରଜା – ସ୍ତ୍ରୀ.ବି.ଶ୍ରେଷ୍ଠ ମହୁମାଛିସମୂହ ।
କ୍ଷୌଦ୍ରଜ—ବି. (କ୍ଷୌଦ୍ର + ଜନ୍ + ଅ), ମହଣ, ସିଠା, ସିକ୍ଥ, ମହମ ।
କ୍ଷୌଦ୍ରପଟଳ—କ୍ଲୀ.ବି.(୬ତତ୍) ମଧୁଚକ୍ର, ମହୁଫେଣା ।
କ୍ଷୌଦ୍ରପ୍ରିୟ – ପୁଂ. ବି. ଜଳମହୁଲ ଗଛ, (ବିଂ) ମହୁପ୍ରିୟ ।
କ୍ଷୌଦ୍ରମେହ – ପୁଂ. ବି. ପ୍ରମେହ ରୋଗବିଶେଷ, ମଧୁମେହ ।
କ୍ଷୌଦ୍ରମେହୀ – ପୁଂ. ବି. କ୍ଷୌଦ୍ରମେହରୋଗଗ୍ରସ୍ତ ।
କ୍ଷୌଦ୍ରେୟ – କ୍ଲୀ. ବି. (କ୍ଷୁଦ୍ରା + ଏୟ) ମହଣ, ସିଠା, (ବିଂ) କ୍ଷୌଦ୍ରସମ୍ବନ୍ଧୀୟ, (ସ୍ତ୍ରୀ) କ୍ଷୌଦ୍ରେୟୀ ।
କ୍ଷୌମ – କ୍ଲୀ.ବି. (କ୍ଷୁମା + ଅଣ୍)ପଟ୍ଟବସ୍ତ୍ର, ଛଣପଟନିର୍ମିତ-ଲୁଗା, କୋଠା, ଚନ୍ଦ୍ରଶାଳା, କୋଠାର ପଛଭାଗ (ବିଂ)ପାଟନିର୍ମିତ, ଛଣପଟ ନିର୍ମିତ,ଛଣପଟମଞ୍ଜିରୁ ଜାତ ( ତୈଳ ) ।

କ୍ଷୌମିକା-ସ୍ତ୍ରୀ ବି.ଛଣପଟନିର୍ମିତମେଖଳା ।
କ୍ଷୌମୀ – ସ୍ତ୍ରୀ. ବି. (କ୍ଷୁମା + ଅ + ଈ) ଅତସୀ, ପାଟନିର୍ମିତ କନ୍ଥା ।
କ୍ଷୌର – କ୍ଲୀ.ବି. (କ୍ଷୁର + ଅ) ଖିଅର, ହଜାମତ୍, କେଶ ଦାଢ଼ି ନଖ ପ୍ରଭୃତିର କର୍ତ୍ତନ ।
କ୍ଷୌରକର୍ମ – ବି.(କ୍ଷୌର + କର୍ମ)ମସ୍ତକମୁଣ୍ଡନ,ଶ୍ମଶ୍ରୁଚ୍ଛେଦନ ଓ ନଖଚ୍ଛେଦନ ।
କ୍ଷୌରକାର୍ଯ୍ୟ – ବି. (କ୍ଷୌର + କାର୍ଯ୍ୟ) କ୍ଷୌର କର୍ମ (ଦେଖ) ।
କ୍ଷୌରପବ୍ୟ – କ୍ଲୀ.ବିଂ.ଅତିଶୟ ତୀକ୍ଷ୍ଣ ।
କ୍ଷୌରକ – ପୁଂ. ବି. (କ୍ଷୌର + ଇକ) ଭଣ୍ଡାରି, ନାପିତ, ବାରିକ ।
କ୍ଷୌରୀ--ସ୍ତ୍ରୀ. ବି. (କ୍ଷୌର + ଈ)ଛୁରା, ଛଣପଟ ସୂତା ।
କ୍ଷ୍ଣୁତ-ବିଂ.(କ୍ଷ୍ଣୁ + ର୍ମ,କ୍ତ)ପଜାଯାଇଥିବା, ଶାଣିତ ।
କ୍ଷ୍ଣୋତ୍ର – କ୍ଲୀ.ବି.(କ୍ଷ୍ଣୁ + ଷ୍ଟ୍ର,ତ୍ର)ଶାଣଯନ୍ତ୍ର, ଶାହାଣ ପଥର ।
କ୍ଷ୍ମା –ସ୍ତ୍ରୀ.ବି. (କ୍ଷମ + ଅ + ଆ) ପୃଥିବୀ, ସର୍ବଂସହା ।
କ୍ଷ୍ମାଜ—ବି.(କ୍ଷ୍ମା + ଜନ୍ + ଅ)ମଙ୍ଗଳଗ୍ରହ; ବୃକ୍ଷବିଶେଷ,ନରକାସୁର ।
କ୍ଷ୍ମାତଳ – କ୍ଲୀବି. ( ୬ତତ୍ ) ପୃଥିବୀତଳ ।
କ୍ଷ୍ମାଧର – ପୁଂ.ବି. ( କ୍ଷ୍ମା + ଧୃ + କ,ଅ ) ରାଜା, ପର୍ବତ, ଅନନ୍ତ, ସାତସଂଖ୍ୟା ।
କ୍ଷ୍ମାଧୃତ – ପୁଂ. ବି. କାଶ୍ମୀରଦେଶୀୟ ଜଣେକ ରାଜା ।
କ୍ଷ୍ମାପ – ପୁଂ.ବି. (କ୍ଷ୍ମା + ପା + ଅ)ରାଜା ।
କ୍ଷ୍ମାପତି – ପୁଂ.ବି. (କ୍ଷ୍ମା + ପତି) ରାଜା ।
କ୍ଷ୍ମାପାଳ—ପୁଂ. ବି. (କ୍ଷ୍ମା + ପାଲ + ଅ) ରାଜା ।
କ୍ଷ୍ମାଫେନ—ବି. ଅହିଫେନ, ଅଫିମ ।
କ୍ଷ୍ମାଭୁକ୍ – ପୁଂ. ବି. (କ୍ଷ୍ମା + ଭୁଜ୍ + କ, କ୍ୱିପ୍) ରାଜା, ଭୂମିପାଳ ।
କ୍ଷ୍ମାଭୃତ୍ – ପୁଂ. ବି. (କ୍ଷ୍ମା + ଭୃ + କ୍ୱିପ୍) ପର୍ବତ, ରାଜା ।

କ୍ଷ୍ମାୟୁ—(ଧାତୁ) ଥରିବା, କମ୍ପିବା ।
କ୍ଷ୍ମାୟିତ-ବି.ବ୍ୟଂ.(କ୍ଷ୍ମା+ଇତ) କମ୍ପିତ ।
କ୍ଷ୍ମାୟିତା—ପୁଂ.ବି. (କ୍ଷ୍ମାୟି+ତୃ)କମ୍ପକ, ଯେ କମ୍ପାଏ ।
କ୍ଷ୍ୱିଙ୍କା—ସ୍ତ୍ରୀ. ବି. ଶବ୍ଦକାରିଣୀ, ଯେ, ସ୍ତ୍ରୀ ଲୋକ ଶବ୍ଦ କରେ, ପକ୍ଷୀବିଶେଷ ।
କ୍ଷ୍ୱିଣ୍ଣ—ବି. ବ୍ୟଂ.(କ୍ଷ୍ୱିଦ୍+ତ)ଗୁଣ୍ଣୁଗୁଣ୍ଣୁ ଶବ୍ଦ କରୁଥିବା, କୋମଳ, ଚକ୍କଣିଆ, ମୁକ୍ତ, ସ୍ନିଗ୍ଧ ।
କ୍ଷ୍ୱେଡ଼—ପୁଂ. ବି. (କ୍ଷ୍ୱିଡ୍+ଅ) ସିଂହନାଦ,ଧ୍ୱନି, ବିଷ,ଗରଳ, ଓଦାକରିବା, ନାଲି ଅରଖ ଗଛର ଫଳ, ପରିତ୍ୟାଗ, ଅସ୍ପଷ୍ଟ ଧ୍ୱନି, କର୍ଣ୍ଣରୋଗବିଶେଷ, ଜହ୍ନି, (ବ୍ୟଂ)କୁଟିଳ,କୁତ୍ସିତ,ଖଳ,ଦୁଷ୍ଟ,ବକ୍ର ।
କ୍ଷ୍ୱେଡ଼ନ—କ୍ଳୀ. ବି. (କ୍ଷ୍ୱିଡ୍+ଅନ) ମୋଚନ, ତ୍ୟାଗ, ଫଁ ଫଁ ଶବ୍ଦ ।
କ୍ଷ୍ୱେଡ଼ା—ସ୍ତ୍ରୀ. ବି. (କ୍ଷ୍ୱିଡ୍+ଅ+ଆ) ସିଂହନାଦ, କୋଷାତକୀ ବୃକ୍ଷ,ଜହ୍ନିଗଛ, ବଂଶଶଲାକା, ବାଉଁଶକାଠି ।
କ୍ଷ୍ୱେଡ଼ିତ—ବି. (କ୍ଷେଡ୍+ଇତ) ସିଂହନାଦ,ମର୍ମରଧ୍ୱନି,ଯୁଦ୍ଧନାଦ, ଗର୍ଜନ ।
କ୍ଷ୍ୱେଲ—ବି. କ୍ଷ୍ୱେଡ (ଦେଖ) ।
କ୍ଷ୍ୱେଲନ—ବି. (କ୍ଷ୍ୱିଲ୍+ଣ, ଅନ) କ୍ରୀଡ଼ା, କେଳି, ଥଟ୍ଟା, ସଞ୍ଚଳନ ।
କ୍ଷ୍ୱେଲା—ବି. (କ୍ଷ୍ୱିଲ୍+ଣ, ଅ+ଆ) କ୍ଷ୍ୱେଲନ (ଦେଖ) ।
କ୍ଷ୍ୱେଲିକା—ବି. (କ୍ଷ୍ୱେଲ+କ+ଆ) କ୍ଷ୍ୱେଲନ (ଦେଖ) ।
କ୍ଷ୍ୱେଲୀ—ବି. (କ୍ଷ୍ୱେଲ+ଈ) କ୍ଷ୍ୱେଲନ (ଦେଖ) ।
କ୍ଷ୍ୱେଲ୍ୟ—ବି.(କ୍ଷ୍ୱେଲ+ଣ,ଯ) କ୍ଷ୍ୱେଲନ (ଦେଖ) ।

# ଖ

ଖ—ବ୍ୟଞ୍ଜନ ବର୍ଣ୍ଣର ଦ୍ୱିତୀୟ ଅକ୍ଷର ଏହାର ଉଚ୍ଚାରଣ ସ୍ଥାନ କଣ୍ଠ, ଶିକ୍ଷା ଗ୍ରନ୍ଥାନୁସାରେ ଏହାର ଉଚ୍ଚାରଣ ସ୍ଥାନ ଜିହ୍ୱାମୂଳବୋଲି ନିରୂପିତ ହୋଇଅଛି ।
ଖ—ପୁଂ.ବି. (ଖନ+ଡ,ଆ) ସୂର୍ଯ୍ୟ,କ୍ଳୀ. (ଖନ+ଡ,ଅ) ସ୍ୱର୍ଗ, ସୁଖ, ଶୂନ୍ୟ, ଆକାଶ, (ଖ+ଡ,ଅ) ଇନ୍ଦ୍ରିୟ, (ଖର୍ବ+ଡ,ଅ)ଦେହ,(ଖଟ+ଡ,ଅ) ନଗର ପୁର, (ଖଚ+ଡ,ଅ) ବ୍ରହ୍ମ, ଜ୍ଞାନ, ଶରୀରର ନବରନ୍ଧ୍ର(ଯଥା ପାଟି,ଦୁଇଆଖି, ଦୁଇକାନ, ଦୁଇନାକପୁଡ଼ା, ଗୁହ୍ୟ ଓ ଜନନେନ୍ଦ୍ରିୟ) ଶୂନ୍ୟସଂଖ୍ୟା,ମେଘମାଳା ଅଭ୍ର, କର୍ମ, ସୁଖ, ବୋଧ, ମୋକ୍ଷ, ନିର୍ବାଣ, (ଜ୍ୟୋତିଷ) ଜନ୍ମ ଲଗ୍ନଠାରୁ ଦଶମସ୍ଥାନ, ବିନ୍ଦୁ, ସମ୍ବେଦନ, ଦେବଲୋକ, ଛିଦ୍ର ।
ଖଇଁଚୁ—ଗ୍ରା.(ସମ୍ବ) ବି ଓ ବ୍ୟଂ. ଖଇଚୁ, ସାମାନ୍ୟ ଦୋଷ ବା ତ୍ରୁଟି, କାର୍ଯ୍ୟରେ ହେଳା,(ବ୍ୟଂ) ଅଧାପଲରିଆ, ଅସମ୍ପୂର୍ଣ୍ଣ, ତ୍ରୁଟିଯୁକ୍ତ ।
ଖଇଖାନା—ଗ୍ରା. (ସମ୍ବ) ବ୍ୟଂ. କୁତ୍ସିତ, ଅସୁନ୍ଦର, ଅପରିଷ୍କୃତ,ମଇଳା, କର୍କଶ ।
ଖଇଙ୍ଗା—ଗ୍ରା.ବି.ଏକଜାତୀୟ ସାମୁଦ୍ରିକ ବଡ଼ଜାତ ବିଶିଷ୍ଟ ମାଛ ।
ଖଇଚଡ଼ା—ଗ୍ରା. ବି. ଦରଫୁଟା ଖଇ, ମୁଢ଼ି ବା ଖଇ ଲିଆଛଡ଼ା ଧାନକୁ କୁଟି ତହିଁରୁ ଚୂଡ଼ାଭଳି ବାହାର କରାଯିବା ପଦାର୍ଥ ।
ଖଇଚଲା—ଗ୍ରା.ବି.ଟେଙ୍ଗା (ଲିଆରୁ ଗୋପା ଧାନ ବାହାର କରିବା ନିମିତ୍ତ ବାଉଁଶ କାଠି ବା ଖଡ଼ିକା ନିର୍ମିତ ପାତ୍ରବିଶେଷ) ଲିଆଚଲା, ଲିଆଛଡ଼ା ।
ଖଇଚୁ—ଯା. ବି. ଖଇଁଚୁ (ଦେଖ) ।
ଖଇଚୁକରିବା—ଗ୍ରା. କ୍ରି. କାର୍ଯ୍ୟରେ ହେଳା କରିବା,ଅସମ୍ପୂର୍ଣ୍ଣରୂପେ କାର୍ଯ୍ୟ କରିବା ।
ଖଇଚୂର—ଗ୍ରା. କ୍ରି. ଲିଆଗୁଣ୍ଡ, ଲିଆରେ ଗୁଡ଼ ମିଠାଆଦି ମିଶାଇ ଗୁଣ୍ଡ କରାଯିବା ଖାଦ୍ୟ ।

ଖଇଛଡ଼ାଇବା—ଗ୍ରା.କ୍ରି. ଲିଆରୁ ଗୋଟି ଗୋଟି କରି ଧାନ ବାଛିବା, ଲିଆ କେଳେଇବା ।
ଖଇଞ୍ଚି—ଗ୍ରା ବି. ବାଉଁଶକାଠିରେ ବୁଣା ହୋଇଥିବା ମାଛ ଧରିବାର ଯନ୍ତ୍ରବିଶେଷ, ଖଇ ଚଲାଇବାର ଚାଲୁଣି ।
ଖଇଞ୍ଚିଆଦଳ—ଗ୍ରା. ବି. ଏକ ପ୍ରକାର ଜଳ ଘାସ ।
ଖଇନ୍—ଗ୍ରା. ଯା. ଚୂନସଙ୍ଗେ ଦଳାଯାଇଥିବା ଧୂଆଁପତ୍ର, (ଚୂନପତ୍ର) ଗୁଣ୍ଡି, ଧୂଆଁପତ୍ର, ଦୋକ୍ତା ।
ଖଇଫୁଟିବା—ଗ୍ରା. କ୍ରି. ଖଇ ଭାଜିଲା ବେଳେ ଅଗ୍ନି ଉପରେ ବସିଥିବା ହାଣ୍ଡି ମଧ୍ୟରେ ଧାନ ଉତ୍ତାପଯୋଗେ ଯେଉଁପରି ଲିଆ ହୋଇଯାଏ ସେହିପରି ଦେହ ତାତିବା । (ଜ୍ୱରବେଳେ ଖଇ ଫୁଟିଲା ପରି ତାତି, ଲୋକ ବ୍ୟବହାର) ରାସ୍ତା ତାତିବା, ବାଲି ତାତିବା ପ୍ରଭୃତି ।
ଖଇର—ଗ୍ରା. ବି, ଖଦିର, ଯାହା ପାନ ସଙ୍ଗେ ଖିଆଯାଏ ।
ଖଇରି—ଗ୍ରା.ବ୍ୟଂ. (ସଂ. ଖଦିର) ଖଇରରଙ୍ଗବିଶିଷ୍ଟ, ଧଳା ଓ କଳାମିଶା, ପାଣ୍ଡୁର, (ବି) ଖଇର ପ୍ରସ୍ତୁତ କରିବା ନୀଚଜାତି ବିଶେଷ ।
ଖଇରାତ—ଯା. ବି. ଦାନ, ଏକକାଳୀନ ଓ ଚିରସ୍ଥାୟୀ ଦାନ, ପୁଣ୍ୟ କର୍ମ ।
ଖଇରାତକରିବା—ଗ୍ରା.କ୍ରି.ଦାନ କରିବା ।
ଖଇରାତ ଖଞ୍ଜା—ଗ୍ରା. ବି. ଦାନପାଇଁ ଯାହା ନିର୍ଦ୍ଦିଷ୍ଟ ବା ଖଞ୍ଜା ହୋଇଥାଏ ।
ଖଇରାତ ବାଯ୍ୟାପ୍ତି—ଯା. ବି. ଯେଉଁ ଜମି ପୂର୍ବେ ରାଜାମାନେ ଚିରକାଳପାଇଁ ନିଷ୍କରରୂପେ ଦାନନିମିତ୍ତ ଖଞ୍ଜା କରିଥିଲେ, କିନ୍ତୁ ପରେ କେତେକ କାରଣରୁ ବାଯ୍ୟାପ୍ତ ହୋଇ କରଧାର୍ଯ୍ୟ ହୋଇଅଛି ।
ଖଇରାତବାହେଲ—ଯା. ବି. ଯେଉଁ ଭୂମିକୁ ପୂର୍ବରୁ କୌଣସି ରାଜା ଖୈରାତ ବା ସଦାବ୍ରତରେ ଖଞ୍ଜି ସନନ୍ଦ ଦେଇଥିବାରୁ ଇଂରାଜ ସରକାର ଭୂରାଜସ୍ୱ ବସାଇ ନାହାନ୍ତି ।

କ୍ଷ୍ମାୟୁ—(ଧାତୁ) ଅରବା, କମ୍ପିବା ।
କ୍ଷ୍ମାୟିତ-ବି.ବ୍ୟ°.(କ୍ଷ୍ମା+ଇତ) କମ୍ପିତ ।
କ୍ଷ୍ମାୟିତା—ପୁଂ.ବି. (କ୍ଷ୍ମାୟି+ତୃ)କମ୍ପକ, ଯେ କମ୍ପାଏ ।
କ୍ଷ୍ୱିଙ୍କା—ସ୍ତ୍ରୀ. ବି. ଶବ୍ଦକାରଣୀ, ଯେ, ସ୍ତ୍ରୀ ଲୋକ ଶବ୍ଦ କରେ, ପକ୍ଷୀବିଶେଷ ।
କ୍ଷ୍ୱିଣ୍ଣ—ବି. ବ୍ୟ°.(କ୍ଷ୍ୱିଦ୍+ତ)ଗୁଣୁଗୁଣୁ ଶବ୍ଦ କରୁଥିବା, କୋମଳ, ଚକ୍କଣିଆ, ମୁକ୍ତ, ସ୍ନିଗ୍ଧ ।
କ୍ଷ୍ୱେଡ଼—ପୁଂ. ବି. (କ୍ଷ୍ୱିଡ୍+ଅ) ସିଂହନାଦ,ଧ୍ୱନି, ବିଷ,ଗରଳ, ଔଦାକରବା, ନାଲି ଅରଖ ଗଛର ଫଳ, ପରିତ୍ୟାଗ, ଅସ୍ପଷ୍ଟ ଧ୍ୱନି, କର୍ଣ୍ଣରୋଗବିଶେଷ, ଜହ୍ନି, (ବ୍ୟ°)କୁଟିଳ,କୁତ୍ସିତ,ଖଳ,ଦୁଷ୍ଟ,ବକ୍ର ।
କ୍ଷ୍ୱେଡ଼ନ—କ୍ଳୀ. ବି. (କ୍ଷ୍ୱିଡ୍+ଅନ) ମୋଚନ, ତ୍ୟାଗ, ଫଁ ଫଁ ଶବ୍ଦ ।
କ୍ଷ୍ୱେଡ଼ା—ସ୍ତ୍ରୀ. ବି. (କ୍ଷ୍ୱେଡ୍+ଅ+ଆ) ସିଂହନାଦ, କୋଷାତକୀ ବୃକ୍ଷ,ଜହ୍ନିଗଛ, ବଂଶଶଳାକା, ବାଉଁଶକାଠି ।
କ୍ଷ୍ୱେଡ଼ିତ—ବି. (କ୍ଷ୍ୱେଡ୍+ଇତ) ସିଂହନାଦ,ମର୍ମରଧ୍ୱନି,ଯୁଦ୍ଧନାଦ, ଗର୍ଜନ ।
କ୍ଷ୍ୱେଳ—ବି. କ୍ଷ୍ୱେଡ଼ (ଦେଖ) ।
କ୍ଷ୍ୱେଳନ—ବି. (କ୍ଷ୍ୱିଲ୍+ଣ, ଅନ) କ୍ରୀଡ଼ା, କେଳି, ଥଟ୍ଟା, ସଞ୍ଚାଳନ ।
କ୍ଷ୍ୱେଳା—ବି. (କ୍ଷ୍ୱିଲ୍+ଣ, ଅ+ଆ) କ୍ଷ୍ୱେଳନ (ଦେଖ) ।
କ୍ଷ୍ୱେଳିକା—ବି. (କ୍ଷ୍ୱେଳ+କ+ଆ) କ୍ଷ୍ୱେଳନ (ଦେଖ) ।
କ୍ଷ୍ୱେଳୀ—ବି. (କ୍ଷ୍ୱେଳ+ଈ) କ୍ଷ୍ୱେଳନ (ଦେଖ) ।
କ୍ଷ୍ୱେଲ୍ୟ—ବି.(କ୍ଷ୍ୱେଳ+ଣ,ଯ) କ୍ଷ୍ୱେଳନ (ଦେଖ) ।

# ଖ

ଖ—ବ୍ୟଞ୍ଜନ ବର୍ଣ୍ଣର ଦ୍ୱିତୀୟ ଅକ୍ଷର ଏହାର ଉଚ୍ଚାରଣ ସ୍ଥାନ କଣ୍ଠ, ଶିକ୍ଷା ଗ୍ରନ୍ଥାନୁସାରେ ଏହାର ଉଚ୍ଚାରଣ ସ୍ଥାନ ଜିହ୍ୱାମୂଳବୋଲି ନିରୂପିତ ହୋଇଅଛି ।
ଖ—ପୁଂ.ବି. (ଖନ+ଡ,ଆ) ସୂର୍ଯ୍ୟ,କ୍ଳୀ. (ଖନ+ମି,ଅ) ସ୍ୱର୍ଗ, ସୁଖ, ଶୂନ୍ୟ, ଆକାଶ, (ଖ+ଡ,ଅ) ଇନ୍ଦ୍ରିୟ, (ଖର୍ବ+ଡ,ଅ)ଦେହ,(ଖଟ+ଡ,ଅ) ନଗର ପୁର, (ଖଚ+ଡ,ଅ) ବ୍ରହ୍ମ, ଜ୍ଞାନ, ଶରୀରର ନବରନ୍ଧ୍ର(ଯଥା ପାଟି,ଦୁଇଆଖି, ଦୁଇକାନ, ଦୁଇନାକପୁଡ଼ା, ଗୁହ୍ୟ ଓ ଜନନେନ୍ଦ୍ରିୟ) ଶୂନ୍ୟସଂଖ୍ୟା,ମେଘମାଳା ଅଭ୍ର, କର୍ମ, ସୁଖ, ବୋଧ, ମୋକ୍ଷ, ନିର୍ବାଣ, (ଜ୍ୟୋତିଷ) ଜନ୍ମ ଲଗ୍ନଠାରୁ ଦଶମସ୍ଥାନ, ବିନ୍ଦୁ, ସଂବେଦନ, ଦେବଲୋକ, ଛିଦ୍ର ।
ଖଇଁରୁ—ଗ୍ରା.(ସମ୍ବ) ବି ଓ ବ୍ୟ°. ଖଇରୁ, ସାମାନ୍ୟ ଦୋଷ ବା ତ୍ରୁଟି, କାର୍ଯ୍ୟରେ ହେଳା,(ବ୍ୟ°) ଅଧାପନ୍ତରିଆ, ଅସମ୍ପୂର୍ଣ୍ଣ, ତ୍ରୁଟିଯୁକ୍ତ ।
ଖଇଖାନା—ଗ୍ରା. (ସମ୍ବ) ବ୍ୟ°. କୁତ୍ସିତ, ଅସୁନ୍ଦର, ଅପରିଷ୍କୃତ,ମଇଳା, କର୍କଶ ।
ଖଇଙ୍ଗା—ଗ୍ରା.ବି.ଏକଜାତୀୟ ସାମୁଦ୍ରିକ ବଡ଼କାତ ବିଶିଷ୍ଟ ମାଛ ।
ଖଇଚଡ଼ା—ଗ୍ରା. ବି. ଦରଫୁଟା ଖଇ, ମୁଢ଼ୁକା ଖଇ ଲିଆଚଡ଼ା ଧାନକୁ କୁଟି ତହିଁରୁ ଚୁଡ଼ାଭଳି ବାହାର କରାଯିବା ପଦାର୍ଥ ।
ଖଇଚଲା—ଗ୍ରା.ବି.ଟେଙ୍ଗା (ଲିଆରୁ ଗୋପା ଧାନ ବାହାର କରିବା ନିମିତ୍ତ ବାଉଁଶ କାଠି ବା ଖଡ଼ିକା ନିର୍ମିତ ପାତ୍ରବିଶେଷ) ଲିଆଚଲା, ଲିଆଚଡ଼ା ।
ଖଇରୁ—ଗ୍ରା. ବି. ଖଇଁରୁ (ଦେଖ) ।
ଖଇରୁକରିବା—ଗ୍ରା. କ୍ରି. କାର୍ଯ୍ୟରେ ହେଳା କରିବା,ଅସମ୍ପୂର୍ଣ୍ଣରୂପେ କାର୍ଯ୍ୟ କରିବା ।
ଖଇଚୁର—ଗ୍ରା. କ୍ରି. ଲିଆଗୁଣ୍ଡ, ଲିଆରେ ଗୁଣି ମିଠାଆଦି ମିଶାଇ ଗୁଣ୍ଡ କରାଯିବା ଖାଦ୍ୟ ।

ଖଇଛଡ଼ାଇବା—ଗ୍ରା.କ୍ରି. ଲିଆରୁ ଗୋଟି ଗୋଟି କରି ଧାନ ବାଛିବା, ଲିଆ କେଳେଇବା ।
ଖଇଙ୍କି—ଗ୍ରା ବି. ବାଉଁଶକାଠିରେ ବୁଣା ହୋଇଥିବା ମାଛ ଧରିବାର ଯନ୍ତ୍ରବିଶେଷ, ଖଇ ଚଲାଇବାର ଚାଲୁଣି ।
ଖଇଙ୍କିଆଦଳ—ଗ୍ରା. ବି. ଏକ ପ୍ରକାର ଜଳ ଘାସ ।
ଖଇନ୍—ଗ୍ରା. ଯା. ଚୂନସଙ୍ଗେ ଦଳାଯାଇଥିବା ଧୂଆଁପତ୍ର, (ଚୂନପତ୍ର) ଗୁଣ୍ଡି, ଧୂଆଁପତ୍ର, ଦୋକ୍ତା ।
ଖଇଫୁଟିବା—ଗ୍ରା. କ୍ରି. ଖଇ ଭାଜିଲା ବେଳେ ଅଗ୍ନି ଉପରେ ବସିଥିବା ହାଣ୍ଡି ମଧ୍ୟରେ ଧାନ ଉତ୍ତାପଯୋଗେ ଯେଉଁପରି ଲିଆ ହୋଇଯାଏ ସେହିପରି ଦେହ ତାତିବା । (ଜ୍ୱରବେଳେ ଖଇ ଫୁଟିଲା ପରି ତାତି, ଲୋକ ବ୍ୟବହାର) ରାସ୍ତା ତାତିବା, ବାଲି ତାତିବା ପ୍ରଭୃତି ।
ଖଇର—ଗ୍ରା. ବି, ଖଦିର, ଯାହା ପାନ ସଙ୍ଗେ ଖିଆଯାଏ ।
ଖଇରା—ଗ୍ରା.ବ୍ୟ°. (ସଂ. ଖଦିର) ଖଇରରଙ୍ଗବିଶିଷ୍ଟ, ଧଳା ଓ କଳାମିଶା, ପାଣ୍ଡୁର, (ବି) ଖଇର ପ୍ରସ୍ତୁତ କରିବା ନୀଚଜାତି ବିଶେଷ ।
ଖଇରାତ—ଯା. ବି. ଦାନ, ଏକକାଳୀନ ଓ ଚିରସ୍ଥାୟୀ ଦାନ, ପୁଣ୍ୟ କର୍ମ ।
ଖଇରାତ୍କରିବା—ଗ୍ରା.କ୍ରି.ଦାନ କରିବା ।
ଖଇରାତ ଖଞ୍ଜା—ଗ୍ରା. ବି. ଦାନପାଇଁ ଯାହା ନିର୍ଦ୍ଦିଷ୍ଟ ବା ଖଞ୍ଜା ହୋଇଥାଏ ।
ଖଇରାତ ବାଯ୍ୟାପ୍ତି—ଯା. ବି. ଯେଉଁ ଜମି ପୂର୍ବେ ରାଜାମାନେ ଚିରକାଳପାଇଁ ନିଷ୍କରରୂପେ ଦାନନିମିତ୍ତ ଖଞ୍ଜା କରିଥିଲେ, କିନ୍ତୁ ପରେ କେତେକ କାରଣରୁ ବାଯ୍ୟାପ୍ତ ହୋଇ କରଧାର୍ଯ୍ୟ ହୋଇଅଛି ।
ଖଇରାତବାହେଲ—ଯା. ବି. ଯେଉଁ ଭୂମିକୁ ପୂର୍ବରୁ କୌଣସି ରାଜା ଖଇରାତ ବା ସଦାବ୍ରତରେ ଖଞ୍ଜି ସନନ୍ଦ ଦେଇଥିବାରୁ ଇଂରାଜ ସରକାର ଭୂରାଜସ୍ୱ ବସାଇ ନାହାନ୍ତି ।

ଖଇଗ୍ରଡ—ଗ୍ରା.ବିଂ.ଖଇଗ୍ରଡ୍ ହୋଇଥିବା, ଦତ୍ତ, (ବି) ଦାନ ।
ଖଇଗ୍ରଡମଠ— ଗ୍ରା. ବି. ଯେଉଁ ମଠ ଖଇଗ୍ରଢ ସମ୍ପତ୍ତିର ଆୟରେ ପରି-ଗ୍ରୂଳିତ, ଯେଉଁ ମଠରେ ଅତିଥି ଅଭ୍ୟାଗତମାନଙ୍କୁ ଖଇଗ୍ରଢ ଦିଆଯାଏ ।
ଖଇର—ଗ୍ରା.ବି.ବର୍ଷାସ୍ଥଃ ଶାକବିଶେଷ ।
ଖଇର ଖପର ବଇର ବା—ଗ୍ରା.ବି. ଅତି-ଗରିବ ଅବସ୍ଥା,ସର୍ବନାଶ ଅବସ୍ଥା,ଗ୍ରା.ବିଂ. ଯାହାଘରେ ବାସିଁଓଳକୁ ଦାନା ନ ଥାଏ, ଅତି ଗରିବ ।
ଖଇହାକୁଟି—ଗ୍ରା. ବି. ଅଜୀର୍ଣ୍ଣଜନିତ ଆମ୍ବିଲା ହାକୁଟି ।
ଖଉରଆ—ଗ୍ରା. ବିଂ. ଲୁଖୁରା, ରୁକ୍ଷ, ତୈଳବିହୀନ ।
ଖଉରବା—ଗ୍ରା. କ୍ରି. କ୍ଷୌର କରିବା ।
ଖଏରଖା—ଗ୍ରା. ବିଂ. ଶୃଙ୍ଖଳାଙ୍କ୍ଷୀ, ବଡ଼ଲୋକଙ୍କ ମୁଖନିଃସୃତଃ,ସବୁକଥାରେ ଯେ ଆଚ୍ଛା ଆଚ୍ଛା ବା ହୁଁ ହୁଁ ମାରେ, ଆଜ୍ଞାବହ ।
ଖଁ ଖଁ—ଗ୍ରା. ଅବ୍ୟ. ମୃଦୁକାଶଜନିତ କଣ୍ଠଧ୍ୱନି ।
ଖଁ ଖଁ କାଶ—ଗ୍ରା.ବି.ଅଳ୍ପ ଅଳ୍ପ କାଶ ।
ଖଁଡ଼ା ବହୁର—ପ୍ରା.ସମ୍ବ,ବି.ବମିମାଛ ।
ଖଁଢ—ଗ୍ରା. ବି. ନଦୀ ଆଦିର କୂଳ, ଗଭୀର ଗର୍ତ୍ତର ଫନ୍ଦ ।
ଖକ୍ଣା(ଣି)—ପ୍ରା.ସମ୍ବ.ବି. ଗଡ଼ଶାମାଛ ।
ଖ-କକ୍ଷା—ସ୍ତ୍ରୀ.ବି.ଆକାଶମଣ୍ଡଳର ପରିଧି ।
ଖକାମିନୀ-ସ୍ତ୍ରୀ.ବି.(ଖ+କାମ+ଇନ୍+ଈ ଦୁର୍ଗା, ଚର୍ଚ୍ଚିକା, ମାଈ ଶଙ୍ଖଚିଲ ।
ଖକୁନ୍ତଳ—ପୁଂ.ବି.ବ.ବ୍ରୀ(ଖ+କୁନ୍ତଳ) ଶିବ, (ଆକାଶ ଶିବଙ୍କର କେଶ ବୋଲି କଳ୍ପିତ ଅଛି) ।
ଖଖରେ—ପ୍ରା.(ସମ୍ବ)ବି.ବୃକ୍ଷକୋଟର ।
ଖଖୋଲ୍କ—ପୁଂ. ବି. ସୂର୍ଯ୍ୟ, କାଶୀସ୍ଥିତ ଆଦିତ୍ୟବିଶେଷ ।
ଖଗଲ୍—ପ୍ରା. (ସମ୍ବ) ବି. ଖଗଲା, ଗଳାର ଅଳଙ୍କାର ବିଶେଷ ।
ଖଗ—ପୁଂ. ବି. (ଖ+ଗମ+କ.ଅ) ସୂର୍ଯ୍ୟ,ଗ୍ରହ, ଦେବ, ଶର, ଚନ୍ଦ୍ର, ପକ୍ଷୀ, ଦେବତା,ବାୟୁ, ଶଲଭ, ପତଙ୍ଗ,(ବିଂ) ଯେ ଆକାଶମାର୍ଗରେ ଗମନ କରେ, ଆକାଶଗ୍ରାମୀ,( ପୁଂ. ବି ) ପାତାଳସ୍ଥ ଭୋଗବତୀ ପୁରବାସୀ ଗୋଟିଏ ନାଗ, (ଗ୍ରା.ବି) କୁମ୍ଭୀରର ଖଗପର ହୋଇ ଥିବା ଜନ୍ତୁର ଲମ୍ବ ଲାଞ୍ଜ ।
ଖଗଆସନ—ପୁଂ. ବି. ବିଷ୍ଣୁ,ଯୋଗାସନ-ବିଶେଷ ।
ଖଗଖାନ—କ୍ଲୀ ବି. ବୃକ୍ଷ କୋଟର, ଗଛର ପୋଲ ।
ଖଗଗତି—ସ୍ତ୍ରୀ ବି. (୬ତତ୍) ପକ୍ଷୀର ଗତି ଉଡ୍ଡୀନ, ପ୍ରଡୀନ, ସଂଡୀନ ଅବଡ୍ଡୀନ ପ୍ରଭୃତି ପକ୍ଷୀର ଗତି ।
ଖଗଙ୍ଗା—ସ୍ତ୍ରୀ. ବି. ଆକାଶଗଙ୍ଗା, ମନ୍ଦାକିନୀ ।
ଖଗଚର—ବି. (ଖଗ+ଚର୍+କ,ଅ) ବିଷ୍ଣୁ ।
ଖଗଡ଼ା—ପ୍ରା. ( ମେଦିନୀ ) ବି. ଇଙ୍କଡ଼, କାଣ୍ଡଶର ତୃଣ ।
ଖଗପତି—ପୁଂ. ବି. (୬ତତ୍) ଗରୁଡ଼, ପକ୍ଷୀରାଜ, ସୂର୍ଯ୍ୟ ।
ଖଗମ—ବି. ବିଂ. ( ଖ+ଗମ୍+ଅ ) ଆକାଶଗାମୀ ।
ଖଗରାଜ-ବି.(୬ତତ୍) ଖଗପତି(ଦେଖ) ।
ଖଗଲ୍—ଗ୍ରା. ବିଂ. ହସୁରା, ବି. ଗଳାର ଅଳଙ୍କାରବିଶେଷ ।
ଖଗବନ୍ଧ--ପୁଂ.ବି.ଲକୁଚ ବୃକ୍ଷ,ଢେଉଁଠ ।
ଖଗବତୀ—ସ୍ତ୍ରୀ. ବି. (ଖଗ+ବତ୍+ଈ) ପୃଥିବୀ ।
ଖଗବହ—ଗ୍ରା. ବି. ନାରାୟଣ, ବିଷ୍ଣୁ ।
ଖଗବୁଲଇବାକୁ ସ୍ଥାନ ନ ଥିବା—ଗ୍ରା.ବି. (ଲ. ଲର୍ଥ) ଚଳପ୍ରଚଳ ହେବାପାଇଁ ଯଥେଷ୍ଟ ସ୍ଥାନ ନ ଥିବା, ମନଇଚ୍ଛା ବ୍ୟୟ କରିବାକୁ ଅର୍ଥର ଅନାଟନ ହେବା, ନିଜର ମନମୁତାବକ କାମ କରିବାକୁ ସୁବିଧା ନ ମିଳିବା ।
ଖଗା—ଗ୍ରା.ବିଂ. ନିର୍ବୁଦ୍ଧିଆ, (ବି)ଯେଉଁ ଛନ୍ଦ ଭଲରୂପେ ପଡ଼ା କରେ ନାହିଁ ।
ଖଗାନ୍ତକ—ବି. (୬ତତ୍) ବାଜପକ୍ଷୀ, ଶ୍ୟେନପକ୍ଷୀ ।
ଖଗାବଗା—ଗ୍ରା. ବି. ମାତ. ମନ୍ଦ,ନିକୃଷ୍ଟ, ଘୃଣିତ, ମୂର୍ଖ (ଛନ୍ଦ) ।
ଖଗାସନ—ପୁଂ, ବି. (ବ.ବ୍ରୀ) ଉଦୟ-ଗିରି, ବିଷ୍ଣୁ ।
ଖଗାସନସ୍ଥାନ—ବି. ବୃକ୍ଷର କୋଟର, ପକ୍ଷୀର ବସା ।
ଖଗୁଣ—ବି. ଆକାଶଗୁଣ, (ବିଂ) ଶୂନ୍ୟ କେବଳ ଯାହାର ଗୁଣକ ।
ଖଗେନ୍ଦ୍ର—ପୁଂ. ବି. (୬ତତ୍) ଖଗପତି, ଗରୁଡ଼, ସୂର୍ଯ୍ୟ ।
ଖଗେଶ୍ୱର—ପୁଂ. ବି. (୬ତତ୍) ଗରୁଡ଼, ସୂର୍ଯ୍ୟ ।
ଖଗୋଳ—ପୁଂ. ବି. ( ଖ+ଗୋଳ ) ଆକାଶମଣ୍ଡଳ, ଆକାଶର ପ୍ରତିରୂପକ କୃତ୍ରିମ ଗୋଳକ ।
ଖଗୋଳକ—ବି. ( ଖଗୋଳ+କ ) ଖଗୋଳ, (ଦେଖ) ।
ଖଗୋଳବିଦ୍ୟା—ସ୍ତ୍ରୀ. ବି. (ଖଗୋଳ+ ବିଦ୍ୟା) ଯେଉଁବିଦ୍ୟାଦ୍ୱାରା ଗ୍ରହନକ୍ଷତ୍ରା-ଦିର ଅବସ୍ଥାନ ଓ ଗତି ନିରୂପିତ ହୁଏ, ଗଣିତ ଜ୍ୟୋତିଷ ।
ଖଗୋଳବିବରଣ—ବି. କ୍ଲୀ. ( ବ.ବ୍ରୀ ) ଯେଉଁ ଗ୍ରନ୍ଥରେ ଗ୍ରହ ନକ୍ଷତ୍ରାଦିର ଅବ-ସ୍ଥାନାଦି ସମସ୍ତବିଷୟର ବିବରଣ ଅଛି ।
ଖଗଡ଼ା--ଗ୍ରା.ବି. ତୃଣ,କାଉଁଶିଗଛ, କାଣ୍ଡ-ଶର ତୃଣ, ଏଥିରେ ଘର ଛପର କଲେ ଅନେକଦିନ ଯାଏ, ବେଗେ ଖଡରେ ନାହିଁ । [ବାଲ ।
ଖଙ୍କର—ବି. ଚୂର୍ଣ୍ଣକୁନ୍ତଳ, କେଶପାଶ
ଖଙ୍କା—ଗ୍ରା. ବିଂ. ଶୂନ୍ୟ, ରୁଚ୍ଛା, ଫମ୍ପା, ଖୋକଲା, ଧନହୀନ ।
ଖଙ୍କାର—ଗ୍ରା. ବି. ମୁଖନିଃସୃତ ଘନୀଭୂତ କଫ, ନିଷ୍ଠୀବନ ।
ଖଙ୍କାରିବା—ଗ୍ରା. କ୍ରି. ଗଳଧ୍ୱନିପୂର୍ବକ କାଶିକରି ଗଳାମଧ୍ୟସ୍ଥ ଖଙ୍କାରକୁ ପାଟିରୁ କାଢ଼ିବା,କାଶିବାପରି ଗଳଧ୍ୱନି କରିବା ।

ଖଙ୍କାଳ—ଗ୍ରା.ବ୍ୟଂ. ଖାଲହେବା ହେତୁରୁ ପେଟର ଉପରଚମ ଭିତରେ ପଶିଯାଇ କୋରଡ଼ପର ଦିଶୁଥିବା (ଉଦର) ।

ଖଙ୍କା(ଙ୍ଖା)ଳିଆ—ଗ୍ରା. ବ୍ୟଂ. ଖଙ୍କାଳ (ଦେଖ), ବ. ଖଡ଼୍ଗ ।

ଖଙ୍ଗ—ପୁଂ. ବ. ମୃଗବିଶେଷ, ଗ୍ରା. ବ. ଅଭିମାନ, ମନୋଦୁଃଖ, କୌଣସି ଭଲ ଅର୍ଥରେ କଥା କହିଲେ ମନ୍ଦ ଅର୍ଥରେ ବୁଝିବା ।

ଖଙ୍ଗକରିବା—ଗ୍ରା. କ୍ରି. କୌଣସି କଥାକୁ ଭଲ ଅର୍ଥରେ କହିଲେ ମନ୍ଦ ଅର୍ଥରେ ଗ୍ରହଣ କରିବା, ଶ୍ଳେଷ କହିବା ।

ଖଙ୍ଗର—ପ୍ରା. (ସିଂହଭୂମ) ଗାତ, ଗର୍ତ୍ତ ।

ଖଙ୍ଗା—ଗ୍ରା. ବ. ଏକପ୍ରକାର ସାମୁଦ୍ରିକ ମାଛ ।

ଖଙ୍ଗିବା—ପ୍ରା.(ସମ୍ବ.) କ୍ରି. ନ୍ୟୂନହେବା, କମ୍‌ହେବା ।

ଖଚଖଗ୍ରଇବା—ପ୍ରା. (ସମ୍ବ.) କ୍ରି. ବିରକ୍ତ କରିବା, ଉପର୍ଯ୍ୟୁପରି ପ୍ରଶ୍ନକରି ବିରକ୍ତ କରିବା ।

ଖଚ—ଗ୍ରା. ବ. ଚୁଗୁଲି, ପରର ଅନିଷ୍ଟ କାମନାରେ ପରଛିଦ୍ର ବା ତ୍ରୁଟିକୁ ରାଜା, ପ୍ରଭୁ-ପ୍ରଭୃତିଙ୍କ ଆଗରେ କହିବା ।

ଖଚକହିବା—ଗ୍ରା.କ୍ରି, ଜଣକର ଛିଦ୍ର ବା ତ୍ରୁଟି ତାହାର ପ୍ରଭୁ ଆଗରେ ପ୍ରକାଶ କରିବା, ଚୁଗୁଲି କରିବା ।

ଖଚକୁହା—ଗ୍ରା.ପୁଂ.ବ୍ୟଂ. ଖଚୁଆ (ଦେଖ) ।

ଖଚଡ଼—ଗ୍ରା. ବ. ଘୋଡା ଓ ଗଧ ସଙ୍ଗମରେ ଉତ୍ପନ୍ନ ଜୀବ,ଅଶ୍ୱତର, ଯା. ବ୍ୟଂ. (ଗାଳିବିଶେଷ) ଦୋମିଶା, ଦୋନସଲ, ବଗୁଲିଆ, ଅତିଦୁଷ୍ଟ, ଛେକାଳିଆ, ଦୁଷ୍ଟସ୍ୱଭାବ, ନଷ୍ଟଚରିତ୍ର, ଅନ୍ୟମନସ୍କ, ଅଶ୍ଳୀଳ ।

ଖଚଡ଼ା—ଗ୍ରା. ପୁଂ. ବ୍ୟଂ. ବଗୁଲିଆ, ଛେକାଳିଆ, ଅଶ୍ଳୀଳକାର୍ଯ୍ୟକାରୀ ।

ଖଚଡ଼ାକରିବା—ଗ୍ରା.କ୍ରି.କୌଣସିକାର୍ଯ୍ୟକୁ ଉତ୍ତମରୂପେ ସମ୍ପାଦନ ନ କରି ବିଗାଡ଼ିବା ବା ଅସମ୍ପୂର୍ଣ୍ଣ କରିବା, ମନଦେଇ କାମ ନ କରିବା,କାମରେ ତ୍ରୁଟିକରିବା, କୌଣସି କାର୍ଯ୍ୟକୁ ଜଣେ ଧାରିବାହକରୂପେ ସମ୍ପାଦନ ନ କରି ଏକାଧିକ ବ୍ୟକ୍ତି ଛାଡ଼ିରେ ଏକାବେଳକେ ହାତ ଦେବା ।

ଖଚଡ଼ାଙ୍ଗି—ଗ୍ରା. ବ୍ୟଂ. ବଗୁଲିଆପଣିଆ, ଦୁଷ୍ଟାମି, ମନ୍ଦ ଆଚରଣ, ନଷ୍ଟଚରିତ୍ର, ବ୍ୟଭିଚାର, ଛେକାଳିଆ ।

ଖଚନ—ବ. (ଖଚ + ଣି, ଅନ) ଧାତୁ ଉପରେ ରତ୍ନାଦି ବସାଇବା କର୍ମ, ଜଡ଼ାଉ କାମ,ବନ୍ଧନ, ଚଷଣ, ଅଙ୍କନ ।

ଖଚସମ—ପୁଂ. ବ. (ଖ + ଚମସ୍ + ଅ) ଚନ୍ଦ୍ର ।

ଖଚମିଛ—ଗ୍ରା.ବ. (ସହଚରଶବ୍ଦ)ଅନିଷ୍ଟକାମନାରେ କୌଣସି ଲୋକ ବିପକ୍ଷରେ ତାହାର ପ୍ରଭୁ ଆଗରେ ତା ପରୋକ୍ଷରେ କୁହାଯିବା ସତ୍ୟ ଓ ମିଥ୍ୟା କଥାମାନ, ଚୁଗୁଲି, ଦୁର୍ନାମ ।

ଖଚମିଛଲଗାଇକହିବା—ଗ୍ରା. କ୍ରି. ଖଚକହିବା (ଦେଖ) ।

ଖଚର—ପୁଂ. ବ. ( ଖ + ଚର + ଅ ) ମେଘ, ବାୟୁ, ସୂର୍ଯ୍ୟ, ରାକ୍ଷସ, ତାଳବିଶେଷ, ଭୂତ, ଗନ୍ଧର୍ବ, ପାରଦ, ଜ୍ୟୋତଷୋକ୍ତ ରାଶି,ପୁଂ.ବ୍ୟଂ. ଆକାଶଗାମୀ, ଉଡ଼ୁଥିବା, (ଗ୍ରା.ବ) ଅଶ୍ୱତର ଖଚଡ଼ ।

ଖଚରୀ—ସ୍ତ୍ରୀ. ବ. (ଖଚର + ଈ)ରାକ୍ଷସୀ, (ବ୍ୟଂ) ଆକାଶଗାମିନୀ ।

ଖଚୁ—ପ୍ରା. (ସମ୍ବ) କଚ୍ଛ ।

ଖଚୁରୀ—ପୁଂ.ବ.(ଖ + ଚର୍ + କ,ଇନ୍) ଆକାଶଗାମୀ, (ସ୍ତ୍ରୀ) ଖଚାରିଣୀ, (ବ) କାର୍ତ୍ତିକେୟ, ଖଚର (ଦେଖ) ।

ଖଚିତ—ବି.ବ୍ୟଂ.(ଖଚ + ର୍ମ,ତ)ସଂଯୁକ୍ତ, କରମ୍ବିତ,ମିଶ୍ର, ବ୍ୟାପ୍ତ, ସମ୍ପୃକ୍ତ,ଗ୍ରଥିତ, ଚିତ୍ରିତ, ଅନ୍ତର୍ନିହିତ,ମାଟିରେ ବସାଯାଇଥିବା ।

ଖଚିଲ—କ୍ଲୀ.ବ. (ଖ + ଚଲ + ଅ)ଗୁଲ, ବାଟୁଲି ।

ଖଚୁଆ—ଗ୍ରା. ପୁଂ.ବ୍ୟଂ. ଯେ ପ୍ରଭୁଆଗରେ ଭୃତ୍ୟର ପରୋକ୍ଷରେ ନିନ୍ଦାକରେ, (ଗ୍ରା. ବ. ) କେଳାମାନଙ୍କ ବାଜଗିର ସମୟରେ ରଖାଯାଇଥିବା କନାଢାଞ୍ଚର କଣ୍ଢେଇ, ଝଟଆଡ଼ିଆ (ଦେଖ) ।

ଖଚୁଆଚୁଗୁଲିଆ—ଗ୍ରା.ବ୍ୟଂ.ଖଚୁଆ(ଦେଖ)।

ଖଚୁଆଡିଗ—ଗ୍ରା.ବ. ପାହାନ୍ତିଆ ତାରା ।

ଖଚୁଆରାଜ୍ୟ—ଗ୍ରା. ବ. ଯେଉଁ ରାଜ୍ୟରେ ରାଜା ବା ହାକିମମାନେ ଚୁଗୁଲି ଶୁଣନ୍ତି, ଚୁଗୁଲିଆଙ୍କୁ ପ୍ରଶ୍ରୟ ଦିଅନ୍ତି ଓ ସେହି ଶୁଣା ଚୁଗୁଲି କଥାରେ ବିଶ୍ୱାସ କରି ଲୋକଙ୍କୁ ଦଣ୍ଡନ୍ତି ।

ଖଚ୍ଚର—ଯା. ଖଚର, ଅଶ୍ୱତର, ଗାଳିବିଶେଷ, ଜାରଜ, କୁଳଟାପୁତ୍ର, ଦୁଷ୍ଟ, ବଜ୍ଜାତ, ଦୁର୍ବୃତ୍ତ ।

ଖଜରିଆ—ପ୍ରା. (ସମ୍ବ.) ବ. ଶତପଦୀ, ଚନ୍ଦୁଲିଆବିଛା, ଖଜୁରି ଗଛରୁ ତାଡ଼ି ସଂଗ୍ରହକରିବା ଜାତିବିଶେଷ ।

ଖଜ—ପୁଂ.ବ.(ଖଜ୍ + କ.ଅ)ମନ୍ଥନଦଣ୍ଡ, ଖୁଆବାଡ଼ି, ଅଣକ, ଆଲୋଡ଼ନ, ମନ୍ଥନ, ଯୁଦ୍ଧ,(ବ୍ୟଂ)(ଖ + ଜନ୍ + ଅ)ଆକାଶଜାତ ।

ଖଜକ—ପୁଂ.ବ.(ଖଜ + କ,ଅକ)ମନ୍ଥନ ଦଣ୍ଡ, ଖୁଆବାଡ଼ି ।

ଖଜକୃତ—ବି.ବ୍ୟଂ.(ଖଜ + କୃ + କ୍ତ୍ୱିପ୍) ଯୁଦ୍ଧକର୍ତ୍ତା । [ଯୁଦ୍ଧକର୍ତ୍ତା ।

ଖଜଙ୍କର—ବି. ବ୍ୟଂ. (ଖଜ + କୃ + ଅ)

ଖଜଣା—ଯା.ବ.ଭୂମି-ରାଜସ୍ୱ, ରାଜକୀୟ-ଶୁଳ୍କ ।

ଖଜଣାଖାନା—ଯା.ବ.ରାଜକୀୟ ଧନାଗାର ଟ୍ରେଜେରୀ ।

ଖଜଣୀ—ଗ୍ରା.ବ. ଖଞ୍ଜଣୀ (ଦେଖ) ।

ଖଜପ—କ୍ଲୀ.ବ. (ଖଜ + ର୍ମ. ଅପ)ଘୃତ ।

ଖଜବଜ—ଗ୍ରା. ବ୍ୟଂ. ଅସ୍ଥିର ।

ଖଜବଜିଆ—ଗ୍ରା.ବ୍ୟଂ.ଖଜବଜ,ଅସ୍ଥିର ।

ଖଜରବଜର—ଗ୍ରା.ବ୍ୟଂ.ଖଜବଜ(ଦେଖ) ।

ଖଜରା—ଗ୍ରା. ବ. ଆରବଦେଶରୁ ଆନୀତ ଶୁଖିଲା ଖଜୁରିଫଳ, ଖୁର୍ମା ।

ଖଜଳ—କ୍ଲୀ.ବ.(ବୈଦିକ)ତୁଷାର,କାକର, ଆକାଶରୁ ପଡ଼ୁଥିବା ଜଳ, ବର୍ଷାପାଣି ।

ଖଜା—ସ୍ତ୍ରୀ.ବି. (ଖଜ୍ + ଅ + ଆ) ମନ୍ଥନ, ପ୍ରହସ୍ତ, ଡଙ୍କା, ଖୁଆ, ଦର୍ବୀ, ଚଟୁ, ଅଣକ, ମାରଣ, ଘାଣ୍ଟିବା, ସ୍ରୁଚ, (ଗ୍ରା.ବି) ମିଷ୍ଟାନ୍ନବିଶେଷ ।

ଖଜାକ-ପୁଂ.ବି.(ଖଜ + କ,ଆକ)ପକ୍ଷୀ ।

ଖାଜାକା—ସ୍ତ୍ରୀ.ବି.(ଖଜ + କ,ଆକ + ଆ) ଦର୍ବୀ, ଘୃମୁଘ୍ନ, ହତାଲୀ, ଚଟୁ, ଚଟୁକାଠି, ଅଣକ ।

ଖଜାଜିକା—ବି.(ଖଜ୍ + କ,ଅଜକ + ଆ) ଖଜକା (ଦେଖ) ।

ଖଜାଖିଆ—ଗ୍ରା. ବି. ଖଜା ବା ମିଠାଇ ଖାଇବା ନିମନ୍ତେ ଆପଣା ଚାକର କମ୍ବା ମୂଲିଆଙ୍କୁ ଅଧିକା ଦିଆଯିବା ବକ୍‌ସିସ୍, ଯାତ୍ରାଖରଚ ।

ଖଜାଚଣା—ଗ୍ରା. ବି. ଖଜା ଓ ଚଣା, ଦୋଳପୂର୍ଣ୍ଣିମା ସମୟରେ ଠାକୁରଙ୍କୁ ଭୋଗ କରାଯିବା ଖଜା ଓ ଚଣା ।

ଖଜାପଣସ—ଗ୍ରା.ବି. ଏକପ୍ରକାର କଠିନ ସୁମିଷ୍ଟ କୋଷବିଶିଷ୍ଟ ସୁଖାଦ୍ୟ ପଣସ ।

ଖଜାପିଠା—ଗ୍ରା. ବି. ଖଜା ଓ ପିଠା ।

ଖଜକା—ସ୍ତ୍ରୀ. ବି. (ଖଜ + କନ୍) ଖଜା (ଦେଖ) ।

ଖଜିତ—ପୁଂ.ବି.(ଖ + ଜ + କ୍ୱିପ୍)ଶୂନ୍ୟ-ବାଦୀ ବୌଦ୍ଧବିଶେଷ ।

ଖଜୁର—ଗ୍ରା. ବି. କାବୁଲି ଖଜୁରକୋଳି, ପିଣ୍ଡ ଖର୍ଜୁର, ଆରବ ଓ ତୁରସ୍କ ଆଦି ସ୍ଥାନରୁ ଆନୀତ ଶୁଖିଲା ଖଜୁରି ଫଳ, ଘୃତ ପକ୍ୱ ମିଠାଇ ।

ଖଜୁରି—ଗ୍ରା. ବି. ତାଳାଦି ଶ୍ରେଣୀର ଦେଶୀୟ ଡେଙ୍ଗାଗଛ ଓ ତାହାର ଫଳ ଗଜା, ଏକପ୍ରକାର ମସୃଣ ଶୁଖିଲା ଖଜୁରି-ଫଳ ।

ଖଜୁରିଆ—ଗ୍ରା. ବି. କୋଠାର କାନ୍ଥ ବା ମେଜିଆରେ ଚୂନଦେଇ ଇଟାକୁ ତେରବାଗରେ ବସାଇବାର ପ୍ରଣାଳୀ, ଏକପ୍ରକାର ଚଲେଇ, ପଟିଆ ।

ଖଜୁରିକନ୍ଦା—ଗ୍ରା. ବି. ଖଜୁରି ଗଛର ବେକପାଖରେ ଥିବା ସୁଖାଦ୍ୟ କୋମଳ ଅଂଶ ।

ଖଜୁରିକୋଳି—ଗ୍ରା.ବି.ଖଜୁରିଗଛର ଫଳ ।

ଖଜୁରିଗଛକାଟିବା,ବସାଇବା—ଗ୍ରା. କ୍ରି. ରସ ବାହାର କରିବା ନିମନ୍ତେ ଖଜୁରି ଗଛର ସ୍କନ୍ଧ ପାଖ କାଟି ତହିଁରେ ମାଠିଆ ଟାଙ୍ଗିବା ।

ଖଜୁରିଗୁଡ଼—ଗ୍ରା. ବି. ଖଜୁରି ରସରୁ ପ୍ରସ୍ତୁତ ଗୁଡ଼ ।

ଖଜୁରିଚୁଞ୍ଚୁଣୀ—ଗ୍ରା. ବି. ଏକାଧିକ ଖଜୁରି ପତ୍ରରେ ବନ୍ଧାହୋଇ ତିଆରି ହୋଇଥିବା ଝାଟୁଆ ସମାର୍ଜକ ।

ଖଜୁରିଛାଲିଆ—ଗ୍ରା. ବି. କବାଟରେ ଲଗିବା ଏକପ୍ରକାର ପତଳା କଣ୍ଟା ।

ଖଜୁରିପଟି—ଗ୍ରା.ବି. ଖଜୁରି ପତ୍ରରେ ବୁଣା ହୋଇଥିବା ଏକପ୍ରକାର ଆସନ, ପଟିଆ ।

ଖଜୁରିପତ—ଗ୍ରା.ବି. ଖଜୁରିଗଛର ଡାଳ ଓ କନ୍ଧା ମୂଳରେ ଥିବା ପତଳା ଜାଲି-ଜାଲିଆ ପରଦା ।

ଖଜୁରିପିଷ୍ଟି—ଗ୍ରା. ବି. ଖଜୁରିପତ୍ରରେ ନିର୍ମିତ ଚଅଁର ।

ଖଜୁରିରସ—ଗ୍ରା. ବି. ଖଜୁରି ଗଛରୁ ବାହାରୁଥିବା ନିର୍ଯ୍ୟାସ, ତାଡ଼ି, ମଦ ।

ଖଜ୍ୟୋତଃ—ବି.ବ.ବ୍ରୀ;(ଖ + ଜ୍ୟୋତଃ) ଜୁଳୁଜୁଳିଆପୋକ, ଖଦ୍ୟୋତ ।

ଖଞ୍ଜ—ପୁଂ. ବିଂ. (ଖଞ୍ଜ + କ.ଅ) ବିକ-ଳାଙ୍ଗ, ପଙ୍ଗୁ, ଛୋଟା,ଲେଙ୍ଗଡ଼ା, (ବି) ଏକପ୍ରକାର ରୋଗ, ଯଦ୍ଦ୍ୱାରା ମନୁଷ୍ୟର ଗୋଡ଼ ଅଚଳ ହୋଇଯାଏ, (ଗ୍ରା. ବି) ଉପାୟ,ଅବସର,ସୁବିଧା,ସୁଯୋଗ, କୌଶଳ, ଗୋପନୀୟ ଉପାୟ,ଓର,ସଜିଲ ଢଙ୍ଗ, ଅକାର,ଷଡ଼ଯନ୍ତ୍ର ।

ଖଞ୍ଜଅଖଞ୍ଜ—ଗ୍ରା.ବି.(ବିପରୀତକ ସହଚର) ସୁବିଧା ଅସୁବିଧା ।

ଖଞ୍ଜଉଣ୍ଡିବା—ଗ୍ରା. କ୍ରି. ସୁଯୋଗ ବା ସୁବିଧା ଖୋଜିବା ।

ଖଞ୍ଜକ—ପୁଂ. ବିଂ. (ଖଞ୍ଜ + ଜ, ଅକ) ଛୋଟେଇ ଛୋଟେଇ ଚାଲୁଥିବା,ଛୋଟା, (ସ୍ତ୍ରୀ) ଖଞ୍ଜିକା ।

ଖଞ୍ଜକରିବା—ଗ୍ରା. କ୍ରି. କୌଶଳଦ୍ୱାରା କୌଣସି କାର୍ଯ୍ୟ ସାଧନକରିବା, ସଜିଲ କରିବା ।

ଖଞ୍ଜଜାଗ୍ରି—ପୁଂ. ବି. ( ବ.ବ୍ରୀ ) ସୁସ୍ନା, ଖେସାରି, ଚଣା ।

ଖଞ୍ଜଖାଞ୍ଜ—ଗ୍ରା. ବି. ସୁବିଧା,ତାକତରକ, ଗୋପନ ଉପାୟ ।

ଖଞ୍ଜପେଟ—ପୁଂ. ବି. ସ୍ତ୍ରୀ. ଖଞ୍ଜନପକ୍ଷୀ ।

ଖଞ୍ଜଖେଳ—ପୁଂ. ବି. ସ୍ତ୍ରୀ. ଖଞ୍ଜନପକ୍ଷୀ, ଖଞ୍ଜଗ୍ରିଟ ।

ଖଞ୍ଜଚାଲିବା—ଗ୍ରା.ବି.ଦୁଇଜଣଙ୍କ ମଧ୍ୟରେ ଗୋପନ ଉପାୟ ବା ପରାମର୍ଶ ଚାଲୁଥିବା ।

ଖଞ୍ଜଡ଼—ପ୍ରା. (ସମ୍ବ) ବି. ବେଲୁଚି-ସ୍ଥାନର ଲୋକ ।

ଖଞ୍ଜଣା—ଯା. ବି. ପ୍ରା. ଗ୍ରହସ୍ଥ, ସଜ୍ଜା, ସଜାଇବା ।

ଖଞ୍ଜଣି—ଗ୍ରା.ବି. ଏକମୁହାଁ ଗୋଧିଚମରେ ଛୁଆଣି ମାଟି ବା କାଠର ବାଦ୍ୟଯନ୍ତ୍ର, ସଜ୍ଜା, ଅଳଂକରଣ ।

ଖଞ୍ଜଣିମାଡ଼—ଗ୍ରା. ବି. ଖଞ୍ଜଣି ବଜାଇବା ।

ଖଞ୍ଜତା—ସ୍ତ୍ରୀ.ବି. ଖଞ୍ଜତ୍ୱ, (ବଳାଗଣ୍ଠିର ଅଖାଞ୍ଜ) ବେଦନା ଛୋଟା ହୋଇଥିବା ।

ଖଞ୍ଜନ—କ୍ଳୀ. ବି. (ଖଞ୍ଜ + ଅନ) ବିକଳ-ଗତି, ଛୋଟେଇ ଚାଲିବା, (ପୁଂ. ବି) ସ୍ୱନାମପ୍ରସିଦ୍ଧ ପକ୍ଷିବିଶେଷ, ଖଞ୍ଜଗ୍ରିଟ ପକ୍ଷୀ ।

ଖଞ୍ଜନନୟନା (ନୀ)—ସ୍ତ୍ରୀ. ବି. (ବ.ବ୍ରୀ) ଯେଉଁସ୍ତ୍ରୀର ଆଖିର ଡୋଳା କଳା ଓ ପକ୍ଷୀପରି ସର୍ବଦା ଅସ୍ଥିର ।

ଖଞ୍ଜନରତ—କ୍ଳୀ. ବି. ଯତିମାନଙ୍କର ଗୋପନ ରତି ।

ଖଞ୍ଜନା—ସ୍ତ୍ରୀ. ବି. (ଖଞ୍ଜନ + ଆ) ଖଞ୍ଜନ-ପରି ଏକପ୍ରକାର କଜଳପାତି,ସୋରଷ, ରାଗିଣୀବିଶେଷ ।

ଖଞ୍ଜନାକୃତି—ସ୍ତ୍ରୀ.ବି.ଖଞ୍ଜନାକାର,ଖଞ୍ଜନା କୃତି ପକ୍ଷୀବିଶେଷ ।

ଖଞ୍ଜନାକ୍ଷୀ—ଗ୍ରା. ସ୍ତ୍ରୀ. ବିଂ. ବ.ବ୍ରୀ;ଖଞ୍ଜନ + ଅକ୍ଷି + ଈ) ଖଞ୍ଜନନୟନା(ଦେଖ) ।

ଖଞ୍ଜନାସନ—କ୍ଳୀ. ବି. ରୁଦ୍ରଯାମଳୋକ୍ତ ଏକପ୍ରକାର ଆସନ ।

ଖଞ୍ଜନକା—ସ୍ତ୍ରୀ. ବି. ଖଞ୍ଜନାକୃତିବିଶିଷ୍ଟ ଏକପ୍ରକାର ପକ୍ଷୀ ।

ଖଞ୍ଜମା — ଭାରତବର୍ଷୀୟ ଏକପ୍ରକାର କ୍ଷୁଦ୍ର ଆନଦ୍ଧ ଯନ୍ତ୍ରବିଶେଷ, ଏହାର ବାଦ୍ୟଶୁଣିବାକୁ ଅତ୍ୟନ୍ତ ପ୍ରିୟ ବୋଧ ହୁଏ, ଖଞ୍ଜଣି ।

ଖଞ୍ଜପଟିବା — ଗ୍ରା. ବି. କୌଣସି କାର୍ଯ୍ୟ ସାଧନରେ ଉପଯୁକ୍ତ ସୁବିଧା ଘୁଟିବା ବା ଅବସର ମିଳିବା, ଗୋପନ ପରାମର୍ଶ ନିମନ୍ତେ ମନ ମିଳିବା ।

ଖଞ୍ଜପଡ଼ିବା — ଗ୍ରା.ବି. ଖଞ୍ଜପଟିବା (ଦେଖ)

ଖଞ୍ଜର — ଯା. ବି. କଟାରି, ଛୋରା ।

ଖଞ୍ଜରା — ଗ୍ରା.ବି. କୌଶଳଦ୍ୱାରା କୌଣସି କାର୍ଯ୍ୟ ସାଧନ କରିବା ।

ଖଞ୍ଜରୀଟ — ପୁଂ. ବି. ( ଖଞ୍ଜ + ଋ + କ, ଇଟ) ଖଞ୍ଜନପକ୍ଷୀ ।

ଖଞ୍ଜରୀଟୀ — ସ୍ତ୍ରୀ. ବି. ମାଈ ଖଞ୍ଜନପକ୍ଷୀ ।

ଖଞ୍ଜଲେଖ — ବି. (ଖଞ୍ଜ + ଲେଖ) ଖଞ୍ଜରୀଟ, ଖଞ୍ଜନପକ୍ଷୀ, କଜଳପାତି ପକ୍ଷୀ ।

ଖଞ୍ଜବନ୍ଧୁ — ପୁଂ. ବି. ଚୈତ୍ୟବିଶେଷ ।

ଖଞ୍ଜା — ବି. ବର୍ଣ୍ଣୀଙ୍କ ସମବୃତ୍ତ ମଧ୍ୟରୁ ଏକତମ ବୃତ୍ତ, (ଗ୍ରା.ବି.) ଚତୁର୍ଦ୍ଦିଗ ଗୃହ ବା ପ୍ରାଚୀର ବେଷ୍ଟିତ ସ୍ଥାନ, ଅଗଣା, ନିଯୁକ୍ତ, ନିୟମିତ ବନ୍ଦୋବସ୍ତ, ଉତ୍ସର୍ଗ, ଯୋଡ଼ା, ସଂଯୋଗ, ଦୁଇବସ୍ତୁର ଏକତ୍ର ସଂଲଗ୍ନ ହୋଇଥିବା ସ୍ଥାନ, ଯୋଡ଼ମୁଣ୍ଡ; (ଗ୍ରା. ବିଂ) ସଜ୍ଜିତ ହୋଇଥିବା, ଯୋଡ଼ା ହୋଇଥିବା, ନିୟମିତରୂପେ ବନ୍ଦୋବସ୍ତ କରାଯାଇଥିବା, ସେବାରେ ନିଯୁକ୍ତ, ଖଇରାତ ବା ଦେବସେବାପାଇଁ ଉତ୍ସର୍ଗୀକୃତ । [ରୁପ ।

ଖଞ୍ଜାଇବା — ଗ୍ରା. କ୍ରି. ଖଞ୍ଜିବାର ଣିଜନ୍ତ

ଖଞ୍ଜାକାଟ — ଗ୍ରା. ବି. ଦେବତାମାନଙ୍କ ସେବକମାନେ ଯେଉଁ ଦେବୋତ୍ତର ବୃତ୍ତି ବୃଷ ବା ଦଖଲ କରୁଥାଆନ୍ତି, ସେମାନଙ୍କଦ୍ୱାରା ସମ୍ପନ୍ନସେବା ଓ ଭୋଗ ଆଦିର ମୂଲ୍ୟନିମନ୍ତେ ସେ ଜମିର ଫସଲ ଓ ଖଜଣାରୁ ଯେଉଁ ଅଂଶ କଟିଯାଏ, ଉକ୍ତ ଖାତ ବା ପ୍ରଥା ସେବାଦି ନିୟମିତ ବ୍ୟୟରୁ କର୍ତ୍ତନ, (ଗ୍ରା. ବିଂ.) ଖଞ୍ଜାକାଟ ଖାତରେ ସେବକମାନେ ଭୋଗ କରୁଥିବା ଭୂମି ।

ଖଞ୍ଜାଖଞ୍ଜି — ଗ୍ରା. ବି. ଖଞ୍ଜିବା କର୍ମ, ସଜ୍ଜୀକରଣ ।

ଖଞ୍ଜାବାଡ଼ — ଗ୍ରା. ବି. ଜମିବାଡ଼ବୃତ୍ତି ।

ଖଞ୍ଜାହାଡ଼ — ଗ୍ରା. ବି. ମେରୁଦଣ୍ଡ, ମେରୁହାଡ଼ ।

ଖଞ୍ଜିଆ — ଗ୍ରା. ପୁଂ. ବିଂ. ଯେଉଁ ବ୍ୟକ୍ତି ଖଞ୍ଜଉଣ୍ଡି କାମକରେ, ଚାକଚରକିଆ, କୌଶଳୀ ।

ଖଞ୍ଜିଖାଞ୍ଜି — ଗ୍ରା.କ୍ରି.ବିଂ. ସୁସଜ୍ଜିତରୂପେ ଗଚ୍ଛାଗାଚ୍ଛି ।

ଖଞ୍ଜିତ — ଗ୍ରା. ବିଂ. ଖଞ୍ଜା ହୋଇଥିବା ।

ଖଞ୍ଜିବା — ଗ୍ରା. କ୍ରି. ବନ୍ଦୋବସ୍ତ କରିବା, ନିଯୁକ୍ତ କରିବା, ସୁସଜ୍ଜରୂପେ ଯୋଡ଼ିବା, ସଜ୍ଜିତକରିବା, କୌଣସି ମହତ୍ ଉଦ୍ଦେଶ୍ୟରେ ସମ୍ପତ୍ତିକୁ ସ୍ଥାୟୀଭାବରେ ଅର୍ପଣ କରିବା ପୂର୍ବରୁ ବନ୍ଦୋବସ୍ତ କରିବା, ସ୍ଥାପନକରିବା, ବରାଦକରିବା ।

ଖଞ୍ଜିହେବା — ଗ୍ରା. କ୍ରି. ଭରିବା, ଲଗାଇବା, ନିଜଦେହରେ ଅଳଙ୍କାର ଲଗାଇବା ।

ଖଟ୍ — ଯା. ରାଗବିଶେଷ, (ବରାଡ଼ୀଆଦି) (ଗ୍ରା) ଶବ୍ଦବିଶେଷ ।

ଖଟ୍କା — ଗ୍ରା.ବି. କଳହ, ଦ୍ୱନ୍ଦ୍ୱ, ବିବାଦ, କଷ୍ଟ, ସନ୍ଦେହ, ସମସ୍ୟା ।

ଖଟ୍ଖଟ୍ — ଗ୍ରା. ବି. ସାମାନ୍ୟ ଗାଳିମନ୍ଦମିଶା ଘରକଳି, କଠିନ ପଦାର୍ଥର ଶୁଷ୍କକଟୁ ଶବ୍ଦ, (ବିଂ) କଠିନ ବା ଯୋଡ଼ାପଦାର୍ଥ ହୁଗୁଳା ହୋଇଥିବା ।

ଖଟ୍ଖଟିଆ — ପ୍ରା. (ସମ୍ବ)ବି. ଏକପ୍ରକାର ଲତା, (ଗ୍ରା.ବି) କଳିହା ।

ଖଟ୍ପଟ୍ଲଗାଇବା — ଗ୍ରା.କ୍ରି. କବାଦବା, କଳହ ଲଗାଇବା ।

ଖଟ — ପୁଂ. ବି. (ଖଟ + ମଁ, ଅ) ଅନ୍ଧକୂପ, ଅମୁହାକୂଅ, କଫ, ଟାଙ୍ଗିଆ, ଶସ୍ତ୍ରବିଶେଷ, ଲଙ୍ଗଳ, ତୃଣ, ମୁଠା, ବଟାଳି, ହଳ, ବାଧା, ମୁଥ, ଖଙ୍କାର, (ଗ୍ରା.ବି.) କାଠ ବା ଦଉଡ଼ି ବା ଡୋର ଇତ୍ୟାଦିରେ ଗୁନ୍ଥା ହୋଇଥିବା ଶୟନୀୟ ଆସନବିଶେଷ, ପଲଙ୍କ ।

ଖଟକ — ପୁଂ. ବି. (ଖଟ + କ, ଅକ) ଘଟକ, ନାଗବଟ, ବଦ୍ଧହସ୍ତ, ଅର୍ଦ୍ଧମୁଦ୍ରିତ ହସ୍ତ ।

ଖଟକ — ପଞ୍ଜାବାନ୍ତର୍ଗତ କୋହାଟ ଓ ପେଶବାର ଜିଲ୍ଲାର ପର୍ବତଶ୍ରେଣୀ ।

ଖଟକଟାହକ — ବି. (କ.ଧା) ପିକଦାନି, ଛେପ ପକାଇବାର ବଡ଼ପାତ୍ର ।

ଖଟକାମୁଖ — ପୁଂ.ବି. କାଣ୍ଡମାରିବାବେଳେ ହାତର ବନ୍ଧଭାବ, ନୃତ୍ୟରେ ଏକପ୍ରକାର ଚେଷ୍ଟା ।

ଖଟକିକା — ସ୍ତ୍ରୀ.ବି. ଖିଡ଼କି, ଦ୍ୱାରକୋଳଣୀ ।

ଖଟଖ — ପୁଂ.ବି. ବାନ୍ଧୋଇବାକୁ ଉଦ୍ୟତ ବ୍ୟକ୍ତି ।

ଖଟଖଟିଆ — ଗ୍ରା. ବିଂ. ହୁଗୁଳା, ନିର୍ଦ୍ଦିଷ୍ଟ ଘରରୁ ହୁଗୁଳି ଯାଇଥିବା ।

ଖଟଖାଦକ — ପୁଂ. ବି. (ଖଟ + ଖାଦକ) ଭକ୍ଷକ, କାଚପାତ୍ର, ଶୃଗାଳ, ଜନ୍ତୁଭେଦ, କୁଆ ।

ଖଟଖୁରା — ଗ୍ରା. ବି. ଖଟର ଗୋଡ଼ ।

ଖଟଣି — ଗ୍ରା. ବି. ଦେବତା ବା ରାଜାଙ୍କ ଦୈନନ୍ଦିନ ସେବା ବା ନୀତି, ରାଜା ବା ଦେବତାଙ୍କ ପିନ୍ଧିବା ଲୁଗା, ଗହଣ, ରାଜା ବା ଦେବତାଙ୍କ ସେବାରେ ନିଯୋଜିତ ଭୃତ୍ୟଦଳ, କର୍ମ, ଦେବତାଙ୍କ ନିକଟରେ ଖଞ୍ଜାହେବା ଦୈନିକ ଭୋଗ, (ଗ୍ରା.ବିଂ) ରାଜା ଓ ଦେବତାଙ୍କ ସେବାରେ ନିଯୋଜିତ(ଭୃତ୍ୟ)ରାଜା ବା ଠାକୁରଙ୍କ ଲାଗିହେବା (ମାଳ୍ୟାଦି) ।

ଖଟଣିକାର(କଙ୍କର) - ଗ୍ରା. ବି. ରାଜା ଓ ଦେବତାଙ୍କ ସେବାରେ ନିଯୁକ୍ତ ଚାକର, ଶ୍ରୀଅଙ୍ଗଲଗା ସେବକ, ଆଜ୍ଞାକାରୀ ଭୃତ୍ୟ, ଖଟଣିସେବକ, ଅର୍ଦ୍ଦଳି, ଚାକର ।

ଖଟଣିସେବକ — ଗ୍ରା. ବି. ଖଟଣିକାର, (ଦେଖ) ।

ଖଟମା — ସ୍ତ୍ରୀ. ବି. ଖଟୀ, ଖଟ୍ଟା ।

ଖଟପୁଆ — ଗ୍ରା. ବି. ଖଟଖୁରା ।

ଖଟମ୍ଚୁଆ — ପ୍ରା. (ସମ୍ବ) ବି. ଖଟଖୁରା, ଖଟର ପୁଆ ।

ଖଟ୍‌ମଲ୍ — ଗ୍ରା.ବି. ଛାରପୋକ, ଓଡ଼ଶ ।

ଖଟା — ଗ୍ରା.ବି.ଅମ୍ଳରସ,ଆମ୍ବିଳା,ଅମ୍ଳରସର ବ୍ୟଞ୍ଜନ, (ଶାକର) ପରିଶ୍ରମ, ଖାଟୁଣି, ଖଟିବା, ସେବାକରିବା, ମନୋଦୁଃଖ,(ଗ୍ରା.ବିଂ)ଆମ୍ବିଳା,ଆମ୍ବିଳ, ବିରସ, ଦୁଃଖଯୁକ୍ତ ।

ଖଟାଇବା—ଗ୍ରା. କ୍ରି. ଖୁଣ୍ଟଦେହରେ କୌଣସି ବସ୍ତୁକୁ ବା ଜୀବକୁ ବା ନୌକାକୁ ରଜ୍ଜୁରେ ବାନ୍ଧିବା,କାର୍ଯ୍ୟରେ ଲଗାଇବା, ପରିଶ୍ରମ କରାଇବା, ଖଟଣିସେବକରୂପେ ନିଯୁକ୍ତ କରିବା, କୌଣସି ନିୟମ ବା ସୂତ୍ରକୁ ଉପସ୍ଥିତ କ୍ଷେତ୍ରରେ ପ୍ରୟୋଗ କରିବା ।

ଖଟାକରିବା — ଗ୍ରା. କ୍ରି. ( ଲକ୍ଷଣାର୍ଥ ) ମନୋଦୁଃଖ କରିବା ।

ଖଟାଗପୁରାଣ — ଗ୍ରା. ବି. କୌଣସି ଅପ୍ରାକୃତ ଅଶ୍ରୁତପୂର୍ବ ବର୍ଣ୍ଣନା କୁବାକ୍ୟରେ ଗାଳି, ଅଶ୍ଲୀଳ ତିରସ୍କାର ।

ଖଟାପାଲଙ୍ଗ — ଗ୍ରା. ବି. ଏକ ପ୍ରକାର ଖଟାଶ.ଗ ।

ଖଟାଲିଆ — ଗ୍ରା. ବିଂ. ଈଷତ୍ ଅମ୍ଳ, ସାମାନ୍ୟରେ ଖଟା ।

ଖଟି—ଗ୍ରା. ବି. ମାଦକ ସେବୀମାନଙ୍କର ମିଳନ ସ୍ଥାନ,ମାଦକ ବସ୍ତୁ ଓ ସେବନ ସ୍ଥଳ, (ପ୍ରା. ପୁରୀ) ବି. ଯେଉଁ ସ୍ଥାନରେ ମାଛ ଶୁଖୁଆ ଆଦିର କାରବାର ହୁଏ, (ସଂ. ବି ) ଖଡ଼ି ।

ଖଟିଆ — ଗ୍ରା. ବି. କାନ୍ଧରେ ବୁହାଯିବା ବାଉଁଶ ଲଗିଥିବା ଯାନବିଶେଷ,ଡୋଲି, ଛୋଟ ଖଟ, ଦଉଡ଼ିଆ ଖଟ, ରୋଗୀ-ବୁହା କୋକେଇ, (ପ୍ରା. ପୁରୀ) ଶୂଦ୍ର-ଜାତିବିଶେଷ ।

ଖଟିକ—ପୁଂ. ବି. ( ଖଟ + ସଂ. ଅକ ) ଅର୍ଦ୍ଧମୁଦ୍ରିତ କରତଳ, ମୁଷ୍ଟି, ମୁଠା ।

ଖଟିକା — ବି. ସ୍ତ୍ରୀ. (ଖଟିକ + ଆ) ଖଡ଼ି, ଲେଖନସାଧନ ଦ୍ରବ୍ୟ ବିଶେଷ, କର୍ଣ୍ଣ-ଛିଦ୍ର, ବେଣାମୂଳ ।

ଖଟିନୀ — ବି. ସ୍ତ୍ରୀ. (ଖଟ + ଇନ୍ + ଈ) କଠିନୀ, ଖଡ଼ି ।

ଖଟିବା — ଗ୍ରା.କ୍ରି. ସେବା କରିବା,ବିଶେଷ ପରିଶ୍ରମ କରିବା, ଗୃହକର୍ମ ସ୍ୱୀକାର କରିବା, ସ୍ତ୍ରୀ ଶାଶୁଘରକୁ ପହିଲି ପାଳି ଯିବା, ଫୁଟିବା, ଆଶ୍ରୟ କରିବା, ଦଣ୍ଡ ଭୋଗ କରିବା ।

ଖଟିଯିବା — ଗ୍ରା. ( ଗଞ୍ଜାମ-ସମ୍ବ ) କ୍ରି ବାଳିକା ରଜସ୍ୱଳା ହେବାପରେ ପ୍ରଥମେ ଶାଶୁଘରକୁ ଯିବା, ପହିଲିପାଳି ଯିବା ।

ଖଟୀ—ବି. ସ୍ତ୍ରୀ. (ଖଟ + ଈ) ଖଡ଼ି କଠିନୀ ।

ଖଟୁ — ବି. ମୁଠା ଗ୍ରା. ବିଂ. ପରିଶ୍ରମୀ ।

ଖଟୁଆ — ଗ୍ରା. ବି. ଦିନ ମୂଲିଆ, ଶୂଦ୍ର ଜାତିଙ୍କର (ସହର)ଉପାଧି ବିଶେଷ ।

ଖଟୁଲି—ଗ୍ରା. ବି. ଦେବତା ପ୍ରତିମାମାନ ରଖିବାର କ୍ଷୁଦ୍ର କାଷ୍ଠାସନ, ଛୋଟ ବିମାନ ।

ଖଟୁଲିରେବସାଇବା — ଗ୍ରା. କ୍ରି. (ଲକ୍ଷଣାର୍ଥ) କୌଣସି ବ୍ୟକ୍ତି ବା ପଦାର୍ଥକୁ ବିଶେଷ ଆଦର ସହିତ ପୂଜା ବା ସମ୍ମାନ କରିବା ।

ଖଟୁଲିରେ ବସିବା — ଗ୍ରା.କ୍ରି.(ଲକ୍ଷଣାର୍ଥ), (ଶାଳଗ୍ରାମ ଖଟୁଲିରେ ବସିଲା ପରି ) କୌଣସି କାର୍ଯ୍ୟ ନ କରି ନିଷ୍କର୍ମା ବା ସୁସ୍ଥୀ ହୋଇ ବସି ରହିବା ।

ଖଟୂ — ବି. ହାତ ଗଣ୍ଠିରେ ପିନ୍ଧାଯିବା ବଳୟ, ହାତଖଡ଼ୁ, ଗୋଡ଼ରେ ପିନ୍ଧାଯିବା ଖଡ଼ୁ ।

ଖଟ୍ଟ — ବିଂ. ଖଟା, ଅମ୍ଳ ।

ଖଟ୍ଟନ—ବିଂ. (ଖଟ୍ଟ + ସଂ, ଅନ) ଖଟ୍ଟ, ବାଙ୍ଗରା, ବାମନ ଗେଡ଼ା (ବି) ବାମନ ଗେଡ଼ାଲୋକ, (ସ୍ତ୍ରୀ) ଖଟ୍ଟିନୀ ।

ଖଟ୍ଟା — ବି. ସ୍ତ୍ରୀ. ଖଟ୍ଟା, ଖଟ, ପଲଙ୍କ, ମୁର୍ଦ୍ଦାର କୋକେଇ, (ଗ୍ରା.ବି.) ଅମ୍ଳରସ, ଆମ୍ବିଳ, ।

ଖଟ୍ଟାଶ — ବି.ପୁଂ.ସ୍ତ୍ରୀ.(ଖଟ୍ଟ + ଅଶ + କଅ) ବଣଭୂଆ,ଶାଳିଆପତନୀ,ଗନ୍ଧମାର୍ଜ୍ଜାର ।

ଖଟ୍ଟାଶୀ — ବି.ପୁଂ.(ଖଟ୍ଟାଶ + ଇନ୍)ବଣ-ଭୂଆ, କଟାସ, ଶାଳିଆପତନୀ ।

ଖଟ୍ଟାସ — ପୁଂ.ବି. ସ୍ତ୍ରୀ. ବନଜନ୍ତୁବିଶେଷ, ବଣଭୂଆଁ, କଟାସ, ଶାଳିଆପତନୀ ।

ଖଟ୍ଟି — ବି.(ଖଟ + ସଂ.ଇ)ଶବଯାନ, ଶବ ବହନାର୍ଥଖଟ,ମଡ଼ାର ଖଟ,କୋକେଇ ।

ଖଟ୍ଟିକ — ବି.(ଖଟ୍ଟ + ଇକ)ଯେ ବ୍ୟକ୍ତିଜାଲି ପ୍ରଭୃତିଦ୍ୱାରା ପକ୍ଷୀ ମାରେ, ବ୍ୟାଧ,ଶାକୁ-ନିକ, ଶିକାରୀ, ବାଣୁଆଁ, ମଇଁଷିଦୁଧର ସର, ପକ୍ଷୀମାରିବା ଲୋକ ।

ଖଟ୍ଟିକା — ବି. ସ୍ତ୍ରୀ. (ଖଟ୍ଟ + କ,ଆ)କ୍ଷୁଦ୍ର ଖଟିଆ,ଶବଯାନ,ମଡ଼ାରଖଟ,କୋକେଇ ।

ଖଟ୍ଟେରକ — ବିଂ.କ୍ରି. (ଖଟ୍ଟ + ସଂ,ଏରକ) ଖର୍ବ,ବାମନ,ଛୋଟ, ଗେଡ଼ା ।

ଖଟ୍ୱା—ବି. ସ୍ତ୍ରୀ ( ଖଟ୍ଟ + ସଂ.ବ + ଆ ) କାଷ୍ଠାଦିରଚିତ ଶଯ୍ୟାଧାର, ପର୍ଯ୍ୟଙ୍କ, ପଲଙ୍କ, ଖଟ, ଦୋଳି ।

ଖଟ୍ୱାକା— ବି.ସ୍ତ୍ରୀ.(ଖଟ୍ୱା + କ + ଆ)ଖଟ, ଛୋଟ ଖଟିଆ ।

ଖଟ୍ୱାଙ୍ଗ —ବି.କ୍ଲୀ.(ଖଟ୍ୱା + ଅଙ୍ଗ)ଖଟଖୁରା, ମେରୁହାଡ଼, ମୁଦ୍‌ଗର, ଶିବଙ୍କର ଅସ୍ତ୍ର-ବିଶେଷ, (ବି. ପୁଂ.)ସୂର୍ଯ୍ୟବଂଶୀୟ ଜଣେ ରାଜା, ଦିଲୀପ ରାଜା ।

ଖଟ୍ୱାଙ୍ଗଧର — ବି.ପୁଂ.(ଖଟ୍ୱାଙ୍ଗ + ଧୃ + ଅ) ଶିବ,ମହାଦେବ, (ବିଂ.) ଖଟ୍ୱାଙ୍ଗଧାରୀ ।

ଖଟ୍ୱାଙ୍ଗଭୃତ୍—ବି.ପୁଂ.(ଖଟ୍ୱାଙ୍ଗ + ଭୃ + କ୍ୱିପ୍)ଖଟ୍ୱାଙ୍ଗଧର, ଶିବ ।

ଖଟ୍ୱାଙ୍ଗମୁଦ୍ରା — ବି. ସ୍ତ୍ରୀ. ତନ୍ତ୍ରୋକ୍ତ ମୁଦ୍ରା-ବିଶେଷ ।

ଖଟ୍ୱାଙ୍ଗୀ — ବି. ପୁଂ.(ଖଟ୍ୱାଙ୍ଗ + ଇନ୍)ଶିବ, ବିଂ. ପ୍ରାୟଶ୍ଚିତ୍ତ ନିମିତ୍ତ ଯେଉଁ ଲୋକ ଖଟ୍ୱାଙ୍ଗସଦୃଶ ପାତ୍ର ଧାରଣ କରେ ।

ଖଟ୍ୱାଙ୍ଗୀ — ସ୍ତ୍ରୀ. ବି. ସହ୍ୟାଦ୍ରିନିକଟସ୍ଥିତ ଗୋଟିଏ ନଦୀ ।

ଖଟ୍ୱାପ୍ଲୁତ-ବିଂ.(ଶବ୍ଦ)ଖଟ୍ୱାରୂଢ଼(ଦେଖ)

ଖଟ୍ୱାରୂଢ଼-କ୍ରି.ବିଂ.ଜାଲ୍ମ, ନିନ୍ଦିତ, ବିପଥ-ଗାମୀ ଦୁଷ୍ଟ, ନୀଚ, ଅବିନୀତ, ନିର୍ବୋଧ, ଅଳସ, ପାମର, ଖଟରେ ଶୋଇଥିବା ।

ଖଟ୍ୱିକା — ସ୍ତ୍ରୀ.ବି.ଖଟ,କ୍ଷୁଦ୍ରଖଟ,ପର୍ଯ୍ୟଙ୍କ, ଶୟନାଧାର ।

ଖଡ଼୍ଖଡ଼୍—ଗ୍ରା. ଅବ୍ୟ. ଶୃଙ୍ଖଳ ହାଲୁକା ଜିନିଷ ଅନ୍ୟ ଜିନିଷ ସଙ୍ଗେ ବାଜିବାର ଶବ୍ଦ ।

ଖଡ଼ଖାଡ଼୍—ଗ୍ରା.ଅବ୍ୟ.ଖଡ଼୍ଖଡ଼୍ (ଦେଖ)।

ଖଡ଼--କ୍ଲୀ.ବି.(ଖଡ଼+ଘ,ଅ,)ତୃଣ,ନଡ଼ା, (ପୁଂ.ବି.)ପଣା,ଫଣଫଣାଗୁଳ୍ମ,ଏକପ୍ରକାର ଘାସ,ତରକାରୀ,ଭଙ୍ଗ,ଭେଦ, ଦହିକଡ଼ି, (ଘରବାସଙ୍ଗେ ଦହି ସିଦ୍ଧହୋଇ ପ୍ରସ୍ତୁତ) ବ୍ୟଞ୍ଜନବିଶେଷ । [ ଖଡ଼ମ ।

ଖଡ଼ଉ—ଗ୍ରା.ବି.କଠଉ, କାଷ୍ଠପାଦୁକା,

ଖଡ଼କ--କ୍ଲୀ.ବି.ଲମ୍ବାବରଗଛ,ସ୍ଥାଣୁ,ଖୁଣ୍ଟା, ଖିଲ, ଖୁଣ୍ଟି ।

ଖଡ଼କା—ଗ୍ରା. ବି. ଖଡ଼ିକା; ନଡ଼ିଆ ଓ ତାଳପତ୍ରର ମଞ୍ଜିଶିରା, ଶର ।

ଖଡ଼କ—ଗ୍ରା.ବି.ଏକପ୍ରକାରହାତର ଖଡ଼ୁ ।

ଖଡ଼କିନା—ଗ୍ରା. କ୍ରି. ବିଂ. ଖଡ଼ଖଡ଼ ବା ସାମାନ୍ୟ ଶବ୍ଦରେ ଧଡ଼୍କିନା ଛିଟିପଡ଼ିବା, ହଠାତ୍ ତୁରନ୍ତ ।

ଖଡ଼କ୍କିକା--ସ୍ତ୍ରୀ.ବି.ପକ୍ଷଦ୍ୱାର,ଖିଡ଼କୀଦ୍ୱାର।

ଖଡ଼କ୍କି, ଖଡ—ସ୍ତ୍ରୀ.କ୍ଲୀ.ବି (ଖଡ଼କ+କୃ +କ,ଅ+ଇ)ଖିଡ଼କୀ,ପକ୍ଷଦ୍ୱାର,ଝରକା ଗୁପ୍ତଦ୍ୱାର, ସବାରି, ଖଡ଼ଖଡ଼ି ।

ଖଡ଼ଖଡ଼—ଗ୍ରା. ଅବ୍ୟ. ଶୃଙ୍ଖଳ ହାଲୁକା ବସ୍ତୁମାନ ପରସ୍ପର ବାଜିବାର ଶବ୍ଦ,ଗ୍ରା. ବିଂ. ଶୃଙ୍ଖଳ ଓ ହାଲୁକା, ନୀରୋଗ ଓ ଭାରଶୂନ୍ୟ(ଦେହ),ହାଲୁକା ।

ଖଡ଼ଖଡ଼ି—ଗ୍ରା.ବି. କାଷ୍ଠନିର୍ମିତ ଶିବିକା, ପାଲିଙ୍କି, ସବାରି ।

ଖଡ଼ଖଡ଼ିଆ—ଗ୍ରା.ବିଂ.ଶୃଙ୍ଖଳ (ବାଟ) ।

ଖଡ଼ଙ୍ଗା—ପ୍ରା. (ସମ୍ବ) ବି. ମହାନଦୀର ଉପନଦୀ ତେଲ କୂଳରେ ଥିବା କନ୍ଧମାନଙ୍କ ଅଧ୍ୟୁଷିତ ଇଲାକା ।

ଖଡ଼ତ୍ରୁ—ପୁଂ.ବି.(ଖଡ଼+ଅତ୍ରୁ)ଗ୍ରା. ଖଡ଼ୁ, ହସ୍ତାଭରଣ ।

ଖଡ଼ଦ—ପୁଂ. ବି. କିଷ୍କିନ୍ଧ୍ୟାର ରାଜା(ଏ ବାଲୀ ଓ ସୁଗ୍ରୀବଙ୍କୁ ପାଳନ କରିଥିଲେ)

ଖଡ଼ମ—ଗ୍ରା. ବି. କାଷ୍ଠନିର୍ମିତ ପାଦୁକା, କଠଉ ।

ଖଡ଼ଯୂଷ—ପୁଂ.କଇଥ, ଆମ୍ବୁଡ଼ା,ମରିଚ, କଲାଜିରା, ଚିତକସହିତ ଘୋଲପାକ କଲେ ତାହାକୁ ଖଡ଼ଯୂଷ କହନ୍ତି,ଭାବ-ପ୍ରକାଶମତେ—'ମୁଦ୍‌ଗଯୂଷ ରସ ତକ୍ରଂ ଧାନ୍ୟଂ ଜୀରକଯସ୍ତ୍ରଂ, ସୈନ୍ଧବ ସହିତଂ ଦଦ୍ୟାତ୍ ଖଡ଼ଯୂଷମିତ ସ୍ମୃତଂ' ।

ଖଡ଼ରଖଡ଼ର—ଗ୍ରା.ଅବ୍ୟ.ଖଡ଼ ଖଡ଼ଶବ୍ଦ ।

ଖଡ଼ରା—(ଯା)ଘୋଡ଼ାର ଦେହ ପରିଷ୍କାର କରିବାର ଲୁହାର ଚରୁଣୀ,(ଗ୍ରା) ଖରଡ଼ି ପଇଟି ବା ପୁରୋହିତ(ପୋରେହି)(ଲୁହା, କାଠ,ବାଉଁଶରେ ନିର୍ମିତ ଅର୍ଦ୍ଧବୃତ୍ତାକାର ବସ୍ତୁବିଶେଷ, ଏହାର ବ୍ୟବହାର ଦାଉଣୀରେ ବଳଦ ଯୋଚିଲାବେଳେ ଏହାକୁ ମେଇରେ ଜଳାଇ ବଳଦବୁଲନ୍ତି, ଏହା ଦାଉଣୀର ମୂଳଦେଶରେ ବନ୍ଧାଥାଏ) ।

ଖଡ଼ବାନ୍—ବି. ବିଂ. ଛିଣ୍ଡୁଆଁ ଦେଶ, ଯେଉଁ ଦେଶରେ ଅଧିକ ଖଡ଼ ହୁଏ ।

ଖଡ଼ା—ଗ୍ରା.ବି.ଶାକବିଶେଷ,ବଡ଼ ଶାଗ-ଗଛ,(ଲକ୍ଷଣାର୍ଥ)ସ୍ୱଳ୍ପ ମୂଲ୍ୟର ସାମାନ୍ୟ ବସ୍ତୁ, ପ୍ରା.(ମେଦିନୀ) ଛୁରି, (ପ୍ରା. ସମ୍ବ) ଖଣ୍ଡା, ଖଡ଼୍ଗ ।

ଖଡ଼ାଖଡ, ଖଡ଼ାଦମ—ଯା. ଗ୍ରା. କ୍ରି. ବିଂ. ଠିଆରେ ଠିଆରେ,ବରାବର ଠିଆହୋଇ, କ୍ଷଣମାତ୍ର ବିଳମ୍ବ ।

ଖଡ଼ାପତ୍ର ନ ଦାସ୍ତେ—ଗ୍ରା. (ପ୍ରବଚନ) ଯେଉଁଠାରେ ମୁହଁ ଭଲ ଦେଖାଇ-ବାରେ ସୀମା ନଥାଏ; କିନ୍ତୁ ଦେଲା ବେଳକୁ ଖଡ଼ାପତ୍ର ଭଳି ମୂଲ୍ୟ ଓ ଅସାର ବସ୍ତୁ ସୁଦ୍ଧା ଦିଆ ନଯାଏ ସେହି-ଠାରେ ଏହି ପ୍ରବଚନ ପ୍ରୟୋଗ କରାଯାଏ ।

ଖଡ଼ି—ଗ୍ରା. ବି. (ଖଟୀ ଶବ୍ଦରୁ ଅପଭ୍ରଂଶ) ଶ୍ୱେତ ଓ ନରମ ପ୍ରସ୍ତର ବିଶେଷ, ଅଁଳାକୋଳିଆ, ଦୁଧଖଡ଼ି, ଚକଖଡ଼ି ଏହିପରି ନାମ ।

ଖଡ଼ିଆ—ଗ୍ରା.ବିଂ.ଖଡ଼ିପରିଧଳା,(ପ୍ରା.ସମ୍ବ) ବି. ବାଉରିଙ୍କପରି ନୀଚ ଅନାର୍ଯ୍ୟ ଜାତି-ବିଶେଷ ।

ଖଡ଼ିଆଳ—ଗ୍ରା. ବି. ଓଡ଼ିଶା ଅନ୍ତର୍ଗତ କଳାହାଣ୍ଡି ଜିଲ୍ଲାର ଏକ ଅଞ୍ଚଳ ।

ଖଡ଼ିଆଳ—ଗ୍ରା. ବିଂ. ଦ୍ୱେଷୀ, ବିରୋଧୀ, ପ୍ରତିବାଦୀ ।

ଖଡ଼ିକନ୍ଦା—ଗ୍ରା. ବି. (ସଂ.ଦୁଗ୍ଧପାଷାଣ) ଠିକ୍ ଖଡ଼ିପରି ଶ୍ୱେତ କନ୍ଦାପଥର ।

ଖଡ଼ିକା—ସ୍ତ୍ରୀ.ବି. ( ଖଡ଼୍+ଅକ+ଆ) କଠିନୀ, ଖଡ଼ି,ଚକଖଡ଼ି, (ଗ୍ରା.ବି)କାଠି, ଦାନ୍ତଖୁଣ୍ଟା, ଦାନ୍ତରୁ ମଇଳା କାଢ଼ିବା କାଠି,ନଡ଼ିଆ ଓ ତାଳପତ୍ରର ମଞ୍ଜି ଶିରା ।

ଖଡ଼ିଖାରକୁଆସିବା—ଗ୍ରା. କ୍ରି.(ଅମୁକର ନାମ) ବିଶିଷ୍ଟ ବ୍ୟକ୍ତିଙ୍କର ତାଲିକାରେ ଚଢ଼ିବା ।

ଖଡ଼ିଛୁଆଁ—ଗ୍ରା.ବି.ହିନ୍ଦୁ ବାଳକର ସର୍ବ-ପ୍ରଥମେ ହାତରେ ଖଡ଼ି ଧରିବାର ଅନୁ-ଷ୍ଠାନ, ବାଳକର ବିଦ୍ୟାରମ୍ଭ ସଂସ୍କାର ।

ଖଡ଼ିଛୁଇଁବା—ଗ୍ରା.କ୍ରି. (ଶିଶୁ) ବିଦ୍ୟାରମ୍ଭ କରିବା, ବିଦ୍ୟାରମ୍ଭ କରିବା ନିମନ୍ତେ ପ୍ରଥମେ ଖଡ଼ି ଧରିବା ।

ଖଡ଼ିପକାଇବା—ଗ୍ରା. କ୍ରି. ଭବିଷ୍ୟତ୍, ଘଟଣାଜାଣିବା ନିମନ୍ତେ ଭୂମିରେ ଖଡ଼ି-ଦ୍ୱାରା ମୁଣ୍ଡଳା କାଟି ଫଳାଫଳ ନିର୍ଣ୍ଣୟ କରିବା, ପ୍ରଶ୍ନର ସମାଧାନ କରିବା ।

ଖଡ଼ିପଡ଼ିବା—ଗ୍ରା.ବି. କୌଣସି ବିଷୟର ଉଲ୍ଲେଖ କରାଯିବା, କୌଣସି କାର୍ଯ୍ୟର ପ୍ରଥମ ଆରମ୍ଭ କରାଯିବା,(ଅମୁକ)ଜଣେ ବିଶିଷ୍ଟ ବ୍ୟକ୍ତି ବୋଲିପରିଗଣିତ ହେବା ।

ଖଡ଼ିପଥର—ଗ୍ରା.ବି.ଧଳାରଙ୍ଗର ନରମ ପଥରବିଶେଷ ।

ଖଡ଼ିପାଠ—ଗ୍ରା. ବି. ଚାଟଶାଳୀରେ ପିଲା-ମାନେ ଭୂମିରେ ଖଡ଼ିଦ୍ୱାରା ଲେଖି-ଶିଖିବା ବିଦ୍ୟା, ଶିଶୁମାନଙ୍କର ପ୍ରାଥମିକ ଶିକ୍ଷା, ଯଥା—ପଣକିଆ ଇତ୍ୟାଦି ।

ଖଡ଼ିଲଗି—ଗ୍ରା. ବିଂ. ସ୍ନାନପୂର୍ଣ୍ଣିମା ପରେ ରଥଯାତ୍ରାପୂର୍ବରୁ ଜଗନ୍ନାଥଙ୍କ ବିଗ୍ରହରେ ଖଡ଼ିଆଦି ଲଗାଇ ଚିତ୍ର କରିବାର ଅନୁଷ୍ଠାନ ବା ଉତ୍ସବ ।

ଖଡ଼ିସିଟ୍-ଗ୍ରା.ବି. ଏକପ୍ରକାର ସ୍ଲେଟସିଟ୍ ।

ଖଡ଼ୀ—ସ୍ତ୍ରୀ. ବି. ( ଖଡ୍+ଷ୍ଣ.ଅ+ଈ) ସ୍ୱନାମଖ୍ୟାତ ଶ୍ୱେତବର୍ଣ୍ଣମୃତ୍ତିକାବିଶେଷ, ଖଡ଼ିମାଟି, ଅଙ୍କ ଗଣନା ।

ଖଡ଼ୀନ—ବି.(ଖ+ଡୀନ) ପକ୍ଷୀମାନଙ୍କର ଗତିବିଶେଷ ।

ଖଡ଼ୀମାଟି—ଗ୍ରା. ବି°. ଖଡ଼, ଖଡ଼ୀ, ଏକ-ପ୍ରକାର ଧଳା ଖଡ଼ିକ ମୃତ୍ତିକା ।

ଖଡ଼ୁ—ଗ୍ରା.ବି.(ସଂ-ଖଡ଼ୁକା) ହାତରେ ଓ ଗୋଡ଼ରେ ପିନ୍ଧାଯିବା ବଳୟାକାର କଙ୍କଣବିଶେଷ,ହାତଖଡ଼ୁ,ଗୋଡ଼ଖଡ଼ୁ ।

ଖଡ଼ୁଆ—ଗ୍ରା.ବି°.ଛଣୁଆଁ (ଘର), ଯେଉଁ-ଘର ଛଣ ବା ନଡ଼ାରେ ଛୁଆଣି ହୋଇଥାଏ ।

ଖଡ଼ୁକା—ବି.ହାତ ଓ ଗୋଡ଼ରେ ପିନ୍ଧା-ଯିବା ଖଡ଼ୁ ।

ଖଡ଼ୁକାଢ଼ିବା-ଗ୍ରା.କ୍ରି.ହାତରେ ପିନ୍ଧିଥିବା ଖଡ଼ୁକୁ ହାତରୁ ବାହାର କରିବା, (ଲକ୍ଷଣାର୍ଥ)କୌଣସି ସଧବା ସ୍ତ୍ରୀ ବିଧବା ହେଲେ ତା ହାତରୁ ସଧବାର ଚିହ୍ନ ଖଡ଼ୁକୁ ବାହାର କରିବା ।

ଖଡ଼ୁବାହୁ—ଗ୍ରା.ବି. ହାତର କଟିଠାରୁ କହୁଣୀ ପର୍ଯ୍ୟନ୍ତ ପିନ୍ଧାଯିବା ପିତ୍ତଳ ଓ କଂସାର ଏକାଧିକଚୁଡ଼ି ବା ଚୁଡ଼ିକାଖଡ଼ୁ ।

ଖଡ଼ୁମୁଷା—ଗ୍ରା.ବି. ହାତରେ ପିନ୍ଧିଥିବା ଖଡ଼ୁଦ୍ୱାରା କରାଯିବା ଆଘାତ ।

ଖଡ଼ୁମୁଷାମାରିବା—ଗ୍ରା. କ୍ରି. ପିନ୍ଧିଥିବା ଖଡ଼ୁଦ୍ୱାରା ଅନ୍ୟକୁ ଆଘାତ କରିବା ।

ଖଡ଼ୁରୁ—ଗ୍ରା.ବି.କଂସା ଓ ପିତ୍ତଳରଖଡ଼ୁ ତିଆରି କରିବା ଜାତିବିଶେଷ ।

ଖଡ଼ୁଶୀତଳେଇବା-ଗ୍ରା.କ୍ରି. ଖଡ଼ୁକାଢ଼ିବା ଦେଖ, (ଦ୍ର:—ହାତରୁ ଖଡ଼ୁକାଢ଼ିବା ବିଧବା ଲକ୍ଷଣ) ସାଧାରଣତଃ ସଧବା ସ୍ତ୍ରୀ ହାତରୁଖଡ଼ୁକଢ଼ାଯିବାର ଦରକାର ହେଲେ, 'ଖଡ଼ୁକାଢ଼ିବା ରୂପ' ଅମ-ଙ୍ଗଳସୂଚକ ଶବ୍ଦ ବ୍ୟବହାର ନ କରି, 'ଖଡ଼ୁଶୀତଳେଇବା ରୂପ'କୋମଳତର ଶବ୍ଦ ବ୍ୟବହାର କରିଥାନ୍ତି ।

ଖଡ଼ୂ—ସ୍ତ୍ରୀ.ବି. (ଖଡ଼୍+ଉ)ମୃତଶଯ୍ୟା ।

ଖଡ଼ୂର—ବି.ବି°.ଖଡ଼ଯୁକ୍ତ,ଖଡ଼ଡ଼ଯୁକ୍ତ ।

ଖଡ଼େଖଡ଼େ—ଘ୍ରା. କ୍ରି. ବି°. ଠିଆଠିଆ, କୌଣସିଠାରେ ନ ବସି, ତତ୍‌କ୍ଷଣାତ୍, ତୁରନ୍ତ ।

ଖଡ୍ଗ—ପୁଂ.ବି. (ଖଡ଼୍+ଗ)ଲୌହଶସ୍ତ୍ର-ବିଶେଷ, ଖଣ୍ଡା, ତରବାରି, କୁମ୍ଭୀରର ଖଡ଼୍‌, ଗଣ୍ଡାପଶୁ, ଗଣ୍ଡା, ଲୌହ ।

ଖଡ୍ଗକୋଷ—ପୁଂ. ବି. ଖଡ୍ଗଲତା, ଖଣ୍ଡାଖୋଳ, ଖାପ ।

ଖଡ୍ଗଚର୍ମ—କ୍ଲୀ.ବି.(ଦ୍ୱନ୍ଦ୍ୱ)ଢାଲ,ତରବାରି

ଖଡ୍ଗଧର—ବି°. (ଖଡ୍ଗ+ଧୃ+କ.ଅ) ଖଡ୍ଗଧାରୀ, (ସ୍ତ୍ରୀ) ଖଣ୍ଡାଧରା ।

ଖଡ୍ଗଧାର—ପୁଂ.ବି( ୬ତତ୍ )ଖଡ୍ଗଧାରୀ ପୁରୁଷ,ଖଣ୍ଡାଦାଢ଼,ଖଡ୍ଗର ତୀକ୍ଷ୍ଣଭାଗ ।

ଖଡ୍ଗଧାରଣୀ—ସ୍ତ୍ରୀ.ବି°.(ଖଡ୍ଗଧାରିନ୍+ଈ) ଯେଉଁ ସ୍ତ୍ରୀ ଖଡ୍ଗ ଧରିଥାଏ ।

ଖଡ୍ଗଧାରୀ—ପୁଂ. ବି°. (ଖଡ୍ଗ+ଧୃ+କ.ଇନ୍ )ଯେ ଖଡ୍ଗ ଧରିଥାଏ, (ସ୍ତ୍ରୀ) ଖଡ୍ଗ ଧାରଣୀ ।

ଖଡ୍ଗଧେନୁ—ସ୍ତ୍ରୀ.ବି. (ଖଡ୍ଗ+ଧେନୁ) ଖଡ୍ଗପୁତ୍ରିକା, ଛୁରୀ, ମାଇଗଣ୍ଡା, ଛୋଟଖଣ୍ଡା ।

ଖଡ୍ଗଧେନୁକା—ବି.ଖଡ୍ଗଧେନୁ(ଦେଖ ) ।

ଖଡ୍ଗପତ୍ର—ପୁଂ. ବି. (ବ.ବ୍ରୀ)ଇକ୍ଷୁବୃକ୍ଷ, ଖଡ୍ଗଲତା, (କ୍ଲୀ.ବି) ଢାଲ, ଖଣ୍ଡାର ଦାଢ଼ୁଆ ଫଳକ ।

ଖଡ୍ଗପରୀକ୍ଷା—ସ୍ତ୍ରୀ. ବି. ଅଙ୍ଗାଦିଅଷ୍ଟଚିହ୍ନ-ଦ୍ୱାରା ଖଣ୍ଡାର ଶୁଭାଶୁଭ ନିର୍ଣ୍ଣୟ ।

ଖଡ୍ଗପାଣି—ପୁଂ.ବି° (ବ.ବ୍ରୀ) ଯାହାର ହାତରେ ଖଣ୍ଡା ଅଛି, ମାରଣୋନ୍ମୁଖ, ଖଡ୍ଗହସ୍ତ ।

ଖଡ୍ଗପାଳ—ବି.(୬ତତ୍) ଖଣ୍ଡାର ତୀକ୍ଷ୍ଣ ଧାର ।

ଖଡ୍ଗପିଧାନ—କ୍ଲୀ. ବି. (୬ତତ) ଖଡ୍ଗ-କୋଷ, ଖଣ୍ଡାଖୋଳ, ଖାପ ।

ଖଡ୍ଗପିଧାନକ—କ୍ଲୀ. ବି. ଖଣ୍ଡାଖୋଳ, ଖାପ ।

ଖଡ୍ଗପୁଚ୍ଛୀ—ବି°.(ଖଡ଼ଗ+ପୁଚ୍ଛ+ଇନ୍) ଯେଉଁ ଜୀବର ଢାଲପରି ଦେହାବର-ଣର ନିମ୍ନଭାଗରେ ଖଣ୍ଡାପରି ଶଳାକା ଥାଏ,ଯଥା—ସୁମୁଦ୍ର କଙ୍କଡ଼ା ।

ଖଡ଼୍ଗପୁତ୍ର(ପୁତ୍ରିକା)—ବି. (୬ତତ୍)ଏକ ହାତଲମ୍ବା ମୁଠିଥିବା ଛୁରିବିଶେଷ ।

ଖଡ଼୍ଗପ୍ରହାର—ବି.(୩ତତ୍)ଖଣ୍ଡାଘାତ ।

ଖଡ଼୍ଗଫଳ(କ)—ପୁଂ.ବି.ଖଣ୍ଡାର ଫଳକ ବା ଦାଢ଼ୁଆ ପାଖଆ ।

ଖଡ଼୍ଗବନ୍ଧ—ବି. ଖଣ୍ଡା ଆକୃତିବିଶିଷ୍ଟ କ୍ଷେତ୍ରରେ ଅକ୍ଷର ସନ୍ନିବେଶ, ରୂପ-ରଚନାବିଶେଷ ।

ଖଡ଼୍ଗମାଂସ-କ୍ଲୀ.ବି (୬ତତ୍)ଗଣ୍ଡାମାଂସ ।

ଖଡ଼୍ଗମୁଦ୍ରା—ସ୍ତ୍ରୀ.ବି.ତନ୍ତ୍ରୋକ୍ତ ମୁଦ୍ରା-ବିଶେଷ ।

ଖଡ଼ଗମୃଗ—ବି. (କ.ଧା) ଗଣ୍ଡା ।

ଖଡ଼୍ଗସିଂହ—ପଞ୍ଜାବର ଏକାଦଶ ରାଜା, ଏ ରଣଜିତ୍‌ସିଂହଙ୍କର ଜ୍ୟେଷ୍ଠପୁତ୍ର ।

ଖଡ଼୍ଗହସ୍ତ—ପୁଂ.ବି°. (ବ.ବ୍ରୀ)ଯାହାର ହାତରେ ଖଣ୍ଡା ଅଛି, ବିରୁଦ୍ଧାଗ୍ରସ୍ତ,ଏକାନ୍ତ ବିପକ୍ଷ, ଖଣ୍ଡାଦ୍ୱାରା ଅନ୍ୟକୁ ପ୍ରହାର କରିବାକୁ ଉଦ୍ୟତ,(ସ୍ତ୍ରୀ) ଖଡ଼୍ଗହସ୍ତା ।

ଖଡ଼୍ଗହସ୍ତତା—ବି. (ଖଡ଼୍ଗହସ୍ତ+ତା) ବିପକ୍ଷତା, ବିରୋଧ ।

ଖଡ଼୍ଗାଘାତ-ବି.(୩ତତ୍)ଖଣ୍ଡାର ଚୋଟ, ଖଡ଼୍ଗପ୍ରହାର ।

ଖଡ଼୍ଗାଧାର—ବି.(୬ତତ୍)ଖଣ୍ଡାରଖୋଳ ।

ଖଡ଼୍ଗାମିଷ—ବି. ଗଣ୍ଡାର ମାଂସ ।

ଖଡ଼୍ଗାରୀଟ—ପୁଂ. ବି. ଗଣ୍ଡାଚର୍ମ ନିର୍ମିତ ଢାଲ, ହସ୍ତ ଖଣ୍ଡାଦାଢ଼ରେ ଘୂରିବା ରୂପ ବୌଦ୍ଧବ୍ରତ ।

ଖଡ଼୍ଗାବଲୋକ—ବି. ଶାଣଦିଆ ଖଣ୍ଡା-ପରି ଯାହାର ଦୃଷ୍ଟି ତୀକ୍ଷ୍ଣ, ତୀକ୍ଷ୍ଣଦୃଷ୍ଟି ।

ଖଡ଼୍ଗିକ—ବି.ପୁଂ. ମହିଷୀ ଦୁଗ୍ଧର ଫେନ, ଶୌନିକ ମୃଗୟାକାରୀ ।

ଖଡ଼୍ଗିକା—ବି.ସ୍ତ୍ରୀ. (ଖଡ଼୍ଗ+କ+ଆ) ଦାଆ ।

ଖଡ଼୍ଗିଧେନୁ—ବି. ସ୍ତ୍ରୀ. ଗଣ୍ଡକଜାତି, ମାଇଗଣ୍ଡା ।

ଖଡ଼୍ଗିମାର—ବି.ପୁଂ.(ଖଡ଼୍ଗି+ମୃ+ଅ) ଅସ୍ତ୍ରବିଶେଷ, ଖଡ଼୍ଗ-କୋଷଲତା ।

ଖଡ଼୍ଗୀ—ବି.ପୁଂ.(ଖଡ଼୍ଗ+ଇନ୍)ଗଣ୍ଡକ ଗଣ୍ଡା,ଶିବ, ମହାଦେବ, ବି°. ଯେ ଖଡ଼୍ଗଧରେ, ଖଡ଼୍ଗଧାରୀ ।

ଖଡ଼୍ଗୀକ—ବି,କ୍ଲୀ.(ଖଡ଼୍ଗ+ଈକ)ଦାନ, ଦାଆ,ଧାନ ଦାଇବାର ବା କାଟିବାର ଶସ୍ତ୍ର ବିଶେଷ ।

ଖଡ୍‌ଗୀନ—ବ. ପୁଂ. (ଖଡ୍‌ଗ+ଇନ୍) ଗଣ୍ଡା, ବିଂ. ଖଡ୍‌ଗଧାରୀ ।

ଖଣ୍‌ଖଣ୍—ଗ୍ରା. ଅବ୍ୟ, ଶବ୍ଦ ହେବା ଯୋଗୁଁ ବା ଖନାହୋଇଥିବାରୁ ଉଚ୍ଚାରିତ ବାକ୍ୟର ଅନୁନାସିକ ଧ୍ୱନି ।

ଖଣ୍‌ଖଣାସ୍ଥିତ—ବିଂ. (ଖଣଖଣାସ୍ଥ+ଇତ) ଫୁଣ୍‌ଫୁଣ୍ ଶବ୍ଦ କରିବା ।

ଖଣତା—ଗ୍ରା. ବ. (ସଂ-ଖନନ) ଖଣତି, ମାଟି ଖୋଳିବା ଶସ୍ତ୍ରବିଶେଷ ।

ଖଣତି—ଗ୍ରା.ବ. ଖଣତା (ଦେଖ) ।

ଖଣା—ଗ୍ରା. ବ. (ସଂ-ଖନ) ମାଟିରେ ଖୋଳା ହୋଇଥିବା ଗାତ, ଖଣିଗାତ, ବଡ଼ ଓ ଗଭୀର ଗର୍ତ୍ତ, ଖାଇ, ପରିଖା ।

ଖଣାଖୋଳିବା—ଗ୍ରା. କ୍ରି. (ଲକ୍ଷଣାର୍ଥ) ପରର ଅନିଷ୍ଟ ସାଧନ ନିମନ୍ତେ ଉପାୟ କରିବା,ଭୂମିଖୋଳିବା, ଖଣି ବା ଗର୍ତ୍ତ ।

ଖଣି—ଗ୍ରା.ବ. (ସଂ-ଖନ) ଭୂଗର୍ଭରୁ ସ୍ୱର୍ଣ୍ଣ କୋଇଲା ଆଦି ଖନିଜ ପଦାର୍ଥ ଖୋଳି ବାହାର କରିବା ନିମନ୍ତେ ଖୋଳାଯିବା ବଡ଼ ଗର୍ତ୍ତ,ଆକର, କେତେ ମାସ ପାଇଁ ଧାନସଞ୍ଚୟ କରିବା ନିମନ୍ତେ ଭୂଇଁରେ ଖୋଳାହେବା ବଡ଼ ଗାତ ।

ଖଣିଜ—ଗ୍ରା.ବିଂ. (ସଂ-ଖନିଜ) ଖନିଜ (ଦେଖ) ।

ଖଣିପକାଇବା—ଗ୍ରା. କ୍ରି.ଖଣି ଗାତରେ କୌଣସି ପଦାର୍ଥ (ଧାନଆଦି) ରଖି ଖଣିକୁ ମାଟିଦ୍ୱାରା ଆବୃତ କରିବା ।

ଖଣିପଡ଼ିବା—ଗ୍ରା. ବ. ଖଣି ଗାତରେ ସଞ୍ଚିତ ହେବା ।

ଖଣ୍ଡି—ଗ୍ରା. ବ. (ସଂ-ଖଡ୍‌ଗ)ଡକାଏତ, ବଳପୂର୍ବକ ପରର ଧନହରଣ କରିବା ବ୍ୟକ୍ତି,ଡାକୁ, ଧପାବାଜ୍ ଲୋକ, ଠକ, ଖଣ୍ଡାଏତ(ଜାତି),ଜାତିବିଶେଷ ।

ଖଣ୍ଡିମାରିବା—ଗ୍ରା.ବ. ଖଣ୍ଡିମାନେ ଆକ୍ରମଣ କରି ସମ୍ପତ୍ତି ବୋହିନେବା ।

ଖଣ୍ଡ—ଗ୍ରା. ବ. ଇକ୍ଷୁବିକାର, ଶର୍କରା, ଏହା ଗୁଡ଼ରୁ ତିଆର ହୁଏ ।

ଖଣ୍ଡ—ବ. (ଖଣ୍ଡ+ଘ.ଅ) କ୍ଷୁଦ୍ର ଅଂଶ, ଟୁକୁରା, ମିଶ୍ରି, ଶର୍କରା, ପୁସ୍ତକର ଭାଗ ବା କାଣ୍ଡ, ଅଧ୍ୟାୟ, ଗୁଡ଼ର ବିକାର, ପୁଞ୍ଜ,ଦଳ, ଗହ୍ୱର, ଫାଟ, ଦେଶ ବା ମହାଦେଶର ଏକାଂଶ, ମଣିରେ ଥିବା ଦୋଷ, କଳାଲୁଣ, ଧାରାବାହିକତାର ଭଙ୍ଗ, ଫାଙ୍କ, ସମୀକରଣର ଗୋଟିଏ ପୁଞ୍ଜ,ଗ୍ରନ୍ଥି,ନୂଆଶିଙ୍ଗ ଗଜୁରିଥିବାବାଛୁରୀ, ନଅସଂଖ୍ୟା, ଢଗ, ସଙ୍ଗୀତର ତାଳବିଶେଷ, (ବିଂ) ଖଣ୍ଡିତ ।

ଖଣ୍ଡଅକାର—ଗ୍ରା. ବ. ଲୁପ୍ତଅକାର ବା 'ଅ' ଅକ୍ଷରର ଚିହ୍ନ 'ऽ' ।

ଖଣ୍ଡଅକ୍ଷରିଆ—ଗ୍ରା. ବିଂ. ଯେ ସାମାନ୍ୟ ପଢ଼ି ଥାଏ, ଯେ ଭଲକରି ଅକ୍ଷର ଲେଖି ଜାଣେ ନାହିଁ ।

ଖଣ୍ଡକ—ପୁଂ. ବ. ଶର୍କରାବିଶେଷ, ଖଣ୍ଡ, ବିଂ. (ଖଣ୍ଡ+କ, ଅକ) ଯେ ଖଣ୍ଡନ କରେ, ଛେଦକ,ଯାହାର ନଖ ନାହିଁ ।

ଖଣ୍ଡକଥା—ବ. ସ୍ୱଳ୍ପକଥା, କ୍ଷୁଦ୍ର କ୍ଷୁଦ୍ର ଅଂଶରେ ବିଭକ୍ତ ଗଳ୍ପ, ଉପନ୍ୟାସର ଏକ ଭେଦ ।

ଖଣ୍ଡକପାଳ—ଗ୍ରା.ବିଂ.ହତଭାଗ୍ୟ,ଦୁର୍ଭାଗା ।

ଖଣ୍ଡକପାଳିଆ—ଗ୍ରା. ବିଂ. ପୁଂ. ଯାହାର ଭାଗ୍ୟ ଅତଶୟ ମନ୍ଦ ।

ଖଣ୍ଡକର୍ଣ୍ଣ—ପୁଂ.ବ.(ବ.ବ୍ରୀ)ଆଳୁବିଶେଷ, ଶାକରକନ୍ଦା, ବଜ୍ରକନ୍ଦ, ମିଠାଆଳୁ ।

ଖଣ୍ଡକାଦ୍ୟଲୌହ—ପୁଂ.ବ. ଚକ୍ରଦତ୍ତୋକ୍ତ ଏକପ୍ରକାର ଔଷଧ ।

ଖଣ୍ଡକାଳୁ—ପୁଂ. ବ. (ଖଣ୍ଡକ+ଆଳୁ) ଶାକରକନ୍ଦା, ଦେଶୀ ମିଠା ଆଳୁ ।

ଖଣ୍ଡବାକ୍ୟ—କ୍ଳୀ.ବ. ଯେଉଁବାକ୍ୟ ସମ୍ପୂର୍ଣ୍ଣ ବାକ୍ୟ ଲକ୍ଷଣଯୁକ୍ତ ନୁହେ ।

ଖଣ୍ଡକୁଷ୍ମାଣ୍ଡକ—ପୁଂ. ବ. ଚକ୍ରଦତ୍ତୋକ୍ତ ଔଷଧବିଶେଷ ।

ଖଣ୍ଡକ୍ଷୀର—ଗ୍ରା. ବ. ଖଣ୍ଡମିଶିଥିବା ଦୁଧ, ସଶର୍କର ଦୁଗ୍ଧ ।

ଖଣ୍ଡଖଣ୍ଡ—ବିଂ. ଯାହାକୁ ଟିକିଟିକିକରି କଟାଯାଇଅଛି,ଟିକିଟିକି କରାଯାଇଥିବା, (ଗ୍ରା.ଅବ୍ୟ) ଟିକିଟିକି, ଟୁକୁରା ଟୁକୁରା ।

ଖଣ୍ଡିଖଣ୍ଡିଆ—ଗ୍ରା. ବିଂ. ଖଣ୍ଡିତ, ବିଭିନ୍ନ ଅଂଶରେ ବିଭକ୍ତ,ଟିକିଟିକି ହୋଇଥିବା, ଅସ୍ପଷ୍ଟ, ଅଶୁଦ୍ଧଉଚ୍ଚାରଣବିଶିଷ୍ଟ, ଦରୋଟି (କଥା) ।

ଖଣ୍ଡଖର୍ଜୁର—କ୍ଳୀ. ବ. (କ.ଧା) ସୁସ୍ୱାଦୁ ଖର୍ଜୁର, ଗୁଡ଼ଦେଇ ପାକ କରାହୋଇଥିବା ଖଜୁରି ।

ଖଣ୍ଡଖାଦ୍ୟ—ବ. ବ୍ରହ୍ମଗୁପ୍ତପ୍ରଣୀତ ଏକଖଣ୍ଡ ଜ୍ୟୋତିଃଶାସ୍ତ୍ର ।

ଖଣ୍ଡଗିରି—ବ. ଓଡ଼ିଶାନ୍ତର୍ଗତ ପୁରୀଜିଲ୍ଲା ଭୁବନେଶ୍ୱରନିକଟସ୍ଥ ଗୋଟିଏ ପାହାଡ଼ଏଠାରେ ବୌଦ୍ଧ ଓ ଜୈନକୀର୍ତ୍ତି ଅଛି ।

ଖଣ୍ଡଜ—ପୁଂ.ବ. (ଖଣ୍ଡ+ଜନ୍+କ.ଅ) ଗୁଡ଼, ଶର୍କରା, ଚିନି ।

ଖଣ୍ଡତାଳ—ପୁଂ. ବ. ତାଳବିଶେଷ, ଏକତାଳି ।

ଖଣ୍ଡଧାରା—ସ୍ତ୍ରୀ. ବ. (ବ.ବ୍ରୀ) କତୁରୀ, କର୍ତ୍ତରୀ, କଞ୍ଚିରୀ ।

ଖଣ୍ଡନ—କ୍ଳୀ.ବ.(ଖଣ୍ଡ+ଘ,ଅନ)ଭେଦନ, ନିରାକରଣ, ଛେଦନ, ଭାଙ୍ଗିବା,କର୍ତ୍ତନ, କାଟିବା,ପରମତାଦି ନିରାକରଣ, ଶାସ୍ତ୍ର ବିଶେଷ, ବିଶ୍ୱାସକରଣ, ନିବାରଣ, ପ୍ରତାରଣ, ବିନାଶନ, ଆଶାର ବିଫଳକରଣ,ବାଧାଦେବା, ରଦ୍ କରିବା,ନିଜ ସ୍ୱାମୀଅଙ୍ଗରେ ପରନାରୀର ସମ୍ଭୋଗଚିହ୍ନ ଦର୍ଶନହେତୁକ ନାୟିକାର ଅପମାନବୋଧ,ନୃତ୍ୟରେ ମୁଖ ଓ ଓଷ୍ଠରସ୍ଫୁରଣ କିମ୍ବା, ଯଦ୍ଦ୍ୱାରା ପଢ଼ିବା ଖାଇବାଆଦି କର୍ମର ଭାବ ପ୍ରକାଶିତ ହୁଏ ।

ଖଣ୍ଡନା—ସ୍ତ୍ରୀ.ବ.(ଖଣ୍ଡ+ଘ,ଅନ+ଆ) ଖଣ୍ଡନ, ଛେଦନ, ନିରାକରଣ ।

ଖଣ୍ଡନୀୟ—ବିଂ.(ଖଣ୍ଡ+ଣିଂ,ଅନୀୟ)ଯାହାର ଖଣ୍ଡନକରିବା ଉଚିତ, ଖଣ୍ଡନଯୋଗ୍ୟ ।

ଖଣ୍ଡପଡ଼ା—ଗ୍ରା.ବିଂ. ଓଡ଼ିଶାର ପୂର୍ବତନ ଗଡ଼ଜାତ ଏବଂ ବର୍ତ୍ତମାନ ପୁରୀଜିଲ୍ଲା ଅନ୍ତର୍ଗତ ଅଞ୍ଚଳ ।

ଖଣ୍ଡପତି—ବ. (ଷତତ୍) ରାଜା ।

ଖଣ୍ଡପନ୍ଥ—କ୍ଳୀ.ବ.ନାନାପ୍ରକାରପନ୍ଥଗୁଚ୍ଛ ।

ଖଣ୍ଡପରଶୁ—ପୁଂ.ବ.(ବ.ବ୍ରୀ)ଶିବ,ବିଷ୍ଣୁ, ଜାମଦଗ୍ନ୍ୟ, ପରଶୁରାମ, ରାହୁ, ଭଗ୍ନଦନ୍ତ ହସ୍ତୀ, ଚୂର୍ଣ୍ଣଲେପନକାରୀ(ବ୍ୟକ୍ତି) ।

ଖଣ୍ଡପର୍ଶୁ—ପୁଂ. ବ. ପରଶୁରାମ, ଶିବ, ଚୂର୍ଣ୍ଣଲେପୀ, ରାହୁ, ଔଷଧିବିଶେଷ, ଭଗ୍ନଦନ୍ତ ହସ୍ତୀ ।

ଖଣ୍ଡପାକ — ବ. (ଖଣ୍ଡ + ପାକ) ମସଲା ଦ୍ୱାରା ସୁବାସିତ ପାନୀୟ ବା ସିରା ।
ଖଣ୍ଡପାଲ—ପୁଂ. ବ. (ତତ୍ପୁ) ମୋଦକ, ଗୁଡ଼ୁଆ ।
ଖଣ୍ଡପ୍ରଳୟ — ପୁଂ. ବ. (କ.ଧା) କାଳବିଶେଷ, ଯେଉଁକାଳରେ ଭୂମି ପ୍ରଭୃତି ଭୂତପଦାର୍ଥର ନାଶ ହୁଏ, କଳହ, ବିବାଦ ।
ଖଣ୍ଡଫଣ — ପୁଂ. ବ. ଏକପ୍ରକାର ସର୍ପ ।
ଖଣ୍ଡବ — ବ.(ଖଣ୍ଡ + ବ) ମିଠେଇ ।
ଖଣ୍ଡବିକାର — ବ. (ତତ୍ପୁ) ଗୁଡ଼,ଶାକର, ଚକଆଦି ।
ଖଣ୍ଡବିଖଣ୍ଡ—ଗ୍ରା. ଅବ୍ୟ. ବଂ. ଖଣ୍ଡଖଣ୍ଡ (ଦେଖ) ।
ଖଣ୍ଡମଣ୍ଡଳ — କ୍ଲୀ. ବ. ( ତତ୍ପୁ ) ଠିକ୍ ମଣ୍ଡଳାକାର ନୁହେଁ, ବୃତ୍ତାଭାସ,ବର୍ତ୍ତୁଳ, ଗୋଲକ,(ଗ୍ରା.ବ)ସମଗ୍ର ପୃଥିବୀପ୍ରଦେଶ ।
ଖଣ୍ଡମଧୁର — ଗ୍ରା. ବଂ. ଖଣ୍ଡ ବା କନ୍ଦପରି ମିଠା ।
ଖଣ୍ଡମୟ—ବଂ. (ଖଣ୍ଡ + ମୟ) ଯାହା ଖଣ୍ଡ ଖଣ୍ଡ ହୋଇଯାଇଛି, (ସ୍ତ୍ରୀ) ଖଣ୍ଡମୟୀ । [ଦୁଲ୍ଲଭା ଶର୍କରା ।
ଖଣ୍ଡମୋଦକ—ପୁଂ.ବ. ସିତାଖଣ୍ଡ, ଯବାସ,
ଖଣ୍ଡୟିତବ୍ୟ—ବଂ. (ଖଣ୍ଡ + ଣିଚ୍ + ମି. ତବ୍ୟ) ଖଣ୍ଡମୟ (ଦେଖ) ।
ଖଣ୍ଡର—ବ. (ଖଣ୍ଡ + ର) ମିଠେଇ ।
ଖଣ୍ଡରାଜ ଦୀକ୍ଷିତ — ଗୋଦାଲହରୀନାମକ ସଂସ୍କୃତ କାବ୍ୟକାର ।
ଖଣ୍ଡଲ — ପୁଂ. ବଂ. (ଖଣ୍ଡ + ଲ + ଅ) ଖଣ୍ଡଧର, ଯେ ଖଣ୍ଡଧାରଣ କରେ ।
ଖଣ୍ଡଲବଣ — କ୍ଲୀ. ବ. ବିଟଲବଣ, କଳାଲୁଣ, ବଡ଼ଗୋଡ଼ାଲୁଣ ।
ଖଣ୍ଡଶର୍କରା -- ସ୍ତ୍ରୀ. ବ. (କ.ଧା) ଶର୍କରାବିଶେଷ, ଖଣ୍ଡଶାକର, ମିଶ୍ରି, କନ୍ଦ ବା ଗୁଡ଼ର ଟେଲା ।
ଖଣ୍ଡଶଃ — ଅବ୍ୟ.(ଖଣ୍ଡ + ଶସ୍)ଖଣ୍ଡରୂପେ, ଖଣ୍ଡ ଖଣ୍ଡ କରି, ଟିକି ଟିକି କରି ।

ଖଣ୍ଡଶାଖା — ସ୍ତ୍ରୀ. ବ. ମଦ୍ୟଷବଲ୍ଲୀ ଲତା, ଶୁଆଁଲଇପରି ଏହାର ଆକୃତି ।
ଖଣ୍ଡଶୀଳା—ସ୍ତ୍ରୀ. ବ.(ବ.ବ୍ରୀ) ଦୁଷ୍ଟାନାରୀ, ବେଶ୍ୟା, ଅସତୀ ସ୍ତ୍ରୀ ।
ଖଣ୍ଡସ୍ୱ—ବଂ. (ଖଣ୍ଡ + ମି,ଅଣ୍) ଖଣ୍ଡମୟ, ମସକା, ଭଙ୍ଗୁର, ମଟକା ।
ଖଣ୍ଡସର—ପୁଂ. ବ. ( ଖଣ୍ଡ + ସୃ + ଅ ) ସିତାଖଣ୍ଡ, ଖଣ୍ଡିମିଶା ହୋଇଥିବା ଦୁଧସର ।
ଖଣ୍ଡସାର — ବ. ଗୁଡ଼ ।
ଖଣ୍ଡା-ଗ୍ରା.ବ.(ସ-ଖଡ୍ଗ) ଖଡ଼ଗ,ତରବାରି ।
ଖଣ୍ଡାଇତ — କ୍ଷତ୍ରିୟ ଜାତିବିଶେଷ, ଏ ଖଣ୍ଡାଧାରଣ କରନ୍ତି ବୋଲି ଖଣ୍ଡାଇତ ନାମରେ ଖ୍ୟାତ ।
ଖଣ୍ଡାଏତ—ଗ୍ରା.ବ. ଖଣ୍ଡାଇତ (ଦେଖ) ।
ଖଣ୍ଡାଖପର — ଗ୍ରା. ବ. ଖଡ୍ଗ ଓ ମନୁଷ୍ୟ ମୁଣ୍ଡର ଖପୁରି ।
ଖଣ୍ଡାଖାଇ — ଗ୍ରା. ବଂ ସ୍ତ୍ରୀ. ଦୁଷ୍ଟା ସ୍ତ୍ରୀ ।
ଖଣ୍ଡାଖାପ — ଗ୍ରା. ବ. ଖଣ୍ଡାର ଖୋଳ ।
ଖଣ୍ଡାଖୋଲ — ଗ୍ରା. ବ. ଖଣ୍ଡାଖାପ ।
ଖଣ୍ଡାଧାର—ଗ୍ରା.ବ. ଖଣ୍ଡାର ତୀକ୍ଷ୍ଣ ଅଂଶ ବା ଧାର ।
ଖଣ୍ଡାଧାରରେ ବାଟଚାଲିବା — ଗ୍ରା. (ପ୍ରବଚନ ) କଠୋର ନିୟମାଧୀନ ହୋଇ କାର୍ଯ୍ୟ କରିବା, ଖୁବ୍ ସାବଧାନହୋଇ ଚାଲିବା ।
ଖଣ୍ଡାପାଟଲ — ଗ୍ରା.ବ.ଆଠଫୁଟଗୋଲେଇବିଶିଷ୍ଟ ବନ୍ୟ କାଠଗଛବିଶେଷ ।
ଖଣ୍ଡାବୁଲାଇବା — ଗ୍ରା. କ୍ରି. କ୍ରୀଡ଼ା ବା ଆତ୍ମରକ୍ଷା ନିମନ୍ତେ ଖଣ୍ଡାକୁ ହାତରେ ଧରି ନିଜଶରୀରର ଚାରିପାଖେଘୂରାଇବା ।
ଖଣ୍ଡାମଲକ—କ୍ଲୀ.ବ. ଆମଳକୀ ମୋରବ୍ବା, ଖଣ୍ଡଦ୍ୱାରା ପକ୍ୱ ଅଁଳାଫଳ ।
ଖଣ୍ଡାହଣା— ଗ୍ରା. ବ. ଓଡ଼ିଶା ମୋଗଲ ବନ୍ଦିର ପର୍ବତବିଶେଷ ।
ଖଣ୍ଡାଳୀ — ସ୍ତ୍ରୀ. ବ. ସରସୀ, କାମୁକୀ ସ୍ତ୍ରୀ, ତୈଳର ପରିମାଣବିଶେଷ ।
ଖଣ୍ଡି—ଗ୍ରା. ବ. କ୍ଷୁଦ୍ର ଖଣ୍ଡ ବା ଭାଗ, ଏକଗୋଟି ବା ସଂଖ୍ୟା, ୨୦ମାଣ ପରିମାଣ, ନଗାଡଟ, ବ୍ରାହ୍ମଣ ଶାସନରେ ଗୋଟିଏ ଭାଗ ବା ଅଂଶ (ବଂ) ଖଣ୍ଡେ, ଗୋଟେ ।
ଖଣ୍ଡିଆ — ଗ୍ରା. ବଂ. ବିକଳାଙ୍ଗ, ଅସ୍ତ୍ରାଦିଦ୍ୱାରା କ୍ଷତଯୁକ୍ତ, କ୍ଷତବିକ୍ଷତ, ଭଗ୍ନ, ଅସମ୍ପୂର୍ଣ୍ଣ କୁଷ୍ଠରୋଗୀ ।
ଖଣ୍ଡିଆଖାବରା — ଗ୍ରା.ବଂ.କ୍ଷତ ଓ ଛୋଟ ।
ଖଣ୍ଡିଆଦାଣ୍ଡିଆ — ଗ୍ରା. ବଂ. କ୍ଷତବିକ୍ଷତ ଓ ସ୍ଥୂଳତାଙ୍ଗ । ( ବାୟୁ ।
ଖଣ୍ଡିଆଭୂତ - ଗ୍ରା.ବ. ଚକ୍ରପବନ, ଘୂର୍ଣ୍ଣୀ-
ଖଣ୍ଡିଉଡ଼ା — ଗ୍ରା.ବ.ପକ୍ଷିଶାବକ ବା କ୍ଷୁଦ୍ର ପକ୍ଷବିଶିଷ୍ଟପକ୍ଷୀମାନଙ୍କରସାମାନ୍ୟଭାବରେ ଉଡ଼ିବା(ସମ୍ପୂର୍ଣ୍ଣରୂପେ ଉଡ଼ିପାରୁ ନ ଥିବା ଯୋଗୁଁ ଖଣ୍ଡ ଦୂର ବାଟ ଉଡ଼ି ବିଶ୍ରାମ ନେଇ ପୁଣି ଉଡ଼ିବା) (ଲକ୍ଷଣାର୍ଥ) ଯେଉଁ ବାଳକ ଗୃହ ଚଳାଇବାରେ ଭଲରୂପେ କ୍ଷମ ହୋଇ ନାହିଁ ।
ଖଣ୍ଡିଏ — ଗ୍ରା. ବ. ଏକଖଣ୍ଡ ମାତ୍ର, ଏକ ସଂଖ୍ୟା,(ଗ୍ରା.ବଂ.)ଏକସଂଖ୍ୟକ ଗୋଟିଏ ।
ଖଣ୍ଡିକ — ଗ୍ରା. ବ. ଖଣ୍ଡେମାତ୍ର,ଗୋଟିଏ, ( ସ-ବ-ଖଣ୍ଡ + ଇକ ) ଛାତ୍ର, ଶିଷ୍ୟ, ଗୁଡ଼ ରାନ୍ଧିବା ବ୍ୟକ୍ତି, କ.ଖସନ୍ଧ, ଋଷିବିଶେଷ,ମଟରମଞ୍ଜି,ଖେସାରି,ବଂ.କ୍ଷୁଦ୍ର, କ୍ରୋଧାନ୍ୱିତ, (ସ୍ତ୍ରୀ) ଖଣ୍ଡିକା । [ଭାଷା ।
ଖଣ୍ଡିକଥା—ଗ୍ରା.ବ.ଶିଶୁମାନଙ୍କର ଦରୋଟି
ଖଣ୍ଡିକାଶ — ଗ୍ରା. ବ. ଧୀରେ ଧୀରେ ଉପର୍ଯ୍ୟୁପରି କାଶିବା, ଖୁଁ ଖୁଁ କାଶ ।
ଖଣ୍ଡିକିଆ—ଗ୍ରା. ବଂ. ଏକଖଣ୍ଡବିଶିଷ୍ଟ, ଏକଖଣ୍ଡି ପରିମିତ (ଗୌଣ) ।
ଖଣ୍ଡିକୁହା — ଗ୍ରା.ବଂ. ଯେ ଅନ୍ୟର ମର୍ମକୁ ବାଧିଲଭଳି କଥା କହେ, ଖନା.ବ,ମର୍ମଭେଦବାକ୍ୟ,ଅସମ୍ପୂର୍ଣ୍ଣବାକ୍ୟ,ଖନାକଥା ।
ଖଣ୍ଡିଖଣ୍ଡି— ଗ୍ରା.ଅବ୍ୟ. ଖଣ୍ଡଖଣ୍ଡ (ଦେଖ) ।
ଖଣ୍ଡିଖଣ୍ଡିଆ - ଗ୍ରା. ବଂ. ଖଣ୍ଡଖଣ୍ଡିଆ (ଦେଖ) ।
ଖଣ୍ଡିଗୁଣିଆଁ — ଗ୍ରା. ବଂ.କୁତ୍ସିତ ପ୍ରକାରେ ଖାଦ୍ୟଲୋଭୀ, କୃପଣ, ଅବଗୁଣିଆଁ ।
ଖଣ୍ଡିଗୁଣା—ଗ୍ରା. ବ. ସ୍ତ୍ରୀଲୋକମାନଙ୍କର ନାକ ଫୋଡ଼ାଇବେଳେ, ଅପଣ୍ଡିଆଣୀ ବା ଛୋଟ ସ୍ତ୍ରୀ ପିଲାମାନଙ୍କର କାନରେ ପିନ୍ଧା ଯିବା ଛୋଟଗୁଣା ।

ଖଣ୍ଡିତ—ବି.ବଂ. (ଖଣ୍ଡ୍ + ମଂ.ତ) ଭଗ୍ନ, ଛିନ୍ନ, ଦ୍ୱିଧାକୃତ, ବିନାଶିତ, କ୍ଷୟିତ, ଯୁକ୍ତିଦ୍ୱାରା ନିରସିତ, ଅଦଳ କରାଯାଇ-ଥିବା, ଅନାଦୃତ, ପରିତ୍ୟକ୍ତ, ଭଗ୍ନ, ବିଭକ୍ତ ।

ଖଣ୍ଡିତବିଗ୍ରହ-ପୁଂ.ବଂ. (ବ.ବ୍ରୀ.) ଯାହାର ଦେହର ଅଂଶ ଖଣ୍ଡିତ ହୋଇଅଛି, ବିକଳାଙ୍ଗ (ବି. କ-ଧା) ଖଣ୍ଡିତାଙ୍ଗ ଦେବତା ।

ଖଣ୍ଡିତବୃତ୍ତ-ପୁଂ.ବି.(ବ.ବ୍ରୀ)ଦୁଷ୍ଚରିତ୍ର, ସ୍ୱୈରାଚାରୀ, ଦୁରାଚାର ।

ଖଣ୍ଡିତା—ସ୍ତ୍ରୀ. ବି. ନାୟିକାବିଶେଷ, ସ୍ୱାମୀର ପରନାରୀ ସହବାସ ଚିହ୍ନାଦି ଦର୍ଶନରେ କୁପିତା ଓ ଈର୍ଷାଯୁକ୍ତା ସ୍ତ୍ରୀ ।

ଖଣ୍ଡିତାଶଂସ—ପୁଂ. ବି. (ବ.ବ୍ରୀ)ଯାହାର ଆଶା ତୁଟି ଯାଇଅଛି, ଯେ ଆଶା କରି ପରେ ନିରାଶ ହୋଇଅଛି ।

ଖଣ୍ଡିନୀ—ସ୍ତ୍ରୀ. ବି. (ଖଣ୍ଡିନ୍ + ଈ)ପୃଥିବୀ (ଶବ୍ଦରତ୍ନାବଳୀ) ।

ଖଣ୍ଡିପଞ୍ଜର—ଗ୍ରା. ବଂ. ଯେଉଁ ବଳଦର ଦୁଇ ପାଖର ପଞ୍ଜରା ସମାନ ନ ଥାଏ ।

ଖଣ୍ଡିପାଳକ—ଗ୍ରା. ବି. ଦେଶର ଏକ ଅଂଶରେ ଶସ୍ୟାଦି ଭଲହେବା ଓ ଅନ୍ୟ ଅଂଶରେ ବର୍ଷାର ଅଭାବରୁ ଶସ୍ୟାଦି ଭଲ ନ ହେବା ।

ଖଣ୍ଡିବା—ଗ୍ରା.କ୍ରି. ନାଶ କରିବା, ଛେଦନ କରିବା, ହାଣିବା, କାଟିବା, ହରଣ କରିବା, (ଦୁଃଖ)ଦୂରକରିବା, (ଅନୁଷ୍ଠାନ) ବିଘ୍ନ କରିବା, ଭାଙ୍ଗିବା, କ୍ଷମାଦେବା, ଯୁକ୍ତି ବିତର୍କ ଆଦିକୁ ପ୍ରତିଯୁକ୍ତିଦ୍ୱାରା କାଟିବା, ରଦ୍ଦକରିବା, ଅମାନ୍ୟ କରିବା, ପୃଥକ୍ କରିବା ।

ଖଣ୍ଡିମା—ପୁଂ.ବି.(ଖଣ୍ଡ + ଇମନ୍)ଖଣ୍ଡତା, ନ୍ୟୂନତା, ଖଣ୍ଡିତ ଅବସ୍ଥା ।

ଖଣ୍ଡି ଲଙ୍ଗୁଡ଼ା(ଡ଼ିଆ)-ଗ୍ରା.ପୁଂ. ବି. ଯେଉଁ ଜନ୍ତୁର ଲାଙ୍ଗୁଡ଼ର ଅଗ କଟିଯାଇ ତହିଁରୁ ଖଣ୍ଡେ ମାତ୍ର ଥାଏ, ଲଙ୍ଗୁଡ଼ଖଣ୍ଡିଆ ।

ଖଣ୍ଡୀ—ପୁଂ. ବି. (ଖଣ୍ଡ + ଇନ୍) ଖଣ୍ଡକ, ଯେ ଖଣ୍ଡ କରେ, ଖଣ୍ଡଯୁକ୍ତ, ବିଭକ୍ତ ଅଂଶ-ବିଶିଷ୍ଟ, (ସ୍ତ୍ରୀ) ଖଣ୍ଡିନୀ (ଗ୍ରା. ବଂ. ସ୍ତ୍ରୀ) ଯେଉଁ ସ୍ତ୍ରୀ ଶରୀରର କୌଣସି ଗୋଟିଏ ଅଙ୍ଗ ନ ଥାଏ ।

ଖଣ୍ଡୀ—ସ୍ତ୍ରୀ. ବି. (ଖଣ୍ଡ + ଅ + ଈ) ବଣ ମୁଗ, ବନମୁଦ୍ଗ ।

ଖଣ୍ଡୀର—ପୁଂ. ବି. ପୀତବର୍ଣ୍ଣ ମୁଗ, ହଳଦିଆବର୍ଣ୍ଣ ମୁଗ, ସୁନାମୁଗ ।

ଖଣ୍ଡୁଆ-ଗ୍ରା. ବି. ଭଦ୍ର ସ୍ତ୍ରୀମାନେ ବାହାରକୁ ବାହାରିବା ସମୟରେ ପିନ୍ଧିବା ଲୁଗା ଉପରେ ନାନା ବର୍ଣ୍ଣ, ଚିତ୍ରସମ୍ବଳିତ-ପକାଇଥିବା ଓଢ଼ଣୀ, ଗୁଜରାଟ ପ୍ରଦେଶର ଜାତିବିଶେଷ ।

ଖଣ୍ଡୁଆଳ—ଗ୍ରା. ବି. ଓଡ଼ିଶାରେ ଶୂଦ୍ରଙ୍କ ବଂଶୋପାଧିବିଶେଷ ।

ଖଣ୍ଡୁଲ—ବି. ଏକପ୍ରକାର ବୃକ୍ଷ, ଗୋରୁ ବାଛୁରୀ ଦେହ ଅସୁସ୍ଥ ହେଲେ ଏହାର ପତ୍ର ଖୁଆନ୍ତି ।

ଖଣ୍ଡେ—ଗ୍ରା. ବି. ବଂ. ଖଣ୍ଡିଏ, ଗୋଟିଏ ପଦାର୍ଥର କେତେକ ଅଂଶ, (ଅବ୍ୟ) ପ୍ରାୟ ।

ଖଣ୍ଡେଛଡ଼ା—ଗ୍ରା.କ୍ରି.ବଂ.ଅଳ୍ପ ଦୂରରେ ।

ଖଣ୍ଡେଦୂର—ଗ୍ରା. ବି. ଅଳ୍ପ ଦୂରତ୍ୱ, ସାମାନ୍ୟ ଦୂରତ୍ୱ, ବଂ. ଅଳ୍ପଦୂରବର୍ତ୍ତୀ, (କ୍ରି.ବଂ)ସାମାନ୍ୟ ଦୂରତ୍ୱ ପର୍ଯ୍ୟନ୍ତ, କିଛି ଦୂର, ଅଂଶତଃ, ଅଳ୍ପଦୂରରେ ।

ଖତ୍ନା—ଯା. ବି. ସୁନ୍ନତ, ଯିହୁଦୀ ଓ ମୁସଲମାନ ଧର୍ମର ସଂସ୍କାର ବିଶେଷ ।

ଖତ୍ମା—ଯା. ବି. କୌଣସି ବିଷୟର ଅନୁସନ୍ଧାନ ଶେଷ ହେଲେ ତତ୍ସମ୍ବନ୍ଧେ ଦିଆଯିବା ରିପୋର୍ଟ ।

ଖତବା—ଯା.ବି.ମସ୍ଜିଦ୍‌ରେ ମୁସଲମାନ-ମାନଙ୍କର ଶୁକ୍ରବାର ଦିନ କରାଯିବା ପ୍ରାର୍ଥନା ।

ଖତ—ଯା. ବି. ଦଲିଲ, ଚୁକ୍ତିପତ୍ର, ଚିଠି-ପତ୍ର, ତମସୁକ, ଚିଠା, କଲମର ସୂକ୍ଷ୍ମ ଅକ୍ଷର, ଚିହ୍ନ, ଦାଗ, ସ୍ୱୀକାରପତ୍ର, ଭୂଇଁରେ ନାକ ଘଷି ଦୋଷ ସ୍ୱୀକାର କରିବା, (ଗ୍ରା.ବି) ଗୋବର, ପଚାସଢ଼ା ଜିନିଷ, ପାଉଁଶ ।

ଖତକୁଢ଼—ଗ୍ରା. ବି. (ସଂ-ଖାଦ୍ୟ + କୂଳ) ଗୋବର ପାଉଁଶ ଅଳିଆ ଆଦି ଜମା ହେବା ସ୍ଥାନ ବା ଗଦା ।

ଖତକୁର—ପ୍ରା. (ସମ୍ବ) ବି. ଖତକୁଢ଼ (ଦେଖ) ।

ଖତଗଦା—ଗ୍ରା. ବି.ଖତକୁଢ଼ (ଦେଖ) ।

ଖତଗାଡ଼—ଗ୍ରା. ବି. ଖତକୁଢ଼ (ଦେଖ), ଯେଉଁଗାତରେ ଗୋବର ଅଳିଆ ଆଦି ଜମା କରାଯାଏ ।

ଖତପତ୍ର—ଗ୍ରା. ବି. ତମସୁକ, ଋଣପତ୍ର, (ପ୍ରା.ପୁରୀ. ବି.) ଜଗନ୍ନାଥ ଯାତ୍ରୀମାନେ ପଣ୍ଡାଙ୍କୁ ଦକ୍ଷିଣା ନ ଦେଇପାରଲେ ପଛେଦେବା ନିମନ୍ତେ ଲେଖି ଦେଇଯିବା ଋଣପତ୍ର ।

ଖତମ୍—ଯା. ବି. ଶେଷ, ବିରାମ, ବିଶ୍ରାନ୍ତ, ଅବସାନ, ମୃତ୍ୟୁ, ଲୋପ, ବିନାଶ, ସମାପ୍ତି, (ବଂ) ସମାପ୍ତ, ସମ୍ପୂର୍ଣ୍ଣ, ବିନଷ୍ଟ, ହତ, ମୃତ, ଲୁପ୍ତ, ଅବସାନପ୍ରାପ୍ତ ।

ଖତମାଳ-ପୁଂ.ବି. (୭ତତ୍ପୁ)(ଖ + ତମାଳ) ଧୂମ, ମେଘ, ଧୂଆଁ ।

ଖତର—ଯା. ବିପଦ, ସ୍ମରଣ, ଗ୍ରାମର ପଶ୍ଚାଦ୍‌ଭାଗ, ଗାଁଆର ପଛପାଖ, ଯେଉଁ-ଠାରେ ମଇଳା ପକାନ୍ତି ।

ଖତରା—ଗ୍ରା. ବଂ. ପୋରହା, କୋତରା, ପଚ ନଷ୍ଟ ହୋଇଯାଇଥିବା (କାଠ ଇତ୍ୟାଦି), (ଗ୍ରା. ସମ୍ବ. ବି.) ଥଟ୍ଟା, ପରିହାସ ।

ଖତା—ଗ୍ରା. ବି. ମୁଖଦନ୍ତ ଓ ଜିହ୍ୱା ଆଦି ବିକୃତ କରି ଅନ୍ୟକୁ ପରିହାସ କରିବା ।

ଖତାଇବା—ଗ୍ରା.କ୍ରି.ମୁଖ, ଦନ୍ତ ଓ ଜିହ୍ୱା ଆଦିକୁ ବିକୃତ ଭଙ୍ଗି କରି ଅନ୍ୟକୁ ପରିହାସ କରିବା, ଖତାଇହେବା ।

ଖତାଖତ—ଗ୍ରା.ବି.ପରସ୍ପରକୁ ଲକ୍ଷ୍ୟ କରି ଖତାଇ ହେବା ।

ଖତାନ—ଯା. ବି. ଗଣନ, ହିସାବର ନିଷ୍ପତ୍ତିକରଣ, ଗଣତ, ହିସାବ ଲେଖିବା ।

ଖତିଆନ୍—ଯା. ବି. ଯେଉଁ କାଗଜରେ ପ୍ରଜାର ଜମିଜମା ଲେଖାଥାଏ ଓ ଖଜଣା ଇତ୍ୟାଦି ନିରୂପଣ ଓ ଆୟର

ହିସାବ ଥାଏ, ବ୍ୟବସାୟରେ ଖରିଦ୍ ବିକିର ଦୈନିକ ହିସାବ ଲେଖାଯିବା ଖାତା । [ ଜମି ।

ଖଡର — ଯା. ବି. ନଈକୂଳିଆ ବାଲିଚର

ଖଡୁଆ(ର)- ଗ୍ରା.ବିଂ.ଖଡୁରା(ଦେଖ),ଖଡ-ପର ଗନ୍ଧ ଥିବା, ଖଡଯୋଗୁଁ ଅତ୍ୟନ୍ତ ଉର୍ବର (ଜମି) ।

ଖଡ୍‌ଖଡ୍ (ଖାଡ୍)— ଗ୍ରା. ଅବ୍ୟ. ଉପର୍ଯ୍ୟୁ-ପରି ପାଣି ପଡ଼ିବାର ଶବ୍ଦ ।

ଖଦଖଦିଆ—ଗ୍ରା. ବିଂ. ଯେଉଁ ପାନୀୟ ବା ତରଳୀୟ ପଦାର୍ଥରେ ବାଲି ବା ମଣ୍ଡ ଥାଏ, ଅମସୃଣ, ଅଚିକ୍କଣ ।

ଖଦଡ଼ — ଗ୍ରା.ବି. ଖଣ୍ଡ ଖଣ୍ଡିଆ କ୍ଷୁଦ୍ର ବସ୍ତୁ, ହାତକଟା ସୂତାରେ ବୁଣାହେବା ମୋଟ ଲୁଗା ବା ଖଦି, ବଟା ତରଳୀୟ ପଦାର୍ଥ ଛଣାହେଲେ ପରେ ଯେଉଁ କଠିନ ଅଂଶମାନ ରହେ, ସିଠା ।

ଖଦଡ଼ିଆ — ଗ୍ରା.ବିଂ. ବଗଡ଼ା, ଅଚିକଣ, ଅନିର୍ମଳ, ଖଣ୍ଡଖଣ୍ଡିଆ ।

ଖଦା — ଗ୍ରା.ବି.(ସଂ-କ୍ଷୋଦ) ସିଠା, ମଣ୍ଡ, ଜଙ୍ଗଲରେ ଗିର୍ଦାକରି ହାତୀ ଧରିବା, ଜଙ୍ଗଲରେ ଜନ୍ତୁମାନଙ୍କ ପାଣି ଖାଉ-ଥିବା ସ୍ଥାନରେ ବାଣୁଆଁମାନେ ଜଗି ବଧ କରିବା, ବିବାହାଦି ବ୍ୟୟସାଧ୍ୟ କାର୍ଯ୍ୟ ।

ଖଦାଇ — ଗ୍ରା.ବି.ଜମିବାଡ଼ ନଥିବା ରଇତ, ଗୃହହୀନ ରଇତ ।

ଖଦାନ — ଗ୍ରା.(ସମ୍ଭ)ବି.ଖଣି,ଉତ୍ପତ୍ତିସ୍ଥାନ ।

ଖଦି — ଗ୍ରା. ବି. ଛୋଟ ମୋଟା ଲୁଗା, ହାତକଟା ସୂତାରେ ବୁଣାହେବା ମୋଟା ଲୁଗା ।

ଖଦୋକା—ସ୍ତ୍ରୀ.ବି. (ଖ+ଦୋ+କ+ଆ) ଖଇ, ଲଜା, ଲିଆ ।

ଖଦିଜା — ମହମ୍ମଦଙ୍କ ପ୍ରଥମା ସ୍ତ୍ରୀ. ।

ଖଦିମ — ଯା. ବି. ଭୃତ୍ୟ, ଏଦେଶେ ମସଜିଦ୍ ପ୍ରଭୃତି ଯାହାର ଜମା ଥାଏ ।

ଖଦିର — ପୁଂ.ବି.(ଖଦ୍+କ,ଇର)ଖଇର ଗଛ, ଇନ୍ଦ୍ର, ଚନ୍ଦ୍ର, (ବି.କ୍ଳୀ) ଖଇର ।

ଖଦିରକ — ପୁଂ.ବି. ଖଇର ଗଛ ।

ଖଦିରକଷାୟ — ପୁଂ. ବି. ଔଷଧବିଶେଷ, ଖଦିରକ୍ୱାଥ ।

ଖଦିରକୁଣ — ବି. (ଖଦିର+କୁଣ)ଖଦିର ଗଛର ଫଳଫଳିବା ଋତୁ ।

ଖଦିରପତ୍ରିକା — ସ୍ତ୍ରୀ. ବି. (ବି.ବ୍ରୀ) ଲଜ-କୁଳୀ ଲତା, ଅରିମେଦ ବୃକ୍ଷ, ପାକଡ଼ା ଖଇର ।

ଖଦିରମସ୍ତ — ବିଂ.(ଖଦିର+ମସ୍ତ)ଖଦିର କାଷ୍ଠନିର୍ମିତ ।

ଖଦିରବଣ — କ୍ଳୀ.ବି. ଖଇରବନ ।

ଖଦିରସାର — ପୁଂ.ବି. (୬ତତ୍ପୁ ) ଖଇର ରସ, ଖଇର ଗଛରୁ ଉତ୍ପନ୍ନ ଅଠା ବା ଖଇର ।

ଖଦିରିକା — ସ୍ତ୍ରୀ.ବି.(ଖଦ+ଇର+କ+ଆ) ଲକ୍ଷ,ଲାଖ,ଜଉ, ଲଜକୁଳୀ ଲତା, ଲଙ୍କାଳୁ ଲତା ।

ଖଦିରୀ—ସ୍ତ୍ରୀ. ବି. ଲଜକୁଳୀଲତା, ହାଡ଼ଯୋଡ଼ାଲତା, ବରାହକାନ୍ତା, ବାଲି-ଚେଙ୍ଗ, ହାଡ଼କଙ୍କାଳୀ ଲତା ।

ଖଦୂରବାସିନୀ — ସ୍ତ୍ରୀ. ବି. (ଖ+ଦୂର+ବସ୍+ଇନ୍+ଈ) ବୁଦ୍ଧି ଶକ୍ତିବିଶେଷ ।

ଖଦ୍ୟ—ତ୍ରି. ବିଂ. (ଖଦ୍+ଯ) ସ୍ଥିରତା ବିଷୟରେ ହିତକର ।

ଖଦ୍ୟପତ୍ରୀ — ସ୍ତ୍ରୀ. ବି. (ଖଦ୍ୟପତ୍ର+ଈ) ଖଦିର, ଖଇର ।

ଖଦ୍ୟୋତ—ପୁଂ.ବି.(ଖ+ଦ୍ୟୁତ୍+କ.ଅ ଜୁଳୁଜୁଳିଆ ପୋକ, ଜ୍ୟୋତିରିଙ୍ଗଣ, ସୂର୍ଯ୍ୟ-କାନ୍ତ, ସୂର୍ଯ୍ୟ, (ଲ.ଅର୍ଥ) କ୍ଷଣକାଳ-ସ୍ଥାୟୀ ସୁଖ,. ଚକ୍ଷୁ ।

ଖଦ୍ୟୋତକ — ପୁଂ.ବି. (ଖଦ୍ୟୋତ+କୈ+ଅ) ଏକପ୍ରକାର ବୃକ୍ଷ; ଏହାର ଫଳ ଅତ୍ୟନ୍ତ ବିଷାକ୍ତ, ସୂର୍ଯ୍ୟ ।

ଖଦ୍ୟୋତନ — ପୁଂ. ବି. (ଖ+ଦ୍ୟୁତ୍+କ.ଅନ) ସୂର୍ଯ୍ୟ ।

ଖଦ୍ୟୋତିକା — ବି. (ଖଦ୍ୟୋତ+କ+ଆ) ଜ୍ୟୋତିରିଙ୍ଗଣ, ଜୁଳୁଜୁଳିଆ ।

ଖଧୂପ-ପୁଂ.ବିଂ.(ଖ+ଧୂପ+ଅ)ଆକାଶ-ଗାମୀ ଅଗ୍ନିଶିଖାଯୁକ୍ତ ପଦାର୍ଥବିଶେଷ, ବାୟୁବ୍ୟାପୀସୁଗନ୍ଧ,ତୋପ,ହାଉଇବାଣ ।

ଖଧେର — ପ୍ରା. (ସମ୍ଭ) ବି. (ସଂ-ଖାଦ୍ୟ) ଖାଦ୍ୟ, ଆହାର ।

ଖନ୍‌ଖନ୍—ଗ୍ରା. ଅବ୍ୟ. ଖଣଖଣ(ଦେଖ) ।

ଖନକ — ପୁଂ.ବି.(ଖନ+କ.ଅକ)ମୂଷିକ, ସନ୍ଧିତସ୍କର, ସିନ୍ଧିଆଚୋର, ସ୍ୱର୍ଣ୍ଣାଦିର ଉତ୍ପତ୍ତି ସ୍ଥାନ, ଆକର, ଖଣି, (ବିଂ)ଯେ ଭୂମି ଖୋଳେ, ଭୂତତ୍ତ୍ୱଜ୍ଞ, ସ୍ୱର୍ଣ୍ଣାଦିର ଉତ୍ପତ୍ତିସ୍ଥାନଜ୍ଞ ।

ଖନତ୍‌କାର— ଗ୍ରା. ବି. ମାଟି ଖୋଳାଳି, ମାଟିଖୋଳିବା ବ୍ୟକ୍ତି ।

ଖନନ — କ୍ଳୀ.ବି.(ଖନ୍+ଭା.ଅନ) ଖାତ-କରିବା, ଗାତ କରିବା, ଖୋଳିବା, ପୋତିବା, ପୁଂ.ବିଂ. (ଖନ+କ.ଅନ) ଖନିବିଦ୍ୟାବିତ୍ ବ୍ୟକ୍ତି ।

ଖନନୀୟ—ତ୍ରି. ବିଂ. (ଖନ+ର୍ମ.ଅନୀୟ) ଖୋଳିବାର ଯୋଗ୍ୟ, ଖନନସାଧ୍ୟ, (ସ୍ତ୍ରୀ) ଖନନୀୟା ।

ଖନିତ୍ରୀ—ସ୍ତ୍ରୀ. ବି. ଖୋଳିବାର ଅସ୍ତ୍ର-ବିଶେଷ, ଖଣତି, ସାବଳ, କୋଡ଼ି ଇତ୍ୟାଦି ।

ଖନା—ଗ୍ରା.ପୁଂ.ବି. ଯେ ନାସିକାଯୋଗେ କଥା କହେ, ଯାହାର ଉଚ୍ଚାରଣ ଅସ୍ପଷ୍ଟ, ଅସ୍ପଷ୍ଟବାକ୍,ତୋତା,(ସ୍ତ୍ରୀ) ଖନୀ,(ସ୍ତ୍ରୀ.ବି.) ଜଣେ ବିଦୁଷୀରମଣୀ(ପ୍ରଧାନଜ୍ୟୋତିର୍ବିଦ ମିହିରଙ୍କର ପତ୍ନୀ) ।

ଖନି — ବି. (ଖନ୍+ର୍ମ.ଇ) ଖଣି, ଆକର, ଧାତୁମାନଙ୍କର ଉତ୍ପତ୍ତିସ୍ଥାନ, ବଡ଼ଗାତ, ଖୋଳିବା ।

ଖନିକ — ବି. (ଖନ+କ.ଇକ) ସିନ୍ଧିଆଳ ଚୋର ।

ଖନିଜ — ତ୍ରି. ବିଂ. ( ଖନି+ଜନ୍+କ. ଅ) ଖଣିରୁ ଜାତ, ମନୁଷ୍ୟର ବ୍ୟବ-ହାରୋପଯୋଗୀ ଯେ କୌଣସି ପାର୍ଥିବ ପଦାର୍ଥକୁ ମାଟି ଖୋଳି ବାହାର କରା-ଯାଏ ତାହାକୁ ଖନିଜ ବୋଲାଯାଏ ।

ଖନିତ—ବିଂ. ( ଖନ+ର୍ମ.ତ ) ଯାହା ଖୋଳା ଯାଇଅଛି ।

ଖନିତା — ପୁଂ. ବିଂ. (ଖନ+କ.ତୃ) ଯେ ଖୋଳେ, ଖନକ, (ସ୍ତ୍ରୀ) ଖନିତ୍ରୀ ।

ଖନିତ୍ର—କ୍ଲୀ. ବି. (ଖନ୍+ଇତ୍ର) ଖୋଳିବା ଅସ୍ତ୍ରବିଶେଷ, ଖଣତି, କୋଡ଼ି, କାଙ୍କ, ଗଇନ୍ତୀ।

ଖନିତ୍ରକ—କ୍ଲୀ.ବି, (ଖନିତ୍ର+କ)ଖନିତ୍ର, ଖଣତି, କୋଡ଼ିଆଦି।

ଖନିତ୍ରିକା—ବି. (ଖନିତ୍ର+କ+ଆ) ଖନିତ୍ର (ଦେଖ)।

ଖନିତ୍ରିମ—ତ୍ରି. ବିଂ. (ଖନ+ତ୍ରିମ)ଯାହା ଖୋଳିବାଦ୍ୱାରା ବାହାରେ।

ଖନିତ୍ରୀ—ସ୍ତ୍ରୀ. ବି. (ଖନିତ୍ର+ଈ) ଖନିତ୍ର (ଦେଖ)।

ଖନିବାଜିବା—ଗ୍ରା. ବି. ଅତ୍ୟନ୍ତ ଶୈତ୍ୟ ଓ ଭୟହେତୁ ପାଟି କୋଲମାରିଯିବାରୁ ଓଠ ଲାଗିବା ଓ ପାଟିରୁ କଥା ସ୍ପଷ୍ଟ ହୋଇ ନ ବାହାରିବା, ସ୍ୱଭାବ ଦୋଷରୁ ଅସ୍ପଷ୍ଟ ଉଚ୍ଚାରଣ।

ଖନି-ସ୍ତ୍ରୀ.ବି.(ଖନ୍+ଇ)ଧାତୁ ଓ ରତ୍ନାଦିର ଉତ୍ପତ୍ତିସ୍ଥାନ, ଭୂମିଦାରଣ, ଆଧାର, ଖାତ,ଗାତ,(ଗ୍ରାସ୍ତ୍ରୀ.ବି.)ଖନାର ସ୍ତ୍ରୀଲିଙ୍ଗ।

ଖନେଇବା—ଗ୍ରା. କ୍ରି. ଖଣ୍ଡିତ ବାକ୍ୟ ଉଚ୍ଚାରଣ କରିବା, ଅସ୍ପଷ୍ଟ ବା ଖଣ୍ଡ-ଖଣ୍ଡିଆ କଥା କହିବା।

ଖ'ନ୍ତା—ବି. ମୃତ୍ତିକା ଖନନ କରିବାର ଏକପ୍ରକାର ଅସ୍ତ୍ର, ଖଣତି।

ଖନ୍ଦ—ଗ୍ରା.ବି. ଶସ୍ୟାଦି,ଫଳମୂଳପ୍ରଭୃତି-ବର୍ଷକର ଫସଲ।

ଖନ୍ଦକ—ଗ୍ରା.ବି.ଭୂମିରେ ଖୋଳା ହୋଇ-ଥିବା ଗାତ।

ଖନ୍ଦା—ଗ୍ରା.ବି. ଭୂମିରେ ଖୋଳା ହେବା ଗାତ,ବଡ଼ ହାଣ୍ଡି ବସିବାପାଇଁ ଭୂଇଁରେ ଖୋଳା ହୋଇଥିବା ଲମ୍ବ ଚୁଲ୍ଲୀ, ରଜା ଓ ଦେବତାଙ୍କ ପାଇଁ ରୋଷାଇ ବା ପାକ, ପଣିକିଆର ଗୋଟିଏ ଧାଡ଼ି ବା ସୋପାନ।

ଖନ୍ଦାଘର(ଶାଳ)—ଗ୍ରା.ବି. ରୋଷାଇଘର, ବିବାହାଦି ଉତ୍ସବରେ ଯେଉଁ ଅଗଣାରେ ଖନ୍ଦା ଖୋଳା ହୋଇ ରୋଷାଇ ହେଉଥାଏ।

ଖନ୍ୟ—ତ୍ରି.ବିଂ. (ଖନ୍+ଯ) ଖନନୀୟ, ଯାହା ଖନନ କରାହେବ।

ଖପ୍‌କରି (କନା)—ଗ୍ରା.କ୍ରି.ବିଂ. ହଠାତ୍ କୁଦାମାରି, ଶୀଘ୍ର।

ଖପ୍‌ଖାପ୍—ଗ୍ରା. ଅବ୍ୟ. ଶୀଘ୍ର ଗତିରେ ଅନେକ ଜୀବ ଡେଇଁପଡ଼ିବା ପ୍ରକାରେ।

ଖପଟ—ଗ୍ରା. ବିଂ.(ସଂ-କ୍ଷିପ୍ର)ଦୁଷ୍ଟ,ଅତିରିକ୍ତ ବ୍ୟୟଶୀଳ ବା ଅପବ୍ୟୟୀ, ଉନ୍ମତ୍ତ ପାଗଳ, ଅସ୍ଥିର ପ୍ରକୃତିକ।

ଖପର—ଗ୍ରା. ବି. (ସଂ-ଖର୍ପର) ନିକୃଷ୍ଟ-ଧାତୁବିଶେଷ, ଦସ୍ତା, ଶସ୍ତ୍ରବିଶେଷ, ଘର ଛାଉଣିକରିବାର ଖପରା,ମାଟିରଟାଇଲ।

ଖପରା—ଗ୍ରା.ବି.(ଖର୍ପରଶବ୍ଦର ଅପଭ୍ରଂଶ) ମାଟି ହାଣ୍ଡି ମାଠିଆର ଭଗ୍ନ କ୍ଷୁଦ୍ରାଂଶ, ଖପର (ଦେଖ)।

ଖପଲ—ଗ୍ରା. ବି. ଘରଛୁଆଣି କରିବାର ମାଟିର ଟାଇଲ ବା ଖପରା।

ଖପା—ଯା.ବି.କ୍ରୋଧ,(ବିଂ)କ୍ରୁଦ୍ଧ,ବିରକ୍ତ।

ଖପିବା—ଗ୍ରା. କ୍ରି. ଋଗାକ୍ରାନ୍ତ ହେବା, ବଡ଼ ବସ୍ତୁରେ ମୁଣ୍ଡି ଲୁଚିବା, ବାରି ନ ହେବା, ଖାପଖାଇବା,ବ୍ୟସ୍ତ ହେବା, (ପ୍ରା. ସମ୍ବ. କ୍ରି) ଝାଉଁଳି ପଡ଼ିବା, (ଧାନର ପାଚିବା ସମୟ) ଗଡ଼ିଯିବା, ବଳିଯିବା।

ଖପୁର—ପୁଂ. ବି. (ଖ+ପୃ+ଅ)ଗୁଆ-ଗଛ, ଭଦ୍ରମୁଥା, ବ୍ୟାଘ୍ରନଖ, ପେଟ-ଫମ୍ପା ରୋଗ,(କ୍ଲୀ.ବି.)କଳସ, ଦୈତ୍ୟ-ପୁରବିଶେଷ, ହରିଶ୍ଚନ୍ଦ୍ର ରଜାର ପୁରୀ, ଗନ୍ଧର୍ବନଗର,(ବିଂ) ଅଳସ।

ଖପୁରି—ଗ୍ରା ବି.ମନୁଷ୍ୟମୁଣ୍ଡର ଖୋଳପା, ନର-କପାଳ,(ପ୍ରା.ସଂ ହଭୂମି)ତେଲହଣି, ପଲମ, ବଡ଼ହାଣ୍ଡି, (ପ୍ରା. ବାଲେଶ୍ୱର, ମେଦିନୀ) ଯେଉଁ ହାଣ୍ଡିରେ ଉଖୁଡ଼ା ତିଆରି କରାଯାଏ ବା ମୁଢ଼ି ଭଜା-ଯାଏ, (ପ୍ରା. ପୁରୀ)ପାଗୁଳିଆ ହାଣ୍ଡି।

ଖପୁଷ୍ପ—କ୍ଲୀ. ବି. ଆକାଶକୁସୁମ, ଶୂନ୍ୟ, ଅବାସ୍ତବ ପଦାର୍ଥ, କାଳ୍ପନିକ ବା ଅସମ୍ଭବ ବସ୍ତୁ।

ଖପୃର—ବି.(ଖ+ପୃ+ଅ)ଖପୁର(ଦେଖ)

ଖପ୍ତି—ଗ୍ରା. ବିଂ. ଖପଟ (ଦେଖ)।

ଖଫା—ଯା. ବିଂ. ରାଗୀ,କ୍ରୋଧୀ, କ୍ରୁଦ୍ଧ।

ଖଫଫ୍—ଯା. ବି. ଘୃଣା, ହେୟଜ୍ଞାନ।

ଖବର—ଯା. ବି. ସମ୍ବାଦ, ଯତ୍ନ, ତତ୍ତ୍ୱା-ବଧାନ, ସମାଚାର, ବୃତ୍ତାନ୍ତ।

ଖବରକାଗଜ—ଗ୍ରା. ବି. ସମ୍ବାଦପତ୍ର।

ଖବରଗିର—ଯା. ବିଂ. ସମ୍ବାଦଦାତା, ଅନୁସନ୍ଧାନକାରୀ, ତତ୍ତ୍ୱାବଧାରକ, ଗୋଇନ୍ଦା।

ଖବରଗିରି—ଯା. ବି. ସମ୍ବାଦଦାତାର କର୍ମ, ତତ୍ତ୍ୱାବଧାରଣ ଗୋଇନ୍ଦାଗିରି, ସହାନୁଭୂତି।

ଖବରଦାର୍—ଯା.ଅବ୍ୟ.ସାବଧାନ ହୁଅ, ସତର୍କ ହୁଅ,ହୁସିଆର,(ବିଂ)ସାବଧାନ, ସତର୍କ।

ଖବରଦାରି—ଯା. ବି. ତତ୍ତ୍ୱାବଧାନ, ଦେଖାଶୁଣାକରିବା, ଜଗାରଖା, ଯତ୍ନ, ହୁସିଆରି।

ଖବରରଖିବା—ଗ୍ରା. କ୍ରି. ଅନ୍ୟ ସ୍ଥାନର ବା ବ୍ୟକ୍ତିର ସମ୍ବାଦ ଜାଣିବା, ଆବଶ୍ୟକ ହେବା।

ଖବରାଖବର—ଗ୍ରା. ବି. ନାନାପ୍ରକାର ସମ୍ବାଦ, କୌଣସି ସ୍ଥାନବିଷୟରେ ଜ୍ଞାତବ୍ୟ ନାନାଦି ତଥ୍ୟ, ଭଲ ଖବର ଓ ମନ୍ଦ ଖବର, ତତ୍ତ୍ୱାବଧାନ, ଯତ୍ନ।

ଖବାଡ଼ିବା—ଗ୍ରା. କ୍ରି. ବିଂ. ଅସୁନ୍ଦର ବା ଅସମ୍ପୂର୍ଣ୍ଣ ଭାବରେ (କାର୍ଯ୍ୟ କରିବା), (ଗ୍ରା.ବିଂ) ଅସୁନ୍ଦରରୂପେ କରାଯାଇ-ଥିବା, (ଅବ୍ୟ) ଆବାଖାବା (ଦେଖ)।

ଖବାରି—କ୍ଲୀ. ବି. (୬ତତ୍) ବର୍ଷାଜଳ, କାକର, ବାଷ୍ପ, ଦିବ୍ୟୋଦକ।

ଖବାଷ୍ପ—ବି. (କ.ଧା) କୁହୁଡ଼ି, କାକର।

ଖବିରି—ଗ୍ରା. ବିଂ. ଆଘାତାଦି ଯୋଗୁଁ ଯାହାର ଗୋଡ଼ ଛୋଟ ହୋଇଯାଏ, ଛୋଟା।

ଖବୀଶ—ଯା.ବିଂ.ନିଷ୍ଠୁର, କ୍ରୂର,ବିଦ୍ୱେଷୀ ଅସତ୍, ଦୁଷ୍ଟ,ମନ୍ଦଚରିତ୍ର(ବି),ଦୁଷ୍ଟଲୋକ।

ଖଭ—ପୁଂ.କ୍ଲୀ.ବି. (ଖ+ଭା.ଅ)ଗ୍ରହ।

ଖଭୁକ୍-ପୁଂ.ବି.(ଖ+ଭୁଜ୍+କ୍ୱିପ୍)ଇନ୍ଦ୍ର।

ଖଭ୍ରାନ୍ତ — ପୁଂ. ସ୍ତ୍ରୀ. ବି. (ଖ + ଭ୍ରମ + କ୍ତ) ଚିଲ୍ଲ, ଚିଲପକ୍ଷୀ ।

ଖମ୍ — ପ୍ରା. (ସମ୍ବ) ବି. (ସଂ ସ୍ତମ୍ଭ) ସ୍ତମ୍ଭ, ଖମ୍ବ, ଖୁଣ୍ଟ, ଖୁମ୍ବ ।

ଖମକ — ବି. ଏକପ୍ରକାରଗ୍ରାମ, ଆନନ୍ଦଯନ୍ତ୍ର ।

ଖମଣ — ଗ୍ରା. ବି. ପର୍ବତମୂଳସ୍ଥ ନୀଚଭୂମି, ପାର୍ବତ୍ୟସ୍ଥ ନାଳ, ଚହଡ଼ାଖାଣ୍ଡ, ରେଳ ସଡ଼କରେ କରଯିବା କାଜ ।

ଖମଣା — ଗ୍ରା. ବିଂ. ଖମଣଯୁକ୍ତ, ଖାଲୁଆ ।

ଖମଣି — ପୁଂ. ବି. (ଷତତ୍ପୁ) ଆକାଶମଣି, ସୂର୍ଯ୍ୟ, ଚନ୍ଦ୍ର ।

ଖମଧ — ପୁଂ. ବି. (ଷତତ୍ପୁ) ଆକାଶସ୍ଥ ବିନ୍ଦୁ, ଯାହା ଦର୍ଶକର ଠିକ୍ ମୁଣ୍ଡଉପରେ ଥାଏ ।

ଖମା — ଗ୍ରା. ବି. ଖାଲ, ଲମ୍ବଗାତ, ଖଣ୍ଡା, ପହଣି ।

ଖମାର — ଗ୍ରା. ବି. ଧାନ୍ୟାଦି ସଞ୍ଚୟ କରିବା ସ୍ଥାନ, ଗୃହଘର, ଗୃହଧାନ ଓ ଫସଲ ଆଦି ରଖିବା ସ୍ଥାନ ।

ଖମାରୀ — ଗ୍ରା. ବି. ଜମିଦାରଙ୍କ ଖମାରର ଭାର ଯେଉଁ ଗୃହର ଉପରେ ଥାଏ ।

ଖମାରିଆ — ଗ୍ରା. ବିଂ. ଉପଯୁକ୍ତ ଭାବରେ ଚଷା କରାଯାଇ ନଥିବା (ଗୃଷାଦି) ।

ଖମିର — ଯା. ବିଂ. ବାସି ପିଠଉରେ ଉଠାଇ ହୋଇ ଫୁଲିଥିବା (ପିଠା ବା ରୁଟି), ପଣସ ସପୁରି ଆଦିକୁ ସଡ଼ାଇ ତାହା ସୁବାସ ନିମନ୍ତେ ମିଶାଯାଇଥିବା (ଗୁଡ଼ାଖୁ) ଚିନିରସ ବା ସୀରରେ ପକାଯାଇଥିବା (ଫଳଆଦି) ।

ଖମୀଳନ — କ୍ଲୀ. ବି. (ଷତତ୍ପୁ) ତନ୍ଦ୍ରା, ଅଳ୍ପନିଦ୍ରା, ନିଦ୍ରାଳୁତା, କ୍ଲାନ୍ତି ।

ଖମୂର୍ତ୍ତି — ପୁଂ. ବି. (ବ.ବ୍ରୀ) ଅଷ୍ଟମୂର୍ତ୍ତିଧର, ଶିବ, ଭୀମରୂପ, (ସ୍ତ୍ରୀ) ବ୍ରହ୍ମସ୍ୱରୂପା ।

ଖମୁଲକା — ସ୍ତ୍ରୀ. ବି. ଲୁମ୍ବିକା, ଏକପ୍ରକାର ଫଳ, ବୋରଖାଣ୍ଡି ।

ଖମୁଳୀ — ସ୍ତ୍ରୀ. ବି. ଲୁମ୍ବିକା, ଏକପ୍ରକାର ଫଳ, ବୋରଖାଣ୍ଡି ।

ଖମ୍ବ — ଗ୍ରା. ବି. (ସ୍ତମ୍ଭଶବ୍ଦଜ) ସ୍ତମ୍ଭ, ଖୁମ୍ବ, ଖୁଣ୍ଟ, ଖମ୍ବ ।

ଖମ୍ବଅଡ଼ୁଆ(ଆଡ଼ୁଆ) ବୁଦ୍ଧାମଣା — ଗ୍ରା. ବି. ଓଲଟାଳିଷାପ, ଅବଗୃହ, ଅବୁଦ୍ଧାମଣା ।

ଖମ୍ବଆଡ଼ୁ (କ୍ରୁ) ବୁଝିବା — ଗ୍ରା. କ୍ରି. ଅବଗୃହ କରିବା ।

ଖମ୍ବଆଳୁ — ଗ୍ରା. ବି. (ସଂ-ସ୍ତମ୍ଭାଳୁ) ଖମ୍ବ-ଆଳୁ, ଲମ୍ବାକୃତବିଶିଷ୍ଟ ଆଳୁବିଶେଷ ।

ଖମ୍ବଖୁନ୍ଦିବା — ଗ୍ରା. କ୍ରି. ଗାତରେ ଖମ୍ବ ପୋତି ଶକ୍ତକରିବାଲାଗି ମାଟି ବା ବାଲି ଦେଇ ଖୁନ୍ଦାଳିବା, ସାନ୍ଧିବା ଶିହରିବା, (ଲ.ଅର୍ଥ) କଠିନ ଶ୍ରମସାଧ୍ୟ କର୍ମକରିବା ।

ଖମ୍ବାଳ — ଗ୍ରା. ବି. (ସଂ-ସ୍ତମ୍ଭାବତୀ) ଘରବିଶେଷ ।

ଖମ୍ବାଳୁ — ପ୍ରା. (ସିଂହ) ବି. କୃଷିଜାତ ଆଳୁବିଶେଷ ।

ଖସ୍ୱର — ଯା. ଅବ୍ୟ. ସୁଖସ୍ୱାଚ୍ଛନ୍ଦ୍ୟ, ସ୍ୱାସ୍ଥ୍ୟ, (ବିଂ) ଭାଗ୍ୟବାନ୍ ।

ଖସ୍ୱରୀ — ପ୍ରା. ବି. ଖଇର ବ୍ୟବସାୟୀ ଜାତିବିଶେଷ, ନୀଚଜାତି ।

ଖସ୍ୱରାତ — ଯା. ବି. ଦାନ, ବିତରଣ ।

ଖସ୍ୱରାତ — ଯା. ବିଂ. ଯାହା ବିତରଣ ହୋଇଅଛି, ଦତ୍ତ ।

ଖସ୍ୱେର — ଗ୍ରା. ବି. (ଖଦିରଶବ୍ଦଜ) ଖଦିରସାର ।

ଖର୍ — ପ୍ର. (ସମ୍ବ) ବି. ଉଷ୍ଣତା, ଉଷ୍ଣ, ତୀକ୍ଷ୍ଣ ।

ଖର୍କୁଣ୍ଡ — ପ୍ରା. (ସମ୍ବ) ବି. ଶରଦଗରମ, କୋଠା ଗରମ ।

ଖର୍ବା — ପ୍ରା. (ସମ୍ବ) କ୍ରି. ଗଛରୁ (ପତ୍ର) ଝଡ଼ିବା ।

ଖର୍ଲଖଟ — ପ୍ରା. (ସମ୍ବ) ବି. ବଛଣା ଆଦି ପଡ଼ି ନ ଥିବା, ଖାଲିଖଟ ।

ଖର୍ଲ — ପ୍ରା. (ସମ୍ବ) ବି. ଦୁଆରକିଳଣୀ ।

ଖର୍ଶା — ପ୍ରା. (ସମ୍ବ) ବି. ପନୀର (ଛେନା) ।

ଖର — ପୁଂ. ବି. (ଖ + ର) ଗର୍ଦ୍ଦଭ, ଗଧ, ବଗ, ବକ, ଅଶ୍ୱତର, ଖଚର, କାକ, କୁଆ, ଦର୍ପ ବା ଦେଶବିଶେଷ, ବୃକ୍ଷବିଶେଷ, ସୂର୍ଯ୍ୟାନୁଚରବିଶେଷ, ଶିବାନୁଚରବିଶେଷ, ଘର୍ମ, ଝାଳ, ଉଷ୍ଣତା, ଦୁସ୍ପର୍ଶ, ଲଙ୍କେଶ୍ୱର ରାବଣର ବୈମାତ୍ରେୟ ଭ୍ରାତା, ତୃଣ, ଘାସ, ନଖୀନାମକ ଗନ୍ଧଦ୍ରବ୍ୟ, ମୂଳଦୁଆ, ଘରଉଆର ହେବାପାଇଁ ମାଟିପଡ଼ିଥିବା ଉଚ୍ଚ, (ବିଂ) ତୀକ୍ଷ୍ଣ, ଖର୍ଷଣ, ଟାଉଁସା, ତାତିଲା, ଉଷ୍ଣ, ଅତି ଉତ୍କଟ, ଦାଢ଼ୁଆ, ଆମ୍ବିଲା, ରୁକ୍ଷ, କର୍କଶ, ଅନିଷ୍ଟକର, ଅସ୍ଥିର, ମର୍ମଭେଦୀ, (ଗ୍ରା. ବି) ଅତ୍ୟଧିକ ପକ୍ୱ ବା ଭଜା ହୋଇଥିବା ତରଣ ବା ଭଜା, (ଗ୍ରା. କ୍ରି. ବିଂ) ଶୀଘ୍ର, (ପ୍ରା. ସିଂହ.ବି) ସ୍ରୋତ, ସୁଅ, (ପ୍ରା. ସମ୍ବ) ଖଡ଼, ନଡ଼ା ।

ଖରକ — ପୁଂ. ବି. କ୍ଷେତ୍ରପର୍ପଟୀ, କ୍ଷେତ୍ରପାପଡ଼ା ।

ଖରକଣା — ଗ୍ରା. ବି. ଛଞ୍ଚୁଣୀ, ଖଡ଼କାମୁଠା, ଝାଡ଼ୁ ।

ଖରକର — ବି. (ବ.ବ୍ରୀ) ସୂର୍ଯ୍ୟ, (କ.ଧା) ତୀକ୍ଷ୍ଣକିରଣ ।

ଖରକରଜା — ସ୍ତ୍ରୀ. ବି. (ଖରକର + ଜନ୍ + ଅ + ଆ) ଯମୁନାନଦୀ ।

ଖରକା — ଗ୍ରା. ବି. ଛଞ୍ଚୁଣୀ ପହଁରରେ ଓଲାଇବା, (ବିଂ) ଏଲିଆ ହୋଇଥିବା ।

ଖରକାଷ୍ଠିକା — ସ୍ତ୍ରୀ. ବି. ବାହାଡ଼ା ଗଛ, ବକ୍ରମୁଣ୍ଡୀ ।

ଖରକିବା — ଗ୍ରା. କ୍ରି. ଝାଡ଼ୁ କରିବା, ଓଲାଇବା ।

ଖରକୁଟୀ — ସ୍ତ୍ରୀ. ବି. (ଷତତ୍ପୁ) ନାପିତଗୃହ, ଭଣ୍ଡାରଘର, ଗର୍ଦ୍ଦଭଗୃହ, ଗଧଶାଳା ।

ଖରକୋଣ — ପୁଂ. ସ୍ତ୍ରୀ. ବି. (ଖର + କ୍ୱଣ୍ + ଅ) ତିତ୍ତିର ପକ୍ଷୀ ।

ଖରକୋମଳ — ପୁଂ ବି (କ.ଧା) ଜ୍ୟେଷ୍ଠ ମାସ ।

ଖରଖର — ଗ୍ରା. ଅବ୍ୟ. କ୍ରୋଧରେ ଜର୍ଜର, କ୍ଷିପ୍ର, ତରତର, ସତେଜ, (ବି) କ୍ଷିପ୍ରତା, କ୍ଷିପକାରିତା, (କ୍ରୋଧଜନିତ) ମାନସିକ ଅସ୍ଥିରତା ।

ଖରଖରିଆ — ଗ୍ରା. ବିଂ. ସାମାନ୍ୟ କାରଣରେ ଯେ ରାଗିଯାଏ, ଅସ୍ଥିର, ଚଞ୍ଚଳ, ଚପଳସ୍ୱଭାବ, ଯେ କୌଣସି କଥା ମନରେ ରଖି ନ ପାରି ପ୍ରକାଶ କରେ ।

ଖରଖରି — ଗ୍ରା. ବିଂ. ସ୍ତ୍ରୀ. ଖରଖରିଆର ସ୍ତ୍ରୀଲିଙ୍ଗ, (ବି) ଲତାବିଶେଷ ।

ଖରଗନ୍ଧନିକା(ନ୍ଧା) — ସ୍ତ୍ରୀ. ବି. ନାଗବଲା, ଗୋରକ୍ଷ ଗୁହଳ, ବନ ତୁଳସୀ ।

ଖରଗନ୍ଧା — ସ୍ତ୍ରୀ. ବ (ଖର + ଗନ୍ଧ + ଆ) (ବ.ଗ୍ରା) ନାଗବଳା ।

ଖରଗୃହ — କ୍ଲୀ.ବ.(ଚ.ତତ୍) ଗର୍ଦ୍ଦଭ ଗୃହ, ଗଧଶାଳା, ତମ୍ବୁ, ଘରୁଟି ।

ଖରଗେହ — କ୍ଲୀ.ବ.(ଚ.ତତ୍) ଗଧର ଘର, ଗଧଶାଳା, ଘରୁଟି ।

ଖରଗୋସ — ଯା.ବ. ଶଶା, ଶଶକ, ଖରଆ, (ଗ୍ରା.ବ.) ଠେକୁଆ ।

ଖରଘାତନ — ପୁଂ. ବ. ନାଗକେଶର, ନାଗେଶ୍ୱର । [ବାହୁଙ୍ଗା

ଖରଙ୍ଘା — ପ୍ରା. (ସମ୍ପୃ) ବ. ଢାଲଗଛର

ଖରଚ — ଯା.ବ. ଧନବ୍ୟୟ, ବ୍ୟୟିତଧନ ।

ଖରଚକରିବା — ଗ୍ରା. କ୍ରି. ବ୍ୟୟକରିବା (ଲକ୍ଷଣାର୍ଥ) ବୁଦ୍ଧି ପ୍ରୟୋଗ କରିବା, ବ୍ୟବହାରରେ ଲଗାଇବା ।

ଖରଚପକାଇବା — ଗ୍ରା.କ୍ରି. କୌଣସି ଧନ ହିସାବ ବହିରେ ବ୍ୟୟଘରେ ଲେଖିବା, ଧନ ବ୍ୟୟିତ ହୋଇଅଛି ବୋଲି ହିସାବରେ ଦେଖାଇବା ।

ଖରଚପଡ଼ିବା — ଗ୍ରା.କ୍ରି. (ଏତେଧନ) ବାଧ୍ୟହୋଇଖରଚହେବା, (ଏତେଧନ) ବ୍ୟୟିତ ହେଲବୋଲି ହିସାବରେ ଲେଖାଯିବା ।

ଖରଚପତ୍ର — ଗ୍ରା.ବ.(ସହଚର) ବ୍ୟୟାଦି, ବ୍ୟୟାର୍ଥ ଧନ, ଯହିଁରେ ଖରଚ ଲେଖାଯାଏ ।

ଖରଚଲଗିବା — ଗ୍ରା.ବ. କୌଣସି ନିର୍ଦ୍ଦିଷ୍ଟ କର୍ମପାଇଁ ଏତେପରିମିତ ଧନ ଲୋଡ଼ାହେବା, କୌଣସି ନିର୍ଦ୍ଦିଷ୍ଟ କର୍ମରେ ନିର୍ଦ୍ଦିଷ୍ଟ ପରିମିତ ଧନ ବ୍ୟୟିତ ହେବା, ଉପର୍ଯ୍ୟୁପରି ଧନବ୍ୟୟ କରାଯାଇଥିବା ।

ଖରଚ୍ଚ — ଯା.ବ. ବ୍ୟୟ, ପକ୍ଷ ମକଦ୍ଦମାରେ କରିଥିବା ବ୍ୟୟ, କୌଣସି ବସ୍ତୁ ବା ପଦାର୍ଥପାଇଁ ଲୋଡ଼ା ବ୍ୟୟ ।

ଖରଚୁଆ — ଗ୍ରା.ବିଂ. ଅପରିମିତ ବ୍ୟୟଯୁକ୍ତ (ବ୍ୟକ୍ତି), ବ୍ୟୟ ଲୋଡ଼ାହେବା (କର୍ମ) ।

ଖରଚୀ — ଯା. ବିଂ. ପୁଂ ଓ ସ୍ତ୍ରୀ. ଯେ ଅଧିକ ଖରଚ କରେ, ଅମିତବ୍ୟୟୀ, ଖପଢ ।

ଖରଚ୍ଛଦ — ପୁଂ. ବ. (ଖର + ଛଦ) ଶାଖୋଟ, ଶାହାଡ଼ାଗଛ, ଖରଷଣଗଛ, କ୍ଷୁଦ୍ର ବୁରୁଗଛ, ସାଗୁଆନ, ନାଲିଅପାମାର୍ଗ, ଉଲପ-ନାମ ତୃଣ ।

ଖରଜନ୍ତୁ — ଗ୍ରା.ବ. ବିଷାକ୍ତ ସର୍ପ ।

ଖରଜ — ହି.ବିଂ. ଖରଗତ ।

ଖରଞ୍ଜୀ — ସ୍ତ୍ରୀ.ବ. ରଙ୍ଗଧାରୁ, ରଙ୍ଗ ।

ଖରଞ୍ଜ — ଗ୍ରା.ବ. ଗାଲିଚ୍ଚ, ଲୋମନିର୍ମିତ ମୋଟ ଆସନ, ରଥ ଗଡ଼କୁ ବାଧା ଦେବା ନିମନ୍ତେ ଚକର ଆଗରେ ରଖାଯିବା କାଠଖଣ୍ଡ ।

ଖରଡ଼ା — ଗ୍ରା.ବ. ଶାଗର ଶନ୍ତୁଳା, ଶାଗ ଆଦିକୁ ନିଆଁରେ ବସାଇ ସାମାନ୍ୟ ଭାଜିବା, ଘୋଡ଼ାଙ୍କ ଦେହ ପରିଷ୍କାର କରିବା ନିମନ୍ତେ ବ୍ୟବହୃତ ଲୁହାର ପାନିଆଁ, କାରୁକାର୍ଯ୍ୟବିଶିଷ୍ଟ ଗାଲିଚ୍ଚ, ଖରଡ଼, ବାହାର, ବୁଣାଢାଡ ।

ଖରଡ଼ାଖରଡ଼ି — ଗ୍ରା. ବ. (ଶାଗଆଦି) ସାମାନ୍ୟ ଜଳଦେଇ ନିଆଁରେ ବସାଇ ଭାଜିବା ।

ଖରଡ଼ାପାଣି — ଗ୍ରା.ବ. ବାଜେ ଆୟ, ପ୍ରଜାଠାରୁ ଖଜଣା ଆଦାୟ କରିବାର ପାରଶ୍ରମିକସ୍ୱରୂପ ଜମିଦାର ବା ତହସିଲଦାର ଆଦାୟ କରିବା ବାଜେ କର (ଯାହା ଆଇନ ଅନୁମୋଦିତ ନୁହେ) ।

ଖରଡ଼ିଆ — ଗ୍ରା. ବ. ଧାନଆଦି ଶସ୍ୟ ରଖିବାର ବଡ଼ ଆଧାର, ଡୋଲି, କୋଡ଼ମ୍ବେଇ ।

ଖରଡ଼ିବା — ଗ୍ରା.କ୍ରି. ନିଆଁରେ ବସାଇ ଲେଉଟ ପାଲଟ କରି ସିଝାଇବା ।

ଖରଡ଼ିବୁଣା — ଗ୍ରା.ବ. ଗୃଷକର୍ମ ଶୁଖିଥିବା ଅବସ୍ଥାରେଧାନଆଦି ବୁଣିବାର ପ୍ରକ୍ରିୟା ।

ଖରଡ଼ିହେବା — ଗ୍ରା. କ୍ରି. ସିଝହେବା, ଦହଗଞ୍ଜହେବା, କଷ୍ଟଭୋଗ କରିବା ।

ଖରଣାଃ — ପୁଂ.ସ୍ତ୍ରୀ. ବ. (ବ.ଗ୍ରା) ଯାହାର ନାସିକା ଗଦାପରି, ତୀକ୍ଷ୍ଣନାସିକ, ନାକୁଆ ।

ଖରଣସ — ପୁଂ.ବିଂ.(ବ.ଗ୍ରା) ତୀକ୍ଷ୍ଣନାସିକାଯୁକ୍ତ, ନାକୁଆ, ଯାହାର ନାକ ଗଦାପରି ଠିଆ, (ସ୍ତ୍ରୀ) ଖରଣସୀ ।

ଖରତମ — ବିଂ. (ଖର + ତମ) ସର୍ବାପେକ୍ଷା ଖର, ଅତ୍ୟନ୍ତପ୍ରଖର, ଅତଚଞ୍ଚଳ ।

ଖରତର — ହି.ବିଂ. କର୍କଶ ବା ଅତିଶୟ ତୀକ୍ଷ୍ଣ, ଅପେକ୍ଷାକୃତ, ଦୁଇଟି ମଧ୍ୟରେ ତୀକ୍ଷ୍ଣ, ଚଞ୍ଚଳ ବା କର୍କଶ, (ଗ୍ରା.କ୍ରି.ବିଂ) ଅତିଶୀଘ୍ର, ଅତଚଞ୍ଚଳ, (ସ୍ତ୍ରୀ) ଖରତରା ।

ଖରତାଳୀ — ଘନଯନ୍ତ୍ରବିଶେଷ, ଏହା ସଭ୍ୟ ଯନ୍ତ୍ର ।

ଖରତ୍ୱକ୍ — ସ୍ତ୍ରୀ.ବ. (ବ.ଗ୍ରା.) ଅଲମ୍ବୁଷା, ଲାଜକୁଳୀ ଲତା, ସୋଲ ।

ଖରଦଣ୍ଡ — କ୍ଲୀ.ବ.(ବ.) ପଦ୍ମନାଡ଼, ପଦ୍ମ ।

ଖରଦଳା — ସ୍ତ୍ରୀ. ବ.(ଖର + ଦଳ + ଆ) କ୍ଷେମୀଫଳା, ଉଦୁମ୍ବର, ଡିମିରି ।

ଖରଦଶନ — କ୍ଲୀ.ବ.(କ.ଧା) ତୀକ୍ଷ୍ଣଦନ୍ତ, (ବିଂ.ବ.ଗ୍ରା) ତୀକ୍ଷ୍ଣଦନ୍ତବିଶିଷ୍ଟ ।

ଖରଦ — ଯା. ବ. ବସ୍ତୁ, କିଣିବା, (ବିଂ) କ୍ରୀତ, କିଣାଯାଇଥିବା ।

ଖରଦଦାର — ଯା. ବ. କ୍ରେତା ।

ଖରଦୂଷଣ — ପୁଂ. ବ. (ବ.ଗ୍ରା) ଧୁସ୍ତୁର, ଦୁଦୁରା, ରାବଣର ବୈମାତ୍ରେୟ ଭ୍ରାତୃଦ୍ୱୟ (ଖରଦୂଷଣଯୁଗଳ), (ବିଂ) ବହୁଦୋଷଯୁକ୍ତ ।

ଖରଧାର — ହି.ବିଂ(ବ.ଗ୍ରା) ତୀକ୍ଷ୍ଣଦାଢ଼, ଦାଢ଼ୁଆ ।

ଖରଧ୍ୱଂସୀ — ପୁଂ.ବ.(ଖର + ଧ୍ୱଂସ୍ + କ ଇନ୍) ଶ୍ରୀରାମ ।

ଖରନାଦ — ବ. (ଚ.ତତ୍) ଗଧର ଧ୍ୱନି, (କ.ଧା) କର୍କଶ ରବ ।

ଖରନାଦନୀ — ସ୍ତ୍ରୀ. ବ. ରେଣୁକାନାମକ ଗନ୍ଧଦ୍ରବ୍ୟ, (ବିଂ) ଖରନାଦୀର ସ୍ତ୍ରୀଲିଙ୍ଗ ।

ଖରନାଦୀ — ପୁଂ.ବିଂ. (ଖର + ନଦ + କ, ଇନ୍) ଯେ ଗର୍ଦ୍ଦଭ ପରି ରବ କରେ, ଶ୍ରୁତିକଟୁ ଶବ୍ଦକାରୀ, କର୍କଶ ରବକାରୀ ।

ଖରନାଳ — କ୍ଲୀ. ବ. (ବ.ଗ୍ରା) ପଦ୍ମ ।

ଖରନିଃଶ୍ୱାସ — ବ(କ.ଧା) ଖରଶ୍ୱାସଦେଖ ।

ଖରପ — ପୁଂ. ବ. ଋଷିବିଶେଷ, ଖରପଋଷିଙ୍କ ବହୁଗୋତ୍ରାପତ୍ୟ ।

ଖରପତ୍ର — ପୁଂ. ବି. (ବୈ.ଶା) ସାଗୁଆନ ଗଛ, କ୍ଷୁଦ୍ରତୁଳସୀଗଛ, ଫୁଲସର, କୁଶ, ଜନଗଗଛ, ମରୁଆଗଛ ।
ଖରପତ୍ରକ—ପୁଂ. ବି. ତାଳକବୃକ୍ଷ ।
ଖରପତ୍ରୀ — ସ୍ତ୍ରୀ. ବି. (ବୈ.ଶା) ଗୋଜିହ୍ୱା ବୃକ୍ଷ, କୋବ, କାକେ ଡୁମୁରିକା, ଗର-ଗଡ଼ଗଛ ।
ଖରପରଜା — ଗ୍ରା.ବି.ଖରବଘରା(ଦେଖ) ।
ଖରପର୍ଣ୍ଣିନୀ — ବି. (ଖର + ପର୍ଣ୍ଣ + ଇନ୍ ଈ) ଗୋଜିହ୍ୱା, ଦାଆଣଗ କୋବ-ଶାଗ ।
ଖରପଲ୍ଲବ — ବି. (ବୈ.ଶା) ଶାହାଡ଼ାଗଛ ।
ଖରପା — ଗ୍ରା.ବି. ନଦୀକୂଳରେ ପଡ଼ିଥିବା ପତଳା ସ୍ତରର ପଟୁମାଟିଯୁକ୍ତ ଅଂଶ ।
ଖରପାତ୍ର—କ୍ଲୀ.ବି.(କ.ଧା)ଲୌହପାତ୍ର ।
ଖରପାଦାଢ୍ୟ—ପୁଂ.ବି କପିତ୍ଥବୃକ୍ଷ,କଇଥ ଗଛ, କଇଥ ।
ଖରପୁଷ୍ପ—ପୁଂ.ବି.ମରୁବକ, ନାଗଦାନା, ମରୁଆ ।
ଖରପୁଷ୍ପା — ସ୍ତ୍ରୀ.ବି. ବର୍ବ୍ବରା, ଦୁର୍ଲ୍ଲଭା ।
ଖରପୁଷ୍ପିକା—ସ୍ତ୍ରୀ.ବି.ବର୍ବରବୃକ୍ଷ ଦୁର୍ଲ୍ଲଭା ।
ଖରପୁଷ୍ପୀ — ସ୍ତ୍ରୀ.ବି.ବର୍ବରଶାକ, ଦୁର୍ଲ୍ଲଭା ।
ଖରପୋଡ଼ା — ଗ୍ରା. ବିଂ. ଯେଉଁ ଖାଦ୍ୟ-ଦ୍ରବ୍ୟ ବା ଫଳାଦି ଅତିଶକ୍ତରୂପେ ପୋଡ଼ିହୋଇ ଯାଇଥାଏ, କୌଣସି ଗୋଟାଏ ଖାଦ୍ୟଦ୍ରବ୍ୟ (ମାଛଆଦି)ଖାଲି ରଡ଼ନିଆଁରେ ପୋଡ଼ିବା ।
ଖରପ୍ରିୟ — ପୁଂ.ସ୍ତ୍ରୀ.ବି. ଖଳା, ପାରାବତ, ପାରା, ଶସ୍ୟମର୍ଦ୍ଦନ ସ୍ଥାନ, ଧାନଆଦି ଫସଲ ଦଳିବାର ସ୍ଥାନ ।
ଖରଭଜା — ଗ୍ରା. ବିଂ. ଅତିଶକ୍ତରୂପେ ଭଜା ହୋଇଥିବା (ଦ୍ରବ୍ୟ) ।
ଖରଭୁଜ — ଯା. ବି. କାବୁଲଦେଶୀୟ ତରଭୁଜ ।
ଖରମଜ୍ଞ—ପୁଂ. ବି. ଅତ୍ୟନ୍ତ ଶୋଧକ ।
ଖରମଞ୍ଜରୀ-ସ୍ତ୍ରୀ.ବି.(ବୈ.ଶା)ଅପାମାର୍ଗଗୁଳ୍ମ ।
ଖରମରା — ଗ୍ରା. ବି. ଲହୁଣୀରୁ ପ୍ରସ୍ତୁତ ହେବାବେଳେ ଯେଉଁ ଘିଅରୁ ଜଳୀୟ ଅଂଶ ସମ୍ପୂର୍ଣ୍ଣ ଶୁଷ୍କ ହୋଇ ଯାଇଥାଏ, ଯେଉଁ ଘିଅ ପାଣି ମରିବା ପରେ ବେଶି ବେଳ ନିଆଁରେ ବସିବା ଯୋଗୁ ଈଷତ୍ ପୋଡ଼ି ଯାଇଥାଏ ।
ଖରଯାନ — ବି. (କ.ଧା) ଗଧଟଣାଗାଡ଼ି ।
ଖରରଶ୍ମି — ପୁଂ. ବି. (ବୈ.ଶା) ସୂର୍ଯ୍ୟ ।
ଖରଲୋମା—ପୁଂ. ବିଂ.(ବୈ.ବ୍ରୀ) କଠିନ ରୋମଯୁକ୍ତ, (ବି) ନାଗବିଶେଷ ।
ଖରବଲ୍ଲା — ଗ୍ରା. ବି. ତୃଣବିଶେଷ ।
ଖରବଘରା — ଗ୍ରା. ବି. ତିଅଣଆଦିକୁ ବଘା-ରିଲା ବେଳେ ଫୁଟଣ ମସଲା ଅତିଶକ୍ତ ହୋଇ ଯାଇଥାଏ ବା କୁହୁଳି ଯାଇ-ଯାଏ ।
ଖରବଲ୍ଲରୀ — ସ୍ତ୍ରୀ.ବି.ନାଗବଲା,ଗୋରକ୍ଷ, ଗୃହୁଳ, ଗୃହୁଳିଆ ।
ଖରବଲ୍ଲିକା—ସ୍ତ୍ରୀ.ବି.ନାଗବଲା,ଗୋରକ୍ଷ ଗୃହୁଳ, ଗୃହୁଳିଆ ।
ଖରବଲ୍ଲୀ — ସ୍ତ୍ରୀ.ବି. ନାଗବଲା, ଗୋରକ୍ଷ ଗୃହୁଳ, ଗୃହୁଳିଆ ।
ଖରବାର — ଛୋଟନାଗପୁର ଓ ବିହାର-ବାସୀ ଜାତିବିଶେଷ,(ଗ୍ରା.ବି)ଗୁରୁବାର, ଶନିବାର, ମଙ୍ଗଳବାର ।
ଖରବାହିନୀ-ସ୍ତ୍ରୀ.ବିଂ.(ଖର + ବାହିନ୍ + ଈ) ଅତିବେଗପ୍ରବାହିତା ।
ଖରବାହୀ — ପୁଂ. ବିଂ. (ଖର + ବହ + କ, ଇନ୍) ପ୍ରଚଣ୍ଡବେଗରେ ବହମାନ, (ସ୍ତ୍ରୀ.) ଖରବାହିନୀ ।
ଖରବୁଜ — ଗ୍ରା.ବି. ଖରଭୁଜ,ତରଭୁଜ ।
ଖରଶବ୍ଦ — ପୁଂ. ବି. (ବୈ. ଶା) କୁରର ପକ୍ଷୀ, (ତଦ୍ଭବ) ଗଧର ରାବ,(କ.ଧା) କର୍କଶ ଶବ୍ଦ ।
ଖରଶାକ — ପୁଂ.ବି.ଭାର୍ଗୀ,ବ୍ରାହ୍ମଣଝେଟା ।
ଖରଶାକା — ସ୍ତ୍ରୀ.ବି.ଭାର୍ଗୀ, ବ୍ରାହ୍ମଣଯାଟୀ ।
ଖରଶାଣ — ଗ୍ରା. ବି. ଖରଷଣ ଗଛ (ବିଂ ବ.ବ୍ରୀ) ଅତ୍ୟନ୍ତ ଧାରୁଆ ।ଶାଳା ।
ଖରଶାଳା — କ୍ଲୀ. ବି. ଗଧରଘର, ଗଧ
ଖରଶୋଧା — ଗ୍ରା. ବି. ଦେବାଳୟ ବା ରାଜବାଟିର ଆୟ ବ୍ୟୟର ହିସାବ-ରକ୍ଷକ କର୍ମଚାରୀବିଶେଷ, କରଣଜାତିର ରାଜପ୍ରଦତ୍ତ ଉପାଧି ବିଶେଷ ।
ଖରଶ୍ୱାସ — ବି. (କ. ଧା) ଧଇଁସଇଁ ହେବା, ଦୀର୍ଘଶ୍ୱାସ,ଅଣ୍ଟାଶ ବୋହିବା ।
ଖରଷି — ପ୍ରା. ( ସମ୍ବ ) ବି. (ସଂ-କରୀଷ) ଗୋବର, ଖଡ, ଘସି, ଚଷୁ ମିଶ୍ରିତ ଘସି ।
ଖରସ — ଗ୍ରା. ବି. ଛେଳି ଆଦି ଜନ୍ତୁର ଅପକ୍ୱ ଉଦରସ୍ଥ ଖାଦ୍ୟାଂଶ ।
ଖରସଙ୍ଗ — ଗ୍ରା. ବି. ବାଉଁଶଜାତୀୟ ଗୁଳ୍ମ-ବିଶେଷ ।
ଖରସଣ—ପ୍ରା. (ଗଞ୍ଜାମ) ଜମିର ।
ଖରସୁଆଁ — ଗ୍ରା.ବି.କଟକଜିଲ୍ଲା—ଯାଜପୁର ଅଞ୍ଚଳସ୍ଥ ବ୍ରାହ୍ମଣୀନଦୀର ଶାଖାବିଶେଷ ।
ଖରସୁଆଁ — ଗ୍ରା. ବି. ଓଡ଼ିଶାର ପୂର୍ବତନ ଗଡ଼ଜାତ ଓ ସିଂହଭୂମି ଜିଲ୍ଲାର ଅଞ୍ଚଳ ବିଶେଷ ।
ଖରସୁଧା — ଗ୍ରା.ବି.ଖରଶୋଧା (ଦେଖ) ।
ଖରସୋଦ — ପୁଂ.ବି. ( ବୈ.ଶା ) ଖର-ପତ୍ର, ଲୌହପାତ୍ର ।
ଖରସ୍କନ୍ଧ—ପୁଂ.ବି. (ବୈ.ଶା)ପ୍ରିୟାଳବୃକ୍ଷ, ପିଆଶାଳ ଗଛ ।
ଖରସ୍କନ୍ଧା — ସ୍ତ୍ରୀ ବି.(ବୈ.ଶା) ଖଜୁରୀ ବୃକ୍ଷ, ଖଜୁରୀ ଗଛ ।
ଖରସ୍ପର୍ଶା (ର୍ଶୀ) — ପୁଂ. ବିଂ. ( ବୈ.ଶା ) ଟାଆଁସା, ରଗ୍ଡରଗୁଆ, କରଡା ।
ଖରସ୍ପର୍ଶୀ — ସ୍ତ୍ରୀ. ବି. ପୀତପୁଷ୍ପୀ, ଦେବ-ଦାଲୀ ଲତା, ହଳଦୀ ଫୁଲ, ଜହ୍ନି ଓ ତରଡ଼ା ଜାତୀୟ ଏକ ପ୍ରକାର ଲତା ।
ଖରସ୍ୱର — ସ୍ତ୍ରୀ. ବି. (ବୈ.ଶା) ବଣମଲ୍ଲିକା, ବଣମଲ୍ଲି, କାଠମଲ୍ଲି ।
ଖରସ୍ରୋତା — ସ୍ତ୍ରୀ. ବି. (ବୈ.ଶା) ପ୍ରଖର ସ୍ରୋତ ଥିବା ନଦୀ (ଓଡ଼ିଶାରନଦୀବିଶେଷ) ।
ଖରା — ସ୍ତ୍ରୀ. ବି. ଦେବତାଡ଼-ଜହ୍ନିଜାତୀୟ ଏକ ପ୍ରକାର ଲତା, (ଗ୍ରା.ବି.) ସୂର୍ଯ୍ୟଙ୍କ ଉତ୍ତାପ, ଖାରବା କର୍ମ,ଅସ୍ତ୍ରରେ କାଟିବା, ପ୍ରା. ( ସମ୍ବ ) ବି. ଶଶକ, ଖରିଆ, ଠେକୁଆ, (ପ୍ରାଦେ. ବସ୍ତର.ବି.)ଘାସ ।
ଖରାଂଶୁ — ପୁଂ.ବି.(କ.ଧା)(ଖର + ଅଂଶୁ) ସୂର୍ଯ୍ୟକିରଣ,ଟାଣଖରା(ବୈ.ଶା) ସୂର୍ଯ୍ୟ ।
ଖରାକାଟିବା — ଗ୍ରା. ବି. ଖରାର ତେଜ ଶରୀରକୁ କ୍ଲେଶ ଦେବା, ସୂର୍ଯ୍ୟ କିରଣ ପଡ଼ିବା ।

ଖରାଖାଇବା — ଗ୍ରା. କ୍ରି. (ବସ୍ତୁଆଦି) ସୂର୍ଯ୍ୟ-ଉତ୍ତାପଦ୍ୱାରା ତପ୍ତ ହେବା ।

ଖରାଖିଆ — ଗ୍ରା. ବିଂ. ସର୍ବଦା ଖରା ଖାଉଥିବା, ଫୁଙ୍ଗା ।

ଖରାଗସ — ସ୍ତ୍ରୀ. ବ. (ଖରା+ଗ୍ର+ଅ) ଦେବଦାରୁ ବୃକ୍ଷ, ଜର୍ଦ୍ଧି ପର ଏକ-ପ୍ରକାର ଲତା ।

ଖରାଜ — ଯା. ଯେ ଜମିର କର ଦେବାକୁ ହୁଏ, ଗ୍ରା.ଖାରିଜ ।

ଖରାଟି—ଗ୍ରା.ବିଂ. ଗ୍ରୀଷ୍ମକାଳୀନ, ଯେଉଁ ସ୍ଥାନରେ ଅଧିକାଂଶ ସମୟ ଖରା ପଡ଼େ, ଅନାବୃଷ୍ଟି ।

ଖରାଟିଆ — ଗ୍ରା. ବିଂ. ଖରାଦିନେ ଯେଉଁ ଫସଲ ହୁଏ,ଖରାଟି (ଦେଖ) ।

ଖରାଣ୍ଡକ—ପୁଂ. ବ. ଶିବଙ୍କର ଏକେଜଣ ଅନୁଚର ।

ଖରାତର — ଗ୍ରା. ବ. ( ବିପରୀତାର୍ଥକ-ସହଚର) ଦିନ ଓ ରାତ ।

ଖରାଦିନ—ଗ୍ରା. ବ. ଗ୍ରୀଷ୍ମକାଳ ।

ଖରାଦିନଆଁ—ଗ୍ରା. ବିଂ. ଖରାଦିନେ ଯାହା ଘଟେ ବା ହୁଏ ।

ଖରାପୀ — ଯା.ବ.ହିନ୍ଦୁସ୍ଥାନୀ ଜାତିବିଶେଷ ।

ଖରାଦାଙ୍କୁରକ — କ୍ଲୀ. ବ. ବୈଦୁର୍ଯ୍ୟ-ମଣି ।

ଖରାପ—ଗ୍ରା. ବିଂ. ଦୁଷ୍ଟ, ମନ୍ଦ, ସଢ଼ା, ନଷ୍ଟ, ଅସତ୍ତ୍ୱ, (ଦେହ) ପୀଡ଼ିତ,(ମନ) ବ୍ୟସ୍ତ, କଷ୍ଟପ୍ରାପ୍ତ, ମର୍ଯ୍ୟାଦାଭ୍ରଷ୍ଟ, ଅପବାଦ, ମୃତ, ହତ, ମନ୍ଦଚରିତ ।

ଖରାପଲଗିବା — ଗ୍ରା. କ୍ରି. କୌଣସି ବିଷୟ କୌଣସି ବ୍ୟକ୍ତିଙ୍କୁ ସୁଖକର ଜଣା ନ ଯିବା, ଅସ୍ୱାଦ ଜଣାଯିବା, ଗ୍ରା. ବ. ସୁଖ ସ୍ୱାଚ୍ଛନ୍ଦ୍ୟ ଅନୁଭୂତିର ଅଭାବ ।

ଖରାପୁଇଁବା—ଗ୍ରା.କ୍ରି. ଦେହରେ ସୂର୍ଯ୍ୟଙ୍କ ଉତ୍ତାପ ଗ୍ରହଣ କରିବା ।

ଖରାବେଳ — ଗ୍ରା. ବ. ଦିବସର ପ୍ରଚଣ୍ଡ ରୌଦ୍ର ସମୟ, ଦ୍ୱିପହର ବେଳା ।

ଖରାମଟାଳିବା—ଗ୍ରା. କ୍ରି. କୌଣସି ସ୍ଥାନରେ ଖରାବେଳ ବା ଦ୍ୱିପ୍ରହର ଗତ କରିବା ।

ଖରାଳକ — ପୁଂ. ବ. ଗ୍ରାମଣୀ, ନାପିତ, କ୍ଷୁରଧାର, ଲୌହଶର, ଉପାଧାନ, ଗ୍ରାମନାୟକ, ଭଣ୍ଡାର, ଲୁହାର ଶର ।

ଖରାଶ୍ୱା—ସ୍ତ୍ରୀ. ବ. ମୟୂରଶିଖା, ମୟୂର-ଚୂଳଆଗଛ, ବନଜୁଆଣି, ଅଜମୋଦା, ପୁଷ୍ପବୃକ୍ଷବିଶେଷ ।

ଖରାସ୍ତ୍ର — କ୍ଲୀ. ବ. (୬ତତ୍ପୁ) ରାଧାରକ୍ତ ।

ଖରାହ୍ୱା—ସ୍ତ୍ରୀ.ବ.ଅଜମୋଦା,ବନଜୁଆଣି ।

ଖରି — ଗ୍ରା. ବ. (ଫ-ଖଡ଼ି) ଏକ ଜାତୀୟ ଲମ୍ବତୃଣ, (ପ୍ରା.ସମ୍ବ.)ଧାନବିଡ଼ାର ଗଦା ଯା. ବିଂ) ହୈମନ୍ତିକ (ଶସ୍ୟ) ।

ଖରିଆ — ଗ୍ରା. ବ. ଶଶକ, ଠେକୁଆ ।

ଖରିକା — ସ୍ତ୍ରୀ. ବ. ( ଖର+କ+ଆ ) ଚୂର୍ଣ୍ଣୀକୃତ କସ୍ତୁରୀବିଶେଷ, ଧୂଳିପର ଦାନାବିଶିଷ୍ଟ କସ୍ତୁରୀ, ଗ୍ରା.ବ.(ଶୁଦ୍ଧଭାଷା) ଖଡ଼ିକା ।

ଖରିତା — ଯା. ବ. ପତ୍ରାଧାର, ଚିଠିରଖିଲା ଲଫାଫା, ପୋଲିଦା, ଚିଠିପତ୍ର ।

ଖରିଦ୍—ଯା. ବ. କ୍ରୟ, କିଣିବା ।

ଖରିଦ୍‌ବିକି — ଗ୍ରା. ବ. କିଣାବିକା ।

ଖରିଦା—ଯା.ବିଂ. ଯାହା କିଣା ହୋଇ-ଅଛି, କ୍ରୀତ, ଗ୍ରା. ବ. କିଣାଜିନିଷ ।

ଖରିଦାଜମାବନ୍ଦି — ଗ୍ରା. ବ. ଓଡ଼ିଶାର ଏକପ୍ରକାର ଭୂସତ୍ତ୍ୱ (ହସ୍ତାନ୍ତର ହେବାରୁ ଲଖରାଜ ଜମିଉପରେ ଧାର୍ଯ୍ୟ କରାଯିବା କର) ।

ଖରିଦାର—ଯା. ବିଂ. ଯେ କିଣେ, ଯେ କ୍ରୟ କରେ ।

ଖରିନ୍ଧମ—ପୁଂ. ବିଂ. (ଖାରୀଂ+ଧମ୍+ଅ) ଗାଧଦୁଧପାନକରୁଥିବା,(ସ୍ତ୍ରୀ)ଖରିନ୍ଧମା ।

ଖରିନ୍ଧୟ—ପୁଂ.ବି. ଖରିନ୍ଧମ(ଦେଖ)(ସ୍ତ୍ରୀ) ଖରିନ୍ଧୟୀ ।

ଖରିଫ୍ — ଯା. ବ. ହୈମନ୍ତିକ ଫସଲ ।

ଖରୀ—ଗ୍ରା. ବ. ଇକ୍ଷୁଭେଦ, ଝଙ୍କଆଖୁ, ସ୍ତ୍ରୀ. ବ. (ଖର+ଈ)ମାଈ ଗଧ ।

ଖରୀଜଙ୍ଘ—ପୁଂ. ବ. ଋଷିବିଶେଷ, ଶିବ, ମହାଦେବ ।

ଖରୁ — ପୁଂ. ବ. ଶିବ, ଦର୍ପ, ଅଶ୍ୱ, ଦନ୍ତ, କାମଦେବ, ଶୁକ୍ଳବର୍ଣ୍ଣ,(ସ୍ତ୍ରୀ.ବ) ପତିମ୍ବରା କନ୍ୟା,କର୍ଷିକ ଦ୍ରବ୍ୟପ୍ରତି ଆଗ୍ରହ,(ବିଂ)

ଶ୍ୱେତବର୍ଣ୍ଣବିଶିଷ୍ଟ, ଧଳା, ଜବୋଧ, କ୍ରୂର, ତୀକ୍ଷ୍ଣ ।

ଖରୁଆ — ଗ୍ରା.ବିଂ. ଚଞ୍ଚଳିଆ, ଚଞ୍ଚଳଗତି-ବିଶିଷ୍ଟ,ଯେ ଅଳସୁଆ ନୁହେ, ଅତିରିକ୍ତ ଭାବରେ ଭଜାହୋଇଥିବା (ମୁଗ, ଚଣା ଇତ୍ୟାଦି) ।

ଖରେ — ଗ୍ରା. କ୍ରି. ବିଂ. କ୍ଷିପ୍ରଗତିରେ, ଶୀଘ୍ର ।

ଖରୋଷ୍ଟି —ବ. ଅଶୋକଙ୍କ ରାଜତ୍ୱ ସମ-ୟରେ ଭାରତର ପଶ୍ଚିମୋତ୍ତରସୀମାରେ ଚଳୁଥିବା ଲିପିବିଶେଷ ।

ଖରୋଦ — ପୁଂ. କ୍ଲୀ.ବ. ଭୌତିକବିଦ୍ୟା, ଏକପ୍ରକାର ଇନ୍ଦ୍ରଜାଲ ।

ଖର୍ଗଲା — ସ୍ତ୍ରୀ.ବ. ଉଲୂକୀ ।

ଖର୍ଚ୍ଚ—ଯା. ବ. ଧନବ୍ୟୟ,ବ୍ୟୟିତଧନ ।

ଖର୍ଚ୍ଚା — ଯା. ବ. ଖରଚ୍ଚ (ଦେଖ) ।

ଖର୍ଚ୍ଚାନ୍ତ — ଗ୍ରା. ବିଂ. ଖରଚାନ୍ତ(ଦେଖ) ।

ଖର୍ଚ୍ଚୀ — ଯା. ବିଂ. ଖରଚୀ (ଦେଖ) ।

ଖର୍ଜ୍ — ଧାତୁ. କୁଣ୍ଡେଇ ହେବା, ସଫା କରିବା, ଧୁକାକରିବା,କଷ୍ଟଦେବା,କଟ୍-କଟ୍ ଶବ୍ଦ କରିବା ।

ଖର୍ଜନ—କ୍ଲୀ.ବିଂ.(ଖର୍ଜ୍+ଭା.ଅନ)କଣ୍ଡୁ-ୟନ, କଣ୍ଡୁ, କୁଣ୍ଡାଇହେବା ।

ଖର୍ଜ୍ଜୁ — ସ୍ତ୍ରୀ.ବ.(ଖର୍ଜ୍+ର+ଅ+ଆ) ସ୍ୱର୍ଜିକ୍ଷାର, ସାଜିମାଟି ।

ଖର୍ଜ୍ଜିକା — ସ୍ତ୍ରୀ. ବ. (ଖର୍ଜ୍+ଅକ+ଆ) ଉପଦଂଶରୋଗ, କଣ୍ଡୁ, କାଛୁ,ରୁଚିବା ।

ଖର୍ଜ୍ଜୁ—ପୁଂ. ବ. (ଖର୍ଜ+ଭା, ଉ) ଗଲୁ, କଣ୍ଡୁବିଶେଷ, (ଖର୍ଜ+କ.ଉ)ଖଜୁରୀଗଛ ଦୁଦୁରା, କୀଟବିଶେଷ, ଅଁଶେଇ ।

ଖର୍ଜ୍ଜୁର — କ୍ଲୀ.ବ.(ଖର୍ଜ୍+ଉର)ରୌପ୍ୟ, ରୂପା ।

ଖର୍ଜୁ — ସ୍ତ୍ରୀ.ବ. (ଖର୍ଜ୍+ଉ)କଣ୍ଡୁ, କୀଟ, ବଣିକ, କାଛୁ, ଅଁଶେଇ ।

ଖର୍ଜୁଘ୍ନ—ପୁଂ.ବ.ଗୃଜୁଣ୍ଡୀ, ଚକ୍ରମର୍ଦ୍ଦବୃକ୍ଷ, ଧୂସ୍ତୁର ବୃକ୍ଷ, ଦୁଦୁରା, ଅର୍କବୃକ୍ଷ, ଅରଖ ଗଛ ।

ଖର୍ଜ୍ଜୁର-ପୁଂ.ବ.(ଖର୍ଜ୍+ଣିଚ୍+କ,ଉର) ଖର୍ଜ୍ଜୁର ବୃକ୍ଷ, ଖଜୁରୀଗଛ, ଖଜୁରୀ,

ରୌପ୍ୟ, ହରିତାଳ, ଖଳ, ବଙ୍ଗ,ସଅଁ-ବାଳୁଆପୋକ ।
ଖର୍ଜୁରକ—ପୁଂ.ବି.(ଖର୍ଜୁର+କ)ବୃଶ୍ଚିକ, ବିଛା, ଖଜୁରିଆ ।
ଖର୍ଜୁରବେଧ—ପୁଂ. ବି. ଯୋଗବିଶେଷ, ଏହାର ଅପର ନାମ ଏକାର୍ଗଲ, ଏହି ଯୋଗେ ବିବାହ ନିଷିଦ୍ଧ ।
ଖର୍ଜୁରିକା—ସ୍ତ୍ରୀ. ବି. (ଖର୍ଜୁର+ଇ+କ+ଆ) ମିଷ୍ଟାନ୍ନବିଶେଷ, ମିଠେଇ, ମିଠାଗଜା ।
ଖର୍ଜୁରୀ—ସ୍ତ୍ରୀ. ବି. (ଖର୍ଜୁର+ଈ) ବନ ଖର୍ଜୁର ବୃକ୍ଷ, ବଣଖଜୁରୀ, ଖଜୁରୀ ।
ଖର୍ପର—ବି. (କୃପ୍+କ.ଅର) ତସ୍କର, ଚୋର, ଧୂର୍ତ୍ତ, ଭିକ୍ଷାପାତ୍ର, ଠକ, ଖପର, କପାଳ, ଛତା, କଜ୍ଜଳ, ଖପରନାମକ ଉପଧାତୁ, ଦସ୍ତା, ଏକପ୍ରକାର ତୁତିଆ ।
ଖର୍ପରକ—ପୁଂ. ବି. ଲୌହପାତ୍ର, ଲୁହାର କଡ଼େଇ ।
ଖର୍ପରିକା,ଖର୍ପରୀ—ସ୍ତ୍ରୀ. ବି. (ଖର୍ପର+ଇ+ଆ+ଈ) ଆଖିର ଅଞ୍ଜନବିଶେଷ, କଜ୍ଜଳ ।
ଖର୍ପରୀତୁତ୍ଥ—ପୁଂ.ବି. (କ.ଧା)ଏକପ୍ରକାର ତୁତିଆ, କୃତ୍ରିମ ରସାଞ୍ଜନ ।
ଖର୍ପରୀତୁତ୍ଥକ—କ୍ଲୀ. ବି. ଖପରୀତୁତ୍ଥ (ଦେଖ) ।
ଖର୍ପଶାଳ—ପୁଂ.ବି. ଅଶ୍ୱତ୍ଥବିଶେଷ, ଜର ।
ଖର୍ପାଣି—ପ୍ରା. (ସମ୍ବ.)ବି. ଅନାର୍ଯ୍ୟବଙ୍ଗାଳି ମାନଙ୍କ ମୃତାହ ଶ୍ରାଦ୍ଧକ୍ରିୟାରେ ନବମ ଓ ଦଶମଦିନର ଅନୁଷ୍ଠାନବିଶେଷ ।
ଖର୍ମ୍ମ—କ୍ଲୀ.ବି. ପରୁଷତା ଶ୍ରାଦ୍ଧ, ପୌରୁଷ, ରେଶମୀବସ୍ତ୍ର ।
ଖର୍ବ—ପୁଂ. ବି. (ଖର୍ବ୍+କ,ଅ)କୁବେରଙ୍କ ନିଧିବିଶେଷ, ସେବତୀଫୁଲ, କଙ୍କୋଳ ବୃକ୍ଷ,ବୁଢ଼ିଆଗଛ,(ବିଂ)ବାମନ, ବାଙ୍ଗରା,ଅଳ୍ପ,ଅସଂଖ୍ୟ,ବିନଷ୍ଟ, ଏକଖର୍ବ ସଂଖ୍ୟକ ସହସ୍ରକୋଟି,ବିକଳାଙ୍ଗ,ଅଗଣିତ ।
ଖର୍ବକ—ପୁଂ. ବିଂ. (ଖର୍ବ+କ)ବାମନ, ହ୍ରସ୍ୱ, ବାଙ୍ଗର, ବୁଟା, (ସ୍ତ୍ରୀ) ଖର୍ବକା ।
ଖର୍ବକରିବା—ଗ୍ରା. କ୍ରି. (ଗର୍ବ) ଚୂର୍ଣ୍ଣ କରିବା, ଅପମାନ ଦେବା,କମାଇଦେବା ହ୍ରାସ କରିବା ।
ଖର୍ବକାୟ—ପୁଂ. ବିଂ. (ବ.ବ୍ରୀ) କ୍ଷୁଦ୍ରା-ବୟବବିଶିଷ୍ଟ, ବାମନ, ବାଙ୍ଗର ।
ଖର୍ବଖର୍ବ—ଗ୍ରା. ବିଂ.ଅସଂଖ୍ୟ, ଅଗଣିତ ।
ଖର୍ବଟ—ପୁଂବି. (ଖର୍ବ+ଅଟ୍+ଅ)କ୍ଷୁଦ୍ର ନଗର ଗ୍ରାମଶତ ଗ୍ରାମ ମଧ୍ୟସ୍ଥ ଗ୍ରାମ,ଯେଉଁ ଗ୍ରାମରେ ହାଟ ବସେ, ପାଟଣା,ପର୍ବତ-ପ୍ରାନ୍ତବର୍ତ୍ତୀ ଗ୍ରାମ ଓ ନଦୀ,ଗିରି,ପ୍ରାନ୍ତବର୍ତ୍ତୀ ଏକ ପାଖରେ ଗ୍ରାମ ଓ ଏକ ପାଖରେ ସ୍ଥିତ ନଗରର ମିଶ୍ରଣକୁ ଖର୍ବଟ କୁହାଯାଏ ।
ଖର୍ବପତ୍ରା—ସ୍ତ୍ରୀ. ବି. ଦ୍ରୋଣପୁଷ୍ପୀ, ଗଇଣ
ଖର୍ବପତ୍ରିକା—ସ୍ତ୍ରୀ.ବି. ଦ୍ରୋଣପୁଷ୍ପୀ, ଗଇଣ ଗଛ ।
ଖର୍ବଶାଖ—ପୁଂ.ବି. (ବ.ବ୍ରୀ) କ୍ଷୁଦ୍ରଶାଖା-ବୃକ୍ଷ, କ୍ଷୁଦ୍ରହସ୍ତପଦବିଶିଷ୍ଟ ଜନ, ବାମନ (ବିଂ) କ୍ଷୁଦ୍ରଶାଖାବିଶିଷ୍ଟ, କ୍ଷୁଦ୍ରବାହୁ-ବିଶିଷ୍ଟ । [ଦେଖ ।
ଖର୍ବାକୃତି—ବିଂ. (ବ.ବ୍ରୀ) ଖର୍ବକାୟ
ଖର୍ବିତ—ତ୍ରି. ବିଂ. (ଖର୍ବ+କ.ତ) ହ୍ରସ୍ୱ ।
ଖର୍ବିତା—ସ୍ତ୍ରୀ. ବି. (ଖର୍ବିତ+ଆ) ଅମାବାସ୍ୟାବିଶେଷ, ପରଦିନ ଅଳ୍ପ-ଥିବା ତିଥି । [ଚରସୀ ବୃକ୍ଷ ।
ଖର୍ବୁରା—ସ୍ତ୍ରୀ. ବି. (ଖର୍ବ+ଉର+ଆ)
ଖର୍ବୁଜ—ଯ.ାବି. ଖରଭୁଜ, ଲତାଫଳ ବିଶେଷ, ତରଭୁଜ ଜାତୀୟ ।
ଖଲ୍‌ଖାଲ୍—ଗ୍ରା. (ଅବ୍ୟ) ବୃକ୍ଷର ମଞ୍ଜି ଶୁଖିଗଲେ ଉପରର ବକଲ ହୁଗୁଳା ହୋଇ ଖସିପଡ଼ିବାର ଶବ୍ଦ ।
ଖଳ—ପୁଂ. କ୍ଲୀ. ବି. (ଖଳ+ଅଧି. କ) ଧାନ୍ୟାଦିର ମର୍ଦ୍ଦନସ୍ଥାନ, ଖଳା, ଚକ, ଔଷଧାଦି ମର୍ଦ୍ଦନ କରିବା ପାତ୍ର, ଖଲ, ସ୍ଥଳ, ଦୁର୍ଜନବ୍ୟକ୍ତି (ଖଳ+ମି. ଅ) ତେଲର ପିଠା ବା କାଣ୍ଡି, କଳମଳ, ଜଞ୍ଜାଳ, ଅଳିଆ, (ଖ+ଲା+କ,ଅ) ସୂର୍ଯ୍ୟ, ଧାତୁରା, ତମାଳଗଛ, ଦହିକଣ୍ଡ, ଧୂଳିଗଦା, ଭୂ, ସ୍ଥାନ, ତଳକଳ୍କ, ବଣିଆମାନଙ୍କର ଛାଞ୍ଚ ବା ଠସା, (ବିଂ) ନୀଚ, ଦୁଷ୍ଟ, ଅଧମ, ଦୁର୍ଜନ, ହିଂସ୍ରକ, କୁଟିଳ, ଶଠ (ଗ୍ରା.ବି) କଳହ ।
ଖଳକ—ପୁଂ. ବି. (ଖଳ+ଅକ) କୁମ୍ଭ, ଗୁଗୁଳ । [କୋଳଥ ।
ଖଳକୁଳ—ପୁଂ.ବି. (ଖଳକୁ+ଲା+ଅ)
ଖଳଖଳ—ଗ୍ରା. (ଅବ୍ୟ) ଜଳଆଦି ବେଶି ପରିମାଣରେ ବହିବାର ଶବ୍ଦ, କଳକଳ ଧ୍ୱନି, ପର୍ଯ୍ୟାପ୍ତ,ବହୁପରିମିତ, ହୁଗୁଳା ।
ଖଲଖଲ—ଗ୍ରା. (ଅବ୍ୟ) ହଚହାସ୍ୟଧ୍ୱନି, ଅଶ୍ୱତ୍ଥପତ୍ର ଚଳିବାର ଶବ୍ଦ,ବଲବଲ ।
ଖଲଖଲିଆ—ଗ୍ରା. ପୁଂ. ବିଂ. ଡବଡବା, ଯେ କୌଣସି ଗୁପ୍ତକଥା ଗୁପ୍ତ ରଖିପାରେ ନାହିଁ, ପରିଷ୍କାରରୂପେ ହୋଇଥିବା(ଝାଡ଼ା),ଯଥେଷ୍ଟ,ପର୍ଯ୍ୟାପ୍ତ ।
ଖଲଜ୍—ତୁର୍କ ଜାତିବିଶେଷ ।
ଖଲତ—ପ୍ରା.(ଗଞ୍ଜାମ) ବି. ଗୋଳମାଲ, କଳହ, ଦ୍ୱନ୍ଦ୍ୱ, ଅନର୍ଥ ।
ଖଲତା—ସ୍ତ୍ରୀ.ବି.(ଖଳ+ଭା,ତ)ଆକାଶ ଲତା, ମିଥ୍ୟାଭୂତ ପଦାର୍ଥ, କପଟତା, ଦୁର୍ବଳତା, ଗ୍ରା.ବି.ମୁଣି, ବଡ଼ଲଫାଫା ।
ଖଲତି—ପୁଂ.ବି.ଇନ୍ଦ୍ରଲୁପ୍ତରୋଗ, ଟାଙ୍ଗର ରୋଗ, (ବିଂ.) ଟାଙ୍ଗରମୁଣ୍ଡିଆ, (ସ୍ତ୍ରୀ) ଖଲତୀ । [ପର୍ବତ ।
ଖଳତିକା—ବି. (ଖଲତି+କ+ଆ)
ଖଳଧାନ—ପୁଂ.ବି. (ଖଳ+ଧା+ଅଧି, ଅନ) ଖମାର, ଖଳା ।
ଖଳଧାନ୍ୟ—କ୍ଲୀ. ବି. (ଖଳ+ଧାନ୍ୟ) ଖମାର, ଖଳା ।
ଖଳପୁ—ତ୍ରି.ବିଂ.(ଖଳ+ପୂ+କ୍ୱିପ୍) ମାର୍ଜନକାରୀ, ମେହେନ୍ତର, ଫରାସ, ବାହୁକ, ଝାଡ଼ୁ ।
ଖଳପୁଆ—ଗ୍ରା.ବି. ଖଳରେ ମର୍ଦ୍ଦନପାଇଁ ବ୍ୟବହୃତ ପ୍ରସ୍ତର ଦଣ୍ଡା ।
ଖଲପୂ—ବିଂ. (ଖଲ+ପୂ+କ,କ୍ୱିପ୍) ଖଳପୁ (ଦେଖ) ।
ଖଳପ୍ରକୃତିକ—ପୁଂ.ବିଂ. (ଖଳ+ପ୍ରକୃତି+କ) ବ.ବ୍ରୀ; ଦୁଷ୍ଟସ୍ୱଭାବଯୁକ୍ତ, (ସ୍ତ୍ରୀ) ଖଳପ୍ରକୃତିକା ।

ଖଳପ୍ରୀତି— ସ୍ତ୍ରୀ. ବି. ( ୬ତତ୍ଵ ) ଦୁର୍ଜନ ବ୍ୟକ୍ତିର ସନ୍ତୁଷ୍ଟି ।

ଖଳବ(ବା) — ଗ୍ରା.ବିଂ. (ସଂ.କଳହ,ଖଳ) ଦୁଷ୍ଟ, କଳହା. କାଣ୍ଡୁଆ, (ସ୍ତ୍ରୀ)ଖଳବୀ ।

ଖଳବଚନ — ବି. (ଖଳ + ବଚନ) ଦୁଷ୍ଟଲୋକର କଥା, ଚୁଗୁଲି ।

ଖଳବଳ — ଗ୍ରା.ବିଂ. ଭୀତ,ତ୍ରସ୍ତ ଓ କମ୍ପିତ, ଡରିଛି, ଅସ୍ଥିର, ଇତସ୍ତତଃ ପଳାୟିତ, ଗ୍ରା. ବି. ଗୋଳହଲ୍ଲା ।

ଖଳବାଟିକା — ବି. ( ଖଳ + ବାଟିକା ) ଖଳାବାଡ଼ି, ଶସ୍ୟାଦି ଅମଳ କରିବା ନିମନ୍ତେ ବାଡ଼ ଦିଆଯାଇଥିବା ସ୍ଥାନ ।

ଖଳମୂର୍ତ୍ତି — ପୁଂ. ବି. (ବ.ବ୍ରୀ) ପାରଦ, ପାରା ।

ଖଳମୂଷଳ—ହାମାମ୍‌ଦସ୍ତା, ହେମଦସ୍ତା, ଔଷଧକୁ କୁଟିବାର ଲୌହପାତ୍ରବିଶେଷ ।

ଖଳମୃ — ପ୍ରା. (ଗଞ୍ଜାମ) ଖଳବ, କଳହ ।

ଖଳଯଜ୍ଞ — ପୁଂ.ବି.ଯଜ୍ଞବିଶେଷ,ଖଳାରେ ଏହି ଯଜ୍ଞ କରନ୍ତି ବୋଲି ଏହାକୁ ଖଳଯଜ୍ଞ କହନ୍ତି, ଖଳପୂଜା ।

ଖଳସ୍ୱଭାବ — ପୁଂ. ବି. ( ବ.ବ୍ରୀ ) ଦୁଷ୍ଟସ୍ୱଭାବବିଶିଷ୍ଟ, ଖଳପ୍ରକୃତିକ ।

ଖଳା—ଗ୍ରା.ବି. (ସଂ-ଖଳ) ଧାନ ଫସଲ ଆଦି ଜମା କରିବା ଓ ଅମଳ କରିବା ସ୍ଥାନ ।

ଖଲି—ଗ୍ରା.ବି.ଖଲିବା କିମ୍ବା,ପ୍ରା.(ସମ୍ବଲ, ବାଲେଶ୍ୱର ) ଖଲ୍ଲି, ତାଳପତ୍ରରେ ତିଆରି ଏକ ପ୍ରକାର ଅସ୍ଥାୟୀ ପାତ୍ର ।

ଖଲଇ—ପ୍ରା. ( ସମ୍ବ ) ବି. ଖାଲୋଇ, ମାଛ ରଖିବାର ପାତ୍ର ।

ଖଳାଧାର — ସ୍ତ୍ରୀ. ବି. ତୈଳପାୟିକା, ଅସରପା ପୋକ ।

ଖଳାବାଡ଼ — ଗ୍ରା.ବି.ଖଳବାଟିକା (ଦେଖ) ।

ଖଲାସ—ଯା. ବି. କୌଣସି ବିପଦ ଓ କାଗିଦ ଦାୟିତ୍ୱରୁ ମୁକ୍ତି ପାଇବା, ଯା. ବିଂ. ବିପଦାଦିରୁ ମୁକ୍ତ ।

ଖଲାସକରିବା — ଗ୍ରା. କ୍ରି, କାଗିଦ ବିପଦରୁ ମୁକ୍ତ କରିବା ।

ଖଲାସି — ଯା. ବି. ଜାହାଜ ଅଗ୍ନିବୋଟ ରେଲ ଓ କେନାଲରେ ଏବଂ ତମ୍ବୁ ଟାଣିବା ଆଦିରେ ନିଯୁକ୍ତ ନିମ୍ନତମ ଭୃତ୍ୟ, କୁଲି(ଗ୍ରା.ବି) ବନା ଚୋରରେ ସ୍ତ୍ରୀମାନଙ୍କର ଏକପ୍ରକାର ଖୋସା, ବାଳଗଣ୍ଠି ।

ଖଲି — ପୁଂ.ବି.(ଖଲ + ଇ) ତେଲକାଣ୍ଟ, ପିଡ଼ିଆ,ତୈଳାଦିର କଳ୍କ ବା ସିଠା (ଗ୍ରା. ବି)ଧୋବା ଓ ତନ୍ତିମାନେ ବସ୍ତ୍ରକୁ ଟାଣୁଆ କରିବା ନିମନ୍ତେ ତହିଁରେ ଦେବା ମଣ୍ଡ, ପିଠା ନିମନ୍ତେ ପ୍ରସ୍ତୁତ ଶସ୍ୟଚୂର୍ଣ୍ଣ ଓ ଗୁଡ଼ମିଶ୍ରିତ ଅଗ୍ନିପକ୍ୱ କୋମଳ ଲେହ୍ୟଦ୍ରବ୍ୟ ବିଶେଷ,ଜନ୍ତୁମାନଙ୍କ ପ୍ରିୟ ଆର୍ଦ୍ର ଲବଣାକ୍ତ ସ୍ଥାନ ( ଯେଉଁଠାରେ ମୃଗ ମହିଷାଦି ଜନ୍ତୁ ସମବେତ ହୋଇ ମାଟି ଗୃହିବାକୁ ଭଲପାଆନ୍ତି),ଚକଟାରଙ୍ଗିଆ ଧଳା ଓ କଳାରଙ୍ଗର ମୃତ୍ତିକାବିଶେଷ ।

ଖଲି — ଗ୍ରା. ବି. ଖାଦ୍ୟ ବାଢ଼ିବାପାଇଁ ଏକତ୍ର ସିଆଁ ହୋଇଥିବା ସାଳାଦି ଗଛର ପତ୍ରମାନ,ଅଟ୍ଟା,ରସମସ୍ତ ବାକ୍ୟ, ବାକ୍ୟରେ ରସିକତା, କୌଣସି ବ୍ୟକ୍ତିକୁ ପରୋକ୍ଷଭାବରେ ଲକ୍ଷ୍ୟକରି କୁହାଯିବା ବ୍ୟଙ୍ଗ ବଚନ, ( ସଂ-ଖଲ୍ଲୀ ) ଦୁର୍ବଳତା ବା ବାତବିକାରଯୋଗୁଁ ହାତଗୋଡ଼ର ସାମୟିକ ସ୍ତମ୍ଭନ ।

ଖଲିଆ—ଗ୍ରା. ବିଂ. ଖଲିପରି ଅଠାଳିଆ ଗେଙ୍ଗୁଟି ମିଶ୍ରିତ ଓ କୃଷିର ଅଯୋଗ୍ୟ (ମୃତ୍ତିକା) ।

ଖଲିଆ — ଗ୍ରା. ବି. (ସଂ-ଖଲ୍ଲୀ) ଖଲ୍ଲୀ, ଗୋରୁମାନଙ୍କ ଗୋଡ଼ ଘୋଷାରିହୋଇଲବା ରୋଗବିଶେଷ, (ବିଂ.) ଖଲିରୋଗାକ୍ରାନ୍ତ (ଗୋରୁ), ଅଟ୍ଟାଯୁକ୍ତ, ଅଟଲ, ପ୍ରା.(ସମ୍ବ.) ଖଲିଆ (ଦେଖ) ।

ଖଲିକାର — ଗ୍ରା. ବି. ସାପୁଆ କେଳା ।

ଖଲିନ — ପୁଂ. କ୍ଳୀ ବି. ବାଗ, ଲଗାମ, ଅଶ୍ୱର ମୁଖରଜ୍ଜୁ ।

ଖଲିନୀ — ସ୍ତ୍ରୀ. ବି. (ଖଳ + ଇନ୍ + ଈ) ଖଳାସମୂହ, ଧାନର ଅନେକ ଖମାର, ଖଳସ୍ଥଳୀ ।

ଖଲିପତ୍ର — ଗ୍ରା. ବି. ସାଳଆଦି ପତ୍ରରେ ସିଆଁ ହୋଇଥିବା ଗୋଲାକୃତ ପତ୍ରସମୂହ, ଚଉପଦ, ପଲଙ୍ଗା ଇତ୍ୟାଦି ।

ଖଲିପା — ଯା. ବି. ଖଲିଫା (ଦେଖ) ।

ଖଲିଫା — ଯା. ବି. ମୁସଲମାନମାନଙ୍କର ପ୍ରଧାନ ଧର୍ମଗୁରୁ ବା ଧର୍ମନେତା,ନରପତି, ରୁକସ୍ତର ସୁଲତାନର ଉପାଧି, ସୁନିପୁଣ ଶିଳ୍ପୀ, ଦରଜି, ଓସ୍ତାଦ୍ ।

ଖଲିଫୋଟକା—ଗ୍ରା. ବି. ଗୋରୁଙ୍କ ଖୁରା ସନ୍ଧିରେ ବାହାରିବା ଫୋଟକା ପରି ବ୍ରଣବିଶେଷ ।

ଖଲିବର୍ଦ୍ଧନ — ପୁଂ. ବି ମୁଖରୋଗାନ୍ତର୍ଗତ ଦନ୍ତବେଷ୍ଟ ରୋଗବିଶେଷ ।

ଖଲିବା — ଗ୍ରା. କି. (ସଂ-ଖଲ୍ଲ) ଖଲରେ ମର୍ଦ୍ଦନ କରିବା,ସୁନା ରୁପାର ପାତ୍ରଆଦି ଠଣାରେ ରଖି ବାଡ଼େଇବା ।

ଖଲିମାଟି — ଗ୍ରା.ବି. କାଦୁଆ ମାଟି ।

ଖଲିଶ—ପୁଂ. ବି. (ଖଲି + ଶୀ + କ,ଅ) ସ୍ୱନାମପ୍ରସିଦ୍ଧ ମତ୍ସ୍ୟବିଶେଷ, ଇଣ୍ଡୁଲା ମାଛ ।

ଖଲିଶା — ଗ୍ରା.ବି. ମତ୍ସ୍ୟବିଶେଷ, ଇଣ୍ଡୁଲା ମାଛ ।

ଖଲୀ — ପୁଂ. ବି. (ଖଳ + ଇନ୍) ଶିବ, ମହାଦେବ, ଖଲ (ଦେଖ) ।

ଖଲୀକରଣ-ବି.(ଖଳ + ଚ୍ୱି + କୃ + ଅନ) ଦଳନ, ଦଳିବା, ଚକଟିବା, ଆଘାତକରଣ, ଅବମାନନା କରିବା ।

ଖଲୀକାର — ପୁଂ. ବି. (ଖଳ + ଚ୍ୱି + କୃ + ଅ) ଅପକାର, ଭର୍ତ୍ସନା, ବିପଦ, କଳଙ୍କାରୋପଣ ।

ଖଲୀନ — ପୁଂ. କ୍ଳୀ.ବି. (ଖ + ଲୀନ) କଳ (ର)ସ୍ୱର,ବାଗ,ବଲ୍ଗା,ଘୋଡ଼ାର ଲଗାମ ।

ଖଳୁ — ଅବ୍ୟ (ନିଷେଧ) ନା. ନି. ତ. ନିଶ୍ଚେ,ନିଶ୍ଚୟ, ବାକ୍ୟାଲଙ୍କାର, ଜିଜ୍ଞାସା, ଅନୁନୟ, ନିୟମ, ପ୍ରଶ୍ନ, ବାକ୍ୟ ପାଦପୂରଣ, ସାମ୍ପ୍ରା, ବ୍ୟାପ୍ତି, ବିନୟ ।

ଖଳୁଆ — ଗ୍ରା. ବିଂ. ଖଳ, ଦୁଷ୍ଟ, କଳହା, ଯେ କଳି ଲଗାଏ ।

ଖଲୁକ୍ — ପୁଂ. ବି. (ଖ + ଲୁଞ୍ଚ୍ + କ୍ୱିପ୍) ଅନ୍ଧକାର ।

ଖଲୁରେଷ—ପୁଂ.ସ୍ତ୍ରୀ.ବ. ମୃଗବିଶେଷ ।
ଖଲୂରକା—ସ୍ତ୍ରୀ. ବ. ( ଖଲଦ୍ଧ+ଉର +କ+ଆ) ଶସ୍ତ୍ରାଭ୍ୟାସଭୂମି, ଆଖଡ଼ା, ପରେଡ୍‌ପଡ଼ିଆ ।
ଖଲେକପୋତ—ପୁଂ.ବ. ନ୍ୟାୟବିଶେଷ ।
ଖଲେକପୋତବ--ସ୍ତ୍ରୀ.ବ.ନ୍ୟାୟବିଶେଷ ।
ଖଲେଧାନୀ—ସ୍ତ୍ରୀ. ବ. ( ଖଲେ+ଧା+କ,ଅନ+ଈ).ମେଧି, ମେଢ଼ି, ଧାନ୍ୟାଦ ମଳା ସମୟେ ଯେଉଁ କାଠରେ ବଳଦ ଇତ୍ୟାଦ ରହି ବୁଲନ୍ତି ।
ଖଲେବାଲୀ—ସ୍ତ୍ରୀ. ବ. ( ଖଲେ+ବଲ +ଅଧି.ଅ+ଈ) ମେଧି, ମେଢ, ବେଙ୍ଗଲାର ମଧ୍ୟସ୍ଥିତ କାଷ୍ଠ ।
ଖଲେଶ-ପୁଂ.ବ (ଖେଲେ+ଶୀ+କ,ଅ) ଖାଲିଶ ମତ୍ସ୍ୟ, ଝଲଙ୍ଗା ମାଛ ।
ଖଲେଶୟ—ପୁଂ.ବ.(ଖଲେ+ଶୀ+କ,ଅ) ଖଲିଶ ମତ୍ସ୍ୟ ।
ଖଲୋକ୍ତି—ବ.(୬ତତ୍ପୁ)କଟୂକ୍ତି,ଦୁର୍ବାକ୍ୟ, (କ.ଧା) କୁଟିଳ ବାକ୍ୟ, ହିଂସାପୂର୍ଣ୍ଣ ବଚନ ।
ଖଳ୍ୟ—(ଖଲ+ଯ)ଖଳର ଉପକାରକ ।
ଖଲ୍ୟା—ସ୍ତ୍ରୀ.ବ.(ଖଲ+ଯ.+ଆ) ଖଳାସମୂହ, ଖମାରସମୂହ ।
ଖଲ୍ଲ—ପୁଂ. ବ. ( ଖଲ+ଲ+ମି,ଅ ) ବସ୍ତ୍ରବିଶେଷ, ଗର୍ତ୍ତ, ଚର୍ମ, ଚାତକ ପକ୍ଷୀ, ଚର୍ମନିର୍ମିତପାତ୍ର, ମଶକ,ଔଷଧ ମର୍ଦ୍ଦନ-ପାତ୍ର, ନାଳ, ଖାଲ ।
ଖଲ୍ଲକାର—ବ. ( ଖଲ୍ଲ+କୃ+କ.ଅ ) ଯେ ପହଣି ଖୋଳେ ।
ଖଲ୍ଲନ—ବ. ଖଲବା କର୍ମ, ଖଲ୍ଲରେ ପେଷିବା ।
ଖଲ୍ଲାଟକ—ପୁଂ.ବ. ବିନ୍ଦୁସାର ରାଜ୍ୟର ପ୍ରଧାନ ମନ୍ତ୍ରୀ ।
ଖଲ୍ଲାସାର—ପୁଂ.କ୍ଲୀ. ବ. ଜ୍ୟୋତଷୋକ୍ତ ଯୋଗବିଶେଷ ।
ଖଲ୍ଲିକା—ସ୍ତ୍ରୀ, ବ. (ଖଲ୍ଲ+କ+ଆ) ପିଠା ଆଦ ଭଜିବାର ପାତ୍ର, ତାଵୁଆ, କରଚୁଲି, କରେଇ ।
ଖଲ୍ଲିକୋଟ—ଗ୍ରା. ବ. ଗଞ୍ଜାମ ଜିଲ୍ଲା ଅନ୍ତର୍ଗତ ଅଞ୍ଚଳବିଶେଷ ।
ଖଲ୍ଲିଟ—ପୁଂ. ବ. ଟାଙ୍ଗରମୁଣ୍ଡିଆ ।
ଖଲ୍ଲିତ—ପୁଂ.ବଂ.ଟାଙ୍ଗର ମୁଣ୍ଡିଆ, (ସ୍ତ୍ରୀ) ଖଲ୍ଲିତା ।
ଝଲ୍ଲିଶ—ପୁଂ.ବଂ. ଝଲିଶ ମତ୍ସ୍ୟ ।
ଖଲ୍ଲୀ—ସ୍ତ୍ରୀ. ବ. (ଖଲ୍ଲ+ଈ) ହସ୍ତ ଓ ପାଦର ଅବମର୍ଦ୍ଦକାରୀ ରୋଗବିଶେଷ, ହାତ ଗୋଡ଼ ଭୁଞ୍ଜି ମାଇଲାପରି ହେବା ରୋଗବିଶେଷ ।
ଖଲ୍ଲୀଟ—ପୁଂ.ବଂ. ଇନ୍ଦ୍ରଲୁପ୍ତକ ରୋଗୀ, ଟାଙ୍ଗରମୁଣ୍ଡିଆ ।
ଖଲ୍ୟ-ପୁଂ.ବ,ଏକପ୍ରକାର ଧାନ, ବାଲୁଙ୍ଗା, ଚଣା, ବୁଟ, ଖୋଲ, ମୁଣ୍ଡ ଚନ୍ଦାହେବା ରୋଗ, ଝଲ୍ଲ ।
ଖଲ୍ୱାଟ—ପୁଂ.ବଂ. ଇନ୍ଦ୍ରଲୁପ୍ତ ରୋଗୀ, ଟାଙ୍ଗର,ଯାହା ମୁଣ୍ଡରେ ବାଳ ନ ଥାଏ ।
ଖବଲ୍ଲୀ—ସ୍ତ୍ରୀ.ବ. (୬ତତ୍ପୁ) ଆକାଶ ଲତା ଅମରବଲ୍ଲୀ ।
ଖଶ୍—ପ୍ରା. ( ସମ୍ପ ) ବଂ. (ସଂ-କର୍କଶ) କର୍କଶ ।
ଖଶ୍‌ଲତ—ଯା.ବ. ସ୍ୱଭାବ,ପ୍ରକୃତ,ଅଭ୍ୟାସ, ଖୋଇ, ଦୁଷ୍ଟପଣ, ଜ୍ଞାନକୃତ ତ୍ରୁଟି ।
ଖଶ—ପୁଂ. ବ. ଜନପଦବିଶେଷ, କାଛୁ, କୁଣ୍ଡିଆ ।
ଖଶରୀରୀ—ପୁଂ.ବ.(ଖ+ଶରୀର+ଇନ୍) ଖମୂର୍ତ୍ତିମାନ୍ ।
ଖଶା—ସ୍ତ୍ରୀ. ବ. ମୁରାନାମକ ଗନ୍ଧଦ୍ରବ୍ୟ, ଦକ୍ଷକନ୍ୟା, କଶ୍ୟପପତ୍ନୀ ।
ଖଶୀର-ପୁଂ.ବ. ଦେଶବିଶେଷ, ତଦ୍ଦେଶ-ବାସୀ, ତଦ୍ଦେଶୀୟ ରାଜା ।
ଖଶେଟ—ପୁଂ.ସ୍ତ୍ରୀ.ବ. ଖଲିଶ ମତ୍ସ୍ୟ ।
ଖଶ୍ୱାସ—ପୁଂ.ବ.(୬ତତ୍ପୁ) ବାୟୁ,ପବନ ।
ଖଷ୍—(ଧାତୁ) ହିଂସା କରିବା ।
ଖଷ—ବ. ଖଷ (ଦେଖ),ଯା. (ପ୍ରା.ସମ୍ପ) ବେଣାଚେର ।
ଖଷାଣ—ଗ୍ରା. ବ. ଖସିପଡ଼ିବା, ସ୍ଖଳନ, ଖସିବା, (ବଂ) ଖସୁଥିବା ।
ଖଷ୍ଣ—ବ. (ଖଷ୍+ଭା.ନ) କ୍ରୋଧ, ବଳାତ୍କାର, ଅତ୍ୟାଚାର ।
ଖଷ୍ପ—ପୁଂ.ବ. ( ଖଷ୍+ଭା,ପ ) କ୍ରୋଧ, ବଳାତ୍କାର, ଅତ୍ୟାଚାର ।
ଖସ—ପୁଂ. ବ. (ଖ+ସୋ+କ.ଅ) ରୋଗବିଶେଷ, ଖସୁ,କୁଣ୍ଡିଆ,ବଚର୍ଚ୍ଚିକା, ବଣଙ୍ଗି, ବେଣାମୂଳ, ଦେଶବିଶେଷ, ବ୍ରାତ୍ୟ କ୍ଷତ୍ରିୟଜାତବିଶେଷ ।
ଖସକନ୍ଦ—ପୁଂ.ବ. କ୍ଷୀରୀଶ ବୃକ୍ଷ, ବାରହା କନ୍ଦା ।
ଖସ୍‌ଖସ୍—ଯା. ଉଶୀର, ବେଣାଚେର, ପ୍ରା. ପୋସ୍ତଦାନା ।
ଖସଖସ—ଗ୍ରା. ( ଅବ୍ୟ ) ଶୁଖିଲା ପତ୍ର ଉପରେ ପାଦକ୍ଷେପ କରିବାର ଶବ୍ଦ ।
ଖସଖସିଆ—ଗ୍ରା.ବଂ.(ସଂ-କର୍କଶ) କର୍କଶ, ଅଚିକ୍କଣ, ଲୁଖୁରା (ଦେହ), ଖସ ଖସ ଶବ୍ଦ କରୁଥିବା,ଯା.ବ. ବେଣାଚେର ।
ଖସଡ଼ା—ଗ୍ରା.ବଂ.(ସଂ+କଚର) କାଟିବା ଯୋଗୁଁ ଲଟପଟିଆ, ଚକଟା, ଯହିଁରେ ଗୋଡ଼ଖସେ, ପିଚ୍ଛିଲ,ଯା.ବ.ଚୋକରା-ଯାଇଥିବା,(ବ)ପ୍ରଥମ ଲେଖା ବା ଚିଠା, (ଯାହା ପରେ ସଂଶୋଧିତହୁଏ), ଗ୍ରାମର କ୍ଷେତମାନଙ୍କର ନମ୍ବର ଓ କ୍ଷେତ-ଫଳର ତାଲିକା ବା ସ୍ଥୂଳ ବିବରଣୀ, ଭର୍ଉଁରିଆ, ପାଣ୍ଡୁଲିପି ।
ଖସଡ଼ାଖତିଆନ—ଗ୍ରା. ବ. ସେଟେଲ୍-ମେଣ୍ଟରେ ପ୍ରସ୍ତୁତ କରାଯିବା ଅସମ୍ପୂର୍ଣ୍ଣ ଭୂସ୍ୱତ୍ୱ ନିର୍ଣ୍ଣାୟକ ତାଲିକା ଏବଂ ସମ୍ପୂର୍ଣ୍ଣ ଓ ସଂଶୋଧିତ ଦଲିଲ ।
ଖସଡ଼ିବା—ଗ୍ରା. କି. (ସଂ-ସ୍ଖଳନ)ଗୋଡ଼ ଖସିଯିବା ।
ଖସତିଲ—ପୁଂ.ବ. (କ.ଧା)ପୋସ୍ତଦାନା, ଅଫିମଗଛ ।
ଖସଫେନକ୍ଷୀର—କ୍ଲୀ. ବ. ଅହିଫେନ, ଅଫିମ, ଆପୁ ।
ଖସମ୍—ଯା.ବ. ଅଧିକାରୀ, ସ୍ୱାମୀ, ପତି ।
ଖସରପଟ—ପ୍ରା. (ସମ୍ପ)ବଂ. ମନ୍ଦ, ଦୁଷ୍ଟ ।
ଖସମ୍ବା—ସ୍ତ୍ରୀ. ବ. ସୂକ୍ଷ୍ମ ଜଟାମାଂସୀ, ଆକାଶମାଂସୀ ବୃକ୍ଷ ।
ଖସର୍ପ—ପୁଂ.ବ. (ବ.ବ୍ରୀ) ବୁଦ୍ଧ ।

ଖସବଜ୍ର—ପୁଂ. ବି. ଲକୁଚ, ଜେଉଠ ।

ଖସା—ସ୍ତ୍ରୀ. ବି. କଶ୍ୟପପତ୍ନୀ, (ଗ୍ରା. ବି) ସ୍ଖସି, ଡାଲ, ଶରୀରରେ ଥିବା କୃଷ୍ଣବର୍ଣ୍ଣ ଦାଗ, ତଳକୁ ଖସିବା ବା ପଡ଼ିବା କ୍ରିୟା ।

ଖସାମ୍ବଜ—ପୁଂ. ବି. ରାକ୍ଷସ ।

ଖସିବା—ଗ୍ରା. କ୍ରି. (ସଂ. ସ୍ଖଳନ) ସ୍ଖଳିତ ହେବା, ସ୍ଥାନଭ୍ରଷ୍ଟ ହେବା, ପଡ଼ିବା, ଉପରୁ ତଳକୁ ଓହ୍ଲାଇବା, ପଳାଇଯିବା, ସ୍ଥାନାନ୍ତରକୁ ଯିବା, ଊଣାହେବା, ମଳିନ ହେବା, ଅଧୋମୁଖହେବା, ଝୁଣ୍ଟି ପଡ଼ିବା, ଅଦୃଶ୍ୟହେବା, ଦାୟିତ୍ୱ ବା ବିପଦରୁ ମୁକ୍ତହେବା, ବ୍ୟସ୍ଥିତ ହେବା, ଢିଲା-ହେବା, ଯୌବନରୁ ବୃଦ୍ଧାବସ୍ଥା ଆଡ଼କୁ ଗତିକରିବା ।

ଖସିନ୍ଧୁ—ପୁଂ. ବି. ଚନ୍ଦ୍ର ।

ଖସୁ—ଗ୍ରା. ବି. କାଛୁ, କୁଣ୍ଡିଆ, (ବିଂ) ଖସୁଆ, ଖସୁରୋଗାକ୍ରାନ୍ତ ।

ଖସୂଚୀ—କ୍ରି. ବିଂ. (ଖ+ସୂଚ୍+ଇନ୍) ପ୍ରଶ୍ନ ବିସ୍ତରଣ କରିବାନିମିତ୍ତ ଯେଉଁ-ଲୋକ ଆକାଶର ନିର୍ମଳତା ସୂଚନା କରେ ।

ଖସୃମ—ପୁଂ. ବି. ବିପ୍ରଚିତ୍ତିଦାନବର ପୁଅ ।

ଖସେଇବା—ଗ୍ରା. କ୍ରି. ଖସିବା କ୍ରିୟାର ଣିଜନ୍ତ ରୂପ ।

ଖସ୍ଖସ—ଗ୍ରା.ବି.ଅଫିମ ଗଛ,ପୋସ୍ତଦାନା ।

ଖସ୍ଖସରସ—ପୁଂ. ବି. ଅହିଫେନ, ଅଫିମ

ଖସ୍ତନୀ—ସ୍ତ୍ରୀ. ବି. (ଖ+ସ୍ତନ+ଈ) (ବି.ଗ୍ରା) ପୃଥିବୀ ।

ଖସ୍ଫଟିକ—ପୁଂ.ବି. ସୂର୍ଯ୍ୟକାନ୍ତମଣି, ଚନ୍ଦ୍ର-କାନ୍ତମଣି ।

ଖସ୍ୱସ୍ତିକ—କ୍ଲୀ. ବି. ସମ ସୂତ୍ରପାତରେ ସ୍ଥିତ ମସ୍ତକୋପରିସ୍ଥ ଆକାଶ ବିଭାଗ ।

ଖହର—ପୁଂ. ବି.(ବି.ଗ୍ରା) ଶୂନ୍ୟ,ଶୂନ୍ୟ-ହାରକ ରାଶି ।

ଖା—କ୍ରି.ବିଂ.ଖନନକର୍ତ୍ତା, ଯେ ଖୋଳେ, (ସ୍ତ୍ରୀ) ନଦୀ ।

ଖା—ଗ୍ରା.କ୍ରି. 'ଖାଇବା' କ୍ରିୟାର ଅନୁ-ଜ୍ଞାରେ ଅନାଦରାର୍ଥକ ରୂପ ।

ଖାଆଣପିଆଣ—ଗ୍ରା. ବି. ଖିଆପିଆ, ବନ୍ଧୁ ଲୋକଙ୍କ ପାନଭୋଜନ କ୍ରିୟା, ଭୋଜି ।

ଖାଇ—ଗ୍ରା. ବି. ଖତ, ହୁଡ଼ା, ପରିଖା, ଗଡ଼ଖାଇ, ଆଖୁଖାଇ, କପାଖାଇ ।

ଖାଇଖରଚ—ଗ୍ରା.ବି. ମନୁଷ୍ୟର ଭୋଜ-ନର ବ୍ୟୟ ନିମନ୍ତେ ଆବଶ୍ୟକ ଧନ ।

ଖାଇଖାଇବା—ଗ୍ରା. କ୍ରି. ଥରେ ପୂର୍ଣ୍ଣ ଭୋଜନ କରିସାରି ଜୀର୍ଣ୍ଣ ନ ହେଉଣୁ ଅନତିବିଳମ୍ବରେ ପୁଣି ଖାଇବା, ଖାଇବା ଉପରେ ପୁଣି ଖାଇବା ।

ଖାଇଗୋଡ଼ାଇବା—ଗ୍ରା.କ୍ରି.ମୁଖବ୍ୟାଦାନ କରି ଖାଇବାକୁ ଆସିବା, (କୌଣସି ସ୍ଥାନ) ନିର୍ଜନତା ଯୋଗୁଁ ଉପସ୍ଥିତ ବ୍ୟକ୍ତି ମନରେ ଭୟ ଜନ୍ମାଇବା ।

ଖାଇଦ୍—ଗ୍ରା. (ସମ୍ବ) ବି. ଖାଦ୍ୟ ।

ଖାଇଧୁଁର—ଗ୍ରା.(ସମ୍ବ)ବିଂ. ଉଦରମ୍ଭରି, ପେଟୁ ଓ ଆଳସ୍ୟପରାୟଣ ।

ଖାଇପକେଇବା—ଗ୍ରା. କ୍ରି. ଅତ୍ୟନ୍ତ ବିରକ୍ତ କରିବା, ସର୍ବନାଶ ଘଟାଇବା, କୌଣସି ପଦାର୍ଥକୁ ନିଃଶେଷ କରି-ଖାଇବା ।

ଖାଇବର—ପେଶବାର ନିକଟସ୍ଥ ଆଫଗାନି-ସ୍ଥାନକୁ ଯିବାକୁ ଗୋଟିଏ ଗିରିସଙ୍କଟ ।

ଖାଇବା—ଗ୍ରା. କ୍ରି.(ସଂ ଖାଦ୍)ଭୋଜନ-କରିବା, ଘୋଟିବା, ଅଧିକାର କରିବା, ସର୍ବନାଶ କରିବା, ନଷ୍ଟକରିବା, ଗ୍ରହଣ କରିବା, ସହିବା, ଜଣକର ଅନ୍ୟଜଣେ ବେକ ଗ୍ରୀବପର୍ଯ୍ୟନ୍ତ ଉଚ୍ଚହେବା, (ଧନ) ତୋସରଫ ବା ଆତ୍ମସାତ୍ କରିବା, (ଧନ)ଉଡ଼ାଇବା, ଲାଭକରିବା,ଲଭିବା, ପାଇବା, ଆଘାତକରିବା, ଖାଲଆଦି ପୂର୍ଣ୍ଣହେବାପାଇଁ ମାଟିଆଦି ଗର୍ତ୍ତରେ ଧରିବା, (ସାପ) କାମୁଡ଼ିବା, (ହୁକାଆ, ଧୂଆଁ)ସେବନକରିବା, ଘୋଡ଼ାକର ନଷ୍ଟ କରିବା,ଭୋଗକରିବା, ଅଙ୍ଗେନିଭାଇବା, ଅନୁଭବ କରିବା,ନିଷ୍ପେଷଣକରିବା ।

ଖାଇବୁଡ଼ୁକା—ଗ୍ରା.ବିଂ. ଯାହାର ଖାଇ-ବାରେ ସର୍ବଦା ମନ ଥାଏ, ଠକରି ।

ଖାଇମଖାନି—ରାଜପୁତନାବାସୀମୁସଲମାନ୍ ଧର୍ମାବଲମ୍ବୀ ଜାତିବିଶେଷ ।

ଖାଇମନ—ଗ୍ରା. ବି. କୌଣସି ପଦାର୍ଥ ଭୋଜନ କରିବାର ଇଚ୍ଛା, ଭୋଜନ ଲାଳସା, ଗର୍ଭିଣୀର ଦୋହଦ ।

ଖାଇମନ କରିବା—ଗ୍ରା. କ୍ରି. କୌଣସି ପଦାର୍ଥ ଖାଇବାକୁ ଇଚ୍ଛା ବଳାଇବା (ଗର୍ଭିଣୀ ସ୍ତ୍ରୀ), ବିଶିଷ୍ଟ ଖାଦ୍ୟପ୍ରତି ସ୍ପୃହା କରିବା ।

ଖାଇଲହାତ—ଗ୍ରା. ବି. ଦକ୍ଷିଣହସ୍ତ, ଡାହାଣହାତ ।

ଖାଇହଗୁରୁ-ଗ୍ରା.ବି.ପୁଂ. ଖାଇସାରି ଝାଡ଼ା-ଫେରିଯିବା ଯେଉଁ ବ୍ୟକ୍ତିର ଅଭ୍ୟାସ, ଅକୃତଜ୍ଞ; ଯେଉଁ ବ୍ୟକ୍ତି ଖାଇଲା ପତ୍ରରେ ହଗେ, ଅର୍ଥାତ୍ ଉପକାରୀର ଅପକାର କରେ ।

ଖାଈ—ଗ୍ରା. ବି. ସ୍ତ୍ରୀ. (ସଂ.ଖାଦକା) ଏହା ଅନ୍ୟ ଶବ୍ଦ ସଙ୍ଗେ ଲାଗେ ଓ ବିଶେଷ ଗାଳିରେ ବ୍ୟବହୃତ ହୁଏ,(ଯଥା—ପୁତ-ଖାଈ,ଘଇତାଖାଈ)ଯେ ଅମୁକ ପଦାର୍ଥକୁ ଖାଏ, ଯେ, ଅମୁକର ମୃତ୍ୟୁ ଘଟାଏ, ଯେ ଅମୁକର ମୃତ୍ୟୁପରେ ବଞ୍ଚିରହେ, ଯେ ଅମୁକ ପାତ୍ରାଦିରେ ଖାଏ, ଯେ ଅମୁକ ସ୍ଥାନରେ ଖାଏ(ଯଥାଃ—ଛତର ଖାଈ ଇତ୍ୟାଦି ।)

ଖାଉଁ—ଗ୍ରା.ଅବ୍ୟ.ହଠାତ୍ ମୁଖବ୍ୟାଦାନ-ପୂର୍ବକ କାମୁଡ଼ିବା ଶବ୍ଦ, ଖେଙ୍କାରିବା ଧ୍ୱନି ।

ଖାଉଁକନା—ଗ୍ରା. କ୍ରିଂ.ବିଂ. କାମୁଡ଼ିବାକୁ ମୁଖବ୍ୟାଦାନ କରି, ଖାଉଁ ଖାଉଁ ଶବ୍ଦ କରି ।

ଖାଉଁ ଖାଉଁ—ଗ୍ରା. ଅବ୍ୟ. (କୁକୁର ବିଲୁଆ ଆଦି) କାମୁଡ଼ିବାପାଇଁ କରିବା ଶବ୍ଦ ।

ଖାଉଟି(ଆ)—ଗ୍ରା.ବିଂ. (ଖ ଦକ ଶବ୍ଦଜ) ଯେ ବେଶି ଖାଏ, ପେଟୁ, ଯେ କରଜ ନେଇ ଶୁଝେ ନାହିଁ, ଯେ ଖାଦ୍ୟଦ୍ରବ୍ୟ କିଣେ ଖାଇବାନିମନ୍ତେ ଦୋକାନରୁ ବ୍ୟୟ କରେ ।

ଖାଉଡ଼—ଗ୍ରା. ବି.ହୁଲ,ପଞ୍ଝା, ପଲ ।

ଖାଉନ୍ତ — ଗ୍ରା. ବି. ଆହାର, କୌଣସି ବ୍ୟକ୍ତିଙ୍କ ଅଧିକୃତ ସ୍ଥାନରେ ଭୋଜନ କରିବାକୁ ଅନୁମତି ପାଇବା ନିମନ୍ତେ ଖାଇବା ଲୋକ ଯେଉଁ କର ଦିଏ, (ଗ୍ରା.ବି) ଖାଉନ୍ତିଆ (ଦେଖ) ।

ଖାଉନ୍ଦ — ଯା. ପୁଂ. ବି. ମାଲିକ, ସ୍ୱାମୀ, କର୍ତ୍ତା, ପ୍ରଭୁ, ମୁନିବ, ଗୃହକର୍ତ୍ତା, (ସ୍ତ୍ରୀ) ଖାଉନ୍ଦାଣୀ ।

ଖାଁ — ଯା.ବି. ମୁସଲମାନ ସମ୍ଭ୍ରାନ୍ତଲୋକର ଉପାଧି, ଗ୍ରାମର ପ୍ରଧାନ ବ୍ୟକ୍ତି, ମଣ୍ଡଳେଶ୍ୱର, ମୁସଲମାନ ସମ୍ମାନସୂଚକ ପଦବୀ ।

ଖାଁବାହାଦୁର — ଯା. ବି. ରାଜଭକ୍ତ ବା ସାଧାରଣ କାର୍ଯ୍ୟପାଇଁ ଭାରତର ମୁସଲମାନମାନଙ୍କୁ ଇଂରେଜଶାସନ ଅମଳରେ ବଡ଼ଲାଟଙ୍କ ପ୍ରଦତ୍ତ ଉପାଧି ବିଶେଷ ।

ଖାଁସାହେବ୍ — ଯା.ବି. ଇଂରେଜଶାସନର ବଡ଼ଲାଟଙ୍କ ପ୍ରଦତ୍ତବିଶିଷ୍ଟ ମୁସଲମାନଙ୍କ ଉପାଧିବିଶେଷ ।

ଖାକ୍ — ଗ୍ରା.(ସମ୍ବ)ବିଂ. ଶୂନ୍ୟ, ଶୂନ୍ୟଗର୍ଭ (ବସ୍ତୁ), ନିର୍ଦ୍ଧନ, (କ୍ର) କାଖ ।

ଖାକି — ଯା.ବି. ପାଉଁଶିଆ ମାଟିଆ ବର୍ଣ୍ଣର କନା, ଦେହରେ ପାଉଁଶ ବୋଳିହେବା ସାଧୁ ସମ୍ପ୍ରଦାୟବିଶେଷ, (ବିଂ) ପାଉଁଶିଆ, ମାଟିଆ ।

ଖାଙ୍ଗ — ଗ୍ରା. ବି. ଖାଲି ବା ଶୁଚ୍ଛା ହେବା ଅବସ୍ଥା, ଅନଶନ, ନିଅଣ୍ଟ, ଅଭାବ, ଫାଙ୍କ, ଖାଲିଜାଗା ।

ଖାଙ୍ଗର — ଗ୍ରା. ବିଂ. ମୁଖବ୍ୟାଦାନଯୁକ୍ତ, ମୁକୁଳା (କେଶ), ପୋଲା, ଶୂନ୍ୟଗର୍ଭ, ଭୟଙ୍କର, ବିକଟ, ଲୁଖୁରା, (ଦେହ ଓ କେଶ) ।

ଖାଙ୍ଗା — ଗ୍ରା.ବିଂ. ଶୂନ୍ୟ, ପୋଲା, ଶୁଚ୍ଛା, ଖାଲି, ଉପବାସକ୍ଲିଷ୍ଟ, ନିର୍ଦ୍ଧନ ।

ଖାଙ୍ଗି — ଗ୍ରା.ବି. ଖାକି, ବୈରାଗୀବିଶେଷ, (ଯେ ଦେହରେ ଭସ୍ମ ବୋଳି ବୁଲନ୍ତି), ଉପବାସ, ଅନାହାର ।

ଖାଙ୍ଗେଶ୍ୱରୀ — ଗ୍ରା.ସ୍ତ୍ରୀ.ବି.ଗ୍ରାମଦେବତାବିଶେଷ, ଗାଁ ଠାକୁରାଣୀ, (ଗ୍ରା'ବିଂ) ଖାଙ୍ଗର, ବିକଟବଦନା, ଉପବାସକ୍ଲିଷ୍ଟ ହୋଇ ଯାହା ପେଟ ପିଠି ଆଡ଼କୁ ପଶି ଯାଇଥାଏ ।

ଖାଙ୍ଗାହ୍ୱ — ପୁଂ.ବି. (ଖ+ଅଙ୍ଗ+ହ୍ୱନ୍+ଅ) ଶ୍ୱେତପିଙ୍ଗଳାଶ୍ୱ ।

ଖାଜଣା — ଯା.ବି. ରାଜସ୍ୱ କର, ଖଜଣା ।

ଖାଜା — ଯା.ମୁସଲମାନ ସମାଜରେ ଧନୀ, ବଣିକ, ଚକସକ, ଶିକ୍ଷକ, ମୁସଲମାନ ସମ୍ପ୍ରଦାୟବିଶେଷ ।

ଖାଜାଞ୍ଚୀ — ଯା. ଧନାଧ୍ୟକ୍ଷ, ଯେଉଁ କର୍ମଚାରୀ ତହବିଲ ରଖେ ଓ ଆୟବ୍ୟୟ ଖରଚ କରେ ।

ଖାଜକ — ପୁଂ. ବି. (ଖଜ+କ+ଇକ) ଖଇ, ଲଜା, ଲିଆ ।

ଖାଞ୍ଚ — ଗ୍ରା ବି. (ସଂ-କର୍ଷଣ) ଓଟରା, ଆକର୍ଷଣ, ଖେଞ୍ଚା, ପ୍ରା. (ସମ୍ବ) ବି. ଗଣ୍ଠି, ଗାଞ୍ଚ ।

ଖାଞ୍ଚା — ଗ୍ରା.ବି.ପକ୍ଷୀଆଦି ରଖିବା ପଞ୍ଜୁରୀ ।

ଖାଞ୍ଚି — ଯା. ବି. କାଷ୍ଠମୟ ବୃହତ୍ ପାତ୍ରବିଶେଷ, ଦୁଣା ବଡ଼ଟୋକେଇ, ବେନ୍ତା ।

ଖାଞ୍ଚିଢପାଷ — ଯା. ବି. ବୃହତ୍‌ପାତ୍ରର ଆଚ୍ଛାଦନ ।

ଖାଞ୍ଚିବା — ଗ୍ରା. କ୍ରି. ଓଟାରିବା, ଟାଣିବା, ଖେଞ୍ଚିବା, (ପ୍ରା.ସମ୍ବ. କ୍ରି.) ଠେସି ଠେସି ଭର୍ତ୍ତି କରିବା, ଜାକିଧରିବା, ତଳକୁ ନୁଆଁଇବା, ଟାଣିକରି ବାନ୍ଧିବା ।

ଖାଞ୍ଜ — ଗ୍ରା.ବି.(ସଂ-କୋଷ) ଖୋଳ, ଖାପ, (ସଂ-ଖଞ୍ଜ) ଏକବସ୍ତୁ ଅନ୍ୟ ବସ୍ତୁରେ ଅଟକି ରହିବାପାଇଁ ଦ୍ୱିତୀୟ ବସ୍ତୁରେ ହତିଆରଦ୍ୱାରା କରାଯିବା ଘର, ଖାନ୍ଦ ।

ଖାଞ୍ଜାଞ୍ଚି — ଯା. ବି. କୋଷାଧ୍ୟକ୍ଷ, ଧନଭଣ୍ଡାରର ରକ୍ଷକ ବା ଜମିଦାର, ଧନାଗାରର ପ୍ରଧାନ କର୍ମଚାରୀ ।

ଖାଟ — ବି. (ଖଟ+ର୍ମି.ଅ) ମଡ଼ାବୁହା ଖଟିଆ, କୋକେଇ ।

ଖାଟଣୀ — ଗ୍ରା.ବି. କର୍ମ, ପରିଶ୍ରମ, ନିକୃଷ୍ଟ-କାର୍ଯ୍ୟ ।

ଖାଟମଲ — ଯା.ବି. ଛାରପୋକ, ଓଡ଼ଶ, ଉକୁଣି ।

ଖାଟା — ବି. ଖାଟ (ଦେଖ) ।

ଖାଟି — ସ୍ତ୍ରୀ.ବି. (ଖଟ+ର୍ମି.ଇ) କାଣ, ବଣ୍ଡି, କ୍ଷତଚନ୍ଦ୍ର, ଅସଦ୍‌ଗ୍ରନ୍ଥ, ଖାମଖେୟାଲ, ଶବରଥ, ଶୁଷ୍କବ୍ରଣ, କୋକେଇ ।

ଖାଟିକା — ସ୍ତ୍ରୀ. ବି. (ଖଟ+ଅକ+ଆ) ଖାଟ (ଦେଖ) ।

ଖାଟିବା — ଗ୍ରା.କ୍ରି.ପରିଶ୍ରମ କରିବା, ନିକୃଷ୍ଟ କାର୍ଯ୍ୟକରିବା, ଅବିଶ୍ରାନ୍ତ କାର୍ଯ୍ୟରେ ଲାଗିବା, ଯୋଗ୍ୟହେବା, ପ୍ରଯୁଜ୍ୟ-ହେବା ।

ଖାଟୀ — ସ୍ତ୍ରୀ. ବି. ଖାଟ (ଦେଖ) ।

ଖାଟୁ — ପ୍ରା. (ବାଲେଶ୍ୱର)ବିଂ. ପରିଶ୍ରମୀ ।

ଖାଟୁଣି — ପ୍ରା. (ବାଲେଶ୍ୱର) ବି. ବିଶେଷ ପରିଶ୍ରମ ।

ଖାଡ଼ — ଗ୍ରା. ବି. ଅଶ୍ଳୀଳରେ ସଙ୍ଗୀର ଭଲ କଥାର ଉତ୍ତରରେ ବ୍ୟବହୃତ ଅଶ୍ଳୀଳ ବା ଶ୍ଳେଷାର୍ଥକ ଶବ୍ଦ ।

ଖାଡ଼ଙ୍ଗା — ଗ୍ରା. ବି. ଦେଶୀୟ ରାଜାଙ୍କଦ୍ୱାରା ପ୍ରଦତ୍ତ ବ୍ରାହ୍ମଣମାନଙ୍କର ଉପାଧିବିଶେଷ ।

ଖାଡ଼ଦେବା(ମାରିବା) — ଗ୍ରା. କ୍ରି. ଅଶ୍ଳୀଳ ଲୋକ ସଙ୍ଗେ ପରିହାସଚ୍ଛଳରେ ତାହାଙ୍କ କଥିତ ଭଲ କଥାରେ ପ୍ରତ୍ୟୁତ୍ତରରୂପେ ଅଶ୍ଳୀଳ ବା ଶ୍ଳେଷାର୍ଥକ କଥା କହିବା ।

ଖାଡ଼ା — ଗ୍ରା.ବି.(ସଂ-ଖଡ଼କ) ଠିଆହେବା, ଉପବାସ, (ବିଂ) ଦଣ୍ଡାୟମାନ ।

ଖାଡ଼ାପହରା — ଗ୍ରା. ବି. ଅନେକ ସମୟ ଏକାଦିକ୍ରମେ ଠିଆହେବା ଅବସ୍ଥା ।

ଖାଡ଼ି — ଗ୍ରା.ବି. (ସଂ-କାଷ୍ଠ) କାଠି, ଡାଙ୍ଗ, ଲମ୍ବାଛୁଇଁ, ଗଛ ବା ଲତାର ପତ୍ରବର୍ଜିତ ଡାଙ୍ଗ ବା ନାଡ଼, ଧୂଆଁ ଡାଙ୍ଗ, ପଲଣ, ବଳଦ ପିଠିରେ ଶସ୍ୟାଦି ବୁହାଯିବା ନିମନ୍ତେ ପ୍ରସ୍ତୁତ ମୁଣି, ଦୁଇପାଖରେ ଅଲଗଥିବା ଯାଉଁଳି ବା ଲମ୍ବମୁଣି, ପ୍ରା. (ସମ୍ବ) ଦିଆସିଲେଇ କାଠି, ଦିଆସିଲେଇ ପେଡ଼ି ।

ଖାଡ଼ଆ — ଗ୍ରା.ବି. କାନ୍ଧର ଦୁଇପାଖରେ ଯାଉଁଳି କରି ପକାଇବା ନିମନ୍ତେ ପଥିକମାନଙ୍କ ବ୍ୟବହୃତ ଲମ୍ବ କନାର

ମୁଣ୍ଡି, ଅଡ଼ୁଆ, ଗୋଳମାଳ, କଳି, (ବି°) ଖୋରଆ ( ଢାଢ ), ପତଳା ଡେଙ୍ଗା (ବ୍ୟକ୍ତି) ।

ଖାଡ଼ଆଶିଙ୍ଘା—ଗ୍ରା. ବି. ସିଧା ଓ ସରୁ ହୋଇ ଠିଆ ହୋଇଥିବା ଶୃଙ୍ଗ ।

ଖାଡ଼ଆଶିଙ୍ଘା—ଗ୍ରା.ବି°. ଯେଉଁ ବଳଦର ଶିଙ୍ଗମାନ କାଠିପରି ସରୁ ଓ ସିଧା ହୋଇ ଉଠିଥାଏ ।

ଖାଡ଼ଗୁଣ୍ଡି—ଗ୍ରା.ବି. ଧୂଆଁପତ୍ରରୁ ପତ୍ରର-ଯାକ କାଢ଼ିନେଇ କେବଳ ଡାଙ୍ଗକୁ ଛେଚି ଚୂନାକରି ତହିଁରେ ମସଲାଆଦି ମିଶାଇ ତିଆରି କରାଯିବା ଗୁଣ୍ଡି ।

ଖାଡ଼ଜାଲ—ଗ୍ରା.ବି. ଲୁଗାର ଖିଅପରି ଓ ମଝିରେ ମଝିରେ ଦୁଇପାଖର ଧଡ଼ି କ୍ଷୁଦ୍ର କ୍ଷୁଦ୍ର କାଠିଦ୍ୱାରା ବନ୍ଧା ଯାଇ-ଥିବା ଏକପ୍ରକାରକ୍ଷୁଦ୍ର ଏବଂ କମ୍‌ଚୌଡ଼ା ଅଥଚ ଲମ୍ବାଜାଲ, କାଠିଜାଲ ।

ଖାଡ଼ତେଲ୍—ଗ୍ରା. ବି. ତେଲିମାନଙ୍କର ଶାଖାବିଶେଷ ।

ଖାଡ଼ପତ୍ର—ଗ୍ରା.ବି.ଏକପ୍ରକାର ଧୂଆଁପତ୍ର ।

ଖାଡ଼ବଳଦ—ଗ୍ରା. ବି. ଯେଉଁ ବଳଦ-ମାନେ ଖାଡ଼ଦ୍ୱାରା ପିଠିରେ ଶସ୍ୟାଦି ବୁହନ୍ତି, ଖୋରଆ ବଳଦ ।

ଖାଡ଼ବୁହା—ଗ୍ରା. ବି°. ଯେଉଁ ବେପାରୀ ଖାଡ଼ଦ୍ୱାରା ବଳଦଙ୍କ ପିଠିରେ ପଣ୍ୟ ଦ୍ରବ୍ୟ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ନିଏ ।

ଖାଡ଼ବୋହିବା—ଗ୍ରା.କ୍ରି.ବେପାର କରିବା ନିମନ୍ତେ ବଳଦମାନଙ୍କ ପିଠିରେ ଶସ୍ୟାଦି ଏକସ୍ଥାନରୁ ଅନ୍ୟ ସ୍ଥାନକୁ ନେବା ଆଣିବା କରିବା ।

ଖାଡ଼ମକରସଂକ୍ରାନ୍ତି—ପ୍ରା. (ବାଲେଶ୍ୱର)ବି. ଗର୍ଭଣା ସଂକ୍ରାନ୍ତି ।

ଖାଡ଼ଯୋତ—ଗ୍ରା.ବି. ବଳଦଙ୍କୁ ହଳରେ ଯୋଚିବା ପାଇଁ ଯୁଆଳିର ଦୁଇ ମୁଣ୍ଡରେ ଲାଗିଥିବା ଛୋଟ ଦଣ୍ଡ ।

ଖାଡ଼ସିଂଟୁ—ଗ୍ରା.ବି. ଖଡ଼ସିଂଟୁ (ଦେଖ) ।

ଖାଡ଼—ଗ୍ରା. ବି. ଏକତ୍ର ଯାତ୍ରା କରୁଥିବା ବଣିକ ଦଳ, ଖୋର, ( ପ୍ରା. ମେଦନୀ ) ଖଡ଼ୁ ।

ଖାଡ଼ୁଖାଡ଼ୁ—ଗ୍ରା.ଅବ୍ୟ.ଖଡ଼ଖଡ଼(ଦେଖ) ।

ଖାଡ଼ୁବଳଦ-ଗ୍ରା.ବି.ଖାଡ଼ବଳଦ(ଦେଖ) ।

ଖାଡ଼େ—ଗ୍ରା. (ଇତର) ଅବ୍ୟ, ଥରେ, ଏକବାର ।

ଖାଡ଼େଖାଡ଼େରହିବା—ଗ୍ରା. କ୍ରି. ବସ୍ତୁଷଣ ଠିଆହେବା ।

ଖାଡ୍ଗ—ବି.(ଖଡ୍ଗ+ଅ)ଖଣ୍ଡାସମ୍ବନ୍ଧୀୟ ।

ଖାଡ୍ଗିକ-ବି°(ଖଡ୍ଗ+ଇକ)ଖଡ୍ଗସମ୍ବନ୍ଧୀୟ ଖଡ଼୍ଗଧାରୀ(ପୁଂ.ବି.)ଖଡ଼୍ଗଧାରୀବ୍ୟକ୍ତି ।

ଖାଣ୍ଟି—ଗ୍ରା. ବି°. (ସଂ-ଖର) ନିର୍ଭେଳା, ବିଶୁଦ୍ଧ, ଅମିଶ୍ରିତ, ଅକୃତ୍ରିମ, ଭେଲ ବା ଖାଦରହିତ, ନିୟମପରତନ୍ତ୍ର, ସତ୍ୟ, ନ୍ୟାୟପର, ଧର୍ମର ନିୟମକୁ କଠୋର ରୂପେ ପାଳନକାରୀ ।

ଖାଣ୍ଟିଖୁଣ୍ଟିହେବା—ଗ୍ରା.କ୍ରି.(ସଂ-କୁଣ୍ଠିତ) କୁଣ୍ଠିତହେବା, କୃପଣତା ଦେଖାଇବା

ଖାଣ୍ଟିବା—ଗ୍ରା. କ୍ରି. ଖେଣ୍ଟିବା, କସି-ଦେବା, କମିକରିବା, ଖେଣ୍ଟିବା, ଅଳ୍ପ-ମାତ୍ରାରେ ଦେବା ।

ଖାଣ୍ଡୁ—ଗ୍ରା. ବି. କ୍ଷମତା, ଶକ୍ତି, ବଳ, ସାମର୍ଥ୍ୟ ।

ଖାଣ୍ଡ—କ୍ଲୀ. ବି. (ଖଣ୍ଡ+ଭା.ଅ) ଖଣ୍ଡର-ତକାର, ଖଣ୍ଡାର ଭାବ, ଫଟାହେବା ଅବସ୍ଥା ।

ଖାଣ୍ଡବ—ବି.(ଖଣ୍ଡ+ଅ+ବ)ଖଣ୍ଡବକାର ଯୁକ୍ତ ମୋଦକାଦି,ମିଶ୍ରି ଖଣ୍ଡରେ ତିଆରି ମିଠେଇ, ପ୍ରାଚୀନ ବନବିଶେଷ,ଯମୁନା-ତୀରସ୍ଥପ୍ରଦେଶ,ଦେଶବିଶେଷ,ଖାଣ୍ଡବପ୍ରସ୍ଥ ।

ଖାଣ୍ଡବଦହନ—ବି. (ପୌରାଣିକ)ଅଗ୍ନି-ଙ୍କର ବ୍ୟାଧି ନିବୃତ୍ତି ନିମନ୍ତେ ଅର୍ଜୁନଙ୍କ-ଦ୍ୱାରା ଖାଣ୍ଡବବନ ଓ ତହିଁରେ ଥିବା ଜୀବଜନ୍ତୁଙ୍କର ପୋଡ଼ାପୋଡ଼ି ।

ଖାଣ୍ଡବପ୍ରସ୍ଥ—ବି.ଇନ୍ଦ୍ରପ୍ରସ୍ଥ, ପ୍ରାଚୀନଦିଲ୍ଲୀ ।

ଖାଣ୍ଡବାୟନ—ପୁଂ. ବି. ଖାଣ୍ଡବବନବାସୀ ଋଷି ।

ଖାଣ୍ଡବିକ—ପୁଂ. ବି.(ଖାଣ୍ଡବ+ଇକ)ଯେ ମୋଦକ, ମୁଆଁ,ମିଠେଇପ୍ରଭୃତି ପ୍ରସ୍ତୁତ କରେ, ଗୁଡ଼ିଆ ।

ଖାଣ୍ଡବୀ—ସ୍ତ୍ରୀ. ବି. ଚନ୍ଦ୍ରବଂଶୀୟ ସୁଦର୍ଶନ ରାଜକର୍ତ୍ତୃକ ନିର୍ମିତ ହିମାଳୟର ନିକଟ-ସ୍ଥିତ ଗୋଟିଏ ପୁରୀ ।

ଖାଣ୍ଡି—ପ୍ରା.(ପୁରୀ)ବି. ମହାପ୍ରସାଦ କୁଡ଼ୁଆ ଭଙ୍ଗା ଫାଳ ବା ଚଉଠା ଅଂଶ ।

ଖାଣ୍ଡିକ—ପୁଂ. ବି. (ଖଣ୍ଡ+ଇକ) ଯେ ମୋଦକ ପ୍ରସ୍ତୁତ କରେ, ଗୁଡ଼ିଆ ।

ଖାଣ୍ଡିକ୍ୟ—ନିମିବଂଶୀୟ ଏକଜଣ ରାଜା ।

ଖାଣ୍ଡିଖିଆ—ପ୍ରା.(ପୁରୀ)ବି°.ଯେ ଖାଣ୍ଡିରେ ଖାଏ, ଦରିଦ୍ର, ମାଗିଖିଆ, ଚଣ୍ଡାଳ, (ଗାଳିରେ ବ୍ୟବହୃତ) ।

ଖାଣ୍ଡିତ—ବି°.(ଖଣ୍ଡିତ+ଇ)ଖଣ୍ଡିତର ସନ୍ନିହିତ ଦେଶାଦି ।

ଖାତ—କ୍ଲୀ. ବି. (ଖନ୍+ଭା.ତ) ଗଡ଼ିଆ, ଗୁମ୍ଫା,ପୋଖରୀ, ଗଡ଼ଖାଇ, ଖୋଳିବା, ଖନନ, ପ୍ରଣାଳୀ, (ପୁଂ) କୂପ, (ବି°) ଯାହା ଖୋଳା ହୋଇଅଛି, ଖନିତ, ଚିରା ହୋଇଥିବା ।

ଖାତକ—କ୍ଲୀ. ବି. (ଖାତ+କ) ଖାଇ, ପରିଖା, ଜଳ,ଗଡ଼ିଆ, ପୁଂ.ବି. (ଖାତ+ କି+କ, ଅ) ଅଧମର୍ଣ୍ଣ, ଋଣୀ, କରଜୀ, ଦେଣାଦାର, ପରସୈନ୍ୟବିଦାରକ, ଖନନକାରୀ ।

ଖାତବନ୍ଧ—ଗ୍ରା.ବି. କୌଣସି ସ୍ଥାନରେ ମାଟି ପକାଇବା ନିମନ୍ତେ ଯେଉଁ ଖାତରୁ ମାଟି ଉଠାଯାଇଥାଏ ସେ ସ୍ଥାନରେ କେତେ ପରିମାଣରେ ମାଟିପଡ଼ିଛି ଏହା ଜାଣିବା ନିମନ୍ତେ ଖୋଳାହୋଇଥିବା ଗାତମାନଙ୍କର ଦୈର୍ଘ୍ୟ, ପ୍ରସ୍ଥ ଓ ଗଭୀ-ରତା ମାପିବାର ପ୍ରଣାଳୀ ।

ଖାତବ୍ୟବହାର—ପୁଂ.ବି.ଗଣିତବିଶେଷ, ପୁଷ୍କରିଣୀପ୍ରଭୃତିର ଦୈର୍ଘ୍ୟ, ବିସ୍ତାର, ବେଧଦ୍ୱାରା ପରିମାଣ ନିର୍ଣ୍ଣୟ ।

ଖାତଭୂ—ସ୍ତ୍ରୀ.ବି.ପରିଖା,ପ୍ରତକୂପ ଖାଇ ।

ଖାତର—ଯା. ବି. ଅନୁରୋଧ,ଉପରୋଧ, ଜାମିନ୍, ଧନ, ମନୋଯୋଗ, ସୁନାମ, ଶ୍ରଦ୍ଧା, ମହତ୍ତ୍ୱ,ମର୍ଯ୍ୟାଦା,ସମ୍ମାନ,ଆଦର, ପରବାଏ, ପ୍ରତିପତ୍ତି, ଜାମିନ୍ଦାର୍, (ଯା. ଅବ୍ୟ) (କଚ୍ଛକାଳ,) ନିମନ୍ତେ, ସକାଶେ, ପାଇଁ ।

ଖାତରକରବା — ଗ୍ରା. କ୍ରି. ଆଦରକରିବା, ସମ୍ମାନ କରିବା, (କଥା ବା ଉପଦେଶ) ଗ୍ରାହ୍ୟକରିବା, ଗ୍ରହଣକରିବା ।

ଖାତରକୁ ଆଣିବା — ଗ୍ରା. କ୍ରି. ଖାତର କରିବା (ଦେଖ) ।

ଖାତରଜମା — ଯା. ବି. ସନ୍ତୋଷ ।

ଖାତରଦାରି — ଯା.ବି. ସମ୍ମାନପ୍ରଦର୍ଶନ ।

ଖାତରନଦାରଦ୍ — ଯା.ବି. ବେଖାତର, ଅବହେଳା, ଅବଜ୍ଞା, ଅଯତ୍ନ, ଅଶ୍ରଦ୍ଧା, (ବିଂ) ବେଖାତର ।

ଖାତରଜାମିନ୍ — ଯା.ବି.ବ୍ୟକ୍ତିଗତଜାମିନ୍ ।

ଖାତରିଆ — ଗ୍ରା.ବିଂ.ଯେ ଅନ୍ୟକୁ ସମ୍ମାନ ଦେଖାଏ, ମାନ୍ୟାସ୍ପଦ ।

ଖାତରୂପକାର — ବି.(ଖାତ + ରୂପକାର) କୁମ୍ଭାର ।

ଖାତା — ସ୍ତ୍ରୀ.ବି.(ଖନ୍ + ତ + ଆ)ଖନନ୍ତା, ବି. (ଖାତ + ଆ ) କୃତ୍ରିମ ଜଳାଶୟ, (ଗ୍ରା.ବି.)ହିସାବ ବହି,ଲେଖିବା ନିମନ୍ତେ ବନ୍ଧା ଯାଇଥିବା ବହି, ମହାଜନମାନଙ୍କର କାରବାର ବହି, ସେଟଲମେଣ୍ଟ ଖତିଆନରେ ଚଢ଼ାଯିବା ଗୋଟିଏ ବ୍ୟକ୍ତିର ବିଷୟ ।

ଖାତାଅସୁଲ — ଗ୍ରା. ବି. ଖାତାର ହିସାବ ଦେଖି ଦେଣାଦାରମାନଙ୍କଠାରୁ ପାଉଣା ଆଦାୟ ।

ଖାତାକରିବା — ଗ୍ରା. କ୍ରି. ଖାତାରେ ଲେଖିବା, କୌଣସି ବ୍ୟକ୍ତିର ନାମରେ ପ୍ରଥମେ କାରବାର ବିଷୟ ଉଲ୍ଲେଖ କରିବା, ମହାଜନର ଖାତାରେ ଖାତକ ଆପଣାର ଦାୟିତ୍ୱ ବା ଦେଣା ବିଷୟ ସ୍ୱୀକାର କରି ଲେଖି ସ୍ୱାକ୍ଷରକରିଦେବା ।

ଖାତାଚଢ଼ାଇବା — ଗ୍ରା. କ୍ରି. ଖାତାରେ ଲେଖିବା ।

ଖାତାଦୋରସ୍ତ — ଗ୍ରା.ବି.ଖାତାରେ ଆୟ ବ୍ୟୟ ଚଢ଼ାଯିବା କର୍ମ, କାଗଜପତ୍ର ଅନୁସାରେ ସବୁକାମ ଠିକ୍ ଥିବାର ଦେଖାଯିବା ଅବସ୍ଥା ।

ଖାତାଦୋରସ୍ତ ରଖିବା — ଗ୍ରା.କ୍ରି.ଖାତାପତ୍ରରେ ଆୟବ୍ୟୟର ହିସାବ ଠିକ୍ମତେ ଲେଖି କୈଫିୟତ୍ଗଢ଼ାଇବା, କାଗଜପତ୍ରରେସବୁ ଠିକ୍ ଥିବାର ଦେଖାଇବା ।

ଖାତାପତ୍ର — ଗ୍ରା.ବି.ସବୁପ୍ରକାରର ହିସାବ ପୁସ୍ତକ ଓ କାଗଜ ।

ଖାତାବନ୍ଦ — ଗ୍ରା. ବି. ଖାତା ଅନୁସାରେ ଭୂମିରକର-ନିର୍ଦ୍ଧାରଣ,(ବିଂ)ଖାତାରେ ଲେଖା ହୋଇଥିବା ।

ଖାତାବହି — ଗ୍ରା.ବି. ଆୟବ୍ୟୟର ହିସାବ-ଲେଖା ବହି, ଗୁଡ଼ିଏ କାଗଜ ଏକତ୍ର ବନ୍ଧାହୋଇଥିବା ବହି ।

ଖାତାବାକି — ଗ୍ରା. ବି. କୌଣସି ବ୍ୟକ୍ତି-ଠାରେ ଖାତାରେ ଜମାଖରଚ ହିସାବ ହେବାପରେ ଯାହା ବାକି ପଡ଼େ ।

ଖାତାମିଳାଇବା — ଗ୍ରା. କ୍ରି. ଖାତାରେ ଲେଖାଥିବା ଆୟସଙ୍ଗେ ବ୍ୟୟର ମେଳ କରିବା,ମହାଜନ ଓ ଖାତକଙ୍କ ଖାତା-ଦ୍ୱୟରେ ଲେଖାଥିବା ବିଷୟ ମାନ ମୁକାବିଲା କରିବା ।

ଖାତି — ବି. (ଖନ୍ + ଘ,ତି) ଖୋଳିବା, (ଗ୍ରା.ବି.) ବଣାଣି ବା କାରିଗର ଜାତି-ବିଶେଷ ।

ଖାତିର୍ — ଯା. ବି. ଖାତର (ଦେଖ) ।

ଖାତିରଦାର୍ — ଯା.ବି. ଯାହାକୁ ଖାତିର୍ କରାହୁଏ ଅଥବା ଯେ ଖାତିର କରେ ।

ଖାତିରମଦାର — ଯା. ବି. ସମ୍ମାନ, ପତି-ଆସ୍ତ, ବ୍ୟାବସାୟିକ ପ୍ରତିପତ୍ତି ।

ଖାତୁ — ଗ୍ରା. (ସମ୍ବ) ବି. ଠାଣି, ଢଙ୍ଗ, ଅଭିମାନ, ଆତ୍ମଶ୍ଳାଘା, (ଲରିଆ) ଖତ ।

ଖାତ୍ର — କ୍ଳୀ. ବି. (ଖନ୍ + ଣ.ତ୍ର) ଖନନ, କୋଡ଼ି, (ଖନ୍ + ର୍ମି,ତ୍ର) ବନ; ସୂତ୍ର, ସୂତା,ଅତିଭୟ, ଆୟତ ପୁଷ୍କରଣୀ ।

ଖାଦ — ପୁଂ. ବି. (ଖାଦ୍ + ର୍ମି,ଅ) ଖାଦ୍ୟ ବସ୍ତୁ,ଆହାର,(ଖାଦ + ଘ,ଅ)ଖାଇବା, ଚର୍ବଣ, (ଗ୍ରା.ବି) ଭେଳ ।

ଖାଦକ — ପୁଂ. ବି. (ଖାଦ୍ + କ, ଅକ) ଭକ୍ଷକ, ଭୋଜନକାରୀ, ଅଧମର୍ଣ୍ଣ, ଋଣ, ହିଂସ୍ର, (ବି) ଖାତକ, ଦେଣାଦାର ।

ଖାଦନ୍ତବମନ୍ତା — ବି. (ଖାଦନ୍ତ + ବମନ୍ତ + ଆ) ଉପସର୍ଗପର କେବଳ ଖାଦ୍ୟ ଖାଉଥିବା ଓ ବାନ୍ତି କରୁଥିବା ଅବସ୍ଥା ।

ଖାଦନ୍ତମୋଦନ୍ତା — ସ୍ତ୍ରୀ.ବିଂ. ଭୋଜନ ଓ ହର୍ଷପ୍ରକାଶ କରିବାର ଅନୁମତି ଯେ କାର୍ଯ୍ୟରେ ଅଛି, ସବୁବେଳେ ଖାଇବା ଓ ମଉଜ କରିବା ।

ଖାଦନ୍ତାଚମନ୍ତା — ବି. ( ଖାଦନ୍ତ + ଆଚ-ମନ୍ତ + ଆ) ଉପସର୍ଗପର କେବଳ ଖାଇବା ଓ ଆଚମିବା ଅବସ୍ଥା ।

ଖାଦନ — ପୁଂ. ବି. (ଖାଦ୍ + କ, ଅନ) ଖାଦକ, ( ଖାଦ + ଣ, ଅନ ) ଦାନ୍ତ, କ୍ଳୀ.ବି. ( ଖାଦ + ଘ,ଅନ ) ଆହାର, ଭୋଜନ,ଖୁଆଇବା,(ଖାଦ + ର୍ମି,ଅନ) ଖାଦ୍ୟ ।

ଖାଦନୀୟ — ବିଂ. (ଖାଦ୍ + ର୍ମି,ଅନୀୟ) ଭୋଜନୀୟ, ଯାହା ଭୋଜନ କରିବାର ଯୋଗ୍ୟ, ଖାଦ୍ୟ ।

ଖାଦି — ବି. (ଖାଦ୍ + ଇ) ଖାଦ୍ୟଦ୍ରବ୍ୟ, ଭକ୍ଷବସ୍ତୁ, କବଚ, ବସ୍ତ୍ରାଣି, ଆଭରଣ, (ଗ୍ରା.ବି) ଉପଯୁକ୍ତ ଖାଦ୍ୟଦ୍ରବ୍ୟ, ଯଥେଷ୍ଟ ଖାଦ୍ୟଦ୍ରବ୍ୟ, ଭୋଜନ । [ଭୁକ୍ତ ।

ଖାଦିତ — ବି.ବିଂ.(ଖାଦ୍ + ର୍ମି,ତ)ଭକ୍ଷିତ,

ଖାଦିତବ୍ୟ — ବି.ବିଂ.(ଖାଦ୍ + ର୍ମି,ତବ୍ୟ) ଯାହା ଖାଇବାର ଯୋଗ୍ୟ, ଖାଦନୀୟ ।

ଖାଦିର — ବି.ବିଂ. (ଖଦିର + ଅ) ଖଇ-ରରୁ ତିଆରି, ଖଦିରର ସାର, ଖଦିର କାଷ୍ଠ ନିର୍ମିତ ଯୂପାଦି ।

ଖାଦିରକ — ବିଂ.(ଖଦିର + ଅକ) ଖଇର ସନ୍ନିକଟରୁ ଉତ୍ପନ୍ନ ହୁଏ ।

ଖାଦିରସାର — ପୁଂ. ବି. ଖଦିର ବୃକ୍ଷ-ନିର୍ଯ୍ୟାସ, ଖଇର ।

ଖାଦିରେୟ — ବି. ବିଂ. (ଖଦିର + ଏୟ) ଖଇରରୁ ଉତ୍ପନ୍ନ ।

ଖାଦୀ — ପୁଂ. ବିଂ. ( ଖାଦ + କ, ଇନ୍ ) ଖାଦକ, ଭକ୍ଷକ,ଶତ୍ରୁ, ବିନାଶକ, କଣ୍ଟା-ଳିଆ, ବଳୟଯୁକ୍ତ, (ସ୍ତ୍ରୀ) ଖାଦିନୀ ।

ଖାଦୁକ — ବି. ବିଂ. (ଖାଦ୍ + କ ଓ ଉକ) ହିଂସାଳୁ, (ସ୍ତ୍ରୀ) ଖାଦୁକୀ ।

ଖାଦୋଅର୍ଣ୍ଣିସ୍ — ସ୍ତ୍ରୀ. ବି. ନଦୀକୂଳଙ୍କଷା ।

ଖାଦ୍ୟ—ବି. ବ୍ୟଂ. (ଖାଦ୍‌+ର୍ମ,ଯ) ଭକ୍ଷଣୀୟ, ଭୋଜ୍ୟ, ଭୋଜନର ଉପଯୁକ୍ତ, ପଥ୍ୟ, (ବି) ଭକ୍ଷବସ୍ତୁ ।

ଖାଦ୍ୟଖାଦକ—ପୁଂ.ବ୍ୟଂ. (ତତ୍ପୁ) ଖାଦ୍ୟ ଭୋଜନକାରୀ, (ପୁଂ.ବି. ଦ୍ୱନ୍ଦ୍ୱ) ଭକ୍ଷ ଓ ଭକ୍ଷକ ଆହାର୍ଯ୍ୟ ବସ୍ତୁ ବା ପ୍ରାଣୀ ଓ ତାହାର ଭକ୍ଷକ ।

ଖାଦ୍ୟଖାଦକସମ୍ବନ୍ଧ—ବି. ( ଖାଦ୍ୟ+ ଖାଦକ+ସମ୍ବନ୍ଧ) ଦ୍ୱନ୍ଦ୍ୱ ଓ ତତ୍ପୁ, ଭକ୍ଷବସ୍ତୁ ଓ ଭକ୍ଷକ ମଧ୍ୟରେ ବିଦ୍ୟମାନ ସମ୍ପର୍କ, ପ୍ରାକୃତିକ ଶତ୍ରୁତା ।

ଖାଦ୍ୟସାର—ବି. (ତତ୍ପୁ) ଖାଦ୍ୟ ପଦାର୍ଥରେ ଥିବା ଶରୀରର ପୁଷ୍ଟିସାଧନ ଉପାଦାନବିଶେଷ ।

ଖାଦ୍ୟାଖାଦ୍ୟ—କ୍ଲୀ. ବି.(ଦ୍ୱନ୍ଦ୍ୱ) ଭୋଜନ ଯୋଗ୍ୟ ଓ ଅଭୋଜ୍ୟ ବସ୍ତୁ ।

ଖାଦ୍ୟାଭାବ—ପୁଂ.ବି. ( ତତ୍ପୁ ) ଭକ୍ଷ୍ୟ ଦ୍ରବ୍ୟର ଅନଟନ, ଖାଦ୍ୟର ଅଭାବ ।

ଖାନ୍‌କା—ଯା. ବି. ମୁସଲମାନ ସାଧୁ ଓ ସାଧକଶିକ୍ଷକମାନଙ୍କର ରହିବା ମଠ ।

ଖାନ୍‌କୀ(ଗୀ)—ଯା.ବି.ଗୁପ୍ତବେଶ୍ୟା,ଯେଉଁ ସ୍ତ୍ରୀର ବେଶ୍ୟାବୃତ୍ତିହିଁ ଏକମାତ୍ର ଅବଲମ୍ବନ, (ଗାଳି) ଦୁଷ୍ଟଚରିତ୍ରା, ସ୍ତ୍ରୀ ।

ଖାନ୍‌ତଲାସ—ଯା. ବି. ରାଜାଦେଶରେ ସନ୍ଦେହଯୁକ୍ତ ବ୍ୟକ୍ତିର ଘର ରାଜକର୍ମଚାରୀ ବା ପୁଲିସଙ୍କଦ୍ୱାରା ତଲାସ ବା ଖୋଜାଖୋଜି ।

ଖାନ୍‌ଦାନ୍—ଯା.ବ୍ୟଂ.ଉଚ୍ଚବଂଶୀୟ,କୁଳୀନ ବଂଶପରମ୍ପରାଗତ, ପୈତୃକ ।

ଖାନ୍‌ସୁମାର(ବି)—ଯା.ବି.ରାଜାଦେଶରେ କୌଣସି ଗ୍ରାମ ବା ଦେଶରେ ମନୁଷ୍ୟ ଗଣନା ।

ଖାନ—କ୍ଲୀ. ବି. ( ଖୈ+ସ୍ତ, ଅନ ) ଭୋଜନ, ଖାଇବା, ଖାନା, ଖନନ, ହିଂସନ ।

ଖାନକ—ପୁଂ. ବ୍ୟଂ. (ଖନ୍‌+ଅକ) ଯେ ଖୋଳେ, ଖନନ କରିବା (ଲୋକ) ।

ଖାନକୀ—ଯା.ବି.ବାରବିଳାସିନୀ,ବେଶ୍ୟା, ଖାନଗୀ । (ସଂକ୍ଷ ।

ଖାନକୀଖୋର୍—ଯା.ପୁଂ.ବ୍ୟଂ. ବେଶ୍ୟା-

ଖାନକୀଠୋଲ—ଯା. ବି. ବେଶ୍ୟାପଲ୍ଲୀ, ବେଶ୍ୟାସାହି, ବେଶ୍ୟାପଡ଼ା ।

ଖାନକୀପଣିଆ—ଗ୍ରା. ବେଶ୍ୟାର ଭାବ, ବେଶ୍ୟାପରି ହାବଭାବ ପ୍ରକାଶ କରିବା ।

ଖାନ୍‌କୀବାଜ୍—ଯା. ବ୍ୟଂ. ଯେ ସର୍ବଦା ବେଶ୍ୟା ନେଇ ଆମୋଦପ୍ରମୋଦକରେ ।

ଖାନକୀବାଜୀ—ଯା. ବି. ବେଶ୍ୟାନେଇ ଆମୋଦ-ପ୍ରମୋଦ ।

ଖାନକୀମି—ଯା. ବି. ବେଶ୍ୟାପଣିଆ, ଖାନକୀପଣିଆ ।

ଖାନପାନ-କ୍ଲୀ.ବି.(ଖାନ+ପାନ) ଖାନାପିନା, ଖାଇବା ପିଇବା ।

ଖାନା—ଯା. ବି. ଭୋଜନ,ଭୋଜି, ବିଲାତି ବା ମୁସଲମାନରନ୍ଧା ଖାଦ୍ୟ, ଘର, ସ୍ଥାନ, ବୈଠକଖାନା, ଗ୍ରା, (ଗଞ୍ଜାମ) ପୋଲ ।

ଖାନାଜଙ୍ଗୀ—ଯା. ବି. ଦୁଇ ଜଣଙ୍କ ମଧ୍ୟରେ ଲଢ଼େଇ, ପରସ୍ପର ଝଗଡ଼ା, ଯୁଦ୍ଧ ।

ଖାନାଜାଦ—ଯା.ଯେ ଘରେ ଜାତ ହୁଏ, ନୌକର,ଯାହା ଘରେ ଆଣି ରଖାହୋଇଅଛି ।

ଖାନାପିନା—ଗ୍ରା. ବି. ଖିଆପିଆ, ଭୋଜି, ଉତ୍ସବ, ଭୋଜନ ଓ ପାନକର୍ମ ।

ଖାନାପୁରି—ଗ୍ରା.ବି. ନକ୍‌ସାରଅଙ୍ଗପୂରଣ, ଜମିବନ୍ଦୋବସ୍ତର ପ୍ରାଥମିକକ୍ରିୟା,କିସ୍ତୱାର ପରେ ତାହା ନକ୍‌ସାରେ ଯଥା ସ୍ଥାନରେ ପୂରଣ କରିବା କର୍ମ ।

ଖାନି—ସ୍ତ୍ରୀ. ବି. (ଖନ+ଇ) ସ୍ୱର୍ଣ୍ଣାଦିର ଉତ୍ପତ୍ତି ସ୍ଥାନ, ଖଣି, ଆକାର, ଗ୍ରା. ବି. ସ୍ଥାନ, ଦର, ଭାରତର ଗୃହ ଦରରେ ଥିବା ଗୃହସ୍ଥାର୍ଥ, ପ୍ରକାର, ଶ୍ରେଣୀ ।

ଖାନିକ—କ୍ଲୀ.ବି. (ଖନ+ଇକ) କାନ୍ଥର ଗାତ, (ବ୍ୟଂ) ଖଳ,ଖନକ, ଯେ ଖଣିରେ କାମ କରେ ।

ଖାନିଲ—ପୁଂ.ବି. (ଖନ୍‌+ଇଲ) ସିନ୍ଧଆ-ଚୋର, ଯେ ସିନ୍ଧକରି ଚୋରିକରେ ।

ଖାନିଷ୍ଟ—ପୁଂ. ବି. ମାଂସବିଶେଷ ।

ଖାନୀ—ସ୍ତ୍ରୀ.ବି.(ଖାନି+ଈ(ଖଣି)ଆକର ।

ଖାନୋଦକ-ପୁଂ.ବି. (ବ.ବ୍ରୀ) ନାରିକେଳ ଫଳ, ନଡ଼ିଆ ।

ଖାନ୍ଧ—ଗ୍ରା. ବି. ପଥର ବା କାଠରେ ଖୋଳାହେବା ଘର,ଡାଳ,କଦଳୀ ଆଦି ଫଳର କାନ୍ଧି, ପେଣ୍ଡା ।

ଖାନ୍ୟ—ବି. ବ୍ୟଂ. ( ଖନ୍‌+ଯ) ଯାହା ଖନନ କରାଯାଏ, ଖନନର ଯୋଗ୍ୟ ।

ଖାପ୍‌ଖାପ୍‌ରା—ଗ୍ରା. ବ୍ୟଂ. ଜାଲୁଜାଲୁଆ ।

ଖାପ—ଗ୍ରା. ବି. ଖଣ୍ଡାଖୋଳ, ଯୋଡ଼, ଲାଗି, ମେଳ, ଫାଙ୍କ, ଖାନ୍ଧ, ଘୋଡ଼ଣି, ଗ୍ରା. ବ୍ୟଂ. ଖୁବ୍ ଗାଢ଼ଭାବରେ ବୁଣା ହୋଇଥିବା (ଲୁଗା) ।

ଖାପଖାଇବା—ଗ୍ରା. କ୍ରି. ସମ୍ପୂର୍ଣ୍ଣ ମେଳହେବା, ଉପଯୋଗୀ ହେବା ।

ଖାପଗା—ସ୍ତ୍ରୀ. ବି.(ଖ+ଆପଗା)ତତ୍ପୁ; ଆକାଶଗଙ୍ଗା, ଗଙ୍ଗା ।

ଖାପି—ଗ୍ରା. ବି. ( ସଂ-ଖାଦ୍ୟ ଓ ପାନ ) ଖିଆପିଆ, ଭୋଜନ କ୍ରିୟା ।

ଖାପିବା—ଗ୍ରା. କ୍ରି. ଖପିବା(ଦେଖ)ଖପିବାର ପ୍ରୟୋଜକ ରୂପ ।

ଖାବଖାବୁଆ—ଗ୍ରା.ବ୍ୟଂ.ଉଚ୍ଚନୀଚ,ବନ୍ଧୁର, ଅସମତଳ ।

ଖାବ୍‌ଖାବୁଡ଼ା—ଗ୍ରା. ବ୍ୟଂ. ଖାବ୍‌ଖାବୁଆ (ଦେଖ) ।

ଖାବଡ଼—ଗ୍ରା.(ସମ୍ବ.) ବ୍ୟଂ. ପ୍ରାୟ ଦେଢ଼ ହାତ ଲମ୍ବର ଯଷ୍ଟି,ଫୋପଡ଼,ଲଣ୍ଡିଆ ।

ଖାବଲ—ଗ୍ରା. ବି. (ସଂ-କବଲ)କୌଣସି ପଦାର୍ଥକୁ ଭିତରକୁ ପୁରାଇ ରଖିବାପାଇଁ କାଠ ବା ପଥରରେ କରାଯିବା ଘର ବା ଗର୍ତ୍ତ, ସାଲ, ଅଧିକାର, ଅଲୁଆର, ପଚରା, ସନ୍ଧିଆ, ଦୁଇଟି ବସ୍ତୁର ମଧ୍ୟରେ ଗୁଞ୍ଜାହୋଇ ମରାଯିବା କାଷ୍ଠଖଣ୍ଡ ।

ଖାବଲା—ଗ୍ରା. ବି. ହସ୍ତପୂର୍ଣ୍ଣ ମୁଠାରେ ଯେତିକି ଧରେ (ଧାନଆଦି) ।

ଖାବଜାବି—ଗ୍ରା. ବ୍ୟଂ. ସାଧାରଣ,ସେତେ ଜାକଜମକ ରୂପେ ନୁହେଁ ।

ଖାମ୍-ଯା.ବି. ଲଫାଫା,ପୁଲିନ୍ଦା,ହୁଁକାର, ନାନାରୂପ ବିକଟଶବ୍ଦ ।

ଖାମ୍‌କା—ଯା. କ୍ରି. ବ୍ୟଂ.ସହସା,ହଠାତ୍, ଦୈବାତ୍,ବୃଥା,ଅନର୍ଥକ, ଅକାରଣରେ, ଅନ୍ୟାୟପୂର୍ବକ ।

ଖାମ୍‌ଖିଆଲ—ଯା. ବି. ଆପଣାର ଇଚ୍ଛା ଅନୁସାରେ ଚଳିବା, କୌତୁକ, ଅସ୍ଥାମାନସିକ ଚପଳତା, ଅବ୍ୟବସ୍ଥିତ ମନୋଭାବ, ଅସାର କଳ୍ପନା, (ବିଂ) ଅବ୍ୟବସ୍ଥିତଚିତ୍ତ, ଚପଳମନା ।

ଖାମଚୁ—ଯା. ବି. ଚିମ୍‌ଟିକଟା, ନଖ ଓ ଆଙ୍ଗୁଠିଦ୍ୱାରା ଚିମୁଟା ।

ଖାମି—ଯା.ବି. ନ୍ୟୂନତା,କମ୍‌ତି,ଅଳ୍ପତା, କ୍ଷତି, ନୋକସାନ୍, (ବିଂ)କମି. ନ୍ୟୂନ ।

ଖାମିନ୍ଦ(ନ୍ଦ)—ଯା. ପୁଂ. ବି. ଖାବିନ୍ଦ (ଦେଖ) ।

ଖାମୁଚିବା—ପ୍ରା. (ମେଦ) କ୍ରି. ନଖ ଓ ଆଙ୍ଗୁଠିରେ ପୁଳା ପୁଳାକରି ଚିମୁଟିବା ।

ଖାରଖୁଜୁଡ଼ା—ପ୍ରା.(ସମ୍ବ) ବିଂ. ଅକିଞ୍ଚନ, ଅଡ଼େଙ୍କା, ଅତିଗରିବ ।

ଖାର—ପୁଂ. ବି. (ଖର୍ + ଅ)୧୬ଦ୍ରୋଣ ପରିମିତଶସ୍ୟର ପାତ୍ରବିଶେଷ, ଗ୍ରା. ବି. ଲବଣ ରସ,ସୋଡ଼ା, ପାଉଁଶ, ଭସ୍ମ ।

ଖାରଜ—ଯା. ବି. ତାଲିକାରୁ ନାମ କାଟି ଦେବା, ନାମକର୍ତ୍ତନ, ବହିଷ୍କରଣ, ରଦ୍ କରିବା, ବରଖାସ୍ତି,ଲୋପ, (କଚେରୀ) ପକ୍ଷର ଅନୁପସ୍ଥିତି ବା ଅନ୍ୟ ପ୍ରାଥମିକ ଦୋଷରୁ ବିଚାର ହେବା ପୂର୍ବରୁ ମକଦ୍ଦମା ଡିସ୍‌ମିସ୍ କରାଯିବା, (ବିଂ) (ନାମ)କର୍ତ୍ତିତ, ଲୁପ୍ତ, ରଦ୍ କରାଯାଇଥିବା, କାର୍ଯ୍ୟରୁ ବରଖାସ୍ତ କରାଯାଇଥିବା, ତାଡ଼ିତ, ରହିତ ।

ଖାରଜକରିବା—ଗ୍ରା.କ୍ରି. ରଦ୍ କରିବା, ବରଖାସ୍ତକରିବା,ତାଲିକାରୁ କାଟିଦେବା ।

ଖାରଜଦାଖଲ—ଯା.ବି.(କଚେରୀଭାଷା) କୌଣସି ଭୂସମ୍ପତ୍ତି ସମ୍ବନ୍ଧେ ମୃତବ୍ୟକ୍ତି ବା ବିକ୍ରେତାର ନାମକାଟି ସେ ସ୍ଥାନରେ ଉତ୍ତରାଧିକାରୀ ବା କ୍ରେତାର ନାମ ରାଜ ସ୍ୱତ୍ୱ ବା ଜମିଦାରି ଖାତାପତ୍ରରେ ଦରଜ (ଦାଖଲ) କରିବା, ଦାଖଲଖାରଜ, କୌଣସି ବ୍ୟକ୍ତିର ନାମ କାଟିଦେବା ଓ ସେହି ସ୍ଥାନରେ ନୂତନ ବ୍ୟକ୍ତିର ନାମଲେଖିବା, ବରଖାସ୍ତ ଓ ମୁକରର ।

ଖାରଜପାଇବା—ଗ୍ରା. କ୍ରି. ରଦ୍‌ହେବା, ବରଖାସ୍ତ ହେବା ।

ଖାରପାଣି—ଗ୍ରା. ବି. ଚିଲିକାର ଏକପ୍ରକାର ମାଛ, କ୍ଷାରମିଶ୍ରିତ ଜଳ ।

ଖାରବେଲ—ଗ୍ରା. ବି. ଉତ୍କଳର ଜନୈକ ପ୍ରାଚୀନ ସମ୍ରାଟ୍ ।

ଖାରସାଡ—ଯା. ବି. ପଶୁମାନଙ୍କର ଚର୍ମରୋଗବିଶେଷ, ଏଥିରେ ପଶୁମାନଙ୍କ ଦେହରୁ ଲୋମ ଉଠିଯାଇ ଦେହଯାକ ଘାଆ ହୋଇଯାଏ ।

ଖାରା—ଗ୍ରା. ବିଂ. ସ୍ପଷ୍ଟପଟ, ସରଳ, ନ୍ୟାଯ୍ୟନିଷ୍ଠ, ପ୍ରକୃତବାଦୀ, ଶାଠ, ଅତିତୀକ୍ଷ୍ଣ, ଖାଣ୍ଟି, ଜରୋଳା, ସତ୍‌ସାହସୀ, ପ୍ରକୃତ ।

ଖାରାଖାରା—ଗ୍ରା. କ୍ରି. ବିଂ. ଠିକ୍‌ମତେ, ନ୍ୟାଯ୍ୟମାର୍ଗରେ, ସଫା ସଫା ।

ଖାରି (ରୀ)—ବି.ସ୍ତ୍ରୀ. ଶସ୍ୟାଦି ମାପିବାର ପରିମାଣ ପାତ୍ରବିଶେଷ ବା ୧୬ ଦ୍ରୋଣ ପରିମାଣ,କ୍ଷେତର ଦାଗ, ଗ୍ରା. ବିଂ. କ୍ଷାରଯୁକ୍ତ, ଲୁଣିଆ, ଲବଣାକ୍ତ, ଯାହା ମିଠା ନୁହେଁ,ଅସୁଆଦିଆ ।

ଖାରିକ—ବିଂ. (ଖାର + ଇକ) ଏକଖାର ପରିମିତ (ଶସ୍ୟ), ଏକଖାର ପରିମିତ ଶସ୍ୟ ବୁଣାଯାଇଥିବା(କ୍ଷେତ୍ର) ।

ଖାରିନ୍ଧମ -ତ୍ରି.ବିଂ. (ଖାରି + ଧ୍ମା + କ.ଅ) ଶସ୍ୟର ପରିମାଣକାରକ ।

ଖାରିମ୍ପଚ—ପୁଂ. ବିଂ. ଯେ ଖାରୀପରିମିତ ପାକକରେ, (ସ୍ତ୍ରୀ) ଖାରିମ୍ପଚୀ ।

ଖାରିପାଣି—ଗ୍ରା. ବି. ଖାରଆପାଣି, ଗାଁର ଧୋଉଥିବା ପାଣି ।

ଖାରିଫ—ଯା. ଶରତ୍‌କାଳ, ଶରତ୍‌କାଳରେ ଉତ୍ପନ୍ନ ଶସ୍ୟ, ବର୍ଷା ପୂର୍ବରୁ ଯେ ଶସ୍ୟବୀଜ ବୁଣାହୁଏ ଓ ବର୍ଷାର ପରେ ରୁଆହୁଏ ।

ଖାରିବା—ଗ୍ରା. କ୍ରି.ଅପରେସନ୍ କରିବା, ଶସ୍ତ୍ରାଦିଦ୍ୱାରା ଶରୀରରମାଂସକୁ ଚିରିବା ।

ଖାରୀମ୍ପଚ—ବିଂ.ପୁଂ. (ଖାରୀଂ + ପଚ୍ + କ.ଅ) ଯେ ଖାରୀପରିମିତ ତଣ୍ଡୁଳାଦି ପାକ କରେ ବା ରାନ୍ଧେ ।

ଖାରୀବାପ—ତ୍ରି. ବିଂ. ଖାରୀପରିମିତ ଧାନ୍ୟାଦି ବୁଣିବାର ଯୋଗ୍ୟ ।

ଖାରୁ—ଗ୍ରା. ବିଂ.(ସଂ-କ୍ଷର) କଟୁ, ଅପ୍ରୀତିକର ।

ଖାରୁଆ—ଗ୍ରା.ବି ନାଲିରଙ୍ଗର ମୋଟା ଦେଶୀଲୁଗା, (ଗ୍ରା. ବିଂ.) ଲୁଣିଆ, କ୍ଷାରଯୁକ୍ତ, ଅସ୍ୱାଦୁ ।

ଖାରୁଆଣି-ଗ୍ରା.ବି.ଖାରୁଆ(ଦେଖ), ଧୋବ ଲୁଗାକୁ ଖାରପାଣିରେ ଗୋଳାଇ ସାମାନ୍ୟ କାଚିବା ।

ଖାର୍ଦ୍ଦାର—ପୁଂ.ବି.ଗର୍ଦ୍ଦଭ ଜାତିର ଶବ୍ଦ, ଗଧର ରାବ, ଗଧବୋବାଳି ।

ଖାର୍ଜୁର—କ୍ଲୀ.ବି.ମଦ୍ୟବିଶେଷ, ଖଜୁରିରସର ମଦ, ଖଜୁରୀମଦ, ତାଡ଼ି ।

ଖାର୍ଜୁରେୟ—ବିଂ. ଖର୍ଜୁରସମ୍ବନ୍ଧୀୟ ।

ଖାର୍ବା—ବି. ତ୍ରେତା ଯୁଗ ।

ଖାର୍ବୁଜେୟ—ତ୍ରି.ବିଂ. ଖର୍ବୁଜସମ୍ବନ୍ଧୀୟ, କ୍ଲୀ.ବି. ରସାଳବିଶେଷ ।

ଖାଲ୍—ଯା.ବି. କମିମୂଲ୍ୟ, ଘଟ୍‌ତି, କ୍ଷତି, ନୋକସାନ୍, ମୂଲ୍ୟର ହ୍ରାସ ।

ଖାଲ୍‌ସା—ପ୍ରା. (ସମ୍ବ.)ବି. ଜମିଦାରଙ୍କ ଖାସ ଦଖଲରେ ଥିବା ଜମି, ନିଜଜୋତ୍, ଗଭର୍ଣ୍ଣମେଣ୍ଟଙ୍କ ପ୍ରତ୍ୟକ୍ଷ ଅଧିକାର ଭୁକ୍ତ ଜମି, ଖାସ୍‌ମାହାଲ, ଶିଖସମ୍ପ୍ରଦାୟବିଶେଷ, (ବିଂ) ସରକାରୀ (ଜମି),ଖାସ୍‌ମାହାଲସଂକ୍ରାନ୍ତ (ଜମି) ।

ଖାଲ—ଗ୍ରା. ବି. ଖାତ, ଗଭୀର ସ୍ଥାନ, ଗାତ, ପରିଖା, ନିମ୍ନଭୂମି, କେନାଲ, ନାଳ, ନିମ୍ନତର ମୂଲ୍ୟ ।

ଖାଲଖମା—ଗ୍ରା.ବି.ଖାତ,ଡିପ(ଦେଖ) । ବହୁଗର୍ତ୍ତପୂର୍ଣ୍ଣଭୂମି (ବିଂ.)ବହୁଗର୍ତ୍ତପୂର୍ଣ୍ଣ ।

ଖାଲଜମି—ଗ୍ରା.ବି.ଯେଉଁ ଜମି ନିକଟବର୍ତ୍ତୀ ଜମିର ତୁଳନାରେ ନୀଚ ।

ଖାଲଡିପ—ଗ୍ରା. ବିଂ. ଉଚ୍ଚନୀଚ, ଅସମତଳ, (ବି) ଉଚ୍ଚଭୂମି ଓ ନୀଚଭୂମି ।

ଖାଲତ୍ୟ—କ୍ଲୀ. ବି. (ଖାଲତି + ଷ୍ୟ.ଯା) ଇନ୍ଦ୍ରଲୁପ୍ତରୋଗ, ଚନ୍ଦାହେବା ରୋଗ ।

ଖାଲରେ ପକାଇବା — ଗ୍ରା.କ୍ରି. (ଲ.ଅର୍ଥ) କୌଣସି ବ୍ୟକ୍ତିକୁ ଅସୁବିଧା ଓ ବିପଦରେ ପକାଇବା ।

ଖାଲ୍ଲ — ଯା.ବି.ମାଛୁଅଣୀର ସ୍ୱାମୀ, ମଛୁଆ ।

ଖାଲି — ଯା.ବିଂ.ରୁଚ୍ଛା,ଶୂନ୍ୟଗର୍ଭ, ଶୂନ୍ୟ, ରିକ୍ତ, ମାହାଲିଆ, ଫୋକଟ, କର୍ମଶୂନ୍ୟ, ଯେଉଁଠାରେ କେହି ନ ଥାଏ, ରିକ୍ତହସ୍ତ, ଏକାକୀ, ଅନାବୃତ (ଶରୀର) ଅମିଶ୍ରିତ, ଧନହୀନ,(ବି) କର୍ମଶୂନ୍ୟତା, (ଗ୍ରା. କ୍ରି. ବିଂ) କେବଳ ମାତ୍ର, ରୁଚ୍ଛା, ବୃଥା ।

ଖାଲିକ — ତ୍ରି. ବିଂ. (ଖଲ + ଇକ) ଖଳର ସଦୃଶ, ଖଳାସମ୍ବନ୍ଧୀୟ ।

ଖାଲିକରିବା — ଗ୍ରା. କ୍ରି.କୌଣସି ପାତ୍ରକୁ ଶୂନ୍ୟ କରିବା, କୌଣସି ସ୍ଥାନ ତ୍ୟାଗ କରିବା ।

ଖାଲିଖାଲି — ଗ୍ରା. କ୍ରି. ବିଂ. ରିକ୍ତହସ୍ତହୋଇ, ବୃଥା,ରୁଚ୍ଛାରେ, ବିନା କାରଣରେ, ମାହାଲିଆରେ,(ବିଂ) ରିକ୍ତହସ୍ତ, ଏକାକୀ ।

ଖାଲିତ୍ୟ—ବି. (ଖଲତ + ଯ) ଖାଲତ୍ୟ, ଚନ୍ଦାରୋଗ ।

ଖାଲିଭାତ — ଗ୍ରା. ବି. ଲୁଣ, ତରକାରି, ଘିଅ ଆଦି ବିହୀନ, ଅନ୍ନ, ରୁଚ୍ଛା ଭାତ ।

ଖାଲିସା — ଯା.ବି. ରାଜକୀୟ କାର୍ଯ୍ୟାଳୟ, ଯେଉଁଠାରେ କରହିସାବ କାର୍ଯ୍ୟ ନିର୍ବାହ ହୁଏ, ଯେଉଁ ସମସ୍ତ ଜମିମାନ ଗଭର୍ଣ୍ଣମେଣ୍ଟଙ୍କର ଖାସମାହଲରେ ଅଛି ।

ଖାଲିହାତ — ଗ୍ରା.ବିଂ.ରିକ୍ତହସ୍ତ, ହାତରେ ଟଙ୍କାପଇସା ନ ଥିବା, (ବି) ନିରାଭରଣ ହସ୍ତ, ଘଣ୍ଡହାତ ।

ଖାଲୁଆ — ଗ୍ରା. ବିଂ. ଖାଲ ବା ଗର୍ତ୍ତଯୁକ୍ତ, (ଜମି) ନମ୍ର, ନୀଚ୍ଚ ।

ଖାଲୁଇ,ଖାଲୋଇ — ଗ୍ରା.ବି. ମତ୍ସ୍ୟ.ଧାନୀ, ମାଛ ରଖିବାର ପାତ୍ର ।

ଖାସ୍ — ଯା. ବିଂ.ବିଶିଷ୍ଟ, ସ୍ୱକୀୟ, ବ୍ୟକ୍ତିଗତ, ଗଭର୍ଣ୍ଣମେଣ୍ଟଙ୍କ ନିଜ ଅଧିକୃତ, କୌଣସି ନିର୍ଦ୍ଦିଷ୍ଟ କାର୍ଯ୍ୟପାଇଁ ନିଯୁକ୍ତ ବା ପ୍ରେରିତ, ବିଶିଷ୍ଟ ଉଦ୍ଦେଶ୍ୟପାଇଁ ରକ୍ଷିତ, ମୁଖ୍ୟ, ପ୍ରଧାନ, (ଗ୍ରା.କ୍ରି.ବିଂ) ନିଜସ୍ୱରୂପେ, ବିଶିଷ୍ଟ ଉଦ୍ଦେଶ୍ୟରେ, ବିଶେଷଭାବରେ, କେବଳ, ପ୍ରଧାନତଃ, ସ୍ୱୟଂ, ଖୋଦ୍ ।

ଖାସ୍‌କଲମ — ଯା.ବି. ଛାମୁକରଣ, ରାଜାଆଦିଙ୍କ ବ୍ୟକ୍ତିଗତ ବିଷୟ ଲେଖାପଢ଼ି କରିବାପାଇଁ ନିଯୁକ୍ତ କର୍ମଚାରୀ ।

ଖାସ୍‌କାମରା — ଯା.ବି. ଉଚ୍ଚ ରାଜକର୍ମଚାରୀଙ୍କର କଚେରି ସଂଲଗ୍ନ ସ୍ୱତନ୍ତ୍ର ଓ ନିର୍ଜନ ବିଶ୍ରାମ ଗୃହ ।

ଖାସ୍‌ଖମାର — ଗ୍ରା. ବି. ଜମିଦାର ଯେଉଁ ଜମି ପ୍ରଜାଙ୍କୁ ଚାଷ କରିବାକୁ ନ ଦେଇ ନିଜେ ଚାଷ କରନ୍ତି, ନିଜ ଚାଷଜମି ।

ଖାସ୍‌ତାଲୁକ — ଯା. ବି. ଗଭର୍ଣ୍ଣମେଣ୍ଟଙ୍କ ନିଜ ଅଧିକୃତ ଜମିଦାରି ।

ଖାସ୍‌ବରଦାର— ଯା.ବି. ଶୁଣ୍ଠାଧାରୀ ରାଜକର୍ମଚାରୀ, ଶରୀରରକ୍ଷୀ ।

ଖାସମହଲ — ଯା.ବି.ଯେଉଁମହଲ ରାଜାଙ୍କ ତତ୍ତ୍ୱାବଧାନରେ ଥାଏ, ଅନ୍ତଃପୁର ।

ଖାସମାହାଲ — ଯା. ବି. ଗଭର୍ଣ୍ଣମେଣ୍ଟଙ୍କ ନିଜ ଅଧିକୃତ ଜମିଦାରି ।

ଖାସା — ଯା.ବିଂ. ଉତ୍କୃଷ୍ଟ, ଭଲ, ଉତ୍ତମ, ଆଚ୍ଛା, ଉପାଦେୟ, ବାରିକ୍, ସୁନ୍ଦର ।

ଖାସିଆ—ଗ୍ରା. ବି. ଉତ୍ତର ହିମାଳୟରେ, ନେପାଳରେ ଓ ଆସାମରେଥିବାପାହାଡ଼ି ଜାତିବିଶେଷ, ଆସାମରେ ଥିବା ପର୍ବତ ବିଶେଷ ।

ଖାସିବା — ଗ୍ରା.କ୍ରି. କାଶିବା ।

ଖାସୀ — ଯା. ବି. ମୁଷ୍କଦ୍ୱୟହୀନ ଛାଗଳବିଶେଷ, ପୁଂସ୍ତ୍ୱ ନଷ୍ଟ କରାଯାଇଥିବା ଛେଳି ବା ମେଣ୍ଢା ।

ଖାସୁ—ଗ୍ରା. ବି. ଖାସୀ (ଦେଖ) ।

ଖାସୁଆ — ଗ୍ରା.ବିଂ.ଯେ ସର୍ବଦା କାଶୁଥାଏ, କାଶରୋଗଗ୍ରସ୍ତ ।

ଖାସ୍ତ — ଯା. ବିଂ. ମନ୍ଦ, ଖରାପ, କମ, ଅଲ୍ପ, ବିକୃତ, ନଷ୍ଟ ।

ଖାସ୍ତା—ଯା.ବିଂ. ପ୍ରଚୁର ଘିଅଦେଇ ଅଟା ବା ମଇଦା ଦଳି ପରେ ପାଣିରେ ଦଳାହୋଇ ଘିଅରେ ଛଣା ହୋଇଥିବା- ପୁରି, ଲୁଚି, ମୁସ୍‌ମୁସିଆ, ମୁଢ଼ୁ ମୁଢ଼ିଆ,ମମ୍ ବା ମଇନଦାର,ବିକୃତନଷ୍ଟ ।

ଖିଅ—ପ୍ରା.ବି.(ସଂ-କ୍ଷିପ)ସୂତାର ସରୁ, ମାଛ ଧରିବା ଲୁଗା, ଅଡ଼ୁଆ ସୂତାର ଅଗ, ଅଡ଼ୁଆହେବା,ଜାଲ ପକାଇବାର ଥର, (ଲ) କୌଣସିକଥା ବା ବିଷୟର ଖୋଜ ।

ଖିଅଖୋଜିବା—ଗ୍ରା. କ୍ରି, ସାମାନ୍ୟମାତ୍ର ଦୋଷ ଅନୁସନ୍ଧାନ କରିବା ।

ଖିଅଦେବା—ଗ୍ରା. କ୍ରି. ଲୁଗା ବା ଜାଲଦ୍ୱାରା ମାଛଧରିବା ।

ଖିଅ ବାହାରକରିବା — ଗ୍ରା. କ୍ରି. ସାମାନ୍ୟ ମାତ୍ର ଦୋଷ ବା ତ୍ରୁଟି ଦେଖାଇବା, କଥାର ସୂତ୍ର ଠିକଣା କରିବା ।

ଖିଅର—ଗ୍ରା. ବି.(ସଂ-କ୍ଷୌର)ଖରଦ୍ୱାରା କେଶ ମୁଣ୍ଡନ ।

ଖିଅରବାଆର—ଗ୍ରା. ବି. କ୍ଷୌରକର୍ମାଦି, ମସ୍ତକ ମୁଣ୍ଡନ ଓ ନଖ କର୍ତ୍ତନାଦି, ମୃତ ବ୍ୟକ୍ତିର ଦଶାହ ଉପଲକ୍ଷେ କ୍ଷୌରକର୍ମ ।

ଖିଆ—ଗ୍ରା.ବି. (ସଂ-ଖାଦ୍‌ଧାତୁ) ଭୋଜନ, ଖାଇବା, ( ଗ୍ରା. ପୁଂ. ବିଂ. ) ଖାଦକ, ଭୋଜନକାରୀ, ( ଯଥା — ମାଛଖିଆ ) ଭୁକ୍ତ, ଭୋଜନକାରୀ, (ସ୍ତ୍ରୀ)ଖାଇ,(ବିପରୀତ) ଅଖିଆ ।

ଖିଆପିଆ—ଗ୍ରା. ବି. ଭୋଜନକ୍ରିୟା, ପାନ ଭୋଜନାଦି ।

ଖିଆଲ୍ — ଯା. ବି. ଅନୁମାନ, କଳ୍ପନା, ମନୋଯୋଗ, ଧ୍ୟାନ, ସ୍ମରଣ, ସ୍ମୃତି, ମନୋଗତଭାବ,ବିଚାର, ମନରେ ଦୃଢ଼ରୂପେ ଉଦିତହୋଇ ବହୁକାଳ ସ୍ଥାୟୀହେବା ଭାବ,(ଗ୍ରା.ବି)ପରିହାସ, ଥଟ୍ଟା ।

ଖିଆଲକରିବା—ଗ୍ରା.କ୍ରି. ଚେତିବା,ମନେ ରଖିବା, ଚିନ୍ତାକରିବା, ଥଟ୍ଟାକରିବା ।

ଖିଆଲବାଜ(ଖିଆଲ୍) — ଯା.ବିଂ. କଳ୍ପନା ପ୍ରିୟ, ଅଝଟିଆ, ଖାମଖିଆଲ, ଅବ୍ୟବସ୍ଥିତ ଚିତ୍ତ,ଯାହା ସଙ୍ଗେ ପରିହାସ କରାଯାଇ ପାରେ, ଖିଆଲିଆ ।

ଖିଆସ — ଯା. ବି. ଥଟ୍ଟା ।

ଖିଁଖିଁ—ଗ୍ରା. ଅବ୍ୟ. ଖେଙ୍କିବାର ଧ୍ୱନି, ଉଚ୍ଚହାସ୍ୟର ଧ୍ୱନି ।

ଖିଁକାଇବା — ଗ୍ରା. କ୍ରି. ଖିଙ୍କାରିବା,ଘୃଣା ପ୍ରକାଶ କରିବା ।

ଖିଁନକ — ଗ୍ରା.(ସମ୍ବ)ବି.ଭୁଣ୍ଡଗାଲୁ,ଭୁରୁଡ଼ି ।

ଖିଖି — ବି.(ଖି + କ,ଇଖି) କୋକଶିଆଳ ।

ଖିଙ୍କାରିବା(ହେବା)—ଗ୍ରା.କ୍ରି. ଚନ୍ଦ୍ରମର୍କଟି ହେବା, ଗଗରେ ମୁଖବିକୃତ କରି ରୁକ୍ଷ-ଭାବରେ କଥାକହିବା, ଖେଙ୍କିବା ।

ଖିଙ୍ଗିଲ — ପୁଂ. ବି. କୋକଶିଆଳ, ଖଟ ଖୁରା, ଶିବଙ୍କ ଅସ୍ତ୍ରବିଶେଷ, ଖଟାଙ୍ଗ ।

ଖିଙ୍ଗିଶା— ଗ୍ରା.ବି. ରଣପୁର ଓ ନୂଆଗଡ଼ର ମଧ୍ୟସ୍ଥିତ ପର୍ବତ ।

ଖିଜ୍‌ମତ୍‌— ଯା.ବି. ଚାକିରି,ଶୁଶ୍ରୂଷା,ସେବା, ନୀଚଚାକିରି ।

ଖିଜାଇବା — ଗ୍ରା. (ସମ୍ବଲ ଓ ସୋନପୁର) କ୍ରି. ବିରକ୍ତକରିବା, କଳିକରିବା ।

ଖିଜାଲ — ଗ୍ରା. (ସୋନ) ବି. କଳି,ଚଡ଼ା-ଇବା ବାକ୍ୟ, (ବିଂ) କଳହୀ ।

ଖିଜମିଜିଆ — ଗ୍ରା. ପୁଂ. ବିଂ. ଖଜବଜିଆ, ଅସ୍ଥିର ।

ଖିଟ୍‌ଖିଟ୍‌— ଗ୍ରା.ବି.କ୍ରମାଗତ ବକା,ବିରକ୍ତି-ପ୍ରକାଶ, ଅବ୍ୟକ୍ତ ଶବ୍ଦ ।

ଖିଟ୍‌ଖିଟିଆ — ଗ୍ରା. ବିଂ. ଚଞ୍ଚଳ,ସର୍ବଦା ବିରକ୍ତ ।

ଖିଟିଖିଟି — ଗ୍ରା. ଅବ୍ୟ. କଟିକଟି,ଟିକିଟିକି କରି ଛଣ୍ଡାଇ ଦେବା ।

ଖିଟିମିଟି — ଗ୍ରା.ବି.ଅନଭିପ୍ରାୟ ବା କୋଧ-ସୂଚକ ମୁଖଭଙ୍ଗୀମା ।

ଖିଡ଼କିଦାର — ଗ୍ରା.ବିଂ. ଯେଉଁ କୁରୁତାର ଆଗପାଖ ବେକତଳେ କିଛିଅଂଶ ବୋତାମ ଲାଗିବାପାଇଁ ଖୋଲାଥାଏ, ଯେଉଁ ପଗଡ଼ିର ଉପରପାଖ କିଛିଅଂଶ, ଖୋଲାଥାଏ, ଯେଉଁ ଟୋପିର ଉପରେ ଛିଦ୍ର ଥାଏ ।

ଖିଡ଼କି—ଗ୍ରା.ବି. (ସଂ-ଖଟକିକା,ଖଡ଼କ୍କୀ) ଝରକା, ପାଛଏଲିଲଗା ଝରକା, ଗୃହର କବାଟ, ବାଡ଼ିଦୁଆର, କଙ୍କଣବିଶେଷ, ଘରର ପଛଅଂଶ ।

ଖିଡ଼କିଚକଣ୍ଟା — ଗ୍ରା.ବି. ଅତିକ୍ଷୁଦ୍ର, କଣ୍ଟକ ଯୁକ୍ତ ଗୁଳ୍ମବିଶେଷ, କରକଞ୍ଚ କଣ୍ଟା ।

ଖିଡ଼କିଦେବା— ଗ୍ରା. କ୍ରି. ଝରକା ବନ୍ଦ କରିବା ।

ଖିଡ଼କୀ-(ଖଡ଼କ୍କୀଶବ୍ଦଜ) ପକ୍ଷଦ୍ୱାର,ବାଡ଼ି ଦୁଆର,କଙ୍କଣବିଶେଷ,ଘରର ପଛଅଂଶ, ଝରକା,କଳଣୀ,କବାଟ ବନ୍ଦ ହେବାର ଯନ୍ତ୍ରବିଶେଷ ।

ଖିତାପ୍,ଖିତାବ୍ — ଯା.ବି.ପଦବୀ,ମର୍ଯ୍ୟାଦା-ସୂଚକ ଉପାଧି, ରାଜଦତ୍ତ-ସମ୍ମାନସୂଚକ, ଉପାଧି ।

ଖିତାପୀଖିତାବୀ— ଯା. ବିଂ. ରାଜଦତ୍ତ ଉପାଧିଦ୍ୱାରା ଭୂଷିତ ।

ଖିଦ୍‌ମତ୍‌— ଯା. ବି. ବଶ୍ୟତା ସ୍ୱୀକାର, ପରିଚର୍ଯ୍ୟା, ସେବା, ନୀଚଚାକିରି ।

ଖିଦ୍‌ମତ୍‌କାର— ଯା. ବି. ଚାକର, ଖାନ ସମାଗିର, ସେବକ, ଟହଲିଆ, ଯେ ଖାଇବାଠାରେ ଉପସ୍ଥିତ ଥାଏ ।

ଖିଦ୍‌ମତ୍‌କାରି— ଯା. ବି. ଚାକରପଣ, ଖିଦ୍‌ମତ୍‌କାରର ଚାକିରି ।

ଖିଦ୍‌ମତକାରିଆ — ଯା. ବିଂ. ଭୃତ୍ୟପରି ସେବାକାରୀ, ଖିଦ୍‌ମତ୍‌କାର କାର୍ଯ୍ୟ କରୁଥିବା ।

ଖିଦ୍‌ମତ— ଯା. ବିଂ. ଚାକରି ସମ୍ବନ୍ଧୀୟ ।

ଖିଦ୍‌ମତ୍‌ମାଫି — ଯା.ବି.ଦରମା ପରିବର୍ତ୍ତେ ଚାକରକୁ ମିଳିଥିବା ନିଷ୍କର ଭୂମି ।

ଖିଦଭ୍ — ଯା. ବି. ପୂର୍ବେ ତୁରସ୍କର ସୁଲ-ତାନଙ୍କ ଅଧୀନ ମିଶରରାଜା ଓ ବର୍ତ୍ତ-ମାନର ସ୍ୱାଧୀନ ପ୍ରଜାମାନଙ୍କ ପ୍ରତିନିଧି-ରୂପେ ମିଶରଦେଶକୁ ଶାସନ କରୁଥିବା ମୁସଲମାନ ଶାସକଙ୍କ ଉପାଧି ।

ଖିଦିର— ପୁଂ. ବି. (ଖିଦ୍ + କ,ଇର)ଚନ୍ଦ୍ର ଦୀନ, ତାପସ, ମୁନି, ଋଷି,ଗରିବଲୋକ, ଇନ୍ଦ୍ର । [ଅଞ୍ଚଳ ।

ଖିଦିରପୁର — କଲିକତାର ଦକ୍ଷିଣପାର୍ଶ୍ୱସ୍ଥ

ଖିଦ୍ୟମାନ — ତ୍ରି. ବିଂ. (ଖିଦ୍ + କ,ମାନ) ଖେଦଯୁକ୍ତ, ଦୈନ୍ୟଗ୍ରସ୍ତ, ଉପତପ୍ତ, ଯେ କଷ୍ଟ ପାଉଅଛି, ଶୋକକାରୀ ।

ଖିଦ୍ର — ବି. (ଖିଦ୍ + ର)ରୋଗ, ଦାରିଦ୍ର୍ୟ, ଭେଦକରିବା, (ଗ୍ରା. ବିଂ) କ୍ଷୁଦ୍ର, ଛୋଟ, ହେୟ, (ବି) ଛିଦ୍ର ।

ଖିଦ୍ୱନ୍ — ପୁଂ. ବିଂ. ଖେଦକାରକ ।

ଖିଧା — ଗ୍ରା. (ମେଦିନୀ) ବି. କ୍ଷୁଧା,ଭୋକ ।

ଖିନ୍— ଗ୍ରା.(ସମ୍ବ)ବିଂ. କ୍ଷୀଣ, ଶୀର୍ଣ୍ଣକାୟ, ସରୁ ।

ଖିନ୍‌ଖରାପ — ଗ୍ରା.ବିଂ. ନଷ୍ଟ, ଅପବ୍ୟୟିତ, ଉଚ୍ଛନ୍ନ, ସର୍ବସ୍ୱାନ୍ତ, ବିଧ୍ୱସ୍ତ ।

ଖିନ୍‌ଖିନ୍ — ଗ୍ରା. ବିଂ. ( ସଂ-ଛିନ୍ନଭିନ୍ନ ) ପୁଙ୍ଖାନୁପୁଙ୍ଖ, କ୍ରି. ବିଂ. ପୁଙ୍ଖାନୁପୁଙ୍ଖ-ରୂପେ, ଟିକିଟିକି କରି ।

ଖିନ୍‌ଭିନ୍— ଗ୍ରା. ବି. କ୍ରି. ବିଂ. ଖିନ୍‌ଖିନ୍ (ଦେଖ) ।

ଖିନ — ଗ୍ରା. ବିଂ. (ସଂ-କ୍ଷୀଣ) କ୍ଷୀଣ,କୃଶ ।

ଖିନ୍ନ — ତ୍ରି. ବିଂ. (ଖିଦ୍ + କ,ତ) ଦୈନ୍ୟ-ଯୁକ୍ତ, କୃଶ,ଅଳସ,ଖେଦଯୁକ୍ତ, ଦୁଃଖିତ, ଶ୍ରାନ୍ତ, କ୍ଲାନ୍ତ ।

ଖିପ— ଗ୍ରା. (କଟକ) ପାନପିକ, ପାନ ଖାଇବା ଲୋକର ଛେପ ।

ଖିର— ଗ୍ରା. ବି. (ସଂ-କ୍ଷୀର)ଦୁଗ୍ଧ, ବୃକ୍ଷ-ନିର୍ଯ୍ୟାସ ।

ଖିରକାକୁଲ — ଗ୍ରା. ବି. କ୍ଷୀରକାକୁଲ, ଏକପ୍ରକାର ଗଛ ।

ଖିରସ୍ତାନ— ଗ୍ରା. ପୁଂ. ବି. (ଖ୍ରୀଷ୍ଟୀୟାନ) ଖ୍ରୀଷ୍ଟଧର୍ମାବଲମ୍ବୀ, (ବ୍ୟଙ୍ଗ) ହିନ୍ଦୁ ହୋଇ ହିନ୍ଦୁଧର୍ମର ଶାସ୍ତ୍ରବହିର୍ଭୂତ ବର୍ଣ୍ଣାଚାରପ୍ରତି ଅନାସ୍ଥାକାରୀ ବ୍ୟକ୍ତି ।

ଖିରସ୍ତାନି— ଗ୍ରା. ବି. ଖ୍ରୀଷ୍ଟଧର୍ମାବଲମ୍ବୀ-ଲୋକମାନଙ୍କର ଚାଲିଚଳନ, ଜାତି-ଭେଦ ଅସ୍ୱୀକାରବାଦ ।

ଖିରସ୍ତାନିପାଠ — ଗ୍ରା.ବି. ଆଧୁନିକ ଇଂରାଜୀ ଶିକ୍ଷା ।

ଖିରାଜ — ଯା.କର,ଜମିର ଖଜଣାଓଗେର ମାଲଗୁଜାରି ।

ଖିରେଇବା — ଗ୍ରା. କ୍ରି. ଷଣ୍ଢମାନଙ୍କୁ ଡାକିବା ବା ଲଢ଼େଇପାଇଁ ଉତ୍ତେଜିତ କରିବା ଉଦ୍ଦେଶ୍ୟରେ ଏକପ୍ରକାର ଧ୍ୱନି କରିବା ।

ଖିଲ୍ — ଗ୍ରା.(ସମ୍ବ)ଗୃହଲ କୁଟିବା ଉଦୁଖଳ

ଖିଲ—ଗ୍ରା.ବି. (ସଂ-କୀଲ) କିଳା, ମେଖ, ହୁଡ଼ୁକା, ଅର୍ଗଳ, କଳଣୀ,(ସଂ-କୁଡ଼ୁଲ) ପାନବିଡ଼ିଆ, ଭଙ୍ଗାପାନ, ପାନରେ ଚୂନ ଲଗାଇ ଖଇର ମସଲା ଭଙ୍ଗାଗୁଆ ଗୁଣ୍ଡି ଆଦିଦେଇ ମୋଡ଼ାଯିବାକାହାଳୀ ।

ଖିଲ—ବିଂ. ( ଖ+ଇଲ୍,ଅ ) ପ୍ରତିହତ, ଅପ୍ରହତ,ଦୁର୍ଗମ,ପତିତ, ଅକୃଷ୍ଟ (ଭୂମି), ପଡ଼ିଆ, ଅବଶିଷ୍ଟ ରହିଥିବା, ଉତ୍ପନ୍ନ, ପରିଶିଷ୍ଟ,(ବି) ବସ୍ତୁ,ବ୍ରହ୍ମା, ଶୂନ୍ୟସ୍ଥାନ, ପତିତ ବା ପଡ଼ିଆଭୂଇଁ, ଫାଙ୍କ, ଖଡ଼୍ଗ, ମରୁଭୂମି, ଜୋଡ଼ପତ୍ର, ସଂଗ୍ରହ, ବାୟୁ-ଶୂନ୍ୟ ସ୍ଥାନ ।

ଖିଲକା—ଯା. ବି. ଭିକ୍ଷୁକ, ପରିଚ୍ଛଦ-ବିଶେଷ, ଆଲଖାଲ୍ଲା ।

ଖିଲକାତି—ଗ୍ରା. ବି. ଯେଉଁ ତୁଣ୍ଟର ପତ୍ର ଓ ବେଣ୍ଟ ମଧ୍ୟରେ ଖିଲ ଦିଆଯାଇଥିବାରୁ ତାହା ବନ୍ଦକରାଯାଇପାରେ,ଗୁଆକାତି ।

ଖିଲଜମି—ଗ୍ରା.ବି. ଲଏକ, ପତିତ ।

ଖିଲତ୍—ଯା' ବି. ରାଜାଙ୍କଠାରୁ ସମ୍ମାନ-ସୂଚକ ଉପାଧି ପାଇଥିବା ବ୍ୟକ୍ତିଙ୍କୁ ଦିଆଯିବା ସମ୍ମାନସୂଚକ ପରିଚ୍ଛଦ, (ଶିରୋପା) ।

ଖିଲମାରିବା—ଗ୍ରା. କ୍ରି. ଗୋଟିଏ କିଳାକୁ ଜୋରରେ ଭୂଇଁ ଓ କାଠ ଆଦିରେ ପ୍ରବେଶ କରାଇବା ।

ଖିଲ୍ଲଇବା—ଗ୍ରା. କ୍ରି. ଖୁଆଇବା ।

ଖିଲାଣି—ଗ୍ରା. ବି. ଇଷ୍ଟକାଦିର ଗନ୍ଥନ-ବିଶେଷ, ଇଟାର ଖାର୍ନ୍ନିମା (ଖିଲଣ) । ତୋରଣ ଉପରେ କଡ଼ିନ ଥିବା ଛାତ, (ମେହେରବୀ) ।

ଖିଲାପ୍—ଯା.ବି. କର୍ତ୍ତବ୍ୟବିଚ୍ୟୁତି,ଅନାସ୍ଥା, ଭୁଲ, (ବିଂ) ଅନ୍ୟଥାକୃତ, ତ୍ରୁଟିଯୁକ୍ତ, ବିରୁଦ୍ଧ ।

ଖିଲାଫତ୍—ଯା. ବି, ମୁସଲମାନମାନଙ୍କର ସର୍ବପ୍ରଧାନ ଧର୍ମଗୁରୁ ବା ଖିଲଫାଙ୍କର ପଦ,ଅଧିକାର,କାର୍ଯ୍ୟ ବା ଆସନ ।

ଖିଲାର—ମହାରାଷ୍ଟ୍ର ଓ ଗୁଜରାଟ ରାଜ୍ୟର ଏକ ଜାତୀୟ ଗୋରୁ ।

ଖିଲି(ଲ୍ଲି)—ଗ୍ରା.ପର୍ଣ୍ଣାଦିର ବଟିକା, ପାନ-ଖିଲି ଇତ୍ୟାଦି, ତାମ୍ବୁଲବଟିକା ।

ଖିଲିଖିଲି—ଗ୍ରା. ଅବ୍ୟ. ଉଚ୍ଚହାସ୍ୟଧ୍ୱନି, କରି କରି ।

ଖିଲିଖିଲେଇବା—ଗ୍ରା. କ୍ରି. ଉଚ୍ଚହାସ୍ୟ-କରିବା ।

ଖିଲିଜୀ—ଯା. ବି. ଆଫଗାନିସ୍ଥାନର ସୀମାବାସୀ ପଠାଣଜାତିବିଶେଷ ।

ଖିଲୀକୃତ—ନି. ବିଂ. (ଖିଲ+ଚ୍ୱି+କୃ +ତ) ଯାହା ଦୁର୍ଗମ କରା ହୋଇଅଛି, ନିରୁଦ୍ଧ, ପ୍ରତିହତ, ବାଧାପ୍ରାପ୍ତ ।

ଖିଲୀଭୂତ—ନି.ବିଂ.(ଖିଲ+ଚ୍ୱି+ଭୂତ) ଯାହା ଦୁର୍ଗମ କରାହୋଇଅଛି, ଅଗମ୍ୟ ହୋଇଥିବା ।

ଖିଲେଷୁ—ପୁଂ. ବି. (ବି.ସ୍ତ୍ରୀ) (ଖିଲ+ ଇଷୁ ) ହରିବଂଶ ।

ଖିଲ୍ୟ—ନି.ବିଂ. ( ଖିଲ+ଯ ) ଖିଲରୁ ଉତ୍ପନ୍ନ, ପରିଶିଷ୍ଟରେ ଯାହାପାଠ କରା-ଯାଏ, ପ୍ରାଣୀମାନଙ୍କର ଗମନଯୋଗ୍ୟ ।

ଖିଶା—ଯା. ବି. ପଇସା ରଖିବାର ଲୁଗା-ମୁଣି, କନାଥଳି, ମୁଣି, ଖଲତା ।

ଖିସାଇବା—ଗ୍ରା.(ସମ୍ବ)ବି. ମନମାରିବା, ବିମର୍ଷହେବା, (ଜାଜପୁର) ରାଗିବା ।

ଖୀରକେଳପାରୁଡ଼ାପୋକ—ଗ୍ରା. ବି. ପାରୁଡ଼ାପୋକଙ୍କଠାରୁ ସାନ ଓ କଳା ଏବଂ ହରଡ଼ ପରି ଚେପ୍ଟା ଓ ଦୁର୍ଗନ୍ଧମୟ ପୋକ ।

ଖୀଲ—ପୁଂ. ବି, କୀଳକ, କିଳା, ମେଖ ।

ଖୁଆ—ଗ୍ରା.ବି.(ସଂ-କ୍ଷୁଦ୍ର) ଦଧିମନ୍ଥନଦଣ୍ଡ, ବାହୁମୂଳର ପୃଷ୍ଠାଂଶ, କାନ୍ଧର ପଛ, ଛେଣା,ଘନୀଭୂତ ଆଉଟା ଦୁଧ, ଦୁଧ ଓ ଚିନିମିଶ୍ରିତ ଏକପ୍ରକାର ମିଠାଇ, ଅନ୍ୟଙ୍କୁ ଭୋଜନ କରାଇବା, ( ପ୍ରା. ମେଦିନୀ) ଆଖୁକାତା, (ଛେଦ) ।

ଖୁଆଇଦେବା—ଗ୍ରା. କ୍ରି. ଶିଶୁ ଓ ନିଜ ହାତରେ ଖାଇବାକୁ ଅସମର୍ଥ ବ୍ୟକ୍ତିକୁ ଅନ୍ୟ କେହି ଖାଦ୍ୟ ଖୋଇଦେବା ।

ଖୁଆଇବା—ଗ୍ରା. କ୍ରି. ଅନ୍ୟଙ୍କୁ ଭୋଜନ କରାଇବା, ଡପାଖାଇଦ୍ୱାରା ଭୁଲାଭଣା-ଇବା, ଅନ୍ୟକୁ ଖାଦ୍ୟବସ୍ତୁ ଖାଇବାକୁ ଦେବା, ଉତ୍କୋଚଦେବା, ଅନ୍ୟକୁ ଭୋଜନଦ୍ୱାରା ପାଳିବା ।

ଖୁଆଖୋଇ—ଗ୍ରା.ବିଂ. ପରସ୍ପରକୁ ଖୁଆ-ଇବା, ଦୁଇଟି (ବିରାଡ଼ିଆଦି) ପରସ୍ପର ମଧ୍ୟରେ କାମୁଡ଼ାକାମୁଡ଼ି ହେବା, ଅନ୍ୟୋଽନ୍ୟରେ କଳହ କରୁଥିବା, (ବି) ପରସ୍ପର ମଧ୍ୟରେ କଳହ ।

ଖୁଆଡ଼—ଗ୍ରା. ବି. ଗୋ ମେଷାଦି ରହି-ବାର ଗୋରଡ଼ା, ମେଲାଗୁହାଳ, ଗୋରୁ ଗୋଠ, କାଞ୍ଜିଆହୁଦା ।

ଖୁଆଦଣ୍ଡ—ଗ୍ରା. ବି. ଦହିମୋହିବା ଦଣ୍ଡ, ମନ୍ଥନଦଣ୍ଡ, ଖୁଆବାଡ଼ି ।

ଖୁଆସ—ପ୍ରା. (ସମ୍ବ)ବି. ପାଚକ, ପରି-ବେଷକ, ପରଷୁଣୀ ।

ଖୁଁଖୁଁ—ଗ୍ରା. ଅବ୍ୟ. ଅଳ୍ପ ଅଳ୍ପ ଶୁଖିଲା କାଶ କାଶିବା କଣ୍ଠର ଅବ୍ୟକ୍ତ ଧ୍ୱନି ।

ଖୁଁଖୁଁଆ—ଗ୍ରା. ପୁଂ. ବିଂ. ଯେ ସର୍ବଦା ଖୁଁଖୁଁ କାଶୁଥାଏ,(ସ୍ତ୍ରୀ) ଖୁଁଖୁଁଆଁ ।

ଖୁକା—ପ୍ରା. (ମେଦ ଓ ବଙ୍ଗ) ପୁଂ. ବି. ଖୁକା ବା ଶିଶୁପୁତ୍ର, ଦୁଗ୍ଧପୋଷ୍ୟବାଳକ (ସ୍ତ୍ରୀ) ଖୁକି ।

ଖୁକ୍କା—ପ୍ରା. (ସମ୍ବ) ବିଂ. ଅସଭ୍ୟ, ଅସୁ-ନ୍ଦର, ସାଧାରଣ, ଇତର ।

ଖୁକୁଣ୍ଡି,ଖୁଖୁଣ୍ଡି—ଗ୍ରା. ବି. ତାଳଖୁଙ୍କୁ, ତାଳଟାଙ୍କୁ ମଧ୍ୟରେ ଥିବା ଶସ ।

ଖୁକ୍ରମା,ଖୁଖୁମା—ପ୍ରା. (ସମ୍ବ) ବି. କଇଁ ଫୁଲ ଓ ତାହାର ମଞ୍ଜି -ଗ୍ରା.ବି. ସବଳ, ହୃଷ୍ଟ ପୁଷ୍ଟ ।

ଖୁଗୁର—ଯା. ବି. ଘୋଡ଼ାଉପରେ ଗୃହିଜାମାତଲେ ପକାଯିବା ମୋଟା ବସ୍ତ୍ରର ଆସନ ।

ଖୁଙ୍କୁ—ଗ୍ରା.ବି. (ସଂ-ଅଙ୍କୁର)ତାଳଟାଙ୍କୁ ମଧ୍ୟରେ ଗଜୁରିଥିବା ସୁମିଷ୍ଟ ଶସ ।

ଖୁଙ୍ଗା—ପ୍ରା. (ପୁରୀ) ବିଂ. ଅତିମାନ୍ଦା ବୁଢ଼ିଆ ବା ଲେସମା, (ସ୍ତ୍ରୀ) ଖୁଙ୍ଗୀ ।

ଖୁଙ୍ଗା;ଖୁଙ୍ଗି, ଖୁଙ୍ଗୀ—ଗ୍ରା. ବି. କ୍ଷୁଦ୍ରବଂଶ ନିର୍ମିତ ପେଟିକା, ଛୋଟ ବାଉଁଶ ବା ବେତରତିଆରି ପେଡି,ପତ୍ରଠୋଲା,ଦନା ।

ଖୁଚରା,ଖୁଚୁରା—ଗ୍ରା. ବିଂ. ଅତି ସାମାନ୍ୟ କ୍ଷୁଦ୍ରକ୍ଷୁଦ୍ର ଅଂଶଯୁକ୍ତ, ଛୋଟ, ଛୋଟ, ଅଳ୍ପ ପରିମାଣରେ ବିକିକରାଯିବା

(ପଣ୍ୟ), ଅଳ୍ପ ପରିମାଣରେ ବିକି କରୁଥିବା (ଦୋକାନୀ),ଗ୍ରା.ବି. ଖୁଦ୍ର, ଖୁଦ୍ର ଅଂଶ, ଟଙ୍କା ଭଙ୍ଗାଇ ତହିଁ ବଦଳରେ ଆଣିବା ଖୁଦ୍ର, ଖୁଦ୍ର, ମୁଦ୍ରାଚୟ ।

ଖୁଚବା—ପ୍ରା. (ସମ୍ଭ) କ୍ରି ଖୋଳିବା, ଭିତରକୁ ମାଡ଼ି ଗୁଞ୍ଜିବା ।

ଖୁଜୁରି, ଖୁଜୁରି—ଗ୍ରା. ବି. ବିଂ. ଖୁଚରି (ଦେଖ) ।

ଖୁଜୁର(ଲ)—ଗ୍ରା. ବି. କାଛୁ ବା କୁଣ୍ଡିଆ, ଗଲୁ, କୁଣ୍ଡେଇହେବା ।

ଖୁଜବୁଜ୍,ଖୁଜ୍ ବୁଜ୍—ଗ୍ରା.ବି. ଅସ୍ଥିରତା ଚଗଲାମି, ସାମାନ୍ୟ ଦୁଷ୍ଟାମି, ଗ୍ରା. ବିଂ. ଅସ୍ଥିର, ଚଞ୍ଚଳ ।

ଖୁଜୁବୁଜିଆ,ଖୁଜବୁଜିଆ—ଗ୍ରା. ପୁଂ. ବିଂ. ଅସ୍ଥିର, ଚଞ୍ଚଳ; ସାମାନ୍ୟରେ ଦୁଷ୍ଟ ।

ଖୁଜୁବୁନାଥ—ଗ୍ରା. ବି. ଉତ୍କଳର ଲାମା (ଧର୍ମଗୁରୁ) ମାନଙ୍କର ତୀର୍ଥ ।

ଖୁଞ୍ଚ—ଗ୍ରା. ବି. (ସଂ-କୁଚକା) ଛୋଟଖିଲ, ମେଖ, କିଲା, ବଢ଼େଇ ବା କରତିମାନେ କାଠ ଆଦିରେ ମାପର ଚିହ୍ନ ଦେବା ସକାଶେ ବ୍ୟବହାର କରିବା କାଠି ।

ଖୁଞ୍ଚା—ଗ୍ରା.ବି. ହଳୁରି ଯାଇଥିବା ଗୁଳର ଅଂଶରେ ଗୁଞ୍ଜି ଯିବା ନଡ଼ା ବା କୁଟା, ପାଣି ଖାଇଯାଇଥିବାହେତୁ ଅଳ୍ପସଂଖ୍ୟକ ଧାନଗଛ ଥିବା କ୍ଷେତରେ ମଧ୍ୟେ ମଧ୍ୟେ ଗୋଟିଏ ଗୋଟିଏ ରୁଆହେବା ଧାନଗଛ ।

ଖୁଞ୍ଚିବା—ଗ୍ରା. କ୍ରି. ଖୁଞ୍ଚ କାଠିରେମାପକରି ଚିହ୍ନିବା, କାଠରେ ଦାଗଦେବା, ଗେଞ୍ଜିବା, ଖୁଞ୍ଚିବା,ପିଚ୍ଚାଲୁଗାକୁ କଷିବା, ( ନେତ୍ର ) ପୀଡ଼ା କରିବା, ଆଖି ରୁଗୁରୁଗୁ ହେବା, ଶବଦାହରେ ଶୀଘ୍ର ପୋଡ଼ିଯିବାନିମିତ୍ତ ଶବକୁ ଖୁଞ୍ଚଣା ବାଡ଼ିରେ ଖୁଞ୍ଚ କାଲ ଇତ୍ୟାଦି ଛଡ଼ାଇବା ।

ଖୁଞ୍ଚିହେବା—ଗ୍ରା.ବି. ନେତ୍ର ପୀଡ଼ାକରିବା, ଆଖି ରୁଗୁରୁଗୁ ହେବା ।

ଖୁଟ୍‌ଖୁଟ୍—ପ୍ରା.(ସମ୍ଭୂଳ) ବିଂ. ଅସନ୍ତୁଷ୍ଟ, ସନ୍ଦିଗ୍ଧ ।

ଖୁଟ୍‌ଲ—ପ୍ରା.( ସମ୍ଭୂଳ ) ବି. ବଢ଼େଇର ଲିହଣ ପିଟିବା ମୁଦ୍‌ଗର ।

ଖଡ଼୍‌କନ—ଗ୍ରା.ଅବ୍ୟ. ସାମାନ୍ୟମାତ୍ର ଶବ୍ଦ ହେବା ।

ଖୁଡ଼୍‌ଖୁଡ଼୍—ଗ୍ରା. ଅବ୍ୟ. କଠିନ ପଦାର୍ଥମାନଙ୍କର ପରସ୍ପର ଆଘାତର ସାମାନ୍ୟ ଶବ୍ଦ, ମୃଦୁବିଲୋଡ଼ନ ଶବ୍ଦ ।

ଖୁଡ଼ସ୍—ପ୍ରା. ( ସମ୍ଭୂଳ )ବି. ବାଇଡଙ୍କ ।

ଖୁଡ଼—ଗ୍ରା.ବି. (ସଂ.ଖୋଟ) କଳି, ଦ୍ୱନ୍ଦ୍ୱ ।

ଖୁଡ଼କ—ବି. (ଖୁଡ଼୍+ଅକ) କହୁଣୀର ଗଣ୍ଠି ।

ଖୁଡ଼ୁତା—ଗ୍ରା. ପୁଂ. ବି. ଖୁଲ୍ୟତାତ, କକେଇ, ଦଦା, କକା ।

ଖୁଡୁଆ—ଗ୍ରା.ପୁଂ.ବିଂ.କଳିହୁଡ଼ା,କଳିହା, ଅଝଟିଲ, କୌତୁକିଆ (କଥା),ହାସ୍ୟୋଦ୍ଦୀପକ (କଥା) ।

ଖୁଡ଼ୀ—ଗ୍ରା.ସ୍ତ୍ରୀ. ବି. କନିଷ୍ଠ ପିତୃବ୍ୟଙ୍କ ସ୍ତ୍ରୀ, କକେଇର ଭାର୍ଯ୍ୟା ।

ଖୁଡ଼ୀଶାଶୁ—ଗ୍ରା.ସ୍ତ୍ରୀ.ବି.(ସଂ. ଖୁଲ୍ଲଶ୍ୱଶ୍ରୂ ) ବା ସ୍ୱାମୀଙ୍କର ଖୁଡ଼ୀ ।

ଖୁଡ଼ୁତା—ଗ୍ରା. ପୁଂ. ବି. (ସଂ.ଖୁଲ୍ଲ୍ୟତାତ) ଖୁଡ଼ୁତା, କନିଷ୍ଠ ପିତୃବ୍ୟ, କକେଇ, କକା, ଦଦା ।

ଖୁଡ଼ୁତାଶ୍ୱଶୁର—ଗ୍ରା. ପୁଂ.ବି. ଆପଣା ଶ୍ୱଶୁରଙ୍କ ସାନଭାଇ, (ସ୍ତ୍ରୀ) ଖୁଡ଼ୀଶାଶୁ ।

ଖୁଣ୍—ଯା.ବି ଓ ବିଂ. ଖୁଣ(ଦେଖ) ।

ଖୁଣଆସାମୀ—ଯା. ବି. ହତ୍ୟାକାରୀରୂପେ ଅଭିଯୁକ୍ତ ବ୍ୟକ୍ତି, ଆହତ ବ୍ୟକ୍ତି ।

ଖୁଣ୍ କରିବା—ଗ୍ରା.କ୍ରି. ହତ୍ୟା କରିବା ।

ଖୁଣ୍‌ଖରାପ—ଯା.ବି. ହତ୍ୟାକାଣ୍ଡ, ରକ୍ତପାତ, ବିଂ. ରକ୍ତାକ୍ତ, ରକ୍ତାରକ୍ତି, ଅନ୍ୟୋନ୍ୟରେ ହଣାହଣି ।

ଖୁଣ୍‌ଚଢ଼ିବା—ଗ୍ରା. ବି. ରକ୍ତ ଗରମ ହେବା, ମୁଣ୍ଡକୁ ରକ୍ତ ଉଠିବାର ଚିହ୍ନସ୍ୱରୂପ ଆଖି ରକ୍ତବର୍ଣ୍ଣ ଦିଶିବା, ଅନ୍ୟ ବ୍ୟକ୍ତିକୁ ହତ୍ୟା କରିବାର ଇଚ୍ଛା ବଳବତୀ ହେବା ।

ଖୁଣ—ଗ୍ରା. ବି.ଂ ( ସଂ-କ୍ଷୁଣ୍ଣ ) କ୍ଷୀଣ, ଆହତ, ଖଣ୍ଡିଆ,ଦୋଷଯୁକ୍ତ, (ବି.)କ୍ଷତ, ଆଘାତ,ଖଣ୍ଡିଆଦାଗ,କ୍ଷତଚିହ୍ନ, ଦୋଷ । ଯା.ବି. ରକ୍ତବର୍ଣ୍ଣ, ରକ୍ତ, ହତ୍ୟାକାରୀର ଚିହ୍ନ, (ବିଂ) ରକ୍ତାକ୍ତ, ରକ୍ତବର୍ଣ୍ଣବିଶିଷ୍ଟ, ହତ ।

ଖୁଣି—ଗ୍ରା. ବି.ହତ୍ୟା,ମାରଣ(ବିଂ)ହତ୍ୟାସମ୍ବନ୍ଧୀୟ ମକଦ୍ଦମା, ହତ୍ୟାକାରୀ; ରକ୍ତବର୍ଣ୍ଣବିଶିଷ୍ଟ ।

ଖୁଣିବା—ଗ୍ରା.କ୍ରି. (ସଂ-ଖଣ୍ଡନ) ପରର ଦୋଷ ବାଛିବା, ବାହୁନିବା, ଦୋଷ ଦେଖାଇବା, ।ଗଲଦେବା,ଉଘେଇବା ।

ଖୁଣ୍ଟ—ଗ୍ରା. ବି. (ସଂ-ସ୍ତମ୍ଭ) ଖମ୍ବ, ମୋଟ କୀଳକ, ମେଖ, ଶୁଷ୍କ ବୃକ୍ଷର ଶାଖା, ସ୍ଥାନକାଣ୍ଡ,ଖୁଣ୍ଟା, ଛୋଟଖମ୍ବ, (ଲକ୍ଷଣାର୍ଥ ) ନେତା, ପ୍ରଧାନ ବ୍ୟକ୍ତି ।

ଖୁଣ୍ଟାବାଘ—ଗ୍ରା. ବି. କନ୍ଧମାନେ ଯେଉଁ ସ୍ଥାନରେ ଶବ ପୋଡ଼ନ୍ତି ସେହି ଚତାଭସ୍ମଉପରେ ଉଠିଥିବାଗଛ ।

ଖୁଣ୍ଟା—ଗ୍ରା.ବି. ମଲ୍ଲଗଛର ଶାଖାବିହୀନ କାଣ୍ଡ. (ସଂ-କୂଟ) କଳଙ୍କ, ଅପବାଦ, ଦୁର୍ନାମ, ଦୋଷର ତୀବ୍ର ଆଲୋଚନା, ମିଥ୍ୟା ଅପବାଦ, ବ୍ୟଙ୍ଗ, ବିଦ୍ରୂପ, ( ପ୍ରା-ସମ୍ଭ ବି )- କାଠର ମୁଣ୍ଡା, ମୁଣ୍ଡିକାଠ, ( ଗ୍ରା.ବିଂ. ) ଖୁଣ୍ଟପରି ଠିଆ ହୋଇଥିବା, ଚଢ଼ଚଢ଼ା, ଖେଣ୍ଟା ।

ଖୁଣ୍ଟାଇବା—ଗ୍ରା. କ୍ରି. ଖୁଣ୍ଟିବାର ଣିଜନ୍ତ ରୂପ ।

ଖୁଣ୍ଟାଦେବା, ଖୁଣ୍ଟୁଣାଦେବା—ଗ୍ରା.କ୍ରି. ପୂର୍ବର ଛିଦ୍ର କଥାକୁ ଉପଲକ୍ଷ୍ୟ କରି ଗଞ୍ଜଣାଦେବା, ଜଣକର ପୂର୍ବ କଳଙ୍କକୁ ଲକ୍ଷ୍ୟକରି ଛିଗୁଲାଇବା ।

ଖୁଣ୍ଟି—ଗ୍ରା. ବି. ( ସଂ-କ୍ଷୋଡ଼ ) ଛୋଟ ଖମ୍ବ ବା ଖୁଣ୍ଟ, ଫସଲ କଟାହେବା ପରେ କ୍ଷେତରେ ରହିଯିବା ଗଛର ମୂଳକାଣ୍ଡ, ସ୍ଥିଅର ହେବାପରେ ରହି ଯାଇଥିବା ରୁଢ଼, କିଲା,ମେଖ,ବେଢ଼େଲି ଆଦିର କାନି ।

ଖୁଣ୍ଟିଆ — ଗ୍ରା. ବି. (ଶବରମାନେ ପୂର୍ବେ ଜଗନ୍ନାଥଙ୍କ ସେବକ ଥିବାରୁ ) ରାଜା ବା ଦେବତାମାନଙ୍କର ପାର୍ଶ୍ୱଚର-ବିଶେଷ, କର୍ଣ୍ଣଭୂଷଣବିଶେଷ, ଗଣ୍ଡିଆ, ସେବକବ୍ରାହ୍ମଣ, ବଳଭଦ୍ରଗୋତ୍ରୀ ବ୍ରାହ୍ମଣ ଓ ଶୂଦ୍ର ଜାତିର ଉପାଧିବିଶେଷ, ଅନାର୍ଯ୍ୟ ଶବରଜାତିର ଏକଶ୍ରେଣୀ ।

ଖୁଣ୍ଟିଖାଇବା — ଗ୍ରା.କ୍ରି.ଭୂମିରେ ପଡ଼ିଥିବା ଅନ୍ନକଣାମାନ ଗୋଟାଇକରି ଖାଇବା ।

ଖୁଣ୍ଟିଖାଣ୍ଟି — ଗ୍ରା.କ୍ରି. ବିଂ. ବୁଣାଯାଇଥିବା ସମସ୍ତ କ୍ଷୁଦ୍ରପଦାର୍ଥ ବା ସମସ୍ତ କଣା-ମାନଙ୍କୁ ଆହରଣ କରିବା ପ୍ରକାରେ ।

ଖୁଣ୍ଟିଖିଆ -- ଗ୍ରା. ପୁଂ.ବିଂ. କୃପଣ, ଅତି-ଗରିବ, (ସ୍ତ୍ରୀ) ଖୁଣ୍ଟିଖାଈ ।

ଖୁଣ୍ଟିବା — ଗ୍ରା.କ୍ରି. ଭୂମିରେ ବିଞ୍ଚିହୋଇ ପଡ଼ିଥିବା ପଦାର୍ଥକୁ ଭୂଇଁରୁ ଗୋଟି ଗୋଟି କରି ଗୋଟାଇବା, ଟେକିବା, ପଥର ପ୍ରଭୃତିକୁ ଛୋଟ ନିହାଣଦ୍ୱାରା ହାଣିବା, ଅନ୍ୟକୃତ କାର୍ଯ୍ୟକୁ ବିଶେଷ-ଭାବରେ ପରୀକ୍ଷା କରିବା, କାଠିଦ୍ୱାରା ଦନ୍ତମୂଳରେ ଲାଗିଥିବା ଖାଦ୍ୟକଣା-ମାନଙ୍କୁ ବାହାର କରିବା, ପରର ଦୋଷ ବା ତ୍ରୁଟି ଦେଖାଇବା, କଥାକହୁଥିବା ବ୍ୟକ୍ତିର ଦୋଷଧରିବା, ଖୁଣ୍ଟିବା, ଶାଗର ଅଗକୁ ଛିଣ୍ଡାଇବା, ଉଠାଇବା, ଅଗ କତୁରିବା, ଆମ୍ବଗଛରୁ ଆମ୍ବକୁ ଆଙ୍କୁଡ଼ି ଅଗରେ ଟୋପିବାନ୍ଧି ତଦ୍ଦ୍ୱାରା ଆମ୍ବ ତୋଳିବା ।

ଖୁଣ୍ଟିଲ — ପ୍ରା.(ସମ୍ବ) ବି. କର୍ଣ୍ଣାଲଙ୍କାର-ବିଶେଷ, କାପ, କାନଫୁଲ ।

ଖୁଣ୍ଟଣା — ଗ୍ରା.ବି. ଟିକିଟିକିକରି ଖୁଣ୍ଟିବା, ଛୋଟେଇ ଗୁଳିବା, ଗଞ୍ଜଣା, ତୀବ୍ର ବା କଟୁ ଆଲୋଚନା, ଅନ୍ୟବ୍ୟକ୍ତି ସଙ୍ଗେ ଜଣକୁ ତୁଳନାକରି ଦେଖାଇବା ଗାଳି, ଭବିଷ୍ୟତରେ ଦୋଷ ଦେଖାଇବା ସମ୍ବନ୍ଧରେ ଉଦାହରଣ ଦେଖାଇବାର ଯୋଗ-ବିଷୟ, କଳଙ୍କ, ଗାଳି ।

ଖୁଣ୍ଟୁଣି — ଗ୍ରା. ବି. ଦାନ୍ତ ଖୁଣ୍ଟିବାର କାଠି, ଆମ୍ବ ଖୁଣ୍ଟିବାର ଟୋପିଲଗା ଆଙ୍କୁଡ଼ି ।

ଖୁଣ୍ଡେ — ଗ୍ରା. ବି. ବିଂ. ଖଣ୍ଡିଏ ସବାର କାନ୍ଧେଇବାପାଇଁ ଲୋଡ଼ା ବେହେରା-ଙ୍କର ନିର୍ଦ୍ଦିଷ୍ଟ ସଂଖ୍ୟା ।

ଖୁଦ୍ — ଯା.ଅବ୍ୟ. ଖୋଦ, ସ୍ୱୟଂ, ନିଜେ ।

ଖୁଦ୍‌କାସ୍ତ — ଯା. ବି. ନିଜଗ୍ରାମର ଅଧି-ବାସୀ, ଗୃଷୀ ବା ରୟତ, ଥାନିରଇତ, ଥାନିରସ୍ଥିତ ଜମି, ଜୋତ୍, ଜମିଦାରଙ୍କ ନିଜ ଚାଷଜମି ।

ଖୁଦ୍‌କାସ୍ତା — ଯା. ବି. ଖୁଦ୍‌କାସ୍ତ(ଦେଖ) ।

ଖୁଦ — ଗ୍ରା. ବି. (କ୍ଷୋଦଶବ୍ଦଜ) ତଣ୍ଡୁଳ-କଣା, ଚାଉଳର କ୍ଷୁଦ୍ରାଂଶ ।

ଖୁଦକଣି -ଗ୍ରା.ବି ତଣ୍ଡୁଳକଣା, ତଣ୍ଡୁଳର-କ୍ଷୁଦ୍ରାଂଶ ।

ଖୁଦଛତୁ—ଗ୍ରା.ବି. ଚୁଙ୍କାଉପରେ ଉଠିବା କ୍ଷୁଦ୍ର, କ୍ଷୁଦ୍ର ଶୁକ୍ଳବର୍ଣ୍ଣ ଏକପ୍ରକାର ଛତୁ ।

ଖୁଦପିତା — ଗ୍ରା.ବି. ଖୁଦ ଓ ଲୁଣପାଣିରେ ତିଆରହେବା ଏକପ୍ରକାର ଯାଉ ।

ଖୁଦଯାଉ—ଗ୍ରା.ବି. ସିଦ୍ଧଖୁଦରେ ପ୍ରସ୍ତୁତ ହୋଇଥିବା ଯାଉ ।

ଖୁଦର—ଗ୍ରା. ବି. ( ସଂ-କ୍ଷୁଦ୍ର ) କ୍ଷୁଦ୍ର, ଛୋଟ, ସାନ, ଅତିଛୋଟ ।

ଖୁଦା — ଯା. ବି. ଈଶ୍ୱର ।

ଖୁଦାବନ୍ଦ — ଯା.ବି. ମାଲିକ, ପ୍ରଭୁ, ରାଜା ଆଦିଙ୍କୁ ସମ୍ବୋଧନ, ହଜୁର ।

ଖୁଦିଆ, ଖୁଦୁଡ଼ି — ଗ୍ରା.ବିଂ. ଖୁଦପୂର୍ଣ୍ଣ, (ବି) ଖୁଦରୂପେ ପରିଣତ ହୋଇଥିବା ଚାଉଳ ।

ଖୁଦୁଡ଼ିଆ — ଗ୍ରା. ବି. ଖୁଦିଆ (ଦେଖ) ।

ଖୁଦୁରକୁଣି — ଗ୍ରା.ବି. ଉତ୍କଳରେ କୁମାରୀ-ମାନେ ଭାଦ୍ରମାସର ପ୍ରତି ରବିବାରଦିନ ଡିଙ୍କିଲିଞ୍ଜିରେ ଫୁଲଆଦିଦେଇ ପୂଜା କରିବା ଓଷା, ଭାଲୁକୁଣି ।

ଖୁନ୍ — ଯା. ମାରଣ, ବଧକରଣ, ମାରି-ପକାଇବା, ରକ୍ତ ।

ଖୁନ—ଗ୍ରା. ବି. ଖୁଣି (ଦେଖ) ପ୍ରା. (ଆଳି ଓ କଳନା) ବି. ଚନ୍ଦଥିବା ଉଚ-ସନ୍ଧିଯୁକ୍ତ କାଠର ଡାଲା, ଲୁଣକାଠୁଆ, ଗନ୍ତାଘରଗଡ଼ା ।

ଖୁନ୍ତ — ପ୍ରା.(ସମ୍ବ) ବି. ଖୁଣ୍ଟି, ନରହତ୍ୟା, ପେଶିହୋଇ ଯାଇଥିବା ଲଙ୍ଗଳ ।

ଖୁନ୍ଦା—ଗ୍ରା. ବି. (ସଂ-କୁନ୍ଦଧାତୁ) ହାତକୁ ମୁଠାକରି ବୁଢ଼ାଆଙ୍ଗୁଳିଦ୍ୱାରା କରାଯିବା ଆଘାତ, ଅନେକ ପଦାର୍ଥ ମଧ୍ୟରେ ଗୋଟିଏ ପଦାର୍ଥକୁ ସଂକୀର୍ଣ୍ଣ ସ୍ଥାନରେ ଖୁନ୍ଦିଦେବା, ଯାକିଦେବା ।

ଖୁନ୍ଦାଖୁନ୍ଦି — ଗ୍ରା. ବି. ଜକାଜକି, ଦେହକୁ ଦେହଲଗି ଠେସାଠେସି ହେବା, ଖୁନ୍ଦା-ମରାମରି ହେଉଥିବା ।

ଖୁନ୍ଦିଖାଦିହେବା — ଗ୍ରା.କ୍ରି.ସଂକୀର୍ଣ୍ଣସ୍ଥାନରେ ଏକଦମ ଲଗାଲଗି ହେବା, (ଅନେକଗୁଡ଼ିଏ ପଦାର୍ଥ ବା ଜୀବ) ।

ଖୁନ୍ଦିଖୁନ୍ଦିପଚାରିବା—ଗ୍ରା. କ୍ରି. ଉତ୍ତର ଦେବାକୁ ବାଧ୍ୟକରି ଉପର୍ଯ୍ୟୁପରି ପ୍ରଶ୍ନ କରିବା ।

ଖୁନ୍ଦିବା — ଗ୍ରା. କ୍ରି.(ସଂ-କୁନ୍ଦଧାତୁ)ସଂକୀର୍ଣ୍ଣ ସ୍ଥାନରେ ଅନେକ ଜୀବ ବା ବସ୍ତୁକୁ ଏକଦମ ଲଗାଲଗିକରି ପୂରାଇବା, ବନ୍ଧୁକ ଆଦିରେ ବାରୁଦକୁ ଠେସିକରି ପୂରା-ଇବା ।

ଖୁପ୍— ଗ୍ରା. ଅତିଶୀଘ୍ର, ହଠାତ୍ ।

ଖୁପ୍‌ରାଇବା — ଗ୍ରା.କ୍ରି. ଅଙ୍ଗୁଷ୍ଠିଦ୍ୱାରା ବା କାଠିଦ୍ୱାରା ପରର ଶରୀରକୁ ଆସ୍ତେ ଆସ୍ତେ ଆଘାତ କରିବା, ଉତ୍ତେଜିତ କରିବା ।

ଖୁପି—ପ୍ରା. (ସମ୍ବ) ବି. ଖୁବ୍, ବହୁତ, ଆଚ୍ଛାକରି, (ଗ୍ରା.ବିଂ)ଅତିଛୋଟ, କ୍ଷୁଦ୍ର ।

ଖୁପିଆ — ପ୍ରା. (ସମ୍ବ) ବିଂ. ଗୋପନୀୟ, ଗୁପ୍ତ (ବାର୍ତ୍ତା) ବେନାମି (ଚିଠି) ।

ଖୁପିବା—ପ୍ରା. (ସମ୍ବ) କ୍ରି. ଭେଦିବା, ଅଳ୍ପ ପ୍ରବେଶକରିବା, କୃତକାର୍ଯ୍ୟ-ହେବା, ଖୁମ୍ପିବା ।

ଖୁପୁରାଖୁପୁରି — ଗ୍ରା. ବି. ପରସ୍ପର ଖୁପୁରା-ଇବା କର୍ମ, (ବିଂ) ଖୁପୁରାଇବା କର୍ମ କରୁଥିବା ।

ଖୁପ୍ଲି — ପ୍ରା. (ସମ୍ବ)ବି. ନଡ଼ିଆସଢ଼େଇ, କଇଁଛ ଖୋଳା ।

ଖୁବ୍ — ଯା.ବିଂ. ଉତ୍ତମ, ଭଲ, ଆତ୍ୟନ୍ତିକ, ଅତିରିକ୍ତ, ପ୍ରଶଂସାର୍ହ, (କ୍ରି.ବିଂ) ଅତ୍ୟନ୍ତ, ଆଚ୍ଛାକରି, ଉତ୍ତମରୂପେ ।

ଖୁବ୍‌ସୁରତ—ଯା. ବିଂ. ଅତ୍ୟନ୍ତ ସୁନ୍ଦର, ସୁଶ୍ରୀ ।

ଖୁବ୍‌ସୁରତି—ଗ୍ରା.ବି. ବିଶେଷ ସୌନ୍ଦର୍ଯ୍ୟ, ସୁନ୍ଦରପଣ ।

ଖୁବା—ପ୍ରା. (ସମ୍ବ) ବି. ସ୍କନ୍ଧ ।

ଖୁବାନ—ଯା. ବି. ଖୋବାନ, ସୁଆଦୁ କାବୁଲ ଫଳବିଶେଷ, ଦରଦାଲୁ ।

ଖୁବି—ଯା. ଶ୍ରୀ,ସୌନ୍ଦର୍ଯ୍ୟ,ଖୁବ୍ (ଦେଖ) ।

ଖୁମା—ଗ୍ରା. ବିଂ. ମୋଟା, ବଳେପଣା, (ସ୍ତ୍ରୀ) ଖୁମୀ ବା ଖୁମେଇ ।

ଖୁମାଇପଶିବା—ଗ୍ରା. କ୍ରି. ବଳେ ପଶିବା, ଗୃହ ବା ସ୍ଥାନାଧିକାରୀର ଅନିଚ୍ଛାସତ୍ତ୍ୱେ କୌଣସି ସ୍ଥାନରେ ପ୍ରବେଶ କରିବା ।

ଖୁମାଇହେବା—ଗ୍ରା. କ୍ରି. ଗୃହସ୍ୱାମୀର ଅନିଚ୍ଛାସତ୍ତ୍ୱେ କୌଣସି ସ୍ଥାନରେ ପ୍ରବେଶ କରିବାକୁ ଚେଷ୍ଟାକରିବା,ରୁଷିକରି ଗାରୁଗାରୁ ହେବା,ଅନାହୂତହୋଇ କୌଣସି କାର୍ଯ୍ୟରେ ହସ୍ତକ୍ଷେପ କରିବା ।

ଖୁମାଣ—ଗ୍ରା. ବି. ରୁଷାସହିତ ଗାରୁଗାରୁ ଅଭିମାନ ମାରିବା ।

ଖୁମାଣି—ଗ୍ରା. ପୁଂ. ବିଂ. ଯେଉଁ ପୁରୁଷ ସାମାନ୍ୟ କଥାରେ ରୁଷିକରି ଗାରୁଗାରୁ ହୁଏ, ଅଭିମାନୀ, (ସ୍ତ୍ରୀ) ଖୁମାଣୀ ।

ଖୁମୁଳା—ପ୍ରା. (ଗଞ୍ଜାମ) ବିଂ. ଅଲଗା, ପୃଥକ୍ ।

ଖୁମୁଳୀ—ଗ୍ରା. ବିଂ.ସ୍ତ୍ରୀ. ଅଡ଼ଙ୍ଗିଆ,ଅମାନିଆ, ଅବାଗିଆ ।

ଖୁମ୍ପା—ଗ୍ରା. ବି. ଅଣ୍ଟିଦ୍ୱାରା କୋରରେ ଆଘାତ,(ବିଂ)ଅଣ୍ଟିଦ୍ୱାରା ଆଘାତପ୍ରାପ୍ତ ।

ଖୁମ୍ପିବା—ଗ୍ରା. କ୍ରି. ଅଣ୍ଟିଦ୍ୱାରା ଆଘାତ କରିବା, (ଲ.ଅର୍ଥ) ଅତ୍ୟନ୍ତ ବିରକ୍ତ କରିବା ।

ଖୁରଖୁର୍—ଗ୍ରା. କ୍ରି. ବି. (ସଂ ଖର)କ୍ଷିପ୍ର ଗତିରେ ଓ ସୁନ୍ଦର ରୂପରେ (ଚାଲିବା) ।

ଖୁରଖୁରିଆ—ଗ୍ରା. ପୁଂ. ବିଂ. ଯେଉଁ ଘୋଡ଼ା ବା ବାଛୁରୀ ସୁନ୍ଦରରୂପେ ଖୁର୍‌ଖୁର୍ ହୋଇ ଚାଲେ,ଚଞ୍ଚଳିଆ,ଅସ୍ଥିର ।

ଖୁର୍‌ଚୁଆ—ଗ୍ରା. ବି. ବାଆଁ ଚଢ଼େଇ ।

ଖୁର୍‌ପି—ପ୍ରା.(ସମ୍ବ)ବି. କାଠରେ ନିର୍ମିତ ହୋଇଥିବା ଗୁଡ଼ିଆଙ୍କର ଚଟୁ ।

ଖୁରସୀ, ଖୁରୁସୀ—ଯା. ବି. କାଷ୍ଠ ବା ବେତ୍ରାସନ, ଚୌକି ।

ଖୁର୍‌ହା—ପ୍ରା.(ସମ୍ବ)ବି.ଗୋରୁଙ୍କଖୁରରେ ହେବା ରୋଗବିଶେଷ, ଫାଟୁଆରୋଗ ।

ଖୁର—ପୁଂ. ବି. (ଖୁର୍+ଣ,ର)ଶଫ, ଅଶ୍ୱାଦିର ପାଦର ଖୁରା, ଟାପୁ ବା ଖୁରା, କ୍ଷୌର କରିବାର ଶସ୍ତ୍ର, କୋଳଦଳ, କୋଳପତ୍ର, ଖଟର ଖୁରା, ପାଦ, ନଖୀନାମକ ଗନ୍ଧଦ୍ରବ୍ୟ ।

ଖୁରକ—ପୁଂ.ବି. ତିଳବୃକ୍ଷ,କୋକିଳାକ୍ଷ, କ୍ଷପ, କୁଇଲେଖା ଗଛ, (କ୍ଲୀ.ବି)ଉତ୍ତମ ବଙ୍ଗ ।

ଖୁରକ୍ଷେପ—ବି. (ତନ୍ତ୍ର) ନାଡ ।

ଖୁରଙ୍ଗ—ଗ୍ରା. ବି. ( ସଂ-କୁରଙ୍ଗ ) ମୃଗ, ଏକଜାତୀୟ ଛୋଟ ମୃଗ ।

ଖୁରଢ଼ା—ପ୍ରା. (ସମ୍ବ)ବି. ପତ୍ରରେ ସିଆଁ-ହୋଇଥିବା ବଡ଼ ଚଉପଡ, ପଲଙ୍ଗ ।

ଖୁରଣସ—ପୁଂ. ବିଂ. (ଖୁର+ନାସିକା) ଚେପ୍ଟାନାକା, ନାକୁଆ ।

ଖୁରଣା—ପୁଂ.ବିଂ.ବି.ସ୍ତ୍ରୀ; ଚପିଟନାସିକ, ଚେପ୍ଟାନାକା, ନାକୁଆ ।

ଖୁରଣି—ଗ୍ରା. ବି. ପିଠାକୋରୁଆ ।

ଖୁରଣ୍ଡା—ଗ୍ରା. ବିଂ. ହିନ୍ଦୁସ୍ଥାନୀ, ହିନ୍ଦିଭାଷୀ (ବ୍ୟଙ୍ଗ) ।

ଖୁରଣ୍ଡି—ଗ୍ରା. ବି. ହିନ୍ଦିଭାଷା ।

ଖୁରଣ୍ଡି ଚଳାଇବା—ଗ୍ରା. କ୍ରି. ଓଡ଼ିଆ ଭାଷାରେ ହିନ୍ଦିଶବ୍ଦ ବା ବାକ୍ୟମାନ ବ୍ୟବହାର କରିବା ।

ଖୁରଦାଢ଼ରେ ଚାଲିବା—ଗ୍ରା. କ୍ରି. ଅତି ସତର୍କରୂପେ ନିୟମପରତନ୍ତ୍ର ହୋଇ ଚଳିବା ।

ଖୁରଧରାଇବା—ଗ୍ରା. କ୍ରି. ଖୁରକୁ ଶାଣ ଦିଆଇବା । [ କରିବା ।

ଖୁରଧରିବା—ଗ୍ରା. କ୍ରି. ଖୁରକୁ ଦାଢ଼

ଖୁରନସ—ପୁଂ. ବିଂ. (ବି.ସ୍ତ୍ରୀ) ଚେପ୍ଟା-ନାକା, ନାକୁଆ । [ ଚନ୍ଦ୍ର ।

ଖୁରନ୍ୟାସ—ବି. (ତନ୍ତ୍ର)ଖୋଳ,ଖରର

ଖୁରପଦବୀ—ବି.(ତନ୍ତ୍ର) ଖୋଳ, ଖରର ଚନ୍ଦ୍ର ।

ଖୁରପା,ଖୁରୁପା—ଗ୍ରା. ବି. ଭୂମିରୁ ଘାସ ଛେଲିବାର ଅର୍ଦ୍ଧଚନ୍ଦ୍ରାକୃତି ବେଣ୍ଟ ଲଗିଥିବା ହତିଆର ।

ଖୁରପି—ଗ୍ରା. ବି. ଖୁରପା ( ଦେଖ ) । ମୋଚିଙ୍କର ଚମଡ଼ାଛେଲିବା ଯନ୍ତ୍ର ।

ଖୁରପ୍ରଥ—ପୁଂ.ବି.(ଖୁର+ପ୍ରଥ୍+ଅ,ଅ) ଅର୍ଦ୍ଧଚନ୍ଦ୍ରାକୃତି ବାଣବିଶେଷ, ଖାସି ଛେଲିବାର ଅସ୍ତ୍ରବିଶେଷ, ଖୁରୁପା ।

ଖୁରମା,ଖୁରୁମା—ଯା. ବି. ଲୁଣିଆ ଘିଅ-ପକ୍ୱ ମଇଦା ପିଷ୍ଟକ ବିଶେଷ, ଶୁଖିଲା କାବୁଲି ଖଜୁରୀକୋଳି, କୁରୁମା, ଭଜା-ମାଂସଦ୍ୱାରା ପ୍ରସ୍ତୁତ ତରକାରୀ ।

ଖୁରମୁଠି—ଗ୍ରା.ବି. ଯେଉଁ କୋଠିଥିବା ପେଟିକାରେ ଭଣ୍ଡାର ଖୁଦିଆଦି ରଖେ ।

ଖୁରଳୀ—ସ୍ତ୍ରୀ. ବି. (ଖୁର+ଅଲ+ଈ) ଶସ୍ତ୍ରପ୍ରୟୋଗ,ଅସ୍ତ୍ରଶିକ୍ଷା,ଶତ୍ରୁ ଆକ୍ରମଣରେ କପରି ଆତ୍ମରକ୍ଷାକରିବାକୁ ହୁଏ ତାହାର ଅଭ୍ୟାସ ।

ଖୁରା—ଗ୍ରା. ବି. (ସଂ-ଖୁର) ଘୋଡ଼ାଆଦି ପଶୁଙ୍କ ଟାପୁ, ଖଟଗୋଡ଼, ପାଦର ବଇଠି, (ଲ.ଅର୍ଥ) ଗୋଡ଼, (ପ୍ରା. ସମ୍ବ) ଛୁରା ।

ଖୁରାକ—ପୁଂ. ବି. (ଖୁର+ଆକ) ଜୀବ, ଜନ୍ତୁ, ପଶୁ, (ଯା.ବି) ଆହାର, ଖାଦ୍ୟ, ଥରେ ଭୋଜନକରିବା ପରିମିତ ଦ୍ରବ୍ୟ, ଭୃତ୍ୟାଦିଙ୍କୁ ଭୋଜନ ନିମନ୍ତେ ପ୍ରଦତ୍ତ ଅର୍ଥ ।

ଖୁରାକି—ଯା. ଖୋରାକ୍(ଦେଖ) ।

ଖୁରାଣି—ଗ୍ରା.ବି. ବୃହତ୍ତ ସଂଖ୍ୟାବିଶେଷ, ଅଶ୍ୱବିଶେଷ, ଭଲଘୋଡ଼ା ।

ଖୁରାଣ୍ଡ—ପ୍ରା. (ପୁରୀ)ବି. ପୋଖରୀକୂଳର ଯେଉଁ ଅଂଶ ବର୍ଷାଦିନେ ପାଣିରେ ବୁଡ଼ିଯାଏ ଓ ଖରାଦିନେ ଶୁଖିଲା ରହେ, ଏକ ପ୍ରକାର ମାଛ ।

ଖୁରାଣ୍ଡି—ଗ୍ରା. ବି. ଅତିକ୍ଷୁଦ୍ର ଚତଃଦେହ ମୃଗବିଶେଷ, ନଇକୂଳବନ୍ଦର ଅଗ୍ରଭାଗ, ଏକପ୍ରକାର ଲୁଣିମାଛ, ହିନ୍ଦିଭାଷା ।

ଖୁରାଲକ—ପୁଂ. ବି. (ଖୁର+ଅଲକ) ଲୌହମୟ ବାଣ ।

ଖୁରାଳକ–ପୁଂ. ବି. (ଖୁର+ଅଲ+କ, କ) ନାପିତର ଅସ୍ତ୍ରରଖିବାର ଆଧାର, ଖୁରମୁଠି, ଉପାଧାନ, ବାଲିଶ, ନାରାଚ, ଅସ୍ତ୍ର ।

ଖୁରାସାନ–ପୁଂ. ବି. ଜନପଦ ବିଶେଷ ।

ଖୁରି–ଗ୍ରା. ବି. ପାଣି ପିଇବାର ଛୋଟ ମାଟିଗିଲାସ, ସମୟର ପରିମାଣବିଶେଷ, ଘ ୧ ଣ୍ଟା, ବଳଦ ଷଣ୍ଢଆଦି ଖୁରରେ ଆଘାତକରି ମାଟିକୁ ଖୋଳିବା,କଳହା-ଦିର ପ୍ରଥମ ସୂତ୍ରପାତ,ଅଶ୍ୱାଦିର ଟାପୁ, ପୂର୍ବକାଳରେ ସମୟ ମାପିବା ପାଇଁ ବ୍ୟବହୃତ ଛିଦ୍ରଯୁକ୍ତ ପାତ୍ରବିଶେଷ, ଦଣ୍ଡ, ସମୟ, (ପ୍ରା.ସମ୍ବ) ଦାଢ଼ୁଆ ଫନ୍ଦବିଶିଷ୍ଟ ଖାଇବା କଂସା ।

ଖୁରିଙ୍ଗ—ଗ୍ରା. ବି. ଖୁରଙ୍ଗ, ଏକଜାତୀୟ ଛୋଟମୃଗ ।

ଖୁରିଶାଣ, ଖୁରୁଶାଣ—ଗ୍ରା. ବି. ଉତ୍କୃଷ୍ଟ ଜାତୀୟ ଅଶ୍ୱବିଶେଷ ।

ଖୁରୀ—ବିଂ. (ଖୁର+ଇନ୍) ଖୁରଥିବା, ଖୁରବିଶିଷ୍ଟ (ଜନ୍ତୁ), ଗ୍ରା.ବି. ଖାଇବା କଂସା, କଟୋରି, ମାଟିର ଛୋଟପାତ୍ର ।

ଖୁରୁଖୁରି—ପ୍ରା. (ହିନ୍ଦି) ଗଣ୍ଡଗୋଳ ।

ଖୁରୁଡ଼, ଖୁରୁଡ଼ୁ—ଗ୍ରା.ବି.ଶୁଖିଲାନଡ଼ିଆ, ଯେଉଁ ନଡ଼ିଆ ଭିତରୁ ପାଣିଯାକ ବିଦାକ୍ ମରି ଯାଇଥାଏ ।

ଖୁରୁପି—ଗ୍ରା. ବି. ଘାସଆଦିକୁ ଖୁଣ୍ଟି ବାହାର କରିଦେବାର ଯନ୍ତ୍ର ।

ଖୁରୁପିବା—ଗ୍ରା. କ୍ରି. ଖୁରୁପିରେ ଘାସ ଛେଲିବା ।

ଖୁରେଇବା—ଗ୍ରା.କ୍ରି. ଘୋଡ଼ାଦ୍ୱାରା ଆଡ଼େଇବା, ଖୁରଦ୍ୱାରା ଭୂମିକୁ ଘର୍ଷଣ ବା ।

ଖୁର୍କି—ଗ୍ରା.ବି. ନେପାଳର ଗୁର୍ଖାମାନଙ୍କ ବ୍ୟବହୃତ ଟାଙ୍ଗିଆ, କଟୁରି ।

ଖୁର୍ପା-ଗ୍ରା.ବି. (କ୍ଷୁରପ୍ରଶବ୍ଦଜ)ବାଣବିଶେଷ, ଘାସଛେଲିବାର ଅସ୍ତ୍ର ।

ଖୁର୍ମି—ଗ୍ରା. ବି. ମିଷ୍ଟାନ୍ନବିଶେଷ,(ଯା.ବି) କାବୁଲଦେଶୀୟ ଶୁଖିଲା ଖଜୁରି ।

ଖୁଲ୍ଖୁଲ୍ଲକେଲ–ପ୍ରା. (ସମ୍ବ) କ୍ରି. ବିଂ. ଉଚ୍ଚଧ୍ୱନି ସହକାରେ (ହାସ୍ୟକରିବା) ।

ଖୁଲ୍ଖୁଲି–ଗ୍ରା. ବି. ଧାନକ୍ଷେତ୍ରରେ ବାଳୁଙ୍ଗାପରି ଜାତହେବା ତୃଣବିଶେଷ ।

ଖୁଲକ–ପୁଂ. ବି. ଗଲର ଅଷ୍ଟମଭାଗ ।

ଖୁଲଣା–ଗ୍ରା. ବି. ସ୍ତ୍ରୀ. କାହାଣୀବର୍ଣ୍ଣିତ ଧନପତି ବଣିକର ପତ୍ନୀ, ଜଣେ ଅପ୍ସରାର ନାମ, ଏହି ସ୍ତ୍ରୀର ଚରିତାବଲମ୍ବନରେ ରଚିତ ଓଡ଼ିଆ ପୁସ୍ତକ ।

ଖୁଲଣାସୁନ୍ଦରୀ–ଗ୍ରା.ବି.ଖୁଲଣା (ଦେଖ) ।

ଖୁଲନା–ପୂର୍ବ ପାକିସ୍ଥାନର ଗୋଟିଏ ଜିଲ୍ଲା ।

ଖୁଲସା–ଯା. ବିଂ. ଅକୁଟିଳ, ନିଷ୍କପଟ, ନିର୍ମଳାନ୍ତଃକରଣ, ମୁକ୍ତ, ଅବରୋଧ-ରହିତ,ସଂକ୍ଷିପ୍ତ,ସାର, ପରିଷ୍କୃତ,ମେଳ, ସ୍ପଷ୍ଟ,(ବି) ସ୍ପଷ୍ଟକଥା,ସଂକ୍ଷିପ୍ତରୂପ,ସାରାଂଶ, ତାଲିକା, ବ୍ୟାଖ୍ୟା ।

ଖୁଲି—ପ୍ରା. (ସମ୍ବ) ବି. ଦାଣ୍ଡ, ଗ୍ରାମ୍ୟପଥ, ଛୋଟ ଛୋଟ ଗଳି, ଗ୍ରା. ବି. ଖୁଲି ।

ଖୁଲିବା—ଗ୍ରା. କ୍ରି. ପ୍ରସାରଣ,ବନ୍ଧନ ମୋଚନ, ଫିଟାଇବା ।

ଖୁଲୀ—ବି.(ଖର୍ପର ଶବ୍ଦଜ) ପାତ୍ରବିଶେଷ, କପାଳ, ଖୁଲା ।

ଖୁଲ୍ଲୀ–ଗ୍ରା. ବି. କାଠଆଦି କୁନ୍ଦିବାର କହ୍ଣାଣ ।

ଖୁଲୁଖୁଲିଆ–ଗ୍ରା.ବି.ଖୁଲି ଖୁଲି (ଦେଖ) ।

ଖୁଲ୍ଲତାତ—ଗ୍ରା.ବି. ଖୁଡ଼ୁତା, କକେଇ, ପିତୃବ୍ୟ, ପିତାଙ୍କର ସାନଭାଇ ।

ଖୁଲ୍ଲ–କ୍ଲୀ. ବି. ନଖୀ ନାମକ ଗନ୍ଧଦ୍ରବ୍ୟ, (ବିଂ) (କ୍ଷୁଦ୍ର+ଲ+ଅ)କ୍ଷୁଦ୍ର, ଅଳ୍ପ, କନିଷ୍ଠ, (ସ୍ତ୍ରୀ) ଖୁଲ୍ଲା ।

ଖୁଲ୍ଲକ—ତ୍ରି·ବିଂ.(ଖୁଲ୍ଲ+କ)ଅଳ୍ପ,ନୀଚ, କନିଷ୍ଠ, ଦରିଦ୍ର, ନିଷ୍ଠୁର, ଖଳ ।

ଖୁଲ୍ଲତାତ—ପୁଂ. ବି. (କ.ଧା) ପିତାଙ୍କ କନିଷ୍ଠଭ୍ରାତା,କକେଇ,ଦାଦା,ଖୁଡ଼ୁତା ।

ଖୁଲ୍ଲମ୍ଖୁଲ୍ଲା—ଗ୍ରା. କ୍ରି. ବିଂ. ପରିଷ୍କୃତ ରୂପେ, ସ୍ପଷ୍ଟଭାବରେ, ନିଷ୍କପଟଭାବରେ, ପ୍ରକାଶ୍ୟରୂପେ, ଅବାଧରେ, ବିଂ. ପରିଷ୍କୃତ, ସଫା, ସ୍ପଷ୍ଟ, ମୁକ୍ତ ।

ଖୁଲ୍ଲମ–ପୁଂ. ବି. ବର୍ତ୍ମ, ପଥ, ମାର୍ଗ, ରାସ୍ତା, ସଡ଼କ ।

ଖୁଶ—ଯା.ବିଂ. ମଙ୍ଗଳପ୍ରଦ,ଭଲ,ଆନନ୍ଦ-ଜନକ, (ବି) ଆନନ୍ଦ, ଖୁସି, ଇଚ୍ଛା, ମରଜି ।

ଖୁଶ୍କ—ଯା. ବି. ଅନାବୃଷ୍ଟି ଜନିତ ମରୁଡ଼ି, ଅନାବୃଷ୍ଟି, ଶୁଖିଲା କୁଣ୍ଡିଆ ।

ଖୁଶ୍କନି–ଗ୍ରା.କ୍ରି.ବିଂ.ଅଜ୍ଞାତସାରରେ ।

ଖୁଶ୍ଖବର–ଯା. ବି. ସୁସମ୍ବାଦ ।

ଖୁଶ୍ଖାଶ୍–ଗ୍ରା.ଅବ୍ୟ.ଚୁପଚାପ, ଧୀରଧୀର, ସୁସୁଶବ୍ଦ ।

ଖୁଶ୍ଖାଶ୍ହେବା—ଗ୍ରା. କ୍ରି. ତୁନି କରି ପରସ୍ପର କଥାବାର୍ତ୍ତା ହେବା, ଖସ୍ ଖସ୍ ଶବ୍ଦ କରିବା ।

ଖୁଶ୍ଗପ—ଗ୍ରା. ବି. ଆମୋଦଜନକ କଥାବାର୍ତ୍ତା, ମଜାଦାର କାହାଣୀ ।

ଖୁଶ୍ଜବାନ୍—ଯା. ବି. ସୁନ୍ଦର କଥା ।

ଖୁଶ୍ଦିଲ—ଯା. ବିଂ. ଯେ ସବୁଅବସ୍ଥାରେ ପ୍ରସନ୍ନ ଥାଏ, ହସୁରା, ଅଳ୍ପ ହସିଲି ।

ଖୁଶ୍ନବୀସ୍—ଯା. ବିଂ. ଯେ ସୁନ୍ଦର ଅକ୍ଷର ଲେଖେ, ଉତ୍ତମ ଲେଖକ ।

ଖୁଶ୍ନାମ—ଯା. ବି. ସୁନାମ, ସୁଖ୍ୟାତି, ସୁଯଶ, ପ୍ରଶଂସାବାଦ ।

ଖୁଶ୍ବକ୍ତ–ଯା. ବି. ଉତ୍ତମ କାଳ, ଭଲ ଅବସ୍ଥା ।

ଖୁଶ୍ବାସ–ଯା.ବି.ସୁଖ,ଆନନ୍ଦ, ସ୍ୱାଚ୍ଛନ୍ଦ୍ୟ ।

ଖୁଶବାସୀ—ଯା. ବିଂ.ଆନନ୍ଦିତ, ସୁଖୀ, ସ୍ୱଚ୍ଛନ୍ଦ, ସୌଖୀନ, ନବୋଦ୍ୟମୀ, ଅଦ୍ୟବସାୟୀ (ଯାହାଦଲାଦି) ।

ଖୁଶବୁ(ବୋ)–ବି ଓ ବିଂ.ସୁଗନ୍ଧ,ସୁବାସ ।

ଖୁଶ୍ମିଜାଜ୍—ଗ୍ରା. ବି. ଚିତ୍ତର ପ୍ରଫୁଲ୍ଲ ଅବସ୍ଥା ।

ଖୁଶମିଜାଜି–ଗ୍ରା. ବିଂ. ପ୍ରଫୁଲ୍ଲଚିତ୍ତ (ବି) ପ୍ରଫୁଲ୍ଲଚିତ୍ତତା ।

ଖୁଶା–ପ୍ରା. (ସମ୍ବ) ବି. ପଣସ-ବଢ଼ିଆଳ ଆଦିର ବୀଜକୋଷ, ସ୍ତ୍ରୀ-ମାନଙ୍କର ଜୁଡ଼ା, ଖୋସା ।

ଖୁସାମଦ୍ — ଯା.ବ.ଅଭିପ୍ରାୟ ଅନୁସାରେ କଥାକହି କୌଣସି ଲୋକକୁ ସନ୍ତୁଷ୍ଟ କରିବା,ସ୍ତୁତିବାଦ, ତୋଷାମୋଦ ।

ଖୁଶାମଦିଆ—ଗ୍ରା.ବିଂ.ଚାଟୁକାର, ସ୍ତାବକ, ପ୍ରୀତିଜନକ ଚାଟୁ ପୂର୍ଣ୍ଣ (ଉକ୍ତି),ଖୁଶାମଦ୍ କରିବା ଯାହାର ଅଭ୍ୟାସ ବା ଜୀବିକା ।

ଖୁସୀ — ଯା. ବି. ଆହ୍ଲାଦିତ, ଆନନ୍ଦିତ, ପ୍ରୀତ, ସନ୍ତୁଷ୍ଟ; ବି. ଆନନ୍ଦ, ଆମୋଦ, ସନ୍ତୋଷ ।

ଖୁସର ଖାସର--ଗ୍ରା. ଅବ୍ୟ. ମର୍ମର, ଫୁସ୍ ଫୁସ୍ କଥବାର୍ତ୍ତା ହେବା, ଶୁଷ୍କପତ୍ରର ଘର୍ଷଣ ଜନିତ ଅନୁଚ୍ଚ ଶବ୍ଦ ।

ଖୁ ସୁରୁମୁସୁରୁ ହେବା — ଗ୍ରା.କ୍ରି. ଅପ୍ରତିଭ ହେବା ।

ଖୁସ୍କି — ଯା. ବି. ଶୁଷ୍କତା,ମଲ୍ଲତମ,ଉପୀ, ରୁପି, ମରୁଡ଼ି, ବର୍ଷାଭାବଜନିତ ଶସ୍ୟ-ହାନି, ସ୍ଥଳପଥ, ଶୁଖିଲା ବାଟ ।

ଖୃର୍ପ — ଗ୍ରା ବିଂ. ଖର୍ବକାୟ, ବାମନ ।

ଖୃଗଲ — କ୍ଳୀ. ବି. ତନୁତ୍ରାଣ, ଶରୀର-ରକ୍ଷକ ।

ଖୃପ—ଗ୍ରା. ବିଂ. ଖର୍ବକାୟ ।

ଖୃଷ୍ଟ — ଗ୍ରା . ଯା. ବି. ଖ୍ରୀଷ୍ଟିୟାନ ଧର୍ମର ପ୍ରବର୍ତ୍ତକ, ଯୀଶୁ ।

ଖୃଷ୍ଟଧର୍ମ — ପୁଂ. ବି. (ଭିତର୍) ଯୀଶୁଙ୍କ ପ୍ରବର୍ତ୍ତିତ ଧର୍ମମତ; ଖୃଷ୍ଟାନୀ ।

ଖୃଷ୍ଟପୂର୍ବାବ୍ଦ — ଖୃଷ୍ଟଙ୍କ ଜନ୍ମ ପୂର୍ବରୁ ଗଣିତ ଅବ୍ଦ ।

ଖୃଷ୍ଟାବ୍ଦ — ବି. (ଭିତର୍) ଖୃଷ୍ଟଙ୍କର ଜନ୍ମ-କାଳାବଧି ଗଣିତ ବତ୍ସର ।

ଖୃଷ୍ଟୀୟ—ବିଂ. (ଖୃଷ୍ଟ + ଈୟ) ଯୀଶୁଖ୍ରୀଷ୍ଟ ବା ତଦ୍ଧର୍ମ ସମ୍ବନ୍ଧୀୟ ।

ଖେଆନ — ଯା. ବି. ବିଶ୍ୱାସଘାତକତା ।

ଖେଆଲ — ଯା.ବି ଚିନ୍ତା, ମନେ ରଖିବା, ଖିଆଲ, କଳ୍ପନା ।

ଖେଇ — ଗ୍ରା. ବି. ଦେବତାଙ୍କଠାରେ ଦୈନିକ ଭୋଗ ଲାଗିବା ପଦାର୍ଥରୁ ସେବକମାନଙ୍କୁ ଦୈନିକ ଖୋରାକରୂପେ ଦିଆଯିବା ନିର୍ଦ୍ଦିଷ୍ଟ ଅଂଶ ।

ଖେଉଡ଼ — ଗ୍ରା. ବି. ଅଶ୍ଳୀଳ ଶବ୍ଦଯୁକ୍ତ ଅସଭ୍ୟ ଗାନ ।

ଖେଉଦା—ଗ୍ରା. ବି. ଘଉଡ଼ିବା, ଧକ୍କା-ମାରି ତଡ଼ିବା ।

ଖେଉର — ପ୍ରାଦେ — (ବାଲେଶ୍ବର)ପ୍ରସ୍ରାବ ।

ଖେଁ ଖାଁ — ଗ୍ରା. ଅବ୍ୟ. ଉଚ୍ଚହାସ୍ୟ ଶବ୍ଦ, (ଖୁଁ ଖୁଁ ଠାରୁ ଉଚ୍ଚତର) ।

ଖେଁଖାର — ପ୍ରା.(ସମ୍ବ)ବି.କୋକଶିଆଳ ।

ଖେଁ ଖେଁ — ଗ୍ରା. ଅବ୍ୟ ଖେଁଖା (ଦେଖ), କାଶର ଉଚ୍ଚ ଶବ୍ଦ ।

ଖେଖୀରକ — ପୁଂ. ବି. (ଖେ + ଖୀଲକ) ଶବ୍ଦଯୁକ୍ତ ଯଷ୍ଟି ।

ଖେଗମନ—ପୁଂ. ବି. କାଳକଣ୍ଠ ପକ୍ଷୀ ।

ଖେଙ୍କା—ଗ୍ରା. ବି. ଖିଙ୍କାରି ହେବା, ଖେଙ୍କିବା, ଦାନ୍ତ ବାହାର କରି ଖେଁ ଖେଁ ଶବ୍ଦ କରିବା, (ବିଂ) ଯେ ଖିଙ୍କାରି ହୁଏ, ଚଞ୍ଚଳ, ଅବାଧ ଭୃତ୍ୟ ।

ଖେଙ୍କାଖେଙ୍କି — ଗ୍ରା.ବି ଓ ବିଂ. ଅନ୍ୟୋ-ନ୍ୟରେ ଖିଙ୍କାରି ହେବା, ପରସ୍ପରକୁ ଅଗ୍ରାହ୍ୟ କରିବା ।

ଖେଙ୍କିବା—ଗ୍ରା. କ୍ରି. ଦାନ୍ତଦେଖେଇ ଖେଁ ଖେଁ ଶବ୍ଦ କରିବା, ଖିଙ୍କାରିବା, ଭୁଣ୍ଡଗାଳୁ କରିବା, କୌଣସି ବ୍ୟକ୍ତିର ଆଦେଶପାଳନ ନକରି ଠେସିଦେବା ବା ମୁହେଁ ମୁହେଁ ତାହାର କଥାକୁ ଅଗ୍ରାହ୍ୟ କରିବା ।

ଖେଚଡ଼—ଗ୍ରା. ବିଂ. ଅବାଧ, ଦୁଷ୍ଟ,ପାଜି, ନଷ୍ଟଚରିତ୍ର, ମନ୍ଦଚରିତ୍ର, ସଙ୍କର, ଅମନୋଯୋଗୀ, ଅସମ୍ପୂର୍ଣ୍ଣ, ଅଙ୍ଗହୀନ, ଏକାଧିକ ବ୍ୟକ୍ତିଙ୍କଦ୍ୱାରା ଅର୍ଦ୍ଧ ନିଷ୍ପନ୍ନ (କାର୍ଯ୍ୟ) ।

ଖେଚଡ଼ କରିବା — ଗ୍ରା. କ୍ରି. (କାମ) ବିଗାଡ଼ିବା, ଖରାପ କରିବା ।

ଖେଚଡ଼(ଡ଼ା) — ଗ୍ରା,ବିଂ.ଖେଚଡ଼(ଦେଖ)।

ଖେଉଡ଼ାମି — ଗ୍ରା. ବି. ଦୁଷ୍ଟାମି ।

ଖେଚଡ଼ାମି—ଗ୍ରା. ବି. ଦୁଷ୍ଟାମି ।

ଖେଚଡ଼ି-ଖେଚୁଡ଼ି—ଗ୍ରା. ବି. ଘିଅ ଡାଲି ଚାଉଳ ପ୍ରଭୃତି ମିଶି ରନ୍ଧା ହୋଇଥିବା ଅନ୍ନ, ବହୁ ବସ୍ତୁର ଏକତ୍ର ସମ୍ମିଶ୍ରଣ ।

ଖେଚଡ଼ିଆ—ଗ୍ରା.ବିଂ. ଖେଚଡ଼(ଦେଖ) ।

ଖେଚନ—ଗ୍ରା.ବି. ଖୁଣ୍ଟ ମାରିବା ।

ଖେଚର—ପୁଂ. ବି, (ଖେ + ଚର + ଅ) ଶିବ, ବିଦ୍ୟାଧର, ପାରଦ, ସୂର୍ଯ୍ୟାଦି-ଗ୍ରହ, ମେଷାଦି ଦ୍ୱାଦଶ ରାଶି, (କ୍ଳୀ) କାସୀସ,ହୀରାକସ, ତୃଣ,(ସ୍ତ୍ରୀ)ଘୋଟକ, (ବିଂ) ଆକାଶରେ ବିଚରଣକାରୀ,(ସ୍ତ୍ରୀ) ଖେଚରୀ । [ଖେଚଡ଼ ।

ଖେଚରାନ୍ନ — କ୍ଳୀ. ବି. ଖିଚଡ଼ି, ଖେଚୁଡ଼ି,

ଖେଚରୀ — ସ୍ତ୍ରୀ.ବି.(ଖେଚର + ଈ)ଦେବ-ଯୋନିବିଶେଷ, ଦୁର୍ଗା,ଯୋଗାଙ୍ଗମୁଦ୍ରା-ବିଶେଷ, ତନ୍ତ୍ରୋକ୍ତ ପୂଜାର ମୁଦ୍ରା-ବିଶେଷ ।

ଖେଚରୀମୁଦ୍ରା — ଗ୍ରା.ବି. ଯୋଗଶାସ୍ତ୍ରୋକ୍ତ ମୁଦ୍ରାବିଶେଷ, ଯାହାବଳରେ ମନୁଷ୍ୟ ଉଡ଼ିପାରେ, ତନ୍ତ୍ରୋକ୍ତ ମୁଦ୍ରାବିଶେଷ, ଦୁଇଭ୍ରୂର ମଧ୍ୟବର୍ତ୍ତୀ ସ୍ଥାନକୁ ଓ ଦୃଷ୍ଟିକୁ ନିୟନ୍ତ୍ରିତ କରିବା ରୂପ ସାଧନ ।

ଖେଚୁଡ଼ି,ଖେଚେଡ଼-ଗ୍ରା. ବି. (ସଂ-ଖେଚେ-ରାନ୍ନ, କୃଶର)ଖେଚଡ଼ି (ଦେଖ) ।

ଖେଚେଡ଼ିଆ—ପ୍ରା.ବିଂ. ଖେଚଡ଼(ଦେଖ) ।

ଖେଜା—ଗ୍ରା. ବି. ସମୂହ, ପଞ୍ଝା, ଦଳ, ପୋଥି ପୋଥିର କିଛି ଅଂଶ, ନିର୍ଦ୍ଦିଷ୍ଟ ମୂଲ୍ୟରେ ବିକ୍ରୟ କରିବ ପାଇଁ ସ୍ଥାପିତ ପଣ୍ୟଦ୍ରବ୍ୟର ଛୋଟ ଛୋଟ ଗଦା, (ପ୍ରା. ବାଲେ) ବଡ଼ା ।

ଖେଜି — ଗ୍ରା. ବି. (ଆଦରାର୍ଥକ) ପୁଞ୍ଜି, ଗୋଛା, ବିଡ଼ା, ଖେଜା (ଦେଖ) ।

ଖେଟଜଲ — ଇଫ୍ରେଟିସ୍ ନଦୀତୀରସ୍ଥ ଖ୍ୟମଜାବାନ୍ ଯେ ଙ୍କୃଜାତ ।

ଖେଞ୍ଚ—ଗ୍ରା.ବି. ଅନଟନ,ଅଭାବ, କେଞ୍ଚା, ଝାଲା, ମେଘ, ଅନର୍ଥ, ବାଧା, ବିଂ. ଛୋଟ, ଅଭାବଗ୍ରସ୍ତ, ଅଯଥେଷ୍ଟ ।

ଖେଞ୍ଚ୍ ଖାଞ୍ଚ୍ — ଗ୍ରା. ବି. ଅନଟନ, ଅଭାବ, ଟଣା ଓଟରା, (ବିଂ.) ଅଭାବଗ୍ରସ୍ତ ।

ଖେଞ୍ଚଣା — ଗ୍ରା. ବି. ପୋଡ଼ା ଯାଉଥିବା ମୃତ୍ଦାରକୁ କେଞ୍ଚାକେଞ୍ଚି କରିବାର ଲମ୍ବ କାଠ ବା ବାଉଁଶର ଝାଲା, ଗେଞ୍ଜଣା କାଠି, ଯେଉଁ ସରୁ ଲମ୍ବ ବାଡ଼ିରେ ନିଆଁକୁ ଖୁଞ୍ଚାଇ ତେଜ କରାଯାଏ ।

ଖେଞ୍ଚା—ଗ୍ରା.ବି. ଝିଙ୍କିବା, ଟାଣିବା, ଏକାଦିକ୍ରମେ ତଳକୁ ଓ ଉପରକୁ ଟାଣିବା, ଇନ୍ଦ୍ରିୟବୃତ୍ତି ଚରିତାର୍ଥ କରିବାର କୃତ୍ରିମ ଉପାୟ, କେଞ୍ଚା, ଖାଲା, ପେଟମଗ୍ନ, ପେଟଚଣା ।

ଖେଞ୍ଚାଖେଞ୍ଚି—ଗ୍ରା.ବି.ପରସ୍ପର ଟଣାଓଟରା, ଝିଙ୍କାଝିଙ୍କି, କମ କରିବା ।

ଖେଞ୍ଚିବା—ଗ୍ରା. କ୍ରି. ଓଟାରିବା, ଟାଣିବା, ଝିଙ୍କିବା, କେଞ୍ଚିବା, ଉପର୍ଯ୍ୟୁପରି ଉପରକୁ ତଳକୁ ଟାଣିବା, ବୀର୍ଯ୍ୟ ପାତନାର୍ଥ ଲିଙ୍ଗକୁ ବାରମ୍ବାର ଆଲୋଡ଼ନ କରିବା, ( ପେଟ ) ଟାଣିବା, କମାକରିବା, ସଙ୍ଗ୍ରହକରିବା, ଖେଣ୍ଟିବା, ସଙ୍କୁଚିତ କରିବା, କମାଇବା ।

ଖେଟ୍—( ଧାତୁ ) ଖାଇବା ।

ଖେଟ—ବି. ପୁଂ. ( ଖେ + ଅଟ୍ + ଅ ) ଯଷ୍ଟି, ବାଡ଼ି,ସୂର୍ଯ୍ୟାଦିଗ୍ରହ, (ଖିଟ + ଅ) କର୍ଷକଗ୍ରାମ, ଅସ୍ତ୍ରବିଶେଷ,ଚର୍ମ,ମୃଗୟା, ତୃଣ, ଢାଲ,ଛାଲ,ଭୋଜନ,କୃଷକମାନଙ୍କର ଅଧ୍ୟୁଷିତ ଗ୍ରାମ, କୁଣପା ଅସ୍ତ୍ରର ଅଧଃସ୍ଥିତ ଫଳକାକାର କାଷ୍ଠବିଶେଷ, ବଳଦେବଙ୍କର ଗଦା, କଫ, ଘୋଟକ, (ବିଂ.) ସୁନ୍ଦରକ, ଅଧମ, ଧନବୃଦ୍ଧିଇଚ୍ଛା,ଭକ୍ଷକ,ଅସ୍ତ୍ରାଦି ଧାରଣ କରିଥିବା ।

ଖେଟକ—ବି. ପୁଂ. (ଖେଟ + କ) ଗ୍ରାମ ବିଶେଷ, ଗୃଷଗାଁ, ଫଳକ, ଢାଲ,ଅସ୍ତ୍ରବିଶେଷ, ଧନବୃଦ୍ଧିଇଚ୍ଛା, ବଳଦେବଙ୍କ-ଗଦା ।

ଖେଟା—ଗ୍ରା.ବି. ମାଳା,ଗଜ୍ରା,ଫୁଲପେଣ୍ଡା, ପ୍ରା. (ଗଞ୍ଜାମ ଓ ତେଲୁଗୁ)ବିଂ.ପୃଥକ୍ ।

ଖେଟାଙ୍ଗ-ବି.ପୁଂ.(ବି.ସ୍ତ୍ରୀ)(ଖେଟ + ଅଙ୍ଗ) ଉପଦ୍ରାବକ ଜନ୍ତୁବିଶେଷ,ଅପଦେବତା, ପିଶାଚ । [ ଭୂତ ।

ଖେଟିତାନ—(ଲ), ପୁଂ.ବି.ବୈତାଳିକ,

ଖେଟିବା—ଗ୍ରା.କ୍ରି.ଅଣ୍ଟିବା,ସମାନହେବା, ପହଞ୍ଚିବା, କସିବା, ଭିଡ଼ିବା ।

ଖେଟୀ—ବି.ପୁଂ.(ଖିଟ + କ,ଇନ୍)ଲମ୍ପଟ, ନାଗର, କାମୁକ, (ସ୍ତ୍ରୀ) ଖେଟିନୀ ।

ଖେଟ୍ୱ—କ୍ଲୀ. ବି. ତୃଣ, ଖଡ଼, ନଡ଼ା ।

ଖେଡ଼—କ୍ଲୀ. ବି.ଗନ୍ଧଖଡ଼,ଧନହି,ଗ୍ରା.ବି. (ଇତର) କ୍ରୀଡ଼ା, ଜଆ,ବ୍ୟାୟାମକ୍ରୀଡ଼ା, ମଲ୍ଲକ୍ରୀଡ଼ା, କୌତୁକ, (ଗ୍ରା. ପଦ୍ୟ ବି.) ବିଷ,ଅଟେଇ, ଗୃହଆଡ ବୁଜା ହୋଇଥିବା ସ୍ଥାନ ।

ଖେଡ଼—ମହାରାଷ୍ଟ୍ର ରାଜ୍ୟ ଅନ୍ତର୍ଗତ ରତ୍ନଗିରି ଜିଲାର ଗୋଟିଏ ସ୍ଥାନ ।

ଖେଡ଼ୁଆ—ପ୍ରା. (ସିଂହ) ଶଶକ,ଠେକୁଆ, ଖରିଆ ।

ଖେଡ଼ପଳ—ବି.ପୁଂ.ବୈତାଳିକ,ଗାୟକ ।

ଖେଡ଼ତ୍ରୁ—ପ୍ରା. (ସମ୍ବ) ବି. କୃଷକ ।

ଖେଣା—ଗ୍ରା.ବି.ଅକର୍ମଣ୍ୟ, ବୁଢ଼ା ।

ଖେଣ୍ଟାଖାଣ୍ଟ—ଗ୍ରା.ବିଂ.କହାକହି,ଅନଟନ, ନ ଅଣ୍ଟିବା,ଖେଞ୍ଚାଖାଞ୍ଚ । [ଚଢ଼ିଆ ।

ଖେଣ୍ଟ୍ଖେଣ୍ଟ—ଗ୍ରା. ବିଂ. ବିରକ୍ତ, ଚଢ଼

ଖେଣ୍ଟ୍ଖେଣ୍ଟିଆ—ଗ୍ରା.ବିଂ.ପୁଂ. ଚଡ଼ଲ, ଖଚୁଆ, (ସ୍ତ୍ରୀ) ଖେଣ୍ଟ୍ଖେଣ୍ଟେଇ ।

ଖେଣ୍ଟ—ଗ୍ରା.ବି. କଳହ, ଭୋଜନ ।

ଖେଣ୍ଟା—ଗ୍ରା. ବିଂ. ପୁଂ. ଚଢ଼ଲ, (ଗାଳି) ଅପତ୍ୟ ବା ପରିବାରସ୍ଥାନ, ଗୃହର କଳଙ୍କ ସ୍ୱରୂପ,ନିର୍ଲଜ୍ଜ,ଘରଦା, କୃପଣ, ଚୁଗୁଲିଆ, ଯେଉଁ ବ୍ୟକ୍ତି ଦୁଇଜଣଙ୍କ ମଧ୍ୟରେ କଳି ଲଗାଏ, ଯେଉଁ ବ୍ୟକ୍ତି ଜାରପୁରୁଷମାନଙ୍କ ନିକଟରେ ସ୍ତ୍ରୀ ଯୁଟାଏ, (ସ୍ତ୍ରୀ) ଖେଣ୍ଟେଇ, (ଗ୍ରା.ବି.) ମୁନିଆଖାଲା, କଣ୍ଟା, ଭୋଜନ, ପଦାକୁ ବାହାରି ଥିବା ଖାଲା ।

ଖେଣ୍ଟାଇବା—ଗ୍ରା,କ୍ରି. ଚଢ଼ାଇବା, ଦୁଇଜଣଙ୍କ ମଧ୍ୟରେ ବିବାଦ ଅଣାଇବା ପାଇଁ ଖଚକହିବା, ବାରମ୍ବାର ବିରକ୍ତିକର ଭାବରେ କୌଣସି କଥା କହିବା, ଫଟେଇ ହେବା ।

ଖେଣ୍ଟିଆ—ଗ୍ରା.ବି.ପୁଂ.ବିଂ.ଖେଣ୍ଟା(ଦେଖ) ।

ଖେଣ୍ଟିବା—ଗ୍ରା,କ୍ରି.କସିଦେବା,ଛେଟେଇ ଦେବା, ସଙ୍କୁଚିତ କରିବା, ବ୍ୟୟ ସଙ୍କୋଚ କରିବା ।

ଖେଣ୍ଟେଇ—ଗ୍ରା.ବିଂ.ସ୍ତ୍ରୀ.ଚଢ଼େଇ,ଚଢ଼ାଲ ସ୍ୱଭାବା,ବିରକ୍ତ ସ୍ୱଭାବଯୁକ୍ତା,(ସ୍ତ୍ରୀ)ଖଚୁଇ, (ପୁଂ.) ଖେଣ୍ଟିଆ ।

ଖେତ—ଗ୍ରା.ବି. (କ୍ଷେତ୍ର ଶବ୍ଦଜ) କ୍ଷେତ୍ର, କିଆରି, ପତ୍ନୀ, ବିଲ, ଫସଲ, ଭୂମି ।

ଖେତପାପଡ଼ା—ଗ୍ରା. ବି. (କ୍ଷେତ୍ରପର୍ପଟୀ) ଘରପୋଡ଼ୁଆ ଗୁଳ୍ମ ।

ଖେତବଟା (ବଡ଼ା)—ଗ୍ରା. ବି. ବିଲରୁ ଫସଲ କଟାହୋଇ ଯିବାର ଶେଷଦିନ ବିଲରେ ଲକ୍ଷ୍ମୀଙ୍କୁ କରାଯିବା ଭୋଗ । [ଭୂସମ୍ପତ୍ତି ।

ଖେତବାଡ଼ି—ଗ୍ରା.ବି.ଗୃଷବାସ,ଜମିବାଡ଼ି,

ଖେତା—ଗ୍ରା. ବିଂ. ଓଲୁ, ନିବୁଦ୍ଧିଆ ।

ଖେତାବ—ଯା. ବି. ଉପାଧି, ରାଜଦତ୍ତ ଉପାଧି । [ଲୋକସାନ ।

ଖେତି (ଓ)—ଗ୍ରା.ବି.(କ୍ଷତି ଶବ୍ଦଜ) କ୍ଷତି,

ଖେଦ—ପୁଂ.ବି. (ଖିଦ୍ + ଭା,ଅ)ଶୋକ, ଅବସାଦ, ଅନୁତାପ, କ୍ଳାନ୍ତି, ପରିଶ୍ରମ, (ଖିଦ + ଣିଚ୍,ଅ) ରୋଗ ।

ଖେଦଜ—ବିଂ. ( ଖେଦ + ଜନ୍ + ଅ ) ଦୁଃଖରୁ ଉତ୍ପନ୍ନ, ଯାହା ଦୁଃଖର ଫଳ, ପରିଶ୍ରମ ଜନିତ ।

ଖେଦଜନକ—ବିଂ.(ଖେଦ + ଜନ + କ, ଅକ)ଯାହା ଖେଦ ଜନ୍ମାଏ, ଦୁଃଖପ୍ରଦ, ଶ୍ରମଦାୟକ ।

ଖେଦଜନ୍ୟ—ବିଂ. (ଖେଦ + ଜନ୍ + ଯ) ଖେଦଜ(ଦେଖ) । [ଅସ୍ଥିର ।

ଖେଦମନା—ଗ୍ରା.ବିଂ.ଖିନ୍ନମନା, ଉଦ୍ୱିଗ୍ନ,

ଖେଦନ—ବି.କ୍ଲୀ.(ଖିଦ + ଅନ) ଖେଦ ।

ଖେଦନୀ—ସ୍ତ୍ରୀ. ବି. ଅଶନପର୍ଣ୍ଣୀ ଲତା, ଅପରାଜିତା ।

ଖେଦା—ସ୍ତ୍ରୀ. ବି. ରଶ୍ମି, ରଜ୍ଜୁ,(ଗ୍ରା.ବି) ବଣରେ ହାତୀ ଧରିବା ନିମନ୍ତେ କରାଯିବା ଖୁଆଡ଼, (ଖେଦା ଦେଖ), ଜାଲ ପକାଇବାର ଏକକ୍ଷେପ, ଘଉଡ଼ିବା, ଘେରା, ଥରେ ଗୃହପାଖ ବୁଲିଆସିବା, ପରିକ୍ରମା, ( ପ୍ରା. ସମ୍ବ. ବି ) ମୃଗୟା, ଶିକାର, ପଲ, ଦଳ ।

ଖେଦ୍ର—ପୁଂ.ବି. (ଖିଦ୍ + ଇ ) କିରଣ, (ଗ୍ରା. ବି) ପଲ,ଦଳ,କ୍ଷୁଦ୍ରଦଳ ।

ଖେଦଆସିବା—ଗ୍ରା.କ୍ରି. ସବୁସ୍ଥାନ ଉତ୍ତମ ରୂପେ ଅନୁସନ୍ଧାନ କରିବା ।

ଖେଦଖେଦ—ଗ୍ରା.ବିଂ. ବି. ଖେଦାଖେଦା ବିଭକ୍ତ, (କ୍ରି.ବିଂ.) କ୍ଷୁଦ୍ରକ୍ଷୁଦ୍ର ଦଳରେ

ଖେଦିତ—ବି°. (ଖିଦ+ଣିଚ୍+କ୍ତ) ଦୁଃଖିତ, ବିଷାଦଗ୍ରସ୍ତ, କ୍ଳାନ୍ତ, ଅବସନ୍ନ, ଅକାମକ୍ରା ।

ଖେଦିତବ୍ୟ—କ୍ଳୀ.ବି. (ଖିଦ+ଣ୍ଚ,ତବ୍ୟ) ଶୋକାଦିର ଯୋଗ୍ୟ (ଖେଦ ଦେଖ) ।

ଖେଦନୀ—ସ୍ତ୍ରୀ. ବି. ଅଶନପର୍ଣ୍ଣୀ ଲତା, ଅପରାଜିତା । [ କରିବା ।

ଖେଦଦ—ଯା.ବି.ରାଜା,ଅଧିପତି,ଶାସନ-

ଖେଦିବା—ଗ୍ରା.କି.ଗୃହପାଖକୁ ଲୁଆସିବା, ଗୃହଦଗରେ ବ୍ୟାପିବା, ଘଉଡ଼ିବା, ପଛରେ ଗୋଡ଼ାଇ ଗୋଡ଼ାଇ ତଡ଼ି-ଦେବା, ଭ୍ରମଣକରିବା, ଆସକ୍ତ ହେବା, ଶିକାର ଜଗିଥିବା ସ୍ଥାନ ଆଡ଼କୁ ବଣ-ଜନ୍ତୁଙ୍କୁ ଘଉଡ଼ାଇ ତଡ଼ି ଆଣିବା, ଆଡ଼କରିବା, ( ପ୍ରା. ସମ୍ଭ ) ଗୋରୁ ଆଦିକୁ ଅଡ଼ାଇବା ।

ଖେଦୀ—ପୁଂ.ବି.(ଖିଦ୍+ଇନ୍)ଦୈନ୍ୟ-କାର୍କ, ଯେ ଦୈନ୍ୟଯୁକ୍ତ କରେ, (ସ୍ତ୍ରୀ) ଖେଦନୀ । [ଡାଏ ।

ଖେଦୁ—ଗ୍ରା.ବି°. ଯେ ଖେଦେ ବା ଘଉ-

ଖେଦୁଆ—ଗ୍ରା. ବି°. ପୁଂ. ଯେ ଗୃହର ଗୁପ୍ତକଥା ବାଣ୍ଟରେ ପ୍ରକାଶ କରେ ।

ଖେଦ୍ୟ—ତ୍ରି. ବି°. (ଖିଦ୍+ଣିଚ୍. ଯ) ଯାହାକୁ ଖେଦଯୁକ୍ତ କରାହେବ ।

ଖେନ୍ତେଇବା—ଗ୍ରା. କି. ଖଣ୍ଡାଇହେବା (ଦେଖ) । [କରିବା ।

ଖେପ୍‌ରାଇବା—ପ୍ରା.(ସମ୍ଭ) କି. ଆପ୍ତସାତ୍

ଖେପ—ଗ୍ରା. ବି. ନିକ୍ଷେପ, କୌଣସି କାର୍ଯ୍ୟର ବାର ଥର ବା ଦଫା, ଗଦା, ରାଶି, ବେପାର ନିମନ୍ତେ ପଣ୍ୟଦ୍ରବ୍ୟ ବିଦେଶକୁ ନେଇ ସେଠାରେ ତାହା ବିକି ଧନ ଘେନି ଫେରିବାର ଥର, ଖେପାଜାଲ, ଇସ୍ତାହା, ପୁର୍ଣ୍ଣି ବିବରଣ, ପ୍ରକ୍ଷିପ୍ତ ବାକ୍ୟ, ଯୋଡ଼ପତ୍ର, ଗାଡ଼ି ବା ଡଙ୍ଗାରେ ମାଲ ଆଣିବାର ଥର, (ଗ୍ରା. ବି°) ପ୍ରକ୍ଷିପ୍ତ, ମୂଳଗ୍ରନ୍ଥରେ ନ ଥାଇ ପରେ ଯୋଗ କରାଯାଇ ଥିବା ।

ଖେପଣି—ଗ୍ରା.ବି.(ସଂ-କ୍ଷେପଣୀ)ଆହୁଲା ।

ଖେପରିଭ୍ରମ—ବି. ଆକାଶରେ ବିଚରଣ ।

ଖେପା—ଗ୍ରା. ବି. (କ୍ଷିପ୍ତଶବ୍ଦଜ) ଉନ୍ମତ୍ତ, ପାଗଲ, ଲମ୍ଫ ବା ଡେଅଁ, କୁଦା, ତାଳ, ନଡ଼ଆଗଛ ଚଢ଼ିବାର ଛେଣ୍ଡି, ଛଣ୍ଡି, ଖାଳେଇ, ଫିଙ୍ଗାଜାଲ ।

ଖେପିବା—ଗ୍ରା.କି.(ସଂ-କ୍ଷିପଧାତୁ)କ୍ଷେପିବା (ଦେଖ), (ପ୍ରା.ସମ୍ଭ.କି)ପହଞ୍ଚିବା,ପ୍ରବେଶ କରିପାରିବା,ଅଣ୍ଟିବା, ସମାନହେବା ।

ଖେମଟା, ଖେମଟା—ଗ୍ରା. ବି. ସ୍ୱର ବା ଛଅତାଳ ବିଶିଷ୍ଟ ଚଞ୍ଚଳ ବଜାଯିବା ବାଦ୍ୟବିଶେଷ ।

ଖେମଟୀ—ଗ୍ରା.ବି. ସ୍ତ୍ରୀ. ଖେମଟା ଗାଇବା ଓ ନାଚିବା ନର୍ତ୍ତକୀ ।

ଖେମଣ୍ଡି, ଖେମୁଣ୍ଡି—ଗ୍ରା. ବି. ଗଞ୍ଜାମର ଉତ୍କଳଶ୍ରେଣୀଭୁକ୍ତ ଗୋଟିଏ ମିଦାରି ରାଜ୍ୟ ।

ଖେମୀ—ଗ୍ରା. ବି. ସ୍ତ୍ରୀଲୋକମାନଙ୍କର ଗହଣା ରଖିବାର ପେଟିକା, ଡବା ।

ଖେୟ—ତ୍ରି.ବି°.(ଖନ+ମି,ଯ)ଖନନୀୟ, ଖନନଯୋଗ୍ୟ, ଯାହା ଖୋଳାହେବ, (କ୍ଳୀ.ବି) ପରିଖା, ଗଡ଼ଖାଇ, (ପୁଂ) ସେତୁବିଶେଷ ।

ଖେୟାଲ—ଯା. ବି. ଖିଆଲ୍ (ଦେଖ) ।

ଖେୟାଙ୍ଗଖା—ଚଟ୍ଟଗ୍ରାମ ଓ ଆରାକାନ-ବାସୀ ଜାତିବିଶେଷ ।

ଖେର୍‌ଖେସା—ଗ୍ରା.ବି°. କର୍କଶ,ବନ୍ଧୁର, ଦେଖିବାକୁ ଅସୁନ୍ଦର ।

ଖେର—ଯା.ବି. ଗ୍ରାମର ସନ୍ନିହିତ ଭୂମି, କ୍ଷୀରିକାକୁଣ୍ଡ ।

ଖେରଦସୁରମଲ—ଶିଖଜାତିର ମଧ୍ୟରେ ଜଣେ ଧର୍ମ ପ୍ରଚାରକ ।

ଖେରଲୀ—କାଠିୟାବାଡ଼ର ଝାଲାବାର ବିଭାଗର ମଧ୍ୟବର୍ତ୍ତୀ ଗୋଟିଏ କ୍ଷୁଦ୍ରରାଜ୍ୟ ।

ଖେରାଲୁ—ଗୁଜୁରାଟ ମଧ୍ୟରେ ବରୋଦା ନିକଟସ୍ଥ କାଦି ବିଭାଗାନ୍ତର୍ଗତ ଗୋଟିଏ କ୍ଷୁଦ୍ରରାଜ୍ୟ ।

ଖେରି—ଉତ୍ତରପ୍ରଦେଶର ଅଯୋଧ୍ୟା ନିକଟବର୍ତ୍ତୀ ଗୋଟିଏ ପ୍ରଧାନ ସ୍ଥାନ ।

ଖେଟା—ଗ୍ରା. ବି. ହିନ୍ଦୁସ୍ଥାନୀ ଲୋକ, ହିନ୍ଦିଭାଷୀ ବ୍ୟକ୍ତି, ହିନ୍ଦିଭାଷା ।

ଖେଳ—ଗ୍ରା. ବି. କ୍ରୀଡ଼ା,ବ୍ୟାୟାମ ପ୍ରଦ-ର୍ଶକ, କସରତ, ଗୁରୁସି, କୌତୁକ, ପରିହାସ, ଅଛା କାର୍ଯ୍ୟ, ଜୁଆଖେଳ, ଆଖି ବୁଲାଇବା,ନାଟକାଦିର ଅଭିନୟ ।

ଖେଳ—ପୁଂ. ବି°. ( ଖେଲ+କ.ଅ ) ଯେ ଅତି ସୁନ୍ଦରଭାବେ ଗମନ କରେ, କ୍ରୀଡ଼ନକାମ୍ଭ, କାମୁକ, କମ୍ପ ଥିବା,(ବି) ବେଦପ୍ରସିଦ୍ଧ ରାଜା ।

ଖେଳଅନ୍ତ—ଯା. ବି. ଖେଲାତ୍, ସମ୍ମାନ ସୂଚକ ପରିଚ୍ଛଦ, ରାଜଦତ୍ତ ସମ୍ମାନ-ସୂଚକ ପୋଷାକ ।

ଖେଳଗଡ—ପୁଂ. ବି°. ସ୍ତ୍ରୀ. (ବି.ସ୍ତ୍ରା)ଯେ ଖେଳାଳିପର ଚାଲେ ।

ଖେଳଘର—ଗ୍ରା. ବି. (ସଂ-ଖେଲାଗୃହ) କ୍ରୀଡ଼ାସ୍ଥଳ, କ୍ରୀଡାଗାର, ଧୂଳିଘର, ପିଲାମାନେ ଖେଳରେ କରିବା ଧୂଳିଘର ଅଛା ।

ଖେଳନ—କ୍ଳୀ. ବି.( ଖେଲ୍+ଭା,ଅନ ) କ୍ରୀଡା, ଯାହାଦ୍ୱାରା ଖେଲ କରାଯାଏ ।

ଖେଳନା—ଗ୍ରା.ବି.କ୍ରୀଡ଼ନକ ବସ୍ତୁ,କ୍ରୀଡ଼ା-ସାମଗ୍ରୀ, ଖେଳିବା ଜିନିଷ ।

ଖେଳନୀ—ସ୍ତ୍ରୀ.ବି. (ଖେଲନ+ଈ)ଶାର-ଫଳକ, କ୍ରୀଡ଼ନକ, ପଶାଆଦି ଗୋଟି, ପଶାପାଲି ।

ଖେଳନ୍ତା—ଗ୍ରା. ବି°. (ସଂ-ଖେଲନ୍ତ) କ୍ରୀଡ଼ାକାରୀ, ଖେଳୁଥିବା ।

ଖେଳଖେଳ—ଗ୍ରା. ବି°. କ୍ରୀଡ଼ାହେତୁରୁ ଚଞ୍ଚଳ ବା ଅସ୍ଥିର,(ସଂ.ବି°.) କ୍ରୀଡ଼ନ-ଶୀଳ ଓ ଚଞ୍ଚଳ ।

ଖେଳା—ସ୍ତ୍ରୀ. ବି.(ଖେଲ୍+ଭା.ଅ+ଆ) କ୍ରୀଡ଼ା, କୁର୍ଦ୍ଦନ, କୌତୁକ, ପରିହାସ, କର୍ମିବା, ନାଟକାଭିନୟ, (ଗ୍ରା. ବି°) କ୍ରୀଡ଼ାରତ ।

ଖେଳାଇବା—ଗ୍ରା. କି. ଅନ୍ୟକୁ କ୍ରୀଡ଼ା କରାଇବା, ଇତସ୍ତତଃ ଗତି କରିବାକୁ ଅବସର ବା ସୁଯୋଗଦେବା,ନଚାଇବା, ଚଳାଇବା, ଗ୍ଳାଳିତ କରିବା, ବିକଶିତ କରାଇବା, ଏକାଠେଇଥିବା ଜିନିଷକୁ ଇତସ୍ତତଃ କରିବା,ଖେଳୁଆ କରିବା ।

ଖେଳାଖେଳ, ଖେଳଆଖେଳ—ଗ୍ରା. ବ. ବହୁପ୍ରକାର ଖେଳ, ଏକାଠଥିବା ବସ୍ତୁକୁ ଇତସ୍ତତଃ ବିକ୍ଷିପ୍ତ କରିବା, (ବିଂ) ଇତସ୍ତତଃ ବିକ୍ଷିପ୍ତ କରିବା, ଘଣ୍ଟାଘଣ୍ଟି ହୋଇଥିବା ।

ଖେଲାତ—ଯା. ବ. ରାଜଦତ୍ତ ମର୍ଯ୍ୟାଦାସୂଚକ ପରିଚ୍ଛଦବିଶେଷ, ଇନାମ୍, ବକସିସ୍ ।

ଖେଲାପ୍—ଯା. ବ. ବିପରୀତାଚରଣ, କାମରେ ତ୍ରୁଟି,ନିୟମ ଭଞ୍ଜନ, ଅନ୍ୟଥାକରଣ, ପରିବର୍ତ୍ତନ ।

ଖେଳାଳି—ଗ୍ରା. ବ. ଖେଳୁଥିବା ବ୍ୟକ୍ତି, କ୍ରୀଡ଼ାସଙ୍ଗୀ, ଦକ୍ଷଖେଳାଳି, (ବିଂ) କ୍ରୀଡ଼ାକରୁଥିବା,କ୍ରୀଡ଼ାରତ ।

ଖେଳି—ସ୍ତ୍ରୀ.ବ. (ଖେଳ+ଷ୍ଣ,ଇ) ଗାନ, ବାଣ, ସୂର୍ଯ୍ୟ,ପକ୍ଷୀ,ଜନ୍ତୁ,ସ୍ତବ, ସଙ୍ଗୀତ, ଖେଳ ।

ଖେଳିବା—ଗ୍ରା.କ୍ରି.କ୍ରୀଡ଼ାକରିବା,ଇନ୍ଦ୍ରଜାଲ ବା ବ୍ୟାୟାମ ପ୍ରଦର୍ଶନ କରିବା, ଥଟ୍ଟା କରିବା, ଇତସ୍ତତଃ ବିଚରଣ କରିବା, ବ୍ୟାପିବା, ଅନୁଭୂତ ହେବା, ବ୍ୟବସାୟରେ ଲାଗିବା, ନାଚିବା, ଇତସ୍ତତଃ ଚାଳିତହେବା, ଆଗକୁ ପଛକୁ ଗତି କରିବା,ନାଟକାଦିର ଅଭିନୟ କରିବା, ଜୁଆଖେଳିବା, କମ୍ପିବା ।

ଖେଳିଯିବା—ଗ୍ରା.କ୍ରି.ବ୍ୟାପ୍ତହେବା, ପ୍ରସରିଯିବା, ଖେଳେଇ ହୋଇଯିବା ।

ଖେଳୁଆ—ଗ୍ରା.ବ.ଧାନ କିଆରିରେ ଜଗଞ୍ଚ ଧାନଗଛମାନଙ୍କୁ ଉପାଡ଼ି ଧାନଗଛ ନ ଥିବା ସ୍ଥାନମାନଙ୍କରେ ରୋପଣ କରିବା (ପକାଇବା) ।

ଖେଳୁଆକରିବା—ଗ୍ରା. କ୍ରି. କ୍ଷେତରେ ବହଳିଆ ଧାନଗଛ ଥିବା ସ୍ଥାନରୁ କିଛି ଧାନଗଛ ଉପାଡ଼ି ଅନ୍ୟ ପାତଳସ୍ଥାନରେ ପୋତିବା (ପକାଇବା) ।

ଖେଳୁଆଡ଼—ଗ୍ରା.ବିଂ. କ୍ରୀଡ଼ା କରୁଥିବା, କ୍ରୀଡ଼ାରତ, କ୍ରୀଡ଼ାରେ ଅତିରିକ୍ତରୂପେ ଆସକ୍ତ,କ୍ରୀଡ଼ାରେ ଦକ୍ଷ, (ବି) ଖେଳୁଥିବା ବ୍ୟକ୍ତି, ଖେଳାଳି, ଖେଳସାଙ୍ଗ, ଦକ୍ଷ ଖେଳାଳି ।

ଖେଳୁଆ ପଡ଼ିବା—ଗ୍ରା. ବ. (ଗା.ଇ) ରକ୍ତମଗ୍ନ ହେବା, ବଛର ପଡ଼ିବା ।

ଖେବାଟ—ଗ୍ରା.ବ. ଭୂରାଜସ୍ୱ ବନ୍ଦୋବସ୍ତ ସଂକ୍ରାନ୍ତ ଯେଉଁ କାଗଜରେ ଜମିଦାରୀରେ ଥିବା ଜମିଦାର ଓ ମଧ୍ୟସ୍ୱତ୍ୱାଧିକାରୀମାନଙ୍କର ସ୍ୱତ୍ୱ ଓ ହିଂସା ବର୍ଣ୍ଣିତ ହୋଇଥାଏ ।

ଖେଶ—ଯା. ବ. ଦେହର ବସ୍ତ୍ର, କାର୍ପାସ ରେଶମ ମିଶ୍ରିତ ସୂତାର ବିଶେଷ ।

ଖେଶୟ—ବିଂ. (ଖେ+ଶୀ+କ.ଅ) ଆକାଶବାସୀ,ଆକାଶରେ ବିଶ୍ରାମକାରୀ ।

ଖେଶାରତ୍—ଯା.ବ. କ୍ଷତି, ହାନି, ଅପଚୟ, କ୍ଷତିପୂରଣ ।

ଖେଶାରତି - ଯା. ଯାହାଦ୍ୱାରା ଖେଶାରତ୍ ପୂରଣ କରାଯାଏ, କ୍ଷତିପୂରଣପାଇଁ ପ୍ରଦତ୍ତ ଅର୍ଥାଦି ।

ଖେଶାରୀ—ଯା.ବ. ଖେଶାରତ୍ (ଦେଖ) ।

ଖେସ୍ଥାଙ୍ଗ—ପ୍ରା. (ବାଲେଶ୍ୱର) ବ. ଝେଷ୍ଟାଙ୍ଗ, ସ୍ଥାନତ୍ୟାଗ ।

ଖେସର—ବି.ପୁଂ.ସ୍ତ୍ରୀ (ଖେ+ସୃ+କ.ଅ) ଜନ୍ତୁବିଶେଷ, ଖଚର, ଗଧମିଶା ଘୋଡ଼ା, ଅଶ୍ୱତର ।

ଖେସାରି (ରୀ)—ଗ୍ରା. ବ. ଶିମ୍ବାଦିବର୍ଗର କୃଷିଜାତ ଶସ୍ୟବିଶେଷ, ଚଣା,ଖଣ୍ଡିଆଚଣା ।

ଖୈ—ଗ୍ରା.ବ. (ଖଦିକା ଶବ୍ଦଜ) ଲିଆ, ଲିଆ, ଭୃଷ୍ଟଧାନ୍ୟ, ଖଇ ।

ଖୈଚୂର—ଗ୍ରା. ବ. (ଖଦିକା ଚୂର୍ଣ୍ଣଜ) ଖଇଚୁର, ଲିଆଗୁଣ୍ଡ ।

ଖୈମଖ—ବି. ପୁଂ. (ଖେମଖ+ଅ) ଆକାଶ,କର୍ତ୍ତବ୍ୟ ଯଜ୍ଞବିଶେଷ ।

ଖୈର—ଗ୍ରା.ବ. (ସଂ-ଖଦିର) ଖଇର ।

ଖୈରଚୂର—ଗ୍ରା.ବ. ଘିଅରେ ପୁଆହୋଇ ଥିବା ଗୁହଳଚୂନା ଓ କଦଳରେ ପ୍ରସ୍ତୁତ-ଏକପ୍ରକାର ମିଠାଇ ।

ଖୈର୍ତ୍ତ—ଗ୍ରା. ବ. ନୀଚଜାତି ବିଶେଷ, ଏମାନେ ଖଇର ବ୍ୟବସାୟ କରନ୍ତି ।

ଖୈରାତ୍—ଯା. ବ. ଖଇରାତ (ଦେଖ) ।

ଖୈରୟତ—ଯା. ବ. ମଙ୍ଗଳ, କୁଶଳ, କ୍ଷେମ, ରକ୍ଷା ।

ଖୈଗ୍ର—ଗ୍ରା.ବ. ଏକଜାତୀୟ ବଗ,ବକ ।

ଖୈଲାୟନ—କ୍ରି. ବିଂ. ଖିଳନିର୍ବୃତ୍ତି, ତତ୍ସମ୍ବନ୍ଧ ହେତୁ ଦେଶାଦି ।

ଖୈଲିକ—କ୍ରି. ବିଂ. (ଖିଲ+ଇକ)ଖିଲ ବା ପରିଶିଷ୍ଟ ସମ୍ବନ୍ଧୀୟ,ଅଧିକା,*ଉତ୍ତର

ଖୋ—ପ୍ରା. (ସମ୍ବ) ଅବ୍ୟ. ନିଶ୍ଚୟ, ହଁ ।

ଖୋଇ—ଯା. ବ. ଅଭ୍ୟାସ, ପ୍ରକୃତି, ସ୍ୱଭାବ, ବଦଅଭ୍ୟାସ ।

ଖୋଇଦେବା—ଗ୍ରା.କ୍ରି.ଶିଶୁ ବା ରୋଗୀଙ୍କ ପାଟିରେ ଖାଦ୍ୟଦେବା ।

ଖୋଇପେଇ ମନୁଷ୍ୟକରିବା—ଗ୍ରା. କ୍ରି. ଶିଶୁକୁ ଲାଳନପାଳନ କରି ବଢ଼ାଇବା, ଖାଦ୍ୟାଦି ଦେଇ ପାଳିଆଣିବା ।

ଖୋଁଗ୍ର—ପ୍ରା.(ବସ୍ତର)ବିଂ.ଚିରା(ଲୁଗା) ।

ଖୋକଲ—ପ୍ରା.(ବସ୍ତର) ବ. କାଶ ।

ଖୋକା—ଗ୍ରା. ବ. ଦୁଗ୍ଧପୋଷ୍ୟ ବାଳକ, ଶିଶୁ, କୋଡ଼ପୋଛ ପୁଅ ।

ଖୋକୀ—ଗ୍ରା.ବ. ଦୁଗ୍ଧପୋଷ୍ୟ ବାଳକା ।

ଖୋଖୋ—ଗ୍ରା. ଅବ୍ୟ କୌଣସି ଫମ୍ପା ବା ବାଦ୍ୟ ବସ୍ତୁକୁ ଆଘାତ କଲେ ତହିଁରୁ ଉତ୍ପନ୍ନ ହେବା ଶବ୍ଦ ।

ଖୋଜ୍—ଯା. ବ. ଅନୁସନ୍ଧାନ, ହଜିବା ଲୋକ ବା ବସ୍ତୁର ଅନୁସନ୍ଧାନ ।

ଖୋଜଖବର—ଯା.ବ.ଅନ୍ୱେଷଣ,ସମ୍ବାଦ, ପତ୍ରା, ତତ୍ତ୍ୱସନ୍ଧାନ ।

ଖୋଜ—ଗ୍ରା. ବ. ପଦଚିହ୍ନ ପଦକ୍ଷେପ, ପାହୁଣ୍ଡ ।

ଖୋଜତଲାସ—ଯା. ବ. ଅନୁସନ୍ଧାନ ।

ଖୋଜା—ଗ୍ରା, ବ. ଅନୁସନ୍ଧାନ, ନଷ୍ଟବସ୍ତୁ ବା ଜୀବର ଅନୁସନ୍ଧାନ, (ଯା.ବ.) ପୁରୁଷତ୍ୱ ହୀନ, ନପୁଂସକ ।

ଖୋଜାଇବା—ଗ୍ରା.କ୍ରି.ଖୋଜିବାର ଣିଜନ୍ତ ରୂପ,ନଷ୍ଟ ବା ଲୁକ୍ତଦ୍ରବ୍ୟକୁପାଇବାପାଇଁ ଅନ୍ୱେଷଣ କରାଇବା । [ସନ୍ଧାନ ।

ଖୋଜାଖୋଜ—ଗ୍ରା.ବ. ଅତିଶୟ ଅନୁ-

ଖୋଜାପଡ଼ିବା(ଲାଗିବା)-ଗ୍ରା.ବ.କୌଣସି ପଦାର୍ଥ ବା ବ୍ୟକ୍ତିକୁ ପାଇବାପାଇଁ ଖାଲି ଅନୁସନ୍ଧାନରେ ଲାଗିବ ।

ଖୋଜାଲେଢ଼ା—ଗ୍ରା. ବି.ଅନୁସନ୍ଧାନ ଏବଂ ଲେଢ଼ିବା, କୌଣସି ପ୍ରକାରର ତଲ୍ଲାସ ନେବା ।

ଖୋଜଆ—ଗ୍ରା. ବି. ନଷ୍ଟପଦାର୍ଥକୁ ଅନୁସନ୍ଧାନ କରିବା ନିମନ୍ତେ ନିଯୁକ୍ତବ୍ୟକ୍ତି ।

ଖୋଜଆ—ଗ୍ରା. ବିଂ. କୌଣସି ଜନ୍ତୁର ପଦତଳପରି ପଦତଳବିଶିଷ୍ଟ, (କୌଣସି ଜନ୍ତୁର) ପଦଚିହ୍ନ ଆକୃତିବିଶିଷ୍ଟ ।

ଖୋଜଆଣିବା—ଗ୍ରା. କ୍ରି. କୌଣସି ନଷ୍ଟ ବସ୍ତୁକୁ ଅନ୍ୱେଷଣକରି ଆନୟନକରିବା ।

ଖୋଜଖାଜ—ଗ୍ରା. ଅବ୍ୟ. ଅନୁସନ୍ଧାନପୂର୍ବକ ସଂଗ୍ରହକରି ।

ଖୋଜିବା—ଗ୍ରା. କ୍ରି. ଅନ୍ୱେଷଣ କରିବା, ଅନୁସନ୍ଧାନ କରିବା, ବରପାତ୍ର ବା କନ୍ୟାପାତ୍ରର ସନ୍ଧାନକରିବା ।

ଖୋଜେ—ଗ୍ରା. ଅବ୍ୟ. ଏକଖୋଜ ବା ପଦକ୍ଷେପମାତ୍ର,ଖୋଜର ସୀମାବଦ୍ଧ ସ୍ଥାନ ।

ଖୋଟ-ବିଂ.(ଖୋଟ+ଅ)ଖଞ୍ଜ,ଲେଙ୍ଗଡ଼ା ।

ଖୋଟା—ଗ୍ରା.ବିଂ. ଦୋଷଯୁକ୍ତ, ଦୂଷିତ ।

ଖୋଟି—ସ୍ତ୍ରୀ.ବି.(ଖୋଟ+ଇ)ଚତୁରସ୍ତ୍ରୀ. ପାଲଙ୍ଗଶାଗ, କୁନ୍ଦୁରୁଖୋରଟ, ଷଡ଼ଯନ୍ତ୍ରକାରିଣୀ ସ୍ତ୍ରୀ ।

ଖୋଟୀ—ସ୍ତ୍ରୀ.ବି. (ଖୋଟ+ଈ) ଖୋଟି (ଦେଖ) ।

ଖୋଣ୍ଠା—ଗ୍ରା.ବିଂ. ହୀନ ସ୍ଥାନ;(ପଶ୍ଚିମାବ୍ୟକ୍ତି)ବିହାରର ଶୂଦ୍ର ଗୃହକର ଶ୍ରେଣୀସ୍ଥ ଲୋକ ।

ଖୋଡ଼—ବିଂ. (ଖୋଡ଼+କ.ଅ) ଖୋଟ, (ଦେଖ),ପଙ୍ଗୁ,କୁଷ୍ଠରୋଗଯୋଗୁ ପଙ୍ଗୁ (ବି) କୁଷ୍ଠରୋଗ, କୁଷ୍ଠରୋଗଜନିତ ପଙ୍ଗୁତା ।

ଖୋଡ଼କଶୀର୍ଷକ—କ୍ଳୀ.ବି, କପିଶୀର୍ଷବୃକ୍ଷ, ହିଙ୍ଗୁଳ ।

ଖୋଡ଼ପା—ଗ୍ରା.ବି. ଖୋଲପା (ଦେଖ) ।

ଖୋଡ଼ିଆଚଣା—ଗ୍ରା.ବି. ଖେସାରି, ସାନଚଣା ।

ଖୋଦ୍—ଯ.ଅବ୍ୟ.ସ୍ୱୟଂ,ନିଜେ, ଆପେ, (ବିଂ) ସ୍ୱକୀୟ, ବ୍ୟକ୍ତିଗତ ।

ଖୋଦକାସ୍ତ—ଯ. ବି. ଭୂସ୍ୱାମୀ ଆପଣାର ଅଧିକାରରେ ଯେ ଜମାରଖେ ।

ଖୋଦଗର୍ଜୀ—ଯା.ବିଂ. ସ୍ୱାର୍ଥପର, (ବି) ସ୍ୱାର୍ଥପରତା ।

ଖୋଦନ—ଗ୍ରା.ବି. ପ୍ରସ୍ତରାଦିରେ ଖୋଳାଯାଇଥିବା କାରୁକାର୍ଯ୍ୟ ।

ଖୋଦା—(କ୍ଷୋଦ ଶବ୍ଦଜ) ମୁଦ୍ରାଦିରେ ଅଙ୍କପାତ, କାଷ୍ଠପ୍ରଭୃତିରେ ଯନ୍ତ୍ରନିର୍ମାଣ, (ଯ.ବି.) ଈଶ୍ୱର, ଆଲ୍ଲା, ଭଗବାନ୍ ।

ଖୋଦାବନ୍ଦ—ଯା. ବି. ମହାଶୟ, ପ୍ରଭୁ, ହଜୁର, ଉଚ୍ଚସମ୍ମାନସୂଚକ ସମ୍ବୋଧନ ପଦ ।

ଖୋଦିତ—ଗ୍ରା. ବିଂ. ଉତ୍କୀର୍ଣ୍ଣ, ଖୋଳାହୋଇଥିବା (କାରୁକାର୍ଯ୍ୟ) ।

ଖୋନକାର—ଯ. ବି. ମୁସଲମାନ ସମାଜରେ ଯେ ବ୍ୟକ୍ତି ତ୍ୱକ୍ ଛେଦନକରେ ।

ଖୋନ୍ଦକାର—ମୁସଲମାନ ଧର୍ମାବଲମ୍ବୀ ପାରସୀ ଶିକ୍ଷକ ।

ଖୋପ—ଗ୍ରା. ବି.(କ୍ଷୁପଶବ୍ଦଜ)କ୍ଷୁଦ୍ର, କ୍ଷୁଦ୍ର କୋଠରି, କ୍ଷୁଦ୍ରଗାତ ବା ଗହ୍ୱର,ତାଖ ଫୁଲ, କଣମାଛ ।

ଖୋପା—ଗ୍ରା. ବି. (କ୍ଷୁପଶବ୍ଦଜ) ଧମ୍ମିଲ୍ଲ, ବନ୍ଧାକେଶ, ଖୋସା, ପେନ୍ଥା ।

ଖୋପି—ଗ୍ରା. ବି. ଛୋଟଖୋସା ।

ଖୋବା—ଗ୍ରା. ବି. ବାଉଁଶ ବା କାଠର ଛୋଟ ଏବଂ ମୋଟ କାଠ,ବାଡ଼ି ମୁଣ୍ଡିରେ ଠେସିବା, ଠେଙ୍ଗେଣୀ, କୋବା, ଆଘାତ କରିବା ।

ଖୋବାଇବା—ଗ୍ରା.କ୍ରି. ଖୋବିବାରଣିଜନ୍ତ ରୂପ ।

ଖୋବିବା—ଗ୍ରା. କ୍ରି. ଠେଙ୍ଗାର ମୁଣ୍ଡିରେ କେଞ୍ଚି ପ୍ରହାର କରିବା, ବିଶେଷ ପ୍ରହାର କରିବା,(ଅଶ୍ଳୀଳାର୍ଥ)ସ୍ତ୍ରୀସଙ୍ଗମ କରିବା ।

ଖୋବେଇବା—ଗ୍ରା.କ୍ରି.(ଅଶ୍ଳୀଳ-ସ୍ତ୍ରୀପକ୍ଷେ) ପୁରୁଷ ଦ୍ୱାରା ଆପଣାର କାମ ପ୍ରବୃତ୍ତି ଚରିତାର୍ଥ କରିବା ।

ଖୋବେଈ—ଗ୍ରା. ସ୍ତ୍ରୀ. ବିଂ. ଛିନ୍ଣାଳୀ, ବେଧୋଇ, କାମୁକୀ, ବୃଷସ୍ୟନ୍ତୀ ।

ଖୋର—ଯା. ବିଂ.ଆସକ୍ତ,ଅଭ୍ୟସ୍ତ (ଅନ୍ୟ ବିଶେଷ୍ୟ ଶବ୍ଦ ସଙ୍ଗେ ଲାଗିଲେ) ଯଥା-ନିଶାଖୋର୍, ଗୁଲିଖୋର୍ ଇତ୍ୟାଦି ।

ଖୋର୍ପୋଷ୍—ଯା.ବି.ଖୋରାକପୋଷାକ (ଦେଖ) ।

ଖୋର—କ୍ରି.ବିଂ. (ଖୋର+ଅ) ଖଞ୍ଜ, ଲେଙ୍ଗଡ଼ା ।

ଖୋରକ—ପୁଂ.ବି. (ଖୋର+କ) ଅଶ୍ୱମାନଙ୍କର ରୋଗବିଶେଷ ।

ଖୋରଠବୋଲି—ଗ୍ରା. ବି. ହୀନଭାଷା ।

ଖୋରଣୀ—ଗ୍ରା.ସ୍ତ୍ରୀ ବିଂ. କଳହୀ, ଦୁଷ୍ଟା, (ବି) ଖୋରଣୀପଣ ।

ଖୋରଧା—ଗ୍ରା.ବି.ପୁରୀଜିଲ୍ଲାର ଗୋଟିଏ ସବ୍‌ଡିଭିଜନ ଓ ସହର ।

ଖୋରଧାରୋଡ଼—ଗ୍ରା. ବି. ଦକ୍ଷିଣ-ପୂର୍ବ ରେଳପଥର ମୂଳ ମାର୍ଗରେ ପୁରୀ ଶାଖା ବାହାରିଥିବା ସ୍ଥାନ, ଜଟଣୀ ।

ଖୋରା—ଗ୍ରା. ବି. ପାନପାତ୍ରବିଶେଷ, ଗିଲାସ, ଖୁରା, ଖଟର ଗୋଡ଼ ।

ଖୋରାକ—ଯା. ବି. ଖାଦ୍ୟ, ଆହାରୀୟ, ଭୋଜନ, ଔଷଧର ଏକପାନ, ଥରେ ଭୋଜନ କରିବା ପରିମିତ ଦ୍ରବ୍ୟ,ଭୃତ୍ୟାଦିଙ୍କୁ ଖାଦ୍ୟ ନିମନ୍ତେ ଦିଆଯିବା ଅର୍ଥ, (ଯା.ବିଂ)ଖାଦ୍ୟୋପଯୋଗୀ ।

ଖୋରାକପୋଷାକ—ଯା.ବି. ଗ୍ରାସାଚ୍ଛାଦନ, ଲାଳନପାଳନ,ଖାଇବା ପିନ୍ଧିବା ନିମନ୍ତେ ଦିଆଯିବା ଧନ ।

ଖୋରାକମ—ଗ୍ରା. ବି. ପାନପାତ୍ରବିଶେଷ ।

ଖୋରାକି(କୀ)—ଯା. ବି. ଖାଇବା ପାଇଁ ଦେବା ଧନ,ଯାହାଦ୍ୱାରା ଖାଦ୍ୟ ସଂଗ୍ରହ କରାଯାଏ, (ବିଂ) ଖାଦ୍ୟୋପଯୋଗୀ, ଖୁବ୍‌ଖାଇ ପାରିବା ବ୍ୟକ୍ତି ।

ଖୋଳ—ବି.(ଖୁ+ଲ) ପଦାର୍ଥର ବାହ୍ୟ ଆବରଣ, ଢୋଡ଼ଣୀ, ବଲ୍କଲ, ଚୋପା; ଛାଲ ବା ଖୋଲପା, ଶେଯ, ତକିଆଆଦିର ଗିଲାପ, ମୃଦଙ୍ଗ ବାଦ୍ୟ, ସାପଆଦିର କାତି, ମୋଟ ଗୁଦର; ଜାହାଜ ଭିତରେ ମାଲରହିବାର ଜାଗା, ନୌକାଦିର ଗର୍ଭ, ବିଂ. (ଖୋଳ+ଅ) ଖଞ୍ଜ, ଲେଙ୍ଗଡ଼ା ।

ଖୋଲ୍ — ଗ୍ରା.ବି.ପୋଲ୍, ଜଙ୍ଗଲ ପର୍ବତାଦିର କନ୍ଦ ।

ଖୋଲକ — ପୁଂ.ବି.(ଖୋଲ + କ) ବଲ୍ମୀକ, କରେଇ, ଗୁଆଆଦି ଫଳର ଚୋପା, ହୁଙ୍କା, ଅଭ୍ୟନ୍ତର, ମୁକୁଟ, ଟୋପି, ପଗଡ଼ି, ଢକଣା ଆଦିର ଖୋଳ ।

ଖୋଲକରତାଳ- ଗ୍ରା. ବି. ନାମସଂକୀର୍ତ୍ତନର ଦୁଇଟି ବାଦ୍ୟଯନ୍ତ୍ର, ମୃଦଙ୍ଗ ଓ ଝାଞ୍ଜ ।

ଖୋଲତା — ଗ୍ରା.ବି. (ସଂ-ଖୋଲକ) ମସ୍ତକର ପଗଡ଼ି, ଟୋପି, (ଯା.ବି) ଖଲତା, ଲମ୍ବାମୁଣି ।

ଖୋଲତାଡ଼--ଗ୍ରା.ବି.ଖୋଜିବା ଓ ତାଡ଼ିବା, ଘରଆଡ଼ୁ ଖୋଲତାଡ଼ କୌଣସି ପଦାର୍ଥକୁ ଖୋଜିବା, ଗୁରୁତର ଆନ୍ଦୋଳନ ।

ଖୋଲପର୍ବତମାରମୂଷା—ଗ୍ରା. (ପ୍ରବଚନ) ମୂଷାକୁ ମାରିବା ନିମନ୍ତେ ପର୍ବତକୁ ଖୋଳିବା ନ୍ୟାୟ (ସାଧାରଣ କାର୍ଯ୍ୟପାଇଁ ବହୁ ଅର୍ଥବ୍ୟୟ ବା ପରିଶ୍ରମ କରିବା) ।

ଖୋଲପା—ଗ୍ରା. ବି. ଉପରସ୍ଥ ଆବରଣ, ଛାଲ, ବକଳ, ଘାଆ ଆଦିର ଉପର ଆବରଣ,ସାପକାତି,ଗୁଆ,ବାଉଁଶ,କଦଳୀଗଛଆଦିର ମୂଳକୁ ପ୍ରଥମେ ଆବୃତ କରି ରଖିଥିବା ଆବରଣ ବା ଉପପତ୍ର ।

ଖୋଲପେଟୁଆ – ବଙ୍ଗର ଖୋଲନା ଜିଲ୍ଲା ମଧ୍ୟରେ ପ୍ରବାହିତ ଗୋଟିଏ ନଦୀ ।

ଖୋଲ୍‌ବଟାଳି – ଗ୍ରା.ବି. ଖୋଲ୍ ବା କଣା କରିବା ପାଇଁ ବୃତ୍ତାଗ୍ର ବଟାଳି ।

ଖୋଲର – ଗ୍ରା. ବି. ମସ୍ତକର ପଗଡ଼ି, ଟୋପି ।

ଖୋଲସ – ଗ୍ରା. ବି. ସାପକାତି, କଞ୍ଚୁକ, ଖୋଲପା (ଦେଖ) ।

ଖୋଲା – ଗ୍ରା. ବି.(ସଂ-ଖନଧାତୁ) ଖନନ ଖୋଳିବାକାର୍ଯ୍ୟ, ଖୋଲ ଦେଖ, (ବିଂ) ଖନିତ, ଖୋଦିତ ।

ଖୋଲା—ଯା. ବି. ଅନାବୃତ, ଉନ୍ମୁକ୍ତ, ସହଜ, ଯେ ଅପ୍ରିୟ ସତ୍ୟ କହିପକାଏ, ସରଳ, ଅକପଟ, ଅବରୋଧ ରହିତ, ସ୍ପଷ୍ଟ, ପ୍ରକଟିତ, ବନ୍ଧନରୁ ମୁକ୍ତ, (ଗ୍ରା. ବି) ମାଟିର ସାନକୁଡ଼ୁଆ, କୋଳ, (କମଳାଆଦିର ଚରୁଡ଼ା), ଅକପଟତା, ପରିଷ୍କାର, ଅନାବୃତ ସ୍ଥାନ ।

ଖୋଲାଇବା—ଗ୍ରା.କ୍ରି.ଖୋଲିବାର ଣିଜନ୍ତ ରୂପ ।

ଖୋଳାଇବା — ଗ୍ରା. କ୍ରି. ଖୋଳିବାର ଣିଜନ୍ତରୂପ ।

ଖୋଲାଇହେବା,ଖୋଲେଇହେବା — ଗ୍ରା. କ୍ରି. ନିଜେ ପ୍ରଥମେ କଳିର ସୂତ୍ରପାତ କରିବାଦ୍ୱାରା ଆପଣାର ଦୁର୍ଗୁଣ ପ୍ରକାଶ କରିବା ନିମନ୍ତେ ଅନ୍ୟ ବ୍ୟକ୍ତିକୁ ବାଧ୍ୟ କରିବା, ଦୋଷ ପ୍ରକାଶର ଚେଷ୍ଟା କରିବା, ସ୍ୱଦୋଷ ପ୍ରକାଶର ସହାୟତା କରିବା ।

ଖୋଲାଖୋଲି—ଗ୍ରା. ବି. ଖୋଲିବାର କର୍ମମାନ, ପରସ୍ପର ଛିଦ୍ର କୁହାକୋହି ହେବା, (ଗ୍ରା.ବିଂ) ପରସ୍ପର ଛିଦ୍ର କୁହାକୋହି ହେଉଥିବା ।

ଖୋଲାଖୋଲି — ଗ୍ରା. ବି. ଅକପଟ ବା ସରଳ ବ୍ୟବହାର ବା କଥାଭାଷା, ଖୋଲିବାର କର୍ମମାନ, (ବିଂ) ସ୍ପଷ୍ଟ ଓ ସରଳ(ବାକ୍ୟ) (କ୍ରି.ବିଂ) ସ୍ପଷ୍ଟ ଓ ସରଳରୂପେ ।

ଖୋଲାଘର — ଗ୍ରା. ବି. (ବଙ୍ଗଳାରୁ ଅନୁକୃତ) ଖପର୍‌ଲି ଘର ।

ଖୋଲାପତ୍ର — ଗ୍ରା.ବି.ସ୍ୱତନ୍ତ୍ର ପୃଷ୍ଠା, ଏକତ୍ର ସିଲାଇ ବା ବନ୍ଧାହୋଇ ନ ଥିବା ଗ୍ରନ୍ଥ ।

ଖୋଲାଭାଟି—ଗ୍ରା.ବି. ଯେଉଁ ଭାଟିରେ ମଦ ରନ୍ଧାଯାଏ ।

ଖୋଲାସା — ଯା. ବି. ବିଂ. ସରଳତା, ଅକପଟତା, ଖୁଲାସା (ଦେଖ) ।

ଖୋଲାହାଣ୍ଡୀ — ଗ୍ରା. (ବଙ୍ଗ)ବି.ପାକପାତ୍ରବିଶେଷ, ଯେଉଁ ହାଣ୍ଡିରେ ଲିଆ ମୁଢ଼ି ପ୍ରଭୃତି ଭଜାଯାଏ ।

ଖୋଲି—ସ୍ତ୍ରୀ. ବି. (ଖୋଲ + ଇ) ତୂଣ, ତୂଣୀର, (ଗ୍ରା.ବି) ବଲଲ, ଚୋପା ।

ଖୋଲି—ଗ୍ରା.ବି. ଛୋଟ ନିହଣ ବା ଡଗି, ଛୋଟ କୁଡ଼ୁଆ ବା ମାଟିର ଗିନା, ଖୁନ୍ଦିବାର ନିହାଣ ।

ଖୋଲିକରି କହିବା—ଗ୍ରା. କ୍ରି. ସ୍ପଷ୍ଟକରି କହିବା ।

ଖୋଲତାଡ଼—ଗ୍ରା.କ୍ରି. ବିଂ. ପୁଙ୍ଖାନୁପୁଙ୍ଖରୂପେ, ତନ୍ନ ତନ୍ନ କରି (କୌଣସି କଥା ବୁଝିବା) ।

ଖୋଳିବା — ଗ୍ରା. କ୍ରି. ଖନନ କରିବା, ମାଟିରେ ଗର୍ତ୍ତ କରିବା, କାଠ ପଥର ଆଦିରେ ହତିଆରଦ୍ୱାରା ଗର୍ତ୍ତ ମୂର୍ତ୍ତି ବା ଅକ୍ଷର ଅଙ୍କନ କରିବା,(ଲକ୍ଷଣାର୍ଥ) ପ୍ରବେଶ କରିବା,(ସଂ-ଖନଧାତୁ) ଉପାଡ଼ିବା, ହୃଦୟରେ ଗୁରୁତର ଆଘାତ (କଷ୍ଟ) ଜନ୍ମାଇବା ।

ଖୋଲିବା — ଗ୍ରା.କ୍ରି, ଉଦ୍ଘାଟନ କରିବା, ଉନ୍ମୁକ୍ତ କରିବା,ଆବରଣ ମୁକ୍ତକରିବା, ମେଲା କରିବା, ବନ୍ଧନରୁ ଫିଟାଇବା, ଗୁପ୍ତ ବିଷୟ ପ୍ରକାଶ କରିବା, ଯୋଡ଼ା ହୋଇଥିବା ବସ୍ତୁର ଅଙ୍ଗମାନଙ୍କୁ ପୃଥକ୍ କରିବା, ସ୍ପଷ୍ଟଭାବରେ ବୁଝାଇବା, ଛୁଟିପରେ ସ୍କୁଲ୍ କଚେରି ଆଦିର କାର୍ଯ୍ୟ ଆରମ୍ଭହେବା, ଫିଟିବା, ସୁନ୍ଦର ଦେଖାଯିବା, ନୂତନ କରି ବସାଇବା, ନୂଆ ଅନୁଷ୍ଠାନ ବା କର୍ମ ଆରମ୍ଭ କରିବା,( ପ୍ରା. ସମ୍ବଲ. କ୍ରି) ଖୋଲିବା, (ଦେଖ,)

ଖୋସଣି—ଗ୍ରା. ବି. ପିନ୍ଧିବା ଲୁଗାକୁ ଦେହରେ ଦୃଢ଼କରି ଅଟକାଇ ରଖିବା ନିମନ୍ତେ ଅଣ୍ଟା ପାଖରେ ପଡ଼ିବା ଗଣ୍ଠି ବା ଖୋସିବା ଅଂଶ,ପରିହିତବସ୍ତ୍ରବନ୍ଧନ ଗ୍ରନ୍ଥି, ଅଣ୍ଟାରେ ଲୁଗା ଖୋସିବା, ଲାଞ୍ଚ, ଉତ୍କୋଚ-(ପ୍ରା.ସିଂହଭୂମ୍)ଲୁହ ଖଡ଼ିକା ।

ଖୋସା — ଗ୍ରା. ବି.(କୋଷ ଶବ୍ଦଜ) ତ୍ୱକ୍, ଛାଲ, ଶ୍ମଶ୍ରୁହୀନ ବ୍ୟକ୍ତି, ସ୍ତ୍ରୀମାନଙ୍କର କବରୀ ବା ଜୁଡ଼ା,ଚୁଟି,-ଫଳ ଶସ୍ୟାଦିର ଆବରଣ, ଚୋପା, ପଣସ ଲେମ୍ବୁ ଆଦିର ଫୁଟି, ମିଷ୍ଟାନ୍ନବିଶେଷ ।

ଖୋସାମଦ୍—ଗ୍ରା.ବି. ଖୁସାମଦ୍ (ଦେଖ) ।

ଖୋସାମଦିଆ — ଗ୍ରା. ବିଂ. ଖୁସାମଦିଆ, (ଦେଖ) ।

ଖୋସାହୁଲା — ଗ୍ରା.ବି. ନଡ଼ିଆକତା ବା ପାଲରେ ତିଆରି କିଆଁ ବଡ଼ୁଆ ।

ଖୋସିବା—ଗ୍ରା. କ୍ରି. (ଦେ-କୋଷ) କୌଣସି ଛୋଟପଦାର୍ଥକୁ ଗୁପ୍ତ ସ୍ଥାନରେ ଲୁଚାଇ କରି ରଖିବା, କୌଣସି ପଦାର୍ଥକୁ ଗୁଞ୍ଜିବା, ପିନ୍ଧା ଲୁଗା ଆଦିକୁ ଲେଉଟାଇ କରି ମାରିବା, ଗଛ ମୂଳର ମାଟିକୁ ଲେଉଟ ପାଲଟ କରିବା, ଖୁସାଇବା ।

ଖ୍ରୀଷ୍ଟ୍‌ମସ୍—ଯା. ବି. ପର୍ବ, ଦୋକାନରେ ମିଠାଇଆଦି ସଜାଇବା ଓ ବନ୍ଧୁବାନ୍ଧବ ମାନଙ୍କର ନିକଟକୁ ମିଷ୍ଟାନ୍ନାଦି ଉପହାର ଦେବାରେ ବ୍ୟବହୃତ ଖୁବ୍ ବଡ଼ ଥାଳୀ ।

ଖ୍ୟାତ—ବଂ.ବି. (ଖ୍ୟା+ର୍ମ.ତ)କଥିତ, ଜ୍ଞାତ, ବିଶ୍ରୁତ, ଖ୍ୟାତିଯୁକ୍ତ, ପ୍ରସିଦ୍ଧ, ପ୍ରକଟିତ, ଆହୂତ, ବି. (ଖ୍ୟା+ଭା.ତ) ଇସ୍ତିହାର, ଉଲ୍ଲେଖ ।

ଖ୍ୟାତଗର୍ହଣ—ବଂ.ପୁଂ.(ବ.ବ୍ରୀ) ଯାହାର ନିନ୍ଦା ସମସ୍ତେ ଜାଣନ୍ତି, ଲୋକନିନ୍ଦିତ, (ସ୍ତ୍ରୀ) ଖ୍ୟାତଗର୍ହଣା ।

ଖ୍ୟାତନାମା—ବଂ. (ବ.ବ୍ରୀ.) ଲୋକପ୍ରସିଦ୍ଧ, ଯାହାର ନାମ ପ୍ରସିଦ୍ଧ, ଯାହାକୁ ସମସ୍ତେ ଜାଣନ୍ତି ।

ଖ୍ୟାତବ୍ୟ—ବଂ.ବି (ଖ୍ୟା+ର୍ମ,ତବ୍ୟ) ବକ୍ତବ୍ୟ, ଯାହା କହିବାର ଉପଯୁକ୍ତ, କଥିତବ୍ୟ ।

ଖ୍ୟାତାପନ୍ନ—ବଂ.ପୁଂ.(ଓତତ୍)ବିଖ୍ୟାତ, ପ୍ରସିଦ୍ଧ ।

ଖ୍ୟାତି—ବଂ.ସ୍ତ୍ରୀ.(ଖ୍ୟା+ଭା,ତି)ପ୍ରଶଂସା, ନାମ, ଉପାଧି,ପ୍ରସିଦ୍ଧି,ଉଲ୍ଲେଖ,କଥନ, ଯଶଃ,ପ୍ରକାଶ,ଜ୍ଞାନ, ମହତ୍ତ୍ୱ, ଦକ୍ଷଙ୍କର ଏକ କନ୍ୟା ।

ଖ୍ୟାତିକର—ବଂ. ବି. (ଖ୍ୟାତି+କୃ+କ.ଅ) ଯଦ୍ଦ୍ୱାରା ମନୁଷ୍ୟ ଖ୍ୟାତିଲାଭ କରେ ।

ଖ୍ୟାତିଘ୍ନ—ବଂ.ବି.(ଖ୍ୟାତି+ହନ୍+କ.ଅ) ଯେ ଖ୍ୟାତି ନାଶ କରେ ।

ଖ୍ୟାତିଜନକ—ବଂ. (ଖ୍ୟାତି+ଜନ୍+କ, ଅକ) ଖ୍ୟାତିକର (ଦେଖ) ।

ଖ୍ୟାତିପ୍ରତିପତ୍ତି—ବି.ସ୍ତ୍ରୀ. (ଦ୍ୱନ୍ଦ୍ୱ)ସୁଖ୍ୟାତି ଓ ସମ୍ମାନ ।

ଖ୍ୟାତିବିରୁଦ୍ଧତା—ବି.ଅର୍ଥଦୋଷବିଶେଷ ।

ଖ୍ୟାତିମାନ୍—ବଂ. ପୁଂ. (ଖ୍ୟାତି+ମତୁ) ପ୍ରସିଦ୍ଧ, ଖ୍ୟାତିଯୁକ୍ତ ।

ଖ୍ୟାତ୍ୟାପନ୍ନ—ବଂ. ବି. (୨ତତ୍) ଯେ ଖ୍ୟାତିଲାଭ କରିଅଛି, ଜଗଦ୍‌ବିଖ୍ୟାତ, ପ୍ରସିଦ୍ଧ, (ସ୍ତ୍ରୀ) ଖ୍ୟାତ୍ୟାପନ୍ନା ।

ଖ୍ୟାପକ-ବଂ.ପୁଂ(ଖ୍ୟା+ଣିଚ୍+କ.ଅକ) ଜ୍ଞାପକ, ପ୍ରକାଶକ, ପ୍ରଚାରକ,ଘୋଷଣାକାରୀ, (ସ୍ତ୍ରୀ) ଖ୍ୟାପିକା ।

ଖ୍ୟାପନ—ବି. କ୍ଲୀ. (ଖ୍ୟା+ଣିର୍+ଭା-ଅନ) ପ୍ରକାଶନ, ଘୋଷଣା, ପ୍ରଚାର, କୀର୍ତ୍ତନ, କଥନ ।

ଖ୍ରୀଷ୍ଟ—ଯା.ବି. ଯୀଶୁ ।

ଖ୍ରୀଷ୍ଟଧର୍ମ—ବି. ଯୀଶୁଙ୍କ ପ୍ରବର୍ତ୍ତିତ ଧର୍ମ ।

ଖ୍ରୀଷ୍ଟପୂର୍ବ—ଗ୍ରା. ବଂ. ଯୀଶୁଙ୍କର ଜନ୍ମର ପୂର୍ବବର୍ତ୍ତୀ ସମୟ ।

ଖ୍ରୀଷ୍ଟ୍‌ମସ୍—ଯା.ବି.ଖ୍ରୀଷ୍ଟାନମାନଙ୍କର ବର୍ଷର ଡିସେମ୍ବର ମାସ ପଚିଶ ତାରିଖରେ ହେବା ଉତ୍ସବ ।

ଖ୍ରୀଷ୍ଟାନ୍,ଖ୍ରୀଷ୍ଟିଆନ୍—ଗ୍ରା.ବି.ପୁଂ.ଯୀଶୁ ଖ୍ରୀଷ୍ଟଙ୍କ ଭକ୍ତ ଓ ତନ୍ମତାବଲମ୍ବୀ ସମ୍ପ୍ରଦାୟ ।

ଖ୍ରୀଷ୍ଟାବ୍ଦ—ଗ୍ରା. ବି. ଯୀଶୁଖ୍ରୀଷ୍ଟଙ୍କ ଜନ୍ମଠାରୁ ଗଣା ଯାଉଥିବା ବର୍ଷ ।

ଖ୍ରୀଷ୍ଟୀୟ—ଗ୍ରା.ବଂ.ଯୀଶୁ ଖ୍ରୀଷ୍ଟସମ୍ବନ୍ଧୀୟ ।

---

# ଗ

ଗ—ଗକାର, ବ୍ୟଞ୍ଜନବର୍ଣ୍ଣର ତୃତୀୟ ବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ କଣ୍ଠ, ଏହାର ନାମ,ଗୋ, ଗୌରୀ, ଗୌରବ, ଗଙ୍ଗା,ଗଣେଶ,ଗୋକୁଳେଶ୍ୱର,ଶାର୍ଙ୍ଗୀ, ପଞ୍ଚାତ୍ମକ,ଗାଥା, ଗନ୍ଧର୍ବ,ସର୍ବଗ,ସ୍ମୃତ, ସର୍ବ ସିଦ୍ଧି, ପ୍ରଭା, ଧୂମ୍ରା, ଦ୍ୱିଜାଖ୍ୟ, ଶିବଦର୍ଶନ, ଜାଳନ୍ଧର,ବିଶ୍ୱାତ୍ମା, ଗୌ, ବାଲବନ୍ଧ, ତ୍ରିଲୋଚନ, ଗୀତ,ସରସ୍ୱତୀ, ବିଦ୍ୟା, ଭୋଗିନୀ, ନନ୍ଦନ, ଧରା,ଭୋଗବତୀ, ହୃଦୟ, ଜ୍ଞାନ, ଲବ ।

ଗ—କ୍ଲୀ. ବି. (ଗୈ+ଭା, ଅ) ଗାନ, (ଗୈ+ର୍ମ,ଅ) ସଙ୍ଗୀତ, ଗୀତ, ଗୁରୁ, ସ୍ୱରବର୍ଣ୍ଣ, ପୁଂ. ବି. (ଗେ+କ,ଅ) ଗଣେଶ,ଗନ୍ଧର୍ବ,ଗଗନ, (ଗମ୍+ର୍ମ,ଅ) ସୁମେରୁ, ସ୍ୱର୍ଗ, ଗୁରୁ, ପୁଂ. ବଂ.(ଗୈ+କ,ଅ)ଗାୟକ,ଗାନକାରୀ,(ଗମ୍+କ-ଅ) (ଏହା ଅନ୍ୟଶବ୍ଦ ସଙ୍ଗେ ଯୁକ୍ତହେଲେ ଏହିପରି ହୁଏ) ଯଥାଃ—ଉର୍ଦ୍ଧ୍ୱଗ,ଗତିକାରୀ, ଗମନକାରୀ ।

ଗଅଁ ଗଅଁ—ଗ୍ରା. ବି. (ଧ୍ୱନ୍ୟନୁକରଣ) ବିଶେଷ ପ୍ରହାର ଓ ମୂର୍ଚ୍ଛାଦିଜନିତ କଷ୍ଟ ଯୋଗୁଁ ମନୁଷ୍ୟ ବା ପଶୁ କଣ୍ଠରୁ ଯେଉଁ ଅବ୍ୟକ୍ତ ଓ ଦୀର୍ଘଧ୍ୱନି ବାହାରେ ।

ଗଅଲ—ଗ୍ରା. ବି. ଗସ୍ୱଲ (ଦେଖ) ।

ଗଇ—ଗ୍ରା. ବି. କର୍ଣ୍ଣମଳ, କାନଗଇ, ବାଳକମାନଙ୍କର ଝାଡ଼ାରୋଗ, ଗୁପ୍ତଦୋଷ, ରକ୍ତ, ଶରୀରର କୌଣସି, ଅଂଶର ଓ କଖାରୁଆଦି ଫଳର କୌଣସି ଆଘାତ ଜନିତ ବ୍ରଣରୁ ବାହାରିବା ପୂଯାଦି ।

ଗଇଁଠା—ଗ୍ରା.ବି.ଗୁହଳ ଚୁନାକୁ ପ୍ରଥମେ ବାମ୍ଫରେ ସିଝାଇ ସେ ଖଳକୁ ଗୋଟା କରି ବଳି ପରେ ପାଣିରେ ସିଝାଇ ଡିଆଣକରିବାପିଠା,ଗେଟେଇ, (ଗ୍ରା.ବଂ) ଦୁଇଖଣ୍ଡି ସୂତା ବା କନା ବା ଲୁଗା ଏକତ୍ର ଗଣ୍ଠି ପଡ଼ି ସଂଯୁକ୍ତ କରାଯାଇଥିବା (ବସ୍ତ୍ର) ।

ଗଇଁଠାଗଅଁଠି—ଗ୍ରା. ବଂ. (ଦେ-ଗ୍ରନ୍ଥି) ଯେଉଁ ଦୁଇଜଣଙ୍କ ପିନ୍ଧିଥିବା ଲୁଗା ପରସ୍ପର ଗଣ୍ଠିଦ୍ୱାରା ଆବଦ୍ଧହୋଇଥାଏ, ପରସ୍ପର ଗଣ୍ଠି ପଡ଼ି ଛନ୍ଦାଛନ୍ଦିହୋଇଥିବା, ଛନ୍ଦାଛନ୍ଦି,(ଗ୍ରା. ବି.) ବହୁ ବସ୍ତୁକୁ ଗଣ୍ଠିଦ୍ୱାରା ସଂଯୁକ୍ତ କରିବା କର୍ମ ।

ଗଇଁଠାଳ—ଗ୍ରା. ବଂ. (ଦେ-ଗ୍ରନ୍ଥିଲ) ବିବାହ ସମୟରେ ବିବାହ ବେଦିରେ ବରର ଗୃହର (ପାଛି) ଓ କନ୍ୟାର କର୍ମ ଓଢ଼ଣୀ (ବଉଳପାଟ) କୁ ସଂଯୁକ୍ତ କରିବା ନିମନ୍ତେ ପକାଯିବା ଗଣ୍ଠି ।

ଖୋସିବା—ଗ୍ରା. କ୍ରି. (ଦେ-କୋଷ) କୌଣସି ଛୋଟପଦାର୍ଥକୁ ଗୁପ୍ତ ସ୍ଥାନରେ ଲୁଗ୍ରଇ କରି ରଖିବା, କୌଣସି ପଦାର୍ଥକୁ ଗୁଞ୍ଜିବା, ପିନ୍ଧା ଲୁଗା ଆଦିକୁ ଲେଉଟାଇ କରି ମାରିବା, ଗଛ ମୂଳର ମାଟିକୁ ଲେଉଟ ପାଉଟ କରିବା, ଖୁସାଇବା ।

ଖ୍ରୀସ୍ଟ୍ରମ୍—ଯା. ବି. ପରବ୍, ଦୋକାନରେ ମିଠାଇଆଦି ସଜାଇବା ଓ ବନ୍ଧୁବାନ୍ଧବ ମାନଙ୍କର ନିକଟକୁ ମିଷ୍ଟାନ୍ନାଦି ଉପହାର ଦେବାରେ ବ୍ୟବହୃତ ଖୁବ୍ ବଡ଼ ଥାଳୀ ।

ଖ୍ୟାତ—ବିଂ.ବି. (ଖ୍ୟା+ର୍ମ.ତ)କଥିତ, ଜ୍ଞାତ, ବିଶ୍ରୁତ, ଖ୍ୟାତିଯୁକ୍ତ, ପ୍ରସିଦ୍ଧ, ପ୍ରକଟିତ, ଆହୂତ, ବି. (ଖ୍ୟା+ଭା.ତ) ଇସ୍ତିହାର, ଉଲ୍ଲେଖ ।

ଖ୍ୟାତଗର୍ହଣ—ବିଂ.ପୁଂ.(ବ.ବ୍ରୀ) ଯାହାର ନିନ୍ଦା ସମସ୍ତେ ଜାଣନ୍ତି, ଲୋକନିନ୍ଦିତ, (ସ୍ତ୍ରୀ) ଖ୍ୟାତଗର୍ହଣା ।

ଖ୍ୟାତନାମା—ବିଂ. (ବ.ବ୍ରୀ.) ଲୋକପ୍ରସିଦ୍ଧ, ଯାହାର ନାମ ପ୍ରସିଦ୍ଧ, ଯାହାକୁ ସମସ୍ତେ ଜାଣନ୍ତି ।

ଖ୍ୟାତବ୍ୟ—ବିଂ.ବି (ଖ୍ୟା+ର୍ମ,ତବ୍ୟ) ବକ୍ତବ୍ୟ, ଯାହା କହିବାର ଉପଯୁକ୍ତ, କଥିତବ୍ୟ ।

ଖ୍ୟାତାପନ୍ନ—ବିଂ.ପୁଂ.(୭ତତ୍)ବିଖ୍ୟାତ, ପ୍ରସିଦ୍ଧ ।

ଖ୍ୟାତି—ବିଂ.ସ୍ତ୍ରୀ.(ଖ୍ୟା+ଭା,ତି)ପ୍ରଶଂସା, ନାମ, ଉପାଧି,ପ୍ରସିଦ୍ଧି,ଉଲ୍ଲେଖ,କଥନ, ଯଶଃ,ପ୍ରକାଶ,ଜ୍ଞାନ, ମହତ୍ତ୍ୱ, ଦକ୍ଷଙ୍କର ଏକ କନ୍ୟା ।

ଖ୍ୟାତିକର—ବିଂ. ବି. (ଖ୍ୟାତି+କୃ+କ.ଅ) ଯଦ୍ଦ୍ୱାରା ମନୁଷ୍ୟ ଖ୍ୟାତିଲାଭ କରେ ।

ଖ୍ୟାତିଘ୍ନ—ବିଂ.ବି.(ଖ୍ୟାତି+ହନ୍+କ.ଅ) ଯେ ଖ୍ୟାତି ନାଶ କରେ ।

ଖ୍ୟାତିଜନକ—ବିଂ. (ଖ୍ୟାତି+ଜନ୍+ଣି, ଅକ) ଖ୍ୟାତିକର (ଦେଖ) ।

ଖ୍ୟାତିପ୍ରତିପତ୍ତି—ବି.ସ୍ତ୍ରୀ. (ଦ୍ୱନ୍ଦ୍ୱ)ସୁଖ୍ୟାତି ଓ ସମ୍ମାନ ।

ଖ୍ୟାତିବିରୁଦ୍ଧତା—ବି.ଅର୍ଥଦୋଷବିଶେଷ ।

ଖ୍ୟାତିମାନ୍—ବିଂ. ପୁଂ. (ଖ୍ୟାତି+ମତ୍) ପ୍ରସିଦ୍ଧ, ଖ୍ୟାତିଯୁକ୍ତ ।

ଖ୍ୟାତ୍ୟାପନ୍ନ—ବିଂ. ବି. (୨ତତ୍) ଯେ ଖ୍ୟାତିଲାଭ କରିଅଛି, ଜଗଦ୍‌ବିଖ୍ୟାତ, ପ୍ରସିଦ୍ଧ, (ସ୍ତ୍ରୀ) ଖ୍ୟାତ୍ୟାପନ୍ନା ।

ଖ୍ୟାପକ-ବିଂ.ପୁଂ(ଖ୍ୟା+ଣିଚ୍+କ.ଅକ) ଜ୍ଞାପକ, ପ୍ରକାଶକ, ପ୍ରଚାରକ,ଘୋଷଣାକାରୀ, (ସ୍ତ୍ରୀ) ଖ୍ୟାପିକା ।

ଖ୍ୟାପନ—ବି. କ୍ଳୀ. (ଖ୍ୟା+ଣିଚ୍+ଭା-ଅନ) ପ୍ରକାଶନ, ଘୋଷଣା, ପ୍ରଚାର, କୀର୍ତ୍ତନ, କଥନ ।

ଖ୍ରୀଷ୍ଟ—ଯା.ବି. ଯୀଶୁ ।

ଖ୍ରୀଷ୍ଟଧର୍ମ—ବି. ଯୀଶୁଙ୍କ ପ୍ରବର୍ତ୍ତିତ ଧର୍ମ ।

ଖ୍ରୀଷ୍ଟପୂର୍ବ—ଗ୍ରା. ବିଂ. ଯୀଶୁଙ୍କର ଜନ୍ମର ପୂର୍ବବର୍ତ୍ତୀ ସମୟ ।

ଖ୍ରୀଷ୍ଟ୍‌ମସ୍—ଯା.ବି.ଖ୍ରୀଷ୍ଟାନମାନଙ୍କର ବର୍ଷର ଡିସେମ୍ବର ମାସ ପଚିଶ ତାରିଖରେ ହେବା ଉତ୍ସବ ।

ଖ୍ରୀଷ୍ଟାନ୍,ଖ୍ରୀଷ୍ଟିଆନ୍—ଗ୍ରା.ବି.ପୁଂ.ଯୀଶୁ ଖ୍ରୀଷ୍ଟଙ୍କ ଭକ୍ତ ଓ ତନ୍ମତାବଲମ୍ବୀ ସମ୍ପ୍ରଦାୟ ।

ଖ୍ରୀଷ୍ଟାବ୍ଦ—ଗ୍ରା. ବି. ଯୀଶୁଖ୍ରୀଷ୍ଟଙ୍କ ଜନ୍ମଠାରୁ ଗଣା ଯାଉଥିବା ବର୍ଷ ।

ଖ୍ରୀଷ୍ଟୀୟ—ଗ୍ରା.ବିଂ.ଯୀଶୁ ଖ୍ରୀଷ୍ଟସମ୍ବନ୍ଧୀୟ ।

---

# ଗ

ଗ—ଗକାର, ବ୍ୟଞ୍ଜନବର୍ଣ୍ଣର ତୃତୀୟ ବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ କଣ୍ଠ, ଏହାର ନାମ,ଗୋ, ଗୌରୀ, ଗୌରବ, ଗଙ୍ଗା,ଗଣେଶ,ଗୋକୁଳେଶ୍ୱର,ଶାର୍ଙ୍ଗୀ, ପଞ୍ଚାତ୍ମକ,ଗାଥା, ଗନ୍ଧର୍ବ,ସର୍ବଗ,ସ୍ମୃତି, ସର୍ବ ସିଦ୍ଧି, ପ୍ରଭା, ଧୂମ୍ରା, ଦ୍ୱିଜାଖ୍ୟ, ଶିବଦର୍ଶନ, ଜାଳନ୍ଧର,ବିଶ୍ୱାତ୍ମା, ଗୌ, ବାଲବନ୍ଧ, ତ୍ରିଲୋଚନ, ଗୀତ,ସରସ୍ୱତୀ, ବିଦ୍ୟା, ଭୋଗିନୀ, ନନ୍ଦନ, ଧରା,ଭୋଗବତୀ, ହୃଦୟ, ଜ୍ଞାନ, ଲବ ।

ଗ—କ୍ଳୀ. ବି. (ଗୈ+ଭା, ଅ) ଗାନ, (ଗୈ+ର୍ମ,ଅ) ସଙ୍ଗୀତ, ଗୀତ, ଗୁରୁ, ସ୍ୱରବର୍ଣ୍ଣ, ପୁଂ. ବି. (ଗେ+କ,ଅ) ଗଣେଶ,ଗନ୍ଧର୍ବ,ଗଗନ, (ଗମ୍+ର୍ମ,ଅ) ସୁମେରୁ, ସ୍ୱର୍ଗ, ଗୁରୁ, ପୁଂ. ବିଂ.(ଗୈ+କ,ଅ)ଗାୟକ,ଗାନକାରୀ,(ଗମ୍+କ-ଅ) (ଏହା ଅନ୍ୟଶବ୍ଦ ସଙ୍ଗେ ଯୁକ୍ତହେଲେ ଏହିପରି ହୁଏ) ଯଥାଃ—ଜଙ୍ଘାଗ,ଗତିକାରୀ, ଗମନକାରୀ ।

ଗଅଁ ଗଅଁ—ଗ୍ରା. ବି. (ଧ୍ୱନ୍ୟନୁକରଣ) ବିଶେଷ ପ୍ରହାର ଓ ମୂର୍ଚ୍ଛାଦିଜନିତ କଷ୍ଟ ଯୋଗୁଁ ମନୁଷ୍ୟ ବା ପଶୁ କଣ୍ଠରୁ ଯେଉଁ ଅବ୍ୟକ୍ତ ଓ ଦୀର୍ଘଧ୍ୱନି ବାହାରେ ।

ଗଅଲ—ଗ୍ରା. ବି. ଗୟଳ (ଦେଖ) ।

ଗଇ—ଗ୍ରା. ବି. କର୍ଣ୍ଣମଳ, କାନଗଇ, ବାଳକମାନଙ୍କର ଝାଡ଼ାରୋଗ, ଗୁପ୍ତଦୋଷ, ରକ୍ତ, ଶରୀରର କୌଣସି, ଅଂଶର ଓ କଖାରୁଆଦି ଫଳର କୌଣସି ଆଘାତ ଜନିତ ବ୍ରଣରୁ ବାହାରିବା ପୂଯାଦି ।

ଗଈଁଠା—ଗ୍ରା.ବି.ଗୁହଳ ଚୂନାକୁ ପ୍ରଥମେ ବାମ୍ଫରେ ସିଝାଇ ସେ ଖଳକୁ ଗୋଟା କରି ବଳି ପରେ ପାଣିରେ ସିଝାଇ ତିଆରିକରିବାପିଠା,ଗେଟେଇ, (ଗ୍ରା.ବିଂ) ଦୁଇଖଣ୍ଡ ସୂତା ବା କନା ବା ଲୁଗା ଏକତ୍ର ଗଣ୍ଠି ପଡ଼ି ସଂଯୁକ୍ତ କରାଯାଇଥିବା (ବସ୍ତ୍ର) ।

ଗଈଁଠାଗଅଁଠି—ଗ୍ରା. ବିଂ. (ଦେ-ଗ୍ରନ୍ଥି) ଯେଉଁ ଦୁଇଜଣଙ୍କ ପିନ୍ଧିଥିବା ଲୁଗା ପରସ୍ପର ଗଣ୍ଠି ଦ୍ୱାରା ଆବଦ୍ଧହୋଇଥାଏ, ପରସ୍ପର ଗଣ୍ଠି ପଡ଼ି ଛନ୍ଦାଛନ୍ଦିହୋଇଥିବା, ଛନ୍ଦାଛନ୍ଦି,(ଗ୍ରା. ବି.) ବହୁ ବସ୍ତ୍ରକୁ ଗଣ୍ଠି ଦ୍ୱାରା ସଂଯୁକ୍ତ କରିବା କର୍ମ ।

ଗଈଁଠାଳ—ଗ୍ରା. ବିଂ. (ଦେ-ଗ୍ରନ୍ଥିଲ) ବିବାହ ସମୟରେ ବିବାହ ବେଦିରେ ବରର ଗୁନ୍ଦର (ପାଞ୍ଜି) ଓ କନ୍ୟାର କର୍ମ ଓଢ଼ଣୀ (ବଉଲଘାଟ) କୁ ସଂଯୁକ୍ତ କରିବା ନିମନ୍ତେ ପକାଯିବା ଗଣ୍ଠି ।

**ଗଇଁଠାଳଫିଟା**-ଗ୍ରା.ବି.(ସଂ-ଗ୍ରନ୍ଥିମୋଚନ) ବିବାହର ପରବର୍ତ୍ତୀ ଶୁକ୍ଳ ଦ୍ୱିତୀୟା ଦିନ ବର-କନ୍ୟାଙ୍କ ଚନ୍ଦ୍ରବନ୍ଦାପନା ହେବା ପରେ ବିବାହବେଦିରେ ପାଞ୍ଚ ଓ ବଉଳ ପାଟରେ ପକା ଯାଇଥିବା ଗଇଁଠାଳ (ଗଣ୍ଠି) ଫିଟାଯିବା ବିଧି ।

**ଗଇକାଢ଼ିବା** ( ଖୋଳିବା )—ଗ୍ରା. କ୍ରି. କାନରୁ ମଳବାହାର କରିବା, (ଲକ୍ଷଣାର୍ଥ) ଅନ୍ୟ ବ୍ୟକ୍ତିର ଗୁପ୍ତ ଦୋଷ ବା କଳଙ୍କ ପ୍ରକାଶ କରିବା ।

**ଗଇଛୁଣୀ**—ଗ୍ରା. ବି. ଅରଟର ଯେଉଁ କାଠିମାନଙ୍କ ଉପରେ ମାଳ ଦଉଡ଼ି ଦିଆଯାଏ—ସେହି କାଠର ପରସ୍ପରକୁ ଯୋଡ଼ି ଛନ୍ଦା ହୋଇ ଦିଆ ଯାଇଥିବା ଦଉଡି, ଗଉଛଣୀ (ଦେଖ) ।

**ଗଇଣ୍ଠା**—ଗ୍ରା. ବି. ଗଇଁଠା (ଦେଖ) ।

**ଗଇନ୍ତ**—ଗ୍ରା. ବି. (ସଂ-ଗଜନ୍ତ) ମାଟି ଖୋଳିବାନିମନ୍ତେ ବେଣ୍ଟଲଗା ମୁନିଆଁ ଶସ୍ତ୍ରବିଶେଷ ।

**ଗଇବ**—ଯା.ବିଂ.ଗୁପ୍ତ,ଅଜ୍ଞାତ,ଲୁକ୍କାୟିତ, ଅଦୃଶ୍ୟ, ଅନ୍ତର୍ଦ୍ଧାନ, ଅନୁପସ୍ଥିତ ।

**ଗଇମାରୁ**—ଗ୍ରା. ବିଂ. ଗୁପ୍ତହତ୍ୟାକାରୀ, ବିଶ୍ୱାସଘାତକ, ବି. ଗୁପ୍ତଘାତକବ୍ୟକ୍ତି, ବିଶ୍ୱାସଘାତକ ବ୍ୟକ୍ତି, ଗୁପ୍ତହତ୍ୟା ।

**ଗଇର**—ଯା.ବିଂ.(ଅନ୍ୟଶବ୍ଦପୂର୍ବେଲଗେ) ନୁହେଁ, ଅନ୍ୟ ଗଇର ଖରଚ୍ (ଦେଖ), ଗ୍ରା.ବିଂ. ଗଭିର (ଦେଖ) ।

**ଗଇରଖରଚ୍**—ଯା. ବି. କୌଣସି ପଣ୍ୟ ଦ୍ରବ୍ୟ ବା ବସ୍ତୁ ନିର୍ଦ୍ଦିଷ୍ଟ କାଳପାଇଁ ଅନ୍ୟ ବ୍ୟକ୍ତିର ଅଧିକୃତ ସ୍ଥାନରେ ରଖି ନିରୂପିତସମୟରେ ସେ ସ୍ଥାନରୁ ହଟାଇ ନ ନେଲେ ଅତିରିକ୍ତ ସମୟ ପାଇଁ ବସ୍ତୁସ୍ୱାମୀ ସ୍ଥାନସ୍ୱାମୀଙ୍କୁ ଯେଉଁ ଅର୍ଥ-ଦଣ୍ଡ ଦିଅନ୍ତି ।

**ଗଇରହାଜର**—ଯା. ବିଂ. ଅନୁପସ୍ଥିତ, ବି. ଗଇରହାଜିରି ।

**ଗଇର**—ଗ୍ରା. ବିଂ. ବି. (ଗମ୍ଭୀର ଶବ୍ଦଜ) ଗମ୍ଭୀର, ଗଭୀର, ଗହିର ।

**ଗଇରତ୍**—ଯା.ବି. ଲଜ୍ଜା, ଗୋପନ ।

**ଗଇରି**—ଗ୍ରା. ବିଂ. ଗଭୀର ।

**ଗଇଣ**—ଗ୍ରା. ବି. ଗଣ୍ଡୁସ, ପଡ଼ିଆରେ ଓ କ୍ଷେତରେ ମନକୁଉଠିବା ତୁଳସୀଜାତୀୟ ଗୁଳ୍ମ ବିଶେଷ ।

**ଗଉଁ**—ଗ୍ରା. ବି. ମତଲବ, ଉଦ୍ଦେଶ୍ୟ, ମନର ଭାବ, ଅଭିମାନ, ଗୁମାନ, ଗର୍ବ-ଜନିତ ତୁଷ୍ଣୀଭାବ ।

**ଗଉଁଆ**—ଗ୍ରା. ବିଂ. ଗର୍ବିତ, ଅଭିମାନୀ, ଯାହାର ମନମରଜି ବୁଝିବା କଷ୍ଟକର ।

**ଗଉ**—ପ୍ରା. (ସମ୍ବ) ବି. ଗାଈ, ଗୋରୁ ।

**ଗଉଛଣି-ଗଉଛଣୀ**—ଗ୍ରା. ବି. ଦେହରେ ଛନ୍ଦି କରି ପିନ୍ଧାଯିବା ଲୁଗା, ଦେହରେ ଛନ୍ଦି କରି ଲୁଗା ପିନ୍ଧିବା ।

**ଗଉଡ଼**—ଗ୍ରା.ପୁଂ.ବି, ଶୂଦ୍ର ଜାତିବିଶେଷ, ଗୋପାଳ ଜାତି ।

**ଗଉଡ଼କଷା**—ଗ୍ରା.ବି.ବନ୍ୟଲତାବିଶେଷ ।

**ଗଉଡ଼ଗହକା**—ପ୍ରା. (ଗଞ୍ଜାମ)ବି. ଗଙ୍ଗ-ଶିଉଳୀ ଫୁଲ ଓ ଗଛ, ଶେଫାଳିକା ।

**ଗଉଡ଼ଗୋଖୀ**—ଗ୍ରା.ବି. ଓଡ଼ିଶାର ଗାଈ-ଚରା ଗଉଡ଼ ଜାତି ଓ ମାଛଧରା ଗୋଖା-ଜାତି, ଗ୍ରା. ବିଂ. (ଲକ୍ଷଣାର୍ଥ) ଗଜମୂର୍ଖ, ଅଡ଼ିନବୁଦ୍ଧିଆ, ଅଖାଡ଼ୁଆ, ମଗର ।

**ଗଉଡ଼ଗୋଠିଆ**—ଗ୍ରା. ବି. ଗାଈଆଳ, ଗୋରୁଜଗୁଆଳ,ଗ୍ରା. ବିଂ.ଗଉଡ଼ ଗୋଖା (ଦେଖ),ଯେଉଁ ଗାଈମାନେ ଗଉଡ଼ଙ୍କ ଗୋଠରେ ଗୋରୁପଲଙ୍କ ସଙ୍ଗେ ରହି ଏକତ୍ର ବିଚରଣ କରନ୍ତି ।

**ଗଉଡ଼ପାନ**—ଗ୍ରା. ବି. ଗଉଡ଼ପିଲାମାନେ ଖେଳିବା ସମୟରେ ଖାଇବା ମୁଷାକାନିପତ୍ର ଓ ଖଇର ।

**ଗଉଡ଼ିଆ**—ଗ୍ରା. ବିଂ. ଗୋପାଳଜାତି-ସମ୍ବନ୍ଧୀୟ, (ଗାଳି) ଅଖାଡ଼ୁଆ, ମୂର୍ଖ ନିର୍ବୁଦ୍ଧିଆ, ମଗର, ଏକବାଗିଆ, ଗ୍ରା. ବି. ଗୌଡ଼ୀୟ ବୈଷ୍ଣବମାନଙ୍କର ଶାଖାବିଶେଷ ।

**ଗଉଡ଼ୁଣୀ**—ଗ୍ରା. ବି. (ସ୍ତ୍ରୀ) ଗୋପାଳ ଜାତୀୟା (ସ୍ତ୍ରୀ) ବନ୍ୟକ୍ଷୀରୀ ଗୁଳ୍ମ ।

**ଗଉଡ଼ୁଣୀପୋକ**—ଗ୍ରା. ବି. ( ସଂ ଗଣ୍ଡ-ଗୋପାଳିକା ) ବର୍ଷାଦିନେ ଜାତହେବା କଳା ରଙ୍ଗର ଶତପଦବିଶିଷ୍ଟ ପୋକ, କାଳଗଉଡ଼ୁଣୀ ପୋକ ।

**ଗଉଣି**—ଗ୍ରା.ବି.(ସଂ-ଗୋଣୀ) ଶସ୍ୟାଦିର ପରିମାଣ ପାତ୍ର, (ପ୍ରା. ଗଞ୍ଜାମ) ଭୂମିର ପରିମାଣବିଶେଷ ।

**ଗଉଣିଆ**—ଗ୍ରା. ବି. ପୁରୀ ଜିଲ୍ଲା ରଣପୁର ଅନ୍ତର୍ଗତ ପ୍ରସିଦ୍ଧ ପର୍ବତ ।

**ଗଉଣିଏ ଗେଲ**-ଗ୍ରା.ବି.ଖୁବ୍‌ବେଶି ଆନନ୍ଦ ।

**ଗଉନ୍ତିଆ**—ପ୍ରା. (ସମ୍ବ)ବି.ଗ୍ରାମର ପ୍ରଜା-ମାନଙ୍କଠାରୁ ରାଜସ୍ୱ କର ଆଦାୟ କରି ରାଜକୋଷରେ ଦାଖଲ କରିବା-ପାଇଁ ସରକାରଙ୍କଠାରୁ ଭାରପ୍ରାପ୍ତ ବ୍ୟକ୍ତି, ପ୍ରଧାନ, ସର୍ବରାକାର ।

**ଗଉନ୍ତିଗଣ୍ଡି**—ଗ୍ରା.ବି. ପ୍ରଜାଙ୍କଠାରୁ ମୋଟ ଖଜଣାରୁ ଯେଉଁ ଶତକରା କିଛିଅଂଶ ମାଲିକାନା ଗଉନ୍ତିଆ ନିଏ ।

**ଗଉର**—ଗ୍ରା. ବି. (ପଦ୍ୟ)(ସଂ-ଗୌରବ) ଖାତିର, ସମ୍ମାନ, ସମ୍ମାନ ପ୍ରଦର୍ଶନ, ଗୌରବ, ଆଦର, ସ୍ନେହ,(ସଂ-ଗୌର) ଗୋରା, (ଯା.ବି.)ଚଳନ,ଖିଆଲ, (ଗ୍ରା. ବିଂ) ସମ୍ମାନସୂଚକ,ଗୌରବମୟ, (ପ୍ରା. ସମ୍ବ) ଗଉଡ଼ା ।

**ଗଉରଚନ୍ଦ୍ର (ହରି)**—ଗ୍ରା. ବି. ଚୈତନ୍ୟ-ଦେବ,ବିଷ୍ଣୁଙ୍କର ଚେତନ୍ୟ ଅବତାର ।

**ଗଉରୀବେତ**—ଗ୍ରା. ବି. ଗ୍ରାମଠାକୁରାଣୀ ବା ପାର୍ବତୀ ନିର୍ଜନ ରାତିରେ ବିଜେ କଲାବେଳେ ଯେଉଁ ବେତ ହାତରେ ଧରନ୍ତି ବୋଲି ଲୋକେ ବିଶ୍ୱାସ କରନ୍ତି ।

**ଗଉରେନ୍**—ପ୍ରା. (ସମ୍ବ)ବି. ଗଉଡ଼ୁଣୀ ।

**ଗଏଁଗଏଁ**—ପ୍ରା.(ସମ୍ବ)ବିଂ ଓ ବିଂ.ଚହ-ଚହ, ଟହଟହ, ଅତ୍ୟନ୍ତ ।

**ଗଏବ**—ଯା.ବି.ଗୋପନକରିବା, ଲୋପ-କରିବା. (ବିଂ) ଗୁପ୍ତ ।

**ଗଏରା**—ପ୍ରା. (ସମ୍ବ) ବି. ଚିଙ୍କ ।

**ଗକାର**—ପୁଂ.ବି.(ଗ + କାର) ଗସ୍ୱରୂପ ବର୍ଣ୍ଣ, 'ଗ' ଏହି ଅକ୍ଷର ମାତ୍ର ।

**ଗଗଛ**—ଗ୍ରା.ବି.(ସଂ + ଗୋବତ୍ସା) ଗାଈ-ପ୍ରଭୃତିଙ୍କ ଗର୍ଭସ୍ରାବ ।

**ଗଗନ**—କ୍ଲୀ.ବି.(ଗମ୍ + କ.ଅନ)ଆକାଶ, ଶୂନ୍ୟ, ଲଗ୍ନର ଦଶମ ସ୍ଥାନ ।

**ଗଗନକୁସୁମ**—ବି.(କ.ଧା) ଅଲଭ୍ୟ ବସ୍ତୁ, ଅସମ୍ଭବ କଥା, ଖପୁଷ୍ପ ।

ଗଗନଗତି—ତ୍ରି. ବିଂ. ଆକାଶଗାମୀ, ଯେଉଁମାନେ ଆକାଶରେ ଗମନ କରନ୍ତି, (ପୁଂ.ବି) ଦେବତା, ସୂର୍ଯ୍ୟାଦିଗ୍ରହ, ଆକାଶଗମନ, ପକ୍ଷୀ, ରଶ୍ମିଚନ୍ଦ୍ର, ନକ୍ଷତ୍ର ।

ଗଗନଚର—ତ୍ରି.ବିଂ.(ଗଗନ+ଚର୍+କ.ଅ) ଆକାଶଗାମୀ, ଯେ ଆକାଶରେ ଗମନ କରିପାରେ, (ସ୍ତ୍ରୀ) ଚରୀ ।

ଗଗନଚାରୀ—ପୁଂ.ବିଂ. (ଗଗନ+ଚର୍+କ.ଇନ୍) ଆକାଶଗାମୀ, (ସ୍ତ୍ରୀ) ଗଗନଚାରିଣୀ ।

ଗଗନଚୁମ୍ବିତ—ବିଂ. (୭ତତ୍ପୁ) ଅତ୍ୟୁଚ୍ଚ, ଆକାଶଭେଦୀ ।

ଗଗନଚୁମ୍ବୀ—ପୁଂ.ବିଂ, (ଗଗନ+ଚୁମ୍ବ୍+କ, ଇନ୍ ) ଆକାଶଚୁମ୍ବନକାରୀ, ମେଘସ୍ପର୍ଶୀ, ଅଭ୍ରଂଲିହ, ଅତ୍ୟୁନ୍ନତ, (ସ୍ତ୍ରୀ) ଗଗନଚୁମ୍ବିନୀ ।

ଗଗନତଳ—କ୍ଲୀ.ବି.(୬ତତ୍ପୁ) ଆକାଶତଳ, ଆକାଶପଟ, ଧରାତଳ, ପୃଥିବୀ ।

ଗଗନଧ୍ୱଜ—ପୁଂ.ବି.(ବ.ବ୍ରୀ) ମେଘ, ସୂର୍ଯ୍ୟ ।

ଗଗନପଥ—ପୁଂ.ବି. (କ.ଧା) ଆକାଶମାର୍ଗ, ଆକାଶ, ଶୂନ୍ୟ, ନଭୋଦେଶ ।

ଗଗନପ୍ରାନ୍ତ—ପୁଂ. ବି. ଆକାଶର ପ୍ରାନ୍ତଭାଗ, ଆକାଶର ଯେଉଁ ଅଂଶ ପୃଥିବୀର ପରିଧିର ସହିତ ସଂଯୁକ୍ତ ବୋଲି ବୋଧହୁଏ, ଦିଗନ୍ତ, ଚକ୍ରବାଳ ।

ଗଗନପ୍ରିୟ—ପୁଂ. ବି. ଦୈତ୍ୟବିଶେଷ ।

ଗଗନଫୁଲ—କ୍ଲୀ. ବି. ଅଳୀକ ପଦାର୍ଥ, ଯାହାର ସତ୍ତା ନାହିଁ, ଆକାଶ କୁସୁମ ।

ଗଗନବିହାରୀ—ପୁଂ. ବିଂ. (ଗଗନ+ବି+ହୃ+କ, ଇନ୍) ଯେ ଆକାଶ ପଥରେ ବିଚରଣ କରେ, (ବି) ଖେଚର, ସୂର୍ଯ୍ୟାଦି ଗ୍ରହ ।

ଗଗନଭେଦୀ—ବିଂ. (ଗଗନ+ଭିଦ୍+କ, ଇନ୍) ଗଗନଚୁମ୍ବିତ (ଦେଖ), ଯେଉଁ ଶବ୍ଦ ଆକାଶକୁ ଭେଦକରେ, ଅତ୍ୟୁଚ୍ଚ (ଧ୍ୱନି), ଉଚ୍ଚୈଃ (ସ୍ୱର) ।

ଗଗନମଣ୍ଡଳ—କ୍ଲୀ. ବି: ( କ.ଧା ) ବା (୬ତତ୍ପୁ), ଆକାଶମଣ୍ଡଳ, ନଭୋମଣ୍ଡଳ, ଅନ୍ତରୀକ୍ଷ ।

ଗଗନସଦ୍—ତ୍ରି. ବିଂ. (ଗଗନ+ସଦ୍+କ୍ୱିପ୍) ଆକାଶଗାମୀ, ପୁଂ.ବିଂ. ସୂର୍ଯ୍ୟାଦିଗ୍ରହ, ଦେବତା ।

ଗଗନସିଂଦୁ—ଗ୍ରା.ବି. ନମୁଲୀ (ଦେଖ) ।

ଗଗନସିନ୍ଧୁ—ସ୍ତ୍ରୀ. ବି. ମନ୍ଦାକିନୀ, ବିଷ୍ଣୁ ଗଙ୍ଗା ।

ଗଗନସ୍ପର୍ଶ—ବି. ପବନ, ମରୁତରୁ ଏକତମ ।

ଗଗନସ୍ପର୍ଶୀ—ପୁଂ.ବି. (ଗଗନ—ସ୍ପୃଶ୍+କ, ଇନ୍ ) ଆକାଶ ସ୍ପର୍ଶକାରୀ, ମେଘଚୁମ୍ବୀ, (ସ୍ତ୍ରୀ) ଗଗନସ୍ପର୍ଶିନୀ ।

ଗଗନସ୍ପୃକ୍—ବିଂ. (ଗଗନ+ସ୍ପୃଶ୍+କ କ୍ୱିପ୍) ଗଗନଚୁମ୍ବିତ (ଦେଖ) ।

ଗଗନାଙ୍ଗନା—ସ୍ତ୍ରୀ. ବି. (୬ତତ୍ପୁ) ଦିବ୍ୟାଙ୍ଗନା, ଅପ୍ସରା, ସୁରକାମିନୀ ।

ଗଗନାଧ୍ୱଗ—ପୁଂ. ବି. (ଗଗନ+ଅଧ୍ୱା+ଗମ୍+ଅ) ସୂର୍ଯ୍ୟ ।

ଗଗନାମ୍ବୁ—କ୍ଲୀ.ବି.(କ.ଧା) ଦିବ୍ୟୋଦକ, ମେଘନିଃସୃତଜଳ, ବୃଷ୍ଟିଜଳ, ବର୍ଷାଜଳ ।

ଗଗନେଚର—ପୁଂ.ବି.(ଗଗନେ+ଚର୍+କ, ଅ) ଦେବତା, ସୂର୍ଯ୍ୟାଦିଗ୍ରହ, ରାଶିଚକ୍ର, ବିହଙ୍ଗାଦି, (ବିଂ) ଗଗନଚାରୀ, ଆକାଶଗାମୀ ।

ଗଗନୋଲ୍ମୁକ—ପୁଂ. ବି. ( ୬ତତ୍ପୁ ) ମଙ୍ଗଳଗ୍ରହ ।

ଗଗରି—ପ୍ରା.(ସମ୍ବ) ବି. ତମ୍ବା ବା ପିତଳର ବଡ଼ଗରା ବା ମାଠିଆ ।

ଗଗରୀ—ବି.(ଗର୍ଗରୀଶବ୍ଦଜ) ବଡ଼ମାଠିଆ, ଗରା, ( ସଙ୍ଗୀତ ) ସ୍ୱରକୁ ଦୀର୍ଘ କରି ତୋଳିବା ।

ଗଗ୍ନୁ—ସ୍ତ୍ରୀ. ବି. ବାକ୍ୟ ।

ଗଗ୍ୱ—ପୁଂ.ବି. ହାସ୍ୟ, ହାସ ।

ଗଙ୍ଗ—ପ୍ରସିଦ୍ଧ କବି ହେମଚନ୍ଦ୍ରଙ୍କ ଗୁରୁ ଓ ଜଣେ କବି ।

ଗଙ୍ଗକା—ସ୍ତ୍ରୀ. ବି. (ଗଙ୍ଗା+କ+ଆ) ଗଙ୍ଗାନଦୀ ।

ଗଙ୍ଗବଂଶ—ବି. ଓଡ଼ିଶାର ପ୍ରାଚୀନ ରାଜବଂଶ ବିଶେଷ ।

ଗଙ୍ଗଶିଉଳି—ଗ୍ରା.ବି. ଶେଫାଳିକା, ଗୋଟିଖଡ଼ିକା ଗଛ ଓ ତାହାର ଫୁଲ ।

ଗଙ୍ଗହରି—ପୁଂ. ବି. ତତ୍ତ୍ୱଦୀପିକାନାମରେ ଆନନ୍ଦଲହରୀ ଟୀକାକାର ।

ଗଙ୍ଗା—ସ୍ତ୍ରୀ. ବି. (ଗମ୍+ଗମ୍+କ, ଅ+ଆ) ସ୍ୱନାମପ୍ରସିଦ୍ଧ ନଦୀ, ତଦଧିଷ୍ଠାତ୍ରୀ ଦେବୀ, ହିମାଳୟ-କନ୍ୟା, ଭାଗୀରଥୀ, ଶାନ୍ତନୁଙ୍କ ସ୍ତ୍ରୀ ଓ ଭୀଷ୍ମଙ୍କ ମାତା ।

ଗଙ୍ଗାକା—ସ୍ତ୍ରୀ. ବି. (ଗଙ୍ଗା+କ+ଆ) ଗଙ୍ଗାନଦୀ ।

ଗଙ୍ଗାକୂଳିଆ—ଗ୍ରା. ବିଂ. ଗଙ୍ଗାନଦୀ କୂଳରେ ଜାତ, ଗଙ୍ଗା କୂଳରେ ସ୍ଥିତ, ଗଙ୍ଗବଂଶୀୟ, (ବି) ଏକପ୍ରକାର ବଡ଼ କାଗଜିଲେମ୍ବୁ ।

ଗଙ୍ଗାକ୍ଷେତ୍ର—କ୍ଲୀ. ବି. ଗଙ୍ଗାତୀରଠାରୁ ଉଭୟ ପାର୍ଶ୍ୱସ୍ଥ ଦୁଇକୋଶ ପର୍ଯ୍ୟନ୍ତ ସ୍ଥାନ ।

ଗଙ୍ଗାଗୋବିନ୍ଦସିଂହ—ପାଇକପଡ଼ା ରାଜବଂଶର ପ୍ରତିଷ୍ଠାତା ଓ ୱାରେନ୍ ହେଷ୍ଟିଂସ୍‌ଙ୍କର ଦେୱାନ୍ ।

ଗଙ୍ଗଚିଲ୍ଲୀ—ସ୍ତ୍ରୀ.ବି. ଗଙ୍ଗାରେଥିବା ଚିଲ୍ଲବିଶେଷ, କଳାମୁଣ୍ଡିଆ ଚିଲ୍ଲପକ୍ଷୀ ।

ଗଙ୍ଗାଜ—ପୁଂ.ବି. (ଗଙ୍ଗା+ଜନ୍+କ, ଅ) ଭୀଷ୍ମ, କାର୍ତ୍ତିକେୟ, (ବିଂ) ଗଙ୍ଗାନଦୀରୁ ଉତ୍ପନ୍ନ ।

ଗଙ୍ଗାଜଳ—କ୍ଲୀ. ବି. (୬ତତ୍ପୁ) ଗଙ୍ଗାର ଜଳ, ଗ୍ରା. ବି. ଦୁଇବନ୍ଧୁ ପରସ୍ପର ମୁଖରେ ଗଙ୍ଗାଜଳ ଦେଇ ବସିବା ବନ୍ଧୁତା ।

ଗଙ୍ଗାଜଳି—ଗ୍ରା. ବି. ଗଙ୍ଗାଜଳ ପରି ଈଷତ୍ ନୀଳବର୍ଣ୍ଣ, ବଙ୍ଗଦେଶରେ ତିଆରି ପତଳା କାଚଶିଶି, ଗଙ୍ଗାଜଳ ସ୍ପର୍ଶପୂର୍ବକ ଶପଥ, ବଙ୍ଗର ଏକଜାତୀୟ ବ୍ରାହ୍ମଣ, ଗଙ୍ଗାଜଳ ରଖିବାର ଏକପ୍ରକାର ଶିଶି, (ବିଂ) ଗଙ୍ଗାଜଳପରି ସ୍ୱଚ୍ଛ ଓ ଈଷତ୍ନୀଳ ।

ଗଙ୍ଗାଜଳକରିବା—ଗ୍ରା.କ୍ରି. ଅନ୍ତିମକାଳରେ ମୁମୂର୍ଷୁ ବ୍ୟକ୍ତିର ମୁଖରେ ଗଙ୍ଗାଜଳ ଦେବା, ହାତରେ ଗଙ୍ଗାଜଳ ନେଇ ଶପଥ କରିବା, ଅନ୍ତିମକାଳରେ ମୁମୂର୍ଷୁ

ବ୍ୟକ୍ତିକୁ ଗଙ୍ଗାକୂଳକୁ ନେଇ ତାହାର ଅଙ୍ଗକୁ ଗଙ୍ଗା ନଦୀର ଜଳ ସ୍ପର୍ଶ କରିବା ଅବସ୍ଥାରେ ଗଙ୍ଗାକୂଳରେ ଶୁଆଇବା ।

**ଗଙ୍ଗାଟ**—ବି. (ଗଙ୍ଗ + ଅଟ୍ + କ,ଅ) **ଗାଙ୍ଗଟ** (ଦେଖ) ।

**ଗଙ୍ଗାଟେୟ**—ପୁଂ. ବି. (ଗଙ୍ଗ + ଅଟ୍ + ଏୟ) ମତ୍ସ୍ୟବିଶେଷ, ଚିଙ୍ଗୁଡ଼ିମାଛ ।

ଗଙ୍ଗାତୀର—କ୍ଲୀ.ବି.(୬ତତ୍ପୁ)ଗଙ୍ଗାଗର୍ଭରୁ ୧୫୦ହାତ ପର୍ଯ୍ୟନ୍ତକୁ ଗଙ୍ଗାତୀରକହନ୍ତି, ଗଙ୍ଗା ନଦୀର ତଟ ।

ଗଙ୍ଗାଦତ୍ତ—ପୁଂ. ବି. ( ୩ତତ୍ପୁ ) ଭୀଷ୍ମ, ସୁଭାଷିତ, ବଲୀଧୃତ, ଜଣେ ପ୍ରାଚୀନ ସଂସ୍କୃତ କବି, ଗୃହବର୍ଣ୍ଣବିଗ୍ରହନାମକ ଗ୍ରନ୍ଥର ପ୍ରଣେତା ।

ଗଙ୍ଗାଦିତ୍ୟ—ପୁଂ.ବି. କାଶୀସ୍ଥ ବିଶ୍ୱେଶ୍ୱର ଙ୍କର ଦକ୍ଷିଣରେ ସ୍ଥିତଆଦିତ୍ୟ ବିଶେଷ ।

ଗଙ୍ଗାଦାସ—ଛନ୍ଦଗୋବିନ୍ଦ ନାମକ ସଂସ୍କୃତ ଗ୍ରନ୍ଥପ୍ରଣେତା,ବେଦାନ୍ତଦୀପିକା ପ୍ରଣେତା, ବାକ୍ୟପଦୀ ନାମକ ବ୍ୟାକରଣ-ରଚୟିତା, ତିଲକଖଣ୍ଡ-ପ୍ରଶସ୍ତି ସଂସ୍କୃତ ଗ୍ରନ୍ଥପ୍ରଣେତା ।

ଗଙ୍ଗାଦ୍ୱାର—କ୍ଲୀ.ବି,(୬ତତ୍ପୁ)ହରିଦ୍ୱାର, ମୋକ୍ଷଦ୍ୱାର, ହରଦ୍ୱାର ।

**ଗଙ୍ଗାଧର**—ପୁଂ.ବି.(ଗଙ୍ଗା + ଧୃ + କ,ଅ) ଶିବ, ସମୁଦ୍ର, ଏକଜଣ ପ୍ରାଚୀନ କୋଷକାର ।

**ଗଙ୍ଗାଧରମେହେର**—ଗ୍ରା. ବି. ( ନାମ ) ଉତ୍କଳର ଜଣେକ ଆଧୁନିକ କବି ।

**ଗଙ୍ଗାଧରରସ**—ବି. (ବୈଦ୍ୟକ) ନାଗର ମୁଥା, ମୋଚରସ-ଆଦିଦ୍ୱାରା ପ୍ରସ୍ତୁତ ଗ୍ରହଣୀ ରୋଗର ଔଷଧବିଶେଷ ।

ଗଙ୍ଗାପତ୍ରୀ—ସ୍ତ୍ରୀ. ବି. (ଗଙ୍ଗାପତ୍ର + ଈ) ବୃକ୍ଷବିଶେଷ,ଏହାରପତ୍ର ଅତିଶୟସୁଗନ୍ଧ, ପତ୍ରପତ୍ର ।

**ଗଙ୍ଗାପାଳଙ୍ଗ**—ପୁଂ. ବି. ବନପାଳଙ୍ଗ, ଲଟାପାଳଙ୍ଗ ଶାଗ ।

ଗଙ୍ଗାପୁତ୍ର—ପୁଂ ବି. (୬ତତ୍ପୁ) ଭୀଷ୍ମ, କାର୍ତ୍ତିକ, ଲେଟ ପିତା ଓ ତୀବରୀମାତା ଗର୍ଭସମ୍ଭୂତ ବର୍ଣ୍ଣସଙ୍କରଜାତିବିଶେଷ ।

ଗଙ୍ଗାପୁର—ରାଜପୁତନାନ୍ତର୍ଗତ ଜୟପୁର ରାଜ୍ୟର ଗୋଟିଏ ନଗର, ସାରଣ ଜିଲ୍ଲାନ୍ତର୍ଗତ ଗୋଟିଏ ନଗର ।

ଗଙ୍ଗାପ୍ରାପ୍ତ—ବିଂ. (୨ୟା ତତ୍ପୁ) ସଜ୍ଞାନେ ଗଙ୍ଗାଗର୍ଭେ ତ୍ୟକ୍ତପ୍ରାଣ, ମୃତ ।

ଗଙ୍ଗାପ୍ରାପ୍ତି—ସ୍ତ୍ରୀ. ବି. (୬ତତ୍ପୁ) ମୃତ୍ୟୁ, ସଜ୍ଞାନେ ଗଙ୍ଗାଗର୍ଭେ ପ୍ରାଣତ୍ୟାଗ ।

ଗଙ୍ଗାମାତା—ବି. ଜଗତର ମାତାସ୍ୱରୂପା ଗଙ୍ଗାଦେବୀ, ଦେବତାରୂପେ କଳ୍ପିତା, ଗଙ୍ଗାଦେବୀ । ( ଗର୍ଭର ମାଟି ।

ଗଙ୍ଗାମୃତ୍ତିକା—ବି.(୬ତତ୍ପୁ) ଗଙ୍ଗାନଦୀର

ଗଙ୍ଗାମୃତ—କ୍ଲୀ. ବି. ୬ତତ୍ପୁ; (ଗଙ୍ଗା + ଅମୃତ) ଗଙ୍ଗାଜଳ ।

ଗଙ୍ଗାଯମୁନା—ଗ୍ରା.ବି. ସ୍ପଷ୍ଟଭାବରେ ସ୍ୱତନ୍ତ୍ର ଜଣାଯାଉଥିବା ଦୁଇବର୍ଣ୍ଣଦ୍ରବ୍ୟର ମିଶ୍ରଣ ।

ଗଙ୍ଗାଯାତ୍ରା—ସ୍ତ୍ରୀ.ବି. ଗଙ୍ଗାଙ୍କର ଉଦ୍ଦେଶ୍ୟରେ ଯାତ୍ରା, ମୁମୂର୍ଷୁ ଲୋକ ପ୍ରାଣତ୍ୟାଗାର୍ଥ ଗଙ୍ଗାତୀରକୁ ଗମନ ।

ଗଙ୍ଗାଯାତ୍ରିକ—ପୁଂ. ବିଂ. ଯେ ରୋଗୀକୁ ଗଙ୍ଗା ଯାତ୍ରା କରାଇବାର ଉପଯୁକ୍ତ, ଯୋଗାଦି ଉପଲକ୍ଷେ ଯେଉଁମାନେ ଗଙ୍ଗାସ୍ନାନାର୍ଥ ଯାଆନ୍ତି,(ପୁଂ.ବି) ଗଙ୍ଗାଦେବୀଙ୍କର ଉତ୍ସବ, (ସ୍ତ୍ରୀ) ଗଙ୍ଗାଯାତ୍ରିକା ।

ଗଙ୍ଗାଯାତ୍ରୀ—ପୁଂ. ବି. (ଗଙ୍ଗାଯାତ୍ରା + ଇନ୍) ଯେ ଗଙ୍ଗାତୀରକୁ ଯିବାନିମିତ୍ତ ଯାତ୍ରା କରିଅଛୁ, (ସ୍ତ୍ରୀ) ଯାତ୍ରିଣୀ ।

ଗଙ୍ଗାରାମ—ପୁଂ.ବି.ଜଣେବିଖ୍ୟାତସଂସ୍କୃତ ଜ୍ୟୋତିର୍ବିଦ୍,(ଗ୍ରା.ବି)ଶୁଆକୁ ପଢ଼ାଇବାବେଳେ ଶୁଆକୁ ଡାକିବା ନାମ ।

ଗଙ୍ଗାଳ—ଗ୍ରା. ବି. (ସଂ-ଗର୍ଗର) ଦୁଇ ପାଖରେ କଡ଼ାଲଗିଥିବା ବଡ଼ ପିତ୍ତଳ କରେଇ ।

ଗଙ୍ଗାଲହରୀ—ସ୍ତ୍ରୀ.ବି. ଗଙ୍ଗାର ତରଙ୍ଗ, ଜଗନ୍ନାଥ ତର୍କପଞ୍ଚାନନ-ପ୍ରଣୀତ ଗଙ୍ଗାସ୍ତବ ।

ଗଙ୍ଗାଲାଭ—ପୁଂ.ବି. ଗଙ୍ଗାପ୍ରାପ୍ତି ,ଗଙ୍ଗାଗର୍ଭେ ଜ୍ଞାନପୂର୍ବକ ପ୍ରାଣତ୍ୟାଗ, ଧ୍ୱଂସ ।

ଗଙ୍ଗାବଂଶ—ବି.ଦକ୍ଷିଣାପଥର ଏକ ପ୍ରବଳ ପ୍ରାଚୀନ ରାଜବଂଶ, ଗଙ୍ଗବଂଶ(ଦେଖ) ।

ଗଙ୍ଗାବତାର—ପୁଂ. ବି. (ବ.ବ୍ରୀ) ତୀର୍ଥ ବିଶେଷ,ଗଙ୍ଗାଦ୍ୱାର(ଦେଖ)ବ୍ରହ୍ମଲୋକରୁ ପୃଥିବୀରେ ଗଙ୍ଗାର ଅବତରଣ ।

ଗଙ୍ଗାବଲୀ—ଗଙ୍ଗାବଲୀନଦୀର ମୋହାଣସ୍ଥିତ ଗୋଟିଏ ବନ୍ଦର ।

ଗଙ୍ଗାବାଈ—ଜଣେ ବିଖ୍ୟାତ ମହାରାଷ୍ଟ୍ର ମହିଳା,ପେଶବା ନାରାୟଣରାଓଙ୍କପତ୍ନୀ ।

ଗଙ୍ଗାବାଡ଼ି—ଗ୍ରା. ବି. ପ୍ରାଚୀନ କଳିଙ୍ଗର ଏକ ପ୍ରଧାନ ନଗର,ବର୍ତ୍ତମାନ ପାରଳାଖେମଣ୍ଡିର ମୁଖଲିଙ୍ଗ ନଗର ।

ଗଙ୍ଗାବାଲି—ଗ୍ରା. ବି. ଗଙ୍ଗା ନଦୀ-ଗର୍ଭର ବାଲି,ଲୋକେ ପରସ୍ପର ମୁଖରେ ଗଙ୍ଗାବାଲିକଣିକାଏ ଦେଇ ବସିବା ବନ୍ଧୁତା ।

ଗଙ୍ଗାବାସୀ—ପୁଂ. ବିଂ. (ଗଙ୍ଗା + ବସ + କ, ଇନ୍) ଗଙ୍ଗାତୀରସ୍ଥ, ଗଙ୍ଗାତୀରରେ ବାସକାରୀ ।

ଗଙ୍ଗାସାଗର—ପୁଂ. ବି. (କ.ଧା) ଗଙ୍ଗା ଯେଉଁଠାରେ ସମୁଦ୍ର ସହିତ ମିଳିତ ହୋଇଅଛି ସେହିସ୍ଥାନ ।

ଗଙ୍ଗାସୁତ—ପୁଂ. ବି. (୬ତତ୍ପୁ ) ଭୀଷ୍ମ, କାର୍ତ୍ତିକେୟ ।

ଗଙ୍ଗାସ୍ନାନ—କ୍ଲୀ.ବି.ଗଙ୍ଗାରେ ଅବଗାହନ, ଜ୍ୟୈଷ୍ଠଶୁକ୍ଳଦଶମୀଦିନ ଗଙ୍ଗାରେ ସ୍ନାନ ।

ଗଙ୍ଗାସ୍ନାନକରିବା—ଗ୍ରା. କ୍ରି. ପୁଣ୍ୟମୟୀ ଗଙ୍ଗାନଦୀରେ ଗାଧୋଇବା, (ଲ.ଅର୍ଥ) କୃତାର୍ଥହେବା, ସିଦ୍ଧକାମହେବା, କୌଣସି ଗୁରୁ ଦାୟିତ୍ୱରୁ ମୁକ୍ତିଲାଭ କରିବା ।

ଗଙ୍ଗାସ୍ନାୟୀ—ପୁଂ. ବିଂ. ଯେଉଁ ବ୍ୟକ୍ତି ଗଙ୍ଗାସ୍ନାନ କରେ,(ସ୍ତ୍ରୀ)ଗଙ୍ଗାସ୍ନାୟିନୀ ।

ଗଙ୍ଗାହ୍ରଦ—ପୁଂ.ବି,ଭାରତପ୍ରସିଦ୍ଧ ସ୍ୱସ୍ତି-ପୁରର ମଧ୍ୟବର୍ତ୍ତୀ ଗୋଟିଏ କୂପ,କୋଟି-ତୀର୍ଥର ଅନ୍ତର୍ଗତ ଗୋଟିଏ ତୀର୍ଥ,ଗଙ୍ଗାର ହ୍ରଦ ।

ଗଙ୍ଗିକା—ସ୍ତ୍ରୀ.ବି.(ଗଙ୍ଗା + କ + ଆ)ଗଙ୍ଗା ।

ଗଙ୍ଗୁକ—ପୁଂ. ବି. କାଙ୍ଗୁଧାନ୍ୟବିଶେଷ, କାଙ୍ଗୁ ।

ଗଙ୍ଗେଇ — ଗ୍ରା.ବି. (ସଂ-ଗାଙ୍ଗେୟ) ଦୀର୍ଘ ସରୁଅଣ୍ଟ ଓ ନୀଳବର୍ଣ୍ଣ ପକ୍ଷବିଶିଷ୍ଟ ମାଛରଙ୍କା ଚଢ଼େଇ,ଚଢ଼ୁବିଶେଷ,ବାଜସ୍ତ ।

ଗଙ୍ଗୋତ୍ତରୀ(ତ୍ରୀ)—ସ୍ତ୍ରୀ.ବି. ଉତ୍ତରପ୍ରଦେଶ ଗଡ଼ବାଲ ଜିଲ୍ଲାନ୍ତର୍ଗତ ଗଙ୍ଗାଙ୍କର ଅବତରଣସ୍ଥାନ ।

ଗଙ୍ଗୋଦକ—କ୍ଲୀ. ବି. (ତତ୍ପୁ) ଗଙ୍ଗାନଦୀର ଜଳ, ଗଙ୍ଗାଜଳ ।

ଗଙ୍ଗୋଦ୍ଭେଦ—ପୁଂ.ବି. ତୀର୍ଥବିଶେଷ,ଯେଉଁ ସ୍ଥାନରେ ପିତୃତର୍ପଣ କଲେ ବାଜପେୟ ଯଜ୍ଞର ଫଳ ପାଇବାକୁ ହୁଏ ।

ଗଙ୍ଗୋଲ — ପୁଂ. ବି. ମଣିବିଶେଷ, ଗୋମେଦକ ।

ଗଚ୍ଛ — ପୁଂ.ବି.(ଗମ୍+କ.ଅ)ବୃକ୍ଷ, ଗଛ, ଲୀଳାବତୀର ଶ୍ରେଢ଼ୀ ବ୍ୟବହାରାନ୍ତର୍ଗତ ଗଣିତବିଶେଷ ।

ଗଚ୍ଛାଗଚ୍ଛି — ଗ୍ରା.ବି.(ସଂ-ଗୁଚ୍ଛ)ବହୁବସ୍ତୁକୁ ସଜ୍ଜିତ କରିବା, ସଜ୍ଜା, ଦୁଇ ବସ୍ତୁକୁ ପରସ୍ପର ସଙ୍ଗେ ତୁଳନା କରିବା, କାଛକଚ୍ଛ, (ବିଂ) ସୁସଜ୍ଜିତ, ପରସ୍ପର ସଙ୍ଗେ ମେଳ ଖାଉଥିବା (ଦୁଇବସ୍ତୁ) ।

ଗଚ୍ଛିତ — ଗ୍ରା.ନିକ୍ଷିପ୍ତ,ନ୍ୟସ୍ତ,ସ୍ତୂପୀକୃତ, ପୁଞ୍ଜୀକୃତ, ଅନ୍ୟ ବ୍ୟକ୍ତି ନିକଟରେ ରକ୍ଷିତ, ନିହିତ ।

ଗଛ — ଗ୍ରା.ବି.(ସଂ-ଗଚ୍ଛ) ବୃକ୍ଷ,ଗଛପରି ଶାଖାବିଶିଷ୍ଟ ହୋଇ ପୋତାଯିବା ବାଣ, (ପାନବରଜ ଭାଷା) ଭୂମିରେ ପୋତା ହୋଇଥିବା, ପରସ୍ପର ନିକଟବର୍ତ୍ତୀ ଦୁଇଧାଡ଼ି (ପାଣ) ଇଙ୍କଡ଼ କାଠିରେ ମଡ଼ା ଯାଇଥିବା ପାନଲତା ।

ଗଛଉଠିବା — ଗ୍ରା.ବି.ମଞ୍ଜିରୁ ଗଛ ଉତ୍ପନ୍ନ ହେବା ।

ଗଛଉଠାଇବା—ଗ୍ରା.କ୍ରି. ମଞ୍ଜିରୁ ଉଠିବା ଗଛ କିମ୍ବା ଚାରାଗଛ କ୍ରମଶଃ ସତେଜ ଓ ବଡ଼ ହେବା ପର୍ଯ୍ୟନ୍ତ ତାହାର ଯତ୍ନ ନେବା ।

ଗଛଉପାଡ଼ିବା—ଗ୍ରା.କ୍ରି. ପାଲଜର ଓ କର୍ମଜ୍ୱରରେ ଆକ୍ରାନ୍ତ ରୋଗୀର ନାମ ସହିତ ନିର୍ଦ୍ଦିଷ୍ଟ ମନ୍ତ୍ର ଉଚ୍ଚାରଣପୂର୍ବକ ଜ୍ୱରର ପାଲଧନ ବକ୍ରମୂଳୀ ଆଦି ଗୁଳ୍ମକୁ ଉପାଡ଼ିବା,ଗଛକୁ ଉପାଡ଼ିଦେବା କାର୍ଯ୍ୟ ।

ଗଛକାଟିବା — ଗ୍ରା. କ୍ରି. ଖଜୁରିଆମାନେ ତାଡ଼ି ବାହାର କରିବାପାଇଁ ଖଜୁରିଗଛର ବେକପାଖରେ ଛିଦ୍ରକରିବା, ଗଛକୁ ତଳେ ପକାଇବା ନିମନ୍ତେ ମୂଳ ହାଣିବା ।

ଗଛକାଟିଲପରି—ଗ୍ରା. କ୍ରି. ବିଂ. ବଡ଼ ଗଛର ମୂଳ କାଟିଲେ ତାହା ଯେପରି ଶବ୍ଦକରି ହଠାତ୍ ପଡ଼ିଯାଏ ସେହିପରି ।

ଗଛଘିଅ — ଗ୍ରା.ବି. ଇଉରୋପରୁ ଆମଦାନୀ ହୋଇ ଭାରତକୁ ଆସୁଥିବା ଏକ ପ୍ରକାର ଉଦ୍ଭିଦଘୃତ ।

ଗଛପତର — ଗ୍ରା. ବି. ବୃକ୍ଷ ଓ ପଲ୍ଲବ, ଉଦ୍ଭିଦଜାତୀୟ ବସ୍ତୁ ।

ଗଛପାଚିଲା—ଗ୍ରା. ବିଂ. ଯେଉଁ ଫଳ ଗଛରେ ପାଚିଥାଏ ।

ଗଛବାଣ — ଗ୍ରା. ବି. ବୃକ୍ଷ ଆକୃତିରେ ତିଆରି ହୋଇଥିବା ଅଗ୍ନି କ୍ରୀଡ଼ାବିଶେଷ ।

ଗଛମୂଳରେ ବସିବା — ଗ୍ରା. କ୍ରି. ଗୃହଶୂନ୍ୟ ହୋଇ ବୃକ୍ଷଛାୟା ଆଶ୍ରୟ କରିବା,(ଲକ୍ଷଣାର୍ଥ) ଆଶ୍ରୟସ୍ଥାନହେବା ।

ଗଛରେ ଚଢ଼ାଇବା—ଗ୍ରା.କ୍ରି.ଖୁବ୍ ଆଶା ଦେବା, ଖୁବ୍ ଗୋଟାଏ ବଡ଼କାର୍ଯ୍ୟରେ ପୁରାଇ ଦେବା ।

ଗଛରେ ଚଢ଼ାଇ ମୂଳ ହାଣିବା — ଗ୍ରା.କ୍ରି. ଖୁବ୍ ଆଶା ଦେଇ ନିରାଶ କରିବା ।

ଗଚ୍ଛ — ଗ୍ରା.ବି.ତୁଳନା କରିବା, କୌଣସି ପଦାର୍ଥକୁ ଅନ୍ୟ ପଦାର୍ଥ ସଙ୍ଗେ ତୁଳନା କରିବାପାଇଁ ପ୍ରଥମ ପଦାର୍ଥକୁ ଦ୍ୱିତୀୟ ପଦାର୍ଥ ସଙ୍ଗେ ମିଳାଇବା ।

ଗଚ୍ଛଇବା—ଗ୍ରା.କ୍ରି. ସଜାଇବା,ଦୁଇ ବା ତତୋଽଧିକ ପଦାର୍ଥ ପରସ୍ପର ସମାନ ହେବା, ଗଢ଼ା କରିବା, ଗଚ୍ଛବାର ଣିଜନ୍ତ ରୂପ,ଖଟାଇବା,ପ୍ରଯୁକ୍ତକରିବା ।

ଗଚ୍ଛାଗଚ୍ଛି — ଗ୍ରା.କ୍ରି.ବିଂ. ଏକ ପଦାର୍ଥର ସମସ୍ତ ଅଂଶ ଅନ୍ୟ ପଦାର୍ଥର ସମସ୍ତ ଅଂଶ ସଙ୍ଗେ ଯଥାକ୍ରମେ ମେଳହେବା, ଉତ୍ତମରୂପେ ସଜ୍ଜିତ କର, (ଗ୍ରା.ବିଂ) ପରସ୍ପର ଯୋଗ୍ୟ ବା ସମକକ୍ଷ ।

ଗଚ୍ଛିବା — ଗ୍ରା.କ୍ରି.(ସଂ ଗୁଚ୍ଛ) ଲକ୍ଷ୍ୟଦେବା, ଅର୍ପଣ କରିବା,ଯୋଗ୍ୟହେବା,ଯୋଗାଇବା, ଉପମା ଦେବା,ତୁଳନା କରିବା, ମିଳାଇବା, କଷିବା, ସମାନ ହେବା, ପ୍ରାପ୍ତହେବା,ଖଟିବା, ଉପଯୁକ୍ତ ହେବା, ସାଜିବା, ମାନିବା,ଶୋଭାପାଇବା,ଗ୍ରହଣ କରିବା,ନିହିତ ହେବା, ମିଳିବା,ପ୍ରାପ୍ତହେବା ।

ଗଛୁଆ — ଗ୍ରା. ବି. ଯେ ବ୍ୟକ୍ତି ଖଜୁରିଗଛ କାଟି ତାଡ଼ି ବାହାର କରିବାକୁ ସରକାରଙ୍କଠାରୁ ଅନୁମତି(ଲାଇସେନ୍ସ)ପାଇଥାଏ, ଗ୍ରା. ବିଂ. ଯେ ଗଛରେ ଚଢ଼େ ।

ଗଜଗଜ—ଗ୍ରା. ଅବ୍ୟ. (ଧ୍ୱନ୍ୟନୁକରଣ) ନର୍ଦ୍ଦମା ବା ନାଳୀର ମଇଳାପାଣି ମଧ୍ୟରେ ବହୁସଂଖ୍ୟକ ଲାଙ୍ଗୁଡ଼ାପୋକ ଉତ୍ପନ୍ନକଲାଭଳି କୌଣସି ପଦାର୍ଥ ଅଧିକ ସଂଖ୍ୟାରେ ଦେଖାଯିବା, ଅପରିମିତ ବା ଅସଂଖ୍ୟ ହେବା, ତରଳ ପଦାର୍ଥର କୋମଳ ପତନଶବ୍ଦ, ଉତୁରି ପଡ଼ିବା, ପୂର୍ଣ୍ଣହେବା ।

ଗଜ — ପୁଂ.ବି. ସ୍ତ୍ରୀ (ଗଜ+କ.ଅ)ହସ୍ତୀ, ହାତୀ, ଦିଗ୍ଗଜ, ଆଠସଂଖ୍ୟା, ବାନରସେନା,ଗଜାସୁର,ଗଜକୀଟ,କୀଟବିଶେଷ, ହାତୀପୋକ,ନାଗକେଶର, ଗଜପିପ୍ପଳୀ, ପରିମାଣବିଶେଷ, ଦୁଇହସ୍ତ ପରିମାଣ, (ଗ୍ରା.ବି) ମାପକାଠି, ବାଡ଼ି, ଯଷ୍ଟି,ଛଡ଼, ବନ୍ଧୁକନଳୀ ମଧ୍ୟରେ ବାରୁଦ ଖୁନ୍ଦିବାର କାଠି, ଝରକା ବା ଫାଟକମଧ୍ୟସ୍ଥ ଲମ୍ବଶଳାକା, ବାରବର୍ଷିଆ ଗଛରୁ ବାହାରୁଥିବା ମଞ୍ଜି ଛଡ଼, ଆଖୁର ଅଗ୍ରଭାଗରେ ପତ୍ରମଧ୍ୟରେ ଥିବା କଣ୍ଢା, (ପ୍ରା. ସିଂହ. ବି) ଶଗଡ଼ର ଅର, ପ୍ରା. (ଆଲି)ଘରର ଗୁଳର ଓଳିପାଖକୁ ଥିବା ରୁଅମାନଙ୍କ ମୁଣ୍ଡରେ କଣାହୋଇ ଗଳା ଯାଇଥିବା ସରୁ ବାଉଁଶଖଣ୍ଡମାନ ।

ଗଜଉଦ୍ଧାରଣବେଶ — ଗ୍ରା.ବି. ଗଜୋଦ୍ଧାରଣବେଶ (ଦେଖ) ।

ଗଜକଚ୍ଛପଯୁଦ୍ଧ — ବି. ମହାଭାରତବର୍ଣ୍ଣିତ ହାତୀ ଓ କଇଁଛମଧ୍ୟରେ ଯୁଦ୍ଧ,

(ଏହାଙ୍କୁ ଗରୁଡ଼ ନେଇ ଭକ୍ଷଣ କରିଥିଲେ) (ଲକ୍ଷଣାର୍ଥ) ଦୁଇ ସ୍ଥୂଳକାୟ ବ୍ୟକ୍ତିଙ୍କ ମଧ୍ୟରେ ମଲ୍ଲଯୁଦ୍ଧ ।

ଗଜକଣ୍ଟା — ଗ୍ରା.ବି.ଏକପ୍ରକାରଲତାଗଛ ।

ଗଜକଣା — ସ୍ତ୍ରୀ. ବି. ଗଜପିପ୍ପଳୀ,କୁହୁଁ । କଦଳୀ, ଗଜପିମ୍ପଳା ।

ଗଜକନ୍ଦ—ପୁଂ. ବି. ହସ୍ତୀକନ୍ଦ ବୃକ୍ଷ, ହାତୀକନ୍ଦା, ସୁଖାଦ୍ୟ ମୂଳବିଶେଷ ।

ଗଜକପାଳ—ଗ୍ରା. ବି. କପାଳର ମଧ୍ୟଦେଶ ।

ଗଜକର୍ଣ୍ଣ — ପୁଂ. ବି. ଯକ୍ଷବିଶେଷ ।

ଗଜକର୍ଣ୍ଣୀ — ସ୍ତ୍ରୀ. ବି. ମୂଳ ବିଶେଷ, ହାତୀକେନା ଗଛ ।

ଗଜକର୍ଣ୍ଣିକା(କର୍ଣ୍ଣୀ) — ବି. ଏକ ପ୍ରକାର କନ୍ଦ ବା ମୂଳ ।

ଗଜକର୍ଣ୍ଣିକାର — ପୁଂ.ବି.ହାତୀକେନାଗଛ, କାକୁଡ଼ି,ଇନ୍ଦ୍ରବାରୁଣୀଲତା,ମହାକାଳ ।

ଗଜକାଠି — ଗ୍ରା. ବି. ଦୁଇହାତ ପରିମିତ ମାପର କାଠି,ବନ୍ଧୁକରେ ବାରୁଦଖୁନ୍ଦିବାର କାଠି ।

ଗଜକୁମ୍ଭ — ପୁଂ. ବି. ( ୬ତତ୍ରୁ ) ହାତୀ ମୁଣ୍ଡରେ ମାଠିଆ ପରି ବାହାରିଥିବା ଦୁଇଟି ଆବୁ ।

ଗଜକୁସୁମ — ପୁଂ. ବି. ନାଗକେଶର, ନାଗେଶ୍ୱର ।

ଗଜକୁସୁମା — ସ୍ତ୍ରୀ. ବି. ନାଗକେଶର, ନାଗେଶ୍ୱର ।

ଗଜକୂର୍ମ୍ମଯୁଦ୍ଧ — ଗ୍ରା. ବି. ଗଜକଚ୍ଛପ ଯୁଦ୍ଧ (ଦେଖ) ।

ଗଜକୂର୍ମାଶୀ — ପୁଂ.ବି. (ଗଜକୂର୍ମ + ଅଶ୍ + କ,ଇନ୍) ଗରୁଡ଼ ।

ଗଜକୃତ୍ତି — ବି. ହାତୀର ଚମ,ଗଜାସୁରର ଚମଡ଼ା(ଯେହା ଶିବ ପରିଧାନ କରିବାର କଥିତ ଅଛି) ।

ଗଜକୃଷ୍ଣା — ସ୍ତ୍ରୀ. ବି. ଗଜପିପ୍ପଳୀ ।

ଗଜକେଶର—ପୁଂ. ବି. ନାଗକେଶର ।

ଗଜକେଶରୀ — କେଶରୀବଂଶୀୟ ଓଡ଼ିଶାର ଜଣେ ପରାକ୍ରାନ୍ତ ରାଜା ।

ଗଜଗତି—ସ୍ତ୍ରୀ. ବି. ( ୬ତତ୍ରୁ ) ହାତୀର ଚଳନ, ଅଷ୍ଟାକ୍ଷର ଛନ୍ଦୋବିଶେଷ, (ବିଂ.ବହୁ) ହାତୀପରି ଧୀରଗତିବିଶିଷ୍ଟ (ବ୍ୟକ୍ତି) ।

ଗଜଗମନା — ସ୍ତ୍ରୀ.ବିଂ.(ବ.ବ୍ରୀ)ଯେଉଁ ସ୍ତ୍ରୀ ହାତୀଭଳି ହଂଶଭରେ ଚାଲେ, ଗଜପରି ସୁନ୍ଦର ମନ୍ଥରଗତିଶାଳିନୀ (ରମଣୀ) ।

ଗଜଗମନୀ—ଗ୍ରା. ସ୍ତ୍ରୀ. ବିଂ. ଗଜଗମନା (ଦେଖ) ।

ଗଜଗାମିନୀ-ସ୍ତ୍ରୀ.ବିଂ.ଗଜଗମନା(ଦେଖ) ।

ଗଜଗାମୀ — ପୁଂ.ବିଂ.(ଗଜ + ଗମ୍ + କ, ଇନ୍) (୬ତତ୍ରୁ ) ହସ୍ତ୍ୟାରୋହୀ, ଯେ ହାତୀରେ ଚଢ଼ି ଗମନ କରେ,ହାତୀପରି ଯେ ମନ୍ଥର ଗମନ କରେ, (ସ୍ତ୍ରୀ) ଗଜଗାମିନୀ ।

ଗଜଘଣ୍ଟା — ସ୍ତ୍ରୀ. ବି. ହାତୀ ବେକରେ ବନ୍ଧାହେବା ଘଣ୍ଟି ,ରଙ୍ଗପୁରଜିଲ୍ଲାନ୍ତର୍ଗତ ଗୋଟିଏ ପ୍ରଧାନ ନଗର ।

ଗଜଚକ୍ଷୁ—ତ୍ରି. ବିଂ. ( ବ.ବ୍ରୀ ) ଯାହାର ଆଖି ହାତୀ ଆଖିପରି ଛୋଟ, ବିକୃତ ଚକ୍ଷୁ , ଟେରା ।

ଗଜଚର୍ଭିଟ — ପୁଂ. ବି. ଫୁଟିକାକୁଡ଼ି ।

ଗଜଚର୍ଭିଟା (ଟୀ) — ସ୍ତ୍ରୀ.ବି.ଇନ୍ଦ୍ରବାରୁଣୀ, ମହାକାଳ, ତିତଭୃଙ୍ଗ ଲତା ।

ଗଜଚ୍ଛାୟା — ସ୍ତ୍ରୀ.ବି.ତିଥି ନକ୍ଷତ୍ରରଯୋଗ ବିଶେଷ ସୂର୍ଯ୍ୟୋପରାଗକାଳ, ଅମାବାସ୍ୟାଦିନ ଯେଉଁ ସମୟରେ ଛାୟା ପୂର୍ବମୁଖୀ ହୁଏ, ଏହି ସମୟରେ ପିତୃ ଶ୍ରାଦ୍ଧକଲେ ବିଶେଷ ଫଳ ମିଳେ ।

ଗଜଢକ୍କା — ସ୍ତ୍ରୀ.ବି (କ.ଧା)ହାତୀଉପରେ ବାହିତ ବଡ଼ ନାଗରା ।

ଗଜତା — ସ୍ତ୍ରୀ.ବି. ( ଗଜ + ତା ) ହସ୍ତୀସମୂହ, ହାତୀପଲ, (ଗଜ + ଭା,ତା) ହାତୀର ଅବସ୍ଥା ।

ଗଜତୁରଙ୍ଗବିଲସିତ — କ୍ଲୀ. ବି. ଛନ୍ଦୋବିଶେଷ ।

ଗଜଦଘ୍ନ — ପୁଂ. ବିଂ. (ଗଜ + ଦଘ୍ନଚ୍ ) ହସ୍ତୀପରିମାଣ, ହାତୀ ସମାନ ଉଚ୍ଚ ।

ଗଜଦନ୍ତ—ପୁଂ. ବି. (ବ.ବ୍ରୀ) ଗଣେଶ, ଉପଦନ୍ତ, ଡେହେଡ଼ାଦାନ୍ତ, ବାହୁଡ଼ାଦାନ୍ତ, କରମୁଦ୍ରାବିଶେଷ, କାନ୍ଥରେ ଲୁଗାପଟା ରଖିବାପାଇଁ ମରା ଯାଇଥିବା କାଠି,(ସ୍ତ୍ରୀ)ଗଜଦନ୍ତା,(ବିଂ)ଡେହେଡ଼ା ଦାନ୍ତିଆ, ଯାହାର • ଦାନ୍ତ ଉପରେ ଦାନ୍ତ ଉଠିଅଛି ।

ଗଜଦନ୍ତପଲଙ୍କ — ଗ୍ରା. ବି. ଯେଉଁ ପଲଙ୍କରେ ହାତୀଦନ୍ତଦ୍ୱାରା ଫୁଲଲତାଆଦି ନାନାପ୍ରକାର କାରୁକାର୍ଯ୍ୟ ରଚିତ ହୋଇଥାଏ ।

ଗଜଦନ୍ତଫଳା — ସ୍ତ୍ରୀ. ବି. ଡଙ୍ଗଲତା, ବଡ଼ଲତାଫଳ ବିଶେଷ ।

ଗଜଦନ୍ତମୟ — ତ୍ରି.ବିଂ. ଗଜଦନ୍ତନିର୍ମିତ, ଯାହା ହାତୀଦାନ୍ତରେ ତିଆରି ।

ଗଜଦନ୍ତା — ଗ୍ରା.ପୁଂ. ବିଂ. ଛମୁଁଦାନ୍ତୁଆ, ଯାହାର ଛମୁଦାନ୍ତ ଦୁଇଟି ଅତିବଡ଼ ।

ଗଜଦାନ — କ୍ଲୀ. ବି. (୬ତତ୍ରୁ) ହସ୍ତୀର ମଦଜଳ, ହସ୍ତୀର ଉତ୍ସର୍ଗ, ଶାସ୍ତ୍ରୋକ୍ତ ହାତୀଦାନ ।

ଗଜଦ୍ୱୟସମ୍—ପୁଂ.ବିଂ.ଗଜଦଘ୍ନ(ଦେଖ) ।

ଗଜଧ୍ୱଜ—ବି. (ବ.ବ୍ରୀ) କର୍ଣ୍ଣଙ୍କ ରଥର ନାମ ।

ଗଜନକ — ବି.(ଗଜ + ନକ)ଗଣ୍ଡା ପଶୁ ।

ଗଜନବୀ-ଯା.ବିଂ.ଗଜନୀନଗରଅଧିବାସୀ ।

ଗଜନୀପୁର ବା ଗଜନୀପୁର — ବଙ୍ଗପ୍ରଦେଶର ମାନ୍ଦ୍ରାବାଦ ଅନ୍ତର୍ଗତ ଗୋଟିଏ ମହଲ ।

ଗଜନାଳ — ବି.ଖୁବ୍ ଭାରିତୋପ,ଯାହାକୁ ହାତୀମାନେ ଟାଣନ୍ତି ।

ଗଜନାସା—ସ୍ତ୍ରୀ. ବି. (୬ତତ୍ରୁ) ହାତୀର ଶୁଣ୍ଢ ।

ଗଜନୀ — ଯା. ବି. ଆଫଗାନସ୍ଥାନର ଗୋଟିଏ ନଗର ।

ଗଜପତି—ପୁଂ.ବି. (୬ତତ୍ରୁ) ଶ୍ରେଷ୍ଠଗଜ, ଅତି ଉଚ୍ଚହସ୍ତୀ, ଐରାବତ, ଯେ ବହୁତ ହାତୀ ରଖିଅଛି, ଉତ୍କଳ ଓ କଳିଙ୍ଗର ପ୍ରାଚୀନ ରାଜାମାନଙ୍କର ସମ୍ମାନସୂଚକ ଉପାଧି ।

ଗଜପାଦପ — ପୁଂ. ବି. ସ୍ଥାଳୀବୃକ୍ଷ, ଗଯ୍ୟାଶ୍ୱତ୍ଥ, ଅଶ୍ୱତ୍ଥବିଶେଷ ।

ଗଜପାଳ — ବି. (ଗଜ + ପାଳ + ଅ.ଅ) ମାହୁନ୍ତ ।

ଗଜପିପ୍ପଳୀ — ବି. ସ୍ତ୍ରୀ.ଗଜପିମ୍ପଳା, କୁହୁଁ କଦଳୀ ।

ଗଜପୁଙ୍ଗବ — ବି. ପୁଂ. (ତତ୍ପ) ଶ୍ରେଷ୍ଠ ଗଜ, ଐରାବତ ହସ୍ତୀ ।

ଗଜପୁଟ — ବି.ପୁଂ.ଔଷଧପାକ ଓ ଲୌହ-ମାରଣପ୍ରଭୃତି କାର୍ଯ୍ୟର ଉପଯୋଗୀ ଗର୍ତ୍ତବିଶେଷ ।

ଗଜପୁର — ବି. କ୍ଲୀ.(କ.ଧା) ଯୁଧିଷ୍ଠିରଙ୍କର ରାଜଧାନୀ ହସ୍ତିନାପୁର ।

ଗଜପୃଷ୍ଠ — ବି. ନାଗଦଅଁଣା ।

ଗଜପୃଷ୍ଠୀ — ବି. ସ୍ତ୍ରୀ. ନାଗପୃଷ୍ଠଲତା, ନାଗଦଅଁଣା । [ଗଛ ।

ଗଜପ୍ରିୟା — ବି.ସ୍ତ୍ରୀ. ଶଲ୍ଲକୀ ବୃକ୍ଷ, ଶାଳୁଇ

ଗଜବକ୍ତ୍ର — ବି.କ୍ଲୀ.(ତତ୍ପ)ହସ୍ତୀର ମୁଖ, (ବି.ପୁଂ.ବ.ବ୍ରୀ)ଗଜାନନ,ଗଣେଶ ।

ଗଜବନ୍ଧନୀ — ବି.ସ୍ତ୍ରୀ. (ଗଜବନ୍ଧ + ଅନ + ଈ) ହାତୀବନ୍ଧା ସ୍ଥାନ, ହାତୀଶାଳ, ହାତୀବନ୍ଧା ଖୁଣ୍ଟି ।

ଗଜବନ୍ଧନୀ — ବି.ସ୍ତ୍ରୀ ହାତୀବାନ୍ଧିବାର ସ୍ଥାନ ହାତୀଶାଳା ।

ଗଜବଳ — ପ୍ରା. (ଗଞ୍ଜାମ, ବଡ଼ଖେମୁଣ୍ଡୀ) ବି. ସାତଗୋଟି ପଣ୍ଡା ପୋତ୍ତୁଅଙ୍କୁ ଧରିକରି ଠିଆ କରାଇ ଠାକୁରାଣୀଙ୍କ ଆଗରେ ଏକାବେଳକେ ହଣାଯିବା ବଳି ।

ଗଜଭକ୍ଷକ — ବି.ପୁଂ.(ବ.ବ୍ରୀ)ଅଶ୍ୱତ୍ଥବୃକ୍ଷ ।

ଗଜଭକ୍ଷା — ବି.ସ୍ତ୍ରୀ. ଶଲ୍ଲକୀ ବୃକ୍ଷ,ଲୋବାନ୍ ବା ଗୁଗ୍ଗୁଳ ଗଛ ।

ଗଜଭୁକ୍ତ — ବିଂ. (ତତ୍ପ) ହାତୀକର୍ତ୍ତୃକ ଖିଆ ଯାଇଥିବା ।

ଗଜଭୁକ୍ତକପିତ୍ଥ — ବି.କ୍ଲୀ.(କ.ଧା)ହାତୀର ଖାଇବା କଇଁଥ ।

ଗଜଭୁକ୍ତକପିତ୍ଥବତ୍ — ଗ୍ରା (ପ୍ରବଚନ) ହାତୀ ଖାଇଥିବା କଇଁଥ ଫଳପରି ବାହାରେ ଅକ୍ଷୁଣ୍ଣ ଭିତର ଫମ୍ପା ଅନ୍ତଃ-ସାରଶୂନ୍ୟ

ଗଜମଣ୍ଡନ — ବି.କ୍ଲୀ. ହସ୍ତୀର ଅଳଙ୍କାର, ହସ୍ତୀଭୂଷଣ ।

ଗଜମଣ୍ଡଳିକା(ମଣ୍ଡଳୀ) — ବି.ସ୍ତ୍ରୀ. ହସ୍ତୀର ବେଷ୍ଟନାକାର ପରିଧି,ହସ୍ତୀସମୂହ,ସ୍ଥିର-ଆଡ଼େ ହାତୀଘେରିବାଦ୍ୱାରା କୃତମଣ୍ଡଳ ।

ଗଜମଣ୍ଡା — ଗ୍ରା.ବି. ମଝିରେ ଗୋଟିଏ ଗୋଜ ବା ଭୁଣ୍ଡି ବାହାରିଥିବା ବଡ଼ମଣ୍ଡା ପିଠା ।

ଗଜମତା — ଗ୍ରା.ବି. ଆଷାଢ଼ ମାସର ପ୍ରଥମ ପାଣି ବା ପିଠାପାଣି ବର୍ଷାପରେ ଆଖୁ-ଗଛ ଫୁଲିଯିବା ଓ ଭିତରୁ ଫମ୍ପା ହୋଇ-ଯିବା ରୋଗବିଶେଷ ।

ଗଜମଦହରଣୀ — ବି.ସ୍ତ୍ରୀ.ଶିବଲିଙ୍ଗୀ ଲତା

ଗଜମାଚଳ — ବି.ପୁଂ.ସ୍ତ୍ରୀ (ଗଜମ୍ + ଆ + ଚଲ୍ + ଅ) ସିଂହ ।

ଗଜମାଣିକ — ଗ୍ରା.ବି. ଗଜମୁକ୍ତା ।

ଗଜମାତ୍ର — ବିଂ. ତ୍ରି(ଗଜ + ମାତ୍ର)ଗଜ-ପରିମିତ ।

ଗଜମୁଆଁ — ଗ୍ରା.ବି.ଯେଉଁ ମୁଆଁର ଉପର ଦେଉଳଆ ବା ଗେଜଆ ହୋଇଥାଏ ।

ଗଜମୁକ୍ତା — ସ୍ତ୍ରୀ.ବି. (କ.ଧା) ହସ୍ତୀକୁମ୍ଭ-ଜାତ ଏକପ୍ରକାର ମୁକ୍ତା, ହାତୀମୁଣ୍ଡରୁ ବାହାରିବା ବହୁମୂଲ୍ୟର ମୁକ୍ତା ।

ଗଜମୁଖ — ପୁଂ.ବି.(ବ.ବ୍ରୀ)ଗଣେଶ, କ୍ଲୀ. ବି. (ତତ୍ପ) ହସ୍ତୀ-ମୁଖ,ହାତୀରମୁହଁ ।

ଗଜମୂର୍ଖ-ଗ୍ରା.ବିଂ.(ଉପମା) ଗଜପରମୂର୍ଖ, ଅତିମୂର୍ଖ ବା ନିର୍ବୁଦ୍ଧିଆ ।

ଗଜମୋଚନ — କ୍ଲୀ. ବି. ବିଷ୍ଣୁପୁରାଣୋକ୍ତ ଗଭୀର ଜଳରେ କୁମ୍ଭୀରଦ୍ୱାରା ଧୃତ ହସ୍ତୀର ବିଷ୍ଣୁଙ୍କଦ୍ୱାରା କୁମ୍ଭୀରଠାରୁ ଉଦ୍ଧାର ।

ଗଜମୋଟନ — ସ୍ତ୍ରୀ. ପୁଂ.ବି.(ଗଜ + ମୁଟ୍ + ଣିଚ୍ + ଅନ) ସିଂହ, (ସ୍ତ୍ରୀ) ଗଜମୋଟନୀ ।

ଗଜମୋତି — ବି.ଗଜମୁକ୍ତା(ଦେଖ) ।

ଗଜମୌକ୍ତିକ — କ୍ଲୀ.ବି.ଗଜମୁକ୍ତା (ଦେଖ)

ଗଜଯୂଥ — ବି. ହାତୀଙ୍କ ଦଳ ।

ଗଜଯୋଧୀ — ପୁଂ.ବି (ଗଜ + ଯୋଧିନ୍) ହାତୀ ଉପରେ ଚଢ଼ି ଯୁଦ୍ଧ କରୁଥିବା (ସେନା) ।

ଗଜର — ପ୍ରା. (ଭଦ୍ରକ) ଗର୍ଜନ, ଅନର୍ଥକ ବକାଶୋଧା, ଗୋଳମାଳ, ଗହଳ ।

ଗଜରା — ଗ୍ରା.ବି. ବଡ଼ ମୋଟଥିବା କର୍ଣ୍ଣ-ଭୂଷଣବିଶେଷ, ଗୋଜଆମୁଣ୍ଡି ବାହାରି-ଥିବା ହାତର ଖଡ଼ୁ, (ବିଂ) ଟଟକା (ଦୁଧ), ଗାଈଠାରୁ ଟଟକାଦୁହାଁ ଦୁଧ, ସଦ୍ୟପ୍ରସୂତା (ଗାଈ), ଗ୍ରା. ବି. ଘଣ୍ଟା ବାଜିବା ଶେଷରେ ଟିକିଏଛାଡ଼ି ଅଧିକା ଗୋଟେ ଦୁଇଟା ବାଡ଼େଇବା ।

ଗଜରାଖଡ଼ୁ — ଗ୍ରା. ବି. ସ୍ତ୍ରୀଲୋକମାନଙ୍କ ହାତରେ ପିନ୍ଧିବା ଏକପ୍ରକାର ଖଡ଼ୁ ।

ଗଜରାଜ — ଗ୍ରା. ବି. ଶ୍ରେଷ୍ଠହସ୍ତୀ,ଐରାବତ ହସ୍ତୀ ।

ଗଜଲ୍ — ଯା.ବି. ଏକ ଜାତୀୟସଙ୍ଗୀତ ।

ଗଜଲଣ୍ଡ — କ୍ଲୀ.ବି. ହାତୀର ମଳ,ହସ୍ତୀର ବିଷ୍ଠା ।

ଗଜବତ୍ — ତ୍ରି.ବିଂ. ଗଜବିଶିଷ୍ଟ, ଯହିଁରେ ହାତୀ ଅଛନ୍ତି ।

ଗଜବଦନ — ପୁଂ.ବି. (ବ.ବ୍ରୀ.) ଗଣେଶ, (କ୍ଲୀ.ବି.) ତତ୍ପ; ହାତୀମୁଖ ।

ଗଜବଲ୍ଲଭା — ସ୍ତ୍ରୀ.ବି. ଗିରିକଦଳୀ, ପାହା-ଡ଼ିଆ କଦଳୀ, ଶଲ୍ଲକୀ ବୃକ୍ଷ ।

ଗଜବୀଥି — ସ୍ତ୍ରୀ. ବି. ରୋହିଣୀ, ଆର୍ଦ୍ରା ଓ ମୃଗଶିରା ଏହି ତିନି ନକ୍ଷତ୍ରକୁ ଗଜବୀଥି କହନ୍ତି, ହସ୍ତୀପଂକ୍ତି, ହାତୀମାନଙ୍କର ଜଳରେ ଯିବା ଆସିବା ରାସ୍ତା ।

ଗଜବୀଥୀ — ସ୍ତ୍ରୀ. ବି. ରୋହିଣୀ,ଆର୍ଦ୍ରା ଓ ମୃଗଶିରା ନକ୍ଷତ୍ରତ୍ରୟ ।

ଗଜବେଲ — ଗ୍ରା. ବି. ଏକପ୍ରକାର ଲୁହା, କାନ୍ତଲୌହ । [ଶୃଙ୍ଗ ।

ଗଜବୋରୁ — ମାନଭୂମିସ୍ଥ ଗୋଟିଏ ଗିରି-

ଗଜବ୍ରଜ — ତ୍ରି. ବିଂ. ହସ୍ତୀପରି ଭ୍ରମଣ-ଶୀଳ, (ବିଂ)ହାତୀପଲ,ହସ୍ତୀସମୂହ ।

ଗଜଶାଳା — ବି. (ତତ୍ପ) ହାତୀଶାଳା ।

ଗଜଶିକ୍ଷା — ସ୍ତ୍ରୀ.ବି.ହାତୀଚାଳନା ଅଭ୍ୟାସ ।

ଗଜଶିରଃ — ପୁଂ. ବି. ଦୈତ୍ୟବିଶେଷ, ଗଣେଶ ।

ଗଜଶାସନ — ଯୋଗିନୀ ଓ ତନ୍ତ୍ରୋକ୍ତ କାମରୂପର ବାୟୁକୋଣସ୍ଥ ପବିତ୍ରସ୍ଥାନ ।

**ଗଜସାର**-ପୁଂ.ବି.ଜଣେ ଜୈନଗ୍ରନ୍ଥକାର ।

**ଗଜସାହ୍ୱୟ** — ପୁଂ. ବି. (ଗଜ+ସମ୍+ଆ+ହ୍ୱୟ)ହସ୍ତିନାପୁର,ପ୍ରାଚୀନ ଦିଲ୍ଲୀ ନଗର ।

**ଗଜସ୍କନ୍ଧ** — ପୁଂ.ବି. ଦୈତ୍ୟବିଶେଷ ।

**ଗଜସ୍ଥାନ** — କ୍ଲୀ.ବି.ଗଜଶାଳା,ହାତୀଶାଳା, ହାତୀରହିବା ଜାଗା ।

**ଗଜସ୍ନାନ** — ବି. ହାତୀଗାଧୁଆ,(ଲ. ଅର୍ଥ) ଗଜସ୍ନାନପରି ବୃଥା ଚେଷ୍ଟା ।

**ଗଜା** — ଗ୍ରା. ବି. ମିଷ୍ଟାନ୍ନବିଶେଷ, ଅଙ୍କୁର, ମଞ୍ଜିରୁ ଫୁଟି ବାହାରିଥିବା ସରୁକୋମଳ ଶିଳ, ଶାଖାରୁ ବାହାରିଥିବା କୋମଳ ଓ ନୂତନ ଶାଖା, (ବିଂ) ତରୁଣବୟସ୍କ, ନୂତନ-ନୂତନ ଗଜା ହୋଇଥିବା ।

**ଗଜାଇବା** — ଗ୍ରା.କ୍ରି. ଗଜୁରିବା(ଦେଖ) । କୌଣସି ଶସ୍ୟ ବା ମଞ୍ଜିକୁ କିଛିକାଳ ପାଣିରେ ବତୁରାଇ ତହିଁରୁ ଗଜା ବାହାରିବାର ଉପାୟ କରିବା ।

**ଗଜାକଡ଼ା** — ଗ୍ରା.ବି.(ଗଛର)ଅତିକୋମଳ କଡ଼ ।

**ଗଜାଖ୍ୟ** — ପୁଂ.ବି.ଗୁଳୁଣ୍ଡାଗଛ,ହସ୍ତିନାପୁର ।

**ଗଜାଗଛ** — ଗ୍ରା. ବି. ଛୋଟଗଛ, ଯେଉଁ ଗଛରେ ଫଳ ଧରି ନ ଥାଏ ।

**ଗଜାଗ୍ରଣୀ** — ପୁଂ. ବି. (୬ତତ୍ପୁ) ଐରାବତ ହସ୍ତୀ ।

**ଗଜାଜିନ** — ବି. (୬ତତ୍ପୁ) ହସ୍ତୀର ଚର୍ମ ।

**ଗଜାଜୀବ** — ପୁଂ.ବି.(ବ.ବ୍ରୀ)ହସ୍ତିପାଳକ, ହାତୀମାହୁନ୍ତ ।

**ଗଜାଣ୍ଡ** — କ୍ଲୀ.ବି. (ବ.ବ୍ରୀ) ଗାଜର ପରି ଏକଜାତୀୟ ମୂଳା ।

**ଗଜାତଲ** — ଗ୍ରା.ବି.ଧାନ ବିହନକୁ ଗଜା-କରି ବୁଣାଯିବା ପରେ ତହିଁରୁ ଯେ ତଲ (ଗ୍ରାମ୍ୟ) ଉଠେ, ରୁଆ ହେବାର ଉପଯୋଗୀ କ୍ଷୁଦ୍ର ଧାନଗଛ ।

**ଗଜାତୋଟା** — ଗ୍ରା.ବି.ଯେଉଁ ତୋଟାରେ ଗଛଗୁଡ଼ିକ ନୂଆହୋଇ ଲଗିଅଛି ।

**ଗଜାଦନ** — ପୁଂ.ବି. ଅଶ୍ୱତ୍ଥ ବୃକ୍ଷ ।

**ଗଜାଦନୀ**-ସ୍ତ୍ରୀ. ବି. ଅଶ୍ୱତ୍ଥବୃକ୍ଷ ।

**ଗଜାଦନାମା** — ସ୍ତ୍ରୀ. ବି. (ବ.ବ୍ରୀ) ଗଜପିପ୍ପଳୀ ।

**ଗଜାଧିପ** — ବି.(୬ତତ୍ପୁ)ଗଜରାଜ, ଇନ୍ଦ୍ରଙ୍କ ହସ୍ତୀ, ଐରାବତ ହସ୍ତୀ ।

**ଗଜାଧିପତି** — ବି.(୬ତତ୍ପୁ)ଗଜାଧିପ(ଦେଖ)

**ଗଜାଧ୍ୟକ୍ଷ** — ପୁଂ.ବି. (୬ତତ୍ପୁ) ହାତୀମାନଙ୍କର ତତ୍ତ୍ୱାବଧାରକ ।

**ଗଜାନନ** — ପୁଂ. ବି. (ବ.ବ୍ରୀ) ଗଣେଶ, (କ୍ଲୀ.ବି) ୬ତତ୍ ହାତୀର ମୁଖ ।

**ଗଜାନାଙ୍କ** — ପୁଂ. ବି. ବାଗୀଶ୍ୱର ଦେଶୀ-ଭକ୍ତ ବୈବସ୍ୱତ ଗୋତ୍ରଜ ଜଣେ ରାଜା ।

**ଗଜାନୀକ** — ପୁଂ. ବି. ହସ୍ତୀରୂପ ସୈନ୍ୟ, (ବି) ୬ତତ୍; ହସ୍ତୀର ଯୁଦ୍ଧ ।

**ଗଜାପସଦ** — ବି. (୬ତତ୍ପୁ)ନିକୃଷ୍ଟ ଗଜ ।

**ଗଜାବହଦ** — ଗ୍ରା. ବି. ନୂଆ ଉଠିଥିବା ମେଘ, ମେଘାଙ୍କୁର, ବର୍ଷାସୂଚକ ଦିଗନ୍ତ ବିସ୍ତୃତ ବୃକ୍ଷାକାର ନୀଳମେଘ ।

**ଗଜାବୟସ**-ଗ୍ରା.ବି.ଅଳ୍ପବୟସ,ଯୌବନ ।

**ଗଜାବୟସିଆ** — ଗ୍ରା. ପୁଂ. ବିଂ. ତରୁଣ-ବୟସ୍କ, ଯୁବକ,(ଗଡ଼ଜାତଗାଳି)ଛେଳି ବଅସିଆ, (ଦେଖ) ।

**ଗଜାବରଡ଼ା** — ଗ୍ରା. (ବାଲେଶ୍ୱର ଓ ଯାଜପୁର)ବି. ଶୁଷ୍କ ଓ ମଇ ଦିଆଯାଇଥିବା କାଦୁଅ ଜମିରେ ଗଜା କରାଯାଇଥିବା ଧାନକୁ ଛିଟିବା ।

**ଗଜାବେହଣ** — ଗ୍ରା. ବି. ଧାନଗଛ ଗଜା ହୋଇଥିବା ଅବସ୍ଥାରେ ବେହଣ କରାଯିବା ।

**ଗଜାମରୁଡ଼ି** — ଗ୍ରା. ବି. କ୍ଷେତରେ ବୁଣା-ହୋଇଥିବା ଧାନ ଗଜାହେବା ସମୟରେ ବର୍ଷା ନ ହେଲେ ଖରା ତେଜରେ ଧାନଗୁଡ଼ିକ ମରିଯିବା ।

**ଗଜାମୁଗ**-ଗ୍ରା.ବି.ଓଷାଆଦିରେ ଦେବପୂଜା ବା ଖାଇବାପାଇଁ ପାଣିରେ ବତୁରାହୋଇ ଗଜୁରିଥିବା ଗୋଟା ମୁଗ, ଗଜା ମୁଗ ପରସ୍ପର ମୁଖରେ ଦିଆଦେଇ ହୋଇ ବନ୍ଧ ବୃନ୍ଦରେ ଆବଦ୍ଧ ଥିବା ବ୍ୟକ୍ତିଦ୍ୱୟ ।

**ଗଜାରି** — ପୁଂ.ବି. (୬ତତ୍) ସିଂହ, ଗଜାସୁରନାଶନ, ଶିବ, ଆସାମଦେଶୀୟ ଶାଲବୃକ୍ଷବିଶେଷ ।

**ଗଜାରୂଢ଼** — ପୁଂ.ବିଂ.ଯେ ହାତୀରେ ଚଢ଼ିଥାଏ ।

**ଗଜାରୋହ** — ପୁଂ.ବି.ହସ୍ତୀପାଳ, ମାହୁନ୍ତ, ହସ୍ତୀ ଉପରେ ଆରୋହୀ ବ୍ୟକ୍ତି, (ବିଂ) ଜଷାଦୀ, ହସ୍ତୀ ପୃଷ୍ଠରେ ଉପବିଷ୍ଟ ।

**ଗଜାଶନ** — ପୁଂ. ବି. ଗଜଭକ୍ଷ, ଅଶ୍ୱତ୍ଥ ବୃକ୍ଷ, କମଳକନ୍ଦ,ପଦ୍ମକନ୍ଦା, ଶାଲବୃକ୍ଷ ।

**ଗଜାଶନା** — ସ୍ତ୍ରୀ.ବି. ଶଲ୍ଲକୀବୃକ୍ଷ, ଶାଲୁକ ଗଛ, ପଦ୍ମମୂଳ, ଭାଙ୍ଗ, ସିଦ୍ଧି ।

**ଗଜାସୁର** — ପୁଂ.ବି. ଗଜାକୃତି ଗୋଟିଏ ଅସୁର, ଏହାଙ୍କୁ ଶିବ ବଧ କରିଥିଲେ ।

**ଗଜାସୁରଦ୍ୱେଷୀ** — ପୁଂ.ବି.(୬ତତ୍)ମହାଦେବ, ଶିବ ।

**ଗଜାସ୍ୟ** — ପୁଂ.ବି(ବ.ବ୍ରୀ.)ଗଣେଶ, (କ୍ଲୀ.ବି)୬ତତ୍, ହାତୀର ମୁଖ ।

**ଗଜାହ୍ୱ** — କ୍ଲୀ.ବି. (ବ.ବ୍ରୀ.)ହସ୍ତିନାପୁର, ପ୍ରାଚୀନଦିଲ୍ଲୀ,(ପୁଂ.ବି.)ଗୋଟିଏପ୍ରଦେଶ, ନାଗେଶ୍ୱର ବୃକ୍ଷ ।

**ଗଜାହ୍ୱୟ** — କ୍ଲୀ.ବି.(ବ.ବ୍ରୀ)ହସ୍ତିନାପୁର ।

**ଗଜାହ୍ୱା** — ସ୍ତ୍ରୀ.ବି. ଗଜପିପ୍ପଳୀ, ହସ୍ତିନାପୁରୀ, ଶ୍ୱେତଯୂଇ, ଯୂଥିକା ଯୂପ ।

**ଗଜି** — ଗ୍ରା. ବି. କ୍ଷୁଦ୍ର କେଶକାଟ, ଅତି-ଛୋଟ ଉକୁଣୀ ।

**ଗଜୀ** — ସ୍ତ୍ରୀ. ବି.(ଗଜ+ଈ)ହାତୁଣୀ,ମାଈ ହାତୀ, (ବିଂ) ଦୁଇହାତ ଅର୍ଥାତ୍ ଏକ ଗଜ ପରିମିତ ।

**ଗଜୁରି** — ଗ୍ରା.ବି.ଶିଶୁମାନଙ୍କୁ ଧରିବା ଶ୍ୱାସ ରୋଗ ।

**ଗଜୁରିବା** — ଗ୍ରା.କ୍ରି, ଅଙ୍କୁରିତହେବା,ଗଜରିବା, ନୂଆ ଉଠିବା ।

**ଗଜେକ୍ଷଣ** — ପୁଂ.ବି.ଗଜଚକ୍ଷୁ, ଦାନବ-ବିଶେଷ ।

**ଗଜେନ୍ଦ୍ର** — ପୁଂ. ବି. (୬ତତ୍)ଗଜଶ୍ରେଷ୍ଠ, ଗଜମୁଖାଧିପତି, (ଅଗସ୍ତି ମୁନିଶାପରେ ଗଜଯୋନି ପ୍ରାପ୍ତ ଇନ୍ଦ୍ରଦ୍ୟୁମ୍ନ ରାଜା) ।

**ଗଜେନ୍ଦ୍ରଗଡ଼** — ମହାରାଷ୍ଟ୍ରରାଜ୍ୟର ଗୋଟିଏ ନଗର ।

ଗଜେନ୍ଦ୍ରଗମନ-ପୁଂ.ବିଂ.(ବ.ବ୍ରୀ) ଯାହାର ଗତି ହାତୀଗତିପରି ଧୀର,(ସ୍ତ୍ରୀ)ଗଜେନ୍ଦ୍ରଗମନା ।

ଗଜେନ୍ଦ୍ରଗାମୀ—ପୁଂ. ବିଂ. (ଗଜେନ୍ଦ୍ର+ଗମ୍+କ.ଇନ୍)ହାତୀପରି ଧୀର ଗମ୍ଭୀରଭାବରେ ଗତିଥିବା (ବ୍ୟକ୍ତି), (ସ୍ତ୍ରୀ) ଗଜେନ୍ଦ୍ରଗାମିନୀ ।

ଗଜେଷ୍ଟା—ସ୍ତ୍ରୀ. ବି. ଭୂମିକୁଷ୍ମାଣ୍ଡ, ଭୂଇଁକଖାରୁ ।

ଗଜୋଦର—ପୁଂ.ବି. ଦୈତ୍ୟବିଶେଷ ।

ଗଜୋଦ୍ଧାରଣ—ବି.(ତତ୍ଭ)ଗଜମୋଚନ (ଦେଖ) ।

ଗଜୋଦ୍ଧରଣବେଶ—ବି. ଜଗନ୍ନାଥାଦି-ଦେବବିଗ୍ରହଙ୍କର ଓ ବିଷ୍ଣୁଙ୍କର କୁମ୍ଭୀର ମୁଖରୁ ଗଜଉଦ୍ଧରଣରୂପ ପୌରାଣିକ ଉପାଖ୍ୟାନର ଅନୁରୂପ ବେଶ ।

ଗଜୋପକୁଲ୍ୟା—ସ୍ତ୍ରୀ. ବି. ଗଜପିପ୍ପଳୀ ।

ଗଜୋପମ-ପୁଂ.ବି.କୁମାଣ୍ଡ,ପିଇଁକୁଆଁଷି ।

ଗଜୋଷଣା—ସ୍ତ୍ରୀ. ବି. ଗଜପିପ୍ପଳୀ ।

ଗଞ୍ଜଡ଼ୁଆ—ଗ୍ରା. (ସମ୍ବ)ବିଂ. ଗଞ୍ଜଡ଼ ।

ଗଞ୍ଜ—ପୁଂ.ବି.(ଗନ୍ଜ+ଭା,ଅ)ଗଞ୍ଜଣା, ଅବମାନନା, (ଗନ୍ଜ+ଅଧି,ଅ)ଧନାଗାର, ଭଣ୍ଡାର ଗୃହ,ଶସ୍ୟାଦିର ବିକ୍ରୟସ୍ଥାନ, ହାଟ,ମଦଖଟି,ଗଞ୍ଜାଇ, କାଇଁଛ, ପର୍ଣ୍ଣଶାଳା, ମଦ୍ୟପାନ, ଗୋଗୃହ, ଗୁହାଳ ।

ଗଞ୍ଜଡ଼-ଗଞ୍ଜଡ଼ି—ଗ୍ରା.ପୁଂ.ବିଂ.ଗଞ୍ଜାଖୋର, ଯେ ବିଶେଷ ଗଞ୍ଜେଇ ଖାଏ ।

ଗଞ୍ଜଣା—ଗ୍ରା.ବି.ଖୁଣ୍ଟା, ଦୋଷ ପ୍ରଦର୍ଶନପୂର୍ବକ କଟୂକ୍ତି, ଭର୍ତ୍ସନା, ଗାଳି, ଲାଞ୍ଛନା, ଅବମାନନା,ଅବଜ୍ଞା, କଳଙ୍କ, ଯାତନା ଭୋଗ ।

ଗଞ୍ଜନ—ତ୍ରି. ବିଂ. (ଗନ୍ଜ+କ. ଅନ) ତିରସ୍କାରକ, ନିନ୍ଦାକାରୀ, ତୁଚ୍ଛକାରକ, ଯାହା ଲାଞ୍ଛିତ କରେ, ଦଣ୍ଡଦେବାଲୋକ,ବି.(ଗଞ୍ଜ+ଭା,ଅନ)ତିରସ୍କରଣ, ଗାଳିଦେବା, ଅତ୍ୟାଚାର, ଦଣ୍ଡଦେବା, ଅବମାନନା, ପରାଜିତ କରିବା, ବଳି ପଡ଼ିବା, ଅଷ୍ଟତାଳ ମଧ୍ୟରୁ ଏକତମ ।

ଗଞ୍ଜନା—ବି. (ଗଞ୍ଜନଶବ୍ଦଜ)ଗ୍ଲାନିସୂଚକ ବାକ୍ୟ, ଭର୍ତ୍ସନା, ଗଞ୍ଜଣା, ତିରସ୍କାର, ଲାଞ୍ଛନା ।

ଗଞ୍ଜପା—ଯା. ବି. ତାସ୍‌ଖେଳପରି ଏକପ୍ରକାର ଦେଶୀଖେଳ ।

ଗଞ୍ଜବର—ପୁଂ.ବି. କୋଷାଧ୍ୟକ୍ଷ,ଭଣ୍ଡାରରକ୍ଷକ ।

ଗଞ୍ଜମାନ୍—ଗ୍ରା.ପୁଂ.ବିଂ. ଲାଞ୍ଛିତ, ଦହଗଞ୍ଜ, ଦୁଃଖ ବା କଷ୍ଟ-ପ୍ରପୀଡ଼ିତ ।

ଗଞ୍ଜା—ସ୍ତ୍ରୀ. ବି. (ଗନ୍ଜ+ଅଧି.ଅ+ଆ) ପାମର ଲୋକର ଘର, ହାଟ ବସିବାର ସ୍ଥାନ, ମଦ୍ୟଭାଣ୍ଡ,ମଦଦୋକାନ,ଗଞ୍ଜେଇ, ସିଦ୍ଧି, (ଯା .ବି) ଅଣ୍ଡିରା କୁକୁଡ଼ା, ଖାସି କୁକୁଡ଼ା, (ଗ୍ରା.ବି) ନପୁଂସକ, ପୁରୁଷତ୍ୱହୀନ, ଗଞ୍ଜାମ ଜିଲ୍ଲାର ପୂର୍ବତନ ରାଜଧାନୀ ।

ଗଞ୍ଜାଇ-ଗଞ୍ଜେଇ—ଗ୍ରା. ବି. ସିଦ୍ଧିଗଛର ଶୁଷ୍କ ମଞ୍ଜରୀ, ଉତ୍କଟ ମାଦକଦ୍ରବ୍ୟବିଶେଷ, ଗଞ୍ଜେଇଗଛ ।

ଗଞ୍ଜାକଳୀ—ସ୍ତ୍ରୀ.ବି.ଗଞ୍ଜାଇଗଛର ଅଗରେ ବାହାରିବା କଳି ।

ଗଞ୍ଜାଗୋଲା—ଗ୍ରା.ବି.ଯେଉଁ ଗୋଦାମରେ ସରକାର କର୍ମଚାରୀଙ୍କ ତତ୍ତ୍ୱାବଧାନରେ ଗଞ୍ଜା ସଞ୍ଚିତ ହୋଇଥାଏ ।

ଗଞ୍ଜାଚଲମ—ଗ୍ରା. ବି. ଯେଉଁ ଦୁଦୁରା ପୁଷ୍ପାକୃତିନଳରେ (ମାଟି ତିଆରି ଚଲମ) ଦଳା ଗଞ୍ଜାଇକୁ ରଖି ନିଆଁ ଲଗାଇ ଲୋକେ ଧୂଆଁ ଟାଣି ପିଅନ୍ତି ।

ଗଞ୍ଜାମ—ଉତ୍କଳ ପ୍ରଦେଶର ଦକ୍ଷିଣ ଦିଗର ଗୋଟିଏ ଜିଲ୍ଲା ।

ଗଞ୍ଜି—ଯା. ବି. ଏକପ୍ରକାର ଛୋଟ କୁରୁତା ।

ଗଞ୍ଜିକା—ସ୍ତ୍ରୀ. ବି. (ଗଞ୍ଜ+ଇକ+ଆ) ମଦ୍ୟଗୃହ, ମଦଦୋକାନ, ଗଞ୍ଜାଇ ।

ଗଞ୍ଜିତ—ବିଂ. (ଗଞ୍ଜ+ର୍ମ,ତ) ଗଞ୍ଜନାପ୍ରାପ୍ତ, ଦହଗଞ୍ଜ, ଅବମାନିତ ।

ଗଞ୍ଜଫରାକ ବା ଗଞ୍ଜଫରାସ୍—ଯା. ବି. ଆଣ୍ଠୁ ଛୋଟ କୁରୁତା ।

ଗଞ୍ଜିବା—ଗ୍ରା. କ୍ରି. (ସଂ-ଗଞ୍ଜନ)ଭର୍ତ୍ସନ କରିବା, ଅପମାନିତ କରିବା, ନିନ୍ଦିବା, ନିନ୍ଦାକରିବା,ପୀଡ଼ାଦେବା, ଦଣ୍ଡଦେବା, ଜିଣିବା,(ଲକ୍ଷଣାର୍ଥ)ବଳିଯିବା,ଭର୍ତ୍ତିବା, ଦମନକରିବା ।

ଗଟ୍—ଗ୍ରା. କ୍ରି. ବିଂ. ଘଟବତ୍ ନିଶ୍ଚଳ ଭାବରେ, ଅବିଚଳିତ ଭାବରେ, ଦୃଢ଼ରୂପେ, କୌଣସି ଅଭିପ୍ରେତ କାର୍ଯ୍ୟ ନିମନ୍ତେ ପ୍ରସ୍ତୁତ ହେବା ।

ଗଟାପର୍ଚ୍ଚା—ଯା.ବି. ମାଳୟ ଦ୍ୱୀପପୁଞ୍ଜର କେତେକ ବୃକ୍ଷର ଅଠାକୁ ଶୁଖାଇ ଘନୀଭୂତ କରି ତହିଁରୁ ପ୍ରସ୍ତୁତ କରିବା ଉପର ପରି ବସ୍ତୁ ।

ଗଠଣ—ଗ୍ରା. ବି. ଗଠନ (ଦେଖ) ।

ଗଠନ—କ୍ଲୀ.ବି.(ଗଠ୍+ଭା,ଅନ)ନିର୍ମାଣ, ତିଆରି, ଗଢ଼ା, ରଚନା, ପ୍ରସ୍ତୁତକରଣ, ଗଢ଼ଣ ।

ଗଠନପ୍ରଣାଳୀ—ସ୍ତ୍ରୀ. ବି. (୬ତତ୍ଭ)ନିର୍ମାଣ ପଦ୍ଧତି ।

ଗଠନଶୀଳ—ଗ୍ରା. ବିଂ. (ବ.ବ୍ରୀ)କୌଣସି ବିଷୟକୁ ଗଢ଼ିବାର ପ୍ରକୃତିବିଶିଷ୍ଟ, ଗଢ଼ିବାର କୁଶଳ ।

ଗଠିତ—ବିଂ. (ଗଠ୍+ର୍ମ,ତ) ପ୍ରସ୍ତୁତ, ନିର୍ମିତ, ରଚିତ, ଆକାରବିଶିଷ୍ଟ ।

ଗଡ଼୍‌ଗଡ଼୍—ଗ୍ରା. ଅବ୍ୟ. (ସଂ-ଘର୍ଘର) ଟାଣ ଭୂମିରେ ଶଗଡ଼ ଗଡ଼ିଯିବା ଶବ୍ଦ, ଉଚ୍ଚ ସ୍ୱରରେ ବିନା ବାଧାରେ କଥା କହିଯିବା ପ୍ରକାର, ଘଡ଼ ଘଡ଼ ଠାରୁ ନିମ୍ନସ୍ୱର ।

ଗଡ଼୍‌ଦମ୍‌ଗୋଳ—ଗ୍ରା. (ସମ୍ବ) ବି. ହଟ୍ଟଗୋଳ, ଗୋଳମାଳ, ଘୋଘା, ଦଙ୍ଗାହାଙ୍ଗମା ।

ଗଡ଼୍‌ବଡ଼୍—ଗ୍ରା.ବି.ଗୋଳମାଳ, କୋଳାହଳ, ଘୋ-ଘା, ଲେଉଟ ପାଉଟ, ପେଟ ବିଗିଡ଼ିବା, ଓଲଟପାଲଟ, ମନରେ ଜନ୍ମିବା ସନ୍ଦେହ, କପଟ, କୌଣସି କାର୍ଯ୍ୟ ଶୀଘ୍ର କରି ନ ଯାଇ ପଡ଼ି ରହିବା ଅବସ୍ଥା ।

ଗଡ଼—ପୁଂ. ବି. (ଗଡ଼+କ.ଅ) ମତ୍ସ୍ୟବିଶେଷ, ଅନ୍ତରାୟ, ପରିଖା, ବ୍ୟବଧାନ,

ଦେଶ ବଦେଶ, ଶାମ୍ବର, ଦୁର୍ଗ, ବାଧା, ପର୍ଦା, ବାଡ଼, ଗଡ଼ଜାତ ରାଜ୍ୟର ରାଜଧାନୀ,(ଗ୍ରା.ବ) ସାମାନ୍ୟରାଜ୍ୟ, କୌଣସି ଲମ୍ବ ପଦାର୍ଥର ଖଣ୍ଡିତ ଅଂଶ, ବୃକ୍ଷର ଶାଖାସ୍ଥାନ ଗଣ୍ଡି. ଗଣ୍ଡିକାଠର ମୋଟ ଓ ଲମ୍ବ ଖଣ୍ଡ, ଲମ୍ବ ଓ ସ୍ଥୂଳ ବସ୍ତୁ, ଦେହ, ମସ୍ତକସ୍ଥାନ ଦେହ, ଖଣ୍ଡ, ବିଭାଗ, ପ୍ରା. (ଜଙ୍ଗଲୁକ) ଶସ୍ୟାଦ୍ଧ ମାପିବାର ପରିମାଣବିଶେଷ, ଧାନ ହଳାର ନିର୍ଦ୍ଦିଷ୍ଟ ସଂଖ୍ୟା ।

ଗଡ଼କ—ପୁଂ.ବି. ( ଗଡ଼୍ + କ ) ଛୋଟ ଶେଉଳ ମାଛ,ଗଡ଼ୁଶାମାଛ,ଚେଙ୍ଗମାଛ ।

ଗଡ଼କାଠ—ପ୍ରା. (ବଙ୍ଗ) ବି. ଢେଙ୍କିମୁଣ୍ଡା କାଠ ।

ଗଡ଼ଖାଇ—ଗ୍ରା. ବି. ( ଗଡ଼ଖାତଶବ୍ଦଜ ) ଦୁର୍ଗର ଚତୁର୍ଦ୍ଦିଗରେ ଯେ ଖାଲ ଥାଏ, ପରିଖା, ଜଳୀ ।

ଗଡ଼ଖାନା—ଗ୍ରା. ବି. (ଗଡ଼ଖାନଶବ୍ଦଜ) ଗଡ଼ଖାଇ, ପରିଖା, ଜଳୀ ।

ଗଡ଼ଗଡ଼—ଗ୍ରା. ଅବ୍ୟ, ଏକପ୍ରକାର ଘାସ, ଗଡ଼୍ ଗଡ଼୍,ଖଣ୍ଡଖଣ୍ଡ,ଗଡ଼୍ ଗଡ଼୍ (ଦେଖ) ।

ଗଡ଼ଗଡ଼ା—ଗ୍ରା. ବି. ଭୂମିରେ ଶରୀର ଚକପରି ଗଡ଼ି ଗଡ଼ି ଯିବା, ଚକପରି ଅରେ ଘୂରିବା, ଭୂମିରେ ଗୋଲକାର ବସ୍ତୁର ଗଡ଼ିବା ଅବସ୍ଥା, କାମ ସରିଲା ପରେ ଖାଲିପାଇ ଭୂମିରେ ଗଡ଼ୁଥିବା, (ଲକ୍ଷଣାର୍ଥ) ଦରକାର ବା ବ୍ୟବହାର ଶେଷ ହେବାପରେ ଅନାଦୃତ ହେବା ।

ଗଡ଼ଗଡ଼ିଆ—ଗ୍ରା. ବି. ଅଳଙ୍କାର ଭେଦ, ଗରଗଡ଼ିଆ; କଟକଠାରେ ମହାନଦୀର ଗୋଟିଏ ଘାଟ ।

ଗଡ଼ଗାଁ-ଆସାମର ଶିବାସାଗର ଜିଲ୍ଲାନ୍ତର୍ଗତ ଗୋଟିଏ ପ୍ରାଚୀନ ନଗର ଓ ଗଡ଼ ।

ଗଡ଼ଘାଲି—ଗ୍ରା. ପ୍ରା. କ୍ରି. ବିଂ. ମୁଣ୍ଡକୁ ଭୂମିରେ ଲଗାଇ(ପ୍ରଣାମ କରିବା)ଦଣ୍ଡବତ ପ୍ରକାରେ ।

ଗଡ଼ଘାଲିବା—ଗ୍ରା.କ୍ରି. ମୁଣ୍ଡକୁ ଭୂଇଁରେ ଲଗାଇ ଦଣ୍ଡବତ କରିବା, ମୁଣ୍ଡ ଘାଲିବାରୁ ଭୂଇଁରେ ପଡ଼ିଯିବା ବା ଟଳିପଡ଼ିବା, ମୁଣ୍ଡ ନୁଆଇଁ ଶିକାରକୁ ଛକି ରହିବା, ଗଡ଼ଘାଲି ଶୋଇବା ।

ଗଡ଼ଜାତ—ଗ୍ରା. ବି. ରାଜୋଡ଼ା ଇଲାକା, ଦେଶୀୟ ରାଜାମାନଙ୍କ ଶାସିତ ରାଜ୍ୟ ।

ଗଡ଼ଜାତିଆ—ଗ୍ରା.ବିଂ. ଗଡ଼ଜାତବାସୀ, ଗଡ଼ଜାତସମ୍ବନ୍ଧୀୟ ।

ଗଡ଼ଡ଼ଡ଼—ଗ୍ରା. ବି. ଗୋପନ କରିବା, ଭୂମିରେ ଲମ୍ବହୋଇ ଶୋଇବା ବା ଗଡ଼ିବା,(ଗ୍ରା.ବିଂ) ଭୂମିରେ ଗଡ଼ୁଥିବା ।

ଗଡ଼ଡିଆ—ପ୍ରା. (ସମ୍ବ) ବି. ଗଡ଼ରକ୍ଷକ, ଜମିଦାର ଓ ଗଡ଼ନାୟକଙ୍କ ଉପାଧି, କୋଲଡା ଜାତିର ବଂଶୋପାଧିବିଶେଷ ।

ଗଡ଼ଦେଶଜ—କ୍ଲୀ. ବି. ଶାମ୍ବରଦେଶଜାତ ଲବଣ ।

ଗଡ଼ନାୟକ—ଗ୍ରା. ବି. ଗଡ଼ରକ୍ଷୀ ପାଇକଙ୍କ ସର୍ଦ୍ଦାର, ପାଇକମାନଙ୍କ ଉପାଧିବିଶେଷ ।

ଗଡ଼ନ୍ତ—ଗ୍ରା. ବିଂ. ଗଡ଼ନ୍ତିଆ(ଦେଖ),ବି. ନିମ୍ନୋନ୍ନ ପଥ ବା ସ୍ଥାନ, ଢାଲୁ ରାସ୍ତା ।

ଗଡ଼ନ୍ତିଆ—ଗ୍ରା.ବିଂ. ନିମ୍ନୋନ୍ନ ଗଡ଼ାଣିଆ, ଢାଲୁ ।

ଗଡ଼ପ୍-ଗ୍ରା.ବିଂ. ଗୋପନ କରାଯାଇଥିବା, ହଜିଥିବା,ଅନିର୍ଦ୍ଦେଶ୍ୟ, ଆତ୍ମସାତ୍କୃତ ।

ଗଡ଼ପଡ଼—ଗ୍ରା. ବି. ଗୋପନ କରିବା, ଭୂମିରେ ଲମ୍ବହୋଇ ଶୋଇବା ବା ଗଡ଼ିବା, କୌଣସି କାର୍ଯ୍ୟ ଶୀଘ୍ର କରା ନ ଯାଇ ପଡ଼ି ରହିବା ଅବସ୍ଥା, (ଗ୍ରା.ବିଂ) ଭୂମିରେ ଗଡ଼ୁଥିବା ।

ଗଡ଼ପଡ଼ିବା—ଗ୍ରା.ବି.ରୋଗରୁ ବା ଖାଦ୍ୟାଭାବରୁ ଶରୀର ଅବସନ୍ନ ହେବା ଓ ଭୂମିରୁ ଉଠିବାକୁ ଶକ୍ତି ନ ରହିବା ।

ଗଡ଼ପାକ—ଗ୍ରା.(ପ୍ରାଚୀନ)ବି. ନ୍ୟାୟାନୁମୋଦିତ ସାଂସାରିକ ବ୍ୟବହାର ।

ଗଡ଼ଫସଲ—ଗ୍ରା.ବି. ଭଣ୍ଡାଭଣ୍ଡି କରିବା, ଦଗାବାଜି, ପ୍ରତାରଣା, କୌଣସି କାର୍ଯ୍ୟକୁ ହଁ କରିବା ହଁ କରିବା ବୋଲି ପକାଇ ରଖିବା ।

ଗଡ଼ବଡ଼—ଗ୍ରା.ବି.ଗଡ଼୍ ବଡ଼୍ (ଦେଖ) ।

ଗଡ଼ବନ୍ଧ—ଗ୍ରା. ବି. ଗଡ଼ବନ୍ଧନ, ଗଡ଼ ନିର୍ମାଣ ।

ଗଡ଼ବିଷାଇ—ପ୍ରା. (ସିଂହ) ବି. ଗଡ଼ ବା କିଲ୍ଲାର ତତ୍ତ୍ୱାବଧାରକ, ରାଜକୀୟ କର୍ମଚାରୀ ।

ଗଡ଼ମ୍ ପକାଇବା—ପ୍ରା.(ସମ୍ବ) କ୍ରି.ଦେଡ଼ା ବା ଡବଲ ମୂଲ୍ୟରେ କୌଣସି ଦ୍ରବ୍ୟକୁ ନେବାକୁ ଅନ୍ୟକୁ ବାଧ୍ୟ କରିବା ।

ଗଡ଼ମଠ—ଗ୍ରା. ବି. ବିଳମ୍ବ,ଡେରି, ଦୀର୍ଘସୂତ୍ରତା, ହଁ କରିବା ହଁ କରିବା ବୋଲି କହି ବିଳମ୍ବ କରିବା । [ସୂର୍ଦ୍ଦୀ ।

ଗଡ଼ମଠୁଆ—ଗ୍ରା. ପୁଂ.ବିଂ. ମଠୁଆ,ଦୀର୍ଘ-

ଗଡ଼ମଣ୍ଡଳ—ମଧ୍ୟପ୍ରଦେଶର ଗୋଣ୍ଡବାନାର ଅନ୍ତର୍ଗତ ଗୋଟିଏ ବିସ୍ତୃତ ବିଭାଗର ନାମ, ମଧ୍ୟ ଭାରତର ରାଜ୍ୟବିଶେଷ ।

ଗଡ଼ମାରୁ—ଗ୍ରା. ବି. ଡକାଇତି, ଗଡ଼ଜୟ କରିବା ରୂପ ଉତ୍ପାତ ବା ଅତ୍ୟାଗ୍ରହ, (ଗ୍ରା.ବି) ଅବିଶ୍ୱାସୀ, ଡକାଇତିଯୁକ୍ତ କର୍ମ । [ ଅଷ୍ଟଳ ।

ଗଡ଼ମାଳ—ଗ୍ରା.ବି.ଗଡ଼ଜାତପରିସ୍ଥାନ ବା

ଗଡ଼ମାଳି(ମାଳିଆ)—ଗ୍ରା. ବି. ଗଡ଼ଜାତର ଧନୀ ଓ ରାଜଦ୍ୱାରରେ ସମ୍ମାନିତ ପରିବାର ବା ବଂଶ,ଓଡ଼ିଆ ଭଣ୍ଡାରି ଜାତିର ଶାଖାଭେଦ, (ଗ୍ରା. ବିଂ) ଗଡ଼ଜାତର ଅଧିବାସୀ ସମ୍ଭ୍ରାନ୍ତ (ପରିବାର) ।

ଗଡ଼ୟନ୍ତ୍ର,ଗଡ଼ୟିନ୍ତୁ—ବି. (ଗଡ଼ + ଶିନ୍ତ୍ ଅନ୍ତ) ମେଘ ।

ଗଡ଼ରି—ପ୍ରା. (ସମ୍ବ) ବି. ମେଣ୍ଢା, ମାଈମେଣ୍ଢା ।

ଗଡ଼ରେ—ଗ୍ରା.କ୍ରି.ବିଂ. ସ୍ଥୂଳତଃ,ମୋଟାମୋଟି, ହାରାହାରି ।

ଗଡ଼ଲବଣ—ବି. ଗଡ଼ ଦେଶର ଖଣିରୁ ବା ପାହାଡ଼ରୁ ମିଳିବା ଲୁଣ ।

ଗଡ଼ସୁନ୍ଦର—ଗ୍ରା.ବି. ଏକଜାତୀୟ ବୃକ୍ଷ ।

ଗଡ଼ା—ଗ୍ରା.ବି. (ସଂ-ଗାତ)ମୋଟ ଲୁଗାର ଥାନ, ଉଚ୍ଚ ସଡ଼କ ଓ ବନ୍ଧ ଉପରୁ ତଳକୁ ଗାଡ଼ିଆଦିସହଜରେ ଓହ୍ଲାଇବା ନିମନ୍ତେ ପ୍ରସ୍ତୁତ ହୋଇଥିବା ନିମ୍ନୋନ୍ନ ପଥ, ଘୋଷରା, ଭୂମିରେ ଗଡ଼ିବା, ଗୃହଦ୍ୱାରରେ କାଠ ବାଡ଼ ପରିବେଷ୍ଟିତ

ସ୍ଥାନ, ଯେଉଁ ନାଳଦ୍ୱାରା ପାଣି ଗଡ଼ାଇ ମାଛ ଧରାଯାଏ, ଡୁଡୁ ଖେଳରେ ଉଭୟ ପକ୍ଷ ଖେଳାଳୀଙ୍କର ମଧ୍ୟବର୍ତ୍ତୀ ସୀମା ନିର୍ଦ୍ଦେଶକ ରେଖା, (ଗ୍ରା.ବଂ) ଲେଟିଥିବା, ଗଡ଼ୁଥିବା, ପ୍ରା.(ସମ୍ବ)ବ. ଜନ୍ତା ଛୋଟ ଚକ ଲାଗିଥିବା ଗାଡ଼ି, ଗୋଡ଼ିଆ ।

ଗଡ଼ାଇବା — ଗ୍ରା. କ୍ରି. ଗଡ଼ିବାର ଣିଜନ୍ତ ରୂପ. କୌଣସି ଜଳୀୟ ବସ୍ତୁକୁ ଉଚ୍ଚ ସ୍ଥାନରୁ ନିମ୍ନକୁ ବୁହାଇବା,(ଚକପ୍ରଭୃତି) ବର୍ତ୍ତୁଳାକାର ପଦାର୍ଥକୁ ଭୂମିରେ ଗଡ଼ କରାଇବା ବା ଲେଟାଇବା, ( ସମୟ ) ଅତିକ୍ରାନ୍ତ କରିବା, (ନିରୁପିତକାଳକୁ) କଟାଇବା, (ମାଳାକୁ) ଗୋଟି ଗୋଟି କରି ଜପିବା, (ଶଗଡ଼ ଆଦିକୁ) ନିମ୍ନକୁ ଗଡ଼ କରାଇବା, ବେଖାତିର କରିବା, ଅନାଦର କରିବା, ଏଡ଼ିବା, ବଡ଼ ଗଛକୁ ବା କାଠକୁ ସାନ ସାନ ଗଡ଼ରେ ପରି-ଣତ କରିବା, ଗଡ଼ ଗଡ଼ କରି କାଟିବା, ପାତ୍ରରୁ ଜଳୀୟ ବସ୍ତୁକୁ ତଳକୁ ଅଜା-ଡ଼ିବା, (ଆଖିରୁ ଲୁହ, ପାଟିରୁ ନାଳ) ବୁହାଇବା ।

ଗଡ଼ାଇମାରିବା — ଗ୍ରା.କ୍ରି.ଖାଦ୍ୟ ନ ଦେଇ ବା ଅଳ୍ପ ଖାଦ୍ୟଦେଇ କୌଣସି ବ୍ୟକ୍ତି ଛଟପଟ ହୋଇ ମରିବାର ଉପାୟ କରିବା ।

ଗଡ଼ାକାଟି—ପ୍ରା. ( ସିଂହଭୂମ୍ )ବିଛଣା ।

ଗଡ଼ାଗଡ଼ି — ଗ୍ରା. ବି. ଭୂମିରେ ପଡ଼ି ଦେହକୁ ଲେଟାଇବା. (ବିଂ) ଭୂମିରେ ଲୁଣ୍ଠିତ ।

ଗଡ଼ାଣି(ଆ) — ଗ୍ରା.ବଂ. ନିମ୍ନଗ, ଢମନିମ୍ନ, ଢାଲୁ , ଉଚ୍ଚରୁ ନୀଚ ଆଡ଼କୁ ନିମ୍ନହୋଇ ଯାହା ଆସିଅଛି ।

ଗଡ଼ି — ପୁଂ. ବି. (ଗଡ଼ + ଇ) ବାଛୁରି, ମୃତଛୁଆ, ଅମଣିଆବଳଦ, ଅଳସୁଆ ଦାମୁଡ଼ି ବଳଦପ୍ରଭୃତି, ଗଡ଼ସ୍ଥା (ଗ୍ରା.ବି) ଲମ୍ବ ମୋଟ କାଠଖଣ୍ଡ, ଘର ଗୃହର ଲମ୍ବପଟି ଅଂଶ ବା ଗରି, ସ୍ରୋତସ୍ୱତୀ ନଦୀର ଯେଉଁ ଉଚ୍ଚ ଅଂଶରୁ ଗମ୍ଭୀରତର ନିମ୍ନ ଅଂଶକୁ ପାଣି-ସ୍ରୋତ ଗଡ଼ି କରି ବହେ, ଗରି ।

ଗଡ଼ିଆ — ଗ୍ରା.ବି. କ୍ଷୁଦ୍ର ପୁଷ୍କରିଣୀ, ଯେଉଁ ବଳଦ ଯୋଚଲେ ଯାଏ ନାହିଁ, (ଗ୍ରା. ବିଂ) ଗଡ଼ଜାତଆ, ଗଡ଼ୁଆ, ପ୍ରା. (ବାଲେଶ୍ୱର) ବି. ମାଙ୍କଡ଼ସା ।

ଗଡ଼ିଏ—ଗ୍ରା. ବି. ଓ ବିଂ. (ଆଦରାର୍ଥ ) ଏକ ଗଡ଼ମାତ୍ର, ଗଡ଼େ ।

ଗଡ଼ିପଡ଼ିବା—ଗ୍ରା. କ୍ରି. ଉଚ୍ଚ ଜାଗାରୁ ତଳକୁ ପଡ଼ିଯିବା ।

ଗଡ଼ିବନ୍ଧା—ଗ୍ରା. ବି. ଯେଉଁ ଫାଳିଆ ବାଉଁଶରେ ଘରଗୃହ ନ ଉଡ଼ିବା ସକାଶେ ଗଡ଼ିର ଛଣଆଦି ବନ୍ଧାଯାଏ ।

ଗଡ଼ିବା — ଗ୍ରା. କ୍ରି. ଲୁଣ୍ଠିତ ହେବା, ଭୂମିରେ ଲୁଟିବା, (କାଳ) ଅତିବାହିତ ହେବା, ଉପରୁ ତଳକୁ ଖସିବା, (ଶଗଡ଼ ଚକ) ଭୂମିରେ ଘୂରି ଘୂରି ଗତିକରିବା, (ଜଳସ୍ରୋତ) ଉପରୁ ତଳକୁ ବହିବା, (ମନୁଷ୍ୟର ଆଖିରୁ ଲୁହ ଓ ପାଟିରୁ ନାଳର ଧାର) ବହିବା, ( ଖାଦ୍ୟାଭାବରୁ ଭୋକରେ ଶବପରି) ଭୂମିରେ ଲେଟିବା ବା ଛଟପଟ ହେବା, (ଖାଦ୍ୟ) ଜୀର୍ଣ୍ଣ ନ ହୋଇ ପେଟରେ ଗଡ଼ବଡ଼ ହେବା ବା ମଥିତ ହେବା, ଉଦ୍ଧପରି ହେବା, (ହିଂସ୍ରଜନ୍ତୁ) ପର୍ବତ ବା ଅରଣ୍ୟରୁ ନିମ୍ନ-ଭୂମିକୁ ବା ଗ୍ରାମକୁ ଆସିବା, ଓହ୍ଲାଇ ଆସିବା, (ବର୍ତ୍ତୁଳ ବସ୍ତୁ) ଇତସ୍ତତଃ ସଞ୍ଚାଳିତହେବା, ରୋଗଯୋଗୁଁ ଦେହର କୌଣସି ଅଂଶରୁ ଜଳ ବା ରକ୍ତ ଅନ୍ୟ ଅଂଶରେ ଆସି ଜମା ହେବା, କୌଣସି ସ୍ଥାନରେ ଆସି ଉପସ୍ଥିତ ହେବା, (ତାରିଖ) ସ୍ଥଗିତ ହେବା ।

ଗଡ଼ିମରିବା — ଗ୍ରା. କ୍ରି. ଅନାହାରରେ ମରିବା, ଖାଦ୍ୟାଭାବରୁ ଛଟପଟ ହୋଇ ପ୍ରାଣତ୍ୟାଗ କରିବା ।

ଗଡ଼ିଯିବା — ଗ୍ରା. କ୍ରି. ସ୍ତ୍ରୀମାନଙ୍କର ମାସିକ ଋତୁ ସମୟ ଟପିଯିବା, ନିର୍ଦ୍ଦିଷ୍ଟ କାଳରୁ ବଳିଯିବା । [ ମାଛ ।

ଗଡ଼ିଶା—ଗ୍ରା. ବି. ଶୋଉଳଜାତୀୟ ଛୋଟ

ଗଡ଼ୁ — ପୁଂ.ବି. (ଗଡ୍ + ଉନ୍)ଗଳଗଣ୍ଡ ରୋଗବିଶେଷ, ପିଠିର କୁଜ, ଗଣ୍ଡି, ଗର୍ଣ୍ଣି, କେଞ୍ଚୁଆ, ବର୍ଚ୍ଛୀ, ଜଳପାତ୍ର, ବେଦକାର୍ଯ୍ୟଶେଷ ବସ୍ତୁ,(ବିଂ) କୁବ୍ଜ, କୁଜା, (ଗ୍ରା.ବି) ଲୋଟା, ଢାଳ ।

ଗଡ଼ୁଆ — ଗ୍ରା.ବିଂ. ଗଡ଼ଜାତର ରାଜଧାନୀ ବା ଗଡ଼ରେ ବାସ କରୁଥିବା (ବ୍ୟକ୍ତି) ।

ଗଡ଼ୁକ-ବି'ପୁଂ.(ଗଡ଼ୁ + କ)ଗଡ଼ୁ,ଜଳ-ପାତ୍ରବିଶେଷ, ଋଷିବିଶେଷ, ହାତ-ଆଙ୍ଗୁଳିର ମୁଦି ।

ଗଡ଼ୁର — ବିଂ.ତ୍ରି. (ଗଡ଼ୁ + ର + କ,ଅ) କୁଜା, କୁବ୍ଜବିଶିଷ୍ଟ, କୁବ୍ଜ ।

ଗଡ଼ୁଳ — ତ୍ରି. ବିଂ.(ଗଡ଼ୁ + ଲା + କ.ଅ) କୁଜା,କୁବ୍ଜବିଶିଷ୍ଟ, କୁବ୍ଜ ।

ଗଡ଼ୁଶିରଃ-ତ୍ରି.ବିଂ.(ବ.ବ୍ରୀ)ଯାହାମୁଣ୍ଡରେ ମାଂସ ବୃଦ୍ଧିକାରକ ରୋଗ ଅଛି ।

ଗଡ଼େଇ ତଡ଼େଇ ମାରିବା — ଗ୍ରା. କ୍ରି. ଗୋଟିଏ ବ୍ୟକ୍ତି ଭୂମିରେ ପଡ଼ିବା ଓ ଗଡ଼ୁଥିବା ଅବସ୍ଥାରେ ନିର୍ଦ୍ଦୟ ମାଡ଼-ଦେବା ।

ଗଡ଼େଇତଡ଼େଇ ହେବା—ଗ୍ରା. କ୍ରି. ଭୂମିରେ ବା ଶଯ୍ୟାରେ ଉପର୍ଯ୍ୟୁପରି ପାର୍ଶ୍ୱ ପରିବର୍ତ୍ତନ କରି ଲେଟିବା, ଶଯ୍ୟାରେ ଚେଇଁ ଶୋଇବା ।

ଗଡ଼େର — ପୁଂ.ସ୍ତ୍ରୀ.ବି. (ଗଡ଼ + କ,ଏର) ମେଷ, ଗଡ଼ର, ମେଣ୍ଢା, ମେଣ୍ଢୀ, ଜଳ-ସ୍ରୋତ, ମେଘ ।

ଗଡ଼ୋତ୍ଥ — କ୍ଲୀ.ବି. (ଗଡ଼ + ଉତ୍ଥ)ଶାମ୍ଭର ଦେଶୋତ୍ପନ୍ନ ଲବଣବିଶେଷ ।

ଗଡ଼ୋଲ—ପୁଂ.ବି.(ଗଡ଼ + ଓଲ) ଗୁଡ଼, ଗ୍ରାସ, ଗୁଡ଼ୁକ, ଗୁଳି ।

ଗଡ୍ଡୁକ — ବି.(ଗଡ଼୍ + ଡକ)ସୁନାରକୁମ୍ଭ, ସ୍ୱର୍ଣ୍ଣଘଟ, ଗଡ଼ୁ ।

ଗଡ୍ଡର—ପୁଂ.ବି. (ଗଡ଼ + ଡର) ମେଷ, ମେଣ୍ଢା, ଗାରଡ଼, (ବୋଦା ବା ଲଡ଼ୁଆ ମେଣ୍ଢା) ମେଘ, ଗୁଡ଼ ।

ଗଡ୍ଡରିକ—ବିଂ.(ଗଡ୍ଡର + ଇକ)ମେଣ୍ଢା-ସମ୍ବନ୍ଧୀୟ, (ବି.) ମେଣ୍ଢା ବ୍ୟବସାୟୀ ।

ଗଡ୍ଡରିକା — ସ୍ତ୍ରୀ. ବି. (ଗଡ୍ଡର + କ.ଆ) ଅଜ୍ଞାତପ୍ରବାହ ମୂଳଧାରାବାହିନୀ ନଦୀ-ବିଶେଷ, ଜଳପ୍ରସ୍ରବଣ, ସ୍ରୋତ, ଅବି-

ଚ୍ଛିନ୍ନ ଗତ, ମେଣ୍ଢାପଲ ଆଗରେ ଯିବା ମେଣ୍ଢୀ । ( (ଦେଖ) ।

ଗଡ୍ଡୁଲ—ପୁଂ. ବି.(ଗଡ଼ୁ+ଡ଼ଲ)ଗଡ଼ର

ଗଡ୍ଡୁଲିକା—ସ୍ତ୍ରୀ.ବି.(ଗଡ୍ଡୁଲ+କ+ଆ) ଗଡରିକା (ଦେଖ) ।

ଗଡ୍ଡୁାଲିକାପ୍ରବାହ—ପୁଂ.ବି.ଗଡ୍ଡୁଳିକାପରି କୌଣସି ଭଲମନ୍ଦ ବିଚାର ନ କରି ସମସ୍ତେ ଦେଖାଦେଖି ପ୍ରଚଳିତ ମତର ଅନୁସରଣ କରି ଚାଲିବା,ଆଗମେଣ୍ଢାର ପିଛାଧରି ଅନୁଗମନ କରିବା, ମେଣ୍ଢା-ମାନଙ୍କ ସ୍ରୋତଃ ।

ଗଡ୍ଡୁକ—ପୁଂ.ବି.(ଗଡ଼ୁ+ଡୁକ)ଭୃଙ୍ଗାର ଗଡ଼ୁ, ଝରି,ଜଳପାତ୍ରବିଶେଷ ।

ଗଡ୍ଡୁକ—ପୁଂ.ବି.ଭୃଙ୍ଗାର, ଗଡ଼ୁ,ଝରି, ଜଳପାତ୍ରବିଶେଷ ।

ଗଢ଼ଣ—ଗ୍ରା. ବି. (ସଂ-ଗଠନ) ନିର୍ମାଣ, ରଚନା, ଗଢ଼ିବା, ରଚନାର କୌଶଳ-ରୀତି ବା ଭଙ୍ଗୀ ।

ଗଢ଼ା—ଗ୍ରା. ବି. (ସଂ ଗଠନ) ଗଠନ, ନିର୍ମାଣ,ରଚନ, (ବିଂ) ନିର୍ମିତ, ରଚିତ, ପ୍ରା.(ବାଲେ)ବି. ଗଣ୍ଠି, ଗାଣ୍ଠ ।

ଗଢ଼ାଇବା—ଗ୍ରା. କ୍ରି. ଗଢ଼ିବାର ଣିଜନ୍ତ ରୂପ, ରଚନା କରାଇବା, ମିଥ୍ୟାପ୍ରମାଣ-ଦ୍ୱାରା ମକଦ୍ଦମା ସଜାଇବା, କାରିଗର-ଦ୍ୱାରା ଅଲଙ୍କାର ନିର୍ମିତ କରାଇବା ।

ଗଢ଼ାଗଢ଼ି—ଗ୍ରା. ବି. ନିର୍ମାଣ ପ୍ରକ୍ରିୟା, କୌଣସି ବସ୍ତୁ ସଂପୂର୍ଣ୍ଣଭାବରେ ନିର୍ମିତ ହେବା ନିମନ୍ତେ ପ୍ରୟୋଜନୀୟପ୍ରକ୍ରିୟା-ମାନ ।

ଗଢ଼ାମୂଲ,ଗଢ଼ଣମୂଲ—ଗ୍ରା.ବି. ଅଲଙ୍କାର ପ୍ରସ୍ତୁତ କରିବା ବଣିଆର ମଜୁରି,କୌଣସି ଜିନିଷ ତିଆରି କରିବାର ମୂଲ ।

ଗଢ଼ାଳି—ଗ୍ରା. ବିଂ. ନିର୍ମାତା,ରଚୟିତା, ଯେ ନିର୍ମାଣ କରେ ।

ଗଢ଼ିବା—ଗ୍ରା.କ୍ରି. ଗଠନ କରିବା,ନିର୍ମାଣ କରିବା, ସୃଷ୍ଟିକରିବା, ଉପାଦାନ ଓ ଉପକରଣରୁ ଅଭିପ୍ରେତ ପଦାର୍ଥ ତିଆରି କରିବା, ମିଥ୍ୟା ପ୍ରମାଣଦ୍ୱାରା ମକଦ୍ଦମା ସୃଷ୍ଟିକରିବା, ରଚନା କରିବା ।

ଗଣ—ପୁଂ.ବି. (ଗଣ+ଅ) ସମୂହ,ବର୍ଗ, ପ୍ରମଥଗଣ,ଶ୍ରେଣୀ, ଦଳ,ପଲ, ଗୋଷ୍ଠୀ-ବର୍ଗ, ପାଠକ, ଶିବଙ୍କର ସେବକ, ସେନାର ସଂଖ୍ୟାବିଶେଷ. ହସ୍ତୀ ୨୭, ରଥ ୨୭, ଅଶ୍ୱ ୮୧, ପଦାତି ୧୩୫ ସମ୍ମିଳିତ ସେନା, ଚତୁରଙ୍ଗ ଦଳ, ଗଣନା, ସଂଖ୍ୟା, ଦେବତା ଓ ରାଜା-ଦିଙ୍କ ଅନୁଚରବର୍ଗ, ( ବ୍ୟାକରଣ ) ସଂସ୍କୃତ ଧାତୁମାନଙ୍କର ଭିନ୍ନ ଭିନ୍ନ ଶ୍ରେଣୀ, ଭ୍ୱାଦି ଗଣ, ସମାଜ, ସଭା, ବଣିକସମୂହ, କମ୍ପାନି, ସଂଘ, ଦେବ, ମନୁଷ୍ୟ ଓ ଅସୁର ଏହିପରି ତିନି ଶ୍ରେଣୀରେ ବିଭକ୍ତ ହୋଇଥିବା ନକ୍ଷତ୍ର ମାନଙ୍କର ଶ୍ରେଣୀ, ଗଣେଶ, ଶ୍ଳୋକର ପାଦ,ସ୍ୱରାଦି ସ୍ୱରୂପ ପ୍ରତିପାଦକ ପାଠ-ଗ୍ରନ୍ଥ, ଦୈତ୍ୟବିଶେଷ,ସ୍ୱପକ୍ଷ,ଅଜମୋଦା ପ୍ରଭୃତିନାମକ ଗନ୍ଧଦ୍ରବ୍ୟ, ବାକ୍ୟ, ଛନ୍ଦ ଶାସ୍ତ୍ରୋକ୍ତ ପାରିଭାଷିକ ଏକାକ୍ଷର ପ୍ରଭୃ-ତିର ସଂଜ୍ଞାବିଶେଷ ।

ଗଣକ—ତ୍ରି. ବିଂ. ( ଗଣ+କ, ଅକ ) ସଂଖ୍ୟାକାରକ, ଯେ ସଂଖ୍ୟାର ନିରୂପଣ କରେ, ବହୁଧନଦ୍ୱାରା କ୍ରୀତ,ଅଙ୍କଶାସ୍ତ୍ରରେ ପାରଙ୍ଗମ, (ବି) ମାତୃକା ଦେବୀଭକ୍ତ ମୁନିବିଶେଷ, ଜ୍ୟୋତିର୍ବିଦ୍ ଜ୍ୟୋତିଷ-ଜାତିବିଶେଷ, ଏହାଙ୍କୁ ଗ୍ରହବିପ୍ର ମଧ୍ୟ କହନ୍ତି, ଆଠଗୋଟି ନକ୍ଷତ୍ରର ସମୂହ ।

ଗଣକର୍ମ—କ୍ଳୀ. ବି. ଗଣଯଜ୍ଞ ।

ଗଣକର୍ଣ୍ଣିକା—ସ୍ତ୍ରୀ. ବି. ଇନ୍ଦ୍ରବାରୁଣୀ ।

ଗଣକାର—ପୁଂ.ବି. (ଗଣ+କୃ+କ.ଅ) ଧାତୁସଂଗ୍ରହକର୍ତ୍ତା, ଭୀମସେନ, ଗଣକ, ଦୈବଜ୍ଞ ।

ଗଣକୀ—ସ୍ତ୍ରୀ. ବି. (ଗଣକ+ଈ) ଗଣକ ପତ୍ନୀ, ଦୈବଜ୍ଞ—ଭାର୍ଯ୍ୟା । [କୁଣ୍ଡ ।

ଗଣକୁଣ୍ଡ—ହିମାଳୟର ଗୋଟିଏ ପର୍ବତ

ଗଣକୂଟ—ପୁଂ. ବି. ବର ଏବଂ କନ୍ୟାର ଦେବ ମାନୁଷ ରାକ୍ଷସ ଗଣରୂପ କୂଟ ।

ଗଣଗଣ—ଗ୍ରା. ଅବ୍ୟ. ମାଛିଙ୍କ ଗୁଣ୍ଡୁଗୁଣ୍ଡୁ ଶବ୍ଦ, କାଣ ଶବଦ ବ୍ୟକ୍ତିର ଅନୁନାସିକ ବାକ୍ୟୋଚ୍ଚାରଣ ଧ୍ୱନି ।

ଗଣଗଣା, ଗଣଗଣିଆ—ଗ୍ରା. ପୁଂ. ବିଂ. ଯେ ଗଣଗଣକରି କଥା କହେ, ଅସ୍ପଷ୍ଟ ଅନୁନାସିକ ବାକ୍ୟ ଉଚ୍ଚାରଣକାରୀ, ଚଢ଼ଲ,(ବି) ଏକପ୍ରକାର ବଡ଼ମାଛ ।

ଗଣଚକ୍ରକ—କ୍ଳୀ. ବି. (୬ତତ୍) ଧାର୍ମିକ-ସମୂହ ମିଳିତ ହୋଇ କରିବା ଏକତ୍ର ଭୋଜନ ।

ଗଣଛନ୍ଦସ୍—କ୍ଳୀ.ବି. ପାଦପରିମିତ ଛନ୍ଦ ।

ଗଣଜୀବବିଜୟ-ସନ୍ଦେହ ସମୁଚ୍ଚୟନାମକ ସଂସ୍କୃତ ଧର୍ମଶାସ୍ତ୍ର-ସଂଗ୍ରହକାର ।

ଗଣତନ୍ତ୍ର—ବି.(ଗଣ+ତନ୍ତ୍ର) ସାଧାରଣ-ତନ୍ତ୍ର ଶାସନପ୍ରଣାଳୀ, ପ୍ରଜାତନ୍ତ୍ର ।

ଗଣତନ୍ତ୍ରୀ—ପୁଂ.ବିଂ. (ଗଣତନ୍ତ୍ର+ଇନ୍) ଯେଉଁବ୍ୟକ୍ତି ଗଣତନ୍ତ୍ର ଶାସନପ୍ରଣା-ଳୀର ପକ୍ଷପାତୀ ।

ଗଣତା—ସ୍ତ୍ରୀ.ବି. ସମୂହର ଭାବ, ଗଣିତ-ଶାସ୍ତ୍ର, ପକ୍ଷପାତ,ମେଳ,ଦଳ,ଗୋଷ୍ଠୀ ।

ଗଣତି—ଗ୍ରା. ବି. ସଂଖ୍ୟା, ସଂଖ୍ୟାକରିବା, ସୁମାରି, ଗଣନା ।

ଗଣତିଥ—ତ୍ରି. ବିଂ. ଗଣପୂରକ, ଦଳ-ଗଠନ କରିଥିବା ।

ଗଣତିରେ—ଗ୍ରା. କ୍ରି. ବିଂ. ଗଣନାରେ, ସଂଖ୍ୟାରେ ।

ଗଣଦୀକ୍ଷା—ବି.ଗୁରୁଙ୍କଠାରୁ ବହୁଶିଷ୍ୟଙ୍କର ଏକସମୟରେ ମନ୍ତ୍ରଗ୍ରହଣ,ବହୁଲୋକଙ୍କ-ପାଇଁ ଏକସଙ୍ଗେ କରାଯିବା ପୌରୋ-ହିତ୍ୟ ।

ଗଣଦୀକ୍ଷୀ—ପୁଂ.ବି. ବହୁଯାଜକ, (ବିଂ) ଯେ ଗଣେଶମନ୍ତ୍ରରେ ଦୀକ୍ଷିତ ।

ଗଣଦେବ—ପୁଂ. ଗଣେଶ ।

ଗଣଦେବତା—ସ୍ତ୍ରୀ.ବି.(ଗଣ+ଦେବତା) ଯେଉଁ ଦେବତାମାନେ ଏକାଧିକ ସଂଖ୍ୟକ ଅଟନ୍ତି, ଯଥା:—ଆଦିତ୍ୟଗଣ, ୧୨, ରୁଦ୍ର ୧୧, ବିଶ୍ୱେଦେବା ୧୦, ବସୁ, ୮, ତୁଷିତ ୩୬, ଆଭାସ୍ୱର ୬୪, ବାୟୁ ୪୯, ମହାରାଜିକ ୨୨୦, ସାଧ୍ୟ ୧୨ ।

ଗଣଦେବୀ—ବି. ପାର୍ବତୀଙ୍କ ଅନୁଚର ଦେବୀମାନେ ।

ଗଣଦ୍ରବ୍ୟ—କ୍ଲୀ.ବି. (୬ତତ୍) ସାଧାରଣ ଦ୍ରବ୍ୟ,ଯେଉଁପଦାର୍ଥର ସ୍ୱାମୀ ଅନେକ ।

ଗଣଧର—ବି. (ଗଣ+ଧୃ+କ.ଅ) ଶ୍ରେଣୀର ପ୍ରଧାନ ବ୍ୟକ୍ତି, ବିଦ୍ୟାଳୟର ଶିକ୍ଷକ, ଜୈନାଚାର୍ଯ୍ୟ ବିଶେଷ ।

ଗଣନ—କ୍ଲୀ.ବି. (ଗଣ+ଭା,ଅନ)ବାର, ତିଥି ଓ ନକ୍ଷତ୍ରାଦିମାନଙ୍କର ସ୍ଥିତି ଓ ସଞ୍ଚାର ଅନୁସାରେ ଶୁଭାଶୁଭ, ଭୂତ ଭବିଷ୍ୟତ୍ ଇତ୍ୟାଦି ନିରୂପଣ,ଅଙ୍କକଷା, ସଂଖ୍ୟାକରଣ,ଗ୍ରାହ୍ୟକରଣ,ଅବଧାରଣ, ଜ୍ୟୋତିଷିକ ବ୍ୟାପାର ନିରୂପଣ ।

ଗଣନମହାପାତ୍ର—ବି. ରାଜ୍ୟର ଅର୍ଥ-ବିଭାଗର ମନ୍ତ୍ରୀ ।

ଗଣନାଥ—ପୁଂ. ବି. (୬ତତ୍) ଗଣେଶ, ଶିବ, ଇନ୍ଦ୍ର, ବୃହସ୍ପତି, ଅନେକ ବ୍ୟକ୍ତି-ଙ୍କର କର୍ତ୍ତା ବା ସ୍ୱାମୀ ବା ନାୟକ, ଦଳପତି, ସେନାପତି ।

ଗଣନାୟକ—ବି.ଜନନାୟକ ବା ନେତା, ଗଣନାଥ (ଦେଖ) ।

ଗଣନାୟିକା—ସ୍ତ୍ରୀ. ବି. ଚଣ୍ଡୀ, ଦୁର୍ଗା ।

ଗଣନାର୍ହ—ବିଂ. (ଗଣନ+ଅର୍ହ) ଗଣନାଯୋଗ୍ୟ ।

ଗଣନୀୟ—ବିଂ. (ଗଣ+ମି, ଅନୀୟ) ଗଣ୍ୟ, ସଂଖ୍ୟେୟ, ଗ୍ରାହ୍ୟ, ଉଲ୍ଲେଖ-ଯୋଗ୍ୟ, (ସ୍ତ୍ରୀ) ଗଣନୀୟା ।

ଗଣପ(ପତି)—ପୁଂ. ବି. (୬ତତ୍) ଗଣ-ନାଥ (ଦେଖ) ।

ଗଣପତିକଳ୍ପ—ପୁଂ.ବି. ବିଘ୍ନଶାନ୍ତି ନିମିତ୍ତ ଗଣପତିଙ୍କ ଉଦ୍ଦେଶ୍ୟେ ପୂଜାପ୍ରଭୃତି କାର୍ଯ୍ୟ । (ପର୍ବତ ।

ଗଣପର୍ବତ—ପୁଂ.ବି. (୬ତତ୍) କୈଳାସ

ଗଣପାଠ—ପୁଂ.ବି. ପାଣିନି ପ୍ରଣୀତ ଏକ-ଖଣ୍ଡି ଗ୍ରନ୍ଥ ।

ଗଣପାଠକ—କ୍ଲୀ.ବି. ବକ୍ଷସ୍ଥଳ ।

ଗଣପୁଙ୍ଗବ—ପୁଂ.ବି. ଗଣଶ୍ରେଷ୍ଠ, ଦେଶ-ବିଶେଷ ଓ ରାଜା ସହିତ ସେହି ଦେଶର ଲୋକ ।

ଗଣପୂଜ୍ୟ—ପୁଂ. ବି. ଦେଶବିଶେଷ, ରାଜାସହିତ ସେହି ଦେଶର ଲୋକ ।

ଗଣପୂର୍ବ—ପୁଂ. ବି. ଗ୍ରାମଣୀ, ଗ୍ରାମର ଅଧିନାୟକ ।

ଗଣପ୍ରମୁଖ-ପୁଂ.ବି. ଜାତିର ବା ଶ୍ରେଣୀର ମଧ୍ୟରେ ପ୍ରଧାନ ।

ଗଣଭର୍ତ୍ତା—ପୁଂ.ବି. (୬ତତ୍)ମହାଦେବ, ଗଣେଶ, ବନ୍ଧୁଜନସ୍ୱାମୀ, ଦଳପତି ।

ଗଣଭୂଷଣ—ବି. (୬ତତ୍) ସିନ୍ଦୂର ।

ଗଣଭୋଜନ—କ୍ଲୀ.ବି. ସାଧାରଣ ଭୋଜ, ଜାତିଆଣ ଭୋଜି, ପଂକ୍ତି ଭୋଜନ ।

ଗଣମୁଖ—ପୁଂ.ବି. ଗ୍ରାମଣୀ,ଗ୍ରାମନାୟକ ।

ଗଣଯଜ୍ଞ—ପୁଂ. ବି. ଭ୍ରାତୃବର୍ଗ ଅଥବା ବନ୍ଧୁବର୍ଗର ଅନୁଷ୍ଠେୟ ମରୁତ୍, ସ୍ତୋମ ନାମକ ଯଜ୍ଞ । (ଦେଖ) ।

ଗଣଯାଗ—ପୁଂ. ବି. ଗଣପତିକଳ୍ପ

ଗଣରତ୍ନ—କ୍ଲୀ. ବି. ଏକଖଣ୍ଡି ଗ୍ରନ୍ଥ ।

ଗଣରାଜ୍ୟ—ବି. ଦକ୍ଷିଣଅଞ୍ଚଳର ଗୋଟିଏ ରାଜ୍ୟ ।

ଗଣରାଶି—କ୍ଲୀ. ବି. ରାଶିସମୂହ, ବହୁ-ସଂଖ୍ୟକ ରାଶି ।

ଗଣରୂପ—ପୁଂ.ବି.ଅର୍କବୃକ୍ଷ,ଅରଖ ଗଛ ।

ଗଣରୂପୀ—ପୁଂ.ବି. ଶ୍ୱେତଅରଖ ଗଛ ।

ଗଣବତୀ—ସ୍ତ୍ରୀ.ବି.ଦିବୋ ଦାସର ମାତା ।

ଗଣବାନ୍—ପୁଂ.ବି.(ଗଣ+ବତ୍) ଗଣ-ଯୁକ୍ତ ।

ଗଣଶଃ—ଅବ୍ୟ. (ଗଣ+ଶସ୍)ବହୁଶ, ଦଳଦଳ ହୋଇ, ପଲପଲ, ଶ୍ରେଣୀ-ଶ୍ରେଣୀ ହୋଇ ।

ଗଣଶକ୍ତି—ସ୍ତ୍ରୀ. ବି. (୬ତତ୍) ସାଧାରଣ ଜନମଣ୍ଡଳୀର କ୍ଷମତା ।

ଗଣହାସ—ପୁଂ.ବି. ଚୋରନାମକ ଗନ୍ଧ-ଦ୍ରବ୍ୟ, ଅଜମୋଦା ।

ଗଣହାସକ—ପୁଂ. ବି, ଚୋରନାମକ ଗନ୍ଧଦ୍ରବ୍ୟ, (ବିଂ) ଯେ ବହୁ ଲୋକଙ୍କୁ ହସାଇ ପାରେ ।

ଗଣା—ଗ୍ରା. ବି. (ଗଣନ ଶବ୍ଦଜ) ସଂଖ୍ୟା କରିବା, ଗଣନା, ସୁମାର,ଗ୍ରହମାନଙ୍କର ଗତିସ୍ଥିତି ଅନୁସାରେ ଲୋକର ଶୁଭା-ଶୁଭ ବିଚାର କରିବା, (ବିଂ) ଗଣିତ ହୋଇଥିବା ।

ଗଣାଇବା—ଗ୍ରା.କ୍ରି. ଅନ୍ୟଦ୍ୱାରା ସୁମାର କରାଇବା,ରାଜକୋଷାଧ୍ୟକ୍ଷଙ୍କ ନିକଟରେ ରାଜସ୍ୱାଦି ଦାଖଲ କରିବା ।

ଗଣାକ୍ରାନ୍ତ—ବିଂ.(୨ତତ୍ ବା ୩ ତତ୍) ଦଳାକ୍ରାନ୍ତ, ପକ୍ଷଭୁକ୍ତ ।

ଗଣାଗ୍ରଣୀ—ପୁଂ. ବି. (୬ତତ୍) ଗଣେଶ, ମହାଦେବ, (ବିଂ) ଯେ ଅନେକଙ୍କ ମଧ୍ୟରେ ଅଗ୍ରଗଣ୍ୟ,ସମ୍ମାନିତ ।

ଗଣାଚଳ—ପୁଂ.ବି. କୈଳାସ ପର୍ବତ ।

ଗଣାଧିପ—ପୁଂ.ବି. ଗଣେଶ, ଶିବ ।

ଗଣାଧିପତି—ପୁଂ.ବି.ଗଣନାଥ (ଦେଖ) ।

ଗଣାଧ୍ୟକ୍ଷ—ବି. ଗଣନାଥ (ଦେଖ) ।

ଗଣାନ୍ନ—କ୍ଲୀ. ବି. (କ.ଧା) ଯେଉଁ ଅନ୍ନରେ ଅନେକ ଲୋକଙ୍କର ସ୍ୱତ୍ୱ ଅଛି, ଅନେକ ପ୍ରଭୁଙ୍କ ଅଧୀନରେ ଚାକିରି ।

ଗଣାପୃଚ୍ଛା—ଗ୍ରା. ବି. ଶୁଭକର୍ମ ନିମନ୍ତେ ଜ୍ୟୋତିଷୋକ୍ତ ଶୁଭ ଲଗ୍ନାଦି ବୁଝିବା ।

ଗଣାଭ୍ୟନ୍ତର—ପୁଂ. ବି. ଯେଉଁ ଲୋକ ମଠାଦିରେ ଗଣଉଦ୍ଦେଶ୍ୟରେ ପ୍ରଦତ୍ତ ଧନାଦିଦ୍ୱାରା ପ୍ରତିପାଳିତ ହୁଏ ।

ଗଣାହିବା—ଗ୍ରା. କ୍ରି. ଗଣିତ ହେବା ।

ଗଣି—ବିଂ. (ଗଣ+ଇ)ଗଣନା କରୁଥିବା, (ପୁଂ.ବି.) ବେଦ ବେଦାଙ୍ଗ ପାରଗ-ବ୍ୟକ୍ତି, ତର୍କ ।

ଗଣିଆରି—ଗ୍ରା. ବି.। (ଗଣିକାରୀ ଶବ୍ଦଜ) ଗନିଆରି ଗଛ, ଅଗବଥୁ ଗଛ ।

ଗଣିକା—ସ୍ତ୍ରୀ. ବି. (ଗଣ+ଇକ+ଆ) ବେଶ୍ୟା, ବାରନାରୀ, ହସ୍ତିନୀ, ଯୂଥି-ଫୁଲ ।

ଗଣିକାରିକା—(ସ୍ତ୍ରୀ.ବି.(ଗଣି+କୃ+ଣ. ଅକ+ଆ) ନଦୀତୀରରେ ଉତ୍ପନ୍ନ ବୃକ୍ଷବିଶେଷ, ଗନିଆରି, ଅଗ୍ନିମନ୍ଥ, ଅଗବଥୁ ।

ଗଣିକାରୀ—ସ୍ତ୍ରୀ ବି. ପୁଷ୍ପବୃକ୍ଷବିଶେଷ, ବସନ୍ତ କାଳରେ ଏହାର ଫୁଲ ଫୁଟେ ।

ଗଣିତ—କ୍ଲୀ.ବି (ଗଣ+ଭା.ତ) ଗଣନା, ଅଙ୍କଶାସ୍ତ୍ର, ସଂଖ୍ୟା,ସୁମାର, ଗ୍ରହମାନଙ୍କ ଗତିସ୍ଥିତି ପ୍ରଭୃତିର ଗଣନା,କ୍ଷେତ୍ରଫଳ, (ବିଂ) (ଗଣ୍+ମି.ତ) ଯାହା ଗଣା ହୋଇଅଛି ।

ଗଣିତଜ୍ଞ — ପୁଂ.ବି. (ଗଣିତ + ଜ୍ଞା + କ. ଅ) ଅଙ୍କଶାସ୍ତ୍ରରେ ପାରଦର୍ଶୀ।
ଗଣିତା — ଗ୍ରା. ବି. ସୁମାରି, ଗଣତି, (ବିଂ) ଗଣାହେବା ଯୋଗ୍ୟ।
ଗଣିତୀ — ପୁଂ. ବି. (ଗଣିତ + ଇନ୍) ଯେ ଗଣନା କରେ, ଗଣନାକାରୀ, ଗଣିତଜ୍ଞ।
ଗଣିଦେବା — ଗ୍ରା. କ୍ରି. ଅନ୍ୟକୁ ଧନ ଆଦି ଗଣନା କରିଦେବା, ଗଣନା-କାର୍ଯ୍ୟ ଶେଷ କରିବା, (ଲ. ଅର୍ଥ) ନଗଦ ଧନର ଅଧିକାରୀ ହେବା।
ଗଣିନେବା — ଗ୍ରା. କ୍ରି. ପଦାର୍ଥ ବା ଧନକୁ ଗଣନା କରି ଅନ୍ୟ ବ୍ୟକ୍ତିଠାରୁ ବୁଝି-ନେବା।
ଗଣିବା — ଗ୍ରା. କ୍ରି. ସୁମାରି କରିବା, ସଂଖ୍ୟାକରିବା, ତୁଳନା କରିବା, ବିଚ୍ଛ-ରିବା, ଅବକଳନା କରିବା, ମାନିବା, ଖାତିର କରିବା, ନଗଦ ଧନ ଦେବା, (କୌଣସି ବସ୍ତୁ ସଙ୍ଗେ) ଲେଖାକରିବା, ସମାନ କରିବା, ସ୍ମରଣ କରିବା।
ଗଣୀ — ପୁଂ. ବିଂ. (ଗଣ + ଇନ୍) ଯାହାର ଦଳ ବା ପଲ ଅଛି, (ସ୍ତ୍ରୀ) ଗଣିନୀ, (ପୁଂ. ବି.) ସ୍କୁଲମାଷ୍ଟର।
ଗଣୀଭୂତ — ତ୍ରି. ବିଂ. (ଗଣ + ଚ୍ୱି + ଭୂ + ତ) କୌଣସି ଗଣ ବା ପକ୍ଷରେ ସ୍ଥିତ, ଗଣାନ୍ତର୍ଗତ, ଦଳଭୁକ୍ତ।
ଗଣୀୟ — ବିଂ. (ଗଣ + ଈୟ) ଗଣ-ସମ୍ବନ୍ଧୀୟ।
ଗଣେୟ — ତ୍ରି. ବିଂ. (ଗଣ + ଏୟ) ସଂଖ୍ୟେୟ, ଗଣନୀୟ।
ଗଣେରୁ — ପୁଂ. ବି. (ଗଣ + ଏରୁ) କନିଅର ଗଛ, ପାରିଭଦ୍ର ବୃକ୍ଷ, (ସ୍ତ୍ରୀ ବି) ବେଶ୍ୟା, ହସ୍ତିନୀ।
ଗଣେରୁକା — ସ୍ତ୍ରୀ.ବି.(ଗଣେରୁ + କ + ଆ) କୁଟ୍ଟନୀ, କୁଟ୍ଟିନୀ, ଦାସୀ।
ଗଣେଶ — ପୁଂ. ବି. (ଗଣ + ଈଶ) ୧ ପାର୍ବତୀ ଓ ଶିବ ନନ୍ଦନ, ୨ ଜଣେ ବିଖ୍ୟାତ ଜ୍ୟୋତିର୍ବିଦ୍ ପଣ୍ଡିତ; ଶଙ୍କରାଧ୍ୟ-କେଶିକା ରଚୟିତା, ୪ ଜଣେ ଧର୍ମଶାସ୍ତ୍ର ସଂଗ୍ରହକାର, ୫ ଭାଗବତ ବୋଧବୋଧିନୀ ରଚୟିତା, ୬ ରସତରଙ୍ଗିଣୀ ଟୀକାକାର, ୭ ସ୍ମୃତିଚନ୍ଦ୍ରୋଦୟପ୍ରଣେତା, ୮ ଋକ୍-ବେଦପାଠାନୁକ୍ରମଦୀପିକାରଚୟିତା, ୯ ଜାତକାଲଙ୍କାର ରଚୟିତା, ୧୦ ଗଣିତ-ମଞ୍ଜରୀ ପ୍ରଭୃତି ଗ୍ରନ୍ଥମାନଙ୍କର ପ୍ରଣେତା, ୧୧ ଶିବତୋଷିଣୀ-ନାମକ ଲିଙ୍ଗପୁରାଣ ଟୀକାକାର, ୧୨ ରାମଦେବଙ୍କର ପୁତ୍ର, ୧୩ ନଳୋଦୟ ଟୀକା-ରଚୟିତା।
ଗଣେଶକୁଣ୍ଡ — ନର୍ମଦା ନଦୀର ତୀରବର୍ତ୍ତୀ ଗୋଟିଏ କୁଣ୍ଡ।
ଗଣେଶକୁସୁମ — କ୍ଲୀ. ବି. ରକ୍ତ କୁସୁମ, ନାଲି କନିଅର।
ଗଣେଶଖଣ୍ଡ — କ୍ଲୀ. ବି. ସ୍କନ୍ଦ ପୁରାଣର ଗୋଟିଏ ଅଂଶ। [ଚତୁର୍ଥୀ।
ଗଣେଶଚତୁର୍ଥୀ — ବି. ଭାଦ୍ରମାସର ଶୁକ୍ଳ
ଗଣେଶଜନନୀ — ସ୍ତ୍ରୀ. ବି. ଦୁର୍ଗା।
ଗଣେଶବାହନ — ବି. (୬ତତ୍) ମୂଷିକ, ମୂଷା।
ଗଣେଶବିଭୂତି — ଗ୍ରା. ବି. ଭକ୍ତକବି ଭୂପତି ଭଞ୍ଜଙ୍କ ପ୍ରଣୀତ ପୁରାତନ ଓଡ଼ିଆ ଗ୍ରନ୍ଥ।
ଗଣେଶଭୂଷଣ — କ୍ଲୀ.ବି.(୬ତତ୍) ସିନ୍ଦୂର।
ଗଣେଶଶିଶବ — ପୁଂ. ବି. (ବ.ବ୍ରୀ) ଶିବ, ମହାଦେବ।
ଗଣେଶାନ — ପୁଂ. ବି. ଗଣେଶ, ଶିବ।
ଗଣେଶ୍ୱର — ପୁଂ.ବି. (୬ତତ୍) ଗଣେଶ, ଶିବ, ରୁଦ୍ର, ଆଦିତ୍ୟ, ବସୁ, ଅଗ୍ନି-କୁମାର।
ଗଣେଶାହ୍ୱ — ପୁଂ. ବି. (ବ.ବ୍ରୀ) ଗଣ୍ଡାର, ଗଣ୍ଡ ନାମକ ପଶୁ।
ଗଣ୍ଠା — ଗ୍ରା.ବି.ଯୋଡ଼ିବା, ଦୁଇଟି ପଦାର୍ଥ ଗଣ୍ଠି ପକାଇ ବାନ୍ଧିବା।
ଗଣ୍ଠାଇବା — ଗ୍ରା.କ୍ରି.ଦୁଇଖଣ୍ଡ ସୂତା ବା ଲୁଗାକନାକୁ ପରସ୍ପର ସଂଯୁକ୍ତ କରିବା-ପାଇଁ ଗଣ୍ଠି ପକାଇବା।
ଗଣ୍ଠି — ଗ୍ରା. ବି. (ସଂ-ଗ୍ରନ୍ଥି) ବନ୍ଧନ, ଭିଡ଼ି ବାନ୍ଧିବା ପ୍ରଣାଳୀ, ପୋଟଳା, ଯଷ୍ଟି ଆଦିର ଗୋଲକାର ମୁଣ୍ଡା, ଆଖୁ ବାଉଁଶ ଆଦିର ଦୁଇ ପଦମଧ୍ୟସ୍ଥ ସନ୍ଧି, ଶରୀରର ଅସ୍ଥିର ଯୋଡ଼ାସ୍ଥଳ, ସନ୍ଧି, ତର୍କଣୀୟ ବିଷୟ, ମର୍ମକଥା, ସାର କଥା, ଜଟିଳ ସମସ୍ୟା ଓ ପ୍ରଶ୍ନ, ଜଟିଳତା ଆମବାତ, ବାତରୋଗ ବିଶେଷ, ବ.ଲ ବନ୍ଧାଇବାର ଛୋଟବନ୍ଧ, ବନ୍ଧତା, ଗଛ ବା କାଠ ମଧ୍ୟରେ ଥିବା ଗ୍ରନ୍ଥିଯୁକ୍ତ ଅଂଶ, ବିନା ସୂତାରେ ବାଳରେ ପକା-ଯିବା ଜୁଡ଼ା, ଚୁଟି, (ବିଂ) ଜଟିଳ, ଗ୍ରନ୍ଥିଯୁକ୍ତ।
ଗଣ୍ଠିଅନା — ଗ୍ରା. ବି. ସୁଗନ୍ଧ ଔଷଧି ଦ୍ରବ୍ୟ ବିଶେଷ।
ଗଣ୍ଠିଆ — ଗ୍ରା.ବିଂ.(ସଂ-ଗ୍ରନ୍ଥିଳ) ଗଣ୍ଠିଯୁକ୍ତ କୃପଣ, କୁଟିଳ, ଜଟିଳ, ଚତୁର, (ବିଂ) ହାତ ତିଆରି ଛୋଟ ବନ୍ଧୁକ, କାନର ନୋଳିବିଶେଷ, ସ୍ତ୍ରୀଲୋକମାନଙ୍କର କର୍ଣ୍ଣାଳଂକାରବିଶେଷ, (ପ୍ରା. ସମ୍ପୃ.ବି) ହାତଗୋଡ଼ ଆଦିରେ ହେବା ବ୍ରଣ।
ଗଣ୍ଠିକଟା — ଗ୍ରା. ବି. ଯେଉଁ ଚୋର କୌଶଳରେ ଲୁଗାର ଗଣ୍ଠି କାଟି ଚୋରି କରେ।
ଗଣ୍ଠିକରିବା — ଗ୍ରା. କ୍ରି. ଗଣ୍ଠି ଧନପରି ବିଚାରି କୌଣସି ଛୋଟ କଥାକୁ ବଡ଼ ଆକାରରେ ପରିଣତ କରି ଏକଜିଦ୍ କରି ଧରିବା।
ଗଣ୍ଠିଗଣ୍ଠିଆ — ଗ୍ରା. ବିଂ. ବହୁ ଗ୍ରନ୍ଥି-ଯୁକ୍ତ, ଅତି କୃପଣ।
ଗଣ୍ଠିଦୁବ — ଗ୍ରା. ବି. (ସଂ-ଗଣ୍ଡଦୁର୍ବା) ମୁଞ୍ଜ ଜାତୀୟ ଏକପ୍ରକାର ଘାସ।
ଗଣ୍ଠିଦେବା — ଗ୍ରା.କ୍ରି. ଗଣ୍ଠିପକାଇବା।
ଗଣ୍ଠିଧନ — ଗ୍ରା. ବି. ଲୁଗାରେ ଗଣ୍ଠି ପକାଇ ବାନ୍ଧିରଖିଥିବା ଧନ, (ଲକ୍ଷଣାର୍ଥ) ଅତ୍ୟାଦୃ ଆଦରର ପାତ୍ର ବା ପଦାର୍ଥ।
ଗଣ୍ଠିଧରାବାତ - ଗ୍ରା.ବି. ଆମବାତରୋଗ, (ଯେଉଁ ରୋଗରେ ହାତ ଗୋଡ଼ର ଗଣ୍ଠି ଦରଜ ହୁଏ)।
ଗଣ୍ଠିପଡ଼ିବା — ଗ୍ରା.ବି. ଗ୍ରନ୍ଥି ନ ଫିଟିବା ରଜ୍ଜୁ, ସୂତାଆଦି ଗୁଡ଼େଇ ହୋଇ ଛନ୍ଦି ହୋଇଯିବା, ଜଟିଳ ସମସ୍ୟାରେ ଉପସ୍ଥିତ ହେବା।

ଗଣ୍ଠି ପକାଇବା — ଗ୍ରା. କ୍ରି. ଗ୍ରନ୍ଥି ରଚନ କରିବା, କେଶରେ ଗ୍ରନ୍ଥି ବିନ୍ୟାସ କରିବା, ଦୁଇଟି ଲମ୍ବ ବସ୍ତୁର ଅଗକୁ ପରସ୍ପର ସହିତ ବାନ୍ଧିବା ।

ଗଣ୍ଠି ଫେରାଇବା — ଗ୍ରା. କ୍ରି. ମେଳବାନ୍ଧିବା ଉଦ୍ଦେଶ୍ୟରେ ଗ୍ରାମେ ଗ୍ରାମେ ପ୍ରଜାଙ୍କୁ ମତାଇବାପାଇଁ ମେଳ ବା ସୂଚକ ଡୋରକୁ ଏକଗ୍ରାମରୁ ଅନ୍ୟଗ୍ରାମକୁ ପଠାଇବା । [ମିଳେଇ ।

ଗଣ୍ଠି ବଛିଆ - ଗ୍ରା. ବି. ଏକପ୍ରକାର

ଗଣ୍ଠି ବନ୍ଧ — ଗ୍ରା. ବି. ସଙ୍କୀର୍ଣ୍ଣନାଳରେ ବନ୍ଧା ଯାଇଥିବା ବନ୍ଧ ।

ଗଣ୍ଠି ମୁଠି—ଗ୍ରା. ବି. ଗଣ୍ଠି, ଦଉଡ଼ିରେ ପଡ଼ିଥିବା ଗଣ୍ଠି । [ଧନ ।

ଗଣ୍ଠି ରତ୍ନ — ଗ୍ରା. ବି. ଅତି ଆଦରର

ଗଣ୍ଠି ଲ, ଗଣ୍ଠି ଲା — ଗ୍ରା. ବି. (ସଂ-ଗ୍ରନ୍ଥି) ବୋକଗ୍ର, ଗଣ୍ଠିଗ୍ର, ବୋଝ, ଢାଉଁଲ ।

ଗଣ୍ଠି ଲାବୁହା — ଗ୍ରା.ବି.ପ୍ରଭୁଙ୍କ ଲୁଗାପଟାର ଗଣ୍ଠି ଲାକୁ ବୋହିବା ଅନୁଚର, ଗଧ-ପର ଭାର ବୋହିବା ବ୍ୟକ୍ତି ।

ଗଣ୍ଡ — (ଧାତୁ) ମୁହଁର ଏକ ପାଖରେ ହେବା, କ୍ଷରିତ ହେବା ।

ଗଣ୍ଡ — ପୁଂ.ବି.(ଗଣ୍ଡ + କ.ଅ) କପୋଳ, ବିସ୍ଫୋଟ, ଆବୁ, ଗାଲ, ହସ୍ତୀକପୋଳ, ଗଣ୍ଡା ପଶୁ, ଅର୍ଘ, ମୂଲ୍ୟ, ବୀଥୀନାମକ ନାଟ୍ୟାଙ୍ଗବିଶେଷ, ମୂତ୍ରାଶୟ, ଭର୍ତ୍ସି, ବ୍ରଣ, ଚିଲିଟି, ଦେହର ସନ୍ଧିରେ ଥିବା ଗ୍ରନ୍ଥି, ପିଟକ, ଚିହ୍ନ, ବୀର, ଅଶ୍ୱଭୂଷଣ, ବୁଦବୁଦ, ପାଣିଫୋଟକା, ଗ୍ରନ୍ଥି, ବିଷ୍କୁମ୍ଭାଦି ଯୋଗ ମଧ୍ୟରେ ୧୦ମ ଯୋଗ ନାମ — ଗଣ୍ଡ, କେତେକ ନକ୍ଷତ୍ରମାନଙ୍କର ଦୁଷ୍ଟ ଅଂଶ, (ଗ୍ରା.ବି.) ଗଭୀର ଜଳଥିବା ସ୍ଥାନ, ଖାଲୁଆସ୍ଥାନ, ବିବର, ନିର୍ବୋଧ ବ୍ୟକ୍ତି, ପଣସକଠା, କଲମ ହୋଇଥିବା ଗଛ, (ବିଂ) ପ୍ରଧାନ, ବଡ଼, ଗଭୀରଜଳଯୁକ୍ତ ଖାଲୁଆ, ଅନାର୍ଯ୍ୟ (ଜାତିବିଶେଷ) ।

ଗଣ୍ଡକ—ପୁଂ. ବି. (ଗଣ୍ଡ + କ) ଖଡ଼୍ଗୀ, ଗଣ୍ଡା, ସଂଖ୍ୟା ପ୍ରଭେଦ, ଚାରିକଡ଼ା, ବିଚ୍ଛେଦ, ଚିହ୍ନ, ଦାଗ, ମନ୍ଦା, ବ୍ରଣ, ଆବୁ, ଜ୍ୟୋତିର୍ବିଦ୍ୟାବିଶେଷ, ଅବଚ୍ଛେଦ, ଅନ୍ତରାୟ, ଅଲଙ୍କାରଭୂଷଣ, ଦେଶ-ଭେଦ, ଛନ୍ଦୋଭେଦ, ଗ୍ରନ୍ଥି, ସ୍ଫୋଟକ (ରୋଗବିଶେଷ) ନଦୀବିଶେଷ, କଉଡ଼ି ଗଣ୍ଡା, ଚାରିସଂଖ୍ୟା ।

ଗଣ୍ଡକା—ବି. ( ଗଣ୍ଡକ + ଆ ) ପେଣ୍ଡୁ, ଗୋଲକ, ଗୋଟାଳି, ପୁଳା ।

ଗଣ୍ଡକାଶି — ସ୍ତ୍ରୀ. ବି. ଖଦିରବୃକ୍ଷ, ଖଇର ଗଛ, କାକଜଙ୍ଘା, ବାଲିଗରଡ଼ା ମାଛ, ବରାହକାନ୍ତା, ଲଜ୍ଜାଳୁଲତା ।

ଗଣ୍ଡକାଲୀ — ସ୍ତ୍ରୀ. ବି. ଖଦିରବୃକ୍ଷ, ଲଜ୍ଜାଳୁଲତା ।

ଗଣ୍ଡକୀ — ସ୍ତ୍ରୀ. ବି. (ଗଣ୍ଡକ + ଈ) ଗଣ୍ଡା-ଜାତୀୟା ସ୍ତ୍ରୀ, ଛୋଟ ବଡ଼ ଭେଦରେ ଦୁଇଟି ଅଟନ୍ତି, ମାଈଗଣ୍ଡା, ନଦୀବିଶେଷ ।

ଗଣ୍ଡକୀପୁତ୍ର — ପୁଂ.ବି. ଶାଳଗ୍ରାମ ଶିଳା ।

ଗଣ୍ଡକୁସୁମ — କ୍ଲୀ. ବି. ହସ୍ତୀମୁଣ୍ଡ, ହାତୀର ମଦଜଳ ।

ଗଣ୍ଡକୂପ — ପୁଂ. ବି. (୬ତତ୍) ପର୍ବତର ଉଚ୍ଚସ୍ଥାନ, ଅଧିତ୍ୟକା ।

ଗଣ୍ଡଗଡ଼ — ଧବଳଗିରି ଓ ହାକାର ଜଳ ମଧ୍ୟରେ ଗୋଟିଏ ଗିରିଶ୍ରେଣୀ ।

ଗଣ୍ଡଗାତ୍ର — କ୍ଲୀ. ବି ଫଳବିଶେଷ, ଆତ-ଫଳ, ବଡ଼ିଆଳ ।

ଗଣ୍ଡଗିରି—ଗ୍ରା. ବି. କ୍ଷୁଦ୍ର ଶୈଳ ।

ଗଣ୍ଡଗୋପାଳିକା— ବି. ଗଉଡ଼ୁଣୀପୋକ, ଶଙ୍ଖପଦୀ ।

ଗଣ୍ଡଗୋଳ— ଗ୍ରା. ବି. ବିବାଦ, ଅତିଶୟ କୋଳାହଳ, ବିପ୍ଳବ, ପ୍ରଜାମେଳି, ଅବ୍ୟବସ୍ଥା ।

ଗଣ୍ଡଗୋଳିଆ—ଗ୍ରା. ବିଂ.ଯେ ବିବାଦରେ ମତ୍ତ ହୋଇଥାଏ, ଯେ ଗୋଳମାଳ କରେ, ଗୋଳମାଳିଆ ।

ଗଣ୍ଡଗ୍ରାମ—ପୁଂ.ବି. (୬ତତ୍) ପ୍ରଶସ୍ତଗ୍ରାମ, ଯେଉଁ ଗ୍ରାମରେ ବହୁଲୋକ ବାସ କରନ୍ତି ।

ଗଣ୍ଡଦୁର୍ବା— ସ୍ତ୍ରୀ.ବି. ଦୁର୍ବାବିଶେଷ, ମୁଞ୍ଜ-ଜାତୀୟ ଏକପ୍ରକାର ଘାସ ।

ଗଣ୍ଡଦେଶ — ପୁଂ.ବି. (୬ତତ୍) ଗଣ୍ଡସ୍ଥଳ, କପୋଳ, ଗାଲ ।

ଗଣ୍ଡଦୋଷ-ବି(ଗଣ୍ଡ + ଦୋଷ)(ଜ୍ୟୋତିଷ) ସ୍ତ୍ରୀ ପ୍ରଥମେ ରଜସ୍ୱଳା ହେଲେ ଜ୍ୟୋତିଷ ଶାସ୍ତ୍ର ଅନୁସାରେ ନକ୍ଷତ୍ର-ଦୋଷରୁ ସ୍ୱାମୀ ଓ ସ୍ତ୍ରୀଙ୍କୁ ଲାଗିବା ଦୋଷ, ଶିଶୁ ଜାତ ହେବା ସମୟରେ ନକ୍ଷତ୍ରଜନିତ ଦୋଷ ।

ଗଣ୍ଡନକ୍ଷତ୍ର—ବି. ବାଳିକା ରଜସ୍ୱଳା ଓ ଶିଶୁ ଜାତହେବା ସମୟରେ ଥିବା କେତେକ ଅଶୁଭ ନକ୍ଷତ୍ର ।

ଗଣ୍ଡପାଦ—ବି. (ଜ୍ୟୋତିଷ) କେତେକ ନକ୍ଷତ୍ରର୍ଦ୍ଧସ୍ଥଗଣ୍ଡଯୁକ୍ତ ଅଶୁଭ ଅଂଶ ।

ଗଣ୍ଡପାଳି—ବି. ଗଣ୍ଡଦେଶ, କପୋଳ, ଗାଲ ।

ଗଣ୍ଡପିଣ୍ଡ — ବି. ଗଣ୍ଡଦେଶ, କପୋଳ ।

ଗଣ୍ଡପୂଯ—ଗ୍ରା. ବି. ବ୍ରଣ ପାଚିବା ପରେ ଫାଟି ନ ଗଲେ ତା ମଧ୍ୟରେ ଗାଢ଼ା ହୋଇ ଯାଇଥିବା ପୂଯ ।

ଗଣ୍ଡପୂଯିଆ — ଗ୍ରା.ବିଂ. ପୂଯ ଗାଢ଼ା ହୋଇ ଯାଇଥିବା (ବ୍ରଣ) ।

ଗଣ୍ଡପୋଳିକା—ସ୍ତ୍ରୀ. ବି. କୀଟବିଶେଷ ।

ଗଣ୍ଡପ୍ରପାଳୀ — ସ୍ତ୍ରୀ. ବି. କୀଟବିଶେଷ ।

ଗଣ୍ଡଫଳକ—କ୍ଲୀ. ବି. (୬ତତ୍) ବିସ୍ତୀର୍ଣ୍ଣ ଗଣ୍ଡସ୍ଥଳ, କପୋଳ, ଗାଲ. (ବିଂ) ଯାହାର କପୋଳ ଅତିଶୟ ବିସ୍ତୀର୍ଣ୍ଣ ।

ଗଣ୍ଡବନ୍ଧୁ—ପୁଂ. ବି. କୁବେରଙ୍କର ସେନାପତି ।

ଗଣ୍ଡବ୍ରଣ — ବି.ଦେହର ସନ୍ଧି ବା ଗ୍ରନ୍ଥିରେ ଜାତହେବା ବ୍ରଣ ।

ଗଣ୍ଡବୁର୍ଦ୍ଧି—ଗ୍ରା. ବି. ମୋଟାବୁଦ୍ଧି, (ବିଂ) ମୋଟାବୁଦ୍ଧିଆ ।

ଗଣ୍ଡଭିତ୍ତି—ସ୍ତ୍ରୀ. ବି. ପ୍ରଶସ୍ତ ଗଣ୍ଡସ୍ଥଳ ବା କପୋଳ, ହସ୍ତୀର ଗଣ୍ଡଦେଶରେ ଯେଉଁ ଛିଦ୍ରରୁ ମଦ ସ୍ରବେ ।

ଗଣ୍ଡଭେରଣ୍ଡ, ଗଣ୍ଡଭେରୁଣ୍ଡ — ଗଣ୍ଡଭୈରବ ଗ୍ରା. ବି. ଓଡ଼ିଆ କାହାଣୀରେ ବର୍ଣ୍ଣିତ ବୃହତ୍ କାଳ୍ପନିକ ପକ୍ଷୀ ।

ଗଣ୍ଡମଣ୍ଡଳ—କ୍ଳୀ. ବ. (୬ତତ୍ପୁ)ଗଣ୍ଡସ୍ଥଳ, ଗଣ୍ଡଦେଶ । [ଗଳଗଣ୍ଡ ।

ଗଣ୍ଡମାଳା—ସ୍ତ୍ରୀ. ବ. ଗଳାରୋଗବିଶେଷ,

ଗଣ୍ଡମାଳିକା—ସ୍ତ୍ରୀ. ବ. ଲଜ୍ଜାଳୁ ଲତା, ଲାଜକୁଳୀଲତା ।

ଗଣ୍ଡମାଳୀ—ପୁଂ.ବିଂ.ଗଳଗଣ୍ଡରୋଗଯୁକ୍ତ. ଯାହାର ଗଣ୍ଡମାଳା ରୋଗ ଅଛି ।

ଗଣ୍ଡମୂର୍ଖ—ପୁଂ. ବିଂ. (ଗଣ୍ଡ + ମୂର୍ଖ)ଅତିଶୟ ମୂଢ଼, ଘୋର ଅବୋଧ, ନିପଟ ମୂର୍ଖ, (ବି) ଅତି ମୂର୍ଖବ୍ୟକ୍ତି ।

ଗଣ୍ଡସ୍ୱନ୍ତ—ପୁଂ. ବ. ମେଘ ।

ଗଣ୍ଡଯୋଗ—ବ. ବିଷ୍କୁମ୍ଭାଦି ୨୭ ଯୋଗ ମଧ୍ୟରୁ ଦଶମ ଯୋଗ ।

ଗଣ୍ଡଲୀ—ସ୍ତ୍ରୀ. ବ. (ଗଣ୍ଡ + ଲୀ + କ୍ୱିପ୍) ମହାଦେବ ।

ଗଣ୍ଡଲେଖା—ସ୍ତ୍ରୀ. ବ. (ଗଣ୍ଡ + ଲେଖା) ପ୍ରଶସ୍ତ ଗଣ୍ଡସ୍ଥଳ, ଗାଲ ।

ଗଣ୍ଡଶାନ୍ତି—ବ. (୬ତତ୍ପୁ)ଗଣ୍ଡଦୋଷଜନିତ ଅନିଷ୍ଟ ନିବାରଣାର୍ଥ ସର୍ବୌଷଧି ଜଳରେ ସ୍ନାନ, ଦାନ ଓ ହୋମାଦିକର୍ମ ।

ଗଣ୍ଡଶିଳା-ସ୍ତ୍ରୀ. ବ.ସ୍ଥୂଳପାଷାଣ,ବଡ଼ପଥର ।

ଗଣ୍ଡଶୈଳ—ପୁଂ.ବ.କ୍ଷୁଦ୍ର ପର୍ବତ,ଲଲାଟ, କପାଳ, ଭୂକମ୍ପାଦିଦ୍ୱାରା ପର୍ବତରୁ ଭାଙ୍ଗି ପଡ଼ିଥିବା ବଡ଼ପ୍ରସ୍ତର ବା ଶୈଳଖଣ୍ଡ ।

ଗଣ୍ଡସାହ୍ୱୟା—ସ୍ତ୍ରୀ.ବ.. ଗଣ୍ଡକୀନଦୀ ।

ଗଣ୍ଡସ୍ଥଳ—କ୍ଳୀ. ବ. ଗଣ୍ଡଦେଶ, ଗାଲ, କପୋଳ । [ସ୍ଥଳ ।

ଗଣ୍ଡସ୍ଥଳୀ—ସ୍ତ୍ରୀ.ବ. ଗଣ୍ଡଦେଶ, କପୋଳ-

ଗଣ୍ଡା—ଗ୍ରା. ବ. ଅଙ୍କଶାସ୍ତ୍ରର ପାରିଭାଷିକ ସଂଜ୍ଞାବିଶେଷ, ଚାରିକଉଡ଼ା କଉଡ଼ି, ଚାରି ସଂଖ୍ୟା, ଗଣ୍ଡାପତ୍ର, କୌଣସି ବ୍ୟକ୍ତିର ପ୍ରାପ୍ୟଧନ, ପଘାର ଅଂଶ ।

ଗଣ୍ଡାଏ—ଗ୍ରା. ବ. ବିଂ. ଚାରିକଉଡ଼ା,ଏକଗଣ୍ଡାମାତ୍ର, ଚାରିଗୋଟା, ଏକପୁଞ୍ଜା, ପଣକର କୋଡ଼ିଏ ଭାଗରୁ ଏକଭାଗ, ଅଳ୍ପ, ସାମାନ୍ୟ ।

ଗଣ୍ଡାକ—ଗ୍ରା. ବ. ବିଂ. ଚାରିକଉଡ଼ା ମାତ୍ର, କୌଣସି ବ୍ୟକ୍ତିର ପ୍ରାପ୍ୟ ବା ଦେୟ ନିର୍ଦ୍ଦିଷ୍ଟ ପରିମିତ ଧନମାତ୍ର ।

ଗଣ୍ଡାକର—ଗ୍ରା. ବିଂ. ଏକଗଣ୍ଡା ମୂଲ୍ୟର, ଅତି ସାମାନ୍ୟ ମୂଲ୍ୟର ।

ଗଣ୍ଡାକିଆ—ଗ୍ରା. ବିଂ. ଏକଗଣ୍ଡା କଉଡ଼ି ମୂଲ୍ୟର, ଚାରିଚାରିଟିଭାବରେ ଅବସ୍ଥିତ ।

ଗଣ୍ଡାଗଣ୍ଡା—ଗ୍ରା.ବିଂ.ଚାରି ଚାରିଟି ହୋଇ ଅବସ୍ଥିତ, ବହୁତ, ଅସଂଖ୍ୟ, ପର୍ଯ୍ୟାପ୍ତ, ଯଥେଷ୍ଟ, (କ୍ରି.ବିଂ)ଚାରି ଚାରି ଗୋଟି କରି ବା ହୋଇ, ଦଳକୁ ଦଳ; ପଞ୍ଝା ପଞ୍ଝା । [ଗଣ୍ଡକ ।

ଗଣ୍ଡାଙ୍ଗ—ପୁଂ. ସ୍ତ୍ରୀ. ବ. (ବ.ବ୍ରୀ)ଗଣ୍ଡା,

ଗଣ୍ଡାନ୍ତ—କ୍ଳୀ. ବ. ତିଥି, ନକ୍ଷତ୍ର ଓ ଲଗ୍ନର ସନ୍ଧିକାଳ ।

ଗଣ୍ଡାପାହୀ—ଗ୍ରା.ବ. ଗଣ୍ଡାର ଚମଡ଼ାରେ ପ୍ରସ୍ତୁତ ପାହୀ ।

ଗଣ୍ଡାର—(ଗଣ୍ଡକଶବ୍ଦଜ) ସ୍ୱନାମପ୍ରସିଦ୍ଧ ଜନ୍ତୁବିଶେଷ, ଗଣ୍ଡକ, ଗଣ୍ଡା ।

ଗଣ୍ଡାଲି—ପୁଂ. ବ. କୋବିଦାର ବୃକ୍ଷ ନାଲି କାଞ୍ଚନ ଗଛ ।

ଗଣ୍ଡାସା—ସ୍ତ୍ରୀ. ବ. ମଞ୍ଜିଷ୍ଠା ।

ଗଣ୍ଡାଳୀ—ସ୍ତ୍ରୀ. ବ. ଶ୍ୱେତଦୂର୍ବା, ଗଣ୍ଡଦୂର୍ବା, ସର୍ପାକ୍ଷୀ ବୃକ୍ଷ, ମତ୍ସ୍ୟାକ୍ଷୀ ।

ଗଣ୍ଡି—ପୁଂ. ବ. ( ଗଣ୍ଡ + ଇ ) ବୃକ୍ଷର ମୂଳଠାରୁ ଶାଖାପର୍ଯ୍ୟନ୍ତ ଭାଗ, ମସ୍ତକ ବିହୀନ ଶରୀର, (ଗ୍ରା.ବ)ଗଡ଼,ଗଳଗଣ୍ଡ, ଗଣ୍ଡକାକାର ଭାଷା, ଦେହ, ଶରୀର, ଦେହର ମଧ୍ୟଭାଗ,ସ୍ଥୂଳଶରୀର, ଧୋବାମାନଙ୍କ ଲୁଗାକଚା ପଥର ବା କାଠ, ଗଣ୍ଡି, ଝଙ୍କା, ରାଜକୋଷରୁ ଦେବତାଆଦିଙ୍କ ପୂଜାନିମନ୍ତେ ନିୟମିତରୂପେ ମାସିକ ମିଳୁଥିବା ଧନ, ପଶାଆଦି ଖେଳରେ ଏକପକ୍ଷୀୟ ଦୁଇଜଣ ବ୍ୟକ୍ତି ବା ମେଳ, ସୀମାରେଖା, ଡେଲ, ଘଣାଗଣ୍ଡି ।

ଗଣ୍ଡିଆ—ଗ୍ରା. (ସମ୍ବୁ) ବିଂ. ନପୁଂସକ, ପୁରୁଷତ୍ୱହୀନ, ଅପୌରୁଷ ।

ଗଣ୍ଡିଅଳ(ଆଳ)—ଗ୍ରା. ବ. ଆଙ୍ଗୁମାଛଜାତୀୟ କ୍ଷୁଦ୍ର, ସ୍ଥୂଳଶରୀର ମଧୁର ମତ୍ସ୍ୟବିଶେଷ, ଜଙ୍ଗଲ ଗୁଳ୍ମବିଶେଷ ।

ଗଣ୍ଡିଏ—ଗ୍ରା. ବ. ବିଂ. (ଆଦରାର୍ଥକ) ଗଣ୍ଡାଏ (ଦେଖ) ।

ଗଣ୍ଡିକ—ଗ୍ରା.ବିଂ.ଗଣ୍ଡାଏ (ଦେଖ) କ୍ରି.ବିଂ; ବୃତ୍ତଦ୍ରବ୍ୟ କ୍ଷୁଦ୍ର ପାଷାଣାଦି ।

ଗଣ୍ଡିକରିବା—ଗ୍ରା. କ୍ରି. ନିଜଦେହରେ ସ୍ଥୂଳତା ବଢ଼ାଇବା,ସ୍ଥୂଳହେବା,ମୋଟାହେବା ।

ଗଣ୍ଡିକା—ସ୍ତ୍ରୀ. ବ. (ଗଣ୍ଡ + କ + ଆ) କ୍ଷୁଦ୍ର ଗଣ୍ଡ ପାଷାଣ,ବାଲିଗରଡ଼ାବିଶେଷ, ପାନୀୟ ବିଶେଷ, ପ୍ରଥମ ଅବସ୍ଥାରୁ ଅଗ୍ରସର ହୋଇଥିବା କାର୍ଯ୍ୟ ।

ଗଣ୍ଡିଝଙ୍କା—ଗ୍ରା. ବ. କୌଣସି ଦେବତାଙ୍କ ପୂଜା ଖରଚ ଚଳାଇବା ପାଇଁ ରାଜକୋଷରୁ ମାସିକମିଳୁଥିବା ଖଞ୍ଜାଧନ ।

ଗଣ୍ଡିନୀ—ସ୍ତ୍ରୀ. ବ. (ଗଣ୍ଡ + ଇନ୍ + ଈ) ଦୁର୍ଗା ।

ଗଣ୍ଡିପୂଜା—ଗ୍ରା. ବ. ମକରସଂକ୍ରାନ୍ତି ସମୟରେ ଧୋବାମାନଙ୍କର ଲୁଗାକାଚବା ଗଣ୍ଡିକୁ ପୂଜାକରାଯିବା ଉତ୍ସବ ।

ଗଣ୍ଡିମଣ୍ଡଣ—ଗ୍ରା.ବ.ଦାମୁଣ୍ଡିବଳଦ ମଙ୍ଗିବା ପର୍ଯ୍ୟନ୍ତ ପ୍ରଥମେ ଗଣ୍ଡିବାନ୍ଧ ଯୋଚ ବୁଲାଇବା କର୍ମ ।

ଗଣ୍ଡିରି—ଗ୍ରା. ବ. ଗଣ୍ଡିଲି, ବୋଜଲା, ଜାଉଁଲି, ବୋକଚ୍ଚ । [ ହସ୍ତୀ ।

ଗଣ୍ଡୀ—ପୁଂ. ବ. (ଗଣ୍ଡ + ଇନ୍) ହସ୍ତୀ,

ଗଣ୍ଡୀର—ପୁଂ.ବ.(ଗଣ୍ଡ + ଇର)ସମଷ୍ଠିଲା, ଶଶା, ଅନୁପଦେଶଜାତ ଶାକ, ଖାର, କଞ୍ଚୁ, ଶୂରଣ, ବଣଓଲୁଅ,ମଞ୍ଜିଷ୍ଠା,ସିଜୁ ଗଛ ।

ଗଣ୍ଡୀରୀ—ସ୍ତ୍ରୀ.ବ. (ଗଣ୍ଡୀର + ଈ)ଓଲୁଅ ।

ଗଣ୍ଡୁ(ଣ୍ଡୂ)—ପୁଂ.ସ୍ତ୍ରୀ.ବ. (ଗଣ୍ଡ + ଉ + ଊ) ଉପାଧାନ, ମାଣ୍ଡ, ତକିଆ, ହାଡ଼, ଗଣ୍ଠି, ତେଲ ।

ଗଣ୍ଡୂଷା—ସ୍ତ୍ରୀ, ବ. ଗଣ୍ଡୂଷ (ଦେଖ) ।

ଗଣ୍ଡୂପଦ—ପୁଂ. ବ. (ଗଣ୍ଡୂ + ପଦ) କେଞ୍ଚୁଆ, ଜିଆ, ମହାଲତା ।

ଗଣ୍ଡୂପଦଭବ—କ୍ଳୀ.ବ. ସୀସକ, ସୀସା ।

ଗଣ୍ଡୂପଦୀ—ସ୍ତ୍ରୀ.ବ.(ଗଣ୍ଡୂପଦ + ଈ)କ୍ଷୁଦ୍ର କିଞ୍ଚୁଲକ, ଛୋଟ କେଞ୍ଚୁଆ, ଜିଆ,ଜଳପିପ୍ପଳୀ ।

ଗଣ୍ଡୂଭବ—ବି. ସୀସାଧାତୁ ।

ଗଣ୍ଡୂଳ—ବି. (ଗଣ୍ଡୂ+ଳ) ବକ୍ର ।

ଗଣ୍ଡୂଷି—ପୁଂ.ବି. (ଗଣ୍ଡ+ଉଷି) ହସ୍ତତଳ, ହାତର ଲେଉଡ଼ା, ଚଳେ ପାଣି, କୁଳୁକୁଞ୍ଚା, ମୁଖପୂର୍ଣ୍ଣ ଜଳ, ପୋଷେପାଣି, ଗୋକର୍ଣ୍ଣାକୃତି ହସ୍ତରେ ସମ୍ଭାଇବା ଜଳ, ଚଳୁ, ଭୋଜନର ଆଦ୍ୟ ଓ ଶେଷରେ ବ୍ରାହ୍ମଣାଦି ବର୍ଣ୍ଣିନସ୍ୟରମନ୍ତ୍ରୋଚ୍ଚାରଣପୂର୍ବକ ମୁହଁରେ ଶୋଷିବା ଜଳ, କରଗଣ୍ଡୂଳ, ହସ୍ତୀର ଶୁଣ୍ଡାଗ୍ର, (ବୈଦ୍ୟକ) ତୈଳ ଘୃତାଦି ସ୍ନେହଦ୍ରବ୍ୟ ଓ କ୍ଷାର କଷାୟାଦି ଦ୍ରବ, ଦ୍ରବ୍ୟଦ୍ୱାରା ଔଷଧରୂପେ ମୁଖ ପୂରଣ କରିବା ।

ଗଣ୍ଡୂଷବିଧି—ପୁଂ. ବି. ମୁଖଗଣ୍ଡୂଷ କରିବାର ନିୟମ । [ ଦେଖ ।

ଗଣ୍ଡୂଷା-ସ୍ତ୍ରୀ.ବି. (ଗଣ୍ଡୂଷ+ଆ) ଗଣ୍ଡୂଷ

ଗଣ୍ଡୋପଧାନ—କ୍ଲୀ.ବି.(୪ତତ୍ପୁ)ଉପଧାନବିଶେଷ, ମାଣ୍ଡି, ତକିଆ ।

ଗଣ୍ଡୋପଳ—ପୁଂ. ବି. (କ.ଧା) କରକା, କୁଆପଥର, ଶିଳ ।

ଗଣ୍ଡୋଳ—ପୁଂ. ବି. (ଗଣ୍ଡ+କ.ଓଲ) ଗୁଡ଼,ଗ୍ରାସ,ପାଟିରେ ସମ୍ଭାଇବାପରିମିତ ବସ୍ତୁ ।

ଗଣ୍ୟ—ତ୍ରି. ବିଂ. (ଗଣ+ର୍ମ,ଯ)ପ୍ରଧାନ, ଶ୍ରେଷ୍ଠ, ଗଣନା କରିବାର ଯୋଗ୍ୟ, ଗ୍ରାହ୍ୟ, ଗଣନୀୟ, ବିବେଚନୀୟ ।

ଗତ୍—ଗ୍ରା. ବି.(ସଂ-ଗତି) ଘତ୍, ଗୀତ ନ ଥାଇ ରାଗର ଗତି, ସା, ରି, ଗା,ମା, ପା ଧା, ନି ସ୍ୱରର ଗତିମାନ, ସଙ୍ଗୀତ ବୋଲହେବା ପୂର୍ବରୁ ତହିଁରୁ ନିର୍ଦ୍ଦିଷ୍ଟ ରାଗିଣୀର ପ୍ରଣାଳୀ ବା ସ୍ୱର, ଢଙ୍ଗ, ବନ୍ଧ ନିୟମ, ଅଭ୍ୟାସ ।

ଗତ୍ଗତେଇବା,ଗତ୍ଗତ୍ହେବା—ଗ୍ରା.କ୍ରି. (ତଣ୍ଟି) ଗଳାମଧ୍ୟରେ ଖାଦ୍ୟ ପଦାର୍ଥର ଦୋଷରୁ ବା କଫଦୋଷରୁ ଗଲୁ ଜଣାଯିବା, ତୋଟି ଗଲଗଲହେବା ।

ଗତ—ବିଂ. (ଗମ+କ.ତ) ଶେଷରେ ଘଟିଥିବା, ଅତୀତ, ମୃତ, ପ୍ରସ୍ଥିତ, ଯେ ଯାଇଅଛି, ପତିତ, ସମାପ୍ତ, (ଗମ+ର୍ମ, ତ) ପ୍ରାପ୍ତ, ଉପସ୍ଥିତ, ଜ୍ଞାତ, ସ୍ଥିତ, ସମ୍ବନ୍ଧୀୟ, ପ୍ରାପ୍ତ, ଅତିକ୍ରାନ୍ତ, ଉଭେଇ ଯାଇଥିବା, ନଷ୍ଟ, ଦୁଃସ୍ଥୀଭୂତ, କ୍ଷୟିତ, (ସ୍ତ୍ରୀ) ଗତା, କ୍ଲୀ. ବି. (ଗମ+ଭା.ତ) ଗମନ, ଯିବା, ଗତି ।

ଗତକଥା—ବି. (କ.ଧା) ଅତୀତ କାଳର ଗଳ୍ପ, ପ୍ରାଚୀନ ଆପ୍ତବାକ୍ୟ, ଅତୀତବିଷୟ ।

ଗତକରିବା(ସମୟ)—ଗ୍ରା.କ୍ରି. (ନିର୍ଦ୍ଦିଷ୍ଟ ସମୟ) ଅତିବାହିତ କରିବା, (ବେଳ) ଗଡ଼ାଇବା, ବିତାଇବା ।

ଗତକଳୁଷ—ପୁଂ, ବିଂ. (ବ.ବ୍ରୀ)ନିଷ୍ପାପ, ଯାହାର ପାପ ନଷ୍ଟ ହୋଇଅଛି ।

ଗତକଲ୍ମଷ—ପୁଂ. ବିଂ. (ବ.ବ୍ରୀ) ନିଷ୍ପାପ, ପ୍ରାୟଶ୍ଚିତ୍ତାଦିଦ୍ୱାରା ଯାହାର ପାପକ୍ଷୟ ହୋଇଅଛି, ଶୁଦ୍ଧ ।

ଗତକଲ୍ୟ—କ୍ଲୀ. ବି. (କ.ଧା) ବର୍ତ୍ତମାନ ଦିନର ଅବ୍ୟବହିତ ପୂର୍ବଦିନ, ଗତକାଲି, ଗଲକାଲି ।

ଗତକାର୍ଯ୍ୟ—ତ୍ରି. ବିଂ. ଯାହାର କର୍ତ୍ତବ୍ୟ କାର୍ଯ୍ୟ ନଷ୍ଟ ହୋଇଅଛି, (କ୍ଲୀ) ଅତୀତକର୍ମ ।

ଗତକାଳ—(ଗତକଲ୍ୟଶବ୍ଦଜ)ଗତକଲ୍ୟ, ଗତକାଲି, ଅତୀତକାଳ । [ ଦିନ ।

ଗତକାଲି—ଗ୍ରା.ଅବ୍ୟ.ଗଲକାଲି, ଅତୀତଦିନ ।

ଗତକାଲୁଁ—ଗ୍ରା. ଅବ୍ୟ.ଆଗରୁ, ପୂର୍ବରୁ ।

ଗତକୀର୍ତ୍ତି—ତ୍ରି. ବିଂ. (ବ. ବ୍ରୀ) ଯାହାର କୀର୍ତ୍ତି ନଷ୍ଟ ହୋଇଅଛି, ଅକୀର୍ତ୍ତିକୀର୍ତ୍ତି ।

ଗତକ୍ଲମ—ପୁଂ. ବିଂ. (ବ. ବ୍ରୀ) ଯାହାର ଶ୍ରାନ୍ତି ଦୂର ହୋଇଅଛି, ବିଶ୍ରାନ୍ତ, ଅବସାଦମୁକ୍ତ, (ସ୍ତ୍ରୀ) ଗତକ୍ଲମା ।

ଗତଚେତନ—ତ୍ରି. ବିଂ. (ବ.ବ୍ରୀ) ହତଜ୍ଞାନ, ସଂଜ୍ଞାହୀନ, ବିଲୁପ୍ତଚୈତନ୍ୟ, ମୃତ,(ସ୍ତ୍ରୀ) ଗତଚେତନା ।

ଗତଜୀବ (ଜୀବନ, ଜୀବିତ)—ତ୍ରି. ବିଂ. ତ୍ୟକ୍ତପ୍ରାଣ, ମୃତ ।

ଗତଜ୍ୟୋତି—ବିଂ. ବ.ବ୍ରୀ. ତେଜରହିତ ଦ୍ୟୁତିହୀନ, ନିଷ୍ପ୍ରଭ ।

ଗତତ୍ରପ—ତ୍ରି. ବିଂ. (ବ.ବ୍ରୀ) ନିର୍ଲଜ୍ଜ, ଯାହାର ଲଜ୍ଜା ନାହିଁ,(ସ୍ତ୍ରୀ) ଗତତ୍ରପା ।

ଗତଦିନ (ଦିବସ)—ଅବ୍ୟ. ଗତକାଲି, ପୂର୍ବବର୍ତ୍ତୀ ଦିନ ।

ଗତନାସିକ—ବିଂ.(ବ.ବ୍ରୀ)ଯାହାର ନାକ ନାହିଁ, ଖଣ୍ଡିନାକିଆ ।

ଗତନିଦ୍ର—ବି. ( ବ. ବ୍ରୀ ) ନିଦ୍ରାରହିତ, ଜାଗରିତ, (ସ୍ତ୍ରୀ) ଗତନିଦ୍ରା ।

ଗତପର୍ଶ୍ୱ - (ଗତପରଶ୍ୱଶବ୍ଦଜ)ପୂର୍ବଦିନର ପୂର୍ବଦିନ, ପରଦିନ ।

ଗତପାପ—ତ୍ରି. ବିଂ. (ବ.ବ୍ରୀ) ନିଷ୍ପାପ, ପାପରହିତ ।

ଗତପୁଣ୍ୟ—ତ୍ରି. ବିଂ. (ବ.ବ୍ରୀ) ଯାହାର ପୁଣ୍ୟ ନଷ୍ଟ ହୋଇଅଛି ।

ଗତପ୍ରତ୍ୟାଗତ—ପୁଂ.ବିଂ. ଯେ ଯାଇକରି ପୁନର୍ବାର ଫେରି ଆସିଅଛି, (କ୍ଲୀ. ବି) ଗମନ ଓ ପ୍ରତ୍ୟାଗମନ ।

ଗତପ୍ରଭ—ପୁଂ. ବିଂ. (ବ.ବ୍ରୀ) ନିଷ୍ପ୍ରଭ, ପ୍ରଭାହୀନ, ଯାହାର ପ୍ରଭା ଅସ୍ତ ହୋଇଅଛି, (ସ୍ତ୍ରୀ) ଗତପ୍ରଭା ।

ଗତପ୍ରାଣ—ପୁଂ. ବିଂ. (ବ.ବ୍ରୀ) ଯାହାର ପ୍ରାଣ ଦେହ ଛାଡ଼ି ଯାଇଅଛି,ମୃତ,ନିର୍ଜୀବ (ସ୍ତ୍ରୀ)ଗତପ୍ରାଣା ।

ଗତପ୍ରାୟ—ବିଂ.ପ୍ରାୟ ଗତ ହୋଇଥିବା ।

ଗତବୟସ୍କ—ପୁଂ.ବିଂ.(ବ.ବ୍ରୀ)ବୃଦ୍ଧ, (ସ୍ତ୍ରୀ) ଗତବୟସ୍କା ।

ଗତବୟା—ପୁଂ.ବିଂ. (ବ.ବ୍ରୀ)ବୃଦ୍ଧ,(ସ୍ତ୍ରୀ) ଗତବୟସୀ । [ ବର୍ଷ ।

ଗତବର୍ଷ—ଗ୍ରା. ଅବ୍ୟ ଗଲବରଷ, ପୂର୍ବ-

ଗତବୁଦ୍ଧି—ପୁଂ.ବିଂ.(ବ.ବ୍ରୀ) ବୁଦ୍ଧିଶୂନ୍ୟ, ନିର୍ବୋଧ, ଯାହାର ବୁଦ୍ଧିଲୋପ ପାଇଅଛି ।

ଗତବୈର—ବିଂ.(ବ.ବ୍ରୀ)ଯାହାଙ୍କ ମଧ୍ୟରେ ଶତ୍ରୁତା ଲୁପ୍ତ ହୋଇଅଛି, ପରସ୍ପର ମିଳାମିଶା ହୋଇଥିବା ।

ଗତବ୍ୟଥ—ପୁଂ. ବିଂ. (ବ.ବ୍ରୀ) ଯାହାର ବ୍ୟଥା ନାହିଁ, ବେଦନାଶୂନ୍ୟ, ( ସ୍ତ୍ରୀ ) ଗତବ୍ୟଥା ।

ଗତଭର୍ତ୍ତୃକା— ସ୍ତ୍ରୀ.ବିଂ. (ଗତ + ଭର୍ତ୍ତୃ + କ + ଆ) ବିଧବା, ଯାହାର ସ୍ୱାମୀ ଦୂର-ଦେଶ ଯାଇଅଛି, ପ୍ରୋଷିତଭର୍ତ୍ତୃକା ।

ଗତମର୍ଯ୍ୟାଦ — ତ୍ରି. ବିଂ. ଅପମାନିତ, ଯାହାର ମର୍ଯ୍ୟାଦା ଲୁପ୍ତ ହୋଇଅଛି ।

ଗତଯୌବନ—ପୁଂ.ବିଂ.(ବ.ବ୍ରୀ)ଯାହାର ଯୁବା ଅବସ୍ଥା ଅତୀତ ହୋଇଅଛି, ବୃଦ୍ଧ, (କ୍ଲୀ. ବି.) ଅତୀତ ତାରୁଣ୍ୟ, (ସ୍ତ୍ରୀ)ଗତ-ଯୌବନା ।

ଗତର — ଗ୍ରା. ବି. ( ସଂ-ଗାତ୍ର ) ଦେହ, ଶରୀର, ଅଙ୍ଗ ।

ଗତର ଖଟିବା — ଗ୍ରା. କ୍ରି. ଶାରୀରିକ ପରି-ଶ୍ରମ କରିବା, କୌଣସି କାର୍ଯ୍ୟରେ ଆପଣା ଦେହକୁ ଖଟାଇବା ବା ଲଗା-ଇବା, ସର୍ବଦା ପାଇଟି କରିବା ।

ଗତରପୋଷ — ଗ୍ରା. ବି. ଦେହଧାରଣ, (ବିଂ) ଦେହଚ୍ଛିଆ, ଶ୍ରମବିମୁଖ, ସୁଖୀ ।

ଗତରସ — ତ୍ରି. ବିଂ, (ବ.ବ୍ରୀ) ବିରସ, ଯାହାର ରସ ନଷ୍ଟ ହୋଇଅଛି, ନୀରସ ।

ଗତରାତ୍ରି— ସ୍ତ୍ରୀ. ବି. ଅତୀତ ରାତ୍ରି, ପୂର୍ବବର୍ତ୍ତୀ ରାତ୍ରି ।

ଗତଲଜ୍ଜ — ପୁଂ. ବି. (ବ.ବ୍ରୀ) ନିର୍ଲଜ୍ଜ, ଲଜ୍ଜାହୀନ, (ସ୍ତ୍ରୀ) ଗତଲଜ୍ଜା ।

ଗତଲକ୍ଷ୍ମୀକ—ପୁଂ. ବିଂ. (ବ.ବ୍ରୀ) ଯାହା-ଠାରୁ ଲକ୍ଷ୍ମୀ ଛାଡ଼ି ଅଛି, ଲକ୍ଷ୍ମୀଛଡ଼ା, ଯାହାର ଶୋଭା ନଷ୍ଟ ହୋଇଅଛି ।

ଗତଶୈଶବ — ପୁଂ.ବିଂ.(ବ.ବ୍ରୀ) ଯାହାର ଶୈଶବାବସ୍ଥା ଅତିକ୍ରାନ୍ତ ହୋଇଅଛି ।

ଗତଶୋକ — ବିଂ.(ବ.ବ୍ରୀ) ବିଗତଶୋକ, ବୀତଶୋକ, ଶୋକହୀନ,(ବି) ଅଶୋକ ବୃକ୍ଷ ।

ଗତଶୋଚନ(ନା) — ବି.ଗତାନୁଶୋଚନ, ଅତୀତ ବିଷୟ ଲାଗି ଶୋକ ପ୍ରକାଶ ।

ଗତଶ୍ରମ — ପୁଂ. ବିଂ. (ବ.ବ୍ରୀ) ଗତକ୍ଲମ, ଯାହାର ଶ୍ରାନ୍ତି ଦୂର ହୋଇଅଛି ବିଶ୍ରାନ୍ତ, ଅବସାଦମୁକ୍ତ, (ସ୍ତ୍ରୀ) ଗତଶ୍ରମା ।

ଗତଶ୍ରୀ — ପୁଂ. ବିଂ. (ବ.ବ୍ରୀ) ଯାହାର ଶୋଭା ନାହିଁ, ଗତଲକ୍ଷ୍ମୀକ, ନିଷ୍ପ୍ରଭ ।

ଗତସଙ୍ଗ—ତ୍ରି. ବିଂ. (ବ.ବ୍ରୀ) ଯେ ସଙ୍ଗ ପରିତ୍ୟାଗ କରିଅଛି, ନିଃସଙ୍ଗ, ଫଳ-କାମନା ଶୂନ୍ୟ, ଯେ ସଙ୍ଗପ୍ରାପ୍ତ ହୋଇ ଅଛି, ପ୍ରାପ୍ତସଙ୍ଗ, ଫଳକାମନାମୁକ୍ତ, ପୂର୍ଣ୍ଣମନୋରଥ, (ସ୍ତ୍ରୀ) ଗତସଙ୍ଗା ।

ଗତସତ୍ତ୍ୱ — ପୁଂ. ବିଂ. ( ବ.ବ୍ରୀ) ମୃତ, ଗତପ୍ରାଣ, ନୀଚ ।

ଗତସନ୍ଦେହ — ପୁଂ.ବିଂ. (ବ.ବ୍ରୀ)ଯାହାର ମନରୁ ସଂଶୟ ଦୂରୀଭୂତ ହୋଇଅଛି ।

ଗତସନ୍ନକ — ପୁଂ.ବିଂ. (ବ.ବ୍ରୀ) ମଦ-ଶୂନ୍ୟ (ହସ୍ତୀ), ଯେଉଁ ହାତୀର ମଦଜଳ ବହିବାର ସମୟ ଅତିକ୍ରାନ୍ତହୋଇଅଛି ।

ଗତସ୍ପୃହ—ତ୍ରି. ବିଂ. (ବ.ବ୍ରୀ) ଯାହାର ସ୍ପୃହା ନାହିଁ, ନିସ୍ପୃହ, କାମନାଶୂନ୍ୟ, ବୀତରାଗ ।

ଗତସ୍ୱସ୍ୱ — ପୁଂ.ବିଂ. (ବ.ବ୍ରୀ) ସର୍ବଶୂନ୍ୟ, ବିସ୍ୱସ୍ୱଶୂନ୍ୟ ।

ଗତସ୍ୟଶୋଚନାନାସ୍ତି — (ପ୍ରବଚନ)ପଛ କଥା ଭାବିବା ବୃଥା ।

ଗତହେବା—ଗ୍ରା. ବି. (ବେଳ)ଗଡ଼ିଯିବା, ( ନିର୍ଦ୍ଦିଷ୍ଟ ସମୟ ) ଅତିକ୍ରାନ୍ତ ହେବା, ( ଶୁଭବାଚକ ) ମୃତହେବା, ମରିବା ।

ଗତା — ପ୍ରା. ( ଗଞ୍ଜାମ ) ବି. ଶଗଡ଼ର ଜୁଆଳିକୁ ଦୁଇ ଦଣ୍ଡାର ଶେଷ ବିନ୍ଦୁ ବା ଝୁରିମୁଣ୍ଡି ସହିତ ବାନ୍ଧିବାର କତା ବା ଚମ ଦଉଡ଼ି, ଚମ ବା କତା ଦଉଡ଼ିରେ ବନ୍ଧା ହୋଇଥିବା ଝୁରିମୁଣ୍ଡି ।

ଗତାକ୍ଷ — ପୁଂ. ବିଂ. (ବ.ବ୍ରୀ)ନେତ୍ରହୀନ, ଅନ୍ଧ, (ସ୍ତ୍ରୀ) ଗତାକ୍ଷୀ ।

ଗତାଗତ୍—ଗ୍ରା. ବି. ( ସଂ-ଗତାଗତ ) ଗୁପ୍ତପ୍ରଣୟ, ଗୁପ୍ତମିଳନ, ଗୁପ୍ତ ସହ-ବାସ, ଗତାଗତ ।

ଗତାଗତ — କ୍ଲୀ. ବି. ଗମନାଗମନ, ଯିବା ଆସିବା, ପକ୍ଷୀର ଗତିବିଶେଷ, (ପୁଂ) ମହାଦେବ, ପରସ୍ପରଙ୍କର ବହୁବାର ଦେଖା ସାକ୍ଷାତ୍ ଓ ସହବାସ, ପରସ୍ପର ସ୍ଥାନ ପରିବର୍ତ୍ତନ, (ଜ୍ୟୋତିଷ)ନକ୍ଷତ୍ର-ମାନଙ୍କର ଅନିୟମିତ ଗତି, ( ବିଂ ) ଯାତାୟାତ, ଯାଆସ କରୁଥିବା, ପ୍ରଥମ ଯାଇ ପରେ ଫେରି ଆସିଥିବା ।

ଗତାଗତି — ସ୍ତ୍ରୀ.ବି. ଗମନାଗମନ, ଯିବା-ଆସିବା ।

ଗତାଗତିକ — ତ୍ରି. ବିଂ. ଯିବା ଆସିବାରେ ଯାହା ନିଷ୍ପନ୍ନ ହୋଇଅଛି ।

ଗତାଧି — ବିଂ. (ବ.ବ୍ରୀ) ଚିନ୍ତାମୁକ୍ତ,ସୁଖୀ, ରୋଗମୁକ୍ତ ।

ଗତାଧ୍ୱନ୍ — ତ୍ରି. ବିଂ. ତତ୍ତ୍ୱଜ୍ଞ, ଜ୍ଞାତତତ୍ତ୍ୱ, (ପୁଂ) ଗତାଧ୍ୱା, (ସ୍ତ୍ରୀ) ଗତାଧ୍ୱନୀ ।

ଗତାଧ୍ୱା — ସ୍ତ୍ରୀ. ବି. ଚତୁର୍ଦ୍ଦଶୀଯୁକ୍ତ ଅମାବାସ୍ୟା ତିଥି ।

ଗତାନପତାନ — ଗ୍ରା. ଅବ୍ୟ. ପରମ୍ପରା କ୍ରମେ, ପୁରୁଷାନୁକ୍ରମେ, ଆବହମାନ-କାଳରୁ ।

ଗତାନୁଗତ—ତ୍ରି. ବିଂ. ଆଗଲୋକର ପଛରେ ଯେ ଆସେ,ଆଗର ବା ଦୃଷ୍ଟାନ୍ତ ବା ରୀତିର ଅନୁସରଣକାରୀ, ( ବି ) ଗମନର ଅନୁଗମନ ।

ଗତାନୁଗତିକ — ପୁଂ.ବିଂ. (ବ.ବ୍ରୀ)ଅନୁ-କାରୀ, ଅନୁବର୍ତ୍ତୀ (ଲୋକ), ଦୃଷ୍ଟାନ୍ତର ଅନୁବର୍ତ୍ତୀ, ଯେ ନିଜେ ଆଗପଛ ବିଚାର ନ କରି ଅନ୍ୟର ଦୃଷ୍ଟାନ୍ତକୁ ଅନୁକରଣ କରେ, ଯେ ପୂର୍ବବର୍ତ୍ତୀ ସମଘଟନା ଅନୁସାରେ କର୍ମ କରେ, (ବି) ନ୍ୟାୟ-ବିଶେଷ ।

ଗତାନୁଶୋଚନ(ନା)-- ପୁଂ.ବିଂ.(ବ.ବ୍ରୀ) ଯାହାର ଶୋକ ଦୂର ହୋଇଅଛି,(ବି) ଗତକଥା ସମ୍ବନ୍ଧେ ଅନୁତାପ ।

ଗତାନ୍ତ—ତ୍ରି. ବିଂ. ଯାହାର ଶେଷକାଳ ଉପସ୍ଥିତ, ମୁମୂର୍ଷୁ, ଯାହାର ମୃତ୍ୟୁକାଳ ପହଞ୍ଚି ଅଛି ।

ଗତାୟାତ — କ୍ଲୀ. ବି. ଗମନାଗମନ, ଯିବାଆସିବା ।

ଗତାୟୁଃ—ବିଂ. ଯାହାର ଆୟୁଃଶେଷ, ଅଳ୍ପାୟୁଷ, ମୃତ, ଅତିବୃଦ୍ଧ, ମୁମୂର୍ଷୁ, ଚରମକାଳ ପ୍ରାୟ ଉପସ୍ଥିତ ।

ଗତାର୍ତ୍ତବା — ସ୍ତ୍ରୀ. ବି. ବୃଦ୍ଧାସ୍ତ୍ରୀ, ଯାହାର ବୟସ ପଚାଶରୁ ଅଧିକ, ଯେଉଁ ସ୍ତ୍ରୀର ଋତୁ ସ୍ରାବ ବନ୍ଦ ହୋଇଅଛି ।

ଗତାର୍ଥ—ତ୍ରି. ବି. (ବ.ବ୍ରୀ) ଚରିତାର୍ଥ, ଯାହାର ଅର୍ଥ ଜଣାଅଛି, ନିଷ୍ପ୍ରୟୋଜନ, ସିଦ୍ଧାର୍ଥ, ଧନହୀନ ହୋଇଥିବା ।

ଗତାଲସ—ବିଂ. ( ବ.ବ୍ରୀ ) ନିରଳସ, ଆଳସ୍ୟହୀନ, ଚଞ୍ଚଳ, ଅସ୍ଥିର, (ସ୍ତ୍ରୀ) ଗତାଲସା ।

ଗତି—ସ୍ତ୍ରୀ. ବି. (ଗମ୍ + ଭା,ତି) ଗମନ, ଚଞ୍ଚଳ, ଗମନର ପ୍ରଣାଳୀ, ଚାଲିବାର ଢଙ୍ଗ, ଜୀବନଯାତ୍ରା, ଯାତ୍ରା, ଅବସ୍ଥା,ଜ୍ଞାନ,ଜାଣିବା, ଅଗ୍ରସରହେବା, ଫଳ, ପରିମାଣ,ପ୍ରକାର,ସ୍ୱରୂପ, ଘଟନା-କ୍ରମ, ପ୍ରାପ୍ତି, ପ୍ରସ୍ଥାନ,ପ୍ରସ୍ଥାଣ, ନିର୍ବାହ, ସତ୍କାର, ଅନ୍ତ୍ୟେଷ୍ଟି କ୍ରିୟା,(ଗମ + ଅଧି, ତି) ଗମ୍ୟସ୍ଥାନ, ପଥ, ବାଟ, (ଗମ୍ + ଣ,ତି) ଅବଲମ୍ବନ, ଆଶ୍ରୟ, ଉପାୟ, ପ୍ରମାଣ,ଖ୍ୟାତି,ଦୁଃଖ ଓ ପାପାଦିରୁ ମୁକ୍ତି, ମୋକ୍ଷ, ସଂସାର ବନ୍ଧନରୁ ଉଦ୍ଧାର, ପ୍ରବେଶ, ସ୍ଥିତି,ସ୍ଥାନ, ଗ୍ରହ ଓ ନକ୍ଷତ୍ର-ମାନଙ୍କର ଦୈନିକ ଚଳନ, ଭଗନ୍ଦର ରୋଗ,ନଳୀଘା,ନାଡ଼ୀବ୍ରଣ, ମୃତ୍ୟୁପରେ ପୁନର୍ଜନ୍ମ, ଅଭିପ୍ରାୟ,ମନୋଭାବ, ଢଙ୍ଗ, ଗୀତ, ଜୀବନର ଅବସ୍ଥା, ( ଯଥା— ଶୈଶବ,ଯୌବନ, ଜରା) ଜନ୍ମକାଳରେ ଶିଶୁର ଅବସ୍ଥା, ଶିଶୁ ମାତୃଗର୍ଭରୁ ଭୂମିଷ୍ଠ ହେଲାବେଳେ ଯେଉଁ ଅବସ୍ଥାରେ ଥାଏ, (ବ୍ୟାକରଣ) ଅଳଂ, ତିରସ୍, ନମସ୍, ବହିସ୍, ପୁରସ୍ ଆଦି ଅବ୍ୟୟପଦ କୌଣସି କ୍ରିୟା ବା କ୍ରିୟା ବାଚକବିଶେଷ୍ୟ ଆଦିସଙ୍ଗେ ଯୁକ୍ତ-ହୋଇ ପଦନିଷ୍ପନ୍ନ କରିବା ଅବସ୍ଥା, (ଗ୍ରା. ବି) ଗତ୍ୟନ୍ତର, ଉପାୟାନ୍ତର ।

ଗତିକ—କ୍ଲୀ. ବି. ଗତି, ଅବସ୍ଥା, ଆଶ୍ରୟ, ଗମନ, ଅଭିଶାପ, ଉପାୟ, ପ୍ରକାର, ଦଶା, ଭାବ, ଲକ୍ଷଣ, ଉପଲକ୍ଷ୍ୟ, ପ୍ରୟୋଜନ,(ଗ୍ରା.ବି)ଚାଲିଚଳନ,ଜୀବନ-ଯାତ୍ରା ନିର୍ବାହ, ଢଙ୍ଗ, ଅବଲମ୍ବନ ।

ଗତିକର—ପୁଂ.ବିଂ. (ଗତି + କୃ + କ,ଅ) ଯେ ଜୀବକୁ ଗତି ବା ମୁକ୍ତିପ୍ରଦାନକରେ, ମୁକ୍ତିଦାତା, ଯେ ଅନ୍ୟବ୍ୟକ୍ତି ବା ବସ୍ତୁର ଗତି କରାଏ ।

ଗତିକ୍ରିୟା—ସ୍ତ୍ରୀ. ବି. (୬ତତ୍) ଗମନ-କ୍ରିୟା, ଯିବା, ଚଳନ, ଦୀର୍ଘସୂତ୍ରତା ।

ଗତିଗୋଚର—ଗ୍ରା. ବି. ଅବସ୍ଥିତ ।

ଗତିଦାୟୀ—ପୁଂ. ବି. ( ଗତି + ଦା + କ,ଇନ୍) ଗତିଦାତା,ମୁକ୍ତିଦାୟକ,(ସ୍ତ୍ରୀ) ଗତିଦାୟିନୀ ।

ଗତିବଜ୍ଞାନ—କ୍ଲୀ. ବି. (କ.ଧା) ପଦାର୍ଥ ବିଜ୍ଞାନର ଶାଖାବିଶେଷ ।

ଗତିବଧି—ପୁଂ.ବି. ଗତିବିଧାନ, ସମାନ-ରୂପେ ଜ୍ଞାନ ।

ଗତିମାନ୍—ପୁଂ. ବିଂ. ( ଗତି + ମତ୍ ) ଗତିକରୁଥିବା, ଯାହାର ଘାଆରୁ ପୂଯ ବହୁଥାଏ ।

ଗତିମୁକ୍ତି—ବି. (ଗତି + ମୁକ୍ତି) ସଦ୍‌ଗତି, ସମ୍ୟକ୍ ଉଦ୍ଧାର, ଜୀବନକୁ କଷ୍ଟ ବା ପାପରୁ ଉଦ୍ଧାର କରିବା ।

ଗତିରୋଧ—ପୁଂ. ବି. (୬ତତ୍) ଯିବାରେ ବାଧା, ଗତିରେ ବିଘ୍ନ ।

ଗତିଲ—ସ୍ତ୍ରୀ.ବି. ( ଗମ୍ + ଇଲ + ଆ ) ବେଣିଲତା, ନଦୀବିଶେଷ, ପରମ୍ପରା ।

ଗତିଶକ୍ତି—ସ୍ତ୍ରୀ. ବି. ଗମନାଗମନର କ୍ଷମତା, ଚାଲିପାରିବା ।

ଗତିଶକ୍ତିରହିତ—ପୁଂ. ବିଂ. ଯିବା ଆସି-ବାରେ ଅସମର୍ଥ, ନିଶ୍ଚଳ, ନିରାଶ୍ରୟ ।

ଗତିଶକ୍ତିହୀନ—ବିଂ. ଗତିକରିବାର ଶକ୍ତି ଯାହାର ନାହିଁ, ନିଶ୍ଚଳ, ନିରାଶ୍ରୟ ।

ଗତିସତ୍ତମ—ପୁଂ. ବି. ପରମେଶ୍ୱର ।

ଗତିହୀନ—ବିଂ. ଗତି କରିବାର ଶକ୍ତି ଯାହାର ନାହିଁ, ଅଗତିକ ।

ଗତୀକ—ତ୍ରି. ବିଂ. ଗମନଯୋଗ୍ୟ ।

ଗତୋତ୍ସାହ—ପୁଂ.ବିଂ. (ବ.ବ୍ରୀ) ହତୋତ୍ସାହ, ନିରୁତ୍ସାହ ।

ଗତ୍ୟନ୍ତର—କ୍ଲୀ. ବି. ଅନ୍ୟଉପାୟ ।

ଗତ୍ୱନ୍—ତ୍ରି. ବିଂ. ଗମନକର୍ତ୍ତା, (ସ୍ତ୍ରୀ) ଗତ୍ୱରୀ ।

ଗତ୍ୱର୍—ତ୍ରି.ବିଂ. ଗମନଶୀଳ,ଗତିବିଶିଷ୍ଟ, ବିନଶ୍ୱର, ଅସ୍ଥାୟୀ, ଅସ୍ଥିର, (ସ୍ତ୍ରୀ) ଗତ୍ୱରୀ । (ବିଶେଷ ।

ଗତ୍ୱରୀ—ସ୍ତ୍ରୀ. ବି. ପ୍ରାଚୀନ ଅର୍ଣ୍ଣବପୋତ-

ଗତ୍ୱା--ଅବ୍ୟ.ଯାଇ,ଯାଇକରି,ଗମନକରି ।

ଗଦ୍‌ରା—ଗ୍ରା. (ସମ୍ବ) ବି. ଗୁଡ଼ ରଖିବାର ଚଉଡ଼ାମୁହଁ ବଡ଼ମାଠିଆ, ଆଖୁଦୋରୁଅ ରଖିବାର ପାତ୍ର ବା ମାପବିଶେଷ, (ବିଂ) ଦରପାଚିଲା ଫଳ ।

ଗଦ୍‌ହା—ଗ୍ରା. (ବସ୍ତର) ବିଂ. ଗଧା,ଅକ-ର୍ମଣ୍ୟ (ବ୍ୟକ୍ତି), ବି. ଗଧ ।

ଗଦ୍‌ଗଦ୍—କ୍ଲୀ. ବି. ଗଦ୍‌ଗଦ୍ ଭାଷଣ, ଗ୍ରା. ଅବ୍ୟ; (ସଂ-ଗଦ୍‌ଗଦ୍) ଆନନ୍ଦାତି-ଶଯ୍ୟଜନିତ ପୁନଃ ପୁନଃ କମ୍ପନ ସହ ଉଚ୍ଚାରିତ ବାକ୍ୟର ଅବ୍ୟକ୍ତ ଅବସ୍ଥା, ନଦୀ ବା ପ୍ରପାତାଦିର ଜଳର ଉଚ୍ଚରୁ ପତନ ହେବାର ଶବ୍ଦର ଅନୁକରଣ, ମେଘର ଗମ୍ଭୀର ଶବ୍ଦର ଅନୁକରଣ, ( ଗ୍ରା. ବିଂ )ଭାବବିହ୍ୱଳ(କଣ୍ଠ),ଗଭୀର ଉଲ୍ଲାସ ବା ଦୁଃଖଯୋଗୁଁ ରୁଦ୍ଧ (କଣ୍ଠ), ଭାବାତିଶଯ୍ୟଯୋଗୁଁ କମ୍ପିତ ( ସ୍ୱର ), ଆନନ୍ଦପ୍ରେମ ଭକ୍ତିଆଦିରେ ଯାହାର ପାଟି ଖନିମାରିଯାଏ,କମ୍ପ୍ରା କଣ୍ଠ ନିଃସୃତସ୍ୱର ସ୍ପଷ୍ଟରୂପେ ବୁଝା ପଡ଼େ ନାହିଁ ।

ଗଦ—(ଧାତୁ) କହିବା, ମୁଖରେ ବର୍ଣ୍ଣନା କରିବା, ସଂଖ୍ୟାକରିବା. ପୀଡ଼ିତହେବା, ଘଡ଼ଘଡ଼ି ମାରିବା ।

ଗଦ—ପୁଂ.ବି. ରୋଗ, ପୀଡ଼ା,ମେଘଧ୍ୱନି, କଥନ,କହିବା, ବିଷ, ବାକ୍ୟ, ଘଡ଼ଘଡ଼ି, କୁଡ଼, ବସୁଦେବର ପୁତ୍ର ଶ୍ରୀକୃଷ୍ଣଙ୍କର ସାନଭାଇ, ଗ୍ରା. ବି. (ସଂ-ଅଗଦ) ସାପ କାମୁଡ଼ା ଓ ଶିଶୁମାନଙ୍କ ଉଦରରୋଗର ମହୌଷଧି ବିଶେଷ, ଏକପ୍ରକାର ଗୁଳ୍ମର ସୁଗନ୍ଧଚେର, ମହୌଷଧ ।

ଗଦଗଦନାଦୀ(ଭାଷୀ)—ପୁଂ. ବିଂ.(ଗଦ-ଗଦ + ନଦ + କ,ଇନ୍)ଅବ୍ୟକ୍ତ ଗମ୍ଭୀର ଶବ୍ଦକାରୀ ।

ଗଦଡ଼ା—ବିଂ. ମୋଟା (ବସ୍ତ୍ର), ମଇଳା, ମଳିନ, (ବି) ଖୋଳ, ଛଣପଟ ଇତ୍ୟା-ଦିର ଜଟିଳ ଅଂଶ ବା ଆବର୍ଜନା ବା ଅଳିଆ, ଗରଦ, ଛିଣ୍ଡାଲୁଗା ଓ କନାକୁ ଅନେକ ପରସ୍ତ କରି ସିଲାଇ କରିବା । ଦ୍ୱାରା ପ୍ରସ୍ତୁତ କନ୍ଥା ବା, ଗୋଦଡ଼ି ।

ଗଦୟିତ୍ନୁ—ବିଂ. (ଗଦା+କ, ଇତ୍ନୁ) ଗପୁଡ଼ି, ବହୁଭାଷୀ, କାମୁକ, (ବି) କାମଦେବ ।

ଗଦା—ସ୍ତ୍ରୀ.ବି. (ଗଦ୍+ଅ+ଆ) ସ୍ୱନାମ ଖ୍ୟାତ ଲୌହମୟ ଅସ୍ତ୍ରବିଶେଷ, ବୃଦ୍ଧି-ଡଣ୍ଡି, ମନ୍ଥଡଣ୍ଡି,ପଟୋଳ ବୃକ୍ଷ, ଯୋଗ-ବିଶେଷ, ଲୌହ ବା କାଠର ମୁଦ୍‌ଗର, (ଗ୍ରା.ବି.)ସ୍ତୂପ,ଏକଜାତୀୟ ବହୁବସ୍ତୁର ଏକତ୍ର ଉପର୍ଯ୍ୟୁପରି ସମାବେଶ,(ଯଥା:- ନଡ଼ାଗଦା, ଧାନଗଦା ) ବହୁ ମନୁଷ୍ୟ ଏକସ୍ଥାନରେ ଠୁଳ ବା ରୁଣ୍ଡ ହେବା, ବହୁତ, ପ୍ରଚୁର, (ଗ୍ରା.ବିଂ)ଏକସ୍ଥାନରେ ଜମା ହୋଇଥିବା, ଏକତ୍ର ସମାବିଷ୍ଟ, ରୁଣ୍ଡ ହୋଇଥିବା । [ ବହୁତ ।

ଗଦାଏ—ଗ୍ରା. ବି. ବିଂ. ଏକଗଦା ମାତ୍ର,

ଗଦାକରିବା—ଗ୍ରା.କ୍ରି.ଗଦେଇବା(ଦେଖ) ।

ଗଦାକ୍ଷେତ୍ର—ବିରଜାକ୍ଷେତ୍ରର ଅପର ନାମ ।

ଗଦାକ୍ଷ—କ୍ଲୀ. ବି. କୁଡ଼ ।

ଗଦାଗଦ—ପୁଂ. ବି.ଅଶ୍ୱିନୀକୁମାରଦ୍ୱୟ ।

ଗଦାଗଦା—ଗ୍ରା. ବି. ବିଂ. ଓ କ୍ରି. ବିଂ. ସ୍ତୂପୀକୃତ, କୁଢ଼ କୁଢ଼ ।

ଗଦାଗଦି—ଗ୍ରା. ବି. ବହୁବସ୍ତୁର ସ୍ତୂପୀ-କରଣ, ଏକତ୍ର ଠୁଳକରିବା ।

ଗଦାଗ୍ରଜ—ପୁଂ. ବି. ବଳରାମ, କୃଷ୍ଣ ।

ଗଦାଗ୍ରଣୀ—ପୁଂ.ବି. (୬ତତ୍) କ୍ଷୟରୋଗ, ରାଜଯକ୍ଷ୍ମାରୋଗ ।

ଗଦାଘାତ—ବି.(୩ତତ୍ )ଗଦାଦ୍ୱାରାମାଡ଼ ।

ଗଦାଧର—ପୁଂ. ବି. ବିଷ୍ଣୁ, ଶ୍ରୀକୃଷ୍ଣ, ଗଦାତୀର୍ଥସ୍ଥିତ ଦେବମୂର୍ତ୍ତିବିଶେଷ ।

ଗଦାଧରପଟ୍ଟନାୟକ—ଗ୍ର .ପୁଂ.ବି. ରସ-କଲ୍ପଲତାନାମକ ଗ୍ରନ୍ଥପ୍ରଣେତା ।

ଗଦାଧରପଦ୍ଧତି—ଗ୍ରା. ବି. ଗଦାଧର ରାଜଗୁରୁଙ୍କ ପ୍ରଣୀତ ସ୍ମୃତିଗ୍ରନ୍ଥ ।

ଗଦାଧରରାଜଗୁରୁ—ଗ୍ରା. ବି. ସୁପ୍ରସିଦ୍ଧ ଉତ୍କଳୀୟସ୍ମୃତିଶାସ୍ତ୍ରପ୍ରଣେତା,ଗଦାଧର-ପଦ୍ଧତିର ରଚୟିତା । [ ବିଷ୍ଣୁ ।

ଗଦାଗ୍ରଜ—ପୁଂ. ବି. ଗଦାପୂର୍ବ-ଜନ୍ମା

ଗଦପାଣି—ପୁଂ.ବି. ବିଷ୍ଣୁ,କୃଷ୍ଣ,ମାତୃକା ଦେବୀଭକ୍ତ ଗଣକମୁନିଙ୍କ ଶିଷ୍ୟ ରାଜା, (ବିଂ. ବ.ବ୍ରୀ) ଯେ ହାତରେ ଗଦା ଧରିଅଛି ।

ଗଦାଭୃତ୍—ପୁଂ.ବି. (ଗଦା+ଭୃ+କ, କ୍ୱିପ୍)ବିଷ୍ଣୁ,କୃଷ୍ଣ,(ବିଂ)ଯେ ଗଦାଧରେ ।

ଗଦାମୁଦ୍ରା—ସ୍ତ୍ରୀ. ବି.ବିଷ୍ଣୁପୂଜାର ମୁଦ୍ରା-ବିଶେଷ ।

ଗଦାମ୍ବର—ପୁଂ. ବି. (କ.ଧା) ମେଘ, ଘଡ଼ଘଡ଼ିଯୁକ୍ତ ମେଘ ।

ଗଦଯୁଦ୍ଧ—ବି,(୩ତତ୍) ଗଦାଦ୍ୱାରା ଯୁଦ୍ଧ, ଯେଉଁ ଯୁଦ୍ଧରେ ପ୍ରତିପକ୍ଷମାନେ ଗଦା ବ୍ୟବହାର କରନ୍ତି ।

ଗଦାରାତି—ପୁଂ. ବି. (୬ତତ୍) ଔଷଧ, ମହୌଷଧି । [ତୀର୍ଥ ।

ଗଦାଲୋଳ—କ୍ଲୀ.ବି.ଗଦାତୀର୍ଥସ୍ଥ ଗୋଟିଏ

ଗଦାବସାନ—କ୍ଲୀ.ବି.ମଥୁରାର ନିକଟବର୍ତ୍ତୀ ଗୋଟିଏ ସ୍ଥାନ ।

ଗଦାସନ—କ୍ଲୀ. ବି. ଆସନବିଶେଷ ।

ଗଦାସାହାଣ—ପ୍ରା. ( ପ୍ରଶ୍ନ ) ବି. ବ୍ୟାୟାମ ସାଧନାର୍ଥ ଡାହାଣ ହାତରେ ଲୁହାଗଦା ଓ ବାଆଁ ହାତରେ ପଟାପରି ଲମ୍ବ ଲୁହା ଯନ୍ତ୍ର ଧରି ବୁଲାଇବା ।

ଗଦାହସ୍ତ—ବି. ବିଂ. ଓ ( ବ.ବ୍ରୀ ) ଗଦାପାଣି (ଦେଖ) ।

ଗଦାହ୍ୱ—କ୍ଲୀ.ବି.କୁଷ୍ଠ, କୁଡ଼,ଗଦାହ୍ୱୟ ।

ଗଦି—ଗ୍ରା. ବି. (ସଂ-ଗଦ୍ଧି ଧାତୁ) ସିମିଳି ତୂଳା ବା ଛେଚ୍ଚ କଟା ଆଦିରେ ପୂର୍ଣ୍ଣ ସ୍ଥୂଳ କୋମଳ ବିଛଣା, ରାଜଗାଦି, ରାଜସିଂହାସନ, ମାଲିକଙ୍କ ସ୍ୱତନ୍ତ୍ର ଆସନ ।

ଗଦିଆ—ଗ୍ରା.ବିଂ. ଯେଉଁ ବିଛଣା ଆଦିରେ ଗଦି ମଡ଼ା ହୋଇଥାଏ, ଗଦିଯୁକ୍ତ ତୂଳା ବା କତାର ମୋଟ ଆସ୍ତରଣଯୁକ୍ତ (ଖଟ), ବି. ଗଦେଇବା ।

ଗଦିଆନ—ଗ୍ରା ବିଂ. ଯେଉଁ ମହାଜନ ବ୍ୟବସାୟ ବାଣିଜ୍ୟପାଇଁ ନିଜର ସ୍ୱତନ୍ତ୍ର ବଡ଼ କାର୍ଯ୍ୟାଳୟ ସ୍ଥାପନ କରିଥାଏ ।

ଗଦିଆଳ—ଗ୍ରା. ବି. ବାଣିଜ୍ୟ ଗଦିର କର୍ତ୍ତା, ଗଦିର ମାଲିକ ।

ଗଦିଏ—ଗ୍ରା. ବିଂ. ବି. ଗୋଟିଏ ଛୋଟ ଗଦା ମାତ୍ର ।

ଗଦିତ—କ୍ରି ବିଂ. (ଗଦ୍+ମଁ,ତ)କଥିତ, ଉକ୍ତ; (କ୍ଲୀ.ବି.) କଥନ ।

ଗଦିତୋଜ୍ଜ୍ୱଳା—ସ୍ତ୍ରୀ.ବି. ଛନ୍ଦୋବିଶେଷ ।

ଗଦିନଶିନ—ବିଂ. ସିଂହାସନାରୂଢ଼, ରାଜପଦରେ ଅଭିଷିକ୍ତ, ସିଂହାସନରେ ଉପବିଷ୍ଟ ।

ଗଦୀ—ପୁଂ. ବି. (ଗଦା+ଇନ୍) ବିଷ୍ଣୁ, ବିଂ.(ଗଦ୍+ଇନ୍) ରୋଗୀ, ପୀଡ଼ାଗ୍ରସ୍ତ, ଯାହାର ଗଦା ଅଛି, ଗଦାଧାରୀ ।

ଗଦୀ—ଯା. ବି. ଆସନ, ତୂଳାନିର୍ମିତ ଶଯ୍ୟା ବିଶେଷ ।

ଗଦେଇବା—ଗ୍ରା.କ୍ରି.ବହୁ ବସ୍ତୁକୁ ଏକତ୍ର ସ୍ତୂପ ବା ଠୁଳ ବା ରୁଣ୍ଡ କରିବା ।

ଗଦ୍ଗଦ—ପୁଂ.ବି. (ଗଦ୍+ଗଦ+ମଁ,ଅ) ହର୍ଷ ଶୋକାଦିର ଆତିଶଯ୍ୟବଶତଃ ବାକ୍ୟରୋଧଜନିତ ଅବ୍ୟକ୍ତ ବା ଜଡ଼ିତ କଣ୍ଠଧ୍ୱନି, ଖନାଇବା, ଅସ୍ପଷ୍ଟ ବାକ୍ୟ, ବିଂ. ଅବ୍ୟକ୍ତ କଣ୍ଠଧ୍ୱନିଯୁକ୍ତ, ବିହ୍ୱଳ, ମୋହିତ । [ ନିପୁଣ ।

ଗଦ୍ଗଦକ—ପୁଂ. ବିଂ. ଗୃଷ୍ଟ ବାକ୍ୟରେ

ଗଦ୍ଗଦକଣ୍ଠ—ବିଂ. ( ବ.ବ୍ରୀ ) ଅନତି-ପରିସ୍ଫୁଟ କଣ୍ଠଧ୍ୱନିବିଶିଷ୍ଟ,(ସ୍ତ୍ରୀ) ଗଦ୍ଗଦ-କଣ୍ଠା ବା କଣ୍ଠୀ ।

ଗଦ୍ଗଦଧ୍ୱନି—ପୁଂ. ବି. ଅବ୍ୟକ୍ତ ଶବ୍ଦ, ଗଦ୍ ଗଦ୍ ସ୍ୱର ।

ଗଦ୍ଗଦନାଦୀ—ପୁଂ.ବିଂ.(ଗଦ୍ଗଦ+ନଦ୍+କ. ଇନ୍ ) ଅସ୍ପଷ୍ଟ ଧ୍ୱନି କରୁଥିବା,ପୁନଃ ପୁନଃ କମ୍ପିତସ୍ୱରରେ କଥା କହୁଥିବା, ଖନାଉଥିବା ।

ଗଦ୍ଗଦବାକ୍—ପୁଂ.ବିଂ.ଶୋକ କ୍ରୋଧ ଭୟ ଆଦି ଯୋଗୁଁ କଣ୍ଠରୁଦ୍ଧ ହେବାରୁ ଯେ ଅର୍ଦ୍ଧୋଚ୍ଚାରିତ ବା କମ୍ପିତଭାବେ କଥା କହେ,(ସ୍ତ୍ରୀ) ଗଦ୍ଗଦବାଚୀ,ବି. ଅର୍ଦ୍ଧୋ-ଚ୍ଚାରିତ କଥା । (ଦେଖ) ।

ଗଦ୍ଗଦଭାଷୀ—ପୁଂ. ବିଂ. ଗଦ୍ଗଦବାକ୍

ଗଦ୍ଗଦସ୍ୱର—ପୁଂ. ବି. ଗଦ୍ଗଦ ଧ୍ୱନି (ଦେଖ), ମହର୍ଷି, ପୁଂ. ବିଂ. ଗଦ୍ଗଦବାକ୍ (ଦେଖ) ।

ଗଡ଼ି—ଗ୍ରା.ବି.ପରିହାସ,ଥଟ୍ଟା,କୌତୁକ, ତାମସା, ହିମାଳୟ ଓ ଉଃ ପଃ ଅଞ୍ଚଳ-ବାସୀ ଜାତିବିଶେଷ ।

ଗଦ୍ୟ—ବି.ବିଂ.(ଗଦ+ର୍ମ.ଯ) କଥନୀୟ, ଯାହା କୁହା ହେବ, (ସ୍ତ୍ରୀ) ଗଦ୍ୟା, (କ୍ଲୀ.ବି.)ଶ୍ରାବ୍ୟ କାବ୍ୟବିଶେଷ, ଛନ୍ଦୋ-ବନ୍ଧରହିତ ରଚନା, ସାଧାରଣ ଭାଷା ।

ଗଦ୍ୟପଦ୍ୟ--ବି.(ଦ୍ୱନ୍ଦ୍ୱ) ଗଦ୍ୟ ଓ ପଦ୍ୟ ।

ଗଦ୍ୟମୟ—ବି. (ଗଦ୍ୟ+ମୟ) ଯାହା ଗଦ୍ୟରେ ପୂର୍ଣ୍ଣ ( ରଚନା ), ଯେଉଁ ବିଷୟରେ କବିତା ପରିକଳ୍ପନାର ଖେଳ ନାହିଁ, ବାସ୍ତବ ।

ଗଦ୍ୟାଣ(ନ)—ବି. ୪୮ ରତି ଓଜନର ପରିମାଣବିଶେଷ, ବୈଦ୍ୟ ମତରେ ୬୪ ଗୁଞ୍ଜା ପରିମାଣ ।

ଗଧ—ଗ୍ରା.ବି. ଖର, ଅଶ୍ୱଜାତୀୟ ନିକୃଷ୍ଟ ଭାରବାହୀ ପଶୁ ।

ଗଧଡ଼(ଡ଼ି)—ଗ୍ରା. ବି. ଓ ବିଂ. ଗଧା (ଦେଖ) ।

ଗଧପାଦଧରିବା--ଗ୍ରା.(ପ୍ରବଚନ) ନ୍ୟାୟ, କାର୍ଯ୍ୟୋଦ୍ଧାର ନିମନ୍ତେ ଅସମୟରେ ଅଯୋଗ୍ୟ ବ୍ୟକ୍ତିର ଅନୁସରଣ ବା ସେବା କରିବା ।

ଗଧଭୋଜନ—ଗ୍ରା. ବି. ଗଧର ଖାଦ୍ୟ-ପରି ନିକୃଷ୍ଟ ଖାଦ୍ୟ ।

ଗଧରଲ ( ଫଳ )—ପ୍ରା. (ସମ୍ବ) ବିଂ. ଅର୍ଦ୍ଧପକ୍ୱ (ଫଳ) ।

ଗଧରଡ଼ି (ବୋବାଳି)—ଗ୍ରା. ବି. ଗଧର ବୋବାଳି, ଗଧର ବୋବାଳିପରି କର୍ଣ୍ଣ-କଟୁ ରବ ।

ଗଧା—ଗ୍ରା.ବି.(ସଂ-ଗର୍ଦ୍ଦଭ) ଅତିନିର୍ବୋଧ ବ୍ୟକ୍ତି, ଓଲୁ , (ବିଂ.)ମଠୁଆ, ଅଳସୁଆ, ଓଲୁ , ନିର୍ବୋଧ ।

ଗଧାଟୋପି, ଗଧଟୋପି—ଗ୍ରା. ବି. ବିଦ୍ୟାଳୟରେ ଅପାରଗ ବା ଅମନୋ-ଯୋଗୀ ଛାତ୍ରର ମୁଣ୍ଡ ଉପରେ ଦଣ୍ଡ-ସ୍ୱରୂପ ଶିକ୍ଷକ ଯେଉଁ କାଗଜର ଟୋପି ପିନ୍ଧାଇ ଦିଅନ୍ତି । [ ପଣ ।

ଗଧାମି—ଗ୍ରା.ବି.ଅଳସୁଆପଣ, ନିର୍ବୁଦ୍ଧିଆ

ଗଧିଆ—ଗ୍ରା. ବି. ହେଟାବାଘ, (ବିଂ.) ଅଳସୁଆ, ମଠୁଆ ।

ଗଧୁଣୀ—ଗ୍ରା. ବି. ମାଈଗଧ ।

ଗଧ୍ୟ—ବି.ବିଂ.(ଗ୍ରହ+ଯ)ପ୍ରାପ୍ୟ, ଯାହା ପାଇବାର ଯୋଗ୍ୟ ।

ଗନ୍‌ଗନାନ୍ତୁ—ପ୍ରା.(ସମ୍ବ.)ଅବ୍ୟ.ସଙ୍କେତ (ସରଳତା ଓ ଚଞ୍ଚଳତା ବ୍ୟଞ୍ଜକ,ଚଞ୍ଚଳ ଗତିରେ ଓ ସିଧାରେ) ।

ଗନରିଆ—ଯା. ବି. ମେହରୋଗ ।

ଗନସନ—ପ୍ରା. (ଗଞ୍ଜାମ) ବି, ଗନ୍ଧଷଣ (ଦେଖ) ।

ଗନିମତ୍—ଯା.ବି.ବିଧର୍ମୀ ବା କାଫେରକୁ ଯୁଦ୍ଧରେ ପରାସ୍ତ କରି ତା'ଠାରୁ ମୁସଲମାନବିଜେତାଙ୍କ ଦ୍ୱାରା ପ୍ରାପ୍ତ ମାଲମତା, ମୁଫତ୍ ବା ବିନାପରିଶ୍ରମରେ ମିଳିବା ମାଲ୍ ।

ଗନ୍ତବ୍ୟ—ବି. ବିଂ. ( ଗମ+ର୍ମ,ତବ୍ୟ ) ଜ୍ଞେୟ, ବୋଧଗମ୍ୟ, ନିଷ୍ପାଦନୀୟ, ଗମନୀୟ, ଗମନ କରିବାର ଯୋଗ୍ୟ, ପ୍ରାପ୍ୟ,ଯିବାର ଉପଯୁକ୍ତ(ସମୟ),ଯେଉଁ ସ୍ଥାନକୁ ଯିବା ଉଚିତ ।

ଗନ୍ତବ୍ୟ ସ୍ଥାନ—କ୍ଲୀ. ବି. ଯେଉଁ ସ୍ଥାନକୁ ଯିବାକୁ ମନୁଷ୍ୟର ଲକ୍ଷ୍ୟ ଥାଏ ।

ଗନ୍ତା - ପୁଂ.ବିଂ. (ଗମ+କ.ତୃ)ଗମନ-ଶୀଳ, ପ୍ରାପ୍ତିଶୀଳ, ଗମ୍ୟମାନ, ସ୍ତ୍ରୀ-ସହବାସକାରୀ, (ସ୍ତ୍ରୀ) ଗନ୍ତ୍ରୀ, (ଗ୍ରା.ବି.) ଏକ ପ୍ରକାର କୁରୁଡ଼ା ।

ଗନ୍ତାଇ,ଗନ୍ତେଇ—ଗ୍ରା. ବି. ପାଇଜାମା, ଗାଣ୍ଡିମୁଣା ।

ଗନ୍ତାଇତ (ଏତ)—ଗ୍ରା. ବି. ରଜାଙ୍କର ବସ୍ତ୍ରାଗାରର ରକ୍ଷକଭୃତ୍ୟ, ସରଘରିଆ ।

ଗନ୍ତାଘର—ଗ୍ରା. ବି. ଭଣ୍ଡାର ଘର, ସରଘର ।

ଗନ୍ତାଘରିଆ—ଗ୍ରା. ବି. ପୁଂ. ଗନ୍ତାଇତ ।

ଗନ୍ତାଣୀ—ଗ୍ରା.ବି. ସ୍ତ୍ରୀ. ରାଣୀଙ୍କ ଭଣ୍ଡାରର ଭାରପ୍ରାପ୍ତା ଦାସୀ, ରାଣୀଙ୍କ ବସ୍ତ୍ରାଗାର ଯେଉଁ ଦାସୀର ଜିମା ଥାଏ ।

ଗନ୍ତୁ—ବି. ବିଂ. ( ଗମ୍+କ.ତୁ ) ଯେ ଗମନ କରେ, ଗମନକର୍ତ୍ତା, ପଥିକ, ବି. (ଗମ୍+ଅଧି.ତୁ ) ବାଟ, ପଥ ।

ଗନ୍ତୁକାମ(କାମୀ)—ପୁଂ.ବି.(ଗନ୍ତୁ+କାମ +ଇନ୍) ଗମନେଚ୍ଛୁକ, ଯିବାକୁ ଉଦ୍ୟତ ।

ଗନ୍ତ୍ରୀ—ସ୍ତ୍ରୀ.ବି.(ଗମ+ତୃ+ଈ)ଗୋରୁ-ଗାଡ଼ି,ଶଗଡ଼, (ସ୍ତ୍ରୀ.ବିଂ.)ଗମନକାରିଣୀ, (ସ୍ତ୍ରୀ) ଗମନଶୀଳା, ପ୍ରାପ୍ତିଶୀଳା ।

ଗନ୍ତ୍ରୀରଥ—ପୁଂ. ବି. ( କ.ଧା ) ଶକଟ, ଗୋରୁଗାଡ଼ି ।

ଗନ୍ଥଡ଼ା(ଗନ୍ଥା)—ଗ୍ରା. ବି. (ସଂ-କନ୍ଥା) ଅନେକ ପରସ୍ତ ଛିଣ୍ଡା ଓ ପୁରୁଣାଲୁଗା ଓ କନା ଏକତ୍ର ସିଆଁ ହୋଇଥିବା ବିଛଣା, ଗୋଦଡ଼ି ।

ଗନ୍ଦା—ପ୍ରା. (ସମ୍ବଲ) ବି. ଗେଣ୍ଡୁଫୁଲ, ଛିନ୍ନ ବସ୍ତ୍ର, କନ୍ଥା ।

ଗନ୍ଦ—ପ୍ରା. (ସମ୍ବ) ବି. ପୁଚ୍ଛ ।

ଗନ୍ଧ୍—(ଧାତୁ )ଆଘାତ କରିବା,ହିଂସା-କରିବା, ମାଗିବା, ଗତିକରିବା, ଭୂଷିତ କରିବା, ପୀଡ଼ାଦେବା, ବଧ କରିବା ।

ଗନ୍ଧ—ପୁଂ.ବି. (ଗନ୍ଧ୍+କ,ଅ)ଘ୍ରାଣେ-ନ୍ଦ୍ରିୟ ଗ୍ରାହ୍ୟଗୁଣ,ଲେଶ,ସମ୍ବନ୍ଧ,ଗନ୍ଧକ, ବସ୍ତୁର ଯେଉଁଗୁଣ ନାକଦ୍ୱାରା ଅନୁଭବ କରାଯାଏ, ଆମୋଦ, ବାସ, ଘୃଷ୍ଟ ଚନ୍ଦନାଦି, ଶିବ ଦେବତାଙ୍କୁ ଅର୍ପିତ ହେବାପାଇଁ ସୁବାସିତ ଦ୍ରବ୍ୟାଦି, ନୃତ୍ୟ, ଗର୍ବ,ଶୋଭାଞ୍ଜନ,କୃଷ୍ଣାଗୁରୁ, ବୈଶେଷିକ ଦର୍ଶନୋକ୍ତ ୨୪ ଗୁଣ ମଧ୍ୟରୁ ପୃଥିବୀର ଗୋଟିଏ ଗୁଣ ଅଟେ, (ବିଂ) ଗନ୍ଧଯୁକ୍ତ, ପ୍ରତିବେଶୀ,(ଗ୍ରା.ବି.)ଦୁର୍ଗନ୍ଧ,ଉଗ୍ରଗନ୍ଧ ।

ଗନ୍ଧକ—ପୁଂ.ବି.(ଗନ୍ଧ+କ) ଶିଗ୍ରୁ ବୃକ୍ଷ, ସଜନା ଗଛ, ସ୍ୱନାମଖ୍ୟାତ ପୀତବର୍ଣ୍ଣ ଉପଧାତୁବିଶେଷ ।

ଗନ୍ଧକକଜ୍ଜଳୀ—ସ୍ତ୍ରୀ.ବି.ଔଷଧବିଶେଷ ।

ଗନ୍ଧକଚୂର୍ଣ୍ଣ—କ୍ଲୀ. ବି. (କ.ଧା) ଗନ୍ଧ-ପ୍ରଧାନ ଚୂର୍ଣ୍ଣବିଶେଷ, ବାରୁଦ ।

ଗନ୍ଧକନ୍ଦ — ପୁଂ.ବ. କେଶରୁ ବୃକ୍ଷ,ମୁଥା-ଜାତୀୟତୃଣ,କୈବର୍ତ୍ତିମୁସ୍ତକ,କେଉଟିଆ ମୁଥା ।

ଗନ୍ଧକରିବା — ଗ୍ରା. କ୍ରି. ଗନ୍ଧେଇବା, ଦୁର୍ଗନ୍ଧ କରିବା, ଦୁର୍ଗନ୍ଧ ହେବା, ପାଡ଼ିବା, ଅପାନ ବାୟୁ ତ୍ୟାଗ କରିବା, (ଲକ୍ଷଣାର୍ଥ) କୌଣସି କଥା ମନକୁ ନ ପାଇବା ବା ବିରକ୍ତିକର ବୋଧହେବା ।

ଗନ୍ଧକଳୀ — ସ୍ତ୍ରୀ. ବ. ପ୍ରିୟଙ୍ଗୁ, ଚମ୍ପକ-କଳିକା, ଚମ୍ପାକଢ଼ି ।

ଗନ୍ଧକସ୍ତୁରିକା — ସ୍ତ୍ରୀ. ବ. ସୁଗନ୍ଧ ଦ୍ରବ୍ୟ-ବିଶେଷ, ଗନ୍ଧକସ୍ତୁରୀ ।

ଗନ୍ଧକାରିକା—ସ୍ତ୍ରୀ. ବ. (ଗନ୍ଧ + କାରକ + ଆ) ସୈରିନ୍ଧ୍ରୀ,ପରଗୃହସ୍ଥିତା ଶିଳ୍ପ-ନିପୁଣା ସ୍ୱାଧୀନା ରମଣୀ, ପ୍ରଭୁଙ୍କ ବେଶ-ବିନ୍ୟାସ ନିମନ୍ତେ ସୁଗନ୍ଧ ଓ ଚନ୍ଦନାଦି ପ୍ରସ୍ତୁତ କରି ରଖିବା ଦାସୀ ।

ଗନ୍ଧକାଣ୍ଡ — ସ୍ତ୍ରୀ. ବ. ଶ୍ୱେତ ଲଜ୍ଜାଳୁକା, ଶଲ୍ଲକୀ ବୃକ୍ଷ ।

ଗନ୍ଧକାଳିକା — ସ୍ତ୍ରୀ. ବ (ଗନ୍ଧ + କଲ + ଅ + ଇ + କ + ଆ) ବ୍ୟାସଦେବଙ୍କର ମାତା ।

ଗନ୍ଧକାଳୀ — ସ୍ତ୍ରୀ. ବ. (ଗନ୍ଧ + କଲ୍ + କ,ଅ + ଇ) ବ୍ୟାସଦେବଙ୍କର ମାତା, ଅପର ନାମ ସତ୍ୟବତୀ, କୁମ୍ଭୀରମୂର୍ତ୍ତି ଧାରଣୀ ଶାପଭ୍ରଷ୍ଟା ଗୋଟିଏ ଅପ୍ସରା ।

ଗନ୍ଧକାଳୁକା—ଗ୍ରା. ବ. ଏଳବାଳୁକା ।

ଗନ୍ଧକାଷ୍ଠ — କ୍ଲୀ. ବ. ଅଗୁରୁ ଚନ୍ଦନ, ଚନ୍ଦନକାଠ, ଶମ୍ବର ଚନ୍ଦନ, ସୁଗନ୍ଧ କାଠ ।

ଗନ୍ଧକୁଟୀ—ସ୍ତ୍ରୀ. ବ. ମୁରାନାମକ ଗନ୍ଧ-ଦ୍ରବ୍ୟ, ମୁରାମାଂସୀ ।

ଗନ୍ଧକୁସୁମା—ସ୍ତ୍ରୀ. ବ. (ବୈ.ଶା) ଗଣି-କାରୀ, ଗନ୍ଧପୁଷ୍ପୀ, ଅଗବଥ୍ ।

ଗନ୍ଧକୃଟୀ—ସ୍ତ୍ରୀ. ବ. ବୌଦ୍ଧ-ବିହାରସ୍ଥ ଆରାମ ସ୍ଥାନ ।

ଗନ୍ଧକେଳିକା—ସ୍ତ୍ରୀ. ବ. କସ୍ତୁରୀ, ମୃଗ-ନାଭି, ଗନ୍ଧମାଳତୀ ।

ଗନ୍ଧକୋକିଲା— ସ୍ତ୍ରୀ.ବ. ଗନ୍ଧମାଳତୀ ତୁଲ୍ୟ ଗନ୍ଧଦ୍ରବ୍ୟବିଶେଷ ।

ଗନ୍ଧଖେଡ଼—କ୍ଲୀ. ବ. ଗନ୍ଧବେଣା,ଭୂତୃଣ ।

ଗନ୍ଧଗଜ—ବି. (କ.ଧା) ମଦଗନ୍ଧ ଯୁକ୍ତ ହସ୍ତୀ ।

ଗନ୍ଧଗୁହଗ,ଗୋହିର — ଗ୍ରା. ବ. ଦେହରୁ ଦୁର୍ଗନ୍ଧ ବାହାରୁଥିବା ବବୁରିଜାତୀୟ କଣ୍ଟକୀଗଛ ।

ଗନ୍ଧଗୁହା — ସ୍ତ୍ରୀ. ବ. ମୁରାମାଂସୀ ।

ଗନ୍ଧଗୋକୁଳ(ଳା) — ଗ୍ରା. ବ. ଖଟାଶ, ଶଲ୍ୟଅପଣ୍ଡାନାମକ ନେଉଳଜାତୀୟ ବନ୍ୟଜୀବ ।

ଗନ୍ଧଗ୍ରହ — ବି. (ଗନ୍ଧ + ଗ୍ରହ୍ + ଣ,ଅ) ନାସିକା ।

ଗନ୍ଧଚନ୍ଦନ — ଗ୍ରା.ବ. ଘୋଗଚନ୍ଦନ ।

ଗନ୍ଧଚେଲିକା — ସ୍ତ୍ରୀ.ବ. (ବୈ.ଶା)କସ୍ତୁରୀ, ମୃଗନାଭି, ଲତାକସ୍ତୁରୀ, ମାଛ ଶାଳିଆ-ପତ୍ରିମୀ ।

ଗନ୍ଧଜଟିଳା—ସ୍ତ୍ରୀ. ବ. ବଚ୍, ବଚ ।

ଗନ୍ଧଜଳ — କ୍ଲୀ. ବ. ସୁଗନ୍ଧି କୁସୁମାଦି ବାସିତ ଜଳ,ସୁବାସିତ ଜଳ, ଗୋଲାପ ଜଳପ୍ରଭୃତି ।

ଗନ୍ଧଜାତ — କ୍ଲୀ.ବ. ତେଜପତ୍ର, ଗନ୍ଧ-ଦ୍ରବ୍ୟସମୂହ, (ବିଂ) ଗନ୍ଧରୁ ଉତ୍ପନ୍ନ ।

ଗନ୍ଧଜ୍ଞା — ସ୍ତ୍ରୀ.ବ. (ଗନ୍ଧ + ଜ୍ଞା + ଅ + ଆ) ନାସିକା ।

ଗନ୍ଧଣା — ଗ୍ରା.ବ. ଉତ୍ତୋଳ ଗଛପରି ଏକ ପ୍ରକାର ଗଛ, (ପ୍ରା. ଗଞ୍ଜାମ ବ.) ଅଗ୍ନି-ମନ୍ଥ, (ପ୍ରା. ବସ୍ତର) ବଥୁଆଶାଗ ।

ଗନ୍ଧତଣ୍ଡୁଳ—କ୍ଲୀ.ବ. ଶାଳିଧାନ୍ୟବିଶେଷ, ବାସବତୀ, ବାସନା ଧାନଗୁଣ୍ଡଳ ।

ଗନ୍ଧତନ୍ମାତ୍ର—କ୍ଲୀ. ବ. (ଦର୍ଶନ) ସାଙ୍ଖ୍ୟ ମତସିଦ୍ଧ ସ୍ଥୂଳ ପୃଥିବୀର କାରଣ ସୂକ୍ଷ୍ମ-ଦ୍ରବ୍ୟ ।

ଗନ୍ଧତୁଳସୀ— ବ. ଏକପ୍ରକାର ତୁଳସୀ, ବଣତୁଳସୀ, ଦୋଳଙ୍ଗ । [ରଣତୂର୍ଯ୍ୟ ।

ଗନ୍ଧତୂର୍ଯ୍ୟ — କ୍ଲୀ. ବ. ରଣବାଦ୍ୟବିଶେଷ,

ଗନ୍ଧତୃଣ — କ୍ଲୀ.ବ.ଗନ୍ଧଯୁକ୍ତ ତୃଣବିଶେଷ, ବେଣା, ଧନଶ୍ରୀ ।

ଗନ୍ଧତୈଳ — କ୍ଲୀ. ବ. ଯନ୍ତ୍ରପାକେ ଉତ୍ପନ୍ନ ଗନ୍ଧଯୁକ୍ତ ତୈଳବିଶେଷ, ସୁବାସିତ ତେଲ, ଫୁଲଗତେଲ, ଚନ୍ଦନତେଲ ।

ଗନ୍ଧତ୍ୱକ୍ — କ୍ଲୀ. ବ. ଏଳବାଳୁକ ।

ଗନ୍ଧଦଳା — ସ୍ତ୍ରୀ. ବ. ଅଜମୋଦା, ବନ ଜୁଆଣି ।

ଗନ୍ଧଦାରୁ — କ୍ଲୀ. ବ. ଚନ୍ଦନ ।

ଗନ୍ଧଦ୍ରବ୍ୟ — କ୍ଲୀ. ବ. ନାଗକେଶର, ଅଳାଇଗୁଡ଼ି ଆୟୁର୍ବେଦୀୟ ସୁଗନ୍ଧ ମସଲାସମସ୍ତ ।

ଗନ୍ଧଦ୍ରାବକ—କ୍ଲୀ. ବ. ପ୍ଳୀହାଦି ରୋଗ-ନାଶକ ଔଷଧିବିଶେଷ ।

ଗନ୍ଧଦ୍ୱିପ — ପୁଂ. ବ. ମଦଗନ୍ଧଯୁକ୍ତ ହସ୍ତୀ, ଉତ୍କୃଷ୍ଟହସ୍ତୀ ।

ଗନ୍ଧଧାରୀ — ପୁଂ. ବିଂ. ଯେ ଗନ୍ଧଦ୍ରବ୍ୟ ଧାରଣ କରେ, (ବି) ମହାଦେବ, (ସ୍ତ୍ରୀ) ଗନ୍ଧଧାରିଣୀ ।

ଗନ୍ଧଧୂମଜ-ପୁଂ.ବ. (ଗନ୍ଧ + ଧୂମ + ଜନ୍ + ଅ) ସ୍ୱାଦୁନାମକ ଗନ୍ଧଦ୍ରବ୍ୟ ।

ଗନ୍ଧଧୂଳି — ସ୍ତ୍ରୀ. ବ. କସ୍ତୁରୀ, ମୃଗନାଭି ।

ଗନ୍ଧନ—କ୍ଲୀ.ବ.(ଗନ୍ଧ୍ + ଅନ)ଉତ୍ସାହ, ପ୍ରକାଶ, ହିଂସା, ସୂଚନ,ଯୁଦ୍ଧ, ଗନ୍ଧତୃଣ, ଧନଶ୍ରୀ, ବେଣା । [ମୂଷା ।

ଗନ୍ଧନକୁଳ — ପୁଂ.ବ. ଛୁଚୁନ୍ଦରୀ, ଚୁଚୁନ୍ଦ୍ରା

ଗନ୍ଧନାକୁଳୀ—ସ୍ତ୍ରୀ. ବ. ରାସ୍ନା, ଚବିକା, ଗଜପିପ୍ପଳୀ, ପିପଳାମୂଳ ।

ଗନ୍ଧନାମ—ପୁଂ.ବ. (ବୈ.ଶା) ରକ୍ତ-ତୁଳସୀ, କଳାତୁଳସୀ ।

ଗନ୍ଧନାମ୍ନୀ—ସ୍ତ୍ରୀ. ବ. କ୍ଷୁଦ୍ରରୋଗବିଶେଷ ।

ଗନ୍ଧନାଳିକା — ସ୍ତ୍ରୀ. ବ. ନାସିକା, ନାକ ।

ଗନ୍ଧନାଳୀ -- ସ୍ତ୍ରୀ. ବ. ନାସିକା, ନାକ ।

ଗନ୍ଧନାଳୁକା — ଗ୍ରା. [ବି. ଏଳବାଳୁକ, ସୁଗନ୍ଧଦ୍ରବ୍ୟ ବିଶେଷ ।

ଗନ୍ଧନଳସ୍ୱା-ସ୍ତ୍ରୀ.ବ.ନବମଲ୍ଲିକା,ନଆଳୀ ।

ଗନ୍ଧନଶା — ସ୍ତ୍ରୀ. ବ. ଗନ୍ଧପତ୍ରା, ଶୁଣ୍ଠି, ଗନ୍ଧହୁଳଦି, ଆମ୍ବଅଦା ।

ଗନ୍ଧପ—ବ (ଗନ୍ଧ + ପା + ଅ) ଦେବତା-ବିଶେଷ ।

ଗନ୍ଧପତ୍ର—କ୍ଲୀ.ବି. ତେଜପତ୍ର, ପତ୍ରପତ୍ର, (ପୁଂ, ବି.ସ୍ତ୍ରୀ) ବର୍ବର, ଶ୍ୱେତତୁଳସୀ, ମରୁଆଗଛ, ବିଲ୍ୱବୃକ୍ଷ, ନାଗରଙ୍ଗ ।

ଗନ୍ଧପତ୍ରା—ସ୍ତ୍ରୀ. ବି. ଗନ୍ଧଶୁଣ୍ଠି, ଆମ୍ବକସି ଅଦା, ଅଜମୋଦା, ଅଶ୍ୱଗନ୍ଧା, ଗଙ୍ଗାପତ୍ରୀ, ଶାକ, ଗଦବିଶେଷ, ଅଳାନବନ୍ଧ ।

ଗନ୍ଧପତ୍ରିକା—ସ୍ତ୍ରୀ. ବି. ଗନ୍ଧଶୁଣ୍ଠି, ଅଜ-ମୋଦା, ଆମ୍ବକସିଅଦା, ଅଶ୍ୱଗନ୍ଧା, ଗଦ ବିଶେଷ ।

ଗନ୍ଧପର୍ଣ୍ଣ—କ୍ଲୀ. ବି. (ବି.ସ୍ତ୍ରୀ) ଗନ୍ଧପତ୍ର, (ଦେଖ) ।

ଗନ୍ଧପଲଶ—ଗ୍ରା. ବି. ବୃକ୍ଷବିଶେଷ ।

ଗନ୍ଧପଲାଶକ—ସ୍ତ୍ରୀ. ବି. ବଂଶଲୋଚନା ।

ଗନ୍ଧପଲାଶିକା—ସ୍ତ୍ରୀ.ବି. ହରିଦ୍ରା, ହଳଦୀ ।

ଗନ୍ଧପଲାଶୀ—ସ୍ତ୍ରୀ.ବି. ଗନ୍ଧପତ୍ରା (ଦେଖ) ।

ଗନ୍ଧପାଷାଣ—ପୁଂ.ବି. ଗନ୍ଧକ(ଉପଧାତୁ-ବିଶେଷ) ।

ଗନ୍ଧପିପ୍ପଳୀ—ଗ୍ରା. ବି. ଏକପ୍ରକାରପିପ୍ପଳୀ ଗୁଳ୍ମ, ବଣପିମ୍ପଳୀ ।

ଗନ୍ଧପିଶାଚିକା—ସ୍ତ୍ରୀ. ବି. ଧୂପବିଶେଷ, ଚୁଚୁନ୍ଦ୍ରା ମୂଷା, ଏହି ଧୂପଗନ୍ଧରେ ପିଶାଚୀ ଆଦିର ବିକାର କମିଯାଏ । [ଦେଖ ।

ଗନ୍ଧପୀତା—ସ୍ତ୍ରୀ.ବି. ଗନ୍ଧଶୁଣ୍ଠି, ଗନ୍ଧପତ୍ରା

ଗନ୍ଧପୁଷ୍ପ—ପୁଂ. ବି.ବେତସ ବୃକ୍ଷ, ଅଶୋକ ବୃକ୍ଷ, ନୀଳ ବୃକ୍ଷ ଆଙ୍କୁଲ ଗଛ, (କ୍ଲୀ) ଗନ୍ଧ ଓ ପୁଷ୍ପ, ଚନ୍ଦନ ଗଛ ଓ ଫୁଲ ।

ଗନ୍ଧପୁଷ୍ପକ—ପୁଂ.ବି. ବେତଗଛ, ବେତସ ବୃକ୍ଷ ।

ଗନ୍ଧପୁଷ୍ପା—ସ୍ତ୍ରୀ, ବି. ନୀଳୀବୃକ୍ଷ, କେତକୀ ବୃକ୍ଷ, ଗନଆରି ଗଛ, ଅଗବଥ ।

ଗନ୍ଧପ୍ରସାରଣୀ—ସ୍ତ୍ରୀ.ବି. ପ୍ରସାରଣୀ ଲତା, ପସାରୁଣୀ ଲତା ।

ଗନ୍ଧପ୍ରିୟ—ତ୍ରି. ବିଂ. (ବି.ସ୍ତ୍ରୀ) ଯାହାର ଗନ୍ଧ ଅତିଶୟ ପ୍ରିୟ ।

ଗନ୍ଧପ୍ରିୟଙ୍ଗୁ—ପୁଂ. ବି. ପ୍ରିୟଙ୍ଗୁ ବୃକ୍ଷ ।

ଗନ୍ଧଫଣିଜ୍ଜକ—ପୁଂ.ବି.ରକ୍ତତୁଳସୀ ବୃକ୍ଷ, ଲଣ୍ଡାବଗୁଲି ଗଛ ।

ଗନ୍ଧଫଳ—ପୁଂ.ବି. (ବି.ସ୍ତ୍ରୀ) କପିତ୍ଥବୃକ୍ଷ, କଇଥ ଗଛ, ବେଲଗଛ, ତେଜଃଫଳ ।

ଗନ୍ଧଫଳା—ସ୍ତ୍ରୀ.ବି. ପ୍ରିୟଙ୍ଗୁ ବୃକ୍ଷ, ମେଥି, ଭୂଇଁ କଖାରୁ, ଶଲ୍ଲକୀ, ଶାଲୁଇ ଗଛ, ମୁରମାଂସୀ ।

ଗନ୍ଧଫଳିକା—ସ୍ତ୍ରୀ. ବି. ପ୍ରିୟଙ୍ଗୁ, ଚମ୍ପକ କଳିକା ।

ଗନ୍ଧଫଳୀ—ସ୍ତ୍ରୀ. ବି. ପ୍ରିୟଙ୍ଗୁ, ଚମ୍ପକ-କଳିକା, କାଠଚମ୍ପା ।

ଗନ୍ଧବଣିଆ (ବଣିକ୍)—ପୁଂ. ବି. ପୁଷ୍ଟୁଳି ବଣିଆ ଜାତି, ଏମାନେ ଗନ୍ଧଦ୍ରବ୍ୟ ବ୍ୟବସାୟ କରନ୍ତି ।

ଗନ୍ଧବହା—ସ୍ତ୍ରୀ.ବି. (ଗନ୍ଧ+ବହ+ଆ) ନାସିକା ।

ଗନ୍ଧବନ୍ଧୁ—ପୁଂ.ବି.ଆମ୍ର ବୃକ୍ଷ,(ବିଂ)ଗନ୍ଧ ବିଶିଷ୍ଟ ।

ଗନ୍ଧଭଦୁଲି(ଆ)-ଗ୍ରା.ବି.ପ୍ରସାରଣୀ ଲତା ।

ଗନ୍ଧଭଦ୍ରା—ସ୍ତ୍ରୀ. ବି. ପ୍ରସାରଣୀ ଲତା, ଦୁର୍ଗନ୍ଧ ଲତାବିଶେଷ ।

ଗନ୍ଧଭାଣ୍ଡ—ପୁଂ.ବି. ପ୍ଲକ୍ଷ ବୃକ୍ଷ, ଏକପ୍ରକାର ଅଶ୍ୱତ୍ଥ ।

ଗନ୍ଧମାଂସୀ—ସ୍ତ୍ରୀ. ବି. ଜଟାମାଂସୀ ।

ଗନ୍ଧମାତା—ସ୍ତ୍ରୀ. ବି. (ଷଷ୍ଠୀତତ୍) ପୃଥିବୀ ।

ଗନ୍ଧମାଦନ—ପୁଂ.କ୍ଲୀ. ବି. (ଗନ୍ଧ+ମଦ +ଣିଚ୍+କ, ଅନ) ପର୍ବତବିଶେଷ, ହେମକୂଟ ପର୍ବତସ୍ଥିତ ଗୋଟିଏ ବନ, ଭ୍ରମର, ଗନ୍ଧକ, ଗନ୍ଧମାଦନ ପର୍ବତ-ନିବାସୀ ଗୋଟିଏ ବାନର, ଓଡ଼ିଶାର କେନ୍ଦୁଝରର ରାଜ୍ୟାନ୍ତର୍ଗତ ଗୋଟିଏ ପାହାଡ଼, ପ୍ରା.(ବିଂ) ଯାହା ଗନ୍ଧଦ୍ୱାରା ଲୋକଙ୍କୁ ମତ୍ତ କରାଏ ।

ଗନ୍ଧମାଦନୀ—ସ୍ତ୍ରୀ.ବି. (ଗନ୍ଧମାଦନ+ଈ) ମଦିରା, ଦେବଦାରୁ, ଆମ୍ର ବୃକ୍ଷ, ଲକ୍ଷା, ମୁରମାଂସୀ, ବଦାକ ।

ଗନ୍ଧମାଦ୍ରିକା—ସ୍ତ୍ରୀ. ବି. ସୁଗନ୍ଧ ଦ୍ରବ୍ୟ ବିଶେଷ ।

ଗନ୍ଧମାତ୍ରୀ—ସ୍ତ୍ରୀ.ବି.ସୁଗନ୍ଧ ଦ୍ରବ୍ୟବିଶେଷ ।

ଗନ୍ଧମାର୍ଜାର—ପୁଂ.ବି. ଲୋମଶ ବିଡାଳ, ମାର୍ଜାରୀ ନାମକ ଔଷଧିବିଶେଷ, ଶାଳିଆ-ପତନୀନାମକ ନେଉଳଜାତୀୟ ବନ୍ୟ ଜୀବ, କଠାଶ ।

ଗନ୍ଧମାଳତୀ—ସ୍ତ୍ରୀ. ବି. ଗନ୍ଧକୋକିଳା । ଗନ୍ଧପୂର୍ଣ୍ଣ ଲତାବିଶେଷ, ମାଳତୀ (ଲତା ଓ ଫୁଲ) ।

ଗନ୍ଧମାଳିନୀ—ସ୍ତ୍ରୀ. ବି. ମୁରାନାମକ ସୁଗନ୍ଧ ଦ୍ରବ୍ୟ, ମୁରମାଂସୀ ।

ଗନ୍ଧମାଲ୍ୟ—କ୍ଲୀ. ବି. ଗନ୍ଧ ଓ ମାଳା ।

ଗନ୍ଧମୁଖା—ସ୍ତ୍ରୀ.ବି. ଛୁଚୁନ୍ଦରୀ, ଚୁଚୁନ୍ଦ୍ରା ମୂଷା, (ବିଂ) ଯାହା ମୁହଁ ଗନ୍ଧାଏ ।

ଗନ୍ଧମୁଣ୍ଡ—ପୁଂ.ବି.ପଗାଷନାମକ ଅଶ୍ୱତ୍ଥ, ପ୍ରସାରଣୀ ଲତା ।

ଗନ୍ଧମୂଳ—ପୁଂ. ବି. କୁଳଞ୍ଜନ ବୃକ୍ଷ, ଅଦା-ଜାତୀୟ ସୁଗନ୍ଧ ମୂଳବିଶେଷ ।

ଗନ୍ଧମୂଳକ—ପୁଂ. ବି. (ଗନ୍ଧମୂଳ+କ) ଗନ୍ଧଶୁଣ୍ଠି, ଶୁଣ୍ଠି ।

ଗନ୍ଧମୂଳା—ସ୍ତ୍ରୀ. ବି. ଶଲ୍ଲକୀ ବୃକ୍ଷ, ଶୁଣ୍ଠି, ସ୍ଥଳପଦ୍ମ, ରାସ୍ନା ।

ଗନ୍ଧମୂଳିକା—ସ୍ତ୍ରୀ. ବି. ଗନ୍ଧଶୁଣ୍ଠି ।

ଗନ୍ଧମୂଳୀ—ସ୍ତ୍ରୀ. ବି. ଗନ୍ଧଶୁଣ୍ଠି, ଶଲ୍ଲକୀ ।

ଗନ୍ଧମୂଷିକ—ପୁଂ. ବି. ଚୁଚୁନ୍ଦ୍ରା ମୂଷା ।

ଗନ୍ଧମୂଷୀ—ସ୍ତ୍ରୀ. ବି. ଚୁଚୁନ୍ଦ୍ରା ମୂଷା ।

ଗନ୍ଧମୃଗ—ପୁଂ. ବି. କସ୍ତୁରୀମୃଗ, ଖଟାଶ, ଶାଳିଆପତନୀ ।

ଗନ୍ଧମୈଥୁନ—ପୁଂ. ବି. (ବି,ସ୍ତ୍ରୀ) ବୃଷ, ଷଣ୍ଢ ।

ଗନ୍ଧମୋଦନ—ପୁଂ.ବି. (ଗନ୍ଧ+ମୁଦ୍+ ଣିଚ୍, ଅନ) ଗନ୍ଧକ ।

ଗନ୍ଧମୋଦନୀ—ସ୍ତ୍ରୀ. ବି. (ଗନ୍ଧ+ମୁଦ୍+ ଣିଚ୍+ଇନ୍+ଈ) ଚମ୍ପକକଳିକା, ଚମ୍ପକପୁଷ୍ପକଳିକା, କାଠଚମ୍ପା ।

ଗନ୍ଧମୋହିନୀ—ସ୍ତ୍ରୀ. ବି. (ଗନ୍ଧ+ମୁହ୍+ ଇନ୍+ଈ) ଚମ୍ପକକଳିକା, ଚମ୍ପାଫୁଲର କଡ଼ି । [ବିଶେଷ ।

ଗନ୍ଧଯୁକ୍ତି—ସ୍ତ୍ରୀ.ବି. ଗନ୍ଧଦ୍ରବ୍ୟର ଯୋଗ-

ଗନ୍ଧଯୁକ୍ତ—ସ୍ତ୍ରୀ. ବି. ନାନାପ୍ରକାର ଗନ୍ଧ-ଦ୍ରବ୍ୟର ଏକତ୍ର ମିଶ୍ରଣ ।

ଗନ୍ଧରସ—ପୁଂ. ବି. ଉପଧାତୁବିଶେଷ, ମୁରମାଂସୀ, ଗନ୍ଧ ଓ ରସ, ଗୁଗ୍ଗୁଳ, ସୁଗନ୍ଧସାର । [ଗନ୍ଧଦ୍ରବ୍ୟ ।

ଗନ୍ଧରସାଙ୍ଗକ—ପୁ.ବି, ଶ୍ରୀବେଷ୍ଟ ନାମକ

**ଗନ୍ଧର୍ଵ**—ଗ୍ରା. (ସମ୍ବ) ପୁଂ.ବି. ରସିକ ବା ପରିହାସପ୍ରିୟ ବ୍ୟକ୍ତି,(ବିଂ)ଦୁର୍ଗନ୍ଧମୟ ।

**ଗନ୍ଧରାଜ**—ପୁଂ. ବି. କନକ ଗୁଗୁଳୁ, ମୁଦ୍‌ଗର ବୃକ୍ଷ, ଧୂପକ, ଝୁଣା, ସ୍ଵନାମ-ଖ୍ୟାତ ପୁଷ୍ପବୃକ୍ଷ, ଶ୍ରେଷ୍ଠଗନ୍ଧ, ଚନ୍ଦନ, ଜବାଦିନାମକ ଗନ୍ଧଦ୍ରବ୍ୟ ।

**ଗନ୍ଧରାଜୀ**—ସ୍ତ୍ରୀ.ବି.ନଖୀନାମକ ଗନ୍ଧଦ୍ରବ୍ୟ ।

**ଗନ୍ଧରାସ୍ନା**—ଗ୍ରା. ବି. ଏକପ୍ରକାର ରାସ୍ନା, ଗନ୍ଧନାକୁଲୀ ।

**ଗନ୍ଧରତେଲ**—ଗ୍ରା.ବି. କେରୋସିନ୍‌ତେଲ ।

**ଗନ୍ଧରୁହା**—ସ୍ତ୍ରୀ.ବି. ବଣମଲ୍ଲୀ,କାଠମଲ୍ଲୀ, ଫୁଲଗଛ ।

**ଗନ୍ଧର୍ବ**—ପୁଂ. ବି. (ଗନ୍ଧ—ଅର୍ବ+ଅ. ନିପାତନ) କୋକିଳ, ସୂର୍ଯ୍ୟ, ଚତୁର୍ଦ୍ଦଶ କଳ୍ପ,ସଙ୍ଗୀତର ସ୍ଵରବିଶେଷ, ଘୋଟକ, କସ୍ତୁରୀ ମୃଗ, ଅନ୍ତରାଭବସତ୍ତ୍ଵ, ଗ୍ରହ-ବିଶେଷ, ଧଳା କନିଅର, ମୃତ୍ୟୁପରେ ଏବଂ ପୁନର୍ଜନ୍ମ ପୂର୍ବରୁ ଆତ୍ମା ଯେଉଁରୂପ ଧାରଣ କରେ, ଏରଣ୍ଡ, ଦେବଯୋନି-ବିଶେଷ, ସ୍ଵର୍ଗଗାୟକ, ଦ୍ଵୀପବିଶେଷ, ଦିନ, ଦିବସ, ଶରୀରାଧିଷ୍ଠାତୃ ଦେବତା-ବିଶେଷ, ମୁନି, ଋଷି, ପ୍ରାଣବାୟୁ, ଜାତିବିଶେଷ, ଉନ୍ମାଦ ରୋଗ, ବିଧବାର ଦ୍ଵିତୀୟ ପତି, (ବିଂ) ଗାୟକ, ଯେ ଗାନ କରିପାରେ, ରଶ୍ମିଧାରକ, (ସୂର୍ଯ୍ୟ ଚନ୍ଦ୍ର ପ୍ରଭୃତି) ।

**ଗନ୍ଧର୍ବଖଣ୍ଡ**—ଭାରତବର୍ଷର ଅନ୍ତର୍ଗତ ଗୋଟିଏ ପ୍ରଦେଶ ।

**ଗନ୍ଧର୍ବଗଡ଼**-ମହାଶୂରର ବେଲଗାଁ ଜିଲ୍ଲା ଅନ୍ତର୍ଗତ ଗୋଟିଏ ସ୍ଥାନ ।

**ଗନ୍ଧର୍ବଗୃହୀତ**—ତ୍ରି.ବିଂ.(ଷ ତତ୍ପୁ)ଯାହାକୁ ଗନ୍ଧର୍ବମାନେ ଗ୍ରହଣ କରିଅଛନ୍ତି ।

**ଗନ୍ଧର୍ବଗ୍ରହ**—ପୁଂ. ବି. ଶରୀରପ୍ରବେଶକାରୀ ଉପଦେବବିଶେଷ ।

**ଗନ୍ଧର୍ବତୀର୍ଥ**—ପୁଂ. ବି. ତୀର୍ଥବିଶେଷ ।

**ଗନ୍ଧର୍ବନଗର**—କ୍ଳୀ. ବି.ଗଗନ ମଣ୍ଡଳରେ ଉଦିତ ଅନିଷ୍ଟସୂଚକ ନୀଲପୀତାଦି ମେଘ-ରଚନାବିଶେଷ,ମାନସସରୋବରନିକଟ-ବର୍ତ୍ତୀ ହାଟକର ଚତୁଷ୍ପାର୍ଶ୍ଵେ ଅବସ୍ଥିତ ଗୋଟିଏ ନଗର, ଇନ୍ଦ୍ରଜାଲ ।

**ଗନ୍ଧର୍ବପୁର**—ବି. ମେରୁ ପ୍ରଦେଶରେ ଦେଖାଯିବା ସାମୟିକ ଆଲୋକପୁଞ୍ଜ, ମେରୁଜ୍ୟୋତି,ମୃଗତୃଷ୍ଣା, ଗନ୍ଧର୍ବନଗର ।

**ଗନ୍ଧର୍ବପୂଜା**—ଗ୍ରା. ବି. (ବଙ୍ଗଳା)ପ୍ରଥମେ ଆଦର ଅଭ୍ୟର୍ଥନାପୂର୍ବକ ପରେ ପ୍ରହାର କରି ନିମନ୍ତ୍ରିତବ୍ୟକ୍ତିଙ୍କୁ ବିଦାୟକରିବା ।

**ଗନ୍ଧର୍ବଭୂଷଣ**—ବି. ସିନ୍ଦୂର ।

**ଗନ୍ଧର୍ବରାଜ**—ବି. (ଷତତ୍ପୁ) ଗନ୍ଧର୍ବମାନଙ୍କ ମଧ୍ୟରେ ପ୍ରଧାନ ବା ନେତା, ଚିତ୍ରରଥ ଗନ୍ଧର୍ବ, କୁବେର, ବରୁଣ ।

**ଗନ୍ଧର୍ବଲୋକ**—ପୁଂ. ବି. ଗୁହ୍ୟକ ଲୋକ ଉପରେ ଓ ବିଦ୍ୟାଧର ଲୋକର ତଳେ ଅବସ୍ଥିତ ଗୋଟିଏ ସ୍ଥାନ ।

**ଗନ୍ଧର୍ବବଧୂ**—ସ୍ତ୍ରୀ. ବି. ଶୁଣ୍ଠି ।

**ଗନ୍ଧର୍ବବିଦ୍ୟା**—ସ୍ତ୍ରୀ. ବି. ସଙ୍ଗୀତବିଦ୍ୟା ।

**ଗନ୍ଧର୍ବବିବାହ**—ପୁଂ. ବି. ଆଠପ୍ରକାର ବିବାହ ମଧ୍ୟରୁ ଏକପ୍ରକାର, ଯେଉଁ ବିବାହରେ ସ୍ତ୍ରୀ ପୁରୁଷକର୍ତ୍ତୃପକ୍ଷଙ୍କ ଅଗୋଚରରେ ବା ସମ୍ମତି ଗ୍ରହଣ ନ କରି ବିବାହକାର୍ଯ୍ୟ ସମ୍ପାଦନ କରନ୍ତି ।

**ଗନ୍ଧର୍ବବେଦ**—ପୁଂ.ବି. ସଙ୍ଗୀତର ମୂଳ-ଗ୍ରନ୍ଥ,ସାମବେଦର ଉପବେଦବିଶେଷ, ସଙ୍ଗୀତବିଦ୍ୟା ।

**ଗନ୍ଧର୍ବଶାଳା**—ସ୍ତ୍ରୀ.ବି.ଭାର୍ଗୀ,ବ୍ରାହ୍ମଣଯଷ୍ଟି ।

**ଗନ୍ଧର୍ବହସ୍ତ**—ପୁଂ.ବି.(ବ.ବ୍ରୀ)ଏରଣ୍ଡବୃକ୍ଷ ।

**ଗନ୍ଧର୍ବହସ୍ତକ**—ପୁଂ. ବି. ଏରଣ୍ଡବୃକ୍ଷ, ସୁଶ୍ରୁତ ମତରେ ଏଥିରୁ ଲବଣ ଉତ୍ପନ୍ନ ହୁଏ ।

**ଗନ୍ଧର୍ବୀ**—ସ୍ତ୍ରୀ. ବି. ଗନ୍ଧର୍ବଜାତୀୟା ସ୍ତ୍ରୀ, ଗନ୍ଧର୍ବର ପତ୍ନୀ, ସୁରଭୀର କନ୍ୟା, ଅଶ୍ଵ ଜାତୀୟା ଜନନୀ ।

**ଗନ୍ଧଲତା**—ସ୍ତ୍ରୀ.ବି. ପ୍ରିୟଙ୍ଗୁ ।

**ଗନ୍ଧଲୋଲୁପା**—ସ୍ତ୍ରୀ.ବି.(ଷତତ୍ପୁ) ମକ୍ଷିକା, ମାଛି ।

**ଗନ୍ଧବତୀ**—ସ୍ତ୍ରୀ.ବି. (ଗନ୍ଧ+ବତ୍+ଈ) ମଦ୍ୟ, ସୁରା, ପଦ୍ମ, ବରୁଣଙ୍କ ପୁରୀ-ବିଶେଷ, ପୃଥିବୀ, ମତ୍ସ୍ୟଗନ୍ଧା, ବ୍ୟାସ-ମାତା,ନିଆଳୀ, ବାୟୁପୁରୀ, ତାଳିଶପତ୍ର, ଅଜମୋଦା, ମୁରାମାଂସୀ, ବଣମଲ୍ଲୀ, ଗଙ୍ଗା, ପୁରୀଜିଲ୍ଲାନ୍ତର୍ଗତ ଭୁବନେଶ୍ଵର ନିକଟ ପ୍ରବାହିତ ଗୋଟିଏ କ୍ଷୁଦ୍ରନଦୀ, (ସ୍ତ୍ରୀ.ବିଂ) ସୁଗନ୍ଧବିଶିଷ୍ଟ ।

**ଗନ୍ଧବଧୂ**—ସ୍ତ୍ରୀ.ବି. ଶୁଣ୍ଠି, ଚୀଡ଼ା ନାମକ ଗନ୍ଧଦ୍ରବ୍ୟ ।

**ଗନ୍ଧବନ୍ଧୁ**—ପୁଂ.ବି. ଆମ୍ରବୃକ୍ଷ ।

**ଗନ୍ଧବଲ୍କଳ**—କ୍ଳୀ.ବି. (କ.ଧା) ଗନ୍ଧତ୍ଵକ୍, ଦାରୁଚିନି, ଗୁଡ଼ତ୍ଵକ୍ ।

**ଗନ୍ଧବଲ୍ଲରୀ**—ସ୍ତ୍ରୀ. ବି. ଲତାବିଶେଷ, ସହଦେବୀ, ବନ୍ଧ୍ୟାମୂଳୀ ।

**ଗନ୍ଧବହ**—ପୁଂ.ବି. (ଗନ୍ଧ+ବହ୍+କ. ଅ) ବାୟୁ,କସ୍ତୁରୀମୃଗ,ଚନ୍ଦନ,ନାୟକ-ବିଶେଷ, (ବିଂ) ଗନ୍ଧଯୁକ୍ତ, ଯେ ଗନ୍ଧକୁ ଇତସ୍ତତଃ ସଞ୍ଚାଳିତ କରେ, ଗନ୍ଧଧାରୀ ।

**ଗନ୍ଧବହଳ**—ପୁଂ. ବି. (ବ.ବ୍ରୀ) ଶ୍ଵେତ-ତୁଳସୀ, ସିତାର୍ଜକ ବୃକ୍ଷ ।

**ଗନ୍ଧବହା**—ସ୍ତ୍ରୀ. ବି. (ଗନ୍ଧ+ବହ୍+ଅ +ଆ) ନାସିକା, ନାକ,ଗନ୍ଧବତୀନଦୀର ନାମାନ୍ତର ।

**ଗନ୍ଧବହୁଳ**—କ୍ଳୀ.ବି. (ବ.ବ୍ରୀ)କକ୍କୋଳ, କାଙ୍କୋଲ,(ପୁଂ)ଗନ୍ଧଶାଳୀ,ବାସନାଧାନ ।

**ଗନ୍ଧବହୁଳା**—ସ୍ତ୍ରୀ.ବି. (ବ.ବ୍ରୀ)ଗୋରକ୍ଷୀ, ମାଳବ ଦେଶରେ ଏହା ବେଶୀ ପରିମାଣରେ ମିଳେ ।

**ଗନ୍ଧବାକୁଚୀ**—ସ୍ତ୍ରୀ. ବି. ଲତାକସ୍ତୁରୀ ।

**ଗନ୍ଧବାନ୍**—ପୁଂ. ବିଂ. (ଗନ୍ଧ+ବତ୍) ସୁବାସିତ ।

**ଗନ୍ଧବାରି**—କ୍ଳୀ. ବି. ସୁଗନ୍ଧ ଦ୍ରବ୍ୟଦ୍ଵାରା ବାସିତ ଜଳ, ଗୋଲାପ ଜଳପ୍ରଭୃତି ।

**ଗନ୍ଧବାସ**—ଗ୍ରା. ବି. (ସଂ-ଗନ୍ଧାଧିବାସ) ବିବାହର ପୂର୍ବଦିନ ବରକନ୍ୟାଙ୍କଠାରେ ଗନ୍ଧାଦି ଲେପନବିଧି, ଗନ୍ଧକ୍ଷଣ ।

**ଗନ୍ଧବାହ**—ପୁଂ.ବି. (ଗନ୍ଧ+ବହ୍+କ ଅ) ବାୟୁ,କସ୍ତୁରୀମୃଗ, ନାୟକବିଶେଷ, (ବିଂ)ଗନ୍ଧଯୁକ୍ତ, ଗନ୍ଧଧାରୀ ।

**ଗନ୍ଧବାହା**-ଗ୍ରା.ବି.ପବନ(ସଂ-ବି)ନାସିକା ।

**ଗନ୍ଧବାହୀ**—ପୁଂ. ବିଂ. (ଗନ୍ଧ+ବହ୍+ଇନ୍) ଗନ୍ଧଯୁକ୍ତ,ଯେ ଗନ୍ଧକୁ ଇତସ୍ତତଃ ସଞ୍ଚାଳିତ କରେ (ସ୍ତ୍ରୀ) ଗନ୍ଧବାହିନୀ ।

ଗନ୍ଧବାହା — ସ୍ତ୍ରୀ. ବି. ( ଗନ୍ଧବହ + ଇ ) ନାସିକା, ନାକ ।

ଗନ୍ଧବହ୍ — ଗ୍ରା. ବିଂ. ଯେ, ଗନ୍ଧ ବିଷୟ ଜାଣେ, ଯେ ଗନ୍ଧ ବାରିପାରେ ।

ଗନ୍ଧବିହ୍ୱଳ — ପୁଂ. ବି. (ତତ୍ପୁ)ଗୋଧୂମ, (ବିଂ) କୌଣସି ଗନ୍ଧଦ୍ରବ୍ୟର ଆଘ୍ରାଣ ଦ୍ୱାରା ବିବଶ ବା ମତ୍ତ ।

ଗନ୍ଧବୀଜା — ସ୍ତ୍ରୀ.(ଦ.ଗ୍ରା)ମେଥିକା,ମେଥି ।

ଗନ୍ଧବାର୍ଯ୍ୟା — ବି. ହିମାଳୟ ପ୍ରଦେଶ ଓ ପାରସ୍ୟର ଦେବଦାରୁଜାତୀୟ ବୃକ୍ଷବିଶେଷର ତୈଳବତ୍ ନିର୍ଯ୍ୟାସ, ଶ୍ରୀବାସସାର ।

ଗନ୍ଧବୃକ୍ଷକ — ପୁଂ. ବି. ଶାଳବୃକ୍ଷ ।

ଗନ୍ଧବେଣା — ଗ୍ରା. ବି. ଗନ୍ଧତୃଣ, ଉଶୀର, ବେଣା, ଧନଣୀ ।

ଗନ୍ଧବେଷ୍ଟ — ପୁଂ. ବି. ଝୁଣା, ଧୂନକ ।

ଗନ୍ଧବୋଧିକା — ସ୍ତ୍ରୀ.ବି.କସ୍ତୁରୀ,ମୃଗନାଭି ।

ଗନ୍ଧବ୍ୟାକୁଳ — ପୁଂ. କ୍ଲୀ. ବି. କଙ୍କୋଳ, କାଙ୍କୁଲ ।

ଗନ୍ଧଶଠୀ — ସ୍ତ୍ରୀ. ବି. ଗନ୍ଧଶୁଣ୍ଠି ।

ଗନ୍ଧଶାକ — କ୍ଲୀ.ବି. ଗୌରସୁବର୍ଣ୍ଣ ଶାକ ।

ଗନ୍ଧଶାଳି — ପୁଂ.ବି.(କ.ଧା)ଧାନ୍ୟବିଶେଷ, ବାସନାଧାନ, ସୁରଭିଧାନ୍ୟ ।

ଗନ୍ଧଶୁଣ୍ଠି — ଗ୍ରା. ବି. ଅଦାଜାତୀୟ ସୁଗନ୍ଧ ଔଷଧ ମୂଳବିଶେଷ ।

ଗନ୍ଧଶୁଣ୍ଡିନୀ — ସ୍ତ୍ରୀ.ବି. ଛୁଚୁନ୍ଦରୀ, ଚୂଚନ୍ଦରା ମୂଷା ।

ଗନ୍ଧଶେଖର — ପୁଂ. ବି. କସ୍ତୁରୀ ।

ଗନ୍ଧଷଣ — ଗ୍ରା. ବି. ଗନ୍ଧବାସ (ଦେଖ) ।

ଗନ୍ଧଷିବା — ଗ୍ରା. କ୍ରି. ବିବାହର ପୂର୍ବ ରାତ୍ରିର ( ବରକନ୍ୟା ) ଗନ୍ଧଷଣ ବିଧି-ପାଳନ କରିବା, ବିବାହର ପୂର୍ବରାତ୍ରିରେ ହଳଦୀଆଦି ଲଗାଇ ବରକନ୍ୟାଙ୍କୁ ମଙ୍ଗୁଳିବା, ମଙ୍ଗଳାର୍ଥନ ବରକନ୍ୟାଙ୍କୁ ମଙ୍ଗଳସୂଚକ ବନ୍ଦାପନା ବା ସମ୍ବର୍ଦ୍ଧନା କରିବା ।

ଗନ୍ଧସାର — ପୁଂ. ବି. (ତତ୍ପୁ) ଚନ୍ଦନ, (ବି.ଗ୍ରା) ଚନ୍ଦନବୃକ୍ଷ, (କ.ଧା) ସୁଗନ୍ଧ ପଦାର୍ଥରୁ ବୈଜ୍ଞାନିକ ପ୍ରକ୍ରିୟାରେ ଉତ୍ପାଦିତ ତରଳସାର, ମୁଗୁର ମଲ୍ଲୀଫୁଲ ବିଶେଷ, ଗନ୍ଧଶୁଣ୍ଠି ।

ଗନ୍ଧସାରଣ — ପୁଂ. ବି. ବୃହନ୍ନଖୀନାମକ ଗନ୍ଧଦ୍ରବ୍ୟ, ମୁଦ୍ଗର ବୃକ୍ଷ, ମୁଗୁର ମଲ୍ଲୀ ଗଛ ।

ଗନ୍ଧସୁଖୀ — ବି.(ଗନ୍ଧ + ସୁଖିନ୍)ଗନ୍ଧମୂଷିକ, ଚୁଚୁନ୍ଦ୍ରା ।

ଗନ୍ଧସୂସ୍ତ୍ରୀ — ବି. ଗନ୍ଧମୂଷିକ, ଚୁଚୁନ୍ଦ୍ରା ।

ଗନ୍ଧସୋମ — କ୍ଲୀ. ବି. (ଗନ୍ଧ + ସୋମ) କୁମୁଦ, କଇଁ, ଶ୍ୱେତୋତ୍ପଳ ।

ଗନ୍ଧହସ୍ତୀ — ପୁଂ.ବି. ମତ୍ତହସ୍ତୀ, ମଉଆଳ ହାତୀ, ବୌଦ୍ଧସ୍ତୂପବିଶେଷ ।

ଗନ୍ଧହାରିକା — ସ୍ତ୍ରୀ. ବିଂ. ଶିଳ୍ପନିପୁଣା, ଯେ ସ୍ତ୍ରୀ ପରଗୃହରେ କାମ କରେ ।

ଗନ୍ଧହୀନ — ବିଂ. (ନଞତତ୍ପୁ) ନିର୍ଗନ୍ଧ,ବାସ-ରହିତ ।

ଗନ୍ଧା — ସ୍ତ୍ରୀ. ବି. ପ୍ରିୟଙ୍ଗୁ, ବନତୁଳସୀ, ବଂଶଲୋଚନ, ଚମ୍ପକ କଳିକା, ଶୁଣ୍ଠି, ମୁଥା, ଶାଳପର୍ଣ୍ଣୀ, ଗନ୍ଧଯୁକ୍ତା ସ୍ତ୍ରୀ, (ଗ୍ରା. ବି) ହଳଦୀଜାତୀୟ ଏକପ୍ରକାର ବୃକ୍ଷ ଓ ତାହାର ମୂଳ ।

ଗନ୍ଧାଖୁ — ପୁଂ.ବି.ଚୁଚୁନ୍ଦ୍ରା ମୂଷା ।

ଗନ୍ଧାଜୀବ — ପୁଂ.ବି.(ବି.ଗ୍ରା) ଗନ୍ଧବଣିକ, ପୁଟୁଳିବଣିଆଁ ।

ଗନ୍ଧାଢ୍ୟ — କ୍ଲୀ.ବି. ଶ୍ରୀଖଣ୍ଡଚନ୍ଦନ, ଶ୍ୱେତ ଚନ୍ଦନ, ନାରଙ୍ଗବୃକ୍ଷ, ବକୁଳ, ଗନ୍ଧରାଜ, ବଉଳଫୁଲ, (ବିଂ) ସୁଗନ୍ଧଯୁକ୍ତ, (ସ୍ତ୍ରୀ) ଗନ୍ଧାଢ୍ୟା ।

ଗନ୍ଧାଢ୍ୟା — ସ୍ତ୍ରୀ. ବି. ଗନ୍ଧପତ୍ରା, ହଳଦିଆ ଯୂଇଫୁଲ, ତେଜପତ୍ର, ଟାବଲେମ୍ବୁ, ମୁରାମାଂସୀ, ବନମଲ୍ଲିକା, କେତକୀ, ତରଣୀ ପୁଷ୍ପବୃକ୍ଷ, ଅରଣ୍ୟ ସେବତୀ, ଯାଇପତ୍ରୀ, କସ୍ତୁରୀ ।

ଗନ୍ଧାଧିକ — କ୍ଲୀ.ବି. ତୁରୁଷ୍କକୁଙ୍କୁମ, ସହ୍ଲପ ।

ଗନ୍ଧାଧିବାସ — ପୁଂ. ବି. ବିବାହ ପ୍ରଭୃତି କର୍ମରେ ଗନ୍ଧପୁଷ୍ପ ପ୍ରଭୃତି ଗନ୍ଧଦ୍ରବ୍ୟ ଦ୍ୱାରା ଯେ ଅଧିବାସ କର୍ମହୁଏ, ଅଭ୍ୟୁଦୟିକାଦି କର୍ମରେ ଚନ୍ଦନ ଓ ଫୁଲ ଦ୍ୱାରା ସଂସ୍କାର ।

ଗନ୍ଧାମ୍ଳା — ସ୍ତ୍ରୀ. ବି. ବନବୀଜପୂର, ବନ ଟାବଲେମ୍ବୁ ।

ଗନ୍ଧାର — ପୁଂ. ବି. (ଗନ୍ଧ + ଋ + ଅ) ଦେଶବିଶେଷ, ଗନ୍ଧାର ଦେଶର ରାଜା, ଗନ୍ଧାରୁଦେଶ,ରାଗ,ସିନ୍ଦୁର,ସ୍ୱରବିଶେଷ ।

ଗନ୍ଧାର — ପୁଂ ବି. ଦେଶବିଶେଷ, ଦୁରାଲଭା, ଗନ୍ଧପଲାଶୀ, ଆମ୍ବକଷିଆ ଅଦା ।

ଗନ୍ଧାସ୍ତ୍ରୀ — ସ୍ତ୍ରୀ. ବି. ଗର୍ଭଧାରିଣୀ ସ୍ତ୍ରୀ, ଗର୍ଭବତୀ ।

ଗନ୍ଧାଲା — ସ୍ତ୍ରୀ.ବି. ବୃକ୍ଷବିଶେଷ,ପ୍ରସାରଣୀ ଲତା ।

ଗନ୍ଧାଲୀ — ସ୍ତ୍ରୀ.ବି.ପ୍ରସାରଣୀ ଲତା,ବରୁଡ଼ି ପାରୁଡ଼ାପୋକ, ଯାଇଫଳ ଲତା ।

ଗନ୍ଧାଲୀଗର୍ଭ — ପୁଂ.ବି.ଛୋଟ ଅଳାଇଚ ।

ଗନ୍ଧାଶ୍ମା — ପୁଂ. ବି. ଗନ୍ଧକ ।

ଗନ୍ଧାଷ୍ଟକ — କ୍ଲୀ ବି. ଚନ୍ଦନାଦି ଆଠପ୍ରକାର ଗନ୍ଧଦ୍ରବ୍ୟ,(ଚନ୍ଦନାଦି ଅଷ୍ଟପ୍ରକାର ଗନ୍ଧଦ୍ରବ୍ୟର ମିଶ୍ରଣକୁ ଗନ୍ଧାଷ୍ଟକ କହନ୍ତି) ।

ଗନ୍ଧାହ୍ୱା — ସ୍ତ୍ରୀ. ବି. (ଗନ୍ଧ + ଆ + ହ୍ୱେ + ଅ + ଆ) ରକ୍ତତୁଳସୀ ।

ଗନ୍ଧି — କ୍ଲୀ.ବି. ତୁରୁଷ୍କକୁଙ୍କୁମ, ମୁରାମାଂସୀ, (ଗ୍ରା.ବି) ବଣ ଓ କଆରମାନଙ୍କରେ ହୋଇଥିବା ଶିଉଳି, ଦୁର୍ଗନ୍ଧ, ପାରୁଡ଼ା ପୋକ, ଛାରପୋକ, ପାଡ଼, ଅପାନ-ବାୟୁ, ବଦ୍‌ବୋଇ ।

ଗନ୍ଧିଆ — ଗ୍ରା. ବିଂ. ଦୁର୍ଗନ୍ଧମୟ, ବାସିକୁ ବହୁଦିନରୁ ସଢ଼ିଯାଇ ଦୁର୍ଗନ୍ଧ ହୋଇଥିବା, (ତରକାରୀ ପିଷ୍ଟକାଦି) ।

ଗନ୍ଧିକ — ପୁଂ.ବି. (ଗନ୍ଧ + ଇକ) ଗନ୍ଧକ, ଗନ୍ଧଦ୍ରବ୍ୟ, ଗନ୍ଧବଣିକ, ପୁଟୁଳିବଣିଆ, (ବିଂ) ଗନ୍ଧଯୁକ୍ତ ।

ଗନ୍ଧିନୀ — ସ୍ତ୍ରୀ.ବି. ମୁରାମାଂସୀ, (ଗ୍ରା. ବି.) ଗନ୍ଧକାଳିକା, ମଦିରା, ସୁରା ।

ଗନ୍ଧିପର୍ଣ୍ଣ — ପୁଂ. ବି. ସପ୍ତଚ୍ଛଦ ବୃକ୍ଷ, ସଜନାଗଛ ।

ଗନ୍ଧିପୋକ — ଗ୍ରା. ବି. ପାରୁଡ଼ାପୋକ ।

ଗନ୍ଧିରସ — ଗ୍ରା.ବି.(ବଙ୍ଗଳା)ଜଣାଦଳ ।

ଗନ୍ଧୀ — କ୍ରି. ବିଂ. (ଗନ୍ଧ + ଇନ୍) ପ୍ରଶସ୍ତ ଗନ୍ଧଯୁକ୍ତ, ବାସୁଥିବା, (ପୁଂ. ବି) ଗନ୍ଧ-ବଣିଆଁ, ପାରୁଡ଼ାପୋକ, ଓଡ଼ଣ ।

ଗନ୍ଧେଇବା — ଗ୍ରା. କ୍ରି. ଦୁର୍ଗନ୍ଧକରିବା, (କୌଣସିବସ୍ତୁର) ଦୁର୍ଗନ୍ଧ ବାହାରିବା, ଦୁର୍ଗନ୍ଧହେବା, ଅପାନ ବାୟୁ ତ୍ୟାଗ କରିବା, ପାଦ଼ିବା, (ଲ. ଅର୍ଥ) (କୌଣସି କଥା) ମନକୁ ନ ପାଇବା, ବା ବିରକ୍ତିକର ବୋଧହେବା ।

ଗନ୍ଧେନ୍ଦ୍ରିୟ — କ୍ଲୀ.ବି.(କ.ଧା)ଘ୍ରାଣେନ୍ଦ୍ରିୟ, ନାସିକା ।

ଗନ୍ଧେଭ — ପୁଂ.ବି. ଗନ୍ଧଗଜ, ମତ୍ତହସ୍ତୀ ।

ଗନ୍ଧେଶ୍ୱରୀ — ସ୍ତ୍ରୀ.ବି. (୬ତତ୍)ଗନ୍ଧବଣିକ ଜାତିର କୁଳଦେବତା ବା ଆରାଧ୍ୟ ଦେବତା ।

ଗନ୍ଧୋତୁ — ପୁଂ.ବି. (କ.ଧା) ଗନ୍ଧବିଡ଼ାଲ, ଲେମଣବିରାଡ଼ି, ଶାଲଆପତନ ।

ଗନ୍ଧୋତ୍କଟା — ସ୍ତ୍ରୀ. ବି. ଦମନକ ବୃକ୍ଷ, ମୁରାମାଂସୀ ।

ଗନ୍ଧୋତ୍ତମା — ସ୍ତ୍ରୀ. ବି. (୬ତତ୍) ମଦିରା, ସୁରା, ମଦ୍ୟ ।

ଗନ୍ଧୋଦ — କ୍ଲୀ. ବି. ଗନ୍ଧଦ୍ରବ୍ୟ,ବାସିତଜଳ, ଗୋଲାପଜଳପ୍ରଭୃତି ।

ଗନ୍ଧୋଦକ — କ୍ଲୀ.ବି. (କ.ଧା)ଗନ୍ଧଦ୍ରବ୍ୟ, ବାସିତଜଳ, ଗୋଲାପଜଳ,ଗନ୍ଧଜଳ ।

ଗନ୍ଧୋପଜୀବୀ — ପୁଂ. ବି. ଗନ୍ଧବଣିକ, ପୁଟୁଳିବଣିଆଁ ।

ଗନ୍ଧୋଲି — ସ୍ତ୍ରୀ. ବି. (ଗନ୍ଧ + କ.ଓଲ + ଇ) ଭଦ୍ରମୁଥା ।

ଗନ୍ଧୋଲୀ — ସ୍ତ୍ରୀ.ବି. (ଗନ୍ଧ + କ,ଓଲ + ଈ) ଶୁଣ୍ଠି, ବିରୁଡ଼ି ।

ଗପଗପ — ଗ୍ରା. ଅବ୍ୟ, ଖାଦ୍ୟଦ୍ରବ୍ୟକୁ ନ ଚୋବାଇ ଚଞ୍ଚଳ ଗିଳିବାନିମନ୍ତେ ପାଟିକୁ ନିକ୍ଷେପ କରିବା ଶବ୍ଦର ଅନୁକରଣ ।

ଗପ୍‌ମାରିବା — ଗ୍ରା. କ୍ରି. ଆଗେ ଦେଖାଇ ଦେଇ ପରେ ସମସ୍ତଙ୍କ ଚକ୍ଷୁ ଅନ୍ତରାଳରେ ଲୁଚିଯିବା ।

ଗପ୍‌ସପ୍ — ଗ୍ରା. ବି. କଥୋପକଥନ,କଥାଭାଷା, ଏଣୁ ତେଣୁ କଥାବାର୍ତ୍ତା ।

ଗପ — ଗ୍ରା. ବି. ଗଳ୍ପ, କାହାଣୀ,ହଡ଼ାଖବର, ମୂର୍ଖାଳାପ ବା ବୃଥା କଥାଭାଷା, ବୃଥାବାକ୍ୟ, ବକ୍‌ବାଦ୍ ।

ଗପଡ଼ — ଗ୍ରା. ବିଂ. ଯେଉଁଲୋକ ବେଶି ଗୁଡ଼ାଏ ଗପକରେ ବା କଥା କହେ ।

ଗପକରିବା,ମାରିବା — ଗ୍ରା. କ୍ରି. ବୃଥା ଗଳ୍ପରେ ସମୟ କଟାଇବା ।

ଗପା — ଗ୍ରା. ବି. (ସଂ-ଜଳ୍ପ)ବେଶିଗୁଡ଼ାଏ କଥା କହିବା, ଚଞ୍ଚଳ ଚଞ୍ଚଳ ଖାଦ୍ୟ ପାଟିକୁ ନିକ୍ଷେପ କରିବା, ଚକ୍ଷୁ ଅନ୍ତରାଳରେ ଲୁଚି ରହିବା ।

ଗପାଇବା — ଗ୍ରା. କ୍ରି. ସମସ୍ତ ବ୍ୟକ୍ତିଙ୍କ ଚକ୍ଷୁଆଗେ ଲୁଚାଇଦେବା ।

ଗପିବା — ଗ୍ରା. କ୍ରି. ବେଶି ଗୁଡ଼ାଏ କଥା-କହିବା, ବୃଥା ଗଳ୍ପକରିବା, ଲୁଚିବା, ଛପିବା ।

ଗପୁଆ — ଗ୍ରା. ବିଂ. ଗପଡ଼, ଯେ ବେଶି ଗଳ୍ପକରେ, ବକୁଆ ।

ଗଫ୍ — ଯା. ବିଂ. ଘନଭାବରେ ବୁଣାଯାଇ ଥିବା (ଲୁଗା) ।

ଗଫ୍‌ଲତ୍ — (ତି) ଯା.ବି. ଅମନୋଯୋଗ, ଅବହେଳା, ତ୍ରୁଟି, ଅସାବଧାନତା, ଭ୍ରମ ।

ଗଫଲତିଆ — ଯା.ବିଂ. ଅବହେଳାକାରୀ ।

ଗଫ — ଗ୍ରା. ବି. ଗପ (ଦେଖ) ।

ଗବ୍‌ଗବ୍ — ଗ୍ରା. ଅବ୍ୟ, ଜଳ ଉପରେ ସ୍ଥାପିତ ପାଣିରେ ଗୁହ୍ଳ ଆଦି ଫୁଟିବା ଶବ୍ଦର ଅନୁକରଣ, ସରୁମୁହାଁ ମାଠିଆରୁ ଏକାବେଳକେ ପାଣି ଅଜାଡ଼ିବାର ଶବ୍ଦ, ଦୁଗ୍ଧ ଦୋହନର ଶବ୍ଦ ।

ଗବଲଖାସ୍ — ଗ୍ରା. ବିଂ. ସ୍ଥୂଳକାୟ ଓ ଅକାମିକା (ବ୍ୟକ୍ତି) ।

ଗର୍ଭ — କ୍ଲୀ. ବି. ଭଗ, ଯୋନି ।

ଗଭର୍ଣ୍ଣମେଣ୍ଟ — ବି. ଇଂରେଜ ରାଜସର୍କାର, ରାଜ୍ୟଶାସକ ।

ଗଭର୍ଣ୍ଣର — ଯା.ପ୍ରାଦେଶିକ ଶାସନକର୍ତ୍ତା, ଲେଟଲାଟ ।

ଗଭର୍ଣ୍ଣରଜେନେରଲ — ଯା.ବି.ତତ୍କାଳୀନ ଇଂରାଜଙ୍କ ଅଧିକାରଭୁକ୍ତ ସମସ୍ତ ଭାରତ ସାମ୍ରାଜ୍ୟର ଶାସନକର୍ତ୍ତା ବା ରାଜପ୍ରତିନିଧି, ବଡ଼ଲାଟ, ଭାଇସ୍‌ରଏ ।

ଗଭସ୍ତି — ପୁଂ.ବି. (ଗ + ଭସ୍ + କ,ତି) କିରଣ, ଶିବ, ସୂର୍ଯ୍ୟ, ଅଙ୍ଗୁଳି, ବାହୁଯୁଗଳ, ହସ୍ତ, (ବି. ସ୍ତ୍ରୀ) ସ୍ୱାହା (ଅଗ୍ନିଙ୍କର ପତ୍ନୀ) ।

ଗଭସ୍ତିକର — ପୁଂ.ବି. (ବ.ବ୍ରୀ.) ସୂର୍ଯ୍ୟ ।

ଗଭସ୍ତିନେମି — ପୁଂ. ବି. ପରମେଶ୍ୱର, ବିଷ୍ଣୁ ।

ଗଭସ୍ତିପାଣି — ପୁଂ.ବି. (ବ.ବ୍ରୀ) ସୂର୍ଯ୍ୟ ।

ଗଭସ୍ତିମାନ୍ — ପୁଂ.ବି. (ଗଭସ୍ତି + ମତୁ) ସୂର୍ଯ୍ୟ, ପାତାଳବିଶେଷ, ଦ୍ୱୀପବିଶେଷ, (ବିଂ) କିରଣଯୁକ୍ତ ।

ଗଭସ୍ତିମାଳୀ - ପୁଂ.ବି.(ଗଭସ୍ତି + ମାଲିନ୍) ସୂର୍ଯ୍ୟ ।

ଗଭସ୍ତିହସ୍ତ — ପୁଂ.ବି.(ବ.ବ୍ରୀ)ସୂର୍ଯ୍ୟ ।

ଗଭସ୍ତୀ — ସ୍ତ୍ରୀ. ବି. (ବ.ବ୍ରୀ) ଅଗ୍ନିପତ୍ନୀ, ସ୍ୱାହାଦେବୀ ।

ଗଭସ୍ତୀଶ — ପୁଂ. ବି. କାଶୀସ୍ଥ ଶିବଲିଙ୍ଗବିଶେଷ ।

ଗଭା — ଗ୍ରା. ବି. (ସଂ-ଗର୍ଭ) କେଶଗୁଚ୍ଛରେ ଖୁସାଯିବା ଫୁଲଫେଣ୍ଟା, ପୁଷ୍ପଗର୍ଭକ, ରାଜାମାନଙ୍କର ମସ୍ତକ, ଛଣ ବା ଧାନ କଳେଇ ଗଦାର ଉପରସ୍ଥ ଯେଉଁ ତ୍ରିଭୁଜାକାର ଅଂଶ କ୍ରମଶଃ ତାଲୁ ହୋଇଥାଏ, (ଯା.ବି) ଗୁହା, ସାକ୍ଷୀ ।

ଗଭାଇ — ଯା. ବିଂ. ସାକ୍ଷୀଦ୍ୱାରା କଥିତ ଘଟନାର ପ୍ରମାଣ, ସାକ୍ଷ୍ୟ ।

ଗଭି — ହି. ବିଂ. ଗଭୀର ।

ଗଭିଷ୍ଠ — ହି.ବିଂ. ଗଭୀର ସ୍ଥାୟୀ,ଯାହା ଗଭୀର ସ୍ଥାନରେ ଅବସ୍ଥିତ ।

ଗଭୀରା — ସ୍ତ୍ରୀ. ବି. ବୃକ୍ଷବିଶେଷ, ଗମ୍ଭାରୀ ଗଛ ।

ଗଭୀର — ହି. ବିଂ. (ଗମ୍ + ଈ, ଈର) ଅତଳସ୍ପ, ଦୁର୍ଦ୍ଧର୍ଷ,ଅତଳସ୍ପର୍ଶ, ଗଭୀରଆ, ମନ୍ଦ୍ରଧ୍ୱନି, ଦୁର୍ବୋଧ, ଗହନ, ପ୍ରଚଣ୍ଡ, ଦୁର୍ବାର, ଦୁଷ୍ପ୍ରବେଶ୍ୟ ।

ଗଭୀରକ — ହି. ବିଂ. ଗଭୀର (ଦେଖ) ।

ଗଭୀରଚେତାଃ — ହି. ବିଂ. ( ବ.ବ୍ରୀ ) ଯାହାରମାନସିକଭାବ ଅତିଶୟ ଗଭୀର ।

ଗମ୍ଭୀରତମ—ବି. ବିଂ. (ଗମ୍ଭୀର + ତମ) ସର୍ବାପେକ୍ଷା ଅତ୍ୟନ୍ତ ଗମ୍ଭୀର, (ସ୍ତ୍ରୀ) ଗମ୍ଭୀରତମା ।

ଗମ୍ଭୀରତର—ବି. ବିଂ. (ଗମ୍ଭୀର + ତର) ଅପେକ୍ଷାକୃତ ଗମ୍ଭୀର, ଅତିଶୟ ଗମ୍ଭୀର, ଦୁଇ ମଧ୍ୟରେ ଏକ ଅଧିକ ଗମ୍ଭୀର ।

ଗମ୍ଭୀରତା(ତ୍ୱ)—ସ୍ତ୍ରୀ. କ୍ଲୀ. ବି.(ଗମ୍ଭୀର + ତା'ତ୍ୱ) ଗମ୍ଭୀରଭାବ, ଅଗାଧତା, ଉଦାରତା, ନିବଡ଼ତା ।

ଗମ୍ଭୀରବୋଧ—ବିଂ. (ବ.ବ୍ରୀ) ଯେ ବହୁଦୂର ଭେଦ କରିପାରେ, ଅଗାଧ ଜ୍ଞାନ ।

ଗମ୍ଭୀରବେପଥୁ—ବି.ବିଂ. ଯାହାର କମ୍ପନ ସାଧାରଣ ଜାଣି ପାରନ୍ତି ନାହିଁ ।

ଗମ୍ଭୀରା—ସ୍ତ୍ରୀ. ବି. ବାକ୍ୟ, ଦ୍ୟାବାପୃଥିବୀ, ରୋଦସୀ ।

ଗମ୍ଭୀରାତ୍ମା—ପୁଂ.ବି.(ବ.ବ୍ରୀ)ପରମେଶ୍ୱର ।

ଗମ୍ଭୀରିକା—ସ୍ତ୍ରୀ.ବି.(ଗମ୍ଭୀର + ଇକ + ଆ) ବୃହଦ୍ଭୃଙ୍ଗା, ମନ୍ଦ୍ରଧ୍ୱନିଯୁକ୍ତା ସ୍ତ୍ରୀ, ଗମ୍ଭୀରଶବ୍ଦକାରୀ ବଡ଼ଢୋଲ, ଢକ୍କା ପିଟାଘଣ୍ଟ ।

ଗଭୁରିବା—ଗ୍ରା.କ୍ରି. (ଗବାଦି) ଅକାଳରେ ଅର୍ଦ୍ଧ ଗଠିତଭ୍ରୂଣ ପ୍ରସବକରିବା ।

ଗମ୍ଭୋର୍—ଗ୍ରା.ବିଂ. ଗମ୍ଭୀର, ଅପ୍ରମେୟ, ଉଦାର, ଆଡ଼ମ୍ବରଯୁକ୍ତ, ବି. ଇସ୍ତତ୍ୱ, ଆଡ଼ମ୍ବର, ଉଦାରତା, କଲନା, ଗମ୍ଭୀରତା ।

ଗମ୍ଭୋଲିକ—ପୁଂ. ବି. ମସୂର, ଛୋଟ ଗୋଲମାଣ୍ଡି ।

ଗମ୍ ଖାଇବା—ଗ୍ରା. କ୍ରି. ଚୁପ୍ ହୋଇଯିବା, ତୂର୍ଣ୍ଣୀ ହୋଇ ରହିବା, ଚିନ୍ତା କରୁ କରୁ ତୂର୍ଣ୍ଣୀ ହେବା ।

ଗମ୍‌ଗମିଆ—ଗ୍ରା.ବିଂ.(ଘ-ଘର୍ମ) ଅତ୍ୟଧିକ ଗରମ ହେତୁ ଦେହରୁ ବହୁପରିମାଣରେ ବହୁଥିବା ଝାଳ, (ଗମ୍‌ଗମିଆ ଝାଳ) ।

ଗମ୍‌ପୋକ—ପ୍ରା. (ସମ୍ବ.) ବି. ତେଲୁଣୀ ପୋକ ।

ଗମ୍—ଧାତୁ, ଯିବା, ଗତି କରିବା, ରମଣ କରିବା, ପାଇବା ।

ଗମ—ପୁଂ. ବି. (ଗମ୍ + ଭା.ଅ) ଜିଗୀଷୁ ବ୍ୟକ୍ତିର ଯାତ୍ରା, ଗମନ, ଦୂରତ୍ୱ, ଦ୍ୟୂତ କ୍ରୀଡ଼ାବିଶେଷ, ଗତି, ଗତାଗତ, ଯାଆସ୍, (ଗମ + ଅଧି,ଅ) ଅପର୍ଯ୍ୟାଲୋଚିତ ପଥ, ଗମ୍ୟମାନ, ଉପଭୋଗ, ମୈଥୁନ, (ଗ୍ରା. ବିଂ) ଶସ୍ୟାଦି ଉତ୍ତମ ରୂପେ ଶୁଖା ନ ହୋଇ ରହିଯିବାରୁ ସଢ଼ି ବା ପଚି ଯାଇଥିବା ।

ଗମକ—ପୁଂ. ବିଂ. (ଗମ୍ + କ, ଅକ) ଯେ ଅନ୍ୟକୁ ଗତି କରାଏ, ବୋଧକ, ଜ୍ଞାପକ, ପ୍ରେରକ, ଯେ ଗମନକରେ (ଗମ୍ + ଣିଚ୍ + କ. ଅକ) ସୂଚକ, ବି. ସିତାରାଦି ଯନ୍ତ୍ରରେ ଏକ ସ୍ୱରରୁ ଅନ୍ୟ ସ୍ୱରକୁ ଦ୍ରୁତ ଗମନ ବା ସ୍ୱରର କମ୍ପନ, ଯେଉଁ ସ୍ୱର ମୂର୍ଚ୍ଛନା ପ୍ରାପ୍ତ ହୁଏ, ଗୋମୁଖୀ, ଜପାମାଳା ରଖିବାର ଝୁଲି, ତବଲାର ଗମ୍ଭୀର ସ୍ୱର, ସୁଗନ୍ଧ, ବାସନା,(ଯା. ବି.) ଗମାକ୍ତ ଆମୋଦ ।

ଗମଗମ—ଗ୍ରା. ଅବ୍ୟ. ଗ୍ରୀଷ୍ମାନୁଭୂତି ଯୋଗୁ ବିଶେଷ ପରିମାଣରେ (ଦେହରୁ ଝାଳ ବୋହିବା) ବି. ଗ୍ରୀଷ୍ମ ସମୟ, ବାସନା, ସୁଗନ୍ଧ ।

ଗମକ୍ତ,ଗମାକ୍ତ—ଯା.ବି. ମହକ, ଆମୋଦ ପ୍ରମୋଦର ପରାକାଷ୍ଠା, ଉଚ୍ଛୃଙ୍ଖଳ ଆମୋଦ ପ୍ରମୋଦ ।

ଗମଥ—ପୁଂ. ବି. (ଗମ୍ + ଅଧି,ଅଥ) ପଥ, ଆମୋଦପ୍ରମୋଦ, (ଗମ୍ + କ.ଅଥ) ପର୍ଯ୍ୟଟକ, ପଥିକ ।

ଗମନ—କ୍ଲୀ. ବି. (ଗମ୍ + ଅନ) କ୍ରିୟାବିଶେଷ, ଜିଗୀଷୁ ବ୍ୟକ୍ତିର ଯାତ୍ରା, ପ୍ରସ୍ଥାନ, ପଥ, ରମଣ, ନିକଟକୁ ଯିବା ପ୍ରାପ୍ତି, ଗ୍ରହର ଢଙ୍ଗ, ଉପଭୋଗ, ରଥ ଶକଟ ପ୍ରଭୃତି ଯାନ ।

ଗମନାଗମନ—କ୍ଲୀ.ବି.(ଗମନ + ଆଗମନ) ଯାତାୟାତ, ଯିବା ଆସିବା, ଚଳାଚଳ ।

ଗମନାର୍ହ—ପୁଂ. ବିଂ. (୬ତତ୍) ଯିବାର ଉପଯୁକ୍ତ (ସ୍ଥାନ), ସ୍ତ୍ରୀ. ଗମନାର୍ହା ।

ଗମନୀୟ—ବି.ବିଂ.(ଗମ୍ + ମଁ, ଅନୀୟ) ଗମ୍ୟ, ଯିବାର ଉପଯୁକ୍ତ ବା ଉଚିତ, (ସ୍ଥାନ ବା କାଳ), ସହଜ ବୋଧଗମ୍ୟ ।

ଗମନେଚ୍ଛା—ବି. (୭ ତତ୍ ବା ୬ତତ୍) ଯିବାକୁ ଇଚ୍ଛା ।

ଗମନେଚ୍ଛୁ(କ)—ବିଂ. ଯିବାକୁ ଇଚ୍ଛୁକ ।

ଗମନୋଦ୍ୟତ—ବିଂ.(୭ତତ୍) ଗମନକରିବାକୁ ଉଦ୍ୟୋଗୀ,(ସ୍ତ୍ରୀ) ଗମନୋଦ୍ୟତା ।

ଗମନୋନ୍ମୁଖ—ବିଂ. (୭ତତ୍)ଗମନୋଦ୍ୟତ, ଯିବାକୁ ଆଉ କାଳ ବିଳମ୍ବ ନ ଥିବା, (ସ୍ତ୍ରୀ) ଗମନୋନ୍ମୁଖୀ ।

ଗମୟିତା—ପୁଂ.ବିଂ. (ଗମ୍ + ଣିଚ୍,ତୃ) ଯେ ଗମନ କରେ, ବୋଧକ ।

ଗମୟିତବ୍ୟ—ବି. ବିଂ. (ଗମ୍ + ଣିଚ୍ + ତବ୍ୟ)ଗମନ କରାଇବାର ଉପଯୁକ୍ତ, ପଠାଇବାର ଉପଯୁକ୍ତ ।

ଗମରା—ଗ୍ରା. ବିଂ. ଛତଆ ବା ଫଙ୍ଗୁ ମାରି ଯାଇଥିବା(ଶସ୍ୟାଦି) ।

ଗମା—ଗ୍ରା. ବିଂ. ହଜିଯାଇଥିବା,ଛତଆ, ବା ଫଙ୍ଗୁ ମାରି ଯାଇଥିବା (ଶସ୍ୟାଦି) ।

ଗମାଇଦେବା ଗମାଇବା—ଗ୍ରା.କ୍ରି. ଗମିବାର ଣିଜନ୍ତରୂପ, (କାଳ) ଯାପନ କରିବା, ଗତ କରିବା, ହଜାଇବା, ଅନୁଭବ କରିବା, କୌଣସି ପଦାର୍ଥକୁ ସଢ଼ାଇବା ।

ଗମାଗମ—ପୁଂ. ବି. (ଗମ + ଆଗମ) ଚରାଚର, ସଂସାରେ ଯାତାୟାତ, ଗମନାଗମନ, ସ୍ଥାବରଜଙ୍ଗମ ବସ୍ତୁଚୟ ।

ଗମାଗୋଇ—ଗ୍ରା. ବି. ଦୁଇପାଖରେ ବାଡ଼ ବା କାନ୍ଥଥିବା ସଂକୀର୍ଣ୍ଣ ଗଳି, ଗୋହିରି ଦାଣ୍ଡ ।

ଗମାର—ଗ୍ରା. ବି. ଓଲୁ, ନିର୍ବୁଦ୍ଧିଆ, ନିର୍ବୋଧ, ଦୁଷ୍ଟ ।

ଗମିତ—ବି.ବିଂ.(ଗମ୍ + ଣିଚ୍ + ମଁ.ତ) ଜ୍ଞାପିତ, ଅତିବାହିତ, କ୍ଷେପିତ (କାଳ), ଗ୍ରା. ବିଂ. (ଅମୁକ ସ୍ଥାନକୁ) ଗତ, ଉପଗତ ।

ଗମିବା—ଗ୍ରା, କ୍ରି. ଗତି କରିବା, ଗମନ କରିବା, (ଲକ୍ଷଣାର୍ଥ) ପ୍ରବେଶ କରିବା, ପାଠକରିବା, ବୁଝିବା, କୌଣସିବିଷୟକୁ ଉତ୍ତମରୂପେ ବୋଧକରିବା, ଧାରଣା

କରିବା, (କାଳ) ଗତ ହେବା ବା ଅତିବାହିତହେବା, ଅନୁଭବୀ ବା କୁଶଳୀ ହେବା, ଫଲୁ ମାରିବା, ଗମ୍ ହେବା, ଘା. କ୍ରି, ହଜିବା, ଗୁମିବା ।

ଗମୀ—ପୁଂ.ବିଂ. (ଗମ୍ + କ.ଇନ୍) ଯେ ଯିବ,ଗମନକର୍ତ୍ତା, (ସ୍ତ୍ରୀ) ଗମିନୀ ।

ଗମୀଷ୍ଠ—ପୁଂ. ବିଂ. ଯେ ବେଶି ଯାଇ ପାରେ ।

ଗମୁଆ—ଗ୍ରା.ବିଂ. ଗମରା, ଗମିଯାଇଥିବା, ଛଡଆ ବା ଫଲୁ ମାରି ସଡ଼ି ଯାଇ-ଥିବା (ବି) ଗୋମୁହାଁ କୁମ୍ଭୀର ।

ଗମ୍ପ—ଗ୍ରା.ବି. (ପାନବରଜିଆ ଭାଷା) । ପାନବରଜର ଏକ ଗଛରେ ଥିବା ଦୁଇଧାଡ଼ି ପାନଲତାର ମଝି ସ୍ଥାନ ।

ଗମ୍ବୁଜ—ଯା. ବି. ମୁସଲମାନ-ଭଜନା-ଳୟର ଅଗ୍ରଭାଗର ଅର୍ଦ୍ଧ ଗୋଲକାର ସ୍ଥାନ, ମନ୍ଦିରର ଗୋଲକାର ଚୂଡ଼ା ।

ଗମ୍ଭନ୍—ହି.ବିଂ.(ଗମ + ଅନ୍) ଗମ୍ଭୀର ।

ଗମ୍ଭର—କ୍ଲୀ.ବି.(ଗମ + ଭୃ + ଅ)ଜଳ ।

ଗମ୍ଭରୀ—ଗ୍ରା. ବି. ଗମ୍ଭୀରା, ଗୁପ୍ତ ଓ ଅନ୍ଧକାରମୟ ଗୃହ ବା ଦେବାଳୟ, ଗୁମ୍ଫା ।

ଗମ୍ଭାରିକା—ସ୍ତ୍ରୀ. ବି. (ଗମ + ଭୃ + ଇକ + ଆ) ଗମ୍ଭାରୀ ଗଛ [ଗଛ ।

ଗମ୍ଭାରୀ—ବି.ବନ୍ୟ ବୃକ୍ଷ ବିଶେଷ, ଗମ୍ଭାରି

ଗମ୍ଭିରା(ର)-ଗ୍ରା.ବି. ଗୁପ୍ତ ଓ ଅନ୍ଧକାରମୟ ଗୃହ ବା ଦେବାଳୟ, ଗୁମ୍ଫା, କୋଠରି, (ପ୍ରା. ସମ୍ବ) ତଳ ବା ଆତୁଘର ।

ଗମ୍ଭିର ଘର—ଗ୍ରା.ବି.ଭିତରିଘର,ଗୃହର ଅଭ୍ୟନ୍ତରରେ ନିର୍ମିତ ଗୁପ୍ତଗୃହ ।

ଗମ୍ଭିରରା—ଗ୍ରା. ବି. ପ୍ରାଚୀନ ଓଡ଼ିଶା ଗଡ଼ଜାତର ରାଜାମାନଙ୍କର ପ୍ରଦତ୍ତ ଉପାଧିବିଶେଷ ।

ଗମ୍ଭିର ସାଆନ୍ତ—ଗ୍ରା. ବି. ଯୁବରାଜ ।

ଗମ୍ଭିଷ୍ଠ—ହି. ବିଂ. ( ଗମ୍ଭ + ଇଷ୍ଠ ) ଗମ୍ଭୀରତମ ।

ଗମ୍ଭୀର—ହି. ବିଂ. ନିମ୍ନସ୍ଥାନ, ଗଭୀର, ମନ୍ଦ୍ରଧ୍ୱନି, ନିବିଡ଼, ଉଦାର, ପୂର୍ଣ୍ଣ,ଗୁରୁ, ଅଗାଧ, ମାନସିକ, ଦୃଢ଼ତାଯୁକ୍ତ, ଗାମ୍ଭୀର୍ଯ୍ୟଯୁକ୍ତ ( ପୁଂ. ବି. ) ଜମ୍ଭୀର ଲେମ୍ବୁ, ପଦ୍ମ, ରୁକ୍ ମନ୍ତ୍ରବିଶେଷ ।

ଗମ୍ଭୀରକ—ବିଂ. (ଗମ୍ଭୀର + କ) ଅତି-ଗମ୍ଭୀରଭାବରେଅବସ୍ଥିତ,(ସ୍ତ୍ରୀ)ଗମ୍ଭୀରିକା ।

ଗମ୍ଭୀରତା—ସ୍ତ୍ରୀ. ବି. ଗମ୍ଭୀରଭାବ, ଗାମ୍ଭୀର୍ଯ୍ୟ ।

ଗମ୍ଭୀରନାଦୀ—ପୁଂ. ବିଂ. ( ଗମ୍ଭୀର + ନଦ + କ,ଇନ୍ ) ଗମ୍ଭୀର ଶବ୍ଦକାରୀ ।

ଗମ୍ଭୀରପ୍ରକୃତି—ସ୍ତ୍ରୀ. ବି. ( କ.ଧା ) ଗମ୍ଭୀର ବା ଭାରିସ୍ୱଭାବ ( ବିଂ.ବ.ବ୍ରୀ ) ଗମ୍ଭୀରସ୍ୱଭାବବିଶିଷ୍ଟ ଦୁର୍ଜ୍ଞେୟ ସ୍ୱଭାବ ।

ଗମ୍ଭୀରବାୟୁ—ଜଣେ ପ୍ରସିଦ୍ଧ ବୌଦ୍ଧକବି ।

ଗମ୍ଭୀରବେଦୀ—ପୁଂ. ବି. (ଗମ୍ଭୀର + ବିଦ୍ + କ,ଇନ୍) ମତ୍ତହସ୍ତୀ, ଯେଉଁ ହାତୀ ଚରପଦଚଡ ଶିକ୍ଷା ବିସ୍ମୃତ ହୁଏ, ମୋଟାବୁଦ୍ଧି, ଅଙ୍କୁଶଦୁର୍ଦ୍ଧର ।

ଗମ୍ଭୀରା—ସ୍ତ୍ରୀ. ବି. (ଗମ୍ଭୀର + ଆ) ନଦୀ ବିଶେଷ ।

ଗମ୍ଭୀରିକା—ସ୍ତ୍ରୀ. ବି. ନଦୀବିଶେଷ, ବଡ ଢୋଲ ।

ଗମ୍ୟ—ହି.ବି. (ଗମ୍—ମି,ଯ) ଗମନୀୟ, ପ୍ରାପ୍ୟ, ଗମନଯୋଗ୍ୟ, ଅନୁମେୟ, ଉଦ୍ଦିଷ୍ଟ, କଳ୍ପନାସିଦ୍ଧ, ବୋଧଗମ୍ୟ, ଜ୍ଞେୟ,ଭୋଗ୍ୟ, ସାଧ୍ୟ,ଯେଉଁଠାକୁଗମନ କରାଯାଇ ପାରେ, ଉହ୍ୟ, ଯାହା କରା-ଯାଇପାରେ, ସହବାସ ବା ଉପଭୋଗର ଯୋଗ୍ୟ(ବ୍ୟକ୍ତି), ଔଷଧାଦି ଦ୍ୱାରା ଯାହା ଆରୋଗ୍ୟ କରାଯାଇ ପାରେ, ଯେଉଁ ପୁରୁଷ ସ୍ତ୍ରୀର ସହବାସ ବିଷୟରେ ଶାସ୍ତ୍ରୀୟ ବାଧା ନାହିଁ, କାମୁକ ବ୍ୟକ୍ତି, ନାଗର, ଜାର ।

ଗମ୍ୟମାନ-ପୁଂ.ବିଂ.(ଗମ୍ + ମି.ଯ + ଆନ) କ୍ଷୟମାନ, ବର୍ତ୍ତମାନ ଗମନର କାର୍ଯ୍ୟ, ଯେ ଗ୍ରାମକୁ ଯାଇଅଛୁ, ଅନୁମୀୟମାନ, ଯେଉଁଠାକୁ ଗମନ କରା ଯାଉଥାଏ ।

ଗମ୍ୟା—ସ୍ତ୍ରୀ. ବିଂ. (ଗମ୍ + ମି,ଯ + ଆ) ସମ୍ଭୋଗାର୍ହା (ସ୍ତ୍ରୀ), ଯାହାର ସମ୍ଭୋଗ ଶାସ୍ତ୍ରବିରୁଦ୍ଧ ନୁହେ ।

ଗମ୍ହା—ଗ୍ରା.ଶ୍ରାବଣ ପୂର୍ଣ୍ଣିମା ଦିନ ବଳଦେବ ପୂଜା କରାଯିବା ଉପଲକ୍ଷରେ ନିର୍ମିତ ବଳୀବର୍ଦ୍ଦାକୃତି ମୃତ୍ତିକାମୂର୍ତ୍ତି, ଶ୍ରାବଣ ପୂର୍ଣ୍ଣିମା ।

ଗମ୍ହା ଡକରା ଗ୍ରା. ବି. ଗମ୍ହାପୂର୍ଣ୍ଣମୀ ଦିନ ଗମ୍ହା ବେଦୀଠାରେ ବଳଦେବଙ୍କୁ ଭୋଗ ହୋଇଥିବା ହାକରା ନେବାକୁ ଉପସ୍ଥିତ ହେବାପାଇଁ ବ୍ରାହ୍ମଣଶାସନ-ଗ୍ରାମବାସୀ ମହାଜନମାନଙ୍କୁ ତାଲିକା ଅନୁସାରେ ଆହ୍ୱାନ କରିବା, ବିବାହର ପ୍ରଥମ ବର୍ଷ ମଧ୍ୟରେ ଗମ୍ହାପୂର୍ଣ୍ଣିମା ଦିନ ଶ୍ୱଶୁର ଘରକୁ ଯିବାକୁ ଜ୍ୱାଇଁକୁ ନିମନ୍ତ୍ରଣ ।

ଗମ୍ହାଡ଼ିଆଁ—ଗ୍ରା.ବି. ଗମ୍ହାପୂର୍ଣ୍ଣମୀ ଦିନ ବଳଦେବ ପୂଜା ଉପଲକ୍ଷରେ ଗୋଟିଏ ଅଣ୍ଡିରା ବାଛୁରୀକୁ ନେଇ ଗମ୍ହାବେଦୀକୁ ଡିଆଁଇ ଦେବା ବିଧି ।

ଗମ୍ହାପୂର୍ଣ୍ଣମୀ—ଗ୍ରା ବି. ଶ୍ରାବଣ ପୂର୍ଣ୍ଣମୀ ।

ଗମ୍ହାପୋକ—ଗ୍ରା. (ସମ୍ବ)ବି. ଢେଲୁଣୀ ପୋକ ।

ଗମ୍ହାବେଦୀ—ଗ୍ରା. ବି. ଶ୍ରାବଣ ପୂର୍ଣ୍ଣମୀ ଦିନ ବଳଦେବଙ୍କୁ ପୂଜାକରାଯିବା ଉପଲକ୍ଷରେ ଗ୍ରାମାନ୍ତରେ ନିର୍ମିତ ବଳୀ-ବର୍ଦ୍ଦାକୃତି ମୃତ୍ତିକାମୂର୍ତ୍ତି ।

ଗୟ—ପୁଂ. ବିଂ. ( ଗୈ + କ,ଅ ) ରାମାୟଣପ୍ରସିଦ୍ଧ ଗୋଟିଏ ବାନର, ହବିର୍ଦ୍ଧାନ ରାଜାଙ୍କ ପୁତ୍ର, ପ୍ରିୟବ୍ରତ-ବଂଶୀୟ ଜଣେରାଜା,ଜଣେ ରାଜର୍ଷି,ଧନ, ଅପତ୍ୟ, ଗୃହ, ଅନ୍ତରୀକ୍ଷ, ପରିବାର, ସ୍ୱସ୍ଥାନ, ପ୍ରାଣ,ଗୟା ପ୍ରଦେଶ,ଗୟାସୁର ।

ଗୟଲ—ଗ୍ରା. ବି. (ହି-ଗବୟ) ଅରଣା ମଇଁଷ,ପିଆଶାଳ, ଅସନ ଆଦି କାଠ ।

ଗୟସ-ଗ୍ରା.ବି.(ହି-ଗୋଶୀର୍ଷକ) ପଚ୍ଛଆରେ ମନକୁ ଉଠିବା ବର୍ଷାଯୁକ୍ତ ଝଡ଼ବିଶେଷ, ଗଇଣ, ଦ୍ରୋଣପୁଷ୍ପୀ ।

ଗୟସାଧନ—ବି.(୬ତତ୍ପୁ)ଗୃହର ସାଧନ, ବିଂ. ଗୃହର ଧନାଦି ବୃଦ୍ଧିକାରକ ।

ଗୟସ୍ଥାନ—ହି.ବିଂ. ଧନବର୍ଦ୍ଧନକାରକ ।

ଗୟା—ଗ୍ରା.ବି.(ଗୟ + ଅ + ଆ)ବିହାର ପ୍ରଦେଶର ରାଜଧାନୀ ପାଟନା ନିକଟସ୍ଥ

ପ୍ରାଚୀନ ମଗଧଦେଶର ପ୍ରସିଦ୍ଧ ହିନ୍ଦୁତୀର୍ଥ ସ୍ଥାନ । [ଜାଢ଼ ।

ଗୟାଳୀ—ଗ୍ରା. ବି. ଗୟାବାସୀ ବ୍ରାହ୍ମଣ

ଗୟାଶିଖର—କ୍ଲୀ. ବି. ଗୟାନିକଟସ୍ଥ ପର୍ବତବିଶେଷ ।

ଗୟାଶୀର୍ଷ—ଗୟାନିକଟସ୍ଥ ପର୍ବତବିଶେଷ ।

ଗୟାଶ୍ୱତ୍ଥ—ପୁଂ. ବି. ଅଶ୍ୱତ୍ଥବୃକ୍ଷବିଶେଷ ।

ଗୟାସୁର—ବି.(ଗୟ+ଅସୁର) ବିଷ୍ଣୁଙ୍କ ଦ୍ୱାରା ନିହତ ଗୟ ନାମକ ଅସୁର ।

ଗର୍—ଯା. ଅବ୍ୟ.ଅଭାବ, ଅନ୍ୟ, ବିନା, ବ୍ୟତୀତ, ବିପରୀତ, ନ, ନା, ହୀନ, ଆପଣାର ପରିବାର,ସମାଜ ବା ଦଳର ବହିର୍ଭୂତ ।

ଗର୍‌ୱାଜିବ୍—ଯା. ବିଂ. ଅନ୍ୟାୟ, ଅନୁଚିତ ।

ଗର୍‌କବୁଲ୍—ଯା. ବି. ଅସ୍ୱୀକାର, ଅସମ୍ମତି, ଦୋଷ ନ ମାନିବା ।

ଗର୍‌କବୁଲ୍‌ସୁରତ୍(ତ)—ଯା.ବିଂ.ପଛାଦଆ-ଯାଇ ନ ଥିବା, କବୁଲ୍‌ସୁରତ୍‌ର ବହିର୍ଭୂତ ।

ଗର୍‌ଖର୍ଚ୍ଚା—ଯା.ବି. କୌଣସି ପଣ୍ୟଦ୍ରବ୍ୟ ଡଙ୍ଗାରୁ ବା ଜାହାଜ ଆଦିରୁ ନିରୂପିତ ସମୟରେ ଖଲାସ ନ ହେବା ଯୋଗୁଁ ସେ ଦ୍ରବ୍ୟ ନେବା ବ୍ୟକ୍ତିକୁ ଯେଉଁଦଣ୍ଡ ବା ଜୋରିମାନା ଦେବାକୁ ପଡ଼େ ।

ଗରଗ(ଡା)ଡ଼ିଆ—ପ୍ରା.(ସମ୍ବ) ବି.ଗଡ଼ା-ଣିଆ,(ଗ୍ରା.ବି) ଗରଗଡ଼ିରେଖଥିବାମ.ଲ, ଏକପ୍ରକାର ଅଳଙ୍କାର ।

ଗର୍‌ଗର୍—ଗ୍ରା.ବିଂ.(ଫ-ଜର୍ଜର) ବ୍ୟଗ୍ର-ଜର୍ଜରିତ, ଅତିଶ୍ରାନ୍ତ, ଜଡ଼ିତ, ଆକ୍ରାନ୍ତ, ବିଶେଷଭାବରେ ରଞ୍ଜିତ, ସର୍‌ସର୍ ।

ଗର୍‌ଗରାଇବା—ଗ୍ରା.କ୍ରି. ସ୍ୱାରୁଆଦି ଖାଇ-ବାରୁ ତଣ୍ଟି ଗଡଗଡ଼୍‌ହେବା, ଗରଗର ଶବ୍ଦ କରିବା, ଗଁ ଗଁ ଶବ୍ଦ କରିବା ।

ଗର୍‌ଗାଜ—ଗ୍ର . ବି. (ଫ-ଗର୍ଜନ)ଗର୍ଜ-ଗାଜ, ଉଚ୍ଚୈଃସ୍ୱରେ ଗର୍ଜନ, ବିପନ୍ନ-ଜୀବର ଆତୁରତା ପୂର୍ଣ୍ଣ ଗର୍ଜନ ।

ଗର୍‌ଗାଜିବା—ଗ୍ରା.କ୍ରି.(ଫ-ଗର୍ଜନ)ଗର୍ଜ-ଗାଜିବା, ଉଚ୍ଚୈଃସ୍ୱରରେ ଗରଜିବା,ଅତି ଆକ୍ରାନ୍ତ ହୋଇ ଜୀବନବିକଳରେ ଗର-ଜିବା, (ମେଘ) ଗରଜି ମୁଷଳଧାରାରେ ବର୍ଷା କରିବା ।

ଗର୍‌ଡ଼—ପ୍ରା.(ସମ୍ବ)ବି.ଝଡ଼,ତୋଫାନ ।

ଗର୍‌ଦନ୍—ଯା. ବି. ମୁଣ୍ଡ, ବେକ,ଗଳା, ଧଡ଼ୀ । [ବେକ ।

ଗର୍(ଦ)ଧନା—ପ୍ରା. (ସମ୍ବ) ବି. ଗଳା,

ଗର୍‌ନଶାପ୍(ଫ୍)—ଅବିଚାର, ଅନ୍ୟାୟ, (ବିଂ) ଅନ୍ୟାୟୀ ।

ଗର୍‌ନଶାପି(ଫି)—ଯା. ବିଂ. ଅନ୍ୟାୟୀ ।

ଗର୍‌ପସନ୍ଦ—ଯା. ବିଂ. ଯାହା ପସନ୍ଦକୁ ଆସେନାହିଁ, ବିଶ୍ୱାସର ଅଯୋଗ୍ୟ, ଅମନୋମିତ, (ବି) ଅନନୁମୋଦନ ।

ଗର୍‌ମଜଭୁତ୍—ଯା.ବିଂ. ଦୁର୍ବଳ,ଅଦୃଢ଼ ।

ଗର୍‌ରାଜି—ଯା. ବି.୦ ଅସ୍ୱୀକୃତ,ଅସମ୍ମତ, ଅନିଚ୍ଛୁକ ।

ଗର୍‌ଲାଏକ୍—ଯା. ବିଂ. ଅଯୋଗ୍ୟ, ନାଲାଏକ୍, ପଡ଼ିଆ,ପତିତଭୂମି ।

ଗର୍‌ହାଜର୍—ଯା. ବି. ଅନୁପସ୍ଥିତ ।

ଗର୍‌ହାଜରି(ର)—ଯା. ବି. ଅନୁପସ୍ଥିତି ।

ଗର୍‌ହିସାବୀ—ଯା. ବିଂ. ବେହିସାବୀ, ଅପବ୍ୟୟୀ, ଧାରାବହୀନ ।

ଗର—କ୍ଲୀ. ବି. (ଗୃ+ଣି,ଅ) ବବାଦି କରଣମଧ୍ୟରେ ପଞ୍ଚମ କରଣ; ବିଷ,ମହୁରା, ବତ୍ସନାଭ ପ୍ରଭୃତି ଉପବିଷ, ଗିଳିବା ମହୌଷଧ, ରୋଗ, ସେଚନ, (ଗ୍ରା.-ଇତରଭାଷା) ବି. ଗଡ଼କଠ, ବଡ଼ଖଣ୍ଡ, ଶରୀରର ଗଣ୍ଠି, କୁରଚି, ଲୁହାର ମଞ୍ଜି ।

ଗରକଣ୍ଠ—ପୁଂ. ବି. ବ,ସ୍ତ୍ରୀ, (ଗର+କଣ୍ଠ) ଶିବ, ମହାଦେବ ।

ଗରକଣ୍ଠପର—ପୁଂ. ବି. (ଗରକଣ୍ଠ+ପର) କାମ, କନ୍ଦର୍ପ, ମଦନ ।

ଗରଗଡ଼—ଗ୍ରା. ବି. (ଫ-ଗବେଡ଼ୁ ବା ଗବେଧୂକା) ଧାନକ୍ଷେତରେ ଜାତ ଅକର୍ମଣ୍ୟ ଟାଣୁଆ ତୃଣବିଶେଷ ।

ଗରଗଡ଼ିଆ—ଗ୍ରା. ବି. ହାତର ଖଡ଼ୁ-ବିଶେଷ ।

ଗରଗୀର୍ଣ୍ଣ—ବି. ବିଂ. ଯେ ବିଷପାନ କରିଅଛି ।

ଗରଗୀର୍ଣ୍ଣୀ—ପୁଂ. ବିଂ. ଯେ ବିଷ ଖାଇ-ଅଛି, (ବିଂ) ଜଣେ ଋଷି ।

ଗରଘ୍ନ—ପୁଂ.ବି.(ଗର+ହନ୍+କ.କ୍ୱିପ୍) କୃଷ୍ଣତୁଳସୀ, ବବ୍ବର, (ବିଂ) ବିଷନାଶକାରୀ, ସ୍ୱାସ୍ଥ୍ୟପ୍ରଦ ।

ଗରଘ୍ନୀ—ସ୍ତ୍ରୀ. ବି. ମତ୍ସ୍ୟବିଶେଷ ।

ଗରଜ—ଯା. ବି. ଇଚ୍ଛା, ଅଭିଳାଷ, ପ୍ରୟୋଜନ, ଦରକାର, ଅଭିପ୍ରାୟ, ଜରୁରି ଦରକାର ପଡ଼ିବ ,ଅଭାବ, ଯତ୍ନ, ମତଲବ୍ ।

ଗରଜଚଳାଇବା—ଗ୍ରା. କ୍ରି. ପ୍ରୟୋଜନ ବା ଅଭାବ ସମୟରେ ଅନ୍ୟ ବ୍ୟକ୍ତିର ସହାୟ ହେବା ।

ଗରଜଚୁଳିବା—ଗ୍ରା.କ୍ରି.ଗରଜ ଚଳାଇବା (ଦେଖ) ।

ଗରଜାଏ—ଯା. ବିଂ. ଧନହୀନ, ପ୍ରାପ୍ୟ-ଆଦି ଦେବାକୁ ଅକ୍ଷମ, ବେମକ୍‌ଦୁର୍, ଆଦାୟ ହେବାର ଅଯୋଗ୍ୟ ।

ଗରଜ(ଆ)—ଯା. ବିଂ. ଅଭାବଗ୍ରସ୍ତ, ଯେ କୌଣସି ବସ୍ତୁଲୋଡ଼ୁଥାଏ, ଅନ୍ୟବ୍ୟକ୍ତିର ଯେ ଗରଜ ଚଳାଇ ନଏ, ଆଦାୟ ହେବାର ଅଯୋଗ୍ୟ ।

ଗରଜିବା—ଗ୍ରା. କ୍ରି. ଗର୍ଜନ କରିବା, ଉଚ୍ଚଧ୍ୱନି କରିବା, ବଡ଼ପାଟିକରି ହାଣି-ହୋଇ କଥା କହିବା ।

ଗରଜିମରିବା—ଗ୍ରା, କ୍ରି. ବଡ଼ପାଟିକରି କହି କହି ଅକଳିବା ।

ଗରଣ—କ୍ଲୀ. ବି. ( ଗୃ+ଣି, ଅନ ) ସେଚନ, ଭକ୍ଷଣ,ଛୁଞ୍ଚିବା,ଗିଳିବା, ବିଷ ।

ଗରଣବାନ୍—ପୁଂ.ବିଂ.ଉଦ୍‌ଗିରଣ ବଶିଷ୍ଟ ।

ଗରତୋଳିବା—ଗ୍ରା.କ୍ରି. ଗୋରୁଙ୍କୁ ବାଘ ଧଇଲେ (ଗୋରୁ) ପ୍ରାଣ ବିକଳରେ ଗଁ ଗଁ ହୋଇ ରଡ଼ି ଛାଡ଼ିବା,ଏକମତହେବା, ମେଳା ବାନ୍ଧିବା ।

ଗରଦ—ବି .ବିଂ. (ଗର+ଦା+କ,ଅ) ବିଷପ୍ରଦ,ରୋଗଜନକ, (ସ୍ତ୍ରୀ) ଗରଦା । (ବି) ବିଷ, ରେଶମର ଏକପ୍ରକାର ବସ୍ତ୍ର, ପାଟଲୁଗା ।

ଗରଢା—ଯା. ବି. ଧୂଳି, ଦ୍ରବ୍ୟର ଅକାର୍ଯ୍ୟକା ଅଂଶ, ମଳ, ମଇଳା ।
ଗରଦନ—କ୍ଲୀ. ବି. (ଗର+ଦା+ଣ୍ଚ, ଅନ) ବତ୍ସନାଗ; ବିଷପ୍ରଦାନ ।
ଗରଧର—ପୁଂ. ବି. (ଗର+ଧୃ+କ,ଅ) ବିଷଧର, (ବିଂ) ବିଷାକ୍ତ ସର୍ପ ।
ଗରଧ୍ବଜ—କ୍ଲୀ. ବି. ଅଭ୍ରକ ।
ଗରନ୍ନାଳବାଣ—ଗ୍ରା.ବି.ଏକପ୍ରକାର ବଡ଼ ବନ୍ଧୁକ ।
ଗରନାଶିନୀ—ସ୍ତ୍ରୀ. ବି. ପୀତବର୍ଣ୍ଣ ଦେବଦାଲୀ ଲତା, ଭରଦ୍ୱାଜାଖ୍ୟ ଏକପ୍ରକାର ଲତାଗଛ ।
ଗରବ—ଗ୍ରା. (ପଦ୍ୟ.) ବି. ଗର୍ବ,ଅହଂକାର, (ସଂ-ଗର୍ବ) ।
ଗରବଖାଈ—ଗ୍ରା.ସ୍ତ୍ରୀ.ବି. (ଗାଳିବିଶେଷ) ଯେଉଁ ସ୍ତ୍ରୀ ଗର୍ଭସ୍ଥ ଶିଶୁକୁ ଖାଏ,ଯାହାର ଶିଶୁ ଗର୍ଭରୁ ମରେ, ମୃତବତ୍ସା ପ୍ରସବକାରିଣୀ ଯେଉଁ ସ୍ତ୍ରୀ ନିଜର ଅହଂକାର ହେତୁ ଅକାଳରେ ବିନଷ୍ଟ ହୁଏ ।
ଗରବଖିଆ—ଗ୍ରା.ପୁଂ.ବିଂ.(ଗାଳିବିଶେଷ) ଯେଉଁ ପୁରୁଷ ନିଜ ଅହଂକାର ହେତୁରୁ ଧ୍ୱସ୍ତ ହୁଏ ।
ଗରବଗଞ୍ଜନ—ଗ୍ରା. ବିଂ. ଗର୍ବହାରକ, ଯେ ଅନ୍ୟର ଗର୍ବକୁ ନାଶ କରେ ।
ଗରବଗଞ୍ଜିବା—ଗ୍ରା. କ୍ରି. ଗର୍ବ ଚନା କରିବା ।
ଗରବଦଳିବା—ଗ୍ରା. କ୍ରି. (ଲ.ଅର୍ଥ) ସୌନ୍ଦର୍ଯ୍ୟାଦିରେ ଅନ୍ୟକୁ ଜିଣିବା, ଗରବ ଚୂନା କରିବା ।
ଗରବଭାଙ୍ଗିବା—ଗ୍ରା.କ୍ରି.ଆପଣାର ଗର୍ବକୁ ଦମନ ଓ ସଂଯତ କରିବା,ପରର ଗର୍ବ ଭଞ୍ଜନ କରିବା ।
ଗରବିଣ—ସ୍ତ୍ରୀ. ବି. ସୌନ୍ଦର୍ଯ୍ୟଗର୍ବିତା, ଅହଂକୃତା, ମଦମତ୍ତା, ଆଡମ୍ବରଣୀ ।
ଗରବୀ—ପୁଂ. ବିଂ. ଗର୍ବିତ, ଅହଙ୍କାରୀ, ଅହଂକୃତ, ଦମାକ୍କା ।
ଗରବ୍ରତ—ପୁଂ. ବି. (ବ.ବ୍ରୀ) ମୟୂର ।
ଗରଭ—ପୁଂ.ବି.(ଗୃ+ଅଭ)ଗର୍ଭଭ୍ରୂଣ, ଗ୍ରା. ବି) ଗର୍ଭାବସ୍ଥା, ପେଟ,ଅନ୍ତଃସ୍ଥଳ, (ଗ୍ରା.ବିଂ. ସ୍ତ୍ରୀ) ଗର୍ଭବତୀ,ଗର୍ଭିଣୀ ।

ଗରମ୍—ଯା. ବି. ଉଷ୍ଣତା, ଗ୍ରୀଷ୍ମ, ତାପ, ତାତି, କ୍ରୋଧ, ରାଗ, ଔଦ୍ଧତ୍ୟ, ଗର୍ବ, ଅଜୀର୍ଣ୍ଣ, ଦେହର ଆଭ୍ୟନ୍ତରିକ ତାପ, (ଯ. ବିଂ) ଉତ୍ତପ୍ତ, ତାତିଲା, ଉଦ୍ଧତ, ଗର୍ବିତ, ଉଗ୍ର, ରାଗୀ. କ୍ରୁଦ୍ଧ, ମହର୍ଘ (ପଣ୍ୟଦ୍ରବ୍ୟ),ଗ୍ରୀଷ୍ମଯୁକ୍ତ,କଡ଼ା,କ୍ରୋଧାକ୍ତ (କଥା), ଉଷ୍ଣତାଦାୟକ(ଲୁଗା),ଅଜୀର୍ଣ୍ଣକାରୀ (ଖାଦ୍ୟ) ।
ଗରମ୍ ଗରମ୍, ଗରମା ଗରମ୍—(ଖାଦ୍ୟ) ଗ୍ରା. ବିଂ.; ଚୁଲ୍ଲୀଉପରୁ ସାଙ୍ଗେ ସାଙ୍ଗେ ଓହ୍ଲାଯାଇ ଅବଧି ଶୀତଳ ହୋଇ ନ ଥିବା, ତଟକା, ତପ୍ତ ।
ଗରମଇ—ଗ୍ରା. ବି. ଧାନ କିଆରିରେ ଉଠିଥିବା ଧାନଗଛକୁ ଦୁଇଓଡ଼ ବିଦା ହଅସିବାପରେ ତାହା ଉପରେ ଚଳାଯିବା ଦୁଇ ଏକଓଡ଼ ମଇ, ବିଆଲି ଧାନଗଛ ଉପରେ ବୁଲିଯିବା ମଇ ।
ଗରମ କଥା—ଗ୍ରା.ବି.କଡ଼ାକଥା,କଠୋର ବାକ୍ୟ, କ୍ରୋଧପୂର୍ଣ୍ଣ ବାକ୍ୟ ।
ଗରମକପଡ଼ା—ଗ୍ରା.ବି. ଶୀତଲୁଗା, ଯେଉଁ ଲୁଗା ପିନ୍ଧିଲେ ଶରୀର ଗରମ ରହେ ।
ଗରମକାଳ (ଦିନ)—ଗ୍ରା. ବି. ଗ୍ରୀଷ୍ମଯୁକ୍ତ ଦିବସ, ଗ୍ରୀଷ୍ମସମୟ ।
ଗରମପୋଷାକ—ଯା. ବି. ଗରମକପଡ଼ା, ଯେଉଁ ପୋଷାକ ପିନ୍ଧିଲେ ଶରୀର ଗରମ ରହେ ।
ଗରମପ୍ରକୃତ—ଗ୍ରା. ବି. ଉଗ୍ରପ୍ରକୃତ ।
ଗରମମସଲା—ଗ୍ରା. ବି. ଖାଦ୍ୟାଦିରେ ଦେବାର ସୁବାସିତ ମସଲା, ଲବଙ୍ଗ, ଡାଲଚିନି ତେଜପତ୍ର ଓ ଧନିଆଁ ଇତ୍ୟାଦି ମସଲା, ଉଷ୍ଣବୀର୍ଯ୍ୟ ମସଲା ।
ଗରମମିଜାଜ୍—ଯା. ବି. ଗରମପ୍ରକୃତ, ଉଗ୍ରପ୍ରକୃତ ।
ଗରମହେବା—ଗ୍ରା. କ୍ରି. ରାଗିବା, ଉତ୍ତେଜିତ ହେବା,ମତ୍ତହେବା, ଉତ୍ତପ୍ତହେବା, (ବି) ଦେହର ଉତ୍ତାପ ବୃଦ୍ଧି ହେବା, (ଦେହରେ) ଗ୍ରୀଷ୍ମାନୁଭୂତ, (ସ୍ତ୍ରୀ.ଜୀବ) ରଜସ୍ୱଳାହେବା,(ବଜାର)ମହର୍ଘହେବା, (ପଣ୍ୟାଦିର) ଭାଉଚଢ଼ିବା,(ପେଟ)ଅଜୀର୍ଣ୍ଣ ହେବା ।

ଗରମି—ଯା.ବି.ଉଷ୍ଣତା,ତାପ,ଗ୍ରୀଷ୍ମକାଳ, ଶରୀରର ତାପ, ଗର୍ବ, ଔଦ୍ଧତ୍ୟ,ଗରମି ବେମାର, (ଯା.ବିଂ.) ଉଷ୍ଣ,ତାପଜନ୍ମାଦକ, ଗ୍ରୀଷ୍ମଋତୁଜନ୍ୟ, ଗ୍ରୀଷ୍ମସମ୍ବନ୍ଧୀୟ ।
ଗରମି ଘା—ଗ୍ରା. ବି. ଉପଦଂଶଜନିତ ବ୍ରଣ ।
ଗରଳ—କ୍ଲୀ. ବି. (ଗର+ଲ) ବିଷ,ସର୍ପ ବିଷ, ଘାସବିଡ଼ା, ପରିମାଣବିଶେଷ, (ଗ୍ରା. ବି.) ସୁସ୍ତବ୍ୟକ୍ତିର ପାଟିରୁ ବହିବା ନାଳ ।
ଗରଳାରି—ପୁଂ.ବି.ମରକତମଣି,ନୀଳମଣି ।
ଗରଳୀ—ପୁଂ. ବିଂ. (ଗରଳ+ଇନ୍) ବିଷଧର, (ସ୍ତ୍ରୀ. ବି. ଗରଳ+ଈ) ଗଡ଼ିଶା ମାଛ ।
ଗରଶୀ—ପୁଂ. ବି. ଏକପ୍ରକାର ମାଛ, ଗଡ଼ିଶା ମାଛ ।
ଗରସା—ପ୍ରା. (ସମ୍ବ)ବି.ଅନ୍ନ ଦର ଗୁଣ୍ଡା ।
ଗରହନ୍—ପୁଂ. ବି. କୃଷ୍ଣତୁଳସୀ,ବବୁର, (ବିଂ) ବିଷନାଶକ । [ଧାନ ।
ଗରହୁସିଆର—ଯା, ବିଂ.ଅସତର୍କ,ଅସାବ-
ଗରହୁସିଆରି—ଯା. ବି. ଅସାବଧାନତା, ଅସତର୍କତା ।
ଗରା—ସ୍ତ୍ରୀ.ବି. ଦେବଦାଲୀ ଲତା,ଭକ୍ଷଣ, ଭରଦ୍ୱାଜାଖ୍ୟ ଏକପ୍ରକାର ଲତା, (ଗ୍ରା.ବି) ପିତ୍ତଳମାଠିଆ, (ପ୍ରା.ସମ୍ବ.ବି) ଗଡ଼ାଖଣ୍ଡ, କୁକୁଡ଼ା ଡମ୍ବ, ମହୁଲମଞ୍ଜି, ଟୋଲମଞ୍ଜି, ଅଣ୍ଡକୋଷ, ମୁଷ୍କ ।
ଗରାକ (ଖ)—ଗ୍ରା. ବି. (ସଂ—ଗ୍ରାହକ) ଦୋକାନରୁ ନିୟମିତରୂପେ ପଣ୍ୟଦ୍ରବ୍ୟ କିଣିବା ଲୋକ ।
ଗରାଗରୀ—ସ୍ତ୍ରୀ. ବି. ଦେବତାଡ଼ ବୃକ୍ଷ, ବାରବର୍ଷିଆ ଗଛ, ଭରଦ୍ୱାଜାଖ୍ୟ ଏକପ୍ରକାର ଲତା ।
ଗରାତେଲ—ପ୍ରା.(ସମ୍ବ)ବି. ମହୁଲତେଲ, ଟୋଲତେଲ ।
ଗରାଷ୍ଟକ—କ୍ଲୀ. ବି. ଶୋଭାଞ୍ଜନ ବୀଜ, ସଜନାମଞ୍ଜି ।
ଗରାଧିକା—ସ୍ତ୍ରୀ.ବି. (ଗର+ଅଧିକ+ଆ) ଲକ୍ଷା, ଲାଖ, ଅଲତା, ଲାକ୍ଷାପୋକ ।

ଗରିବଡୁ — ଗ୍ରା. ବି. (ସଂ — ଗର୍ଭବଟୁ) ଭୁବନେଶ୍ୱରରେ ଦେବତାଙ୍କୁ ସ୍ନାନ କରାଇବା ବ୍ରାହ୍ମଣବିଶେଷ, ରାଜା ବା ଦେବତାଙ୍କ ପୂଜା ସମୟରେ ଜଳ ଫୁଲ ଓ ଚନ୍ଦନାଦି ଯୋଗାଇବା ବ୍ରାହ୍ମଣ ସେବକ ।

ଗରିଲିଆ — ଗ୍ରା. ବିଂ. ଦୀର୍ଘସୂତ୍ରୀ, ମଗର ।

ଗରିହ୍ମ — ଗ୍ରା. ବି. ଗୋରୁ ଗାଈ ବନ୍ଧାଯିବା ପଘା ।

ଗରିଆ — ଗ୍ରା. ବି. ପିତ୍ତଳମାଠିଆ, ଆଦରର ପାତ୍ର, ସ୍ନେହର ପାତ୍ର ।

ଗରିତ — ବି. ବିଂ. (ଗର + ଇତ) ସଞ୍ଜାତ ବିଷ, ଯାହାକୁ ବିଷ ଧରିଅଛି ।

ଗରିବ — ଯା. ବିଂ. ଦରିଦ୍ର, ବେସାହା, ନିଃସହାୟ, ନିରହଂକାର ।

ଗରିବପରୱାର — ଯା. ବିଂ. ଦୁଃଖୀଜନ ପାଳକ, ବିପନ୍ନଜନରକ୍ଷକ, ଦୀନଶରଣ ।

ଗରିବାନା — ଯା. ବିଂ. ଦରିଦ୍ରଜନୋଚିତ ।

ଗରିବୀ — ଗ୍ରା. ବିଂ. ଦରିଦ୍ର ଜନୋଚିତ ।

ଗରିମା — ପୁଂ. ବି. (ଗୁରୁ + ଭା. ଇମନ୍) ଗୁରୁତା, ଗୌରବ, ମହିମା, ଦର୍ପ, ମାହାତ୍ମ୍ୟ, ବଡ଼େଇ, ଗୁରୁତ୍ୱ, ଭାର, ଗର୍ବ, ଅହଂକାର, ଅଣିମାଦି ଅଷ୍ଟସିଦ୍ଧି ମଧ୍ୟରୁ ଏକତମ ।

ଗରିଷ୍ଠ — ବି. ବିଂ. (ଗୁରୁ + ଇଷ୍ଠ) ଅତିଗୁରୁ, ଅତିଭାରୀ, ଅତି ମହାନ୍, ଅତିଗୌରବାନ୍ୱିତ, (ଗ୍ରା. ବିଂ) ସହଜରେ ଜୀର୍ଣ୍ଣ ନ ହେବା (ପଦାର୍ଥ), ଗୁରୁପାକ (ଦ୍ରବ୍ୟ), ବି. ଦାନବଭେଦ, ନୃପଭେଦ ।

ଗରିଷ୍ଠସାଧାରଣଗୁଣନୀୟକ — ବି. (ଗଣିତ) ଦୁଇ ବା ତତୋଽଧିକ ରାଶିର ସାଧାରଣ ଗୁଣନୀୟକମାନଙ୍କ ମଧ୍ୟରେ ଯେଉଁ ସଂଖ୍ୟାଟି ସବୁଠାରୁ ବଡ଼ (ଗ:ସା:ଗୁ:) ।

ଗରିହଣା — ପ୍ରା. (କଟକ) ବି. ହେଳା, ଅବହେଳା ।

ଗରୀ — ସ୍ତ୍ରୀ. ବି (ଗୃ + ଅ + ଈ) ଦେବତାଡ ବୃକ୍ଷ, ଖରା ।

ଗରୀୟସୀ — ସ୍ତ୍ରୀ. ବିଂ. (ଗରୀୟସ୍ + ଈ) ଅତିଗୁରୁତର, ଅତିମାନନୀୟା, ଅତିଗୌରବାନ୍ୱିତା, ଗରୀୟାନର ସ୍ତ୍ରୀଲିଙ୍ଗ ।

ଗରୀୟାନ୍ — ପୁଂ. ବିଂ. (ଗୁରୁ + ଈୟସ୍) ଅତିଶୟ ଗୁରୁ, ଅତିଶୟ ଗୌରବାନ୍ୱିତ, ମର୍ଯ୍ୟାଦାବିଶିଷ୍ଟ, ବେଶିଭାରୀ ।

ଗରୀବ — ବି. ଦୀନ, ଦରିଦ୍ର ।

ଗରୀବାନା — ଗ୍ରା, ବି. ଗରୀବର ଭାବ, ଦୀନତା, ଦାରିଦ୍ର୍ୟ ।

ଗରୁ — ଗ୍ରା. ବି. ଗୋରୁ, ଗାଈ, ଗୋଜାତି. (ବିଂ) ଅତ୍ୟଧିକ, ମହତ୍, ବଡ଼, ଭାରୀ, କଷ୍ଟକର ।

ଗରୁଧର — ଗ୍ରା ସ୍ତ୍ରୀ. ବିଂ. (ସଂ-ଗର୍ଭ) ଗର୍ଭିଣୀ, ଗର୍ଭବତୀ, (ବି) ଗର୍ଭାବସ୍ଥା ।

ଗରୁଟାଣ — ଗ୍ରା. ବିଂ. ବିଚକ୍ଷଣ, ଦକ୍ଷ ।

ଗରୁଡ଼ — ପୁଂ. ବି. (ଗରୁତ୍ + ଡ଼ୀ + କ. ଅ) ବିନତାର ଗର୍ଭଜାତ, କଶ୍ୟପାତ୍ମଜ, ପକ୍ଷିରାଜ, ବିଷ୍ଣୁଙ୍କର ବାହନ, ବିହଙ୍ଗବିଶେଷ, (ଗ୍ରା. ବି) ଇଗଲପକ୍ଷୀ ।

ଗରୁଡ଼ଆସନ — ଗ୍ରା. ବି. ବିଷ୍ଣୁ, ଯୋଗ ସନବିଶେଷ ।

ଗରୁଡଖମ୍ବ — ଗ୍ରା. ବିଷ୍ଣୁମନ୍ଦିର ସମ୍ମୁଖରେ ଗରୁଡ଼ ବସିଥିବା ସ୍ତମ୍ଭବିଶେଷ ।

ଗରୁଡ଼ଗେ ବିନ୍ଧ — ଗ୍ରା. ବି. ବୃକ୍ଷବିଶେଷ, ଏହାର ଛେଲି ଔଷଧରେ ଲାଗେ, ଗରୁଡ଼ଉପରେ ଆସୀନ ବିଷ୍ଣୁଙ୍କର ବିଗ୍ରହବିଶେଷ ।

ଗରୁଡ଼ଧ୍ୱଜ — ପୁଂ. .(ବ. ବ୍ରୀ) ବିଷ୍ଣୁ ଶ୍ରୀକୃଷ୍ଣ ।

ଗରୁଡ଼ନଦୀ ବା ଗଡ଼ିଲମ୍ ତାମିଲନାଡ଼ୁ ଅନ୍ତର୍ଗତ ଦକ୍ଷିଣ ଆର୍କଟଜିଲ୍ଲାର ଗୋଟିଏ ନଦୀ ।

ଗରୁଡ଼ପକ୍ଷୀ — ଗ୍ରା. ବି. ଗରୁଡ଼, ବିନତାନନ୍ଦନ, ବିଷ୍ଣୁଙ୍କର ବାହନ, ଆକାଶ ଗରୁଡ଼ ।

ଗରୁଡ଼ପଖୀ — ଗ୍ରା. ବି. ଏକପ୍ରକାର ମଲ୍ଲଙ୍ଗ ।

ଗରୁଡ଼ପୁରାଣ — କ୍ଳୀ. ବି. (କ. ଧା) ଅଷ୍ଟାଦଶ ପୁରାଣ ମଧ୍ୟରେ ସପ୍ତଦଶ ପୁରାଣର ନାମ ଗରୁଡ଼ ପୁରାଣ ।

ଗରୁଡ଼ମନ୍ତ୍ର — ପୁଂ. ବି. ଗରୁଡ଼ ଦେବତାର ମନ୍ତ୍ରବିଶେଷ, (ମନ୍ତ୍ରଯଥା — କ୍ଷିଃ ପଃ ଓଁ ସ୍ୱାହା) ତନ୍ତ୍ରସାର ।

ଗରୁଡ଼ମୁଦ୍ରା — ସ୍ତ୍ରୀ. ବି. ବିଷ୍ଣୁପୂଜାର ଅଙ୍ଗୀଭୂତ ମୁଦ୍ରାବିଶେଷ ।

ଗୁରୁଡ଼ରୁତ — କ୍ଳୀ. ବି. ଛନ୍ଦୋବିଶେଷ ।

ଗରୁଡ଼ବେଗା — ସ୍ତ୍ରୀ ବି. ଲତାବିଶେଷ, ପାତାଳ ଗରୁଡ଼ ।

ଗରୁଡ଼ବାହନ — ପୁଂ. ବି. (ବ. ବ୍ରୀ) ବିଷ୍ଣୁ ।

ଗରୁଡ଼ବ୍ୟୂହ — ପୁଂ. ବି. ଗରୁଡ଼ାକୃତି ସୈନ୍ୟ ରଚନାବିଶେଷ ।

ଗରୁଡ଼ଶିଳା — କୁମାଉନପ୍ରଦେଶସ୍ଥ ହିମାଳୟନିକଟ ବଦରୀନାଥ ତୀର୍ଥର ବୈଷ୍ଣବକ୍ଷେତ୍ରାନ୍ତର୍ଗତ ଗୋ୧୨ଟି କ୍ଷେତ୍ର ମଧ୍ୟରେ ଗୋଟିଏ କ୍ଷେତ୍ର ।

ଗରୁଡ଼ସ୍ତମ୍ଭ — ବି. (କ. ଧା) ଗରୁଡ଼ଖମ୍ବ (ଦେଖ) ।

ଗରୁଡ଼ାଗ୍ରଜ — ପୁଂ. ବି. (୬ତତ୍ପୁ) ବିନତାଙ୍କ ଜ୍ୟେଷ୍ଠପୁତ୍ର, ସୂର୍ଯ୍ୟସାରଥି, ଅରୁଣ ।

ଗରୁଡ଼ାଙ୍କ — ବି. (ବ. ବ୍ରୀ) ବିଷ୍ଣୁ ।

ଗରୁଡ଼ାଙ୍କିତ — କ୍ଳୀ. ବି. ମରକତମଣି, (ବିଂ) (୩ ତତ୍) ଗରୁଡ଼ ଚିହ୍ନ ଯହିଁରେ ଅଙ୍କିତ ହୋଇଥାଏ, ବିଷ୍ଣୁଙ୍କ ରଥର ପତାକା ।

ଗରୁଡ଼ାଚଳ — ଆନ୍ଧ୍ର ପ୍ରଦେଶର ରାଜମହେନ୍ଦ୍ରୀର ଅନ୍ତର୍ଗତ ଗୋଟିଏ ପର୍ବତ । ମଣି ।

ଗରୁଡ଼ାଶ୍ମା — ପୁଂ. ବି. ମରକତମଣି, ନୀଳ-

ଗରୁଡ଼ାସନ — କ୍ଳୀ. ବି. (ବ. ବ୍ରୀ) ବିଷ୍ଣୁଆସନବିଶେଷ ।

ଗରୁଡ଼ିଆ — ପ୍ରା. (ଗଞ୍ଜାମ) ବି. ଶୂଦ୍ରଜାତିବିଶେଷ ।

ଗରୁଡ଼ୋତ୍କୀର୍ଣ୍ଣ - କ୍ଳୀ. ବି. ମରକତମଣି, ନୀଳମଣି । [ମଣି ।

ଗରୁଡ଼ୋଦ୍ଗାର — ବି. ନୀଳମଣି, ମରକତ-

ଗରୁଡ଼ୋପନିଷଦ୍ — ସ୍ତ୍ରୀ. ବି. ଅଥର୍ବବେଦାନ୍ତର୍ଗତ ଗୋଟିଏ ଉପନିଷଦ୍ ।

ଗରୁଣ — ଗ୍ରା. ବି. ଏକପ୍ରକାର ଜଳଚରପକ୍ଷୀ

ଗରୁତ୍ — ପୁଂ. ବି. (ଗୃ + କ. ଉତ୍) ପକ୍ଷ, ଡେଣା, ନିଗରଣ, ଭକ୍ଷଣ, ଜାହାଜ ବା ନୌକାର ପାଲ ।

ଗରୁତ୍ମତୀ — ସ୍ତ୍ରୀ ବିଂ. (ଗରୁତ୍ + ମତ୍ + ଈ ପକ୍ଷବିଶିଷ୍ଟା, ପାଲଥିବା (ନୌକାଦି) ।)

ଗରୁତ୍ମାନ୍—ପୁଂ. ବ. (ଗରୁତ୍ + ମତ୍) ଗରୁଡ଼, ପକ୍ଷୀମାତ୍ର, ହବିର୍ଭକ୍ଷକ, ଅଗ୍ନି ।
ଗରୁଦ୍‌ଯୋଧୀ—ପୁଂ. ବ. ଭରଦ୍ୱାଜନାମକ ପକ୍ଷୀ, ଭରଦ୍ୱାଜ ପକ୍ଷୀ, ଝିଙ୍କପକ୍ଷୀ ।
ଗରୁଳ—ପୁଂ. ବ. ଗରୁଡ଼ (ଦେଖ) ।
ଗରେର—ବହାରବାସୀ ଜାତିବିଶେଷ ।
ଗରେଲ୍—ପ୍ରା. (ସମ୍ବ) ବ. ଝଡ଼, ତୋଫାନ, ଘୂର୍ଣ୍ଣୀବାୟୁ ।
ଗରୋଆ—ଉଃ ପଃ ପ୍ରଦେଶର ଝାନ୍ସି ଜିଲ୍ଲାର ଉଃ ପୂଃ ସ୍ଥିତ ଗୋଟିଏ ତହସିଲ ।
ଗରୋହ—ଜାତିବିଶେଷ ରାଜପୁଆ, ଏମାନେ ମୁସଲମାନ ଧର୍ମାବଲମ୍ବୀ ।
ଗର୍ଗ—ପୁଂ.ବ. (ଗୃ + କ.ଗ) ଯାଦବମାନଙ୍କର କୁଳ-ପୁରୋହିତ ମୁନିବିଶେଷ, ଷଣ୍ଢ, ଜିଆ, କେଞ୍ଚୁଆ, ବଛା, ବାଦ୍ୟର ତାଳବିଶେଷ, ମାଠିଆରେ ପାଣି ପଶିବାର ଧ୍ୱନି, ଜଣେ ଖ୍ୟାତନାମା ଜ୍ୟୋତିର୍ବିଦ୍, ଗୟା କ୍ଷେତ୍ରରେ ଯଜ୍ଞ ନିମିତ୍ତ ସୃଷ୍ଟ ବ୍ରହ୍ମାଙ୍କର ମାନସଜାତ-ପୁତ୍ରବିଶେଷ । [ବିଶେଷ ।
ଗର୍ଗତ୍ରିରାତ୍ର—ପୁଂ.ବ. ତ୍ରିଦିବସ ସାଧ୍ୟ ଯାଗ ।
ଗର୍ଗବଟୁ—ବ. (ଗର୍ଗ + ବଟୁ) ଗର୍ଗବଟୁ, ଦେବତାଙ୍କ ପୂଜା ସମୟରେ ଜଳ ଚନ୍ଦନାଦି ଯୋଗାଇବା ବ୍ରାହ୍ମଣସେବକ (ଗର୍ଗବଟୁ ଦେଖ) ।
ଗର୍ଗର—ପୁଂ.ବ. (ଗର୍ଗ + ର + ଅ) ମତ୍ସ୍ୟବିଶେଷ, ମାଠିଆ, କଳସ, ଗରା, ଜଳଭଉଁରୀ, ଦଧିମନ୍ଥନ ପାତ୍ର, ଏକପ୍ରକାର ଢୋଲ । [ମତ୍ସ୍ୟ ।
ଗର୍ଗରକ—ପୁଂ. ବ. ସମୁଦ୍ରଜାତ ଗର୍ଗର
ଗର୍ଗରୀ-ସ୍ତ୍ରୀ.ବ. (ଗର୍ଗ + ର + କ.ଅ + ଈ) ମନ୍ଥନୀ, ଖୁଆଭାଣ୍ଡ, ଦଧିମନ୍ଥନ ପାତ୍ର ବା ଭାଣ୍ଡ, କଳସୀ, ଗଡ଼ୁ ।
ଗର୍ଗଶିରଃ—ପୁଂ. ବ. ଦୈତ୍ୟବିଶେଷ ।
ଗର୍ଗସଂହିତା—ସ୍ତ୍ରୀ.ବ. କାଳଜ୍ଞାନାର୍ଥ ଗର୍ଗକୃତ ସଂହିତା, ଜ୍ୟୋତିଷଗ୍ରନ୍ଥବିଶେଷ ।
ଗର୍ଗସ୍ରୋତ—କ୍ଲୀ ବ. ତୀର୍ଥବିଶେଷ, ଜ୍ୟୋତିର୍ବିଦ୍ ଗର୍ଗମୁନିଙ୍କ ନାମାନୁସାରେ ଏହାର ନାମକରଣ ହୋଇଅଛି ।
ଗର୍ଗାଟ—ପୁଂ. ବ. ମତ୍ସ୍ୟବିଶେଷ, ଗାଗର ମାଛ ।
ଗର୍ଜ୍ଜ—ପୁଂ.ବ. (ଗର୍ଜ୍ଜ + ଭା.ଅ) ହସ୍ତୀ ଓ ମେଘାଦିର ଗମ୍ଭୀର ଧ୍ୱନି, ଗର୍ଜ୍ଜନ, (ଯା. ବ) ଆବଶ୍ୟକ, ଗରଜ, ଅଭାବ ।
ଗର୍ଜ୍ଜକ—ପୁଂ. ବ. ଗାଗର ମାଛ, ମତ୍ସ୍ୟବିଶେଷ, ବିଂ. (ଗର୍ଜ୍ଜ + କ.ଅକ) ଯେ ଗର୍ଜ୍ଜନ କରେ, ଗର୍ଜ୍ଜନକାରୀ ।
ଗର୍ଜ୍ଜନ୍‌ତେଲ—ଗ୍ରା.ବ. ଉଦ୍ଭିଜ୍ଜ ତୈଳବିଶେଷ, ଏହା ରଙ୍ଗ ବାର୍ଣ୍ଣିଶ୍ ଇତ୍ୟାଦିରେ ମିଶାଯାଏ ।
ଗର୍ଜ୍ଜନ—କ୍ଲୀ.ବ. (ଗର୍ଜ୍ଜ + ଭା.ଅନ) ଶବ୍ଦ, କୁପିତ ଜନ୍ତୁଙ୍କର ନାଦ, ମେଘସିଂହାଦିର ରଡ଼ି, କୋପ, ତର୍ଜ୍ଜନ, ଭର୍ତ୍ସନ, ବୃକ୍ଷବିଶେଷ, ତଜ୍ଜାତ ତୈଳବିଶେଷ ।
ଗର୍ଜ୍ଜମାନ—ବି. ବିଂ. (ଗର୍ଜ୍ଜ + କ,ମାନ) ଯେ ଗର୍ଜ୍ଜନ କରୁଅଛି, ଗର୍ଜ୍ଜନଶୀଳ ।
ଗର୍ଜ୍ଜର—କ୍ଲୀ.ବ. ଗାଜର, ଗୃଞ୍ଜନ, ମୂଳାଜାତୀୟ ଖାଦ୍ୟବିଶେଷ ।
ଗର୍ଜ୍ଜା—ସ୍ତ୍ରୀ. ବ. (ଗର୍ଜ୍ଜ + ଆ) ଗର୍ଜ୍ଜନ, ମେଘାଦିର ନାଦ ।
ଗର୍ଜ୍ଜାଫଳ—କ୍ଲୀ.ବ. ବିକଣ୍ଟକ ବୃକ୍ଷ, ଧ୍ୱନି, ଭର୍ତ୍ସନା, ଉତ୍ତେଜନ ।
ଗର୍ଜ୍ଜି—ପୁଂ.ବ. (ଗର୍ଜ୍ଜ + ଇ) ମେଘଶବ୍ଦ, ଘଡ଼ଘଡ଼ି ।
ଗର୍ଜ୍ଜିତ—କ୍ଲୀ.ବ. (ଗର୍ଜ୍ଜ + ଭା.ତ) ମେଘାଦିର ଶବ୍ଦ, ଗର୍ଜ୍ଜନ, ଯୁଦ୍ଧନାଦ, (ପୁଂ) ମତ୍ତହସ୍ତୀ, (ବିଂ) ଗର୍ଜ୍ଜନ କରୁଥିବା (ବାଦ୍ୟ), କୃତ ଶବ୍ଦ, ଯେ ଶବ୍ଦ କରିଅଛି ।
ଗର୍ଜ୍ଜିବା—ଗ୍ରା. କ୍ରି. ଗର୍ଜ୍ଜନ କରିବା, ଉଚ୍ଚଧ୍ୱନି କରିବା ।
ଗର୍ଜ୍ଜ୍ୟ—କ୍ଲୀ. ବ. (ଗର୍ଜ୍ଜ + ଯ) ଗର୍ଜ୍ଜନୀୟ, ଗର୍ଜ୍ଜିବାର ଉପଯୁକ୍ତ ।
ଗର୍ତ୍ତ—ପୁଂ.ବ. (ଗୃ + କ,ତ) ଭୂମିଛିଦ୍ର, ତ୍ରିଗର୍ତ୍ତଦେଶ, ସ୍ତ୍ରୀ ନିତମ୍ବର ଆବର୍ତ୍ତାକାର ଚକ୍ର, କୁକୁନ୍ଦର, ବିବର, ଗହ୍ୱର, କବର, ରୋଗବିଶେଷ, ଗୃହ, ସଙ୍କୁଚିତ ଗୃହର ସ୍ତମ୍ଭ, ରଥ, ଯେଉଁ ଜଳାଶୟର ଗଭୀରତା ବା ପ୍ରବାହ ଆଠହଜାର ଧନୁରୁ ଅଧିକ ନୁହେ ତାହାକୁ ଗର୍ତ୍ତ କହନ୍ତି, ନରକ ବିଶେଷ ।
ଗର୍ତ୍ତଶ୍ରୟୀ—ପୁଂ. ବ. (ଗର୍ତ୍ତାଶ୍ରୟ + ଇନ୍) ଯେଉଁମାନେ ଗାତରେ ରହନ୍ତି, ଗାତୁଆ ।
ଗର୍ତ୍ତସଦ୍—ବି. ବିଂ. (ଗର୍ତ୍ତ + ସଦ୍ + କ୍ୱିପ୍) ଗର୍ତ୍ତସ୍ଥିତ । (ଦେଖ) ।
ଗର୍ତ୍ତା—ବ. (ଗୃ + କ, ତନ୍ + ଆ) ଗର୍ତ୍ତ
ଗର୍ତ୍ତାଶ୍ରୟ—ବି. ବିଂ. (ବ-ବ୍ରୀ) ଯେଉଁମାନେ ଗାତରେ ବାସ କରନ୍ତି, ଗାତୁଆ (ବ) ଯେଉଁ ଜୀବ ଗାତରେ ରହେ, ଗାତୁଆ ପ୍ରାଣୀ । [ଦେଖ ।
ଗର୍ତ୍ତି—ବ. (ଗୃ + କ, ତ + ଇ) ଗର୍ତ୍ତ
ଗର୍ତ୍ତିକା—ସ୍ତ୍ରୀ. ବ. (ଗର୍ତ୍ତ + ଇକ + ଆ) ତନ୍ତୁଶାଳା, ତନ୍ତଘର, ତନ୍ତର ତନ୍ତଶାଳା ।
ଗର୍ତ୍ତ୍ୟ—ବି. ବିଂ. (ଗର୍ତ୍ତ + ଯ) ଗର୍ତ୍ତବିଶିଷ୍ଟ ଦେଶ । [ଧକ୍କା ।
ଗର୍ଦ୍ଦନ୍—ଯା. ବ. ମୁଣ୍ଡ, ବେକ, ଗଳା,
ଗର୍ଦ୍ଦନତୋଡ଼—ଯା. ବିଂ. ବେକଫଟା, ଚପିବାରେ ବେକ ଫାଟିଯାଇଥିବା, (ବ) କୁସ୍ତିର ଏକପେଞ୍ଚ, ଯହିଁରେ ପ୍ରତିମଲ୍ଲର ବେକକୁ ଦୁଇହାତରେ ଚପିଦେଇ ତାକୁ ତଳେ ପକାଇଦିଏ ।
ଗର୍ଦ୍ଦନା—ଯା.ବ. ମୁଣ୍ଡ, ବେକ, ଗଳା, ଧକ୍କା ।
ଗର୍ଦ୍ଦନିଆଁ—ଗ୍ରା. ବ. ଗଳାଧକ୍କା, ହାବୁକା, ଅର୍ଦ୍ଧଚନ୍ଦ୍ର ।
ଗର୍ଦ୍ଦମା—ଗ୍ରା. ବ. ଗର୍ଦ୍ଦନିଆ, ଧକ୍କା, କୁରୁଡାରବେକପାଖ, ଘୋଡ଼ାର ବେକପାଖେ ଗୋଟିଏ ମୁଣ୍ଡ ବନ୍ଧାଯାଇ ବାକି ଅଂଶ ଘୋଡ଼ାର ଦେହରେ ପକାଯିବା ଲୁଗା, କୋଠାର କାନ୍ଥର ବା ଖୁଣ୍ଟର କାନୁସ, ଜଣେ ପହିଲମାନ ଅନ୍ୟ ପହିଲମାନର ବେକ ଗ୍ରୀବାପାଖେ ଦୁଇ ହାତଦ୍ୱାରା ଯେଉଁ ଗ୍ରିପ ପକାଏ ।
ଗର୍ଦ୍ଦଭ—ପୁଂ.ବ. (ଗର୍ଦ୍ଦ + କ,ଅଭ) ପଶୁବିଶେଷ, ଗଧ, ଖର, ମୂର୍ଖ (ସ୍ତ୍ରୀ) ଗର୍ଦ୍ଦଭୀ, (କ୍ଲୀ.ବ) ଶ୍ୱେତ କୁମୁଦ, ଧଳାକଇଁ, ବଡ଼ଙ୍ଗ, ଭ୍ରମରଭେଦ, ଗୋବରପୋକ ।

ଗର୍ଦ୍ଦଭକ—ପୁଂ. ବ. କୀଟବିଶେଷ, ଚର୍ମ ରୋଗବିଶେଷ, ଏହି କୀଟ ଶ୍ଳେଷ୍ମାର ପ୍ରକୋପକାରକ ।
ଗର୍ଦ୍ଦଭଗନ୍ଧ—ପୁଂ. ବ. ଜାଲ ଗର୍ଦ୍ଦଭ-ନାମକ ରୋଗବିଶେଷ, ଚର୍ମରୋଗ ।
ଗର୍ଦ୍ଦଭନାଦୀ—ପୁଂ. ବ୍ୟ. (ଗର୍ଦ୍ଦଭ+ନଦ୍+କ,ଇନ୍)ଯେ ଗଧପରି ନାଦକରେ ।
ଗର୍ଦ୍ଦଭଯାଗ—ପୁଂ. ବ. (୬ତତ୍) ଯାଗ-ବିଶେଷ । [ରାଜା ।
ଗର୍ଦ୍ଦଭରୂପ—ପୁଂ. ବ. ବିକ୍ରମାଦିତ୍ୟ
ଗର୍ଦ୍ଦଭଶାକ—ପୁଂ. ବ. ବ୍ରହ୍ମଯଷ୍ଟିକା, ବ୍ରାହ୍ମଣଯଷ୍ଟି ।
ଗର୍ଦ୍ଦଭଶାଖୀ-ସ୍ତ୍ରୀ.ବ.ଭାର୍ଗୀ, ବ୍ରାହ୍ମଣଯଷ୍ଟି ।
ଗର୍ଦ୍ଦଭା—ସ୍ତ୍ରୀ. ବ. ଶ୍ୱେତକଣ୍ଟକାରୀ ।
ଗର୍ଦ୍ଦଭାକ୍ଷ—ପୁଂ. ବ୍ୟ. ବ.ବ୍ରୀ. ଗଧ ଆଖି ପରି ଆଖି ଯାହାର, ( ପୁଂ. ବ ) ବଳି ରାଜାର ପୁତ୍ର ।
ଗର୍ଦ୍ଦଭାଣ୍ଡ—ପୁଂ. ବ. (ଗର୍ଦ୍ଦଭ+ଅଣ୍ଡ) ପ୍ଲକ୍ଷବୃକ୍ଷ,ଜରୀଗଛ,(ଏକପ୍ରକାରଅଶ୍ୱତ୍ଥ) ।
ଗର୍ଦ୍ଦଭାଣ୍ଡକ—ପୁଂ.ବ. (ଗର୍ଦ୍ଦଭାଣ୍ଡ+କ) ପ୍ଲକ୍ଷବୃକ୍ଷ, ଜରୀ ।
ଗର୍ଦ୍ଦଭାହ୍ୱୟ—ପୁଂ.ବ. (ଗର୍ଦ୍ଦଭ+ଆ+ହ୍ୱେ+ଅ) କୁମୁଦବିଶେଷ, ଧଳା ।
ଗର୍ଦ୍ଦଭି—ପୁଂ. ବ. ବିଶ୍ୱାମିତ୍ରଙ୍କର ପୁତ୍ର-ଭେଦ ।
ଗର୍ଦ୍ଦଭିକ—ସ୍ତ୍ରୀ.ବ. କ୍ଷୁଦ୍ର ରୋଗବିଶେଷ, ଚର୍ମରୋଗ ।
ଗର୍ଦ୍ଦଭୀ—ସ୍ତ୍ରୀ. ବ. ( ଗର୍ଦ୍ଦ+ଅଭ+ଈ) କୀଟବିଶେଷ, ଗୋବରପୋକ,ଗର୍ଦ୍ଦଭିକା ରୋଗ, ମାଈଗଧ, ଅପରାଜିତା ଲତା, ଶ୍ୱେତକଣ୍ଟକାରୀ ।
ଗର୍ଦ୍ଧା—ଯା. ବ. ଧୂଳି, ମଇଳା, ମଳ, ଦ୍ରବ୍ୟର ଅକାମିକା ଅଂଶ, ଗଞ୍ଜେଇ କଲିରୁ ଝଡ଼ିବା କ୍ଷୁଦ୍ର କ୍ଷୁଦ୍ର ଅଂଶ ।
ଗର୍ଦ୍ଧ—ପୁଂ.ବ. (ଗୃଧ୍+ଘ,ଅ) ଲୋଭ, ଆକାଙ୍କ୍ଷା, ଲାଳସା, ଅତ୍ୟନ୍ତଲୋଭ ଇଚ୍ଛା, ସ୍ପୃହା, ଗନ୍ଧଭାଣ୍ଡବୃକ୍ଷ, ପ୍ଲକ୍ଷ ।
ଗର୍ଦ୍ଧନ—ତ୍ରି. ବ୍ୟ. ( ଗୃଧ୍+କ,ଅନ ) ଲୁବ୍ଧ,ଲୋଭୀ,ଲାଳାୟିତ,ଇଚ୍ଛୁକ,ପେଟୁ, କୃପଣ, (ସ୍ତ୍ରୀ) ଗର୍ଦ୍ଧନା ।
ଗର୍ଦ୍ଧନା—ବ. (ଗୃଧ୍+ଘ, ଅନ+ଆ) ପେଟୁପଣ, ( ସ୍ତ୍ରୀ. ବ୍ୟ) ଗର୍ଦ୍ଧନର ସ୍ତ୍ରୀ-ଲିଙ୍ଗ । [ଭେଦ ।
ଗର୍ଦ୍ଧଭି—ପୁଂ. ବ. ବିଶ୍ୱାମିତ୍ରଙ୍କର ପୁତ୍ର
ଗର୍ଦ୍ଧିତ—ତ୍ରି.ବ୍ୟ. (ଗୃଧ୍+କ,ତ)ଲୁବ୍ଧ, ଲୋଭୀ, ଯେ ଲୋଭକରେ, ଇଚ୍ଛୁକ, ଲାଳାୟିତ ।
ଗର୍ଦ୍ଧୀ—ପୁଂ. ବ୍ୟ. (ଗର୍ଦ୍ଧ+କ,ଇନ୍) ଅତ୍ୟନ୍ତଲୋଭୀ, ଲାଳାୟିତ, କୃପଣ ।
ଗର୍ବ—ପୁଂ. ବ. (ଗର୍ବ+ଘ,ଅ) ସ୍ପର୍ଦ୍ଧା, ଅନ୍ୟପ୍ରତି ଅବଜ୍ଞା,ଦେମାକ୍,ଅହଂକାର, ବଡ଼ିମା, ଆତ୍ମଶ୍ଳାଘା, ଅବନସ୍ଥ, ଗର୍ଭା-ଶୟସ୍ଥ ଶୁକ୍ରଶୋଣିତମୟ ପିଣ୍ଡ ।
ଗର୍ବକାରୀ—ପୁଂ. ବ୍ୟ. (ଗର୍ବ+କୃ+ଇନ) ଗର୍ବିତ,ଅହଂକାରୀ ।
ଗର୍ବଖର୍ବକରିବା—ଗ୍ରା. କ୍ରି. ଅହଂକାରୀ ବ୍ୟକ୍ତିର ଅହଂକାରକୁ ଚୂର୍ଣ୍ଣ କରିବା ।
ଗର୍ବର—ବ୍ୟ. ଗର୍ବକାରୀ, ଗର୍ବିତ ।
ଗର୍ବାଟ—ବ.(ଗର୍ବ+ଅଟ୍+କ,ଅ)ଦ୍ୱାରୀ, ଦ୍ୱାରପାଳ,(ବ୍ୟ)ଯେ ଗର୍ବଭରେ ଚାଲେ ।
ଗର୍ବିତ—ପୁଂ. ବ୍ୟ. ( ଗର୍ବ+ଇତ ) ଅହଂକୃତ, ଗର୍ବଯୁକ୍ତ, ଅହଂକାରୀ,(ସ୍ତ୍ରୀ) ଗର୍ବିତା ।
ଗର୍ବିତା—ବ. (ଗର୍ବିନ+ଘ,ତା)ଗର୍ବ ।
ଗର୍ବୀ—ପୁଂ.ବ.(ଗର୍ବ+ଇନ୍)ଗର୍ବଯୁକ୍ତ, ଅହଂକୃତ, ଦେମାକୀ, ଅହଂକାରୀ, ଦର୍ପିତ, (ସ୍ତ୍ରୀ) ଗର୍ବିଣୀ ।
ଗର୍ବୋଜ୍ଜ୍ୱଳ—ପୁଂ.ବ୍ୟ. (୬ତତ୍) ଅହଂ-କାରରେ ଦୀପ୍ୟମାନ, ଅଭିମାନ ପ୍ରକାଶକ ।
ଗର୍ବୋଦ୍ଧତ—ପୁଂ.ବ୍ୟ. (୬ତତ୍) ଅତ୍ୟନ୍ତ ଗର୍ବିତ, ଅହଂକାରରେ ଉନ୍ମତ୍ତ ।
ଗର୍ଭ—ପୁଂ. ବ. ( ଗୃ+ମ,ଭ) ଗର୍ଭା-ଶୟସ୍ଥ ଶୁକ୍ରଶୋଣିତମୟ ପିଣ୍ଡ, ଶିଶୁ, ଭ୍ରୂଣ, ଅଗ୍ନି, (ଗୃ+ଅଧ୍,ଭ) ଜରାୟୁ, କୁକ୍ଷି, ତଳପେଟ, ଅଭ୍ୟନ୍ତର, ନଦୀଗର୍ଭ, ଗର୍ଭଧାରଣକାଳ,ଗର୍ଭଧାରଣ,ଗର୍ଭସ୍ଥଶିଶୁ, ଜଠରାଗ୍ନି, ମର୍ମସ୍ଥଳ, ଗମ୍ଭୀର ଘର, ଅନ୍ତଃପୁରଶାଳ,ଗଣ୍ଠି, ପଦ୍ମଫୁଲର ବୀଜା-ଧାର, ସଂଯୋଗସୂତ୍ର, ଖାଦ୍ୟ, ଅନ୍ନ, ପଣସକଠା, ନାଟକର ସନ୍ଧିବିଶେଷ, ପକ୍ଷିଶାବକ ।
ଗର୍ଭକ—କ୍ଲୀ. ବ. (ଗର୍ଭ+କ) ରଜନୀ-ଦ୍ୱୟ, ଦୁଇରାତି, ( ପୁଂ. ବ. ) କେଶ-ଭୂଷଣପୁଷ୍ପ, କେଶମଧ୍ୟସ୍ଥ ମାଳା, ପୁଷ୍ପ-ଗୁଚ୍ଛ, ଫୁଲତୋଡ଼ା,(ବ୍ୟ. ବ.ବ୍ରୀ)ବହୁ-ବ୍ରୀହି ସମାସରେ ଅନ୍ୟ ଶବ୍ଦପରେ ଗର୍ଭଶବ୍ଦଯୁକ୍ତ ହୋଇ ତହିଁରେ 'କ' ଯୋଗହୋଇ ନିଷ୍ପନ୍ନ ରୂପ, ଯଥାଃ— ମୃତଗର୍ଭକ । (ଓ ବୃକ୍ଷ ।
ଗର୍ଭକଣ୍ଟକ—ବ. (ବ.ବ୍ରୀ) ପଣସ ଫଳ
ଗର୍ଭକର—ପୁଂ. ବ. (ଗର୍ଭ+କୃ+ଅ) ପୁତ୍ରଜୀବ ବୃକ୍ଷ,(ବ୍ୟ) ଗର୍ଭକାରକ,ଯାହା ଗର୍ଭ ଜନ୍ମାଏ ।
ଗର୍ଭକରଣ—ବ.ଗର୍ଭକାରକ ଦ୍ରବ୍ୟମାତ୍ର ।
ଗର୍ଭକାର—ପୁଂ.ବ୍ୟ. (ଗର୍ଭ+କୃ+କ, ଅ) ଗର୍ଭକାରକ (ପଡପ୍ରଭୃତି) ।
ଗର୍ଭକାଳ-ପୁଂ.ବ. (୬ତତ୍)ଗର୍ଭଧାରଣର ଉପଯୁକ୍ତ ସମୟ, (ଋତୁସ୍ନାନ ପରବର୍ତ୍ତୀ ଗର୍ଭାଧାନର ଉପଯୁକ୍ତ ସମୟ) ।
ଗର୍ଭକେଶର—( କ.ଧା ) ଫୁଲର ମଧ୍ୟସ୍ଥ ବଡ଼ କେଶର—ଯହିଁରେ ପୁଂ କେଶର ପଡ଼ିଲେ ଫଳ ହୁଏ, ସ୍ତ୍ରୀପୁଷ୍ପଯୋନ ।
ଗର୍ଭକୋଷ—ପୁଂ.ବ.(୬ତତ୍ ବା କ.ଧା) ଗର୍ଭାଶୟ, ଜରାୟୁ ।
ଗର୍ଭକ୍ଲେଶ—ପୁଂ. ବ.(କ.ଧା)ଗର୍ଭଜନିତ କଷ୍ଟ, ପ୍ରସବ ବେଦନା ।
ଗର୍ଭକ୍ଷୟ—ପୁଂ.ବ. (୬ତତ୍) ଗର୍ଭନାଶ, ଗର୍ଭସ୍ରାବ ।
ଗର୍ଭଗୃହ—କ୍ଲୀ.ବ. ( କ.ଧା ) ମଝିଘର, ଘରର ମଧ୍ୟଭାଗ, ଅନ୍ତଃପୁରଶାଳ, ଗମ୍ଭୀର ଘର, ପ୍ରସବଗୃହ ।
ଗର୍ଭଗ୍ରହଣ—କ୍ଲୀ. ବ.( ୬ତତ୍ ) ଗର୍ଭ-ଧାରଣ, ପେଟରେ ହେବା ।

**ଗର୍ଭାଘାତ**—ବି. (୬ତତ୍) ଅସମୟରେ ଗର୍ଭସ୍ଥ ଭ୍ରୂଣର ହତ୍ୟା ।

**ଗର୍ଭଘାତକ**—ପୁଂ. ବିଂ. (୬ତତ୍) ଯେ ଗର୍ଭସ୍ଥ ଭ୍ରୂଣକୁ ହତ୍ୟା କରେ, (ସ୍ତ୍ରୀ) ଗର୍ଭଘାତକା ।

**ଗର୍ଭଘାତନ**—କ୍ଳୀ.ବି.(୬ତତ୍)ଗର୍ଭାଘାତ, ଅସମୟରେ ଗର୍ଭସ୍ଥ ଭ୍ରୂଣହତ୍ୟା ।

**ଗର୍ଭଘାତୀ**—ପୁଂ. ବିଂ. (ଗର୍ଭ+ଘାତିନ୍) ଗର୍ଭବିନାଶକ, ଯେ ଗର୍ଭ ବିନାଶ କରେ ।

**ଗର୍ଭଘାତିନୀ**—ସ୍ତ୍ରୀ. ବି. ଲାଙ୍ଗଲିକାବୃକ୍ଷ, ଲହଲଙ୍ଗୁଳିଆଗଛ ।

**ଗର୍ଭଚଳନ**—ବି.(ଗର୍ଭ+ଚଳନ)ଗର୍ଭର ପଞ୍ଚମ ମାସପରେ ପେଟରେ ଚୁଆ ବୁଲିବା । [ ଚକ୍ରସ୍ଥା ।

**ଗର୍ଭଚକ୍ରସ୍ଥା**—ବି. ( କ.ଧା ) ଗର୍ଭିଣୀର

**ଗର୍ଭଚ୍ୟୁତ**—ବିଂ.(୫ତତ୍)ଗର୍ଭରୁ ପତିତ, ଜାତ, ଅସମୟରେ ଗର୍ଭରୁ ନିଃସୃତ ।

**ଗର୍ଭଚ୍ୟୁତି**—ସ୍ତ୍ରୀ. ବି. ( ୫ତତ୍ ) ଗର୍ଭସ୍ରାବ,ଗର୍ଭକ୍ଷରଣ,ବେଇବା,ପ୍ରସବ,ଜନ୍ମ ।

**ଗର୍ଭଜ**—ତ୍ରି. ବିଂ. (ଗର୍ଭ+ଜନ୍+ଡ, ଅ) ଗର୍ଭରୁ ଜାତ, (ସ୍ତ୍ରୀ) ଗର୍ଭଜା ।

**ଗର୍ଭଜାତ**—ବିଂ.(୫ତତ୍) ଗର୍ଭରୁ ଜାତ, (ସ୍ତ୍ରୀ) ଗର୍ଭଜାତା ।

**ଗର୍ଭଣା**—ଗ୍ରା. ବି. ଗର୍ଭଣା ସଂକ୍ରାନ୍ତି, ( କାର୍ତ୍ତିକ ) ତୁଳ ମାସର ସଂକ୍ରାନ୍ତି, ପୁଷ୍ଟ ହୋଇଥିବା ଧାନଗଛ, ଛୋଟ ବନ୍ୟ ଓ ଗ୍ରାମବୃକ୍ଷବିଶେଷ ।

**ଗର୍ଭଣାକାଠି**—ଗ୍ରା. ବି. ଗର୍ଭଣା ସଂକ୍ରାନ୍ତି ଦିନ ପୂଜା କରାଯାଇ ଧାନବିଲରେ ପୋତାଯିବା ଗର୍ଭଣାଗଛର ଡାଳ ।

**ଗର୍ଭଣାସଂକ୍ରାନ୍ତି**—ଗ୍ରା. ବି. ( କାର୍ତ୍ତିକ ) ତୁଳମାସର ସଂକ୍ରାନ୍ତି ।

**ଗର୍ଭଣୀ**—ଗ୍ରା.ବିଂ. ସ୍ତ୍ରୀ ( ଗର୍ଭିଣୀଦେଖ ) ।

**ଗର୍ଭଣ୍ଡ**—ପୁଂ. ବି. ନାଭିଗୁଡ଼ିକ, ଲମ୍ବ-ନାଡ଼, ନାଭିନାଡ଼ ।

**ଗର୍ଭତନ୍ତୁ**—କ୍ଳୀ. ବି. ଗର୍ଭକେଶର, ଉପରସ୍ଥ ସୂକ୍ଷ୍ମବତ୍ତ ଅଂଶ ।

**ଗର୍ଭତ୍ୱ**—କ୍ଳୀ.ବି. ଗର୍ଭର ଭାବ ଓ ଧର୍ମ, ମେଘ ମଧ୍ୟରେ ଜଳର ଗର୍ଭ-ଭାବପ୍ରାପ୍ତି ।

**ଗର୍ଭଦ**—ପୁଂ. ବି. ( ଗର୍ଭ+ଦା+ଅ ) ପୁତ୍ରଜୀବ ବୃକ୍ଷ,ଜିୟାପୁତା,ଗର୍ଭୋତ୍ପାଦକ ଔଷଧବିଶେଷ, (ବି) ଯେ ଗର୍ଭ ସମ୍ପାଦନ କରେ ।

**ଗର୍ଭଦା**—ସ୍ତ୍ରୀ.ବି.(ଗର୍ଭ+ଦା+ଅ+ଆ) ଶ୍ୱେତ କଣ୍ଟକାରୀ ।

**ଗର୍ଭଦାତ୍ରୀ**—ସ୍ତ୍ରୀ. ବି. ( ଗର୍ଭ+ଦା+ତୃ+ଈ)କ୍ଷୁପବିଶେଷ,ଗର୍ଭଦା,ପୁତ୍ରଦାତ୍ରୀ ।

**ଗର୍ଭଦାସ**—ପୁଂ. ବି. ରକ୍ଷିତା ଦାସୀଠାରୁ ଜାତପୁତ୍ର, (ସ୍ତ୍ରୀ) ଗର୍ଭଦାସୀ ।

**ଗର୍ଭଦିବସ**—ପୁଂ. ବି. ଗର୍ଭ ଧାରଣର ଉପଯୁକ୍ତ ଦିନ ।

**ଗର୍ଭଦୋହଦ**—କ୍ଳୀ.ବି.(୬ତତ୍)ଗର୍ଭିଣୀର ଅଭିଲଷଣୀୟ ଦ୍ରବ୍ୟବିଶେଷ, ଗର୍ଭିଣୀର ଅଭିଲାଷ ବା ଖାଇମନକରିବା, ମନସଧ ।

**ଗର୍ଭଦ୍ରୁହ୍**—ସ୍ତ୍ରୀ. ବି. (ଗର୍ଭ+ଦ୍ରୁହ୍+କ୍ୱିପ୍ ) ଗର୍ଭପାତକାରିଣୀ, (ସ୍ତ୍ରୀ) ଯେ ନିଜର ଗର୍ଭ ନଷ୍ଟକରେ ।

**ଗର୍ଭଧ**—ତ୍ରି. ବିଂ. ଗର୍ଭଧାରଣକାରକ ରେତଃ ପ୍ରଭୃତି ।

**ଗର୍ଭାଧରା**—ସ୍ତ୍ରୀ ବିଂ. (ଗର୍ଭ+ଧୃ+ଅ +ଆ) ଗର୍ଭଧାରିଣୀ (ସ୍ତ୍ରୀ), ପେଟରେ ହୋଇଥିବା (ସ୍ତ୍ରୀ) ।

**ଗର୍ଭଧାନ**—କ୍ଳୀ. ବି. ପୁତ୍ରୋତ୍ପାଦନାର୍ଥ ନାରୀଗର୍ଭରେ ଗର୍ଭଧାରଣ କ୍ରିୟା-ବିଶେଷ, ଗର୍ଭାଧାନ କ୍ରିୟା ।

**ଗର୍ଭଧାରଣ**—କ୍ଳୀ. ବି. ଗର୍ଭଧାରଣ ନିମିତ୍ତ ଶୁକ୍ର ଶୋଣିତାନୁବନ୍ଧରୂପ ଗର୍ଭଗ୍ରହଣ, ପେଟରେ ହେବା, ଅନ୍ତଃସତ୍ତ୍ୱା ହେବା ।

**ଗର୍ଭଧାରିଣୀ**—ସ୍ତ୍ରୀ. ବି. ( ଗର୍ଭ+ଧୃ+ ଣ,ଇନ୍+ଈ ) ଯେ ଗର୍ଭରେ ଧାରଣ କରେ, ଜନନୀ, ମାତା ।

**ଗର୍ଭଧାସୀ**—ଗ୍ରା.ସ୍ତ୍ରୀ. ବି. ଜନନୀ, ମାତା ।

**ଗର୍ଭଧି**—ସ୍ତ୍ରୀ. ବି. ( ଗର୍ଭ+ଧା+ଇ ) ଗର୍ଭଧାରିଣୀ, ଜନନୀ, ମାତା ।

**ଗର୍ଭଧ୍ୱଂସ**—ବି. (୬ତତ୍) ଗର୍ଭସ୍ରାବ, ଗର୍ଭବିଚ୍ୟୁତି ।

**ଗର୍ଭନାଡ଼ୀ**—ସ୍ତ୍ରୀ. ବି. ( ୬ତତ୍ ) ଗର୍ଭ-ଧାରଣର ଉପଯୁକ୍ତ ନାଡ଼ୀବିଶେଷ, ଗର୍ଭସ୍ଥ ଫୁଲନାଡ଼, ଗର୍ଭସ୍ଥ ଶିଶୁର ନାଭିଠାରୁ ଯେଉଁ ନାଡ଼ ଫୁଲସହିତ ସଂଯୁକ୍ତ ଥାଏ ।

**ଗର୍ଭନାଶ**—ବି. (୬ତତ୍ ) ଗର୍ଭବିଚ୍ୟୁତି ।

**ଗର୍ଭନିଃସୃତ**—ତ୍ରି.ବିଂ. (୫ତତ୍ ) ଗର୍ଭରୁ ନିର୍ଗତ, ଜାତ ।

**ଗର୍ଭନିପାତ**—ବି. (୬ତତ୍) ଗର୍ଭସ୍ରାବ ।

**ଗର୍ଭନୁଦ୍**—ପୁଂ.ବି.ଲାଙ୍ଗଲିକା,ଲହଲଙ୍ଗୁଳିଆ ।

**ଗର୍ଭପରିସ୍ରବ**—ପୁଂ. ବି. (ଗର୍ଭ+ପରିସ୍ରବ)ସନ୍ତାନ ଜନ୍ମସମୟରେ ତାହା ସହିତ ମାତୃ ଗର୍ଭରୁ ବାହାରିବା ନାଡ଼ୀ-ପୁଟୁଳିକା, ସାଧାରଣ ଏହାକୁ ଫୁଲ କହନ୍ତି ।

**ଗର୍ଭପାକୀ**—ପୁଂ.ବି. ( ଗର୍ଭ+ପାକ+ ଇନ୍) ଷାଠିଆ ଧାନ, ସାରଆ ଧାନ ।

**ଗର୍ଭପାତ**—ପୁଂ.ବି. (୬ତତ୍) ପଞ୍ଚମ ଓ ଷଷ୍ଠମାସର ଗର୍ଭସ୍ଥ ଭ୍ରୂଣର ପତନ, ଗର୍ଭସ୍ରାବ ।

**ଗର୍ଭପାତକ**—ପୁଂ. ବି. ( ଗର୍ଭ+ପତ୍ +ଣିଚ+ଅକ) ନାଲି ସଜନା, ରକ୍ତ-ଶୋଭାଞ୍ଜନ, (ବିଂ) ଯେଉଁ ବ୍ୟକ୍ତି ଗର୍ଭ-ସ୍ରାବ କରାଏ, ଯେଉଁ ଔଷଧ ସେବନ କଲେ ଗର୍ଭପାତ ଘଟେ, ଭ୍ରୂଣହତ୍ୟା-କାରୀ ।

**ଗର୍ଭପାତନ**—ପୁଂ.ବି. (୬ତତ୍ ) ସୀଠା କରଞ୍ଜ, ଔଷଧାଦି ପ୍ରୟୋଗରେ ଗର୍ଭ-ପାତ ।

**ଗର୍ଭପାତିନୀ**—ସ୍ତ୍ରୀ.ବି.(ଗର୍ଭପାତ+ଇନ୍+ ଈ ) ବିଷଲାଙ୍ଗଳୀ, ଲହଁ ଲାଙ୍ଗଳିଆ, ବିଶଲ୍ୟା ବୃକ୍ଷ ।

**ଗର୍ଭପୀଡ଼ା**—ବି. (କ.ଧା ) ଗର୍ଭବେଦନା (ଦେଖ) ।

**ଗର୍ଭପୋଷଣ**—କ୍ଳୀ ବି. ଯତ୍ନପୂର୍ବକ ଗର୍ଭ-ପାଳନ, ଗର୍ଭର ପୁଷ୍ଟିସମ୍ପାଦନ କ୍ରିୟା-ବିଶେଷ, ଗର୍ଭଧାରଣ ।

**ଗର୍ଭପ୍ରସବ**—ପୁଂ. ବି. ଗର୍ଭସ୍ଥ ଶିଶୁର ଭୂମିଷ୍ଠ ହେବାପାଇଁ ବହିର୍ଗମନ ରୂପ କ୍ରିୟାବିଶେଷ ।

**ଗର୍ଭଭର୍ତ୍ତା**—ଗର୍ଭସ୍ଥ ଶିଶୁର ଭରଣପୋଷଣ, ବି. ଶିଶୁର ଭରଣପୋଷଣ ।

**ଗର୍ଭଭବନ**—କ୍ଳୀ. ବି. ମଧ୍ୟବର୍ତ୍ତୀ ଗୃହ, ଗର୍ଭାଗାର, ସୂତିକାଗୃହ ।

**ଗର୍ଭଜ୍ୱର**—ପୁଂ.ବି. (କ.ଧା) ଗର୍ଭରୂପ-ଜ୍ୱର, ଗର୍ଭିଣୀର ଅନୁଭୂତ କ୍ଳାନ୍ତି ।

**ଗର୍ଭମଣ୍ଡପ**—ପୁଂ. ବି. ( କ. ଧା )ଗୃହ ମଧ୍ୟସ୍ଥ ମଣ୍ଡପ, ଗର୍ଭଗୃହ, ସୂତିକା ଗୃହ, ଗମ୍ଭୀରଘର ।

**ଗର୍ଭମାସ**—ପୁଂ.ବି.(ଷତତ୍) ଗର୍ଭାରମ୍ଭକ ମାସ, ଗର୍ଭାଧାନଠାରୁ ଗଣନାହେବା ମାସକ୍ରମ ।

**ଗର୍ଭମୋଚନ**—କ୍ଳୀ.ବି. (ଷତତ୍) ପ୍ରସବ-କରଣ, ପେଟରୁ ପିଲା ଖାଲାସହେବା, ପିଲା ଜାତ ହେବା ।

**ଗର୍ଭଯନ୍ତ୍ରଣା(ଯାତନା)**—ସ୍ତ୍ରୀ.ବି.(ଷତତ୍) ଗର୍ଭାବସ୍ଥାରେ ଗର୍ଭିଣୀର କ୍ଳେଶଭୋଗ, ପ୍ରସବବ୍ୟଥା, ଗର୍ଭସ୍ଥଶିଶୁର ଦାରୁଣ କଷ୍ଟ ।

**ଗର୍ଭଯୋଷା**—ସ୍ତ୍ରୀ.ବି. (କ.ଧା) ଗର୍ଭିଣୀ-ସ୍ତ୍ରୀ. (ଲକ୍ଷଣାର୍ଥ) ଦୁଇ କୂଳ ଖାଉଥିବା ଗଙ୍ଗାନଦୀ । [ ପାଳନ ।

**ଗର୍ଭରକ୍ଷଣ**—କ୍ଳୀ. ବି. ( ଷତତ୍ ) ଗର୍ଭ-

**ଗର୍ଭରସ**—ବିଂ. ବି. ଯାହାର ପେଟରେ ବା ଅନ୍ତରେ ରସ ଅଛି, ଗର୍ଭୋତ୍ପତ୍ତି ନିମିତ୍ତ ରସ । [ ବିଶେଷ ।

**ଗର୍ଭଗ୍ର**—ଗ୍ରା. ବି. ପ୍ରାଚୀନ ଜଳଯାନ-

**ଗର୍ଭରୂପ**—ପୁଂ.ବିଂ. ଶିଶୁସୁଲଭ, ବାଲ୍ୟ, (ବି) ଶିଶୁ, (ସ୍ତ୍ରୀ) ଗର୍ଭରୂପା ।

**ଗର୍ଭରୂପକ**—ବି. ଶିଶୁ ।

**ଗର୍ଭଲକ୍ଷଣ**—କ୍ଳୀ. ବି. (ଷତତ୍) ଗର୍ଭ-ସୂଚକଚହ୍ନ—ପେଟ ଉଚ୍ଚହେବା, ମୁଖର ପାଣ୍ଡୁରତା, ସ୍ତନାଗ୍ରଭାଗର କୃଷ୍ଣତ୍ୱ, ଅରୁଚି ଇତ୍ୟାଦି ।

**ଗର୍ଭଲମ୍ଭନ**—କ୍ଳୀ.ବି.ଗର୍ଭରକ୍ଷାର୍ଥ କ୍ରିୟା, ଗର୍ଭାଧାନ, ପେଟରେ ହେବା ।

**ଗର୍ଭବତୀ**—ସ୍ତ୍ରୀ.ବିଂ. (ଗର୍ଭ + ବତ୍ + ଈ) ଅନ୍ତଃସତ୍ତ୍ୱା, ଗର୍ଭିଣୀ ।

**ଗର୍ଭବସତି**—ସ୍ତ୍ରୀ. ବି. କୁକ୍ଷିରୂପ ବାସ-ସ୍ଥାନ, ଗର୍ଭ, କୁକ୍ଷି, ଜରାୟୁ ।

**ଗର୍ଭବାସ**—ପୁଂ. ବି.କୁକ୍ଷିରୂପ ବାସସ୍ଥାନ, ଗର୍ଭରେ ଅବସ୍ଥିତ, (ଗ୍ରା.ବି) ପେଟରେ ହେବା ।

**ଗର୍ଭବିଚ୍ୟୁତି**—ସ୍ତ୍ରୀ.ବି. ( କ.ଧା ) ଗର୍ଭରୁ କ୍ଷରଣ, ଗର୍ଭସ୍ରାବ, ଭ୍ରୂଣ ଜୀବ ନ ପାଉଣୁ ଭାଙ୍ଗିଯିବା ।

**ଗର୍ଭବିନୋଦରସ**—ସୂତିକା ରୋଗର ବୈଦ୍ୟକୋକ୍ତ ଔଷଧ ବିଶେଷ ।

**ଗର୍ଭବିପତ୍ତି**—ସ୍ତ୍ରୀ. ବି. ( କ. ଧା ) ରୋଗ ସ୍ରାବ ପାତାଦି ଜନିତ ଗର୍ଭର ଆପଦ ଓ ବ୍ୟାଘାତ ।

**ଗର୍ଭବେଦନା**—ସ୍ତ୍ରୀ.ବି.(କ.ଧା)ସନ୍ତାନୋ-ତ୍ପତ୍ତିଜନିତ ବ୍ୟଥା, ପ୍ରସବ କାଳରେ ଜନନୀର ଯନ୍ତ୍ରଣା ।

**ଗର୍ଭବେଶ୍ମ**—କ୍ଳୀ. ବି. ଗର୍ଭରୂପ ଗୃହ ।

**ଗର୍ଭବ୍ୟଥା**—ବି. (କ.ଧା) ଗର୍ଭବେଦନା, (ଦେଖ) ।

**ଗର୍ଭବ୍ୟାକରଣ**—କ୍ଳୀ. ବି. ଯେଉଁ ପ୍ରକା-ରରେ ଗର୍ଭୋତ୍ପତ୍ତି ହୁଏ ତାହାର ବିବରଣ, ଗର୍ଭର ବିବରଣ ।

**ଗର୍ଭବ୍ୟାପଦ**—ସ୍ତ୍ରୀ.ବି. ଗର୍ଭର ବିପତ୍ତି ।

**ଗର୍ଭବ୍ୟୂହ**—ପୁଂ. ବି. ବ୍ୟୂହବିଶେଷ, ଯୁଦ୍ଧାର୍ଥ ପଦ୍ମାକୃତି ସୈନ୍ୟ ରଚନା ବିଶେଷ ।

**ଗର୍ଭଶଙ୍କୁ**—ପୁଂ. ବି. (କ.ଧା) ମୃତଗର୍ଭ ଆକର୍ଷଣାର୍ଥ ଯନ୍ତ୍ରବିଶେଷ ।

**ଗର୍ଭଶଙ୍କୁକ**—ପୁଂ. ବି. ମୃତଗର୍ଭାକର୍ଷଣ ନିମିତ୍ତ ଯନ୍ତ୍ରବିଶେଷ ।

**ଗର୍ଭଶଯ୍ୟା**—ସ୍ତ୍ରୀ. ବି. (କ.ଧା) ଗର୍ଭୋ-ତ୍ପତ୍ତିର ସ୍ଥାନ, ଗର୍ଭରେ ଭ୍ରୂଣର ବାସ ବା ଅବସ୍ଥାନ, ଜରାୟୁ ।

**ଗର୍ଭସଂକ୍ରମଣ**—କ୍ଳୀ. ବି. ଦେହାନ୍ତର ଗ୍ରହଣାର୍ଥ ଜୀବର ଗର୍ଭରେ ପ୍ରବେଶ ।

**ଗର୍ଭସଂଗ୍ରହ**—ପୁଂ. ବି. (ଷତତ୍) ଜଠର ମଧ୍ୟରେ ଭ୍ରୂଣର ଜନ୍ମ ।

**ଗର୍ଭସମ୍ଭବ**—ପୁଂ.ବି.(ଷତତ୍)ଗର୍ଭୋତ୍ପତ୍ତି ।

**ଗର୍ଭସମ୍ଭୂତି**—ସ୍ତ୍ରୀ.ବି.(ଷତତ୍)ଗର୍ଭୋତ୍ପତ୍ତି ।

**ଗର୍ଭସମୟ**—ପୁଂ. ବି. (ଷତତ୍) ଗର୍ଭ-କାଳ, ଋତୁସ୍ନାନ ପର ସହବାସ କାଳ, ବୃଷ୍ଟିର ଉତ୍ପତ୍ତିନିମିତ୍ତକ କାଳ ।

**ଗର୍ଭସୁଭଗ**—ବି. ବିଂ. ଗର୍ଭକାଳାବଧି ସୌଭାଗ୍ୟଶାଳୀ, (ସ୍ତ୍ରୀ) ଗର୍ଭକାଳାବଧି ସୌଭାଗ୍ୟଶାଳିନୀ ।

**ଗର୍ଭସୂଚନା**—ବି. ଗର୍ଭବତୀ ହେଲେ ପୂର୍ବ ବା ସମସାମୟିକ ଲକ୍ଷଣ ।

**ଗର୍ଭସ୍ଥ**—ବି.ବିଂ. (ଗର୍ଭ + ସ୍ଥା + କ,ଅ) ଯେ ଗର୍ଭରେ ଥାଏ, ଉଦରସ୍ଥ, ମଧ୍ୟସ୍ଥ, ଅନ୍ତରସ୍ଥ । [ ଗର୍ଭାଶୟ ।

**ଗର୍ଭସ୍ଥଳୀ**—ସ୍ତ୍ରୀ. ବି. ଗର୍ଭରୂପ ସ୍ଥାନ,

**ଗର୍ଭସ୍ଥାୟୀ**—ବିଂ. (ଗର୍ଭ + ସ୍ଥା + ଇନ୍) ଗର୍ଭସ୍ଥ,ଅନ୍ତରସ୍ଥ, ଯେ ପେଟରେ ଥାଏ, (ଗ୍ରା,ବି.) ଗର୍ଭାଧାନ ।

**ଗର୍ଭସ୍ଥିତ**—ବିଂ. (ଗର୍ଭ + ସ୍ଥା + କ,ତ) ଗର୍ଭସ୍ଥ (ଦେଖ) ।

**ଗର୍ଭସ୍ରାବ**—ପୁଂ. ବି. ଷତତ୍;(ଗର୍ଭ + ସ୍ରୁ + ଅ) ଗର୍ଭହେବାର ପ୍ରଥମ ଦିନଠାରୁ ଚାରିମାସ ମଧ୍ୟରେ ଶୋଣିତରୂପ ଗର୍ଭର ସ୍ରବଣ, ଗର୍ଭଚ୍ୟୁତି, ଗର୍ଭସ୍ଥ ଭ୍ରୂଣର ଅକାଳ ପତନ ।

**ଗର୍ଭସ୍ରାବାଶୌଚ**—କ୍ଳୀ. ବି. ଗର୍ଭସ୍ରାବ ଛଅ ମାସ ମଧ୍ୟରେ ହେଲେ (ସ୍ତ୍ରୀ)ର ତିନଦିନ ଅଶୌଚ କାଳ, ଗର୍ଭସ୍ରାବ ନିମିତ୍ତକ ଅଶୌଚ ।

**ଗର୍ଭସ୍ରାବୀ**—ପୁଂ. ବି. ହେନ୍ତାଳ ଗଛ ।

**ଗର୍ଭହେବା**—ଗ୍ରା. କ୍ରି. ଗର୍ଭବତୀହେବା, ପେଟରେ ହେବା ।

**ଗର୍ଭାଗାର**—କ୍ଳୀ. ବି. (କ.ଧା) ସମସ୍ତ ଘରର ମଧ୍ୟଭାଗସ୍ଥିତ ବାସଗୃହ, ଗମ୍ଭୀର ଘର, ସୂତିକା ଗୃହ ।

**ଗର୍ଭାଙ୍କ**—ପୁଂ,ବି. ନାଟକର ଅଙ୍କମଧ୍ୟରେ ଅନ୍ତର୍ଗତ କ୍ଷୁଦ୍ରଅଙ୍କ ।

**ଗର୍ଭାଦ**—ବି. ବିଂ. (ଗର୍ଭ + ଅଦ୍ + ଅ) ଗର୍ଭଭକ୍ଷକ ।

ଗର୍ଭାଧାନ—କ୍ଳୀ. ବ. (ଗର୍ଭ+ଆ+ଧା+ଅନ) ଦଶବଧ ସଂସ୍କାର ମଧ୍ୟରୁ ପ୍ରଥମ ସଂସ୍କାର, ନିଷେକ କ୍ରିୟା ।

ଗର୍ଭାବକ୍ରାନ୍ତ—ସ୍ତ୍ରୀ.ବ..ଗର୍ଭୋତ୍ପତ୍ତି,ଜୀବର ଗର୍ଭାଶୟରେ ପ୍ରବେଶରୂପ ଅବତରଣ ।

ଗର୍ଭାଶଙ୍କା—ବ. (୬ତତ୍ପୁ) ସ୍ତ୍ରୀ ଗର୍ଭବତୀ ହେବାର ସନ୍ଦେହ ।

ଗର୍ଭାଶୟ—ପୁଂ.ବ. ୬ତତ୍ପୁ, (ଗର୍ଭ+ଆ+ଶୀ+ଅ) ଗର୍ଭର ଆଧାର, ଗର୍ଭଶଯ୍ୟା, ଜରାୟୁ ।

ଗର୍ଭାଷ୍ଟମ—ପୁଂ. ବ. (ଗର୍ଭ+ଅଷ୍ଟମ) ଗର୍ଭ ଧାରଣର ଅଷ୍ଟମ ମାସ ଓ ଅଷ୍ଟମ ବର୍ଷ, (ବି୦) ଗର୍ଭାରମ୍ଭ ହେବାଠାରୁ ଅଷ୍ଟମ (ମାସ ବା ବର୍ଷ) ।

ଗର୍ଭାସ୍ପନ୍ଦନ—କ୍ଳୀ. ବ. ଗର୍ଭସ୍ଥର ଚଳନ-ବିଶେଷ, ଗର୍ଭର କମ୍ପନବିଶେଷ ।

ଗର୍ଭାସ୍ରାବ—ପୁଂ. ବ. (ଗର୍ଭ+ଆସ୍ରାବ) ଗର୍ଭଧାରଣଠାରୁ ଚାରିମାସ ପର୍ଯ୍ୟନ୍ତ ଗର୍ଭରୁ ରକ୍ତସ୍ରାବ, ଗର୍ଭକ୍ଷରଣ, ଗର୍ଭଚ୍ୟୁତ ।

ଗର୍ଭିଣୀ—ସ୍ତ୍ରୀ. ବ. (ଗର୍ଭ+ଇନ୍+ଈ) ଗର୍ଭବତୀ ନାରୀ,ଅନ୍ତଃସତ୍ତ୍ୱା ସ୍ତ୍ରୀ, ଙ୍କରଇ ଗଛ, (ବି୦) ନବସନ୍ତାନବତୀ, ପୁଆତୀ, ଅନ୍ତଃସତ୍ତ୍ୱା ।

ଗର୍ଭିଣୀଦୋହଦ—ବ. ଗର୍ଭଦୋହଦ (ଦେଖ) ।

ଗର୍ଭିଣୀଦୌହୃଦ—କ୍ଳୀ.ବ. ଗର୍ଭବତୀ ସ୍ତ୍ରୀର ଅଭିଲଷିତ ଦ୍ରବ୍ୟ ।

ଗର୍ଭିଣ୍ୟବେକ୍ଷକ—ପୁଂ. ବ. ଗର୍ଭ ଚକିତ୍ସାରେ ନିପୁଣ ପୁରୁଷ, (ସ୍ତ୍ରୀ) ଗର୍ଭିଣ୍ୟବେକ୍ଷିକା ।

ଗର୍ଭିଣ୍ୟବେକ୍ଷଣ—କ୍ଳୀ. ବ. (୬ତତ୍) ଗର୍ଭବତୀ ସ୍ତ୍ରୀର ପରିଚର୍ଯ୍ୟା, କୁମାରଭୃତ୍ୟା, ଗର୍ଭସ୍ଥ ଭ୍ରୂଣ ଓ ନବଜାତ ଶିଶୁର ଯତ୍ନନେବା କର୍ମ ।

ଗର୍ଭିତ—ବି.ବି୦. (ଗର୍ଭ+ଇତ) ଜାତଗର୍ଭ, ଯାହାର ଗର୍ଭ ସଞ୍ଚାର ଅଛି, ଗର୍ଭଯୁକ୍ତ, ଅନ୍ତର୍ଗତ, କାବ୍ୟର ଦୋଷଭେଦ । [ ବଶିଷ୍ଟ ।

ଗର୍ଭୀ—ପୁଂ. ବ. (ଗର୍ଭ+ଇନ୍) ଗର୍ଭ-

ଗର୍ଭେତୃପ୍ତ—ବି.ବି୦. ଯେ ସନ୍ତାନ ପାଇ ତୃପ୍ତ ହୋଇଅଛି, ଅନ୍ତରେ ତୃପ୍ତ, ଅଳସୁଆ ।

ଗର୍ଭେଶ୍ୱର—ପୁଂ. ବ. ଗର୍ଭରୁ ରାଜା, ଯାହାର ପୂର୍ବପୁରୁଷରୁ ରାଜା ହୋଇଆସି ଅଛନ୍ତି, ପୁରୁଷାନୁକ୍ରମେରାଜା ବା ଧନୀ ।

ଗର୍ଭୋତ୍ପତ୍ତି—ସ୍ତ୍ରୀ.ବ. ଗର୍ଭର ଜନ୍ମ,ଗର୍ଭସଞ୍ଚାର ।

ଗର୍ଭୋତ୍ପାଦନ—ବ (୬ତତ୍ପୁ) ଗର୍ଭବତୀ ହେବା, ପେଟରେ ହେବା ।

ଗର୍ଭୋପଘାତ—ପୁଂ.ବ.ଗର୍ଭନାଶ,ମେଘର ଜଳୋତ୍ପାଦକ ଶକ୍ତିର ବିନାଶ, ଗର୍ଭର ପକାଇବା ।

ଗର୍ଭୋପଘାତିନୀ—ସ୍ତ୍ରୀ. ବ.୦(ଗର୍ଭ+ଉପଘାତ+ଇନ୍+ଈ)ଗର୍ଭନାଶିନୀ ଗାଈପ୍ରଭୃତି, ଗର୍ଭର ଗାଈ ବା ନାରୀ ।

ଗର୍ଭୋପନିଷତ୍—ସ୍ତ୍ରୀ. ବ. ଗର୍ଭଜ୍ଞାପିକା ଖଣ୍ଡିଏ ଅଥର୍ବ ବେଦର ଉପନିଷତ୍ ।

ଗର୍ଭାଳମ୍ବୁ—ସ୍ତ୍ରୀ.ବ. ପାତାଳ ଗରୁଡ଼ୀ ।

ଗର୍ହଣ—କ୍ଳୀ.ବ. ନିନ୍ଦା,(ଗର୍ହ+ଣ,ଅନ) ଅଭିଯୋଗ, ଦୋଷାରୋପ, ତିରସ୍କାର ।

ଗର୍ହଣା—ସ୍ତ୍ରୀ.ବ.(ଗର୍ହ+ଣ,ଅନ+ଆ) ନିନ୍ଦା, କୁତ୍ସା, ଭର୍ତ୍ସନା, ତିରସ୍କାର ।

ଗର୍ହଣୀୟ—ବି.ବି୦.(ଗର୍ହ+ମି,ଅନୀୟ) ନିନ୍ଦନୀୟ, ନିନ୍ଦ୍ୟ, ମନ୍ଦ ।

ଗର୍ହା—ସ୍ତ୍ରୀ.ବ. (ଗର୍ହ୍+ଣ, ଅ+ଆ) ନିନ୍ଦା, ତିରସ୍କାର, ଦୋଷାରୋପ ।

ଗର୍ହା—ମଧ୍ୟଭାରତର ଗୁଣା ଉପବିଭାଗର ଅନ୍ତର୍ଗତ ଗୋଟିଏ କ୍ଷୁଦ୍ର ଗ୍ରାମ ।

ଗର୍ହିତ—ବି.ବି୦.(ଗର୍ହ୍+ମି,ତ)ନିନ୍ଦିତ, କୁତ୍ସିତ, ଦୂଷଣୀୟ, ଜଘନ୍ୟ, ନିଷିଦ୍ଧ, ଅନୁଚିତ, (ସ୍ତ୍ରୀ)ଗର୍ହିତା ।

ଗର୍ହିତବ୍ୟ—ବି. ବି୦. (ଗର୍ହ୍+ତବ୍ୟ) ନିନ୍ଦନୀୟ, ନିନ୍ଦାଯୋଗ୍ୟ ।

ଗର୍ହୀ—ପୁଂ.ବ. (ଗର୍ହ୍+ଇନ୍)ନିନ୍ଦୁକ ନିନ୍ଦାକାରକ ।

ଗର୍ହ୍ୟ—ବି. ବି୦. (ଗର୍ହ୍+ଯ)ନିନ୍ଦନୀୟ, ଅଧମ, ନିନ୍ଦ୍ୟ ।

ଗର୍ହ୍ୟବାସୀ—ପୁଂ.ବି୦.(ଗର୍ହ୍ୟ+ବସ+ଇନ୍) କୁତ୍ସିତ ସ୍ଥାନବାସୀ, ମନ୍ଦସ୍ଥାନବାସୀ ।

ଗଳକନା—ଗ୍ରା.କ୍ରି.ବି୦.ଝୁଲୁଗୁଲା ଅଳଙ୍କାର ଆଦି ଦେହରୁ ଖସି ପଡ଼ିବା ପ୍ରକାରେ, ଜଳୀୟ ପଦାର୍ଥ ହଠାତ୍ ପାତ୍ରରୁ ବୋହିଯିବା ପ୍ରକାରେ ।

ଗଲ୍‌ଗଲ୍—ଗ୍ରା. ଅବ୍ୟ. ଝୁଗୁଲାହେବା, ଅବଲୀଳାକ୍ରମେ ତରଳପଦାର୍ଥ ଗଳାଧଃକରଣହେବା ଶବ୍ଦ ।

ଗଲ୍‌ଗଲ୍—ଗ୍ରା. ଅବ୍ୟ. କୁଣ୍ଠାଇହେବା, ଟହଟହ, ଅତ୍ୟନ୍ତ ।

ଗଲ୍‌ଜ—ଯା. ବ. ବସ୍ତ୍ର, ଗୁହ, ଅଳିଆ, ମଇଳା. (ଗ୍ରା.ବି୦)ଦୁର୍ଗନ୍ଧମୟ, ମଇଳା, ବିଷ୍ଠାପୂର୍ଣ୍ଣ ।

ଗଲ୍‌ତ—ଯା.ବ.ଗୁପ୍ତ,ଛିଦ୍ର, ଯାହା ଥିବା ଯୋଗୁଁ କୌଣସି ପାତ୍ରସ୍ଥ ତରଳପଦାର୍ଥ ଅଜ୍ଞାତଭାବରେ ବୋହିଯାଏ, ଭ୍ରାନ୍ତ, ଭୁଲ୍, ଦୋଷ, ଗୁପ୍ତଦୋଷ, ତ୍ରୁଟି, କାର୍ଯ୍ୟରେ ଅବହେଳା,ମିଥ୍ୟା,(ଗ୍ରା.ବି୦.) ଦୋଷପୂର୍ଣ୍ଣ, ତ୍ରୁଟିପୂର୍ଣ୍ଣ ।

ଗଳ—ପୁଂ. ବ.(ଗଲ୍+ଣ, ଅ)ବେକ, କଣ୍ଠ, ଗଳନାଳୀ, ସର୍ଜରସ, ଝୁଣା, ବାଦ୍ୟଭେଦ, ଦଉଡ଼ା,ଗଡ଼େଇ ମାଛ ।

ଗଳକ—ପୁଂ. ବ. (ଗଲ୍+କ) ଗଡ଼େଇ ମତ୍ସ୍ୟ, ବାଲିଗରଡ଼ାମାଛ ।

ଗଳକଣ୍ଟକ—ବ. ଗଳାରେ ଉଠିବା ମାରାତ୍ମକ ବ୍ରଣ ।

ଗଳକମ୍ବଳ—ପୁଂ.ବ. (୬ତତ୍ପୁ)ଗୋରୁର ଗଳଲମ୍ବିତ କମ୍ବଳାକୃତ ଲୋମଶମାଂସପିଣ୍ଡ, ସାସ୍ନା ।

ଗଳଗଣ୍ଡ—ପୁଂ.ବ. (୬ତତ୍) ରୋଗଜନିତ ଗଳଦେଶରେ ବାହାରିବା ସ୍ଥୂଳମାଂସ ବା ଆବୁ, ଗଳାର ଗିଲ୍‌ଟି ଫୁଲା ଓ ଦରଜ ରୋଗ, ହାଡ଼ଗିଲା ପକ୍ଷୀ ।

ଗଳଗଣ୍ଡୀ—ପୁଂ. ବ. (ଗଳଗଣ୍ଡ+ଇନ୍) ଗଳଗଣ୍ଡରୋଗୀ ।

ଗଲଗଲହେବା—ଗ୍ରା.କ୍ରି କୁଣ୍ଠାଇହେବା, (ଲ.ଅର୍ଥ)ମନ ରବେଇଖବେଇହେବା ।

ଗଳଗଳିଆ — ଗ୍ରା. ବିଂ. ଘୁଗୁଳା, ପାଣିରୁ ବିଶେଷରୂପେ ଅଲଗାହୋଇ ପଡ଼ୁଥିବା, (ଜଳୀୟ ପଦାର୍ଥ) ।

ଗଳଗଳିଆ — ଗ୍ରା. ବିଂ. ଯେଉଁ ପଦାର୍ଥ (ସାରୁ ପ୍ରେଲୁଅ) ଦେହରେ ଲଗାଇଲେ ଦେହ ଗଲୁ କରେ ବା ଖାଇଲେ ତଣ୍ଟି କୁଣ୍ଡାଇ ହୁଏ, ପ୍ରା. (ବସ୍ତର) ବି. ଝଖ ଲେମ୍ଭ ।

ଗଳଗାଜିବା — ଗ୍ରା.କ୍ରି. ଗଳାଦ୍ୱାରା ଗର୍ଜନ କରିବା ।

ଗଳଗୋଡ଼ିକା — ସ୍ତ୍ରୀ. ବି., ବିଷଯୁକ୍ତ ଜନ୍ତୁବିଶେଷ ।

ଗଳଗ୍ରହ — ପୁଂ. ବି. (ଗଳ + ଗ୍ରହ + ଅ) ବ୍ୟଞ୍ଜନବିଶେଷ, ମାଛପକା ତରକାରୀ, ଯେଉଁଦିନ ପଢ଼ା ଆରମ୍ଭ କରାଯାଏ, କିନ୍ତୁ ତହିଁଆରଦିନ ଅନଧ୍ୟୟନ ତିଥି ପଡ଼େ, ଆରବ୍ଧ ହୋଇ ହଠାତ୍ ବନ୍ଦ କରାଯିବା ପାଠ, ଅପରିହାର୍ଯ୍ୟ ଆପଦ ପରିତ୍ୟାଗକର ହୁଏ ନାହିଁ ବୋଲି ଅନିଚ୍ଛାରେ ଯାହାର ଭାର ନେବାକୁ ହୁଏ, କଣ୍ଠରୋଗବିଶେଷ, ତଣ୍ଟି ଚିପିବା, ଅନ୍ୟର ବେକ ଧରିବା, କୃଷ୍ଣପକ୍ଷର ଚତୁର୍ଥୀ, ସପ୍ତମୀ, ଅଷ୍ଟମୀ, ନବମୀ, ତ୍ରୟୋଦଶୀ, ଚତୁର୍ଦ୍ଦଶୀ ଓ ଅମାବାସ୍ୟା ତିଥି ।

ଗଳଗ୍ରହଣ — ବି. (ଗଳଗ୍ରହ + ଅନ) ଗଳଗ୍ରହ (ଦେଖ) ।

ଗଳଘଣ୍ଟା — ଗ୍ରା.ବି. ଗୋଲମାଲ ।

ଗଳଚର୍ମ — ବି. (ଗଳ + ଚର୍ମନ୍) ତଣ୍ଟି, ତୋଟି, (ଗ୍ରା.ବି) ଗଳକମ୍ବଳ ।

ଗଳତ୍ — ନି. ବିଂ. (ଗଳ + କ. ଅତ) ଯାହା ଗଳି ପଡ଼ୁଅଛି, ବୋହୁଥିବା, କ୍ଷରିତ ହେଉଥିବା । [(ଦେଖ)

ଗଳତ୍ — ଯା. ବି. ଭ୍ରମ, ଭୁଲ୍, ଗଳତି,

ଗଳତ୍କୁଷ୍ଠ — କ୍ଳୀ.ବି. ରସରକ୍ତାଦି କ୍ଷରଣଶୀଳ କୁଷ୍ଠବିଶେଷ ।

ଗଳତ୍କୁଷ୍ଠାରିରସ — ପୁଂ.ବି.ପାରଦାଦିଘଟିତ ଔଷଧବିଶେଷ ।

ଗଳଥନ — ଗ୍ରା.ବି. (ସଂ-ଗଳସ୍ତନ) ଅଜା-ବା ଛେଳିର ଗଳ-ସ୍ତନ ।

ଗଳଥା — ଗ୍ରା.ବି. (ସଂ-ଗଳହସ୍ତ) ବେକର ସାମନା ଆଡ଼େ ଅର୍ଥାତ୍ ତଣ୍ଟିରେ ଧକ୍କାଦେବା, ତଣ୍ଟିଆ, ହାବୁକା ।

ଗଳଥିବା — ଗ୍ରା, କ୍ରି. ତଣ୍ଟିଆଦେବା, ବେକରେ ଧକ୍କା ମାରି ଘଉଡ଼ିବା ।

ଗଳଦ — ଯା. ବି. ଭୁଲିଯିବା, ଛାଡ଼ିଯିବା, ଦୋଷ, ଅଙ୍ଗହୀନତା, ତ୍ରୁଟି, କମ୍ତି ।

ଗଳଦ୍ଘର୍ମ — ବିଂ. (ବ.ବ୍ରୀ) ପରିଶ୍ରମ ବା ଭୟ ହେତୁରୁ ଯାହା ଦେହରୁ ବେଶି ଝାଳ ବୋହି ଯାଉଥାଏ, (ବି.କ.ଧା) ଦେହରୁ ବୋହୁଥିବା ଝାଳ ।

ଗଳଦଶ୍ରୁ — ବିଂ. (ବ.ବ୍ରୀ) ଯାହାର ଅଶ୍ରୁ ଗଳୁଅଛି, ଯାହାର ଲୋତକ ବୋହୁଅଛି, ଲୁହଗଡ଼ୁଥିବା(ନେତ୍ର), (ବି.କ.ଧା) ବୋହୁଥିବା ଲୁହ ।

ଗଳଦଶ୍ରୁଲୋଚନ — କ୍ଳୀ. ବି. (କ.ଧା) ଲୋତକ ଗଡ଼ୁଥିବା ଆଖି, (ବିଂ.ବ.ବ୍ରୀ) ସାଶ୍ରୁନେତ୍ର ।

ଗଳଦେଶ — ପୁଂ. ବି. (୬ତତ୍) ଗଳ, ଗଳା, ତଣ୍ଟି, ବେକ, କଣ୍ଠ ।

ଗଳନ୍ — ପୁଂ. ବିଂ. ଯାହା ଗଳୁଅଛି ବା ଝରୁଅଛି ।

ଗଳନ — କ୍ଳୀ.ବି.(ଗଲ୍ + ଭା,ଅନ) କ୍ଷରଣ, ଗଳିବା, ନିର୍ଗତହେବା, ସ୍ରାବ, ପାଣିହୋଇ ଗଳିବା ।

ଗଳନୀୟ — ନି. ବିଂ. (ଗଲ୍ + ଅନୀୟ) ଗଳିବାର ଯୋଗ୍ୟ, ଗୋଳି ହୋଇଯିବା ଯୋଗ୍ୟ ।

ଗଳନ୍ତିକା — ସ୍ତ୍ରୀ. ବି. (ଗଳ + ଅନ୍ତ + କ + ଆ) ସ୍ୱଳ୍ପବାରିଧାନିକା, ଗଡ଼ୁ, ଝର, କର୍କରୀ । [ଭାଙ୍ଗିବା ।

ଗଳଭଙ୍ଗ — ପୁଂ. ବି. ସ୍ୱରଭଙ୍ଗ, ଗଳା

ଗଳମେଖଳା — ସ୍ତ୍ରୀ.ବି. (୬ତତ୍) କଣ୍ଠାଭରଣବିଶେଷ, ମାଳି, ହାର ।

ଗଳରନ୍ଧ୍ର — କ୍ଳୀ. ବି. (୬ତତ୍) କଣ୍ଠର ଛିଦ୍ର, ଶଙ୍ଖନଳା ।

ଗଳରୋଗ — ପୁଂ. ବି. ଗଳଦେଶ-ଜାତ ରୋଗ, ଗଳବ୍ୟାଧି ।

ଗଳରୋହିଣୀ — ସ୍ତ୍ରୀ. ବି. (ଗଳ + ରୁହ୍ + ଇନ୍ + ଈ) କଣ୍ଠଗତ ରୋଗବିଶେଷ ।

ଗଳଲଗ୍ନ — ନି. ବିଂ. (୭ତତ୍) ଗଳଦେଶରେ ଲଗିଥିବା, ତଣ୍ଟିରେ ଅଟକିଯିବା ।

ଗଳଲଗ୍ନୀକୃତ — ବିଂ. (୭ତତ୍) ଯାହା ବେକରେ ପକା ହୋଇଅଛି ।

ଗଳଲଗ୍ନୀକୃତବାସ — ପୁଂ. ବି. (କ.ଧା) ବେକରେ ପକାଇଥିବାବସ୍ତ୍ର, (ବିଂ.ବ.ବ୍ରୀ) ଯେ ବେକରେ ଲୁଗା ପକାଇଅଛି ।

ଗଳବନ୍ଧନ — ବି. (ଗଳ + ବନ୍ଧନ) ଗଳା ଗୁରିପାଖ ବନ୍ଧାହେବା ରଜ୍ଜୁ ବା ବସ୍ତ୍ର, ଗୋରୁଗାଈଙ୍କ ବେକର ପଘା ।

ଗଳବସ୍ତ୍ର — ନି. ବିଂ. (ବ.ବ୍ରୀ) ଯେ ବେକରେ ଲୁଗା ପକାଇ ଦେବତାଙ୍କୁ ପ୍ରଣାମ କରୁଅଛି ବା ପ୍ରଣାମ କରିବା ନିମିତ୍ତ ବେକରେ ଲୁଗା ପକାଇଅଛି ।

ଗଳବାଣ୍ଡି — ନି. ବିଂ. ଭୂରି ଭୋଜନ-ସମର୍ଥ, ଯଥେଷ୍ଟ ଭୋଜନଯୋଗ୍ୟ ନିରାମୟ (ବ୍ୟକ୍ତି) ।

ଗଳବିଦ୍ରଧି — ପୁଂ. ବି. ଗଳଦେଶଜାତ ବ୍ରଣରୋଗ ବିଶେଷ ।

ଗଳବ୍ରତ — ପୁଂ. ବି. (ବ.ବ୍ରୀ) ମୟୂର ।

ଗଳଶୁଣ୍ଡିକା — ସ୍ତ୍ରୀ. ବି. ତାଳୁର ଊର୍ଦ୍ଧ୍ୱ ଦେଶରେ ସ୍ଥିତ ସୂକ୍ଷ୍ମଜିହ୍ୱିକା, ଘଣ୍ଟିକା, ତାଳୁଗତ ରୋଗବିଶେଷ ।

ଗଳଶୁଣ୍ଡୀ — ସ୍ତ୍ରୀ. ବି. ଗଳଶୁଣ୍ଡିକାରୋଗ, ଘଣ୍ଟିକା, ତାଳୁଗତ ରୋଗବିଶେଷ ।

ଗଳସ୍ତନ — ବି. (୬ତତ୍) ଛେଳି ବେକତଳେ ଚରଭଳି ଝୁଲୁଥିବା ମାଂସଖଣ୍ଡ ।

ଗଳସ୍ତନୀ — ସ୍ତ୍ରୀ. ବି. (ବ.ବ୍ରୀ) ଛାଗୀ, ଯେଉଁ ଛାଗୀର ଗଳଦେଶରେ ଚର ଭଳି ଦୁଇଟି ମାଂସପିଣ୍ଡ ଝୁଲୁଥାଏ ।

ଗଳହସ୍ତ — ପୁଂ.ବି. (୬ତତ୍) ବେକରେ ହାତଦେଇ ଲୋକଙ୍କୁ ଠେଲିବା, ଧକ୍କା, ତଣ୍ଟିଆ, ଅର୍ଦ୍ଧଚନ୍ଦ୍ର, ତଣ୍ଟିଚିପା ।

ଗଳହସ୍ତିତ — ନି. ବିଂ. ଯାହାକୁ ଧକ୍କା ଦେଇ ତଡ଼ି ଦିଆଯାଇଅଛି ।

ଗଳା — ସ୍ତ୍ରୀ. ବି. (ଗଳ + ଆ) ଅଳମ୍ବୁଷା, ଲାଜକୁଳୀଲତା, ଗଳଦେଶ, କଣ୍ଠ ।

ଗଲ୍ଲ — ଗ୍ରା.ବ୍ୟ.ଗତ(ବର୍ଷ),ଯେ ଯାଇଅଛୁ, ଯେ ଯାଉଅଛୁ, (କ୍ରି) ଗମଧାତୁର ଅଗତ କାଳ ୩ୟ ପୁରୁଷ,ଅନାଦରି ଏକବଚନ ରୂପ ।

ଗଲ୍ଲଅଇଲ୍ଲ — ଗ୍ରା.ବ୍ୟ.ଯିବାଆସିବା କରୁଥିବା, ଗମନାଗମନକାରୀ (ବ୍ୟକ୍ତି) (ଗ୍ରା.ବି) ଆଗନ୍ତୁକ ବ୍ୟକ୍ତିଗଣ ।

ଗଲାଇବା – ଗ୍ରା.କ୍ରି. (ଗଳିବାର ଣିଜନ୍ତ), ପ୍ରବେଶ କରାଇବା, ଛଳାଇବା, ଗୁଣ୍ଡିବା (ଗାଳିବାର ଣିଜନ୍ତରୂପ) ଅନ୍ୟ ବ୍ୟକ୍ତିଦ୍ୱାରା ଭାତହାଣ୍ଡିରୁ ପେଜ ନିଗଡ଼ାଇବା ।

ଗଲ୍ଲଉତ୍ତାରୁ—ଗ୍ରା. ଅବ୍ୟ. ଯିବାପରେ, ପରେ, କୌଣସି କୌଣସି ବ୍ୟକ୍ତିଙ୍କର କଥା କହିବା ସମୟରେ ଅଭ୍ୟାସଜନିତ ନିରର୍ଥକ ବାକ୍ୟ ।

ଗଲାକଟା—ଗ୍ରା.ବି.ମୁଣ୍ଡ ହାଣିବା, (ବ୍ୟ) ଯେ ଗଲାକୁ କାଟେ, ଅନ୍ୟର ସର୍ବନାଶକାରୀ । [କଥା ।

ଗଲ୍ଲକଥା—ଗ୍ରା. ବି. ଅଗତ ବିଷୟ,ଗତ-

ଗଲାକାଟିବା - ଗ୍ରା. କ୍ରି. ଦେହରୁ ମୁଣ୍ଡ ବିଚ୍ଛିନ୍ନ କରିବା, ସର୍ବନାଶ ଘଟାଇବା ।

ଗଲ୍ଲକାଲ୍ଲ—ଗ୍ରା. ଅବ୍ୟ. ଗତକାଲି ।

ଗଲାଖିଁଖିଁ — ଗ୍ରା. ବି. କାଶ ଓ ଶରଦି ଯୋଗୁଁ ଗଲାର ସ୍ୱର ବିକୃତ ଓ ଖଣ୍ଡିକାଶ ।

ଗଲାଖଙ୍କାର-ଗ୍ରା.ବି. ଗଲଗର୍ଜ୍ଜନ,କାଶିବା ଦ୍ୱାରା ଗଲାନଳୀର ଶ୍ଳେଷ୍ମା ନିଷ୍କାସନ କରିବା ।

ଗଲାଖୁଁଖୁ — ଗ୍ରା.ବି.ଗଲାଖିଁଖିଁ (ଦେଖ) ।

ଗଲାଇବା— ଗ୍ରା. କ୍ରି. ପ୍ରବେଶ କରାଇବା ସଂକୀର୍ଣ୍ଣ ବ୍ୟବଧାନ ମଧ୍ୟରେ ଶରୀରକୁ ପ୍ରବେଶ କରାଇବା, (ବ୍ୟ) ଅନ୍ୟୋନ୍ୟ ଗଲା ଧରାଧରି ହୋଇ ଯୁଦ୍ଧ କରୁଥିବା, ଅନ୍ୟୋନ୍ୟର ଅଙ୍ଗରେ ଅପରର ଅଙ୍ଗୁଳିଆଦି ପ୍ରବେଶ କରାକରି, ପରସ୍ପର ମଧ୍ୟରେ ଘନିଷ୍ଠ ସଦ୍ଭାବଥିବା, ପ୍ରବେଶ କରାକରି ହେଉଥିବା, ଅନ୍ୟୋନ୍ୟରେ ଗଲାଉଥିବା, ଅତି କଷ୍ଟରେ ସଂକୀର୍ଣ୍ଣ ବ୍ୟବଧାନ ମଧ୍ୟରେ ଆପଣାର ଶରୀରକୁ ପ୍ରବେଶ କରାଉଥିବା ।

ଗଲାଗଲି — ଗ୍ରା.ବି.ଅନ୍ୟୋନ୍ୟରେ ଗଲା ଧରାଧରି ହୋଇ ଯୁଦ୍ଧ, ଅନ୍ୟୋନ୍ୟର ଅଙ୍ଗସନ୍ଧିରେ ଅପରର ଅଙ୍ଗୁଳିଆଦି ପ୍ରବେଶ କରାକରି, ପରସ୍ପର ମଧ୍ୟରେ ଘନିଷ୍ଠ ପ୍ରୀତି ।

ଗଲାଘଡ଼ଘଡ଼ — ଗ୍ରା.ବି. ସର୍ଦ୍ଦି, ସନ୍ନିପାତ ବା ଆସନ୍ନ ମୃତ୍ୟୁ ଯୋଗୁଁ ଗଲାରେ ଶ୍ଳେଷ୍ମା ଜମିବାରୁ ନିଃଶ୍ୱାସ ପ୍ରଶ୍ୱାସ ସମୟରେ ଶ୍ଳେଷ୍ମାଜନିତ ଘଡ଼ଘଡ଼ ଶବ୍ଦ ।

ଗଳାଙ୍କୁର — ପୁଂ. ବି. ଗଳଦେଶଜାତ ମାଂସପିଣ୍ଡବିଶେଷ । [ରୋଧ ।

ଗଲାଚିପା — ଗ୍ରା.(ବାଲେଶ୍ୱର) ବି.ଶ୍ୱାସ-

ଗଲ୍ଲଚପିବା—ଗ୍ରା.କ୍ରି.ଅଙ୍ଗୁଳିଦ୍ୱାରା ତଣ୍ଟି ଚପି ଶ୍ୱାସରୋଧ କରି ମାରିପକାଇବା ।

ଗଲାଚିପିବା — ଗ୍ରା.କ୍ରି.ଗଲାଚପିବା (ଦେଖ)

ଗଲାଧଃକରଣ — କ୍ଲୀ.ବି.ଗିଳିବା,କୌଣସି ବସ୍ତୁକୁ ଖାଇବା ।

ଗଲ ଧକ୍କା — ଗ୍ରା.ବି. ଗଲହସ୍ତ ତଣ୍ଟିଆ, ଗଲାରେ ହାବୁକା ମାରିବା ।

ଗଲାଧରା—ଗ୍ରା. ବି. ସର୍ଦ୍ଦି ବା ଶ୍ଳେଷ୍ମା ଯୋଗୁଁ ଗଳାର ସ୍ୱର ବନ୍ଦହେବା, ସର୍ଦ୍ଦି ଯୋଗୁଁ ତଣ୍ଟିର ବାହାରେ ଓ ଭିତରେ ଦରଜହେବା ଓ ଫୁଲିବା ରୋଗ ।

ଗଲାନଳ — ପୁଂ.ବି. ଚଙ୍ଗୁଡ଼ିମାଛ ।

ଗଲ ନଲ — ପୁଂ. ବି. ପ୍ରାଣବାୟୁ, ମତ୍ସ୍ୟଭେଦ, ଚଙ୍ଗୁଡ଼ିମାଛ । [ବିସ୍ୱଖଣ୍ଡ ।

ଗଲାବନ୍ଧ — ଗ୍ରା. ବି. ଗଲାରେ ବାନ୍ଧିବା

ଗଲାବସିବା — ଗ୍ରା.ବି.ବେଶି ପାଟିକରିବା ବା ସର୍ଦ୍ଦି ଯୋଗୁଁ ଗଲାର ସ୍ୱର ନ ଶୁଭିବା, ସ୍ୱର ବନ୍ଦହେବା ।

ଗଲାବାଜ — ଗ୍ରା. ବି. ଉଚ୍ଚୈଃସ୍ୱରରେ ଚିତ୍କାର,ଉଚ୍ଚୈଃସ୍ୱରରେ ବକ୍ତୃତା, ବୃଥା ଆସ୍ଫାଳନ ।

ଗଳାବଳ — ପୁଂ. ବି. ଗଲାନଳ ମତ୍ସ୍ୟ, ଚଙ୍ଗୁଡ଼ିମାଛ ।

ଗଲାଭଙ୍ଗିବା — ଗ୍ରା.ବି.ସ୍ୱର ଭଙ୍ଗହେବା, ସର୍ଦ୍ଦି ଯୋଗୁଁ ବା ବହୁ ଗପିବାରୁ ଗଲାର ସ୍ୱର କର୍କଶ ହେବା ।

ଗଲାମୋଟ କରିବା — ଗ୍ରା.କ୍ରି.ଉଚ୍ଚୈଃସ୍ୱର କରିବା ।

ଗଲାରେ ଦଉଡ଼ିଦେବା ଗ୍ରା.କ୍ରି.ଉଦ୍‌ବନ୍ଧନଦ୍ୱାରା ଆତ୍ମହତ୍ୟା କରିବା ନିମନ୍ତେ ବେକରେ ଦଉଡ଼ିର ଫାଶ ବସାଇବା ।

ଗଲାସି—ଗ୍ରା. ବି. ଗବାଦିମାନଙ୍କର ଗଲବନ୍ଧନ ରଜ୍ଜୁ,ପଘା,ଛଟି, ଯେ ବେକରେ ଦଉଡ଼ି ଦେଇ ମରିଅଛି ।

ଗଲି—ପୁଂ.ବି. ଛୋଟରାସ୍ତା, ଗୋଲ୍ଲିବାଟ, ସରୁ ବା ଅଣଓସାରିଆ ବାଟ ।

ଗଲିଆ – ଗ୍ରା.ବି. ବିଲର ହିଡ଼ ବା ଜଲାଶୟର ବନ୍ଧ ଇତ୍ୟାଦିରୁ ଯେଉଁ ଛିଦ୍ର ବା ଜଲାବାଟେ ପାଣି ବାହାରିଥାଏ ।

ଗଲେଇ(ଦେଖ),ପ୍ରା(କୁଜଙ୍ଗ)ବି.ଛୋଟନଦୀ, ଜୋଡ଼,(ଗ୍ରା.ବ୍ୟ)କ୍ଷୁଦ୍ର, ଅନୁଚ୍ଚ, ଓ ସଂକୀର୍ଣ୍ଣ (ରାସ୍ତା), ଗଲପରି ସଂକୀର୍ଣ୍ଣ (ବାଟ) ।

ଗଲିକୁଞ୍ଚି — ଗ୍ରା.ବି.ସନ୍ଧି ବିସନ୍ଧି, ଅନ୍ଧିସନ୍ଧି ।

ଗଲିକୁଞ୍ଚିରେପଶିବା — ଗ୍ରା.କ୍ରି,ଗହଳମଧ୍ୟରେ ଲୁଚିଯିବା, ଅଦୃଶ୍ୟ ହେବା ।

ଗଲିଗଲି—ଗ୍ରା.କ୍ରି.ବି. ପ୍ରତିଗଲି, ସର୍ବତ୍ର, ଅନ୍ଧିସନ୍ଧି ।

ଗଲିତ-ବି.ବ୍ୟ.(ଗଲ + କ.ତ)ଜୀର୍ଣ୍ଣ,ପତିତ, ଲୁପ୍ତ, ଭ୍ରଷ୍ଟ, ନଷ୍ଟ, ଖସିପଡ଼ିଥିବା, ପଚା, ଝରିତ,ଦ୍ରବୀଭୂତ,ଯାହା ଗଲି ପଡ଼ିଅଛି ।

ଗଲିତକୁଷ୍ଠ—ବି.ଶରୀରଯାକ ଘାଆହୋଇ ରକ୍ତ ପୂଜ ବହି ଅଙ୍ଗୁଳିଆଦି ଖସି ପଡ଼ିବା ଅବସ୍ଥାବିଶିଷ୍ଟ କୁଷ୍ଠରୋଗ ।

ଗଲିତ — (ଧାତୁ)ବି. ତରଳିତ ଧାତୁ ।

ଗଲିତମାଂସ — ବି. ଘାଆ ହୋଇ ସଢ଼ି ମିଳାଇଯିବା ମାଂସ ।

ଗଲିତଯୌବନା — ସ୍ତ୍ରୀ.ବ୍ୟ.(ବ.ବ୍ରୀ)ଯେଉଁ ସ୍ତ୍ରୀର ଯୁବାକାଳ ଟପିଗଲଣି ।

ଗଳପଡ଼ିବା — ଗ୍ରା.କ୍ରି.ଜନ୍ମକୁ ପ୍ରବିଷ୍ଟହେବା, ଅବିଶ୍ରାନ୍ତ ବା ବିଶେଷ ପରିମାଣରେ ସ୍ରବିବା, ବହୁସଂଖ୍ୟକ ବସ୍ତୁ ବା ଗହଳି ମଧ୍ୟରେ ଅଦୃଶ୍ୟହେବା ବା ଲୁଚିଯିବା ।

ଗଳଫିଟି ରହିଯିବା — ଗ୍ରା. କ୍ରି. ଗଳକୁଞ୍ଚି ରହିଯିବା (ଦେଖ) ।

ଗଳିବା — ଗ୍ରା. କ୍ରି. ସଙ୍କୀର୍ଣ୍ଣ ପଥରେ ସଙ୍କୁଚିତ ହୋଇ ପ୍ରବେଶକରିବା, ସ୍ରବିବା, ବହିବା, ଝରିବା, ଛଳକିବା, ଭେଦିବା, ଦବିଯିବା, କୌଣସି ପଦାର୍ଥମଧ୍ୟକୁ ପ୍ରବେଶ କରିବା ।

ଗଳିବା-ପ୍ରା.(ସମ୍ବ)କ୍ରି.ଗୃହର ଛାତବାଟେ ବର୍ଷାପାଣି ଗଳିବା । [ପଥ ।

ଗଳିବାଟ — ଗ୍ରା. ବି.ସଙ୍କୀର୍ଣ୍ଣ ରାସ୍ତା, ଗୁପ୍ତ-

ଗଳିରାସ୍ତା — ଗ୍ରା.ବି.କ୍ଷୁଦ୍ର ବାଟ,ଗଳିବାଟ ।

ଗଲୁ — ଗ୍ରା. ବି. କଣ୍ଡୁ, କୁଣ୍ଡାଇହେବା, ଗଲଗଲହେବା ।

ଗଲୁଉଠିବା — ଗ୍ରା. ବି. କଣ୍ଡୁ ସ୍ଥାନ ପ୍ରଭୃତି ଜାଗିବା, କଣ୍ଡୁ ଉଠିବା ।

ଗଲୁଗଲୁଆ — ଗ୍ରା. ବିଂ. ଯେଉଁ ପଦାର୍ଥ ଖାଇଲେ ବା ଦେହରେ ଲାଗିଲେ କୁଣ୍ଡାଇ ହୁଏ, ଯେଉଁ ରୋଗରେ ଶରୀର କୁଣ୍ଡାଇ ହୁଏ ।

ଗଲୁଛାଡ଼ିବା — ଗ୍ରା ବି.ଗଲୁ ମରିବା, କଣ୍ଡୁ ନିବୃତ୍ତି ।

ଗଲୁମାରିବା — ଗ୍ରା. କ୍ରି. ଉପଶ୍ମର ବା କୁଣ୍ଡାଇବାଦ୍ୱାରା କଣ୍ଡୁ ନିବାରଣ କରିବା । [ଦେଖ ।

ଗଲେଇ — ଗ୍ରା.ବି.(ସଂ — ଗୁଳଞ୍ଚ) ଗୁଳଞ୍ଚ

ଗଲେଇବା — ଗ୍ରା.କ୍ରି.ଗଳାଇବା (ଦେଖ) ।

ଗଲେଗଣ୍ଡ — ପୁଂ.ବି.(ବ.ବ୍ରୀ) ପକ୍ଷୀବିଶେଷ (ହାଡ଼ଗିଲା ଚଢ଼େଇ) । [ଯୋଗ୍ୟ ।

ଗଲେଷ୍ଟେପକ — ତ୍ରି.ବିଂ. ଗଳା କାଟିବାର

ଗଲେସ୍ତନୀ — ସ୍ତ୍ରୀ. ବି. ଛାଗୀ, ଛେଳି ।

ଗଲେଡ୍ୟ — କ୍ଲୀ. ବି. ଧାନ୍ୟବିଶେଷ ।

ଗଲୋଦ୍ଦେଶ — ପୁଂ.ବି. ଗଳାର ନିକଟ-ସ୍ଥିତ ଅବୟବବିଶେଷ ।

ଗଲୋଦ୍ଭବ — ପୁଂ. ବି. (ବ.ବ୍ରୀ)ଘୋଡ଼ା ବେକରେ ଥିବା ରୋମମାନନ ମକ ଭଉଁରୀବିଶେଷ ।

ଗଲୌଘ — ପୁଂ. ବି. ସୁଶ୍ରୁତୋକ୍ତ ରୋଗ ବିଶେଷ ।

ଗଳ୍ପ — ସ୍ତ୍ରୀ. ବି. ଉପକଥା, ଉପନ୍ୟାସ, ଗପ,କଥାଣୀ,କାହାଣୀ,କଥୋପକଥନ ।

ଗଳ୍ପଚତୁର — ଗ୍ରା.ପୁଂ.ବିଂ. (୭ତତ୍ପୁ)ଯେ ବିଶେଷ ଗଳ୍ପ କହିପାରେ ।

ଗଳ୍ପଚତୁରତା - ବି. (୬ତତ୍ପୁ) ଗଳ୍ପ କହିବାରେ ଚତୁରତା ବା ଛଟା ।

ଗଳ୍ପସଳ୍ପ — ଗ୍ରା. ବି. ଗପସପ, କଥୋପକଥନ ।

ଗଳ୍ପସାଗର — ଗ୍ରା.ବି.ଗଳ୍ପଚତୁର(ଦେଖ) ।

ଗଳ୍ପସ୍ୱଳ୍ପ — ଗ୍ରା.ବି. ଗଳ୍ପସଳ୍ପ (ଦେଖ) ।

ଗଲ୍‌ଭ — ତ୍ରି. ବିଂ. (ଗଲ୍‌ଭ + କ.ଅ) ସଂକୋଚଶୂନ୍ୟ, ନିର୍ଭୟ, ଗର୍ବକାରୀ. ଧୃଷ୍ଟ । [ସମୂହ ।

ଗଲ୍ୟା — ସ୍ତ୍ରୀ.ବି. (ଗଲ + ଯ + ଆ) ଗଳ-

ଗଲ୍ଲ — ପୁଂ. ବି.(ଗଲ୍ + ଗ) ଗାଲ,ଗଣ୍ଡ

ଗଲ୍ଲକ — ପୁଂ.ବି.(ଗଲ୍ଲ + କ)ଗଣ୍ଡ, ଗାଲ, ଚଷକ,ମଦ୍ୟପାନ ପାତ୍ର,ଇନ୍ଦ୍ରନୀଳମଣି ।

ଗଲ୍ଲଚାତୁରୀ — ସ୍ତ୍ରୀ. ବି. ଉପାଧାନବିଶେଷ, ଗାଲତକିଆ, ମାଣ୍ଡି ।

ଗଲ୍ଲିଦାସାର — ଧାରବାର ପ୍ରଦେଶର ଅଧିବାସୀ ଜାତିବିଶେଷ ।

ଗଲ୍ଲିକା — ସ୍ତ୍ରୀ. ବି. ଗଲ୍ଲ, ଗାଲ, ଗଣ୍ଡ ।

ଗଲ୍ୱର୍କ — ପୁଂ.ବି.ଚଷକ,ମଦ୍ୟପାନ ପାତ୍ର, ସାରବିଶିଷ୍ଟ, ମଣିବିଶେଷ ।

ଗବ୍‌ଗବ୍ — ଗ୍ରା. ଅବ୍ୟ. ନିଆଁ ଉପରେ ସ୍ଥାପିତ ପାତ୍ରସ୍ଥ ପାଣିରେ ଗୃହଳଆଦି ଫୁଟିବା ଶବ୍ଦର ଅନୁକରଣ, ସରୁମୁହାଁ-ମାଠିଆରୁ ଏକାବେଳକେ ପାଣି ଅଜାଡ଼ିବାର ଶବ୍ଦ, ଦୁଗ୍ଧ ଦୁହିଁବାର ଶବ୍ଦ ।

ଗବ୍‌ଦଲଖାସୁ — ଗ୍ରା. ବିଂ. ସ୍ଥୂଳକାୟ ଓ ଅକାମିକା (ବ୍ୟକ୍ତି) ।

ଗବ — ଗ୍ରା.ବି. ଏରଣ୍ଡ, ପ୍ରା, (ମେଦିନୀ)ବି. ବାଇଗବ (ଦେଖ) ।

ଗବକାଲ — ଗ୍ରା.ବି. ଜଡ଼ା ଫଳକୁ ଛେଚି ତାକୁ ସିଝା ତହିଁରୁ ତେଲ ବାହାର କରି ନେବା ପରେ ଯେଉଁ ଦୁର୍ଗନ୍ଧମୟ ଜଳ ମିଶ୍ରିତ କ୍ୱାଥାଦି ରହେ ।

ଗବଗଛୁଆକରିବା,ଗବଗୋଛୁଆକରିବା — ଗ୍ରା.କ୍ରି. କୌଣସିବ୍ୟକ୍ତିକୁ ଅତି ମାତ୍ରାରେ ପ୍ରଶଂସା କରିବା ।

ଗବଗରଡ଼ିଆ — ଗ୍ରା.ବିଂ.ଏଣ୍ଡୁତେଣ୍ଡୁ,ସାର-ଅସାର ଅଂଶ ମିଶ୍ରିତ ।

ଗବଗାଣ୍ଡୁ — ଗ୍ରା. ବିଂ. ନିର୍ବୁଦ୍ଧିଆ,ମୂର୍ଖ ।

ଗବଗାଣ୍ଡୁଆ — ଗ୍ରା.ବିଂ.ନିର୍ବୁଦ୍ଧିଆ,ମୂର୍ଖ ।

ଗବଚୀ — ସ୍ତ୍ରୀ.ବି.ଇନ୍ଦ୍ରବାରୁଣୀ,ମହାକାଳ ।

ଗବତ୍ର — କ୍ଲୀ. ବି. (ଗୋ + ତ୍ରୈ + କ.ଅ) ଗୋଭକ୍ଷୀ ଖଡ଼, ଘାସ ।

ଗବନ୍ଦ — ଦାକ୍ଷିଣାତ୍ୟବାସୀ ଜାତିବିଶେଷ, ବାନରବିଶେଷ ।

ଗବୟ — ପୁଂ.ବି. (ଗା + ଅୟ + କ.ଅ) ଅରଣାମଇଁଷି,ଗୟଳ, ରାମାୟଣ ବର୍ଣ୍ଣିତ ମର୍କଟ ଯୂଥପତିବିଶେଷ ।

ଗବୟୀ — ସ୍ତ୍ରୀ. ବି. ଗାଈ, ବଣଗାଈ ।

ଗବରାଜ — ପୁଂ. ବି. (ଗବ + ରାଜ + ଅ) ବୃଷ, ଷଣ୍ଢ ।

ଗବଲ — ପୁଂ.ବି.(ଗୁ + ଅଲ)ବନ୍ୟମହିଷ, ବଣମଇଁଷି ।

ଗବଲ — କ୍ଲୀ.ବି. (ଗୁ + ଣ. ଅଲ)ମଇଁଷି-ଶୃଙ୍ଗ, ମହିଷଶୃଙ୍ଗ ।

ଗବଲୀ — ପୁଂ. ବି. ମହିଷି, ମଇଁଷି ।

ଗବଲଗଣ — ପୁଂ.ବି. ସଞ୍ଜୟଙ୍କର ପିତା ।

ଗବଷଣ୍ଡା (ଣ୍ଢ) — ଗ୍ରା.ବି. ଗବଗଛର ଅଗ୍ରଭାଗରେ ଥିବା କୋମଳ ଅଙ୍କୁର ।

ଗବସାହାଣୀ — ଗ୍ରା.ବି. ପ୍ରାଚୀନ ଉତ୍କଳର ରାଜୋପାଧିବିଶେଷ ।

ଗବା — ପ୍ରା.(ସମ୍ବ)ବିଂ.ପାଗଳ, ବାୟା ।

ଗବାକ୍ଷ — ପୁଂ.ବି. (ଗୋ + ଅକ୍ଷ + କ.ଅ) ବାତାୟନ, ଝରକା, ଜାଲା, ବାନର-ବିଶେଷ, ବୈବସ୍ୱତ ମନୁଙ୍କର ପୁତ୍ର ।

ଗବାକ୍ଷୀ — ସ୍ତ୍ରୀ, ବି. (ଗୋ + ଅକ୍ଷ + ଈ) ଇନ୍ଦ୍ରବାରୁଣୀ, ମହାକାଳ ।

ଗବାଚନ୍ଦ୍ରମନ୍ତ୍ରୀ — ଗ୍ରା. ବି. ଅତି ନିର୍ବୋଧ ମନ୍ତ୍ରୀ, ମୂର୍ଖମନ୍ତ୍ରୀ, ପାଗଳବଣ୍ଡା ମନ୍ତ୍ରୀ ।

ଗବାଚୀ — ସ୍ତ୍ରୀ. ବି. ମତ୍ସ୍ୟବିଶେଷ ।

ଗବାଜନ — କ୍ଲୀ. ବି. ଗୋରୁର ଚମଡ଼ା, ଗାଈଛାଲ ।

ଗବାଦନ — କ୍ଲୀ. ବି. (ଗୋ — ଅଦ୍ + ର୍ମ. ଅନ) ଘାସ, ତୃଣ ।

ଗବାଦନୀ—ସ୍ତ୍ରୀ.ବ. (ଗୋ + ଅଦ୍ + ଅଧି ଅନ + ଈ) ଇନ୍ଦ୍ରବାରୁଣୀ, ମାଳ ଅପରା-ଜିତା, ମହାକାଳ, ଗୋରୁଜଙ୍ଘା, ଗୋରୁ ଖାଇବାର ପାତ୍ର, ଗୋରୁକୁଣ୍ଡ (ଡମା)।
ଗବାଧିକା—ସ୍ତ୍ରୀ. ବ. ଲାକ୍ଷା।
ଗବାନୃତ—କ୍ଳୀ. ବ. ଗୋରୁ ବିଷୟରେ ମିଥ୍ୟାକଥନ।
ଗବାମୟନ—କ୍ଳୀ.ବ.ଦଶମାସ ବା ଦ୍ୱାଦଶ ମାସସାଧ୍ୟ ଯଜ୍ଞବିଶେଷ।
ଗବାମୃତ—କ୍ଳୀ. ବ. ଗୋ-ଦୁଗ୍ଧ।
ଗବାମ୍ପତ—ପୁଂ.ବ.(ତତ୍ପୁ)ବୃଷଭ,ଷଣ୍ଢ, (ଗ୍ରା) ଷେଣ୍ଢ, ଗୋପାଳକ, ଗୋସ୍ୱାମୀ, ରୁଦ୍ର,କିରଣପତି,ସୂର୍ଯ୍ୟ ଓ ଅଗ୍ନି ପ୍ରଭୃତି।
ଗବାର—ଯା.ବ.ଯେଉଁମାନେ ମୁସଲମାନ ନୁହନ୍ତି, ପୂର୍ବେ କାବୁଲ ଅଞ୍ଚଳରେ ଗବାର ବୋଲି ଏକ ଜାତି ଥିଲେ।
ଗବାଲୁକ—ପୁଂ.ବ. ଗବୟ,ବଣଗୋରୁ, ଅରଣା ମଇଁଷି, ଗୟଳ।
ଗବାଶନ—ପୁଂ.ବଂ.(ଗୋ + ଅଶ୍ + କ. ଅନ) ଗୋଭକ୍ଷକ, (ବ) ମୁଚି, ଚମାର, ଚଣ୍ଡାଳ, ହାଡ଼ି, ହେଡ଼ାଖିଆ ଜାତି।
ଗବାଶୀ—ବଂ.(ଗୋ + ଅଶ୍ + କ.ଇନ୍) ଗବାଶନ (ଦେଖ)।
ଗବାଶ୍ୱ—କ୍ଳୀ.ବ. (ଗୋ + ଅଶ୍ୱ)(ଦ୍ୱନ୍ଦ୍ୱ) ଗୋ ଅଶ୍ୱର ସମାହାର ବା ଏକତ୍ର ମିଳନ, ଗୋରୁ ଏବଂ ଘୋଡ଼ା।
ଗବାଶିର—ବି. ବଂ. ଦୁଗ୍ଧମିଶ୍ରିତ ବା ଜଳ-ମିଶ୍ରିତ।
ଗବାକ୍ଷିକା—ସ୍ତ୍ରୀ. ବ. ଲାକ୍ଷା, ଲାଖ।
ଗବାହ୍ନିକ—କ୍ଳୀ. ବ. ଗୋରୁ ଦିନେ ଖାଇବାର ଯଥେଷ୍ଟ ଘାସାଦି।
ଗବିଜାତ—ପୁଂ. ବଂ. ଋଷିବିଶେଷ, ବୈଶ୍ରବଣ।
ଗବିନୀ—ସ୍ତ୍ରୀ.ବ.(ଗବିନ୍ + ଈ)ଗୋସମୂହ।
ଗବିପୁତ୍ର—ପୁଂ. ବ. ବୈଶ୍ରବଣ।
ଗବିଷ୍—ବି. ବଂ. (ଗୋ + ଇଷ୍ + କ୍ୱିପ୍) ସ୍ତୋତ୍ରାଦି ବାକ୍‌ଛାବିଶିଷ୍ଟ।
ଗବିଷ—ପୁଂ.ବଂ. (ଗୋ + ଇଷ୍ + ଅ) ଗାଈ ପ୍ରତି ଇଚ୍ଛୁକ।
ଗବିଷ୍ଟି—ପୁଂ. ବଂ. ଗୋରୁର ଅନ୍ୱେଷଣ-କର୍ତ୍ତା।
ଗବିଷ୍ଠ—ବି.ବଂ. (ଗବି + ସ୍ଥା + ଅ)ସ୍ୱର୍ଗ-ସ୍ଥିତ,ଭୂମିସ୍ଥିତ, (ବ) ଦୈତ୍ୟବିଶେଷ।
ଗବିଷ୍ଠିର—ପୁଂ. ବ. ଗୋତ୍ରପ୍ରବର୍ତ୍ତକ ଋଷିବିଶେଷ।
ଗବୀ—ସ୍ତ୍ରୀ.ବ. (ଗୋ + ଈ) ଗାଈ,ଗାଈ, ମାଈଗୋରୁ, ବାକ୍ୟ। [ଗଡ଼।
ଗବୀଧୁକା—ସ୍ତ୍ରୀ.ବ. ଧାନବିଶେଷ, ଗର-
ଗବୀୟ-ବଂ.(ଗୋ + ଈୟ)ଗବ୍ୟ(ଦେଖ)।
ଗବୀଶ—ପୁଂ. ବ. ଗୋସ୍ୱାମୀ।
ଗବୀଶ୍ୱର—ପୁଂ. ବ. ଗୋସ୍ୱାମୀ।
ଗବେଙ୍ଗିତ—କ୍ଳୀ. ବ. ଗୋରୁମାନଙ୍କର ଶୁଭାଶୁଭସୂଚକ ଚେଷ୍ଟାବିଶେଷ।
ଗବେଡ଼ୁ—ସ୍ତ୍ରୀ. ବ. (ଗୋ + ଏଡ଼ + ଉ) ଧାନ୍ୟଭେଦ, ଗରଗଡ଼, ମେଘ।
ଗବେଡ଼ୁକା—ସ୍ତ୍ରୀ.ବ.(ଗବେଡ଼ୁ କ + ଆ) ଗବେଧୁ, ଗରଗଡ଼।
ଗବେଧୁ—ସ୍ତ୍ରୀ.ବ. (ଗୋ + ଏଧ + କ.ଉ) ଧାନ୍ୟବିଶେଷ, ଗରଗଡ଼।
ଗବେଧୁକ—ପୁଂ. ବ. ଦର୍ବୀକରଜାତୀୟ ସର୍ପବିଶେଷ, ଗୈରିକ, ଗେରୁମାଟି, ତୃଣ ଧାନ୍ୟବିଶେଷ, ଗରଗଡ଼।
ଗବେଧୁକା—ସ୍ତ୍ରୀ.ବ. (ଗୋ + ଏଧ + କ. ଉ + କ,ଆ) ତୃଣଧାନ୍ୟବିଶେଷ, ଗର-ଗଡ଼। [ଗୋରୁ।
ଗବେନ୍ଦ୍ର—ପୁଂ.ବ. (ଗୋ + ଇନ୍ଦ୍ର) ଶ୍ରେଷ୍ଠ
ଗବେରୁକ—କ୍ଳୀ.ବ.ଗୈରିକ,ଗେରୁମାଟି।
ଗବେଶ—ପୁଂ.ବ.(ଗୋ + ଈଶ)ଗୋସ୍ୱାମୀ, ଗୋରକ୍ଷକ। [ଗୃହଳ।
ଗବେଶକା-ସ୍ତ୍ରୀ.ବ. ବୃକ୍ଷବିଶେଷ,ଗୋରେଖ
ଗବେଷ—ବ.(ଗବେଷ + ଅ)ଅନ୍ୱେଷଣ।
ଗବେଷଣ—ପୁଂ. ବଂ. ଗୋରୁର ଅନ୍ୱେ-ଷଣକର୍ତ୍ତା, ଜଳାନ୍ୱେଷଣକୋଶ, ଅନ୍ୱେ-ଷଣକର୍ତ୍ତା, ବ. ( ଗବେଷ + ଭା.ଅନ ) ଖୋଜାଖୋଜି, ଅନ୍ୱେଷଣ, ଜଳର ଅନୁସନ୍ଧାନ।
ଗବେଷଣା—ସ୍ତ୍ରୀ.ବ.(ଗବେଷ + ଅନ + ଆ) ଅନ୍ୱେଷଣ।
ଗବେଷଣୀୟ—ବି. ବଂ. (ଗବେଷ—ର୍ମ, ଅନୀୟ) ଖୋଜିବାର ଯୋଗ୍ୟ, ଅନ୍ୱେ-ଷଣଯୋଗ୍ୟ। [ଅନ୍ୱେଷିତ।
ଗବେଷିତ—ବି.ବଂ. ( ଗବେଷ + ତ )
ଗବେଷୀ—ପୁଂ. ବଂ. ଅନ୍ୱେଷଣକର୍ତ୍ତା, ଖୋଜିବା ଲୋକ।
ଗବେଷ୍ଠିନ୍—ପୁଂ. ବ. ଦୈତ୍ୟବିଶେଷ।
ଗବୈଡ଼କ—କ୍ଳୀ. ବ. ଗୋ ଏବଂ ମେଷ, ଗାଈ ଓ ମେଣ୍ଢା।
ଗବୋଦ୍ଧ—ପୁଂ. ବ. ପ୍ରଶସ୍ତ ଗୋରୁ।
ଗବ୍ୟ—ବି.ବ.(ଗୋ + ଯ)ଗୋସମ୍ବନ୍ଧୀୟ, ଗୋରୁର ହିତକର, ଗୋରୁଠାରୁ ଉତ୍ପନ୍ନ (ଦୁଗ୍ଧାଦି),(କ୍ଳୀ.ବ.)ଧନୁର ଗୁଣ, ଜ୍ୟା, ସ୍ୱାଗଦ୍ରବ୍ୟ।
ଗବ୍ୟଘୃତ—ବ. (କ.ଧା) ଗୁଆଘିଅ।
ଗବ୍ୟସ୍ତ୍ରୀ—ସ୍ତ୍ରୀ. ବ. ତ୍ୱକ୍‌ପ୍ରଭୃତି।
ଗବ୍ୟୁ—ବି. ବଂ. ଯେଉଁଲୋକ ଗୋରୁ ଗ୍ରହଣ ବିଷୟରେ ଇଚ୍ଛାବାନ୍।
ଗବ୍ୟା—ସ୍ତ୍ରୀ.ବ.(ଗବ୍ୟ + ଆ)ଗୋସମୂହ, ଜ୍ୟା, ଧନୁର ଗୁଣ, ଲୁଗାର ଦଶି, ଗବ୍ୟୂତି (ଦୁଇକୋଶ), ଗୋରୋଚନା।
ଗବ୍ୟୁ—ବି. ବ. ଯେ ଗୋରୁ ଗ୍ରହଣରେ ଇଚ୍ଛୁକ।
ଗବ୍ୟୂତ—କ୍ଳୀ. ବ. (ଗୋ + ଯୂ + ର୍ମ.ତ) ଦୁଇକୋଶ ପରିମାଣ ଦୂରତ୍ୱ।
ଗବ୍ୟୂତି—ସ୍ତ୍ରୀ. ବ.(ଗୋ + ଯୂ + ର୍ମ.ତି) ଦୁଇକୋଶ ବା କୋଶପରିମିତ ଦୂରତ୍ୱ।
ଗସ୍ତ—ଯା.ବ.ବୁଲି ପଣ୍ୟସଂଗ୍ରହ କରିବା, ରାଜକୀୟ କାର୍ଯ୍ୟ ଉପଲକ୍ଷେ ଭ୍ରମଣ, ରୁନ୍ଦ୍ର, ପହରା ଦେବାପାଇଁ ବୁଲିବା।
ଗସ୍ତଖର୍ଚ୍ଚ—ଯା. ବ. ସରକାରୀ କାର୍ଯ୍ୟ ଉପଲକ୍ଷରେ ଗମନାଗମନ ପାଇଁ ଗସ୍ତ-କାରୀଙ୍କୁ ମିଳିବା ଖର୍ଚ୍ଚ।

ଗସ୍ତ ଖିଲାଇବା—ପ୍ରା.(କଟକ)କ୍ରି. ବନ୍ଧା-ହୋଇ ରହିଥିବା ଘୋଡ଼ା ବା ଗୋରୁ-ଆଦି ପଶୁଙ୍କ ଗୋଡ଼ ଖେଳିଯିବାପାଇଁ ଟହଲାଇ ଆଣିବା।

ଗସ୍ତନିର୍ଘଣ୍ଟ—ଗ୍ରା. ବି. ଗସ୍ତକରିବା ସମ୍ବନ୍ଧରେ କେଉଁ ସ୍ଥଳକୁ କେଉଁଦିନ ଓ କେଉଁ ସମୟରେ ଯିବାକୁ ହେବ, ପୂର୍ବରୁ ତାହାର ନିର୍ଦ୍ଧାରଣ ଓ ପ୍ରକାଶ ।

ଗସ୍ତଭତ୍ତା—ଯା.ବି. ଗସ୍ତଖର୍ଚ୍ଚ (ଦେଖ) ।

ଗସ୍ତାନି—ଗ୍ରା. ଯେଉଁ ସ୍ତ୍ରୀ ସ୍ୱେଚ୍ଛାନୁସାରେ ପରପୁରୁଷ ସଙ୍ଗ କରେ ।

ଗସ୍ତ ଦାର୍—ଯା.ବି.ଯେଉଁ ଗୁମାସ୍ତାମାନେ ବଣିକମାନଙ୍କ ତରଫରୁ ପଣ୍ୟଦ୍ରବ୍ୟାଦିର ଗ୍ରାହକ ଖୋଜିବା ନିମନ୍ତେ ଭିନ୍ନ ଭିନ୍ନ ସ୍ଥାନ ବୁଲନ୍ତି ।

ଗହ—(ଧାତୁ) ନିବିଡ଼ହେବା, ବୁଝିବାକୁ କଠିଣହେବା । [କେତା ।

ଗହକ—ଗ୍ରା. ବି. ଗରାଖ, ପଣ୍ୟଦ୍ରବ୍ୟର

ଗହଗହ—ଗ୍ରା.ନିବିଡ଼ରୂପେ ପ୍ରକାଶ,ଭିଡ଼, ବହୁଲୋକ ସମାଗମଜନିତ କୋଳାହଳ ।

ଗହଡ଼ବାର—ରାଜପୁତ ଜାତିର ଗୋଟିଏ ଶାଖା ।

ଗହଡ଼ବା—ପ୍ରା. (ସମ୍ବ) କ୍ରି. ଘଉଡ଼ବା ।

ଗହଣ—ଗ୍ରା. ବି. ବନ, ରାଜାଦିଙ୍କ ସଙ୍ଗେ ଯିବା ବହୁ ଅନୁଚର, ସମଭିବ୍ୟାହାର ବା ସଙ୍ଗ, ଜନତା, ସମୂହ, ଗଣ,ଦଳ, ପୋଷାକ ।

ଗହଣଲଗାଇବା—ଗ୍ରା, କ୍ରି. ସଦଳବଳହେବା, ଯାହା କରିବାପାଇଁ ବହୁଲୋକଙ୍କ ସହିତ ଯିବା, ଶୋଭାଯାତ୍ରା କରିବା ।

ଗହଣା—ଗ୍ରା. ଅଳଙ୍କାର, ସାଜସଜ୍ଜା, (ପ୍ରା. ଗଞ୍ଜାମ. ବି.) ତେଲ ପେଡ଼ିବାର ଯନ୍ତ୍ର, ଘଣା, ସମୂହ, ଅଟେଇ, ( ପ୍ରା. ସମ୍ବ.ବି) ବନ୍ଧକ ।

ଗହଣାକରିବା—ପ୍ରା. (ସମ୍ବ) କ୍ରି.ଚଳନ୍ତି ସମ୍ପତ୍ତି ବନ୍ଧକଦେବା, (ଗ୍ରା. କ୍ରି) ଅଳଙ୍କାର ଗଢ଼ାଇବା ।

ଗହଣାଗଣ୍ଠି—ଗ୍ରା. ବି. ସମସ୍ତ ପ୍ରକାରର ଅଳଙ୍କାର, ଅଳଙ୍କାରପତ୍ର, ସୁନାରୁପାର ଗହଣା ଓ ତାହା ଗୁନ୍ଥାହୋଇ ଥିବା ସୂତାଦି ।

ଗହଣାପତ୍ର—ଗ୍ରା.ବି.ଗହଣାଗଣ୍ଠି (ଦେଖ) ।

ଗହଦ—ଗ୍ରା. ବି. ଗରମ, ଗମଗମୁଆ ବା ଝାଳବୁହା ଗରମ, (ବିଂ) ଗମଗମୁଆ, ଯେଉଁ ସମୟରେ ନିବାତ ଗ୍ରୀଷ୍ମଯୋଗୁଁ ଭାରି କାହିଲ ଲାଗେ ଓ ଝାଳ ବହେ ।

ଗହଦବ—ପ୍ରା. (ସମ୍ବ)ବି. ଝାଳେଇବା, ଝାଳବହିବା ।

ଗହନ—କ୍ଲୀ.ବି.(ଗାହ + କ.ଅନ)ଜଙ୍ଗଲ, ବନ,ଗହ୍ୱର, (ଅଧି.ଅନ)ଦୁଃଖ,ଯାତନା, ଗହ୍ୱର, ଗମ୍ଭୀରତା, ଗମ୍ଭୀର, ଗଣ୍ଡି, (ପୁଂ.ବି)ପରମେଶ୍ୱର,ବିଂ. (ଗାହ୍ + ମିଁ ଅନ) ଦୁର୍ଗମ, ଦୁଷ୍ପ୍ରବେଶ, ଦୁରୂହ, ଗମ୍ଭୀର, ଦୁର୍ବୋଧ, (ସ୍ତ୍ରୀ) ଗହନା ।

ଗହବା—ଗ୍ରା. ବି. ବଦ୍ଧଲିଆ, ଘନ ।

ଗହବବା—ଗ୍ରା. କ୍ରି. ଫସଲ୍ଭିଯିବା, ଖୁବ୍ ହୃଷ୍ଟପୁଷ୍ଟ ହୋଇ ବଢ଼ିବା ।

ଗହମ—ଗ୍ରା. ବି. ଧାନ୍ୟାଦି ବର୍ଗର ପ୍ରସିଦ୍ଧଶସ୍ୟ, ଗୋଧୂମ । [କାକୁଡ଼ି ।

ଗହମକାକୁଡ଼ି—ଗ୍ରା. ବି. ସୁସ୍ୱାଦୁ ଧଳା

ଗହମନିଦ—ଗ୍ରା. ବି. ଗାଢ଼ନିଦ୍ରା ।

ଗହର—ପ୍ରା. (ବସ୍ତର) ବି. ଗହଳ ।

ଗହରୁ—ଗ୍ରା.ବି. ବିଳମ୍ବ, ଗହରଖର୍ଚ୍ଚ ।

ଗହଳ—ଗ୍ରା. ବି. ଗୋଳମାଳ, ବହୁଲୋକ ସମାଗମଜନିତ ଗଣ୍ଡଗୋଳ, ପ୍ରାଚୁର୍ଯ୍ୟ, ସମଭିବ୍ୟାହାର, ସଙ୍ଗ, (ଗ୍ରା. ବିଂ) ଘନ, ନିବିଡ଼,ଘଞ୍ଚ ।

ଗହଳଚହଳ—ଗ୍ରା.ବି. ଗହଳ (ଦେଖ) ।

ଗହଳା—ପ୍ରା. (ସିଂହଭୂମ ଓ ଧଳଭୂମ) ବି. କୃଷିଜୀବୀ ଶୁଦ୍ରଜାତି ବିଶେଷ ।

ଗହଳାଗହଳି—ଗ୍ରା.ବି. ଅତିଶୟ କୋଳାହଳ । [(ଦେଖ) ।

ଗହଲ—ଗ୍ରା. ବି. ଓ ବିଂ. ଗହଳ

ଗହଡ଼(ର)—ଗ୍ରା. ବି. ବଡ଼ ଖାତ,ଗାତ, ଗଭୀର ପ୍ରଦେଶ,ସବୁ ନିମ୍ନସ୍ଥାନ,(ଗ୍ରା.ବି) ଗଭୀର ।

ଗହିର—ଗ୍ରା.ବିଂ ଓ ବି. ଗହଡ଼ା (ଦେଖ)

ଗହିରବିଲ—ଗ୍ରା. ବି. ମୌଜାର ନିମ୍ନ ସମତଳ ଅଞ୍ଚଳ, ଯେଉଁ ଅଞ୍ଚଳର ଜଳ ଜମିରେ ଧାନ ଫସଲର ସୁବିଧାହୁଏ ।

ଗହିରିଆ—ଗ୍ରା. ବିଂ. ଅଳ୍ପ ଗଭୀର, ଗହିଡ଼ା, ଗଭୀର ।

ଗହ୍ୱରା—ସ୍ତ୍ରୀ. ବି. ଗହ୍ୱର, ଗୁହା ।

ଗହ୍ୱରିତ—ତ୍ରି. ବିଂ. (ଗହ୍ୱର + ଇତ) ଗୁପ୍ତ, ଲୁକ୍କାୟିତ, କ୍ଷୁବ୍ଧ, ନିମଗ୍ନ ।

ଗହ୍ୱରେଷ୍ଠ—ତ୍ରି. ବିଂ. (ଗହ୍ୱରେ + ସ୍ଥା + ଅ) ଯେ ଗହ୍ୱରରେ ଲୁଚିଅଛି ।

ଗା—ସ୍ତ୍ରୀ.ବି.ଗାଆ, (ଗାତ୍ରଶବ୍ଦଜ)ଶରୀର, ଦେହ ।

ଗା—ପ୍ରା. (ସମ୍ବ) ଅବ୍ୟ. (ଭାଇ, ସମାନ ସ୍କନ୍ଧ ଓ ବନ୍ଧୁଙ୍କୁ ସମ୍ବୋଧନ)ହେ,ଗୋ, ପ୍ରା, (ସିଂହଭୂମ) ଗୁଡ଼ାକ ।

ଗାଆଁ—ଗ୍ରା. ବି. ଗ୍ରାମ ।

ଗାଆଁପରମଲ—ଗ୍ରା.ବି. ଗ୍ରାମର ମହାତ୍ମ୍ୟ ବା ସୁଖ୍ୟାତି ।

ଗାଆଁମୁଣ୍ଡ—ଗ୍ରା. ବି. ଗ୍ରାମର ପ୍ରାନ୍ତ ।

ଗାଆଁମୁଣ୍ଡିଆ—ଗ୍ରା. ବିଂ. ଗ୍ରାମପ୍ରାନ୍ତରେ ଅବସ୍ଥିତ ।

ଗାଆଣ—ଗ୍ରା.ବି.(ସଂ-ଗାନ)ଗାନ, ଗୀତ ଗାଇବା, ଗୀତ, (ଗାୟକ ଦେଖ) ।

ଗାଆଣବଜାଣ—ଗ୍ରା. ବି. ଗୀତ ଓ ବାଦ୍ୟ ଗାନ କରିବା ଓ ବାଦ୍ୟ ବଜାଇବା ।

ଗାଆଣିଆ—ଗ୍ରା. ବି. ଗାୟକ ।

ଗାଆଣୀ—ଗ୍ରା. ବି. ସ୍ତ୍ରୀ. ( ସଂ-ଗାୟିନୀ ) ଗାୟିକା, ରାଜାନ୍ତଃପୁରରେ ଥିବା ଗୀତ ବୋଷାରିବା ଦାସୀ, ଗ୍ରା. ସ୍ତ୍ରୀ. ବିଂ. ଗୀତ ଗାଇବାରେ ସୁନିପୁଣା ।

ଗାଇଁଗୁଇଁ ହେବା, ଗାଇଁଶ୍ ଗୁଇଁଶ୍ ହେବା—ଗ୍ରା.କ୍ରି. କୌଣସି କାର୍ଯ୍ୟ କରିବାକୁ ଅନିଚ୍ଛା ପ୍ରକାଶ କରିବା ।

ଗାଇଗିଲ—ଗ୍ରା. ବି. ଗଲଜାତୀୟ କଣ୍ଟାଯୁକ୍ତ ଏକପ୍ରକାର ଲଟାଳିଆ ଗୁଳ୍ମ ।

ଗାଇକୋବାଡ଼—ବରୋଦା ରାଜବଂଶର ନାମ ।

ଗାଇଗେଣ୍ଡୋଲସ୍ୱା—ଗ୍ରା.ବି. ଗେଣ୍ଡୋଲସ୍ୱାନାମକ ଗୁଳ୍ମ ।

ଗାଇଗୋବସ୍—ଗ୍ରା.ବି.(ବୈଦ୍ୟକ) ବୃକ୍ଷବିଶେଷ ।

ଗାଈଚରି — ଗ୍ରା.ବି. ଗଡ଼ାବଗି (ଦେଖ) ।

ଗାଇବା — ଗ୍ରା. କ୍ରି. (ସଂ-ଗୈଧାତୁ) ଗାନ କରିବା, ଗୀତବୋଲିବା, ପଦ୍ୟ ଆବୃତ୍ତି କରିବା, ବାହୁଲ୍ୟ କରି କହିବା, ବାରମ୍ବାର କହିବା, ନାମଗାନ କରିବା ।

ଗାଈ — ଗ୍ରା. ସ୍ତ୍ରୀ. ବି. (ସଂ-ଗବୀ) ଗାଈଗୋରୁ, ଗୁଆ ଫଳର ଦଶଗୋଟି ସଂଖ୍ୟା ।

ଗାଈଅଇଲାବେଳ — ଗ୍ରା.ବି. ସନ୍ଧ୍ୟାବେଳେ ଗୋଠରୁ ଗାଈଗୋରୁ ଫେରିଆସୁଥିବା ସମୟ, ଗୋଧୂଳି ସମୟ ।

ଗାଈଆ — ଗ୍ରା. ବିଂ. ଗାଈର ସେବାରେ ନିଯୁକ୍ତ, ଗାଈପରି ଶ୍ଳେଷ୍ଠ ଆକୃତିବିଶିଷ୍ଟ, ଗାଈଠାରୁ ଉତ୍ପନ୍ନ ।

ଗାଈଆଳ — ଗ୍ରା.ବି.(ସଂ-ଗବୀପାଳ) ଗାଈରଖୁଆଳ, ଗାଈକୁ ଯେ ଜଗେ ।

ଗାଈକଅଁଳେଇବା — ଗ୍ରା.ବି. ଗାଈ ପ୍ରସବ କରିବା ।

ଗାଈକଟା — ଗ୍ରା. ବି. (ଗାଳି) ଯେ ଖାଦ୍ୟ ନିମନ୍ତେ ଗୋରୁ ହାଣେ, (ଗ୍ରା. ବି.) ଗାଈକୁ ହାଣିବା, ଗୋଘାତକ, ଯେ ହିନ୍ଦୁ ନୁହେ ।

ଗାଈଗଙ୍ଗା — ଗ୍ରା. ବିଂ. ଅତି ପବିତ୍ର ଓ ଧାର୍ମିକ (ଲୋକ), ଯେ ଗାଈ ଓ ଗଙ୍ଗାପରି ଅତି ନିଷ୍ପାପ ।

ଗାଈଗାଧୁଆ — ଗ୍ରା. ବି. ଦୋଳପୂର୍ଣ୍ଣିମୀଦିନ ଗଉଡ଼ମାନେ ଗାଈମାନଙ୍କୁ ଗାଧୋଇଦେବା ରୂପ ଉତ୍ସବ ।

ଗାଈଗୋଠ — ଗ୍ରା. ବି. ବହୁସଂଖ୍ୟକ ଗାଈଙ୍କର ଏକତ୍ରାବସ୍ଥିତି, ଗାଈମାନଙ୍କର ରହିବା ସ୍ଥାନ, ଗୋଗୋଷ୍ଠ, ଗୋଚରଣ ସ୍ଥଳ ।

ଗାଈଗୋରୁ — ଗ୍ରା.ବି. (ସହଚର) ଗାଈ, ବଳଦ, ବାଛୁରି, ଷଣ୍ଢ଼ଆଦି ।

ଗାଈଚରାଇବା — ଗ୍ରା. କ୍ରି. ଗାଈ ପଡ଼ିଆରେ ଘାସ ଆଦି ଚରିବା ସମୟରେ ତା ପଛେ ପଛେ ଦୃଷ୍ଟି ରଖିବା ।

ଗାଈଜଗୁଆଳ — ଗ୍ରା. ବି. ଯେଉଁଲୋକ ବା ଭୃତ୍ୟ ଗାଈମାନଙ୍କୁ ଚରାଇବାକୁ ନିଏ ।

ଗାଈଦୁହିଁବା — ଗ୍ରା. କ୍ରି. ଗାଈଠାରୁ ଦୁଧ ଦୋହନ କରିବା ।

ଗାଈଧରା — ଗ୍ରା. ବି. ଗାଈ ପ୍ରସବ କରିବା ପରେ ଦୁଧ ଦୁହିଁବାବେଳେ ନାତ ମାଇଲେ ବା ଦୁଷ୍ଟାମି କଲେ ଗଉଡ଼ମାନେ ତା ଯୋନି ଦ୍ୱାରରେ ମୁହଁ ଲଗାଇ ତା ପେଟକୁ ଫୁଙ୍କିବା ରୂପ ନୃଶଂସପ୍ରଣାଳୀ ।

ଗାଈଧରିବା — ଗ୍ରା.କ୍ରି. ନବପ୍ରସୂତା ଗାଈକୁ ଆୟତ୍ତ କରିବାପାଇଁ ତା ପେଟଭିତରେ ମୁହଁଦ୍ୱାରା ପବନ ଫୁଙ୍କିବା ।

ଗାଈପଲ — ଗ୍ରା. ବି. ବହୁସଂଖ୍ୟକ ଗାଈଙ୍କର ଏକତ୍ରାବସ୍ଥିତି ।

ଗାଈଫିଟାବେଳ — ଗ୍ରା. ବି. ସକାଳପ୍ରହର ।

ଗାଈବଗୁଲା — ଗ୍ରା. ବି. ଏକପ୍ରକାର ଧଳା ବଗ ।

ଗାଈବତରପଡ଼ିବା — ଗ୍ରା. ବି, ଗାଈ ଋତୁ- [ମତ୍ତ ହେବା ।

ଗାଈବଳଦ — ଗ୍ରା. ବି. ଗାଈ, ବଳଦ, ବାଛୁରି, ଷଣ୍ଢ଼ଆଦି ।

ଗାଈବିଗାଡ଼ିବା — ଗ୍ରା. କ୍ରି. ଦୁଧ ଦୁହିଁବାବେଳେ ଦୁଗ୍ଧବତୀ ଗାଈ ଅସ୍ଥିର ହେବା ଓ ନାତ ଉଠାଇ ଦୁଧ ଦୁହିଁଇ ନ ଦେବା ଏ ଉଦ୍ଦେଶ୍ୟରେ ଗାଈପ୍ରତି ମନ୍ତ୍ର ଯନ୍ତ୍ର ବା ଔଷଧି ପ୍ରୟୋଗ କରିବା ।

ଗାଈବର୍ଷିବା — ଗ୍ରା. ବି. ଦୁହାଁଳୀ ଗାଈ କେତେକ ସମୟ ଦୁଧ ଦେବାପରେ ତାହାର ଦୁଧର ପରିମାଣ କମିଆସିବା ।

ଗାଈରଖୁଆଳ — ଗ୍ରା. ବି. ଗାଈ ଜଗୁଆଳ (ଦେଖ) ।

ଗାଈଲେଉଟାଇବା — ଗ୍ରା. ବି. ଥରେ ବୃଷସଙ୍ଗମପରେ ଗାଈ ଗର୍ଭବତୀ ନ ହୋଇ ପୁନର୍ବାର ଋତୁମତ୍ତ ହେବା ।

ଗାଈହମାଳିବା — ଗ୍ରା. ବି. ଗାଈର ବୋବାଳି ।

ଗାଉଁକିନି — ଗ୍ରା. କ୍ରି. ବିଂ. କୁକୁର ବାଘ ଇତ୍ୟାଦି ଆକ୍ରମଣ କରୁଥିବା ଜନ୍ତୁକୁ ମାଡ଼ି ବସିବାବେଳେ ଶବ୍ଦ କରିବା ପ୍ରକାର ।

ଗାଉଁଗାଉଁ — ଗ୍ରା. ଅବ୍ୟ. (ଧ୍ୱନ୍ୟନୁକରଣ) କୁକୁର ଆଦିଙ୍କର ଅସନ୍ତୋଷ ବା କ୍ରୋଧ ସୂଚକ ମୁହୁର୍ମୁହୁ ଉଚ୍ଚାରିତ ଶବ୍ଦ ।

ଗାଉଁଗାଉଁହେବା — ଗ୍ରା. କ୍ରି. ବିରକ୍ତ ହୋଇ ଅସ୍ପଷ୍ଟ ଧ୍ୱନି କରିବା ।

ଗାଉଁଲି ଗାଁ — ଗ୍ରା.ବି. ପଲ୍ଲିଗ୍ରାମ, (ଗ୍ରା.ବିଂ) ଗ୍ରାମ୍ୟ, ପଲ୍ଲିଗ୍ରାମବାସୀ, ମଫସଲିଆ, ଓଲୁ, ନିର୍ବୋଧ ।

ଗାଉଁଲି — ଗ୍ରା.ବିଂ. (ସଂ-ଗ୍ରାମ୍ୟ) ଗ୍ରାମ୍ୟ, ଗ୍ରାମସମ୍ବନ୍ଧୀୟ, ଗ୍ରାମବାସୀ, ମଫସଲି (ଲୋକ), ଅମାର୍ଜିତ, ସରଳପ୍ରକୃତିକ ।

ଗାଉଁଲିଆ — ଗ୍ରା. ବି. ଗ୍ରାମବାସୀବ୍ୟକ୍ତି, ମଫସଲିଆଲୋକ, ଓଲୁଲୋକ, (ଗ୍ରା.ବିଂ) ଗାଉଁଲି (ଦେଖ) ।

ଗାଉଣା — ଗ୍ରା. ବି. (ସଂ-ଗାନ) ଗାନ, ଗୀତଗାଇବା, ଗୀତ ।

ଗାଉଣାବାଜଣା — ଗ୍ରା ବି. (ଦ୍ୱନ୍ଦ୍ୱ) ଗାଆଣ ବଜାଣ (ଦେଖ) ।

ଗାଉଣାବାଜ୍ — ଗ୍ରା. ବିଂ. ସଙ୍ଗୀତପ୍ରିୟ ।

ଗାଉତକିଆ — ଗ୍ରା. ବି. ଆଉଜି କରି ବସିବା ନିମନ୍ତେ ବଡ଼ମାଣ୍ଡି ।

ଗାଉନ୍ — ଗ୍ରା. ବି. ଇଉରୋପୀୟ ସ୍ତ୍ରୀଲୋକଙ୍କ ଘାଗରା; ଜଜ୍, ଓକିଲ ଓ ବାରିଷ୍ଟରମାନେ ପୋଷାକ ଉପରେ ଆଚ୍ଛାଦନ କରୁଥିବା କଳା କନାରେ ତିଆରି ଲମ୍ବା ଢିଲା କୁର୍ତ୍ତା ।

ଗାଉନ୍ତିଆ — ପ୍ରା. (ସମ୍ବ) ବି. ଗଅଁତିଆ (ଦେଖ), ସମ୍ବଲପୁର ଅଞ୍ଚଳର ଉପାଧିବିଶେଷ ।

ଗାଉନ୍ତିଆଲିମୌଜା — ପ୍ରା. (ସମ୍ବ) ବି. ଯେଉଁ ମହଜାରେ ଗାଉନ୍ତିଆ ପ୍ରଜାମାନଙ୍କଠାରୁ ରାଜସ୍ୱ ଅସୁଲ୍‌କରି ଗଭର୍ଣ୍ଣମେଣ୍ଟଙ୍କ ନିକଟରେ ଦାଖଲ କରେ ।

ଗାଏ — ଗ୍ରା. ଅବ୍ୟ. ସର୍ବମୋଟ ।

ଗାଏଁଗାଏଁ — ଗ୍ରା. ଅବ୍ୟ. ଗ୍ରାମେ ଗ୍ରାମେ, ଏକ ଗ୍ରାମରୁ ଅନ୍ୟ ଗ୍ରାମକୁ, ଅନେକ ଗ୍ରାମର ମଧ୍ୟଦେଇ, ଗ୍ରାମଦାଣ୍ଡଦେଇ ।

ଗାଏକରିବା — ଗ୍ରା. କ୍ରି. କେତେଗୁଡ଼ିଏ ସଂଖ୍ୟାକୁ ମୋଟ କରିବା ।

ଗାଏଣୀ—ଗ୍ରା. ସ୍ତ୍ରୀ. ବି. ( ସଂ-ଗାୟିକା ) ଗାଆଣୀ (ଦେଖ) ।
ଗାଉଁ—ଗ୍ରା.(ବସ୍ତର ଓ ଭଞ୍ଜି)ବି. ଗ୍ରାମ, ଗାଆଁ ।
ଗାଁ—ଗ୍ରା.ବି. (ସଂ-ଗ୍ରାମ) ଗ୍ରାମ, ଜନପଦ, ପଲ୍ଲୀ, ଧୋବା ଓ ଭଣ୍ଡାରି ଆଦି ସେବାକାରୀମାନେ ଯେଉଁ ସକଳ ପରିବାର ସେବା କରନ୍ତି ସେ ସବୁର ସମଷ୍ଟି ।
ଗାଁଜନିଆ—ଗ୍ରା. ସ୍ତ୍ରୀ. ବି. ଆପଣାଗ୍ରାମର ଅବିବାହିତା ବାଳିକା ।
ଗାଁଗାଁ—ଗ୍ରା.ଅବ୍ୟ. ଗାଏଁ ଗାଏଁ (ଦେଖ)।
ଗାଁଗାଁକେ—ଗ୍ରା. ବି. ଭିନ୍ନ ଭିନ୍ନ ଗ୍ରାମରେ, ପ୍ରତିଗ୍ରାମରେ ।
ଗାଁ-ଗଣ୍ଡା—ଗ୍ରା. ବି. (ସମ୍ବଲପୁର) ଧୋବା ଭଣ୍ଡାରିଙ୍କ ସେବିତ ଗ୍ରାମବାସୀ ପରିବାରବର୍ଗଙ୍କ ସମଷ୍ଟି, ମଫସଲ ଅଞ୍ଚଳ ।
ଗାଁବ—ଗ୍ରା. (ବସ୍ତର) ବି. ଗାଁ, ଗ୍ରାମ ।
ଗାଁମା—ଗ୍ରା (ସମ୍ବଲ)ବି. ଗ୍ରାମଦେବତା ।
ଗାଁମାକୁପାଏନ୍‌ଧାରିକରିବା—ଗ୍ରା. (ସମ୍ବ) କ୍ରି. ଗ୍ରାମରେ ମାରୀଭୟ ଆଦି ଉପସ୍ଥିତ ହେଲେ ଗ୍ରାମଦେବତାଙ୍କୁ ପାଣି ଫୁଲ-ଲଗି ବା ମାଜଣା କରିବା ।
ଗାଁରେ ବାଡ଼—ଗ୍ରାମବାସୀମାନଙ୍କମଧ୍ୟରେ ହୋଇଥିବା ଦଳ ।
ଗାଗ୍‌ବା—ଗ୍ରା. (ବସ୍ତର) କ୍ରି. କାନ୍ଦିବା ।
ଗାଗର—ଗ୍ରା. ବି. ଏକଜାତୀୟ କାତ ନ ଥିବା ମାଛ ।
ଗାଗରି—ଗ୍ରା. (ମେଦିନୀ) ବି. ପିତଳର ଗରା ବା ମାଠିଆ ।
ଗାଗ୍ରବ—ଗ୍ରା. ବି. (ସଂ-ଗାର୍ଗ୍ୟ) ଯଦୁବଂଶର କୁଳଗୁରୁ ଗର୍ଗମୁନିଙ୍କର ପୁତ୍ର ।
ଗାଙ୍ଗ—ପୁଂ. ବି. ( ଗଙ୍ଗା+ଅ ) ଭୀଷ୍ମ, ଗଙ୍ଗାଙ୍କର ପୁତ୍ର, କାର୍ତ୍ତିକେୟ,ଇଲିଶିମାଛ, (ବିଂ) ଗଙ୍ଗାସମ୍ବନ୍ଧୀୟ, ଗଙ୍ଗାଜାତ, (ସ୍ତ୍ରୀ)ଗାଙ୍ଗୀ କ୍ଲୀ. ସ୍ୱର୍ଣ୍ଣ, ଧୁସ୍ତୁରବିଶେଷ, ମେଘନିଃସୃତ ଜଳବିଶେଷ, ନଦୀର ତଟାଦି, ଚନ୍ଦ୍ରବଂଶୀୟ ଜଣେ ରାଜା ।
ଗାଙ୍ଗଟ—ପୁଂ. ବି. (ଗଙ୍ଗା+ଅଟ୍+କ, ଅ) ମତ୍ସ୍ୟବିଶେଷ, ଚଙ୍ଗୁଡ଼ିମାଛ, ଗଣିଆ ଚୋଡ଼ ମାଛ ।
ଗାଙ୍ଗପୁର—ଗ୍ରା. ବି. ରାଜସ୍ଥାନର ସ୍ଥାନବିଶେଷ ।
ଗାଙ୍ଗବ—ଗ୍ରା. ବି. ଭୀଷ୍ମଦେବ ।
ଗାଙ୍ଗୟବେଣା—ଗ୍ରା. ବି. ନଦୀତୀରସ୍ଥିତଜାତ ତୃଣବିଶେଷ, ଗାଂବେଣା ।
ଗାଙ୍ଗାଟ—ବି. (ଗଙ୍ଗା+ଅଟ୍+କ,ଅ) ଗାଙ୍ଗଟ (ଦେଖ) ।
ଗାଙ୍ଗାୟନ—ପୁଂ.ବି. ଭୀଷ୍ମ,କାର୍ତ୍ତିକେୟ, ପ୍ରବର ଋଷିଭେଦ । [ବିଶେଷ ।
ଗାଙ୍ଗିନୀ—ସ୍ତ୍ରୀ. ବି. ଗଙ୍ଗାର ଶାଖାନଦୀ-
ଗାଙ୍ଗୀ—ଗ୍ରା. ସ୍ତ୍ରୀ. ବି. ଗଙ୍ଗାଦେବୀ ।
ଗାଙ୍ଗେୟ—ପୁଂ.ବି. (ଗଙ୍ଗା+ଏୟ)ଭୀଷ୍ମ, କାର୍ତ୍ତିକେୟ, ଇଲିଶିମାଛ, (କ୍ଲୀ) ସ୍ୱର୍ଣ୍ଣ, ଧୁସ୍ତୁର, କେଶୁର ତୃଣ, ମୁଥା, ଭଦ୍ରମୁଥା, ଦୁବ, ଗଙ୍ଗବଣ, (ବିଂ) ଗଙ୍ଗାସମ୍ବନ୍ଧୀୟ, ଗଙ୍ଗାଠାରୁ ଜାତ, ଗଙ୍ଗାରେ ମିଳୁଥିବା ।
ଗାଙ୍ଗେୟମୁସ୍ତକ—ବି. ଗଙ୍ଗାମୁଥା ।
ଗାଙ୍ଗେରୁକ—କ୍ଲୀ.ବି. ଗୋରଖ ଗୃହଳର ମଞ୍ଜି, ଗରଗଡ଼ ମଞ୍ଜି ।
ଗାଙ୍ଗେରୁକା—ସ୍ତ୍ରୀ. ବି. ଗୋରଖ ଗୃହଳ, ଗରଗଡ଼ । [ଗୃହଳ ।
ଗାଙ୍ଗେରୁସ୍ତ—ସ୍ତ୍ରୀ.ବି. ନାଗବଳା,ଗୋରଖ
ଗାଙ୍ଗେଷ୍ଟୀ—ସ୍ତ୍ରୀ. ବି. କଟ ଶର୍କରା, ନଟା, ଗୁଡ଼ ।
ଗାଙ୍ଗୋଇ—ଗ୍ରା.ବି. ମାଛରଙ୍କା ଚଢ଼େଇ ।
ଗାଙ୍ଗୌଘ—ପୁଂ. ବି. ଗଙ୍ଗାସ୍ରୋତ ।
ଗାଙ୍ଗ୍ୟ—ବି. ବିଂ. (ଗଙ୍ଗା+ଯ)ଗଙ୍ଗାକୂଳସମ୍ବନ୍ଧୀୟ ।
ଗାଜର—ଗ୍ରା. ବି. (ସଂ-ଗର୍ଜର) ଗୃଞ୍ଜନ, ଗର୍ଜ୍ଜର,ମୂଳାଜାତୀୟ ଖାଦ୍ୟମୂଳବିଶେଷ ।
ଗାଜ—ଯା.ବି.ଯୋଦ୍ଧା,ବୀର,ମୁସଲମାନମାନଙ୍କର ଗୋଟିଏ ସମ୍ପ୍ରଦାୟ ।
ଗାଜଦେବା—ଗ୍ରା. କ୍ରି. ଖାମିନ୍ଦର କଥାକୁ ଏଡ଼ିଦେବା ବା ଅବଜ୍ଞା କରିବା ।
ଗାଜପୁର—ଉ: ପ: ବାରାଣସୀର ଗୋଟିଏ ଜିଲ୍ଲା ।
ଗାଜିବା—ଗ୍ରା. କ୍ରି. (ସଂ-ଗର୍ଜ)ବନ୍ଧୁକରେ ବା ବାଣରେ ବାରୁଦ ଖୁନ୍ଦିଲାଭଳି ଖୋଦିବା,ବହୁପରିମାଣରେବର୍ଷାକରିବା, ଖୁବ୍ ମାଡ଼ଦେବା, ଗର୍ଜନ କରିବା ।
ଗାଞ୍ଜ—ଗ୍ରା. ବି. କଳସୀ ମୁହଁର ବଣ୍ଡା, ବାରୁଦ ଖୁନ୍ଦିବାର ବ୍ୟବହୃତ କାଷ୍ଠଦଣ୍ଡ ।
ଗାଞ୍ଜିଆ—ଗ୍ରା.ବି. (ସଂ-ଗଞ୍ଜ)ଯେଉଁ ସରୁ ଲମ୍ବା ଜାଲମୁଣିରେ ଟଙ୍କା ପଇସା ରଖି ଲୋକେ ଅଣ୍ଟାରେ ଟ୍ରୁଲନ୍ତି ।
ଗାଞ୍ଜିକାୟ—ପୁଂ. ବି. ବାର୍ତ୍ତିକ ପକ୍ଷୀ ।
ଗାଟ୍—ଗ୍ରା. ଯା. ବି ରାଜକୀୟ ଧନ ବା ବ୍ୟକ୍ତିଙ୍କୁ ରକ୍ଷାକରିବା ନିମନ୍ତେ ନିଯୁକ୍ତ ପ୍ରହରିଦଳ, ଚଳୁଥିବା ରେଲ୍‌ଗାଡ଼ିର ତତ୍ତ୍ୱାବଧାୟକ କର୍ମଚାରୀ ।
ଗାଟ୍‌ର—ଯା. ବି. ମୋଜାକୁ ଗୋଡ଼ରେ ଅଟକାଇ ରଖିବା ନିମନ୍ତେ ଗୋଡ଼ ଚାରିପାଖେ ଗୁଡ଼ାହେବା ଫିତା ।
ଗାଡି—ଗ୍ରା. ବିଂ. କୃପଣ, ଲେଣ୍ଡା ।
ଗାଡୁ—ଗ୍ରା. (ଗଞ୍ଜାମ) ବି. ବନ୍ଧ ।
ଗାଡ଼—ଗ୍ରା. ବି. ଗାତ,ଗର୍ତ୍ତ ଛିଦ୍ର, କଣା, ଗ୍ରା.(ସମ୍ବ) ବିଂ. ଗଭୀର ।
ଗାଡ଼ଭାଲୁ—ଗ୍ରା. ବି. ଭୂମିରେ ଗର୍ତ୍ତକରି ରହିବା ଏକପ୍ରକାର ଛୋଟ ଭାଲୁ ।
ଗାଡ଼ର—ଗ୍ରା. ବି. ମେଣ୍ଢା, ପୁରୁଷଜାତୀୟ ମେଷ ।
ଗାଡ଼ର୍ଓ୍ୱାନ୍—ଯା.ବି. ରଥଚାଳକ,କୋଚମାନ୍, ଶଗଡ଼ିଆ ।
ଗଡ଼ା—ଗ୍ରା. (ଗଞ୍ଜାମ) ବି. ଏକପ୍ରକାର ପିତଳ ଗରା ।
ଗାଡ଼ି—ଗ୍ରା. ବି. ରଥ, ଶଗଡ଼, ବଗି, ରେଲ୍‌ଗାଡ଼ି, ମଟରଗାଡ଼ି ।
ଗାଡ଼ିଆନ୍—ଯା.ବି.ପାଗଳ ବା ନାବାଳକର ଶରୀର ଓ ସମ୍ପତ୍ତି ରକ୍ଷକ ବ୍ୟକ୍ତି,ମୁରବୀ, ଗୃହ ବା ପରିବାରର କର୍ତ୍ତା,ଅଭିଭାବକ ।
ଗାଡ଼ିଆ—ଗ୍ରା. ବି. କ୍ଷୁଦ୍ର ଜଳାଶୟ ।
ଗାଡ଼ିଅଡ୍ଡା—ଗ୍ରା. ବି. ଯେଉଁ ନିର୍ଦ୍ଦିଷ୍ଟ ସ୍ଥାନରେ ଭଡ଼ାଗାଡ଼ିମାନ ଭଡ଼ା ପ୍ରତୀକ୍ଷାରେ ଅପେକ୍ଷା କରୁଥାଏ ।

**ଗାଡ଼ିକ**—ଗ୍ରା. ବି°. ଏକଗାଡ଼ିମାତ୍ର ।

**ଗାଡ଼ିଗାଡ଼ି**—ଗ୍ରା. ଅବ୍ୟ. ଶଗଡ଼ ଶଗଡ଼, ବହୁତ ଶଗଡ଼ରେ ପୂର୍ଣ୍ଣ ।

**ଗାଡ଼ିଗ୍ଲକ୍**—ପ୍ରା. (ବସ୍ତର) ବି. ଅଖ ।

**ଗାଡ଼ିବା**—ଗ୍ରା. ବି. ଗାତରେ ପୋତିବା, ଗ୍ୱନ୍ଧୁଆ ତମ୍ବୁଆଦି ଖଟାଇବା ।

**ଗାଡ଼ିଯୋଚିବା**—ଗ୍ରା. କ୍ରି. ଗାଡ଼ିକୁ ଟାଣିବା ନିମନ୍ତେ ଜନ୍ତୁଙ୍କୁ ଗାଡ଼ିରେ ଲଗାଇବା ।

**ଗାଡ଼ିବାଲ**—ଗ୍ରା. ବି. ଯାହାର ଗାଡ଼ିଅଛି, ଗାଡ଼ିର ଅଧିକାରୀ, ଗାଡ଼ିର ଗ୍ଳଳକ ।

**ଗାଡ଼ୁଆ**—ଗ୍ରା. ବି°. ଗର୍ତ୍ତିମସ୍ଥ, ଗମ୍ଭୀର, ଯେ ଗର୍ତ୍ତିରେ ବାସକରେ ।

**ଗାଡ଼ୁଆନ୍**—ଗ୍ରା.ବି. ଯେ ଗାଡ଼ି ଚଳାଏ, କଚୁଆନ୍ । [ଭିବ ।

**ଗାଡ଼ୁଲ୍ୟ**—କ୍ଲୀ.ବି.(ଗଡ଼ୁଳ + ଯ)ଗଡ଼ୁଳର

**ଗାଢ଼**—ବି°. (ଗାହ୍ + ର୍ମ, ତ)ଆକ୍ରାନ୍ତ, ସେବିତ, ନିମଗ୍ନ, (ଗାହ + କ,ତ)ଦୃଢ଼, ଘନ, ଅତିଶୟ. ନିବିଡ଼, ଗମ୍ଭୀର,ନିମଗ୍ନ, ମନୋଯୋଗବିଶିଷ୍ଟ, (ଗ୍ରା.ବି°) ଶ୍ରେଷ୍ଠ, ପ୍ରଧାନ, (କ୍ରି. ବି°) ଅତିଶୟ ରୂପେ, ଦୃଢ଼ଭାବେ ।

**ଗାଢ଼କର୍ଣ୍ଣ**—ବି. (କ. ଧା) ମନୋଯୋଗ ପୂର୍ବକ ଶୁଣୁଥିବା କାନ ।

**ଗାଢ଼କେଶ**—ବି. (କ. ଧା) ଘନକେଶ, (ପୁଂ.ବି°.ବ.ବ୍ରୀ) ଯାହାର କେଶ ଘନ ।

**ଗାଢ଼ତା(ତ୍ୱ)**—କ୍ଲୀ. ସ୍ତ୍ରୀ. ବି.(ଗାଢ଼ + ତା ତ୍ୱ)ଦାର୍ଢ୍ୟ,କାଠିନ୍ୟ,ଘନତ୍ୱ,ଆତିଶଯ୍ୟ ।

**ଗାଢ଼ନିଦ୍ରା**—ବି°. (କ.ଧା) ଘୋରନିଦ୍ରା, ଗଭୀର ନିଦ୍ରା ।

**ଗାଢ଼ପ୍ରବାସ**—ବି° (କ. ଧା) ବହୁକାଳ ବିଦେଶ ବାସ ।

**ଗାଢ଼ପ୍ରୀତି**—ବି.(କ.ଧା)ଅଚ୍ଛେଦ୍ୟ ପ୍ରେମ, ପାଣି ନ ଗଳିବା ପ୍ରୀତି ।

**ଗାଢ଼ମୁଷ୍ଟି**—ପୁଂ.ବି. (ବ.ବ୍ରୀ) ଖଡ଼୍ଗ, କୃପାଣ, (ବି°.ବ.ବ୍ରୀ) କୃପଣ, କଞ୍ଜୁଷ, ଚପା, (ବି) ଶକ୍ତ ବା ଦୃଢ଼ରୂପେ ମୁଠା କରାଯାଇଥିବା କରତଳ ଓ ଅଙ୍ଗୁଳିଚୟ, ଦୃଢ଼ବଦ୍ଧ ମୁଷ୍ଟି ।

**ଗାଢ଼ମୈଥୁନ**—ବି.(କ.ଧା) ଗାଢ଼ାଲିଙ୍ଗନ ସହିତ ସ୍ତ୍ରୀ ସହବାସ ।

**ଗାଢ଼ା**—ଗ୍ରା.ବି°. ବସିଯାଇଥିବା, କାଠୁଆ, ବହଳିଆ, ଘନ, (ତରଳ ପଦାର୍ଥପ୍ରତି ପ୍ରଯୁଜ୍ୟ) ।

**ଗାଢ଼ାପୁରୀ**—ବୋମ୍ବାଇ ବନ୍ଦର ନିକଟ-ବର୍ତ୍ତୀ କ୍ଷୁଦ୍ର ଦ୍ୱୀପ ।

**ଗାଢ଼ାବର୍ଟୀ**—ସ୍ତ୍ରୀ ଚତୁରଙ୍ଗ କ୍ରୀଡ଼ାମଧ୍ୟରୁ ଏକତମ ।

**ଗାଢ଼ାଲିଙ୍ଗନ**—ବି.(କ.ଧା)ଦେହକୁ ଦେହ ଲଗାଇ ଜୋରରେ ବା ଚପିଚାପି କରି କୁଣ୍ଢାଇବା, ଅନ୍ୟର ଶରୀରକୁ ଆଣ୍ଠରେ ଭିଡ଼ିବା ।

**ଗାଢ଼ୁଆ**—ଗ୍ରା. ବି°. କଠିନ, କାଠୁଆ, କୃପଣ, ନିଷ୍ଠୁର, ଆଣ୍ଠ ।

**ଗାଢ଼ୁଷ୍ଟିକ**—ଗ୍ରା. ବି°. ବିଶେଷ ଧର୍ମ ।

**ଗାଢ଼େ**—ଗ୍ରା. କ୍ରି. ବି°. ଗାଢ଼ ଭାବରେ, ଅତ୍ୟଧିକ, ଅତ୍ୟନ୍ତ, ଦୃଢ଼ତାସହିତ ।

**ଗାଣପତ**—ତ୍ରି. ବି°. (ଗଣପତି + ଅ) ଗଣପତିସମ୍ବନ୍ଧୀୟ, ଗଣପତିଉପାସକ ।

**ଗାଣପତ୍ୟ**—ତ୍ରି. ବି°. (ଗଣପତି + ଯ) ଗଣେଶଉପାସକ, ଗଣେଶ ସମ୍ବନ୍ଧୀୟ, (କ୍ଲୀ.ବି)ଗଣପତିଙ୍କର ଭାବ,ଗଣପତିଙ୍କର ଗଣପତିଭାବତ୍ୱ ।

**ଗାଣିକ**—ପୁଂ. ବି°. ଗଣସୂତ୍ରାଦିପାଠକ, ଗଣସୂତ୍ରକୁଶଳ, ଗଣସୂତ୍ରବେତ୍ତା ।

**ଗାଣିକ୍ୟ**—କ୍ଲୀ.ବି. (ଗଣିକା + ଯ)ବେଶ୍ୟା ସମୂହ, ଗଣିକାସମୂହ ।

**ଗାଣିତିକ**—ପୁଂ. ବି°. (ଗଣିତ + ଇକ) ଗଣିତଶାସ୍ତ୍ରବେତ୍ତା, ଗଣିତସମ୍ବନ୍ଧୀୟ,(ବି) ଗଣିତଶାସ୍ତ୍ରଜ୍ଞ ବ୍ୟକ୍ତି ।

**ଗାଣୀନ**—ପୁଂ. ବି.ସ୍ତ୍ରୀ. ଗଣୀର ଅପତ୍ୟ, ଗଣୀର ସନ୍ତାନ ।

**ଗାଣ୍ଠି**—ଗ୍ରା. ବି. ବହୁତ ଗୁଡ଼ିଏ ଜିନିଷ ବା ଲୁଗାପଟା ଏକତ୍ର ଦୃଢ଼ଭାବରେ ବନ୍ଧା ଯାଇଥିବା ବୋଝଗୁ ବା ଗଣ୍ଠିରି, ଦୃଢ଼ଭାବରେ ଧରିବା, ପୀଡ଼ନ ।

**ଗାଣ୍ଠିବା**—ଗ୍ରା. କ୍ରି. ଦୃଢ଼ ବା ଗାଢ଼-ଭାବରେ ଧରିବା, ଜାବୁଡ଼ିବା, ଘୂରିଆଡ଼ ଚପିବା, କାବୁ କରିବା, ଅବଶକରିବା, ଜବତ କରିବା ।

**ଗାଣ୍ଡି**—ସ୍ତ୍ରୀ.ବି. (ଗଣ୍ଡ + ଇ) ଗଣ୍ଠି, ଗ୍ରନ୍ଥି ।

**ଗାଣ୍ଡି**—ଗ୍ରା. ବି. ପିଚ୍ଛ, ଶରୀରର ପଛ ଭାଗ, କୌଣସି ପଦାର୍ଥର ପଛଭାଗ, କୌଣସି ପଦାର୍ଥର ତଳଭାଗ, ଶେଷ-ଭାଗ,ଗିନା, କଂସା ମାଠିଆଆଦି ପାତ୍ରର ତଳଭାଗ, ପେନ୍ଦ, ଗୁହ୍ୟଦ୍ୱାର, ପାୟୁ, ଗୁଦ,(ଅଶ୍ଳୀଳ)ସ୍ତ୍ରୀଜନନେନ୍ଦ୍ରିୟ,ଯୋନି ।

**ଗାଣ୍ଡିଆ**—ଗ୍ରା.ବି.ଗାଣ୍ଡିଆବନ୍ତା (ଦେଖ), (ଅଶ୍ଳୀଳ) ଯେଉଁ ବାଳକ ବା ପୁରୁଷ ସଙ୍ଗେ ଅନ୍ୟପୁରୁଷ ଅସ୍ୱାଭାବିକପ୍ରକ୍ରିୟା ବା ଗୁଦାମୈଥୁନପୂର୍ବକ ସହବାସ କରେ, (ଗ୍ରା. ବି°. ଅଶ୍ଳୀଳ) ଅସ୍ୱାଭାବିକ ପ୍ରକ୍ରିୟାରେ ଗୁଦମୈଥୁନଦ୍ୱାରା ଅନ୍ୟ ପୁରୁଷର କାମବୃତ୍ତି ଚରିତାର୍ଥ କର-ବାରେ ନିଯୁକ୍ତ (ବ୍ୟକ୍ତି), ଯେଉଁ ପାତ୍ରର ଗାଣ୍ଡି ବା ବଇଠି ଅଛି, ଅନ୍ୟାୟ (ବୁଝାମଣା), (ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ଯଥା :—ବଡ଼ ଗାଣ୍ଡିଆ) ଅମୁକ ପର ପିଚ୍ଛବିଶିଷ୍ଟ ।

**ଗାଣ୍ଡିଆଭଁସା**—ଗ୍ରା. ବି. ( ଲକ୍ଷଣାର୍ଥ ) ଖୋସାମଦ୍, (ଗ୍ରା.ବି°.) ଖୋସାମଦିଆ, ପ୍ରା.(ସମ୍ବ)ବି°. ଅଣପୁରୁଷା, ଅମନୁଷ୍ୟ ।

**ଗାଣ୍ଡିଆଡ଼େ**—ଗ୍ରା. ଅବ୍ୟ, ପଛଆଡ଼େ, ପଶ୍ଚାଭାଗରେ, (ଲକ୍ଷଣାର୍ଥ) ଅଲକ୍ଷ୍ୟରେ ।

**ଗାଣ୍ଡିଆନଶାପ**—ଗ୍ରା.(ଅଶିଷ୍ଟ)ବି.ଗାଣ୍ଡିଆ ବୁଝାମଣା ।

**ଗାଣ୍ଡିଆବନ୍ତା**—ଗ୍ରା. ବି. ଗ୍ଳଲଘରେ ଗ୍ଳଲ ଛପର କରିସାରି ମୂଳ ଗଡ଼ର ନଡ଼ାକୁ ପବନରୁ ରକ୍ଷା କରିବାପାଇଁ ସେହି ଗଡ଼ର ମୂଳରେ ନଡ଼ାକୁ ଚପିକରି ବାନ୍ଧିବାର ବନ୍ତା ।

**ଗାଣ୍ଡିଆବୁଝାମଣା**—ଗ୍ରା. ବି. (ଅଶିଷ୍ଟ) ଅବିଗ୍ଳର, ଅଖାଡ଼ୁଆ ବିଗ୍ଳର, ଅବୁଝା-ମଣା ।

**ଗାଣ୍ଡିଆଖଣ୍ଡ**—ଗ୍ରା. ବି. ପୁରୀଜିଲ୍ଲାର ଖୋର୍ଦ୍ଧା ଅନ୍ତର୍ଗତ କ୍ଷୁଦ୍ର ପର୍ବତବିଶେଷ (ଗ୍ରା. ବି°. ପୁଂ.) (ଅଶ୍ଳୀଳ) ଅସ୍ୱାଭାବିକ ପ୍ରକ୍ରିୟାରେ ଯେ ଗୁଦାମୈଥୁନ କରେ ।

ଗାଣ୍ଡିଏଗାଣ୍ଡିଏ ଲାଗିବା — ଗ୍ରା.କ୍ରି. ଅନ୍ୟ ବ୍ୟକ୍ତିର ପଛେ ପଛେ ରହିବା, କୁକୁର ପରି ଅନ୍ୟ ବ୍ୟକ୍ତିର ପଶ୍ଚାଦ୍ଧାବନ କରିବା ।

ଗାଣ୍ଡିକଚା — ଗ୍ରା. ବି. କୌଣସିବ୍ୟକ୍ତି ବା ବସ୍ତୁକୁ ଉପରକୁ ଉଠାଇ ପୁନର୍ବାର ତଳେ କଚାଡ଼ିଦେବା ବା ଛେଚିଦେବା, କଚାଡ଼ିଦେବା, ଭୂମିରେ ଗାଣ୍ଡି ମାଡ଼ି ବସିଲାଭଳି ପଡ଼ିବା ।

ଗାଣ୍ଡି କଚିବା — ଗ୍ରା.କ୍ରି. (ଅଶିଷ୍ଟ) କୌଣସି ବ୍ୟକ୍ତିକୁ ବସିବା ପରି ଧରି ଭୂମିରେ ତାର ପିଚ୍ଛକୁ ଛେଚି ଦେବା ।

ଗାଣ୍ଡି କନାମୁଣ୍ଡରେ ବାନ୍ଧିବା — ଗ୍ରା. କ୍ରି. (ଲ.ଅର୍ଥ) ଅତିଶୟ ବିରକ୍ତ ହେବା, ଅତ୍ୟନ୍ତ ଚିଡ଼ିଯିବା ।

ଗାଣ୍ଡିକି କଳାସଜାଡ଼ିବା-ଗ୍ରା.କ୍ରି.ଗାଣ୍ଡିକି ମେଖ ସଜାଡ଼ିବା ।

ଗାଣ୍ଡିକି ଗୋଜସଜାଡ଼ିବା — ଗ୍ରା.କ୍ରି.ଗାଣ୍ଡିକି ମେଖ ସଜାଡ଼ିବା ।

ଗାଣ୍ଡିକି ମେଖସଜାଡ଼ିବା — ଗ୍ରା.କ୍ରି.(ଲ.ଅର୍ଥ) କୌଣସି ବ୍ୟକ୍ତିର ଅନିଷ୍ଟ କରିବାର ଉପାୟ କରିବା ।

ଗାଣ୍ଡି ଗଳିପଡ଼ିବା — ଗ୍ରା. ବି. ରୋଗଆଦି ହେତୁରୁ ରୋଗୀ ନ ଜାଣିପାରିବା ଅବସ୍ଥାରେ ତରଳ ମଳ ନିର୍ଗତ ହେବା ।

ଗାଣ୍ଡିଗୁଆ — ଗ୍ରା. ବି. ବର ଚିରକାଳ କନ୍ୟାର ବଶବର୍ତ୍ତୀହୋଇ ରହିବ ଏହି ଆଶାରେ ବିବାହ ସମୟରେ କନ୍ୟାର ପାଟିରେ ଗୋଟିଏ ଗୁଆ କିଛିକାଳ ପୁରାଇରଖି ତାହା କାଢ଼ି ଉକ୍ତ ଗୁଆକୁ ଭାଙ୍ଗି ପାନସଙ୍ଗେ ବରର ଅଜ୍ଞାତରେ ତାକୁ ଖାଇବାକୁ ଦେବାର ରୀତି ଅନୁସାରେ ବରକୁ କନ୍ୟାପକ୍ଷୀୟ ଲୋକେ ବିବାହ ଉତ୍ସବରେ ପାନସଙ୍ଗେ ଖାଇବାକୁ ଦେବା ଗୁଆ,କଳଙ୍କା ଗୁଆ ।

ଗାଣ୍ଡି ଗୁଞ୍ଜିବା — ଗ୍ରା.କ୍ରି.କୌଣସିସ୍ଥାନରେ ଅତି କଷ୍ଟରେ ଅବସ୍ଥାନ କରିବା ।

ଗାଣ୍ଡି ଘଷରାପାଡ଼ିବା — ଗ୍ରା. କ୍ରି. (ବିଶେଷ କୁକୁର,ବିଲୁଆଆଦି) ଝାଡ଼ାଫେରସାରିବା ପରେ ହିଡ଼ଆଦି ଉଚ୍ଚଭୂମି ବା ପଦାକୁ ବାହାରିଥିବା ବସ୍ତୁରେ ଗାଣ୍ଡିକୁ ଘୋଷାରିବା ।

ଗାଣ୍ଡି ଦେଖାଇବା — ଗ୍ରା. କ୍ରି. ଗାଣ୍ଡି ମରାଇବା (ଦେଖ) ।

ଗାଣ୍ଡି ଧକ୍‌ଧକ୍‌ହେବା — ଗ୍ରା. କ୍ରି. ଗାଣ୍ଡି ପୁଚୁ ପୁଚୁ ହେବା (ଦେଖ) ।

ଗାଣ୍ଡିଧୋଇ ନ ଆସିବା — ଗ୍ରା. ବି. ଅତି ଶୈଶବ ଅବସ୍ଥା ଟପି ନ ଥିବା ।

ଗାଣ୍ଡି ଧୋଇବା — ଗ୍ରା. କ୍ରି. ଝାଡ଼ାଫେରିସାରି ଜଳଶୌଚ କରିବା, ଛଅଞ୍ଚିବା ।

ଗାଣ୍ଡି ପଶା — ଗ୍ରା. ପୁଂ. ବିଂ. ପରର ଅନୁସରଣିଆ, ଯେ ସବୁବେଳେ ପରର ବୁଦ୍ଧିରେ ଚଳେ ।

ଗାଣ୍ଡି ପାଡ଼ିବସିବା — ଗ୍ରା. କ୍ରି. ଭୂମିରେ ପିଚ୍ଛିଲଗାଇ ବସିବା, (ଲ.ଅର୍ଥ) କୌଣସି ବିଷୟରେ ଦୃଢ଼ତା ଧରି ରହିବା ।

ଗାଣ୍ଡିପୁଚୁପୁଚୁହେବା — ଗ୍ରା. ବି. ଅତ୍ୟନ୍ତ ଭୟରେ ସଙ୍କୁଚିତ ହେବା, ଅତ୍ୟନ୍ତ ଭୟତ୍ରସ୍ତ କରିବା ।

ଗାଣ୍ଡି ପୋଡ଼ିବା — ଗ୍ରା. ବି. ଲଙ୍କାମରିଚଆଦି ବେଶି ପରିମାଣରେ ଖାଇଲେ ମଳୋତ୍ସର୍ଗ ସମୟରେ ଗୁହ୍ୟ ଦ୍ୱାରରେ ଯନ୍ତ୍ରଣା ବୋଧ ।

ଗାଣ୍ଡି ଫାଟିବା — ଗ୍ରା.ବି. (ଅଶିଷ୍ଟ,ଲ.ଅର୍ଥ) କୌଣସି କାର୍ଯ୍ୟ ସାଧନାରେ ସାହସର ଅଭାବ ଅନୁଭବ କରିବା, ଅତିଶୟ କ୍ଲାନ୍ତହେବା,ଅତ୍ୟନ୍ତ ଭୟତ୍ରସ୍ତ ହେବା ।

ଗାଣ୍ଡି ଫୋଡ଼ — ଗ୍ରା. ବି. ଗୁହ୍ୟଦ୍ୱାର ବା ଛିଦ୍ର ।

ଗାଣ୍ଡିବ,ଗାଣ୍ଡୀବ — ପୁଂ. କ୍ଲୀ. (ଗାଣ୍ଡି+ବ) ଅର୍ଜ୍ଜୁନଙ୍କର ଧନୁ, ଧନୁମାତ୍ର ।

ଗାଣ୍ଡିବଧନ୍ୱା — ପୁଂ.ବି. ବ.ବ୍ରୀ; (ଗାଣ୍ଡିବ+ଧନୁ+ଅନ) ଅର୍ଜ୍ଜୁନ ।

ଗାଣ୍ଡିବୀ — ପୁଂ. ବି. (ଗାଣ୍ଡିବ+ଇନ୍) ଅର୍ଜ୍ଜୁନ, ଧାନୁଷ୍କ, ଅର୍ଜ୍ଜୁନ ବୃକ୍ଷ, ଧନୁର୍ଦ୍ଧର ବ୍ୟକ୍ତି ।

ଗାଣ୍ଡି ବୁଲାଇବା — ଗ୍ରା. କ୍ରି. ଶରୀରକୁ ଘୂର୍ଣ୍ଣନ କରିବା, ଏକସ୍ଥାନରୁ ଅନ୍ୟସ୍ଥାନକୁ ଯିବା ।

ଗାଣ୍ଡି ମରା — ଗ୍ରା. ବି. (ଅଶ୍ଳୀଳ) ଗୁହ୍ୟମୈଥୁନ, ଅସ୍ୱାଭାବିକ ପ୍ରକ୍ରିୟାରେ ବା ଗୁହ୍ୟଦ୍ୱାରବାଟେ ଏକପୁରୁଷର ଅନ୍ୟ ପୁରୁଷସଙ୍ଗେ ସହବାସ (ଗ୍ରା. ବିଂ) ଅସଦୁପାୟରେ ଅର୍ଜିତ ।

ଗାଣ୍ଡିମରାଇବା — ଗ୍ରା. କ୍ରି. (ଅଶ୍ଳୀଳ) ଏକପୁରୁଷ ଅନ୍ୟପୁରୁଷଦ୍ୱାରା ଆପଣାର ଗୁହ୍ୟଦ୍ୱାରବାଟେ ଅସ୍ୱାଭାବିକ ମୈଥୁନ କରାଇବା, (ସ୍ତ୍ରୀ) ପୁରୁଷଦ୍ୱାରା ମୈଥୁନ କରାଇବା, (ଲ.ଅର୍ଥ) ଠକାମିରେ ପଡ଼ିବା, ଓଲୁ ବନିବା, ପଛେ ଅନୁତାପ କରିବାଭଳି କାର୍ଯ୍ୟ କରିବା, ବେକୁବୀ କାମ କରିବା ।

ଗାଣ୍ଡି ମାଡ଼ିବସିବା — ଗ୍ରା.କ୍ରି. ଗାଣ୍ଡି ମାଡ଼ି ବସିବା (ଦେଖ) ।

ଗାଣ୍ଡି ମାରିବା — ଗ୍ରା. କ୍ରି.(ଅଶ୍ଳୀଳ) ଏକ ପୁରୁଷ ଅନ୍ୟ ପୁରୁଷକୁ ଅସ୍ୱାଭାବିକ ପ୍ରଣାଳୀରେ ଗୁହ୍ୟଦ୍ୱାରବାଟେ ମୈଥୁନ କରିବା,ସ୍ତ୍ରୀ ସହବାସକରିବା, (ଲ.ଅର୍ଥ) ଅନ୍ୟକୁ ଠକାଇବା, ଚାନ୍ଦା କାଟିବା, ଗ୍ରା. (ବାଲେ)କ୍ରି. ଦୁଇଜଣ ବସିଥିବା ଅବସ୍ଥାରେ ତୃତୀୟବ୍ୟକ୍ତି ତାଙ୍କମଧ୍ୟରେ ବସିପାରିବ—ଏଥିପାଇଁ ସେ ଦୁହେଁ ବା ତାଙ୍କମଧ୍ୟରୁ ଜଣେ ଘୁଞ୍ଚି ବସିବା, ବସିଥିବାଲୋକ ବସି ବସି ଘୁଞ୍ଚିବା ।

ଗାଣ୍ଡିମୁଣା — ଗ୍ରା. ବି. ପାଇଜାମା, ଗୋଡ଼ ବାଟେ ପିନ୍ଧାଯିବା ପ୍ୟାଣ୍ଟାଲୁନ୍ ।

ଗାଣ୍ଡି ମୁଣ୍ଡ — ଗ୍ରା.ବି. (ବିପରୀତାର୍ଥକ ସହଚର) କୌଣସି କଥାର ଶେଷ ଓ ମୂଳ, ଆଦ୍ୟ ପ୍ରାନ୍ତ ଆଦି ଓ ଅନ୍ତ, ଠିକଣା ସ୍ଥିରତା, କୌଣସି କଥାର ସମାପ୍ତି ବା ଆରମ୍ଭ ।

ଗାଣ୍ଡିରେ ପଶିବା — ଗ୍ରା.କ୍ରି. (ଲ.ଅର୍ଥ) ଅତି ନୀଚଭାବରେ ଖୋସାମଦ କରିବା, ଦାସାନୁଦାସରୂପେ କୌଣସି ବ୍ୟକ୍ତିର ଆଜ୍ଞାବହ ହେବା, କୁକୁରପରି କୌଣସି ବ୍ୟକ୍ତିର ପଛେ ପଛେ ରହିବା ।

ଗାଣ୍ଡି ଶୁଖିବା—ଗ୍ରା.କ୍ରି. (ଲ.ଅର୍ଥ)ଖାଦ୍ୟାଭାବରୁ ଶୀର୍ଣ୍ଣ ଶୀର୍ଣ୍ଣ ହୋଇଯିବା,ଖାଦ୍ୟାଭାବରୁ କୋଷ୍ଠବଦ୍ଧ ହେବା ।

ଗାଣ୍ଡିହୁଡ଼କମ୍ପହେବା—ଗ୍ରା. କ୍ରି. ଗାଣ୍ଡି ସୁରୁସୁରୁ ହେବା (ଦେଖ) ।

ଗାଣ୍ଡୀ—ପୁଂ. ବି. (ଗାଣ୍ଡି+ଈ) ଗ୍ରନ୍ଥି ।

ଗାଣ୍ଡୀର—ବି. ବିଂ. ( ଗାଣ୍ଡୀର+ଅ ) ଗାଣ୍ଡୀର ଶାକସମ୍ବନ୍ଧୀୟ ।

ଗାଣ୍ଡୀବଧନ୍ୱା—ପୁଂ. ବି. ଅର୍ଜ୍ଜୁନ ।

ଗାଣ୍ଡୀବ—ପୁଂ.ବି. ଅର୍ଜ୍ଜୁନ,ମଧ୍ୟମ ପାଣ୍ଡବ, ଅର୍ଜ୍ଜୁନ ଗଛ ।

ଗାଣ୍ଡୁ—ଗ୍ରା. ବି. ଲୁଣିମାଛଙ୍କ ନାହିରୁ ବାହାରିବା ଝାଣ୍ଡୁଆ ମାଂସପିଣ୍ଡ,(ଗାଳିରେ ବ୍ୟବହୃତ) ଅମନୁଷ୍ୟ, ମନୁଷ୍ୟର ଅବୃଷଣ ବଢ଼ିଥିବା ନାଭି,(ଗ୍ରା.ବିଂ) ଯାହାର ବଡ଼ ଗାଣ୍ଡି ବା ପିଚ୍ଛ ଥାଏ, ( ଗାଳି ) ଅମନୁଷ୍ୟ, ଡରକୁଳା, ପରବୁଦ୍ଧିରେ ଚାଳିତ୍ ନିର୍ବୁଦ୍ଧିଆ,ନିକମା, ସ୍ତ୍ରୀ. (ସମ୍ବ) ବିଂ, ଅଣପୁରୁଷ ।

ଗାଣ୍ଡୁଆ—ଗ୍ରା. ବି. ବାଉଁଶରେ ବୁଣା ହୋଇଥିବା ଗୋଲାକୃତ ଚଟକା ଟୋକାଇ ।

ଗାଣ୍ଡେଇବା—ଗ୍ରା. କ୍ରି. ଗାଣ୍ଡିଦ୍ୱାରା ବସିବା, ଭୂମିରେ ବସିକରି ପିଚ୍ଛଭୂମିରେ ଘୋଷାରି ଘୋଷାରି ଏକସ୍ଥାନରୁ ଅନ୍ୟ ସ୍ଥାନକୁ ଘୁଞ୍ଚିବା, କୌଣସି ବ୍ୟକ୍ତିର କଥାକୁ ଖାତିର ନ କରି ତା ଆଡ଼କୁ ପଛ କରିବା, ଆଦେଶକୁ ଏଡ଼ିଦେବା ।

ଗାତ—ଗ୍ରା. ବି. (ସଂ ଗର୍ତ୍ତ) ଗର୍ତ୍ତ, ଛିଦ୍ର, ରନ୍ଧ୍ର, ଶବ ପୋତିବାର ଗର୍ତ୍ତ, କବର, ଗହ୍ୱର ।

ଗାତପଶା—ଗ୍ରା. ପୁଂ. ବିଂ. (ଗାଳି)ଯେଉଁ ବ୍ୟକ୍ତି ଶୀଘ୍ର ମରି ଗାତରେ ପୋତାଯିବ, ଭସ୍ମାନ୍ତ, ଡରୁଆ ।

ଗାତବ୍ୟ—ବି. ବିଂ. (ଗୈ+ର୍ମ୍ପ,ତବ୍ୟ) ଗେୟ, ଗନ୍ତବ୍ୟ, ଗାଇବାର ଯୋଗ୍ୟ, ଯାହା ଗାନକରାହେବ,(ସ୍ତ୍ରୀ)ଗାତବ୍ୟା ।

ଗାତରେ ପଶିବା—ଗ୍ରା. କ୍ରି. ଗାତମଧ୍ୟରେ ପ୍ରବେଶ କରିବା, (ଗାଳି) ମରି ପୋତାହେବା, ମରିବା ।

ଗାତଶୁଆ—ଗ୍ରା.ବିଂ. ପୁଂ. (ଗାଳି) ଯେ ଶୀଘ୍ର ଗାତରେ ଶୋଇବ ।

ଗାତା—ପୁଂ.ବିଂ. (ଗୈ+କ,ତୃ)ଗାୟକ, ଯେ ଗାନକରେ, ଗ୍ୱଗୀ, କୃଷ୍ଣ,(ପୁଂ.ବି) ଗନ୍ଧର୍ବ ।

ଗାତ଼ଗତିକ—ବି.ବିଂ. ଗମନାଗମନଦ୍ୱାରା ନିଷ୍ପନ୍ନ ।

ଗାତୁ—ପୁଂ.ବି. (ଗୈ+ତୁ )କୋକିଳ, ଭ୍ରମର, ଗନ୍ଧର୍ବ, ପଥିକ, ଗମନ, ଗମନୀୟର ପଥ, ଉପାୟ, ପୃଥିବୀ, ସ୍ତବ, (କ୍ଲୀ.) ଧନ,(ବିଂ) କ୍ରୁଦ୍ଧ, ସ୍ତୁତିକାରକ, ପ୍ରଶଂସାକାରୀ ।

ଗାତୁଆ—ଗ୍ରା. ବିଂ. ଯେ ଗାତରେ ବାସକରେ,ଯେ ଭୂମିରେ ଗାତଖୋଳି ରହେ, (ଗାଳି) ଯେଉଁବ୍ୟକ୍ତି ଶୀଘ୍ର ମରିଗାତରେ ପୋତାଯିବ ।

ଗାତୁବିଦ୍—ପୁଂ. ବିଂ. (ଗାତୁ+ବିଦ୍+କ୍ୱିପ୍) ପଥ ଜାଣିବା ଲୋକ ।

ଗାତୋଲନ—ଗ୍ରା. ଶରୀରର ଉତ୍ଥାପିତ କରଣ, ଉଠିବା ।

ଗାତ୍ର—କ୍ଲୀ. ବି. (ଗମ୍+କ,ତ୍ରନ୍)ଅଙ୍ଗ, ଦେହ, ହସ୍ତୀର ଅଗ୍ରଜଙ୍ଘର ଆଦ୍ୟଭାଗ, (ବିଂ) ଗାଥକସମ୍ବନ୍ଧୀୟ ।

ଗାତ୍ରକ—କ୍ଲୀ. ବି. (ଗାତ୍ର+କ) ଶରୀର, ଦେହ, ଅଙ୍ଗ ।

ଗାତ୍ରକଣ୍ଡୁ—ସ୍ତ୍ରୀ. ବି. ( ୬ତତ୍ପୁ ) ଶରୀର କୁଣ୍ଡେଇହେବା,ଗାତ୍ରବିଚର୍ଚ୍ଚିକା,କୁଣ୍ଡିଆ ।

ଗାତ୍ରଗୁପ୍ତ—ପୁଂ. ବି. ଶ୍ରୀକୃଷ୍ଣଙ୍କର ଔରସରେ ଲକ୍ଷ୍ମଣାଙ୍କର ଗର୍ଭୋତ୍ପନ୍ନ ଏକପୁତ୍ର ।

ଗାତ୍ରଦାହ—ପୁ. ବି. ( ୬ତତ୍ପୁ ) ଦେହ ପୋଡ଼ିବା, ଶରୀରଜ୍ୱାଳା, ( ଲକ୍ଷଣାର୍ଥ ) ମନପୋଡ଼ିବା, ଈର୍ଷା ବା କ୍ରୋଧଜନିତ ମାନସିକ ଅଶାନ୍ତି । [(ଆଳଙ୍କାରୀ) ।

ଗାତ୍ରଭଙ୍ଗା—ସ୍ତ୍ରୀ.ବି.ଶୂକଶିମ୍ବୀ, ବାଇତଙ୍କ,

ଗାତ୍ରମାର୍ଜନ—ବି. ( ୬ତତ୍ପୁ ) ଦେହକୁ ଲୁଗାଆଦିଦ୍ୱାରା ଘଷିପରିଷ୍କାର କରିବା ।

ଗାତ୍ରମାର୍ଜନୀ—ସ୍ତ୍ରୀ.ବି. ୬ତତ୍ପୁ, (ଗାତ୍ର+ମୃଜ୍+ଅନ+ଈ) ଗାମୁଛା, ପୋଛା ।

ଗାତ୍ରଯଷ୍ଟି—ବି.(ଗାତ୍ର+ଯଷ୍ଟି)ଅତିସରୁଆ ଅଥଚ ସୁନ୍ଦର ଦେହ ।

ଗାତ୍ରରୁହ—କ୍ଲୀ.ବି.(ଗାତ୍ର+ରୁହ୍+ଅ) ଲୋମ, ରୋମ ।

ଗାତ୍ରବାନ୍—ପୁଂ.ବି. ଶ୍ରୀକୃଷ୍ଣଙ୍କରଲକ୍ଷ୍ମଣାଗର୍ଭଜାତ ଏକପୁତ୍ର, (ବିଂ) ପ୍ରଶସ୍ତଗାତ୍ରବିଶିଷ୍ଟ ।

ଗାତ୍ରବିନ୍ଦ—ପୁଂ. ବି. ଲକ୍ଷ୍ମଣା ଗର୍ଭଜାତ ଶ୍ରୀକୃଷ୍ଣଙ୍କର ଏକପୁତ୍ର ।

ଗାତ୍ରସଂକୋଚୀ—ପୁଂ. ବି. ଜାହକନାମକ ଜନ୍ତୁବିଶେଷ ।

ଗାତ୍ରସଂପ୍ଳବ—ପୁଂ. ବି. (୩ତତ୍ପୁ) (ଗାତ୍ର+ସମ୍+ପ୍ଳୁ+ଅ) ପ୍ଲବପକ୍ଷୀ ।

ଗାତ୍ରସମ୍ମିତ—ବିଂ. ( ବ.ବ୍ରୀ ) ସଂପୂର୍ଣ୍ଣଗାତ୍ର, ଦଶମାସରୁ ଅଧିକକାଳ ଗର୍ଭସ୍ଥିତ ପ୍ରାଣୀ ।

ଗାତ୍ରସ୍ପର୍ଶ—ପୁଂ. ବି. (୬ତତ୍ପୁ) ଅଙ୍ଗସ୍ପର୍ଶ, ଦେହକୁ ଛୁଇଁବା ।

ଗାତ୍ରୀ—ଗ୍ରା.(ଗଞ୍ଜାମ)ବିଂ. ପରିଷ୍କୃତ ।

ଗାତ୍ରାନୁଲେପନ—ପୁଂ. ବି. ( ୬ତତ୍ପୁ ) ଅଙ୍ଗରାଗ, ଦେହରେ ବୋଳାହେବା ନିମନ୍ତେ ବଟା ହୋଇଥିବା ସୁଗନ୍ଧ ଦ୍ରବ୍ୟାଦି ।

ଗାତ୍ରାନୁଲେପନୀ—ସ୍ତ୍ରୀ. ବି. (ଗାତ୍ରାନୁଲେପନ+ଈ) ଅନୁଲେପନ, ବର୍ତ୍ତିକା, ଦେହରେ ଅଙ୍ଗରାଗ ବୋଳିବାର ତୂଳିକା, ସାବୁନ୍ ପ୍ରଭୃତି ।

ଗାତ୍ରାବରଣ—କ୍ଲୀ.ବି. ୬ତତ୍ପୁ, (ଗାତ୍ର+ଆ+ବୃ+ଅନ) ସାଞ୍ଜୁ, କବଚ, ବର୍ମ୍ମ, ଖଦର, ଗନ୍ତା, କୁରୁତା ।

ଗାତ୍ରିକା—ସ୍ତ୍ରୀ. ବି. ( ଗାତ୍ରକ+ଆ ) ଗାମୁଛା, ଅଙ୍ଗପୋଛା ।

ଗାତ୍ରୀ—ସ୍ତ୍ରୀ. ବିଂ. (ଗାତ୍ର+ଈ)ଗାୟିକା, ଯେଉଁ ସ୍ତ୍ରୀ ଗାନ କରେ ।

ଗାତ୍ରୋତ୍ଥାନ—ବି. (୬ତତ୍ପୁ) ବସିବା ବା ଶୋଇବା ଅବସ୍ଥାରୁ ଉଠିବା, ନିଦରୁ ଉଠିବା,କୌଣସି ସ୍ଥାନରୁ ଉଠିଯିବା ।

ଗାତ୍ରୋତ୍ସାଦନ-କ୍ଲୀ.ବି. ଗାତ୍ରାନୁଲେପନ ।

ଗାଥ—ବିଂ ( ଗୈ+ଥ,ଥା ) ଗାତବ୍ୟ ସ୍ତୋତ୍ରାଦି, ଗୀତ, ଗାନଗାଇବା କର୍ମ ।

ଗାଥକ--ବି. ବଂ. ( ଗୈ + କ, ଥକ ) ଗାୟକ, ଯେ ଗାନ କରେ ( ସ୍ତ୍ରୀ ) ଗାଥିକା ।
ଗାଥପତ୍ର—ପୁଂ.ବି. (୬ତନ୍ତ୍ର) ବାକ୍‌ପତ୍ର, ସ୍ତୋତ୍ରପାଳକ ରୁଦ୍ର ।
ଗାଥା—ସ୍ତ୍ରୀ.ବି. (ଗୈ + ମଁ.ଥନ୍ + ଆ) ପଦ୍ୟବିଶେଷ, ଯହିଁରେ ସ୍ୱର ନିୟମ ନାହିଁ, ଶୁଣିବାକୁ ଠିକ୍ ଗଦ୍ୟପରି ମାତ୍ରା-ବୃତ୍ତବିଶେଷ, ପ୍ରାକୃତ ଭାଷା, ଶ୍ଳୋକ, ଆର୍ଯ୍ୟାଛନ୍ଦ, ଗୀତ ।
ଗାଥାକାର—ପୁଂ.ବି.(ଗାଥା + କୃ + ଅ) ଗାଥାକାରକ,ଗାଥା ରଚୟିତା ।
ଗାଥାମ୍ନ—ବି.ବଂ-ଗାଥାଯୋଗ୍ୟ,ଗାତବ୍ୟ ।
ଗାଥାନ୍ତର—ପୁଂ. ବି. ବ୍ରହ୍ମାଙ୍କର ମାସର ଚତୁର୍ଥଦିନ ।
ଗାଥିକ—ପୁଂ.ବି.(ଗାଥ + ଇକ୍)ଗାୟକ, ଯେ ଗାନକରେ, (ସ୍ତ୍ରୀ) ଗାଥିକା ।
ଗାଥିକା—ସ୍ତ୍ରୀ. ବି. (ଗାଥିକ + ଆ) ସ୍ତୁତି-ପାଇଁ ଶ୍ଳୋକ,ଗେୟ, ସ୍ତୁତି, ପଦ୍ୟ ।
ଗାଥିନ—ବି. (ଗାଥି + ଅଣ) ସାମବେଦ-ଗାୟକର ଅପତ୍ୟ—ତାଙ୍କର ଛାତ୍ର ।
ଗାଥୀ—ପୁଂ.ବଂ.(ଗାଥା + ଇନ୍ )ଗାଥା-ଯୁକ୍ତ, ଗୀତ୍ୟମାନ ସାମଯୁକ୍ତ ।
ଗାଦ—ପ୍ରା. (ମେଦନୀ) ବି. ଢେଲାଦିର କାଣ୍ଡି ।
ଗାଦି—ପୁଂ. ବି. (ଗଦ + ଇ)ଗଦଙ୍କ ପୁତ୍ର, କୃଷ୍ଣଙ୍କ ପୁରୁଷ,(ଯା.ବି.)ରାଜସିଂହାସନ, ( ଦେବତା, ମହନ୍ତ, ମହାପୁରୁଷ ଓ ଜ୍ଞାନୀମାନଙ୍କ) ଆସନ ବା ବସିବାର ସ୍ଥାନ,ଗଦି,ସ୍ତୂପ, ଗଦା, ଏକତ୍ରୀକରଣ, ପୋଥିଗାଦି, ଏକତ୍ର ରଖିବା ସ୍ଥାନ, ଭାଗବତଗାଦି, ମଞ୍ଚ, ଉଚ୍ଚସ୍ଥାନ, ମହା-ପୁରୁଷମାନଙ୍କ ସମାଧି, ( ଯହିଁ ମଧ୍ୟରେ ମୃତ ମହାପୁରୁଷଙ୍କ ଅସ୍ଥି ରଖାହୋଇ ମାଟି ଗଦା ହୋଇଥାଏ) ଶାସନକର୍ତ୍ତାଙ୍କ ପଦ ବା ଅଧିକାର ।
ଗାଦିଗୋସାଇଁ—ଗ୍ରା. ବି. ଦେବତାରୂପେ ପୂଜିତ ଭାଗବତଆଦି ବହୁ ପୁସ୍ତକର ଗଦି, ଦେବତାରୂପେ ପୂଜିତ ମହା-ପୁରୁଷଙ୍କ କବଚ । [ଧ୍ରୁବ ।
ଗାଦିତା—ବି.ବଂ.ଯାହା କଥାରେ ସାଧିତ
ଗାଦିମାଡ଼ିବସିବା—ଗ୍ରା. କ୍ରି. କୌଣସି ସ୍ଥାନରେ ଆସନ ଜମାଇ ବସିବା, କୌଣସି ସ୍ଥାନ ସ୍ଥାୟୀଭାବରେ ଅଧି-କାର କରିବା ।
ଗାଦିରେ ବସିବା—ଗ୍ରା. କ୍ରି. ରାଜସିଂହା-ସନରେ ଆରୂଢ଼ ହେବା,ରାଜତ୍ୱକରିବା ।
ଗାଦୁର୍—ପ୍ରା. (ବସ୍ତର)ବି. ବାଦୁଡ଼ି ।
ଗାଦ୍ଗଦ୍ୟ—କ୍ଲୀ.ବି. ଗଦ୍ଗଦର ଭାବ, ଗଦ୍-ଗଦତ୍ୱ ।
ଗାଧ—ପୁଂ. ବି. (ଗାଧ + କ.ଅ) ସ୍ଥାନ, ଲିପ୍ସା, ଲୋଭ, ଲାଳସା, ଲାଭେଚ୍ଛା, ତଳସ୍ପର୍ଶ, ( ବଂ ) ଅଗଭୀର, ଯେଉଁ ଜଳରେ ଲୋକେ ପଶି ଯାଆଆସ କରି-ପାରନ୍ତି, (ସ୍ତ୍ରୀ) ଗାଧା ।
ଗାଧା—ସ୍ତ୍ରୀ. ବି. (ଗାଧ୍ + ଆ) ଗାୟତ୍ରୀ-ସ୍ୱରୂପା ମହାଦେବୀ. (ବଂ) ତଳସ୍ପର୍ଶ-ଯୋଗ୍ୟା, ଅନତିଗଭୀର ।
ଗାଧି—ପୁଂ.ବି. (ଗାଧ + କ.ଇ) କାନ୍ୟ-କୁବ୍ଜର ଜଣେ ଚନ୍ଦ୍ରବଂଶୀୟ ରାଜା, ବିଶ୍ୱାମିତ୍ର ଋଷିଙ୍କ ପିତା ।
ଗାଧିଜ—ପୁଂ. ବି. (ଗାଧି + ଜନ୍ + କ. ଅ) ମହର୍ଷି ବିଶ୍ୱାମିତ୍ର ।
ଗାଧିନଗର—କ୍ଲୀ.ବି.(୬ତନ୍ତ୍ର)କାନ୍ୟକୁବ୍ଜ ।
ଗାଧିନନ୍ଦନ—ପୁଂ.ବି.(୬ତନ୍ତ୍ର) ବିଶ୍ୱାମିତ୍ର ଋଷି ।
ଗାଧିପୁତ୍ର—ପୁଂ.ବି. (୬ତନ୍ତ୍ର)ବିଶ୍ୱାମିତ୍ର ।
ଗାଧିପୁର—କ୍ଲୀ.ବି. (୬ତତ୍) ଗାଧିରାଜା-ଙ୍କର ପୁର, କାନ୍ୟକୁବ୍ଜ ।
ଗାଧିଭୂ—ପୁଂ. ବି. ବିଶ୍ୱାମିତ୍ର ଋଷି ।
ଗାଧିସୁତ-ପୁଂ.ବି.(୬ତନ୍ତ୍ର)ବିଶ୍ୱାମିତ୍ରଋଷି ।
ଗାଧିସୂନୁ—ପୁଂ.ବି.(୬ତତ୍ )ବିଶ୍ୱାମିତ୍ରଋଷି
ଗାଧୀ—ପୁଂ.ବି. (ଗାଧ୍ + ଇନ୍ ) କାନ୍ୟ-କୁବ୍ଜର ଜଣେ ଚନ୍ଦ୍ରବଂଶୀୟ ରାଜା,ବିଶ୍ୱା-ମିତ୍ରଙ୍କର ପିତା ।
ଗାଧୁଆ—ଗ୍ରା. ବି. ସ୍ନାନ, (ଗ୍ରା.ବଂ)ସ୍ନାତ, ସ୍ନାନ କରିଥିବା (ବ୍ୟକ୍ତି) ।
ଗାଧୁଆରୁଠ—ଗ୍ରା. ବି. ଜଳାଶୟ ବା ନଦୀରେ ଲୋକମାନଙ୍କର ସ୍ନାନକରିବାର ଘାଟ ।
ଗାଧୁଆପାଧୁଆ—ଗ୍ରା. ବି. ସ୍ନାନାଦି କର୍ମ, ଗୋଡ଼ ହାତ ଓ ଶରୀର ଧୋଇବା କର୍ମ ।
ଗାଧୁଆବେଳେ—ଗ୍ରା.ବି. ସାଧାରଣ ଲୋକ-ଙ୍କର ଗାଧୋଇବା ସମୟ ।
ଗାଧେୟ—ପୁଂ.ବି.ବିଶ୍ୱାମିତ୍ର ପ୍ରଭୃତି,(ସ୍ତ୍ରୀ) ଗାଧେୟୀ, ଗାଧିଙ୍କ କନ୍ୟା ସତ୍ୟବତୀ ।
ଗାଧେୟୀ—ସ୍ତ୍ରୀ.ବି. ଗାଧି ରାଜାଙ୍କ କନ୍ୟା ସତ୍ୟବତୀ ।
ଗାଧୋଇବା-ଗ୍ରା.କ୍ରି.ସ୍ନାନକରିବା; (ଶିଶୁ-ଆଦିଙ୍କୁ) ସ୍ନାନକରାଇବା, ( ଲକ୍ଷଣାର୍ଥ ) ଗାଧୋଇବାରପରିଦେହତମାମ(ଝାଳରେ ଜର୍ଜରିତ ହେବା) ।
ଗାଧୋଇଯିବା—ଗ୍ରା.କ୍ରି. ସ୍ନାନ କରିବାକୁ ଜଳାଶୟ ନିକଟକୁ ଗମନ କରିବା, (ଲକ୍ଷଣାର୍ଥ) କୌଣସି ଲାଭ ବା କ୍ରିୟାରୁ ବଞ୍ଚିତ ହେବା, କୌଣସି ବାଞ୍ଛା ବା ବିଷୟ ଉପସ୍ଥିତ ଆଲୋଚନାରେ ଆଲୋଚିତ ନ ହେବା ଧ୍ୱନି ।
ଗାଧଣ୍ଡା—ସ୍ତ୍ରୀ. ବି. ଭୁଇଁଅଁଳା ।
ଗାନ—କ୍ଲୀ. ବି. (ଗୈ + ଭା.ଅନ) ଗୀତ, ସଙ୍ଗୀତ, ଗାଇବା, ଗୀତ ବୋଲିବା, ଗାଉଣା, ପ୍ରଶଂସାକରଣ,କୀର୍ତ୍ତନ, ଧ୍ୱନି ।
ଗାନବିଦ୍ୟା—ସ୍ତ୍ରୀ.,ବି. ସଙ୍ଗୀତଶାସ୍ତ୍ର ।
ଗାନା—ପ୍ରା. (ସମ୍ବ) ବି. ଗୀତଗାଇବା, ଗାଉଣା ।
ଗାନପ-ଦାକ୍ଷିଣାତ୍ୟର ରାଜାପୁରଅଞ୍ଚଳବାସୀ ଜାତିବିଶେଷ ।
ଗାମୀ—ପୁଂ.ବଂ.(ଗାନ + ଇନ୍ )ଗାନକାରୀ, (ଗମ୍ + ଇନ୍ ) ଗାମୀ, ଗମନକାରୀ ।
ଗାନ୍ତୁ—ପୁଂ. ବଂ. ( ଗମ୍ + ତୁ )ଗନ୍ତା, ଗମନକର୍ତ୍ତା, ପଥିକ, ପର୍ଯ୍ୟଟକ,(ଗୈ + କ.ତୁ ) ଗାୟକ ।
ଗାନ୍ତ୍ର—କ୍ଲୀ. ବି. ଶକଟ, ଶଗଡ଼ ।
ଗାନ୍ତ୍ରୀ—ସ୍ତ୍ରୀ. ବି.(ଗନ୍ତ୍ରୀ + ଅ + ଇ)ବଳଦ ଯେଉଁ ଗାଡ଼ି, ଗୋରୁଗାଡ଼ି, ଶଗଡ଼, ପୃଥିବୀ, ଗୋରୁ, ବଳଦ ।

ଗାନ୍ଥିମା—ଗ୍ରା.ବ. କାଦୁଅ ବା ଚୂନଦ୍ୱାରା ଇଟା ବା ପଥରକୁ ଏକତ୍ର ବସାଇବା, ଗୁନ୍ଥିବା କର୍ମ ।

ଗାନ୍ଥିବା—ଗ୍ରା.କ୍ରି. କାନ୍ଥଆଦି କାମପାଇଁ କାଦୁଅ ବା ଚୂନଦ୍ୱାରା ଇଟା ପଥରଆଦି ଯୋଡ଼ିବା, ଇଟା ପଥରଆଦି କାଦୁଅ ବା ଚୂନରେ ବସାଇବା, ମାଳାଆଦି ଗୁନ୍ଥିବା ।

ଗାଧକ—ତ୍ରି. ବ୍‌ଂ. ଗଧକାନଗାଜାତ ।

ଗାଧକା—ଗ୍ରା. (ଜୟପୁର) ବ. ଅନର୍ଥ, ଅଖାଡ଼ୁଆ ବିଷୟ, ଗୋଳମାଳ ।

ଗାଧନୀ—ସ୍ତ୍ରୀ. ବ. (ଗୋ+ଦା+ଇନ୍+ଈ)ଅକ୍ରୂରଙ୍କ ମାତା,ଗଙ୍ଗା, ଭାଗୀରଥୀ, ସପତ୍ନୀଙ୍କ ସ୍ତ୍ରୀ ।

ଗାଧନୀସୁତ—ପୁଂ. ବ. (୬ତତ୍) ଭୀଷ୍ମ, କାର୍ତ୍ତିକେୟ, ଅକ୍ରୂର ।

ଗାନ୍ଧୀ—ସ୍ତ୍ରୀ. ବ.ଅକ୍ରୂର ମାତା ଗାଧନୀ ।

ଗାନ୍ଧର୍ବ—କ୍ଲୀ. ବ. (ଗନ୍ଧର୍ବ+ଅ) ଗାନ, ଗନ୍ଧର୍ବ-ଦେବତାତ୍ମକ ମନ୍ତ୍ର,(ପୁଂ)ଗନ୍ଧର୍ବ, ଭାରତବର୍ଷର ଉପଦ୍ୱୀପବିଶେଷ, ଅଷ୍ଟବିଧ ବିବାହ ମଧ୍ୟରେ ବିବାହବିଶେଷ, ଅଶ୍ୱ, ସାମବେଦର ଉପବେଦବିଶେଷ, ଦ୍ୱୀପବିଶେଷ, (ସ୍ତ୍ରୀ) ଗାନ୍ଧର୍ବୀ, ଦୁର୍ଗା, ବାକ୍, (ବ୍‌ଂ) ଗନ୍ଧର୍ବସମ୍ବନ୍ଧୀୟ ।

ଗାନ୍ଧର୍ବକ—ପୁଂ. ବ. (ଗାନ୍ଧର୍ବ+କ) ଗାୟକ, ଗାନବାଦ୍ୟ ବିଦ୍ୟାରେ ପ୍ରବୀଣ ବ୍ୟକ୍ତି, (ସ୍ତ୍ରୀ) ଗାନ୍ଧର୍ବକା ।

ଗାନ୍ଧର୍ବବେଦ—ପୁଂ. ବ. ସଙ୍ଗୀତ ବିଷୟକ ଆଲୋଚନା ପୂର୍ଣ୍ଣ ସାମବେଦର ଉପବେଦବିଶେଷ, ସଙ୍ଗୀତଶାସ୍ତ୍ର ।

ଗାନ୍ଧର୍ବଶାସ୍ତ୍ର—କ୍ଲୀ. ବ. ସଙ୍ଗୀତଶାସ୍ତ୍ର ।

ଗାନ୍ଧର୍ବିକ—ପୁଂ. ବ୍‌ଂ. (ଗନ୍ଧର୍ବ+ଇକ) ସଙ୍ଗୀତଶାସ୍ତ୍ରକୁଶଳ ।

ଗାନ୍ଧର୍ବୀ—ଗ୍ରା.ସ୍ତ୍ରୀ.ବ.(ଗନ୍ଧର୍ବ+ଅ+ଈ) ନବଯୁବତୀ, ଦୁର୍ଗା ।

ଗାନ୍ଧାର—କ୍ଲୀ. ବ. (ଗନ୍ଧ+ଋ+କ.ଅ) ଗନ୍ଧକ, ଗୁଗ୍‌ଗୁଳ, ସିନ୍ଦୂର, ଆଫଗାନ ସ୍ଥାନର ପୂର୍ବନାମ, ପିଣ୍ଡାଦିକ, ଗାନ୍ଧାର ଦେଶବାସୀ ଲୋକମାନ, ଗାନ୍ଧାରଦେଶ ରାଜା, ସପ୍ତସ୍ୱରାନ୍ତର୍ଗତ ତୃତୀୟ ସ୍ୱର, (ଏହି ସ୍ୱର ଛାଗସ୍ୱରତୁଲ୍ୟ) ସ୍ୱରଗ୍ରାମବିଶେଷ,ରାଗବିଶେଷ, ଗନ୍ଧରସ, ଗାନ୍ଧାରଙ୍କର ଅପତ୍ୟ ।

ଗାନ୍ଧାରକ—ତ୍ରି. ବ୍‌ଂ. ଗାନ୍ଧାର ଦେଶର ମନୁଷ୍ୟ, ଗାନ୍ଧାରଦେଶସ୍ଥିତ ।

ଗାନ୍ଧାରପଞ୍ଚମ—ବ.ଷଡ଼୍‌ଜରାଗବିଶେଷ ।

ଗାନ୍ଧାରଭୈରବ—ବ. ପ୍ରାତଃକାଳରେ ଗେୟ ସପ୍ତସ୍ୱରବିଶିଷ୍ଟ ରାଗବିଶେଷ ।

ଗାନ୍ଧାରରାଜା—ପୁଂ. ବ.(୬ତତ୍)ଗାନ୍ଧାର ଦେଶର ରାଜା, ସୁବଳଙ୍କ ପୁତ୍ର ଓ ଦୁର୍ଯ୍ୟୋଧନଙ୍କ ମାମୁ, ଶକୁନି ।

ଗାନ୍ଧାରି—ପୁଂ. ବ. (ଗାନ୍ଧ+ଋ+ଇ) ଗାନ୍ଧାରଦେଶ, ଗାନ୍ଧାରଦେଶ ରାଜାଙ୍କର ଅପତ୍ୟ,ଦୁର୍ଯ୍ୟୋଧନଙ୍କ ମାମୁଁ, ଶକୁନି ।

ଗାନ୍ଧାରିକା—ସ୍ତ୍ରୀ.ବ.ମାଦକଦ୍ରବ୍ୟବିଶେଷ, ଗଞ୍ଜା, ଗଞ୍ଜେଇ ।

ଗାନ୍ଧାରୀ—ସ୍ତ୍ରୀ.ବ. (ଗାନ୍ଧାର+ଈ)ଧୃତରାଷ୍ଟ୍ର ରାଜାଙ୍କ ପତ୍ନୀ,ଦୁର୍ଯ୍ୟୋଧନାଦିଙ୍କର ମାତା,ଅଜମୀଢ଼ରକନ୍ୟା,ନାଡ଼ୀବିଶେଷ, ଯବାସ, ଦୁରାଳଭା, ଗଞ୍ଜାଇ, ପାର୍ବତୀଙ୍କର ସହଚରୀବିଶେଷ, ଗାୟତ୍ରୀ, ଜୈନମାନଙ୍କର ଶାସନଦେବତାବିଶେଷ, କଣ୍ଟକାରୀ ।

ଗାନ୍ଧାରୀଏକାଦଶୀ—ଗ୍ରା.ବ. ଶ୍ରାବଣ କୃଷ୍ଣପକ୍ଷ ଏକାଦଶୀ ।

ଗାନ୍ଧାରୀତନୟ—ପୁଂ. ବ.ଦୁର୍ଯ୍ୟୋଧନାଦି, (ସ୍ତ୍ରୀ) ଗାନ୍ଧାରୀତନୟା, ଦୁଃଶୀଳା ।

ଗାନ୍ଧାରେୟ—ପୁଂ.ବ.(ଗାନ୍ଧାରୀ+ଏୟ) ଗାନ୍ଧାରୀଙ୍କର ଦୁର୍ଯ୍ୟୋଧନାଦି ଶତପୁତ୍ର ।

ଗାନ୍ଧି—ଗ୍ରା. ବ. ବଂଶୋପାଧିବିଶେଷ, ଗାନ୍ଧିମହାତ୍ମା (ଦେଖ) ।

ଗାନ୍ଧିକ—ପୁଂ. ବ. (ଗନ୍ଧ+ଇକ) ଗନ୍ଧ ବଣିକ୍, ପୁଟଳ ବଣିଆ, ଗନ୍ଧବେଣା, ଲେଖକ, ଗନ୍ଧଦ୍ରବ୍ୟମାତ୍ର, କୀଟବିଶେଷ, ପାରୁଡ଼ାପୋକ ।

ଗାନ୍ଧିନୀ—ସ୍ତ୍ରୀ. ବ. ଗାଧନୀ (ଦେଖ) ।

ଗାନ୍ଧିମହାତ୍ମା—ବ. ବଂଶଶତାବ୍ଦୀର ବିଶ୍ୱବିଖ୍ୟାତ ଭାରତୀୟ ରାଜନୀତିଜ୍ଞ ମହାତ୍ମା ଗାନ୍ଧି ଅର୍ଥାତ୍ ମୋହନଦାସ କରମଚାନ୍ଦ ଗାନ୍ଧି ।

ଗାନ୍ଧୀ—ସ୍ତ୍ରୀ.ବ.(ଗାନ୍ଧ+ଈ)ଗାନ୍ଧୀପୋକ, ପାରୁଡ଼ାପୋକ ।

ଗାପ-ଗ୍ରା.ବ.ଗୋପନକରିବା, ଲୁଚାଇବା ।

ଗାଫ—ଯା.ବ. ମୋଟା, ପିଟାକୁଣା ବସ୍ତ୍ର, ଘନୀଭୂତ ଭାବେ ବୁଣାଲୁଗା ଆଦି ।

ଗାଫଲତ—ଯା. ବ. ଅବହେଳା, ଅସାବଧାନତା, ଅମନୋଯୋଗ, ପ୍ରମାଦ, ଭ୍ରାନ୍ତି ।

ଗାଫଲତ—ଯା. ବ. ଗାଫଲତ (ଦେଖ) (ବ୍‌ଂ)ଅସାବଧାନ, ଅମନୋଯୋଗୀ,ଯେ ହେଳା କରେ ।

ଗାଫିଲ—ଯା.ବ୍‌ଂ.ଅମନୋଯୋଗୀ,ଅବହେଳାକାରୀ, ଅସାବଧାନ, (ବ) ଅମନୋଯୋଗ, ଅବହେଳା, ଅଳସୁଆ ପଣିଆ, ଆଳସ୍ୟ, ମଠ ।

ଗାବ—ଗ୍ରା. ବ. (ଗଦ୍ୟରେ ବ୍ୟବହୃତ) ଗୋରୁଗାଈ, ଗୋସମୂହ, ମୃଦଙ୍ଗାଦି ବାଦ୍ୟଯନ୍ତ୍ରର ଚମଡ଼ା ଉପରେ (ଯେଉଁଠାରେ ଟିପଲଗେ ) ବୋଳା ଯିବା ଏକପ୍ରକାର ଲେପ ।

ଗାବରାଇବା—ଗ୍ରା.କ୍ରି. ଗାରଆଗାରକରି ଲେଖିବା, ଅସୁନ୍ଦରକରି ଲେଖିବା ।

ଗାବଲ୍‌ଗଣି—ବ.ଗବଲ୍ଗଣଙ୍କପୁତ୍ର, ସଞ୍ଜୟ ।

ଗାବନ—ଗ୍ରା.ସ୍ତ୍ରୀ.ବ୍‌ଂ. ଗର୍ଭିଣୀ,ଗର୍ଭବତୀ ।

ଗାବିବା—ଗ୍ରା. (ପଦ୍ୟ)କ୍ରି.ଗାନକରିବା, ତଳକୁ ଚାପିଦେବା, ଦବାଇବା,ଗୋପନ କରାଇବା, (ଲକ୍ଷଣାର୍ଥ) ଗୁଡ଼ାଏ ଖାଦ୍ୟ ଗଳାଧଃକରଣ କରିବା ।

ଗାବୀ—ସ୍ତ୍ରୀ. ବ. ଗାଭୀ, ଗାଈ ।

ଗାବୁଜନା—ଗ୍ରା. ଅବ୍ୟ. ହଠାତ୍ ମାଡ଼ିବସିବା ପ୍ରକାରେ ।

ଗାଭୀ—ଗ୍ରା. ବ. ମାଈଗୋରୁ,ଧେନୁ,ଗାଈ, ଜାହାଜର ମାସ୍ତୁଲରେ ବନ୍ଧାହେବା ପ୍ରଧାନ ପାଲ ।

ଗାମଛା—ଗ୍ରା. ବ. ଗାତ୍ରମାର୍ଜନୀ, ପୋଛା ଗାମୁଛା, ଅଙ୍ଗପୋଛା ।

ଗାମଦ—ଗ୍ରା. ବ. (ଜାହାଜଆଭାଷା) ଜାହାଜର ତଳ କଣା ହୋଇ ପାଣି ପଶିବା, ନକାଣ, ଜାହାଜ ବନ୍ଦର ଛାଡ଼ିବା ।

ଗାମଲ—ଯା.ବ. ମାଟିର କୁଣ୍ଡ, ନନ୍ଧଆ, ଗାଙ୍ଗୁଲ ବା ପିତ୍ତଳ ଗଙ୍ଗାଳ ।
ଗାମିକ-ବି.ବ୍ୟଂ.(ଗମ୍+ଇକ)ଗମନକାରୀ
ଗାମିନୀ—ବ.(ଗମ୍+ଇନ୍+ଈ)ଭାରତ ବାସୀଙ୍କ ବ୍ୟବହୃତ ପ୍ରାଚୀନ ଅର୍ଣ୍ଣବପୋତ ବିଶେଷ, (ସ୍ତ୍ରୀ.ବ୍ୟଂ) ଗମନକାରିଣୀ ।
ଗାମୀ—ପୁଂ. ବ୍ୟଂ. (ଗମ୍+କ, ଇନ୍) ଭାବିଗମନକାରକ, ଯେ ଯିବ, ଗତି-ବିଶିଷ୍ଟ, ସଙ୍ଗମକାରୀ, (ସ୍ତ୍ରୀ) ଗାମିନୀ ।
ଗାମୁକ—ପୁଂ.ବ୍ୟଂ. (ଗମ୍+କ, ଉକ) ଗମନଶୀଳ, ଗମନକାରୀ, ଗତିବିଶିଷ୍ଟ, (ସ୍ତ୍ରୀ) ଗାମୁକା ।
ଗାମୁଛା—ଗ୍ରା. ବ. ଗାତ୍ରମାର୍ଜନୀ, ଅଙ୍ଗ ପୋଛିବାର ଲୁଗା, କଷାୟାମ୍ବର, ଗେରୁଆ ଲୁଗା ।
ଗାମ୍ଭୀର—ବି.ବ୍ୟଂ. (ଗମ୍ଭୀର+ଅ)ଗମ୍ଭୀର ଦ୍ୱାରା ନିର୍ବୃତ୍ତ ।
ଗାମ୍ଭୀର୍ଯ୍ୟ—କ୍ଲୀ. ବ.(ଗମ୍ଭୀର+ଯ)ଗମ୍ଭୀର ଭାବ, ଅଗାଧତ୍ୱ,ଅବକାରତ୍ୱ, ମାହାତ୍ମ୍ୟ, ଗୂଢ଼ତା, ସାତ୍ତ୍ୱିକ ଗୁଣବିଶେଷ, ଅଚ୍ଛ-ପଲ୍ୟ ।
ଗାମ୍ମନ୍ୟ—ବି. ବ୍ୟଂ. ଯେ ଆପଣାକୁ ଗୋରୁ ତୁଲ୍ୟ ମନେ କରେ ।
ଗାୟ—ପୁଂ. ବ. (ଗୈ+ଘ,ଅ) ଗୀତ, ଗାନ, ଗୀତ ଗାଇବା, ଗ୍ରା. (ବସ୍ତର) ବ. ଗାଈ ।
ଗାୟକ—ବି. ବ୍ୟଂ. (ଗୈ+କ, ଅକ) ଗାନକର୍ତ୍ତା, ଗାନୋପଜୀବୀ, (ଗ୍ରା. ବ) ଠିଆ ପାଲି କରିବା ଦଳ ମଧ୍ୟରେ ଯେଉଁ ବ୍ୟକ୍ତି ପ୍ରଥମେ ଗୀତ ଗାଏ ।
ଗାୟଣି—ଗ୍ରା. ବ. ଗାନ, ଗୀତଗାୟିକା, ଗୀତବିଶାରଦା (ସ୍ତ୍ରୀ),ରାଜାନ୍ତଃପୁରର ଗାନବିଶାରଦା ଦାସୀ ।
ଗାୟତ୍ର—ବି.ବ୍ୟଂ.(ଗାୟତ୍ରୀ+ଅ)ଗାୟତ୍ରୀ ଛନ୍ଦ ସମ୍ବନ୍ଧୀୟ, ବ. (ଗୈ+ତ୍ର) ସ୍ତବ, ଗାୟତ୍ରୀ ଛନ୍ଦ ।
ଗାୟତ୍ରୀ—ପୁଂ. ବ. (ଗାୟତ୍ର+ଇନ୍) ଖଦିର ବୃକ୍ଷ, ଉଦ୍‌ଗାତା, ସାମଗାୟକ ।
ଗାୟତ୍ରୀ—ସ୍ତ୍ରୀ. ବ. (ଗାୟତ୍ର+ଙୀ+ଅଲ) ବେଦମାତା, ଦ୍ୱିଜମାନଙ୍କର ଉପାସ୍ୟ ବୈଦିକ ମନ୍ତ୍ରବିଶେଷ, ତ୍ରିପଦା ଦେବୀ, ତ୍ରିପାଦ ମନ୍ତ୍ରବିଶେଷ, ବୈଦିକ ଷଡ଼କ୍ଷର ଛନ୍ଦୋବିଶେଷ, ଦୁର୍ଗା,ଗଙ୍ଗା ।
ଗାୟତ୍ରୀସାର—ପୁଂ. ବ. ଖଦିରସାର, ଖଇର ।
ଗାୟନ—ପୁଂ. ବ୍ୟଂ. (ଗୈ+କ,ଅନ) ସଙ୍ଗୀତବ୍ୟବସାୟୀ, ଗାନକାରୀ, (ବ) ଗୀତ ବୋଲିବା, ଗୀତ, କାର୍ତ୍ତିକେୟ-ଙ୍କର ପାରିଷଦବିଶେଷ ।
ଗାୟନ—ମୁସଲମାନ ଜାତିର ଗୋଟିଏ ଶାଖା । [ସ୍ଥାନ ।
ଗାୟନ୍ତିକା—ସ୍ତ୍ରୀ.ବ.ହିମାଳୟସ୍ଥ ଗୋଟିଏ
ଗାୟନ୍ତୀ—ସ୍ତ୍ରୀ. ବ. ଗାୟପତ୍ନୀ, ଯେ ସ୍ତ୍ରୀ ଗାୟନ କରୁଅଛି ।
ଗାୟା—ଗ୍ରା.ବ. ଖଲ୍ଲିକୋଟ ଘୁମୁସର ଓ ନୂଆଗଡ଼ର ରାଜ୍ୟମାନଙ୍କର ସୀମାରେ ଥିବା ପର୍ବତବିଶେଷ ।
ଗାୟିକା—ସ୍ତ୍ରୀ.ବ୍ୟଂ. (ଗାୟକ+ଆ) ଯେ ଗୀତ ଗାଏ । [ବିଶେଷ ।
ଗାୟିନୀ—ସ୍ତ୍ରୀ. ବ. ଗାୟିକା, ଛନ୍ଦୋ-
ଗାୟେବ—ଯା. ବ୍ୟଂ. ଅଦୃଶ୍ୟ, ଗୁପ୍ତ, ଲୁକ୍‌କାୟିତ,(ବ) ଲୁଚାଇବା,ଗୋପନ, ଏକପ୍ରକାର ସତରଞ୍ଜି ଖେଳ ।
ଗାୟେବୀ—ଯା. ବିଂ. ଗୁପ୍ତ,ଲୁକ୍‌କାୟିତ ।
ଗାର—ଯା. ବ. ରେଖା, ଗିରା, ଲେଖା ବା ଗଣନା, ଓଜନ କରିବା ପରିମାଣ ବିଶେଷ, ଭାଗ, ଚିହ୍ନ, ତାଲିକା, ଗ୍ରା. (ଯାଜପୁର) ବ. ବାଲେଶ୍ୱରୀ ଦୁଇସେର ଓଜନ ପରିମାଣ,ଗ୍ରା.(କଟକ)ବ.ଏକବିଶା ବା ଦୁଇକଲ୍ଲେଗ୍ରାମରୁ କିଛିଏ ବେଶି ।
ଗାରକାଟିବା—ଗ୍ରା. କ୍ରି. ଭୂମି ଆଦିରେ ରେଖା ଅଙ୍କନ କରିବା, କୌଣସି ଲିଖିତ ବିଷୟ ରେଖାଦ୍ୱାରା କାଟିବା, ଲେଖିବା, କୌଣସି କାର୍ଯ୍ୟର ସୀମା ନିର୍ଦ୍ଦେଶ କରିବା, ଲିଖିତ ଆଦେଶ ଦେବା ।
ଗାରଗାରିଆ—ଗ୍ରା.ବ୍ୟଂ. ଯହିଁରେ ବହୁତ ଗାର ପଡ଼ିଥାଏ । [ମେଣ୍ଢା ।
ଗାରଡ଼—ଗ୍ରା. ପୁଂ. ଅଣ୍ଡିରା ମେଷ,
ଗାରଡ଼—ଗ୍ରା. ବ. ମାୟାବିଦ୍ୟା, ସାପ ବିଷ ଝାଡ଼ିବା ମନ୍ତ୍ର ।
ଗାରଡ଼ମନ୍ତ୍ର—ଗ୍ରା. ବ. ସର୍ପବଶୀକରଣ ମନ୍ତ୍ର ଓ ସର୍ପ ବିଷଝଡ଼ା ମନ୍ତ୍ର ।
ଗାରଡେଇବା—ଗ୍ରା. କ୍ରି. ଗାରଡ଼ ଗୁହିଁଲି ପରି ମୁହଁକୁ ପୋତି ଟେରେଇ କରି ଗୁହିଁବା ।
ଗାରଡ଼େଇଁବା—ଗ୍ରା. କ୍ରି. ସୀମାଲଙ୍ଘନ କରିବା, ନିର୍ଦ୍ଦିଷ୍ଟ ବିଷୟକୁ ଟପିବା ।
ଗାରଦ—ଯା. ବ. କାରାଗାର, ଜେଲ-ଖାନା, ପ୍ରହରୀରକ୍ଷିତ ସାମୟିକ ବନ୍ଦଶାଳା, ହାଜତ, ଜଣେ ଉଚ୍ଚ କର୍ମ-ଚାରୀଙ୍କ ନେତୃତ୍ୱରେ କୌଣସି ନିର୍ଦ୍ଦିଷ୍ଟ କାର୍ଯ୍ୟପାଇଁ ନିଯୁକ୍ତ ପ୍ରହରୀଦଳ ।
ଗାରଦ—ଯା. ବ. ସିପାହୀ । (ଦେଖ) ।
ଗାରଦେବା—ଗ୍ରା. କ୍ରି. ଗାରକାଟିବା ।
ଗାରା—ଗ୍ରା.(ସମ୍ବ)ବ.ବାଘ ଆଦିଙ୍କୁ ପ୍ରଲୋଭିତ କରି ମଞ୍ଚା ନିକଟକୁ ଆଣିବାଲାଗି ବନ୍ଧା ହୋଇଥିବା ଛେଳିଆଦି ପଶୁ, (ଯା.ବ) କାଦୁଅ ।
ଗାରାଣ୍ଟି—ଯା. ଭବିଷ୍ୟତ ଘଟଣା ସମ୍ବ-ନ୍ଧରେ ନିର୍ଦ୍ଧିତ ଜବାବ,ନିର୍ଭରଜବାବ, ପ୍ରତିଭୂ, ଜାମିନ୍ ।
ଗାରିଆ—ଗ୍ରା. ବ୍ୟଂ. ଗାରବିଶିଷ୍ଟ, ଗାର କଟାଯାଇଥିବା, ଅତିକଦର୍ଯ୍ୟହୋଇ ଲେଖା ଯାଇଥିବା, (ଗ୍ରା. ବ.) ଗାର କାଟିବା କର୍ମ ।
ଗାରିଆଗାରି—ଗ୍ରା. ବ୍ୟଂ. ବହୁରେଖା-ଦ୍ୱାରା ଅଙ୍କିତ, (ଗ୍ରା.ବ.) ବହୁରେଖା କାଟିବା କର୍ମ ।
ଗାରିଆସିବା—ଗ୍ରା.କ୍ରି.ଗାରକଟାହେବା, ଲିଖିତହେବା, ଅତିକଦର୍ଯ୍ୟରୂପେ ଲେଖାହେବା ।
ଗାରିକିଆ—ଗ୍ରା.ବ୍ୟଂ. ଏକରେଖାବିଶିଷ୍ଟ ।
ଗାରିତ—କ୍ଲୀ. ବ. (ଗୃ+ଇତ) ଅନ୍ନ ।
ଗାରିବା—ଗ୍ରା. କ୍ରି. ଗାର ବା ରେଖା ଟାଣିବା, ନିର୍ଣ୍ଣୟ କରିବା, ଏଣ୍ଡୋର୍ସ ଲେଖିବା, ଗାରେଇବା, ଅଟଳଆଦେଶ ଦେବା ।

ଗାରମା—ଗ୍ରା. ବି. ଅହଂଙ୍କାର, ଗର୍ବ, ବଡ଼ାଇ, ଢମାକ୍, (ଗ୍ରା. ବିଂ) ଗର୍ବିତ ।

ଗାରୁ—ପ୍ରା. (ଗଞ୍ଜାମ) ବି. ( ତେଲଗୁ ) ସମ୍ମାନାର୍ଥକ ଶବ୍ଦ, ମହାଶୟ ।

ଗାରୁଗାରୁ—ଗ୍ରା. ବିଂ. ବିରକ୍ତି ବା ଅଭିମାନ ପ୍ରକାଶପୂର୍ବକ ଗାଉଁ ଗାଉଁ ହେଉଥିବା, ବିମର୍ଷ, ଭ୍ରୂକୁଟିଯୁକ୍ତ, ଅସନ୍ତୁଷ୍ଟ, ବିରକ୍ତିପ୍ରକାଶକ ।

ଗାରୁଡ଼—କ୍ଳୀ.ବି. (ଗରୁଡ଼+ଅ)ଗରୁଡ଼ପୁରାଣ, ବିଷହରମନ୍ତ୍ରବିଶେଷ, ଗରୁଡ଼ାକୃତି ବ୍ୟୂହଭେଦ, (ବି)ଗରୁଡ଼ସମ୍ବନ୍ଧୀୟ, (ବି) ମରକତମଣି, ସ୍ୱର୍ଣ୍ଣ, ଅସ୍ତ୍ରବିଶେଷ, (ସ୍ତ୍ରୀ) ଗାରୁଡ଼ୀ, ପାତାଳ ଗରୁଡ଼ଲତା ।

ଗାରୁଡ଼ି(କ)—ପୁଂ. ବି. ବିଷବୈଦ୍ୟ, ଜାଙ୍ଗଳିକ, ବିଷମନ୍ତ୍ରଜ୍ଞ, ସାପୁଆ ।

ଗାରୁତ୍ମତ—କ୍ଳୀ. ବି. ( ଗରୁତ୍ମତ୍+ଅ ) ଗରୁଡ଼ଦୈବତ, ଅସ୍ତ୍ରବିଶେଷ, (ଗାରୁଡ଼ାସ୍ତ୍ର), ମରକତମଣି ।

ଗାରୁତ୍ମତପତ୍ରିକା—ସ୍ତ୍ରୀ.ବି. ପାଚୀଲତା ।

ଗାରେ—ଗ୍ରା. ଅବ୍ୟ. ଲିବମାତ୍ର, ତଳେହେଲେ ।

ଗାରେଇବା—ଗ୍ରା. କ୍ରି. ଗାର କାଟିବା, ଲେଖିବା, ଅତି ଭଦର୍ଯ୍ୟରୂପେ ଲେଖିବା, ଏଣ୍ଡୁତେଣ୍ଡୁ ଗୁଡ଼ାଏ ଲେଖିବା ।

ଗାରୋ—ଆସାମର ଦ. ପ. ହଗରେ ଅବସ୍ଥିତ ଗିରିଶ୍ରେଣୀ, ମେଘାଳୟ ରାଜ୍ୟ ଅନ୍ତର୍ଗତ ସ୍ଥାନବିଶେଷ, ଏହି ଅଞ୍ଚଳର ବନ୍ୟଜାତିବିଶେଷ ।

ଗାର୍ଗ—ପୁଂ. ବି. (ଗାର୍ଗ+ଅ) ଗାର୍ଗସଂଘ ଓ ତାହାର ଅଙ୍ଗ, ଗାର୍ଗଲକ୍ଷଣ, ଗାର୍ଗର କୁତ୍ସିତଅପତ୍ୟ,(ବିଂ)ଗାର୍ଗରୁ ଆଗତ ।

ଗାର୍ଗକ—ପୁଂ. ସ୍ତ୍ରୀ. ବି. ଗାର୍ଗଙ୍କର କୁତ୍ସିତ ଅପତ୍ୟ ।

ଗାର୍ଗି—ପୁଂ. ବି. ( ଗର୍ଗ+ଇ ) ଜଣେ ପ୍ରାଚୀନ ଜ୍ୟୋତିଃଶାସ୍ତ୍ରକାର, ଗର୍ଗମୁନିଙ୍କ ସନ୍ତାନ ।

ଗାର୍ଗିକ—ପୁଂ. ସ୍ତ୍ରୀ. ବି. ଗାର୍ଗୀଙ୍କର କୁତ୍ସିତ ଅପତ୍ୟ ।

ଗାର୍ଗିକା—ସ୍ତ୍ରୀ. ବି. ଗାର୍ଗ୍ୟର ଭାବ ବା ଧର୍ମ, ଗାର୍ଗ୍ୟଙ୍କର କର୍ମ ।

ଗାର୍ଗୀ—ସ୍ତ୍ରୀ. ବି. ( ଗର୍ଗ+ଈ) ଗର୍ଗଗୋତ୍ରୋତ୍ପନ୍ନ ବିଦୁଷୀ ରମଣୀ, ଯାଜ୍ଞବଲ୍କ୍ୟ ମୁନିଙ୍କ ସ୍ତ୍ରୀ, ଦୁର୍ଗା ।

ଗାର୍ଗୀପୁତ୍ର—ପୁଂ. ବି. ଗାର୍ଗିଙ୍କର ପୁତ୍ର ଶୁକ୍ଳ ଯଜୁର୍ବେଦ କଥିତ ଜଣେ ମୁନି ।

ଗାର୍ଗୀପୁତ୍ରକାୟଣି, ଗାର୍ଗୀପୁତ୍ରାୟଣୀ—ଗାର୍ଗୀପୁତ୍ର,(ପୁଂ. ସ୍ତ୍ରୀ. ବି) ଗାର୍ଗୀପୁତ୍ରଙ୍କର ଅପତ୍ୟ ।

ଗାର୍ଗୀୟ—ତ୍ରି.ବିଂ.(ଗର୍ଗ+ଈୟ) ଗାର୍ଗ୍ୟ ସମ୍ବନ୍ଧୀୟ, ଗାର୍ଗ୍ୟପ୍ରୋକ୍ତ ।

ଗାର୍ଗେୟ—ପୁଂ. ସ୍ତ୍ରୀ. ବି. (ଗର୍ଗ+ଏୟ) ଗର୍ଗଗୋତ୍ରୋତ୍ପନ୍ନ ।

ଗାର୍ଗ୍ୟ—ପୁଂ. ସ୍ତ୍ରୀ. ବି. ( ଗର୍ଗ+ଯ ) ଗର୍ଗଙ୍କର ଅପତ୍ୟ, ଜଣେ ପ୍ରାଚୀନବୈୟାକରଣ ।

ଗାର୍ଗ୍ୟଗୋପାଳଯଜ୍ୱା—ପୁଂ. ବି. ଜଣେ ବେଦଜ୍ଞ ପଣ୍ଡିତ ।

ଗାର୍ଜନ—ଯା. ନାବାଳଗ ବା ବାଉଳମାନଙ୍କରଅଭିଭାବକ,ଗୃହକର୍ତ୍ତା,ମୁରବୀ ।

ଗାର୍ଡ଼—ଯା. ବି. ରେଲଗାଡ଼ିର ତତ୍ତ୍ୱାବଧାରକ, ଚୌକିଦାର, ପ୍ରହରୀ, ପକ୍ଷାର୍ଥୀମାନଙ୍କୁଜଗିବାବ୍ୟକ୍ତି,ସଶସ୍ତ୍ରପ୍ରହରୀ ।

ଗାଡ଼େ଼ନପାର୍ଟୀ—ଯା.ବି.କୌଣସି ବିଶିଷ୍ଟ ବ୍ୟକ୍ତିଙ୍କୁ ସମ୍ବର୍ଦ୍ଧନା କରିବାପାଇଁ କିମ୍ବା କୌଣସି ଉତ୍ସବ ଉପଲକ୍ଷ୍ୟରେ ବହୁ ବନ୍ଧୁଙ୍କର ଉଦ୍ୟାନ-ସମ୍ମିଳନ ଓ ଭୋଜି ।

ଗାର୍ତ୍ତିକ—ତ୍ରି.ବିଂ. (ଗର୍ତ୍ତି+ଅକ) ଗର୍ତ୍ତିଦେଶଜାତ ।

ଗାର୍ତ୍ସମଦ—ପୁଂ.ବି. ଗୃତ୍ସମଦଙ୍କର ପୁତ୍ର ।

ଗାର୍ଦ୍ଦଭ—ତ୍ରି.ବିଂ.(ଗର୍ଦ୍ଦଭ+ଅ)ଗର୍ଦ୍ଦଭସମ୍ବନ୍ଧୀୟ, ରାସଭିକ, (ବି) ଗର୍ଦ୍ଦଭର ଧ୍ୱନି, ଗର୍ଦ୍ଦଭମୂତ୍ର ।

ଗାର୍ଦ୍ଦଭରଥିକ—ପୁଂ. ବିଂ. ଗର୍ଦ୍ଦଭଯୁକ୍ତ ରଥଗମନଯୋଗ୍ୟ,ଗଧଯୋଗ୍ୟ ଗାଡ଼ିରେ ଯିବାର ଯୋଗ୍ୟ ।

ଗାର୍ଦ୍ଧ୍ୟ—କ୍ଳୀ.ବି. (ଗର୍ଦ୍ଧ+ଯ) ଲୋଭ, ଅତିଶୟ ତୃଷ୍ଣା ।

ଗାର୍ଦ୍ଧପକ୍ଷ-ପୁଂ.ବି. ଗୃଧ୍ରପକ୍ଷବିଶିଷ୍ଟ ବାଣ ।

ଗାର୍ଦ୍ଧପତ୍ର—ପୁଂ. ବି. ଗୃଧ୍ରପକ୍ଷବିଶିଷ୍ଟ ।

ଗାର୍ଧ୍ରବାଜିତ-ପୁଂ.ବି. (ଗାର୍ଧ୍ରବାଜ+ତ) ଯେଉଁ ବାଣରେ ଗୃଧ୍ରପକ୍ଷ ସଂଯୁକ୍ତ କରାହୋଇଅଛି ।

ଗାର୍ଧ୍ରବାଣ—କ୍ଳୀ.ବି.ଗୃଧ୍ରପକ୍ଷଯୁକ୍ତ ବାଣ ।

ଗାର୍ନେଟ୍—ଯା. ବି. ଏକପ୍ରକାର ଉତ୍କୃଷ୍ଟ ରଙ୍ଗିନ୍ ରେଶମ ଲୁଗା ।

ଗାର୍ଭ—ତ୍ରି. ବିଂ. (ଗର୍ଭ+ଅ) ଗର୍ଭଶୁଦ୍ଧି ନିମିତ୍ତ ଯାହା ଅନୁଷ୍ଠାନ କରାଯାଏ, ଗର୍ଭସମ୍ବନ୍ଧୀୟ ।

ଗାର୍ଭିକ—ବିଂ. (ଗର୍ଭ+ଇକ)ଗର୍ଭସମ୍ବନ୍ଧୀୟ, (ସ୍ତ୍ରୀ) ଗାର୍ଭିକୀ ।

ଗାର୍ଭିଣ—କ୍ଳୀ. ବି. ଗର୍ଭିଣୀସମୂହ ।

ଗାର୍ମୁତ—ତ୍ରି. ବିଂ. (ଗର୍ମୁତ+ଅ) ଗର୍ମୁତ ଧାନ୍ୟସମ୍ବନ୍ଧୀୟ ।

ଗାର୍ଷ୍ଟେୟ—ପୁଂ.ସ୍ତ୍ରୀ.ବିଂ.ଏକବାର ପ୍ରସୂତା ଗାଈର ଅପତ୍ୟ, ବୃଷଭ, ପଢ଼ୁଆଁକାଳୁଣୀ ଗାଈର ଅଣ୍ଡିରା ବାଛୁରୀ ।

ଗାର୍ହପତ—ତ୍ରି. ବିଂ. ( ଗୃହପତି+ଅ ) ଗୃହପତିସମ୍ବନ୍ଧୀୟ ।

ଗାର୍ହପତ୍ୟ—ପୁଂ. ବି.( ଗୃହପତି+ଯ ) ସାଗ୍ନିକ ଗୃହସ୍ଥଦ୍ୱାରା ସମ୍ପାଦିତ ଯଜ୍ଞାଗ୍ନି ଓ ଯଜ୍ଞ, (ବିଂ) ଗୃହପତିସମ୍ବନ୍ଧୀୟ ।

ଗାର୍ହପତ୍ୟାଗାର—ପୁଂ.ବି.ଗାର୍ହପତ୍ୟାଗ୍ନିଗୃହ ।

ଗାର୍ହପତ୍ୟାଗ୍ନି—ବି.କ.ଧା (ଗାର୍ହପତ୍ୟ+ଅଗ୍ନି) ଛଅପ୍ରକାର ଯଜ୍ଞାଗ୍ନି ମଧ୍ୟରୁ ପ୍ରଥମ ଓ ପ୍ରଧାନ ଅଗ୍ନି ।

ଗାର୍ହମେଧ—ପୁଂ. ବି. (ଗୃହମେଧ+ଅ) ଗୃହସ୍ଥର କର୍ତ୍ତବ୍ୟ ପଞ୍ଚଯଜ୍ଞରୂପ କର୍ମ ।

ଗାର୍ହସ୍ଥ(ସ୍ଥ୍ୟ)—କ୍ଳୀ. ବି. (ଗୃହସ୍ଥ+ଅ.ଯ) ଗୃହସ୍ଥର କର୍ତ୍ତବ୍ୟ ପଞ୍ଚଯଜ୍ଞରୂପ କର୍ମ, ଦ୍ୱିତୀୟାଶ୍ରମବିଶେଷ ।

ଗାର୍ହ୍ୟ—ବିଂ.(ଗୃହ+ଯ)ଗୃହସ୍ଥସମ୍ବନ୍ଧୀୟ, ପାରିବାରିକ ଗୃହସମ୍ବନ୍ଧୀୟ ।

ଗାଳ—ବି.(ଗଳ+ଣି,ଅ)ଟୋପାଟୋପା ହୋଇ ତଳକୁ ପଡ଼ିବା, ଗଳିବା,

ପ୍ରବାହ, (ବିଂ) ବହୁଥିବା, ଝରୁଥିବା, ଟୋପା ଟୋପା, ହୋଇ ପଡୁଥିବା ।

ଗାଲ—ଗ୍ରା. ବି. କପୋଳଦେଶ, ଗଣ୍ଡ-ଦେଶ, ଗ୍ରାସ, କବଳ ।

ଗାଲକେଚୂନ ଗାଲକେ କଲାଦେବା—ଗାଲରେ ଚୂନକଳା ଦେବା, (ଗ୍ରା.କ୍ରି) ଲଜ୍ଜାଜନକ କାର୍ଯ୍ୟକାରୀ ବା ଅପରାଧ-କାରୀ ବ୍ୟକ୍ତିଙ୍କୁ ଅପମାନିତ କରିବା ଉଦ୍ଦେଶ୍ୟରେ ବା ଦଣ୍ଡସ୍ୱରୂପ ତାହାର ଏକ ଗାଲରେ ଚୂନ ଓ ଅନ୍ୟ ଗାଲରେ କାଳି ଲେପିବା । [ପ୍ରଳାପ ।

ଗାଲଗଳ୍ପ—ଗ୍ରା.ବି. ମିଥ୍ୟାଗଳ୍ପ, ଅଳୀକ

ଗାଲଚପା—ଗ୍ରା.ବି.ଅନ୍ୟ ବ୍ୟକ୍ତିର ଗାଲକୁ ଚପି ଆଘାତ କରିବା ।

ଗାଲନ୍—ଯା.ଇଂରେଜ ପ୍ରଚଳିତ ତରଳ ପଦାର୍ଥର ପରିମାଣବିଶେଷ ।

ଗାଲନ—କ୍ଲୀ. ବି. ( ଗାଲ୍+ ଷ୍ଣି.ଅନ ) କ୍ଷାରଣ, ନିଃସ୍ରାବଣ, ଗାଳିବା, ତର-ଳାଇବା ।

ଗାଲପାଟି—ଗ୍ରା.ବି. ମୁହଁର ତଳପାଟି ଓ ତଳ ଗାଲ ଅଂଶ, ହନୂ ।

ଗାଲଫୁଲ୍—ଗ୍ରା.ବି.ଗାଲୁଆରୋଗ, ଗାଲ-ଫୁଲାରୋଗ ।

ଗାଲବ—ପୁଂ.ବି.ଲୋଧ୍ରବୃକ୍ଷ, ଲୋଧଗଛ, କେନ୍ଦୁଗଛ, ମୁନିବିଶେଷ, ବିଶ୍ୱାମିତ୍ର-ଙ୍କର ଏକଶିଷ୍ୟ, ଜଣେ ପ୍ରସିଦ୍ଧ ବୈୟା-କରଣ, ଜଣେ ଧର୍ମଶାସ୍ତ୍ରକାର ।

ଗାଲବକ୍ଷେତ୍ର—ବି. ଗୋଟିଏ ପୁଣ୍ୟସ୍ଥାନ ।

ଗାଲବାଦ୍ୟ—କ୍ଲୀ. ବି. ଗାଲ ମଧ୍ୟରେ ପବନ ବନ୍ଦ କରି ଗାଲ ଉପରେ ଆଙ୍ଗୁଠି ମାରି କରାଯିବା ବଂ ବଂ ଶବ୍ଦ ।

ଗାଲବି—ପୁଂ.ବି.(ଗାଲବ+ଇ) ପ୍ରାକ୍-ଶୃଙ୍ଗବନ୍ତନାମକ ଗାଲବ ଋଷିଙ୍କର ଗୋଟିଏ ପୁତ୍ର ।

ଗାଲମାଧବ—ଗ୍ରା.ବି. ପ୍ରାଚୀନ ଓଡ଼ିଶାର ରାଜାବିଶେଷ,(ଲକ୍ଷଣାର୍ଥ) ମିଥ୍ୟା ଭାବ-କରିବା ବ୍ୟକ୍ତି ।

ଗାଲମୁଚ୍ଛ(ଛ)—ଗ୍ରା.ବି.ଗାଲପଟା, କାନ ନିକଟରୁ ଗାଲ ପର୍ଯ୍ୟନ୍ତ ରଖାଯିବା କେଶ ବା ଦାଢ଼ି ।

ଗାଲରେ ହାତଦେବା—ଗ୍ରା. କ୍ରି.ଅତ୍ୟନ୍ତ ଦୁଃଖିତ ଓ ମ୍ରିୟମାଣ ହେବା ।

ଗାଲ୍ଲ—ବି. (ଗଲ୍‌ଧାତୁଜ) ଢଉ, ଢେଉ, ଲହ ।

ଗାଲାଗାଢ—ଗ୍ରା. ବି. କଟୂବାକ୍ୟ, କଳି-କଜ୍ୟା, ଶାପ ।

ଗାଲ୍ମୋହର—ଗ୍ରା.ବି.ଲଫାଫା ଉପରେ ଦିଆଯିବା ଜତୁମୁଦ ।

ଗାଲି—ପୁଂ. ବି. (ଗଲ୍+ଇ)ଶାପ,ମନ୍ଦ କଟୂବାକ୍ୟ, ଭର୍ତ୍ସନା ।

ଗାଲି—ଗ୍ରା.ବି.ମାଛଆଦିଙ୍କ ଗାଲ ଉପରେ ଥିବା ଅର୍ଦ୍ଧଚନ୍ଦ୍ରାକାର ବର୍ତ୍ତୁଳ ଅସ୍ଥି, ମାଛର ଗାଲ, ଆମ୍ବଆଦି ଫଳର ଟୁକୁ-ଆର ଯେଉଁ ଅଂଶରୁ ଗଜା ବାହାରେ, ଗଜା, ଗାଲି, କଳି, ଲୁଣ ମରାଯିବା ସ୍ଥାନ । [ଭର୍ତ୍ସନା ।

ଗାଲିଗୁଲଜ—ଗ୍ରା. ବି. ନାନାବିଧ ପ୍ରକାର

ଗାଲିଚ୍—ଯା. ବି. ମେଷ ଲୋମାଦିରେ ପ୍ରସ୍ତୁତ ମୋଟ ଚକ୍ରବିଚକ୍ର ଆସନ-ବିଶେଷ ।

ଗାଲିତ—ବି.ବିଂ.(ଗାଲି+ ମି.ତ)ଦ୍ରବୀ-କୃତ, ଜଳୀୟ ଅଂଶ ନିଷ୍କାସିତ ହୋଇ-ଥିବା, ଗଳା ହୋଇଥିବା ।

ଗାଲିଦେବା—ଗ୍ରା. କ୍ରି. ଅନ୍ୟ ବ୍ୟକ୍ତିକୁ ଭର୍ତ୍ସନା କରିବା ।

ଗାଲିନୀ—ସ୍ତ୍ରୀ.ବି.ତନ୍ତ୍ରୋକ୍ତ ମୁଦ୍ରାବିଶେଷ ।

ଗାଲିବା—ଗ୍ରା. କ୍ରି. ଜଳମିଶ୍ରିତ ବସ୍ତୁରୁ ଜଳୀୟ ଅଂଶ ନିଗାଡ଼ିବା ।

ଗାଲିମ—ଯା.ବି. ବିପକ୍ଷ, ଶତ୍ରୁ, ଅତ୍ୟା-ଗ୍ରସ୍ତ ବ୍ୟକ୍ତି, (ବିଂ) ଅତ୍ୟାଗ୍ରହକ,ଶତ୍ରୁ-ଭାବାପନ୍ନ, ପ୍ରବଳ ପରାକ୍ରମଶାଳୀ ।

ଗାଲିମନ୍ଦ—ଗ୍ରା.ବି.ଗାଲିଫଜଜ୍ଜ,ଧିକ୍କାର, ଗାଲି ଓ ଅପମାନ ।

ଗାଲିମାନ୍—ପୁଂ.ବିଂ.(ଗାଲି+ମତ୍)ଗାଲି-ଯୁକ୍ତ, ଆକ୍ରୋଶଯୁକ୍ତ ।

ଗାଲିଲିଓ—ଯା.ବି,ଗ୍ରୀସର ପ୍ରସିଦ୍ଧ ପ୍ରାଚୀନ ବୈଜ୍ଞାନିକ ।

ଗାଲିବ—ଯା.ବି.ଜଣେ ମୁସଲମାନ କବି ।

ଗାଲିସି—ଗ୍ରା. ବି. ଗାଲି, ମାଛର ଗାଲ ଉପରେ ବୃତ୍ତାକାର ଅସ୍ଥିଫଳକ ବା ବର୍ତ୍ତୁଳ ଅସ୍ଥିବତ୍ ବସ୍ତୁ, ମାଛର ଗାଲ-ତଳେ ଥିବା କାମାଣି ଆକାରର ନାଲ-ଅସ୍ଥି—ଯହିଁରେ ପାଣିଆଁପରି ଗୁଡ଼ିଏ ଦାନ୍ତ ଥାଏ ।

ଗାଲୁ—ଗ୍ରା.ବି.ମିଛକୁ ସତ, ସତକୁ ମିଛ କରି କହିବାର ଅଭ୍ୟାସ, ଠେଁସାପଣ, ଅବାଧ୍ୟତା, ତାଳ ଫଳରେ ଥିବା ଅକ-ର୍ମଣ୍ୟ ଅଂଶ, ପ୍ରା.(ଉତ୍ତରଓଡ଼ିଶା)ଜଡ଼ା, ଭେରଣ୍ଡ, ଏରଣ୍ଡ ।

ଗାଲୁଆ—ଗ୍ରା.ବିଂ.ଯେ ଆତ୍ମବଡ଼ିମା କରେ, ମିଛୁଆ, ଅମାନିଆଁ, ଗାଲବିଶିଷ୍ଟ, (ବି) ଗାଲଫୁଲା ରୋଗ, ମିଛୁଆଲୋକ, ଆତ୍ମ-ବଡ଼ିମାକାରୀ ବ୍ୟକ୍ତି ।

ଗାଲୁକରିବା—ଗ୍ରା. କ୍ରି. କୌଣସି ସତ-କଥାକୁ ମିଛ ବୋଲି ଦୃଢ଼ଭାବରେ କହିବା, ଭୁରୁଡ଼ାଇବା ।

ଗାଲୁଭୁରୁଡ଼ୁ—ଗ୍ରା. ବି. ମିଥ୍ୟାଆସ୍ଫାଳନ, ଦାମ୍ଭିକତା ।

ଗାଲେଇବା—ଗ୍ରା. କ୍ରି. କୌଣସି ମିଛ କଥାକୁ ସତ ବୋଲି କହିବା, ଭୁରୁ-ଡ଼ାଇବା ।

ଗାଲେଇବା—ଗ୍ରା.କ୍ରି.ମୁହଁକୁ ଏକପାଖିଆ କରି କାନଡେରି କୌଣସି ବିଷୟକୁ ଶୁଣିବାକୁ ମନୋଯୋଗଦେବା,କୌଣସି କଥାକୁ ନ ଶୁଣିଲାପରି ଏଡ଼ିଦେବା ବା ନ କରିବା ।

ଗାଲେରି—ଯା. ବି. ବହୁଲୋକ ବସିବା-ପାଇଁ କ୍ରମୋଚ୍ଚସଜ୍ଜିତ ସୋପାନାକୃତ ଆସନପଂକ୍ତି ।

ଗାଲୋଡ଼ନ—କ୍ଲୀ.ବି. (ଗୋଲଡ଼+ଅନ) ଉନ୍ମାଦ ରୋଗ, ମୂର୍ଖତ୍ୱ ।

ଗାଲୋଡ଼ିତ—ବି.ବିଂ.(ଗାଲୋଡ଼+ଇତ) ଉନ୍ମାଦଶୀଳ, ରୋଗାକ୍ତ, ମୂର୍ଖ ।

ଗାଲୋଡ଼୍ୟ—କ୍ଲୀ.ବି. ଧାନ୍ୟବିଶେଷ, ପଦ୍ମ-ବୀଜ, ପୁଷ୍କର ।

ଗାବିଷ୍ଟିର—ପୁଂ.ସ୍ତ୍ରୀ. ଗବିଷ୍ଟିର ଋଷିଙ୍କର ପୁତ୍ରାପତ୍ୟ (ସ୍ତ୍ରୀ) ଗାବିଷ୍ଟିରୀ ।

ଗାବସ୍ଥିରାୟଣ—ପୁଂ. ବ. ଗବସ୍ଥିର ଋଷିଙ୍କରଯୁବାପତ୍ୟ,(ସ୍ତ୍ରୀ)ଗାବସ୍ଥିରାୟଣୀ ।
ଗାମ୍ବାଧୁକ—ବି. ବଂ. (ଗମ୍ବାଧୁକ+ଅ) ଗମ୍ବାଧୁକର ବିକାର, ତାହାଦ୍ୱାରା ପ୍ରସ୍ତୁତ ଚରୁ ପ୍ରଭୃତି ।
ଗାବେଧୁକ—ବି. ବ. (ଗବେଧୁକା+ଅ) ଗବେଧୁକର ବିକାର, ଗହମଦ୍ୱାରା ପ୍ରସ୍ତୁତ ଚରୁପ୍ରଭୃତି ।
ଗାବଲୀ—ଦାକ୍ଷିଣାତ୍ୟର ଗହଳ୍ଜାତି ।
ଗାହ—ପୁଂ.ବ.(ଗାହ୍+ଭାଁ.ଅ) ଗହନ, ଦୁର୍ଗମ, ବଂ. (ଗାହ+କ.ଅ)ଯେ ଅବଗାହନ କରେ, ଅବଗାହନକର୍ତ୍ତା ।
ଗାହକ—ପୁଂ. ବଂ. (ଗାହ୍+କ.ଅକ) ଯେ ଗାଧୁଏ, ଯେ ବୁଡ଼େ, ଅବଗାହନକାରୀ ।
ଗାହନ—କ୍ଳୀ. ବ. (ଗାହ୍+ଭା.ଅନ) ବିଲୋଡ଼ନ, ଆକୁଳୀକରଣ, ନିମଜ୍ଜନ, ବୁଡ଼ିବା, ସ୍ନାନ ।
ଗାହମାସ୍ୟ—ବି. ବଂ. (ଗାହ୍+ଅନୀୟ) ଯାହାକୁ ବିଲୋଡ଼ନ କରିବା ଉଚିତ ।
ଗାହ—ଗ୍ରା. ବ. (ଜାହାଜଆଶବ୍ଦ)ଜାହାଜର ଦାଗ ।
ଗାହିତ—ବି. ବଂ. (ଗାହ୍+କ.ମାଁ.ତ) ଆଲୋଡ଼ିତ, ଅବଗାହିତ, ସ୍ନାତ, ସ୍ନାନ କରିଥିବା, ମଜ୍ଜିତ, ପାଣିରେ ବୁଡ଼ା ଯାଇଥିବା ।
ଗାହିତା—ପୁଂ.ବଂ.(ଗାହ୍+କ.ତୃ)ଅବଗାହନକର୍ତ୍ତା, ଆଲୋଡ଼ନକର୍ତ୍ତା, ସ୍ନାନକାରୀ,କମ୍ପନକାରୀ, ଯେ କମ୍ପାଏ, (ସ୍ତ୍ରୀ) ଗାହିନୀ ।
ଗିଜ—ପ୍ରା.(ସମ୍ବ)ବ. ମଳଦ୍ୱାର, ଗାଣ୍ଡି ।
ଗିଜ୍ଜିବା-ପ୍ରା(ସମ୍ବ) କ୍ରି.(ଦାନ୍ତ)ଲେପେଇବା, ଦାନ୍ତ ନିକୁଟିବା ।
ଗିଜାଇବା—ପ୍ରା. ( ସମ୍ବ ) କ୍ରି. ହେଳା କରିବା, ଯିବାକୁ ବିଳମ୍ବ କରିବା ।
ଗିଜାନୀମୌଲନା—ବ. ଜଣେ ରାଜକବି ।
ଗିଜସ୍ୱାମୀ—ଆଫଗାନସ୍ଥାନବାସୀ ପଠାଣଜାତିର ଗୋଟିଏ ଶାଖା ।
ଗିଞ୍ଜି—ତାମିଲନାଡ଼ୁ ରାଜ୍ୟସ୍ଥ ଆର୍କଟ ନିକଟବର୍ତ୍ତୀ ଦଣ୍ଡବନମ୍ ଅଞ୍ଚଳ ମଧ୍ୟରେ ଗୋଟିଏ ପର୍ବତମୟ ଭୂଭାଗ ଓ ଗିରିଦୁର୍ଗ । [ବିଶେଷ ।
ଗିଡ଼ଗିଡ଼ିଆ—ଗ୍ରା.ବ.ନୀଚ କେଉଟ ଜାତି
ଗିଡ଼ଗିଡ଼ି—ଗ୍ରା.ଅବ୍ୟ.ଘିଡ଼ଘିଡ଼ି, ଶଗଡ଼ର ଚକ ଟାଣ ଭୂଇଁରେ ଗଡ଼ିବାର ଶବ୍ଦ, ମର୍ଦ୍ଦଳାଦି ବାଦ୍ୟର ଶବ୍ଦ ।
ଗିଣିଗିଣା—ଗ୍ରା. ପୁଂ. ବଂ. ଅନୁନାସିକ, ଯେ କଥା କହିଲାବେଳେ ଅନୁନାସିକ ଶବ୍ଦ ଉଚ୍ଚାରଣ କରେ, ଯେ ଅସନ୍ତୁଷ୍ଟ, ସରୁ, ଅସ୍ପଷ୍ଟ, ଗୁଣୁଗୁଣୁ ସ୍ୱରକାରୀ ।
ଗିଣିଗିଣି—ଗ୍ରା. ଅବ୍ୟ. ମାଛିଙ୍କର ଶବ୍ଦବିଶେଷ, (ଗ୍ର .ବ.)ଗିଣିଗିଣୀ (ଦେଖ) ।
ଗିଣିଗିଣିଆଁ—ଗ୍ରା. ପୁଂ. ବଂ. ଗିଣିଗିଣା (ଦେଖ), (ସ୍ତ୍ରୀ) ଗିଣିଗିଣେଇ ।
ଗିଦ—ପୁଂ. ବ. ରଥପାଳକ ଦେବତାବିଶେଷ ।
ଗିଦଡ଼—ଯା.ବ. କୋକଶିଆଳ, ଶୃଗାଳ, (ବଂ) ସ୍ୱେଚ୍ଛାଗୃହୀ ।
ଗିଧ୍‌ଲ—ପ୍ରା.(ସମ୍ବ) ବ. ସାନ ବାଦୁଡ଼ି, ଚେମିଣି ବାଦୁଡ଼ି ।
ଗିଧ୍‌ଲି—ପ୍ରା.(ସମ୍ବ)ବ.ବାଦୁଡ଼ି,ଚେମିଣି ।
ଗିଧଡ଼—ଗ୍ରା. ବଂ.ଗଧା,ନିର୍ବୁଦ୍ଧିଆ,ଓଲୁ, ଡରକୁଳା(ବ୍ୟକ୍ତି), ବ. ଗୃଧ୍ର, ଶିଆଳ ।
ଗିଧା—ପ୍ରା.(ସମ୍ବ) ବ. ଗୃଧ୍ର,ଶକୁନ,(ପ୍ରା. ବସ୍ତର ବ.) ଚିଲ ।
ଗିଧୀ—(ଗୃଧ୍ରଶବ୍ଦଜ)ଗୃଧ୍ର,ଗିଧ,ଶିଆଳ ।
ଗିଧୋଡ଼—ମୁଙ୍ଗେର ଜିଲ୍ଲାନ୍ତର୍ଗତ ଗିଧୋଡ ରାଜତ୍ୱ ବିଭାଗର ଗୋଟିଏ ନଗର ।
ଗିଧୋଡ଼ଗଲ—ପେଶବାର ଅନ୍ତର୍ଗତ ଗୋଟିଏ ଗିରିସଙ୍କଟ ।
ଗିନତି—ଯା. ବ. ଗଣତି ।
ଗିନା—ଗ୍ରା. ବ. ଧାତୁନିର୍ମିତ ଛୋଟ କଟୋରା ।
ଗିନି—ଯା. ବ. ଇଂଲଣ୍ଡରେ ପ୍ରଚଳିତ ଏକୋଇଶ ଶିଲିଂ ମୂଲ୍ୟର ସ୍ୱର୍ଣ୍ଣମୁଦ୍ରା, ସଭରେନ୍, (ଗ୍ରା.ବ) କଂସାରେ ନିର୍ମିତ ଛୋଟ କରତାଳ ।
ଗିନିମାଳ—ଗ୍ରା.ବ.ସ୍ୱର୍ଣ୍ଣନିର୍ମିତ ଏକପ୍ରକାର ବେକର ଅଳଙ୍କାର, ହାର ।
ଗିନିସୁନା—ଗ୍ରା.ବ. ପ୍ରଚଳିତଗିନିମୁଦ୍ରାରେ ବ୍ୟବହୃତ ସ୍ୱର୍ଣ୍ଣ ।
ଗିନ୍ଦୁକ—ପୁଂ.ବ. କେନ୍ଦୁକବୃକ୍ଷ, କେନ୍ଦୁ, ଖେଳିବା ପେଣ୍ଡୁ ।
ଗିନ୍ନି—ପ୍ରା.(ମେଦନା)ବ.ଗୃହିଣୀ, ଗୃହର କର୍ତ୍ତ୍ରୀ, ଠାକୁରାଣୀ, ଭାର୍ଯ୍ୟା ।
ଗିମା—ପ୍ରା. (ମେଦନା) ପିତାଣ ଗ ।
ଗିର୍-ସ୍ତ୍ରୀ.ବ.(ଗ+କ୍ୱିପ୍)ବାକ୍ୟ,ବଚନ, କଥିତଭାଷା, କଣ୍ଠସ୍ୱର ।
ଗିର୍‌ଗଟି—ପ୍ରା.(ଦକ୍ଷିଣଓଡ଼ିଶା)ଏଣ୍ଡୁଅ ।
ଗିର୍‌ମିଟ୍—ଗ୍ରା.ବ.ଏକଗାରନାମା, ଚୁକ୍ତିପତ୍ର, ଯେଉଁ ଦଲିଲରେ ଦୁଇପକ୍ଷଙ୍କ ମଧ୍ୟରେ ତର୍କ ବିତର୍କ ପରେ ସ୍ୱୀକୃତ ସର୍ତ୍ତମାନ ଲେଖାଯାଏ, (ପ୍ରା.ସମ୍ବ.ବ) ଲୁହାଭଅଁର । ଇଂରାଜୀ ଏଗ୍ରୀମେଣ୍ଟଶବ୍ଦରୁ ଅପଭ୍ରଷ୍ଟ ।
ଗିରଫ୍—ଯା.ବ. ଧରିବା, ରାଜାଦେଶରେ ଅପରାଧୀ ବା ସନ୍ଦେହୀ ବ୍ୟକ୍ତିକୁ ଧରିବା ବା ବନ୍ଦ କରିବା ।
ଗିରଫକରିବା—ଗ୍ରା. କ୍ରି. ଧରିବା ।
ଗିରଫଦାର୍—ଯା. ବ. ରାଜାଦେଶରେ ଅପରାଧୀ ବ୍ୟକ୍ତିକୁ ବା ଆସାମୀକୁ ଧରିବା,(ଯା.ବଂ)ରାଜାଦେଶରେ ଧୃତ ।
ଗିରସ୍ତି—ଗ୍ରା.ବ.ଗୃହକର୍ତ୍ତା,ସ୍ୱାମୀ,ଭର୍ତ୍ତା, ଗୃହସ୍ଥାଶ୍ରମୀ ବ୍ୟକ୍ତି, ଗୃହୀ ।
ଗିରସ୍ତି—ଗ୍ରା.ବଂ.ଗୃହସ୍ଥସମ୍ବନ୍ଧୀୟ, ଗୃହ ସମ୍ବନ୍ଧୀୟ, (ବ) ଗୃହସ୍ଥ ।
ଗିରା-ସ୍ତ୍ରୀ.ବ.(ଗୃ+କ୍ୱିପ୍ ବା ଆ) କବିତା, ସରସ୍ୱତୀ ନଦୀ, ବାକ୍ୟ, ବଚନ, ଜିଭ, ଜିହ୍ୱା, ସରସ୍ୱତୀ ଦେବୀ,ଭାଷା, (ଯା.ବ) ରେଖା, କାର୍ଯ୍ୟମଧ୍ୟସ୍ଥ କୋମଳତମଅଂଶ, ଏକଗଜ ପରିମାଣର ୧୬ ଭାଗରୁ ଏକଭାଗ, ଗଣ୍ଡି ଓ ସ୍ୱପାର୍ଜିତ ଧନ, ଶେଷସୀମା, (ଗ୍ରା.ବଂ) ନିଜର ଅର୍ଜିତ ଧନ ।
ଗିରାଇବା—ଗ୍ରା. କ୍ରି. (ଗିରିବା କ୍ରିୟାର ଣିଜନ୍ତ ରୂପ) ତଳେ ପକାଇବା,ତଳକୁ ଖସାଇପକାଇବା । [ ବାଣ ।
ଗିରାଙ୍କୁଶ—ବ. (ଗିର୍+ଅଙ୍କୁଶ) ବାକ୍ୟ

ଗିଗ୍ରଣ — ଯା.ବ. ମହାର୍ଘତା, ଦୁର୍ମୂଲ୍ୟତା, (ବ୍ୟ°) ମହଙ୍ଗା, ମହର୍ଗ, ଦୁର୍ମୂଲ୍ୟ ।
ଗିଗ୍ରଣି — ଯା.ବ.ମହର୍ଗ ସମୟ,ମହାର୍ଘତା, (ବ୍ୟ°) ମହଙ୍ଗା, ମହର୍ଗ ।
ଗିଗ୍ରପିତ — ବ. (ଷତତ୍ପୁ)ବିଷ୍ଣୁ, ବ୍ରହ୍ମା ।
ଗିର—ପୁଂ. ବ. (ଗୃ + କ.ଇ) ପର୍ବତ, ତାନ୍ତ୍ରିକ ସନ୍ନ୍ୟାସିବିଶେଷ, ଆଠ-ସଂଖ୍ୟା, ପରିବ୍ରାଜକମାନଙ୍କର ଉପାଧି-ବିଶେଷ, ନେତ୍ରରୋଗବିଶେଷ, ପେଣ୍ଡୁ, ମେଘ, ପାରଦଦୋଷବିଶେଷ, ଦଶନାମୀ ସଂପ୍ରଦାୟର ଅନ୍ତର୍ଗତ ଗୋଟିଏ ସମ୍ପ୍ରଦାୟ, (ସ୍ତ୍ରୀ) ବାଳମୂଷିକା, ନିଗରଣ, ଭକ୍ଷଣ, (ବ୍ୟ°) ପୂଜା, ଶ୍ରେଷ୍ଠ, (ଗ୍ରା.ବ) କାନର କୋମଳତମ ଅନ୍ତଃସ୍ଥଳ,ଛେଟ-ମୂଷା,(ଲ୍ଘବାର୍ଥେ ଓଡ଼ିଆ ପ୍ରତ୍ୟୟବିଶେଷ) ଯଥା—ବାବୁଗିରି, କର୍ଣ୍ଣିଗିରି ।
ଗିରକ — ପୁଂ.ବ.( ଗିର + କ ) ଶିବ, ମହାଦେବ, (ବି) ପର୍ବତଜାତ ।
ଗିରିକଚ୍ଛପ — ପୁଂ. ବ. ( କ.ଧା ) ଏକ ପ୍ରକାରସ୍ଥଳଚର କଚ୍ଛପ ।
ଗିରିକଣ୍ଟକ — ପୁଂ.ବ. (ଷତତ୍ପୁ) ବଜ୍ର ।
ଗିରିକଦମ୍ବ—ପୁଂ. ବ.ନୀପ,ଧାରାକଦମ୍ବ ।
ଗିରିକଦମ୍ବକ—ପୁଂ.ବ.ନୀପ,ଧାରାକଦମ୍ବ ।
ଗିରିକଦଳୀ — ସ୍ତ୍ରୀ,ବ.(କ.ଧା) ପାର୍ବତୀୟ କଦଳୀ, ବନ୍ୟକଦଳୀ । [ ଗୁହା ।
ଗିରିକନ୍ଦର — ପୁଂ. ବ. (ଷତତ୍ପୁ ) ପର୍ବତ
ଗିରିକର୍ଣ୍ଣା—ସ୍ତ୍ରୀ.ବ. (ଗିରିକର୍ଣ୍ଣ + ଆ ) ଅପରାଜିତା ଲତା ।
ଗିରିକର୍ଣ୍ଣିକା—ସ୍ତ୍ରୀ.ବ.(ଗିରି + କର୍ଣ୍ଣ + ଆ) ପୃଥିବୀ, ଶ୍ୱେତ କଣିଆ ବୃକ୍ଷ, ଅପାମାର୍ଗ ଗୁଳ୍ମ, ଅପରାଜିତା ଲତା ଓ ଫୁଲ ।
ଗିରିକର୍ଣ୍ଣୀ — ସ୍ତ୍ରୀ.ବ.(ଗିରି + କର୍ଣ୍ଣ + ଈ) ଅପରାଜିତା ଲତା, ଯବାସ (ଦୁର୍ଲଭା) ।
ଗିରିକା — ସ୍ତ୍ରୀ. ବ. ( ଗିରି + କ + ଆ ) ବାଳମୂଷିକା, ବସୁରାଜାଙ୍କର ପତ୍ନୀ, ଛେଟମୂଷା, ଡୁଙ୍ଗେଇ ମୂଷା ।
ଗିରିକାଣ — ପୁଂ.ବ°. ଗିରିନାମକ ଚକ୍ଷୁ ରୋଗରେ ଯାହାର ଗୋଟିଏ ଚକ୍ଷୁ ନଷ୍ଟ ହୋଇଅଛି ।
ଗିରିକୁମାରୀ—ସ୍ତ୍ରୀ. ବ. (ଷତତ୍ପୁ) ପାର୍ବତୀ, ଉମା, ଦୁର୍ଗା, ନଦୀ ।
ଗିରିକୂଟ — ବ. (ଷତତ୍ପୁ) ପର୍ବତ ଶୃଙ୍ଗ, ପର୍ବତର ଉପରିସ୍ଥ ଗୃହ ।
ଗିରିକ୍ଷିତ୍ — ବ°. (ଗିରି + କ୍ଷି + କ୍ୱିପ୍ ) ବାକ୍ୟରେ ଅବସ୍ଥିତ, ଯେ ପର୍ବତ ପରି ଉଚ୍ଚ ସ୍ଥାନରେ ବାସକରେ ।
ଗିରିକ୍ଷିପ — ତ୍ରି.ବ°.(ଗିରି + କ୍ଷିପ + ଅ) ଯାହାର ପର୍ବତ ଉତ୍କ୍ଷେପଣ କରିବାର ସାମର୍ଥ୍ୟ ଅଛି, (ବି) ଅକ୍ରୂରଙ୍କର ଏକ ଭାଇ,(ଗ୍ରା.ବ.)ମାଛ ମାରିବା ବ୍ୟବସାୟୀ, ନୀଚ କେଉଟଜାତି, ଗିରଗିରିଆ ।
ଗିରିଗୁଡ଼ — ପୁଂ. ବ. କନ୍ଦୁକ, ପେଣ୍ଡୁ ।
ଗିରିଗୁହା — ବ' (ଷତତ୍ପୁ) ଗିରିକନ୍ଦର (ଦେଖ) ।
ଗିରିଗୈରିକ ଧାତୁ — ପୁଂ. ବ. ପର୍ବତ-ସ୍ଥିତ ଗୈରିକଧାତୁ, ଗେରୁ ।
ଗିରିଙ୍ଗା — ଗ୍ରା. ବ. ବନ୍ଧୁକାଦି ବର୍ଗର ବନ୍ୟତରୁବିଶେଷ ।
ଗିରିଚର — ତ୍ରି. ବ°. (ଗିରି + ଚର୍ + କ,ଅ ) ପର୍ବତଚାରୀ, ଯେ ପର୍ବତରେ ବିଚରଣକରେ,(ସ୍ତ୍ରୀ)ଗିରିଚରୀ, (ପୁଂ.ବ) ଚୋରମାନଙ୍କର ଅଧିପତି ରୁଦ୍ରଦେବ, ରୁଦ୍ରାକ୍ଷବିଶେଷ ।
ଗିରିଚାରୀ — ପୁଂ.ବ°. (ଗିରି + ଚର୍ + ଇନ୍) ଯେଉଁମାନେ ପର୍ବତରେ ଭ୍ରମଣ କରନ୍ତି, ପର୍ବତଚାରୀ ।
ଗିରିଜ — କ୍ଲୀ. ବ. (ଗିରି + ଜନ୍ + ଅ) ଶୈଳଜ; ଶିଳାଜତୁ, ଲୌହ, ଅଭ୍ର, ଗେରୁ, ରକ୍ତକାଞ୍ଚନ ବୃକ୍ଷ, ପାହାଡ଼ୀ ମହୁଲଗଛ, (ବ୍ୟ°) ଯାହା ବାକ୍ୟରେ ନିଷ୍ପନ୍ନ ହୁଏ, ବାକ୍ୟଜାତ, ଯାହା ପର୍ବତରେ ଉତ୍ପନ୍ନ ହୁଏ ।
ଗିରିଜା—ସ୍ତ୍ରୀ.ବ.(ଗିରି + ଜନ୍ + କ,ଅ + ଆ) ପାର୍ବତୀ, ମାତୁଳୁଙ୍ଗ, କମଳା-ଲେମ୍ବୁ, ଟଗର, କ୍ଷୁଦ୍ର ପାଷାଣଭେଦୀ ଲତା, ଜ୍ୟୋତିଷ୍ମତୀ ଲତା, ବଳଡମ୍ବିର, ମଲ୍ଲୀ, ଗିରି କଦଳୀ, ଗଙ୍ଗାନଦୀ, କାଗ ବୃକ୍ଷ, (ଗ୍ରା.ବ) ଖ୍ରୀଷ୍ଟାନମାନଙ୍କର ଭଜନ ମନ୍ଦିର ।
ଗିରିଜାକୁମାର—ପୁଂ. ବ. ( ଷତତ୍ପୁ ) କାର୍ତ୍ତିକେୟ, ଗଣେଶ ।
ଗିରିଜାତନୟ—ପୁଂ. ବ. ( ଷତତ୍ପୁ ) ପାର୍ବତୀନନ୍ଦନ, କାର୍ତ୍ତିକେୟ ।
ଗିରିଜାନନ୍ଦନ—ପୁଂ. ବ. (ଷତତ୍ପୁ) କାର୍ତ୍ତିକେୟ, ଗଣେଶ ।
ଗିରିଜାନାଥ(ପତି) — ପୁଂ. ବ. (ଷତତ୍ପୁ) ଶିବ, ମହାଦେବ ।
ଗିରିଜାବୀଜ—ବ. (ଷତତ୍ପୁ) ଗନ୍ଧକ ।
ଗିରିଜାମଲ—କ୍ଲୀ. ବ. (ଷତତ୍ପୁ)ଅଭ୍ରକ, ଅଭ୍ର ।
ଗିରିଜାୟା — ବ. (ଷତତ୍ପୁ) ହିମାଳୟଙ୍କ ପତ୍ନୀ, ପାର୍ବତୀଙ୍କ ମାତା, ମେନାଦେବୀ ।
ଗିରିଜାଲ—କ୍ଲୀ.ବ. ଗିରିସମୂହ, ପର୍ବତ-ପଂକ୍ତି ।
ଗିରିଜାଶଙ୍କର—ବି. (ଦ୍ୱନ୍ଦ୍ୱ) ପାର୍ବତୀ ଓ ମହାଦେବ, ଶିବଙ୍କର ଅର୍ଦ୍ଧନାରୀଶ୍ୱର-ମୂର୍ତ୍ତି ।
ଗିରିଜାହ୍ୱୟ—କ୍ଲୀ.ବ. ଶିଳାଜତୁ ।
ଗିରିଜ୍ୱର—ପୁଂ.ବ.(ଷତତ୍ପୁ) ବଜ୍ର ।
ଗିରିଡ଼ିଆ—ଗ୍ରା.ବ°.ଖର୍ବକାୟ, ବାଙ୍ଗରା, ଠୁଳ । [ ଏକଦେଶ ।
ଗିରିଣଖ—ପୁଂ. ବ. ପର୍ବତର ଖଣ୍ଡ ବା
ଗିରିଣଦୀ — ସ୍ତ୍ରୀ.ବ. ପାର୍ବତୀୟ ନଦୀ ।
ଗିରିଣଦ୍ଧ — ତ୍ରି. ବ°. ଯାହା ପର୍ବତରେ ଆବଦ୍ଧ ଅଛି । [ ଦେଶ ।
ଗିରିଣିତମ୍ବ — ପୁଂ. ବ. ପର୍ବତର ପାର୍ଶ୍ୱ-
ଗିରିତ — ତ୍ରି. ବ°. (ଗିଲ୍ + ତ)ଭକ୍ଷିତ, ଗିଳିତ । [ ଓଡ଼ିୟ ନଦୀ ।
ଗିରିତରଙ୍ଗିଣୀ—ସ୍ତ୍ରୀ. ବ. (କ.ଧା) ପାର୍ବ-
ଗିରିଦ — ପୁଂ.ବ.(ଗିର + ଦୈ + କ,ଅ) ରୁଦ୍ର, ଶିବ, ସମୁଦ୍ର ।
ଗିରିଦୁର୍ଗ — କ୍ଲୀ. ବ. (କ.ଧା) ପର୍ବତୋ-ପରିସ୍ଥିତ ଦୁର୍ଗ ।
ଗିରିଦ୍ୱାର — କ୍ଲୀ. ବ. ପର୍ବତପଥ ।
ଗିରିଧର — ପୁଂ.ବ. (ଗିରି + ଧୃ + କ,ଅ) ବିଷ୍ଣୁ, ଶ୍ରୀକୃଷ୍ଣଙ୍କର ନାମ, ଜଣେ

ବୈଦାନ୍ତିକ, ଜଣେ ବୈଷ୍ଣବ କବି, ଜଣେ ସଂସ୍କୃତ ଶାସ୍ତ୍ରର ରଚୟିତା, ଜଣେ ସଂସ୍କୃତ ବ୍ୟାକରଣ ପ୍ରଣେତା ।
ଗିରିଧାତୁ—ପୁଂ.ବି. (କ.ଧା) ଉପଧାତୁ ବିଶେଷ, ଗୈରିକ, ଗେରୁମାଟି ।
ଗିରିଧାରୀ—ପୁଂ.ବି. (ଗିରି+ଧାରିନ୍) ଶ୍ରୀକୃଷ୍ଣଙ୍କ ନାମ ।
ଗିରିଧି—ବିହାରର ହଜାରିବାଗ ଜିଲ୍ଲାନ୍ତର୍ଗତ ଗୋଟିଏ ଉପବିଭାଗ ।
ଗିରିଧ୍ୱଜ—ପୁଂ. ବି. ଇନ୍ଦ୍ର ।
ଗିରିନଗ—ପୁଂ.ବି. ପର୍ବତର ଅଂଶ ବା ଏକଦେଶ । [ନଗର ।
ଗିରିନଗର—ବି.ଦକ୍ଷିଣାପଥବର୍ତ୍ତୀ ଗୋଟିଏ
ଗିରିନଦୀ—ସ୍ତ୍ରୀ. ବି. (କ. ଧା) ପାର୍ବତୀୟ ନଦୀ, ପାହାଡ଼ରୁ ବାହାରୁଥିବା ନଦୀ ।
ଗିରିନନ୍ଦିନୀ—ସ୍ତ୍ରୀ.ବି. (୬ତତ୍ପୁ) ପାର୍ବତୀ, ଦୁର୍ଗା, ଗଙ୍ଗା, ନଦୀ । [ଦେଶ ।
ଗିରିନିତମ୍ବ—ପୁଂ. ବି. ପର୍ବତର ପାର୍ଶ୍ୱ-
ଗିରିନିମ୍ନଗା—ସ୍ତ୍ରୀ. ବି. ପାର୍ବତୀୟ ନଦୀ ।
ଗିରିନିମ୍ବ—ପୁଂ. ବି. ମହାନିମ୍ବ ଗଛ, ଘୋଡ଼ାନିମ୍ବ ଗଛ ।
ଗିରିପକାଇବା—ଗ୍ରା. କ୍ରି. ଗୋରୁପୋଢ଼ୁଅ ଆଦି ବେମାର ହୋଇ ଘୁମାଇବା ଓ ଆଖିରୁ ଲୁହ ଗଡ଼ାଇବା ।
ଗିରିପାଦୁକା—ସ୍ତ୍ରୀ. ବି. କପିକଚ୍ଛୁ, ବାଇଡଙ୍କ ।
ଗିରିପୀଲୁ—ପୁଂ. ବି. ପୁରୁଷକ ବୃକ୍ଷ ।
ଗିରିପୁ—ପ୍ରା. (ଗଞ୍ଜାମ) ବି. ଗର୍ବ ।
ଗିରିପୁର—କ୍ଲୀ. ବି. ଆନର୍ତ୍ତଦେଶାନ୍ତର୍ଗତ ଗୋଟିଏ ନଗର ।
ଗିରିପୁଷ୍ପକ—କ୍ଲୀ. ବି. ଶୈଳେୟ, ଶୈଳଜ ।
ଗିରିପ୍ରପାତ—ପୁଂ. ବି. ପର୍ବତର ଭୃଗୁ, ଉଚ୍ଚସ୍ଥାନ ।
ଗିରିପ୍ରସ୍ଥ—ବି. (୬ତତ୍) ଅଧିତ୍ୟକା ।
ଗିରିପ୍ରିୟା—ସ୍ତ୍ରୀ. ବି. (ବ.ବ୍ରୀ) ମୃଗ ବିଶେଷ, ଚମରୀ ମୃଗୀ ।
ଗିରିବର—ବି. (୬ତତ୍ପୁ) ଶ୍ରେଷ୍ଠ ପର୍ବତ, ଗିରିଶ୍ରେଷ୍ଠ, ହିମାଳୟ ପର୍ବତ ।
ଗିରିବର୍ତ୍ମ—କ୍ଲୀ. ବି. (କ.ଧା) ପାର୍ବତୀୟ ପଥ, ଗିରିସଙ୍କଟ ।
ଗିରିବା—ଗ୍ରା. କ୍ରି. ଆରୋପିତ ହେବା, ଲଦାଯିବା, ଅଭିଯୁକ୍ତ କରାଯିବା, ତଳେପଡ଼ିବା ।
ଗିରିବାଣ—ପ୍ରା.(ଗଞ୍ଜାମ) ବି. ଗର୍ବ ।
ଗିରିବାନ୍ଧବ—ବି. (୬ତତ୍ପୁ) ମହାଦେବଙ୍କ ନାମ । [ପାର୍ବତୀ ।
ଗିରିବାଲା—ସ୍ତ୍ରୀ. ବି. (୬ତତ୍ପୁ) ଉମା,
ଗିରିବୁଧ୍ନା—ସ୍ତ୍ରୀ. ବି. ଜଳ ।
ଗିରିଭିଦ୍—ପୁଂ. ବି. (ଗିରି+ଭିଦ୍+କ୍ୱିପ୍) ପାଷାଣଭେଦୀ ଗଛ, ଇନ୍ଦ୍ର, ବିଂ. ଯେ ପର୍ବତ ଭେଦକରେ ।
ଗିରିଭୂ—ସ୍ତ୍ରୀ.ବି. (ଗିରି+ଭୂ+କ,କ୍ୱିପ୍) ପର୍ବତରୁ ଉତ୍ପନ୍ନ ନଦୀ, ପାର୍ବତୀ, ଗଙ୍ଗା, ପର୍ବତଭୂମି, ବିଂ. ପର୍ବତୋତ୍ପନ୍ନ, ଯାହା ପର୍ବତରେ ଜନ୍ମେ ।
ଗିରିଭେଦ—ପୁଂ. ବି. (ଗିରି+ଭିଦ୍+ଅ) ପାଷାଣଭେଦୀ ଗଛ, ହିମସାଗର ।
ଗିରିମଲ୍ଲିକା—ସ୍ତ୍ରୀ. ବି. କୁଟଜ ବୃକ୍ଷ, କୁରେଇଁ ଗଛ ।
ଗିରିମାନ—ବି. ବି. (ବ.ବ୍ରୀ) ଯାହାର ପରିମାଣ ପର୍ବତ ତୁଲ୍ୟ, (ପୁଂ. ବି) ହସ୍ତୀ ।
ଗିରିମାଲ—ପୁଂ. ବି. ବାଧକ ବୃକ୍ଷ, ଏହାଦ୍ୱାରା ଯଜ୍ଞୀୟ ଯୂପ ପ୍ରସ୍ତୁତ କରାଯାଇ ପାରେ ।
ଗିରିମୃଦ୍—ସ୍ତ୍ରୀ. ବି. (୬ତତ୍ପୁ) ଗୈରିକ, ଗେରୁମାଟି, ପାର୍ବତୀୟ ମୃତ୍ତିକା ।
ଗିରିମୃଦ୍ଭବ—କ୍ଲୀ. ବି. ଗୈରିକ, ଗେରୁମାଟି ।
ଗିରିମେଦ—ପୁଂ. ବି. ବିଟ ଖଦିର, ପାକଡ଼ା ଖଇର ।
ଗିରିୟକ—ପୁଂ.ବି. ଗେଣ୍ଡୁକ, ଗେଣ୍ଡୁ, ପେଣ୍ଡୁ । [କଦଳୀ ।
ଗିରିରମ୍ଭା—ସ୍ତ୍ରୀ.ବି. ଗିରିକଦଳୀ, ପାହାଡ଼ିଆ
ଗିରିରାଜ—ପୁଂ. ବି. (ଗିରି+ରାଜ+କ୍ୱିପ୍) ପର୍ବତଶ୍ରେଷ୍ଠ, ହିମାଳୟ ପର୍ବତ ।
ଗିରିବର୍ତ୍ତିକା—ସ୍ତ୍ରୀ. ବି. ପାର୍ବତୀୟ ପକ୍ଷିବିଶେଷ, ପାହାଡ଼ିଆ ଚଟକପକ୍ଷୀ ।
ଗିରିବାସୀ—ପୁଂ. ବି. (ଗିରି+ବସ୍+କ. ଇନ୍) ହସ୍ତିକନ୍ଦ ବୃକ୍ଷ, ହାତୀକନ୍ଦା ଗଛ, (ବିଂ) ପର୍ବତବାସୀ ।
ଗିରିବ୍ରଜ—କ୍ଲୀ. ବି. ମଗଧଦେଶାନ୍ତର୍ଗତ ଗୋଟିଏ ନଗର, କେକୟରାଜ, ଅଶ୍ୱପତିଙ୍କର ରାଜଧାନୀ ।
ଗିରିଶ—ପୁଂ.ବି.(ଗିରି+ଶୀ+କ—ଅ) ଶିବ, ମହାଦେବ ।
ଗିରିଶନ୍ତ—ପୁଂ. ବି. (କ. ଧା) ଶିବ, ମହାଦେବ ।
ଗିରିଶୟ—ପୁଂ. ବି. (ଗିରି+ଶୀ+ଅ) ଶିବ, ମହାଦେବ ।
ଗିରିଶାଲ—ପୁଂ. ବି.(ଗିରି+ଶାଲ+ଅ) ସୂତ୍ରୁଟୋକ୍ତ ପ୍ରଭୃତ ପକ୍ଷୀବିଶେଷ ।
ଗିରିଶାଲିନୀ—ସ୍ତ୍ରୀ. ବି. (ଗିରି+ଶାଲ୍+ଇନ୍+ଈ) ଅପରାଜିତା ।
ଗିରିଶୃଙ୍ଗ—ପୁଂ. ବି. (ଗିରିଶୃଙ୍ଗ+ଅ) ଗଣେଶଙ୍କ ନାମ, ପର୍ବତଶିଖର ।
ଗିରିଷଦ—ପୁଂ. ବି. (ଗିରି+ସଦ୍+କ୍ୱିପ୍) ମହାଦେବ, ଶିବ ।
ଗିରିଷ୍ଠା—ବି. ବିଂ.(ଗିରି+ସ୍ଥା+କ୍ୱିପ୍) ପର୍ବତସ୍ଥାୟୀ, (ପୁଂ. ବି) ମହାଦେବ ।
ଗିରିସଙ୍କଟ—ବି. (୬ତତ୍ପୁ) ଦୁଇପର୍ବତ ବା ପର୍ବତ ଶ୍ରେଣୀ ମଧ୍ୟସ୍ଥ ସଂକୀର୍ଣ୍ଣ ପଥ, ଘାଟି ।
ଗିରିସମ—ବିଂ. (ଗିରି+ସମ) ପର୍ବତାକାରବିଶିଷ୍ଟ, ର୍ଘ. ଖୁବ ବଡ଼ ଗଦା ।
ଗିରିସର୍ପ—ପୁଂ. ବି. ଦର୍ବୀକରଜାତୀୟ ସର୍ପବିଶେଷ ।
ଗିରିସାର—ପୁଂ.ବି, (୬ତତ୍ପୁ) ଲୌହ, ରଙ୍ଗଧାତୁ, ଟିଣ, ଶିଳାଜତୁ, (୬ତତ୍ପୁ) ମଳୟ ପର୍ବତ ।
ଗିରିସାରମୟ—ବି.ବିଂ. (ଗିରିସାର+ମୟ) ଗିରିସାରଦ୍ୱାରା ନିର୍ମିତ ।
ଗିରିସୁତ—ପୁଂ. ବି. (୬ତତ୍ପୁ) ମୈନାକ ପର୍ବତ । [ଗଦା ।
ଗିରିସୁତା—ସ୍ତ୍ରୀ. ବି. (୬ତତ୍ପୁ) ପାର୍ବତୀ,

ଗିରସ୍ରବା—ସ୍ତ୍ରୀ. ବି. (ଗିର + ସ୍ରୁ + ଅ ଆ) ପାର୍ବତୀୟ ନଦୀ ।
ଗିରହ୍ୱା—ସ୍ତ୍ରୀ. ବି. ଅପରାଜିତା ।
ଗିରୀନ୍ଦ୍ର—ପୁଂ. ବି. (୬ତତ୍) ହିମାଳୟ ପର୍ବତ, ବଡ଼ପର୍ବତ, ମହାଦେବ, ଶିବ ।
ଗିରୀୟକ—ପୁଂ. ବି. ପେଣ୍ଡୁକ, ପେଣ୍ଡୁ ।
ଗିରୀଶ—ପୁଂ.ବି. (ଗିରି + ଈଶ) ୬ତତ୍ କୈଳାସପତି, ଶିବ, ହିମାଳୟ ପର୍ବତ, ବୃହସ୍ପତି ।
ଗିରୁଣ୍ଡ—ଗ୍ରା. ବି. କ୍ଷୁଦ୍ର କାୟ ଆମ୍ବ ।
ଗିରେଇବା—ଗ୍ରା. କ୍ରି. ଗିରିବା କ୍ରିୟାର ଣିଜନ୍ତରୂପ, ତଳେ ପକାଇବା, ଦାୟିତ୍ୱ ବା ଦୋଷ ଆଦି କୌଣସି ବ୍ୟକ୍ତିଉପରେ ପକାଇବା, କୌଣସି ବ୍ୟକ୍ତିକୁ ଆପଦରେ ପକାଇବା ।
ଗିର୍ଜା—ଯା. ବି. ଖ୍ରୀଷ୍ଟାନ୍‌ମାନଙ୍କର ଭଜନାଳୟ ।
ଗିର୍ଦା—ଯା. ବି. ଗୋଲମାଣ୍ଡି, ମାଟିର ସ୍ତୂପ ଗୃହଆଡ଼େ ବାଡ଼ ରୂଜା ଯାଇଥିବା ମାଟି, ପଥର ବା ଇଟାର ଗୋଲାକାର ଉଚ୍ଚ ସ୍ତୂପ, ଗୃହଆଡ଼େ ବାଡ଼ ଘେରା ହୋଇଥିବା ସ୍ଥାନ ।
ଗିର୍ଧମୀ—ଗ୍ରା.ବି. ଔଷଧ ଗୁଳ୍ମବିଶେଷ ।
ଗିର୍ଧୀକନ୍ଦା—ଗ୍ରା. ବି. (ବୈଦ୍ୟକ) ଆକାଶ ବୃକ୍ଷ ।
ଗିର୍ଯ୍ୟାହ୍ୱା—ସ୍ତ୍ରୀ.ବି. ଗିରହ୍ୱା, ଅପରାଜିତା ।
ଗିର୍ବଣଃ—ପୁଂ. ବି. (ଗିର୍ + ବନ୍ + ଅସ୍) ଦେବବିଶେଷ, (ବିଂ) ସ୍ତବକର୍ତ୍ତା ।
ଗିର୍ବଣସ୍ୟୁ—ବି. ବିଂ. ଯେଉଁମାନେ ସ୍ତବ କରନ୍ତି ।
ଗିର୍ବନ୍—ବିଂ. ଯେଉଁମାନେ ସ୍ତବକରନ୍ତି ।
ଗିର୍ବାନ୍—ଉଃ ପଃ ପ୍ରଦେଶର ବନ୍ଦାଜିଲା ଦକ୍ଷିଣ ପଶ୍ଚିମସ୍ଥିତ ଗୋଟିଏ ତହସିଲ ।
ଗିର୍ବାହଃ—ବି. ବି. ସ୍ତୁତି ବାକ୍ୟଦ୍ୱାରା ଯାହାକୁ ବହନ କରାହୁଏ, ଇନ୍ଦ୍ରାଦି ଦେବଗଣ ।
ଗିଲ—ବି. (ଗିଲ୍ + କ, ଅ) ଭକ୍ଷକ, କୁମ୍ଭୀର, ଜମ୍ବୀର, ଟାଭାଗଛ, (ବିଂ) ଯେ ଗ୍ରାସକରେ, ଭକ୍ଷକ, (ସ୍ତ୍ରୀ) ଗିଲା ।

ଗିଲ—ଗ୍ରା. ବି. କଣ୍ଟକଯୁକ୍ତ ବୃକ୍ଷ ଓ ତହିଁର ବୀଜ, ବଡ଼ ବା ସାରେଣୀ ଗିଲ ।
ଗିଲକୁସୁମ—ବି.କ୍ଷୁଦ୍ର ବନ୍ୟ ବୃକ୍ଷବିଶେଷ, ଶ୍ୱେତକଳକ ବୃକ୍ଷ ।
ଗିଳଗିଳ—ବିଂ. (ଗିଳ + ଗିଳ + ଅ) ଯେ କୁମ୍ଭୀରକୁ ଗିଳିପାରେ, (ପୁଂ) ଗିଳଗ୍ରାହନକ୍ର, ହାଙ୍ଗର ।
ଗିଲଗ୍ରାହ—ପୁଂ. ବି.(ଗିଲ + ଗ୍ରହ୍ + ଅ) ନକ୍ର, ହାଙ୍ଗର ।
ଗିଲଜାଇ—ଆଫଗାନ ଜାତିର ଗୋଟିଏ [ ଶାଖ ।
ଗିଲତ୍—ଯା. ବି. ଦୋଷ, ତ୍ରୁଟି ।
ଗିଲନ—ସ୍ତ୍ରୀ.ବି. (ଗିଲ + ଭା,ଅନ) ଗ୍ରାସ କରିବା, ଗିଳିବା, ଗଳାଧଃକରଣ ।
ଗିଲା—ଗ୍ରା.ବି. ଗଳାଧଃକରଣ, ଗିଳିବା, ଗ୍ରାସକରିବା, (ବ୍ୟଙ୍ଗ) ଭୋଜନ, (ଗ୍ରା.- ବିଂ.ପୁଂ ଓ ସ୍ତ୍ରୀ) ପେଟୁ, ଉଦରମ୍ଭରି ।
ଗିଲା—ଯା.ବି.ତ୍ରୁଟି, ଆଲସ୍ୟ, ସନ୍ଦେହ, ଅସନ୍ତୋଷ, କଳ୍ପନା, ନିନ୍ଦା, ପ୍ରା. (ସମ୍ବ) ବି. କାଦୁଅ, ସମ୍ପୂର୍ଣ୍ଣରୂପେ ଶୁଖି ନ ଥିବା ଅବସ୍ଥା, (ବିଂ) ଅସୁସ୍ଥ, ଦୁଃଖିତ, ସନ୍ଧହାନ, ଓଦାଳିଆ, ପ୍ରା. (ସମ୍ବ) ବିଂ. କାଦୁଅ- ମିଶ୍ରିତ, ଓଦା ଜଙ୍ଘ, ମଠୁଆ ।,
ଗିଲାଇବା—ଗ୍ରା. କ୍ରି. ଗିଳିବାର ଣିଜନ୍ତ ରୂପ, ଖୁଆଇବା ।
ଗିଲ୍ଲଇବା—ଗ୍ରା. କ୍ରି. କାର୍ଯ୍ୟରେ ବିଳମ୍ବ କରିବା, ହେଳାକରିବା, ଅସୁସ୍ଥତାର ପୂର୍ବଲକ୍ଷଣ ପ୍ରକାଶକରିବା ।
ଗିଳାଗିଳି—ଗ୍ରା.ବି. ପରସ୍ପରକୁ ଗିଳିବା, ବହୁବାର ଭୋଜନ କରିବା, ଅତିଶୀଘ୍ର ଗଳାଧଃକରଣ କରିବା, (ବିଂ) ପରସ୍ପର ଗଳାଧଃକୃତ ହେବା ।
ଗିଲ୍ଲପ—ଯା. ବି. ଦେହ ଘୋଡ଼ାହେବା, ମୋଟା ଗୁଡ଼ର, ତକିଆ, ରେଜେଇ ଆଦିର ବଡ଼ ଖୋଳ ।
ଗିଲ୍‌ଭାତ—ଗ୍ରା.ବି. କେବଳ ଲୁଣ ସାହାଯ୍ୟରେ ଖିଆଯିବା ତତଲା ଭାତ, ବେଶି ସିଝି କଅଁଳ ହୋଇଯାଇଥିବା ଭାତ, ପେଡ଼େପେଡ଼ା ଭାତ ।

ଗିଲ୍ସ—ଯା. ବି. ଡେଙ୍ଗା ଓ ଗୋଲ ପାନପାତ୍ର, କାଚ, କାଚନିର୍ମିତ ଦୀପ ।
ଗିଲି—ସ୍ତ୍ରୀ. ବି. (ଗିଲ + ଭା,ଇ) ଗିଳନ, ଗିଳିବା ।
ଗିଳିତ—ବି.ବିଂ. (ଗିଳ + ର୍ମ,ତ) ଭକ୍ଷିତ, ଗ୍ରସ୍ତ, (ସ୍ତ୍ରୀ) ଗଳିତା ।
ଗିଳିତ-ଚର୍ବଣ—କ୍ଳୀ. ବି. (୬ତତ୍) ରୋମନ୍ଥ, ପାକୁଳି, ଚଘାକରିବା ।
ଗିଳିବା—ଗ୍ରା.କ୍ରି. ଗ୍ରାସକରିବ, ଗଳାଧଃ- କରଣ କରିବା, (ଲ. ଅର୍ଥ) ପ୍ରକୃତ ଅର୍ଥ ନ ବୁଝି (ପାଠ) ମୁଖସ୍ଥ କରିବା, ବିଶେଷ ପରିମାଣରେ ଖାଇବା, ଅଭିଭୂତକରିବା, ଆଚ୍ଛନ୍ନକରିବା, ଘୋଟିବା, (ବ୍ୟଙ୍ଗାର୍ଥ) ଖାଇବା, ଭୋଜନ କରିବା, (ଲ. ଅର୍ଥ) ପରାସ୍ତକରିବା, ଇଚ୍ଛାବିରୁଦ୍ଧରେ କୌଣସି କାର୍ଯ୍ୟ କରିବା, ଅନ୍ୟର ଧନ ସମ୍ପତ୍ତିକୁ ଠୋସରଫ ବା ଆତ୍ମସାତ୍ କରିବା, କୌଣସି ପଦାର୍ଥଠାରୁ ବଳିଯିବା ।
ଗିଲିସି—ପ୍ରା. (ଗଞ୍ଜାମ) ବି. ପରିଧେୟ ବସ୍ତ୍ରବିଶେଷ ।
ଗିଲୋଡ଼୍ୟ—ପୁଂ. ବି. ସୁଶ୍ରୁତୋକ୍ତ ମଧୁର ବର୍ଗାନ୍ତର୍ଗତ ବୃକ୍ଷବିଶେଷ ।
ଗିଲ୍—ଯା. ବିଂ. କୌଣସି ପଦାର୍ଥରେ ସୁନାପାଣି ମଡ଼ାଇ ସୁନାର ରଙ୍ଗଯୁକ୍ତ କରାଯାଇଥିବା, (ଲ. ଅର୍ଥ) କୃତ୍ରିମ, ଭେଲ, (ଯା.ବି) ଦେହ ସନ୍ଧିର ଗଣ୍ଠି, ଦେହର ସନ୍ଧିଫୁଲି ଦରଜ ହେବାରୋଗ ।
ଗିଷ୍ଣ—ବି. ବିଂ. (ଗା + ଇଷ୍ଣୁ) ଗାୟକ, (ପୁଂ) ସାମବେଦ ଗାୟକ ।
ଗିହା—ଗ୍ରା. ବି. (ଅଶ୍ଳୀଳ)(ଫ-ଶ୍ରେଦନ) ମୈଥୁନ, ସଙ୍ଗମ, (ପୁଂ.ବି) ସଙ୍ଗମକାରୀ; (ସ୍ତ୍ରୀ) ଗେହ୍ନି ।
ଗିହାଗେହି—ଗ୍ରା. ବି. ସଙ୍ଗମ ବା ମୈଥୁନ କର୍ମ, ବହୁବାର ସଙ୍ଗମ, ସ୍ତ୍ରୀ ପୁରୁଷଙ୍କର ପୂର୍ଣ୍ଣଇଚ୍ଛା ସହିତ ମୈଥୁନ ।
ଗିହାଣ—ଗ୍ରା. ବି. ମୈଥୁନ ।
ଗିହାଳିଆ—ଗ୍ରା. ପୁଂ. ବିଂ. ବଳୁଆ, ପରାକ୍ରମୀ, ସ୍ତ୍ରୀସଙ୍ଗମରେ ପଟୁ, (ସ୍ତ୍ରୀ) ଗିହାଳୀ ।

ଗିହ୍ଲାଳପ—ଗ୍ରା. ପୁଂ. ବି. (ଅଶ୍ଳୀଳ) ନଷ୍ଟଚରିତ୍ରା ସ୍ତ୍ରୀର ପୁତ୍ର ।

ଗିହ୍ଲାଳୀ—ଗ୍ରା.ବିଂ. ସ୍ତ୍ରୀ. (ଅଶ୍ଳୀଳଗାଳି) ନଷ୍ଟଚରିତ୍ରା(ସ୍ତ୍ରୀ),ମୈଥୁନରତା, କାମାତୁରା, (ବି) ନଷ୍ଟଚରିତ୍ରା ସ୍ତ୍ରୀ ।

ଗିହ୍ଲାଳି—ଗ୍ରା. (ସମ୍ବଲ) ବି. ବିଂ. ସ୍ତ୍ରୀ. ଗିହ୍ଲାଳୀ (ଦେଖ) ।

ଗୀ (ଗୀଃ)—ସ୍ତ୍ରୀ. ବି. ବାଣୀ, କହିବାର ଶକ୍ତି, ସରସ୍ୱତୀ ଦେବୀ, ବାକ୍ୟ ।

ଗୀଃପତି—ପୁଂ. ବି. ବାଚସ୍ପତି, ବୃହସ୍ପତି, ଦେବଗୁରୁ, ପ୍ରଧାନ ପଣ୍ଡିତ ।

ଗୀତ—କ୍ଳୀ.ବି. (ଗୈ+ଭା,ତ)ସଙ୍ଗୀତ, ଗାନ, ଗାଇବା, ବିଂ. (ଗୈ+ମିଂ,ତ) ଶବ୍ଦିତ, ସ୍ତୁତ, ଯାହାର ଗାନ କରାହୋଇଅଛି, ବର୍ଣ୍ଣିତ, କଥିତ, (ଗ୍ରା.ବି) ଛନ୍ଦୋବଦ୍ଧ ରଚନା । [ଦେଖ ।

ଗୀତକ—କ୍ଳୀ. ବି. (ଗୀତ+କ) ଗୀତ

ଗୀତକଣ୍ଡିକା—ସ୍ତ୍ରୀ. ବି. ସାମବେଦର ପରିଶିଷ୍ଟ ।

ଗୀତକ୍ରମ—ପୁଂ. ବି. ତାନବିଶେଷ ।

ଗୀତଗାଇବା—ଗ୍ରା. କ୍ରି. ପଦଂକୁ ରାଗ ରାଗିଣୀ ସହିତ ଗାନକରିବା ।

ଗୀତଗୋବିନ୍ଦ—ପୁଂ.ବି. ମହାକବି ଜୟଦେବକୃତ ରାଧାକୃଷ୍ଣଙ୍କ ଚରିତବର୍ଣ୍ଣିତ ଖଣ୍ଡିଏ ଗ୍ରନ୍ଥ ।

ଗୀତଜ୍ଞ—ପୁଂ.ବିଂ.(ଗୀତ+ଜ୍ଞା+କ.ଅ) ଯେ ଗୀତ ଜାଣେ, ଗାୟକ,ଗୀତଶାସ୍ତ୍ରନିପୁଣ ।

ଗୀତପୁସ୍ତକ—କ୍ଳୀ.ବି. ଯେଉଁ ପୁସ୍ତକରେ ଗୀତବିଷୟ ଲେଖାଅଛି ।

ଗୀତପ୍ରିୟ—ତ୍ରି. ବିଂ. (ବ.ବ୍ରୀ) ଯେ ଗୀତକୁ ଭଲପାଏ, ଗାନାନୁରକ୍ତ,(ସ୍ତ୍ରୀ) ଗୀତପ୍ରିୟା, (ପୁଂ.ବି) ମହାଦେବ ।

ଗୀତପ୍ରିୟା—ସ୍ତ୍ରୀ. ବି. କାର୍ତ୍ତିକେୟଙ୍କର ଅନୁଗାମିନୀ ମାତୃକାବିଶେଷ ।

ଗୀତବନ୍ଧ—ବି. (ଷତତ୍) କବିତା ବା ପଦ୍ୟର ଆକାର ।

ଗୀତବାଦନ—କ୍ଳୀ. ବି. ଗାନ,ଗାଇବା ।

ଗୀତବାଦ୍ୟ-ବି.(ଦ୍ୱନ୍ଦ୍ୱ) ଗାଉଣା ବାଜଣା ।

ଗୀତବିଦ୍ୟା-ବି.(ଗୀତ+ବିଦ୍ୟା)ସଙ୍ଗୀତବିଜ୍ଞାନ ।

ଗୀତମୋଦୀ—ପୁଂ. ବି. (ଗୀତ+ମୁଦ+ଇନ୍) କିନ୍ନର, (ବିଂ) ଯେଉଁମାନେ ଗାନକରି ଆମୋଦ କରୁଅଛନ୍ତି ।

ଗୀତଶାସ୍ତ୍ର—କ୍ଳୀ. ବି. ଯେଉଁ ଶାସ୍ତ୍ରରେ ଗୀତବିଷୟ ବର୍ଣ୍ଣିତ ଅଛି ।

ଗୀତସଂହିତା—ଗ୍ରା. ବି. (ପାଦ୍ରିଙ୍କ ଭାଷାନ୍ତର) ବାଇବେଲର ସ୍ତୋତ୍ରପୁସ୍ତକ ।

ଗୀତା—ସ୍ତ୍ରୀ. ବି. (ଗୈ+ମିଂ. ତ, ଆ) ଗୁରୁ ଏବଂ ଶିଷ୍ୟ କଳ୍ପନା କରି ଆତ୍ମବିଦ୍ୟା ଓ ଉପଦେଶାତ୍ମକ ଜ୍ଞାନଗର୍ଭ କଥାବିଶେଷ, ଭଗବଦ୍ଗୀତା, (ବିଂ) କୀର୍ତ୍ତିତା, ବର୍ଣ୍ଣିତା, ଉଚ୍ଚାରିତା ।

ଗୀତାଭିଧାନ—ଗ୍ରା. ବି. (ଗୀତ+ଅଭିଧାନ) ଉପେନ୍ଦ୍ର ଭଞ୍ଜଙ୍କ କୃତ ପଦ୍ୟ ଅଭିଧାନ, (ଯହିଁରୁ ଭଞ୍ଜୀୟ କବିତାଦିରେ ବ୍ୟବହୃତ ବିଶିଷ୍ଟ ଶବ୍ଦମାନଙ୍କର ଅର୍ଥ ଜଣାଯାଏ ।)

ଗୀତାୟନ—କ୍ଳୀ. ବି. (ଗୀତ+ଆୟନ) ଗୀତର ଆଶ୍ରୟ,ସଙ୍ଗୀତର ଉପକରଣ, (ବେଣୁ ମୃଦଙ୍ଗାଦି) ।

ଗୀତାର୍ଥ—ବି. (ଷତତ୍) ସଙ୍ଗୀତର ଭାବାର୍ଥ ।

ଗୀତାର୍ଥୀ—ଗ୍ରା. ପୁଂ. ବିଂ. ଯେଉଁ ବ୍ୟକ୍ତି ଦୁର୍ବୋଧ ସଙ୍ଗୀତ ଓ ଛନ୍ଦମାନଙ୍କର ବିଶେଷତଃ ଉପେନ୍ଦ୍ରଭଞ୍ଜୀୟ ରଚନାବଳୀର ଅର୍ଥ ବିଶଦଭାବରେ ବ୍ୟାଖ୍ୟା କରିବାରେ ପଟୁ ।

ଗୀତାସାର—ପୁଂ. ବି. ଯହିଁରେ ଗୀତାର ସାରାଂଶ ସଂକ୍ଷେପରେ ଉକ୍ତ ହୋଇଅଛି ।

ଗୀତି—ସ୍ତ୍ରୀ. ବି. (ଗୈ+ଭା.ତି) ଗାନ, ମାତ୍ରାବୃତ୍ତ ବିଶେଷ, ଗାଥା ।

ଗୀତିକବିତା—ସ୍ତ୍ରୀ.ବି. (କ.ଧା) ଗୀତହେବା ଉଦ୍ଦେଶ୍ୟରେ ରଚିତ କବିତା, ଗୀତିକାବ୍ୟ ।

ଗୀତିକା—ସ୍ତ୍ରୀ. ବି. (ଗୀତି+କ+ଆ) ଗାଥା, ଗାନକରାଯିବା ଅଭିପ୍ରାୟରେ ରଚିତ ପଦ୍ୟ, କ୍ଷୁଦ୍ର ଗୀତ,ଗାନକରିବା ।

ଗୀତିକାବ୍ୟ—କ୍ଳୀ.ବି. ଗାନମିଶ୍ରିତ କାବ୍ୟ, ଯେଉଁ କାବ୍ୟ କେବଳ ସଙ୍ଗୀତମୟ ।

ଗୀତିନାଟ୍ୟ—କ୍ଳୀ. ବି. (କ.ଧା) ଗାନବହୁଳ ନାଟକ ବା ନାଟିକା ।

ଗୀତୀ—ପୁଂ.ବି.(ଗୀତ+ଇନ୍)ଗୀତଯୁକ୍ତ, ସଙ୍ଗୀତନିପୁଣ, ଯେ ଗାନ କରୁଅଛି, ଗାୟକ, (ସ୍ତ୍ରୀ) ଗିତିନୀ ।

ଗୀଥା-ସ୍ତ୍ରୀ.ବି. (ଗୈ+ଥ+ଆ)ବାକ୍ୟ ।

ଗୀରଥ—ପୁଂ.ବି. (ଗୀ+ରଥ)ବୃହସ୍ପତି, ଜୀବାତ୍ମା ।

ଗୀର୍ଣ୍ଣ—ତ୍ରି. ବିଂ. (ଗୃ+ମିଂ,ତ)ବର୍ଣ୍ଣିତ, ସ୍ତୁତ, ଗିଳିତ, ଯାହା ଗ୍ରାସ କରାଯାଇଅଛି, ପ୍ରଶଂସିତ, ସ୍ୱୀକୃତ, ଭକ୍ଷିତ, (ସ୍ତ୍ରୀ) ଗୀର୍ଣ୍ଣା ।

ଗୀର୍ଣ୍ଣି-ସ୍ତ୍ରୀ.ବି.(ଗୃ+ଭା,ତି)ସ୍ତୁତି,ବର୍ଣ୍ଣନା, ଗିଳିବା, ଗ୍ରାସ, ପ୍ରଶଂସା, ଭକ୍ଷଣ ।

ଗୀର୍ଦ୍ଦେବୀ—ସ୍ତ୍ରୀ.ବି. ସରସ୍ୱତୀ,ବାକ୍ଦେବୀ ।

ଗୀର୍ପତି—ପୁଂ.ବି. ଷତତ୍, (ଗୀଃ+ପତି) ବୃହସ୍ପତି, ପଣ୍ଡିତ, ଗୀଷ୍ପତି,ଦେବଗୁରୁ ।

ଗୀର୍ଲତା—ସ୍ତ୍ରୀ.ବି. ମହାଜ୍ୟୋତିଷ୍ମତୀଲତା ।

ଗୀର୍ବାନ୍—ପୁଂ. ବିଂ. (ଗୀର+ବତ୍) ବାକ୍ୟଯୁକ୍ତ ।

ଗୀର୍ବାଣ—କ୍ଳୀ. ବି. (ଗୀର+ବାଣ) ଦେବତା, ବାକ୍ୟ ଯେଉଁମାନଙ୍କର କାର୍ଯ୍ୟସାଧନରୂପ ଅସ୍ତ୍ର ।

ଗୀର୍ବାଣକୁସୁମ—କ୍ଳୀ.ବି. (ଷତତ୍)ଦେବକୁସୁମ, ଲବଙ୍ଗ ।

ଗୀର୍ବାଣବାଣୀ—ସ୍ତ୍ରୀ.ବି. (ଷତତ୍) ଦେବବାଣୀ, ସଂସ୍କୃତ ଭାଷା ।

ଗୀର୍ବାଣଯୋଗୀନ୍ଦ୍ର—ଜଣେ ଗ୍ରନ୍ଥକାର ।

ଗୀର୍ବାଣେନ୍ଦ୍ରସରସ୍ୱତୀ—ବିଶ୍ୱେଶ୍ୱର ସରସ୍ୱତୀଙ୍କର ଶିଷ୍ୟ,ନୃସିଂହାଶ୍ରମଙ୍କର ଗୁରୁ ।

ଗୀଷ୍ପତି—ପୁଂ. ବି. ଷତତ୍;(ଗୀଃ+ପତି) ବୃହସ୍ପତି, ଦେବଗୁରୁ, ପ୍ରଧାନ ପଣ୍ଡିତ ।

ଗୁ—ଧାତୁ ବିଷ୍ଠୋତ୍ସର୍ଗ, ଧ୍ୱନି ।

ଗୁ—ବି. (ପୁରୀଷ ପରିତ୍ୟାଗ କରଣାର୍ଥକ ଗୁଦ ଶବ୍ଦଜ) ବିଷ୍ଠା, ପୁରୀଷ, ମଳ ।

ଗୁଆ—ଗ୍ରା. ବି. ସୁପାରି, ଗୁବାକ, ଉତ୍ସବାଦି ଉପଲକ୍ଷରେ ବନ୍ଧୁବାନ୍ଧବମାନଙ୍କଠାକୁ ପଠାଯିବା ଗୁଆସହ ନିମନ୍ତ୍ରଣ, (ଗ୍ରା.ବିଂ) ଗାଈଠାରୁ ଉତ୍ପନ୍ନ ।

ଗୁଆଇବା—ଗ୍ରା. କ୍ରି. ଗାଇବା କ୍ରିୟାର ଣିଜନ୍ତ ରୂପ ।

ଗୁଆଁର—ଗ୍ରା. ବି°. ନିର୍ବୋଧ, ମୂର୍ଖ, ଗମାର, ଏକବାଗିଆ, ଜ୍ଞାନହୀନ, (ସ୍ତ୍ରୀ) ଗୁଆଁରି ।

ଗୁଆଁରି—ଗ୍ରା. ବି. ଏକପ୍ରକାର ଗୁଳ୍ମ ଓ ତାହାର ଚୂର୍ଣ୍ଣ ।

ଗୁଆକଢ଼ି—ଗ୍ରା. ବି. ଭଣ୍ଡାରି ଗଉଡ଼ ଆଦି ହାଟୁଆ ଜାତିଙ୍କ ମଧ୍ୟରେ ବିବାହ ସମୟରେ ବର ଓ କନ୍ୟା ପକ୍ଷର ଜାତି ବେହେରାଙ୍କୁ ନିମନ୍ତ୍ରଣସ୍ୱରୂପ ଭେଟିବା, ୪ ଗାଇ ବା ଗୁଳଣଗୋଟି ଗୁଆ ଓ କଉଡ଼ି ପରିବର୍ତ୍ତିରେ ଦେବା ଦୁଇଅଣା ପଇସା ।

ଗୁଆକାଟ—ଗ୍ରା. ବି. ବନ୍ଧୁମାନଙ୍କ ମଧ୍ୟରେ ପରସ୍ପରଙ୍କ ବିବାହାଦି ପାରିବାରିକ ଅନୁଷ୍ଠାନରେ ନିମନ୍ତ୍ରଣସ୍ୱରୂପ ଦିଆଯିବା ଗୁଆର ଆଦାନ ପ୍ରଦାନ ବନ୍ଦହେବା ।

ଗୁଆକାଟିବା—ଗ୍ରା. କ୍ରି. ବନ୍ଧୁବାନ୍ଧବଙ୍କୁ ପାରିବାରିକ କାର୍ଯ୍ୟ ଉପଲକ୍ଷେ ଗୁଆ ପଠାଇ ନିମନ୍ତ୍ରଣ କରିବା ପ୍ରଥା ସ୍ଥଗିତ କରିବା, ଗୁଆକୁ ଖଣ୍ଡ ଖଣ୍ଡ କରିବା, ଗୁଆଭାଙ୍ଗିବା ।

ଗୁଆକାତି—ଗ୍ରା.ବି.ଗୁଆକାଟିବାର ଯନ୍ତ୍ର ।

ଗୁଆଘିଅ—ଗ୍ରା. ବି. (ସଂ—ଗବ୍ୟଘୃତ) ଗୋଦୁଗ୍ଧ ଜାତ ଘୃତ ।

ଗୁଆଗୁଳିବା—ଗ୍ରା. କ୍ରି. ଗୁଆଦେବା, ଗୁବାକ ଅର୍ପଣପୂର୍ବକ ବନ୍ଧୁବାନ୍ଧବଙ୍କୁ ବିବାହାଦି ଅନୁଷ୍ଠାନକୁ ନିମନ୍ତ୍ରଣକରିବା ।

ଗୁଆତରିଆ—ଉଚ୍ଚ ବୈଦିକବ୍ରାହ୍ମଣସମାଜସ୍ଥ ଗୁଣପ୍ରକାର ମହାପାତ୍ର ମଧ୍ୟରୁ ଏକତମ । (ବିଶ୍ୱାସ, ପାଡ଼ୁସିପୁରିଆ, ଭୁମ୍ବୁରାପୁଟିଆ, ଗୁଆତରିଆ ବା ଗ୍ରାମ୍ୟହେସ୍ତା) ।

ଗୁଆଦେବା—ଗ୍ରା. କ୍ରି. ଗୁବାକ ଅର୍ପଣ ପୂର୍ବକ ବନ୍ଧୁବାନ୍ଧବଙ୍କୁ ବିବାହାଦି ଅନୁଷ୍ଠାନକୁ ନିମନ୍ତ୍ରଣ କରିବା ।

ଗୁଆନୋ—ଯା.ବି. ପକ୍ଷିବିଶେଷର ମଳରୁ ଉତ୍ପନ୍ନ ଖତ ।

ଗୁଆପଢ଼ିବା—ଗ୍ରା. ବି. ଉତ୍ସବାଦି ଉପଲକ୍ଷରେ ବନ୍ଧୁଘରୁ ଗୁବାକସହ ନିମନ୍ତ୍ରଣ ଆସିବା ।

ଗୁଆପାନ—ଗ୍ରା.ବି. ଖୋଇବା ନିମନ୍ତେ ବ୍ୟବହୃତ ଗୁଆ ଓ ପାନ ।

ଗୁଆଭଇଁଶା—ପ୍ରା. (ସମ୍ବ) ବି. ଶୁକ୍ଳ ବା କୃଷ୍ଣବର୍ଣ୍ଣର ବୃକ୍ଷ ମଞ୍ଜି ।

ଗୁଆଭାଙ୍ଗିବା—ଗ୍ରା.କ୍ରି.ପାନସଙ୍ଗେ ଖୋଇବା ଇବା ପାଇଁ ଗୁଆକାତିରେ ଗୁଆକୁ ଟିକିଟିକି କରି କାଟିବା ।

ଗୁଆମହୁରି—ଗ୍ରା.ବି. ଛୋଟ ପାନମହୁରି ।

ଗୁଆଳ—ଗ୍ରା. ବି. ଗଉଡ଼ ।

ଗୁଆଳା—ପ୍ରା. (ବାଲେଶ୍ୱର ଓ ମେଦିନୀପୁର) ଗଉଡ଼ ।

ଗୁଆଲି—ଗ୍ରା. ବି. ବିବାହ ପରେ ବରକନ୍ୟା ବନ୍ଧୁବାନ୍ଧବଙ୍କ ଘରକୁ ସମାରୋହରେ ଯିବା (ନନ୍ଦ) ।

ଗୁଆଲିଅର—ଗ୍ରା.ବି. (ନାମ)ମଧ୍ୟ ପ୍ରଦେଶ ଅନ୍ତର୍ଗତ ପ୍ରସିଦ୍ଧ ସ୍ଥାନବିଶେଷ, ଦେଶୀୟ ରାଜ୍ୟ ଓ ତାହାର ରାଜଧାନୀ ।

ଗୁଆଳସଭା—ଗ୍ରା.ବି.ବ୍ରାହ୍ମଣମାନଙ୍କ ବ୍ରତ ବିବାହରେ ଭୋଜନ ପୂର୍ବରୁ ରାତ୍ରିରେ ସମବେତ ବନ୍ଧୁମାନେ ବରକନ୍ୟାଙ୍କୁ ବା ବ୍ରତ ହୋଇଥିବା ବାଳକକୁ ଆଶୀର୍ବାଦ କରିବା ଉପଲକ୍ଷେ କରାଯିବା ସଭା, ଫୁଲସଭା ।

ଗୁଇ—ଗ୍ରା. ବି. (ସଂ-ଗୁପ୍ତି) ଗୁପ୍ତଦୋଷ, ପ୍ରା. (ଗଞ୍ଜାମ)ବି. ଗୋଧି ।

ଗୁଇଁ—ଗ୍ରା.ବି. ଖେଳରେ ଅପର ପକ୍ଷକୁ ଗୋପନ କରି ଭଣ୍ଡାଇବା, ଓଡ଼ିଶାର ସ୍ଥାୟୀ ଅଧିବାସୀ, ବଙ୍ଗୀୟ ରଙ୍ଗଣୀଙ୍କ (ଛତ୍ରୀ) ଉପାଧିବିଶେଷ, ପ୍ରା. (ମେଦିନୀ) ବି. ଗୁଳଘରର ମଥାନ ।

ଗୁଇଁଗାଇଁ—ଗ୍ରା.ଅ. (ଧ୍ୱନ୍ୟାତ୍ମକ) ଅରଟରେ ସୂତା କଟା ହେଲାବେଳେ ଅରଟ ବୁଲିବାର ଶବ୍ଦ,ଖେଳରେ ଗୋଳାଇବା ।

ଗୁଇଁଜ—ପ୍ରା.(ସମ୍ବ)ବି. ଗୁଞ୍ଜା, କାଇଁଚ ।

ଗୁଇଁପୁଇଁ—ଗ୍ରା. ଅ. ଗୁଁପୁଁ (ଦେଖ) ।

ଗୁଇଁଶାଇଁଶହେବା—ପ୍ରା. (ସମ୍ବ) କ୍ରି. କୌଣସି କାର୍ଯ୍ୟ କରିବାକୁ ଅନିଚ୍ଛା ପ୍ରକାଶ କରିବା ।

ଗୁଇଁନଗ୍ଗ—ପ୍ରା.(ସମ୍ବ)ବି. ଗୁଣ୍ଡୁଚମୂଷା ।

ଗୁଇନ୍ଦା—ଯା. ଗୁପ୍ତଚର, ଗୁଇନ୍ଦା, ଭେଦୁଆ, ଯେଉଁ ବ୍ୟକ୍ତି ଗୁପ୍ତଭାବରେ ସମାଚାର ସଂଗ୍ରହ କରେ ।

ଗୁଇନ୍ଦା ପୁଲିସ—ଯା. ବି. ସରକାରଙ୍କ ନିଯୁକ୍ତ ଯେଉଁ ପୁଲିସ ଅପରାଧୀଙ୍କର ଗୁପ୍ତ ଅନୁସନ୍ଧାନ କରନ୍ତି ।

ଗୁଏଁ—ପ୍ରା.(ସମ୍ବ) ବି. ଗୋଧି ।

ଗୁଁ—ବି.ବୈଦିକ ଅକ୍ଷର 'ଅ' ଉଚ୍ଚାରଣ ।

ଗୁଁଗାଁ—ଗ୍ରା. ଅ.(ଧ୍ୱନ୍ୟନୁକରଣ) ଅସ୍ପଷ୍ଟଭାବରେ ବିରକ୍ତି ବା ଅନିଚ୍ଛା ପ୍ରକାଶ ।

ଗୁଁଡ଼ିଆ—ପ୍ରା. (ସମ୍ବ) ବି. ମଶା ।

ଗୁଁପୁଁ—ଗ୍ରା. ଅ. ଅସ୍ପଷ୍ଟଭାବରେ ବିରକ୍ତି ବା ଅନିଚ୍ଛା ପ୍ରକାଶ, ଖେଳରେ ଗୋଳାଇବା, ସିଦ୍ଧାନ୍ତର ଅସ୍ଥିରତା, ସନ୍ଦେହ, (ଗ୍ରା.ବି°)ଅସ୍ପଷ୍ଟଭାବରେ ଅନିଚ୍ଛାପ୍ରକାଶକାରୀ ।

ଗୁଁପୁଁଆ—ଗ୍ରା.ବି°.ଅସ୍ପଷ୍ଟଭାବରେ କୌଣସି କାର୍ଯ୍ୟ କରିବାକୁ ଅନିଚ୍ଛାପ୍ରକାଶକାରୀ (ବ୍ୟକ୍ତି), ଯେ ଖେଳରେ ଗୋଳାଏ, ସନ୍ଦିଗ୍ଧମନା ।

ଗୁଁପୁଁହେବା—ଗ୍ରା.କ୍ରି. କୌଣସି କାର୍ଯ୍ୟ କରିବାକୁ ଅନିଚ୍ଛା ପ୍ରକାଶ କରିବା, ଖେଳରେ ଗୋଳାଇବା, କୌଣସି ବିଷୟରେ ସ୍ଥିର ସିଦ୍ଧାନ୍ତରେ ଉପନୀତ ନ ହୋଇ ଇତସ୍ତତଃ କରୁଥିବା, ସନ୍ଦେହ କରିବା ।

ଗୁଗୁଚ—ଗ୍ରା. ବି. ଗୁଗୁପାଞ୍ଚ (ଦେଖ) । ଏକପ୍ରକାର ଘାସଫୁଲଯାକ ଲୁଗାରେ ଲାଗିଯାଏ ।

ଗୁଗୁପାଞ୍ଚ—ଗ୍ରା. ବି. ବଡ଼ମଣିଷ ଚିତ ହୋଇ ଶୋଇ ଆଣ୍ଠୁକୁ ଉପରକୁ ଟେକି ଗୋଡ଼ରେ ପିଲାଙ୍କୁ ବସାଇ ଖେଳାଇବାର ରୀତିବିଶେଷ ।

ଗୁଗ୍‌ଗୁଳ—ପୁଂ. ବି. ସ୍ୱନାମଖ୍ୟାତ ବୃକ୍ଷବିଶେଷ, ସୁଗନ୍ଧ ଧୂପ ବା ଦ୍ରବ୍ୟବିଶେଷ, ଗୁଗ୍ଗୁଳ ।

ଗୁଗ୍‌ଗୁଳକ—ପୁଂ. ବି°. ଯେଉଁମାନେ ଗୁଗ୍ଗୁଳ ବିକ୍ରୟ କରନ୍ତି ।

ଗୁଗ୍ଗୁଲଦ୍ରୁ—ବି.(ଗୁଗ୍ଗୁଲ+ଦ୍ରୁ)ବୃକ୍ଷସଜ୍ଜନାଗଛ ।

ଗୁଗ୍ଗୁଲୁ—ସ୍ୱନାମ ପ୍ରସିଦ୍ଧ ବୃକ୍ଷବିଶେଷ, ଗୁଗୁଲଗଛ, ଏହାର କ୍ଷୀର ସୁଗନ୍ଧୀଯୁକ୍ତ ।

ଗୁଗ୍ଗୁଲୁଗନ୍ଧ—ପୁଂ.ସ୍ତ୍ରୀ.ବି.ଗୋ, ଗୋରୁ, ଗାଈ, (ବିଂ) ଗୁଗ୍ଗୁଲପରି ଗନ୍ଧଯୁକ୍ତ ।

ଗୁଙ୍ଗ୍ନିଆହେବା—ପ୍ରା. (ଲରିଆ) କ୍ରି. ଗୁରୁଣ୍ଡିବା ।

ଗୁଙ୍ଗା—ଯା. ପୁଂ.ବିଂ. ମୂକ, ବାକ୍‌ଶକ୍ତି-ରହିତ, (ସ୍ତ୍ରୀ) ଗୁଙ୍ଗୀ ।

ଗୁଗୁଇବା-ପ୍ରା.(ସିଂହଭୂମ)କ୍ରି.ଫିଙ୍ଗାଇବା ।

ଗୁଚଡାଣ୍ଡି(ଣ୍ଡୁ)-ଯା.ବି.ଡାବଲପୁଆଖେଳ ।

ଗୁଚ୍ଛ-ପୁଂ.ବି. (ଗୁଧ୍ + ଗୋ + ଅ)ସ୍ତବକ, ପେଣ୍ଡା, କଳିକା, କୁସୁମପ୍ରଭୃତିର ସମୂହ, ସ୍ତମ୍ବ,ତୃଣାଦିର ଗୋଛ, ଉଦ୍ଭିଦ ବିଶେଷ,କଣ୍ଡି ଶୂନ୍ୟ ଧାନ୍ୟ ମଲ୍ଲି କାଦିବୃକ୍ଷ ଦ୍ୱାତ୍ରିଂଶଦ୍‌ଯଷ୍ଟିକ, ହାରବିଶେଷ । ମୟୂର ପୁଚ୍ଛ, କଳାପ, ଗୁଚ୍ଛକରଞ୍ଜ ।

ଗୁଚ୍ଛକ—କ୍ଲୀ.ବି.(ଗୁଚ୍ଛ + କ) ଗ୍ରନ୍ଥିପର୍ଣ୍ଣ, ସ୍ତବକ, ପେଣ୍ଡା ।

ଗୁଚ୍ଛକଣିଶ—ପୁଂ.ବି. ଧାନ୍ୟବିଶେଷ ।

ଗୁଚ୍ଛକରଞ୍ଜ—ପୁଂ. ବି. ଏକପ୍ରକାର କରଞ୍ଜ ଗଛ, କେହି କେହି କାମିନୀଗଛକୁ ଗୁଚ୍ଛକରଞ୍ଜ କହନ୍ତି ।

ଗୁଚ୍ଛଦନ୍ତିକା—ସ୍ତ୍ରୀ. ବି. କଦଳୀ ।

ଗୁଚ୍ଛପତ୍ର—ପୁଂ.ବି. (ବ.ବ୍ରୀ) ତାଳଗଛ, (ବିଂ) ଯେଉଁ ଗଛର ପତ୍ର ଗୁଚ୍ଛାକୃତି ।

ଗୁଚ୍ଛପୁଷ୍ପ—ପୁଂ.ବି.(ବ.ବ୍ରୀ)ସପ୍ତଚ୍ଛଦବୃକ୍ଷ, ସଚନାଗଛ, ଅଶୋକଗଛ, ଶଠୀ, ଧାତକୀ, (ବିଂ) ଯେଉଁ ଗଛର ଫୁଲ ପେନ୍ଥା ପେନ୍ଥା ହୋଇ ଫୁଟେ ।

ଗୁଚ୍ଛପୁଷ୍ପକ—ପୁଂ.ବି. ଶଠୀକରଞ୍ଜ,ଗୁଚ୍ଛ-କରଞ୍ଜ, କାମିନୀଗଛ ।

ଗୁଚ୍ଛପୁଷ୍ପୀ—ସ୍ତ୍ରୀ. ବି. ଧାତକୀବୃକ୍ଷ, ଶିମୁଡ଼ୀ ବୃକ୍ଷ, କ୍ଷୁପବିଶେଷ ।

ଗୁଚ୍ଛଫଳ—ପୁଂ.ବି.(ବ.ବ୍ରୀ)ଶଠୀକରଞ୍ଜ, କଦଳୀଗଛ, ରଜାଦନୀ, କାକମାଚୀ, କତକ, ନିର୍ମଳୀଫଳ, ଅଙ୍ଗୁର, (ବିଂ) ଯେଉଁ ଗଛର ଫଳ ପେନ୍ଥା ପେନ୍ଥା ହୁଏ ।

ଗୁଚ୍ଛଫଳା—ସ୍ତ୍ରୀ. ବି.(ବ.ବ୍ରୀ)ଅଗ୍ନିଦମନୀ ବୃକ୍ଷ, କାକମାଚୀ, ଦ୍ରାକ୍ଷା,କଦଳୀ ।

ଗୁଚ୍ଛବଧ୍ରା—ସ୍ତ୍ରୀ. ବି. ଗୁଣ୍ଡାସିନୀ ତୃଣ-ଚେପିଟୀ ଲତା ।

ଗୁଚ୍ଛମୂଳିକା—ସ୍ତ୍ରୀ. ବି. ଗୁଣ୍ଡସିନ ତୃଣ, ଚେପିଟୀଲତା ।

ଗୁଚ୍ଛାର୍ଦ୍ଧ—ପୁଂ. ବି. ଚତୁର୍ବିଂଶତି ଯଷ୍ଟିକ ହାର, ଅଧଗୋଛେ ।

ଗୁଚ୍ଛାଳ—ପୁଂ. ବି. ଭୂତୃଣ, ଗନ୍ଧଖଡ଼ ।

ଗୁଚ୍ଛାହ୍ୱକନ୍ଦ—ପୁଂ.ବି.ଗୁଲୁଚୀକନ୍ଦ,କୁଲୀ ।

ଗୁଚ୍ଛି—(ଗୁଚ୍ଛ ଶବ୍ଦଜ)ଗୁଚ୍ଛସମୂହ,ଗୋଛ ।

ଗୁଚ୍ଛୀ—ସ୍ତ୍ରୀ.ବି.(ଗୁଚ୍ଛ + ଈ)ଗୁଚ୍ଛାକରଞ୍ଜ ।

ଗୁଚ୍ଛଇବା—ଗ୍ରା.କ୍ରି.ଗୋଛାକରିବା,ଏକତ୍ର ସଂଗ୍ରହ କରିବା, ସଜାଇବା ।

ଗୁଚ୍ଛେଇବା—ଗ୍ରା. କ୍ରି. ଗୋଛ କରିବା, ଏକତ୍ର ସଂଗ୍ରହ କରିବା, ସଜାଇବା ।

ଗୁଜ୍—ଧାତୁ, ଗୁଣ୍‌ଗୁଣ୍‌ ଶବ୍ଦକରିବା ।

ଗୁଜ—ଗ୍ରା. ବି. ଗୁଳଘରମାନଙ୍କରେ ଶେଣୀ ରଖିବା ନିମନ୍ତେ ଓସାର ମଧ୍ୟଭାଗସ୍ଥ ଖୁଣ୍ଟର ଅଗ୍ରଭାଗରେ ବସିଥିବା ଗୋଲାକୃତି କ୍ଷୁଦ୍ରକାଷ୍ଠଖଣ୍ଡ ।

ଗୁଜବ—ଗ୍ରା. ବି. ଜନରବ, ରଟନା ।

ଗୁଜର—ଉ: ପଃ ଅଞ୍ଚଳବାସୀ ଜାତି-ବିଶେଷ ।

ଗୁଜରତ—ଯା. ଦ୍ୱାର. ହସ୍ତଦ୍ୱାର ।

ଗୁଜରତଖୋଦ୍—ଯା. କୌଣସି ବ୍ୟକ୍ତିର ନିଜର ଦ୍ୱାରା, ମାରଫତ୍ ଖୋଦ୍ ବା ନିଜେ ।

ଗୁଜରସିଂହ—ଜଣେ ଶିଖ ଯୋଦ୍ଧା ।

ଗୁଜରାଟ—ଭାରତବର୍ଷ ଅନ୍ତର୍ଗତ ଏକ ପ୍ରଦେଶ ଏହା ଭାରତର ପଶ୍ଚିମରେ ସମୁଦ୍ର କୂଳକୁ ଲାଗି ଅବସ୍ଥିତ ।

ଗୁଜରାଟୀ ଏଲଚୀ—ଗୁଜରାଟଦେଶୋଦ୍ଭବ କ୍ଷୁଦ୍ର ଅଳାଇଚ ।

ଗୁଜରାଟୀପେଟୀ—ଆନ୍ଧ୍ର ପ୍ରଦେଶାନ୍ତର୍ଗତ ଚିକାକୋଲ ନିକଟରେ ଲାଙ୍ଗୁଲିୟା ନଦୀର ଦକ୍ଷିଣ କୂଳରେ ଅବସ୍ଥିତ ଗୋଟିଏ ନଗର ।

ଗୁଜରାଟୀ ବ୍ରାହ୍ମଣ—ଗୁଜୁରାଟବାସୀ ଏକ ଶ୍ରେଣୀର ବ୍ରାହ୍ମଣ ।

ଗୁଜରାଣଚଳାଇବା—ଗ୍ରା. କ୍ରି. ଜୀବିକା ନିର୍ବାହ କରିବା, କାଳଯାପନ କରିବା ।

ଗୁଜରାତ—ଗ୍ରା.ବି.ସୁଗନ୍ଧ ମସଲାବିଶେଷ ।

ଗୁଜରାନ୍—ଯା.ବି. ଅତିବାହିତ କରିବା; ଦିନଯାପନ ବା କାଳକଟାଇବା,ଜୀବିକା ।

ଗୁଜରିବା—ଗ୍ରା. କ୍ରି. (କାଳ) ଯାପିତ ହେବା, ଅତିବାହିତ ହେବା, କାଳ-କାଟିବା, କୌଣସି ପ୍ରକାରେ ଚଳିଯିବା, କୌଣସି ପଦାର୍ଥ ବା ସୁଖ କିଛିକାଳ ଉପଭୋଗ କରିବା, ସାକ୍ଷିରୂପେ ଜବାନ୍ ବନ୍ଦ କରିବା, (ମନୁଷ୍ୟ) ମୃତହେବା, ଘଟିବା ।

ଗୁଜରୀ—ପାଦର ଅଳଙ୍କାରବିଶେଷ, ଗୀତଶାସ୍ତ୍ରରେ ସ୍ତ୍ରୀଅଙ୍ଗବିଶେଷ, ଗ୍ରା. (ସମ୍ବ) ବି. ଦୈନିକ, ଯାହା ପ୍ରତିଦିନ ହୁଏ ।

ଗୁଜରୀହାଟ—ପ୍ରା. (ଗଡ଼) ବି. ପ୍ରତିଦିନ ବସିବା ହାଟ । [ଖରଚ ।

ଗୁଜସ୍ତା—ଯା.ବି. ଅତିବାହିତ କରିବା,

ଗୁଜସ୍ତା—ଯା. ବିଂ. ପୁରାତନ, ଅତୀତ, ସାବିକ, ଗତ, ଗତବର୍ଷର, (କ୍ରି.ବିଂ) ଗତବର୍ଷ ।

ଗୁଜାନ୍‌ୱାଲା—ପଞ୍ଜାବର ବସହର ରାଜ୍ୟାନ୍ତର୍ଗତ ଗୋଟିଏ ଗଣ୍ଡଗ୍ରାମ ।

ଗୁଜାର—ଯା.ନୌକା,ଯେଉଁ ନୌକାରେ ନଦୀ ପାର ହୁଅନ୍ତି ।

ଗୁଜାବ—(ଯା) ଜନରବ ।

ଗୁଜାରିବା—ଗ୍ରା.କ୍ରି. ଉପସ୍ଥାପିତକରିବା, ପେଶ କରିବା, (କାଳ) କଟାଇବା ।

ଗୁଜିକାଠି—ଗ୍ରା. ବି. ସ୍ତ୍ରୀମାନେ ଜୁଡ଼ାରେ ଗୁଞ୍ଜିବା ଘୁଙ୍ଗୁରଯୁକ୍ତକାଠି(ଝିରିକାଠି) ।

ଗୁଜୁଗୁଜିଆ—ଗ୍ରା. ବିଂ. ଖଣ୍ଡିଗଣିଆ, ଅତିକୃପଣ ।

ଗୁଜୁରୁଗାଜର—ଗ୍ରା.ବି. କଥାବାର୍ତ୍ତାକରି ଗୋଳମାଳ କରିବା ।

ଗୁର୍ଜ୍ଜରୀ—ସ୍ତ୍ରୀ. ବି. (ସଂ-ଗୁର୍ଜ୍ଜରୀ) ରାଗିଣୀ-ବିଶେଷ ।

ଗୁଞ୍ଜ—ଧାତୁ. ଶବ୍ଦ କରିବା ।

ଗୁଞ୍ଜ—ପୁଂ. ବି. (ଗୁଞ୍ଜ + ଅ) ନିକୁଞ୍ଜ, ପୁଷ୍ପସ୍ତବକ, ଧ୍ୱନି,ଗୁଞ୍ଜନ,ଗୁଣ୍ଗୁଣ୍ଶବ୍ଦ, ଲତାଗୃହ, କଳରବ, ଗୁଞ୍ଜା, କାଇଞ୍ଚ,

ସୁନାତାରରେ ଦଉଡ଼ିପରି ବୁଣା ହୋଇଥିବା ହାର, ଗୋପ୍ ।

ଗୁଞ୍ଜକୃତ୍—ପୁଂ.ବି.(ଗୁଞ୍ଜ + କୃ + କ୍ୱିପ୍) ଭ୍ରମର ।

ଗୁଞ୍ଜନ—କ୍ଲୀ. ବି.(ଗୁଞ୍ଜ୍ + ଅନ)ଗୁଣୁଗୁଣୁ ଧ୍ୱନି, ଭ୍ରମରାଦିମାନଙ୍କର ଶବ୍ଦ, କାଇଞ୍ଚ, କଥାବାର୍ତ୍ତାର ମୃଦୁ ଅସ୍ପଷ୍ଟ ଶବ୍ଦ ।

ଗୁଞ୍ଜର୍—ପ୍ରା. (ସମ୍ବ) ବି. କବାଟର ଶିକୁଳି, ନୂପୁର ।

ଗୁଞ୍ଜରି—ଗ୍ରା. ବି. (ସଂ-ଗୁଞ୍ଜନ)ଗୁଣୁଗୁଣୁ-ଶବ୍ଦ,ରତ୍ନଖଚିତ କୁଣ୍ଡଳ,(ସଂ-ଗୁର୍ଜର) ହସ୍ତା-ଲଙ୍କାରବିଶେଷ, ବଳୟ, ଏକଜାତୀୟ ନେଳି ଡାଣ୍ଡିଆ ପକ୍ଷଯୁକ୍ତ ପୋକ, (ସଂ-କୁଞ୍ଜର) ହସ୍ତୀ ।

ଗୁଞ୍ଜରି—ଗ୍ରା. ବି. ମୁଣ୍ଡର ମାଳାପରି ଆଭରଣବିଶେଷ, (ସଂ-ଗୁଞ୍ଜି) କାଇଞ୍ଚର ମାଳା, ଗୁଞ୍ଜରିପୋକର ଖୋଳରୁ ପ୍ରସ୍ତୁତ ଗୋଲାକାର ଟିକଲି ।

ଗୁଞ୍ଜହାର—ବି. କାଇଞ୍ଚ ମାଳି ।

ଗୁଞ୍ଜନଧ୍ୱନି—ପୁଂ. ବି. (କ.ଧା) ଗୁଣୁଗୁଣୁ ଶବ୍ଦ ।

ଗୁଞ୍ଜନବତ୍—ଅବ୍ୟ. ଭ୍ରମରଗୁଞ୍ଜନତୁଲ୍ୟ ।

ଗୁଞ୍ଜା—ସ୍ତ୍ରୀ. ବି. (ଗୁଞ୍ଜ୍ + ଅ + ଆ)ଲତା ବିଶେଷ,କାଇଞ୍ଚ ଗଛ, ପରିମାଣବିଶେଷ, ପଟହ, ଢକା, କଳଧ୍ୱନି, ଚର୍ଚ୍ଚା, ମଦିରା ଗୃହ, ଦୁଇରତ୍ତି ପରିମିତ ଓଜନ, ରତି, ଗୁଣୁଗୁଣୁ ଶବ୍ଦ, ନାଗରା, ଧ୍ୟାନ, ବର୍ଷାକ୍ରମୂଳ ଗୁଳ୍ମବିଶେଷ, (ଗ୍ରା. ବି) ଠେଲି ଠେଲି କୌଣସି ପଦାର୍ଥକୁ ଅନ୍ୟ ପଦାର୍ଥ ମଧ୍ୟରେ ଭର୍ତ୍ତି କରିବା, (ଗ୍ରା. ବିଂ) ଠେଲିକରି ଭର୍ତ୍ତି କରା-ଯାଇଥିବା, ଅନ୍ୟ ବ୍ୟକ୍ତି ନିକଟରେ ଅଯାଚିତଭାବରେ ପେଲିହୋଇ ପଶିବା (ଲୋକ) ।

ଗୁଞ୍ଜାଗୁଞ୍ଜି—ଗ୍ରା. ବି. ସଙ୍କୀର୍ଣ୍ଣ ସ୍ଥାନରେ ବହୁବସ୍ତୁ ବା ବ୍ୟକ୍ତିଙ୍କର ଅବସ୍ଥାନ ଲାଗି ଠେଲାଠେଲି, ଗଳାଗଳି, ଭିଡ଼ ।

ଗୁଞ୍ଜାରୁଅ—ଗ୍ରା. ବି. ଯେଉଁରୁଅ ପୁରୁଣା ଘରଗୁଡ଼ିରେ ପରେ ଠେଲିହୋଇ ପୁରା ହୋଇଥାଏ, (ଲ-ଅର୍ଥ) ଯାହା ଅସ୍ୱାଭାବିକ, ମାତ୍ର କୃତ୍ରିମ ଉପାୟରେ ସ୍ୱାଭାବିକ ଆଶ୍ରୟପରି ବ୍ୟବହୃତ ହୁଏ ।

ଗୁଞ୍ଜିକା—ସ୍ତ୍ରୀ.ବି. (ଗୁଞ୍ଜକ + ଆ) ଗୁଞ୍ଜା, ତ୍ରିଯବ ପରିମାଣ ।

ଗୁଞ୍ଜିଗାଞ୍ଜି ହେବା—ଗ୍ରା. କ୍ରି. ସ୍ଥାନାଭାବରୁ ଠେଲାଠେଲି ହେବା ।

ଗୁଞ୍ଜିତ—କ୍ଲୀ. ବି. (ଗୁଞ୍ଜ + ତ) ଗୁଞ୍ଜନ, ଗୁଣୁଗୁଣୁରବ,(ବିଂ) ଗୁଣୁଗୁଣୁଶବ୍ଦଯୁକ୍ତ ।

ଗୁଞ୍ଜିବା—ଗ୍ରା.କ୍ରି.ଗୁଣୁଗୁଣୁ ଶବ୍ଦକରିବା, କୌଣସି ପଦାର୍ଥକୁ ଅନ୍ୟ ପଦାର୍ଥମାନଙ୍କ ମଧ୍ୟରେ ଠେଲି ପୁରାଇବା, ଦୁଇଟି ଲେଖା ମଧ୍ୟରେ ନୂଆଲେଖା ପୂରାଇବା, ଲୁଚାଇବା, (ଲ.ଅର୍ଥ) ଅନିଚ୍ଛାସତ୍ତ୍ୱେ ବା ଅଯାଚିତଭାବରେ କୌଣସି ବ୍ୟକ୍ତିକୁ କୌଣସି ପଦାର୍ଥ ଦେବା ।

ଗୁଞ୍ଜିହେବା—ଗ୍ରା.କ୍ରି. ଅନାହୂତ ହୋଇ କୌଣସି ବ୍ୟକ୍ତି ନିକଟରେ ଆଶ୍ରୟ ନେବା,(ବହୁତଲୋକ)କୌଣସି ସଙ୍କୀର୍ଣ୍ଣ ସ୍ଥାନରେ ମାଡ଼ି ମକଚି ହୋଇରହିବା ।

ଗୁଞ୍ଜୁଗୁଞ୍ଜୁ—ଗ୍ରା.ଅବ୍ୟ. ଆସିବାମାତ୍ରକେ ଉପସ୍ଥିତ ହେଲାକ୍ଷଣି ( ରାତ୍ରି, ସକାଳ, ସନ୍ଧ୍ୟା )

ଗୁଞ୍ଜୁରି—ଗ୍ରା. ବି. ଭ୍ରମରଜାତୀୟ ନେଳି ପୋକ, ଗୁଞ୍ଜରି ପୋକ ।

ଗୁଞ୍ଜୁଲୁଗୁଞ୍ଜା—ପ୍ରା.(ଗଡ଼ଜାତ)ବି.କେଳା ଆଦି ଜାତିର ଗୀତର ତୁହା ।

ଗୁଟନ—ଗ୍ରା.ସଙ୍କେତ କରିବା, ଗୋଟେଇବା ।

ଗୁଟଲୀ—ଗ୍ରା. ଗୋଲାକାର ବନ୍ଧମଳ, ଫଳର କଠିନ ବୀଜ ।

ଗୁଟି—ସ୍ତ୍ରୀ. ବି. (ଗୁଡ଼୍ + କ.ଇ)ବଟିକା, ଗୁଳି, ବଡ଼ି, ବର୍ତ୍ତୁଳାକାର ପଦାର୍ଥ, ମୁକ୍ତା, ଅଳ୍ପବିନୋତ୍ପନ୍ନ ଫଳ, କୀଟ-ବିଶେଷ, କୋଷାପୋକ, ଗୋଲ ବାଲି-ଗରାଡ଼ି, ବସନ୍ତାଦି ରୋଗର ବ୍ରଣ, ପ୍ରା. (ବାଲେ) ବି. ଗୋ-ବସନ୍ତ ରୋଗ ।

ଗୁଟିକା—ସ୍ତ୍ରୀ. ବି. (ଗୁଡ଼୍ + ଇକ + ଆ) ବଟିକା, ବଡ଼ି, ବର୍ତ୍ତୁଳାକାର ପଦାର୍ଥ, ଗୁଟି (ଦେଖ) ।

ଗୁଟିକାପାତ—ପୁଂ.ବି. ଧର୍ମଗୁଳା, ବର୍ଣ୍ଣର ଇତ୍ୟାଦିରେ ଭାଗ ନିରୂପଣ କରିବା-ପାଇଁ ଗୁଳାନିକ୍ଷେପ, ସୁରତଖେଳା ।

ଗୁଟିକାଲବଣ—ପୁଂ. ବି. କ୍ଲୀ. ଲବଣ-ବିଶେଷ ।

ଗୁଟୀ—ସ୍ତ୍ରୀ. ବି. (ଗୁଡ଼୍ + ମି.ଈ) ଗୁଟି, (ଦେଖ) ।

ଗୁଠ—ପ୍ରା. (ସମ୍ବ) ବି. ଗୋଠ ।

ଗୁଡ଼—ପୁଂ.ବି. (ଗୁ + କା. ଡ଼) ଗୋଲ, ବର୍ତ୍ତୁଳାକାର ପଦାର୍ଥ, ଖେଳିବାର ପେଣ୍ଡୁ,ହସ୍ତିସନ୍ନାହ, ଗ୍ରାସ,ଆଖୁରସରୁ ପ୍ରସ୍ତୁତ ମିଷ୍ଟଦ୍ରବ୍ୟବିଶେଷ, ପ୍ରା. (ସମ୍ବ.) ଗୁଣ୍ଡ, ଗୋଡ଼, (ଗ୍ରା. ବି) ଖେଳରେ ହାରିନେବା ବୋଝ ।

ଗୁଡ଼କ—ତ୍ରି.ବିଂ. (ଗୁଡ଼ + କ)ଗୁଡ଼ପକ୍ୱ, ଯାହା ଗୁଡ଼ଦେଇ ପାକ କରା ହୋଇ-ଅଛି,(ବି)ଗୁଣ୍ଡା,(ଭାତଆଦିର)ଗୋଳକ, ଗୁଡ଼ପକ୍ୱ ଔଷଧବିଶେଷ, ମୋଦକ ।

ଗୁଡ଼କଙ୍କ—ଗ୍ରା. ବି. ନଦୀର ବାଲୁକାମୟ କୂଳଦେଶରେ ବିଶେଷତଃ ସମୁଦ୍ର କୂଳରେ ଲତାପରି ମାଡ଼ିବା ଏକପ୍ରକାର ଡାଣ୍ଡିଆ ଘାସ ।

ଗୁଡ଼କନ୍ଦ—ଗ୍ରା.ବି. ଗୁଡ଼ରୁ ପ୍ରସ୍ତୁତ ଅପରିଷ୍କୃତ ନବାତ ।

ଗୁଡ଼କାର—ବି. ( ଗୁଡ଼୍ + କୃ + କ.ଅ) ଯେ ଆଖୁ ଦୋରୁଅରୁ ଗୁଡ଼ ତିଆରି କରେ ।

ଗୁଡ଼କାଶୀ—ସ୍ତ୍ରୀ. ବି. ରାଗିଣୀବିଶେଷ ।

ଗୁଡ଼କୁଷ୍ମାଣ୍ଡକ—କ୍ଲୀ.ବି.ଔଷଧବିଶେଷ ।

ଗୁଡ଼କୋଚିଲା—ଗ୍ରା. ବି. କୁଚିଲା ଫଳ-ସଙ୍ଗେ ଗୁଡ଼ବାଟି ଯେଉଁ ମାଦକ ଦ୍ରବ୍ୟ ପ୍ରସ୍ତୁତ ହୁଏ (ବିଷ) ।

ଗୁଡ଼ଗୁଡ଼—ଗ୍ରା. ବି. ଏକପ୍ରକାର ଖେଳ ।

ଗୁଡ଼ଗୁହାଳ—ଗ୍ରା.ବିଂ.ବନ୍ୟତରୁବିଶେଷ ।

ଗୁଡ଼ଗ୍ରାମ—ରାଜଗଡ଼ର ଅନ୍ତର୍ଗତ ଗୋଟିଏ ଗଣ୍ଡଗ୍ରାମ ।

ଗୁଡ଼ଚୀ—ସ୍ତ୍ରୀ.ବି.(ଗୁଡ଼୍ + କ.ଅଚ + ଈ) ଗୁଡ଼ୁଚୀ, ଗୁଳୁଚୀ, ଗୁଳଞ୍ଚ ।

ଗୁଡ଼ତମାଖୁ—ଗ୍ରା.ବି. ଗୁଡ଼ାଖୁ ।
ଗୁଡ଼ତୃଣ—କ୍ଳୀ. ବି. (କ.ଧା) ଆଖୁ ।
ଗୁଡ଼ତ୍ୱଚ—କ୍ଳୀ. ବି. (ଗୁଡ଼+ତ୍ୱଚ) ଗୁଡ଼ତ୍ୱକ୍, ରାଜଶ୍ରେଣୀ, ଦାରୁସିତା, ଦାରୁଚିନି, ତେଜପତ୍ର ଗଛର ସୁଗନ୍ଧ ବଲ୍‌କଲ ।
ଗୁଡ଼ଦାରୁ—କ୍ଳୀ.ବି.(ବ.ସ୍ତ୍ରୀ)ଇକ୍ଷୁ, ଆଖୁ ।
ଗୁଡ଼ଧେନୁ—ସ୍ତ୍ରୀ.ବି. (କ.ଧା) ଦାନନିମିତ୍ତ ଗୁଡ଼ଦ୍ୱାରା ନିର୍ମିତ ଧେନୁ ।
ଗୁଡ଼ପର୍ବତ—ପୁଂ. ବି. ଦାନନିମିତ୍ତ ଗୁଡ଼ଦ୍ୱାରା ନିର୍ମିତ ପର୍ବତ, (ହେମାଦ୍ରିରଦାନ ଖଣ୍ଡବିଧାନ, ମତ୍ସ୍ୟପୁରାଣରେ ଏହାର ବିଧାନ ଅଛି) ।
ଗୁଡ଼ପାକ—ପୁଂ ବି. ବୈଦ୍ୟଶାସ୍ତ୍ରୋକ୍ତ ଗୁଡ଼ପାକବିଶେଷ । [ପିଠା ।
ଗୁଡ଼ପିଠା—(ଗୁଡ଼ପିଷ୍ଟ ଶବ୍ଦଜ)ଗୁଡ଼ମିଶ୍ରିତ
ଗୁଡ଼ପିପ୍ପଳୀଘୃତ—କ୍ଳୀ. ବି. ଘୃତୌଷଧ ବିଶେଷ ।
ଗୁଡ଼ପିଷ୍ଟ—କ୍ଳୀ. ବି. ଗୁଡ଼ପିଠା, ଗୁଡ଼ମିଶ୍ରିତ ପିଠା ।
ଗୁଡ଼ପୁଷ୍ପ—ପୁଂ. ବି. (ବ.ସ୍ତ୍ରୀ) ମଧୁକପୁଷ୍ପ, ମହୁଲ ଗଛ ଓ ତାହାର ଫୁଲ ।
ଗୁଡ଼ପୁଷ୍ପକ—ପୁଂ.ବି. ମଧୁକ ପୁଷ୍ପ ବୃକ୍ଷ, ମହୁଲ ଗଛ । [ବୃକ୍ଷ ।
ଗୁଡ଼ଫଳ—ପୁଂ.ବି (ଗୁଡ଼+ଫଳ)ପୀଲୁ-
ଗୁଡ଼ବଣା—ଗ୍ରା.ବି. ଗୁଡ଼ ରଖିବାର ଏକ-ପ୍ରକାର ମୁହଁ ଚୌଡ଼ା ଓ ପଛପାଖ ଗୋଜିଆ ମାଠିଆ ।
ଗୁଡ଼ଭଲ୍ଲାତକ—ପୁଂ. ବି. ଔଷଧବିଶେଷ ।
ଗୁଡ଼ମ୍ବ—ସ୍ତ୍ରୀ.ବି.(ଗୁଡ଼+ମ୍ବ+ଅ)ଶର୍କରା-ବିଶେଷ ।
ଗୁଡ଼ମୂଳ—ପୁଂ. ବି. ଅଲ୍ପମାରିଷ ଶାକ (କାଣିମ.ରିଷ ବା କଣ୍ଟାମାରିଷ), ଆଖୁ ।
ଗୁଡ଼ର—ବି.ବିଂ. (ଗୁଡ଼+ର) ଗୁଡ଼ଦ୍ୱାରା ନିଷ୍ପନ୍ନ, ଯାହା ଗୁଡ଼ଦ୍ୱାରା ପ୍ରସ୍ତୁତ ହୋଇ-ଅଛି ।
ଗୁଡ଼ଲ—କ୍ଳୀ.ବି.(ଗୁଡ଼+ଲ+ଅ)ଗୌଡ଼ୀ-ନାମକ ମଦିରା, ଗୁଡ଼ରୁ ତିଆରି ମଦ, (ବିଂ) ଗୁଡୋତ୍ପନ୍ନ ।
ଗୁଡ଼ଲିହ୍—ପୁଂ. ବିଂ. (ଗୁଡ଼+ଲିହ+କ୍ୱିପ୍) ଯେ ଗୁଡ଼ ଲେହନକରେ, ଚାଟେ ।

ଗୁଡ଼ବୀଜ—ପୁଂ. ବି. ମସୂର ।
ଗୁଡ଼ଶର୍କରା—ସ୍ତ୍ରୀ. ବି. (କ.ଧା) ଗଡ଼ଜାତ ଶର୍କରା, କନ୍ଦ, ଚିନି ।
ଗୁଡ଼ଶିଗ୍ରୁ—ପୁଂ. ବି. (ଗୁଡ଼+ଶିଗ୍ରୁ) ରକ୍ତଶୋଭାଞ୍ଜନ, ଲାଲ ସଜନା ।
ଗୁଡ଼ା—ସ୍ତ୍ରୀ. ବି. ( ଗୁଡ଼୍+ଅ+ଆ ) ପତ୍ର ସିଜ୍ ଗଛ, ସ୍ନୁହୀ, କପାଗଛ, ବଟିକା, ଗୁଟିକା, ବଡ଼ୀ, (ଗ୍ରା)ପଦାର୍ଥର କ୍ଷୁଦ୍ରାଂଶ ବିଶେଷ, ଲୁଣଗୁଡ଼ା ଇତ୍ୟାଦି, ପ୍ରା.(ସମ୍ବ) ସ୍ତ୍ରୀ. ମୁଗ ବିରି ଆଦି ଫସଲ ଜନ୍ମିବା ଉପଯୋଗୀ, ଉଚ୍ଚଭୂମି, ପଞ୍ଜୁର, ଝଟକା, ଗ୍ରା.(ପ୍ରତ୍ୟୟ) ଅନେକ, ବହୁପରିମାଣ, (ଯଥା:—ପିଲଗୁଡ଼ା ଇତ୍ୟାଦି) ।
ଗୁଡ଼ାଇବା—ଗ୍ରା.କ୍ରି.ବେଢ଼ାଇବା, ବେଷ୍ଟନ କରିବା, ସୂତାଆଦିକୁ ପେଣ୍ଡାକାରରେ ବାନ୍ଧିବା, ଭୂମିରୁ ଉଠାଇବା ପୂର୍ବରୁ ମସିଣାକୁ ବାରଂବାର ଲେହଟାଇ ପିଣ୍ଡୀକୃତ କରିବା ।
ଗୁଡ଼ାଏ—ଗ୍ରା. ପ୍ରତ୍ୟୟ (ଅନାଦରାର୍ଥକ) ଗୁଡ଼ା (ଦେଖ) । (ଗ୍ରା. ସର୍ବ) ବହୁତ, ବେଶି ।
ଗୁଡ଼ାକ—ଗ୍ରା. (ପ୍ରତ୍ୟୟ) ଗୁଡ଼ା, ଅନେକ, ବହୁ ପରିମାଣ ।
ଗୁଡ଼ାକା—ସ୍ତ୍ରୀ. ବି. (ଗୁଡ଼+ଅକ+ଆ) ନିଦ୍ରା, ଆଳସ୍ୟ ।
ଗୁଡ଼ାକେଶ—ପୁଂ.ବି.(ବ.ସ୍ତ୍ରୀ) ମହାଦେବ, ଅର୍ଜୁନ, ବିଂ. ଜିତନିଦ୍ର, ଯେ ନିଦ୍ରାକୁ ଜୟ କରିଅଛି, ଆଳସ୍ୟଶୂନ୍ୟ ।
ଗୁଡ଼ାଖୁ—ଗ୍ରା.ବି. (ସ+ତାମ୍ରକୂଟ) ଗୁଡ଼ ଓ ଧୂଆଁପତ୍ରଚୂର୍ଣ୍ଣମିଶ୍ରିତ ଧୂମପାନାର୍ଥ କିମ୍ବା ଦନ୍ତମାର୍ଜନ ନିମିତ୍ତ ପ୍ରସ୍ତୁତ ଦ୍ରବ୍ୟ-ବିଶେଷ ।
ଗୁଡ଼ାଖ୍ୟ—ବି. (ବ.ସ୍ତ୍ରୀ) (ଗୁଡ଼+ଆଖ୍ୟ) ରୈମକ, ଶାମ୍ଭରୀ ଲବଣ ।
ଗୁଡ଼ାଚଳ—ପୁଂ. ବି. ଦାନପାଇଁ ଗୁଡ଼-ଦ୍ୱାରା ନିର୍ମିତ ପର୍ବତ ।
ଗୁଡ଼ାଦାଣ୍ଡ—ପ୍ରା.(ସମ୍ବ)ବି.ଗୋଚରଭୂମି ।
ଗୁଡ଼ାପୂପ—ପୁଂ. ବି. (କ.ଧା) ଗୁଡ଼ମିଶ୍ରିତ ପିଷ୍ଟକ, ଗୁଡ଼ପିଠା ।

ଗୁଡ଼ାପୂପିକା—ସ୍ତ୍ରୀ. ବି. ପୂର୍ଣ୍ଣିମା ତିଥି-ବିଶେଷ, ଏଥିରେ ଗୁଡ଼ପିଠା ଖାଇବାର ବିଧି ଅଛି ।
ଗୁଡ଼ାରିଷ୍ଟ—କ୍ଳୀ. ବି. (କ.ଧା)ମଦିରା ।
ଗୁଡ଼ାଳୀ—ସ୍ତ୍ରୀ. ବି. ଗୁଣ୍ଡାସିଳି ବୃକ୍ଷ ।
ଗୁଡ଼ାଶୟ-ପୁଂ.ବି.(ଗୁଡ଼+ଆ+ଶୀ+ଅ) ଆଖ୍ରୋଟ ବୃକ୍ଷ, ଆଖରୋଟ ।
ଗୁଡ଼ାଶୁକ—ପୁରାଣୋକ୍ତ ଗୋଟିଏ ଜନ-ପଦ ।
ଗୁଡ଼ି—ଗ୍ରା. ବି. (ସ-ଗୁରୁ+ଉଡ୍ଡୀନ) କାଗଜ ଚଙ୍କ, ସ୍ତ୍ରୀଲୋକମାନଙ୍କ କାନ୍ଧ-ପଣତରେ ଦିଆଯିବା ଗଣ୍ଠି, ପଥରର କ୍ଷୁଦ୍ରାଂଶ, ଗୋଡ଼, ପ୍ରା. (ସମ୍ବ.) ବି. ସନ୍ଧି, ଗ୍ରା. ପ୍ରତ୍ୟୟ (ଆଦରାର୍ଥକ) ଅନେକ, ବହୁ ପରିମାଣ ।
ଗୁଡ଼ିଆ—ଗ୍ରା.ବି. (ସ-ଗୁଡ଼କାର) ଗୁଡ଼ରେ ମିଷ୍ଟାନ୍ନ ପ୍ରସ୍ତୁତ କରିବା ବ୍ୟକ୍ତି ଓ ଜାତି, ଗୁଡ଼ଇବା କର୍ମ, ଅତି ଉଚ୍ଚ କଣ୍ଟାଳିଆ ବୃକ୍ଷବିଶେଷ, ଗ୍ରା.ବିଂ. ଗୁଡ଼ମୟ, ମିଠା, ଗୁଡ଼ସମ୍ବନ୍ଧୀୟ, ଛନ୍ଦା ହୋଇଥିବା ।
ଗୁଡ଼ିଆଇବା—ଗ୍ରା. କ୍ରି. ଗୁଡ଼ାଇବା (ଦେଖ), ଗୁଡ଼ାଇବାର ଣିଜନ୍ତ ରୂପ ।
ଗୁଡ଼ିଆଗୁଡ଼ି—ଗ୍ରା. ବି. ପରସ୍ପର ଛନ୍ଦାଛନ୍ଦି ହେବା, ବିଂ.ପରସ୍ପର ଛନ୍ଦାଛନ୍ଦି ।
ଗୁଡ଼ିଆ ଜନ୍ଦା—ଗ୍ରା. ବି. ଏକପ୍ରକାର ବଡ଼ଜନ୍ଦା, ଡଗରା ଜନ୍ଦା ।
ଗୁଡ଼ିଆ ଜାତି—ଗ୍ରା. ବି. ମୁଡ଼ି, ଉଖୁଡ଼ା, ମିଠେଇ ପ୍ରସ୍ତୁତକାରୀ ଶୂଦ୍ର ଜାତିବିଶେଷ ।
ଗୁଡ଼ିଉସ୍ତାଇବା—ପ୍ରା. (ସମ୍ବ.) କ୍ରି. ସନ୍ଧି ଭାଙ୍ଗିବା ।
ଗୁଡ଼ିଉସ୍ତାରବେଳ—ପ୍ରା. (ସମ୍ବ) ବି. ସ୍ୱଳ୍ପ ଦଣ୍ଡା ବେଳ (ସନ୍ଧି ଭାଙ୍ଗିବା ସମୟ) ।
ଗୁଡ଼ିଏ-ଗ୍ରା, (ପ୍ରତ୍ୟୟ)ସର୍ବ, (ଆଦରାର୍ଥକ) ଗୁଡ଼ାଏ (ଦେଖ) ।
ଗୁଡ଼ିକ—ଗ୍ରା.(ପ୍ରତ୍ୟୟ)ସର୍ବ(ଆଦରାର୍ଥକ), ଗୁଡ଼ାଏ (ଦେଖ) ।
ଗୁଡ଼ିବାଡ଼—ଅନ୍ଧ୍ରପ୍ରଦେଶ କୃଷ୍ଣାଜିଲ୍ଲା-ନ୍ତର୍ଗତ ଗୋଟିଏ ନଗର ।

ଗୁଡ଼ୂଲେବୃହଦାଚଳ—ବିଶାଖାପଟ୍ଟନ ଜିଲ୍ଲାନ୍ତର୍ଗତ ବିମଳୀପଟ୍ଟନ ତାଲୁକାର ମାଂଇଲ ପଶ୍ଚିମରେ ଅବସ୍ଥିତ ଗୋଟିଏ ପାହାଡ଼ ।

ଗୁଡ଼ଶାଲ—ଗ୍ରା.ବି.ଦୁଇଖଣ୍ଡ କାଠ ପଟାକୁ ଆଡ଼ ବାଗରେ ଯୋଡ଼ିବା ନିମନ୍ତେ ବ୍ୟବହୃତ ଦୁଇମୁଣ୍ଡ ମୁନିଆ ହୋଇଥିବା କଣ୍ଟା ।

ଗୁଡ଼ଗୁଡ଼—ଗ୍ରା.ବି.(ଶିଶୁ ବଚନ) ଅନ୍ଧାର ଗୁଡ଼ଗୁଡ଼, ଯେଉଁ ହସ୍ତପଦ ବିହୀନ କାଳ୍ପନିକ ଜନ୍ତୁ ଭୂମିରେ ଗଡ଼ଗଡ଼ ଯାଏ, (ଅବୁଝା ପିଲାମାନଙ୍କୁ ଡରାଇବା ପାଇଁ ପିତାମାତାମାନେ କାଳ୍ପନିକ ଗୁଡ଼ଗୁଡ଼ ଭୟ ଦେଖାଇଥାନ୍ତି ) (ଗ୍ରା. ବି) ଅଛୋବନ୍ଦ୍ର, ଖର୍ବକାୟ, (ବି.) ବାଦ୍ୟବିଶେଷ ।

ଗୁଡ଼ୁଗୁଡ଼ୁ—ଗ୍ରା. ଅବ୍ୟ (ଧ୍ୱନ୍ୟନୁକରଣ) ଶଗଡ଼ ଭୂମିରେ ଗଡ଼ିବାର ଶବ୍ଦ, ଗଡ଼ଗଡ଼ ଗୁଡ଼ିବାର ପ୍ରକାର ବା ରୀତି, ହୁକା ଖାଇବାର ଶବ୍ଦ, (ସଂ-ଗୁର୍ ଧାତୁ) ଶିଶୁମାନେ ଶୀଘ୍ର ଗୁଡ଼ିବା ବା ଧାଇଁବାର ମଧୁର ପ୍ରକାର, କ୍ଷୁଦ୍ର ବସ୍ତୁର ଦ୍ରୁତଗମନ ।

ଗୁଡ଼ୂଚୀ—ସ୍ତ୍ରୀ. ବି. (ଗୁଡ଼+ଉଚ+ଈ) ଗୁଡ଼ୂଚୀ, ଗୁଳୁଚୀ, ଗୁଳଞ୍ଚ ।

ଗୁଡ଼ୁମ—ଗ୍ରା. ବି. (ଆ+ଗୁମ୍) (ବୁଦ୍ଧି ଅକଲ) ଲୁପ୍ତ ।

ଗୁଡ଼ୁମ୍ ଗୁଡ଼ୁମ୍—ଗ୍ରା. ଅବ୍ୟ (ଧ୍ୱନ୍ୟନୁକରଣ) ଘନଘନ ତୋପ ଫୁଟିବାର ଶବ୍ଦ, ତୋପ ଧ୍ୱନି ।

ଗୁଡ଼ୁରଗାଡ଼ର—ଗ୍ରା, ଅବ୍ୟ ଶ୍ରୁତିମଧୁର ସାମାନ୍ୟ ଗୁଡ଼ୁଗୁଡ଼ୁ ଶବ୍ଦ ।

ଗୁଡ଼ୂଚୀ—ସ୍ତ୍ରୀ. ବି. (ଗୁଡ଼+ଉଚ+ଈ) ଗୁଳୁଚୀ ଲତା, ଗୁଳୁଚୀ, ଗୁଳଞ୍ଚ ।

ଗୁଡ଼ୂଚୀଘୃତ—କ୍ଲୀ.ବି.ଗୁଳୁଚୀ ଘୃତୌଷଧବିଶେଷ ।

ଗୁଡ଼ୂଖାଦ—ପୁଂ. ବି. ବୈଦ୍ୟକଶାସ୍ତ୍ରୋକ୍ତ ଗୋଟିଏ ଗଣ ।

ଗୁଡ଼ୂଚ୍ୟାଦକଷାୟ—ପୁଂ.ବି. ଚକ୍ରଦତ୍ତୋକ୍ତ ପାଚନବିଶେଷ ।

ଗୁଡ଼ୂଚ୍ୟାଦକ୍ୱାଥ—ପୁଂ.ବି.ପାଚନବିଶେଷ ।

ଗୁଡ଼େ—(ଗ୍ରାମ୍ୟ ପ୍ରତ୍ୟୟ)ସଂ. ( ଅନାଦରାର୍ଥକ) ଗୁଡ଼ାଏ, ବହୁତ, ବେଶି ।

ଗୁଡ଼େଇଗୁଡ଼େଇହେବା—ଗ୍ରା.କ୍ରି. (ମନ) ଘାଣ୍ଟି ହେବା, ଉଦ୍ବେଳିତ ହେବା, ପରସ୍ପର ଛନ୍ଦାଛନ୍ଦି ହେବା ।

ଗୁଡ଼େର—ପୁଂ.ବି. (ଗୁଡ଼+ଏର) ଗୁଳି, ବାଟୁଳି, ପେଣ୍ଡୁ, ଗ୍ରାସ ।

ଗୁଡ଼େରକ—ପୁଂ. ବି. (ଗୁଡ଼େର+କ) ବର୍ତ୍ତୁଳାକାର ପଦାର୍ଥବିଶେଷ, ଗୁଳି, ଗ୍ରାସ ।

ଗୁଡ଼ୋଦ୍ଭବା—ସ୍ତ୍ରୀ. ବି. (ବ.ବ୍ରୀ) ଶର୍କରା, (ବିଂ) ଯାହା ଗୁଡ଼ରୁ ଉତ୍ପନ୍ନ ହୁଏ ।

ଗୁଡ଼ୋଦ୍ଭୂତା—ସ୍ତ୍ରୀ.ବି. (୫ତତ୍ପୁ) ଶର୍କରା ।

ଗୁଣ—ଧାତୁ,ପରାମର୍ଶଦେବା,ମନ୍ତ୍ରଣାକରିବା, ନିମନ୍ତ୍ରଣ କରିବା, ଅଭ୍ୟାସକରିବା, ଗୁଣନକରିବା ।

ଗୁଣ୍‌ଗୁଣ୍—ଗ୍ରା. ଅବ୍ୟ.(ସଂ-ଗୁଞ୍ଜନ) ଭ୍ରମର ଆଦିଙ୍କ ଝଙ୍କାର, ଅସ୍ପଷ୍ଟ ବାକ୍ୟୋଚାରଣ ଶବ୍ଦ, ଝଙ୍କାର ଧ୍ୱନିଯୁକ୍ତ ।

ଗୁଣଚ-ଗ୍ରା.(ସମ୍ବ)ବି.ଅଣ୍ଟାସୂତା,ଅଣ୍ଟାରେ ପିନ୍ଧାଯିବା ଅଳଂକାରବିଶେଷ ।

ଗୁଣ—ବି. (ଗୁଣ+ଅ) ଧନୁର ଆକର୍ଷଣରଜ୍ଜୁ,ଜ୍ୟା,ରଜ୍ଜୁ,ଦଉଡ଼ି,ଶୌର୍ଯ୍ୟାଦି ଧର୍ମ, ଷଟ୍‌ପ୍ରକାର ରାଜନୀତି, ସୂତ୍ର, ଜ୍ଞାନବିଦ୍ୟାଦି, ଯେଉଁ ଧର୍ମଥିଲେ ଲୋକ ପ୍ରଶଂସନୀୟ ହୁଏ, ସାଂଖ୍ୟମତସିଦ୍ଧ ପଦାର୍ଥ, ନୈୟାୟିକ ବୈଶେଷିକ ମତସିଦ୍ଧ ଦ୍ରବ୍ୟାଶ୍ରିତ ପଦାର୍ଥବିଶେଷ,ବୈୟାକରଣମତେ ସ୍ୱରମାନଙ୍କର ବୃଦ୍ଧିରୂପ କାର୍ଯ୍ୟ, ଆଲଙ୍କାରିକମତେ ଅଙ୍ଗୀଭୂତ ରସର ଉତ୍କର୍ଷ ହେତୁ ମାଧୁର୍ଯ୍ୟପ୍ରଭୃତି ଧର୍ମ, ଆବୃତ୍ତି, ଉତ୍କର୍ଷ, ବିଶେଷଣ, ଦ୍ରବ୍ୟକୁ ଯେଉଁ ସମସ୍ତ ପଦାର୍ଥ ଆଶ୍ରୟ କରି ରହେ, ଦେଶ ଓ କାଳଙ୍କଠୁ ପ୍ରଭୃତି ଗୋ୯ଟି ଧର୍ମ, ସମସ୍ତ ପ୍ରାଣୀ ପ୍ରତି ଦୟା କ୍ଷମାଦି ଆଠପ୍ରକାର ଧର୍ମ, କୁକୁଡ଼ା, ସୂଦ, ଇନ୍ଦ୍ରିୟ, ତ୍ୟାଗ, ବତୀ, ଦୋଷଭିନ୍ନ ଧର୍ମ,ମୂଳସାଧନ, ବିବେକ, ଅଙ୍ଗ ପ୍ରଧାନର ନିର୍ବାହକ, ସାଦୃଶ୍ୟ ପ୍ରଭୃତି ବସ୍ତୁ ଧର୍ମ, ପ୍ରକୃତି, ମାଳା, ଯେ କୌଣସି ପ୍ରଦାର୍ଥର ଧର୍ମ, ବର୍ତ୍ତୌପୃତ୍ତିର ଅନନ୍ତରଜାତ ବିବାଗଦି ବାହ୍ୟପ୍ରଯତ୍ନ, ସୁଶ୍ରୁତୋକ୍ତ ଅଷ୍ଟବିଧ ସାର୍ଥ, (ଗଣିତ) ଏକ ଅଙ୍କ ଦ୍ୱାରା ଅନ୍ୟ ଅଙ୍କରେ ପୂରଣ କିମ୍ବା, ବହୁରାଶିର ଗୁଣଫଳ, ବାର ବା ଥର, ଭୀମସେନ, ତନ୍ତୁ, ବ୍ୟଞ୍ଜନ, ଗଣିତବିଶେଷ, ଜିତ୍ୱସଂଖ୍ୟା, ପାଚକ, ଶରୀରସ୍ଥ କଫ ଓ ବାତପିତ୍ତାଦି ଧାତୁ, ଯୋଗେଶ୍ୱର ଭକ୍ତ ପଦ୍ମାକ୍ଷ ମୁନିକୁଳଜ ଜଣେ ରାଜା,(ଗ୍ରା.ବି)ହେତୁ, କାରଣ ।

ଗୁଣକ—ପୁଂ.ବି.(ଗୁଣ୍+କ.ଅକ)ପୁରକାଙ୍କବିଶେଷ, ଯେଉଁ ଅଙ୍କଦ୍ୱାରା ଗୁଣ କରାଯାଏ,(ବିଂ)ଗୁଣକାରୀ,(ସ୍ତ୍ରୀ)ଗୁଣିକା ।

ଗୁଣକଥନ—କ୍ଲୀବି. (୬ତତ୍ପୁ)ଗୁଣବର୍ଣ୍ଣନ, ବିରହରେ କାମକୃତ ଦଶଗୋଟି ଅବସ୍ଥା ମଧ୍ୟରୁ ଚତୁର୍ଥ ଅବସ୍ଥା, ପ୍ରଶଂସା ।

ଗୁଣକର—ବିଂ. ( ଗୁଣ+କୃ+କ.ଅ ) ଉପକାରୀ ।

ଗୁଣକରିବା—ଗ୍ରା. କ୍ରି. ଉପକାରକରିବା, ଫଳପ୍ରଦ ହେବା, ଗୁଣିବା, କୌଣସି ସଂଖ୍ୟାକୁ ଅନ୍ୟଦ୍ୱାରା ଗୁଣନ କରିବା ।

ଗୁଣକର୍ମ—କ୍ଲୀ. ବି. (କ.ଧା) ଅପ୍ରଧାନ, ଗୌଣକର୍ମ, ସତ୍ତ୍ୱ ରଜ ଓ ତମୋଗୁଣର କର୍ମ ।

ଗୁଣକାଢ଼ିବା—ଗ୍ରା. କ୍ରି. (ବ୍ୟଙ୍ଗ) ଦୁର୍ଗୁଣ ଦେଖାଇବା ।

ଗୁଣକାମଦେବ—ପୁଂ. ବି. ନେପାଳର ଜଣେ ରାଜା ।

ଗୁଣକାର—ପୁଂ. ବିଂ. (ଗୁଣ+କୃ+ଅ) ସୂପକାର, (ବି) ଭୀମସେନ ।

ଗୁଣକାରକ—ବିଂ.(ଗୁଣ+କୃ+କ.ଅକ) ଫଳପ୍ରଦ, ଆରୋଗ୍ୟପ୍ରଦ, ଉପକାରକ ସହାୟକ ।

ଗୁଣକାରୀ—ପୁଂ.ବିଂ(୬ତତ୍) ଗୁଣକାରକ, ଉପକାରକ, ହିତକର, ଆରୋଗ୍ୟଜନକ ।

ଗୁଣକୀର୍ତ୍ତନ — କ୍ଳୀ.ବି.(୬ତତ୍)ଗୁଣବର୍ଣ୍ଣନ, ଗୁଣର ପୁନଃପୁନଃ ଉଲ୍ଲେଖ, ଅନ୍ୟର ଗୁଣ କହିବା ।

ଗୁଣକେଲୀ — ସ୍ତ୍ରୀ. ବି. ଗୁର୍ଜ୍ଜରୀ ଓ ମାଳବ ଯୋଗେ ଉତ୍ପନ୍ନ ଭୈରବ ରାଗର ପତ୍ନୀ ।

ଗୁଣକେଶୀ — ସ୍ତ୍ରୀ.ବି.ଇନ୍ଦ୍ରସାରଥି ମାତଲି-ଙ୍କର କନ୍ୟା ।

ଗୁଣଗାଇବା — ଗ୍ରା. କ୍ରି. ଗୁଣକୀର୍ତ୍ତନ କରିବା, ପ୍ରଶଂସା କରିବା ।

ଗୁଣଗାନ — କ୍ଳୀ.ବି.(୬ତତ୍) ଗୁଣକୀର୍ତ୍ତନ, ପ୍ରଶଂସାକରଣ ।

ଗୁଣଗାରମା — ଗ୍ରା.ବି.(୬ତତ୍)ବିଚକ୍ଷଣତା ।

ଗୁଣଗୃହ୍ୟ — ତ୍ରି.ବି°.(ଗୁଣ+ଗ୍ରହ୍+ମ୍. ଯ) ଗୁଣପକ୍ଷପାତୀ, (ସ୍ତ୍ରୀ) ଗୁଣଗୃହ୍ୟା ।

ଗୁଣଗୌରବ — ବି. (୬ତତ୍) ଉତ୍କର୍ଷ-ଜନିତ ସମ୍ମାନ ବା ପ୍ରଶଂସା ।

ଗୁଣଗୌରୀ — ସ୍ତ୍ରୀ. ବି. ଯେଉଁନାରୀ ସମସ୍ତ ଗୁଣରେ ପଣ୍ଡିତା, ଯେଉଁ ସ୍ତ୍ରୀ ସର୍ବା-ଂଶରେ ପାତିବ୍ରତ୍ୟପର ।

ଗୁଣଗ୍ରହଣ — କ୍ଳୀ. ବି. ଗୁଣବାନ୍ ଲୋକର ଗୁଣ ଗ୍ରହଣପୂର୍ବକ ଅନୁରୂପ ସମାଦର କରି ଗୁଣ ବୁଝିବା ।

ଗୁଣଗ୍ରାମ — ପୁଂ.ବି. ଗୁଣସମୂହ, ସଦ୍ଗୁଣ-ସକଳ ।

ଗୁଣଗ୍ରାହକ — ପୁଂ.ବି°. (୬ତତ୍)ଯେ ଗୁଣ ଗ୍ରହଣ କରେ, ଗୁଣଗ୍ରାହୀ, (ସ୍ତ୍ରୀ) ଗୁଣ-ଗ୍ରାହିକା ।

ଗୁଣଗ୍ରାହିତା — ସ୍ତ୍ରୀ.ବି.(ଗୁଣଗ୍ରାହିନ୍+ତା) ଗୁଣପ୍ରିୟତା, ଗୁଣଜ୍ଞତା, ଅନ୍ୟ ଗୁଣ ପ୍ରତି ଅନୁରାଗ ବା ପ୍ରଶଂସା ।

ଗୁଣଗ୍ରାହୀ — ପୁଂ.ବି°. (ଗୁଣ+ଗ୍ରହ+କ. ଇନ୍) ଯେ ଅନ୍ୟର ଗୁଣ ଗ୍ରହଣ କରି-ପାରେ, ଗୁଣଜ୍ଞ, (ସ୍ତ୍ରୀ) ଗ୍ରାହିଣୀ ।

ଗୁଣଘାତୀ — ପୁଂ. ବି°. (ଗୁଣ+ହନ୍+ ଇନ୍) ଗୁଣନାଶକ, ଯେ ସମସ୍ତ ଗୁଣ ନଷ୍ଟକରେ ।

ଗୁଣଚଢ଼ାଇବା — ଗ୍ରା. କ୍ରି. ଧନୁକୁ ବଙ୍କା କରି ତାହାର ଦୁଇ ମୁଣ୍ଡରେ ଗୁଣକୁ ଭିଡ଼ିବା ।

ଗୁଣ(ଚକ୍ଷୁ)ରୀ — ଗ୍ରା. ବି°. ଯେ ପରର ସୁଗୁଣକୁ ଆଦର କରେ, ଗୁଣଗ୍ରାହୀ ।

ଗୁଣଜନିତ — ବି°.(୭ତତ୍)ଗୁଣୋତ୍ପାଦିତ, ଯାହା ଗୁଣରୁ ଉତ୍ପନ୍ନ ।

ଗୁଣଜ୍ଞ — ପୁଂ.ବି°. (ଗୁଣ+ଜ୍ଞା+କ.ଅ) ଯେ ଗୁଣ ଗ୍ରହଣ କରିପାରେ, ଗୁଣଗ୍ରାହୀ, (ସ୍ତ୍ରୀ) ଗୁଣଜ୍ଞା ।

ଗୁଣଜ୍ଞତା — ସ୍ତ୍ରୀ. ବି. (ଗୁଣଜ୍ଞ+ତା)ଗୁଣ ଗ୍ରାହିତା ।

ଗୁଣଟାଣିବା — ଗ୍ରା. କ୍ରି. ଧନୁର ଗୁଣ ଆକର୍ଷଣ କରିବା ।

ଗୁଣତା — ସ୍ତ୍ରୀ. ବି. ଗୁଣତ୍ୱ, ଗୁଣର ଧର୍ମ, ଦ୍ରବ୍ୟଜ୍ଞାନର ଅଧୀନ, ଜ୍ଞାନଅଧୀନତା ।

ଗୁଣତ୍ରୟ — ବି. (୬ତତ୍) ସତ୍ତ୍ୱ ରଜଃ ଓ ତମଃ ଏହି ତିନିଗୋଟି ସୃଷ୍ଟିର ପ୍ରକୃ-ତିକ ଗୁଣ, ଉତ୍ତମ ଗୁଣ, ମଧ୍ୟମ ଗୁଣ, ଓ ଅଧମ ଗୁଣ ।

ଗୁଣତ୍ୱ — କ୍ଳୀ.ବି. ଗୁଣର ଧର୍ମ. ଅଧୀନତା, ମିଳିତ ହୋଇ ରଜ୍ଜୁରୂପରେ ପରିଣତ ।

ଗୁଣଦେବ — ପୁଂ.ବି. ଗୁଣାଢ୍ୟଙ୍କର ଜଣେ ଶିଷ୍ୟ ।

ଗୁଣଦୋଷବିଚାର — ପୁଂ. ବି. ଗୁଣାଗୁଣ [ବିବେଚନା ।

ଗୁଣଧର — ତ୍ରି, ବି°. (ଗୁଣ+ଧୃ+ଅ) ୬ତତ୍; ଗୁଣର ଆଧାର, ଯାହାଠାରେ ଗୁଣ ଅଛି, (ବ୍ୟଙ୍ଗ) ଗୁଣଧର, କୁକ୍ରିୟା-ସକ୍ତ, (ସ୍ତ୍ରୀ) ଗୁଣଧରୀ ।

ଗୁଣଧର୍ମ — ପୁଂ. ବି. (କ.ଧା)କ୍ଷତ୍ରିୟମାନ-ଙ୍କର ପ୍ରଜାପାଳନରୂପ ଧର୍ମ, ଏହିପରି ଗୁଣର କାର୍ଯ୍ୟ ।

ଗୁଣଧାମ — ବି. ( ୬ତତ୍ ) ସର୍ବଗୁଣର ଆଧାର, ବହୁଗୁଣସମ୍ପନ୍ନ ।

ଗୁଣନ — କ୍ଳୀ.ବି.(ଗୁଣ+ଭା.ଅନ)ମନ୍ତ୍ରଣା, ଅଭ୍ୟାସ, ପୂରଣ, ଏକ ଅଙ୍କଦ୍ୱାରା ଅନ୍ୟଅଙ୍କର ଗୁଣନ, ଗୁଣିକରି ଦେଖିବା, ଆବୃତ୍ତି, ବର୍ଣ୍ଣନ ।

ଗୁଣନପ୍ରତିଗୁଣନ — ବି. (ଗଣିତପରିଭାଷା) ଆଧୁନିକ ବ୍ୟବହାର, ଏକାଧିକ ସଂଖ୍ୟା ବିଶିଷ୍ଟ ରାଶିର ଭିନ୍ନ ଭିନ୍ନ ଅଂଶକୁ ଭିନ୍ନ ଭିନ୍ନରୂପେ ସଂସ୍ଥାପନ କରି ଗଣନା କରିବା ପ୍ରଣାଳୀବିଶେଷ ।

ଗୁଣନଫଳ — ବି.(୬ତତ୍)(ଗଣିତ) ଦୁଇ ସଂଖ୍ୟାର ଗୁଣନଦ୍ୱାରା ଲବ୍ଧଫଳ ।

ଗୁଣନିକା — ସ୍ତ୍ରୀ.ବି.(ଗୁଣ+ଅନ+କ+ ଆ) ଅଭ୍ୟାସ, ଦୃଢ଼ ସଂସ୍କାର ନିମିତ୍ତ ପାଠ୍ୟଗ୍ରନ୍ଥର ବାରମ୍ବାର ଅନୁଶୀଳନ, ନୃତ୍ୟ, ଶୂନ୍ୟସଂଖ୍ୟା, ମାଳା, ପାଠ ସ୍ଥିରୀ-କରଣ, ଦ୍ୱିରୁକ୍ତି ।

ଗୁଣନିଧି — ପୁଂ.ବି°.(୬ତତ୍) ଗୁଣାଧାର, ପ୍ରଭୂତଗୁଣସମ୍ପନ୍ନ, (ବି) ଜଣେ ସଂସ୍କୃତ ଗ୍ରନ୍ଥକାର ।

ଗୁଣନୀ — ସ୍ତ୍ରୀ.ବି.ପାଠ୍ୟଗ୍ରନ୍ଥର ଦୃଢ଼ ସଂସ୍କାର ନିମିତ୍ତ ପୁନଃପୁନଃ ଅନୁଶୀଳନ ।

ଗୁଣନୀୟ — ବି°. (ଗୁଣ୍+ମ୍. ଅନୀୟ) ଗୁଣନ କରିବାର ଯୋଗ୍ୟ, ଯେଉଁ ସଂଖ୍ୟାକୁ ଅନ୍ୟ ସଂଖ୍ୟାଦ୍ୱାରା ଗୁଣନ କରାଯାଏ, (ବି) ଅଭ୍ୟାସ ।

ଗୁଣନୀୟକ — ପୁଂ. ବି. ଯେଉଁ ରାଶିଦ୍ୱାରା ଅନ୍ୟ ଗୋଟିଏ ରାଶିକୁ ଭାଗ କଲେ ଭାଗଶେଷ ରହେ ନାହିଁ ତାହା ଦ୍ୱିତୀୟ ରାଶିର ଗୁଣନୀୟକ, ଅପବର୍ତ୍ତକ ।

ଗୁଣପକ୍ଷପାତୀ — ପୁଂ.ବି°. (୬ତତ୍) ଗୁଣା-ନୁରାଗୀ ।

ଗୁଣପୂର୍ଣ୍ଣ — ତ୍ରି. ବି°. (୭ତତ୍) ଯାହାର ଅନେକ ଗୁଣ ଅଛି, ଗୁଣାଧାର ।

ଗୁଣପ୍ରବୃଦ୍ଧ — ତ୍ରି. ବି°. (୩ତତ୍) ଯାହା ଗୁଣଦ୍ୱାରା ବୃଦ୍ଧି ପାଇଅଛି ।

ଗୁଣପ୍ରକର୍ଷ — ପୁଂ. ବି. ( ୬ତତ୍ ) ଗୁଣର ଆଧିକ୍ୟ ।

ଗୁଣପ୍ରିୟ — ତ୍ରି. ବି°. (ବ.ବ୍ରୀ) ଗୁଣାନୁ-ରାଗୀ, ଯେ ଗୁଣକୁ ଭଲପାଏ ।

ଗୁଣଫଳ — ବି. (୬ତତ୍; ଗଣିତ) ଏକ ସଂଖ୍ୟାକୁ ଅନ୍ୟ ସଂଖ୍ୟାରେ ଗୁଣିଲେ ଯେଉଁ ଫଳ ପଡ଼େ ।

ଗୁଣଭଦ୍ର — ପୁଂ.ବି. ଜଣେ ଚୀନ୍ଦେଶ-ବାସୀ ବୌଦ୍ଧପଣ୍ଡିତ ।

ଗୁଣଭୋକ୍ତା — ପୁଂ.ବି°.(୬ତତ୍) ଯେ ଗୁଣ ଭୋଗକରେ ।

ଗୁଣଭୃତ୍—ବି. ବ୍ୟ. (ଗୁଣ+ଭୃ+କ୍ୱିପ୍) ଯାହାର ଗୁଣ ଅଛି, ଗୁଣାଧାର, (ପୁଂ.ବ) ପରମେଶ୍ୱର।
ଗୁଣଭ୍ରଂଶ—ପୁଂ.ବ. (୬ତତ୍) ଗୁଣନାଶ।
ଗୁଣମଣି—ବ. (କ.ଧା) ନାନାଗୁଣବିଶିଷ୍ଟ ବୋଲି ରତ୍ନସ୍ୱରୂପ।
ଗୁଣମୟ—ବି.ବ୍ୟ. (ଗୁଣ+ମୟ) ସତ୍ତ୍ୱ, ରଜଃ ଓ ତମୋଗୁଣବିଶିଷ୍ଟ, ଗୁଣାତ୍ମକ, ଗୁଣସ୍ୱରୂପ, ଗୁଣାଢ୍ୟ, ଗୁଣଯୁକ୍ତ, (ସ୍ତ୍ରୀ) ଗୁଣମୟୀ।
ଗୁଣମହାର୍ଣ୍ଣବ—କଳିଙ୍ଗର ଜଣେ ଗଙ୍ଗବଂଶୀୟ ରାଜା।
ଗୁଣମୁଗ୍ଧ—ପୁଂ. ବ୍ୟ. (୩ତତ୍) ଅନ୍ୟର ସୁଗୁଣଦ୍ୱାରା ଆକୃଷ୍ଟ, ଗୁଣଲୁବ୍ଧ।
ଗୁଣଯୁକ୍ତ—ବି.ବ୍ୟ. (୩ତତ୍) ଗୁଣବିଶିଷ୍ଟ।
ଗୁଣଯୋଗ—ପୁଂ.ବ. (୬ତତ୍) ଗୁଣସହିତ ସମ୍ବନ୍ଧ।
ଗୁଣରତ୍ନ—କ୍ଲୀ. ବ. (କ.ଧା) ଗୁଣସ୍ୱରୂପ ରତ୍ନ, ରତ୍ନପରି ପ୍ରଶଂସନୀୟ ଗୁଣ।
ଗୁଣରାଗ—ପୁଂ. ବ. (୭ତତ୍) ଗୁଣରେ ଅନୁରାଗ, ଗୁଣପ୍ରିୟତା। [ଶିବ।
ଗୁଣରାଶି—ପୁଂ. ବ. (୬ତତ୍) ଗୁଣସମୂହ,
ଗୁଣଲୟନିକା—ସ୍ତ୍ରୀ. ବ. (ଗୁଣ+ଲୀ+ଅନ+କ,ଆ) ବସ୍ତ୍ରନିର୍ମିତ ଗୃହ, ତମ୍ବୁ, ରାହୁଟୀ। [ତମ୍ବୁ।
ଗୁଣଲୟନୀ—ସ୍ତ୍ରୀ. ବ. ବସ୍ତ୍ରନିର୍ମିତ ଗୃହ,
ଗୁଣଲୁବ୍ଧ—ପୁଂ.ବ୍ୟ. (୭ତତ୍) ଗୁଣଗ୍ରାହୀ, ସଦ୍‌ଗୁଣ ଦର୍ଶନେ ବିମୋହିତ।
ଗୁଣବଚନ—ପୁଂ. ବ. ଗୁଣବାଚକ ଶବ୍ଦ, ଗୁଣବତ୍ ଦ୍ରବ୍ୟବାଚକ ଶୁକ୍ଳାଦି ଶବ୍ଦ।
ଗୁଣବତୀ—ସ୍ତ୍ରୀ. ବ. ଗୋଟିଏ ଅପ୍ସରା, ଯଦୁବଂଶୀୟ ସୁନାଭର ଏକ ଦୌହିତ୍ରୀ, ଗାୟତ୍ରୀ ସ୍ୱରୂପା ଏକ ମହାଦେବୀ।
ଗୁଣବରରା—ସ୍ତ୍ରୀ. ବ. ଜୀବନ୍ତୀ ଶାକ।
ଗୁଣବତ୍ତା—ସ୍ତ୍ରୀ. ବ. (ଗୁଣବତ୍+ତା) ଗୁଣ, ଗୁଣାଧାରତା, ଗୁଣଶାଳିତା।
ଗୁଣବନ୍ତ—ଗ୍ରା.ପୁଂ.ବ୍ୟ. ଗୁଣବାନ୍, ବିଦ୍ୱାନ୍ ଗୁଣଶାଳୀ।
ଗୁଣବର୍ତ୍ତନ—କ୍ଲୀ. ବ. ଗୁଣବୃତ୍ତି।
ଗୁଣବର୍ତ୍ତୀ—ପୁଂ. ବ. ଯାହାକୁ ଗୁଣବୃତ୍ତି ଅବଲମ୍ବନ କରେ।
ଗୁଣବର୍ମୀ—ପୁଂ.ବ. ତେଜସ୍ୱୀଙ୍କର ପିତା, ଜଣେ ଜୈନ ଗ୍ରନ୍ଥକାର।
ଗୁଣବାଚକ—ବି. ବ୍ୟ. (ଗୁଣ+ବଚ୍+କ.ଅକ) ଯେଉଁ ସମସ୍ତ ଶବ୍ଦରେ କୌଣସିପ୍ରକାର ଗୁଣ ବୁଝାଏ, ଗୁଣ ପ୍ରକାଶକ, (ସ୍ତ୍ରୀ) ବାଚକା, (ବ) ବ୍ୟାକରଣବିଶେଷ।
ଗୁଣବାଚକବିଶେଷଣ—ବ, (ବ୍ୟାକରଣ) ଯେଉଁ ବିଶେଷଣଦ୍ୱାରା ବିଶେଷ୍ୟର ଗୁଣ ବୁଝାଏ।
ଗୁଣବାଚକବିଶେଷ୍ୟ—ବ. ଯେଉଁବିଶେଷ୍ୟ କୌଣସିବ୍ୟକ୍ତି ବା ବସ୍ତୁର ଗୁଣ ବୁଝାଏ।
ଗୁଣବାଦ—ପୁଂ. ବ. (୬ତତ୍) ଅର୍ଥବାଦବିଶେଷ, ପ୍ରଶଂସା, ଗୁଣକୀର୍ତ୍ତନ।
ଗୁଣବାନ୍—ପୁଂ. ବ୍ୟ. (ଗୁଣ+ବତ୍) ଗୁଣଶାଳୀ, ଗୁଣଯୁକ୍ତ, ଗୁଣୀ, (ସ୍ତ୍ରୀ) ଗୁଣବତୀ, (ବ) ବ୍ରାହ୍ମଣୀ ଦେବୀଭକ୍ତ ମାଣ୍ଡବ୍ୟ ମୁନିବଂଶୀୟ ଜଣେ ରାଜା।
ଗୁଣବିଧ—ବି.ବ୍ୟ. (ବ.ବ୍ରୀ) ଗୁଣତୁଲ୍ୟ।
ଗୁଣବିଧି—ପୁଂ.ବ. (୬ତତ୍) ଅପର ବିଧି ବାକ୍ୟରେ ପ୍ରାପ୍ତ ବା ଅପ୍ରାପ୍ତ କର୍ମର ଅଙ୍ଗ ବିଧାନର ନାମ ଗୁଣବିଧି।
ଗଣବିଶେଷ—ପୁଂ.ବ. (୬ତତ୍) ଏକପ୍ରକାର ଗୁଣଭେଦ।
ଗୁଣବିଷ୍ଣୁ—ପୁଂ. ବ. ଜଣେ ବୈଦିକ ପଣ୍ଡିତ।
ଗୁଣବୃକ୍ଷ—ପୁଂ.ବ. (୬ତତ୍) ନୌକା ବା ଜାହାଜର ମାସ୍ତୁଲ, ଗୁଣରୂପବୃକ୍ଷ।
ଗୁଣବୃକ୍ଷକ—ପୁଂ. ବ. (ଗୁଣବୃକ୍ଷ+କ) ଗୁଣବୃକ୍ଷ।
ଗୁଣବୃତ୍ତି—ସ୍ତ୍ରୀ.ବ (୬ତତ୍) ଲକ୍ଷଣାବିଶେଷ, (ବ୍ୟ. ବ.ବ୍ରୀ) ଗୁଣ ଉପରେ ଯାହାର ବୃତ୍ତି ବା ସାମର୍ଥ୍ୟ ଅଛି।
ଗୁଣବୈଚିତ୍ର୍ୟ—କ୍ଲୀ. ବ. (୬ତତ୍) ଗୁଣର ବିଚିତ୍ରତା, ବିଭିନ୍ନତା।
ଗୁଣବୈଷମ୍ୟ—ବ୍ୟ. (୬ତତ୍) ବିରୁଦ୍ଧଗୁଣର ସମାବେଶ, ଗୁଣର ଅସମାନତା।
ଗୁଣଶବ୍ଦ—ପୁଂ.ବ. (କ.ଧା) ଗୁଣବୋଧକ ଶବ୍ଦ।
ଗୁଣଶାଳିତା—ସ୍ତ୍ରୀ. ବ. ଗୁଣାଧାରତା, ଗୁଣବତ୍ତା, ଗୁଣଯୋଗ।
ଗୁଣଶାଳିନୀ—ସ୍ତ୍ରୀ ବ. (ଗୁଣଶାଳିନ୍+ଈ) ଗୁଣବତୀ।
ଗୁଣଶାଳୀ—ପୁଂ. ବ୍ୟ. (ଗୁଣ+ଶାଳ+ଇନ୍) ଗୁଣବିଶିଷ୍ଟ, ଗୁଣବାନ୍।
ଗୁଣଶୀଳ—ପୁଂ.ବ୍ୟ. (ବ.ବ୍ରୀ) ସଚ୍ଚରିତ୍ର।
ଗୁଣଶ୍ଲାଘା—ସ୍ତ୍ରୀ.ବ. (୬ତତ୍) ଗୁଣପ୍ରଶଂସା।
ଗୁଣସଂକୀର୍ତ୍ତନ—କ୍ଲୀ. ବ. (୬ତତ୍) ଗୁଣକଥନ, ଗୁଣାନୁବାଦ।
ଗୁଣସଂଖ୍ୟାନ—କ୍ଲୀ. ବ. (୬ତତ୍) ସଂଖ୍ୟା ବା ପାତଞ୍ଜଳ ଶାସ୍ତ୍ର।
ଗୁଣସଂମୂଢ଼—ପୁଂ. ବ୍ୟ. (୩ତତ୍) ଗୁଣକାର୍ଯ୍ୟ ପ୍ରଭୃତିରେ ଆତ୍ମାଭିମାନବିଶିଷ୍ଟ, ଆତ୍ମାଭିମାନୀ, (ସ୍ତ୍ରୀ) ସମୂଢ଼ା।
ଗୁଣସଙ୍ଗ—ପୁଂ. ବ. (୭ତତ୍) ସୁଖ ପ୍ରଭୃତିରେ ଆସକ୍ତି।
ଗୁଣସମ୍ପନ୍ନ—ବ. (୩ତତ) ଗୁଣବିଶିଷ୍ଟ, ଗୁଣାନ୍ୱିତ, (ସ୍ତ୍ରୀ) ଗୁଣସମ୍ପନ୍ନା।
ଗୁଣସମୁଦ୍ର—ପୁଂ. ବ୍ୟ. ଗୁଣାଧାର, ଗୁଣନିଧି।
ଗୁଣସାଗର—ପୁଂ. ବ. ଗୁଣାଧାର, ନାନା ଗଣଧର, ସମୁଦ୍ରପରି ଅପରମେୟ ଗୁଣବିଶିଷ୍ଟ, (ବ) ଚତୁର୍ମୁଖ ବ୍ରହ୍ମା, ବୃକ୍ଷ ବିଶେଷ, ଶ୍ରୀକୃଷ୍ଣଙ୍କର ଦୁଇଟି ଭଗୁଣାବଳୀର ବର୍ଣ୍ଣନାପୂର୍ଣ୍ଣ ଦୀନକୃଷ୍ଣ ଦାସଙ୍କ ରଚିତ ଓଡ଼ିଆ ପଦ୍ୟଗ୍ରନ୍ଥବିଶେଷ।
ଗୁଣସିନ୍ଧୁ—ପୁଂ.ବ୍ୟ. (୬ତତ୍) ଗୁଣାଧାର, ଗୁଣସାଗର। [ମାସ୍ତୁଲ।
ଗୁଣସ୍ତମ୍ଭ—ପୁଂ.ବ. (୬ତତ୍) ଗୁଣବୃକ୍ଷ,
ଗୁଣସ୍ଥାପ୍ରକରଣ—ବୌଦ୍ଧ ଓ ଜୈନମାନଙ୍କର ଖଣ୍ଡିଏ ଧର୍ମଗ୍ରନ୍ଥ।
ଗୁଣହୀନ—ବି.ବ୍ୟ. (୩ତତ୍) ଗୁଣଶୂନ୍ୟ, ଯାହାର କୌଣସି ଗୁଣ ନାହିଁ, (ସ୍ତ୍ରୀ) ଗୁଣହୀନା।
ଗୁଣା—ସ୍ତ୍ରୀ. ବ. (ଗୁଣ+ଅ+ଆ) ଦୁବା, ମାଂସରୋହିଣୀ, (ଗ୍ରା. ବ) ସୁନା ବା

ପିତଳ ଇତ୍ୟାଦିର ତାରରେ ଗଠିତ ନାକରେ ଲଗାଇବାର ଅଳଙ୍କାର-ବିଶେଷ, ଖଣାପ୍ରଭୃତିର ତାର, ଗୁଣ-ନର ସାଙ୍କେତିକ ଚିହ୍ନ, ଅଗୁରୁଜାତୀୟ ବୃକ୍ଷବିଶେଷ, ଗୁଣଫଳ, (ଗ୍ରା. ବି. ଗଣିତ) ଗୁଣିତକ ।

ଗୁଣାକର—ପୁଂ. ବି. (୬ତତ୍) ବୁଦ୍ଧ-ବିଶେଷ, ମହାଦେବ, ବୁଦ୍ଧଙ୍କର ଜଣେ ଶିଷ୍ୟ, (ବିଂ) ଗୁଣଯୁକ୍ତ । [ କଥନ ।

ଗୁଣାଖ୍ୟାନ—କ୍ଲୀ.ବି.ଗୁଣ କୀର୍ତ୍ତନ, ଗୁଣ-

ଗୁଣାଗାର(ର)—ସା. ବି. ଅର୍ଥଦଣ୍ଡ, ଦଣ୍ଡ, ଜୋରିମାନା ।

ଗୁଣାଗୁଣ—ପୁଂ. ବି. (ଦ୍ୱନ୍ଦ୍ୱ) ଗୁଣ ଓ ଦୋଷ, ଭଲମନ୍ଦ ।

ଗୁଣାଗୁଣି—ଗ୍ରା. ବି. ଅନେକ ସଂଖ୍ୟାକୁ ଅନେକ ସଂଖ୍ୟାଦ୍ୱାରା ଗୁଣିବା କର୍ମ, ସ୍ତବସ୍ତୋତ୍ରାଦି ବୋଲିବା, ଗୁଣିବା କର୍ମ, ଦୈନିକ ସନ୍ଧ୍ୟାବନ୍ଦନାଦି ସମୟରେ ମନେ ମନେ ସ୍ତବସ୍ତୋତ୍ରାଦି ଆବୃତ୍ତି କରିବା କର୍ମ ।

ଗୁଣାଢ୍ୟ—ପୁଂ. ବିଂ. (୩ତତ୍)ଗୁଣଯୁକ୍ତ, ଗୁଣବାନ୍, (ପୁଂ.ବି) ପୈଶାଚୀ ଭାଷାର ଗ୍ରନ୍ଥକାର କବିବିଶେଷ, ଜଣେ ବ୍ରାହ୍ମଣ କୁମାର ।

ଗୁଣାଢ୍ୟକ—ପୁଂ. ବି. ଅଙ୍କୋଠବୃକ୍ଷ, ଆଙ୍କୁଳଗଛ ।

ଗୁଣାଣ—ଗ୍ରା. ବି. ଗୁଣନ ।

ଗୁଣାତୀତ—ପୁଂ.ବିଂ. ଗୁଣତ୍ରୟରୁ ଅତୀତ (ସତ୍ତ୍ୱ, ରଜ ଓ ତମ) ସୁଖ ଦୁଃଖାଦି ଗୁଣଶୂନ୍ୟ, ସାଂସାରିକ ବନ୍ଧନରୁ ମୁକ୍ତ, ନିର୍ଲିପ୍ତ, (ବି.) ପରମେଶ୍ୱର ।

ଗୁଣାଧାର—ପୁଂ. ବିଂ. (୬ତତ୍) ଗୁଣ-ବାନ୍, ଗୁଣସାଗର, ଗୁଣର ଆଶ୍ରମ ।

ଗୁଣାଧିଷ୍ଠାନକ—କ୍ଲୀ. ବି. ବକ୍ଷର ଯେଉଁ-ଠାରେ ମେଖଳା ବନ୍ଧାଯାଏ ।

ଗୁଣାନୁକରଣ—ବି. (୬ତତ୍) ଅନ୍ୟର ଗୁଣଲାଭାର୍ଥ ପ୍ରୟାସ ।

ଗୁଣାନୁକୀର୍ତ୍ତନ—ବି. (୬ତତ୍) ଅନ୍ୟର ଗୁଣର ପ୍ରଶଂସା କରିବା ।

ଗୁଣାନୁବାଦ—ପୁଂ.ବି. (୬ତତ୍) ବାର-ମ୍ବାର ଗୁଣକୀର୍ତ୍ତନ, ପ୍ରଶଂସା ।

ଗୁଣାନୁରାଗ—ପୁଂ. ବି. (୬ତତ୍) ଗୁଣ ପ୍ରିୟତା, ଅନ୍ୟର ଗୁଣରେ ଆସକ୍ତି, ଗୁଣପ୍ରତି ସ୍ନେହ ।

ଗୁଣାନୁରାଗୀ—ପୁଂ. ବିଂ. (୬ତତ୍ ବା ୭ତତ୍) ଗୁଣ ଦର୍ଶନରେ ଗୁଣୀପ୍ରତି ଅନୁରାଗବିଶିଷ୍ଟ, (ସ୍ତ୍ରୀ)ଗୁଣାନୁରାଗିଣୀ ।

ଗୁଣାନୁରୋଧ—ପୁଂ.ବି. (୬ତତ୍) ଗୁଣର ପ୍ରତୀକ୍ଷା, ଗୁଣର ଅନୁସରଣ ।

ଗୁଣାନ୍ତର—ପୁଂ.ବି.(କ,ଧା) ଅନ୍ୟଗୁଣ ।

ଗୁଣାନ୍ତରାଧାନ—କ୍ଲୀ.ବି.କୌଣସି ଦ୍ରବ୍ୟର ପୂର୍ବଗୁଣ ଭିନ୍ନ ଅପର ଗୁଣ ଉତ୍ପାଦନ ବା ପ୍ରାପ୍ତି ନାମ ଗୁଣାନ୍ତରାଧାନ ।

ଗୁଣାନ୍ତରାପନ—କ୍ଲୀ. ବି. ଭାବାନ୍ତର ପ୍ରାପ୍ତି ।

ଗୁଣାନ୍ୱିତ—ପୁଂ.ବିଂ. (୩ତତ୍)ବିବେକୀ, ଗୁଣଯୁକ୍ତ, ଗୁଣବାନ୍, ଗୁଣଶାଳୀ ।

ଗୁଣାପବାଦ—ପୁଂ. ବି. (୬ତତ୍)ଗୁଣର ନିନ୍ଦା ।

ଗୁଣାବସୁଣୀ—ଗ୍ରା.ବି. (ସହଚର)ସ୍ତ୍ରୀଲୋକ ମାନଙ୍କର ନାକର ଦୁଇପୁଡ଼ାରେ ପିନ୍ଧା ଯିବା ଗୁଣା ଓ ବସୁଣୀନାମକ ଦୁଇଟି ଅଳଂକାର ।

ଗୁଣାର୍ଦ୍ଧି—ପୁଂ. ବି. ବୃକ୍ଷବିଶେଷ ।

ଗୁଣାଭରଣ—କ୍ଲୀ. ବି. ଗୁଣରୂପ ଅଳଂ-କାର ।

ଗୁଣାଭାସ—ପୁଂ.ବି.(୬ତତ୍)ଗୁଣସାଦୃଶ୍ୟ, ଗୁଣ ନ ଥିବା ସ୍ଥାନରେ ଗୁଣର ଭ୍ରମ ।

ଗୁଣାସ୍ପଦ—କ୍ଲୀ. ବି. (୬ତତ୍) ଗୁଣର ଆଶ୍ରୟ, (ବିଂ) ଗୁଣବାନ୍,ଗୁଣାଶ୍ରିତ ।

ଗୁଣୋରଷ୍ଟ—କ୍ଲୀ. ବି. ମଦ୍ୟ, ମଦ ।

ଗୁଣାଲଙ୍କୃତ—ବି. ବିଂ. (୩ତତ୍) ଗୁଣ-ଭୂଷିତ, ଗୁଣବାନ୍, ଗୁଣଦ୍ୱାରା ମଣ୍ଡିତ ।

ଗୁଣାଲଭ—ପୁଂ.ବି.(୬ତତ୍)ଗୁଣପ୍ରାପ୍ତି, ଫଳସ୍ଥାନତା ।

ଗୁଣାବଳୀ—ସ୍ତ୍ରୀ. ବି. (୬ତତ୍) (ଗୁଣ+ଆବଳୀ) ଗୁଣଶ୍ରେଣୀ, ନାମତା, ଗୁଣ ସମୂହ ।

ଗୁଣାସକ୍ତି—ବି. (୭ତତ୍) ଗୁଣାନୁରାଗ ।

ଗୁଣାହେବା—ଗ୍ରା. କ୍ରି. ଗୁଣିବା କ୍ରିୟାର କର୍ମ ବାଚ୍ୟରେ ରୂପ, ଗୁଣିତ ହେବା, (ସ୍ତବାଦି) ଆବୃତ୍ତି କରାଯିବା ।

ଗୁଣି—ଗ୍ରା. ବି. ମନ୍ତ୍ର ଯନ୍ତ୍ର ବିଦ୍ୟା, ତନ୍ତ୍ର ବିଦ୍ୟା, ଇନ୍ଦ୍ରଜାଲ ।

ଗୁଣିଆଁ—ଗ୍ରା.ବି. ଭୂତ ପ୍ରେତ ଛଡ଼ାଇବା ଲୋକ, ଓଝା, ଐନ୍ଦ୍ରଜାଲିକ ।

ଗୁଣିକ—ପୁଂ. ବିଂ. (ଗୁଣିନ୍+କ)ଗୁଣ-ଗ୍ରାହକ, ଗୁଣଜ୍ଞ, (ସ୍ତ୍ରୀ) ଗୁଣିକା ।

ଗୁଣିକା—ସ୍ତ୍ରୀ. ବି. ଶୂନ୍ୟାଙ୍କ ।

ଗୁଣିତ—ବି. ବିଂ.(ଗୁଣ୍+ର୍ମ.ତ) ଗୁଣା ଯାଇଥିବା, ଆହତ, ପୂରିତ, ଅନ୍ୟ ଅଙ୍କଦ୍ୱାରା ଯେ ଅଙ୍କ ପୂରଣ ହୋଇ-ଅଛି ।

ଗୁଣିତକ—ପୁଂ. ବି. (ଗୁଣିତ+କ) (ଗଣିତ) ଯେଉଁ ବୃହତ୍ ରାଶିକୁ ଅନ୍ୟ ଗୋଟିଏ କ୍ଷୁଦ୍ରତର ରାଶିଦ୍ୱାରା ଭାଗ କଲେ କିଛି ଭାଗଶେଷ ରହେ ନାହିଁ ।

ଗୁଣିତା—ସ୍ତ୍ରୀ. ବି. ଗୁଣିର ଧର୍ମ, ଗୁଣ ।

ଗୁଣିବା—ଗ୍ରା. କ୍ରି. ଗୁଣନ କରିବା,ମନେ ମନେ ବହୁଥର ବିଚାର କରିବା, ଗୁଣୁ ଗୁଣୁଶବ୍ଦରେ ପୁନଃ ପୁନଃ ପାଠକରିବା, ଆବୃତ୍ତି କରିବା, ସ୍ତୋତ୍ର-ସ୍ତବାଦି ପାଠ କରିବା, ସ୍ମରିବା ।

ଗୁଣିବିଦ୍ୟା—ସ୍ତ୍ରୀ. ବି. ମନ୍ତ୍ର-ଯନ୍ତ୍ରବିଦ୍ୟା ।

ଗୁଣିହେବା—ଗ୍ରା.କ୍ରି. ମନେ ମନେ ଭାବି-ହେବା,ଗୁଣକୀର୍ତ୍ତନ କରିବା,ପୁନଃ ପୁନଃ କହିବା, ଏକରାଶି ଅନ୍ୟରାଶିଦ୍ୱାରା ଗୁଣି-ହୋଇ ପାରିବା ।

ଗୁଣୀ—ପୁଂ. ବି. (ଗୁଣ+ଇନ୍) ଧନୁଃ, (ବିଂ) ଗୁଣଯୁକ୍ତ, ଗୁଣବାନ୍, ଗୁଣିଆଁ, ଧର୍ମୀ, ଧର୍ମବିଶିଷ୍ଟ, (ସ୍ତ୍ରୀ) ଗୁଣିନୀ ।

ଗୁଣୀଭୂତ—ବି.ବିଂ.(ଗୁଣ+ଚ୍ୱି+ଭୂ+ତ) ଅପ୍ରଧାନଭାବେଅବସ୍ଥିତ,ପ୍ରବଳ ନ ଥିବା, ଅଲକ୍ଷିତ,ଅନ୍ତର୍ଗତ, (ସ୍ତ୍ରୀ) ଗୁଣୀଭୂତା ।

ଗୁଣୀଭୂତବ୍ୟଙ୍ଗ୍ୟ—କ୍ଲୀ. ବି. କାବ୍ୟ-ବିଶେଷ ।

ଗୁଣୁଗୁଣୁସ୍ୱର—ଗ୍ରା. ବି. ଅବ୍ୟକ୍ତ ଅନୁ-ନାସିକ ସ୍ୱର, ମହୁମାଛିଆଦିଙ୍କ ଗୁଞ୍ଜନ ସ୍ୱର ।

ଗୁଣୁସି — ପ୍ରା. ( ପୁଷ ) ବି. ନଡ଼ିଆ ଓ ତାଳପତ୍ରର ଧାରରେ ଥିବା ଲମ୍ବ ସୂକ୍ଷ୍ମ ଓ ଟାଣୁଆ ତନ୍ତୁ ।

ଗୁଣେଶ୍ୱର — ପୁଂ. ବି. ପରମେଶ୍ୱର, ଚନ୍ଦ୍ରକୂଟ ପର୍ବତ, (ବିଂ) ଗୁଣର ଅଧୀଶ୍ୱର ।

ଗୁଣୋତ୍କର୍ଷ — ପୁଂ. ବି. (ଷତତ୍ପୁ) ଗୁଣାତିଶଯ୍ୟ, ଗୁଣର ପ୍ରାଚୁର୍ଯ୍ୟ ବା ଆଧିକ୍ୟ ।

ଗୁଣୋତ୍କୀର୍ତ୍ତନ — କ୍ଲୀ. ବି. ବିରହରେ ନାୟକ ଅଥବା ନାୟିକାର ପ୍ରଶଂସାଦି କଥନ ।

ଗୁଣୋତ୍ଥ — ବିଂ. (ଗୁଣ + ଉତ୍ + ସ୍ଥା + ଅ) ଗୁଣରୁ ଜାତ ବା ଉତ୍ପନ୍ନ ।

ଗୁଣୋପେତ — ପୁଂ. ବିଂ. (ଷତତ୍ପୁ)ଗୁଣଯୁକ୍ତ, ଗୁଣବାନ୍, କୌଣସି କଳାରେ ନିପୁଣ, (ସ୍ତ୍ରୀ) ଗୁଣୋପେତା ।

ଗୁଣ୍ଠ — ଗ୍ରା. ବି. ଭୂମିର ପରିମାଣବିଶେଷ, ଏକ ମାଣର ୨୫ ଭାଗରୁ ୧ ଭାଗ, ( ପୁଂ ଓ ସ୍ତ୍ରୀ ବି. ) କ୍ଷୁଦ୍ରକାୟ ମନୁଷ୍ୟ, (ବିଂ) ଖର୍ବକାୟ ।

ଗୁଣ୍ଠନ — କ୍ଲୀ. ବି. ( ଗୁଣ୍ଠ୍ + ଭା, ଅନ) ଆବରଣ, ବେଷ୍ଟନ, ଲୁଗୁଇବା ।

ଗୁଣ୍ଠିତ — ବି. ବିଂ. ( ଗୁଣ୍ଠ୍ + ର୍ମ,ତ ) ଆବୃତ, ଆଚ୍ଛାଦିତ, ଧୂଳିପ୍ରଭୃତିରେ ଧୂସରିତ, ଧ୍ୱଂସିତ, ଗୁଣ୍ଡିତ ।

ଗୁଣ୍ଠୁଣା — ପୁଂ. ବିଂ. ଖର୍ବକାୟ, ( ସ୍ତ୍ରୀ ) ଗୁଣ୍ଠୁଣୀ ।

ଗୁଣ୍ଠୁଣୀହାଣ୍ଡି — ଗ୍ରା. ବି. ଅତି ଅଳ୍ପଉଚ୍ଚ ହାଣ୍ଡି ।

ଗୁଣ୍ଡ — ପୁଂ. ବି. (ଗୁଣ୍ଡ + ର୍ମ, ଅ) ଧୂଳି, ଚୂନା, ମଇଳା, କଳଧୂଳି, ତୈଳପାତ୍ର, ତୃଣବିଶେଷ,ଚୂର୍ଣ୍ଣନ,ପେଷଣ, କେଶୁର, ମୁରୁଜ, (ବିଂ) ଚୂର୍ଣ୍ଣୀକୃତ,(ପ୍ରା.ଗଞ୍ଜାମ) ବଟକରା ।

ଗୁଣ୍ଡକ — ବି.ବିଂ. (ଗୁଣ୍ଡ + କ) ମଳିନ, (ବି) ଧୂଳି,କଳଧୂଳି, ସ୍ନେହପାତ୍ର,ଚୂନା, ମଇଳା, ତୈଳପାତ୍ର ।

ଗୁଣ୍ଡକନ୍ଦ — ପୁଂ. ବି. କଶେରୁ, କେଶୁରତୃଣ ।

ଗୁଣ୍ଡଲକାମ୍ମା — ମାନ୍ଦ୍ରାଜର ଅନ୍ତର୍ଗତ ଗୋଟିଏ ନଦୀ ।

ଗୁଣ୍ଡକେଶ୍ୱ — ଗ୍ରା. ବି. ରୋଗବିଶେଷ ।

ଗୁଣ୍ଡା — ଗ୍ରା.ବି. ଧୂଳି,ଚୂର୍ଣ୍ଣ,(ସଂ-ଗୁଟିକା) ଅନ୍ନର ଏକ କବଳ ପରିମିତ ଗୋଳକ, ହାତରେ ବଳାଯିବା ଏକଗ୍ରାସର ଅନ୍ନ, କ୍ଷୁଦ୍ରକ୍ଷୁଦ୍ର ଖଣ୍ଡ, ଦୁଷ୍ଟଲୋକ, ବଦମାଏଶ, ଅତ୍ୟାଚାରୀ ବ୍ୟକ୍ତି, (ଗ୍ରା. ବିଂ) ଚୂର୍ଣ୍ଣ କରାଯାଇଥିବା ।

ଗୁଣ୍ଡାଇବା — ଗ୍ରା. କ୍ରି. ଚୂର୍ଣ୍ଣକରିବା ।

ଗୁଣ୍ଡାକରିବା — ଗ୍ରା. କ୍ରି. ଚୂନାକରିବା, ବିନାଶକରିବା ।

ଗୁଣ୍ଡାବଳିବା — ଗ୍ରା. କ୍ରି. ମୁଖକୁ ନେବା ନିମନ୍ତେ ଅନ୍ନକୁ ହାତରେ ବଳିବା, (ବ୍ୟଙ୍ଗ) ଭୋଜନ କରିବା ।

ଗୁଣ୍ଡାମାରିବା — ଗ୍ରା. କ୍ରି. (ବ୍ୟଙ୍ଗ) ଗୁଣ୍ଡା ଗୁଣ୍ଡା ଅନ୍ନ ପାଟିରେ ପୂରାଇବା, ଭୋଜନ କରିବା ।

ଗୁଣ୍ଡାର — ମହୁର ଜିଲ୍ଲାନ୍ତର୍ଗତ ଗୋଟିଏ ନଦୀ ।

ଗୁଣ୍ଡାରୋଚନିକା — ସ୍ତ୍ରୀ. ବି. ବୃକ୍ଷବିଶେଷ, କମଳାଗୁଣ୍ଡୀ ।

ଗୁଣ୍ଡାରୋଚନୀ — ସ୍ତ୍ରୀ. ବି. କମଳାଗୁଣ୍ଡୀନାମକ ଗନ୍ଧଦ୍ରବ୍ୟ ।

ଗୁଣ୍ଡଲା — ସ୍ତ୍ରୀ. ବି. କ୍ଷୁଦ୍ର କ୍ଷୁପବିଶେଷ ।

ଗୁଣ୍ଡାସିନୀ — ସ୍ତ୍ରୀ. ବି. ତୃଣବିଶେଷ ।

ଗୁଣ୍ଡି — ଗ୍ରା. ବି. କ୍ଷୁଦ୍ର ବସନ୍ତ ରୋଗ, ପଶାଆଦି ଖେଳରେ ଖେଳାଳିଙ୍କର ମେଳ ବା ପକ୍ଷ ବାନ୍ଧିବା, କ୍ଷୁଦ୍ର ଖଣ୍ଡମାନ, ଧନିଆଁ ଆଦି ମିଶ୍ରିତ ଧୂଆଁପତ୍ରର ଚୂର୍ଣ୍ଣ, (ଗ୍ରା.ବିଂ)ଚୂର୍ଣ୍ଣିତ, (ପ୍ରା.ଗଞ୍ଜା.ବି) ବେତାମ,(ପ୍ରା.ସମ୍ବ.ବି)ମହୁଲଫୁଲ ।

ଗୁଣ୍ଡିଆ — ଗ୍ରା.ବିଂ.କପଟାଚାରୀ,(ପ୍ରା.ଗଞ୍ଜା.ବି) ଧୈର୍ଯ୍ୟ,ଆସ୍ପର୍ଦ୍ଧା, (ଗ୍ରା.ବି)ଏକପ୍ରକାର ମଶକ ବା ମଶା ।

ଗୁଣ୍ଡିକ — ପୁଂ ବି. (ଗୁଣ୍ଡ + ଇକ) ଚୂର୍ଣ୍ଣୀକୃତ ତଣ୍ଡୁଳାଦି, ଚୂନା, ଗୁଣ୍ଡାମୁରୁଜ ।

ଗୁଣ୍ଡିଖିଆ, ପ୍ରା.(ସମ୍ବ) ବି. ଦୋଳପୂର୍ଣ୍ଣିମାଦିନ ସମ୍ବଲପୁରର କେତେକ ଜାତିଙ୍କ ମଧ୍ୟରେ ପ୍ରଚଳିତ ନୂଆଖିଆ (ନବାନ୍ନ) ପରି ଉତ୍ସବବିଶେଷ ।

ଗୁଣ୍ଡିଚା — ସ୍ତ୍ରୀ. ବି. ପୁରୁଷୋତ୍ତମ କ୍ଷେତ୍ରର ଗୋଟିଏ ମନ୍ଦିର, ଓଡ଼ିଶାର ପ୍ରାଚୀନ ନରପତି ଶ୍ରୀଜଗନ୍ନାଥଦେବଙ୍କ ପ୍ରତିଷ୍ଠାତା, ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କ ରାଣୀ,ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ।

ଗୁଣ୍ଡିଚାଘର — ଗ୍ରା. ବି. ଶ୍ରୀ ଜଗନ୍ନାଥ ଦେବଙ୍କ ଉଦ୍ୟାନ ମନ୍ଦିର ।

ଗୁଣ୍ଡିଚାବାହୁଡ଼ା — ଗ୍ରା. ବି. ଶ୍ରୀ ଜଗନ୍ନାଥ ମହାପ୍ରଭୁ ଗୁଣ୍ଡିଚା ମନ୍ଦିରରେ ଏକ ସପ୍ତାହ ଅବସ୍ଥାନ କରିବା ପରେ ନିଜ ମନ୍ଦିରକୁ ଦଶମୀଦିନ ରଥରେ ଫେରି ଆସିବା ଉତ୍ସବ, ବାହୁଡ଼ା ଉତ୍ସବ ।

ଗୁଣ୍ଡିଚାମଣ୍ଡପ — ଗ୍ରା. ବି. ଗୁଣ୍ଡିଚାଘର ମଧ୍ୟରେ ଯେଉଁ ବେଦୀରେ ଶ୍ରୀ ଜଗନ୍ନାଥ ବଳଭଦ୍ର ଓ ସୁଭଦ୍ରା ରଥରୁ ଓହ୍ଲାଇ ବିଜେ କରନ୍ତି ।

ଗୁଣ୍ଡିଚାଯାତ୍ରା — ବି. ଶ୍ରୀ ଜଗନ୍ନାଥଙ୍କ ରଥଯାତ୍ରା ।

ଗୁଣ୍ଡିତ — ବି. ବିଂ. ( ଗୁଣ୍ଡି + ତ )ଧୂଳିଧୂସରିତ, ଚୂର୍ଣ୍ଣିତ, ଚୂର୍ଣ୍ଣବିଶିଷ୍ଟ, ଯାହା ଗୁଣ୍ଡ କରାହୋଇଅଛି, (ସ୍ତ୍ରୀ) ଗୁଣ୍ଡିତା ।

ଗୁଣ୍ଡୁଚିମୂଷା — ଗ୍ରା. ବି. ବୃକ୍ଷଚାରୀମୂଷିକଜାତୀୟ ଜୀବବିଶେଷ, ପକ୍ଷିବିଶେଷ ।

ଗୁଣ୍ଡୁରୁ — ଗ୍ରା. ବି. କ୍ଷୁଦ୍ର ପକ୍ଷିବିଶେଷ, ଧୂଳିରେ ଖାତକରି ପଶିରହୁବା ଏକପ୍ରକାର ପୋକ, ବାଲିମେଣ୍ଢା ପୋକ, ଡୁଙ୍ଗେଇ ।

ଗୁଣ୍ୟ — ବି. ବିଂ. (ଗୁଣ + ଯ) ଗୁଣନୀୟ, ପୂରଣୀୟ, ଯାହାକୁ ଗୁଣାଯାଏ, ପ୍ରଶସ୍ତ ଗୁଣଯୁକ୍ତ, ଯାହାର ପ୍ରଶସ୍ତ ଗୁଣ ଅଛି, (ସ୍ତ୍ରୀ) ଗୁଣ୍ୟା ।

ଗୁତ — ଗ୍ରା. ବି. ଜ୍ଞାତି, ବନ୍ଧୁ, ସ୍ୱଜନ ।

ଗୁତା — ଗ୍ରା.ବି. ଲୁଚକାଳିଖେଳ,ପାଣିରେ ବୁଡ଼ିକରି ଲୁଚିବା, ପ୍ରା. (ଗଞ୍ଜାମ) ଦେ. (ତେଲୁଗୁ)ବି.ଭୂମିରୁ ଉତ୍ପନ୍ନ ଶସ୍ୟାଦିର ପରିମାଣ ଓ ତହିଁରୁ ରାଜାଙ୍କୁ ଦେୟ ଅଂଶ ଅନୁମାନଦ୍ୱାରା ସ୍ଥିର କରିବା, କୁତ, ଦେଖାମଣା ଦ୍ୱାରା ରାଜାଙ୍କୁ ଦେୟ

ଭାଗ ସ୍ଥିର କରିବା, ଶଗଡ଼ର ସ୍ତୁଆଳକୁ ଝୁଣ୍ଟମୁଣ୍ଡି ସଙ୍ଗେ ଯେଉଁ ଚମ ବା କଣ୍ଠା ଦଉଡ଼ିଦ୍ୱାରା ବନ୍ଧାଯାଏ, ନଙ୍ଗା ଦଉଡ଼ି, ବର୍ଷକୁ ବର୍ଷ ଆମ୍ବଗଛଆଦିରେ ଉତ୍ପନ୍ନ ଫଳାଦିପାଇଁ ଭୂସ୍ୱାମୀ ଅନ୍ୟ ବ୍ୟକ୍ତିକୁ ଯେଉଁ ପଟା ଦିଅନ୍ତି ।

ଗୁଡ଼ାଦେବା — ଗ୍ରା. (ଗଞ୍ଜାମ)କ୍ରି. କୌଣସି ଶସ୍ୟ କ୍ଷେତକୁ ପ୍ରଜାକୁ ଭାଗରେ ଗୁଡ଼ା ଲଗାଇବା ।

ଗୁଡ଼ି — ଗ୍ରା. (ସମ୍ବ) ବି. ବର୍ଷକପାଇଁ ନିଯୁକ୍ତ ହଳିଆ ହଳିଆଣୀଙ୍କୁ ଦିଆଯିବା ମୂଲ ।

ଗୁଡ଼ିବର୍ଷାବେଲ୍ — ଗ୍ରା. (ସମ୍ବ) ବି. ଅପରାହ୍ଣ ୨ଟା ଠାରୁ ୩ଟା ସମୟ ।

ଗୁଡ଼ୁଚ — ପୁଂ. ବି. ଗଡେଧୁକା, ଗଳୁମ, ଗୁଡ଼ୁଚୀ ।

ଗୁଡ଼ୁଚକ — କ୍ଲୀ.ବି.ଗ୍ରନ୍ଥିପର୍ଣ୍ଣୀ,ଗଣ୍ଠିଅଳା ।

ଗୁତ୍ସ — ବିଂ(ଗୁଧ୍ + ସ)ଦ୍ଧିଗୁଚ୍ଛ, ଥୋପ, ସ୍ତବକ, ଫୁଲତୋଡ଼ା, ଗଛର ଗଣ୍ଡି, ତୃଣଗୁଚ୍ଛ, ଗ୍ରନ୍ଥର ଅଧ୍ୟାୟ ବା ପରିଚ୍ଛେଦ, ବତିଶସରିଆ ହାର, ଗ୍ରନ୍ଥିପର୍ଣ୍ଣୀ ବୃକ୍ଷ, ତୃଣାଦିର ସ୍ତମ୍ଭ ।

ଗୁତ୍ସକ — ବି. ସ୍ତବକ, ଗ୍ରନ୍ଥର ପରିଚ୍ଛେଦ, ବର୍ଣ୍ଣିମାଳୀ ଗୋଟିଏ ଗୋଟିଏ ବିଷୟର ବିଭାଗ ।

ଗୁତ୍ସପୁଷ୍ପ — ପୁଂ.ବି.ସପ୍ତଚ୍ଛଦ,ସତନାଗଛ ।

ଗୁତ୍ସାର୍ଦ୍ଧ — ପୁଂ. ବି. ଚତୁର୍ବିଂଶତିଯଷ୍ଟିକ ହାର ।

ଗୁଡ଼ର — ଗ୍ରା. (ସମ୍ବ) ବି. ଧାନ୍ୟାଗାର, ଅମାର ।

ଗୁଦ — କ୍ଲୀ.ବି. (ଗୁଦ୍ + ଅ) ମଳତ୍ୟାଗଦ୍ୱାର, ଗୁହ୍ୟଦ୍ୱାର, ଗୁହ୍ୟଦେଶ ।

ଗୁଦକୀଳ — ପୁଂ. ବି. ଅର୍ଶରୋଗ ।

ଗୁଦକୀଳକ — ପୁଂ. ବି. ଅର୍ଶରୋଗ ।

ଗୁଦକୀଳହା — ପୁଂ.ବିଂ.(ଗୁଦକୀଳ + ହନ୍ + କ୍ୱିପ୍)ଗୁଦକୀଳନାଶକ, ଅର୍ଶରୋଗ ନାଶକ ।

ଗୁଦଗ୍ରହ — ପୁଂ, ବି. ଉଦାବର୍ତ୍ତ ରୋଗ, ଗୁହ୍ୟଦ୍ୱାରରେ ବ୍ୟଥା ଓ ପୀଡ଼ା ।

ଗୁଦଡ଼ (ଡ଼ୀ) — ବି. ସନ୍ନ୍ୟାସୀମାନଙ୍କର କନ୍ଥା, ସମ୍ପ୍ରଦାୟବିଶେଷ ।

ଗୁଦନିର୍ଗମ — ବିଂ. ମଳଦ୍ୱାରରେ ବାହାରିବା ପଦ୍ମରୋଗ ।

ଗୁଦପରିଣଦ୍ଧ — ପୁଂ.ବି. ଋଷିବିଶେଷ ।

ଗୁଦପାକ — ପୁଂ.ବି ଗୁଦ ପାଚିବା ରୋଗବିଶେଷ ।

ଗୁଦଭ୍ରଂଶ — ପୁଂ. ବି. (୬ତତ୍) ରୋଗବିଶେଷ, ପଦ୍ମ ଖସିପଡ଼ିବା, ମଳକଣ୍ଟକ ରୋଗ ।

ଗୁଦରୋଗ — ପୁଂ. ବି. ଗୁଦ ସ୍ଥାନରେ ହେବା ରୋଗ ।

ଗୁଦବର୍ତ୍ମ — କ୍ଲୀ. ବି. ମଳଦ୍ୱାର ।

ଗୁଦସ୍ତମ୍ଭ — ପୁଂ.ବି. ମଳ ନିଃସାରଣ ପ୍ରତିରୋଧକ ରୋଗବିଶେଷ, କୋଷ୍ଠବଦ୍ଧତା ରୋଗ ।

ଗୁଦା — ସ୍ତ୍ରୀ.ବି.ନାଡ଼ୀବିଶେଷ,ପକ୍ଷିବିଶେଷ ।

ଗୁଦାଙ୍କୁର — ପୁଂ.ବି.(୬ତତ୍)ଅର୍ଶରୋଗ ।

ଗୁଦାବର୍ତ୍ତ — ବି.(୬ତତ୍) କୋଷ୍ଠବଦ୍ଧତା, ଝାଡ଼ାକଷ୍ଟ ।

ଗୁଦାମ — ବି. ଯହିଁରେ ଏକଜାତୀୟ ଅନେକ ଦ୍ରବ୍ୟ ରଖାହୁଏ, ଗୋଲା ।

ଗୁଦାମୈଥୁନ — ପୁଂ. ବି. ଗୁହ୍ୟଦ୍ୱାରରେ ଲିଙ୍ଗ ପ୍ରବେଶପୂର୍ବକ ମୈଥୁନ ।

ଗୁଦି(ଦୀ) — ବି.ସ୍ତ୍ରୀ.(ଗୁଦ + ଇ.ଈ)ଯେଉଁଠାରେ ନୌକାଦି ମରାମତି ହୁଏ, ଜାହାଜ ରଖିବାର ସ୍ଥାନ ।

ଗୁଦୁଡ଼ି — ଯା.ବି.ଗୁଡ଼ିଏ ଚିରାଲୁଗା ଏକତ୍ର ସିଲାଇ କରି ପ୍ରସ୍ତୁତ କରାଯିବା ଶଯ୍ୟା, କନ୍ଥା । [ ବିଶେଷ ।

ଗୁଦୌଷ୍ଠ — ପୁଂ. ବି. ଗୁଦର ଅବୟବ-

ଗୁଧିତ — ବିଂ. (ଗୁଧ୍ + ମ.ତ) ବେଷ୍ଟିତ, ଆବୃତ ।

ଗୁଧେର — ପୁଂ. ବି. ( ଗୁଧ + ଏର ) ଗୋପ୍ତା, ରକ୍ଷକ ।

ଗୁନ୍ଚ — ଗ୍ରା. ( ସମ୍ବ ) ବି. କଟିସୂତ୍ର, ଅଣ୍ଟାସୂତା, କରଧୁନ ।

ଗୁନ୍ହା — ଗ୍ରା. (ସମ୍ବ) ଯା. ବି. ଦୋଷ, ଅପରାଧ, ପାପ ।

ଗୁନ୍ହାଗାର — ଗ୍ରା.(ସମ୍ବ) ଯା.ବି. ଗୁଣାଗାର, ଅର୍ଥଦଣ୍ଡ ।

ଗୁନ୍ଜାଇସ — ଯା.ବି.ଆଧାରଗୃହ,ଲାଭ ।

ଗୁନ୍ଜାଇସୀ — ଯା. ବିଂ. ସୁବିଧାଜନକ, ଲାଭକର ।

ଗୁନା — ଗ୍ରା. (ଗଞ୍ଜାମ)ବି. ଜଳରଖିବାର ବଡ଼ ମାଟିଭାଣ୍ଡ,(ଯା.ବି) ରାଗ, କ୍ରୋଧ, ଅଭିମାନ ।

ଗୁନାହ — ଯା. ଦୋଷ, ପାପ, ଦୁଷ୍କୃତା ।

ଗୁନାହଗାର — ଯା. ଅନିଷ୍ଟକାରୀ, ଦୁଷ୍ଟ, ଦୁର୍ବଳ, ବୃଥା ଖତପୂରଣ ।

ଗୁନିଆ — ଗ୍ରା.ବି. ନକ୍ସାରୁ ଭୂମିର ପରିମାଣ ନିର୍ଣ୍ଣୟ କରିବାସକାଶେ ବ୍ୟବହୃତ ଯନ୍ତ୍ରବିଶେଷ, ରାଜମିସ୍ତ୍ରୀ ବଢ଼େଇ ଓ ପଥୁରିଆମାନଙ୍କର ପରିମାପକ ଆଠଅଙ୍କିଆ ଯନ୍ତ୍ରବିଶେଷ ।

ଗୁନ୍ଥା — ଗ୍ରା. ବି. ମାଳାକରିବା ନିମନ୍ତେ ଫୁଲଆଦି ଗୁନ୍ଥିବା, (ଗ୍ରା.ବିଂ)ଗ୍ରଥିତ ।

ଗୁନ୍ଥାଗୁନ୍ଥି — ଗ୍ରା.ବି.ବହୁଦ୍ରବ୍ୟଗୁନ୍ଥିବା କର୍ମ, (ଅଙ୍ଗ) ଲଗାଲଗି ।

ଗୁନ୍ଥିବା — ଗ୍ରା. କ୍ରି. ମାଳାରୂପେ ଏକତ୍ର କରିବା, ଗ୍ରନ୍ଥନକରିବା, ଫୋଡ଼ିବା ।

ଗୁନ୍ଦ — ଗ୍ରା. ବି. ଅଠାରୂପେ ବ୍ୟବହୃତ ବୃକ୍ଷନିର୍ଯ୍ୟାସବିଶେଷ ।

ଗୁନ୍ଦ୍ରି — ଗ୍ରା.ବି. ଖେଳରେ ଗୋଳାଇବା (ଗ୍ରା.ବି.ପୁଂ)ମିଥ୍ୟାବାଦୀ,ଗୋଳିଆ, ଯେ ଖେଳରେ ଗୋଳାଏ, (ସ୍ତ୍ରୀ) ଗୁନ୍ଦ୍ରୁଣୀ ।

ଗୁନ୍ଦ୍ରାଇବା — ଗ୍ରା. କ୍ରି. ମିଥ୍ୟା କହିବା, ଖେଳରେ ଗୋଳାଇବା, ଅପରିଷ୍କୃତ ବା ଗୋଳମାଳିଆ କରି ଲେଖିବା ।

ଗୁନ୍ଦଲ୍ — ଗ୍ରା.(ସମ୍ବ)ବିଂ.ଆବିଳ,ଗୋଳିଆ (ପାଣି) ଅପରିଷ୍କୃତ ।

ଗୁନ୍ଦଲ — ପୁଂ.ବି. (ଗୁନ୍ + ଦଲ + ଣିଚ୍, ଅ) ମର୍ଦ୍ଦଳଧ୍ୱନି, ମାଦଳ ଶବ୍ଦ ।

ଗୁନ୍ଦା-ଗ୍ରା.(ସମ୍ବ)ବି.ଗେଣ୍ଡୁକୁସୁମ(ଫୁଲ) ।

ଗୁନ୍ଦ୍ର — ପୁଂ.ବି.ଶରତୃଣ, ଝଙ୍ଗ ବାଳୁଙ୍ଗାଜାତୀୟ ବଡ଼ମୂଳିଆ ଘାସ ।

ଗୁନ୍ଦ୍ରମୂଳା — ସ୍ତ୍ରୀ.ବି.ଏରକାତୃଣ,ଶରତୃଣ ।

ଗୁନ୍ଦ୍ରା—ସ୍ତ୍ରୀ.ବି.(ଗୁନ୍ଦ୍ର+ଅ+ଆ)ଏରକା, ଭଦ୍ରମୁଥା, ପ୍ରିୟଙ୍ଗୁଲତା, ଗନ୍ଧେଧୁନ୍ଦ୍ରା, ସନ୍ଦ୍ରସ, ଶରତୃଣ ।

ଗୁନ୍ଦ୍ରାଲ—ପୁଂ. ବି. (ଗୁନ୍ଦ୍ରା+ଲା+ଅ) ଚକୋର ପକ୍ଷୀ ।

ଗୁପ୍‌କରିବା—ଗ୍ରା. କ୍ରି. ଗୋପନକରିବା, ଲୁଚାଇବା ।

ଗୁପ୍‌ଚୁଇବା—ଗ୍ରା. (ସମ୍ବ) କ୍ରି. କାଠ ବା ବାଉଁଶର ଅଗକୁ ମୁନିଆଁ କରିବା ।

ଗୁପ୍‌ଚୁପ୍—ଗ୍ରା.ବି. ଗୁପ୍ତବିଷୟ, କଥା ନ କହିବା, ମଉନ, ମିଷ୍ଟାନ୍ନବିଶେଷ, (ଗ୍ରା. (ବିଂ)ଗୁପ୍ତ,ମୌନାବଲମ୍ବୀ. (କ୍ରି.ବିଂ) ଗୋପନରେ, ତୁନିହୋଇ ।

ଗୁପିଲ—ପୁଂ.ବି. (ଗୁପ+ଇଲ)ରାଜା ।

ଗୁପୋ—ବିଂ.(ଗୁପଧାତୁଜ) ଗୋପନୀୟ, ଯାହାର ବଡ଼ ଗୋପ ଅଛି ।

ଗୁପ୍ତ—ବି. ବି.ଂ (ଗୁପ୍+ମଁ.ତ)ରକ୍ଷିତ, ଗୂଢ଼, ଗୋପନୀୟ, ଅପ୍ରକାଶ୍ୟ, ଲୁକ୍କାୟିତ, ଅଦୃଶ୍ୟ, (ବି) ସଙ୍ଗତ,ବୈଶ୍ୟମାନଙ୍କର ଉପାଧିବିଶେଷ, ପରମେଶ୍ୱର, ଭାରତର ବିଖ୍ୟାତ ରାଜବଂଶ ।

ଗୁପ୍ତକ—ପୁଂ. ବି, ରାଜା ଜୟଦ୍ରଥଙ୍କର ଜଣେ ସେନାପତି,(ବିଂ)ଗୁପ୍ତ(ଦେଖ) ।

ଗୁପ୍ତକଥା—ସ୍ତ୍ରୀ. ବି.(କ.ଧା)ଗୂଢ଼ବାକ୍ୟ, ଯାହା ସାଧାରଣରେ ପ୍ରକାଶିତ ହୁଏ ନାହିଁ, ଅପ୍ରକାଶିତ ବିଷୟ ।

ଗୁପ୍ତକାଲ—ଗୁପ୍ତ ରାଜାମାନଙ୍କର ପ୍ରତିଷ୍ଠିତ ଗୋଟିଏ ସ୍ୱତନ୍ତ୍ର ଅବ୍ଦ ।

ଗୁପ୍ତକାଶୀ—ହିମାଳୟ ମଧ୍ୟସ୍ଥ ରୁଦ୍ରପ୍ରୟାଗ ଠାରୁ ପ୍ରାୟ ୨୪ ମାଇଲ ଦୂରରେ ମନ୍ଦାକିନୀ ନଦୀର ଦକ୍ଷିଣରେ ଅବସ୍ଥିତ ଗୋଟିଏ ଗ୍ରାମ ହିନ୍ଦୁ ତୀର୍ଥସ୍ଥାନବିଶେଷ ।

ଗୁପ୍ତଗତି—ସ୍ତ୍ରୀ.ବି. ଗୂଢ଼ଗମନ, (ପୁଂ.ବି) ଗୁପ୍ତଚର, (ବିଂ. ବ.ବ୍ରୀ) ଯେ ଗୋପନରେ ଗମନାଗମନ କରେ । [ ସ୍ଥାନ ।

ଗୁପ୍ତଘାଟ—ସରଯୂତୀରସ୍ଥ ଗୋଟିଏତୀର୍ଥ

ଗୁପ୍ତଚର—ବିଂ. (ଗୁପ୍ତ+ଚର+କ.ଅ) ଯାହାର ଗୂଢ଼ ଚର ଅଛି, ଗୁପ୍ତଭାବେ ବିଚରଣକାରୀ, (ବି.କ.ଧା) ଗୋଇନ୍ଦା ଦୂତବିଶେଷ, ବଳଦେବଙ୍କ ନାମ ।

ଗୁପ୍ତଦାନ—ବି. (କ.ଧା) ଅନ୍ୟ ବ୍ୟକ୍ତି ନ ଜାଣି ଯେଉଁ ଦାନ ଦିଆଯାଏ ।

ଗୁପ୍ତଧନ—ବି. (କ.ଧା) ଅନ୍ୟର ଅଲକ୍ଷିତରେ ସଞ୍ଚିତ ଧନ, (ବିଂ. ବ.ବ୍ରୀ) ଯାହାର ଗୁପ୍ତଧନ ଅଛି ।

ଗୁପ୍ତପଞ୍ଚକ—ପୁଂ.ବି. ମଧ୍ୟାହ୍ନ ।

ଗୁପ୍ତପ୍ରଣୟ—ବି. (କ.ଧା) ଲୋକସାଧାରଣଙ୍କ ଦୃଷ୍ଟିର ଅଗୋଚରରେ କରାଯିବା ପ୍ରଣୟ ।

ଗୁପ୍ତବେଶ ପୁଂ.ବିଂ.(ବ.ବ୍ରୀ)ଛଦ୍ମବେଶୀ, କପଟବେଶଧାରୀ, (ପୁଂ.ବି) ଗୂଢ଼ବେଶ, ଛଦ୍ମବେଶ ।

ଗୁପ୍ତବେଶଧାରୀ—ପୁଂ.ବିଂ.(ଗୁପ୍ତବେଶ+ଧୃ+ଇନ୍) ଛଦ୍ମବେଶୀ, ଯେ କପଟବେଶ ଧରିଥାଏ, (ସ୍ତ୍ରୀ) ଧାରିଣୀ ।

ଗୁପ୍ତବେଶରେ—ଗ୍ରା.କ୍ରି.ବିଂ. ଛଦ୍ମବେଶଧାରଣପୂର୍ବକ ।

ଗୁପ୍ତବେଶୀ-ପୁଂ.ବିଂ.(ଗୁପ୍ତବେଶ+ଇନ୍) ଗୁପ୍ତବେଶଧାରୀ,(ସ୍ତ୍ରୀ) ଗୁପ୍ତବେଶିନୀ ।

ଗୁପ୍ତମଣି—ପୁଂ. ବି. କୁମାରୀମାନଙ୍କର କ୍ରୀଡ଼ାମଣି ।

ଗୁପ୍ତମନ୍ତ୍ର—ପୁଂ. ବି. (କ.ଧା) ଗୋପନ ପରାମର୍ଶ, (ବିଂ.ବ. ବ୍ରୀ) ଯେଉଁ ରାଜାଙ୍କ ମନ୍ତ୍ରଣା ଅନ୍ୟମାନେ ଜାଣିପାରନ୍ତି ନାହିଁ, (ସ୍ତ୍ରୀ) ଗୁପ୍ତମନ୍ତ୍ରା ।

ଗୁପ୍ତମନ୍ତ୍ରଣା—ବି. (କ.ଧା) ଗୋପନୀୟ ପରାମର୍ଶ ।

ଗୁପ୍ତରହସ୍ୟ—ବି.(କ.ଧା)ଯେଉଁଗୋପନୀୟ ବିଷୟ ଗୋପନକରି ରଖାହୋଇଅଛି ।

ଗୁପ୍ତା—ସ୍ତ୍ରୀ.ବି. (ଗୁପ୍ତ+ଆ)ବାଇଡ଼ଙ୍କ, ପରକୀୟା ନାୟିକା, ରକ୍ଷିତା ସ୍ତ୍ରୀ ।

ଗୁପ୍ତି—ବି. (ଗୁପ୍+ତି)ଗୋପନ,ସମ୍ବରଣ, ଆଚ୍ଛାଦନ, ରକ୍ଷଣ, ବହିର୍ଗର୍ଭ, ଗ୍ରହଣୀୟ ମନ୍ତ୍ରର ସଂସ୍କାରବିଶେଷ, ଅବସ୍ଥିର ସ୍ଥାନ, କାରାଗାର,ଯମ, ଭୂଗହ୍ୱର, ଅହିଂସାଦି ଯୋଗାଙ୍ଗ, ନୌକାର ଛିଦ୍ର, ଗାତକରିବା ପାଇଁ ଭୂଇଁ ଖୋଳିବା, (ଗ୍ରା.ବି) ଯଷ୍ଟି ବା ବାଡ଼ି ମଧ୍ୟରେ ଗୋପନରେ ରକ୍ଷିତ ଅସ୍ତ୍ର ବା ସରୁଆ ତରବାରି ।

ଗୁପ୍ତୋତ୍ପ୍ରେକ୍ଷା-ବି.(କ.ଧା)କାବ୍ୟର ଅଲଙ୍କାରବିଶେଷ, ପ୍ରତୀୟମାନ ଉତ୍ପ୍ରେକ୍ଷା ଅଲଂକାର ।

ଗୁଫିତ—ବି.ବିଂ.(ଗୁଫ+ମଁ.ତ)ଗ୍ରଥିତ, ଗୁନ୍ଥାହୋଇଥିବା, ଗୁମ୍ଫିତ ।

ଗୁବାକ—ବି.(ଗୁ+ଣ,ଆକ)ଗୁଆ,ଗୁଆଗଛ, ସୁପାରି ।

ଗୁଭ—ଗ୍ରା.ବି. ଜୀବନ୍ତ ଶାଖାର ଅଗରେ ଥିବା କୋମଳପତ୍ର ।

ଗୁମ୍—ଯା. ବି. ନିସ୍ତବ୍ଧତା, ତୁଷ୍ଣୀ-ଭାବ, ହଜିବାଅବସ୍ଥା,(ବିଂ)ନିସ୍ତବ୍ଧ,ତୁଷ୍ଣୀ-ଭୂତ, ହଜିଥିବା, ଗୁପ୍ତ,(ଗ୍ରା.ସମ୍ବ)ଅବ୍ୟ,ଅତି ଅତ୍ୟନ୍ତ ।

ଗୁମ୍‌କରିବା—ଗ୍ରା.କ୍ରି.ଲୁଚାଇବା,ହଜାଇବା ।

ଗୁମ୍‌ଗାମ୍—ଗ୍ରା. ଅବ୍ୟ. (ଧ୍ୱନ୍ୟନୁକରଣ ) ଅନ୍ୟର ପିଠିରେ ବିଧା ମାରିବାର ଶବ୍ଦ, ଦୁମ୍‌ଦୁମ୍ ଶବ୍ଦ, ବିଧା ।

ଗୁମ୍‌ଗୁମ୍—ଗ୍ରା. ବି. ପବନ ନ ଥିବା ଅବସ୍ଥାରେ ହେବା ପ୍ରଚଣ୍ଡ ଗ୍ରୀଷ୍ମ, ବିଧା ମାରିବାର ଶବ୍ଦ, ବିଧା ।

ଗୁମ୍‌ଗୁମା—ଗ୍ରା.ବି. ଅତ୍ୟନ୍ତ ଗ୍ରୀଷ୍ମ ।

ଗୁମ୍‌ଦରହ—ଗ୍ରା. ବି. ଗଣ୍ଡପାଣି, ଅତି ଗଭୀର ଜଳ ।

ଗୁମ୍‌ନାମ—ଯା. ବିଂ. ଅପ୍ରସିଦ୍ଧ, ଅଜ୍ଞାତ ।

ଗୁମ୍‌ସୁମ୍—ଯା ବି.ଚୁପ୍‌ହେବା,ତୁଷ୍ଣୀ-ଭାବ, ଭିତରେ ଭିତରେ ଗୁପ୍ତମନ୍ତ୍ରଣା କରୁଥିବା, କିନ୍ତୁ ବାହାରେ ଚୁପ୍ ହୋଇ ରହିବା, ମୁସଲମାନମାନଙ୍କର ମହରମ୍ ପର୍ବର ତୃତୀୟଦିନ,(ଯା.ବିଂ)ତୁଷ୍ଣୀଭୂତ ।

ଗୁମ୍‌ହେବା—ଗ୍ରା.କ୍ରି.ଚୁପହେବା,ହଜିବା, ଅଦୃଶ୍ୟହେବା, ଲୁଚିଯିବା ।

ଗୁମଟ—ଗ୍ରା.ବି.ଗୁଳୁଗୁଳି, ଗରମ, ଗ୍ରୀଷ୍ମ, ନିର୍ବାତ ଗ୍ରୀଷ୍ମ ।

ଗୁମର—ଯା. ବି. ଗର୍ବ, ଦମ୍ଭ, ମାତ୍ସର୍ଯ୍ୟ, ଗରିମା, ଅଭିମାନ, ଦାମ୍ଭିକତା,ମହତ୍ତ୍ୱ, ଇଜ୍ଜତ, ଗୂହ୍ୟଚ୍ଛିଦ୍ର,ଗୁପ୍ତକଥା ।

ଗୁମସ୍ତା, ଗୁମାସ୍ତା — ଯା.ବି. କର୍ମକାରକ, ପ୍ରତିନିଧି, ଓକିଲ, ମୋହରିର ।

ଗୁମାଇବା — ଗ୍ରା. କ୍ରି. ଅପକ୍ୱ ଫଳକୁ ପଚ୍ରାଇବାପାଇଁ ଧାନ ପାଲଇତ୍ୟାଦି ମଧ୍ୟରେ ପୁରାଇ ରଖିବା, ଗମାଇବା, ହଜାଇବା ।

ଗୁମାନ — ଯା.ବି. ଗର୍ବ, ଅଭିମାନ, ମହତ୍ତ୍ୱ, ଟେକ, ପରାକ୍ରମ ।

ଗୁମାନୀ — ଯା.ବିଂ, ପୁଂ ଓ ସ୍ତ୍ରୀ. ଅଭିମାନୀ, ଗର୍ବୀ, ଆତ୍ମବଡ଼ିମାଯୁକ୍ତ ।

ଗୁମିବା — ଗ୍ରା.କ୍ରି. ହଜିଯିବା, ଲୁଚିଯିବା, କୃତ୍ରିମ ଉପାୟରେ ଉତ୍ତାପ ପାଇ ଫଳ ପାଚିବା, (ଫଳଆଦି) ଗରମରେ ପଚିଯିବା ।

ଗୁମୁଟ — ଗ୍ରା. ବି. (ଫ-ଗୁମ୍ଫା) ଚାରିଆଡ଼ ବନ୍ଦଥିବା କ୍ଷୁଦ୍ର ଦ୍ୱାରବିଶିଷ୍ଟ ଛୋଟଘର, ଆଲୁଅ ଓ ବାୟୁଚଳନବିହୀନ କ୍ଷୁଦ୍ର ଗୃହ ।

ଗୁମ୍ଫ — ପୁଂ.ବି. (ଗୁମ୍ଫ + ଭା.ଅ) ରଚନ, ଗ୍ରନ୍ଥନ, (ଗୁମ୍ଫ + ର୍ମ.ଅ) ବାହୁର ଗହଣା, ଶ୍ମଶ୍ରୁ, ଦାଢ଼ି, ମୁଛ, ନଖ, ସନ୍ଦର୍ଭ, ଗୁଚ୍ଛ, ପ୍ରବନ୍ଧ ।

ଗୁମ୍ଫନ — ବି. (ଗୁମ୍ଫ୍ + ଭା.ଅନ) ଗ୍ରନ୍ଥନ, ଗୁନ୍ଥିବା, ରଚନା ଓ ବାକ୍ୟରେ ଶବ୍ଦ ଓ ଅର୍ଥର ସମ୍ୟକ୍ ବିନ୍ୟାସ ।

ଗୁମ୍ଫନା — ସ୍ତ୍ରୀ.ବି.(ଗୁମ୍ଫନ + ଆ) ବାକ୍ୟର ସୁନ୍ଦର ରଚନା, ଉତ୍କୃଷ୍ଟରଚନା, ଗୁନ୍ଥିବା, ଗ୍ରନ୍ଥନ ।

ଗୁମ୍ଫା — ଗ୍ରା. ବି. ଗୁଚ୍ଛା, ପେନ୍ଥା, ବାହୁର ଅଳଙ୍କାରବିଶେଷ, ବିଦମାଳ, ବାଙ୍କଡେଉଁରିଆ, ଫୁଲଗଭା, ପର୍ବତରେ ଥିବା ଗୁହା ।

ଗୁମ୍ଫିତ — ବି.ବିଂ.(ଗୁମ୍ଫ + ର୍ମ.ତ) ଗ୍ରଥିତ, ଗୁନ୍ଥା ହୋଇଥିବା, ନିବନ୍ଧ, ରଚିତ ।

ଗୁମ୍ବଜ — ଯା.ବି. ଖିଲାଣ, ଘରର ଗୋଲାକାର ଛାତ, ଦେଉଳ ଇତ୍ୟାଦିର ଗୋଲାକାର ବୃହତ୍ ଚୂଡ଼ା, ଶିଖରପ୍ରଦେଶ ।

ଗୁର୍ମାଁ — ଗ୍ରା. ବିଂ. ଅତି ଅଭିମାନୀ, ଅଳ୍ପ କଥାରେ ଅଭିମାନକରିବା ବ୍ୟକ୍ତି, ଗୁପ୍ତକ୍ରୋଧୀ, ଯେ ଖେଳରେ ଗୋଳାଏ, ଢାଉଁଗାଉଁଆଁ ।

ଗୁର୍ — (ଧାତୁ) ଚେଷ୍ଟାକରିବା, ହିଂସା କରିବା, ଯିବା ।

ଗୁର୍ଡ଼ା, ଗୁର୍ଲ — ପ୍ରା. (ସମ୍ବ) ବି. ଅଟେଇ, ଘେରବନ୍ଧ, ବାନ୍ଧାବନ୍ଧ, କୁଣ୍ଡଳୀ, ଗୋରଡ଼ା ।

ଗୁରଣି — ଗ୍ରା. (ଲରିଆ) ବି. ଢମ୍ଭେଇ ।

ଗୁରଣ — କ୍ଳୀ.ବି.(ଗୁର + ଭା.ଅନ) ଉଦ୍ୟମ, ଚେଷ୍ଟା ।

ଗୁରବ - ଦାକ୍ଷିଣାତ୍ୟର ବିଜାପୁରପ୍ରଭୃତି ଅଞ୍ଚଳବାସୀ ପୁରୋହିତ ଜାତି ।

ଗୁରସ୍ତ — ଗ୍ରା. ବି. ପତି, ସ୍ୱାମୀ ।

ଗୁରସ୍ତଭାରିଯା — ବି. ସ୍ୱାମୀ ସ୍ତ୍ରୀ, ଦମ୍ପତି ।

ଗୁରଣ୍ଡି — ଗ୍ରା.ବି. କ୍ଷେପଣୀୟ ଶସ୍ତ୍ରବିଶେଷ, କ୍ଷୁଦ୍ର ମୃଗବିଶେଷ, (ଗ୍ରା.ବିଂ) ଆନ୍ଦୋଳିତ ।

ଗୁରାଳି — ଗ୍ରା. ବି. କୋଳାହଳ, ଘୋଘା, (ବିଂ) କାହାଳି ହୋଇ କୋଳାହଳ କରୁଥିବା ।

ଗୁରିବା — ଗ୍ରା. କ୍ରି. କୁରାଢ଼ିରେ କାଠକୁ ଫାଳଫାଳ କରିବା, ଚିରିବା ।

ଗୁରୁ — ପୁଂ.ବି. (ଗୃ + କ.ଉ) ବୃହସ୍ପତି, ଦେବଗୁରୁ, ନିଷେକାଦି କ୍ରିୟା କର୍ତ୍ତା, ପିତା, ଶାସ୍ତ୍ରୋପଦେଶକ ଆଚାର୍ଯ୍ୟ, ଆଚାର୍ଯ୍ୟପ୍ରଭୃତି ଏକାଦଶ ପୂଜନୀୟ ବ୍ୟକ୍ତି, ସମ୍ପ୍ରଦାୟ ପ୍ରବର୍ତ୍ତକ, ଧର୍ମୋପଦେଶକ, ବାଇତଙ୍କଗଛ, ବର୍ଣ୍ଣବିଶେଷ, ବ୍ରହ୍ମା, ବିଷ୍ଣୁ, ମହେଶ୍ୱର, ବୈଦିକତାନ୍ତ୍ରିକ ମନ୍ତ୍ରୋପଦେଷ୍ଟା, ପୂର୍ବପୁରୁଷ, ଦ୍ରୋଣାଚାର୍ଯ୍ୟ, ପୁଷ୍ୟା ନକ୍ଷତ୍ର, ତାଳବିଶେଷ, ପରମାତ୍ମା, (ବିଂ) ଅଧିକ, ଦୁର୍ଜ୍ଜର, ଦୁଷ୍ପାକ, ଗୁରୁତ୍ୱବିଶିଷ୍ଟ, ଭାରି, ମହତ୍ତ୍ୱ, ପୂଜନୀୟ, ମାନନୀୟ, ଗମ୍ଭୀରାର୍ଥ, ବଳବାନ୍, ବିଷମ, ଉତ୍କଟ, ବୃହତ୍, କଠିନ, ଅଧିକ, ବହୁକାଳସ୍ଥାୟୀ, ପ୍ରିୟ, ଦୀର୍ଘ, (ସ୍ତ୍ରୀ) ଗୁର୍ବୀ, (ଗ୍ରା. ବି.) ଗଉଡ଼ଙ୍କ ଉପାଧିବିଶେଷ, ସମ୍ବଲପୁର ଅଞ୍ଚଳର ବ୍ରାହ୍ମଣଙ୍କ ବଂଶୋପାଧିବିଶେଷ, କେଳାଙ୍କ ବଂଶୋପାଧିବିଶେଷ ।

ଗୁରୁଆଣୀ — ଗ୍ରା.ସ୍ତ୍ରୀ.ବି. ଗୁରୁପତ୍ନୀ, ଗୁରୁଙ୍କ ସ୍ତ୍ରୀ ।

ଗୁରୁକ — ବି.ବିଂ.(ଗୁରୁ + କ) ଅତିଶୟ ଭାରଯୁକ୍ତ, ଭାରି ।

ଗୁରୁକଣ୍ଟକ — ପୁଂ.ବି. ଏକପ୍ରକାର ମୟୂର ।

ଗୁରୁକନ୍ୟା — ସ୍ତ୍ରୀ. ବି. (୬ତତ୍ପୁ) ଧର୍ମୋପଦେଷ୍ଟା ବା ଶିକ୍ଷକଙ୍କର ଦୁହିତା ।

ଗୁରୁକରିବା — ଗ୍ରା. କ୍ରି. କୌଣସି ବ୍ୟକ୍ତିଙ୍କୁ ଆପଣାର ଗୁରୁରୂପେ ବରଣ କରି ତାଙ୍କଠାରୁ କୌଣସି ବିଦ୍ୟା ଶିକ୍ଷା କରିବା ।

ଗୁରୁକର୍ଣ୍ଣ — ବି. (କ. ଧା.) ଗୁରୁ ଯେଉଁ କାନରେ ମନ୍ତ୍ର ଦିଅନ୍ତି, ଦକ୍ଷିଣକର୍ଣ୍ଣ ।

ଗୁରୁକାର — ବି. ବିଂ. (ଗୁରୁ + କୃ + ଅ) ଯେଉଁ ବ୍ୟକ୍ତି ଭାରଦିଏ, (ପୁଂ. ବି) ଉପାସନା, ଗୁରୁପୂଜା ।

ଗୁରୁକାର୍ଯ୍ୟ — ବିଂ. ଗୁରୁଙ୍କର କର୍ତ୍ତବ୍ୟ, ଯାହା ଗୁରୁଙ୍କର କରିବା ଉଚିତ, (ବି) ଗୁରୁକର୍ମ ।

ଗୁରୁକୁଣ୍ଡଳୀ — ସ୍ତ୍ରୀ.ବି (ଜ୍ୟୋତିଷ) ନକ୍ଷତ୍ରାନୁସାରେ ଶୁଭାଶୁଭ ଫଳ ଜାଣିବାର ଚକ୍ରବିଶେଷ ।

ଗୁରୁକୁଳ — କ୍ଳୀ. ବି. (୬ତତ୍ପୁ) ଗୁରୁଙ୍କର ବଂଶ ବା ପରିବାର, ବ୍ରହ୍ମଚର୍ଯ୍ୟାଶ୍ରମରେ ଦ୍ୱିଜାତି ଛାତ୍ରମାନଙ୍କ ଶିକ୍ଷାସ୍ଥାନ ଓ ବାସସ୍ଥାନରୂପେ ବ୍ୟବହୃତ ଗୁରୁଙ୍କ ଗୃହ ବା ଆଶ୍ରମ ।

ଗୁରୁକୃତ — ବି. ବିଂ. ଗୁରୁ ଯାହାର ଅନୁଷ୍ଠାନ କରିଥିଲେ ।

ଗୁରୁକ୍ରମ — ପୁଂ.ବି.(୬ତତ୍ପୁ) ପରମ୍ପରାଗତ ଉପଦେଶ ।

ଗୁରୁଗମ୍ଭୀର — ବିଂ. ଗୁରୁ ଓ ଗମ୍ଭୀର ।

ଗୁରୁଗୀତା — ସ୍ତ୍ରୀ. ବି. ଗୀତବିଶେଷ ।

ଗୁରୁଗୁରୁ — ଗ୍ରା. (ଅବ୍ୟ) (ଧ୍ୱନ୍ୟାନୁକରଣ) ମଇଁଷିଙ୍କ ବେକରେ ବନ୍ଧାଯାଇଥିବା ବାଉଁଶଟିପାର ଧ୍ୱନି, ଚୁପ୍‌ଚୁପ୍ କଥାବାର୍ତ୍ତା ।

ଗୁରୁଗୃହ — ବି.(୬ତତ୍ପୁ) ଗୁରୁଙ୍କ ବାସସ୍ଥାନ ।

ଗୁରୁଗୋବିନ୍ଦସିଂ — ଶିଖମାନଙ୍କର ଦଶମ ଗୁରୁ, ତେଜବାହାଦୁରଙ୍କ ପୁତ୍ର ।

ଗୁରୁଗୌରବ — ବି.(କ.ଧା) ମାନମର୍ଯ୍ୟାଦା, ଗୁରୁଜନଙ୍କ ପ୍ରତି ପ୍ରଦର୍ଶନୀୟ ମର୍ଯ୍ୟାଦା ।

ଗୁରୁଗ୍ରନ୍ଥସାହେବ — ଗ୍ରା.ବି. ଶିଖମାନଙ୍କର ଧର୍ମଗ୍ରନ୍ଥ ।

ଗୁରୁଘ୍ନ — ପୁଂ. ବି. (ଗୁରୁ+ହନ୍+ଅ) ଶ୍ୱେତସୋରଷ, ରାଇସୋରଷ, (ବିଂ) ଗୁରୁନାଶକ, ଯେ ଗୁରୁ ହତ୍ୟାକରେ, (ସ୍ତ୍ରୀ) ଗୁରୁଘ୍ନୀ । [ବିଶେଷ ।

ଗୁରୁଙ୍ଗ, ଗୁରୁଙ୍ଗା — ନେପାଳବାସୀ ଜାତି

ଗୁରୁଚଣ୍ଡାଳ — ଗ୍ରା. ବି. ସାଧୁ ଓ ପ୍ରଚଳିତ ଶବ୍ଦର ଏକତ୍ର ଯୋଗ, ଯାହା ଶିଷ୍ଟ ପ୍ରୟୋଗ ନୁହେଁ, ଶିଷ୍ଟପ୍ରୟୋଗ ବିରୁଦ୍ଧ, ଯଥା — ଭାତ ପ୍ରାଶନ, ଶବପୋଡ଼ିବା ।

ଗୁରୁଚର୍ଯ୍ୟା — ବି.(୬ତତ୍ପୁ)ଗୁରୁଙ୍କସେବା ।

ଗୁରୁଚଣ୍ଡାଳୀଦୋଷ — ଗ୍ରା. ବି. ରଚନାର ଦୋଷବିଶେଷ ।

ଗୁରୁଚନ୍ଦ୍ରୀଯୋଗ — ବି. ଫଳିତ ଜ୍ୟୋତିଷୋକ୍ତ ଶୁଭଯୋଗବିଶେଷ ।

ଗୁରୁଜ — ଗ୍ରା. ବି. କବାଟ ବନ୍ଦକରିବା ପାଇଁ ଦୁଆର ବନ୍ଧର ଏରୁଣ୍ଡିରେ ଯେଉଁ ବକ୍ର ଦ୍ୱିଗୁଣିତ ଲୌହଖଣ୍ଡ ଯୁକ୍ତଥାଏ, ଶସ୍ତ୍ରବିଶେଷ, ନଦୀ ବଢ଼ିରେ ସ୍ରୋତର ତୋଡ଼ ସମ୍ଭାଳିବା ପାଇଁ ନଦୀ ବନ୍ଧର ଯେଉଁ ଅଂଶ ନଦୀ ଭିତରକୁ ଅର୍ଦ୍ଧବୃତ୍ତାକାର ହୋଇ ଇଟା ବା ପଥର ଗାନ୍ଥୁଣିରେ ଗଢ଼ା ହୋଇଥାଏ, ବୁରୁଜ,ଦୁର୍ଗର ପାର୍ଶ୍ୱରେ ଅର୍ଦ୍ଧଚନ୍ଦ୍ରାକୃତି କନ୍ଥ ଦ୍ୱାରା ବେଷ୍ଟିତ ଅଂଶ, ଯେଉଁଠାରେ ସୈନ୍ୟମାନେ ଲୁଚିରହି ଆକ୍ରମଣକାରୀ ଶତ୍ରୁ ପ୍ରତି ଗୋଳାଆଦି ଚଳାଇ ପାରନ୍ତି ।

ଗୁରୁଜନ — ପୁଂ. ଓ ସ୍ତ୍ରୀ. ବି. ପିତାମାତା, ଶାଶୁ, ଶ୍ୱଶୁର, ବଡ଼ଭାଇ, ଭାଉଜଆଦି ଗୁରୁସ୍ଥାନୀୟ ମାନ୍ୟବ୍ୟକ୍ତି ।

ଗୁରୁଜାୟା — ବି. (୬ତତ୍ପୁ)ଗୁରୁଙ୍କ ପତ୍ନୀ ।

ଗୁରୁଣ୍ଡ — ଗ୍ରା. ବି. ଧାନ ରଖିବାର ଡୋଲି ।

ଗୁରୁଣ୍ଡକ — ପୁଂ. ବି. ଜଳମୟୂର ।

ଗୁରୁଣ୍ଡା — ଗ୍ରା. ବି. ଦୁଇହାତ ଓ ଦୁଇ ଆଣ୍ଠୁରେ ଭରାଦେଇ ଭୂମିରେ ଗତି କରିବା, ହାମୁଡ଼ାଇବା ।

ଗୁରୁଣ୍ଡିବା — ଗ୍ରା. କ୍ରି. ହାତ ଓ ଆଣ୍ଠୁରେ ଭରାଦେଇ ଚାଲିବା ।

ଗୁରୁତମ — ବିଂ. (ଗୁରୁ+ତମ) ଅତିଗୁରୁ, (ପୁଂ.) ମାତା ପିତା ପ୍ରଭୃତି ଗୁରୁଜନ, ପରମେଶ୍ୱର ।

ଗୁରୁତର — ବିଂ. ଦୁଇ ପଦାର୍ଥ ମଧ୍ୟରେ ଅପେକ୍ଷାକୃତ ଗୁରୁ ଓ ଭାରି ।

ଗୁରୁତଳ୍ପ — ପୁଂ. ବିଂ. (ବ.ବ୍ରୀ)ବିମାତୃଗାମୀ,ବି. (୬ତତ୍ପୁ) ଗୁରୁଙ୍କର ଭାର୍ଯ୍ୟା, ଗୁରୁଙ୍କ ଶଯ୍ୟା ।

ଗୁରୁତଳ୍ପଗ — ପୁଂ. ବିଂ. (ଗୁରୁ+ତଳ୍ପ ଗମ୍+କ.ଅ) ବିମାତୃଗାମୀ, ଯେ ଗୁରୁପତ୍ନୀକୁ ହରଣ କରେ, (ଗ୍ରା.ବି) ଗୁରୁପତ୍ନୀ ହରଣ ଦୋଷ ।

ଗୁରୁତଳ୍ପୀ — ପୁଂ. ବି. ଗୁରୁତଳ୍ପଗ (ଦେଖ) ।

ଗୁରୁତା — ସ୍ତ୍ରୀ. ବି. (ଗୁରୁ — ଭା,ତା) ଗୁରୁପଣିଆ, ଶିକ୍ଷକତ୍ୱ, ମହାଦାତୃତ୍ୱ, ଗୁରୁତ୍ୱ, ମହତ୍ତ୍ୱ, ଭାର, ଓଜନ, ଆତିଶଯ୍ୟ, ଦୁର୍ବହଭାର, ଗାମ୍ଭୀର୍ଯ୍ୟ,କାଠିନ୍ୟ, ପୂଜ୍ୟତ୍ୱ ।

ଗୁରୁତ୍ୱ — କ୍ଲୀ. ବି. ବୈଶେଷିକ ମତସିଦ୍ଧ ଚତୁର୍ବିଂଶତି ଗୁଣର ଅନ୍ତର୍ଗତ ଗୋଟିଏ ଗୁଣ ।

ଗୁରୁତ୍ୱକେନ୍ଦ୍ର — ବି. ( ଜଡ଼ବିଜ୍ଞାନ ପରିଭାଷା ) ପଦାର୍ଥର ଯେଉଁ ବିନ୍ଦୁଠାରେ ପଦାର୍ଥର ସବୁଆଡ଼ର ଭାର ସମାନ ଭାବରେ ରକ୍ଷିତ ହୁଏ ।

ଗୁରୁତ୍ୱାନୁଭବକତା — ସ୍ତ୍ରୀ. ବି. ଯେଉଁ ବୃତ୍ତିଦ୍ୱାରା ଗୁରୁତ୍ୱର ଅନୁଭବ କରାଯାଇପାରେ ।

ଗୁରୁଦକ୍ଷିଣା — ସ୍ତ୍ରୀ. ବି, (୬ତତ୍ପୁ) ଅଧ୍ୟୟନାଦି ଅନୁଷ୍ଠାନପରେ ଗୁରୁଙ୍କର ସନ୍ତୋଷ ପାଇଁ ଯାହା କିଛି ଦାନ କରାହୁଏ ।

ଗୁରୁଦଣ୍ଡ — ବି. (କ.ଧା) କଠୋରଦଣ୍ଡ ।

ଗୁରୁଦଶା — ପିତୃ ବା ମାତୃ ବିୟୋଗଜନିତ ଦୁରବସ୍ଥା, ମହାଦଶା (ଫଳିତ ଜ୍ୟୋତିଷ) ଜ୍ୟୋତିଷ ଗଣନାନୁସାରେ ମନୁଷ୍ୟ ଜୀବନର ଯେଉଁ ସମୟରେ ବୃହସ୍ପତି ଗ୍ରହଙ୍କର ପ୍ରଭାବ ମନୁଷ୍ୟ ଉପରେ ପଡ଼େ ।

ଗୁରୁଦା — ଗ୍ରା.ବି.ଗୁଦାସ୍ଥ ବିଶେଷ,ଗଦା, ସୋଠା ।

ଗୁରୁଦାରା — ବି.ଗୁରୁଜାୟା,ଗୁରୁଙ୍କପତ୍ନୀ ।

ଗୁରୁଦାସପୁର — ପଞ୍ଜାବର ଗୋଟିଏ ଜିଲ୍ଲା ।

ଗୁରୁଦେବ — ପୁଂ. ବି. (କ.ଧା) ଧର୍ମୋପଦେଷ୍ଟା ବା ଶିକ୍ଷକ, ଇଷ୍ଟଦେବତା, ଯାହାଙ୍କନିକଟରେ ଦୀକ୍ଷିତ ହେବାକୁହୁଏ ।

ଗୁରୁଦୈବତ — ପୁଂ.ବି. (ବ.ବ୍ରୀ)ପୁଷ୍ୟାନକ୍ଷତ୍ର ।

ଗୁରୁଦ୍ୱାର — ଗ୍ରା.ବି. ଗୁରୁଙ୍କ ବାସସ୍ଥାନ, ଶିଖମାନଙ୍କ ଧର୍ମଗୁରୁଙ୍କ ଆଶ୍ରମ ।

ଗୁରୁନିତମ୍ବ — ପୁଂ.ବିଂ.(ବ.ବ୍ରୀ)ଯାହାର ପିଚ୍ଛ ବଡ଼ ବା ସ୍ଥୂଳ,(ସ୍ତ୍ରୀ)ଗୁରୁନିତମ୍ବା, ବି. (କ.ଧା) ଯୁବତୀର ସ୍ଥୂଳପିଚ୍ଛ ।

ଗୁରୁନିନ୍ଦକ — ବିଂ.ଯେ ଆପଣାର ଗୁରୁଙ୍କ ନିନ୍ଦାବାଦ କରେ ।

ଗୁରୁନିନ୍ଦା — ବି.(୬ତତ୍ପୁ)ଗୁରୁଙ୍କର ନିନ୍ଦା ।

ଗୁରୁନିନ୍ଦୁକ — ଗ୍ରା. ପୁଂ. ବିଂ. ଯେ ଗୁରୁଙ୍କର ନିନ୍ଦାବାଦ କରେ ।

ଗୁରୁନ୍ଦା — ପ୍ରା. (ପୁରୀ) ବି.ଘନାବର୍ତ୍ତିତଦୁଗ୍ଧ, ଆଉଟାହୋଇ ଜାଉପରି ଘନ ହୋଇଥିବା ଦୁଧ ।

ଗୁରୁପଣ୍ଡିତ — ଜଣେ ନୈୟାୟିକ ପଣ୍ଡିତ, ଭବାନନ୍ଦ ଟୀକା ଓ ଗୁରୁ ପଣ୍ଡିତୀୟନାମକ ନ୍ୟାୟଗ୍ରନ୍ଥପ୍ରଣେତା ।

ଗୁରୁପତ୍ନୀ — ସ୍ତ୍ରୀ.ବି. ଗୁରୁଙ୍କର ଅସବର୍ଣ୍ଣା ବା ସବର୍ଣ୍ଣା ସ୍ତ୍ରୀ ।

ଗୁରୁପତ୍ର — କ୍ଲୀ. ବି. ଧାତୁବିଶେଷ, ବଙ୍ଗ, ରଙ୍ଗ ।

ଗୁରୁପତ୍ରୀ — ସ୍ତ୍ରୀ, ବି. (ବ.ବ୍ରୀ) ତନ୍ତ୍ରିଡ଼ୀ ବୃକ୍ଷ, ତେନ୍ତୁଳି ବୃକ୍ଷ ।

ଗୁରୁପରିଚର୍ଯ୍ୟା — ସ୍ତ୍ରୀ.ବି.(୬ତତ୍ପୁ)ଗୁରୁସେବା, ଗୁରୁଶୁଶ୍ରୂଷା ।

ଗୁରୁପାକ—ବି. ବି°. (ବ.ସ୍ତ୍ରୀ)ଦୁଷ୍ପାଚ୍ୟ, ଯାହା ସହଜରେ ପରିପାକ ହୁଏନାହିଁ ।
ଗୁରୁପାଦୁକାଗିରି-ବୌଦ୍ଧଶାସ୍ତ୍ରୋକ୍ତ ଗୋଟିଏ ପବିତ୍ର ପାହାଡ଼ ।
ଗୁରୁପାପ—ବି. (କ ଧା) ମହାପାପ ।
ଗୁରୁପୁତ୍ର—(୬ତତ୍) ଆଗୃଯ୍ୟପ୍ରଭୃତି ଗୁରୁଙ୍କର ପୁତ୍ର ।
ଗୁରୁପୁଷ୍ୟାଯୋଗ—ବି. (୬ତତ୍) ହିନ୍ଦୁ ଜ୍ୟୋତିଷମତରେ ଗୁରୁବାର ପୁଷ୍ୟା ନକ୍ଷତ୍ର ପଡ଼ିବା ଶୁଭଯୋଗ ।
ଗୁରୁପୂଜା—ସ୍ତ୍ରୀ. ବି. (୬ତତ୍)ଗୁରୁ ବା ମନ୍ତ୍ରଦାତାଙ୍କର ପୂଜା ଓ ସେବା ।
ଗୁରୁପ୍ରମୋଦ—ପୁଂ.ବି. ଗୁରୁଙ୍କର ପ୍ରୀତି, (ବି°) ଗୁରୁଙ୍କର ସନ୍ତୋଷକାରକ ।
ଗୁରୁପ୍ରସାଦ--ପୁଂ.ବି.-ଗୁରୁଙ୍କର ପ୍ରସନ୍ନତା ।
ଗୁରୁପ୍ରିୟ—ପୁଂ.ବି.ଗୁରୁ ଯାହାକୁ ଭଲ ପାଆନ୍ତି, ଗୁରୁଙ୍କଠାରେ ଯାହାର ଅଚଳା ଭକ୍ତି ।
ଗୁରୁଭ—କ୍ଲୀ. ବି.(ଗୁରୁ+ଭ,ଅ)ପୁଷ୍ୟା ନକ୍ଷତ୍ର, ଧନୁରାଶି ଓ ମୀନରାଶି, ଧନୁ ।
ଗୁରୁଭକ୍ତି—ସ୍ତ୍ରୀ.ବି. (୬ତତ୍) ଗୁରୁଙ୍କ ପ୍ରତି ଐକାନ୍ତିକୀ ଶ୍ରଦ୍ଧା ।
ଗୁରୁଭାଇ—ଗ୍ରା.ବି.ଆପଣାର ଗୁରୁଙ୍କ ଶିଷ୍ୟ ଥିବାଯୋଗୁଁ ନିଜର ଭ୍ରାତୃସ୍ଥାନୀୟ ବ୍ୟକ୍ତି, ଏକ ଗୁରୁଙ୍କର ବହୁ ଶିଷ୍ୟ-ମଧ୍ୟରୁ ଏକତମ ।
ଗୁରୁଭାର—ପୁଂ.ବି. (କ.ଧା)ଗରିଷ୍ଠଙ୍କର ପୁତ୍ର, ବେଶିବୋଝ, ବିଶେଷଦାୟିତ୍ୱ, (ବି°)ବେଶିଭାର, ବିଶେଷ ଦାୟିତ୍ୱପୂର୍ଣ୍ଣ ।
ଗୁରୁଭାବ - ପୁଂ. ବି. ଗୁରୁତା, ଅତିଶୟ ଗୌରବାନ୍ୱିତ ଅଭିପ୍ରାୟ ।
ଗୁରୁଭୃତ୍-ପୁଂ.ବି.(ଗୁରୁ+ଭୃ+କ୍ୱିପ୍) ଗୁରୁତ୍ୱଯୁକ୍ତ, ଯହିଁରେ ଗୌରବ ଅଛି ।
ଗୁରୁମରା—ଗ୍ରା. ବି. ଗୁରୁମାରବିଦ୍ୟା (ଦେଖ) ବି°. ଗୁରୁଘାତୀ, ଗୁରୁଘ୍ନ ।
ଗୁରୁମର୍ଦ୍ଦଳ—ପୁଂ. ବି°. ବାଦ୍ୟବିଶେଷ, ଡିଣ୍ଡିମବାଦ୍ୟ ।
ଗୁରୁମାନ୍-ପୁଂ.ବି.(ଗୁରୁ+ମତ୍)ଯହିଁରେ ଗୁରୁ ବର୍ଣ୍ଣ ଅଛି, ଗୁରୁଯୁକ୍ତ ।
ଗୁରୁମାରବିଦ୍ୟା—ଗ୍ରା. ବି. ଯେଉଁବିଦ୍ୟା ପ୍ରୟୋଗରେ ସେହି ବିଦ୍ୟାଦାତା ଗୁରୁଙ୍କୁ ମାରିପକାଏ, ମଲ୍ଲବିଦ୍ୟା ।
ଗୁରୁମୁଖୀ—ଗ୍ରା. ବି. ପଞ୍ଜାବବାସୀଶିଖ-ମାନଙ୍କର ବର୍ଣ୍ଣମାଳା ବା ଭାଷା ।
ଗୁରୁରତ୍ନ—କ୍ଲୀ.ବି.ପୁଷ୍ପରାଗମଣି,ଗୋମେଦ-ମଣି ।
ଗୁରୁରାଜ—ପୁଂ. ବି. ଜଣେ ବୈଦାନ୍ତିକ ଚନ୍ଦ୍ରକାନ୍ତୀକା ପ୍ରଣେତୃନକଣ୍ଠୀ ।
ଗୁରୁରାହୁ—ପୁଂ. ବି. ବୃହସ୍ପତି ସହ ଏକ ରାଶିସ୍ଥ ଯୋଗବିଶେଷ ।
ଗୁରୁଲଘୁ—ବି°. (ବିପରୀତାର୍ଥକ) ବଡ଼ ଓ ସାନ, ଭାରି ଓ ହାଲୁକା ।
ଗୁରୁଲାଘବ—ବି. ଦୁଇବର୍ଣ୍ଣ ମଧ୍ୟରେ ପରସ୍ପରଆପେକ୍ଷିକଗୁରୁତା ଓ ଲଘୁତା ।
ଗୁରୁବର୍ଚ୍ଚୋଘ୍ନ—ପୁଂ. ବି. ଲିମ୍ପାକ, ପାତିଲେମ୍ବୁ ।
ଗୁରୁବର୍ଣ୍ଣ—ବି.(କ.ଧା)ଦୀର୍ଘସ୍ୱର,ସଂଯୁକ୍ତ ବର୍ଣ୍ଣର ପୂର୍ବବର୍ତ୍ତୀ ସ୍ୱର, ଅନୁସ୍ୱାର ଓ ବିସର୍ଗଯୁକ୍ତ ବର୍ଣ୍ଣ ।
ଗୁରୁବର୍ତ୍ତୀ—ପୁଂ. ବି, ( ଗୁରୁ+ବୃତ୍ +ଇନ୍ ) ବ୍ରହ୍ମଚାରୀ, (ବି°) ଯେ ଗୁରୁ କୁଳରେ ବାସକରେ ।
ଗୁରୁବର୍ଷ—କ୍ଲୀ.ବି. ବୃହସ୍ପତିଙ୍କ ସମ୍ବନ୍ଧୀୟ ସମ୍ବତ୍ସରବିଶେଷ । [ ବଳ ।
ଗୁରୁବଳ—କ୍ଲୀ. ବି. ଗୁରୁଙ୍କର କୃପା-
ଗୁରୁବାର—ବି. (୬ତତ୍) ରବିବାରର ପଞ୍ଚମ ଦିବସ, ବୃହସ୍ପତି ବାସର ।
ଗୁରୁବାରହଳ୍ଦୀଆଁ—ଗ୍ରା. ବି. ମାର୍ଗଶିର ମାସର ପ୍ରତିଗୁରୁବାର ଦିନ ଲକ୍ଷ୍ମୀ ପୂଜା କରି ଶେଷ ଗୁରୁବାରରେ ବିଶେଷ ଅନୁଷ୍ଠାନାଦି ସହିତ ବ୍ରତ ଉଦ୍ୟାପନ କରିବା, କେହି କେହି ପୌଷର ପ୍ରଥମ ଗୁରୁବାରରେ ଉଦ୍ୟାପନ ମଧ୍ୟ କରନ୍ତି ।
ଗୁରୁବାରିଆ—ଗ୍ରା.ପୁଂ.ବି.ଗୁରୁବାରରେ ଜାତ ହୋଇଥିବା ବ୍ୟକ୍ତି ବା ଗୋରୁ ବା ଅନ୍ୟ ପାଳିତ ପଶୁପକ୍ଷୀଙ୍କ ନାମ, (ସ୍ତ୍ରୀ) ଗୁରୁବାରୀ ।
ଗୁରୁବାସୀବୈଷ୍ଣବ—ଉତ୍କଳଦେଶୀୟ ଏକ ପ୍ରକାର ବୈଷ୍ଣବ ସମ୍ପ୍ରଦାୟ ।
ଗୁରୁବ୍ୟଥ—ପୁଂ. ବି°. (ବ.ସ୍ତ୍ରୀ)ଅତ୍ୟନ୍ତ ବ୍ୟଥିତ, (ସ୍ତ୍ରୀ) ଗୁରୁବ୍ୟଥା ।
ଗୁରୁବ୍ୟଥା—ବି. ( କ.ଧା ) ଅତ୍ୟନ୍ତ ବେଦନା ।
ଗୁରୁବୃତ୍ତି—ସ୍ତ୍ରୀ. ବି°. ଆଗୃଯ୍ୟ ପ୍ରଭୃତି ଗୁରୁଙ୍କ ପ୍ରତି ଶିଷ୍ୟର ବ୍ୟବହାର ।
ଗୁରୁଶଙ୍କା—ଗ୍ରା. ବି. ଝାଡ଼ାମାଡ଼ିବା, ହଗା ଦେଖାଇବା ।
ଗୁରୁଶୁଶ୍ରୂଷା—ସ୍ତ୍ରୀ.ବି. (୬ତତ୍) ଗୁରୁ-ସେବା, ଆପଣା ଗୁରୁଙ୍କୁ ପରିଚର୍ଯ୍ୟା କରିବା ।
ଗୁରୁସେବା—ବି.(୬ତତ୍)ଗୁରୁଶୁଶ୍ରୂଷା, ଗୁରୁଙ୍କୁ ପରିଚର୍ଯ୍ୟା କରିବା ।
ଗୁରୁସ୍କନ୍ଧ—ପୁଂ. ବି. ଗୋଟିଏ ପର୍ବତ ।
ଗୁରୁସ୍ଥାନୀୟ—ସ୍ତ୍ରୀ. ବି. ଗୁରୁ ସଦୃଶ ବା ଗୁରୁଙ୍କ ତୁଲ୍ୟ ।
ଗୁରୁହ—ବି. ଗୋଟିଏ ପ୍ରଦେଶ ।
ଗୁରୁହତ୍ୟା—ବି. (୬ତତ୍) ଗୁରୁଙ୍କ ଜୀବନ ନେବା ।
ଗୁରୁହନ୍ତା—ପୁଂ. ବି. (୬ତତ୍) ଯେ ଆପଣା ଗୁରୁଙ୍କୁ ହତ୍ୟା କରେ, (ସ୍ତ୍ରୀ) ଗୁରୁହନ୍ତ୍ରୀ ।
ଗୁରୁହା—ପୁଂ. ବି. ( ଗୁରୁ+ହନ୍+କ୍ୱିପ୍ ) ଗୁରୁପାକ ନାଶକ ଶ୍ୱେତ ସୋରିଷ, (ବି°) ଗୁରୁଘ୍ନ,ଗୁରୁହନ୍ତା ।
ଗୁରୂତ୍ତମ—ବି.ବି°. (୬ତତ୍)ଗୁରୁଶ୍ରେଷ୍ଠ, ପୂଜ୍ୟତମ, ପରମାରାଧ୍ୟ, ( ପୁଂ.ବି ) ପରମେଶ୍ୱର ।
ଗୁରୂପଦେଶ—ପୁଂ.ବି. (୬ତତ୍) ଗୁରୁ-ଙ୍କର ବାକ୍ୟ, ଗୁରୁ ମୁଖରୁ ପ୍ରାପ୍ତଶିକ୍ଷା ।
ଗୁରୂପାସନା—ସ୍ତ୍ରୀ.ବି. (୬ତତ୍) ଗୁରୁ-ସେବା, ଗୁରୁପୂଜା ।
ଗୁରେ—ଗ୍ରା.ବି°. (ନୀଚଭାଷା) ଗୁଡ଼ାଏ, ଅନେକ ।
ଗୁର୍ଖା—ଗ୍ରା. ବି. ( ସଂ ଗୋରକ୍ଷପୁର ) ନେପାଳବାସୀ, ଯୋଦ୍ଧୃଜାତିବିଶେଷ ।
ଗୁର୍ଗାଁଓ—(ଗଡ଼ଗାଁ) ପଞ୍ଜାବର ଅନ୍ତର୍ଗତ ଏକ ଅଞ୍ଚଳବିଶେଷ ।
ଗୁର୍ଚନ—ଭାରତ ଉତ୍ତର ପଶ୍ଚିମ ପ୍ରାନ୍ତ-ଅଞ୍ଚଳରେ ବାସ କରୁଥିବା ଯୁଦ୍ଧନିପୁଣ ଆଫଗାନ ଜାତିବିଶେଷ ।

ଗୁର୍ଜର—ପୁଂ. ବି. ଗୁଜରାଟ ଦେଶ, ଗୁଜରାଟଦେଶବାସୀ, ଗୁଜରାଟବାସୀ। ବ୍ରାହ୍ମଣଭେଦ।

ଗୁର୍ଜରୀ—ସ୍ତ୍ରୀ.ବି. ରାଗିଣୀବିଶେଷ,ଗୁର୍ଜର-ଦେଶ ରମଣୀ।

ଗୁର୍ଥ—କ୍ରି. ବିଂ. ଚେଷ୍ଟିତ।

ଗୁର୍ଦ୍ଦିସ୍ଥାନ୍—ଯା. ବି. ପାରସ୍ୟର ଉତ୍ତରାଂ-ଶସ୍ଥ ପ୍ରଦେଶ, କୁର୍ଦ୍ଦିସ୍ଥାନ।

ଗୁର୍ବଙ୍ଗନା—ସ୍ତ୍ରୀ.ବି. (ତତ୍ତ୍ୱ) ଗୁରୁପତ୍ନୀ, ବିମାତା।

ଗୁର୍ବର୍ଥ—କ୍ରି. ବିଂ. (ବି.ଣ୍ଣ) ସମଧିକ ପ୍ରୟୋଜନୀୟ, ଯାହାର ପ୍ରଧାନ ଅର୍ଥ-ଅଛି, ଶ୍ରେଷ୍ଠ ବା ଦୁର୍ଜ୍ଞେୟ ଅର୍ଥବିଶିଷ୍ଟ, ବି.(କ.ଧା) ଶ୍ରେଷ୍ଠ ବା ଦୁର୍ଜ୍ଞେୟ ଅର୍ଥ, ବିଶିଷ୍ଟ ପ୍ରୟୋଜନ।

ଗୁର୍ବସ୍ତ—ବି. (ଗୁରୁ+ଅସ୍ତ) ବୃହସ୍ପତି ଓ ରବି ଏକନକ୍ଷତ୍ର କେରାଶିସ୍ଥ ହେବା ଯୋଗ।

ଗୁର୍ବାଦିତ୍ୟ—ପୁଂ.ବି. (ଗୁରୁ+ଆଦିତ୍ୟ) ବୃହସ୍ପତି ଓ ରବିଙ୍କର ଏକ ନକ୍ଷତ୍ର ଓ ଏକରାଶିରେ ଅବସ୍ଥିତି।

ଗୁର୍ବିଣୀ—ସ୍ତ୍ରୀ.ବିଂ.(ଗୁରୁ+ଇନ୍+ଈ) ଗର୍ଭିଣୀ,ଗର୍ଭବତୀ,ଅନ୍ତଃସତ୍ତ୍ୱା,ଗୌରବ-ବତୀ, (ବି) ଗର୍ଭବତୀ ସ୍ତ୍ରୀ।

ଗୁର୍ବୀ—ସ୍ତ୍ରୀ. ବିଂ. (ଗୁରୁ+ଈ) ଗର୍ଭିଣୀ, ଗର୍ଭବତୀ, ଗୌରବଯୁକ୍ତ ସ୍ତ୍ରୀବୋଧକ-ପଦାର୍ଥ, (ବି) ଗୁରୁପତ୍ନୀ, ଗାଯ୍ନତ୍ରୀ।

ଗୁର୍ସରାଇ—ଦ. ପ. ଝାନ୍ସି ନିକଟବର୍ତ୍ତୀ ନଗରବିଶେଷ।

ଗୁଲ୍—ଯା. ବି. ଗୋଲାପଫୁଲ, ଫୁଲ, ପ୍ରା. (ଗଞ୍ଜାମ)ବି. ଗୋଲମାଲ।

ଗୁଲ୍ ଅନାର—ଯା.ବି.ଏକପ୍ରକାର ଡାଲିମ୍ବ ଗଛ।

ଗୁଲ୍ କନ୍ଦ—ଯା. ବି. ଗୋଲାପୀ ମିଠାଇ, ରସଗୋଲା, ଶର୍କରାମିଶ୍ରିତ ଗୋଲାପ-ଫୁଲ ପାଖୁଡ଼ା।

ଗୁଲ୍ ଗୀର—ଯା. ବି. ବାଡାପୀ, ଚୁଗ୍ଗ, କରୁଗ୍ଗ।

ଗୁଲ୍ ଗୁଲ୍—ଗ୍ରା. ବି. ବରଲଡ୍ଡୁ ପିଷ୍ଟକ-ବିଶେଷ,ପ୍ରା. (ସମ୍ବ),ବି. ସମବେଦନା। ପ୍ରକାଶ, ଦୁଃଖୀପ୍ରତି ସହାନୁଭୂତି, (ବିଂ) ସମବେଦନା ପ୍ରକାଶ କରୁଥିବା, ଅତି ବିନୀତ ଓ ନମ୍ର ହୋଇ କଥାକହୁଥିବା, ନାହଲଗହଲ।

ଗୁଲ୍ ଜାର—ଯା. ବିଂ. ସୁଶୋଭନ, ଚକ୍ ଚକ୍ କରୁଥିବା, ଝଟକୁଥିବା।

ଗୁଲ୍ ଚ—ଗ୍ରା, ବି. ଶୁଆଁ ପରି ଏକପ୍ରକାର ଖାଦ୍ୟ ଶସ୍ୟ।

ଗୁଲ୍ ଦସ୍ତା—ଯା. ବି. ଡେମ୍ପ ଲାଗିଥିବା, ଗୁଚ୍ଛାଏ ଫୁଲ ଏକତ୍ର ବନ୍ଧା ହୋଇ ଧରିବାକୁ ବେଣ୍ଟଥିବାପରି ହୋଇଥିବା ଫୁଲତୋଡ଼ା, ଫୁଲଦାନ୍, ଫୁଲପେଣ୍ଡା ରଖାଯିବା ପାଇଁ ପ୍ରସ୍ତୁତ ଧାତୁର ପାତ୍ର।

ଗୁଲ୍ ତରାସ୍—ଯା.ବି. ଯେଉଁ ଅସ୍ତ୍ରଦ୍ୱାରା ବତିର ଜଳିଯିବା ଅଂଶ (ଗୁଲ) କଟା ଯାଏ, ବତିର ଗୁଲ କାଟିବା ଗୁଲକର, ବଗିଚାରେ ଗଛର ଅଗଛଣ୍ଟା କରୁଗ୍ଗ, ଗଛ ଛାଣ୍ଟିବା ମାଲି, ପଥର ଉପରେ ଫୁଲ କାମ ଓ ନକ୍ସା ଖୋଲିବା ପାଇଁ ବ୍ୟବହୃତ ବେଣ୍ଟଲଗା ନହୁରୁଣୀ।

ଗୁଲ୍ ତି—ଗ୍ରା. ବି. ଗୁଲୁଗାର, ବାଟୁଲି ମାରିବାର ଅସ୍ତ୍ରବିଶେଷ।

ଗୁଲ୍ ଦାର—ଯା.ବିଂ. ଫୁଲଦାର ଫୁଲର କାରୁକାର୍ଯ୍ୟବିଶିଷ୍ଟ।

ଗୁଲ୍ ନାଗରା—ଗ୍ରା. ବିଂ. ଓଡ଼ିଶାର କେନ୍ଦ୍ରାପଡ଼ାନିକଟସ୍ଥ ଗୁଲ୍ ନଗରନାମକ ସ୍ଥାନରେ ତନ୍ତୀମାନଙ୍କଦ୍ୱାରା ବୁଣା ହୋଇଥିବା (ଏକପ୍ରକାର ପତଲା ଲୁଗା)।

ଗୁଲ୍ନାର୍—ଯା.ବି.ଧଡ଼ିରେ ଓ ଦେହରେ ଭିନ୍ନ ଭିନ୍ନ ଜାତୀୟ ଫୁଲ କାମ ଓ ବୁଟା କରା ଯାଇଥିବା ବିଭିନ୍ନ ରକମର ରେଶମ ଶାଢ଼ୀ।

ଗୁଲ୍ ବଦନ—ଯା.ବି. ଏକ ପ୍ରକାର ବହୁମୂଲ୍ୟ ରଙ୍ଗିନ୍ ରେଶମ ଲୁଗା।

ଗୁଳ—ପୁଂ.ବି.(ଗୁଡ଼+ଅ) ଇକ୍ଷୁ ବିକାର, ଗୁଡ଼, (ଗ୍ରା. ବି') ଗୋଲାକାର ଛୋଟ ବସ୍ତୁ,ବଟିକା, ଖଣ୍ଡ ଖଣ୍ଡ ହୋଇ କଟା ହୋଇଥିବା ଆଖୁମଞ୍ଜି।

ଗୁଲ—ଯା. ବି. ପୋଡ଼ା ଗୁଡ଼ାଖୁ, ଜଳି ଯାଇଥିବା ବଳିତା ବା ପିକାର ଭସ୍ମାଂଶ, ଅଗ୍ନିକଣା, ବଳିତାର ଯେଉଁଅଂଶ ଜଳି ସାର ପଡ଼ିଶ ହୋଇଥା ଏ, (ଗ୍ରା. ବି.) (ଶିଶୁ ରଞ୍ଜନ ବଚନ) ଶିଶୁ ବାଳକଙ୍କ ଲିଙ୍ଗ, କସିଆ।

ଗୁଳଞ୍ଚ—ବି. ଔଷଧାର୍ଥେ ବ୍ୟବହୃତ ଭେଷଜ ଲତାବିଶେଷ, ଗୁଳୁଚୀ।

ଗୁଲର—ଗ୍ରା. ବି. ବାଟୁଲି ବା ଗୋଡ଼ି ଦୂରକୁ ମାରିବାପାଇଁ ବ୍ୟବହୃତ ଛୁଟି-କ୍ଷଣି।

ଗୁଲସୁ—ଗ୍ରା. ବି. (ଦକ୍ଷିଣଆଞ୍ଚଳ) ଦକ୍ଷିଣୀ ସୁନାଗଡ଼ୁ, ସ୍ତ୍ରୀଲୋକମାନଙ୍କ ପିନ୍ଧିବା ସୁନା ବା ରୁପାତାରର ଏକପ୍ରକାର କଞ୍ଜିର।

ଗୁଳା—ସ୍ତ୍ରୀ. ବି. (ଗୁଳ+ଅ+ଆ) ସିଦ୍ଧ ଗଛସମୂହ, (ଗ୍ରା.ବି) ବଟିକା, ଗୁଟିକା, ଶଗଡ଼ଚକ ଯିବାର ମାର୍ଗ, ବନ୍ଧୁକର ଗୁଳି ଯେତେଦୂର ଯାଏ ସେତିକିପରିମାଣ ଦୂରତ୍ୱ, ଗୁଳା ପଡ଼ି ଭୂମି ବାଡ଼ ବଣ୍ଟା ହେବା ନିରୂପଣ-ପତ୍ର, କଡ଼ା ଛଡ଼ା ହୋଇଥିବା ନଡ଼ିଆଗୁଳା, ଆଖୁର ମଞ୍ଜି, ବନ୍ଧୁକ ବା ତୋପର ବ୍ୟବହୃତ ଗୋଲା।

ଗୁଲା—ପ୍ରା. (ବସ୍ତର) ବି. ଗେଣ୍ଡା।

ଗୁଲାଚ ପ୍ରା.(ସିଂହଭୂମ)ବି.ଶ୍ୱେତକରବୀର।

ଗୁଲାପ—ଗ୍ରା. ବି. ସ୍ତ୍ରୀଲୋକଙ୍କ ନାକର ଅଳଙ୍କାର,ଏକ ପ୍ରକାର ଦଣ୍ଡି, (ଯା.ବି) ଗୋଲାପଫୁଲ।

ଗୁଳ (ଳା) ପକାଇବା—ଗ୍ରା.କ୍ରି. ବଣ୍ଟାରେ ଭିନ୍ନ ଭିନ୍ନ କଚ୍ଛ ଉପରେ କାଗଜର ଗୁଳାରଖି ଅଂଶୀଦାରମାନଙ୍କର ଅଂଶ ନିରୂପଣ କରିବା।

ଗୁଲାବ—ଯା. ବି. ସ୍ଥଳପଦ୍ମବିଶେଷ, ଗୋଲାପ ଫୁଲ।

ଗୁଲଷୀ—ଯା. ବି°. ଗୋଲାପସମ୍ବନ୍ଧୀୟ, ଗୋଲାପୀ ।
ଗୁଲ୍ଲାଲ—ଯା. ବି. ଅବିର, ଫଗୁ, (ବି°) ଲାଲ ରଙ୍ଗର, ଗୋଲାପୀ ରଙ୍ଗଯୁକ୍ତ ।
ଗୁଲ୍ଲାଲତୁଳସୀ—ଗ୍ରା. ବି. ଏକ ପ୍ରକାର ସୁଗନ୍ଧ ତୁଳସୀ, ଦୟଣା ।
ଗୁଲି—ଗ୍ରା. ବି. ଜୁଆ ବା ସୁଞ୍ଚିଖେଳରେ ବଣ୍ଟାଗ୍ର ହେଉଥିବା ପଦାର୍ଥ ଉପରେ ପକାଯିବା ଲେଖା କାଗଜର ଗୁଟିକା, ବାଟି, ଗୁଲି, ସମୂହବୋଧକ, ବଟିକା, ବାଟୁଲି, ବନ୍ଧୁକର ଗୋଳା, ଶକଟାଦିର ଚକ ।
ଗୁଲି—ଗ୍ରା. ବି. ମଦକ୍ର, ଅଫିମ ଓ ପୋଡ଼ା ପିଜୁଲିପତ୍ରରେ ନିଆଁରେ ରନ୍ଧା ହୋଇ ଧୂମ ପାନାର୍ଥ ପ୍ରସ୍ତୁତ ହେବା ମାଦକ ଦ୍ରବ୍ୟବିଶେଷ, ବାଳକମାନଙ୍କର ଖେଳିବା ମାଟି ଗୁଲି ବା ବାଟି, ପିଣ୍ଡୁଳା, ଦୂରତ୍ୱର ପରିମାଣବିଶେଷ, ଗ୍ରା. (ଗଞ୍ଜାମ) ବି. ବାଉଁଶରେ ନିମନ୍ତ ଟୋକେଇ, ଗ୍ରା. (ସମ୍ବ) ବି. ଢୋକିଆ, ପରିକଣ୍ଡା, ଗ୍ରା. (ଦିହିଭୂମି—ପ୍ରତ୍ୟୟ ବହୁବଚନ) ମାନେ, ଗୁଡ଼ି, ଗୁଡ଼ିକ ।
ଗୁଲିଆ—ଗ୍ରା. ବି°. ମଦକ୍ର ବା ଗୁଲି ଖାଇବାରେ ରତ (ବ୍ୟକ୍ତି), ଗ୍ରା. (ଗଞ୍ଜାମ) ବି. ଲୁଣ ବ୍ୟବସାୟରେ ମହାଜନଠାରୁ ଅଗ୍ରିମ ଟଙ୍କା ଗ୍ରହଣ କରିବା ବ୍ୟକ୍ତିର ଉପାଧି (ଗ୍ରା. ବି) ଗାଈ ବା ମଇଁଷିର ଫଡ଼ିଆ ।
ଗୁଲିକା—ସ୍ତ୍ରୀ.ବି.(ଗୁଡ଼+କ,ଅକ+ଆ) ପେଣ୍ଡୁ, ଗୁଲି, ଗୁଟିକା, ଗୁଲିକାର ବଟିକା, ବସନ୍ତ ରୋଗ, ପକ୍ୱ କୁଷ୍ମାଣ୍ଡ-ଖଣ୍ଡବିଶେଷ ।
ଗୁଲିଖଟି—ଗ୍ରା. ବି. ମଦକ୍ର ଖାଇବାର ଆଡ୍ଡା, ଯେଉଁଠାରେ ଲୋକେ ଗୁଲି ଖାନ୍ତି ।
ଗୁଲିଖଟିଗପ—ଗ୍ରା.ବି. ଅସାର କଳ୍ପନା-ସମ୍ଭୂତ ଗଳ୍ପ ।
ଗୁଲିଖିଆ—ଗ୍ରା. ବି. ମଦକ୍ର ଖାଇବା (ବି°) ଯେ ଗୁଲି ଖାଏ ।
ଗୁଲିଖୋର—ଗ୍ରା. ବି. ଯେ ଗୁଲି ନିଶା ସେବନ କରେ, ମଦକ୍ର (ବ୍ୟକ୍ତି) ।
ଗୁଲିଙ୍କ—ବି. ଘରଚଟିଆ ପକ୍ଷୀ ।
ଗୁଲିସୂତା—ଗ୍ରା. ବି. ଗୋଟାଲ ପରି ଗୋଡ଼ିଆ ହୋଇଥିବା କଳସୂତା ।
ଗୁଲଦ୍ୱା—ଗ୍ରା. (ସମ୍ବ) ବି. କଳହା, କଳହପ୍ରିୟ ।
ଗୁଲୀ—ସ୍ତ୍ରୀ.ବି. (ଗୁଡ଼+ଅ+ଈ)ଗୁଟିକା, ଗୁଲି, ବସନ୍ତ ରୋଗ, ବାଟୁଲି ।
ଗୁଳୁଗୁଗୁ-ଗ୍ରା.ବି.ଶିଶୁମାନଙ୍କ ପେଟେଇବା ।
ଗୁଳୁଗୁଳି—ଗ୍ରା. ବି. ପବନ ନ ବହିବା ହେତୁରୁ ଅନୁଭୂତ ଉତ୍ତାପାଧିକ୍ୟ ।
ଗୁଲୁଗୁଲିଆ—ଗ୍ରା. ବି°. କୌତୁକିଆ, ସୁନ୍ଦର (ଶିଶୁ), ବଙ୍ଗ, ବିହାର, ଓଡ଼ିଶା ଓ ଛୋଟନାଗପୁରର ଅନାର୍ଯ୍ୟ ଯାଯାବର ଜାତିବିଶେଷଙ୍କ କଥିତ ଭାଷା ।
ଗୁଲୁଗୁଲୁ—ଗ୍ରା. ଅବ୍ୟ. ଶିଶୁ ପରି ସ୍ନିଗ୍ଧ ଦୃଷ୍ଟିପାତ କରିବା, କଣ୍ଡୁ, ଗଲଗଲ, ସଲସଲ, ଶିଶୁମାନଙ୍କର ଗୁଲୁରୁ ଗୁଲୁରୁ ବା ଦରୋଟି କଥା କହିବାର ମଧୁର ଶବ୍ଦ ।
ଗୁଳୁଚୀ—ଗ୍ରା.ବି. ଭେଷଜ-ଲତାବିଶେଷ, ଗୁଳୁଞ୍ଚ ।
ଗୁଳୁଚ୍ଛ—ପୁଂ. ବି.ଗୁଚ୍ଛ,ସ୍ତବକ, ପେଣ୍ଡା ।
ଗୁଳୁଞ୍ଚ—ପୁଂ.ବି.ଗୁଚ୍ଛ, ସ୍ତବକ, ପେଣ୍ଡା ।
ଗୁଳୁଞ୍ଚିକ—ପୁଂ. ବି. ସ୍ତବକ, ପେଣ୍ଡା ।
ଗୁଲୁପୁଚ—ଗ୍ରା. ବି. ଲୁକ୍କାୟିତଭାବ, ଷଡ଼ଯନ୍ତ୍ର, ଭ୍ରମକ୍ରମେ ଛାଡ଼ିଯିବା,ଗ୍ରା.ବି°. ଲୁଚକର ରହିଯିବା, ଭୁଲ୍‌କ୍ରମେ ଛଡ଼ା ଯାଉଥିବା, କ୍ରି. ବି°. ଲୁଚକର ।
ଗୁଲୁବାସ—ଯା.ବି. ଗୁଲ୍ମ ଓ ପୁଷ୍ପବିଶେଷ ।
ଗୁଲୁରୁ ଗୁଲୁରୁ—ଗ୍ରା. ଅବ୍ୟ. ଶିଶୁମାନଙ୍କ ପରି ସ୍ନିଗ୍ଧ ଦରୋଟି କଥା କହିବା ।
ଗୁଲ୍ଫ—ପୁଂ. ବି. (ଗୁଲ+ଣ,ଫ) ପାଦ-ଗଣ୍ଠି, ବଲାଗଣ୍ଠି, ଗୋଇଠି ।
ଗୁଲ୍ଫଦାହ—କ୍ଲୀ. ବି. ଗୁଲ୍ମମୂଳ ।
ଗୁଲ୍ମ—ପୁଂ. ବି. (ଗୁଡ଼+କ.ମ) ଲତା, ଗୁଳ୍ମ, ବୃକ୍ଷପୁଞ୍ଜ, ପ୍ରଧାନ ପୁରୁଷ ବା ଅଧିନାୟକଦ୍ୱାରା ପରିଚାଳିତ ଏକ ସୈନ୍ୟସଂଖ୍ୟା, ଘଞ୍ଚଦେଶ, ଥାନା, ଘାଟରେ ସ୍ଥାପିତ ସୈନ୍ୟ,ରକ୍ଷକସମୂହ, ଜାଣ୍ଡଶୂନ୍ୟ ଲତାଦି,ଗୁଲ୍ମରୋଗ,ଉଦର-ରୋଗ ବିଶେଷ,କ୍ଷୁଦ୍ରଗଛ-ବୁଦା,୯ରଥ, ୯ହସ୍ତୀ, ୨୭ ଘୋଡ଼ା ଓ ୪୫ ପଦାତି-ବିଶିଷ୍ଟ ସେନା, ଘାଟି ।
ଗୁଲ୍ମକାଳାନଳରସ—ପୁଂ. ବି. ଗୁଲ୍ମ-ରୋଗର ଔଷଧବିଶେଷ ।
ଗୁଲ୍ମକେତୁ—ପୁଂ. ବି. (ବି.ବ୍ରୀ) ଅମ୍ଳ-ବେତସ, ଖଟାପାଲଙ୍ଗ, ଏକ ପ୍ରକାର ବେତ ।
ଗୁଲ୍ମକେଶ—ପୁଂ. ବି. (ଗୁଲ୍ମକ+ଈଶ) ଗୁଲ୍ମର ଅଧୀଶ୍ୱର, ଯାହା ଅଧୀନରେ ଗୁଲ୍ମଥାଏ, ବି°. (ବି.ବ୍ରୀ) ଯାହାର ବାଳ ଝାମ୍ପୁଡ଼ା, (ସ୍ତ୍ରୀ) ଗୁଲ୍ମକେଶୀ ।
ଗୁଲ୍ମମୂଳ—କ୍ଲୀ. ବି. ଆର୍ଦ୍ରକ, ଅଦା ।
ଗୁଲ୍ମବଲ୍ଲୀ—ସ୍ତ୍ରୀ. ବି. ସୋମଲତା ।
ଗୁଲ୍ମଶାର୍ଦୁଳରସ—ପୁଂ. ବି. ଏକପ୍ରକାର ଔଷଧ ।
ଗୁଲ୍ମଶୂଳ—ପୁଂ.ବି.ଶୂଳ ରୋଗବିଶେଷ ।
ଗୁଲ୍ମିନୀ—ସ୍ତ୍ରୀ. ବି, (ଗୁଲ୍ମ+ଇନ୍+ଈ) ବିସ୍ତୃତ ଲତା, ଲମ୍ବଲତା, ଝାମ୍ପୁଡ଼ା ବା ବହୁଦୂର ବିସ୍ତୃତ ଲତା ।
ଗୁଲ୍ମୀ—ପୁଂ. ବି°. (ଗୁଲ୍ମ+ଇନ୍) ଗୁଲ୍ମ-ରୋଗବିଶିଷ୍ଟ, ଯାହାର ଗୁଲ୍ମରୋଗ ଅଛି, (ସ୍ତ୍ରୀ. ବି.) (ଗୁଲ୍ମ+ଈ) ଆମଳକୀ, ଅଁଳା, ଅଳେଇଚ, ତମ୍ବୁ, ଗଛଟି, ଲବଲୀ, ଗୃଧ୍ରନଖୀ ବୃକ୍ଷ, ଗୁଡ଼କାଙ୍କ ବରକୋଳି (ଗଛ) ।
ଗୁଲ୍ୟ—ବି°.(ଗୁଡ଼+ଯ) ମଧୁର, ସ୍ୱାଦୁ ।
ଗୁବ୍ଣ—ମଯୂରଭଞ୍ଜର ରାଜ୍ୟର ଭୂମକୁର ଜଲାନ୍ତର୍ଗତ ଗୋଟିଏ ନଗର ।
ଗୁଷାଣ—ଶକ ଜାତିର ଗୋଟିଏ ଶାଖା ।
ଗୁସ୍ତକ—ଯା. ବି, ଧୃଷ୍ଟତା, ଗଫଲ୍‌ଯୁକ୍ତ, ଦୋଷ, ତ୍ରୁଟି ।
ଗୁମ୍ଫିତ—କ୍ଲୀ.ବି. (ଗୁମ୍ଫ+ତ) ନିର୍ଗତ-ଶାଖା, ଗୁମ୍ଫନ,ଗଛର ଶାଖାଦି ନିର୍ଗମ ।
ଗୁସ୍ସା—ଯା. ବି. ରାଗ, ବି°. କ୍ରୁଦ୍ଧ, ରାଗାନ୍ୱିତ ।

ଗୁହ—ପୁଂ. ବି. (ଗୁହ୍ + କ.ଅ) କାର୍ତ୍ତିକେୟ, ବିଷ୍ଣୁ, ଶିବ, ପରମେଶ୍ୱର, ଅଶ୍ୱ, ଘୋଡ଼ା, ଶୃଙ୍ଗବେର ପୁରର ଅଧୀଶ୍ୱର ଜଣେ ଚଣ୍ଡାଳ ଜାତୀୟ ରାଜା, (ଗ୍ରା. ବି.) ବଙ୍ଗୀୟ କାୟସ୍ଥମାନଙ୍କର ଉପାଧିବିଶେଷ, ମଇଳା, ବିଷ୍ଠା, ପୁରୀଷ, ଶ୍ଳେଷ୍ମମଳ, (ଲକ୍ଷଣାର୍ଥ) ଲାଞ୍ଚ, ଉତ୍କୋଚ, କଳଙ୍କଯୁକ୍ତ ବିଷୟ, (ଗ୍ରା. ବିଂ.) ବିଷ୍ଠା, ପରମଳ।

ଗୁହକ—ଗ୍ରା. ବି. ଲାଞ୍ଚ, ଉତ୍କୋଚ. (ପୁଂ. ବି.) ନିଷାଦରାଜ, ଶ୍ରୀ ରାମଚନ୍ଦ୍ରଙ୍କର ମିତ୍ର।

ଗୁହକନା—ଗ୍ରା. ବି. ମାତୃକ୍ରୋଡ଼ଶାୟୀ ଶିଶୁ ବା ଶଯ୍ୟାଗତରୋଗୀ ଶୋଇଥିବାବେଳେ ଯେଉଁ କନାରେ ମଳତ୍ୟାଗ କରିଥାଏ।

ଗୁହକୁଟା—ଗ୍ରା. ବି. ଯେଉଁ କୁଟାଗୁଛି ଧରି ଶିଶୁମାନଙ୍କ ବିଷ୍ଠାକୁ ତଳୁ ପୋଛି ଉଠାଇ ନିଆଯାଏ।

ଗୁହକୁଡ଼—ଗ୍ରା. ବି. ବିଷ୍ଠାର ସ୍ତୂପ, ଗୁହଗଦା।

ଗୁହଖାଇବା-ଗ୍ରା.କ୍ରି. (ଲ.ଅର୍ଥ) ଅନୁଚିତ ବା ଘୃଣ୍ୟକର୍ମ କରିବା।

ଗୁହଖିଆ—ଗ୍ରା. ପୁଂ. ବିଂ. (ଗାଳି) ଯେ ବିଷ୍ଠା ଖାଏ, ଅତ୍ୟନ୍ତଘୃଣ୍ୟ, ଅତିଜଘନ୍ୟ କର୍ମକାରୀ, ଲାଞ୍ଚୁଆ, ଯେ ଲାଞ୍ଚ ଖାଏ।

ଗୁହଗୋବର—ଗ୍ରା. ବି. ମଇଳା, (ଲ.-ଅର୍ଥ) ଅଖାଦ୍ୟ ବା ନିକୃଷ୍ଟ ଖାଦ୍ୟ, (ବିଂ) ମଇଳା, ଅପରିଷ୍କୃତ।

ଗୁହଘାଣ୍ଟିବା—ଗ୍ରା.କ୍ରି.(ଲ.ଅର୍ଥ) କୌଣସି କଳଙ୍କଯୁକ୍ତ ବିଷୟକୁ ପ୍ରକାଶ୍ୟରେ ଆଲୋଡ଼ନ କରିବା।

ଗୁହଡିମ୍ବ—ଗ୍ରା.ବି. ଡିମ୍ବଠାରୁ ବାହାରିବାବେଳେ ପକ୍ଷିଶାବକର ତଳପେଟରେ ଯେଉଁ ଅଣ୍ଡାକାର ମାଂସପିଣ୍ଡ ଥାଏ, ଡିମ୍ବରୁ ବାହାରିଥିବା ନୂତନ ପକ୍ଷିଶାବକ।

ଗୁହ ଡିମ୍ବଇଛରିବା—ଗ୍ରା. କ୍ରି. (ଲ.ଅର୍ଥ) ଡିମ୍ବ ଫୁଟିଲାପରେ ପକ୍ଷିମାତା ପକ୍ଷହୀନ ଶାବକକୁ ବହୁଯତ୍ନପୂର୍ବକ ଆଧାର ଦେଇ ପାଳିବାପରି ଅତି ଶିଶୁକାଳରୁ କୌଣସି ଶିଶୁକୁ ପାଳିବା।

ଗୁହପୁଅ—ଗ୍ରା. ବି. (ଶିଶୁରଞ୍ଜନବଚନ) ଦୁଷ୍ଟଶିଶୁ ବା ବାଳକ, ମନ୍ଦବାଳକ।

ଗୁହପୋଛିବା—ଗ୍ରା. କ୍ରି. କୌଣସି ବ୍ୟକ୍ତିର ଉତ୍ସୃଷ୍ଟମଳକୁ ଉଠାଇନେଇ ସେହିସ୍ଥାନକୁ ପରିଷ୍କାର କରିବା, ଅତି ତୁଚ୍ଛ ସେବା କରିବା।

ଗୁହବଣି—ଗ୍ରା. ବି. ବଣିଜାତୀୟ ପକ୍ଷିବିଶେଷ, ଏକପ୍ରକାର ବଣିଚଢ଼େଇ, ସାଧାରଣ ମଳତ୍ୟାଗ କରିବା ସ୍ଥାନ।

ଗୁହମାଡ଼ିବା—ଗ୍ରା. କ୍ରି. ଅସ୍ପୃଶ୍ୟହେବା, ଋତୁମତୀହେବା, ବିଷ୍ଠା ପାଦରେ ମାଡ଼ିବା ବା ସ୍ପର୍ଶ କରିବା।

ଗୁହମୁତ—ଗ୍ରା. ବି. ବିଷ୍ଠା ଓ ମୂତ୍ର।

ଗୁହର—ବିଂ. (ଗୁହ + ର) ଗୁହଦ୍ୱାର ନିର୍ବୃତ୍ତ, ସମ୍ପାଦିତ।

ଗୁହରାଜ—ପୁଂ. ବି. ପ୍ରାସାଦବିଶେଷ।

ଗୁହଲଣ୍ଡି—ବି. ବିଷ୍ଠାର ଗୋଟିଏ ଘନ ଲମ୍ବରାଶି।

ଗୁହଲୁ—ପୁଂ. ବି. ଗୋତ୍ରପ୍ରବର୍ତ୍ତକ ଜଣେ ଋଷି।

ଗୁହଲୁଣ୍ଡା—ଗ୍ରା. ବି. ଯେଉଁ କୁଟାପୁଳାକ ସାହାଯ୍ୟରେ କୌଣସି ସ୍ଥାନରୁ ମଳାଦି ପୋଛିନେଇ ସେ ସ୍ଥାନକୁ ପରିଷ୍କାର କରାଯାଏ।

ଗୁହଲି—ଗୋପକପୁରର କଦମ୍ବରାଜାମାନଙ୍କର ଆଦିପୁରୁଷ। [ରାଜା।

ଗୁହଶିବ—ପୁଂ. ବି. କଳିଙ୍ଗର ଜଣେ

ଗୁହଷଷ୍ଠୀ—ସ୍ତ୍ରୀ. ବି. ମାର୍ଗଶିର ମାସର ଶୁକ୍ଳଷଷ୍ଠୀ।

ଗୁହସେନ—ପୁଂ. ବି. ବଲଭୀର ଜଣେ ପରାକ୍ରାନ୍ତ ମହାରାଜା, ତାମ୍ରଲିପ୍ତନିବାସୀ ବସୁଦତ୍ତନାମକ ଜଣେ ବିଖ୍ୟାତ ବଣିକର ପୁତ୍ର।

ଗୁହା—ସ୍ତ୍ରୀ.ବି. (ଗୁହ୍ + ଅ + ଆ) ସିଂହପୁଚ୍ଛୀଲତା, ଗର୍ତ୍ତ, ଦେବଖାତ, ପର୍ବତଗହ୍ୱର, ଗୁମ୍ଫା, ଶାଳପର୍ଣ୍ଣୀ, ପୃଶ୍ନିପର୍ଣ୍ଣୀ, ହୃଦୟ, ମାୟା, ଗୁହାଧିଷ୍ଠାତ୍ରୀ ଦେବତା, ବୁଦ୍ଧି, ସମ୍ବରଣ, ଅଭ୍ୟନ୍ତର, (ଯା.ବି) ସାକ୍ଷୀ। [ପ୍ରମାଣ।

ଗୁହାଇ—ଯା. ବି. ସାକ୍ଷ୍ୟ, ସାକ୍ଷ୍ୟପ୍ରଦତ୍ତ

ଗୁହାଗୃହ-କ୍ଳୀ.ବି.ଗୁହାରୂପ ଘର, କନ୍ଦର, ଗୁହାବାସ।

ଗୁହାଚର—ପୁଂ. ବି. (ଗୁହା + ଚର + ଅ) ବ୍ରହ୍ମ, ପରମାତ୍ମା, (ବିଂ) ପର୍ବତଗହ୍ୱରରେ ଭ୍ରମଣକାରୀ।

ଗୁହାଣି—ପ୍ରା. (ଗଞ୍ଜାମ) ବି. ବନ୍ଧାହୋଇ ଥିବା ଗୋରୁମାନେ ଘାସକୁଟାଆଦି ଖାଇବାବେଳେ କାଳେ ତାହାସବୁ ଗୋଡ଼ରେ ଦଳି ନଷ୍ଟକରି ପକାଇବେ ଏଥିପାଇଁ ଘାସକୁଟାକୁ ଅଟକାଇ ରଖିବା ପଟା କିମ୍ବା କାଠର ବାଡ଼।

ଗୁହାଦିତ୍ୟ—ପୁଂ. ବି. ସୁପ୍ରସିଦ୍ଧ ବାପ୍ପର ପୁତ୍ର, ଅପରନାମ ଗୁହିଲ।

ଗୁହାମୁଖ—କ୍ଳୀ. ବି. (୬ତତ୍) ଗହ୍ୱରଦ୍ୱାର, (ପୁଂ.ବିଂ) ମେଲା ମୁହାଁ, (ସ୍ତ୍ରୀ) ଗୁହାମୁଖୀ।

ଗୁହାବଦରୀ—ସ୍ତ୍ରୀ. ବି. ଶାଳପର୍ଣ୍ଣୀ।

ଗୁହାବାସୀ—ସ୍ତ୍ରୀ. ବି. ଗାୟତ୍ରୀ।

ଗୁହାରି—ଗ୍ରା. ବି. ସାକ୍ଷାତ୍ ନିବେଦନ, କୌଣସି ବ୍ୟକ୍ତିର ବିପକ୍ଷରେ କର୍ତ୍ତୃପକ୍ଷଙ୍କଠାରେ ଅଭିଯୋଗ, ଫେରାଦ୍, ସୁବିଚାରପାଇଁ ପ୍ରାର୍ଥନା, ଅନୁଗ୍ରହ, ପ୍ରାର୍ଥନା, ଦେବତାଙ୍କ ନିକଟରେ ବର ପ୍ରାର୍ଥନା, ଦରଖାସ୍ତ, ଆପତ୍ତି।

ଗୁହାରିଆ—ଗ୍ରା. ବି. ଲତାବିଶେଷ, ଗୁଆଲିଆ ଲତା, ଦରଖାସ୍ତକାରୀ, ଫେରାଦି, ବଡ଼ଲୋକ ବା ଦେବତାଙ୍କ ନିକଟରେ ବର ବା ଅନୁଗ୍ରହ ପ୍ରାର୍ଥନାର୍ଥ ଉପସ୍ଥିତ ଅନୁସରଣିଆ। [ଘର।

ଗୁହାଳ—ଗ୍ରା.ବି. ଗୋରୁମାନଙ୍କ ରହିବା

ଗୁହାଳଖଲିଆ—ଗ୍ରା. ବିଂ. ଯେଉଁ ବଳଦ ଗୁହାଳରୁ ବାହାରି ଖଣ୍ଡିଏଦୂର ପର୍ଯ୍ୟନ୍ତ ପଛଗୋଡ଼କୁ ଘୋଷାରି ଘୋଷାରି (ଖଳେଇ ଖଳେଇ) ଚାଲେ।

ଗୁହାଳପୋଛା—ଗ୍ରା.ବି. ଯେଉଁ ଠୋକେଇରେ ଗୁହାଳର ଗୋବର ଓ ଚଳାଆ ପକାନ୍ତି,(ଗ୍ରା.ବିଂ)ଯେ ଗୁହାଳପୋଛେ ।

ଗୁହାଶୟ—ପୁଂ. ସ୍ତ୍ରୀ. ବି. (ଗୁହା+ଶୀ+ଅ) ମୂଷିକ, ମୂଷା ପରମାତ୍ମା ପ୍ରାଣ, ଯେଉଁ ପ୍ରାଣୀମାନେ ଗୁହାରେ ବାସ କରନ୍ତି,ସିଂହାଦି ପଶୁ,(ବିଂ)ଗୁହାଶାୟୀ, ଗୁହାସ୍ଥିତ ।

ଗୁହାହିତ—ବିଂ.ହୃଦୟସ୍ଥ, ଯାହା ହୃଦୟରେ ଅବସ୍ଥାନ କରେ, (ବିଂ)ହୃଦୟସ୍ଥ ଆତ୍ମା ।

ଗୁହିଆ—ଗ୍ରା. ପୁଂ. ବି. ବିଷ୍ଠାଲିପ୍ତ,ଘୃଣୀ, ମଇଳା, (ସ୍ତ୍ରୀ) ଗୁହେଇ ।

ଗୁହିନ—କ୍ଲୀ. ବି. (ଗୁହ+ଇନ୍) ବଣ, ବଣବୁଦା ।

ଗୁହିରି—ଗ୍ରା. ବି. ସ୍ୱନାମଖ୍ୟାତ ବୃକ୍ଷବିଶେଷ, ଗନ୍ଧଗୋହିରି ଗଛ, ଗୋହିରି ଗଛ ।

ଗୁହିଲ—କ୍ଲୀ. ବି. ( ଗୁହ+ଇଲ ) ବନ (ବିଂ) ଗୁହାନିକଟବର୍ତ୍ତୀଦେଶାଦି,(ପୁଂ) ଗହଲୋତ୍ର ବଂଶର ଆଦିପୁରୁଷ ।

ଗୁହୁକାଲିକା—ଗ୍ରା.ବି. ବଣିଜାତୀୟ ପକ୍ଷିବିଶେଷ ।

ଗୁହେର ଗୁହେର ଛାଡ଼ିବା—ପ୍ରା.(ସମ୍ବ)କ୍ରି. ଚାହିଁ ଚାହିଁ ଡାକଦେବା, ଆର୍ତ୍ତସ୍ୱର କରିବା ।

ଗୁହେର—ପୁଂ. ବିଂ. (ଗୁହ+ଏର) ରକ୍ଷାକର୍ତ୍ତା, ରକ୍ଷକ, ଅଭିଭାବକ,(ପୁଂ-ବି) ଲୌହକାର । [ଅପରାଧ ।

ଗୁହ୍ଲା—ପ୍ରା. (ସମ୍ବ) ଯା. ବି. ଦୋଷ,

ଗୁହ୍ୟ—କ୍ଲୀ.ବି. (ଗୁହ୍+ଯ) ଗୋପନ, ଉପସ୍ଥ, ସ୍ତ୍ରୀ ଓ ପୁରୁଷ ଚିହ୍ନ,ମଳଦ୍ୱାର, ନିର୍ଜନସ୍ଥାନ, (ବିଂ)ବିଜନ, ଦୁର୍ବୋଧ, ଗୋପନୀୟ, ଗୁପ୍ତ, (ପୁଂ.ବି) କଚ୍ଛପ, କମଠ, ଦମ୍ଭ, ଅହଂକାର, ବିଷ୍ଣୁ, ମହାଦେବ, ଉପଦେବତାବିଶେଷ ।

ଗୁହ୍ୟକ—ପୁଂ. ବି. ( ଗୁହ୍ୟ+କ ) କୁବେରଙ୍କ ଅନୁଚର ଦେବଯୋନିବିଶେଷ, ଯକ୍ଷ,ପକ୍ୱାନ୍ନବିଶେଷ, ଅର୍ଙ୍ଗିରକୁଳର ତାମସୀଦେବୀଭକ୍ତ ଜଣେ ରାଜା ।

ଗୁହ୍ୟକାଳୀ—ସ୍ତ୍ରୀ.ବି. କାଳୀମୂର୍ତ୍ତିବିଶେଷ, (ମନ୍ତ୍ର) କ୍ରୀଂ କ୍ରୀଂ କ୍ରୀଂ ହୂଁ ହୂଁ ହ୍ରୀଂ ଗୁହ୍ୟେ କାଳିକେ ।

ଗୁହ୍ୟକେଶ୍ୱର—ପୁଂ.ବି.(୬ତତ୍)କୁବେର ।

ଗୁହ୍ୟଗୁରୁ—ପୁଂ. ବି. (୬ତତ୍) ଶିବ ।

ଗୁହ୍ୟଗ୍ରନ୍ଥ—ପୁଂ. ବି. ଗୋପନୀୟ ଗ୍ରନ୍ଥ, ତନ୍ତ୍ରଶାସ୍ତ୍ର ।

ଗୁହ୍ୟଦୀପକ—ପୁଂ.ବି.(୬ତତ୍)ଖଦ୍ୟୋତ, ଜୁଳୁଜୁଳିଆ ପୋକ ।

ଗୁହ୍ୟଦେଶ—ପୁଂ. ବି. (୬ତତ୍) ପାୟୁ, ମଳଦ୍ୱାର, ଗୁଦ ।

ଗୁହ୍ୟଦ୍ୱାର—ବି. (କ.ଧା) ମଳଦ୍ୱାର, ଗୁହ୍ୟଦେଶ । [ପ୍ରସ୍ରାବ ।

ଗୁହ୍ୟନିଷ୍ୟନ୍ଦ—ପୁଂ. ବି. (୬ତତ୍)ମୂତ୍ର,

ଗୁହ୍ୟପତି—ପୁଂ. ବି. (୬ତତ୍) ଗୁହ୍ୟମାନଙ୍କର ଅଧିପତି, ବଜ୍ରଧର, ଇନ୍ଦ୍ର ।

ଗୁହ୍ୟପିଧାନ—କ୍ଲୀ. ବି. ଗୁହ୍ୟଦେଶର ଆବରଣ । [ବୃକ୍ଷ ।

ଗୁହ୍ୟପୁଷ୍ପ—ପୁଂ. ବି. (ବ.ବ୍ରୀ) ଅଶ୍ୱତ୍ଥ-

ଗୁହ୍ୟଭାଷିତ—କ୍ଲୀ. ବି. (କ.ଧା) ମନ୍ତ୍ର, ଗୁପ୍ତକଥା, ଇଷ୍ଟମନ୍ତ୍ର ।

ଗୁହ୍ୟମଣ୍ଡଳ—କ୍ଲୀ.ବି.ପୁରାଣୋକ୍ତ ଗୋଟିଏ ପବିତ୍ର ସ୍ଥାନ ।

ଗୁହ୍ୟମୟ—ପୁଂ.ବି. ( ଗୁହ୍ୟ+ମୟ ) କାର୍ତ୍ତିକେୟ । [ଧନଣୀ ।

ଗୁହ୍ୟବୀଜ—ପୁଂ. ବି. ଭୂତୃଣ, ଗନ୍ଧଖଡ଼,

ଗୁହ୍ୟସ୍ଥାନ—ବି. ନେପାଳର ଗୋଟିଏ ପବିତ୍ର ସ୍ଥାନ । [ଗୋପନୀୟ ।

ଗୁହ୍ୟାତିଗୁହ୍ୟ—ବିଂ. (୬ତତ୍) ଅତ୍ୟନ୍ତ

ଗୁହ୍ୟାଷ୍ଟକ—କ୍ଲୀ. ବି. ଆଠଗୋଟି ତୀର୍ଥ, ଯଥା—ଖରଭୂତ, ଆଷାଢ଼ୀ, ଡଣ୍ଡିଲ, ଆକୁଳୀ, ପୁଷ୍କର, ଅମ୍ବରକଣ୍ଟକ,ପ୍ରଭାସ, ନୈମିଷ ।

ଗୁହ୍ୟେଶ୍ୱରୀ—ସ୍ତ୍ରୀ. ବି. ଗୁହ୍ୟକମାନଙ୍କର ଅଧିଷ୍ଠାତ୍ରୀ ଦେବୀ, ଇଷ୍ଟଦେବୀ, କାଳୀ, ଆଦ୍ୟାବିଦ୍ୟା ।

ଗୂ—ସ୍ତ୍ରୀ. ବି. (ଗୁ+ମି, କ୍ୱିପ୍) ବିଷ୍ଠା, ମଳ, ମଇଳା ।

ଗୂଢ଼—ବିଂ.(ଗୁହ୍+ତ) ଜଟିଳ,ପ୍ରଚ୍ଛନ୍ନ, ଗହନ, ସଂବୃତ, ଗୁପ୍ତ, ଆନ୍ତରିକ, ଦୁର୍ବୋଧ,ଦୁଷ୍ପ୍ରବେଶ୍ୟ; (କ୍ଲୀ.ବି) ରହସ୍ୟ ଗୁହ୍ୟ, ଗୁପ୍ତସ୍ଥାନ ।

ଗୂଢ଼ଚର—ପୁଂ. ବିଂ. (ଗୂଢ଼+ଚର୍+କ,ଅ ) ଗୋପନରେ ବିଚରଣକାରୀ, ଗୁପ୍ତ ଅନୁସନ୍ଧାନକାରୀ, (ସ୍ତ୍ରୀ)ଗୂଢ଼ଚରୀ, (ବି) ଗୁପ୍ତଚର, ଗୋଇନ୍ଦା ।

ଗୂଢ଼ଚାରୀ—ପୁଂ.ବିଂ.(ଗୂଢ଼+ଚର୍+କ, ଇନ୍) ଯେ ଗୁପ୍ତଭାବରେ ବିଚରଣ କରେ, ଗୁପ୍ତଚାରୀ, (ସ୍ତ୍ରୀ) ଗୂଢ଼ଚାରିଣୀ ।

ଗୂଢ଼ଜ—ବି. ( ଗୂଢ଼+ଜନ୍+କ,ଅ ) ଗୂଢ଼ୋତ୍ପନ୍ନ ପୁତ୍ର,ଗୁପ୍ତଭାବେ ଯେଉଁ ପୁତ୍ର ଜନ୍ମେ, (ସ୍ତ୍ରୀ) ଗୂଢ଼ଜା ।

ଗୂଢ଼ତା—ସ୍ତ୍ରୀ. ବି. ( ଗୂଢ଼+ତା+ଆ ) ଗୂଢ଼ତ୍ୱ, ଗୂଢ଼ର ଭାବ ବା ଧର୍ମ ।

ଗୂଢ଼ତ୍ୱ—କ୍ଲୀ. ବି. (ଗୂଢ଼+ତ୍ୱ) ଗୂଢ଼ତା ।

ଗୂଢ଼ନାଭି—ପୁଂ. ବି. ବଶିଷ୍ଠଗୋତ୍ରୀୟ ଚଣ୍ଡିକାଭକ୍ତ ପୃଥୁବଂଶୀୟ ଜଣେ ରାଜା ।

ଗୂଢ଼ନୀଡ଼—ପୁଂ.ବି.(ବ.ବ୍ରୀ)ଖଞ୍ଜନପକ୍ଷୀ ।

ଗୂଢ଼ନୀଡ଼ୀ—ସ୍ତ୍ରୀ, ବି. (ଗୂଢ଼ନୀଡ+ଈ) ଖଞ୍ଜନଜାତୀୟ ପକ୍ଷିଣୀ ।

ଗୂଢ଼ପତ୍ର—ପୁଂ. ବି. (ବ.ବ୍ରୀ) ଅଙ୍କୋଲ-ବୃକ୍ଷ, କରୀରବୃକ୍ଷ, ବାଂଶ ଗଛ ।

ଗୂଢ଼ପଥ—ପୁଂ.ବି. (ଗୂଢ଼+ପନ୍ଥା+ଅ) (ବ.ବ୍ରୀ)ହୃଦୟ, ଅନ୍ତଃକରଣ, (କ.ଧା) ଗୁପ୍ତବାଟ ।

ଗୂଢ଼ପାତ୍—ପୁଂ.ବି. (ଗୂଢ଼+ପଦ୍+ଣି+କ୍ୱିପ୍)କଚ୍ଛପ,ସର୍ପ,(ବିଂ)ଗୁପ୍ତପଦବିଶିଷ୍ଟ ।

ଗୂଢ଼ପାଦ—ପୁଂ. ବି. (ବ.ବ୍ରୀ) କଚ୍ଛପ, ସର୍ପ, ( ବିଂ ) ଯେଉଁ ଜୀବର ଗୋଡ଼ ବାହାରକୁ ଦେଖାଯାଏ ନାହିଁ,ଗୁପ୍ତପଦ, ବିଶିଷ୍ଟ ।

ଗୂଢ଼ପୁରୁଷ—ପୁଂ.ବି.(କ.ଧା)ରାଜପ୍ରେରିତ ଛଦ୍ମବେଶଧାରୀ ଦୂତ,ଗୁପ୍ତଚର, ଦୂତ ।

ଗୂଢ଼ପୁଷ୍ପକ—ପୁଂ. ବି. (ବ.ବ୍ରୀ) ବଉଳ ବୃକ୍ଷ ।

ଗୂଢ଼ଫଳ—ପୁଂ.ବି. (ବ.ବ୍ରୀ) ବରକୋଳି ଗଛ, ବଦରୀ ।

ଗୂଢ଼ଭାଷିତ—ବି. (କ. ଧା) ଗୁପ୍ତକଥା, ଗୋପନୀୟ ସମ୍ବାଦ ।

ଗୂଢ଼ମାର୍ଗ—ବିଂ. (ଗୂଢ଼+ମାର୍ଗ) ବ.ବ୍ରୀ; ଗୁପ୍ତମାନ୍ୟାଧାରୀ, ଯାହାର ମାର୍ଗାକୁ ଅନ୍ୟ ଲକ୍ଷ୍ୟ କରି ପାରେ ନାହିଁ,(ସ୍ତ୍ରୀ)ଗୂଢ଼ମାର୍ଗା ।

ଗୂଢ଼ମାର୍ଗ—ପୁଂ.ବି. (କ.ଧା) ଗୁପ୍ତ ପଥ, ସୁଡ଼ଙ୍ଗ ।

ଗୂଢ଼ମୈଥୁନ—ପୁଂ. ବି. (ବ.ବ୍ରୀ) କୁଆ, କାକପକ୍ଷୀ, (ସ୍ତ୍ରୀ) ଗୂଢ଼ମୈଥୁନା ।

ଗୂଢ଼ବର୍ଚ୍ଚସ୍—ପୁଂ. ବି. (ବ.ବ୍ରୀ) ଭେକ, ବେଙ୍ଗ ।

ଗୂଢ଼ବଲ୍ଲିକା—ସ୍ତ୍ରୀ. ବି. ଅଙ୍କୋଠବୃକ୍ଷ, ଆଙ୍କୁଲ ଗଛ ।

ଗୂଢ଼ବଲ୍ଲୀ—ସ୍ତ୍ରୀ. ବି. ଆଙ୍କୁଲ ଗଛ ।

ଗୂଢ଼ବ୍ୟଙ୍ଗ୍ୟା—ସ୍ତ୍ରୀ. ବି. (ଗୂଢ଼+ବ୍ୟଙ୍ଗ୍ୟ +ଆ) ଏକପ୍ରକାର ଲକ୍ଷଣା ।

ଗୂଢ଼ସାକ୍ଷୀ—ପୁଂ. ବିଂ. (କ.ଧା)ପ୍ରଚ୍ଛନ୍ନ-ଭାବେ ଶିକ୍ଷିତ ସାକ୍ଷୀ, ଯେଉଁ ସାକ୍ଷୀ ଗୋପନରେ ରହି ବାଦୀ ବା ପ୍ରତିବାଦୀର କଥା ଶୁଣିଥାଏ ।

ଗୂଢ଼ାଗୂଢ଼ତା—ସ୍ତ୍ରୀ. ବି. ଗୂଢ଼ାଗୂଢ଼ତ୍ୱ, ଗୂଢ଼ାଗୂଢ଼ର ଭାବ ବା ଧର୍ମ ।

ଗୂଢ଼ାଙ୍ଗ—ପୁଂ.ବି.(ଗୂଢ଼+ଅଙ୍ଗ),(ବ.ବ୍ରୀ) କଚ୍ଛପ, କଇଁଛ, (ସ୍ତ୍ରୀ) ଗୂଢ଼ାଙ୍ଗୀ ।

ଗୂଢ଼ାଙ୍ଘ୍ରି—ପୁଂ.ବି.ସର୍ପ, (ସ୍ତ୍ରୀ)ଗୂଢ଼ାଙ୍ଘ୍ରୀ ।

ଗୂଢ଼ାତ୍ମା—ପୁଂ. ବି. (କ.ଧା)ପରମାତ୍ମା ।

ଗୂଢ଼ୋତ୍ପନ୍ନ—ପୁଂ. ବି. (୭ତତ୍ପୁ) ଦ୍ୱାଦଶ ପ୍ରକାର ପୁତ୍ର ମଧ୍ୟରୁ ଏକପ୍ରକାର, ଗୋପନଜାତ ପୁତ୍ରବିଶେଷ ।

ଗୂଥ—ପୁଂ.ବି. (ଗୁ+ମିଁ,ଥ) ବିଷ୍ଠା,ଗୁହ, ପୁରୀଷ, ମଇଳା ।

ଗୂଥଲକ୍ତ—ପୁଂ. ବି. ପକ୍ଷିବିଶେଷ, ଗୁହ-ବଣିଚଢ଼େଇ ।

ଗୂନ—ପୁଂ. ବିଂ. (ଗୁ+କ,ତ) କୃତ-ବିଷ୍ଠୋତ୍ସର୍ଗ, ଯେ ମଳତ୍ୟାଗ କରିଅଛି, (ମିଁ,ତ) ତ୍ୟକ୍ତ, ଉତ୍ସୃଷ୍ଟ ।

ଗୂବାକ—ପୁଂ. ବି. ଗୁଆ, କମୁକ, ପୁଗ, ସୁପାରି ।

ଗୂରଣ-କ୍ଲୀ.ବି.(ଗୁର୍+ଭା.ଅନ)ଉଦ୍ୟମ, ଚେଷ୍ଟା, ଉତ୍ତୋଳନ, ଉଠାଇବା ।

ଗୂର୍ତ୍ତ—ବିଂ.(ଗୁର୍+ତ)ଉଦ୍‌ଯୁକ୍ତ,ଉଦ୍ୟମ ବିଶିଷ୍ଟ, ପ୍ରଶଂସନୀୟ ।

ଗୂର୍ତ୍ତମନାଃ—ପୁଂ. ବିଂ. (ବ.ବ୍ରୀ)ଯାହାର ମନ ଉଦ୍ୟମବିଶିଷ୍ଟ ।

ଗୂର୍ତ୍ତବଚାଃ—ପୁଂ. ବିଂ. (ବ.ବ୍ରୀ)ଯାହାର ବାକ୍ୟ ଉଦ୍ୟମବିଶିଷ୍ଟ ।

ଗୂର୍ତ୍ତଶ୍ରବାଃ—ପୁଂ.ବିଂ.(ବ.ବ୍ରୀ)ପ୍ରଶସ୍ୟାନ୍ନ, ଯାହାର ଭୋଜନୀୟ ଦ୍ରବ୍ୟ ପ୍ରଶଂସନୀୟ ।

ଗୂର୍ତ୍ତାବସୁ—ପୁଂ. ବିଂ. ଦାନକରିବାପାଇଁ ଯେ ହାତରେ ଧନ ଧରିଅଛି ।

ଗୂର୍ତ୍ତି—ପୁଂ.ବିଂ.(ଗୃ+କ,ତି) ସ୍ତୋତା, ସ୍ତବକର୍ତ୍ତା, (ସ୍ତ୍ରୀ+ବି)(ଗୁର+ଭା,ତି) ସ୍ତୁତି ।

ଗୂର୍ଦ୍ଦ୍—(ଧାତୁ) କୁଦିବା, ଡେଇଁବା, ବାସକରିବା ।

ଗୂର୍ଦ୍ଦ—ବି. (ଗୂର୍ଦ୍ଦ+ଭା,ଅ)ଲମ୍ଫ,କୁଦ ।

ଗୂଷଣା—ସ୍ତ୍ରୀ. ବି.ମୟୂରଚନ୍ଦ୍ରିକା, ମୟୂର ପୁଚ୍ଛର ଚନ୍ଦ୍ର ।

ଗୂହନ—କ୍ଲୀ. ବି. (ଗୁହ୍+ଭା, ଅନ) ଗୋପନ, ଲୁଚାଇବା ।

ଗୂହିତବ୍ୟ—ବିଂ. (ଗୁହ୍+ତବ୍ୟ)ଗୋପ-ନୀୟ, ଯାହା ଗୋପନକରିବା ଉଚିତ ।

ଗୃଞ୍ଜ—କ୍ଲୀ. ବି. (ଗୃଞ୍ଜ୍+ଅ) ଗୃଞ୍ଜନ, ଗାଜର, ରଶୁନ, ରଶୁଣ ।

ଗୃଞ୍ଜନ—ପୁଂ.କ୍ଲୀ.ବି. (ଗୃଞ୍ଜ୍+ଣ,ଅନ) ବିଷାକ୍ତ ପଶୁମାଂସ,ମୂଳବିଶେଷ,ଗାଜର, ସାଲଗମ, ରସୋନ, ରସୁଣ, ପିଆଜ, ଲାଲ ରସୁଣ, ଗଞ୍ଜେଇକନ୍ଦ ।

ଗୃଞ୍ଜନକ—ପୁଂ. ବି. ଗୃଞ୍ଜନ, ଗାଜର, ରସୁଣ, ପିଆଜ ।

ଗୃଞ୍ଜିନ—ପୁଂ. ବି. ଯଦୁବଂଶୀୟ ମୁରଙ୍କ ପୁତ୍ର, ବସୁଦେବଙ୍କ ଭାଇ ।

ଗୃଣୀଷଣ୍—ପୁଂ. ବି. ସ୍ତୋତ୍ର, ସ୍ତବ ।

ଗୃଣ୍ଡିବ—ପୁଂ. ବି. କ୍ଷୁଦ୍ରଶୃଗାଳ,ବଡ଼ ଶିଆଳ, (ସ୍ତ୍ରୀ) ଗୃଣ୍ଡିବୀ ।

ଗୃତ୍ସ—ପୁଂ.ବି.(ଗୃଧ୍+ସ)ରୁଦ୍ରବିଶେଷ, କାମଦେବ (ବିଂ) ସ୍ତବକର୍ତ୍ତା,ଯେ ସ୍ତବ-କରେ, ସ୍ତୋତା, ଯାହାକୁ ସ୍ତବକରିବା ଉଚିତ, ମେଧାବୀ, ବିଷୟାଭିଳାଷୀ ।

ଗୃତ୍ସପତି—ପୁଂ. ବି. ବିଷୟାଭିଳାଷି-ମାନଙ୍କର ପ୍ରତିପାଳକ ରୁଦ୍ର,ମେଧାବୀ ପ୍ରତିପାଳକ ରୁଦ୍ର ।

ଗୃତ୍ସମଦ—ପୁଂ.ବି ଜଣେ ମୁନି, ଶୁନକ ଗୋତ୍ରର ପ୍ରବର-ପ୍ରବର୍ତ୍ତକ ।

ଗୃଧୁ—ପୁଂ.ବି.(ଗୃଧ୍+ଉ) କାମ,କନ୍ଦର୍ପ, (ବିଂ) ଅଭିଳାଷୁକ, କାମୁକ ।

ଗୃଧୁ—ପୁଂ.ବି.(ଗୃଧ+ଉ)ବୃଦ୍ଧି,କୁତ୍ସିତ, ଅପାନ ।

ଗୃଧ୍ନ—ପୁଂ. ବିଂ. (ଗୃଧ୍+କ,ନ) ଲୁବ୍ଧ, ଲୋଭୀ, ଲୋଭଯୁକ୍ତ ।

ଗୃଧ୍ନୁ—ପୁଂ. ବିଂ. (ଗୃଧ+କ,ନୁ)ଲୋଭୀ, ଲୁବ୍ଧ ।

ଗୃଧ୍ନୁତା—ସ୍ତ୍ରୀ.ବି.(ଗୃଧ୍ନୁ+ତା)ଅଭିଳାଷ, ଅତିଶୟ ଇଚ୍ଛା, ଲୁବ୍ଧତା, ଲାଳସା ।

ଗୃଧ୍ୟ—ବିଂ.(ଗୃଧ୍+ମିଁ,ଯ)ଅଭିଲଷଣୀୟ, ବାଞ୍ଛନୀୟ, (ବି) (ଭା,ଯ) ଇଚ୍ଛା, ଅଭିଳାଷ, ଲାଳସା ।

ଗୃଧ୍ୟୀ—ପୁଂ.ବିଂ. (ଗୃଧ୍ୟ+ଇନ୍) ଅଭି-ଳାଷଯୁକ୍ତ, ଅଭିଳାଷୀ ।

ଗୃଧ୍ର—ପୁଂ. ସ୍ତ୍ରୀ. ବି. (ଗୃଧ୍+କ,ର) ଗିରିଧପକ୍ଷୀ, ଶାଗୁଣା, (ପୁଂ. ବିଂ.)ଲୁବ୍ଧ, ପେଟୁ, (ସ୍ତ୍ରୀ) ଗୃଧ୍ରୀ ।

ଗୃଧ୍ରକୂଟ—ପୁଂ.ବି. ମଗଧଦେଶମଧ୍ୟବର୍ତ୍ତୀ ଗୋଟିଏ ପର୍ବତ, ବର୍ତ୍ତମାନ ନାମ ଶୈଳଗିରି ।

ଗୃଧ୍ରଚକ୍ର—ପୁଂ. ବି. ଗୃଧ୍ର ଓ ଚକ୍ରବାକ, ଗିରିଧ ଓ ଚକୁଆ ।

ଗୃଧ୍ରଜମ୍ବୁକ—ପୁଂ. ବି. ଶିବଙ୍କର ଜଣେ ଅନୁଚର ।

ଗୃଧ୍ରନଖୀ—ସ୍ତ୍ରୀ. ବି. (ବ.ବ୍ରୀ) କାକାଦନୀ ବୃକ୍ଷ, କୁଇଲେଖାଗଛ, କୋଳିଗଛ, କଣ୍ଟକପାଳୀବୃକ୍ଷ ।

ଗୃଧ୍ରପତି—ପୁଂ.ବି. (୬ତତ୍ପୁ) ଗୃଧ୍ରମାନ-ଙ୍କର ଅଧୀଶ୍ୱର, ଜଟାୟୁ ।

ଗୃଧ୍ରପକ୍ଷ—ପୁଂ. ବ. ବାଣ, କାର୍ତ୍ତିକେୟଙ୍କର ଜଣେ ସୈନିକ ।

ଗୃଧ୍ରପକ୍ଷା—ସ୍ତ୍ରୀ. ବ. (ବ.ସ୍ତ୍ରୀ) ଧୂମ୍ରପକ୍ଷା ବୃକ୍ଷ, ଦୋକତାଗଛ, ଧୂଆଁପତ୍ରଗଛ, ତମାଖୁଗଛ ।

ଗୃଧ୍ରମଳ—ପୁଂ. ବ. ଗୃଧ୍ରପକ୍ଷୀର ବିଷ୍ଠା ।

ଗୃଧ୍ରଯାତୁ—ପୁଂ. ବ. ଗୃଧ୍ରରୂପଧାରୀ ଅସୁରବିଶେଷ ।

ଗୃଧ୍ରରାଜ—ପୁଂ.ବ.ତତ୍ପୁ.(ଗୃଧ୍ର+ରାଜା) ଗରୁଡ଼ପୁତ୍ର ଜଟାୟୁ, ସମ୍ପାତି ।

ଗୃଧ୍ରବଟ—ପୁଂ. ବ. ତୀର୍ଥବିଶେଷ, ଏହି ତୀର୍ଥରେ ବୃଷଭବାହନ ମହାଦେବ ଅଛନ୍ତି ।

ଗୃଧ୍ରସଦ୍—ବିଂ. (ଗୃଧ୍ର+ସଦ୍+କ୍ୱିପ୍) ଯେଉଁଠାରେ ଗୃଧ୍ରମାନେ ଉପବେଶନ କରନ୍ତି ।

ଗୃଧ୍ରସୀ-ସ୍ତ୍ରୀ.ବ.(ଗୃଧ୍ର+ସୋ+ଅ+ଈ) ବାତରୋଗବିଶେଷ, କଟୀବାତ, ଅଣ୍ଡାଧର ବାତ ।

ଗୃଧ୍ରାଣ—ପୁଂ. ବିଂ. (ଗୃଧ୍ର+ଆଣ) ଗୃଧ୍ର ପରି ସ୍ୱଭାବ, ଶାଗୁଣା ପରି ଖାଦ୍ୟଲୋଭୀ.(ବି)ଧୂଆଁପତ୍ର, ଦୋକତାଗଛ ।

ଗୃଧ୍ରାଣୀ—ସ୍ତ୍ରୀ.ବି.(ଗୃଧ୍ର+ଆନୀ)ଧୂମ୍ରପକ୍ଷା ବୃକ୍ଷ, ଧୂଆଁପତ୍ର ଗଛ, ଦୋକତା ।

ଗୃଧ୍ରୀ—ସ୍ତ୍ରୀ. ବ. କଶ୍ୟପଙ୍କର ସ୍ତ୍ରୀ, ତାମ୍ରାଙ୍କର ଏକ କନ୍ୟା ।

ଗୃଭ—ପୁଂ. ବ. ଗୃହ ।

ଗୃଭୀତ—ବିଂ. (ଗ୍ରହ+ତ) ଗୃହୀତ, ଗୃହୀତପଙ୍କ ।

ଗୃଭୀତତାତି—ସ୍ତ୍ରୀ. ବ. (ଗୃଭୀତ+ତାତି) ଗୃହୀତପଙ୍କସମୂହ, ଠ ।

ଗୃଷ୍ଟି—ସ୍ତ୍ରୀ. ବ. (ଗ୍ରହ+ତି) ଏକଥର ପ୍ରସୂତାଧେନୁ. ଗୋଟିଏ ସନ୍ତାନ ଜନ୍ମ କରିଥିବା ସ୍ତ୍ରୀ, ବରାହକ୍ରାନ୍ତା, ବଦର ବୃକ୍ଷ, ଗମ୍ଭାରୀ, ଭୂଇଁକଖାରୁ, ବାରାହୀକନ୍ଦ, ଶୂକରୀ ।

ଗୃଷ୍ଣ୍ୟା—ସ୍ତ୍ରୀ. ବ. ବସ୍ତ୍ରା, ବାଡୁଲୀ ।

ଗୃହ—କ୍ଲୀ. ବ. ( ଗ୍ରହ+କ,ଅ) ଘର, ଇଷ୍ଟକାଦିରଚିତ ବାସସ୍ଥାନ, କଳତ୍ର;, ଭାର୍ଯ୍ୟା, ସଂଜ୍ଞା, ନାମ, ମେଷାଦିରାଶି ।

ଗୃହକଚ୍ଛପ—ପୁଂ. ବ. ପେଷଣଶିଳା, ପେଷଣୀଚକ, ଚନ୍ଦନପେଡ଼ି ।

ଗୃହକନ୍ୟା—ସ୍ତ୍ରୀ. ବ.ଘୃତକୁମାରୀ, ଘିଅକୁଆଁରୀ ।

ଗୃହକପୋତ—ପୁଂ.ବ. (ତତ୍ପୁ) ପାରାବତ, ପାଳିତପକ୍ଷୀ, ପୋଷାପାରା ।

ଗୃହକର୍ତ୍ତା—ପୁଂ. ବ. ବିଂ. (ଗୃହ+କୃ—ତୃ)ଘରର ମାଲିକ, ଗୃହକାରକ, ଗୃହୀ, (ବି) ଏକପ୍ରକାର ଧୂସରବର୍ଣ୍ଣ କ୍ଷୁଦ୍ରକାୟ ଚଟକପକ୍ଷୀ,(ବାସ୍ତୁଚଢ଼େଇ), (ସ୍ତ୍ରୀ)ଗୃହକର୍ତ୍ତ୍ରୀ ।

ଗୃହକର୍ତ୍ତ୍ରୀ—ସ୍ତ୍ରୀ.ବ. ବା ବିଂ, ଗୃହିଣୀ, ଗୃହସ୍ୱାମିନୀ ।

ଗୃହକର୍ମ—କ୍ଲୀ. ବ. ଗୃହକାର୍ଯ୍ୟ, ଘରକରଣା,ଘରକାମ,ଘର ତିଆରି କରିବା ଘରର ଦୈନନ୍ଦିନ ବ୍ୟାପାର ।

ଗୃହକର୍ମଦାସ—ପୁଂ. ବ. ଘରକାର୍ଯ୍ୟଚଳାଇବା ଚାକର ।

ଗୃହକଳହ—ପୁଂ.ବିଂ. (ତତ୍ପୁ) ଗୃହବିରୋଧ, ଏକାନ୍ନଭୁକ୍ତ ପରିବାରମଧ୍ୟରେ ଘଟିବା ସାମାନ୍ୟ ବିରୋଧ ।

ଗୃହକାର,ଗୃହକାରକ—ପୁଂ.ବିଂ.(ଗୃହ-କୃ-ଅ.କ) ବର୍ଣ୍ଣସଙ୍କର ଜାତିବିଶେଷ, ମିସ୍ତ୍ରୀ, (ବିଂ) ଗୃହନିର୍ମାଣକର୍ତ୍ତା ।

ଗୃହକାରୀ—ପୁଂ.ବିଂ. (ଗୃହ+କୃ+କ.ଇନ୍) ଗୃହକାରକ, ଗୃହୀ, (ବିଂ) କୁମ୍ଭାରପୋକ, ମିସ୍ତ୍ରୀ, ମାଟିବିରୁଡ଼ି ।

ଗୃହକାର୍ଯ୍ୟ—କ୍ଲୀ. ବିଂ. (ତତ୍ପୁ) ଗୃହକର୍ମ, ଘରକାମ ।

ଗୃହକୁକ୍କୁଟ—ପୁଂ. ସ୍ତ୍ରୀ.ବ.(ମଧ୍ୟ.କ.ଧା) ଗୃହପାଳିତ କୁକୁଡ଼ା ।

ଗୃହକୁଲିଙ୍ଗ—ପୁଂ. ବ. ପକ୍ଷୀବିଶେଷ, ଗୃହବାଟକ, ଘରଚଟିଆ ପକ୍ଷୀ ।

ଗୃହକୃତ୍ୟ—କ୍ଲୀ. ବ. ଗୃହକାର୍ଯ୍ୟ, ଘରକାମ ।

ଗୃହଗୋଧା—ସ୍ତ୍ରୀ ବ. ଝିଟିପିଟି,ଜ୍ୟୋସ୍ନୀ, ପଲ୍ଲୀ ।

ଗୃହଗୋଧିକା—ସ୍ତ୍ରୀ.ବ. ଜ୍ୟୋସ୍ନୀ, ଝିଟିପିଟି, ପଲ୍ଲୀ ।

ଗୃହଗୋଳକ—ପୁଂ. ବ. ( ଗୃହ+ଗୋଳକ )ଅଣ୍ଡିରା ଝିଟିପିଟି,ପୁଂଜାତୀୟ ଝିଟିପିଟି ।

ଗୃହଗୋଳିକା—ସ୍ତ୍ରୀ.ବ. ମାଈ ଝିଟିପିଟି, ସ୍ତ୍ରୀଜାତୀୟ ଝିଟିପିଟି ।

ଗୃହଘ୍ନ—ପୁଂ. ବ. (ଗୃହ+ହନ୍+ଅ) ଗୃହନାଶକ, ଗୃହଭଙ୍ଗକାରୀ ।

ଗୃହଘ୍ନୀ—ସ୍ତ୍ରୀ. ବ. (ଗୃହ+ହନ୍+ଈ) ଗୃହନାଶିକା ସ୍ତ୍ରୀ, ଘରଭଙ୍ଗେଇ ସ୍ତ୍ରୀ ।

ଗୃହଚଟକ—ପୁଂ.ବ.(ମଧ୍ୟ-କ.ଧା) ଘରଚଟିଆପକ୍ଷୀ, ଘରଚଟିଆ ଚଢ଼େଇ ।

ଗୃହଚୁଲ୍ଲୀ—ସ୍ତ୍ରୀଂ. ବ. ଦୁଇଟିମାତ୍ର ଶାଳଯୁକ୍ତଘର, ଯେଉଁଘରର ପୂର୍ବ ଓ ପଶ୍ଚିମ ପାଖେ ଦୁଇଟି ଶାଳ ଥାଏ ।

ଗୃହଚ୍ଛିଦ୍ର—କ୍ଲୀ. ବ, (ତତ୍ପୁ) ଘରରଦୋଷ, ଘରର କଳଙ୍କ ।

ଗୃହଜ—ପୁଂ.ବ. ( ଗୃହ+ଜନ୍+ଅ) ଏକପ୍ରକାର ଦାସୀପୁତ୍ର ।

ଗୃହଜନ—ପୁଂ. ବ. (ତତ୍ପୁ) ଘରରଲୋକ,ପରିଜନ, ଆତ୍ମୀୟ ସ୍ୱଜନ ।

ଗୃହଜାତ—ବିଂ(ଗୃହ+ଜାତ) (ତତ୍ପୁ) ଗୃହୋତ୍ପନ୍ନ,ଯାହା ଘରେ ଉତ୍ପନ୍ନ ହୁଏ, ଗୃହରେ ତିଆରି ହୋଇଥିବା, ଗୃହରେ ସଞ୍ଚିତ, (ତତ୍ପୁ) ଗୃହକୁ ଆନୀତ ।

ଗୃହଜାଲିକା—ସ୍ତ୍ରୀ.ବ.କପଟତା, ଛଳନା, ଛଦ୍ମବେଶ ।

ଗୃହଜ୍ଞାନୀ—ପୁଂ, ବିଂ. ଅନନୁଭବୀ, ଅପ୍ରବୀଣ, ନିର୍ବୋଧ, ଘରମାଇପେ ଘରଭିତରେ ଜ୍ଞାନ ଦେଖାଇ ହୁଏ) ।

ଗୃହଣୀ—ସ୍ତ୍ରୀ.ବ,( ଗୃହ+ନୀ) କାଞ୍ଜି, ପିଆଜ, ପଲ୍ଲଣ୍ଡୁ ।

ଗୃହତଟୀ—ସ୍ତ୍ରୀ. ବ. (ଗୃହ+ତଟ+ଈ) ପିଣ୍ଡା, ବଥିକା, ବାରଣ୍ଡା ।

ଗୃହତଳ—କ୍ଲୀ, ବ. (ତତ୍ପୁ) ଘରର ମେଜିଆ ।

ଗୃହତ୍ୟାଗ—ପୁଂ.ବ.(ତତ୍ପୁ) ଘରଛାଡ଼ି ବାହାରି ଯିବା ।

ଗୃହତ୍ୟାଗୀ—ପୁଂ. ବିଂ. (ଗୃହ+ତ୍ୟଜ୍ +ଇନ୍) ଯେ ଘରଛାଡ଼ି ବାହାରିଯାଇ ଅଛି ।
ଗୃହଦାସ—ପୁଂ.ବି.(୬ତତ୍ପୁ) ଗୃହଭୃତ୍ୟ, ଘରର ଚାକର ।
ଗୃହଦାହ—ପୁଂ. ବିଂ. ୬ତତ୍ପୁ; (ଗୃହ+ ଦହ୍+ଅ) ଘରପୋଡ଼ା ।
ଗୃହଦୀପ୍ତି—ସ୍ତ୍ରୀ. ବି. (୬ତତ୍ପୁ) ଘରର ଉଜ୍ଜ୍ୱଳତା, ଶୋଭା, ସାଧ୍ୱୀ ସ୍ତ୍ରୀ ।
ଗୃହଦେବତା—ସ୍ତ୍ରୀ. ବି. (୬ତତ୍ପୁ) ବାସ୍ତୁଦେବତା, ଇଷ୍ଟଦେବତା, ଘରଦିଅଁ, ପାରିବାରିକ ଦେବତା ।
ଗୃହଦେବୀ—ସ୍ତ୍ରୀ. ବି. (୬ତତ୍ପୁ) ଷଷ୍ଠୀଦେବୀ, ଗୃହିଣୀ, ଗୋଟିଏ ରାକ୍ଷସୀ, (ଏହାର ନାମ ଜରା, ଏ ପ୍ରତ୍ୟେକଙ୍କ ଘରେ ଥାଏ) ।
ଗୃହଦେହଳୀ—ବି. (୬ତତ୍ପୁ) ଘରର ଦୁଆରବନ୍ଧ, ଯେଉଁ ଦୁଆରବନ୍ଧକୁ ଡେଇଁ ଘରେ ପଶିବାକୁ ବା ଘର ଭିତରୁ ବାହାରିବାକୁ ହୁଏ ।
ଗୃହଦ୍ରୁମ—ପୁଂ.ବି. ଶାଳବୃକ୍ଷ,ଶାଗୁଆନ ଗଛ, ମେଷଶୃଙ୍ଗିନାମକ ବୃକ୍ଷ ।
ଗୃହଦ୍ୱାର—କ୍ଲୀ. ବି.(୬ତତ୍ପୁ) ଦରଜା, ଘରର ବାଟ । [ କର୍ମ ।
ଗୃହଧର୍ମ—ବି.(୬ତତ୍ପୁ) ଗୃହସ୍ଥର କର୍ତ୍ତବ୍ୟ
ଗୃହଧୂମ—ପୁଂ. ବି. (୬ତତ୍ପୁ) ଅଳନ୍ଧୁ ।
ଗୃହନମନ—କ୍ଲୀ.ବି.(ଗୃହ+ନମ୍+ଣି, ଅନ) ବାୟୁ ।
ଗୃହନରକ—କ୍ଲୀ.ବି. ଗୃହର ଅପରିଷ୍କୃତ ସ୍ଥାନ, ଯେଉଁଠାରେ ଅଇଁଠା ଇତ୍ୟାଦି ପକାନ୍ତି ।
ଗୃହନାୟକ—ପୁଂ.ବି.(୬ତତ୍ପୁ)ଗୃହକର୍ତ୍ତା, ଗୃହସ୍ୱାମୀ ।
ଗୃହନାଶନ—ପୁଂ ସ୍ତ୍ରୀ.ବି.(ଗୃହ+ନଶ୍+ ଣିଚ୍+ଅନ) ବି.ସ୍ତ୍ରୀ; କପୋତ,ବଣୁଆଁ ପାରା ।
ଗୃହନୀଡ଼—ପୁଂ. ସ୍ତ୍ରୀ, ବି. (ବି.ସ୍ତ୍ରୀ)ଘରଚଟିଆ ପକ୍ଷୀ, ଚଟକପକ୍ଷୀ ।

ଗୃହପ—ପୁଂ. ବି. (ଗୃହ+ପା+ଅ) ପାଳକ ।
ଗୃହପତି—ପୁଂ.ବି.(ଗୃହ+ପତି)୬ତତ୍ପୁ; ଗୃହସ୍ଥ, ଦ୍ୱିତୀୟାଶ୍ରମାବଲମ୍ବୀ, ମନ୍ତ୍ରୀ, ଧର୍ମ, ଯଜ୍ଞକର୍ତ୍ତା, ଆତଥେୟତା, ଯଜମାନ, ଅଗ୍ନିବିଶେଷ ।
ଗୃହପତ୍ନୀ—ସ୍ତ୍ରୀ.ବି.(୬ତତ୍ପୁ)ଗୃହପାଳିକା, କର୍ତ୍ତ୍ରୀ, ଗୃହସ୍ୱାମିନୀ ।
ଗୃହପାଳ—ବିଂ.(ଗୃହ+ପାଲ୍+କ,ଅ) ଗୃହକର୍ତ୍ତା, ଗୃହରକ୍ଷକ, (ପୁଂ. ସ୍ତ୍ରୀ. ବି) କୁକ୍କୁର ।
ଗୃହପାଳିତ—ବିଂ. (୬ତତ୍ପୁ) ଗୃହରେ ପୋଷିତ, ଘରପୋଷା, (ସ୍ତ୍ରୀ) ଗୃହପାଳିତା ।
ଗୃହପୋତ(କ)—ପୁଂ. ବି. ଘରବାଡ଼ି, ଯେଉଁ ଆୟତନ ଉପରେ ଘର ତିଆରି ହୁଏ ।
ଗୃହପୋଷ୍ୟ—ବିଂ. (୬ତତ୍ପୁ) ଗୃହରେ ପ୍ରତିପାଳ୍ୟ, ଯାହାକୁ ଘରେ ରଖି ପୋଷଣ କରାହୁଏ,(ସ୍ତ୍ରୀ) ଗୃହପୋଷ୍ୟା ।
ଗୃହପ୍ରତିଷ୍ଠା—ବି. (୬ତତ୍ପୁ) ନୂଆ ଘରକୁ ହୋମାଦିଦ୍ୱାରା ପବିତ୍ରୀକୃତ କରି ବାସୋପଯୁକ୍ତ କରିବା ଅନୁଷ୍ଠାନ,ଗୃହର ଭିତ୍ତି ସଂସ୍ଥାପନ ।
ଗୃହପ୍ରବେଶ—ପୁଂ.ବି. (୬ତତ୍ପୁ) ବୈଦିକ ଅନୁଷ୍ଠାନପୂର୍ବକ ନୂତନ ଘରେ ରହିବା, ଗୃହ ଭିତରକୁ ଯିବା ।
ଗୃହବଭ୍ରୁ—ପୁଂ.ସ୍ତ୍ରୀ.ବି.ଗୃହସ୍ଥିତ ନକୁଳ, ଘରେ ଥିବା ନେଉଳ ।
ଗୃହବଳି—ପୁଂ. ବି. (କ.ଧା) ଗୃହରେ ଅନୁଷ୍ଠେୟ ବଳିକର୍ମ, ବୈଶ୍ୱଦେବ କର୍ମ ।
ଗୃହବଳିପ୍ରିୟ—ପୁଂ.ବି.କାକପକ୍ଷୀ,କୁଆ ।
ଗୃହବଳିଭୁକ୍—ପୁଂ.ସ୍ତ୍ରୀ.ବି.(ଗୃହବଳି+ ଭୁଜ୍+କ୍ୱିପ୍)କାକ,ଚଟକ, ଘରଚଟିଆ ପକ୍ଷୀ, ବକ, କପୋତ । [ନାଶ ।
ଗୃହଭଗ୍ନ—ଗ୍ରା.ବି.ନିଜ ସ୍ତ୍ରୀର ମୃତ୍ୟୁ,କଳହ
ଗୃହଭଙ୍ଗ—ପୁଂ. ବି. ଘରଭାଙ୍ଗିବା, ନିଜ ସ୍ତ୍ରୀର ମୃତ୍ୟୁ ।

ଗୃହଭଞ୍ଜନ—କ୍ଲୀ.ବି.(୬ତତ୍ପୁ) ଗୃହଭଙ୍ଗ, ଘରଭାଙ୍ଗିବା, ଗୃହ ବିବାଦ ଘଟାଇବାଦ୍ୱାରା ପରିବାରର ବିନାଶ ସାଧନ ।
ଗୃହଭର୍ତ୍ତା—ପୁଂ. ବି. (ଗୃହ+ଭୃ+ତୃ) ୬ତତ୍ପୁ,ଗୃହସ୍ୱାମୀ, ଘରର ମାଲିକ ।
ଗୃହଭୂମି—ସ୍ତ୍ରୀ. ବି.(ଗୃହ+ଭୂମି)ବାସ୍ତୁଭୂମି, ଘରଡିହ ।
ଗୃହଭେଦ—ବି.(୬ତତ୍ପୁ,ସିନ୍ଧକାଟି ଘରେ କରାଯିବା ଚୋରି, ପାରିବାରିକ ଅନ୍ତର୍ବିବାଦ,ଘରର ଗୁପ୍ତଛିଦ୍ର ଜାଣିବା ।
ଗୃହଭେଦୀ--ପୁଂ.ବିଂ.(ଗୃହ+ଭିଦ୍+ଣିନ୍) ଘରଭଙ୍ଗା (ଲୋକ),ଯେ ପରର ଗୁପ୍ତ କଥାକୁ ଖୋଳି ଥାଏ, ଯେ ପର ଘରେ ବିବାଦ ଘଟାଏ, (ସ୍ତ୍ରୀ) ଗୃହଭେଦିନୀ ।
ଗୃହଭୋଜୀ—ପୁଂ. ବିଂ. (ଗୃ+ଭୁଜ୍+ ଇନ୍) ଗୃହଲୋକ, ଏକପରିବାରଭୁକ୍ତ, (ସ୍ତ୍ରୀ) ଗୃହଭୋଜିନୀ ।
ଗୃହମଣି—ପୁଂ.ବି. (ଗୃହ+ମଣି)୬ତତ୍ପୁ, ପ୍ରଦୀପ, ଦୀପ ।
ଗୃହମାଚିକା—ସ୍ତ୍ରୀ.ବି.(ଗୃହ+ମଚ୍+ଅକ +ଆ) ୬ତତ୍ପୁ, ଚର୍ମଚଟା, ଚମଚଟା, ଚେମିଣି, ବାଦୁଡ଼ି, ଚେମଣିବାଦୁଡ଼ି ।
ଗୃହମାର୍ଜନ—ବି.(୬ତତ୍ପୁ)ଘରଓଳାଇବା, ଘର ଲିପି ସଫା କରିବା, ଘର ପରିଷ୍କାର କରିବା ।
ଗୃହମାର୍ଜାର—ପୁଂ. ବି. (କ.ଧା) ଗୃହପାଳିତ ବିଡ଼ାଲ, ଘରପୋଷା ବିରାଡ଼ି ।
ଗୃହମୃଗ—ପୁଂ.ସ୍ତ୍ରୀ. (୬ତତ୍ପୁ)ବି. (ଗୃହମୃଗ) କୁକ୍କୁର, (ସ୍ତ୍ରୀ) ଗୃହମୃଗୀ ।
ଗୃହମେଘ—ପୁଂ. ବି. ଗୃହସମୂହ ।
ଗୃହମେଧ—ପୁଂ.ବି.(ଗୃହ+ମେଧ୍+ଘ. ଅ)୬ତତ୍ପୁ; ଗୃହସ୍ଥ, ଯେ ଦାରପରିଗ୍ରହ କରିଅଛି, ପଞ୍ଚସୂନା ରୂପହିଂସା, ଯେ ଗୃହରେ ପଞ୍ଚଯଜ୍ଞର ଅନୁଷ୍ଠାନ କରାହୁଏ, ଦେବତାବିଶେଷ ।
ଗୃହମେଧୀ--ପୁଂ.ବି.(ଗୃହ+ମେଧ+କ. ଇନ୍) ଗୃହିଣୀଯୁକ୍ତ, ଗୃହସ୍ଥ, ମରୁତବିଶେଷ, (ସ୍ତ୍ରୀ) ଗୃହମେଧିନୀ ।

ଗୃହମେଧିନୀ—ସ୍ତ୍ରୀ. ବି. (ଗୃହମେଧିନ୍ + ଈ) ଗୃହସ୍ଥପତ୍ନୀ, ଗୃହିଣୀ, ସାଗ୍ନିକ ସ୍ତ୍ରୀ ।

ଗୃହମେଧୀୟ—ବିଂ. (ଗୃହ + ମେଧୀୟ) ଗୃହସ୍ଥର ଅନୁଷ୍ଠେୟକର୍ମ, ହବିଃ ପ୍ରଭୃତି ଗୃହମେଧୀ ମରୁତ୍ମାନଙ୍କୁ ପ୍ରଦେୟ ।

ଗୃହମେଧ୍ୟ—ବିଂ. (ଗୃହ + ମେଧ୍ + ଯ) ଗୃହମେଧୀ ଦେବତାମାନଙ୍କୁ ପ୍ରଦେୟ ହବିଃ ପ୍ରଭୃତି ।

ଗୃହଯନ୍ତ୍ର—କ୍ଲୀ. ବି, ଗୃହସ୍ଥିତ କାଷ୍ଠାଦି ନିର୍ମିତ ବସ୍ତ୍ରାଦି ରଖିବାର ଆଧାର-ବିଶେଷ, ଆଲନା ।

ଗୃହୟାଯ୍ୟ—ବିଂ. (ଗୃହ + ଣିଚ୍ + ଆଯ୍ୟ) ଗୃହସ୍ଥ ।

ଗୃହୟାଳୁ—ବିଂ. (ଗୃହ + ଣିଚ୍ + ଆଳୁ) ଗ୍ରହୀତା, ଗ୍ରାହକ, ଗ୍ରହଣାଭିଳାଷୀ ।

ଗୃହଯୁଦ୍ଧ—ବି. (ମ.କ.ଧା) ଘରୋଇ ବିବାଦ, ରାଜ୍ୟର ଅନ୍ତର୍ବିପ୍ଳବ ।

ଗୃହରାଜ—ପୁଂ. ବି. (ଗୃହ + ରାଜ) ଶ୍ରେଷ୍ଠ ଗୃହ ।

ଗୃହଲକ୍ଷ୍ମୀ—ସ୍ତ୍ରୀ. ବି. (୬ତତ୍) ସୁଶୀଳା, ସଚ୍ଚରିତ୍ରା ସ୍ତ୍ରୀ, କୁଳକାମିନୀ, ଗୃହିଣୀ, କୁଳବଧୂ ।

ଗୃହବାଜ—ଗ୍ରା.ବି.(କ. ଧା) ଏକପ୍ରକାର ପାରା, ଛଞ୍ଚାଣ, ବାଜପକ୍ଷୀ, ଲେଞ୍ଜଣୀ ପାରା ।

ଗୃହବାଟିକା—ସ୍ତ୍ରୀ. ବି. (୬ତତ୍) ଗୃହର ନିକଟବର୍ତ୍ତୀ ଉପବନ, ବଗିଚାଘର ।

ଗୃହବାସ—ପୁଂ.ବି.(ଗୃହ + ବାସ) ଗୃହରେ ଅବସ୍ଥିତି, ଗାର୍ହସ୍ଥ୍ୟ ଧର୍ମ, ଘରବାଡ଼ି, ବାସସ୍ଥାନ ।

ଗୃହବାସକରିବା—ଗ୍ରା.କ୍ରି. ସଂସାରକରିବା, ଗୃହସ୍ଥରୂପେ ସଂସାରେ ରହିବା, କୌଣସି ସ୍ଥାନରେ ସ୍ଥାୟୀରୂପେ ବାସ କରିବା ।

ଗୃହବାସୀ—ପୁଂ.ବିଂ. (ଗୃହ + ବସ୍ + କ. ଇନ୍) ସଂସାରୀ, ଗୃହସ୍ଥ, ଯେଉଁମାନେ ଘରେ ବାସକରନ୍ତି, (ସ୍ତ୍ରୀ ଗୃହବାସିନୀ ।

ଗୃହବିଚ୍ଛେଦ—ପୁଂ. ବି. (୬ତତ୍) ପରିବାରର ବ୍ୟକ୍ତିମାନଙ୍କ ମଧ୍ୟରେ ଜନ୍ମିବା ମନୋମାଳିନ୍ୟରେ ପାରିବାରିକ କଳହ

ଗୃହବିବାଦ—ପୁଂ. ବି. (୬ତତ୍) ଅନ୍ତର୍ବିବାଦ, ଅସ୍ତଃକଳହ, ଗୃହବିଚ୍ଛେଦ ।

ଗୃହବ୍ୟାପାର—ବି. (୬ତତ୍) ଗୃହକର୍ମ ।

ଗୃହଶିକ୍ଷକ—ପୁଂ.ବି.(ଆଧୁନିକ ପ୍ରୟୋଗ) ଯେଉଁ ଶିକ୍ଷକମାନେ ଘରେ ପିଲାମାନଙ୍କୁ ପଢ଼ାଇ ବିଦ୍ୟାଳୟର ପଢ଼ାରେ ସାହାଯ୍ୟ କରନ୍ତି ।

ଗୃହଶକୁନ୍ତିକା—ବି.ପୋଷାପକ୍ଷୀ, କୁକୁଡ଼ା ।

ଗୃହଶୂନ୍ୟ—ବିଂ. (୫ତତ୍) ଭବନରହିତ, ଯାହାର ଘରଦ୍ୱାର ନାହିଁ, ବିପତ୍ନୀକ, ଯାହାର ଭାର୍ଯ୍ୟା ନାହିଁ, (ସ୍ତ୍ରୀ) ଗୃହଶୂନ୍ୟା ।

ଗୃହସଂବେଶକ—ପୁଂ.ବିଂ.(ଗୃହ + ସମ୍ + ବିଶ୍ + ଅକ) ବାସ୍ତୁବିଦ୍ୟୋପଜୀବୀ, ସ୍ଥପତି, ସୂତ୍ରଧର, ଯେ ଘର ତିଆରି ବା ଛାଉଣି କରି ଜୀବିକା ନିର୍ବାହ କରେ ।

ଗୃହସଜ୍ଜା—ସ୍ତ୍ରୀ.ବି.(କ.ଧା) ଘରର ଅସବାବ ।

ଗୃହସ୍ଥ—ପୁଂ. ବି. (ଗୃହ + ସ୍ଥା + କ.ଅ) ଗୃହୀ, ଗେରସ୍ତ, ଦ୍ୱିତୀୟାଶ୍ରମସ୍ଥ, ଗୃହାଧିପ, କୁଟୁମ୍ବୀ, ।

ଗୃହସ୍ଥଧର୍ମ—ପୁଂ. ବି. (ଗୃହସ୍ଥ + ଧର୍ମ) ୬ତତ୍, ଗାର୍ହସ୍ଥ୍ୟଧର୍ମ, ଗୃହୀର ଅବଶ୍ୟ କର୍ତ୍ତବ୍ୟ ଧର୍ମ, ଘରକରଣା ବ୍ୟକ୍ତିର କର୍ତ୍ତବ୍ୟ କର୍ମ ।

ଗୃହସ୍ଥାନ—କ୍ଲୀ. ବି. ବାସସ୍ଥାନ, ଯେଉଁ ସ୍ଥାନରେ ଘର ତିଆରି କରିବାକୁ ହୁଏ ।

ଗୃହସ୍ଥାଲୀ—ସ୍ତ୍ରୀ. ବି. (କ.ଧା) ଗୃହରୂପସ୍ଥଳୀ, ଘରକରଣା ସଂସାରାଶ୍ରମ ।

ଗୃହସ୍ଥାଶ୍ରମ—ପୁଂ, କ୍ଲୀ.ବି.(୬ତତ୍) ଗୃହସ୍ଥର କର୍ତ୍ତବ୍ୟ ଧର୍ମ, ଦ୍ୱିତୀୟାଶ୍ରମ, ଗାର୍ହସ୍ଥ୍ୟ ଆଶ୍ରମ ।

ଗୃହସ୍ଥୂଳ—କ୍ଲୀ.ବି.ଘରରଖମ୍ବ ବା ଖୁଣ୍ଟି ।

ଗୃହସ୍ୱାମୀ—ପୁଂ. ବି.(୬ତତ୍) ଗୃହପତି, ଘରର ମାଲିକ, (ସ୍ତ୍ରୀ) ଗୃହସ୍ୱାମିନୀ ।

ଗୃହହନ୍ତା—ପୁଂ,ବିଂ (ଗୃହ + ହନ୍ — କ୍ୱିପ୍) ଗୃହନାଶକ, (ସ୍ତ୍ରୀ) ଗୃହହନ୍ତ୍ରୀ ।

ଗୃହହୀନ—ବିଂ. [୫ତତ୍] ଗୃହଶୂନ୍ୟ, ଯାହାର ଘରଦ୍ୱାର ନାହିଁ, (ସ୍ତ୍ରୀ) ଗୃହହୀନା ।

ଗୃହାକ୍ଷ—ପୁଂ. ବି. ଗବାକ୍ଷ, ବାତାୟନ, ଝରକା, ଜଳାକବାଟି ।

ଗୃହାଗତ—ପୁଂ. ବିଂ. (ଗୃହ + ଆଗତ) ୨ତତ୍, ଆଗନ୍ତୁକ, ଅତିଥି, ଯେଉଁ ବ୍ୟକ୍ତି ଗୃହକୁ ଆସିଅଛି, (ସ୍ତ୍ରୀ) ଗୃହାଗତା ।

ଗୃହାଙ୍ଗନା—ସ୍ତ୍ରୀ. ବି. (୬ତତ୍) ଘରଣୀ, କୁଳବଧୂ ।

ଗୃହାଧିପ—ପୁଂ.ବି. (୬ତତ୍) ଗୃହସ୍ଥ, (ବିଂ) ଗୃହସ୍ୱାମୀ, (ସ୍ତ୍ରୀ) ଗୃହାଧିପା ।

ଗୃହାଧିପତି—ପୁଂ.ବି. (୬ତତ୍) ଗୃହସ୍ଥ, (ବିଂ) ଗୃହସ୍ୱାମୀ ।

ଗୃହାନ୍ତର—କ୍ଲୀ. ବି. ଗୃହର ମଧ୍ୟଭାଗ, ଘରଭିତର (୫ତତ୍), ଅନ୍ୟଗୃହ ।

ଗୃହାପିକା—ସ୍ତ୍ରୀ.ବି.କୋୖଶ୍ଶ୍ରୀ ଟିକ୍ଟିକି ।

ଗୃହାମ୍ଳ—କ୍ଲୀ.ବି.(୬ତତ୍) କାଞ୍ଜିକ, କାଞ୍ଜି ।

ଗୃହାମ୍ବୁ—କ୍ଲୀ. ବି. କାଞ୍ଜିକ, କାଞ୍ଜି ।

ଗୃହାୟନିକ—ପୁଂ. ବି. ଗୃହସ୍ଥ ।

ଗୃହାରାମ—ପୁଂ. ବି. (ଗୃହ + ଆରାମ) କ.ଧା. ଗୃହର ନିକଟବର୍ତ୍ତୀ ଉପବନ, ଉଦ୍ୟାନ, ବଗିଚା ।

ଗୃହାର୍ଥ—ପୁଂ.ବି.(ଗୃହ + ଅର୍ଥ) ଗୃହକର୍ମ ।

ଗୃହାଳିକା—ସ୍ତ୍ରୀ. ବି. ଗୃହଗୋଧିକା, ଟିକ୍ଟିକି ।

ଗୃହାବଗ୍ରହଣୀ—ସ୍ତ୍ରୀ.ବି.(ଗୃହ ଅବଗ୍ରହ + ଅନ + ଈ) ଦେହଲୀ ପ୍ରାଚୀର, ପାଚଲି, ପାଚେରି ।

ଗୃହାବସ୍ଥିତ—ବିଂ. (ଗୃହ + ଅବସ୍ଥିତ) ଗୃହସ୍ଥିତ, ଯାହା ଘରେ ଅଛି ।

ଗୃହାଶୟା—ସ୍ତ୍ରୀ. ବି (ଗୃହ ଆ-ଶୀ + ଅ + ଆ) ତାମ୍ବୂଳ, ପାନଗଛ ।

ଗୃହାଶ୍ମ—ପୁଂ.ବି. ପେଷଣୀ, ଶିଳ, ଚକି, ପେଷଣା ।

ଗୃହାଶ୍ରମ—ପୁଂ. ବି. ( ଗୃହ + ଆଶ୍ରମ ) ଦ୍ୱିତୀୟାଶ୍ରମ, ଗୃହରୂପ ଆଶ୍ରମ, ଗୃହସ୍ଥର ଅନୁଷ୍ଠେୟ ଧର୍ମ, ଗାର୍ହସ୍ଥ୍ୟ ।

ଗୃହାଶ୍ରମୀ—ପୁଂ.ବିଂ.(ଗୃହଆଶ୍ରମ + ଇନ୍) ଯାହାର ଗୃହାଶ୍ରମ ଅଛି, ଗୃହସ୍ଥ ।

ଗୃହାସକ୍ତ—ପୁଂ.ବିଂ. (ଗୃହ+ଆସକ୍ତ) ୭ତତ୍, ଗାର୍ହସ୍ଥ୍ୟାସକ୍ତ, ସାଂସାରିକ କାର୍ଯ୍ୟରେ ଜଡ଼ିତ, ସଂସାରାନୁରାଗୀ, ଗୃହସ୍ଥିତ (ପକ୍ଷି ପ୍ରଭୃତି) ।

ଗୃହିଣୀ—ସ୍ତ୍ରୀ. ବି. (ଗୃହ+ଇନ୍+ଈ) ଭାର୍ଯ୍ୟା, ପତ୍ନୀ, ଗୃହସ୍ୱାମୀ ଯେଉଁ ଭାର୍ଯ୍ୟା ପ୍ରତି ସମସ୍ତଗୃହର ଭାର ଅର୍ପଣ କରେ ।

ଗୃହୀ—ପୁଂ.ବି. (ଗୃହ+ଇନ୍) ଗୃହାଶ୍ରମୀ, ଗୃହସ୍ଥ, ସଂସାରୀ, ଯାହାର ଗୃହ ଅଛି ।

ଗୃହୀତ—ବିଂ. (ଗ୍ରହ୍+ର୍ମ.କ୍ତ) ଆଶ୍ରିତ, ଅଭ୍ୟସ୍ତ, ଜ୍ଞାତ, ସ୍ୱୀକୃତ, ଅବଗତ, ପ୍ରାପ୍ତ, ଧୃତ, ସାକ୍ଷାତ୍କୃତ(ବି) ସ୍ୱୀକାର, ଜ୍ଞାନ, ପ୍ରାପ୍ତି, ଧାରଣ ।

ଗୃହୀତଗର୍ଭା—ସ୍ତ୍ରୀ.ବିଂ(ଗୃହୀତ+ଗର୍ଭ+ଆ) ବ.ବ୍ରୀ. ଗର୍ଭବତୀ ।

ଗୃହୀତଦିଶ ବିଂ.(ଗୃହୀତ+ଦିଶ୍ )ବ.ବ୍ରୀ. ପଳାୟିତ, ତିରୋହିତ ।

ଗୃହୀତନାମ—ପୁଂ.ବିଂ.(ଗୃହୀତ+ନାମ) ବ.ବ୍ରୀ, ଯାହାର ନାମ ପ୍ରଶସ୍ତ ।

ଗୃହୀତବିଦ୍ୟ—ପୁଂ. ବିଂ. (ବ.ବ୍ରୀ) ଯେ ବିଦ୍ୟାଗ୍ରହଣ (ପଠନ) କରିଅଛି, ଶିକ୍ଷିତ, ପଣ୍ଡିତ ।

ଗୃହୀତବେତନ—ବିଂ. (ବ.ବ୍ରୀ) ଯେ ବେତନ ଗ୍ରହଣ କରିଅଛି, ବେତନଗ୍ରାହୀ, (ସ୍ତ୍ରୀ) ଗୃହୀତବେତନା (ପୁଂ.ବି), କର୍ମଚାରୀ, ଦାସ, ଚାକର ।

ଗୃହୀତବ୍ୟ—ବିଂ.(ଗ୍ରହ୍+ତବ୍ୟ) ଗ୍ରହଣଯୋଗ୍ୟ, ଯାହା ଗ୍ରହଣ କରିବା ଉଚିତ ।

ଗୃହୀତା—ପୁଂ.ବିଂ. (ଗ୍ରହ+ତୃ) ଗ୍ରାହକ, ଗ୍ରହଣକର୍ତ୍ତା ।

ଗୃହୀତାସ୍ତ୍ର—ପୁଂ. ବିଂ. (ଗୃହୀତ+ଅସ୍ତ୍ର) ଯେଉଁ ବ୍ୟକ୍ତି ଅସ୍ତ୍ରଧାରଣ କରିଅଛି, ଅସ୍ତ୍ରଧାରୀ ।

ଗୃହୀତୀ—ପୁଂ.ବିଂ. (ଗୃହୀତ+ଇନ୍) ଯେ ଗ୍ରହଣ କରି ଅଛି, କୃତଗ୍ରହଣ ।

ଗୃହ୍ନୁ—ପୁଂ. ବିଂ. (ଗ୍ରହ+ନୁ) ଯେ ଗ୍ରହଣ କରେ, ଗ୍ରହୀତା ।

ଗୃହେଜ୍ଞାନୀ—ପୁଂ. ବିଂ. ଅଦୂରଦର୍ଶୀ, ନିତାନ୍ତ ନିର୍ବୋଧ ।

ଗୃହେରୁହ—ପୁଂ. ବିଂ. (ଗୃହେ+ରୁହ+ଅ) ଗୃହଜାତ ବୃକ୍ଷ ।

ଗୃହେନର୍ଦ୍ଦୀ—ପୁଂ. ବି. (ଗୃହେ+ନର୍ଦ୍ଦ+ଇନ୍) କାପୁରୁଷ,, ଯୁଦ୍ଧଭୀରୁ ।

ଗୃହେଶ—ପୁଂ. ବି. (୬ତତ୍) ଗୃହର ଅଧିପତି, ଘରର କର୍ତ୍ତା ।

ଗୃହେଶ୍ୱର—ପୁଂ. ବି. (୬ତତ୍) ଗୃହର ଅଧିପତି, ଘରର ମାଲିକ ।

ଗୃହୋତ୍ପାତ—ପୁଂ. ବି. (୬ତତ୍) ଗୃହର ବିଘ୍ନ, ଘରୋଇମାନଙ୍କ ପ୍ରତି କଷ୍ଟପ୍ରଦ ଘଟଣା ।

ଗୃହୋପକରଣ—କ୍ଳୀ. ବି. (୬ତତ୍) ଘର ତିଆରି କରିବାରେ ଯେଉଁ ଜିନିଷ ଲାଗେ, ଗୃହ ସାମଗ୍ରୀ, ଗୃହର ଅସବାବ ପତ୍ର ।

ଗୃହୋଳିକା—ସ୍ତ୍ରୀ.ବି.ଜ୍ୟେଷ୍ଠୀ, ଝିଟିପିଟି ।

ଗୃହ୍ଣାନ—ବିଂ. ( ଗ୍ରହ+କ, ଶାନଚ୍) ଯେ ଗ୍ରହଣ କରୁଅଛି, ଗ୍ରହଣଶୀଳ, (ସ୍ତ୍ରୀ) ଗୃହ୍ଣାନା ।

ଗୃହ୍ୟ—ପୁଂ. ବି. (ଗ୍ରହ+ର୍ମ. ଯ) ଗୃହପାଳିତ ପଶ୍ୱାଦି, ଗୃହ୍ୟସୂତ୍ର, (କ୍ଳୀ. ବି) ଗୃହ୍ୟ, ମଳଦ୍ୱାର, ବୈଦିକ କର୍ମକାଣ୍ଡର ଗ୍ରନ୍ଥବିଶେଷ, (ବିଂ) ଅସ୍ୱତନ୍ତ୍ର, ପରାଧୀନ, ଆସ୍ଥିର, ପକ୍ଷ, ପକ୍ଷପାତୀ, ଭକ୍ତ, ଗୃହୋତ୍ପନ୍ନ, ଗୃହସମ୍ବନ୍ଧୀୟ, ଗ୍ରହଣଯୋଗ୍ୟ ଆକର୍ଷିତ ହେବାର ଯୋଗ୍ୟ ।

ଗୃହ୍ୟକ—ବିଂ. (ଗୃହ୍ୟ+କ) ଗୃହପାଳିତ (ପଶ୍ୱାଦି), ପରାଧୀନ ।

ଗୃହ୍ୟଗୁରୁ—ପୁଂ. ବି. ଶିବ ।

ଗୃହ୍ୟଗ୍ରନ୍ଥ—ପୁଂ. ବି. ଗୃହ୍ୟ ସୂତ୍ର ।

ଗୃହ୍ୟସୂତ୍ର—ବି. ଗୋଭିଲାଦି କୃତ ବେଦୋକ୍ତ କର୍ମକାଣ୍ଡ ଗ୍ରନ୍ଥ, ( ଏଥିରେ ଗୃହସ୍ଥର ଦୈନିକ କର୍ତ୍ତବ୍ୟମାନ ବିବୃତ ହୋଇଅଛି ) ।

ଗୃହ୍ୟା—ସ୍ତ୍ରୀ. ବି. (ଗୃହ୍ୟ+ଆ) ସହର ତଳିଆ ଗ୍ରାମ, ବଡ଼ଗାଁର ନିକଟବର୍ତ୍ତୀ ଛୋଟଗାଁ, ପଲ୍ଲିମୌଜା, ପଡ଼ା ।

ଗୃହ୍ୟାଗ୍ନି—ବି. ବିବାହବେଦିରେ ପାଣିଗ୍ରହଣପରେ ପ୍ରଜ୍ୱଳିତ ହୋମାଗ୍ନି ।

ଗୄ—(ଧାତୁ) ଶବ୍ଦ କରିବା, ପାଟି କରି ଡାକିବା, ଉଚ୍ଚାରଣ କରିବା, ପ୍ରଚାର କରିବା, ପ୍ରଶଂସା କରିବା, ଗ୍ରାସ କରିବା, ଗିଳିବା ।

ଗେଁଇଦେବା—ପ୍ରା. (ଗଞ୍ଜାମ) (କ୍ରି.) ଠକି ଦେବା, ହଠାତ୍ କୌଣସି ପଦାର୍ଥକୁ ନେଇଯିବା, କୌଣସି ସ୍ଥାନ ତ୍ୟାଗକରି ହଠାତ୍ ଚାଲିଯିବା ।

ଗେଁ ଗେଁ—ଗ୍ରା. (ଧ୍ୱନ୍ୟନୁକରଣ) ଅ. ଶବ୍ଦକରି ହୋଇ କାନ୍ଦିବା, ଅସ୍ପଷ୍ଟରୂପେ କଥା କହିବା ।

ଗେଁପେଁ କରିବା—ଗ୍ରା. କ୍ରି. ଖେଳରେ ଭୁରୁଡ଼ାଇବା, ବାଧା ପାଇବା, କୌଣସି କଥାକୁ ଗୋଳାଇ ଦେବା, ଖରାପ ଭାବରେ କାର୍ଯ୍ୟ କରିବା, ପ୍ରା. (ସମ୍ବ) ଆତ୍ମସାତ୍ କରିବା ।

ଗେଙ୍ଗୁଟି—ଗ୍ରା. ବି. ପଥର ଚୂନର ଉପାଦାନ ଉପଲଖଣ୍ଡ, ମାଟିରେ ମିଳିବା ଚୂନ ଉତ୍ପାଦକ ପଥରଖଣ୍ଡ, (ଯାହାକୁ ପୋଡ଼ିଲେ ଚୂନ ବାହାରେ) ଏକ ପ୍ରକାର ବନ୍ୟ ଗୁଳ୍ମ ।

ଗେଜ—ପ୍ରା.(ଗଞ୍ଜାମ)ଯା.ବି. ମାପକାଠି ।

ଗେଜା—ଗ୍ରା.ବିଂ.ନିର୍ଗୁଣ, ମୂର୍ଖ, ନିର୍ବୋଧ, ଓଲୁ ।

ଗେଜେଟ—ଯା. ବି. ସମ୍ବାଦପତ୍ର, ସରକାରଙ୍କ ପରିଚାଳିତ ସମ୍ବାଦପତ୍ର ।

ଗେଞ୍ଜ—ଗ୍ରା.ବି. ଅଣଓସାରିଆ ସ୍ଥାନ ।

ଗେଞ୍ଜଗୋହିରି—ଗ୍ରା. ବି. ଅଣଓସାରିଆ ଓ ଗଭୀର ।

ଗେଞ୍ଜଣା—ଗ୍ରା.ବି. ଗେଞ୍ଜିବା, ଭୁଷିବା ଯେଉଁ କାଠିକୁ ଚୁଲ୍ଲୀରେ ଗେଞ୍ଜି ନିଆଁକୁ ସତେଜ ରଖାଯାଏ ।

ଗେଞ୍ଜା—ଗ୍ରା. ବି. କୌଣସି ମୁନିଆଁ ପଦାର୍ଥକୁ ଅନ୍ୟବସ୍ତୁ ମଧ୍ୟରେ ପୁରାଇବା ବା ଭୁଷିବା, (ବିଂ) ଗେଞ୍ଜାହୋଇଥିବା ।

ଗେଞ୍ଜାଗେଞ୍ଜି—ଗ୍ରା. ବି. ଏକ ସ୍ଥାନରେ ଯାକହୋଇ ବସିଥିବା (ବହୁବ୍ୟକ୍ତି ବା

ପଦାର୍ଥ ) ଚଳିବାପାଇଁ ଅତିସଙ୍କୀର୍ଣ୍ଣ, ଗ୍ରା.ବି. ବହୁଲୋକ ଏକଜା ଠେଲାଠେଲି ହୋଇ ଅଳ୍ପ ସ୍ଥାନ ଅଧିକାର କରିବା, ଅଳ୍ପସ୍ଥାନରେ ବହୁ ପଦାର୍ଥକୁ ଏକଜା ମାଡ଼ି ପୁରାଇବା ।

ଗେଞ୍ଜିବା—ଗ୍ରା.କ୍ରି.ଚେଞ୍ଚିବା, କୌଣସି ମୁନିଆଁ ପଦାର୍ଥରେ ଅନ୍ୟ ପଦାର୍ଥକୁ ଭୁଷିବା, ବହୁ ପଦାର୍ଥ ମଧ୍ୟରେ ଗୋଟିଏ ପଦାର୍ଥକୁ ଗୁଞ୍ଜିବା, ଜାକିବା, ଏକଜା ଗୁଞ୍ଜିବା, ଲେଖାହୋଇଥିବା ଅକ୍ଷର ବା ଧାଡ଼ି ମଧ୍ୟରେ ଅନ୍ୟ ଅକ୍ଷର ବା ଧାଡ଼ି ଲେଖିବା ।

ଗେଞ୍ଜିହେବା—ଗ୍ରା. କ୍ରି. ଭୁଷିହେବା, ଅଳ୍ପ ସ୍ଥାନରେ ଅତି କଷ୍ଟରେ ପଶି-ରହିବା ।

ଗେଟ୍‌ଘର—ଗ୍ରା. ବି. ଫାଟକ ନିକଟରେ ପ୍ରହରୀମାନଙ୍କର ରହିବା ଘର ।

ଗେଟମା—ଗ୍ରା.ବି.ପୁଂ. ବାଙ୍ଗର, ବାମନ, ଗେଡ଼ା ।

ଗେଟା—ଗ୍ରା.ବି. ଦାସ, ଗୋଲାମ, ତାସ-ଖେଳର ଗୋଲାମ ।

ଗେଟି—ଗ୍ରା. ବି. ରେଲ୍‌ଲାଇନର ଲୁହା ମଧ୍ୟରେ ବିଛାଯିବା ଓ ପକା ସଡ଼କରେ ବିଛାଯିବାନିମନ୍ତେ ବ୍ୟବହୃତ କ୍ଷୁଦ୍ର କ୍ଷୁଦ୍ର ଉପଳଖଣ୍ଡ(ପଥରଗୋଡ଼ି)ବା ଗେଙ୍ଗୁଟି ।

ଗେଟିଜହର—ଗ୍ରା. (ଗଞ୍ଜାମ) ବି. ଚିକା ସରୁ ଓ ଈଷତ୍‌ ରଙ୍ଗ-ଧାନ ।

ଗେଟେଇ—ଗ୍ରା. ବି. ଗୁହିଳଚନ୍ଦ୍ରାରେ ପ୍ରସ୍ତୁତ ଗରମଜଳସିଦ୍ଧ ପିଠା(ଗଇଣ୍ଠା) ।

ଗେଡ଼ା—ଗ୍ରା. ପୁଂ. ବିଂ. ଖର୍ବକାୟ, ବାଙ୍ଗୁରା, ଗ୍ରା. (ସମ୍ବ) ବି. ବାଡ଼ି, ଘାଇସନ୍ଧି, (ବିଂ) ଉଚ୍ଚ । [ନିମ୍ନ ।

ଗେଡ଼ୁ ।—ଗ୍ରା(ଗଞ୍ଜାମ)ବି. ଅତ୍ୟଳ୍ପ ଖେଳ

ଗେଣ ଗ୍ରା.ବି ମନର ଦମ୍ଭ,ଦାମ୍ଭିକତା, ଅଯଥା ସନ୍ତୋଷ, ଦେମାକ୍, ଗର୍ବ ।

ଗେଣ୍ଡା—ଗ୍ରା.ବି. ( ଅଶ୍ଳୀଳ ) ଲିଙ୍ଗମଳ, ଗେନ୍ଦା ।

ଗେଣ୍ଡୁ—ଗ୍ରା.ବି. (ଅଶ୍ଳୀଳ ଗାଳିବିଶେଷ) ଅକାମିକା ଓ ଘୃଣ୍ୟବ୍ୟକ୍ତି ।

ଗେଣ୍ଡା—ଗ୍ରା. ବି. କ୍ଷୁଦ୍ରକାୟାସ୍ଥ ଶମ୍ବୁକ, ଜଳରେ ଥିବା ପେଣ୍ଡୁଆକୃତି ଜନ୍ତୁ-ବିଶେଷ ।

ଗେଣ୍ଡାଳିଆ—ଗ୍ରା. ବି. ଜଳାଭୂମିରେ ଚରିବା କୂଳଚରବର୍ଗର ଏକପ୍ରକାର ପକ୍ଷୀ, ଗାଇଗେଣ୍ଡାଳିଆନାମକ ଗୁଳ୍ମ; ଏକ ପ୍ରକାର ସାପ ।

ଗେଣ୍ଡୁ—ପୁଂ. ବି. ( ଗମ୍ + କ.ଇଣ୍ଡୁ ) କନ୍ଦୁକ, ପେଣ୍ଡୁ, (ଗ୍ରା.ବି) କୁସୁମଫୁଲ, ଏକପ୍ରକାର ଧାତୁ, ଚନ୍ଦ୍ରିକାରେ ଦେଖା-ଯିବା ଏକପ୍ରକାର ପକ୍ଷୀ, ଏକପ୍ରକାର କଇଁଛ ।

ଗେଣ୍ଡୁକ—ପୁଂ. ବି. କନ୍ଦୁକ, କ୍ରୀଡ଼ା-ଗୋଲକ, ବଲ୍ ।

ଗେଣ୍ଡୁଲୀଳା—ବି.(ତତ୍ )କନ୍ଦୁକକ୍ରୀଡ଼ା, ବ’ଲ୍ ଖେଳ ।

ଗେଣ୍ଡେଇଶ୍ରୁଣୀ—ଗ୍ରା.ବି. ଦେବତାରୂପେ କଳ୍ପିତ, ଗେଣ୍ଡା ଶାମୁକ ।

ଗେଧ—ଗ୍ରା. ପୁଂ. ବି. ଅଣ୍ଡିରାମାଙ୍କଡ଼, ଦଳପତି କପି ।

ଗେଧା—ଗ୍ରା. ବିଂ. ମୋଟା, ସ୍ଥୂଳକାୟ ।

ଗେଧେଇବା—ଗ୍ରା. କ୍ରି. କାର୍ଯ୍ୟ କରିବା ପାଇଁ ଅନିଚ୍ଛୁକ ବ୍ୟକ୍ତିକୁ କାର୍ଯ୍ୟ କରିବା ନିମିତ୍ତ ବାରମ୍ବାର ପ୍ରବର୍ତ୍ତାଇବା ।

ଗେନବା ପ୍ରା. (ଭଞ୍ଜୀ) କଣିବା ।

ଗେଦରା—ଗ୍ରା.ପୁ.ବିଂ.(ଅସୁନ୍ଦର ଲେଖା) ଅପରିପାଟୀ, (ସ୍ତ୍ରୀ) ଗେଦ୍ରୀ ।

ଗେଦରେଇବା—ଗ୍ରା.କ୍ରି. ଲେଖାକୁ ଅସୁ-ନ୍ଦର କରି ଓ କାଳି ଲେପି ଲେଖିବା, ଖେଳ ଗୋଳାଇବା ।

ଗେଦଲା—ଗ୍ରା. (ହିନ୍ଦି) ବିଂ. ଗୋଳିଆ (ପାଣି) ।

ଗେଦଲି—ଗ୍ରା. ( ସମ୍ବ ) ବିଂ. କଅଁଳ ପିଲା ବା ଛୁଆ ।

ଗେନ୍ଦୁକ—ବି. ( ଗମ + ଇନ୍ଦୁ + କ ) ପେଣ୍ଡୁ, କନ୍ଦୁକ, ବ’ଲ୍, ବର୍ତ୍ତୁଳାକୃତି ଖେଳନା ।

ଗେନ୍ଦା—ଗ୍ରା. ବି. (ଅଶ୍ଳୀଳ) ଲିଙ୍ଗମଳ, (ଏହା ଅତ୍ୟନ୍ତ ଦୁର୍ଗନ୍ଧମୟ) ।

ଗେନ୍ଦାସୁଙ୍ଘା—ଗ୍ରା. ବିଂ. (ଅଶ୍ଳୀଳଗାଳି) ଯେଉଁ ବ୍ୟକ୍ତି ପରଦ୍ୱାରା ଲାଞ୍ଛିତ ବା ପ୍ରତାରିତ ହୁଏ, ନିର୍ବୋଧ, ଓଲୁ ।

ଗେନ୍ଦାସୁଙ୍ଘେଇବା—ଗ୍ରା. କ୍ରି.(ଅଶ୍ଳୀଳ—ଲ.ଅ.) କୌଣସି ବ୍ୟକ୍ତିକୁ ପ୍ରତାରଣା କରିବା, କୌଣସି ବ୍ୟକ୍ତିକୁ ତାହାର ପ୍ରାପ୍ୟରୁ ବଞ୍ଚିତ କରିବା ।

ଗେନ୍ଦାସୁଙ୍ଘିବା—ଗ୍ରା.କ୍ରି.(ଅଶ୍ଳୀଳ) ଅନ୍ୟ-ଦ୍ୱାରା ପ୍ରତାରିତ ହେବା, ନିଜ ପ୍ରାପ୍ୟରୁ ବଞ୍ଚିତ ହେବା । [ଗୁଣ୍ଡା ।

ଗେଫା—ଗ୍ରା. ବି. ଖାଦ୍ୟର ବଡ଼ ବଡ଼

ଗେବ୍‌ର—ଗ୍ରା. ପୁଂ. ବିଂ.ଯେ ଖେଳରେ ଗୋଳାଏ ।

ଗେବ୍‌ରଗେବର—ଗ୍ରା. ବି. ଖେଳରେ ଗୋଳାଇବା, ଗାରିଆଗାରି ।

ଗେବ୍‌ରେଇବା—ଗ୍ରା.କ୍ରି.(ଖେଳ)ଗୋଳା ଇବା, ଅକ୍ଷରକୁ କାଳିରେ ଲେପି ଅନ୍ୟ ଅକ୍ଷର ମଧ୍ୟରେ ଗୁଞ୍ଜି ଲେଖିବା, ଏଣ୍ଡୁ-ତେଣ୍ଡୁ କହି ପ୍ରକୃତ କଥା ପ୍ରକାଶ ନ କରିବା, (ପ୍ରା.ସମ୍ବ. କ୍ରି) କୌଣସି ପଦାର୍ଥକୁ ଲୁଗ୍ରଇ କରି ନେଇଯିବା, ଅସ୍ପଷ୍ଟସ୍ୱରରେ କଥା କହିବା, ଗେଁପେଁ କରିବା, ଲେଖା ଉପରେ ଗାରେଇ-ଦେବା ।

ଗେବ—ଗ୍ରା.ବି.କୌଣସି ବର୍ତ୍ତୁଳ ପଦାର୍ଥ ଉପରେ ମରିଯାଇ ଉପରକୁ ବାହାରି-ଥିବା ମୁଣ୍ଡି ଭୁଣ୍ଡି, କୌଣସି ପଦାର୍ଥରେ ମରିଯିବା ଚିହ୍ନସୂଚକ ଚିପଚିହ୍ନ ।

ଗେବଲା—ଗ୍ରା. (ବାଲେ) ବି. ଖାଦ୍ୟର ବଡ଼ଗୁଣ୍ଡା ।

ଗେବାଥେବା—ଗ୍ରା. ଅବ୍ୟ. ଯାହାତାହା, ସଟାବଟା, କଣ୍ଠିତ ସ୍ୱରରେ, କାମ-ଚଳିବାମାଫିକ ।

ଗେବିବା—ଗ୍ରା. କ୍ରି. ଖାଇବା, ବଡ଼ବଡ଼ ଗୁଣ୍ଡା ଖାଇବା, ଦୁର୍ଗିବା, ଗିଳିବା, ଗେଞ୍ଜିବା ।

ଗେମଟା—ଗ୍ରା. ବିଂ.ଖର୍ବକାୟ,ବାଙ୍ଗର ।

ଗେମଣା—ଗ୍ରା.ପୁଂ.ବିଂ. ଗେଡ଼ା ଓ ସ୍ଥୂଳ (ବି) ଗେଡ଼ା ଓ ସ୍ଥୂଳବ୍ୟକ୍ତି ।

ଗେୟ—ବିଂ. ( ଗୈ + ର୍ମ.ଯ ) ଯାହା ଗାଇବା ଉଚିତ, ବି. (ଭା.ଯ) ଗୀତ, ଗାନ ।

**ଗେରସ୍ତ**—ଗ୍ରା.ପୁଂ.ବି. ଗୃହସ୍ୱାମୀ, ପତି ସ୍ୱାମୀ, ଘରକରଣା ଲୋକ, ଗୃହସ୍ଥ, ଘଇତା ।

**ଗେଗ**—ଗ୍ରା.(ସମ୍ବ)ଅବ୍ୟ.ଗୁଡ଼ା,ଗୁଡ଼ାକ ।

**ଗେରଗେର**—ଗ୍ରା.(ସମ୍ବ)ଅବ୍ୟ.ଅନେକ, ଗୁଡ଼ାଏ, (ଗ୍ରା.ବି) ଗାଳି, ତିରସ୍କାର, ଅପମାନ ।

**ଗେରୁ**—ଗ୍ରା.ବି. (ସଂ-ଗୈରିକ) ରକ୍ତବର୍ଣ୍ଣ ମୃତ୍ତିକାବିଶେଷ, ଗେରୁମାଟି ।

**ଗେରୁଆ**—ଗ୍ରା. ବିଂ. (ସଂ—ଗୈରିକାକ୍ତ) ଗେରୁ-ରଙ୍ଗପରି ରକ୍ତବର୍ଣ୍ଣ, ଗେରୁ-ଦ୍ୱାରା ରଞ୍ଜିତ ।

**ଗେରୁମୁଣ୍ଡି**—ଗ୍ରା.ବି.(ଗାଳିବିଶେଷ)ଯାହା ଦ୍ୱାରା (କୌଣସି ଲୋକର) କିଛିମାତ୍ର ଅନିଷ୍ଟ ହୋଇପାରିବ ନାହିଁ, ଉଚ୍ଚ ପଦାରୂଢ଼ ଅଯୋଗ୍ୟ ବ୍ୟକ୍ତି ।

**ଗେର୍ଦ**—ଯା.ବି. ବେଷ୍ଟିତ ବୃତ୍ତ, ବେଷ୍ଟିତ ପ୍ରଦେଶ,କୌଣସିସ୍ଥାନର ଚତୁଃସୀମା ।

**ଗେର୍ଦବାର**—ଯା.ବି. ଅନ୍ତସ୍ଥଳ,ଆବରଣ ।

**ଗେଲ**—ଗ୍ରା. ବି. ଶ୍ରଦ୍ଧା, ପ୍ରେମ, ସ୍ନେହ, ଇଙ୍ଗିତ, ଥଟ୍ଟା, ବାତ୍ସଲ୍ୟଯୁକ୍ତ ଆଦର, ଶିଶୁ ଓ ସ୍ତ୍ରୀମାନଙ୍କ ପ୍ରତି ସସ୍ନେହ ଆଦର ।

**ଗେଲକରିବା**—ଗ୍ରା. କ୍ରି. ଶିଶୁମାନଙ୍କୁ ଅତ୍ୟନ୍ତ ସ୍ନେହରେ ଖେଳାଇବା, ଥଟ୍ଟା ପରିହାସ କରିବା ।

**ଗେଲପ**—ଯା. ବି. ଘୋଡ଼ାମାନଙ୍କର ଏକ ପ୍ରକାର ଗୁଲି ।

**ଗେଲବସର**—ଗ୍ରା. ବି. ସ୍ନେହ, ଅଦର, ସ୍ନେହର ପାତ୍ର, ଅଯଥା ସ୍ନେହ ବା ଆଦର, (ଗ୍ରା. ବିଂ.) ଅତ୍ୟନ୍ତ ସ୍ନେହ ଓ ଆଦରରେ ବଢ଼ିଥିବା ।

**ଗେଲବସରିଆ**—ଗ୍ରା. ବିଂ. ସ୍ନେହ ଓ ଆଦର ପ୍ରାପ୍ତ, ଯାହାକୁ ଅଯଥା ଆଦର କରାଯାଏ, ଅତ୍ୟନ୍ତ ସ୍ନେହଆଦରରେ ଲାଳିତ ।

**ଗେଲଲାଗିବା**—ଗ୍ରା.କ୍ରି. (କୌଣସିକାର୍ଯ୍ୟ) ଅନାୟାସ ସାଧ୍ୟବୋଲି ବୋଧହେବା; କୌତୁକପରି ଜଣାଯିବା ।

**ଗେଲଇ ଗେଲଇ**—ଗ୍ରା. କ୍ରି.ବିଂ. ଅତି-ଅନାୟାସରେ,ଖେଳଲାପରି, ଅନ୍ୟଠାରୁ ଆଦର ପାଇବା ପ୍ରତ୍ୟାଶାରେ ସ୍ନେହ-ଭଙ୍ଗୀ ଦେଖାଇ ।

**ଗେଲେ**—ଗ୍ରା. କ୍ରି. ବିଂ. ଆନନ୍ଦରେ କୌତୁକରେ ।

**ଗେହ୍ଲା**—ଗ୍ରା.ବିଂ.(ପୁଂ ଓ ସ୍ତ୍ରୀ)ସେରନ୍ଥା, ଅତି ସ୍ନେହ ବା ଆଦରର ପାତ୍ର,(ଗ୍ରା ବି) ଅତିଆଦର, ସ୍ନେହ ।

**ଗେହ୍ଲାଇ**—ଗ୍ରା. ସ୍ତ୍ରୀ. ବିଂ. ସେରନ୍ଥୀ, ସ୍ନେହ ଓ ଆଦରର ପାତ୍ରୀ, ସ୍ନେହ-ପାଳିତା, ମଧୁର, କୋମଳ, ଆଦର-ପୂର୍ଣ୍ଣ, (ବି) ସେରନ୍ଥୀ ସ୍ତ୍ରୀ ବା ବାଳିକା, ଆଦର-ପାଳିତା ସ୍ତ୍ରୀ ବା ବାଳିକା ।

**ଗେଷ୍ଣ**—ପୁଂ.ବି.(ଗା+ଇଷ୍ଣ) ଉଦ୍‌ଗୋପ-ଜୀବୀ,ସାମଗାନକର୍ତ୍ତା, ପର୍ବତଗ୍ରନ୍ଥି,ଗାୟକ ଗୀତବାଦ୍ୟ ବ୍ୟବସାୟୀ ।

**ଗେଷ୍ଣୁ**—ପୁଂ.ବି.(ଗା+ଇଷ୍ଣୁ)ଗାୟନ, ନଟ, ସାମବେଦ ଗାନକାରୀ, ଗାୟକ ।

**ଗେସା**—ପ୍ରା. (ଆଳି) ବି. ଟାପରା, ପରିହାସ ।

**ଗେହ**—କ୍ଲୀ. ବି. (ଗୋ+ଈହ. ଅ) ଗୃହ, ଆଳୟ, ବାସସ୍ଥାନ, ଘର ।

**ଗେହଦାହ**—ପୁଂ. ବି. (ଗେହ+ଦାହ) ୬ତତ୍, ଗୃହଦାହ, ଘରପୋଡ଼ି ।

**ଗେହପତି**—ପୁଂ. ବି. (୬ତତ୍)ଗୃହପତି, ଗୃହସ୍ୱାମୀ ।

**ଗେହଭୂ**—ସ୍ତ୍ରୀ. ବି (୬ତତ୍) ଗୃହସ୍ଥାନ ।

**ଗେହନୀ**—ସ୍ତ୍ରୀ ବି. (ଗେହ+ଇନ୍+ଈ) ଗୃହିଣୀ ।

**ଗେହିବା**—ଗ୍ରା.କ୍ରି. (ଯେ ଗୃହିଣୀ ସଙ୍ଗେ ଗୃହସ୍ଥ ଧର୍ମ ପାଳନ କରେ ) ସଙ୍ଗମ କରିବା,ମୈଥୁନ କରିବ (ଗ୍ରା.ଗଞ୍ଜା. କ୍ରି) ବହୁଜନତାମଧ୍ୟରୁ ହଠାତ୍ ଉଠି ସ୍ଥାନା-ନ୍ତରକୁ ଯିବା ।

**ଗେହୀ**—ପୁଂ. ବିଂ. (ଗେହ+ଇନ୍) ଗୃହୀ, ଗୃହସ୍ଥ, ( ଗ୍ରା. ପ୍ରଚଂସ୍ତ ) ସ୍ତ୍ରୀ. ( ପ୍ରାୟଶଃ ଅନ୍ୟଶବ୍ଦ ସଂଯୋଗରେ ବ୍ୟବହୃତ, ଯଥା-ଘୋଡ଼ାଗେହୀ)ସଙ୍ଗମ-କାରିଣୀ ।

**ଗେହୀପୁଅ**—ଗ୍ରା. ପୁଂ. ବି. ( ଅଶ୍ଳୀଳ ) ନଷ୍ଟଚରିତ୍ରାସ୍ତ୍ରୀର ପୁତ୍ର,ଗିହାଳୀର ପୁତ୍ର ।

**ଗେହେକ୍ଷ୍ୱେଡ଼ୀ**—ପୁଂ. ବିଂ. ଘରେ ବସି ନିଜ ପରାକ୍ରମ ଦେଖାଇବା, ଯୁଦ୍ଧରେ ଅକ୍ଷମ ।

**ଗେହେଦାହୀ**—ପୁଂ. ବିଂ.(ଗେହେ+ଦହ+ଇନ୍) କାପୁରୁଷ ।

**ଗେହେଦୃପ୍ତ**—ପୁଂ. ବିଂ. ( ଗେହେ+ଦୃପ୍ତ ) ଯେ କେବଳ ଘରେ ବସି ଆତ୍ମ-ଶ୍ଳାଘା କରେ, କାପୁରୁଷ ।

**ଗେହେଧୃଷ୍ଟ**—ପୁଂ. ବିଂ. ଯେ ଆପଣା ଘରେ ଧୃଷ୍ଟତା ପ୍ରକାଶ କରେ ।

**ଗେହେନର୍ଦ୍ଦୀ**—ପୁଂ.ବିଂ. ଯେ ଘରେ ବସି ଗର୍ଜେ, କାପୁରୁଷ ।

**ଗେହେମେହୀ**—ପୁଂ. ବିଂ. (ଗେହେ+ମୁହ୍+ଇନ୍) ଯେ ଘରରେ କେବଳ ମୋହପ୍ରାପ୍ତ ହୁଏ ।

**ଗେହେବିଜିତୀ**—ପୁଂ. ବିଂ. କାପୁରୁଷ ।

**ଗେହେବ୍ୟାଡ଼**—ପୁଂ. ବିଂ. ଦାମ୍ଭିକ ।

**ଗେହେଶୂର**—ପୁଂ.ବି.(ଗେହେ+ଶୂର) କାପୁରୁଷବ୍ୟକ୍ତି, ଅକ୍ଷମବ୍ୟକ୍ତି, (ବିଂ) ଯେଉଁବ୍ୟକ୍ତି ଘରେ ମାଇପଙ୍କ ଆଗରେ ବୀରତ୍ୱ ପ୍ରକାଶ କରେ; କିନ୍ତୁ ବାହାରେ କାପୁରୁଷତା ଦେଖାଏ ।

**ଗେହୋପବନ**—କ୍ଲୀ. ବି. ଘରନିକଟ ଉଦ୍ୟାନ ।

**ଗେହ୍ୟ**—ବିଂ.(ଗେହ+ଯ)ଗୃହୋତ୍ପନ୍ନ, ଘରହୁତକର । [ କରିବା ।

**ଗୈ**—(ଧାତୁ) ଗାଇବା,ଗୀତଦ୍ୱାରା ପ୍ରକାଶ

**ଗୈର**—ବିଂ. (ଗିର+ଅ)ପର୍ବତୋତ୍ପନ୍ନ, ଯାହା ପର୍ବତରୁ ଜାତହୁଏ, ଗିରି-ସମ୍ବନ୍ଧୀୟ, (କ୍ଲୀ.ବି) ଉପଧାତୁବିଶେଷ, (ସ୍ତ୍ରୀ) ଗୈରୀ ।

**ଗୈରକଂବୁଳ**—କ୍ଲୀ. ବି.ନୀଳକଣ୍ଠ ତାଳକ-ବୋଲ୍ ବର୍ଷ ଓ ଲଘୁକାଳିକ ଗନ୍ଧ-ଯେଗବିଶେଷ ।

**ଗୈଇବ୍**—ଯା.ବି. ଗୋପନ,ଲୁଗ୍ଇବା ।

**ଗୈରାୟଣ**—ପୁଂ. ବି. (ଗିର+ଆୟଣ) ଗିରିର ଗୋତ୍ରାପତ୍ୟ ।

**ଗୈରିକ**—କ୍ଲୀ. ବି. (ଗିର+ଇକ) ଉପ-ଧାତୁବିଶେଷ, ଗେରୁ ମାଟି, ସ୍ୱର୍ଣ୍ଣ,(ବିଂ) ଗିରିଜାତ, ଗିରିସମ୍ବନ୍ଧୀୟ, ଗେରୁଆ ।

**ଗୈରିକଂବ୍**—କ୍ଲୀ. ବି. ମାନକଣ୍ଠ ତାଜ-କୋକ୍ତ ବର୍ଷ ଓ ଲଗ୍ନକାଳକ ଗ୍ରହଯୋଗ ବିଶେଷ । [ଲୁଗ ।

**ଗୈରିକବସନ** କ୍ଲୀ.ବି.(କ.ଧା) ଗେରୁଆ

**ଗୈରିକାକ୍ଷ**—ପୁଂ.ବି. (ଗୈରିକ+ଅକ୍ଷି+ଅ) ଜଳମଧୁକ (ମହୁଲ) ବୃକ୍ଷ ।

**ଗୈରିକାଞ୍ଜନ**—କ୍ଲୀ. ବି. ଗୈରିକ ନିର୍ମିତ ଅଞ୍ଜନ ।

**ଗୈରିକ୍ଷିତ**—ପୁଂ. ବି. (ଗୈରିକ୍ଷିତ୍+ଅ) ଗିରିକ୍ଷିତ ବଂଶୋତ୍ପନ୍ନ ଜଣେ ପ୍ରାଚୀନ ରାଜର୍ଷି ।

**ଗୈରୀ**—ସ୍ତ୍ରୀ. ବି. (ଗିର+ଅ+ଈ) ଲଙ୍ଗଲୀବୃକ୍ଷ ।

**ଗୈରେୟ**—କ୍ଲୀ.ବି.(ଗିରି+ଏୟ)ଶିଳା-ଜତୁ, ଗେରୁ, ଲୋବାନ୍-ପର୍ବତରୁ ନିଃସୃତ କୃଷ୍ଣବର୍ଣ୍ଣ ତୈଳବିଶେଷ,(ବିଂ) ପାର୍ବତ୍ୟ,ପର୍ବତଜାତ,(ସ୍ତ୍ରୀ) ଗୈରେୟୀ ।

**ଗୋ**—ବି. ବି. (ଗମ୍+ଓ) ଗୋରୁ, ଗାଈ. ରଶ୍ମି, କିରଣ, ଯଜ୍ଞ, ସ୍ୱରକ, ସ୍ୱର୍ଗ, ଚନ୍ଦ୍ର, ସୂର୍ଯ୍ୟ, ଗୋମେଧଯଜ୍ଞ, ଋଷଭନାମକ ଏକପ୍ରକାର ଔଷଧ,ଚକ୍ଷୁ, ବାଣ, ଦିଗ, ବାଣୀ, ବାକ୍ୟ, ପୃଥିବୀ, ଜଳ, ପଶୁ, ମାତା, ପୁଲସ୍ତ୍ୟଙ୍କ ଭାର୍ଯ୍ୟା, ନବସଂଖ୍ୟା,ଇନ୍ଦ୍ରିୟ, ଲୋମ, ବୃଷରାଶି, ବେଦମାତା, ଗାୟତ୍ରୀ, ଋଷିବିଶେଷ, ନକ୍ଷତ୍ର, ବଜ୍ର, ଗୁଆ, ଦଶକୋଟିସଂଖ୍ୟା, ଗାୟକ, ଗୃହ । (ଗୋ ଅଛୁ ।

**ଗୋଅଗ୍ର**—ବିଂ. ଯାହାର ଅଗ୍ରଭାଗରେ

**ଗୋଅଜନ**—ବିଂ. (ଗୋ+ଅଜ୍+ଅନ) ଗୋଚାଳକ ।

**ଗୋଅର୍ଣସ୍**—ବିଂ. ଯାହାଠାରେ ଜଳପର ଗୋମାନେ ବୃଦ୍ଧି ପାଆନ୍ତି ।

**ଗୋ-ଅଶ୍ୱ**—କ୍ଲୀ.ବି.(ଗୋ+ଅଶ୍ୱ)ଗୋରୁ ଓ ଅଶ୍ୱ ।

**ଗୋଆ**—ଗ୍ରା. ବି. ପର୍ତ୍ତୁଗିଜ୍ ଅଧିକୃତ ଭାରତର ପଶ୍ଚିମ ଉପକୂଳସ୍ଥ ନଗର-ବିଶେଷ ।

**ଗୋଆଲଦେଉ**—ଗ୍ରା. ବି. ଦଶପଲ୍ଲର ପର୍ବତବିଶେଷ ।

**ଗୋଆଲନୀ**—( ଗୋପାଳିନୀ ଶବ୍ଦଜ ) ଗୋପାଙ୍ଗନା, ଗୋପାଳମାନଙ୍କର ସ୍ତ୍ରୀ, ଗଉଡ଼ୁଣୀ ।

**ଗୋଆଲ**—ଗ୍ରା. ପୁଂ. ବି. ଗଉଡ଼ (ସ୍ତ୍ରୀ) ଗୋଆଲୁଣୀ ।

**ଗୋଆଲ**—ଗ୍ରା. (ବାଲେ. ମେଦିନୀପୁର) ବି. ଗୋପାଳ, ଯେଉଁମାନେ ଗୋରୁ ପାଳନ କରନ୍ତି,ଦୁଗ୍ଧବିକେତା ଗଉଡ଼ ।

**ଗୋଆଲିଆଲତା**—ଗ୍ରା. ବି. ଏକପ୍ରକାର ଲତା,ହଂସପାଦୀ ।

**ଗୋଇ**—ଗ୍ରା. ବି. ମର୍ମକଥା, ଗୁପ୍ତକଥା, ଗୃହଚ୍ଛିଦ୍ର, ଗୋଧିସାପ, ଗଣ୍ଠି, ଗୋପାଙ୍ଗନା ।

**ଗୋଇଆ ନିମନ୍ତ୍ରଣ**—ଗ୍ରା.ବି.(ରାଜପରିବାର ମାନଙ୍କର) ବିବାହ ବାସିଦିନ ସକାଳ-ଠାରୁ ବର ଓ କନ୍ୟାପକ୍ଷୀୟ ବ୍ୟକ୍ତି-ମାନଙ୍କର ହଳଦୀତୈଳ-ମର୍ଦ୍ଦନ ଏବଂ ଅବିର ଚୂଆଚନ୍ଦନ ବୋଳାବୋଳିହୋଇ ଓ ପିଚକାରୀ ମାରାମାରି ହୋଇ ସ୍ନାନ-କରିବା ।

**ଗୋଇଖୋଲିବା,ଗୋଇକାଢ଼ିବା**-ଗ୍ରା. କ୍ରି. ପରର ଗୁପ୍ତକଥା ବା ଗୃହଚ୍ଛିଦ୍ରପ୍ରକାଶ କରିବା ।

**ଗୋଇଠା**—ଗ୍ରା. ବି. ପଦାଘାତ ।

**ଗୋଇଠି**—ଗ୍ରା. ବି. ପାଦମୂଳ, ଗୁଲ୍ଫ, ରେଣ୍ଡ, ପାଦତଳର ଯେଉଁଅଂଶ ଠିକ୍ ପାଦଗଣ୍ଠିର ତଳେ ଥାଏ । (ବିଶେଷ ।

**ଗୋଇଠିଆସନ**—ଗ୍ରା. ବି. ଯୋଗାସନ-

**ଗୋଇନ୍ଦା**—ଗ୍ରା.ବି. ଚର,ସମ୍ବାଦଦାତା, ଗୁପ୍ତଚର, ଯେଉଁମାନେ ଗୋପନୀୟ-ଭାବରେ ଗୁପ୍ତସମ୍ବାଦ ସଂଗ୍ରହ କରନ୍ତି ।

**ଗୋଋଜୀକ**—ବିଂ.ଦଧ୍ୟାଦିଦ୍ୱାରା ସଂସ୍କୃତ ।

**ଗୋଏ**—ପ୍ରା. (ସମ୍ବ) ବି. (ସଂ-ଗୋଧିକା) ଗୋଧି ।

**ଗୋଆଁର୍**—ଗ୍ରା. ବିଂ. (ସଂ-ଗ୍ରାମ୍ୟ)ଏକ-ଜିଦିଆ, ନିର୍ବୋଧ, ମଫସଲିଆ,ମୁସଲ-ମାନମାନଙ୍କର ମହରମର ଶେଷଦିନ ରାତିରେ ଶବାଧାର (ତାଜିଆ)କୁ ନେଇ ଶୋଭାଯାତ୍ରା କରିବା ଉତ୍ସବ ।

**ଗୋଁଗାଁ**—ଗ୍ରା. ଅବ୍ୟ.ଗଁ ଗଁ ଶବ୍ଦ, (ପ୍ରହାର ବା ଯନ୍ତ୍ରଣାଜନିତ) ଆସନ୍ନମୃତ୍ୟୁ ଜୀବର ଆର୍ତ୍ତରବ ।

**ଗୋକଣ୍ଟ**—ପୁଂ. ବି. ଗୋକ୍ଷୁର ବୃକ୍ଷ, ଗୋଖରୁ ଗଛ ।

**ଗୋକଣ୍ଟକ**—ପୁଂ. ବି. ଗୋକ୍ଷୁର ଗଛ, ଗୋରୁଖୁରୁ ଆବଡ଼ାଖାବଡ଼ା, ବିଷମୋ-ନ୍ନତ ।

**ଗୋକନ୍ଦା**—ଗ୍ରା. ବି. ଅଙ୍ଗୁଳି-ସନ୍ଧିରେ ହେବା ଚର୍ମରୋଗବିଶେଷ ।

**ଗୋକର୍ଣ୍ଣ**—ପୁଂ. ବି. (ଗୋ+କର୍ଣ୍ଣ)ସର୍ପ, ଅଶ୍ୱତର, ଖଚର, ମୃଗବିଶେଷ, ଗୋ-ହରଣ, ଗଣଦେବତାବିଶେଷ,ପରିମାଣ-ବିଶେଷ, ବିତସ୍ତି, ଅନାମିକା ପ୍ରାନ୍ତରୁ ଅଙ୍ଗୁଷ୍ଠପ୍ରାନ୍ତପର୍ଯ୍ୟନ୍ତ ପରିମାଣ, ଗଣ୍ଡୂଷ, ରୁଦ୍ରବିଶେଷ, କାଶୀସ୍ଥ ଗୋଟିଏ ଶିବ-ଲିଙ୍ଗ, କାଶ୍ମୀରରାଜା ଗୋପାଦିତ୍ୟଙ୍କ ପୁତ୍ର, ଉତ୍ତର କର୍ଣ୍ଣାଟର ଗୋଟିଏ ନଗର, ହିମାଳୟସ୍ଥ ତୀର୍ଥବିଶେଷ ।

**ଗୋକର୍ଣ୍ଣୀ**—ସ୍ତ୍ରୀ.ବି. ମୂର୍ବାଲତା, ମୁରୁଗା-ଗୁଳ ।

**ଗୋକର୍ଣ୍ଣେଶ୍ୱର**—ବି. ଗୋକର୍ଣ୍ଣତୀର୍ଥସ୍ଥ ଗୋଟିଏ ଶିବଲିଙ୍ଗ ।

**ଗୋକଲ**—ବି. (ଗୋ+କଲ)ଗୋଗ୍ରାସ, ଗୋରୁଙ୍କୁ ଦେବା ଘାସ ।

**ଗୋକବଳ**—ବି. (୬ତତ୍) ଗୋଗ୍ରାସ, ଗୋରୁଙ୍କୁ ଦେବା ଘାସ । [ଗୋରୁ ।

**ଗୋକା**—ସ୍ତ୍ରୀ. ବି. ( ଗୋ+କ+ଆ)

**ଗୋକକ**—ମହୀଶୂର ରାଜ୍ୟର ବେଲଗାଁ-ଜିଲ୍ଲାର ପ୍ରଧାନ ନଗର ।

**ଗୋକାମ**—ବିଂ. (ଗୋ+କାମି+ଅ) ଯେଉଁଲୋକ ଗୋରୁ କାମନା କରେ ।

**ଗୋକାମୁଖ**—ପୁଂ. ବି. ଭାରତବର୍ଷସ୍ଥ ଗୋଟିଏ ପର୍ବତ ।

**ଗୋକାରୁ**—ଉତ୍ତର କାନଡ଼ା ଅନ୍ତର୍ଗତ ଗୋଟିଏ ନଗର ।

**ଗୋକାଲବ୍ରତ**—କ୍ଲୀ. ବି. କୁମାରୀମାନ-ଙ୍କର ଗୋପୂଜାରୂପ ବ୍ରତବିଶେଷ ।

**ଗୋକରଟିକା**—ସ୍ତ୍ରୀ. ବି. ସାରିକା ପକ୍ଷୀ, ସାରୀ ।

ଗୋକରଣ୍ଟୀ—ସ୍ତ୍ରୀ.ବ.(ଗୋକର+ଅଟ୍+ଅ+ଈ) ସାରକା ପକ୍ଷୀ ।

ଗୋକଲ—ପୁଂ.ବ.(ଗୋ+କଲ)ମୂଷଲ ଲଙ୍ଗଲ, ହ୍ରାମାମନ୍ତ୍ରୀର ପୁଅ ।

ଗୋକାଲ—ପୁଂ.ବ. (ଗା+କାଲ)ମୂଷଲ ଲଙ୍ଗଲ, ହ୍ରାମାମନ୍ତ୍ରୀର ପୁଅ ।

ଗୋକୁଳ—କ୍ଲୀ. ବ. ଗୁହାଳ,ଗୋସମୂହ, ଗୋଷ୍ଠ, ମଥୁରାର ପୂର୍ବ ଓ ଦକ୍ଷିଣ କୋଣରେ ଅବସ୍ଥିତ ଯମୁନାର ବାମ-ତୀରବର୍ତ୍ତୀ ଗୋଟିଏ ପୁଣ୍ୟସ୍ଥାନ ।

ଗୋକୁଳଜନ୍ମ—ବିଂ. (ଗୋକୁଳ+ଜ+କ୍ୱିପ୍) ଯେ ଗୋକୁଳ ଜନ୍ମ କରିଅଛୁ ।

ଗୋକୁଳଚନ୍ଦ୍ର—ଆର୍ଯ୍ୟ ଜଚନ୍ଦ୍ରକାନାମକ ସଂସ୍କୃତଗ୍ରନ୍ଥ ରଚୟିତା,ଭଗବଦ୍ଗୀତାର୍ଥ ସାରପ୍ରଣେତା, ରସଚନ୍ଦ୍ରକାନାମକ ଗୋବର୍ଦ୍ଧନକୃତ ଆର୍ଯ୍ୟାସପ୍ତଶତୀର ଜଣେ ଟୀକାକାର, ଶ୍ରୀକୃଷ୍ଣ ।

ଗୋକୁଳନାଥମଣ୍ଡି ସମକାଳ—ସୁରାଷ୍ଟ୍ରର ଜଣେ ବିଖ୍ୟାତ ବୈଦାନ୍ତିକ ଏବଂ ପାରସ୍ୟ ସଂସ୍କୃତ ଓ ଇଂରାଜି ଭାଷାବିତ୍ ପଣ୍ଡିତ ।

ଗୋକୁଳଦେବ—ତୀର୍ଥକଲ୍ପଲତାନାମକ ସଂସ୍କୃତ-ଗ୍ରନ୍ଥକାର ।

ଗୋକୁଳନାଥ—ଜଣେ ବିଖ୍ୟାତ ପଣ୍ଡିତ, ଜନ୍ମବଲାସନାମକ ସଂସ୍କୃତ ଜ୍ୟୋତିଃ-ଶାସ୍ତ୍ରକାର ।

ଗୋକୁଳପ୍ରସାଦ ଲାଲ—କାୟସ୍ଥଜାତୀୟ ଜଣେ ପ୍ରସିଦ୍ଧ ହିନ୍ଦୀକବି ।

ଗୋକୁଳବିହାରୀ—ବି. ଶ୍ରୀକୃଷ୍ଣଙ୍କର ନାମ ବିଶେଷ ।

ଗୋକୁଳଭଟ୍ଟ—ହରିରାୟକୃତ ବେଦାନ୍ତ-ଭାରକାର ଜଣେ ଟୀକାକାର ।

ଗୋକୁଳସ୍ଥ—ବିଂ. (ଗୋକୁଳ+ସ୍ଥା+ଅ)ଗୋକୁଳବାସୀ,କୃଷ୍ଣଉପାସକ ସମ୍ପ୍ରଦାୟବିଶେଷ ।

ଗୋକୁଳାନନ୍ଦ—ପୁଂ. ବ. (ଗୋକୁଳ+ଆନନ୍ଦ) ଶ୍ରୀକୃଷ୍ଣଙ୍କର ନାମବିଶେଷ ।

ଗୋକୁଳାଷ୍ଟମୀ—ସ୍ତ୍ରୀ.ବ. ଜନ୍ମାଷ୍ଟମୀ ବ୍ରତ-ବିଶେଷ ।

ଗୋକୁଲକ—ବିଂ (ଗୋକୁଲ+କ) ପଙ୍କସ୍ଥ ଗବ୍ୟାପେକ୍ଷକ, ପଙ୍କରେ ଲଗି-ରହିଥିବା ଗୋରୁକୁ ଯେ ସାହାଯ୍ୟ ନ କରେ, କେବଳ, ଚେଷ୍ଟ ।

ଗୋକୁଲୋଦ୍ଭବା—ସ୍ତ୍ରୀ.ବ.ଦୁର୍ଗା,ମହାମ ସ୍ୱ।

ଗୋକୃତ—କ୍ଲୀ.ବ.(ଗୋ+କୃତ)୬ତତ୍;ଗୋମୟ, ଗୋବର,(ବିଂ) ଗୋକର୍ତ୍ତୃକ ଅନୁଷ୍ଠିତ ।

ଗୋକ୍ଷ—ବି. ଯୋକ ।

ଗୋକ୍ଷୀର—କ୍ଲୀ.ବ.(ଗୋ+କ୍ଷୀର)୬ତତ୍ ଗୋଦୁଗ୍ଧ, ଗାଈଦୁଧ, ଓଖର ।

ଗୋକ୍ଷୀରଜ—କ୍ଲୀ.ବ.(ଗୋକ୍ଷୀର+ଜନ+ଅ)ଘୃତ, ଦଧିପ୍ରଭୃତି,କ୍ଷୀରଜଳ ।

ଗୋକ୍ଷୁର-ପୁଂ.ବ.(ଗୋ+କ୍ଷୁର)ଗୋଖୁରା, ଗୁଖୁରାକ୍ଷୁପ, ଗୋରୁର ଖୁରା, ସର୍ପ-ବିଶେଷ ।

ଗୋକ୍ଷୁରକ—ପୁଂ. ବ. (ଗୋକ୍ଷୁର+କ) ଗୁଖୁରାଗଛ, ଗୋଖୁର କ୍ଷୁପ । [ମଞ୍ଜି ।

ଗୋକ୍ଷୁର,ଗୋକ୍ଷୁରା-ପୁଂ.ସ୍ତ୍ରୀ.ବ. ଗୋକ୍ଷୁର, ଗୋଖୁରକ୍ଷୁପ । [ମଞ୍ଜି ।

ଗୋକ୍ଷୁରବୀଜ—କ୍ଲୀ.ବ.(୬ତତ୍) ଗୁଖୁରା-

ଗୋକ୍ଷୋଡ଼କ—ପୁଂ.ସ୍ତ୍ରୀ.ବ.ପ୍ରତୁଦଶ୍ରେଣୀର ଅନ୍ତର୍ଗତ ଏକପ୍ରକାର ପକ୍ଷୀ ।

ଗୋଖର—ଗ୍ରା. ବ. (ସ—ଗୋକ୍ଷୁର) ଫଣାଧାରୀ ବିଷଧରସର୍ପବିଶେଷ, ନାଗ, ତିନୋଟି ଗୋଡାବିଶିଷ୍ଟ ସୁନାର କଣ୍ଠ-ଭୂଷଣବିଶେଷ ।

ଗୋଖା—ସ୍ତ୍ରୀ. ବ. (ଗୋ+ଖନ୍+ଆ) ନଖ,(ଗ୍ରା. ପୁଂ. ବ.)ଓଡ଼ିଶାର ଧୀବର ଶ୍ରେଣୀସ୍ଥ ନୀଚଜାତିବିଶେଷ ।

ଗୋଖାଦକ—ବିଂ. (ଗୋ+ଖାଦ୍+କ. ଅକ) ଗୋମାଂସଭୋଜୀ, (ବି) ମ୍ଲେଚ୍ଛ, ଯବନପ୍ରଭୃତି, (ସ୍ତ୍ରୀ) ଗୋଖାଦିକା ।

ଗୋଖି—ଗ୍ରା.ବିଂ.ଗୋରୁଠାରୁ ପ୍ରାପ୍ତ, (ବି) ଗୋମାଂସ ଓ ଚର୍ବି ।

ଗୋଖୁରା—ପୁଂ.ବ. (ଗୋ+କ୍ଷୁର+ଅ) ଗୋକ୍ଷୁରବୃକ୍ଷ,(କ୍ଲୀ.ବ.)ଗୋରୁର ଖୁରା ।

ଗୋଖୁରସାପ—ଗ୍ରା. ବ.ଏକପ୍ରକାର ତୀବ୍ର ବିଷଧର ସର୍ପ, ନାଗବିଶେଷ ।

ଗୋଖୁର—ପୁଂ.ବ.ଗୋଖୁରା ଗଛ ।

ଗୋଗାଚୌହାନ୍—ପୁଂ.ବ.ଜଣେ ପ୍ରସିଦ୍ଧ ବୀରପୁରୁଷ ।

ଗୋଗୃଷ୍ଟି—ସ୍ତ୍ରୀ. ବ. ପୁଂ. ବ. ଏକବାର ପ୍ରସୂତା ଗାଈ, ସକୃତ୍ପ୍ରସୂତା ଗୌ ।

ଗୋଗୃହ—ବ. (୬ତତ୍) ଗୁହାଳ, ଗୋଶାଳ ।

ଗୋଗେଇ—ଗ୍ରା(କେନ୍ଦ୍ରାପଡ଼ା) ବ. ପଶ୍ଚିମା-ପବନ ସହିତ ମେଘାଚ୍ଛନ୍ନ ଆକାଶଯୁକ୍ତ ପାଗ ।

ଗୋଗୋଛବାଡ଼ୁଅ—ଗ୍ରା. ବ. ବିଶେଷ ପ୍ରହାର, ଅତ୍ୟନ୍ତ ପାହାର ।

ଗୋଗୋପ୍ରାଗ—କ୍ଲୀ.ବ.ଗୋରୁର ଦ୍ୱିସଂଖ୍ୟା, ଏକହଳ ଗୋରୁ ।

ଗୋଗୋଷ୍ଠ—କ୍ଲୀ. ବ. ଗୋରୁମାନଙ୍କର ରହିବା ସ୍ଥାନ, ଗୋଠ, ଗୋଶାଳା ।

ଗୋଗ୍ରନ୍ଥି-ପୁଂ.ବ.କରୀଷ,ଘସି,ଗୋଷ୍ଠସ୍ଥାନ, ଗୋଜିହ୍ୱିକା ।

ଗୋଗ୍ରାହ—ବି. (୬ତତ୍) ଗୋହରଣ, ଗୋରୁଚୋର ।

ଗୋଗ୍ରାସ—ପୁଂ.ବ.(୬ତତ୍)ଶ୍ରାଦ୍ଧସ୍ୱସ୍ତି-ନଲ୍ଲର ଗୋଜାତିର ତୃପ୍ତିନିମିତ୍ତ ପ୍ରଦତ୍ତ ଘାସ, ଗାଈପର ବଡ଼ବଡ଼ ଗୁଣ୍ଡାରେ-ଖାଇବା ।

ଗୋଘା—କାଠିଆବାଡ଼ ଆହ୍ମଦାବାଦଜଲ୍ଲା ଗୋଘା ଉପବିଭାଗର ପ୍ରଧାନ ନଗର ।

ଗୋଘାତ—ପୁଂ.ବିଂ.(ଗୋ+ହନ୍+କ, ଅ) ଗୋହନ୍ତା, ଗୋହତ୍ୟାକାରୀ ।

ଗୋଘାତକ—ପୁଂ.ବିଂ. (ଗୋ+ଘାତକ) ଗୋହତ୍ୟାକାରୀ,ଗୋରୁର ପ୍ରାଣନାଶକ, (ବି) କଂସାଇ, ଯବନ, ମ୍ଲେଚ୍ଛପ୍ରଭୃତି ।

ଗୋଘାତୀ-ପୁଂ.ବିଂ.(ଗୋ+ହନ୍+ଇନ୍) ଗୋହତ୍ୟାକାରୀ (ସ୍ତ୍ରୀ) ଗୋଘାତିନୀ ।

ଗୋଘୃତ—କ୍ଲୀ.ବ. (୬ତତ୍)ଗବ୍ୟଘୃତ, ଗୁଆଘିଅ, ବୃଷ୍ଟିଜଳ ।

ଗୋଘ୍ନ—ପୁଂ.ବିଂ.(ଗୋ+ହନ୍+କ.ଅ) ଗୋଘାତକ, ଗୋହତ୍ୟାକାରୀ (ସ୍ତ୍ରୀ) ଗୋଘ୍ନୀ, (ବି) ଅତିଥି, କୁଣିଆଁ ।

ଗୋଙ୍ଗା — ଯା.ବିଂ. ବୋବା,ଖନା,ବାକ୍-ଶକ୍ତିହୀନ, (ବି) ଏକପ୍ରକାର ବଡ଼ ଜହଳ୍ପ ।

ଗୋଚନ୍ଦନ — କ୍ଲୀ. ବିଂ. ଗୋଶୀର୍ଷଖ୍ୟ-ଚନ୍ଦନ,ଗୋରୋଚନା, ଗୋରଚନା ।

ଗୋଚନ୍ଦନା — ସ୍ତ୍ରୀ.ବି.ଏକପ୍ରକାର ବିଷାକ୍ତ ଜୋକ ।

ଗୋଚର — ପୁଂ.ବି.(ଗୋ + ଚର୍ + ଅଧି. ଅ)ଗୋରୁ ଚରିବା ଭୂମି, ଗୋଚରଣ-ଭୂମି,ଇନ୍ଦ୍ରିୟଗ୍ରାହ୍ୟବସ୍ତୁ, ସାକ୍ଷାତ୍କାର, ଇନ୍ଦ୍ରିୟ ଗ୍ରହଣର ସୀମା, ଇନ୍ଦ୍ରିୟଦ୍ୱାରା ଅନୁଭୂତ,(ଜ୍ୟୋତିଷ)ଗ୍ରହର ତାତ୍କାଳିକ ସଞ୍ଚାର, ସ୍ଥାନ, ଦେଶ, (ବି) ଯେଉଁ ଭୂମିରେ ଗୋରୁ ଚରନ୍ତି, ବିଷୟକାରୀ, ବିଚରଣକାରୀ,ଇନ୍ଦ୍ରିୟର ବିଷୟୀଭୂତ, ସ୍ଥିତ,ଆଶ୍ରିତ,ପ୍ରତ୍ୟକ୍ଷ, ଉପଲବ୍ଧ,(ସ୍ତ୍ରୀ.) ଗୋଚରୀ ।

ଗୋଚରକରିବା — ଗ୍ରା. କ୍ରି. ଜଣାଇବା, ନିବେଦନ କରିବା ।

ଗୋଚରହେବା — ଗ୍ରା. କ୍ରି. ଜାଣିବା, ଜଣାଯିବା, ଜ୍ଞାତହେବା ।

ଗୋଚର୍ମ — କ୍ଲୀ.ବି.ଗୋରୁଚମଡ଼ା, ଭୂମିର ବର୍ଗପରିମାଣ ମାପବିଶେଷ, ଦଶହାତ ପରିମିତ ନଳରେ ଦୀର୍ଘ ଓ ପ୍ରସ୍ଥରେ ପନ୍ଦରନଳପରିମିତ କ୍ଷେତ୍ର ।

ଗୋଚର୍ମବସନ — ପୁଂ.ବି.(ବ.ବ୍ରୀ) ମହା-ଦେବ ।

ଗୋଚ୍ଛାଲୀ — ଗ୍ରା.ବି.ଏକପ୍ରକାର ବୃକ୍ଷ ।

ଗୋଚାରକ — ପୁଂ.ବି. (ଗୋ + ଚର୍ + କ,ଅକ)ଗୋରକ୍ଷକ,ଗହଳ୍ପ,ଯେ ଗୋରୁ ଚରାଏ ।

ଗୋଚାରଣ -କ୍ଲୀ.ବି.(ଗୋ + ଚର୍ + ଣି, ଅନ)ଗାଈଚରାଇବା, ଗୋରୁଚରିବା ।

ଗୋଚାରୀ --ପୁଂ.ବି.(ଗୋ + ଚର୍ + ଇନ୍) ଏକପ୍ରକାର ତପସ୍ୱୀ,(ସ୍ତ୍ରୀ)ଗୋଚାରିଣୀ ।

ଗୋଚକ୍ରକ — ପୁଂ.ବି. (୬ତତ୍)ଗୋରୁ-ମାନଙ୍କ ରୋଗର ଚିକିତ୍ସାକାରୀ, ଗୋବୈଦ୍ୟ ।

ଗୋଚିକିତ୍ସା — ସ୍ତ୍ରୀ.ବି. (୬ତତ୍) ଗୋରୁ-ମାନଙ୍କର ରୋଗର ଚିକିତ୍ସା ।

ଗୋଚୀ — ସ୍ତ୍ରୀ.ବି.(ଗୋ + ଅନଚ୍ + କ୍ୱିପ୍ + ଈ) ମତ୍ସ୍ୟବିଶେଷ, ହିମାଳୟପର୍ବତୀ ।

ଗୋଛ — ଗ୍ରା. ବି. (ଗୁଚ୍ଛଶବ୍ଦଜ) ଗୁଚ୍ଛ, ସ୍ତବକ, ପେଣ୍ଡା, ଗୋଛା ।

ଗୋଛ — ଗ୍ରା.ବି.ବଡ଼, ସମୂହ ।

ଗୋଛଇତ — ଗ୍ରା. ବି. ଶୂଦ୍ରଜାତିର କୌଳିକ ଉପାଧିବିଶେଷ, ହାଡ଼ିମାନଙ୍କ ବଂଶୋପାଧିବିଶେଷ ।

ଗୋଛଇବା — ଗ୍ରା-କ୍ରି.ଗୁରିଆଡ଼େ ପଡ଼ି-ଥିବା ପଦାର୍ଥକୁ ଏକତ୍ରକରିବା, କୌଣସି ପଦାର୍ଥକୁ ବଡ଼ାକରି ବାନ୍ଧିବା ।

ଗୋଛଗୋଛ — ଗ୍ରା.ବି. (ଲ.ଅର୍ଥ)ପ୍ରଚୁର (କ୍ରି. ବି.) ପ୍ରଚୁରପରିମାଣରେ, ବଡ଼ ବଡ଼ ହୋଇ । [ ଗଛ ।

ଗୋଛଲ — ପୁଂ.ବି.ଭୂକଦମ୍ବ, ଗୁହ୍ଲଲିଆ-

ଗୋଛୁ — ଗ୍ରା.ବି.(ସଂ ଗୁଚ୍ଛ)ମାଂସପେଶୀ, ଗୋଡ଼ର ଶିରାମାନ ଗୋଇଠିଉପରେ ଯେଉଁଠାରେ ଏକତ୍ର ହୋଇଥାଏ, ବେକର ଯେଉଁ ଅଂଶରେ ଶରୀରର ଶିରାସବୁ ଏକତ୍ର ହୋଇଥାଏ, ଘେଣ୍ଟ-ଗୋଛ ।

ଗୋଛୁକାର — ଗ୍ରା.ବି.ବଂଶୋପାଧିବିଶେଷ, ପୁରୀ ଜଗନ୍ନାଥଙ୍କ ସେବକବିଶେଷ ।

ଗୋଜ — ପୁଂ.ବି.ସଂକର ଜାତିବିଶେଷ, (କ୍ଲୀ.ବି) ଗୋରୁ ବା ଛେଳି ଦୁଗ୍ଧର ବିକାରବିଶେଷ, ଗ୍ରା.ବି.ମେଖି, ମୁନିଆଁ-କଣ୍ଟା,(ବି)ସୂକ୍ଷ୍ମାଗ୍ର, ମୁନିଆ, ଗୋଜିଆ ।

ଗୋଜର — ପୁଂ.ବି.(ଗୋ + ଜରା)ବୁଢ଼ା-ବଳଦ ବା ଷଣ୍ଢ ।

ଗୋଜଳ — କ୍ଲୀ.ବି. ଗୋମୂତ୍ର ।

ଗୋଜା — ବି.(ଗୋଜ + ଆ).ବ୍ରାହ୍ମୀପ୍ରଭୃତି, ଗୋଲମିକାବୃକ୍ଷ, (ଗ୍ରା.ବି.) ଋଣପତ୍ର. ତମସୁକ,ଭୂମି ବିକ୍ରୟର ପ୍ରମାଣପତ୍ର(ବି) ସୁରଭିଜାତ ।

ଗୋଜାଗରିକ — କ୍ଲୀ.ବି. (ଗୋଜାଗର + ଇକ)ମଙ୍ଗଳ,କଣ୍ଟକାର ବୃକ୍ଷ,(ବିଂ)ଯେ ଭକ୍ଷ୍ୟଦ୍ରବ୍ୟ ରକ୍ଷା କରେ ।

ଗୋଜାତ — ପୁଂ.ବି. ଗୋନାମକ ପୁଲସ୍ତ୍ୟ ପତ୍ନୀର ଗର୍ଭଜାତ, ସ୍ୱର୍ଗଜାତ, ଯାହା ସ୍ୱର୍ଗରୁ ଜାତ ହୁଏ, (ବି) (୫ତତ୍) ଗୋରୁଠାରୁ ଉତ୍ପନ୍ନ (ଘୃତାଦି) ।

ଗୋଜାପର୍ଣ୍ଣୀ — ସ୍ତ୍ରୀ.ବି.ଦୁଗ୍ଧଫେଣୀବୃକ୍ଷ ।

ଗୋଜି,ଗୋଜୀ — ସ୍ତ୍ରୀ.ବି. ଗୋଜିହ୍ୱାଲତା, କୋବି, କୃଷିଜାତ ଶାକ ଗୁଳ୍ମ-ବିଶେଷ,ବନ୍ୟତୃଣବିଶେଷ ।

ଗୋଜିଆ-ଗ୍ରା.ବିଂ.ମୁନିଆଁ (ପ୍ରା — ବାଲେ) ବି. ତେଣ୍ଟା, ବରଛା ।

ଗୋଜିକା — ସ୍ତ୍ରୀ. ବି. ଗୋଜିହ୍ୱା ଲତା, ଗୋଜି (ଦେଖ) ।

ଗୋଜିକାଠି — ଗ୍ରା.ବି.ସିନ୍ଧକାଠି,ସ୍ତ୍ରୀମାନେ ଜୁଡ଼ାରେ ଖିଞ୍ଚିବା ରୌପ୍ୟାଦି-ନିର୍ମିତ କାଠି ।

ଗୋଜିତ୍ — ବିଂ. (ଗୋ + ଜି + କ୍ୱିପ୍) ଯେ ପୃଥିବୀ ଜୟକରେ, (ପୁଂ.ବି) ରାଜା ।

ଗୋଜିହ୍ୱା — ସ୍ତ୍ରୀ.ବି.ଲତାବିଶେଷ, ଗାଈ-ଜିଭ, ଗୋଜି (ଦେଖ) ।

ଗୋଜିହ୍ୱିକା — ସ୍ତ୍ରୀ. ବି. ଗୋଜିହ୍ୱାଲତା ଗୋଜି (ଦେଖ) ।

ଗୋଜୀର — ପୁଂ. ବିଂ. ପତ୍ରପ୍ରେରକ, ଯେ ଶ୍ରୋତୃମାନଙ୍କ ଉଦ୍ଦେଶ୍ୟରେ ପତ୍ର ପ୍ରେରଣ କରେ ।

ଗୋଞ୍ଜାଲିସ — ପୁଂ. ବି. ଜଣେ ବିଖ୍ୟାତ ପର୍ତ୍ତୁଗିଜ୍ ଦସ୍ୟୁ ।

ଗୋଟ୍ — ପ୍ରା.ସର୍ବ,(ଭଦ୍ରୀ)ଏକ,ଗୋଟିଏ, (ଗ୍ରା.ବି)ଗୋଲାକୃତି ।

ଗୋଟ୍କା — ପ୍ରା, (କଟକ)ବି. ଟଙ୍କା ।

ଗୋଟମୀ — ଗ୍ରା.ବି.କଷି ନଡ଼ିଆଫଳ ଓ ତାଳଫଳ ।

ଗୋଟା — ଗ୍ରା.ବି. (ସଂ-ଗୁଟିକା)ବର୍ତ୍ତୁଳ, ଏକା. ଏକୁଟିଆ, ଅଖଣ୍ଡ, ଗୋଟାଳିଆ, ଏକ ଜାଗାରେ ଜମାହୋଇ ଟାଣୁଆ, (ଗ୍ରା. ଅବ୍ୟ) ସଂଖ୍ୟାବାଚକ ଶବ୍ଦର (ପ୍ରତ୍ୟୟ) ସଂଖ୍ୟକ, (ଗ୍ରା. ସର୍ବନାମ — ଅନାଦରାର୍ଥ) ଏକଗୋଟା, (ଗ୍ରା. ବି) ସଂଖ୍ୟା,ସୁନା ବା ରୁପାର ଜରି, ବିବିଧ ମସଲାର ଚୂର୍ଣ୍ଣବିଶେଷ, ସୁପାରି, ଗୁଆ, ନନ୍ଦାବାକ୍ୟ ।

ଗୋଟାଇପୋଟାଇ — ଗ୍ରା. କ୍ରି. ବି°. ଏକତ୍ର ସଂଗ୍ରହ କରି ।

ଗୋଟାଇବା — ଗ୍ରା.କ୍ରି. ସଙ୍କୁଚିତକରରେ ଏକତ୍ର କରିବା, ସଂଗ୍ରହ କରିବା ।

ଗୋଟାଏ,ଗୋଟାକ — ଗ୍ରା.ସର୍ବ. (ଅନାଦରାର୍ଥ) ଏକଗୋଟା ମାତ୍ର ।

ଗୋଟାଏବେଳ — ଗ୍ରା ବି. ଦିନ ବା ରାତ୍ରି ଦ୍ୱିପ୍ରହର ପରେ ଏକଘଣ୍ଟା ବାଜିବା ସମୟ ।

ଗୋଟାକ ସାତଟା — ଗ୍ରା.ବି°. (କ୍ରୋଧରେ) ଜର୍ଜରିତ, ବିକଳିତ ପ୍ରଭାବ ।

ଗୋଟାକୁ ଗୋଟା — ଗ୍ରା.ଅବ୍ୟ. ଗୋଟାକ ପରେ ଗୋଟାଏ ।

ଗୋଟାକେତେ,ଗୋଟିକେତେ — ଗ୍ରା.ସର୍ବ. କେତେକଟା,କେତେକ ଗୋଟା ।

ଗୋଟାଗୋଟା — ଗ୍ରା.ଅବ୍ୟ. ଭିନ୍ନ ଭିନ୍ନ, ଖଣ୍ଡଖଣ୍ଡ, କ୍ଷୁଦ୍ର କ୍ଷୁଦ୍ର ଟାଣ୍ଡୁଆଖଣ୍ଡ, ଏକ ଏକ ହୋଇ, ଅରକେ ଏକ-ହୋଇ, ଗୋଟାକ ପରେ ଗୋଟେ, ଗୋଟାପଣେ, ଗୋଟାସୁଦ୍ଧା-ଗ୍ରା.ବି.ସମସ୍ତ-ବସ୍ତୁ, (ଅବ୍ୟ) ସମ୍ପୂର୍ଣ୍ଣରୂପେ, ଗୋଟା-ଯାକ, ଗୋଟି ଗୋଟି ହୋଇ ।

ଗୋଟାଲ — ଗ୍ରା. ବି.(ସଂ-ଗୁଟିକା ଗୋଲ-କାର କ୍ଷୁଦ୍ର ଖଣ୍ଡଖଣ୍ଡ,କ୍ଷୁଦ୍ର ଓ ଟାଣ୍ଡୁଆ-ଖଣ୍ଡ ।

ଗୋଟାଲିଆ — ଗ୍ରା.ବି°. ଅଖଣ୍ଡ, ଗୋଟାଲ ପରି ଗୋଲ, (ଲ. ଅର୍ଥ) ବର୍ତ୍ତୁଳ ଓ ଟାଣ୍ଡୁଆ ।

ଗୋଟାସିଝା — ଗ୍ରା. ବି. (ବିରି, ମୁଗ ଓ ସାରୁ, ଆଳୁ, ବାଇଗଣ ପ୍ରଭୃତି ପରିବା) ଖାଦ୍ୟଦ୍ରବ୍ୟ କଟା ନ ହୋଇ ଗୋଟାସୁଦ୍ଧା ପାଣିରେ ସିଦ୍ଧ ହୋଇଥିବା ।

ଗୋଟି — ଗ୍ରା. ବି°.ଏକସଂଖ୍ୟକ, ଏକମାତ୍ର, ଏତେଟି ସଂଖ୍ୟକ,(ଯଥା — ପଞ୍ଚଗୋଟି) (ବି)ପାଟ ବା ଟସରପୋକଙ୍କ ଡିମ୍ବାକାର ବସା, ପଶାଖେଳର ସାରୀ ।

ଗୋଟିଆ — ଗ୍ରା.ବି°.ଏକୁଟିଆ, ଏକମାତ୍ର, ସଙ୍ଗୃହୀତ, (ବି) ପାର୍ବତ୍ୟସ୍ଥ ଭୂମିରେ ଚଳିବା ନିମନ୍ତେ ବ୍ୟବହୃତ ଛୋଟ ନିଦା ଚକଲଗା ଶଗଡ଼ ।

ଗୋଟିଆଗୋଟି — ଗ୍ରା.ବି. ସଙ୍ଗୃହୀତ ବସ୍ତୁ-ଚୟ, (ବି°) ଏକତ୍ର ସଙ୍ଗୃହୀତ ।

ଗୋଟିଏ — ଗ୍ରା. ସର୍ବ. ଏକମାତ୍ର, ଏକ-ସଂଖ୍ୟକ ।

ଗୋଟିଏଗୋଟିଏ — ଗ୍ରା. କ୍ରି. ବି°. ଧୀରେ ଧୀରେ, ଅଳ୍ପେ ଅଳ୍ପେ, କ୍ରମେ କ୍ରମେ, ଏକାଦିକ୍ରମେ,ଏକପରେ ଅନ୍ୟ, ଅରକେ ଏକ ହୋଇ ।

ଗୋଟିକଠଉଁ — ଗ୍ରା. ଅବ୍ୟ. କିଛି ନ ଛାଡ଼ି ସମସ୍ତ ନିଃଶେଷରୂପେ, (ଗ୍ରା. ସର୍ବ) ସମସ୍ତେ, ପ୍ରତ୍ୟେକେ ।

ଗୋଟିକିଆ — ଗ୍ରା.ବି°.ଏକୁଟିଆ,ଗୋଟା ।

ଗୋଟିକ ଗୋଟି — ଗ୍ରା. ଅବ୍ୟ. ଏକପରେ ଏକ ।

ଗୋଟିଖଡ଼ିକା — ଗ୍ରା ବି.ଗଙ୍ଗଶିଉଳି ।

ଗୋଟିଖେଳ — ଗ୍ରା. ବି. ଏକପ୍ରକାର ଖେଳ, ସ୍ତ୍ରୀ ପିଲାମାନେ ଛୋଟ ଗୋଟାଲ ପଥରରେ ଖେଳିବା ଖେଳ । [ ଏକ ।

ଗୋଟିଗୋଟି — ଗ୍ରା. ଅବ୍ୟ. ଏକପରେ

ଗୋଟିଘ(ଢ)ର — ଗ୍ରା. ବି° ଅଣ୍ଡକୋଷ ।

ଗୋଟିଧରିବା — ଗ୍ରା.କ୍ରି. କ୍ଷୁଦ୍ର ଟାଣ୍ଡୁଆ ଓ ବର୍ତ୍ତୁଳଖଣ୍ଡମାନଙ୍କରେ ପରିଣତ ହେବା ।

ଗୋଟିପିଲା(ପୁଅ) — ଗ୍ରା.ବି.ସଙ୍ଗୀତଦଳର ନାଚୁଆ ପିଲା । [ ପୋକ ।

ଗୋଟିପୋକ — ଗ୍ରା. ବି. ପାଟ ବା ଟସର

ଗୋଟିଯାକ — ଗ୍ରା. ଅବ୍ୟ, କୌଣସିବସ୍ତୁକୁ ସମ୍ପୂର୍ଣ୍ଣରୂପେ ବ୍ୟାପୀ ।

ଗୋଟିହେବା — ଗ୍ରା. କ୍ରି. ଗୋଟି ଧରିବା (ଦେଖ),(ଲ. ଅର୍ଥ) ଠୁଳହେବା ।

ଗୋଠ — ଗ୍ରା. ବି. (ଗୋଷ୍ଠଶବ୍ଦଜ) ଅରଣା-ମଇଁଷି, ମୃଗ, ବରାହ, ଗଣ୍ଡଲଆଦିଙ୍କର ପଲ, ଗୋଚାରଣସ୍ଥାନ,ଗୋରୁ ରହିବାର ସ୍ଥାନ, ଗୋଷ୍ଠ, ଗୋରୁମାନେ ଦଳବଦ୍ଧ ହୋଇ ଯେଉଁଠାରେ ରହନ୍ତି, ଅଣ୍ଟାରେ ପିନ୍ଧାଯିବା ଶିକୁଳି(ପ୍ରା.ବସ୍ତର) ବି. କଥା, ବାକ୍ୟ । [ ଗଛ ।

ଗୋଠକାକୁଡ଼ା-ପ୍ରା.(ଗଞ୍ଜାମ)ବି.ମହାକାଳ

ଗୋଠଛଣ୍ଡିଆ — ଗ୍ରା. ବି., ଯେଉଁ ଜନ୍ତୁ ପଲରୁ ପୃଥକ୍ ହୋଇ ରହେ, ସେ ପଲମଧ୍ୟରୁ ପଛକୁ ରହିଯାଏ, (ମନୁଷ୍ୟ) ସେ ଅନ୍ୟ ବ୍ୟକ୍ତି ସଙ୍ଗେ ମିଶେ ନାହିଁ ।

ଗୋଠଗଛ — ଗ୍ରା. ବି. ବରକୋଳି ଗଛ ପରି କଣ୍ଟାଳିଆ ଗଛ ।

ଗୋଠଗୋପାଳିଆ — ଗ୍ରା. ବି° (ବ୍ୟଙ୍ଗ) ଅଯୋଗ୍ୟ ଓ ଦୁଷ୍କର୍ମକାରୀ (ବ୍ୟକ୍ତି) ।

ଗୋଠଛଡ଼ା — ଗ୍ରା. ବି°. ଗୋଠଖଣ୍ଡିଆ (ଦେଖ) ।

ଗୋଠନଉଁଛୁଣା — ଗ୍ରା. ବି°. ପଲ ବା ଦଳମଧ୍ୟରୁ ପୃଥକ୍ ଓ ମନ୍ଦ ଅଭ୍ୟାସଯୁକ୍ତ ।

ଗୋଠଲ — ପ୍ରା.(ଗଞ୍ଜାମ) ବି. ଗୋରକ୍ଷ-କାକୁଡ଼ି । [ସମାଜ ।

ଗୋଠି — ଗ୍ରା. ବି. (ସ — ଗୋଷ୍ଠୀ)ସମୂହ,

ଗୋଠିଆ — ଗ୍ରା. ବି°. (ସ — ଗୋଷ୍ଠୀସ୍ଥ) ଗୋଠରେ ଥିବା, ଗୋଠସମ୍ବନ୍ଧୀୟ ।

ଗୋଠେ — ଗ୍ରା.ବି. ଓ ବି°. ବହୁସଂଖ୍ୟକ, ଏକଦଳ ।

ଗୋଡ଼ — ଗ୍ରା.ବି. ଚରଣ, ପାଦ,ଟେବୁଲ୍ ଖଟଆଦିର ଖୁଣ୍ଟି,ଚେର, ମୂଳ, ବଇଠି; ମୂଳକାରଣ, ଗୁଲ୍ଫ, ପାଦମୂଳ, ରଞ୍ଜା, ଜହ୍ନି କାକୁଡ଼ି ଆଦି ମାଡ଼ିବାପାଇଁ ଦିଆ-ଯିବା ଖୁଣ୍ଟି, ଦୁଇଖଣ୍ଡ ବିଶିଷ୍ଟ ଅଳଂକାର ସଂଲଗ୍ନହେବାର ଗଣ୍ଠି ବା କବଜା ।

ଗୋଡ଼କାଢ଼ିବା — ଗ୍ରା. କ୍ରି. କୌଣସି ସ୍ଥାନରୁ ଖସିଯିବା ।

ଗୋଡ଼କୁ ଶାଙ୍କୋଳହାତକୁ ବେଡ଼ି — ଗ୍ରା.କ୍ରି. (ଲ. ଅର୍ଥ) କଠୋର ପ୍ରତିବନ୍ଧକ, ଅନ୍ତସ୍ତ୍ର, ବନ୍ଧ ।

ଗୋଡ଼ଖସଡ଼ିବା,ଗୋଡ଼ଖସିବା — ଗ୍ରା. ବି. ପିଚ୍ଛିଳଭୂମିରେ ଗୋଡ଼ ସ୍ଥିର ନ ରହି ସ୍ଖଳିତହେବା,(ଗ୍ରା.କ୍ରି.)(ଗୋଡ଼)ପିଚ୍ଛିଳ ଭୂମିରେ ଅସ୍ଥିର ହୋଇ ରହି ନ ପାରି ଇତସ୍ତତଃ ହେବା ।

ଗୋଡ଼ଗଣ୍ଠି,ଗୋଡ଼ବଲାଗଣ୍ଠି — ଗ୍ରା. ବି. ଗୁଲ୍ଫ, ଚରଣଗ୍ରନ୍ଥି ।

ଗୋଡ଼ଘଷିବା — ଗ୍ରା. କ୍ରି. ପାଦସଂବାହନ କରିବା,(ଲ.ଅର୍ଥ)ଅତିଶୟ ଖୋସାମତ କରିବା ।

ଗୋଡ଼ଘୋଳା — ଗ୍ରା. ବି. ଗୋଡ଼ ବ୍ୟଥା ହେବା ରୋଗ ।

ଗୋଡ଼ଚଳିବା — ଗ୍ରା.କ୍ରି.ଚ୍ଚଲିବା,(ଲ.ଅର୍ଥ) କାର୍ଯ୍ୟକ୍ଷମ ହେବା ।

ଗୋଡ଼ଛଟିବା — ଗ୍ରା. କ୍ରି. ମଲ୍ଲବେଳେ ଗୋଡ଼କୁ ଇତସ୍ତତଃ ସଞ୍ଚାଳିତ କରିବା, (ଶିଶୁ) ଅଶୁଝା ହୋଇ ଭୂମିରେ ପଡ଼ି ଗୋଡ଼କୁ ଇତସ୍ତତଃସଂଚାଳିତ କରିବା ।

ଗୋଡ଼ଜମାଇବା — ଗ୍ରା.କ୍ରି. ଦୃଢ଼ଭାବରେ ଠିଆ ହେବା ।

ଗୋଡ଼ଟେକିବସିବା,ଗୋଡ଼ବଢ଼ାଇବସିବା- ଗ୍ରା. କ୍ରି. କୌଣସି କାର୍ଯ୍ୟ କରିବାପାଇଁ ସମ୍ପୂର୍ଣ୍ଣରୂପେ ପ୍ରସ୍ତୁତ ଓ ସଜ୍ଜିତଥାଇ ସେହିକାର୍ଯ୍ୟକୁ ଅପେକ୍ଷାକରି ରହିବା ।

ଗୋଡ଼ତଳକୁ ଆସିବା — ଗ୍ରା.କ୍ରି. ଆପେ ଆପେ ଖୋଜିଲେଇ ଆସି କୌଣସି ବ୍ୟକ୍ତିର ଶରଣାର୍ଥୀ ହେବା ।

ଗୋଡ଼ତଳିଆ — ଗ୍ରା.ବିଂ. ନମ୍ରସ୍ଥ(ବ୍ୟକ୍ତି), ନୀଚ (ବ୍ୟକ୍ତି) ।

ଗୋଡ଼ତଳେ ପଡ଼ିବା — ଗ୍ରା. ବି. ଅନ୍ୟ ବ୍ୟକ୍ତିର ପାଦତଳେ ପତିତହେବା ।

ଗୋଡ଼ଦେବା-ଗ୍ରା.କ୍ରି.(କୌଣସିସ୍ଥାନରେ) ଉପସ୍ଥିତହେବା, କୌଣସି କାର୍ଯ୍ୟରେ ହସ୍ତକ୍ଷେପ କରିବା ।

ଗୋଡ଼ଧରିବା — ଗ୍ରା. କ୍ରି. ଅନ୍ୟର ପାଦ-ଧରି ପ୍ରାର୍ଥନା କରିବା, କ୍ଷମା-ପ୍ରାର୍ଥନା-କରିବା, ଅତି ମିନତି କରିବା ।

ଗୋଡ଼ଧୁଆ — ଗ୍ରା.ବି. ଜଳଦ୍ୱାରା ପାଦ-ଧୌତ କରିବା, ଗୋଡ଼ ଧୋଇବାର ପାଣି ।

ଗୋଡ଼ଧୁଆପାଣି — ଗ୍ରା. ବି. ପାଦୋଦକ, ପାଦଧୁଆ ହେବାପରେ ପାଦରୁ ନିଃସୃତ-ଜଳ, (ଯଥା— ତା ଗୋଡ଼ଧୁଆ ପାଣିକି କେହି ସରି ନୁହନ୍ତି ) ।

ଗୋଡ଼ପକାଇବା — ଗ୍ରା. କ୍ରି. କୌଣସି ସ୍ଥାନରେ ଉପସ୍ଥିତ ହେବା, ନୃତ୍ୟାଦିର ତାଳଅନୁସାରେ ପାଦକୁ ଭୂଇଁରେ ପକାଇବା ।

ଗୋଡ଼ଫାଟ — ଗ୍ରା. ବି. ପାଦତଳ ଓ ଗୋଇଠିର ଚର୍ମ ଫାଟିଯିବା ରୋଗ ।

ଗୋଡ଼ଫାଟ — ଗ୍ରା. ବିଂ. ଯେଉଁ ବ୍ୟକ୍ତିର ପାଦତଳର ଚର୍ମ ଫାଟିଯାଇଥାଏ ।

ଗୋଡ଼ବଢ଼ାଇବା — ଗ୍ରା.କ୍ରି. ଆଗକୁ ପାଦ ସଞ୍ଚାଳନ କରିବା,ପାଦବିସ୍ତାର କରିବା ।

ଗୋଡ଼ବଳା — ଗ୍ରା.ବି.ଗୁଳ୍ଫରେ ପିନ୍ଧାଯିବା ଅଳଙ୍କାର ।

ଗୋଡ଼ଭଣ୍ଡା — ଗ୍ରା. ବି. ( ସ-ପିଣ୍ଡିକା ) ଆଣ୍ଠୁର ତଳେ ଥିବା ନଳିଗୋଡ଼ର ମାଂସର ଅଂଶ, ଜଙ୍ଘା ।

ଗୋଡ଼ଭୂଇଁରେ ନ ଲାଗିବା— ଗ୍ରା. ବି. (ଲ.ଅର୍ଥ)ଆନନ୍ଦ ବା ଗର୍ବରେ ଅତ୍ୟନ୍ତ ବିହ୍ୱଳ ବା ସ୍ଫୀତ ହେବା, ଶୂନ୍ୟରେ ଅବସ୍ଥାନ କରିବା ବା ଟେକିହେବା ।

ଗୋଡ଼ରୁ ପାଣିମରିବା—ଗ୍ରା. ବି. ବହୁତ ଚୁଲି ଚୁଲି ଗୋଡ଼ ଅଙ୍କା ମାରିଯିବା, ଚଳନ୍ତଶକ୍ତିହୀନ ହେବା ।

ଗୋଡ଼ହାତ—ଗ୍ରା.ବି.(ସହଚର) ଦେହର ସର୍ବାଙ୍ଗ ।

ଗୋଡ଼ହାତଧରିବା—ଗ୍ରା. କ୍ରି. କୌଣସି ବ୍ୟକ୍ତିର ପାଦତଳେ ପଡ଼ି ଆଶ୍ରୟ ଭିକ୍ଷା କରିବା, କ୍ଷମାଭିକ୍ଷା କରିବା ।

ଗୋଡ଼କୁ ହାତକୁ ଦୃଷ୍ଟିହେବା — ଗ୍ରା.କ୍ରି. କୌଣସି ବ୍ୟକ୍ତିର ଗତିବିଧିକୁ ଲକ୍ଷ୍ୟ କରିବା ।

ଗୋଡ଼ା — ପ୍ରା. (ସମ୍ବ) ବି. ଗୁଡ଼ା, ମୁଗ ବିରିଆଦି ଶସ୍ୟ ବୁଣିବାର ଉପଯୋଗୀ ଉଚ୍ଚ ଭୂମି,ପଞ୍ଜର, ଝରକା, ମଦଭାଟିରୁ ବାଲି ପଡ଼ୁଥିବା ଗାତ ବା ମହୁଲର ପିଠା,(ଆଠଗଡ଼)ବିଆଲିଧାନ,(ଗ୍ରା.ବିଂ) ନୈଷ୍ଠିକ ଖାଣ୍ଟି (ହିନ୍ଦୁ), ଗ୍ରା. ବି. ମୂଳଦୁଆ, ସ୍ତମ୍ଭ ।

ଗୋଡ଼ାଇବା — ଗ୍ରା.କ୍ରି.ପଛରେ ଧାଇଁବା, ପଦାନୁସରଣ କରିବା, ପାଦରେ ଠେଲି ଦେବା ।

ଗୋଡ଼ାକାଟି—ପ୍ରା. (ସିଂହ) ବି. ନଡ଼ା ।

ଗୋଡ଼ାଗୋଡ଼ି — ଗ୍ରା. ବି. ଜଣକ ପଛରେ ଜଣେ ଦୌଡ଼ିବା, ଏକପ୍ରକାର ଖେଳ ।

ଗୋଡ଼ାଣିଆଁ — ଗ୍ରା.ବିଂ.ପରର ଅନୁସର-ଣିଆଁ, ଯେ ବିନା ନିମନ୍ତ୍ରଣରେ ଅନ୍ୟ ବ୍ୟକ୍ତିର ପଛରେ ଗୋଡ଼ାଇଥାଏ ।

ଗୋଡ଼ାତକ — ଗ୍ରା. ବିଂ. ଶତ୍ରୁର ଅନୁ-ଧାବନ କରୁଥିବା ।

ଗୋଡ଼ାବାନ୍ଧିବା — ଗ୍ରା.କ୍ରି.ଗଛ ବା ଜାନ୍ତୁ ମୂଳରେ ମାଟି ଗଦାକରି ଦୃଢ଼ କରିବା, ଅବତାରଣ କରିବା ।

ଗୋଡ଼ାରେଗଲତ୍ — ଗ୍ରା. ବି. କାର୍ଯ୍ୟର ପ୍ରଥମରୁ ଭୁଲ୍, ମୂଳରୁ ଅଶୁଦ୍ଧ,ବିଷମ-ଗ୍ଳିରେଗଲତ୍ ।

ଗୋଡ଼ି — ଗ୍ରା. ବି. ସ୍ନାନସ୍ଥାନ ପଥରଖଣ୍ଡ, କଙ୍କର, (ପ୍ରା.ଗଞ୍ଜାମ).ବି. ଜମି-ଖାଡ଼ି-ମାଛ ।

ଗୋଡ଼ିଆ — ଗ୍ରା.ବିଂ.ଗୋଡ଼ିମିଶା, ଗୋଡ଼ି-ଯୁକ୍ତ (ଯଥା-ଗୁଡ଼ଗୋଡ଼ିଆ ଖଟ) ।

ଗୋଡ଼ିଖାଇ — ଗ୍ରା.(ଗଞ୍ଜା) ବି. ଜମିଖାଡ଼ି ମାଛ ।

ଗୋଡ଼ିଙ୍ଗି — ଗ୍ରା. ବି. ବେଢ଼ଷଣ କରିବା ଓ ପଡ଼ିଆ ଚରିବାର ଉପଯୋଗୀ ସରୁ ଲଙ୍ଗଳ ।

ଗୋଡ଼ିବନ୍ଧା — ଗ୍ରା.ବି. ଘୁଲଘରର ଚଉ-ତଳ ଆଡ଼କୁ ରୁଅର ମୁଣ୍ଡର ଛିଦ୍ରରେ ଗଳାଥିବା ସରୁ ବାଉଁଶ-ଖଣ୍ଡମାନ ।

ଗୋଡ଼ିବାଣ — ଗ୍ରା. ବି. ବନ୍ୟପୁଷ୍ପ କ୍ଷୁପ-ବିଶେଷ ।

ଗୋଡ଼ିମାଟି — ଗ୍ରା ବି. ଗୋଡ଼ି ବା କଙ୍କର ମିଶ୍ରିତ ମାଟି, ଗୋଡ଼ି ଓ ମାଟି ।

ଗୋଡ଼ିଶାଲ — ଗ୍ରା. ବି. ଦୁଇଖଣ୍ଡ କାଠ ପଟାକୁ ଆଡ଼ ବାଗରେ ଯୋଡ଼ିବାପାଇଁ ବ୍ୟବହୃତ ଦୁଇମୁଣ୍ଡ ମୁନିଆ ହୋଇ-ଥିବା କଣ୍ଟା ।

ଗୋଡ଼େଗୋଡ଼େ — ଗ୍ରା. ଅବ୍ୟ. ଠିଆଏ ଠିଆଏ, କୌଣସି ସ୍ଥାନକୁ ଯାଇ ସେଠାରେ ନ ବସି ଠିଆରେ ଠିଆରେ କାର୍ଯ୍ୟ ସାରିବା,ଅନତିବିଳମ୍ବେ,ଅତିଶୀଘ୍ର, ଚଟ୍, ପ୍ରତିମୁହୂର୍ତ୍ତରେ, ବାରମ୍ବାର, ସର୍ବଦା ଜଣକର ପଛେ ପଛେ ଥାଇ ।

**ଗୋଡ଼େ ଗୋଡ଼େ ଜଗିବା**—ଗ୍ରା. କ୍ରି. କୌଣସି ବ୍ୟକ୍ତିର ପଦାଙ୍କ ଅନୁସରଣ କରି ତାହା ପଛେ ପଛେ ରହିବା ଓ ତାହାପାଖରୁ କ୍ଷଣେ ଅନ୍ତର ନ ହେବା, ପିଛ ଧରିବା ।

**ଗୋଢ଼ା**—ଗ୍ରା.(ସମ୍ବ)ବି.ଗୋଡ଼ା(ଦେଖ) ।

**ଗୋଢ଼ି**—ଗ୍ରା. (ସମ୍ବ) ବି. ଗୋଡ଼ି ।

**ଗୋଣୀ**—ସ୍ତ୍ରୀ. ବି. (ଗୁଣ+ଅ+ଈ) ଶସ୍ୟାଦିର ପରିମାଣବିଶେଷ, ଶସ୍ୟାଦିର ପରିମାଣପାତ୍ର, ଗୋଣୀ, ଅଖା, ବସ୍ତା, ଥଳି, କନ୍ଥା, ଚିରାଲୁଗା ।

**ଗୋଣ୍ଡ**—ବି. (ଗୁଣ୍ଡ+କ.ଅ) ବନ୍ୟ ନୀଚ ଜାତିବିଶେଷ, ଗଣ୍ଡ-ଜାତିବିଶେଷ ନାଭି, ନାଭିଦେଶରେ ବର୍ଦ୍ଧିତ ମାଂସ, ଗାଣ୍ଡୁ, (ବିଂ) ଯେଉଁ ବ୍ୟକ୍ତିର ଗାଣ୍ଡୁ ବାହାରି ଆଏ, ଉନ୍ନତ ନାଭିଯୁକ୍ତ ।

**ଗୋଣ୍ଡା**—ଉତ୍ତରପ୍ରଦେଶ ଅନ୍ତର୍ଗତ ଗୋଟିଏ ଜିଲା, ଗୁଣ୍ଡା ।

**ଗୋଣ୍ଡାଲ**—ଗୁଜରାଟ ରାଜ୍ୟ ଅନ୍ତର୍ଗତ ଏକ ପ୍ରଧାନ ସ୍ଥାନ ।

**ଗୋଣ୍ଡି**—ଗ୍ରା. (ଗଞ୍ଜାମ)ବି. ମାଳଅଞ୍ଚଳର ଅଧିବାସୀ ଅନାର୍ଯ୍ୟ ଜାତିବିଶେଷ ।

**ଗୋତ**—ଗ୍ରା. ବି. (ସଂ-ଗୋତ୍ର) ବଂଶ. ବାନ୍ଧବ (ବିଂ) ଗୋତ୍ରୀୟ (ବ୍ୟକ୍ତି) ।

**ଗୋତମ**-ପୁଂ.ବି.(ଗୋ+ତମ)ଅଙ୍ଗୀରସବଂଶୀୟ ନ୍ୟାୟଦର୍ଶନପ୍ରଣେତା ମୁନି, ଗୌତମ ମୁନି, ବୌଦ୍ଧମତ-ପ୍ରବର୍ତ୍ତକ ମୁନି, ଗୌତମ ବୁଦ୍ଧ ।

**ଗୌତମ ବୁଦ୍ଧ**—ପୁଂ. ବି. ବୌଦ୍ଧମତ ପ୍ରବର୍ତ୍ତକ ମୁନି, ବୁଦ୍ଧଦେବ ।

**ଗୋତମସ୍ତୋମ**—ପୁଂ. ବି. ଯଜ୍ଞବିଶେଷ, ଯଜ୍ଞବିଶେଷ ।

**ଗୋତମସ୍ୱାମୀ**—ପୁଂ. ବି. ଜୈନ ଧର୍ମାବଲମ୍ବୀ ଜଣେ ବ୍ରାହ୍ମଣ ।

**ଗୋତମାନ୍ୱୟ**—ପୁଂ. ବି. ମାୟାଦେବୀଙ୍କ ପୁତ୍ର ଶାକ୍ୟମୁନି, ବୁଦ୍ଧଦେବ ।

**ଗୋତମୀ**—ସ୍ତ୍ରୀ. ବି. ଗୌତମଙ୍କ ଭାର୍ଯ୍ୟା, ଅହଲ୍ୟା ।

**ଗୋତମୀପୁତ୍ର**—ପୁଂ.ବି.(୬ତତ୍ପୁ)ଅହଲ୍ୟା ପୁତ୍ର, ଶତାନନ୍ଦ ।

**ଗୋତମେଶ୍ୱର**—ପୁଂ. ବି. ତୀର୍ଥବିଶେଷ ।

**ଗୋତର**—ଗ୍ରା.(ଗଞ୍ଜାମ) ବି. ଓର,ଟେର, ସନ୍ଧାନ ।

**ଗୋତର୍ତ୍ତି**--ବୋମ୍ବାଇବେରକାଣ୍ଡା ବିଭାଗର ମଧ୍ୟବର୍ତ୍ତୀ ଗୋଟିଏ କ୍ଷୁଦ୍ର ରାଜ୍ୟ ।

**ଗୋତଲ୍ଲକ**—ପୁଂ. ବି. ଉତ୍ତମ ଗୋରୁ ।

**ଗୋତା**—ଗ୍ରା.ବି.ଜଳ ଆଦିରେ ଡୁବିବା, ଅଣବିଶ୍ୱାସୀ, ଅନିଷ୍ଟକର ଆଚରଣ ।

**ଗୋତାଡ଼ୁ**—ଗ୍ରା. (ଗଞ୍ଜାମ)ବି. ଦକ୍ଷିଣରେ ଛଅଟି ରୁପାର ସରୁପାତିଆରେ ତଳେଇ ପରି ବୁଣା ଅଣ୍ଟାର ଗୋଲ ସୂତା ।

**ଗୋତାମାରୁ**—ଗ୍ରା.ବିଂ-ଦଗାଦାର୍,ଧୂର୍ତ୍ତ ଦଗାବାଜ୍, ଅଣବିଶ୍ୱାସୀ, ଯେ ଗୋପନରେ ପରର ଅନିଷ୍ଟ କରେ ।

**ଗୋତି**—ଗ୍ରା. ବି. ପର ଘରେ ଆଶ୍ରୟ ମାଗି ପେଟ ପୋଷିବା, ଗୋଡ଼ରେ ଗୋଡ଼ ମାରି ଅନ୍ୟକୁ ତଳେ ପକାଇଦେବାର କୌଶଳବିଶେଷ, (ବିଂ) ଯେ ପର ଘରେ ଆଶ୍ରୟ ନେଇ ପେଟ ପୋଷେ ।

**ଗୋତିପଣ**—ଗ୍ରା.ବିଂ.(ସଂ-ଗୋତ୍ରପ୍ରବନ୍ଧ) ପରଘରେ ଆଶ୍ରିତ ।

**ଗୋତୀର୍ଥ**—କ୍ଲୀ. ବି. ଗୋଚରଣ ସ୍ଥାନ, ଗୋଷ୍ଠ,ଗୋଠ, କାନ୍ୟକୁବ୍ଜର ଅନ୍ତର୍ଗତ ତୀର୍ଥବିଶେଷ ।

**ଗୋତୀର୍ଥକ**—ପୁଂ. ବି. ବୈଦ୍ୟଶାସ୍ତ୍ରୋକ୍ତ ଏକପ୍ରକାର ଛେଦନ ପ୍ରଣାଳୀ ।

**ଗୋତ୍ର**—ପୁଂ. ବି. (ଗୋ+ତ୍ରୈ+ଅ) ପାହାଡ଼, ପର୍ବତ (କ୍ଲୀ) ଆଖ୍ୟା, ନାମ, ସମ୍ଭାବନୀୟବୋଧ, କାନନ, କ୍ଷେତ୍ର, ମାର୍ଗ, ବୃଦ୍ଧି, ବିତ୍ତ, ଧନ,ବଂଶ, କୁଳ, ଗୁହାଳ, ଜାତିଶ୍ରେଣୀ(ପୁଂ.ବି.) ସନ୍ତତି, ସନ୍ତାନ, ବନ୍ଧୁ, ଛତ୍ର, ସଂଘ, ସମୂହ, କୁଳପ୍ରବର୍ତ୍ତକ ଋଷି,(ଯଥା—ଭରଦ୍ୱାଜ, କଶ୍ୟପ ପ୍ରଭୃତି),(ବିଂ)ରକ୍ଷିତ ।

**ଗୋତ୍ରକ**—କ୍ଲୀ. ବି. (ଗୋତ୍ର+କ) ଗୋତ୍ର, ବଂଶ ।

**ଗୋତ୍ରକର୍ତ୍ତା**—ପୁଂ.ବି. (୬ତତ୍ପୁ)ଗୋତ୍ରପ୍ରବର୍ତ୍ତକ ବ୍ୟକ୍ତି ।

**ଗୋତ୍ରକାର**—ପୁଂ.ବି. (ଗୋତ୍ର+କୃ+ଇନ୍) ଗୋତ୍ରକର୍ତ୍ତା, ଗୋତ୍ରପ୍ରବର୍ତ୍ତକ ବ୍ୟକ୍ତି ।

**ଗୋତ୍ରକୀଲା**—ସ୍ତ୍ରୀ. ବି. ପୃଥିବୀ ।

**ଗୋତ୍ରକୁଠାରି**—ଗ୍ରା. ବି. (ସଂ-ଗୋତ୍ରକୁଠାର) ଗୋତ୍ରମଧ୍ୟ ତାହୁକ,(ଲ.ଅର୍ଥ) ଯେଉଁବ୍ୟକ୍ତି ଶତ୍ରୁପକ୍ଷକୁ ସାହାଯ୍ୟଦେଇ ନିଜର ଆତ୍ମୀୟ ବ୍ୟକ୍ତିମାନଙ୍କର ସର୍ବନାଶ ଘଟାଏ ।

**ଗୋତ୍ରଘ୍ନ**—ପୁଂ.ବି. (ଗୋତ୍ର+ହନ୍+କ.ଅ)ଇନ୍ଦ୍ର,(ବିଂ)ଗୋତ୍ରମାରୁ(ଦେଖ) ।

**ଗୋତ୍ରଜ**—ପୁଂ.ବି. (ଗୋତ୍ର+ଜନ୍+କ. ଅ) ବଂଶୀୟ, ଏକ ଗୋତ୍ରୋତ୍ପନ୍ନ, (ଚତୁର୍ଦ୍ଦଶ ପୁରୁଷପର ଏକ ଗୋତ୍ରରୁ ଉତ୍ପନ୍ନ ବ୍ୟକ୍ତିଙ୍କୁ ଗୋତ୍ରଜ କହନ୍ତି) ।

**ଗୋତ୍ରଜସପିଣ୍ଡ**—ବି. (ତ୍ରିଦ୍, ସ୍ମୃତି) ଆପଣାବଂଶର ଯେଉଁ ବଂଶମାନେ କୌଣସି ବ୍ୟକ୍ତି ସଙ୍ଗେ ପିଣ୍ଡ ଦାନଦ୍ୱାରା ସମ୍ପର୍କିତ(ଯଥା—ପିତୃ,ପିତାମହ, ପ୍ରପିତାମହ ଓ ପୁତ୍ର,ପୌତ୍ର, ପ୍ରପୌତ୍ର) ଆପଣାର ଉପର ତିନିପୁରୁଷ ଓ ତଳ ତିନିପୁରୁଷ ଗୋତ୍ରଜ ସପିଣ୍ଡ ।

**ଗୋତ୍ରପ୍ରଧାନ**—ବି. (୬ତତ୍ପୁ) ହିମାଳୟ ପର୍ବତ, ବଂଶର ଶ୍ରେଷ୍ଠ ବ୍ୟକ୍ତି ।

**ଗୋତ୍ରପ୍ରବର**—ବି. (ଗୋତ୍ର+ପ୍ରବର) ଗୋତ୍ରପ୍ରବର୍ତ୍ତକ ବ୍ୟକ୍ତି, କୁଳର ପ୍ରଧାନ ବ୍ୟକ୍ତି, କୌଣସି ବ୍ୟକ୍ତିର ବଂଶର ପ୍ରବର୍ତ୍ତକ ଆଦିପୁରୁଷଙ୍କ ନାମସମ୍ବଳିତ ଗୋତ୍ର ଓ ଉକ୍ତ ଆଦି ପୁରୁଷଙ୍କର ବଂଶ ଯେଉଁ ଶାଖାର ଅନ୍ତର୍ଗତ ସେହି ଶାଖା ।

**ଗୋତ୍ରପ୍ରବର୍ତ୍ତକ**—ପୁଂ. ବିଂ. ଯାହାଙ୍କ ନାମରୁ ଗୋଟିଏ କୁଳର ନାମକରଣ ହୁଏ, ବଂଶର ପ୍ରତିଷ୍ଠାତା ।

**ଗୋତ୍ରଭିତ୍**—ପୁଂ.ବି. (ଗୋତ୍ର+ଭିଦ୍+କ୍ୱିପ୍) ଇନ୍ଦ୍ର,ନାମଭେଦକ, ଗୋତ୍ରସ୍ଖଳନ ।

**ଗୋତ୍ରମରା ଡାହୁକ** — ଗ୍ରା. ବି. ବଂଶମରା ଡାହୁକ, (ଲ.ଅର୍ଥ) ଯେଉଁବ୍ୟକ୍ତି ଶତ୍ରୁପକ୍ଷକୁ ସାହାଯ୍ୟ ଦେଇ ନିଜର ଆତ୍ମୀୟମାନଙ୍କର ସର୍ବନାଶ ଘଟାଏ।

**ଗୋତ୍ରମାରୁ** — ଗ୍ରା. ବିଂ. ଗୋତ୍ରଘ୍ନ, ଯେ ଶତ୍ରୁ ସଙ୍ଗେ ମିଶି ଆପଣା ବଂଶର ବିନାଶ ଘଟାଏ।

**ଗୋତ୍ରରିକ୍ଥ** — କ୍ଲୀ. ବି. (ଗୋତ୍ର + ରିକ୍ଥ) (୬ତତ୍) ଗୋତ୍ର ଧନ।

**ଗୋତ୍ରବାନ୍** — ପୁଂ.ବିଂ. (ଗୋତ୍ର + ବତ୍) ଗୋତ୍ରଯୁକ୍ତ, ଯାହାର ଗୋତ୍ର ଅଛି, (ସ୍ତ୍ରୀ) ଗୋତ୍ରବତୀ।

**ଗୋତ୍ରବୃକ୍ଷ** — ପୁଂ. ବି. (ଗୋତ୍ର + ବୃକ୍ଷ) ଧନ୍ୱନ୍ ବୃକ୍ଷ।

**ଗୋତ୍ର ସୁମରିବା, ଗୋତ୍ର ସୁମରଣକରିବା** — ଗ୍ରା. କ୍ରି. ଆପଣା ପରିବାରର ବିଷୟ ସ୍ମରଣ କରିବା, ଝୁରିବା।

**ଗୋତ୍ରସ୍ଖଳନ** — କ୍ଲୀ.ବି.(ଗୋତ୍ର + ସ୍ଖଳନ) ଜଣଙ୍କର ନାମ କହିବାବେଳେ ଅନ୍ୟର ନାମ ଉଚ୍ଚାରଣ କରିବା (ଅତିଶୟ ଗାଢ଼ ଚିନ୍ତାରେ ଏପରି ଘଟିଥାଏ)।

**ଗୋତ୍ରା**--ସ୍ତ୍ରୀ.ବି.(ଗୋ + ତ୍ରୈ + ଅ + ଆ) ପୃଥିବୀ, ଗୋ-ସମୂହ, ଗାୟତ୍ରୀସ୍ୱରୂପା ମହାଦେବୀ, (ବିଂ) ରକ୍ଷିତା।

**ଗୋତ୍ରାନ୍ତ** — ପୁଂ. ବି. (ଗୋତ୍ର + ଅନ୍ତ) ୬ତତ୍; ଗୋତ୍ରର ବିନାଶ।

**ଗୋତ୍ରାନ୍ତର** — କ୍ଲୀ.ବି. (ଗୋତ୍ର + ଅନ୍ତର) ଅନ୍ୟଗୋତ୍ର।

**ଗୋତ୍ରିକ** — ବିଂ. ( ଗୋତ୍ର + ଇକ ) ଗୋତ୍ରୋତ୍ପନ୍ନ, ଗୋତ୍ରୀୟ।

**ଗୋତ୍ରୀ, ଗୋତ୍ରିଆ** — ଗ୍ରା. ବିଂ. ଗୋତ୍ରସମ୍ବନ୍ଧୀୟ, ( ଅମୁକ ) ଗୋତ୍ରଜାତ, (ଅମୁକ) ବଂଶଜାତ।

**ଗୋତ୍ରୀୟ** — ବିଂ. ( ଗୋତ୍ର + ଈୟ ) ଗୋତ୍ରସମ୍ବନ୍ଧୀୟ, (ଅମୁକ) ଗୋତ୍ରଜାତ, (ଅମୁକ) ବଂଶୀୟ।

**ଗୋତ୍ୱ** — କ୍ଲୀ.ବି. (ଗୋ + ତ୍ୱ) ଜାତି-ବିଶେଷ, ଯେଉଁ ଜାତି କେବଳ ଗୋରୁଠାରେ ଅଛି ଅନ୍ୟ କାହାଠାରେ ହେଲେ ନାହିଁ, ଗୋରୁର ଧର୍ମ।

**ଗୋଦ** — ପୁଂ. ବି. (ଗୋ + ଦା + ଅ) ମସ୍ତିଷ୍କ, ମଗଜ, ଗୋଦାବରୀ ନିକଟସ୍ଥ ଗୋଟିଏ ଦେଶ, ଶ୍ଳୀପଦରୋଗ, ଗୋଦର, (ବିଂ) ଯେ ଗୋରୁ ଦାନକରେ, ଗୋଦାତା।

**ଗୋଦଡ଼** — ଗ୍ରା.ବି. (ଫ-ଗ୍ରନ୍ଥିଲ) ଅନେକ ପରସ୍ତ ଚିରା କନାରେ ତିଆରି ହୋଇଥିବା ଆସ୍ତରଣ, କନ୍ଥା।

**ଗୋଦଡ଼ା** — ଗ୍ରା.ବିଂ. ସ୍ଥୂଳ, ଗଦଡ଼ା, ଶ୍ରବଣଶକ୍ତିରହିତ, ସ୍ତବ୍ଧ(କର୍ଣ୍ଣ), ସ୍ପର୍ଶାନୁଭୂତିରହିତ(ଅଙ୍ଗ), ଖାଦ୍ୟରେ ଭର୍ତ୍ତିହୋଇଥିବା ଅବସ୍ଥାଯୁକ୍ତ (ପାଟି), ଗମ୍ଭୀର ଶବ୍ଦଯୁକ୍ତ, (ଗ୍ରା.ପୁଂ.ବିଂ) ଗୋଦରା, ଶ୍ଳୀପଦ ରୋଗୀ, (ସ୍ତ୍ରୀ) ଗୋଦଡ଼ୀ।

**ଗୋଦତ୍ର** — କ୍ଲୀ.ବିଂ.(ଗୋଦ + ତ୍ରୈ + ଅ) ମସ୍ତିଷ୍କରକ୍ଷକ, ମୁକୁଟାଦି।

**ଗୋଦନା** — ( ରେବେଲଗଞ୍ଜ ) ସାରଣ ଜିଲ୍ଲାନ୍ତର୍ଗତ ଗୋଟିଏ ନଗର।

**ଗୋଦନାବାଲୀ** — ବେଦିଆ ଜାତିର ସ୍ତ୍ରୀଲୋକ।

**ଗୋଦନ୍ତ**-କ୍ଲୀ.ବି. ହରିତାଳ, ଅକର୍ମଶିଳା, (ପୁଂ. ବି. ୬ତତ୍) ଗୋରୁର ଦାନ୍ତ।

**ଗୋଦର** — ଗ୍ରା.ବି. (ଫ-ଗ୍ରନ୍ଥିଲ) ପାଦର ମାଂସବୃଦ୍ଧି ରୋଗ, ( ବିଂ ) ଶ୍ଳୀପଦରୋଗଯୁକ୍ତ।

**ଗୋଦରା** — ଗ୍ରା. ପୁଂ. ବିଂ. ଶ୍ଳୀପଦରୋଗଯୁକ୍ତ (ବ୍ୟକ୍ତି)।

**ଗୋଦସ୍ତା** — ଯା. ବି. ଗତବର୍ଷ, (ବିଂ) ଗତବର୍ଷସମ୍ବନ୍ଧୀୟ।

**ଗୋଦା** — ସ୍ତ୍ରୀ. ବି. (ଗୋ + ଦା + ଅ + ଆ ) ଗୋଦାବରୀ ନଦୀ, ଗାୟତ୍ରୀ ସ୍ୱରୂପା ମହାଦେବୀ (ସ୍ତ୍ରୀ.ବି.) ଗୋଦାତ୍ରୀ, ଗୋଦରରୋଗଯୁକ୍ତା (ସ୍ତ୍ରୀ)।

**ଗୋଦାତା** — ପୁଂ. ବିଂ. (ଗୋ + ଦା + ତୃ) ଯେ ଗୋଦାନକରେ।

**ଗୋଦାନ** — କ୍ଲୀ.ବି.(ଗୋ + ଦ + ଅନ) କେଶ ଛେଦନରୂପ ସଂସ୍କାରବିଶେଷ, ଦକ୍ଷିଣ କର୍ଣ୍ଣର ସମୀପବର୍ତ୍ତୀ ସ୍ଥାନ, (୬ତତ୍) ଗୋରୁଦାନ।

**ଗୋଦାନିକ** — ବି. (ଗୋଦାନ + ଇକ) ଗୋଦାନାଖ୍ୟ ବ୍ରହ୍ମଚର୍ଯ୍ୟ, ଗୋଦାନୋକ୍ତ କର୍ମ।

**ଗୋଦାମ** — ଗ୍ରା. ବି. (ଇଂ-ଗୋଡ଼ାଉନ୍) ଗଞ୍ଜ, ପଣ୍ୟଦ୍ରବ୍ୟ ସଞ୍ଚୟସ୍ଥାନ, ଭଣ୍ଡାର, ଗଲ୍ଲାଘର।

**ଗୋଦାମଝଡ଼ା, ଗୋଦାମ ଝାଡ଼ୁ** — ଗ୍ରା.ବି. ଗୋଦାମରେ ମହଜୁଦ୍ ଥିବା ପଣ୍ୟଦ୍ରବ୍ୟମାନ ବିକ୍ରୀ ହୋଇସାରିବା ପରେ ଅଳିଆ ମଧ୍ୟରେ ଯେଉଁ ଅକର୍ମଣ୍ୟ ମାଲମାନ ରହିଯାଏ।

**ଗୋଦାମରଦ** — ଗ୍ରା. ବିଂ. ଗୋଦାମରେ ସଞ୍ଚିତ ପଣ୍ୟଦ୍ରବ୍ୟମାନଙ୍କ ମଧ୍ୟରୁ ଯାହା ବିକ୍ରୀ ନ ହୋଇ ବଳିପଡ଼ି ଥାଏ, ଗୋଦାମରେ ଥିବା ଜିନିଷମାନଙ୍କ ମଧ୍ୟରୁ ସର୍ବ ନିକୃଷ୍ଟ ଓ ଅକର୍ମଣ୍ୟ (ମାଲ), (ଲ.ଅର୍ଥ) ଅକର୍ମଣ୍ୟ (ବ୍ୟକ୍ତି)।

**ଗୋଦାୟ** — ପୁଂ.ବିଂ. (ଗୋ + ଦା + ଅ) ଯେ ଗୋଦାନ କରେ, ଗୋଦାତା।

**ଗୋଦାରଣ** — କ୍ଲୀ. ବି. (ଗୋ + ଦୃ + ଣିଚ୍ + ଅନ) ଲଙ୍ଗଳ, କୁଦାଳ, କୋଡ଼ି।

**ଗୋଦାରି** — ପ୍ରା. (ଗଞ୍ଜାମ) ବି. ଶୂଦ୍ର, ପାଟକ ବିଶେଷ।

**ଗୋଦାବରୀ** — ସ୍ତ୍ରୀ. ବି. ସ୍ୱନାମଖ୍ୟାତା ପୁଣ୍ୟତୋୟା ନଦୀବିଶେଷ, ଆନ୍ଧ୍ରପ୍ରଦେଶ ଅନ୍ତର୍ଗତ ଗୋଟିଏ ଜିଲ୍ଲା।

**ଗୋଦାବରୀଶ ମିଶ୍ର** — ଉତ୍କଳର ଭୂତପୂର୍ବ ଶିକ୍ଷାମନ୍ତ୍ରୀ ଓ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠାତା।

**ଗୋଦୁଗ୍ଧ** — କ୍ଲୀ. ବି. (୬ତତ୍) ଗୋରୁର କ୍ଷୀର, ଗାଈଦୁଧ। [ଘାସ।

**ଗୋଦୁଗ୍ଧଦା** — ସ୍ତ୍ରୀ. ବି. ଚଣିକା ତୃଣ,

**ଗୋଦୁଗ୍ଧା** — ସ୍ତ୍ରୀ. ବି. ଚଣିକା ତୃଣ, ଘାସବିଶେଷ।

**ଗୋଦୁହ୍** — ପୁଂ.ବି. ଗୋ + ଦୁହ + କ୍ୱିପ୍) ଗୋଦୋହକ, ଗୋପାଳ, ଗଉଡ଼।

**ଗୋଦୋହ** — ପୁଂ. ବି. ଗୋଦୋହନ, ଗୋଦୁଗ୍ଧ, କାଳବିଶେଷ।

**ଗୋଦୋହନ** — କ୍ଲୀ.ବି. ଗୋରୁଦୋହନ, ଗାଈ ଦୁହିଁବା, ଗୋଦୋହନକାଳ।

ଗୋଦୋହନୀ—ସ୍ତ୍ରୀ.ବି. (ଗୋ+ଦୁହ୍+ଅନ+ଈ) ଗୋଦୋହନ ପାତ୍ର, ଦୁଧ-ଦୁହାଁ ଠେକ, ଦୁଧଦୁହାଁ ଗଣ୍ଡ ।

ଗୋଦୋହମାତ୍ର—ଅବ୍ୟ.ଅତ୍ୟଳ୍ପସମୟ ।

ଗୋଦ୍ରବ—ପୁଂ. ବି. (ଗୋ+ଦ୍ରୁ+ଅ) (ମଧ୍ୟ. କ. ଧା) ଗୋମୂତ୍ର, ଗାଇମୂତ୍ର, ଗୋରୁମୂତ୍ର ।

ଗୋଧଡ଼ି—ଗ୍ରା.ବି.(ସଂ—କନ୍ଥା·ଗର୍ଦ୍ଦିଲ) ଗୋଦଡ଼ି, କନ୍ଥାରେ ପ୍ରସ୍ତୁତ ପରିଧାନ ବା ଆସ୍ତରଣ,ମୁଣା,ଝୁଲିମୁଣି,ସନ୍ନ୍ୟାସୀ, କନ୍ଥାଧାରୀ, ବୈରାଗୀ, ଭିକ୍ଷୁକ ।

ଗୋଧନ—କ୍ଲୀ. ବି. ଗୋରୂପ-ଧନ, ଗୋସମୂହ, ଗୋରୁପଲ୍ଲ, ପ୍ରଶସ୍ତ ଫଳ-ଯୁକ୍ତ ତୀର, (ବି°) ଯାହାର ଗୋରୂପ ଧନ ଅଛି ।

ଗୋଧନବାହୁଡ଼ା—ଗ୍ରା.ବି. ଗୋରୁମାନେ ଚରିବୁଲି ଫେରିବା, ଶ୍ରୀକୃଷ୍ଣଙ୍କର ଗୋଧୂଳି ସମୟରେ ଗୋଚାରଣରୁ ଫେରିବା ।

ଗୋଧନ୍ୟ—ଚୀନ୍‌ପରିବ୍ରାଜକବର୍ଣ୍ଣିତ ଏକ ବିସ୍ତୃତ ମହାଦ୍ୱୀପ । [ଗହମ ।

ଗୋଧମ—ବି. (ଗୁଧ+କ,ଅମ)ଗୋଧୂମ,

ଗୋଧର—ପୁଂ.ବି.(ଗୋ+ଧୃ+କ,ଅ) ପର୍ବତ, ପ୍ରଭାସଖଣ୍ଡବର୍ଣ୍ଣିତ ଏକ ପ୍ରାଚୀନ ପୁଣ୍ୟତୀର୍ଥ ।

ଗୋଧର୍ମ—ପୁଂ.ବି. (୬ତତ୍ପୁ)ଗୋରୁଙ୍କ-ପରି ବିଚାରଶୂନ୍ୟ ମୈଥୁନ, (ପଶୁ-ମାନଙ୍କପରି ) ।

ଗୋଧା—ସ୍ତ୍ରୀ.ବି.(ଗୁଧ୍+ଅ+ଆ)ଧନୁର ଗୁଣାଘାତ ନିବାରଣାର୍ଥ ବାମପ୍ରକୋଷ୍ଠ-ନିବଦ୍ଧ ଚର୍ମନିର୍ମିତ ପଟ୍ଟିକା, ଜନ୍ତୁ-ବିଶେଷ, ଗୋଧିସାପ ।

ଗୋଧାଖ୍ୟ—ପୁଂ.ବି.ଗୋଧିସାପ ।

ଗୋଧାଙ୍ଗୁଳୀତ୍ର—କ୍ଲୀ.ବି.(କ.ଧା) ଗୋଧି-ଚମରେ ତିଆରି ଦସ୍ତାନା ।

ଗୋଧାଙ୍ଘ୍ରି—ସ୍ତ୍ରୀ.ବି. ଗୋଧାପଦୀ ଲତା, ହଂସପାଦୀ ଲତା ।

ଗୋଧାପଦିକା—ସ୍ତ୍ରୀ.ବି.ଗୋଧାପଦୀ ଲତା, ହଂସପାଦୀ ଲତା ।

ଗୋଧାପଦୀ—ସ୍ତ୍ରୀ. ବି. ଲତାବିଶେଷ, ହଂସପାଦୀ ।

ଗୋଧାସୁର—ପୁଂ. (ଗୋ+ଧା+ଅସୁ) ଯେ ଗୋରୁ ଧାରଣକରେ,ଗୋଧାରକ ।

ଗୋଧାବତୀ—ସ୍ତ୍ରୀ. ବି. ଗୋଧାପଦୀ, ବଟପତ୍ରୀ ।

ଗୋଧାବଲ୍ଲୀ—ସ୍ତ୍ରୀ. ବି. ଗୋଧା ସଦୃଶୀ-ଲତା, ଗୋଧାବତୀ, ହଂସପାଦୀ ଲତା ।

ଗୋଧାବୀଣାକା—ସ୍ତ୍ରୀ. ବି. ଗୋଧିଛାଲରେ ଆବଦ୍ଧ ବାଦ୍ୟଯନ୍ତ୍ରବିଶେଷ, ଖଂଜଣୀ, ଘୁଡ଼ୁକ ।

ଗୋଧାସ୍କନ୍ଧ—ପୁଂ. ବି. ପାକଡ଼ା ଖଇର ।

ଗୋଧି—ପୁଂ.ସ୍ତ୍ରୀ.ବି. (ଗୋ+ଧା+ଇ) ଗୋମୁହାଁ କୁମ୍ଭୀର, ଗୋଧିକା, ଗୋଧି-ସାପ, (ପୁଂ. ବି) ଲଲାଟ, କପୋଳ ।

ଗୋଧିକା—ସ୍ତ୍ରୀ. ବି. (ଗୁଧା+କ+ଆ) ଗୋଧିସାପ, ଗୋଧି ।

ଗୋଧିକାତ୍ମଜ—ପୁଂ. ବି. ଗୋଧିସାପପରି ଆକୃତିବିଶିଷ୍ଟ ଜନ୍ତୁବିଶେଷ ।

ଗୋଧିନୀ—ସ୍ତ୍ରୀ.ବି.(ଗୋଧ+ଇନ୍+ଈ) କ୍ଷବକା (ବୃକ୍ଷବିଶେଷ) ।

ଗୋଧିସାପ—ଗ୍ରା. ବି. ଗୋଧି (ଦେଖ) ।

ଗୋଧୀଶ—ପୁଂ.ବି.ଦ୍ରୋଣପୁଷ୍ପୀ, ଗଇଣ ।

ଗୋଧୁମ—ପୁଂ. ବି. (ଗୁଧ+କ, ଉମ) ଗୋଧୂମ, ଗହମ, ଲେମ୍ବୁ, ନାରଙ୍ଗ, ଶସ୍ୟବିଶେଷ ।

ଗୋଧୂମକ—ପୁଂ. ବି. (ଗୋଧୂମ+କ) ସର୍ପବିଶେଷ ।

ଗୋଧୂମଚୂର୍ଣ୍ଣ—କ୍ଲୀ.ବି. (୬ତତ୍ପୁ)ଗହମ-ଅଟା, ମଇଦା ।

ଗୋଧୂମସମ୍ଭବ—କ୍ଲୀ.ବି. ସୌବୀରକାଞ୍ଜିକ ବିଶେଷ ।

ଗୋଧୂମସାର—ପୁଂ. ବି. ଗୋଧୂମର ସାରାଂଶ, ଗହମସାର ।

ଗୋଧୂମୀ—ସ୍ତ୍ରୀ. ବି. ( ଗୋ+ଧୂମ+ଅ +ଈ) ଗୋଲୋମିକା, ଶ୍ୱେତଦୁବା, ଧଳାଦୁବ ।

ଗୋଧୂଳି—ସ୍ତ୍ରୀ. ବି. (ବ.ବ୍ରୀ) ଗୋରୁ-ମାନେ ଚରିବୁଲି ଫେରିବା ସମୟରୁ ଗୋଧୂଳି କହନ୍ତି ଅର୍ଥାତ୍, ସନ୍ଧ୍ୟା-କାଳ, ସନ୍ଧ୍ୟାର ପ୍ରାକ୍‌କାଳ, (କ.ଧା) ଗୋରୁଖୁରା ଦ୍ୱାରା ଉଡ଼ୁଥିବାଧୂଳି ।

ଗୋଧୂଳିଯାତ୍ରା—ବି. ଗୋଧୂଳି ସମୟରେ କୌଣସି ଶୁଭକର୍ମପାଇଁ ଗମନ କରିବା ବା ଅନୁକୂଳ କରିବା ।

ଗୋଧୂଳିଲଗ୍ନ—କ୍ଲୀ. ବି. (କ.ଧା)ଗୋଧୂଳି ସମୟରେ ବିବାହପାଇଁ ନିରୂପିତ ଲଗ୍ନ ।

ଗୋଧେନୁ—ସ୍ତ୍ରୀ. ବି. (କ.ଧା)ଦୁଗ୍ଧବତୀ ଗାଈ ।

ଗୋଧେର-ପୁଂ.(ଗୁଧା+କ,ଏର)ରକ୍ଷକ, ପୁଷ୍ଟିପୋଷକ ।

ଗୋଧେରକ—ପୁଂ. (ଗୋଧେର+କ) ରକ୍ଷକ, (ବି) ଚତୁଷ୍ପଦ ସର୍ପବିଶେଷ, ଗୋଧିସାପ ।

ଗୋଧ୍ର—ପୁଂ. ବି. (ଗୋ+ଧୃ+କ,ଅ) ଭୂଧର, ପର୍ବତ ।

ଗୋଧ୍ରା—ଗୁଜୁରାଟର ପାଞ୍ଚମହଲ ଜିଲାର ଗୋଧ୍ରାଉପବିଭାଗାନ୍ତର୍ଗତ ପ୍ରଧାନ ନଗର ।

ଗୋନନ୍ଦ—ପୁଂ. ବି. କାର୍ତ୍ତିକେୟଙ୍କର ଗଣବିଶେଷ, କାଶ୍ମୀରର ଜଣେ ରାଜା, ମତ୍ସ୍ୟ, ବାମନ ଓ ମାର୍କଣ୍ଡେୟପୁରାଣୋକ୍ତ ଜନପଦବିଶେଷ ।

ଗୋନନ୍ଦନ—ପୁଂ. ବି. ସ୍କନ୍ଦକର୍ତ୍ତୃକମୃତଧୃତ ଜଣେ ଗଣ ।

ଗୋନନ୍ଦୀ—ସ୍ତ୍ରୀ. ବି. (ଗୋ+ନନ୍ଦ୍+ଅ +ଈ ) ସାରସ ପକ୍ଷୀ, ବଢ଼ିଆକାଙ୍କ, ପର୍ବତବିଶେଷ, ଦେଶବିଶେଷ, ଶିବ, କାଶ୍ମୀରର ପ୍ରାଚୀନ ରାଜାବିଶେଷ, ନଗର ମୁଥା ।

ଗୋନର୍ଦ୍ଦ—ପୁଂ.ବି.(ଗୋ+ନର୍ଦ୍ଦ+କ, ଅ) ସାରସପକ୍ଷୀ,ଦେଶବିଶେଷ, କେଉଟ ମୁଥା, ମହାଦେବ, କାଶ୍ମୀରର ଜଣେ ରାଜା, ଜଣେ ପ୍ରାଚୀନ ଗ୍ରନ୍ଥକାର ।

ଗୋନର୍ଦ୍ଦୀୟ—ପୁଂ.ବି.(ଗୋନର୍ଦ୍ଦ+ଈୟ) ପତଞ୍ଜଳି ମୁନି, (ବି°) ଗୋନର୍ଦ୍ଦ ଦେଶୋତ୍ପନ୍ନ ।

ଗୋନସ—ପୁଂ.ସ୍ତ୍ରୀ. ବି. (ଗୋ+ନସ୍+ଅ); (ବ.ବ୍ରୀ) ବୋଡ଼ାସାପ,ସର୍ପବିଶେଷ, ଚନ୍ଦବୋଡ଼ା, (ପୁଂ.ବି) ବୈକ୍ରାନ୍ତମଣି ।

ଗୋନସୀ — ସ୍ତ୍ରୀ. ବି. ଔଷଧବୃକ୍ଷବିଶେଷ ।
ଗୋନାଗୋଷ୍ଠୀ — ( ଗଣଗୋଷ୍ଠୀଶବ୍ଦଜ ) ପୂର୍ବପୁରୁଷ ବା ବା ବଂଶଠାରୁ ଠିକ୍ ଗଣିବା ।
ଗୋନାଡ଼କ — ପୁଂ. ବି. ଚକ୍ଷୁଶାକ ।
ଗୋନାଥ — ପୁଂ. ବି. ( ଗୋ + ନାଥ ) (୬ତତ୍) ବୃଷ, ଭୂମିପତି, ରାଜା, ଗୋସ୍ୱାମୀ, ଯାହାର ଗୋରୁପଲ୍ଲଅଛନ୍ତି ।
ଗୋନାସ୍ତ — ପୁଂ.ବି. (ଗୋ + ନ୍ନ + ଅ) ଗୋପ, ଗଉଡ଼ ।
ଗୋନାସ — ପୁଂ.ବି. (ବ.ବ୍ରୀ) ଗୋନସ-ସର୍ପ, (କ୍ଲୀ.ବି) ରତ୍ନବିଶେଷ, ବୈକ୍ରାନ୍ତ-ମଣି ।
ଗୋନାସା-ଗ୍ରା.ବି. ଗୋନାସିକା(ଦେଖ) ।
ଗୋନାସିକା — ବି. ହିମାଳୟର ଯେଉଁ ସ୍ଥଳରେ ପର୍ବତ ଛିଦ୍ରରୁ ବାହାରି ଗଙ୍ଗାନଦୀ ଧୀରଭାବରେ ଭୂପୃଷ୍ଠରେ ପଡ଼ିଅଛି, ଗୋରୁର ନାସାମଣି, (ଗ୍ରା.ବି.), ଓଡ଼ିଶାର କେନ୍ଦୁଝର-ଅନ୍ତର୍ଗତ ଗୋଟିଏ ପାହାଡ଼ । [ତୀର୍ଥ ।
ଗୋନିଷ୍କ୍ରମଣ — କ୍ଲୀ. ବି. ଗୋଟିଏ ପୁଣ୍ୟ-
ଗୋନିଷ୍ୟନ୍ଦ — ପୁଂ.ବି.ଗୋମୂତ୍ର, ଗୋରୁ-ମୁତ ।
ଗୋନ୍ଦ — ଗ୍ରା.ବି. (ଫ — କୁନ୍ଦୁରୁ) ଏକ-ପ୍ରକାର ବୃକ୍ଷ-ନିର୍ଯ୍ୟାସ ବା ଅଠା ।
ପ୍ରକାର ବୃକ୍ଷ ନିର୍ଯ୍ୟାସ ବା ଅଠା ।
ଗୋନ୍ଦାନ — ଗ୍ରା. ବି. ଭାରତର ମଧ୍ୟ ପ୍ରଦେଶରେ କଥିତ ଓଡ଼ିଆ ଓ ଛତିଶ-ଗଡ଼ ଭାଷା ।
ଗୋନ୍ଧ — ପ୍ରା.(ବସ୍ତର)ବି. ଭାଗ, ଅଂଶ ।
ଗୋନ୍ଦୋଲ--ସାତାରଜିଲାମାନ ନଦୀଠାରୁ ନିଃସୃତ ଗୋଟିଏ ବିସ୍ତୃତ ଖାଲ ।
ଗୋନ୍ଧଲଗାର, ଗୋନ୍ଧଳୀ — ମହାରାଷ୍ଟ୍ର ରାଜ୍ୟବାସୀ ମରଠା ଜାତିବିଶେଷ ।
ଗୋନ୍ୟୋଧସ୍ ପୁଂ.ବିଂ.ଗମନଶୀଳ, ଦୁଗ୍ଧର ଯାହା ଚଳିତ ବା ପ୍ରବାହିତ ହୁଏ ।
ଗୋପ — ପୁଂ.ବି. (ଗୋ + ପା + କ,ଅ) ଜାତିବିଶେଷ, ଗଉଡ଼, (ସ୍ତ୍ରୀ) ଗୋପୀ, ଗଉଡ଼ୁଣୀ, (ପୁଂ.ବି) ଗ୍ରାମ୍ୟାଧିକାରୀ, ଭୂପାଳ, ଗୋଷ୍ଠାଧ୍ୟକ୍ଷ, (ବିଂ) ଗୋରକ୍ଷକ, ରକ୍ଷକ, ଉପକାରକ, (ପୁଂ.ବି) ଗନ୍ଧର୍ବ-ବିଶେଷ, ଷୀରକଲ, (ଗ୍ରା.ବି) ଗୋପପୁର, ବୃନ୍ଦାବନ, ପଚଲା ଚାରିରେ ଦଉଡ଼ିପରି ବଳା ହୋଇଥିବା ସୁନାର ହାର ।
ଗୋପକ — ପୁଂ.ବିଂ. (ଗୋପ + କ) ରକ୍ଷକ ଗୋପନକାରୀ, ( ବି ) ଜିଲ୍ଲାର ଶାସକ କର୍ମଚାରୀ, ବହୁ ଗ୍ରାମର ରକ୍ଷକ, ଗଉଡ଼, ଝୁଣା, (ସ୍ତ୍ରୀ) ଗୋପିକା ।
ଗୋପକନ୍ୟା — ସ୍ତ୍ରୀ. ବି. ଔଷଧବିଶେଷ, ଶାରିବା, ଶ୍ୟାମାଲତା ।
ଗୋପକନ୍ୟକା — ସ୍ତ୍ରୀ. ବି. ( ୬ତତ୍ ) ଗଉଡ଼ୁଣୀ, ଗୋପୀ, ବୃନ୍ଦାବନର ଷୋଳସହସ୍ର ଗୋପନାରୀ ।
ଗୋପକର୍କଟିକା — ସ୍ତ୍ରୀ. ବି. କୁନ୍ଦୁରୁ ।
ଗୋପକେନା-ପ୍ରା.(ଗଞ୍ଜାମ)ବି.(ବୈଦ୍ୟକ) ବୃକ୍ଷବିଶେଷ ।
ଗୋପକ୍ଷେତ୍ର — ପ୍ରଭାସଖଣ୍ଡବର୍ଣ୍ଣିତ ଏକ ପୁଣ୍ୟସ୍ଥାନ ।
ଗୋପଗୋଇ — ଗ୍ର. ସ୍ତ୍ରୀ. ବି. ଗଉଡ଼ୁଣୀ, ଗୋପାଙ୍ଗନା, ଗୋପୀ ।
ଗୋପଘୋଣ୍ଟା — ସ୍ତ୍ରୀ. ବି, ବୃକ୍ଷବିଶେଷ, ହସ୍ତୀକୋଲ, ଭର୍ଚ୍ଚିକୋଲ ।
ଗୋପତ — ଗ୍ରା. ବିଂ. ଗୁପ୍ତ, ଲୁକ୍କାୟିତ, ଅଦୃଶ୍ୟ ।
ଗୋପତମାରୁ — ଗ୍ରା. ବିଂ.ବିଶ୍ୱାସଘାତକ, ଗୁପ୍ତହନ୍ତା, ରହସ୍ୟଭେଦକାରୀ ।
ଗୋପତା — ସ୍ତ୍ରୀ. ବି. ଗୋପର ଧର୍ମ, ଗୋପଭାବ ।
ଗୋପତି — ପୁଂ.ବି.(ଗୋ + ପତି)୬ତତ୍, ଶିବ, ବୃଷ, ଷଣ୍ଢ, ଭୂମିପତି, କିରଣପତି, ସୂର୍ଯ୍ୟ, ଶ୍ରୀକୃଷ୍ଣ, ବରୁଣ, ବିଷ୍ଣୁଙ୍କର ସହସ୍ରନାମୋକ୍ତ ନାମବିଶେଷ, ସ୍ୱର୍ଗପତି ଇନ୍ଦ୍ର, ଋଷଭନାମକ ଔଷଧି, ସ୍ୱୋଜ-ବଂଶୀୟ ଜଣେ ରାଜା, ବାଚାଳ ବା ମୁଖର ବ୍ୟକ୍ତି, ଗଉଡ଼, ଗନ୍ଧର୍ବବିଶେଷ, ନଅ-ଜଣ ଉପନନ୍ଦଙ୍କ ମଧ୍ୟରୁ ଜଣେ ।
ଗୋପତିଚାପ — ପୁଂ. ବି. ଇନ୍ଦ୍ରଧନୁ ।
ଗୋପତ୍ୱ — କ୍ଲୀ. ବି. ଗୋପତିର ଧର୍ମ, ଗୋପାଳକ ଭାବ, ଅଥର୍ବବେଦର ବ୍ରାହ୍ମଣ-ବିଶେଷ ।
ଗୋପଥ — ପୁଂ.ବି.(୬ତତ୍) ଯେଉଁପଥରେ ଗୋରୁମାନେଯାଆନ୍ତି, (କ.ଧା) ସ୍ୱର୍ଗପଥ, ଅଥର୍ବବେଦୀୟ ବ୍ରାହ୍ମଣବିଶେଷ ।
ଗୋପଦ — କ୍ଲୀ.ବି. ଗୋରୁର ପଦଯୋଗ୍ୟ ସ୍ଥାନ ।
ଗୋପଦଲ — ପୁଂ. ବି. (ଗୋପଦ + ଲା + ଅ) ଗୁବାକବୃକ୍ଷ, ଗୁଆଗଛ ।
ଗୋପଦାଣ୍ଡ — ଗ୍ରା. ବି. ଗୋପପୁରର ଦାଣ୍ଡ ବା ପଥ ।
ଗୋପନ — କ୍ଲୀ. ବି. ( ଗୁପ୍ + ଣି, ଅନ) ଲୁଚିବା, ଅପହ୍ନବ, ରକ୍ଷଣ, କୁତ୍ସା, ବ୍ୟାକୁଳତା, ଦୀପ୍ତି, ତମାଲପତ୍ର, ତେଜପତ୍ର ।
ଗୋପନକରିବା — ଗ୍ରା. କ୍ରି. ଲୁଚ୍ଛାଇବା ।
ଗୋପନଗର — ବି, ଗୋକୁଳ (ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳାସ୍ଥାନ) । [ (ଦେଖ) ।
ଗୋପନଗରୀ — ସ୍ତ୍ରୀ. ବି. ଗୋପନଗର
ଗୋପନବାଦ — ବି. (ଆଧୁନିକ ପ୍ରୟୋଗ) ସାଧାରଣଙ୍କ ଅବୋଧ ଧର୍ମତତ୍ତ୍ୱବିଶେଷ ।
ଗୋପନା — ସ୍ତ୍ରୀ.ବି. (ଗୁପ୍ + ଅନ୍ + ଆ) ଦୀପ୍ତି ।
ଗୋପନାଗରୀ — ସ୍ତ୍ରୀ.ବି. (୬ତତ୍ )ଗୋପୀ (ଦେଖ), ରାଧିକା ।
ଗୋପନାରୀ — ସ୍ତ୍ରୀ.ବି.(୬ତତ୍)ଗୋପ ସ୍ତ୍ରୀ, ଗଉଡ଼ୁଣୀ, ଗୋପାଙ୍ଗନା ।
ଗୋପନୀୟ — ବିଂ. (ଗୁପ୍ + ମିଁ, ଅନୀୟ) ଅପ୍ରକାଶ୍ୟ, ଲୁଚ୍ଛାଇବାର ଯୋଗ୍ୟ, ରକ୍ଷଣୀୟ, ଯାହା ପ୍ରକାଶ କରିବା ଅନୁଚିତ ।
ଗୋପପୁର — ବି.ଗୋପନଗର (ଦେଖ) ।
ଗୋପପୁରଆ — ଗ୍ରା. ବିଂ. ଗୋପପୁର-ନିବାସୀ. (ବି) ଉତ୍କଳର ଏକଶ୍ରେଣୀର ଗଉଡ଼ । [ ଗୋପାଙ୍ଗନା ।
ଗୋପବଧୂ — ସ୍ତ୍ରୀ. ବି. ଶାରିବା,
ଗୋପବଧୂଟୀ — ସ୍ତ୍ରୀ.ବି.(ଗୋପ + ବଧୂ + ଟୀ) ଯୁବତୀ ଗୋପାଙ୍ଗନା, ଗଉଡ଼ୁଣୀ, ଗୋପୀ । [(ଦେଖ) ।
ଗୋପବନ୍ଧୁ — ବି. (୬ତତ୍) ଗୋପବଲ୍ଲଭ

ଗୋପବନ୍ଧୁଦାଶ—ଗ୍ରା.ବ.ଉତ୍କଳର ଜଣେ ସୁପ୍ରସିଦ୍ଧ ନେତା । ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାଶ । 'ସମାଜ' ନାମକ ଦୈନିକ ପତ୍ରିକାର ପ୍ରତିଷ୍ଠାତା ।

ଗୋପବଲ୍ଲଭ—ବି.(୬ତତ୍ପୁ)ଶ୍ରୀକୃଷ୍ଣ,(ବିଂ. ୬ତତ୍ପୁ) ଗୋପମାନଙ୍କର ପ୍ରିୟ, (ସ୍ତ୍ରୀ) ଗୋପବଲ୍ଲଭା ।

ଗୋପଭଦ୍ର—କ୍ଲୀ. ବି. ଶାଳୁକ ।

ଗୋପଭଦ୍ରା—ସ୍ତ୍ରୀ.ବି. କାଶ୍ମୀରୀ ବୃକ୍ଷ ।

ଗୋପମାଉ—ଉ.ପ. ପ୍ରଦେଶର ହାର୍ଦୋଇ ଜିଲ୍ଲାନ୍ତର୍ଗତ ଗୋଟିଏ ପ୍ରାଚୀନ ନଗର ।

ଗୋପରସ—ପୁଂ. ବି. (ଗୋପ+ରସ) କ୍ଷୀରଜଳ ।

ଗୋପରାଜପଣ୍ଡିତ—ଜଣେ ବିଖ୍ୟାତ ଜ୍ୟୋତିର୍ବିଦ୍ ପଣ୍ଡିତ ।

ଗୋପରାଷ୍ଟ୍ର—ପୁଂ.ବି. ଭାରତର ଗୋଟିଏ ପ୍ରଦେଶ, ଗୋୟାଲିୟରର ପ୍ରାଚୀନ ନାମ,ଗଉଡ଼ଜାତିର ପ୍ରଧାନ ବାସସ୍ଥାନ ।

ଗୋପଚର୍ଯ୍ୟା—ସ୍ତ୍ରୀ. ବି. ଗୋସେବା, ଗୋ ପ୍ରତିପାଳନ ।

ଗୋପବନ—କ୍ଲୀ. ବି. ଯେଉଁ ବନରେ ଅନେକ ଗୋପାଳ ବାସକରନ୍ତି ।

ଗୋପବଲ୍ଲିକା—ସ୍ତ୍ରୀ.ବି. (ଗୋପବଲ୍ଲୀ+କ+ଆ)ଗୋପବଲ୍ଲୀ, ମୂର୍ବା, ଶାରିବା, ଶୁଆଁଲଇଁ ।

ଗୋପବଲ୍ଲୀ—ସ୍ତ୍ରୀ. ବି. ମୂର୍ବା, ଶାରିବା, ଶୁଆଁଲଇ,ଚେରମାରୁ,ଚେମେଣ୍ଡି ଲଇ ।

ଗୋପବାଳ—ପୁଂ. ବି. (୬ତତ୍ପୁ)ଗଉଡ଼ ଟୋକା, ଗୋପପୁରବାସୀ ଶ୍ରୀକୃଷ୍ଣଙ୍କର ସହଚରଗଣ, (ସ୍ତ୍ରୀ) ଗୋପବାଳିକା ।

ଗୋପବାଳକ—ପୁଂ. ବି. ଗୋପବାଳ (ଦେଖ), (ସ୍ତ୍ରୀ) ଗୋପବାଳିକା ।

ଗୋପଶୁ—ବି. (ଗୋ+ପଶୁ) ଗୋମେଧ ଯଜ୍ଞରେ ବଳି ଦିଆଯିବା ଗୋରୁ ।

ଗୋପସ୍—ପୁଂ.ବି.(ଗୁପ୍+ଅସ୍)ରକ୍ଷିତା, ରକ୍ଷକ ।

ଗୋପସ୍ତ୍ରୀ—ସ୍ତ୍ରୀ.ବି. ଗଉଡ଼ୁଣୀ ।

ଗୋପା—ସ୍ତ୍ରୀ.ବି.(ଗୋପ+ପା+ଅ+ଆ) ଗଉଡ଼ୁଣୀ, ଶ୍ୟାମାଲତା, ବୁଦ୍ଧଦେବଙ୍କ ପତ୍ନୀ, (ବିଂ) ଗୋରକ୍ଷକ ।

ଗୋପାଗୁଳି—ଗ୍ରା. ବି. ଗୋରୁମାନଙ୍କର ଗ୍ରେମଣ୍ଟ, ଚଘା ।

ଗୋପାଙ୍ଗନା—ସ୍ତ୍ରୀ.ବି.(୬ତତ୍ପୁ)ଗୋପସ୍ତ୍ରୀ, ଗୋପୀ, ଶାରିବା, ଗଉଡ଼ୁଣୀ, ଚେରମାରୁ ।

ଗୋପାଜନ୍ତୁ—ବିଂ.ଯାହାର ଜନ୍ତୁ. "ଭୟ ନାହିଁ" ଏହିକଥା ଉଚ୍ଚାରଣ କରେ ।

ଗୋପାଟବିକ—ପୁଂ. ବି. ଗୋପାଳ, ଯେ ବନେ ବନେ ଗୋରୁଚରାଇ ବୁଲୁଥାଏ ।

ଗୋପାତୀର୍ଥ—କ୍ଲୀ. ବି. ବୌଦ୍ଧମାନଙ୍କର ତୀର୍ଥବିଶେଷ । [ ରାଜା ।

ଗୋପାଦିତ୍ୟ—ପୁଂ.ବି. କାଶ୍ମୀରର ଜଣେ

ଗୋପାଧ୍ୟକ୍ଷ—ପୁଂ.ବି. ଗୋପାଳମାନଙ୍କର କର୍ତ୍ତା, ଗୋପତି, ନନ୍ଦ, (ବିଂ) ଗୋପ-ପ୍ରଧାନ, (ସ୍ତ୍ରୀ) ଗୋପାଧ୍ୟକ୍ଷା ।

ଗୋପାନସୀ—ସ୍ତ୍ରୀ.ବି. (ଗୁପ୍+ନସ୍+ଈ) ବଲ୍ଲଭୀ, ଘରଚାଳର ନମ୍ରସ୍ଥ ବକ୍ର-କାଷ୍ଠ, ଛାତ ଉପରେ ଥିବା ବାଉଁଶ ପିଞ୍ଜରା, କର୍ଣ୍ଣିକାବିଷ୍ଟମ୍ଭି କାଷ୍ଠ,ବର୍ତ୍ତୀଭୂତ ଧାରଣ କାଷ୍ଠ । [ ରକ୍ଷକ ।

ଗୋପାୟକ—ବିଂ. (ଗୁପ୍+ଆୟ+କ)

ଗୋପାୟନ—କ୍ଲୀ. ବି. (ଗୁପ୍+ଆୟ+ଅନ) ଗୋପନ, (ବିଂ) ରକ୍ଷକ ।

ଗୋପାୟିତ—ବିଂ.(ଗୁପ୍+ମିଂ.ତ)ରକ୍ଷିତ, ଲୁକ୍କାୟିତ,ପରିପୁଷ୍ଟ,(କ୍ଲୀ.ବି) ଗୋପନ, (ସ୍ତ୍ରୀ) ଗୋପାୟିତା ।

ଗୋପାୟିତା—ପୁଂ.ବିଂ. (ଗୁପ୍+କ.ତୃ) ରକ୍ଷକ, (ସ୍ତ୍ରୀ) ଗୋପାୟିତ୍ରୀ ।

ଗୋପାଳ—ପୁଂ. ବି. (ଗୋ+ପାଳ+କ,ଅ)ରାଜା, ଗୋରକ୍ଷକ, ଗଉଡ଼ଜାତି, ବିଷ୍ଣୁଙ୍କ ଅବତାରବିଶେଷ, ନନ୍ଦନନ୍ଦନ, ଶ୍ରୀକୃଷ୍ଣ, ଶିବ ।

ଗୋପାଳକ—ପୁଂ. ବି. ବିଂ. ଗୋରକ୍ଷକ, ଗୋପ,ଶ୍ରୀକୃଷ୍ଣ,ଶିବ,(ସ୍ତ୍ରୀ)ଗୋପାଳିକା ।

ଗୋପାଳକର୍କଟୀ—ସ୍ତ୍ରୀ.ବି. କ୍ଷୁଦ୍ରକାକୁଡ଼ି, କୁନ୍ଦୁରୁ ।

ଗୋପାଳକବି—ଗ୍ରା. ବି. ଜଣେ ବିଖ୍ୟାତ ଓଡ଼ିଆ କବି ।

ଗୋପାଳକୃଷ୍ଣ—ପୁଂ.ବି. ଜଣେ ବିଖ୍ୟାତ ସଂସ୍କୃତ ଗ୍ରନ୍ଥକାର ।

ଗୋପାଳକୃଷ୍ଣ (ପଟ୍ଟନାୟକ)—ଗ୍ରା. ବି. ଉତ୍କଳର ଉପେନ୍ଦ୍ରଭଞ୍ଜ ଯୁଗର ପରବର୍ତ୍ତୀ ସଙ୍ଗୀତ ରଚୟିତା କବି । [ଭେଦ ।

ଗୋପାଳକେଶବ—ଶ୍ରୀକୃଷ୍ଣଙ୍କର ମୂର୍ତ୍ତି-

ଗୋପାଳଗଞ୍ଜ—ଫରିଦପୁର ଅନ୍ତର୍ଗତ ଗୋଟିଏ ନଗର ।

ଗୋପାଳ ଚକ୍ରବର୍ତ୍ତୀ—ପୁଂ. ବି. ଜଣେ ବିଖ୍ୟାତ ଟୀକାକାର ।

ଗୋପାଳଚନ୍ଦ୍ର ସାହୁ—ପୁଂ. ବି. ଜଣେ ବିଖ୍ୟାତ ବୃଦ୍ଧ କବି ।

ଗୋପାଳଭଟ୍ଟାଚାର୍ଯ୍ୟ—ପୁଂ. ବି. ଜଣେ ବିଖ୍ୟାତ ନୈୟାୟିକ ।

ଗୋପାଳଚମ୍ପୂ—ସ୍ତ୍ରୀ. ବି. ଜୀବଗୋସ୍ୱାମୀକୃତ ଖଣ୍ଡିଏ ଚମ୍ପୂଗ୍ରନ୍ଥ । [ ବିଶେଷ ।

ଗୋପାଳତାପନୀୟ—କ୍ଲୀ. ବି. ଉପନିଷଦ୍

ଗୋପାଳଦାସ—ପୁଂ. ବି.ପାରିଜାତହରଣ ନାମକ ସଂସ୍କୃତ ନାଟକରଚୟିତା ।

ଗୋପାଳଧାନୀ—ସ୍ତ୍ରୀ. ବି. (ଗୋପାଳ+ଧା+ଅନ+ଈ) ଗୋଷ୍ଠ, ଗୋଠ ।

ଗୋପାଳନ—ବି. (୬ତତ୍ପୁ) ଗୋରୁଙ୍କ ସେବା, ଗୋରୁ ରଖିବା ।

ଗୋପାଳନଗର—କ୍ଲୀ.ବି. ପଶ୍ଚିମବଙ୍ଗର ନଦୀୟା ଅନ୍ତର୍ଗତ ଗୋଟିଏ ବାଣିଜ୍ୟର ପ୍ରଧାନ ନଗର ।

ଗୋପାଳନନ୍ଦବାଣୀବିଳାସ—ସାଗରବଲ୍ଲୀ-ନାମକ କୁମାରସମ୍ଭବର ଟୀକାକାର ।

ଗୋପାଳନାୟକ—ପୁଂ. ବି. ଭାରତବର୍ଷ ମଧ୍ୟରେ ଜଣେ ପ୍ରଧାନ ନାୟକ ।

ଗୋପାଳନ୍ୟାୟପଞ୍ଚାନନ ଭଟ୍ଟାଚାର୍ଯ୍ୟ—ବଙ୍ଗଦେଶୀୟ ଜଣେ ବିଖ୍ୟାତ ସ୍ମାର୍ତ୍ତ ପଣ୍ଡିତ ।

ଗୋପାଳପଣ୍ଡିତ—ଗୃହ୍ୟଭାଷ୍ୟ ଓ ପ୍ରାୟଶ୍ଚିତ୍ତକଦମ୍ବନାମକ ସଂସ୍କୃତ-ଗ୍ରନ୍ଥକାର ।

ଗୋପାଳପୁର—ଗଞ୍ଜାମ ଜିଲ୍ଲାର ଗୋଟିଏ ନଗର ଓ ବନ୍ଦର ।

ଗୋପାଳବୈଷ୍ଣବ—ଗ୍ରା ବି. ଗୋସ୍ୱାମୀ ଅଚ୍ୟୁତାନନ୍ଦଦାସଙ୍କର ଗ୍ରାମ, ଯାଦବ,

ମୁକୁନ୍ଦଆଦି ବାରଜଣ, ଗୋସ୍ୱାମୀଙ୍କ ଶିଷ୍ୟାଙ୍କ ତୃତୀ ବଂଶଧରଗଣ ।
ଗୋପାଳଖଣ୍ଡ—ଜଣେ ହାସ୍ୟରସ ପରିବେଷକ, ନବଦ୍ୱୀପାଧିପତି କୃଷ୍ଣଚନ୍ଦ୍ରଙ୍କର ସଭାସଦ୍ ଥିଲେ ।
ଗୋପାଳଭୋଗ—ଗ୍ରା. ବି. ଏକପ୍ରକାର ଉତ୍କୃଷ୍ଟ ଧାନ ଓ ଉତ୍କୃଷ୍ଟ ଆମ୍ବ, ଏକପ୍ରକାର ମିଷ୍ଟାନ୍ନ ଓ କଦଳୀ ।
ଗୋପାଳମନ୍ତ୍ର—ଗ୍ରା.ବି.(ବ୍ୟଙ୍ଗାର୍ଥ)ଚୁଡ଼ା ।
ଗୋପାଳ ମିଶ୍ର — ଗୋପାଳପୂଜାପଦ୍ଧତି ରଚୟିତା ।
ଗୋପାଳଯୋଗୀ—କଣ୍ଠବଲ୍ଲୀ ଭାଷ୍ୟ ବିବରଣ ପ୍ରଣେତା ।
ଗୋପାଳବର୍ଦ୍ଧୀଜନ—ବୁନ୍ଦେଲ ଖଣ୍ଡର ଅନ୍ତର୍ଗତ ଚରଖାଡ଼ୀନିବାସୀ ଜଣେ କବି ।
ଗୋପାଳବ୍ୟାସ—ସଂସ୍କୃତରେ ନବଗ୍ରହନିର୍ଣ୍ଣୟ ପୁସ୍ତକ ରଚୟିତା ।
ଗୋପାଳଶରଣ-ତୁଳସୀକୃତ "ଶତସଇ" ଗ୍ରନ୍ଥର ପ୍ରବନ୍ଧଘଟନାନାମକ ଟୀକା ରଚନା କରିଥିଲେ ।
ଗୋପାଳଶର୍ମା—ଜଣେ କବି, ସୂର୍ଯ୍ୟଶତକ ରଚୟିତା ।
ଗୋପାଳସିଂହ—ବ୍ରଜବାସୀ ଜଣେ ହିନ୍ଦି ଗ୍ରନ୍ଥକାର ।
ଗୋପାଳସିଦ୍ଧାନ୍ତ—ଅଶୌଚମାଳାନାମକ ଧର୍ମଶାସ୍ତ୍ରକାର ।
ଗୋପାଳି—ପୁଂ. ବି. (ଗୋ+ପାଳି+ଇନ୍) ଶିବ, ପ୍ରବରବିଶେଷ ।
ଗୋପାଳିଆ—ଗ୍ରା. ବିଂ. ଅଡ଼ୁଆଳଡ଼ୁଆ, ଗୋଳିଆ ।
ଗୋପାଳିକା—ସ୍ତ୍ରୀ. ବି. (ଗୋପାଳକ+ଆ)ଗଉଡ଼ୁଣୀ, ଗୋପାଙ୍ଗନା, ଚେରମାରୁ, କୀଟବିଶେଷ ।
ଗୋପାଳୀ—ସ୍ତ୍ରୀ. ବି. (ଗୋପାଳ+ଈ) ଜୁଡୁରୁ, ଗୋପାଳକର୍କଟୀ, ଗୋପାଙ୍ଗନା, ଯେଉଁ ସ୍ତ୍ରୀ ଗୋପାଳନ କରେ, କାର୍ତ୍ତିକେୟଙ୍କର ସହଚାରିଣୀ ମାତୃକାବିଶେଷ ।

ଗୋପାଳୁଣୀ—ଗ୍ରା. ସ୍ତ୍ରୀ. ବି. ଗଉଡ଼ୁଣୀ, ଭୁବନେଶ୍ୱର ଲିଙ୍ଗରାଜଙ୍କ ମନ୍ଦିରର ଭିତରରେ ବେଢ଼ା ମଧ୍ୟରେ ଗୋଟିଏ ଛୋଟ ଚୂନବୋଳା ଦେଉଳରେ ପୂଜା ପାଉଥିବା ଭଗବତୀ ଦେବୀଙ୍କ ମୂର୍ତ୍ତି, ଭୁବନେଶ୍ୱରୀ ।
ଗୋପାୟିତ—ପୁଂ.ବିଂ.(ଗୋପା+ଇତ) ରକ୍ଷଣଯୁକ୍ତ, ଗୁପ୍ତ, ରକ୍ଷିତ ।
ଗୋପାଷ୍ଟମୀ—ସ୍ତ୍ରୀ. ବି. କାର୍ତ୍ତିକମାସର ଶୁକ୍ଳାଷ୍ଟମୀ, ଏହି ଦିନରେ ଗୋପୂଜା କରିବା କର୍ତ୍ତବ୍ୟ ।
ଗୋପିକା—ସ୍ତ୍ରୀ. ବି.(ଗୋପା+କ+ଆ) ଗଉଡ଼ୁଣୀ, ଗୋପପତ୍ନୀ, ଗୋପନାରୀ, (ବିଂ) ଯେ ସ୍ତ୍ରୀ ଗୋପାଳନ କରେ, ଗୋପାଳିକା, ରକ୍ଷିଣୀ ।
ଗୋପୀକାମୋଦ—ପୁଂ. ବି. ରାଗିଣୀବିଶେଷ ।
ଗୋପିକ ମୋହନ—ପୁଂ.ବିଂ (୬ତତ୍) ଗୋପୀମାନଙ୍କର ମୁଗ୍ଧକାରୀ, (ପୁଂ.ବି) ଶ୍ରୀକୃଷ୍ଣ ।
ଗୋପିକାଯନ୍ତ୍ର—କ୍ଳୀ. ବି. ଗୋପୀଯନ୍ତ୍ର (ଦେଖ) । [ ଶ୍ରୀକୃଷ୍ଣ ।
ଗୋପିକାରମଣ—ପୁଂ. ବି. ( ୬ତତ୍ )
ଗୋପିତ—ବିଂ.(ଗୋପି+ମିଂ.ତ)ସଞ୍ଜାତଗୋପନ, ଗୁପ୍ତ, ରକ୍ଷିତ, ଲୁକ୍କାୟିତ ।
ଗୋପିତ୍ତ—କ୍ଳୀ.ବି,(ଗୋ+ପିତ୍ତ)୬ତତ୍; ଗୋରୋଚନା, ଗନ୍ଧଦ୍ରବ୍ୟବିଶେଷ ।
ଗୋପିନୀ—ସ୍ତ୍ରୀ. ବି.(ଗୁପ୍+ଇନ୍+ଈ) ଗୋପୀ, ଶ୍ୟାମା ଲତା, ଶ୍ରୀଆଁଳିର, ନାୟିକାବିଶେଷ ।
ଗୋପିଲ—ବିଂ.(ଗୁପ୍+ଇଲ)ଗୋପ୍ତା ।
ଗୋପିଲପୁରମ୍—ମାନ୍ଦ୍ରାଜ ବୃନ୍ଦାଚଳ ତାଲୁକାନ୍ତର୍ଗତ ଗୋଟିଏ ପ୍ରାଚୀନଗ୍ରାମ ।
ଗୋପିଷ୍ଠ—ବିଂ.(ଗୋପ+ଇଷ୍ଠ)ଗୋପ୍ତୃତମ ।
ଗୋପୀ—ପୁଂ.ବିଂ. (ଗୁପ୍+ଇନ୍)ରକ୍ଷକ ଯେ ରକ୍ଷାକରେ ।
ଗୋପୀ—ସ୍ତ୍ରୀ.ବି. (ଗୋପ+ଈ)ଗୋପପତ୍ନୀ,ଗୋପାଙ୍ଗନା,ଅନନ୍ତମୂଳ, ଚେରମାରୁ, ଭୁଆମଇତା,ବମ୍ବୁଫଳ,ରକ୍ଷିକା ।

ଗୋପୀକ—ପୁଂ. ବି. ସୂକ୍ତକର୍ଣ୍ଣାମୃତଧୃତ ଜଣେ ପ୍ରାଚୀନ କବି ।
ଗୋପୀକାନ୍ତ—ନ୍ୟାୟପ୍ରଦୀପନାମକ ସଂସ୍କୃତ ଗ୍ରନ୍ଥ ରଚୟିତା ।
ଗୋପୀଗୀତ—ସ୍ତ୍ରୀ. ବି. ଭାଗବତର ଦଶମ ସ୍କନ୍ଧାନ୍ତର୍ଗତ ଗୋପୀମାନଙ୍କକୃତ ଶ୍ରୀକୃଷ୍ଣଙ୍କର ସ୍ତୁତିବିଶେଷ ।
ଗୋପୀକାମୋଦା—ସ୍ତ୍ରୀ. ବି. କାମଦ ଓ କେଦାର ଯୋଗେ ଉତ୍ପନ୍ନ ରାଗିଣୀବିଶେଷ ।
ଗୋପୀଚନ୍ଦନ—କ୍ଳୀ. ବି. ଏକପ୍ରକାର ଧଳାମାଟି, ସୌରାଷ୍ଟ୍ରୀ ।
ଗୋପୀଚନ୍ଦ୍ର—ରଙ୍ଗପୁରର ଜଣେ ରାଜା ଥିଲେ ଏହାଙ୍କ ଗାନ ବର୍ତ୍ତମାନ ରଙ୍ଗପୁର ଅଞ୍ଚଳରେ ପ୍ରଚଳିତ ଅଛି ।
ଗୋପୀଜନବଲ୍ଲଭ—ପୁଂ. ବି. ଶ୍ରୀକୃଷ୍ଣ ।
ଗୋପୀତ—ପୁଂ. ବି. ଖଞ୍ଜନବିଶେଷ ।
ଗୋପୀଥ—କ୍ଳୀ. ବି. (ଗୋ+ପା+ଥ) ତୀର୍ଥସ୍ଥାନ, ସୋମପାନ, ରକ୍ଷଣ ।
ଗୋପୀଥ୍ୟ—କ୍ଳୀ.ବି.(ଗୋ+ପୀଥ+ଯ) ପୃଥିବୀପାଳନ ।
ଗୋପୀନାଥ—ପୁଂ.ବି.(୬ତତ୍) ଗୋପୀମାନଙ୍କର ନାଥ ଶ୍ରୀକୃଷ୍ଣ ।
ଗୋପୀନାଥଦେବ—ଓଡ଼ିଶାର ଜଣେ ପ୍ରସିଦ୍ଧ ରାଜା ଥିଲେ ।
ଗୋପୀନାଥନନ୍ଦ—ଓଡ଼ିଶାଶବ୍ଦତତ୍ତ୍ୱବୋଧନାମକ ଅଭିଧାନର ସଙ୍କଳୟିତା,ଆଧୁନିକ ଯୁଗର ଜଣେକ ସ୍ୱର୍ଗୀୟ ଓଡ଼ିଆପଣ୍ଡିତ ।
ଗୋପୀନାଥଭଟ୍ଟ — ହିରଣ୍ୟକେଶିସୂତ୍ରର ଜ୍ୟୋତ୍ସ୍ନାନାମକ ଟୀକାକାର ।
ଗୋପୀନାଥମିଶ୍ର—କ୍ରିୟାକୌମୁଦୀନାମକ ସଂସ୍କୃତ ଗ୍ରନ୍ଥ-ପ୍ରଣେତା ।
ଗୋପୀନାଥମୌଲିନ୍—ଜଣେ ବିଖ୍ୟାତ ନୈୟାୟିକ ଓ ବାବେବାର ରାଜା ଜୟସିଂହଙ୍କ ସଭାପଣ୍ଡିତ ।
ଗୋପୀନାଥ ଶର୍ମା— ଶବ୍ଦମାଳାନାମକ ସଂସ୍କୃତ ଅଭିଧାନକାର ।

**ଗୋପୀନାଥଶୈବ**—ମାଧବଶୈବଙ୍କ ପୁତ୍ର ଓ ସ୍ମାନସୂତ୍ରଦୀପିକା ପ୍ରଣେତା ।

**ଗୋପୀନାଥନାରାୟଣ**—ଜଣେ ବିଖ୍ୟାତ ସ୍ମାର୍ତ୍ତ ।

**ଗୋପୀନ୍ଦ୍ରତିପ୍‌ପଭୂପାଳ**-ବାମନଙ୍କକାବ୍ୟାଲଙ୍କାରବୃତ୍ତିର କାବ୍ୟାଳଂକାର କାମଧେନୁନାମକ ଟୀକାକାର ।

**ଗୋପୀଭାଷା**—ଗ୍ରା.ବି. ଓଡ଼ିଶାର ପ୍ରାଚୀନ କବି ଦନାଇ ଦାସଙ୍କ ବିରଚିତ ଶ୍ରୀକୃଷ୍ଣବିଚ୍ଛେଦରେ ଗୋପୀମାନଙ୍କର ଖେଦୋକ୍ତିବିଷୟକ ପଦ୍ୟଗ୍ରନ୍ଥବିଶେଷ ।

**ଗୋପୀଯନ୍ତ୍ର**—କ୍ଳୀ. ବି. ଏକ ତାରବିଶିଷ୍ଟ ବାଦ୍ୟଯନ୍ତ୍ରବିଶେଷ ।

**ଗୋପୀରମଣ**—ଗ୍ରା. ବି. ଆନନ୍ଦଲହରୀର ଟୀକାକାର ।

**ଗୋପୁଚ୍ଛ**—ପୁଂ. ବି. (ବି.ବ୍ରୀ) ଗୋପୁଚ୍ଛ ପରି ପୁଚ୍ଛଯୁକ୍ତ ଏକପ୍ରକାର ବାନର, (୬ତତ୍) ଗୋରୁର ଲାଙ୍ଗୁଳ, (ପୁଂ) ହାରବିଶେଷ । [ ଅଳାଇଚ ।

**ଗୋପୁଟା**—ସ୍ତ୍ରୀ.ବି. ବଡ଼ ଅଳେଇଚ,ବଡ଼

**ଗୋପୁଟୀକ**—କ୍ଳୀ.ବି. ଶିବବୃଷଭମସ୍ତକ ।

**ଗୋପୁତ୍ର**—ପୁଂ. ବି. ଗୋବତ୍ସ, ସୂର୍ଯ୍ୟପୁତ୍ର କର୍ଣ୍ଣ ।

**ଗୋପୁର**—କ୍ଳୀ.ବି. ( ଗୁପ୍ + ମିଁ, ଉର) ନଗରର ଫାଟକ, ପୁରଦ୍ୱାର, ସହରର ଗେଟ୍, ଦୁର୍ଗଦ୍ୱାର, ଦ୍ୱାର,ନାଗରମୁଥା, ବୈଦ୍ୟଶାସ୍ତ୍ରପ୍ରଣେତା ଋଷିବିଶେଷ, ଦାକ୍ଷିଣାତ୍ୟରେ ମନ୍ଦିର ସମ୍ମୁଖରେ ନିର୍ମିତ ସମୁଚ୍ଚ ପ୍ରବେଶଗୃହବିଶେଷ ।

**ଗୋପୁରକ**—କ୍ଳୀ.ବି. ଗୋପୁର, କୁନ୍ଦୁରୁ ଗଛ, ଯେ ଗୋପାଳନ କରେ ।

**ଗୋପୁରୀଷ**—କ୍ଳୀ. ବି. (୬ତତ୍)ଗୋମୟ, ଗୋବର ।

**ଗୋପେନ୍ଦ୍ର**—ପୁଂ. ବି. ଶ୍ରୀକୃଷ୍ଣ,ଗୋପର ଅଧିପତି ନନ୍ଦ ।

**ଗୋପେଶ**—ପୁଂ.ବି.(୬ତତ୍)ନନ୍ଦଗୋପ, ଗୋପପ୍ରଧାନ, ଶ୍ରୀକୃଷ୍ଣ, ଶାକ୍ୟମୁନି, ବୁଦ୍ଧଦେବ ।

**ଗୋପେଶ୍ୱର**—ଆତ୍ମବାଦ ଓ ବାଦକଥାନାମକ ବେଦାନ୍ତ ଗ୍ରନ୍ଥକାର ।

**ଗୋପ୍ତବ୍ୟ**—ବିଂ. (ଗୁପ୍ + ତବ୍ୟ)ଅପ୍ରକାଶ୍ୟ, ରକ୍ଷଣୀୟ, ଗୁହ୍ୟ ।

**ଗୋପ୍ତା**—ପୁଂ. ବିଂ. ( ଗୁପ୍ + କ, ତୃ ) ରକ୍ଷକ,ସମ୍ବରକ,ଆଚ୍ଛାଦନକାରୀ,ନେତା, ପ୍ରତିପାଳକ, (ବି) ବିଷ୍ଣୁ ।

**ଗୋପ୍ୟ**—ବିଂ.(ଗୁପ୍ + ମିଁ,ଯ)ରକ୍ଷଣୀୟ, ଗୋପନୀୟ, ଅପ୍ରକାଶ୍ୟ, (ପୁଂ.ବି) ଦାସୀପୁତ୍ର, ଭୃତ୍ୟ ।

**ଗୋପ୍ୟକ**—ପୁଂ. ବି. (ଗୋପ୍ୟ + କ) ଦାସୀପୁତ୍ର, ଭୃତ୍ୟ ।

**ଗୋପ୍ୟାନ**—ଗ୍ରା. ବି. ଗୋପନ୍ୟ, (ବିଂ) ଗୁପ୍ତ, ଲୁକ୍କାୟିତ ।

**ଗୋପ୍ୟାଦିତ୍ୟ**—ପୁଂ. ବି. ପ୍ରଭାସତୀର୍ଥରେ ଗୋପୀମାନଙ୍କ କର୍ତ୍ତୃକ ସ୍ଥାପିତ ଗୋଟିଏ ସୂର୍ଯ୍ୟମୂର୍ତ୍ତି ।

**ଗୋପ୍ରକାଣ୍ଡ**—କ୍ଳୀ. ବି. ଶ୍ରେଷ୍ଠଗୋରୁ ।

**ଗୋପ୍ରଚାର**—ପୁଂ.ବି.(ଗୋ + ପ୍ର + ଚର୍ + ଅଧି,ଅ) ଗୋଚରଭୂମି, ଗୋଚାରଣ ସ୍ଥାନ, ଗୋଷ୍ଠ, ତୀର୍ଥବିଶେଷ ।

**ଗୋପ୍ରତାର**—ପୁଂ.ବି. (ଗୋ + ପ୍ର + ତୃ + ଅଧି,ଅ) ସରଯୂର ତୀର୍ଥବିଶେଷ,ଶିବ, ଗୋରୁମାନଙ୍କର ଅବତରଣ ।

**ଗୋପ୍ରବେଶ**—ପୁଂ. ବି. ଗୋରୁମାନେ ବନରୁ ଚରିବୁଲି ଘରକୁ ଫେରିବା, ଗୋଧୂଳି ସମୟ ।

**ଗୋଫଣା**—ସ୍ତ୍ରୀ. ବି. ସୁଶ୍ରୁତୋକ୍ତ ବ୍ରଣର ବନ୍ଧନବିଶେଷ ।

**ଗୋବ**—ଗ୍ରା.ବି. ଛଡ଼ଥିବା କଣ୍ଟା, ଯଷ୍ଟିର ଅଗଦ୍ୱାରା କରାଯିବା କୁଟାପ୍ରହାର, କୁନ୍ଦାମାଡ଼, ମୁଠାକରାଯାଇଥିବା ହାତଦ୍ୱାରା ଗେଞ୍ଜାମାଡ଼, ଢାଲଆଦି ଉପରେ ବା କବାଟରେ ମରାଯିବା ଗୋଲ ଆବୁଆବୁଆ ଫୁଲୁକା ଚନ୍ଦ୍ର, ଖୋବା, ସିଝ୍ବା କଦଳୀପୁଆଆଦିର ମୁଣ୍ଡିକୁ ଗରମକରି ତାହାଦ୍ୱାରା ଦରଜହେବା ସ୍ଥାନରେ ବସାଯିବା ଦାଗ ବା ଛପ, ବାଡ଼ ବା ବନ୍ଧକର ମୂଳଅଂଶ ।

**ଗୋବତ୍ସ**—ପୁଂ. ବି. (୬ତତ୍) ବାଛୁରୀ ।

**ଗୋବତ୍ସା**—ସ୍ତ୍ରୀ. ବି. (୬ତତ୍) ବାଛୁରୀ ।

**ଗୋବଧ**—ବି. (୬ତତ୍) ଗୋରୁକୁ ଜୀବନରେ ମାରିବା, ଗୋହତ୍ୟା ।

**ଗୋବ ବସାଇବା**—ଗ୍ରା. କ୍ରି. ଦରଜ ହୋଇଥିବାସ୍ଥାନରେ ସିଝ୍ ଓ କଦଳୀ ପୁଆ ଆଦିର ଗୋଲକାରମୁଣ୍ଡକୁ ଗରମକରି ମାଡ଼ିବା ।

**ଗୋବର**—ଗ୍ରା.ବି.ଗୋରୁରବିଷ୍ଠା,ଗୋମୟ, (ଲ.ଅର୍ଥ) ଅତିଅସାର ବସ୍ତୁ, (ଫ-ବି) ଚୂର୍ଣ୍ଣୀକୃତଗୋମୟ ।

**ଗୋବରଗଣେଶ**—ଗ୍ରା. ବି. ( ଲ.ଅର୍ଥ) ସ୍ଥୂଳକାୟ ଅଥଚ ଅଚଳ ଓ ଅକର୍ମଣ୍ୟ ବ୍ୟକ୍ତି ।

**ଗୋବରଗଦା**—ଗ୍ରା. ବି. ସାର ବା ଖତ କରିବା ଉଦ୍ଦେଶ୍ୟରେ ସ୍ତୂପୀକୃତ ଗୋମୟ ।

**ଗୋବରଗଦାରେ ପଦ୍ମଉକୁଟିବା(ନ୍ୟାୟ)**-( ଗ୍ରା-ପ୍ରବଚନ ) ଅସ୍ଥାନରେ ସୁନ୍ଦର ପଦାର୍ଥ ଦେଖାଯିବା ନ୍ୟାୟ ।

**ଗୋବରଛତୁ**—ଗ୍ରା. ବି. ଗୋବର ଜମାହୋଇଥିବା ସ୍ଥାନରେ ଫୁଟିଥିବା ଅଖାଦ୍ୟ ଛତୁ ।

**ଗୋବରପାଣି**—ଗ୍ରା. ବି. ଘରଲିପିବା ବା ଅଗଣାଆଦିରେ ଛିଞ୍ଚିବାପାଇଁ ପ୍ରସ୍ତୁତ ଗୋମୟ ମିଶ୍ରିତ ଜଳ ।

**ଗୋବରପୋକ**—ଗ୍ରା. ବି. ବାସୀଗୋବରରେ ଦେଖାଯିବା ଏକପ୍ରକାର ବଡ଼ ପୋକ ।

**ଗୋବରଲଗାଇବା**—ଗ୍ରା. କ୍ରି. କୌଣସି ଅପରିଷ୍କୃତ ସ୍ଥାନକୁ ଗୋବର ଲଗାଇ ଲିପିବା ।

**ଗୋଭକ୍ତ**—ବିଂ.(୭ତତ୍) ଗାଈମାନଙ୍କୁ ଦେବତା ଜ୍ଞାନକରି ତତ୍ପ୍ରତି ଭକ୍ତିଯୁକ୍ତ (ହିନ୍ଦୁ) ।

**ଗୋଭଣ୍ଡୀର**—ପୁଂ.ବି. ଜଳକୁକ୍କୁଡ଼ପକ୍ଷୀ ।

ଗୋଭାନୁ—ପୁଂ. ବି. ତୁର୍ବସୁ ନୃପତିଙ୍କ ପୌତ୍ର ଓ ଅଗ୍ନିଙ୍କ ପୁତ୍ର ।

ଗୋଭିଲ—ପୁଂ. ବି. ଜଣେ ଗୁହ୍ୟସୂତ୍ର ପ୍ରଣେତା ଋଷି ।

ଗୋଭିଲସୂତ୍ର-ପୁଂ.ବି.ଜଣେ ସ୍ମୃତିକାର ।

ଗୋଭୁଜ୍—ପୁଂ. ବି. (ଗୋ+ଭୁଜ୍+କ୍ୱିପ୍) ଭୂପାଳ, ରାଜା ।

ଗୋଭୃତ୍—ପୁଂ.ବି.(ଗୋ+ଭୃ+କ୍ୱିପ୍) ପର୍ବତ, ମହୀଧର ।

ଗୋମକ୍ଷିକା—ସ୍ତ୍ରୀ. ବି. ଗୋରୁମାନଙ୍କର କେଶଦାୟକ ମାଛିବିଶେଷ, ଡଂଶ, ଡାଉଁଶ ।

ଗୋମଘ—ବିଂ. (ଗୋ+ମଘି+ଅ)ଯେ ଗୋରୁଦାନ କରେ, ଗୋଦାତା, (ସ୍ତ୍ରୀ) ଗୋମଘା ।

ଗୋମଣ୍ଡଳ—କ୍ଳୀ. ବି. (ଗୋ+ମଣ୍ଡଳ) ୬ତତ୍; ଗୋସମୂହ. ଭୂମଣ୍ଡଳ, କିରଣସମୂହ ।

ଗୋମତ—କ୍ଳୀ.ବି.(୬ତତ୍) ଅଧ୍ୱପରିମାଣ, ଗବ୍ୟୂତି, ଦୁଇକ୍ରୋଶ ପରିମାଣ ।

ଗୋମତଲ୍ଲିକା—ସ୍ତ୍ରୀ. ବି. ପ୍ରଶସ୍ତ ଗୋରୁ ।

ଗୋମତୀ—ସ୍ତ୍ରୀ. ବି. (ଗୋମତ୍+ଈ) ଗୋରୋଚନା,ଲକ୍ଷ୍ମୌନକଟରେ ପ୍ରବାହିତ ହିନ୍ଦୁମାନଙ୍କର ତୀର୍ଥନଦୀବିଶେଷ, ବିଦ୍ୟାବିଶେଷ, ଗଙ୍ଗା, ଗୋମନ୍ତ ପର୍ବତରେ ଅବସ୍ଥିତା ଭଗବତୀ ମୂର୍ତ୍ତି,ବଙ୍ଗର ତ୍ରିପୁରାଜିଲାନ୍ତର୍ଗତ ଗୋଟିଏ ନଦୀ, (ବିଂ) ଗୋମାନ୍‌ର ସ୍ତ୍ରୀଲିଙ୍ଗ ।

ଗୋମତ୍ସ୍ୟ—ପୁଂ.ବି. ମତ୍ସ୍ୟବିଶେଷ ।

ଗୋମଥ—ବିଂ. (ଗୋ+ମଥ୍+ଅ) ଗୋପାଳ ।

ଗୋମନ୍ତ—ପୁଂ.ବି. (ଗୋ+ମନ୍+ତ) ବିନ୍ଧ୍ୟପର୍ବତର ସମୀପବର୍ତ୍ତୀ ଗୋଟିଏ ପର୍ବତ,ଗୋସମୂହ,ଯାହାର ଗୋରୁ ଅଛି, ଗୋସ୍ୱାମୀ, କ୍ରୌଞ୍ଚଦ୍ୱୀପରେ ଅବସ୍ଥିତ ପର୍ବତବିଶେଷ, ଗୋସ୍ୱାମୀଙ୍କ ଦଳ ।

ଗୋମୟ—ପୁଂ. ବି. (ଗୋ+ମୟ) ଗୋରୁର ବିଷ୍ଠା, ଗୋବର, ଘସି ।

ଗୋମୟଚ୍ଛତ୍ର—କ୍ଳୀ.ବି. (କ.ଧା) ଗୋବର ଛତୁ ।

ଗୋମୟଚ୍ଛତ୍ରିକା—ସ୍ତ୍ରୀ.ବି.ଗୋବର ଛତୁ ।

ଗୋମୟପ୍ରିୟ—କ୍ଳୀ.ବି.ଗନ୍ଧଖଡ଼,ଧନହରୀ ।

ଗୋମୟୋତ୍ଥ—ବି. (ଗୋମୟ+ଉତ୍+ସ୍ଥା+କ,ଅ) ଗୋମୟଜାତ କୀଟବିଶେଷ, ଗୋବରପୋକ ।

ଗୋମୟୋଦ୍ଭବ—ବିଂ. ଗୋମୟଜାତ, ଯାହା ଗୋବରରୁ ଜନ୍ମେ ।

ଗୋମହିଷଦା—ସ୍ତ୍ରୀ. ବି. କାର୍ତ୍ତିକେୟଙ୍କ ଅନୁଗାମିନୀ ମାତୃକାବିଶେଷ ।

ଗୋମତୀ—ସ୍ତ୍ରୀ. ବି. ବାର୍ତ୍ତାକୀବିଶେଷ, ରାମବାଇଗଣ ।

ଗୋମଲ,ଗୋମାଲ-ପଞ୍ଜାବର ପଶ୍ଚିମରେ ସୁଲେମାନ ପାହାଡ଼ରୁ ନିଃସୃତ ଗୋଟିଏ ନଦୀ ।

ଗୋମସୃରିକା—ବି.ଗୋବସନ୍ତ(ଦେଖ) ।

ଗୋମସୃଣ୍ଣ—ବି. ଗୋବସନ୍ତ(ଦେଖ) ।

ଗୋମସୂର୍ଯ୍ୟାଧାନ—ବି. ଗୋବୀଜ ଟିକା (ଦେଖ) ।

ଗୋମସୂର୍ଯ୍ୟାହିତ—ବିଂ. (ଗୋମସୃଣ୍ଣ+ଆହିତ)ଗୋବୀଜ ଟିକା ନେଇଥିବା (ବ୍ୟକ୍ତି) ।

ଗୋମାସ୍ତା—ଯା.ବି.ମୋହରର, ଖଜଣାଆଦାୟକାରୀ ଅଧସ୍ତନ କର୍ମଚାରୀ ।

ଗୋମାଂସ—କ୍ଳୀ.ବି' (୬ତତ୍) ଗୋରୁରମାଂସ ।

ଗୋମାଂସଭକ୍ଷଣ—କ୍ଳୀ.ବି. ଗୋରୁମାଂସ ଖାଇବା, ତାଳୁ ସ୍ଥାନରେ ଜିହ୍ୱାର ପ୍ରବେଶ ।

ଗୋମାତା—ସ୍ତ୍ରୀ.ବି. (୬ତତ୍) ସୁରଭି, (କ.ଧା)ଗବୀରୂପା ଜନନୀ, କଶ୍ୟପଙ୍କ ପତ୍ନୀ, ମରୁତ୍ତ ଦେବତା ।

ଗୋମାନ୍—ପୁଂ.ବିଂ. (ଗୋ+ମତ୍) ଯାହାର ଅନେକ ଗାଈ ଅଛନ୍ତି, ଭୂସମ୍ପତ୍ତିଶାଳୀ,ଚକ୍ଷୁଷ୍ମାନ୍,ଜ୍ୟୋତିଷ୍ମାନ୍, କିରଣଶାଳୀ, (ପୁଂବି.)ସ୍ମୃତିବାଦକ, (ସ୍ତ୍ରୀ) ଗୋମତୀ ।

ଗୋମାୟୁ-ପୁଂ.ସ୍ତ୍ରୀ.ବି. (ଗୋ+ମା+କ,ଉ)ଶୃଗାଳ, ଶିଆଳ, ଗନ୍ଧର୍ବବିଶେଷ, ଏକପ୍ରକାର ବେଙ୍ଗ, ଗୋରୋଚନା ।

ଗୋମାୟୁଭକ୍ଷ-ପୁଂ.ବି. ମୀଟଜାତିବିଶେଷ, ମୁଣ୍ଡପୋଡା ଜାତି ।

ଗୋମାସ୍ତା—ଯା.ବି.ଯେଉଁ ଲୋକ ଖଜଣା ସଂଗ୍ରହ ବା ଆଦାୟ କରେ, ମହାଜନର ଗଦିର ପ୍ରଧାନ କର୍ମଚାରୀ ।

ଗୋମାସ୍ତାଗିରି—ଯା. ବି. ଗୋମାସ୍ତାରକାର୍ଯ୍ୟ, ଗୋମାସ୍ତାର ପଦ ।

ଗୋମିଥୁନ—କ୍ଳୀ.ବି. ବୃଷ ଓ ଗାଈ, ଷଣ୍ଢ ଓ ଗାଈ ।

ଗୋମୀ—ପୁଂ.ବିଂ.(ଗୋ+ମିନ୍)ଗୋମାନ୍, ଯାହାର ଗୋରୁ ଅଛି,ଉପାସକ, (ପୁଂବି.) ଶୃଗାଳ, ବୁଦ୍ଧଙ୍କର ଜଣେ ଶିଷ୍ୟ, ପୂଜକ ।

ଗୋମୀନ—ପୁଂ.ବି. ମତ୍ସ୍ୟବିଶେଷ,ଗାଇଆ [ମାଛ ।

ଗୋମୁଖ—ବି.ନକ୍ର,ଯକ୍ଷବିଶେଷ,ମାତଲିପୁତ୍ର, ଗୋମୁଖୀ ବାଦ୍ୟଯନ୍ତ୍ର, ଲେପନବିଶେଷ, କୁଟିଳାକାର ଗୃହ, ଗୃହରେ ଚୋରମାନେ ଖୋଳିବା ଏକପ୍ରକାର ସିନ୍ଧିଗାତ, ଗୋମୁଖାକୃତି ସିନ୍ଧିବିଶେଷ, ଆସନବିଶେଷ, ଜପମାଳା ଗୋପନ କରିବାର ଏକପ୍ରକାର ମୁଣି,ବତ୍ସରାଜାଙ୍କ ମନ୍ତ୍ରୀପୁତ୍ର, ଗୋମୁଖୀ, ଏକପ୍ରକାର କୁମ୍ଭୀର,ନରବାହନ ଦତ୍ତର ପ୍ରତିହାରୀ ।

ଗୋମୁଖା—ବି. ଗୋମୁହାଁ (ଦେଖ) ।

ଗୋମୁଖୀ—ସ୍ତ୍ରୀ.ବି. ହିମାଳୟରୁ ଗଙ୍ଗାର ପତନ ସ୍ଥାନରେ ଅବସ୍ଥିତ ଗୋଟିଏଗୁହା, ରାଢ଼ଦେଶସ୍ଥ ଗୋଟିଏ ନଦୀ, ଗୋମୁଖାକୃତି ଜପମାଳାର ଝୁଲି, ମୁଣି, (ଗ୍ରା. ବି.) ମହାଦେବଙ୍କୁ ଅଭିଷେକ କରିବାପାଇଁ ବ୍ୟବହୃତ ଗୋମୁଖାକୃତି ଛିଦ୍ରଯୁକ୍ତ ପାତ୍ରବିଶେଷ ।

ଗୋମୁଣ୍ଡୀ—ଭାରତୀୟ ଦ୍ୱୀପପୁଞ୍ଜଜାତ ବୃକ୍ଷବିଶେଷ ।

ଗୋମୁହାଁ—ଗ୍ରା.ବି.ଏକଜାତୀୟ କୁମ୍ଭୀର ।

ଗୋମୂଢ଼—ପୁଂ.ବି.ଗୋରୁପରି ନିର୍ବୋଧ, ଗଣ୍ଡମୂର୍ଖ, ଗଜମୂର୍ଖ ।

ଗୋମୂତ୍ର—କ୍ଳୀ.ବି, (୬ତତ୍) ଗୋରୁର ପ୍ରସ୍ରାବ, ଗୋରୁମୂତ. ପଦ୍ୟ ରଚନାର ପରିପାଟିବିଶେଷ, ଛନ୍ଦ ।

ଗୋମୁତ୍ରଛନ୍ଦ—କ୍ଲୀ. ବ. ପଦ୍ୟ ରଚନାର ପଦ୍ଧପାଟିବିଶେଷ ।

ଗୋମୁତ୍ରିକା—ସ୍ତ୍ରୀ.ବ.(ଗୋମୁତ୍ର+କ+ଆ) ତୃଣବିଶେଷ, ଚିତ୍ରକାବ୍ୟର ବନ୍ଧବିଶେଷ । [ ଗବସ୍ଥ ।

ଗୋମୃଗ—ପୁଂ.ବ. ଗବାକୃତି ମୃଗ,

ଗୋମେଦ—ପୁଂ.ବ.(ଗୋ+ମିଦ୍+ଣ+ଅ) ମଣିବିଶେଷ, ଗୋମେଦକମଣି, ଦ୍ୱୀପବିଶେଷ, ଦେହରେ ତୈଳାଦି ଲେପନ, ପ୍ରାଚୀନ ଭାରତର ଦ୍ୱୀପବିଶେଷ, ଶୀତଳଚିନି ।

ଗୋମେଦକ—ପୁଂ.ବ.(ଗୋମେଦ+କ) ସ୍ୱନାମଖ୍ୟାତ ମଣିବିଶେଷ, (କ୍ଲୀ) ପୀତମଣି, କାକୋଲ, ପତ୍ରକ ।

ଗୋମେଦସଂଭବ—ପୁଂ. ବ. ଦୁଗ୍ଧପାଷାଣ ।

ଗୋମେଧ—ପୁଂ.ବ.(ଗୋ—ମେଧ୍+ଅ) ଗୋସବ, ଯଜ୍ଞବିଶେଷ, ବୃନ୍ଦାବନବାସୀ ଗୋପମାନଙ୍କର ମଙ୍ଗଳନିମିତ୍ତ ଶ୍ରୀକୃଷ୍ଣଙ୍କ କର୍ତ୍ତୃକ ଅନୁଷ୍ଠିତ ଗୋମହୋତ୍ସବ ।

ଗୋମ୍ପ—ଗ୍ରା. (ମେଢ଼) ବ. ମୁଛ ।

ଗୋଯଜ୍ଞ—ବ. ଗୋମେଧ (ଦେଖ) ।

ଗୋୟା—ମାଲବାର ଉପକୂଳରେ ଭୂଭାଗ ।

ଗୋଯାନ—କ୍ଲୀ.ବ.ଶକଟ,ଗୋରୁଗାଡ଼ି ।

ଗୋୟାଲନ୍ଦ—ଫରିଦପୁର ଜିଲ୍ଲାନ୍ତର୍ଗତ ଗୋଟିଏ ଉପବିଭାଗ ।

ଗୋୟାଲପଡ଼ା—ଆସାମରାଜ୍ୟର ଗୋଟିଏ ଜିଲା ।

ଗୋୟାଲପ୍ରସିଦ୍ଧ—ଉତ୍ତର ପ୍ରଦେଶର ବରେଲିଜିଲାନ୍ତର୍ଗତ ଗୋଟିଏ ପ୍ରାଚୀନ ନଗର ।

ଗୋୟାଲିୟର—ମଧ୍ୟ ପ୍ରଦେଶସ୍ଥିତ ଏକ ପ୍ରଧାନ ନଗର ।

ଗୋୟୀଚନ୍ଦ୍ର—ପୁଂ. ବ. ସଂକ୍ଷିପ୍ତସାରର ଜଣେ ଟୀକାକାର । [ ବଶିଷ୍ଟ ।

ଗୋଯୁକ୍ତ—ବିଂ, (ଗୋ+ଯୁକ୍ତ) ଗୋ-

ଗୋଯୁଗ—କ୍ଲୀ. ବ.ଗୋଯୁଗଳ, ଏକହଳ ଗୋରୁ, ଦୁଇଟି ଗୋରୁ ।

ଗୋଯୁତ—ବିଂ. ଗୋଯୁକ୍ତ, ଗୋବିଶିଷ୍ଟ ।

ଗୋଯୁତ—ସ୍ତ୍ରୀ.ବ. ଗୋରୁର ଗମନ ।

ଗୋର୍—ଯା.ବ. କବର, ସମାଧି, ମୃତବ୍ୟକ୍ତିର ଶବସ୍ଥାପନାର୍ଥ ଗର୍ତ୍ତ ।

ଗୋର—(ଗୌରଶବଜ)ଗୌରବର୍ଣ୍ଣ ।

ଗୋରକ୍ଷ—ପୁଂ.ବ. (ଗୋ+ରକ୍ଷ୍+କ, ଅ) ଶିବ,ଲତାବିଶେଷ, ଗରୁଡ଼,ଲେମ୍ବୁ ନାରଙ୍ଗ, ଋଷଭନାମକ ଔଷଧ, (ବି) ଗୋପାଳକ, ଗୋରକ୍ଷକ, ଯେ ଗୋରୁ ଜଗେ ।

ଗୋରକ୍ଷକ—ବି. ଗୋପାଳ, ଗରୁଡ଼, ରାଜା, (ବିଂ) ଗୋରୁଜଗୁଥିବା, ଯେ ଗୋରୁ ପାଳନ କରେ ।

ଗୋରକ୍ଷକର୍କଟୀ—ସ୍ତ୍ରୀ.ବ. ଚର୍ଭିଟା,କର୍କଟିକାଭେଦ ।

ଗୋରକ୍ଷଗୃହଳ—ସ୍ତ୍ରୀ.ବ.ଗୋରକ୍ଷତଣ୍ଡୁଳ ନାଗବଳା (ଦେଖ) ।

ଗୋରକ୍ଷଜମ୍ବୁ—ସ୍ତ୍ରୀ.ବ. ଗୋଧୂମ, ଗହମ, ଗୋରକ୍ଷଗୃହଳ, ଗୋରକ୍ଷ ତଣ୍ଡୁଳ, କୋଳଗଛ ।

ଗୋରକ୍ଷଣ—ବ. (ଚତତ୍ର) ଗୋରୁଜଗିବା, ଗୋପାଳନ ।

ଗୋରକ୍ଷତଣ୍ଡୁଳା—ସ୍ତ୍ରୀ. ବ. ଗୋରକ୍ଷ ଗୃହଳ (ଦେଖ), ନାଗବଳା ।

ଗୋରକ୍ଷତଣ୍ଡୁଲୀ—ସ୍ତ୍ରୀ. ବ. ଗୋରକ୍ଷ ତଣ୍ଡୁଳା, ନାଗବଳା ।

ଗୋରକ୍ଷତୁମ୍ବୀ—ସ୍ତ୍ରୀ.ବ. କୁମ୍ଭାକାରତୁମ୍ବୀ, ମାଠିଆ ଲାଉ ।

ଗୋରକ୍ଷଦୁଗ୍ଧା—ସ୍ତ୍ରୀ.ବ. କ୍ଷୁପବିଶେଷ ।

ଗୋରକ୍ଷନାଥ—ଗ୍ରା. ବ. ନେପାଳରେ ଗୁର୍ଖାମାନଙ୍କର ପ୍ରଧାନ ଉପାସ୍ୟଦେବତା ବା ଠାକୁର, ଏ ଜଣେ ମହାସିଦ୍ଧପୁରୁଷ, ଗୋରଖନାଥ ।

ଗୋରକ୍ଷପୁର—ଗ୍ରା' ବ. (ଗୋରଖପୁର) ଉଃ ପଃ ପ୍ରଦେଶର ଲେଫ୍ଟେନାଣ୍ଟଙ୍କ ଶାସନାଧୀନ ଗୋଟିଏ ଜିଲା,ନେପାଳର ପାର୍ବତ୍ୟ ନଗରବିଶେଷ ।

ଗୋରକ୍ଷମୁଣ୍ଡି—ଗ୍ରା.ବ.ମହାମୁଣ୍ଡୀ,ଭୁଇଁକଦମ୍ବବୃକ୍ଷ, ସୋମରାଜାଦିବର୍ଗର ବର୍ଷାୟୁଃ ଶାକଗୁଳ୍ମ ।

ଗୋରକ୍ଷା—ସ୍ତ୍ରୀ. ବ. (ଗୋରକ୍ଷ+ଆ) ଗୋପାଳନ, ଗୋଜାତିର ରକ୍ଷା ।

ଗୋରକ୍ଷୀ—ସ୍ତ୍ରୀ. ବ. (ଗୋରକ୍ଷ+ଈ) ଗୋରକ୍ଷଦୁଗ୍ଧା, ମାଠିଆ ଲାଉ, କ୍ଷୁଦ୍ରକ୍ଷୁପବିଶେଷ । [ ପ୍ରଗ୍ରହକ ।

ଗୋରଖନାଥ—ଗ୍ରା. ବ. ସହଜିଆଧର୍ମର

ଗୋରଖପନ୍ଥୀ—ଗ୍ରା. ବ. ଗୋରଖନାଥଙ୍କର ପ୍ରବର୍ତ୍ତିତ ଧର୍ମସମ୍ପ୍ରଦାୟର ଅନୁଗାମୀ ବ୍ୟକ୍ତି ।

ଗୋରଖା—ଗ୍ରା. ବ. ହିମାଳୟପ୍ରଦେଶସ୍ଥ ନେପାଳରାଜ୍ୟର ଯୋଦ୍ଧା, ସୈନ୍ୟଜାତିବିଶେଷ, ଗୁର୍ଖା, ନେପାଳର ଗୋଟିଏ ପ୍ରଦେଶ ।

ଗୋରଖାନା—ଯା. ବ. ସମାଧି, କବରଖାନା, ମୃତ ବ୍ୟକ୍ତିକୁ କବର ଦିଆଯିବା ସ୍ଥାନ ।

ଗୋରଙ୍କୁ—ପୁଂ.ସ୍ତ୍ରୀ.ବ. ଜଳଚର ପକ୍ଷୀବିଶେଷ, ଲଗ୍ନକ, ବନ୍ଦୀ, କାରାବଦ୍ଧବ୍ୟକ୍ତି, ଲଙ୍ଗୁଳୀବାବାଜ ।

ଗୋରଚନା—ଗ୍ରା. ବ. ଗୋରୁମୁଣ୍ଡରୁ ବାହାରିବା ହଳଦିଆ ଶ୍ଳେଷ୍ମପିଣ୍ଡ ।

ଗୋରଜ—ବ. (ଗୋ+ରଜଃ) ଗତିକରୁଥିବା ଗୋରୁଙ୍କ ଖୁରଦ୍ୱାରା ଉଦ୍ଧୃତ ଧୂଳି ।

ଗୋରଟ—ପୁଂ.ବ. (ଗୋ+ରଟ୍+ଅ) ବିଟଖଦିର, ପାକଡ଼ା ଖଇର ।

ଗୋରଡ଼ା—ଗ୍ରା.ବ. ଗୋରୁଖୁଆଡ଼,ବାଡ଼ଦିଆ ଉଦ୍ୟାନ, ବୈଦିକ ବ୍ରାହ୍ମଣଙ୍କ ଶାଖାଭେଦ, ଦରଜ ଓ ଦ୍ୟାଆ ନିବାରଣାର୍ଥ ନବପ୍ରସୂତର ଜନନେନ୍ଦ୍ରିୟରେ ଅନ୍ୟ ବ୍ୟକ୍ତି ଦ୍ୱାରା ଗୋଇଠିଦ୍ୱାରା ସେକଦେବା, ବାଡ଼, ଅଟେଇ ।

ଗୋରଡ଼ି—ଗ୍ରା.ବ.ଗୋରୁର ଦମ୍ଭା ଉଡ଼, ଧାନ ରଖିବାର ବଡ଼ ଡୋଲି,ମରେଇ ।

ଗୋରଣ — କ୍ଳୀ.ବ.(ଗୁର୍ + ଅନ)ଉତ୍ତୋଳନ, ଉଦ୍ୟମ, ଶକ୍ତି, ଅଧ୍ୟବସାୟ, ଚେଷ୍ଟା ।

ଗୋରଣ୍ଟଲ — ତାମିଲନାଡୁକର୍ଣ୍ଣୁଲ୍ ଜିଲ୍ଲାନ୍ତର୍ଗତ ଓ କର୍ଣ୍ଣୁଲ ନଗରର ଦକ୍ଷିଣରେ ଅବସ୍ଥିତ ଗୋଟିଏ ପ୍ରଧାନ ଗ୍ରାମ ।

ଗୋରଥ — ମଗଧଦେଶସ୍ଥିତ ଗୋଟିଏ ମନୋରମ ପର୍ବତ । [ନିଗଶ୍ରସ୍ତ ।

ଗୋରବା — ଯା. ବିଂ. ଗରବ, ଦରିଦ୍ର,

ଗୋରଭସ — ବିଂ.(ଗୋ + ରଭସ୍)ବ.ବୀର୍ଯ୍ୟବାନ୍ ।

ଗୋରମା — ସ୍ତ୍ରୀ. ବ. ଗନ୍ଧତୃଣ, ଧନିଆ ।

ଗୋରଶ୍ମିନ୍ — ବ. ( ଗୋଲଶ୍ମିନଶବ୍ଦଜ ) ଏକପ୍ରକାର ବୃକ୍ଷ ।

ଗୋରସ — ପୁଂ.ବ.(ଷତତ୍ପୁ) ଗୋଦୁଗ୍ଧ, ଦହି, ଛେନା, ଘୋଳଆଦି, ବାକ୍ୟଗତରସ ।

ଗୋରସଜ — କ୍ଳୀ. ବ. (ଗୋ + ରସ + ଜନ୍ + ଡ.ଅ) ଦହି, ଛେନା, ଘୋଳ, ତକ୍ରା, (ବିଂ) ଗୌରିସଜାତ ।

ଗୋରସ୍ଥାନ — ଯା. ବି. କବରଖାନା, ମୃତବ୍ୟକ୍ତିଙ୍କୁ କବର ଦିଆଯିବା ସ୍ଥାନ ।

ଗୋରା — ଗ୍ରା. ପୁଂ. ବିଂ. (ଗୌରଶବ୍ଦଜ) ଗୌରବର୍ଣ୍ଣ, ଶୁଭ୍ରବର୍ଣ୍ଣ ଶରୀରବିଶିଷ୍ଟ, (ଗ୍ରା.ବ.) ୟୁରୋପୀୟ ସାହେବ, ୟୁରୋପୀୟ ସୈନ୍ୟ ।

ଗୋରାଚମଡ଼ା — ଗ୍ରା. ବ. ଶ୍ୱେତକାୟ (ୟୁରୋପୀୟ) ବ୍ୟକ୍ତିର ଗାତ୍ରଚର୍ମ, ଶ୍ୱେତକାୟ ବ୍ୟକ୍ତି ।

ଗୋରାଚାନ୍ଦ — ଗ୍ରା. ବ. ପୀର ଗୋରାଚାନ୍ଦ ନାମରେ ଖ୍ୟାତ ଜଣେ ମୁସଲମାନ ଧର୍ମାବଲମ୍ବୀ ଫକୀର,(ଗୌରଚନ୍ଦ୍ରଶବ୍ଦଜ) ଚୈତନ୍ୟଦେବ ।

ଗୋରାଜ — ପୁଂ.ବ. (ଗୋ + ରାଜ୍ + ଅ) ଶ୍ରେଷ୍ଠବୃଷ ।

ଗୋରାଟିକା — ସ୍ତ୍ରୀ.ବ. (ଗୋ + ରଟ୍ + ଇକ + ଆ)ଶାରିକାପକ୍ଷୀ, ଶାରୀଚଢ଼େଇ ।

ଗୋରାଟୀ — ସ୍ତ୍ରୀ.ବ.(ଗୋ + ରଟ୍ + ଅ + ଈ) ଶାରିକାପକ୍ଷୀ, ଶାରୀଚଢ଼େଇ ।

ଗୋରାପ୍ — ଗ୍ରା. ବ. ବଡ଼ଜାହାଜ, ତିନି ମାସ୍ତୁଲବାଲା, ପାଲଟଣା ଜାହାଜ ।

ଗୋରିଆ — ପ୍ରା.(ସମ୍ବ)ବିଂ.ଈଷତ୍‌ନାଲିଆ, କସରା ।

ଗୋରିଲା (ଗରିଲା) — ଯା.ବ.ବନମନୁଷ୍ୟ, ଆଫ୍ରିକା ଜଙ୍ଗଲରେ ବାସ କରୁଥିବା ଏକପ୍ରକାର ନରତୁଲ୍ୟ ଜନ୍ତୁ ।

ଗୋରିକା — ସ୍ତ୍ରୀ.ବ. ଶାରିକା, ଶାରୀ ।

ଗୋରିବଦନୂର — ମହୀଶୂରର କୋଲାର ଜିଲ୍ଲାନ୍ତର୍ଗତ ଗୋଟିଏ ତାଲୁକ ।

ଗୋରୀ — ଗ୍ରା.ସ୍ତ୍ରୀ.ବିଂ.ସୁନ୍ଦରୀ,(ବ)ରାଧିକା, ଗୌରୀ, ପାର୍ବତୀ,ଗୌରବର୍ଣ୍ଣା ସ୍ତ୍ରୀ ।

ଗୋରୁ — ଗ୍ରା. ବ. ଗୋ, ଗାଈ, ଷଣ୍ଢ, ବଳଦ, ବାଛୁରୀ ଆଦି, (ଲ.ଅର୍ଥ)ନିଷ୍ପଟବ୍ୟକ୍ତି, ନିର୍ବୋଧ ବ୍ୟକ୍ତି ।

ଗୋରୁଖିଆ — ଗ୍ରା. ବ. ବନ୍ୟଫଳ,କଣ୍ଟିଚକାକୁଡ଼ି, ଲତାବିଶେଷ ।

ଗୋରୁଗାଈ — ଗ୍ରା.ବ.ଗୋଜାତୀୟ ସକଳ ପ୍ରକାର ଜୀବ । [ଶକଟ ।

ଗୋରୁଗାଡ଼ି — ଗ୍ରା.ବ. ଗୋଯାନ. ଗୋ-

ଗୋରୁଗୁହାଳ — ଗ୍ରା.ବ.ଗୋଶାଳା, ଗୋରୁ ଗାଈ ରହିବା ଘର ।

ଗୋରୁଚନ୍ଦା — — ଗ୍ରା. ବ. ଗୋମୂତ୍ର ।

ଗୋରୁଚମଡ଼ା — ଗ୍ରା.ବ.ଗୋଚର୍ମ,ଗୋରୁର ଛାଲ ।

ଗୋରୁଚରା — ଗ୍ରା. ବ ଓ ବିଂ. ଯେଉଁ ଜାଗାରେ ଗୋରୁଚରନ୍ତି, ଗୋରୁଜଗା (ଦେଖ) । [କରିବା ।

ଗୋରୁଚରାଇବା — ଗ୍ରା. କ୍ରି. ଗୋଚାରଣ ।

ଗୋରୁଚରିବା — ଗ୍ରା.ବ'ଯେଉଁ ପଡ଼ିଆଆଦିରୁ ଗୋରୁ ଘାସଖାଆନ୍ତି ବା ଚରନ୍ତି(ଲ.ଅର୍ଥ) କୌଣସି ପଦାର୍ଥ ବା ପ୍ରହାର ଅପର୍ଯ୍ୟାପ୍ତ ସଂଖ୍ୟାରେ ଘଟିବା ।

ଗୋରୁଜଗା — ଗ୍ରା. ବିଂ. ଯେ ଗୋରୁଙ୍କୁ ଚରାଏ ବା ଜଗେ. (ବ) ଗୋରୁ ରଖୁଆଳ,ଚରୁଥିବା ଗୋରୁଙ୍କୁ ରଖିବା କର୍ମ ।

ଗୋରୁଜଗିବା — ଗ୍ରା. କ୍ରି. ଗୋରୁ ଚରାଇବା,ଗୋଚାରଣ କରିବା, ଗୋରୁଙ୍କୁ ଚରିବାବେଳେ ଜଗିବା ।

ଗୋରୁଢୁକାବେଳ — ଗ୍ରା. ବ. ଗୋଧୂଳି ସମୟ ମୁହଁସନ୍ଧ୍ୟା ।

ଗୋରୁତ — କ୍ଳୀ.ବ'(ଗୋ + ରୁତ୍)ଗୋରୁର ଶବ୍ଦ,ଗୋରବ, ଦୁଇକ୍ରୋଶ ଦୂରତ୍ୱ ।

ଗୋରୁଧନ — ଗ୍ରା. ବ. ଗୋଧନ, ଗୋରୁ ରୂପ ସମ୍ପତ୍ତି ।

ଗୋରୁଧରଣା — ପ୍ରା. (ସମ୍ବ) ବ. ଗୋରୁ ଯିବା ବାଟ, ଗୋଦଣ୍ଡା ।

ଗୋରୁମାରି ଜୋତାଦାନଦେବା ନ୍ୟାୟ — (ଗ୍ରା — ପ୍ରବଚନ) ଗୋହତ୍ୟାଜନିତ ତଜ୍ଜନିତ ପାପଛଡ଼ାଇବା ନିମନ୍ତେ ହତଗୋରୁର ଚର୍ମରେ ନିର୍ମିତ ଜୋତାକୁ ବ୍ରାହ୍ମଣଙ୍କୁ ଦାନଦେବା ଯେପରି ବୃଥା ସେହିପରି ଜ୍ଞାନକୃତ ପାପନିମନ୍ତେ ବୃଥା ପ୍ରାୟଶ୍ଚିତ୍ତ କରିବା ।

ଗୋରୁମୁଣ୍ଡ ଆପିବା — ଗ୍ରା.କ୍ରି.(ଲ.ଅର୍ଥ) ଜଣଙ୍କୁ ନାମମାତ୍ର ପ୍ରଭୁ ବା ନେତାରୂପେ ବସାଇ କୌଣସି କାର୍ଯ୍ୟ ସାଧନ କରିନେବା ।

ଗୋରୁମୁହାଁ — ଗ୍ରା. ବିଂ. ଗୋମୁଖଯୁକ୍ତ, (ବ) ଗୋରୁଙ୍କୁ କୁଣ୍ଡାପାଣି ଖୁଆଇବା ।

ଗୋରୁଲାଙ୍ଗୁଡ଼ଛୁଇଁବା — ଗ୍ରା. କ୍ରି. ଗୋପୁଚ୍ଛ ଧରି ଶପଥ କରିବା ।

ଗୋରୁଲାଙ୍ଗୁଡ଼ରେପାରହୋଇଯିବା — ଗ୍ରା. କ୍ରି. ଯାହାକୁ ପହଁରି ଆସେ ନାହିଁ ସେ ନଈରେ ଗୋରୁଙ୍କୁ ପହଁରିବାକୁ ପୂରାଇଦେଇ ପହଁରୁଥିବା ଗୋରୁର ଲାଙ୍ଗୁଡ଼କୁ ଧରି ନଦୀଆଦି ପାରହୋଇଯିବା,(ହିନ୍ଦୁ ବିଶ୍ୱାସମତେ ) ମୃତ୍ୟୁପୂର୍ବରୁ ବ୍ରାହ୍ମଣଙ୍କୁ ଦାନକରାଯାଇଥିବା ଗୋରୁର ଲାଙ୍ଗୁଡ଼କୁ ଧରି ମୃତ୍ୟୁପରେ ବୈତରଣୀକୁ ବିନା କଷ୍ଟରେ ପାରହୋଇଯିବା, ମହାଜନଙ୍କୁ ଖାତକ ଗୋଟିଏମାତ୍ର ଗାଈ ଦେଇ ସମସ୍ତ ଋଣରୁ ମୁକ୍ତହେବା ।

ଗୋରୂପ — କ୍ଳୀ. ବ. ଗୋରୁର ରୂପ, ଗୋରୁର ଆକୃତି, ମହାଦେବ ।

ଗୋରୋଚ — କ୍ଳୀ. ବ. (ଗୋ + ରୁଚ୍ + କ.ଅ) ହରିତାଳ ।

ଗୋରୋଚନା — ସ୍ତ୍ରୀ. ବ. (ଗୋ + ରୋଚ୍ + ଣ + ଅନ + ଆ) ସ୍ୱନାମ ଖ୍ୟାତ ପୀତବର୍ଣ୍ଣ ଦ୍ରବ୍ୟବିଶେଷ ।

**ଗୋର୍ଖା** — ଗ୍ରା. ବି. ନେପାଳ ରାଜ୍ୟର ଅନ୍ତର୍ଗତ ଗୋଟିଏ ଜିଲ୍ଲା, ଉକ୍ତ ଜିଲ୍ଲାର ପ୍ରଧାନ ନଗର, ଉକ୍ତ ଜିଲ୍ଲାରଅଧିବାସୀ ।

**ଗୋର୍ଦ୍ଦ** — କ୍ଲୀ.ବି.(ଗୁର + ଦଦ)ମସ୍ତିଷ୍କ, ମସ୍ତିଷ୍କସ୍ଥ ଘୃତ ।

**ଗୋଲ୍** — ଯା.ବି. ଫୁଟବଲ ଖେଳ ପଡ଼ିଆର ନିର୍ଦ୍ଦିଷ୍ଟ ସୀମାର ଦୁଇପାଖରେ ପୋତା ହୋଇଥିବା ଓ ଉପରେ ଆଡ଼ଧାରଣା ପଡ଼ିଥିବା ଖୁଣ୍ଟିଦ୍ଵୟ, ଫୁଟବଲ ଖେଳରେ ଏକପକ୍ଷ ଅନ୍ୟପକ୍ଷକୁ ଦେବା ବୋଲ୍,(ବିଂ)ବିଶୃଙ୍ଖଳ, (ଗ୍ରା.ବି)ବର୍ତ୍ତୁଳ ବସ୍ତୁ, ଗୋଲାକାର କୋଠା ଓ ସିଡ଼ି, ଗୋଲମାଲ, ଶ୍ରୁତିକଟୁ ଶବ୍ଦ, ଅତି ଉଚ୍ଚଧ୍ଵନି, ଘୋଷା, (ଗ୍ରା.ବିଂ)ବର୍ତ୍ତୁଳ ।

**ଗୋଲ୍ କରିବା** — ଗ୍ରା.(ସମ୍ଭ)କି.ଚଢ଼ିବା ।

**ଗୋଲ୍ କୁମୁଡ଼ା** — ଗ୍ରା. (ମେଦିନୀ) ବି. ବୋଇତକଖାରୁ । [ ଦେଖ ।

**ଗୋଲ୍ ଖାଇବା** — ଗ୍ରା.କି. ଗୋଲନେବା

**ଗୋଲ୍ ଟଗର**-ଗ୍ରା.(ସମ୍ଭ)ବି.କଲଗୋଲ ।

**ଗୋଲ୍ ଦେବା** — ଗ୍ରା.କି.ଫୁଟବଲଖେଳରେ ଏକପକ୍ଷ ଅପରପକ୍ଷରଗୋଲସୀମାମଧ୍ୟରେ ପେଣ୍ଡୁକୁ ଗଳାଇ ଦେବାଦ୍ଵାରା ଅନ୍ୟ ପକ୍ଷକୁ ବୋଲ୍‌ଦେବା ।

**ଗୋଲ୍ ନେବା**-ଗ୍ରା.କି.ଫୁଟବଲଖେଳରେ ଆପଣାପକ୍ଷର ଗୋଲ (ସୀମା) କାଟେ ପେଣ୍ଡୁଗଳି ଗଲେ ତଦ୍ଦ୍ଵାରା ଖେଳରେ ହାରିବା ।

**ଗୋଲ୍ ପାଇବା** — ଗ୍ରା.କି.ଗୋଲନେବା, (ଦେଖ) ।

**ଗୋଲ** — ପୁଂ.ବି.(ଗୁଡ଼୍ + କ.ଅ)ପେଣ୍ଡୁ, ବୃତ୍ତ, କୁଟଚକ୍ର,ଗୋଲଘର, ମୁଣ୍ଡକୁମ୍ଭ, ବର୍ତ୍ତୁଳାକାର ପଦାର୍ଥ, ମଦନବୃକ୍ଷ, କଣ୍ଟକୀ ବୃକ୍ଷବିଶେଷ, ବିଧବାର ଗର୍ଭୋତ୍ପନ୍ନ ଜାରଜ ପୁତ୍ର, ଦୋଲ(ଜ୍ୟୋତିଷ) ଏକରାଶିରେ ସବୁଗ୍ରହଙ୍କର ଅବସ୍ଥିତି, ଭାସ୍କରାଚାର୍ଯ୍ୟ କୃତ ଗୋଳାଧ୍ୟାୟନାମକ ଗ୍ରନ୍ଥ, କ୍ଷେତ୍ରବିଶେଷ, (କ୍ଲୀ.ବି.) ମଣ୍ଡଳ, ଗୁଗ୍ଗୁଳ,ଶୂନ୍ୟସଂଖ୍ୟା, (ଯା.ବି) ଗୋଲମାଲ,କୋଲାହଳ, ଗଡ଼ବଡ଼, ଅଲି, ପ୍ରାର୍ଥନା, ମେଳି,ଉପଦ୍ରବ, ରାଜଦ୍ରୋହ, କଳହ, ଜନତା, ମେଳା, ଅରାଜକତା, ଉତ୍ସବର ଆନ୍ଦୋଳନ ।

**ଗୋଲଆଳୁ** — ଗ୍ରା. ବି. ବିଲାତିଆଳୁ,(ଲ. ଅର୍ଥ) ଶୂନ୍ୟ, ଶୂନ ।

**ଗୋଲକ** — ପୁଂ. ବି.(ଗୁଡ଼୍ + ଅକ)ଅଳିଞ୍ଜର,ଜାଳ,ଗୁଡ଼,ଗନ୍ଧରସ, ମଟରମଞ୍ଜି, ବୈକୁଣ୍ଠ, ଗୋଲାକାରଇଙ୍ଗାର, ସୁପାରି, ଅକ୍ଷର,ଗୋଲାକୃତ ପଦାର୍ଥ,ପିଣ୍ଡ, (କ୍ଲୀ) ଗୋଲୋକଧାମ, ଇନ୍ଦ୍ରିୟର ଆଧାରବିଶେଷ, ଆଖିର ପିତୁଳା, ଗମ୍ବୁଜ, (ମନୁକୃତ) ବିଧବାର ଜାରଜ ସନ୍ତାନ, ମଣ୍ଡଳ, ଭୂପୃଷ୍ଠର ପ୍ରତିରୂପକ ଦାରୁମୟ ବର୍ତ୍ତୁଳ, କୌଣସି କାର୍ଯ୍ୟପାଇଁ ସଂଗୃହୀତ ଧନ, ଫଣ୍ଡ, ବାଟୁଲି,ବଡ଼କୋଳି ।

**ଗୋଲକ**-ଗ୍ରା.ବି.(ସଂ-ଗୋଲକ,ଗୋଲୋକ) ଗୋଲୋକ, ବୈକୁଣ୍ଠ ।

**ଗୋଲକଧନ୍ଦା** — ଗ୍ରା. ବି. ବିଷମସମସ୍ୟା, ଭୂଆଁ, ଗୋଲମାଲିଆ ପଥଯୁକ୍ତ ସ୍ଥାନ, ଦୁର୍ଗମ ପଥ, ଅତିକଷ୍ଟରେ ସାଧନ ଯୋଗ୍ୟ ପ୍ରଶ୍ନ, ପ୍ରହେଳିକା ।

**ଗୋଲକଧାମ** — କ୍ଲୀ.ବି. ବିଷ୍ଣୁଙ୍କର ବାସସ୍ଥାନ, ବୈକୁଣ୍ଠ ।

**ଗୋଲକବିହାରୀ** — ପୁଂ. ବି. ବିଷ୍ଣୁ ।

**ଗୋଲକଲମ** — ଗ୍ରା. ବି. ରୁପା ଓ ପିତଳ ପାତଆଦିଉପରେ ନକ୍ସି କାମକରିବାରେ ବ୍ୟବହୃତ ଛେଣି ।

**ଗୋଲକରିବା** — ଗ୍ରା.କି. ଅଳକଣ ବ୍ୟତିବ୍ୟସ୍ତ କରିବା, କଳିକରିବା,ଗୋଲମାଲ କରିବା,ସବୁମିଶାଇଦେବା ।

**ଗୋଲକୁଣ୍ଡା** — ଗ୍ରା. ସ୍ତ୍ରୀ. ବି. ଅସତୀ ସ୍ତ୍ରୀ, ଆନ୍ଧ୍ର, ବିଶାଖ ପଟ୍ଟନ ଜିଲ୍ଲାନ୍ତର୍ଗତ ତାଲୁକାବିଶେଷ ( ହୀରାଖଣିଥିବାରୁ ବିଖ୍ୟାତ), ନିଜାମ ରାଜ୍ୟର ଅନ୍ତର୍ଗତ ଗୋଟିଏ ଧ୍ୱଂସାବଶିଷ୍ଟ ନଗର ଓ ଦୁର୍ଗ ।

**ଗୋଲକ୍ଷଣ** — କ୍ଲୀ.ବି. ଗୋରୁର ଶୁଭାଶୁଭସୂଚକ ଚିହ୍ନବିଶେଷ ।

**ଗୋଲଗାଲ** — ଗ୍ରା.ବିଂ. ବର୍ତ୍ତୁଳ ସମ୍ପୂର୍ଣ୍ଣରୂପେ ଗୋଲାକାର, ବାଙ୍ଗର ଓ ସ୍ଥୂଳକାୟ(ବ୍ୟକ୍ତି),(ବି)କୋଲାହଳ,ମେଳି ।

**ଗୋଲଗୋଲ** — ବି. ବହୁଗୋଲକବିଶିଷ୍ଟ ଗୋଲକ, (ଗ୍ରା.ବି) ଗୋଲାକାର ବସ୍ତୁବସ୍ତୁ ।

**ଗୋଲଘାଣ୍ଟ** — ଗ୍ରା.ବିଂ.ଅସ୍ତବ୍ୟସ୍ତ,ଲେଉଟପାଉଟ,ଦୁରବସ୍ଥ,ଜର୍ଜରିତ,ଅବ୍ୟବସ୍ଥିତ, (ଗ୍ରା ବି) ଗୋଲମାଲ, ଘଣ୍ଟାଚକଟା, ବିଶେଷ ଆନ୍ଦୋଳନ ।

**ଗୋଲଞ୍ଜା** — ଗ୍ରା. ବି. ବନ୍ୟଜନ୍ତୁବିଶେଷ, ବାନରବିଶେଷ ।

**ଗୋଲଣ୍ଡିକା** — ସ୍ତ୍ରୀ.ବି.ବନରେ ସ୍ତ୍ରୀଜାତୀୟ ପକ୍ଷୀବିଶେଷ ।

**ଗୋଲଦାର** — ଯା. ବି. ଦୋକାନଦାର, ଯେ ମାଲ ଅଧିକସଂଖ୍ୟକ ଏକବାରେ ବିକ୍ରୟ କରେ ।

**ଗୋଲଦାରି** — ଯା. ବି. ଗୋଲଦାରର କାର୍ଯ୍ୟ ।

**ଗୋଲନ୍ଦ** — ପୁଂ. ବି. ଋଷିବିଶେଷ ।

**ଗୋଲନ୍ଦାଜ** — ଯା. ବି. ଯେଉଁ ସୈନ୍ୟ ତୋପଦ୍ଵାରା ଗୋଳା ଚଳାଏ ।

**ଗୋଲନ୍ଦାଜୀ** — ଯା. ବି. ଗୋଲନ୍ଦାଜ ସେନାର କାର୍ଯ୍ୟ ।

**ଗୋଲବାନ୍ଧିବା** — ଗ୍ରା. କି. ମେଳକରିବା, ପାଟିକରିବା, ଗୋଲମାଲ କରିବା ।

**ଗୋଲବିଦ୍ୟା** — ସ୍ତ୍ରୀ.ବି. ଜ୍ୟୋତିଷବିଦ୍ୟାର ଯେଉଁଅଂଶରୁ ପୃଥିବୀର ଗୋଲକତ୍ଵ, ବିସ୍ତାର, ଆକାର ଓ ଗୁରୁତ୍ୱପରିବର୍ତ୍ତନ ଆଦିର ଶିକ୍ଷା କରାଯାଏ ।

**ଗୋଲମରିଚ** — ଗ୍ରା. ବି. ସ୍ଵନାମଖ୍ୟାତ ବୃକ୍ଷବିଶେଷ ଓ ତାହାର ଫଳ ମସଲାବିଶେଷ ।

**ଗୋଲମାଲ** — ଗ୍ରା. ବି. କାର୍ଯ୍ୟର ବିଘ୍ନଜନକ କ୍ଷୁଦ୍ରବ୍ୟାପାର, ଗଣ୍ଡଗୋଳ, ଅନେକ ସ୍ଵରମିଶ୍ରିତ ଶବ୍ଦ, ବିଷମସଙ୍କଟ ।

**ଗୋଲମାଲିଆ** — ଗ୍ରା.ବିଂ.ଗଣ୍ଡଗୋଲ ପୂର୍ଣ୍ଣ, ଜଟିଳ, ଦୁର୍ବୋଧ, ଅଡ଼ୁଆଝଡ଼ୁଆ ।

**ଗୋଲମୋହରୀ** — ଗ୍ରା. ବି. ଏକପ୍ରକାର ଗଛ ।

ଗୋଳଯନ୍ତ୍ର — କ୍ଲୀ. ବି. ପ୍ରାଚୀନ କାଳରେ ଭାରତୀୟ ଜ୍ୟୋତିଷୀମାନଙ୍କ ବ୍ୟବହୃତ ସୂର୍ଯ୍ୟ, ଚନ୍ଦ୍ର, ପୃଥିବୀ, ଗ୍ରହ, ନକ୍ଷତ୍ରାଦିଙ୍କ ସ୍ଥିତିଗତି ଓ ପରିବର୍ତ୍ତନ-ଜ୍ଞାପକ ଯନ୍ତ୍ର, ବିଶେଷ ।

ଗୋଳଯୁଦ୍ଧ — ଗ୍ରା. ବି. ଭୟଙ୍କର ଯୁଦ୍ଧ ।

ଗୋଳଯୋଗ — ଗ୍ରା. ବି. ଗୋଳମାଳ, ଗଣ୍ଡଗୋଳ, ବିଷମସଙ୍କଟ, ମହା ଅବ୍ୟବସ୍ଥା, ଗଡ଼ବଡ଼ ।

ଗୋଲ୍‌ଲବଣ — କ୍ଲୀ. ବି. ଯେଉଁ ପରିମାଣ ଲବଣ ଗୋରୁଙ୍କୁ ଦିଆହେବାର ବିଧାନ ଅଛି ସେହିପରିମାଣ ଲବଣ ।

ଗୋଲସିଙ୍ଗ — ଗ୍ରା.ବି.ଏକପ୍ରକାର ବୃକ୍ଷ ।

ଗୋଲା-ସ୍ତ୍ରୀ.ବି.(ଗୋ + ଲା + ଅ + ଆ) ଗୋଦାବରୀ ନଦୀ, ସ୍ତ୍ରୀର ସଖୀ, କାଳି, ମସୀ, କୁନଟୀ, ପଦ୍ମାଞ୍ଜନ, ଗୋଲକାର ବଡ଼ଜଳପାତ୍ର, ଗଗ୍ରୀ, ନାଲିସଙ୍ଖୁଆ, ସିନ୍ଦୁର,,ମାଣିକ,ମଣ୍ଡଳ, କାଷ୍ଠାଦିନିର୍ମିତ ଗୋଲାକାର କ୍ଷୁଦ୍ର ପଦାର୍ଥ,ଦୁର୍ଗା,କୁଣ୍ଡଳ, ମରେଇ, ଗୋଦାମ, ତୋପରେ ମାରିବାର ଲୁହାଗୁଳା, ବାଳକମାନଙ୍କର ଗୋଲାକାର କ୍ରୀଡ଼ନକ, (ଗ୍ରା. ବି) ପାଣିରେ ଗୋଳିବା, ମିଶ୍ରିତ କରିବା, ଗୋଳାଇବା, ଗୁଳିବା, ଗୋଳିବା, ଘାଣ୍ଟିବା, (ଗ୍ରା.ବିଂ) ମିଶ୍ରିତ, ତରଳ, ଜଳରେ ମିଶି ତରଳ ହୋଇଥିବା,ଘଣ୍ଟା ହୋଇଥିବା ଘୋଳ, ମଳିଆ (ପାଣି) ।

ଗୋଲି — ବି. ଗୋଲା(ଦେଖ) (ଗ୍ରା.ବି.) ବନ୍ଧୁକ ବା କମାଣର ଗୁଳି,ଗୋଲାକାର କ୍ଷୁଦ୍ର ପଦାର୍ଥ, ମଦକ, ବଟିକା, ପେଣ୍ଡୁ, ଶତ୍ରୁଜାତିବିଶେଷ, ଶସ୍ୟାଦିର ଅମାର, ପଣ୍ୟଦ୍ରବ୍ୟର ଭଣ୍ଡାର ଘର, କମାଣର ବଡ଼ଫମ୍ପା ବାରୁଦପୂର୍ଣ୍ଣପିଣ୍ଡ,ଯହିଁ ମଧ୍ୟରେ ଛୋଟ ଛୋଟ ଗୁଳିକଣ୍ଡା ମେଖଆଦି ପଶିଥାଏ, ବଲ୍ଲେସ,(ଗ୍ରା.ବିଂ)ବର୍ତ୍ତୁଳ ।

ଗୋଳାଇପୋଳାଇହେବା — ଗ୍ରା. କ୍ରି. ଗୋଳାଇହେବା (ଦେଖ) ।

ଗୋଳାଇବା — ଗ୍ରା. କି. (ସକର୍ମକ)ଦ୍ରବପଦାର୍ଥସହ ଅନ୍ୟପଦାର୍ଥ ମିଶାଇବା, ଗୋଳିବା,ଘାଣ୍ଟିବା,ଆଲୋଡ଼ନ କରିବା, ଗୋଳମାଳ କରିଦେବା, (ଅକର୍ମକ) ହୁଁଆଉଁ ଆ କାରଣ ନ ରଖିବା,ଅପାନ ବାୟୁ ତ୍ୟାଗଦ୍ୱାରା ବାୟୁକୁ ଦୁର୍ଗନ୍ଧମୟ କରିବା ।

ଗୋଳାଇହେବା — ଗ୍ରା. କି. ମିଶ୍ରିତହେବା, ଅନ୍ୟ ବ୍ୟକ୍ତି ସଙ୍ଗେ ବଳେ ପଶି ମିଶିବାକୁ ଚେଷ୍ଟା କରିବା, ( ମନ ) ଘାଣ୍ଟି ହେବା, ଅନୁତାପ କରିବା ।

ଗୋଲାକାର — ବି. ବର୍ତ୍ତୁଳାକୃତି, (ବିଂ) ବର୍ତ୍ତୁଳ । [ (ଦେଖ) ।

ଗୋଲାକୃତି — ବିଂ. ଓ ବି. ଗୋଲାକାର

ଗୋଲାକ୍ଷ — ପୁଂ. ବି. ଋଷିବିଶେଷ ।

ଗୋଲାଗ — ବି. ଛତ୍ରୁ ।

ଗୋଲାଗୁଳି — ଗ୍ରା. ବି. ବନ୍ଧୁକ ଓ ତୋପ ଫଏର କରିବାର ଉପକରଣ ।

ଗୋଳାଗୋଳି — ଗ୍ରା. ବି. ବିଶେଷପରିମାଣରେ ଘାଣ୍ଟିବା, ଘଣ୍ଟାଚକଟା(ବିଂ) ଏକଦମ ଘଣ୍ଟା ହୋଇଥିବା (ବହୁବସ୍ତୁ) ।

ଗୋଲାଘର — ଗ୍ରା.ବି. ଅମାର, ଶସ୍ୟ ବା ପଣ୍ୟାଗାର ।

ଗୋଲାଘାଟ — ଆସାମ ରାଜ୍ୟର ଶିବସାଗର ଜିଲ୍ଲା ମଧ୍ୟରେ ଥିବା ଗୋଟିଏ ଉପବିଭାଗ ।

ଗୋଲାଙ୍କ — ପୁଂ. ବି. ଋଷିବିଶେଷ ।

ଗୋଲାଙ୍ଗୁଳା — ସ୍ତ୍ରୀ.ବି. ବାନରବିଶେଷ ।

ଗୋଲାଙ୍ଗୂଳ — ପୁଂ. ବି.(ବି.ଗ୍ରା)ବାନରବିଶେଷ, କାଶୀଖଣ୍ଡ ମତରେ ଲାଲମୁଖ ନାଲଶରୀର ଯୂଥପତି ବାନରକୁ ଗୋଲାଙ୍ଗୂଳ କହନ୍ତି, (ତନ୍ତ୍ର) ଗୋରୁର ଲାଞ୍ଜ ।

ଗୋଲାଙ୍ଗୂଳପରିବର୍ତ୍ତନ — କ୍ଲୀ.ବି. ରାଜଗୃହର ନିକଟବର୍ତ୍ତୀ ଗୋଟିଏ କ୍ଷୁଦ୍ର ପାହାଡ଼ ।

ଗୋଲାଜାତ — ଗ୍ରା. ବିଂ. ଅମାର ବା ପଣ୍ୟାଗାରକୁ ଆଣିତ ବା ସଞ୍ଚିତ ।

ଗୋଲାଧ୍ୟାୟ-ପୁଂ.ବି.(ଗୋଲ + ଅଧ୍ୟାୟ) ଭାସ୍କରାଚାର୍ଯ୍ୟ ପ୍ରଣୀତ ଖଣ୍ଡିଏ ଗ୍ରନ୍ଥ ।

ଗୋଲାପ-ଯା.ବି. ଏକପ୍ରକାର ମନୋହର ଫୁଲ ଓ ତାହାର କଣ୍ଟକମୟ ଗୁଳ୍ମ, ଗୋଲାପଜଳ ।

ଗୋଲାପଅତର — ଯା.ବି.ଗୋଲାପ ଫୁଲରୁ ପ୍ରସ୍ତୁତ ସୁଗନ୍ଧ ତେଲ ।

ଗୋଲାପଜଳ — ଗ୍ରା. ବି. ଗୋଲାପଫୁଲର ସୁଗନ୍ଧ ଜଳ ।

ଗୋଲାପଜାମୁ — ଗ୍ରା.ବି.ଜମ୍ବୁ ଜାତିବର୍ଗର ଉଦ୍ୟାନଜାତ ସୁଗନ୍ଧ ପୁଷ୍ପବିଶିଷ୍ଟ ତରୁ ଓ ତାହାର ମିଷ୍ଟଫଳ, ଦୁଧଛେନା ସାମାନ୍ୟ ମଇଦା ଚିନିରେ ତିଆରି ଘୃତପକ୍ୱ ମିଷ୍ଟାନ୍ନବିଶେଷ ।

ଗୋଲାପପାସ୍ — ଯା. ବି. ଉତ୍ସବ ଉପଲକ୍ଷ୍ୟରେ ଭଦ୍ରଲୋକଙ୍କ ଉପରେ ଗୋଲାପପାଣି ଛିଞ୍ଚିବାପାଇଁ ନିର୍ମିତ ପିଚକାରୀଯୁକ୍ତ ପାତ୍ର ।

ଗୋଲାପଫୁଲ — ଗ୍ରା.ବି. ଗୋଲାପ ଗଛର ଫୁଲ, ସୁନା ବା ରୁପାର ଗୋଲାପଫୁଲ ସଦୃଶ ଅଲଙ୍କାର ।

ଗୋଲାପସିଂହ — ରଜପୁତବଂଶୀୟ କାଶ୍ମୀରର ଜଣେ ମହାରାଜ, ପ୍ରତାପସିଂହଙ୍କର ପିତାମହ ।

ଗୋଲାପସିଂହଭଙ୍ଗୀ — ପଞ୍ଜାବର ଜଣେ ବିଖ୍ୟାତ ଭଙ୍ଗୀ ସର୍ଦ୍ଦାର, ଏ ରଣଜିତ୍‌ସିଂହଙ୍କ ବିରୁଦ୍ଧରେ ଅନେକବାର ଯୁଦ୍ଧ କରିଥିଲେ ।

ଗୋଲାପସିଂହମେଜେଠିଆ — ଜଣେ ଶିଖ ସର୍ଦ୍ଦାର, ମହାରାଜ ରଣଜିତ୍‌ସିଂହଙ୍କର ପୂର୍ବପୁରୁଷ ।

ଗୋଲାପି — ଯା. ବିଂ. ଗୋଲାପଫୁଲର ଗନ୍ଧଯୁକ୍ତ,ଗୋଲାପସମ୍ବନ୍ଧୀୟ,ଗୋଲାପଫୁଲପରି ଈଷତ୍ ରକ୍ତବର୍ଣ୍ଣବିଶିଷ୍ଟ, ଆରକ୍ତ, ପାଟଳବର୍ଣ୍ଣ ।

ଗୋଲାପିନିଶା-ଯା.ବି.ସୁନ୍ଦରସୁରଭିତ ମଦ୍ୟପାନଜନିତ ଅଳ୍ପ ମଧୁର ନିଶା, ମୃଦୁନିଶା, ଯେଉଁ ନିଶାରେ ଚକ୍ଷୁ ଗୋଲାପଫୁଲପରି ସାମାନ୍ୟ ରକ୍ତବର୍ଣ୍ଣ ହୁଏ ।

ଗୋଲାପୂର୍ବ — ବି.ଏକ ଅତି ନୀଚଶ୍ରେଣୀର ବ୍ରାହ୍ମଣ ।

ଗୋଲାମ — ଯା. ବି. ଚାକର, କ୍ରୀତଦାସ, ଭୃତ୍ୟ, ସେବକ, ତାସ ଖେଳରେ

ଗୋଲାମ ଚନ୍ଦଥିବା ତାସ୍‌ପତ୍ର, ଉତ୍କଳର କରଣମାନଙ୍କର ରକ୍ଷିତା (ଅବିବାହିତା) ସ୍ତ୍ରୀ ଗର୍ଭଜାତ ସନ୍ତାନ, ସାଗରପେଶା-ଜାତି, ଗଞ୍ଜପା ଖେଳର ଗୋଟିଏ ସାର ବା ତାସ୍ ।

ଗୋଲାମକାଦେରଖାଁ — ଜଣେ ରୋହିଲା ସର୍ଦ୍ଦାର, ଜାବିତାଖାଁରପୁତ୍ର ।

ଗୋଲାମକୁତବୁଦ୍ଦୀନ୍‌ଶାହ— ଅଲ୍ଲାହା-ବାଦନିବାସୀ ଜଣେ ବିଖ୍ୟାତ କବି ।

ଗୋଲାମଗିରି—ସ୍ତ୍ରୀ. ବି. ଦାସତ୍ୱ, ପରର ଚାକର । [ ନାତି ।

ଗୋଲାମମହମ୍ମଦ — ଟିପୁ ସୁଲତାନଙ୍କର

ଗୋଲାମହୋସେନ୍‌ଖାଁ — ଜଣେ ମୁସଲ-ମାନ ଐତିହାସିକ ଓ ବିଖ୍ୟାତ ପଣ୍ଡିତ ।

ଗୋଲାମି — ସ୍ତ୍ରୀ.ବି.ଗୋଲାମଗିରି.ଦାସତ୍ୱ ।

ଗୋଲାମିଖଟିବା — ଗ୍ରା. କ୍ରି. ଦାସତ୍ୱକର୍ମ କରିବା ।

ଗୋଲାଯନ୍ତ୍ର—କ୍ଳୀ. ବି. ଜ୍ୟୋତିଷିକ ଯନ୍ତ୍ରବିଶେଷ, ଗୋଲଯନ୍ତ୍ର (ଦେଖ) ।

ଗୋଲାସ — ପୁଂ. ବି.(ଗୋ + ଲସ୍ + ଣି + ଅ) ଶିଳୀନ୍ଧ୍ର, ଛତୁ ।

ଗୋଲାହାଟ — ଗ୍ରା.ବି. ଶରୀରଭେଦ ଭଜନରେ ବର୍ଣ୍ଣିତ ହୃଦୟର କାଳ୍ପନିକ ସ୍ଥାନ ।

ଗୋଲାହାଣ୍ଡି—ଗ୍ରା.ବି. ଯେଉଁ ହାଣ୍ଡିରେ ଗୋବରପାଣି ରଖି ସକାଳେ ଘରେ ବାହାରେ ଛୁଆଁ ହୁଏ ।

ଗୋଲି — ଗ୍ରା.ବି. କ୍ରୀଡ଼ନକ ଗୋଲାକାର ପ୍ରସ୍ତରଖଣ୍ଡ ବା କାଚ ଗୋଟାଲି, ମାର୍‌ଗୋଲି,ମାରବଲ୍,ମଦଳି, ଅଫିମ ରସରେ ତିଆରି ଗୋଲାକାର ମାଦକ-ଦ୍ରବ୍ୟବିଶେଷ, ପେଣ୍ଡୁଲା, ଦୂରତ୍ୱର ପରିମାଣବିଶେଷ, ତୋପ ବା ବନ୍ଧୁକର ଗୋଳା ଯେତେଦୂର ଯାଇପାରେ ସେହି ପରିମିତ ଦୂରତ୍ୱ, ଡାବଲ, ଡାବଲପୁଆ, ଖେଳରେ ବ୍ୟବହୃତ ଦୁଇପାଖ ମୁନିଆଁ କ୍ଷୁଦ୍ର କାଠଖଣ୍ଡ, କୃଷ୍ଣାଜିଲ୍ଲାର ଗୋଟିଏ ପ୍ରାଚୀନ ଗ୍ରାମ ।

ଗୋଲି-ଗ୍ରା.ବିଂ.ଘଣ୍ଟାହୋଇଥିବା ଯୋଗୁଁ କର୍ଦ୍ଦମାକ୍ତ ( ଜଳ ),ଗୋଳିଆ, ( ବି ) (ଜଳାଦିର) ଆଲୋଡ଼ନ ।

ଗୋଲିଆ—ଗ୍ରା. ବିଂ. ଅନିର୍ମଳ, ଆବିଳ (ଜଳ),ଯେ ଖେଳରେ ଗୋଳାଏ,ଯେ ଘଣ୍ଟାଘଣ୍ଟି କରେ. କପଟୀ, ( ଗ୍ରା.ବି. ) ଗୋଳାଇବା କର୍ମ, କପଟ, ଛଳ ।

ଗୋଲିଆଇବା — ଗ୍ରା. କ୍ରି. ଗୋଲିବାର ଣିଜନ୍ତରୂପ, ଗୋଲିବା (ଦେଖ) ।

ଗୋଲିଆଗୋଲି — ଗ୍ରା. ବି. ଘାଣ୍ଟିବା, ମିଶ୍ରଣ, ଗୋଲମାଲ, ଅସ୍ତବ୍ୟସ୍ତତା, ଅନେକ ପରିବା ମିଶ୍ରିତ ତରକାରୀ, ଘାଣ୍ଟତିଅଣ (ଗ୍ରା,ବିଂ) ମିଶ୍ରିତ (ବହୁ-ଦ୍ରବ୍ୟ),ଭଲ ଓ ମନ୍ଦ ମିଶାମିଶି ହୋଇ-ଥିବା. ଅସ୍ତବ୍ୟସ୍ତ, ଅନିର୍ଦ୍ଦିଷ୍ଟ, ଅନିଶ୍ଚିତ, ଘଣ୍ଟା ହୋଇଥିବା ।

ଗୋଲିଗାଲିହେବା — ଗ୍ରା.କ୍ରି. ଘାଣ୍ଟିହେବା, ଆନ୍ଦୋଳିତ ବା ମଥିତହେବା,ଭୂମିରେ ଲୁଣ୍ଠିତ ହେବା,ଲେଟି ସାଉଣ୍ଟି ହେବା ।

ଗୋଲିଘାଣ୍ଟି ହେବା— ଗ୍ରା.,କ୍ରି.ଗୋଲେଇ ଘାଣ୍ଟି ହେବା (ଦେଖ) ।

ଗୋଲିବା-ଗ୍ରା.କ୍ରି.ଗୋଲାଇବା (ଦେଖ) ।

ଗୋଲିସୂତା — ଗ୍ରା.ବି କଳନିର୍ମିତ ସୂତାର ଗୋଲକ ।

ଗୋଲିହ — ପୁଂ.ବି. (ଗୋ + ଲିହ୍ + ଅ) ଛଚିନ୍ଦିକା, ଘଣ୍ଟାପାଟଲି ।

ଗୋଲିହଳ୍ଳି — ବେଲଗାଁଜିଲ୍ଲାନ୍ତର୍ଗତ ବନ୍ଦ ନଗରର ଦକ୍ଷିଣରେ ଅବସ୍ଥିତ ଗୋଟିଏ ପ୍ରସିଦ୍ଧ ଗ୍ରାମ ।

ଗୋଲୀ—ବି. ବର୍ତ୍ତୁଳାକାର ଲୌହାଦି ନିର୍ମିତ ପଦାର୍ଥ, ବନ୍ଧୁକପ୍ରଭୃତିର ଗୁଳି ।

ଗୋଲୁର — ପ୍ରା. (ବନ୍ଧ୍ୟର)ବି. ପିଆଜ ।

ଗୋଲେଇ—ଗ୍ରା. କ୍ରି. କାଠଗଡ଼ ବା ଖୁଣ୍ଟଆଦି ବର୍ତ୍ତୁଳ ବସ୍ତୁର ପରିଧି, (ବିଂ) ଗୋଲାକାର ।

ଗୋଲେଇଘାଣ୍ଟି ହେବା-ଗ୍ରା.କ୍ରି. (ପେଟ) ଚକଟିହେବା, (ମନ) ଉଦ୍‌ବିଗ୍ନହେବା, (ଜଞ୍ଜାଳରେ ପଡ଼ି) ବ୍ୟତିବ୍ୟସ୍ତ ହେବା

ଗୋଲେଇପୋଲେଇହେବା — ଗ୍ରା. କ୍ରି. ନିଜେ ଇଚ୍ଛା କରି ବିପକ୍ଷ ଲୋକଙ୍କ ସଙ୍ଗେମିଳାମିଶାର ଚେଷ୍ଟା ବା ଯେ ଗାଢ଼ କରିବା ।

ଗୋଲେଖ — ଗ୍ରା. ବି. ବୈକୁଣ୍ଠଧାମ ।

ଗୋଲୋକ — ପୁଂ. ବି ବୈକୁଣ୍ଠ , ଗୋଟିଏ ପରମଧାମ, ଶ୍ରୀକୃଷ୍ଣ ବା ବିଷ୍ଣୁଙ୍କର ବସତିସ୍ଥାନ ।

ଗୋଲୋକଧାମ-କ୍ଳୀ.ବି.ଗୋଲୋକ(ଦେଖ) ।

ଗୋଲୋକନାଥ,ଗୋଲୋକପତି — ପୁଂ.ବି. ଶ୍ରୀକୃଷ୍ଣ, ବିଷ୍ଣୁ ।

ଗୋଲୋକପ୍ରାପ୍ତ — ବିଂ.(ତ୍ରିଲିଙ୍ଗ) ସ୍ୱର୍ଗଗତ, ସ୍ୱର୍ଗାରୂଢ଼, ମୃତ,(ସ୍ତ୍ରୀ) ଗୋଲୋକପ୍ରାପ୍ତା ।

ଗୋଲୋକପ୍ରାପ୍ତି — ସ୍ତ୍ରୀ. ବି. ( ୭ତତ୍ତ୍ୱ ) ବୈକୁଣ୍ଠପ୍ରାପ୍ତି, ସ୍ୱର୍ଗଲାଭ, ପୁଣ୍ୟାତ୍ମାର ଦେହତ୍ୟାଗ ।

ଗୋଲୋମିକା — ସ୍ତ୍ରୀ. ବି. ପୃଷ୍ଟ ପର୍ଣ୍ଣୀ ବା କୃଷ୍ଣପର୍ଣ୍ଣୀ କ୍ଷୁଦ୍ର କୂପବିଶେଷ, ପାଥୁଆ ।

ଗୋଲୋମୀ — ବି.(ଗୋ + ଲୋମ + ଇନ୍) ଶ୍ୱେତଦୁବା, ଧଳାଦୁବ ।

ଗୋଲ୍ଲା — ଗ୍ରା. ବି. ଗୋଲ ବସ୍ତୁ ।

ଗୋଲ୍ଲାଟ — ବି. ତନ୍ତ୍ରସାଧକଙ୍କ କଳ୍ପିତ ମନୁଷ୍ୟ ଶରୀରାଭ୍ୟନ୍ତରସ୍ଥ ଚକ୍ର ବା କେନ୍ଦ୍ରବିଶେଷ ।

ଗୋବରା — ଗ୍ରା. ବି. ଏକପ୍ରକାର ପୋକ, ସ୍ୱନାମଖ୍ୟାତ ଏକପ୍ରକାର ଛୋଟପକ୍ଷୀ, ଗୋବରା ଚଢ଼େଇ, (ବିଂ)ଗୋବରପରି ଫିକା କଳାରଙ୍ଗବିଶିଷ୍ଟ, ଗୋବରପରି ଅସ୍ୱାଦ,ଗୋବର ମିଶ୍ରିତ(ମାଟି),ଖତରା ।

ଗୋବରାଇବା-ଗ୍ରା.କ୍ରି. ଗୋବରାଗୋବର କରିବା, ଗୋବରିବା (ଦେଖ) ।

ଗୋବରାଗୋବରକରିବା — ଗ୍ରା.କ୍ରି.ଅପରି-ଷ୍କୃତ ଓ ଅପାଠ୍ୟ ଲେଖା ଲେଖିବା, ଗାବରାଇବା, କୌଣସି କାର୍ଯ୍ୟକୁ ଅସୁନ୍ଦରଭାବରେ ସମ୍ପାଦନ କରିବା ।

ଗୋବରାଚଢ଼େଇ — ଗ୍ରା. ବି. ବୁଲ୍‌ବୁଲ୍, ସ୍ୱନାମଖ୍ୟାତ ଏକପ୍ରକାର ଛୋଟପକ୍ଷୀ ।

ଗୋବରାଟ — କ୍ଳୀ. ବି. କବାଟର ନିମ୍ନସ୍ଥ କାଠ ।

ଗୋବରିଆ — ଗ୍ରା.ବିଂ.ଗୋବରା(ଦେଖ) ।

ଗୋବରିଆଚମ୍ପା — ଗ୍ରା. ବି. ଏକପ୍ରକାର ଚମ୍ପାଗଛ ।

ଗୋବରିଆପୋକ — ଗ୍ରା. ବି. ଗୋବରରୁ ଉତ୍ପନ୍ନ ଏକପ୍ରକାର ପୋକ ।

**ଗୋବରରବା**—ଗ୍ରା. କ୍ରି. ଗର୍ଭ ସମ୍ପୂର୍ଣ୍ଣ ନ ପାଇ (ଗୋରୁଆଦି ପଶୁ) ଗର୍ଭପାତ କରିବା, ଗଭ୍ଭରିବା ।

ଗୋବରେଇବା—ଗ୍ରା. କ୍ରି. ଗୋବରଗୋବର କରିବା(ଦେଖ),ଅଛଡ଼(ର) ବାଛୁରିକୁ ବନ୍ଧନ ଧାନରେ ଗୋବର ଗୋଳାଇବା, ବାଛୁରି ନ ପିଇବା ଉଦ୍ଦେଶ୍ୟରେ ଗାଈ ଚରରେ ଗୋବର ବୋଳିବା ।

**ଗୋବର୍ଦ୍ଧନ**—କ୍ଲୀ. ବି. ଗୋରୁର ବୃଦ୍ଧି, (ଗୋ+ବର୍ଦ୍ଧନ)ଷତତ୍ପୁ, ଗୋରୁମାନଙ୍କର ବୃଦ୍ଧି, (ଗୋ+ବୃଧ+ଅନ)ପୁଂ. ଗିରିଯଜ୍ଞବିଶେଷ, ବୃନ୍ଦାବନସ୍ଥ ଗୋଟିଏ ପର୍ବତ, ଯାହାକୁ ଶ୍ରୀକୃଷ୍ଣ ସାତଦିନ ପର୍ଯ୍ୟନ୍ତ ଧରି ବର୍ଷାରୁ ଗୋପବାସୀଙ୍କୁ ରକ୍ଷା କରିଥିଲେ,ମଥୁରା ଜିଲାର ଗୋଟିଏ ପ୍ରାଚୀନ ନଗର ଓ ପବିତ୍ର ତୀର୍ଥସ୍ଥାନ ।

ଗୋବର୍ଦ୍ଧନଗିରି—ପୁଂ. ବି. ବୃନ୍ଦାବନ ନିକଟସ୍ଥ ଗୋଟିଏ ପ୍ରସିଦ୍ଧ ପର୍ବତ, ମହୀଶୂର ରାଜ୍ୟର ଗୋଟିଏ ପାହାଡ଼ ।

**ଗୋବର୍ଦ୍ଧନଟ୍ଟା**—ଗ୍ରା(ଗଞ୍ଜାମ) ବି.ଗୁଆଁର ଚୁଲି ।

**ଗୋବର୍ଦ୍ଧନଧର**—ପୁଂ.ବି.(ଗୋବର୍ଦ୍ଧନ+ଧୃ+କ,ଅ) ଶ୍ରୀକୃଷ୍ଣ ।

**ଗୋବର୍ଦ୍ଧନଧାରଣ**—ବି. ଗୋବର୍ଦ୍ଧନଧର, ଶ୍ରୀକୃଷ୍ଣ ।

**ଗୋବର୍ଦ୍ଧନଧାରୀ**-ପୁଂ.ବି.(ଗୋବର୍ଦ୍ଧନ+ଧୃ+କ.ଇନ) ଶ୍ରୀକୃଷ୍ଣ ।

**ଗୋବଶା**—ସ୍ତ୍ରୀ. ବି. ବନ୍ଧ୍ୟାଗାଈ,ବାଞ୍ଝୀଗାଈ ।

**ଗୋବସନ୍ତ**—ବି, ଗୋରୁମାନଙ୍କଠାରେ ହେବା ବସନ୍ତ ରୋଗ ।

**ଗୋବାଏ**—ଗ୍ରା.ବିଂ, (ଲ.ଅର୍ଥ)ଅତି ଅଳ୍ପ ପରିମିତ ଭୂମି ।

**ଗୋବାଘ, ଗୋବାଘା**—ଗ୍ରା. ବି.ହିଂସ୍ର ଜନ୍ତୁ,ଗୋଘାତକବ୍ୟାଘ୍ର, ବୃକ, ତରକ୍ଷୁ ।

**ଗୋବାଟ**—କ୍ଲୀ. ବି. (ଗୋ+ବାଟ) ଗୋଶାଳା, ଗୋଷ୍ଠ, ଗୋରୁରହିବା ଅଟେଇ ।

ଗୋବାଳ—ପୁଂ. ବି. (ଗୋ+ବାଳ) ଷତତ୍ପୁ; ଗୋରୁର କେଶ, ଗୋରୁଲୋମ ।

ଗୋବାଳ—ଗ୍ରା. ବି. (ଗୋପାଳଶବ୍ଦଜ) ଗୋସ୍ୱାଳ, ଗୋପାଳ, ଗଉଡ଼ ।

ଗୋବାସ—ପୁଂ. ବି. (ଷତତ୍ପୁ) ଗୋରୁମାନଙ୍କର ବାସସ୍ଥାନ,ଗୁହାଳ, ଗୋଷ୍ଠ, ଗୋରୁ ରହିବା ଅଟେଇ ।

ଗୋବାସନ—ପୁଂ. ବି.(ଗୋ+ବସ୍+ଣିଚ୍+ଅନ ) ବ୍ରାହ୍ମଣବିଶେଷ, ଗୋପାଳକ ମୁନିବିଶେଷ, (ବିଂ) ଗୋରୁଚମଡ଼ାରେ ତୁଆଣି ହୋଇଥିବା ।

ଗୋବି—ମଧ୍ୟଏସିଆସ୍ଥ ବୃଷ୍ଟିହୀନ ଗୋଟିଏ ବିସ୍ତୃତ ମରୁଭୂମି ।

ଗୋବିକର୍ତ୍ତ—ପୁଂ. ବି. (ଗୋ+ବି+କୃତ୍+ଅ)ଗୋଘାତକ,କର୍ଷକ,ହାଳିକ, ହଳିଆ ।

ଗୋବିକର୍ତ୍ତା—ପୁଂ. ବିଂ. (ଗୋ+ବି+କୃତ୍+ତୃ) ଗୋଘାତକ ।

ଗୋବିଟ୍—କ୍ଲୀ. ବି. (ଷତତ୍ପୁ) ଗୋବର, ଗୋମୟ । [ମେଧ ଯଜ୍ଞ ।

ଗୋବିତତ—ପୁଂ.ବି. ଗୋଭୂମିସ୍ପୃଷ୍ଟ ଅଶ୍ୱ-

ଗୋବିଦାଂପତି—ପୁଂ.ବି. ପରମେଶ୍ୱର ।

ଗୋବିନତ—ପୁଂ.ବି. ଅଶ୍ୱମେଧଯଜ୍ଞ ।

ଗୋବିନ୍ଦ—ପୁଂ. ବି. ଗୋ+ବିଦ୍+କ.ଅ) ବିଷ୍ଣୁ, ଗୋପାଳ, ଗୋପେନ୍ଦ୍ର, ଶ୍ରୀକୃଷ୍ଣ, ଗବାଧ୍ୟକ୍ଷ,ବୃହସ୍ପତି, ପରଂବ୍ରହ୍ମ, (ବିଂ) ଗୋପାଳକ,(ଗ୍ରା. ବି) ଅଚ୍ୟୁତାନନ୍ଦଙ୍କ ଶିଷ୍ୟ ଦ୍ୱାଦଶ ଗୋପାଳଙ୍କ ମଧ୍ୟରୁ ଜଣେ ।

ଗୋବିନ୍ଦଦ୍ୱାଦଶୀ—ସ୍ତ୍ରୀ. ବି. ପୁଷ୍ୟାନକ୍ଷତ୍ର ଯୁକ୍ତ ଫାଲ୍‌ଗୁନ ଶୁକ୍ଳ ଦ୍ୱାଦଶୀ ।

ଗୋବିନ୍ଦଦ୍ୱାଦଶୀଯୋଗ—ଗ୍ରା.ବି.ଗୋବିନ୍ଦ ଦ୍ୱାଦଶୀଦିନ ତୀର୍ଥଜଳରେ ସ୍ନାନ କରିବା ଯୋଗ ।

ଗୋବିନ୍ଦଭଞ୍ଜ—ଗ୍ରା.ବି.ଷୋଡ଼ଶ ଶତାବ୍ଦୀର ଶେଷଭାଗର ଜନୈକ ଓଡ଼ିଆ କବି ।

ଗୋବିନ୍ଦ ରଥ—ଗ୍ରା. ବି. ବିଂଶଶତାବ୍ଦୀର ଉତ୍କଳର ଜଣେ ପ୍ରସିଦ୍ଧ ଲେଖକ ।

ଗୋବିନ୍ଦୁ-ବିଂ.(ଗୋ+ବିନ୍ଦୁ)ଗୋଲାଭକ, ଯେ ଗୌ ଲାଭ କରେ ।

ଗୋବିଷ—ସ୍ତ୍ରୀ.ବି. ଗୋବିଷ୍ଠା, ଗୋବର, ଖତ ।

ଗୋବିଷାଣ—କ୍ଲୀ.ବି. (ଷତତ୍ପୁ)ଗୋରୁର ଶୃଙ୍ଗ, ଗୋରୁର ଶିଙ୍ଗ ।

ଗୋବିଷାଣିକ—ପୁଂ.ବି. (ଗୋ+ବିଷାଣ+ଇକ) ଗୋଶୃଙ୍ଗ-ନିର୍ମିତ ବାଦ୍ୟ-ବିଶେଷ, ଶିଙ୍ଘା ।

ଗୋବିଷ୍ଠା—ସ୍ତ୍ରୀ.ବି. (ଷତତ୍ପୁ) ଗୋମୟ, ଗୋବର, ଖତ ।

ଗୋବିସର୍ଗ—ପୁଂ. ବି. (ଗୋ+ବିସର୍ଗ) ଗୋ ପରିତ୍ୟାଗ, ପ୍ରଭାତ ।

ଗୋବୀଜ—(ଆଧୁନିକ) ଗୋରୁମାନଙ୍କ ଠାରେ ହୋଇଥିବା ବସନ୍ତରୋଗ-ଜାତ ବ୍ରଣରୁ ନିଷ୍କାସିତ ହୋଇଥିବା ପୂଜ ।

ଗୋବୀଜଟିକା—ଗ୍ରା.ବି. ବସନ୍ତ ରୋଗରୁ ରକ୍ଷା ପାଇବା ଉଦ୍ଦେଶ୍ୟରେ ମନୁଷ୍ୟ ଦେହରେ କ୍ଷତ କରି ସେହି କ୍ଷତ ମଧ୍ୟରେ ଗୋବୀଜକୁ ପ୍ରବିଷ୍ଟ କରାଇବାର ପ୍ରକ୍ରିୟା-ବିଶେଷ, (ଇଂରାଜୀ) ଟୀକା ।

ଗୋବୀଥି—ସ୍ତ୍ରୀ. ବି. ନକ୍ଷତ୍ରମାନଙ୍କ ନବ ସଂଖ୍ୟକ ମାର୍ଗ ମଧ୍ୟରୁ ହସ୍ତା, ଚିତ୍ରା, ସ୍ୱାତୀ ଏହି ତିନି ନକ୍ଷତ୍ର ମଧ୍ୟଦେଇ ଗମନ କରୁଥିବା ବେଳେ ଚନ୍ଦ୍ରଙ୍କର ପଥ ।

ଗୋବୀର୍ଯ୍ୟ—କ୍ଲୀ. ବି. (ଷତତ୍ପୁ) ଗୋରୁର ବୀର୍ଯ୍ୟ, ଗୋଦୁଗ୍ଧ ବିକ୍ରୟଲବ୍ଧ ଧନ ।

ଗୋବୃନ୍ଦ—କ୍ଲୀ.ବି.(ଗୋ+ବୃନ୍ଦ)(ଷତତ୍ପୁ) ଗୋ-ସମୂହ, ଗୋରୁପଲ୍ଲ ।

ଗୋବୃନ୍ଦାରକ—ପୁଂ.ବି. ଶ୍ରେଷ୍ଠ ଗୋ, ଉତ୍ତମ ଗୋରୁ, ଗୋରୁଶ୍ରେଷ୍ଠ ।

ଗୋବୃଷ—ପୁଂ.ବି. (ଗୋ+ବୃଷ୍+ଅ) ଶ୍ରେଷ୍ଠ ବୃଷଭ । [ଅଣ୍ଡକୋଷ ।

ଗୋବୃଷଣ—କ୍ଲୀ. ବି. (ଷତତ୍ପୁ) ବୃଷଭର

ଗୋବୃଷଭ—ପୁଂ. ବି. ଶ୍ରେଷ୍ଠ ବୃଷ, ଭଲ ଷଣ୍ଢ, ଉତ୍ତମ ବୃଷଭ ।

ଗୋବେଷ୍ଟ—କ୍ଲୀ. ବି. ସୀସକ, ସୀସା ।

ଗୋବୈଦ୍ୟ—ପୁଂ. ବି. (କ.ଧା) ମୂର୍ଖ ବୈଦ୍ୟ, (ଚଳିତ) ଗୋଚିକିତ୍ସକ ।
ଗୋବ୍ୟଚ୍ଛ—ବିଂ. ଗୋରୁ ନିକଟରେ ଗମନଶୀଳ । (ଋଷିବିଶେଷ ।
ଗୋବ୍ୟାଧୀ—ପୁଂ. ବି. ଗୋଘ୍ନପ୍ରବର୍ତ୍ତିକ
ଗୋବ୍ରଜ—ପୁଂ. ବି. (ଗୋ+ବ୍ରଜ) ଗୋସମୂହ, ଗୋଷ୍ଠ, ଗୋଚର,ସ୍କନ୍ଦଙ୍କ ଅନୁଚରବିଶେଷ, ଦାନବବିଶେଷ ।
ଗୋବ୍ରତ—କ୍ଳୀ.ବି. ଗୋହତ୍ୟା-ପାତକର ପ୍ରାୟଶ୍ଚିତ୍ତ ନିମନ୍ତେ ଅନୁଷ୍ଠେୟ ବ୍ରତ-ବିଶେଷ, (ପୁଂ. ବିଂ.)ଖାଦ୍ୟ ବିଷୟରେ ସଂଯମୀ, (ସ୍ତ୍ରୀ) ଗୋବ୍ରତା ।
ଗୋବ୍ରତୀ—ପୁଂ. ବିଂ. (ଗୋବ୍ରତ+ଇନ୍) ଯେ ଗୋବ୍ରତାଚରଣ କରେ, ଖାଦ୍ୟ ବିଷୟରେ ସଂଯମୀ, (ସ୍ତ୍ରୀ) ଗୋବ୍ରତିନୀ ।
ଗୋବ୍ରା—ଗ୍ରା. ବି. ଯଶୋର ଜିଲ୍ଲାର ସୁନ୍ଦରବନ ବିଭାଗାନ୍ତର୍ଗତ ଗୋଟିଏ ପ୍ରସିଦ୍ଧ ଗ୍ରାମ ।
ଗୋବ୍ରାହ୍ମଣ—ବି.(ଦ୍ୱନ୍ଦ୍ୱ)ଗୋରୁ ଓ ବ୍ରାହ୍ମଣ ଏହି ଦୁଇ ଜୀବ ହିନ୍ଦୁଶାସ୍ତ୍ର ଅନୁସାରେ ଅବଧ୍ୟ ଓ ପୂଜ୍ୟ ।
ଗୋଶ—ଯା. ବିଂ. ପର୍ଦ୍ଦାନସିନ୍, ଲୁକ୍କାୟିତ, ଗୃହମଧ୍ୟେ ଅବସ୍ଥିତ, ଯେଉଁ ସ୍ତ୍ରୀଲୋକ ସର୍ବଦା ଗୃହମଧ୍ୟରେ ଥାଏ କେବେହେଲେ ପଦାକୁ ବାହାରେ ନାହିଁ ।
ଗୋଶକୃତ୍—କ୍ଳୀ. ବି. (ଗୋଃ+ଶକୃତ୍) (ଚଳିତ) ଗୋମୟ, ଗୋବର, ଖତ ।
ଗୋଶଙ୍ଗା—ଗ୍ରା.ବି. ଅକର୍ମଣ୍ୟ,ଅଳସୁଆ ।
ଗୋଶଫ—ପୁଂ.କ୍ଳୀ.ବି. ଗୋରୁର ଖୁରା ।
ଗୋଶର୍ପ—ପୁଂ.ବି.ବୃହତ୍‌ସର୍ପ,ଅଜଗର ।
ଗୋଶଲ୍—ଯା.ବି. ସ୍ନାନ ।
ଗୋଶଲ୍‌କରିବା—ଯା. ଗ୍ରା. କ୍ରି. ସ୍ନାନ କରିବା, ଗାଧୋଇବା ।
ଗୋଶଲ୍‌ଖାନା—ଯା. ବି. ସ୍ନାନଗୃହ, ଗାଧୁଆଘର, ଗୁପ୍ତ ମନ୍ତ୍ରଣା ଘର, ଗୁପ୍ତ-ମନ୍ତ୍ରଣା ଗୃହ ।
ଗୋଶାଳ—ପୁଂ. ବି. (ଗୋ+ଶାଳ) ଚଳିତ; ଗୁହାଳଘର ।
ଗୋଶାଳା—ସ୍ତ୍ରୀ. ବି. (ଚଳିତ) ଭାରତର ସ୍ଥାନେସ୍ଥାନେ ଦାନଶୀଳ ଲୋକମାନଙ୍କ-ଦ୍ୱାରା ପ୍ରତିଷ୍ଠିତ ଅକର୍ମଣ୍ୟ ଗୋରୁମାନ-ଙ୍କର ଆଶ୍ରୟସ୍ଥାନ,ଗୋରୁଘର,ଗୁହାଳ ।
ଗୋଶୀର—କୌଶାମ୍ବୀ ନଗରର ଉପନଗର ।
ଗୋଶୀର୍ଷ—ପୁଂ. ବି. ଗୋଟିଏ ପର୍ବତ, ମେଘର ଅପରନାମ ବୃଷଭ, ଚନ୍ଦନ-ବିଶେଷ, ହରିଚନ୍ଦନ,ଅସ୍ତ୍ରବିଶେଷ,(କ୍ଳୀ. ଚଳିତ) ଗୋମୁଣ୍ଡ ।
ଗୋଶୀର୍ଷକ—ପୁଂ. ବି. ଗଇଶ ଗଛ, ଦ୍ରୋଣପୁଷ୍ପୀବୃକ୍ଷ, ଚନ୍ଦନବିଶେଷ ।
ଗୋଶୃଙ୍ଗ—ପୁଂ.ବି.(ବି.ଗ୍ରା)ଋଷିବିଶେଷ, ପର୍ବତବିଶେଷ,ବବୁଲବୃକ୍ଷ, ହିନ୍ଦୁମାନ-ଙ୍କର ଗୋଟିଏ ଶୃଙ୍ଗର ବାଦ୍ୟଯନ୍ତ୍ର, ଶିଙ୍ଗା, (ଚଳିତ) ଗୋରୁଶିଙ୍ଘ ।
ଗୋଶ୍ରୁତ—ପୁଂ. ବି. ବୈୟାଘ୍ରପଦ୍ୟ ଗୋତ୍ରୋତ୍ପନ୍ନ ଜଣେ ଋଷି ।
ଗୋଶ୍ୱ—ପୁଂ.ବି. (ଗୋ+ଅଶ୍ୱ) ଦ୍ୱନ୍ଦ୍ୱ; ଗୋରୁ ଓ ଅଶ୍ୱ, ଗାଈ ଓ ଘୋଡ଼ା ।
ଗୋଷ—ପୁଂ. ବିଂ. ଗୋଦାତା, ଯେ ଗୋଦାନ କରେ ।
ଗୋଷଖି—ପୁଂ. ବି, (ବି.ଗ୍ରା) ଗୋରୁ ଯାହାର ସହାୟ ।
ଗୋଷଡ୍ଗବ—କ୍ଳୀ.ବି. (ଗୋ+ଷଟ୍+ଗୋ) ଗୋଷଟ୍‌କ,ଛଅଗୋଟି ଗୋରୁ, ତିନିହଳ ଗୋରୁ ।
ଗୋଷଣି—ବିଂ. (ଗୋ+ସନ୍+ଇନ୍) ଗୋଦାତା, ଯେ ଗାଈଦାନ କରେ ।
ଗୋଷକ୍ତ—ପୁଂ.ବି. ଅଧ୍ୟାୟ ବା ଅନୁବାକ-ବିଶେଷ ।
ଗୋଷଦ୍—ବିଂ. (ଗୋ+ସଦ୍+କ୍ୱିପ୍) କଥା କହୁ କହୁ ଯାହାର ବାକ୍ୟ ସ୍ଖଳିତ ହୁଏ ।
ଗୋଷଦ—ବିଂ (ଗୋ+ସଦ୍+ଅ) ସ୍ଖଳିତବାକ୍ୟ, ଜଡ଼ିତବାକ୍ ।
ଗୋଷନ୍—ବିଂ. ଗୋଦାତା, ଯେ ଗୋ ଦାନ କରେ ।
ଗୋଷା—ବିଂ. (ଗୋ+ଷନ୍+ବିଟ୍) ଗୋଦାତା, ଯେ ଗୋରୁଦାନ କରେ ।
ଗୋଷାତ—ସ୍ତ୍ରୀ. ବି. (ଗୋ+ସତ) ଗୋଲାଭ,ଗୋଦାନ, (ବିଂ)ଲବ୍ଧପଶୁକ, ଯେ ପଶୁଲାଭ କରିଅଛି ।
ଗୋଷାଣି—ସ୍ତ୍ରୀ. ବି. (ଗୋ+ସନ୍+ଣି+ଅ+ଇ) ପକ୍ଷୀବିଶେଷ ।
ଗୋଷଚର—ବି.(ଗୋଷ୍ଠ+ଚର୍+ଅ) ଗୋରୁମଧ୍ୟରେ ବିଚରଣ ।
ଗୋଷ୍ଠଯୁଧ୍—ପୁଂ.ବିଂ.(ଗୋଷ୍ଠ+ଯୁଧ୍+କ୍ୱିପ୍)ଯେ ଗୋରୁନିମିତ୍ତ ଯୁଦ୍ଧ କରେ ।
ଗୋଷୂକ୍ତୀ—ପୁଂ.ବି. ଜଣେ ଋଷି ।
ଗୋଷେଧ—ସ୍ତ୍ରୀ. ବି. ଦୁର୍ଲକ୍ଷଣା ସ୍ତ୍ରୀ ।
ଗୋଷ୍ଠନଦୀ—ଆନ୍ଧ୍ରରାଜ୍ୟର ଗୋଦାବରୀ ଜିଲ୍ଲାନ୍ତର୍ଗତ ନଦୀବିଶେଷ ।
ଗୋଷ୍ଟୋମ—ପୁଂ. ବି. ଏକାହସାଧ୍ୟ ଯାଗବିଶେଷ, ଉକ୍ତଅନୁଷ୍ଠିତ କେତେ-ଗୁଡ଼ିଏ ମନ୍ତ୍ର ।
ଗୋଷ୍ଠ—(ଧାତୁ) ଏକତ୍ରହେବା, ଗଦା-କରିବା, ସମାବେଶ କରିବା ।
ଗୋଷ୍ଠ—କ୍ଳୀ.ବି. (ଗୋ+ସ୍ଥା+ଅଧି.ଅ) ଗୋଠ, ପଶୁଚାରଣଭୂମି, ଗୋରୁପଲ୍ଲ, ଯେଉଁଠାରେ ଗୋରୁମାନେ ରହନ୍ତି, ଗୋଟିଏ ଅଙ୍କବିଶିଷ୍ଟ ନାଟକ, (ମିଂ,ଅ) ଶ୍ରାଦ୍ଧବିଶେଷ, ଶୁଦ୍ଧି ଶ୍ରାଦ୍ଧ, ପରାମର୍ଶ, ସଙ୍ଘ, ଦଳ, ମଣ୍ଡଳୀ, (କ, ଅ) ଗୋପାଳମାନଙ୍କର ମିଳନସ୍ଥଳ, ମିଳନ ସ୍ଥାନ, ସଭା, (ଭା,ଅ) ବହୁଲୋକଙ୍କର କଥୋପକଥନ, ସଙ୍ଗ, ସମ୍ପର୍କୀୟ ବ୍ୟକ୍ତି, ମିଳନ ।
ଗୋଷ୍ଠଚନ୍ଦ୍ର—ଗ୍ରା. ବି. ପ୍ରାଚୀନ ଉତ୍କଳୀୟ କବିମାନଙ୍କଦ୍ୱାରା ପ୍ରଦତ୍ତ ଶ୍ରୀକୃଷ୍ଣଙ୍କ ନାମ ।
ଗୋଷ୍ଠଜ—ବିଂ. (ଗୋଷ୍ଠ+ଜନ୍+ଅ) ଯାହା ଗୋଷ୍ଠରେ ଜନ୍ମେ, (ବି) ଜଣେ ବ୍ରାହ୍ମଣର ନାମ ।
ଗୋଷ୍ଠପଣ୍ଡୁ,ଗୋଷ୍ଠପଣ୍ଡିତ—ପୁଂ.ବିଂ.ଗପଣ୍ଡ, ଯେ ମୂର୍ଖ ବାଉଣ୍ଡି କରେ ।

ଗୋଷ୍ପତି – ପୁଂ. ବି. (ଗୋଷ୍ଠ + ପତି) ୬ତତ୍, ଗୋଷ୍ଠର ଅଧ୍ୟକ୍ଷ ।

ଗୋଷ୍ଠଲୀଳା – ସ୍ତ୍ରୀ.ବି. (୬ତତ୍) ଶ୍ରୀକୃଷ୍ଣଙ୍କର ଗୋଚାରଣାଦିକାର୍ଯ୍ୟ, ଗୋଷ୍ଠଗୃହର କ୍ଷେତ୍ରେ ଶ୍ରୀକୃଷ୍ଣକୃତ ଲୀଳାବିଶେଷ ।

ଗୋଷ୍ଠଶାଳା – ସ୍ତ୍ରୀ.ବି. ସଭାଗୃହ ।

ଗୋଷ୍ଠଶ୍ୱ – ପୁଂ.ବିଂ.(ଗୋଷ୍ଠ + ଶ୍ୱ + ଅ) ଗୋଠରେ ଥିବା କୁକ୍କୁର,ପରହିଂସକ ।

ଗୋଷ୍ଠଶ୍ୱା – ପୁଂ.ବିଂ. (ଗୋଷ୍ଠ + ଶ୍ୱା + ଅ) ଗୋଠକୁକୁର, ଯେ ଘରେ ବସି ପରର ହିଂସା କରେ, ପରହିଂସକ ।

ଗୋଷ୍ଠାଗାର – କ୍ଲୀ.ବି.(ଗୋଷ୍ଠ + ଆଗାର) ୬ତତ୍, ସଭାଘର, ଯେଉଁଘରେ ବହୁଲୋକ ବାସକରନ୍ତି, ଗୋଠଘର; ଗଞ୍ଜ, ପଣ୍ୟାଗାର ।

ଗୋଷ୍ଠାଧ୍ୟକ୍ଷ – ପୁଂ.ବି. (ଗୋଷ୍ଠ + ଅଧ୍ୟକ୍ଷ) ୬ତତ୍; ଗୋଷ୍ଠପତି, ସଭାପତି, ଜନନେତା, ପରିବାରର କର୍ତ୍ତା,ଗୋପାଳଙ୍କ ମଧ୍ୟରେ ପ୍ରଧାନ ବ୍ୟକ୍ତି ।

ଗୋଷ୍ଠାନ – କ୍ଲୀ. ବି. ଗୋପ୍ରଚାରସ୍ଥାନ, ଗୋଷ୍ଠ, ଗୋଠ ।

ଗୋଷ୍ଠାଷ୍ଟମୀ – ସ୍ତ୍ରୀ. ବି. କାର୍ତ୍ତିକଶୁକ୍ଳ ଅଷ୍ଟମୀ, ଗୋପାଷ୍ଟମୀ ।

ଗୋଷ୍ଠି – ସ୍ତ୍ରୀ. ବି. (ଗୋ + ସ୍ଥା + ଇ) ଗୋଷ୍ଠୀଶବ୍ଦାର୍ଥ, ପରସ୍ପର ସଂଳାପ ।

ଗୋଷ୍ଠିକ – ବିଂ.(ଗୋଷ୍ଠ + ଇକ)ଗୋଷ୍ଠୀସମ୍ବନ୍ଧୀୟ ।

ଗୋଷ୍ଠୀ – ସ୍ତ୍ରୀ.ବି. (ଗୋ + ସ୍ଥା + କ, ଅ + ଈ)ସଭା,ପରସ୍ପରାଳାପ, ବହୁଲୋକଙ୍କ ସମାଗମସ୍ଥାନ,ସଭାସ୍ଥଳ,ଦଳ, ପରିବାରବର୍ଗ, ପୋଷ୍ୟବର୍ଗ, ଜ୍ଞାତି, ନଅ ଦଶଜଣ ପୁରୁଷ ଓ ପାଞ୍ଚ ଛଅଜଣ ସ୍ତ୍ରୀଙ୍କଦ୍ୱାରା ଅଭିନେୟ ଏକ ଅଙ୍କବିଶିଷ୍ଟ ଦୃଶ୍ୟକାବ୍ୟ ଜାତି, ବଂଶ, କୁଳ ।

ଗୋଷ୍ଠୀକରିବା – କ୍ରି. କ୍ରି. ବହୁଲୋକମିଳି କୌଣସି ବିଷୟ ଆଲୋଚନାକରିବା ।

ଗୋଷ୍ଠୀପତି – ପୁଂ.ବି. (ଗୋଷ୍ଠୀ + ପତି) ପୋଷ୍ୟମାନଙ୍କର ପ୍ରତିପାଳକ, ସଭାପତି ବା ସମାଜପତି, ନେତା ।

ଗୋଷ୍ପେକ୍ଷ୍ୱେଡ଼ୀ – ପୁଂ. ବି. (ଗୋଷ୍ଠେ + କ୍ଷ୍ୱେଡ଼ + ଇନ୍) ପ୍ରଗଲ୍ଭ ।

ଗୋଷ୍ଠେଗଲ୍ଭ – ପୁଂ.ବି(ଗୋଷ୍ଠେ + ଗଲ୍ଭ + ଅ) ପ୍ରଗଲ୍ଭ ।

ଗୋଷ୍ଠେପଣ୍ଡିତ – ପୁଂ. ବିଂ. ପ୍ରଗଲ୍ଭ ।

ଗୋଷ୍ଠେପଟୁ – ପୁଂ.ବିଂ.(ଗୋଷ୍ଠେ + ପଟୁ ) ପ୍ରଗଲ୍ଭ ।

ଗୋଷ୍ଠେପ୍ରଗଲ୍ଭ – ପୁଂ.ବିଂ. (ଗୋଷ୍ଠେ + ପ୍ରଗଲ୍ଭ) ଯେ ସଭାସ୍ଥଳେ ପ୍ରଗଲ୍ଭତା ପ୍ରକାଶକରେ ।

ଗୋଷ୍ଠେଶୟ – ପୁଂ. ବି. (ଗୋଷ୍ଠେ + ଶୀ + କ, ଅ) ଯେଉଁ ଲୋକ ଗୋ-ବ୍ରତ ଅନୁଷ୍ଠାନପାଇଁ ଗୋଠରେ ଶୁଏ ।

ଗୋଷ୍ଠେଶୂର – ପୁଂ.ବିଂ.ସଭାରେ ପ୍ରଗଲ୍ଭ ।

ଗୋଷ୍ଠ୍ୟ – ବିଂ.(ଗୋଷ୍ଠ + ଯ) ଗୋଷ୍ଠୋତ୍ପନ୍ନ, ଯାହା ଗୋଠରେ ଉତ୍ପନ୍ନ ହୁଏ, (ବି) ରୁଦ୍ରବିଶେଷ ।

ଗୋଷ୍ପଦ – କ୍ଲୀ. ବି. (ଗୋଃ + ପଦ)ଗୋରୁ ଖୁରଦ୍ୱାରା ଭୂମିରେ ଖୋଳହୋଇଯାଇଥିବା କ୍ଷୁଦ୍ରଗର୍ତ୍ତ,ଗୋରୁର ଖୁରଚିହ୍ନ ପରିମିତ ସ୍ଥାନ, ଗୋରୁଖୋଜ, ଗୋଷ୍ଠ, ଅତିଅଳ୍ପ ପରିମିତ ଜଳର ଆଧାର, ପ୍ରଭାସକ୍ଷେତ୍ରସ୍ଥିତ ତୀର୍ଥବିଶେଷ, ଗୋସେବିତ ସ୍ଥାନ, ଯେଉଁଠାରେ ଗୋରୁମାନେ ସର୍ବଦା ଯାତାୟାତ କରନ୍ତି, ଯେଉଁ ଲୋକ ଗୋ-ବ୍ରତ ଗୋକର୍ତ୍ତୃକ ଆସେବିତ ।

ଗୋଷ୍ପଦୀକୃତ – ବିଂ. (ଗୋଷ୍ପଦ + ଚ୍ୱି + କୃ + ତ) ଯାହାକୁ ଗୋରୁଖୁରର ଚିହ୍ନ ତୁଲ୍ୟ କରାଯାଇଅଛି, ଯେଉଁ ଜଳାଶୟକୁ ପୋତି ଗୋରୁଖୋଜ ତୁଲ୍ୟ ସାନ କରାଯାଇଅଛି ।

ଗୋସ – ପୁଂ.ବି.(ଗୋ + ସୋ + କ.ଅ) ବୋଲ, କ୍ଷାରଜଳ,ଉଷ୍ମକାଳ, ପ୍ରଭାତ, ପ୍ରାତଃକାଳ,ଗୁଗ୍‌ଗୁଳ ।

ଗୋସଖି – ପୁଂ.ବି. ଯେ ଗୋରୁକୁ ସହାୟତା କରେ ।

ଗୋସଗୃହ – କ୍ଲୀ.ବି. ଶୟନଗୃହ ।

ଗୋସଂଖ୍ୟ – ପୁଂ.ବି.(ଗୋ + ସମ + ଖ୍ୟା + କ, ଅ) ଗୋପାଳ, ଗୋସଂଖ୍ୟାତା, ଯେ ଗୋରୁଙ୍କୁ ସୁମାରକରେ ।

ଗୋସଙ୍ଗ – ପୁଂ.ବି.ପ୍ରଭାତ,ସକାଳବେଳ ।

ଗୋସବ – ପୁଂ. ବି. ଯଜ୍ଞବିଶେଷ, ଗୋମେଧ ଯଜ୍ଞ ।

ଗୋସଦୃକ୍ଷ – ପୁଂ. ବି. ଗୋସଦୃଶ ପଶୁ, ଗବୟ,(ବିଂ) ଗୋସଦୃଶ, ଗୋତୁଲ୍ୟ ।

ଗୋସନି – ବିଂ. ( ଗୋ + ସନ୍ + ଇ ) ଗୋଦାତା, ଯେ ଗୋରୁଦାନ କରେ ।

ଗୋସଂଦାୟ – ପୁଂ. ବି. (ଗୋ + ସମ + ଦା + କ,ଅ) ଯେ ଗୋଦାନ କରେ, ଗୋଦାତା ।

ଗୋସମ୍ପ୍ରଦାୟ – ବିଂ. (ଗୋ + ସମ + ପ୍ର + ଦା + ଅ) ଗୋଦାତା, ଗୋରୁଦାନକର୍ତ୍ତା ।

ଗୋସମ୍ଭବା – ସ୍ତ୍ରୀ.ବି. ଶ୍ୱେତଦୁବ୍ଧା,(ବିଂ) ଗୋଜାତ, ଯାହା ଗୋରୁଠାରୁ ଉତ୍ପନ୍ନ ହୁଏ ।

ଗୋସର୍ପ – ପୁଂ.ସ୍ତ୍ରୀ.ବି. (ଗୋ – ସୃପ୍ + କ,ଅ) ଗୋଧିସାପ, ଗୋଧୀ ।

ଗୋସର୍ପିକା – ସ୍ତ୍ରୀ. ବି. (ଗୋ + ସୃପ୍ + କ, ଅକ + ଆ) ମାଈ ଗୋଧିସାପ, ବାରନାରୀ, ବେଶ୍ୟା ।

ଗୋସବ – ପୁଂ.ବି. (ଗୋ + ସୁ – ଅ) କ.ଧା, ଯଜ୍ଞବିଶେଷ, ଗୋମେଧଯଜ୍ଞ ।

ଗୋସବାପ – ପ୍ରା. ( ବାଲେ ) ପୁଂ. ବି. ଗୋସେଇଁବାପ, ପିତାମହ ।

ଗୋସମା – ପ୍ରା. ( ବାଲେ ) ସ୍ତ୍ରୀ. ବି. ଗୋସେଇଁମାଆ, ପିତାମହୀ ।

ଗୋସଶଣ – ପୁଂ. ବି. (ଗୋସ + ଶଣ) ବୋଳ ।

ଗୋସହସ୍ର – କ୍ଲୀ.ବି.ତୁଳାପ୍ରଭୃତି ଷୋହଳଟି ମହାଦାନର ଅନ୍ତର୍ଗତ ଗୋଟିଏ ମହାଦାନ,ସୋମବାରଯୁକ୍ତ ଅମାବାସ୍ୟା ।

ଗୋସା – ଯା. ବି. ରାଗ. କ୍ରୋଧ, କଣ୍ଠରୋଧ, ଦୁର୍ଭିକ୍ଷା,ଶୋକ, (ବିଂ) କ୍ରୁଦ୍ଧ ।

ଗୋସାଇଁ – ଗ୍ରା.ବି. ( ଗୋସ୍ୱାମୀ ଶବ୍ଦର ଅପଭ୍ରଂଶ) ଯେ ଇନ୍ଦ୍ରିୟ ଜୟ କର

ଅଛୁ ତାହାକୁ ଗୋସାଇଁ କହନ୍ତି, ପ୍ରଭୁ, ସ୍ୱାମୀ, ପଶୁର ବା ଦ୍ରବ୍ୟର ମାଲିକ, ବ୍ରାହ୍ମଣ,ବୈରାଗୀ, ସନ୍ନ୍ୟାସୀ ସମ୍ପ୍ରଦାୟ-ବିଶେଷ, ଈଶ୍ୱର, ଦଶନାମୀ ସନ୍ନ୍ୟାସୀ, ଚୈତନ୍ୟଦେବଙ୍କ ଶିଷ୍ୟ ଓ ବଂଶଧରଙ୍କ ଉପାଧି,ଦେବତା,ବ୍ରାହ୍ମଣ ଓ ଗୁରୁଆଦିଙ୍କ-ପରେମାନ୍ୟାର୍ଥପ୍ରଯୁକ୍ତଉପାଧି,(ଗ୍ରା. ଅବ୍ୟ) ସମ୍ବୋଧନ, ମହାଶୟ ।

ଗୋସାଇଁଆ – ଗ୍ରା.ବି. (ସଂ-ସ୍ୱାମୀ) ପ୍ରଭୁ, ମାଲିକ, ପତି, ରକ୍ଷକ ।

ଗୋସାଇଁଖିଆ – ଗ୍ରା. ପୁଂ. ବିଂ. (ଗାଳି) ଯେ ଆପଣା ସ୍ୱାମୀର ବିନାଶର କାରଣ ହୁଏ (ସ୍ତ୍ରୀ) ଗୋସାଇଁଖାଇ ।

ଗୋସାଇଁବାପା – ଗ୍ରା. ବି. ପିତାମହ ।

ଗୋସାଇଁ ମହାପ୍ରଭୁ – ଗ୍ରା. ବି. ଅବ୍ୟ, (ସମ୍ବୋଧନ – ଗୋସାଇଁ (ଦେଖ) ।

ଗୋସାଇଁମାଆ – ସ୍ତ୍ରୀ.ଗ୍ରା.ବି. ପିତାମହୀ ।

ଗୋସାଇଁଶ୍ୱଶୁର –.ଗ୍ରା. ବି. ପୁ. ଶ୍ୱଶୁରଙ୍କ ପିତା ଓ ପିତାମହ,(ସ୍ତ୍ରୀ)ଗୋସାଇଁଶାଶୁ ।

ଗୋସାଉଳ – ଗ୍ରା.ସ୍ତ୍ରୀ.ବି. ଲତାବିଶେଷ ।

ଗୋସାଣିଆଁ – ଗ୍ରା. ପୁଂ. ବିଂ. ପିଶାଚୀ-ଗ୍ରସ୍ତ, (ସ୍ତ୍ରୀଲୋକମାନଙ୍କ ଗାଳି) ।

ଗୋସାଣୀ – ଗ୍ରା. ସ୍ତ୍ରୀ. ବି. ମାତା ଓ ଗୋସାଇଁମାଆ, ପିଶାଚୀ, ଡାହାଣୀ, କୁଷ୍ମାଣ୍ଡଦେବୀବିଶେଷ, ଯୋଗିନୀ, ଦୁର୍ଗାଙ୍କ ପାର୍ଶ୍ୱଚାରିଣୀ ଦେବୀ ।

ଗୋସାଣୀଯାତ – ଗ୍ରା. (ପୁରୀ)ବି.ଆଶ୍ୱିନ ଶୁକ୍ଳଅଷ୍ଟମୀଠାରୁ ଦଶମୀପର୍ଯ୍ୟନ୍ତ ମାଟିରେ ଗୋସାଣୀମୂର୍ତ୍ତି ତିଆରି କରାଯାଇ ପୂଜା ଇତ୍ୟାଦି କରିସାରି ଏକାଦଶୀଦିନ ଯେଉଁ ଶୋଭାଯାତ୍ରା ଓ ଉତ୍ସବ କରାଯାଏ ।

ଗୋସାଦ – ପୁଂ. ବିଂ (ଗୋ+ସଦ୍+ଣିଚ୍+ଅ) ଗୋଚାଳକ, ଯେ ଗୋରୁ-ଚଳାଏ ।

ଗୋସାଦୀ – ପୁଂ ବିଂ. (ଗୋ+ସଦ+ଣିଚ୍+ଇନ୍ )ଗୋସାରଥି,ଗୋଚାଳକ, ଗୋରୁଚାଳକ ।

ଗୋସାପ – ପୁଂ. ସ୍ତ୍ରୀ. ବି. ସରୀସୃପ ଜାତିବିଶେଷ, ଗୋଧିସାପ ।

ଗୋସାମଣୀ – ଗ୍ରା.ସ୍ତ୍ରୀ.ବି.ଗୋସାମନ୍ତାଣୀର ଅପଭ୍ରଂଶ ସ୍ତ୍ରୀ, ସ୍ୱାମିନୀ, ପ୍ରଭୁ ।

ଗୋସାରଥି – ପୁଂ.ବିଂ.(ଗୋ+ସାରଥି) ଗୋ-ଚାଳକ, ଯେ ଗୋରୁ ଚଳାଏ ।

ଗୋସିଁଆ – ଗ୍ରା.ବି. (ସଂ-ଗୃହସ୍ୱାମୀ) ଗୃହସ୍ୱାମୀ, ଭୃତ୍ୟର ମାଲିକ, ପଶୁ ବା ଦ୍ରବ୍ୟର ମାଲିକ, ସ୍ୱାମୀ, ଭର୍ତ୍ତା,ମାଲିକ, ରକ୍ଷକ, (ଗ୍ରା.ବିଂ) ଯାହାର ରକ୍ଷକ ଅଛି, ଯେଉଁ ସ୍ତ୍ରୀର ପତି ଜୀବିତ ଅଛି, ଅହିଅ ।

ଗୋସୁଆରୀ – ଯା. ବି. ବନ୍ଦୋବସ୍ତରେ ଭୂମିସମ୍ବନ୍ଧୀୟ ସଂକ୍ଷିପ୍ତ ବିବରଣ ଥିବା କାଗଜ,ଯେଉଁ ବନ୍ଦୋବସ୍ତ କାଗଜରେ ଭୂମିର ପରିମାଣ ଆଦି ବର୍ଣ୍ଣିତ ହୋଇ ଲେଖାଥାଏ ।

ଗୋସୂଚିକା – ସ୍ତ୍ରୀ. ବି. (ଗୋ+ସୂଚ+କ.ଆ) ଗୋବନ୍ଧନରଜ୍ଜୁ, ପଘା, ଛଟି, ଦାଉଣୀ ।

ଗୋସେବା—ସ୍ତ୍ରୀ. ବି. (ଗୋ+ସେବା) (ଚଳିତ) ଗୋପରିଚର୍ଯ୍ୟା ।

ଗୋସ୍ତ—ଯା. ବି. ମାଂସ ।

ଗୋସ୍ତନ—ପୁଂ.ବି. (ଚଳିତ)ଚତୁର୍ସ୍ତ୍ରିକ-ହାର, ଗୋରୁର ଥନ, ଗୋରୁର ସ୍ତନ, ଫୁଲକଢ଼ର ପୁଞ୍ଜ, (ବି.ସ୍ତ୍ରୀ) ଚାରିସରିଆ ହାର ।

ଗୋସ୍ତନା—ସ୍ତ୍ରୀ.ବି. (ଗୋ+ସ୍ତନ+ଆ) (ବି.ସ୍ତ୍ରୀ) ଅଙ୍ଗୁର, ଦ୍ରାକ୍ଷା ।

ଗୋସ୍ତନୀ—ସ୍ତ୍ରୀ. ବି. (ଗୋ+ସ୍ତନ+ଈ) (ବି.ସ୍ତ୍ରୀ) ଦ୍ରାକ୍ଷା, କସମିସ୍, ଅଙ୍ଗୁର, କପିଳଦ୍ରାକ୍ଷା, କାର୍ତ୍ତିକେୟଙ୍କର ମାତୃ-ଗଣାନ୍ତର୍ଗତ ଗୋଟିଏ ମାତୃକା ।

ଗୋସ୍ତାକ – ଯା.ବି.ଔଦ୍ଧତ୍ୟ,ପ୍ରଗଲ୍‌ଭତା, ଧୃଷ୍ଟତା, ଅଶିଷ୍ଟତା, ଅଭଦ୍ରତା ।

ଗୋଷ୍ଟୋମ – ପୁଂ. ବି. ଅଗ୍ନିଷ୍ଟୋମ-ଯାଗର ଅଙ୍ଗ,ଏକାହସାଧ୍ୟ ଯଜ୍ଞବିଶେଷ ।

ଗୋସ୍ଥାନ – କ୍ଳୀ. ବି. ଗୋରୁର ସ୍ଥାନ, ଗୋଷ୍ଠ, ଗୋଠ ।

ଗୋସ୍ଥାନକ – କ୍ଳୀ. ବି. (ଗୋସ୍ଥାନ+କ) ଗୋଷ୍ଠ, ଗୋଠ ।

ଗୋସ୍ଥାନ୍ନ – ବଣାଖାପଉନ ଜିଲ୍ଲାର ଗଜପତି ନଗରଠାରୁ ଦୁର୍ଗତ ଗୋଟିଏ ନଦୀ ।

ଗୋସ୍ୱଲ୍ଲ—ପୁଂ. ବି. ଶାକଲ୍ୟଙ୍କର ଜଣେ ଶିଷ୍ୟ ।

ଗୋସ୍ୱାମୀ – ପୁଂ.ବିଂ. (ଗୋ+ସ୍ୱାମୀ) (ଚଳିତ)ଗୋରୁମାନଙ୍କ ଅଧିପତି,ରାଜା, ଇନ୍ଦ୍ର, ବୃହସ୍ପତି, ବରୁଣ, ଭଗବାନ୍, ଧର୍ମୋପଦେଷ୍ଟା, ସଂସାରତ୍ୟାଗୀ ବ୍ୟକ୍ତି, (ଗ୍ରା.ବି)ନବଦ୍ୱୀପର ଅଦ୍ୱୈତ ଓ ନିତ୍ୟା-ନନ୍ଦଙ୍କବଂଶୀୟ ବ୍ରାହ୍ମଣଙ୍କ ବଂଶୋପାଧି ।

ଗୋସ୍ୱାମୀସ୍ଥାନ – କ୍ଳୀ. ବିଂ ହିମାଳୟର ଗୋଟିଏ ଶୃଙ୍ଗ ।

ଗୋହ – ପୁଂ. ବି. (ଗୁହ+ଅ) ଗୃହ ।

ଗୋହଡ଼ା – ଗ୍ରା.(ସମ୍ବ)ବିଂ.ବହୁ,ଅନେକ, ଗୋଠେ, ପଲ୍ଲେ । [ ଗାଈ ।

ଗୋହଡ଼ି – ଗ୍ରା. (କଟକ) ବି. ଗୋରୁ,

ଗୋହତ୍ୟା – ସ୍ତ୍ରୀ. ବି. (ଚଳିତ) (ଗୋ+ହନ୍+କ୍ୟପ୍) ଗୋବଧ ।

ଗୋହଦ – ଗ୍ରା.ବି.ମଧ୍ୟଭାରତର ଗୋୟାଲିୟର ରାଜ୍ୟାନ୍ତର୍ଗତ ଗୋଟିଏ ନଗର ।

ଗୋହନ – କ୍ଳୀ. ବି. (ଗୁହ+ଣ, ଅନ) ଗୋପନକରିବା ।

ଗୋହନ୍ତ – କ୍ଳୀ. ବି. (ଗୋ+ହନ୍+ତ) ଗୋମୟ, ଗୋବର ।

ଗୋହମୁଖ – ପୁଂ. ବି. ଭାରତବର୍ଷସ୍ଥ ଗୋଟିଏ ପର୍ବତ ।

ଗୋହର – ପୁଂ.ବି.ଗୋହରଣ, ଗୋରୁ-ଚୋର । ( ଗଛ ।

ଗୋହରୀତକୀ—ସ୍ତ୍ରୀ.ବି. କଳ୍ପବୃକ୍ଷ,ବେଲ-

ଗୋହଲ – ଗ୍ରା.(ସିଂହ)ବି. ବଙ୍ଗର ସଦ୍-ଗୋପଙ୍କ ପରିସିଂହଭୂମବାସୀ ଓଡ଼ିଆଶୂଦ୍ର ।

ଗୋହଲା – ସ୍ତ୍ରୀ. ବି. ଗୋଧାପଦୀ, ହଂସପାଦୀଲତା ।

ଗୋହଲ୍ଲି – କ୍ଳୀ.ବି. ଗୋମୟ, ଗୋବର ।

ଗୋହା – ପୁଂ. ବିଂ. (ଗୋ+ହନ୍+କ କ୍ୱପ୍) ଗୋଘାତକ, (ବି) ଇନ୍ଦ୍ର ।

ଗୋହାରି – ଗ୍ରା. ବି., ଫେରାଦ,ସାକ୍ଷାତ, ନିବେଦନ, ଗୁହାରି ।

ଗୋହାଳ—ଗ୍ରା. ବ. (ଗୋଶାଳାଶବ୍ଦଜ) ଗୋଗୃହ, ଗୋଶାଳା ।

ଗୋହାଳିକା—ସ୍ତ୍ରୀ. ବ' ଲତାବିଶେଷ, ହଂସପାଦୀଲତା ।

ଗୋହିଂସା—ସ୍ତ୍ରୀ. ବ. ଗୋହତ୍ୟା ।

ଗୋହିତ—ପୁଂ. ବ. ବେଲ, ବିଷ୍ଣୁ, ଘୋଷା ଲତା,(ବିଂ) ଗୋହିତକାରକ ।

ଗୋହିର—କ୍ଲୀ. ବ. ( ଗୁହା + ଇର ) ପାଦମୂଳ, ଗୋଇଠି ।

ଗୋହୁରି—ଗ୍ରା. ବ. ଦୁଇପାଖେ ବାଡ଼ଥିବା ସଙ୍କୀର୍ଣ୍ଣ ପଥ, ଜଳନାଳ ।

ଗୋହୁରିଦାଣ୍ଡ—ଗ୍ରା.ବ.ଗୋହୁରି(ଦେଖ) ।

ଗୋହ୍ୟ—ବିଂ. (ଗୁହ୍ + ର୍ମ,ଯ) ଗୁହ୍ୟ, ଅପ୍ରକାଶ୍ୟ, ସଂବରଣୀୟ, ଗୁପ୍ତ ।

ଗୌକକ୍ଷ୍ୟ—ପୁଂ. ସ୍ତ୍ରୀ. ଗୋକକ୍ଷନାମକ ଗୋତ୍ରାପତ୍ୟ । [ଅପତ୍ୟ ।

ଗୌକକ୍ଷ୍ୟାୟଣି—ପୁଂ. ସ୍ତ୍ରୀ. ଗୋକକ୍ଷଙ୍କ

ଗୌଗ୍ଗୁଲବ—ବିଂ. ( ଗୁଗ୍ଗୁଲୁ + ଅ ) ଗୁଗ୍ଗୁଲୁରୁ ଉତ୍ପନ୍ନ ।

ଗୌଙ୍ଗବ—କ୍ଲୀ. ବ. ସାମଭେଦ ।

ଗୌଚରିକ—ବିଂ. ( ଗୋଚର + ଇକ ) ଗୋଚରଜାତ, ଯାହା ଗୋଚରରେ ଉତ୍ପନ୍ନ ହୋଇଅଛି । [ମୈନାକ ।

ଗୌଚ୍ୟ—ପୁଂ. ବ. ହିମାଳୟ ପୁତ୍ର

ଗୌଞ୍ଜିକ—ପୁଂ.ବ. ସ୍ୱର୍ଣ୍ଣକାର,ସୁନାରି ।

ଗୌଡ଼—ପୁଂ.ବ.(ଗୁଡ଼ + ଅ) ସାରସ୍ୱତ, କାନ୍ୟକୁବ୍ଜ, ଗୌଡ଼, ଉତ୍କଳ, ମୈଥିଳ, ଏହି ପଞ୍ଚ ଗୌଡ଼ୀୟ ବ୍ରାହ୍ମଣମାନଙ୍କ ମଧ୍ୟରୁ ଗୋଟିଏ ଶ୍ରେଣୀୟ ଗୌଡ଼ ଦେଶବାସୀ ଲୋକ, ବସ୍ତୁତ ପ୍ରାଚୀନ ଜନପଦବିଶେଷ, ରାଗବିଶେଷ, ଜଣେ ଧର୍ମଶାସ୍ତ୍ରକାର ଓ ପ୍ରାଚୀନ ବୈୟାକରଣ,(ବିଂ) ଗୁଡ଼ବିକାର (ଆସବ ପ୍ରଭୃତି), ଯାହା ଗୁଡ଼ଦ୍ୱାରା ପ୍ରସ୍ତୁତ ହୁଏ, (ଗ୍ରା.ବ) କଥିତ ଭାଷାବିଶେଷ, ଗୋପାଳକ ଜାତି,ଉ:ପ୍ର: ଭାରତବାସୀ ରାଜପୁତ୍ର ଜାତିର ଶାଖାବିଶେଷ, କାୟସ୍ଥଙ୍କ ଶାଖାବିଶେଷ ।

ଗୌଡ଼କ—ପୁଂ. ବ. ଗୌଡ଼ଜନବାସୀ, ଗୌଡ଼ଦେଶ ।

ଗୌଡ଼କମୃଗ—ପୁଂ. ବ. ବନ୍ୟ ଘୋଟକବିଶେଷ, ବଣଘୋଡ଼ା ।

ଗୌଡ଼କାୟସ୍ଥ—ପଶ୍ଚିମାଞ୍ଚଳର କାୟସ୍ଥ ଜାତିର ଗୋଟିଏ ଶାଖା ।

ଗୌଡ଼ନଟ—ଗୌଡ଼ ଓ ନଟଯୋଗେ ଉତ୍ପନ୍ନ ରାଗ ।

ଗୌଡ଼ପାଦ—ପୁଂ. ବ. ଜଣେ ପ୍ରସିଦ୍ଧ ବୈଦାନ୍ତିକ ।

ଗୌଡ଼ପାର୍ଶ୍ୱ—ପୁଂ.ବ. ବୌଦ୍ଧମତନାମକ ସଂସ୍କୃତ ଗ୍ରନ୍ଥ-ପ୍ରଣେତା ।

ଗୌଡ଼ବାହୁଡ଼—ଗ୍ରା. ବ. କୌଣସିବ୍ୟକ୍ତି ସଙ୍ଗେ ବା ଯାହାରେ ଆସିଥିବା ଗହୁଡ଼ ଓ ଅନ୍ୟାନ୍ୟ ଅନୁଚରବର୍ଗ ।

ଗୌଡ଼ଭୃତ୍ୟପୁର—କ୍ଲୀ. ବ. ଗୋଟିଏ ପ୍ରାଚୀନ ନଗର ।

ଗୌଡ଼ରାଜପୁତ୍ର— — ରାଜପୁତ୍ରମାନଙ୍କର ଛତିଶକୁଳ ମଧ୍ୟରୁ ଗୋଟିଏ । [ ଭ୍ରମ ।

ଗୌଡ଼ବ୍ରାହ୍ମଣ—ଦଶବିଧ ବ୍ରାହ୍ମଣର ଅନ୍ୟ

ଗୌଡ଼ବାସୁକ—ବ. ଚକ୍ଳୀଶାକ ।

ଗୌଡ଼ମୋଲ୍ଲାର—ଗୌଡ଼ ଓ ମୋଲ୍ଲାର ଯୋଗେ ଉତ୍ପନ୍ନ ଗୋଟିଏ ରାଗ ।

ଗୌଡ଼ସାରଙ୍ଗ—ଗୌଡ଼ ଓ ସାରଙ୍ଗ ଯୋଗେ ଉତ୍ପନ୍ନ ଗୋଟିଏ ରାଗ ।

ଗୌଡ଼ାଗ୍ରର୍ଯ୍ୟ—ବର୍ତ୍ତମାନ ଯୁଗର ଜଣେ ପ୍ରଧାନ ଆଗ୍ରର୍ଯ୍ୟ ।

ଗୌଡ଼ିଆ—ଗ୍ରା. ବିଂ. ଗୌଡ଼ଦେଶୀୟ, ଗୌଡ଼ସମ୍ବନ୍ଧୀୟ, ଗୌଡ଼ଙ୍କ ବ୍ୟବହୃତ ।

ଗୌଡ଼ିଆବୈଷ୍ଣବ—ଗ୍ରା. ବ. ଚୈତନ୍ୟମତାବଲମ୍ବୀ ବୈଷ୍ଣବ ।

ଗୌଡ଼ିଆମତ—ଗ୍ରା. ବ. ଚୈତନ୍ୟ ପ୍ରବର୍ତ୍ତିତ ବୈଷ୍ଣବମତ ।

ଗୌଡ଼ିକ—ବିଂ. (ଗୁଡ଼ + ଇକ) ଗୌଡ଼ଦେଶ ସମ୍ବନ୍ଧୀୟ, ଗୁଡ଼ୋତ୍ପନ୍ନ, ଗୁଡ଼ରୁ ପ୍ରସ୍ତୁତ ମଦ୍ୟବିଶେଷ,(ବ) ଆଖୁ ।

ଗୌଡ଼ୀ—ସ୍ତ୍ରୀ.ବ. ( ଗୁଡ଼ + ଅ + ଈ ) ଗୁଡ଼ରୁ ପ୍ରସ୍ତୁତ ଏକପ୍ରକାର ମଦ, କାବ୍ୟର ରୀତିବିଶେଷ, ରାଗିଣୀବିଶେଷ, ବୀର ଓ ଶୃଙ୍ଗାର ରସରେ ଗେୟ ।

ଗୌଡ଼ୀୟ—ବିଂ. ( ଗୌଡ଼ + ଈୟ ) ଗୌଡ଼ଦେଶସମ୍ବନ୍ଧୀୟ, ଗୌଡ଼ଦେଶବାସୀ, (ବ) ଉତ୍ତର ବଙ୍ଗର କଥିତ ଭାଷା ।

ଗୌଡ଼ୀୟା—ସ୍ତ୍ରୀ.ବ. ଗୌଡ଼ୀରୀତି ।

ଗୌଡ଼େଶ୍ୱର—ପୁଂ. ବ. ଗୌଡ଼ଦେଶର ରାଜା, ଶ୍ରୀଚୈତନ୍ୟ ଦେବ ।

ଗୌଣ—ବିଂ. (ଗୁଣ + ଅ) ଗୌଣୀଲକ୍ଷଣା ଦ୍ୱାରା ଯେ ଅର୍ଥଜ୍ଞାନ ହୁଏ, ଯାହା ମୌଳିକ ନୁହେଁ, କାଳ୍ପନିକ, ପରୋକ୍ଷ, ଯାହା ପ୍ରକାଶ୍ୟରେ କରାଯାଏ ନାହିଁ, ଅପ୍ରଧାନ, ଯାହାର ଉଦ୍ଦେଶ୍ୟ ପ୍ରଧାନ-ନୁହେଁ, ଗୁଣନସମ୍ବନ୍ଧୀୟ, ଅଧସ୍ତନ, (ବ.) ଡେରି,ବିଳମ୍ବ, ଅପେକ୍ଷାକରିବା ।

ଗୌଣକରିବା—ଗ୍ରା. (ବାଲେ, ମେଦନୀ) କି. ବିଳମ୍ବକରିବା, ଅପେକ୍ଷା କରିବା ।

ଗୌଣକର୍ମ—କ୍ଲୀ.ବ.(ବ୍ୟାକରଣ)ଦ୍ୱିକର୍ମକ ଅପ୍ରଧାନ କର୍ମ ।

ଗୌଣକାଳ—ପୁଂ. ବ. ମୁଖ୍ୟକାଳରେ କର୍ତ୍ତବ୍ୟ କର୍ମର ଅନୁଷ୍ଠାନଯୋଗ୍ୟ କାଳାନ୍ତର ।

ଗୌଣଚାନ୍ଦ୍ର—ପୁଂ. ବ. କୃଷ୍ଣପ୍ରତିପଦଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ତିଂଶ ତିଥିକୁ ଗୌଣଚାନ୍ଦ୍ର ମାସ କହନ୍ତି ।

ଗୌଣପକ୍ଷ—ବ.(ଦର୍ଶନ)ଯୁକ୍ତିର ଦୁର୍ବଳ ବା ନିକୃଷ୍ଟତର ପକ୍ଷ ।

ଗୌଣାର୍ଥ—ବ. କୌଣସି ଶବ୍ଦର ପ୍ରଧାନ ବା ଆକ୍ଷରିକ ଅର୍ଥ ଛଡ଼ା ଅନ୍ୟ ଅର୍ଥ, ଆଶୟାର୍ଥ, ଲକ୍ଷଣାର୍ଥ । [ (ଦେଖ) ।

ଗୌଣି—ଗ୍ରା. ବ. (ସଂ-ଗୋଣୀ) ଗହଣୀ

ଗୌଣିକ—ବିଂ. (ଗୁଣ + ଇକ) ଗୁଣସାଧନ, ଗୁଣବେତ୍ତା, ଅଧସ୍ତନ, ଗୌଣ (ଦେଖ), ଗୁଣଜ୍ଞ, ଗୁଣୀ, ଯେ ଗୁଣ ପ୍ରତିପାଦକ ଗ୍ରନ୍ଥ ଅଧ୍ୟୟନ କରେ, ସତ୍ତ୍ୱାଦିଗୁଣ-ନିର୍ମିତ ପଦାର୍ଥ, ଅଖାପରି ଦେଖା ଯାଉଥିବା, (ପୁଂ. ବ) ଗୁଣ ।

ଗୌଣିଗୋଣି—ଗ୍ରା. ବ. ଅନେକ ଗହଣୀ ପରିମିତ ।

ଗୌଣିମୁହାଁ—ଗ୍ରା.ପୁଂ. ବିଂ.ଯାହାର ମୁହଁ ଗୌଣିପରି, ଭୁଲ୍ଭୁଶ୍ରାମୁହାଁ ।

ଗୌଣୀ—ବ. (ବ୍ୟାକରଣ)ଶବ୍ଦର ବୃତ୍ତିବିଶେଷ, ଶବ୍ଦର ଯେଉଁ ବୃତ୍ତିଦ୍ୱାରା ଗୋଟିଏ ବିଶିଷ୍ଟ ଗୁଣ ସୂଚିତ ହୁଏ ।

ଗୌଣ୍ୟ—କ୍ଲୀ.ବି. (ଗୌଣ+ଯ)ଗୁଣତା, ଅଧସ୍ତନ ଅବସ୍ଥା, ନମ୍ରତର ପାହ୍ୟା ।
ଗୌତମ—ପୁଂ. ବି. (ଗୋତମ+ଅ) ଗୋତମ ଋଷିଙ୍କ ପୁତ୍ର ଶତାନନ୍ଦ ଋଷି, ଭରଦ୍ୱାଜ ମୁନି, ବୈବସ୍ୱତ ମନ୍ୱନ୍ତରରେ ସପ୍ତର୍ଷି ମଧ୍ୟରୁ ଜଣେ, କୃପାଚାର୍ଯ୍ୟ, ଗୌତମୀ ପ୍ରତିପାଳିତ ଶାକ୍ୟମୁନି,ଜଣେ ସ୍ମୃତିଶାସ୍ତ୍ରକାର,ଧନଚନ୍ଦ୍ରିକା ରଚୟିତା, ପର୍ବତବିଶେଷ, ଗୋଦାବରୀ ନଦୀର ଉତ୍ପତ୍ତିସ୍ଥାନ, (ବିଂ) ଗୌତମସମ୍ବନ୍ଧୀୟ ।
ଗୌତମରାଜପୁତ—ଚନ୍ଦ୍ରବଂଶୀୟ ରାଜପୁତ ଜାତିର ଗୋଟିଏ ଶାଖା । [ନଦୀ ।
ଗୌତମସମ୍ଭବା—ସ୍ତ୍ରୀ. ବି. ଗୋଦାବରୀ
ଗୌତମୀ—ସ୍ତ୍ରୀ.ବି.(ଗୋତମ+ଅ+ଈ) ଦୁର୍ଗା, ରାକ୍ଷସୀବିଶେଷ, ଦ୍ରୋଣାଚାର୍ଯ୍ୟଙ୍କ ସ୍ତ୍ରୀ ଓ କୃପାଚାର୍ଯ୍ୟଙ୍କ ଭଗିନୀ, କୃପୀ, ଗୋତମୀନଦୀ, ହଳଦୀ, ଗୋଦାବରୀ, ଗୋରୋଚନା, ଗୋତମବଂଶୀୟ ଭରଦ୍ୱାଜଙ୍କ କନ୍ୟା, ନ୍ୟାୟଦର୍ଶନ, ବୁଦ୍ଧଦେବଙ୍କ ସୁପ୍ରଦର୍ଶିତ ଧର୍ମମାର୍ଗ, ଅହଲ୍ୟା, ଗୋତମବଂଶୀୟା ସ୍ତ୍ରୀ, ଗାୟତ୍ରୀସ୍ୱରୂପା ମହାଦେବୀ, ଗୌତମ ପ୍ରଣୀତ ନ୍ୟାୟ ବିଦ୍ୟା ।
ଗୌତମୀପୁତ୍ର—ପୁଂ. ବି. ଆନ୍ଧ୍ରବଂଶୀୟ ଜଣେ ରାଜା ।
ଗୌତମୀୟ—ବି. ଗୌତମସମ୍ବନ୍ଧୀୟ ।
ଗୌତମେଶ୍ୱର—ପୁଂ. ବି. ତୀର୍ଥବିଶେଷ ।
ଗୌଡ଼—ଦକ୍ଷିଣ-ପଶ୍ଚିମଭାରତର ଗୋଟିଏ ରାଜବଂଶ ।
ଗୌତ୍ତମ—ପୁଂ.ବି. (ଗା+ଉଦ୍+ତମ+ଅ) ସ୍ଥାବର ବିଷଭେଦ ।
ଗୌଦନ୍ତେୟ—ବିଂ. ଗୋଦନ୍ତଚନ୍ଦନ-ସମ୍ବନ୍ଧୀୟ ।
ଗୌଦାନିକ—ବିଂ. (ଗୋଦାନ+ଇକ) ଗୋଦାନାଖ୍ୟ ବ୍ରହ୍ମଚର୍ଯ୍ୟ, ଗୋଦାନୋକ୍ତ କର୍ମ ।
ଗୌଧାର—ପୁଂ. ବି. (ଗୋଧା+ଆର) ଗୋଧାପୁତ୍ର, ଗୋଧିଚୁଆ ।
ଗୌଧୂମ—ବିଂ.(ଗୋଧୂମ+ଅ)ଗୋଧୂମର ବିକାର, ରୋଟି ଇତ୍ୟାଦି ।
ଗୌଧୂମୀନ—କ୍ଲୀ.ବି. (ଗୋଧୂମ+ଈନ୍) ଗୋଧୂମ ଜନ୍ମିବାର ଉତ୍ତମକ୍ଷେତ୍ର,ଯେଉଁ କ୍ଷେତ୍ରରେ ଗହମ ଫସଲ ହୁଏ ।
ଗୌଧେୟ—ପୁଂ. ବି. (ଗୋଧା+ଏୟ) ଗୋଧିକାତ୍ମଜ, ଗୋଧିଚୁଆ ।
ଗୌଧେର—ପୁଂ. ବି. (ଗୋଧା+ଏର) ଗୋଧିଚୁଆ ।
ଗୌଧେରକ—ପୁଂ ବି. ଗୋଧିକାତ୍ମଜ, ଗୋଧିଚୁଆ ।
ଗୌଧେରକାୟଣି—ପୁଂ.ବି. ଗୌଧେର-ପୁତ୍ର, ଗୋଧିଚୁଆ ।
ଗୌନର୍ଦ୍ଦ—ବିଂ.(ଗୋନର୍ଦ୍ଦ+ଅ)ଗୋନର୍ଦ୍ଦ ଦେଶବାସୀ,(ପୁଂ.ବି) ପତଞ୍ଜଳି ମୁନି ।
ଗୌନ୍ତିଆ—ଗ୍ରା. (ସମ୍ବ) ବି. ଗ୍ରାମର ସର୍ବରାକାର, ଯଶୋପାଧିବିଶେଷ ।
ଗୌନ୍ଦୀ—ଦାକ୍ଷିଣାତ୍ୟବାସୀ ଜାତିବିଶେଷ ।
ଗୌପତ୍ୟ—କ୍ଲୀ. ବି. (ଗୋପତି+ଯ) ଗୋପତିତ୍ୱ, ଗୋସ୍ୱାମିତ୍ୱ ।
ଗୌପବନ—ପୁଂ. ବି. ଜଣେ ଋଷି, ଏ ମଧୁକାଣ୍ଡ ବଂଶରେ ଜନ୍ମଗ୍ରହଣ କରିଥିଲେ ।
ଗୌପାଡ଼ା—ସାଓନ୍ତାଳ ପରଗଣାନ୍ତର୍ଗତ ଗୋଟିଏ ପ୍ରଧାନ ଗ୍ରାମ ।
ଗୌପାୟନ—ପୁଂ.ବି.ଗୋପର ଅପତ୍ୟ ।
ଗୌପାଲପଶୁପାଲକା—ସ୍ତ୍ରୀ.ବି. ଗୋପାଳ ଓ ପଶୁପାଳର ଧର୍ମ ଓ କର୍ମ ।
ଗୌପିକ—ପୁଂ.ସ୍ତ୍ରୀ.ବି. (ଗୋପି+ଅକ) ଗୋପିକାର ଅପତ୍ୟ, ଗୋପୀଙ୍କର ସନ୍ତାନ । [ନିର୍ବୃତ୍ତ ।
ଗୌପିଲେୟ—ବିଂ. ଗୋପିଲଦ୍ୱାରା
ଗୌପୁଚ୍ଛ—ବିଂ. (ଗୋପୁଚ୍ଛ+ଅ) ଗୋଲାଙ୍ଗୁଳ ସଦୃଶ ।
ଗୌପୁଚ୍ଛିକ—ବିଂ ଗୋପୁଚ୍ଛଦ୍ୱାରା ଯାହା କିଣା ହୋଇଅଛି ।
ଗୌପ୍ତେୟ—ପୁଂ.ସ୍ତ୍ରୀ.ବି. (ଗୁପ୍ତ+ଏୟ) ବୈଶ୍ୟଜାତି ସ୍ତ୍ରୀର ଅପତ୍ୟ, ବୈଶ୍ୟା-ସନ୍ତାନ ।
ଗୌଭୃତ—ବିଂ. (ଗୋଭୃତ୍+ଅ) ଯାହା ଗୋଭୃତ୍‌ଦ୍ୱାରା ନିବୃତ୍ତ ହୁଏ ।
ଗୌମତ—ବିଂ.(ଗୋମତୀ+ଅ)ଗୋମତୀ ନଦୀରୁ ଉତ୍ପନ୍ନ ।
ଗୌମତାୟନ—ବିଂ(ଗୋମତ+ଆୟନ) ଗୋମତୀ ନଦୀରୁ ଉତ୍ପନ୍ନ ପ୍ରଭୃତି ।
ଗୌମୟିକ—ବିଂ.( ଗୋମୟ+ଇକ ) ଗୋବରଜାତପ୍ରଭୃତି ।
ଗୌମାୟନ—ପୁଂ.ସ୍ତ୍ରୀ.ବି. (ଗୋମିନ୍+ଆୟନ) ଗୋମୀର ଗୋତ୍ରାପତ୍ୟ ।
ଗୌମେଦ—ବି. ( ଗୋମେଦ+ଅ ) ଗୋମୂତ୍ରର ବର୍ଣ୍ଣଯୁକ୍ତ ମଣିବିଶେଷ ।
ଗୌର୍—ଧା. ବି. ଧ୍ୟାନ. ପ୍ରଣିଧାନ, ଖାଦର୍ ।
ଗୌରନିତାଇ—ଗ୍ରା.ବି. ଚୈତନ୍ୟଦେବ, ଓ ତାଙ୍କ ସହଚର ନିତ୍ୟାନନ୍ଦ ।
ଗୌର—ପୁଂ. ବି. (ଗୁର୍+ଅ) ଚନ୍ଦ୍ର, ବୃହସ୍ପତି, ଶ୍ୱେତସୋରିଷ, ଧଅଗଛ, ବ୍ରହ୍ମାଣ୍ଡ-ପୁରାଣମତେ କୈଳାସର ଉତ୍ତରରେ ଅବସ୍ଥିତ ପର୍ବତବିଶେଷ, ପୀତବର୍ଣ୍ଣ, ଶ୍ୱେତବର୍ଣ୍ଣ, ବିଶୁଦ୍ଧ, ଗୋରା, ଅରୁଣବର୍ଣ୍ଣ, ( ବିଂ ) ପୀତବର୍ଣ୍ଣବିଶିଷ୍ଟ, ଶୁଭ୍ର, ଲୋହିତାଭ, ପରିଷ୍କୃତ, ଶ୍ୱେତ-ବର୍ଣ୍ଣଯୁକ୍ତ, ଅରୁଣବର୍ଣ୍ଣଯୁକ୍ତ,( କ୍ଲୀ. ବି. ) ପଦ୍ମକେଶର ବା କଞ୍ଜଳ୍କ, କୁଙ୍କୁମ, ସ୍ୱର୍ଣ୍ଣ, (ପୁଂ.ବି) ମାଟିଆ ମଇଁଷି, ପରମାଣୁ-ବିଶେଷ, ଏକପ୍ରକାରମୃଗ, ଧଳାସୋରିଷ ପରିମିତ ଓଜନ, ଚୈତନ୍ୟଦେବ, ଗୌରାଙ୍ଗ (ବିଂ) ବିଶୁଦ୍ଧ ।
ଗୌରକ୍ଷ୍ୟ—କ୍ଲୀ. ବି. (ଗୋରକ୍ଷ+ଯ) ପଶୁପାଳନ, ବୈଶ୍ୟକର୍ମବିଶେଷ, ଗୋରକ୍ଷର ଭାବ ବା ଧର୍ମ ।
ଗୌରଖର—ପୁଂ. ବି. ବନଗର୍ଦ୍ଦଭ, ବଣ ଗଧ ।
ଗୌରଗ୍ରୀବ—ପୁଂ. ବି. ଦେଶବିଶେଷ, (ବିଂ) ତଦ୍ଦେଶବାସୀ ।
ଗୌରଗ୍ରୀବୀୟ—ବିଂ. ଗୌରଗ୍ରୀବ-ସମ୍ବନ୍ଧୀୟ, ଗୌରଗ୍ରୀବ ଦେଶବାସୀର ଅପତ୍ୟ ।

ଗୌରଚନ୍ଦ୍ର—ପୁଂ. ବ. ଚୈତନ୍ୟଦେବ, ଗୌରାଙ୍ଗ ।

ଗୌରଚନ୍ଦ୍ର ଗଜପତି ନାରାୟଣଦେବ—ପୁଂ.ବ.ଗଞ୍ଜାମଅନ୍ତର୍ଗତ ପାରଲାଖେମଣ୍ଡିର ଜଣେ ରାଜା ।

ଗୌରଚନ୍ଦ୍ରିକା—ସ୍ତ୍ରୀ, ବ. ମୂଳଗାନର ପୂର୍ବରୁ ମଙ୍ଗଳାଚରଣସ୍ୱରୂପ ଚୈତନ୍ୟ ଦେବଙ୍କ ବର୍ଣ୍ଣନା । [ଧଳା ଜୀରା ।

ଗୌରଜୀରକ—ପୁଂ. ବ. ଶ୍ୱେତ ଜୀରା,

ଗୌରତିତ୍ତିର—ପୁଂ.ସ୍ତ୍ରୀ.ବ. ଶ୍ୱେତବର୍ଣ୍ଣ ତିତ୍ତିର ପକ୍ଷୀ, ଚକଚକିଆ ପକ୍ଷବିଶିଷ୍ଟ ତିତ୍ତିର ପକ୍ଷୀ । [ଜସ୍ତା ପ୍ରଭୃ ।

ଗୌରତ୍ୱଚ—ପୁଂ. ବ. ଇଙ୍ଗୁଦ ବୃକ୍ଷ,

ଗୌରପୃଷ୍ଠ—ପୁଂ. ବ. ଯମରାଜାର ସଭାସ୍ଥିତ ଜଣେ ରାଜା ।

ଗୌରମୁଖ—ପୁଂ. ବ. ଚନ୍ଦ୍ର, ମହର୍ଷି ଶମୀକଙ୍କର ଜଣେ ଶିଷ୍ୟ, (ବିଂ)ଶ୍ୱେତ-ବର୍ଣ୍ଣ ମୁଖବିଶିଷ୍ଟ ।

ଗୌରମୃଗ—ପୁଂ. ସ୍ତ୍ରୀ. ବ. ଗୌରବର୍ଣ୍ଣ ମୃଗବିଶେଷ ।

ଗୌରବ—ବ. (ଗୁରୁ—ଭାବ, ଅ)ଉତ୍କର୍ଷ, ଗମ୍ଭୀରତା, ଗର୍ବ, ସ୍ଥୂଳତା, ଭାର, ଓଜନ ବିଷୟର ଗୁରୁତ୍ୱ, ଜରୁରିପଣ, ମହିମା, ମହତ୍ତ୍ୱ, ଇଜ୍ଜତ, ମର୍ଯ୍ୟାଦା, ମାନ୍ୟ, ସମ୍ମାନ, ଆଦର, ପୂଜ୍ୟତ୍ୱ, ଅକ୍ଷରର ଗୁରୁତା, ଅର୍ଥର ଗାମ୍ଭୀର୍ଯ୍ୟ, ବିଷାକ୍ତ ଗୁଳ୍ମବିଶେଷ, କାରଣମାନଙ୍କର ଅପ୍ରୟୋଜନୀୟ ବାହୁଲ୍ୟ, (ବିଂ) ଗୁରୁସମ୍ବନ୍ଧୀୟ ।

ଗୌରବ କରିବା—କ୍ରୀ. କ୍ରି.ମର୍ଯ୍ୟାଦା ବା ସମ୍ମାନ କରିବା, ପ୍ରଶଂସା କରିବା ।

ଗୌରବର୍ଣ୍ଣ—ବ. (କ.ଧା) ଦେହର ଗୋରା ରଙ୍ଗ, ଶୁଭ୍ର ବା ଧଳା ରଙ୍ଗ ।

ଗୌରବବାନ୍—ପୁଂ. ବିଂ.(ଗୌରବ+ବତ୍) ଗୌରବବିଶିଷ୍ଟ, ଯାହାର ଗୌରବ ଅଛି ।

ଗୌରବାନ୍ୱିତ+ବିଂ.(ଅନ୍ୱିତ) ଗୌରବଯୁକ୍ତ,ମହିମାନ୍ୱିତ,ସମ୍ମାନନୀୟ,ପୂଜନୀୟ, ଗର୍ବାନ୍ୱିତ ।

ଗୌରବାସନ—କ୍ଲୀ. ବ. (କ.ଧା)ଉତ୍କର୍ଷ ସୂଚକ ଆସନ ।

ଗୌରବାହନ—ପୁଂ. ବ. ଜଣେ ରାଜା, ଅପର ନାମ ଶ୍ୱେତବାହନ ।

ଗୌରବିଣୀ—ସ୍ତ୍ରୀ.ବ. (ଗୌରବ+ଇନ୍+ଈ) ଗର୍ବିଣୀ, ଗର୍ବିତା,ଗରବିଣୀ ।

ଗୌରବିତ-ପୁଂ.ବିଂ. (ଗୌରବ+ଇତ) ପୂଜ୍ୟ, ମର୍ଯ୍ୟାଦାଶାଳୀ ।

ଗୌରଶାକ—ପୁଂ. ବ. ମଧୁକ ବୃକ୍ଷ ବିଶେଷ, ମହୁଲ ଗଛ ।

ଗୌରଶାଲି—ପୁଂ. ବ. ଶାଳିଧାନ୍ୟ ବିଶେଷ, ବାସନାଧାନ ।

ଗୌରଶିରାଃ—ପୁଂ. ବ. (ବ. ବ୍ରୀ) ଶୁକ୍ଳବର୍ଣ୍ଣ କେଶଯୁକ୍ତ,ଯାହାର ମୁଣ୍ଡବାଳ ଧଳା ହୋଇଅଛି, (ବ) ରାଜନୀତିଶାସ୍ତ୍ର ପ୍ରଣେତା ଜଣେ ଋଷି ବା ମୁନି, ଏହାଙ୍କ ନୀତିଶାସ୍ତ୍ର ବର୍ତ୍ତମାନସମୟରେ ଦୁଷ୍ପ୍ରାପ୍ୟ ।

ଗୌରସର୍ଷପ—ପୁଂ. ବ. (କ.ଧା) ଶ୍ୱେତ ସୋରିଷ, ପରିମାଣବିଶେଷ, ରାଇ ବା ରାଇଆ ସୋରିଷ ।

ଗୌରସୁବର୍ଣ୍ଣ—କ୍ଲୀ. ବ. ଚକ୍ରକୂଟ ପ୍ରସିଦ୍ଧ ଏକ ପ୍ରକାର ଶାକ ।

ଗୌରହରି—ଗ୍ରା. ପୁଂ. ବ. ଚୈତନ୍ୟ ବା ଗୌରାଙ୍ଗରୂପେ ଆବିର୍ଭୂତ ବିଷ୍ଣୁ ବା ହରି, ଭଞ୍ଜପୁରର ପରବର୍ତ୍ତୀ ଗଞ୍ଜାମର ସଙ୍ଗୀତ-ରଚୟିତା କବି-ବିଶେଷ ।

ଗୌରା—ସ୍ତ୍ରୀ. ବିଂ. (ଗୌର+ଆ) ବିଶୁଦ୍ଧା ସ୍ତ୍ରୀ, ଗୌରୀ ସ୍ତ୍ରୀ, ପାର୍ବତୀ ।

ଗୌରାଙ୍ଗ—ପୁଂ. ବ. (ଗୌର+ଅଙ୍ଗ) ବିଷ୍ଣୁ, ଶ୍ରୀକୃଷ୍ଣ, ଶଚୀଙ୍କ ପୁତ୍ର ଚୈତନ୍ୟ ଦେବ, (ସ୍ତ୍ରୀ) ଗୌରାଙ୍ଗୀ,(ବିଂ.ବ.ବ୍ରୀ) ଗୌରବର୍ଣ୍ଣ ଦେହ ଯାହାର, (କ୍ଲୀ.ବ) ଗୌରବର୍ଣ୍ଣ ଶରୀର ।

ଗୌରାଙ୍ଗଦହ—ଗ୍ରା.ବ. ବଙ୍ଗର ବାଙ୍କୁଡ଼ା ଜିଲ୍ଲାର ଗିରିଶ୍ରେଣୀ ।

ଗୌରାଜାଜୀ—ସ୍ତ୍ରୀ. ବ. ଶ୍ୱେତ ଜୀରକ, ସାଦାଜୀରା, ଧଳାଜୀରା ।

ଗୌରାର୍ଦ୍ରକ—ପୁଂ. ବ. ସ୍ଥାବର ବିଷ-ବିଶେଷ ।

ଗୌରାବସ୍କନ୍ଦୀ—ପୁଂ. ବ. (ଗୌରବ+ଆ+ସ୍କନ୍ଦ+ଇନ୍) ଅହଲ୍ୟାଜାରୁ, ଇନ୍ଦ୍ର ।

ଗୌରାଶ୍ୱ—ପୁଂ.ବ. ଯମଙ୍କ ସଭାର ସଭ୍ୟ ଜଣେ ରାଜା, ଅର୍ଜୁନ, (ବିଂ) ଯାହାର ଗୌରବର୍ଣ୍ଣ ଅଶ୍ୱ ଅଛି ।

ଗୌରାସ୍ୟ—ପୁଂ. ସ୍ତ୍ରୀ. ଏକ ପ୍ରକାର ମାଙ୍କଡ଼, ଏହି ଜାତୀୟ ମାଙ୍କଡ଼ର ମୁଖ ଗୌରବର୍ଣ୍ଣ ଓ ଶରୀର କୃଷ୍ଣବର୍ଣ୍ଣ ।

ଗୌରାହିକ—ପୁଂ. ସ୍ତ୍ରୀ. ବ. ବିଷଶୂନ୍ୟ ଏକ ପ୍ରକାର ସର୍ପ, ଢ଼ୋଣ୍ଡିଆ ସାପ ।

ଗୌରି—ପୁଂ. ବ. (ଗୌର+ଇ) ଅଙ୍ଗିରସ ଋଷି ।

ଗୌରିକ—ବିଂ.(ଗୌର+ଇକ)ଶ୍ୱେତ-ବର୍ଣ୍ଣଯୁକ୍ତ, (ପୁଂ.ବ) ଶ୍ୱେତସର୍ଷପ, ରାଇସୋରିଷ ।

ଗୌରିକା—ସ୍ତ୍ରୀ. ବ.(ଗୌରି+କ+ଆ) ଗୌରୀ (ଦେଖ) ।

ଗୌରିକୀ—ସ୍ତ୍ରୀ.ବ. (ଗୌରୀ+କ+ଈ) ଅଷ୍ଟବର୍ଷୀୟା କନ୍ୟା, ଆଠ ବରଷର କନ୍ୟା ।

ଗୌରିମାନ୍—ପୁଂ. ବ. (ଗୌର+ମନ୍+କ୍ୱିପ୍) ଗୌରିତୀର୍ଥ ।

ଗୌରିମତୀ—ସ୍ତ୍ରୀ.ବ. (ଗୌରିମତ୍+ଈ) ଗୌରିତୀର୍ଥସ୍ଥ ଗୋଟିଏ ନଦୀ ।

ଗୌରିଲ—ପୁଂ. ବ. (ଗୌର+ଇଲ) ଶ୍ୱେତସର୍ଷପ,ଲୌହଚୂର୍ଣ୍ଣ,ରାଇସୋରିଷ, ଲୁହାଗୁଣ୍ଡ ।

ଗୌରିବୀତ—କ୍ଲୀ.ବ. (ଗୌରି+ବୀତ+ଅ)ସାମବିଶେଷ ।

ଗୌରିବୀତି—ପୁଂ. ବ. ଋଷିବିଶେଷ, ଶକ୍ତି ମୁନିଙ୍କ ପୁତ୍ର ।

ଗୌରସକ୍ଥ—ପୁଂ. ବିଂ. ଗୌର ଊରୁ ସକ୍ଥିବିଶିଷ୍ଟ ।

ଗୌରୀ—ସ୍ତ୍ରୀ.ବ. (ଗୌର+ଈ)ଗୌର ବର୍ଣ୍ଣ, ଗୌରବର୍ଣ୍ଣବିଶିଷ୍ଟା ସ୍ତ୍ରୀ,ପାର୍ବତୀ, ଗୋରୋଚନା, ହରିଦ୍ରା, ଦାରୁହରିଦ୍ରା, ପ୍ରିୟଙ୍ଗୁ, ଅଷ୍ଟବର୍ଷୀୟାକନ୍ୟା,ବରୁଣଙ୍କ ପତ୍ନୀ,ପୃଥିବୀ, ନଦୀବିଶେଷ, ବୁଦ୍ଧି ଶକ୍ତି

ବିଶେଷ, ମଞ୍ଜିଷ୍ଠା, ଶ୍ୱେତଦୁବା, ମଲ୍ଲିକା ତୁଳସୀ, ସ୍ୱର୍ଣ୍ଣ କଦଳୀ, ସୂର୍ଯ୍ୟବଂଶୀୟ ପ୍ରସେନଜିତ୍ ରାଜାଙ୍କ ପତ୍ନୀ, ଆକାଶ-ମାଂସୀ, ରାଗିଣୀବିଶେଷ, ମାଧ୍ୱୀଜିବାକ୍, ଯାଷ୍ଟିମଧୁ ସ୍ତ୍ରୀ, ଗଙ୍ଗା, ପୀଠସ୍ଥାନର ଅଧିଷ୍ଠାତ୍ରୀ ଦେବୀବିଶେଷ ।

ଗୌରୀକଳ୍ପ—ପୁଂ. ବି. କଳ୍ପଭେଦ, ବ୍ରହ୍ମମାସର କୃଷ୍ଣା ତ୍ରୟୋଦଶୀ ।

ଗୌରୀକାନ୍ତ—ପୁଂ.ବି.(ଗୌରୀ+କାନ୍ତ) ୬ତତ୍; ମହାଦେବ, ଶିବ ।

ଗୌରୀକାନ୍ତସାର୍ବଭୌମଭଟ୍ଟାଚାର୍ଯ୍ୟ--ବଙ୍ଗ-ଦେଶୀୟ ଜଣେ ବିଖ୍ୟାତ ପଣ୍ଡିତ ।

ଗୌରୀକାଳ—ପୁଂ. ବି. (୬ତତ୍) ସ୍ତ୍ରୀ-ଲୋକମାନଙ୍କର ଅଷ୍ଟମବର୍ଷ ସମୟ ।

ଗୌରୀକୁଣ୍ଡ—ଗ୍ରା.ବି. କୈଳାସର ସାନୁ-ଦେଶ ସ୍ଥିତ ହ୍ରଦ, ହିମାଳୟର ସାନୁ-ଦେଶସ୍ଥ ଗଙ୍ଗୋତ୍ରୀର ଅର୍ଦ୍ଧମାଇଲ୍ ପଶ୍ଚିମରେ ଅବସ୍ଥିତ ହ୍ରଦ ।

ଗୌରୀଖଣ୍ଡ—ବି. ଗୋଟିଏ ପୁଣ୍ୟ ଜନ-ସ୍ଥାନ, ରେବାଖଣ୍ଡ ।

ଗୌରୀଗୁରୁ—ପୁଂ.ବି. (ଗୌରୀ+ଗୁରୁ) (୬ତତ୍) ହିମାଳୟ, ମହାଦେବ ।

ଗୌରୀଜ—କ୍ଳୀ. ବି. (ଗୌରୀ+ଜନ୍+କ,ଅ) ଧାତୁବିଶେଷ, ଅଭ୍ର, (ପୁଂ) କାର୍ତ୍ତିକେୟ, ଗଣେଶ, ମେଘନାଳ ।

ଗୌରୀତକ—କ୍ଳୀ. ବି. ସୁଗନ୍ଧ ଦ୍ରବ୍ୟ ଓ ମସଲାଯୁକ୍ତ ଘୋଳବିଶେଷ ।

ଗୌରୀଦତ୍ତ—ଗ୍ରା.ବି.ବାଙ୍ଗଳା ତୀର୍ଥଯାତ୍ରା-ପ୍ରକାଶନାମକ ସଂସ୍କୃତ ଗ୍ରନ୍ଥକାର ।

ଗୌରୀଦ୍ୱାର—ଗ୍ରା. ବି. ମଧ୍ୟପ୍ରଦେଶ ଅନ୍ତର୍ଗତ ଗୋଟିଏ ସ୍ଥାନ ।

ଗୌରୀନାଥ—ପୁଂ.ବି. (ଗୌରୀ+ନାଥ) ୬ତତ୍, ମହାଦେବ, ଶିବ ।

ଗୌରୀପଟ୍ଟ—ବି. (କ.ଧା) ଶିବ ଲିଙ୍ଗର ଚାରିପାଖେ ବେଢ଼ିଥିବା ପ୍ରସ୍ତରନିର୍ମିତ ଶକ୍ତି ।

ଗୌରୀପତି—ପୁଂ. ବି. (ଗୌରୀ+ପତି) ୬ତତ୍; ଶିବ, ମହାଦେବ ।

ଗୌରୀପାଷାଣ—ବି. ( ବୈଦ୍ୟକ ) ଏକ-ପ୍ରକାର ପାଷାଣ ବିଷ ।

ଗୌରୀପୁତ୍ର—ପୁଂ. ବି. (ଗୌରୀ+ପୁତ୍ର) ୬ତତ୍; କାର୍ତ୍ତିକେୟ, ଗଣେଶ, ଅଷ୍ଟମ ବର୍ଷରେ ବିବାହିତା କନ୍ୟାର ଗର୍ଭଜାତ ପୁତ୍ର ।

ଗୌରୀପୁଷ୍ପ—ପୁଂ. ବି. ପ୍ରିୟଙ୍ଗୁ ବୃକ୍ଷ ।

ଗୌରୀପୂଜା—ସ୍ତ୍ରୀ. ବି. ଗୌରୀ ମୂର୍ତ୍ତି-ଧାରିଣୀ ଦେବୀଙ୍କ ପୂଜା, କୁମାରୀପୂଜା ।

ଗୌରୀମନ୍ତ୍ର—ପୁଂ. ବି. ଗୌରୀଙ୍କର ବୀଜମନ୍ତ୍ର, ତନ୍ତ୍ରସାରମତେ ଗୌରୀ ମନ୍ତ୍ର, ଯଥା—ଓଁ ହ୍ରୀଂ ଗୌରି ରୁଦ୍ର-ଦୟିତେ ଯୋଗେଶ୍ୱରି ସର୍ବଫଟ୍ ସ୍ୱାହା ।

ଗୌରୀ ଲଳିତ—କ୍ଳୀ. ବି. (ଗୌରୀ+ଲଳିତ) ହରିତାଳ ।

ଗୌରୀବର—ପୁଂ. ବି. (ଗୌରୀ+ବର) ୬ତତ୍, ଶିବ, ମହାଦେବ ।

ଗୌରବରଣର୍ମ୍ମା—ଗ୍ରା. ପୁଂ.ବି. ଦେବୀ-ମାହାତ୍ମ୍ୟର ବିଦ୍ୱନ୍ମନୋରମାନାମକ ଟୀକାକାର ।

ଗୌରୀବ୍ରତ—କ୍ଳୀ. ବି. ଗୌରୀଙ୍କର ଉପାସନାବ୍ରତ ବିଶେଷ ।

ଗୌରୀଶ—ପୁଂ. ବି. (ଗୌରୀ+ଈଶ) ୬ତତ୍, ପାର୍ବତୀପତି, ଶିବ ।

ଗୌରୀଶଙ୍କର—ପୁଂ. ବି. (ଦ୍ୱନ୍ଦ୍ୱ) ମହା-ଦେବ, ଅର୍ଦ୍ଧନାରୀଶ୍ୱର, ( ବି.ଗ୍ରା ) ହିମାଳୟ ପର୍ବତର ସର୍ବୋଚ୍ଚ ଶୃଙ୍ଗ ।

ଗୌରୀଶଙ୍କରଉଦୟଶଙ୍କରଯାଜ୍ଞିକ -ଭବ ନଗରର ଜଣେ ପ୍ରଧାନ ରାଜମନ୍ତ୍ରୀ ।

ଗୌରୀଶଙ୍କରରାୟ--ଗ୍ରା. ପୁଂ.ବି. ଉତ୍କଳ-ଦୀପିକା ପତ୍ରିକାର ପୂର୍ବତନ ସମ୍ପାଦକ ।

ଗୌରୀଶିଖର—କ୍ଳୀ.ବି. ଗୋଟିଏ ତୀର୍ଥ-ସ୍ଥାନ, ପାର୍ବତୀ ଯେଉଁ ଶିଖରରେ ବସି ତପସ୍ୟା କରିଥିଲେ, ଗୌରୀଶୃଙ୍ଗ ।

ଗୌରୀସୁତ--ପୁଂ.ବି. ଆଠବର୍ଷବୟସରେ ବିବାହ କରିଥିବା କନ୍ୟାର ଗର୍ଭଜାତ ପୁତ୍ର, କାର୍ତ୍ତିକେୟ, ଗଣେଶ, ଶ୍ୟାମାଳାଷ୍ଟକ ରଚୟିତା ।

ଗୌରୀହାର—ମଧ୍ୟଭାରତର ବୁନ୍ଦେଲ-ଖଣ୍ଡାନ୍ତର୍ଗତ ଗୋଟିଏ କ୍ଷୁଦ୍ର ରାଜ୍ୟ ।

ଗୌରୁତଳ୍ପିକ—ପୁଂ, ବିଂ. ( ଗୁରୁତଳ୍ପ +ଇକ) ଗୁରୁପତ୍ନୀଗାମୀ ।

ଗୌଲକ୍ଷଣିକ—ପୁଂ. ବି. (ଗୋଲକ୍ଷଣ+ ଇକ) ଯେ ଗୋରୁର ଲକ୍ଷଣ ଜାଣେ, ଯେ ଗୋଲକ୍ଷଣ ପ୍ରତିପାଦକ ଶାସ୍ତ୍ର ଅଧ୍ୟୟନ କରେ ।

ଗୌଲଦ—ପୁଂ. ବି. ଗୋଲଦ ଋଷିଙ୍କ ଛାତ୍ର ବା ଶିଷ୍ୟ ।

ଗୌଲଦ୍ୟ—ପୁଂ. ସ୍ତ୍ରୀ. ବି. ଗୋଲଦ ଋଷିଙ୍କର ଗୋତ୍ରାପତ୍ୟ ।

ଗୌଳା—ସ୍ତ୍ରୀ. ବି. ( ଗୌର+ଆ ) ଗୌରୀ, ହିମାଳୟର କନ୍ୟା ।

ଗୌଲାଙ୍କାୟନ—ପୁଂ.ସ୍ତ୍ରୀ. ବି. ଗୋଲାଙ୍କ ଋଷିଙ୍କର ଗୋତ୍ରାପତ୍ୟ ।

ଗୌଳି—ମେବାରର ଗୋଟିଏ ସ୍ଥାନ; ଦାକ୍ଷିଣାତ୍ୟର ଗୋପଜାତି ।

ଗୌଳିକ—ପୁଂ. ବି. (ଗୁଡ଼୍+ଇକ) ମୁଷ୍କକ ବୃକ୍ଷ, ଘଣ୍ଟାପାରୁଳି ।

ଗୌଲ୍ମେମ—ବିଂ. (ଗୋଲ୍ମେମନ୍+ଅ) ଗୋଲ୍ମେମ ସଦୃଶ ।

ଗୌଲ୍‌ଗୁଲବ—ବିଂ.ଗୁଗ୍‌ଗୁଲସମ୍ବନ୍ଧୀୟ ।

ଗୌଲ୍ମିକ—ପୁଂ. ବି. ଗୁଲ୍ମ ସ୍ଥାନରେ ନିଯୁକ୍ତ ଯାମିକସେନାବିଶେଷ ।

ଗୌଳ୍ୟ—କ୍ଳୀ. ବି. (ଗୁଡ଼+ଯ)ମାଧୁର୍ଯ୍ୟ, ମଧୁର ରସ ।

ଗୌଶକଣ୍ଟିକ-ବିଂ. ଗୋଶକଣ୍ଟସମ୍ବନ୍ଧୀୟ ।

ଗୌଶତକ—ପୁଂ. ବିଂ. (ଗୋଶତ+ ଇକ) ଯାହାର ଶହେ ଗୋରୁ ଅଛନ୍ତି ।

ଗୌଶୃଙ୍ଗ—କ୍ଳୀ. ବି. ସାମଭେଦ ।

ଗୌଶ୍ରି—ପୁଂ. ଗୁଶ୍ରିଙ୍କର ଗୋତ୍ରାପତ୍ୟ ।

ଗୌଷ୍ଟକ୍ତ—କ୍ଳୀ. ବି. ସାମଭେଦ ।

ଗୌଷ୍ଟକ୍ତ—ପୁଂ. ବି. ମୁନିଭେଦ ।

ଗୌଷ୍ଠ—ବିଂ. (ଗୋଷ୍ଠ+ଅ)ଗୋଠରେ ଜାତ, ଗୋଠରୁ ଉତ୍ପନ୍ନ ।

ଗୌଷ୍ଠୀନ—କ୍ଳୀ. ବି. ପୂର୍ବେ ଯେଉଁ ସ୍ଥାନରେ ଗୋଷ୍ଠ ଥିଲା ।

ଗୌସହସ୍ରିକ—ପୁଂ.ବିଂ.(ଗୋସହସ୍ର+ଇକ) ଯାହାର ସହସ୍ରେ (ହଜାରେ) ଗୋରୁ ଅଛନ୍ତି ।

ଗୌହ—ବିଂ. (ଗୁହ+ଅ)ଗୁହସମ୍ବନ୍ଧୀୟ ଗୁହଦ୍ୱାରା ନିର୍ବୃତ୍ତି ପ୍ରଭୃତି,କାର୍ତ୍ତିକେୟଙ୍କ ସମ୍ବନ୍ଧୀୟ ।

ଗୌହର—ଯା.ବି. ମୋତି,ମୁକ୍ତା ।

ଗୌହଲବ୍ୟ—ପୁଂ. ବି. (ଗୁହଲୁ+ଯ) ଗୁହଲୁନାମକ ଋଷିଙ୍କ ଗୋତ୍ରାପତ୍ୟ ।

ଗୌହଲବ୍ୟାୟନୀ—ସ୍ତ୍ରୀ. ବି. ଗୁହଲୁନାମକ ଋଷିଙ୍କ ବଂଶୋତ୍ପନ୍ନା ସ୍ତ୍ରୀ । [ନଗର ।

ଗୌହାଟି—ଗ୍ରା. ବି. କାମରୂପର ପ୍ରଧାନ

ଗ୍ଧି—ସ୍ତ୍ରୀ.ବି. (ଅଦ୍+ତି) ଭକ୍ଷଣ ।

ଗ୍ନା—ସ୍ତ୍ରୀ.ବି.(ଗମ୍+ନା)ସ୍ତ୍ରୀ,ଦେବପତ୍ନୀ, ବାକ୍ୟ, ବେଦ ।

ଗ୍ନାବାନ୍—ପୁଂ. ବିଂ. (ଗ୍ନା+ବତ୍) ସ୍ତ୍ରୀଯୁକ୍ତ, ସପତ୍ନୀକ, ସ୍ତୁତିବାକ୍ୟବିଶିଷ୍ଟ ।

ଗ୍ନାସ୍ପତି—ପୁଂ. ବି. ଦେବପତ୍ନୀଙ୍କ ପତି, ଛନ୍ଦର ପତି । [ଦେଖ ।

ଗ୍ନାସ୍ପତ୍ନୀ—ସ୍ତ୍ରୀ.ବି. ସ୍ତ୍ରୀମାନଙ୍କର ପାଳୟିତ୍ରୀ

ଗ୍ମା—ସ୍ତ୍ରୀ. ବି. ପୃଥିବୀ ।

ଗ୍ୟାଲିଲିଓ—ଗ୍ରା. ବି. ଇଟାଲୀୟ ପ୍ରସିଦ୍ଧ ବିଜ୍ଞାନବିତ୍ ପଣ୍ଡିତ ଓ କେତେ ପ୍ରସିଦ୍ଧ ବିଜ୍ଞାନର ଉଦ୍ଭାବକ । [ପଦାର୍ଥ ।

ଗ୍ୟାସ୍—ଯା. ବି. ବାଷ୍ପବିଶେଷ, ବାଷ୍ପୀୟ

ଗ୍ରଥନ—କ୍ଲୀ.ବି.(ଗ୍ରନ୍ଥ୍+ଭା,ଅନ)ଗୁନ୍ଥା, ଗୁନ୍ଥାହେବା, ତନ୍ତ୍ରଶାସ୍ତ୍ରପ୍ରସିଦ୍ଧ ସାଧବର୍ଣ୍ଣ-ଗୁଡ଼ିକୁ ମନ୍ତ୍ରଦ୍ୱାରା ଅନ୍ତରିତକରି ବିନ୍ୟାସ କରିବା ।

ଗ୍ରଥନା—ବି. (ଗ୍ରନ୍ଥ୍+ଭା,ଅନ+ଆ) ଜଳୀୟପଦାର୍ଥ ଜମାଟବାନ୍ଧିବା,ଗୁନ୍ଥିବା, ଗୁମ୍ଫନ, ବହୁ ବସ୍ତୁକୁ ସୂତାଆଦିଦ୍ୱାରା ଯୋଡ଼ିବା, ରଚନ ।

ଗ୍ରଥିତ—ବିଂ. (ଗ୍ରନ୍ଥ୍+ତ) ଗୁମ୍ଫିତ, ଯାହା ଗୁନ୍ଥାହୋଇଅଛି, ଆକ୍ରାନ୍ତ, ହିଂସିତ,ରଚିତ,ସଙ୍କଟିତ, ଗଣ୍ଠିଗଣ୍ଠିଆ, ଘନୀଭୂତ, ଆହତ, ଅଧିକୃତ, (ବି) ଗଣ୍ଠିଗଣ୍ଠିଆ ଵଣ,(ସ୍ତ୍ରୀ) ଗ୍ରଥିତା ।

ଗ୍ରଥୀ—ପୁଂ.ବି. (ଗ୍ରନ୍ଥ୍+ଇନ୍) ଜଳ୍ପକ, ଯେ ଜଳ୍ପନ କରେ, ମିଥ୍ୟାଜଳ୍ପକାରୀ, (ସ୍ତ୍ରୀ) ଗ୍ରଥିନୀ ।

ଗ୍ରଥ୍ନ—ପୁଂ. ବି. ସ୍ତବକ ।

ଗ୍ରନ୍ଥ—ପୁଂ. ବି. (ଗ୍ରନ୍ଥ୍+ଅ) ଗୁମ୍ଫନ, ଗ୍ରନ୍ଥନ, ପୋଥି, ପୁସ୍ତକ, ଶାସ୍ତ୍ର ଧନ, ଶିଖମାନଙ୍କର ଧର୍ମଶାସ୍ତ୍ର,ରଚନା, ସନ୍ଦର୍ଭ ୩୨ଅକ୍ଷରବିଶିଷ୍ଟ ଶ୍ଳୋକ,ଅନୁଷ୍ଟୁପ୍ ଛନ୍ଦ, (ଗ୍ରା.ବି) ୧୦୮ କର୍ଣ୍ଣ ବିଶିଷ୍ଟ ମାଳାକୁ ଉପର୍ଯ୍ୟୁପରି ଗୁରୁଥର ଜପିବା ।

ଗ୍ରନ୍ଥକରଣ—କ୍ଲୀ.ବି. (ଗ୍ରନ୍ଥ+କୃ+ଅନ) ଗ୍ରନ୍ଥରଚନାକରିବା ।

ଗ୍ରନ୍ଥକର୍ତ୍ତା—ପୁଂ.ବିଂ. (ଗ୍ରନ୍ଥ+କୃ+ତୃ) ଗ୍ରନ୍ଥକାର, ଶାସ୍ତ୍ରଲେଖକ, (ସ୍ତ୍ରୀ) ଗ୍ରନ୍ଥକର୍ତ୍ତ୍ରୀ ।

ଗ୍ରନ୍ଥକାର—ପୁଂ.ବିଂ.(ଗ୍ରନ୍ଥ+କୃ+କ,ଅ) ଗ୍ରନ୍ଥରଚକ, ପୁସ୍ତକପ୍ରଣେତା, (ସ୍ତ୍ରୀ) ଗ୍ରନ୍ଥକାରୀ ।

ଗ୍ରନ୍ଥକୀଟ—ବି. (୬ତତ୍) ଯେଉଁ ପୋକ ପୋଥିପ୍ରଭୃତିରେ ରହି ତାକୁ କାଟନ୍ତି, (ଲ. ଅର୍ଥ) ଯେ ସର୍ବଦା ପୁସ୍ତକ ଅଧ୍ୟୟନରେ ଲଗିଥାଏ ।

ଗ୍ରନ୍ଥକୁଟ—ବି. (୬ତତ୍) ଗୁଡ଼ିଏ ଗ୍ରନ୍ଥ ସଂଗୃହୀତ ହୋଇ ସଞ୍ଚିତ ହୋଇଥିବାର ସ୍ଥାନ, ଲାଇବ୍ରେରୀ ।

ଗ୍ରନ୍ଥକୁଟୀ—ସ୍ତ୍ରୀ. ବି. ଗ୍ରନ୍ଥକୁଟ (ଦେଖ) । ଲେଖ୍ୟସ୍ଥାନ, ଗ୍ରନ୍ଥାଳୟ, ଯେଉଁଘରେ ବସି ଗ୍ରନ୍ଥ ଲେଖନ୍ତି ।

ଗ୍ରନ୍ଥଚୁମ୍ବକ—ପୁଂ. ବି. ଯେଉଁ ବ୍ୟକ୍ତି କେବଳ ଗ୍ରନ୍ଥଗୁଡ଼ିଏ ପଢ଼ିଛି କିନ୍ତୁ ତହିଁ ସମ୍ବନ୍ଧେ ସମ୍ୟକ୍ ଜ୍ଞାନଲାଭ କରିପାରି ନାହିଁ ।

ଗ୍ରନ୍ଥଚୁମ୍ବନ—ବି.ଭାବ ବା ବ୍ୟାବହାରିକତା ଗ୍ରହଣ ନ କରି କେବଳ ପୁସ୍ତକପାଠ ।

ଗ୍ରନ୍ଥଛଡ଼ା—ଗ୍ରା. ବିଂ. ଗ୍ରନ୍ଥ ବା ଶାସ୍ତ୍ର-ବହିର୍ଭୂତ ।

ଗ୍ରନ୍ଥନ—କ୍ଲୀ. ବି. (ଗ୍ରନ୍ଥ+ଭା, ଅନ) ଗୁମ୍ଫନ, ଗୁନ୍ଥିବା, ଗ୍ରଥନା (ଦେଖ) ।

ଗ୍ରନ୍ଥନା—ସ୍ତ୍ରୀ.ବି. (ଗ୍ରନ୍ଥନ+ଆ) ଗ୍ରଥନା (ଦେଖ) ।

ଗ୍ରନ୍ଥପାଠ—ବି.(୬ତତ୍)ପୁସ୍ତକ ପଢ଼ିବା ।

ଗ୍ରନ୍ଥବଦ୍ଧ—ବିଂ. (୭ତତ୍) ପୁସ୍ତକରେ ଲିଖିତ ।

ଗ୍ରନ୍ଥବାହୁଲ୍ୟ—ବି.(୬ତତ୍) ପୁସ୍ତକ ବଡ଼ ହେବା ଅବସ୍ଥା । [ଗ୍ରନ୍ଥବାହୁଲ୍ୟ ।

ଗ୍ରନ୍ଥବିସ୍ତର—ପୁଂ.ବି. ପୁସ୍ତକର ବିସ୍ତାର,

ଗ୍ରନ୍ଥସନ୍ଧି—ପୁଂ.ବି.(୬ତତ୍)ଗ୍ରନ୍ଥର ସନ୍ଧି, ଅଂଶବିଶେଷ, ପୁସ୍ତକର ଅଧ୍ୟାୟ ।

ଗ୍ରନ୍ଥସାହେବ—ଗ୍ରା. ବି. ଶିଖମାନଙ୍କର ଧର୍ମପୁସ୍ତକ । [ଲାଇବ୍ରେରୀ ।

ଗ୍ରନ୍ଥାଗାର—କ୍ଲୀ.ବି.(୬ତତ୍)ପୁସ୍ତକାଳୟ,

ଗ୍ରନ୍ଥାଗାରିକ—ପୁଂ.ବିଂ.(୬ତତ୍)ଗ୍ରନ୍ଥାଗାରର ରକ୍ଷକ, ଲାଇବ୍ରେରୀ ରକ୍ଷକ ।

ଗ୍ରନ୍ଥାନୁରାଗ—ପୁଂ.ବି. (୬ତତ୍) ପୁସ୍ତକ-ପ୍ରତି ଆସକ୍ତି, ପୁସ୍ତକପ୍ରିୟତା ।

ଗ୍ରନ୍ଥାବଳୀ—ବି. (୬ତତ୍) ପୁସ୍ତକସମୂହ ।

ଗ୍ରନ୍ଥାଳୟ—ପୁଂ. ବି. (୬ତତ୍) ଯେଉଁ-ଠାରେ ବହୁସଂଖ୍ୟକ ଗ୍ରନ୍ଥ ରଖାହୁଏ, ଲାଇବ୍ରେରୀ, ପୁସ୍ତକାଳୟ ।

ଗ୍ରନ୍ଥି—ପୁଂ. ବି. (ଗ୍ରନ୍ଥ+ଭା,ଇ) ବାଉଁଶର ପବଗଣ୍ଠି,କାଣ୍ଡସନ୍ଧି,ଲୁଗାର ଗୁଣ୍ଡି, ଦେହର ଗଣ୍ଠି ବା ସନ୍ଧିସ୍ଥାନ, ଆଳୁ, ଭୁର୍ଣ୍ଡି, ମୁଣ୍ଡି,ବିବାହବନ୍ଧନ, ଭଦ୍ରମୁଥା, ବକ୍ରତା, ଗୁଚ୍ଛ, ମିଥ୍ୟା, ହାରାବଳୀ, ପିଣ୍ଡାଳୁ, ବନ୍ଧନ,ମାୟାପାଶ,କୌଟିଲ୍ୟ, ଗଣ୍ଠିଅନା ଗଛ,ରୋଗବିଶେଷ ।

ଗ୍ରନ୍ଥିକ—କ୍ଲୀ.ବି. (ଗ୍ରନ୍ଥ+ଇକ)ପିପ୍ପଳୀ-ମୂଳ, ଗଣ୍ଠିଅନା ଗଛ, ଗୁଗୁଗୁଳୁ,କାନର ବାହାରର ରୋଗ, (ପୁଂ.ବି) କଣ୍ଡାର ବାଉଁଶ, ଦୈବଜ୍ଞ, ମାଦ୍ରୀତନୟ ସହଦେବ (ଅଜ୍ଞାତବାସ ସମୟରେ ଏହିନାମରେ ବିରାଟ-ରାଜଭବନରେ ବାସ କରିଥିଲେ) ।

ଗ୍ରନ୍ଥିଖେଟ—କ୍ଲୀ.ବି. ଗନ୍ଧମାଳିକା ।

ଗ୍ରନ୍ଥିଛେଦ—ବି.(୬ତତ୍)ଗଣ୍ଠିକାଟିବା, ଗଣ୍ଠିକଟା ଚୋରି, ଲୁଗାର ଗଣ୍ଠିକାଟି ଚୋରି କରିବା । [ଚୋର ।

ଗ୍ରନ୍ଥିଚ୍ଛେଦକ—ପୁଂ.ବି.ଜାଲିକ,ଗଣ୍ଠିକଟା

ଗ୍ରନ୍ଥିଚ୍ଛେଦନ — କ୍ଲୀ. ବି. ଗ୍ରନ୍ଥିଚ୍ଛେଦ (ଦେଖ)

ଗ୍ରନ୍ଥିତ — ବି°. (ଗ୍ରନ୍ଥ + ତ) ଗୁମ୍ଫିତ, ଗୁନ୍ଥା ହୋଇଥିବା ।

ଗ୍ରନ୍ଥିତ୍ୱ — କ୍ଲୀ. ବି. ଗ୍ରନ୍ଥିର ଭାବ ।

ଗ୍ରନ୍ଥିଦଳ — ପୁଂ. ବି. ଗେ୍ରରକନାମକ ଗନ୍ଧଦ୍ରବ୍ୟବିଶେଷ, ଗ୍ରନ୍ଥିପର୍ଣ୍ଣ ବୃକ୍ଷ ।

ଗ୍ରନ୍ଥିଦଳା — ସ୍ତ୍ରୀ. ବି. (ଗ୍ରନ୍ଥିଦଳ + ଆ) ମାଳାକନ୍ଦ ।

ଗ୍ରନ୍ଥିଦୂର୍ବା — ସ୍ତ୍ରୀ. ବି. (କ. ଧା) ଦୁର୍ବାବିଶେଷ, ଗଣ୍ଠିଦୁବ, ମାଳାଦୁବା ।

ଗ୍ରନ୍ଥିପର୍ଣ — ପୁଂ. ବି. ଗେ୍ରରକ ନାମକ ଗନ୍ଧଦ୍ରବ୍ୟ ।

ଗ୍ରନ୍ଥିପର୍ଣ୍ଣ — କ୍ଲୀ. ବି. ଗଣ୍ଠିଅଳା ଗଛ, ଗେ୍ରରକନାମକ ଗନ୍ଧଦ୍ରବ୍ୟ ।

ଗ୍ରନ୍ଥିପର୍ଣ୍ଣକ — ପୁଂ. ବି. (ଗ୍ରନ୍ଥିପର୍ଣ୍ଣ + କ) ଶ୍ରୀବାସ ।

ଗ୍ରନ୍ଥିପର୍ଣ୍ଣା — ସ୍ତ୍ରୀ. ବି. (ଗ୍ରନ୍ଥିପର୍ଣ୍ଣ + ଆ) ଜତୁକା ଲତା । [ ଗଣ୍ଡଦୁବା ।

ଗ୍ରନ୍ଥିପର୍ଣ୍ଣୀ — ସ୍ତ୍ରୀ. ବି. (ଗ୍ରନ୍ଥିପର୍ଣ୍ଣ + ଈ)

ଗ୍ରନ୍ଥିଫଳ — ପୁଂ. ବି. କପିତ୍ଥ ବୃକ୍ଷ, ମଦନ ଗଛ, ଶାଲୁରୁଣ୍ଡ ବୃକ୍ଷ ।

ଗ୍ରନ୍ଥିବଦ୍ଧ — ବି°. (୩ତତ୍) ଗଣ୍ଠି ବନ୍ଧା ହୋଇଥିବା ।

ଗ୍ରନ୍ଥିବନ୍ଧନ — କ୍ଲୀ. ବି. ଗଣ୍ଠି ପକାଇବା, ଜନ୍ମତିଥିରେ ଗୋରୋଚନାଯୁକ୍ତ ସୂତ୍ର ବନ୍ଧନ, ବିବାହକାଳରେ ବରକନ୍ୟାଙ୍କର ଗେଣ୍ଠାଲବନ୍ଧନ ବା ପକାଇବା ।

ଗ୍ରନ୍ଥିବର୍ହ — ପୁଂ. ବି. (ଗ୍ରନ୍ଥି + ବର୍ହ + ଇନ୍) ଗଣ୍ଠି ଅଳା ଗଛ, ଗ୍ରନ୍ଥିପର୍ଣ୍ଣବୃକ୍ଷ ।

ଗ୍ରନ୍ଥିଭେଦ — ପୁଂ. ବି. (ଗ୍ରନ୍ଥି + ଭିଦ୍ + ଅ) ଗଣ୍ଠିକଟାଚୋର, ଗଣ୍ଠି କାଟିବା ।

ଗ୍ରନ୍ଥିମତ୍ — ବି°. (ଗ୍ରନ୍ଥି + ମତ୍) ଗଣ୍ଠି-ଗଣ୍ଠିଆ, ଯାହାର ଦେହରେ ଅନେକ ଗଣ୍ଠି ଅଛି ।

ଗ୍ରନ୍ଥିମାନ୍ — ପୁଂ. ବି°. (ଗ୍ରନ୍ଥି + ମତ୍) ଗ୍ରନ୍ଥିଯୁକ୍ତ, ଗଣ୍ଠିଗଣ୍ଠିଆ, ଗଣ୍ଠିବିଶିଷ୍ଟ, (ପୁଂ. ବି) ବାଲିଚେଙ୍ଗ, ହାଡ଼କଙ୍କାଳି ଗଛ, ହାଡ଼ଯୋଡ଼ା ଗଛ । [ମନ୍ଦାର ।

ଗ୍ରନ୍ଥିମତ୍‌ଫଳା — ପୁଂ. ବି. ଲକୁଚ ବୃକ୍ଷ,

ଗ୍ରନ୍ଥିମୂଳ — କ୍ଲୀ. ବି. ଗୃଞ୍ଜନ, ଗାଜର ।

ଗ୍ରନ୍ଥିମୂଳା — ସ୍ତ୍ରୀ. ବି. (ଗ୍ରନ୍ଥିମୂଳ + ଆ) ମାଳାଦୁବା, ଦୁବ । [ (ଦେଖ) ।

ଗ୍ରନ୍ଥିମୋଚକ — ପୁଂ. ବି°. ଗ୍ରନ୍ଥିଚ୍ଛେଦକ,

ଗ୍ରନ୍ଥିମୋଚନ — କ୍ଲୀ. ବି. (୬ତତ୍) ଗଣ୍ଠି ଫିଟାଇବା, ଗେଣ୍ଠାଲଫିଟା, ଗ୍ରନ୍ଥିଚ୍ଛେଦ (ଦେଖ) ।

ଗ୍ରନ୍ଥିଯୁକ୍ତ — ବି°. (ଗ୍ରନ୍ଥି + ଯୁକ୍ତ) ଗ୍ରନ୍ଥି-ମତ୍, ଗଣ୍ଠିଗଣ୍ଠିଆ ।

ଗ୍ରନ୍ଥିଲ — ବି°. (ଗ୍ରନ୍ଥି + ଲ) ଗ୍ରନ୍ଥିଯୁକ୍ତ, ଗଣ୍ଠିଗଣ୍ଠିଆ, (ବି) ପିପ୍ପଳୀମୂଳ, ଅଦା, ଭଇଁଚଗଛ, ବାଉଁଶଗଛ, ଗୃଞ୍ଜଳୀସ୍ୟା ଶାଗ, ପିଣ୍ଡାଳୁ, ଗେ୍ରରକ ଗନ୍ଧଦ୍ରବ୍ୟ ।

ଗ୍ରନ୍ଥିଲଦେହ — ବି°. ଗ୍ରନ୍ଥିଯୁକ୍ତ ଶରୀର-ଧାରୀ (ଜୀବ) ।

ଗ୍ରନ୍ଥିଲା — ସ୍ତ୍ରୀ. ବି. (ଗ୍ରନ୍ଥିଲ + ଆ) ଭଦ୍ର-ମୁଥା, ମାଳାଦୁବା, ଗଣ୍ଡଦୁବା ।

ଗ୍ରନ୍ଥିହର — ପୁଂ. ବି. (ଗ୍ରନ୍ଥି + ହୃ + କ, ଅ) ଅମାତ୍ୟ, ମନ୍ତ୍ରୀ, ସଚିବ ।

ଗ୍ରନ୍ଥିହର — ପୁଂ. ବି. (ବ. ବ୍ରୀ) ମନ୍ତ୍ରୀ, ସଚିବ ।

ଗ୍ରନ୍ଥୀ — ପୁଂ. ବି°. (ଗ୍ରନ୍ଥ + ଇନ୍) ବହୁ-ଗ୍ରନ୍ଥରଚୟିତା, ପୁସ୍ତକରକ୍ଷକ, ଯାହା ନିକଟରେ ବହୁପୁସ୍ତକ ଅଛି, ଯେ ବହୁ-ଗ୍ରନ୍ଥ ପଢ଼ିଅଛି, (ସ୍ତ୍ରୀ) ଗ୍ରନ୍ଥିନୀ ।

ଗ୍ରନ୍ଥୀକ — କ୍ଲୀ. ବି. ପିପ୍ପଳୀମୂଳ ।

ଗ୍ରଭ — ପୁଂ. ବି. (ଗ୍ରଭ୍ + ଅ) ଗ୍ରହଣ ।

ଗ୍ରଭଣ — କ୍ଲୀ. ବି. (ଗ୍ରଭ୍ + ଅନ) ଗ୍ରହଣ ।

ଗ୍ରଭଣବାନ୍ — ପୁଂ. ବି. (ଗ୍ରଭଣ + ବତ୍) ଗ୍ରହଣବିଶିଷ୍ଟ, (ସ୍ତ୍ରୀ) ଗ୍ରଭଣବତୀ ।

ଗ୍ରଭୀତ୍ — ପୁଂ. ବି. (ଗ୍ରଭ୍ + ତୃଚ୍) ଗ୍ରହୀତା, ଯେ ଗ୍ରହଣ କରେ ।

ଗ୍ରସନ — କ୍ଲୀ. ବି. (ଗ୍ରସ୍ + ଭା, ଅନ) ଭକ୍ଷଣ, ଗ୍ରାସ, ଅସୁରବିଶେଷ, ଗ୍ରହଣ-ବିଶେଷ, ଗ୍ରହକର୍ତ୍ତୃକ ସୂର୍ଯ୍ୟ ବା ଚନ୍ଦ୍ର-ଙ୍କର ଗ୍ରାସ, ଗିଳିପକାଇବା, ଗ୍ରାସକରିବା, ଧରିବା, ଗ୍ରହଣ, ଗୁଣ୍ଡା, ଗିଳିବା ।

ଗ୍ରସମାନ — ପୁଂ. ବି. (ଗ୍ରସ୍ + ମାନ) ଯେ ଗ୍ରାସ କରୁଅଛି, ଭୋଜନ କରୁଥିବା ।

ଗ୍ରସିଷ୍ଣୁ — ବି°. (ଗ୍ରସ + ଇଷ୍ଣୁ) ଯେ ଅତି-ଶୟରେ ଗ୍ରାସ କରିଅଛି ।

ଗ୍ରସିଷ୍ଣୁ — ବି°. (ଗ୍ରସ୍ + ଇଷ୍ଣୁ) ଗ୍ରସନ-ଶୀଳ, (ବି) ପରଂବ୍ରହ୍ମ ।

ଗ୍ରସ୍ତ — ବି°. (ଗ୍ରସ୍ + ତ) ଭକ୍ଷିତ, ଗିଳାହୋଇଥିବା, ଆକ୍ରାନ୍ତ, ଉଦ୍‌ଗୀର୍ଣ୍ଣିତ, ଧୃତ, ଲୁପ୍ତ କରାଯାଇଥିବା (ପଦାଦି), (କ୍ଲୀ ବି) ଅସମ୍ପୂର୍ଣ୍ଣୋଚ୍ଚାରିତଶବ୍ଦ, ଲୁପ୍ତ-ବର୍ଣ୍ଣ, ପଦ ବା ବାକ୍ୟ, (ବି°) ଭକ୍ଷକ, ରାହୁକେତୁଦ୍ୱାରା ଅଭିଭୂତ (ସୂର୍ଯ୍ୟ ବା ଚନ୍ଦ୍ର) ।

ଗ୍ରସ୍ତକାଳ — ପୁଂ. ବି. ସୂର୍ଯ୍ୟଚନ୍ଦ୍ର ରାହୁଗ୍ରସ୍ତ ଅବସ୍ଥାରେ ରହିବାର ସମୟ ।

ଗ୍ରସ୍ତମୁକ୍ତ — ବି° (କ. ଧା.) ରାହୁ ବା କେତୁ ଦ୍ୱାରା ଆକ୍ରାନ୍ତହୋଇ ପରେ ମୋକ୍ଷ-ପ୍ରାପ୍ତ (ସୂର୍ଯ୍ୟ ବା ଚନ୍ଦ୍ର) ।

ଗ୍ରସ୍ତାସ୍ତ — ପୁଂ. ବି. (ଗ୍ରସ୍ତ + ଅସ୍ତ) ଗ୍ରସ୍ତ-ହୋଇ ଯେ ଅଦୃଷ୍ଟ ହୁଏ, (କ୍ଲୀ. ବି.) ଗ୍ରହଣକାଳରେ ଚନ୍ଦ୍ର-ସୂର୍ଯ୍ୟଙ୍କର ତିରୋଧାନ । [ ଗିଳିବା ।

ଗ୍ରସ୍ତି — ସ୍ତ୍ରୀ. ବି. (ଗ୍ରସ୍ + ଭା; ତି) ଗ୍ରାସ,

ଗ୍ରସ୍ତୋଦୟ — ପୁଂ. ବି. (ଗ୍ରସ୍ତ + ଉଦୟ) ରାହୁଗ୍ରସ୍ତ ଚନ୍ଦ୍ର ବା ସୂର୍ଯ୍ୟଙ୍କର ଉଦୟ ।

ଗ୍ରସ୍ୟ — ବି°. (ଗ୍ରସ୍ + ଯ) ଭକ୍ଷଣୀୟ ।

ଗ୍ରହ — ପୁଂ. ବି. (ଗ୍ରହ + ଅ) ସୂର୍ଯ୍ୟାଦି, ଜ୍ୟୋତିଷ୍କଗଣ, ଆଦିତ୍ୟାଦିନବଗ୍ରହ, ଜବରଦସ୍ତି, ଶତ୍ରୁଠାରୁ ନିଆଯିବା ବସ୍ତୁ, ବାଳକମାନଙ୍କର ଅନିଷ୍ଟ କାରକ ସ୍କନ୍ଦ ପ୍ରଭୃତିରୋଗ, ଆଦାନ, ଅନୁଗ୍ରହ, ନିର୍ବନ୍ଧ, ରଣୋଦ୍ୟମ, ଧାରଣ, ସ୍ୱୀକ-ରଣ, ବୋଧ, ମୁଖରେ ଉଚ୍ଚାରଣ, ଜ୍ଞାନ, ନୈକଟ୍ୟ, ଚନ୍ଦ୍ରଗ୍ରହଣ ବା ସୂର୍ଯ୍ୟୋପରାଗ, ନବସଂଖ୍ୟା, ଅଧ୍ୟବସାୟ, ଗ୍ରହବୈଗୁଣ୍ୟ, ମଗର, ଗ୍ରାହ, କୁମ୍ଭୀର, ଗୃହ, ଅଣକ, ପାଦ, ଗ୍ରହଦୋଷ ।

ଗ୍ରହକ — ପୁଂ. ବି°. (ଗ୍ରହ୍ + ଅ + କ) ଗ୍ରାହକ, ଗ୍ରହଣକାରୀ, (ବି) ବନ୍ଦୀ, କାରା-ରୁଦ୍ଧବ୍ୟକ୍ତି ।

ଗ୍ରହକକ୍ଷା — ସ୍ତ୍ରୀ. ବି. ଯେଉଁ ବୃତ୍ତାକାର-ପଥରେ ଗ୍ରହମାନେ ଭ୍ରମଣ କରନ୍ତି ।

ଗ୍ରହକଙ୍କାଳ — ପୁଂ.ବି.(ଚଳିତ) ରାହୁଗ୍ରହ, ରାହୁ ।

ଗ୍ରହକଲ୍ଲୋଳ — ପୁଂ.ବି, ରାହୁ, ରାହୁଗ୍ରହ ।

ଗ୍ରହକୁଷ୍ମାଣ୍ଡ—ପୁଂ. ବି. ପ୍ରାଣୀମାନଙ୍କର ଉପଦ୍ରାବକ କୁଷ୍ମାଣ୍ଡାକାର ଦେବଯୋନି-ବିଶେଷ ।

ଗ୍ରହକୋପ — ବି. (ଚଳିତ) ମନୁଷ୍ୟ ବା ପୃଥିବୀ ଉପରେ ଗ୍ରହମାନଙ୍କର ଅଶୁଭଦୃଷ୍ଟି ।

ଗ୍ରହଗଣିତ — କ୍ଳୀ. ବି. ଜ୍ୟୋତିଃଶାସ୍ତ୍ରର ଗୋଟିଏ ସ୍କନ୍ଧ, ଯହିଁରେ ଗ୍ରହମାନଙ୍କର ବିବରଣ ଅଛି ।

ଗ୍ରହଗତି — ସ୍ତ୍ରୀ.ବି. ଗ୍ରହମାନଙ୍କର ଗମନ, ସ୍ୱୀୟକକ୍ଷାତିକ୍ରମ ।

ଗ୍ରହଗୋଚର—ପୁଂ.ବି. (ଚଳିତ) ଜନ୍ମ-ପ୍ରଭୃତିରାଶିରେ ଗ୍ରହମାନଙ୍କର ଶୁଭାଶୁଭ ଗତିବିଶେଷ ।

ଗ୍ରହଗନ୍ଧ — ପୁଂ. ବି. ସୂର୍ଯ୍ୟାଦି ଗ୍ରହମାନ-ଙ୍କର ଉଦ୍ଦେଶ୍ୟରେ ଦେୟ ରକ୍ତଚନ୍ଦନ-ପ୍ରଭୃତି ।

ଗ୍ରହଚକ୍ର — କ୍ଳୀ. ବି. ଗ୍ରହମଣ୍ଡଳ (ଦେଖ) ।

ଗ୍ରହଚିନ୍ତକ—ପୁଂ. ବି. (ଗ୍ରହ + ଚିନ୍ତ୍ + ଅକ) ଚଳିତ, ଦୈବଜ୍ଞ, ଜ୍ୟୋତିଷିକ ।

ଗ୍ରହଜଗତ୍ — କ୍ଳୀ.ବି. (ଚଳିତ) ଗ୍ରହଉପ-ଗ୍ରହାଦିଙ୍କ ଭ୍ରମଣପଥ-ସମ୍ବଳିତ ଅଞ୍ଚଳ ।

ଗ୍ରହଣ — କ୍ଳୀ. ବି. (ଗ୍ରହ + ଅନ) ବରଣ, ଅବଲମ୍ବନ, ଉଚ୍ଚାରଣ, ବୋଧ, ଅନୁଭବ, ଧାରଣ,ଆଦାନ,ନେବା, ସ୍ୱୀକାର, ଜ୍ଞାନ, ଆଦର, ହସ୍ତ, ଇନ୍ଦ୍ରିୟ, ଶବ୍ଦ-ଉପରାଗ,ଭୋଜନ, ବନ୍ଦୀକରିବା,ବନ୍ଧନ, ଜବରଦସ୍ତି ଧରିବା, ସ୍ୱବଶକୁ ଆଣିବା, ଅନ୍ୟଗ୍ରହର ଛାୟାପାତଦ୍ୱାରା ସୂର୍ଯ୍ୟ ଓ ଚନ୍ଦ୍ରଙ୍କର ଆଂଶିକ ବା ସମ୍ପୂର୍ଣ୍ଣ ଅଦର୍ଶନ, ନିମନ୍ତ୍ରଣ, ଅର୍ଥପ୍ରତିଧ୍ୱନି, କ୍ରୟ, ପାଣି-ଗ୍ରହଣ, ବିବାହ, ବନ୍ଦୀ, ପୁରସ୍କାର ।

ଗ୍ରହଣକ — କ୍ଳୀ. ବି. (ଗ୍ରହ + ଅନ + କ) ଗ୍ରାହକଶାସ୍ତ୍ର ।

ଗ୍ରହଣକରିବା — ଗ୍ରା.କ୍ରି.ନେବା,କାର୍ଯ୍ୟତଃ ଓ ବାକ୍ୟତଃ ସ୍ୱୀକାରକରିବା, ଭୋଜନ-କରିବା, ବୋଧ କରିବା, ଧରିବା ।

ଗ୍ରହଣକାଳ — ବି. (ଚଳିତ) ଯେଉଁ ସମୟରେ ଚନ୍ଦ୍ର ବା ସୂର୍ଯ୍ୟ ରାହୁଗ୍ରସ୍ତ ଅବସ୍ଥାରେ ଥାଆନ୍ତି ।

ଗ୍ରହଣକ୍ଷମ — ପୁଂ, ବିଂ. (ଚଳିତ) ଯେ ନେଇ ପାରେ, ଧାରଣସମର୍ଥ, ଧାରକ, (ସ୍ତ୍ରୀ) ଗ୍ରହଣକ୍ଷମା ।

ଗ୍ରହଣଖଣ୍ଡିଆ—ଗ୍ରା. ପୁଂ. ବିଂ. ଯାହାର ଜନ୍ମରୁ ନାକ ବା ଓଷ୍ଠ ଖଣ୍ଡିତ ହୋଇ ଥାଏ ।

ଗ୍ରହଣସ୍ନାନ — କ୍ଳୀ.ବି.(କ.ଧା)ସୂର୍ଯ୍ୟୋପରାଗ ଓ ଚନ୍ଦ୍ର ଗ୍ରହଣ ଲଗିବା ସମୟରେ ଓ ଗ୍ରହଣ ଛାଡ଼ିବା ସମୟରେ ହିନ୍ଦୁଶାସ୍ତ୍ର-ବିହିତ ସ୍ନାନ ।

ଗ୍ରହଣାନ୍ତ — କ୍ଳୀ.ବି. ଗ୍ରହଣର ଅବସାନ ।

ଗ୍ରହଣି — ସ୍ତ୍ରୀ. ବି. (ଗ୍ରହ + ଅନି)ଗ୍ରହଣୀ-ରୋଗ, ଝାଡ଼ାରୋଗ, ଉଦରାମୟ,ନାଡ଼ି-ବିଶେଷ, ଉଦରମଧ୍ୟସ୍ଥ କୋଷ୍ଠ, ଯେଉଁ-ଠାରେ ଖାଦ୍ୟଦ୍ରବ୍ୟ ସଙ୍ଗେ ପିତ୍ତ ମିଶେ ।

ଗ୍ରହଣିହର—ବି. (ଗ୍ରହଣି + ହୃ + କ,ଅ) ଲବଙ୍ଗ, (ବି) ଗ୍ରହଣିରୋଗନାଶକ ।

ଗ୍ରହଣୀ — ସ୍ତ୍ରୀ.ବି. (ଗ୍ରହଣି + ଈ)ଅଗ୍ନ୍ୟଧି-ଷ୍ଠାନ ନାଡ଼ୀ,ପିତ୍ତାଧାର, ଗ୍ରହଣୀ ରୋଗ, ଉଦରଭଙ୍ଗ ରୋଗବିଶେଷ ।

ଗ୍ରହଣୀକପର୍ଦ୍ଦପୋଟଳୀ— ଗ୍ରହଣୀରୋଗର ଔଷଧବିଶେଷ ।

ଗ୍ରହଣୀକପାଟ — ବି. ଏକପ୍ରକାର ଔଷଧ, ମାହାଳ, ମହାନିମ୍ବ ।

ଗ୍ରହଣୀୟ—ବିଂ. (ଗ୍ରହ୍ + ଅନୀୟ)ଗ୍ରହଣ-ଯୋଗ୍ୟ, ଗ୍ରାହ୍ୟ, (ସ୍ତ୍ରୀ) ଗ୍ରହଣୀୟା ।

ଗ୍ରହଣୀହର — ବି. ( ଗ୍ରହଣୀ + ହୃ + ଅ) ଲବଙ୍ଗ, (ବିଂ) ଗ୍ରହଣୀନାଶକ, ଯହିଁରେ ଗ୍ରହଣୀରୋଗ ନଷ୍ଟ ହୁଏ ।

ଗ୍ରହତତ୍ତ୍ୱ — କ୍ଳୀ. ବି. ଗ୍ରହମାନଙ୍କର ଯଥା-ଯଥ ବୃତ୍ତାନ୍ତ,ଗ୍ରହମାନଙ୍କର ସ୍ଥାନସ୍ଥିତିର ବିବରଣ ।

ଗ୍ରହତତ୍ତ୍ୱବିଦ୍ୟା-ସ୍ତ୍ରୀ. ବି.(କ.ଧା)ଜ୍ୟୋତିଃ ଶାସ୍ତ୍ର, ମହାତତ୍ତ୍ୱସଂକ୍ରାନ୍ତବିଦ୍ୟା ।

ଗ୍ରହତା — ସ୍ତ୍ରୀ. ବି. (ଗ୍ରହ + ତା) ଗ୍ରହର ଧର୍ମ ବା ଭାବ, ଗ୍ରହତ୍ୱ ।

ଗ୍ରହଦକ୍ଷିଣା — ସ୍ତ୍ରୀ. ବି. ଗ୍ରହଉଦ୍ଦେଶ୍ୟରେ ଦେୟ ଦକ୍ଷିଣା, ଗ୍ରହଯଜ୍ଞରେ ଦେୟ ଦକ୍ଷିଣା ।

ଗ୍ରହଦଶା — ସ୍ତ୍ରୀ. ବି. ଗ୍ରହର ଭୋଗକାଳ, ଗ୍ରହର ମନୁଷ୍ୟଜୀବନରେ ଅଧିକାରକାଳ, ଦୁର୍ଭାଗ୍ୟ ।

ଗ୍ରହଦାନ—କ୍ଳୀ. ବି. ଗ୍ରହ ଉଦ୍ଦେଶ୍ୟରେ ଯେ ଦ୍ରବ୍ୟ ଦାନ କରିବାକୁ ହୁଏ ।

ଗ୍ରହଦୃଷ୍ଟି—ସ୍ତ୍ରୀ. ବି. (ଗ୍ରହ + ଦୃଷ୍ଟି) ଗ୍ରହ-ମାନଙ୍କର ପରସ୍ପର ପ୍ରତି ଓ ସ୍ଥାନାନ୍ତର ପ୍ରତି ଦୃଷ୍ଟି ।

ଗ୍ରହଦେବତା—ସ୍ତ୍ରୀ. ବି. ଗ୍ରହମାନଙ୍କର ଅଧିଷ୍ଠାତ୍ରୀ ଦେବତା ରୁଦ୍ରପ୍ରଭୃତି ।

ଗ୍ରହଦୋଷ — ପୁଂ. ବି. ଗ୍ରହମାନଙ୍କର ପ୍ରତିକୂଳ ଅବସ୍ଥିତି-ଜନିତ ଅମଙ୍ଗଳ ।

ଗ୍ରହଦ୍ରୁମ — ପୁଂ.ବି.(ଗ୍ରହ + ଦ୍ରୁମ)ଶାକ-ବୃକ୍ଷ, କଳଡ଼ାଶୃଙ୍ଗୀ ।

ଗ୍ରହଧୂପ—ପୁଂ. ବି. ଗ୍ରହ ଉଦ୍ଦେଶ୍ୟରେ ପ୍ରଦେୟ ଧୂପବିଶେଷ ।

ଗ୍ରହନକ୍ଷତ୍ର — ବି.(ଦ୍ୱନ୍ଦ୍ୱ)ଗ୍ରହ ଓ ନକ୍ଷତ୍ର ।

ଗ୍ରହନାୟକ—ପୁଂ. ବି. (ଗ୍ରହ + ନାୟକ) (ଚଳିତ) ସୂର୍ଯ୍ୟ, ଶନି, ଅର୍କବୃକ୍ଷ ।

ଗ୍ରହନାଶ — ପୁଂ.ବି.(ଗ୍ରହ + ନଶ୍ + ଣିଚ୍ + ଅ)ଶାକବୃକ୍ଷ, ଶାଗଗଛ, ଛତିଆନା-ଗଛ ।

ଗ୍ରହନାଶନ — ପୁଂ. ବି. ଶାକବୃକ୍ଷ, ଶାଗ-ଗଛ, ଛତିଆନା ଗଛ ।

ଗ୍ରହନିଗ୍ରହ—ବି. ( ଦ୍ୱନ୍ଦ୍ୱ ) ପୁରସ୍କାର ଓ ଦଣ୍ଡ, ଅନୁଗ୍ରହ ଓ ପ୍ରତିକୂଳତା ।

ଗ୍ରହନୀହାରିକା—ବି. (ଚଳିତ) ସୁଦୂରସ୍ଥ ଅସ୍ପଷ୍ଟ ନକ୍ଷତ୍ରପୁଞ୍ଜ ।

ଗ୍ରହନେମି—ପୁଂ. ବି. ( ଗ୍ରହ + ନେମି ) ଚନ୍ଦ୍ର ଆକାଶ ।

ଗ୍ରହପତି—ପୁଂ.ବିଂ. (ଗ୍ରହ + ପତି)ସୂର୍ଯ୍ୟ, ଶନିଗ୍ରହ, ଅର୍କବୃକ୍ଷ, ଚନ୍ଦ୍ର, ଗୃହସ୍ୱାମୀ ।

ଗ୍ରହପୀଡ଼ା—ସ୍ତ୍ରୀ. ବି. (କ.ଧା) ଅଶୁଭ-ଗ୍ରହମାନେ ଶାରୀରିକ ବା ମାନସିକ ଯାତନା ଉତ୍ପାଦନ କରିବାର ନାମ ଗ୍ରହପୀଡ଼ା, (ଚଳିତ) ଚନ୍ଦ୍ର ବା ସୂର୍ଯ୍ୟଙ୍କ ଗ୍ରହଣ ।

ଗ୍ରହପୀଡ଼ନ—କ୍ଲୀ. ବି. (ଗ୍ରହ + ପୀଡନ) ଗ୍ରହପୀଡ଼ା (ଦେଖ) ।

ଗ୍ରହପୁଷ—ପୁଂ. ବି. (ଗ୍ରହ + ପୁଷ + ଅ) ସୂର୍ଯ୍ୟ, ରବି ।

ଗ୍ରହପୂଜା—ସ୍ତ୍ରୀ.ବି.(୬ତତ୍)ଗ୍ରହମାନଙ୍କର ଅର୍ଚ୍ଚନା, କୁଗ୍ରହମାନଙ୍କରଶାନ୍ତି ବିଧାନାର୍ଥ ଅନୁଷ୍ଠେୟ ଶାସ୍ତ୍ରୋକ୍ତ କ୍ରିୟା ।

ଗ୍ରହପ୍ରତ୍ୟଧିଦେବତ—କ୍ଲୀ. ବି. ଗ୍ରହମାନଙ୍କର-ପ୍ରତି ଅଧିପତି ଦେବତା ।

ଗ୍ରହବଳ—କ୍ଲୀ.ବି. (୬ତତ୍)ଗ୍ରହମାନଙ୍କର ବଳ, ସାମର୍ଥ୍ୟ, ଯଥା—ସ୍ଥାନବଳ, ଚେଷ୍ଟାବଳ, କାଳବଳ, ଦିଗ୍‌ବଳ, ଏପରି ଗୃହ ପ୍ରକାର ବଳ ।

ଗ୍ରହବଳି—ପୁଂ. ବି. (୬ତତ୍) ଗ୍ରହମାନଙ୍କର ପୂଜୋପହାର, ଗୁଡ଼ୋଦନାଦି, (ଗୁଡ଼ଭାତପ୍ରଭୃତି) ।

ଗ୍ରହଭକ୍ତି—ସ୍ତ୍ରୀ.ବି. (ଗ୍ରହ + ଭକ୍ତି) ଗ୍ରହମାନଙ୍କର ଭାଗ, ଅଂଶ ବା ଅଧିକାର ।

ଗ୍ରହଭୀତିଜିତ୍—ପୁଂ.ବି. (ଗ୍ରହ + ଭୀତି + ଜି + କ୍ୱିପ୍) ଗନ୍ଧଦ୍ରବ୍ୟବିଶେଷ, ଚଢ଼ା ।

ଗ୍ରହଭୋଜନ—କ୍ଲୀ.ବି. ଗ୍ରହ ଉଦ୍ଦେଶ୍ୟରେ ଦେୟ ବଳି,ଗୁଡ଼ ଓଦନ (ଭାତ)ପ୍ରଭୃତି ।

ଗ୍ରହମଣି—ପୁଂ. ବି. ( ୬ତତ୍ ) ସୂର୍ଯ୍ୟ, ଗ୍ରହରାଜ (ଦେଖ) ।

ଗ୍ରହମଣ୍ଡଳ—କ୍ଲୀ. ବି. (୬ତତ୍)ଗ୍ରହସମୂହ, ଗ୍ରହପୂଜା ନିମିତ୍ତ କରାଯାଇଥିବା ପୂଜାସ୍ଥାନ ବା ମଣ୍ଡଳ, ଭିନ୍ନ ଭିନ୍ନ ରାଶିମାନଙ୍କରେ ଗ୍ରହମାନଙ୍କର ଅବସ୍ଥାନ-ନିର୍ଦ୍ଦେଶ ଚକ୍ର । [ (ଦେଖ) ।

ଗ୍ରହମଣ୍ଡଳୀ—ବି. (୬ତତ୍) ଗ୍ରହମଣ୍ଡଳ

ଗ୍ରହମୈତ୍ର—କ୍ଲୀ. ବି. ବର ଓ କନ୍ୟାର ରାଶ୍ୟଧିପତି ଗ୍ରହର ମିତ୍ରତା ବିବାହରେ ବିଚାର୍ଯ୍ୟ ।

ଗ୍ରହଯଜ୍ଞ—ପୁଂ.ବି.(୬ତତ୍)ଶାନ୍ତି ଓ ପୁଷ୍ଟି କର୍ମରେ ମନୋରଥ ସିଦ୍ଧି ନିମିତ୍ତ ଗ୍ରହ ଉଦ୍ଦେଶ୍ୟରେ କର୍ତ୍ତବ୍ୟ ଯଜ୍ଞ ।

ଗ୍ରହଯାଗ—ପୁଂ.ବି. (୬ତତ୍) ଗ୍ରହଯଜ୍ଞ (ଦେଖ) ।

ଗ୍ରହଯାମଳ—ବି. ଜ୍ୟୋତିଷସମ୍ବନ୍ଧୀୟ ଖଣ୍ଡିଏ ଯାମଳ ଗ୍ରନ୍ଥ ।

ଗ୍ରହଯାଜ୍ୟ—ପୁଂ. ବି°.(ଗ୍ରହ + ଯଜ୍ + ଣିଚ୍ + ଯ) ଗ୍ରହକ, ଗ୍ରାହକ ।

ଗ୍ରହୟାଳୁ—ପୁଂ. ବି°. (ଗ୍ରହ + ଣିଚ୍ + ଆଳୁ) ଗ୍ରହକ, ଗ୍ରାହକ ।

ଗ୍ରହଯୁତି—ପୁଂ.ବି. (୬ତତ୍) ଗ୍ରହମାନଙ୍କର ଏକତ୍ରାବସ୍ଥାନ ବା ପରସ୍ପର ସଂକ୍ରମଣ ।

ଗ୍ରହଯୁଦ୍ଧ—କ୍ଲୀ.ବି.ମଙ୍ଗଳପ୍ରଭୃତି ପାଞ୍ଚଟି ତାରାଗ୍ରହମାନଙ୍କର କୌଣସି ଦୁଇଟି ଉପର୍ଯ୍ୟୁପରି ଅବସ୍ଥିତ ହେଲେ,ସେମାନଙ୍କର କିରଣ ସ୍ପର୍ଶାଦି ହୋଇଥାଏ; ତାହାର ନାମ ଗ୍ରହଯୁଦ୍ଧ ।

ଗ୍ରହଯୁଦ୍ଧଭ—କ୍ଲୀ.ବି. ଯେଉଁ ନକ୍ଷତ୍ରରେ ଥାଇ ଗ୍ରହମାନଙ୍କର ଯୁଦ୍ଧ ହୁଏ ।

ଗ୍ରହରାଜ—ପୁଂ. ବି. (ଗ୍ରହ + ରାଜ + ଅ) ସୂର୍ଯ୍ୟ, ଚନ୍ଦ୍ର, ବୃହସ୍ପତି, ଶନି ।

ଗ୍ରହରୈବତ—ବି. ସୂତିକାଗୃହ ।

ଗ୍ରହବହ୍ନି—ପୁଂ. ବି. ଗ୍ରହମାନଙ୍କର ଉଦ୍ଦେଶ୍ୟରେ ସ୍ଥାପିତ ଅଗ୍ନି ।

ଗ୍ରହବିପ୍ର—ପୁଂ.ବି. (ମଧ୍ୟ.କ.ଧା) ଗ୍ରହାଚାର୍ଯ୍ୟ, ଗଣକ, ଜ୍ୟୋତିଷନାୟକ ।

ଗ୍ରହବେଧ—ବି. ( ଜ୍ୟୋତିଷ ) ନଳର ଦୃଷ୍ଟି ଅଥବା ଯନ୍ତ୍ରାଦିଦ୍ୱାରା ଗ୍ରହମାନଙ୍କର ପର୍ଯ୍ୟବେକ୍ଷଣ ।

ଗ୍ରହବୈକଲ୍ୟ—କ୍ଲୀ.ବି.(ଗ୍ରହ + ବୈକଲ୍ୟ) ଗ୍ରହଦୋଷ, ଗ୍ରହମାନଙ୍କର ପ୍ରତିକୂଳ ଅବସ୍ଥାନଜନିତ ଅମଙ୍ଗଳ ।

ଗ୍ରହବୈଗୁଣ୍ୟ—କ୍ଲୀ.ବି. (୬ତତ୍) ଗ୍ରହବୈକଲ୍ୟ (ଦେଖ) ।

ଗ୍ରହବୈଷମ୍ୟ—କ୍ଲୀ. ବି. (୬ତତ୍)ଗ୍ରହବୈକଲ୍ୟ (ଦେଖ) ।

ଗ୍ରହଶାନ୍ତି—ସ୍ତ୍ରୀ. ବି. (୬ତତ୍) ଗ୍ରହପୂଜା (ଦେଖ) ।

ଗ୍ରହଶୃଙ୍ଗାଟକ—କ୍ଲୀ. ବି. ବୃହତ୍ ସଂହିତୋକ୍ତ ଗ୍ରହମାନଙ୍କର ଯୋଗବିଶେଷ ।

ଗ୍ରହସଙ୍ଗ୍ୟ—ବି. ଗ୍ରହଯୁତି (ଦେଖ) ।

ଗ୍ରହସମାଗମ—ପୁଂ. ବି. ଚନ୍ଦ୍ର ସହିତ ମଙ୍ଗଳ ଓ ତାରାଗଣ ପ୍ରଭୃତିର ମିଳନ ।

ଗ୍ରହସ୍ଫୁଟ—ବି.(ଜ୍ୟୋତିଷ) ୬ତତ୍; ଗ୍ରହସ୍ଥିତି ଜ୍ଞାପକ ରାଶ୍ୟଂଶ ।

ଗ୍ରହାଚାର୍ଯ୍ୟ—ପୁଂ.ବି. (କ.ଧା) ଗ୍ରହବିପ୍ର, ଗଣକ, ଦୈବଜ୍ଞ । [ତାରା ।

ଗ୍ରହାଧାର—ପୁଂ.ବି. ଧ୍ରୁବନକ୍ଷତ୍ର, ଧ୍ରୁବ-

ଗ୍ରହାଧିକରଣ—କ୍ଲୀ. ବି. ନ୍ୟାୟସ୍ୱରୂପ ପଞ୍ଚାଙ୍ଗ ଅଧିକରଣବିଶେଷ ।

ଗ୍ରହାଧିପ—ପୁଂ.ବି. (୬ତତ୍) ସୂର୍ଯ୍ୟ ।

ଗ୍ରହାଧୀଶ—ପୁଂ. ବି. ( ଗ୍ରହ + ଅଧୀଶ ) ଗ୍ରହାଧିପତି, ସୂର୍ଯ୍ୟ ।

ଗ୍ରହାମୟ—ପୁଂ. ବି ( ଗ୍ରହ + ଆମୟ ) ଗ୍ରହାବେଶରୁ ଉତ୍ପନ୍ନ ରୋଗ ।

ଗ୍ରହାବମର୍ଦ୍ଦନ—କ୍ଲୀ. ବି, ( ଗ୍ରହ + ଅବ + ମୃଦ୍ + ଣ, ଅନ) ଗ୍ରହଯୁଦ୍ଧ, ସୂର୍ଯ୍ୟ ଓ ଚନ୍ଦ୍ର ଗ୍ରହଣ,(ବି.ସ୍ତ୍ରୀ,ପୁଂ.ବି) ରାହୁ ।

ଗ୍ରହାବିଷ୍ଟ—ବି°.(୩ତତ୍) ଗ୍ରହଦଶାଗ୍ରସ୍ତ, ଗ୍ରହଦୋଷରେ ବିପନ୍ନ ।

ଗ୍ରହାଶୀ—ପୁଂ.ବି. (ଗ୍ରହ + ଅଶ୍ + ଇନ୍) ଗ୍ରହନାଶକ ବୃକ୍ଷ ।

ଗ୍ରହାଶ୍ରୟ—ପୁଂ.ବି.(ଗ୍ରହ + ଆଶ୍ରୟ)ଗ୍ରହାଧାର (ଦେଖ) ।

ଗ୍ରହାହ୍ୱୟ—ପୁଂ. ବି. (ଗ୍ରହ + ଆ + ହ୍ୱେ + ଅ) ଭୂତାଙ୍କୁଶ ବୃକ୍ଷ ।

ଗ୍ରହିଲ—ପୁଂ.ବି°.(ଗ୍ରହ + ଇଲ) ନିର୍ବନ୍ଧଯୁକ୍ତ, ଆଗ୍ରହାତିଶୟଯୁକ୍ତ, ଜିଦ୍‌ଖୋର, ଗ୍ରହଣକାଙ୍କ୍ଷୀ, (ସ୍ତ୍ରୀ) ଗ୍ରହିଲା ।

ଗ୍ରହୀତବ୍ୟ—ବି°. (ଗ୍ରହ୍ + ଣି + ତବ୍ୟ) ଗ୍ରାହ୍ୟ, ଯାହା ଗ୍ରହଣ କରିବା ଉଚିତ ।

ଗ୍ରହୀତା—ପୁଂ.ବି°.(ଗ୍ରହ୍ + କ.ତୃ)ଗ୍ରହଣକର୍ତ୍ତା, ଯେ ଋଣ ଗ୍ରହଣ କରେ,ଋଣ ଗ୍ରହଣକାରୀ ବ୍ୟକ୍ତି, ଖାତକ, ଖରିଦ୍‌ଦାର, ସ୍ୱାମୀ, ଘଇତା ।

ଗ୍ରହେଶ—ପୁଂ. ବି. (୬ତତ୍) ଗ୍ରହର ଅଧିପତି ସୂର୍ଯ୍ୟ ।

ଗ୍ରହୋପରାଗ—ବି. (୬ତତ୍) ଗ୍ରହମାନଙ୍କ ଗ୍ରହଣ, ଗ୍ରହମାନଙ୍କ ଉପରେ ଅନ୍ୟ ଗ୍ରହ ବା ପୃଥିବୀର ଛାୟାପତନ ।

ଗ୍ରହ୍ୟ—ପୁଂ. ବି. (ଗ୍ରହ୍ + ଯ) ଯଜ୍ଞୀୟପାତ୍ରବିଶେଷ ।

ଗ୍ରାବଭିତ୍ — ବି.(ଗ୍ରାବ+ଭିଦ୍+କ.କ୍ୱିପ୍) ପାଷାଣଭେଦୀ ।

ଗ୍ରାଭ—ପୁଂ. ବିଂ. (ଗ୍ରଭ୍ +ଅ) ଗ୍ରାହକ, ଯେ ଗ୍ରହଣ କରେ ।

ଗ୍ରାମ—ପୁଂ.ବି. (ଗ୍ରସ୍+ମନ୍) ଲୋକାଳୟ,ପ୍ରାକାରପରିଖା ଶୂନ୍ୟ ବହୁଲୋକର ବାସସ୍ଥାନ, ଗାଁ, ମଫସଲ, କ୍ଷୁଦ୍ର ଗ୍ରାମ, ସ୍ୱର ସଂଘବିଶେଷ, ସମୂହ, ଜନପଦ,ଶିବ, ଗ୍ରାମବାସୀ,ଗ୍ରାମସଦୃଶ, ସଂହୃତ ପଦାର୍ଥ, ଗ୍ରାମ୍ୟଧର୍ମ,(ବିଂ)ଗ୍ରାମସମ୍ବନ୍ଧୀୟ ।

ଗ୍ରାମକ—ପୁଂ. ବି. (ଗ୍ରାମ+କ) ଗ୍ରାମବାସୀ ବ୍ୟକ୍ତି ।

ଗ୍ରାମକଥା—ବି.(ଷତତ୍) ଗ୍ରାମସମ୍ବନ୍ଧୀୟ ଗଳ୍ପ, ଗ୍ରାମସମ୍ବନ୍ଧୀୟ ସାଧାରଣ ବିଷୟ ।

ଗ୍ରାମକଣ୍ଟକ—ବି. (ଷତତ୍) ଯେଉଁବ୍ୟକ୍ତି ଗ୍ରାମର ଅନିଷ୍ଟ ଘଟାଏ, ଚୁଗୁଲିଆ ।

ଗ୍ରାମକାମ—ବିଂ. (ଗ୍ରାମ+କମ୍+ଅ) ଯେଉଁଗ୍ରାମର କାମନା କରାଯାଏ ।

ଗ୍ରାମକୁକ୍କୁଟ—ପୁଂ. ସ୍ତ୍ରୀ. ବି. (ଷତତ୍) ଗ୍ରାମରେ ଥିବା କୁକ୍କୁଟ, ଗୃହପାଳିତ କୁକୁଡ଼ା ।

ଗ୍ରାମକୁମାର—ପୁଂ. ବିଂ. ଗ୍ରାମ ସୁନ୍ଦର, ଗ୍ରାମର ସମସ୍ତଙ୍କ ଅପେକ୍ଷା ଯେ ସୁନ୍ଦର ।

ଗ୍ରାମକୁମାରକ—କ୍ଳୀ ବି. (ଗ୍ରାମକୁମାର+ଅକ) ଗ୍ରାମକୁମାରର ଧର୍ମ, ସୌନ୍ଦର୍ଯ୍ୟାତିଶଯ୍ୟ ।

ଗ୍ରାମକୁଲାଲ—ପୁଂ. ବି.(ଗ୍ରାମ+କୁଲାଲ) କୁମ୍ଭକାର, କୁମ୍ଭାର ।

ଗ୍ରାମକୁଲାଲକ—କ୍ଳୀ. ବି. କୁମ୍ଭାରର ଧର୍ମ ଓ କର୍ମ ।

ଗ୍ରାମକୂଟ—ପୁଂ. ସ୍ତ୍ରୀ. ବି. (ଗ୍ରାମ+କୂଟ) ଗ୍ରାମର ସର୍ବୋତ୍ତମ ବ୍ୟକ୍ତି, ଶୂଦ୍ର, (ସ୍ତ୍ରୀ) ଗ୍ରାମକୂଟୀ ।

ଗ୍ରାମକୋଠ—ଗ୍ରା. ବି. ଗ୍ରାମବାସୀଙ୍କ ସାଧାରଣ ସମ୍ପତ୍ତି, ଗ୍ରାମର ସାଧାରଣ ଫଣ୍ଡ ।

ଗ୍ରାମକୋଡ଼—ପୁଂ. ସ୍ତ୍ରୀ.ବି.ଗ୍ରାମ୍ୟ ଶୂକର, ଘୁଷୁରି, (ସ୍ତ୍ରୀ) ଗ୍ରାମକୋଡ଼ୀ ।

ଗ୍ରାମଗତ—ବିଂ. (ଗ୍ରାମ+ଗତ) ଗ୍ରାମସମ୍ବନ୍ଧୀୟ, ଗାଉଁଲି, (ପୁଂ) ଯେ ଗ୍ରାମକୁ ଯାଇଅଛି ।

ଗ୍ରାମଗତି—ଗ୍ରା. ସ୍ତ୍ରୀ. ବି. ଗ୍ରାମର ପରିଚାଳନା, ଗ୍ରାମ ପରିଚାଳନାସମ୍ବନ୍ଧୀୟ ଯାବତୀୟ ବିଷୟ ।

ଗ୍ରାମଗୃହ୍ୟ—ବିଂ. (ଗ୍ରାମ+ଗ୍ରହ+ମିଂ,ଯ) ଗ୍ରାମବାହ୍ୟ, ଗ୍ରାମରୁ ବାହାର ।

ଗ୍ରାମଗୃହ୍ୟା—ସ୍ତ୍ରୀ. ବି. (ଗ୍ରାମ+ଗୃହ୍ୟ+ଆ) ଗ୍ରାମର ବାହାରେ ଅବସ୍ଥିତ ସେନା ।

ଗ୍ରାମଗେୟ—କ୍ଳୀ. ବି. ସାମବିଶେଷ ।

ଗ୍ରାମଗୋଦୁହ୍—ପୁଂ. ବି. (ଷତତ୍) ଗ୍ରାମ୍ୟ ଗୋପ, ଗାଆଁରେ ଥିବା ଗଉଡ଼ ।

ଗ୍ରାମ ଗ୍ରାମକେ—ଗ୍ରା. ଅ. ପ୍ରତିଗ୍ରାମରେ, ଭିନ୍ନ ଭିନ୍ନ ଗ୍ରାମରେ ।

ଗ୍ରାମଘାତ—ପୁଂ. ବି. (ଷତତ୍) ଗ୍ରାମର ଅପଚୟ, ଗ୍ରାମ୍ୟ ଦ୍ରବ୍ୟର ଲୁଣ୍ଠନ, ଗ୍ରାମବାସୀଙ୍କର ଅମଙ୍ଗଳ ।

ଗ୍ରାମଘାତକ—ପୁଂ. ବିଂ. (ଷତତ୍) ଗ୍ରାମ ଲୁଣ୍ଠନକାରୀ ବ୍ୟକ୍ତି ।

ଗ୍ରାମଘାତୀ—ପୁଂ. ବିଂ. (ଗ୍ରାମ+ହନ୍+କ,ଇନ୍) ଗ୍ରାମବାସୀ ବହୁଲୋକର ଭକ୍ଷଣପାଇଁ ପଶୁହିଂସାକାରୀ, ଗ୍ରାମର ଯେଉଁ ବ୍ୟକ୍ତି ବରାବର ଠାକୁରାଣୀଙ୍କ ପାଖେ ବୋଦା ପକାଏ ।

ଗ୍ରାମଘୋଷ—ଗ୍ରା. ବି. କ୍ଷୁଦ୍ର ଗୋପଗ୍ରାମ, ଗଉଡ଼ସାହି, ଗଉଡ଼ ପଲ୍ଲୀ ।

ଗ୍ରାମଘୋଷୀ—ପୁଂ. ବି. (ଗ୍ରାମ+ଘୋଷ୍+ଇନ୍) ଇନ୍ଦ୍ର, ଦେବରାଜ ।

ଗ୍ରାମଚର—ପୁଂ. ବି. (ଗ୍ରାମ+ଚର୍+କ,ଅ) ଗ୍ରାମବାସୀ ବ୍ୟକ୍ତି, କୃଷକ ।

ଗ୍ରାମଚର୍ଯ୍ୟା—ସ୍ତ୍ରୀ. ବି. (ଗ୍ରାମ+ଚର୍ଯ୍ୟା) ଷତତ୍, ଗ୍ରାମ୍ୟଧର୍ମ, ସ୍ତ୍ରୀସମ୍ଭୋଗାଦି ।

ଗ୍ରାମଚୂଡ଼କା—ଗ୍ରା. ବି. ଗ୍ରାମରେ ନିଷ୍କର୍ମା ହୋଇ ଏଣେ ତେଣେ ବୁଲୁଥିବା ଓ ବସିବା ଲୋକ ।

ଗ୍ରାମଚୈତ୍ୟ—ପୁଂ. ବି. ଗ୍ରାମସ୍ଥ ପବିତ୍ର ବୃକ୍ଷ, ଗ୍ରାମବାସୀମାନଙ୍କଦ୍ୱାରା ପ୍ରତିଦିନ ପୂଜିତ ଅଶ୍ୱତ୍ଥ ବୃକ୍ଷ ।

ଗ୍ରାମଜ—ବିଂ.(ଗ୍ରାମ+ଜନ୍+ଅ)ଗ୍ରାମ୍ୟ, ଯାହା ଗ୍ରାମରେ ଜାତହୁଏ,ଗ୍ରାମୋତ୍ପନ୍ନ ।

ଗ୍ରାମଜନିଷ୍ପାବୀ—ସ୍ତ୍ରୀ. ବି. (ଗ୍ରାମଜ+ନିଷ୍ପାବୀ) ଧାନ୍ୟବିଶେଷ ।

ଗ୍ରାମଜାତ—ବିଂ. (ଗ୍ରାମ+ଜାତ)ଗ୍ରାମୋତ୍ପନ୍ନ, ଯାହା ଗ୍ରାମରେ ଜନ୍ମେ ।

ଗ୍ରାମଜାଲ—କ୍ଳୀ.ବି.(ଗ୍ରାମ+ଜାଲ)ଗ୍ରାମସମୂହ ।

ଗ୍ରାମଜିତ୍—ପୁଂ.ବିଂ.(ଗ୍ରାମ+ଜି+କ୍ୱିପ୍) ସଂହୃତପଦାର୍ଥର ବିଶ୍ଳେଷକାରୀ ।

ଗ୍ରାମଟି—ପୁଂ.ବି. (ଗ୍ରା+ଟି) କ୍ଷୁଦ୍ରଗ୍ରାମ, ମନ୍ଦ ବା ଦୁରବସ୍ଥାପନ୍ନ ଗ୍ରାମ ।

ଗ୍ରାମଠାକୁର—ଗ୍ରା.ପୁଂ. ବି.ଗ୍ରାମବାସୀଙ୍କଦ୍ୱାରା ପୂଜିତ ଦେବ ।

ଗ୍ରାମଠାକୁରାଣୀ—ଗ୍ରା.ସ୍ତ୍ରୀ.ବି.ଗ୍ରାମବାସୀଙ୍କଦ୍ୱାରାପୂଜିତ ଦେବୀମୂର୍ତ୍ତି ଗ୍ରାମଦେବତା ।

ଗ୍ରାମଣ—ବିଂ. (ଗ୍ରାମଣୀ+ଅ) ଗ୍ରାମଣୀସମ୍ବନ୍ଧୀୟ ।

ଗ୍ରାମଣୀ—ପୁଂ. ବି. (ଗ୍ରାମ+ନୀ+କ, କ୍ୱିପ୍)ଗ୍ରାମର ଅଧିପତି,ଗ୍ରାମର ଉନ୍ନତିକାରକ, ଭୌଗିକ, ନାପିତ, ଭଣ୍ଡାରି, ବିଷ୍ଣୁ, ଯକ୍ଷ, ଗ୍ରାମନାୟକ, (ସ୍ତ୍ରୀ) ନଟୀ, ବେଶ୍ୟା, ଗ୍ରାମବାସିନୀ ସ୍ତ୍ରୀ, କୃଷକପତ୍ନୀ, ମଲ୍ଲିକା ଗୁଳ୍ମ, (ବିଂ) ପ୍ରଧାନ, ଶ୍ରେଷ୍ଠ ।

ଗ୍ରାମଣୀଖ୍ୟ—କ୍ଳୀ. ବି. ଆଧିପତ୍ୟ ।

ଗ୍ରାମଣୀୟ—ବିଂ. (ଗ୍ରାମଣୀ+ଯ+ଅ) ଗ୍ରାମଣୀସଦୃଶ ।

ଗ୍ରାମଣୀସବ—ପୁଂ.ବି. ଏକାହସାଧ୍ୟ ଯାଗବିଶେଷ ।

ଗ୍ରାମତକ୍ଷ—ପୁଂ.ବି.(ଗ୍ରାମ+ତକ୍ଷା+ଅ) ଷତତ୍; ଗ୍ରାମ୍ୟ ସୂତ୍ରଧର ।

ଗ୍ରାମତା—ସ୍ତ୍ରୀ. ବି. (ଗ୍ରାମ+ତା) ଗ୍ରାମସମୂହ, ଗ୍ରାମତ୍ୱ, ଗ୍ରାମର ଭାବ ।

ଗ୍ରାମଦେବତା—ସ୍ତ୍ରୀ.ବି. (ଗ୍ରାମ+ଦେବତା) ଗ୍ରାମର ଅଧିଷ୍ଠାତ୍ରୀ ଦେବତା, ଗ୍ରାମସ୍ଥ ସାଧାରଣଙ୍କର ପ୍ରତିଷ୍ଠିତ ଦେବମୂର୍ତ୍ତି ବା ଦେବୀ ।

ଗ୍ରାମଦୁତ—ପୁଂ.ବି.(୬ତତ୍ପୁ)ଯେ ଗ୍ରାମର ସାମାଜିକ ସମ୍ବାଦବହନକରେ,ଭଣ୍ଡାରୀ ।

ଗ୍ରାମଦୌତ୍ୟ—କ୍ଲୀ.ବି. (ଗ୍ରାମଦୁତ+ଯ) ୬ତତ୍ପୁ। ଗ୍ରାମର ସମ୍ବାଦବହନ କର୍ମ, ଗ୍ରାମସ୍ଥ ସମ୍ବାଦବାହକତା । [ବୃକ୍ଷ ।

ଗ୍ରାମଦ୍ରୁମ—ପୁଂ. ବି. ଏକପ୍ରକାର ଗ୍ରାମ୍ୟ

ଗ୍ରାମଧଗ୍—ସ୍ତ୍ରୀ. ବି. ଗିରିବିଶେଷ ।

ଗ୍ରାମଧର୍ମ—ପୁଂ.ବି.୬ତତ୍ପୁ;(ଗ୍ରାମ+ଧର୍ମ) ଗ୍ରାମ୍ୟଧର୍ମ, ମୈଥୁନ, ସ୍ତ୍ରୀସଙ୍ଗମ, ଗ୍ରାମ ପ୍ରଚଳିତ ପ୍ରଥା ।

ଗ୍ରାମନାପିତ—ପୁଂ. ବି. ଗ୍ରାମସ୍ଥ ସାଧାରଣଙ୍କର ନାପିତ, ଭଣ୍ଡାରୀ, ବାରିକ ।

ଗ୍ରାମନିବାସୀ—ପୁଂ.ବିଂ. (ଗ୍ରାମ+ନି+ବସ୍+ଇନ୍)ଯେ ଗ୍ରାମରେ ବାସକରେ ।

ଗ୍ରାମପତି—ପୁଂ. ବି. ଗ୍ରାମର ନେତା, ଗ୍ରାମନାୟକ, ପ୍ରଧାନ ।

ଗ୍ରାମପାଳ—ପୁଂ.ବି. (ଗ୍ରାମ+ପାଲ୍+ଅ) ଗ୍ରାମରକ୍ଷକ ସୈନ୍ୟବିଶେଷ, ଗ୍ରାମାଧ୍ୟକ୍ଷ, ଗ୍ରାମର ଚଉକିଦାର ।

ଗ୍ରାମପୁତ୍ର—ପୁଂ. ବି.ଯାହାକୁ ଗ୍ରାମବାସୀମାନେ ପୁତ୍ରପରି ପ୍ରତିପାଳନ କରନ୍ତି, ଗ୍ରାମବାସୀବାଳକ, ବେଶ୍ୟାପୁତ୍ର, ଜାରଜସନ୍ତାନ, (ସ୍ତ୍ରୀ) ଗ୍ରାମପୁତ୍ରିକା ।

ଗ୍ରାମପୁତ୍ରକ—କ୍ଲୀ.ବି. ଗ୍ରାମପୁତ୍ରର ଧର୍ମ, ଗ୍ରାମପୁତ୍ରର କର୍ମ ।

ଗ୍ରାମପୁରୁଷ—ପୁଂ.ବି. (୬ତତ୍ପୁ) ଗ୍ରାମର ପ୍ରଧାନ ବ୍ୟକ୍ତି,ନଗରର ପ୍ରଧାନ ଲୋକ ।

ଗ୍ରାମପୁରୋହିତ—ପୁଂ. ବି.(୬ତତ୍ପୁ)ସମସ୍ତ ଗ୍ରାମବାସୀଙ୍କର ପୁରୋହିତ ।

ଗ୍ରାମପ୍ରେଷ୍ୟ—ପୁଂ. ବି. ଯେଉଁ ଲୋକ ଗ୍ରାମଲୋକଙ୍କର ଅଧୀନରେ ଚାକରି କରେ, ଗ୍ରାମଭୃତ୍ୟ, ଗ୍ରାମଦୁତ ।

ଗ୍ରାମପ୍ରେଷ୍ୟକ—କ୍ଲୀ. ବି. ଗ୍ରାମପ୍ରେଷ୍ୟର ଧର୍ମ, ଚାକିରିପଣ ।

ଗ୍ରାମଭୃତ୍—ପୁଂ.ବିଂ.ବହୁଲୋକର ଭରଣୀୟ, ବ୍ରାହ୍ମଣ ଗ୍ରାମଭୃତ୍ ହେଲେ ଅବ୍ରାହ୍ମଣ ହୁଏ ।

ଗ୍ରାମମଦ୍‌ଗୁରିକା—ସ୍ତ୍ରୀ. ବି. ଶୃଙ୍ଗୀ ମତ୍ସ୍ୟ, ଶିଙ୍ଗୀମାଛ, ଗ୍ରାମପୁଙ୍କ, ମାଗୁରମାଛ ।

ଗ୍ରାମମହୁଷୀ—ସ୍ତ୍ରୀ.ବି.ଗ୍ରାମର ଅଧିଷ୍ଠାତ୍ରୀ ।

ଗ୍ରାମମୁଖ—ପୁଂ. ବି. (୬ତତ୍ପୁ) ହାଟ, ବଜାର ।

ଗ୍ରାମମୁଖ୍ୟ—ପୁଂ. ବିଂ.ଗ୍ରାମର ଶ୍ରେଷ୍ଠ ବା ପ୍ରଧାନ (ବ୍ୟକ୍ତି), ଗ୍ରାମର ମୁଖିଆ ।

ଗ୍ରାମମୃଗ—ପୁଂ.ବି.(ଗ୍ରାମ+ମୃଗ)୬ତତ୍ପୁ; କୁକ୍କୁର ।

ଗ୍ରାମମେଳ—ସ୍ତ୍ରୀ.ବି. ଗ୍ରାମସ୍ଥ ସାଧାରଣଙ୍କ ମଧ୍ୟରେ କରାଯିବା ଏକବିଗ୍ରହ, ଗ୍ରାମରେ ବିବାଦର ଅଭାବ ।

ଗ୍ରାମମେଳା—ସ୍ତ୍ରୀ. ବି. ଗ୍ରାମମେଳ (ଦେଖ) ଗ୍ରାମବାସୀମାନଙ୍କ ସମ୍ମିଳିତ ପରାମର୍ଶରେ ସ୍ଥିରୀକୃତ ଆନ୍ଦୋଳନ ।

ଗ୍ରାମଯାଜକ—ପୁଂ.ବି.ଓ ବିଂ. (ଗ୍ରାମ+ଯାଜକ) ୬ତତ୍ପୁ, ଗ୍ରାମର ପୁରୋହିତ, ଗ୍ରାମଦେବତାପୂଜକ, ଗ୍ରାମର ନାନାବର୍ଣ୍ଣର ଯାଜକ (ପୁରୋହିତ), ଦେବଳ ବା ଦେବଳକା (ପୂଜାହାରୀ ବ୍ରାହ୍ମଣ ବା ଅପକୃଷ୍ଟ ।)

ଗ୍ରାମଯାଜୀ—ପୁଂ.ବି.ଓବିଂ.(ଗ୍ରାମ+ଯଜ୍+ଣି+ଇନ) ଗ୍ରାମଯାଜକ, ଦେବଳ, ପୂଜାରିବ୍ରାହ୍ମଣ ।

ଗ୍ରାମଯୁଦ୍ଧ—କ୍ଲୀ. ବି. କ୍ଷୁଦ୍ରଯୁଦ୍ଧ, ଗ୍ରାମଲୋକମାନଙ୍କର ପରସ୍ପରରେ ବିରୋଧ ।

ଗ୍ରାମରଥ୍ୟା—ସ୍ତ୍ରୀ. ବି. (୬ତତ୍ପୁ) ବୃହତ୍ ଗ୍ରାମ୍ୟରାସ୍ତା, ଗାଁଦାଣ୍ଡ, ଗ୍ରାମ ମଧ୍ୟଦେଇ ପଡିଥିବା ରାସ୍ତା ।

ଗ୍ରାମଲକ୍ଷ୍ମୀ—ସ୍ତ୍ରୀ.ବି.(୬ ଓ ୭ତତ୍ପୁ)ଗ୍ରାମର ଲକ୍ଷ୍ମୀସ୍ୱରୂପା, ଯାହାର ଗ୍ରାମରେ ଥିବା ଦ୍ୱାରା ଲୋକଙ୍କରସୁଖ ସମୃଦ୍ଧି ବଢୁଥାଏ ।

ଗ୍ରାମଲୁଣ୍ଠନ—ବି. (୬ତତ୍ପୁ) ଗ୍ରାମବାସୀମାନଙ୍କର ଧନାଦି ଲୁଟିହେବା ।

ଗ୍ରାମବାନ୍—ପୁଂ. ବି. (ଗ୍ରାମ+ବତୁ) ଗ୍ରାମର ସ୍ୱାମୀ, ଯାହାର ଅଧୀନରେ ଗ୍ରାମଅଛି,(ବିଂ)ଗ୍ରାମବିଶିଷ୍ଟ । [ଖବର ।

ଗ୍ରାମବାର୍ତ୍ତା—ସ୍ତ୍ରୀ. ବି. ଗ୍ରାମବିଷୟକ

ଗ୍ରାମବାସ—ପୁଂ.ବି.୭ତତ୍ପୁ;(ଗ୍ରାମ+ବାସ) ଗ୍ରାମରେ ଅବସ୍ଥିତି, ଗ୍ରାମରେ ଘରକରି ରହିବା ।

ଗ୍ରାମବାସୀ—ପୁଂ. ବି. (ଗ୍ରାମ+ବସ୍+ଇନ୍) ଯେଉଁ ବ୍ୟକ୍ତି ଗ୍ରାମରେ ବାସ କରେ, ପୋଷା,ପାଳିତ(ଜୀବ),ଗାଉଁଲି, (ସ୍ତ୍ରୀ) ଗ୍ରାମବାସିନୀ ।

ଗ୍ରାମବାନ୍ଧବ୍ୟ—ପୁଂ.ବି(ଗ୍ରାମ+ବାନ୍ଧବ୍ୟ) ଗ୍ରାମବାସୀ ।

ଗ୍ରାମବୃଦ୍ଧ—ପୁଂ.ବି.ଗ୍ରାମବାସୀ ବୃଦ୍ଧଲୋକ ।

ଗ୍ରାମଷଣ୍ଡ—ପୁଂ. ବି. ଗ୍ରାମ୍ୟଧର୍ମରହିତ, କ୍ଲୀବ, ନପୁଂସକ ବ୍ୟକ୍ତି ।

ଗ୍ରାମଷଣ୍ଡକ—କ୍ଲୀ. ବି. ଗ୍ରାମଷଣ୍ଡର ଧର୍ମ, ନପୁଂସକତ୍ୱ ।

ଗ୍ରାମସଙ୍କର—ପୁଂ. ବି. (୬ତତ୍ପୁ) ଗ୍ରାମର ସାଧାରଣ ପ୍ରଣାଳୀ, ନର୍ଦ୍ଦମା ।

ଗ୍ରାମସଂଘ—ବି. (କ.ଧା) ଗ୍ରାମର ସାଧାରଣ ବିଷୟ ବୁଝିବା ବା ପରିଚାଳନା କରିବାପାଇଁ ଗ୍ରାମବାସୀଙ୍କଦ୍ୱାରା ମନୋନୀତ ପଞ୍ଚାୟତ, ମ୍ୟୁନିସିପାଲିଟି ।

ଗ୍ରାମସାକ୍ଷତ—ବ୍ରାହ୍ମଣମାନଙ୍କର ବିବାହ ବ୍ରତାଦି ଆନୁଷ୍ଠାନିକ ଆଶୀର୍ବାଦାସକ ସଭାରେ (ଫୁଲ ସଭା)ବ୍ରାହ୍ମଣମହାଜନମାନଙ୍କୁ ସାମୂହିକଭାବେ ମର୍ଯ୍ୟାଦାସୂଚକ ଦେୟ ବସ୍ତୁ ଓ ଧନ ।

ଗ୍ରାମସିଂହ—ପୁଂ.ବି. (୬ତତ୍ପୁ) କୁକ୍କୁର ।

ଗ୍ରାମସୀମା—ବି. (୬ତତ୍ପୁ) ମୌଜାର ସରହଦ, ଗ୍ରାମ ବା ମୌଜାର କ୍ଷେତ୍ର ।

ଗ୍ରାମସୁଖ—କ୍ଲୀ.ବି. ଗ୍ରାମ୍ୟସୁଖ (ଦେଖ) ।

ଗ୍ରାମସେବକ—ପୁଂ.ବି.(୬ତତ୍ପୁ)ଗ୍ରାମବାସୀଙ୍କର ସେବାକରିବାପାଇଁ ନିଯୁକ୍ତ ଧୋବା, ଭଣ୍ଡାରୀ, କମାର, ବଢ଼େଇ, ଇତ୍ୟାଦି । ସରକାରୀ ନିଯୁକ୍ତ କର୍ମଚାରୀ ବିଶେଷ ।

ଗ୍ରାମସେବା—ବି. ଧୋବା, ଭଣ୍ଡାରୀ, କମାର, ବଢ଼େଇ ଇତ୍ୟାଦି ଗ୍ରାମର ସାଧାରଣ ଲୋକଙ୍କର ଯେଉଁ ଚାକିରି କରନ୍ତି, ଗ୍ରାମର ହେଡ଼ାଖିଆ ଚାକିରି ।

ଗ୍ରାମସ୍ଥ—ବିଂ. (ଗ୍ରାମ+ସ୍ଥା+କ. ଅ.) ଗ୍ରାମବାସୀ, ଗ୍ରାମରେ ବାସକରୁଥିବା, ଗ୍ରାମସମ୍ବନ୍ଧୀୟ ।

ଗ୍ରାମହାସକ—ପୁଂ. ବି. (ଗ୍ରାମ+ହସ୍+ଣିଚ୍+ଅକ) ଭଗିନୀପତି, ଭିଣୋଇଁ ।

ଗ୍ରାମହୃଡ଼ା—ସ୍ତ୍ରୀ. ବି. ଗ୍ରାମର ମଶାଣି ।

ଗ୍ରାମାଚାର—ପୁଂ. ବି. (୬ତତ୍ପୁ) ଗ୍ରାମ୍ୟ ବ୍ୟବହାର, ଗ୍ରାମ୍ୟଧର୍ମ (ଦେଖ) ।

ଗ୍ରାମାଧାନ—କ୍ଲୀ. ବି. (ଗ୍ରାମ+ଆ+ଧା+ଅନ) ମୃଗୟା, ଶିକାର,ଛୋଟଗ୍ରାମ, ପଲ୍ଲିଗ୍ରାମ ।

ଗ୍ରାମାଧିକାରୀ—ବି.(ତତ୍ପୁ) ଗ୍ରାମାଧିକୃତ (ଦେଖ) ।

ଗ୍ରାମାଧିକୃତ—ବି. ଗ୍ରାମର ପ୍ରଧାନ,ଗ୍ରାମର ରାଜକୀୟ କର୍ମ ଚଳାଇବା ବ୍ୟକ୍ତି ।

ଗ୍ରାମାନ୍ତ—କ୍ଲୀ.ବି. (ଗ୍ରାମ+ଅନ୍ତ)ତତ୍ପୁ; ଗ୍ରାମର ସମୀପ, ଗ୍ରାମର ସୀମା, ଗ୍ରାମର ବହିର୍ଭାଗ । [ଅନ୍ୟଗ୍ରାମ ।

ଗ୍ରାମାନ୍ତର—କ୍ଲୀ. ବି. (ଅନ୍ୟତ୍ର+ଗ୍ରାମ)

ଗ୍ରାମାନ୍ତିକ—ବି. (ତତ୍ପୁ) ଗ୍ରାମର ପାଖ-ଆଖ ସ୍ଥାନ ।

ଗ୍ରାମାନ୍ତୀୟ—ବିଂ.ଗ୍ରାମସମୀପରେ ଉତ୍ପନ୍ନ ।

ଗ୍ରାମାରଣ୍ୟ—ବି. (ତତ୍ପୁ) ଗ୍ରାମବାସୀ-ମାନଙ୍କ ବ୍ୟବହୃତ ଜଙ୍ଗଲ ।

ଗ୍ରାମିକ—ପୁଂ. ବି. (ଗ୍ରାମ+ଇକ) ଗ୍ରାମ ରକ୍ଷଣ ବିଷୟରେ ନିଯୁକ୍ତ, ଗ୍ରାମାଧ୍ୟକ୍ଷ, ଗ୍ରାମର ଚଉକିଆ, ମୈଥୁନ, (ବିଂ) ଗ୍ରାମସମ୍ବନ୍ଧୀୟ, ଅଭଦ୍ର, ମଫସଲିଆ ।

ଗ୍ରାମିକ୍ୟ—କ୍ଲୀ. ବି. ଗ୍ରାମିକର ଧର୍ମ, ଗ୍ରାମାଧ୍ୟକ୍ଷତା ।

ଗ୍ରାମିଣୀ—ସ୍ତ୍ରୀ. ବି. (ଗ୍ରାମିନ୍+ଈ) ନୀଳୀବୃକ୍ଷ ।

ଗ୍ରାମୀ—ପୁଂ. ବିଂ.(ଗ୍ରାମ+ଇନ୍) ଗ୍ରାମ-ସ୍ୱାମୀ, ଗ୍ରାମବାସୀ, ଗ୍ରାମ୍ୟଧର୍ମଯୁକ୍ତ, ଗ୍ରାମଦ୍ୱାରା ପରିବେଷ୍ଟିତ,ଲମ୍ପଟ,କାମୁକ, ଗ୍ରାମବିଶିଷ୍ଟ, ମଫସଲିଆ,ଗାଉଁଲି, (ସ୍ତ୍ରୀ) ଗ୍ରାମିଣୀ ।

ଗ୍ରାମୀଣ—ପୁଂ. ସ୍ତ୍ରୀ. ବି. (ଗ୍ରାମ+ଈନ) ଗ୍ରାମ୍ୟକୁକ୍କୁର,ଅଭଦ୍ରବ୍ୟକ୍ତି, ଗ୍ରାମବାସୀ ବ୍ୟକ୍ତି, କାକ, ଗ୍ରାମ୍ୟଶୂକର, ଘୁଷୁରି, କୁକୁଡ଼ା, (ବିଂ) ଗ୍ରାମୋତ୍ପନ୍ନ, ଗାଉଁଲି, ଗ୍ରାମବାସୀ, ଗ୍ରାମସମ୍ବନ୍ଧୀୟ ।

ଗ୍ରାମୀଣା—ସ୍ତ୍ରୀ. ବି. (ଗ୍ରାମୀଣ+ଆ) ପାଲଙ୍ଗଶାଗ, ନୀଳୀବୃକ୍ଷ ।

ଗ୍ରାମୀୟ—ବିଂ. (ଗ୍ରାମ+ଈୟ) ଗ୍ରାମ-ସମ୍ବନ୍ଧୀୟ, ଅଭଦ୍ର ।

ଗ୍ରାମୀୟକ—ପୁଂ. ବିଂ, (ଗ୍ରାମୀୟ+କ) ଗ୍ରାମବାସୀମାନଙ୍କ ମଧ୍ୟରୁ ଜଣେ ।

ଗ୍ରାମେୟ—ବିଂ(ଗ୍ରାମ+ଏୟ)ଗ୍ରାମୋତ୍ପନ୍ନ, (ବି) ଗ୍ରାମବାସୀବ୍ୟକ୍ତି,(ସ୍ତ୍ରୀ. ଗ୍ରାମେୟୀ ।

ଗ୍ରାମେୟକ—ବିଂ. (ଗ୍ରାମେୟ+କ) ଗ୍ରାମୋତ୍ପନ୍ନ, ଗ୍ରାମ୍ୟ ।

ଗ୍ରାମେୟୀ—ସ୍ତ୍ରୀ. ବି. (ଗ୍ରାମେୟ+ଈ) ବେଶ୍ୟା, କୁଳଟା ।

ଗ୍ରାମେବାସ—ପୁଂ. ବି. (ଗ୍ରାମେ+ବସ୍+ଅ) ଗ୍ରାମବାସ, ଗାଁଆବାସ ।

ଗ୍ରାମେବାସୀ—ପୁଂ. ବି. (ଗ୍ରାମେ+ବସ+ଇନ୍) ଗ୍ରାମବାସୀ ।

ଗ୍ରାମୋଫୋନ୍—ଯା.ବି. ଅନ୍ୟବ୍ୟକ୍ତିଦ୍ୱାରା ଗୀତ ସଙ୍ଗୀତ ଓ ବାଦ୍ୟଆଦି ଅନୁକରଣ-ପୂର୍ବକ ଧ୍ୱନିଦ୍ୱାରା ଅବିକଳ ପ୍ରକାଶ କରିବା ବାଦ୍ୟଯନ୍ତ୍ର ।

ଗ୍ରାମ୍ୟ—ବିଂ. (ଗ୍ରାମ+ଯ) ଗ୍ରାମୋତ୍ପନ୍ନ, ଗ୍ରାମଜାତ, ପ୍ରାକୃତ, ମୂଢ଼, ଅମାର୍ଜିତ, ଗ୍ରାମସମ୍ବନ୍ଧୀୟ, ଅଶ୍ଳୀଳ, ନୀଚ,ଜଘନ୍ୟ, ସଙ୍ଗୀତର ସ୍ୱର, ଗ୍ରାମସମ୍ବନ୍ଧୀୟ, ସ୍ତ୍ରୀ-ସଙ୍ଗମସମ୍ବନ୍ଧୀୟ, ଗୃହପାଳିତ, ପୋଷା, ଇତର,କୃଷିଦ୍ୱାରା ଉତ୍ପାଦିତ, ଗାଉଁଲି, (ବି) ପୋଷାପୁଷୁରି,(ଜ୍ୟୋତିଷ) ମେଷ ଓ ବୃଷରାଶି, ମୈଥୁନ, ଗ୍ରହଣ, ରଚ-ନାରେ ଶବ୍ଦଗତ ଓ ଅର୍ଥଗତ ଦୋଷ-ବିଶେଷ,ଗ୍ରାମବାସୀବ୍ୟକ୍ତି, ଘରୋଇଭାଷା, ଇତରଜନ ବ୍ୟବହୃତ ଭାଷା, ପ୍ରାକୃତ-ଭାଷା, ଗ୍ରାମରେ ପ୍ରସ୍ତୁତ ଖାଦ୍ୟ, ଗ୍ରାମପାଳିତ ଜୀବ,ମିଥୁନରାଶି,ରତିବନ୍ଧ-ବିଶେଷ ।

ଗ୍ରାମ୍ୟକଥା—ସ୍ତ୍ରୀ. ବି. ଇତର ବ୍ୟବହୃତ ବା ଅଶ୍ଳୀଳ କଥା, ଗ୍ରାମବିଷୟକ କଥା ।

ଗ୍ରାମ୍ୟକନ୍ଦ—ପୁଂ. ବି. କନ୍ଦବିଶେଷ, କନ୍ଦମୂଳ, ଓଲୁଅ ।

ଗ୍ରାମ୍ୟକର୍କଟୀ—ବି.(କ.ଧା)ପାଣିକଖାରୁ ।

ଗ୍ରାମ୍ୟକର୍ମ—କ୍ଲୀ. ବି. (ଗ୍ରାମ୍ୟ+କର୍ମ) ମୈଥୁନ, ଦାମ୍ପତ୍ୟଧର୍ମ, ଗୃହସ୍ଥଧର୍ମ, ମଫସଲ ରସିକତା ।

ଗ୍ରାମ୍ୟକୁଙ୍କୁମ—କ୍ଲୀ. ବି. କୁସୁମ୍ଭ, କୁସୁମ-ଫୁଲ ।

ଗ୍ରାମ୍ୟଜନ୍ତୁ—ବି.(କ.ଧା)ଗୃହପାଳିତପଶୁ, ପୋଷା ଜୀବ, ଗୋ-ମେଷାଦି ।

ଗ୍ରାମ୍ୟତା—ସ୍ତ୍ରୀ. ବି. (ଗ୍ରାମ୍ୟ+ତା) ଜଘନ୍ୟତା, ଅସଭ୍ୟତା, ଅଶ୍ଳୀଳତା, ଇତର ଜନ ବ୍ୟବହୃତ ଭାଷା, ପ୍ରାକୃତତା ।

ଗ୍ରାମ୍ୟଦେବତା—ସ୍ତ୍ରୀ. ବି. ଗ୍ରାମର ଅଧିଷ୍ଠାତ୍ରୀ ଦେବତା । [(ଦେଖ) ।

ଗ୍ରାମ୍ୟଧର୍ମ—ପୁଂ. ବି. (କ.ଧା) ଗ୍ରାମ୍ୟକର୍ମ

ଗ୍ରାମ୍ୟଧର୍ମୀ—ପୁଂ.ବିଂ. (ଗ୍ରାମ୍ୟ+ଧର୍ମ+ଇନ୍) ଗ୍ରାମ୍ୟଧର୍ମବିଶିଷ୍ଟ,ମୈଥୁନରତ ।

ଗ୍ରାମ୍ୟପଶୁ—ପୁଂ. ବି. ଗ୍ରାମରେ ରହିବା ଯୋଗ୍ୟ ପଶୁବିଶେଷ,ଗ୍ରାମ୍ୟଜନ୍ତୁ(ଦେଖ), ବାଙ୍ଗ,ନିର୍ବୋଧ ବ୍ୟକ୍ତି ।

ଗ୍ରାମ୍ୟଭାଷା—ଗ୍ରା.ବି. ଗ୍ରାମବ୍ୟକ୍ତିମାନଙ୍କ ବ୍ୟବହୃତ ଭାଷା, ଗାଉଁଲି ଭାଷା ଇତର ଜନ ବ୍ୟବହୃତ ଭାଷା ।

ଗ୍ରାମ୍ୟମଦ୍‌ଗୁରିକା—ସ୍ତ୍ରୀ. ବି. ଶୃଙ୍ଗୀମତ୍ସ୍ୟ, ଶିଙ୍ଗୀ ମାଛ,ମାଗୁରମାଛ ।

ଗ୍ରାମ୍ୟମୃଗ-ପୁଂ.ସ୍ତ୍ରୀ.ବି.(କ.ଧା)କୁକ୍କୁର ।

ଗ୍ରାମ୍ୟରାଶି—ପୁଂ. ବି. ମିଥୁନପ୍ରଭୃତି କେତେଗୋଟି ରାଶି । [ଶାଗ ।

ଗ୍ରାମ୍ୟବଲ୍ଲଭା—ସ୍ତ୍ରୀ. ବି. ବେଶ୍ୟା, ପାଳଙ୍ଗ

ଗ୍ରାମ୍ୟବାଦୀ—ପୁଂ.ବି. (ଗ୍ରାମ୍ୟ+ବଦ୍+ଇନ୍) ଯେଉଁମାନେ ଗ୍ରାମ୍ୟଶବ୍ଦ କହନ୍ତି, ବାଳକାଦି, (ସ୍ତ୍ରୀ) ଗ୍ରାମ୍ୟବାଦିନୀ ।

ଗ୍ରାମ୍ୟଶୂକର—ପୁଂ. ସ୍ତ୍ରୀ. ବି. ଘୁଷୁରି ।

ଗ୍ରାମ୍ୟସିଂହ—ବି. (କ.ଧା) କୁକ୍କୁର ।

ଗ୍ରାମ୍ୟସୁଖ—କ୍ଲୀ. ବି. ମୈଥୁନ ସୁଖ, ଗ୍ରାମବାସୀମାନଙ୍କର ସୁଖ ।

ଗ୍ରାମ୍ୟା—ସ୍ତ୍ରୀ.ବି. (ଗ୍ରାମ୍ୟ+ଆ) ତୁଳସୀ, ନୀଳୀ ବୃକ୍ଷ, ଧାନ୍ୟବିଶେଷ ।

ଗ୍ରାମ୍ୟାସୁତ—ପୁଂ.ସ୍ତ୍ରୀ. ବି.ପ୍ରାକୃତବ୍ୟକ୍ତିର ଅପତ୍ୟ । [ଗ୍ରାମ୍ୟାଶ୍ୱା ।

ଗ୍ରାମ୍ୟାଶ୍ୱ—ପୁଂ.ବି. ଗର୍ଦ୍ଦଭ,ଗଧ, (ସ୍ତ୍ରୀ)

ଗ୍ରାବଗ୍ରାଭ—ପୁଂ. ବି. ଗ୍ରାବସ୍ତୁତ ନାମକ ଋତ୍ୱିକ୍ ବିଶେଷ ।

ଗ୍ରାବ,ଗ୍ରାବା—ପୁଂ. ବି. ପ୍ରସ୍ତର, ପଥର, ମେଘ, ପର୍ବତ, (ବି) ଦୃଢ଼,କଠିନ ।

ଗ୍ରାବଭେଦକ—ପୁଂ. ବି.ଅଶ୍ୱଗନ୍ଧା ବୃକ୍ଷ ।

ଗ୍ରାବସ୍ତୁତ—ପୁଂ.ବି.(ଗ୍ରାବ+ସ୍ତୁ+କ୍ୱିପ୍) ହୋତାର ସହାୟ ଋତ୍ୱିକ୍‌ବିଶେଷ ।

ଗ୍ରାବସ୍ତୋତା—ପୁଂ.ବି.ହୋତାର ସହାୟ ଋତ୍ୱିକ୍‌ବିଶେଷ ।

ଗ୍ରାବସ୍ତୋତ୍ରୀୟ—ପୁଂ. ବି. (ଗ୍ରାବସ୍ତୋତ୍ର + ଈୟ)ଗ୍ରାବସ୍ତୋତ୍ରସମ୍ବନ୍ଧୀୟ, ଗ୍ରାବସ୍ତୋତ୍ରର ହୃତକର ।

ଗ୍ରାବହସ୍ତ—ପୁଂ. ବି. ଋତ୍ୱିକ୍‌ବିଶେଷ ଯାହାର ହସ୍ତରେ ଅଭିଷେକ ପାଷାଣ-ଥାଏ ।

ଗ୍ରାବାସ୍ୟଣ—ପୁଂ, ବି. (ଗ୍ରାବ + ଅସ୍ୟଣ) ପ୍ରବରବିଶେଷ ।

ଗ୍ରାସ—ପୁଂ. ବି. (ଗ୍ରସ୍ + ମିଂ,ଅ) କବଳ, ଗୁଣ୍ଡାଏ, ମୁଖ ପୁରେଷୋପଯୁକ୍ତ ଅନ୍ନାଦି, ଗ୍ରହଣ, ଗିଳିବା, ଖାଦ୍ୟ, ଭକ୍ଷଣ, ପାଟିଦ୍ୱାରା କାମୁଡ଼ି ନଆସିବା ଖାଦ୍ୟର ଅଂଶ, ସୂର୍ଯ୍ୟଚନ୍ଦ୍ରାଦିଙ୍କର ଗ୍ରହଣ, ଉଚ୍ଚାରଣ ଦୋଷ, ଗ୍ରହଣ-କାଳରେ ଛାୟା ଦ୍ୱାରା ଆଚ୍ଛାଦିତ ସୂର୍ଯ୍ୟ ବା ଚନ୍ଦ୍ରଙ୍କ ଅଂଶ, (ଜ୍ୟାମିତି) ଦୁଇଟି ବୃତ୍ତ ପରସ୍ପରକୁ କାଟିବାଦ୍ୱାରା ଆଚ୍ଛାଦିତ ଖଣ୍ଡ,ଧରିବା କର୍ମ, ଗିରଙ୍ଗ. (ଗ୍ରା. ବି.) ପୂର୍ଣ୍ଣଭୋଜନ ।

ଗ୍ରାସକ—ପୁଂ.ବିଂ. ( ଗ୍ରାସ + କ, ଅକ) ଧରିଲାବାଲା, ଗିଳିଲାବାଲା,ଯେ ଲୁଟ୍ଟଏ ।

ଗ୍ରାସକରିବା—ପୁଂ.ବିଂ.ଗିଳିବା, ଉପରେ ଘୋଡ଼ାଇବା, ଅଭିଭୂତ ବା ଆକ୍ରାନ୍ତ କରିବା ।

ଗ୍ରାସଶଲ୍ୟ—କ୍ଲୀ. ବି. (ମଧ୍ୟ. କ. ଧା) ଖାଦ୍ୟଖାଇବା ସମୟରେ ତଣ୍ଟିରେ ଲାଗି ଯିବା କାଣ୍ଡୁଆ ବସ୍ତୁ, ଖାଦ୍ୟ କବଳ ମଧ୍ୟରେ ଥିବା ମତ୍ସ୍ୟାଦିର କଣ୍ଟା ।

ଗ୍ରାସାଚ୍ଛାଦନ—କ୍ଲୀ. ବି. (ଦ୍ୱନ୍ଦ୍ୱ)ଭୋଜନ ଓ ପରିଧାନ, ଅନ୍ନ, ବସ୍ତ୍ର, ଖୋରାକ-ପୋଷାକ ।

ଗ୍ରାସାର୍ଥୀ—(ଗ୍ରାସ + ଅର୍ଥ + ଇନ୍)ଖାଇବା ପାଇଁ ପ୍ରାର୍ଥୀ ବା ଇଚ୍ଛୁକ ।

ଗ୍ରାସିବା—ଗ୍ରା. କ୍ରି. ଗିଳିବା, ଉଦରସ୍ଥ କରିବା, (ଲ.ଅର୍ଥ) ବ୍ୟାପିବା,ଘୋଟିବା, (ରାହୁ ବା କେତୁ) ଚନ୍ଦ୍ର ବା ସୂର୍ଯ୍ୟଙ୍କୁ ଆଚ୍ଛାଦିତ କରିବା, ( ଭୂତ ପ୍ରେତାଦି ) ମନୁଷ୍ୟଙ୍କୁ ଅଭିଭୂତ କରିବା, ମନୁଷ୍ୟ-ଠାରେ ଆବେଶ ହେବା, କଷ୍ଟଦେବା, ହସ୍ତୀଭୂତ କରିବା ।

ଗ୍ରାସୀ—ପୁଂ. ବିଂ. (ଗ୍ରାସ + ଇନ୍) ପେଟୁ ଉଦରମ୍ଭରି, (ସ୍ତ୍ରୀ) ଗ୍ରାସିନୀ ।

ଗ୍ରାସୀକୃତ-ବିଂ.(ଗ୍ରାସ + ଚ୍ୱି + କୃ + ତ) ଯାହାକୁ ଗ୍ରାସ କରି ହୋଇଅଛି ।

ଗ୍ରାସେ—ଗ୍ରା. ବି. ଏକଗ୍ରାସ, ଉଦର ପୂର୍ତ୍ତି ଭୋଜନ, (ଗ୍ରା. ବିଂ) ଉଦର ପୂର୍ତ୍ତି ।

ଗ୍ରାହ—ପୁଂ.ବି. (ଗ୍ରହ + ଅ) ଗ୍ରହଣ, ଜଳଚର ଜନ୍ତୁବିଶେଷ, କୁମ୍ଭୀର, ଜଳହସ୍ତୀ, ରୋଗ, କର୍ମାରମ୍ଭ, ବନ୍ଦୀ, କାରାରୁଦ୍ଧ ବ୍ୟକ୍ତି, ବୋଧ, ସ୍ୱୀକାର, ଜ୍ଞାନ,ଆଗ୍ରହ, ନକ୍ରାଦିଜନ୍ତୁ, ପ୍ରତିଜ୍ଞା, (ବିଂ) ଗ୍ରହୀତା, ଗ୍ରାହକ, ଗ୍ରହଣକର୍ତ୍ତା ।

ଗ୍ରାହକ—ପୁଂ. ବି. ( ଗ୍ରହ + ଅକ ) ଶ୍ୟେନପକ୍ଷୀ, ଛଞ୍ଚାଣ, ବିଷବୈଦ୍ୟ, ସାପୁଆ,ଜଗୁଆଳ, ଶାକବିଶେଷ, (ବିଂ) ଗ୍ରହୀତା, ଗ୍ରହଣକର୍ତ୍ତା, କ୍ଷେପକ, କେତା, ହୃଦୟବାନ୍, ରସିକ ।

ଗ୍ରାହବାନ୍—ପୁଂ. ବି. ( ଗ୍ରାହ + ବତ୍ ) ଗ୍ରାହବିଶିଷ୍ଟ, (ସ୍ତ୍ରୀ) ଗ୍ରାହବତୀ ।

ଗ୍ରାହା—ଗ୍ରା. ବି. କୁମ୍ଭୀର, ମଗର ।

ଗ୍ରାହି—ସ୍ତ୍ରୀ. ବି. (ଗ୍ରହ + ଇ) ଗ୍ରହଣ-ଶୀଳା,ଗ୍ରହସ୍ୱରୂପା ଦେବତା, ଡାହାଣୀ, ପିଶାଚୀ, ମୂର୍ଚ୍ଛା ।

ଗ୍ରାହିକା—ସ୍ତ୍ରୀ. ବି. ଓ ବିଂ. (ଗ୍ରାହକ + ଆ) ଗ୍ରାହକର ସ୍ତ୍ରୀଲିଙ୍ଗ ।

ଗ୍ରାହିତ—ବିଂ. (ଗ୍ରହ୍ + ଣିଚ୍ ମିଂ, ତ) ଯାହା ଅନ୍ୟଦ୍ୱାରା ଗ୍ରହଣକରି ଯାଇଅଛି, ସ୍ୱୀକାରିତ ।

ଗ୍ରାହିତ୍ୟ—ଗା. ବିଂ. ଗ୍ରାହ୍ୟ (ଦେଖ) ।

ଗ୍ରାହିଣୀ—ସ୍ତ୍ରୀ. ବି. (ଗ୍ରାହିନ + ଈ)କ୍ଷୁଦ୍ର ଦୁରାଲଭା, ତାମ୍ର ମୂଳା ବୃକ୍ଷ ।

ଗ୍ରାହୀ—ପୁଂ. ବି. (ଗ୍ରହ + କ, ଇନ୍ ) କପିତ୍ଥ, କଇଥ, (ବିଂ) ଗ୍ରହଣକର୍ତ୍ତା, ଆକର୍ଷକ, ମଳବନ୍ଧକାରକ.ବନ୍ଧନକାରୀ, ପ୍ରଲୋଭକ, ଯେ ଗରଙ୍ଗକରେ, ମଙ୍ଗଳ ବନ୍ଧକାରକ, ଧାରକ, ଗ୍ରାହକ, ପ୍ରତିକୂଳ, (ସ୍ତ୍ରୀ) (ଗ୍ରାହ + ଈ) ମାଈ କୁମ୍ଭୀର ।

ଗ୍ରାହ୍ୟଫଳ—ପୁଂ.ବି.କପିତ୍ଥବୃକ୍ଷ,କଇଥ-ଗଛ ।

ଗ୍ରାହୁକ-ବି.(ଗ୍ରାହ୍ + ଉକ) ଗ୍ରହଣଶୀଳୀ ।

ଗ୍ରାହ୍ୟ—ବିଂ.(ଗ୍ରହ୍ + ମିଂ,ଯ)ଯାହା ଗ୍ରହଣ କରିବା ଉଚିତ, ଗ୍ରହଣଯୋଗ୍ୟ, ଗଣ-ନୀୟ, ବରୁଣୀୟ, ବୋଧ୍ୟ, ଉପା-ଦେୟ, ସ୍ୱୀକାର୍ଯ୍ୟ, ଜ୍ଞେୟ, ( ବି.) ଉପହାର, ଦାନ ।

ଗ୍ରୀକ୍—ଯା. ବି. ଗ୍ରୀସ୍‌ଦେଶର ଅଧିବାସୀ, ଗ୍ରୀସ୍‌ଦେଶୀୟଭାଷା, (ଯା.ବିଂ) ଗ୍ରୀସ୍-ଦେଶୀୟ, ଗ୍ରୀସ୍‌ଜାତୀୟ, ଗ୍ରୀକ୍‌ଭାଷା-ସମ୍ବନ୍ଧୀୟ ।

ଗ୍ରୀନଲଣ୍ଡ—ଆମେରିକା ମହାଦ୍ୱୀପ ଓ ଆଇସ୍‌ଲଣ୍ଡନାମକ ଦ୍ୱୀପର ମଧ୍ୟସ୍ଥଳରେ ଅବସ୍ଥିତ ଗୋଟିଏ ବୃହତ୍ ଦ୍ୱୀପ ।

ଗ୍ରୀବ—ପୁଂ.ବିଂ. ଗ୍ରୀବାଯୁକ୍ତ,(ସ୍ତ୍ରୀ)ଗ୍ରୀବା, (ଗ୍ରା.ବି.) ଗ୍ରୀବା, ବେକ ।

ଗ୍ରୀବା—ସ୍ତ୍ରୀ. ବି. (ଗୃ + ଣି + ବ + ଆ) କନ୍ଧରା,ଶିରୋଧି, ବେକ, କଣ୍ଠର ପଛ-ଭାଗ ।

ଗ୍ରୀବାକ୍ଷ—ପୁଂ. ବି. ଋଷି ବିଶେଷ ।

ଗ୍ରୀବାଘଣ୍ଟ—ସ୍ତ୍ରୀ. ବି. ଗ୍ରୀବାସ୍ଥିତ ଘଣ୍ଟା, ବେକରେ ଥିବା ଘଣ୍ଟି । ( ଦେଖ ।

ଗ୍ରୀବାଦେଶ—ପୁଂ. ବି. ( କ.ଧା ) ସ୍କନ୍ଧ-

ଗ୍ରୀବାଭଙ୍ଗ—ପୁଂ.ବି.(ତତ୍ପୁ)ସ୍କନ୍ଧଦେଶର ବକ୍ରଭାବରେ ସ୍ଥାପନ ।

ଗ୍ରୀବାଭଙ୍ଗି—ବି. ( ତତ୍ପୁ ) ଗ୍ରୀବାଭଙ୍ଗ (ଦେଖ) ।

ଗ୍ରୀବାବିଲ—କ୍ଲୀ. ବି. ଗ୍ରୀବାର ଅନ୍ତର୍ଗତ ଗର୍ତ୍ତ ।

ଗ୍ରୀବୀ—ପୁଂ.ବି. (ଗ୍ରୀବା + ଇନ୍) ଉଷ୍ଟ୍ର, ଓଟ,(ବିଂ)ଦୀର୍ଘଗ୍ରୀବାଯୁକ୍ତ,(ସ୍ତ୍ରୀ)ଗ୍ରୀବିଣୀ ।

ଗ୍ରୀଷ୍ମ—ପୁଂ.ବି.(ଗ୍ରସ୍ + ମ)ଋତୁବିଶେଷ, ଗରମକାଳ, ଖରାଦିନ, (ବିଂ) ଉଷ୍ଣ ।

ଗ୍ରୀଷ୍ମଋତୁ—ପୁଂ.ବି. (କ.ଧା) ଖରାଦିନ, ଖରାଋତୁ ।

ଗ୍ରୀଷ୍ମକଟିବନ୍ଧ—ବି. (କ.ଧା) (ଭୂଗୋଳ) ବିଷୁବରେଖାରେ ଉଭୟ ପାର୍ଶ୍ୱରେ ସାଢ଼େ ୨୩ଅଂଶ ବ୍ୟାପୀ ପୃଥିବୀର ଗ୍ରୀଷ୍ମମଣ୍ଡଳ; କର୍କଟକ୍ରାନ୍ତି ଓ ମକରକ୍ରାନ୍ତି ମଧ୍ୟସ୍ଥ ଭୂଭାଗ ।

ଗ୍ରୀଷ୍ମକାଳ—ପୁଂ.ବି.ଗ୍ରୀଷ୍ମଋତୁ ,ଖରାଦିନ ।

ଗ୍ରୀଷ୍ମକାଳକ—ବିଂ. ଯାହା ଗ୍ରୀଷ୍ମକାଳରେ ଉତ୍ପନ୍ନ, ଗ୍ରୀଷ୍ମକାଳସମ୍ବନ୍ଧୀୟ ।

ଗ୍ରୀଷ୍ମଛୁଟି—ଗ୍ରା. ବି.ଗ୍ରୀଷ୍ମାବକାଶ, ବିଶେଷ ଗ୍ରୀଷ୍ମଜନିତ ଅସୁବିଧାଯୋଗୁଁ ସ୍କୁଲ ଓ କାର୍ଯ୍ୟାଳୟ ଆଦିର କର୍ମ ବନ୍ଦହେବା ।

ଗ୍ରୀଷ୍ମଜ—ବିଂ. ( ଗ୍ରୀଷ୍ମ+ଜନ୍+ଅ ) ଗ୍ରୀଷ୍ମଜାତ ।

ଗ୍ରୀଷ୍ମଜା—ସ୍ତ୍ରୀ.ବି.(ଗ୍ରୀଷ୍ମଜ+ଆ)ଲବଣୀ, ବଢ଼ିଆଳ, ଆତଫଳ, ନବମଲ୍ଲିକା, ନଆଳୀ ।

ଗ୍ରୀଷ୍ମଧାନ୍ୟ—କ୍ଲୀ. ବି. (କ.ଧା) ଧାନ୍ୟବିଶେଷ, ଡାଲୁଅଧାନ ।

ଗ୍ରୀଷ୍ମନିବାସ—ବି. ଗ୍ରୀଷ୍ମକାଳରେ ରାଜା ବା ରାଜପୁରୁଷମାନେ ଶୀତଳତା ଉପଭୋଗ କରିବାପାଇଁ ସ୍ଥାନୀୟ ରାଜଧାନୀଠାରୁ ଦୂରବର୍ତ୍ତୀ ଯେଉଁ ଉଚ୍ଚପାର୍ବତ୍ୟ ବା ସମୁଦ୍ରର ଉପକୂଳସ୍ଥ ଶୀତଳ ପ୍ରଦେଶରେ ରହନ୍ତି ।

ଗ୍ରୀଷ୍ମପୀଡ଼ିତ—ବିଂ. (୩ତତ୍) ନିଦାଘ ତାପିତ, ପ୍ରଖର ରୌଦ୍ରରେ କ୍ଲେଶିତ, (ସ୍ତ୍ରୀ) ଗ୍ରୀଷ୍ମପୀଡ଼ିତା ।

ଗ୍ରୀଷ୍ମପୁଷ୍ପୀ—ସ୍ତ୍ରୀ. ବି. ( ଗ୍ରୀଷ୍ମପୁଷ୍ପ+ଈ ) କରୁଣପୁଷ୍ପବୃକ୍ଷ ।

ଗ୍ରୀଷ୍ମପ୍ରଧାନ—ବିଂ.(ବି.ବ୍ରୀ) ଯେଉଁଠାରେ ବିଶେଷଭାବରେ ଗ୍ରୀଷ୍ମ ବୋଧହୁଏ ।

ଗ୍ରୀଷ୍ମବୋଧ—ବି. (୬ତତ୍) ଗରମ ଅନୁଭୂତି ।

ଗ୍ରୀଷ୍ମଭବା—ସ୍ତ୍ରୀ.ବି. (ଗ୍ରୀଷ୍ମ+ଭୂ+କ.ଅ +ଆ) ନବମଲ୍ଲିକା, ନଆଳୀ, (ବିଂ) ଗ୍ରୀଷ୍ମଜାତ ମାତ୍ର ।

ଗ୍ରୀଷ୍ମମଣ୍ଡଳ—ବି. (କ.ଧା) ଗ୍ରୀଷ୍ମକଟିବନ୍ଧ (ଦେଖ) ।

ଗ୍ରୀଷ୍ମସୁନ୍ଦର, ଗ୍ରୀଷ୍ମସୁନ୍ଦରକ—ପୁଂ. ବି. ଶାକବିଶେଷ, ଶାଗବିଶେଷ ।

ଗ୍ରୀଷ୍ମହାସ—କ୍ଲୀ.ବି. ଇନ୍ଦ୍ରତୂଳ, ବୁଢ଼ିଆଣୀ ସୂତା ।

ଗ୍ରୀଷ୍ମାର୍ତ୍ତି—ପୁଂ.ବିଂ. ( ୬ତତ୍ )ଉଷ୍ଣତାଦ୍ୱାରା ଆକ୍ରାନ୍ତ, (ସ୍ତ୍ରୀ) ଗ୍ରୀଷ୍ମାର୍ତ୍ତା ।

ଗ୍ରୀଷ୍ମୀ—ସ୍ତ୍ରୀ. ବି. ( ଗ୍ରୀଷ୍ମ+ଅ+ଈ ) ନବମଲ୍ଲିକା, ନଆଳୀଫୁଲଗଛ ।

ଗ୍ରୀଷ୍ମୋଦ୍ଭବ—ବିଂ. ଯାହା ଗ୍ରୀଷ୍ମକାଳରେ ଉତ୍ପନ୍ନହୁଏ,(ସ୍ତ୍ରୀ)ଗ୍ରୀଷ୍ମୋଦ୍ଭବା,ନଆଳୀ ।

ଗ୍ରୀସ୍—ଯା. ବି. ୟୁରୋପର ଅନ୍ତର୍ଗତ ଗୋଟିଏ ସ୍ୱାଧୀନରାଜ୍ୟ ।

ଗ୍ରେଟ୍ବ୍ରିଟେନ—ଯା. ବି. ଇଂଲଣ୍ଡ ସ୍କଟଲଣ୍ଡ ଓ ୱେଲ୍ସ ଏହି ତିନୋଟି ରାଜ୍ୟର ସମ ହାର,ଗଳାବନ୍ଧନ, ଗ୍ରୀବାଭୂଷଣ, ଗଳାହାର ।

ଗ୍ରୈବ—ବିଂ. ( ଗ୍ରୀବା+ଅ ) ଯାହା ଗ୍ରୀବାଦେଶରେ ଉଠେ ବା ଉତ୍ପନ୍ନ ହୁଏ (କ୍ଲୀ) ଗ୍ରୀବାସମ୍ବନ୍ଧୀୟ ।

ଗ୍ରୈବେୟ—ବିଂ. ( ଗ୍ରୀବା+ଇୟ ) ଯାହା ଗ୍ରୀବାରେ ଉତ୍ପନ୍ନ ହୁଏ, ଗ୍ରୀବାସମ୍ବନ୍ଧୀୟ, ( କ୍ଲୀ. ବି. ) ଗଳାହାର, ଗଜଚନ୍ଦନ, ଗ୍ରୀବାଭୂଷଣ ।

ଗ୍ରୈବେୟକ—କ୍ଲୀ. ବି. ଓ ବିଂ. (ଗ୍ରୀବା +ଏୟ+କ) ଗ୍ରୈ (ଦେଖ) ।

ଗ୍ରୈବ୍ୟ—ବିଂ. (ଗ୍ରୀବା+ଯ)ଗ୍ରୈବେୟ, ଗ୍ରୀବୋତ୍ପନ୍ନ, ଗ୍ରୀବାସମ୍ବନ୍ଧୀୟ ।

ଗ୍ରୈଷ୍ମ—ବି. (ଗ୍ରୀଷ୍ମ+ଅ) ଯାହା ଗ୍ରୀଷ୍ମ ଋତୁରେ ଉତ୍ପନ୍ନ ହୁଏ, ଉଷ୍ଣସମ୍ବନ୍ଧୀୟ ।

ଗ୍ରୈଷ୍ମକ—ବିଂ. (ଗ୍ରୈଷ୍ମ+କ) ଯାହା ଗ୍ରୀଷ୍ମକାଳରେ ଉତ୍ପନ୍ନ ହୁଏ ।

ଗ୍ରୈଷ୍ମିକ—ପୁଂ.ବି. ଯେ ଗ୍ରୀଷ୍ମଧର୍ମଜାଣେ ଯେ ଗ୍ରୀଷ୍ମବିବରଣପ୍ରତିପାଦକ ଶାସ୍ତ୍ର ଅଧ୍ୟୟନ କରେ ।

ଗ୍ଲପନ—ବି. ( ଗ୍ଲୈ+ଣିଚ୍+ଭା.ଅନ) କ୍ଲାନ୍ତି, ନିନ୍ଦା, ଶୁଖିଯିବା, ମଉଳିବା, (ବିଂ)ଗ୍ଲାନିକାରକ,ନିନ୍ଦକ,ଗ୍ଲାନିଜନକ, ନିନ୍ଦା, ନିନ୍ଦାଜନକ ।

ଗ୍ଲପିତ—ବିଂ. (ଗ୍ଲୈ+ଣି,ତ) ମ୍ଳାନକୃତ, ଅବସାଦିତ ।

ଗ୍ଲସ୍ତ—ବିଂ. ( ଗ୍ଲସ୍—ମଁ.ତ ) ଭକ୍ଷିତ, ଖାଦିତ, (ସ୍ତ୍ରୀ) ଗ୍ଲସ୍ତା ।

ଗ୍ଲହ—ବି. ( ଗ୍ଲହ୍+ମଁ,ଅ) ପଶାଆଦି ଖେଳରେ ରଖାଯିବା ପାଣ୍ଠି,ପଶାକାଠି, ( ଭା.ଅ ) ଦ୍ୟୂତକ୍ରୀଡ଼ା, ପଶାଖେଳ, (ଣ.ଅ) ପଶା ବା ସତରଞ୍ଜିର ଗୋଟି ।

ଗ୍ଲାନ—ବିଂ. ( ଗ୍ଲୈ +କ.ତ ) ମ୍ଳାନ, ଅବସନ୍ନ, କ୍ଲାନ୍ତ,ଅସୁସ୍ଥ,ପୀଡ଼ିତ,ଦୁର୍ବଳ, (ଭା. ତ) ବି. ଗ୍ଲାନି (ଦେଖ) ।

ଗ୍ଲାନି—ବି. (ଗ୍ଲୈ+ଭା,ତି)କ୍ଲାନ୍ତି, ଶ୍ରାନ୍ତି, ଶାରୀରିକ ଶିଥିଳତା, ଅସ୍ୱାସ୍ଥ୍ୟ, ହାନି, ଦୁର୍ବଳତା, ନିନ୍ଦା,କ୍ଷୟ,କଳ୍ପିତଦୋଷାରୋପ, ମନରେ ଜାତ ଗଭୀର ଦୁଃଖ, ଖେଦ, ମାନସିକ ଶିଥିଳତା, ଅବସାଦ, ସଞ୍ଚାରୀଭାବ; ସହୃଦୟରେ ସ୍ୱାଭସ୍ୱରସର ଗୋଟିଏ ସ୍ଥାୟୀଭାବ ।

ଗ୍ଲାନିକର—ବିଂ. (ଗ୍ଲାନି+କୃ+କ.ଅ) ହାନିକାରକ, ନିନ୍ଦାଜନକ, ଦୁର୍ବଳତାଉତ୍ପାଦକ, ଶ୍ରାନ୍ତିକର ।

ଗ୍ଲାନିକରିବା—ଗ୍ରା. କି. ନିନ୍ଦାକରିବା, ହାନିକରିବା, ଦୁର୍ବଳକରିବା, ଅସୁସ୍ଥକରିବା ।

ଗ୍ଲାନିଜନକ—ବି. ଗ୍ଲାନିକର (ଦେଖ) ।

ଗ୍ଲାନିପ୍ରଦ—ବିଂ. ଗ୍ଲାନିକର (ଦେଖ) ।

ଗ୍ଲାସ୍ନୁ—ବିଂ.( ଗ୍ଲୈ+କ.ସ୍ନୁ ) ଗ୍ଲାନ, କ୍ଲାନ୍ତ । [ ଦୈନ୍ୟ ।

ଗ୍ଲେପନ—କ୍ଲୀ. ବି. (ଗ୍ଲେପ୍+ଭା.ଅନ)

ଗ୍ଲେୟ—ବିଂ.(ଗ୍ଲୈ+କ,ଅ) ଗ୍ଲାନିକର, (ମଁ.ଯ) ଗ୍ଲାନିଯୋଗ୍ୟ ।

ଗ୍ଲୌ—ବି. ( ଗ୍ଲୈ+କ, ଔ ) ଚନ୍ଦ୍ର, କର୍ପୂର, ତୁଦୟନାଡ଼ୀ ।

# ଘ

ଘ — ବ୍ୟଞ୍ଜନ ବର୍ଣ୍ଣର ଓ କ ବର୍ଗର ୪ର୍ଥ ବର୍ଣ୍ଣ, ଏହାର ଉଚ୍ଚାରଣସ୍ଥାନ ଜିହ୍ୱାମୂଳ, (ବି)(ହନ୍ + ସଂ.ଅ) ଘଣ୍ଟା, ଘଣ୍ଟାଧ୍ୱନି, ଘର୍ଘରଶବ୍ଦ, ବଜ୍ରସ୍ୱର, ବର୍ଷା ।

ଘଇତା — ଗ୍ରା.ପୁଂ. ବି. ( ସଂ-ଗୃହପତି ) ଭର୍ତ୍ତା, ସ୍ୱାମୀ, ମାଲିକ, ଜାର, ଉପପତି ।

ଘଇତାକରାଇ — ଗ୍ରା. ସ୍ତ୍ରୀ. ବିଂ. (ଗାଳି) ଅସତୀ (ସ୍ତ୍ରୀ) କୁଟପୀ ।

ଘଇତାକରିବା — ଗ୍ରା. କ୍ରି. ପରପୁରୁଷକୁ ଉପପତିରୂପେ ଗ୍ରହଣ କରିବା, ପରପୁରୁଷ ସଙ୍ଗମକରିବା, ସ୍ୱାମୀରୂପେ ବରଣ କରିବା ।

ଘଇତା ଖାଇ — ଗ୍ରା. ସ୍ତ୍ରୀ. ବି. (ଗାଳି) ଯେ ନିଜସ୍ୱାମୀର ମୃତ୍ୟୁର କାରଣ ହୁଏ, ବିଧବା । [ ସ୍ୱାମିତ୍ୱ ।

ଘଇତାପଣ — ଗ୍ରା. ବି. ସ୍ୱାମୀର ଅଧିକାର,

ଘଇତାପଣିଆଁ — ଗ୍ରା.ବି.ସ୍ୱାମୀର ଅଧିକାର ସ୍ୱାମିତ୍ୱ ।

ଘଇତାବୁଲି — ଗ୍ରା. ବି. (ଲ.ଅର୍ଥ) ସ୍ୱାମୀଠାରୁ ଉତ୍ସାହ ବା ଅଙ୍ଗୀକାର ବଚନ ।

ଘଇତାମାଇପ — ଗ୍ରା. ବି. (ଦ୍ୱନ୍ଦ୍ୱ) ସ୍ୱାମୀ ଓ ସ୍ତ୍ରୀ ।

ଘଇତାସୁଆଗୀ — ଗ୍ରା. ବିଂ. ସ୍ତ୍ରୀ. ଯେଉଁ ସ୍ତ୍ରୀ ସ୍ୱାମୀପ୍ରତି ଅତିଭକ୍ତି ଆଦରଦେଖାଏ, ଯେଉଁ ସ୍ତ୍ରୀକୁ ସ୍ୱାମୀ ଅତ୍ୟନ୍ତ ଆଦର ଦେଖାଏ । [ ଦେବା ।

ଘଉଡ଼ା — ଗ୍ରା. ବି. ଦୂରୀକରଣ, ତଡ଼ି-

ଘଉଡ଼ାଇବା — ଗ୍ରା. କ୍ରି. ଦୂରକରିବା, ତଡ଼ିଦେବା, ଗଳାଧକ୍କାଦେବା ।

ଘଉଡ଼ାଘଉଡ଼ି — ଗ୍ରା. ବି. ପରସ୍ପର ତଡ଼ାତଡ଼ିହେବା କର୍ମ, ବହୁବାର ତଡ଼ିବାକର୍ମ, (ବିଂ) ପରସ୍ପର ତଡ଼ାତଡ଼ିହେବା ।

ଘଉଡ଼ିବା — ଗ୍ରା. କ୍ରି. ଘଉଡ଼ାଇବା, ପଛରେ ଗୋଡ଼ାଇକରି ଖଣ୍ଡେଦୂରରେ ଛାଡ଼ିବା, ତଡ଼ିବା ।

ଘଁଘଁ — ଗ୍ରା. (ଅବ୍ୟ) ଘୁଙ୍ଗୁଡ଼ିମାରିବାର ଅନୁନାସିକ ଧ୍ୱନି ।

ଘଁଟା — ପ୍ରା.(ସମ୍ବ)ବି.(ସଂ-ଗ୍ରନ୍ଥି) ଗଣ୍ଠି ।

ଘଁଠା — ପ୍ରା. (ସମ୍ବ)ବି. ଘଁଟା, ଗଣ୍ଠି ।

ଘଗ୍‌ର — ପ୍ରା. (ସମ୍ବ) ବି. ( ସଂ-ଗର୍ଗରୀ ) ମାଠିଆ, କଳସ ।

ଘଞ୍ଚ — ଗ୍ରା. ବିଂ.(ସଂ-ଘନ) ଗହନ, ସାନ୍ଦ୍ର, ନିବିଡ଼, ଭିଡ଼, ଜନତାପୂର୍ଣ୍ଣ, ମୋଟ ।

ଘଞ୍ଚାଘଞ୍ଚ — ଗ୍ରା. ବି. ଅତିଗହନ, (ବି) ବହୁବସ୍ତୁର ଅଳ୍ପସ୍ଥାନରେ ସମାବେଶ ।

ଘଞ୍ଚାଘଞ୍ଚି — ଗ୍ରା.ବି.ବିଂ.ଘଞ୍ଚାଘଞ୍ଚ(ଦେଖ) ।

ଘଞ୍ଚାଳ — ଗ୍ରା ବି. (ପ୍ରାଚୀନ) ପ୍ରତିରୋଧ ।

ଘଟ୍ — (ଧାତୁ) ଚେଷ୍ଟାକରିବା, ଉତ୍ପନ୍ନ କରିବା, ହିଂସାକରିବା, ଘଟିବା, ମିଳିତହେବା, ପହଞ୍ଚିବା, ମିଶିବା, ସମ୍ପାଦନ କରିବା, ଗଢ଼ିବା, ମିଳାଇବା, ଘଷିବା, ଛୁଇଁବା ।

ଘଟ — ପୁଂ. ବି. ( ଘଟ୍ + ସଂ,ଅ )କୁମ୍ଭ, କଳସ, ଭାଣ୍ଡ, ଗଜକୁମ୍ଭ, କୁମ୍ଭକ, ଶ୍ୱାସରୋଧ, କୁମ୍ଭରାଶି, ପରିମାଣବିଶେଷ, ୨୦ ଦ୍ରୋଣ ବା ୬୪ସେର, ମୃତବ୍ୟକ୍ତିର ଶ୍ରାଦ୍ଧକ୍ରିୟାରେ କ୍ରିୟାଧିକାରୀ ଦିନଠାରୁ ଦଶାହ ପର୍ଯ୍ୟନ୍ତ ତିକାଠିଆ ଉପରେ ସ୍ଥାପିତ ହୋଇଥିବା ମାଠିଆ, ଯହିଁ ନୀର କ୍ଷୀର ପ୍ରତ୍ୟହ ଦିଆଯାଏ, ଦେହ, ଶରୀର, ମୂର୍ତ୍ତି, ପ୍ରାଣ, ମସ୍ତକ, ମସ୍ତିଷ୍କ ।

ଘଟକ — ପୁଂ. ବିଂ. ( ଘଟ୍ + ସଂ.ଅକ ) ସମ୍ପାଦନକାରୀ, ଘଟଣାକାରୀ, (ବି) ବିବାହରେ ବର କନ୍ୟା ଉଭୟ ପକ୍ଷରୁ ପ୍ରସ୍ତାବ ଆଣି ସମ୍ବନ୍ଧ ଯୋଡ଼ିବା ମଧ୍ୟସ୍ଥି, ଭଲଲୋକ, ଯୋଟକ; ଯେଉଁ ବୃକ୍ଷର ପୁଷ୍ପ ଦେଖା ନ ଯାଇ ଫଳ ଫଳେ, (ଡିମିରିପ୍ରଭୃତି), ଯେଉଁ ବ୍ୟକ୍ତି କୃପିନାମା ଉଆରକରେ, ଭେଟା, ଯେଉଁବ୍ୟକ୍ତି ପ୍ରେମିକପ୍ରେମିକାଙ୍କୁ ଭେଟାଏ, ଦଲାଲ, (ଘଟ୍ + ସ୍ୱାର୍ଥେ-କ) ଘଟ, ମାଠିଆ, ଜଳକୁମ୍ଭ, ଶରୀର, ଦେହ ।

ଘଟକଞ୍ଚୁକୀ — ବି.(ବି.ସ୍ତ୍ରୀ)ଆଗମପୁରାଣୋକ୍ତ ତାନ୍ତ୍ରିକ ଓ ଶାକ୍ତମାନଙ୍କରଗୀତବିଶେଷ ।

ଘଟକର୍କଟ — ବି. ବାଦ୍ୟର ତାଳବିଶେଷ (ହିନ୍ଦୀଶବ୍ଦସାଗର) ।

ଘଟକର୍ପର — ବି. ବିକ୍ରମାଦିତ୍ୟଙ୍କ ସଭାର ନବରତ୍ନ ପଣ୍ଡିତଙ୍କ ମଧ୍ୟରୁ ଜଣେ ।

ଘଟକପ୍ରବର୍ତ୍ତୀ — ସ୍ତ୍ରୀ. ବି. (କ.ଧା) ଦୂତୀ, ଯେଉଁ ସ୍ତ୍ରୀ ଜାରସଙ୍ଗେ ପ୍ରେମିକାର ଭେଟ କରାଏ ।

ଘଟକା — ପ୍ରା. (ହିଂସ୍ର) ବି. ଘଉଡ଼ ।

ଘଟକାର — ପୁଂ. ବି. (ଘଟ + କୃ + ଅ) କୁମ୍ଭକାର, କୁମ୍ଭାର, (ଗ୍ରା.ବି) ଘଟନାକାରୀ ବ୍ୟକ୍ତି ।

ଘଟକାଳି — ଗ୍ରା.ବି.ଘଟକପଣ, ବିବାହରେ ମଧ୍ୟସ୍ଥତା, ଭଲଲୋକ, ଦୂତୀପଣ, ବିବାହଘଟନାର କୌଶଳ ।

ଘଟକୁମାର — ବି. (୭ତନ୍ତ୍ର)ଅଗସ୍ତ୍ୟମୁନି ।

ଘଟକୃତ୍ — ପୁଂ.ବି. (ଘଟ + କୃ + କ୍ୱିପ୍) ଘଟକାର, କୁମ୍ଭକାର, କୁମ୍ଭାର ।

ଘଟଗ୍ରହ — ପୁଂ. ବି. (ଘଟ + ଗ୍ରହ୍ + କ. ଅ) ପାଣିବୁହାଳି, ପାଣିଆପଟ, ଘଡ଼େଇ ।

ଘଟଘଟ — ଗ୍ରା. ଅବ୍ୟ. (ଧ୍ୱନ୍ୟନୁକରଣ) ଘଡ଼ଘଡ଼ ଶବ୍ଦ ।

ଘଟଛୁଟିବା — ଗ୍ରା.ବି.ପିଣ୍ଡରୁ ପ୍ରାଣଛାଡ଼ିବା ।

ଘଟଜ — ପୁଂ. ବି. (ଘଟ + ଜନ୍ + ଅ) କୁମ୍ଭସମ୍ଭବ, ଅଗସ୍ତି ମୁନି । [ଦ୍ରୋଣ ।

ଘଟଜନ୍ମା — ବି. ବି.ସ୍ତ୍ରୀ; (ଘଟ + ଜନ୍ମନ୍)

ଘଟଣ — ଗ୍ରା. ବି. (ସଂ-ଘଟନ) ଘଟିବା, ଗଠନ, ଗଢ଼ଣ, ଘଟଣା, ସୌନ୍ଦର୍ଯ୍ୟ, ବିଧିବିଧାନ, (ବିଂ) ସୁନ୍ଦର ।

ଘଟଣା — ଗ୍ରା. ବିଂ. (ସଂ-ଘଟନ) ଘଟିବା, ଅକସ୍ମାତ୍ ଘଟିବା ବିଷୟ, ବ୍ୟାପାର, ଯାହା ଘଟେ, ରଚନା, ନିର୍ମାଣ, ଆୟୋଜନ, ବନ୍ଦୋବସ୍ତ, ଯୋଗାଡ଼ ।

ଘଟଣାକରିବା — ଗ୍ରା. କ୍ରି. ସଂଗ୍ରହକରିବା, ଆୟୋଜନକରିବା, ସ୍ଥିରକରିବା ।

ଘଟଣି — ଗ୍ରା. ବିଂ.(ସଂ-ଘଟନ)ସମ୍ପାଦନ, ନିର୍ମାଣ, ଗଢ଼ଣ ।

ଘଟତି — ଗ୍ରା.ବି. ଘଟଣା, କାଣ୍ଡ, କମ୍‌ତି, କମିଯିବା ଅବସ୍ଥା, ହ୍ରାସତା, କ୍ଷତି, ନୋକସାନ ।

ଘଟଦାସୀ — ସ୍ତ୍ରୀ.ବି.(ଘଟ + ଦାସୀ)ଦୂତୀ, କୁଟୁଣୀ, ଯେ ପରପୁରୁଷ ନିକଟରେ ସ୍ତ୍ରୀ ଯୁଟାଏ ।

ଘଟନ — ବି.(ଘଟ୍ + ସଂ,ଅନ)ବ୍ୟାପାର, ଘଟିବାକର୍ମ, ମେଳନ, ଯୋଜନା,

ଦୈବୀଘଟନା, ଆକସ୍ମିକ ବ୍ୟାପାର, ଘଟାଇବା, ନର୍ମାଣକରିବା, ବିବାଦ, ଶୃଙ୍ଖଳା, ହସ୍ତିସୈନ୍ୟ, ବନ୍ଦୋବସ୍ତ, ଯୋଗାଡ଼, ରଚନା । [ (ଦେଖ) ।
ଘଟନା—ସ୍ତ୍ରୀ. ବି. (ଘଟନ+ଆ) ଘଟନ
ଘଟନାକରିବା—ଗ୍ରା. କ୍ରି. ଯୋଗାଡ଼ କରିବା, ଗଢ଼ିବା, ରଚନାକରିବା ।
ଘଟନାକ୍ରମ—ବି. (ତତ୍ପୁ) କାର୍ଯ୍ୟଗତି, ଧାରାବାହିକ ଘଟନା ।
ଘଟନାକ୍ରମେ—ଗ୍ରା. କ୍ରି. ବିଂ. ଦୈବାତ୍, ଦୈବକ୍ରମରେ ।
ଘଟନାଚକ୍ର—ବି. (ତତ୍ପୁ) ବ୍ୟାପାର, ସମୂହ, ଆକସ୍ମିକ ବ୍ୟାପାରପରମ୍ପରା, ଘଟନାବଳୀ ।
ଘଟନାଧୀନ—ବିଂ.(ତତ୍ପୁ) ଦୈବାଧୀନ, ଆକସ୍ମିକବ୍ୟାପାରାଧୀନ,(ସ୍ତ୍ରୀ)ଘଟନାଧୀନା ।
ଘଟନାନୁଭବକତା—ସ୍ତ୍ରୀ.ବି. ଯେଉଁବୃତ୍ତି-ଦ୍ୱାରା ଘଟନାର ଅନୁଭବ କରାଯାଇ ନ ପାରେ ।
ଘଟନାପୂର୍ଣ୍ଣ—ବିଂ. (ତତ୍ପୁ) ଚିରକାଳ-ପାଇଁ ସ୍ମରଣୀୟ, ବ୍ୟାପାରପୂର୍ଣ୍ଣ ।
ଘଟନାପ୍ରବାହ—ବି. (ତତ୍ପୁ)ଘଟନାକ୍ରମ (ଦେଖ) ।
ଘଟନାବଳୀ—ସ୍ତ୍ରୀ. ବି. (ତତ୍ପୁ) ଘଟନ-ସମୂହ, ଘଟନାସଙ୍କୁଳ ।
ଘଟନାବିରହ—ଗ୍ରା. ବି. କୌଣସିବିଷୟ ନ ଘଟିବାର ଅବସ୍ଥା ।
ଘଟନାମୟ—ବିଂ.(ଘଟନା+ମୟ)ଘଟନା ପୂର୍ଣ୍ଣ, (ଦେଖ) ।
ଘଟନାସ୍ଥଳ—କ୍ଲୀ. ବି. (ତତ୍ପୁ) ଯେଉଁ ସ୍ଥାନରେ କୌଣସି ବ୍ୟାପାର ଘଟେ, ଭିକ୍ସଲ—ସରଜମିନ୍ ।
ଘଟନାସ୍ରୋତ—ଗ୍ରା. ବି. (ତତ୍ପୁ)ଧାରା-ବାହିକ ଘଟନା ।
ଘଟନୀୟ—ବିଂ. (ଘଟ୍+ମିଂ. ଅନୀୟ) ଯାହା ଘଟିବାର ସମ୍ଭବପର, ଘଟିବା ଯୋଗ୍ୟ, ଅବଶ୍ୟମ୍ଭାବୀ ।
ଘଟପଟାଦି—ବି. (ଘଟ+ପଟାଦି) ଘଟ ଓ ପଟଆଦି ବାସ୍ତବବସ୍ତୁ, ବାସ୍ତବ ଜଗତ୍ ।

ଘଟପଲ୍ଲବ-ବି.(ବାସ୍ତୁବିଦ୍ୟା)ଘଟ ଓ ପଲ୍ଲବର ରୂପ ଯେଉଁ ଖମ୍ବର ମୁଣ୍ଡରେ ଅଙ୍କିତ ହୋଇଥାଏ । [ଅଗସ୍ତ୍ୟମୁନି ।
ଘଟଭବ—ପୁଂ.ବି. (ଘଟ+ଭୂ+କ.ଅ.)
ଘଟସ୍ଥିତଦ୍ରବ୍ୟ—ବିଂ. (ଘଟ୍+ଶିତ୍+ମିଂ, ଦ୍ରବ୍ୟ) ଯେଉଁ ଛିଦ୍ର ବନ୍ଦ କରିବାକୁ ହେବ ।
ଘଟଯୋନି—ପୁଂ. ବି. (ଘଟ+ଯୋନି) କୁମ୍ଭଯୋନି, ଅଗସ୍ତ୍ୟ ମୁନି ।
ଘଟରଘୁମା—ଗ୍ରା. ବି. ଏକପ୍ରକାର ହୁଁ ହୁଁ ଶବ୍ଦକାରୀ ଚଢ଼େଇ ।
ଘଟରାଜ—ବିଂ. ପୋଡ଼ାମାଟିଆ, ବଡ଼-ମାଟିଆ ।
ଘଟଶ୍ରବଣ—ପୁଂ. ବି.(ବ.ବ୍ରୀ)କୁମ୍ଭକର୍ଣ୍ଣ ।
ଘଟଶ୍ରୋତ୍ର—ପୁଂ.ବି.(ବ.ବ୍ରୀ)କୁମ୍ଭକର୍ଣ୍ଣ ।
ଘଟସମ୍ଭବ—ପୁଂ.ବି. ଘଟଯୋନି, ଅଗସ୍ତ୍ୟ-ମୁନି ।
ଘଟସୂତ୍ର—ଗ୍ରା. ବି. ( ସଂ-ଘଟ+ସୂତ୍ର ) ଘଟନାଚକ୍ର, ଘଟନାକ୍ରମେ, ଘଟନା ଘଟିବା, ଚେଷ୍ଟା ।
ଘଟସ୍ତନା—ସ୍ତ୍ରୀ.ବିଂ. (ଘଟ+ସ୍ତନ+ଆ) ବ.ବ୍ରୀ; ଯେଉଁ ସ୍ତ୍ରୀର ସ୍ତନ କୁମ୍ଭପରି ବଡ଼, କୁମ୍ଭସ୍ତନା ।
ଘଟସ୍ତନୀ—ସ୍ତ୍ରୀ. ବିଂ.ଘଟସ୍ତନା (ଦେଖ) ।
ଘଟସ୍ଥାପନ—ବି.(ଘଟ+ସ୍ଥାପନ)ତତ୍ପୁ; କୌଣସି ଦେବଦେବୀଙ୍କ ମୂର୍ତ୍ତି ପୂଜା-ସ୍ଥାନରେ ସ୍ଥାପନ ନ କରି ତତ୍ ପରି-ବର୍ତ୍ତେ ମୂର୍ତ୍ତିରୂପେ କଳ୍ପିତ ଗୋଟିଏ ଜଳପୂର୍ଣ୍ଣ କୁମ୍ଭ ସ୍ଥାପନ,କଳସ ଆପିବା ।
ଘଟା—ସ୍ତ୍ରୀ.ବି. (ଘଟ+ଅ+ଆ)ସମୂହ, ଘଟନା, ଜାକଜମକ, ଆଡ଼ମ୍ବର,ସଭା, ଯୁଦ୍ଧରେ ହସ୍ତୀସମୂହର ଏକତ୍ର ମିଳନ, ସମର୍ଥନ, ଚେଷ୍ଟା,ମେଘମାଳା, (ଗ୍ରା.ବି) ଦାଗ, ତେଲ ପ୍ରଲେପଜନିତ ମଇଳା-ବିଶେଷ ।
ଘଟାଇବା—ଗ୍ରା. କ୍ରି ( ସଂ-ଘଟ୍ଧାତୁ ) ଘଟନା କରିବା, ମିଳାଇବା,ବନ୍ଦୋବସ୍ତ କରିବା, ମିଥ୍ୟାକଥା କହିବା ।
ଘଟାଇ—ଗ୍ରା. ସ୍ତ୍ରୀ. ବିଂ. (ସଂ-ଘଟକୀ) ଘଟକୀ, ଅଘଟଘଟେଇ, କହିବାପ୍ରଣାଳୀ-ଦ୍ୱାରା ମିଛକୁ ସତ ବୋଲି ଶ୍ରୋତା-ମନରେ ପ୍ରତ୍ୟୟ କରାଇବା (ସ୍ତ୍ରୀ) ।

ଘଟାଗ୍ର—ବି. ( ଘଟ+ଅଗ୍ର ) ତତ୍ପୁ; (ବାସ୍ତୁବିଦ୍ୟା) ସ୍ତମ୍ଭର ସର୍ବୋଚ୍ଚଭାଗର ନିମ୍ନବର୍ତ୍ତୀଅଂଶ, ସ୍ତମ୍ଭର ନଅଗୋଟିଅଂଶ ମଧ୍ୟରୁ ଅଷ୍ଟମ ଅଂଶ ।
ଘଟାଘଟ—ଗ୍ରା. ବିଂ. ବଳପଡ଼ିବା କମ୍ବା କମ୍ ନ ହେବା (ଅବସ୍ଥା) ।
ଘଟାଘଟି—ଗ୍ରା. ବି. ପରସ୍ପର ସଙ୍ଗେ ଯୋଡ଼ିଖାଉଥିବା, ମିଳାମିଳ, ମୁମୂର୍ଷୁ (ସମସ୍ୟ), ପରସ୍ପର ଉପଯୋଗୀ ।
ଘଟାଟପ—ଗ୍ରା. ବି. ( ସଂ-ଘଟାଟୋପ ) ଗାଡ଼ିଆଦି ଉପରେ ବସ୍ତ୍ରର ବା ଚମଡ଼ାର ଆବରଣ ବା ଘୋଡ଼ଣୀ ।
ଘଟାଟୋପ—ପୁଂ.ବି. (ଘଟ+ଆଟୋପ) ଯାନଆଦିର ଉପରେ ଥିବା ବସ୍ତ୍ର ବା ଚମଡ଼ାର ଆବରଣ,ଆଡ଼ମ୍ବର, ଆକାଶ-ଗ୍ଭରଆଡ଼େ ଘୋଟିଥିବାମେଘ ।
ଘଟାଭ—ପୁଂ. ବି. ହିରଣ୍ୟକଶିପୁର ସେନାପତି ଅସୁରବିଶେଷ ।
ଘଟାଳ—ବିଂ. ( ଘଟା+ଲ ) କୁଞ୍ଚିତ ଘଟନାଯୁକ୍ତ ।
ଘଟଲବୁ—ସ୍ତ୍ରୀ.ବି.ମ ଠିଆଲାଉ,କୁମ୍ଭତୁମ୍ବୀ ।
ଘଟି—ଗ୍ରା.ବି. (ସଂ-ଘୃଷ୍ଟ) ମଲ୍ଲଛଡ଼ାଇବା ନିମନ୍ତେ ଦେହରେ ଲେପନାର୍ଥ ଚୂର୍ଣ୍ଣ ବା ଲେପ, (ସଂ-ଘଟ) କଳସ, ଛୋଟ ଘଟ, (ଗ୍ରା.ଇତର,ଅବ୍ୟ) ଘରଠାଇଁ, ଘରଠାରେ, ଘରେ ( ପ୍ରା. ବାଲେ ) ( ସଂ-ଘଟୀ ) ଛୋଟି,ଛୋଟଢାଲ, (ପ୍ରା. ସମ୍ଭ ବି. ) ଘାଟି, ଦୋଷ, କ୍ଷତି ।
ଘଟିକ—ବି. (ଘଟ+ଇକ)ନିତମ୍ବଦେଶ, ପିଣ୍ଡ, ପାଦଗଣ୍ଠି, ପାଣିଆପଟ, ଯେ ଘଣ୍ଟାବଜାଏ ।
ଘଟିକା—ସ୍ତ୍ରୀ. ବି. (ଘଟି+କ+ଆ) ହୋରା, ଏକଘଣ୍ଟା, ୨୪ଦଣ୍ଡ ୫ ଘଡ଼ି, ଏକଦଣ୍ଡ,ପ୍ରାୟ ୨୪ ମିନିଟ୍,ଏକମୁହୂର୍ତ୍ତ କ୍ଷୁଦ୍ର, ଘଟ ବା କଳସ, ଘଡ଼ି, ସମୟ-ନିର୍ଣ୍ଣାୟକ ଯନ୍ତ୍ର,ଘଣ୍ଟା, ଗୁଳ୍ଫ,ପାଦଗଣ୍ଠି, (ସ୍ତ୍ରୀ.ବିଂ) ଯୋଜନକାରିଣୀ, ସଂଘଟନ-କାରିଣୀ ।

ଘଟିକାଚଳ—ପୁଂ. ବି. ମାନ୍ଦ୍ରାଜ ନଗରର ପୂର୍ବାଂଶରେ ସ୍ଥିତ ଚଡୋର ନଗରର ନିକଟବର୍ତ୍ତୀ ଗୋଟିଏ ପର୍ବତ ।

ଘଟିକାଯନ୍ତ୍ର—କ୍ଲୀ. ବି. ସମୟଜ୍ଞାପକଯନ୍ତ୍ର-ବିଶେଷ, ଘଣ୍ଟା,ଜଳଉଠାଇବାର ଯନ୍ତ୍ର, ଯନ୍ତ୍ର, ଡେଣ୍ଡା ।

ଘଟିକାଲବଣ—ବି. ବିଟଲବଣ ।

ଘଟିତ—ବିଂ, (ଘଟ+ର୍ମି,ତ) ରଚିତ, ନିର୍ମିତ, ମିଶ୍ରିତ, ଯୋଜିତ, ଘଟିଥିବା, କଳ୍ପିତ, ସମ୍ଭାବ୍ୟ,(ସ୍ତ୍ରୀ) ଘଟିତା ।

ଘଟିତବ୍ୟ—ବିଂ. (ଘଟ+ର୍ମି.ତବ୍ୟ) ଘଟନୀୟ ।

ଘଟିତା--ପୁଂ.ବିଂ.(ଘଟ୍+କ.ତୃ)ଘଟ୍ଟିତା (ଦେଖ) ।

ଘଟିନ୍ଧମ—ବି. (ଘଟିଂ+ଧ୍ମା+କ.ଅ) କୁମ୍ଭକାର, କୁମ୍ଭାର ।

ଘଟିନ୍ଧୟ—ପୁଂ.ବିଂ.(ଘଟିଂ+ଧେ+କ, ଅ) ଯେ ମାଠିଆଏ ପରିମିତ ପାଣି ଆଦି ପିଇପାରେ ।

ଘଟିବା—ଗ୍ରା.କ୍ରି. ଘଟନାହେବା,ଅଣ୍ଟିବା, ସିଦ୍ଧହେବା, ସଫଳହେବା, ବୋଧ-ହେବା, ବିବେଚିତହେବା, ଅନୁମିତ-ହେବା, ସନ୍ନିକଟହେବା, ମିଳିବା, ଯୁଟିବା, ଶୋଭାପାଇବା, ଯୋଗାଇବା, ମାନିବା (ପ୍ରା.ସମ୍ବ) କମିଯିବା ।

ଘଟୀ—ପୁଂ.ବି. (ଘଟ+ଇନ୍)କୁମ୍ଭରାଶି, (ସମ୍ବ-ବି) ଘଟାକୃତି କ୍ଷୁଦ୍ର ଜଳପାତ୍ର, ଲୋଟା, ଡାଲ, ଘଡ଼ି, ମୁହୂର୍ତ୍ତ, ଦଣ୍ଡ, ଘଣ୍ଟା, (ବିଂ) ଘଟଯୁକ୍ତ,ଯାହାର କୁମ୍ଭ-ଅଛି ।

ଘଟୀଯନ୍ତ୍ର—କ୍ଲୀ.ବି. (କ.ଧା)କୂପପ୍ରଭୃତିରୁ ପାଣିଉଠାଇବାର ଯନ୍ତ୍ରବିଶେଷ,ଅରଘଟ, କାଳନିରୂପକ ଯନ୍ତ୍ର ।

ଘଟୁଆର—ଗ୍ରା. ବି. ପୁରୀ ଜଗନ୍ନାଥମହା-ପ୍ରଭୁଙ୍କ ସେବାପୂଜାପାଇଁଚନ୍ଦନଘୋରିବା ସେବକବିଶେଷ ।

ଘଟୁଆଳ୍—ପ୍ରା. (ସମ୍ବ) ବି. ଯେଉଁବ୍ୟକ୍ତି ନଦୀଆଦିର ଘାଟରେ ମନୁଷ୍ୟଙ୍କୁ ପାର-ଉତ୍ତାର କରେ,ଦେବପୂଜକ,ପୂଜାହାର, ସେବାଏତ, ସେବକ ।

ଘଟୁଆଳ—ଗ୍ରା. ବି. ଘାଟ ବା ନିର୍ଦ୍ଦିଷ୍ଟ ସ୍ଥାନବାଟେ ପଣ୍ୟଦ୍ରବ୍ୟନେଇ ଯାଉଥିବା ବଣିକମାନଙ୍କଠାରୁ ଶୁଳ୍କ ବା କର ଆଦାୟ କରିବା ବ୍ୟକ୍ତି, ଘାଟିଆ ।

ଘଟୋତ୍କଚ—ପୁଂ.ବି. ଭୀମଙ୍କ ଔରସରେ ହିଡ଼ିମ୍ବା ରାକ୍ଷସୀର ଗର୍ଭଜାତ ଜଣେ ରାକ୍ଷସ ।

ଘଟୋତ୍କଚମୁକ୍ତକ—ପୁଂ.ବି.(ଷତତ୍ପୁ)କର୍ଣ୍ଣ ।

ଘଟୋଦର—ପୁଂ. ବି. ହିରଣ୍ୟକଶିପୁର ଜଣେ ସେନାପତି, ଅସୁରବିଶେଷ ।

ଘଟୋଧ୍ନୀ—ସ୍ତ୍ରୀ.ବିଂ.(ଘଟ+ଉଧସ୍+ଈ) ଯେଉଁ ଗାଈର ପହ୍ନା ମାଠିଆପରି ବଡ଼ ।

ଘଟୋଦ୍ଭବ—ପୁଂ. ବି. (ଘଟ+ଉଦ୍ଭବ) ବ.ବ୍ରୀ; ଅଗସ୍ତ୍ୟମୁନି ।

ଘଟ୍ଟ—ପୁଂ. ବି. (ଘଟ୍ଟ+ଅ) ନଈଘାଟ, ନଈପାରିହୋଇ କୂଳରେ ଓହ୍ଲାଇବାର ସ୍ଥାନ, ତୋଠ୍,ଗାଧୁଆଘାଟ,ବନ୍ଧାଘାଟ, ଗିରିସଙ୍କଟ, ଘାଣ୍ଟିବା, ଶୁଳ୍କ ଆଦାୟର ସ୍ଥାନ, ଥାନା, ଫାଣ୍ଡି ।

ଘଟ୍ଟକୁଟୀ—ବି. ଘାଟମାସୁଲ ଆଦାୟ କରାଯିବା ଘର । [ ଗୋଳ ।

ଘଟ୍ଟଗୋଳ—ଗ୍ରା.ବି. ହଟ୍ଟଗୋଳ, ଗଣ୍ଡ-

ଘଟ୍ଟଜୀବୀ - ପୁଂ. ବିଂ. ( ଘଟ୍ଟ+ଜୀବ୍+ଇନ୍) ନଈଘାଟିଆ, ଯେ ଯାତ୍ରୀମାନଙ୍କୁ ନଈରେ ପାରିଉତ୍ତାର କରେ, ଯେଉଁ-ବ୍ୟକ୍ତି ଘାଟରେ ସ୍ନାନକରିବା ଲୋକଙ୍କ ଲୁଗାପଟା ଜଗାରଖାକରେ,ବେଶ୍ୟା ସ୍ତ୍ରୀ ଗର୍ଭରେ ରଜକ ଔରସରେ ଜାତ ଜାତିବିଶେଷ ।

ଘଟ୍ଟନ-କ୍ଲୀ.ବି.(ଘଟ୍ଟ୍+ଭା,ଅନ)ଆଘାତ, ଆନ୍ଦୋଳନ କରିବା, ଘାଣ୍ଟିବା,ଘର୍ଷଣ, ଘୋଟିବା, ଘଟାଇବା,ସଂଘଟନ,ଚାଳନ, ଘୋରିବା,ପେଶା, ବୃତ୍ତି । [ (ଦେଖ) ।

ଘଟ୍ଟନା—ବି. (ଘଟ୍ଟ୍+ଅନ+ଆ)ଘଟ୍ଟନ

ଘଟ୍ଟିତ—ବିଂ. (ଘଟ୍ଟ୍+ର୍ମି.ତ) ଚାଳିତ, ଘଣ୍ଟାହୋଇଥିବା, ଘୋଟାହୋଇଥିବା, ଗଠିତ,ନିର୍ମିତ,ଆହତ,ମଡ଼ାଯାଇଥିବା ।

ଘଟ୍ଟିତା—ପୁଂ.ବିଂ.(ଘଟ୍ଟ୍+ତୃ)ବିଶେଷ ଯତ୍ନକରିବାପାଇଁ ଉଦ୍ୟତ ।

ଘଠ୍ଠି—ଗ୍ରା.(ଇତର)ଅବ୍ୟ.ଘରଠାରେ ।

ଘଠ୍ଠଉଁ—ଗ୍ରା. (ଇତର) ଅବ୍ୟ. ଘର-ଠାରୁ ।

ଘଠ୍ଠୁ—ଗ୍ରା.(ଇତର)ଅବ୍ୟ.ଘରଠାରୁ ।

ଘଠ୍ଠେଇଁ—ଗ୍ରା.(ଇତର) ଅବ୍ୟ. ଘର-ଠାରେ ।

ଘଠି—ଗ୍ରା. (ଇତର) ଘରଠାରେ ।

ଘଡ଼କ—ଗ୍ରା. ବି. (ଧ୍ୱନ୍ୟନୁକରଣ) ମୃତ୍ୟୁ ପୂର୍ବରୁ ଜୀବକଣ୍ଠରୁ ଉଠିବା ଖରଶ୍ୱାସ ଓ ଘଡ଼ ଘଡ଼ ଧ୍ୱନି ।

ଘଡ଼୍ ଘଡ଼୍—ଗ୍ରା. ଅବ୍ୟ.(ଧ୍ୱନ୍ୟନୁକରଣ) ମେଘ ଗର୍ଜନଶବ୍ଦ, ଟାଣଭୂଇଁରେ ଶଗଡ଼ ଗଡ଼ିବାର ଶବ୍ଦ, ଗଳାରେ କଫରୋଧ ଯୋଗୁଁ ନିଃଶ୍ୱାସ ପ୍ରଶ୍ୱାସର ଶବ୍ଦ,ମରିବା ପୂର୍ବରୁ ଜୀବର ନିଃସୃତ ଘଡ଼୍ ଘଡ଼୍ ଶବ୍ଦ, ଅଜୀର୍ଣ୍ଣଯୋଗୁ ପେଟ ମଧ୍ୟରେ ହେବା ଶବ୍ଦ, (କଳକଳ) ।

ଘଡ଼ଘଡ଼ାଇବା—ଗ୍ରା.କ୍ରି.(ଧ୍ୱନି) ଶ୍ଳେଷ୍ମା-ରୋଧ ଯୋଗୁ କଣ୍ଠବାଟେ ଘଡ଼ ଘଡ଼ ଶବ୍ଦକରିବା, ମୃତ୍ୟୁ ପୂର୍ବରୁ ଘଡ଼ ଘଡ଼ ଶବ୍ଦ କରିବା,ଲୁଗା ଆଦିକୁ ଖାର ମିଶା ପାଣିରେବୁଡ଼ାଇ ନିଆଁରେ ସିଝାଇବା ।

ଘଡ଼୍ ଘଡ଼ି—ଗ୍ରା.ବି.(ଧ୍ୱନି) ମେଘ ଗର୍ଜନ, ଚଡ଼୍ ଚଡ଼ି, ଚଡ଼କ । [ ଥିବା ।

ଘଡ଼ଘଡ଼ିଆ—ଗ୍ରା.ବିଂ.ଘଡ଼ଘଡ଼ି ଶବ୍ଦ କରୁ-

ଘଡ଼ା—ଗ୍ରା.ବି.(ସଂ-ଘଟ)କ୍ଷୁଦ୍ର ବା ବୃହତ୍ କଳସାକୃତି ଦୃଢ଼ପାତ୍ର, ଗରା ।

ଘଡ଼ାଇ—ଗ୍ରା. ବି. (ସଂ-ଘଟ୍ଟଗ୍ରହ) ରାଜ ଗୃହରେ ଘଟବାହକ ଭୃତ୍ୟ, ଉତ୍କଳୀୟ ଚଷାମାନଙ୍କର ଉପାଧିବିଶେଷ ।

ଘଡ଼ି—ଗ୍ରା.ବି.(ସଂ-ଘଟୀ)ଦୁଇଦଣ୍ଡ ପରିମିତ କାଳ, ଏକପ୍ରହରର ଏକଚତୁର୍ଥାଂଶ, ଘଣ୍ଟା, ପିଟାଘଣ୍ଟା, କ୍ଷୁଦ୍ର ମାଟିର ପାତ୍ର, ବିଭିନ୍ନ ପ୍ରକାରର ସମୟନିରୂପକ ଯନ୍ତ୍ର, ଘଣ୍ଟା, ସମୟ, କାଳ,ନିର୍ଦ୍ଦିଷ୍ଟ ସମୟ, ଛୋଟ କଳସ ।

ଘଡ଼ିଆଳ—ଗ୍ରା. ବି. ଯେ ଘଣ୍ଟା ବଜାଏ, ଘଡ଼ିମୁହାଁ ବଡ଼ କୁମ୍ଭୀର ।

ଘଣ୍ଡକ—ଗ୍ରା. ବି. ଏକଘଣ୍ଟା ସମୟ, ଅଳ୍ପ ସମୟ ।

ଘଣ୍ଡକଘଣ୍ଡ—ଗ୍ରା. କ୍ରି. ବି°. କ୍ଷଣକୁ କ୍ଷଣ, ପ୍ରତିମୁହୂର୍ତ୍ତରେ, ସର୍ବଦା, ହରଘଣ୍ଡ, ବାରମ୍ବାର ।

ଘଣ୍ଡକେ—ଗ୍ରା. କ୍ରି.ବି°.ଘଣ୍ଡକ ଭିତରେ, କିଛି ସମୟ ପରେ ।

ଘଣ୍ଡକେପନ୍ଦରକେ—ଗ୍ରା. କ୍ରି.ବି°. ବହୁ-ସମୟ ବ୍ୟବଧାନରେ ।

ଘଣ୍ଡଘଣ୍ଡ-ଗ୍ରା.କ୍ରି.ବି°.ଘଣ୍ଡକଘଣ୍ଡ(ଦେଖ) ।

ଘଡ଼ୀ-ଗ୍ରା.ବି.(ଘଟୀଶବ୍ଦଜ) କାଳନିର୍ଣ୍ଣାୟକ ଯନ୍ତ୍ରବିଶେଷ, କଳଘଣ୍ଡ, ଏକଦଣ୍ଡ, ଏକଘଣ୍ଟା । [ ଏକଘଡ଼ି ।

ଘଡ଼େ—ପ୍ରା. (ସମ୍ବ)ବି. ଘଟିକା,ଘଣ୍ଡଏ,

ଘଡ଼େଇ—ଗ୍ରା. ବି. ଘଡ଼ାଇ (ଦେଖ) ।

ଘଡ଼ୋଞ୍ଚି—ଗ୍ରା.ବି.(ସଂ-ଘଟ)ପାଣିକୁ ଛୁଣି ପାନୀୟଜଳ ବାହାରକରିବାପାଇଁ ଉପର୍ଯ୍ୟୁପରି ତିନୋଟି ମାଠିଆ ଯେଉଁ ତିନି ଗୋଡ଼ିଆ ଖୋଡ଼ଚ ଉପରେ ରଖାଯାଏ ।

ଘଣ—ଗ୍ରା.ବି. (ସଂ-ଘନ) କଡ଼, ପାର୍ଶ୍ୱ, ତେର, ଘନବସ୍ତୁର ବେଧ ପାଖ ।

ଘଣଘଣ—ଗ୍ରା. ଅବ୍ୟ.(ଧ୍ୱନ୍ୟନୁକରଣ) ଅନୁନାସିକ ଶବ୍ଦ ।

ଘଣଘଣିଆଁ—ଗ୍ରା. ବି°. ନାକଖଣ୍ଡିଆ ବା କଫାଧିକ୍ୟ ହେତୁ ଘଣଘଣ ଶବ୍ଦ କରୁଥିବା ବ୍ୟକ୍ତି ।

ଘଣା—ଗ୍ରା.ବି.(ସଂ-ଘୃଷ୍ଟି) ତେଲିବୀଜ ବା ଶସ୍ୟାଦିରୁ ତୈଳ ନିଷ୍କାସନ କରିବା ଯନ୍ତ୍ର, (ପ୍ରା.ସମ୍ବ.ବି)ଆଖୁପେଡ଼ିବା ଯନ୍ତ୍ର ।

ଘଣାଯୋଚା—ଗ୍ରା. ବି. ଘଣାଟାଣିବା ପାଇଁ ଲାଗିଥିବା (ବଳଦ) ।

ଘଣାଟଣା—ଗ୍ରା. ବି. ଘଣାଚାଳନ କରିବା ପାଇଁ ଘଣାର ଦଣ୍ଡାକୁ ଆଗଆଡ଼କୁ ଟାଣିବାର କ୍ରିୟା ।

ଘଣାଟାଣିବା—ଗ୍ରା.କ୍ରି.ଘଣାଯନ୍ତ୍ରକୁ ଆଗଆଡ଼ୁ ଓଟାଇ ଟାଣିବା ।

ଘଣାପକାଇବା—ଗ୍ରା.କ୍ରି.ତୈଳ ବାହାର କରିବା ନିମନ୍ତେ ବଳଦ ବା ମନୁଷ୍ୟ ଲଗାଇ ଘଣାଯନ୍ତ୍ର ଚାଳନ କରିବା, (ଲ.ଅର୍ଥ) ହଇରାଣ କରିବା, ଅଯଥା କଷ୍ଟଦେବା ।

ଘଣାପଡ଼ିବା—ଗ୍ରା. ବି°. ବୀଜରୁ ତେଲ ବାହାରକରିବା ନିମନ୍ତେ ଘଣାଚାଳନ ।

ଘଣି—ଗ୍ରା.ବି. ଶଗଡ଼ ଚକର ଘର୍ଷଣରେ ରାସ୍ତାଉପରେ ହେବା ଖାଲ ବା ଗାତ, ଗମ୍ଭୀର ଶଗଡ଼ ଗୁଲା, ତେଲି, (ଗ୍ରା. ମେଦ)ବି. ମାଛଧରା ଖଇଞ୍ଚ ।

ଘଣିଖାଇବା—ଗ୍ରା.ବି. ଏକବସ୍ତୁର ଘର୍ଷଣ-ଦ୍ୱାରା ଅନ୍ୟ ବସ୍ତୁରେ ଗାତ ହୋଇଯିବା ।

ଘଣ୍—(ଧାତୁ) ଉଜ୍ଜ୍ୱଳ ଦେଖାଯିବା, କହିବ, ଶବ୍ଦକରିବା ।

ଘଣ୍ଟ—ବି.(ଘ.ଣ+ର୍ମି.ଟ ବା ହନ୍+ତ) ପିତାଘଣ୍ଟା, କାଂସ୍ୟନିର୍ମିତ ଥାଳ ଆକାରର ବାଦ୍ୟ, ଅନେକପ୍ରକାର ପରିବା-ମିଶ୍ରିତ ବ୍ୟଞ୍ଜନ, ଘାଣ୍ଟିଆ ତରକାରୀ, ମଧୁର, ଶିବ,(ବି°)ଉଜ୍ଜ୍ୱଳ,ଦୀପ୍ତିଯୁକ୍ତ ।

ଘଣ୍ଟକ—ବି. ଏକପ୍ରକାର ବନ୍ୟ ଗୁଳ୍ମ, ଘଣ୍ଟାପାଟଳ ବୃକ୍ଷ ।

ଘଣ୍ଟଘୋଡ଼େଇରଖିବା—ଗ୍ରା.କ୍ରି.କୌଣସି ବ୍ୟକ୍ତିକୁ ସମ୍ପୂର୍ଣ୍ଣରୂପେ ଆପଦରୁ ରକ୍ଷା କରିବା ।

ଘଣ୍ଟପାଟୁଆ—ଗ୍ରା. ବି. ଓଡ଼ିଶାର ଝଙ୍କଡ଼ ସାରଳା ଓ କାକଟପୁର ମଙ୍ଗଳାଆଦି ଠାକୁରାଣୀଙ୍କର ନୃତ୍ୟକାରୀ ସେବକ, ପଣାସଂକ୍ରାନ୍ତି ଦିନ ଠାକୁରାଣୀଙ୍କୁ ମାନସିକ କରି ଅଣ୍ଟାରେ ଘଣ୍ଟିଘାଗୁଡ଼ି ବାନ୍ଧି ନାଚିବା ବ୍ୟକ୍ତି, (ଛୋଟଜାତି) ଝଙ୍କଡ଼ ସାରଳା ଓ କାକଟପୁର ମଙ୍ଗଳାଆଦି ଠାକୁରାଣୀଙ୍କ ଘଟ (ଯାହାକୁ ମୁଣ୍ଡରେ ବସାଇ ଠାକୁରାଣୀଙ୍କ ସେବକମାନେ ଗ୍ରାମେ ଗ୍ରାମେ ବୁଲିନାଚନ୍ତି) । [ଡାଲ ।

ଘଣ୍ଟପଲକ—ବି. ଘଣ୍ଟାପରି ଶବ୍ଦକରୁଥିବା

ଘଣ୍ଟର—ଗ୍ରା.ବି.ଲୁହାକାମ କରିବା ଜାତିବିଶେଷ ।

ଘଣ୍ଟଶିଳା—ଗ୍ରା.ବି. ପୁରୀଜିଲ୍ଲା ବାଣପୁରର ପଶ୍ଚିମରେ ଥିବା ନିକଟବର୍ତ୍ତୀ ପର୍ବତ ।

ଘଣ୍ଟା-ବି.(ହନ୍ ବା ଘଣ୍ +ର୍ମି.ଟ+ଆ) ପିତାଘଣ୍ଟା, କାଂସ୍ୟନିର୍ମିତ ବାଦ୍ୟ, କ୍ଷଣ-ପୂର୍ତ୍ତି, ଛଣପଟ,ଜବାଫୁଲଗଛ,(ଗ୍ରା.ବି.) ସମୟ-ନିର୍ଦ୍ଦେଶକ ଆଧୁନିକ ଯନ୍ତ୍ର, ଅଢ଼େଇଦଣ୍ଡ କାଳ, ୬୦ମିନିଟ୍ ସମୟ, ମନ୍ଥର ଚାଲଣ, ଘାଣ୍ଟିବା, ଆଲୋଡ଼ନ, (ଗ୍ରା.ବି°) ଆଲୋଡ଼ିତ ।

ଘଣ୍ଟାକ—ପୁଂ. ବି. (ଘଣ୍ଟା+କୈ+ଅ) ଘଣ୍ଟାପାଟଳୀବୃକ୍ଷ ।

ଘଣ୍ଟାକର୍ଣ୍ଣ—ପୁଂ. ବି. (ବି.ବ୍ରୀ) ଶିବଙ୍କର ଅନୁଚରବିଶେଷ ।

ଘଣ୍ଟାଗାର—ପୁଂ. ବି.(ଘଣ୍ଟା+ଆଗାର) ଯେଉଁ ଘରେ ଘଣ୍ଟା ରଖାଯାଏ ବା ଝୁଲୁଥାଏ ।

ଘଣ୍ଟାଘଣ୍ଟି—ଗ୍ରା.ବି.ଉତ୍ତମରୂପେ ଘାଣ୍ଟିବା, ବିପର୍ଯ୍ୟସ୍ତ ବା ଇତସ୍ତତଃ ବିକ୍ଷିପ୍ତକରିବା, ଗୋଲମାଳ, ଧରପଗଡ଼, କୌଣସି ବିଷୟ ଅନୁସନ୍ଧାନ, ଲେଉଟପାଉଟ, ବିପର୍ଯ୍ୟାସ ।

ଘଣ୍ଟାଚକଟା—ଗ୍ରା.ବି.ଘଣ୍ଟାଘଣ୍ଟି(ଦେଖ) ।

ଘଣ୍ଟାତାଡ଼—ପୁଂ.ବି. (ଘଣ୍ଟା+ତାଡ଼+କ.ଅ) ଯେ ଘଣ୍ଟାବଜାଏ, ବର୍ଣ୍ଣସଙ୍କର ଜାତିବିଶେଷ । [ ଶବ୍ଦ ।

ଘଣ୍ଟାଧ୍ୱନି—ବି.(ଷତତ୍ପୁ)ଘଣ୍ଟା ବାଜିବାର

ଘଣ୍ଟାନାଦ—ପୁଂ.ବି.(ଷତତ୍)ଘଣ୍ଟାଧ୍ୱନି, କୁବେରଙ୍କର ଜଣେ ମନ୍ତ୍ରୀ ।

ଘଣ୍ଟାପଥ—ପୁଂ. ବି.(ଘଣ୍ଟ+ପନ୍ଥା+ଅ) ବଡ଼ଦାଣ୍ଡ, ବୃହତ୍ ରାଜମାର୍ଗ, ଦଶ-ଧନୁକର ରାଜମାର୍ଗ, ମଲ୍ଲୀନାଥକୃତ କିରାତାର୍ଜ୍ଜୁନୀୟ କାବ୍ୟର ଟୀକା ।

ଘଣ୍ଟାପାଟଳ—ବି. ଏକପ୍ରକାର ପାଟଳି-ବୃକ୍ଷ, ଅରଣ୍ୟତରୁବିଶେଷ । [ମଞ୍ଜି ।

ଘଣ୍ଟାବୀଜ—ବି. ଜୟପାଳମଞ୍ଜି, କନକା

ଘଣ୍ଟାରବା—ସ୍ତ୍ରୀ. ବି. ଛଣପଟ ।

ଘଣ୍ଟାଳିକା—ସ୍ତ୍ରୀ.ବି.(ଘଣ୍ଟାଳୀ+କ+ଆ) କୋଷାତକୀ, ଜହ୍ନି,ତଡ଼ା,ପଟୋଳ, ଘଣ୍ଟାଶ୍ରେଣୀ ।

ଘଣ୍ଟାଳୀ—ସ୍ତ୍ରୀ. ବି. ଘଣ୍ଟାଳିକା (ଦେଖ) ।

ଘଣ୍ଟାଶବ୍ଦ—ପୁଂ. ବି.(ଷତତ୍ପୁ)ଘଣ୍ଟାଧ୍ୱନି ।

ଘଣ୍ଟି—ଗ୍ରା. ବି. ଘାଗୁଡ଼ି, ଅଳଙ୍କାରାର୍ଥ ବ୍ୟବହୃତ ସାନଘଣ୍ଟି, କରଘଣ୍ଟା, ବନ୍ୟ-ବୃକ୍ଷବିଶେଷ ।

ଘଣ୍ଟିଆ—ଗ୍ରା. ବି. (ଘଣ୍ଟି ଦେଖ) (ବିଂ) ଘଣ୍ଟାବାଦକ ।

ଘଣ୍ଟିକ—ପୁଂ. ବି. (ଘଣ୍ +ଇ, ଷ୍ଟିକ) ଘଡ଼ିଆଳ କୁମ୍ଭୀର ।

ଘଣ୍ଟିକା—ସ୍ତ୍ରୀ. ବି. (ଘଣ୍ଟା+କ+ଆ) କ୍ଷୁଦ୍ର ଘଣ୍ଟା, ମାଈକୁମ୍ଭୀର, ତାଳୁରେ ଥିବା ଜିହ୍ୱା. ଘୁଙ୍ଗୁର, ଛଣପଟ ଫୁଲ, ଗଳାର ଘଣ୍ଟିକା ବଢ଼ିବା ରୋଗ ।

ଘଣ୍ଟୀ—ବିଂ. (ଘଣ୍ଟା+ଇନ୍) ଘଣ୍ଟାଯୁକ୍ତ. ଯାହାର ଘଣ୍ଟା ଅଛି, (ସ୍ତ୍ରୀ-ଈ) ଘଣ୍ଟାପରି ଶବ୍ଦ କରୁଥିବା, ଯହିଁରେ ଘଣ୍ଟା ଲାଗିଥାଏ, (ବି) ଶିବ, ଘଣ୍ଟିକା (ଦେଖ) ।

ଘଣ୍ଟୁ—ବି. (ଘଣ୍ +ଟୁ) ହାତୀ ଗଳାରେ ଝୁଲୁଥିବା ଘଣ୍ଟାର ମାଳ, ଆଲୋକ, ଉଗ୍ରତା, ପ୍ରତାପ, ଆତ୍ମମ୍ଭରିତା ।

ଘଣ୍ଟୁଆଳ—ଗ୍ରା.ବି.ଘଣ୍ଟପଟୁଆ (ଦେଖ) ।

ଘଣ୍ଟେ—ଗ୍ରା. ଅବ୍ୟ. ଏକଘଣ୍ଟା ସମସ୍ତ ।

ଘଣ୍ଟେଶ୍ୱର—ପୁଂ. ବି. (ତତ୍ତ) ମଙ୍ଗଳ ଗ୍ରହର ପୁତ୍ର,ଏ ବ୍ରଣଦାତା ଅଟନ୍ତି, ଶିବ ।

ଘଣ୍ଡ—ବି. (ଘଣ୍+କ.ତ) ମହୁମାଛି ।

ଘତ—ଗ୍ରା. ବି. (ସଂ-ଗତ) ବାଦ୍ୟଯନ୍ତ୍ରରେ ବାଜିତ ପ୍ରାଥମିକ ସ୍ୱରସଂଯୋଗର ଗତି ଘାତ, ଢଙ୍ଗ, ଧରଣ, ଚତୁରତା, ବାଦ୍ୟ-ଯନ୍ତ୍ରର ସ୍ୱର ।

ଘତଘାତ—ଗ୍ରା.ବି.କଳକଉଶଳ, କୌଶଳ, ଉପଯୁକ୍ତ ଅବସର, ସାବଧାନତା, ଘାତ, ଢଙ୍ଗ ।

ଘତଘାତିଆ—ଗ୍ରା. ବି. ଅବସର ଜାଣି କାମକରିବାଲା, କୌଶଳୀ, ଚତୁର ।

ଘନ୍‌ଘାଇ—ପ୍ରା. (ସମ୍ବ) ବିଂ. (ସଂ-ଘନ+ଘୋର) ଅଗଣାଗ୍ନି, ଘନ, ନିବିଡ଼ (ବନ) ।

ଘନ୍‌ଘୁଟୀ—ପ୍ରା. (ସମ୍ବ) ବି. ଆଖିପାଖରେ ଉଡ଼ିବା ଏକପ୍ରକାର ଛୋଟ ପତଙ୍ଗ ।

ଘନ—ବି. (ହନ୍+ମୂ,ଅ) ମଦ୍ଦଳ, ଝାଞ୍ଜ, ପିଟାଘଣ୍ଟା, ଘୁଙ୍ଗୁର, ମେଘ, ଶରୀର, ନୃତ୍ୟବିଶେଷ, ମୋଥା, ଘାଲ, ଚର୍ମ, ଲୌହ, ଟିଣ, ଜମାଟବାନ୍ଧିବା, ଘନଭାବ, କାଠିନ୍ୟ, ବିସ୍ତାର, ମୁଥା, ଅଭ୍ରକ, କୌଣସି ରାଶିକୁ ସେହି ରାଶିଦ୍ୱାରା ଦୁଇ ଥର ଗୁଣନ, ଦୈର୍ଘ୍ୟ ପ୍ରସ୍ଥ ଓ ବେଧ-ଥିବା ବସ୍ତୁ, ବୈଦିକମନ୍ତ୍ରର ବୋଲିବା ପ୍ରଣାଳୀ, କଫ, ଶ୍ଳେଷ୍ମ, ଦୃଢ଼ତା, ଶୀତ-ବସ୍ତ୍ର, ସମୂହ, ଇତରଲୋକଗଣ, ଅନ୍ଧକାର, (ବିଂ) ଦୃଢ଼, କଠିନ, ବହଳିଆ, ଦୁର୍ଭେଦ୍ୟ, ସାନ୍ଦ୍ର, ଅଭେଦ୍ୟ, ଜମାଟ ହୋଇଥିବା, ମୋଟା, ଖରା, ଗମ୍ଭୀର (ଶବ୍ଦ), ପୁଷ୍ଟ, ଅନେକ, ଅଧିକ, ସମ୍ପୂର୍ଣ୍ଣ, ସ୍ଥାୟୀ, ଅବିରତ, ଘୋର, ମଙ୍ଗଳକର, ସୌଭାଗ୍ୟବାନ୍ ।

ଘନକଫ—ବି. (ଘନ+କଫ) କ.ଧା; ଗାଢ଼ଶ୍ଳେଷ୍ମା, (ତତ୍ତ) କୁଆପଥର, କରକା ।

ଘନକାଳ—ପୁଂ. ବି. (ଘନ+କାଳ) ବର୍ଷାଋତୁ; ବର୍ଷାଦିନ ।

ଘନକୁଚ-ସ୍ତ୍ରୀ.ବିଂ.(ବ.ବ୍ରୀ) କଠିନସ୍ତନା, ଯେଉଁ ସ୍ତ୍ରୀର କୁଚ କଠିନ ।

ଘନକୁନ୍ତଳା—ସ୍ତ୍ରୀ.ବିଂ. (ବ.ବ୍ରୀ) ଯେଉଁ ସ୍ତ୍ରୀର ମୁଣ୍ଡରେ ଗାଢ଼କୃଷ୍ଣବର୍ଣ୍ଣ ଓ ସାନ୍ଦ୍ର-କେଶ ଅଛି ।

ଘନକୃଷ୍ଣ—ବିଂ. ଘୋର କୃଷ୍ଣବର୍ଣ୍ଣ, ଗାଢ଼ କଳା ରଙ୍ଗବିଶିଷ୍ଟ ।

ଘନକେଶ—ବି. (କ.ଧା) ନିବିଡ଼କେଶ, (ବିଂ., ବ.ବ୍ରୀ) ନିବିଡ଼କେଶଯୁକ୍ତ ।

ଘନକୋଦଣ୍ଡ—ବି. (ମ: ପ: କ. ଧା) ଇନ୍ଦ୍ରଧନୁ, (ହିନ୍ଦୁ-ଶବ୍ଦସାଗର) ।

ଘନକ୍ଷମ—ବିଂ. ଯାହାକୁ ବାଡ଼େଇ କର ଘନକରିଯାଇପାରେ ।

ଘନକ୍ଷେତ୍ର—ବି.(କ.ଧା) ଯେଉଁକ୍ଷେତ୍ରର ଦୈର୍ଘ୍ୟ ପ୍ରସ୍ଥ ଓ ବେଧ ଅଛି, ଯେଉଁବସ୍ତୁର ଏକାଧିକ ତଳ ଥାଏ, ଯେଉଁକ୍ଷେତ୍ରର ଦୈର୍ଘ୍ୟ ପ୍ରସ୍ଥ ଓ ବେଧ ସମାନ ।

ଘନଗର୍ଜନ—ବି.(ଘନ+ଗର୍ଜନ) ତତ୍ତ; ଘଡ଼ଘଡ଼ି, ମେଘ ଗର୍ଜନ, ଗମ୍ଭୀର ଗର୍ଜନ ।

ଘନଗର୍ଜିତ—ବି. (ତତ୍ତ ଓ କ.ଧା) ଘନଗର୍ଜନ (ଦେଖ) ।

ଘନଗୋଳକ—ବି. (କ.ଧା) ମିଶ୍ରିତ ସ୍ୱର୍ଣ୍ଣ ରୌପ୍ୟ ।

ଘନଘଟା—ବି. (ଘନ+ଘଟା) କ.ଧା, ବିଶେଷ ଆଡ଼ମ୍ବର, (ତତ୍ତ) ମେଘାଡ଼ମ୍ବର ।

ଘନଘନ—ବି. ତତ୍ତ; (ଗଣିତ) ଘନ-ଫଳର ଘନଫଳ, (ଗ୍ରା. କ୍ରି. ବିଂ.) ଶୀଘ୍ର, ଉପର୍ଯ୍ୟୁପରି, ବାରମ୍ବାର, ପୁନଃ-ପୁନଃ, ଅବିରଳଭାବରେ, ନିରବଚ୍ଛିନ୍ନ-ଭାବରେ, ମୁହୁର୍ମୁହୁଃ, ଘନଭାବରେ ।

ଘନଘୋର—ବିଂ. (ତତ୍ତ) ମେଘାଚ୍ଛନ୍ନ, (କ.ଧା) ମେଘପରି ଭୟଙ୍କର, ଜଳଦ-ଗମ୍ଭୀର, ଅତିଭୀଷଣ ।

ଘନଘୋଷ—ବି.(ତତ୍ତ) ମେଘଗର୍ଜନ ।

ଘନଚତୁର୍ଭୁଜ—ବି. (ଜ୍ୟାମିତି) ଯେଉଁ ବସ୍ତୁର ୬ଟି ଚତୁର୍ଭୁଜ ତଳ ବା ପାର୍ଶ୍ୱ ଥାଏ ।

ଘନଚତୁଷ୍କୋଣ—ପୁଂ.ବି. ଚତୁଷ୍କୋଣିଆ ଦୈର୍ଘ୍ୟ, ପ୍ରସ୍ଥ ଓ ବେଧଥିବା ପଦାର୍ଥ ।

ଘନଚ୍ଛଦ—ପୁଂ. ବି. (ବ.ବ୍ରୀ) ସଜନା-ଗଛ, ତାଳିଶପତ୍ର, ଗୁଳ୍ମବିଶେଷ ।

ଘନଜମ୍ବାଳ—ବି. (କ.ଧା) ବହଳିଆ ପଙ୍କ ।

ଘନଜ୍ୱାଳା—ସ୍ତ୍ରୀ. ବି. (ଘନ+ଜ୍ୱାଳା) ବଜ୍ରାଗ୍ନି, ସୌଦାମିନୀ, ବିଦ୍ୟୁତ୍ ।

ଘନତା—ସ୍ତ୍ରୀ.ବି. (ଘନ+ତା) ଘନର ଭାବ ଓ ଧର୍ମ ।

ଘନତାଳ—ବି. (ଘନ+ତାଳ) ସାରଙ୍ଗ-ପକ୍ଷୀ, ଚାତକପକ୍ଷୀ, ସଙ୍ଗୀତର ତାଳ-ପରିମାଣ ।

ଘନତ୍ୱ—କ୍ଳୀ.ବି. (ଘନ+ତ୍ୱ) କଠିନତା, ନିବିଡ଼ତା, ବେଧ, ଗମ୍ଭୀରତା, ଗାଢ଼ତା, ଦୈର୍ଘ୍ୟ-ପ୍ରସ୍ଥ ଓ ବେଧର ଭାବ ।

ଘନତ୍ୱକ୍—ପୁଂ. ବିଂ. (ବ.ବ୍ରୀ) ଯାହାର ବକ୍କଳ ମୋଟା, (ବି) ଶ୍ରୀକ୍ଷୁଲୋଧ୍ର, ଏକ ପ୍ରକାର ଲୋଧଗଛ ।

ଘନଦ୍ରୁମ—ପୁଂ. ବି. (ଘନ+ଦ୍ରୁମ) ବିକଣ୍ଟକ ବୃକ୍ଷ । [ ପୁଷ୍ଟ ।

ଘନଧାତୁ—ବି. (ଘନ+ଧାତୁ) କ.ଧା;

ଘନନାଭି—ପୁଂ.ବି. (ଘନ+ନାଭି)ଧୂମ, ଧୂଆଁ ।
ଘନପତ୍ର—ପୁଂ. ବି. (ବି.ସ୍ତ୍ରୀ) ପୁନର୍ନବା, ପୁରୁଣୀଶାଗ,(ବିଂ)ଯାହାର ପତ୍ର ମୋଟା ବା ବହଳିଆ ।
ଘନପଦ—ବି. ( ଗଣିତ ) ଘନଫଳର ମୂଳରାଶି ।
ଘନପଦବୀ—ସ୍ତ୍ରୀ. ବି. (୬ଚତ୍ର) ଆକାଶ ।
ଘନପୟୋଧର—ବି. (କ.ଧା) ଟାଣୁଆଁ କୁଚ, କଠିନ ସ୍ତନ ।
ଘନପୟୋଧରା—ସ୍ତ୍ରୀ. ବିଂ. (ବି. ସ୍ତ୍ରୀ) ଘନକୁଚା, ଯେଉଁ ସ୍ତ୍ରୀର ସ୍ତନ ଟାଣ ।
ଘନପରିମାଣ—ବି. (କ.ଧା) କୌଣସି ବସ୍ତୁର ଦୈର୍ଘ୍ୟ, ପ୍ରସ୍ଥ ଓ ବେଧର ପରିମାଣ, କୌଣସି ବସ୍ତୁର ଶରୀର ପରିମାଣ ଫଳ, ଘନବସ୍ତୁର ଦୈର୍ଘ୍ୟ-ପ୍ରସ୍ଥ ଓ ବେଧର ଗୁଣଫଳ ।
ଘନପଲ୍ଲବ—ପୁଂ. ବିଂ. (ବି.ସ୍ତ୍ରୀ) ଘନପତ୍ର (ଦେଖ), ବି. ସଜନାଗଛ ।
ଘନପାଷଣ୍ଡ—ବି.(ଘନ+ପାଷଣ୍ଡ)ମୟୂର, (ସ୍ତ୍ରୀ) ଘନପାଷଣ୍ଡୀ ।
ଘନଫଳ—ପୁଂ. ବି. ( ଘନ+ଫଳ ) ବିକଣ୍ଟକ ବୃକ୍ଷ, ଘନପରିମାଣ ।
ଘନମୂଳ—କ୍ଲୀ. ବି. ଯେଉଁମୂଳରାଶିକୁ ଉକ୍ତ ରାଶିସଙ୍ଗେ ଦୁଇଥର ଗୁଣାଯାଏ, ସେହି ଗୁଣଫଳର ମୂଳରାଶି, ଗୁଳ୍ମବିଶେଷ ।
ଘନଯନ୍ତ୍ର—କ୍ଲୀ. ବି. କାଂସ୍ୟାଦି ଧାତୁନିର୍ମିତ ବାଦ୍ୟଯନ୍ତ୍ରବିଶେଷ ।
ଘନରବ—ବି.(୬ଚତ୍ର)ମେଘଧ୍ୱନି(ବି.ସ୍ତ୍ରୀ), ମୟୂର, ଚାତକପକ୍ଷୀ ।
ଘନରସ—ପୁଂ. ବି. (କ.ଧା.) ବହଳିଆ ଅଠା, ପ୍ରଚୁର ସନ୍ତୋଷ, (ବି.ସ୍ତ୍ରୀ) କର୍ପୂର, (୬ଚତ୍ର) ବୃଷ୍ଟି ଜଳ,(ମଧ୍ୟ—କ.ଧା) ଜଳ, ଗୁଳ୍ମବିଶେଷ, ପୀଲୁପର୍ଣ୍ଣୀ ଗୁଳ୍ମ, (ଗ୍ରା.ବି) ନିବିଡ଼ ଶୃଙ୍ଗାରରସ, ଜଳ ।
ଘନରୁକ୍-ବିଂ.(ବି.ସ୍ତ୍ରୀ)ମେଘପରି ଉଜ୍ଜ୍ୱଳ ।
ଘନରୂପା—ବି. ( ଘନ+ରୂପ+ଆ ) ମିଶ୍ରି ।

ଘନଲତା—ବି. ବିଦ୍ୟୁତ୍, ବିଜୁଳି ।
ଘନବର—କ୍ଲୀ. ବି. (ଘନ+ଦେହ+ବର=ଶ୍ରେଷ୍ଠ) ମୁଖ, ମୁହଁ ।
ଘନବର୍ଗ—ବି. କୌଣସି ରାଶିର ଘନଫଳକୁ ପୁନର୍ବାର ସେହି ଘନଫଳ ସଙ୍ଗେ ଗୁଣନ କରିବା ।
ଘନବର୍ଣ୍ଣ—ବିଂ. ( ବି. ସ୍ତ୍ରୀ ) ମେଘପରି ବର୍ଣ୍ଣବିଶିଷ୍ଟ,ଯାହାର ବର୍ଣ୍ଣ ମେଘବର୍ଣ୍ଣ ପରି, (ସ୍ତ୍ରୀ) ଘନବର୍ଣ୍ଣା ।
ଘନବର୍ତ୍ମ—କ୍ଲୀ. ବି. (୬ଚତ୍ର) ଆକାଶ, ମେଘପଥ ।
ଘନବଲ୍ଲିକା—ସ୍ତ୍ରୀ.ବି. (୬ଚତ୍ର) ଅମୃତସ୍ରବା ଲତା, ବିଦ୍ୟୁତ୍ ।
ଘନବଲ୍ଲୀ—ସ୍ତ୍ରୀ.ବି. (୬ଚତ୍ର) ଘନଜ୍ୱାଳା, ବିଦ୍ୟୁତ୍, ଲତାକାର ମେଘ, ମେଘମାଳା ।
ଘନବସତି—ଗ୍ରା. ବି. ବହୁଲୋକଙ୍କର ଅଳ୍ପ ପରିସର ସ୍ଥାନେ ଅବସ୍ଥାନ ବା ବସବାସ ।
ଘନବାତ—ପୁଂ. ବି. (ବି.ସ୍ତ୍ରୀ) ନରକବିଶେଷ, (ଘନ=ଅତ୍ୟଧିକ+ବାତ ଯେଉଁଠାରେ) ।
ଘନବାରି—କ୍ଲୀ.ବି. (୬ଚତ୍ର) ବର୍ଷାଜଳ ।
ଘନବାସ—ପୁଂ.ବି.(ଘନ+ବାସ)ବି.ସ୍ତ୍ରୀ; ଯେ ବହୁଦିନ ରହିପାରେ, କୁଷ୍ମାଣ୍ଡ ।
ଘନବାହନ—ପୁଂ. ବି. (ଘନ+ବାହନ) ମେଘବାହନ, ଇନ୍ଦ୍ର, ଶିବ ।
ଘନବିନ୍ୟସ୍ତ—ବିଂ. ( ଘନ+ବିନ୍ୟସ୍ତ ) ଅବିରଳ ସନ୍ନିବିଷ୍ଟ, ନିବିଡ଼ଭାବରେ ସଜ୍ଜିତ ।
ଘନବିନ୍ୟାସ—ପୁଂ.ବି. (କ.ଧା) ଅବିରଳ ସନ୍ନିବେଶ, ନିବିଡ଼ଭାବରେ ସଜ୍ଜା ।
ଘନବୀଥି—ସ୍ତ୍ରୀ. ବି. (୬ଚତ୍ର) ଘନବର୍ତ୍ମ, ଆକାଶ, ମେଘମାଳା,ମେଘର ରେଖା ।
ଘନବ୍ୟପାୟ—ବି. (୬ଚତ୍ର) ଶରତ୍‌ଋତୁ, ବର୍ଷାର ଅବସାନ ।
ଘନଶବ୍ଦ—ବି. (ଘନ+ଶବ୍ଦ) ୬ଚତ୍ର, ଘନଗର୍ଜନ, ( କ.ଧା ) ଗମ୍ଭୀର ଶବ୍ଦ, ଗର୍ଜନ ଶବ୍ଦ ।

ଘନଶ୍ୟାମ—ପୁଂ. ବିଂ. (ଘନ+ଶ୍ୟାମ) ଗାଢ଼ ଶ୍ୟାମଳବର୍ଣ୍ଣଶରୀରବିଶିଷ୍ଟ, (ବି.) ସଜଳ ମେଘପରି ଗାଢ଼ କଳାରଙ୍ଗ, ଶ୍ରୀକୃଷ୍ଣଙ୍କ ନାମ, ନୀଳମେଘ, ରାମଙ୍କ ନାମ ।
ଘନଶ୍ୟାମ ପଟ୍ଟନାୟକ—ଗ୍ରା.ବି. (ନାମ) ଜଣେକ ଉତ୍କଳୀୟ କବି, ଏ ଗରୁଡ଼ ପୁରାଣ ଓଡ଼ିଆରେ ଅନୁବାଦ କରିଥିଲେ ।
ଘନସଂବୃତ୍ତି—ବି. ଅତ୍ୟନ୍ତଗୋପନୀୟତା, ଅତିଗୂଢ଼ତା ।
ଘନସାର—ବି. (ଘନ+ସାର) କର୍ପୂର, (ବି.ସ୍ତ୍ରୀ) ଚନ୍ଦନ, (କ.ଧା) ପାରଦ, (୬ଚତ୍ର) ଜଳ, (କ.ଧା)ଗାଢ଼କୃଷ୍ଣବର୍ଣ୍ଣ, ନବୀନ ମେଘ ।
ଘନସ୍କନ୍ଧ—ବି. (ଘନ+ସ୍କନ୍ଧ) ବି.ସ୍ତ୍ରୀ, କୋଷାମ୍ର, ସତ୍ୟାଆମ୍ବଗଛ ।
ଘନସ୍ୱନ—ବି.(ଘନ+ସ୍ୱନ)କ.ଧା;ଗମ୍ଭୀର ଧ୍ୱନି, (୬ଚତ୍ର) ମେଘର ଧ୍ୱନି, (ବିଂ) ବି.ସ୍ତ୍ରୀ; ଯାହାର କଣ୍ଠଧ୍ୱନି ମେଘପରି ଗମ୍ଭୀର, (ସ୍ତ୍ରୀ) ଘନସ୍ୱନା ।
ଘନହସ୍ତସଂଖ୍ୟା—ବି. ଗୋଟିଏ ସମବାହୁ ଘନ ବସ୍ତୁ ବା ଖାତର ଘନଫଳ ।
ଘନା—ସ୍ତ୍ରୀ.ବି.ମଧୁପର୍ଣ୍ଣୀଲତା, ରୁଦ୍ରଜଟା, ତନ୍ତ୍ରୀବାଦ୍ୟବିଶେଷ,(ପ୍ରା.ସମ୍ପ୍ର)ବି.ଘଣା, ଆଖୁଖାଇ, ଶସ୍ୟ ଭାଜିବା ହାଣ୍ଡି, କମରିର ନିହାଇ ।
ଘନାକର—ପୁଂ. ବି. ( ଘନ+ଆକର ) ୬ଚତ୍ର; ବର୍ଷାଋତୁ,ଘନାଗମ, (ଘନ+ଆ+କୃ+କ.ଅ)ଆକାଶ ।
ଘନାଗମ—ପୁଂ.ବି. (ବି.ସ୍ତ୍ରୀ) ବର୍ଷାକାଳ, ଜଳଦାଗମ, (୬ଚତ୍ର) ବର୍ଷାଋତୁର ଆରମ୍ଭ, ମେଘ ଛୁଟାଇବା ।
ଘନାଘନ—ପୁଂ.ବି. (ହନ୍+କ.ଅ)ଦ୍ୱିତ୍ୱ (ନିପାତନେ) ବର୍ଷଣକାରୀ ମେଘ, ଅପକାରୀ ହସ୍ତୀ, ମତ୍ତହସ୍ତୀ, ଇନ୍ଦ୍ର, ଘାତପ୍ରତିଘାତ, ପରସ୍ପର ସଂଘର୍ଷଣ, (ବିଂ) ନିଷ୍ଠୁର, ନିରନ୍ତର, ସତତ ଘାତକ, ଅତିନିବିଡ଼ ।

ଘନାଘନା — ବି. ( ଘନ + ଘନ + ଆ) ବୃହସ୍ତି ଗୁଳ୍ମ, ଭେଜବାଇଗଣ, କାକମାଚୀ ।

ଘନାଚ୍ଛନ୍ନ — ବିଂ. (ଘନ + ଆଚ୍ଛନ୍ନ) ୭ତତ୍ମ୍ ମେଘଦ୍ୱାରା ଘୋଡ଼ାଇ ହୋଇଥିବା, ମେଘୁଆ (ପାଗ), ନିବିଡ଼ ଭାବରେ ଆଚ୍ଛାଦିତ ।

ଘନାଞ୍ଜନୀ — ସ୍ତ୍ରୀ.ବି. (ବ.ବ୍ରୀ) ଦୁର୍ଗା ।

ଘନାତ୍ୟୟ — ବି. (୬ତତ୍ମ୍) ମେଘାପଗମ, ଘୋଟିଥିବା ମେଘ ଛାଡ଼ିଯିବା, ଶରତ୍‌କାଳ ।

ଘନାନ୍ତ — ବି. (ଘନ + ଅନ୍ତ) ୬ତତ୍ମ୍, ଘନାତ୍ୟୟ (ଦେଖ) ।

ଘନାନ୍ଧକାର — ବି. (ମଧ୍ୟ. କ.ଧା) ମେଘ ହେତୁ ଅନ୍ଧକାର, ଘୋର ଅନ୍ଧକାର ।

ଘନାବର୍ତ୍ତି — ବିଂ. (ଘନ + ଆ + ବୃତ୍ + ମିଁ.ଅ) ଆବର୍ତ୍ତା ହୋଇ ଗାଢ଼ ହୋଇଥିବା (ଦୁଧ) ।

ଘନାବୃତ — ବିଂ.(ଘନ + ଆବୃତ)୩ତତ୍ମ୍, ଘନାଚ୍ଛନ୍ନ (ଦେଖ) ।

ଘନାମୟ — ବି. ବ.ବ୍ରୀ,(ଘନ + ଆମୟ) ଖଜୁରି ଗଛ ।

ଘନାମଲ—ପୁଂ. ବି. ବାସ୍ତୁକ ଶାକ, ବଥୁଆ ଶାଗ, ପୁନର୍ନବା, ପୁରୁଣୀ ।

ଘନାମ୍ବୁ – ବି.(୬ତତ୍ମ୍)ବର୍ଷାପାଣି,ବର୍ଷା ।

ଘନାୟମାନ — ବିଂ.(ଘନ + ନାମଧାତୁ + କ ଆନ) ଯାହା ଘନ ହୋଇ ଆସୁଅଛି, ସଂଖ୍ୟାରେ ବୃଦ୍ଧି ପାଉଥିବା ।

ଘନାରୁଣ — ବିଂ. (ଘନ + ଅରୁଣ)ଗାଢ଼ରକ୍ତବର୍ଣ୍ଣ ।

ଘନାଶ୍ରୟ—ପୁଂ. ବି. (ଘନ + ଆଶ୍ରୟ) ଆକାଶ, ମେଘ ।

ଘନାହାଣ୍ଡି -ପ୍ରା.(ସମ୍ବ)ବି.ଭଜାଭଜାହାଣ୍ଡି ।

ଘନିଷ୍ଠ — ନି.ବିଂ.(ଘନ + ଇଷ୍ଠ) ଅତିଶୟ ଘନ, ଅତି ନିକଟ, ଆସନ୍ନ, ବିଶେଷ ଆତ୍ମୀୟ, ଅନ୍ତରଙ୍ଗ ।

ଘନିଷ୍ଠତା — ସ୍ତ୍ରୀ. ବି. (ଘନିଷ୍ଠ + ଭା.ତା) ନିକଟ ସମ୍ବନ୍ଧ, ସବିଶେଷ ଆତ୍ମୀୟତା ।

ଘନୀକୃତ — ବିଂ.(ଘନ + ଚ୍ୱି + କୃ + ତ) ଯାହାକୁ ଘନ କରାହୋଇଅଛି, ଦୃଢ଼ୀକୃତ (ବିଂ) ଘନୀକରଣ ।

ଘନୀଭବ — ପୁଂ. ବି. (ଘନ + ଚ୍ୱି + ଭୂ + ଅ) ଘନହେବା ।

ଘନୀଭୂତ—ନି.ବିଂ.(ଘନ + ଚ୍ୱି + ଭୂ + ତ) କେନ୍ଦ୍ରୀଭୂତ, ସାନ୍ଦ୍ରୀଭୂତ, ଯାହା ପୂର୍ବେ ତରଳ ଥିଲା ବର୍ତ୍ତମାନ ଘନ ବା କଠିନ ହୋଇଅଛି, ଦୃଢ଼ୀଭୂତ, ଗମ୍ଭୀର କରାଯାଇଥିବା, ପୂର୍ବ ଅପେକ୍ଷା ବେଶି ବଢ଼ିଥିବା ।

ଘନୋତ୍ତମ—ପୁଂ. ବିଂ. (ଘନ + ଉତ୍ତମ) ୭ତତ୍ମ୍; ମେଘଶ୍ରେଷ୍ଠ ।

ଘନୋଦ—ପୁଂ.ବି.(ଘନ + ଉଦ)ବ.ବ୍ରୀ; ଯେଉଁ ସମୁଦ୍ର ବା ପୁଷ୍କରିଣୀର ଜଳ ଘନ ବା ଖର ବହୁଳଆ ।

ଘନୋଦଧି — ପୁଂ. ବି. (ଘନ + ଉଦଧି) ନରକବିଶେଷ ।

ଘନୋପଲ — ପୁଂ. ବି. (ଘନ + ଉପଲ) କରକା, କୁଆପଥର ।

ଘନୋରୁ — ସ୍ତ୍ରୀ. ବିଂ.(ଘନ + ଉରୁ + ସ୍ତ୍ରୀ ଈ) ପୃଥୁଲ ଜଙ୍ଘବିଶିଷ୍ଟା (ସ୍ତ୍ରୀ), କଦଳୀଜଙ୍ଘୀ ।

ଘବଡ଼ାଇବା — ଗ୍ରା.କ୍ରି. ଭୟତ୍ରସ୍ତ ହେବା, କିଂକର୍ତ୍ତବ୍ୟବିମୂଢ଼ହେବା,ଅତର୍କ୍ତ ହେବା ।

ଘମଣ୍ଡିଆ — ପ୍ରା. (ସମ୍ବ) ବିଂ. ବଗୁଲିଆ, ବଦ୍‌ମାସ୍, ଦୁଷ୍ଟ, ଗର୍ବୀ ।

ଘମ—ଗ୍ରା. ବି. ଘୁମ୍, ଶସ୍ୟ ଓ ଆମ୍ବୁଲ ଚାଉଳଆଦି ରଖିବାର ବଡ଼ମୁହାଁମାଟିର ପାତ୍ର ।

ଘମଘମ — ଗ୍ରା. ଅବ୍ୟ. (ଅ-ଘର୍ମ) ବିଶେଷ ଭାବରେ(ବାସିବା),ବିଶେଷପରିମାଣରେ (ଝାଳ ବୋହିବା) ।

ଘମଣ୍ଡ — ପ୍ରା(ସମ୍ବ)ବିଂ.ଘମଣ୍ଡିଆ(ଦେଖ) ।

ଘମାଇବା — ଗ୍ରା. କ୍ରି. ଘାରିବା ।

ଘମାଘୋଟ୍ — ଗ୍ରା. ବି. (ଅ-ଘନଘଟା) ଜାକଜମକ, ଧୁମ୍‌ଧାମ, ଆଡ଼ମ୍ବର, ଆଧିକ୍ୟ, ମେଘଘୋଟିବା ଅବସ୍ଥା, (ଗ୍ରା.ବିଂ) ନିବିଡ଼, ଗାଢ଼, ଅତ୍ୟଧିକ, ସର୍ବତ୍ର ବ୍ୟାପିଥିବା, ଭୟଙ୍କର ମେଘ ଘୋଟିଥିବା (ପାଗ) ।

ଘମାଘୋଟିଆ-ଗ୍ରା.ବିଂ.ଘମାଘୋଟ(ଦେଖ)।

ଘିମିରି — ଗ୍ରା. ବି. ( ଅ, ଘର୍ମଚର୍ଚ୍ଚିକା ) ଝାଳଯୋଗୁଁ ଦେହରେ ଜନ୍ମିଥିବା ଜଳପୂର୍ଣ୍ଣ କ୍ଷୁଦ୍ର ବ୍ରଣ ।

ଘର୍ — (ଧାତୁ) ଘଡ଼ଘଡ଼ ଶବ୍ଦ କରିବା, ଘୋଡ଼ାଇବା ।

ଘର — ବି.(ଘୋର୍ + କ.ଅ)ଗୃହ,ଭବନ, ପ୍ରକୋଷ୍ଠ, ବାସସ୍ଥାନ, କୌଣସି ଜୀବର ଆଶ୍ରୟ ସ୍ଥାନ, ପରିବାର, ବଂଶ, କୁଳ, ଉଚ୍ଚବଂଶ, ଧର୍ମପରିବାର, ଘରକରଣା, ସଂସାର, (ଗ୍ରା.ବି) ସ୍ଥାନ, ( ଯଥା — ରୋଗର ଘର, ଅନିଷ୍ଟର ଘର), ପାରିବାରିକ ଉତ୍ସବ ବା ଅନୁଷ୍ଠାନ, (ଯଥା-ବିଭାଘର, ବ୍ରତଘର ) ମୂଳ, ନିଦାନ, ପାଳିତ ହାତୀ ଘୋଡ଼ାଙ୍କର ସଂଖ୍ୟା, କୌଣସି ସ୍ଥାନବାସୀ ପାରିବାରିକ ସଂଖ୍ୟା (ଯଥା-ଦଶଘର ବ୍ରାହ୍ମଣ ଏ ଶାସନରେ ଅଛନ୍ତି), ଲ.ଅର୍ଥ ଆଧାର, ନିଜର ସ୍ତ୍ରୀ, ବୁଣାଯିବା ଲୁଗାର ଗୁରିକୋଣିଆଫାଙ୍କ, ବୁଣାଯିବା ଜାଲର ଦୁଇଟି ପନ୍ତ ମଧ୍ୟସ୍ଥ ଫାଙ୍କ, (ବିପ — ବାହାର) ।

ଘରଆଡ଼ — ଗ୍ରା. ବି. ଅନ୍ତଃପୁର, ଗୃହର ଯେଉଁଅଂଶରେ ସ୍ତ୍ରୀମାନେ ଚଳପ୍ରଚଳ ହୁଅନ୍ତି, ନିଜର ସ୍ତ୍ରୀ, କାର୍ଯ୍ୟାଳୟ, (ବିପ-ଦାଣ୍ଡଆଡ଼) ।

ଘରଆଡ଼େ—ଗ୍ରା. ବି. ନିଜର ସ୍ତ୍ରୀ,(ଦ୍ର. — ପୁରୁଷମାନେ ନିଜ ସ୍ତ୍ରୀକୁ ଲକ୍ଷ୍ୟକରି କହିଲାବେଳେ "ଘରଆଡ଼େ" ଏହିପରି କହୁଆଅନ୍ତି) କ୍ରି. ବିଂ. ଗୃହାଭିମୁଖରେ, ଘରତରଫରେ ।

ଘର ଉଜଳକରିବା — ଗ୍ରା.କ୍ରି. ନିଜର ଗୃହ ବା ପରିବାରକୁ ଆନନ୍ଦମୟ ବା ଶାନ୍ତିମୟ କରିବା, ନିଜକାର୍ଯ୍ୟଦ୍ୱାରା ପରିବାରର ମହତ୍ତ୍ୱ ବା ପ୍ରତିପତ୍ତିକୁ ବଜାୟ ରଖିବା ବା ବଢ଼ାଇବା, ( ଅଖିଳ ) ନିଜର ସୌନ୍ଦର୍ଯ୍ୟଦ୍ୱାରା ଗୃହକୁ ଉଜ୍ଜ୍ୱଳ ବା ଶୋଭାଯୁକ୍ତ କରିବା ।

ଘରଉଜାଡ଼ — ଗ୍ରା. ବି. ଅପବ୍ୟୟହେତୁରୁ ଘରକରଣା ନଷ୍ଟହେବା, ପରିବାର ନିଧନହେବା, ଯତ୍ନ ଓ ସଂସ୍କାର ଅଭାବରେ ଗୃହ ଛିନ୍ନଛତ୍ର ହେବା ।

ଘରଉଜାଡ଼ିବା — ଗ୍ରା. କ୍ରି. ଯତ୍ନ ଓ ଜୀର୍ଣ୍ଣ ସଂସ୍କାର ଅଭାବରୁ ଘରକୁ ଛିନ୍ନଛତ୍ର ବା ନଷ୍ଟକରିବା, ଅପବ୍ୟୟ ଓ ଦାନଦ୍ୱାରା ଗୃହକୁ ଶୂନ୍ୟ କରିବା ।

ଘରଉଜୁଡ଼ିବା — ଗ୍ରା. ବି. ଘରଉଜାଡ଼ (ଦେଖ) ।

ଘରକଉଡ଼ି — ଗ୍ରା.ବି. ନିଜର ଧନ, ଗୃହରେ ଗଚ୍ଛିତଥିବା ଧନ, ଯେଉଁ ଧନ ନିଜର ଘରକୁ ଆସିବା ଉଚିତ ।

ଘରକଥା — ଗ୍ରା.ବି. ପରିବାରର ଆଭ୍ୟନ୍ତରୀଣ ବିଷୟ, ଗୃହଛିଦ୍ର, ନିଜର ଆତ୍ମୀୟ ବିଷୟ ।

ଘରକରଣା — ଗ୍ରା. ବି. (ସଂ-ଗୃହକରଣ) ଗୃହସ୍ଥଧର୍ମ, ସଂସାରକର୍ମ, ପରିବାରପାଳନ, ଗୃହର ସମସ୍ତ ବିଷୟ ଚଳିବାର ଅବସ୍ଥା, ଗୃହସ୍ଥ, ଏକତ୍ର ବାସକରୁଥିବା ପରିବାର ବ୍ୟକ୍ତିଗଣ, ଅଳ୍ପ ବ୍ୟୟରେ ପରିବାରପାଳନ, (ବି) ଗୃହସ୍ଥାଳୀସମ୍ବନ୍ଧୀୟ. ଗୃହସ୍ଥର ଉପଯୋଗୀ, ଖାନ୍ଦାନ୍, ଭଦ୍ରବଂଶଜ, ସଚଳ, ଯାହାର ସଂସାରର କାର୍ଯ୍ୟ ସୁରୁଖୁରୁରେ ଚଳେ ।

ଘରକରଣାବୁଦ୍ଧି — ଗ୍ରା. ବି. ନିଜର ଗୃହ ସଂସାର ସୁରୁଖୁରୁରୂପେ ପରିଚାଳନ କରିବାର ବୁଦ୍ଧି ।

ଘରକରିବା — ଗ୍ରା.କ୍ରି. ଗୃହନିର୍ମାଣକରିବା, କୌଣସି ସ୍ଥାନରେ ସ୍ଥାୟୀରୂପେ ସପରିବାର ବାସ କରିବା, ସଂସାର କର୍ତ୍ତବ୍ୟଚୟ ନିର୍ବାହକରିବା, ନିଜର ପରିବାର ପାଳନ କରିବା, ଗୃହସ୍ଥଧର୍ମ ପାଳନ କରିବା, ସ୍ତ୍ରୀ ବା ସ୍ୱାମୀସହିତ ଦାମ୍ପତ୍ୟ ଜୀବନ ଅତିବାହିତ କରିବା, (ଲ.ଅର୍ଥ) ହୃଦୟକୁ ଆଶ୍ରୟ କରିବା, (ହୃଦୟରେ) ଉପୁଜିବା, ଜନ୍ମିବା, ସର୍ବଦା ମନରେ ପଡ଼ିବା, ସର୍ବଦା ଆଖିଆଗରେ ନାଚିବା ।

ଘରକରିବାକୁ ଯିବା — ଗ୍ରା.କ୍ରି. (ବିବାହିତା କନ୍ୟା) ବୟଃପ୍ରାପ୍ତହୋଇ ନିଜସ୍ୱାମୀ ସଙ୍ଗେ ଦାମ୍ପତ୍ୟଜୀବନଯାପନ କରିବା ନିମନ୍ତେ ପ୍ରଥମେ ଶାଶୁଘରକୁ ଯିବା, ପହିଲିପାଳି ଯିବା ।

ଘରକାମ — ଗ୍ରା. ବି. ପାରିବାରିକକାର୍ଯ୍ୟ, ଗୃହକର୍ମ, ଘରଧନ୍ଦା, ଗୃହନିର୍ମାଣକର୍ମ ।

ଘରଖରଚ — ଗ୍ରା. ବି. ସଂସାର ବା ପରିବାରର ନିତ୍ୟ ନୈମିତ୍ତିକ ବ୍ୟୟ ।

ଘରଘର - ଗ୍ରା. ଅବ୍ୟ, ପ୍ରତିଘରେ, ଗୋଟିଏ ଘରୁ ଅନ୍ୟଘରକୁ ।

ଘରଚଟିଆ — ଗ୍ରା.ବି. (ସଂ-ଘର+ଚଟକ) ଗୃହଚାଳତଳେ ବାସକରୁଥିବା କ୍ଷୁଦ୍ର ପକ୍ଷିବିଶେଷ ।

ଘରଚଳାଇବା — ଗ୍ରା.କ୍ରି. ଗୃହର କାର୍ଯ୍ୟ କର୍ମ ନିର୍ବାହକରିବା, ନିତ୍ୟ ଆବଶ୍ୟକ ବ୍ୟୟ ନିର୍ବାହ କରିବା ।

ଘରଚଳିବା — ଗ୍ରା. ବି. ପରିବାରର ନିତ୍ୟ ନୈମିତ୍ତିକ ଅଭାବ ଦୂରହେବା, ସାଂସାରିକ ବ୍ୟୟ ନିର୍ବାହ ।

ଘରଚାଳିବା — ଗ୍ରା. କ୍ରି. ଘରଚଳାଇବା (ଦେଖ), ଗ୍ରା. ବି. ଗୃହସ୍ଥର ଦୈନନ୍ଦିନ କାର୍ଯ୍ୟର ପରିଚାଳନ ।

ଘରଛପର — ଗ୍ରା.ବି. ଚାଳଘରର ଚାଳକୁ ନଡ଼ାଆଦିଦ୍ୱାରା ଘୋଡ଼ାଇବା, ଚାଳଘରର ଉପରିସ୍ଥ ଆବରଣ ।

ଘରଛାଆଣି — ଗ୍ରା. ବି. ଚାଳଘର ଚାଳକୁ ନଡ଼ାଆଦିଦ୍ୱାରା ଘୋଡ଼ାଇବା ।

ଘରଛାଇଁବା — ଗ୍ରା. କ୍ରି. ନଡ଼ାଆଦିଦ୍ୱାରା ଘରର ଚାଳକୁ ଘୋଡ଼ାଇବା ।

ଘରଜଗିଆ — ଗ୍ରା. ବି. ଯେ ଘରକୁ ଜଗି ଥାଏ ।

ଘରଜୁଆଁଇ — ଗ୍ରା. ବି. ଯେଉଁ ଜାମାତା ଶ୍ୱଶୁରଙ୍କ ଉତ୍ତରାଧିକାରୀରୂପେ ତାଙ୍କ ଘରେ ବାସକରେ ।

ଘରଝାଡ଼ିବା — ଗ୍ରା.କ୍ରି. ଚାଳଘରର ଚାଳଭିତର ପାଖରେ ଓ କାନ୍ଥ ଦେହରେ ଲାଗିଥିବା ଝୁଲା ଅଳିଆ ଓ ଅଳନ୍ଧୁଆଦିକୁ ପଛୁଁରିଆଦିଦ୍ୱାରା ପରିଷ୍କାର କରିବା, ଛପରବନ୍ଧ ଉଦ୍ଦେଶ୍ୟରେ ଚାଳରୁ ପୁରୁଣା ନଡ଼ାକୁ ଓଲାରିବା ।

ଘରଝିଅ — ଗ୍ରା.ସ୍ତ୍ରୀ.ବି., ଯେଉଁ ଦାସୀମାନେ ବାଲ୍ୟାବସ୍ଥାରୁ ରାଜାଙ୍କ ଆବାସରେ ଲାଳିତ ପାଳିତ ହୋଇ ରାଜବଂଶର ଚିରଦାସୀରୂପେ ଆବାସରେ ରହନ୍ତି ।

ଘରଞ୍ଜି — ଗ୍ରା.ବି. ଅରଣ୍ୟ-ବୃକ୍ଷବିଶେଷ ।

ଘରଟ — ପୁଂ.ବି. (ଘର+ଅଟ+କ.ଅ) ପେଷଣା, ଚକି, ଘୋରଣାଯନ୍ତ୍ର ।

ଘରଢିଙ୍କି — ଗ୍ରା. ବି. ପାରିବାରିକ ବ୍ୟବହାର ନିମନ୍ତେ ଘରେ ରଖାଯାଇଥିବା ଧାନ ଚାଉଳଆଦି କୁଟିବାର ଯନ୍ତ୍ର (ଲ.ଅର୍ଥ) ଘରର ଲୋକ ।

ଘରଣୀ — ସ୍ତ୍ରୀ. ବି. (ଘର୍+ଅନ୍+ଈ) ଗୃହିଣୀ, ଭାର୍ଯ୍ୟା, ସ୍ତ୍ରୀ, ଗୃହକର୍ତ୍ତ୍ରୀ ।

ଘରତଳି — ଗ୍ରା. ବି. ଯେଉଁ ଜମିଉପରେ ଘରତୋଳା ହୋଇଥାଏ, ଗୃହସଂଲଗ୍ନ ଜମି, ଘରଚଟାଣ, ଘରବାଡ଼ି ।

ଘରତଲାସ — ଗ୍ରା.ବି. ଖାନ୍ତଲାସ, ରାଜକର୍ମଚାରୀଙ୍କଦ୍ୱାରା ସନ୍ଦେହୀ ବ୍ୟକ୍ତିର ଘର ଖୋଜା ହେବା ।

ଘରତାଡ଼ିଯିବା — ଗ୍ରା. ବି. ଘରପୋଡ଼ିଯିବା, ଘରେ ନିଆଁ ଲାଗିବା, ଗୃହଦାହ ।

ଘରତୋଳିବା — ଗ୍ରା. ବି. ନୂତନଗୃହ ନିର୍ମାଣ, (କ୍ରି) ନୂତନଗୃହ ନିର୍ମାଣ କରିବା ।

ଘରଦୁଆର — ଗ୍ରା. ବି. ଗୃହର ଭିତର ଓ ବାହାର ବାସସ୍ଥାନ, କୌଣସି ବ୍ୟକ୍ତିର ସମସ୍ତ ସମ୍ପତ୍ତି ।

ଘରଧନ୍ଦା — ଗ୍ରା.ବି. ଘରକାମ (ଦେଖ) ।

ଘରଧରିବା — ଗ୍ରା.କ୍ରି. ଦୂରଦେଶରୁ ଆସି ଘରେ ପହଞ୍ଚିବା, ନିଜର ଭ୍ରାନ୍ତ ବୁଝିପାରିବା, ଚନ୍ଦ୍ରାମଗ୍ନହେବା, ନିଜର ଅବସ୍ଥା ଉପଲବ୍ଧି କରିବା, (ପ୍ରା.ଗଞ୍ଜା)(ବାଳିକା) ପ୍ରଥମେ ଋତୁମତୀ ହେବା, ଘରଯୋଗ୍ୟା ହେବା । [ଗୃହଚ୍ଛିଦ୍ର ।

ଘରନିଆଁ — ଗ୍ରା. ବି. ଗୃହମଧ୍ୟସ୍ଥ ଅଗ୍ନି,

ଘରପିଛା — ଗ୍ରା.ବି.ଅବ୍ୟ, ପ୍ରତିଘରନିମନ୍ତେ, ପ୍ରତିପରିବାର ପାଇଁ, ପ୍ରତିଘରୁ ।

ଘରପୋଡ଼ା — ଗ୍ରା. ବି. ଘରେ ନିଆଁ-ଲାଗିବା, (ବି) ଗୃହଦାହକ ।

ଘରପୋଡ଼ା—ଗ୍ରା. ବି. ଘରପୋଡ଼ିଯିବା, ଘରନିଆଁ ଲାଗିବା ।

ଘରପୋଡ଼ିଆ—ଗ୍ରା. ବି. ଏକପ୍ରକାର ଔଷଧିଗୁଳ୍ମ, କ୍ଷେତପାମ୍ପଡ଼ା ।

ଘରପୋଷା—ଗ୍ରା. ବି. ଘରେ ପୋଷା ଯାଇଥିବା, ଗୃହପାଳିତ ।

ଘରବର—ଗ୍ରା. ବି. କନ୍ୟାପାଇଁ ନିର୍ବାଚିତ ବର ଓ ବରର ଘର ବା ସଂସାର ।

ଘରବରଦେଖା—ଗ୍ରା. ବି. କନ୍ୟାବର ଓ ବରର ଗୃହ ଏବଂ ବରର ବୈଷୟିକ ଅବସ୍ଥା ଦେଖିବା କ୍ରିୟା ।

ଘରବସାଇବା—ଗ୍ରା.କ୍ରି. ଅନ୍ୟଦେଶ ବା ଇଲାକାରୁ ପ୍ରଜାଙ୍କୁ ଆଣି ଆପଣା ଇଲାକା ବା ଜମିଦାରୀରେ ଉପନିବେଶୀ କରାଇବା ।

ଘରବସିବା—ଗ୍ରା. ସମ୍ଭ. କ୍ରି. (ପୁରୁଷର) ଆଶୀର୍ବାଦଘର ହେବା (ପୂର୍ବବିବାହ)

ଘରବସିଯିବା—ଗ୍ରା.ବି. କୌଣସି ଉଆର ଘର ମାଟିତଳକୁ ଦବିଯିବା, (ଲ.ଅର୍ଥ) ପରିବାରର ପୂର୍ବସମୃଦ୍ଧିର ହ୍ରାସ ।

ଘରବାଡ଼ି—ଗ୍ରା. ବି. ଘର ଓ ବାଡ଼ି, ଘରତଳ ଜମି ଓ ତହିଁସଲଗ୍ନ ଜମି, ବାସ୍ତୁ ।

ଘରବାସିଦଣ୍ଡୀ—ବି.ଏକପ୍ରକାର ସମ୍ପ୍ରଦାୟ, ଏମାନେ ଦଣ୍ଡୀ ନାମରେ ପରିଚିତ ହେଲେ ସୁଦ୍ଧା ଗୃହସ୍ଥ, ସ୍ତ୍ରୀ ପୁତ୍ରନେଇ ସଂସାରଧର୍ମ ପାଳନ କରନ୍ତି ।

ଘରବାଲା—ଗ୍ରା.ବି.ଗୃହସ୍ୱାମୀ,ସ୍ତ୍ରୀର ସ୍ୱାମୀ, ଭର୍ତ୍ତା, ଭଡ଼ାଘରର ମାଲିକ ।

ଘରବାହାର—ଗ୍ରା.ବି. (ସହଚର)ଗୃହର ଭିତର ଓ ବାହାର ।

ଘରବାହାରହେବା—ଗ୍ରା. କ୍ରି. କୌଣସି ପ୍ରତ୍ୟାଶିତ ପ୍ରିୟଜନର ଆଗମନ ବା ଘଟଣା ଘଟିବାର ଅପେକ୍ଷାରେ(କୌଣସି ବ୍ୟକ୍ତି) ଏ କ୍ଷଣରେ ଘରୁବାହାରିକୁ ଆସୁଥିବା ଓ ଅନ୍ୟକ୍ଷଣରେ ବାହାରୁ ଘରକୁ ଯାଉଥିବା ।

ଘରବିଦ୍ୟା—ବି, (ତତ୍ପୁ) କୁଳବିଦ୍ୟା, ବଂଶର ବିଦ୍ୟା ।

ଘରବୁଡ଼ା—ଗ୍ରା.ବି. ପରିବାରର କଳଙ୍କ-ଜନିତସର୍ବନାଶ, ପରିବାରର ସର୍ବନାଶ, (ଗ୍ରା. ପୁଂ.ବିଂ.)ଯେ ପରିବାରର ସର୍ବ-ନାଶ କରେ ବା କୁଳକୁକଳଙ୍କିତକରେ, ଯେ ଅନ୍ୟପରିବାରର କୁଳସ୍ତ୍ରୀକୁ କୁଳଟା କରାଏ, ବଂଶନାଶକାରୀ,ଘରର ସର୍ବ-ନାଶକାରୀ ।

ଘରବୁଡ଼ାଇବା—ଗ୍ରା.କ୍ରି. ଅନ୍ୟର ଅନିଷ୍ଟ ଘଟାଇବା, ପରିବାରରେ ଅଶାନ୍ତି ବା କଳଙ୍କ ଘଟାଇବା, କୌଣସି ପରିବାରର ସ୍ତ୍ରୀକୁ ଫୁସୁଲାଇ କୁଳରୁ ବାହାର କରିନେବା ।

ଘରବୁଡ଼ିବା—ଗ୍ରା.ବି. ବଢ଼ିପାଣିଆଦିରେ ଘରଦ୍ୱାର ବୁଡ଼ିଯିବା, କୌଣସି ପରି-ବାରର ଘରଦ୍ୱାର ଏକାବେଳକେ ଧ୍ୱସ୍ତହେବା, ପରିବାର କଳଙ୍କିତ ହେବା ।

ଘରବୁହା—ଗ୍ରା.ବିଂ. ଘରଭଙ୍ଗା (ଦେଖ), ଯେ ପରଘରୁ ଜିନିଷପତ୍ର ବୋହିନିଏ ।

ଘରଭଗ୍ନ—ଗ୍ରା. ବି. ଗୃହସ୍ଥର ସ୍ତ୍ରୀ ବା ଗୃହିଣୀର ମୃତ୍ୟୁ ।

ଘରଭଙ୍ଗା—ଗ୍ରା. ବିଂ. ଯେଉଁ ବ୍ୟକ୍ତି ପରର ପରିବାରରେ ଅନିଷ୍ଟ ବା ବିବାଦ ଜାତକରାଏ, ଯେଉଁ ବ୍ୟକ୍ତି ଏକାନ୍ନ-ବର୍ତ୍ତୀ ପରିବାରକୁ ପୃଥକାନ୍ନ କରାଏ ।

ଘରଭାଙ୍ଗିବା—ଗ୍ରା.କ୍ରି. ଉଆର ହୋଇ-ଥିବା ଘରକୁ ଭାଙ୍ଗିଦେବା,ପରିବାରରେ ଅଶାନ୍ତି ଜନ୍ମାଇବା, (ଗ୍ରା. ବି. ଲ.ଅର୍ଥ) (କୌଣସିବ୍ୟକ୍ତିର) ପରିବାରଗତ ସମ୍ବନ୍ଧ ଶୃଙ୍ଖଳା ଓ ଶାନ୍ତି ଏକାବେଳକେ ନଷ୍ଟ ହୋଇଯିବା ।

ଘରଭାଙ୍ଗିଯିବା—ବି. ଗୃହମରାମତି ଅଭା-ବରୁ ଭଗ୍ନ ବା ଭୂମିସାତ୍ ହେବା,ଏକାନ୍ନ ବର୍ତ୍ତୀ ପରିବାରର ବ୍ୟକ୍ତିଗଣ ଅଲଗା ଅଲଗା ରହିବା (ଭିନ୍ନେ ହେବା) ।

ଘରଭାର—ଗ୍ରା. ବି. ପରିବାର-ପରିପାଳ-ନର ଦାୟିତ୍ୱ ।

ଘରମଙ୍ଗଳିବା—ଗ୍ରା. କ୍ରି. ଘର ମଧରେ ଛୁଆଁ ଅଛୁଆଁ ବାରଣ ନ ରଖିବା, ଡାଣ୍ଡଛୁଆଁ ଆଣି ଘରେ ପୂରାଇବା ।

ଘରମୁହଁଦେଖିବା—ଗ୍ରା.କ୍ରି. ବହୁତ ଦିନ ପରେ ଘରକୁ ଆସିବା ।

ଘରମୁହାଁ—ଗ୍ରା.ବିଂ. ଗୃହାଭିମୁଖୀ, ନିଜ ଘର ଆଡ଼କୁ ମୁହଁକରି ଆସୁଥିବା ।

ଘରଯୋଗ୍ୟା—ଗ୍ରା.ସ୍ତ୍ରୀ.ବିଂ.ପ୍ରାପ୍ତଯୌବନା ବାଳିକା ।

ଘରରଖା—ଗ୍ରା. ( ସମ୍ଭ ) ବି. ଅସରପା, ଚମ୍ପେଇନେଳି ।

ଘରଲୋକ—ଗ୍ରା.ବି. ନିଜର ସ୍ତ୍ରୀ, ନିଜର ସ୍ୱାମୀ, ଆପଣାର କୁଟୁମ୍ବମଧ୍ୟସ୍ଥ ବ୍ୟକ୍ତି, ଆପଣାର ଅନ୍ତରଙ୍ଗ ବ୍ୟକ୍ତି ।

ଘରସନ୍ଧାନ—ଗ୍ରା. ବି. ଗୃହର ଭଲ ମନ୍ଦ ଅବସ୍ଥା ଜାଣିବା, ଗୃହଛିଦ୍ର-ଜ୍ଞାନ ।

ଘରସାଜ—ଗ୍ରା. ବି. ଘରର ଯାବତୀୟ ଉପକରଣ ବା ଅସବାବ ।

ଘରସାଣ୍ଢ—ଗ୍ରା. ବି. ପରିବାରର ବଂଶା-ନୁଗତ ବହୁମୂଲ୍ୟ ଉପକରଣ ।

ଘରସାର—ଗ୍ରା. ବି. ଗୃହର ସର୍ବୋତ୍କୃଷ୍ଟ ବା ମୂଲ୍ୟବାନ୍ ବସ୍ତୁ ।

ଘର୍—ଗ୍ରା.ବି. (ସଂ-ଘର) କୌଣସିପଦାର୍ଥ ରଖିବାର ନିର୍ଦ୍ଦିଷ୍ଟ ଛିଦ୍ର ବା ସ୍ଥାନ,ଠଣା, ବନ୍ଧୁକ ବା ତୋପର ପାର୍ଶ୍ୱରେ ଥିବା ନିଆଁ ଲଗାଇବାର ଛିଦ୍ର, କୋଠରୀ, କୌଣସି ବସ୍ତୁର ଘର୍ଷଣ ଯୋଗୁଁ ଅନ୍ୟ ପଦାର୍ଥରେ ହୋଇଯିବା ଲମ୍ବ ଛିଦ୍ର, କୁରୁଡାରେ ଥିବା ବେଣ୍ଟାମଲଗିବା ଛିଦ୍ର, କ୍ଷୁଦ୍ର ପକ୍ଷୀର ବସା,ସ୍ଥାନଭ୍ରଷ୍ଟ ଜିନିଷ, ପ୍ଲୀହାଆଦିର ମୂଳସ୍ଥାନ, ଗ୍ରା, (ସମ୍ଭ)ବି. ମହୁଫେଣା, ଗାଈର ପଣ୍ଡା, ବ୍ୟାଘ୍ରଆଦି ବନ୍ୟଜନ୍ତୁଙ୍କ ଗର୍ତ୍ତ ।

ଘରୁଅ—ଗ୍ରା. ବିଂ. କୌଣସି ବ୍ୟକ୍ତିର ଗୃହ ବା ପରିବାରସମ୍ବନ୍ଧୀୟ (ବିଷୟ) ଗୋପନୀୟ, ଅନ୍ୟନିକଟରେ ଅପ୍ରକାଶ୍ୟ ।

ଘର୍କାଟିବା—ଗ୍ରା.କ୍ରି. ଭୂମିରେ ଚତୁଷ୍କ ଆଦି କ୍ଷେତ୍ରମାନ ଅଙ୍କିତକରିବା,ଚକ୍ଷିତ କରିବା ।

ଘର୍ଖାଇବା—ଗ୍ରା. ବି. ଶଗଡ଼ର ଚକ-ଦ୍ୱାରା ଅଖ ଘଷିହୋଇ ଅଖରେ ଖାଲ

ବା ଛୁଦ୍ର ହେବା, ମୁହଁରୁ ହଠାତ୍ ବାକ୍ୟ ସ୍ପଷ୍ଟଭାବରେ ନ ବାହାରି ଖନ ମାରିବା ।

ଘଉ — ଗ୍ରା(ସମ୍ବ) ବି. ଲୁଆ ଚଲାଇବାର ବଡ଼ ଗୁଲୁଣି ।

ଘରଆ—ଗ୍ରା. ବିଂ. (ଅନ୍ୟ ଶବ୍ଦ ସଙ୍ଗେ ଲାଗେ, ଯଥା — ଏକଘରଆ) ଗୃହସମ୍ବନ୍ଧୀୟ । [ ଘରଣୀ ଦେଖ ।

ଘରଣୀ — ସ୍ତ୍ରୀ. ବି. (ଘର୍ + ଇନ୍ + ଈ)

ଘରୁଆ — ଗ୍ରା. ବି. ଗୃହସ୍ଥବ୍ୟକ୍ତି, ଏକଘରେ ବାସ କରୁଥିବା ବ୍ୟକ୍ତି, (ଗ୍ରା.ବିଂ) ସତ୍କୁଳପ୍ରସୂତ, ଘରକରଣା, ଉତ୍ତମ ବୈବାହିକ ଅବସ୍ଥାପନ୍ନ ପରିବାରର (ବ୍ୟକ୍ତି) ଗୃହସ୍ଥିତ, ଗୃହପାଳିତ, ପାରିବାରିକ, ଯେ ଉତ୍ତମରୂପେ ପରିବାର ଚଳାଏ, (ଗ୍ରା.ସମ୍ବ.ବି.) ଆତ୍ମୀୟସ୍ୱଜନ ।

ଘରୁଖାଇବା — ଗ୍ରା. କ୍ରି. ନିଜ ଗୃହରେ (ଅର୍ଥାତ୍) ନିଜ ବ୍ୟୟରେ ଭୋଜନ କରିବା ।

ଘରୁଗୋଡ଼କାଢ଼ିବା-ଗ୍ରା.କ୍ରି.ଘରୁବାହାରି ସ୍ଥାନାନ୍ତରକୁ ଯିବା, ସ୍ଥାନାନ୍ତରକୁ ଯିବା ପାଇଁ ଘରୁ ଅନୁକୂଳ କରିବା ।

ଘରେଇ—ଗ୍ରା.ବି. ଗୃହସ୍ଥ (ବିଂ) ଗୃହସମ୍ବନ୍ଧୀୟ, ପାରିବାରିକ, ଗୃହପାଳିତ, ଅନ୍ତରଙ୍ଗ, ଆତ୍ମୀୟ,ସ୍ୱଜନ, ଗୃହପ୍ରସୁତ, ଗୋପନୀୟ, ଅପ୍ରକାଶ୍ୟ, ଯେ ସର୍ବଦା ଘରେ ରହିବାକୁ ସୁଖପାଏ, ଯେଉଁ ସ୍ତ୍ରୀ ପରିବାରରେ ବାସ କରୁଥାଏ ।

ଘରେଗୋଡ଼ଦେବା—ଗ୍ରା. କ୍ରି. ପ୍ରଥମେ ଗୃହରେ ପ୍ରବେଶ କରିବା, (ଲ. ଅର୍ଥ) କୌଣସି କାର୍ଯ୍ୟ କରିବାକୁ ଆରମ୍ଭ କରିବା ।

ଘରେଘରେ-ଗ୍ରା.ଅବ୍ୟ.ଘରଘର ଦେଖ ।

ଘରୋଇ — ଗ୍ରା.ବି.ଓବିଂ.ଘରେଇ(ଦେଖ)।

ଘର୍ଘଟ — ପୁଂ. ବି. (ଘୃ + ଘଟ୍ + ଅ) କିଙ୍କିଣୀକ ମତ୍ସ୍ୟ ।

ଘର୍ଘର — ପୁଂ. ବି. (ଘର୍ଘ + ର + ଅ) ଧ୍ୱନିବିଶେଷ, ପେଚକାଦିଙ୍କର ଶବ୍ଦ, ସ୍ୱରବିଶେଷ, ପର୍ବତଦ୍ୱାର, ଦ୍ୱାର, କବାଟ, ଉଲୂକ, ପେଚକ, ଢଷୁରୁଆଁ, ନଦୀବିଶେଷ, ଧ୍ୱନି, ହାସ୍ୟ, (ବିଂ) ଘର୍ଘର ଶବ୍ଦବିଶିଷ୍ଟ ।

ଘର୍ଘରଜ — ପୁଂ. ବି. (ଘର୍ଘରା + ଜ) ଗୋଟିଏ ପ୍ରସିଦ୍ଧ ନଦ ।

ଘର୍ଘରା — ସ୍ତ୍ରୀ. ବି. (ଘର୍ଘର — ଆ) କ୍ଷୁଦ୍ର ଘଣ୍ଟିକା, ବୀଣାବିଶେଷ, ଗଙ୍ଗା, ଉତ୍ତର ପ୍ରଦେଶ ମଧ୍ୟଦେଇ ପ୍ରବାହିତ ହେଉଥିବା ନଦୀବିଶେଷ ।

ଘର୍ଘରିକା—ସ୍ତ୍ରୀ.ବି. (ଘର୍ଘର + କ + ଆ) କ୍ଷୁଦ୍ର ଘଣ୍ଟିକା, ଘାଗୁଡ଼ି, ଘଣ୍ଟି, ନଦୀବିଶେଷ, ବାଦ୍ୟଖଣ୍ଡ, ବାଦ୍ୟବିଶେଷ, ଧୁଡୁକୁଲି, ଭଜା ଧାନ, ଖଇ, ଲିଆ ।

ଘର୍ଘରିତ — କ୍ଲୀ. ବି. (ଘର୍ଘର + ଇତ) ଶୂକରଜାତୀୟ ଧ୍ୱନି ବିଶେଷ, (ବିଂ) ଘର୍ଘର ଶବ୍ଦଯୁକ୍ତ । [(ଦେଖ) ।

ଘର୍ଘରୀ — ସ୍ତ୍ରୀ. ବି. (ଘର୍ଘର + ଈ) ଘର୍ଘରା

ଘର୍ଘୁର୍ଣ୍ଣା — ସ୍ତ୍ରୀ. ବି. କୀଟବିଶେଷ, ଗୁଣ୍ଡୁରି ପୋକ ।

ଘର୍ମ — ପୁଂ. ବି. (ଘୃ + କ.ମ) ସ୍ୱେଦ, ଶ୍ରମଜନିତ ଦେହରୁବାହାରିବା ଝାଳ, ଆତପ, ଗ୍ରୀଷ୍ମକାଳ, ଆତପଯୁକ୍ତ ଦିନ, ଯଜ୍ଞ, ରସ, ଦୁଗ୍ଧ ବଡ଼ହଣ୍ଡା, ତଙ୍ଗାଳ(ବିଂ) ଦୀପ୍ତିଯୁକ୍ତ, ଉଷ୍ଣ, ଉତପ୍ତ, (ସ୍ତ୍ରୀ) ଘର୍ମା ।

ଘର୍ମକର — ବିଂ. (ତତ୍ପୁ) ଘର୍ମଜନକ, (ସ୍ତ୍ରୀ) ଘର୍ମକାରୀ ।

ଘର୍ମଚର୍ଚ୍ଚିକା—ସ୍ତ୍ରୀ ବି. (ଘର୍ମ + ଚର୍ଚ୍ଚିକା) (ଭ.ଧା) ଘିମିରି ।

ଘର୍ମଜନକ — ବିଂ. (ତତ୍ପୁ) ସ୍ୱେଦକର, ସ୍ୱେଦୋତ୍ପାଦକ, ଯଦ୍ଦ୍ୱାରା ଝାଳ ହୁଏ, (ସ୍ତ୍ରୀ) ଘର୍ମଜନିକା ।

ଘର୍ମଜଳ — ବି. (ଘର୍ମ + ଜଳ) ଝାଳ ।

ଘର୍ମଦୀଧିତ — ପୁଂ. ବି. (ଘର୍ମ + ଦୀଧିତ) (ବ.ବ୍ରୀ) ସୂର୍ଯ୍ୟ ।

ଘର୍ମଦୁଘା—ସ୍ତ୍ରୀ.ବି.ଯେଉଁ ଗାଇର ଦୁଗ୍ଧ ଦୋହନ କରାହୋଇଅଛି ।

ଘର୍ମଧୁକ୍ — ସ୍ତ୍ରୀ.ବି.(ଘର୍ମ + ଦୁହ + କ୍ୱିପ୍) ଯେଉଁ ଗାଇର ଦୁଗ୍ଧ ଦୁହାଁ ହୋଇଅଛି ।

ଘର୍ମପୟଃ — କ୍ଲୀ. ବି. ଗରମଜଳ ।

ଘର୍ମପାବନ୍ — ପୁଂ.ବି.(ଘର୍ମ + ପ୍ର + ବନ୍) ଊଷ୍ମପାନାତ୍ମକ ପିତୃଗଣ ।

ଘର୍ମପୀଡ଼କା — ବି. ଘର୍ମଚର୍ଚ୍ଚିକା, ଘିମିରି ।

ଘର୍ମମାସ — ପୁଂ.ବି. (ଘର୍ମ + ମାସ) ଗ୍ରୀଷ୍ମ ଋତୁର ଅନ୍ତର୍ଗତ ବୈଶାଖ ଓ ଜ୍ୟେଷ୍ଠ ମାସ ।

ଘର୍ମରଶ୍ମି — ପୁଂ. ବି. (ଘର୍ମ + ରଶ୍ମି) ବ.ବ୍ରୀ ସୂର୍ଯ୍ୟ ।

ଘର୍ମବାନ୍ — ପୁଂ. ବିଂ. (ଘର୍ମ + ବତ୍) ଘର୍ମଯୁକ୍ତ, ଘର୍ମାକ୍ତ, ଝାଳରେ ଭିଜି ଯାଇଥିବା ।

ଘର୍ମସଦ୍ — ପୁଂ.ବି.(ଘର୍ମ + ସଦ୍ + କ୍ୱିପ୍) ପିତୃଗଣବିଶେଷ, ଅପର ନାମ ଯଜ୍ଞସାଦୀ ।

ଘର୍ମସ୍ତୁଭ୍ — ବି. (ଘର୍ମ + ସ୍ତୁଭ୍ + କ୍ୱିପ୍) ବାୟୁ ।

ଘର୍ମସ୍ୱରସ୍ — ପୁଂ. ବିଂ. (ଘର୍ମ + ସ୍ୱରସ୍) ଦୀପ୍ତିଧ୍ୱନିଯୁକ୍ତ ।

ଘର୍ମସ୍ୱେଦ — ପୁଂ. ବି (ଘର୍ମ + ସ୍ୱେଦ) ଦୀପ୍ତଗମନ, ଗଳିତ ସ୍ୱେଦଜଳ, (ବିଂ ବ.ବ୍ରୀ)ଯେ ଯଜ୍ଞକୁ ଯାଏ ।

ଘର୍ମାଂଶୁ — ପୁଂ. ବି. (ଘର୍ମ + ଅଂଶୁ) (ବ. ବ୍ରୀ) ସୂର୍ଯ୍ୟ ।

ଘର୍ମାକ୍ତ — ବିଂ. (ଘର୍ମ + ଅକ୍ତ) ତତ୍ପୁ; ସ୍ୱେଦଯୁକ୍ତ, ଝାଳରେ ଭିଜିଯାଇଥିବା, (ସ୍ତ୍ରୀ) ଘର୍ମାକ୍ତା ।

ଘର୍ମାକ୍ତକଳେବର — ବିଂ.(ବ.ବ୍ରୀ) ଯାହାର ଶରୀର ଝାଳରେ ଭିଜିଯାଇଅଛି, (କ୍ଲୀ. ବି) ଝାଳରେ ଭିଜିଥିବା ଦେହ ।

ଘର୍ମାନ୍ତ — ପୁଂ. ବି. (ଘର୍ମ + ଅନ୍ତ) ବ.ବ୍ରୀ; ବର୍ଷାକାଳ, ପ୍ରାବୃଟ ।

ଘର୍ମାନ୍ତକାମୁକୀ-ସ୍ତ୍ରୀ.ବି.(ଘର୍ମାନ୍ତ + କାମୁକୀ) ତତ୍ପୁ; ବଲାକା, ବକ ।

ଘର୍ମାମ୍ବୁ — କ୍ଲୀ. ବି. ସ୍ୱେଦଜଳ, ଝାଳ ।

ଘର୍ମାମ୍ଭଃ — କ୍ଲୀ. ବି. ସ୍ୱେଦଜଳ, ଝାଳ ।

ଘର୍ମାର୍ତ୍ତ — ପୁଂ. ବିଂ. (ଘର୍ମ + ଆର୍ତ୍ତ) ତତ୍ପୁ; ଝାଳଦ୍ୱାରା ଅତ୍ୟନ୍ତ ବ୍ୟସ୍ତ, ଯାହାର ଅତ୍ୟନ୍ତ ଝାଳ ହୋଇଅଛି, (ସ୍ତ୍ରୀ) ଘର୍ମାର୍ତ୍ତା ।

ଘର୍ମାର୍ଦ୍ର—ବିଂ. (୬ତତ୍) ଝାଳଦ୍ୱାରା ଓଦା ହୋଇଥିବା, ସ୍ୱେଦାର୍ଦ୍ର ।

ଘର୍ମୀ—ପୁଂ. ବିଂ. (ଘର୍ମ+ଇନ୍) ଯେ ଘର୍ମଦ୍ୱାରା ଜୀବିକା ନିର୍ବାହ କରେ, ଘର୍ମଯୁକ୍ତ ।

ଘର୍ମୋଦକ—କ୍ଲୀ.ବି.ସ୍ୱେଦଜଳ,ଝାଳ ।

ଘର୍ମ୍ୟ—ବିଂ.(ଘର୍ମ+ଯ)ଘର୍ମସମ୍ବନ୍ଧୀୟ ।

ଘର୍ଷ—ପୁଂ.ବି. (ଘୃଷ୍+ଭା.ଅ) ଘର୍ଷଣ, ପେଷା, ଘଗଡ଼ା, ଚୂରିବା ।

ଘର୍ଷକ—ପୁଂ. ବିଂ. (ଘୃଷ୍+କ) ଯେ ଘର୍ଷଣ କରେ, ଯେ ପାଲିସ୍ କରେ, ଯେ ଘଷେ, ଯେ ଚୂରେ ।

ଘର୍ଷକପକ୍ଷୀ—ପୁଂ. ସ୍ତ୍ରୀ. ବିଂ.ଯେଉଁ ସମସ୍ତ ପ୍ରାଣୀ ଭୂମିକୁ ନଖରେ ଆଞ୍ଚୁଡ଼ି ଖାଦ୍ୟାନ୍ୱେଷଣ କରନ୍ତି, (କୁକୁଡ଼ା ମୟୂର-ପ୍ରଭୃତି) ।

ଘର୍ଷଣ—କ୍ଲୀ. ବି. (ଘୃଷ୍+ଭା. ଅନ) ଘଷା, ମଜା, ଘଷିବା, ମାଜିବା, ବଟା, ବାଟିବା । [ବାଟିବା ।

ଘର୍ଷଣକରିବା—ଗ୍ରା.କ୍ରି.ଘଷିବା,ମାଜିବା ।

ଘର୍ଷଣାଳ—ପୁଂ.ବି. (ଘର୍ଷଣ+ଅଲ+ଅ ଶିଳପୁଆ ।

ଘର୍ଷଣୀ—ସ୍ତ୍ରୀ.ବି. (ଘୃଷ୍+ର୍ମ.ଅନ+ଈ) ହଳଦୀ, ହଳଦୀ ।

ଘର୍ଷଣୀୟ—ବିଂ. (ଘୃଷ୍+ର୍ମ+ଅନୀୟ) ଯାହା ଘର୍ଷଣ କରାହେବ, ଯାହା ବଟାହେବ,ଯାହା ପାଲିସ୍ କରାଯାଇପାରେ ।

ଘର୍ଷିତ—ବିଂ. (ଘୃଷ୍+ର୍ମ.ତ) ପିଷ୍ଟ, ଯାହା ଘଷା ଯାଇଅଛି, ଯାହା ବଟା ଯାଇଅଛି, ପାଲିସ୍ କରାଯାଇଥିବା ।

ଘର୍ଷୀ—ପୁଂ. ବିଂ. (ଘୃଷ୍+ଇନ୍) ଯେ ଘର୍ଷଣକରେ,ଯେ ବାଟେ,(ସ୍ତ୍ରୀ)ଘର୍ଷଣୀ ।

ଘଲକନା—ଗ୍ରା.କ୍ରି.ବିଂ.(ଧ୍ୱନ୍ୟାନୁକରଣ) ହଠାତ୍ ବହୁ ପରିମାଣରେ (ପୂଜ ବା ପାଣି ବୋହିବା) ।

ଘଲଘଲ—ଗ୍ରା. ଅବ୍ୟ. (ଦେ-ଅନର୍ଗଳ) ପାଚିଲା ଘା'ରୁ ବହୁ ପରିମାଣରେ ପୂଜ ବା ଛିଦ୍ରବାଟେ ଜଳ ବୋହିବା, (ଦେ-ଶ୍ଳଥ) ଗଲ ଗଲ ଦେଖ ।

ଘଲଘଲିଆ—ଗ୍ରା. ବିଂ. ଅବ୍ୟ. ପୂଜ ଭର୍ତ୍ତି ହୋଇଥିବା (ବ୍ରଣ), ହୁଗୁଳା,ଗଳଗଳିଆ, ଶ୍ଳଥ ।

ଘଷରଘଷର—ଗ୍ରା.ଅବ୍ୟ.ଏକ ପଦାର୍ଥକୁ ଅନ୍ୟ ପଦାର୍ଥରେ ଘଷିବାର ଶବ୍ଦ ।

ଘଷରପଶର—ଗ୍ରା. ଅବ୍ୟ. ଘଷରଘଷର (ଦେଖ), ଲହରପଢ଼ର, ବହୁବାର ଏକସ୍ଥାନ ପାଖଦେଇ ଯିବା ଆସିବା କରିବା, କୌଣସି କାର୍ଯ୍ୟ କରିବା ବିଷୟରେ ଅନୁଚିତ ବିଳମ୍ବ ବା ଶିଥିଳତା ।

ଘଷଗ୍ର—ଗ୍ରା.ବିଂ. (ଦେ-ଘୃଷ) ଘର୍ଷଣଦ୍ୱାରା କ୍ଷୟପ୍ରାପ୍ତ, କ୍ଷୟପ୍ରାପ୍ତ ହେବାରୁ ଅଚଳ ମୁଦ୍ରା,ଅତ୍ୟନ୍ତ ଅଭ୍ୟସ୍ତ ହେବାଯୋଗୁଁ ଅନାଦୃତ, ଅତ୍ୟନ୍ତ ଅଭ୍ୟସ୍ତ, ଅତି ପରିଚୟ ଯୋଗୁଁ ଅନାଦୃତ,ଚିରପରିଚିତ, ବହୁକାଳର ପୁରୁଣା ।

ଘଷା—ଗ୍ରା.ବି.(ଦେ-ଘୃଷ) ଘର୍ଷଣ,ଘଷିବା କର୍ମ, ଦେହର ସମ୍ବାହନ, ଗୋଡ଼ହାତ ଘଷିବା, ତେଲିଙ୍କି ବାଜାର ଯେଉଁ ଢୋଲର ଏକ ପାଖରେ ଖଣ୍ଡିଏ କାଠି ଘଷା ଯାଏ, (ଗ୍ରା. ବିଂ.) ଘର୍ଷିତ, ଯେ ସର୍ବଦା ଘଷି ହୁଏ ।

ଘଷାଆଉଁସା—ଗ୍ରା.ବି.କ୍ଲାନ୍ତି ବା ଯାତନା ନିବାରଣାର୍ଥ) ଅନ୍ୟ ବ୍ୟକ୍ତିର ଅଙ୍ଗ-ପ୍ରତ୍ୟଙ୍ଗକୁ ମୋଡ଼ିବା ଓ ଆଉଁସିବା ।

ଘଷାଇବା-ଗ୍ରା.କ୍ରି.ଘଷିବାର ଣିଜନ୍ତରୂପ ।

ଘଷାଇହେବା—ଗ୍ରା.କ୍ରି. ଘଷାଖାଇବା, ଅନ୍ୟବ୍ୟକ୍ତିଦ୍ୱାରା ନିଜ ଶରୀର ମୋଡ଼ି ହେବା ।

ଘଷାକାଠି—ଗ୍ରା. ବି. ଦାନ୍ତକାଠି, ଦିଆସିଲେଇ କାଠି, ତେଲିଙ୍ଗୀ ବାଜାର ଘଷାପାଖରେ ଘଷିବାପାଇଁ ବ୍ୟବହୃତ କାଠି ।

ଘଷାଗୁଣା—ଗ୍ରା. ବି. ଗୁଆ ବସିଥିବା ନାକର ଗହଣା ।

ଘଷାଘଷି—ଗ୍ରା. ବି. (ଦେ-ଘୃଷ୍)ବହୁବାର ଘଷିବାକର୍ମ, ଘର୍ଷଣ, ଅନ୍ୟୋନ୍ୟରେ ଘର୍ଷଣ,(ଗ୍ରା.ବିଂ.)ପରସ୍ପର ଲଗାଲଗି, ପରସ୍ପର ଘର୍ଷିତ ।

ଘଷାପଥର—ଗ୍ରା. ବି. ଛୁରୀ, କଚୁରି ନହଣ ଆଦି ଯନ୍ତ୍ରମାନଙ୍କୁ ଧାର୍‌ଆ କରିବାପାଇଁ ବ୍ୟବହୃତ ପଥରବିଶେଷ, ଗାଧୁଆରୁଠ-ପଥର ।

ଘଷାପାଣି—ଗ୍ରା. ବି. ମସଲା-ମିଶ୍ରିତ-ସୁପେୟ ଜଳ ।

ଘଷାମଜା—ଗ୍ରା.ବି.ଶରୀର ବା ଅଲଙ୍କାର ବାସନ ଆଦି ଉତ୍ତମରୂପେ ମାଜିବା, ମଜାମଜି ।

ଘଷି—ଗ୍ରା. ବି. ଶୁଖିଲା ଗୋବର ବା ଖତ, ଜାଳରୂପେ ବ୍ୟବହୃତ ଶୁଷ୍କ ଗୋମୟ, ଚେନା ।

ଘଷିଘଷିଦେବା—ଗ୍ରା.କ୍ରି. ଅନ୍ୟବ୍ୟକ୍ତିର ଶରୀରର ଭିନ୍ନ ଭିନ୍ନ ଅଙ୍ଗକୁ ଉତ୍ତମରୂପେ ମୋଡ଼ିମାଡ଼ି ଦେବା, ଅନ୍ୟ ବ୍ୟକ୍ତିକୁ ଗାଧୋଇଦେବାବେଳେ ମଳି ଛଡ଼ାଇବା ନିମନ୍ତେ ତାହା ଦେହ ଗାମୁଛାରେ ରଗଡ଼ିବା ।

ଘଷିବା—ଗ୍ରା. କ୍ରି. (ଦେ-ଘୃଷ) ଘର୍ଷଣ କରିବା, ରଗଡ଼ିବା, ମଳିବା, ଅନ୍ୟର ପଦାଦି ଘର୍ଷଣ କରିବା, ମଞ୍ଜାଳିବା, ପାଲିସ୍ କରିବା,ମାଜି କରି ସଫାକରିବା, ବାଟିବା ।

ଘଷିମାଜିହେବା—ଗ୍ରା.କ୍ରି. ନିଜର ଦେହ ବା ଅଳଂକାରାଦିକୁ ଉତ୍ତମରୂପେ ଘଷି ପରିଷ୍କାର କରିବା ।

ଘଷିହେବା—ଗ୍ରା. କ୍ରି. ଅନ୍ୟ ବ୍ୟକ୍ତି ବା ବସ୍ତୁ ଦେହରେ ଆପଣା ଅଙ୍ଗକୁ ଘର୍ଷଣ କରିବା, (ଘଷିବା କ୍ରିୟାର କର୍ମବାଚ୍ୟ) ଘର୍ଷିତ ହେବା ।

ଘସ୍—(ଧାତୁ) ଭକ୍ଷଣ କରିବା ।

ଘସ୍ମ—ବିଂ. (ଘସ୍+ମ. ଅ) ଖାଦକ, ଖାଇବା ବ୍ୟକ୍ତି, (ବି.ଭା. ଅ) ଭୋଜନ, ଖାଇବା ।

ଘସି—ପୁଂ. ବି.(ଘସ୍+ଭା,ଇ)ଭକ୍ଷଣ, (ର୍ମ.ଇ) ଅନ୍ନ ।

ଘସିଆ—ଗ୍ରା. (ସମ୍ବ) ପୁଂ. ବି. ଘାସି,

ପାଣଆଦିଙ୍କପରି ନୀଚ ଅସ୍ପୃଶ୍ୟ ଜାତି-ବିଶେଷ ।

ଘସ୍ମର — ବି°. (ଘସ୍ + କ.ମର) ଖାଦକ, ହିଂସ୍ର, ପେଟୁ, ଭକ୍ଷଣଶୀଳ, (ବି) କାଳାଞ୍ଜର ଗିରିସ୍ଥିତ ସପ୍ତମୃଗ ମଧ୍ୟରୁ ଅନ୍ୟତମ, (ଗର୍ଗ ମହର୍ଷିଙ୍କ ଶାପରେ ମୃଗଯୋନିପ୍ରାପ୍ତ କୌଶିକଙ୍କର ସୃସ୍ତପାଦ ସପ୍ତପୁତ୍ର ମଧ୍ୟରୁ ଏକ ପୁତ୍ର) ।

ଘସ୍ର — ପୁଂ.ବି. (ଘସ୍ + ର) ସୂର୍ଯ୍ୟ, ଦିନ, (କ୍ଲୀ.ବି) ଜାଫ୍ରାନ୍-କୁଙ୍କୁମ, (ବି°) ହିଂସ୍ର ।

ଘସ୍ରନାଥ — ପୁଂ. ବି. (୬ତତ୍) ସୂର୍ଯ୍ୟ ।

ଘସ୍ରନାଥନନ୍ଦନ — ପୁଂ. ବି. (୬ତତ୍) ଯମ । [୬ତତ୍; ଯମୁନା ।

ଘସ୍ରନାଥନନ୍ଦିନୀ ( ନନ୍ଦନା ) — ସ୍ତ୍ରୀ. ବି.

ଘା — ସ୍ତ୍ରୀ.ବି. ( ହନ୍ + ଷ + ଅ + ଆ ) ଆଘାତ, କାଶ୍ମୀ, ବନ୍ୟବୃକ୍ଷବିଶେଷ, (ଗ୍ରା.ବି) କ୍ଷତ, ବ୍ରଣ, କ୍ଷତଚିହ୍ନ, (ଗ୍ରା.-ମେଦ ବି; ) ଅସ୍ତ୍ରଶସ୍ତ୍ରାଦିଦ୍ୱାରା ପ୍ରହାର, ଆଘାତ ।

ଘାଆ — ଗ୍ରା. ବି. ଘା ଦେଖ ।

ଘାଆକରିବା — ଗ୍ରା. କ୍ରି. କ୍ଷତକରିବା ।

ଘାଆଧରିବା — ଗ୍ରା.କ୍ରି.ମନ୍ତ୍ରଯନ୍ତ୍ର ପ୍ରୟୋଗ ଦ୍ୱାରା କୌଣସି କ୍ଷତ ବା ବ୍ରଣକୁ ଦୂଷିତ କରିବା ଓ ଦୁରାରୋଗ୍ୟ କରିବା ।

ଘାଆମୁହଁ — ଗ୍ରା. ବି. କୌଣସି ଘାଆରୁ ପୂଯବୋହିବା ସ୍ଥାନ ।

ଘାଇ — ଗ୍ରା. ବି°. ( ସଂ-ଘାତ ) ନଦୀ ବା ପୁଷ୍କରିଣୀର ବନ୍ଧ ଭାଙ୍ଗି ଯାଇ ଯେଉଁ ପାଣିବାଟ ମେଲହୋଇଯାଏ, ଜଳନିର୍ଗତ ପଥ, ମଥାଭିଉଁସି ଜାଲର ଅଗ ବା ମୁହଁ (ଘଗ ଦେଖ) ।

ଘାଇକରିବା — ଗ୍ରା.କ୍ରି.କୌଣସି ବନ୍ଧରେ ପାଣିଯିବାପାଇଁ ବାଟ ମେଲକରିବା ।

ଘାଇମାରିବା — ଗ୍ରା. କ୍ରି. ଧପ୍ପାମାରିବା, ଠକାଇବା, ଆତ୍ମସାତ୍ କରିବା ।

ଘାଇଲା — ଗ୍ରା.ବି°. ଆଘାତପ୍ରାପ୍ତ, ଆହତ, ବିଶେଷଭାବରେ କ୍ଷତଯୁକ୍ତ ।

ଘାହ — ଗ୍ରା. ବି. କ୍ଷତ, ଘାଆ ।

ଘାହଆ — ଗ୍ରା. ବି°.(ସଂ-ଘାତ)କ୍ଷତଯୁକ୍ତ, ଆହତ, କ୍ଷତବିକ୍ଷତ ।

ଘାଉଁକିନା — ଗ୍ରା. ଅବ୍ୟ. ଅତିଶୀଘ୍ର, ଚଞ୍ଚଳ, ହଠାତ୍ ।

ଘାଉଁଘାଉଁ — ଗ୍ରା. ଅବ୍ୟ. କୁକ୍କୁର ପ୍ରଭୃତି ଯନ୍ତ୍ରଣାବର ଗମ୍ଭୀରଧ୍ୱନି, ଶୂନ୍ୟମନ୍ଦିର ମଧ୍ୟରେ ପ୍ରତିଧ୍ୱନିର ଶବ୍ଦ ।

ଘାଉଘାଉକରିବା — ଗ୍ରା. କ୍ରି. କୁକୁରପରି ଶବ୍ଦକରି କାମୁଡ଼ି ଗୋଡ଼ାଇବା, ଖାଲି ଦେଉଳ ବା ବଡ଼ଘର ମଧ୍ୟରେ ପାଟିକରି ପ୍ରତିଧ୍ୱନି ଓ ଶବ୍ଦଜାତ କରିବା ।

ଘାଉଁର — ଗ୍ରା.ବି.ଚକାକାର ଗତି,ଘୂର୍ଣ୍ଣନ ।

ଘାଉଁରଖାଇବା — ଗ୍ରା. କ୍ରି. ଚକାକାର ଗତିକରିବା, ମୁଣ୍ଡବୁଲାଇ କଚ୍ଛିଡ଼ିହୋଇ ପଡ଼ିବା, ମୁଣ୍ଡ ବୁଲାଇଦେବା ।

ଘାଉଡ଼ — ଗ୍ରା. ବି. (ସଂ-ଘାତ)ସର୍ପାଘାତ, ସର୍ପାଘାତଜନିତ ବିଷ ଦଷ୍ଟବ୍ୟକ୍ତିର ଦେହରେ ବ୍ୟାପିବା ।

ଘାଉଡ଼କରିବା — ଗ୍ରା.କ୍ରି.କୌଣସି ବ୍ୟକ୍ତି-ପ୍ରତି ମନ୍ତ୍ରଯନ୍ତ୍ର ପ୍ରୟୋଗକରି ଅନିଷ୍ଟ କରିବା, (ସାପ) କାମୁଡ଼ିବା ।

ଘାଉଡ଼ଛଡ଼ାଇବା — ଗ୍ରା. କ୍ରି. ମନ୍ତ୍ର ବା ଔଷଧପ୍ରୟୋଗଦ୍ୱାରାସର୍ପବିଷ ଛଡ଼ାଇବା ।

ଘାଏ — ଗ୍ରା. କ୍ରି. ବି°. (ସଂ-ଘାତ) ଏକ ଆଘାତରେ, ଏକାଥରକେ, ପ୍ରା.(ସମ୍ପ) ଅବ୍ୟ. ଦଣ୍ଡେ, କ୍ଷଣେ ।

ଘାଏଁ — ଗ୍ରା.କ୍ରି.ବି°.ଢାଉରେ,ଜୋରରେ, ଥରେ, ଝୁପେ ।

ଘାଏକେ — ପ୍ରା. (ସମ୍ପ) ଅବ୍ୟ. କ୍ଷଣକେ, (ଗ୍ରା. ଅବ୍ୟ) ଏକାଥରକେ ।

ଘାଗଡ଼ା — ଗ୍ରା. ବି. କଣ୍ଠାଭରଣବିଶେଷ, ମେମ୍‌ମାନଙ୍କର ପିନ୍ଧିବା ଏକପ୍ରକାର ଲମ୍ବା କୁରୁତା, ଲହଙ୍ଗା, (ଗ୍ରା. ବି°.) ଛଡକଠୋର ସ୍ୱରଯୁକ୍ତ ପାଟି ।

ଘାଗରା — ଗ୍ରା.ବି. ପରିଧେୟ ବସ୍ତ୍ରବିଶେଷ, କଟିଦେଶରେ ପରିଧେୟ ସ୍ତ୍ରୀମାନଙ୍କର ଏକପ୍ରକାର ପୋଷାକ, ସ୍ତ୍ରୀମାନଙ୍କର ପିନ୍ଧିବା ଏକପ୍ରକାର ଲମ୍ବା କୁରୁତା, ଲହଙ୍ଗା ।

ଘାଗୁଡ଼ି — ଗ୍ରା. ବି.( ସଂ-ଘର୍ଘର ) ଅଳଂ-କାରରୂପେ ବ୍ୟବହୃତ କ୍ଷୁଦ୍ରଘଣ୍ଟି ବା ଘୁଙ୍ଗୁର,ପାଦଭୂଷଣବିଶେଷ, କଟିଭୂଷଣ ବିଶେଷ ।

ଘାଗୁଡ଼ିଆଟିଙ୍କ — ଗ୍ରା.ବି.(ଏମାନଙ୍କ ଆକୃତି ଘାଗୁଡ଼ିପରି ଥିବାରୁ) ଏକପ୍ରକାର ଟିଙ୍କ ।

ଘାଗୁଡ଼ିମାଳ — ପ୍ରା. (ଗଞ୍ଜା)ବି. ବେକରେ ପିନ୍ଧିବାଯୋଗ୍ୟ ଏକପ୍ରକାର ହାର,(ଗ୍ରା-ବି) ବଳାଗଣ୍ଠିରେ ପିନ୍ଧିବା ଅନେକ ଗୁଡ଼ିଏ ଘୁଙ୍ଗୁରୁଗୁନ୍ଥାହୋଇଥିବାମାଳ ।

ଘାଘ୍ଗାର — ଉତ୍ତରପ୍ରଦେଶରେ ପ୍ରବାହିତ ନଦୀବିଶେଷ ।

ଘାଟ୍ — ପ୍ରା. (ସମ୍ପ)ବି. ଘାଟ (ଦେଖ), କ୍ଷତି, ଲୁକ୍‌ସାନ୍ ।

ଘାଟ — ପୁଂ. ବି. ( ଘଟ୍ + ଣିଚ୍ + ଅ ) ଗ୍ରୀବାର ପଶ୍ଚାଦ୍ଭାଗ, ବେକ, ଘଟ,କୁମ୍ଭ, ନଦୀ, ପୋଖରୀର ଅବତରଣ ସ୍ଥାନ, ଗାଧୁଆ ତୁଠ, ଗିରିବର୍ତ୍ମ, ଗିରିସଙ୍କଟ, ନଗର ବା ଦୁର୍ଗର ତୋରଣ, ଦାଗ, ଦୋଷ, କଳଙ୍କ, ଦୁର୍ଗମସ୍ଥାନ, ଦୁଃସହ ଘଟନା, ଜୀବନର ପ୍ରଧାନଘଟଣା, ଘାଟ ମାସୁଲ,ବନ୍ଦର,ସମୁଦ୍ରକୂଳରେ ଜାହାଜ ଲାଗିବା ସ୍ଥାନ, ଯେଉଁଠାରେ ନଦୀଆଦି ପାରିହେବାପାଇଁ ଲୋକ ଡଙ୍ଗାରେ ଚଢ଼ନ୍ତି ଓ ଡଙ୍ଗାରୁ ଓହ୍ଲାନ୍ତି ।

ଘାଟକଉଡ଼ି — ଗ୍ରା. ବି. ଘାଟପାରିହେବା-ବ୍ୟକ୍ତି ମାଝିଙ୍କୁ ଦେବା ମାସୁଲ ।

ଘାଟକର୍କଶା — ସ୍ତ୍ରୀ.ବି. ଏକପ୍ରକାର ବୀଣା ।

ଘାଟକୁଲ — ମଧ୍ୟପ୍ରଦେଶ ଅନ୍ତର୍ଗତ ଗୋଟିଏ ପରଗଣା ।

ଘାଟଚକ୍ର — ବି.ଦେଉଳର ଅଂଶବିଶେଷ ।

ଘାଟଜଗିଆ — ଗ୍ରା. ବି. ଯେ ଗିରିସଙ୍କଟ ବା ନଗରର ଦ୍ୱାର ରକ୍ଷାକରେ, ଘାଟୂଆଲ ।

ଘାଟଡଙ୍ଗା — ଗ୍ରା. ବି. ଯେଉଁ ଡଙ୍ଗାରେ ଲୋକେ ନଦୀଆଦି ପାରିହୁଅନ୍ତି ।

ଘାଟପାରି — ଗ୍ରା. ବି.ଘାଟରେ ପାରିହେବା ସମୟରେ ପଥିକମାନେ ଦେବା ଶୁଳ୍କ, ନଦୀପ୍ରଭୃତିକୁ ଡଙ୍ଗାଦ୍ୱାରା ଉତ୍ତୀର୍ଣ୍ଣ ହେବା । [ନଦୀ ।

ଘାଟପ୍ରସ୍ଥ — କର୍ଣ୍ଣାଟ ପ୍ରବାହିତ ଗୋଟିଏ

ଚଅଁର—ଗ୍ରା.ବି. ଚାମର ଭଳି ଲାଞ୍ଜରେ ଗୋଛାଏ ବାଳଥିବା (ଗାଈ କିମ୍ବା ବଳଦ)।

ଚଅଁରିବା—ଗ୍ରା. କ୍ରି. ଚଅଁର କାଢ଼ିବା, (ଚଅଁର ପକାଇବା ଦେଖ,) କୌଣସି ଭଙ୍ଗପ୍ରବଣ ପଦାର୍ଥ ଫାଟିଯିବାର ପୂର୍ବାଭାସ ପ୍ରକାଶ କରିବା, ଘରକଥା ନ ବୁଝି ଇତସ୍ତତଃ ବୁଲିବା।

ଚଅଁରେଇବା—ଗ୍ରା.କ୍ରି. (ଚଅଁର ପକାଇବା ଦେଖ)।

ଚଇ—ବି. (ସଂ-ଚବିକା) ଲତାକାର ଏକପ୍ରକାର ବୃକ୍ଷ, ଚୁଇଁକାଠ।

ଚଇତ—ଗ୍ରା.ବି. (ସଂ-ଚୈତ୍ର) ଚୈତ୍ରମାସ, ବସନ୍ତଋତୁର ପ୍ରଥମ ବା ଆଦ୍ୟ।

ଚଇତନ—ଗ୍ରା.ବି.ପଦ୍ୟ,ଚେଷ୍ଟା,ଚେତନା, ଜ୍ଞାନ, ଚୈତନ୍ୟ, ବଙ୍ଗଦେଶୀୟ ପ୍ରସିଦ୍ଧ ଧର୍ମପ୍ରଚାରକ ଶ୍ରୀଚୈତନ୍ୟ (ବ୍ୟଙ୍ଗ) ପ୍ରହାର, ଯାହାଦ୍ୱାରା ଚେତନା ଉଦିତ ହୁଏ।

ଚଇତବାଣ୍ଡ—ଗ୍ରା. ବି. ଚୈତ୍ରମାସରେ ବ୍ୟାପିବା ହଇଜା ରୋଗ।

ଚଇତା—ଗ୍ରା. ବିଂ. ଚୈତ୍ରମାସସମ୍ବନ୍ଧୀୟ, ଚୈତ୍ରମାସରେ ଆମଦାନୀ କରାହେବା (ଫସଲ)।

ଚଇତଘୋଡ଼ା—ଗ୍ରା. ବି.ଚୈତ୍ରପୂର୍ଣ୍ଣିମୀରେ କେଉଟମାନେ ବତା-ଆଟ ପଞ୍ଜରା ଉପରେ ଲୁଗା ଘେରାଇ ଯେଉଁ ଘୋଡ଼ାର ରୂପ ନଚାନ୍ତି।

ଚଇତମଣ୍ଡା—ଗ୍ରା. ବିଂ. ଚୈତ୍ରମାସରେ ହେବା ବର୍ଷା, (ବିଂ) ଚୈତ୍ରମାସରେ ବର୍ଷିବା ବା ମାଡିବା (ମେଘ)।

ଚଇନ୍—ଗ୍ରା. ବିଂ. ସ୍ଥିର, ଶାନ୍ତ,ନିଶ୍ଚଳ, ସୁସ୍ଥ, (ବି) ସ୍ଥିରତା, ସ୍ୱାସ୍ଥ୍ୟ, ସ୍ୱଚ୍ଛନ୍ଦତା, ଆରାମ। ବ୍ରାହ୍ମଣବିଶେଷଙ୍କର ଉପନାମ (ସାଙ୍ଖ)।

ଚଇନ୍‌ଫିଟ୍—ଯା.ବି. ଗୋଡ଼ଠାରୁ ମୁଣ୍ଡ-ପର୍ଯ୍ୟନ୍ତ ବାବୁଗିରି ଉପଯୁକ୍ତ ସାଜ-ସଜ୍ଜାରେ ସଜ୍ଜିତ, ଲମ୍ବଶାଟପଟାବୃତ।

ଚଇନ୍‌ମହାଘାଣେ—ଗ୍ରା. ବି. (ଅବଜ୍ଞା-ସୂଚକବ୍ୟବହାର) ସର୍ବେସର୍ବା, ପ୍ରଧାନ ଲୋକ,(ବ୍ୟଙ୍ଗ) କେହି ନୁହେ।

ଚଉ—ଗ୍ରା.ବିଂ.(ସଂ-ଚତୁର)ଚାରିସଂଖ୍ୟକ, ଚାରିଦିଗରେ ଅବସ୍ଥିତ, (ଯଥା—ଚୌହଦ) ଗ୍ରା.ଅବ୍ୟ. ଅମୁକସଂଖ୍ୟାରେ ଚାରିଦ୍ୱାରା ଗୁଣିତ ହେଲେ (ଯଥା—ତିନି ଚଉ ବାର।)

ଚଉଅଂଶ—ଗ୍ରା.ବି.(ସଂ-ଚତୁର୍ଥାଂଶ)ଏକ-ଚତୁର୍ଥାଂଶ।

ଚଉଅଂଶା—ଗ୍ରା.ବି.ଚାରିପାଖବିଶିଷ୍ଟ, ବର୍ଗକ୍ଷେତ୍ରାକୃତି, ଚାରି ସମକୋଣବିଶିଷ୍ଟ (କ୍ଷେତ୍ର)।

ଚଉଆ—ଗ୍ରା. ବି. ଅଳଡ, ଶିଶୁମାନଙ୍କ ମୁହଁରେ ଓ ଦେହରେ ହେବା ଚକା ଚକା ନାଲିମନ୍ଦା ରୋଗ,(ଗ୍ରା.ବିଂ)ଚତୁର୍ଥ (ପ୍ରା.ବାଲେ ବି)ଗୋରୁଙ୍କ ରୋଗବିଶେଷ।

ଚଉଆଖିଆ—ଗ୍ରା. ବିଂ. ଯେ ଚାରିଆଡ଼କୁ ଆଖିରଖି କାର୍ଯ୍ୟ କରେ,(ଲ.ଅର୍ଥ) ଖୁବ୍ ସତର୍କ ଓ ସାବଧାନ, କୌଶଳୀ, ବୁଦ୍ଧିମାନ୍।

ଚଉଁର—ଗ୍ରା. ବି. କେଶରେ ନିର୍ମିତ କେଶବନ୍ଧନ ରଜ୍ଜୁ।

ଚଉକ—ଗ୍ରା.ବି. ଚାରିଆଙ୍ଗୁଳ ପରିମାଣ, ଚତୁଷ୍ପଥ, ବହୁଲୋକଙ୍କ ମିଳନସ୍ଥଳ, ଗଞ୍ଜ, ଗୃହର କାଷ୍ଠସ୍ତମ୍ଭର ମୁଣ୍ଡଉପରେ ଥିବା କାଷ୍ଠଖଣ୍ଡ,ଚତୁଷ୍କୋଣବିଶିଷ୍ଟସ୍ଥାନ।

ଚଉକଠ,ଚଉକାଠ—ଗ୍ରା. ବି. ଘରର ଦୁଆରମୁହଁରେ ବା ଝରକାରେ ଲାଗିଥିବା ଫରମା, ଯହିଁରେ କବାଟ ଝୁଲୁଆଏ।

ଚଉକଡ଼ି—ଗ୍ରା.ବି. ସୁନାରେ ତିଆରି ଗଳାର ଅଳଙ୍କାରବିଶେଷ।

ଚଉକଣି—ଗ୍ରା.ବି.ଚାରିକୋଣବିଶିଷ୍ଟ।

ଚଉକତି—ଗ୍ରା.ବି. ଚାରିଦିଗ, ଚାରିପାଖ, (ଗ୍ରା.କ୍ରି ବିଂ) ଚାରିପାଖେ।

ଚଉକନା—ଗ୍ରା.ବି. ଚାରିଗୋଟି ମୁନ ବା ଶାଖାଥିବା ଅସ୍ତ୍ରବିଶେଷ।

ଚଉକନ—ଗ୍ରା.ବି. (ସମ୍ବ.)ବି. ପତ୍ରନିର୍ମିତ ଚତୁଷ୍କୋଣ ପାତ୍ର, ଚଉପଦୀ।

ଚଉକସ—ଗ୍ରା.ବିଂ. ଦୃଢ଼ଭାବରେ ଆବଦ୍ଧ, ଚାରିଆଡ଼ୁ ବନ୍ଧାହୋଇଥିବା, ମଜବୁତ୍, ବଳୁଆ,ଦୃଢ଼, ଚତୁର, ସର୍ବକର୍ମନିପୁଣ, ଧୁରନ୍ଧର, ଖୁବ୍ ସାବଧାନ, ସତର୍କ-ଯାହାର ସବୁଆଡ଼କୁ ଦୃଷ୍ଟି ଥାଏ, ଚତୁର୍ଦ୍ଦିଗରେ ସମତଳ।

ଚଉକା—ଗ୍ରା. ବି. ଜଳସଂଗ୍ରହାର୍ଥ ଗାଡ଼ିଆ ବା ଗଡ଼ି, ଗଞ୍ଜପା ଓ ତାସଖେଳରେ ଚାରିଗୋଟି ଟିପଥିବା ପାର, ପାକ-ପୂର୍ବରୁ ଲିପା ପୋଛାଥିବା ଚୁଲ୍ଲୀର ଚାରିପାଖ ସ୍ଥାନ।

ଚଉକି—ଗ୍ରା.ବି. ବସିବା ନିମନ୍ତେ ଚାରି-ଗୋଡ଼ିଆ କାଷ୍ଠ ବା ପଥରର ଆସନ, ପଛ ପଟରେ ଆଉଜିବାର ଉପଯୋଗୀ ବାଡ଼ଥିବା କାଷ୍ଠ ବା ବେତର ଆସନ, ଖୁରସୀ, କର୍ଣ୍ଣର ନୋଳବିଶେଷ, ଗ୍ରାମ ବା ନଗର ରକ୍ଷା ନିମନ୍ତେ ନିର୍ଦ୍ଦିଷ୍ଟ ସ୍ଥାନ ବା ଚତୁଷ୍ପଥରେ ଅବସ୍ଥିତ ପ୍ରହରୀଙ୍କ ଆଡ୍ଡା, ଫାଣ୍ଡି, ଜଗିବାକର୍ମ, ପହରା, ଗୃହମଧ୍ୟସ୍ଥ ଚତୁଷ୍କୋଣବିଶିଷ୍ଟ ପିଣ୍ଡା, (ଯହିଁରେ ବସାଉଠା ଖିଆପିଆ ଆଦି କାର୍ଯ୍ୟମାନ ଘରର ଲୋକେ କରନ୍ତି)।

ଚଉକିଆ—ଗ୍ରା.ବି. (ଚଉକିଦାର ଦେଖ) (ଗ୍ରା.ବିଂ) ଚାରିକୋଣିଆଁ।

ଚଉକିଦାର—ଗ୍ରା.ବି. ଗ୍ରାମର ବା ଗୃହର ରକ୍ଷକ, ପହରାବାଲା।

ଚଉକିଦାରି—ଗ୍ରା. ବି. ଚଉକିଦାରର କର୍ମ, ଚଉକିଦାରର ଚାକିରି, (ଗ୍ରା.ବି) ଚଉକିଦାରସମ୍ବନ୍ଧୀୟ।

ଚଉକିଦାରିଆଇନ୍—ଗ୍ରା. ବି. ବଙ୍ଗର ୧୮୭୦ ମସିହାର ୬ ଆଇନ୍, ଯେଉଁ ଆଇନାନୁସାରେ ବଙ୍ଗ ବିହାର ଓଡ଼ିଶାରେ ଚକିଦାର ଏବଂ ପ୍ରେସିଡେଣ୍ଟ ଓ ପଞ୍ଚାୟତମାନେ ନିଯୁକ୍ତ ହୋଇ ଆସୁଥିଲେ ଓ ଚଉକିଦାରି ଟିକସ ଆଦାୟ ହେଉଥିଲା।

ଚଉକିଦେବା—ଗ୍ରା. କ୍ରି. ଚଉକିକରିବା, ପହରାଦେବା।

ଚଉକିଦେଇ—ଗ୍ରା. ବି. ରାଜାମାନଙ୍କର ରକ୍ଷିତା ସ୍ତ୍ରୀବିଶେଷଙ୍କ ନାମ।

ଚଉକୁଣା—ଗ୍ରା. ବିଂ. ଚଉକୋଣିଆ, ଚତୁଷ୍କୋଣବିଶିଷ୍ଟ (କ୍ଷେତ୍ର ବା ବସ୍ତୁ)।

ଚଉକୋଣା—ଗ୍ରା. ବି. ଚତୁଷ୍କୋଣ ବିଶିଷ୍ଟ (କ୍ଷେତ୍ର ବା ବସ୍ତୁ)।

ଚଉଖାନା, ଚଉଖାନ—ଗ୍ରା. ବି. ଚାରି-କୋଣିଆ ଆକାରରେ ଚର୍ଚ୍ଚିତ ହୋଇଥିବା ବସ୍ତୁ, ଚାରିଖାଣି,ଜରାୟୁଜ,ଅଣ୍ଡଜ, ସ୍ୱେଦଜ, ଉଦ୍ଭିଜ୍ଜ ଏହି ଚାରି ଜାତିର ଜୀବ ।

ଚଉଖୁଣ୍ଟିଆ—ଗ୍ରା.ବିଂ. ଚାରିଗୋଟି ଖୁଣ୍ଟ-ବିଶିଷ୍ଟ ଚତୁଷ୍କୋଣ, ଚାରିକୋଣିଆଁ ।

ଚଉଗୁଣ—ଗ୍ରା.ବିଂ.ଚାରିଗୁଣା, ଚତୁର୍ଗୁଣ, ମୂଳ ସଂଖ୍ୟାକୁ ଚାରିରେ ଗୁଣିଲେ ଯାହା ହେବ ସେହି ପରିମିତ ।

ଚଉଠ—ଗ୍ରା.ବି. ଚାରିଭାଗରୁ ଏକଭାଗ ।

ଚଉଠା—ଗ୍ରା.ବି. ଚଉଠ ଦେଖ, ମାସର ଚତୁର୍ଥ ଦିବସ ବା ତାରିଖ, (ଗ୍ରା.ବିଂ) ଚତୁର୍ଥ

ଚଉଠି—ଗ୍ରା.ବି. (ସଂ-ଚତୁର୍ଥୀ) ଚାନ୍ଦ୍ରମାନ ପକ୍ଷର ଚତୁର୍ଥୀ ତିଥି, ଶିଶୁ ଜନ୍ମର ଚତୁର୍ଥ ଦିବସର କୃତ୍ୟ, ବିବାହର ଚତୁର୍ଥ ଦିବସ ଓ ସେହିଦିନ କରିବା ଉତ୍ସବାଦି, ମାସର ଚତୁର୍ଥ ଦିବସ ।

ଚଉଠିବେଭାର—ଗ୍ରା.ବି.ବିବାହର ଚତୁର୍ଥ ଦିନ କନ୍ୟା ଘରେ ବରଥିଲେ ବର-ଘରୁ ବା ବରଘରେ କନ୍ୟା ଥିଲେ କନ୍ୟା ବାପଘରୁ ପଠାଯିବା ଚତୁର୍ଥୀ କର୍ମର ସରଞ୍ଜାମ । [ମାହ ।

ଚଉଠେ—ଗ୍ରା. ବି ଓ ବିଂ. ଏକଚତୁର୍ଥାଂଶ

ଚଉଡ଼ା—ଗ୍ରା. ବି. ପ୍ରସ୍ଥ, ଓସାର, ଆଡ, ଫରସ୍ତ, (ବିଂ)ବିସ୍ତୀର୍ଣ୍ଣ, ଫରସ୍ତ, ପ୍ରଶସ୍ତ ।

ଚଉତ—ଗ୍ରା.ବି. ଲୁଗାଆଦିର ଚାରିଭାଙ୍ଗ, ( ଗ୍ରା. ବିଂ ) ଚାରି ଭାଙ୍ଗରେ ଭଙ୍ଗା ବା ସଙ୍କୁଚିତ ହୋଇଥିବା (ଲୁଗା) ।

ଚଉତରଫ—ଗ୍ରା. ବି.ଚାରିଦିଗ, (ଗ୍ରା,କ୍ରି ବିଂ.) ଚାରିଦିଗରେ,ସର୍ବତ୍ର,ସବୁଠାରେ ।

ଚଉତରା—ଗ୍ରା.ବି. ଚାନ୍ଦନି, ବସିବାପାଇଁ ପ୍ରସ୍ତୁତ ମେଲା ଚତୁଷ୍କୋଣ ପୀଠ, ପକ୍କା ତୁଳସୀ ଚଉରା, ଚଉବଟା, ଗୃହସ୍ଥର ବ୍ୟବହାର୍ଯ୍ୟ ଜଳ ସଂଗ୍ରହ କରିବା ନିମନ୍ତେ ପ୍ରସ୍ତୁତ ଚତୁଷ୍କୋଣ ଜଳକୁଣ୍ଡ ।

ଚଉତଲ—ଗ୍ରା.ବି. (ଚଉତାଲ ଦେଖ) ।

ଚଉତା—ଗ୍ରା.ବି ଓ ବିଂ.(ଚଉତ ଦେଖ) ।

ଚଉତାଇବା—ଗ୍ରା. କ୍ରି. ଚଉତିବାର ଣିଜନ୍ତରୂପ, (ଚଉତିବା ଦେଖ) ।

ଚଉତାଚଉତି—ଗ୍ରା. ବି. (ସଂ-ଚତୁଷ୍ପୁଟ) ଲୁଗାକୁ ଚାରିଭାଙ୍ଗରେ ଉତ୍ତମରୂପେ ଭାଙ୍ଗିବା, (ଗ୍ରା.ବିଂ) ଚାରି ଭାଙ୍ଗ ହୋଇ ଉତ୍ତମରୂପେ ଭଙ୍ଗା ହୋଇଥିବା ।

ଚଉତାର—ଗ୍ରା.ବିଂ. ବସ୍ତ୍ର ଚତୁଷ୍କ ଆକାରରେ ନିକଟବର୍ତ୍ତୀ, ଦୁଇ ' ସୂତାରେ ବୁଣାଯାଇଥିବା (ଲୁଗା, ମଶିଣି ପ୍ରଭୃତି) ।

ଚଉତାଳ—ଗ୍ରା. (ସମ୍ଭ) ବି. ଦେବତାଙ୍କ ରଥର ଚାରିପାଖରେ ଦୋମହଲା ପରି ବୁଲିଥିବା କାଠର ଛାତ,(ଗ୍ରା.ବି)ମୃଦଙ୍ଗର ତାଳବିଶେଷ ।

ଚଉତାଲ—ଗ୍ରା.ବି. (ସଂ-ଚତୁସ୍ତଳ)ଚାରି-ତଳବିଶିଷ୍ଟ କୋଠା, ଚାରିମହଲା ।

ଚଉତି—ଗ୍ରା. ବି. ଚଉପଦୀ ବା ପଦର ଟୋଲ ।

ଚଉତିବା—ଗ୍ରା. କ୍ରି. ବସ୍ତ୍ରାଦିକୁ ଚାରିଭାଙ୍ଗ ବା ଚାରିପରସ୍ତ କରି ସଜାଡ଼ିବା ।

ଚଉତିରିଶ—ଗ୍ରା. ବି. (ସଂ-ଚତୁସ୍ତ୍ରିଂଶ ) ଚଉତିରିଶସଂଖ୍ୟା, ୩୪ ସଂଖ୍ୟା, (ବିଂ) ଚଉତିରିଶସଂଖ୍ୟକ ।

ଚଉତିଶା—ଗ୍ରା.ବି.'କ'ଠାରୁ'କ୍ଷ'ପର୍ଯ୍ୟନ୍ତ କ୍ରମରେ ଆଦ୍ୟ ଅକ୍ଷର ଯୁକ୍ତ ହୋଇ ରଚିତ ୩୪ପଦବିଶିଷ୍ଟ ପଦ୍ୟ, କଉଁ କ୍ଷ ।

ଚଉଥ—ଗ୍ରା. ବିଂ ଏକଚତୁର୍ଥାଂଶ, ଚତୁର୍ଥ ଭାଗ, ମରହଟ୍ଟାମାନେ ମୁସଲମାନ-ଶାସିତ ବଙ୍ଗ ବିହାର ଓଡ଼ିଶାରୁ ଯେଉଁ କର ଆଦାୟ କରୁଥିଲେ କୌଣସି ରଯ୍ୟତଜମି ବନ୍ଦୀହେଲେ ଜରସମନର ଚାରିଭାଗରୁ ଭାଗେ, ଯାହାକି ଖରିଦ୍ଦାର ଜମିଦାରଙ୍କୁ ସେଲାମ ଦେଇ ଆପଣା ନାମ ଦାଖଲ ଖାରଜ କରାଏ (ମିଉଟେ-ସନ୍ ଫି ।)

ଚଉଥା—ଗ୍ରା(ସମ୍ଭ)ବି.ଚତୁର୍ଥାଂଶ,ମାସର ଚତୁର୍ଥ ଦିନ ବା ତାରିଖ,(ବିଂ)ଚତୁର୍ଥ ।

ଚଉଦ—ଗ୍ରା.ବି.ଚଉଦ ସଂଖ୍ୟା,୧୪(ବିଂ) ଚଉଦସଂଖ୍ୟକ ।

ଚଉଦପୁରୁଷ—ଗ୍ରା.ବି. ମନୁଷ୍ୟର ପୂର୍ବ-ବର୍ତ୍ତୀ ସାତପୁରୁଷ ଓ ପରବର୍ତ୍ତୀ ସାତ ପୁରୁଷ ।

ଚଉଦବର୍ଷା—ଗ୍ରା.ବି.କୌଣସି ରୋଗ ବା ବିପଦଦ୍ୱାରା ବିଶେଷଭାବରେ ଆକ୍ରାନ୍ତ ହେବା ଅବସ୍ଥା, ଦୁର୍ବହ ଅବସ୍ଥା ।

ଚଉଦବ୍ରହ୍ମାଣ୍ଡ—ଗ୍ରା.ବି. ସପ୍ତ ପାତାଳ ଓ ସପ୍ତସ୍ୱର୍ଗ । [ ଦେଖ ।

ଚଉଦଭୁବନ—ଗ୍ରା. ବି. ଚଉଦବ୍ରହ୍ମାଣ୍ଡ

ଚଉଦମାଦଳ—ଗ୍ରା.ବି. ପୁରୀ ସହରରେ ଥିବା ଚୈତନ୍ୟ-ଭକ୍ତସମ୍ପ୍ରଦାୟଗଣ ଚଉଦଖଣ୍ଡି ମାଦଳ ବା ମୃଦଙ୍ଗ ଓ ଝାଞ୍ଜ ବଜାଇ ନଗର ଓ ଜଗନ୍ନାଥଙ୍କ ବେଢ଼ାରେ କରିବା ସଂକୀର୍ତ୍ତନ ।

ଚଉଦଳ—ଗ୍ରା. ବି. ( ସଂ-ଚତୁର୍ଦ୍ଦୋଳ ) (ଚଉଦୋଳ ଦେଖ) ଚାରିଜଣ ଖେଳିବା ଖେଳ ।

ଚଉଦାନୀ—ଗ୍ରା.ବି. ( ସଂ-ଚତୁର୍ଧାନ୍ୟା ) ୪ଟି ମୁକ୍ତାର ଦାନା ଝୁଲୁଥିବା କର୍ଣ୍ଣ-ଭୂଷଣ ।

ଚଉଦିଗ—ଗ୍ରା.ବି. (ସଂ-ଚତୁର୍ଦ୍ଦିକ୍ )ଚାରି-ଆଡ଼, ଚାରିଦିଗ,(କ୍ରି. ବିଂ)ଚାରିଆଡ଼େ ।

ଚଉଦିଗା—ଗ୍ରା.ବି, ଚତୁର୍ଦ୍ଦିଗ ଘେରିଥିବା, ଚତୁର୍ଦ୍ଦିଗବ୍ୟାପୀ, (ଗ୍ରା.ଅବ୍ୟ) ଚାରି-ଆଡ଼େ, ସବୁଆଡ଼େ ।

ଚଉଦୁଆର—ଗ୍ରା.ବି. ଓଡ଼ିଶାର ପ୍ରାଚୀନ ରାଜାମାନଙ୍କର ସାମୟିକ ରାଜଧାନୀ-ବିଶେଷ,(ଏହା କଟକର ଉତ୍ତର-ପଶ୍ଚିମ ସାତମାଇଲ ଦୂରରେ ବିରୂପା ନଦୀ କୂଳରେ ଅବସ୍ଥିତ) (ଗ୍ରା. ବିଂ) ଚାରି-ଦ୍ୱାରବିଶିଷ୍ଟ ।

ଚଉଦୃଢ଼—ଗ୍ରା. ବିଂ. (ସଂ—ଚତୁର + ଦୃଢ଼) ଅତ୍ୟନ୍ତ ଦୃଢ଼ ।

ଚଉଦୋଳ—ଗ୍ରା. ବି. (ସଂ-ଚତୁର୍ଦ୍ଦୋଳ) ମନୁଷ୍ୟବାହ୍ୟ ରାଜକୀୟ ଯାନବିଶେଷ, ଚାରିଜଣ ବୋହିବା ଶିବିକା, ବିମାନ, ପାଲିଙ୍କି ।

ଚଉଧୁରୀ—ଗ୍ରା.ପୁଂ. ବି. (ସଂ-ଚତୁର୍ଧୁରୀ) ଜାତି ଓ ବ୍ୟବସାୟୀଙ୍କ ମଧ୍ୟରେ ପ୍ରଧାନ ।

ବ୍ୟକ୍ତିଙ୍କ ଉପାଧି, ଓଡ଼ିଆ ଜମିଦାରଙ୍କ ସମ୍ମାନସୂଚକ ଉପାଧିବିଶେଷ, ମୁସଲମାନ ଅଧିକାର କାଳରେ ତାଲୁକାର ପ୍ରଧାନ କର୍ମଚାରୀ, (ବ୍ୟଙ୍ଗୋକ୍ତି) ସ୍ଥୁଳକାୟ ବ୍ୟକ୍ତି ।

**ଚଉପଟ** — ଗ୍ରା.ବି. ଚାରିଆଡ଼, ଚାରିପାଖ, ଯେଉଁ କାଠର ଚାରିପାଖ ଚଞ୍ଛା ହୋଇ ଚାରିଅଂଶିଆ ହୋଇଅଛି, ଏକପ୍ରକାର ପଶାଖେଳ, ସର୍ବନାଶ, (ଗ୍ରା.ବିଂ) ଚାରିଆଡ଼ ଖୋଲା, ଅରକ୍ଷିତ ।

**ଚଉପଣି** — ଗ୍ରା. ବି. ଚାରିଭାଗରୁ ଭାଗେ ହିସାବରେ ଆଦାୟ କରାଯିବା ଶୁଳ୍କ ।

**ଚଉପଦୀ** — ଗ୍ରା.ବି.(ସଂ-ଚତୁଷ୍ପଦୀ) ଚାରି ଓ କ୍ୱଚିତ୍ ତତୋଽଧିକ ପଦବିଶିଷ୍ଟ ସଙ୍ଗୀତ, (ସଂ-ଚତୁଷ୍ପଦୀ) ଚାରିକୋଣିଆ ପଦଦାନା, ଠୋଲା, ଚଉକି, ପଲଙ୍କ,

**ଚଉପହରୀ** — ଗ୍ରା. ବିଂ. (ସଂ-ଚତୁଷ୍ପ୍ରହର) ଯେଉଁ ଦାସଦାସୀମାନେ ରାତ୍ର ଓ ଦିନ ଚାରିପହର ଲେଖାଏଁ ପାଳକର ଉପସ୍ଥିତ ଥାଆନ୍ତି, ଅର୍ଦ୍ଦଳୀ, ଚାରିପହର ଖଟିବା ଚାକର ।

**ଚଉପାଟି** — ଗ୍ରା. ବି. ଗୋଲ ନ ହୋଇ ଚାରିପାଖ ସମାନ ଭାବରେ ଚଞ୍ଛା ହୋଇ ଥିବା କାଷ୍ଠଖଣ୍ଡ ।

**ଚଉପାଠୀ,ଚଉପାଢ଼ୀ,ଚଉପାଢ଼ୀ** — ଗ୍ରା.ବି. (ସଂ-ଚତୁଷ୍ପାଠୀ) ଗ୍ରାମ୍ୟ ବିଦ୍ୟାଳୟ, ପାଠଶାଳା, ସଂସ୍କୃତ ପାଠଶାଳା, ଟୋଲ, ବୈଠକ ଘର, ଚାରିଦ୍ୱାରଯୁକ୍ତ ମଣ୍ଡପ ।

**ଚଉପାୟା** — ଗ୍ରା. ବି. ( ସଂ-ଚତୁଷ୍ପାଦ ) ଚାରିଗୋଡ଼ିଆ ଛୋଟ ହାଲୁକା ଖଟ, ଖଟିଆ ।

**ଚଉପାଲ**—ଗ୍ରା.ବି. ସ୍ତ୍ରୀଲୋକଙ୍କୁ ବୋହିବା ପାଇଁ ବ୍ୟବହୃତ ମନୁଷ୍ୟବାହ୍ୟ ଛୋଟ ଡୋଲି ବା ଖଟିଆ ।

**ଚଉପିଠି** — ଗ୍ରା.ବି. କୌଣସି ଘନପଦାର୍ଥର ଚାରିପାର୍ଶ୍ୱ ବା ତଳ, ଚାରିଆଡ଼, ଚାରିଦିଗ ।

**ଚଉପିଠିଆ**—ଗ୍ରା. ବିଂ. ଯେଉଁ ପଶୁ ସବୁପ୍ରକାର ( ଚାରିପ୍ରକାର ) ଭାର ବୋହିବାରେ ଅଭ୍ୟସ୍ତ, (ଲ. ଅର୍ଥ) ଚଉକସ୍, ଯେଉଁବ୍ୟକ୍ତି ସବୁକାର୍ଯ୍ୟରେ ପାରଙ୍ଗମ ।

**ଚଉଫେରା** — ଗ୍ରା. ବି. ମନ୍ଦିର ବା ଦେବବିଗ୍ରହଙ୍କର ଚାରିପାଖେ ବୁଲିଆସିବା, ପରିକ୍ରମା ।

**ଚଉବଚ୍ଚା**—ଗ୍ରା. ବି. କ୍ଷୁଦ୍ରଜଳାଧାର, ଜଳକୁଣ୍ଡ ।

**ଚଉବନ** — ଗ୍ରା. ପଚାଶ ଅପେକ୍ଷା ଚାରି ଅଧିକ ସଂଖ୍ୟା, ୫୪ସଂଖ୍ୟା, (ବିଂ) ୫୪ ସଂଖ୍ୟକ ।

**ଚଉବର୍ଣ୍ଣୀ**--ଗ୍ରା.ବିଂ.(ପୂର୍ବେ)କଟକରେ ବ୍ୟବହୃତ (ସେର) ଯାହା ଓଜନରେ ୧୦୮ ଟଙ୍କା ସଙ୍ଗେ ସମାନ(ଥିଲା) ପକାସେର, ଚାରି ବର୍ଣ୍ଣବିଶିଷ୍ଟ, ଧଳା, କଳା, ନାଲି ଓ ହଳଦିଆ ଏହି ଚାରିଟି ରଙ୍ଗର ।

**ଚଉବନ୍ଦୀ**—ଗ୍ରା.ବି.ଅଣ୍ଟାପର୍ଯ୍ୟନ୍ତ ଲମ୍ବିବା ପଟ୍ଟିହାତବାଲା ଏକପ୍ରକାର ମରହଟ୍ଟିଆ ଜାମା ବା ମିରଜେଇ, ଘୋଡ଼ା ବା ବଳଦର ଚାରିଗୋଡର ନାଲବନ୍ଦୀ ।

**ଚଉବନ୍ଧ** — ଗ୍ରା.ବି. ଚଉକଠା, ଦେଖ ।

**ଚଉବର୍ଗ** — ଗ୍ରା. ବି. (ସଂ-ଚତୁର୍ବର୍ଗ) ଧର୍ମ ଅର୍ଥ କାମ ଓ ମୋକ୍ଷରୂପେ ଚାରିଗୋଟି ଲକ୍ଷ୍ୟ ବା ଫଳ ।

**ଚଉବାହା**—ଗ୍ରା.ବିଂ. ଚତୁର୍ଭୁଜବିଶିଷ୍ଟ, ଶ୍ରୀ ଜଗନ୍ନାଥ, ବିଷ୍ଣୁ ।

**ଚଉବଂଶ**—ଗ୍ରା. (ପଦ୍ୟ) ବି. ଚବିଶ, ୨୪ସଂଖ୍ୟା, (ବିଂ) ଚବିଶସଂଖ୍ୟକ ।

**ଚଉମଥା** — ଗ୍ରା.ବି. ବ୍ରହ୍ମା, ଚଉଛକି ରାସ୍ତା, (ବିଂ) ଚାରିଟି ମସ୍ତକବିଶିଷ୍ଟ ।

**ଚଉମହଲା**—ଗ୍ରା.ବି. ଚଉତାଲି ଦେଖ ।

**ଚଉମୁହାଁ** — ଗ୍ରା. ବିଂ. ଚାରିଟି ମୁଖ ବା ଦ୍ୱାରବିଶିଷ୍ଟ ।

**ଚଉରଙ୍ଗୀ** — ଗ୍ରା.ବି. ଏକପ୍ରକାର ଖେଳ, ଛକରାସ୍ତା, ଏକପ୍ରକାର ବାତରୋଗ, ଚତୁରଙ୍ଗ ବଳ ।

**ଚଉରସ୍**—ଗ୍ରା.ବିଂ. (ବର୍ଗକ୍ଷେତ୍ର)ଯାହାର ଚାରିବାହୁସମାନ, ଚାରିଆଡ ସମପରିମିତ, ଭଲ, ସମ ଭୂମି, ଷୋଳପଣୀ, ସମତୁଲ, ଶକ୍ତ, ମଜବୁତ୍, ଚଉରସ ଦେଖ ।

**ଚଉରା** — ଗ୍ରା.ବି.ଗୃହସଂଲଗ୍ନ ଯେଉଁ ମାଟି ବା ପଥର ବା ଇଟାର ସ୍ତୂପରେ ତୁଳସୀ ରୁଆ ହୋଇଥାଏ ।

**ଚଉରାଅଶି**—ଗ୍ରା.ବି. ଅଶି ଅପେକ୍ଷା ଚାରି ଅଧିକ ସଂଖ୍ୟା, ୮୪ ସଂଖ୍ୟା (ବିଂ) ଚଉରାଅଶି ସଂଖ୍ୟକ ।

**ଚଉରା ନବେ**—ଗ୍ରା. ବି. ନବେ (୯୦) ଅପେକ୍ଷା ଚାରି ଅଧିକ ସଂଖ୍ୟା, (ବିଂ) ଚଉରାନବେ ସଂଖ୍ୟକ ।

**ଚଉରାଳିଶ**—ଗ୍ରା. ବି. ଚାଳିଶରୁ ଚାରି ଅଧିକସଂଖ୍ୟା, ୪୪, (ବିଂ) ଚଉରାଳିଶ ସଂଖ୍ୟକ ।

**ଚଉରାସେବା**—ଗ୍ରା.ବି. ତୁଳସୀଚଉରାରେ ବୃନ୍ଦାବତୀ ( ତୁଳସୀ ) ଙ୍କର ଜଳଦାନ ପୂଜାଦି କାର୍ଯ୍ୟ ।

**ଚଉରାସ୍ତା**—ଗ୍ରା. ବି. ଚାରିପଥର ମିଳନ ସ୍ଥାନ, ଛକ ।

**ଚଉରି** — ଗ୍ରା. ବି. କେଶଦ୍ୱାରା ନିର୍ମିତ କେଶବନ୍ଧନ ରଜ୍ଜୁ, ଚାରିଆଡେ ଘେର ଥିବା ପ୍ରାଙ୍ଗଣ, ଖଞ୍ଜା, ଚଉଶାଳା, ଚାମର, ସନ୍ଧ୍ୟାଆମ୍ବ (ଦେଖ), ଅଗଣା ମଧ୍ୟସ୍ଥ ଛୋଟ ପକ୍କାବେଦୀ ।

**ଚଉରିଚୂର୍ଣ୍ଣି** — ଗ୍ରା. ବି. ଚଉରିର ଗୁଚ୍ଛର ମୂଳଗଣ୍ଠି ଉପରେ ଜଉଦ୍ୱାରା ଦୃଢହୋଇ ବସାଯାଇଥିବା ପଦ୍ମାକୃତି ଅଳଙ୍କାର ବିଶେଷ ।

**ଚଉଶାଳା** — ଗ୍ରା. ବି. (ସଂ-ଚତୁଃଶାଳା) ବର୍ଗାକୃତି ଘର, ମୁନିମାନଙ୍କ ଘର, ଚାରିପାଖେ ଚାଲି ରହିଥିବା ଘର ।

**ଚଉଷଠି** — ଗ୍ରା. ବି. (ସଂ-ଚତୁଃଷଷ୍ଟି) ଷାଠିଏ ଅପେକ୍ଷା ଚାରି ଅଧିକ ସଂଖ୍ୟା, ୬୪ସଂଖ୍ୟା, (ବିଂ) ୬୪ ସଂଖ୍ୟକ ।

**ଚଉଷଠିକଳା** — ଗ୍ରା.ବି. ଚଉଷଠି ପ୍ରକାର କଳାବିଦ୍ୟା ।

**ଚଉଷଠିବନ୍ଧ**—ଗ୍ରା. ବି. କାମଶାସ୍ତ୍ରୋକ୍ତରେ ବର୍ଣ୍ଣିତ ସ୍ତ୍ରୀପୁରୁଷସଙ୍ଗମ ୬୪ ପ୍ରକାର ବନ୍ଧ ବା ଅବସ୍ଥାନ ।

ଚଉସମ — ଗ୍ରା. ବି. (ସଂ-ଚତୁଃସମ) ଚାରି ଗୋଟି ସୁଗନ୍ଧଦ୍ରବ୍ୟର ସମାହାର, (ଚନ୍ଦନ,ଅଗୁରୁ, କର୍ପୂର, (ମତାନ୍ତରେ) କସ୍ତୁରୀ ଓ କୁଙ୍କୁମ) ଚାରିଗୋଟି ଶ୍ଳେଷ୍ମା-ନିବାରକ ଔଷଧ ଦ୍ରବ୍ୟରଚୂର୍ଣ୍ଣ, ଲବଙ୍ଗ ଜୀରା, ଜୁଆଣୀ ଓ ହରଡ଼ାର ଚୂର୍ଣ୍ଣରେ ପ୍ରସ୍ତୁତ ପାଚକ । [ଖେଳ ।

ଚଉସାର — ଗ୍ରା. ବି. ପଶାପାଲି, ପଶା-

ଚଉସ୍ତର — ଗ୍ରା. ବି. (ସଂ-ଚତୁଃସପ୍ତତି) ସତୁରିଅପେକ୍ଷା ଚାରି ଅଧିକସଂଖ୍ୟା, ୭୪ସଂଖ୍ୟା, (ବିଂ) ୭୪ ସଂଖ୍ୟକ ।

ଚଉହଦ — ଗ୍ରା. ବି. ସୀମା, ଚତୁଃସୀମା, (ବିଂ) ଚତୁଃସୀମାରେ ଅବସ୍ଥିତ,ସୀମାକୁ ଲାଗିଥିବା ।

ଚଁକିବା — ଗ୍ରା. କ୍ରି. ଚମକିବା ।

ଚଁଘରା — ପ୍ରା. ( ସମ୍ବ ) ବି. ଚାଙ୍ଗଡ଼ା, ଚାଙ୍ଗୁଡ଼ି ।

ଚଁପିଲ — ଗ୍ରା. ବି. ପଞ୍ଜାବର ବସହର ରାଜ୍ୟର ଅନ୍ତର୍ଗତ ଗୋଟିଏ ପର୍ବତ ଶ୍ରେଣୀ । [ହଠାତ୍ ।

ଚକ୍ — ଯା. ବି. ଫୁଲଖଣ୍ଡ, (ଗ୍ରା. ଅବ୍ୟ)

ଚକ୍‌ଚକ୍ — ଯା. ବି. ଧାତୁ. ଚମକ, ଚାକଚକ୍ୟ, ବର୍ଣ୍ଣର ଔଜ୍ଜ୍ୱଲ୍ୟ (ଗ୍ରା. ବିଂ) ଉଜ୍ଜ୍ୱଳ, ଜକ୍‌ଜକ୍,ଜାଜ୍ୱଲ୍ୟମାନ, (ପ୍ରା. ସମ୍ବ.ବି.) ଆସନ୍ନ ବିପଦଜନିତ ଆଶଙ୍କା ଯୋଗୁଁ ମନର ଅସ୍ଥିରତା ।

ଚକ୍‌ଚକ — ଗ୍ରା. ବି. ଏକପ୍ରକାର ଡଙ୍ଗା ।

ଚକ୍‌ଚକିଆ — ଗ୍ରା. ବିଂ. (ସଂ-ଚାକଚକ୍ୟ) ଚକ୍‌ଚକ୍,ଉଜ୍ଜ୍ୱଳ,ଜକ୍‌ଜକ୍,ଜାଜ୍ୱଲ୍ୟମାନ ।

ଚକ — ଗ୍ରା. ବି. ଶକଟ ପ୍ରଭୃତିର ଚକ୍ର, ମୌଜାମଧ୍ୟସ୍ଥ ଏକଶ୍ରେଣୀର ଭୂମି, ଚତୁଃଶାଳାର ମଧ୍ୟସ୍ଥାନ, ଏକତ୍ରାବସ୍ଥିତ ବହୁ କ୍ଷେତ୍ରର ସମଷ୍ଟି, ବେଦୀ ମଧ୍ୟସ୍ଥ ବରକନ୍ୟାଙ୍କ ଆସନ, ବଜାରର ସ୍ଥାନ-ବିଶେଷ, କୁମ୍ଭାର ଯେଉଁ ଚକକୁ ବୁଲାଇ ହାଣ୍ଡି ଆଦି ଗଢ଼େ, ଉତ୍ତର ଭାରତ-ବାସୀ ଶ୍ରେଷ୍ଠ ଜାତିର ଏକ ଶାଖା, ଏକପ୍ରକାର ଖଡ୍ଗ ।

ଚକ — ପୁଂ.ବି.(ଚକ + କ.ଅ)ଖଳ,ସାଧୁ ।

ଚକଚକିଆ — ଗ୍ରା. ବିଂ. (ସଂ-ଚାକଚକ୍ୟ) ଚକ୍‌ଚକ୍, ଉଜ୍ଜ୍ୱଳ, ଜକ୍‌ଜକ୍, ଜାଜ୍ୱଲ୍ୟମାନ ।

ଚକଚୁନ୍ଧ — ଗ୍ରା.ବି. କିଂକର୍ତ୍ତବ୍ୟବିମୂଢ଼ତା, ଧନ୍ଦତା, ଘାବରା, ବିହ୍ୱଳତା, ଅତ୍ୟନ୍ତ ଆଲୋକ ଦେଖି ଆଖି ଝଲସି ଯିବା, ବହୁତ ବାଟ ଚାଲିବା ଯୋଗୁଁ ତଳ-ପାରେ ହେବା ବ୍ୟଥାଯୁକ୍ତ ବ୍ରଣ, ତଳ-ପାରେ ଚୁନ୍ଧ ଫୁଟିଯିବା, ମନରେ ଜନ୍ମ ବା ଅସ୍ଥିରତା ।

ଚକଟମନ୍ଥନ — ଗ୍ରା. ବି. ଚକଟାମନ୍ଥା, କୌଣସି ବିଷୟର ପୁଙ୍ଖାନୁପୁଙ୍ଖରୂପେ ଅନୁସନ୍ଧାନ, ବିଶେଷ ଆଲୋଚନା ।

ଚକଟା — ଗ୍ରା. ବି. ଦୁଇ ବସ୍ତୁକୁ ପାଣି ସଙ୍ଗେ ବା ଗୋଟିଏ ଘନ ବସ୍ତୁକୁ ତରଳ ବସ୍ତୁ ସଙ୍ଗେ ସାନ୍ଧିବା କର୍ମ,ଦୁଧ ପାଚିଲା କଦଳୀପ୍ରଭୃତିର ସମ୍ମିଶ୍ରଣରେ ପ୍ରସ୍ତୁତ ଖାଦ୍ୟବିଶେଷ, ହସ୍ତଦଳିତ ଖାଦ୍ୟ, ଦଳିତପଦାର୍ଥ, (ଗ୍ରା.ବିଂ.)ଦଳିତ, ପଦ-ଦଳିତ ।

ଚକଟାଇବା — ଗ୍ରା.କ୍ରି.ଚକଟିବା କ୍ରିୟାର ଣିଜନ୍ତରୂପ ।

ଚକଟାଚକଟି — ଗ୍ରା.ବି.ଦଳାଦଳି, ଉତ୍ତମ ରୂପେ ଦଳିବା, ଘଣ୍ଟାଚକଟା, ଗୋଳ-ଘାଣ୍ଟ ।

ଚକଟିବା — ଗ୍ରା. କ୍ରି. କରତଳ ଦ୍ୱାରା ମଳିବା ବା ଦଳିବା,ଗୋଡ଼ରେ ଦଳିବା, କୁଟିବା, ( ଲ. ଅର୍ଥ ) ବିଧ୍ୱସ୍ତ କରିବା, ବ୍ୟାକୁଳିତ କରିବା, ଗୋଳମାଳ ସୃଷ୍ଟି କରିବା ।

ଚକଟ୍ୟୋଦନ — କ୍ଳୀ. ବି. ଖଗପ୍ରଭେଦ ।

ଚକଡ଼ା — ଗ୍ରା. (ସଂ-ଚକ୍ର)ବିସ୍ତୃତ ଭୂଖଣ୍ଡ, ଅଞ୍ଚଳ, ଖାନାବାଡ଼ି, ବାସ୍ତୁ,ଦେବାଳୟ ଆଦିର ସୀମା, ଚକଲା (ଦେଖ), ରଥ-ଚକ୍ରମାନଙ୍କ ଦ୍ୱାରା ଅଧିକୃତ ସ୍ଥାନ, ଚକ୍ରାକୃତ ସ୍ଥାନ, ବଡ଼ଖଣ୍ଡ ।

ଚକଡ଼ାଦାନ — ଗ୍ରା.ବି. ବିସ୍ତୃତ ଭୂଖଣ୍ଡ ବା ଚକଲା ଦାନ ।

ଚକଢ — ଗ୍ରା. ବି. ଧାତୁ. ଚମଡ଼ା ମୋଟ କାଗଜ ବା କନାର ଗୋଲ ପତଳା ଛୋଟଖଣ୍ଡ, ଟିକଲି, ଛାଲ ।

ଚକନ — ପ୍ରା. (ସମ୍ବ)ବି.ଚଉପଦୀ. ପଦର ଟୋଳି ।

ଚକବନ୍ଧ — ଗ୍ରା.ବି.ଗ୍ରାମର ସୀମାନିରୂପଣ, ଖଣ୍ଡ ଖଣ୍ଡ କରି ଭୂମିର ଭାଗକରଣ, ଭୂସମ୍ପତ୍ତି ରାଜସ୍ୱ ବା ପୁଲିସ ଅଧିକାରର ସୀମା ।

ଚକ୍‌ମକ୍ — ଯା.ବି. ଚକ୍‌ଚକ୍ ଦେଖ ।

ଚକମକି — ଗ୍ରା.ବି.ନିଆଁ ଝାଡ଼ିବାର ପଥର (ଖଣ୍ଡେ ବାଲିଗରଡ଼ା ଓ ଖଣ୍ଡେ ଲୁହା), ଯେଉଁ ଟାଙ୍ଗିଆ ପଥରରେ ଅନ୍ୟ ପଥର ବା ଲୁହା ଆଘାତକଲେ ନିଆଁ ବାହାରେ, ଝଟକ, (ଗ୍ରା.ବିଂ) ଚକମକି ଲଗାଯାଇ-ଥିବା (ବନ୍ଧୁକ) ।

ଚକମକିଆ — ଗ୍ରା.ବିଂ. ଚକ୍‌ଚକ୍ ଦେଖ ।

ଚକମକିଝାଡ଼ିବା — ଗ୍ରା. କ୍ରି. ଚକମକି ପଥରରେ ଲୁହା ମାରି ଅଗ୍ନି ବାହାର କରିବା ।

ଚକମକିଥଳି — ଗ୍ରା. ବି. ଯେଉଁ ମୁଣିରେ ଚକମକି ପଥର ଓ ସୋଲ୍ଲଆଏ, ଖିସା ।

ଚକମକିପଥର — ଗ୍ରା. ବି. ଏକପ୍ରକାର ଅକର୍ମଶିଳା ପଥର, ଲୁହାରେ ଆଘାତ କଲେ ଯହିଁରୁ ଅଗ୍ନି ସ୍ଫୁଲିଙ୍ଗ ବାହାରେ ।

ଚକର୍ — ପ୍ରା (ସମ୍ବ) ବି. ଚକ, (ବିଂ) ଚକାକୃତିବିଶିଷ୍ଟ ।

ଚକରଛେଉଣ୍ଡ — ଗ୍ରା.ପୁଂ.ବି. ବାସହୀନ, ବାରବୁଲା, ଛନ୍ନଛଡ଼ା, ଦୁଷ୍ଟ, ବଗୁଲିଆ, ଯେଉଁ ପିଲାଗର୍ଭରେ ଥିଲାବେଳେ ପିତା ମରିଯାଇ ଥାଆନ୍ତି ।

ଚକରେ ଗଢ଼ାଇବା — ଗ୍ରା. କ୍ରି.ଚକରେ ଗଢ଼ିବାକ୍ରିୟାର ଣିଜନ୍ତରୂପ ।

ଚକରେଗଢ଼ିବା — ଗ୍ରା. କ୍ରି. (ଲ. ଅର୍ଥ) ନ ଥିବା ପଦାର୍ଥକୁ ଉତ୍ପାଦନ କରିବା ।

ଚକଲା — ଗ୍ରା. ବି. ମରହଟ୍ଟା ରାଜତ୍ୱରେ ଶାସନ ଶୃଙ୍ଖଳା ପାଇଁ କରାଯାଇଥିବା ଭୂଖଣ୍ଡ ବିଭାଗ ।

ଚକା — ଗ୍ରା. ବି. ଚକଡ଼ା, ଗୋଲାକାର ପଦାର୍ଥର ଅଧିକୃତ ସ୍ଥାନ, ଦୁଇଗାଲକୁ

ପରସ୍ପର ମଣ୍ଡଳାକାରରେ ଛନ୍ଦ ଭୂମିରେ ବସିବା ଆସନ, ବସିବା ନିମନ୍ତେ ଚକ୍ରାକାର ପୀଢ଼ା, ଜଗନ୍ନାଥ ମହାପ୍ରଭୁଆଦି ସିଂହାସନରେ ଯେଉଁ ଗୋଲକାର ପୀଠରେ ବସିଥାଆନ୍ତି, ଗୋଲକାର ପଥର,ଯାହା ଉପରେ ମଲ୍ଲମାନେ ହାତ ଭରାଦେଇ ଦଣ୍ଡପକାନ୍ତି, (ଚକୁଆଦେଖ), ଚେକା, ଘାସଲଗା ମାଟିର ଖଣ୍ଡ, (ଗ୍ରା.ବି) ବର୍ତ୍ତୁଳ, ଗୋଲ ।

ଚକାଆଖି—ଗ୍ରା. ବି. ପୁରୀରେ ପ୍ରତିଷ୍ଠିତ ଗୋଲ ଚକ୍ଷୁ ଯୁକ୍ତ ଶ୍ରୀଶ୍ରୀଜଗନ୍ନାଥଙ୍କ ପ୍ରତିମା, ଜଗନ୍ନାଥଙ୍କ ଗୋଲକାର ଚକ୍ଷୁ, (ବିଂ) ଗୋଲଚକ୍ଷୁବିଶିଷ୍ଟ ।

ଚକାଚକା—ଗ୍ରା.ବିଂ.ବହୁସଂଖ୍ୟକ ଗୋଲାକାର (ବସ୍ତୁ), ବହୁସଂଖ୍ୟକ ଚକ୍ରାକାର ଚିହ୍ନବିଶିଷ୍ଟ ।

ଚକାଚକାଭଉଁର—ଗ୍ରା.ବି. ଚକ୍ରାକାରରେ ଘୂରିବା, ପିଲାମାନଙ୍କର ଚକ୍ରାକାରରେ ବୁଲିବା ଏକପ୍ରକାର ଖେଳ ।

ଚକାଡ଼ୋଳା—ଗ୍ରା.ବି. ଓ ବିଂ. ଚକାଆଖି ଦେଖ ।

ଚକାଦାଗ—ଗ୍ରା. ବି. ଦେହରେ ଫଳିବା ଗୋଲଚିହ୍ନ । [ଦେଖ ।

ଚକାନୟନ—ଗ୍ରା.ବି. ଓ ବିଂ.ଚକାଆଖି

ଚକାପକାଇବା-ଗ୍ରା.କି.ଜାନୁଛନ୍ଦି ବସିବା, ପଦ୍ମାସନରେ ବସିବା ।

ଚକାମାଣ୍ଡି—ଗ୍ରା. ବି. ଜାନୁଛନ୍ଦି ଭୂମିରେ ଉପବେଶନ, ପଦ୍ମାସନ ।

ଚକାସନ—ଗ୍ରା. ବି. ପଦ୍ମାସନ, (ଗ୍ରା.ବିଂ) ଭୂମିରେ ଜାନୁଛନ୍ଦି ଚକାସନରେ ବସିଥିବା ।

ଚକାସିତ—ବିଂ. ( ଚକାସି+କ.ତ ) ଦୀପ୍ତ, ଉଜ୍ଜ୍ୱଳ, ଅଳଂକୃତ, ଶୋଭିତ, (ମି.ତ) ଆଲୋକିତ, ପ୍ରକାଶିତ, ସୁନ୍ଦର, (ସ୍ତ୍ରୀ) ଚକାସିତା ।

ଚକି—ଗ୍ରା.ବି.(ସଂ-ଚକ୍ର) କାଗଜର ଗୁଡ଼ି, ଚକ୍‌ତି, କ୍ଷୁଦ୍ର ବର୍ତ୍ତୁଳାକାରଖଣ୍ଡ, ଚୂନପେଷା ଚକ୍ରାକାର ପଥର, ଯନ୍ତା, ପେଷଣ ଯନ୍ତ୍ର, ଗୋଡ଼ ଆଣ୍ଠୁ ଗଣ୍ଠିରେ-ଥିବା ଗୋଲାକାର ହାଡ଼ଖଣ୍ଡ, ଆଣ୍ଠୁର ଚକି, ହାତର ଲେଉଟ; କରତଳର ମଧ୍ୟଭାଗ ବା ଖାଲୁଆ ଜାଗା ।

ଚକିଏ—ଗ୍ରା.ବି. ଓ ବିଂ. ହାତ ଲେଉଟର ଚକି ମଧ୍ୟରେ ଯେତିକି ( ପାଣି ଆଦି ) ସମ୍ଭାଏ ।

ଚକିକାଠି—ଗ୍ରା.ବି. ଚକିର ଉପର ପଟର ପାର୍ଶ୍ୱରେ ଥିବା ଛିଦ୍ରରେ ଯେଉଁ ଗୃଖଣ୍ଡେ ଲମ୍ବର କାଠିକୁ ପୁରାଇ ବୁଲାଇବାକୁ ହୁଏ ।

ଚକିତ—କ୍ଲୀ.ବି. (ଚକ୍+ଭା.ତ) ଭୟ, ସମ୍ଭ୍ରମ, ନାୟିକାର ସାତ୍ତ୍ୱିକ ଅଳଂକାର ବିଶେଷ, ( ବିଂ.କ.ତ ) ଭୀତ,ଶଙ୍କିତ, ଭୟକମ୍ପିତ, ଚମକପଡ଼ିଥିବା, ତ୍ରସ୍ତ, ଅରୁଥିବା, ଆଶ୍ଚର୍ଯ୍ୟାନ୍ୱିତ ।

ଚକିତା—ସ୍ତ୍ରୀ. ବି. ଷୋଡ଼ଶଅକ୍ଷରବିଶିଷ୍ଟ ଛନ୍ଦୋବିଶେଷ, (ସ୍ତ୍ରୀ.ବିଂ)ଭୀତା, ତ୍ରସ୍ତା, ଚମକିତା, ଭୟକମ୍ପିତା, ଶଙ୍କିତା ।

ଚକିତେ—ଗ୍ରା. କି. ବିଂ. ନିମେଷମାତ୍ରେ, ଦେଖୁ ଦେଖୁ ।

ଚକୁ—ଗ୍ରା.ବି. ଖିଲିକାଡ଼,ଛୋଟ ଛୁରୀ ।

ଚକୁଆ—ଗ୍ରା.ବି.ଚକ୍ରବାକ ପକ୍ଷୀ, ରଥାଙ୍ଗ ପକ୍ଷୀ ।

ଚକୁଳି—ଗ୍ରା.ବି.(ସଂ-ଶଷ୍କୁଲୀ) ପିଠଉରେ ତିଆରି ଗୋଲାକାର ପତଳା ପିଷ୍ଟକବିଶେଷ ।

ଚକୁଳିଆପଣ୍ଡା—ଗ୍ରା.ପୁଂ. ବି. ଏକଜାତୀୟ ନୀଚଶ୍ରେଣୀସ୍ଥ ଭିକ୍ଷୁକ ବ୍ରାହ୍ମଣ ।

ଚକେ—ଗ୍ରା. କି. ବିଂ. ଚକ ଥରେ ଘୂରିବା ଦୂରତ୍ୱ, ଚକାଏ, ମନୁଷ୍ୟ ବସିଥିବା ଭୂମିପରିମିତ, ଘୃରଆଙ୍ଗୁଳ ପରିମିତ, ଚଉକେ ।

ଚକୋଇ--ଗ୍ରା.ସ୍ତ୍ରୀ.ବି. ଚକ୍ରବାକ ସ୍ତ୍ରୀ ପକ୍ଷୀ ।

ଚକୋର—ପୁଂ. ବି. (ଚକ+କ.ଓର) ଜୀବଞ୍ଜୀବ, ଏକପ୍ରକାର ଛୋଟପକ୍ଷୀ, (ସ୍ତ୍ରୀ) ଚକୋରୀ ।

ଚକୋରକ—ପୁଂ. ବି. (ଚକୋର+କ) ଚକୋରପକ୍ଷୀ, (ସ୍ତ୍ରୀ) ଚକୋରିକା ।

ଚକୋରନୟନା—ସ୍ତ୍ରୀ.ବି.(ବ.ବ୍ରୀ) ଯେଉଁ ସ୍ତ୍ରୀର ଚକ୍ଷୁ ଚକୋର ଚକ୍ଷୁପରି ସୁନ୍ଦର ।

ଚକୋରୀ—ସ୍ତ୍ରୀ. ବି. ( ଚକୋର+ଈ ), ଚକୋର ଜାତୀୟା ସ୍ତ୍ରୀ,ମାଇଚକୋର ।

ଚକ୍କ—ପୁଂ.ବି. (ଚକ୍କ+ଅ) ପୀଡ଼ନ, ପୀଡ଼ା ।

ଚକ୍କନ—କ୍ଲୀ.ବି. (ଚକ୍କ+ଅନ)ପୀଡ଼ନ, ପୀଡ଼ା ।

ଚକ୍କର—ଗ୍ରା.ବି. ମସ୍ତକଘୂର୍ଣ୍ଣନ, ପ୍ରଦକ୍ଷିଣ, ଘୋଡ଼ାର ଚକ୍ରାକାର ଗତି ।

ଚକ୍କରଖାଇବା—ଗ୍ରା. କି. ମୁଣ୍ଡବୁଲାଇବା ଚକ୍ରପରି ଘୂରିବା ।

ଚକ୍କଲ—ବି.(ଚକ୍+ଅଲ)ଚକା,ଗୋଲ ।

ଚକ୍ର—ପୁଂ, ବି. (କୃ+କ.ଅ)ଚକ୍ରବାକପକ୍ଷୀ, ଚକୁଆ,(କ୍ଲୀ.ବି.)ରଥାଙ୍ଗ, ଚକ୍କ, ଚକା,ସୈନ୍ୟ, ସମୂହ, ରାଷ୍ଟ୍ର, ଦେଶ, ବୃତ୍ତ, ଦଳବିଶେଷ, କୁମ୍ଭାରଚକ, ଅସ୍ତ୍ରବିଶେଷ, ବ୍ୟୂହବିଶେଷ, ଜଳାବର୍ତ୍ତ, ଦେଶାଂଶ, ପ୍ରଦେଶ, ଜାଲ, ରାଶିଚକ୍ର, ବଳୟ,ମୁଦିଆ,କୂଟ, କପଟ, କୌଶଳ, ଛଳ, ଷଡ଼ଯନ୍ତ୍ର, ଗ୍ରାମସମୂହ, ତଗରପୁଷ୍ପ, ତେଲଘଣା, ଦେବତାର୍ଚ୍ଚନ ଯନ୍ତ୍ର, ଭଦ୍ରମଣ୍ଡଳ, ମୂଳାଧାରାଦି ଷଟ୍‌ଚକ୍ର, ଭେଳକ,(ଜ୍ୟୋତିଷ) ଅକଡ଼ମାଦଚକ୍ର, ଚକ୍ରକାବ୍ୟ, ମୁଦ୍ର, ହସ୍ତ ଓ ପାଦସ୍ଥ ଚକ୍ରାକାର ରେଖା, ଘେରା, ଚକ୍ରାକାର ବେଷ୍ଟନୀ, ଗୋଲକ, ବୃତ୍ତର ପରିଧି, ଗ୍ରହମଣ୍ଡଳ, ଶାଳଗ୍ରାମ ଶିଳାରେ ଥିବା ଚକ୍ରାକାର ଚିହ୍ନ, ପୁସ୍ତକ ବା ଗ୍ରନ୍ଥର ଭାଗ ବା ଅଧ୍ୟାୟ, ଚକ୍ରାକାର ଦାଗ, ପକ୍ଷୀମାନଙ୍କର ଚକ୍ରାକାର ଉଡ୍ଡୟନ, ସାପର ଫଣା, ଶରୀରାଭ୍ୟନ୍ତରସ୍ଥକାଳ୍ପନିକ ଆଧ୍ୟାତ୍ମିକ ଚକ୍ର, ନଦୀର ବାଙ୍କ, (ଗ୍ରା.ବି)ଚକ୍ରବନ୍ଧ, ଚକ୍ରାକାର ଛାପା, ଚକ୍ରବାଣ, କୌଣସି ଜଟିଳ ବିଷୟ ।

ଚକ୍ରଉହାଡ଼କରିବା—ଗ୍ରା. କି. ଚକ୍ରାସ୍ତ୍ରକୁ ଟେକି ଧରି ଚକ୍ର ତଳେ ମନୁଷ୍ୟଙ୍କୁ ଶତ୍ରୁର ଅସ୍ତ୍ରରୁ ରକ୍ଷାକରିବା ।

ଚକ୍ରକ—ପୁଂ. ବି. ( ଚକ୍ର+କୈ+ଅ ) ତର୍କ ବିଶେଷ, ସର୍ପବିଶେଷ, ହେତ୍ୱାଭାସ ।

ଚକ୍ରକା—ସ୍ତ୍ରୀ.ବି. ଅକାଦମୀ ବୃକ୍ଷ ।

ଚକ୍ରକାରକ—କ୍ଲୀ. ବି. ନଖ, ନଖୀ ନାମକ ଗନ୍ଧଦ୍ରବ୍ୟ, ଲୁହାକଣ୍ଟା ।

ଚକ୍ରକୁଲ୍ୟା—ସ୍ତ୍ରୀ.ବି.ଚକ୍ର ପର୍ଣ୍ଣୀ,ଗୁହଳଆ ।

ଚକ୍ରକେଳି—ଗ୍ରା.ବି°.ଓଡ଼ିଆ ରାଗ ବିଶେଷ ।

ଚକ୍ରକୋର—ପୁଂ.ବି°. ଚକ୍ରାକାର ଅସ୍ଥି-ସନ୍ଧି ।

ଚକ୍ରଗଜ—ପୁଂ.ବି. (ଚକ୍ର+ଗଜ) ଚକ୍ର ମର୍ଦ୍ଦ ବୃକ୍ଷ, ଚକୁଣ୍ଡା ଗଛ ।

ଚକ୍ରଗଣ୍ଡୁ—ପୁଂ. ବି. ( ଚକ୍ର+ଗଣ୍ଡୁ ) ଚକ୍ରାକାର ଉପଧାନ, ମାଣ୍ଡି, ଗୋଲ ତକିଆ ।

ଚକ୍ରଗତି—ସ୍ତ୍ରୀ.ବି. (୬ତତ୍) ଚକ୍ରର ଗତି (କ.ଧା) ଚକ୍ରାକାରରେ ଗମନ ।

ଚକ୍ରଗଦାଧର—ପୁଂ. ବି. (ଚକ୍ର+ଗଦା +ଧୃ+ଅ) ବିଷ୍ଣୁ । [ବୃକ୍ଷ ।

ଚକ୍ରଗୁଚ୍ଛ—ପୁଂ. ବି. (ବ.ବ୍ରୀ) ଅଶୋକ

ଚକ୍ରଗୋପ୍ତା—ପୁଂ.ବି. (ଚକ୍ର+ଗୋପ୍ତା) ୬ତତ୍; ସେନାପତି, ରାଜ୍ୟରକ୍ଷକ, ଯେ ରଥଚକ୍ରାଦି ରକ୍ଷାକରେ,ଯୋଦ୍ଧା-ବିଶେଷ,ପଲ୍ଲି ରକ୍ଷକ,(ସ୍ତ୍ରୀ)ଚକ୍ରଗୋପ୍ତ୍ରୀ ।

ଚକ୍ରଗ୍ରହଣ—କ୍ଲୀ. ବି. (ଚକ୍ର+ଗ୍ରହଣ) ୬ତତ୍; ଚକ୍ରର ଅବଲମ୍ବନ, ଦୁର୍ଗର ଚତୁର୍ଦ୍ଦିଗସ୍ଥ ପ୍ରାଚୀର,ଗଡ଼ବଳି ।

ଚକ୍ରଚର—ପୁଂ.ବି.(ଚକ୍ର+ଚର୍+ଅ) ଚକପରି ବୁଲୁଥିବା, ଯେଉଁମାନେ ଦଳ ଦଳ ହୋଇ ବୁଲୁଥାଆନ୍ତି,(ବି) ଐନ୍ଦ୍ର-ଜାଲିକ,ତେଲି, କୁମ୍ଭାର, ହସ୍ତୀ, ପକ୍ଷୀ ପ୍ରଭୃତି ।

ଚକ୍ରଚାରୀ—ପୁଂ. ବି°. (ଚକ୍ର+ଚର+ଇନ୍ ) ଯେ ଚକ ଦ୍ୱାରା ଏକସ୍ଥାନରୁ ଅନ୍ୟ ସ୍ଥାନକୁ ଚଳେ,(ବି) ରଥ ।

ଚକ୍ରଚୂଡ଼ାମଣି—ପୁଂ. ବି. କଣ୍ଠରେ ସଂଲଗ୍ନ ମଣି,ବୋପଦେବଙ୍କର ଗୋଟିଏ ଉପାଧି ।

ଚକ୍ରଛେଦଣ୍ଡ—ଗ୍ରା. ପୁଂ. ବି°. ଚକର ଛେଦଣ୍ଡ ଦେଖ ।

ଚକ୍ରଜୀବକ—ପୁଂ. ବି. (ଚକ୍ର+ଜୀବ୍+କ.ଅକ) କୁମ୍ଭକାର, କୁମ୍ଭାର ।

ଚକ୍ରଣଦୀ,ଚକ୍ରନଦୀ—ସ୍ତ୍ରୀ.ବି. ଗଣ୍ଡକୀନଦୀ ।

ଚକ୍ରତୀର୍ଥ—କ୍ଲୀ. ବି. ତୀର୍ଥ ବିଶେଷ,ଓଡ଼ିଶା ପୁରୁଷୋତ୍ତମ କ୍ଷେତ୍ରର ସମୁଦ୍ରତୀରସ୍ଥ ତୀର୍ଥବିଶେଷ, ଶ୍ରୀକୃଷ୍ଣଙ୍କ ସୁଦର୍ଶନ ଚକ୍ର ଦ୍ୱାରା ନିର୍ମିତ ପ୍ରଭାସ କ୍ଷେତ୍ରାନ୍ତର୍ଗତ ଗୋଟିଏ ବୈଷ୍ଣବତୀର୍ଥ, ମଥୁରା ସନ୍ନିହିତ ଯମୁନାତୀରସ୍ଥ ଗୋଟିଏ ତୀର୍ଥ, ସେତୁ-ବନ୍ଧ ରାମେଶ୍ୱରସ୍ଥ ତୀର୍ଥବିଶେଷ ।

ଚକ୍ରତୁଣ୍ଡୀ—ବି°. ଯାହାର ମୁଖ ଚକ୍ରପରି ମଣ୍ଡଳାକାର ।

ଚକ୍ରତୈଳ—କ୍ଲୀ. ବି. ଚକୁଣ୍ଡା ମଞ୍ଜିରୁ ଉତ୍ପନ୍ନ ତୈଳ ବିଶେଷ ।

ଚକ୍ରଦଂଷ୍ଟ୍ର—ପୁଂ. ଓ ସ୍ତ୍ରୀ. ବି. (ବ.ବ୍ରୀ) ଶୂକର, ଘୁଷୁରି ।

ଚକ୍ରଦତ୍ତ—କ୍ଲୀ ବି. ଚକ୍ରପାଣି କୃତ ଖଣ୍ଡିଏ ବୈଦ୍ୟକ ଗ୍ରନ୍ଥ ।

ଚକ୍ରଦନ୍ତୀ—ସ୍ତ୍ରୀ. ବି. (ବ.ବ୍ରୀ)ଦନ୍ତୀଗଛ, ଜନକା ଗଛ ।

ଚକ୍ରଦନ୍ତୀବୀଜ—କ୍ଲୀ. ବି. (୬ତତ୍) ଜନକା ମଞ୍ଜି ।

ଚକ୍ରଦୀପିକା—ବି. ଜନ୍ମସାର ଧୃତ ଖଣ୍ଡିଏ ବେଦାନ୍ତ ସମ୍ବନ୍ଧୀୟ ଗ୍ରନ୍ଥ ।

ଚକ୍ରଦେବ—ପୁଂ. ବି°. ଯାଦବ ବଂଶୀୟ ଜଣେ ରାଜା । [ ବିଶେଷ ।

ଚକ୍ରଦ୍ୱାର—ପୁଂ.ବି. (ବ.ବ୍ରୀ) ପର୍ବତ-

ଚକ୍ରଧନୁଃ—ପୁଂ.ବି. ସୂର୍ଯ୍ୟଙ୍କଠାରୁ ଉତ୍ପନ୍ନ ଋଷିବିଶେଷ, ଏହାଙ୍କର ଅପର ନାମ କପିଳ ।

ଚକ୍ରଧର—ପୁଂ. ବି°. (ଚକ୍ର+ଧୃ+ଅ) ବିଷ୍ଣୁ,ରାଜା, ମଣ୍ଡଳାଧିପ,ସର୍ପ, କୁମ୍ଭାର, ଐନ୍ଦ୍ରଜାଲିକ, ଗ୍ରାମ ପୁରୋହିତ, ଗ୍ରାମ-ଯାଜୀ, ରାଗବିଶେଷ (ବି°) ଯେ ଚକ୍ରାସ୍ତ୍ର ଧରେ । [ଅଧିପତି ।

ଚକ୍ରଧର୍ମୀ—ପୁଂ.ବି°. ବିଦ୍ୟାଧରମାନଙ୍କର

ଚକ୍ରଧାରଣ—କ୍ଲୀ. ବି. (ଚକ୍ର+ଧାର+ଅନ) ରଥାଙ୍ଗ ବିଶେଷ, ଅକ୍ଷନାଭି ।

ଚକ୍ରଧାରା—ସ୍ତ୍ରୀ. ବି. ( ଚକ୍ର+ଧାରା ) ୬ତତ୍;ଚକ୍ରର ଅଗ୍ରଭାଗ,ଚକର ପରିଧି ।

ଚକ୍ରଧ୍ୱଜ—ଗ୍ରା. ପୁଂ. ବି. କମତାପୁର ଓ କାମରୂପଦେଶର ଜଣେ ରାଜା ।

ଚକ୍ରନଖ—ପୁଂ.ବି. (ଚକ୍ର+ନଖ୍+ଅ) ନଖୀ ନାମକ ଗନ୍ଧଦ୍ରବ୍ୟ, ବ୍ୟାଘ୍ରନଖୀ ।

ଚକ୍ରନାଭି—ପୁଂ. ବି. (୬ତତ୍ ) ଚକର ନାଭି, ଚକର ମଧ୍ୟସ୍ଥଳ, ତୁମ୍ବ ।

ଚକ୍ରନାମା—ପୁଂ.ବି.(ବ.ବ୍ରୀ) ସ୍ୱର୍ଣ୍ଣମାକ୍ଷୀ, ଧାତୁ ବିଶେଷ, ଚକ୍ରବାକପକ୍ଷୀ ।

ଚକ୍ରନାୟକ—ପୁଂ.ବି.(୬ତତ୍)ଚକ୍ରନାମକ ଗନ୍ଧ ଦ୍ରବ୍ୟ, ବାଘନଖୀ, ସେନାପତି ।

ଚକ୍ରନାରାୟଣସଂହିତା—ବି°. ରଘୁନନ୍ଦନ ରଚିତ ଗ୍ରନ୍ଥ ବିଶେଷ ।

ଚକ୍ରନିତମ୍ବ—ପୁଂ. (୬ତତ୍)ଚକରନାଭି, ତୁମ୍ବ, ମାଣ ।

ଚକ୍ରନେମି—ସ୍ତ୍ରୀ. ବି. (୬ତତ୍) ଚକର-ଧାର, ଚକର ପରିଧି ।

ଚକ୍ରପଥ—ବି.(କ.ଧା)ମଣ୍ଡଳାକାର ପଥ ।

ଚକ୍ରପଦ୍ମାଟ—ପୁଂ. ବି°. ଚକ୍ରମର୍ଦ୍ଦ ବୃକ୍ଷ, ଚକୁଣ୍ଡା ଗଛ ।

ଚକ୍ରପଦ—କ୍ଲୀ.ବି. ସତର ଅକ୍ଷର ପାଦ-ବିଶିଷ୍ଟ ଛନ୍ଦୋବିଶେଷ ।

ଚକ୍ରପରିବ୍ୟାଧ—ପୁଂ. ବି. ଆରଗ୍‌ବଧ, ସୁନାରି ଗଛ ।

ଚକ୍ରପର୍ଣ୍ଣୀ—ସ୍ତ୍ରୀ. ବି. (ବ.ବ୍ରୀ)ଚକ୍ରକୁଲ୍ୟା, ଚକୁଲିଆ, ନାଗବଳା ଦେଖ, କୃଷ୍ଣ ତୁଳସୀ, ପୃଶ୍ନିପର୍ଣ୍ଣୀ ।

ଚକ୍ରପାଣି—ପୁଂ. ବି. (ବ.ବ୍ରୀ ) ବିଷ୍ଣୁ, ଜଣେ ସୁପ୍ରସିଦ୍ଧ ଆୟୁର୍ବେଦବିତ୍ ଓ ଗ୍ରନ୍ଥକାର ।

ଚକ୍ରପାଣିଦାସ—ଗ୍ରା. ବି. ଅଭିନବ-ଚିନ୍ତାମଣି ନାମକ ବୈଦ୍ୟକ ଗ୍ରନ୍ଥ ପ୍ରଣେତା ।

ଚକ୍ରପାତ—ପୁଂ. ବି. ଛନ୍ଦୋବିଶେଷ ।

ଚକ୍ରପାଳ—ପୁଂ. ବି. (ଚକ୍ର+ପାଲ+କ.ଅ) ପ୍ରାଦେଶିକ ଶାସନକର୍ତ୍ତା, ଦିଗ୍‌-ବଳୟ, ବୃତ୍ତ, ଚକ୍ରାସ୍ତ୍ରଧାରୀ ବ୍ୟକ୍ତି,

ସେନାପତି, କାଶ୍ମୀରରାଜ ଅବନ୍ତି-ବର୍ମାଙ୍କ ସଭାର ଜଣେ କବି, ଶୃଙ୍ଗାରର ଏକ ଭେଦ ।

ଚକ୍ରପୁର—କ୍ଲୀ. ବି. କାଶ୍ମୀରସ୍ଥ ଗୋଟିଏ ପ୍ରାଚୀନ ନଗର । [ ପୁଷ୍କରଣୀ ।

ଚକ୍ରପୁଷ୍କରଣୀ—ପୁଂ.ବି.କାଶୀସ୍ଥ ଗୋଟିଏ

ଚକ୍ରପୂଜା—ବି. ତାନ୍ତ୍ରିକ ଗ୍ରନ୍ଥ, ତାନ୍ତ୍ରିକ ଆଗ୍ରର ବିଶେଷ ।

ଚକ୍ରଫଳ—କ୍ଲୀ. ବି. (ବି.ସ୍ତ୍ରୀ)ଚକ୍ରାକାର ଅଗ୍ରଯୁକ୍ତ ଅସ୍ତ୍ର ବିଶେଷ ।

ଚକ୍ରବନ୍ଧ—ବି. ରତିବନ୍ଧ ବିଶେଷ, ଛନ୍ଦୋବଦ୍ଧ ରଚନା ବିଶେଷ, ଚକ୍ର କାବ୍ୟ ବିଶେଷ ।

ଚକ୍ରବନ୍ଧୁ—ବି. (ଷତତ୍) ସୂର୍ଯ୍ୟ ।

ଚକ୍ରବାନ୍ଧବ—ପୁଂ. ବି.(ଚକ୍ର+ବାନ୍ଧବ) ଷତତ୍; ସୂର୍ଯ୍ୟ ।

ଚକ୍ରଭିକ୍ଷା—ବି.ବହୁଗ୍ରାମର ଗ୍ରାମଦାଣ୍ଡରେ ବୁଲି ବୁଲି ଭିକ୍ଷା କରିବା ।

ଚକ୍ରଭୃତ୍—ପୁଂ. ବି. (ଚକ୍ର+ଭୃ+କ. କ୍ୱିପ୍) ଚକ୍ରଧର ଦେଖ, ବିଷ୍ଣୁ, (ବିଂ) ଚକ୍ରଧାରୀ, ଯେ ଚକ୍ରଧାରଣ କରେ ।

ଚକ୍ରଭେଦନୀ—ସ୍ତ୍ରୀ.ବି. (ଚକ୍ର+ଭିଦ୍+ ଇନ୍+ଈ) ଚକ୍ରବାକ ପକ୍ଷୀମାନଙ୍କର ବିଚ୍ଛେଦକାରିଣୀ ରାତ୍ରି, ରାତି ।

ଚକ୍ରଭୋଗ—ପୁଂ. ବି. (ଚକ୍ର+ଭୋଗ) ଷତତ୍; ଗ୍ରହମାନଙ୍କର ରାଶିମାନଙ୍କରେ ସଞ୍ଚାର ।

ଚକ୍ରଭ୍ରମ—ପୁଂ.ବି. (ଚକ୍ର+ଭ୍ରମି+ଅ) ଷତତ୍; କୁନ୍ଦଯନ୍ତ୍ର, ଚକ୍ରଭ୍ରମଣ ଗତି, ଚକ୍ର, ଚକ୍ର ବିଷୟକ ଭ୍ରାନ୍ତି ।

ଚକ୍ରଭ୍ରମଣ—ବି. ଏକ ପ୍ରକାର ନୃତ୍ୟ ।

ଚକ୍ରଭ୍ରମି—ପୁଂ.ବି. (ଚକ୍ର+ଭ୍ରମ୍+ଇ) ଚକ୍ରର ଭ୍ରମଣ, ଚକ୍ରବାକ ବିଷୟକ ଭ୍ରାନ୍ତି ।

ଚକ୍ରଭ୍ରାନ୍ତି—ବି. (ଷତତ୍)ଚକ ଘୂରିବା ।

ଚକ୍ରମଣ୍ଡଳୀ-ପୁଂ.ବି.(ଚକ୍ରମଣ୍ଡଳ+ଇନ୍) ଗୋଖୁର ସାପ, ଅଜଗର ସର୍ପ, (ସ୍ତ୍ରୀ) ଚକ୍ରମଣ୍ଡଳିନୀ ।

ଚକ୍ରମନ୍ଦ—ପୁଂ. ବି. ନାଗବିଶେଷ ।

ଚକ୍ରମର୍ଦ୍ଦ—ପୁଂ. ବି. (ଚକ୍ର+ମୃଦ୍+ଅ) କ୍ଷୁପବିଶେଷ, ଚକୁଣ୍ଡା ।

ଚକ୍ରମର୍ଦ୍ଦକ-ପୁଂ.ବି. (ଚକ୍ର+ମୃଦ୍+ଅକ) ଚକ୍ରମର୍ଦ୍ଦ, ଚକୁଣ୍ଡା ।

ଚକ୍ରମଦକା—ସ୍ତ୍ରୀ.ବି.ରାଜାଲଳିତାଦିତ୍ୟଙ୍କ ପଟ୍ଟମହିଷୀ ।

ଚକ୍ରମାସଜ—ପୁଂ. ବିଂ. ଯେ ରଥଚକ୍ର ସଂଯୋଜିତ କରେ ।

ଚକ୍ରମୀମାଂସା—ସ୍ତ୍ରୀ ବି. ବୈଷ୍ଣବମାନଙ୍କର ଆଚରିତ ଚକ୍ରାଦି ଚିହ୍ନଧାରଣ, ଭକ୍ତ-ଆଗ୍ରହନିର୍ଣ୍ଣାୟକ ଗ୍ରନ୍ଥ ।

ଚକ୍ରମୁଖ—ପୁଂ. ବି. ( ବି.ସ୍ତ୍ରୀ ) ଶୂକର, ଘୁଷୁରି, (ସ୍ତ୍ରୀ) ଚକ୍ରମୁଖୀ ।

ଚକ୍ରମୁଣୋହି—ପ୍ରା.(ପୁରୀ)ବି.ଶ୍ରୀଜଗନ୍ନାଥ ମନ୍ଦିରର ନୀଳଚକ୍ରକୁ ଦେଖାଇ ଦେବତାଙ୍କ ନାମରେ ଉତ୍ସର୍ଗୀକୃତ ଭୋଗ ।

ଚକ୍ରମୁଦ୍ରା—ସ୍ତ୍ରୀ. ବି. ଦେବପୂଜାର କର ମୁଦ୍ରାବିଶେଷ, ବିଷ୍ଣୁଙ୍କ ଚକ୍ରାଦି ଆୟୁଧର ଛାପା, ଯାହା ଭକ୍ତମାନେ ଦେହରେ ଘେନନ୍ତି ।

ଚକ୍ରମୂଷଳ—ପୁଂ. ବି. ଯୁଦ୍ଧାସ୍ତ୍ରବିଶେଷ, ଚକ୍ର ଓ ମୂଷଳ ।

ଚକ୍ରଯାନ—କ୍ଲୀ. ବି. ( ଚକ୍ର+ଯାନ) ମଧ୍ୟ କ.ଧା;ରଥ,ଗାଡ଼ି,ଶକଟ,ଶୂନ୍ୟବଡ଼ି ।

ଚକ୍ରଯୋଗ—ପୁଂ. ବି. (ଚକ୍ର+ଯୋଗ) ଷତତ୍; ଚକ୍ରତୈଳ ଲେପନ ।

ଚକ୍ରରକ୍ଷ—ପୁଂ. ବି. (ଷତତ୍) ବ୍ୟୂହ-ରକ୍ଷାକାରୀ, ସେନାପତି, ଚକ୍ରରକ୍ଷକ, ଯୋଦ୍ଧାବିଶେଷ ।

ଚକ୍ରରଦ—ପୁଂ. ବି.( ବି.ସ୍ତ୍ରୀ ) ଘୁଷୁରି, ଶୂକର, (ସ୍ତ୍ରୀ) ଚକ୍ରରଦୀ ।

ଚକ୍ରଲକ୍ଷଣା—ସ୍ତ୍ରୀ. ବି. (ଚକ୍ର+ଲକ୍ଷଣା) (ବି.ସ୍ତ୍ରୀ) ଗୁଳୁଚୀଲତା ।

ଚକ୍ରଲକ୍ଷଣିକା—ସ୍ତ୍ରୀ. ବି. ଗୁଳୁଚୀ ।

ଚକ୍ରଲତାମ୍ର—ପୁଂ.ବି. (ଚକ୍ର+ଲତାମ୍ର) ବୃକ୍ଷ ରସାଳବୃକ୍ଷ । [ଜଟା ।

ଚକ୍ରଲା—ସ୍ତ୍ରୀ. ବି. ( ଚକ୍ର+ଲା+ଅ)

ଚକ୍ରଲିପ୍ତା—ସ୍ତ୍ରୀ. ବି. (ଷତତ୍)ରାଶିଚକ୍ରର କଳାତ୍ମକ ଭାଗ ।

ଚକ୍ରବତ୍—ବିଂ. (ଚକ୍ର+ବତ୍)ଚକ୍ରପରି ଗୋଲାକାର ।

ଚକ୍ରବର୍ତ୍ତୀ-ପୁଂ.ବି.(ଚକ୍ର+ବୃତ୍+ଇନ୍) ବହୁ ବିସ୍ତୃତରାଜ୍ୟର ଅଧିପତି, ସମ୍ରାଟ୍, ଆସମୁଦ୍ରକରଗ୍ରାହୀ, ବହୁବ୍ୟକ୍ତିମାନଙ୍କ ମଧ୍ୟରେ ପ୍ରଧାନ ବା ଅଧ୍ୟକ୍ଷ ବା ଅଗ୍ରଣୀ, ବାସ୍ତୁକଶାକ,ବଥୁଆଶାଗ,(ଲ.ଅର୍ଥ.ବିଂ) ଶ୍ରେଷ୍ଠ, (ଗ୍ରା.ବି) ବଙ୍ଗୀୟ ବ୍ରାହ୍ମଣମାନ-ଙ୍କର ବଂଶୋପାଧି ବିଶେଷ ।

ଚକ୍ରବର୍ତ୍ତିନୀ—ସ୍ତ୍ରୀ.ବି. ଯୁଦ୍ଧର ଅଧିଷ୍ଠାତ୍ରୀ, ଦଳାଧୀଶ୍ୱରୀ, ଅଲକ୍ତକ,ଅଳତା, ଜଟା-ମାଂସୀ, ପର୍ପଟୀ, ସର୍ବଭୂମିର ଅଧୀଶ୍ୱରୀ ।

ଚକ୍ରବର୍ମା—ପୁଂ. ବି. କାଶ୍ମୀରର ଜଣେ ରାଜା ।

ଚକ୍ରବାକ—ପୁଂ. ବି. (ଚକ୍ର+ବଚ୍+ ଘଂ.ଅ) ଜଳଚର ପକ୍ଷିବିଶେଷ,ଚକୁଆ, (ସ୍ତ୍ରୀ) ଚକ୍ରବାକୀ ।

ଚକ୍ରବାକବନ୍ଧୁ—ପୁଂ,ବି. (ଷତତ୍)ସୂର୍ଯ୍ୟ ।

ଚକ୍ରବାକବତୀ—ସ୍ତ୍ରୀ. ବି. (ଚକ୍ରବାକ+ ବତ୍+ଈ)ବହୁତ ଚକୁଆପକ୍ଷୀ ଅବସ୍ଥାନ କରୁଥିବା ନଦୀ ବା ପୋଖରୀ ।

ଚକ୍ରବାକୀ—ପୁଂ.ବିଂ.(ଚକ୍ରବାକ+ଇନ୍) ଚକ୍ରବାକଯୁକ୍ତ, (ସ୍ତ୍ରୀ-ଚକ୍ରବାକ+ଈ) ମାଈ ଚକୁଆପକ୍ଷୀ ।

ଚକ୍ରବାଟ—ପୁଂ.ବି.(ବି.ସ୍ତ୍ରୀ) କ୍ରିୟାଯୋଗ, କର୍ମପ୍ରାରମ୍ଭ, ପର୍ଯ୍ୟନ୍ତ, ସୀମା,ଶିଖାତରୁ, ଦୀପରୁଖା ।

ଚକ୍ରବାଡ଼—ପୁଂ.ବି.(ଚକ୍ର+ବାଡ଼+ଅ) ଲୋକାଲୋକପର୍ବତ, (କ୍ଲୀ.ବି)ମଣ୍ଡଳ ।

ଚକ୍ରବାତ—ପୁଂ.ବି.ଭ୍ରମିବାୟୁ,ଘୂର୍ଣ୍ଣିବାୟୁ, ଖଣ୍ଡିଆଭୂତ, ମଣ୍ଡଳାକାରରେ ଅବସ୍ଥିତ ସମୂହ ।

ଚକ୍ରବାନ୍—ପୁଂ. ବିଂ. (ଚକ୍ର+ବତ୍) ଚକ୍ରଧର,ଯାହାର ଚକ୍ରଅଛି,ଚକ୍ରବିଶିଷ୍ଟ, ଗୋଲାକାର, (ବି)ତେଲି,ସମ୍ରାଟ୍,ବିଷ୍ଣୁ, ପୌରାଣିକ ପର୍ବତବିଶେଷ, କୁମ୍ଭାର ।

ଚକ୍ରବାଳ—ପୁଂ. ବି. (ଚକ୍ର+ବାଲ+ କ.ଅ) ଲୋକାଲୋକ ପର୍ବତ, ଚକ୍ରବାକ

ପକ୍ଷୀ,(କ୍ଲୀ.ବ.)ମଣ୍ଡଳାକାରରେ ଅବସ୍ଥିତ ସମୂହ, ମଣ୍ଡଳାକାର ଜଳସମୂହ, ଦୃଷ୍ଟି-ପରିଚ୍ଛେଦ ସୀମା ।
ଚକ୍ରବାଳଧି—ପୁଂ.ବ.(ବ.ବ୍ରୀ) କୁକ୍କୁର ।
ଚକ୍ରବସ୍ତ୍ରଦାସ——ବ. ଭାସ୍ୱତୀନାମକ ଜ୍ୟୋତିଃଶାସ୍ତ୍ରର ଜଣେ ଟୀକାକାର ।
ଚକ୍ରବୁଲା—ଗ୍ରା. ବ. ଶୋଭାଯାତ୍ରା ପୂର୍ବକ ଚକ୍ରବୁଲା ଏକାଦଶୀଦିନ ଜଗନ୍ନାଥଙ୍କ ସୁଦର୍ଶନଚକ୍ରକୁ ପୁରୀର ସାହିସାହିରେ ବୁଲାଇବାରୂପ ଉତ୍ସବ ।
ଚକ୍ରବୁଲାଏକାଦଶୀ—ଗ୍ରା. ବ. ଶ୍ରାବଣକୃଷ୍ଣ ଏକାଦଶୀ ।
ଚକ୍ରବୃଦ୍ଧି—ସ୍ତ୍ରୀ. ବ. ସୁଧର ସୁଧ, ଗାଡ଼ି ପ୍ରଭୃତିର ଭଡ଼ା ।
ଚକ୍ରବ୍ୟୂହ—ପୁଂ. ବ. (କ.ଧା)ଚକ୍ରାକାର ସେନା ସନ୍ନିବେଶ । [ମତ୍ସ୍ୟ ।
ଚକ୍ରଶକୁଳ—ପୁଂ.ବ. ଶାଳମତ୍ସ୍ୟ,ଶାହାଳ
ଚକ୍ରଶଲ୍ୟା—ସ୍ତ୍ରୀ.ବ. (ବ.ବ୍ରୀ) ଧଳାକାଇଁଞ୍ଚ, କାକତୁଣ୍ଡୀ ।
ଚକ୍ରଶାଳ—ଗ୍ରା. ବ. ଚଉଷଠାମାନ୍ତର୍ଗତ ଗୋଟିଏ ପରଗଣା ।
ଚକ୍ରଶାସ୍ତ୍ର—ବ. ଶିଳ୍ପଶାସ୍ତ୍ର ସମ୍ବନ୍ଧୀୟ ଗୋଟିଏ ସଂସ୍କୃତ ଗ୍ରନ୍ଥ । [ଗଛ ।
ଚକ୍ରଶ୍ରେଣୀ—ସ୍ତ୍ରୀ.ବ.(ବବ୍ରୀ) ମେଣ୍ଢାଶିଙ୍ଗା
ଚକ୍ରସଂଜ୍ଞ—କ୍ଲୀ. ବ. ( ବ.ବ୍ରୀ ) ଧାତୁ-ବିଶେଷ, ରଙ୍ଗା,ବଙ୍ଗ,ଚକ୍ରବାକ ପକ୍ଷୀ ।
ଚକ୍ରସମ୍ବର—ପୁଂ.ବ. (ଚକ୍ର+ସମ୍+ବୃ+ଅ) ବୁଦ୍ଧବିଶେଷ ।
ଚକ୍ରସକ୍ଥ—ବିଂ. ଚକ୍ରରୂପ ସକ୍ଥିଯୁକ୍ତ ଯାହାର ଊରୁ ଚକ୍ରପରି ।
ଚକ୍ରସାହ୍ୱୟ—ପୁଂ. ବ.ଚକ୍ରବାକ, (ସ୍ତ୍ରୀ) ଚକ୍ରସାହ୍ୱୟା ।
ଚକ୍ରସିଂହାବଲୋକନ—ଗ୍ରା. ବ. ଶବ୍ଦାଳ-ଙ୍କାରବିଶେଷ, ଚିତ୍ରକାବ୍ୟବିଶେଷ ।
ଚକ୍ରସ୍ତନିକନନ୍ଦାବର୍ତ୍ତି—ପୁଂ.ବ. ବୁଦ୍ଧଙ୍କର ନାମାନ୍ତର ।
ଚକ୍ରସ୍ୱାମୀ—ପୁଂ. ବିଂ. ( ଚକ୍ର+ସ୍ୱାମୀ) ୬ତତ୍; ଚକ୍ରର ଅଧିପତି, ଚକ୍ରରେ ଯାହାର ସ୍ୱତ୍ୱ ଅଛି ।

ଚକ୍ରହସ୍ତ—ପୁଂ. ବ. (ବ.ବ୍ରୀ) ଚକ୍ରପାଣି, ବିଷ୍ଣୁ, (ବିଂ) ଚକ୍ରଧାରୀ ।
ଚକ୍ରା—ସ୍ତ୍ରୀ.ବ. (ଚକ୍ର+ଆ)ନାଗରମୁଥା କକଡ଼ାଶୃଙ୍ଗୀ ।
ଚକ୍ରାଂଶ—ପୁଂ.ବ. (ଚକ୍ର+ଅଂଶ)ରାଶି ଚକ୍ରର ୩୬୦ ଭାଗରୁ ଏକଭାଗ ।
ଚକ୍ରାକାର—ବି.(ବ.ବ୍ରୀ) ମଣ୍ଡଳାକାର, ଗୋଲ ।
ଚକ୍ରାଙ୍କୀ--ସ୍ତ୍ରୀ.ବ. (ଚକ୍ର+ଅଙ୍କ+ଅ+ଈ) ହଂସୀ, ମାଈ ହଂସ ।
ଚକ୍ରାକୃତି—ବିଂ. (ଚକ୍ର+ଆକୃତି)୬ତତ୍ ଯାହାର ଆକୃତି ଚକ୍ରପରି ।
ଚକ୍ରାଖ୍ୟରସ—ପୁଂ. ବ. ଅର୍ଶରୋଗର ପ୍ରଧାନ ଔଷଧ ।
ଚକ୍ରାଙ୍କ—ବ. ( ୬ତତ୍ ) ଚକ୍ରର ଚିହ୍ନ, ଚକ୍ରମୁଦ୍ରା, ଦେଖ ।
ଚକ୍ରାଙ୍କିତା—ସ୍ତ୍ରୀ. ବ. ବୃକ୍ଷବିଶେଷ ।
ଚକ୍ରାଙ୍କୀ—ସ୍ତ୍ରୀ. ବ. (ଚକ୍ର+ଅଙ୍କ+ଈ) ହଂସୀ, ମାଈହଂସ ।
ଚକ୍ରାଙ୍ଗ—ପୁଂ. ବ. ( ବ.ବ୍ରୀ ) କଟୁକା, ହିଡ଼ିମିଚ୍ଛିଶାଗ, ହଂସ, ରଥ, ଚକ୍ରବାକ, ବଗିଚ୍ଛ, ଛତା ।
ଚକ୍ରାଙ୍ଗା—ସ୍ତ୍ରୀ. ବ. ( ଚକ୍ରାଙ୍ଗ+ଆ ) ସୁଦର୍ଶନ ଲତା, କକଡ଼ାଶୃଙ୍ଗୀ ।
ଚକ୍ରାଙ୍ଗୀ--ସ୍ତ୍ରୀ.ବ. (ଚକ୍ରାଙ୍ଗ+ଈ)କଟୁକା, ହଂସୀ,ମାଈହଂସ,ହିଡ଼ିମିଚ୍ଛିଶାଗ,ମଞ୍ଜିଷ୍ଠା, ବୃଷପର୍ଣ୍ଣୀ, କକଡ଼ାଶୃଙ୍ଗୀ, ବଥୁଆଶାଗ ।
ଚକ୍ରାଟ—ପୁଂ. ବ. (ଚକ୍ର+ଅଟ+ଅ) ବିଷବୈଦ୍ୟ, ଧୂର୍ତ୍ତ,ଠକ,ସାପୁଆକେଳା, ଐନ୍ଦ୍ରଜାଲିକ, ସ୍ୱର୍ଣ୍ଣମୁଦ୍ରା, ଦିନାର ।
ଚକ୍ରାତା—ଦେରାଦୁନ ଜିଲ୍ଲାର ଗୋଟିଏ ଗିରିଦୁର୍ଗ ।
ଚକ୍ରାଥ—ପୁଂ. ବ. କୌରବ ଯୋଦ୍ଧା-ବିଶେଷ ।
ଚକ୍ରାଧିବାସୀ—ପୁଂ.ବ. (ଚକ୍ର+ଅଧି+ବସ୍+ଇନ୍) ନାରଙ୍ଗଲେମ୍ବୁ ।
ଚକ୍ରାନ୍ତ—ପୁଂ. ବ. (ବ.ବ୍ରୀ) କୌଣସି ଲୋକର ଅନିଷ୍ଟ ସାଧନପାଇଁ ଅନେକ ଲୋକ ମିଳି ଯେଉଁ କୁମନ୍ତ୍ରଣା କରନ୍ତି, ମେଳ ।

ଚକ୍ରାନ୍ତକାରୀ—ପୁଂ. ବିଂ. ( ଚକ୍ରାନ୍ତ+କୃ+ଇନ୍) ଯେ ଚକ୍ରାନ୍ତକରେ, (ସ୍ତ୍ରୀ) ଚକ୍ରାନ୍ତକାରିଣୀ ।
ଚକ୍ରାୟୁଧ—ପୁଂ. ବ. ( ବ.ବ୍ରୀ ) ବିଷ୍ଣୁ, (ବିଂ)ଯେ ଚକ୍ରଧାରଣକରେ,ଚକ୍ରଧାରୀ ।
ଚକ୍ରାବର୍ତ୍ତ—ପୁଂ. ବ. ମଣ୍ଡଳାକାରରେ ପରିଭ୍ରମଣ, ପରିକ୍ରମା, ଘୂର୍ଣ୍ଣନ ।
ଚକ୍ରାହ୍ୱ—ପୁଂ. ବ. ( ଚକ୍ର+ଆହ୍ୱା ) ବ.ବ୍ରୀ;ଚକ୍ରମର୍ଦ୍ଦ,ଚକୁଣ୍ଡା,ଚକ୍ରବାକପକ୍ଷୀ ।
ଚକ୍ରାସୀ—ଗ୍ରା. ବ. ବୃକ୍ଷବିଶେଷ ।
ଚକ୍ରି—ପୁଂ. ବିଂ. କର୍ତ୍ତା, କରଣଶୀଳ ।
ଚକ୍ରିକ—ପୁଂ. ବିଂ.(ଚକ୍ର+ଇକ)ଚକ୍ର-ଧାରୀ, (ବ) କୃଷ୍ଣ, ଚକ୍ରଧାରୀ ବ୍ୟକ୍ତି ।
ଚକ୍ରିକା-ସ୍ତ୍ରୀ. ବ.(ଚକ୍ରିକ+ଆ)ଆଣ୍ଠୁର ଚକ୍ରାକାର ହାଡ଼, ଚକ, ଜାନୁ, ରାଶି, ଗଦା, ସେନାଦଳ, ଦଳ ।
ଚକ୍ରିଣୀ—ସ୍ତ୍ରୀ.ବ ଓ ବିଂ.ଚକ୍ରୀର ସ୍ତ୍ରୀଲିଙ୍ଗ, (ଗ୍ରା.ବ) ରଥ ।
ଚକ୍ରିୟ—ପୁଂ. ବିଂ. ( ଚକ୍ର+ଇୟ ) ଭ୍ରମଣକାଳରେ ଚକ୍ରଯାନ ଚଢ଼ିଥିବା, (ସ୍ତ୍ରୀ) ଚକ୍ରିୟା ।
ଚକ୍ରୀ—ପୁଂ. ବ. (ଚକ୍ର+ଇନ୍) ବିଷ୍ଣୁ, ଗ୍ରାମଜାଳିକ, (ପୁଂ ଓ ସ୍ତ୍ରୀ) ଚକ୍ରବାକ-ପକ୍ଷୀ, ସର୍ପ, ଅଙ୍କା, ଛେଳି, କାକ, ଗର୍ଦ୍ଦଭ, କୁମ୍ଭକାର, କୁମ୍ଭାର, ତେଲି, ଗୁପ୍ତଚର,ଚକ୍ରବର୍ତ୍ତୀ,ଚକ୍ରମର୍ଦ୍ଦ, ଚକୁଣ୍ଡା, ତିନିଶବୃକ୍ଷ, ବାଘନଖୀ, ସଙ୍କର ଜାତି-ବିଶେଷ, ବେଶ୍ୟାଗର୍ଭରେ ଗୌରଶୂଦ୍ର ଔରସଜାତସନ୍ତାନ, ( ବିଂ ) ସୂଚକ, ଗୋଲକାର, ଷଡ଼ଯନ୍ତ୍ରକାରୀ, ଚକ୍ରଯୁକ୍ତ ଯାହାର ଚକ୍ରଅଛି, ଯେ ଚକ୍ରଯୁକ୍ତ, ରଥରେ ଆରୋହଣ କରେ,(ସ୍ତ୍ରୀ)ଚକ୍ରିଣୀ ।
ଚକ୍ରୀକରଣ—ବ. (ଚକ୍ର+ଚ୍ୱି+କୃ+ଅନ) ସିଧାହୋଇ ଥିବା କୌଣସିବସ୍ତୁ (ଧନୁଆଦି)କୁ ଗୋଲକରିବା ।
ଚକ୍ରୀବାନ୍--ପୁଂ.ବ (ଚକ୍ର+ବତ୍)ଗର୍ଦ୍ଦଭ, ଗଧ, ରାଜବିଶେଷ, ( ବିଂ) ଚକ୍ରଯୁକ୍ତ, ଯାହାର ଚକ୍ରଅଛି, (ସ୍ତ୍ରୀ) ଚକ୍ରୀବତୀ ।

ଚକ୍ରୁ—ବିଂ.(କୃ+ଉ)କର୍ତ୍ତା,ଯେ କରେ।

ଚକ୍ରେଶ୍ୱର—ପୁଂ. ବି. (୬ତତ୍) ମଥୁରା-ସନ୍ନିହିତ ଚକ୍ରତୀର୍ଥରେ ଅବସ୍ଥିତ ମହାଦେବ, ତାନ୍ତ୍ରିକଚକ୍ରର ଅଧିପତି, ଚକ୍ରବର୍ତ୍ତୀ, ସମ୍ରାଟ୍, ବିଷ୍ଣୁ।

ଚକ୍ରେଶ୍ୱରରସ——ବି. ଅର୍ଶରୋଗର ଔଷଧ ବିଶେଷ।

ଚକ୍ରେଶ୍ୱରୀ—ସ୍ତ୍ରୀ. ବି.(୬ତତ୍)ଜୈନମାନଙ୍କର ବିଦ୍ୟାଦେବୀ ବିଶେଷ, ରାଜ୍ୟର ଈଶ୍ୱରୀ।

ଚକ୍ରୋପଜୀବୀ—ପୁଂ.ବି. (ଚକ୍ର+ଉପ+ଜୀବ୍+ଇନ୍) ତୈଳିକ, (ସ୍ତ୍ରୀ) ଚକ୍ରୋପଜୀବିନୀ।

ଚକ୍ଷଣ—କ୍ଲୀ.ବି, (ଚକ୍ଷ+ଅନ) ଅନୁଗ୍ରହ, ମଦ୍ୟପାନରେ ଚକ ଭକ୍ଷ ଦ୍ରବ୍ୟ,ଚଟଣୀ, ଗ୍ରାଖଣା, ଗ୍ରାଖିବା, କଥନ, କୃପାଦୃଷ୍ଟି।

ଚକ୍ଷଣି—ବିଂ. (ଚକ୍ଷ+ଅନି) ପ୍ରକାଶକ।

ଚକ୍ଷନ୍—କ୍ଲୀ. ବି. ଚକ୍ଷୁ।

ଚକ୍ଷମ୍—ପୁଂ. ବି. ( ଚକ୍ଷ+କ. ଅମ ) ବୃହସ୍ପତି, ଉପାଧ୍ୟାୟ।

ଚକ୍ଷୁଃ—କ୍ଲୀ. ବି.(ଚକ୍ଷ+ଶା, ଉସ୍)ଦୃଷ୍ଟି, ଦୃଷ୍ଟି ଶକ୍ତି,ଉଜ୍ଜ୍ୱଳତା,ତେଜଃ, ଆଲୋକ, (ଚକ୍ଷ+ଣ,ଉସ୍) ନେତ୍ର,ଦର୍ଶନେନ୍ଦ୍ରିୟ, (ପୁଂ.ବି)ଆଜମୀଢ଼ବଂଶୀୟ ଜଣେ ରାଜା, ଅନୁଙ୍କପୁତ୍ର,ଅଭିଧାନକମତରେ ୨।୩।୪ ଅର୍ଥ ବୋଧକଶବ୍ଦ, ନଦୀବିଶେଷ, ଆକ୍ସସନଦୀ।

ଚକ୍ଷୁପଥ—ପୁଂ. ବି. (୬ତତ୍) ଦୃଷ୍ଟିପଥ, ଯେତେଦୂର ଦୃଷ୍ଟି ଚଳେ, ଦିଗ୍‌ବଳୟ, ଚକ୍ରବାଳ।

ଚକ୍ଷୁପୀଡ଼ା—ସ୍ତ୍ରୀ.ବି.(୬ତତ୍)ନେତ୍ରରୋଗ, ଆଖିଝୁଣ୍ଟିବା।

ଚକ୍ଷୁଃପ୍ରୀତି—ବି. କୌଣସି ସୁନ୍ଦର ବସ୍ତୁ ଦେଖିବାଦ୍ୱାରା ଜନ୍ମିବା ଆନନ୍ଦ।

ଚକ୍ଷୁଶୂଳ—ବି. (୬ବିଭ.,ଲ.ଅର୍ଥ) ଯାହା ଦେଖିବା ବ୍ୟକ୍ତି ମନରେ କଷ୍ଟ ହୁଏ, ଚକ୍ଷୁପୀଡ଼ା, (ବିଂ—ଲ. ଅର୍ଥ) ଯାହା ଦେଖିଲେ ବିରକ୍ତି ଜନ୍ମେ, ଯେ ନାନା ରୂପ କଷ୍ଟ ଦେଇଅଛି।

ଚକ୍ଷୁଶ୍ରବାଃ—ପୁଂ. ଓ ସ୍ତ୍ରୀ.ବି.(ଚକ୍ଷୁ+ସ୍ରୁ+ଅସ୍ ) ବି.ବ୍ରୀ—ସର୍ପ, ସାପ।

ଚକ୍ଷୁରୁନ୍ମିଳନ—କ୍ଲୀ.ବି. (୬ତତ୍)ଚକ୍ଷୁମେଲା। [ଡେଇଁବା।

ଚକ୍ଷୁସ୍ପନ୍ଦନ—ବିଂ. ( ୬ତତ୍ ) ଆଖିପତା-

ଚକ୍ଷୁକର୍ଣ୍ଣର ବିବାଦମେଣ୍ଟାଇବା—ଗ୍ରା.କ୍ରି. ଶୁଣିଥିବା ବିଷୟକୁ ଦେଖିବାଦ୍ୱାରା ଶୁଣା କଥା ଓ ଦେଖା କଥା ଏକାଥିବା ଜାଣି ସନ୍ତୁଷ୍ଟ ହେବା।

ଚକ୍ଷୁକର୍ଣ୍ଣରବିବାଦମେଣ୍ଟିବା—ଗ୍ରା. ବି. ଶୁଣିଥିବା ବିଷୟକୁ ସ୍ୱଚକ୍ଷୁରେ ଦେଖିବା ଦ୍ୱାରା ଶୁଣାକଥା ସଙ୍ଗେ ଦେଖାକଥାର ସାମଞ୍ଜସ୍ୟ ପ୍ରତିପାଦିତ ହେବା।

ଚକ୍ଷୁଖୋଲିବା—ଗ୍ରା. କ୍ରି. ଆଖି ମେଲା କରିବା, (ଗ୍ରା. ବି. ଲ. ଅର୍ଥ) ଚୈତନ୍ୟ ଉଦୟହେବା, ପ୍ରକୃତ ଅବସ୍ଥା ହୃଦୟଙ୍ଗମ ହେବା।

ଚକ୍ଷୁର୍ଗୋଚର—ବିଂ. (୬ତତ୍) ଚକ୍ଷୁର ବିଷୟ, ଯାହା ଚକ୍ଷୁଦ୍ୱାରା ଗ୍ରହଣ କରାଯାଏ, ଦୃଶ୍ୟ, (ସ୍ତ୍ରୀ)ଚକ୍ଷୁର୍ଗୋଚରା।

ଚକ୍ଷୁର୍ଗ୍ରହଣ--କ୍ଲୀ.ବି.(୬ତତ୍)ଚକ୍ଷୁଃପ୍ରାପ୍ତି, ଆଖିଧରା ରୋଗ।

ଚକ୍ଷୁର୍ଦା—ପୁଂ.ବିଂ. (ଚକ୍ଷୁଃ+ଦା+କ୍ୱିପ) ଯେ ଚକ୍ଷୁଦାନ କରେ, ଚକ୍ଷୁପ୍ରଦାତା।

ଚକ୍ଷୁର୍ଦାନ—କ୍ଲୀ. ବି.(୬ତତ୍)ନେତ୍ରାର୍ପଣ, ଜ୍ଞାନଦାନ, ଉପଦେଶ ଦେଇ ଚତୁର କରିବା, ଦେବ ପ୍ରତିମାର ଚକ୍ଷୁଅଙ୍କନ ବା ତାହାର ଦର୍ଶନ ଶକ୍ତି ବିଧାନ, ଦୃଷ୍ଟିଶକ୍ତିଦାନ।

ଚକ୍ଷୁର୍ଭୃତ୍—ପୁଂ.ବି (ଚକ୍ଷୁ+ଭୃ+କ୍ୱିପ୍) ଲୋଚନଯୁକ୍ତ, ନେତ୍ରରକ୍ଷକ।

ଚକ୍ଷୁର୍ମଳ୍ଲ—ବିଂ. ( ୬ତତ୍ ) ନେତ୍ରର ମୁଗ୍ଧକର।

ଚକ୍ଷୁର୍ମୟ—ବିଂ. (ଚକ୍ଷୁ+ମୟ) ଯାହାର ଅନେକ ଚକ୍ଷୁ ଅଛି। ( ଲୋତକ।

ଚକ୍ଷୁର୍ମଳ—କ୍ଲୀ. ବି. (୬ତତ୍) ନେତ୍ରମଳ,

ଚକ୍ଷୁର୍ଲଜ୍ଜା—ବି. ( ଜ.ଧା ) ମୋହବଶତଃ, ମୁହୂର୍ତ୍ତକ୍ରୋଧ, ଅଶିଷ୍ଟ ଆଚରଣହେତୁ ଲଜ୍ଜାବୋଧ ବା କୁଣ୍ଠାବୋଧ।

ଚକ୍ଷୁର୍ଲୋକ—ବିଂ. ଚକ୍ଷୁରେ ଦର୍ଶନ।

ଚକ୍ଷୁର୍ବନ୍ୟ—ବିଂ.ଚକ୍ଷୁରୋଗରେ ପୀଡ଼ିତ।

ଚକ୍ଷୁର୍ବନ୍ଧ—ବି. (୬ତତ୍) ଆଖିରେ ଅନ୍ଧପୋଟଳ ବାନ୍ଧିବା, ମନ୍ତ୍ରପ୍ରୟୋଗଦ୍ୱାରା ଦୃଷ୍ଟିଶକ୍ତିର ଲୋପକରଣ।

ଚକ୍ଷୁର୍ବର୍ଦ୍ଧନିକା—ସ୍ତ୍ରୀ. ବି. ଶାକଦ୍ୱୀପସ୍ଥ ନଦୀ ବିଶେଷ।

ଚକ୍ଷୁର୍ବର୍ଦ୍ଧନ—କ୍ଲୀ. ବି. (ଚକ୍ଷୁ+ବର୍ଦ୍ଧ୍+ଅନ) ମେଣ୍ଢାଶିଙ୍ଗାଗଛ।

ଚକ୍ଷୁର୍ବିଷୟ—ପୁଂ. ବି. (୬ତତ୍) ଚକ୍ଷୁର ଗ୍ରାହ୍ୟ ରୂପାଦି, ନେତ୍ରଗ୍ରାହ୍ୟର ସ୍ଥାନ, ଯେତେଦୂରପର୍ଯ୍ୟନ୍ତ ଦୃଷ୍ଟି ପଡ଼େ, (ବିଂ) ଦର୍ଶନୀୟ।

ଚକ୍ଷୁର୍ହା -ପୁଂ.ବିଂ.(ଚକ୍ଷୁଃ+ହନ+କ୍ୱିପ) ଯାହାର ଦୃଷ୍ଟି ପଡ଼ିଲେ ବିନାଶ ଘଟେ, ଦୃଷ୍ଟିନାଶକ, (ବି) ଏକପ୍ରକାର ସପ।

ଚକ୍ଷୁଷ୍ଟି ତ୍—ବିଂ.ଦୃଷ୍ଟିଶକ୍ତି ସଞ୍ଚୟକାରୀ।

ଚକ୍ଷୁଷ୍କର୍ଣ୍ଣ—ବି.ବହୁବ୍ରୀ; ଚକ୍ଷୁଃଶ୍ରବାଃ,ସର୍ପ।

ଚକ୍ଷୁଷ୍କାମ—ବିଂ. (ଚକ୍ଷୁସ୍+କାମ+ଅ) ଯେଉଁ ବ୍ୟକ୍ତି ଚକ୍ଷୁ କାମନା କରେ।

ଚକ୍ଷୁଷ୍ଟସ୍—ବିଂ.(ଚକ୍ଷୁସ୍+ତସ୍) ଚକ୍ଷୁରୁ, ଚକ୍ଷୁହେତୁକ।

ଚକ୍ଷୁଷ୍ପତି—ପୁଂ. ବି. ( ୬ତତ୍ ) ଚକ୍ଷୁର ଅଧିପତି ସୂର୍ଯ୍ୟ।

ଚକ୍ଷୁଷ୍ପା—ବିଂ. ( ଚକ୍ଷୁସ୍+ପା+କ୍ୱିପ୍) ଚକ୍ଷୁରକ୍ଷକ, ଯେ ଚକ୍ଷୁକୁ ରକ୍ଷାକରେ।

ଚକ୍ଷୁଷ୍ପୀଡ଼ା—ବି. ( ୬ତତ୍ ) ଚକ୍ଷୁଃପୀଡ଼ା ଦେଖ।

ଚକ୍ଷୁଷ୍ମତୀ—ସ୍ତ୍ରୀ.ବିଂ.ପ୍ରଖର ଦୃଷ୍ଟିସମ୍ପନ୍ନା।

ଚକ୍ଷୁଷ୍ମତ୍ତା—ସ୍ତ୍ରୀ.ବି.(ଚକ୍ଷୁଷ୍ମତ୍+ତ+ଆ) ପ୍ରଶସ୍ତଚକ୍ଷୁ, ପ୍ରଖର ଦୃଷ୍ଟିଶକ୍ତି, ସ୍ପଷ୍ଟ ଦେଖିପାରିବା।

ଚକ୍ଷୁଷ୍ମାନ୍—ପୁଂ. ବିଂ. ( ଚକ୍ଷୁସ୍+ମତ୍) ପ୍ରଶସ୍ତଲୋଚନଯୁକ୍ତ, ଦୃଷ୍ଟିଶକ୍ତିଯୁକ୍ତ।

ଚକ୍ଷୁଷ୍ୟ—ବିଂ. ( ଚକ୍ଷସ୍+ଯ ) ଚକ୍ଷୁର ହିତକର,ପ୍ରିୟଦର୍ଶନ,ସୁନ୍ଦରନେତ୍ରଜାତ, (ସ୍ତ୍ରୀ) ଚକ୍ଷୁଷ୍ୟା, (ପୁଂ.ବି) କେତେକବୃକ୍ଷ, ପୁଣ୍ଡରୀକବୃକ୍ଷ, ସଜନାଗଛ, ରସାଞ୍ଜନ, (କ୍ଲୀ.ବି.)ସୌବୀରାଞ୍ଜନ, ଖର୍ପରୀ, ତୁତିଆ, ପ୍ରପୌଣ୍ଡରୀକ ଗୁଳ୍ମ।

ଚକ୍ଷୁଷ୍ୟା – ସ୍ତ୍ରୀ.ବି. (ଚକ୍ଷୁଷ୍ୟ+ଆ) ଚକ୍ଷୁଷ୍ୟର ସ୍ତ୍ରୀଲିଙ୍ଗ, (ବି) କୋଳଥ, ମେଣ୍ଢାଶିଙ୍ଗା, ବନକୋଳଥ, ସୁନ୍ଦରୀ ସ୍ତ୍ରୀ, କଆ ଗଛ ।

ଚକ୍ଷୁସ୍-କ୍ଲୀ.ବି.(ଚକ୍ଷ୍+ଉସ୍) ଦର୍ଶନେନ୍ଦ୍ରିୟ, ଆଖି, ଶରୀରାବୟବ ।

ଚକ୍ଷୁଷ୍ଟିର – ବିଂ.ବି.ଗ୍ରା., ବିସ୍ମିତ, ଚମତ୍କୃତ, ମୂର୍ଚ୍ଛିତ, ହତବୁଦ୍ଧି, (ସ୍ତ୍ରୀ) ଚକ୍ଷୁଷ୍ଟିରା ।

ଚକ୍ଷୁରାଗ – ପୁଂ. ବି. (୬ତତ୍) ଚକ୍ଷୁର ରକ୍ତିମା, ଚକ୍ଷୁର ଆକର୍ଷକ ଅନୁରାଗବିଶେଷ ।

ଚକ୍ଷୁରୋଗ--ପୁଂ.ବି.(୬ତତ୍) ନେତ୍ରରୋଗ ।

ଚଖ – ପ୍ରା.ସଂ.ଦ୍ୱ, କ୍ରି.ଅସ୍ୱାଦ ପଜାଇବା ।

ଚଖା – ଗ୍ରା. ବି. (ସଂ-ଚକ୍ଷଣ) ଜିହ୍ୱାଦ୍ୱାରା ସ୍ୱାଦଗ୍ରହଣ, ଚାଖିବା କର୍ମ, (ପୁଂ. ଗ୍ରା. ବିଂ) ଯେ ସବୁ ପଦାର୍ଥ ଚାଖେ; କିନ୍ତୁ କୌଣସି ପଦାର୍ଥ ଖାଏନାହିଁ, ଯେ ଖାଦ୍ୟଦ୍ରବ୍ୟ କିଣିବା ବାହାନାରେ ସବୁ ଖାଦ୍ୟଦ୍ରବ୍ୟରୁ ଟିକିଏ ଟିକିଏ ଚାଖେ, କିନ୍ତୁ ଶେଷରେ ନ କିଣି ଚାଲିଯାଏ, (ଗାଳିରେ ବ୍ୟବହୃତ) ଯେ କୌଣସି ବିଷୟକୁ ଦୃଢ଼ଭାବରେ ନ ଧରି ଆଜି ଏ କାମ କାଲି ସେ କାମ କରେ ଓ ସବୁ କାମକୁ ଚାଖିଲାପରି ଚାଖି ଛାଡ଼ିଦିଏ, ଚଖା ହୋଇଥିବା ବସ୍ତୁ ।

ଚଖାଇବା – ଗ୍ରା. କ୍ରି. ଚାଖିବା କ୍ରିୟାର ଣିଜନ୍ତରୂପ, ଅନ୍ୟ ବ୍ୟକ୍ତିକୁ କୌଣସି ବସ୍ତୁ ଚାଖିବାର ସୁଯୋଗ ବା ଅନୁମତି ଦେବା ।

ଚଖାଚଖି – ଗ୍ରା.ବି.ଅନେକ ବସ୍ତୁକୁ ଚାଖିବା କର୍ମ, କୌଣସି ବସ୍ତୁର ସ୍ୱାଦ ପରସ୍ପରକୁ ଗ୍ରହଣ କରିବା, (ଲ.ଅର୍ଥ) ପରସ୍ପର ବଳ ବା ପରାକ୍ରମ ପରୀକ୍ଷା କରିବା, କସାକସି, ବିବାଦ, ବୈର, (ବିଂ) ପରସ୍ପର ବଳ କସାକସି ହେଉଥିବା ।

ଚଗ୍‌ଭାଇ – ଗ୍ରା. ବି. ତୁର୍କୀଜାତିର ଗୋଟିଏ ଶ୍ରେଣୀ ।

ଚଗଲ୍ – ଗ୍ରା.ବି.(ସଂ-ଚପଳ) ଅସ୍ଥିରତା, ଚପଳତା, ଅମନୋଯୋଗ, (ବିଂ) ଅସ୍ଥିର, ଅମନୋଯୋଗୀ ।

ଚଗଲ୍‌ବଗଲ୍—ଗ୍ରା.ବିଂ.ଚଞ୍ଚଳମତି, ଚପଳ, ଅସ୍ଥିର, (ବିଂ) ଅସ୍ଥିରତା, ଅନବସ୍ଥିତତା ।

ଚଗଲପଣ—ଗ୍ରା.ବି.ଦୁଷ୍ଟାମି, ଅସ୍ଥିରତା, ଅମନୋଯୋଗିତା ।

ଚଗଲା—ଗ୍ରା.ପୁଂ.ବିଂ.ଅସ୍ଥିରମନା, ଚପଳ, ଚଞ୍ଚଳମତି, ଅମନୋଯୋଗୀ, ଦୁଷ୍ଟ, ଅସ୍ଥିର, ଚଳନ୍ତ ବା କୃତ ବିଷୟରୁ ଅନ୍ୟ ଆଡ଼କୁ ଆକର୍ଷିତ ମନ ।

ଚଗଲିଆ – ଗ୍ରା.ପୁଂ.ବିଂ.ଚଗଲା, ଅସ୍ଥିର ।

ଚଗଲେଇବା—ଗ୍ରା.କ୍ରି. (ମନକୁ) ଅସ୍ଥିର କରିବା ବା ଚଞ୍ଚଳ କରିବା ।

ଚଘା—ଗ୍ରା.ବି. ଗୋରୁପ୍ରଭୃତି ପଶୁମାନଙ୍କର ରୋମନ୍ଥ, ପାକୁଳି ।

ଚଘିବା--ପ୍ରା.(ସମ୍ବ) କ୍ରି.ଆରୋହଣକରିବା, ଚଢ଼ିବା, ଅବରୋହଣ କରିବା, ଓହ୍ଲାଇବା ।

ଚଙ୍କ – ବି.ଉତ୍ତର ଭାରତରେ ଧାନକଟା ସମୟରେ ଆଚରିତ ଉତ୍ସବବିଶେଷ ।

ଚଙ୍କାଇବା – ଗ୍ରା. କ୍ରି. ଚଙ୍କିବା କ୍ରିୟାର ଣିଜନ୍ତରୂପ, ଘୁଞ୍ଚାଇବା, ସ୍ଥାନଚ୍ୟୁତ କରିବା ।

ଚଙ୍କି – ଗ୍ରା.ବି. ପାଣିକଲାଜାତୀୟ ଜଳଜ ଲତାବିଶେଷ ।

ଚଙ୍କିବା—ଗ୍ରା.କ୍ରି.ସାମାନ୍ୟ ମାତ୍ର ହଲିବା ବା ସ୍ଥାନାନ୍ତର ହେବା ।

ଚଙ୍କୁଣ – ପୁଂ. ବି. ପୁନଃ ପୁନଃ ଗମନ କରିବା, ରାଜା ଲଳିତାଦିତ୍ୟଙ୍କ ପ୍ରଧାନ ମନ୍ତ୍ରୀ ।

ଚଙ୍କ୍ରର—କ୍ଲୀ. ବି. (ଚଂକ୍ରମ୍+କ.ଉର) ଯାନ, (ପୁଂ.ବି) ରଥ, ଗାଡ଼ି, ଚକ୍ରବିଶିଷ୍ଟ ଯାନ ବୃକ୍ଷ, ଉଦ୍ଭିଦ ।

ଚଙ୍କ୍ରମଣ—କ୍ଲୀ. ବି. (କ୍ରମ୍+ଭା.ଅନ) ପୁନଃପୁନଃ ଭ୍ରମଣ, ବାରମ୍ବାର ଘୂରିବା, ଭ୍ରମଣ, ଧୀରଗତି, କୁଦା, ବକ୍ରଗମନ ।

ଚଙ୍କ୍ରମା—ସ୍ତ୍ରୀ. ବି. ପଥ, ବୁଲିବା ସ୍ଥାନ ।

ଚଙ୍କ୍ରାୟଣ – ପୁଂ. ବି. (ଚଙ୍କ+ଆୟଣ) ପ୍ରବରଭେଦ ।

ଚଙ୍ଗ—ବିଂ. (ଚମ୍+ଗମ୍+କ.ଅ) ସୁସ୍ଥ, ନିପୁଣ, ଦକ୍ଷ, ସୁନ୍ଦର, ଶୋଭାଯୁକ୍ତ, (ପୁଂ.ବି) ରାଜାତୁଙ୍ଗଙ୍କର ଅନ୍ତରଙ୍ଗବିଶେଷ, ଭୋଟ ଦେଶରେ ଚଳିତ ଏକପ୍ରକାର ମଦ୍ୟ, ମଲ୍ଲ, ଯୋଦ୍ଧା, ସୈନ୍ୟ, (ଗ୍ରା.ବି) ନକାସି କାମ ନ ଥିବା ସୁନା ରୁପାର ବଳୟ, ଚମକ, ଗଞ୍ଜାପାର ଆଠ ରଙ୍ଗରୁ ଏକରଙ୍ଗ, ସିତାର ଚଢ଼ା ହୋଇଥିବା ସୁର, (ଗ୍ରା. ବିଂ. ସଂ-ଜଙ୍ଗମ) ଅସ୍ଥିର, ଚଗଲା, ସ୍ଫୁର୍ତ୍ତିଯୁକ୍ତ, (ପ୍ରା. ସିଂହ-ବି) ଅସ୍ଥିରହେବା, ଅସ୍ଥିର ଭାବରେ ଏଣେତେଣେ ଦୃଷ୍ଟି କରିବା ।

ଚଙ୍ଗଚଙ୍ଗିଆ – ଗ୍ରା. ପୁଂ. ବିଂ. ଅସ୍ଥିର, ଅବ୍ୟବସ୍ଥିତ ଚିତ୍ତ, ସୁନ୍ଦର, ଯେ ସର୍ବଦା ଚମକେ ।

ଚଙ୍ଗୁଦାସ – ଗ୍ରା.ପୁଂ. ବି. ଜଣେ ବୌଦ୍ଧ ପଣ୍ଡିତ, ଚାଙ୍ଗୁ ନାମରେ ଖ୍ୟାତ ।

ଚଙ୍ଗିମା – ବି.(ଚଙ୍ଗ+ଇମନ୍) ସୌନ୍ଦର୍ଯ୍ୟ ।

ଚଙ୍ଗୁ – ଗ୍ରା.ବି.(ସଂ+ଚଙ୍ଗ୍) ଏକପ୍ରକାର ଆନନ୍ଦ ବାଦ୍ୟ, ଚାଙ୍ଗୁ ।

ଚଙ୍ଗୁମାଡ଼ – ଗ୍ରା. ବି. ଚଙ୍ଗୁବାଦ୍ୟ ବଜାଇବା, ଚାଙ୍ଗୁମାଡ଼ ।

ଚଙ୍ଗେରା – ପ୍ରା. (ସମ୍ବ) ବି.ଚଙ୍ଗେରା, ଚାଙ୍ଗଡ଼ା, ଚାରିକୋଣିଆ ଡାଲା ।

ଚଚ – ଗ୍ରା. ବି. ପଞ୍ଜାବର ରାବଲପିଣ୍ଡି ଜିଲ୍ଲାର ଗୋଟିଏ ଜନପଦ ।

ଚଚଣ୍ଡୀ – ସ୍ତ୍ରୀ.ବି.କ୍ଷୁଦ୍ର ଜିହ୍ୱା, ଘଣ୍ଟିକା ।

ଚଚର – ବିଂ.(ଚଚ+ଅ, ଦ୍ୱିତ୍ୱ) ଗମନଶୀଳ ।

ଚଚ୍ଚନ – ଗ୍ରା.ବି. କାଠିୟାବାଡ଼ର ଝାଲବାର ଅନ୍ତର୍ଗତ ଗୋଟିଏ କ୍ଷୁଦ୍ର ଅଞ୍ଚଳ ।

ଚଚେଣ୍ଡ୍ରିଲା – ସ୍ତ୍ରୀ.ବି. ଚଚେଣ୍ଡା, ପଟୋଳ ଲତା ସଦୃଶ ଲତାବିଶେଷ ।

ଚଚେଣ୍ଡା – ସ୍ତ୍ରୀ.ବି. ପଟୋଳ ଲତାସଦୃଶ ଲତାବିଶେଷ । [ ବିଶେଷ ।

ଚଚପୁଟ—ବି.ଚାଚପୁଟ, ସଙ୍ଗୀତର ତାଳ

ଚଢା—ଗ୍ରା.ବି.(ସଂ-ତାତ)କକେଇ,କନିଷ୍ଠ ପିତୃବ୍ୟ, (ସ୍ତ୍ରୀ) ଚଢୀ ।

ଚଚୁ—ଗ୍ରା.ବି. (ସଂ-ଚକ୍ଷୁଃ)ଚକ୍ଷୁ, ଆଖି ।

ଚଢା—ଗ୍ରା. ବି. (ସଂ-ତର୍ଜଧାତୁ) ଚଢା, ତର୍ଜନ, ଭୟପ୍ରଦର୍ଶନ ।

ଚଢାଚଢ—ଗ୍ରା.ବି ଓ ବିଂ.ଅନ୍ୟୋନ୍ୟରେ ଭୟ ଦେଖାଦେଖି, ଚଢାଚଢ଼ ।

ଚଢବା—ଗ୍ରା. କ୍ରି. ଚଢ଼ବା,ଧମକାଇବା, ତର୍ଜନ କରିବା, ଭୟ ଦେଖାଇବା ।

ଚଢମର୍କଟିହେବା—ଗ୍ରା. କ୍ରି. ଭୟଦେଖାଇ ମାଙ୍କଡ଼ପରି ଗର୍ଜିବା ବା ଖେଙ୍କାରି ହେବା ।

ଚଞ୍ଚ—ପୁଂ .ବି, (ଚଞ୍ଚ+ଅ) ପରିମାଣ ବିଶେଷ, ପାଞ୍ଚ ଆଙ୍ଗୁଳ ପରିମାଣ, ଟୋକେଇ, ବାଉଁଶିଆ ।

ଚଞ୍ଚକତା—ଗ୍ରା. ବି. କପଟତା, ଚଞ୍ଚଳ ।

ଚଞ୍ଚତ୍—ପୁଂ. ବି. (ଚଞ୍ଚ+କ.ଅତ୍) ଚଞ୍ଚଳ, ଅସ୍ଥିର, ଗତିଶୀଳ, ଦୋହଲୁଥିବା ।

ଚଞ୍ଚକ—ବିଂ. (ଚଞ୍ଚତ୍+କ) ଲମ୍ଫମାରୁଥିବା, କୁଦୁଥିବା, ଗତି କରୁଥିବା, ଅସ୍ଥିର ।

ଚଞ୍ଚତ୍କୁଠାରରସ—ପୁଂ. ବି. ଅର୍ଶରୋଗର ଔଷଧବିଶେଷ । [ବିଶେଷ ।

ଚଞ୍ଚତ୍ପୁଟ—ପୁଂ. ବି. ବାଦ୍ୟର ତାଳ-

ଚଞ୍ଚପଟ—ଗ୍ରା. ବି. ଏକପ୍ରକାର ଆନନ୍ଦ-ବାଦ୍ୟ, ଚଞ୍ଚୁପୁଟ ଦେଖ ।

ଚଞ୍ଚର—ପୁଂ.ବି(ଚଞ୍ଚର୍+କ.ଅ)ଭ୍ରମର ।

ଚଞ୍ଚରୀ—ସ୍ତ୍ରୀ.ବି. ( ଚଞ୍ଚର+ଇନ୍+ଈ ) ଭ୍ରମରୀ, ଗୀତବିଶେଷ, ହୋଲି ସମୟରେ ବୋଲଯିବା ଗୀତ ।

ଚଞ୍ଚରୀ—ପୁଂ.ବି.(ଚଞ୍ଚର+ଇନ୍)ଭ୍ରମର, (ସ୍ତ୍ରୀ.ବି. ଚଞ୍ଚର+ଈ)ଭ୍ରମରୀ, ହୋଲି-ସମୟରେ ବୋଲଯିବା ଗୀତ ।

ଚଞ୍ଚରୀକ—ପୁଂ. ବି. ଭ୍ରମର, (ସ୍ତ୍ରୀ.ବି) ଚଞ୍ଚରୀକା ।

ଚଞ୍ଚରୀକାବଳୀ—ସ୍ତ୍ରୀ.ବି. ୧୩ ଅକ୍ଷର ପାଦ ଛନ୍ଦୋବିଶେଷ, ଭ୍ରମରଶ୍ରେଣୀ ।

ଚଞ୍ଚଳ—ପୁଂ. ବି. (ଚଞ୍ଚ+ଅଳ)ପ୍ରେମିକ ବ୍ୟକ୍ତି, (ବିଂ) ଅବ୍ୟବସ୍ଥିତ, ଚପଳ, ଅସ୍ଥିର, ଥରୁଥିବା, କମ୍ପିତ, କାମୁକ, ଲମ୍ପଟ, ଲୋଲୁପ, (ସ୍ତ୍ରୀ) ଚଞ୍ଚଳା ।

ଚଞ୍ଚଳଚିତ୍ତ—ପୁଂ. ବିଂ. (ବ.ବ୍ରୀ) ଅସ୍ଥିର ହୃଦୟ, ଅବ୍ୟବସ୍ଥିତଚିତ୍ତ, ଉଦ୍‌ବିଗ୍ନ, (ସ୍ତ୍ରୀ) ଚଞ୍ଚଳଚିତ୍ତା ।

ଚଞ୍ଚଳଚେତାଃ—ପୁଂ. ବି. (ବ.ବ୍ରୀ) ଚଞ୍ଚଳଚିତ୍ତ ଦେଖ ।

ଚଞ୍ଚଳନୟନ—ବି. (କ.ଧା) ଇତସ୍ତତଃ ଘୂର୍ଣ୍ଣିତ ନେତ୍ର, ଅସ୍ଥିରଦୃଷ୍ଟି, (ବିଂ) ବ.ବ୍ରୀ;ଅସ୍ଥିରଦୃଷ୍ଟି, ଘୁରିଆଡ଼କୁ ଆଖି ବୁଲାଉଥିବା, (ସ୍ତ୍ରୀ) ଚଞ୍ଚଳନୟନା ।

ଚଞ୍ଚଳପ୍ରକୃତି—ପୁଂ. ବିଂ. (ବ.ବ୍ରୀ) ଯେ ସ୍ୱଭାବତଃ ଅସ୍ଥିର ।

ଚଞ୍ଚଳପ୍ରକୃତିକ—ପୁଂ.ବିଂ. ଚଞ୍ଚଳପ୍ରକୃତି ଦେଖ, (ସ୍ତ୍ରୀ) ଚଞ୍ଚଳପ୍ରକୃତିକା ।

ଚଞ୍ଚଳମନାଃ—ପୁଂ.ବିଂ. (ବ.ବ୍ରୀ)ଚଞ୍ଚଳଚିତ୍ତ ଦେଖ, ଚଞ୍ଚଳ ପ୍ରକୃତି ଦେଖ ।

ଚଞ୍ଚଳା—ସ୍ତ୍ରୀ.ବି. (ଚଞ୍ଚଳ+ଆ)ବିଦ୍ୟୁତ୍, ଲକ୍ଷ୍ମୀ, ପିପ୍ପଳୀ, (ସ୍ତ୍ରୀ.ବିଂ) ଚଞ୍ଚଳର ସ୍ତ୍ରୀଲିଙ୍ଗ, ଅସ୍ଥିରା,(ସ୍ତ୍ରୀ) ନଷ୍ଟଚରିତ୍ରା ।

ଚଞ୍ଚଳାକ୍ଷୀ—ସ୍ତ୍ରୀ. ବିଂ.(ଚଞ୍ଚଳ+ଅକ୍ଷ+ଈ)ବ.ବ୍ରୀ; ଯେଉଁ ସ୍ତ୍ରୀର ନୟନଯୁଗଳ ଅତିଶୟ ଚଞ୍ଚଳ ।

ଚଞ୍ଚଳାସ୍ୟ—ପୁଂ. ବି. ସୁଗନ୍ଧଦ୍ରବ୍ୟ ।

ଚଞ୍ଚଳିଆ—ଗ୍ରା.ପୁଂ.ବିଂ.ଯେ ସ୍ଥିରହୋଇ ରହି ନ ପାରେ, ଚଞ୍ଚଳସ୍ୱଭାବବିଶିଷ୍ଟ ।

ଚଞ୍ଚଳିତ—ବିଂ.(ଚଞ୍ଚଳ+କ.ତ) ବିଚଳିତ,ଅସ୍ଥିରୀକୃତ,ଚାଞ୍ଚଲ୍ୟଯୁକ୍ତ, ଚଞ୍ଚଳ ।

ଚଞ୍ଚଳୀ—ଗ୍ରା. ସ୍ତ୍ରୀ. ବିଂ. ଯେଉଁ ସ୍ତ୍ରୀ ଖୁବ୍ ଚଞ୍ଚଳ ବା ଫର୍ଚ୍ଚିରେ କାମ କରେ ।

ଚଞ୍ଚଳେଇ—ଗ୍ରା.ସ୍ତ୍ରୀ.ବିଂ. ଚଞ୍ଚଳୀ ଦେଖ ।

ଚଞ୍ଚା—ସ୍ତ୍ରୀ. ବି. ( ଚନଚ୍+ଅ+ଆ ) ବାଉଁଶ କାଠିରେ ନିର୍ମିତ ଆସ୍ତରଣ-ବିଶେଷ, ଚାଞ୍ଚ,ତଲେଇ,ମେଣ୍ଢା,ତୃଣ-ନିର୍ମିତ ପୁରୁଷାକୃତି ମୂର୍ତ୍ତି, ତୃଣନିର୍ମିତ ଆସନ, ମସିଣା, ମଦୁରୀ ।

ଚଞ୍ଚୁ—ପୁଂ. ବି. (ଚନ୍ଚ୍+ଉ)ଏରଣ୍ଡ ବୃକ୍ଷ, ରଙ୍ଗଜଡ଼ା, ନାଲିଜେରଣ୍ଡା,ବର୍ଷା ଦିନେ କଅଁଳିବା ପତ୍ର ଶାକବିଶେଷ, ପକ୍ଷୀର ଚଞ୍ଚୁ ବା ଥଣ୍ଟ ।

ଚଞ୍ଚୁକା—ସ୍ତ୍ରୀ. ବି. (ଚଞ୍ଚୁ+କ+ଆ) ପକ୍ଷୀର ଥଣ୍ଟ ।

ଚଞ୍ଚୁତୈଳ—କ୍ଲୀ. ବି. ଜଡ଼ାତେଲ ।

ଚଞ୍ଚୁପତ୍ର—ପୁଂ. ବି. ବ.ବ୍ରୀ; ଚଞ୍ଚୁଶାକ ବିଶେଷ ।

ଚଞ୍ଚୁପୁଟ—ପୁ.ବି.(କ.ଧା.)ପକ୍ଷୀର ଦୁଇ-ଥଣ୍ଟ ବୁଜାହୋଇଥିବା ଅବସ୍ଥା ।

ଚଞ୍ଚୁପ୍ରହାର—ବି. ( ଷତତ୍ପୁ ) ଥଣ୍ଟରେ ଠୁକିବା ବା ହାଣିବା, ଥଣ୍ଟମାରିବା, ଖୋମ୍ପିବା ।

ଚଞ୍ଚୁଭୃତ୍—ପୁଂ.ବି. (ଚଞ୍ଚୁ+ଭୃ+କ୍ୱିପ୍) ପକ୍ଷୀ ।

ଚଞ୍ଚୁମାନ୍—ପୁଂ.ବି.(ଚଞ୍ଚୁ+ମତୁ)ପକ୍ଷୀ, (ସ୍ତ୍ରୀ) ଚଞ୍ଚୁମତୀ ।

ଚଞ୍ଚୁର-ପୁଂ.ବି.(ଚଞ୍ଚୁ+ଉର) ପତ୍ରଶାକ ବିଶେଷ, (ବିଂ) ଦକ୍ଷ, ନିପୁଣ ।

ଚଞ୍ଚୁରୀ—ସ୍ତ୍ରୀ.ବି.(ଚଞ୍ଚୁର+ଈ) ବାସ୍ୟା-ଚଢ଼େଇ ।

ଚଞ୍ଚୁଲ—ପୁଂ. ବି. ବିଶ୍ୱାମିତ୍ର ମୁନିଙ୍କର ଗୋଟିଏ ପୁତ୍ରର ନାମ ।

ଚଞ୍ଚୁଶାକ—କ୍ଲୀ. ବି. ପତ୍ରଶାକବିଶେଷ ।

ଚଞ୍ଚୁସୂଚ—ପୁଂ.ସ୍ତ୍ରୀ.ବି. (ବ.ବ୍ରୀ) କାରଣ୍ଡ ପକ୍ଷୀ, ବାସ୍ୟାଚଢେଇ ।

ଚଞ୍ଚୁସୂଚକ—ପୁଂ.ସ୍ତ୍ରୀ. ବି. (ଚଞ୍ଚୁ+ସୂଚ+କ) କାରଣ୍ଡପକ୍ଷୀ, ବାସ୍ୟାଚଢେଇ ।

ଚଞ୍ଚୂ—ସ୍ତ୍ରୀ.ବି. (ଚଞ୍ଚୁ+ଊ)ଚଞ୍ଚୁଶାକ, ପକ୍ଷୀର ଥଣ୍ଟ ।

ଚଞ୍ଚୂକ—କ୍ଲୀ. ବି. ତୃଣୋକବିଶେଷ ।

ଚଞ୍ଛା—ଗ୍ରା. ବି. ଚାଞ୍ଛିବା, ଛଞ୍ଚା, ଆମ୍ବ ଆଦିରୁ ଚୋପାକାଟିବା, କାଠଆଦିକୁ ଚାଞ୍ଛି ସମାନକରିବା କର୍ମ,(ବିଂ) ଯାହା ଦେହରୁ ଚୋପାକୁ ଚାଞ୍ଛି ଆଣିଛି, ଚଞ୍ଛା ।

ଚଟ୍—ଗ୍ରା. ଅବ୍ୟ. ଅତିଶୀଘ୍ର, ଝଟିତ, ଝଟ, ଚଞ୍ଚଳ । [ଭୁବନ୍ତ ।

ଚଟ୍‌କରି—ଗ୍ରା.କ୍ରି.ବିଂ.ଅତିଶୀଘ୍ର,ସତ୍ୱର,

ଚଟ୍‌ପଟ୍—ଗ୍ରା. ଅବ୍ୟ. ଚଟ୍ ଦେଖ; (ଧ୍ୱନ୍ୟନୁକରଣେ) ଘୋଡ଼ାର ଚମରେ ଖୁର ଘଷିବାର ଶବ୍ଦ, ସ୍ଫୂର୍ତ୍ତିସହିତ ।

ଚଟ—ଗ୍ରା. ବି. ଥଳି, ବୋରା, ଅଖା, ଚଟେଇ, ମସିଣା, (ପ୍ରା. ମେଦ) ବି. ଖୋଟ।

ଚଟକ—ପୁଂ. ବି. (ଚଟ + କ. ଅକ) କଲବିଙ୍କପକ୍ଷୀ, ଘରଚଟିଆ।

ଚଟକଣା—ଗ୍ରା. ବି. ଚାପୁଡ଼ା।

ଚଟକଣି—ଗ୍ରା.ବି. ଛୋଟଚାପୁଡ଼ା, ଚାପୁଡ଼ା।

ଚଟକଲ—ଗ୍ରା. ବି. ଯେଉଁକଲରେ ଅଖା ବା ବସ୍ତା ତିଆରି ହୁଏ।

ଚଟକା—ସ୍ତ୍ରୀ. ବି. (ଚଟକ + ଆ) ମାଈ ଘରଚଟିଆ, ମାଈ ଘରଚଟିଆ ଛୁଆ, ଶ୍ୟାମା ପକ୍ଷୀ, ପିପ୍‌ପଲାମୂଳ, (ଗ୍ରା.ବିଂ) ଚେପଟା, ମଲଗିରିର ଦୁଇକୋଶ ଦୂରରେ ଅବସ୍ଥିତ ଗୋଟିଏ ସମତଳ, ନଟ୍ଟଣୀ।

ଚଟକାମୁଖ—କ୍ଳୀ. ବି. (ବ.ବ୍ରୀ) ଅସ୍ତ୍ରବିଶେଷ।

ଚଟକାମୁହାଁ—ଗ୍ରା. ବିଂ. ଯାହାର ମୁହଁ ଚେପଟା, (ସ୍ତ୍ରୀ) ଚଟକାମୁହିଁ।

ଚଟକାର—ବିଂ. ଚଟକା, ଚେପଟା।

ଚଟକାଶିରଃ—ପୁଂ.ବି.(ବହୁବ୍ରୀ) ପିପ୍‌ପଲାମୂଳ, ବଣପିପ୍‌ଲି।

ଚଟକିକା—ସ୍ତ୍ରୀ.ବି.(ଚଟକ + ଇକ + ଆ) ଚଟିକା।

ଚଟଚଟ—ଗ୍ରା. ଅବ୍ୟ. (ଧ୍ୱନ୍ୟନୁକରଣ) ସୁଦାହ୍ୟ ପଦାର୍ଥରେ ଚଞ୍ଚଳ ଅଗ୍ନି ଲାଗିବାର ଶବ୍ଦ, ବାହୁକୁ ଭୂମିରେ ଆଘାତ କରିବା ଓ ଚପେଟାଘାତରୁ ଜାତ ଶବ୍ଦ, (ଗ୍ରା.ବିଂ.) ଅଠାଳିଆ, ଅଠା ପରି ଲାଗିବା, (କ୍ରି.ବିଂ) ଅବିଳମ୍ବେ, ଅତି ଚଞ୍ଚଳ।

ଚଟଚଟା—ଅବ୍ୟ. (ଧ୍ୱନ୍ୟନୁକରଣ) ଅଗ୍ନି ଲାଗିବାର ଚଡ଼ଚଡ଼ ଶବ୍ଦ।

ଚଟଚଟାସ୍ୱନ—ବି. ଚଡ଼ଚଡ଼ ଶବ୍ଦ।

ଚଟଚଟିଆ—ଗ୍ରା.ବିଂ. ଚଟଚଟ୍ ଦେଖ।

ଚଟଚାଟ୍—ଗ୍ରା. ଅବ୍ୟ, ବିଂ ଓ କ୍ରି. ବିଂ. ଚଟଚଟ୍ ଦେଖ।

ଚଟଣି—ଗ୍ରା. ବି. ଖଟାଫଳ ଲୁଣ ଲଙ୍କା ଓ ମିଠା ଏକତ୍ର ବଟାଯାଇ ପ୍ରସ୍ତୁତ ରୁଚିକର ଅମ୍ଳପ୍ରଧାନ ଲେହ୍ୟ, ଚଟୁଣି, (ଲ. ଅର୍ଥ) ପ୍ରୀତିପ୍ରଦ କଥା, ରସିକତାପୂର୍ଣ୍ଣ ବାକ୍ୟ।

ଚଟଣିକରିବା—ଗ୍ରା. କ୍ରି. କୌଣସି ଅମ୍ଳ ପଦାର୍ଥକୁ ବାଟି ଲେହ୍ୟରେ ପରିଣତ କରିବା, (ଲ.ଅର୍ଥ) ଦଳିବା, ଧ୍ୱସ୍ତବିଧ୍ୱସ୍ତ କରିବା।

ଚଟଣିପତ୍ର—ଗ୍ରା. ବି. ଧନିଆଁ ପତ୍ର।

ଚଟତ୍କାର—ବିଂ. (ଚଟତ୍ + କୃ ଅ) ଅସ୍ଫୁଟଶବ୍ଦକାରକ, (ବି. ଭା.ଅ) ଅସ୍ଫୁଟ ଶବ୍ଦକରଣ।

ଚଟନ—ବି. (ଚଟ୍ + ଭା.ଅନ) ଫଟାଇବା, ଫାଳେଇବା, ଚିକିଟିକିହୋଇ ଭାଙ୍ଗିଯିବା।

ଚଟପଟ—ଗ୍ରା. ଅବ୍ୟ. ତ୍ୱରିତ, ଅତିଶୀଘ୍ର।

ଚଟପଟି—ଗ୍ରା. ବି. (ଫ-ଚର୍ମପଟ) ଯେଉଁ ଚମଡ଼ାରେ ଭଣ୍ଡାରି ଖୁରଦାଢ଼ିକୁ ମସୃଣ କରେ, ହ୍ୱାସ।

ଚଟପଟିଆ—ଗ୍ରା. ପୁଂ ଓ ସ୍ତ୍ରୀ. ବିଂ. ଅତି ଚଞ୍ଚଳ, ତ୍ୱରିତ।

ଚଟରପଟର—ଗ୍ରା. ଅବ୍ୟ. ଚଟ୍‌ପଟ୍ ଦେଖ।

ଚଟଲଫିରଙ୍ଗି—ପ୍ରା. (ଗଞ୍ଜାମ) ବି. ରୋଗବିଶେଷ।

ଚଟା—ଗ୍ରା. ବି.(ଫ-ଚକ୍ଷଣ) ଚାଟିବା କର୍ମ, କୁମ୍ଭାରମାନେ କଞ୍ଚା ହାଣ୍ଡିକୁ ଯେଉଁ ଚଟକା ବା କାଠର କୋବ ଦ୍ୱାରା ଚାପଡ଼ାନ୍ତି, (ଗ୍ରା.ବିଂ.) ଯେ ଚାଟେ, (ଗାଳି) ଅଇଣ୍ଠା ଖିଆ, କ୍ଷୁଦ୍ର, ସାନ (ଶିଶୁ), (ପ୍ରା.ମେଦ, ବି) ରାଗ, କ୍ରୋଧ, ରାଗିବା, (ପ୍ରା.ସମ୍ବ. ବି) ଚଢ଼ୁ, (ବିଂ) ଚେପଟା, ଚଟକା, ଶୃଖିଳ।

ଚଟାଇ—ଗ୍ରା. ବି. ତୃଣାସନ, ମସିଣା, ସ୍ଥା. (ସମ୍ବ) ବି. ତଲେଇ, ବାଉଁଶ ପାତିଆର ପଟି।

ଚଟାଇବା—ଗ୍ରା.କ୍ରି. ଚାଟିବାର ଣିଜନ୍ତରୂପ, ଅନ୍ୟବ୍ୟକ୍ତିକୁ ଚାଟିବାପାଇଁ ବାଧ କରାଇବା।

ଚଟାକ୍—ଗ୍ରା. କ୍ରି. ବିଂ. ଝଟ୍, ତୁରନ୍ତ।

ଚଟାଚଟ୍—ଗ୍ରା. କ୍ରି. ବିଂ. ଅତି ଶୀଘ୍ର, ବିଳମ୍ବ ନ କରି।

ଚଟାଚଟି—ଗ୍ରା. ବି. (ପଶୁମାନଙ୍କର) ପରସ୍ପର ଦେହକୁ ଚାଟିବା କର୍ମ, ରଗାରଗି—ପରସ୍ପର ପ୍ରତି ରାଗିବା, (ଗ୍ରା.ବିଂ) ପରସ୍ପର ଦେହକୁ ଚାଟୁଥିବା, ପରସ୍ପର ପ୍ରତି କ୍ରୋଧ।

ଚଟାଙ୍ଗ୍—ପ୍ରା. (ସମ୍ବ)ବି. ଚଟୁକାଠି।

ଚଟାଣ—ଗ୍ରା. ବି. ସମତଳଭୂମି, ପଥୁରିଆ ସମତଳ, ଗୃହତଳ, କୋଠାଘରର ପକ୍କା ସମତଳ।

ଚଟାତ୍—ଗ୍ରା.ଅବ୍ୟ.ହଠାତ୍, ତତ୍‌କ୍ଷଣାତ୍, ଶୀଘ୍ର।

ଚଟାଫଳ—ପୁଂ. ବି. ନାରିକେଳ।

ଚଟାଳ—ଗ୍ରା. କ୍ରି. ବିଂ. ଶୀଘ୍ର।

ଚଟାଳିଆ—ଗ୍ରା. ବିଂ. ଈଷତ୍‌ଚେପ୍‌ଟା।

ଚଟି, ଚଟୀ—ଗ୍ରା. ବି. ପାନ୍ଥଶାଳା, ଦୁର୍ଗମ ରାସ୍ତାର ମଧ୍ୟସ୍ଥିତ ପାନ୍ଥଶାଳା, ପଛ ନଥିବା ଯୋତା, (ପ୍ରା.ମେଦ-ବାଲେ. ବି. କ୍ଷୁଦ୍ର ବହି, (ବିଂ) କ୍ଷୁଦ୍ର, ସାନ, ପତଳା।

ଚଟିଆ—ଗ୍ରା. ବି. ଘରଚଟିଆ ଚଢ଼େଇ, ଏକପ୍ରକାର ଛୋଟମୂଷା, (ଗ୍ରା.ବିଂ) କ୍ଷୁଦ୍ର, ସାନ।

ଚଟିକା—ସ୍ତ୍ରୀ. ବି. (ଚଟକ + ଆ) ମାଈ ଘରଚଟିଆ ପକ୍ଷୀ, ପିପ୍‌ପଲାମୂଳ।

ଚଟିକାଶିରଃ—କ୍ଳୀ.ବି. (ବ.ବ୍ରୀ) ପିପ୍‌ପଲାମୂଳ।

ଚଟିବା—ପ୍ରା.(ମେଦ) କ୍ରି. କ୍ରୁଦ୍ଧହେବା, ରାଗିବା।

ଚଟୁ—ପୁଂ ବି.(ଚଟ + ଣ.ଉ) ପ୍ରିୟବାକ୍ୟ, ଚାଟୁ, ଉଦର, ବ୍ରତୀମାନଙ୍କର ଆସନ ବିଶେଷ, (ଗ୍ରା.ବି) ବ୍ୟଞ୍ଜନାଦି ଘାଣ୍ଟିବାପାଇଁ ବ୍ୟବହୃତ ଚେପ୍‌ଟା ଦଣ୍ଡ, ଦର୍ବୀ, କରଚୁଲି।

ଚଟୁଆ—ଗ୍ରା. ବି. (ଫ.କଟି) ଫଡ଼ିଆ, ପିଠି ଓ ଜଙ୍ଘମଧ୍ୟସ୍ଥ ଅଂଶ, ମୃଗାଦିର ଫଡ଼ିଆ, ଧାନକିଆରିରେ ଜନ୍ମିବା ଏକପ୍ରକାର ଘାସ, (ପ୍ରା.ସମ୍ବ. ବି) ସାନଚଟୁ।

ଚଟୁଚଲାଇବା—ଗ୍ରା. କ୍ରି. ଚଟୁଦ୍ୱାରା ପାକହାଣ୍ଡିରେ ଥିବା ବସ୍ତୁକୁ ଘାଣ୍ଟିବା (ଲ.ଅର୍ଥ) ବହୁବ୍ୟକ୍ତିଙ୍କମଧ୍ୟରେ ଆପଣାର

ଜାଣିବାପଣ ବା ବାହାଦୁର ଦେଖାଇ ହେବା ବା ପ୍ରୌଢ଼ି କରିବା, କିଛୁ ନ ବୁଝି ନ ସୁଝି ଗୋଟିଏ ଅଖଡ଼ୁଆ ଆଦେଶ ଜାରିକରିବା ।

ଚଟ୍ଟୁହାସ—ଗ୍ରା. ବି. ଲୁହାର ଚଟ୍ଟୁକୁ ନିଆଁରେ ତତାଇ ସେକିବା, ( ବିଂ ) ଭସ୍ମ ବା ଲଜ୍ଜାରେ ବିବର୍ଣ୍ଣ ।

ଚଟୁଳ—ବିଂ. (ଚଟ + କ.ଉଲ) ଚଞ୍ଚଳ, ଚପଳ, ସୁନ୍ଦର, ଅସ୍ଥିର, ପ୍ରିୟବାଦୀ, (ସ୍ତ୍ରୀ) ଚଟୁଳା ।

ଚଟୁଳା—ସ୍ତ୍ରୀ.ବି.(ଚଟୁଳ + ଆ)ବିଦ୍ୟୁତ୍ ଗାୟତ୍ରୀରୂପା ଭଗବତୀ ।

ଚଟୁଲୋଳ—ବିଂ.(କ.ଧା) ଗୃଟୁକାରକ, ଚଞ୍ଚଳ, ସୁନ୍ଦର, ଅତିଶୟ ଚଞ୍ଚଳ, ଗୃଟୁକାରୀ । [ଦେଖ ।

ଚଟୁଲୋଳ—ବିଂ. (ଷତତ୍) ଚଟୁସେଲ

ଚଟେଇ—ଗ୍ରା.ବି. ଚଟାଇ ଦେଖ, (ପ୍ରା. ଯାଜପୁର. ବି) ନଡ଼ିଆଛପା, ଗୁଞ୍ଜ ।

ଚଛ—ବି. ଛନ୍ଦ, ଗୃଟ, ଶିଷ୍ୟ, ଚେଲା ।

ଚଛୋପାଧ୍ୟାୟ—ବି. ବଙ୍ଗୀୟ ବ୍ରାହ୍ମଣମାନଙ୍କ ଉପାଧିବିଶେଷ ।

ଚଠା—ଗ୍ରା. (ସମ୍ବ) ବିଂ. ଉଦରମ୍ଭରି, ପେଟୁ, ବିନା ନିମନ୍ତ୍ରଣରେ ଭୋଜନ ସ୍ଥାନକୁ ଯିବା (ବ୍ୟକ୍ତି), ଡାହାଣା, ଅଇଣ୍ଠା ଚଠା ।

ଚଡ଼୍ ଚଡ଼୍—ଗ୍ରା.ଅବ୍ୟ. (ଧ୍ୱନ୍ୟାନୁକରଣ) ଉପର୍ଯ୍ୟୁପରି ଗୁଳିଫୁଟା ବାଜିବାର ଶବ୍ଦ, ଧାନ ଭାଜିବା ସମୟରେ ଖଇ ଫୁଟିବାର ଶବ୍ଦ, ଜଳନ୍ତା ନିଆଁରେ ଜଳୁଥିବା କାଠର ଶବ୍ଦ, ଶୁଖିଲା କାଠ ବା ବକଲ ଫାଟିଯିବାର ଶବ୍ଦ, (ଗ୍ରା. କ୍ରି.ବିଂ) ଚଡ଼ଚଡ଼ ଶବ୍ଦକରି, ଅତି ଚଞ୍ଚଳ, ଶୀଘ୍ର ଚାହିଁ ।

ଚଡ଼ଚଡ଼ିଆ—ଗ୍ରା. ବିଂ. ଚଡ଼ଚଡ଼ ଶବ୍ଦକାରୀ ।

ଚଡ଼୍ଗୁଡ଼—ଗ୍ରା. ଅବ୍ୟ (ଧ୍ୱନ୍ୟାନୁକରଣ) ଚଡ଼ଚଡ଼ ଦେଖ ।

ଚଡ଼—ବି. ( ସଂ-ଚପେଟ ) କରତଳ ଚାପଡ଼ା, ନଦୀ ଗର୍ଭରୁ ଉତ୍ଥିତ ନୂତନ ଜମି ।

ଚଡ଼କ—ଗ୍ରା.ବି. ବଜ୍ରସୂଚ, ଚୈତ୍ରମାସ ସଂକ୍ରାନ୍ତିରେ ଅନୁଷ୍ଠେୟ ବ୍ରତବିଶେଷ ।

ଚଡ଼କପକାଇବା—ଗ୍ରା. କ୍ରି. (ଲ.ଅର୍ଥ) ନାଶ କରିବା, ବିନଷ୍ଟ କରାଇବା ।

ଚଡ଼କ ପଡ଼ିବା—ଗ୍ରା. ବି. ବଜ୍ରପାତ,(ଲ. ଅର୍ଥ) ସର୍ବନାଶ ଘଟିବା ।

ଚଡ଼କ ପୂଜା—ପ୍ରା.(ମେଦନୀ)ବି. ଓଡ଼ିଶାର ପାଟୁଆ ଉତ୍ସବ ।

ଚଡ଼କବାଜ—ଗ୍ରା.ବି.ଚଡ଼୍ ଚଡ଼୍ ଶବ୍ଦକରି ଫୁଟିବା ଏକ ପ୍ରକାର ବାଣ ।

ଚଡ଼କସଂକ୍ରାନ୍ତି—ପ୍ରା.ବି.(ମେଦନୀ.ବାଲେ) ପଣାସଂକ୍ରାନ୍ତି, ଚୈତ୍ରସଂକ୍ରାନ୍ତି ।

ଚଡ଼କା—ଗ୍ରା. ବି. (ସଂ-ଚର୍ଚ୍ଚରୀ)ବାଦ୍ୟବିଶେଷ, ଚର୍ଚ୍ଚରୀବାଦ୍ୟ, କାଠ ବା ଧାତୁ ବା କାଚରେ ଖୁବ୍ ସରୁ ଫଟାଦାଗ ।

ଚଡ଼କାଇବା—ଗ୍ରା.କ୍ରି. (ଧ୍ୱନ୍ୟାନୁକରଣ) ଚଡ଼କିବାର ଣିଜନ୍ତରୂପ, ଫଟାଇବା, ଭୟରେ ସ୍ତମ୍ଭିତ ବା ଚମକିତ କରିବା ।

ଚଡ଼କିବା—ଗ୍ରା. କ୍ରି. ( ଧ୍ୱନ୍ୟାନୁକରଣ ) ଚଡ଼ଚଡ଼ ଶବ୍ଦ କରିବା, ଲୁଣ ନିଆଁରେ ଚଡ଼ଚଡ଼ ହୋଇ ଫୁଟିବା, (ପଟାଆଦି) ଚଡ଼ଚଡ଼ ହୋଇ ଫାଟିଯିବା, (ବିଜୁଳିଆଦି)ଘନଘନ ଝଟକିବା,(ମନ)ଚକିତ ବା ସନ୍ତ୍ରସ୍ତହେବା, (କାଦୁଅମାଟି) ଶୁଖି ଫାଟିଯିବା । [କରିବା ।

ଚଡ଼ଚଡ଼ାଇବା—ଗ୍ରା. କ୍ରି. ଚଡ଼ଚଡ଼ ଶବ୍ଦ

ଚଡ଼ଚଡ଼ି—ଗ୍ରା. ବି. ବଜ୍ରପାତ, ଚଡ଼କ, ବଜ୍ରସୂଚ, ସନ୍ତୁଳା ତିଅଣ, ଅଳ୍ପ ରସାବଶିଷ୍ଟ ବ୍ୟଞ୍ଜନ ।

ଚଡ଼ଗୁପଡ଼—ଗ୍ରା.ବି. ଗୁପୁଡ଼ା, ଗୁପୁଡ଼ାରୂପ ଦଣ୍ଡ ।

ଚଡ଼ତି—ପ୍ରା. ବି. (ମେଦନୀ)ଆରୋହଣ, ଊର୍ଦ୍ଧ୍ୱଗମନ,ବୃଦ୍ଧି, ବଢ଼ିବା,ମୂଲ୍ୟବୃଦ୍ଧି ।

ଚଡ଼ା—ଗ୍ରା. ବି. ନଦୀଗର୍ଭରେ ବନ୍ୟାବେଳେ ସ୍ରୋତ ଦ୍ୱାରା ସଞ୍ଚିତ ବାଲି ବା ପଟୁ, ପଟା ।

ଚଡ଼ାପଡ଼ିବା-ଗ୍ରା.ବି.ନଦୀଗର୍ଭରେ ସ୍ରୋତ ଦ୍ୱାରା ଏକ ସ୍ଥାନରେ ଗୁଡ଼ିଏ ବାଲି ବା ମାଟି ଜମା ହୋଇଯିବା ।

ଚଡ଼ୁ—ଗ୍ରା. ବି.ରୋଗ ନିବାରଣାର୍ଥ ତପ୍ତ ଲୌହଦ୍ୱାରା ଜୀବ ଶରୀର ଶିରାରେ ଦିଆଯିବା ଦାଗ,ଚଆଁ, ବାଣୀ ।

ଚଡ଼ୁକାଠି—ଗ୍ରା. ବି. ଯେଉଁ ଲୌହ ଶଲାକାର ଅଗ୍ରଭାଗ ତତାଇ ଦାଗନ୍ତି ।

ଚଡ଼ୁଦିନବା—ଗ୍ରା. କ୍ରି. ଦଗାଇହେବା, ଆପଣା ଶରୀରରେ ଚଡ଼ୁଦାଗ ଗ୍ରହଣ କରିବା ।

ଚଡ଼ୁଦେବା—ଗ୍ରା. କ୍ରି. ଅନ୍ୟ ଶରୀରରେ ଚଡ଼ୁକାଠି ତତାଇ ଓ ଚେଙ୍କିବା ବା ଦାଗିବା ।

ଚଡ଼େଇ—ଗ୍ରା. ବି. ଚଢ଼ାଇ, ଛୋଟପକ୍ଷୀ, ପକ୍ଷୀ ।

ଚଢ଼ଉ—ଗ୍ରା. ବି. ଉଠାଣି, ଉଠିବାକର୍ମ, ଚଢ଼ାଉ, ଆକ୍ରମଣ ।

ଚଢ଼ଉଘୋଡ଼ା—ଗ୍ରା.ବି. ଯେଉଁ ଘୋଡ଼ାର ପଛପାଖ ଚମଡ଼ା ଗୋଇଠି ଉପରକୁ ଉଠିଯାଏ ।

ଚଢ଼ା—ଗ୍ରା.ବି.ଆରୋହଣ,ଉଠିବା, (ବିଂ) ମହର୍ଘ, ଦୁର୍ମୂଲ୍ୟ, ଉଚ୍ଚୈଃସ୍ୱରବିଶିଷ୍ଟ, କଠିନ, ଆରୋହୀ, ଉଦ୍ଧତ (ସ୍ୱଭାବ), ଉଠାଣିଆ (ରାସ୍ତା), ଉଚ, ଅଧିକ ।

ଚଢ଼ାଇ—ଗ୍ରା. ବି. ଛୋଟପକ୍ଷୀ, ପକ୍ଷୀ ।

ଚଢ଼ାଇବା—ଗ୍ରା.କ୍ରି.ଚଢ଼ିବାର ଣିଜନ୍ତରୂପ, ଆରୋହଣ କରାଇବା, ଉପରକୁ ଉଠାଇବା, ଉତ୍ତୋଳିତ କରିବା, ରେଳ ଜାହାଜ ବା ଯାନରେ ଯାତ୍ରୀଙ୍କୁ ଆରୋହଣ କରିବାର ସୁବିଧା କରିଦେବା, (ଔଷଧ) ନିଜେ ଖାଇବା ବା ପରକୁ ଖୁଆଇବା, (ମାଡ଼) ମାରିବା, (ଯନ୍ତ୍ରର ତାର) କସିବା, ଭିଡ଼ିବା, (ପୋଷାକ) ନିଜେ ପିନ୍ଧିବା, (ଧନୁରେ) ଗୁଣଦେବା, (ନିଶା)ଖାଇବା, (ଦେବବିଗ୍ରହ ଆଦିରେ ଫୁଲଆଦି)ଲାଗିକରିବା, ନିଜ କାନ୍ଧ ବା ପିଠି ଉପରେ ଅନ୍ୟକୁ ବହିବାକୁ ସମର୍ଥନ କରିବା ।

ଚଢ଼ାଇମାରୁ—ଗ୍ରା.ବି. ବ୍ୟାଧ, ଯେ ପକ୍ଷୀ ଧରି ଜୀବିକା ନିର୍ବାହ କରେ ।

ଚଢ଼ାଉ—ଗ୍ରା.ବି.ଆକ୍ରମଣ, ବହୁସଂଖ୍ୟାରେ ଏକ ସ୍ଥାନରେ ପ୍ରବେଶ; ସୈନିକଦ୍ୱାରା ରାଜ୍ୟାଦି ଆକ୍ରମଣ ।

ଚଢ଼ାଉତ୍ରାକରିବା—ଗ୍ରା. କ୍ରି. ତଳୁ-ଜାଗାରେ ତଳୁ ଉପରକୁ ଓ ଉପରୁ ତଳକୁ ଆସିବା ଓ ଯିବା ।

ଚଢ଼ାଉତ୍ରର—ଗ୍ରା.ବି. କୌଣସି ପଦାର୍ଥକୁ ଉପରକୁ ଉଠାଇବା ଓ ତଳକୁ ଓହ୍ଲାଇ ଆଣିବା, ଉଠାଣି ଓ ଗଡ଼ାଣି, ପ୍ରଶ୍ନ ଓ ଉତ୍ତର ଉତ୍ତର, ଉପରକୁ ଉଠିବା ଓ ତଳକୁ ଖସିବା, ଖୁବ୍ କଡ଼ା ସ୍ୱର ଓ ଖୁବ୍ ନରମା ସ୍ୱର ।

ଚଢ଼ାକଥା—ଗ୍ରା. ବି. ପ୍ରୁରୁଷୋକ୍ତି, କ୍ରୁଦ୍ଧଭାବେ କହିବା, କଥାରେ ତେଜସ୍ୱିତା ପ୍ରକାଶ ।

ଚଢ଼ାଚଢ଼ି—ଗ୍ରା. ବି. ପରସ୍ପର ଉପରେ ଚଢ଼ିବା,ବହୁବାର ଆରୋହଣ,(ଅଶ୍ଳୀଳ) ମୈଥୁନ କ୍ରିୟା ।

ଚଢ଼ାଦର—ଗ୍ରା·ବିଂ.ମହାର୍ଘ, ଅଧିକମୂଲ୍ୟ ।

ଚଢ଼ାଳି—ଗ୍ରା. ପୁଂ. ବିଂ. ଘୋଡ଼ା ଚଢ଼ିବାରେ ଅଭ୍ୟସ୍ତ, ଆରୋହଣକୋଶଳ, ( ବୃକ୍ଷାଦି ) ଯେ ବେଶି ପରିମାଣରେ ଚଢ଼ିପାରେ ।

ଚଢ଼ିବା—ଗ୍ରା. କ୍ରି. ଆରୋହଣ କରିବା, ବୃଦ୍ଧିହେବା, ମହାର୍ଘହେବା, ( ସ୍ୱର ) ଉଚ୍ଚତର ବା କର୍କଶତର ହେବା,(ପ୍ରକୃତି) କଡ଼ା ହେବା,(ଅଶ୍ଳୀଳ)ସହବାସ କରିବା ।

ଚଢ଼େଇଗୋଡ଼—ଗ୍ରା. ବି. ପାଣିକୂଳରେ ଜନ୍ମିବା ଜଙ୍ଗଲ ବୁଦାଳିଆ ବୃକ୍ଷବିଶେଷ, ଏକପ୍ରକାର ଶାଗ ।

ଚଢ଼େଇମାରୁମରାବେଳ-ଗ୍ରା. ବି. ସନ୍ଧ୍ୟାର ଠିକ୍ ପୂର୍ବକାଳ ।

ଚଣ—ପୁଂ.ବି. (ଚଣ+ଅ)ଶସ୍ୟବିଶେଷ, ଚଣା, ସୋଲ ।

ଚଣକ—ପୁଂ. ବି. ( ଚଣ+ସଂ.ଅକ ) ଚଣା, ବୁଟ, ସୋଲ, ମୁନିବିଶେଷ ।

ଚଣକା—ସ୍ତ୍ରୀ. ବି. ଅତସୀ ।

ଚଣକାତ୍ମଜ—ପୁଂ.ବି. (ଷତତ୍) ଗୁଣକ୍ୟ, ବାତ୍ସ୍ୟାୟନମୁନି ।

ଚଣକାମ୍ଳ—କ୍ଳୀ. ବି. ଚଣକ ଲବଣ, ବୁଟ ଶାକକୁ ସିଝାଇ ତହିଁରୁ ପ୍ରସ୍ତୁତ କରିବା ଏକପ୍ରକାର ଲବଣ ।

ଚଣଦ୍ରୁମ—ପୁଂ. ବି. କ୍ଷୁଦ୍ର ଗୋକ୍ଷୁର ।

ଚଣପତ୍ରୀ—ସ୍ତ୍ରୀ.ବି. (ବ.ବ୍ରୀ)ରୁଦନ୍ତୀବୃକ୍ଷ ।

ଚଣଶକ୍ତୁ—ପୁଂ.ବି.(ଷତତ୍)ବୁଟଛତୁଆ ।

ଚଣା—ଗ୍ରା. ବି. ବୁଟପରି ଏକପ୍ରକାର ଶସ୍ୟ, ଆମ୍ବବଉଳରୁ ବାହାରିବା ଚଣାପରି କ୍ଷୁଦ୍ର କଷି, ଖେସାରି ।

ଚଣାଚଣ୍ଟା—ଗ୍ରା. ପୁଂ. ବିଂ. ( ଲୋକ ) ବେହିଆ, ନିକୁଟା ।

ଚଣାଚୁର୍—ଗ୍ରା.ବି. ଲୁଣ ରାଗ ଓ ମସଲା ଦିଆ ଚଣା ବା ବୁଟଭଜା ।

ଚଣାଧରିବା-ଗ୍ରା.ବି.ଆମ୍ବବଉଳରୁ ପ୍ରଥମେ ଚଣାପରି ଅତି ଛୋଟ କଷି ବାହାରିବା ।

ଚଣାଫଳ—ଗ୍ରା. ବି. ଶଗଡ଼ର ଉଧିର ଆଗ ଓ ପଛରେ ଥିବା କାଠଖଣ୍ଡ ।

ଚଣିକା—ସ୍ତ୍ରୀ. ବି. ତୃଣବିଶେଷ, ଏହା ଗୋରୁପକ୍ଷେ ଅତ୍ୟନ୍ତ ହିତକାରୀ ।

ଚଣୀଦ୍ରୁମ—ପୁଂ. ବି. କ୍ଷୁଦ୍ର ଗୋକ୍ଷୁର ।

ଚଣ୍ଡ—ବି. ( ଚଣ୍ଡ+ଭା.ଅ) କ୍ରୋଧ, ତନ୍ତୁଳଗଛ, (କ.ଆ) ଯମଦୂତ, ଶିବାନୁଚର ବିଶେଷ, ଚଣ୍ଡୀଙ୍କଦ୍ୱାରା ନିହତ ଦୁଷ୍ଟ ଦୈତ୍ୟବିଶେଷ, ନମ୍ରୁଇତା, ଉଷ୍ଣତା, ଭୀଷଣତା, ଉଗ୍ରତା, ତୀକ୍ଷ୍ଣତା, ତୀବ୍ରତା,ଜଳିବା ଅଗ୍ନିର ତାପ, ବିଷ୍ଣୁଙ୍କ ପାରିଷଦ ବିଶେଷ, କଂସାସୁରର ଭାଇ, (ବିଂ) ଅତିଶୟକ୍ରୁଦ୍ଧ, ଉଷ୍ଣ, ଜଳୁଥିବା, ତୀକ୍ଷ୍ଣ, ଭୀଷଣ, ପ୍ରଚଣ୍ଡ,ଉଗ୍ର,କଠୋର, ଦୁର୍ଦମନୀୟ, ଦୁଷ୍ଟ, (ଗ୍ରା. ବି.) ଜଣେ ଉତ୍ତରେଜ଼ା ରାଜସ୍ଥାନ ନିବାସୀ ରାଜପୁତ ରାଜକୁମାରଙ୍କ ନାମ ।

ଚଣ୍ଡକର—ବି. (ବ.ବ୍ରୀ) ସୂର୍ଯ୍ୟ ।

ଚଣ୍ଡକୌଶିକ—ପୁଂ. ବି. ଋଷିବିଶେଷ, ଜୈନପୁରାଣବର୍ଣ୍ଣିତ ବିଷଧର ସର୍ପବିଶେଷ ।

ଚଣ୍ଡଗ୍ରମୁଣ୍ଡ—ବି. ଶିବଙ୍କର ଭୀଷଣ ଅନୁଚର ଦ୍ୱୟ,(ଗ୍ରା.ବି)ଦୁର୍ଦାନ୍ତ ଅନୁଚର ।

ଚଣ୍ଡତା—ସ୍ତ୍ରୀ. ବି. ( ଚଣ୍ଡ+ତ+ଆ) ତୀକ୍ଷ୍ଣତା, ଉଗ୍ରତା, ଭୀଷଣତା ।

ଚଣ୍ଡତୁଣ୍ଡକ—ପୁଂ. ବି. (ବ.ବ୍ରୀ)ଗରୁଡ଼ର ପୁତ୍ର, ପକ୍ଷୀବିଶେଷ ।

ଚଣ୍ଡତେଜାଃ—ପୁଂ. ବିଂ.(ବ.ବ୍ରୀ) ଉଗ୍ରତେଜାଃ, ଅତ୍ୟନ୍ତ ଶକ୍ତିଶାଳୀ ।

ଚଣ୍ଡତ୍ୱ—କ୍ଳୀ. ବି. (ଚଣ୍ଡ+ତ୍ୱ) ଚଣ୍ଡତା, ଉଗ୍ରତା ।

ଚଣ୍ଡଦକ୍ଷିଣା—ଗ୍ରା. ବି. ଦେବତାଙ୍କ ନିକଟରେ ଅର୍ପିତ ଭୋଗରୁ ପଣ୍ଡାଙ୍କପାଇଁ କଢ଼ାହୋଇଥିବା ଅଂଶ, ଯାହାକି ପୂଜକଙ୍କୁ ଦକ୍ଷିଣାରୂପେ ଦିଆଯାଏ ।

ଚଣ୍ଡଦୀଧିତି—ପୁଂ. ବି.(ବ.ବ୍ରୀ) ଚଣ୍ଡାଂଶୁ, ସୂର୍ଯ୍ୟ ।

ଚଣ୍ଡନାୟିକା—ସ୍ତ୍ରୀ. ବି. (କ.ଧା) ଦୁର୍ଗା, ଅଷ୍ଟନାୟିକାନ୍ତର୍ଗତ ଭଗବତୀଙ୍କ ଏକ ସଖୀ ।

ଚଣ୍ଡନୈବେଦ୍ୟ—ବି. (କ.ଧା)ଚଣ୍ଡବଳି ।

ଚଣ୍ଡପରଶୁ—ଗ୍ରା.ପୁଂ. ବି. ଦୁରିତାଦେବୀ-ଭକ୍ତ ବିଶ୍ୱାମିତ୍ରଗୋତ୍ରୀୟ ଜଣେ ରାଜା ।

ଚଣ୍ଡପାଳ—ଗ୍ରା.ପୁଂ. ବି. ଜଣେ ସଂସ୍କୃତ-ବିଦ୍ ଯଶୋରାଜଙ୍କ ପୁତ୍ର ।

ଚଣ୍ଡବଳ—ପୁଂ. ବି. ବାନରବିଶେଷ ।

ଚଣ୍ଡଭଣ୍ଡ—ବି. ସୁନ୍ଦର ବନବାସୀ, ପୁର୍ବକାଳୀନ ଲବଣ ପ୍ରସ୍ତୁତକାରୀ ଜାତିବିଶେଷ । [ଜଣେ ଋଷି ।

ଚଣ୍ଡଭାର୍ଗବ—ପୁଂ. ବି. ଚ୍ୟବନବଂଶୀୟ

ଚଣ୍ଡମୟୂଖ—ବି. (ବ.ବ୍ରୀ) ସୂର୍ଯ୍ୟ ।

ଚଣ୍ଡମହାସେନ—ପୁଂ. ବି. ଜଣେ ପ୍ରବଳ ପରାକ୍ରାନ୍ତ ରାଜା ।

ଚଣ୍ଡମାରୁତ ସ୍ୱାମୀ—ଗ୍ରା. ପୁଂ. ବି. ହରିହରଦତ୍ତଳକ ନାମକ ଧର୍ମଶାସ୍ତ୍ରର ଜଣେ ଟୀକାକାର ।

ଚଣ୍ଡମୁଣ୍ଡ—ବି. (ଦ୍ୱନ୍ଦ୍ୱ) ଦୁର୍ଗାଙ୍କଦ୍ୱାରା ନିହତ ରାକ୍ଷସ ଭ୍ରାତୃଦ୍ୱୟ, (ଗ୍ରା. ବି. ) ଅତ୍ୟନ୍ତ ଦୁଷ୍ଟ ବ୍ୟକ୍ତି ।

ଚଣ୍ଡମୁଣ୍ଡା—ସ୍ତ୍ରୀ.ବି. (ଚଣ୍ଡ+ମୁଣ୍ଡ+ଆ) ଚାମୁଣ୍ଡା, ଚଣ୍ଡୀ ।

ଚଣ୍ଡମୁଣ୍ଡୀ—ସ୍ତ୍ରୀ. ବ. ମହାସ୍ଥାନସ୍ଥିତ ଦେବୀବିଶେଷ ।

ଚଣ୍ଡରବ—ବିଂ. ଘୋରନାଦ ଯୁକ୍ତ, ଯେ ଭୀଷଣ ଚିତ୍କାର କରେ ।

ଚଣ୍ଡରଶ୍ମି—ପୁଂ. ବ. (ବ.ବ୍ରୀ) ସୂର୍ଯ୍ୟ ।

ଚଣ୍ଡରୁଦ୍ରିକା—ସ୍ତ୍ରୀ. ବ. ବିଦ୍ୟାବିଶେଷ ।

ଚଣ୍ଡବତୀ—ସ୍ତ୍ରୀ. ବ. (ଚଣ୍ଡ+ବତ୍+ଈ) ଦୁର୍ଗା, ଅଷ୍ଟନାୟିକାନ୍ତର୍ଗତ ଦୁର୍ଗାଙ୍କର ଜଣେ ସଖୀ ।

ଚଣ୍ଡବଳ—ବ. ଚଣ୍ଡେଶ୍ୱର ମହାଦେବଙ୍କ ଅନୁଚର ବିଶେଷ, ଶିବଙ୍କର ଚଣ୍ଡ-ଦେବତାଙ୍କୁ ନୈବେଦ୍ୟ ଭୋଗାଂଶ ବା ବଳି ବିଷ୍ଣୁଙ୍କ ପାର୍ଶ୍ୱଚର ଦେବତାଙ୍କୁ ନୈବେଦ୍ୟ ଭୋଗାଂଶ, ଭୋଗ ହେବାପରେ ନୈବେଦ୍ୟ ଦ୍ରବ୍ୟରୁ ପୂଜକ ନିଜର ପାରିଶ୍ରମିକ ନିମନ୍ତେ କାଢ଼ି ରଖିବା ଏକଚତୁର୍ଥାଂଶ, ଏକାଦଶମାଂଶ କିମ୍ବା ଏକଷୋଡ଼ଶାଂଶ ।

ଚଣ୍ଡବିକ୍ରମ—ବିଂ. ପ୍ରବଳପ୍ରତାପଶାଳୀ, (ପୁଂ, ବ. କ. ଧା) ପ୍ରଚଣ୍ଡପରାକ୍ରମ, ରାଜାବିଶେଷ ।

ଚଣ୍ଡବୃଷ୍ଟିପ୍ରପାତ—ବ. ୨୭ ଅକ୍ଷର ପାଦ ବିଶିଷ୍ଟ ଛନ୍ଦୋବିଶେଷ ।

ଚଣ୍ଡବେଗ—ବିଂ. (ବ. ବ୍ରୀ) ଅତିଶୟ ବେଗଶାଳୀ ।

ଚଣ୍ଡଶକ୍ତି—ପୁଂ.ବ.(ବ.ବ୍ରୀ) ବଳିରାଜାଙ୍କର ଜଣେ ସୈନିକ,(ବିଂ) ଚଣ୍ଡବିକ୍ରମ ଦେଖ ।

ଚଣ୍ଡା—ସ୍ତ୍ରୀ.ବ.(ଚଣ୍ଡ+ଆ) ଅଷ୍ଟନାୟିକା ମଧ୍ୟରୁ ଜଣେ, ଅତିଶୟ କୋପନା ସ୍ତ୍ରୀ, ଷୋଡ଼ଶ ଭୁଜା ଦୁର୍ଗା, ଚୋରକ ନାମକ ଗନ୍ଧଦ୍ରବ୍ୟ, ଶତପୁଷ୍ପୀ, ଶଙ୍ଖପ, ପାନମହୁରି, ଲିଙ୍ଗିନୀ ଲତା, ବାଇଡ଼ଙ୍କ,ଶ୍ୱେତଦୁବ, ମୂଷାକାନି, ନଦୀବିଶେଷ ।

ଚଣ୍ଡାଂଶୁ—ପୁଂ. ବ. (ବ.ବ୍ରୀ) ସୂର୍ଯ୍ୟ, (କ,ଧା) ତୀକ୍ଷ୍ଣ, କିରଣ, ସୂର୍ଯ୍ୟକିରଣ ।

ଚଣ୍ଡାତ—ପୁଂ. ବ. (ଚଣ୍ଡ+ଅତ+ଅ) କରବୀର ।

ଚଣ୍ଡାତକ—ପୁଂ. କ୍ଳୀ. ବ. (ଚଣ୍ଡା+ଅତ୍ କ. ଅକ) ସ୍ତ୍ରୀଲୋକମାନଙ୍କର ଅର୍ଦ୍ଧୋରୁ ପର୍ଯ୍ୟନ୍ତ ଛଡ଼ାହୋଇ କଚ୍ଛମାର ପିନ୍ଧା ହୋଇଥିବା ବସ୍ତ୍ର, ଲହଙ୍ଗା ।

ଚଣ୍ଡାଧିକାର—ବ. (ଷତତ୍) ଦେବତାଙ୍କୁ ଅର୍ପିତ ହେବା ଭୋଗରୁ ନିର୍ଦ୍ଦିଷ୍ଟ ଅଂଶ, ୧/୪, ୧/୧୦ ବା ୧/୧୬ ଚଣ୍ଡବଳିରୂପେ କଢ଼ା ହୋଇ ସ୍ୱତନ୍ତ୍ର ରଖାଯିବା ବିଧି ।

ଚଣ୍ଡାଳ—ପୁଂ.ବ. (ଚଣ୍ଡ+ଲା+କ.ଅ) ଶୂଦ୍ର ଔରସରେ ବ୍ରାହ୍ମଣୀ ଗର୍ଭଜାତ ବର୍ଣ୍ଣସଙ୍କର ଜାତିବିଶେଷ, ହିନ୍ଦୁମାନଙ୍କର ନୀଚତମ ଜାତି, ପତିତ ଓ ପାପୀ ବ୍ୟକ୍ତି, (ପୁଂ. ବିଂ.) ଦୁରାତ୍ମା, କ୍ରୂରକର୍ମାନୁଷ୍ଠାନକାରୀ, (ପୁଂ.ବ) ବୃକ୍ଷବିଶେଷ, (ଗ୍ରା.ବ.) ହାଡ଼ି, ମେହେନ୍ତର ଜାତି, (ପ୍ରା. ଗଞ୍ଜା. ବ). ଗଞ୍ଜାମ ଜିଲ୍ଲାର ପାଟକ ବିଶେଷ,(ପୁଂ.ବ.) ପକ୍ଷିବିଶେଷ, କୁଆ ।

ଚଣ୍ଡାଳକନ୍ଦ—ପୁଂ. ବ. ମୂଳ ବିଶେଷ ।

ଚଣ୍ଡାଳତ୍ୱ—କ୍ଳୀ. ବ. ଚଣ୍ଡାଳର ଧର୍ମ, ଦୟାମାୟା ଶୂନ୍ୟ ନିଷ୍ଠୁର ଆଚରଣ ।

ଚଣ୍ଡାଳତା—ସ୍ତ୍ରୀ.ବ. ଚଣ୍ଡାଳତ୍ୱ, ଚଣ୍ଡାଳର ଧର୍ମକର୍ମ ।

ଚଣ୍ଡାଳପକ୍ଷୀ—ବ. କାକ, କୁଆ ।

ଚଣ୍ଡାଳବଲ୍ଲକୀ—ସ୍ତ୍ରୀ. ବ. (ଷତତ୍) କଣ୍ଡୋଳବୀଣା, କେନ୍ଦରା ।

ଚଣ୍ଡାଳାମି—କ୍ଳୀ. ବ.ଚଣ୍ଡାଳତ୍ୱ, ଚଣ୍ଡାଳ ପରି ବ୍ୟବହାର ।

ଚଣ୍ଡାଳିକା—ସ୍ତ୍ରୀ.ବ.ଉମା, ଚଣ୍ଡାଳବୀଣା, କଣ୍ଡୋଳ,କେନ୍ଦରା,ଔଷଧିବୃକ୍ଷବିଶେଷ ।

ଚଣ୍ଡାଳିକାବନ୍ଧ—ପୁଂ. ବ. ବନ୍ଧବିଶେଷ ।

ଚଣ୍ଡାଳିନୀ—ସ୍ତ୍ରୀ.ବ(ଚଣ୍ଡାଳ+ଇନ୍—ଈ) ଦୁଷ୍କର୍ମକାରିଣୀ ସ୍ତ୍ରୀ, ନିଷ୍ଠୁର ସ୍ତ୍ରୀ, ଦୁଷ୍ଟା ସ୍ତ୍ରୀ, ନଷ୍ଟା ସ୍ତ୍ରୀ,ଚଣ୍ଡାଳୁଣୀ, ଚଣ୍ଡାଳର ସ୍ତ୍ରୀ, ମେହେନ୍ତରାଣୀ । [ଦେଖ]

ଚଣ୍ଡାଳୁଣୀ—ଗ୍ରା. ସ୍ତ୍ରୀ. ବ. ଚଣ୍ଡାଳିନୀ

ଚଣ୍ଡାଳୀୟ—ବିଂ. (ଚଣ୍ଡାଳ+ଈୟ) ଚଣ୍ଡାଳ ସମ୍ବନ୍ଧୀୟ ।

ଚଣ୍ଡାଳସ୍ଥା—ବିଂ. ଚଣ୍ଡାଳ ସଦୃଶ ।

ଚଣ୍ଡାଶୋକ—ପୁଂ. ବ. ବୌଦ୍ଧପ୍ରତିପାଳକ ଜଣେ ରାଜା,ଅପର ନାମ କାମାଶୋକା ।

ଚଣ୍ଡି—ସ୍ତ୍ରୀ. ବ. (ଚଣ୍ଡ+ଇ) ଚଣ୍ଡୀ, ଦୁର୍ଗା । [ଭୁଲ ।

ଚଣ୍ଡିଆ—ଗ୍ରା.ପୁଂ. ବିଂ. ଦୁଷ୍ଟ କ୍ରୂରକର୍ମା,

ଚଣ୍ଡିକଘଣ୍ଟ—ପୁଂ. ବ.(ଚଣ୍ଡିକ+ଘଣ୍ଟା) ବ.ବ୍ରୀ; ଶିବ, ମହାଦେବ ।

ଚଣ୍ଡିକା—ସ୍ତ୍ରୀ. ବ. (ଚଣ୍ଡି+କ+ଆ) ଦୁର୍ଗା, ଗାୟତ୍ରୀଦେବୀ, ( ସ୍ତ୍ରୀ,ବିଂ ) କୋପନା, ଦୁଷ୍ଟା, କଳିହୁଡ଼ି ।

ଚଣ୍ଡିମା—ବ. (ଚଣ୍ଡ+ଭା. ଇମନ୍ ) ଚଣ୍ଡତା, ଉଗ୍ରତା, କ୍ରୋଧ, କୋପନ-ସ୍ୱଭାବ ।

ଚଣ୍ଡୀ—ସ୍ତ୍ରୀ. ବ. (ଚଣ୍ଡି+ଈ) ଦୁର୍ଗା, ହିଂସ୍ରାସ୍ତ୍ରୀ, ଅତିକୋପନା ସ୍ତ୍ରୀ, ସତର ଅକ୍ଷର ପାଦ ଛନ୍ଦୋବିଶେଷ, ମାର୍କଣ୍ଡେୟ ପୁରାଣାନ୍ତର୍ଗତ ସ୍ତବବିଶେଷ, ସପ୍ତଶତୀ ।

ଚଣ୍ଡୀକୁସୁମ—ପୁଂ. ବ. (ଚଣ୍ଡୀ+କୁସୁମ) ଷ.ବ୍ରୀ; ରକ୍ତକରବୀର, ମନ୍ଦାର ।

ଚଣ୍ଡୀଗଡ଼—ଗ୍ରା.ବ. ଗୋଟିଏ ପ୍ରାଚୀନ ଗଡ଼ । ପଞ୍ଜାବ ଓ ହରିଆନା ରାଜ୍ୟର ରାଜଧାନୀ ।

ଚଣ୍ଡୀଗୁଣା—ଗ୍ରା. ବ. ଅନୁଚ୍ଚସ୍ୱରରେ ଚଣ୍ଡୀପାଠ, ( ଲ.ଅର୍ଥ ) ଚଣ୍ଡୀଗୁଣିଲା ଭଳି କ୍ରୋଧରେ ଅନୁଚ୍ଚ ଗୁଣ୍ଡୁଗୁଣ୍ଡୁ ଶବ୍ଦ କରିବା, (ଗ୍ରା. ବିଂ) ଚଣ୍ଡୀ ପାଠ-କାରୀ ।

ଚଣ୍ଡୀଗୁଣିବା—ଗ୍ରା. କ୍ରି. ଅନୁଚ୍ଚସ୍ୱରରେ ଚଣ୍ଡୀ ପାଠକରିବା, (ବ୍ୟଙ୍ଗ; ଲ.ଅର୍ଥ) କ୍ରୋଧ ବା ଅଭିମାନରେ ଗୁଣ୍ଡୁଗୁଣ୍ଡୁ ଶବ୍ଦ କରିବା ।

ଚଣ୍ଡୀଟୀକା—ବ. ମାର୍କଣ୍ଡେୟପୁରାଣାନ୍ତର୍ଗତ ଦେବୀମହାତ୍ମ୍ୟର ଟୀକା ।

ଚଣ୍ଡୀଦତ୍ତ—ଗ୍ରା. ବ. ଅଯୋଧ୍ୟା ରାଜା ମାନସିଂହଙ୍କ ସଭାସ୍ଥ ଜଣେ କବି ।

ଚଣ୍ଡୀଦାସ—ଗ୍ରା. ବ. କବି ବିଦ୍ୟାପତିଙ୍କ ସମସାମୟିକ ବଙ୍ଗଳାର ଜଣେ ପ୍ରାଚୀନ କବି ।

ଚଣ୍ଡୀଦେବଶର୍ମା—ଗ୍ରା.ବ. ସଂକ୍ଷିପ୍ତସାରର ପ୍ରାକୃତଦୀପିକାକାର ।

ଚଣ୍ଡୀପର୍ବ — ଗ୍ରା. ବି. ଦୁର୍ଗୋତ୍ସବ ।

ଚଣ୍ଡୀପାଠ — ପୁଂ. ବି. (୬ତତ୍) ଦେବୀ-ମାହାତ୍ମ୍ୟ ଗ୍ରନ୍ଥର ଆବୃତ୍ତି, ଯଥାନିୟମରେ ପ୍ରଥମରୁ ଶେଷପର୍ଯ୍ୟନ୍ତ ଉଚ୍ଚାରଣ ।

ଚଣ୍ଡୀପୁର — ଗ୍ରା.ବି. ରାଜମହଲସ୍ଥ ଗୋଟିଏ ପ୍ରାଚୀନ ଗ୍ରାମ ।

ଚଣ୍ଡୀପୁରାଣ — ବି. (୬ତତ୍) ମାର୍କଣ୍ଡେୟ-ପୁରାଣାନ୍ତର୍ଗତ ଦେବୀମାହାତ୍ମ୍ୟ ।

ଚଣ୍ଡୀପୂଜା — ସ୍ତ୍ରୀ. ବି. (୬ତତ୍) ଚଣ୍ଡୀ ବା ଦୁର୍ଗାଙ୍କର ଉପାସନା, ଦୁର୍ଗାପୂଜା, ଶାରଦୀୟ ଦୁର୍ଗୋତ୍ସବ ।

ଚଣ୍ଡୀମଣ୍ଡପ — ପୁଂ. ବି. (ଚଣ୍ଡୀ + ମଣ୍ଡପ) ୬ତତ୍; କାଳୀ, ଦୁର୍ଗା ପ୍ରଭୃତି ଦେବୀଙ୍କ ପୂଜା ନିମିତ୍ତ ନିର୍ଦ୍ଦିଷ୍ଟ ସ୍ୱତନ୍ତ୍ର ଇଟା ବା ମାଟିର ନିର୍ମିତ ଦାଲାଣ, ଗ୍ରାମର ସାଧାରଣ ଠାକୁରାଣୀ ମଣ୍ଡପ । [ ଶିବ ।

ଚଣ୍ଡୀଶ — ପୁଂ. ବି. ରୁଦ୍ରଙ୍କର ଗଣଭେଦ,

ଚଣ୍ଡୀଶ୍ୱର — ଗ୍ରା.ବି. ମାଧବ ସରସ୍ୱତୀଙ୍କର ଜଣେ ଶିଷ୍ୟ ।

ଚଣ୍ଡୁ — ପୁଂ. ବି. (ଚଣ୍ଡ + ଉ) ମୂଷିକ, ଇନ୍ଦୁର, (ଗ୍ରା. ବି.) ଅଫିମରେ ପ୍ରସ୍ତୁତ ଧୂମପାନପୂର୍ବକ ସେବନ ଉଗ୍ରମାଦକ-ଦ୍ରବ୍ୟ ବିଶେଷ ।

ଚଣ୍ଡୁଖୋର୍ — ଗ୍ରା. ବିଂ. ଯେ ଚଣ୍ଡୁନାମକ ମାଦକଦ୍ରବ୍ୟର ଧୂମପାନ କରେ, ଯେ ଚଣ୍ଡୁ ପିଏ ।

ଚଣ୍ଡୂଲ — ବି. ଏକପ୍ରକାର ସୁନ୍ଦର ଭରତଆ ପକ୍ଷୀ ।

ଚଣ୍ଡୂପଣ୍ଡିତ — ଗ୍ରା. ବି. ଧୋଲକାନ୍‌ବାସୀ ସଂସ୍କୃତଜ୍ଞ ଜଣେ ବିଖ୍ୟାତ ପଣ୍ଡିତ ।

ଚଣ୍ଡେଶ୍ୱର — ପୁଂ. ବି. (କ.ଧା) ଶିବଙ୍କର ଅନୁଚର ବିଶେଷ, ରକ୍ତବର୍ଣ୍ଣ ଶରୀରଧାରୀ ଶିବମୂର୍ତ୍ତି ବିଶେଷ, ରୁଦ୍ରଗଣବିଶେଷ, ଜଣେ ସ୍ମାର୍ତ୍ତ ପଣ୍ଡିତ, ଜଣେ ପ୍ରସିଦ୍ଧ-ଜ୍ୟୋତିର୍ବିଦ ।

ଚଣ୍ଡେଶ୍ୱରବର୍ମା-ଗ୍ରା.ପୁଂ.ବି. ଅପରୋକ୍ଷାନୁଭୂତିର ଅନୁଭବଦୀପିକା ନାମକ ଟୀକା-କାର ।

ଚଣ୍ଡୋଗ୍ରଶୂଳପାଣି — ପୁଂ. ବି. ଶିବମୂର୍ତ୍ତି ବିଶେଷ ।

ଚଣ୍ଡୋଗ୍ରା — ସ୍ତ୍ରୀ. ବି. ନାୟିକାବିଶେଷ ।

ଚତ୍ — (ଧାତୁ) ପ୍ରାର୍ଥନା କରିବା, ଗମନ କରିବା, ଲୁଚିବା, ମାଗିବା ।

ଚତର — ଗ୍ରା. ବି. ଗୋଲ ସମତଳ ଭୂମି, ଜଳାଶୟ ମଧ୍ୟରେ ଜଳଆଦିଦ୍ୱାରା ଆବୃତ ହୋଇ ନ ଥିବା ଜଳର ଉପରଭାଗରେ ବିସ୍ତୃତ ଅଂଶ, ଜଳ ରହିବାର ଗର-ଢୋଣିଆ ଗାତ, ଅଗଭୀର ବଡ଼ ଜଳା-ଶୟ, ଜୋଡ଼, (ବିଂ) ବିସ୍ତୃତ, ବିସ୍ତୃତ ବହୁଶାଖ ଯୁକ୍ତ (ବୃକ୍ଷ) ଝାମ୍ପୁଲ ।

ଚତରାଇବା — ଗ୍ରା.କ୍ରି. (ଅକର୍ମକ) ଅଧିକ ତର ବିସ୍ତୃତକରିବା, ବହୁଶାଖାମେଲିବା, ଛତାପରି ବିସ୍ତୃତହେବା, ( ସକର୍ମକ ) ଖେଳାଇଦେବା ।

ଚତର — ପ୍ରା. (ଆଠମଲକ) ବି. ଚନ୍ଦ୍ରପଦୀ, ପଦ୍ମଫୋଲ । [ (ସ୍ତ୍ରୀ) ଚତରୀ ।

ଚତି — ପୁଂ.ବିଂ. (ଚତ୍ + ଇନ୍) ବିନାଶକ,

ଚତୁର — ବି ଓ ବିଂ. ( ସଂଖ୍ୟାବାଚକ ) ଗୁଣସଂଖ୍ୟା, ୪ ସଂଖ୍ୟକ ।

ଚତୁଃକୁଟା (ଚତୁଷ୍କୁଟା) — ସ୍ତ୍ରୀ. ବି. ଶ୍ରୀ ବିଦ୍ୟାଧର ମନ୍ତ୍ର ବିଶେଷ ।

ଚତୁଃପଞ୍ଚ (ଚତୁଷ୍ପଞ୍ଚ) — ବିଂ.ଗୁର ବା ପାଞ୍ଚ ଗୁର ସଂଖ୍ୟକ ବା ପଞ୍ଚସଂଖ୍ୟକ ।

ଚତୁଃପଞ୍ଚାଶ (ଚତୁଷ୍ପଞ୍ଚାଶ) — ବିଂ. ୫୪ର ପୂରକ, ୫୪ ସଂଖ୍ୟକ ।

ଚତୁଃପଞ୍ଚାଶତ୍ (ଚତୁଷ୍ପଞ୍ଚାଶତ୍‌ମ୍) — ସ୍ତ୍ରୀ. ବି. ୫୪ ସଂଖ୍ୟା, (ବିଂ.) ୫୪ସଂଖ୍ୟକ ।

ଚତୁଃପଞ୍ଚାଶତ୍ତମ (ଚତୁଷ୍ପଞ୍ଚାଶତ୍ତମ) — ବିଂ. ୫୪ର ପୂରକ ।

ଚତୁଃପଦୀ (ଚତୁଷ୍ପଦୀ) ସ୍ତ୍ରୀ.ବି. (ବ.ବ୍ରୀ) କ୍ଷୁଦ୍ର ପ ଷାଣ ଭେଦୀ ।

ଚତୁଃପର୍ଣ୍ଣୀ (ଚତୁଷ୍ପର୍ଣ୍ଣୀ) — ସ୍ତ୍ରୀ. ବି. (ବ.ବ୍ରୀ) କ୍ଷୁଦ୍ରାମ୍ଳିକା, ଆମ୍ବୁଡ଼ା ।

ଚତୁଃପାର୍ଶ୍ୱ (ଚତୁଷ୍ପାର୍ଶ୍ୱର) — ବି. (କ.ଧା) ଗୁରଦିଗ, ଗୁରଆଡ଼, ଗୁରପାଖ, ବର୍ଗକ୍ଷେତ୍ରର ଗୁରୋଟି ବାହୁ ।

ଚତୁଃପୁଣ୍ଡ୍ର, (ଚତୁଷ୍ପୁଣ୍ଡ୍ର) — ପୁଂ. ବି. (ବ.ବ୍ରୀ) ଭଣ୍ଡୀତକ ବୃକ୍ଷ ।

ଚତୁଃଫଲା (ଚତୁଷ୍ଫଲ — ସ୍ତ୍ରୀ.ବି.(ବ.ବ୍ରୀ) ନାଗାବଲା ।

ଚତୁଃଶତ — ବି. (ଚତୁଃ + ଶତ) ଦ୍ୱିଗୁ; ଗୁରଶତ, ଗୁରଶହ, (ମଧ୍ୟ କ.ଧା) ଏକ ଶହ ଗୁର ।

ଚତୁଃଶତୀ — ସ୍ତ୍ରୀ. ବି. ଗୁରଶତ, ୪୦୦ ।

ଚତୁଃଶଙ୍ଗ — ପୁଂ. ବିଂ. (ବ.ବ୍ରୀ) ଯେଉଁ ଜୀବର ଗୁରୋଟି ଖୁରଥାଏ, (ସ୍ତ୍ରୀ) ଚତୁଃଶଙ୍ଗୀ

ଚତୁଃଶାଖ — ବିଂ. (ବ.ବ୍ରୀ) ଗୁରଶାଖା-ବିଶିଷ୍ଟ, ଗୁରଗୋଟି ଶାଖା ବା ଅଙ୍ଗ-ବିଶିଷ୍ଟ, (ବି) ଦେହ, ଶରୀର, ବେଦ ।

ଚତୁଃଶାଖା — ବିଂ. (ବ.ବ୍ରୀ) ଗୁରଶାଖା-ବିଶିଷ୍ଟ. ବି. (କ.ଧା) ଗୁରଶାଖା ।

ଚତୁଃଶାଳ — କ୍ଲୀ. ବି' (ବ.ବ୍ରୀ) ଝଞ୍ଜାମର ଘର, ଚଉହରି ।

ଚତୁଃଶାଳକ — କ୍ଲୀ.ବି. (ଚତୁଃଶାଳ + କ) ଝଞ୍ଜାମର ଘର, ଚଉହରି ।

ଚତୁଃଶୃଙ୍ଗ — ବି. (ବ.ବ୍ରୀ) ଯେଉଁ ଜୀବର ଗୁରୋଟି ଶୃଙ୍ଗଥାଏ, ଗୁରଶିଙ୍ଗା; ଯେଉଁ ପର୍ବତର ଗୁରଗୋଟି ଶୃଙ୍ଗଥାଏ ।

ଚତୁଃଷଷ୍ଟ — ବି. ଯାହାଦ୍ୱାରା ୬୪ ସଂଖ୍ୟା ପୂରଣ ହୁଏ ।

ଚତୁଃଷଷ୍ଟି — ସ୍ତ୍ରୀ.ବି. (କ.ଧା) ୬୪ ସଂଖ୍ୟା, (ବିଂ) ୬୪ ସଂଖ୍ୟକ ।

ଚତୁଃଷଷ୍ଟିକଳା — ସ୍ତ୍ରୀ. ବି. କଳାନାମ୍ନୀ ଉପବିଦ୍ୟା ।

ଚତୁଃଷଷ୍ଟିତମ — ବିଂ. (ଚତୁଃଷଷ୍ଟି + ତମ) ଯାହାଦ୍ୱାରା ୬୪ ସଂଖ୍ୟା ପୂରଣ ହୁଏ ।

ଚତୁଃସ୍ତୋମ-ବି. (ଚତୁଃ + ସ୍ତୋମ) ଗୁରୋଟି ଅଂଶଥିବା ବୈଦିକ ସ୍ତବବିଶେଷ ।

ଚତୁଃସଙ୍କର — ବି· ( ହିନ୍ଦୁ ସ୍ମୃତି ) ଯେଉଁ ମକଦ୍ଦମାରେ ୪ଟି ନାଲିଶର କାରଣ ଏକଜ ମିଶିଅଛି (ଯାଜ୍ଞବଲ୍କ୍ୟ) ।

ଚତୁଃସନ — ବି. (ଚତୁଃ + ସନ) ସନ, ଯେଉଁ ଆଦ୍ୟରେ ଥିବା (ସନକ, ସନନ୍ଦ, ସନତ୍କୁମାର, ସନାତନ) ନାମଚତୁଷ୍ଟୟ ଯୁକ୍ତ ବ୍ରହ୍ମାଙ୍କର ଗୁରପୁତ୍ର, (ବିଂ) ଯାହିରେ ବ୍ରହ୍ମାଙ୍କର ଉପଦେଷ୍ଟା ଗୁରପୁତ୍ରଥାଆନ୍ତି ।

ଚତୁଃସପ୍ତତ — ବି. (ଚତୁଃସପ୍ତତି + ଅ) ଯାହାଦ୍ୱାରା ୭୪ ସଂଖ୍ୟା ପୂରଣହୁଏ ।

ଚତୁଃସପ୍ତତି — ସ୍ତ୍ରୀ.ବି. (କ.ଧା) ୭୪ ସଂଖ୍ୟା, (ବିଂ) ୭୪ ବିଶିଷ୍ଟ ।

ଚତୁଃସପ୍ତତିତମ — ବିଂ ଯାହାଦ୍ୱାରା ୭୪ ସଂଖ୍ୟା ପୂରଣ ହୁଏ ।

ଚତୁଃସମ — କ୍ଲୀ. ବ.(ବ.ସ୍ତ୍ର)ମିଶ୍ରିତ ଲବଙ୍ଗ ଜାଗ, ପୁଆଣି, ହରଡ଼ା, ଚଉସମ, ସମଗୁଣବିଶିଷ୍ଟ ଗନ୍ଧଦ୍ରବ୍ୟ ଚତୁଷ୍ଟୟ,ଯଥା—ଚନ୍ଦନ, ଅଗୁରୁ, କସ୍ତୁରୀ ଓ କୁଙ୍କୁମ ।

ଚତୁଃସମ୍ପ୍ରଦାୟ — ବ. ଚାରିଜଣ ଆଚାର୍ଯ୍ୟ ପ୍ରବର୍ତ୍ତିତ ଚାରିପ୍ରକାର ସମ୍ପ୍ରଦାୟ, ଯଥା-୧-ଶ୍ରୀ ସମ୍ପ୍ରଦାୟ, ୨—ମାଧ୍ୱି ବା ଚତୁର୍ମୁଖ ସମ୍ପ୍ରଦାୟ,୩—ରୁଦ୍ରସମ୍ପ୍ରଦାୟ, ୪—ସନକସମ୍ପ୍ରଦାୟ ।

ଚତୁଃସହସ୍ର — ବ. (ଦ୍ୱିଗୁ) ଚାରିହଜାର, (ମଧ୍ୟ. କ.ଧା) ଏକହଜାର ଚାରିସଂଖ୍ୟା ।

ଚତୁଃସୀମା — ସ୍ତ୍ରୀ.ବ. ଚତୁର୍ଦ୍ଦିଗର ସୀମା, ଚାରିସୀମା, ସରହଦ୍, ଚୌହଦ ।

ଚତୁଃସୀମାବଚ୍ଛିନ୍ନ — ବିଂ.ଚାରିସୀମାବିଶିଷ୍ଟ, ଯାହାର ଚାରିଦିଗରେ ଚାରି ସୀମାଅଛି ।

ଚତୁଃସ୍ତନା — ସ୍ତ୍ରୀ. ବିଂ.(ବ.ସ୍ତ୍ର) ଚାରିଟି-ଚରଥିବା (ଗାଈ) ।

ଚତୁର୍ — ବ. (ଚତ + କ,ଉର) ଚତୁଃସଂଖ୍ୟା ଚାରି, (ବିଂ) ଚାରିସଂଖ୍ୟାଯୁକ୍ତ ।

ଚତୁର — ପୁଂ. ବିଂ. ( ଚତ + କ.ଉର ) ବକ୍ରଗାମୀ, ଆଳସ୍ୟହୀନ, କୌଶଳୀ, କାର୍ଯ୍ୟଦକ୍ଷ,ଧୂର୍ତ୍ତ,ସୁନ୍ଦର,ନେତ୍ରଗୋଚର, (ବ) ୪ ସଂଖ୍ୟା, ଚତୁରଙ୍ଗସେନା, ( ଚତ + ର୍ମ.ଉର ) ଗୋଲ ତକିଆ, ଗେହ୍ମାଛ, ହାତିଶାଳ, ନାୟକବିଶେଷ, (ବିଂ) ୪ସଂଖ୍ୟାବିଶିଷ୍ଟ, ଉପଭୋଗକ୍ଷମ, ନେତ୍ରଗୋଚର ।

ଚତୁରଂଶ — ପୁଂ. ବିଂ. (ବ.ସ୍ତ୍ର) ଯାହାର ୪ଗୋଟି ଅଂଶଅଛି, ଚାରିଅଂଶିଆ, ୪ଗୋଟି ସମତଳବିଶିଷ୍ଟ, ଚାରିକୋଣିଆ, ଚାରିଭାଗରେ ବିଭକ୍ତ ।

ଚତୁରଂଶା — ସ୍ତ୍ରୀ. ବ. ବର୍ଣ୍ଣବୃତ୍ତ ବିଶେଷ ।

ଚତୁରଂଶିତ — ବିଂ. ଚାରିଅଂଶଯୁକ୍ତ, ଚାରିପୃଷ୍ଠାରେ ବିଭକ୍ତ, ଚାରିଫର୍ଦ୍ଦ ।

ଚତୁରକ — ପୁଂ.ବ ଓ ବିଂ.(ଚତୁର + କ) ଚତୁର ଦେଖ, (ସ୍ତ୍ରୀ) ଚତୁରିକା ।

ଚତୁରକ — ଗ୍ରା. ବ. ଦାକ୍ଷିଣାତ୍ୟର ବିଜାପୁର ଜିଲ୍ଲାନ୍ତର୍ଗତ ଗୋଟିଏ ପ୍ରାଚୀନ କ୍ଷୁଦ୍ରଗ୍ରାମ ।

ଚତୁରକ୍ରମ — ପୁଂ. ବ. ରୂପକବିଶେଷ ।

ଚତୁରକ୍ଷ — ବିଂ. (ଚତୁର + ଅକ୍ଷି)ବ.ସ୍ତ୍ର: ଯାହାର ଚାରିଟି ଆଖି ଅଛି, ସାମନାସାମନି ଭେଟହେବା (ଚୁଇବ୍ୟକ୍ତି) ।

ଚତୁରକ୍ଷର — କ୍ଲୀ.ବ.(ବ.ସ୍ତ୍ର)ଚାରିଗୋଟି ଅକ୍ଷରଯୁକ୍ତ ନାରାୟଣଙ୍କ ନାମ, ଅକ୍ଷର ଚତୁଷ୍ଟୟାତ୍ମକ ଛନ୍ଦଃପ୍ରଭୃତି, ( ବିଂ ) ଚାରିଅକ୍ଷରଯୁକ୍ତ ।

ଚତୁରଗ — ପୁଂ. ବିଂ.(ଚତୁର୍ + ଗମ୍ + କ.ଅ) ଦ୍ରୁତଗାମୀ, (ସ୍ତ୍ରୀ) ଚତୁରଗା ।

ଚତୁରଙ୍ଗ — କ୍ଲୀ. ବ. ( ଚତୁର + ଅଙ୍ଗ ) ବ.ସ୍ତ୍ର: ହସ୍ତୀ, ଘୋଡ଼ା, ରଥ ଓ ପଦାତି ଏହିଅଙ୍ଗ ଚତୁଷ୍ଟୟଯୁକ୍ତ ସୈନ୍ୟ, ଗୀତର ତାଳବିଶେଷ,କ୍ରୀଡ଼ାବିଶେଷ,ଏକପ୍ରକାର କାକୁଡ଼, (ବିଂ) ଯାହାର ଚାରିଟି ଅଙ୍ଗ ଅଛି,ସମସ୍ତ ଅଙ୍ଗକୁ ଘୋଡ଼ିଥିବା(ବାଡ଼), ଚତୁରଙ୍ଗୀ ।

ଚତୁରଙ୍ଗବଳ — ବ. ହସ୍ତୀ ରଥ ଅଶ୍ୱ ପଦାତିଯୁକ୍ତ ପୂର୍ଣ୍ଣାବୟବସେନା,ଚାରିଜଣ ଖେଳାଳି ଖେଳିବା ଖେଳ ।

ଚତୁରଙ୍ଗା — ସ୍ତ୍ରୀ. ବ. (ଚତୁର + ଅଙ୍ଗ + ଆ) ଘୋଡ଼ିକା ବୃକ୍ଷ ।

ଚତୁରଙ୍ଗିଣୀ — ସ୍ତ୍ରୀ.ବ. (ଚତୁରଙ୍ଗ + ଇନ୍ + ଈ)ଚତୁରଙ୍ଗଯୁକ୍ତ ସେନା,ଚତୁରଙ୍ଗବଳ ଦେଖ ।

ଚତୁରଙ୍ଗୀ — ପୁଂ. ବିଂ. (ଚତୁରଙ୍ଗ + ଇନ୍) ହସ୍ତ୍ୟଶ୍ୱପ୍ରଭୃତି ସେନାଙ୍ଗ ଚତୁଷ୍ଟୟଯୁକ୍ତ ।

ଚତୁରଙ୍ଗୁଳ — ପୁଂ.ବ.(ବ.ସ୍ତ୍ରୀ)ଆରଗବଧ, ସୁନାରିଗଛ, ବୁଢ଼ାଆଙ୍ଗୁଠିଛଡ଼ା ହାତର ଚାରିଆଙ୍ଗୁଠି, ଚାରିଆଙ୍ଗୁଳ ଅଧିକୃତ ଦୈର୍ଘ୍ୟ ବା ପ୍ରସ୍ଥ, ( ବିଂ ) ଚାରିଆଙ୍ଗୁଳ ପରିମିତ ।

ଚତୁରଙ୍ଗୁଳା — ସ୍ତ୍ରୀ.ବ.ଶୀତଳୀ,ଶିହୁଳ ।

ଚତୁରଚୂଡ଼ାମଣି — ବିଂ. (୬ତତ୍ପୁ)ଅତ୍ୟନ୍ତ ଚାଲାକ ।

ଚତୁରତା — ସ୍ତ୍ରୀ. ବ. (ଚତୁର + ତ + ଆ) ଚାତୁର୍ଯ୍ୟ, ଦକ୍ଷତା, ଚଲାକପଣିଆ, ନୈପୁଣ୍ୟ, ବୁଦ୍ଧିଜୀବିତା ।

ଚତୁରଧ୍ୟାୟିକା — ସ୍ତ୍ରୀ. ବ. ଯାହାର ଚାରି ଅଧ୍ୟାୟ ଅଛି । [ ବିଶିଷ୍ଟ ।

ଚତୁରନୀକ — ବିଂ. ଚତୁରାନନ, ଚାରିମୁଖ-

ଚତୁରନ୍ତ — ବିଂ. (ବ.ସ୍ତ୍ର) ଚାରିପଦାର୍ଥଦ୍ୱାରା ପରିବୃତ, ଚାରିସୀମାଦ୍ୱାରା ପରିବେଷ୍ଟିତ, (ବିଂ) ଚାରିସୀମା ।

ଚତୁରନ୍ତା — ସ୍ତ୍ରୀ. ବ. (ଚତୁରନ୍ତ + ଆ) ପୃଥିବୀ ।

ଚତୁରପଣ — ଗ୍ରା.ବ. ଚତୁରତା,ଧୂର୍ତ୍ତତା ।

ଚତୁରମ୍ଳ — କ୍ଲୀ.ବ.ଚାରିପ୍ରକାର ଅମ୍ଳଦ୍ରବ୍ୟ, (ଅମ୍ଳବେତସ) ଝଟାପାଳଙ୍ଗ, ତନ୍ତୁଳି, ଟଭା, ଲେମ୍ବୁ ଏହି ଚାରି ଅମ୍ଳ ।

ଚତୁରବଚ୍ଛ — ବିଂ.ଚାରିଅଂଶରେ ବିଭକ୍ତ ।

ଚତୁରବର୍ତ୍ତୀ — ପୁଂ. ବିଂ. ଯେ ଚାରିଅଂଶରେ ହବ ବିସ୍ତାର କରିବେ ।

ଚତୁରବହାର୍ଯ୍ୟ — ଭ୍ରା. ପୁଂ. ବ. ଜଣେ ବୃଦ୍ଧ କବି ।

ଚତୁରଶୀତ — ବିଂ. ଯାହାଦ୍ୱାରା ୮୪ ସଂଖ୍ୟା ପୁରଣ ହୁଏ ।

ଚତୁରଶୀତି — ସ୍ତ୍ରୀ. ବ. ଚୌରାଶୀସଂଖ୍ୟା, (ବିଂ) ୮୪ ସଂଖ୍ୟାଯୁକ୍ତ । [ ପୂରଣ ।

ଚତୁରଶୀତିତମ — ବିଂ. ୮୪ ସଂଖ୍ୟାର

ଚତୁରଶ୍ୱ — ବିଂ ( ଚତୁଃ + ଅଶ୍ୱ ) ଅଶ୍ୱ ଚତୁଷ୍ଟୟ, ଚାରିଗୋଟି ଘୋଡ଼ା, (ବିଂ) ଅଶ୍ୱଚତୁଷ୍ଟୟଯୁକ୍ତ (ରଥ), ଚାରିଗୋଟି ଘୋଡ଼ା ଯୋଗହୋଇଥିବା ( ରଥ ଗାଡ଼ିଆଦି ) ।

ଚତୁରସିଂହ — ଗ୍ରା. ପୁଂ. ବ. ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀର ଜଣେ ହିନ୍ଦି କବି ।

ଚତୁରସ୍ର — ବିଂ. (ଚତୁଃ + ଅସ୍ର) ବ.ସ୍ତ୍ର; ଚତୁଷ୍କୋଣଯୁକ୍ତ, ଯାହାର ୪ ଗୋଟି କୋଣଅଛି, ନର୍ଦ୍ଦୋଷ, ସବୁକାର୍ଯ୍ୟରେ ଦକ୍ଷ, ରମ୍ୟ, ଅନ୍ୟୂନାତିରିକ୍ତ, (କ୍ଲୀ.ବ) ଚତୁଷ୍କୋଣକ୍ଷେତ୍ର, ଚାରି ସରଳ ରେଖାଦ୍ୱାରା ବଦ୍ଧ ସ୍ଥାନ, ବ୍ରାହ୍ମଣସନ୍ତାନ, ଜ୍ୟୋତିଃଶାସ୍ତ୍ରରେ ୪ର୍ଥ ବା ୮ମ ରାଶି ।

ଚତୁରହ — କ୍ଲୀ. ବ. ଚାରିଦିନ, (ପୁଂ.ବ) ଚାରିଦିନରେ ସାଧ୍ୟ ଯାଗ ।

ଚତୁର — ଗ୍ରା. ପୁଂ. ବିଂ. ଚତୁର, ଧୂର୍ତ୍ତ, ଶଠ, ସ୍ତ୍ରୀ.ବି.; (ଚତୁର+ଆ) ବୁଦ୍ଧିଜୀବନୀ, ବୁଦ୍ଧିମତୀ, ଧୂର୍ତ୍ତା, ଶଠତାପୂର୍ଣ୍ଣା (ସ୍ତ୍ରୀ) ।

ଚତୁରସ୍ର — ଗ୍ରା.ବିଂ. ସାମନାସାମନି ଭେଟ ହେବା (ଦୁଇବ୍ୟକ୍ତି), ଦୁଇଜଣଙ୍କର ଭେଟହେବା(ସମସ୍ୟ), ବି. ଦୁଇଜଣ ମନୁଷ୍ୟଙ୍କର ଭେଟାଭେଟି ।

ଚତୁରସ୍ରା — ପୁଂ. ବି. (ଚତୁର+ଅସ୍ରାନ୍) ବି.ଗ୍ରା; ପରମେଶ୍ୱର, ବିଷ୍ଣୁ ।

ଚତୁରାନନ — ପୁଂ. ବି. (ବି.ଗ୍ରା) ଚତୁର୍ମୁଖ, ବ୍ରହ୍ମା । [ନୃତ୍ୟ ।

ଚତୁରାନର୍ତ୍ତନ — କ୍ଳୀ. ବି. ଗ୍ରାମ୍ୟଗରେ

ଚତୁରାଶ୍ରମ — କ୍ଳୀ. ବି. (କ.ଧା)ବ୍ରହ୍ମଚର୍ଯ୍ୟ ପ୍ରଭୃତି ଚାରିଆଶ୍ରମ, ଯଥା — ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ, ବାନପ୍ରସ୍ଥ ଓ ସନ୍ନ୍ୟାସ ।

ଚତୁରାଶ୍ରମୀ — ବି. (ଚତୁରାଶ୍ରମ+ଇନ୍) ବ୍ରାହ୍ମଣ ।

ଚତୁରିକା — ବି. (ଚତୁର+ଇକ+ଆ) ଅଭ୍ୟାଗତମାନଙ୍କ ସମ୍ବର୍ଦ୍ଧନାର୍ଥ ବାଂଧିଥିବା ଚାରିକୋଣିଆ ଅଗଣା ।

ଚତୁରୀ — ଗ୍ରା. ସ୍ତ୍ରୀ. ବିଂ. ବୁଦ୍ଧିମତୀ,ଧୂର୍ତ୍ତା, ବୁଦ୍ଧି ଜୀବନୀ, ଶଠତାପୂର୍ଣ୍ଣା (ସ୍ତ୍ରୀ) ।

ଚତୁରୀଚମ୍ପା — ଗ୍ରା. ବି. ସ୍ତ୍ରୀଲୋକମାନଙ୍କପ୍ରତି ପ୍ରଯୁଜ୍ୟ ବ୍ୟଙ୍ଗୋକ୍ତି ବିଶେଷ; କଉତୁକୀ ସ୍ତ୍ରୀ ।

ଚତୁରୁତ୍ତର — ବିଂ. ଚାରିକ୍ରମେ ବୃଦ୍ଧି ।

ଚତୁରୂଷଣ — କ୍ଳୀ. ବି. ପିପ୍ପଳୀମୂଳପ୍ରଭୃତି ଚିକଟୁ ।

ଚତୁର୍ଗତି — ସ୍ତ୍ରୀ.ବି.(ବି.ଗ୍ରା) ପରମେଶ୍ୱର, (ପୁଂ. ସ୍ତ୍ରୀ. ବି.ଗ୍ରା) କଚ୍ଛପ, (ବିଂ) ଯାହାର ଚାରିପ୍ରକାର ଗତି ଅଛି ।

ଚତୁର୍ଗବ — କ୍ଳୀ. ବି. ଚାରିଗୋଟି ଗୋରୁ, ଚାରି ବଳଦରେ ଟାଣାଯିବା ଗାଡ଼ି ।

ଚତୁର୍ଗୁଣ — ବିଂ. ଚାରିଗୁଣ, ଅତ୍ୟନ୍ତ, ଚାରିସରିଆ(ହାର), (ସ୍ତ୍ରୀ) ଚତୁର୍ଗୁଣା ।

ଚତୁର୍ଗୁଣିତ୍ — ବିଂ.ଚାରିଗୁଣ କରାହୋଇ ଥିବା, (ସ୍ତ୍ରୀ) ଚତୁର୍ଗୁଣିତା ।

ଚତୁର୍ଗୃହୀତ — ବିଂ. (ଅତତ୍) ଯାହା ଚାରିଜଣଦ୍ୱାରା ଗୃହୀତ ହୋଇଅଛି ।

ଚତୁର୍ଗ୍ରାମ — କ୍ଳୀ. ବି. ଗ୍ରାମଭେଦ ।

ଚତୁର୍ଜାତକ — କ୍ଳୀ. ବି. ଗୁଡ଼ତ୍ୱକ୍, ଅଳେଇଚ, ତେଜପତ୍ର, ନାଗେଶ୍ୱର ଏହି ଚାରି ଦ୍ରବ୍ୟ ।

ଚତୁର୍ତ୍ରିଂଶତ — ବିଂ. ଯାହାଦ୍ୱାରା ୩୪ ସଂଖ୍ୟା ପୂରଣ ହୁଏ, ୩୪ ସଂଖ୍ୟକ ।

ଚତୁର୍ତ୍ରିଂଶତ୍ — ସ୍ତ୍ରୀ. ବି. ୩୪ ସଂଖ୍ୟା,(ବିଂ) ୩୪ ସଂଖ୍ୟାଯୁକ୍ତ ।

ଚତୁର୍ଥ — ବିଂ. ୪ସଂଖ୍ୟାର ପୂରକ, (ଗ୍ରା.ବି) ମୃତ୍ୟୁର ଚତୁର୍ଥଦିନ କର୍ତ୍ତବ୍ୟ-ଜ୍ଞାତିମାନଙ୍କୁ ଡାକିଆସିବା ଜଳଯୋଗ, ମୃତ୍ୟୁର ୪ର୍ଥ ଦିବସ, ବର୍ଣ୍ଣମାନଙ୍କର ୪ର୍ଥବର୍ଣ୍ଣ, ୪ର୍ଥବର୍ଣ୍ଣ, ଶୂଦ୍ର, ଏକଚତୁର୍ଥାଂଶ, ଚାରିର ସମାହାର ।

ଚତୁର୍ଥଉପାସ୍ତ — ବି. ଭେଦ, ପରସ୍ପର ବିବାଦ, କଳହ, (ଗ୍ରା. ବି ଓ ବିଂ) ଚାରି ।

ଚତୁର୍ଥକ — ପୁଂ. ବି. (ଚତୁର୍ଥ+କ)ରୋଗ ବିଶେଷ, ବିଷମଜ୍ୱର, ପାଳିଜ୍ୱର ।

ଚତୁର୍ଥକାଳ — ପୁଂ. ବି. ଭୋଜନକାଳ, ଜୀବନର ଶେଷଭାଗ ।

ଚତୁର୍ଥକାଳିକ — ପୁଂ. ବିଂ. (ଚତୁର୍ଥକାଳ+ଇକ)ସେଉଁବ୍ୟକ୍ତି ଚାରିଓଳିରେ ଥରେ ଖାଏ ।

ଚତୁର୍ଥଭକ୍ତ — କ୍ଳୀ. ବି. ଭୋଜନକାଳ, ଦ୍ୱିପ୍ରହରଦିନ ।

ଚତୁର୍ଥଭାକ୍ — ପୁଂ. ବିଂ. (ଚତୁର୍ଥ+ଭଜ୍ +କ. କ୍ୱିପ୍) ଯେ ପ୍ରଜା ନିକଟରୁ ଧାନ୍ୟ ପ୍ରଭୃତିର ଏକଚତୁର୍ଥାଂଶ ଗ୍ରହଣକରେ, (ବି) ରାଜା ।

ଚତୁର୍ଥସ୍ୱର — କ୍ଳୀ. ବି.(ବି.ତ୍ରୀ)ବୃଦ୍ଧବ୍ୟକ୍ତିର ସ୍ୱର, ସାମବିଶେଷ, (ବିଂ) ସଙ୍ଗୀତର ସାତସ୍ୱର ମଧ୍ୟରୁ ୪ର୍ଥ ସ୍ୱରଯୁକ୍ତ ।

ଚତୁର୍ଥାଂଶ — ପୁଂ. ବି. (କ.ଧା)ଚାରିଭାଗରୁ ଏକଭାଗ,(ବିଂ)ଚତୁର୍ଥାଂଶର ଅଧିପତି ।

ଚତୁର୍ଥିକା — ସ୍ତ୍ରୀ. ବି. ପରମାଣବିଶେଷ, ଏକପଳ, ଚାରିକର୍ଷ ଓଜନ ।

ଚତୁର୍ଥୀକର୍ମ — କ୍ଳୀ. ବି. ବିବାହପର ଚତୁର୍ଥ ଦିନ ଅନୁଷ୍ଠେୟ କର୍ମ ।

ଚତୁର୍ଥୀ — ସ୍ତ୍ରୀ. ବି. ବିବାହର ଚତୁର୍ଥଦିବସ, ଚଉଠି, ବ୍ୟାକରଣ ପାରିଭାଷିକ ବିଭକ୍ତିବିଶେଷ, ସମ୍ପ୍ରଦାନକାରକର ବିଭକ୍ତି, ଚନ୍ଦ୍ରଙ୍କର ୪ର୍ଥ କଳା, ତିଥିବିଶେଷ ।

ଚତୁର୍ଦ୍ଦଂଷ୍ଟ୍ର — ବିଂ. (ବି.ଗ୍ରା) ଯାହାର ୪ଗୋଟି ଦାନ୍ତଅଛି, (ପୁଂ. ବି) କାର୍ତ୍ତିକେୟଙ୍କର ସୈନ୍ୟ, ଦାନବବିଶେଷ, ବଳରସୈନ୍ୟ, ପରମେଶ୍ୱର ।

ଚତୁର୍ଦ୍ଦନ୍ତ — ପୁଂ. ବି. (ବି.ଗ୍ରା) ଐରାବତ ହସ୍ତୀ, ସୁରଗଜ, (ବିଂ) ଯାହାର ୪ ଗୋଟି ଦାନ୍ତଅଛି,(ସ୍ତ୍ରୀ) ଚତୁର୍ଦ୍ଦନ୍ତା ।

ଚତୁର୍ଦ୍ଦଳ — ବି. (ବି.ଗ୍ରା) ଚତୁଷ୍ପତ୍ରୀ (ଦେଖ) । [(ବି) ୧୪ ସଂଖ୍ୟା ।

ଚତୁର୍ଦ୍ଦଶ — ବିଂ. ୧୪ ସଂଖ୍ୟାର ପୂରକ,

ଚତୁର୍ଦ୍ଦଶକ — ବିଂ. (ଚତୁର୍ଦ୍ଦଶ+କ) ଚଉଦର ପୂରକ ।

ଚତୁର୍ଦ୍ଦଶଧା — ଅବ୍ୟ, ଚଉଦପ୍ରକାର ।

ଚତୁର୍ଦ୍ଦଶପୁରୁଷ — ପୁଂ.ବି. (କ.ଧା)ପିତାପିତାମହାଦିକ୍ରମେ ଗଣିତ ୧୪ ପୁରୁଷ, ଚତୁର୍ଦ୍ଦଶ ପୂର୍ବକ ପୁରୁଷ ।

ଚତୁର୍ଦ୍ଦଶବିଦ୍ୟା — ସ୍ତ୍ରୀ. ବି. ବେଦପ୍ରଭୃତି ୧୪ପ୍ରକାର ବିଦ୍ୟା, ଯଥା - ୪ ବେଦ, ୬ବେଦାଙ୍ଗ,ଧର୍ମଶାସ୍ତ୍ର,ପୁରାଣ, ମୀମାଂସା ଓ ତର୍କ ।

ଚତୁର୍ଦ୍ଦଶଭୁବନ — କ୍ଳୀ. ଚଉଦଭୁବନ, ସପ୍ତସ୍ୱର୍ଗ ଓ ସପ୍ତପାତାଳ ।

ଚତୁର୍ଦ୍ଦଶଲୋକ — ବି. ଚତୁର୍ଦ୍ଦଶ ଭୁବନ, ସପ୍ତସ୍ୱର୍ଗ ଓ ସପ୍ତପାତାଳ ।

ଚତୁର୍ଦ୍ଦଶାଙ୍ଗକ୍ୱାଥ--ପୁଂ.ବି.ପାଚନବିଶେଷ ।

ଚତୁର୍ଦ୍ଦଶୀ — ସ୍ତ୍ରୀ. ବି. (ଚତୁର୍ଦ୍ଦଶ+ଈ) ତିଥିବିଶେଷ, ଅମାବାସ୍ୟା ଓ ପୂର୍ଣ୍ଣିମାର ପୂର୍ବଦିବସ ।

ଚତୁର୍ଦ୍ଦିକ — ସ୍ତ୍ରୀ. ବି. ଚାରିଦିଗ, ଚଉଦିଗ, ପୂର୍ବ ପଶ୍ଚିମ ଉତ୍ତର ଦକ୍ଷିଣ ଦିଗଚତୁଷ୍ଟୟ, ଚାରିପାଖ, ସମସ୍ତ ବିଷୟ (ଗ୍ରା. ଅବ୍ୟ) ଚାରିଆଡ଼େ, ସବୁଆଡ଼େ ।

ଚତୁର୍ଦ୍ଦିଶ୍ — ସ୍ତ୍ରୀ. ବି. ପୂର୍ବ ପଶ୍ଚିମ ଉତ୍ତର ଦକ୍ଷିଣ — ଏପରି ଚାରିଦିଗ ।

ଚତୁର୍ଦ୍ଦୋଳ—ବି. (ଚତୁଃ + ଦୁଲ୍ + ଅ) ସ୍ୱନାମଖ୍ୟାତ ଯାନବିଶେଷ, ଚଉଦୋଳ, ବିମାନ ।

ଚତୁର୍ଦ୍ୱାର—କ୍ଳୀ.ବି. ଚାରିମୁଖଥିବା ଗୃହ, ଚାରିଦ୍ୱାର ।

ଚତୁର୍ଧର—ପୁଂ. ବି. ଗଣପତିଗୀତାର ଜଣେ ଟୀକାକାର ।

ଚତୁର୍ଧର ଶିବ—ଗ୍ରା. ପୁଂ. ବି. ଶିବମହିମ୍ନ ସ୍ତବର ଜଣେ ଟୀକାକାର ।

ଚତୁର୍ଧା—ଅବ୍ୟ. ଚାରିପ୍ରକାର, ଚାରିଖଣ୍ଡ, ଚାରିଥର, ଚାରିବିଷୟରେ, ଚାରି-ଅଂଶରେ ।

ଚତୁର୍ଧାମ—କ୍ଳୀ.ବି.(କ.ଧା) ମଥୁରାମଣ୍ଡଳସ୍ଥ ଚାରିଧାମ—ରାମନାଥ, ବୈଦ୍ୟନାଥ, ଜଗନ୍ନାଥ, ଦ୍ୱାରକାନାଥ ।

ଚତୁର୍ଧାମୂରତି—ଗ୍ରା. ବି. ବିଷ୍ଣୁଙ୍କର ଶଙ୍ଖ, ଚକ୍ର, ଗଦା, ପଦ୍ମ ଧରିଥିବା ମୂର୍ତ୍ତି, ଜଗନ୍ନାଥଙ୍କ ମନ୍ଦିରରେ ଥିବା ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ ଚକ୍ର ଏହିପରି ଚାରିମୂର୍ତ୍ତି ।

ଚତୁର୍ବାହୁ—ପୁଂ. ବି. (ବ.ବ୍ରୀ)ବିଷ୍ଣୁ,ଶିବ, (ବିଂ)ଯାହାର ଚାରିଟି ବାହୁ ଅଛି,ଚାରି-ବାହୁବିଶିଷ୍ଟ ।

ଚତୁର୍ଭଦ୍ର—କ୍ଳୀ. ବି. ଧର୍ମାର୍ଥକାମମୋକ୍ଷ, ନାଗରମୁଥା, (ବିଂ) ଧର୍ମାର୍ଥକାମମୋକ୍ଷ-ଯୁକ୍ତ ।

ଚତୁର୍ଭାଗ—ପୁଂ.ବି. ଏକଚତୁର୍ଥାଂଶ,ଚାରି-ପଣ, ସିକି, ଚଉଠ ।

ଚତୁର୍ଭୁଜ—ପୁଂ. ବି. (ଚତୁର୍ + ଭୁଜ୍) ବ.ବ୍ରୀ· ବିଷ୍ଣୁ, ବିଷ୍ଣୁଙ୍କ ଅବତାର, ବାସୁଦେବ, (କ୍ଳୀ.ବି) ଚତୁଷ୍କୋଣ କ୍ଷେତ୍ର, (ବିଂ) ଯାହାର ଚାରିଗୋଟି ହାତ ଅଛି, ଧର୍ମାର୍ଥକାମମୋକ୍ଷଦାୟକ, (ସ୍ତ୍ରୀ) ଭୁଜା ।

ଚତୁର୍ଭୁଜା—ଗ୍ରା.ବି. ଏକପ୍ରକାର ବୈଷ୍ଣବ ସମ୍ପ୍ରଦାୟ ।

ଚତୁର୍ମହାରାଜକାୟିକ - ବୌଦ୍ଧଶାସ୍ତ୍ରୋକ୍ତ ମହାଦୀପ୍ତିଶାଳୀ ଦେବତାବିଶେଷ ।

ଚତୁର୍ମାଥ—ଗ୍ରା. ବି. ଚତୁର୍ମୁଖ ବ୍ରହ୍ମା ।

ଚତୁର୍ମାସ—ବି. ବର୍ଷା ଚାରିମାସ, ଆଷାଢ଼ ଶୁକ୍ଳ ଦ୍ୱାଦଶୀଠାରୁ କାର୍ତ୍ତିକ ଶୁକ୍ଳ ଦ୍ୱାଦଶୀ ପର୍ଯ୍ୟନ୍ତ ସମୟ, ଦେବଶୟନ ଏକାଦଶୀଠାରୁ ଉତ୍ଥାନ ଏକାଦଶୀ ପର୍ଯ୍ୟନ୍ତ ଚାରିମାସ ସମୟ ।

ଚତୁର୍ମାସିକ—ବିଂ. ( ଚତୁର + ମାସ + ଇକ) ଚତୁର୍ମାସବ୍ୟାପୀ (ବ୍ରତ), ଚତୁ-ର୍ମାସରେ ଅନୁଷ୍ଠେୟ ।

ଚତୁର୍ମାସ୍ୟା—ଗ୍ରା. ବି. ଆଷାଢ଼, ଶ୍ରାବଣ, ଭାଦ୍ରବ ଓ ଆଶ୍ୱିନ ଏହି ଚାରିମାସ, ବର୍ଷା ସମୟ ।

ଚତୁର୍ମୁଖ—ପୁଂ. ବି. (ଚତୁର + ମୁଖ) ବ୍ରହ୍ମା, ଚତୁର୍ଦ୍ୱାରବିଶିଷ୍ଟ, ଚାରିପାଖେ ମୁହଁ, (ପୁଂ.ବି)ଔଷଧବିଶେଷ (ବିଂ) ଚାରିମୁଖ-ଯୁକ୍ତ, (ସ୍ତ୍ରୀ) ଚତୁର୍ମୁଖୀ ।

ଚତୁର୍ମୁଖସ୍ଥାନ—ଗ୍ରା. ବି. ବୃନ୍ଦାବନସ୍ଥ ଗୋଟିଏ ତୀର୍ଥକ୍ଷେତ୍ର, ଆଧୁନିକ ନାମ ଚୌମୁହାଁ ।

ଚତୁର୍ମୂର୍ତ୍ତି—ପୁଂ.ବି. ବିଷ୍ଣୁ, ଯେ ବିରାଟ, ସୂତ୍ରାତ୍ମା, ଅବ୍ୟାକୃତ ଓ ତୁରୀୟ ଏହି-ଚାରିମୂର୍ତ୍ତିରେ ଅଛନ୍ତି ।

ଚତୁର୍ଯୁଗ—କ୍ଳୀ. ବି. ସତ୍ୟ, ତ୍ରେତା, ଦ୍ୱାପର ଓ କଳି ଏହି ଚାରିଯୁଗ ।

ଚତୁର୍ଯୁଜ୍—ବିଂ.(ଚତୁର + ଯୁଜ୍ + କ୍ୱିପ୍) ଚାରି (ବଳଦ ବା ବୃଷ) ଦ୍ୱାରା ଯୁକ୍ତ ବା ଆକର୍ଷିତ ।

ଚତୁର୍ବକ୍ତ୍ର—ପୁଂ. ବି· ଚତୁର୍ମୁଖ ବ୍ରହ୍ମା, ଦାନବବିଶେଷ ।

ଚତୁର୍ବୟସ୍କ—ବିଂ.(ଚତୁର + ବୟସ୍)ବ·ବ୍ରୀ; ଚତୁର୍ବ୍ୟୂହ ।

ଚତୁର୍ବର୍ଗ—ପୁଂ.ବି. ଧର୍ମ, ଅର୍ଥ, କାମ,ମୋକ୍ଷ ଏହି ପୁରୁଷାର୍ଥ ଚତୁଷ୍ଟୟ ।

ଚତୁର୍ବର୍ଗକର୍ତ୍ତା ବା ଦାତା—ବି. (୬ତତ୍) ଚତୁର୍ବର୍ଗଦାତା, ପରମେଶ୍ୱର, ଭଗବାନ୍ ।

ଚତୁର୍ବର୍ଗଚିନ୍ତାମଣି—ବି. ହେମାଦ୍ରିକୃତ ଏକ ବୃହତ୍ ସ୍ମୃତିନିବନ୍ଧ ଗ୍ରନ୍ଥ ।

ଚତୁର୍ବର୍ଣ୍ଣ—ପୁଂ· ବି· ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ଏହି ଚାରିବର୍ଣ୍ଣ । ଧଳା, କଳା, ନାଲି ଓ ନେଳୀ,(ବି)ଚତୁର୍ବର୍ଣ୍ଣ-ବିଶିଷ୍ଟ ।

ଚତୁର୍ବର୍ଷିକା—ସ୍ତ୍ରୀ. ବି. ଚାରିବର୍ଷ ବୟସ୍କା ଗାଈ ।

ଚତୁର୍ବାହୀ—ପୁଂ. ବି.(ଚତୁର୍ + ବହ + ଇନ୍) ଚାରିଘୋଡ଼ା ବା ବଳଦଙ୍କଦ୍ୱାରା ଟଣାହେବା ରଥ ।

ଚତୁର୍ବିଂଶ—ବିଂ. ୨୪ ସଂଖ୍ୟାର ପୂରକ, (କ୍ଳୀ.ବି) ଏକାହଯାଗବିଶେଷ ।

ଚତୁର୍ବିଂଶତତ୍ତ୍ୱ—ଗ୍ରା ବି.୨୪ ଗୋଟି ତତ୍ତ୍ୱ, ୫ମହାଭୂତ, ୧୧ଇନ୍ଦ୍ରିୟ, ୫ ତନ୍ମାତ୍ର, ଅହଂକାର ଓ ମହତ୍ତତ୍ତ୍ୱ ପ୍ରକୃତି, ଏପରି ୨୪ ତତ୍ତ୍ୱ ।

ଚତୁର୍ବିଂଶତି—ସ୍ତ୍ରୀ.ବି.(କ.ଧା) ୨୪ ସଂଖ୍ୟା, (ବିଂ) ଯାହାର ୨୪ ସଂଖ୍ୟା ଅଛି ।

ଚତୁର୍ବିଂଶତିକ—୨୪ ସଂଖ୍ୟାଯୁକ୍ତ, (ବି) ସାଙ୍ଖ୍ୟ ମତସିଦ୍ଧ ଚତୁର୍ବିଂଶତି ତତ୍ତ୍ୱ ।

ଚତୁର୍ବିଂଶତିତମ—ବିଂ. (ଚତୁର୍ବିଂଶତି + ତମ) ୨୪ ସଂଖ୍ୟାର ପୂରକ ।

ଚତୁର୍ବିଂଶତିମୂର୍ତ୍ତି—ସ୍ତ୍ରୀ.ବି. ବିଷ୍ଣୁଙ୍କ ହସ୍ତ ଓ ଚକ୍ରାଦି ବିନ୍ୟାସ ଭେଦରେ ୨୪ଟି ମୂର୍ତ୍ତିଭେଦ ।

ଚତୁର୍ବିଦ୍ୟ—ପୁଂ. ବିଂ. ଚାରିବେଦଜ୍ଞ, ଚତୁର୍ବେଦୀ ।

ଚତୁର୍ବିଦ୍ୟା—ସ୍ତ୍ରୀ. ବି. (ଚତସ୍ର + ବିଦ୍ୟା) କ.ଧା· ଋକ୍, ଯଜୁ, ଅଥର୍ବ, ସାମ ଏହି ଚାରିବେଦ ବା ବିଦ୍ୟା ।

ଚତୁର୍ବିଧ—ବିଂ. ଚାରି ପ୍ରକାର ।

ଚତୁର୍ବିଧାନ୍ନ—ବି. (ଚତୁର୍ବିଧ + ଅନ୍ନ)ଚାରି ପ୍ରକାରର ଖାଦ୍ୟ ପଦାର୍ଥ,ଚର୍ବ୍ୟ, ଚୋଷ୍ୟ, ଲେହ୍ୟ ଓ ପେୟ ।

ଚତୁର୍ବୀଜ—କ୍ଳୀ. ବି. ମେଥୀ, ଚନ୍ଦ୍ରଶୂର, କଳାଜିରା ଓ ଯୁଆଣୀ ଏହିପରି ମିଳିତ ଦ୍ରବ୍ୟ ।

ଚତୁର୍ବୀର—ବି. ଚାରିଦିନ ସାଧ୍ୟ ସୋମ-ଯାଗବିଶେଷ, ଅଞ୍ଜନବିଶେଷ ।

ଚତୁର୍ବୃଷ—ବିଂ. (ବ.ବ୍ରୀ) ଯାହାର ଚାରି-ଗୋଟି ବୃଷ ବା ବଳଦ ଅଛନ୍ତି ।

ଚତୁର୍ବେଦ—ପୁଂ.ବି.ବ.ବ୍ରୀ; ପରମେଶ୍ୱର, ଚାରିବେଦ,(ବିଂ) ଚତୁର୍ବେଦାଭିଜ୍ଞ, ଯେ ଚାରିବେଦ ଅଧ୍ୟୟନ କରିଅଛି ।

ଚତୁର୍ବେଦପୁର—ଗ୍ରା. ବ. ବାରଣସୀ ଜିଲାନ୍ତର୍ଗତ ଗୋଟିଏ ପ୍ରାଚୀନ ଗ୍ରାମ ।

ଚତୁର୍ବେଦବତ୍—ପୁଂ.ବ. (ଚତୁର୍ବେଦ+ ବଦ+କ୍ୱିପ)ବିଷ୍ଣୁ, (ବିଂ) ଚତୁର୍ବେଦାଭିଜ୍ଞ ।

ଚତୁର୍ବେଦୀ—ପୁଂ. ବ. ( ଚତୁର୍ବେଦ+ ଇନ୍)ଯାହାର ଚାରିଟି ବେଦ ଅଛି ,ଯେ ଚାରିବେଦ ଜାଣେ, ଚୌବେ ।

ଚତୁର୍ବ୍ୟୂହ—ପୁଂ.ବ.(ବ.ବ୍ରୀ)ବିଷ୍ଣୁ, କୃଷ୍ଣ, ବଳରାମ, ପ୍ରଦ୍ୟୁମ୍ନ, ଅନିରୁଦ୍ଧ ଏହି ଚତୁରାତ୍ମକ ବିଷ୍ଣୁ, (କ୍ଲୀ.ବ)ଚିକିତ୍ସାଶାସ୍ତ୍ର ।

ଚତୁର୍ହନୁ—ବିଂ.(ବ.ବ୍ରୀ) ଯାହାର ଚାରିଟି ହନୁ ଅଛି,(ପୁଂ.ବ) ଦାନବବିଶେଷ ।

ଚତୁର୍ହାୟନ—ବିଂ. (ବ.ବ୍ରୀ) ଚାରିବର୍ଷବୟସ୍କ, (ସ୍ତ୍ରୀ)ଚତୁର୍ହାୟଣୀ ।

ଚତୁର୍ହୋତ—ପୁଂ. ବ. (କ.ଧା) ଚାରିଜଣ ହୋତା, ବିଷ୍ଣୁ ।

ଚତୁର୍ହୋତୃ—ପୁଂ. ବ. (ବ.ବ୍ରୀ ) ବିଷ୍ଣୁ, ପରମେଶ୍ୱର ।

ଚତୁର୍ହୋତ୍ରକ—କ୍ଲୀ. ବ. (ବ.ବ୍ରୀ) ଯେଉଁ ବୈଦିକ କର୍ମରେ ଚାରି ହୋତା ଅଛନ୍ତି, ଯଜ୍ଞ ।

ଚତୁଲ—ବିଂ.(ଚତ+ଉଲ) ସ୍ଥାପୟିତା, ଯେ ସ୍ଥାପନ କରେ ।

ଚତୁଷ୍କଣ୍ଠ—କ୍ଲୀ. ବ. ରୁଦ୍ରଯାମଳୋକ୍ତ ଗୋଟିଏ ଚକ୍ର ।

ଚତୁଶ୍ଚତ୍ୱାରିଂଶ—ବିଂ.୪୪ସଂଖ୍ୟାର ପୂରକ ।

ଚତୁଶ୍ଚତ୍ୱାରିଂଶତ୍—ସ୍ତ୍ରୀ. ବ. ୪୪ ସଂଖ୍ୟା, (ବିଂ) ୪୪ ସଂଖ୍ୟାଯୁକ୍ତ ।

ଚତୁଶ୍ଚତ୍ୱାରିଂଶତ୍ତମ—ବିଂ. ୪୪ ସଂଖ୍ୟାର ପୂରଣ ।

ଚତୁଶ୍ଶାଳ—ବିଂ. (ବ.ବ୍ରୀ) ଯାହାର ଚାରିଗୋଟି ଶାଳା ଅଛି, ଚଉରା ।

ଚତୁଶ୍ଶୃଙ୍ଗ—ବିଂ. ଯାହାର ଚାରି ସଂଖ୍ୟକ ଶୃଙ୍ଗ ଅଛି, ( ପୁଂ. ବ. ) କୁଶଦ୍ୱୀପସ୍ଥ ପର୍ବତବିଶେଷ ।

ଚତୁଶ୍ଶ୍ରୋତ୍ର—ବିଂ. ( ବ.ବ୍ରୀ ) ଯାହାର ଚାରିଗୋଟି କର୍ଣ୍ଣ ଅଛି ।

ଚତୁଷ୍କ—ବିଂ. ଯାହାର ଚାରି ଗୋଟି ଅବୟବ ଅଛି, ଚାରି ଦ୍ୱାରା ଯୋଗ କରାଯିବା, ଚାରିଟି ବସ୍ତୁବିଶିଷ୍ଟ, (ବି) ଚତୁଷ୍ଟୟ, ଚାରିଟିଆ ହାର, ଛକ, ଚୌରାସ୍ତା, ଚାରିଟି କସ୍ତୁର ସମାହାର, ଗୃହବିଶେଷ, ଯଷ୍ଟିବିଶେଷ, ଚାରିକୋଣିଆ ପ୍ରାଙ୍ଗଣ, ଚତ୍ୱର, ଚଉକ, ( ପୁଂ. ବ. ) ରାଜତରଙ୍ଗିଣୀ ବର୍ଣ୍ଣିତ ଜଣେ ରାଜା ।

ଚତୁଷ୍କବେଶ୍ମ—ବ. (କ.ଧା) ଚାରିଟି ଖୁଣ୍ଟ ଉପରେ ଯେଉଁ ମଣ୍ଡପର ଗୃହ ଥାଏ ।

ଚତୁଷ୍କର—ପୁଂ. ବ. ଯେଉଁ ଜନ୍ତୁର ପଦର ଅଗ୍ରଭାଗ ଠିକ ହାତ ପରି, (ବିଂ) ହସ୍ତଚତୁଷ୍ଟୟଯୁକ୍ତ, ଚାରିହାତବିଶିଷ୍ଟ, (ପୁଂ. ବ. ବ.ବ୍ରୀ ) ବିଷ୍ଣୁ, ଚତୁର୍ବାହୁ, ନାରାୟଣ ।

ଚତୁଷ୍କରୀ—ପୁଂ. ବିଂ. ଯେଉଁ ଜନ୍ତୁର ପଦ ଚତୁଷ୍ଟୟର ଅଗ୍ରଭାଗ ହସ୍ତରୂପ ପରଗଣିତ ।

ଚତୁଷ୍କର୍ଣ୍ଣ—ବିଂ. ଯାହା କେବଳ ଚାରି କାନରେ ଶୁଣାଯାଇଅଛି, ଯାହାର ଚାରି କର୍ଣ୍ଣ ଅଛି ।

ଚତୁଷ୍କର୍ଣ୍ଣୀ—ସ୍ତ୍ରୀ. ବ. କାର୍ତ୍ତିକେୟଙ୍କର ଅନୁଚରୀ ମାତୃବିଶେଷ ।

ଚତୁଷ୍କଲ—ପୁଂ. ବ. ଛନ୍ଦଶାସ୍ତ୍ରପ୍ରସିଦ୍ଧ ମାତ୍ରାଗଣ ବିଶେଷ ।

ଚତୁଷ୍କା—ସ୍ତ୍ରୀ. ବ. (ଚତୁଷ୍କ+ଆ) ଚାରି କୋଣିଆଁ ଗ୍ରେଟ ପୋଖରୀ, ଚଉକା, ଚଉକି, କେଦାସନ, ମସାଣ, ଚାରିଦୁଆ, ଚାରିସରିଆ ହାର ।

ଚତୁଷ୍କିକା—ସ୍ତ୍ରୀ. ବ. ଚାରିସଂଖ୍ୟା ।

ଚତୁଷ୍କୀ—ପୁଂ. ବିଂ. (ଚତୁଷ୍କ+ଇନ୍) ଯାହାର ଚାରି ଧାର ଅଛି; ଚତୁଷ୍କଯୁକ୍ତ ।

ଚତୁଷ୍କୋଣ—ବିଂ. (ବ.ବ୍ରୀ) ଚତୁରସ୍ର, ଚାରିକୋଣବିଶିଷ୍ଟ (କ୍ଷେତ୍ର), ଚତୁର୍ଭୁଜ (କ୍ଷେତ୍ର), ଚାରିକୋଣିଆ (କ୍ଷେତ୍ର) ।

ଚତୁଷ୍ଟୟ—ବିଂ. (ଚତୁର+ତୟ)ଚତୁରବୟବଯୁକ୍ତ, ଚାରିଅଂଶରେ ବିଭକ୍ତ, (ବି) ଚାରିପ୍ରକାର,ଚାରିସଂଖ୍ୟା, କେନ୍ଦ୍ର ଲଗ୍ନ, ଚତୁର୍ଥ, ସପ୍ତମ ଦଶମ, ସ୍ଥାନ ।

ଚତୁଷ୍ଟୋମ—ପୁଂ.ବ.ଚତୁରୁତ୍ତର ସ୍ତୋମ, ବାୟୁ, ବିଂ, ଚାରିଭାଗରେ ବିଭକ୍ତ ସ୍ତୋମସମ୍ବନ୍ଧୀୟ ।

ଚତୁଷ୍ପଞ୍ଚାଶ—ବିଂ. ୫୪ର ପୂରକ ।

ଚତୁଷ୍ପର୍ଣ୍ଣୀ—ସ୍ତ୍ରୀ. ବ. (ବ.ବ୍ରୀ) ସୁନିଷଣ୍ଣକ, ସୁନିସୁନିଆ ଶାଗ,ଗ୍ରେଟ ପାଷାଣଭେଦୀ ।

ଚତୁଷ୍ପଥ—ପୁଂ. ବ. ( ଦ୍ୱିଗୁ) ବ୍ରାହ୍ମଣ, ଏକତ୍ରମିଳିତ ଚାରିଟି ବାଟ, ଛକ, ଚଉମୁହାଣିଆଁ ସ୍ଥାନ,(ବିଂ.ବ.ବ୍ରୀ) ଯହିଁରେ ଚାରି ଗୋଟି ବାଟଅଛି ।

ଚତୁଷ୍ପଥନିକେତା—ସ୍ତ୍ରୀ. ବ.ସ୍କନ୍ଦାନୁଚରୀ ମାତୃକାଭେଦ ।

ଚତୁଷ୍ପଦ—ପୁଂ ଓ ସ୍ତ୍ରୀ. ବ. (ବ.ବ୍ରୀ) ଚାରି ପାଦଆ ପ୍ରାଣୀ, ପଶୁ ,(ବିଂ) ଚାରିପଦବିଶିଷ୍ଟ (ଆସନ, ଶ୍ଳୋକ, ପଦ, ଗୀତାଦି) ।

ଚତୁଷ୍ପଦବୈକୃତ—କ୍ଲୀ. ବ. ଚତୁଷ୍ପଦ ଜନ୍ତୁ ପ୍ରସବାଦିରୂପ ଉତ୍ପାତବିଶେଷ ।

ଚତୁଷ୍ପଦୀ—ସ୍ତ୍ରୀ.ବ. ଚୌପଦୀ, ଚାରିପାଦଯୁକ୍ତ ପଦ୍ୟ, ଛନ୍ଦୋବିଶେଷ ।

ଚତୁଷ୍ପର୍ଣ୍ଣୀ—ସ୍ତ୍ରୀ.ବ.(ଚତୁଃ+ପର୍ଣ୍ଣ+ଈ) ସୁନିଷଣ୍ଣକ, ସୁନିସୁନିଆ ଶାଗ ।

ଚତୁଷ୍ପାଟୀ—ସ୍ତ୍ରୀ. ବ. (ଚତୁଃ+ପାଟି+ ଅ+ଈ) ନଦୀ ।

ଚତୁଷ୍ପାଠୀ—ସ୍ତ୍ରୀ. ବ. (ଚତୁର୍+ପଠ+ ଈ ) ଛାତ୍ରାଧ୍ୟୟନ ସ୍ଥାନ, ଚୌପାଢ଼ୀ, ଟୋଲ ।

ଚତୁଷ୍ପାଣି—ପୁଂ.ବ. (ବ.ବ୍ରୀ)ବିଷ୍ଣୁ, (ବିଂ) ଚାରିହାତବିଶିଷ୍ଟ ।

ଚତୁଷ୍ପାତ୍—ବିଂ. ଚତୁଷ୍ପାଦଯୁକ୍ତ ( ଗୋମହିଷାଦି),ଚାରିଭାଗରେ ଯୁକ୍ତ ।

ଚତୁଷ୍ପାଦ—ବିଂ. ସର୍ବାବୟବସମ୍ପନ୍ନ, ଚାରି ଖଣ୍ଡରେ ବିଭକ୍ତ,(ବି) ଚାରିପଦ, ଚାରିଭାଗ ।

ଚତୁଷ୍ପାଦଯୋଗ—ବ.ଶୁଭଯୋଗବିଶେଷ ।

ଚତୁଷ୍ପାର୍ଶ୍ୱ—କ୍ଲୀ.ପୁଂ. ବ. (କ.ଧା) ଚାରିପାଖ, ଚାରିଧାର ।

ଚତୁଷ୍ପାର୍ଶ୍ୱସ୍ଥ—ବିଂ.(ଚତୁଷ୍ପାର୍ଶ୍ୱ+ସ୍ଥା+କ.ଅ) ଚାରିଧାରରେ ଅବସ୍ଥିତ ।

ଚତୁସ୍ତନ—ସ୍ତ୍ରୀ. ବି. ଚାରିସ୍ତନ ବା ଥର-ଯୁକ୍ତ (ଗାଈ) ।
ଚତୁସ୍ତଳ—ବି°. (ଚତୁଃ+ତଳ) ବ.ବ୍ରୀ.; ଚାରିମହଲା, ଚଉତାଲା, ଚାରିକୋଣି ସମତଳ ବା ପାଖଥିବା (ବସ୍ତୁ) ।
ଚତୁସ୍ତାଳ—ବି.ସଙ୍ଗୀତର ତାଳବିଶେଷ ।
ଚତୁସ୍ତ୍ରିଂଶ—ବି°.୩୪ ସଂଖ୍ୟାର ପୂରକ ।
ଚତୁସ୍ତ୍ରିଂଶତ୍—ସ୍ତ୍ରୀ.ବି. ୩୪ ସଂଖ୍ୟା,(ବି°) ୩୪ ସଂଖ୍ୟକ ।
ଚତୁସ୍ତ୍ରିଂଶତ୍ତମ—ବି°. ୩୪ ସଂଖ୍ୟକ, ୩୪ ସଂଖ୍ୟାର ପୂରକ ।
ଚତୁସ୍ସନ—ପୁଂ. ବି. ବ୍ରହ୍ମାଙ୍କର ପୁତ୍ର-ଚତୁଷ୍ଟୟ, ଯଥା—ସନକ, ସନନ୍ଦ, ସନତ୍‌କୁମାର ଓ ସନାତନ,(ବି)ବିଷ୍ଣୁ ।
ଚତୁସ୍ସମ—କ୍ଳୀ.ବି.ଚନ୍ଦନ, ଅଗୁରୁ,କସ୍ତୁରୀ ଓ କୁଙ୍କୁମ ଏହି ଚାରି ଗନ୍ଧଦ୍ରବ୍ୟ ।
ଚତୁସ୍ଥାନ—ବି. କର୍ମନାଶା ନଦୀତୀରରେ ଅବସ୍ଥିତ ଗୋଟିଏ ଅତି ପ୍ରାଚୀନ ଗ୍ରାମର ନାମ ।
ଚତୁଃସ୍ରକ୍ତି—ବି°. ଚତୁର୍ଦ୍ଦିଗବିଚ୍ଛିନ୍ନ ।
ଚତୂରାଜୀ—ସ୍ତ୍ରୀ. ବି. ଚତୁରଙ୍ଗ କ୍ରୀଡ଼ାର ରାଜା ସ୍ୱପଦସ୍ଥିତ ଅପର ରାଜାକୁ ମାରିଲେ ଚତୂରାଜୀ ହୁଏ ।
ଚତୂରାତ୍ର—କ୍ଳୀ. ବି°. ଚାରିରାତିବ୍ୟାପୀ, (ବି) ଚାରିରାତି, ଚାରିରାତିସାଧ୍ୟ ଯଜ୍ଞ-ବିଶେଷ, ଉତ୍ସବବିଶେଷ ।
ଚତ୍ୱର—କ୍ଳୀ. ବି.(ଚତ୍+ବର)ସ୍ଥଣ୍ଡିଳ, ହୋମନିମିତ୍ତ ସଂସ୍କୃତ ଭୂମି,ଚୌତାଲ, ଚତୁଷ୍ପଥ, ଛକ, ଅଗଣା, ପ୍ରାଙ୍ଗଣ, ମଠ । [ ଭେଦ ।
ଚତ୍ୱରବାସିନୀ—ସ୍ତ୍ରୀ.ବି.ସ୍କନ୍ଦାନୁଚର ମାତୃ
ଚତ୍ୱାର—ବି. (ଚତ୍+ଆର) ୪ସଂଖ୍ୟା, ଚତ୍ୱାଲ ଦେଖ ।
ଚତ୍ୱାରିଂଶ—ବି°. ୪୦ ସଂଖ୍ୟାର ପୂରକ, ଚତ୍ୱାରିଂଶତ୍ତମ ।
ଚତ୍ୱାରିଂଶତ୍—ସ୍ତ୍ରୀ. ବି. ( ବ.ବ୍ରୀ ) ୪୦ ସଂଖ୍ୟା, (ବି°) ୪୦ ସଂଖ୍ୟକ ।
ଚତ୍ୱାରିଂଶତ୍ତମ—ବି°.୪୦ସଂଖ୍ୟାର ପୂରକ, ୪୦ ସଂଖ୍ୟକ ।

ଚତ୍ୱାଲ—ପୁଂ.ବି. (ଚତ+ବାଲ)ହୋମ-କୁଣ୍ଡ, ଦର୍ଭ, କୁଶ, ଗର୍ଭ ।
ଚଦର—ଗ୍ରା. ବି. ଚାଦର ଦେଖ ।
ଚଦା—ଗ୍ରା. ବି. ଧମକା, ତର୍ଜନା ।
ଚଦାଇବା—ଗ୍ରା.କ୍ରି. ଚଦବାର ଣିଜନ୍ତ-ରୂପ ।
ଚଦାଚଦ—ଗ୍ରା. ବି. ଅନ୍ୟୋଽନ୍ୟରେ ତର୍ଜନ ବା ଧମକ ।
ଚଦାମର୍କଟା—ଗ୍ରା. ବି. ତର୍ଜନ ଗର୍ଜନ, ଧମକ ଓ ମୁଖଭଙ୍ଗୀ ।
ଚଦିବା—ଗ୍ରା. କ୍ରି. ଧମକାଇବା, ସାବ-ଧାନକରିବା, ତାକିଦ କରିବା ।
ଚଦିମର୍କଟିହେବା—ଗ୍ରା. କ୍ରି. ଚଳମର୍କଟି ହେବା ଦେଖ ।
ଚଢର—ପୁଂ ଓ ସ୍ତ୍ରୀ. ବି. ହସ୍ତୀ, ସର୍ପ, (ସ୍ତ୍ରୀ) ଚଢରୀ, ଚନ୍ଦ୍ର, କର୍ପୂର ।
ଚନ୍‌ଚନ୍—ଗ୍ରା. ଅବ୍ୟ. ଚିନ୍‌ଚିନ୍, ଚୁଇଁ-ଚୁଇଁ, ଶିରା ସ୍ନାୟୁ ପ୍ରଭୃତିର ସଙ୍କୋଚ-ଜନିତ ଉପର୍ଯ୍ୟୁପରି କ୍ଷଣସ୍ଥାୟୀ ବ୍ୟଥା ବା ଶାରୀରିକ କ୍ଲେଶାନୁଭୂତି ।
ଚନ୍‌ଚନାଇବା—ପ୍ରା.(ସମ୍ବ)କ୍ରି. କୌଣସି କାର୍ଯ୍ୟରେ ଖୁବ୍ ଦୃଢ଼ତା ସହିତ ଲାଗି-ଯିବା, (ବିଅ) ବନ୍ଧିବା, ବଥାଇବା ।
ଚନ—ଅବ୍ୟ. ( ଚନ+ଅ ) ପ୍ରତ୍ୟୟ-ବିଶେଷ, ଅସାକଲ୍ୟ, ନିଷେଧ ଓ ସମୁଚ୍ଚୟ । [ ରାଜା ।
ଚନକପାଲ—ଗ୍ରା.ବି.ପାଲବଂଶୀୟ ଜଣେ
ଚନସ୍—କ୍ଳୀ. ବି. ଅନ୍ନ ।
ଚନସିତ—କ୍ଳୀ. ବି. ( ବ.ବ୍ରୀ ) ବ୍ରାହ୍ମଣ-ମାନଙ୍କର ଗୁପ୍ତ ନାମ ।
ଚନାବ୍—ଗ୍ରା. ବି. ( ସଂ—ଚନ୍ଦ୍ରଭାଗା ) ପଞ୍ଜାବର ପାଞ୍ଚଟି ନଦୀ ମଧ୍ୟରୁ ଏକ ।
ଚନାର—ଗ୍ରା.ବି.ଉ: ପ: ପ୍ରଦେଶାନ୍ତର୍ଗତ ମିର୍ଜାପୁର ଜିଲ୍ଲାର ଗୋଟିଏ ତହସିଲ ।
ଚନି—ଗ୍ରା. ବି. ଗୋମୂତ୍ର ।
ଚନିଷ୍ଠ—ବି°. (ଚନ+ଇଷ୍ଠ) ଅନ୍ନଶାଳୀ-ଗଣ ମଧ୍ୟରେ ଶ୍ରେଷ୍ଠ ।
ଚନୋଧା—ବି°. ଅନ୍ନାଧିପତି, ଯେ ଅନ୍ନ ପୋଷଣ ବା ଧାରଣ କରେ ।

ଚନୋହିତ—ବି°. ( ୬ତତ୍ ) ଅନ୍ନର ହିତକର, ନିହିତାନ୍ନ ।
ଚନ୍ଦ—ପୁଂ.ବି.(ଚନ୍ଦ+ଅ)ଚନ୍ଦ୍ର,କର୍ପୂର, (ବି°) ଆନନ୍ଦଜନକ ।
ଚନ୍ଦକ—ପୁଂ. ବି. (ଚନ୍ଦ+ଅକ) ମତ୍ସ୍ୟ-ବିଶେଷ, ଟଙ୍କାଗୁନ୍ଦିମାଛ । [ ପୁଷ୍ପ ।
ଚନ୍ଦକପୁଷ୍ପ—କ୍ଳୀ.ବି.ଚନ୍ଦନଫୁଲ, ଚନ୍ଦନ
ଚନ୍ଦନ—କ୍ଳୀ. ବି. (ଚନ୍ଦ+ଅନ) ସ୍ୱନାମ-ପ୍ରସିଦ୍ଧ ସୁଗନ୍ଧ ବୃକ୍ଷ ଓ କାଠ, ଘୃଷ୍ଟ ଚନ୍ଦନ, ଘୋରା ଚନ୍ଦନ, ରକ୍ତଚନ୍ଦନ, ଭଦ୍ରକାଳୀ, (ପୁଂ.ବି) ରାମ ସୈନ୍ୟବର୍ଣ୍ଣିତ ବାନରବିଶେଷ, ପ୍ରସାରଣୀଲତା, (ଗ୍ରା. ବି) ଚନ୍ଦନଯାତ୍ରା ଦେଖ ଭାଗଲପୁର, ଜିଲ୍ଲାର ଗୋଟିଏ ନଦୀ ।
ଚନ୍ଦନଅର୍ଗଳ—ଗ୍ରା. ବି. ଦେବତାଙ୍କ ଦର୍ଶନ ନିମିତ୍ତ ଗମ୍ଭୀରା ବା ଦେଉଳ ମଧ୍ୟକୁ ଯିବା ପୂର୍ବରୁ ବାଟରେ ଦୁଇ-ପାଖେ ପୋତା ହୋଇଥିବା ଖୁଣ୍ଟର ଛିଦ୍ରମାନଙ୍କରେ ଯେଉଁ ଲମ୍ବ କାଠ ଗଳାଯାଇଥାଏ ଓ ଯାହା ଫିଟାଇ ଦେଲେ ବାଟ ମେଲା ହୁଏ ଓ ଯାହା ପକାଇ ଦେଲେ ବାଟ ବନ୍ଦ ହୁଏ, ବୋଧହୁଏ ଏହି ଅର୍ଗଳ କାଠ ଚନ୍ଦନ କାଠର ହୋଇଥିବ ବୋଲି "ଚନ୍ଦନ-ଅର୍ଗଳ" ନାମରେ ଖ୍ୟାତ ।
ଚନ୍ଦନକ—ପୁଂ.ବି.(ଚନ୍ଦନ+କ)ଚନ୍ଦନ, ମୃଚ୍ଛକଟିକବର୍ଣ୍ଣିତ ଜଣେ ରାଜଭୃତ୍ୟ ।
ଚନ୍ଦନକାଶୀ—ବି. ( ପଞ୍ଚକୂଟାନ୍ତର୍ଗତ ) ଗୋଟିଏ ପ୍ରାଚୀନ ଗ୍ରାମ । [ ଚଳ ।
ଚନ୍ଦନଗିରି—ପୁଂ. ବି. (୬ତତ୍) ମଳୟା-
ଚନ୍ଦନଗୋପୀ—ସ୍ତ୍ରୀ. ବି. (ଚନ୍ଦନ+ଗୁପ +ଅ+ଈ) ଶାରିବା, ଶୁଆଁଲଇ ।
ଚନ୍ଦନଦେଇବା—ଗ୍ରା. କ୍ରି. ଶରୀରରେ ଘୃଷ୍ଟ ଚନ୍ଦନ ଲେପନ କରିବା, ଚିତା କରିବା, ଚନ୍ଦନ ଲଗାଇବା ।
ଚନ୍ଦନଘୋରିବା—ଗ୍ରା. କ୍ରି.ଚନ୍ଦନକାଠକୁ ଚନ୍ଦନ ପେଡ଼ିରେ ପାଣି ଦେଇ ଘଷିବା ।
ଚନ୍ଦନଚର୍ଚ୍ଚିତ—ବି°. ( ୩ତତ୍ ) ଚନ୍ଦନ ବୋଳା ହୋଇଥିବା (ଶରୀର) ।

ଚନ୍ଦନଜାତ—ଗ୍ରା. ବି. ଚନ୍ଦନସାର ଦେଖ ।

ଚନ୍ଦନତେଲ—ଗ୍ରା. ବି. ଚନ୍ଦନ କାଠରୁ ବୈଜ୍ଞାନିକ ପ୍ରକ୍ରିୟା ଦ୍ୱାରା ବାହାର କରାଯିବା ତେଲ ।

ଚନ୍ଦନଦାନ୍—ଗ୍ରା. ବି. ଘୋରା ଚନ୍ଦନକୁ ରଖି ବ୍ୟବହାର କରିବା ନିମନ୍ତେ ରୂପାର ପାତ୍ର ।

ଚନ୍ଦନଦାସ—ପୁଂ.ବି.କୁସୁମପୁର ନିବାସୀ ଜଣେ ଶ୍ରେଷ୍ଠୀ, ଶେଠ୍ ( ମୁଦ୍ରାରାକ୍ଷସ ବର୍ଣ୍ଣିତ) ।

ଚନ୍ଦନଧେନୁ—ସ୍ତ୍ରୀ. ବି. (କ.ଧା) ପତି-ପୁତ୍ରବତୀ ସ୍ତ୍ରୀର ମୃତ ଉଦ୍ଦେଶ୍ୟରେ ବୃଷୋତ୍ସର୍ଗ ପରିବର୍ତ୍ତିରେ ପୁତ୍ରଦ୍ୱାରା-ବ୍ରାହ୍ମଣକୁ ଦାନ କରାଯିବା ଚନ୍ଦନ-ଚର୍ଚ୍ଚିତ ସବତ୍ସା ଧେନୁ ।

ଚନ୍ଦନନଗର—ଗ୍ରା.ବି. ଫରାସୀ ଅଧିକୃତ କଲିକତା ନିକଟସ୍ଥ ନଗର ବିଶେଷ ।

ଚନ୍ଦନପଙ୍କ—ବି. (୬ତତ୍ର) ଘୃଷ୍ଟ ଚନ୍ଦନ, ଘୋରା ଚନ୍ଦନ ।

ଚନ୍ଦନପାଟି—ଗ୍ରା. ବି. କପାଳର ଦୁଇ ପାଖରେ ଗାଲ ପର୍ଯ୍ୟନ୍ତ ବୋଳା ହୋଇଥିବା ଚନ୍ଦନପଟି ବା ଚିତା ।

ଚନ୍ଦନପାଳ—ଗ୍ରା. ବି. ୨୧ ଦିନ ବ୍ୟାପୀ ଚନ୍ଦନଯାତ୍ରାର ଗୋଟିଏ ଲେଖାଏଁ ଦିନର ଉତ୍ସବ ଓ ଉକ୍ତ ଉତ୍ସବର ବ୍ୟୟାଦି ଭାର ।

ଚନ୍ଦନପୁଷ୍ପ—କ୍ଲୀ. ବି. (ବ.ବ୍ରୀ) ଲବଙ୍ଗ, (୬ତତ୍ର) ଚନ୍ଦନ ଗଛର ଫୁଲ ।

ଚନ୍ଦନପେଢ଼ି—ଗ୍ରା. ବି. ଚନ୍ଦନକାଠ ଘୋରିବାର ପଥର ଚକି ।

ଚନ୍ଦନବୋଡ଼ା—ଗ୍ରା.ବି.(କ.ଧା.ହଳଦିଆ ଦେହରେ ବଡ଼ ବଡ଼ ଚନ୍ଦନଧାଡ଼ି କଳା ଗୋଲ ଚିହ୍ନ ଥିବା ଭୟାନକ ବିଷଧର ବୋଡ଼ା ସାପ, (ଏହା ଲମ୍ବରେ ପ୍ରାୟ ଦୁଇ ହାତ ବଢ଼େ) ।

ଚନ୍ଦନରାୟ—ଗ୍ରା. ପୁଂ. ବି. ଜଣେ ପ୍ରସିଦ୍ଧ ଛନ୍ଦ କବି ।

ଚନ୍ଦନବେଶ—ଗ୍ରା.ବି.(କ.ଧା.)ଶରୀରରେ ଚନ୍ଦନଲେପନ ଦ୍ୱାରା କରାଯିବା ବେଶ ।

ଚନ୍ଦନଯାତ୍ରା—ଗ୍ରା. ବି. ବୈଶାଖ ଶୁକ୍ଳ ତୃତୀୟା, (ଅକ୍ଷୟ ତୃତୀୟା) ଠାରୁ ୨୧ ଦିନ ଅପରାହ୍ଣ ଓ ସନ୍ଧ୍ୟାରେ ଜଗନ୍ନାଥ ଆଦି ବିଷ୍ଣୁ ମୂର୍ତ୍ତିଙ୍କର କରାଯିବା ଜଳ-କ୍ରୀଡ଼ାରୂପ ଉତ୍ସବ । [ ଶାରିବା ।

ଚନ୍ଦନଶାରିବା—ସ୍ତ୍ରୀ.ବି.(କ.ଧା) ସୁଗନ୍ଧ-

ଚନ୍ଦନସାର—ପୁଂ.ବି. (ବ.ବ୍ରୀ) ବଜ୍ରକ୍ଷାର, ଘୋରା ଚନ୍ଦନର ସାରାଂଶ ।

ଚନ୍ଦନା—ସ୍ତ୍ରୀ.ବି.(ଚନ୍ଦନ+ଆ)ଶାରିବା-ବିଶେଷ, ଶୁକପକ୍ଷୀବିଶେଷ, ନଦୀ-ବିଶେଷ ।

ଚନ୍ଦନାଚଳ—ପୁଂ.ବି.(ଚନ୍ଦନ+ଅଚଳ) ମଳୟାଚଳ ।

ଚନ୍ଦନାଦି—ପୁଂ. ବି. ବୈଦ୍ୟକୋକ୍ତ ଗୋଟିଏ ଗଣ, ଚନ୍ଦନ ଉଶୀରାଦି ।

ଚନ୍ଦନାଦ୍ରି—ପୁଂ. ବି. (ଚନ୍ଦନ+ଅଦ୍ରି) ମଳୟ ପର୍ବତ ।

ଚନ୍ଦନାଦ୍ୟ—କ୍ଲୀ.ବି. ଚନ୍ଦନାଦିଯୁକ୍ତ ଔଷଧ-ତୈଳ ବିଶେଷ ।

ଚନ୍ଦନାବତୀ—ସ୍ତ୍ରୀ. ବି. ନଦୀ ବିଶେଷ ।

ଚନ୍ଦନମାଟି—ଗ୍ରା. ବି, ଯେଉଁ ମାଟିରେ ବାଲି ଗୋଡ଼ି ଆଦି ନ ଥାଏ ।

ଚନ୍ଦନୀ—ପୁଂ. ବିଂ. ( ଚନ୍ଦନ+ଇନ୍ ) ଯାହାର ଚନ୍ଦନ ଅଛି, ଚନ୍ଦନଯୁକ୍ତ, (ସ୍ତ୍ରୀ) ଚନ୍ଦନିନୀ ।

ଚନ୍ଦନୀୟା—ସ୍ତ୍ରୀ. ବି. (ଚନ୍ଦନ+ଇୟ+ଆ) ଗୋରୋଚନା ।

ଚନ୍ଦନୋଦକଦୁନ୍ଦୁଭି—ଗ୍ରା. ପୁଂ. ବି. ଜନୈକ ଯାଦବ ବୀର ।

ଚନ୍ଦରସ୍—ଯା. ବି. ଧୂପ ନିମନ୍ତେ ବ୍ୟବହୃତ ବୃକ୍ଷନିର୍ଯ୍ୟାସବିଶେଷ, ଧୂନା, ଏକପ୍ରକାର ଝୁଣା ।

ଚନ୍ଦା—ଗ୍ରା.ବି.(ସଂ-ଚନ୍ଦ୍ର) ଚିହ୍ନ,ଅନାବୃତ ସ୍ଥାନ, ଜମିର ସୀମାନିର୍ଦ୍ଦେଶକ ଚିହ୍ନ ବା ଶଙ୍କୁ, (ବିଂ) କେଶହୀନ(ମସ୍ତକ), ଟାଙ୍ଗରା ।

ଚନ୍ଦାଇ—ଗ୍ରା. ସ୍ତ୍ରୀ. ବି ଓ ବିଂ. କୁଟ୍ଟିନୀ, ବେଧୋଇ, ଛିଣ୍ଡାଳୀ, ନଷ୍ଟା ସ୍ତ୍ରୀ, ଯେ ଆପଣାର ପ୍ରଶଂସା ଆପେ କରେ, ଯେଉଁ ସ୍ତ୍ରୀ ହାବ ଭାବ ଦ୍ୱାରା ପୁରୁଷ ନିକଟରେ କାମେଚ୍ଛା ପ୍ରକାଶ କରେ ।

ଚନ୍ଦାଇପଣ—ଗ୍ରା. ବି. ସ୍ତ୍ରୀର ଆତ୍ମ ଢଙ୍ଗମା ପ୍ରକୃତି,ଭାବଭଙ୍ଗୀ ଦ୍ୱାରା ପୁରୁଷ ନିକଟ-ରେ କାମେଚ୍ଛା ପ୍ରକଟନ ।

ଚନ୍ଦାମୁଣ୍ଡ—ଗ୍ରା. ପୁଂ. ବିଂ. ଯାହାର ମୁଣ୍ଡରେ କେଶ ନାହିଁ ।

ଚନ୍ଦିଆ—ଗ୍ରା.ସମ୍.ବିଂ. ଚାନ୍ଦିଆ, ମୁଣ୍ଡରେ ଚାନ୍ଦି ବା ଧଳାଦାଗ ଥିବା (ପଶୁଆଦି) ।

ଚନ୍ଦିର—ପୁଂ. ସ୍ତ୍ରୀ. (ଚନ୍ଦ+ଇର) ହସ୍ତୀ, ଚନ୍ଦ୍ର, (ସ୍ତ୍ରୀ) ଚନ୍ଦିରା ।

ଚନ୍ଦୁକ—ଗ୍ରା. ବି. (ବଣିଆଦେ) ଭିନ୍ନଭିନ୍ନ ପ୍ରକାରର ଗ୍ରନ୍ଥିଥାଇ ଢଆଁରହୋଇଥିବା ଏକ ପ୍ରକାର ଠସା ।

ଚନ୍ଦେର—ଗ୍ରା.ବି.ଗୋୟାଲିୟରର ଅନ୍ତର୍ଗତ ଗୋଟିଏ ଜିଲ୍ଲା ।

ଚନ୍ଦେଲ—ଗ୍ରା. ବି. ବୁନ୍ଦେଲଖଣ୍ଡର ପ୍ରାଚୀନ ରାଜବଂଶ ।

ଚନ୍ଦେଲ୍—ଗ୍ରା.ବି. କ୍ଷତ୍ରିୟ ବା ରାଜପୁତ-ମାନଙ୍କର ଏକଶାଖା ।

ଚନ୍ଦ୍ର—ପୁଂ. ବି. (ଚନ୍ଦ+କ.ର) ହିମାଂଶୁ, ଚନ୍ଦ୍ରମା, ଚାନ୍ଦ, କର୍ପୂର, ସ୍ୱର୍ଣ୍ଣ, ଜଳ, କାମ୍ପିଲ୍ୟ, ଦ୍ୱୀପ ବିଶେଷ, ନାଦବିନ୍ଦୁ, ମେଚକ, ରକ୍ତବର୍ଣ୍ଣ, ମୟୂରପୁଚ୍ଛ, ମୁକ୍ତା, ହୀରକ, ଶ୍ରେଷ୍ଠବ୍ୟକ୍ତି, ମୃଗଶିରାନକ୍ଷତ୍ର, ଏକସଂଖ୍ୟା, ଚନ୍ଦ୍ରଗୁପ୍ତ, ସ୍ତ୍ରୀମାନଙ୍କର ଅଳଙ୍କାର ବିଶେଷ, (ବିଂ) ଆହ୍ଲାଦ-ଜନକ,କମନୀୟ, (ଗ୍ରା.ବି.) ବଦାଉଦର ପାଳବଂଶୀୟ ରାଜଗଣର ଆଦିପୁରୁଷ, ନେପାଳସ୍ଥ ଗୋଟିଏ ଗିରି, ପ୍ରାକୃତ-ଭାଷାନ୍ତର ବିଧାନ ରଚୟିତା, ଅଷ୍ଟାଙ୍ଗ ହୃଦୟର ଜଣେ ଟୀକାକାର, ପଞ୍ଜାବ ପ୍ରଦେଶସ୍ଥ ଚନ୍ଦ୍ରଭାଗା ନଦୀର ଗୋଟିଏ ଉପନଦୀ, ଅଯୋଧ୍ୟା ପ୍ରଦେଶର ସୀତା-ରାମପୁରଜିଲ୍ଲାନ୍ତର୍ଗତ ଗୋଟିଏ ପରଗଣା ।

ଚନ୍ଦ୍ରଉଦିଆ—ଗ୍ରା. ବି. ବାଣବିଶେଷ, ଯେଉଁ ବାଣକୁ ଜାଳିଲେ ଚନ୍ଦ୍ର ଉଦୟ ହେଲା ଭଳି ଧଳା ଆଲୋକ ଦେଖା-

ଯାଏ, ମନ୍ଦତାପ, (ଗ୍ରା. ବି°) ଚନ୍ଦ୍ର ପରି ସୁନ୍ଦର ଓ ଉଜ୍ଜ୍ୱଳ ।
ଚନ୍ଦ୍ରକ—ପୁଂ. ବି. ( ଚନ୍ଦ୍ର+କୈ+ଅ ) ବର୍ହିନେତ୍ର, ମୟୂରପୁଚ୍ଛରି ଚନ୍ଦ୍ର, ନଖ, ଟଙ୍କାଚାନ୍ଦମାଛି, ଚନ୍ଦ୍ର, ଚନ୍ଦ୍ରମଣ୍ଡଳ, ସଜନା ମଞ୍ଜି, ଶ୍ୱେତ ମରିଚ, ଗୋଲ ମରିଚ.ଜଣେ ବିଖ୍ୟାତ ସଂସ୍କୃତଜ୍ଞ କବି ।
ଚନ୍ଦ୍ରକର—ପୁଂ. ବି.(୬ତତ୍ପୁ)ଜ୍ୟୋତ୍ସ୍ନା ।
ଚନ୍ଦ୍ରକଳା—ସ୍ତ୍ରୀ. ବି. ( ୬ତତ୍ପୁ ) ଚନ୍ଦ୍ରର ଷୋଡ଼ଶ ଭାଗର ଏକଭାଗ, ଚନ୍ଦ୍ର ମଣ୍ଡଳରେ ଦେଖାଯିବା କଳଙ୍କ, ସ୍ୱର୍ଗବେଶ୍ୟାବିଶେଷ, ଚନ୍ଦ୍ରକିରଣ, ଗ୍ରେଟ ଢୋଲ, ସଙ୍ଗୀତର ତାଳବିଶେଷ, (ଗ୍ରା.ବି) କବିସୂର୍ଯ୍ୟଙ୍କ ରଚିତ ଓଡ଼ିଆ ଅସମ୍ପୂର୍ଣ୍ଣ କାବ୍ୟବିଶେଷ ।
ଚନ୍ଦ୍ରକବାନ୍—ପୁଂ.ବି.( ଚନ୍ଦ୍ରକ+ବତ୍ ) ମୟୂର, (ସ୍ତ୍ରୀ) ଚନ୍ଦ୍ରକବତୀ, ମୟୂରୀ ।
ଚନ୍ଦ୍ରକବି—ଗ୍ରା. ବି. ପଶ୍ଚିମାଞ୍ଚଳବାସୀ ବିଖ୍ୟାତ ରାଜପୁତ କବି ।
ଚନ୍ଦ୍ରକାତ୍ୟକି- ପୁଂ.ବି.ପ୍ରବର ଋଷି ଭେଦ ।
ଚନ୍ଦ୍ରକାନ୍ତ— ପୁଂ. ବି. ମଣିବିଶେଷ, କୈରବ, କଇଁ, କାମରୂପର ଜଣେ ରାଜା, (କ୍ଳୀ.ବି) ଶ୍ରୀଖଣ୍ଡଚନ୍ଦନ, ଲକ୍ଷ୍ମଣ-ପୁତ୍ର ଚନ୍ଦ୍ରକେତୁଙ୍କ ରାଜଧାନୀ, (ବି°) ଚନ୍ଦ୍ରବତ୍ ସୁନ୍ଦର ।
ଚନ୍ଦ୍ରକାନ୍ତା—ସ୍ତ୍ରୀ. ବି. (୬ତତ୍ପୁ) ତାରକା, ଜ୍ୟୋତ୍ସ୍ନା, ରାତ, ଚନ୍ଦ୍ରଙ୍କର ପତ୍ନୀ, ଔଷଧି, ଛନ୍ଦୋବିଶେଷ ।
ଚନ୍ଦ୍ରକାନ୍ତ—କ୍ଳୀ. ବି. ରୌପ୍ୟ, ରୂପା, ଚନ୍ଦ୍ରଙ୍କ ଦୀପ୍ତି, ଶୁକ୍ତି, ଶାମୁକା, (ଗ୍ରା.ବି) ମିଷ୍ଟାନ୍ନବିଶେଷ, ଅଳ୍ପ ଗୁଡ଼ ଲଗିଥିବା ଉଖୁଡ଼ା ।
ଚନ୍ଦ୍ରକାମ—ବି.କୌଣସି ସ୍ତ୍ରୀ କର୍ତ୍ତୃକ ବଶୀକରଣ ଔଷଧ ବା ମନ୍ତ୍ରଦ୍ୱାରା ବିମୋହିତ ପୁରୁଷର ମାନସିକ ପୀଡ଼ା ।
ଚନ୍ଦ୍ରକାମାଶ୍ରିତ—ବି°. ଇନ୍ଦ୍ରଜାଲ ମତେ ଚନ୍ଦ୍ରକାମରୋଗାଶ୍ରିତ ବ୍ୟକ୍ତି ।
ଚନ୍ଦ୍ରକାଳାନଳ—କ୍ଳୀ. ବି. ଚକ୍ରବିଶେଷ ।
ଚନ୍ଦ୍ରକିତ—ବି°. (ଚନ୍ଦ୍ରକ+ଇତ)ଜାତଚନ୍ଦ୍ର, ଚନ୍ଦ୍ରପରି ଉଜ୍ଜ୍ୱଳ ଗୋଲ ଗୋଲ ଚିହ୍ନବିଶିଷ୍ଟ ।
ଚନ୍ଦ୍ରକୀ—ପୁଂ.ବି.(ଚନ୍ଦ୍ରକ+ଇନ୍)ମୟୂର, (ସ୍ତ୍ରୀ) ଚନ୍ଦ୍ରକିନୀ, ମୟୂରୀ ।
ଚନ୍ଦ୍ରକୀର୍ତ୍ତି—ପୁଂ.ବି. ବୁଦ୍ଧପାଳିତ ମତାବଲମ୍ବୀ ଜନୈକ ବୌଦ୍ଧାଚାର୍ଯ୍ୟ ।
ଚନ୍ଦ୍ରକୀର୍ତ୍ତିସୂରି—ପୁଂ. ବି. ଜୈନାଚାର୍ଯ୍ୟ, ହର୍ଷକୀର୍ତ୍ତିଙ୍କ ଗୁରୁ ।
ଚନ୍ଦ୍ରକୁଣ୍ଡ—ବି. କାମରୂପସ୍ଥ ଗୋଟିଏ ପବିତ୍ର କୁଣ୍ଡ, (ପ୍ରବାଦ ଅଛି ଯେ ଚନ୍ଦ୍ର ରଶ୍ମିରୁ ଏହାର ଉଦ୍ଭବ ।)
ଚନ୍ଦ୍ରକୁଲ୍ୟା—ସ୍ତ୍ରୀ.ବି. କାଶ୍ମୀରରେ ପ୍ରବାହିତ ଗୋଟିଏ ନଦୀ ।
ଚନ୍ଦ୍ରକୂପ—ପୁଂ. ବି. କାଶ୍ମୀରସ୍ଥ ଚନ୍ଦ୍ରକୃତ ପବିତ୍ର କୂପଭେଦ ।
ଚନ୍ଦ୍ରକେତୁ—ପୁଂ. ବି. ରାମାନୁଜଲକ୍ଷ୍ମଣଙ୍କ କନିଷ୍ଠ ପୁତ୍ର ।
ଚନ୍ଦ୍ରକୋଣା—ଗ୍ରା.ବି.ବଙ୍ଗଳାର ମେଦିନୀପୁର ଜିଲାନ୍ତର୍ଗତ ଗୋଟିଏ ସହର ।
ଚନ୍ଦ୍ରକ୍ଷୟ—ପୁଂ. ବି. ଅମାବାସ୍ୟା ।
ଚନ୍ଦ୍ରକ୍ଷେତ୍ର—ଗ୍ରା. ବି. ତାପୀ ନଦୀତୀରସ୍ଥ ଗୋଟିଏ ପବିତ୍ର ସ୍ଥାନ । [ଗ୍ରନ୍ଥ ।
ଚନ୍ଦ୍ରଗର୍ଭ—ପୁଂ. ବି.ଗୋଟିଏ ବୌଦ୍ଧସୂତ୍ର-
ଚନ୍ଦ୍ରଗିରି—ଗ୍ରା. ବି. ମାନ୍ଦ୍ରାଜ ପ୍ରଦେଶର ଗୋଟିଏ ତାଲୁକ ଓ କାନାଡ଼ା ଜିଲାର ଗୋଟିଏ ନଦୀ ।
ଚନ୍ଦ୍ରଗୁପ୍ତ—ପୁଂ. ବି. ଭାରତବର୍ଷର ଜଣେ ପ୍ରବଳ ପରାକ୍ରାନ୍ତ ସମ୍ରାଟ୍, ଏ ମଗଧଦେଶର ପ୍ରଥମ ମୌର୍ଯ୍ୟବଂଶୀ ରାଜା, ପାଟଳୀପୁତ୍ର ଏହାଙ୍କ ରାଜଧାନୀ ।
ଚନ୍ଦ୍ରଗୃହ—କ୍ଳୀ.ବି.(ଚନ୍ଦ୍ର+ଗୃହ)୬ତତ୍ପୁ; କର୍କଟରାଶି ।
ଚନ୍ଦ୍ରଗୋଚରଫଳ—କ୍ଳୀ.ବି. ରାଶିବିଶେଷରେ ଚନ୍ଦ୍ରଙ୍କ ଅବସ୍ଥିତି ଅନୁସାରେ ମନୁଷ୍ୟମାନଙ୍କର ଯେଉଁ ଶୁଭାଶୁଭ ଘଟେ
ଚନ୍ଦ୍ରଗୋପାଳପାଳ—ଗ୍ରା. ପୁଂ. ବି. ନବଦ୍ୱୀପାଧିପତି କୃଷ୍ଣଚନ୍ଦ୍ରଙ୍କ ସଭାସ୍ଥ ପ୍ରଧାନ ବିଦୂଷକ ।
ଚନ୍ଦ୍ରଗୋମୀ—ଗ୍ରା. ପୁଂ.ବି. ପ୍ରସିଦ୍ଧ ଚନ୍ଦ୍ରବ୍ୟାକରଣ ପ୍ରଣେତା । [ମଣ୍ଡଳ ।
ଚନ୍ଦ୍ରଗୋଲ—ପୁଂ.ବି. ଗୋଲକାର ଚନ୍ଦ୍ର-
ଚନ୍ଦ୍ରଗୋଲସ୍ଥ—ପୁଂ. ବି. ଚନ୍ଦ୍ରମଣ୍ଡଳସ୍ଥିତ ସ୍ୱଧାଭୋଜୀ ପିତୃଲୋକ ।
ଚନ୍ଦ୍ରଗୋଳିକା—ସ୍ତ୍ରୀ.ବି. (ଚନ୍ଦ୍ରଗୋଲକ+ଆ) ଜ୍ୟୋତ୍ସ୍ନା, ଚନ୍ଦ୍ରିକା ।
ଚନ୍ଦ୍ରଗ୍ରହଣ—କ୍ଳୀ.ବି. (୬ତତ୍ପୁ) ରାହୁକେତୁ ବା ପୃଥିବୀର ଛାୟାଦ୍ୱାରା ଚନ୍ଦ୍ରଙ୍କର ଆଚ୍ଛାଦନ ।
ଚନ୍ଦ୍ରଗ୍ରହସମାଗମ—ପୁଂ. ବି. ଅପର ଗ୍ରହଠାରୁ ବା ନକ୍ଷତ୍ର ସହିତ ମେଳନ ।
ଚନ୍ଦ୍ରଚଞ୍ଚଳ—ପୁଂ. ବି. ମତ୍ସ୍ୟବିଶେଷ, ଖୁରୁସାଣ ମାଛ ।
ଚନ୍ଦ୍ରଚଞ୍ଚଳା—ସ୍ତ୍ରୀ. ବି. ଚନ୍ଦ୍ରକ ମତ୍ସ୍ୟ, ଟଙ୍କାଗୁଣ୍ଡି ମାଛ ।
ଚନ୍ଦ୍ରଚନ୍ଦନ—ଅଷ୍ଟାଙ୍ଗହୃଦୟର ପଦାର୍ଥଚନ୍ଦ୍ରିକାନାମକ ଟୀକାକାର ।
ଚନ୍ଦ୍ରଚଳନ—ବି. (୬ତତ୍ପୁ; ଜ୍ୟୋତିଷ ) ଚନ୍ଦ୍ରଙ୍କର ଏକରାଶିରୁ ଅନ୍ୟରାଶିକୁ ଗମନ ।
ଚନ୍ଦ୍ରଚାର—ପୁଂ. ବି. ଚନ୍ଦ୍ରଗ୍ରହ ରାଶିବିଶେଷରେ ଗତିକରିବା ।
ଚନ୍ଦ୍ରଚୁଲକ—ଗ୍ରା. ବି. (କାମଶାସ୍ତ୍ର); ଭିନ୍ନଭିନ୍ନ ତିଥିରେ ସ୍ତ୍ରୀମାନଙ୍କର ଭିନ୍ନ ଭିନ୍ନ ଅଙ୍ଗରେ ଥିବା 'ଚନ୍ଦ୍ର'ଙ୍କୁ କାମଶାସ୍ତ୍ରୋକ୍ତ ବିଧିରେ ଉତ୍ତେଜିତ କରି କାମୋପଭୋଗ କରିବା ।
ଚନ୍ଦ୍ରଚୁଲନ—କ୍ଳୀ. ବି. (୬ତତ୍ପୁ) ଚନ୍ଦ୍ରଚୁଲକ ଦେଖ ।
ଚନ୍ଦ୍ରଚୂଡ଼—ପୁଂ.ବି. (ବ.ବ୍ରୀ) ଚନ୍ଦ୍ରଶେଖର, ଶିବ, ଗୋମାଞ୍ଚଳସ୍ଥ ଗୋଟିଏ ତୀର୍ଥସ୍ଥାନ ।
ଚନ୍ଦ୍ରଚୂଡ଼ା—ସ୍ତ୍ରୀ. ବି. ଗାୟତ୍ରୀମୂର୍ତ୍ତିବିଶେଷ ।
ଚନ୍ଦ୍ରଚୂଡ଼ାମଣି ହରିଚନ୍ଦନ ଜଗଦେବ—ଗ୍ରା. ବି. ଟେକ୍କାଲି ସୁରଙ୍ଗୀରାଜ୍ୟର ସ୍ୱର୍ଗୀୟ ରାଜା, ଏ ମାତୃପୂଜା, ସଙ୍ଗୀତସର୍ବସ୍ୱ ଓ ଦଶମହାବିଦ୍ୟାଆଦି ପୁସ୍ତକମାନ ଲେଖିଅଛନ୍ତି, ଏ ଇଉରୋପ ଭ୍ରମଣକରି ପାଶ୍ଚାତ୍ୟ ଭ୍ରମଣ ଓ ଅନେକ ଗୁଡ଼ିଏ କବିତା

ରଚନା କରିଥିଲେ ।

ଚନ୍ଦ୍ରଚୋରବାହ୍ମଣପଢ—ଗ୍ରା. ବ. ମୋଗଲ-ବାଦଶାହା ଆକବରଙ୍କ ରାଜତ୍ୱ ସମୟରେ ପୁରୀଜିଲା ରହଙ୍ଗପ୍ରଗନ୍ନାର ଖାର ନରସିଂହପୁର ଶାସନର ଜଣେ ତାନ୍ତ୍ରିକ ବ୍ରାହ୍ମଣ ।

ଚନ୍ଦ୍ରଜ—ପୁଂ. ବ. (ଚନ୍ଦ୍ର+ଜନ+ଅ) ବୁଧ, ଚନ୍ଦ୍ରପୁତ୍ର, (ବିଂ) ଯାହା ଚନ୍ଦ୍ରଙ୍କଠାରୁ ଜାତହୁଏ ।

ଚନ୍ଦ୍ରଝଲକା—ଗ୍ରା. ବ. ଚନ୍ଦ୍ରକିରଣ ।

ଚନ୍ଦ୍ରଝୁମ୍ପା(ମ୍ପି)—ଗ୍ରା. ବ. ସ୍ତ୍ରୀମାନଙ୍କର ମୁଣ୍ଡର ଚଉଁରିଖୁଣ୍ଟିରେ ଲାଗିଥିବା ଚନ୍ଦ୍ରାକାର ଝୁମ୍ପା,ଉପରକାନରେ ପିନ୍ଧିବା ଅର୍ଦ୍ଧଚନ୍ଦ୍ରାକାର ଫାସିଆ ।

ଚନ୍ଦ୍ରତୀର୍ଥ—ସହ୍ୟାଦ୍ରିଖଣ୍ଡବର୍ଣ୍ଣିତ ସୋମମଣ୍ଡଳର ଗୋଟିଏ ତୀର୍ଥସ୍ଥାନ ।

ଚନ୍ଦ୍ରତାପନ—ପୁଂ. ବ. (ଚନ୍ଦ୍ର+ତାପ+ଣିଚ,ଅନ) ଦାନବବିଶେଷ ।

ଚନ୍ଦ୍ରଦକ୍ଷିଣା—ବ. ସ୍ୱର୍ଣ୍ଣଦକ୍ଷିଣା ।

ଚନ୍ଦ୍ରଦଶା—ସ୍ତ୍ରୀ. ବ. ଚନ୍ଦ୍ରମହାଦଶା ଦେଖ ।

ଚନ୍ଦ୍ରଦାର—ପୁଂ. ବ. (୬ତତ୍) ଚନ୍ଦ୍ରଙ୍କର ସ୍ତ୍ରୀ, ଅଶ୍ୱିନୀପ୍ରଭୃତି ସତାଇଶ ନକ୍ଷତ୍ର ।

ଚନ୍ଦ୍ରଦୀପ—ଗ୍ରା. ବ. ଅନ୍ଧାରରେ ବାଟ ଦେଖିବାପାଇଁ ବ୍ୟବହୃତ ଉଜ୍ଜ୍ୱଳ କିରଣଯୁକ୍ତ ପ୍ରଦୀପ ବା ଲଣ୍ଠନ ।

ଚନ୍ଦ୍ରଦେବ—ଗ୍ରା.ବ. ପଞ୍ଚାଳବଂଶୀୟ ଜଣେ ବୀରପୁରୁଷ, ରାଜତରଙ୍ଗିଣୀବର୍ଣ୍ଣିତ ଜଣେ ତାପସ ବ୍ରାହ୍ମଣ ।

ଚନ୍ଦ୍ରଦ୍ୱୀପ—ପୁଂ. କ୍ଲୀ. ବ. ହିନ୍ଦୁଶାସ୍ତ୍ରୋକ୍ତ ଏକାଦଶ ଦ୍ୱୀପମଧ୍ୟରୁ ଏକତମ ।

ଚନ୍ଦ୍ରଦ୍ୟୁତି—ପୁଂ. ବ. (ବ.ବ୍ରୀ) ଚନ୍ଦନ, (ସ୍ତ୍ରୀ; ୬ତତ୍) ଚନ୍ଦ୍ରକିରଣ ।

ଚନ୍ଦ୍ରଧନୁ—ବ. ରାତ୍ରିକାଳରେ ବୃଷ୍ଟି-ଉପରେ ଚନ୍ଦ୍ରକିରଣପଡ଼ି ଧନୁପରି ଯେଉଁ ଆଲୋକ ଉତ୍ପନ୍ନ ହୁଏ ।

ଚନ୍ଦ୍ରଧ୍ୱଜକେତୁ—ପୁଂ.ବ. ସମାଧିବିଶେଷ ।

ଚନ୍ଦ୍ରନାଥ—ଗ୍ରା. ବ. ଚଟ୍ଟଗ୍ରାମର ଉତ୍ତରରେ ସୀତାକୁଣ୍ଡଶୈଳମାଳାର ମଧ୍ୟଭାଗରେ ଅବସ୍ଥିତ ଗୋଟିଏ ପାହାଡ଼ ।

ଚନ୍ଦ୍ରନାଭ—ପୁଂ. ବ. ଭାରତ-ବର୍ଣ୍ଣିତ ଗୋଟିଏ ଦାନବ ।

ଚନ୍ଦ୍ରନାମ—ପୁଂ. ବ. (ବ.ବ୍ରୀ) କର୍ପୂର ।

ଚନ୍ଦ୍ରନିର୍ଣ୍ଣିକ୍—ପୁଂ. ବିଂ. (ବ.ବ୍ରୀ) ଚନ୍ଦ୍ର-ସଦୃଶ ରୂପବିଶିଷ୍ଟ, ଯାହାର ରୂପ ଆହ୍ଲାଦ ଜନକ ।

ଚନ୍ଦ୍ରନେତ୍ର—ଗ୍ରା. ବ. ରାମାୟଣୋକ୍ତ ରାକ୍ଷସବିଶେଷ ।

ଚନ୍ଦ୍ରପଞ୍ଚାଙ୍ଗ—କ୍ଲୀ. ବ. ଚନ୍ଦ୍ରମାନଜ୍ଞାପକ ପଞ୍ଜିକାବିଶେଷ । [ଲିତ

ଚନ୍ଦ୍ରପର୍ଣ୍ଣୀ—ସ୍ତ୍ରୀ. ବ. (ବ.ବ୍ରୀ) ପ୍ରସାରଣୀ

ଚନ୍ଦ୍ରପାଣ୍ଡୁର—ବିଂ. (ଚନ୍ଦ୍ର+ପାଣ୍ଡୁର) ଚନ୍ଦ୍ରପରି ଶୁଭ୍ରବର୍ଣ୍ଣ ।

ଚନ୍ଦ୍ରପାଦ—ପୁଂ. ବିଂ. ( ଚନ୍ଦ୍ର+ପାଦ ) ୬ତତ୍; ଚନ୍ଦ୍ରକିରଣ ।

ଚନ୍ଦ୍ରପାଳ—ପୁଂ. ବ. ଜଣେ ବୌଦ୍ଧ ଦାର୍ଶନିକ ପଣ୍ଡିତ, ମିବାରର ସୂର୍ଯ୍ୟ-ବଂଶୀୟ ଜଣେ ରାଜା, ଗୋପାଚଳର ଜଣେ ଅଧିପତି ।

ଚନ୍ଦ୍ରପୁତ୍ର—ପୁଂ. ବ. (୬ତତ୍) ବୁଧ ।

ଚନ୍ଦ୍ରପୁର—ଗ୍ରା.ବ. ମଧ୍ୟପ୍ରଦେଶର ସମ୍ବଲପୁରଜିଲାନ୍ତର୍ଗତ ଗୋଟିଏ ଜମିଦାରୀ ରାଜ୍ୟ, ତନ୍ତ୍ରବର୍ଣ୍ଣିତ ଗୋଟିଏ ପୀଠସ୍ଥାନ ।

ଚନ୍ଦ୍ରପୁରୀ—ଗ୍ରା.ବ. ନର୍ମଦାନଦୀତୀରବର୍ତ୍ତୀ ଗୋଟିଏ ପ୍ରାଚୀନ ନଗରୀ ।

ଚନ୍ଦ୍ରପୁଲୀ—ଗ୍ରା. ବ. ଏକପ୍ରକାର ସୁମିଷ୍ଟ ଖାଦ୍ୟଦ୍ରବ୍ୟ ।

ଚନ୍ଦ୍ରପୁଷ୍ପା—ସ୍ତ୍ରୀ.ବ. (ବ.ବ୍ରୀ) ଶ୍ୱେତକଣ୍ଟକାରୀ, ବାକୁଚୀ, ଜ୍ୟୋତ୍ସ୍ନା ।

ଚନ୍ଦ୍ରପ୍ରକାଶ—ପୁଂ. ବ. (୬ତତ୍) ଚନ୍ଦ୍ରଙ୍କର ଉଦୟ, ଚନ୍ଦ୍ରାଲୋକ ।

ଚନ୍ଦ୍ରପ୍ରଭ—ପୁଂ. ବ. ଜୈନମାନଙ୍କର ୮ମ ତୀର୍ଥଙ୍କର, ଭଦ୍ରଶିଳ ବା ତକ୍ଷଶିଳା ଅଧିବାସୀ ଜଣେ ବୋଧିସତ୍ତ୍ୱ, (ବିଂ. ବ.ବ୍ରୀ;)ଚନ୍ଦ୍ରପରି ପ୍ରଭାସମ୍ପନ୍ନ, ସୌମ୍ୟ-ଦର୍ଶନ, ସୁନ୍ଦର, କମନୀୟ.(ସ୍ତ୍ରୀ) ଚନ୍ଦ୍ର-ପ୍ରଭା ।

ଚନ୍ଦ୍ରପୃଷ୍ଠ—ଗ୍ରା.ପୁଂ.ବିଂ. ଯାହାର ଜାନୁ ଭୁଜ ଓ ହୃଦୟ ମୋଟ ଓ ପେଟ କୃଶ ଏବଂ ଯେ ଦିବସରେ ଚନ୍ଦ୍ରଯାଏ ଓ ରସଦ୍ରବ୍ୟ ଭକ୍ଷଣ କରେ ।

ଚନ୍ଦ୍ରବାଳା—ସ୍ତ୍ରୀ. ବ. ବଡ଼ ଅଳେଇଚ, ଚନ୍ଦ୍ରକିରଣ,ଔଷଧିବିଶେଷ,ଚନ୍ଦ୍ରପତ୍ନୀ ।

ଚନ୍ଦ୍ରବାହୁ—ପୁଂ. ବ. ଅସୁରବିଶେଷ ।

ଚନ୍ଦ୍ରବୁଧ୍ନ—ବିଂ. (ବ.ବ୍ରୀ) ଯାହାର ମୂଳ ଆହ୍ଲାଦଜନକ ।

ଚନ୍ଦ୍ରଭ—ପୁଂ.ବ. (ବ-ବ୍ରୀ) ଚନ୍ଦ୍ରପ୍ରଭା ।

ଚନ୍ଦ୍ରଭବନ—କ୍ଲୀ. ବ. (ଚନ୍ଦ୍ର+ଭବନ) ଚନ୍ଦ୍ରଶାଳା ଦେଖ ।

ଚନ୍ଦ୍ରଭସ୍ମ—କ୍ଲୀ. ବ. କର୍ପୂର ।

ଚନ୍ଦ୍ରଭା—ସ୍ତ୍ରୀ. ବ. ଶ୍ୱେତକଣ୍ଟକାରୀ ।

ଚନ୍ଦ୍ରଭାଗ—ପୁଂ. ବ. ( ବ.ବ୍ରୀ ) ପର୍ବତ-ବିଶେଷ, ହିମାଳୟର ଶୃଙ୍ଗବିଶେଷ ।

ଚନ୍ଦ୍ରଭାଗା—ସ୍ତ୍ରୀ. ବ. ପର୍ଶୁରାମଙ୍କ ଶିଷ୍ୟା ଓ ସୁମନ୍ତୁଙ୍କ କନ୍ୟା, ସିନ୍ଧୁର ଉପନଦୀ ବିଶେଷ, ଉତ୍କଳର ପୁରୀଜିଲାର ସମୁଦ୍ର ଉପକୂଳସ୍ଥ କୋଣାର୍କ ନିକଟସ୍ଥ ଲୁପ୍ତ ନଦୀ, ଓଡ଼ିଆ କାବ୍ୟବିଶେଷ ।

ଚନ୍ଦ୍ରଭାଗାଳକା—ଗ୍ରା. ସ୍ତ୍ରୀ.ବିଂ.ଅର୍ଦ୍ଧଚନ୍ଦ୍ର-ସଦୃଶ ଲଲାଟବିଶିଷ୍ଟା (ସ୍ତ୍ରୀ) ।

ଚନ୍ଦ୍ରଭାଗୀ—ସ୍ତ୍ରୀ. ବ. ଚନ୍ଦ୍ରଭାଗା ନଦୀ ।

ଚନ୍ଦ୍ରଭାନୁ—ପୁଂ. ବ. କୃଷ୍ଣପ୍ରିୟା ଶ୍ରୀମତୀ ଚନ୍ଦ୍ରାବଳୀଙ୍କ ପିତା, ଶ୍ରୀକୃଷ୍ଣଙ୍କ ଦଶପୁତ୍ର ମଧ୍ୟରୁ ଜଣେ ।

ଚନ୍ଦ୍ରଭାସ—ପୁଂ. ବ. (ଚନ୍ଦ୍ର+ଭାସ+ଅ) ଖଡ୍ଗ, ଚକ୍‌ଚକିଆ ତରବାରି ।

ଚନ୍ଦ୍ରଭୂତ—କ୍ଲୀ.ବ.(ବ.ବ୍ରୀ)ରଜତ, ରୁପା ।

ଚନ୍ଦ୍ରମଣି—ପୁଂ.ବ.(କ.ଧା)ଚନ୍ଦ୍ରକାନ୍ତମଣି ।

ଚନ୍ଦ୍ରମଣିଦାସ—ଗ୍ରା.ପୁଂ.ବ.ପ୍ରାଚୀନ ଓଡ଼ିଆ କବିବିଶେଷ ।

ଚନ୍ଦ୍ରମଣ୍ଡଳ—କ୍ଲୀ.ବ(୬ତତ୍) ଚନ୍ଦ୍ରବିମ୍ବ, ଚନ୍ଦ୍ରଙ୍କର ଗୋଲାକାର କଳେବର, ସମୟ ସମୟରେ ଚନ୍ଦ୍ରଙ୍କ ଚତୁଷ୍ପାର୍ଶ୍ୱେ କିଛିଦୂର ପର୍ଯ୍ୟନ୍ତ ଯେଉଁ ମଣ୍ଡଳାକାର ପ୍ରଭା ଚନ୍ଦ୍ରଙ୍କୁ ବେଷ୍ଟନ କଲାପରି ଦେଖାଯାଏ ।

ଚନ୍ଦ୍ରମଲ୍ଲିକା—ସ୍ତ୍ରୀ.ବି. (ଚନ୍ଦ୍ର+ମଲ୍ଲି+କ +ଆ) ସୋମରାଜ୍ୟାଦିବର୍ଗରେ ପୁଷ୍ପ-ଶାକବିଶେଷ, ଏକଜାତୀୟ ହଳଦିଆ ବିଦେଶାଗତ ସୁବାସ ଫୁଲ ।

ଚନ୍ଦ୍ରମଲ୍ଲୀ—ସ୍ତ୍ରୀ.ବି.ଚନ୍ଦ୍ରମଲ୍ଲିକା ଦେଖ ।

ଚନ୍ଦ୍ରମହ—ପୁଂ.ବି.(୬ତତ୍ପୁ)ଚନ୍ଦ୍ରୋତ୍ସବ, କୁକ୍କୁର ।

ଚନ୍ଦ୍ରମହାଦଶା—ବି.(୬ତତ୍ପୁ;ଜ୍ୟୋତିଷ), ମନୁଷ୍ୟର ଜାତକରେ ଗ୍ରହ ଅବସ୍ଥାନ ଅନୁସାରେ ଗଣନା କରାଯିବା ମନୁଷ୍ୟର ଜୀବନରେ ଚନ୍ଦ୍ରଗ୍ରହ ଭୋଗ-କରିବା କାଳ, ବିଂଶୋତ୍ତରୀ ମତେ ବା୧୦ବର୍ଷ ଓ ଅଷ୍ଟୋତ୍ତରୀ ମତେ ବା୧୫ବର୍ଷ

ଚନ୍ଦ୍ରମହାରାଜା—ଗ୍ରା. ପୁଂ. ବି. ଗଞ୍ଜାମ ପାରଳାଖେମୁଣ୍ଡିର ସ୍ୱର୍ଗୀୟ ୨ୟ ରାଜକୁମାର ପଦ୍ମନାଭ ନାରାୟଣଦେବଙ୍କର ସୁପରିଚିତ ନାମ ବା ଡାକନାମ ।

ଚନ୍ଦ୍ରମା—ଗ୍ରା.ବି.ଚନ୍ଦ୍ର, ସ୍ତ୍ରୀମାନଙ୍କୁ ଡ଼ାକିବା ନାମ ।

ଚନ୍ଦ୍ରମାଃ—ପୁଂ.ବି. ( ଚନ୍ଦ୍ର+ମା+କ.ଅସ୍)ଚନ୍ଦ୍ର, କର୍ପୂର, ଦେବ ବା ଦାନବ ରୂପେ କଳ୍ପିତ ଚନ୍ଦ୍ର, ନଦୀବିଶେଷ ।

ଚନ୍ଦ୍ରମାର୍ଗ—ବି.(୬ତତ୍ପୁ) ଯେଉଁ କଳ୍ପିତ ମଣ୍ଡଳାକାର ରେଖାରେ ଚନ୍ଦ୍ର ପୃଥିବୀର ଚାରିପାଖରେ ଘୁରେ,ବାୟୁମଣ୍ଡଳ ।

ଚନ୍ଦ୍ରମାସ—ବି. (୬ତତ୍ପୁ)ଚାନ୍ଦ୍ରମାନ ମାସ, ଚନ୍ଦ୍ର ପୃଥିବୀର ଚାରିପାଖରେ ଘୁରି ଆସିବାର କାଳ ।

ଚନ୍ଦ୍ରମୁଖ—ପୁଂ. ବିଂ. (ବି.ଗ୍ରୀ) ଯାହାର ମୁଖମଣ୍ଡଳ ଚନ୍ଦ୍ରପରି ଅତିଶୟ ସୁନ୍ଦର ।

ଚନ୍ଦ୍ରମୁଖୀ—ସ୍ତ୍ରୀ. ବି. ଯେଉଁ ସ୍ତ୍ରୀର ମୁଖ ଚନ୍ଦ୍ରପରି ସୁନ୍ଦର, (ସ୍ତ୍ରୀ.ବି) ଜନନେନ୍ଦ୍ରିୟର ଶିରାବିଶେଷ, ସୁରାଙ୍ଗନାବିଶେଷ. ୧୦ ଅକ୍ଷରବିଶିଷ୍ଟ ଚାରିପାଦିଆ ଛନ୍ଦୋବିଶେଷ ।

ଚନ୍ଦ୍ରମୁହାଁ—ଗ୍ରା.ସ୍ତ୍ରୀ.ବିଂ. ଚନ୍ଦ୍ରପରି ସୁନ୍ଦର ମୁଖବିଶିଷ୍ଟା (ସ୍ତ୍ରୀ), ସୁନ୍ଦରୀ ।

ଚନ୍ଦ୍ରମୌଳି—ପୁଂ. ବି. (ଚନ୍ଦ୍ର+ମୌଳି) ବ.ଗ୍ରୀ; ମହାଦେବ, ଶିବ ।

ଚନ୍ଦ୍ରରତ୍ନ—ବି. ମୁକ୍ତା, ମୋତି ।

ଚନ୍ଦ୍ରରଥ—ବିଂ.(ବ.ଗ୍ରୀ) ସ୍ୱର୍ଣ୍ଣମୟ ରଥ, (ପୁଂ.ବି) ସୁବର୍ଣ୍ଣ ନିର୍ମିତ ରଥ, ଚନ୍ଦ୍ରଦେବ ଯେଉଁ ରଥରେ ଆରୋହଣ କରନ୍ତି ।

ଚନ୍ଦ୍ରରଶ୍ମି—ପୁଂ.ବି. (୬ତତ୍ପୁ)ଜ୍ୟୋତ୍ସ୍ନା, ଚନ୍ଦ୍ରକିରଣ ।

ଚନ୍ଦ୍ରରସା—ସ୍ତ୍ରୀ. ବି. ଭାରତବର୍ଷୀୟ ଗୋଟିଏ ନଦୀ ।

ଚନ୍ଦ୍ରରାଜ—ପୁଂ.ବି.ରାଜତରଙ୍ଗିଣୀବର୍ଣ୍ଣିତ ଜଣେ ରାଜପୁରୁଷ ।

ଚନ୍ଦ୍ରରେଖ—ପୁଂ. ବି. ରାମାୟଣବର୍ଣ୍ଣିତ ରାକ୍ଷସବିଶେଷ ।

ଚନ୍ଦ୍ରରେଖା—ସ୍ତ୍ରୀ.ବି.(୬ତତ୍ପୁ)ଜ୍ୟୋତିଃ-ଶାସ୍ତ୍ରପ୍ରସିଦ୍ଧ ଚନ୍ଦ୍ରର ମଣ୍ଡଳସୂଚକ ରେଖା, ଶୁକ୍ଳ ପ୍ରତିପଦା ବା ଦ୍ୱିତୀୟା ତିଥିର କ୍ଷୀଣଚନ୍ଦ୍ର, ବାଣରାଜ କନ୍ୟା ଉଷାର ସଖୀ, ଚନ୍ଦ୍ରକିରଣ, ଗୋଟିଏ ପରମାସୁନ୍ଦରୀ ଅପ୍ସରା, ବାକୁଚୀଲତା,

ଚନ୍ଦ୍ରରେଖାଗଡ଼—ଗ୍ରା. ବି. ମେଦିନୀପୁର ଜିଲ୍ଲାର ଗୋଟିଏ ପ୍ରାଚୀନ ଗଡ଼ ।

ଚନ୍ଦ୍ରରେଣୁ—ପୁଂ. ବି. (ବ.ଗ୍ରୀ) କାବ୍ୟ-ଚୋର, ଗ୍ରନ୍ଥଚୋର, (କ୍ଲୀ. ବି.) ରୂପା ।

ଚନ୍ଦ୍ରଲା—ସ୍ତ୍ରୀ. ବି. କର୍ଣ୍ଣାଟ ଦେଶପ୍ରସିଦ୍ଧ ଗୋଟିଏ ଦେବୀ ।

ଚନ୍ଦ୍ରଲେଖା—ସ୍ତ୍ରୀ. ବି. (ଚନ୍ଦ୍ର+ଲିଖ+ଅ +ଆ) ବାକୁଚୀ, ଚନ୍ଦ୍ରରେଖା, ଛନ୍ଦୋବିଶେଷ, ନଦୀବିଶେଷ, ବାଣରାଜ କନ୍ୟା ଉଷାଦେବୀଙ୍କ ସଖୀ, ଅପ୍ସରାବିଶେଷ,ନାଗସୁନ୍ଦରୀର ଜ୍ୟେଷ୍ଠା କନ୍ୟା. ଏହାର କନିଷ୍ଠା ଭଗିନୀର ନାମ ଇରାବତୀ ।

ଚନ୍ଦ୍ରଲୋକ—ପୁଂ.ବି.(୬ତତ୍ପୁ)ଚନ୍ଦ୍ରମଣ୍ଡଳ, ସୌରଜଗତରେ ଯେଉଁ ସ୍ଥାନରେ ଚନ୍ଦ୍ର ପୃଥିବୀକୁ ପରିଭ୍ରମଣ କରେ, ପୁରାଣୋକ୍ତ ସ୍ୱର୍ଗଲୋକବିଶେଷ, ଯହିଁର ଅଧିଷ୍ଠାତା ଚନ୍ଦ୍ର, ଚନ୍ଦ୍ରଗ୍ରହର ଅଭ୍ୟନ୍ତର ସ୍ଥାନ ।

ଚନ୍ଦ୍ରଲୋଚନ—ପୁଂ.ବି. ଦାନବବିଶେଷ ।

ଚନ୍ଦ୍ରଲୋହକ—କ୍ଲୀ.ବି(ଚନ୍ଦ୍ର+ଲୋହକ) କ.ଧା; ରୂପା, ରୌପ୍ୟ ।

ଚନ୍ଦ୍ରବଂଶ—ପୁଂ. ବି. ( ଚନ୍ଦ୍ର+ବଂଶ ) ୬ତତ୍ପୁ; ଚନ୍ଦ୍ରଙ୍କଠାରୁ ଉତ୍ପନ୍ନ ପୁରୁଷ-ପରମ୍ପରା, ଚନ୍ଦ୍ରଙ୍କର ସନ୍ତାନ ସନ୍ତତି, ଜନକ, କୁରୁ, ଯଦୁ ପ୍ରଭୃତିଙ୍କ ବଂଶ ।

ଚନ୍ଦ୍ରବକ୍ତ୍ରା—ସ୍ତ୍ରୀ. ବି. (ବ.ଗ୍ରୀ) ନଗରୀ-ବିଶେଷ ।

ଚନ୍ଦ୍ରବତୀ—ସ୍ତ୍ରୀ. ବି. ବଜ୍ରନାଭର ଭ୍ରାତା-ସୁନାଭର କନ୍ୟା ।

ଚନ୍ଦ୍ରବଦନ—ବିଂ. (ବ.ଗ୍ରୀ) ଚନ୍ଦ୍ରସଦୃଶ ମୁଖବିଶିଷ୍ଟ, ଯାହାର ମୁଖ ଅତିଶୟ ସୁନ୍ଦର,(କ୍ଲୀ.ବି.କ.ଧା) ଚନ୍ଦ୍ରପରି ସୁନ୍ଦର ମୁଖଥିବା ।

ଚନ୍ଦ୍ରବଦନୀ—ସ୍ତ୍ରୀ.ବିଂ.ଚନ୍ଦ୍ରମୁଖୀ, ଯେଉଁ ସ୍ତ୍ରୀର ମୁଖ ଅତିଶୟ ସୁନ୍ଦର ।

ଚନ୍ଦ୍ରବନ୍ଧନୀ—ଗ୍ରା.ବି.(ଗଣିତ)ଏକପ୍ରକାର ଗାଣିତିକ ସଙ୍କେତ ।

ଚନ୍ଦ୍ରବର୍ଣ୍ଣ—ବିଂ. (ବ.ଗ୍ରୀ) ଯାହାର ବର୍ଣ୍ଣ ସୁବର୍ଣ୍ଣ ସଦୃଶ, ଚନ୍ଦ୍ରପରି ଧବଳ ।

ଚନ୍ଦ୍ରବର୍ତ୍ମ—କ୍ଲୀ.ବି. ଛନ୍ଦୋବିଶେଷ ।

ଚନ୍ଦ୍ରବର୍ମା—ଗ୍ରା. ବି. କାଳଞ୍ଜର ଦୁର୍ଗ ନିର୍ମାତା ଚନ୍ଦେଲ ରାଜବଂଶର ଆଦି-ପୁରୁଷ । [ ବ୍ରାହ୍ମୀଶାକ ।

ଚନ୍ଦ୍ରବଲ୍ଲରୀ—ସ୍ତ୍ରୀ.ବି(୬ତତ୍ପୁ)ସୋମଲତା,

ଚନ୍ଦ୍ରବଲ୍ଲୀ—ସ୍ତ୍ରୀ.ବି. ସୋମଲତା, ମାଧବୀ ଲତା, ପ୍ରସାରଣୀଲତା । [ ନଦୀ ।

ଚନ୍ଦ୍ରବସା—ସ୍ତ୍ରୀ.ବି.ଭାରତବର୍ଷୀୟ ଗୋଟିଏ

ଚନ୍ଦ୍ରବାଟୀ—ଗ୍ରା.ବି.ବର୍ଦ୍ଧମାନର ଦକ୍ଷିଣାଂଶରେ ଦାମୋଦରସ୍ଥ ଗୋଟିଏ ପ୍ରାଚୀନ ନଗର ।

ଚନ୍ଦ୍ରବାଡ଼ୁ—ଗ୍ରା.ବି. ଘୋଡ଼ାଙ୍କର ବସୂଚିକା ରୋଗ ।

ଚନ୍ଦ୍ରବାଣ—ବି. ଅର୍ଦ୍ଧଚନ୍ଦ୍ରାକୃତ ବାଣ-ବିଶେଷ ।

ଚନ୍ଦ୍ରବାନ୍—ବିଂ. (ଚନ୍ଦ୍ର+ବତ୍) ଚନ୍ଦ୍ରକିରଣ ଦ୍ୱାରା ଆଲୋକିତ, (ବୈଦିକ) ଯହିଁରେ ପ୍ରଚୁର ସ୍ୱର୍ଣ୍ଣଅଛି, (ସ୍ତ୍ରୀ) ଚନ୍ଦ୍ରବତୀ ।

ଚନ୍ଦ୍ରବିନ୍ଦୁ—ପୁଂ.ବି. ( ମଧ୍ୟ.କଧା ) ବର୍ଣ୍ଣବିଶେଷ,ବିନ୍ଦୁଯୁକ୍ତ ଅର୍ଦ୍ଧଚନ୍ଦ୍ରାକୃତ ଅକ୍ଷର
ଚନ୍ଦ୍ରବିମଳ—ପୁଂ. ବି. ସମାଧିବିଶେଷ।
ଚନ୍ଦ୍ରବିମ୍ବ—ଗ୍ରା.ବି.ଚନ୍ଦ୍ରମଣ୍ଡଳ ଦେଖ।
ଚନ୍ଦ୍ରବିମ୍ବା—ଗ୍ରା. ବି. ଧବଳପୁଷ୍ପବିଶେଷ।
ଚନ୍ଦ୍ରବିହଙ୍ଗମ—ପୁଂ.ସ୍ତ୍ରୀ.ବି.(କ.ଧା)ବକପକ୍ଷୀ, ଶଙ୍ଖଚିଲ।
ଚନ୍ଦ୍ରବେଗା—ସ୍ତ୍ରୀ. ବି. ଗୋଟିଏ ପୁଣ୍ୟତୋୟା ନଦୀ। [ ଦେଖ।
ଚନ୍ଦ୍ରବୋଡ଼ା—ଗ୍ରା. ବି. ଚନ୍ଦ୍ରଚୋଡ଼ା
ଚନ୍ଦ୍ରବ୍ରତ—କ୍ଲୀ.ବି.ଚାନ୍ଦ୍ରାୟଣବ୍ରତ, ଚନ୍ଦ୍ରଲୋକପ୍ରାପ୍ତି ନିମିତ୍ତ କୃତ ବ୍ରତବିଶେଷ।
ଚନ୍ଦ୍ରଶାଳା—ସ୍ତ୍ରୀ.ବି. (ଚନ୍ଦ୍ର + ଶାଲ + କ. ଅ + ଆ)ଜ୍ୟୋତ୍ସ୍ନା,ଚନ୍ଦ୍ରକିରଣ, ଉଆଦି ପ୍ରାସାଦର ଉପରସ୍ଥ ଗୃହ।
ଚନ୍ଦ୍ରଶାଳିକା—ସ୍ତ୍ରୀ. ବି.(ଚନ୍ଦ୍ର+ଶାଳୀ+କ+ଆ) ବଡ଼ଭି, ଗ୍ଲୁଭ।
ଚନ୍ଦ୍ରଶିଖର—ବି.(ବ.ବ୍ରୀ)ଚନ୍ଦ୍ରଚୂଡ଼ ଦେଖ।
ଚନ୍ଦ୍ରଶିଳା—ସ୍ତ୍ରୀ. ବି. ଚନ୍ଦ୍ରକାନ୍ତମଣି, କାର୍ତ୍ତିକେୟଙ୍କ ଅନୁଚରୀ ମାତୃ ଭେଦ।
ଚନ୍ଦ୍ରଶେଖର—ପୁଂ.ବି. (ବ.ବ୍ରୀ)ଗୋଟିଏ ପ୍ରସିଦ୍ଧ ପର୍ବତ ତୀର୍ଥସ୍ଥାନ, ଓଡ଼ିଶା କଟକ ଜିଲାନ୍ତର୍ଗତ ଢେଙ୍କାନାଳ ରାଜ୍ୟର କପିଳାସ ପର୍ବତରେ ଥିବା ବିଖ୍ୟାତ ଶିବମୂର୍ତ୍ତି, ମହାଦେବ, ଧ୍ରୁବକ ତାଳବିଶେଷ।
ଚନ୍ଦ୍ରଶେଖରରସ—ବି. ଔଷଧବିଶେଷ।
ଚନ୍ଦ୍ରଶେଖରରାଜଗୁରୁ—ଗ୍ରା. ପୁଂ. ବି. ଜନୈକ ଆଧୁନିକ ଉତ୍କଳୀୟ ବ୍ରାହ୍ମଣ ପଣ୍ଡିତ;ଏ 'ମଧୁକରୁଦ୍ଧ'ନାମକ ଖଣ୍ଡେ ସଂସ୍କୃତ ରୂପକ ରଚନା କରିଥିଲେ।
ଚନ୍ଦ୍ରଶେଖରବାଚସ୍ପତି—ଗ୍ରା. ବି. ନବଦ୍ୱୀପର ଜଣେ ସ୍ମୃତିଶାସ୍ତ୍ରବେତ୍ତା ପଣ୍ଡିତ
ଚନ୍ଦ୍ରଶେଖରବିଦ୍ୟାଳଙ୍କାର—ଗ୍ରା.ବି.ସଂକ୍ଷିପ୍ତସାରର ଜଣେ ବିଖ୍ୟାତ ଟୀକାକାର।
ଚନ୍ଦ୍ରଶେଖରସାମନ୍ତ—ଗ୍ରା.ପୁଂ.ବି. ଉତ୍କଳ ଗଡ଼ଜାତ ଖଣ୍ଡପଡ଼ାର ରାଜବଂଶୀୟ ପ୍ରସିଦ୍ଧ ସ୍ୱର୍ଗୀୟ ଜ୍ୟୋତିର୍ବିଦ୍।
ଚନ୍ଦ୍ରଶୈଳ—ବି. ନେପାଳସ୍ଥ ଗୋଟିଏ ପର୍ବତ ଶିର।
ଚନ୍ଦ୍ରଶ୍ରୀ—ପୁଂ. ବି. ଅନ୍ଧ୍ରଭୃତ୍ୟବଂଶୀୟ ଜଣେ ରାଜା।
ଚନ୍ଦ୍ରସଞ୍ଜ୍ଞ—ପୁଂ.ବି. (ବ.ବ୍ରୀ)କର୍ପୂର।
ଚନ୍ଦ୍ରସଚିବ—ବି. ୬ତତ୍ପୁ ବା ବ. ବ୍ରୀ; କାମଦେବ, କର୍ପୂର।
ଚନ୍ଦ୍ରସଦନ—ଗ୍ରା. ବି. ଚୂନଲିପା ଘର।
ଚନ୍ଦ୍ରସମ୍ଭବ—ପୁଂ. ବି. (ଚନ୍ଦ୍ର+ସମ୍ଭବ) ବ.ବ୍ରୀ: ବୁଧ, ଚନ୍ଦ୍ରପୁତ୍ର।
ଚନ୍ଦ୍ରସମ୍ଭବା—ସ୍ତ୍ରୀ. ବି. ଶ୍ରେଷ୍ଠ ଅଳାଇଚ, ଗୁଜରାଟ।
ଚନ୍ଦ୍ରସରଃ—କ୍ଲୀ. ବି. ବୃନ୍ଦାବନର ଅନ୍ତର୍ଗତ ସଙ୍କର୍ଷଣ କୁଣ୍ଡର ନିକଟବର୍ତ୍ତୀ ଗୋଟିଏ ଜଳାଶୟ।
ଚନ୍ଦ୍ରସୁତ—ପୁଂ. ବି. (୬ତତ୍ପୁ) ବୁଧ।
ଚନ୍ଦ୍ରସୁଧା—ସ୍ତ୍ରୀ. ବି. (୬ତତ୍) ଚନ୍ଦ୍ରମଣ୍ଡଳସ୍ଥିତ ଅମୃତ, ଚନ୍ଦ୍ରିକା, ଜ୍ୟୋତ୍ସ୍ନା।
ଚନ୍ଦ୍ରସୁରସ—ପୁଂ. ବି. ବୃକ୍ଷବିଶେଷ।
ଚନ୍ଦ୍ରସୂର୍ଯ୍ୟ—ବି. (ଦ୍ୱନ୍ଦ୍ୱ) ଚନ୍ଦ୍ର ଓ ସୂର୍ଯ୍ୟ. ସ୍ତ୍ରୀମାନଙ୍କ ମୁଣ୍ଡର ସୁନାର ଅଳଙ୍କାରବିଶେଷ।
ଚନ୍ଦ୍ରସୂର୍ଯ୍ୟାମୃତରସ—ପୁଂ. ବି. ବୈଦ୍ୟକୋକ୍ତ ଏକପ୍ରକାର ଔଷଧ।
ଚନ୍ଦ୍ରସୂରି—ପୁଂ. ବି. ଜଣେ ବିଖ୍ୟାତ ଜୈନ ପଣ୍ଡିତ।
ଚନ୍ଦ୍ରସେଣା—ଗ୍ରା.ପୁଂ.ବି.ରାଧିକାଙ୍କ ସ୍ୱାମୀ
ଚନ୍ଦ୍ରସେନ—ପୁଂ. ବି. ( ବ.ବ୍ରୀ ) ଭାରତ ପ୍ରସିଦ୍ଧ ଜଣେ ପ୍ରବଳ ନରପତି।
ଚନ୍ଦ୍ରସେନସମୁଦ୍ର—ପୁଂ.ବି. ଜଣେ ପ୍ରଧାନ ସେନାପତି ଧନଞ୍ଜୟ ଯାଦବଙ୍କ ପୁତ୍ର।
ଚନ୍ଦ୍ରସେନା—ବି. ମହାଭାରତୋକ୍ତ ରାଜା ସମୁଦ୍ରସେନଙ୍କ ପୁତ୍ର, ରାଜକୁମାରବିଶେଷ।
ଚନ୍ଦ୍ରସ୍ୱର—ବି. (କ.ଧା) ସ୍ୱରସାଧକ ବାୟୁସାଧକ ମାନଙ୍କର ସାଧନାଗତର ଅନୁକୂଳ ଅବସ୍ଥାବିଶେଷ, ଯେଉଁ ସମୟରେ ନିଃଶ୍ୱାସ ବାମପୁଡ଼ାରେ ବହୁଥାଏ।
ଚନ୍ଦ୍ରହନ୍ତା—ପୁଂ. ବି. (ଚନ୍ଦ୍ର+ହନ୍+ତୃ) ଅସୁରବିଶେଷ।
ଚନ୍ଦ୍ରହ—ପୁଂ. ବି. (ଚନ୍ଦ୍ର+ହନ୍+କ୍ୱିପ୍) ରାହୁ।
ଚନ୍ଦ୍ରହାର—ଗ୍ରା. ବି. ଗୋଠ ବା କଟିଭୂଷଣବିଶେଷ।
ଚନ୍ଦ୍ରହାସ—ପୁଂ. ବି. (ଚନ୍ଦ୍ର + ହସ + ଅ) ବ.ବ୍ରୀ; ଖଡ୍ଗ, ରାବଣର ଖଡ୍ଗ,ରୌପ୍ୟ, ଚନ୍ଦ୍ରକିରଣ।
ଚନ୍ଦ୍ରହାସା—ସ୍ତ୍ରୀ. ବି. (ଚନ୍ଦ୍ରହାସ+ଆ) ଗୁଳୁଚି, ତାମ୍ବୂଳୀ, ବୃହତୀ, ଯୋଗିନୀବିଶେଷ।
ଚନ୍ଦ୍ରହାସିନୀ—ସ୍ତ୍ରୀ. ବି. (ଚନ୍ଦ୍ର+ହସ୍+ଇନ୍+ଈ) ତାମ୍ବୂଳୀ ଦେଖ।
ଚନ୍ଦ୍ରହିରଣ୍ୟ—ବି. ( ଚନ୍ଦ୍ର + ହିରଣ୍ୟ ) ରୌପ୍ୟ।
ଚନ୍ଦ୍ରା—ସ୍ତ୍ରୀ. ବି. (ଚନ୍ଦ୍ର+ଆ) ଅଳେଇଚ, ଚାନ୍ଦୁଆ, ଗୁଳୁଚୀଲତା, ଘରଆଡ଼ ମେଲ କିନ୍ତୁ ଛାତ ବଢ଼େଇଥିବା ଘର,(ଗ୍ରା.ବି.) ବହୁପୁରୁଷରେ ହୁଗଳୀ ଓଡ଼ିଶାରେ ଉପନିବେଶକାରୀ ଆରବୀ ବ୍ୟବହାର ଓ କୁଳଚଳନରେ ଓଡ଼ିଆ ପାଳନ୍ତି ଥାଇ-ଥିବା ବଙ୍ଗାଳୀ ବଣିଆଙ୍କ ଜଣେ ପ୍ରାଧି।
ଚନ୍ଦ୍ରାଂଶୁ—ପୁଂ. ବି. ( ବ.ବ୍ରୀ ) ବିଷ୍ଣୁ, ପରମେଶ୍ୱର, ( ୬ତତ୍ ) ଚନ୍ଦ୍ରକିରଣ, ଜ୍ୟୋତ୍ସ୍ନା। [ ପୁରୁଷ।
ଚନ୍ଦ୍ରାକର—ପୁଂ. ବି. ଜନୈକ ଖାରଚନ୍ଦ୍ରାଗ୍ର—ବି. ସୁବର୍ଣ୍ଣ ପ୍ରଭୃତି,ସୁବର୍ଣ୍ଣଶୃଙ୍ଗ।
ଚନ୍ଦ୍ରାତପ—ପୁଂ. ବି. (ଚନ୍ଦ୍ର + ଆତ + ପା ଅ) ବିତାନ, ଚାନ୍ଦୁଆ, ଚାରିପାଖ ମେଲ ଘର, (୬ତତ୍) ଜ୍ୟୋତ୍ସ୍ନା।
ଚନ୍ଦ୍ରାତ୍ରେୟବଂଶ—ଗ୍ରା. ବି. ବୁନ୍ଦେଲଖଣ୍ଡ ପ୍ରଦେଶର ପ୍ରବଳ ପରାକ୍ରାନ୍ତ ରାଜପୁତ ବଂଶ। [ ବୁଧ।
ଚନ୍ଦ୍ରାତ୍ମଜ—ପୁଂ. ବି. (୬ତତ୍) ଚନ୍ଦ୍ରପୁତ୍ର,
ଚନ୍ଦ୍ରାନନ—ପୁଂ.ବି. (ବ.ବ୍ରୀ) କାର୍ତ୍ତିକେୟ, (ବିଂ. ବ.ବ୍ରୀ) ଚନ୍ଦ୍ରବଦନ ଦେଖ।
ଚନ୍ଦ୍ରାନନା—ସ୍ତ୍ରୀ. ବିଂ. ଚନ୍ଦ୍ରବଦନା, ଚନ୍ଦ୍ରପରି ମନୋହର ମୁଖବିଶିଷ୍ଟା (ସ୍ତ୍ରୀ)।
ଚନ୍ଦ୍ରାପୀଡ଼—ପୁଂ. ବି. ( ବ.ବ୍ରୀ ) ଶିବ, କାଶ୍ମୀରାଧିପତି ଲଳିତାଦିତ୍ୟଙ୍କ ଜ୍ୟେଷ୍ଠ-

ପୁତ୍ର (କାଦମ୍ବରୀ କାବ୍ୟବର୍ଣ୍ଣିତ ନାୟକ ତାରାପୀଡ଼ଙ୍କ ପୁତ୍ର, ରାଜା ଜନମେଜୟଙ୍କର ଏକ ପୁତ୍ର ।

ଚନ୍ଦ୍ରାଭାସ—ପୁଂ. ବି. (ଚନ୍ଦ୍ର+ଆ+ଭାସ+ଅ) ବି.ଗ୍ରା; ଠିକ୍ ଚନ୍ଦ୍ରକିରଣପରି ଦେଖାଯିବା, ଚନ୍ଦ୍ରଙ୍କ ପ୍ରତିରୂପ ।

ଚନ୍ଦ୍ରାମୃତଲୌହ—କ୍ଳୀ.ବି.ଔଷଧବିଶେଷ ।

ଚନ୍ଦ୍ରାର୍କଦୀପ—ପୁଂ. ବି. ବୃକ୍ଷ ।

ଚନ୍ଦ୍ରାର୍ଦ୍ଧ—ପୁଂ. ବି. (୬ତତ୍) ଅର୍ଦ୍ଧଚନ୍ଦ୍ର, (ଲ.ଅର୍ଥ) କପାଳରେ ଅର୍ଦ୍ଧଚନ୍ଦ୍ରାକାର ତିଳକ ।

ଚନ୍ଦ୍ରାର୍ଦ୍ରକ—ପୁଂ. ବି. କର୍ପୂର ।

ଚନ୍ଦ୍ରାଲୋକ—ପୁଂ. ବି. (୬ତତ୍)ଜ୍ୟୋସ୍ନା, ଚନ୍ଦ୍ରକିରଣ, ଖଣ୍ଡିଏ ଅଳଙ୍କାର ଗ୍ରନ୍ଥ ।

ଚନ୍ଦ୍ରାବତ୍—ଗ୍ରା. ବି. ରାଜପୁତ ଜାତିର ଗୋଟିଏ ଶାଖା ।

ଚନ୍ଦ୍ରାବତୀ—ଗ୍ରା. ବି. ଆରାବଲୀ ପର୍ବତର ପାଦଦେଶରେ ଅବସ୍ଥିତ ଗୋଟିଏ ପ୍ରାଚୀନ ନଗର ।

ଚନ୍ଦ୍ରାବତୀ—ଗ୍ରା. ବି. ରାଜପୁତନାର ଝାଲବାର ରାଜ୍ୟର ରାଜଧାନୀ ଝାଲରାପାଟନାର ଦକ୍ଷିଣାଂଶରେ ଚନ୍ଦ୍ରଭାଗା ନଦୀତୀରରେ ଅବସ୍ଥିତ ଗୋଟିଏ ପ୍ରାଚୀନ ନଗରୀ, ରାଜା ଧର୍ମସେନଙ୍କ ମହିଷୀ ।

ଚନ୍ଦ୍ରାବର୍ତ୍ତ—ବି. ଛନ୍ଦୋବିଶେଷ ।

ଚନ୍ଦ୍ରାବଳୀ—ଗ୍ରା. ସ୍ତ୍ରୀ. ବି.ଶ୍ରୀକୃଷ୍ଣଙ୍କ ପ୍ରିୟସଖୀ, ଚନ୍ଦ୍ରଭାନୁଙ୍କ କନ୍ୟା, ଗୋବର୍ଦ୍ଧନ ମଲ୍ଲଙ୍କ ସ୍ତ୍ରୀ, ଯୋଗିନୀବିଶେଷ, (ପୁଂ.ବି) ଚନ୍ଦ୍ରକିରଣ ।

ଚନ୍ଦ୍ରାବଲୋକ—ପୁଂ. ବି. କୁଶବଂଶୀୟ ରାମଙ୍କ ପୁତ୍ର ।

ଚନ୍ଦ୍ରାଶ୍ୱ—ପୁଂ. ବି. ଧନୁକୁମାରଙ୍କ ପୁତ୍ର ।

ଚନ୍ଦ୍ରାଶ୍ମା—ପୁଂ. ବି. (ଚନ୍ଦ୍ର+ଅଶ୍ମନ୍) ଚନ୍ଦ୍ରକାନ୍ତମଣି ।

ଚନ୍ଦ୍ରାହ୍ୱଦା—ସ୍ତ୍ରୀ.ବି.ବି.ଗ୍ରା;ଜଳକଡ଼ାଶଙ୍ଗୀ ।

ଚନ୍ଦ୍ରାହ୍ୱୟ—ପୁଂ. ବି. (ନ.ଗ୍ରା) କର୍ପୂର ।

ଚନ୍ଦ୍ରିକା—ସ୍ତ୍ରୀ. ବି. (ଚନ୍ଦ୍ର+ଇକ+ଆ) ଜ୍ୟୋସ୍ନା, ନୟନତାରା, ମୟୂର ପୁଚ୍ଛର ଗୋଲାକାର ଚନ୍ଦ୍ରିତ ଚକ୍ଷୁ, ବଡ଼ ଅଳେଇଚ, ଝଙ୍କାଗୁନ୍ଦା ମାଛ, ଅଭ୍ର, ଝାଙ୍ଗର, ଚନ୍ଦା, ସଉପ, ଚନ୍ଦ୍ରଭାଗା ନଦୀ, କର୍ଣ୍ଣସ୍ଫୋଟାଲତା, ମଲ୍ଲୀ, ଶ୍ୱେତକଣ୍ଟକାରୀ, ମେଥୀ, ଶ୍ରେଷ୍ଠଅଳେଇଚ, ଚନ୍ଦ୍ରସୂର, ଚାନ୍ଦସୁର, ପୀଠସ୍ଥାନର ଅଧିଷ୍ଠାତ୍ରୀ ଦେବୀ, ୧୩ ଅକ୍ଷରବିଶିଷ୍ଟ ଛନ୍ଦୋବିଶେଷ, ବାସପୁଷ୍ପା, (ବଂ) ଜ୍ୟୋସ୍ନାପରି ଆହ୍ଲାଦଦାୟିନୀ ।

ଚନ୍ଦ୍ରିକାଦ୍ରାବ—ପୁଂ. ବି. (ବି.ଗ୍ରା) ଚନ୍ଦ୍ରକାନ୍ତମଣି ।

ଚନ୍ଦ୍ରିକାପାୟୀ—ପୁଂ. ବି. (ଚନ୍ଦ୍ରିକା+ପା କ.ଇନ୍) ଚକୋରପକ୍ଷୀ,(ସ୍ତ୍ରୀ) ଚନ୍ଦ୍ରିକାପାୟିନୀ, ମାଈଚକୋରୀ ।

ଚନ୍ଦ୍ରିକାପୁରୀ—ଗ୍ରା. ବି. ଶ୍ରାବସ୍ତୀ ନଗରୀର ନାମାନ୍ତର ।

ଚନ୍ଦ୍ରିକାମ୍ବୁଜ—କ୍ଳୀ. ବି. ଶ୍ୱେତପଦ୍ମ ।

ଚନ୍ଦ୍ରିତା—ଗ୍ରା. ବି. ରକ୍ତିମା ।

ଚନ୍ଦ୍ରିମା—ସ୍ତ୍ରୀ. ବି. (ଚନ୍ଦ୍ର+ଇମନ୍) ଚନ୍ଦ୍ରିକା,ଜ୍ୟୋସ୍ନା ।

ଚନ୍ଦ୍ରିଲ—ପୁଂ. ବି. (ଚନ୍ଦ୍ର+ଇଲ) ଶିବ, ନାପିତ, ଭଣ୍ଡାରି, ବାସ୍ତୁକ ଶାକ, ବଥୁଆ ଶାଗ ।

ଚନ୍ଦ୍ରୀ—ପୁଂ.ବି. (ଚନ୍ଦ୍ର+ଇନ୍) ଯାହାର ସୁବର୍ଣ୍ଣ ଅଛି, (ସ୍ତ୍ରୀ.ବି—ଚନ୍ଦ୍ର+ଈ) ବାକୁଚୀ ।

ଚନ୍ଦ୍ରେଶ୍ୱର—ପୁଂ. ବି. (ଚନ୍ଦ୍ର+ଈଶ୍ୱର) ୬ତତ୍; କାଶୀସ୍ଥ ଶିବମୂର୍ତ୍ତିବିଶେଷ ।

ଚନ୍ଦ୍ରେଷ୍ଟା—ସ୍ତ୍ରୀ. ବି. (ଚନ୍ଦ୍ର+ଇଷ୍ଟ+ଆ) ଉତ୍ପଳିନୀ, ନାଳଥିବା ଗଛ ।

ଚନ୍ଦ୍ରେହୀ—ଗ୍ରା. ବି. ବୁନ୍ଦେଲଖଣ୍ଡର ଶୋଣନଦୀ ତୀରବର୍ତ୍ତୀ ଗୋଟିଏ କ୍ଷୁଦ୍ର ପଲ୍ଲୀଗ୍ରାମ ।

ଚନ୍ଦ୍ରୋଦୟ—ପୁଂ. ବି. (ଚନ୍ଦ୍ର+ଉଦୟ) ୬ତତ୍; ଚନ୍ଦ୍ରଙ୍କର ପ୍ରଥମ ପ୍ରକାଶ,ଚନ୍ଦ୍ରାତପ, ଗୁନ୍ଦୁଆ, ଔଷଧବିଶେଷ ।

ଚନ୍ଦ୍ରୋଦୟା—ସ୍ତ୍ରୀ.ବି. (ବି.ଗ୍ରା) ନେତ୍ରରୋଗର ଔଷଧବିଶେଷ, ବର୍ତ୍ତୀ ।

ଚନ୍ଦ୍ରୋଦୟାସ୍ତସାଧନ—କ୍ଳୀ.ବି. (୬ତତ୍) ଗଣିତାନୁସାରେ ଚନ୍ଦ୍ରଙ୍କର ଉଦୟ ଓ ଅସ୍ତ ନିର୍ଣ୍ଣୟକରଣ । [ ଦେଖ ।

ଚନ୍ଦ୍ରୋପରାଗ—ବି. (୬ତତ୍) ଚନ୍ଦ୍ରଗ୍ରହଣ

ଚନ୍ଦ୍ରୋପଲ—ପୁଂ.ବି. କ.ଧା; ଚନ୍ଦ୍ରକାନ୍ତମଣି । [ ଜ୍ୟୋତିର୍ଗ୍ରନ୍ଥ ।

ଚନ୍ଦ୍ରୋନ୍ମୀଳନ—କ୍ଳୀ. ବି. ଖଣ୍ଡିଏ ଫଳିତ

ଚନ୍ଦ୍ରୌରସ—ପୁଂ. ବି. (ଚନ୍ଦ୍ର+ଔରସ) ୬ତତ୍; ବୁଧ, ଛନ୍ଦୋବିଶେଷ ।

ଚନ୍ନଗିରି—ଗ୍ରା. ବି. ମହୀଶୂରର ଶିମୋଗା ଜିଲ୍ଲାନ୍ତର୍ଗତ ଗୋଟିଏ ତାଲୁକ ।

ଚନ୍ନବସବେଶ୍ୱରସ୍ୱାମୀ—ଗ୍ରା. ବି. ଦାକ୍ଷିଣାତ୍ୟର ଜଣେ ପ୍ରଧାନ ଗ୍ରନ୍ଥକାର ।

ଚପ—ଗ୍ରା.ଅବ୍ୟ. (କଣ୍ଠାଆଦି) ଗଳିଯିବା ପ୍ରକାରେ । [ କୁରୁତା ।

ଚପ୍‌କନ୍—ଗ୍ରା. ବି. ଆଜାନୁଲମ୍ବିତ ଚୁସ୍ତ

ଚପ୍ ଚପ୍—ଗ୍ରା. କ୍ରି. ଝପାଝପ୍, ଅତିଶୀଘ୍ର, ତୁରନ୍ତ ।

ଚପ୍ ଚପିଆ—ପ୍ରା. ସମ୍. ବଂ.ଅଠାଳିଆ ।

ଚପ୍‌ରା—ପ୍ରା. ସମ୍. ବି. ଜଳାଭୂମି, (ଗ୍ରା. ବଂ), କର୍ଦ୍ଦମାକ୍ତ (ଭୂମି). ସନ୍ତସନ୍ତିଆ ।

ଚପ୍‌ରାସ୍—ଯା. ବି. ପିଅନମାନଙ୍କର ପରିଚୟ ଚିହ୍ନ ସ୍ୱରୂପ ପୋଷାକ ଉପରେ ଧାରଣ କରିବା ପିତଳାଦି ନିର୍ମିତ ଫଳକ, କରତର ଦାନ୍ତ, କରତର ଦାନ୍ତ ବେହାରିବା ।

ଚପରାସୀ—ଯା. ବି. ପତ୍ରବାହକ, ଅର୍ଦ୍ଦଳି ପିଅନ, ଯାହାର ଚପ୍‌ରାସ୍ ଅଛି ।

ଚପଟ—ପୁଂ. ବି. (ଚପ+ଭ୍ବା.ଅଟ) ଚାପୁଡ଼ା (ଗ୍ରା.ବି) ଆଘାତ,ବିପତ୍ତିପାତର ଆଶଙ୍କା, ଉତ୍ପୀଡ଼ନ, ଚାପ, ଦାୟିତ୍ୱ, ପୀଡ଼ା, ହାନି, କ୍ଷତି, ବହୁକାର୍ଯ୍ୟର ଜଞ୍ଜାଳ । [ ମାରିବା ।

ଚପଟାଘାତ—ବି. (୩ତତ୍) ଚାପୁଡ଼ା-

ଚପରଚପର—ଗ୍ରା.ଅବ୍ୟ.(ଧ୍ୱନ୍ୟନୁକରଣ) ବର୍ଷାର ଝପ ଝପ ଶବ୍ଦ, ଦୁଇତିନ ଆଙ୍ଗୁଳି ପାଣି ବା କାଦୁଅ ଥିବା ସ୍ଥାନରେ ଲୋକ ଗଲାବେଳର ଶବ୍ଦ ।

ଚପରା—ଗ୍ରା.ବଂ. ଅଳ୍ପତର ଶିଥିଳ (ଜ୍ମିନ), କର୍ଦ୍ଦମମୟ, ପଙ୍କୁଆ ।

ଚପଳ—ବି. ବାଂ. ଶୀଘ୍ର, ଚଞ୍ଚଳ, (ବି) ପାରଦ, ଗ୍ରେର, ଶିଳା ବିଶେଷ, ମତ୍ସ୍ୟ, ଗନ୍ଧଦ୍ରବ୍ୟବିଶେଷ, ଏକପ୍ରକାର ମୂଷ, ଗୃତକ, କ୍ଷବ, ବାୟୁ, କଳାପୋଷେ, ରୋଗୋତ୍ପାଦନକାରୀ ରାକ୍ଷସବିଶେଷ, ( ବାଂ—ଚପ୍+କ. ଅଲ ) ବା (କମ୍ପ+କ. ଅଳ) କମ୍ପୁଥିବା, ଚଞ୍ଚଳ, ତରତରିଆ, ତରଳ, ଅସ୍ଥିର, ଚଗଲା, ଅନବସ୍ଥିତ, ଅସ୍ଥାୟୀ, ଦୁର୍ବିଜ୍ଞାତ, ଦୁଷ୍ଟ, ବଗୁଲିଆ, ଧୃଷ୍ଟ, ବିକଳ, ଅବିବେଚକ, ଭୁରୁଭୁରିଆ, କ୍ଷଣିକ, (ଗ୍ରା.ବି) ପ୍ରାଚୀନ ଜଳଯାନ ବିଶେଷ । [ ଦେଖ ।

ଚପଳକ—ବାଂ. (ଚପଳ+କ) ଚପଳ

ଚପଳଗଣ—ବି. (ଛନ୍ଦ) ପଞ୍ଚାଏ ବଗୁଲିଆ ଟୋକା ।

ଚପଳଗ୍ରାମ—ଗ୍ରା.କ୍ରି.ବିନ୍ଧ୍ୟାରଣ୍ୟ ନିକଟ-ବର୍ତ୍ତୀ ପଶ୍ଚିମ ନଦୀତୀରସ୍ଥ ଗୋଟିଏ ଗ୍ରାମ ।

ଚପଳତା—ସ୍ତ୍ରୀ. ବି. ଶୃଙ୍ଖଳା, ଅସ୍ଥିରତା, ଧୃଷ୍ଟତା,ବ୍ୟଭିଚାରୀ ଗୁଣବିଶେଷ,ଦୁଷ୍ଟାମି, ଅଭଦ୍ରତା ।

ଚପଳସ୍ୱଭାବ—ବି.( କ. ଧା)ଅସ୍ଥିରପ୍ରକୃତି, ପୁଂ.ବାଂ. ବ.ବ୍ରୀ; ଅସ୍ଥିରପ୍ରକୃତିକ(ବ୍ୟକ୍ତି). (ସ୍ତ୍ରୀ) ଚପଳସ୍ୱଭାବା ।

ଚପଳା—ସ୍ତ୍ରୀ. ବି. (ଚପଳ+ଆ) ଲକ୍ଷ୍ମୀ, ବିଦ୍ୟୁତ୍, ବେଶ୍ୟା, ପିପ୍ପଳୀ, ଜିହ୍ୱା, ବିଜୟା, ମଦିରା, ମାତ୍ରାବୃତ୍ତବିଶେଷ, ଅସତୀ ସ୍ତ୍ରୀ, ସଙ୍ଗୀତର ପଞ୍ଚମସ୍ୱର, (ବାଂ) ଚପଳାର ସ୍ତ୍ରୀଲିଙ୍ଗ ।

ଚପଳାକ୍ଷ—ପୁଂ. ବାଂ. (ବ. ବ୍ରୀ) ଯେ ଇତସ୍ତତଃ ଆଖି ବୁଲାଉ ଥାଏ, (ସ୍ତ୍ରୀ) ଚପଳାକ୍ଷୀ ।

ଚପଳାଙ୍ଗ—ବାଂ. (ବ. ବ୍ରୀ) ଯାହାର ଶରୀର ଚଞ୍ଚଳ, (ପୁଂ. ବି) ଶିଶୁମାର, ଶୁଶୁକ ।

ଚପଳାଲୀଳା—ବି. (ଛନ୍ଦ) ମେଘରେ ବିଦ୍ୟୁତ୍‌ଝଟକନା,ବିଜୁଳିଝଟକ, ବିଜୁଳି ଝଟକପରି ଚଞ୍ଚଳ ଅଙ୍ଗସଞ୍ଚାଳନ ।

ଚପଳାବକ୍ତ୍ର—କ୍ଲୀ. ବି. ଛନ୍ଦୋବିଶେଷ ।

ଚପଳାଶୟ—ବି. ପେଟଫମ୍ପା, ଅଜୀର୍ଣ୍ଣ ।

ଚପଳେ—ଗ୍ରା. କ୍ରି. ବାଂ. ଶୀଘ୍ର, ଚଞ୍ଚଳ ( ଲ. ଅର୍ଥ ) ଚପଳତାସହକାରେ, ଆଗ ପଛ ବିଚାର ନକରି ।

ଚପା—ଗ୍ରା. ବି. ଚାପିବା, ଦାବିବା, ଚାପ ।

ଚପାଇବା—ଗ୍ରା. କ୍ରି. ଚପିବା କ୍ରିୟାର ଣିଜନ୍ତରୂପ, କାଗଜରେ ଅଠାଦ୍ୱାରା ଅନ୍ୟ ପତଳା ବସ୍ତୁ ଦବାଇବା, ଦାବିବା, ଲୁଚାଇବା, ସମସ୍ତଙ୍କ ଉପରେ ନତ-ମସ୍ତକ ବା ଚୁପ୍ କରାଇବା, (କୋଟଫି ଆଦି) ଲଗାଇବା,ଅନ୍ୟଦ୍ୱାରା ଚାପିବା-କର୍ମ କରାଇବା, ଲେଖା କାଗଜରେ କାଳି ଶୋଷିବାକୁ ଚପା କାଗଜ ମଡ଼ାଇବା, ଧମକାଇବା ।

ଚପାକାଗଜ—ଗ୍ରା.ବି.ଯେଉଁ କାଗଜରେ ଲେଖିଲେ କାଳି କାଗଜ ଦ୍ୱାରା ଶୋଷି-ହୋଇଯାଏ, ମସିଶୋଷକ ପତ୍ର,ଛପା-କାଗଜ ।

ଚପାଚପି—ଗ୍ରା. ବି. ଚପା ଦେଖ ।

ଚପିବା—ଗ୍ରା. କ୍ରି. ଦବିବା, କାଳିଆଦି କାଗଜରେ ଶୋଷି ହୋଇଯିବା, ଅନ୍ୟର ପ୍ରତାପରେ ଭୟ ପାଇ ଭୁକ ହେବା, ଲଜ୍ଜିତ ହେବା ।

ଚପିଯିବା—ଗ୍ରା. କ୍ରି. ଚପିବା ଦେଖ ।

ଚପେଟ—ପୁଂ. ବି. (ଚପେ+ଷ୍ଣ. ଏଟ) ଚଡ଼, ଚାପୁଡ଼ା, ପ୍ରତଳ, ପ୍ରହସ୍ତ, ଚାପୁଡ଼ାଇବା ।

ଚପେଟା—ସ୍ତ୍ରୀ. ବି. (ଚପ+ଇଟ+ଆ) ଚାପୁଡ଼ା, ପ୍ରତଳ, ପ୍ରହସ୍ତ ।

ଚପେଟାଘାତ—ବି. ଚପଟାଘାତ ଦେଖ ।

ଚପେଟିକ(କା)—ବି.ଚପେଟ ଦେଖ ।

ଚପେଟୀ—ସ୍ତ୍ରୀ.ବି.ଭାଦ୍ରମାସର ଶୁକ୍ଳଷଷ୍ଠୀ ।

ଚପ୍ୟ—ବାଂ. (ଚପ+ଯ) ସାନ୍ତ୍ୱନୀୟ ।

ଚମ୍‌ଚମ୍—ଗ୍ରା. ବି. ଚିନିରସରେ ପାକ ହୋଇଥିବା ଦୁଧଛେନାର ଏକ ପ୍ରକାର ମିଷ୍ଟାନ୍ନ ।

ଚମ—ଗ୍ରା. ବି. ଜୀବ ଦେହର ଚର୍ମ, ଜୀବ ଦେହର ମାଂସ ଶିରା ଓ ହାଡ଼କୁ ଘୋଡ଼ାଇଥିବା ପତଳା ଆବରଣ,ଗୁଲ, ଚମଡ଼ା, ଭଣ୍ଡାରିଙ୍କ ଚଟ୍‌ପଟି ।

ଚମଉକୁଣି—ଗ୍ରା. ବି. ଦେହ ଚର୍ମ ଓ ଆଖିପତା ପ୍ରଭୃତି ସ୍ଥାନର କେଶରେ ଜାତ ଉକୁଣି ପରି ପୋକ ବିଶେଷ ।

ଚମଉକୁଣିଆ—ଗ୍ରା. ବାଂ. (ଲ. ଅର୍ଥ) ଚମଉକୁଣି ଚମରେ ଲାଗିଲା ପରି ଯେ କୌଣସି ବିଷୟରେ ଜଗିର କରି ଲାଗିରହେ ଓ ସହଜରେ ଛାଡ଼ନାହିଁ ।

ଚମକ—ଗ୍ରା. ବି. ହଠାତ୍ ଉପସ୍ଥିତି କ୍ଷଣିକ ଭୟ, ଛନିଆଁ, ଚମକପଡ଼ିବା, ବିସ୍ମୟ,(ବିଦ୍ୟୁତାଦିର) ହଠାତ୍ ପ୍ରକାଶିତ କ୍ଷଣିକ ଆଲୋକ, ଝଟକ, ହଠାତ୍ ଭୟ ଜନିତ ଗାତ୍ରର କମ୍ପନ, ଚକ୍‌ଚକ୍ୟ (ବାଂ) ଅସ୍ଥିର, ଛନିଆଁ, ଯାହା ହଠାତ୍ ଭୟ କନ୍ମାଏ, ଚକମକ କରୁଥିବା ।

ଚମକଛଡ଼ାଇବା—ଗ୍ରା. କ୍ରି. ଚମକଭାଙ୍ଗିବା ଦେଖ ।

ଚମକଚ୍ଛଣ୍ଡାଳ—ଗ୍ରା. ସ୍ତ୍ରୀ. ବାଂ. (ଗାଳି-ବିଶେଷ) ଯେ ଜାଣି ଶୁଣି ପର ପୁରୁଷ ସଙ୍ଗେ ପାପ ପ୍ରଣୟ କରୁଥାଏ ଅଥଚ ମଝିରେ ମଝିରେ ଧରା ପଡ଼ିବା ଭୟରେ ବାହାନା କରି ଚମକ ପଡ଼ୁଥାଏ । ଯେଉଁ ଦୁଷ୍ଟା କି ସ୍ତ୍ରୀ ବ୍ରତ ଆଡ଼ମ୍ବରରେ ଥାଏ । ଗୁପ୍ତବ୍ୟଭିଚାରରତା (ସ୍ତ୍ରୀ) ।

ଚମକତି—ଗ୍ରା. ବି. ଗୋଡ଼ ଓ ଗୋଇଠି ତଳପାରୁ ମଳଚମ ତାଞ୍ଛି ନେବାର ନହୁରୁଣୀ ।

ଚମକଦମକ—ଗ୍ରା. ବି. ଚାକଚକ୍ୟ ଉଜ୍ଜ୍ୱଳତା, ଦୀପ୍ତି ।

ଚମକଦାର—ଗ୍ରା. ବି. ଚକଚକିଆ ।

ଚମକଧମକ—ଗ୍ରା. ବି. ଧମକାଧମକି, ଧମକଚମକ ।

ଚମକପଡ଼ିବା—ଗ୍ରା. ବି. ଶୁଣିବା ଲୋକ ମନରେ ଛନିଆଁ ବା କମ୍ପ ଉପସ୍ଥିତ ହେବା ।

ଚମକପଶିବା—ଗ୍ରା. ବି. ମନରେ ହଠାତ୍ ଉପସ୍ଥିତ ଭୟର ଛାପ ରହିଯିବା ।

ଚମକଭଙ୍ଗାଇବା—ଗ୍ରା. କ୍ରି. ଚମକ ଭାଙ୍ଗିବା ଦେଖ ।

ଚମକଭାଙ୍ଗିବା—ଗ୍ରା. କ୍ରି. ଯୁଦ୍ଧ ସ୍ଥଳାଦିକୁ

ମନୁଷ୍ୟ ବା ଘୋଡ଼ା ଆଦିକୁ ନେଇ ସେମାନଙ୍କ ମନରୁ ହଠାତ୍ ଚ୍ଛନିଆଁ ହେବା ଖୋଇ ଛଡ଼ାଇବା, ଅଭ୍ୟାସ ଦ୍ୱାରା ମନରୁ ହଠାତ୍ ଭୟ ଛଡ଼ାଇବା ।

ଚମକରେ—ଗ୍ରା. କ୍ରି. ବିଂ. ଝଟକରେ, ଆଡ଼ମ୍ବରରେ ।

ଚମକସୂକ୍ତ—କ୍ଲୀ. ବି. ବାଜସନେୟ ସଂହିତାର ୧୮ ଅଧ୍ୟାୟର '୧୦ ଠାରୁ ୨୭' ମନ୍ତ୍ରକୁ ଚମକସୂକ୍ତ କହନ୍ତି ।

ଚମକା—ଗ୍ରା. ବି. ମନରେ ହଠାତ୍ ଭୟ ବା ଚ୍ଛନିଆଁ ପଶିବା, (ଗ୍ରା. ବିଂ) ଯେ ହଠାତ୍ ଚମକି ଉଠେ, ଚ୍ଛନିଆଁ ।

ଚମକାଇବା—ଗ୍ରା.କ୍ରି. ଭୟ ଦେଖାଇବା, ଡରାଇବା, ଅସ୍ତ୍ର ଆଦିର ଉଜ୍ଜ୍ୱଳ ଫଳାକୁ ଇତସ୍ତତଃ ସଂଚାଳିତ କରିବା, ଝଟକାଇବା, ଚକଚକିଆ ପୋଷାକ ଦେଖାଇବା ।

ଚମକାଣି—ଗ୍ରା. ବି. ଚମକାଇବା କର୍ମ, ଚମକ ଦେଖ । [ ଦେଖ ।

ଚମକଉଠିବା—ଗ୍ରା. କ୍ରି, ଚମକି ପଡ଼ିବା

ଚମକିତ—ଗ୍ରା.ପଦ୍ୟ.ବିଂ.ହଠାତ୍ ବିସ୍ମିତ ।

ଚମକିପଡ଼ିବା—ଗ୍ରା. କ୍ରି. ହଠାତ୍ ଚ୍ଛନିଆ ହେବା, ଭୟତ୍ରସ୍ତ ହେବା, ଗୁଡ଼ ଧଡ଼ପଡ଼ କରିବା,ଭୟତ୍ରସ୍ତ ହୋଇ କମ୍ପିବା ।

ଚମକିବା—ଗ୍ରା. କ୍ରି. ହଠାତ୍ ଦୂରକୁ ତୀବ୍ରବେଗରେ ଗତିକରିବା, (ଶସ୍ତ୍ରାଦି) ଇତସ୍ତତଃ ସଂଚାଳିତ ହେବା,ଝଟକିବା, ଭୟ ଯୋଗୁ (ଗୁଡ଼)ଧଡ଼ପଡ଼ କରିବା, ଚମକି ଉଠିବା ।

ଚମଚ—ଗ୍ରା. ବି. ଚାମଚ, ଧାତୁ ନିର୍ମିତ କ୍ଷୁଦ୍ର ଅଣକ ବା ଡଙ୍କି ।

ଚମଚନ୍ଦ—ଗ୍ରା. ବି. କୁରୁକ୍ଷେତ୍ରର ପାର୍ଶ୍ୱବର୍ତ୍ତୀ ପ୍ରଦେଶ ।

ଚମଚାଟ—ଗ୍ରା. ବି. ଚେମିଣି ଚଟେଇ, ବାଦୁଡ଼ି, (ଲ. ଅର୍ଥ) ଚେମିଣି ଭଳିଆ ସଙ୍ଗରେ ଲାଗିବା, (ଗ୍ରା. ବିଂ.) ଯେ କୌଣସି କାର୍ଯ୍ୟରେ ଉଦ୍ଧାର ଲାଗି ଲାଗି ରହି ଥାଏ, ନଛୋଡ଼ବନ୍ଦା, ଏକଜିଦିଆ, ଅକ୍ଳାନ୍ତ ।

ଚମଗ୍ଗୈର—ଗ୍ରା, ପୁଂ, ବିଂ. ଗୁପ୍ତ ପ୍ରଣୟକାରୀ, ପର ସ୍ତ୍ରୀ ସଙ୍ଗେ ଆସକ୍ତ, ଲମ୍ପଟ ।

ଚମଗ୍ଗୈରି—ଗ୍ରା. ବି. ଲମ୍ପଟ୍ୟ, ପରସ୍ତ୍ରୀହରଣ, ଗୁପ୍ତପ୍ରୀତି ।

ଚମଡ଼—ଗ୍ରା. ବି. ଚେମଡ଼ ଦେଖ ।

ଚମଡ଼ା—ଗ୍ରା. ବି. ଶରୀରର ଚର୍ମ, ଛାଲ, ମସଲା ଦ୍ୱାରା ବଦୁରା ହୋଇ ରଙ୍ଗ ଓ ପାଲିସ ହୋଇ ଥିବା ଚର୍ମ ।

ଚମଡ଼ାଉଖୁଣ୍ଡିବା—ଗ୍ରା.କ୍ରି.ଜୀବ ଦେହରୁ ଚମଡ଼ାକୁ ବାହାର କରିବା, ଛାଲ ଉତାରିବା, (ଲ. ଅର୍ଥ) ବିଶେଷ ପ୍ରହାର କରିବା ।

ଚମଡ଼ାକଶିବା—ଗ୍ରା. କ୍ରି. ଚମଡ଼ାକୁ ମସଲା ପାଣି ଦ୍ୱାରା ନରମ କରିବା ।

ଚମଡ଼ାଛାଆଣି—ଗ୍ରା. ବି. ଢୋଲ ଆଦିର ମୁହଁରେ ଚମଆବୃତ କରିବା,(ଗ୍ରା. ବିଂ) ଉପରେ ଚମଡ଼ା ପଡ଼ିଥିବା, ଚର୍ମ ବୃତ ।

ଚମତ୍—ଅବ୍ୟ. (ଚମ+ଅତ୍) ଚମକିବା

ଚମତ୍କରଣ—କ୍ଲୀ. ବି. (ଚମତ୍+କୃ+ଣ,ଅନ)ହଠାତ୍ ଆଶ୍ଚର୍ଯ୍ୟକରିବା,ଆଶ୍ଚର୍ଯ୍ୟବୋଧ, ଚ୍ଛନିଆଁ କରିବା, ଉଚ୍ଚ ଧରଣର ପଦ୍ୟରଚନା, (ବିଂ. କ.ଅନ) ଯେ ଚମତ୍କୃତ କରେ, ଯେ ଆଶ୍ଚର୍ଯ୍ୟ ଜ୍ଞାନକରେ ।

ଚମତ୍କର୍ତ୍ତା—ପୁଂ.ବିଂ. ଯେ ଆଶ୍ଚର୍ଯ୍ୟାନ୍ୱିତ କରେ, ଯେ ଚମତ୍କୃତ କରେ ।

ଚମତ୍କାର—ପୁଂ. ବି. (ଚମତ୍+କୃ+ଘ,ଅ) ଉଦ୍ବେଗ, ଆନନ୍ଦ ଆଶ୍ଚର୍ଯ୍ୟ, ଆଡ଼ମ୍ବର, ମଙ୍ଗଳ, ମଜଲସ୍, ବିସ୍ମୟ, ଚିତ୍ତବୃତ୍ତିବିଶେଷ,ଆଶ୍ଚର୍ଯ୍ୟଜନକ ବିଷୟ, ବିସ୍ମୟ, ଉଚ୍ଚଧରଣର ପଦ୍ୟରଚନା, ଅପାମାର୍ଗ, (ଗ୍ରା.ବିଂ) ଆଶ୍ଚର୍ଯ୍ୟଜନକ, ଆନନ୍ଦଦାୟକ,ଉତ୍କୃଷ୍ଟ,ଆଶ୍ଚର୍ଯ୍ୟାନ୍ୱିତ ।

ଚମତ୍କାରକ—ତ୍ରି. ବିଂ.(ଚମତ୍+କୃ+କ. ଅକ) ବିସ୍ମୟଜନକ, ଯେ ଆଶ୍ଚର୍ଯ୍ୟବୋଧ ଜନ୍ମାଏ, ଅତ୍ୟନ୍ତ ସୁନ୍ଦର, (ସ୍ତ୍ରୀ) ଚମତ୍କାରିକା ।

ଚମତ୍କାରପୁର — ନାଗରଖଣ୍ଡବର୍ଣ୍ଣିତ ଗୋଟିଏ ପୁଣ୍ୟସ୍ଥାନ ।

ଚମତ୍କାରିତ—ପୁଂ.ବିଂ. (ଚମତ୍କାର+ଇତ) ବିସ୍ମିତ, ଯାହାର ଚମତ୍କାର ଜନ୍ମିଅଛି, ଚମତ୍କୃତ ।

ଚମତ୍କାରିତା—ବି.(ଚମତ୍କାରିନ୍+ତା) ବିସ୍ମୟକରତ୍ୱ, ମୁଗ୍ଧକାରିତା, ଆଶ୍ଚର୍ଯ୍ୟଜନକ ଶକ୍ତି ।

ଚମତ୍କାରୀ—ପୁଂ. ବିଂ. (ଚମତ୍+କୃ+ଇନ୍) ଚମତ୍କାରକ (ଦେଖ; ସ୍ତ୍ରୀ) ଚମତ୍କାରିଣୀ ।

ଚମତ୍କୃତ—ପୁଂ. ବିଂ. (ଚମତ୍+କୃ+କ୍ତ) ବିସ୍ମୟାନ୍ୱିତ, ବିମୁଗ୍ଧ, ବିସ୍ମିତ, (ସ୍ତ୍ରୀ) ଚମତ୍କୃତା ।

ଚମତ୍କୃତି—ସ୍ତ୍ରୀ. ବି. (ଚମତ୍+କୃ+ତି) ଆଶ୍ଚର୍ଯ୍ୟ, ବିସ୍ମୟ ।

ଚମଦଉଡ଼ି—ଗ୍ରା. ବି. ଚର୍ମରଜ୍ଜୁ,ଚମଡ଼ାର ତନ୍ତୁରେ ବଳାଯାଇଥିବା ଦଉଡ଼ି ।

ଚମଦଳା—ଗ୍ରା. ବି. କୁଣ୍ଡିଆରୋଗବିଶେଷ ।

ଚମବାଇଦ—ଗ୍ରା. ବି. ଚମଡ଼ା ଛାଆଣି ବାଦ୍ୟ, ଢୋଲ, ଆନଦ୍ଧବାଦ୍ୟ ।

ଚମମୁଠିଆ ( ଭଣ୍ଡାର )—ଗ୍ରା. ବି. ଉଚ୍ଚଶ୍ରେଣୀର ଭଣ୍ଡାର ।

ଚମମୂଣା—ଗ୍ରା.ବି. ଚର୍ମନିର୍ମିତ ବଡ ଥଳି ।

ଚମର—ପୁଂ. ସ୍ତ୍ରୀ. ବି. (ଚମ+କ.ଅର) ମହିଷପରି ଏକପ୍ରକାର ପଶୁ, ଚମରମୃଗ, (କ୍ଲୀ.ବି) ଚାମର, ଚଅଁର,ଦୈତ୍ୟବିଶେଷ ।

ଚମରପୁଚ୍ଛ—ପୁଂ. ସ୍ତ୍ରୀ. ବି. ( ବ.ବ୍ରୀ ) ବିଲେଶୟ ପଶୁବିଶେଷ, (କ୍ଲୀ.ବି) ଚାମର ମୃଗର ଲାଞ୍ଜ, ଚଅଁର ।

ଚମରମୃଗ—ବି. ଚାମରପରି ପୁଚ୍ଛଯୁକ୍ତ ଏକପ୍ରକାର ମୃଗ ।

ଚମରିକ—ପୁଂ. ବି. କୋବିଦାର ବୃକ୍ଷ ।

ଚମରୀ—ସ୍ତ୍ରୀ. ବି. (ଚମର+ଈ) ଚମରଜାତୀୟା ସ୍ତ୍ରୀ, ଚମରଗାଈ,କପିଳାଗାଈ, ମଞ୍ଜରୀ ।

ଚମରୀଗୋ—ସ୍ତ୍ରୀ. ବି. ଚମରୀ ଦେଖ ।

ଚମସ—ପୁଂ ଓ କ୍ଲୀ.ବି. (ଚମ+ଣ,ଅସ୍) ଯଜ୍ଞୀୟ ପାତ୍ରବିଶେଷ, ସୋମପାନ

ପାତ୍ର, ଗ୍ଳାସ, କରଚୁଲି ।
ଚମସାଧ୍ୱର୍ଯ୍ୟ—ପୁ . ବି. ଋତ୍ୱିକ୍‌ବିଶେଷ ।
ଚମସୀ—ପୁଂ.ବିଂ.(ଚମସ + ଇନ୍)ଯାହାର ଚମସ ଅଛି, ଚମସଯୁକ୍ତ, (ସ୍ତ୍ରୀ—ଚମସ+ ଈ) ମୁଗ ବା ବିରି ଆଦି ଶସ୍ୟ ଚୂର୍ଣ୍ଣ-ନିର୍ମିତ ପିଷ୍ଟ, ପର୍ପଟ, ପାପଡ଼,କାଷ୍ଠନିର୍ମିତ ଯଜ୍ଞୀୟ ପାତ୍ରବିଶେଷ ।
ଚମସୋଦ୍‌ଭେଦ—ପୁଂ. ବି. ପ୍ରଭାସ ନିକଟ-ବର୍ତ୍ତୀ ତୀର୍ଥବିଶେଷ ।
ଚମସୋଦ୍‌ଭେଦକ—କ୍ଳୀ. ବି. ତୀର୍ଥବିଶେଷ ।
ଚମାର—ଗ୍ରା.ପୁଂ.ବି. ତାଳଗଛ ଝାଡ଼ିବା ଓ ତାଳପତ୍ରରେ ତାଟି ବାଉଁଶିଆ ଓ ଟୋକେଇଆଦି ପ୍ରସ୍ତୁତକାରୀ ଜାତି, ଅତିନୀଚକର୍ମା ବା ହୀନବ୍ୟକ୍ତି,(ଗ୍ରା.ସମ୍ବ-ଫିନ୍ଦ. ବି) ମୋଚି, (ପ୍ରା. ବାଲେ. ବି.) ଏକପ୍ରକାର ଅସ୍ପୃଶ୍ୟ ଜନ୍ତୁ, ( ପ୍ରା.ଗଡ଼ ) ଖଜୁରିଗଛ କାଟି ତାଡ଼ି ବ୍ୟବସାୟୀକାରୀ ଜାତି, ଖଜୁରିଆ, ଏକପ୍ରକାର ଚଢ଼େଇ
ଚମାରପ୍ରେତ—ଗ୍ରା.ବି. ଚମାରଙ୍କ ପ୍ରେତ-କାର୍ଯ୍ୟରେ ପୌରହିତ୍ୟ କରିବା ନାହାକ ଜାତି । [ ସ୍ତ୍ରୀ ।
ଚମାରୁଣୀ—ଗ୍ରା. ସ୍ତ୍ରୀ. ବି. ଚମାରଜାତୀୟା
ଚମୀକର—ପୁଂ. ବି. କୁଡ଼ସ୍ୱର ନାମକ ସ୍ୱର୍ଣ୍ଣର ଉତ୍ପତ୍ତି ସ୍ଥାନ, ସ୍ୱର୍ଣ୍ଣଖଣି ।
ଚମୁ—ପ୍ରା, ଗଞ୍ଜା. ବି. ଏକଜାତୀୟ ପିତ୍ତଳର ଶ୍ରେଷ୍ଠ ଢାଲ ।
ଚମୂ—ସ୍ତ୍ରୀ. ବି. (ଚମ + କ.ଉ) ସେନା-ବିଶେଷ, ସେନାର ସଂଖ୍ୟାବିଶେଷ, ୭୨୯ ହାତୀ, ୭୨୯ ରଥ, ୨୧୮୭ଅଶ୍ୱାରୋହୀ, ୩୬୪୫ ପଦାତି, ଏମାନଙ୍କଦ୍ୱାରା ଗଠିତ ସେନା, ଚମସ, ସ୍ୱର୍ଗ ଓ ପୃଥିବୀ ।
ଚମୂଚର—ପୁଂ. ବି. (ଚମୂ+ଚର + କ. ଅ) ସୈନିକ ପୁରୁଷ, ସୈନ୍ୟାଧ୍ୟକ୍ଷ, ଯୋଦ୍ଧା ।
ଚମୂନାଥ—ପୁଂ. ବି. (୬ତତ୍) ସୈନ୍ୟା-ଧ୍ୟକ୍ଷ,ସେନାପତି । [ ସେନାପତି ।
ଚମୂପତି—ବି. ( ୬ତତ୍ ) ସେନାଧ୍ୟକ୍ଷ,
ଚମୂପତିସିଂହ—ଗ୍ରା. ବି. ଚମ୍ପତିସିଂହ ଦେଖ ।
ଚମୂରୁ—ପୁଂ ଓ ସ୍ତ୍ରୀ. ବି. ମୃଗବିଶେଷ ।
ଚମୂସଦ୍—ବିଂ. ( ଚମୂ+ସଦ + କ୍ୱିପ୍ ) ଯେଉଁମାନେ ଚମସପ୍ରଭୃତି ଯଜ୍ଞପାତ୍ରରେ ଅବସ୍ଥାନ କରନ୍ତି ।
ଚମୂହର—ପୁଂ. ବି. ମହାଦେବ ।
ଚମେଲ—ଗ୍ରା. ବି. ଗୁମେଲ ଦେଖ ।
ଚମ୍ପ—ପୁଂ. ବି. (ଚମ୍ପ+ଅ) କୋବିଦାର ବୃକ୍ଷ, ଚମ୍ପକ ପୁଷ୍ପ, ଚମ୍ପକ ନଗର ସ୍ଥାପୟିତା ରାଜାବିଶେଷ । [ ଆମ୍ବର ।
ଚମ୍ପଉଡ—ଗ୍ରା. ବି. ଏକପ୍ରକାର ଆମ୍ବ-
ଚମ୍ପକ—ପୁଂ. ବି. ( ଚମ୍ପ+କ. ଅକ ) ନଗରବିଶେଷ,ରମ୍ୟକସିଦ୍ଧି,ଏକପ୍ରକାର ବୃକ୍ଷ ଓ ତାହାର ଉତ୍କୃଷ୍ଟ ଗନ୍ଧଯୁକ୍ତ ପୁଷ୍ପ ଚମ୍ପା, ଚମ୍ପାକଦଳୀ,ଦୀପକରାଗର ପୁତ୍ର ରାଗବିଶେଷ । [ ଦେଖ ।
ଚମ୍ପକଗୋରୀ—ଗ୍ରା.ସ୍ତ୍ରୀ.ବିଂ. ଚମ୍ପାଗୋରୀ,
ଚମ୍ପକଚତୁର୍ଦ୍ଦଶୀ—ସ୍ତ୍ରୀ. ବି. ଜ୍ୟେଷ୍ଠମାସର ଶୁକ୍ଳ ଚତୁର୍ଦ୍ଦଶୀ । [ ମାଳା ।
ଚମ୍ପକଦାମ—ବି. (କ.ଧା) ଚମ୍ପାଫୁଲର
ଚମ୍ପକଦ୍ୱାଦଶୀ—ସ୍ତ୍ରୀ. ବି. ଜ୍ୟେଷ୍ଠମାସର ଶୁକ୍ଳଦ୍ୱାଦଶୀ ।
ଚମ୍ପକମାଳା—ସ୍ତ୍ରୀ.ବି.ଚମ୍ପାଫୁଲର ମାଳା, ଅଳଙ୍କାରବିଶେଷ, ଛନ୍ଦୋବିଶେଷ ।
ଚମ୍ପକରମ୍ଭା—ସ୍ତ୍ରୀ. ବି. ଚମ୍ପାକଦଳୀ ।
ଚମ୍ପକଲତା—ସ୍ତ୍ରୀ. ବି. ରାଧିକାଙ୍କ ସଖୀ-ବିଶେଷ ।
ଚମ୍ପକାନନଦାକୁଞ୍ଜ—ପୁଂ ବା କ୍ଳୀ. ବି. ବୃନ୍ଦାବନର ଗୋବର୍ଦ୍ଧନ ସନ୍ନିହିତ ଶ୍ୟାମ ଓ ରାଧାକୁଣ୍ଡର ନିକଟସ୍ଥ ଚମ୍ପକ-ଲତିକା କୁଞ୍ଜବିଶେଷ ।
ଚମ୍ପକାବତୀ—ସ୍ତ୍ରୀ. ବି. ଚମ୍ପାପୁରୀ ।
ଚମ୍ପକାରଣ୍ୟ—କ୍ଳୀ. ବି. ତୀର୍ଥବିଶେଷ ।
ଚମ୍ପକାଳୁ—ପୁଂ.ବି. ପନସ, ପନସଫଳ, ରୋଟିଫଳ ଗଛ ।
ଚମ୍ପକୁନ୍ଦ—ପୁଂ. ବି. ମତ୍ସ୍ୟବିଶେଷ ।
ଚମ୍ପକୋଷ—ପୁଂ. ବି. (ବ.ବ୍ରୀ) ପଣସ ।
ଚମ୍ପଟ୍—ଗ୍ରା.ବି. କୌଣସି ସ୍ଥାନରୁ ଗୋପନରେ ପଳାୟନ, ହଠାତ୍ ଅନ୍ତର୍ଦ୍ଧାନ ।
ଚମ୍ପଟ୍‌କରିବା—ଗ୍ରା. କ୍ରି. କୌଣସି ସ୍ଥାନରୁ ହଠାତ୍ ଗୋପନରେ ପଳାଇବା ।
ଚମ୍ପତ୍‌ରାୟ—ପୁଂ. ବି. ଜଣେ ବିଖ୍ୟାତ ବୁନ୍ଦେଲ ସର୍ଦ୍ଦାର ।
ଚମ୍ପତି—ଗ୍ରା. ବି. ଶ୍ରେଷ୍ଠ ରାଜା ବା ଜମି-ଦାର ବା ସେନାପତିଙ୍କର ରାଜଦତ୍ତ ଉପାଧିବିଶେଷ, ଓଡ଼ିଶା ଗଡ଼ଜାତ ରାଜାମାନଙ୍କର ବିଶିଷ୍ଟ ଶୂଦ୍ର ଓ ଖଣ୍ଡାଏତ ପ୍ରଜାଙ୍କୁ ପ୍ରଦତ୍ତ ଉପାଧିବିଶେଷ, ଖଣ୍ଡା-ଏତ ଓ କ୍ଷତ୍ରିୟମାନଙ୍କର ବଂଶୋପାଧି ବିଶେଷ ।
ଚମ୍ପତିସିଂହ—ଗ୍ରା. ବି. କ୍ଷତ୍ରିୟମାନଙ୍କର ବଂଶୋପାଧିବିଶେଷ ।
ଚମ୍ପା—ସ୍ତ୍ରୀ. ବି. ଗଙ୍ଗାତୀରସ୍ଥିତ ଅଙ୍ଗ-ରାଜ୍ୟର ରାଜଧାନୀ, ଅଙ୍ଗରାଜ କର୍ଣ୍ଣଙ୍କ ପତ୍ନୀ, ନଦୀବିଶେଷ,(ଆଧୁନିକ) ଭାଗଲ-ପୁର ନିକଟସ୍ଥ ଗୋଟିଏ ବିସ୍ତୃତପ୍ରଦେଶ, (ଗ୍ରା.ବି)ଚମ୍ପାଫୁଲ ଓ ବୃକ୍ଷ, ତଳକାନର ଏକପ୍ରକାର ସୁନାର ଅଳଂକାର, ଘଣ୍ଟି-ବାଣ. ଯେଉଁ ବାଣରୁ ଚମ୍ପାଫୁଲପରି ଅଗ୍ନି ସ୍ଫୁଲିଙ୍ଗ ଝଡ଼େ, (ପ୍ରା.ସମ୍ବ.ବି.) ଗୋବରଚଢ଼େଇ ।
ଚମ୍ପାଇ—ଗ୍ରା.ସ୍ତ୍ରୀ.ବି.ଗ୍ରାମଦେବୀବିଶେଷ ।
ଚମ୍ପାକଢ଼—ଗ୍ରା.ବି.ଚମ୍ପାଫୁଲର କଳିକା, ଗଳାର ହାରବିଶେଷ ।
ଚମ୍ପାକଦଳୀ—ଗ୍ରା.ବି. ଏକପ୍ରକାର ଶ୍ରେଷ୍ଠ ସୁଗନ୍ଧ ଗୋଲ କଦଳୀ ।
ଚମ୍ପାଗୋରୀ—ଗ୍ରା. ସ୍ତ୍ରୀ. ବି. ଯେଉଁ ସ୍ତ୍ରୀର ଶରୀରର ବର୍ଣ୍ଣ ଚମ୍ପାଫୁଲପରି ହଳଦିଆ, ଗୌରବର୍ଣ୍ଣା । [ ବିଶେଷ ।
ଚମ୍ପାଝଲକା—ଗ୍ରା.ବି.ସୁନାର ଅଳଂକାର
ଚମ୍ପାଧିପ—ପୁଂ.ବି.(୬ତତ୍)କର୍ଣ୍ଣ, ଚମ୍ପା-ନଗରର ରାଜା ।
ଚମ୍ପାନଗର—ଭାଗଲପୁରସହରର ପଶ୍ଚିମ-ଭାଗସ୍ଥ ଗୋଟିଏ ଗ୍ରାମ ।
ଚମ୍ପାନେର—ଗ୍ରା. ବି. ଗୁଜରାଟର ଅନ୍ତ-ର୍ଗତ ପଞ୍ଚମହଲ ଜିଲ୍ଲାର ଗୋଟିଏ ଗ୍ରାମ ଓ ଗିରି ଦୁର୍ଗ ।
ଚମ୍ପାରଣ—ଗ୍ରା. ବି. ବିହାର ପ୍ରଦେଶର ବାୟୁକୋଣରେ ଅବସ୍ଥିତ ପାଟନା

ବିଭାଗ ଅନ୍ତର୍ଗତ ଗୋଟିଏ ଜିଲ୍ଲା ।
ଚମ୍ପାଳୁ—ପୁଂ. ବି. ପଣସ ।
ଚମ୍ପାବତୀ—ସ୍ତ୍ରୀ.ବି.ଚମ୍ପାପୁରୀ, ଭାଗଲପୁର ଜିଲାର ଗୋଟିଏ ନଗରୀ ।
ଚମ୍ପାଷଷ୍ଠୀ—ଗ୍ରା. ବି. ଦକ୍ଷିଣଭାରତରେ ପ୍ରଚଳିତ ପର୍ବବିଶେଷ ।
ଚମ୍ପୂ—ସ୍ତ୍ରୀ. ବି. ( ଚମ୍ପ+କ.ଉ ) ଗଦ୍ୟ ଓ ପଦ୍ୟମୟ କାବ୍ୟବିଶେଷ ।
ଚମେଇନେଭଲ(ଲୀ)—ଗ୍ରା.ବି. ଝିଟିପିଟି ଶ୍ରେଣୀସ୍ଥ ଏକପ୍ରକାର ଚତୁଷ୍ପଦବିଶିଷ୍ଟ ସରୀସୃପ, ଏହାର ଲାଞ୍ଜ ନାଲି ଓ ଦେହ ଚିକଣ ପଣ୍ଡୁରା ଓ ଧଳା ଲମ୍ବିଗାର-ବିଶିଷ୍ଟ ।
ଚମ୍ପେଶ—ପୁଂ. ବି. କର୍ଣ୍ଣରାଜ ।
ଚମ୍ପୋପଲକ୍ଷିତ—ପୁଂ. ବି. ଅଙ୍ଗଦେଶ, ତଦ୍ଦେଶବାସୀ ।
ଚମ୍ପୋଳ—ଗ୍ରା. ବି. ଏକପ୍ରକାର ମାଛ ।
ଚମ୍ବଲ—ମଧ୍ୟଭାରତର ଗୋଟିଏ ନଦୀ ଓ ଯମୁନାର ପ୍ରଧାନ ଉପନଦୀ ।
ଚମ୍ରି—ସ୍ତ୍ରୀ. ବି. ଚମସସ୍ଥଭକ୍ଷ୍ୟ ଦ୍ରବ୍ୟ, ଚମସରେ ଅବସ୍ଥିତ ଅନ୍ନ ।
ଚମ୍ରୀଷ—ବିଂ.ଚମସରେ ଅବସ୍ଥିତ, ଯାହା ଚମସରେ ଥାଏ ।
ଚମ୍ବା—ଗ୍ରା. ବି. ପଞ୍ଜାବ ଗଭର୍ଣ୍ଣମେଣ୍ଟଙ୍କ ଅଧୀନ ପର୍ବତମୟ ଗୋଟିଏ କ୍ଷୁଦ୍ରରାଜ୍ୟ
ଚମ୍ଭୁ—ଗ୍ରା. ବି. ଛୋଟମୁହାଁ ଡାଲ ।
ଚମ୍ଭେଇବା—ଗ୍ରା, କ୍ରି. ଏକ ପଦାର୍ଥକୁ ଅନ୍ୟ ପଦାର୍ଥ ନିକଟରେ ପହଞ୍ଚାଇବା ।
ଚମ୍ଭେଲ—ଗ୍ରା.ବି.ପୁଷ୍ପବିଶେଷ, ଗୁମେଲ ।
ଚମ୍ଭା—ଗ୍ରା. ବିଂ. ଉଜ୍ଜ୍ୱଳ, ଚକଚକିଆ, ସତେଜ, ଚତୁର ।
ଚୟ—ପୁଂ.ବି.(ଚି+ଅ) ସମୂହ, ବପ୍ର, ପ୍ରାକାର, ପରିଖାରୁ ଉଦ୍ଧୃତ ମୃତ୍ତିକା ସ୍ତୂପ, ସମାହାର, ପୀଠ, ପୀଢ଼ା, ଅଗ୍ନ୍ୟାଦିର ଚୟନ ରୂପ ସଂସ୍କାରବିଶେଷ, ବାତପିତ୍ତ ଓ କଫର ଅବସ୍ଥାନବିଶେଷ ।
ଚୟକ—ତ୍ରିଂ. ବିଂ. (ଚି+ଅକ) ଚୟନ-କୁଶଳ, ସଂଗ୍ରାହକ ।
ଚୟନ—କ୍ଲୀ. ବି. (ଚି+ଭା.ଅନ) ଆହରଣ, ସଂଗ୍ରହ, ଫୁଲତୋଳା, ନିର୍ବାଚନ, ନିର୍ମାଣ, ଅଗ୍ନ୍ୟାଦିର ସଂସ୍କାରବିଶେଷ, ସଂସ୍କାରଶୋଧନ ଯୂପପ୍ରଭୃତି ।
ଚୟନିକା—ବି. ( ଚୟନ+କ+ଆ ) କ୍ଷୁଦ୍ର ସଂଗ୍ରହ ।
ଚୟନୀୟ—ବିଂ. (ଚି+ର୍ମ.ଅନୀୟ)ଯାହା ସଂଗ୍ରହ କରାଯାଇପାରେ, ତୋଳା ବା ସଂଗୃହୀତ ହେବାର ଯୋଗ୍ୟ ।
ଚୟିତ—ବିଂ. ସଂଗୃହୀତ, ସଞ୍ଚିତ, ଅର୍ଜିତ ।
ଚର୍—ଗ୍ରା.ବି.ଚର୍‌ଚର୍ ଦେଖ;(ପ୍ରା.ସମ୍ବ. ବି.)ଚଡ଼ୁ ।
ଚର୍‌ଚର୍—ଗ୍ରା. ଅବ୍ୟ (ଧ୍ୱନ୍ୟନୁକରଣ) ଲୁଗା ବା କାଗଜ ଚିରିବାର ବା ଛୁରୀରେ କାଟିବାର ଶବ୍ଦ, ସରୁମୁହାଁ ବାଟେ ଜଳସ୍ରୋତ (ପ୍ରସ୍ରାବ) ବାହାରି ତଳକୁ ପଡ଼ିବାର ଶବ୍ଦ, କାଗଜ ଉପରେ ପକ୍ଷୀ କଲମ ଦ୍ୱାରା ଚଞ୍ଚଳ ଲେଖିବାର ଶବ୍ଦ ।
ଚର୍‌ଚରି—ଗ୍ରା. ବି. ନଈବଢ଼ି ସମୟରେ କୂଳସ୍ଥ ସମତଳ ବାଲି ଉପରକୁ ଚଞ୍ଚଳ ଚଞ୍ଚଳ ମାଡ଼ିଯିବା ଫେନଯୁକ୍ତ ପାଣି, (ପ୍ରା.ସମ୍ବ.ବିଂ.) ଅଳ୍ପରୁ ପରିମାଣରେ ବୋଳା ଯାଇଥିବା (ତେଲାଦି) ।
ଚର୍‌ପା—ଗ୍ରା. ବି. ଖଜୁରିଗଛର ଫାଳିଡ଼ା ବା ତଳ ଡାଳର ମୂଳଭାଗ । [ଦେଖ]
ଚରର—ଅବ୍ୟ.(ଧ୍ୱନ୍ୟନୁକରଣ)ଚର୍‌ଚର୍
ଚରଲ—ପ୍ରା. (ସମ୍ବ)ବି. ବୃକ୍ଷବଲ୍କଲ ।
ଚର—ପୁଂ. ବି. (ଚର+କ.ଅ) ସ୍ୱପର-ରାଜ୍ୟର ଶୁଭାଶୁଭ ଖବର ଜଣାଇବାରେ ନିଯୁକ୍ତ ଦୂତ, ଗୁପ୍ତଦୂତ, ଚର, ନଦୀଗର୍ଭରେ ନଈବଢ଼ି ଦ୍ୱାରା ଆନୀତ ଓ ସମସଞ୍ଚିତ ଭୂଭାଗ, ପଟୁ, ବାଲିଚର କପର୍ଦ୍ଦକ, କଉଡ଼ି, ମେଷ, କର୍କଟ, ତୁଳା ଓ ମକରରାଶି, ସ୍ୱାତୀ, ପୁନର୍ବସୁ ଶ୍ରବଣା, ଧନିଷ୍ଠା ଓ ଶତଭିଷା ଏହି ଜ୍ୟୋତିଷ ନକ୍ଷତ୍ର,ମଙ୍ଗଳଗ୍ରହ, ମଙ୍ଗଳବାର, ଜୀବ, ପ୍ରାଣୀ, ଅକ୍ଷକ୍ରୀଡ଼ାବିଶେଷ, (ବିଂ) ଚଳ, ଅସ୍ଥିର,ଅସ୍ଥାବର (ପ୍ରାଣୀ), (ପୁଂ ଓ ସ୍ତ୍ରୀ.ବି.) ଖଞ୍ଜନପକ୍ଷୀ, ଦେଶାନ୍ତର,ଏହା ଦୁଇପ୍ରକାର ପୂର୍ବାପର ଓ ଓ ଦକ୍ଷିଣ ଉତ୍ତର ।
ଚରକ—ପୁଂ.ବି. (ଚର+କ.ଅକ)ଚର, ଦୂତ, ବୈଦ୍ୟଶାସ୍ତ୍ରପ୍ରଣେତା ମୁନି-ବିଶେଷ, ଚରକମୁନିପ୍ରଣୀତ ଖଣ୍ଡିଏ ବୈଦ୍ୟକଗ୍ରନ୍ଥ, ଚଟକ, ଘରଚଟିଆ ଚଢ଼େଇ,କ୍ଷେତ୍ରପାପଡ଼ା, ଘରପୋଡ଼ିଆ ଗୁଳ୍ମ, ଚନ୍ଦକର, ଭିକ୍ଷୁକ, ବାଟୋଇ, ଜଣେ ପ୍ରାଚୀନ ବୈୟାକରଣ ।
ଚରକସଂହିତା—ସ୍ତ୍ରୀ. ବି. ଚରକ ମୁନି-ପ୍ରଣୀତ ବୈଦ୍ୟକ ଗ୍ରନ୍ଥବିଶେଷ ।
ଚରକା—ଗ୍ରା. ବି. (ଚକ୍ରଶବ୍ଦଜ) ସୂତା-କାଟିବାର କଳବିଶେଷ, ଚକ୍ରାକାର ଅଗ୍ନିକ୍ରୀଡ଼ା ଦ୍ରବ୍ୟ, ଚଡ଼କଯନ୍ତ୍ର, ପଣା ସଂକ୍ରାନ୍ତିରେ ପାଟୁଆମାନେ ଯେଉଁ ଯନ୍ତ୍ରରେ ଓହଳି ଘୂରନ୍ତି, ଅରଟି, ଡାକୁଡ଼, ନଟେଇ, ଡଙ୍ଗା ବା ବୋଝ ବା ଜାହାଜର ଦଉଡ଼ି ଗୁଡ଼ାଇବାର ଖିଞ୍ଚି, କୂଅରୁ ପାଣି ଉଠାଇବା ଯନ୍ତ୍ର, କପି କଳଆଦିରେ ଲାଗିବା ଶଗଡ଼,(ବି,) ବତୀ, ପ୍ରଦୀପ ।
ଚରକାଳ—ପୁଂ.ବି. କାଳବିଶେଷ, ଦିନ-ମାନ ସ୍ଥିରକରିବାରେ ପ୍ରୟୋଜନ ହୁଏ ।
ଚରକି—ଗ୍ରା.ବି. ଚରକା ଦେଖ;ଚକ୍ର, ଚକ୍ରପରି ଘୂରିବା ଅଙ୍ଗବିଶିଷ୍ଟ କୌଣସି ଯନ୍ତ୍ର, ଯାହା ସମାନ ଭାବରେ ଚତୁର୍ଦ୍ଦିଗରେ ଘୁରେ, ଏକପ୍ରକାର ବାଣ ।
ଚରକିବା—ଗ୍ରା. କ୍ରି. ଚିରକିବା ଦେଖ ।
ଚରଖା—ଗ୍ରା.ବି. ଚରକା ଦେଖ; କପା-ଖାଇ, (ପ୍ରା.ସମ୍ବ.ବି.) ଆଖୁଖାଇ ।
ଚରଖାକାଟିବା—ଗ୍ରା. କ୍ରି. ଚରଖା ଯନ୍ତ୍ର-ଦ୍ୱାରା ସୂତା ପ୍ରସ୍ତୁତ କରିବା ।
ଚରଖିଦେବା—ପ୍ରା. ( ଯାଜ ) କ୍ରି. ପାରି ଘୂରିଘୂରି ଉଡ଼ିବା ।
ଚରଗୃହ—କ୍ଲୀ.ବି.ମେଷ, କର୍କଟ, ତୁଳା ଓ ମକର ରାଶି ।
ଚରଗ୍ର—ଗ୍ରା. କ୍ରି. (ସ-ଚର୍ଯ୍ୟା) ସମାଗତ ଅତିଥି ବା ବନ୍ଧୁବାନ୍ଧବଙ୍କୁ ସମ୍ମାନ ବା ମର୍ଯ୍ୟାଦା ପୂର୍ବକ ଭୋଜନାଦି ଦେବା,

ଆତିଥେୟତା ।
ଚରଗୃହକରିବା—ଗ୍ରା. କ୍ରି. ଅତିଥିମାନଙ୍କୁ ଭୋଜନାଦି ଦ୍ୱାରା ମର୍ଯ୍ୟାଦା ପୂର୍ବକ ସେବା କରିବା ।
ଚରଗୃହେଦେଖିଶିଆ—ଗ୍ରା. ବି. ରାଜଦ୍ୱାରକୁ ଆଗତ ଅତିଥିମାନଙ୍କ ଖବର ବୁଝିବା ନିମନ୍ତେ ନିଯୁକ୍ତ ରାଜଭୃତ୍ୟବିଶେଷ ।
ଚରେଇବା—ଗ୍ରା. କ୍ରି. ଚରିବା କରିବା ଦେଖ । [ ଚରଣୀ ।
ଚରଟ—ପୁଂ ଓ ସ୍ତ୍ରୀ.ବି. ଖଞ୍ଜନପକ୍ଷୀ,(ସ୍ତ୍ରୀ)
ଚରଡ଼—ଗ୍ରା.ବି.(ସଂ-ଶରାଳ) ଏକଜାତୀୟ ଜଳେଚର ପକ୍ଷୀ, ଏମାନେ ଜଳା ଭୂମିରେ ଚରି ଗେଣ୍ଡାଆଦି ଖାଆନ୍ତି, ବଡ଼ିଆ କାଙ୍କ ବା ଗେଣ୍ଡାଳିଆ ଜାତୀୟ. ଏମାନେ ବିଷଧର ସାପକୁ ମଧ୍ୟ ଖାଇ-ଯାଆନ୍ତି ।
ଚରଢ଼—ପ୍ରା. ବସ୍ତର. ବି. ମଧ୍ୟପ୍ରଦେଶର ବସ୍ତର ବିଶାଖାପାଟଣା ଓ ଜୟପୁର ଅଞ୍ଚଳର ପାହାଡ଼ର ଜଙ୍ଗଲ ଜାତି-ବିଶେଷ ।
ଚରଣ—କ୍ଲୀ. ପୁଂ. ବି. ( ଚର+ଅନ ) ଦେହାବୟବବିଶେଷ, ପାଦ, ବେଦର ଏକ ଶାଖା, କାରଣ, ଶ୍ଲୋକର ଚତୁର୍ଥ-ଭାଗ, ଏକଦେଶ, ବେଦର କଠ, କୌଥୁମ, ବହ୍ୱୃଚ୍ଚ ଶାଖା ଉପନିଷଦ୍, ଅନୁଷ୍ଠାନ, ଗମନ, ଭକ୍ଷଣ, ଆଚାର, ଗୃହେଶ୍ଚ ନ, ଦାକ୍ଷିଣାତ୍ୟର ଜଣେ ରାଜା, ( ଲ.ଅର୍ଥ ) କୌଣସି ବସ୍ତୁର ନିମ୍ନଭାଗ, କୃତାଦିପାଳକ, ଗ୍ରା.ପୁଂ.ବି. (ନାମରେ ଲାଗେ) ଯଥା—କାଳୀଚରଣ ଇତ୍ୟାଦି ।
ଚରଣକମଳ—ବି. ( କ.ଧା ) ପାଦପଦ୍ମ, ପୂଜାର୍ହ ପାଦଦ୍ୱୟ, ପୂଜ୍ୟବ୍ୟକ୍ତିଙ୍କ ଗୋଡ଼ତଳ, ଯେଉଁ ଗୁରୁସ୍ଥାନୀୟ ବ୍ୟକ୍ତି ବା ଦେବତାଙ୍କର ଚରଣକମଳ ବୋଲି କୁହାଯାଏ ସେ ସ୍ୱୟଂ ।
ଚରଣଗତ—ପୁଂ.ବି. (ଷତତ୍)ଗୋଡ଼-ତଳେ ପଡ଼ିଥିବା ।
ଚରଣଚିତ୍ର—ବି.(ବ.ବ୍ରୀ) ଚିତ୍ରକାବ୍ୟ ବା ଚିତ୍ରରଚନାବିଶେଷ ।
ଚରଣଗ୍ରନ୍ଥି—ପୁଂ. ବି. (ଷତତ୍) ଗୁଳ୍ଫ, ଗୋଇଠି, ବଳାଗଣ୍ଠି ।
ଚରଣଗ୍ରହଣ—କ୍ଲୀ. ବି. (ଷତତ୍) ପାଦ-ଗ୍ରହଣ, ଗୋଡ଼ଘଷା, ପାଦସେବା ।
ଚରଣଚିହ୍ନ—ବି. (ଷତତ୍) ଭୂମିଆଦିରେ ମୁଦ୍ରିତ ହୋଇ ରହିଯିବା ପାଦଚିହ୍ନ, ପଥରଆଦିରେ ଅଙ୍କିତ ବିଷ୍ଣୁ ଓ ମହାତ୍ମା-ମାନଙ୍କର ପାଦଚିହ୍ନ ( ଯାହାକୁ ଭକ୍ତ-ମାନେ ପୂଜାକରନ୍ତି ) ।
ଚରଣଚୁଟିଆ—ଗ୍ରା.ପୁଂ.ବି.ଯେଉଁ ବ୍ୟକ୍ତି ସମୟ ପଡ଼ିଲେ ଗୋଡ଼ ଧରି ଖୋସା-ମଦ କରେ ଓ ସମୟ ପଡ଼ିଲେ ପୁଣି ଚୁଟି ଧରି ମାରେ ।
ଚରଣଟୀକା—ବି. ପଦଟୀକା, ଲିଖିତ ବିଷୟ ବୁଝାଇବା ପାଇଁ ପୃଷ୍ଠାର ତଳ-ଭାଗରେ ଲିପିବଦ୍ଧ ହୋଇଥିବା ଟିପ୍ପଣୀ
ଚରଣତରୀ--ବି.(କ.ଧା)ପଦରୂପ ନୌକା ।
ଚରଣତଳ—ବି. (ଷତତ୍) ଗୋଡ଼ପାଖ, ପାଦନିକଟ, ନିକଟ, ପାଦତଳ ଭୂମି, (ସମ୍ବୋଧିତ ବ୍ୟକ୍ତିଙ୍କ)ହୃଦୟ, ଆଶ୍ରୟ, ତଳପା ।
ଚରଣତଳିଆ—ଗ୍ରା.ପୁଂ. ବିଂ. ପାଦତଳେ ରହିବାର ଉପଯୁକ୍ତ, ଅତିନ୍ୟୂନ, ପାଦ-ତଳିଆ, ଚରଣାଶ୍ରିତ (ବ୍ୟକ୍ତି) ।
ଚରଣତଳେପଡ଼ିବା—ଗ୍ରା. କ୍ରି. ଗୋଡ଼-ତଳେ ପଡ଼ିବା, ଅନୁଗ୍ରହ, ଦୟା, କ୍ଷମା, ଆଶୀର୍ବାଦ ପାଇବା ଉଦ୍ଦେଶ୍ୟରେ ମାନ୍ୟ ବ୍ୟକ୍ତିର ଗୋଡ଼ତଳେ ପ୍ରଣି-ପାତ କରିବା ।
ଚରଣଦାସ—ପୁଂ.ବି. ଷତତ୍; ପ୍ରଭୁଙ୍କର ଚରଣ ସେବା କରିବା ଭୃତ୍ୟ, ପ୍ରଭୁଙ୍କ ଅତ୍ୟନ୍ତ ଅନୁଗତ ଭୃତ୍ୟ, କିଙ୍କର, ଅଜ୍ଞାକାରୀ ଶିଷ୍ୟ, ଚରଣଦାସୀ ନାମକ ବୈଷ୍ଣବ ସମ୍ପ୍ରଦାୟର ସ୍ଥାପନକର୍ତ୍ତା ।
ଚରଣଦାସୀ—ସ୍ତ୍ରୀ. ବି. (ଷତତ୍,ନିଜ ସ୍ତ୍ରୀ, ଅତ୍ୟନ୍ତ ଅନୁଗତା ସେବିକା, (ଗ୍ରା.ବି) ଚରଣଦାସଙ୍କ ପ୍ରବର୍ତ୍ତିତ ବୈଷ୍ଣବ ସମ୍ପ୍ରଦାୟବିଶେଷ ।
ଚରଣଦେଶ—ଗ୍ରା.ବି.ଚରଣତଳ, ପାଦ-ଦେଶ, ଗୋଡ଼ତଳ, ପୂଜ୍ୟ ବ୍ୟକ୍ତିଙ୍କ ଚରଣ ଯେଉଁ ସ୍ଥାନରେ ପଡ଼ିଥାଏ ।
ଚରଣଧୂଳି—ବି.(ଷତତ୍)ପ୍ରଭୁ ବା ଗୁରୁ-ଜନଙ୍କ ଚରଣରେ ଲାଗିଥିବା ଧୂଳି, ଗୁରୁଜନଙ୍କ ପାଦ ।
ଚରଣନ୍ୟାସ—ପୁଂ. ବି. ପାଦନ୍ୟାସ, ପାଦକ୍ଷେପ, ଚରଣଚିହ୍ନ । [ ଦେଖ ।
ଚରଣପଦ୍ମ—ବି. (କ.ଧା) ଚରଣକମଳ
ଚରଣପର୍ବ—କ୍ଲୀ. ବି. ( ଷତତ୍ ) ଗୁଳ୍ଫ, ପାଦଗଣ୍ଠି, ଗୋଇଠି ।
ଚରଣପାଦୁକା—ବି. ( ଷତତ୍ ) କଠଉ, ଖଡ଼ମ, ଜୋତା, ଚରଚେହ୍ନି ।
ଚରଣପାତ—ପୁଂ.ବି. ପାଦନ୍ୟାସ, ପଦ ସ୍ଖଳନ ।
ଚରଣପାହାଡ଼ୀ—ଗ୍ରା. ବି. ବୃନ୍ଦାବନର ଅନ୍ତର୍ଗତ କାମ୍ୟବନର ସୀମାମଧ୍ୟରେ ଲୁକାଲୁକି କୁଣ୍ଡର ପାର୍ଶ୍ୱସ୍ଥ ଗୋଟିଏ ପାହାଡ଼ ।
ଚରଣପୀଠ—(ବି. କ.ଧା) ଚରଣପାଦୁକା, ପାମ୍‌ଦାନ୍ ।
ଚରଣପୂଜା—ସ୍ତ୍ରୀ.ବି. (ଷତତ୍)ପାଦବନ୍ଦନା, ପାଦଦ୍ୱୟର ଆରାଧନା, ପାଦସେବା ।
ଚରଣପ୍ରସାର—ବି. ( ଷତତ୍ ) ଗୋଡ଼ ଲମ୍ବାଇବା ।
ଚରଣପ୍ରାନ୍ତ—ପୁଂ. ବି. (ଷତତ୍) ପାଦର ଶେଷଭାଗ, ପାଦତଳ । [ ପୂଜା ।
ଚରଣବନ୍ଦନା—ସ୍ତ୍ରୀ. ବି. (ଷତତ୍) ପାଦ-
ଚରଣଭୂଷଣ—କ୍ଲୀ. ବି. (ଷତତ୍) ପଦା-ଭରଣ, ପାଦର ଗହଣା ।
ଚରଣଯୋଧୀ—ବି. (ଚର+ଯୁଦ୍ଧ+କ. ଇନ୍) କୁକୁଡ଼ା । [ ଧୂଳି ।
ଚରଣ ରଜଃ—କ୍ଲୀ. ବି. (ଷତତ୍) ପଦ-
ଚରଣରେଣୁ—ବି. (ଷତତ୍) ଚରଣଧୂଳି ।
ଚରଣବ୍ୟୂହ—ପୁଂ. ବି. ବେଦର ଶାଖା-ବିଭାଗର ପରିଚୟସୂଚକ ଗୋଟିଏ ଗ୍ରନ୍ଥ ।
ଚରଣଶରଣ—ପୁଂ. ବିଂ. ( ବ. ବ୍ରୀ ) ଚରଣାଶ୍ରିତ ଦେଖ ।
ଚରଣଶୁଶ୍ରୂଷା—ସ୍ତ୍ରୀ. ବି. ପଦସେବା ।

ଚରଣସ--ବି°.ଚରଣ ନକ୍ଷତ୍ର ଦେଖାଦ।

ଚରଣସ୍ପିରୋଜ—ବି. (କ. ଧା) ଚରଣକମଳ ଦେଖ।

ଚରଣସେବକ—ପୁଂ. ବି. (୬ତତ୍ପୁ) ଯେ ଚରଣ ସେବା କରେ, ସ୍ତାବକ, ତୋଷାମଦକାରୀ, ( ପୁଂ. ବି ) କିଙ୍କର, ଭୃତ୍ୟ, ଗୃକର, ଚାକର, ଅନୁଗତ ଜନ, (ସ୍ତ୍ରୀ) ଚରଣସେବିକା।

ଚରଣସେବା—ସ୍ତ୍ରୀ. ବି. (୬ତତ୍ପୁ) ପାଦସେବା, ଗୋଡ଼ ଘଷିବା, ଗୁରୁଜନଙ୍କ ପ୍ରତି ଶିଷ୍ୟମାନଙ୍କର ଆନୁଗତ୍ୟ।

ଚରଣା—ସ୍ତ୍ରୀ.ବି. ଯୋନିରୋଗବିଶେଷ।

ଚରଣାକ୍ଷ--ପୁଂ.ବି.ଅକ୍ଷପାଦ, ଗୌତମ।

ଚରଣାଙ୍କିତ—ବି°. (୩ତତ୍ପୁ) ପାଦଗ୍ରୁପ, (୭ତତ୍ପୁ) ପଦରେ ଚିହ୍ନିତ।

ଚରଣାଦ୍ରି—ବି. ଚନାର ଓ କାଶୀ ଏବଂ ମିର୍ଜାପୁର ମଧ୍ୟରେ ଥିବା ସ୍ଥାନ।

ଚରଣାନୁଗ—ପୁଂ. ବି°. ( ୬ତତ୍ପୁ ) ଶରଣାଗତ, ପଶ୍ଚାଦ୍ଗାମୀ, ଚରଣାନୁଗତ ଦେଖ।

ଚରଣାନୁଗତ—ପୁଂ. ବି°. (ଚରଣ+ଅନୁ+ଗମ୍+କ.ତ) ଅନ୍ୟର ପଦାଙ୍କ ଅନୁସରଣକାରୀ ବା ପଶ୍ଚାଦ୍ଗାମୀ, ଅତ୍ୟନ୍ତ ବିନୀତ ଓ ଆଜ୍ଞାପାଳକ, ପ୍ରଭୁଙ୍କର ଚରଣ ସେବାକାରୀ,ଶରଣାଗତ।

ଚରଣାଭରଣ—କ୍ଲୀ.ବି. (୬ତତ୍ପୁ) ପାଦର ଅଳଂକାରବିଶେଷ, ପାଦଭୂଷଣ।

ଚରଣାମ୍ବୁଜ—ବି.(କ.ଧା ) ଚରଣକମଳ ଦେଖ।

ଚରଣାମୃତ—କ୍ଲୀ. ବି. (୬ତତ୍ପୁ) ପାଦୋଦକ, ଗୁରୁଜନ ବା ଦେବ ବିଗ୍ରହର ପାଦଧୌତ ଜଳ।

ଚରଣାୟୁଧ—ପୁଂ. ସ୍ତ୍ରୀ. ବି. କୁକ୍କୁଟ, କୁକୁଡ଼ା, (ସ୍ତ୍ରୀ)କୁକ୍କୁଟୀ,( ବି°) ଯାହାର ଗୋଡ଼ ଅସ୍ତ୍ର ରୂପେ ବ୍ୟବହୃତ।

ଚରଣାରବିନ୍ଦ—କ୍ଲୀ. ବି.(କ.ଧା) ଚରଣକମଳ ଦେଖ।

ଚରଣାବରଣ—କ୍ଲୀ. ବି. ( ୬ତତ୍ପୁ ) ପାଦାଚ୍ଛାଦନ,ଯାହା ଦ୍ୱାରା ପାଦ ଆଚ୍ଛାଦନ କରାଯାଏ, ମୋଜା।

ଚରଣାଶ୍ରିତ—ପୁଂ. ବି°. (୩ତତ୍ପୁ) ଗୁରୁଜନ ଦେବତା ପ୍ରଭୃତି ଧନୀ ବା ବଡ଼ଲୋକଙ୍କ ଆଶ୍ରୟରେ ଚଳୁଥିବା (ବ୍ୟକ୍ତି), ଚରଣାନୁଗତ।

ଚରଣାସ୍କନ୍ଦନ—ବି. (୬ତତ୍ପୁ) ଗୋଡ଼ରେ ମଳିବା, ପାଦଦଳନ।

ଚରଣି—ପୁଂ. ବି. (ଚର+କ. ଅନି) ମନୁଷ୍ୟ, ( ଗ୍ରା. ବି ) ଘାସ, ଗୋରୁ ଘୋଡ଼ାଙ୍କ ଖାଦ୍ୟ, ଗୋଚାରଣ, ଗୋରୁଚରାଇବା, ଗୋଚର ଭୂମି, ଗୋରୁଚରିବାର କର।

ଚରଣିଲ—ବି°. ପାଦ ଦ୍ୱାରା ନକ୍ଷତ୍ର।

ଚରଣୋଦକ—ବି.(୬ତତ୍ପୁ) ଚରଣାମୃତ ଦେଖ।

ଚରଣୋପଧାନ—ବି. (୬ତତ୍ପୁ) ଯେଉଁ ମାଣ୍ଡି ବା ଆସନ ଉପରେ ଗୋଡ଼ ରଖାଯାଏ।

ଚରଣୋପାନ୍ତ—ପୁଂ. ବି. ଚରଣସମୀପ, ପାଦନିକଟ।

ଚରଣୀ—ସ୍ତ୍ରୀ. ବି. ସୁବାସିନୀ।

ଚରଣ୍ୟ—ବି°.ଚରଣଶୀଳ,ଗମନଶୀଳ।

ଚରତା—ସ୍ତ୍ରୀ. ବି. (ଚର+ତା) ଚରର ଧର୍ମ, ଚରତ୍ୱ, (ଗ୍ରା.ବି.) ବୃଦ୍ଧି।

ଚରତି—ବି. ଦୀର୍ଘଜୀବୀ ଶାକତରୁବିଶେଷ।

ଚରଥ—ବି°. (ଚର+ଅଥ) ଜଙ୍ଗମ, ଗମନ କରିବା ଯାହାର ସ୍ୱଭାବ,ଚରଣଶୀଳ, ( କ୍ଲୀ. ବି. ) ବିଚରଣ, ଭ୍ରମଣ।

ଚରଦେବ—ପୁଂ. ବି. ରାଜତରଙ୍ଗିଣୀ ବର୍ଣ୍ଣିତ ଜଣେ ରାଜା।

ଚରପ—ଯା. ବି. ବାସ୍ଥର ଚତୁର୍ଦିଗସ୍ଥ ନିମ୍ନ ଭୂମି।

ଚରବସ୍ତ—ଗ୍ରା.ବି. ନଈବଢ଼ି ଦ୍ୱାରା ନଦୀଗର୍ଭରେ ପଟୁ ପଡ଼ି ଯେଉଁ କୃଷି ଉପଯୋଗୀ ଜମି ଜାତ ହୋଇଥାଏ, ପଟୁଜମି।

ଚରଭ—କ୍ଲୀ. ବି. ଚରରାଶି, ଚରଗୃହ।

ଚରଭବନ—କ୍ଲୀ. ବି. ଚରଗୃହ।

ଚରମ—ବି°. (ଚର+କ.ଅମ) ଅନ୍ତିମ, ଶେଷ,ପଛଆଡ଼ର, ଶେଷଜାତ, ଷୁଦ୍ରତମ, ସର୍ବୋଚ୍ଚ, ପରମ, ଚୂଡ଼ାନ୍ତ,ଅନ୍ତ୍ୟ, (ବି) ଶେଷଭାଗ, ପଶ୍ଚିମ, ପଛଆଡ଼, ପିଠି, ପୃଷ୍ଠ, (ଗ୍ରା. ବି. ପଦ୍ୟ)ଚର୍ମ।

ଚରମକାଳ—ପୁଂ. ବି. (କ. ଧା) ଶେଷସମୟ, ମଲାବେଳ, ବୃଦ୍ଧାବସ୍ଥା, ମୁମୂର୍ଷୁ ଅବସ୍ଥା।

ଚରମକୋଟି—ବି.ପରାକାଷ୍ଠା, ଶେଷସୀମା।

ଚରମକ୍ରିୟା—ବି. (କ.ଧା) ମୃତବ୍ୟକ୍ତିର ଶୁଦ୍ଧି କ୍ରିୟା।

ଚରମକ୍ଷ୍ମାଭୃତ୍—ପୁଂ. ବି. (କ.ଧା) ଅସ୍ତାଚଳ,ପଶ୍ଚିମାଚଳ।

ଚରମଗିରି—ବି. (କ. ଧା) ଅସ୍ତାଚଳ।

ଚରମଦଶା—ବି. (କ. ଧା) ଚରମକାଳ ଦେଖ,ମୃତ୍ୟୁ। [ଆଡ଼।

ଚରମଦେଶ—ଗ୍ରା. ବି. ପିଠିଆଡ଼, ପଛ

ଚରମପତ୍ର,ଚରମଲେଖ୍ୟ—ବି. (କ. ଧା) ଉଇଲ ପତ୍ର, ବିଷୟର ବନ୍ଦୋବସ୍ତ ଜ୍ଞାପକ ଅନ୍ତିମଲେଖ୍ୟ।

ଚରମପନ୍ଥା—ବି. ରାଜା ବା ଶାସକଙ୍କୁ ବହିଷ୍କୃତ କରି ସ୍ୱାୟତ୍ତଶାସନ ଲାଭ କରିବା ରୂପ ରାଜନୀତିକ ଉପାୟ।

ଚରମପନ୍ଥୀ—ବି. (ଆଧୁନିକ ପ୍ରୟୋଗ— ଚରମପନ୍ଥା+ଇନ୍ ) ରାଜନୀତିରେ ଯେଉଁମାନେ ଚରମପନ୍ଥା ଅବଲମ୍ବନ କରନ୍ତି ଅର୍ଥାତ୍ ମାରପିଟ ଆଦି କ୍ରିୟା ଦ୍ୱାରା ସରକାରଙ୍କୁ ଧ୍ୱଂସ କରି ବା ତଡ଼ି ସ୍ୱାୟତ୍ତଶାସନ ଲାଭ କରିବାର ଉଦ୍ଦେଶ କରନ୍ତି।

ଚରମଫଳ—ବି. (୬ତତ୍ପୁ) ଶେଷଫଳ।

ଚରମ ବୟସ୍—ବି°. (ଚରମ+ବୟସ୍) ବି.ଗ୍ରା) ଅତି ବୁଢ଼ା, ଯେ ମରିବାକୁ ବସିଲାଣି।

ଚରମଭାଗ—ବି. ଶେଷ ଅଂଶ, (ଗ୍ରା. ବି) ପିଠିପଟ, ପଛଆଡ଼।

ଚରମଶୈର୍ଷିକ—ବି°. ପଶ୍ଚିମଶୀର୍ଷ,ଯାହାର ମୁଣ୍ଡ ପଶ୍ଚିମ ଦିଗରେ ଥାଏ।

ଚରମାଚଳ—ବି. (କ. ଧା) ଅସ୍ତାଚଳ,

ଅସ୍ତଗିର ।
ଚରମାଜା—ସ୍ତ୍ରୀ. ବ. ଅତି କ୍ଷୁଦ୍ର ଅଙ୍କ, ଅତି ଶ୍ରେଷ୍ଠ ଖେଳ ।
ଚରମାଦ୍ରି—ବ. (କ. ଧା) ଅସ୍ତଗିର ।
ଚରମାବସ୍ଥା—ବ. (କ.ଧ.) ଚରମକାଳ ଦେଖ ।
ଚରମୋତ୍କର୍ଷ—ପୁଂ.ବ.(କ.ଧା) ଉନ୍ନତିର ପରାକାଷ୍ଠା ଯେତେଦୂର ହୋଇପାରେ ତେତେ ଦୂର ଉନ୍ନତ ।
ଚରଷା—ଯା. ବଂ. ଧାତୁ ବିଶେଷ, ବସା ।
ଚରଷାଦାର—ଯା. ବଂ. ଯାହାର ଚରଷା ଅଛି ।
ଚରବ୍ୟ—ବଂ. (ଚରୁ+ଯ) ଚରୁରୂପେ ବ୍ୟବହୃତ ହେବାର ଉପଯୁକ୍ତ (ତଣ୍ଡୁଳାଦି) ।
ଚରସ୍—ଗ୍ରା. ବ. ଗଞ୍ଜେଇ ଗଛର ଓ ତାହାର ଫୁଲର ଅଠା, ମାଦକବିଶେଷ ।
ଚରସୀ—ଗ୍ରା. ବଂ. ଯେ ଚରସ ଖାଏ, ଚରସ ଧୂମପାନରେ ଅତ୍ୟାସକ୍ତ.ଚରସ୍ଖୋର୍ ।
ଚରା—ଗ୍ରା. ବ. ପଶୁ ପକ୍ଷୀ ପ୍ରଭୃତିଙ୍କର ପଡ଼ିଆଆଦିରେ ବୁଲି ଖାଦ୍ୟ ଖାଇବା, ଗୋରୁମାନଙ୍କର ଖାଇବା ଘାସଆଦି, ମାଛମାନେ ବନ୍ଶୀ ପକାଉଥିବା ସ୍ଥାନକୁ ଆକୃଷ୍ଟହୋଇ ଆସିବାନିମନ୍ତେ ଜଳାଶୟର ନିର୍ଦ୍ଦିଷ୍ଟ ଅଂଶରେ ବୁଣାଯିବା ଖାଦ୍ୟ, ଚରାଭୂଇଁ, ଗୋଚରଣସ୍ଥାନ, ନଦୀର ପଠା, ପଟ୍ଟ, ଗବାଦି ପଶୁଙ୍କର ଗିଳିତବସ୍ତୁର ଉଦ୍ଗୀରଣ, (ଗ୍ରା. ବଂ) ଚରୁଥିବା, ଗୋରୁ ଚରିବାର ଯୋଗ୍ୟ, ଯେ ଚରାଏ, ରଖୁଆଳ, (ପ୍ରା. ବ.ସମ୍ଭ) ଖାଦ୍ୟ, ଗ୍ରାସାଚ୍ଛାଦନ ।
ଚରାଇବା—ଗ୍ରା. କ୍ରି. ଗୋରୁପ୍ରଭୃତି ପଶୁଙ୍କୁ ଚରିବାବେଳେ ଜଗିବା, ଗୋ ପ୍ରଭୃତିଙ୍କର ଚରିବାର ସୁବିଧା ଆୟୋଜିତ କରାଇବା,ଚଲାଇବା,ଚରିବାର ଣିଜନ୍ତରୂପ, (ପ୍ରା. ସମ୍ଭ. କ୍ରି) ବଳିଦିଆଯିବା ବୋଦାକୁ ହାଣିବା ପୂର୍ବରୁ ଦେବୀଙ୍କ ପ୍ରସାଦ ଛୁଆଇବା ।
ଚରାଚର—ବଂ. ସ୍ଥାବର, ଜଙ୍ଗମ, ଇଷ୍ଟ, ଚଳନ୍ତ ଓ ଅଚଳନ୍ତ (ବସ୍ତୁ), ଗ୍ରା.ବ. ମନୁଷ୍ୟସମାଜ, କନ୍ଦଡ଼, ବସ୍ତୁ, ସ୍ଥାବର ଓ ଜଙ୍ଗମାତ୍ମକ ନିଖିଳ ବ୍ରହ୍ମାଣ୍ଡ,ଜଗତ୍, ବିଶ୍ୱ ।
ଚରାଚରଗୁରୁ—ପୁଂ. ବ. (୬ତତ୍) ପରମେଶ୍ୱର, ସ୍ଥାବର ଓ ଜଙ୍ଗମାତ୍ମକ ଜଗତ୍ର ସୃଷ୍ଟିକର୍ତ୍ତା, ବ୍ରହ୍ମା, ବିଷ୍ଣୁ, ଶିବ ।
ଚରାବାତ—ଗ୍ରା. ବ. ଯେଉଁ ବାତ ବା ବାୟୁ ଶରୀରର ଅଭ୍ୟନ୍ତରରେ ଚରି ବୁଲୁଥାଏ ଅର୍ଥାତ୍ ବର୍ତ୍ତମାନ ଏକସ୍ଥାନରେ ବ୍ୟଥା ହୋଇ ପରକ୍ଷଣରେ ଅନ୍ୟ ସ୍ଥାନରେ ମାରେ ।
ଚରାବୁଲା—ଗ୍ରା.ବ. ଚରାବୁଲା, ଚୁଲବୁଲ, ଚରିବା ଓ ବୁଲିବାଆଦି ପ୍ରକ୍ରିୟା ।
ଚରାଭୂଇଁ—ଗ୍ରା.ବ.ଚରିବାଭୂମି, ଯେଉଁଠାକୁ କୌଣସି ପଶୁ ବା ପଶୁଦଳ ବାରମ୍ବାର ଚରିବାକୁ ଆସନ୍ତି, (ଲ.ଅର୍ଥ) କୌଣସି ବ୍ୟକ୍ତିର ସର୍ବଦା ଯାତାୟାତ କରିବା ସ୍ଥାନ ।
ଚରି—ପୁଂ. ବ. (ଚର+ଇ) ପଶୁ ।
ଚରିଆ—ପ୍ରା.(ସମ୍ଭ)ବ.କାଣଗୁଳ୍ମବିଶେଷ, ଯେଉଁ ମନୁଷ୍ୟ କୃଷି କ୍ଷେତ୍ରରେ ବଳରୂପେ ଅର୍ପିତ ହୁଏ, ମେରିଆ ।
ଚରିତ—ବ.(ଚର+ଭା.ତ) ପୁରାଣାଦିରେ ବର୍ଣ୍ଣିତ ବିଷୟ ବା ବୃତ୍ତାନ୍ତ, ଐତିହାସିକ ଘଟଣା, ଚରିତ୍ର, ଆଚରଣ, ବିବରଣ, ଅନୁଷ୍ଠାନ, ପ୍ରତିଷ୍ଠାନ, ପ୍ରଥା, ଭ୍ରମଣ, ସଞ୍ଚାର, ଗତି, କାର୍ଯ୍ୟ, ବ୍ୟବହାର, ଚେଷ୍ଟା, ଜୀବନଚରିତ, କାର୍ଯ୍ୟବିଧି, ଢଙ୍ଗ, ଗୃହଚଳନ, (ବଂ—ଚର+ର୍ମ. ତ)ଅନୁଷ୍ଠିତ, କୃତ, ସେବିତ, ସମ୍ପନ୍ନ, ଭକ୍ଷିତ, ଆଶ୍ରିତ, ଅଭ୍ୟସ୍ତ, (ଗ୍ରା.ବ) କଳ ବିଦ୍ୟା ।
ଚରିତପୂର୍ବ—ବଂ.ପୂର୍ବେ କରାଯାଇଥିବା ।
ଚରିତମୟ—ବଂ. (ଚରିତ+ମୟ) ଚରିତାତ୍ମକ ।
ଚରିତବ୍ୟ—ବଂ. (ଚର+ର୍ମ.ତବ୍ୟ) ଯାହା କରାଯିବା ଉଚିତ, ଅନୁଷ୍ଠେୟ, କର୍ତ୍ତବ୍ୟ, ଚରିତାର୍ଥଯୋଗ୍ୟ ।
ଚରିତବ୍ରତ—ବଂ. (ବ.ବ୍ରୀ) କୃତବ୍ରତ, ଯେ ବ୍ରତାଚରଣ କରିଅଛି,(ସ୍ତ୍ରୀ)ଚରିତବ୍ରତା ।
ଚରିତାଖ୍ୟାନ—କ୍ଳୀ. ବ. (୬ତତ୍)ଚରିତ କୀର୍ତ୍ତନ, ଚରିତବର୍ଣ୍ଣନ ।
ଚରିତାଖ୍ୟାୟକ—ପୁଂ. ବଂ. (୬ତତ୍) ଲେଖକ, ଯେଉଁ ଲୋକ କାହାର ଜୀବନୀ ଲେଖିଅଛି ।
ଚରିତାର୍ଥ—ବଂ.(ବ.ବ୍ରୀ) କୃତାର୍ଥ, କୃତକାର୍ଯ୍ୟ, ଚରବାଧିତ, ଆପ୍ୟାୟିତ, ସନ୍ତୁଷ୍ଟ,ଯାହାର କାର୍ଯ୍ୟ ବା ପ୍ରୟୋଜନ ସିଦ୍ଧହୋଇଅଛି ।
ଚରିତାର୍ଥତା—ସ୍ତ୍ରୀ. ବ. ଚରିତାର୍ଥରଭାବ, କୃତକାର୍ଯ୍ୟତା ।
ଚରିତାର୍ଥତ୍ୱ—କ୍ଳୀ. ବ. କୃତାର୍ଥତା ।
ଚରିତାର୍ଥୀ—ପୁଂ.ବଂ.(ଚରିତାଥ+ଇନ୍) ଚରିତାର୍ଥ ବା ସଫଳକାମ ହେବାକୁ ଇଚ୍ଛୁକ ।
ଚରିତାବଳୀ—ବ.(୬ତତ୍)ଅନେକ ଗୁଣୀଙ୍କ ଜୀବନ ଚରିତର ସଂଗ୍ରହ ।
ଚରିତୀ—ପୁଂ. ବଂ. (ଚରିତ+ଇନ୍) ଦୁଷ୍ଟଚରିତ୍ର ।
ଚରିତ୍ର—କ୍ଳୀ. ବ.(ଚର+ଣ.ଇତ୍ର)ଆଚରଣ, ସ୍ୱଭାବ, ଅନୁଷ୍ଠାନ, ଚେଷ୍ଟା, ଗୃହଚଳନ, ବ୍ୟବହାର, ଆଗ୍ରହ, ଶୀଳ, ନୈତିକ ଆଚରଣ, ଇତିହାସ ନାଟକ ପୁରାଣାଦିରେ ନାୟକଆଦିଙ୍କର ଚରିତ ସ୍ୱଭାବ, ପୌରାଣିକ ଉପାଖ୍ୟାନ ।
ଚରିତ୍ରଗୁଣ—ପୁଂ.ବ.(୬ତତ୍)ଆଚରଣର ଉତ୍କର୍ଷ ।
ଚରିତ୍ରଚିତ୍ରଣ—ବ. (୬ତତ୍) କୌଣସି ଐତିହାସିକ ବା ପୌରାଣିକ ବ୍ୟକ୍ତିଙ୍କର ସ୍ୱଭାବ କିପରି ଥିଲା ତାହାଁର ବିଶଦବର୍ଣ୍ଣନା,ମନୁଷ୍ୟ ଚରିତ୍ରର ବ୍ୟାଖ୍ୟାନ ।
ଚରିତ୍ରଜୀବୀ—ପୁଂ. ବଂ. (ଚରିତ୍ର+ଜୀବ+କ.ଇନ୍) ଅତି ଚରିତ୍ରବାନ୍, (ସ୍ତ୍ରୀ) ଚରିତ୍ରଜୀବନୀ ।
ଚରିତ୍ରଦୋଷ—ପୁଂ.ବ.(୬ତତ୍)ଦୂଷିତ-

ଚରିତ୍ର ହେବା, ଲମ୍ପଟ୍ୟ, ସୁରାସକ୍ତି ପ୍ରଭୃତି ।

ଚରିତ୍ରପୁର—ଗ୍ରା.ବି. ଉତ୍କଳର ଗୋଟିଏ ପ୍ରାଚୀନ ନଗର ।

ଚରିତ୍ରବାନ୍—ପୁଂ. ବିଂ. (ଚରିତ୍ର+ବତ୍) ସୁଗୁଣସମ୍ପନ୍ନ, ଯେ ହୋମ ବା ବ୍ରତ କରି ସାରିଅଛି, (ସ୍ତ୍ରୀ) ଚରିତ୍ରବତୀ ।

ଚରିତ୍ରହୀନ—ପୁଂ. ବିଂ. (୬ତତ୍)ଅସତ୍-ଚରିତ୍ର, ନଷ୍ଟଚରିତ୍ର, କୁଚରିତ୍ରଶୀଳ, ଅନୈତିକ, ସଦ୍‌ଗୁଣଶୂନ୍ୟ ।

ଚରିତ୍ରା—ସ୍ତ୍ରୀ. ବି. (ଚରିତ୍ର+ଆ)ତିନ୍ତିଡ଼ି ବୃକ୍ଷ,ତେନ୍ତୁଳି ଗଛ ।

ଚରିବା—ଗ୍ରା. କ୍ରି. ବିଚରଣ କରିବା, ଇତସ୍ତତଃ ବୁଲିବା, ସର୍ବତ୍ର ବ୍ୟାପ୍ତ ହେବା, ସଞ୍ଚାରିତ ହେବା, ପଶୁଆଦି ଚରି ଭୂମିରେ ବୁଲି ଘାସ ଇତ୍ୟାଦି ଖାଇବା, ଖାଇବା, (ପୋକଆଦି) କୌଣସି ଗଛ ବା କାଠ ବା ବସ୍ତ୍ର ଆଦିକୁ ଆକ୍ରମଣ କରି ନଷ୍ଟକରିବା, (ମେଘ)ଘୋଟିବା ।

ଚରିବୁଲିବା—ଗ୍ରା. କ୍ରି. ଚରିବା ଦେଖ ।

ଚରିଯିବା—ଗ୍ରା. କ୍ରି. (କୌଣସି ରୋଗ ଔଷଧ ବା ବିଷକ୍ରିୟା) ଦେହସାକ ବ୍ୟାପ୍ତହେବା, (ଗୋରୁଆଦି) କୌଣସି କ୍ଷେତ୍ରର ଫସଲକୁ ଖାଇ ବିଶେଷ-ଭାବରେ ନଷ୍ଟ କରିବା, (ଗୋରୁମାନେ) ଚରିବା ନିମନ୍ତେ ଘରୁ ବା ପଦାରୁ ଫିଟି ବାହାରକୁ ବାହାରିବା,(ଲ.ଅର୍ଥ)ଗୋରୁ ଘାସ ଚରିଯିବା ଭଳି ଅନ୍ନ ଧ୍ୱଂସକରିବା, (ପୋକଆଦି) କୌଣସି ବୃକ୍ଷ ବା କାଠ-ଆଦି ଖାଇ ନଷ୍ଟକରିବା ।

ଚରିଷ୍ଣୁ—ପୁଂ. ବିଂ. (ଚର+ଇଷ୍ଣୁ) ଗତିଶୀଳ, ଜଙ୍ଗମ, ଚରଣଶୀଳ, (ବି) କୀର୍ତ୍ତିମାନ୍ ରଜାଙ୍କ ପୁତ୍ର ।

ଚରିଷ୍ଣୁଧୂମ—ବିଂ ଯାହାର ଧୂମ ଗୃହଆଦିରେ ବିସ୍ତୃତ ହୋଇଅଛି, ଚରଣଶୀଳ ଧୂମବିଶିଷ୍ଟ ।

ଚରୀ—ବି. (ଚର+କ.ଇନ୍) ପ୍ରାଣୀ ।

ଚରୁ—ପୁଂ. ବି. (ଚର+ର୍ମ,ଉ) ହୋମାଗ୍ନିରେ ଦେବତାଙ୍କ ଉଦ୍ଦେଶ୍ୟରେ ଘୃତ ଆହୁତି ଦେଲାବେଳେ ତାହାସଙ୍ଗେ ଅଗ୍ନିରେ ଅର୍ପିତହେବା ପାୟସାନ୍ନ, ହବ୍ୟାନ୍ନ, ମେଘ, ଚରୁପାକପାତ୍ର, ପଶୁ-ଗ୍ରହଣ ଭୂମି, ଯଜ୍ଞ ।

ଚରୁସମିଧ—ବି. (ଦ୍ୱନ୍ଦ୍ୱ) ହୋମାଗ୍ନିରେ ଘୃତସହିତ ଅର୍ପିତହେବା ମିଷ୍ଟାନ୍ନ ଓ କାଠ ।

ଚରୁସ୍ଥାଲୀ—ସ୍ତ୍ରୀ. ବି. (୬ତତ୍) ଯେଉଁ ହାଣ୍ଡିରେ ଚରୁଅନ୍ନ ରଖାଯାଏ ।

ଚରୁହୋମ—ପୁଂ. ବି. ଯହିଁରେ ଚରୁ ଦେଇ ଆହୁତି ଦେବାର ବିଧାନ ଅଛି, ମାଂସବଳି ।

ଚର୍ଖା—ଗ୍ରା. ବି. ଦକ୍ଷିଣ କାଠିୟାବାଡ଼ର ଅନ୍ତର୍ଗତ ଗୋଟିଏ କ୍ଷୁଦ୍ର ରାଜ୍ୟ ।

ଚର୍ଚ୍ଚ—ବି. (ଚର୍ଚ୍ଚ+ଭା.ଅ) ବିଚାର, ବିବେଚନା ।

ଚର୍ଚ୍ଚକ—ପୁଂ. ବିଂ.(ଚର୍ଚ୍ଚ+କ. ଅକ) ଯେ ଚର୍ଚ୍ଚାକରେ, ଆଲୋଚକ, ଲେପନ-କାରୀ, (ସ୍ତ୍ରୀ) ଚର୍ଚ୍ଚିକା, (ବି) ବେଦପାଠ ସମୟରେ ଗୋଟିଏ ଶବ୍ଦର ପୁନରାବୃତ୍ତି, ବେଦଜ୍ଞ ବ୍ୟକ୍ତି ।

ଚର୍ଚ୍ଚନ—କ୍ଲୀ. ବି. (ଚର୍ଚ୍ଚ+ଭା. ଅନ) ଆଲୋଚନା, ଲେପନ ।

ଚର୍ଚ୍ଚର—ପୁଂ. ବିଂ. (ଚର୍ଚ୍ଚ+ଅର) ଗମନଶୀଳ, (ସ୍ତ୍ରୀ) ଚର୍ଚ୍ଚରୀ ।

ଚର୍ଚ୍ଚରିକା—ସ୍ତ୍ରୀ. ବି. (ଚର୍ଚ୍ଚର+କ+ଆ) ଗୀତବିଶେଷ,ଆନନ୍ଦ ବାଦ୍ୟଯନ୍ତ୍ରବିଶେଷ, କାହ୍ନବାଦ୍ୟ ସମନ୍ୱିତ ଧ୍ୱନି, ହେଣ୍ଡି ବା ହେଣ୍ଡି, ପୁନଃପୁନଃ ଉଚ୍ଚାରିତ ଗାନ, ହୋରିଉତ୍ସବ, ବସନ୍ତଉତ୍ସବ ।

ଚର୍ଚ୍ଚରୀ—ସ୍ତ୍ରୀ. ବି. (ଚର୍ଚ୍ଚ+ଅରନ୍+ଈ) ଗାନବିଶେଷ, କରଧ୍ୱନି, ତାଳି ବଜା-ଇବା ଧ୍ୱନି, ଆମୋଦ ପ୍ରମୋଦ, ନାଟ ତାମସା, କାର୍ପଟିକମାନଙ୍କର ଆଦର-ଯୁକ୍ତ ବାକ୍ୟ, ତୌର୍ଯ୍ୟତ୍ରିକ, ବସନ୍ତ ଉତ୍ସବ, ହର୍ଷ କ୍ରୀଡ଼ାର ବାକ୍ୟବିଶେଷ, ହାଟୋପବାକ୍ୟ, ପ୍ରାଚୀନ ଭାରତର ଏକପ୍ରକାର ଆନନ୍ଦ ଯନ୍ତ୍ର, ବର୍ତ୍ତିବୃତ୍ତି-ବିଶେଷ ।

ଚର୍ଚ୍ଚରୀକ—ପୁଂ.ବି. ମହାକାଳ ଭୈରବ, କେଶବିନ୍ୟାସ, ଶାକ, ଶାଗ ।

ଚର୍ଚ୍ଚସ୍—ପୁଂ. ବି. (ଚର୍ଚ୍ଚ+ଅସ୍) କୁବେରଙ୍କର ନିଧିବିଶେଷ ।

ଚର୍ଚ୍ଚା—ସ୍ତ୍ରୀ. ବି. (ଚର୍ଚ୍ଚ+ଭା, ଅ+ଆ) ବିଚାର, ବିବେଚନା, ଅନୁଶୀଳନ, ପୁନଃପୁନଃ ଆବୃତ୍ତି, ଭ୍ରମଣ, ପରୀକ୍ଷା, ଯତ୍ନ, ବର୍ତ୍ତନ, କଥୋପକଥନ, ଜପ, ଦୁର୍ଗା, ଚିନ୍ତା, ଆଲୋଚନା, ଲେପନ, ଗାୟତ୍ରୀରୂପା ମହାଦେବୀ, ଜମ୍ବୁଦ୍ୱୀପର ଅନ୍ତର୍ଗତ ଗୋଟିଏ ନଦୀ, ବେଦପାଠ ସମୟରେ 'ଇତି' ଶବ୍ଦପ୍ରୟୋଗ ପୂର୍ବକ କୌଣସି ଶବ୍ଦର ପୁନରୁଚ୍ଚାରଣ, କଳି-କାର ଦୁଇଜଣଙ୍କ ଦ୍ୱାରା ଗୋଟିଏ ପଦ୍ୟର ଆବୃତ୍ତି, ତଦନ୍ତ, ଅନୁସନ୍ଧାନ, କିମ୍ବ-ଦନ୍ତୀ, ଜନଶ୍ରୁତି, (ଗ୍ରା.ବି; ଫା-ଚର୍ଯ୍ୟା) ସମ୍ବର୍ଦ୍ଧନାସହିତ ଗୃହାଗତ ଅତିଥି ବା ବନ୍ଧୁଙ୍କର ସେବା ଓ ସତ୍କାର, ଆତି-ଥେୟତା ।

ଚର୍ଚ୍ଚାକରିବା—ଗ୍ରା. କ୍ରି. ଆଲୋଚନା କରିବା, ଅନୁଶୀଳନ କରିବା,ମର୍ଯ୍ୟାଦା-ପୂର୍ବକ ଅତିଥିଙ୍କୁ ଖାଦ୍ୟପାନାଦିଦ୍ୱାରା ସେବାକରିବା ।

ଚର୍ଚ୍ଚାବେହେରା—ଗ୍ରା. ବି. ରାଜଦ୍ୱାରକୁ ଆଗତ ଅତିଥିମାନଙ୍କ ଖବର ବୁଝିବା ନିମନ୍ତେ ନିଯୁକ୍ତ ରାଜଭୃତ୍ୟବିଶେଷ ।

ଚର୍ଚ୍ଚି—ସ୍ତ୍ରୀ.ବି. (ଚର୍ଚ୍ଚ+ଇ) ବିଚାରଣା ।

ଚର୍ଚ୍ଚିକା—ବିଂ. ଯେ ବେଦାଦିର ବିଚାର ଜାଣେ ।

ଚର୍ଚ୍ଚିକା—ସ୍ତ୍ରୀ. ବି. (ଚର୍ଚ୍ଚ+ଭା, ଅକ+ଆ) ଅଙ୍ଗରେ ଚନ୍ଦନାଦି ଲେପନ,ଏକ ପ୍ରକାର ଶିମ୍ବ, ଦୁର୍ଗା, ଚର୍ଚ୍ଚା, ରୋଗ-ବିଶେଷ, ଆଲୋଚନା, (ଗ୍ରା.ବି) କଟକ ଜିଲାର ବାଙ୍କିରାଜ୍ୟର ପ୍ରଧାନ ଗ୍ରାମ ଓ ତହିଁରେ ପୂଜିତା ଦୁର୍ଗାମୂର୍ତ୍ତି, ଚଣ୍ଡୀକେଇ ।

ଚର୍ଚ୍ଚିତ—ବିଂ. (ଚର୍ଚ୍ଚ+ର୍ମ.ତ) ପୂଜିତ, ସେବିତ, ଆଲୋଚିତ,ଅନୁଧ୍ୟାତ,ଚିନ୍ତିତ,

ଚନ୍ଦନାଦିଦ୍ୱାରା ଲେପିତ, ଆନ୍ଦୋଳିତ, (କ୍ଲୀ.ବି; ଗ୍ରା.ତ) ଲେପନ ।

ଚର୍ଚ୍ଚିନ—ବି°. ଏକପ୍ରବନ୍ଧ, (କ୍ଲୀ.ବ) ଗୋଳ, ଖାଲକ, ଖାଲା ।

ଚର୍ଚ୍ଚିତବ୍ୟ—ବି°. (ଚର୍+ତବ୍ୟ) ଚର୍ଚ୍ଚି-ତବ୍ୟ ଦେଖ ।

ଚର୍ଚ୍ଚ୍ୟ—ବି°. (ଚୃତ+ଯ) ହିଂସନୀୟ, ହିଂସିତବ୍ୟ ।

ଚର୍ଥାବଲ—ଗ୍ରା. ବି. ଉଃ ପଃ ପ୍ରଦେଶର ମଜଃଫରପୁର ଅନ୍ତର୍ଗତ ଗୋଟିଏ ନଗର ।

ଚର୍ଦ୍ଦ—ଗ୍ରା. ବି.ଅଯୋଧ୍ୟା ବଡ଼ାଇଚ ଜିଲ୍ଲାର ଗୋଟିଏ ପରଗଣା ।

ଚର୍ଦ୍ଦାର—ଗ୍ରା. ବି.ଆସାମର ଦରଙ୍ଗ ଜିଲ୍ଲାର ଗୋଟିଏ ପରଗଣା ।

ଚର୍ପଟ—ପୁଂ. ବି°. (ଚୃପ+କ. ଅଟ) ସ୍ଫାର, ବିପୁଳ, ଅଧିକ, (ବି) କରତଳର ପ୍ରସାର,ବିସ୍ତାର, ଚପେଟ, ଚଟକଣା, ଜାବୁଡ଼ା, କରତଳ ଦ୍ୱାରା ଆଘାତ ।

ଚର୍ପଟା—ସ୍ତ୍ରୀ.ବି. (ଚର୍ପଟ+ଆ)ଭାଦ୍ରମାସର ଶୁକ୍ଳଷଷ୍ଠୀ, ତାଳଷଷ୍ଠ, ଷଷ୍ଠୀଓଷା ।

ଚର୍ପଟିକା—ବି. (ଚର୍ପଟ+କ, ଆ) କର-ତଳଦ୍ୱାରା ମଡ଼ାହୋଇ ପ୍ରସ୍ତୁତ ହୋଇ-ଥିବା ପିଷ୍ଟକ ବା କାକରପିଠା, ପାପଡ଼, ବିସ୍କୁଟ ।

ଚର୍ପଟୀ—ସ୍ତ୍ରୀ.ବି. (ଚର୍ପଟ+ଈ) ପିଷ୍ଟକ-ବିଶେଷ, ପୁଲୀ, ଚର୍ପଟିକା ଦେଖ ।

ଚର୍ଭିକ—ପୁଂ. ବି. କାକୁଡ଼ି ।

ଚର୍ଭଟ—ପୁଂ. ବି. (ଚର୍+ଭଟ+ଅ) ଇର୍ବାରୁ, କାକୁଡ଼ି ।

ଚର୍ଭଟୀ—ସ୍ତ୍ରୀ. ବି. ଚର୍ଚ୍ଚରୀ, ହର୍ଷକ୍ରୀଡ଼ା, ସାଟ୍ଟୋପବାକ୍ୟ, ଚର୍ଚ୍ଚା ।

ଚର୍ମ—କ୍ଲୀ. ବି. (ଚର+ଣ+ମନ୍) ଚମଡ଼ା, ଚମ, ଗଛର ଛେଲି, ବକଲ, ବର୍ମ, ଚର୍ମନିର୍ମିତ ଫଳକ, ଢାଲ,(ଗ୍ରା.-ବି) ଚରମ ଦେଖ ।

ଚର୍ମକ—ବି°. ଚର୍ମକାର ଦେଖ; (ଗ୍ରା.ବି) ଚମଡ଼ାରୁ ତିଆରି ବାଜଣା ।

ଚର୍ମକର—ସ୍ତ୍ରୀ.ବି. ମାଂସରୋହିଣୀ ଲତା, ସୁଗନ୍ଧଦ୍ରବ୍ୟ, ଗିଲ ।

ଚର୍ମକଶା—ସ୍ତ୍ରୀ. ବି. ପଶ୍ଚିମଦେଶ ପ୍ରସିଦ୍ଧ ଗନ୍ଧଦ୍ରବ୍ୟବିଶେଷ, ସପ୍ତଲା ଲତା,ଗିଲ

ଚର୍ମକସା—ସ୍ତ୍ରୀ. ବି. ଚର୍ମକଶା ଦେଖ ।

ଚର୍ମକାର—ପୁଂ. ସ୍ତ୍ରୀ. ବି. (ଚର୍ମ+କୃ+କ.ଅଁ) ସଙ୍କୀର୍ଣ୍ଣ ଜାତିବିଶେଷ, ଚମାର, ମୋଚି,ତୀବରସ୍ୱାମୀ ଔରସରେ ଚଣ୍ଡାଳୀ ସ୍ତ୍ରୀଗର୍ଭଜାତ ସନ୍ତାନ ।

ଚର୍ମକାରକ—ବି°. ଯେ ଚର୍ମପାଦୁକା ନିର୍ମାଣକରେ, ଚମାର, ମୋଚି ।

ଚର୍ମକାରଲୁକ—ପୁଂ.ବି. ବାରାହୀ କନ୍ଦ ।

ଚର୍ମକାରୀ—ସ୍ତ୍ରୀ.ବି. ଔଷଧିବିଶେଷ,ଚର୍ମ-କାର ଜାତିସ୍ତ୍ରୀ ସ୍ତ୍ରୀ ।

ଚର୍ମକାର୍ଯ୍ୟ—କ୍ଲୀ. ବି. ଚମାର ଜୀବିକା, ମୋଚିର କାମ, ଜୋତା ପ୍ରଭୃତି ତିଆରି କରିବା ।

ଚର୍ମକୀଲ—ପୁଂ. ବି. (ଵୈଦ୍ୟ)ଗୁହ୍ୟରୋଗ-ବିଶେଷ,ଅର୍ଶରୋଗ,ଖଉରୁଡ଼ି,ବାଘୀ ରୋଗ ।

ଚର୍ମକୃତ୍—ପୁଂ. ବି. ଚର୍ମକାର, ମୋଚି ।

ଚର୍ମଖଣ୍ଡିକ—ପୁଂ.ବି. ତନ୍ନାମକଜନପଦ-ବାସୀ ଜାତିବିଶେଷ ।

ଚର୍ମଗ୍ରନ୍ଥି—ପୁଂ. ବି. ଚମଡ଼ାର ଗଣ୍ଠି ।

ଚର୍ମଗ୍ରୀବ—ପୁଂ. ବି. ଶିବଙ୍କ ଅନୁଚର ବିଶେଷ ।

ଚର୍ମଘଟିକା—ବି.(ଚର୍ମ+ଘଟ+କ+ଆ) ଜୋକ ।

ଚର୍ମଚକ୍ଷୁ—କ୍ଲୀ. ବି. ଜୀବର ସାଧାରଣ ଚକ୍ଷୁ, ସ୍ଥୂଳଚକ୍ଷୁ ।

ଚର୍ମଚଟକ—ପୁଂ. ବି. (ଚର୍ମ+ଚଟ୍+ଅକ) ବାଦୁଡ଼ି ।

ଚର୍ମଚଟକା—ସ୍ତ୍ରୀ.ବି. ପକ୍ଷିବିଶେଷ,ବାଦୁଡ଼ି, ଚେମେଣିବାଦୁଡ଼ି ।

ଚର୍ମଚଟିକା—ସ୍ତ୍ରୀ. ବି. (ଚର୍ମ+ଚଟ+ଇକ+ଆ) ଚେମେଣି ବାଦୁଡ଼ି ।

ଚର୍ମଚଟୀ—ସ୍ତ୍ରୀ. ବି. ଚମଚଟକା, ଚେମେଣି ବାଦୁଡ଼ି ।

ଚର୍ମଚିତ୍ରକ—କ୍ଲୀ. ବି. (ବୈଦ୍ୟ) ଶ୍ୱେତ-କୁଷ୍ଠ, ଛଉ, ଧବଳରୋଗ, ଚର୍ମମୃଗ ।

ଚର୍ମଚେଳ—ପୁଂ ଓ କ୍ଲୀ. ବି. ଚର୍ମାଚ୍ଛା-ଦିତ ବସ୍ତ୍ର ।

ଚର୍ମଜ—କ୍ଲୀ. ବି. (ଚର୍ମ+ଜନ+କ.ଅ) ରୋମ, ଲୋମ, ରକ୍ତ, (ବି°) ଯାହା ଚମରୁ ଜାତହୁଏ, ଚର୍ମନିର୍ମିତ, (ଗ୍ରା.ବି) ମୃଦଙ୍ଗ, ଢମ୍ପଆଦି ଆନଦ୍ଧ ବାଦ୍ୟ ।

ଚର୍ମଣ୍ୟ—ବି°. ଚର୍ମଜ, ଯାହା ଚମରେ ତିଆରି ହୁଏ, ଚର୍ମନିର୍ମିତ । [ ଅଛି ।

ଚର୍ମଣ୍ୱତ୍—ବି°. ଚର୍ମଯୁକ୍ତ, ଯାହାର ଚର୍ମ

ଚର୍ମଣ୍ୱତୀ—ସ୍ତ୍ରୀ.ବି. (ଚର୍ମନ୍+ବତ୍+ଈ) ନଦୀବିଶେଷ, ଏହାର ଆଧୁନିକ ନାମ ଚମ୍ବଲ, କଦଳୀ ଗଛ ।

ଚର୍ମତରଙ୍ଗ—ପୁଂ.ବି. ଚର୍ମର ସଙ୍କୋଚ, ବଳିପଳିତ ଚର୍ମ,ଧାଳିତ ଚର୍ମର ବଳି ।

ଚର୍ମତିଲ—ବି°. ଯାହାର ଦେହରେ ତିଳ ଦେଖାଯାଏ ।

ଚର୍ମଦଣ୍ଡ—ପୁଂ. ବି. (ଵୈଦ୍ୟ) ଚର୍ମନିର୍ମିତ ଦଣ୍ଡ, କଶା, ଚାବୁକ ।

ଚର୍ମଦଳ—ବି. କ୍ଷୁଦ୍ରକୁଷ୍ଠବିଶେଷ, ଚର୍ମ-ଦଳା ରୋଗ ।

ଚର୍ମଦୂଷିକା—ସ୍ତ୍ରୀ. ବି. କୋଠରୋଗ ଦଦ୍ରୁରୋଗ, ଦାଦୁ ।

ଚର୍ମଦ୍ରୁମ—ପୁଂ. ବି. ଭୂର୍ଜବୃକ୍ଷ ।

ଚର୍ମଧାରୀ—ପୁଂ. ବି°. (ଚର୍ମ+ଧୃ+କ. ଇନ୍) ଫଳକ ଧାରଣକାରୀ, ଯେ ଢାଲ-ଧରେ, (ସ୍ତ୍ରୀ) ଚର୍ମଧାରିଣୀ ।

ଚର୍ମନ୍—କ୍ଲୀ. ବି. (ଚର+ମନ୍) ତ୍ୱକ୍, ଚମ, ଚମଡ଼ା, ଇନ୍ଦ୍ରିୟବିଶେଷ ।

ଚର୍ମନାଲିକା—ସ୍ତ୍ରୀ. ବି. କଶା, ତାଡ଼ନୀ, ଚାବୁକ ।

ଚର୍ମନାସିକା—ସ୍ତ୍ରୀ.ବି. ଚର୍ମବନ୍ଧ,ଚାବୁକ ।

ଚର୍ମପଟ—ବି. ଚର୍ମନିର୍ମିତ ପଟ ।

ଚର୍ମପଟ୍ଟିକା—ସ୍ତ୍ରୀ, ବି. ଚର୍ମନିର୍ମିତ ପଟ ।

ଚର୍ମପତ୍ରା—ବି. (ଚର୍ମ+ପତ୍ର+ଆ) ବାଦୁଡ଼ି । [ ବାଦୁଡ଼ି ।

ଚର୍ମପତ୍ରୀ—ସ୍ତ୍ରୀ. ବି. ଚମଚଟକା,ଚେମେଣି,

ଚର୍ମପାଦୁକା—ସ୍ତ୍ରୀ.ବି.(କ.ଧା) ଉପାନତ୍, ଜୋତା ।

ଚର୍ମପୀଡ଼ିକା—ସ୍ତ୍ରୀ. ବି. (ଚର୍ମ+ପୀଡ଼+ଇକ+ଆ) ଏକପ୍ରକାର ମସୂରିକା ବା

ବସନ୍ତରୋଗ, ମଲିମଲା, କୋଲଥଆ ।
ଚର୍ମପୁଟ—ପୁଂ. ବ. ଚର୍ମନିର୍ମିତ ପାତ୍ରବିଶେଷ, କୁମ୍ପା, ଚମଡ଼ାମୁଣି, ବ୍ୟାଗ ।
ଚର୍ମପୁଟକ—ପୁଂ. ବ. ଚମଡ଼ାର ଥଳି, ଚମଡ଼ାମୁଣି, ବ୍ୟାଗ ।
ଚର୍ମପ୍ରଭେଦକା—ସ୍ତ୍ରୀ. ବ. (ଚର୍ମ + ପ୍ର + ଭିଦ୍ + କ. ଅକ + ଆ) ମନୁଷ୍ୟର ଶରୀର ଫୋଡ଼ିବାର ଚିକିତ୍ସାସ୍ତ୍ରବିଶେଷ ।
ଚର୍ମପ୍ରସେବକ—ପୁଂ. ବ. (ଚର୍ମ + ପ୍ର + ସିବ + କ. ଅକ) ଭସ୍ତ୍ରା, ଜନ୍ତ, ଖାତ, ଭସ୍ତି, ଚମଡ଼ାମୁଣି ।
ଚର୍ମପ୍ରସେବିକା—ସ୍ତ୍ରୀ. ବ. ଭସ୍ତ୍ରା, ଜନ୍ତ, ଖାତ, ନିଆଁ ଡାଇବାର ଚମଡ଼ାର ଯନ୍ତ୍ର ।
ଚର୍ମବନ୍ଧ—ପୁଂ. ବ. ଚର୍ମଦ୍ୱାରା ବନ୍ଧନ, ଗୃବୁକ ।
ଚର୍ମମଣ୍ଡଳ—ପୁଂ. ବ. ଦେଶବିଶେଷ ।
ଚର୍ମମୟ—ବିଂ. (ଚର୍ମ + ମୟ) ଚର୍ମନିର୍ମିତ (ପାଦୁକାଦି), (ସ୍ତ୍ରୀ) ଚର୍ମମୟୀ ।
ଚର୍ମମୁଣ୍ଡା—ସ୍ତ୍ରୀ. ବ. ଚାମୁଣ୍ଡା, ଦୁର୍ଗା ।
ଚର୍ମମୁଦ୍ରା—ସ୍ତ୍ରୀ. ବ. ତନ୍ତ୍ରଶାସ୍ତ୍ରୋକ୍ତ ମୁଦ୍ରାବିଶେଷ ।
ଚର୍ମମ୍ନ—ବିଂ. ଯେ ଚର୍ମମୟ କବଚ ଧାରଣ କରିବାର ଅଭ୍ୟାସ କରିଅଛି, ଯେ ଅଶ୍ୱାଦି ଆରୋହଣ କରିବାରେ ବିଶେଷ ଅଭ୍ୟସ୍ତ ।
ଚର୍ମଯଷ୍ଟି—ସ୍ତ୍ରୀ. ବ. ଚର୍ମମୟ ଯଷ୍ଟି, ଅଶ୍ୱତାଡ଼ନୀ, ଗୃବୁକ । [ ବିଶେଷ ।
ଚର୍ମରଙ୍ଗ—ପୁଂ. ବ. ( ବ.ଗ୍ର ) ଦେଶ-
ଚର୍ମରଙ୍ଗା—ସ୍ତ୍ରୀ. ବ. ଆବର୍ତ୍ତକୀ ଲତା ।
ଚର୍ମରୀ—ସ୍ତ୍ରୀ. ବ. ସ୍ଥାବର ବିଷର ଅନ୍ତର୍ଗତ ଏକପ୍ରକାର ଲତା, ଏହାର ଫଳରେ ବିଷ ଅଛି ।
ଚର୍ମରୁ—ପୁଂ. ବ. (ଚର୍ମ + ରୁ + କ. କ୍ୱିପ୍) ଚର୍ମକାର, ମୋଚି ।
ଚର୍ମରୋଗ—ବ. (କ.ଧା) ଚର୍ମକୁ ଆକ୍ରମଣ କରିବା ରୋଗ, କାଛୁକୁଣ୍ଡିଆ ଦାଦୁ ପ୍ରଭୃତି ।
ଚର୍ମବସନ—ପୁଂ. ବ. (ବ.ଗ୍ର) ମହାଦେବ ।
ଚର୍ମବାନ୍—ପୁଂ. ବିଂ. ( ଚର୍ମ + ବତ୍ )

ଚର୍ମଯୁକ୍ତ, (ସ୍ତ୍ରୀ) ଚର୍ମବତୀ ।
ଚର୍ମବାସ—ବିଂ. ( ବ.ଗ୍ର ) ବ୍ୟାଘ୍ର ଓ ମୃଗଚର୍ମ ପିନ୍ଧିଥିବା (ବ୍ୟକ୍ତି) ।
ଚର୍ମବ୍ୟବସାୟ—ବ. (୬ତତ୍) ଚମଡ଼ାର କ୍ରୟ ବିକ୍ରୟ ରୂପ କାର୍ଯ୍ୟ ।
ଚର୍ମବୃକ୍ଷ—ପୁଂ. ବ. ଭୂର୍ଜବୃକ୍ଷ ।
ଚର୍ମସମ୍ଭବା—ସ୍ତ୍ରୀ. ବ. (ବ.ଗ୍ର) ଅଳେଇଚ ।
ଚର୍ମସାର—ପୁଂ. ବ. ରସ ।
ଚର୍ମସ୍ଥଳୀ—ସ୍ତ୍ରୀ. ବ. ( ୬ତତ୍ ) ଚମଡ଼ା ରଖିବାର ସ୍ଥାନ, ( କ.ଧା ) ଚମଡ଼ାର ମୁଣି, ବ୍ୟାଗ ।
ଚର୍ମହନ୍ତ୍ରୀ—ବ. (ଚର୍ମ + ହନ୍ + କ. ତୃ + ଈ) ହାଲ୍ଦମ ଦେଶ ।
ଚର୍ମାଖ୍ୟ—ପୁଂ. ବ. (ଚର୍ମ + ଆଖ୍ୟା) କ୍ଷୁଦ୍ର କୁଷ୍ଠରୋଗବିଶେଷ ।
ଚର୍ମାନ୍ତ—ବ. ସୁଶ୍ରୁତୋକ୍ତ ପ୍ରାଚୀନ-କାଳରେ ଅସ୍ତ୍ରଚିକିତ୍ସାର୍ଥ ବ୍ୟବହୃତ ଯନ୍ତ୍ରବିଶେଷ ।
ଚର୍ମାନୁରଞ୍ଜକ—ବିଂ. (ଚର୍ମ + ଅନୁରଞ୍ଜକ) ୬ତତ୍; ଯେ ଚମଡ଼ାକୁ ରଙ୍ଗାଏ ବା କଷେ ।
ଚର୍ମାନୁରଞ୍ଜନ—ବ. (ଚର୍ମ + ଅନୁରଞ୍ଜନ) ୬ତତ୍; ଚମଡ଼ା କଷିବା ବା ରଙ୍ଗେଇବା, (ବ.ଗ୍ର) ହିଙ୍ଗୁଳ । [ ବିଶେଷ ।
ଚର୍ମାନ୍ତ—ପୁଂ. ବ. ସୁଶ୍ରୁତୋକ୍ତ ଉପଯନ୍ତ୍ର-
ଚର୍ମାମ୍ଭଃ—କ୍ଲୀ. ବ. ଚର୍ମମଧ୍ୟସ୍ଥିତ ରସ ।
ଚର୍ମାର—ପୁଂ. ବ. ( ଚର୍ମ + ରୁ + ଅ ) ଚର୍ମକାର, ମୋଚି ।
ଚର୍ମାବକର୍ତ୍ତ—ପୁଂ. ବ. ଚର୍ମକାର, ମୋଚି,
ଚର୍ମାବକର୍ତ୍ତୀ—ପୁଂ. ବ. ଚର୍ମକାର, ମୋଚି ।
ଚର୍ମାସନ—କ୍ଲୀ. ବ. (କ.ଧା) ଚମଡ଼ାର ଆସନ, (ପୁଂ. ବ. ବ.ଗ୍ର); ଶିବ ।
ଚର୍ମି—ସ୍ତ୍ରୀ. ବ. ଚର୍ମନଟିକା, ବାଦୁଡ଼ି ।
ଚର୍ମିକ—ବିଂ. (ଚର୍ମ + ଇକ) ଯେ ଚର୍ମମୟ ଫଳକ ବା ଢାଲ ଧରି ଯୁଦ୍ଧକରେ, ଢାଲଧାରୀ, ବି.(ଚର୍ମ + କ) ଭୂର୍ଜପତ୍ର ।
ଚର୍ମିକା—ସ୍ତ୍ରୀ. ବ. (ଚର୍ମିକ + ଆ) ଭୂର୍ଜପତ୍ର, ଚମଡ଼ାନିର୍ମିତ କାଗଜ ।
ଚର୍ମୀ—ପୁଂ. ବିଂ. (ଚର୍ମନ + ଇନ୍) ଚର୍ମ-

ଯୁକ୍ତ, ଚର୍ମଧାରୀ, ( ପୁଂ. ବ ) ଭୂର୍ଜବୃକ୍ଷ, ଭୃଙ୍ଗୀରିଟି, ମୋଚି, ମହାଦେବ ।
ଚର୍ଯ୍ୟ—ପୁଂ. ବିଂ. (ଚର + ମି.ଯ) କର୍ତ୍ତବ୍ୟ, ଅନୁଷ୍ଠେୟ, କରଣୀୟ, ଆଚରଣୀୟ, (କ୍ଲୀ. ବ) ଅବଶ୍ୟକର୍ତ୍ତବ୍ୟ ।
ଚର୍ଯ୍ୟା—ସ୍ତ୍ରୀ. ବ. ( ଚର + ଭା.ଯ + ଆ ) ବ୍ରତ ବା ଧର୍ମ କାର୍ଯ୍ୟକରଣ, ଆଚରଣ, ସେବା, ଗମନ, ଭକ୍ଷଣ, ପାଳନ, ରକ୍ଷା, ଚରିତ୍ର, ଈର୍ଷାପଥସ୍ଥିତି, (ସ୍ତ୍ରୀ. ବିଂ) ଆଚରଣୀୟା, ବ୍ୟବହରଣୀୟା । [ ବିଶେଷ ।
ଚର୍ଯ୍ୟାବତାର—ପୁଂ. ବ. ବୌଦ୍ଧଗ୍ରନ୍ଥ-
ଚର୍ବି—ଗ୍ରା. ବ. ମେଦ, ବସା, ମୃତଜୀବର ବସା ତରଳା ଯାଇ ପ୍ରସ୍ତୁତ ହେବା ଦ୍ରବ୍ୟ । [ ମନ୍ତ୍ରମନଦ ।
ଚର୍ବିବଢ—ଗ୍ରା. ବ. ଚର୍ବିରେ ଢାଙ୍କିର ବଢ,
ଚର୍ବିହେବା—ଗ୍ରା. ବ. ମେଦ ବୃଦ୍ଧି ହେବା, ମୋଟାହେବା, (ଲ.ଅର୍ଥ) ଗର୍ବୀ ହେବା ।
ଚର୍ବଣ—କ୍ଲୀ. ବ. ( ଚର୍ବ + ଭା.ଅନ ) ଚୋବାଇବା କର୍ମ, ଦନ୍ତଦ୍ୱାରା ପେଷଣ, ରସାସ୍ୱାଦନ ବ୍ୟାପାରବିଶେଷ, (ବିଂ) ଯେଉଁମାନେ ଚୋବାନ୍ତି ।
ଚର୍ବଣା—ସ୍ତ୍ରୀ. ବ. (ଚର୍ବଣ + ଆ) ରସାସ୍ୱାଦନ ବ୍ୟାପାର, ଚର୍ବଣ, ଚୋବାଇବା
ଚର୍ବଣୀୟ—ବିଂ. ( ଚର୍ବ + ମି.ଅନୀୟ ) ଚୋବାହେବାର ଯୋଗ୍ୟ ।
ଚର୍ବନ୍—ପୁଂ. ବ. ତଳପ୍ରହାର, ଚାପୁଡ଼ା ।
ଚର୍ବୀ—ସ୍ତ୍ରୀ. ବ. ଚର୍ବଣ, କରତଳପ୍ରହାର, (ପୁଂ. ବିଂ) କାମୁଡ଼ା( ଆଦି ), ହିଂସ୍ର (ଜନ୍ତୁ), (ସ୍ତ୍ରୀ) ଚର୍ବୀ ।
ଚର୍ବିତ—ବିଂ. ( ଚର୍ବ + ମି.ତ ) ଯାହାକୁ ଚର୍ବଣ କରାଯାଇଅଛି, ଭକ୍ଷିତ, ସ୍ୱାଦିତ, ଚୋବାଇକରି ଖିଆଯିବା, (ବି) ପାନ-ପିକ, ଗୁପ, ଗୋରୁଆଦିଙ୍କ ପାଗୁଳି, ଚର୍ବଣ ।
ଚର୍ବିତଚର୍ବଣ—ବ. ( ୬ତତ୍ ) ପାଗୁଳି, (ଲ.ଅର୍ଥ) କଥିତ ବସ୍ତୁର ପୁନଃକଥନ, କୃତକାର୍ଯ୍ୟର ପୁନଃକରଣ ।
ଚର୍ବିତପାତ୍ର(କ)—କ୍ଲୀ. ବ. ପାତ୍ରବିଶେଷ, ପିକଦାନୀ ।

ଚର୍ବ୍ୟ—ବି॰. (ଚର୍ବ+ର୍ମି.ଯ୍ୟ) ଚୋବାଇବାରଯୋଗ୍ୟ, ଚର୍ବଣୀୟ ।

ଚର୍ବ୍ୟଚୂଷ୍ୟଲେହ୍ୟପେୟ—ବି. ( ଦ୍ୱନ୍ଦ୍ୱ ) ସବୁପ୍ରକାର ଖାଦ୍ୟଦ୍ରବ୍ୟ,ଯାହା ଚୋବାଇ କରି, ଚୋଷି କରି, ଚାଟିକରି ଓ ପିଇକରି ଖିଆଯାଏ ।

ଚର୍ଷଣ—କ୍ଳୀ. ବି. ରଥଚର୍ଷଣ ।

ଚର୍ଷଣି—ପୁଂ.ବି. (କୃଷ+ଅନ)ମନୁଷ୍ୟ, ଲୋକ, ବ୍ୟକ୍ତି, (ସ୍ତ୍ରୀ) ପୁଂଶ୍ଚଳୀ, କୁଳଟା ସ୍ତ୍ରୀ ।

ଚର୍ଷଣିପ୍ରା— ବି॰.ଯେ ଧନ ଦେଇ ମନୁଷ୍ୟ ମାନଙ୍କୁ ପ୍ରୀତିଯୁକ୍ତ କରେ ।

ଚର୍ଷଣୀ—ସ୍ତ୍ରୀ. ବି. (ଚର୍ଷଣି+ଈ)ମନୁଷ୍ୟଜାତି, ମାନବଜାତି ।

ଚର୍ଷଣୀଧୃତ୍—ବି॰. ( ଚର୍ଷଣି+ଧୃ+କ. କ୍ୱିପ୍) ଯେ ମନୁଷ୍ୟଜାତିକୁ ଧାରଣ ବା ରକ୍ଷାକରେ ।

ଚର୍ଷଣୀଧୃତ—ବି॰. ପ୍ରଜାକର୍ତ୍ତୃକ ଧୃତ, ପ୍ରଜାମାନେ ଯାହାକୁ ଧରିଅଛନ୍ତି ।

ଚର୍ଷଣୀସହ—ବି॰.ଶତ୍ରୁନାଶକ, ଯେ ଶତ୍ରୁମାନଙ୍କୁ ଅଭିଭବ କରିପାରେ ।

ଚଳ—ବି॰. (ଚଳ+ଅ) ଚଞ୍ଚଳ,ଅସ୍ଥିର, କମ୍ପଯୁକ୍ତ, ଜଙ୍ଗମ, ଜୀବିତ (ପ୍ରାଣୀ), ବ୍ୟବହୃତ,ଆଚରିତ, ହଲୁଥିବା, ପଳାୟିତ,(ବି) ଚାଞ୍ଚଲ୍ୟ, ଅସ୍ଥିରତା, କମ୍ପନ, ବାୟୁ,ରୋଗ,ବିଷ୍ଣୁ, ଶିବ,ଛନ୍ଦୋବିଶେଷ, (ଅସ୍ଥିବିଜ୍ଞାନ) ଶରୀରର ଯେଉଁ ଅସ୍ଥି ସ୍ଥିର ନୁହେ ଅର୍ଥାତ୍ ଇତସ୍ତତଃ ଚଳେ (ଯଥା—ଆଣ୍ଠୁ ଚକି),ପାରଦ,ଦୋଷ, ତ୍ରୁଟି, ଭୁଲ, ଭ୍ରାନ୍ତି, ଛଳ, କପଟ, ନୃତ୍ୟର ଚେଷ୍ଟାବିଶେଷ, ଯହିଁରେ ହାତଠାରି କାହାକୁ ପାଖକୁ ଆସିବାକୁ ଇସାରା ଦିଆଯାଏ,(ଗ୍ରା.ବି॰)ସୁପରିଷ୍କୃତ, ସଚଳ, (ଗ୍ରା.ବି) ରାଗ, କ୍ରୋଧ, ବିରକ୍ତି, ଗୋଟିଏ ହାତରେ ପାଣିଆଦି ଯାହା ଧରିହୋଇପାରେ,ସାଂସାରିକ ସ୍ୱାଚ୍ଛନ୍ଦ୍ୟତା ।

ଚଳକର୍ଣ୍ଣ—ପୁଂ.ବି.ପୃଥିବୀଠାରୁ ଗ୍ରହମାନଙ୍କର ପ୍ରକୃତ ଦୂରତ୍ୱ, ହାତୀ, (ବି॰)ଯେ ସବୁବେଳେ କାନ ହଲାଉଥାଏ ।

ଚଳକା—ଗ୍ରା.ବି. ହସ୍ତକୋଷ; ପାଣିକୁନ୍ଦ ଗୋଟିଏ କରତଳ ।

ଚଳକାଚଳ—ଗ୍ରା. ଅବ୍ୟ. ଏକଚଳ (ଜଳୀୟପ୍ରଦାର୍ଥ)ପରେ ଅନ୍ୟ ଏକଚଳ, ଅନେକ ପୋଷ, ପୋଷକୁ ପୋଷ ।

ଚଳକୁଡ଼ି—ଗ୍ରା. ବି. ମାନ୍ଦ୍ରାଜ ପ୍ରଦେଶର କୋଚିନ ରାଜ୍ୟରେ ପ୍ରବାହିତ ଗୋଟିଏ ନଦୀ ।

ଚଳକୃତ—ବି॰.ଯାହାର କାର୍ଯ୍ୟ ଅସ୍ଥିର ।

ଚଳକେତୁ—ପୁଂ. ବି. (କ.ଧା)ଧୂମକେତୁ ବିଶେଷ ।

ଚଳଙ୍କସଙ୍ଗତିପ୍ରିୟା—ସ୍ତ୍ରୀ. ବି. ଦେଶୀବିଶେଷ, କୁମାରୀ ।

ଚଳଚଞ୍ଚୁ—ପୁଂଓ ସ୍ତ୍ରୀ.ବି.ଚକୋର ପକ୍ଷୀ ।

ଚଳଚିତ୍ତ—କ୍ଳୀ.ବି. (କ.ଧା) ଅସ୍ଥିରଚିତ୍ତ, (ପୁଂ.ବି.ବ.ବ୍ରୀ,) ଅସ୍ଥିରଚିତ୍ତ, ଉଦ୍ୱିଗ୍ନ, ବ୍ୟାକୁଳ, ଚଞ୍ଚଳସ୍ୱଭାବ, ଯାହାର ମତର ସ୍ଥିର ନାହିଁ ।

ଚଳଚିତ୍ତତା—ସ୍ତ୍ରୀ.ବି.ଚିତ୍ତର ଅସ୍ଥିରତା ।

ଚଳଚିତ୍ର—କ୍ଳୀ.ବି.(କ.ଧା) ସିନେମା ବା ବାୟୋସ୍କୋପର ଛବି ।

ଚଳଚ୍ଛକ୍ତି—ସ୍ତ୍ରୀ.ବି. ଗତିଶକ୍ତି, ଚଳିବାର ସାମର୍ଥ୍ୟ; ବୁଲିବୁଲି ପାରିବାର କ୍ଷମତା ।

ଚଳଜାତି—ଗ୍ରା.ବି.ପାଣିଛୁଆଁ ହିନ୍ଦୁଜାତି, ଯେଉଁ ଜାତୀୟ ଲୋକଙ୍କ ସ୍ପୃଷ୍ଟ ଜଳକୁ ବ୍ରାହ୍ମଣ କ୍ଷତ୍ରିୟାଦି ଉଚ୍ଚ ଜାତୀୟ ହିନ୍ଦୁମାନେ ପିଇପାରିବେ ।

ଚଳଣ—ଗ୍ରା. ବି. (ସଂ-ଚଳନ) ଚଳିବାର ରୀତି, ଆଚରଣ, ବ୍ୟବହାର, ସାମାଜିକ ଆଦାନପ୍ରଦାନ ବା ସମ୍ପର୍କ ।

ଚଳଣା—ଗ୍ରା. ବି. ଏକପ୍ରକାର ନିକୃଷ୍ଟ ଲଉଜାତୀୟ ଫଳ, ତରଭୁଜବିଶେଷ, ଏକପ୍ରକାର ଖଟାଫଳ, ଚଲତା, କାଛୁ, ଲେଙ୍ଗୁଟି ।

ଚଳଣି—ଗ୍ରା.ବି.(ସଂ-ଚଳନ)ବ୍ୟବହାର, ଦେଶାଚାର, ଦେଶରେ ମୁଦ୍ରାରୂପେ ବ୍ୟବହାର, ଅଭ୍ୟାସ, ଆଚରଣ, (ଗ୍ରା. ବି॰) ପ୍ରଚଳିତ ।

ଚଳତ୍—ବି॰. ( ଚଳ+କ.ଅତ ) ଯେ ଚଳୁଅଛି, ଚଞ୍ଚଳ, ଅସ୍ଥିର, କମ୍ପମାନ, ଜଙ୍ଗମ, ପ୍ରଚଳିତ, ଚଳନ୍ତି, ଧାବମାନ, ସଚଳ, ବ୍ୟବହୃତ ।

ଚଳତା—ସ୍ତ୍ରୀ. ବି. ଅସ୍ଥିରତା, (ଗ୍ରା.ବି) ଅମ୍ଳକଷାୟବିଶିଷ୍ଟ ଫଳ, ଓଉ ।

ଚଳପୂର୍ଣ୍ଣିମା—ସ୍ତ୍ରୀ.ବି.ଚନ୍ଦ୍ରକମତ୍ସ୍ୟ, ଟଙ୍କାଗୁନ୍ଥିମାଛ ।

ଚଳନ୍ତି—ଗ୍ରା.ବି॰. ପ୍ରଚଳିତ, ଚଳନ୍ତ, ବ୍ୟବହୃତ, ଗତିବିଶିଷ୍ଟ,(ବି) ସାମାଜିକ କାର୍ଯ୍ୟରେ ପରସ୍ପର ମଧ୍ୟରେ ବିବାହ ଶବଦହନ ଓ ଖାଦ୍ୟଭୋଜନାଦି ସମ୍ପର୍କ, ବ୍ୟବହାର, ପ୍ରଚଳନ ।

ଚଳଦଙ୍ଗ—ପୁଂଓ ସ୍ତ୍ରୀ. (ବ.ବ୍ରୀ) ମତ୍ସ୍ୟବିଶେଷ, ଚେଙ୍ଗମାଛ ।

ଚଳଦଙ୍ଗକ—ପୁଂ ସ୍ତ୍ରୀ.ବି. (ବ.ବ୍ରୀ)ମତ୍ସ୍ୟବିଶେଷ, ଚେଙ୍ଗମାଛ ।

ଚଳଦଳ—ପୁଂ.ବି.(ବ.ବ୍ରୀ) ଅଶ୍ୱତ୍ଥବୃକ୍ଷ ।

ଚଳନ—କ୍ଳୀ.ବି.(ଚଳ+ଭା.ଅନ)କମ୍ପନ, ଗତି, ଭ୍ରମଣ, ଚାଲି, ଚାଲ୍, ଧୂରଣ, ଅନୁଷ୍ଠାନ, ଦୋହଲିବା. ହଲିବା,ଚାଲିବାର ରୀତି, ରୀତି,ଆଚାର, ବ୍ୟବହାର, ଆଭ୍ୟାସ, ( ପୁଂ.ବି ) ଚରଣ, ପଦ, ଗୋଡ଼, (ଗଣିତ ଜ୍ୟୋତିଷ) ଗ୍ରହାଦିର ସଞ୍ଚାର, ଏକରାଶିରୁ ଅନ୍ୟ ରାଶିକୁ ଗମନ, ଦେଶାଚାର, ହାତିବନ୍ଧା ଦଉଡ଼ି, ଦିନ ଓ ରାତି ସମାନଥିବା ସମୟରେ କ୍ରାନ୍ତିପାତ ବା ବିଷୁବରେଖାର ଗତି,(ଗ୍ରା. ବି ) ପରସ୍ପର ସଙ୍ଗେ ସାମାଜିକ ସମ୍ପର୍କ, ବି॰. (କ.ଅନ) ଗତିଶୀଳ, କମ୍ପଯୁକ୍ତ, (ପୁଂ.ସ୍ତ୍ରୀ.ବି) ହରିଣ ।

ଚଳନକ—ପୁଂ.ବି.(ଚଳନ+କ) ଚଣ୍ଡାତକ ନର୍ତ୍ତକୀମାନେ ପିନ୍ଧିବା ଘାଗରା, କାଞ୍ଚଲି ।

ଚଳନକଳନ—ବି.(ଷତତ୍)ଜ୍ୟୋତିଷରେ ଯେଉଁ ଗଣନା ଦ୍ୱାରା ପୃଥିବୀର ଗତିର ତାରତମ୍ୟ ଅନୁସାରେ ଦିନରାତି ବଢ଼ିବା ଓ କମିବାର ହିସାବ କରାଯାଏ ।

ଚଳନକ୍ଷମ—ପୁଂ.ବି॰. (ଚଳନ+କ୍ଷମ+

କ.ଅ) ଚାଲି ଚାଲିବାକୁ ସମର୍ଥ, ଚଳନ-ସନ୍ଧ ।

**ଚଳନକ୍ଷମତା**—ବି. (ଭତତ୍ର) ଚାଲିବାର ସାମର୍ଥ୍ୟ, ଚଳଚ୍ଛକ୍ତି ।

**ଚଳନଶିଳା**—ସ୍ତ୍ରୀ. ବି. ବୃନ୍ଦାବନାନ୍ତର୍ଗତ ଗୋଟିଏ ସ୍ଥାନ, ଶ୍ରୀକୃଷ୍ଣଙ୍କ ଲୀଳାଭୂମି ।

**ଚଳନଶୀଳ**—ବି°. ଗତିବିଶିଷ୍ଟ, ଗତିଶୀଳ ।

**ଚଳନସନ୍ଧ**—ଗ୍ରା. ବି°. କାର୍ଯ୍ୟ ଚଳିବାର ଉପଯୁକ୍ତ, ଯାହାଦ୍ୱାରା କାମ ଚଳି-ପାରେ, ସାଧାରଣରେ ପ୍ରଚଳିତ ।

**ଚଳନା**—ସ୍ତ୍ରୀ.ବି° (ଚଳନ+ଆ) ଚଳନର ସ୍ତ୍ରୀଲିଙ୍ଗ, ଦୁଷ୍ଟା, ଅସଚ୍ଚରିତ୍ରା (ସ୍ତ୍ରୀ) ।

**ଚଳନାର୍ହ**—ବି°. ଯାହା ଚଳିବାରଯୋଗ୍ୟ, ଚଳନସନ୍ଧ ଦେଖ ।

**ଚଳନିକା**—ସ୍ତ୍ରୀ. ବି. ( ଚଳନକ+ଆ ) ରେଶମୀ ଝାଲର ।

**ଚଳନୀ**—ସ୍ତ୍ରୀ.ବି.(ଚଳନ+ଈ) ପରିଧେୟ ବସ୍ତ୍ରବିଶେଷ, ଘାଗରା, ଗଜବନ୍ଧନୀ, ବାଘା ।

**ଚଳନୀୟ**—ବି°. ( ଚଳନ+ସଂ.ଅନୀୟ ) ଗମନୀୟ, ବ୍ୟବହାର ଯୋଗ୍ୟ, ପ୍ରଚଳିତ, ଚଳିବାର ଯୋଗ୍ୟ, ଚଳୁଥିବା ।

**ଚଳନ୍ତ**—ଗ୍ରା. ବି°. (ସଂ-ଚଳତ୍) ପ୍ରଚଳିତ, ଚଳୁଥିବା, ଗତିଶୀଳ, ଜଙ୍ଗମ, ଅଧୁନା ବ୍ୟବହୃତ, ଉପସ୍ଥିତ, ବର୍ତ୍ତମାନ ଘଟୁଥିବା, ଅଧୁନା ଲକ୍ଷିତ, ବ୍ୟବହାରରେ ଯାହାର ନେବା ଦେବା ହେଉଅଛି, ଅସ୍ଥାବର ସମ୍ପତ୍ତି, (ଗ୍ରା.ବି) ଚଳନ୍ତମାଲ ଦେଖ ।

**ଚଳନ୍ତପ୍ରତିମା**—ଗ୍ରା. ବି. ବିଜେ ପ୍ରତିମା; ପ୍ରତିନିଧିରୂପେ ସ୍ଥାପିତ ଦେବମୂର୍ତ୍ତି ।

**ଚଳନ୍ତମାଲ**—ଗ୍ରା. ବି. ଚଳନ୍ତ ସମ୍ପତ୍ତି, ଅସ୍ଥାବର ଧନ, ଯେଉଁ ସମ୍ପତ୍ତିକୁ ସ୍ଥାନାନ୍ତରିତ କରିଯାଇପାରେ ।

**ଚଳନ୍ତମୁଦ୍ରା**—ଗ୍ରା. ବି. ପ୍ରଚଳିତ ମୁଦ୍ରା, ଯେଉଁ ମୁଦ୍ରା ଧନାଦର ବିନିମୟରେ ବ୍ୟବହୃତ ହୁଏ, ଘଷରା ହୋଇ ନଥିବା ମୁଦ୍ରା ।

**ଚଳପକ୍ଷ**—ଗ୍ରା. ବି. ସଚଳଅବସ୍ଥା, ଉତ୍ତମ ସାଂସାରିକ ଅବସ୍ଥା, କୌଣସି କାର୍ଯ୍ୟ ଅଟକି ନ ଯାଇ ଚଳିଯିବା ଅବସ୍ଥା ।

**ଚଳପଟ**—ଗ୍ରା. ବି. ଚଳପକ୍ଷ ଦେଖ ।

**ଚଳପତ୍ର**—ପୁଂ.ବି. (ବ.ବ୍ରୀ) ଅଶ୍ୱତ୍ଥବୃକ୍ଷ ।

**ଚଳପାଣି**—ଯୁସୁଫଜଇ ଏବଂ ଲୁନଖୋର ଜିଲାରେ ପ୍ରବାହିତ ଗୋଟିଏ ନଦୀ ।

**ଚଳପ୍ରଚଳ**—ଗ୍ରା.ବି. ଗମନାଗମନ, ପରସ୍ପର ମଧ୍ୟରେ ସଂସ୍ରବ, ଗତିବିଧି, (ବି°) ବନ୍ଧ ଶିଠି ମାତ୍ରାରୁ ସାମାନ୍ୟ ମାତ୍ରାରେ, କମ୍‌ବେଶି, ଯାତାୟାତ, ପରସ୍ପରମଧ୍ୟରେ ସଂସ୍ରବଯୁକ୍ତ ।

**ଚଳବିଚଳ**—ଗ୍ରା.ବି. ଚଳପ୍ରଚଳ ଦେଖ

**ଚଳମାଡ଼ିବା**—ଗ୍ରା. ବି. ବିରକ୍ତି ବୋଧ-ହେବା, କାର୍ଯ୍ୟରେ ଦୁରାଗ୍ରହ ବା ଆଳସ୍ୟ ବା ବ୍ୟାପାର ହୀନତା ଯୋଗୁଁ ବିରକ୍ତି ବୋଧହେବା, କଷ୍ଟାଲାଗିବା ।

**ଚଳମୁକୁଟିଆ**—ଗ୍ରା. ବି°. ମସ୍ତକଚାଳନ-ହେତୁରୁ ଯେଉଁମାନଙ୍କର ମୁକୁଟ ଇତ-ସ୍ତତଃ ସଞ୍ଚାଳିତ ହେଉଥାଏ ।

**ଚଳସଂକ୍ରାନ୍ତି**—ସ୍ତ୍ରୀ. ବି. ରାଶ୍ୟଂଶରେ ରବି-ପ୍ରଭୃତି ଗ୍ରହମାନଙ୍କର ପ୍ରଭ୍ରସଞ୍ଚାର ।

**ଚଳସି**—ଗ୍ରା. କ୍ରି; (ପ୍ରା-ପଦ୍ୟ) (ତୁମ୍ଭେ) ଯାଅ, ଚାଲ ।

**ଚଳା**—ସ୍ତ୍ରୀ. ବି. ( ଚଳ+ଆ ) ଲକ୍ଷ୍ମୀ, ଗନ୍ଧଦ୍ରବ୍ୟ ବିଶେଷ, ବିଦ୍ୟୁତ୍, ଛନ୍ଦୋ-ବିଶେଷ, (ବି°) ଚଳର ସ୍ତ୍ରୀଲିଙ୍ଗ, ଚଞ୍ଚଳା, ଅସ୍ଥିରା, ( ଗ୍ରା. ବି ) ବିଚଳିତହେବା, ଟିପଣା, ସଂକ୍ଷିପ୍ତ ହିସାବ, ପ୍ରେରିତ ଟଙ୍କା ବା ଜିନିଷର ତାଲିକା, ଚାଲାଣ, ଚଳ, ପୋଷ ।

**ଚଲା**—ଗ୍ରା. ବି. ଚାଲୁଣୀଦ୍ୱାରା ଚାଲିବା କର୍ମ, ଚାଲିବା, ଅଳ, ନଦୀର ପାଣି କମିଯିବାଯୋଗୁଁ ଲୋକେ ନଈରେ ପଶି ନଈ ପାରହେବା ଅବସ୍ଥା, ଚାଲୁଣୀ, (ଗ୍ରା.ବି°) ଯେଉଁ ପଥରେ କେବଳ ପାଦରେ ଚାଲିଯିବାକୁ ହୁଏ, ନଦୀର ଯେଉଁ ଅଂଶରେ ମନୁଷ୍ୟ ପଶି ଚାଲିଯାଇ ପାରେ, (ପ୍ରା. ଗଞ୍ଜା. ବି) ଘୋଳଦହି, ଚହ୍ଲା ।

**ଚଳାଇବା**—ଗ୍ରା. କ୍ରି. ଚାଳିତ କରିବା, ଚାଳିବା, ଗତିକରାଇବା, ଅନ୍ୟଲୋକକୁ କାର୍ଯ୍ୟ କରାଇବା, କାମଅନ୍ତାମ କରିବା, କାମ ଚଳାଇବା, ନେତାରୂପେ ପରି-ଚାଳନ କରିବା, ବରକ୍ତ କରିବା, ଢକ୍-କରିବା, ଲଗାଇବା, କୌଣସି ନୂତନ ନିୟମ ପ୍ରବର୍ତ୍ତନ କରିବା, କୌଣସି ଜାତିଚ୍ୟୁତ ବା ନବାଗତ ବ୍ୟକ୍ତିକୁ ସମାଜଭୁକ୍ତ କରିବା, ଅପ୍ରଚଳିତ ବସ୍ତୁକୁ ଲୋକସାଧାରଣରେ ପ୍ରଚଳିତ କରାଇବା, ସ୍ଥାନାନ୍ତରକୁ ପଠାଯିବାର ଉପାୟ କରିବା, କୌଣସି ଦ୍ରବ୍ୟ ବା ଔଷଧା-ଦିକୁ ବ୍ୟବହାର କରିବାକୁ ନିଜକୁ ଅଭ୍ୟସ୍ତ କରିବା, କୌଣସି ବ୍ୟକ୍ତିର ଅଭାବଆଦି ପୂରଣ କରିବା ।

**ଚଲାଇବା**—ଗ୍ରା. କ୍ରି. ଚାଲିବା କ୍ରିୟାର ଣିଜନ୍ତରୂପ, କୌଣସି ବ୍ୟକ୍ତିକୁ ପାଦ-ଚାରଣଦ୍ୱାରା ଗନ୍ତକରିବାର ଉପାୟ କରିବା, ଚାଲୁଣୀଦ୍ୱାରା କୌଣସି ବସ୍ତୁରୁ ସୂକ୍ଷ୍ମାଂଶ ବାହାର କରିବା, ପ୍ରଚ୍ଚରିତ କରିବା, ଜାରିକରିବା, ଅଙ୍ଗରେ ଅସ୍ତ୍ରାଦି ପ୍ରୟୋଗ କରିବା, ତନଖିବା, ସୁପରିଚାଳିତ କରିବା, ଚାଲିଯିବା, ଗମନ କରିବା, କୌଣସି ସ୍ଥାନ ତ୍ୟାଗ କରିବା, ମୃତ-ହେବା, ପରଲୋକ ଗମନ କରିବା ।

**ଚଲାକ୍**—ଯା. ବି°.(ସଂ-ଚାଲକ) ବୁଦ୍ଧିମାନ୍, ଚତୁର, ଧୂର୍ତ୍ତ, ଚାଲବାଜ୍ ।

**ଚଲାକ୍‌ଚତୁର**—ଗ୍ରା. ବି°. ଚତୁର, ଧୂର୍ତ୍ତ ଓ ଚତୁର ।

**ଚଲାକି**—ଗ୍ରା. ବି. ପାଦରେ ଚାଲିବା, ପଦବ୍ରଜ, ପାଦଚାରଣ, (ଯା.ବି) ତୀକ୍ଷ୍ଣ-ବୁଦ୍ଧି, ଚତୁରତା, ଫନ୍ଦ, ଧୂର୍ତ୍ତତା, (ଗ୍ରା.ବି°) ଯେଉଁବାଟରେ ଗାଡ଼ିଘୋଡ଼ାର ବ୍ୟବହାର କରାଯାଇ ନ ପାରେ କେବଳ ଗୋଡ଼ରେ ଚାଲିବାକୁ ହୁଏ ।

**ଚଲାକିଆ**—ଗ୍ରା. ବି°. ଚଲାକି ଦେଖ ।

**ଚଳାଚଳ**—ପୁଂ. ବି°. ( ଚଳ+ଚଳ ) ହରିଣ, କୋଲ, ସର୍ବଦା ଗତିବିଶିଷ୍ଟ, ଇତସ୍ତତଃ ଗତିଶୀଳ, ପରିବର୍ତ୍ତନଶୀଳ,

(ଚଳ+ଅଚଳ) ପ୍ରଚଳିତ ଓ ଅପ୍ରଚଳିତ, ବ୍ୟବହୃତ ଓ ଅବ୍ୟବହୃତ, ଚଳନ୍ତ ଓ ଅଚଳନ୍ତ ( ପଦାର୍ଥ ) ଅସ୍ଥି-ଭଙ୍ଗାନ; ଆଂଶିକ ଚଳୁଥିବା ପୁଣି ଅଚଳ ହେବା (ଅସ୍ଥି ଟୁଟିବା), (ବ) କାକ, ବାକ୍ୟ, (ଗ୍ରା.ବ) ପରସ୍ପର ମଧ୍ୟରେ ସାମାଜିକ ଘନିଷ୍ଠତା ବା ସମ୍ଭବ, ଚଳାଚଳ, କାର୍ଯ୍ୟଚଳନ, ଗମନାଗମନ, ଚଳପ୍ରଚଳ, ସାଂସାରିକ ସ୍ୱାଚ୍ଛନ୍ଦ୍ୟ,(ଗ୍ରା.ବିଂ)ଚଳପ୍ରଚଳ ଦେଖ ।

ଚଳାଚଳି—ଗ୍ରା. ବ. (ସଂ-ଚଳନ) ପରସ୍ପର ମଧ୍ୟରେ ସମ୍ଭବ, କାର୍ଯ୍ୟଚାଳନ, କାର୍ଯ୍ୟ ସମ୍ପାଦନ, ସାମାଜିକ ସମ୍ଭବ, ଯାତାୟାତ ।

ଚଳଚଳ—ଗ୍ରା. ବ. ପାଦଦ୍ୱାରା ଗମନ, ପାଦରେ ଯିବା, ଗୃହଭିତରେ ବୁଲିବା ।

ଚଲାଣ—ଗ୍ରା. ବିଂ. ( ସଂ-ଚାଳକ ) ଯେ ରାଜାଙ୍କର କାର୍ଯ୍ୟ ଚଳାନ୍ତି, ( ଗ୍ରା. ବ) ଚଲଣ ଦେଖ ।

ଚଲଣ--ଗ୍ରା.ବ. ପଣ୍ୟଦ୍ରବ୍ୟାଦିର ପ୍ରେରଣ, ରପ୍ତାନି, ଧନାଦିର ପ୍ରେରଣ, ପୋଲିସଦ୍ୱାରା ଧୃତଅପରାଧୀଙ୍କୁ ମାଜିଷ୍ଟ୍ରେଟଙ୍କ ନିକଟକୁ ବିଚାରାର୍ଥପ୍ରେରଣ କରିବା, ପ୍ରେରିତ ପଣ୍ୟଦ୍ରବ୍ୟସଙ୍ଗେ ପଠାଯିବା ତାଲିକା, ରାଜକୋଷରେ ଟଙ୍କାଦାଖଲ କରିବାର ସୂଚକ ବିବରଣ ପତ୍ର,ଚଲା ।

ଚଲଣକରିବା—ଗ୍ରା. କ୍ରି. ଅପରାଧୀଙ୍କୁ ଗିରଫଦାର କରି ବିଚାରାର୍ଥେ ପ୍ରେରଣ କରିବା, ଧନାଦି ପ୍ରେରଣ କରିବା, ପଣ୍ୟଦ୍ରବ୍ୟ ରପ୍ତାନି କରିବା, କୁଲିମାନଙ୍କୁ ଦୂରଦେଶକୁ ପଠାଇବା ।

ଚଲଣି—ଗ୍ରା. ବ. ଟଙ୍କା ବା ଜିନିଷ ପଠାଇବା, (ଗ୍ରା. ବିଂ) ପଠାଯାଉଥିବା (ଦ୍ରବ୍ୟ),ରପ୍ତାନିର ଉପଯୋଗୀ,ବାହାରିଥ ପ୍ରେରିତ (ଅପରାଧୀ) । [ ଅସ୍ୱାଭାବିକ ।

ଚଲାତଙ୍କ—ପୁଂ.ବ. ବାତରୋଗବିଶେଷ,

ଚଲାପାଙ୍ଗ—ବ. (କ.ଧା) ଚଞ୍ଚଳ ଚକ୍ଷୁକୋଣ, ଇତସ୍ତତଃ ସଞ୍ଚାଳିତ ଚକ୍ଷୁର କୌଣସି ଦୃଷ୍ଟି, (ବିଂ-ବ.ବ୍ରୀ) ଚଞ୍ଚଳ, ଅପାଙ୍ଗଯୁକ୍ତ (ବ୍ୟକ୍ତି) ।

ଚଲାବଇ—ଗ୍ରା. ପଦ୍ୟ. କ୍ରି. ଚଲାଏ ।

ଚଲବୁଲ—ଗ୍ରା. ବ. ଯିବାଆସିବା,ଗମନାଗମନ, ପାଦଗୁରଣ, (ବିଂ) ଇତସ୍ତତଃ ଭ୍ରମଣ କରୁଥିବା ।

ଚଲ—ପୁଂ. ବିଂ. ରାଜମାଷ, ବରବଟି, ଉଦ୍ଭିଦ୍‌ବିଶେଷ ।

ଚଲଉଠିବା—ଗ୍ରା.କ୍ରି. ହଠାତ୍ ରାଗିଯିବା, ରାଗାନ୍ୱିତହେବା । [ ହେବା ।

ଚଲଗୁଲିଯିବା—ଗ୍ରା.କ୍ରି.(କାର୍ଯ୍ୟ) ସମାଧା-

ଚଳିତ—ବିଂ. (ଚଳ+କ୍ତ) କମ୍ପିତ, ଅସ୍ଥିର; କମ୍ପଯୁକ୍ତ, ଗତ, ପ୍ରାପ୍ତ, ଜ୍ଞାତ ।

ଚଳିତବ୍ୟ—ବିଂ. ( ଚଳ+ତବ୍ୟ ) ଗନ୍ତବ୍ୟ, ପ୍ରଚଳିତ ହେବାର ଯୋଗ୍ୟ ।

ଚଳିବା—ଗ୍ରା. କ୍ରି. ସ୍ଥାନାନ୍ତରକୁ ଯିବା, ଗମନକରିବା,କମ୍ପାନ୍ୱିତହେବା,ହଲିବା, ପ୍ରଚଳିତହେବା, ସମାଜରେ ଚଳନ-ଭୋଜନାଦି କରିବାକୁ ଅନୁମତି ପାଇବା, ସଙ୍ଗତହେବା, ବଢ଼ିବା, କ୍ରମାଗତ ଘଟିବା ବା ହେବା, ମରିବା,ମହାଯାତ୍ରା କରିବା, ଘଣ୍ଟିକା ଯନ୍ତ୍ରାଦି ଠିକ୍‌ମତେ କାର୍ଯ୍ୟକରିବା, ସଂସାରରେ ସୁଖରେ ଜୀବନଯାପନ କରିବା ଶରୀରରେ ସହ୍ୟହେବା, ଦେହରେ ଯିବା, ଚଢ଼ିବା, ଲାଗିବା, ସମାଜରେ ପ୍ରକାଶ୍ୟରେ ବ୍ୟବହୃତହେବା, ପ୍ରବୃତ୍ତହେବା,ଅଭିପ୍ରେତ କାର୍ଯ୍ୟରେ ନିଯୁକ୍ତହେବା, କୌଣସି ଗ୍ରହ ଏକରାଶିର ସୀମାଟପି ଅନ୍ୟରାଶିକୁ ଯିବା, ଆରବ୍ଧହେବା,ପ୍ରବର୍ତ୍ତିତହେବା,ପରଷାଯିବା, ଖାଦ୍ୟଦ୍ରବ୍ୟ ଖାଇବା ପାଇଁରେ ପରଷୋଯିବା, ସମାଜରେ ଖାଇବାକୁ ଆରମ୍ଭ କରିବା, ବାସ କରିବା ।

ଚଳମରିବା—ଗ୍ରା. କ୍ରି. ଅତ୍ୟନ୍ତ ବିରକ୍ତ ହେଉରୁ ବିଷମ ମାନସିକ କଷ୍ଟ ବୋଧକରିବା ।

ଚଳିଷ୍ଣୁ—ବିଂ. (ଚଳ+ଇଷ୍ଣୁ) ଗମନଶୀଳ, ଗମନୋଦ୍ୟତ ।

ଚଲହେବା—ଗ୍ରା. କ୍ରି. କୌଣସି ବ୍ୟକ୍ତି ପ୍ରତି ବିରକ୍ତହୋଇ ଗାଳିଦେବା ବା ବିରକ୍ତି ପ୍ରକାଶ କରିବା ।

ଚଳୁ—ପୁଂ. ବ. ( ଚଳ+ଉ ) ଗଣ୍ଡୂଷ, ଗଣ୍ଡୂଷରେ ଧରିବା ଜଳ, ଭୋଜନାଦ୍ୟରେ ଓ ଭୋଜନାନ୍ତରେ ବ୍ରାହ୍ମଣାଦିଙ୍କର କରିବା ଆଚମନ, ( ଗ୍ରା. ବ ) (ଲ.ଅର୍ଥ) ଭୋଜନ ।

ଚଳୁଆ—ଗ୍ରା. ପୁଂ. ବିଂ. ରୋଗାକ୍ରାନ୍ତ, କୋପନସ୍ୱଭାବ, ଚଞ୍ଚଳ ।

ଚଳୁକ—ପୁଂ. ବ. (ଚଳ+ଉକ) ପ୍ରସୃତ, ମେଲାହାତ ପାପୁଲି, ପୋଷ, କ୍ଷୁଦ୍ରଖଣ୍ଡ ।

ଚଳୁକରିଦେବା—ଗ୍ରା. କ୍ରି. ( ଲ.ଅର୍ଥ ) ଏକାଥରକେ ଭୋଜନ କରିଦେବା, ଖାଇଦେବା, ଆତ୍ମସାତ୍ କରିବା ।

ଚଳୁକରିବା—ଗ୍ରା. କ୍ରି. ଗଣ୍ଡୂଷ ପରିମିତ ଜଳ ପାନକରିବା; ବ୍ରାହ୍ମଣଙ୍କର ଖାଇବା ପୂର୍ବରୁ ଓ ପରେ ଚଳୁବିଧି ପାଳନ କରିବା, (ଲ.ଅର୍ଥ) ଭୋଜନ କରିବା, ଆତ୍ମସାତ୍ କରିବା,ଭୋଜନରେ ବସିବା ।

ଚଳୁଧରିବା—ଗ୍ରା. କ୍ରି. ବ୍ରାହ୍ମଣମାନଙ୍କର ଭୋଜନ କରିବା ପୂର୍ବରୁ ଚଳୁ କରିବାକୁ ଗଣ୍ଡୂଷ ପରିମିତ ଜଳ ହାତରେ ଧରିବା, (ଗ୍ରା. ଲ.ଅର୍ଥ) ଭୋଜନ ଆରମ୍ଭ କରିବା ।

ଚଳୁଲାଗିବା—ଗ୍ରା. ବ. ବ୍ରାହ୍ମଣମାନଙ୍କର ପଂକ୍ତିଭୋଜନ ସମୟରେ ଭୋଜନ ପୂର୍ବରୁ ଆଚମନ ବା ଚଳୁବିଧି ପାଳନ କରିବା, ଆଚମନବିଧିର ପାଳନ ।

ଚଳେନ୍ଦ୍ରିୟ—ବିଂ. (ବ.ବ୍ରୀ)ଚଞ୍ଚଳମନାଃ, ଅସ୍ଥିରଚିତ୍ତ, ଅଜିତେନ୍ଦ୍ରିୟ, ( ସ୍ତ୍ରୀ ) ଚଳେନ୍ଦ୍ରିୟା ।

ଚଳେଷୁ—ପୁଂ. ବ. (ବ.ବ୍ରୀ) ମନ୍ଦଧାନୁଷ୍କ, ଯାହାର ବାଣ ଲକ୍ଷ୍ୟଭେଦ ନ କରେ ।

ଚଲୋନ—ଗ୍ରା.ବ.ଭାଗଲପୁରର ଗୋଟିଏ ନଦୀ । [ ତରଙ୍ଗ ।

ଚଳୋର୍ମି—ବ. ( କ.ଧା ) ନର୍ତ୍ତନଶୀଳ

ଚହ୍ଲା—ଗ୍ରା. ବ. ଘୋଳଦହି । [ପୋକ ।

ଚହ୍ଲାପୋକ—ଗ୍ରା. (ସମ୍ବ) ବ. ଘଉଡ଼ୁଣୀ

ଚଡ୍‌ଚଡ୍—ଗ୍ରା. ଅବ୍ୟ. (ଧ୍ୱନ୍ୟନୁକରଣ) ଅଳ୍ପପାଣିରେ ବା କାଦୁଅରେ ଚାଲି-

ବାର ବା ହାତପାପୁଲି ବାଡ଼େଇବାର ଶବ୍ଦ ।
ଚବକା—ଗ୍ରା. ବି. ଅତିକ୍ଷୁଦ୍ର ଅଗଭୀର ଜଳାଶୟ ।
ଚବର୍ଗ—ପୁଂ. ବି. ( ୬ତତ୍ପୁ ) ୨ୟବର୍ଗ, 'ଚ, ଛ, ଜ, ଝ, ଞ' ଏହି ପଞ୍ଚ ବ୍ୟଞ୍ଜନବର୍ଣ୍ଣ ।
ଚବର୍ଗୀୟ—ବିଂ. ଚବର୍ଗ ସମ୍ବନ୍ଧୀୟ ।
ଚବନ—ବି. ଗୁଇଁକାଠ ଦେଖ ।
ଚବଲ—ପୁଂ. ବି. ରାଜମାଷ ।
ଚବା—ପ୍ରା, (ସମ୍ବ) ବି. କାଇଁଣ ।
ଚବି—ସ୍ତ୍ରୀ.ବି. ଚବ୍ୟ, ଚଇଁ, ଗୁଇଁକାଠ ।
ଚବିକ୍କ—କ୍ଲୀ. ବି. ଚବକା, ଗୁଇଁକାଠ ।
ଚବିକା—ସ୍ତ୍ରୀ. ବି. ବୃକ୍ଷବିଶେଷ, ଗୁଇଁକାଠ । [ ସ୍ୱଭାବ ।
ଚବିଲି—ଗ୍ରା.ବିଂ.ଛଇଳା, ଚଗଲା, ଚପଳ
ଚବିଶାକୁଟା—ଗ୍ରା.ବି. ୨୪ ଗୌଣି ଧାନ କୁଟାଦେଲେ ଯେଉଁଥିରୁ ୧୦ ଗୌଣୀ ଚାଉଳ ପାଇବା ରୀତି ।
ଚବିଶ—ଗ୍ରା. ବି. ୨୦ରୁ ୪ଅଧିକ ସଂଖ୍ୟା, ଚବିଶସଂଖ୍ୟା, ( ବିଂ ) ୨୪ ସଂଖ୍ୟକ, ୨୪ର ପୂରକ । [ ରାତ୍ର ।
ଚବିଶିଘଣ୍ଟା—ଗ୍ରା.ବି. ଦିନରାତ, ଅହୋ-
ଚବିଶିଦେଓିଆମାଣ—ଗ୍ରା.ବି. ଉତ୍କଳଦେଶ ପ୍ରଚଳିତ ଭୂମି ପରିମାଣବିଶେଷ, ଏକ ଏକର ।
ଚବିଶିଦସ୍ତିପଦକା—ଗ୍ରା. ବି. ଉତ୍କଳର ଭୂମି ମାପିବାର ନଳବିଶେଷ, ଫୁ୯୦ଟ ଇଞ୍ଚ ୯ଯବ ପରିମାଣ ଲଠା ।
ଚବୀ—ସ୍ତ୍ରୀ. ବି. ଚବିକା ଦେଖ ।
ଚବେଣା—ଗ୍ରା. ବି. ଚାଉଳ ମୁଗ ବୁଟ ଓ ଚଣାଆଦି ଶସ୍ୟ ଭଜା ହୋଇ ଚୋବା-ଇବା ପାଇଁ ବ୍ୟବହୃତ ଖାଦ୍ୟ ।
ଚବ୍ୟ—କ୍ଲୀ. ବି. ଚବିକା, ଗୁଇଁକାଠ, କଷାଗଛ, ( ଗ୍ରା.ବିଂ ) ଚୋବାଇବାର ଯୋଗ୍ୟ ।
ଚବ୍ୟକ—କ୍ଲୀ. ବି. ଚବିକା, ଗୁଇଁକାଠ ।
ଚବ୍ୟକାଷ୍ଠ—ବି. ଗୁଇଁକାଠ ।
ଚବ୍ୟଜା—ସ୍ତ୍ରୀ, ବି.ଗଜପିପ୍ପଳୀ,ଗଜପିମ୍ପଲା ।
ଚବ୍ୟଫଳ—କ୍ଲୀ. ବି. ଗଜପିପ୍ପଳୀ ।
ଚବ୍ୟା—ସ୍ତ୍ରୀ. ବି. (ଚବ୍ୟ+ଆ) ଚବିକା, ଗୁଇଁକାଠ, ବଚ, କାପାସୀ ।
ଚଂବା—ପ୍ରା.(ସମ୍ବ)ବିଂ. ହ୍ରସ୍ୱ, କାମୁଡ଼ା ।
ଚଶମ—ଯା. ବି. ଚକ୍ଷୁ, କୂପ, ଝରଣ ।
ଚଶମଖୋର—ଯା.ବିଂ.ଯେ କିଛି ଦେଖି-ପାରେନାହିଁ, ଯାହାର ଚକ୍ଷୁରେ ଲଜ୍ଜା-ନାହିଁ, ବେମୋହମତିଆ ।
ଚଶମଖୋରି—ଯା.ବି.କିଛି ନ ଦେଖିବା, ଅକୃତଜ୍ଞତା । [ ଭସ୍ର ।
ଚଶମା—ଯା. ବି. ପ୍ରଚକ୍ଷୁ, ନୟନାବରଣ,
ଚଷକ—ପୁଂ.କ୍ଲୀ.ବି.( ଚଷ+ଣି.ଅକ ) ମଦ୍ୟପାନ ପାତ୍ର, (ମି.ଅ) ମଧୁ, ମଦ୍ୟ-ବିଶେଷ, ସୁରା ।
ଚଷଡ଼—ଗ୍ରା.ବି.ମୂର୍ଖ ଓ ନିର୍ବୁଦ୍ଧିଆ ଚଷାଭୂଷା ଲୋକ ।
ଚଷଣ—ପୁଂ. ବି. (ଚଷ+ଅନ) ଭକ୍ଷଣ, ବଧ, କ୍ଷୟ ।
ଚଷା—ଗ୍ରା. ବି. ଚଷିବା, କର୍ଷଣ, ଯେ ଚାଷକରେ, କୃଷକ ଜାତିବିଶେଷ,(ବିଂ) କୃଷ୍ଟ, ଯାହା ଚଷା ହୋଇଅଛି, (ଲ. ଅର୍ଥ)ଇତର ଜନ,ଅସଭ୍ୟ ବ୍ୟକ୍ତି ।
ଚଷାଇବା—ଗ୍ରା. କ୍ରି. ଚଷିବାକ୍ରିୟାର ଣିଜନ୍ତରୂପ,ଅନ୍ୟଦ୍ୱାରା ଚାଷ କରାଇବା ।
ଚଷାଚଷି—ଗ୍ରା.ବି.କୃଷିକର୍ମ, ଭୂକର୍ଷଣ ।
ଚଷାଟିଆ—ଗ୍ରା. ବିଂ. ଚଷାଣ୍ଡିଆ, ଚଷା-ପର ନିର୍ବୋଧ, ଅଖଡ଼ୁଆ, ଅଭଦ୍ର, ମଫସଲିଆ, ଓଲୁ ।
ଚଷାପକ୍ଷୀ—ଗ୍ରା.ବି. ଭରଦ୍ୱାଜ, ଭରଢଆ ପକ୍ଷୀ, ସ୍ୱର୍ଣ୍ଣଚୂଡକ ପକ୍ଷୀ, ଚଷାପୁଅ ଚଢେଇ ।
ଚଷାପୁଅ—ଗ୍ରା. ବି. ଚଷାପକ୍ଷୀ ଦେଖ, ଚଷାଘରର ସନ୍ତାନ, କୃଷକପୁତ୍ର ।
ଚଷାଭାଗ—ଗ୍ରା.ବି. ଜମିଦାରଠାରୁ ପ୍ରଜା ଭାଗରେ ନେଇ ଚାଷ କରିଥିବା ଜମିର ଉତ୍ପନ୍ନରୁ ଜମିଦାରଙ୍କ ପ୍ରାପ୍ୟ ଅଧିକ ଗଲାପରେ ପ୍ରଜାର ପାରିଶ୍ରମିକ ସ୍ୱରୂପ ପ୍ରାପ୍ୟ ଅପର ଅଂଶ ।
ଚଷାଲ—ପୁଂ. ବି. ( ଚଷ+ମି.ଆଲ ) ଯଜ୍ଞୀୟ ପଶୁବନ୍ଧନାର୍ଥ କାଷ୍ଠ, ଯୂପାଗ୍ର-ସ୍ଥିତ କାଷ୍ଠ ବା ଲୌହ ନିର୍ମିତ ବଳୟ, ମଧୁଚକ୍ର, ମଦ୍ୟଫେଣା ।
ଚଷିତ—ବିଂ. ଭକ୍ଷିତ, ହତ, ( ଗ୍ରା.ବିଂ ) କୃଷ୍ଟ, ଯାହା ଚାଷ କରାହୋଇଅଛି ।
ଚଷିବା—ଗ୍ରା. କ୍ରି. ଭୂମିକର୍ଷଣକରିବା ।
ଚଷୀପୋକ—ଗ୍ରା.ବି.ଏକପ୍ରକାର ପୋକ, ଏହା ହାଣ୍ଡିରେ ଜାଭିତରେ ଓ ଲଙ୍ଗରେ ହୁଅନ୍ତି । [ ଗୈପା ।
ଚଷୁ—ଗ୍ରା ବି. (ସଂ-ତୁଷ)ତଷୁ, ଧାନର
ଚଷୁକୁଟା—ଗ୍ରା.ବି.(ଲ.ଅର୍ଥ)ଚଷୁକୁଟିବା-ପରି ନିଷ୍ଫଳ ବା ବୃଥା ପରିଶ୍ରମ, ପଣ୍ଡ-ପରିଶ୍ରମ,ନିଷ୍ଫଳ ଆଲୋଚନା,ବହ୍ୱାରମ୍ଭ ଲଘୁକ୍ରିୟା ।
ଚଷୁକୁଟିବା—ଗ୍ରା.କ୍ରି.(ଲ.ଅର୍ଥ) ବୃଥାପରି-ଶ୍ରମ କରିବା, ଅପ୍ରୟୋଜନୀୟ ବିଷୟର ଆଲୋଚନା କରିବା, ନିଷ୍ଫଳ କାର୍ଯ୍ୟରେ ସମୟ ନଷ୍ଟ କରିବା ।
ଚଷ୍ଟନ—ଗ୍ରା.ପୁଂ.ବି.ଜଣେ କ୍ଷତ୍ରପଡ ରାଜା ।
ଚସମା—ଯା. ବି. କାଚ ଆଦିରେ ନିର୍ମିତ ଚକ୍ଷୁର ଆବରଣ, ପ୍ରଚକ୍ଷୁ ।
ଚହଁଫଳା—ଗ୍ରା.ପୁଂ ଓ ସ୍ତ୍ରୀ.ବିଂ.ଚଗଲିଆ, ଚଳଚଞ୍ଚଳ, ଚଳପ୍ରକୃତିକ (ବ୍ୟକ୍ତି), (ସ୍ତ୍ରୀ) ଚହଁଫଳୀ ।
ଚହଁଳ—ଗ୍ରା. ବି. ଚମକ ଦେଖ ।
ଚହକଚକ୍କଣ—ଗ୍ରା. ବିଂ. ଚାକଚକ୍ୟଯୁକ୍ତ, ବେଶଭୂଷାରେ ସୁସଜ୍ଜିତ, ବିଳାସପ୍ରିୟ ।
ଚହକମହକ—ଗ୍ରା. ବି. ଚାକଚକ୍ୟ ।
ଚହକା—ଗ୍ରା. ବି ଓ ବିଂ.ଚମକା ଦେଖ ।
ଚହଚହ—ଗ୍ରା. ଅବ୍ୟ. (ଧ୍ୱନ୍ୟନୁକରଣ) ଲୋକଗହଳ ବା ଗୋଳମାଳର ଅବ୍ୟକ୍ତ ଶବ୍ଦ, ଗହଗହ. ଚାକଚକ୍ୟ, ଅତ୍ୟନ୍ତ, ଝହଟହ ।
ଚହଚହମନ୍ଦ—ଗ୍ରା. ବିଂ. ଆଡ଼ମ୍ବରପୂର୍ଣ୍ଣ ।
ଚହଟ—ଗ୍ରା, ବି. ଚାକଚକ୍ୟ, ଶୋଭା, କାନ୍ତି, ଆଡ଼ମ୍ବର, ପ୍ରକାଶ, ପ୍ରଚାର, ପ୍ରକଟନ, (ବିଂ) ପ୍ରକାଶିତ, ପ୍ରଚାରିତ, ଚକଚକିଆ, ଉଜ୍ଜ୍ୱଳ ।
ଚହଟଚମ୍ପା—ଗ୍ରା.ସ୍ତ୍ରୀ.ବିଂ.ଫୁଟିଥିବା ଚମ୍ପା-

ଫୁଲପର ସୁନ୍ଦର ଓ ଗୋରା (ସ୍ତ୍ରୀ) ।

ଚହଟଚକଣ—ଗ୍ରା. ବି°. ସର୍ବାଙ୍ଗରେ ସୁନ୍ଦର, ଶୋଭାମୟ, ବାହ୍ୟାଡ଼ମ୍ବରପୂର୍ଣ୍ଣ, (ଗ୍ରା.ବି) କୃତ୍ରିମ ସୌନ୍ଦର୍ଯ୍ୟ, ପ୍ରସାଧନ ଦ୍ୱାରା ପ୍ରସ୍ତୁତ ସୌନ୍ଦର୍ଯ୍ୟ, ଆଡ଼ମ୍ବର ।

ଚହଟନାଗର—ଗ୍ରା. ପୁଂ. ବି°. ସୁବେଶ ସଜ୍ଜିତ ରସିକ ନାଗର, ଛଇଳ ।

ଚହଟା—ଗ୍ରା.ବି.ବିସ୍ତୃତ ସମତଳ ଭୂଖଣ୍ଡ, ବିଷଆଦି ମନୁଷ୍ୟର ମଗଜରେ ବା ଶରୀର ଯାକ ବ୍ୟାପିଯିବା, ଗ୍ରାମପାଖେ ଜଙ୍ଗଲଥିବା ବିସ୍ତୃତ ଭୂଖଣ୍ଡ, (ବି°) ଚପଳ ସ୍ୱଭାବ, ଚପଳମତି ।

ଚହଟାଇବା—ଗ୍ରା. କ୍ରି. ଆମୋଦରେ ଦିଗଦିଗନ୍ତ ପୂର୍ଣ୍ଣକରିବା, ପ୍ରକାଶିତ କରାଇବା, ପ୍ରସାରିତ କରିବା, ଶୋଭିତ କରାଇବା । [ବିଶିଷ୍ଟ ।

ଚହଟିଆ—ଗ୍ରା. ବି°. ଶୋଭାମୟ, କାନ୍ତି-

ଚହଟିବା—ଗ୍ରା. କ୍ରି. (ସୁଗନ୍ଧ) ପ୍ରକାଶିତ ହେବା, ମହକିବା, (ବିଷ) ମନୁଷ୍ୟ ଦେହରେ ବ୍ୟାପିବା, ବିଦ୍ୟୁତାଦି ଉଜ୍ଜ୍ୱଳ ରୂପେ ପ୍ରକାଶିତ ହେବା, (ଦିଗଦିଗନ୍ତ) ସୁବାସରେ ପୂର୍ଣ୍ଣହେବା,ପ୍ରକାଶିତହେବା, (ମାଛଆଦି) ଉପରକୁ ଉଠିବା ।

ଚହଟିହେବା—ଗ୍ରା. କ୍ରି. ଦଣ୍ଡେଇ ମାଛ-ପର ଉପରକୁ ଉଠି ଫଟଫଟ ହେବା, ପ୍ରକାଶିତହେବା ।

ଚହରାଇବା—ପ୍ରା. (ସମ୍ବ)କ୍ରି. ପ୍ରଲୋଭନ ଦେଖାଇବା ।

ଚହଲ—ଗ୍ରା. ବି. ଆନ୍ଦୋଳନ, ଗୋଳ-ମାଳ, ବହୁଲୋକଙ୍କ ମୁଖରବ, ହୁଲର, ଗହଳ, ଭିଡ଼, ପ୍ରକାଶ ।

ଚହଲି—ଗ୍ରା.ବି.ସ୍ପନ୍ଦନ, କମ୍ପନ,କାଦୁଅ, ପଙ୍କ, (ବି°) କର୍ଦ୍ଦମମୟ, ପଙ୍କିଳ ।

ଚହଲା—ଗ୍ରା. ବି°. ଚହଲିଆ ଦେଖ ।

ଚହଲି—ଗ୍ରା.ବି.(ସଂ—ଚକଳ)ଛେଚଲିଆ କୂପପରି ସାନ ଖାତ, ଚୁଆ, ମଳ, ମଇଳା,ପଙ୍କ,(ବି°)କର୍ଦ୍ଦମମୟ, ପଙ୍କୁଆ ।

ଚହଲାଇବା—ଗ୍ରା. କ୍ରି. ଚହଲିବାର ଣିଜନ୍ତରୂପ, ଆନ୍ଦୋଳିତ କରିବା, ହଲାଇବା । [ପ୍ରା.(କଣ୍ଟକ)ମୁଣ୍ଡ ।

ଚହଳି—ଗ୍ରା. ବି. ଚହଲ, ଗୋଳମାଳ,

ଚହଳିଆ—ଗ୍ରା. ବି°. (ସଂ-ଚଳ) ଅସ୍ଥିର, ଚଞ୍ଚଳ, ଯେ ହଲ୍ଲା କରେ ।

ଚହଲିବା—ଗ୍ରା.କ୍ରି. (ସଂ-ଚଳ)ହଲିବା, ହଲଚଲହେବା, ଚଳିବା, ଗତିଯୁକ୍ତ ହେବା, ଅସ୍ଥିରହେବା, କମ୍ପିବା ।

ଚହାଁଚହଁ—ଗ୍ରା.ବି. ଚୁହାଁଚୁହଁ, ଦେଖା-ଦେଖି ।

ଚହ୍ଲା—ଗ୍ରା. ବି. ଘୋଳଦହି, ଚନ୍ଦ ।

ଚା—(ସଂ-ଇଚ୍ଛା)ସ୍ପୃହା, ବାଞ୍ଛା, ଚାହାଗଛ ଓ ପତ୍ର, ଚାହାପତ୍ର ପଚ୍ଚ ତିଆରି ହୋଇ-ଥିବା ପାନୀୟ ।

ଚାଅଲତା—ଗ୍ରା.ବି.ମେଳେଣ୍ଡର,ମାଳେଣ୍ଡା, ଉପମାନ, ଏହା ଆଲକାତରାରୁ ପ୍ରସ୍ତୁତ କରାଯାଏ ।

ଚାଆଁରା—ଗ୍ରା.ବି.ଏକପ୍ରକାର ଘାସ, (ଗ୍ରା. ବି°) ସତେଜ (ବୃକ୍ଷାଦି), ହୃଷ୍ଟପୁଷ୍ଟ ।

ଚାଇ—ଗ୍ରା. ବି. ଗୋଲମରିଚ ଦେଖ, ଚାଇଁକାଠ ।

ଚାଇଁ—ଗ୍ରା.ବି°. (ସଂ-ଚପଳ)ଚଞ୍ଚଳମତି, ଚପଳ, ଚାଲାକ, ଠକ, ଧୂର୍ତ୍ତ, ଚତୁର, କର୍ମଠ, ଢାଉଁଳା, ଉତ୍ତପ୍ତ,(ଗ୍ରା.ବି)ଯେଉଁ ଲୋକ ଆଖି ଆଗରୁ ଜିନସ ଚୋରିକରି ନିଏ,ଧପ୍ପାବାଜ ବା ଠକ ବ୍ୟକ୍ତି,ଠକାମି ।

ଚାଇଁଆ—ଗ୍ରା. ବି°. ଚାଇଁ ଦେଖ ।

ଚାଇଁକରିବା—ଗ୍ରା.କ୍ରି.ତାତିଯିବା, ଉତ୍ତପ୍ତ ହେବା, ଚାଇଁ ଶବ୍ଦକରିବା ।

ଚାଇଁକାଠ—ଗ୍ରା.ବି. (ସଂ-ଚବିକା)ଚଇ-କାଠ । [ଦେଖ ।

ଚାଇଁକିନା—ଗ୍ରା. ଅବ୍ୟ. ଚାଇଁଚାଇଁ

ଚାଇଁଚାଇଁ—ଗ୍ରା.ଅବ୍ୟ.ତୀକ୍ଷ୍ଣସ୍ପର୍ଶ ଅନୁଭୂତ ସହିତ, ଚଆଁ ବା ନିଆଖୁଣ୍ଟା ଦେହରେ ମାଡ଼ିଦେଲେ ଯେଉଁ ଅନୁଭୂତି ହୁଏ ସେହିପରି, ଦେହରେ ଛୁଞ୍ଚି ଫୋଡ଼ି ହୋଇଗଲେ ଯେଉଁ କଷ୍ଟ ଅନୁଭୂତ ହୁଏ, ଶୀଘ୍ରଶୀଘ୍ର, ଘନ ଘନ ଦେହ ଗୋଳି ବନ୍ଧ ହେବାର ଅନୁଭୂତ ସହିତ, ଚେଁଚେଁ ଶବ୍ଦ ।

ଚାଇଁପଖାଳ—ଗ୍ରା. ବି. ଭାତ ଗରମ ଥାଉଁ ଥାଉଁ ସେଥିରେ ପାଣି ଦିଆଯାଇ କରାଯିବା ପଖାଳ, ସଜପଖାଳ ।

ଚାଇଁମୁଗ—ଗ୍ରା. ବି. ଝାଙ୍କମୁଗ,ଖରାଦିନେ ହେବା ଏକପ୍ରକାର ନିକୃଷ୍ଟ ମୁଗ, ସୁନାମୁଗ ।

ଚାଉଁ—ପ୍ରା. ଅବ୍ୟ. ( ଧ୍ୱନ୍ୟନୁକରଣ ) ହଠାତ୍ ତାତିଲା ଧାତୁଖଣ୍ଡ ଦେହରେ ମାଡ଼ିବାର ଅନୁଭୂତ, ହଠାତ୍, ହଠାତ୍ ଭୟପାଇ ଚମକିବା, ଛାନିଆଁ ।

ଚାଉଁକିନା—ଗ୍ରା. ଅବ୍ୟ. ଚାଇଁ ଚାଇଁ ଦେଖ ।

ଚାଉଁଚାଉଁ—ଗ୍ରା. ଅବ୍ୟ. ଚାଉଁଚାଉଁଆ, ଦେଖ; ଚାଇଁଚାଇଁ ଦେଖ ।

ଚାଉଁଚାଉଁଆ—ଗ୍ରା. ଅବ୍ୟ. ନିଗୁଛିଆ ହେବା ଯୋଗୁଁ ଡର ବା ଭୟ, ଭୟ-ପ୍ରଦ (ସ୍ଥାନ),ନିଗୁଛିଆ,ନିର୍ଜନ,କୌଣସି ବସ୍ତୁ ହଠାତ୍ ଉପସ୍ଥିତ ହେବାଯୋଗୁଁ ଭୟ ।

ଚାଉଳ—ଗ୍ରା. ବି. ତଣ୍ଡୁଳ, ତୁଷ ଧା ଚୋପା କଢ଼ାହୋଇଥିବା କେତେକ ଶସ୍ୟବୀଜ, ଏକରତିର ଅଷ୍ଟମାଂଶ (ଓଜନ) ।

ଚାଉଳଧୁଆ—ଗ୍ରା. ବି. ଯେଉଁ ବାଉଁଶ-ଆରେ ଚାଉଳ ରଖି ଧୌତ କରାଯାଏ, ଗୁଳ୍ମବିଶେଷ ।

ଚାଉଳଧୁଆପାଣି—ଗ୍ରା.ବି. ତଣ୍ଡୁଳୋଦକ, ଯେଉଁ ପାଣିରେ ଚାଉଳ ମକଚିହୋଇ ଧୁଆହେବାରୁ ତାହାର ଅଂଶ ବିଦ୍ୟମାନ ଥାଏ ।

ଚାଉଳପକାଇବା—ଗ୍ରା. କ୍ରି. ଅନ୍ନପ୍ରସ୍ତୁତ କରିବା ସକାଶେ ଚୁଲିରେ ବସିଥିବା ପାଣିହାଣ୍ଡିରେ ଧୂଆଚାଉଳକୁ ଛାଡ଼ିଦେବା, (ଲ.ଅର୍ଥ) କୌଣସି କନ୍ୟା କୌଣସି ନିର୍ଦ୍ଦିଷ୍ଟ ପୁରୁଷକୁ ବା ନିର୍ଦ୍ଦିଷ୍ଟ ପରିବାରସ୍ଥ ସନ୍ତାନକୁ ବିବାହକରିବ ବୋଲି ପୂର୍ବରୁ ଗ୍ରାମ ପଣ୍ଡାଙ୍କଦ୍ୱାରା ନିର୍ଦ୍ଦିଷ୍ଟ ହୋଇଥିବା ।

ଚାଉଳଭଜା—ଗ୍ରା. ବି. ଭଜାହୋଇଥିବା ଚାଉଳ,ଭୃଷ୍ଟ ତଣ୍ଡୁଳ, ମୁଢ଼ି ।

ଚାଉଳମୁଗୁରି—ଗ୍ରା.ବି.ବନ୍ୟତରୁବିଶେଷ ।

ଚାଉଳ—ଗ୍ରା.ବି. ଚାଉଳରୁ ପ୍ରସ୍ତୁତ ମଦ୍ୟ ।

ଚାଉଳିଆ—ଗ୍ରା. ବି. ପିଜୁଳି, ଚିଲିକାରେ ମିଳିବା ଏକପ୍ରକାର ମତ୍ସ୍ୟ, ବଡ଼ବଡ଼ କାମୁକୋଳି, (ବି°) ଚାଉଳ ବ୍ୟବସାୟୀ, ଚାଉଳପଣ ଙ୍କାଣୁଆ (ବସ୍ତ୍ର), ପାଟିରେ ଚାଉଳ ଚୋବାଉଥିବା ଅବସ୍ଥାରେ ଉଚ୍ଚାରିତ ହେବ ଭଳି, ଚାଉଳସମ୍ବନ୍ଧୀୟ

ଚାଉଳିଆକଲୋ—ଗ୍ରା. ବି. ଏକଜାତୀୟ କେଳା ।

ଚାଉଳିଆଗଞ୍ଜ—ଗ୍ରା. ବି. ଚାଉଳ ବେପାରର ଆଡ୍ଡା, କଟକ ରେଲଷ୍ଟେସନ ନିକଟବର୍ତ୍ତୀ ହାଟୁଆ ଗ୍ରାମବିଶେଷ ।

ଚାଉଳିଆଗୁଣା—ଗ୍ରା. ବି. ଦୁଇଧାଡ଼ ଲୁଆ ବସାଯାଇଥିବା ମଝିରେ ପଥର ଘସାଥିବା ଏକପ୍ରକାର ଗୋଲ ଗୁଣା, ଯାଉଁଳିଗୁଣା ।

ଚାଉଳିଆପୋକ—ଗ୍ରା.ବି.. ପୁରୁଣା ଚାଉଳରେ ହେବା ଧଳା ଲମ୍ବ କୀଟବିଶେଷ ।

ଚାଉଳକୋକଲି—ଗ୍ରା. ବି. ଏକପ୍ରକାର କୋକଲି ମାଛ ।

ଚାଉଳେଇ ବାଉଳେଇ କଥାକହିବା—ଗ୍ରା. କ୍ରି. ଦରୋଟି କଥାକହିବା, ଅସ୍ପଷ୍ଟ ଭାବରେ କଥା କହିବା, ପାଟିରେ ଚାଉଳ ଚୋବାଇ ଚୋବାଇ କଥା କହିଲେ କଥା ଯେପରି ଅସ୍ପଷ୍ଟ ହୁଏ, ସେହିପରି କହିବା ।

ଚାକ୍—ପ୍ରା. (ମେଢ଼) ବି. ମଧୁଚକ୍ର, ମହୁଫେଣା, (ପ୍ରା.ହି.ବି) ଶଗଡ଼ର ଚକ, କୁମ୍ଭାର ଚକ ।

ଚାକଚକ୍ୟ—କ୍ଲୀ. ବି. (ଚକଚକ+ଯ) ଉଜ୍ଜ୍ୱଳତା, ଚକ୍‌ଚକ୍, ଦୀପ୍ତି, ପାଲିଶ ।

ଚାକଚକ୍ୟବନ୍ତ—ଗ୍ରା. ବି°. ଚକଚକିଆ, ଦୀପ୍ତିଶାଳୀ ।

ଚାକଚକ୍ୟ—କ୍ଲୀ. ବି. (ଚକଚକ+ଯ) ଉଜ୍ଜ୍ୱଳତା, ଚାକଚକ୍ୟ, ମାସୃଣ୍ୟ ।

ଚାକଚିତ୍ରା—ସ୍ତ୍ରୀ. ବି. ଶ୍ୱେତବୃହତୀ ।

ଚାକଦହ—ହୁଗୁଳୀନଦୀ ପାରସ୍ଥ ନଦୀୟା ଜିଲ୍ଲାନ୍ତର୍ଗତ ଗୋଟିଏ ନଗର ।

ଚାକପ୍—ଯା. ବି. ଚାହା ପାନକରିବା ନିମନ୍ତେ ସାଧାରଣତଃ ବ୍ୟବହୃତ ଚିନା-ମାଟିର ଗିନା ବା ପିଆଲା ।

ଚାକର—ପୁଂ.ବି. ସେବକ, ଭୃତ୍ୟ, କର୍ମଚାରୀ, ଯେ ଚାକିରି କରେ ।

ଚାକରବାକର—ଗ୍ରା.ବି. ଭୃତ୍ୟାଦି ଅନୁଚର ବର୍ଗ ।

ଚାକରାଣୀ—ଗ୍ରା. ସ୍ତ୍ରୀ. ବି. ଦାସୀ ।

ଚାକରାନ୍—ଯା. ବି. ଦାସତ୍ୱର ପାରିତୋଷିକ ସ୍ୱରୂପ ଯେଉଁ ଭୂମିଦାନ କରାଯାଏ, ଜାଗିରି ଭୃତ୍ୟବର୍ଗ ।

ଚା-କରିବା—ଗ୍ରା. କ୍ରି. ଗରମ ଜଳରେ ଚାହା ସିଦ୍ଧକରି ପାନୀୟ ପ୍ରସ୍ତୁତ କରିବା ।

ଚାକରି—ଯା. ଦାସତ୍ୱ, ପର ନିକଟରେ କାର୍ଯ୍ୟକରି ବେତନ ଗ୍ରହଣ କରିବା ।

ଚାକିରି—ଯା.ବି. ଭୃତ୍ୟର କର୍ମ, ଦାସତ୍ୱ, ଭୃତ୍ୟପଣିଆଁ, ନିର୍ଦ୍ଦିଷ୍ଟ ବେତନପାଇଁ କରାଯିବା କର୍ମ । [ ଚାକିରି ।

ଚାକିରିଆ—ଗ୍ରା. ପୁଂ. ବି. ଭୃତ୍ୟ, ଦାସ,

ଚାକିରିରୁଉଠାଇବା—ଗ୍ରା. କ୍ରି. ଚାକିରି ତୁଲାଇବା ଦେଖି, ଚାକିରିରୁ ବରଖାସ୍ତ କରାଇବା ।

ଚାକିରିକରିବା—ଗ୍ରା. କ୍ରି. ପ୍ରଭୁର ସେବା କରିବା, ଦାସତ୍ୱ ଗ୍ରହଣ କରିବା ।

ଚାକିରିଛଡ଼ାଇବା—ଗ୍ରା. କ୍ରି. ଭୃତ୍ୟକୁ ବରଖାସ୍ତ କରିବା ବା ଅନ୍ତର କରିବା ।

ଚାକିରିଛୁଡ଼ିବା—ଗ୍ରା. କ୍ରି. ଦାସତ୍ୱରୁ ନିଜେ ଅନ୍ତର ହେବା । [ ମିଳିବା ।

ଚାକିରିଜୁଟିବା—ଗ୍ରା.ବି. କର୍ମପ୍ରାପ୍ତି, ଚାକିରି

ଚାକିରିତୁଲାଇବା—ଗ୍ରା. କ୍ରି. ଦାସରୂପେ ଆପଣା ଉପରେ ନ୍ୟସ୍ତକାର୍ଯ୍ୟ ସମ୍ପାଦନ କରିବା ।

ଚାକିରିଦେଖିବା—ଗ୍ରା. କ୍ରି. ଆପଣାପାଇଁ କିମ୍ବା ଅନ୍ୟନିମନ୍ତେ ଉପଯୁକ୍ତ ଚାକିରି ବା କର୍ମର ଅନ୍ୱେଷଣ କରିବା, ଖଣ୍ଡେ ଉପଯୁକ୍ତ ଚାକିରି ଠିକଣା କରିବା, ଚାକିରିର ସୁଖ ଦୁଃଖ ଅନୁଭବ କରିବା

ଚାକିରିଦେବା—ଗ୍ରା. କ୍ରି. ଚାକରରୂପେ ନିଯୁକ୍ତ କରିବା, କୌଣସି ସେବାରେ ନିଯୁକ୍ତ ବା ମୁକରର କରିବା ।

ଚାକିରିନେବା—ଗ୍ରା. କ୍ରି. କୌଣସି ବ୍ୟକ୍ତିକୁ ତାହାର ଚାକିରିରୁ ଛଡ଼ାଇ ଆପେ ଉକ୍ତ ଚାକିରିରେ ନିଯୁକ୍ତ ହେବା ।

ଚାକିରିପାଇବା—ଗ୍ରା. କ୍ରି. କୌଣସି ଚାକିରିରେ ମୁକରର ହେବା ।

ଚାକିରିବାକିରି—ଗ୍ରା. ବି. ଚାକିରିଆଦି, ଚାକିରି ବା ସେହିପରି ଆଉ କିଛି ଅବଲମ୍ବନ ।

ଚାକିରିରହିବା—ଗ୍ରା. ବି. କୌଣସି ଚାକିରି ସ୍ଥାୟୀହେବା, କିଛିକାଳପାଇଁ ଚାକିରି ସ୍ଥିରହେବା, (ଗ୍ରା.କ୍ରି. କୌଣସି ବ୍ୟକ୍ତି) ବେତନ ସକାଶେ ଅନ୍ୟର କାର୍ଯ୍ୟ କରିବା, ଚାକିରି କରିବା ।

ଚାକୀ—ପଞ୍ଜାବର ଗୁରୁଦାସପୁର ଜିଲ୍ଲା ମଧ୍ୟରେ ପ୍ରବାହିତ ଗୋଟିଏ ନଦୀ ।

ଚାକୁ—ଯା. ବି. ଛୁରି, ଯେଉଁ ଛୁରିର ଦାଢ଼ ବେଣ୍ଟ ଭିତରର ଘରରେ ଭୁଜ ହୋଇଯାଏ ।

ଚାକୁଚାକୁ—ଗ୍ରା. ଅବ୍ୟ. (ଧ୍ୱନ୍ୟନୁକରଣ) ପାଣିଆ ଜିନିଷକୁ ବିରାଡ଼ି କୁକୁରଆଦି ଜିଭରେ ଚାଟିଲେ ଯେଉଁ ଶବ୍ଦହୁଏ ।

ଚାକୁଣ୍ଡା—ଗ୍ରା. ବି. ଚକ୍ରମର୍ଦ୍ଦ, କାଶମର୍ଦ୍ଦ, ଏକପ୍ରକାର ଶାକ, ବାଲିଆ ଚାକୁଣ୍ଡା, (ଗ୍ରା. ବି°) ଦାରା, ପୁତ୍ର, ଧନଆଦି ସାଂସାରିକ ବିଷୟରେ ଏକାନ୍ତ ଆସକ୍ତ ।

ଚାକୁଣ୍ଡି—ଗ୍ରା. ବି. (ଫ-କଞ୍ଚୁଲିକା)କାଚୁଙ୍ଗି, ମଳ ବା ବାନ୍ତସଙ୍ଗେ ପଡ଼ିବା ବୃହତ୍ କୃମି ।

ଚାକୁଲିଆ—ଗ୍ରା. ବି. କୃଷ୍ଣପର୍ଣ୍ଣୀ ଶିମ୍ବାଦି ବର୍ଗର ବନ୍ୟହ୍ରସ୍ୱାକାର କ୍ଷୁପବିଶେଷ ।

ଚାକୁଲେଇବା—ଗ୍ରା. କ୍ରି. କୌଣସି ଖାଦ୍ୟକୁ ଧୀରେ ଧୀରେ ପାଟିରେ ଚୋବାଇ ଜିଭ ସାହାଯ୍ୟରେ ଏକଲ ସେକଲ କରିବା, ପାକୁଲେଇବା ।

ଚାନ୍ଦ—ତ୍ରି. ବି°. (ଚନ୍ଦ୍ର+ଅ) ଯାହା ଚନ୍ଦ୍ରଠାରୁ ଉତ୍ପନ୍ନ ହୋଇଅଛି ।

ଚାନ୍ଦବର୍ମଣ—ପୁଂ. ବି. (ଚନ୍ଦ୍ରବର୍ମନ୍+ଅ) ଚନ୍ଦ୍ରବର୍ମାଙ୍କ ପୁତ୍ର, ଜଣେ ବୈଶ୍ୟ-

କରଣ ।
ଚାନ୍ଦ୍ରବାକେୟ—ତ୍ରି. ବିଂ. ଚନ୍ଦ୍ରବାକର ନିକଟଦେଶାଦି । [ ବଂଶଧର ।
ଚାନ୍ଦ୍ରାୟଣ—ପୁଂ.ବି. ଚନ୍ଦ୍ରନାମକ ଋଷିଙ୍କ
ଚାନ୍ଦ୍ରିକ—ତ୍ରି.ବିଂ. (ଚନ୍ଦ୍ର+ଇକ)ଘାଣ୍ଟିକ, ଯେଉଁମାନେ ଅନେକ ମିଳିତହୋଇ କୌଣସି ବ୍ୟକ୍ତିର ସ୍ତୁତିପାଠ କରନ୍ତି, ତୈଳିକାର, ଶଗଡ଼ିଆ, ଚନ୍ଦ୍ରଶିଳ୍ପୀ, ସ୍ୱହଚର, କୁମ୍ଭାର, ଚନ୍ଦ୍ରସମ୍ବନ୍ଧୀୟ, ଶମାଙ୍କସମ୍ବନ୍ଧୀୟ, ତରଙ୍ଗିଣୀ, ( ସ୍ତ୍ରୀ ) ଚାନ୍ଦ୍ରିକୀ ।
ଚାନ୍ଦ୍ରିକା—ସ୍ତ୍ରୀ, ବି. ଏକପ୍ରକାର ପୁଷ୍ପ ।
ଚାନ୍ଦ୍ରିଣ—ପୁଂ. ବି. ( ଚନ୍ଦ୍ରିନ୍+ଅ ) ଚନ୍ଦ୍ରୀପୁତ୍ର । [ ଦେଶାଦି ।
ଚାନ୍ଦ୍ରେୟ—ତ୍ରି.ବିଂ. ଚନ୍ଦ୍ରର ନିକଟବର୍ତ୍ତୀ
ଚାକ୍ଷୁଷ—କ୍ଲୀ. ବି. (ଚକ୍ଷୁସ୍+ଅ) ପ୍ରତ୍ୟକ୍ଷବିଶେଷ, ଦର୍ଶନେନ୍ଦ୍ରିୟଦ୍ୱାରା ଯେ ଜ୍ଞାନ ଜନ୍ମେ, ଚକ୍ଷୁର୍ଗ୍ରାହ୍ୟ ରୂପାଦି, ( ବିଂ ) ଚକ୍ଷୁର୍ଗ୍ରାହ୍ୟ ରୂପାଦିଯୁକ୍ତ,(ପୁଂ.ବି) ଷଷ୍ଠମନୁ ସ୍ୱାୟମ୍ଭୁବ ମନୁଙ୍କ ପୁତ୍ର,କକ୍ଷେୟୁଙ୍କ ଏକପୁତ୍ର, ରିପୁଙ୍କପୁତ୍ର, ଖନିତ୍ରଙ୍କ ପୁତ୍ର, ଚତୁର୍ଦ୍ଦଶ ମନ୍ୱନ୍ତରର ଗୋଟିଏ ଦେବଗଣ, ଷଷ୍ଠ ମନ୍ୱନ୍ତର ପିତୃଭେଦ ।
ଚାକ୍ଷୁଷତ୍ୱ—କ୍ଲୀ. ବି. ( ଚକ୍ଷୁଷ+ତ୍ୱ ) ଚାକ୍ଷୁଷର ଧର୍ମ ।
ଚାକ୍ଷୁଷପ୍ରମାଣ—ବି. ( କ.ଧା ) ପ୍ରତ୍ୟକ୍ଷ ପ୍ରମାଣ, ଯେଉଁ ପ୍ରମାଣ ସ୍ୱଚକ୍ଷୁରେ ଦେଖାଯାଏ । [ କରେ ।
ଚାକ୍ଷୁ—ତ୍ରି. ବିଂ. ଦ୍ରଷ୍ଟା, ଯେ ଦର୍ଶନ
ଚାଖଣା—ଗ୍ରା. ବି. ସ୍ୱାଦଗ୍ରହଣ,ଚାଖିବା, କୌଣସି ବସ୍ତୁର ସ୍ୱାଦ ପରୀକ୍ଷା କରିବା, ଆଚାର ପ୍ରଭୃତି, ମୁଖରୋଚକ ଦ୍ରବ୍ୟ, ଚାଟ୍, ମଦ୍ୟପାନ କାଳରେ ଖିଆଯିବା ବା ଚଟାଯିବା ମୁଖରୋଚକ ଖାଦ୍ୟ ।
ଚାଖଣ୍ଡ—ଗ୍ରା. ବି. ବିତସ୍ତି, ବିସ୍ତାରିତ କରତଳର କାଣିଆଙ୍ଗୁଠି ଅଗଠାରୁ ବୁଢ଼ାଆଙ୍ଗୁଠିର ଅଗପର୍ଯ୍ୟନ୍ତ ପରିମାଣ, ୧୨ ଆଙ୍ଗୁଳ । [ ପରିମିତ ।
ଚାଖଣ୍ଡିଆ—ଗ୍ରା. ବିଂ. ଏକଚାଖଣ୍ଡ
ଚାଖି—ଗ୍ରା. ବି. ଚାକି, ବାଳଙ୍କି ବା ଚାଖାନ, ଆତ୍ମପ୍ରଶଂସା, ଦାମ୍ଭିକତା, କଥାର ତାରିଫି, ଚାତର, ନମୁନା, (ଗ୍ରା.ବିଂ) ଆତ୍ମଶ୍ଳାଘୀ, ଯେ ବାଳଙ୍କି ଦେଖାଏ, ଗର୍ବୀ ।
ଚାଖିଖଣ୍ଡିଆ—ଗ୍ରା. ବି. ପୁରୀର ଜନୈକ ବଳଶାଳୀ ସ୍ୱାଧୀନଚେତା ବ୍ରାହ୍ମଣ ସେବକ ।
ଚାଖିବା—ଗ୍ରା. କ୍ରି. ( ସଂ-ଚକ୍ଷଣ ) ସ୍ୱାଦଗ୍ରହଣ କରିବା, ଆସ୍ୱାଦନ କରିବା, ସ୍ୱାଦପରୀକ୍ଷା କରିବା, (ଲ.ଅର୍ଥ)ଇନ୍ଦ୍ରିୟଦ୍ୱାରା ଉପଲବ୍ଧି କରିବା ।
ଚାଖୁଣିଆ—ଗ୍ରା. ବି. (ସଂ-ଚକ୍ଷଣ) ରାଜଭୋଜ୍ୟ ଖାଦ୍ୟକୁ ଆସ୍ୱାଦନକରି ପରୀକ୍ଷା କରିବା ନିମନ୍ତେ ନିଯୁକ୍ତ ଭୃତ୍ୟ, (ସ୍ତ୍ରୀ) ଚାଖୁଣୀ ।
ଚାଙ୍କିବା—ପ୍ରା. (ଗଡ଼) କ୍ରି. ଅଳ୍ପଘୁଞ୍ଚାଇ ଦେବା, ସ୍ଥାନଚ୍ୟୁତ କରିବା ।
ଚାଙ୍ଗ—ପୁଂ. ବି. ( ବ.ସ୍ତ୍ରୀ ) ଚାଙ୍ଗେରୀ, ଦନ୍ତପଟୁତା ।
ଚାଙ୍ଗଡ଼ା—ଗ୍ରା. ବି. ଡାଲା, ଚାଙ୍ଗୁଡ଼ି, କୌଣସି ବଡ଼ଗଛକୁ ମୂଳରୁ କାଟିଦେଲାପରେ ଗଛମୂଳଖୋଳି ଯେଉଁ ଗଡ଼ଖଣ୍ଡି ବାହାର କରାଯାଏ ।
ଚାଙ୍ଗଡ଼ାଘର—ଗ୍ରା. ବି. ଯେଉଁଘରେ ବାଙ୍କୁଅଳଙ୍କାରାଦି ରଖା ହୋଇଥାଏ, ଗନ୍ତାଘର ।
ଚାଙ୍ଗଡ଼ାତୁମ୍ବ—ଗ୍ରା. ବି. ଗଛର ଚାଙ୍ଗଡ଼ାରେ ମଟିରେ ଠିଆଗାତକରି ତହିଁରେ ବାରୁଦଖୁନ୍ଦି ଯେଉଁ ତୁମ୍ବବାଣ କରାଯାଏ ।
ଚାଙ୍ଗଡ଼ାମେକାପ—ଗ୍ରା. ବି. ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ସେବକବିଶେଷ ।
ଚାଙ୍ଗା—(ଚଙ୍ଗଶବ୍ଦଜ) ନୀରୋଗ,ସବଳ ।
ଚାଙ୍ଗୁ—ପ୍ରା. (ଗଡ଼) ବି. ଓଡ଼ିଶା ଗଡ଼ଜାତର ଜୁଆଙ୍ଗ ଆଦି ଅଧିବାସୀଙ୍କର ଚାଙ୍ଗୁବାଦ୍ୟସହ ନାଚ ।
ଚାଙ୍ଗୁଡ଼ା—ଯା. ବି. ଚାଙ୍ଗଡ଼ା ଦେଖ; ପୁଷ୍ପାଧାର ।
ଚାଙ୍ଗୁଡ଼ି—ଗ୍ରା. ବି. ଗ୍ରେଟଡ଼ାଲା, ଚାଙ୍ଗୁଡ଼ି, ବାକ୍ସ ବା ପେଡ଼ିର ମୁହଁ, ଡାଙ୍କୁଣୀ ।
ଚାଙ୍ଗୁନାଚ—ପ୍ରା.(ଗଡ଼)ବି. ଚାଙ୍ଗୁବାଦ୍ୟସହ ଅନାର୍ଯ୍ୟମାନଙ୍କର ନୃତ୍ୟବିଶେଷ ।
ଚାଙ୍ଗୁନଡ଼ା—ପ୍ରା. ( ଗଡ଼ ) ବି. ଆନଦ୍ଧବାଦ୍ୟବିଶେଷ ।
ଚାଙ୍ଗୁବାଦ୍ୟ—ପ୍ରା. (ଗଡ଼) ବି. ଆନଦ୍ଧବାଦ୍ୟବିଶେଷ, ମାଦଳ ଚାଙ୍ଗୁ ବା ସାନଚାଙ୍ଗୁ ।
ଚାଙ୍ଗେରୀ—ସ୍ତ୍ରୀ. ବି. ଅମ୍ଳଲୋଣିକା, ଆମ୍ବିଳିଶାଗ । [ ଦେଖ ।
ଚାଚକ—ଗ୍ରା. ବି. (ସଂ-ଚାତକ) ଚାତକ
ଚାଚକପୁର—କେନ୍ଦୁଝରପୁର ଜିଲ୍ଲାର ଗୋଟିଏ ଗ୍ରାମ ।
ଚାଚକା—ଗ୍ରା. ସ୍ତ୍ରୀ. ବି. ( ସଂ-ଚର୍ଚ୍ଚିକା ) କଟକ ଜିଲ୍ଲାର ବାଙ୍କି ବା ଚର୍ଚ୍ଚିକାଗ୍ରାମର ଅଧିଷ୍ଠାତ୍ରୀ ଦେବୀ,ଗ୍ରାମଦେବତାବିଶେଷ ।
ଚାଚପୁଟ—ପୁଂ.ବି. ସଙ୍ଗୀତରେ ତାଳର ୬୦ ପ୍ରକାର ମୁଖ୍ୟ ଭେଦ ମଧ୍ୟରୁ ଏକ ତାଳବିଶେଷ, ( ଗ୍ରା. ବି ) ଦୁଇଖଣ୍ଡ କାଠରେ ବଜାଯିବା ବାଦ୍ୟବିଶେଷ, କରତାଳିକା ବାଦ୍ୟ ।
ଚାଚଳ—ତ୍ରି. ବିଂ. ଅତିଶୟ ଚଞ୍ଚଳ, ବକ୍ରଗାମୀ । [ କକେଇ ।
ଚାଚା—ଯା. ପିତାର ଭ୍ରାତା, ପିତୃବ୍ୟ,
ଚାଚାତ—ଯା. ପିତୃବ୍ୟ ସମ୍ବନ୍ଧୀୟ ।
ଚାଚାତବାହିନ୍—ଯା. ପିତୃବ୍ୟ କନ୍ୟା, କକେଇ ଝିଅ ଭଉଣୀ ।
ଚାଚାତଭାଇ—ଯା. କକେଇପୁଅ ଭାଇ ।
ଚା-ଚାମଚା—ଯା ବି. ଚାହାପାନ କରିବାରେ ବ୍ୟବହୃତ ଚାମଚ ।
ଚା-ଚକା—ଗ୍ରା. ବି. ଭିକ୍ଷାପାତ୍ର ।
ଚାଚିଙ୍ଗଦେବ—ଗୁଜରାଟର ଅନ୍ତର୍ଗତ ପାଟକ ଗଡ଼ର ଜଣେ ରାଜା ।
ଚା-ଚୀ—ଯା. ଚାଚାର ସ୍ତ୍ରୀ, ଖୁଡ଼ୀ ।
ଚାଚ୍କା—ଗ୍ରା. ବି. ଅସ୍ଥାୟୀ, କୌଣସି ଲୋକଉପରେ ନିର୍ଭର ।
ଚାଚେମୁଦ୍ରା—ଗ୍ରା. ବି. ମୁଦ୍ରାବିଶେଷ ।
ଚାଚେରୀ—ଗ୍ରା.ବି. (ସଂ-ଚର୍ଚ୍ଚରୀ) ଦୋଳ-

ପୂର୍ଣ୍ଣିମାର ପୂର୍ବଦିନ ଅବର ପିଠାକାଣ୍ଡ-ଆଦି ମାର କରିବା ଲ ଧ୍ୱନିକରି ଯେଉଁ ହୋଉଉତ୍ସବ କରାଯାଏ, ବସନ୍ତୋତ୍ସବ ବିଶେଷ, ଗ୍ରାମଦେବତାବିଶେଷ ।

ଚା-ଚ୍ଛେଣୀ—ଗ୍ରା. ବି. ଚାହାକୁ ଛାଣିବା ସକାଶେ ବ୍ୟବହୃତ ରନ୍ଧ୍ରଯୁକ୍ତ ପାତ୍ର ବିଶେଷ ।

ଚାଞ୍ଚ—ଗ୍ରା. ବି. ( ଫ-ଚଞ୍ଚା ) ନଡ଼ିଆ, ବରଡ଼ା ତାଳପତ୍ର ବା ବାଉଁଶ ପାତ୍ର-ଆରେ ବୁଣାହୋଇଥିବା ଆସ୍ତରଣ ବିଶେଷ, ଚାଟେଇ ।

ଚାଞ୍ଚଖାଇ—ପ୍ରା. (ଗଡ଼ଜାତ)ସ୍ତ୍ରୀ.ବି. ପିଲା-ଙ୍କର ରକ୍ତଶୋଷିନେବା ଡାହାଣୀ ।

ଚାଞ୍ଚଡ଼ାପଥର—ପ୍ରା(ଗଡ଼ଜାତ ଓ ଗଞ୍ଜାମ ବି.ସମତଳଭାବରେ ବିସ୍ତୃତ ପଥରଖଣ୍ଡ ।

ଚାଞ୍ଚଲ—ମାଲଦହର ଅନ୍ତର୍ଗତ ଗୋଟିଏ ବୃହତ୍ ଜମିଦାରୀ ।

ଚାଞ୍ଚଲ୍ୟ—କ୍ଲୀ.ବି(ଚଞ୍ଚଳ+ଯ)ଚଞ୍ଚଳତା, ଅସ୍ଥିରତା, ଚପଳତା, ବ୍ୟଗ୍ରତା ।

ଚାଞ୍ଚି—ଗ୍ରା.ବି.ନଡ଼ିଆ ବାହୁଙ୍ଗାର ମୂଳରେ ନଡ଼ିଆ ଗଛର ଗଣ୍ଡିକୁ ବେଢ଼ିଥିବା ଜାଲି ଆକୃତିର ବଲ୍କଲ, ଚଞ୍ଚ, ପାକଳ ଆମ୍ବର ନୂତନ ଟାକୁଆର ଦୃଢ଼ ଆବରଣ, ଚାଞ୍ଚୁ ।

ଚାଞ୍ଚୁ—ଗ୍ରା. ବି. ଚାଞ୍ଚି ଦେଖ ।

ଚାଞ୍ଛିବା—ଗ୍ରା. କ୍ରି. (ସଂ-ତକ୍ଷଧାତୁ)କାଠ ବା ଫଳର ଚୋପା ଛଡ଼ାଇବା,ଚାଞ୍ଚିବା, ଛେଲିବା, ଭୂମିଉପରୁ ଘାସ ସହିତ ମାଟିର ପତଳା ସ୍ତର ଉଠାଇବା,ଉପରୁ ପତଳା ସ୍ତର ଉଠାଇବା ।

ଚାଟ୍—ଗ୍ରା. ବି. ( ସଂ-ଚକ୍ଷଣ ) ମଦ୍ୟାଦି ମାଦକ ସେବନ ପରେ ଖାଇବା ମୁଖ-ରୋଚକ ଖାଦ୍ୟ,ଲାଳସା, ଝୁଙ୍କ ।

ଚାଟ୍‌ଧରିବା—ଗ୍ରା. ବି. (ଖରାପ) ଅଭ୍ୟାସ ହେବା, କୌଣସି ଦ୍ରବ୍ୟପ୍ରତି ଝୁଙ୍କ ଲାଗିବା ବା ଲାଳସା ଜନ୍ମିବା ।

ଚାଟ—ପୁଂ. ବି. ( ଚଟ+ଅ ) ବିଶ୍ୱାସ-ଘାତକ, ଠକ, ଚୋର, ମୁଖରୋଚକ ଖାଦ୍ୟଦ୍ରବ୍ୟବିଶେଷ, ( ଗ୍ରା.ବି ) ପାଠ-ଶାଳାରେ ପଢୁଥିବା ଛାତ୍ର, ଶିଷ୍ୟ, ବତ୍ସ, ପୁଅ, ବଡ଼ ଡାଲ, ଚାଟ, ( ଗ୍ରା.ବଂ ) ବିଦ୍ୱାନ୍, ବିଦ୍ୟାର୍ଥୀ ।

ଚାଟକାୟନ—ପୁଂ.ବି. ଚଟକବଂଶଧର ।

ଚାଟକେର—ବି. (ଚଟକା+ଏର) ଛୁଆ ଘରଚଟିଆ ଚଢ଼େଇ ।

ଚାଟକୈର—ପୁଂ. ବି. ( ଚଟକା+ଏର ) ଚଟକାର ପୁଂଅପତ୍ୟ,ଚଢ଼େଇଛୁଆ ।

ଚାଟ୍‌ଗାଁ—(ଚଟଗ୍ରାମ) ବଙ୍ଗଳାର ଗ୍ରେଟ ଲାଟଙ୍କ ଅଧୀନ ଗୋଟିଏ ଜିଲ୍ଲା ।

ଚାଟନ—ଗ୍ରା. ବି. ଜିହ୍ୱାଦ୍ୱାରା ଆସ୍ୱାଦନ ।

ଚାଟପୁଟ—ପୁଂ. ବି. ତାଳବିଶେଷ ।

ଚାଟଶାଳା—ଗ୍ରା. ବି. ( ସଂ-ଛାତ୍ରଶାଳା ) ଚାହାଳ, ପାଠଶାଳା, ଦେଶୀୟ ପ୍ରାଥ-ମିକ ବିଦ୍ୟାଳୟ ।

ଚାଟଶାଳିଆ—ଗ୍ରା. ବଂ. ପାଠଶାଳାରେ ଶିକ୍ଷା ଦିଆଯିବା (ପାଠ),ପାଠଶାଳାରେ ପଢୁଥିବା ( ଛାତ୍ର ), ପାଠଶାଳାରେ ବ୍ୟବହୃତ (ଦଣ୍ଡ), ଚାହାଳସମ୍ବନ୍ଧୀୟ ।

ଚାଟଶାଳୀ—ଗ୍ରା. ବି. ଚାଟଶାଳା ଦେଖ ।

ଚାଟି—ଗ୍ରା. ବି. ବଡ଼ଟୋକେଇ, ବେତା, ଲୁଣ ପୋଖାନ ହେବାର ସ୍ଥାନ,(ପ୍ରା.) ବସ୍ତର ) ବଂ. ଜନ୍ଦା, ପିମ୍ପୁଡ଼ି, ( ପ୍ରା. ମେଦିନୀ ) ଖଜୁରି ପଟି ।

ଚାଟିଚୁଟି—ଗ୍ରା. କ୍ରି. ବଂ. ପୋଛପାଛ, ନିଃଶେଷ କରି ( ଖାଦ୍ୟ ପଦାର୍ଥକୁ ଖାଇବା) ।

ଚାଟିବା—ଗ୍ରା.କ୍ରି.ଜିହ୍ୱାଦ୍ୱାରା ରସାସ୍ୱାଦନ କରିବା, (ଲକ୍ଷଣାର୍ଥ) ବ୍ୟଗ୍ରତା ସହିତ ଖାଇବା, ଧ୍ୱଂସକରିବା ।

ଚାଟୁ—ପୁଂ. କ୍ଲୀ. ବି. (ଚଟ+ଉ) ପ୍ରିୟ-ବାକ୍ୟ, ମିଥ୍ୟାପ୍ରିୟ ବାକ୍ୟ, ଖୋସାମଦ୍, ବିନୟବଚନ, ପାକଳାପାକଳକରିବା, କଅଁଳେଇ ସଅଁଳେଇ କରି କୁହା-ଯିବା କଥା ।

ଚାଟୁଆ—ଗ୍ରା. ପୁଂ. ବଂ. ଚାଟୁକାରୀ, ଯେ ଖୋସାମଦ୍ କରେ, ଯେ ଚାଟୁକଥା ଶୁଣିବାକୁ ସୁଖପାଏ, (ସ୍ତ୍ରୀ)ଚାଟୋଇ ।

ଚାଟୁଆଇବା—ଗ୍ରା.କ୍ରି.ଖୋସାମଦ୍‌କରିବା ପାକଳାପାକଳ କରିବା, ମନଯୋଗା କଥାକହିବା, ବିନୟପୂର୍ଣ୍ଣ କଥା କହିବା ।

ଚାଟୁକ—ପୁଂ.କ୍ଲୀ. ବି. (ଚାଟ+କ)ପ୍ରିୟ-ବାକ୍ୟ, ଖୋସାମୋଦ, ମିଥ୍ୟା ପ୍ରିୟ-ବାକ୍ୟ ।

ଚାଟୁକାର—ପୁଂ. ବିଂ. (ଚାଟୁ+କୃ+ଅ) ଯେ ଚାଟୁବାକ୍ୟ କହେ, ଖୋସାମଦିଆ, (ସ୍ତ୍ରୀ) ଚାଟୁକାରୀ, (ବି) ଖୋସାମଦିଆ ବ୍ୟକ୍ତି ।

ଚାଟୁପଟୁ—ପୁଂ.ବି. (୬ତତ୍) ଭଣ୍ଡ, ଧୂର୍ତ୍ତ, ବିଦୂଷକ, (ବଂ) ଯେ ଖୁବ୍ ଖୋସାମଦ କରିପାରେ, ଖୋସାମଦିଆ ।

ଚାଟୁଲୋଲ—ତ୍ରି.ବଂ. ଚାଟୁକାର, ଖୋସା-ମଦିଆ ।

ଚାଟୁବଚନ—ବି. (କ.ଧା) ଖୋସାମଦିଆ କଥା, ଚାଟୁପୂର୍ଣ୍ଣବଚନ,ଅତିରିକ୍ତ ପ୍ରଶଂସା ପ୍ରାର୍ଥନା ।

ଚାଟୁବଟୁ—ପୁଂ. ବି. (୬ତତ୍) ବିଦୂଷକ, କ୍ରୀଡ଼ାସହଚର ଭଣ୍ଡ ।

ଚାଟୁବାକ୍ୟ—ବି. ( କ. ଧା ) ଚାଟୁବଚନ [ଦେଖ ।

ଚାଟୁବାଦ—ପୁଂ.ବି.ପ୍ରିୟବାକ୍ୟ, ଅନ୍ୟର ପ୍ରୀତିପ୍ରଦ କଥନ ।

ଚାଟୁବାଦୀ—ପୁଂ.ବଂ. (ଚାଟୁ+ବଦ+ଇନ୍) ଚାଟୁକାର, (ସ୍ତ୍ରୀ) ଚାଟୁବାଦିନୀ ।

ଚାଟୁଭାଷୀ—ବଂ. (ଚାଟୁ+ଭାଷ+ଇନ୍) ଚାଟୁକାର ଦେଖ ।

ଚାଟୁର୍ଯ୍ୟା—ଗ୍ରା.ବି. ଚାଟୁର୍ଯୀ, ଚଟୋପା-ଧ୍ୟାୟ, ବଙ୍ଗାଳି ବ୍ରାହ୍ମଣଙ୍କ ଉପାଧି-ବିଶେଷ ।

ଚାଟୂକ୍ତି—ସ୍ତ୍ରୀ. ବି. ପ୍ରିୟବାକ୍ୟ, ସେବା, ଖୋସାମଦିଆ କଥା ।

ଚାଟେଶ୍ୱର—ପୁଂ. ବି. ଉତ୍କଳର କଟକ ଜିଲ୍ଲାର ପଦ୍ମପୁର ପରଗଣାନ୍ତର୍ଗତ କିସନପୁର ଗ୍ରାମରେ ପ୍ରତିଷ୍ଠିତ ବିଖ୍ୟାତ ଶିବଲିଙ୍ଗ ଓ ତାହାଙ୍କ ମନ୍ଦିର ।

ଚାଟୋଲ—ଗ୍ରା. ବଂ. ରୋଗାଦି ଯୋଗୁ ବ୍ୟାକୁଳତା ଅନୁଭବ କରୁଥିବା,ଡହଳ-ବିକଳ ।

ଚାଢ଼—ଗ୍ରା. ବି. ଉତ୍କଟେଚ୍ଛା, ଏକାନ୍ତ

ଅଭିପ୍ରାୟ, କ୍ଷିପ୍ରତା, ପ୍ରୟୋଜନ ଏକପ୍ରକାରରେ ଯେଉଁ ଖାଦ୍ୟ ରନ୍ଧାହୁଏ ।
ଚାଡ଼ଚଟ୍ଟ—ଗୁଜରାଟ ପାଲନପୁର ଏଜେନ୍ସୀର ଅନ୍ତର୍ଗତ ଗୋଟିଏ ଜମିଦାରୀ ।
ଚାଡ଼ା—ଗ୍ରା. ବ. ମୃତ୍ତିକା ନିର୍ମିତ ପାତ୍ରାଦିର ଭଗ୍ନାଂଶ, କ୍ଷୁଦ୍ର ଗଛ, ଉଚ୍ଚ, ଅବଲମ୍ବନ ବା ଠେସ ।
ଚାଣ—( ଶବ୍ଦାନୁକରଣ ) ଜଳ ମଧ୍ୟରେ ମତ୍ସ୍ୟର ଉଲ୍ଲାସ ।
ଚାଣକ୍କ—ପୁଂ. ବ. ଚାଣକ୍ୟଙ୍କ ଗ୍ରନ୍ଥ ।
ଚାଣକୀନ—କ୍ଲୀ.ବ.ଚଣାର ଉତ୍ପତ୍ତିଯୋଗ୍ୟ କ୍ଷେତ୍ର ।
ଚାଣକ୍ୟ—ପୁଂ. ବ. (ଚଣକ+ଯ)ଚନ୍ଦ୍ରଗୁପ୍ତଙ୍କର ମନ୍ତ୍ରୀ ବିଷ୍ଣୁଗୁପ୍ତ, ଜଣେ ସୁପ୍ରସିଦ୍ଧ ନୀତିଜ୍ଞ ମୁନି, (କ୍ଲୀ) ଚାଣକ୍ୟରଚିତ ନୀତିଶାସ୍ତ୍ର, ଚଣକ, ଚଣା ।
ଚାଣକ୍ୟନୀତି—ବ. (୬ତତ୍ପୁ) ଚାଣକ୍ୟଙ୍କ ସଙ୍କଳିତ ଅର୍ଥନୀତି ଓ ରାଜନୀତି ।
ଚାଣକ୍ୟମୂଳକ—କ୍ଲୀ. ବ. ଏକଜାତୀୟ ମୂଳା, ଚଣକ ମୂଳୀ ।
ଚାଣକ୍ୟଶ୍ଳୋକ—ପୁଂ.ବ.(କ.ଧା)ଚାଣକ୍ୟ ପ୍ରଣୀତ ବା ସଂଗୃହୀତ ଅଷ୍ଟୋତ୍ତର ଶତଶ୍ଳୋକ ।
ଚାଣୂର—ପୁଂ.ବ(ଚଣ+କ.ଊର)କଂସର ଅନୁଚର ମଲ୍ଲଯୁଦ୍ଧାଭିଜ୍ଞ ଜଣେ ଅସୁର ।
ଚାଣୂରମର୍ଦ୍ଦନ—ବ. (୬ତତ୍ପୁ)ଶ୍ରୀକୃଷ୍ଣ ।
ଚାଣୂରସୂଦନ—ପୁଂ. ବ. ଶ୍ରୀକୃଷ୍ଣ ।
ଚାଣ୍ଟ—ଗ୍ରା.ବ(ବଣିଆଶବ୍ଦ)ସୁନାରୁପାରେ ନିର୍ମିତ ଟୋଲପ ଫୁଲ ପ୍ରଭୃତି ସୁନ୍ଦର ଦିଶିବା ପାଇଁ ତହିଁ ତଳେ ଝୁଲୁଥିବା ଚେପ୍ଟା ଚେପ୍ଟା ରୁଆ ।
ଚାଣ୍ଟି—ପ୍ରା.(ସମ୍ବ)ବ. ପିମ୍ପୁଡ଼ି, ଚାଣ୍ଟିଶାଗ, ଆମ୍ଳିତିପତ୍ର ।
ଚାଣ୍ଡ—ପୁଂ ଓ ସ୍ତ୍ରୀ. ବ. ଚଣ୍ଡର ଅପତ୍ୟ, (କ୍ଲୀ.ବ) ଚଣ୍ଡତା, (ଗ୍ରା.ଘ) ତୀବ୍ରତା ।
ଚାଣ୍ଡରସ—ଗ୍ରା. ବ. ତୁମ୍ବ ବାଣଆଦିରେ ନିଆଁ ଲଗାଇବା ପୂର୍ବରୁ ହଠାତ୍ ନିଆଁ ଧରିବା ପାଇଁ ବାଣ ମୁହଁରେ ଯେଉଁ ବାରୁଦ ବ୍ୟବହୃତ ହୁଏ, ରଞ୍ଜକ ।
ଚାଣ୍ଡାଳ—ପୁଂ.ବ. ଚଣ୍ଡାଳ ଦେଖ, (ବିଂ) ଚଣ୍ଡାଳସମ୍ବନ୍ଧୀୟ, (ଗ୍ରା.ବ) ନୀଚବ୍ୟକ୍ତି, ଅସ୍ପୃଶ୍ୟଜାତୀୟ ବ୍ୟକ୍ତି, କ୍ରୂରକର୍ମୀ-ବ୍ୟକ୍ତି ।
ଚାଣ୍ଡାଳକ—କ୍ଲୀ.ବ.ସଂଜ୍ଞାବିଶେଷ, (ବିଂ) ଚଣ୍ଡାଳକୃତ । [ଅପତ୍ୟ ।
ଚାଣ୍ଡାଳକି—ପୁଂ. ସ୍ତ୍ରୀ. ବ. ଚଣ୍ଡାଳର
ଚାଣ୍ଡାଳିକା—ସ୍ତ୍ରୀ. ବ. ବୀଣାବିଶେଷ, ଚଣ୍ଡାଳବୀଣା । [ ତାର୍ଥସ୍ଥାନ ।
ଚାଣ୍ଡାଳିକାଶ୍ରମ—ବ. ଗୋଟିଏ ପ୍ରସିଦ୍ଧ
ଚାଣ୍ଡାଳୀ—ସ୍ତ୍ରୀ.ବ.ଲଙ୍ଗିନୀଲତା, ଚାଣ୍ଡାଳ ଜାତୀୟା ସ୍ତ୍ରୀ ।
ଚାଣ୍ଡେ—ଗ୍ରା. କ୍ରି. ବିଂ. (ସଂ-ଚଣ୍ଡ)କ୍ଷଣମାତ୍ରକେ, ଅତିଶୀଘ୍ର, ପ୍ରତ୍ୟକ୍ଷଭାବରେ ।
ଚାତକ—ପୁଂ.ସ୍ତ୍ରୀ. ବ. (ଚତ୍+କ.ଅକ) ସ୍ୱନାମଖ୍ୟାତ କୃଷ୍ଣବର୍ଣ୍ଣ ପକ୍ଷୀବିଶେଷ, ଘରଚଟିଆଜାତୀୟ କ୍ଷୁଦ୍ର ପକ୍ଷୀବିଶେଷ ।
ଚାତକାନନ୍ଦନ—ପୁଂ.ବ.ବର୍ଷାକାଳ,ମେଘ
ଚାତନ—କ୍ଲୀ.ବ. (ଚାତ+ଅନ)ପୀଡ଼ନ, କ୍ଲେଶଦେବା, ଜଣେ ବୈଦିକ ଋଷି, ( କ୍ରି. ବିଂ ) ଯାଚନା, ପ୍ରୟୋଜକ,ଯେ ମଗାଇଦିଏ ।
ଚାତର—ଗ୍ରାଦେ. (ସଂ-ଚାତୁରୀ) ଚାତୁରୀ, କୌଶଳ, ଚାଖି, କଥାର ବଡ଼ାଇ, ବାଲିଙ୍ଗି, ଅହଂକାର, ଗର୍ବ, (ଗ୍ରା.ବିଂ) ଗର୍ବୀ, ଗର୍ବୋଚ୍ଚାଳିତ । [ ଘାସ ।
ଚାତରଦୂବ—ଗ୍ରା.ବ. ଏକପ୍ରକାର ଦୂବ-
ଚାତରା—ବଙ୍ଗଦେଶର ହଜାରିବାଗ୍ ଜିଲ୍ଲାର ଗୋଟିଏ ସହର ।
ଚାତରିଆ—ଗ୍ରା. ବିଂ. ଆତ୍ମଗର୍ବୀ, ଯେ ମୁହଁବାଲିଙ୍ଗି କରେ ।
ଚାତା,ଗ୍ରଚ୍ଛା—ଉ: ପଃ ପ୍ରଦେଶସ୍ଥ ମଥୁରା ଜିଲ୍ଲାନ୍ତର୍ଗତ ଗୋଟିଏ ତହସିଲ ।
ଚାତାଳ—(ହିନ୍ଦୁସ୍ଥାନୀଶବ୍ଦ)ଅଙ୍ଗନ, ପ୍ରାଙ୍ଗଣ
ଚାତୁର—କ୍ରି. ବିଂ. (ଚତୁର+ଅ) ଯାହା ଚାରିଜଣ ବହନ କରନ୍ତି, ନେତ୍ରଗୋଚର,ନମ୍ରତା,ଚାଟୁକାର, ଚତୁର, (ସ୍ତ୍ରୀ) ଚାତୁରୀ, (ପୁଂ.ବ) ଚନ୍ଦ୍ରଗଣ୍ଡ, (କ୍ଲୀ) ଚତୁରତା ।
ଚାତୁରକ—କ୍ରି.ବିଂ.(ଚାତୁର+କ)ଚାତୁର ଦେଖ ।
ଚାତୁରକ୍ଷ—କ୍ଲୀ.ବ. ଯେଉଁ ଚାରିଗୋଟି ଗୋଟି ନେଇ ପଶା ଖେଳାହୁଏ, ଉପଧାନବିଶେଷ ।
ଚାତୁରଙ୍ଗକ—ଶୂର୍ପାରକ କ୍ଷେତ୍ରର ମଧ୍ୟବର୍ତ୍ତୀ ଗୋଟିଏ ଗିରି ।
ଚାତୁରର୍ଥିକ—ପୁଂ. ବ. ପାଣିନିଉକ୍ତ କେତେଗୋଟି ପ୍ରତ୍ୟୟ ।
ଚାତୁରଶ୍ରମିକ—ପୁଂ.ବିଂ.ବ୍ରହ୍ମଚର୍ଯ୍ୟପ୍ରଭୃତି ଆଶ୍ରମବିହିତ ଧର୍ମ ।
ଚାତୁରଶ୍ରମୀ—କ୍ରି. ବିଂ. ଚାରି ଆଶ୍ରମ ମଧ୍ୟରେ ଏକ ଆଶ୍ରମଭୁକ୍ତ ।
ଚାତୁରାଶ୍ରମ—କ୍ଲୀ.ବ. ଆଶ୍ରମଚତୁଷ୍ଟୟ ।
ଚାତୁରିକ—ପୁଂ. ବ. ସାରଥି ।
ଚାତୁରିକା—ସ୍ତ୍ରୀ. ବ. ଚତୁରତା, ଚାତୁର୍ଯ୍ୟ
ଚାତୁରୀ—ସ୍ତ୍ରୀ. ବ. ଚତୁରତା, ନିପୁଣତା, ପ୍ରବଞ୍ଚନା, ଶଠତା ।
ଚାତୁର୍ଜାତକ—ପୁଂ.ବ. ଗୁର୍ଜ୍ଜର ଦେଶୀୟ ଉଚ୍ଚ ରାଜପରିଷଦଙ୍କ ଉପାଧିବିଶେଷ, (କ୍ଲୀ.ବ)ଗନ୍ଧଚତୁଷ୍ଟୟ, ଗୁଡ଼ତ୍ୱକ୍, ଏଲା, ତେଜପତ୍ର, ନାଗେଶ୍ୱର ।
ଚାତୁର୍ଥକ—ପୁଂ. ବ. ପଞ୍ଚପ୍ରକାର ଜ୍ୱର ମଧ୍ୟରୁ ଏକପ୍ରକାର, ଯେଉଁ ଜ୍ୱର ଚତୁର୍ଥ ଦିନରେ ଉତ୍ପନ୍ନ ହୁଏ, ବଡ଼ ପାଳିଜ୍ୱର ।
ଚାତୁର୍ଥକାରି—ପୁଂ. ବ. ଔଷଧବିଶେଷ ।
ଚାତୁର୍ଥାହ୍ନିକ—କ୍ରି. ବିଂ ଚତୁର୍ଥଦିନ ସମ୍ବନ୍ଧୀୟ, ଦିନର ଚତୁର୍ଥ ଭାଗରେ କର୍ତ୍ତବ୍ୟ କର୍ମ ।
ଚାତୁର୍ଥିକ—କ୍ରି. ବିଂ. ଯାହା ଚତୁର୍ଥ ଦିନରେ ଉତ୍ପନ୍ନ ହୁଏ,ଚତୁର୍ଥ ସମ୍ବନ୍ଧୀୟ (ବ.) ଗୋଟିଏଦିନ ଛଡ଼ା ହେବା ପାଳିଜ୍ୱର ।
ଚାତୁର୍ଦ୍ଦଶ—କ୍ଲୀ. ବ. ରାକ୍ଷସ (ବିଂ.)ଯାହା ଚତୁର୍ଦ୍ଦଶୀରେ ଉତ୍ପନ୍ନ ହୁଏ ।
ଚାତୁର୍ଦ୍ଦଶିକ—କ୍ରି. ବିଂ.ଯେ ଚତୁର୍ଦ୍ଦଶୀରେ ଅଧ୍ୟୟନ କରେ । [ ପବିତ୍ର ।
ଚାତୁର୍ଦ୍ଦୈବ—କ୍ରି. ବ. ଚାରି ଦେବଙ୍କ
ଚାତୁର୍ଭଦ୍ର—କ୍ଲୀ. ବ.ଚତୁର୍ଭଦ୍ର ଦେଖ ।
ଚାତୁର୍ଭୌତିକ—କ୍ରି. ବିଂ. ଯାହା ଚାରି

ଗୋଟି ଭୂତରୁ ଉତ୍ପନ୍ନ ହୁଏ, ମୃତ୍ତିକା, ଜଳ, ଅଗ୍ନି ଓ ବାୟୁରୁ ଉତ୍ପନ୍ନ ।

ଚାତୁର୍ମହାରାଜକାୟିକ—ଚାତୁର୍ମହାରାଜକ ଦେଖ ।

ଚାତୁର୍ମହାରାଜକ—ପୁଂ. ବ. ପରମେଶ୍ୱର ବିଷ୍ଣୁ, ବୁଦ୍ଧଙ୍କ ନାମଭେଦ ।

ଚାତୁର୍ମାସ—ବିଂ. (ଚତୁର୍ମାସ+ଅ) ଚାରି ମାସରେ କର୍ତ୍ତବ୍ୟ ବ୍ରତ ।

ଚାତୁର୍ମାସକ—ବିଂ, ପୁଂ, ସ୍ତ୍ରୀ. ଯେ ଚାତୁର୍ମାସ୍ୟ ବ୍ରତ ଆଚରଣ କରେ ।

ଚାତୁର୍ମାସିକ—ବିଂ, ଚତୁର୍ମାସ ବ୍ୟାପକ ବ୍ରହ୍ମଚର୍ଯ୍ୟ ଯୁକ୍ତ,ବି. ଚାରିମାସ ବ୍ୟାପୀ ବ୍ରହ୍ମଚର୍ଯ୍ୟ ଅବଲମ୍ବନ କରିବା ।

ଚାତୁର୍ମାସୀ—ପୁଂ, ବିଂ, ଯେ ଚତୁର୍ମାସ୍ୟ ବ୍ରତ ଆଚରଣ କରେ (ସ୍ତ୍ରୀ)ଚାତୁର୍ମାସିନୀ ।

ଚାତୁର୍ମାସୀ—ସ୍ତ୍ରୀ. ବ. (ଚତୁର୍ମାସ+ଅ+ଈ) ପୌର୍ଣ୍ଣମାସୀ ।

ଚାତୁର୍ମାସ୍ୟ—କ୍ଲୀ. ବ.. (ଚତୁର୍ମାସ+ଯ) ଚତୁର୍ମାସ ସାଧ୍ୟ ଯଜ୍ଞ ବିଶେଷ,ଚତୁର୍ମାସ-ସାଧ୍ୟ ବ୍ରତ ବିଶେଷ ।

ଚାତୁର୍ମାସ୍ୟଦ୍ୱିତୀୟା—ସ୍ତ୍ରୀ. ବ. ଆଷାଢ଼ ଫାଲ୍ଗୁନ, ଆଶ୍ୱିନ ଓ କାର୍ତ୍ତିକ ମାସର କୃଷ୍ଣ ପକ୍ଷର ଦ୍ୱିତୀୟା, ଫାଲ୍ଗୁନ ଚୈତ୍ର ବା ବୈଶାଖ ପୂର୍ଣ୍ଣିମାଠାରୁ ଆରମ୍ଭ କରାଯାଇ ଚାରିମାସ କାଳ ଅନୁଷ୍ଠିତ ହେବା ଯଜ୍ଞ ବିଶେଷ, ଆଷାଢ଼ ଶୁକ୍ଳ ଦ୍ୱାଦଶୀ ବା ପୂର୍ଣ୍ଣିମାଠାରୁ କାର୍ତ୍ତିକ ଶୁକ୍ଳ ଦ୍ୱାଦଶୀ ବା ପୂର୍ଣ୍ଣିମା ପର୍ଯ୍ୟନ୍ତ ଚାରି ମାସ କାଳ ପାଳନ କରାଯିବା ବ୍ରତ ବିଶେଷ,ବିଂ.ଚାରିମାସରେ ସମ୍ପାଦନୀୟ ।

ଚାତୁର୍ମାସ୍ୟ ଦ୍ୱିତୀୟା—ସ୍ତ୍ରୀ. ବ. ଆଷାଢ଼ ଫାଲ୍ଗୁନ ଆଶ୍ୱିନ ଓ କାର୍ତ୍ତିକ ମାସର କୃଷ୍ଣପକ୍ଷ ଦ୍ୱିତୀୟା ।

ଚାତୁର୍ମାସ୍ୟା—ସ୍ତ୍ରୀ. ବ. (ଚତୁର୍ମାସ+ଯ+ଆ) ଚାତୁର୍ମାସ୍ୟ ଦେଖ; ଗ୍ରା. ବ. ବର୍ଷାଋତୁ, ବର୍ଷ ଋତୁର ଚାରିମାସ ।

ଚାତୁର୍ଯ୍ୟ—କ୍ଲୀ. ବ. ( ଚତୁର+ଯ ) ଚତୁରତା, ଦକ୍ଷତା, ଚାତୁରୀ,ନିପୁଣତା, ଗ୍ରା. ବ. ପ୍ରବଞ୍ଚନା, ଶଠତା ।

ଚାତୁର୍ବର୍ଣ୍ଣ୍ୟ—କ୍ଲୀ. ବ. ଚାରିବର୍ଣ୍ଣ, ବ୍ରାହ୍ମଣ କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର, (ବର୍ଣ୍ଣ ଚତୁଷ୍ଟୟର ଅନୁଷ୍ଠେୟ ଧର୍ମ) ।

ଚାତୁର୍ବିଂଶିକ—ତ୍ରି. ବି. ଚତୁର୍ବିଂଶତି ଦିନ ସମ୍ବନ୍ଧୀୟ ।

ଚାତୁର୍ବିଦ୍ୟ—କ୍ଲୀ. ବ. ଚାରିବେଦ,ବିଦ୍ୟା ଚତୁଷ୍ଟୟ, ବିଂ. ଚତୁର୍ବେଦାଭିଜ୍ଞ ।

ଚାତୁର୍ବୈଦ୍ୟ—କ୍ଲୀ.ବ. (ଚାତୁର୍ବେଦ+ଯ) ଚାରିବେଦ, ବିଂ. ଯେ ଚାରିବେଦ ଅଧ୍ୟୟନ କରେ ।

ଚାତୁର୍ହୋତ୍ରକ—ପୁଂ. ବ. ଚତୁର୍ହୋତୃ ପ୍ରତିପାଦକ ଗ୍ରନ୍ଥର ବ୍ୟାଖ୍ୟାନକର୍ତ୍ତା ।

ଚାତୁର୍ହୋତ୍ର—ତ୍ରି.ବିଂ.(ଚତୁର୍ହୋତ୍ର+ଅ) ଯାହା ଚାରିଜଣ ହୋତାଙ୍କ ଦ୍ୱାରା ଅନୁଷ୍ଠାନ କରାଯାଏ,ଚାରିଜଣ ହୋତାଙ୍କ ଦ୍ୱାରା ସମ୍ପାଦ୍ୟ ଯଜ୍ଞ ।

ଚାତୁର୍ହୋତ୍ରୀୟ—ତ୍ରି.ବିଂ.ଯେଉଁ ଯଜ୍ଞାଦିରେ ଚାରିଜଣ ହୋତା ନିଯୁକ୍ତ ହୁଅନ୍ତି ।

ଚାତୁଷ୍କାଣ୍ଡିକ—ତ୍ରି, ବିଂ. ଚାରି କାଣ୍ଡରେ ବିଭକ୍ତ ।

ଚାତୁଷ୍ଟୟ—ପୁଂ.ବିଂ. ଚତୁଷ୍ଟୟ ବୃତ୍ତିଅଭିଜ୍ଞ ଯେ ଚତୁଷ୍ଟୟ ବୃତ୍ତି ଅଧ୍ୟୟନ କରେ ।

ଚାତୁଷ୍ପ୍ରାଶ୍ୟ—ତ୍ରି. ବିଂ.ଚାରି ଋତ୍ୱିକଙ୍କର ଭୋଜନୋପଯୁକ୍ତ । [ ରୋତ୍ପନ୍ନ ।

ଚାତୁଃସାଗରକ—ତ୍ରି. ବିଂ. ଚତୁଃସାଗ-

ଚାତ୍ର—କ୍ଲୀ. ବ. ଅଗ୍ନି ମନ୍ଥନ ଯନ୍ତ୍ରର ଅବୟବ ବିଶେଷ ।

ଚାତ୍ୱାରିଂଶ—କ୍ଲୀ. ବ. ବ୍ରାହ୍ମଣବିଶେଷ, ଯହିଁରେ ଚାଳିଶ ଗୋଟି ଅଧ୍ୟାୟ ଅଛି ।

ଚାତ୍ୱାରିଂଶତ୍—ତ୍ରି. ବିଂ. ଚାଳିଶ ଦ୍ୱାରା କ୍ରୀତ ।

ଚାତ୍ୱାଲ—ପୁଂ. ବ. ଯଜ୍ଞକୁଣ୍ଡ, ଦର୍ଭ, ଉତ୍ଖନ,ଉତ୍କଟ, ମୃତ୍ତିକା ସ୍ତୂପ, ଉତ୍ତର ବେଦିର ଅଙ୍ଗ, ଗର୍ତ୍ତ ।

ଚାତ୍ୱାଲବାନ୍—ପୁଂ.ବିଂ. (ଚତ୍ୱାଲ+ବତ୍) ଚାତ୍ୱାଲଯୁକ୍ତ, ଯାହାର ଚାତ୍ୱାଲ ଅଛି, ।

ଚାଦର—ଯା. ବ. ଉତ୍ତରୀୟ ବସ୍ତ୍ର, ଦୋପଟ୍ଟା, ଆଚ୍ଛାଦନ ବସ୍ତ୍ର, ବିଛଣାର ଆସ୍ତରଣ, ଧାତୁ ଆଦିର ପତଳା ଓ ଦୀର୍ଘ ଏବଂ ପ୍ରଶସ୍ତ ଖଣ୍ଡ ।

ଚାନ୍ଦଲ—କାଲଞ୍ଜର. ଦ.ପ.ସ୍ଥିତ ଅଜୟ-ଗଡ଼ ନାମକ ସ୍ଥାନର ଜଣେ ପ୍ରସିଦ୍ଧ ରାଜା ।

ଚାନ୍ସୀ—ଗ୍ରା. ବ. ଯେଉଁ ଦେଶୀ ଡାକ୍ତର ଅସ୍ତ୍ର ଚିକିତ୍ସା ନ କରି କେବଳ ତୈଳ ଓ ଲେପ ଆଦିରେ ବ୍ରଣ ଓ ନାଳୀ ଘାଆ ଇତ୍ୟାଦି ଆରୋଗ୍ୟ କରନ୍ତି ।

ଚାନ୍ଦ—ଗ୍ରା.ବ.(ସଂ-ଚନ୍ଦ୍ର) ଚନ୍ଦ୍ର, ବିବାହର ପରବର୍ତ୍ତୀ ଶୁକ୍ଳ ତୃତୀୟା ଦିନ ବର-କନ୍ୟାଙ୍କ ଦ୍ୱାରା କରାଯିବା ଚନ୍ଦ୍ର ବନ୍ଦା-ପନା ବିଧି, ଚନ୍ଦ୍ର ବନ୍ଦାପନା, କୁମାର ପୂର୍ଣ୍ଣିମା ଦିନ ସନ୍ଧ୍ୟାରେ ଚନ୍ଦ୍ରଙ୍କୁ ଭୋଗ ଦିଆଯିବା ନୈବେଦ୍ୟ,କୁମାର ପୂର୍ଣ୍ଣିମାର ନୈବେଦ୍ୟ ପରସ୍ପର ପାତ୍ରରେ ଦିଆ-ଦେଇ ହୋଇ ଦୁଇଜଣ ସ୍ତ୍ରୀଲୋକ ବା ବାଳକଙ୍କ ମଧ୍ୟରେ ସ୍ଥାପିତ ବନ୍ଧୁତା ଓ ପରସ୍ପରକୁ ଡାକିବା ସମ୍ବୋଧନ, ଗାଈ, ବଳଦ ଓ ଘୋଡ଼ାଙ୍କ ମୁହଁ ସମ୍ମୁଖରେ କପାଳ ତଳକୁ ଥିବା ଶୁକ୍ଳବର୍ଣ୍ଣ ଗୋଲ ବା ଲମ୍ବ ରୋମରେଖା, ଦ୍ୱିତୀୟା ଚନ୍ଦ୍ର, ଅର୍ଦ୍ଧ ଚନ୍ଦ୍ର ବା ପୂର୍ଣ୍ଣିମା ଚନ୍ଦ୍ର ଆକୃତିର ଧାତୁନିର୍ମିତ ଅଳଙ୍କାରବିଶେଷ,(ଲ.ଅର୍ଥ) ଚନ୍ଦ୍ର ପରି ପ୍ରୀତିଦାୟକ ବ୍ୟକ୍ତି ବା ବସ୍ତୁ, ଧଳା ଓ ଗୋଲ ଦାଗମାନ ।

ଚାନ୍ଦକଲା—ଗ୍ରା. ବି. କୃଷ୍ଣ ବର୍ଣ୍ଣ ରଙ୍ଗ ବିଶେଷ ।

ଚାନ୍ଦନା—ଯା. ବି. ରଇତ ଘରବାଡ଼ି ରୂପେ ଭୋଗ କରୁଥିବା ଭୂମି ବା ଯୋତ, ଘରବାଡ଼ି, ରଇତ,ଘରଡ଼ିହ ଜମି ।

ଚାନ୍ଦନାପ୍ରଜା—ଗ୍ରା. ବ. ଯେଉଁ ରଇତ ଆପଣାର ଯୋତରେ ଘର କରିଥାଏ ।

ଚାନ୍ଦନକ—ତ୍ରି. ବିଂ. (ଚନ୍ଦନ+ଇକ) ଯାହା ଚନ୍ଦନ ଦ୍ୱାରା ସମ୍ପନ୍ନ ହୁଏ, ଚନ୍ଦନ ନିର୍ମିତ, ଚନ୍ଦନଚର୍ଚ୍ଚିତ, (ସ୍ତ୍ରୀ) ଚାନ୍ଦନିକୀ ।

ଚାନ୍ଦନୀ—ଗ୍ରା. ବ. ଜ୍ୟୋତ୍ସ୍ନାମୟୀ (ରାତ୍ରି), ଚନ୍ଦ୍ର କିରଣ ଥିବା, ଚନ୍ଦ୍ରିକା ଯୁକ୍ତ, ଚନ୍ଦ୍ର ଦ୍ୱାରା ଆଲୋକିତ,ଗ୍ରା. ବ. ଚନ୍ଦ୍ର କିରଣ, ଚନ୍ଦ୍ରଶାଳା, ଖୋଲା ପକ୍କା ମଣ୍ଡପ ।

ଚାନ୍ଦବଦନ—ଗ୍ରା. ବି ଓ ବିଂ. ଚନ୍ଦ୍ରବଦନ ଦେଖ ।

ଚାନ୍ଦବନ୍ଦା—ଗ୍ରା.ବି.ଚାନ୍ଦବନ୍ଦାପନା ଦେଖ ।

ଚାନ୍ଦବନ୍ଦାଇବା—ଗ୍ରା.କ୍ରି.(କୁମାରୀ କୁମାରୀମାନେ) କୁମାରପୂର୍ଣ୍ଣିମା ସନ୍ଧ୍ୟାବେଳେ ନବୋଦିତ ଚନ୍ଦ୍ରଙ୍କୁ ବନ୍ଦାପନା କରିବା, ବିବାହର ପରବର୍ତ୍ତୀ ଶୁକ୍ଳତୃତୀୟା ଦିନ ବରକନ୍ୟା ଚନ୍ଦ୍ରଙ୍କୁ ବନ୍ଦାପନା କରିବା ।

ଚାନ୍ଦବନ୍ଦାପନା—ଗ୍ରା. ବି. ବିବାହର ପରବର୍ତ୍ତୀ ଶୁକ୍ଳତୃତୀୟା ଦିନ ବରକନ୍ୟା ଚନ୍ଦ୍ରଙ୍କ ପୂଜା କରିବା ବିଧି, ଚନ୍ଦ୍ରବନ୍ଦାପନା, କୁମାରପୂର୍ଣ୍ଣିମା ଦିନ ସନ୍ଧ୍ୟାରେ କୁମାରୀମାନଙ୍କ ଦ୍ୱାରା ଚନ୍ଦ୍ରଙ୍କ ପୂଜା ।

ଚାନ୍ଦବାଲି—ଗ୍ରା. ବି. ବାଲେଶ୍ୱର ଜିଲ୍ଲାର ଗ୍ରାମବିଶେଷ (ଓଡ଼ିଶାର ବାଣିଜ୍ୟପ୍ରଧାନ ବନ୍ଦର) ।

ଚାନ୍ଦମାରି—ଗ୍ରା. ବି. ବନ୍ଧୁକ ଦ୍ୱାରା ଲକ୍ଷ୍ୟ ଭେଦ ଶିକ୍ଷା କରିବା ନିମନ୍ତେ ନିର୍ଦ୍ଦିଷ୍ଟ ଦୂରରେ ରଖାଯାଇଥିବା ଚନ୍ଦ୍ରାକାର ଚିହ୍ନ ବିଶେଷ । [ ଦେଖ ।

ଚାନ୍ଦମୁଖ—ଗ୍ରା. ବି ଓ ବିଂ. ଚନ୍ଦ୍ରବଦନ

ଚାନ୍ଦମୁହିଁ—ଗ୍ରା. ବିଂ. ସ୍ତ୍ରୀ. ଚନ୍ଦ୍ରମୁଖୀ, ଚନ୍ଦ୍ରବଦନା ।

ଚାନ୍ଦରାୟଗୁରୁ—ଗ୍ରା. ବି. ପୁରୀ ଜିଲ୍ଲାର ଜଣେକ ସଂସ୍କୃତଜ୍ଞ ପଣ୍ଡିତ ।

ଚାନ୍ଦସୁରି—ଗ୍ରା. ବି. ଚନ୍ଦ୍ରସୂର ଦେଖ ।

ଚାନ୍ଦା—ଗ୍ରା. ବି. ଭେଦା, ଅନେକ ବ୍ୟକ୍ତିଙ୍କଠାରୁ କୌଣସି ବିଶିଷ୍ଟ କାର୍ଯ୍ୟ ପାଇଁ ସଂଗୃହୀତ ଅର୍ଥ, ସମ୍ବାଦପତ୍ର ପାଇଁ ଗ୍ରାହକ ଦେବା ମୂଲ୍ୟ, ଭୂମି ମାପିବାବେଳେ ବିଶିଷ୍ଟ ସ୍ଥାନର ନିଦର୍ଶନ ସ୍ୱରୂପ ଭୂମିରେ ପୋତା ଯିବା କାଠ ଆଦି ଚିହ୍ନ ।

ଚାନ୍ଦାଉଠା(ଉଠାଇବା)—ଗ୍ରା. କ୍ରି. ବହୁ ବ୍ୟକ୍ତିଙ୍କଠାରୁ ଚାନ୍ଦା ଅସୁଲ କରିବା ।

ଚାନ୍ଦାଉଠିବା—ଗ୍ରା.କ୍ରି. ବହୁ ବ୍ୟକ୍ତିଙ୍କଠାରୁ ଚାନ୍ଦା ଆଦାୟ କରାଯିବା ।

ଚାନ୍ଦାସ୍ୱୀକାର କରିବା—ଗ୍ରା. କ୍ରି. ନିଜର ଦେୟ ଚାନ୍ଦାର ପରିମାଣ ଅଙ୍ଗୀକାର କରି ଦସ୍ତଖତ କରିବା ।

ଚାନ୍ଦି—ଗ୍ରା. ବିଂ. ବିଶୁଦ୍ଧ ରୌପ୍ୟ, ମତ୍ସ୍ୟବିଶେଷ, ଗୋଡ଼ର ତଳିପା, ଗ୍ରା. ପୁରୀ. ବି. ଘୋଡ଼ା ଓ ଗୋରୁଙ୍କ ଖୁରାରେ ମରାଯିବା ନାଲ ବା ଲୁହାର ପାଉଁଆ ।

ଚାନ୍ଦିଆ—ଗ୍ରା. ବିଂ. ଯେଉଁ ରଙ୍ଗିନ ଘୋଡ଼ା ଓ ଗୋରୁ ପ୍ରଭୃତିଙ୍କ କପାଳରେ ଚନ୍ଦ୍ରାକୃତି ଧଳା ରୋମରେଖା ଥାଏ, ଗ୍ରା. ବି. କପାଳରେ ଚାନ୍ଦଥିବା ପଶୁ ।

ଚାନ୍ଦିଫୁଟିବା—ଗ୍ରା. ବି. ଅନେକ ବାଟ ଚାଲିବାରୁ ଗୋଡ଼ର ତଳିପା ଫୁଟିଯିବା ବା କ୍ଷତଯୁକ୍ତ ହେବା ।

ଚାନ୍ଦୁଆ—ଗ୍ରା.ବି. (ସଂ-ଚନ୍ଦ୍ରାତପ) ବିତାନ, ନାନା ବର୍ଣ୍ଣରେ ଚିତ୍ରିତ ସାମିୟାନା ।

ଚାନ୍ଦ୍ର—ପୁଂ. ବିଂ. (ଚନ୍ଦ୍ର+ଅ) ଚନ୍ଦ୍ରସମ୍ବନ୍ଧୀୟ, ଚାନ୍ଦ୍ର ବ୍ୟାକରଣ ଅଧ୍ୟୟନକାରୀ, ଚନ୍ଦ୍ରଘଟିତ, ସ୍ତ୍ରୀ-ଚାନ୍ଦ୍ରୀ (କ୍ଲୀ.ବି.) ଚାନ୍ଦ୍ରାୟଣ ବ୍ରତ, ଆର୍ଦ୍ରକ, ପରିମାଣ ବିଶେଷ, ପୁଂ. ବି. ଚନ୍ଦ୍ରକାନ୍ତମଣି, ମୃଗଶିରା ନକ୍ଷତ୍ର, ଚାନ୍ଦମାସ, ଚନ୍ଦ୍ରଲୋକ, ପ୍ଲକ୍ଷ ଦ୍ୱୀପସ୍ଥ ଗୋଟିଏ ପର୍ବତ । [ଘୁଣ୍ଠୀ ।

ଚାନ୍ଦ୍ରକ—କ୍ଲୀ. ବି. (ଚାନ୍ଦ୍ର+କୈ+ଅ)

ଚାନ୍ଦ୍ରପୁର—ପୁଂ. ବି. ଗୋଟିଏ ଜନପଦ ଓ ତଦ୍ଦେଶସ୍ଥ ଶିବମୂର୍ତ୍ତି । [ ନଦୀ ।

ଚାନ୍ଦ୍ରଭାଗା—ସ୍ତ୍ରୀ. ବି. (ବ.ବ୍ରୀ) ଚନ୍ଦ୍ରଭାଗା

ଚାନ୍ଦ୍ରଭାଗେୟ—ପୁଂ. ବି. ଚନ୍ଦ୍ରଭାଗାନଦୀରୁ ଉତ୍ପନ୍ନ ଗୋଟିଏ ନଦୀ ।

ଚାନ୍ଦ୍ରମଳ—ବି.(କ.ଧା) ଅଧିକା ଚନ୍ଦ୍ରମାସ, ମଳମାସ ।

ଚାନ୍ଦ୍ରମସ—ତ୍ରି. ବିଂ. (ଚନ୍ଦ୍ର+ମସ+ଅ) ଚନ୍ଦ୍ରସମ୍ବନ୍ଧୀୟ, ସ୍ତ୍ରୀ-ଚାନ୍ଦ୍ରମସୀ, କ୍ଲୀ. ବି. ମୃଗଶିରା ନକ୍ଷତ୍ର ।

ଚାନ୍ଦ୍ରମସାୟନ—ପୁଂ. ବି. ବୁଧ ।

ଚାନ୍ଦ୍ରମସାୟନି—ପୁଂ. ବି. ବୁଧଗ୍ରହ ।

ଚାନ୍ଦ୍ରମାଣ—କ୍ଲୀ. ବି. କାଳର ପରିମାଣ ବିଶେଷ ।

ଚାନ୍ଦ୍ରମାନବତ୍ସର—ବି. ଚନ୍ଦ୍ରଙ୍କ ଗତିଦ୍ୱାରା ନିୟମିତ ଦ୍ୱାଦଶ ମାସବିଶିଷ୍ଟ ବର୍ଷ ।

ଚାନ୍ଦ୍ରମାନମାସ—ପୁଂ. ବି. ଚନ୍ଦ୍ରଙ୍କ ଗତି ଦ୍ୱାରା ନିୟମିତ ମାସ ।

ଚାନ୍ଦ୍ରମାସ—ପୁଂ. ବି. (କ. ଧା) ଚନ୍ଦ୍ରସମ୍ବନ୍ଧୀୟ ମାସ, ତ୍ରିଂଶତ୍ ତିଥିଗଠିତ ମାସ ।

ଚାନ୍ଦ୍ରବତ୍ସର—ପୁଂ. ବି. (କ.ଧା) ଦ୍ୱାଦଶ ଚାନ୍ଦମାସ ଯୁକ୍ତ ବର୍ଷ ।

ଚାନ୍ଦ୍ରବ୍ୟାକରଣ—ଚନ୍ଦ୍ର ବା ଚନ୍ଦ୍ର ଗୋମିନ୍ ନାମଧେୟ ପଣ୍ଡିତଙ୍କ ପ୍ରଣୀତ ବ୍ୟାକରଣ

ଚାନ୍ଦ୍ରବ୍ରତିକ—ପୁଂ. ବି. ରାଜା, ପ୍ରଜାବର୍ଗ ତାହାର ଦର୍ଶନରେ ଚନ୍ଦ୍ରଦର୍ଶନ ପରି ଆହ୍ଲାଦିତ ହୁଏ, ଯେ ଚାନ୍ଦ୍ରାୟଣ ବ୍ରତ କରେ । [ ଅଦା ।

ଚାନ୍ଦ୍ରାଖ୍ୟ—କ୍ଲୀ. ବି. (ବ. ବ୍ରୀ) ଆର୍ଦ୍ରକ,

ଚାନ୍ଦ୍ରାୟଣ—କ୍ଲୀ.ବି.(ବ.ବ୍ରୀ) ବ୍ରତବିଶେଷ, ପ୍ରାୟଶ୍ଚିତ୍ତ ବିଶେଷ, ବିଂ. ଚାନ୍ଦ୍ରାୟଣସମ୍ବନ୍ଧୀ ।

ଚାନ୍ଦ୍ରାୟଣିକ—ପୁଂ. ବିଂ. (ଚାନ୍ଦ୍ରାୟଣ+ଇକ) ଚାନ୍ଦ୍ରାୟଣ ବ୍ରତକାରୀ, ଚାନ୍ଦ୍ରାୟଣବ୍ରତବିଷୟକ, (ସ୍ତ୍ରୀ) ଚାନ୍ଦ୍ରାୟଣିକୀ ।

ଚାନ୍ଦ୍ରୀ—ସ୍ତ୍ରୀ. ବି. (ଚନ୍ଦ୍ର+ଅ+ଈ) ଚନ୍ଦ୍ରପତ୍ନୀ, ଜ୍ୟୋତ୍ସ୍ନା, ଶ୍ୱେତକଣ୍ଟକାରୀ, (ବିଂ) ଚନ୍ଦ୍ରସମ୍ବନ୍ଧୀୟ ।

ଚାପ—ପୁଂ. ବି. (ଚପ୍+କ.ଅ) ଧନୁ, ବୃତ୍ତକ୍ଷେତ୍ରାର୍ଦ୍ଧ, ଧନୁରାଶି, (ଗ୍ରା. ବି) ଓଜନ, ଭାର, ପୀଡ଼ନ, ଦାବିବା, ଚାପସରି, କଣ୍ଠର ଅଳଙ୍କାରବିଶେଷ, ଯାହା ଉପଲକ୍ଷେ ସଜ୍ଜିତ ନୌକା । [ କରିବା ।

ଚାପଖେଳିବା—ଗ୍ରା. କ୍ରି. ନୌକା ବିହାର

ଚାପଡ଼(ଡ଼ା)—ଗ୍ରା. ବି. ଚପେଟାଘାତ, ଥାପଡ଼, ଚାପୋଡ଼, ଯାପଡ଼ା ।

ଚାପଡ଼ାଖାଇବା—ଗ୍ରା. କ୍ରି. ଅନ୍ୟର ଚପେଟାଘାତ ସହିବା ।

ଚାପଡ଼ାଖିଆ—ଗ୍ରା. ପୁଂ. ବିଂ. ଯେ ବାରମ୍ବାର ଅନ୍ୟଠାରୁ ଚାପଡ଼ାମାଡ଼ ଖାଏ ।

ଚାପଡ଼ାମାରିବା—ଗ୍ରା. କ୍ରି. ଚପେଟାଘାତ କରିବା, ଚାପଡ଼ା ଦେବା, ଥାପଡ଼ ମାରିବା ।

ଚାପଦଣ୍ଡ—ବି. ଯାହାଦ୍ୱାରା ଜଳାଦି ଉର୍ଦ୍ଧ୍ୱ

ଓ ଅଧୋଗତ ହୁଏ, ଯେପରି ପିରୁକାର ଦଣ୍ଡ ।

ଚାପଦ୍ୱାର—ଗ୍ରା. ବ. ଜାହାଜ ଭିତରେ ଯାତ୍ରୀମାନେ ରହିବା ଘର ।

ଚାପଦାସୀ—ସ୍ତ୍ରୀ. ବ. ନଦୀଭେଦ ।

ଚାପପଟ—ପୁଂ.ବ.(ବ.ଗ୍ର) ପିୟାଳବୃକ୍ଷ ।

ଚାପରାସ୍—ଯା. ବ. ଭୃତ୍ୟର ପରିଚୟ ଜ୍ଞାପକ ଧାତୁପଟ୍ଟ ।

ଚାପଲ—କ୍ଲୀ. ବ. (ଚପଳ+ଅ) ଚପଳତା, ଅନବସ୍ଥିତି ।

ଚାପଲାୟନ—ପୁଂ.ବ. (ଚପଳ+ଆୟନ) ଚପଳଙ୍କ ଗୋତ୍ରଜ ପୁରୁଷ ।

ଚାପଲ୍ୟ—କ୍ଲୀ. ବ. କ.ଧା; (ଚପଳ+ଯ) ଚପଳତା, ଚାଞ୍ଚଲ୍ୟ, ଅସ୍ଥୈର୍ଯ୍ୟ, ଧୃଷ୍ଟତା, ପ୍ରଗଲ୍ଭତା, ଅବମୃଷ୍ୟକାରିତା, ଔଦ୍ଧତ୍ୟ ।

ଚାପବଂଶ— କାଠିୟାବାଡ଼ର ପଶ୍ଚିମ ସୀମାନ୍ତର୍ଗତ ବର୍ଦ୍ଧମାନ ନାମକ ସ୍ଥାନର ଗୋଟିଏ ରାଜବଂଶ ।

ଚାପସରି—ଗ୍ରା. ବ. (ସଂ—ଚଲମାଲିକା) ବେକରେ ପିନ୍ଧାଯିବା ଅଳଙ୍କାରବିଶେଷ, ମୁଦିଆ ଲାଗିଥିବା ଏକପ୍ରକାର ଅଣ୍ଟାସୂତା ।

ଚାପା—ଗ୍ରା. ବ. ଉପରୁ ଦିଆଯିବା ଭାର, ପୀଡ଼ନ, ଅତିରିକ୍ତ ଭୋଜନ, ମଧ୍ୟଭାରତ ବର୍ଷର ଅନ୍ତର୍ଗତ ବିଲାସପୁର ଜିଲ୍ଲା ଏବଂ ସିଓରିନାରାୟଣ ତହସୀଲଭୁକ୍ତ ଗୋଟିଏ ଗ୍ରାମ ।

ଚାପାଲ—କ୍ଲୀ. ବ. ବୌଦ୍ଧମାନଙ୍କର ଏକ ବିଖ୍ୟାତ ଚୈତ୍ୟ ।

ଚାପିଆଲ୍—ଗ୍ରା. ବ. ଯେଉଁ ବାସନରେ ଚା ପାନ କରାହୁଏ ।

ଚାପିଚାପିକଥାକହିବା—ଗ୍ରା.କି. (ଲ.ଅର୍ଥ) ସତର୍କତା ସହିତ କଥାକହିବା ।

ଚାପିବା—ଗ୍ରା. କି. ଭାରଦେଇ ତଳକୁ ଦାବିବା, ଚପିବା, କୌଣସି ବ୍ୟକ୍ତିକୁ ଘଷିବା, ଭିଡ଼ିବା ।

ଚାପୀ—ପୁଂ. ବଂ. (ଚାପ+ଇନ୍) ଧନୁର୍ଦ୍ଧାରୀ, (ବି) ଶିବ, ଧନୁରାଶି ।

ଚାପୁଣୀ—ଗ୍ରା.ବ. ଘରର ଚାଳ ବା ନଡ଼ା ଦିଆହୋଇ ବେତର ହେବାପରେ ବତାଗୁଡ଼ିକୁ ଚାପିରଖିବାପାଇଁ ଚାଳଆଡ଼ୁ ପଶିଆ ଆଡ଼କୁ ଯେଉଁ ବତା ଖୁବ୍ କସ୍‌କରି ବନ୍ଧା ଦିଆଯାଏ, ଛାଲିଟି ବାଡ଼ିରୁ ଜାଲ ଫିଟାଇବାକୁ ଯେଉଁ ଯନ୍ତ୍ରର ଚାପା ଦିଆଯାଏ, ଝୁଇ ।

ଚାପୁଡ଼ା—ଗ୍ରା. ବ. ଚାପଡ଼ା ଦେଖ ।

ଚାପୁଡ଼ାଇବା—ଗ୍ରା. କି. ଚାପଡ଼ାଇବା, ସ୍ନେହରେ ଧୀରେ ଧୀରେ କରତଳଦ୍ୱାରା ଆଘାତ କରିବା ।

ଚାପୋଡ଼(ଡ଼ା)—ଗ୍ରା. ବ. ଚାପଡ଼ ଦେଖ ।

ଚାବ୍‌ରା—ଗ୍ରା. ବଂ. କାମୁଡ଼ା । [ ପିମ୍ପୁଡ଼ି

ଚାବ୍‌ରାଚଣ୍ଡି—ପ୍ରା. (ଗ୍ରାମ୍ୟ) ବ. କାମୁଡ଼ା

ଚା-ବଗିଚା—ଗ୍ରା. ବ. ଚାହାର କୃଷି କରାଯିବା କ୍ଷେତ ।

ଚାବଦାର—ଗ୍ରା. ବଂ. ଯେଉଁ ଯନ୍ତ୍ର (ଯଥା—ଘଣ୍ଟା) ସ୍ୱତନ୍ତ୍ର ଚାବିଦ୍ୱାରା ଚାଳିତ ହୁଏ ।

ଚାବଦେବା—ଗ୍ରା. କି. ଚାବପକାଇବା, ଦେଖ; ଘଣ୍ଟାଭିତରର ସ୍ପ୍ରିଙ୍ଗ୍ ଖୋଲିଯାଇଥିଲେ ତାକୁ ଚାବିଦ୍ୱାରା ଗୁଡ଼ାଇବା ଘଣ୍ଟାରେ ଦମ୍ ଦେବା, କାମୁଡ଼ିବା ।

ଚାବପକା(ନେ)ଇବା—ଗ୍ରା. କି. କୋଲପକୁ ବନ୍ଦକରିବା, ଘର କବାଟରେ ତାଲାଦେବା ।

ଚାବଫିଟା(ଟେ)ଇବା—ଗ୍ରା. କି. କୋଲପକୁ ମେଲ କରିବା, ଘର କବାଟରୁ କୋଲପ ଫିଟାଇବା ।

ଚାବବା—ଗ୍ରା. କି. କାମୁଡ଼ିବା ।

ଚାବୁକ—ଯା. ବ. ଅଶ୍ୱତାଡ଼ନ ଦଣ୍ଡ, କୋରଡ଼ା, ଚାବୁକଦ୍ୱାରା ପ୍ରହାର, ପ୍ରା. (ଗଞ୍ଜାମ) ବ. ଗଛ ।

ଚାବୁକସବାର—ଯା. ବ. ଯେଉଁ ଅଶ୍ୱାରୋହୀ ଘୋଡ଼ାକୁ ମଣକରେ ।

ଚାବୁଚାବୁ—ଗ୍ରା. ଅବ୍ୟ. (ଧ୍ୱନ୍ୟନୁକରଣ) ଅଳ୍ପପାଣିରେ ଆଙ୍ଗୁଠି ବା କ୍ଷୁଦ୍ରବସ୍ତୁ ବାଡ଼େଇବା ଶବ୍ଦ, ଚବଚବ ଶବ୍ଦ ।

ଚାମଚ(ଚା)—ଯା. ବ. ହତା, ଦର୍ବୀ, ପଳା, ଧାତୁନିର୍ମିତ ଡଙ୍କି ବା ସାନ ଅଣକ ।

ଚାମଚକା—ଗ୍ରା.ସ୍ତ୍ରୀ.ବ. (ସଂ-ଚର୍ମଚଟିକା) ଚର୍ମଚଟୀ, ଚେମଣୀ, ଚର୍ମପକ୍ଷୀ, ଚେମେଣି ବାଦୁଡ଼ି ।

ଚାମଠା—ପ୍ରା. (ହିନ୍ଦି) ବ. ଶଗଡ଼ର ଯୁଆଳି ଓ ଦଣ୍ଡା ଆଗକୁ ଯୋଡ଼ି ରଖିବାରେ ବ୍ୟବହୃତ ରଜ୍ଜୁ ।

ଚାମର—ପୁଂ. କ୍ଲୀ. ବ. (ଚମର+ଅ) ଚମରୀମୃଗପୁଚ୍ଛ, ଲୋମନିର୍ମିତ ବ୍ୟଜନ, ଚଅଁର, ବାଳବ୍ୟଜନ, କେଶଗୁଚ୍ଛ, ଛନ୍ଦୋବିଶେଷ ।

ଚାମରଗ୍ରାହ—ତ୍ରି. ବଂ. (ଚାମର+ଗ୍ରହ+ଅ) ଚାମରବ୍ୟଜନକାରୀ, ଯେ ଚାମର ପକାଏ ।

ଚାମରଚକୁରି—ସ୍ତ୍ରୀ. ବଂ. (ବ.ଗ୍ର) ଘନକେଶୀ, ଯେଉଁ ସ୍ତ୍ରୀର ମୁଣ୍ଡର ବାଳ ଚାମରପରି ଘନ ଓ ଲମ୍ବ ।

ଚାମରଢାଳିବା—ଗ୍ରା. କି. ଚଅଁର ପକାଇବା, ଚଅଁର ଢାଳିବା ।

ଚାମରଧାରିଣୀ—ସ୍ତ୍ରୀ.ବଂ. (ଚାମର+ଧର+ଇନ୍+ଈ) ଚାମରଗ୍ରାହିକା, ଯେଉଁ ସ୍ତ୍ରୀ ଚାମର ପକାଏ ।

ଚାମରପୁଷ୍ପ—ପୁଂ.ବ. ନଡ଼ିଆ, ଗୁଆ, ମକା, କାଶତୃଣ, କେତକୀ ବୃକ୍ଷ, ଆମ୍ବଆଦି ବୃକ୍ଷମାନ ।

ଚାମରପୁଷ୍ପକ—ପୁଂ. ବ. କାଶତୃଣ ।

ଚାମରହସ୍ତା—ସ୍ତ୍ରୀ. ବଂ. (ବ.ଗ୍ର) ଚାମରଗ୍ରାହିକା । [ ଦେଖ ।

ଚାମରା—ସ୍ତ୍ରୀ. ବ. (ଚାମର+ଆ) ଚାମର

ଚାମରାଜ—ମହୀସୁରର ଯାଦବ ବଂଶୀୟ କେତେଜଣ ରାଜାଙ୍କ ନାମ ।

ଚାମରିକ—ପୁଂ. ବ. (ଚାମର+ଇକ) ଯେଉଁବ୍ୟକ୍ତି ଚାମର ଧରେ ବା ପକାଏ ।

ଚାମରୀ—ପୁଂ. ସ୍ତ୍ରୀ. ବ. ଚମରୀଗୋ, ଚମରୀମୃଗ, ଘୋଟକୀ, ଘୋଟକ, ଚାମର, ପୁଂ. ବ; (ଚାମର+ଇନ୍) ଚାମରବିଶିଷ୍ଟ, ଚଅଁର ଧରିଥିବା (ବ୍ୟକ୍ତି), (ସ୍ତ୍ରୀ) ଚାମରିଣୀ । [ ଚମଡ଼ା ।

ଚାମାଟି—ଗ୍ରା. ବ. ଖୁରରେ ଶାଣ ଦେବାର

ଚାମାର—ପୁଂ.ବ. ଚର୍ମପ୍ରସ୍ତୁତକାରୀ, ମୋଚି ।

ଚାମାରି—ଗ୍ରା. ବ. ଏକପ୍ରକାର ଲତା ।

ଚାମୀକର—କ୍ଳୀ. ବ. (ଚମୀକର+ଅ) ସ୍ୱର୍ଣ୍ଣ, ଧୁସ୍ତୁରର ବୃକ୍ଷ, (ବି°) ସ୍ୱର୍ଣ୍ଣମୟ ।

ଚାମୀକରଗୌର—ପୁଂ. ବି°. (ଉପମିତ୍ କ.ଧା) ଯାହାର ଦେହର ବର୍ଣ୍ଣ ସୁନାପରି, (ସ୍ତ୍ରୀ) ଚାମୀକରଗୌରୀ ।

ଚାମୁଣ୍ଡରାଜ—ଗୁଜରାଟର ଚୌଲୁକ୍ୟ ବଂଶୀୟ ଦ୍ୱିତୀୟ ରାଜା ।

ଚାମୁଣ୍ଡା—ସ୍ତ୍ରୀ. ବ. (ଚଣ୍ଡ+ମୁଣ୍ଡ+ଆ) ଚଣ୍ଡମୁଣ୍ଡ ବିନାଶକାରିଣୀ ଦୁର୍ଗା, ମାତୃକାବିଶେଷ ।

ଚାମୁଣ୍ଡୀବେର୍ଟା—ବ. ମହୀସୁର ରାଜ୍ୟର ଗୋଟିଏ ପର୍ବତ ।

ଚାମେଲ୍—ଗ୍ରା. ବ. ଜାଇଫୁଲ ।

ଚାମ୍ପ—ଗ୍ରା. ବ. (ସଂ-ଚାମର) ନଡ଼ିଆ ଓ ଗୁଆଗଛର ଚଅଁରର ରଜ୍ଜୁସଦୃଶ ବୃନ୍ତ, (ଯହିଁରେ ଫଳ ଓହଳି ଥାଏ) ।

ଚାମ୍ପବା—ପ୍ରା. (ଯାଜ) କ୍ରି. (ନଡ଼ିଆଗଛ) ନୂଆଚଅଁର କାଢ଼ିବା ।

ଚାମ୍ପେୟ—ବି: (ଚମ୍ପା+ଏୟ) ଚମ୍ପାଫୁଲ, ନାଗେଶ୍ୱର ଫୁଲ, ସ୍ୱର୍ଣ୍ଣ, କିଞ୍ଜଳ୍କ, କେଶର ।

ଚାମ୍ଫାଁ—ଗ୍ରା. ବ. ପଖୋଜର ଡାହାଣ ମୁଣ୍ଡରେ ଆବଦ୍ଧ ଚମଡ଼ା ଏବଂ ଉକ୍ତ ପାଖରୁ ଜାତହେବା ଧ୍ୱନି ।

ଚାୟ—ତ୍ରି. ବି°. (ଚୟ+ଅ) ଚୟମୟ ।

ଚାୟକ—ତ୍ରି. ବି°. (ଚି+ଅକ) ଯେ ଚୟନ କରେ । [ ପୂଜନୀୟ ।

ଚାୟନୀୟ—ତ୍ରି. ବି°. (ଚାୟ+ଅନୀୟ)

ଚାୟମାନ—ପୁଂ. ବ. ଚୟମାନ ରାଜାଙ୍କ ପୁତ୍ର, (ବି°) ପୂଜ୍ୟ, ତୁଷ୍ଟ ।

ଚାୟୁ—ତ୍ରି. ବି°. (ଚାୟ+ଉ) ପୂଜକ ।

ଚାର୍ସମା—ଯା. ବ. ବୁଧବାର ।

ଚାର—ପୁଂ. ବ. (ଚର+ଅ) ଗୁପ୍ତଚର, ଗୂଢ଼ପୁରୁଷ, ଚାରକୋଳି, କ୍ଳୀ. ବ. (ଚର+କର୍ମ.ଅ) ଶୃଙ୍ଖଳ, (ଚର+କ.ଅ) କୃତ୍ରିମ ବିଷ, ମାଛ ଧରିବା ପାଇଁ ବନଶୀରେ ଗୁନ୍ଥା ହୋଇଥିବା ଦ୍ରବ୍ୟ, ସମ୍ବାଦ ବାହକ, (ଅଧି.ଅ) କାରାଗାର, (ଚର+ଭା.ଅ) ଗତି, ସଞ୍ଚାର, ବନ୍ଧନ, (ଗ୍ରା. ବି.) ଉଚ୍ଚ କୋଠା ଆଦିରେ କାମ କରିବା ରାଜମିସ୍ତ୍ରୀମାନଙ୍କ ସୁବିଧା ନିମନ୍ତେ ବନ୍ଧା ହୋଇଥିବା ମଞ୍ଚା ବା ଭାଡ଼ି, ଭାରି, ପାହ୍ନ ନଥିବା ସିଡ଼ି, ମାଛଙ୍କ ପାଇ ଜଳରେ ପକା ଯିବା ଖାଦ୍ୟ ବା ଚାର ।

ଚାରଇସ୍ୟାର—ଇସଲାମ ଧର୍ମାବଲମ୍ବୀ ଏକପ୍ରକାର ସୁନ୍ନ ସମ୍ପ୍ରଦାୟ ।

ଚାରକ—ତ୍ରି. ବି°. (ଚର+କ. ଅକ) ଗୋ ଅଶ୍ୱାଦିର ପାଳକ, ପଶୁପାଳକ, ସଞ୍ଚାରକ, ( ପୁଂ. ବ ) ବନ୍ଧ, ଗତି, ବନ୍ଧନାଳୟ, ପିୟାଳ ବୃକ୍ଷ, କାରାଗାର, ଗୁପ୍ତଚର, ଚାଳକ, ସହଚର, ଅଶ୍ୱାରୋହୀ, ଭ୍ରମଣକାରୀ, ବ୍ରାହ୍ମଣ ଯୁବକ, ମନୁଷ୍ୟ, (କ୍ଳୀ. ବ) ଚରକନିର୍ମିତ ।

ଚାରକୀଣ—ତ୍ରି. ବି°. ଭ୍ରମଣକାରୀ ବ୍ରାହ୍ମଣ ଯୁବକର ଉପଯୁକ୍ତ ।

ଚାରକୋଳି—ଗ୍ରା. ବ. ପିଆଳ, ଚାର ଗଛର ଫଳ ।

ଚାରଚକ୍ଷୁ—ପୁଂ. ବ. (ବ.ବ୍ରୀ) ରାଜା ।

ଚାରଚଣ—ତ୍ରି. ବି°. ( ଚାର+ଚଣ ) ଯାହାର ଗମନ ସୁନ୍ଦର ।

ଚାରଚଞ୍ଚୁ—ତ୍ରି.ବି°. ବୁଲିଲାବେଳେ ଯେ ଭଲ ଦେଖାଯାଏ, ସୁନ୍ଦର ଗତିଯୁକ୍ତ ।

ଚାରଟିକା—ସ୍ତ୍ରୀ. ବ. (ଚାର+ଟିର୍+ଅଟ+କ+ଆ) ନଳୀନାମକ ଗନ୍ଧଦ୍ରବ୍ୟ ।

ଚାରଟୀ—ସ୍ତ୍ରୀ. ବ. (ଚାର+ଟିର୍+ଅଟ+ଈ) ପଦ୍ମଚାରିଣୀ ବୃକ୍ଷ, ଭୂମ୍ୟାମଳକୀ ।

ଚାରଣ—ପୁଂ. ବ. ( ଚାର+କ. ଅନ ) ନଟ, ଭାଟ, ସ୍ତୁତିପାଠକ, ଧର୍ମଶାସ୍ତ୍ରପାଠକ, କୁଶୀଲବ, ଗନ୍ଧର୍ବବିଶେଷ, ଦେବଯୋନିବିଶେଷ , ଚାରପୁରୁଷ , ଭ୍ରମଣକାରୀ, ବାଗୀଶ୍ୱରୀ ଦେବୀଭକ୍ତ ଅଣହିଲୋଡ଼ୀୟ ଜଣେ ରାଜା, କୋଲାମ୍ବାଦେବୀଭକ୍ତ ପ୍ରିୟର୍ଜନବଂଶୀୟ ଜଣେ ରାଜା, ଭାରତର ପଶ୍ଚିମାଞ୍ଚଳସ୍ଥ ଗୋଟିଏ ଜାତି

ଚାରଣଦାରା—ସ୍ତ୍ରୀ. ବ. ନଟୀ ପ୍ରଭୃତି ।

ଚାରଣ(ଣା)ବିଦ୍ୟ—ବୈଦ୍ୟ—ପୁଂ. ବ. ଅଥର୍ବ ବେଦର ଅଂଶବିଶେଷ ।

ଚାରଣା—ସ୍ତ୍ରୀ. ବ. (ଚାର+ଣି,ଅନ+ଆ) ଚାଳନା ।

ଚାରଦୃଷ୍ଟ—ବି.(କ.ଧା) ଚାର ବା ଦୂତଙ୍କ ଦ୍ୱାରା ଦେଶ ବିଦେଶର ସମ୍ବାଦଜାଣିବା ।

ଚାରପଥ—ପୁଂ. ବ. (କ.ଧା.) ଯେଉଁ ସ୍ଥାନରେ ଦୁଇଟି ରାସ୍ତା ମିଳିତ ହୋଇଅଛି, ରାଜପଥ ।

ଚାରଭଟ—ପୁଂ.ବ.(୭ତତ୍ପୁ) ବୀର, ସାହସୀ ବ୍ୟକ୍ତି, ମଲ୍ଲବିଶେଷ ।

ଚାରମାଗୁଣ୍ଡ—ପ୍ରା. (ଗଞ୍ଜାମ) ବ. ବାଟି-ଖେଳ ବା ଗୁଲି ଖେଳରେ ଖାତରେ ପଢ଼ାଇ ଖେଳିବା ବାଟିର ଚତୁର୍ଥ ଆଘାତ ।

ଚାରମିକ—ତ୍ରି°. ବି°. ( ଚରମ+ଇକ ) ଚରମ ଅଧ୍ୟୟନକାରୀ । [ ବତାସ ।

ଚାରବାୟୁ—ପୁଂ.ବ. (କ.ଧା) ଗ୍ରୀଷ୍ମକାଳର

ଚାରସମ୍ପ୍ରଦାୟ—ବିଭିନ୍ନ ଶ୍ରେଣୀଭୁକ୍ତ ଭାଟମାନଙ୍କର ଗୋଟିଏ ବିଭାଗ ।

ଚାରା—ଗ୍ରା.ବି. ଏକପ୍ରକାର ପକ୍ଷୀ, ଗ୍ରେଟ ଗଛ, ଖାଦ୍ୟସାମଗ୍ରୀ; ବନଶୀର ଥୋପ, (ଯା.ବି) ଶକ୍ତି, କ୍ଷମତା, ଉପାୟ, ପ୍ରତିବିଧାନ, ସାହାଯ୍ୟ ।

ଚାରାନ୍ତରିତ—ପୁଂ. ବ. ଗୁପ୍ତଚର ।

ଚାରାୟଣ—ପୁଂ.ସ୍ତ୍ରୀ.ବ. ଚରର ଗୋତ୍ରାପତ୍ୟ, ସାଧାରଣାଧିକରଣ ନାମକ ଜଣେ କାମଶାସ୍ତ୍ରକାର ।

ଚାରାୟଣକ—ତ୍ରି.ବି°.ଚାରାୟଣୀୟ ଛାତ୍ର ।

ଚାରାୟଣୀୟ—ପୁଂ.ବ. ଚାରାୟଣଙ୍କ ଛାତ୍ର, କମ୍ବଳ ।

ଚାରି—ଗ୍ରା.ବି.(ସଂ-ଚତୁର୍)ଚତୁଃସଂଖ୍ୟା, (ଗ୍ରା.ବି°)ଚାରିସଂଖ୍ୟକ ।

ଚାରିଆଖି—ଗ୍ରା.ବ. (ସଂ-ଚତୁରକ୍ଷ)ଦୁଇଜଣଙ୍କର ପରସ୍ପର ସାକ୍ଷାତ୍କାର ବା ଭେଟାଭେଟି, ବ୍ରହ୍ମା, ଆଗପଛ ଦୃଷ୍ଟି, ଦୂରଦୃଷ୍ଟି, ଅତିଶୟ ସାବଧାନତା ।

ଚାରିଆଖିଆ—ଗ୍ରା. ବି°. ଚାରିଗୋଟି ଆଖିବିଶିଷ୍ଟ, ଦୂରଦର୍ଶୀ, ପରସ୍ପରକୁ ଭେଟିଥିବା, ( ଗ୍ରା.ବି ) ଚାରିଆଖିଆ ମାଛ, ମହୁରବଡ଼ ଜାତୀୟ ମାଛ, ବ୍ରହ୍ମା ।

ଚଉଆଡ଼—ଗ୍ରା. ବି. ଚତୁର୍ଦ୍ଦିଗ, ସବୁଦିଗ, ସବୁବିଷୟ ।

ଚଉଉରଣହେ-ଗ୍ରା.ବି.ଏକଶତ ଗୁଣ ।

ଚଉକଣା—ଗ୍ରା. ବିଂ. ଓଜନରେ ଠିକ୍ (କମ୍ ବା ବେଶି ନୁହେଁ) ।

ଚଉକର—ଆଫଗାନ ସ୍ଥାନର ଅନ୍ତର୍ଗତ ଗୋଟିଏ ସ୍ଥାନ ।

ଚଉକସ୍ତରକା—ସ୍ତ୍ରୀ. ବି. ସହଚରୀ, ଅସ-ରପା ପୋକ ।

ଚଉକାତ—ଗ୍ରା.ବି. ଦୁଇ ହାତ ଓ ଦୁଇ-ଗୋଡ଼ ।

ଚଉକାନ—ଗ୍ରା. ବିଂ. ଦୁଇଜଣ ବ୍ୟକ୍ତି ଶୁଣିଥିବା (ବିଷୟ), ପ୍ରଘଟ ହୋଇଥିବା (ଗୁପ୍ତକଥା) ।

ଚଉକୋଣ—ଗ୍ରା.ବି.(କ୍ଷେତ୍ର ବା ଗୃହର) ଚାରିଗୋଟି କୋଣ । [ ବିଶିଷ୍ଟ ।

ଚଉକୋଣିଆ—ଗ୍ରା. ବିଂ. ଚାରିକୋଣ-

ଚଉଖାନା—ଗ୍ରା. ବି. ଦେହଯାକ ଛକି ପଡ଼ି ବୁଣା ହୋଇଥିବା ବସ୍ତ୍ର ।

ଚଉଖାନି—ଗ୍ରା. ବି. ଚତୁର୍ବିଧ ସୃଷ୍ଟ ଜୀବ, ( ଜରାୟୁଜ, ଅଣ୍ଡଜ, ସ୍ୱେଦଜ ଓ ଉଦ୍ଭିଜ୍ଜ ) ଚାରିଦିଗ, ଭାରତର ଚାରି-ଦିଗରେ ଥିବା ଚାରିଗୋଟି ପ୍ରସିଦ୍ଧ ତୀର୍ଥ, ଚାରିଭାଷା, (ଗ୍ରା.ବିଂ) ଚତୁର୍ବିଧ ।

ଚଉଖୁଣିମାଫ୍—ଗ୍ରା. ବି. ମୁସଲମାନ ରାଜତ୍ୱରେ ସମ୍ରାଟଙ୍କର ବିଶେଷ ଅନୁ-ଗୃହୀତ ବ୍ୟକ୍ତିଙ୍କୁ ସମ୍ମାନରୂପେ ଦିଆ-ଯାଉଥିବା ବିଶିଷ୍ଟ ଅଧିକାର, ଏପରିକି ସେ ଚାରିଟି ପର୍ଯ୍ୟନ୍ତ ନରହତ୍ୟା କଲେ ମଧ୍ୟ ତାଙ୍କୁ ରାଜଦଣ୍ଡ ଦିଆଯାଉ ନଥିଲା, (ଲ.ଅର୍ଥ) କୌଣସି କ୍ଷମତାପନ୍ନ ବ୍ୟକ୍ତି ତାଙ୍କର ଅନୁଗ୍ରହପାତ୍ରଙ୍କୁ ଦେବା ବିଶିଷ୍ଟ ଅଧିକାର ।

ଚଉଖଣ୍ଡ—ଗ୍ରା. ବି. ପୃଥିବୀର ଚାରିଦିଗ ।

ଚଉଗଣ୍ଡା—ପ୍ରା.(ଗଞ୍ଜାମ)ବି. ଏକପ୍ରକାର କଉଡ଼ି ଖେଳ, ଗୁଟିକେଇ ଖେଳ, ( ଗ୍ରା. ବି ଓ ବିଂ—ସଂଖ୍ୟାବାଚକ) ଷୋହଳ-ସଂଖ୍ୟା ।

ଚଉଗୁଣ—ଗ୍ରା.ବି.ଚତୁର୍ଗୁଣ, ଚାରିଗୁଣ (ବିଂ) ଚତୁର୍ଗୁଣିତ, ଅତ୍ୟଧିକ ।

ଚାରିଗୁଣା—ଗ୍ରା. ବିଂ. ଚତୁର୍ଗୁଣ ।

ଚାରିଗୋଡ଼ିଆ—ଗ୍ରା.ବିଂ.ଚତୁଷ୍ପଦ, ଦୁଇ-ହାତ ଓ ଦୁଇଆଣ୍ଠୁ ଭୂମିରେ ଲଗାଇ ଗୁରୁଣ୍ଡିବା, (ଗ୍ରା. ବି) ଚତୁଷ୍ପଦ ଜନ୍ତୁ, ଚୋରମାନଙ୍କୁ ଦିଆଯାଉଥିବା ଦଣ୍ଡ ।

ଚାରିଘଣ୍ଟିଆ—ଗ୍ରା. ବିଂ. ଦୁଇଓଳି କାମ କରିବା ମୂଲିଆମାନଙ୍କର ବେଳ ୯ଟା ବା ୧୦ଟା ଠାରୁ ୪ଟା ପର୍ଯ୍ୟନ୍ତ କାମ କରିବା ରୀତି ।

ଚାରିକିଚାରିହେଁ—ଗ୍ରା. ସର୍ବ. ଚାରିଜଣ-ଯାକ ସମସ୍ତେ ।

ଚାରିଚଉକ—ଗ୍ରା. ବିଂ. ସମଚତୁଷ୍କୋଣ, (ଗ୍ରା.ବି) ପଶା ଓ କଉଡ଼ିରେ ପକାଯିବା ଚାରିସଂଖ୍ୟକ ଦାନ ।

ଚାରିଚଉକସ—ଗ୍ରା. ବିଂ. ସମ୍ପୂର୍ଣ୍ଣ ରୂପେ ସଜ୍ଜିତ, ଖୁବ୍ ସାବଧାନ (ବ୍ୟକ୍ତି), ଖୁବ ଦୃଢ଼ରୂପେ ଭିଡ଼ା ହୋଇ ବନ୍ଧାହୋଇ-ଥିବା, ଖୁବ୍ ବଳିଷ୍ଠ (ବ୍ୟକ୍ତି),ଧୁରନ୍ଧର, ପାରଙ୍ଗମ, ପରସ୍ପର ସଙ୍ଗେ ସମ୍ପୂର୍ଣ୍ଣ-ରୂପେ ମେଳ ଖାଉଥିବା ( ବସ୍ତୁଦ୍ୱୟ ), ସମ୍ପୂର୍ଣ୍ଣରୂପେ ପ୍ରସ୍ତୁତ । [ ଖେଳ ।

ଚାରିଚଉକା—ଗ୍ରା.ବି. ଏକପ୍ରକାର କଉଡ଼ି

ଚାରିଚଉରସ—ଗ୍ରା.ବିଂ. ଯେଉଁ କ୍ଷେତ୍ରର ଚାରିଆଡ଼ ସମତଳ,ବର୍ଗ କ୍ଷେତ୍ର ।

ଚାରିଚକ୍ଷୁ—ଗ୍ରା. ବି ଓ ବିଂ. ଚାରିଆଖି ଇତ୍ୟାଦି ଦେଖ ।

ଚାରିଜଣ—ଗ୍ରା.ବି. ଚାରିସଂଖ୍ୟକ ବ୍ୟକ୍ତି, ଏକତ୍ର ଉପବିଷ୍ଟ କେତେଜଣ ବ୍ୟକ୍ତି, ନିର୍ଦ୍ଦିଷ୍ଟ ସଂଖ୍ୟକ ଅଳ୍ପ ବ୍ୟକ୍ତି ।

ଚାରିଜଣିଆ—ଗ୍ରା.ବିଂ.ଚାରିଜଣବ୍ୟକ୍ତିଙ୍କ ଦ୍ୱାରା ନିଷ୍ପାଦ୍ୟ, ଚାରିବ୍ୟକ୍ତିଙ୍କ ବ୍ୟବ-ହାରାର୍ଥ ଅଭିପ୍ରେତ, ଚାରି ବ୍ୟକ୍ତିଙ୍କ ଦ୍ୱାରା ବାହ୍ୟ (ଯାନାଦି) ।

ଚାରିଜାମା—ଯା. ବି. ଘୋଡ଼ା ପିଠିରେ ପଡ଼ିବା ଜୁଲାରେ ପୂର୍ଣ୍ଣ ବନ୍ଧନମିତ କୋମଳ ଚତୁଷ୍କୋଣ ଆସ୍ତରଣବିଶେଷ, (ଗ୍ରା.ବିଂ) ଚାରିଚଉକସ ଦେଖ ।

ଚାରିଟା—ଗ୍ରା.ବି.(ଅନାଦରାର୍ଥ)ସଂଖ୍ୟାରେ ଚାରି ଅପରାହ୍ଣ ଓ ଭୋର ଚାରିଘଣ୍ଟା ବେଳ,(ଗ୍ରା.ବି) ଚାରିସଂଖ୍ୟକ, ଅଳ୍ପ-ସଂଖ୍ୟକ, ସାମାନ୍ୟ ।

ଚାରିଣୀ—ସ୍ତ୍ରୀ. ବି. (ଚର+ଣିଚ୍+ଇନ୍ +ଈ) କରୁଣୀବୃକ୍ଷ ।

ଚାରିତ—ତ୍ରି.ବିଂ. (ଚର+ଣିଚ୍+ମି. ତ)ଚାଳିତ, ସଂଚାଳିତ,(ସ୍ତ୍ରୀ)ଚାରିତା ।

ଚାରିତାର୍ଥ୍ୟ—କ୍ଳୀ. ବି. ଚରିତାର୍ଥତା, ଉଦ୍ଦେଶ୍ୟ ସିଦ୍ଧି ।

ଚାରିତ୍ର—କ୍ଳୀ. ବି.(ଚରିତ୍ର+ଅ) ଚରିତ୍ର, ସ୍ୱଭାବ, କୁଳକ୍ରମାଗତ ଆଚାର, ଚାଲି-ଚଳନ, ଢଙ୍ଗ, ଜୈନମାନଙ୍କ ସନ୍ନ୍ୟାସ, (ପୁଂ.ବି) ମରୁଦ୍‌ଗଣର ଅନ୍ୟତମ ।

ଚାରିତ୍ରକବଚ—ତ୍ରି.ବିଂ. ସତ୍ସ୍ୱଭାବ ରୂପ କବଚରେ ବା ବର୍ମରେ ଆବୃତ ।

ଚାରିତ୍ରବତୀ—ସ୍ତ୍ରୀ.ବି.ଏକପ୍ରକାର ସମାଧି

ଚାରିତ୍ରବର୍ଦ୍ଧନ—ବି. ଜଣେ ବିଖ୍ୟାତ ଜୈନଗ୍ରନ୍ଥକାର ।

ଚାରିତ୍ରବିନୟ—ବି. ଚରିତ୍ରଦ୍ୱାରା ବିନୀତ-ଭାବ ପ୍ରଦର୍ଶନ, ନମ୍ରତା, ଶିଷ୍ଟାଚାର, ସୌଜନ୍ୟ ।

ଚାରିତ୍ରା—ସ୍ତ୍ରୀ. ବି. (ଚରିତ୍ର+ଅ+ଆ ) ତେନ୍ତୁଳୀବୃକ୍ଷ, ତେନ୍ତୁଳିଗଛ ।

ଚାରିତ୍ରିକ—ବିଂ. (ଚରିତ୍ର+ଇକ) ସ୍ୱଭାବ ବା ଚରିତ୍ର ସମ୍ବନ୍ଧୀୟ ।

ଚାରିତ୍ର୍ୟ—କ୍ଳୀ. ବି. (ଚରିତ୍ର+ଯ)ସ୍ୱଭାବ ।

ଚାରିଦଉଡ଼ିକଟା—ଗ୍ରା. ବିଂ. ଯାହାର ସଂସାରରେ କୌଣସି ମାୟା ବନ୍ଧନ ନାହିଁ, ଯାହାର ଆତ୍ମୀୟ ସ୍ୱଜନ ସମସ୍ତେ ମରିଅଛନ୍ତି ବା ଯେ ସଂସାର ଛାଡ଼ି ବୈରାଗୀ ହୋଇଅଛି ।

ଚାରିଦରଜା—ଯା.ଖୋଲା ଜାଗା ।

ଚାରିପଇସା—ଗ୍ରା. ବି.ଚାରିଗୋଟି ପଇସା ବା ତାମ୍ରମୁଦ୍ରା,( ଲକ୍ଷଣାର୍ଥ ) କିଛିଧନ, କିଛିଅର୍ଥ । [ ସାରିଦିନ ।

ଚାରିପହର—ଗ୍ରା. କ୍ରି. ବିଂ. ଦିନତମାମ

ଚାରିପା—ଗ୍ରା. ବି. ଏକସେର ପରିମାଣ, (ବିଂ) ସମ୍ପୂର୍ଣ୍ଣ ଷୋଳଅଣା, ପୂରା ।

ଚାରପାଇ—ଗ୍ରା. ବି. ଚାରପାହୁଆ ବେଞ୍ଚ ।

ଚାରପାଠ—ଗ୍ରା. ବି. ଓଡ଼ିଆ, ବଙ୍ଗଳା, ନାଗରୀ ଓ ଫାରସୀ ଏହି ଚାରିଭାଷା ଶିକ୍ଷା ।

ଚାରପାହାଡ଼ିଆ—ଗ୍ରା. ବିଂ. ସକଳ କାର୍ଯ୍ୟରେ ସମର୍ଥ ।

ଚାରପାହୁଆ—ଗ୍ରା. ବି. କାଷ୍ଠନିର୍ମିତ କ୍ଷୁଦ୍ର ଖଟ ବା ଖଟିଆ,ଚଉକି, ମେଜ, ଟୁଲ ।

ଚାରଫଲି—ଗ୍ରା. ବିଂ. ଯେଉଁ ଖିଲକାଠ ବା ଦୁଆରରେ ଚାରୋଟି ଫଳକ ଥାଏ ।

ଚାରଫୁଲିଆ—ଗ୍ରା. ବିଂ. ଧଡ଼ିରେ ଚାରିଧାଡ଼ି ଫୁଲଥିବା (ବସ୍ତ୍ର) ।

ଚାରିଭାଇଙ୍କ କାନ୍ଧରେ ଯିବା—ଗ୍ରା. କ୍ରି. ( ଲକ୍ଷଣାର୍ଥ ) ମୃତହେବା, ମଲାପରେ ଆପଣା ଶବ ଚାରିଜଣ ଜ୍ଞାତି ବା ମଡ଼ାସାଙ୍ଗିଆ ଭାଇଙ୍କ କାନ୍ଧରେ କୋକେଇରେ ଶ୍ମଶାନକୁ ନିଆଯିବା ।

ଚାରଭିତ—ପ୍ରା. (ମେଦିନୀପୁର) ଅବ୍ୟ, ଚଉଦିଗରେ, ଚାରିଆଡ଼େ ।

ଚାରିମା—ପୁଂ. ବି. ( ଚାରୁ + ଇମନ୍ ) ଚାରୁତା, ସୌନ୍ଦର୍ଯ୍ୟ, ଲଳିତ୍ୟ ।

ଚାରମାଥ—ଗ୍ରା. ପଦ୍ୟ. ବି. ଚତୁର୍ମୁଖ, ବ୍ରହ୍ମା ।

ଚାରମୁଖ—ଗ୍ରା. ବି. ବ୍ରହ୍ମା ।

ଚାରହରଡ—ଗ୍ରା. ବି. ଚଉଦିଗ ।

ଚାରି—ପୁଂ. ବିଂ. (ଚର+ଇନ୍)ସଞ୍ଚାରକାରୀ, ବିଚରଣକାରୀ, ଗମନକାରକ, (ପୁଂ. ବି) ପଦାତସୈନ୍ୟ, ସଞ୍ଚାରୀଭାବ, ସ୍ତ୍ରୀ. ବି. ( ଚାର+ଇ ) ନୃତ୍ୟର ଅଙ୍ଗ ବିଶେଷ ।

ଚାରୁ—ତ୍ରି. ବିଂ. (ଚର + କ,ଉ) ସୁସ୍ବାଦୁ, ସୁମିଷ୍ଟ, ମନୋଜ୍ଞ, ସୁନ୍ଦର, ସମ୍ୟକ୍, ଅସାଧାରଣ, ( ସ୍ତ୍ରୀ ) ଚାର୍ବୀ, (ପୁଂ.ବି.) ବୃହସ୍ପତି, ଶ୍ରୀକୃଷ୍ଣଙ୍କ ପୁତ୍ର, (କ୍ଲୀ. ବି.) କୁଙ୍କୁମ, ଜାଫ୍ରାନ୍ ।

ଚାରୁକ—ପୁଂ. ବି. (ଚାରୁ + କ) କ୍ଷୁଦ୍ର ଧାନ୍ୟ ବିଶେଷ ।

ଚାରୁକାନ୍ତ—ବି, (କ.ଧା) ଲାବଣ୍ୟ, ପୁଂ. ବିଂ. (ବ.ବ୍ରୀ) ସୁନ୍ଦର, ଲାବଣ୍ୟମୟ ।

ଚାରୁକେଶରା—ସ୍ତ୍ରୀ. ବି. ନାଗର ମୁଥା, ତରୁଣୀ, ପୁଷ୍ପ, ସେବତୀଫୁଲ ।

ଚାରୁଗର୍ଭ—ପୁଂ. ବି. (ବ.ବ୍ରୀ) ଶ୍ରୀକୃଷ୍ଣଙ୍କ [ପୁତ୍ର ।

ଚାରୁଗୀତ—ସ୍ତ୍ରୀ. ବି. ଛନ୍ଦୋବିଶେଷ ।

ଚାରୁଗୁପ୍ତ—ପୁଂ. ବି. ଶ୍ରୀକୃଷ୍ଣଙ୍କ ପୁତ୍ର ।

ଚାରୁଚନ୍ଦ୍ର—ପୁଂ. ବି. ଧୃତରାଷ୍ଟ୍ରଙ୍କ ଏକପୁତ୍ର

ଚାରୁତା—ସ୍ତ୍ରୀ. ବି. ( ଚାରୁ + ତା ) ସୌନ୍ଦର୍ଯ୍ୟ, ରମଣୀୟତା, ମାଧୁରୀ ।

ଚାରୁତାନିଦାନ—କ୍ଲୀ. ବି. ( ୬ତତ୍ତ ) ମନୋହରତ୍ୱର ଆଦିକାରଣ, ସୌନ୍ଦର୍ଯ୍ୟର ମୂଳ ହେତୁ ।

ଚାରୁଦତ୍ତ—ପୁଂ. ବି.ମୃଚ୍ଛକଟିକନାଟକର [ନାୟକ ।

ଚାରୁଦର୍ଶନ—ପୁଂ. ବିଂ. (ବ.ବ୍ରୀ)ଦେଖିବାକୁ ସୁନ୍ଦର, (ସ୍ତ୍ରୀ.) ଚାରୁଦର୍ଶନା ।

ଚାରୁଧାମା—ସ୍ତ୍ରୀ. ବି. (ଚାରୁ+ଧାମନ୍) ଶଚୀ, ଇନ୍ଦ୍ରପତ୍ନୀ ।

ଚାରୁଧାରା—ସ୍ତ୍ରୀ. ବି. ( ଚାରୁ + ଧାରା ) ଇନ୍ଦ୍ରପତ୍ନୀ. ଶଚୀ, ସ୍ତ୍ରୀ. ବିଂ. ( କ.ଧା ) ମନୋହରପ୍ରବାହଯୁକ୍ତ(ନଦୀ),ସୁମନୋହର ପ୍ରବାହ ।

ଚାରୁଧିଷ୍ଣ—ପୁଂ. ବି. ଏକାଦଶ ମନ୍ୱନ୍ତର ସପ୍ତର୍ଷିମଧ୍ୟରେ ଜଣେ ।

ଚାରୁନୟନ—ପୁଂ. ବିଂ. (ବ.ବ୍ରୀ)ଯାହାର ଆଖି ସୁନ୍ଦର, ଚାରୁନେତ୍ର, (ସ୍ତ୍ରୀ) ଚାରୁନୟନା (ବି) ମୃଗ ।

ଚାରୁନାଳକ—କ୍ଲୀ. ବି. କୋକନଦ [ରକ୍ତପଦ୍ମ ।

ଚାରୁନେତ୍ର—ତ୍ରି. ବିଂ. (ବ.ବ୍ରୀ) ସୁନ୍ଦର ନୟନବିଶିଷ୍ଟ, (ସ୍ତ୍ରୀ)ଚାରୁନେତ୍ରା (ତ୍ରି.ବି) ହରିଣ, ଅପ୍ସରାବିଶେଷ ।

ଚାରୁନେତ୍ରା—ବିଂ (ବ.ବ୍ରୀ) ସୁଲୋଚନା ମନୋହରନୟନବିଶିଷ୍ଟା,ମୃଗନୟନା, (ବି) ଅପ୍ସରାବିଶେଷ ।

ଚାରୁପଦ—ପୁଂ. ବି. ପୁରୁବଂଶୀୟ ରାଜା ମନସ୍ୟୁଙ୍କ ଏକପୁତ୍ର ।

ଚାରୁପର୍ଣ୍ଣୀ—ସ୍ତ୍ରୀ. ବି.(ବ.ବ୍ରୀ) ପ୍ରସାରଣୀ, ଗନ୍ଧଭାଦୁଲୀ ।

ଚାରୁପାଣି—ପ୍ରା. (ଗଞ୍ଜାମ) ବି. ମାନ୍ଦ୍ରାଜ ଅଞ୍ଚଳରେ ବ୍ୟବହୃତ ରେଚକ ସୁପକ୍ୱ ଅମ୍ଳ ଓ ରାଗରସଯୁକ୍ତ ପାନୀୟବିଶେଷ ।

ଚାରୁପୁଟ—ପୁଂ. ବି. ସଙ୍ଗୀତର ତାଳ ବିଶେଷ ।

ଚାରୁପ୍ରତୀକ—ତ୍ରି. ବିଂ. ସୁନ୍ଦର ଉପକ୍ରମ [ଯୁକ୍ତ ।

ଚାରୁଫଳା—ସ୍ତ୍ରୀ. ବି. (ବ.ବ୍ରୀ)ଦ୍ରାକ୍ଷାଲତା, ଅଙ୍ଗୁରଗଛ ।

ଚାରୁବାହୁ—ପୁଂ.ବି. ଶ୍ରୀକୃଷ୍ଣଙ୍କର ପୁତ୍ର ।

ଚାରୁଭଦ୍ର—ପୁଂ. ଶ୍ରୀକୃଷ୍ଣଙ୍କର ପୁତ୍ର ।

ଚାରୁମତ୍ର—ପୁଂ. ବି, ଜଣେ ବୌଦ୍ଧ ଚକ୍ରବର୍ତ୍ତୀ ।

ଚାରୁମତୀ—ସ୍ତ୍ରୀ. ବି. ରୁକ୍ମିଣୀଙ୍କ ଗର୍ଭଜାତ ଶ୍ରୀକୃଷ୍ଣଙ୍କ ଏକ କନ୍ୟା ।

ଚାରୁଯଶାଃ—ପୁଂ. ବି.ଶ୍ରୀକୃଷ୍ଣଙ୍କ ଏକପୁତ୍ର

ଚାରୁରବା—ସ୍ତ୍ରୀ. ବି.(ଚାରୁ + ରବ+ଆ) ଇନ୍ଦ୍ରପତ୍ନୀ, ଶଚୀଙ୍କ ନାମାନ୍ତର ।

ଚାରୁଲୋଚନ—ପୁଂ. ବି. (ବ.ବ୍ରୀ)ହରିଣ, (ସ୍ତ୍ରୀ.)ଚାରୁଲୋଚନା,(ତ୍ରି. ବିଂ) ସୁନ୍ଦର ନେତ୍ରଯୁକ୍ତ, (କ୍ଲୀ. କ.ଧା)ସୁନ୍ଦରବଦନ ।

ଚାରୁବକ୍ତ୍ର—ତ୍ରି. ବିଂ. (ବ.ବ୍ରୀ) ସୁନ୍ଦର ମୁଖଯୁକ୍ତ, (ସ୍ତ୍ରୀ.) ଚାରୁବକ୍ତ୍ରା (ପୁଂ. ବି) କାର୍ତ୍ତିକେୟଙ୍କର ଏକ ଅନୁଚର ।

ଚାରୁବର୍ଦ୍ଧନ—ତ୍ରି. ବିଂ. (ଚାରୁ+ବୃଧ+ଣିଚ୍.ଅନ) ସୌନ୍ଦର୍ଯ୍ୟବର୍ଦ୍ଧକ ।

ଚାରୁବର୍ଦ୍ଧନା—ସ୍ତ୍ରୀ.ବି.ବ.ବ୍ରୀ(ଚାରୁବର୍ଦ୍ଧନ +ଆ) ରମଣୀ, ସ୍ତ୍ରୀଲୋକ ।

ଚାରୁବିନ୍ଦ—ପୁଂ.ବି. ଶ୍ରୀକୃଷ୍ଣଙ୍କର ଏକପୁତ୍ର ।

ଚାରୁବେଶ—ତ୍ରି. ବିଂ. (ବ.ବ୍ରୀ) ସୁନ୍ଦର ବେଶଯୁକ୍ତ, ( ପୁଂ. ବି ) ଶ୍ରୀକୃଷ୍ଣଙ୍କର ଏକପୁତ୍ର ।

ଚାରୁବ୍ରତ—ତ୍ରି.ବିଂ. ସୁନ୍ଦର ବ୍ରତବିଶିଷ୍ଟ, ଉତ୍କୃଷ୍ଟ ନିୟମଧାରକ, (ବି) ସୁନ୍ଦର ନିୟମ ।

ଚାରୁବ୍ରତା—ସ୍ତ୍ରୀ. ବି. ( ଚାରୁବ୍ରତ+ଆ ) ଏକମାସ ଉପବାସକାରିଣୀ ସ୍ତ୍ରୀ ।

ଚାରୁଶିଳା—ସ୍ତ୍ରୀ. ବି. (କ.ଧା)ସୁନ୍ଦରଶିଳା, ସୁଦୃଶ୍ୟ ପ୍ରସ୍ତରଖଣ୍ଡ, ମଣି, ରତ୍ନ ।

ଚାରୁଶୀଳ—ପୁଂ.ବିଂ. (ବ.ବ୍ରୀ)ସତ୍ସ୍ୱଭାବବିଶିଷ୍ଟ, ସଚ୍ଚରିତ୍ର, ସୁଶୀଳ, ନମ୍ରସ୍ୱଭାବ,

ମର୍ଯ୍ୟାଦାବନ୍ତ ।
ଚାରୁଶୀଳତା—ସ୍ତ୍ରୀ. ବ. (ଚାରୁଶୀଳ+ତା) ସୁଶୀଳତା ।
ଚାରୁଶୀର୍ଷ—ତ୍ରି. ବଂ. (ବ.ଗ୍ରା) ସୁନ୍ଦର ମସ୍ତକବିଶିଷ୍ଟ ।
ଚାରୁଶ୍ରବସ୍—ତ୍ରି. ବଂ. (ବ.ଗ୍ରା) ସୁନ୍ଦର କର୍ଣ୍ଣଯୁକ୍ତ, (ପୁଂ. ବ) ରୁକ୍ମିଣୀଗର୍ଭଜାତ ଶ୍ରୀକୃଷ୍ଣଙ୍କର ଏକପୁତ୍ର ।
ଚାରୁହାସୀ—ପୁଂ. ବଂ. (ଚାରୁ+ହସ+ଇନ୍) ଯେ ସୁନ୍ଦରହାସ୍ୟକରେ, ଯାହାର ମୁଖ ସର୍ବଦା ହାସ୍ୟଯୁକ୍ତ, ହର୍ଷମୁଖ, (ସ୍ତ୍ରୀ) ହାସିନୀ ।
ଚାରୁହାସିନୀ—ସ୍ତ୍ରୀ. ବ. ବୈତାଳୀୟ ଛନ୍ଦୋବିଶେଷ, ସୁନ୍ଦର ହାସ୍ୟକାରିଣୀ ସ୍ତ୍ରୀ ।
ଚାର୍ଚ୍ଚକ—ପୁଂ. ବଂ. (ଚର୍ଚ୍ଚା+କ.ଅକ) ବେଦ ପାରାୟଣରେ ନିପୁଣ, (ସ୍ତ୍ରୀ) ଚାର୍ଚ୍ଚକୀ ।
ଚାର୍ଚ୍ଚିକ—ପୁଂ. ବଂ. ବିଚାର ମଲ୍ଲ ବା ଚର୍ଚ୍ଚାପରାୟଣ ଅଧ୍ୟୟନଶୀଳ ।
ଚାର୍ଚ୍ଚିକ୍ୟ—କ୍ଳୀ. ବ. (ଚର୍ଚ୍ଚିକା+ଯ) କୁଙ୍କୁମାଦିଦ୍ୱାରା ଗାତ୍ରଲେପନ ।
ଚାର୍ବଙ୍ଗ—ପୁଂ. ବଂ. (ବ.ଗ୍ରା) ଯାହାର ଅଙ୍ଗ ବା ଶରୀର ସୁନ୍ଦର ଓ କୋମଳ ।
ଚାର୍ମ—ତ୍ରି. ବଂ.(ଚର୍ମନ+ଅ) ଚର୍ମାଚ୍ଛାଦିତ, ଚର୍ମସମ୍ବନ୍ଧୀୟ,(ପୁଂ. ବ)ଚର୍ମାଚ୍ଛାଦିତ ରଥ ।
ଚାର୍ମଣ—କ୍ଳୀ. ବ. (ଚର୍ମନ୍+ଅ) ଚର୍ମ ସମୂହ, (ବଂ)ଚର୍ମାବୃତ,ଚମଡ଼ାଗୁଆଣି ।
ଚାର୍ମିକ—ତ୍ରି. ବଂ. (ଚର୍ମ+କ) ଚର୍ମ ନିର୍ମିତ, ଚର୍ମ ବ୍ୟବସାୟୀ ।
ଚାର୍ମିକାୟଣି—ପୁଂ. ସ୍ତ୍ରୀ. ବ. ଚର୍ମୀର ଅପତ୍ୟ ।
ଚାର୍ମିକ୍ୟ—କ୍ଳୀ. ବ. (ଚାର୍ମିକ+ଯ)ଚାର୍ମିକରଭାବ ବା ଧର୍ମ ।
ଚାର୍ମିଣ—କ୍ଳୀ. ବ.(ଚର୍ମିଣ+ଅ)ଚର୍ମିସମୂହ, ଢାଲସଜ୍ଜିତ ବହୁଲୋକ ।
ଚାର୍ମୀୟ—ତ୍ରି. ବଂ. (ଚର୍ମ+ଈୟ)ଚର୍ମ ସମ୍ବନ୍ଧୀୟ ।
ଚାର୍ଯ୍ୟ—ପୁଂ. ବ. ବର୍ଣ୍ଣସଙ୍କର ଜାତି ବିଶେଷ ।
ଚାର୍ଲସ୍‌ଉଇଲକିନ୍‌ସ—ଜଣେ ବିଖ୍ୟାତ ପଣ୍ଡିତ ।
ଚାର୍ବାକ୍—ପୁଂ. ବି. (ବ.ଗ୍ରା) ତାର୍କିକବିଶେଷ,ଜନୈକ ନାସ୍ତିକ ମତାବଲମ୍ବୀ ଦାର୍ଶନିକ ପଣ୍ଡିତ, ଜଣେ ରାକ୍ଷସ ।
ଚାର୍ବାକଦର୍ଶନ—ବ. ଚାର୍ବାକ୍ ମୁନିଙ୍କ ପ୍ରବର୍ତ୍ତିତ ନାସ୍ତିକତା ପ୍ରତିପାଦକ ଦର୍ଶନଶାସ୍ତ୍ରବିଶେଷ ।
ଚାର୍ବାକ୍‌ବଧପର୍ବନ୍—କ୍ଳୀ. ବ. ମହାଭାରତାନ୍ତର୍ଗତ ଅବାନ୍ତର ପର୍ବବିଶେଷ ।
ଚାର୍ବାଘାଟ—ପୁଂ. ବ.ଖଡ୍ଗବିଶେଷ ।
ଚାର୍ବାଦ—ପୁଂ. ବ. ଅନ୍ତ୍ୟୋଦାତ୍ତସ୍ୱର ପ୍ରକିୟାର ସୂତ୍ରୋକ୍ତ ଶବ୍ଦଗଣ ।
ଚାର୍ବୀ—ସ୍ତ୍ରୀ. ବ. (ଚାରୁ+ଈ) ସୁନ୍ଦରୀ ସ୍ତ୍ରୀ, ଜ୍ୟୋତ୍ସ୍ନା, ବୁଦ୍ଧି, କୁବେରଙ୍କ ସ୍ତ୍ରୀ, ଦୀପ୍ତି, ଦାରୁହଳଦୀ, (ସ୍ତ୍ରୀ. ବ) ସୁନ୍ଦରୀ, ମନୋହାରିଣୀ ।
ଚାଲ୍—ଗ୍ରା. ବ. ଦେଶାଚାର, ରୀତି, ପ୍ରଥା, ଅଭ୍ୟାସ,ପ୍ରଣାଳୀ,କାର୍ଯ୍ୟର ଧାରା, ବ୍ୟବହାର, ଆଚରଣ, ସ୍ୱଭାବ, ଚରିତ୍ର, କୌଶଳ,ଫନ୍ଦି,ଫିକର,ଚଳନ, ଧରଣ, ଢଙ୍ଗ, ପଶା ଓ ସତରଞ୍ଜ ଆଦି ଖେଳରେ ଗୋଟିର ଏକଘରୁ ଅନ୍ୟଘରକୁ ଚାଳନ, କପଟ, କୂଟ, ଚାଲାକି ।
ଚାଲ୍‌ଚଳନ—ଗ୍ରା. ବ. ଆଚରଣ, ବ୍ୟବହାର, ସ୍ୱଭାବ, ଚରିତ୍ର, ରୀତିନୀତି, ପରସ୍ପର ମିଶାମିଶି, ଯାତାୟାତ ସମ୍ପର୍କ, ସମାଜରେ ଚଳିବା ।
ଚାଲ୍‌ଚାଲିବା—ଗ୍ରା. କ୍ରି. ଫନ୍ଦି ବା କୌଶଳରେ କାର୍ଯ୍ୟ କରିବା, ବିଶିଷ୍ଟ ଧରଣରେ ଚଳିବା ।
ଚାଲ—ପୁଂ. ବ. (ଚଲ+କ.ଅ) ଗୃହର ନମ ନିମ୍ନ ଛପର, ଗୃହପଟଳ, ଛାତ, ସ୍ୱର୍ଣ୍ଣଚୂଡ଼ପକ୍ଷୀ, ଖଞ୍ଜନପକ୍ଷୀ ( ଭ୍ର. ଅ ) ଚଳନଶୀଳତା ।
ଚାଳକ—ତ୍ରି. ବଂ. (ଚଲ+ଅକ) ପରିଚାଳକ,ଚାଳନକାରୀ,ଯେ ଚଳାଏ,(ବ) ନର୍ତ୍ତକର ହସ୍ତଚାଳନଚେଷ୍ଟା, ଦୁର୍ଦ୍ଦମହସ୍ତୀ ନେତା (ଗ୍ରା.ବ) କୌଣସି ବ୍ୟକ୍ତିକୁ ଉଚ୍ଚାଟନ ବା ବଶ କରିବା ସକାଶେ ତାହାପ୍ରତି ମନ୍ତ୍ରଯନ୍ତ୍ର ପ୍ରୟୋଗ ।
ଚାଲକୁଣ୍ଡ—ବ. ଓଡ଼ିଶାର ପୁରୀଜିଲ୍ଲା ଓ ଗଞ୍ଜାମର ପୂର୍ବପ୍ରାନ୍ତସ୍ଥ ସାମୁଦ୍ରିକ ହ୍ରଦ, ଚିଲିକା ହ୍ରଦ ।
ଚାଲଧୂଆ—ଗ୍ରା. ବ. କଣ୍ଡାଳିଆ ଶ୍ରେଣ୍ଟ କ୍ଷୁଦ୍ରବିଶେଷ, ଚାଉଳ ଧୋଇବା ଟୋକେଇ, ଶ୍ରେଣ୍ଟବେଢ଼ି ।
ଚାଳନ—କ୍ଳୀ. ବ. (ଚଲ+ଣିଚ୍+ଣ.ଅନ) ଚାଳୁଣୀ, ବାୟୁର କ୍ରିୟାବିଶେଷ, ଚଳନ, ଗତି, ଗମନ,(ଚାଲ.+ଭ.ଅନ) ସ୍ଥାନାନ୍ତର କରିବା, ଚଲାଇବା କର୍ମ, ଅବୟବ ଆଦି ଇତସ୍ତତଃ ଘୁରାଇବା, ପରିଚାଳନ, ଖେଳାଇବା, ସଞ୍ଚାଳନ, କାର୍ଯ୍ୟରେ ଲଗାଇବା,ପ୍ରୟୋଗ, ହୁଗୁଳାଇବା, ହଲାଇବା ।
ଚାଳନା—ବ. (ଚଲ+ଣିଚ୍+ଭ.ଅନ+ଆ)ଆନ୍ଦୋଳନ, ଅନୁଶୀଳନ, ଚର୍ଚ୍ଚା, ଗତି, ଗତିକରାଇବା, ନିୟନ୍ତ୍ରିତ କରିବା, ସୂଚନା, ପ୍ରସ୍ତାବ ।
ଚାଳନୀ—ସ୍ତ୍ରୀ. ବ.(ଚାଳନ+ଈ) ଚାଳୁଣୀ ।
ଚାଳନୀୟ—ବଂ. ( ଚଲ+ଣିଚ୍+ମଁ. ଅନୀୟ) ଚାଳିତ ହେବାଯୋଗ୍ୟ, ଚାଳୁଣୀରେ ଚାଳିହେବା ଯୋଗ୍ୟ, ହୁଗୁଳାଯିବା ଯୋଗ୍ୟ ।
ଚାଲବୁଲ—ଗ୍ରା. ବ. ଚଳବୁଲ, ଯିବା ଆସିବା, ଗମନାଗମନ, ଭ୍ରମଣ ।
ଚାଲା—ଗ୍ରା. ବ. ଚେଲା, ଶିଷ୍ୟ ।
ଚାଲାକ—ଯା. ବଂ. ଚଲାକ ଦେଖ ।
ଚାଲାକି—ଯା. ବ. ଚଲାକି ଦେଖ ।
ଚାଲାକିଆ—ଗ୍ରା. ବଂ. ଚଲାକିଆ ଦେଖ ।
ଚାଲାଣ—ଗ୍ରା. ବ. ଚଲାଣ ଇତ୍ୟାଦି ଦେଖ ।
ଚାଲାଣି—ଗ୍ରା. ବ. ଓ ବଂ.ଚଲାଣି ଦେଖ ।
ଚାଳି—ଗ୍ରା. ବ. ଶ୍ରେଣ୍ଟ ଚାଳ,ଏକପାଖକୁ ଢାଳୁ ଚାଳଥିବା ଘର ।
ଚାଲି—ଗ୍ରା. ବ. ଗମନ, ଭ୍ରମଣ, ପାଦଚାରଣ, ଗମନ କରିବାର ରୀତି, ଗତିର

ବେଗ, ଆଚରଣ ।

ଚାଳିଆ—ଗ୍ରା. ବିଂ. ଚାଳ ବା ଛପରଯୁକ୍ତ, (ବି) ଚାଳ ଦେଖ ।

ଚାଳିକର—ମହାରାଷ୍ଟ୍ର ଆଧିପତ୍ୟ କାଳରେ ଧାରବାରର ଖଜଣାଆଦାୟକାରୀ ଏକପ୍ରକାର କର୍ମଚାରୀ ।

ଚାଳିତ—ବିଂ. ( ଚଳ + ଣିଚ୍ + ମିଂ.ତ ) ସଞ୍ଚାଳିତ, ସ୍ଥାନାନ୍ତରିତ, ଆନ୍ଦୋଳିତ, ପ୍ରସ୍ତାବିତ, ଅନୁଶୀଳିତ, (ସ୍ତ୍ରୀ) ଚାଳିତା ।

ଚାଳିବା—ଗ୍ରା. କ୍ରି. ଚାଳନ କରିବା, ଗତି କରାଇବା, ଉତ୍ତେଜିତ କରିବା, ଟେହ୍ଳିବା, ମଡାଇବା, ଆନ୍ଦୋଳିତ କରିବା, ହଲାଇବା, ( ବିବାହାଦି କାର୍ଯ୍ୟ ) ସମ୍ପନ୍ନ ହେବା ବିଷୟରେ ସାହାଯ୍ୟ କରିବା, ( ମୁଣ୍ଡ ହାତ-ଯଷ୍ଟି ) ହଲାଇବା, ଅଭାବ ବା ଗରଜ ପୂରଣ କରିବା, ସ୍ଥାନାନ୍ତରିତ କରିବା, ଘୁଞ୍ଚାଇବା, ( ସମ୍ବାଦ ) ଏକ-ସ୍ଥାନରୁ ଅନ୍ୟସ୍ଥାନକୁ ପଠାଇବା, (ସାପକୁ) ଖେଳାଇବା ।

ଚାଲିବା—ଗ୍ରା. କ୍ରି. ଗତିକରିବା, ଭ୍ରମଣ କରିବା, ଘଟିବା, ( କାର୍ଯ୍ୟ ) ଚଳିବା, ବ୍ୟବହାରରେ ଲାଗୁଥିବା, ଗମନାଗମନ କରିବା, ଲମ୍ବଭାବରେ ପାତିତହେବା ।

ଚାଲିୟା—ମଲବାର ଉପକୂଳର ଗୋଟିଏ ପୁରାତନ ବନ୍ଦର ।

ଚାଲିଯିବା—ଗ୍ରା. କ୍ରି. ପାଦରେ ଗତିକରି କୌଣସି ସ୍ଥାନକୁ ଯିବା, କୌଣସିସ୍ଥାନ ପରିତ୍ୟାଗ କରିବା, ( ଶୁଭବାଦନ ) ମରିଯିବା, ସଂସାରତ୍ୟାଗ କରିବା, ବୈରାଗ୍ୟ ବା ବାନପ୍ରସ୍ଥ ଅବଲମ୍ବନ କରିବା, (କାର୍ଯ୍ୟ) ଚଳିବା, ସମ୍ପାଦିତ ହେବା, ଲୋପପାଇବା, (ଏତେକାଳ-ପାଇଁ) ସ୍ଥାୟୀହେବା, ( ସମୟ ) ଅତି-ବାହିତ ହେବା ।

ଚାଳିଶ—ଗ୍ରା. ବି. ଚାଳିଶସଂଖ୍ୟା, ଚାଳିଶ ସଂଖ୍ୟକ,(ବିଂ)ଚାଳିଶ ସଂଖ୍ୟାର ପୂରଣ ।

ଚାଳିଶଗାଁ—ବୋମ୍ବାଇ ପ୍ରେସିଡେନ୍ସୀର ଖାନ୍ଦେଶ ଜିଲାର ଗୋଟିଏ ଉପବିଭାଗ ।

ଚାଳିଶା—ଗ୍ରା. ବିଂ. ଚାଳିଶସଂଖ୍ୟା ସମ୍ବନ୍ଧୀୟ, ( ଗ୍ରା.ବିଂ ) ପ୍ରାୟ ଚାଳିଶବର୍ଷ ବୟସପରେ ମନୁଷ୍ୟର ଦୃଷ୍ଟିଶକ୍ତିର କ୍ଷୀଣତା, ଚାଳିଶ ନମ୍ବରିଆ କଳସୂତା, ଚାଳିଶ ବସ୍ତୁର ପୁଞ୍ଜ ବା ସମାହାର ।

ଚାଳିଶିଘରିଆ—ଗ୍ରା. (ବାଲେ) ବି. ଏକ-ଶ୍ରେଣୀର ନାହକ୍ତ, ଗୋପପୁରିଆ ଗଉଡ଼ ।

ଚାଲୁ—ଗ୍ରା. ବି. ଯାନାଦିର ଗତି, ଚାଲି ।

ଚାଳୁଆ—ଗ୍ରା.ବିଂ. ଚାଳସମ୍ବନ୍ଧୀୟ, ଯେଉଁ ମୂଷାମାନେ ଚାଳରେ ବସାକରି ରହନ୍ତି ।

ଚାଳୁକ୍ୟ—ଗ୍ରା. ବି. ଦକ୍ଷିଣାପଥର ପ୍ରବଳ ପରାକ୍ରାନ୍ତ ଏକ ପ୍ରାଚୀନ ରାଜବଂଶ ।

ଚାଲୁଣିଆଁ—ଗ୍ରା. ବି. ବହୁମୁଖ ବିଶିଷ୍ଟ ବ୍ରଣ, ପଠାବ୍ରଣ, ଶୋଢ଼ ଫଳପାରେ ହେବା ବହୁଛିଦ୍ରଯୁକ୍ତ ରୋଗବିଶେଷ ।

ଚାଲୁଣିପାଣି—ଗ୍ରା. ବି. ପ୍ରଥମ ରଜସ୍ୱଳା ବାଳିକାର ପ୍ରଥମେ ରଜୋଦର୍ଶନହେବା ମାତ୍ରକେ ତାକୁନେଇ ବାଡ଼ିଆଡ଼େ ଗଛ-ମୂଳେ ବସାଇ ତା ମୁଣ୍ଡଉପରେ ଗୋଟିଏ ଚାଲୁଣିଧରି ତହିଁରେ ସାତଜଣ ଅଦ୍ୟ ସ୍ତ୍ରୀ ହଳଦୀପାଣି ଢାଳିବାରୂପ ସ୍ତ୍ରୀ ଆଚାର ।

ଚାଲୁଣୀ—ଗ୍ରା. ବି. (ସଂ-ଚାଳନୀ) ତଣ୍ଡୁଳା-ଦିର ସୂକ୍ଷ୍ମଅଂଶ ଚାଳିବାଁ ନିମନ୍ତେ ବ୍ୟବହୃତ ବହୁଛିଦ୍ରଯୁକ୍ତ ପାତ୍ରବିଶେଷ ।

ଚାଲ୍ୟ—ବି.ବିଂ. (ଚଳ + ଣିଚ୍ + ମିଂ.ଯ) ଚାଳନୀୟ, ଯାହାକୁ ଚଳାଇବାକୁ ହୁଏ ।

ଚାବଡ଼—ଗୁଜରାଟର ଗୋଟିଏ ପ୍ରାଚୀନ ଓ ବିଖ୍ୟାତ ରାଜପୁତ ରାଜବଂଶ ।

ଚାବଣ୍ଡ—ପୁନାଜିଲାନ୍ତର୍ଗତ ଗୋଟିଏ ପର୍ବତ

ଚାବୁଣ୍ଡ—ଦାକ୍ଷିଣାତ୍ୟର ପ୍ରାଚୀନ ସିନ୍ଦ-ବଂଶର ରାଜା ।

ଚାଷ—ପୁଂ. ବି. (ଚଷ + କ.ଅ) ସ୍ୱର୍ଣ୍ଣ-ଚାତକ, ନୀଳକଣ୍ଠ, ଚଷାପୁଅ ପକ୍ଷୀ, ଭଦଭଦଳିଆ ପକ୍ଷୀ,(ମିଂ.ଅ) ଇକ୍ଷୁ, ଆଖୁ, (ଭା.ଅ) କୃଷି, ଭୂମିକର୍ଷଣ, ଉତ୍ପାଦନ ।

ଚାଷକରିବା—ଗ୍ରା. କ୍ରି. କୃଷି କରିବା, ହଳକୁଳାଇବା ।

ଚାଷବାସ—ଗ୍ରା. ବି. ବିଲବାଡ଼ି, ବିଲ ଓ ଘରବାଡ଼ି, କୃଷି କର୍ମମାନ, କୃଷିବୃତ୍ତି ।

ଚାଷମୁଣ୍ଡ—ଗ୍ରା. ବି. (ଲକ୍ଷଣାର୍ଥ) କୃଷିର ଶେଷ ବା ଫସଲ ଆଦାୟ ସମୟ ।

ଚାଷୀ—ଗ୍ରା. ବି. କୃଷିଜୀବୀ, କୃଷକ, ଚଷା, (ଗ୍ରା.ବିଂ) ଜମିଚାଷ କରୁଥିବା (ବ୍ୟକ୍ତି), (ସ୍ତ୍ରୀ) ଚାଷୁଣୀ ।

ଚାସ—ପୁଂ. ବି. ଚାଷ ଦେଖ ।

ଚାସଖୋର—ଯା.ବିଂ. ଚଷ୍ଟଲୁଲୁହାକ ।

ଚାସାଧୋବା—ବଙ୍ଗଳାର କୃଷି ଓ ବାଣିଜ୍ୟୋପଜୀବୀ ଜାତିବିଶେଷ ।

ଚାହଡ଼ଦେବ—ନଲପୁର ବା ନରବାର ରାଜ୍ୟର ଜଣେ ହିନ୍ଦୁରାଜା, ଦିଲ୍ଲୀର ଅଧିପତି ପୃଥ୍ୱୀରାଜଙ୍କ ସାନଭାଇ ।

ଚାହମାନ—ରାଜପୁତମାନଙ୍କର ଏକ ବିଖ୍ୟାତ ଶାଖା ।

ଚାହା—ଯା. ବି. ଚା ଇତ୍ୟାଦି ଦେଖ ।

ଚାହାଁ—ଗ୍ରା. ବି. ଦେଖିବା, ଅନାଇବା, ଚାହାଣି, (ଗ୍ରା. ଅବ୍ୟ—ବିସ୍ମୟସୂଚକ), ଯଥା—ତୁ ଦେଖ, ଗ୍ରା.କ୍ରି. ( ଦେଖିବା କ୍ରିୟାର ଅନୁଜ୍ଞା) ତୁ ଦେଖ । [ନିକ୍ଷେପ ।

ଚାହାଁଚହିଁ—ଗ୍ରା. ବି. ପରସ୍ପରପ୍ରତି ଦୃଷ୍ଟି

ଚାହାଁଡ଼ା—ଗ୍ରା. ସ୍ତ୍ରୀ. ବି. ରାଣୀଙ୍କ ଦାସୀ ବିଶେଷ । [ଦେଖିବା ।

ଚାହାଣି—ଗ୍ରା.ବି. ଦୃଷ୍ଟିପାତ, ଦୃଷ୍ଟିଭଙ୍ଗୀ,

ଚାହାଣିଚୁଟକ—ଗ୍ରା.ବି.ଚାହିଁବାର ଢଙ୍ଗ, ଅପାଙ୍ଗଦୃଷ୍ଟି ।

ଚାହାଣିମଣ୍ଡପ—ଗ୍ରା. ବି. ରଥଯାତ୍ରାରୁ ଜଗନ୍ନାଥ ଓ ଲକ୍ଷ୍ମୀଙ୍କ ମହାପ୍ରଭୁ ଫେରିବା ସମୟରେ ଦେଉଳରେ ପହଞ୍ଚିବା ପୂର୍ବରୁ ବାଟରେ ଆସୁଥିବା ଅବସ୍ଥାରେ ଦେଉଳର ବେଢ଼ାମଧ୍ୟରେ ଥିବା ଯେଉଁ ମଣ୍ଡପରେ ଠାକୁରାଣୀଙ୍କ ପ୍ରତିମାକୁ ନେଇ ବିଜେ କରାଯାଏ ଓ ଯେଉଁଠାରୁ ଠାକୁରାଣୀ ବାହୁଡ଼ାବିଜେ କରୁଥିବା ଦିଅଙ୍କୁ ଚାହିଁବେ ବୋଲି ଅନୁମାନ କରାଯାଏ ।

ଚାହାରମ୍—ଯା. ବିଂ. ଚତୁର୍ଥ, ଚତୁର୍ଥ ବା ନିକୃଷ୍ଟ ଶ୍ରେଣୀର ।

ଚାହାରମ୍‌ଜମି—ଯା.ବି. ମୁସଲମାନରାଜାଙ୍କ ଅମଳରେ ଜମିର ଶ୍ରେଣୀବିଭାଗବିଶେଷ, ଚତୁର୍ଥ ଶ୍ରେଣୀର ନିକୃଷ୍ଟ ଜମି ।

ଚାହାରମ୍ଫାଡିଆ—ଯା.ବି. ମୁସଲମାନମାନଙ୍କ ମୃତ୍ୟୁପରେ ଚତୁର୍ଥ ଦିବସରେ ହେବା ଅନୁଷ୍ଠାନ ବା ଉତ୍ସବ ।

ଚାହାଳି—ଗ୍ରା. ବି. ଚାଟଶାଳୀ ଦେଖ ।

ଚାହାଳିଆ—ଗ୍ରା. ବିଂ. ଚାଟଶାଳିଆ ଦେଖ ।

ଚାହାଳିକରିବା—ଗ୍ରା. କ୍ରି. ପୁଢ଼ିଏ ପିଲା ସଂଗ୍ରହକରି ଗୋଟିଏ ପାଠଶାଳା ଖୋଲିବା ।

ଚାହାଳିରେ ବସିବା—ଗ୍ରା. କ୍ରି. (ବାଳକ ବା ବାଳିକା) ପାଠଶାଳାରେ ପ୍ରବେଶକରି ପାଠଆରମ୍ଭ କରିବା ।

ଚାହାଲ୍ଲିମ—ଯା. ବି. ମୁସଲମାନମାନଙ୍କର ସଫର ମାସର ବିଂଶଦିନ ।

ଚାହି—ଗ୍ରା. ବି. ଆବଶ୍ୟକ ଓ ଦରକାର, ଜରୁରତ୍, (ଗ୍ରା.ଅବ୍ୟ) ଅପେକ୍ଷା, ଠାରୁ ।

ଚାହିଁ—ଗ୍ରା. ବିଂ. ଚାହିଁ ଦେଖ, (ଗ୍ରା. ଅବ୍ୟ.) ଅନୁରୂପେ, ଅନୁଯାୟୀ ।

ଚାହିଁଅନ୍ଧ—ଗ୍ରା. ପୁଂ, ବିଂ. ଚକ୍ଷୁ ବିଦ୍ୟମାନ ଥାଇସୁଦ୍ଧା ଯେଉଁ ବ୍ୟକ୍ତିକୁ ଆଦୌ ଦେଖାଯାଏ ନାହିଁ ।

ଚାହିଁଚାହିଁ—ଗ୍ରା. କ୍ରି.ବିଂ. ଦୃଷ୍ଟିନିକ୍ଷେପକରି କରି ।

ଚାହିଁକଲକା—ଗ୍ରା. ପୁଂ. ବିଂ. ଯେଉଁ ଲୋକର ଆଖି ବିଦ୍ୟମାନ ଥାଏ ଅଥଚ ସେ ସ୍ପଷ୍ଟ ଦେଖିପାରେ ନାହିଁ, (ଗ୍ରା.ବି) ରୋଗବିଶେଷ ।

ଚାହିଁବସିବା—ଗ୍ରା.କ୍ରି. ବହୁକ୍ଷଣ ଅପେକ୍ଷା କରିବା, ଉତ୍କଣ୍ଠା ଓ ଆଶାସହକାରେ କୌଣସି ବିଷୟକୁ ଅପେକ୍ଷା କରିବା, ଚାହିଁରହିବା, ଚେଇଁକରି ବସିବା ।

ଚାହିଁବା—ଗ୍ରା. କ୍ରି. ଅନାଇବା, ଦୃଷ୍ଟିପକାଇବା, ଦେଖିବା, ଆଖିମେଲିକରିବା, ଅପେକ୍ଷା କରିବା, ଚେଇଁବା ।

ଚାହିଁରହିବା—ଗ୍ରା. କ୍ରି. ଚାହିଁବସିବା ଦେଖ ।

ଚାହିଁଲେ—ଗ୍ରା. ଅବ୍ୟ.(ଅମୁକକୁ ଅମୁକ ସଙ୍ଗେ)ତୁଳନାକଲେ ଦେଖାଯିବ ଯେ ।

ଚାହିକ୍କି—ଗ୍ରା.ବିଂ. ଚାହିକଚକଣ ଦେଖ ।

ଚାହିକଚକଣ—ଗ୍ରା. ବିଂ.ଚକଚକ କରୁଥିବା, ବାହ୍ୟାଡ଼ମ୍ବରଯୁକ୍ତ ।

ଚାହିକଚକା—ଗ୍ରା. ବି.ଚାକଚକ୍ୟ, ( ଗ୍ରା. ବିଂ.) ଚାହିକଚକ୍କଣ ଦେଖ ।

ଚାହିତା—ଗ୍ରା. ବି. ଯତ୍ନ,ଆଦର, ସ୍ନେହ, ଗେହ୍ଲା, (କୌଣସି ଦ୍ରବ୍ୟର) ଆବଶ୍ୟକତା, ଅଭିଳାଷ ।

ଚାହିବା—ଗ୍ରା.କ୍ରି. ଇଚ୍ଛାକରିବା, ମାଗିବା, ଲୋଡ଼ିବା, ସ୍ନେହ କରିବା, ଆଦରକରିବା ।

ଚାହୁ—ପ୍ରା.(କୋଶପୁର)ବିଂ.ଉଚିତ, (ଗ୍ରା. ବି.) ଚାହିତା ଦେଖ ।

ଚାହୁଚାହୁ—ଗ୍ରା. ଅବ୍ୟ. ହଠାତ୍, ତତ୍‌କ୍ଷଣାତ୍, କେତେକ ସମୟ ଅନ୍ତେ ।

ଚାହୁକମ୍—ଗ୍ରା. ବି. ଯୁଦ୍ଧବିଦ୍ୟାବିଶେଷ ।

ଚି—(ଧାତୁ) ସଂଗ୍ରହକରିବା ।

ଚିଆଁଇବା—ଗ୍ରା.କ୍ରି. ଚେଇଁବା, ସଚେତ ହେବା, ଚେତା କରାଇବା, ନିଦରୁ ଉଠାଇବା, ନିର୍ଜୀବ ବା ମୃତ ଜୀବକୁ ପୁନରୁଜ୍ଜୀବିତ କରିବା, ଶସ୍ତ୍ରାଦି ଆସ୍ଫାଳନ କରିବା ।

ଚିଆଁଇବା—ପ୍ରା. (ସମ୍ବ)କ୍ରି.ବିଆଇବା ।

ଚିଆଁ—ଗ୍ରା.ବି.ତପ୍ତ ଲୌହଦ୍ୱାରା ମନୁଷ୍ୟ ବା ପଶୁର ଦେହରେ ଦିଆଯିବା ଦାଗ, ଚଡ଼ୁ,ତପ୍ତ ଲୌହରେ ଦାଗ ଦେଲେ ଯେପରି କଷ୍ଟ ହୁଏ ସେହିପରି ବେଦନା, ଚେଇଁବା, ଚେତା, (ଗ୍ରା.ବିଂ) ଚେଇଁଥିବା, ଶୋଇ ନଥିବା, ଅନିଦ୍ରେଟ ।

ଚିଆଇଁଉଠିବା—ଗ୍ରା.କ୍ରି. ଚେଇଁଉଠିବା, ନିଦରୁ ଉଠିବା, ସଚେତ ହେବା, ସତେଜହେବା ।

ଚିଆଁଚଇତନ—ଗ୍ରା.ବି. ଜୀବାତ୍ମା ।

ଚିଆଁଦେବା—ଗ୍ରା. କ୍ରି. ଲୁହା ତତାଇ ଦାଗିବା ବା ଲଞ୍ଛିବା ।

ଚିଆଁପହଡ଼—ଗ୍ରା. ବି. ବିଛଣାରେ ପଡ଼ିଥିବା ଅଥଚ ନିଦ ହୋଇ ନଥିବା ଅବସ୍ଥା, ରାଜାଙ୍କ ନିଦ୍ରାଭଙ୍ଗ ଅବସ୍ଥାରେ ବିଶ୍ରାମ ।

ଚିଆର୍—ଗ୍ରା.ବିଂ.ତୀକ୍ଷ୍ଣ,(ବି) ଶର୍, ବାଣ, (ପ୍ରା.ମେଦିନୀ) ଯା. ବି. ଚଉକି ।

ଚିଇଁ—ଗ୍ରା. ଅବ୍ୟ. ( ଧ୍ୱନ୍ୟନୁକରଣ ) ଚଢ଼େଇ ଛୁଆଙ୍କର ଅସ୍ଫୁଟ ଶବ୍ଦ, ରୁଗ୍ଣ ଦୁର୍ବଳ ବ୍ୟକ୍ତିର କ୍ଷୀଣ କଣ୍ଠସ୍ୱର ।

ଚିଇଁଚିଇଁ—ଗ୍ରା. ଅବ୍ୟ. ଚିଇଁ ଦେଖ ।

ଚିଇଁଚିଇଁଆ—ଗ୍ରା.ବିଂ.ଚିଇଁଚିଇଁ ଶବ୍ଦକାରୀ, (ଲକ୍ଷଣାର୍ଥ)ଅତିକ୍ଷୀଣ ବ୍ୟକ୍ତି ।

ଚିଇଁବା—ଗ୍ରା.କ୍ରି. ଭୂମିରେ ଭେଦିଯିବା, (ପ୍ରା.ଗଞ୍ଜାମ କ୍ରି.)ଶୋଷିବା, ଚୁଚୁମିବା ।

ଚିକ୍‌ଚିକ୍—ଗ୍ରା. ବିଂ. ବର୍ଣ୍ଣୋଜ୍ଜ୍ୱଳତା, ଜକଜକ, ଚାକଚକ୍ୟ, (ଗ୍ରା.ବିଂ) ଜକଜକ, ଚକଚକିଆ ।

ଚିକ—ଗ୍ରା.ବି. କଣ୍ଠାଭରଣବିଶେଷ, (ଯା. ବି) ତୁଚ୍ଛ ବା ହେୟ ବ୍ୟକ୍ତି, ବାଉଁଶ ପାତିଆରେ ତିଆରି ଏକପ୍ରକାର ପଞ୍ଜୁରି ।

ଚିକଟା—ଗ୍ରା. ବିଂ. ଅଠାଳିଆ ( ମାଟି ), ତୈଳାକ୍ତ,ତେଲ କାଣ୍ଡି ଯୋଗୁଁ ମଇଳା, (ଲକ୍ଷଣାର୍ଥ) କୃପଣ, ବ୍ୟୟକୁଣ୍ଠ ।

ଚିକଣ—ଗ୍ରା.ବି.ତେଲ, ତୈଳବତ୍ ସ୍ନିଗ୍ଧ ପଦାର୍ଥ, ସୁଶ୍ରୀ, ( ଗ୍ରା.ବିଂ ) ମସୃଣ ଓ ଉଜ୍ଜ୍ୱଳ, ଖସଡ଼ା, ସୁନ୍ଦର, ସ୍ନିଗ୍ଧ, ଉତ୍ତମ ରୂପେ ବଟା ହୋଇଥିବା,ତେଲ ଲଗାଇଲା ପରି ଜକଜକ ।

ଚିକଣକୁହା—ଗ୍ରା. ପୁଂ. ବିଂ. ଯେଉଁ ବ୍ୟକ୍ତି ମଧୁର କଥା କହେ ମାତ୍ର ଅଯୋଗ୍ୟ ବା ଅବିଶ୍ୱାସୀ ଅଟେ ।

ଚିକଣଚାକଣ—ଗ୍ରା.ବିଂ.ସୁନ୍ଦର ଓ ମସୃଣ, ଫିଟ୍‌ଫାଟ, ଛଇଲା ।

ଚିକଣପଟୁ—ଗ୍ରା. ବିଂ, (ବ୍ୟଙ୍ଗ)ହୃଷ୍ଟପୁଷ୍ଟ, ବିଳାସୀ ଓ ଆଳସ୍ୟ ପରାୟଣ(ବ୍ୟକ୍ତି) ।

ଚିକଣହାତ—ଗ୍ରା. ବି. ତେଲ ଘିଅଆଦି ଚିକଣ ପଦାର୍ଥ ଲାଗିଥିବା ହାତ ।

ଚକଣା(ଣେ)ଇବା—ଗ୍ରା. କ୍ରି. ତୈଳାକ୍ତକରିବା, ମସୃଣ କରିବା,ପାଲିଶକରିବା, ସୁନ୍ଦର କରିବା, ହଳଦି ଇତ୍ୟାଦି ଚିକଣକରି ବାଟିବା,ଖୋସାମତ୍ କରିବା, ଶ୍ରୋତାର ମନୋରଞ୍ଜନପୂର୍ବକ କଥାକହିବା ।

ଚକଣାଚକଣି—ଗ୍ରା.ବି° ସୁନ୍ଦର ଓ ମସୃଣ (ଗ୍ରା. ବି) ହଳଦୀ ଆଦି ବାଟି ଚକଣ କରିବା କର୍ମ ।

ଚକଣାମାଟି—ଗ୍ରା.ବି. କୁମ୍ଭାର ହାଣ୍ଡି ଆଦି ଗଢ଼ିବା ନିମନ୍ତେ ଚକଣ କରି ଚକଟି-ଥିବା ମାଟି ।

ଚକଣିଆଁ—ଗ୍ରା. ବି°. ଚକ୍କଣ ଦେଖ ।

ଚକନ—ଯା. ବି. ଛୁଞ୍ଚଦ୍ୱାରା ଲୁଗାରେ ଫୁଲ ଲତା ଆଦି ବୁଣାହୋଇଥିବା କାମ ଓ ଖୁବ୍ ସରୁ ଲୁଗା ।

ଚକବଲପୁର—ମହୀସୁରରାଜ୍ୟର କୋଲାର ଜିଲାର ଗୋଟିଏ ତାଲୁକ ।

ଚକଲଦହ—ବେରାର ପ୍ରଦେଶାନ୍ତର୍ଗତ ଇଲିଚପୁର ଜିଲାରେ ଅବସ୍ଥିତ ଗୋଟିଏ ପାହାଡ଼ ।

ଚକା—ପ୍ରା°.(ଗଞ୍ଜାମର ଦକ୍ଷିଣାଞ୍ଚଳ)ଆଶା, ପ୍ରଲୋଭନ, ଲାଳସା ।

ଚକାକୋଲ—ମାନ୍ଦ୍ରାଜ ପ୍ରେସିଡେନ୍ସୀର ଗଞ୍ଜାମ ଜିଲାନ୍ତର୍ଗତ ଗୋଟିଏ ତାଲୁକ ।

ଚକାଗୋ—ଆମେରିକାର ଏକ ବିଖ୍ୟାତ ନଗର ।

ଚକାଡ—ମାନ୍ଦ୍ରାଜ ପ୍ରେସିଡେନ୍ସୀର ଅନ୍ତ-ର୍ଗତ ଗଞ୍ଜାମ ଜିଲା ମଧ୍ୟସ୍ଥ ଗୋଟିଏ ରାଜ୍ୟ ।

ଚକାସି—ଗ୍ରା.ବି ସିତାର ଯନ୍ତ୍ରରେ ପ୍ରଧାନ ପାଞ୍ଚଟି ତାର ଛଡ଼ା ଆଉ ସ୍ୱତନ୍ତ୍ର ଆବଦ୍ଧଥିବା ତାରର ନାମ ।

ଚକି—ଗ୍ରା.ବି.ଚେକି ଚେକି ହୋଇ କଣ୍ଟା ହୋଇ ଦୁଧରେ ସିଝାଯାଇ ଶୁଖା ଯାଇ-ଥିବା ଏକପ୍ରକାର ଗୁଆ ।

ଚକିଟା—ଗ୍ରା.ବି. ଚକଟା ଦେଖ ।

ଚେକିତ—ତ୍ରି. ବି°. (ଚ+ମି.ତ)ଅତିଶୟ ଜ୍ଞାନବିଶିଷ୍ଟ, ଜ୍ଞାତ, ଋଷିବିଶେଷ ।

ଚିକିତାନ୍—ତ୍ରି. ବି°. ( କିତ୍+ଆନ ) ଅଭିଜ୍ଞ, (ପୁ°.ବି) ଋଷିବିଶେଷ ।

ଚିକିତାୟନ—ପୁ°.ବି.ଚିକିତର ଗୋତ୍ରା-ପତ୍ୟ ।

ଚିକିତ—ତ୍ରି.ବି°. ଜ୍ଞାତ, ପରିଚିତ ।

ଚିକିତୁ—ତ୍ରି. ବି°. ( କିତ+ଉ.ଦ୍ୱିତ୍ୱ ) ଅଭିଜ୍ଞ । [ ଜ୍ଞାନବିଶିଷ୍ଟ ।

ଚିକିତ୍ୱନ—ତ୍ରି. ବି°. ( କିତ+କ୍ୱନିପ୍ )

ଚିକିତ୍ୱିତ୍—ତ୍ରି.ବି°.ଯେ ଜାଣେ, ଜାଣିଥିବା ।

ଚିକିତ୍ୱିନ୍ମନସ—ତ୍ରି. ବି°. ସର୍ବଜ୍ଞ ଅନ୍ତଃ-କରଣବିଶିଷ୍ଟ ।

ଚିକିତ୍ସକ—ପୁ°.ବି°.ବି. (କିତ+ସନ୍-କ. ଅକ ) ବୈଦ୍ୟ, ଯେ ରୋଗ ଆରୋଗ୍ୟ କରେ, ଡାକ୍ତର, କବିରାଜ ।

ଚିକିତ୍ସନ—କ୍ଲୀ. ବି. (ଚିକିତ୍ସ+ଭା.ଅନ) ଆରୋଗ୍ୟକରଣ,ଚିକିତ୍ସା ।

ଚିକିତ୍ସା—ସ୍ତ୍ରୀ.ବି.(କିତ+ସନ୍-ଭା.ଅ+ଆ) ରୋଗର ପ୍ରତିକାରାର୍ଥ ବୈଦ୍ୟଙ୍କ କ୍ରିୟା-ସମୂହ, ରୋଗ ପ୍ରତିକାର କଲେ ଔଷ-ଧାଦି ପ୍ରଦାନ ।

ଚିକିତ୍ସାଳୟ—ବି(ତତ୍ପୁ) ଡାକ୍ତରଖାନା, ହାସପାତାଲ ।

ଚିକିତ୍ସାଶାସ୍ତ୍ର—କ୍ଲୀ. ବି. (କ.ଧା) ରୋଗ-ନିର୍ଣ୍ଣୟ ଓ ଉପଯୁକ୍ତ ଔଷଧ ବିଷୟକ ଶାସ୍ତ୍ର ।

ଚିକିତ୍ସିତ—କ୍ଲୀ.ବି(କିତ+ସନ୍—ଭା.ତ) ଚିକିତ୍ସା, (ପୁ°.ବି°.ମି.ତ) କୃତରୋଗ ପ୍ରତିକାର, ଚିକିତ୍ସା ଦ୍ୱାରା ଯାହାର ରୋଗ ଶାନ୍ତ ହୋଇଅଛି, (ସ୍ତ୍ରୀ) ଚିକି-ତ୍ସିତା, (ପୁ°.ବି) ଋଷିବିଶେଷ ।

ଚିକିତ୍ସୁ—ପୁ°. ବି°. (ଚିକିତ୍ସ+ସନ୍.ଉ) ଯେ ଚିକିତ୍ସା କରେ ।

ଚିକିତ୍ସ୍ୟ—ତ୍ରି. ବି°.(କିତ+ସନ୍+ମି.ଯ) ପ୍ରତିକାର୍ଯ୍ୟ, ଚିକିତ୍ସାସାଧ୍ୟ, ଚିକିତ୍ସାର ଯୋଗ୍ୟ ।

ଚିକିନ—ତ୍ରି. ବି°. ନତ ନାସିକାଯୁକ୍ତ ।

ଚିକିଲ—ପୁ°.ବି. (ଚିକ+କ.ଇଲ)ପଙ୍କ, କାଦୁଅ ।

ଚିକୀର୍ଷକ—ତ୍ରି. ବି°. (କୃ+ସନ୍+ଅକ) କରିବାକୁ ଇଚ୍ଛୁକ ।

ଚିକୀର୍ଷା—ସ୍ତ୍ରୀ.ବି. (କୃ+ସନ୍.ଭା.ଅ+ଆ) କରିବାର ଇଚ୍ଛା ।

ଚିକୀର୍ଷିତ—ତ୍ରି. ବି°.(କୃ+ସନ୍+ମି.ତ) ଅଭିପ୍ରେତ, ଅଭିଲଷିତ, ବାଞ୍ଛିତ, ଅଭି-ପ୍ରେତ, (ବି.ଭା.ତ) କରିବାର ଇଚ୍ଛା ।

ଚିକୀର୍ଷୁ—ତ୍ରି. ବି°. ( ଚିକୀର୍ଷ+କ.ଉ ) କରିବାର ଇଚ୍ଛାବିଶିଷ୍ଟ, କରିବାକୁ ଇଚ୍ଛୁକ ।

ଚିକୀର୍ଷ୍ୟ—ତ୍ରି. ବି°. (କୃ+ସନ୍+ମି.ଯ) କରିବା ଅଭିଲଷଣୀୟ ।

ଚିକୁର—ପୁ°.ବି.(ଚି+କୁର+ଅ)କେଶ, ବୃକ୍ଷଭେଦ, ପର୍ବତ. ସରୀସୃପ, ସର୍ପ-ବିଶେଷ, ପକ୍ଷୀବିଶେଷ, ଚୁଚୁନ୍ଦୁରା, ସୁସୁଙ୍କ ପିତା,(ବି°)ଚଞ୍ଚଳ, ଅପରାଧୀ ।

ଚିକୁରକଲାପ—ପୁ°. ବି. (ତତ୍ପୁ) କେଶସମୂହ ।

ଚିକୁରଜାଲ—କ୍ଲୀ. ବି. (ତତ୍ପୁ) କେଶ-ପାଶ, କେଶସମୂହ ।

ଚିକୁରପକ୍ଷ—ବି. (ତତ୍ପୁ) କେଶସମୂହ, କେଶଗୁଚ୍ଛ, ମୁଣ୍ଡର ଗୋଛାଏ ବାଳ ।

ଚିକ୍ରୁର—ପୁ°. ବି.°କେଶ, ବାଳ ।

ଚିକୋଡ଼ି—ବୋମ୍ବାଇ ପ୍ରଦେଶାନ୍ତର୍ଗତ ବେଲଗାଁ ଜିଲାମଧ୍ୟସ୍ଥ କେତେକ ଗ୍ରାମ-ସମଷ୍ଟି ।

ଚିକ୍କ—ପୁ°. ବି. ( ଚିକ+କୈ+ଅ ) ଚୁଚୁନ୍ଦୁରା ମୂଷା, ନାକ ଚେପ୍ଟା ହେବା ଅବସ୍ଥା,(ପୁ°.ବି°) ନତ ନାସିକାଯୁକ୍ତ, ଚେପ୍ଟାନାକା, (ସ୍ତ୍ରୀ) ଚିକ୍କା ।

ଚିକ୍କଣ—ତ୍ରି. ବି°. ( ଚିକ୍+ମି.କଣ ) ତେଲିଆ, ଖସଡ଼ା, ଚିକ୍କଣ, ସ୍ନିଗ୍ଧ,(ପୁ°. ବି.) ଗୁଆଗଛ, (କ୍ଲୀ) ଗୁଆଫଳ, ହରି-ତକୀ, ହରିଡ଼ା, କାଳକାନ୍ଦୁଆ ବସ୍ତ୍ର, ଅଠା,(ପୁ°.ବି) ଔଷଧପାକର ଅବସ୍ଥା ବିଶେଷ ।

ଚିକ୍କଣା—ସ୍ତ୍ରୀ. ବି. (ଚିକ୍କଣ+ଆ)ଉତ୍କୃଷ୍ଟ ଗାଈ ବା ଗାଇ, ପୂଗଫଳ, ଗୁଆ ।

ଚିକ୍କଣୀ—ସ୍ତ୍ରୀ. ବି. (ଚିକ୍କଣ+ଈ) ଗୁଆ, ହରିଡ଼ା ।

ଚିକ୍କଣକଣ୍ଠ—କ୍ଲୀ. ବି. ନଗରବିଶେଷ ।

ଚିକ୍କଣଶଲ୍କୀ—ପୁ°. ବି. ଚକଣିଆ କାତି-ବିଶିଷ୍ଟ ମାଛ ।

ଚିକ୍କଦେବ—ପୁ°. ବି. ମହୀସୁର ରାଜ୍ୟର ଯାଦବବଂଶୀୟ ଜଣେ ରାଜା ।

ଚକ୍କନର୍ତ୍ତି—ବୋମ୍ବାଇପ୍ରଦେଶସ୍ଥ ଧୁଗୁଲୀସ୍ଥାନ ଠାରୁ ପୂର୍ବ ଦକ୍ଷିଣରେ ଅବସ୍ଥିତ ଗୋଟିଏ କ୍ଷୁଦ୍ର ଗ୍ରାମ ।

ଚକ୍କସ—ପୁଂ. ବି.(ଚକ୍କ+ଅସ)ସବଚୂର୍ଣ୍ଣ, ସଅ ଚଉଆ ।

ଚକ୍କା—ସ୍ତ୍ରୀ.ବି. (ଚକ୍କ+ଅ+ଆ)ଗୁବାକଫଳ, ସୁପାରି, ଗୁଆ ।

ଚକ୍କର—ପୁଂ. ବି. ( ଚକ୍କ+ଇର ) ଏକପ୍ରକାର ମୂଷା । [ ଘଡ଼ଘଡ଼ି ।

ଚକ୍କୁର—ବି. (ଚକ+କ.କୁର)ବିଦ୍ୟୁତ୍,

ଚକ୍କୁରକ୍କନବର—କର୍ଣ୍ଣାଟବାସୀ ଜାତିବିଶେଷ ।

ଚକ୍ରଂସା—ସ୍ତ୍ରୀ.ବି. (କ୍ରମ+ସନ୍.ଅ+ଆ) ଆକ୍ରମଣର ଅଭିଳାଷ, ଗମନର ଇଚ୍ଛା ।

ଚକ୍ନାଂଶୀ—ସ୍ତ୍ରୀ. ବି. ବୃକ୍ଷବିଶେଷ ।

ଚକ୍କରଦେଉକର—କର୍ଣ୍ଣାଟବାସୀ ଏକଜାତି । [ ଘର୍ମଯୁକ୍ତ ।

ଚକ୍ଲଦ—ବି. ବିଂ.ଅତିଶୟ କ୍ଲେଦଯୁକ୍ତ,

ଚକ୍ରୀଡ଼ା—ସ୍ତ୍ରୀ. ବି, ( କ୍ରୀଡ଼ା+ସନ୍+ଅ ଆ)କ୍ରୀଡ଼ା କରିବାର ଇଚ୍ଛା ।

ଚଖଲ୍ଲ—ବି. (ଚକ+କ.ଅଲ) କାଦୁଅ, ପଙ୍କ ।

ଚଖାଦିଷୁ—ବି. ବିଂ. (ଖାଦ+ସନ୍.ଉ) ଖାଇବାର ଅଭିଳାଷୀ ।

ଚଖଲ—ଖାନ୍ଦେଶ ଜିଲ୍ଲାନ୍ତର୍ଗତ ଗୋଟିଏ କ୍ଷୁଦ୍ର ଭୀଲ ରାଜ୍ୟ ।

ଚଙ୍ଗଟ—ପୁଂ.ବି.( ଚଙ୍ଗ+ଅଟ+କ.ଅ ) ଏକପ୍ରକାର ମାଛ, ଚଙ୍ଗୁଡ଼ିମାଛ ।

ଚଙ୍ଗଟୀ—ସ୍ତ୍ରୀ. ବି. (ଚଙ୍ଗଟ+ଈ)ଶ୍ରେଷ୍ଠ ଚଙ୍ଗୁଡ଼ିମାଛ ।

ଚଙ୍ଗଡ଼—ପୁଂ.ବି.(ଚଙ୍ଗ+ଅଡ଼+କ.ଅ) ଚଙ୍ଗୁଡ଼ିମାଛ ।

ଚଙ୍ଗଲପତ୍ତୁ—ମାନ୍ଦ୍ରାଜ ପ୍ରେସିଡେନ୍ସୀର ଅନ୍ତର୍ଗତ ଗୋଟିଏ ଜିଲ୍ଲା ।

ଚଙ୍ଗୁଡ଼ି— ଗ୍ରା. ବି. ମତ୍ସ୍ୟବିଶେଷ, ଏକପ୍ରକାର ଲଘୁ ଧାନ ।

ଚଙ୍ଗୁଡ଼ିଆଦଲ—ଗ୍ରା. ବି. ଚଙ୍ଗୁଡ଼ି ମାଛର ନିଶପରି ଲମ୍ବଲମ୍ବ କେଶଯୁକ୍ତ ପାଣିରେ ଜନ୍ମିବା ଅପୁଷ୍ପକ ଜଳଜ ଉଦ୍ଭିଦବିଶେଷ ।

ଚଗ୍ଙ୍ଗିଲ—ପଞ୍ଜାବର ବନ୍ନୁଜିଲ୍ଲାନ୍ତର୍ଗତ ଗୋଟିଏ ଗିରିମାଳା ।

ଚଟଙ୍ଗା—ପ୍ରା. ( ମେଦିନୀପୁର )ବି. ଏକପ୍ରକାର ଲତାଳିଆ ଗଛ, ଛଚନ୍ଦା ।

ଚଚଣ୍ଡ—ପୁଂ.ବି. ଫଳବିଶେଷ, ଚଚଙ୍ଗା, ଛଚନ୍ଦା ନାମକ ସର୍ପାକୃତି ଖାଦ୍ୟଲତା ଫଳ ।

ଚଚ୍ଗଡ଼—ମଧ୍ୟପ୍ରଦେଶସ୍ଥ ଭଣ୍ଡାର ଜିଲ୍ଲାନ୍ତର୍ଗତ ଦକ୍ଷିଣପୂର୍ବ ପ୍ରାନ୍ତସ୍ଥିତ ଗୋଟିଏ ବିସ୍ତୃତ ରାଜ୍ୟ ବା ଜମିଦାରି ।

ଚଛିକୁଟୀ—ସ୍ତ୍ରୀ. ବି. ପକ୍ଷୀର ଶବ୍ଦ ।

ଚଛିଟିଙ୍ଗ—ପୁଂ. ବି. କୀଟଭେଦ ।

ଚଛୁଦୈବଜ୍ଞ—ବି. ପ୍ରଶ୍ନସାର ନାମକ ସଂସ୍କୃତ ଜ୍ୟୋତିଷ ଗ୍ରନ୍ଥକାର ।

ଚଛକ୍ତି—ସ୍ତ୍ରୀ. ବି. ( କ.ଧା ) ଚେତନା, ଚୈତନ୍ୟଶକ୍ତି, ତତ୍ତ୍ୱଜ୍ଞାନ, ବିବେଚନା ।

ଚଚ୍ଛାୟାପତ୍ତି—ସ୍ତ୍ରୀ. ବି.. ଚିତ୍, ପ୍ରତିବିମ୍ବ, ଚୈତନ୍ୟାଧ୍ୟାସ, ଚିଦାବେଶ ।

ଚଛୁସୁ—ବି. ବିଂ. ( ଛୁଦ+ସନ୍.ଉ) ଛେଦନ କରିବାକୁ ଅଭିଳାଷୀ ।

ଚଛିଲ—ପୁଂ.ବି. ଦେଶଭେଦ, ତଦ୍ଦେଶବାସୀ । [ଟୀକାକାର ।

ଚଛୁକ—ପୁଂ. ବି. ଭାଗବତର ଜଣେ

ଚଜ—ଯା. ବି. ବସ୍ତୁ, ପଦାର୍ଥ, ଦ୍ରବ୍ୟ, ଚଳନ୍ତ ସମ୍ପତ୍ତି, ମୂଲ୍ୟବାନ୍ ପଦାର୍ଥ, ସମ୍ପତ୍ତି, ସ୍ପୃହଣୀୟ ପଦାର୍ଥ, ସୁଖାଦ୍ୟ ପଦାର୍ଥ, ଗହଣା ।

ଚଜବସ୍ତୁ—ଗ୍ରା. ବି. ନାନାବିଧ ପଦାର୍ଥ, ଅସବାବ ପତ୍ର ।

ଚଞ୍ଚା—ସ୍ତ୍ରୀ ବି. (ଚମ୍+ଚର+କ.ଅ+ଆ)ତିନ୍ତିଡ଼ିବୃକ୍ଷ,ତେନ୍ତୁଳି(ଫଳ ଓ ଗଛ)

ଚିଞ୍ଚାଟକ—ପୁଂ. ବି. ତୃଣ ବିଶେଷ ।

ଚିଞ୍ଚାମ୍ଳ—କ୍ଲୀ.ବି.ତେନ୍ତୁଳିରୁ ପ୍ରସ୍ତୁତ ରସାୟନିକଦ୍ରବ୍ୟ ବିଶେଷ, ଅମ୍ଳଶାକ, ଆମରୁଲ, ଖଟାପାଳଙ୍ଗ ଶାଗ ।

ଚିଞ୍ଚାସାର—ପୁଂ. ବି. ଅମ୍ଳଶାଗ, ଖଟାପାଳଙ୍ଗ ଶାଗ ।

ଚିଞ୍ଚିଡ଼ୀ—ସ୍ତ୍ରୀ. ବି. ବୃକ୍ଷବିଶେଷ ।

ଚିଞ୍ଚୁମା—ସ୍ତ୍ରୀ. ବି. ନଗରୀ ବିଶେଷ, ଗଙ୍ଗାଦ୍ୱାରର ଦକ୍ଷିଣଭାଗରେ ଅବସ୍ଥିତ ।

ଚିଞ୍ଚୀ—ସ୍ତ୍ରୀ.ବି.(ଚିଞ୍ଚ+ଇ)ଗୁଞ୍ଜା,କାଇଞ୍ଚ ।

ଚିଞ୍ଚୋଟକ—ପୁଂ. ବି.(ବୈଦିକ) ଶାକଗୁଳ୍ମବିଶେଷ, ତୃଣବିଶେଷ ।

ଚିଟ—ଗ୍ରା. ବି, କାଗଜର ଟୁକୁରା, ଚିରକୁଟ୍ ।

ଚିଟ୍ଚିଟ୍—ଗ୍ରା. ବିଂ. ଅଠାଳିଆ ।

ଚିଟ—ଗ୍ରା. ବି. ଅଠା,ବିରକ୍ତି, (ଗ୍ରା. ବି) ଅଠାଳିଆ, ବିରକ୍ତିକର ।

ଚିଟଉ—ଗ୍ରା. ବି. ଚିଟାଉ ଦେଖ ।

ଚିଟରି—ଗ୍ରା. ବି. ଚିତାବାଘ ।

ଚିଟଲ—ପ୍ରା. (ସିଂହଭୂମ) ବିଂ. ଠକ; ପ୍ରତାରକ ।

ଚିଟାଉ—ଗ୍ରା, ବି. ପତ୍ର, ଚିଠି, ପ୍ରେମପତ୍ର; କନ୍ୟା ବା ଜ୍ଞାତିର ମୃତ୍ୟୁସଂବାଦ ଜ୍ଞାପକ ପତ୍ର ।

ଚିଟା—ଗ୍ରା. ବିଂ. ଅତ୍ୟନ୍ତ ବିରକ୍ତ, କାର୍ଯ୍ୟ ନ କରି ବହୁକାଳ ବସିରହିବା ଯୋଗୁଁ ବିରକ୍ତ, ଅଠାଳିଆ,ଅତିକୃପଣ, ବିରକ୍ତିକର, ଧୃଷ୍ଟ,ତେଲାକ୍ତ ଓ ମଳିଆ, (ବି)ତେଲଯୋଗୁଁ କେଶ ଓ ବସ୍ତ୍ରାଦିରେ ଜମିଥିବା କାଳି ବା ଅଠା ।

ଚିଟାକପୁର—ଗ୍ରା. ବି. ଏକପ୍ରକାର ନିକୃଷ୍ଟ ଓ କୃତ୍ରିମ କର୍ପୂର ।

ଚିଟାଗୁଡ଼—ଗ୍ରା. ବି. କାଳିଆ ଅଠାଳିଆଗୁଡ଼, କୋତରାଗୁଡ଼, ପାଣିଆ ଗୁଡ଼ ।

ଚିଠି—ଗ୍ରା. ବି, ପତ୍ର,କ୍ଷୁଦ୍ର ଆଦେଶ ପତ୍ର, ଭଗବାନଙ୍କ ବରାଦ ।

ଚିଟିଙ୍ଗ—ପୁଂ, ବି. କୀଟଭେଦ ।

ଚିଟିତପଟ—ଗ୍ରା, ବି. ଚିଠିପତ୍ର, ପତ୍ରାଦି, ଆଦେଶଲିପି ଆଦି ।

ଚିଠିଦେବା—ଗ୍ରା. କ୍ରି, କୌଣସି ବ୍ୟକ୍ତିଙ୍କ ନିକଟକୁ ପତ୍ର ଲେଖିପଠାଇବା ।

ଚିଟିପତ୍ର—ଗ୍ରା. ବି. ଚିଟିତପଟ ଦେଖ ।

ଚିଟୀ—ସ୍ତ୍ରୀ.ବି. (ଚିଟ+ଅ+ଈ)ଚଣ୍ଡାଳବେଶଧାରିଣୀ ଯୋଗିନୀ ।

ଚିଟୁଆ—ଗ୍ରା. ବିଂ. ଅଠାଳିଆ, ଧୃଷ୍ଟୁଆ ।

ଚିଟୁକୁଣି—ଗ୍ରା. ବି. ଚିଟକଣି ଦେଖ ।

ଷାର୍ଯ୍ୟକଲାପରେ ମୁଷ୍ଟିପ୍ରହାର ।

ଚିଠା—ଗ୍ରା.ବି. ଜମିର ପରିମାଣ ଯହିଁରେ ଲେଖାହୁଏ, ଭଉଁରିଆ, ପଣ୍ୟଦ୍ରବ୍ୟ ବା ଟଙ୍କାଦେଣନେଣର ସ୍ମାରକ ଲିପି, ହାତ-ଚିଠା, କୌଣସି ଦଲିଲର ମୌଳିକ ପାଣ୍ଡୁଲିପି ବା ଖସଡ଼ା, ବଣିକର ମୋଟାମୋଟି ଦୈନିକ ଆୟବ୍ୟୟ ଖାତା

ଚିଠାକରିବା—ଗ୍ରା. କ୍ରି. କୌଣସି ପ୍ରସ୍ତାବିତ ବିଷୟକୁ ପ୍ରଥମେ ମୋଟାମୋଟି ଲେଖିବା ।

ଚିଠାଖାତା—ଗ୍ରା. ବି. ବ୍ୟବସାୟୀର ଦୈନିକ ଆୟ ବ୍ୟୟର ହିସାବପୁସ୍ତକ ।

ଚିଠାସିହା—ଗ୍ରା. ବି. ଚିଠା ଖାତା ଦେଖ ।

ଚିଠି—ଗ୍ରା. ବି. ଚିଟି ଦେଖ ।

ଚିଡ଼୍‌ଚିଡ଼୍—ଗ୍ରା. ବି. ବିରକ୍ତି, (ଗ୍ରା. ବିଂ) ବିରକ୍ତ, ସ୍ୱଭାବତଃ କ୍ରୋଧୀ ।

ଚିଡ଼୍‌ଚିଡ଼୍‌ହେବା—ଗ୍ରା. କ୍ରି. ସାମାନ୍ୟ କଥାରେ ବିରକ୍ତି ହେବା, ଗାଉଁ ଗାଉଁ ହେବା ।

ଚିଡ଼ଲ୍—ଗ୍ରା. ପୁଂ ଓ ସ୍ତ୍ରୀ. ବିଂ. ଉଗ୍ର-ସ୍ୱଭାବ, ଚିଡ଼୍‌ଚିଡ଼ା, ସାମାନ୍ୟକଥାରେ ଯେ ଚିଡ଼େ ।

ଚିଡ଼ା—ଗ୍ରା. ବି. ବିରକ୍ତି ( ଗ୍ରା. ବିଂ ) କ୍ରୋଧୀ, ରାଗୀ, ଉଗ୍ରସ୍ୱଭାବ ।

ଚିଡ଼ା(ଡ଼େ)ଇବା—ଗ୍ରା. କ୍ରି. ବିରକ୍ତ କରାଇବା, କଥା ବା କାର୍ଯ୍ୟଦ୍ୱାରା ଅନ୍ୟ ବ୍ୟକ୍ତିର ମନରେ ରାଗ ଜନ୍ମାଇବା, ଚଲାଇବା ।

ଚିଡ଼ାଚିଡ଼ି—ଗ୍ରା. ଅତ୍ୟନ୍ତ ବିରକ୍ତି, ଅନ୍ୟୋନ୍ୟରେ ବିରକ୍ତି କରିବା ।

ଚିଡ଼ାମାଡ଼ିବା—ଗ୍ରା. ବି. ଚଲାଲାଗିବା, ବିରକ୍ତି ବୋଧହେବା ।

ଚିଢ଼—ପ୍ରା. (ସମ୍ବ) ବି. ବଡ଼ଟୋକେଇ, (ପ୍ରା. ଗଞ୍ଜାମ. ବି.) ଚିଙ୍ଗୁଡ଼ିମାଛ, ଗ୍ଲେଟ ଡାଲ ।

ଚିଢ଼ଆ—ଗ୍ରା. ବି. ପକ୍ଷୀ, ଚଢ଼େଇ, ଚିଢ଼-ତନ ଦେଖ ।

ଚିଢ଼ଆଖାନା—ଗ୍ରା. ବି. ପକ୍ଷୀ ରଖିବାର ସ୍ଥାନ, ଯେଉଁଠାରେ ନାନାଜାତିୟ ଜୀବଜନ୍ତୁଙ୍କୁ ପାଳିକରି ରଖାଯାଏ ।

ଚିଢ଼ଆଘାସ—ଗ୍ରା. ବି. ଏକପ୍ରକାର ଘାସ ।

ଚିଢ଼ିତନ—ଯା. ବି. ତାସ ଖେଳରେ ତ୍ରିଗୋଲକ ଓ ପୁଚ୍ଛବିଶିଷ୍ଟ କଳାରଙ୍ଗ, ଚିଢ଼ିଆ ରଙ୍ଗ ।

ଚିଢ଼ିବା—ଗ୍ରା. କ୍ରି. କ୍ରୁଦ୍ଧ ହେବା, ରାଗ କରିବା, ବିରକ୍ତ ହେବା, ବିରକ୍ତି ପ୍ରକାଶ କରିବା । [ ହେବା ।

ଚିଢ଼ିଭିଢ଼ିହେବା—ଗ୍ରା. କ୍ରି. ଚିଢ଼ ଚିଢ଼

ଚିଢ଼େଇ—ଗ୍ରା. ବି, ମାଛ ଧୋଇବା ଓ ରଖିବା ପାଇଁ ବ୍ୟବହୃତ ଗ୍ଲେଟ ବାଉଁଶିଆ ।

ଚିଣି—ଗ୍ରା. ବିଂ. କ୍ଷୁଦ୍ର, ଗ୍ଲେଟ ।

ଚିଣିଚିଣି—ଗ୍ରା. ଅବ୍ୟ. (ଧ୍ୱନ୍ୟନୁକରଣ) ଗୁଇଁ ଗୁଇଁ ମାଛଦେବା, ଛୁଞ୍ଚି ମାଇଲା ପରି ହେବା, କଂସା ଆଦି ଧାତୁନିର୍ମିତ ବାଦ୍ୟାଦିର ଶବ୍ଦ ।

ଚିତ୍—ସ୍ତ୍ରୀ. ବି. (ଚିତ+ଭା. କ୍ୱିପ୍) ଜ୍ଞାନ, ମନ, ଚୈତନ୍ୟ, ଚିତ୍ତବୃତ୍ତି, ନିର୍ବିକଳ୍ପକ, ପ୍ରତ୍ୟକ ଆତ୍ମ ସ୍ୱରୂପ ସମସ୍ତ ବସ୍ତୁର ଅବଭାସକ ଜ୍ଞାନ, (ପୁଂ.ବି.) ଚୟନକର୍ତ୍ତା, ଅଗ୍ନି (ଅବ୍ୟ.) ଅସାକଲ୍ୟ, ବିଭକ୍ତିର ଅନ୍ତ କିମ୍ ଶବ୍ଦର ଉତ୍ତର ପ୍ରତ୍ୟୟ ବିଶେଷ, ( କସ୍ମିଚିତ୍, କାସ୍ମିଚ ) (ଗ୍ରା. ବି. ) (ମୁଦ୍ରାଦିର) ଉପର ପାଖ, ମୁହଁପାଖ, ଉତ୍ତାନ ଶୟନ, ମୁହଁ ଉପରକୁ କରି ଶୋଇବା, ମଲ୍ଲ ଯୁଦ୍ଧରେ ବିପକ୍ଷ ଦ୍ୱାରା ପରାଜିତ ହୋଇ ଉତ୍ତାନଶାୟୀ ହେବା, କଉଡ଼ି ଖେଳରେ କଉଡ଼ି ଥିଲା ପାଖ ଉପରକୁ ହୋଇ ପଡ଼ିବା ଅବସ୍ଥା, (ଗ୍ରା. ବିଂ) ଉତ୍ତାନଶାୟୀ ।

ଚିତ୍‌କରିବା—ଗ୍ରା. କ୍ରି. ମଲ୍ଲ ଯୁଦ୍ଧରେ ଜେତା ବିଜେତାଙ୍କୁ ଭୂମିରେ ଉପର-ମୁହାଁକରି ପକାଇ ତା ଗୁଡ ଉପରେ ମଡ଼ି ବସିବା ।

ଚିତ୍‌ପଟ—ଗ୍ରା. ବି. ମୁହଁ ପାଖ ଓ ପିଠି ପାଖ, କୌଣସି ଦୋମୁହାଁ ପଦାର୍ଥର ଉପର ମୁହଁ ଓ ତଳମୁହଁ, (ଗ୍ରା. ବିଂ.) ଚିତ୍‌ପଟାଙ୍ଗ୍ ଦେଖ ।

ଚିତ୍‌ପଟାଙ୍ଗ—ଗ୍ରା. ବିଂ. ଉପରକୁ ମୁହଁ କରି ପଡ଼ିତ, ( ଗ୍ରା. ବି. ) ଉପରକୁ ମୁହଁ କରି ପତନ ।

ଚିତ୍‌ପବନ—ଗ୍ରା. ବି. ମରହଟ୍ଟା ବ୍ରାହ୍ମଣ-ମାନଙ୍କ ଶାଖାବିଶେଷ ।

ଚିତ—ସଂ. ବିଂ. (ଚି+ର୍ମ.ତ) ଛନ୍ନ, ସଂଗୃହୀତ, କୃତ ଚୟନ, ସଞ୍ଚିତ, ରଚିତ ସମ୍ପାଦିତ, ଗୁମ୍ଫିତ, ଆଚ୍ଛାଦିତ, ଗୋଟିଆ ଗୋଟି ହୋଇ ଗଦା କରି ଯାଇଥିବା, ବ୍ୟାପ୍ତ, (ଫଳଫୁଲ ଆଦି ଗଛରୁ) ତୋଳା ଯାଇଥିବା, କ୍ଲୀ. ବି. (ଚି+ଭା.ତ) ଚୟନ, ସଂଗ୍ରହକରଣ, ସଂକଳନ, ଫଳ ଫୁଲଆଦି ତୋଳିବା କର୍ମ, ଗଦା କରିବା, ପ୍ରା. ଗଞ୍ଜାମ (ଅ.) ହେଉ ଆପଣଙ୍କ ଇଚ୍ଛା, ଆପଣଙ୍କ ମରଜି ।

ଚିତଉ—ଗ୍ରା.ବି. ବାଷ୍ପସିଦ୍ଧ ପିଷ୍ଟକବିଶେଷ ।

ଚିତଉ ଅମାବାସ୍ୟା—ଗ୍ରା. ବି. ଶ୍ରାବଣ ମାସର ଅମାବାସ୍ୟା ।

ଚିତଉଖିଆ—ଗ୍ରା. ବି. ଗର୍ଭବତୀଙ୍କୁ ସପ୍ତମ ମାସରେ ଦିଆଯିବା ସାଧ ।

ଚିତକୁ ଆଣିବା—ପ୍ରା. ( ଗଞ୍ଜାମ ) କ୍ରି. ମନରେ ବିବେଚନା କରିବା ।

ଚିତଂ—ପଞ୍ଜାବାନ୍ତର୍ଗତ ଆମ୍ବାଲା ଓ କର୍ଣ୍ଣାଲ ଜିଲ୍ଲାର ଗୋଟିଏ ନଦୀ ।

ଚିତରତଲା—ଓଡ଼ିଶାର କଟକ ଜିଲ୍ଲାନ୍ତ-ର୍ଗତ ମହାନଦୀର ଗୋଟିଏ ଶାଖା ।

ଚିତର—ଗ୍ରା. ବିଂ. ଚର୍ଚ୍ଚିତ, ନାନାବର୍ଣ୍ଣ ରଞ୍ଜିତ ।

ଚିତଲ—ଗ୍ରା.ବି.ଫଳୀ ଜାତୀୟ ବୃହଦାକାର ମତ୍ସ୍ୟ ବିଶେଷ ।

ଚିତଲଦୁର୍ଗ—ମହୀସୁର ରାଜ୍ୟାନ୍ତର୍ଗତ ନଗର ବିଭାଗର ଗୋଟିଏ ଦୁର୍ଗ ।

ଚିତଲମାରି—ବଙ୍ଗଳାନ୍ତର୍ଗତ ଖୁଲନା-ଜିଲ୍ଲାର ଗୋଟିଏ ଗ୍ରାମ । [ବିଶେଷ ।

ଚିତଲମାଛ—ଗ୍ରା.ବି.ଫଳି ଜାତୀୟ ମତ୍ସ୍ୟ-

ଚିତା—ସ୍ତ୍ରୀ. ବି. ( ଚି+ଅଧିତ+ଆ.) ଶବଦାହାଗ୍ନି, ଚିଇ, ଚୁଲ୍ଲି, ଶବ-ଦାହାର୍ଥ ରଚିତ କାଷ୍ଠରାଶି, ମଶାଣି, ଶ୍ମଶାନ, ଗ୍ରା. ବି. ରୂପା ଓ ଶରୀରର

ଅନ୍ୟାନ୍ୟ ଅଙ୍ଗରେ ଅଙ୍କିତ ତିଳକ ବା ଚନ୍ଦନର ନାନା ପ୍ରକାର ଚିହ୍ନ, ସ୍ତ୍ରୀଲୋକମାନଙ୍କର କପାଳରେ ଦିଆଯିବା ଟିକିଲି ବା ଟୋପି, ବିନ୍ଦୁ ଚନ୍ଦନ, ସ୍ତ୍ରୀଲୋକମାନେ ଚୁଣ୍ଣ ଓ କାଳୀ ଦ୍ୱାରା ଦେହର ଭିନ୍ନ ଭିନ୍ନ ପ୍ରକାଶ୍ୟ ସ୍ଥାନରେ ଯେଉଁ ସ୍ଥାୟୀ ଚିହ୍ନ ଲେଖନ୍ତି, ଝୁଣ୍ଟି, ମନୁଷ୍ୟର କପାଳ ବା ଭ୍ରୂମଧ୍ୟସ୍ଥଳ, ସ୍ତ୍ରୀଲୋକଙ୍କ କାର୍ତ୍ତିକ ଘରର କାନ୍ଥ ଓ କବାଟରେ ପିଠଉ ବା ଚୂନ ଆଦିରେ ଲେଖାହେବା ଚିହ୍ନ, ଚିତାପାରୁ ଗଛ, ଚିତା ବା 'ଇ' ମାତ୍ରା, ହ୍ରସ୍ୱ 'ଇ'କାର।

ଚିତାକରିବା—ଗ୍ରା. କ୍ରି. ସ୍ନାନ ପରେ କପାଳାଦିରେ ଚନ୍ଦନ ଓ ତିଳକାଦି ଲଗାଇବା।

ଚିତାକାଟିବା—ଗ୍ରା. କ୍ରି. କପାଳରେ ଲମ୍ବ ବା ଠିଆ ଦାଗରେ ତିଳକ ବା ଚନ୍ଦନର ଚିହ୍ନ ଅଙ୍କନ କରିବା, ଠକିବା ଧପ୍ପାମାରିବା।

ଚିତାକୁଟା (ଟେ)ଇବା—ଗ୍ରା. କ୍ରି. ଚିତାକୁଟିବାର ଣିଜନ୍ତରୂପ।

ଚିତାକୁଟିବା—ଗ୍ରା. କ୍ରି. କୌଣସି ବ୍ୟକ୍ତିର ଦେହରେ ଚୁଣ୍ଣ ଓ କଳାଦ୍ୱାରା ନାନାବିଧ ସ୍ଥାୟୀ ଚିହ୍ନ ଅଙ୍କନ କରିବା।

ଚିତାଗ୍ନି—ପୁଂ. ବି. (କ.ଧା) ଶବଦାହାର୍ଥ ଅଗ୍ନି, ଜୁଇ।

ଚିତାଚଇତନ—ଗ୍ରା. ବି. ହିନ୍ଦୁର ଚିତା କରିବା ଆଦି ନିତ୍ୟକ୍ରିୟା।

ଚିତାଚ୍ଛାଦନ—କ୍ଲୀ. ବି. (୬ତତ୍ପୁ) ଚିତାର ଆଚ୍ଛାଦନ ବସ୍ତ୍ର।

ଚିତାଦେବା—ଗ୍ରା. କ୍ରି. ଘରର କବାଟ ଓ କାନ୍ଥରେ ପିଠଉ ବା ଚୂନ ଦ୍ୱାରା ଚିହ୍ନ ଅଙ୍କନ କରିବା, ଧପା ମାରିବା, ଠକିବା।

ଚିତାପାରୁ—ଗ୍ରା. ବି. ଗୁଳ୍ମବିଶେଷ, ଧଳାଚିତା, ରକ୍ତଚିତା, କଳାଚିତା।

ଚିତାପେଡ଼ି—ଗ୍ରା. ବି. ଚନ୍ଦନ, ପେଡ଼ି, ତିଳକ ପେଡ଼ି, ଖୁଙ୍ଗି।

ଚିତାବାଘ—ଗ୍ରା. ବି. ଶାର୍ଦ୍ଦୂଳଜାତୀୟ ଅପେକ୍ଷାକୃତ କ୍ଷୁଦ୍ରାବୟବ ମାଂସାଶୀ ହିଂସ୍ର ଜନ୍ତୁ।

ଚିତାଭସ୍ମ—ବି. (୬ତତ୍ପୁ) ମଶାଣି ପାଉଁଶ, ଚିତାଗ୍ନିର ପାଉଁଶ।

ଚିତାଭୂମି—ସ୍ତ୍ରୀ. ବି. (୬ତତ୍ପୁ) ଶ୍ମଶାନ।

ଚିତାମଣପୁର—ବିହାରର ଅନ୍ତର୍ଗତ ଶାହାବାଦ ଜିଲ୍ଲାର ଗୋଟିଏ ନଗର।

ଚିତାରନ୍ଦା—ଗ୍ରା. ବି. କାଠକୁ ପାଲିସ କରିବା ନିମନ୍ତେ ବ୍ୟବହୃତ ଶସ୍ତ୍ରବିଶେଷ, ଗ୍ରେଟ ରନ୍ଦା।

ଚିତାରୂଢ଼—ତ୍ରି. ବି. (୨ତତ୍ପୁ) ଚିତାରେ ଯେ ଆରୋହଣ କରିଅଛି।

ଚିତାରେବା—ମଧ୍ୟ ପ୍ରଦେଶରେ ଥିବା ଗୋଟିଏ ନଦୀ।

ଚିତାରୋହଣ—କ୍ଲୀ. ବି. (୭ତତ୍ପୁ) ମୃତ ସ୍ୱାମୀଙ୍କ ଶବ ସଙ୍ଗେ ପୋଡ଼ି ହୋଇ ପ୍ରାଣତ୍ୟାଗ କରିବା ସକାଶେ ସତୀମାନଙ୍କର ମୃତ ସ୍ୱାମୀର ଚିତାଗ୍ନି ଉପରେ ଚଢ଼ିବା ସହମରଣ ପ୍ରଥା।

ଚିତାଲଗି ଅମାବାସ୍ୟା—ଗ୍ରା. ବି. ଚିତଉ ଅମାବାସ୍ୟା, ଶ୍ରାବଣ ଅମାବାସ୍ୟା।

ଚିତାଲାଗି ହେବା—ଗ୍ରା. କ୍ରି. ଦେହରେ ଚନ୍ଦନ ବୋଳି ହେବା।

ଚିତାଲିଆ—ବଙ୍ଗଳାନ୍ତର୍ଗତ ସାଁଓତାଳପରଗଣାର ଗୋଟିଏ ଜମିଦାରୀ।

ଚିତାଶାୟୀ—ପୁଂ. ବିଂ. (ଚିତା+ଶୀ+ଇନ୍) ଚିତାରେ ଯେ ଶୋଇଛି, (ସ୍ତ୍ରୀ) ଚିତାଶାୟିନୀ।

ଚିତାସାଧନ—କ୍ଲୀ. ବି. (୭ତତ୍ପୁ) ଚିତାଭସ୍ମ ଉପରେ ବସି ଇଷ୍ଟମନ୍ତ୍ର ଜପପୂର୍ବକ ତାନ୍ତ୍ରିକ ସାଧନବିଶେଷ।

ଚିତାହରଣ—ଗ୍ରା. ବି. ଚିହ୍ନ ମୃଗ।

ଚିତି—ସ୍ତ୍ରୀ. ବି. (ଚି+ର୍ମ.ତି) ଇଷ୍ଟକାଦିର ପୁଞ୍ଜ, ଚିତାଗ୍ନି, ସମୂହ, ରାଶି, (ଭା.ତି) ଚୟନ, ସଂଗ୍ରହ, ଅଗ୍ନିର ସଂସ୍କାରବିଶେଷ, (କ.ତି) ଦୁର୍ଗା, ଇଷ୍ଟକାଦିର ସଂସ୍କାର, ନିର୍ବିଷୟ ଜ୍ଞାନ, ରାଶି କରଣ, ଚୈତନ୍ୟ, (ଗ୍ରା.ବି.) ଅଧିକ ସମୟ ଓଦା ରହିବାରୁ ଲୁଗାରେ ପଡ଼ିଯିବା କଳା ଧଳା ଦାଗମାନ, ଚିତିସାପ।

ଚିତିକା—ସ୍ତ୍ରୀ. ବି. (ଚିତି+କୈ+ଅ+ଆ) କଟି ଶୃଙ୍ଖଳା, ମେଖଳା, ଅଣ୍ଟାସୂତା, ଚିତି ଦେଖ।

ଚିତିବ୍ୟବହାର—ବି. (କ.ଧା) ଇଟା ପଥରାଦିର ପରିମାଣର ହିସାବ, ଇଷ୍ଟକରାଶି ବା ସ୍ତୂପର ଘନଫଳ ବାହାର କରିବାର ନିୟମ, ଗୋଟିଏ ସ୍ତୂପର ଘନଫଳ ନିରୂପଣ।

ଚିତିମାରିବା—ଗ୍ରା. କ୍ରି. ଦରମରା ବା ବଉଳ ଯାଇଥିବା ମାଛମାନେ ପେଟ ପାଖ ଉପରକୁ ଦେଖାଇ ଜଳରେ ଭାସିବା, ଗାମୁଛା ବା ଲୁଗା ଅତିରିକ୍ତ ସମୟ ଓଦା ରହିବାରୁ ତହିଁରେ ଧଳା କଳା ଦାଗହୋଇ ଯିବା, ମାକଡ଼ଚିତିମାରିବା।

ଚିତିସାପ—ଗ୍ରା. ବି. ଏକପ୍ରକାର ବିଷାକ୍ତ ସାପ।

ଚିତୁ—ପ୍ରା. (ଗଞ୍ଜାମ) ଯା. ବି. କଉଡ଼ି ଖେଳରେ ନଷ୍ଟ କଉଡ଼ିର ପେଟ ଉପରକୁ ହୋଇ ପଡ଼ିବା ଅବସ୍ଥା, ବିଂ. ରିଦ (କାଗଜ ଆଦି)।

ଚିତୋଇବା—ଗ୍ରା. କ୍ରି. ଅନ୍ୟ ବ୍ୟକ୍ତିଙ୍କୁ କୌଣସି ବିଷୟ ସ୍ମରଣ କରାଇବା, ମନେ ପକାଇବା, ଣିଜନ୍ତରୂପ, ସଚେତ କରିବା, ଜାଗ୍ରତ କରିବା, ନିଦରୁ ଉଠାଇବା, ଚେତାଇବା।

ଚିତୋର୍—ଗ୍ରା. ବି. ରାଜପୁତନାର ଅନ୍ତର୍ଗତ ଉଦୟପୁରର ଗୋଟିଏ ସୁପ୍ରସିଦ୍ଧ ପ୍ରାଚୀନ ନଗର।

ଚିତ୍କଣ—ତ୍ରି. ବିଂ. (ଚିତ୍+କଣ+ଅ) ଯେ ଚିତ୍କାର କରେ।

ଚିତ୍କଣ୍ଠ—କ୍ଲୀ. ବିଂ. (୬ତତ୍ପୁ) କହ୍ଲାର ସଙ୍ଖାଭେଦ।

ଚିତ୍କାର—ପୁଂ. ବି. (ଚିତ୍+କୃ+ଭା. ଅ) ଚିତ୍କାର, ଭୟାଦିଜନ୍ୟ ଉଚ୍ଚଶବ୍ଦ, ହଲ୍ଲା।

ଚିତ୍କାରବାନ୍—ପୁଂ. ବିଂ. (ଚିତ୍କାର+ବତ୍) ଚିତ୍କାରକାରୀ, (ସ୍ତ୍ରୀ) ଚିତ୍କାରବତୀ।

ଚିତ୍ତ—କ୍ଲୀ. ବ. (ଚିତ+ଣ.ତ) ଅନ୍ତଃକରଣଭେଦ, ମନଃ, ଇଚ୍ଛା, ମରଜ, ସ୍ମରଣଶକ୍ତି, (ଗ୍ରା. ବ.) ଧୈର୍ଯ୍ୟ।

ଚିତ୍ତକ୍ଷୋଭ—ପୁଂ. ବ. (୬ତତ୍) ଚିତ୍ତବୃଞ୍ଚଳ୍ୟ, ମନଃକ୍ଷୋଭ, ମନୋଦୁଃଖ।

ଚିତ୍ତଗର୍ଭ—ତ୍ରି. ବ. (ଚିତ୍ତ+ଗର୍ଭ+ଅ) ଚିତ୍ତଗ୍ରାହୀ, ମନୋହର, ସୁନ୍ଦର, (ସ୍ତ୍ରୀ) ଚିତ୍ତଗର୍ଭା।

ଚିତ୍ତଗର୍ଭା—ସ୍ତ୍ରୀ. ବ. ଚିତ୍ତଗର୍ଭର ସ୍ତ୍ରୀଲିଙ୍ଗ, (ବୈଦିକ) ଗର୍ଭଧାରଣ କରିଥିବାର ଦେଖାଯାଉଥିବା ସ୍ତ୍ରୀ।

ଚିତ୍ତଚମତ୍କାରୀ—ପୁଂ. ବଂ. ହୃଦୟର ବିସ୍ମୟଜନକ, ମନୋମୋହକର, ମନୋହର, (ସ୍ତ୍ରୀ) ଚିତ୍ତଚମତ୍କାରିଣୀ।

ଚିତ୍ତଚାଞ୍ଚଲ୍ୟ—କ୍ଲୀ. ବ. (୬ତତ୍) ମନର ଅସ୍ଥିରତା, ମାନସିକ ଉଦ୍ବେଗ, ପାଗଳାମି, ଅବ୍ୟବସ୍ଥିତଚିତ୍ତତା।

ଚିତ୍ତଚାରୀ—ପୁଂ. ବଂ. (ଚିତ୍ତ+ଚର+ଇନ୍) ଯାହାଙ୍କୁ ସର୍ବଦା ମନରେ ଭାବିବାକୁ ହୁଏ, (ସ୍ତ୍ରୀ) ଚିତ୍ତଚାରିଣୀ।

ଚିତ୍ତଚୋର—ଗ୍ରା.ବ.ଚିତ୍ତଚୌର ଦେଖ।

ଚିତ୍ତଚଳନ—କ୍ଲୀ. ବ. (୬ତତ୍) ମନୋବୃତ୍ତିର ଚଳନା।

ଚିତ୍ତଚୌର—ବ. (୬ତତ୍) ପ୍ରଣୟୀ।

ଚିତ୍ତଜ—ପୁଂ. ବ. (ଚିତ୍ତ+ଜନ୍+କ.ଅ) କନ୍ଦର୍ପ, କାମ, ଚିତ୍ତଜନ୍ମା।

ଚିତ୍ତଜ୍ଞ—ପୁଂ.ବଂ.(ଚିତ୍ତ+ଜ୍ଞା+କ.ଅ) ଯେ ଚିତ୍ତ ବା ଆଶୟ ଜାଣିପାରେ, ଅଭିପ୍ରାୟବିତ୍, ଭାବଜ୍ଞ, (ସ୍ତ୍ରୀ) ଚିତ୍ତଜ୍ଞା।

ଚିତ୍ତଜନ୍ମା—ପୁ. ବ. (ବ.ଗ୍ରୀ) କାମ ମନସିଜ, କନ୍ଦର୍ପ।

ଚିତ୍ତଦମନ—କ୍ଲୀ. ବ. (୬ତତ୍) ମନକୁ ନିକୃଷ୍ଟ ବିଷୟରୁ ଫେରେଇବା, ମନଃସଂଯମ।

ଚିତ୍ତଦୋଷ—ପୁଂ. ବ. (୬ତତ୍) ଚିତ୍ତର ଦୋଷ,ବିଷୟାଦି ଗ୍ରହଣରେ ଅସମାର୍ଥ୍ୟ

ଚିତ୍ତଦ୍ରାବକ—ବଂ. (ଚିତ୍ତ+ଦ୍ରୁ+କ. ଅକ) ଯେ ମନକୁ ତରଳାଇଦିଏ, ମର୍ମସ୍ପର୍ଶୀ।

ଚିତ୍ତନଦୀ—ସ୍ତ୍ରୀ. ବ. (କର୍ମଧା) ଚିତ୍ତବୃତ୍ତିରୂପ ନଦୀ।

ଚିତ୍ତନାଶ—ପୁଂ. ବ. (୬ତତ୍) ଚିତ୍ତବୃତ୍ତିର ନାଶ।

ଚିତ୍ତନିରୋଧ—ପୁଂ. ବ. (୬ତତ୍) ମନକୁ ବହିର୍ବିଷୟରୁ ଫେରାଇ ଅନ୍ତର୍ମୁଖୀକରଣ ଯୋଗ। [ ଶାନ୍ତ।

ଚିତ୍ତନିବୃତ୍ତି—ସ୍ତ୍ରୀ. ବ. (୬ତତ୍) ମନର

ଚିତ୍ତପରିକର୍ମ—କ୍ଲୀ.ବ. (୬ତତ୍) ମୈତ୍ରାଦି ଭାବନାରୂପ ଚିତ୍ତର ସଂସ୍କାର।

ଚିତ୍ତପ୍ରମାଥୀ—ପୁଂ. ବଂ. (ଚିତ୍ତ+ପ୍ରମନ୍ଥ+କ.ଇନ୍) ଯେ ଚିତ୍ତକୁ ବ୍ୟାକୁଳ କରେ, ଅନ୍ୟର ମନରେ ପ୍ରଣୟ ବା ଅନୁରାଗ ଉଦ୍ରେକକାରୀ (ସ୍ତ୍ରୀ), ଚିତ୍ତପ୍ରମାଥିନୀ।

ଚିତ୍ତପ୍ରସନ୍ନତା—ସ୍ତ୍ରୀ. ବ. (୬ତତ୍) ମନର ତୃପ୍ତି, ପ୍ରୀତି, ମନର ଶାନ୍ତି।

ଚିତ୍ତପ୍ରସାଦ—ପୁଂ. ବ. (୬ତତ୍) ମନର ସନ୍ତୋଷ, ମନର ଶାନ୍ତି।

ଚିତ୍ତପ୍ରସାଦନ—କ୍ଲୀ.ବ.(୬ତତ୍) ମୈତ୍ର୍ୟାଦି ଭାବନାଦ୍ୱାରା ଚିତ୍ତ ନିର୍ମଳ କରିବା।

ଚିତ୍ତଭୂ—ପୁଂ.ବ. (ଚିତ୍ତ+ଭୂ+କ.କ୍ୱିପ୍) କନ୍ଦର୍ପ, କାମ। [ ଅବସ୍ଥା।

ଚିତ୍ତଭୂ—ସ୍ତ୍ରୀ. ବ. (୬ତତ୍) ଚିତ୍ତର

ଚିତ୍ତଭୂମି—ସ୍ତ୍ରୀ. ବ. (କ.ଧା) ମନୋରୂପା ଭୂମି, ଯୋଗଦର୍ଶନମତେ ଚିତ୍ତଭୂମି ୫ ପ୍ରକାର,ଯଥା—କ୍ଷିପ୍ତ,ମୂଢ଼,ବିକ୍ଷିପ୍ତ, ଏକାଗ୍ର, ନିରୁଦ୍ଧ।

ଚିତ୍ତଭେଦ—ପୁଂ. ବ. (୬ତତ୍) ଏକାଧିକ ବ୍ୟକ୍ତିଙ୍କର ମନର ବା ଉଦ୍ଦେଶ୍ୟର ଅମେଳ।

ଚିତ୍ତଭ୍ରଂଶ—ପୁଂ. ବ. (୬ତତ୍) ମନର ଅସ୍ଥିରତା,ଚିତ୍ତଚାଞ୍ଚଲ୍ୟ,ଚିତ୍ତବିଭ୍ରମ।

ଚିତ୍ତମୋହ—ପୁଂ.ବ.(୬ତତ୍)ମନରମୋହ

ଚିତ୍ତଯୋନି—ପୁଂ. ବ. (ବ.ଗ୍ରୀ) କନ୍ଦର୍ପ, ମନୋଭୂ।

ଚିତ୍ତରଙ୍ଗିଣୀ—ସ୍ତ୍ରୀ.ବ. (ଚିତ୍ତରଙ୍ଗ+ଇନ୍+ଈ) ମନୋରୂପ ରଙ୍ଗଭୂମିବିଶିଷ୍ଟ, ଯେଉଁ ରମଣୀର ଚିତ୍ତରେ ନାଟ୍ୟଶାଳାପରି ଆନନ୍ଦ ସ୍ରୋତଃ ବହମାନ, ଯେଉଁ ରମଣୀର ଚିତ୍ତରେ ପ୍ରତିକୂଳ ବିଷୟ ଦ୍ୱୟର ତୁମୁଳ ସଂଗ୍ରାମ ଚାଲିଅଛି।

ଚିତ୍ତରଞ୍ଜନ—କ୍ଲୀ. ବ. (୬ତତ୍) ମନୋରଞ୍ଜନ, ମନର ସନ୍ତୋଷ ସାଧନ,(ବଂ) ମନର ତୃପ୍ତିଦାୟକ, ଚିତ୍ତସନ୍ତୋଷକର।

ଚିତ୍ତରଞ୍ଜନଦାସ—ଗ୍ରା. ବ. ବଙ୍ଗର ଅସହଯୋଗ ଆନ୍ଦୋଳନର ନେତା।

ଚିତ୍ତରଞ୍ଜିନୀବୃତ୍ତି—ସ୍ତ୍ରୀ. ବ. କାନ୍ତବୃତ୍ତି, ଯେଉଁ ବୃତ୍ତିଯୋଗୁଁ ସୌନ୍ଦର୍ଯ୍ୟଲକ୍ଷିତ କଳାଦିର ଉପଭୋଗ କରାଯାଏ।

ଚିତ୍ତରଞ୍ଜୀ—ପୁଂ. ବଂ. (ଚିତ୍ତ+ଣିଚ୍+ରଞ୍ଜ୍+କ.ଇନ୍) ମନୋରଞ୍ଜନକାରୀ, ହୃଦୟର ଆହ୍ଲାଦଜନକ।

ଚିତ୍ତରସ—ଗ୍ରା. ବ. ହୃଦୟର ପ୍ରଗାଢ଼ ଅନୁରାଗ। [ ଅନୁରାଗ।

ଚିତ୍ତରାଗ—ପୁଂ. ବ. (୬ତତ୍) ମନର

ଚିତ୍ତବାଦ—ପୁଂ.ବ. (କ.ଧା) ମନଖୋଲି କହିବା, ମନାନୁସାରେ କହିବା।

ଚିତ୍ତବାନ୍—ପୁଂ. ବଂ. (ଚିତ୍ତ+ବତୁ) ଉଦାରଚେତା, ଉନ୍ନତମନା, (ସ୍ତ୍ରୀ) ଚିତ୍ତବତୀ।

ଚିତ୍ତବିକାର—ପୁଂ. ବ. (୬ତତ୍) ମନର ବିକାର, ମନର ଚାଞ୍ଚଲ୍ୟ, ହୃଦୟର ଅସ୍ଥିରତା।

ଚିତ୍ତବିକ୍ଷେପ—ପୁଂ. ବ. (୬ତତ୍) ମନର ଚଞ୍ଚଳ ଅବସ୍ଥା,ଯୋଗାଭ୍ୟାସ ବ୍ୟାଘାତକାରୀ।

ଚିତ୍ତବିଦ୍—ତ୍ରି. ବଂ. (ଚିତ୍ତ+ବିଦ୍+କ. କ୍ୱିପ୍) ଚିତ୍ତଜ୍ଞ, ଯେ ମନର ଭାବ ବୁଝିପାରେ, ଅଭିପ୍ରାୟବିଦ୍, (ପୁଂ.ବ) ବୌଦ୍ଧଭେଦ।

ଚିତ୍ତବିନାଶନ—ତ୍ରି. ବଂ. (ଚିତ୍ତ+ବିନାଶ+ଅନ୍) ଚିତ୍ତବିନାଶକ, (କ୍ଲୀ. ବ) ଚିତ୍ତର ବିନାଶ।

ଚିତ୍ତବିନୋଦନ—କ୍ଲୀ.ବ. (୬ତତ୍)ମନର ଆନନ୍ଦ ସମ୍ପାଦନ,ମନକୁ ପ୍ରଫୁଲ୍ଲକରଣ।

ଚିତ୍ତବିପ୍ଳବ—ପୁଂ.ବ. (ବ.ଗ୍ରୀ) ଉନ୍ମାଦରୋଗ,(୬ତତ୍) ଚିତ୍ତର ଅନବସ୍ଥିତି,

ବୁଦ୍ଧିଭ୍ରଂଶ, ବାତୁଳତା ।
ଚିତ୍ତବିଭ୍ରମ—ପୁଂ. ବି. (ବ. ବ୍ରୀ)ଉନ୍ମାଦ-ରୋଗ, ବୁଦ୍ଧି ଭ୍ରଂଶ ।
ଚିତ୍ତବିଲାସ—ମାନ୍ଦ୍ରାଜ ପ୍ରେସିଡ଼େନ୍ସୀର ଅନ୍ତର୍ଗତ ବିଶାଖାପତ୍ତନ ଜିଲ୍ଲାର ଗୋଟିଏ ନଦୀ ।
ଚିତ୍ତବୃତ୍ତି—ସ୍ତ୍ରୀ. ବି. (୬ତତ୍) ଚିତ୍ତର ଅବସ୍ଥା,ଚିତ୍ତର ବିଷୟାକାର ପରିଣାମ, ଚିନ୍ତାଶକ୍ତି, ମୈତ୍ରୀ, କରୁଣା, ମୁଦିତା ଉପେକ୍ଷା ଏହି ଚାରି ପ୍ରକାର ।
ଚିତ୍ତବୈକଲ୍ୟ—କ୍ଲୀ. ବି. (୬ତତ୍) ମନର ଅସ୍ଥିରତା,ଅନ୍ତଃକରଣର ନିସ୍ତେଜ ଭାବ, ବିକ୍ଷିପ୍ତଚିତ୍ତତା ।
ଚିତ୍ତଲ—ପୁଂ. ସ୍ତ୍ରୀ. (ଚିତ୍ତ+ଲା+ଅ) ମୃଗଭେଦ ।
ଚିତ୍ତଶୁଦ୍ଧି—ସ୍ତ୍ରୀ. ବି. ମନର ପବିତ୍ରତା, ମନର ନିର୍ମଳତା ।
ଚିତ୍ତସଂଖ୍ୟ—ପୁଂ. ବିଂ. (ଚିତ୍ତ+ସମ+ଖ୍ୟା+କ.ଅ) ଯେ ଅନ୍ୟର ମନୋଭାବ ଜାଣିପାରେ, (ସ୍ତ୍ରୀ) ଚିତ୍ତସଂଖ୍ୟା ।
ଚିତ୍ତସଂଯମ—ପୁଂ. ବି. (୬ତତ୍) ମନକୁ ସଂଯମ କରିବା, ମନକୁ କୁତ୍ସିତ ବିଷୟରୁ ନିବୃତ୍ତି କରିବା ।
ଚିତ୍ତସମୁନ୍ନତି—ସ୍ତ୍ରୀ. ବି. (୬ତତ୍) ମନର ଉନ୍ନତି, ଗର୍ବ, ଅଭିମାନ,ଆତ୍ମ ସମାଦର ।
ଚିତ୍ତସ୍ଥିତ—ତ୍ରି. ବିଂ. (୭ତତ୍) ଯାହା ମନରେ ରଖାଯାଏ । [ ହୀନତା ।
ଚିତ୍ତସ୍ଥିରତା—ବି. (୬ତତ୍) ଉଦ୍ବେଗ-
ଚିତ୍ତସ୍ଥୈର୍ଯ୍ୟ—କ୍ଲୀ. ବି. (୬ତତ୍) ମନର ସ୍ଥିରତା, ହୃଦୟର ଅଚାଞ୍ଚଲ୍ୟ, ଚିତ୍ତସଂଯମ ।
ଚିତ୍ତହାରକ—ପୁଂ. ବିଂ. (ଚିତ୍ତ+ହୃ+କ.ଅକ) ଚିତ୍ତହାରୀ, ଯାହା ମନକୁ ଲୋଭାଏ, (ସ୍ତ୍ରୀ) ଚିତ୍ତହାରିକା ।
ଚିତ୍ତହାରୀ—ପୁଂ. ବିଂ. (ଚିତ୍ତ+ହୃ+ଇନ୍) ମନୋରଞ୍ଜକ,ମନୋହାରୀ,ସୁନ୍ଦର, (ସ୍ତ୍ରୀ) ଚିତ୍ତହାରିଣୀ ।
ଚିତ୍ତାକର୍ଷକ—ବିଂ. (୬ତତ୍) ହୃଦୟ ଆକର୍ଷଣକାରୀ, ମନୋମୁଗ୍ଧକର,ମନୋହର, ମୋହନ, (ସ୍ତ୍ରୀ) ଚିତ୍ତାକର୍ଷିକା ।
ଚିତ୍ତାକର୍ଷଣ—କ୍ଲୀ. (୬ତତ୍) ହୃଦୟକୁ ମୁଗ୍ଧ କରିବା ।
ଚିତ୍ତାନୁବର୍ତ୍ତୀ—ପୁଂ.ବିଂ. (ଚିତ୍ତ+ଅନୁ-ବୃତ୍+ଇନ୍) ଯେ ମନୋଯୋଗ କରି ଚଳେ ।
ଚିତ୍ତାନ୍ତର—କ୍ଲୀ. ବି. (୬ତତ୍) ଅନ୍ୟଚିତ୍ତ, ମନର ଭିତର ।
ଚିତ୍ତାପହରଣ—ବି. (୬ତତ୍) ଚିତ୍ତାକର୍ଷଣ ଦେଖ ।
ଚିତ୍ତାପହାରକ—ପୁଂ.ବିଂ.(୬ତତ୍)ଚିତ୍ତକୁ ଯେ ହରଣ କରେ,ମନୋହାରୀ,ସୁନ୍ଦର, ଚିତ୍ତାପକର୍ଷକ ।
ଚିତ୍ତାପାହାଡ଼—ପଞ୍ଜାବର ରାଓଲପିଣ୍ଡି ଜିଲ୍ଲାନ୍ତର୍ଗତ ଗୋଟିଏ ଗିରିମାଳା ।
ଚିତ୍ତାପାର୍ଣ୍ଣୀ—ପଞ୍ଜାବାନ୍ତର୍ଗତ ହୁସିୟାର-ପୁର ଜିଲ୍ଲାସ୍ଥ ଗିରିମାଳା ।
ଚିତ୍ତାଭୋଗ—ପୁଂ. ବି. (୭ତତ୍) ଏକ ବିଷୟରେ ମନର ପ୍ରବୃତ୍ତି,ମନର ସ୍ଥିରତା, ମନୋବୃତ୍ତି ।
ଚିତ୍ତାବାଦଣୀ—ମାନ୍ଦ୍ରାଜର ଅନ୍ତର୍ଗତ ବେଲାରୀ ଜିଲ୍ଲାର ଗୋଟିଏ ସହର ।
ଚିତ୍ତାସଙ୍ଗ—ବି. (୭ତତ୍) ପ୍ରଣୟ,ସ୍ନେହ, ଅନୁରାଗ ।
ଚିତ୍ତି—ସ୍ତ୍ରୀ. ବି. (ଚିତ୍+ଭା.ତି) ବୁଦ୍ଧିବୃତ୍ତି,ଅଗ୍ନି ତତ୍ତ୍ୱ ପରିଜ୍ଞାନାର୍ଥ ଚିନ୍ତା, କର୍ମଖ୍ୟାତିଜ୍ଞାପକ ବା ପ୍ରାପକ ।
ଚିତ୍ତିତ—ତ୍ରି. ବିଂ. (ଚିତ୍ତ+ଇତ) ଚିତ୍ତଯୁକ୍ତ ।
ଚିତ୍ତୀ—ପୁଂ. ବିଂ. (ଚିତ୍ତ+ଇନ୍)ପ୍ରଶସ୍ତ ଚିତ୍ତଯୁକ୍ତ, (ସ୍ତ୍ରୀ) ଚିତ୍ତିନୀ ।
ଚିତ୍ତୀକୃତ—ତ୍ରି. ବିଂ. (ଚିତ୍ତ+ଚ୍ୱୀ+କୃ.ତ) ଚିତ୍ତର ସହିତ ପ୍ରାପ୍ତ, ଯାହାକୁ ଏକାଗ୍ରଚିତ୍ତରେ ଚିନ୍ତା କରାଯାଇଅଛି ।
ଚିତ୍ତୁର—ମାନ୍ଦ୍ରାଜ ପ୍ରେସିଡ଼େନ୍ସୀର ଅନ୍ତର୍ଗତ ଉତ୍ତର ଆର୍କଟ ଜିଲ୍ଲାର ଗୋଟିଏ ତାଲୁକ ।
ଚିତ୍ତେଆସିବା—ଗ୍ରା.କ୍ରି. ମନକୁ ଆସିବା, ବୋଧହେବା, ଜଣାଯିବା ।
ଚିତ୍ତେଆସିବା—ଗ୍ରା. କ୍ରି. ମଙ୍ଗିବା ।
ଚିତ୍ତେଇବା—ଗ୍ରା.କ୍ରି. ସ୍ମରଣ କରାଇବା, ମନେକରାଇଦେବା,ସାବଧାନ କରିବା ।
ଚିତ୍ତୋତ୍କର୍ଷ—ବି.(୬ତତ୍)ମନର ଉନ୍ନତି ।
ଚିତ୍ତୋଦ୍ବେଗ—ବି. (୬ତତ୍) ମାନସିକ ଅଶାନ୍ତି ବା ଚିନ୍ତା ।
ଚିତ୍ତୋନ୍ନତି—ସ୍ତ୍ରୀ. ବି. (୬ତତ୍) ମନର ଉନ୍ନତି, ଗର୍ବ, ଆତ୍ମଗର୍ବ ।
ଚିତ୍ୟ—ପୁଂ.ବି. (ଚି+ଯ) ଅଗ୍ନି, (ବିଂ) ଚିତାରୁ ଉତ୍ପନ୍ନ, ଚୟନଶୀଳ,(କ୍ଲୀ.ବି) ଶବଦାହ କରିବାର ଚୁଲ୍ଲି ।
ଚିତ୍ୟା—ସ୍ତ୍ରୀ. ବି. (ଚିତ୍ୟ+ଆ) ଚିତା, (ଚି+ଭା.ଯ) ଚୟନ ।
ଚିତ୍ର—(ଧାତୁ) ଚିତ୍ରକରିବା ।
ଚିତ୍ର—କ୍ଲୀ. ବି. ( ଚିତ୍+ତ୍ରୈ+ଅ ) ଚିହ୍ନ, ଦାଗ, ତିଳକ, ଆଲେଖ୍ୟ, ଅଦ୍ଭୁତ, ଆଶ୍ଚର୍ଯ୍ୟ, ବାକ୍ୟରଚନା-ବିଶେଷ, ଆକାଶ, କୁଷ୍ଠବିଶେଷ,ଛନ୍ଦୋ-ବିଶେଷ, କର୍ବୁରବର୍ଣ୍ଣ, ବିଚିତ୍ର ବର୍ଣ୍ଣ, (ପୁଂ.ବି) ଯମଭେଦ, ଚିତ୍ରଗୁପ୍ତ, ଏରଣ୍ଡ ବୃକ୍ଷ, ଅଶୋକ ବୃକ୍ଷ, ଚିତ୍ରକ ବୃକ୍ଷ,(ବିଂ) ବିଚିତ୍ର ବର୍ଣ୍ଣବିଶିଷ୍ଟ, ଆଶ୍ଚର୍ଯ୍ୟଜନକ ।
ଚିତ୍ରଂଦେବାନାଦେବ—ଗ୍ରା.କ୍ରି.ଠକିବା ।
ଚିତ୍ରକ—କ୍ଲୀ. ବି. (ଚିତ୍ର+କ) ଆଲେଖ୍ୟ, ତିଳକ, ଛବି, (ପୁଂ.ବି) ଚିତାବାଘ,ଶୂର, ବଳବାନ, ବୀର, ନାଲିଚିତା, ଏରଣ୍ଡ ବୃକ୍ଷ, ଚିତା, ଔଷଧଭେଦ, ଚିରେ-ଇତା, ମୁଚୁକୁନ୍ଦଗଛ, ଧଳାଚିତା,(ବିଂ) ଚିତ୍ରକର ।
ଚିତ୍ରକଣ୍ଠ—ପୁଂ. ବି. (ବ.ବ୍ରୀ) କପୋତ, ପାରା, ଚନକପୋତ, ଘୁଘୁ ।
ଚିତ୍ରକଗୁଡ଼ିକା—ବୈଦ୍ୟକୋକ୍ତ ଔଷଧ ବିଶେଷ । [ ବିଶେଷ ।
ଚିତ୍ରକତୈଳ—ବୈଦ୍ୟକୋକ୍ତ ଔଷଧ-
ଚିତ୍ରକମ୍ବଳ—ପୁଂ.ବି. (କ.ଧା)ନାନାବର୍ଣ୍ଣ-ବିଶିଷ୍ଟ ଗାଲିଚା, ଖରଡ଼ ।
ଚିତ୍ରକର—ତ୍ରି. ବିଂ. (ଚିତ୍ର+କୃ+କ.ଅ) ଯେ ଚିତ୍ରକରେ, ଚିତ୍ରଶିଳ୍ପକର,ତିନିଶ ବୃକ୍ଷ, ବର୍ଣ୍ଣସଙ୍କର ଜାତିବିଶେଷ ।

ଚିତ୍ରକର୍ମ—କ୍ଳୀ.ବି. (୬ତତ୍) ଚିତ୍ରକାର୍ଯ୍ୟ, ଶିଳ୍ପ, ଅଳଂକରଣ,ରଙ୍ଗାଇବା କାର୍ଯ୍ୟ ।

ଚିତ୍ରକର୍ମା—ପୁଂ. ବିଂ. (ବ.ବ୍ରୀ) ଚିତ୍ରକର, ବିସ୍ମୟକର, (ପୁଂ.ବି) ତିନିଶବୃକ୍ଷ, ବିଚିତ୍ରକର୍ମ କରିବା(ବ୍ୟକ୍ତି) ।

ଚିତ୍ରକଳା—ସ୍ତ୍ରୀ.ବି. ଚିତ୍ରଅଙ୍କିବା ବିଦ୍ୟା ।

ଚିତ୍ରକହ୍ନଟକ୍କା—ସ୍ତ୍ରୀ.ବି. ଆୟୁର୍ବେଦୋକ୍ତ ଔଷଧବିଶେଷ ।

ଚିତ୍ରକାବ୍ୟ—ବି. ଶବ୍ଦାଲଙ୍କାରପୂର୍ଣ୍ଣ କାବ୍ୟ ବିଶେଷ, ପଦ୍ମବନ୍ଧାଦିଘଟିତ କାବ୍ୟ ।

ଚିତ୍ରକାୟ—ପୁଂ. ବିଂ. (ବ.ବ୍ରୀ) ଯାହାର ଦେହ ଚିହ୍ନିତ, (ବି) ଚିତାବାଘ ।

ଚିତ୍ରକାର—ପୁଂ. ବିଂ. (ଚିତ୍ର+କୃ+ଅ) ଚିତ୍ରକର, (ବି) ସଙ୍କରଜାତିବିଶେଷ ।

ଚିତ୍ରକାରୀ—ପୁଂ. ବିଂ. (ଚିତ୍ର+କୃ+ଇନ୍) ଚିତ୍ରକର, ଚିତ୍ର ତିଆରି କରିବା ବ୍ୟବସାୟୀ ।

ଚିତ୍ରକୁଣ୍ଡଳ—ପୁଂ. ବି. (ବ.ବ୍ରୀ) ଧୃତରାଷ୍ଟ୍ରଙ୍କ ପୁତ୍ରଭେଦ ।

ଚିତ୍ରକୂଟ—ପୁଂ. ବି. (ବ.ବ୍ରୀ) ରାମଗିରି, ପର୍ବତବିଶେଷ, ଚିତୋର ନଗରର ଶିଳାଲିପି ବର୍ଣ୍ଣିତ ପ୍ରାଚୀନ ସଂସ୍କୃତ ନାମ, ହିମାଳୟ ପର୍ବତର ଗୋଟିଏ ଶୃଙ୍ଗ, ସୀତାନଦୀର ପୂର୍ବତଟରେ ଅବସ୍ଥିତ ଗୋଟିଏ ପର୍ବତ ।

ଚିତ୍ରକୃତ୍—ତ୍ରି. ବିଂ. (ଚିତ୍ର + କୃ + କ୍ୱିପ୍) ଚିତ୍ରକର, ଆଶ୍ଚର୍ଯ୍ୟକର, (ବି) ସଙ୍କର ଜାତିଭେଦ, ତିନିଶ ବୃକ୍ଷ ।

ଚିତ୍ରକେତୁ—ପୁଂ.ବି.ଗରୁଡ଼ଙ୍କ ପୁତ୍ରଭେଦ, ଲକ୍ଷ୍ମଣଙ୍କ ଏକପୁତ୍ର,ଊର୍ମିଳାର ଗର୍ଭଜାତ ବଶିଷ୍ଠଙ୍କ ଏକପୁତ୍ର, କଂସାର ଗର୍ଭଜ ଯଦୁବଂଶୀୟ ଦେବଭାଗର ଏକପୁତ୍ର, ଶୂରସେନ ଦେଶର ଏକ ରାଜା, (ବିଂ) ଚିତ୍ରପତାକାଯୁକ୍ତ । [ ଅଞ୍ଜନୀ ।

ଚିତ୍ରକୋଣ—ପୁଂ.ବି. (ବ.ବ୍ରୀ) ଅଞ୍ଜନିକା,

ଚିତ୍ରକ୍ରିୟା—ସ୍ତ୍ରୀ.ବି. (କ.ଧା) ଚିତ୍ରକାର୍ଯ୍ୟ ।

ଚିତ୍ରକ୍ଷତ୍ର—ତ୍ରି. ବିଂ. ବିଚିତ୍ର ବଳବିଶିଷ୍ଟ ।

ଚିତ୍ରଗ—ତ୍ରି. ବିଂ. (ଚିତ୍ର + ଗମ୍ + ଅ) ଚିତ୍ରାର୍ପିତ, ଚିତ୍ରଲିଖିତ ।

ଚିତ୍ରଗତ—ତ୍ରି. ବିଂ. (ଚିତ୍ର+ଗମ୍+କ୍ତ) ଚିତ୍ରାର୍ପିତ, ଚିତ୍ରରୂପେ ଅଙ୍କିତ ।

ଚିତ୍ରଗନ୍ଧ—କ୍ଳୀ. ବି. (ବ.ବ୍ରୀ) ହରିତାଳ, ବି. (କ.ଧା) ସୁବାସ, ସଦ୍‌ଗନ୍ଧ, (ବିଂ) ଆଶ୍ଚର୍ଯ୍ୟ ଗନ୍ଧଯୁକ୍ତ ।

ଚିତ୍ରଗୁପ୍ତ—ପୁଂ. ବି. (ବ.ବ୍ରୀ) ଯମଭେଦ, ଜଣେ ଧର୍ମଶାସ୍ତ୍ରକାର, ଯମଙ୍କ ପାଞ୍ଜିଆ, ଚତୁର୍ଦ୍ଦଶ ଯମଙ୍କ ମଧ୍ୟରୁ ଏକତମ ।

ଚିତ୍ରଗୃହ—ପୁଂ.କ୍ଳୀ.ବି.(୬ତତ୍)ଚିତ୍ରଶାଳା, ଚିତ୍ରଯୁକ୍ତ ବା ଚିତ୍ରକରିବାର ଘର ।

ଚିତ୍ରଗ୍ରୀବ—ପୁଂ. ବିଂ. ( ବ.ବ୍ରୀ ) ବିଚିତ୍ର ଗ୍ରୀବାବିଶିଷ୍ଟ, (ସ୍ତ୍ରୀ) ଚିତ୍ରଗ୍ରୀବା ।

ଚିତ୍ରଘଣ୍ଟା—ସ୍ତ୍ରୀ.ବି.(ବ.ବ୍ରୀ)କାଶୀସ୍ଥଦେବୀ ଭେଦ । [ ବିଶେଷ ।

ଚିତ୍ରଘଣ୍ଟେଶୀ—ସ୍ତ୍ରୀ. ବି. କାଶୀସ୍ଥ ଦେବୀ-

ଚିତ୍ରଚାପ—ପୁଂ.ବି.ଧୃତରାଷ୍ଟ୍ରଙ୍କ ପୁତ୍ରଭେଦ ।

ଚିତ୍ରଜଳ୍ପ—ପୁଂ. ବି. ( କ.ଧା ) ବାକ୍ୟ ବିଶେଷ ।

ଚିତ୍ରଣ—କ୍ଳୀ.ବି.(ଚିତ୍ର+ଣିଚ୍,ଅନ)ଚିହ୍ନିତ-କରଣ, ଆଲେଖ୍ୟ ଅଙ୍କନ ।

ଚିତ୍ରତଣ୍ଡୁଳ—କ୍ଳୀ. ବି. (ବ.ବ୍ରୀ)ବିଡ଼ଙ୍ଗ ।

ଚିତ୍ରତଣ୍ଡୁଳା—ସ୍ତ୍ରୀ. ବି. ବିଡ଼ଙ୍ଗ ।

ଚିତ୍ରତୈଳ—କ୍ଳୀ. ବି. ଏରଣ୍ଡତୈଳ, ଜଡ଼ାତେଲ ।

ଚିତ୍ରତ୍ୱକ୍—ପୁଂ. ବି.(ବ.ବ୍ରୀ)ଭୂର୍ଜପତ୍ରବୃକ୍ଷ

ଚିତ୍ରଦଣ୍ଡକ—ପୁଂ. ବି. (ବ.ବ୍ରୀ) ଶୂରଣ, ଓଲୁଅ ଗଛ ।

ଚିତ୍ରଦୀପ—ପୁଂ.ବି.ପଞ୍ଚଦଶୀ ପ୍ରକରଣର ଅନ୍ତର୍ଗତ ଦୀପଭେଦ ।

ଚିତ୍ରଦୃଶ୍ୟକ—ତ୍ରି. ବିଂ.ବିଚିତ୍ରଦର୍ଶନ ।

ଚିତ୍ରଦେବ—ପୁଂ. ବି. କାର୍ତ୍ତିକେୟଙ୍କର ଏକ ଅନୁଚର ।

ଚିତ୍ରଦେବୀ—ସ୍ତ୍ରୀ. ବି. ମହେନ୍ଦ୍ରବାରୁଣୀ, ବଡ଼ ମହାକାଳ ଲତା,ଶକ୍ତିବିଶେଷ ।

ଚିତ୍ରଧର୍ମ—ପୁଂ.ବି. ଦୈତ୍ୟନୃପତିଭେଦ ।

ଚିତ୍ରଧରଶର୍ମା—ପୁଂ. ବି. ଜଣେ ପ୍ରଧାନ ନୈୟାୟିକ ।

ଚିତ୍ରଧା—ଅବ୍ୟ,(ଚିତ୍ର+ଧା)ଅନେକଧା, ଅନେକବିଧ ।

ଚିତ୍ରଧାମ—କ୍ଳୀ. ବି. (କ.ଧା) ଚିତ୍ରନିର୍ମିତ ପୂଜାର ମଣ୍ଡଳ,ସର୍ବତୋଭଦ୍ରମଣ୍ଡଳ ।

ଚିତ୍ରଧ୍ୱଜଦ—ତ୍ରି. ବି. ବିଚିତ୍ରଗତିବିଶିଷ୍ଟ ।

ଚିତ୍ରଧ୍ୱଜ—ପୁଂ. ବି. ଜଣେ ପାଣ୍ଡ୍ୟରାଜା ।

ଚିତ୍ରନେତ୍ରା—ସ୍ତ୍ରୀ. ବି. (ବ.ବ୍ରୀ) ସାରିକା, ସାରୀ,ମଦନପକ୍ଷୀ, ( ସ୍ତ୍ରୀ.ବିଂ ) ବିଚିତ୍ର-ନୟନା, ଅପରୂପଲୋଚନା ।

ଚିତ୍ରନୈପୁଣ୍ୟ—କ୍ଳୀ. ବି. (୬ତତ୍) ଚିତ୍ର-କାର୍ଯ୍ୟରେ ଦକ୍ଷତା, ଅଙ୍କନନିପୁଣତା ।

ଚିତ୍ରନ୍ୟସ୍ତ—ତ୍ରି. ବିଂ. (୬ତତ୍)ଚିତ୍ରାର୍ପିତ, ଚିହ୍ନିତ ।

ଚିତ୍ରପକ୍ଷ—ପୁଂ. ବି.(ବ.ବ୍ରୀ)ତିତ୍ତିରି ପକ୍ଷୀ, ବିଂ. (ବ.ବ୍ରୀ) ବିଚିତ୍ର ପକ୍ଷବିଶିଷ୍ଟ,(ସ୍ତ୍ରୀ) ଚିତ୍ରପକ୍ଷା ।

ଚିତ୍ରପଟ—ପୁଂ. ବି. (କ.ଧା)ଚିହ୍ନିତ ବସ୍ତ୍ର, ଛିଟ, ଚିତ୍ରାଧାର, ପଟ ।

ଚିତ୍ରପଠ—ପୁଂ. ବି. ଚିତ୍ରିତ ଉପଟ ।

ଚିତ୍ରପଟୁ—ପୁଂ.ବିଂ(୬ତତ୍)ଚିତ୍ରକାର୍ଯ୍ୟରେ କୁଶଳ ।

ଚିତ୍ରପତି—ପୁଂ.ବି. ସିଦ୍ଧାନ୍ତପୀୟୂଷନାମକ ସ୍ମୃତିଗ୍ରନ୍ଥକାର ।

ଚିତ୍ରପତ୍ର—ତ୍ରି. ବିଂ. (ବ.ବ୍ରୀ) ବିଚିତ୍ର ପକ୍ଷଯୁକ୍ତ, ସୁନ୍ଦର ଡେଣାବିଶିଷ୍ଟ ।

ଚିତ୍ରପତ୍ରିକା—ସ୍ତ୍ରୀ. ବି. (ବ.ବ୍ରୀ)କପିତ୍ଥପର୍ଣ୍ଣୀ ବୃକ୍ଷ, ଦ୍ରୋଣପୁଷ୍ପୀ ।

ଚିତ୍ରପତ୍ରୀ—ସ୍ତ୍ରୀ. ବି. ଜଳପିପ୍ପଳୀ ।

ଚିତ୍ରପଥା—ସ୍ତ୍ରୀ. ବି. ପ୍ରଭାସତୀର୍ଥରେ ବ୍ରହ୍ମକୁଣ୍ଡର ସମୀପସ୍ଥ ଗୋଟିଏ କ୍ଷୁଦ୍ର ନଦୀ

ଚିତ୍ରପଦ—ତ୍ରି. ବିଂ.(ବ.ବ୍ରୀ) ସୁନ୍ଦରପଦ-ବିଶିଷ୍ଟ ।

ଚିତ୍ରପଦା—ସ୍ତ୍ରୀ. ବି. ଗୋଧାପଦୀ ଲତା, ହଂସପାଦୀ ଲତା । [ଭେଦ ।

ଚିତ୍ରପର୍ଣ୍ଣିକା—ସ୍ତ୍ରୀ.ବି. (ବ.ବ୍ରୀ) ଚିତ୍ରପର୍ଣ୍ଣୀ-

ଚିତ୍ରପର୍ଣ୍ଣୀ—ସ୍ତ୍ରୀ. ବି. ( ବ.ବ୍ରୀ ) ପୃଶ୍ନି-ପର୍ଣ୍ଣୀ, ଗୃଧ୍ରନଖୀ, କର୍ଣ୍ଣସ୍ଫୋଟକ ଲତା, କାନଫୁଟା, ଜଳପିପ୍ପଳୀ, ମଞ୍ଜିଷ୍ଠା, ଦ୍ରୋଣପୁଷ୍ପୀ, ଗଇଣ । [ପକ୍ଷିଣୀ ।

ଚିତ୍ରପାଦା—ସ୍ତ୍ରୀ. ବି. (ବ.ବ୍ରୀ) ଶାରିକା

ଚିତ୍ରପିଚ୍ଛକ—ପୁଂ. ବି. (ବ.ବ୍ରୀ) ମୟୂର ।

ଚିତ୍ରପିରୁଳା—ଗ୍ରା. ବି. କଣ୍ଢେଇ ।

ଚିତ୍ରପୁଙ୍ଖ—ପୁଂ. ବି. (ବ.ଗ୍ରା) ଶର, ବାଣ ।

ଚିତ୍ରପୁତ୍ତଳିକା—ସ୍ତ୍ରୀ.ବି. (କ.ଧା) କଣ୍ଢେଇ, ଶାଳଭଞ୍ଜିକା, ଚିତ୍ରିତ ପ୍ରତିମୂର୍ତ୍ତି ।

ଚିତ୍ରପୁରୁଷ—ଗ୍ରା. ବି. (କ.ଧା) ପଟ୍ଟଲିଖିତ ପୁରୁଷର ଛବି ।

ଚିତ୍ରପୃଷ୍ଠ— ପୁଂ. ବି. (ବ.ଗ୍ରା) କଳବିଙ୍କ ପକ୍ଷୀ, ଘରଚଟିଆ ।

ଚିତ୍ରପୃଷ୍ଣୀ—ସ୍ତ୍ରୀ. ବି. (ବ.ଗ୍ରା) ଅମ୍ବଷ୍ଠା, ଆମ୍ବଡ଼ା ଗଛ ।

ଚିତ୍ରପ୍ରତିକୃତି—ସ୍ତ୍ରୀ. ବି.(କ.ଧା)ଚିତ୍ରରେ ଅଙ୍କିତ ପ୍ରତିମୂର୍ତ୍ତି ।

ଚିତ୍ରଫଳ—ପୁଂ. ବି. (ଚିତ୍ରଫଳ+ଅ) ଚିତଳମାଛ, କରଭଙ୍ଗ ।

ଚିତ୍ରଫଳକ—ପୁଂ.ବି.ଚିତଳମାଛ,(କ୍ଲୀ.ବି) ଛବି, ଚିତ୍ରପଟ ।

ଚିତ୍ରଫଳା—ସ୍ତ୍ରୀ. ବି. (ବ.ଗ୍ରା) ଚିର୍ଭଟୀ, କାଳୁଡ଼ି, ମୃଗେର୍ବାରୁ, ଲିଙ୍ଗିନୀ ଲତା, ମହେନ୍ଦ୍ରବାରୁଣୀ, ବଡ଼ମହାକାଳ, ବାଇଗଣ, କଣ୍ଟକାରୀ, ଫଳୀ ମାଛ ।

ଚିତ୍ରବର୍ହ—ପୁଂ. ବି. (ବ.ଗ୍ରା) ମୟୂର, ଗରୁଡ଼ର ଏକପୁତ୍ର ।

ଚିତ୍ରବର୍ହୀ—ପୁଂ. ବିଂ. ବିଚିତ୍ରପୁଚ୍ଛବିଶିଷ୍ଟ, (ସ୍ତ୍ରୀ) ଚିତ୍ରବର୍ହିଣୀ ।

ଚିତ୍ରବର୍ହିଃ—ତ୍ରି. ବିଂ. (ବ.ଗ୍ରା) ବିଚିତ୍ରଗୁଣମୟ ବା ଗୁଣଯୁକ୍ତ । [ପୁତ୍ର ।

ଚିତ୍ରବାହୁ—ପୁଂ. ବି. ଧୃତରାଷ୍ଟ୍ରଙ୍କର ଏକ

ଚିତ୍ରଭାନୁ—ତ୍ରି. ବିଂ.(ବ.ଗ୍ରା) ବିଚିତ୍ରଦୀପ୍ତିବିଶିଷ୍ଟ, (ପୁଂ. ବି) ଅଗ୍ନି, ସୂର୍ଯ୍ୟ, ଭୈରବ, ଶିବ, ଅର୍କଗୁଳ୍ମ, ଚିତ୍ରକ ବୃକ୍ଷ, ଚିତାଗଛ, ଅରଖଗଛ, ଭୈରବ, ଅଶ୍ୱିନୀକୁମାର ଦ୍ୱୟ, ପ୍ରଭବାଦି ଷଷ୍ଟି ସମ୍ବତ୍ସରର ଯେଉଁ ବାରଟି ଯୁଗଦ୍ୱୟ. ତାହାମଧ୍ୟରୁ ଚତୁର୍ଥ ଯୁଗର ପ୍ରଥମ ବତ୍ସର, ମଣିପୁରରରାଜା, ଅର୍ଜୁନପତ୍ନୀ, ଚିତ୍ରାଙ୍ଗଦର ଜନକ ।

ଚିତ୍ରଭୂତ—ତ୍ରି.ବିଂ.(କ.ଧା)ଆଶ୍ଚର୍ଯ୍ୟଭୂତ ।

ଚିତ୍ରଭେଷଜା—ସ୍ତ୍ରୀ. ବି. (ବ.ଗ୍ରା)କାକୋଦୁମ୍ବରିକା, କାଠଡ଼ିମିରି । [କଡ଼ିବା ।

ଚିତ୍ରମଣିବା—ଗ୍ରା. ତ୍ରି. ଆଶ୍ଚର୍ଯ୍ୟ ବୋଧ

ଚିତ୍ରମଣ୍ଡଳ—ପୁଂ. ବି. (ବ.ଗ୍ରା) ମଣ୍ଡଳାକାରସ୍ଥ ସର୍ପଭେଦ ।

ଚିତ୍ରମତ୍ସ୍ୟ—ବି. ଚିତଳ ମାଛ ।

ଚିତ୍ରମଦ—ପୁଂ.ବି.ନାଟକ ଉପନ୍ୟାସରେ କୌଣସି ସ୍ତ୍ରୀ ଆପଣାର ଅନୁପସ୍ଥିତ ପତି ବା ପ୍ରେମିକର ଚିତ୍ରଦେଖି ବିରହୋତ୍କଣ୍ଠା ପ୍ରକାଶ କରିବା ।

ଚିତ୍ରମୟ—ବିଂ.(ଚିତ୍ର+ମୟ)ଆଲେଖ୍ୟାତ୍ମକ, ଆଲେଖ୍ୟରୂପେ ପ୍ରକଟିତ, ଚିତ୍ରାକାରରେ ଅଙ୍କିତ, (ସ୍ତ୍ରୀ) ଚିତ୍ରମୟୀ ।

ଚିତ୍ରମହଃ—ତ୍ରି. ବିଂ. (ବ.ଗ୍ରା) ବିଚିତ୍ର ବା ସ୍ପୃହଣୀୟ ତେଜୋବିଶିଷ୍ଟ ।

ଚିତ୍ରମୃଗ—ପୁଂ. ବି. ଚିତ୍ରବର୍ଣ୍ଣହରିଣ, କଲାବାଢୁଡ଼ିଆ ।

ଚିତ୍ରମେଖଳ—ପୁଂ.ବି. (ବ.ଗ୍ରା) ମୟୂର, (ସ୍ତ୍ରୀ) ଚିତ୍ରମେଖଳା ।

ଚିତ୍ରଯାମ—ତ୍ରି. ବିଂ. ନାନା ଗମନଯୁକ୍ତ ।

ଚିତ୍ରଯୋଗ—ବି. ୬୪କଳାମଧ୍ୟରୁ ଏକ, ବୁଢ଼ାକୁ ଯୁବକ ବା ଯୁବକକୁ ବୃଦ୍ଧ ଓ ନପୁଂସକ କରିଦେବା ବିଦ୍ୟା ।

ଚିତ୍ରଯୋଧୀ—ପୁଂ. ବିଂ. (ଚିତ୍ର+ଯୁଧ୍ କ.ଇନ୍) ଆଶ୍ଚର୍ଯ୍ୟଯୁଦ୍ଧକାରୀ, (ପୁଂ.ବି) ଅର୍ଜୁନ, ଅର୍ଜୁନଗଛ ।

ଚିତ୍ରରଥ—ପୁଂ. ବି. (ବ.ଗ୍ରା) ସୂର୍ଯ୍ୟ, ସୁରଲୋକବାସୀ ଏକ ଗନ୍ଧର୍ବ, ଜଣେ ରାଜା, ଶ୍ରୀକୃଷ୍ଣଙ୍କର ନାତି, ସୁପାର୍ଶ୍ୱଙ୍କ ପୁତ୍ର, ଗୟଙ୍କର ଏକ ପୁତ୍ର, ମୃତ୍ତିକାବତୀର ରାଜା, ଜଣେ ସାରଥି, (ବିଂ) ନାନାବର୍ଣ୍ଣ ରଥଯୁକ୍ତ ।

ଚିତ୍ରରଥା—ସ୍ତ୍ରୀ. ବି. ନଦୀଭେଦ ।

ଚିତ୍ରରଶ୍ମି—ତ୍ରି. ବିଂ. (ବ.ଗ୍ରା)ନାନାବର୍ଣ୍ଣ ରଶ୍ମି ବିଶିଷ୍ଟ, (ପୁଂ. ବି) ମରୁଦ୍ଭେଦ ।

ଚିତ୍ରରାତ—ତ୍ରି.ବିଂ. (ବ.ଗ୍ରା)ଯେ ନାନାବିଧ ଦାନକରେ ।

ଚିତ୍ରରାଧଃ—ତ୍ରି. ବିଂ. ବିଚିତ୍ର ବା ସ୍ପୃହଣୀୟ ଧନଯୁକ୍ତ ।

ଚିତ୍ରରେଖା—ସ୍ତ୍ରୀ. ବି. (କ.ଧା) ଅଭିତରେଖା ଅସ୍ତ୍ରବିଶେଷ ।

ଚିତ୍ରରେଫ—ପୁଂ. ବି. ଶାକଦ୍ୱୀପାଧିପତି ପ୍ରିୟବ୍ରତଙ୍କ ନାତି ଓ ମେଧାତିଥିଙ୍କ ପୁତ୍ର ।

ଚିତ୍ରଳ—ପୁଂ. ବି. (ଚିତ୍ର+ଲା+ଅ) କର୍ବୁରବର୍ଣ୍ଣ,(ବିଂ)ନାନାବିଧ ବର୍ଣ୍ଣଯୁକ୍ତ ।

ଚିତ୍ରଲତା—ସ୍ତ୍ରୀ. ବି. ମଞ୍ଜିଷ୍ଠା ।

ଚିତ୍ରଳା—ସ୍ତ୍ରୀ. ବି. (ଚିତ୍ରଳ+ଆ) ଗୋରକ୍ଷୀବୃକ୍ଷ ।

ଚିତ୍ରଲଖନ—କ୍ଲୀ. ବି. ଚିତ୍ରକରିବା, ସୁନ୍ଦରଲେଖା ।

ଚିତ୍ରଲିଖିତ—ତ୍ରି. ବିଂ. ବିଚିତ୍ର ଲିଖିତ, ସୁନ୍ଦର ଲିଖିତ ।

ଚିତ୍ରଲେଖ—ପୁଂ. ବିଂ. (ତତ୍ପୁ)ଚିତ୍ରକାର, ଯେ ସୁନ୍ଦର ଲେଖେ ।

ଚିତ୍ରଲେଖନିକା—ସ୍ତ୍ରୀ. ବି. (ଚିତ୍ର+ଲେଖନୀ+ଇକ+ଆ)ତୁଳି, ତୁଳିକା ।

ଚିତ୍ରଲେଖନୀ—ସ୍ତ୍ରୀ. ବି. (ଚିତ୍ର+ଲିଖ +ଣ.ଅନ୍+ଈ) ଚିତ୍ରଲେଖିବାର ତୁଳିକା ।

ଚିତ୍ରଲେଖା—ସ୍ତ୍ରୀ.ବି. (ବ.ଗ୍ରା)ବାଣାସୁରଦୁହିତା ଉଷାର ସଖୀ, ଅପ୍ସରାବିଶେଷ, ସପ୍ତଦଶାକ୍ଷରପାଦ ଛନ୍ଦୋବିଶେଷ, ବ୍ରଜାଙ୍ଗନାଭେଦ, ଚିତ୍ରବର୍ଣ୍ଣ ରେଖା, ଚିତ୍ରଲେଖନୀ ।

ଚିତ୍ରଲୋଚନା—ସ୍ତ୍ରୀ.ବି. (ବ.ଗ୍ରା)ଶାରିକା, ମଦନପକ୍ଷୀ ।

ଚିତ୍ରବତ୍—ତ୍ରି. ବି. (ଚିତ୍ର+ବତ୍) ଚିତ୍ରଯୁକ୍ତ, ଆଲେଖ୍ୟଶୋଭିତ ।

ଚିତ୍ରବଦଳ—ପୁଂ. ବି. ପାଠୀନ ମତ୍ସ୍ୟ, ବାଲିଆ ମାଛ ।

ଚିତ୍ରବନ—କ୍ଲୀ.ବି.ଗଣ୍ଡକୀର ନିକଟବର୍ତ୍ତୀ ପୁରାଣଖ୍ୟାତ ଗୋଟିଏ ବନ ।

ଚିତ୍ରବର୍ମା—ପୁଂ.ବି.ଧୃତରାଷ୍ଟ୍ରଙ୍କ ଏକ ପୁତ୍ର, କୁଳୁତ ଦେଶର ଏକ ରାଜା ।

ଚିତ୍ରବର୍ଷୀ—ତ୍ରି. ବିଂ. (ଚିତ୍ର+ବୃଷ+ଇନ୍) ଅଦ୍ଭୁତବର୍ଷଣକାରୀ ।

ଚିତ୍ରବଲ୍ଲିକ—ପୁଂ. ବି. (ଚିତ୍ରବଲ୍ଲି+କୈ+ଅ)ଚିତ୍ରବଦାଳ, ବାଲିଆ ମାଛ ।

ଚିତ୍ରବଲ୍ଲୀ—ସ୍ତ୍ରୀ. ବି. (କ.ଧା)ଚିତ୍ରଫଳଲତା,

ମହେନ୍ଦ୍ରବାରୁଣୀ, ମହାକାଳ ଲତା, ମୃଗେର୍ବାରୁ ।

ଚନ୍ଦ୍ରବନ୍ଧା—ସ୍ତ୍ରୀ. ବ.(ଚନ୍ଦ୍ର+ବନ୍ଧ+ଅ+ଆ) ନଦୀଭେଦ ।

ଚନ୍ଦ୍ରବାଜ—ବି.ବଂ. (ବ.ଗ୍ରା)ବିଚିତ୍ରପକ୍ଷଯୁକ୍ତ । [ ପୁଚ୍ଚ ।

ଚନ୍ଦ୍ରବାଣ—ପୁଂ.ବ. ଧୃତରାଷ୍ଟ୍ରଙ୍କର ଏକ-

ଚନ୍ଦ୍ରବାହନ—ପୁଂ. ବ. ମଣିପୁରେଶ୍ୱର ଏକ ନାଗ, ବଭ୍ରୁବାହନଙ୍କ ମାତାମହ, ଅର୍ଜ୍ଜୁନପତ୍ନୀ, ଚନ୍ଦ୍ରାଙ୍ଗଦାଙ୍କ ପିତା ।

ଚନ୍ଦ୍ରବିଚିତ୍ର—ବିଂ. (୬ତତ୍ପୁ) ବିବିଧବର୍ଣ୍ଣ ନା ଚିତ୍ରରେ ଚିତ୍ରିତ, ଗ୍ଲିପିଗ୍ଲିପିକିଆ, ନାନାବର୍ଣ୍ଣର ।

ଚନ୍ଦ୍ରବିଦ୍ୟା—ସ୍ତ୍ରୀ. ବ. କଳାବିଶେଷ, ଚିତ୍ରାଙ୍କନ ବିଦ୍ୟା ।

ଚନ୍ଦ୍ରବୀର୍ଯ୍ୟ—ପୁଂ.ବ.(ବ.ଗ୍ରା)ରକ୍ତ ଏରଣ୍ଡ, ନାଲିଜଡ଼ା,(ବି.ବଂ) ଆଶ୍ଚର୍ଯ୍ୟବଳଯୁକ୍ତ ।

ଚିତ୍ରବୃତ୍ତି—ସ୍ତ୍ରୀ. ବ.( କ. ଧା ) ଅଦ୍ଭୁତ ବ୍ୟାପାର ।

ଚିତ୍ରବେଗିକ—ପୁଂ. ବ. (ଚିତ୍ର+ବେଗ+ଇକ) ନାଗଭେଦ ।

ଚିତ୍ରବେଶ—ପୁଂ.ବ.(କ.ଧା)ବିଚିତ୍ର ବେଶ ।

ଚିତ୍ରବ୍ୟାଘ୍ର—ପୁଂ. ବ. ଚିତାବାଘ ।

ଚିତ୍ରଶାର୍ଦ୍ଦୂଳ—ବ. ଚିତାବାଘ ।

ଚିତ୍ରଶାଳା—ସ୍ତ୍ରୀ. ବ. ( କ.ଧା) ଚିତ୍ର କରିବା ନିମିତ୍ତ ନିର୍ମିତ ଘର, ଚିତ୍ରଗୃହ, ଯାଦୁଗୃହ, ଯେଉଁ ସ୍ଥାନରେ ନାନାବିଧ ଆଶ୍ଚର୍ଯ୍ୟଜନକ ଓ କୌତୁହଳଦୀପକ ପଦାର୍ଥ ସମୂହ ସଂଗ୍ରହ କରି ରଖାହୁଏ ।

ଚିତ୍ରଶିଖଣ୍ଡିଜ—ପୁଂ. ବ. (ଚିତ୍ରଶିଖଣ୍ଡିନ୍+ଜନ+ଅ) ବୃହସ୍ପତି, ଦେବଗୁରୁ ।

ଚିତ୍ରଶିଖଣ୍ଡିପ୍ରସୂତ—ପୁଂ. ବ. (୬ ତତ୍ପୁ) ବୃହସ୍ପତି ।

ଚିତ୍ରଶିଖଣ୍ଡୀ—ପୁଂ.ବ. ମରୀଚି, ଅଙ୍ଗିରା, ଅତ୍ରି, ପୁଲସ୍ତ୍ୟ, ପୁଲହ, କ୍ରତୁ, ବଶିଷ୍ଠ ଏହି ସାତ ଋଷି, ସପ୍ତର୍ଷିନକ୍ଷତ୍ରମଣ୍ଡଳ ।

ଚିତ୍ରଶିରଃ -ପୁଂ.ବ.(ବ.ଗ୍ରା)ଗନ୍ଧର୍ବଭେଦ ।

ଚିତ୍ରଶୀର୍ଷକ—ପୁଂ.ବ.(ବ.ଗ୍ରା)କୀଟଭେଦ ।

ଚିତ୍ରଶୋଚି—ବି.ବଂ. (ବ.ଗ୍ରା)ବିଚିତ୍ରଯୁକ୍ତ, ବିଚିତ୍ର ଦୀପ୍ତିଯୁକ୍ତ ।

ଚିତ୍ରଶ୍ରବାଃ—ପୁଂ.ବଂ. ବିବିଧ କୀର୍ତ୍ତିଯୁକ୍ତ ।

ଚିତ୍ରସଂସ୍ଥ—ବି.ବଂ.(ଚିତ୍ର+ସଂ+ସ୍ଥା+ଅ) ଚିତ୍ରସ୍ଥିତ, ଚିତ୍ରଗତ ।

ଚିତ୍ରସଙ୍ଗ—ପୁଂ. କ୍ଳୀ.ବ. ଗୁରୁ ଚରଣ ଓ ଷୋଳ ଅକ୍ଷରଯୁକ୍ତ ଛନ୍ଦୋବିଶେଷ ।

ଚିତ୍ରସର୍ପ—ପୁଂ. ବ. (କ. ଧା) ମାଲୁଧାନ ସର୍ପ, ଚିତ୍ର ସାପ ।

ଚିତ୍ରସେନ—ପୁଂ. ବ. ଗନ୍ଧର୍ବଭେଦ, ଧୃତରାଷ୍ଟ୍ରଙ୍କ ଏକପୁତ୍ର, ପୁରୁ ବଂଶୀୟ ରାଜା ପରୀକ୍ଷିତଙ୍କ ପୁତ୍ର, ଶମ୍ବରପୁରର ପୁତ୍ର, ନରଷ୍ୟନ୍ତ ରାଜାଙ୍କ ପୁତ୍ର, (ବିଂ. ବ.ଗ୍ରା) ନାନାସୈନ୍ୟବିଶିଷ୍ଟ ।

ଚିତ୍ରସ୍ଥ—ବି. ବଂ. ( ଚିତ୍ର+ସ୍ଥା+ଅ ) ଚିତ୍ରାର୍ପିତ, ଚିତ୍ରଗତ ।

ଚିତ୍ରହସ୍ତ—ପୁଂ. ବ. (ବ.ଗ୍ରା) ଯୁଦ୍ଧାଙ୍ଗ ହସ୍ତ କ୍ରିୟା ବିଶେଷ, ପ୍ରସାରିତ କରତଳ, ପୁଂ. ବଂ. ଯୁଦ୍ଧରେ କ୍ଷିପ୍ରହସ୍ତ ।

ଚିତ୍ରା—ସ୍ତ୍ରୀ. ବ. ( ଚିତ୍ର+ଅ+ଆ ) ଶ୍ରୀକୃଷ୍ଣଙ୍କ ସଖୀ, ବ୍ରଜାଙ୍ଗନାଭେଦ, ମୂଷିକପର୍ଣ୍ଣୀ,କାକୁଡ଼,ସୁଭଦ୍ରା,ଦନ୍ତୀଗଛ, ମାୟା, ଚିତିସାପ, ନଦୀବିଶେଷ, ଚନ୍ଦ୍ରର ଉତ୍ତରଣୀ ନଦୀ ହୋଇ ଚନ୍ଦ୍ରପ୍ରଧାନାମରେ ଆଖ୍ୟାତ, ଅପ୍ସରାବିଶେଷ, ମୃଗେର୍ବାରୁ ଗଣ୍ଡଦୁବା, ଗଣ୍ଠି ଦୁବଘାସ, ମଞ୍ଜିଷ୍ଠା, ବଡ଼ଙ୍ଗ, ମୂଷାକାନ ଗଛ, ଜୁଆଣି, ଚତୁର୍ଦ୍ଦଶ ନକ୍ଷତ୍ର,ଗାୟତ୍ରୀସ୍ୱରୂପା ମହାଦେବୀ, ବିଂ. ଅଦ୍ଭୁତା,ବିବିଧବର୍ଣ୍ଣଯୁକ୍ତା, ସ୍ତ୍ରୀ. ବ. ବଙ୍ଗଳା ଜିଲ୍ଲାରେ ପ୍ରବାହିତ ଗୋଟିଏ ନଦୀ ।

ଚିତ୍ରାଇବା—ଗ୍ରା. ବ. କୌଣସି ବସ୍ତୁ ଉପରେ ଚିତ୍ରଅଙ୍କନ କରିବା, ଚିତ୍ରିତ କରିବା, ରଙ୍ଗାଇବା ।

ଚିତ୍ରାକ୍ଷ—ବି. ବଂ. (ବ.ଗ୍ରା)ବିଚିତ୍ର ନେତ୍ରଯୁକ୍ତ,ପୁଂ. ବ. ଧୃତରାଷ୍ଟ୍ରଙ୍କ ପୁତ୍ରର ନାମ

ଚିତ୍ରାକ୍ଷୀ—ସ୍ତ୍ରୀ. ବ. (ଚିତ୍ରାକ୍ଷ+ଈ) ଶାରିକା ପକ୍ଷିଣୀ, (ସ୍ତ୍ରୀ. ବଂ. ବ.ଗ୍ରା) ବିଚିତ୍ରନୟନବିଶିଷ୍ଟା ।

ଚିତ୍ରାକ୍ଷୁପ—ପୁଂ.ବ.ଦ୍ରୋଣ ପୁଷ୍ପୀ, ଗାଇଶ ଗଛ ।

ଚିତ୍ରାଙ୍ଗ—ପୁଂ. ବ.ଧୃତରାଷ୍ଟ୍ରଙ୍କ ଏକପୁତ୍ର, ରକ୍ତଚିତା, ଚିତିସାପ, ଚିତଳ ମଛ ଚିତ୍ରକ, (କ୍ଳୀ. ବ.) ହିଙ୍ଗୁଳ,ହରିତାଳ, ବି. ବଂ. ବିଚିତ୍ର ଅଙ୍ଗଯୁକ୍ତ ।

ଚିତ୍ରାଙ୍ଗଦ—ପୁଂ.ବ. (ବ.ଗ୍ରା)ସତ୍ୟବତୀ-ଗର୍ଭଜାତ ଶାନ୍ତନୁଙ୍କର ପୁତ୍ର, ଗନ୍ଧର୍ବବିଶେଷ, ଦଶାର୍ଣ୍ଣ ଦେଶର ରାଜା ।

ଚିତ୍ରାଙ୍ଗଦସୂ—ସ୍ତ୍ରୀ. ବ. (ଚିତ୍ରାଙ୍ଗଦ+ସୂ+କ୍ୱିପ୍) ଶାନ୍ତନୁଙ୍କ ସ୍ତ୍ରୀ ସତ୍ୟବତୀ ।

ଚିତ୍ରାଙ୍ଗଦା—ସ୍ତ୍ରୀ.ବ.କଳିଙ୍ଗ ରାଜକନ୍ୟା, ଜଣେ ଅପ୍ସରା, ଅର୍ଜ୍ଜୁନଙ୍କ ସ୍ତ୍ରୀ, ରାବଣର ସ୍ତ୍ରୀ, ବୀରବାହୁର ଜନନୀ, ଦୁର୍ଯ୍ୟୋଧନଙ୍କ ପତ୍ନୀ ।

ଚିତ୍ରାଙ୍ଗିଦେବା—ଗ୍ରା.ବି. ଚିଡ଼ାକାଟିବା, ଧପା ମାରିବା, ଲୁଚିକରି ପଳାଇବା ।

ଚିତ୍ରାଙ୍ଗୀ—ସ୍ତ୍ରୀ. ବ. (ଚିତ୍ରାଙ୍ଗ+ଈ) ମଞ୍ଜିଷ୍ଠା, କର୍ଣ୍ଣଜଳୌକା ।

ଚିତ୍ରାଟୀର—ପୁଂ. ବ. (ଚିତ୍ରା+ଅଟ+ଈର) ଚନ୍ଦ୍ର,ଉଦ୍ଧୃଷ୍ଟ ରକ୍ତଦ୍ୱାରା ଅଙ୍କିତ, ଘଣ୍ଟାକର୍ଣ୍ଣର କପାଳ, ଶିବଙ୍କର ଅନୁଚର ବିଶେଷ ।

ଚିତ୍ରାଦିତ୍ୟ—ପୁଂ. ବ. (୬ତତ୍ପୁ) ପ୍ରଭାସ ତୀର୍ଥରେ ଚିତ୍ରଗୁପ୍ତଙ୍କ କର୍ତ୍ତୃକ ସ୍ଥାପିତ ସୂର୍ଯ୍ୟଙ୍କ ମୂର୍ତ୍ତିଭେଦ ।

ଚିତ୍ରାନ୍ନ—କ୍ଳୀ.ବ.(କ.ଧା) ଅନ୍ନ ବିଶେଷ ।

ଚିତ୍ରାପୂପ—ପୁଂ. ବ. (କ.ଧା) ପେଷ୍ଟକବିଶେଷ, ଚିତଉ ପିଠା ।

ଚିତ୍ରାଫଳ—ବ. ଗହମକାକୁଡ଼ି ।

ଚିତ୍ରାମଘ—ତ୍ରି. ବ. ବିଚିତ୍ର ଧନଯୁକ୍ତ ।

ଚିତ୍ରାମଘା—ସ୍ତ୍ରୀ.ବ.(ଚିତ୍ରମଘ+ଆ)ଉଷା

ଚିତ୍ରାୟସ—କ୍ଳୀ.ବ. (ଚିତ୍ର+ଆୟଃ+ଅ) ତୀକ୍ଷ୍ଣ ଲୌହ, ଇସ୍ପାତ ।

ଚିତ୍ରାୟୁଧ—ବି. ବଂ. (ବ.ଗ୍ରା) ଆଶ୍ଚର୍ଯ୍ୟ ଆୟୁଧଯୁକ୍ତ, ପୁଂ. ବ. ଧୃତରାଷ୍ଟ୍ରଙ୍କ ଏକପୁତ୍ର, କ୍ଳୀ. ବ. ଆଶ୍ଚର୍ଯ୍ୟ ଆୟୁଧ ।

ଚିତ୍ରାୟୁଃ—ବି.ବଂ.(ବ.ଗ୍ରା) ଚିତ୍ର ଗମନ ବା ଅଶ୍ୱଯୁକ୍ତ ।

ଚିତ୍ରାରମ୍ଭ—ତ୍ରି.ବି. (ଚିତ୍ର+ଆ+ରଭ+ମିଂ.ଅ) ଚିତ୍ରଅଙ୍କନରେ ପ୍ରଥମେ ରେଖା ଟାଣିବା, ପୁଂ. ବି. ଚିତ୍ରଲିଖିତ ପୁତ୍ତଳିକାଦି ।

ଚିତ୍ରାର୍ପିତ—ପୁଂ. ବିଂ. (୭ତତ୍) ଚିତ୍ରନ୍ୟସ୍ତ, ଚିତ୍ରିତ, ଚିତ୍ରପଟରେ ଅଙ୍କିତ ଛବି ପରି ନିଶ୍ଚଳ । [ଲେଖିତ ।

ଚିତ୍ରାର୍ପି । ମ୍ବ—ତ୍ରି.ବିଂ. (ବ.ବ୍ରୀ) ଚିତ୍ର

ଚିତ୍ରାଳ—କାଶ୍ମୀରଦେଶାନ୍ତର୍ଗତ ଚିତ୍ରାଳ ନାମକ ରାଜ୍ୟର ରାଜଧାନୀ ।

ଚିତ୍ରାବତୀ—ମାନ୍ଦ୍ରାଜ ପ୍ରେସିଡ଼େନ୍‌ସୀର ଅନ୍ତର୍ଗତ କଡ଼ାପା ଜିଲାରେ ପ୍ରବାହିତ ଗୋଟିଏ ନଦୀ ।

ଚିତ୍ରାବସୁ—ସ୍ତ୍ରୀ. ବି. ବିବିଧ ନକ୍ଷତ୍ରାଦି ମଣ୍ଡିତ ରାତ୍ରି ।

ଚିତ୍ରାଶ୍ୱ—ପୁଂ. ବି. ସତ୍ୟବାନଙ୍କର ନାମାନ୍ତର, ସାବିତ୍ରୀଙ୍କ ସ୍ୱାମୀ ।

ଚିତ୍ରିକ—ପୁଂ. ବି. (ଚିତ୍ରା+ଇକ) ଚିତ୍ରା ନକ୍ଷତ୍ରଯୁକ୍ତ ପୂର୍ଣ୍ଣିମାର ମାସ, ଚୈତ୍ରମାସ ।

ଚିତ୍ରିକା—ସ୍ତ୍ରୀ. ବି. (ଚିତ୍ରା+ଇକ+ଆ) ଚିତ୍ରା ଦେଖ ।

ଚିତ୍ରିଣୀ—ସ୍ତ୍ରୀ. ବି. ପଦ୍ମିନୀ ପ୍ରଭୃତି ଚତୁର୍ବିଧ ନାୟିକାନ୍ତର୍ଗତ ମୀନଗନ୍ଧା ନାୟିକା ।

ଚିତ୍ରିତ—ତ୍ରି. ବିଂ. (ଚିତ୍ର+ମିଂ.ତ) ଚିତ୍ରପଟରେ ଲିଖିତ, ଚିତ୍ରାର୍ପିତ, ରଞ୍ଜିତ, ଅଙ୍କିତ, ଚିହ୍ନଯୁକ୍ତ, ଛିପିଛିପିକିଆ ।

ଚିତ୍ରୟୁ—ପୁଂ. ବି. ଏକପ୍ରକାର ଅଶ୍ୱତ୍ଥର ନାମ ।

ଚିତ୍ରୀ—ପୁଂ. ବିଂ. (ଚିତ୍ର+ଇନ୍) ଆଶ୍ଚର୍ଯ୍ୟ କାରକ, ଚିତ୍ରକର୍ମଯୁକ୍ତ, (ସ୍ତ୍ରୀ) ଚିତ୍ରିଣୀ ।

ଚିତ୍ରୀକରଣ—କ୍ଲୀ. ବି. ଆଶ୍ଚର୍ଯ୍ୟକରଣ ।

ଚିତ୍ରୀୟମାଣ—ତ୍ରି. ବିଂ. (ଚିତ୍ର+ଯ+ମିଂ. ଆନ) ଯେ ଆଶ୍ଚର୍ଯ୍ୟାନ୍ୱିତ କରେ, ଆଶ୍ଚର୍ଯ୍ୟ ଜନକ ।

ଚିତ୍ରେଶ—ପୁଂ.ବି. ଚିତ୍ରାନକ୍ଷତ୍ରପତି ଚନ୍ଦ୍ର, ଚିତ୍ରେଶ୍ୱର ଶିବଲିଙ୍ଗ ।

ଚିତ୍ରେଶ୍ୱର—କ୍ଲୀ. ବି. ଦ୍ରାକ୍ଷାସତ୍ତୀର୍ଥସ୍ଥ ଚିତ୍ରଗୁପ୍ତଙ୍କ ସ୍ଥାପିତ ଶିବଲିଙ୍ଗ ।

ଚିତ୍ରେଶ୍ୱରୀ—କଲିକତାର ଉତ୍ତର ପ୍ରାନ୍ତସ୍ଥିତ ଚିତ୍ରପୁରରେ ଅବସ୍ଥିତ ଗୋଟିଏ ଦେବୀମୂର୍ତ୍ତି ।

ଚିତ୍ରୋକ୍ତି—ସ୍ତ୍ରୀ. ବି. (କ.ଧା) ଚିତ୍ରକଥନ, ଆକାଶବାଣୀ, ଆଶ୍ଚର୍ଯ୍ୟ ବାକ୍ୟ ।

ଚିତ୍ରୋଡ଼—ବୋମ୍ବାଇ ପ୍ରେସିଡ଼େନ୍‌ସୀର କଣ୍ଟକୋଟର ତେରମାଇଲ ଦୂରରେ ଅବସ୍ଥିତ ଗୋଟିଏ ଗ୍ରାମ ।

ଚିତ୍ରୋତ୍ଥ—ତ୍ରି.ବିଂ. ନାନାବିଧ ଭୃତ୍ତିଯୁକ୍ତ

ଚିତ୍ରୋତ୍ତର—ବି.ବାକ୍ୟାଳଂକାରବିଶେଷ, ଯହିଁରେ ପ୍ରଶ୍ନ ଓ ଉତ୍ତର ଏକସଙ୍ଗେ ଏକ ରଚନାରେ ଥାଏ ।

ଚିତ୍ରୋତ୍ପଳ—ବି. ( ବ.ବ୍ରୀ ) ନାନାବର୍ଣ୍ଣ ବିଶିଷ୍ଟ କଇଁଫୁଲ ।

ଚିତ୍ରୋତ୍ପଳା—ସ୍ତ୍ରୀ. ବି. ଉତ୍କଳର ଗୋଟିଏ ବିଖ୍ୟାତ ନଦୀ, ମହାନଦୀର ଶାଖାନଦୀ ବିଶେଷ ।

ଚିତ୍ରୋପଳା—ସ୍ତ୍ରୀ.ବି. (ବ.ବ୍ରୀ) ନଦୀଭେଦ, ମହାଭାରତୋକ୍ତ ନଦୀବିଶେଷ ।

ଚିତ୍ରୌଦନ—କ୍ଲୀ. ବି. କେତୁ ପୂଜାରେ ଦେୟ ବିଚିତ୍ର ଅନ୍ନବିଶେଷ ।

ଚିତ୍ର୍ୟ—ତ୍ରି. ବିଂ. (ଚିତ୍ର+ମିଂ.ଯ) ପୂଜ୍ୟ, ଗୃହନୀୟ ।

ଚିଦ୍—ଅବ୍ୟ. ଅପ୍ୟର୍ଥ, ଏବ, ଚକାରାର୍ଥ, ପୂଜା, କୁତ୍ସା, ପାଦପୂରଣେ, କୁତ୍ସିତ, ଅସାକଲ୍ୟ, ଉପମା । [ଗ୍ରନ୍ଥକାର ।

ଚିଦମ୍ବର—ଜଣେ ବିଖ୍ୟାତ ସଂସ୍କୃତ-

ଚିଦମ୍ବରମ୍—ମାନ୍ଦ୍ରାଜ ପ୍ରେସିଡ଼େନ୍‌ସୀର ଦକ୍ଷିଣ ଆର୍କଟ ଜିଲାନ୍ତର୍ଗତ ଗୋଟିଏ ତାଲୁକ ।

ଚିଦାକାଶ—ପୁଂ. କ୍ଲୀ. ବି. ଆକାଶବତ୍ ନିର୍ଲିପ୍ତ ପରଂବ୍ରହ୍ମ ।

ଚିଦାତ୍ମା—ପୁଂ. ବି. ଚୈତନ୍ୟ ସ୍ୱରୂପ ପରଂବ୍ରହ୍ମ, ଜୀବାତ୍ମା, ଜ୍ଞାନର ପ୍ରକାଶ ।

ଚିଦାନନ୍ଦ—ବି. (ବ.ବ୍ରୀ) ଚୈତନ୍ୟମୟ ଓ ଜ୍ଞାନମୟ ବ୍ରହ୍ମ, ପରମାତ୍ମା, ପରମଜ୍ଞାନୀ, ସଦାନନ୍ଦ, ଶିବ ।

ଚିଦାନନ୍ଦଯୋଗୀ—ପୁଂ. ବି. ଜଣେ ଦାର୍ଶନିକ ତୋଟକବାଖ୍ୟା ରଚୟିତା ।

ଚିଦାନନ୍ଦସରସ୍ୱତୀ— ଆତ୍ମପ୍ରକାଶ ନାମକ ବୈଦାନ୍ତିକଗ୍ରନ୍ଥର ଜଣେ ବ୍ୟାଖ୍ୟାକାର ।

ଚିଦାଭାସ—ପୁଂ. ବି. (୭ତତ୍) ବୁଦ୍ଧି ବା ମହତ୍ତତ୍ତ୍ୱରେ ଚୈତନ୍ୟର ପ୍ରତିବିମ୍ବ, ଜୀବାତ୍ମା, ଜ୍ଞାନ, ଜ୍ଞାନର ପ୍ରକାଶ ।

ଚିଦ୍ରୂପ—ତ୍ରି. ବିଂ. (ବ.ବ୍ରୀ) ସ୍ଫୂର୍ତ୍ତିଯୁକ୍ତ, ହୃଦୟାଳୁ, ପ୍ରଶସ୍ତଚେତା, ଜ୍ଞାନମୟ, (ପୁଂ.ବି) ଆତ୍ମା, (କ୍ଲୀ) ଚୈତନ୍ୟରୂପ ।

ଚିଦୁଲ୍ଲାସ—ତ୍ରି.ବିଂ.(ଉତ୍+ଲସ+ଭା,ଅ) କ.ଧା ଚୈତନ୍ୟଙ୍କଠାରେ ଉଜ୍ଜ୍ୱଳ,(ପୁଂ.ବି) ଚୈତନ୍ୟଙ୍କ ସ୍ଫୁରଣ ।

ଚିଦ୍ରୂପାଶ୍ରମ—ବି. ଜଣେ ବିଖ୍ୟାତ ବ୍ୟାକରଣ ବିତ୍ ।

ଚିଦ୍ୱିଳାସ—ପୁଂ. ବି. ଶଙ୍କରାଚାର୍ଯ୍ୟଙ୍କର ଜଣେ ଶିଷ୍ୟ ।

ଚିନ୍‌ଚିନ୍—ଗ୍ରା. ବି. କ୍ଷୁଦ୍ର ମାଇଲାପରି ସାମାନ୍ୟ ତୀବ୍ର ଯନ୍ତ୍ରଣାର ଅନୁଭୂତି, ଝିମ୍‌ଝିମ୍ ଦେଖ ।

ଚିନକୁଲିଖାଁ—ନିଜାମ୍ ଉଲମୁଲକ ଆସଫଜା ଦାକ୍ଷିଣାତ୍ୟ ଦିଲ୍ଲୀର ମୋଗଲ ସମ୍ରାଟଙ୍କ ଜଣେ ପ୍ରତିନିଧି ।

ଚିନମନ୍ଦେଶ—ମାନ୍ଦ୍ରାଜ ପ୍ରେସିଡ଼େନ୍‌ସୀର କଡ଼ାପା ଜିଲାର ରାୟଚୁଟି ତାଲୁକର ଅନ୍ତର୍ଗତ ଗୋଟିଏ ସହର ।

ଚିନା—ଗ୍ରା. ବି. ନିଦର୍ଶନ, ପରିଚୟ, ଗୁରୁ କାଇଞ୍ଚ ପରିମାଣ କ୍ଷୁଦ୍ର ଓଜନ, ସୁନା ରୂପା ଓଜନ କରିବାର ପରିମାଣବିଶେଷ, (ବିଂ) ଚିନ୍ ଦେଶୀୟ, ଚିନ୍ ଦେଶରୁ ଆନୀତ ।

ଚିନାଏ—ଗ୍ରା. ବି. ଏକ ଚିନା ପରିମାଣ, (ବିଂ) ଏକଚିନା ପରିମିତ, (ଲକ୍ଷଣାର୍ଥ) ଟିକିଏ ମାତ୍ର ।

ଚିନାଘୋଡ଼ା—ବି. ଯେଉଁ ଘୋଡ଼ାର ଗୁରଗୋଡ଼ ଧଳା ଓ ଦେହଯାକ ନାଲି ଓ ଧଳାରଙ୍ଗ ମିଶା ଲୋମ ଥାଏ ।

ଚିନାପାଟଣା—ପ୍ରା. (ଗଞ୍ଜାମ)ବି. ମାନ୍ଦ୍ରାଜ ସହର ଓ ମାନ୍ଦ୍ରାଜ ଉପକୂଳ ।

ଚିନାବାଦାମ—ଗ୍ରା.ବି.ଭୂଇଁଚଣା, ଚେରୁଚଣା, ମୁଗଫଳୀ ।

ଚିନାବାସନ—ଗ୍ରା. ବି. ଏକପ୍ରକାର ଧଳା ମାଟିରେ ତିଆରି ହୋଇଥିବା ବାସନ ।

ଚିନାମାଟି—ଗ୍ରା. ବି. ବାସନ ଇତ୍ୟାଦି ତିଆରି କରିବା ନିମନ୍ତେ ବ୍ୟବହୃତ ଏକପ୍ରକାର ଧଳାମାଟି ।

ଚିନାମାଳି—ଗ୍ରା.ବି. ମେଣ୍ଢା ଓ ବୋଦାର-କୋଷ, କଣ୍ଠର ମାଳବିଶେଷ, ଏକ-ପ୍ରକାର ଧାନ ।

ଚିନି—ଗ୍ରା. ବି. ମଧୁର ଆସ୍ୱାଦବିଶିଷ୍ଟ ଗୁଣ୍ଡାକାରର ଗୁଡ଼, ଚିନାମାଟି ।

ଚିନିଆଳୁ—ଗ୍ରା.ବି.ଶଙ୍ଖଆଳୁ, ଏକପ୍ରକାର ମିଠାଆଳୁ, ଗସ୍ୱାଆଳୁ ।

ଚିନିଚମ୍ପା—ଗ୍ରା.ବି. ଏକପ୍ରକାର ଉଗ୍ରଗନ୍ଧ ବିଶିଷ୍ଟ ଚମ୍ପକଜାତୀୟ ଫୁଲ ।

ଚିନିସିନ୍ଦୂର—ଗ୍ରା.ବି. ଏକପ୍ରକାର ଉତ୍କୃଷ୍ଟ ଉଜ୍ଜ୍ୱଳବର୍ଣ୍ଣ ସିନ୍ଦୂର ।

ଚିନ୍ତକ—ପୁଂ. ବିଂ. (ଚିନ୍ତ+କ.ଅକ) ଯେ ଚିନ୍ତାକରେ, ଚିନ୍ତୟିତା, ଚିନ୍ତା-କରିବା (ବ୍ୟକ୍ତି), (ସ୍ତ୍ରୀ) ଚିନ୍ତିକା ।

ଚିନ୍ତନ—କ୍ଲୀ.ବି. (ଚିନ୍ତ+ଭା.ଅନ)ଅନୁ-ଧ୍ୟାନ, ଚିନ୍ତା, ବାରମ୍ବାର ସ୍ମରଣ ।

ଚିନ୍ତନୀୟ—ତ୍ରି.ବିଂ. (ଚିନ୍ତ+ର୍ମ.ଅନୀୟ) ଅନୁଧ୍ୟେୟ, ଭାବନୀୟ, ବିବେଚ୍ୟ,ଭାବ୍ୟ, (ସ୍ତ୍ରୀ) ଚିନ୍ତନୀୟା ।

ଚିନ୍ତୟିତବ୍ୟ—ତ୍ରି. ବିଂ. ( ଚିନ୍ତ+ର୍ମ. ତବ୍ୟ, ଚିନ୍ତନୀୟ, ଧ୍ୟେୟ ।

ଚିନ୍ତା—ସ୍ତ୍ରୀ.ବି (ଚିନ୍ତ+ଅ+ଆ)ଆଧ୍ୟାନ, ଭାବନା, ନାଟକୋକ୍ତ ବ୍ୟଭିଚାରିର ଗୁଣ-ବିଶେଷ, ବିବେଚନା, ସ୍ମରଣ, ଶଙ୍କା ବା ଭୟ, ମନରେ ଆନ୍ଦୋଳନ,ବିଚାର ।

ଚିନ୍ତାକର୍ମ-କ୍ଲୀ.ବି.କ.ଧା,ଚିନ୍ତାରୂପ କାର୍ଯ୍ୟ ।

ଚିନ୍ତାକାରୀ—ପୁଂ. ବିଂ. (ଚିନ୍ତା+କୃ+ଇନ୍) ଯେ ଚିନ୍ତାକରେ, (ସ୍ତ୍ରୀ) ଚିନ୍ତା-କାରିଣୀ ।

ଚିନ୍ତାକୁଳ—ପୁଂ. ବିଂ. (୩ତତ୍ପୁ) ଚିନ୍ତା-ଯୁକ୍ତ, ଉଦ୍ବିଗ୍ନ(ସ୍ତ୍ରୀ) ଚିନ୍ତାକୁଳା ।

ଚିନ୍ତାକୁଳିତ—ପୁଂ.ବିଂ.(୩ତତ୍ପୁ)ଚିନ୍ତା-କୁଳ ଦେଖ, (ସ୍ତ୍ରୀ) ଚିନ୍ତାକୁଳିତା ।

ଚିନ୍ତାଖାଇବା—ଗ୍ରା. ବି. (ଲ.ଅର୍ଥ)ଅତି-ଶୟ ଭାବନା ଚାପକର ଶରୀର ଓ ମନକୁ କ୍ଷୀଣ ଓ ଦୁର୍ବଳ କରି ପକାଇବା ।

ଚିନ୍ତାଦେଶାକ୍ଷ—ଗ୍ରା. ବି. ରାଗବିଶେଷ ।

ଚିନ୍ତାନ୍ୱିତ—ପୁଂ.ବିଂ.ଚିନ୍ତାକୁଳ ଦେଖ, (ସ୍ତ୍ରୀ) ଚିନ୍ତାନ୍ୱିତା ।

ଚିନ୍ତାପଦ୍ମ—ଗ୍ରା. ବି. ଢେଙ୍କାନାଳଆଦି ଗଡ଼ଜାତରେ ଠାକୁର ଠାକୁରାଣୀଙ୍କ ମାଳ ସେବକ ।

ଚିନ୍ତାପର—ପୁଂ.ବିଂ.(ବ.ବ୍ରୀ)ଚିନ୍ତାସକ୍ତ, ଚିନ୍ତାନ୍ୱିତ ।

ଚିନ୍ତାପାଣ୍ଡୁ—ପ୍ରା.(ଗଞ୍ଜାମ)ବି.ତେନ୍ତୁଳି ।

ଚିନ୍ତାବାନ୍—ପୁଂ. ବିଂ. (ଚିନ୍ତା+ବତ୍) ଚିନ୍ତାଯୁକ୍ତ, ଚିନ୍ତିତ ।

ଚିନ୍ତାବିକୃତି—ସ୍ତ୍ରୀ.ବି. (କ.ଧା)ଭାବନା-ରୂପ ବିକାର, ଚିନ୍ତାଜନିତ ବିକାର ।

ଚିନ୍ତାବେଶ୍ମ—କ୍ଲୀ. ବି. (୬ତତ୍ପୁ)ମନ୍ତ୍ରଣା-ଗୃହ, ପରାମର୍ଶ କରିବାର ଘର ।

ଚିନ୍ତାଭର—ଗ୍ରା.ବିଂ.ଚିନ୍ତାଗ୍ରସ୍ତ,ଚିନ୍ତିତ, ଉଦ୍ବିଗ୍ନ ।

ଚିନ୍ତାମଗ୍ନ—ବିଂ(୭ତତ୍ପୁ)ଭାବନାସାଗରେ ବୁଡ଼ିଥିବା, ଚିନ୍ତାନିବିଷ୍ଟଚିତ୍ତ, ଅତ୍ୟନ୍ତ ଭାବନାଗ୍ରସ୍ତ, ଧ୍ୟାନବିଶିଷ୍ଟ ।

ଚିନ୍ତାମଣି—ପୁଂ.ବି. (ଚିନ୍ତା+ମନ୍+ଇ) ବାଞ୍ଛାପ୍ରଦ ରତ୍ନବିଶେଷ, ପରଶୁ-ପଥର, ବୃକ୍ଷବିଶେଷ, ବ୍ରହ୍ମା,ସର୍ବକାମଦ ପରମେଶ୍ୱର, ମନ୍ତ୍ରବିଶେଷ, ଯାତ୍ରିକ ଯୋଗଭେଦ, ସ୍ୱର୍ଣ୍ଣମଣି, ଗଣେଶଭେଦ, ଅଶ୍ୱବିଶେଷ, କୃଷ୍ଣକୀର୍ତ୍ତିପ୍ରବନ୍ଧ ନାମକ ସଂସ୍କୃତ ଗ୍ରନ୍ଥକାର, ଜଣେ ବିଖ୍ୟାତ ଜ୍ୟୋତିର୍ମୂର୍ତ୍ତି ଚିନ୍ତାମଣିବିଦ୍,ଜଣେ ସଂସ୍କୃତ ଗ୍ରନ୍ଥକାର, ଶେଷ ନୃସିଂହଙ୍କ ପୁତ୍ର, ଶିବପୁରବାସୀ ଗୋବିନ୍ଦ ଜ୍ୟୋତି-ର୍ବିଦଙ୍କ ପୁତ୍ର, ଜ୍ଞାନାଧିରାଜକୃତ ସିଦ୍ଧାନ୍ତ-ସୁନ୍ଦରର ଜଣେ ଟୀକାକାର ।

ଚିନ୍ତାମଣିଚତୁର୍ମୁଖ—ବୈଦ୍ୟକ ଔଷଧ ବିଶେଷ ।

ଚିନ୍ତାମଣିଦୀକ୍ଷିତ—ଗ୍ରା.ବି. ୧୮୦୦ଶତା-ବ୍ଦୀର ସାରଣୀ ନାମକ ଜ୍ୟୋତିଷ ଗ୍ରନ୍ଥର ରଚୟିତା ।

ଚିନ୍ତାମଣିପେଟ—ମହୀସୁର ରାଜ୍ୟର ଅନ୍ତର୍ଗତ କୋଲାର ଜିଲ୍ଲାର ଗୋଟିଏ ନଗର ।

ଚିନ୍ତାମଣିରସ—ବି. ଔଷଧବିଶେଷ ।

ଚିନ୍ତାମଣିବିନାୟକ—ପୁଂ.ବି.ଗଣପତିଙ୍କ ମୂର୍ତ୍ତିଭେଦ ।

ଚିନ୍ତାମୟ—ତ୍ରି.ବିଂ. (ଚିନ୍ତା+ମୟଟ୍) ଚିନ୍ତାଦ୍ୱାରା ଉପସ୍ଥିତ ।

ଚିନ୍ତାର୍ଥୀ—ପୁଂ. ବିଂ. (ଚିନ୍ତା+ଅର୍ଥ+କ.ଇନ୍) ଚିନ୍ତିତ ଦେଖ, (ସ୍ତ୍ରୀ) ଚିନ୍ତାର୍ଥିନୀ ।

ଚିନ୍ତାଶୀଳ—ବିଂ. ( ବ.ବ୍ରୀ ) ଭାବନା-ପରାୟଣ, ଚିନ୍ତାଦ୍ୱାରା ସମାଧାନକରିବା ବିଷୟରେ ପଟୁ ।

ଚିନ୍ତାସଖୀ—ସ୍ତ୍ରୀ.ବି. (କ.ଧା)ଚିନ୍ତାରୂପା ସହଚରୀ, ଭାବନାର ସଙ୍ଗିନୀ ।

ଚିନ୍ତାହରଣ—କ୍ଲୀ.ବି. (୬ତତ୍ପୁ)ଚିନ୍ତା-ନାଶନ, ଭାବନାର ଅପଗମ, ନିଦ୍ରା, (ବିଂ)ଚିନ୍ତାନାଶକ, ଯେ ଭାବନା ଦୂର-କରେ, (ପୁଂ.ବି)ବିଷ୍ଣୁ, ପରମେଶ୍ୱର ।

ଚିନ୍ତି—ପୁଂ.ବି.ଦେଶବିଶେଷ, ତଦ୍ଦେଶ-ବାସୀ ଜାତିବିଶେଷ ।

ଚିନ୍ତିଡ଼ୀ—ସ୍ତ୍ରୀ.ବି. ତେନ୍ତୁଳି ଗଛ ।

ଚିନ୍ତିତ—ତ୍ରି. ବିଂ. ( ଚିନ୍ତ+ର୍ମ.ତ ) ଅନୁଧ୍ୟାତ, ଭାବିତ, ଆଲୋଚିତ, ସ୍ମୃତ, ( କ.ତ ) ଯେ ଚିନ୍ତାକରେ, ( ଭା.ତ ) ଚିନ୍ତାଭାବନା ।

ଚିନ୍ତିତପୂର୍ବ—ବିଂ. ଯାହା ପୂର୍ବରୁ ଚିନ୍ତା-କରାଯାଇଅଛି ।

ଚିନ୍ତିତବ୍ୟ—(ଚିନ୍ତ+ର୍ମ.ତବ୍ୟ)ଚିନ୍ତ-ନୀୟ ଦେଖ ।

ଚିନ୍ତିତା—ସ୍ତ୍ରୀ. ବି. ଚିନ୍ତିତା ନାମ୍ନୀ ସ୍ତ୍ରୀ, (ବିଂ) ଚିନ୍ତାଯୁକ୍ତା, ଭାବନାଯୁକ୍ତା ।

ଚିନ୍ତିତି—ସ୍ତ୍ରୀ. ବି. (ଚିତି+ଭା.ତି+ଇ) ଚିନ୍ତା, ଭାବନା । [ କରିବା

ଚିନ୍ତିବା—ଗ୍ରା.କ୍ରି. ଚିନ୍ତାକରିବା,ସ୍ମରଣ-

ଚିନ୍ତ୍ୟା—ସ୍ତ୍ରୀ. ବି. ଚିନ୍ତା ।

ଚିନ୍ତୋକ୍ତି—ସ୍ତ୍ରୀ.ବି.(୩ତତ୍ପୁ)ଚିନ୍ତାପୂର୍ବକ ଯାହା ବୋଲଯାଏ ।

ଚିନ୍ତ୍ୟ—ବି.ବି°. (ଚିନ୍ତ+ର୍ମି.ଯ) ଚିନ୍ତନୀୟ, ସ୍ମରଣୀୟ, ଭାବ୍ୟ, ବିବେଚ୍ୟ ।

ଚିନ୍ତ୍ୟଦ୍ୟୋତ—ପୁଂ. ବି. (ଚିନ୍ତ୍ୟ+ଦ୍ୟୁତ+ଅ) ଦେବଭେଦ, ଚିନ୍ତାଦ୍ୱାରା ଯାହାର ନବୀନ ଜ୍ୟୋତି ଅନୁଭବ କରାଯାଏ ।

ଚିନ୍ତ୍ୟମାନ—ବି°. (ଚିନ୍ତ+ର୍ମି.ଆନ) ଅନୁଧ୍ୟାୟମାନ, ଯାହା ଚିନ୍ତା କରାହେଉଅଛି, (ସ୍ତ୍ରୀ) ଚିନ୍ତ୍ୟମାନା ।

ଚିନ୍ନ—ପୁଂ. ବି. (ଚି+ର୍ମି.ତ) ଶସ୍ୟବିଶେଷ, ଚିନାଧାନ, ଚିନାଶସ୍ୟ ।

ଚିନ୍ନକିମେଢ଼—ମାନ୍ଦ୍ରାଜ ପ୍ରଦେଶର ଅନ୍ତର୍ଗତ ଗଞ୍ଜାମଜିଲ୍ଲାର ଗୋଟିଏ ଜମିଦାରୀ

ଚିନ୍ନମଲପୁର—ମାନ୍ଦ୍ରାଜ ପ୍ରଦେଶାନ୍ତର୍ଗତ ଗଞ୍ଜାମଜିଲ୍ଲାସ୍ଥିତ ପାହାଡ଼ର ଗୋଟିଏ ଚୂଡ଼ା ।

ଚିନ୍ମୟ—ପୁଂ. ବି° (ଚିତ୍+ମୟ) ଜ୍ଞାନମୟ, ଚୈତନ୍ୟମୟ, ଆଧ୍ୟାତ୍ମିକ, (ବି°) ପରମେଶ୍ୱର, ପରମାତ୍ମା ।

ଚିନ୍ନଲଗୁନ୍ଦ—ବୋମ୍ବାଇ ପ୍ରେସିଡେନ୍ସୀ ଅନ୍ତର୍ଗତ ଧାରବାରଜିଲ୍ଲାର ଗୋଟିଏ ସ୍ଥାନ ।

ଚିପ—ଗ୍ରା. ବି. କୁରାଢ଼ି ପ୍ରଭୃତି ଅସ୍ତ୍ରର ଫଳକ, ବେଣ୍ଟରେ ଦୃଢ଼ବଦ୍ଧ ହୋଇ ରହିବା ପାଇଁ ବେଣ୍ଟ ଓ କୁରାଢ଼ିର ଆଖି ମଧ୍ୟସ୍ଥ ଫାଙ୍କରେ ଦିଆଯିବା କ୍ଷୁଦ୍ର କାଷ୍ଠଖଣ୍ଡ, ଚପୁଆ, ପତଳା ଖିଲ, ପଚରି ଆଗୁଆ (ମୁଦ୍ର) ।

ଚିପା—ଗ୍ରା. ବି ଉଭୟ ଦିଗରୁ ଚାପଦେବା, ଚିପ ଦେଖ; (ଲଙ୍ଗଳର) ପିତଳଖିଲା ଦେଖ; (ବି°) କୃପଣ, ଚାପଦ୍ୱାରା ସଙ୍କୁଚିତ ଛୋଟ କଂସା ବା ବେଲ ।

ଚିପାଇବା—ଗ୍ରା. କ୍ରି. ଚିପିବାକ୍ରିୟାର ଣିଜନ୍ତରୂପ ।

ଚିପାଚିପି—ଗ୍ରା. ବି. ବହୁବାର ଚିପିବା କର୍ମ, ଅନ୍ୟୋନ୍ୟରେ ଚିପିବା ।

ଚିପିଚିପିହେବା—ଗ୍ରା. କ୍ରି. ସମ୍ପୂର୍ଣ୍ଣରୂପେ ସଙ୍କୁଚିତହେବା ।

ଚିପିଟ—ପୁଂ. ବି. (ଚି+ପିଟ+ର୍ମି.ଅ) ଭକ୍ଷ୍ୟଦ୍ରବ୍ୟବିଶେଷ, ଚୁଡ଼ା, (ବି°) ନତନାସିକ, ଚେପ୍ଟାନାକା, ଚେପ୍ଟାକାର, ବିସ୍ତୃତ, (ପୁଂ.ବି) ଅଙ୍ଗୁଲ୍ୟାଦି ନିପୀଡ଼ନ ଦ୍ୱାରା ନେତ୍ରର ଆକୁଳତା ଓ ଦୃଷ୍ଟବସ୍ତୁ ଏକାଧିକପରି ଦେଖାଯିବା ।

ଚିପିଟକ—ପୁଂ.ବି. (ଚିପିଟ+କ) ଚିପିଟ, ଚୁଡ଼ା ।

ଚିପିଟଜୟାପୀଡ଼—ପୁଂ. ବି. କାଶ୍ମୀରର ଜଣେ ରାଜା ।

ଚିପିଟନାସିକ—ପୁଂ. ବି. (ବ.ବ୍ରୀ) ଦେଶବିଶେଷ, ତଦ୍ଦେଶବାସୀ ଓ ସେହି ଦେଶର ତାତାର ବା ମଙ୍ଗୋଲିଆ ଅଞ୍ଚଳ, (ବି°. ବ.ବ୍ରୀ) ଚେପ୍ଟାନାକା ।

ଚିପିଟା—ସ୍ତ୍ରୀ.ବି.ଗୁଣ୍ଡ୍ରାସିନୀ ତୃଣ, ହରିକର୍ଣ୍ଣ ନିଷ୍ପାବ, ବନକୁଲତ୍ଥ, ଚେପ୍ଟାମୂର୍ତ୍ତି ।

ଚିପିଟିକାବନ୍ତ—ବି. ବି°. ଚିପିଟର ପରି ଆକାରଯୁକ୍ତ ।

ଚିପିବା—ଗ୍ରା. କ୍ରି. ଦୁଇଆଡୁ ଚାପଦେବା, ସଙ୍କୋଚନ କରିବା, ମୁଠାଇ ଧରିବା, ହାତ ଆଙ୍ଗୁଠି ଦ୍ୱାରା ଚିପିବା, ମଳିବା, ଗୋଡ଼ ହାତକୁ ହାତଦ୍ୱାରା ଚିପିବା, (ଜୋତା, ଚୁଡ଼ି, କୁରୁତା) ଦେହକୁ କସିହେବା ।

ଚିପୀଟକ—ପୁଂ. ବି. ଚୁଡ଼ା ।

ଚିପୁଟ—ପୁଂ. ବି. ଚିପିଟକ, ଚୁଡ଼ା ।

ଚିପୁଡ଼ା—ଗ୍ରା. ବି. କୌଣସି ବସ୍ତୁକୁ ହସ୍ତ ଦ୍ୱାରା ସମ୍ପୀଡ଼ିତ କରି ତହିଁରୁ ରସ ବା ଜଳ ବାହାର କରିବା, (ବି°) ଚିପୁଡ଼ା ହୋଇଥିବା ।

ଚିପୁଡ଼ାଚିପୁଡ଼ି—ଗ୍ରା. ବି. ସମ୍ପୂର୍ଣ୍ଣରୂପେ ଚିପୁଡ଼ିବା ।

ଚିପୁଡ଼ିବା—ଗ୍ରା. କ୍ରି. କୌଣସି ବସ୍ତୁକୁ ହାତରେ ଚିପି ତହିଁରୁ ରସ ବା ଜଳ ବାହାର କରିବା, (ଲ.ଅର୍ଥ) କୌଣସି ବିଷୟ ସମ୍ୟକ୍ ଆଲୋଚନା କରିବା, ନିଃଶେଷିତ କରିବା, (ଗ୍ରା.ବି)ଚିପୁଡ଼ିବା କର୍ମ ।

ଚିପୁଲ—ଗ୍ରା. ବି. ଚଟିଜୋତା, ଉପର ଅଂଶ ନଥିବା ଚଟିଜୋତା, ବବୁରଛାଲ, ବେଣ୍ଟି ।

ଚିପ୍ପ—ପୁଂ.ବି.ନଖରୋଗବିଶେଷ, କଣନିଖା ରୋଗ ।

ଚିପ୍ପିକା—ସ୍ତ୍ରୀ. ବି.ରାତ୍ରିଚର ଜନ୍ତୁଭେଦ ।

ଚିପ୍ୟ—ପୁଂ. ବି. କୃମିଭେଦ ।

ଚିଫ୍—ଯା.ବି.ସ୍ୱାଧୀନ ରାଜା ବା ସମ୍ରାଟଙ୍କୁ କରଦାୟୀ ଦେଶୀୟ ରାଜା,(ବି)ପ୍ରଧାନ ।

ଚିବି—ବି. (ଚିବ+କ.ଇ)ଚିବୁକଦେଖ ।

ଚିବଟ—ବି. ଚିପିଟ ଦେଖ ।

ଚିବୁ—ବି. (ଚିବ+କ.ଉ) ଚିବୁକ ଦେଖ ।

ଚିବୁକ—କ୍ଲୀ.ବି. (ଚିବୁ+କ) ଅଧରର ତଳଭାଗ, ଓଠ, ଥୋଡ଼, ଦାଢ଼ି ।

ଚିମ୍ଟା—ଗ୍ରା. (ସମ୍ବ)ବି. ଚିମୁଟା ।

ଚିମ୍ନାଜିଆପା—ମହାରାଷ୍ଟ୍ରୀୟ ରାଜ୍ୟର ପ୍ରଥମ ପେଶୋବା,ବାଲଜି ବିଶ୍ୱନାଥଙ୍କ ୨ୟ ପୁତ୍ର ।

ଚିମ୍ନାଜି ମାଧବରାଓ—ମହାରାଷ୍ଟ୍ରୀୟ ରାଜ୍ୟର ଅଷ୍ଟମ ପେଶୋବା ।

ଚିମ୍ନାଜିଯାଦବ—ମହାରାଷ୍ଟ୍ରର ଜଣେ ବିଦ୍ରୋହୀ ।

ଚିମ—ପୁଂ.ବି. ଲିକ୍ଖଟପଟ, ପାଟଶାକ, ପନ୍ଦଶାକ ।

ଚିମଟା—ଗ୍ରା. ବି.ଅଗ୍ନି ଧରିବାର ଲୌହନିର୍ମିତ ଯନ୍ତ୍ର, ସଣ୍ଡାସି । [ ଦ୍ୱିଭାଗ ।

ଚିମନଗୌଡ଼—ଗୌଡ଼ଜାତିର କୋଟିଏ

ଚିମି—ପୁଂ. ବି. ଶୁକପକ୍ଷୀ, ପଠକବୃକ୍ଷ, ପାଟଶାକ ।

ଚିମିକ—ପୁଂ. ବି. (ଚିମ+କ)ଶୁକପକ୍ଷୀ, ପିଟକବୃକ୍ଷ ।

ଚିମିଚିମା—ସ୍ତ୍ରୀ. ବି. ଚିଣିଚିଣିକରିବା ।

ଚିମିଣି—ଗ୍ରା. ବି. ଚମଚଟା, ଛୋଟ ବାଦୁଡ଼ି ।

ଚିମିଣିଆଁ—ଗ୍ରା. ବି. ଚମଚଟା ଦେଖ, (ଗ୍ରା.ବି°—ଲ.ଅର୍ଥ) ଯେ ଚେମିଣି ଚଢ଼େଇ ପରି ଚେଁ ଚେଁ ଶବ୍ଦ କରୁଥାଏ, ଚେମିଣିଙ୍କ ପରି ଶୀର୍ଣ୍ଣ ।

ଚିମୁଟା—ଗ୍ରା. ବି. ଦୁଇଟିପ ଦ୍ୱାରା ଚିପି ଆଘାତ କରିବା, ବଣିଆ ସନ୍ନ୍ୟାସୀ ଓ

କମାରମାନଙ୍କ ଯନ୍ତ୍ରବିଶେଷ, ଯେଉଁ ପରିମିତ ବସ୍ତୁ ସଂକୁଚିତ କରତଳର ଚାରି ବା ପାଞ୍ଚ ଆଙ୍ଗୁଠିର ଟିପ ଦ୍ୱାରା ଧରିଯାଇପାରେ, (ବି°) ଦୁଇଟିପରେ ସମ୍ଭାଇବା ପରିମିତ, ଯଥା—ଲୁଣ ଚିମୁଟାଏ ।

ଚିମୁଟାଚିମୁଟି—ଗ୍ରା. ବି. ଏକାଧିକଥର ଚିମୁଟିବା କର୍ମ, ଅନ୍ୟୋନ୍ୟରେ ଚିମୁଟିବା ।

ଚିମୁଟିବା—ଗ୍ରା. କି. ନଖ ଦ୍ୱାରା ପୀଡ଼ନ, ଦୃଢ଼କରି ଚିପି ଧରିବା ।

ଚିମୁଲା—ଗ୍ରା. ବି. ମୁଚୁଲା ।

ଚିୟୁ—ପ୍ରା. (ସିଂହଭୂମ)ବି°. ଗ୍ଭର, ସ୍ଥାନ ।

ଚିରକୁଟ୍—ଗ୍ରା. ବି. କାଗଜର କ୍ଷୁଦ୍ର ଖଣ୍ଡ, ଚିଙ୍କିକାଗଜ, ଛିଣ୍ଡାଲୁଗା, ଲେଙ୍ଗୁଟି, ପ୍ରଜାଙ୍କୁ ମିଳିବା ଜମିର ପାଟ୍ଟା, (ବି°) ଛିନ୍ନଭିନ୍ନ, ଚିକିଚିକି ହୋଇ ଛିନ୍ନ ।

ଚିରମୁଦ୍ରି—ପ୍ରା.(ସମ୍ବ) ବି. ବିବାହପୂର୍ବେ ବର ପକ୍ଷରୁ କନ୍ୟା ପାଇଁ ବସ୍ତ୍ର ଆଭରଣାଦିର ପ୍ରେରଣ ପ୍ରଥା ।

ଚିର—ବି. ବି°. ( ଚି+କ.ର ) ଦୀର୍ଘ, ଦୀର୍ଘକାଳବର୍ତ୍ତୀ, ବହୁକାଳସ୍ଥାୟୀ,ଅପରିବର୍ତ୍ତନଶୀଳ,(କ୍ଲୀ.ବି) ବହୁକାଳ, ଦୀର୍ଘକାଳ, ଛନ୍ଦଶାସ୍ତ୍ରୋକ୍ତ ଗଣବିଶେଷ,( କ୍ରି. ବି°) ବହୁକାଳ ପର୍ଯ୍ୟନ୍ତ, ବହୁକାଳରୁ, ଅନନ୍ତ କାଳପାଇଁ, ବାରଂବାର, (ଗ୍ରା. ବି°) ଗୋରୁଆଦି ପଶୁଙ୍କ ସ୍ତନ ଶ ବା ଚୁଚୁକ, ଏକା ଥରକେ ଗୋଟିଏ ଚିର ବା ଗୋଟିଏ ଚୁଚୁକରୁ ଯେତେ ଦୁଧ ଦୁହାଁ ହୁଏ,(ପ୍ରା.ସମ୍.ବି.)ନଦୀ କୂଳରେ ବନ୍ଧାହେବା ପଥରର ବନ୍ଧ ।

ଚିରକର୍ମୀ—ପୁଂ. ବି. (ବ.ବ୍ରୀ) ଚିରକ୍ରିୟ ଦୀର୍ଘସୂତ୍ରୀ, ଯେ କୌଣସି କାର୍ଯ୍ୟକୁ ବହୁକାଳରେ କରେ ।

ଚିରକଷ୍ଟୀ—ପୁଂ. ବି°. ( ଚିର+କଷ୍ଟ+ଇନ୍ ) ଆଜୀବନ ଦୁଃଖଭୋଗୀ, ଚିରଦୁଃଖୀ; (ସ୍ତ୍ରୀ) ଚିରକଷ୍ଟିନୀ ।

ଚିରକାଙ୍କ୍ଷିତ—ବି°. ( ଚିର+କାଙ୍କ୍ଷିତ ) ବହୁକାଳରୁ ବାଞ୍ଛିତ ବହୁଦିନରୁ ଅଭିଲଷିତ ।

ଚିରକାର—ପୁଂ. ବି°. (ଚିର+କୃ+ଅ) ଦୀର୍ଘସୂତ୍ର, ବିଳମ୍ବରେ କାର୍ଯ୍ୟକାରୀ ।

ଚିରକାରକ—ବି. ବି°. (ଚିରକାର+କ) ଦୀର୍ଘସୂତ୍ର ।

ଚିରକାରତା—ସ୍ତ୍ରୀ. ବି. ( ଚିରକାରିନ୍ + ତା) ଦୀର୍ଘସୂତ୍ରତା, ବିଳମ୍ବରେ କାର୍ଯ୍ୟକାରିତା ।

ଚିରକାରୀ—ପୁଂ. ବି°. ( ଚିର+କୃ+ଇନ୍) ଦୀର୍ଘସୂତ୍ରୀ, ବିଳମ୍ବେ କାର୍ଯ୍ୟକାରୀ, (ସ୍ତ୍ରୀ) ଚିରକାରିଣୀ, (ବି) ଗୌତମଙ୍କ ପୁତ୍ର ।

ଚିରକାଳ—ପୁଂ.ବି. (କ.ଧା) ଦୀର୍ଘକାଳ, ବହୁକାଳ, ବରାବର ।

ଚିରକାଳାର୍ଜିତ—ବି°. (୭ତତ୍)ଦୀର୍ଘକାଳ ପରିଶ୍ରମରେ ବା ସାଧନରେ ଉପାର୍ଜିତ ବା ଲବ୍ଧ,ଆଜୀବନ ସଞ୍ଚିତ, ଆବାଲ୍ୟରୁ, ଅଭ୍ୟସ୍ତ ।

ଚିରକାଳିକ—ବି°.( ଚିରକାଳ+ଇକ ) ଚିରକାଳସ୍ଥାୟୀ, ଚିରନ୍ତନ ।

ଚିରକାଳୀନ—ବି°. (ଚିରକାଳ+ଈନ) ଚିରନ୍ତନ, ଚିରକାଳବ୍ୟାପୀ ।

ଚିରକୀର୍ତ୍ତି—ସ୍ତ୍ରୀ. ବି. (୬ଷ୍ଠୀତତ୍)ଦୀର୍ଘକାଳବ୍ୟାପିନୀ ସୁଖ୍ୟାତି, ( ବି°. ବ.ବ୍ରୀ ) ଦୀର୍ଘକାଳବ୍ୟାପୀ ଯଶସ୍ୱୀ ।

ଚିରକୁମାର—ବି. ( ୨ତତ୍ ) ଚିରକାଳ ଅବିବାହିତ,(ସ୍ତ୍ରୀ) ଚିରକୁମାରୀ ।

ଚିରକ୍ରିୟ—ପୁଂ. ବି°. (ବ.ବ୍ରୀ) ଦୀର୍ଘସୂତ୍ର, ଚିରକର୍ମୀ, ବିଳମ୍ବେ କାର୍ଯ୍ୟକାରୀ, (ସ୍ତ୍ରୀ) ଚିରକ୍ରିୟା ।

ଚିରକ୍ରିୟତା—ସ୍ତ୍ରୀ.ବି. (ଚିରକ୍ରିୟ+ଭା. ତା) ଦୀର୍ଘସୂତ୍ରତା, ବିଳମ୍ବେ କାର୍ଯ୍ୟକାରିତା ।

ଚିରକ୍ରୀତ—ବି.ବି°.(ଚିର+କ୍ରୀତ) ଯାହା ଦୀର୍ଘକାଳ ପାଇଁ କିଣା ହୋଇଅଛି, ବହୁକାଳ ନିମନ୍ତେ କିଣା ଯାଇଥିବା, (ସ୍ତ୍ରୀ) ଚିରକ୍ରୀତା ।

ଚିରଖଣ୍ଡ ବା ଚୂରଖଣ୍ଡ—ବୁନ୍ଦେଲ ଖଣ୍ଡ ପ୍ରଦେଶସ୍ଥ ଗୋଟିଏ ଦେଶୀୟ ରାଜ୍ୟ ।

ଚିରଙ୍ଗଦ୍ୱାର—ଅସାମାନ୍ତର୍ଗତ ଗୋଆଲପଡ଼ା ଜିଲାର କେତେକ ଅଂଶ ।

ଚିରଚର—ଗ୍ରା.ବି°.ଯେଉଁ ଗ୍ଭତ୍ର କୌଣସି ପାଠକୁ ବହୁକାଳ ଲାଗି ଆବୃତ୍ତି କରେ, ଯେ ପାଠକୁ ବିଳମ୍ବରେ ଆବୃତ୍ତି କରେ ଓ ବିଳମ୍ବରେ ପାଶୋରେ ।

ଚିରଜାତ—ବି.ବି° (ଚିର+ଜାତ)ଦୀର୍ଘକାଳଜାତ ।

ଚିରଜୀବକ—ପୁଂ.ବି (ଚିର+ଜୀବ+ଅକ) କାକ, ବିଷ୍ଣୁ, ମାର୍କଣ୍ଡେୟ ଋଷି, ଶିମିଳିଗଛ, ଅଶ୍ୱତ୍ଥାମା, ଜୀବକ ବୃକ୍ଷ, ବଳି, ବ୍ୟାସ, ପରଶୁରାମ, ହନୁମାନ୍, ବିଭୀଷଣ, କୃପ,(ବି°) ଦୀର୍ଘାୟୁ, ଚିରଜୀବୀ,ଅମର ।

ଚିରଜୀବନ—କ୍ଲୀ. ବି. (କ.ଧା)ଆଜୀବନକାଳ, ମରଣକାଳ ପର୍ଯ୍ୟନ୍ତ ।

ଚିରଜୀବିକା—ସ୍ତ୍ରୀ. ବି. (କ.ଧା )ଦୀର୍ଘକାଳବୃତ୍ତି, ଦୀର୍ଘକାଳବଞ୍ଚିବା ।

ଚିରଜୀବିତା—ବି. (ଚିରଜୀବିନ୍+ଭା.ତା) ବହୁକାଳ ବଞ୍ଚିବା, ଅମରତ୍ୱ ।

ଚିରଜୀବୀ—ପୁଂ.ବି°. (ଚିର+ଜୀବ+କ. ଇନ୍) ଦୀର୍ଘକାଳଜୀବୀ, ବହୁକାଳଜୀବୀ, (ସ୍ତ୍ରୀ) ଚିରଜୀବିନୀ,(ପୁଂ.ବି)ବିଷ୍ଣୁ, କାକ, ଜୀବକ ବୃକ୍ଷ,ଶାଲ୍ମଳୀ ବୃକ୍ଷ,ମାର୍କଣ୍ଡେୟ, ଅଶ୍ୱତ୍ଥାମା, ବଳି, ବ୍ୟାସ, ହନୁମାନ୍, ବିଭୀଷଣ, କୃପ, ପରଶୁରାମ ଏହି ସାତଜଣ ଚିରଜୀବୀ ।

ଚିରଜୀବେଷୁ—ଏହି ବାକ୍ୟ ପତ୍ରାଦିରେ ବଡ଼ମାନେ ସାନମାନଙ୍କୁ ସମ୍ବୋଧନ କରି ଲେଖନ୍ତି ।

ଚିରଞ୍ଜି—ଗ୍ରା. ବି. ପିଆଳ ବୃକ୍ଷ ଓ ଫଳ, ଏକପ୍ରକାର ବାଦାମ ।

ଚିରଞ୍ଜୀବ—ବଦ୍ଧନ୍ତୋଦତରଙ୍ଗିଣୀ ରଚୟିତା, ବହୁକାଳ ବଞ୍ଚି ରହିବା ଦୀର୍ଘଜୀବୀ ହୋ ।

ଚିରଞ୍ଜୀବୀ—ପୁଂ. ବି°. ( ଚିରଂ+ଜୀବ+ଇନ୍) ଚିରଜୀବୀ ଦେଖ ।

ଚିରଣ୍ଟୀ(ଣ୍ଟି)—ସ୍ତ୍ରୀ. ବି. ଚିରକାଳ ପିତୃଗୃହବାସିନୀ, ଊଢ଼ା ବା ଅନୂଢ଼ା, ପିତୃଗୃହସ୍ଥିତା ବୟସ୍ଥା କନ୍ୟା, ଯୁବତୀ ।

ଚିରତିକ୍ତ—ପୁଂ. ବି. ( କ.ଧା ) ଭୂନିମ୍ବ, ଚିରେଇତା, କିରାତତିକ୍ତ ।
ଚିରତା—ସ୍ତ୍ରୀ. ବି. (ଚିର + ସ୍ୱା.ତା) ଦୀର୍ଘସୂତ୍ରତା, ଭୂନିମ୍ବ, ଚିରେଇତା ।
ଚିରତୁଷାର—ବି. ଯେଉଁ ବରଫ ଆଦୌ ତରଳେ ନାହିଁ ।
ଚିରତୁଷାରସୀମା—ବି. ଅତି ଉଚ୍ଚ ପର୍ବତରେ ଯେଉଁ ସୀମା ଉପରେ ତୁଷାର ଚିରକାଳ ଜମିଥାଏ କେତେବେଳେ ହେଲେ ସୁଦ୍ଧା ତରଳେ ନାହିଁ ।
ଚିରତୃଷିତ—ବିଂ. ଦୀର୍ଘକାଳ ହେଲା ପାଣି ପିଇ ନ ଥିବାରୁ ଅତ୍ୟନ୍ତ ତୃଷାତୁର (ବ୍ୟକ୍ତି) ।
ଚିରତ୍ନ—ତ୍ରି.ବିଂ. (ଚିର + ତ୍ନ) ପୁରାତନ, ଚିରକାଳୋତ୍ପନ୍ନ, ଚିରନ୍ତନ ।
ଚିରଦରିଦ୍ର—ବିଂ. (୬ତତ୍) ଆବହମାନ ନିଃସ୍ୱ ବା ଦୀନ, ଆଜୀବନ ନିର୍ଦ୍ଧନ ବା ଗରିବ ।
ଚିରଦାସ—ପୁଂ.ବି. ଚିରାନୁଗତ, ଯାବଜ୍ଜୀବନ କୌଣସି ବ୍ୟକ୍ତିଠାରେ ଅନୁଗତ, ଆଜୀବନ ଦାସ, ଆଜୀବନ ଭକ୍ତ ।
ଚିରଦିନ—ବି. ଚିରକାଳ ଦେଖ ।
ଚିରଦିନିଆ—ଗ୍ରା. ବିଂ. ଚିରକାଳିଆ, ଚିରକାଳସ୍ଥାୟୀ ।
ଚିରଦୁଃଖୀ—ପୁଂ.ବିଂ (୬ତତ୍) ଚିରକାଳ ଅସୁଖୀ, ଆଜୀବନ ଦୁଃଖୀ, (ସ୍ତ୍ରୀ) ଚିରଦୁଃଖିନୀ ।
ଚିରନିଦ୍ରା—ସ୍ତ୍ରୀ.ବି. (୬ତତ୍) ଯେଉଁ ନିଦ କେବେହେଁ ଭାଙ୍ଗେ ନାହିଁ, ମୃତ୍ୟୁ ।
ଚିରନିଦ୍ରିତ—ବିଂ. (୬ତତ୍) ମହାନିଦ୍ରାଭିଭୂତ, ମୃତ ।
ଚିରନିବାସ—ବି. (କ.ଧା) ପୁରୁଷାନୁକ୍ରମେ ଏକସ୍ଥାନରେ ବାସକରିବା ।
ଚିରନିବୃତ୍ତି—ସ୍ତ୍ରୀ.ବି. (୬ତତ୍) ଚିରଦିନ ପାଇଁ ବିରତି, ଚିରଶାନ୍ତି ।
ଚିରନିର୍ଦ୍ଦିଷ୍ଟ—ବିଂ. ( ୬ତତ୍ ) ଚିରଦିନ ପାଇଁ ନିର୍ଦ୍ଧାରିତ, ଚିରକାଳ ପାଇଁ ସ୍ଥିରୀକୃତ ।
ଚିରନିର୍ଭର—ପୁଂ. ବି. (୬ତତ୍) ଚିରକାଳର ଅବଲମ୍ବନ, ବନ୍ଧୁବର ଆଶ୍ରୟ, ଚିରସହାୟ ।
ଚିରନିର୍ମଳ—ବିଂ. ( ୬ତତ୍ ) ଚିରଦିନ ମଳଶୂନ୍ୟ ବା ପରିଷ୍କୃତ, ଚିରନିଷ୍ପାପ, (ବି) ପରମେଶ୍ୱର ।
ଚିରନିର୍ବାସନ—ବି. ( ଚିର + ନିର + ବସ + ଣିଚ୍ .ଭା.ଅନ) ଅପରାଧୀକୁ ଯାବଜ୍ଜୀବନ ଦେଶାନ୍ତରରେ ବାସକରିବା ରୂପ ଦଣ୍ଡ ।
ଚିରନିର୍ବାସିତ—ବିଂ. (୬ତତ୍) ଚିରଦିନ ନିମିତ୍ତ ନିର୍ବାସିତ ବା ସ୍ୱଦେଶରୁ ବିତାଡ଼ିତ, ଚିରପ୍ରୋଷିତ, ଯାବଜ୍ଜୀବନ ଦ୍ୱୀପାନ୍ତରିତ ।
ଚିରନିଷ୍ପାପ—ବିଂ. ( ୬ତତ୍ ) ଚିରଦିନ ପାତକଶୂନ୍ୟ, ଆବହମାନକାଳ ବା ଆଜୀବନ ପବିତ୍ର ।
ଚିରନୀହାର—ପୁଂ.ବି. ଚିରସ୍ଥାୟୀ ତୁଷାର, ଯେଉଁ ବରଫ ତରଳେ ନାହିଁ ।
ଚିରନୀହାରବାହୁ—ଚିରନୀହାର ସୀମାର ନିମ୍ନଭାଗରେ ଯେଉଁ ବରଫଗଣି ଜମାଟ ବାନ୍ଧି ରହିଥାଏ—କେବେହେଁ ତରଳେ ନାହିଁ ।
ଚିରନୀହାରସୀମା—ପର୍ବତର ଯେଉଁ ଭାଗ ନିତ୍ୟ ତୁଷାରମଣ୍ଡିତ ତାହାର ନିମ୍ନରେଖା ।
ଚିରନ୍ତନ—ତ୍ରି. ବିଂ. ( ଚିରଂ + ତନ ) ଯାହା ଆବହମାନ କାଳରୁ ଚଳି ଆସୁଅଛି, ପୁରାତନ (ବି) ମୁନିବିଶେଷ ।
ଚିରପରିଚିତ—ପୁଂ. ବିଂ. ବହୁକାଳର ଚିହ୍ନା ବା ଜଣାଶୁଣା, ଚିରାଭ୍ୟସ୍ତ ।
ଚିରପର୍ଣ୍ଣିକା—ସ୍ତ୍ରୀ. ବି. କପିତ୍ଥପର୍ଣ୍ଣୀ ବୃକ୍ଷ, କପିତ୍ଥାନୀ ।
ଚିରପାକୀ—ପୁଂ ବି. (ଚିର + ପଚ + କ. ଇନ୍) କଇଥ ଗଛ ଓ ଫଳ ।
ଚିରପାଳିତ— ପୁଂ. ବିଂ. ଚିରପୋଷିତ ଦେଖ ।
ଚିରପୁଷ୍ପ—ପୁଂ.ବି. (ବ.ବ୍ରୀ) ବଉଳ ଗଛ, ବକୁଳ ବୃକ୍ଷ ।
ଚିରପୂଜ୍ୟ—ବିଂ. ( ୬ତତ୍ ) ଚିରକାଳ ଆରାଧନାର ଯୋଗ୍ୟ ।
ଚିରପୋଷିତ—ପୁଂ. ବିଂ. (୬ତତ୍) ବହୁକାଳରୁ ପାଳିତ, ସର୍ବଦା ଅନ୍ତର୍ମଧ୍ୟ ସମାବୃତ ବା ଯତ୍ନରେ ରକ୍ଷିତ, ଚିରାଭିଳଷିତ ।
ଚିରପ୍ରଚଳିତ— ବିଂ. (୬ତତ୍) ଆବହମାନ କାଳରୁ ଚଳୁଥିବା ।
ଚିରପ୍ରବାସ— ବି. ( କ.ଧା ) ବହୁକାଳ ବିଦେଶରେ ବାସ, ଆଜୀବନ ବିଦେଶରେ ବାସ ।
ଚିରପ୍ରବାସୀ—ପୁଂ. ବିଂ. ( ଚିର + ପ୍ର + ବସ + ଇନ୍ ) ଯେ ଚିରକାଳ ବିଦେଶରେ ବାସ କରେ, ଚିରବିଦେଶୀ, (ସ୍ତ୍ରୀ) ଚିରପ୍ରବାସିନୀ ।
ଚିରପ୍ରବାହ—ବି. ( କ.ଧା ) ଅନନ୍ତ ବା ଅବିରତ ସ୍ରୋତର ଧାର ।
ଚିରପ୍ରବାହିତ— ବିଂ. (୬ତତ୍) ଚିରକାଳ ସ୍ରୋତସ୍ୱାନ୍, ଚିରଦିନ ବହମାନ ।
ଚିରପ୍ରସିଦ୍ଧ—ବିଂ. ( ୬ତତ୍ ) ଚିରକାଳ ବିଖ୍ୟାତ, (ସ୍ତ୍ରୀ) ଚିରପ୍ରସିଦ୍ଧା ।
ଚିରପ୍ରାପ୍ତ—ତ୍ରି. ବିଂ. (୬ତତ୍) ଅନେକ ଦିନପରେ ଯାହା ମିଳିଅଛି, ବହୁକାଳ ଲବ୍ଧ ।
ଚିରପ୍ରାର୍ଥିତ—ତ୍ରି. ବିଂ. (୬ତତ୍) ଚିରାଭିଳଷିତ, ବହୁଦିନର ଆକାଙ୍କ୍ଷିତ ।
ଚିରପ୍ରୋଷିତ—ପୁଂ. ବିଂ. (୬ତତ୍) ଯେ ବହୁକାଳ ବିଦେଶରେ ବାସକରେ ।
ଚିରବନ୍ଧୁ—ପୁଂ. ବି. (କ.ଧା) ଅନେକ ଦିନର ପୁରୁଣା ବନ୍ଧୁ, ସ୍ଥାୟୀ ବନ୍ଧୁ ।
ଚିରବାଞ୍ଛିତ—ବିଂ. (୬ତତ୍) ବହୁଦିନାବଧି ଅଭିଳଷିତ ।
ଚିରବିଚ୍ଛିନ୍ନ—ପୁଂ.ବିଂ. ଯାହାଠାରୁ ବହୁଦିନ ହେଲା ଅନ୍ତରିତ ହେବାକୁ ହୋଇଅଛି, ଚିରକାଳ ପାଇଁ ଅନ୍ତରିତ ।
ଚିରବିଚ୍ଛେଦ—ବି. (କ.ଧା) ଚିରକାଳ ନିମନ୍ତେ ବିରହ, ଯାବଜ୍ଜୀବନ ପାଇଁ ଛଡ଼ାଛଡ଼ି ହେବା, ମୃତ୍ୟୁ, ଦୀର୍ଘକାଳସ୍ଥାୟୀ ମନୋମାଳିନ୍ୟ ।
ଚିରବିଦାୟ—ପୁଂ.ବି. ଚିରଦିନ ସକାଶେ

ପ୍ରସ୍ଥାନ, ମୃତ୍ୟୁ ।
ଚିରବିରହ—ବି. (ଚିର+ବିରହ) ଚିରବିଚ୍ଛେଦ ଦେଖ ।
ଚିରବିରହୀ—ପୁଂ. ବି. ଆଜୀବନ ସ୍ୱାମୀ ବା ସ୍ତ୍ରୀ ସଙ୍ଗରୁ ବଞ୍ଚିତ ।
ଚିରବିରୁଦ୍ଧ—ପୁଂ. ବି. ଯେ ଆଜୀବନ ପ୍ରତିକୂଳ ବା ବିପକ୍ଷ, ବହୁକାଳ ହେଲା ଶତ୍ରୁ, ଯେଉଁ ଦ୍ରବ୍ୟଦ୍ୱୟ ସେବନ କଲେ ଅନିଷ୍ଟ ଘଟେ (ଯଥା—କ୍ଷୀର ଓ କ୍ଷାର) ।
ଚିରବିଲ୍ୱ—ପୁଂ. ବି. କରଞ୍ଜବୃକ୍ଷ, କରମଙ୍ଗୁ, ଘୁରୁଘୁରୁ ।
ଚିରବିଲ୍ୱକ—ପୁଂ. ବି. (ଚିରବିଲ୍ୱ+କ) କରଞ୍ଜ, କରମଙ୍ଗୁ ।
ଚିରବିସ୍ମୃତ—ପୁଂ. ବିଂ. (ବ.ଗ୍ରୀ) ଯେଉଁ ବ୍ୟକ୍ତି ବା ବସ୍ତୁ ଚିରଦିନ ବିସ୍ମୟ ଉତ୍ପାଦନ କରେ ।
ଚିରବିସ୍ମୃତ—ପୁଂ. ବିଂ. ଯେ ବହୁଦିନ ହେଲା କୌଣସି କଥା ଭୁଲିଯାଇଅଛି, ଯାହାକୁ ବହୁଦିନ ହେଲା ଭୁଲି ଯାଇଅଛୁ ।
ଚିରବୀର୍ଯ୍ୟ—ପୁଂ. ବି. ରକ୍ତ ଏରଣ୍ଡ ବୃକ୍ଷ, ନାଲିଗଛ ।
ଚିରବୃଷ୍ଟିମଣ୍ଡଳ—ପୁଂ. ବି. ଯେଉଁ ଦେଶରେ ସର୍ବଦା ବୃଷ୍ଟି ହୁଏ ।
ଚିରବେଗା—ସ୍ତ୍ରୀ. ବିଂ. ଯେଉଁ ସ୍ତ୍ରୀ କୌଣସି ପାଠକୁ ଆୟତ୍ତ କରିବାକୁ ବହୁ ସମୟ ନିଏ, କିନ୍ତୁ ଶୀଘ୍ର ପାଶୋରି ପକାଏ ।
ଚିରବୈର—ବି. ( କ.ଧା ) ବହୁକାଳ ବ୍ୟାପୀ ଶତ୍ରୁତା, (ବିଂ. ବ.ଗ୍ରୀ) ଚିରବିରୁଦ୍ଧ ଦେଖ ।
ଚିରବୈରାଗୀ—ବିଂ. ଯେ ବାଲକାଳରୁ ବଞ୍ଚିଥିବାପର୍ଯ୍ୟନ୍ତ ସଂସାର ତ୍ୟାଗ କରିଅଛି ।
ଚିରବୈରୀ—ପୁଂ. ବିଂ. (କ.ଧା) ଆଜୀବନ ବା ବହୁକାଳହେଲା ପ୍ରତିକୂଳ, ଜନ୍ମତଃ ବା ପ୍ରକୃତିତଃ ପରସ୍ପର ଶତ୍ରୁ, ଚିରଶତ୍ରୁ ।
ଚିରମ୍—ଅବ୍ୟ. ଦୀର୍ଘକାଳ, ଚିରକାଳ ।
ଚିରମ୍‌କୋଡ୍—ମାନ୍ଦ୍ରାଜ ପ୍ରେସିଡେନ୍ସୀର ଅନ୍ତର୍ଗତ ମାଲଗିରି ନଗରର ଗୋଟିଏ ବିଭାଗ ।
ଚିରମଳିନ—ପୁଂ. ବିଂ. (କ.ଧା) ଯେଉଁ ପଦାର୍ଥ ବା ବ୍ୟକ୍ତିଠାରୁ ମଳିନତା କଦାପି ଦୂର ହେବନାହିଁ, ଯେଉଁ ବ୍ୟକ୍ତିର କଳଙ୍କ ଦୂରପନେୟ ।
ଚିରମିତ୍ର—କ୍ଲୀ. ବି. (୬ତତ୍) ବହୁକାଳର ସୁହୃତ୍, ଅନେକ ଦିନର ବନ୍ଧୁ ।
ଚିରମେହୀ—ପୁଂ. ବିଂ. (ଚିର+ମିହ+କ୍ତ. ଇନ୍) ଯେଉଁ ଗଧ ଅନେକକ୍ଷଣ ଧରି ପ୍ରସ୍ରାବ କରେ, ଗଦର୍ଭ ।
ଚିରମେହିଣୀ—ସ୍ତ୍ରୀ. ବି. (ଚିରମେହିନ୍+ଈ) ଗର୍ଦ୍ଦଭୀ ।
ଚିରମୋଚନ—କ୍ଲୀ. ବି. ତୀର୍ଥବିଶେଷ ।
ଚିରମ୍ଭ—ପୁଂ. ବି. (ଚି+ରମ୍ଭ+କ.ଅ) ଚିଲି, ଚିଲ ।
ଚିରମ୍ଭଣ—ପୁଂ. ବି. (ଚିରଂ+ମ୍ଭଣ+କ.ଅ) ଚିଲିପକ୍ଷୀ, ଚିଲ ।
ଚିରଯଶଃ—ବି. ( କ.ଧା ) ଯେଉଁ ଯଶ ଚିରକାଳ ରହେ, ଅନନ୍ତକୀର୍ତ୍ତି ।
ଚିରଯୁବା—ବିଂ. (ଚିର+ଯୁବନ୍) ଯାହାର ଯୌବନ କେବେହେଲେ ମୌଳେ ନାହିଁ (ଯଥା—ଦେବତା) ।
ଚିରରହସ୍ୟ—ବି. (କ.ଧା) ଯେଉଁ ରହସ୍ୟ କେବେହେଁ ସମାଧାନ ହୋଇ ପାରିବନାହିଁ ।
ଚିରରାତ୍ର—କ୍ଲୀ.ବି. ଚିରକାଳ, ଦୀର୍ଘକାଳ ।
ଚିରରାତ୍ରାୟ—ଅବ୍ୟ. (ଚିରରାତ୍ର+ଅୟଃ+ଅ) ଦୀର୍ଘକାଳ, କ୍ରମିକ ।
ଚିରରୁଗ୍ଣ—ପୁଂ.ବିଂ. (୬ତତ୍) ଚିରକାଳପୀଡ଼ିତ, ଆବାଲ୍ୟ ରୋଗାକ୍ରାନ୍ତ, (ସ୍ତ୍ରୀ) ଚିରରୁଗ୍ଣା ।
ଚିରରୁଦ୍ଧ—ବିଂ. ୬ତତ୍; ଚିରକାଳ ଆବଦ୍ଧ ।
ଚିରରୋଗ—ବିଂ. ବହୁଦିନବ୍ୟାପୀ ଅସୁସ୍ଥତା ।
ଚିରରୋଗୀ—ପୁଂ. ବି. (୬ତତ୍) ସର୍ବଦା ରୋଗଗ୍ରସ୍ତ, ଚିରରୁଗ୍ଣ । [ଦେଖ ।
ଚିରଲୁବ୍ଧ—ପୁଂ. ବିଂ. ଚିରବାଞ୍ଛିତ
ଚିରଲୋକ—ପୁଂ. ବି.(ବ.ଗ୍ରୀ) ପରଲୋକଗତ, ପିତୃପୁରୁଷ, (ବିଂ) ଚିରସ୍ଥାୟୀ ।
ଚିରଶତ୍ରୁ—ପୁଂ.ବିଂ.(୬ତତ୍) ଚିରବୈରୀ ।
ଚିରଶୟନ—ବି. (ଚିର+ଶୟନ) ମୃତ୍ୟୁ ।
ଚିରଶାନ୍ତ—ପୁଂ. ବିଂ. (ଚିର+ଶାନ୍ତ) ଯେ ଆଜୀବନ ସଂଯତ, ଆଜୀବନ ଧୀର, ଯେଉଁଠାରେ କେବେହେଲେ ଅଶାନ୍ତି ଘଟେ ନାହିଁ ।
ଚିରଶାନ୍ତି—ପୁଂ. ବି. (କ.ଧା) ଦୀର୍ଘକାଳବ୍ୟାପୀ ଶାନ୍ତି, ଅବିଚ୍ଛିନ୍ନ ଶାନ୍ତି, ମୃତ୍ୟୁ ।
ଚିରସଙ୍ଗୀ—ପୁଂ. ବିଂ. ନିତ୍ୟସଙ୍ଗୀ, ଆଜନ୍ମସଙ୍ଗୀ ବା ଅନୁଚର ।
ଚିରସହାୟ—ବିଂ. (୬ତତ୍) ଚିରଦିନ ସାହାଯ୍ୟକାରୀ, ସଦାଅନୁକୂଳ, ଚିରମିତ୍ର ।
ଚିରସୁଖ—ବି. ( କ.ଧା ) ଚିରସ୍ଥାୟୀ ଆନନ୍ଦ, ଅନନ୍ତକାଳପାଇଁ ସୁଖ ।
ଚିରସୁନ୍ଦର—ବିଂ. ଯାହା ସବୁବେଳେ ସୁନ୍ଦର ଦେଖାଯାଏ, (ବି) ପରମେଶ୍ୱର ।
ଚିରସୂତା—ସ୍ତ୍ରୀ. ବି. କାକବନ୍ଧ୍ୟା, ଚିରପ୍ରସୂତା ଗାଈ ।
ଚିରସେବକ—ବିଂ. (୬ତତ୍) ଚିରକାଳବ୍ୟାପୀ ସେବକ, ଯାହା ବହୁକାଳରୁ ମାନି ଆସିଅଛି ।
ଚିରସ୍ଥ—ବିଂ. (ଚିର+ସ୍ଥା+ଅ) ଚିରକାଳସ୍ଥାୟୀ, (ପୁଂ.ବି) ନାୟକ ।
ଚିରସ୍ଥାୟିତା—ସ୍ତ୍ରୀ. ବି. (ଚିରସ୍ଥାୟିନ୍+ଷ୍ୟ,ତା) ଦୀର୍ଘକାଳସ୍ଥାୟିତା, ଅବିନଶ୍ୱରତ୍ୱ ।
ଚିରସ୍ଥାୟୀ—ପୁଂ. ବିଂ. (୬ତତ୍) ଚିରକାଳସ୍ଥାୟୀ, ଅବିନାଶୀ, ଇସ୍ତମରାର, (ସ୍ତ୍ରୀ) ଚିରସ୍ଥାୟିନୀ ।
ଚିରସ୍ଥାୟୀପଟ୍ଟା—ସ୍ତ୍ରୀ. ବି. ଯେଉଁ ପଟ୍ଟାଦ୍ୱାରା ଭୂମି ଚିରକାଳ ସକାଶେ ରଇତକୁ ନିର୍ଦ୍ଦିଷ୍ଟ ଜମାରେ ଭୋଗ କରିବାକୁ ଦିଆଯାଏ, ଇସ୍ତମରାର ପଟ୍ଟା ।
ଚିରସ୍ଥାୟୀବନ୍ଦୋବସ୍ତ—ସ୍ତ୍ରୀ ବି. ଚିରଦିନ ସକାଶେ ଭୂମିର ସରକାରୀ ଖଜଣା ନିରୂପଣ, ଯେଉଁ ବ୍ୟବସ୍ଥାର ପରିବର୍ତ୍ତନ ଘଟେ ନାହିଁ ।
ଚିରସ୍ମରଣୀୟ—ବିଂ. (ଚିର+ସ୍ମରଣୀୟ)

ଯାହା ଚିରକାଳ ସକାଶେ ଲୋକଙ୍କ ମନରେ ରହିବ, ଆବହମାନକାଳରୁ ଯାହାକୁ ଲୋକେ ମନେରଖି ଅଛନ୍ତି ।
ଚିରସ୍ୟ—ଅବ୍ୟ. (ଚିର+ଅସ+ସଂ.ଯ) ଦୀର୍ଘକାଳ, ବହୁକାଳ ।
ଚିରସ୍ରୋତ—ଗ୍ରା.ବି. ଚିରପ୍ରବାହ ଦେଖ, (ବିଂ) ଚିରପ୍ରବାହିତ ଦେଖ ।
ଚିରସ୍ରୋତାଃ—ବିଂ. (ବ.ବ୍ରୀ) ଚିରପ୍ରବାହିତ ଦେଖ ।
ଚିରହରିତ୍—ବିଂ.(୬ତତ୍) ସଦା ଶ୍ୟାମଳ, ସବୁ ଋତୁରେ ସବୁଜବର୍ଣ୍ଣ, ସବୁବେଳେ ସତେଜ ।
ଚିରା—ଗ୍ରା. ବି. ଫାଡ଼ିବା, ଚିରିବା, ଚିମୁଡ଼ିବା, କନା ଦୁଇଫାଳ କରିବା, ଅସ୍ତ୍ରଦ୍ୱାରା କାଟିବା ବା କ୍ଷତ ବିକ୍ଷତ କରିବା, ପଟି, ଏକାଧିକ ଅଂଶୀଦାର ଗୋଟିଏ କିଆରକୁ ବାଣ୍ଟିନେଲେ ପ୍ରତି ଭାଗରେ ପଡ଼ିବା ଲମ୍ବ ଓ ସରୁ ଅଂଶମାନ, ଫଟା, ଲମ୍ଫ, ଡିଆଁ, (ବିଂ) ଜୀର୍ଣ୍ଣ, ଛିଣ୍ଡା ଯାଇଥିବା(କନା), ଚିମୁଡ଼ା ହୋଇଥିବା, ଫାଳ ଫାଳ । [ଇବା ।
ଚିରାଇବା—ଗ୍ରା. କି. ଅନ୍ୟଦ୍ୱାରା ଫାଡ଼ା-
ଚିରାକନା—ଗ୍ରା. ବି. ଛିନ୍ନ ବସ୍ତ୍ରାଂଶ ।
ଚିରାଗ—ଗ୍ରା. ବି. ପ୍ରଦୀପ, ଆଲୁଅ ।
ଚିରାଗଦାନ—ଗ୍ରା. ବି. ପ୍ରଦୀପ ସ୍ତମ୍ଭ, ଦୀପରୁଖା ।
ଚିରାଗତ—କି. ବିଂ. (୨ତତ୍) ବହୁଦିନରୁ ଯାହା ଚାଲି ଆସୁଅଛି, ଅନେକ ଦିନପରେ ଆଗତ ।
ଚିରାଚରିତ—ବିଂ. (୭ତତ୍) ବହୁକାଳ ଯାବତ୍ ଅନୁଷ୍ଠିତ, ଚିରପ୍ରଚଳିତ, ଚିରାଗତ ଦେଖ ।
ଚିରାଚିରି—ଗ୍ରା. ବି. ଅନେକ ବସ୍ତ୍ର ବା କାଗଜକୁ ଚିରିବା କର୍ମ, (ବିଂ) ଛିଣ୍ଡା (କାଗଜ କନାଆଦି) ।
ଚିରାଚିରିକରିବା—ଗ୍ରା. କି. ଅନେକ କାଗଜ ବା ବସ୍ତ୍ରଆଦି ଚିରିବା ବା ଟିକି ଟିକି କରିବା ।
ଚିରଟିକା—ସ୍ତ୍ରୀ. ବି. ଶ୍ୱେତ ପୁନର୍ନବା, କିରାତକ, ଚିରେଇତା ।
ଚିରାତ୍—ଅବ୍ୟ. (ଚିର+ଅତ୍+କ୍ୱିପ୍) ଚିରକାଳ, ଦୀର୍ଘକାଳ, (ପୁଂ. ବି.) ଚିରେଇତା । [ଇତା ।
ଚିରାତିକ୍ତ—ପୁଂ.ବି. ଚିରାତିକ୍ତ, ଚିରେ-
ଚିରାଦ୍—ପୁଂ. ବି. (ଚିର+ଅଦ୍+କ୍ୱିପ୍) ଗରୁଡ଼ । [ବସ୍ତ୍ରାଂଶ ।
ଚିରାଦରିବା—ଗ୍ରା. ବି. ଚିରାକନା, ଛିନ୍ନ-
ଚିରାନୁବୃତ୍ତ—ବିଂ. ବହୁକାଳହେଲା ଚାଲି ଆସୁଥିବା ।
ଚିରାନ୍ତକ—ପୁଂ. ବି. ଗରୁଡ଼ଙ୍କ ପୁତ୍ର ।
ଚିରାନ୍ଧ—ପୁଂ.ବିଂ.(ଚିର+ଅନ୍ଧ) ଜନ୍ମାନ୍ଧ, ଆଜନ୍ମ ଦୃଷ୍ଟିହୀନ, ଯେ କେବେହେଁ ସତ୍ୟତତ୍ତ୍ୱ ଦେଖେ ନାହିଁ ।
ଚିରାଭ୍ୟସ୍ତ—ବିଂ (୭ତତ୍) ସଦାକାଳରେ ଅଭ୍ୟାସଗତ ।
ଚିରାମରି—ଗ୍ରା.ବିଂ. କଣ୍ଠ,(ବି)ଡିଆଁ ଡେଇଁ ।
ଚିରାମାରିବା—ଗ୍ରା. କି. ଉର୍ଦ୍ଧ୍ୱକୁ ଲମ୍ଫ ଦେବା, ଡେଇଁବା, ଡିଆଁ ମାରିବା ।
ଚିରାଯିବା—ଗ୍ରା. କି. ଚିରିବା କ୍ରିୟାର କର୍ମବାଚ୍ୟ ରୂପ । [ଦୀର୍ଘକାଳ ।
ଚିରାୟ—ଅବ୍ୟ. (ଚିର+ଅୟ+କ.ଅ)
ଚିରାୟୁଃ—କି. ବିଂ. (ବ.ବ୍ରୀ) ଦୀର୍ଘକାଳଜୀବୀ, ଦୀର୍ଘାୟୁ, (ପୁଂ.ବି) ଦେବତା, (କ୍ଲୀ.ବି) ଦୀର୍ଘ ଜୀବନ ।
ଚିରାୟୁଷ—ଗ୍ରା. ବିଂ. ଦୀର୍ଘଜୀବୀ ।
ଚିରାୟୁଷ୍ମତୀ—ସ୍ତ୍ରୀ.ବିଂ. (୬ତତ୍) ଚିରଜୀବୀ, ଚିରଦିନ ସଧବାଥାଇ ଜୀବନଧାରିଣୀ ।
ଚିରାୟୁଷ୍ମତ୍ତା—ବି. (ଚିରାୟୁଷ୍ମତ୍+ତା) ଦୀର୍ଘଜୀବିତା, ଚିରଜୀବିତ୍ୱ ।
ଚିରାୟୁଷ୍ମାନ୍—ପୁଂ. ବିଂ. (୬ତତ୍) ଚିରଜୀବୀ, ଦୀର୍ଘଜୀବୀ, (ସ୍ତ୍ରୀ) ଚିରାୟୁଷ୍ମତୀ ।
ଚିରାଲ—ଗ୍ରା. ବି. ପତାକା ।
ଚିରାଲା—ମାନ୍ଦ୍ରାଜ ପ୍ରେସିଡ଼େନ୍ସୀର ଅନ୍ତର୍ଗତ କୃଷ୍ଣାଜିଲ୍ଲାର ବା ପତଲା ତାଲୁକର ଗୋଟିଏ ସହର ।
ଚିରାବା—ରାଜପୁତାନାର ଜୟପୁର ରାଜ୍ୟାନ୍ତର୍ଗତ ଶେଖାବତୀ ବିଭାଗର ଗୋଟିଏ ନଗର ।
ଚିରାଶ୍ରିତ—ବିଂ. (୬ତତ୍) ଚିରଦିନ ଶରଣାଗତ, ସଦା ଅନୁଗତ ।
ଚିରି—ପୁଂ. ବି. (ଚି+ରି+କ. ଇ) ଶୁକପକ୍ଷୀ ।
ଚିରିକା—ଗ୍ରା. ବି. (ଧ୍ୱନ୍ୟନୁକରଣ) କୌଣସି ଜଳୀୟ ବସ୍ତୁକୁ ସାମାନ୍ୟ ପରିମାଣରେ ଜୋରରେ ଛାଡ଼ିଦେବା, (ଗ୍ରା.ବିଂ) ଯେ ସାମାନ୍ୟ କଥାରେ ରାଗିଯାଏ, ଧୈର୍ଯ୍ୟହୀନ, ଦମ୍ଭଶୂନ୍ୟ(ବ୍ୟକ୍ତି) ।
ଚିରିକାଏ—ଗ୍ରା. ବି. ଅତ୍ୟଳ୍ପ ପରିମାଣ ।
ଚିରିକାଟିକ୍କ—ଗ୍ରା.ବି. ଚିରିକା ଦେଖ ।
ଚିରିକିବା—ଗ୍ରା. କି. ଅତି ଅଳ୍ପମାତ୍ରାରେ ଜଳୀୟ ମଳ ବିସର୍ଜନ କରିବା, ଟୋପାଟୋପା ହୋଇ ସାମାନ୍ୟ ମାତ୍ରାରେ ପଡ଼ିବା ।
ଚିରିଗୁଡ଼ିଆ—ଗ୍ରା. ବି. ଲଇହେବା ଭଳି ଜଙ୍ଗଲି ଲତାବିଶେଷ ।
ଚିରିଗୁଣୀ—ଗ୍ରା. ବି. ଅନ୍ଧାର ଓ ମେଘୁଆ ରାତିରେ ନିର୍ଜନ ସ୍ଥାନ ଓ ଶ୍ମଶାନାଦିରେ ଯେଉଁ ଅସ୍ଥିର(କ୍ଷଣେ ଲିଭି କ୍ଷଣେ ଜଳି ଉଠିବା) ଆଲୋକ ଦେଖାଯାଏ ।
ଚିରିଚିରି—ଗ୍ରା. ବି. ହଠାତ୍ ଭୟଜନିତ ବିକଟ ଚିତ୍କାର ।
ଚିରିଣ୍ଟିକା—ସ୍ତ୍ରୀ. ବି. (ଚିରିଣ୍ଟୀ+କ+ଆ) ବିବାହିତ ବା ଅବିବାହିତ ଅବସ୍ଥାରେ ଯେଉଁ କନ୍ୟା ପିତାଘରେ ଥାଏ ।
ଚିରିଣ୍ଟୀ—ସ୍ତ୍ରୀ. ବି. ପିତୃଗୃହସ୍ଥିତ କନ୍ୟା, ଯୁବତୀ ।
ଚିରିବା—ଗ୍ରା.କି. ଫାଡ଼ିବା(ବସ୍ତ୍ର କାଗଜ) ଛିଣ୍ଡାଇବା, ଟାଙ୍ଗିଆରେ କାଠକୁ ଖଣ୍ଡ ଖଣ୍ଡ ଓ ଲମ୍ବ ଲମ୍ବ କରି କାଟିବା, କରତରେ ଫାଳ କରିବା, ଚିମୁଡ଼ିବା, କେଶକୁ କେରା କେରା କରି ବିଭିନ୍ନ କରିବା, ଦୁଇଫାଳ କରିବା, ଭୂମିରେ ହାତ ବା ଗୋଡ଼ ନଖଦ୍ୱାରା ଗାର କାଟିବା ।
ଚିରିବିଲ୍ୱ—ପୁଂ. ବି. କରଞ୍ଜ ବୃକ୍ଷ, କରମଙ୍ଗ ଗଛ ।

ଚିରସିବା—ଗ୍ରା. କି. ଲୁଗାଆଦି ଜୀର୍ଣ୍ଣ ହେବାରୁ ବା କଣ୍ଟା ଲାଗିବାରୁ ଛିଣ୍ଡିଯିବା, ଫାଡ଼ ହୋଇଯିବା ।
ଚିରହେବା—ଗ୍ରା. କି. ଫାଡ଼ହେବା, ଚିରହେବାର ଉପଯୁକ୍ତ ହେବା ।
ଚିରୁ—କ୍ଲୀ. ବ. (ଚି + ରୁ) ବାହୁସନ୍ଧି, ସ୍କନ୍ଧ ଓ ବାହୁର ସନ୍ଧିସ୍ଥଳ ।
ଚିରୁଡ଼ା—ଗ୍ରା. ବ. ଆମ୍ବଆଦି ଫଳର ଏକ-ଫାଳ ବା ଏକଚତୁର୍ଥାଂଶ ବା ଚଉଠ, କୋଳି ।
ଚିରୁଣ—ଗ୍ରା. ବ. କଙ୍କତିକା, ପାନିଆ ।
ଚିରୁଣୀ—ଗ୍ରା. ବ. ପାନିଆ, କଙ୍କତିକା ।
ଚିରୁଲି—ଗ୍ରା. ବ. କଞ୍ଚା ଆମ୍ବକୁ ଚିର ଚିରୁଡ଼ା କରି ମସଲା ଆଦି ଦେଇ କରାଯିବା ଆଚାର ।
ଚିରେ—ଅବ୍ୟ. ଦୀର୍ଘକାଳ ।
ଚିରେଇ—ଗ୍ରା. ବ. ଚିରିବା କର୍ମ; କାଠ ଆଦି ଚିରିବା ମଜୁରି ।
ଚିରେଇତା—ଗ୍ରା. ବ. ହିମାଳୟଜାତ କ୍ଷୁଦ୍ର ଶାକବିଶେଷ, ଭୂନିମ୍ବ, ଅତ୍ୟନ୍ତ ତିକ୍ତ ଔଷଧି ଗୁଳ୍ମ ବିଶେଷ । [କାଳ ।
ଚିରେଣ—ଅବ୍ୟ. (ଚିର + ଏନ) ଦୀର୍ଘ-
ଚିରୋଞ୍ଜି—ପ୍ରା. (ସମ୍ପ୍ର)ବ. ପିଆଳ ଦେଖ।
ଚିରୋପକୃତ—ପୁଂ. ବ°. ଯାବଜ୍ଜୀବନ ପ୍ରତ୍ୟୁପକାର ଦ୍ୱାରା ଯାହାର ଶୋଧ ହୋଇ ନ ପାରିବା ଉପକାର ଦ୍ୱାରା ଉପକୃତ ।
ଚିର୍ଭଣା—ସ୍ତ୍ରୀ. ବ. ପୂଗଫଳ, ସୁପାରି, ଗୁଆ ।
ଚିର୍ଭଟ—କ୍ଲୀ. ବ. କାକୁଡ଼ି, ଫୁଟି କାକୁଡ଼ି ।
ଚିର୍ଭଟୀ—ସ୍ତ୍ରୀ. ବ. କର୍କଟୀ, କାକୁଡ଼ି ।
ଚିର୍ଭଟ—ପୁଂ. ବ. କାକୁଡ଼ି ।
ଚିର୍ଭିଟା—ସ୍ତ୍ରୀ. ବ. କର୍କଟୀ ଭେଦ, ଫୁଟି-କାକୁଡ଼ି ।
ଚିର୍ଭିଟିକା—ସ୍ତ୍ରୀ. ବ. କର୍କଟୀ, କାକୁଡ଼ି ।
ଚିର୍ଭିଟୀ—କର୍କଟୀ, କାକୁଡ଼ି ।
ଚିଲ୍ଗ—ପ୍ରା. (ଗଞ୍ଜାମ) ବ ଟଙ୍କା ଭଙ୍ଗାଇ ତହିଁ ପରବର୍ତ୍ତିରେ ନେବା କ୍ଷୁଦ୍ର ମୁଦ୍ରା ଓ ଖୁଚୁରା ପଇସା ଆଦି, ରେଜା, ରେଜକି, ବ°. ରେଜା, ଖଚୁରା, ସାମାନ୍ୟ, ହିସାବବେଳେ ବଳି ପଡ଼ିବା ଅର୍ଥ ।
ଚିଲ—ଗ୍ରା. ବ. ଶଙ୍ଖଚିଲ, ମାଟିଆଚିଲ, ପିଲାମାନେ କାଗଜରେ ଗୁଡ଼ିକଣିଆ କରି ସୂତା ବାନ୍ଧି ଆକାଶରେ ଉଡ଼ାଇବା ଏକ ପ୍ରକାର କ୍ରୀଡ଼ନକ ।
ଚିଲନଦେବ—ନେପାଳାନ୍ତର୍ଗତ ପାଟନ ଓ କାନ୍ତିକପୁରର କେତେ ମନ୍ଦିର ।
ଚିଲବଲ୍ଲି—ବ. ସୋହ୍ନ ।
ଚିଲମ୍ଚି-ଗ୍ରା. ବ. ମୁଖ ହାତ ଧୋଇବାର ପାତ୍ର ବିଶେଷ ଏକପ୍ରକାର କୁଣ୍ଡ, ହୁକାର ଯେଉଁ ନଳ ଉପରେ ଚିଲମ ବସା ଯାଏ ।
ଚିଲମ—ଗ୍ରା. ବ. ଛିଲମ; ହୁକା, ଗଞ୍ଜାଇ ଗୁଡ଼ାଖୁ ଆଦିର ଧୂମ ପାନର ଉପକରଣ ବିଶେଷ ।
ଚିଲମିଲିକା—ସ୍ତ୍ରୀ. ବ. (ଚିଲମିଲ + ଅକ + ଆ) କଣ୍ଠଭୂଷଣ, କଣ୍ଠମାଳା, ଝିଲିମିଲି ମାଳି, ଖଦ୍ୟୋତ, ଜଳୁଜଳିଆ, ବିଦ୍ୟୁତ ।
ଚିଲସ୍—କାଶ୍ମୀରମହାରାଜଙ୍କ ଅଧୀନସ୍ଥ ଗୋଟିଏ କରଦରାଜ୍ୟ ।
ଚିଲା—ଗ୍ରା. ବ. ଚିଲ ଆଦି ହିଂସ୍ର ପକ୍ଷୀମାନଙ୍କର ନଖ ଦ୍ୱାରା କୌଣସି ବସ୍ତୁକୁ ଝାମ୍ପିବା, କୁଦା, ଖେଞ୍ଚା, ବ°. ଫଙ୍କା, ମାଟିଆ, ପାଣ୍ଡୁର ବର୍ଣ୍ଣ, ଅତ୍ୟନ୍ତ ଗୋରା ।
ଚିଲାଆଖି—ଗ୍ରା. ବ. ମାଟିଆ ବା ପାଣ୍ଡୁର ତେଳାଯୁକ୍ତ ଅଖି ।
ଚିଲାଆଖିଆ—ଗ୍ରା. ବ. ଜଳାର ଆଖିପରି ଯାହାର ଅଖିର କଳାଡୋଳା ମାଟିଆ ବା ପାଣ୍ଡୁର ବା ଈଷତ୍ ସବୁଜ ବର୍ଣ୍ଣ ।
ଚିଲାଇବା—ଗ୍ରା. କି. ଉଚ୍ଚ ସ୍ୱରରେ ଡାକିବା, ରଡ଼ିଦେବା, ଚିତ୍କାର କରିବା
ଚିଲାମାରିବା—ଗ୍ରା. କି. (ହିଂସ୍ରପକ୍ଷୀ) ଝାମ୍ପ ମାରିବା, (ଲକ୍ଷଣାର୍ଥ) ହଠାତ୍ ଆକ୍ରମଣ କରି ନେଇଯିବା, ଠକି ନେଇ-ଯିବା, କୁଦିବା, ନାଚିବା ।
ଚିଲିହି—ମଧ୍ୟ ଏସିଆର ଅନ୍ତର୍ଗତ ହିନ୍ଦୁ-କୁଶ ପର୍ବତବାସୀ ଜାତିବିଶେଷ ।
ଚିଲ୍ଲ—ଗ୍ରା. ବ. ଚିଲ୍ଲୀ (ଦେଖ) ଝିଙ୍କି-ବଥୁଆ; ଝିଙ୍କ ବଥୁଆ, ଭ୍ରୂଲତା; ଲଙ୍କା-ମରିଚ ।
ଚିଲକା—ଗ୍ରା.ବ.ମତ୍ସ୍ୟ ବିଶେଷ; ଓଡ଼ିଶାର ଦକ୍ଷିଣପୂର୍ବସ୍ଥ ପୁରୀଜିଲା ଓ ଗଞ୍ଜାମ ଜିଲାରେ ସ୍ଥିତ ପ୍ରସିଦ୍ଧ ଲବଣାକ୍ତ ହ୍ରଦ; ରାଧାନାଥଙ୍କ ପଦ୍ୟଗ୍ରନ୍ଥବିଶେଷ ।
ଚିଲଚିମ—ପୁଂ. ବ. (ଚିଲ + ଚି + ମ) ମତ୍ସ୍ୟବିଶେଷ, ଖଙ୍କାରଖାଇ ମାଛ ।
ଚିଲମିଲ ପୋକ—ଗ୍ରା. ବ. ଜୁଳୁ ଜୁଳିଆ ପୋକ ।
ଚିଲିୟାନବାଲା—ପଞ୍ଜାବପ୍ରଦେଶରେ ଗୁଜ-ରାଟ ଜିଲାନ୍ତର୍ଗତ ଫେଲିୟାନ୍ ତହସିଲର ଗୋଟିଏ ଗ୍ରାମ ।
ଚିଲ୍ଲ—ବି. ବ°. କ୍ଲିନ୍ନଚକ୍ଷୁ, ଯାହାର ଅଖି ଲେନ୍ଧେରେ ପୂର୍ଣ୍ଣ, ବ. ଚିଲପକ୍ଷୀ, ଲେନ୍ଧେରେ ପୂର୍ଣ୍ଣ ଅଖି ।
ଚିଲ୍ଲିକା—ସ୍ତ୍ରୀ. ବ. (ଚିଲ + କୈ + ଅ + ଆ) ଝିଁ ଝିଁ ପୋକ, ଝିଙ୍କାରି ପୋକ ।
ଚିଲ୍ଲଭକ୍ଷ୍ୟା—ସ୍ତ୍ରୀ. ବ. (୬ତତ୍) ହଟ-ବିଲାସିନୀ ନାମକ ଗନ୍ଧଦ୍ରବ୍ୟ ।
ଚିଲ୍ଲାଭ—ପୁଂ.ବ. (ଚିଲ୍ଲ + ଆ + ଭ + ଅ) ଚୋର ବିଶେଷ, ଠାଉକା ଚୋର, ଗଣ୍ଠି-କଟା, (ପୁଂ. ବ) ଚୈତନ୍ୟଲଭ ।
ଚିଲ୍ଲି—ପୁଂ. ବ. (ଚିଲ୍ଲ + ଇ) ଭ୍ରୂଦ୍ୱୟର ମଧ୍ୟ; ଚିଲପକ୍ଷୀ ।
ଚିଲ୍ଲିକା—ସ୍ତ୍ରୀ. ବ. (ଚିଲ୍ଲି + କ + ଆ) ଭ୍ରୂଲତା, ଚିଲି ଶାକ, ବଥୁଆ ଶାଗ, ଦୁଇ ଭ୍ରୂର ମଧ୍ୟବର୍ତ୍ତୀ ସ୍ଥାନ, ଝିଙ୍କାରି ପୋକ ।
ଚିଲ୍ଲୀ—ସ୍ତ୍ରୀ. ବ. (ଚିଲ୍ଲ + ଅ + ଈ) ଲୋଧ୍ର ବୃକ୍ଷ, ଝିଁ ଝିଁ ପୋକ, ଭ୍ରୂଲତା; କ୍ଷୁଦ୍ର ବାସ୍ତୁକ ଶାଗ, ଝିଙ୍କାରି ।
ଚିଲ୍ଲୀକା—ସ୍ତ୍ରୀ. ବ. ଝିଁ ଝିଁ ପୋକ, ଝିଙ୍କାରି ପୋକ ।
ଚିଲ୍ଲୂପାର—ଯୁ: ପ୍ର: ପ୍ରଦେଶାନ୍ତର୍ଗତ ଗୋରକ୍ଷପୁର ଜିଲାର ଗୋଟିଏ ପରଗଣା
ଚିବି—ସ୍ତ୍ରୀ. ବ. (ଚିବ + ଇ) ଚିବୁକ ।
ଚିବିଟ—ପୁଂ. ବ. ଚିପିଟ, ଚୂଡ଼ା ।

ଚିବିଲ୍ଲିକା—ସ୍ତ୍ରୀ. ବି. କ୍ଷୁଦ୍ର କ୍ଷୁପ ବିଶେଷ।

ଚିବୁ—ପୁଂ. ବି. ( ଚିବ+ଉ ) ଓଷ୍ଠର ଅଧୋଭାଗ, ଚିବୁକ।

ଚିବୁକ—କ୍ଲୀ. ବି. (ଚିବୁ+କ) ଓଷ୍ଠର ଅଧୋଭାଗ, ପୁଂ. ମୁଚୁକୁନ୍ଦବୃକ୍ଷ। [ଶବ୍ଦ।

ଚିଷ୍ଟା—ଅବ୍ୟ. ତୂଣୀରୁ ଶର ଉଠାଇବାର

ଚିହ୍ନଣ—ବି. ବିଂ. ଚିକ୍କଣ।

ଚିହ୍ନଣକନ୍ଥ—ବି. ବିଂ. (ବ.ବ୍ରୀ) ଯାହାର ଚିକ୍କଣ କନ୍ଥା ଅଛି।

ଚିହ୍ନଣୀଦ—ପୁଂ. ବି. (ବ.ବ୍ରୀ) ପଣିମାଯୁ ଗୋଟିଏ ଗଣ।

ଚିହ୍ନାର—ଗ୍ରା. ବି. ଏକପ୍ରକାର ବୃକ୍ଷ।

ଚିହ୍ନାର—ଗ୍ରା. ବି. ମୂର୍ତ୍ତି, ଆକୃତି।

ଚିହ୍ନଁକା—ଗ୍ରା. ବି. ହଠାତ୍ ଚମକି ଉଠିବା, ଚିଁଇକା।

ଚିହ୍ନଁକାଇବା—ଗ୍ରା. କ୍ରି. ହଠାତ୍ ଭୟ-ଦେଖାଇ ଚମକାଇବା। ଭୟ ଚକିତ କରିବା।

ଚିହ୍ନଁକିବା—ଗ୍ରା. କ୍ରି. ହଠାତ୍ ଭୟରେ ଚମକିବା।

ଚିହ୍ନୁର—ପୁଂ ବି. ଚିକୁର, ମୁଣ୍ଡର ବାଳ।

ଚିହ୍ନ—କ୍ଲୀ. ବି. (ଚିହ୍ନ+ଭା. ଅ) ଛାପ, କଳଙ୍କ, ଦାଗ, (ଣ.ଅ) ଲକ୍ଷଣ, ସଙ୍କେତ, କ୍ଷତ, ଚିହ୍ନ, ଅଙ୍କ, ମାନାଗଣ ବିଶେଷ, ପତାକା, ଇସାରା, ପଦକ, ଚପରାସ୍, ସ୍ମାରକ ବସ୍ତୁ, ଜ୍ୟୋତିଷିକ ରାଶି।

ଚିହ୍ନକ—ବି. ବିଂ. (ଚିହ୍ନ+ଅକ) ଯେ ଚିହ୍ନାଏ, ଯେ ଚିହ୍ନିତ କରେ, (ପୁଂ.ବି) ବୃକ୍ଷ ବିଶେଷ, ଦାଗ, ଏକଚିନା ବା ଗୁରୁ କାଇଞ୍ଚ ଓଜନ।

ଚିହ୍ନକାରୀ-ପୁଂ.ବି.(ଚିହ୍ନ+କୃ+କ.ଇନ୍) ଚିହ୍ନକାରକ, ଯେ ଦାଗ କରେ, ଘୋର ଦର୍ଶନ, ଭୟଙ୍କର, ବିଘାତୀ, (ସ୍ତ୍ରୀ) କାରିଣୀ

ଚିହ୍ନଟ—ଗ୍ରା. ବି. ଯେଉଁ ବିଶିଷ୍ଟ ଚିହ୍ନରୁ କୌଣସି ବ୍ୟକ୍ତି ବା ବସ୍ତୁ ଚିହ୍ନି ହୁଏ, ଯେ ଅନ୍ୟର ପରିଚୟ ଜଣାଇ ଦିଏ, ବିଂ. ଅନ୍ୟର ପରିଚୟଜ୍ଞାପକ, ସୁପରିଚିତ, ସ୍ମାରକ।

ଚିହ୍ନଟକରିବା—ଗ୍ରା. କ୍ରି. କୌଣସି ଦଲିଲ ସମ୍ପାଦନ କରି ରେଜିଷ୍ଟରୀ କରିବାକୁ କଚେରୀକୁ ଯିବା ବ୍ୟକ୍ତି, କିମ୍ବା ହାକିମଙ୍କ ନିକଟରେ ଉପସ୍ଥିତ ହେବା ବ୍ୟକ୍ତି, ପ୍ରକୃତ ବ୍ୟକ୍ତି କି ନା ଏହା ହାକିମଙ୍କୁ ଚିହ୍ନାଇ ଦେବା, କୌଣସି ଜମି ବା ବସ୍ତୁକୁ ରାଜକୀୟ କର୍ମଚାରୀଙ୍କୁ ଚିହ୍ନାଇ ଦେବା।

ଚିହ୍ନଟପଡ଼ିବା—ଗ୍ରା. କ୍ରି. କୌଣସି ପକ୍ଷ ବସ୍ତୁ ବା ଜମିକୁ ରାଜକର୍ମଚାରୀଙ୍କ ଆଗରେ ଚିହ୍ନାଇ ଦେଇ ତତ୍ସମ୍ବନ୍ଧୀୟ ଦଲିଲରେ ଚିହ୍ନଟ ସାକ୍ଷୀ ରୂପେ ଦସ୍ତଖତ କରିବା।

ଚିହ୍ନଧାରୀ—ପୁଂ. ବି.(ଚିହ୍ନ+ଧୃ+ଇନ୍) ଚିହ୍ନଯୁକ୍ତ, ଯେ ଚିହ୍ନଧାରଣ କରେ, ପତାକାଧାରୀ, ଯେ ରାଜକୀୟ ଛତ୍ର-ଚାମରାଦି ବହନ କରେ।

ଚିହ୍ନଧାରିଣୀ—ସ୍ତ୍ରୀ.ବି. (ଚିହ୍ନଧାରିନ୍+ଈ) ଶ୍ୟାମାଲତା, ଶୁଆଁଲଇ।

ଚିହ୍ନନ—ବି. (ଚିହ୍ନ+ଣ.ଅନ) ଲକ୍ଷଣ।

ଚିହ୍ନବର୍ତ୍ତ୍ର—ଗ୍ରା. ବି. ଅସ୍ତିତ୍ୱ, ପତ୍ତା, ଚିହ୍ନମାତ୍ରା, କୌଣସି ବସ୍ତୁର ଅସ୍ତିତ୍ୱର କୌଣସି ନିଦର୍ଶନ।

ଚିହ୍ନୟିତବ୍ୟ—ବିଂ. (ଚିହ୍ନ+ମି.ତବ୍ୟ) ଯହିଁରେ ଚିହ୍ନ ଦିଆଯିବ।

ଚିହ୍ନାରୀ—ଗ୍ରା. ବିଂ. ଯେ ଭଲ ମନ୍ଦ ଚିହ୍ନି ପାରେ, ସୁପରୀକ୍ଷକ, ଯେ ସୁନା ରୂପା ଆଦିର ଉତ୍କୃଷ୍ଟତା ବାରି ପାରେ।

ଚିହ୍ନା—ଗ୍ରା. ବି. ପରିଚୟ, କୌଣସି ବ୍ୟକ୍ତି ବା ବସ୍ତୁକୁ ପୂର୍ବରୁ ଜାଣିଥିବା, ଜଣାଶୁଣା, ବିଂ. ସୁପରିଚିତ ଚିହ୍ନିତ।

ଚିହ୍ନାଇବା—ଗ୍ରା. କ୍ରି. କୌଣସି ବ୍ୟକ୍ତିକୁ ଅନ୍ୟ ବ୍ୟକ୍ତିଙ୍କ ନିକଟରେ ପରିଚିତ କରାଇବା, କୌଣସି ବିଶିଷ୍ଟ ଚିହ୍ନ ଦ୍ୱାରା ଚିହ୍ନିତ କରାଇବା।

ଚିହ୍ନାଚିହ୍ନି—ଗ୍ରା.ବି. ଅନ୍ୟୋନ୍ୟପରିଚୟ, ବିଂ. ଅନ୍ୟୋନ୍ୟରେ ପରିଚିତ।

ଚିହ୍ନାଦେବା—ଗ୍ରା.କ୍ରି. ଆପେ ଆପଣାର ପରିଚୟ ପ୍ରକାଶ କରିବା।

ଚିହ୍ନାପଡ଼ିବା—ଗ୍ରା. କ୍ରି. ଜଣାପଡ଼ିବା, ଚିହ୍ନିତ ହେବା, ପ୍ରକାଶ ପାଇବା, କୌଣସି କାର୍ଯ୍ୟରେ ନିଜର ଗୁପ୍ତ ସହାନୁଭୂତି ବା ସାହଚର୍ଯ୍ୟ ଥିବା ବିଷୟ ସାଧାରଣରେ ପ୍ରକାଶିତ ହେବା, ଲକ୍ଷଣାଦି ଦ୍ୱାରା ସୁନିଶ୍ଚିତ ରୂପେ ସ୍ୱୀକାର-କୃତ ହେବା, ଉତ୍ତମରୂପେ ଜ୍ଞାତ ହେବା।

ଚିହ୍ନା ପରିଚୟ—ଗ୍ରା. ବି. ସୁପରିଚୟ, ଘନିଷ୍ଠ ପରିଚୟ, ଜଣାଶୁଣା, ପରସ୍ପର ପରସ୍ପରକୁ ଉତ୍ତମ ରୂପେ ଜାଣିବା।

ଚିହ୍ନାର—ପ୍ରା.(ସମ୍ବ.) ବିଂ. ସୁପରିଚିତ।

ଚିହ୍ନାଳି—ଗ୍ରା. ବିଂ. ଯେ ଚିହ୍ନିପାରେ, ଚିହ୍ନାରୀ।

ଚିହ୍ନିତ—ବି. ବିଂ.(ଚିହ୍ନ+ମି.ତ)ଅଙ୍କିତ, ଲକ୍ଷିତ, ସୁପରିଚିତ, ଚିହ୍ନଯୁକ୍ତ, ଦାଗ ଦିଆ ଯାଇଥିବା, ପ୍ରସିଦ୍ଧ ଲକ୍ଷଣ ଦ୍ୱାରା ସ୍ୱୀକୃତ, ବିଶେଷ ନିଦର୍ଶନ-ପରିଧାରୀ (ସ୍ତ୍ରୀ) ଚିହ୍ନିତା।

ଚିହ୍ନିତନାମା—ଗ୍ରା.ବି. ଜମି ଜମା ସମ୍ବନ୍ଧେ ରାଜା ବା ଭୂସ୍ୱାମୀ ପ୍ରଦତ୍ତ ସୀମାନିରୂପଣ ପତ୍ର।

ଚିହ୍ନିଦେବା—ଗ୍ରା.କ୍ରି.ଭଲମନ୍ଦବାଛିଦେବା, ପରିଚୟକରିବା, ପୂର୍ବ ପରିଚିତ ବ୍ୟକ୍ତିକୁ ଜାଣିନେବା।

ଚିହ୍ନିନେବା—ଗ୍ରା. କ୍ରି, ସୁପରିଚିତ ବ୍ୟକ୍ତିକୁ ବା ବାଞ୍ଛିତ ପଦାର୍ଥକୁ ଅନେକ ମଧ୍ୟରୁ ବାଛି ନେବା। [ଦେଖ।

ଚିହ୍ନିପକାଇବା—ଗ୍ରା. କ୍ରି. ଚିହ୍ନି ଦେବା

ଚିହ୍ନିବା—ଗ୍ରା, କ୍ରି. ପୂର୍ବ ପରିଚିତ ବା ଜ୍ଞାତ ବ୍ୟକ୍ତିକୁ ବା ବସ୍ତୁକୁ ଜାଣିବା, ଠଉରାଇବା, ପରିଚୟ କରିବା, ପରୀକ୍ଷା କରି ଭଲ ମନ୍ଦ ବସ୍ତୁକୁ ଜାଣିବା, ଲକ୍ଷଣ ଦେଖି ରୋଗନିର୍ଣ୍ଣୟ କରିବା, ଚିରେଖି ଦେଖିବା।

ଚିହ୍ନୀକୃତ—ବି.ବିଂ. (ଚିହ୍ନ+ଚ୍ୱି,କୃ+ତ) ଚିହ୍ନିତ, ଯହିଁରେ ମାର୍କା ବା ଚିହ୍ନ ଦିଆ ହୋଇଅଛି।

ଚୀଚୀକୁଟୀ—ଅବ୍ୟ. ଶାରିକା ପ୍ରଭୃତି ଶବ୍ଦର ଅନୁକରଣ, ଚଢ଼େଇମାନଙ୍କର ଚେଁ ଏଁ ଗୁଁ ଆଁ ଧ୍ୱନି।

ଚୀଚୀରସ୍ଥା—ସ୍ତ୍ରୀ. ବ. ଏକଜାତୀୟ କ୍ଷୁଦ୍ର ଗୁଳ୍ମ ।
ଚୀକ—ଧା. ବ. ଦ୍ରବ୍ୟ, କ୍ଷରଣ ।
ଚୀଡ଼ା—ସ୍ତ୍ରୀ. ବ. ଗନ୍ଧଦ୍ରବ୍ୟ ବିଶେଷ, ଦାରୁଗନ୍ଧା ।
ଚୀଣ—ପୁଂ. ବ. ଚୀନ ଦେଶ ।
ଚୀଣକ—ପୁଂ. ବ. ଚୀନକ ଦେଖ ।
ଚୀତ୍କାର—ପୁଂ. ବ. (ଚୀତ୍ + କୃ + ଘ. ଅ) ଚିତ୍କାର, ଉଚ୍ଚଧ୍ୱନି, ହଲ୍ଲା, ଗୋଗା, ଗୋଲମାଲ ।
ଚୀତ୍କୃତ୍—ବ. ( ଚୀତ୍ + କୃ + କ୍ତ ) ଚୀତ୍କାର ଦେଖ ।
ଚୀତ୍କୃତ—ବ. (ଚୀତ୍ + କୃ + ଭ.କ୍ତ) ଗଡ଼ଗଡ଼ ଶବ୍ଦ ।
ଚୀତ—ସ୍ତ୍ରୀ. ବ. (ଚି + କ୍ତ) ଚୟନ ।
ଚୀଉ—ପୁଂ. ବ. ଜଣେ ବିଖ୍ୟାତ ପିଣ୍ଡାରି ସର୍ଦ୍ଦାର ।
ଚୀନ—ପୁଂ.ବ.(ଚି + ର୍ମି.ନ)ଦେଶବିଶେଷ, ଚୀନଦେଶୀୟ ଲୋକ, ବ୍ରୀହିବିଶେଷ, ଚିନାଧାନ୍ୟ, ଉଲୁ, ସୂତା, ମୃଗବିଶେଷ, ଆଗୁରୁବିଶେଷ, କର୍ପୂରବିଶେଷ, (କ୍ଲୀ. ବ.) ପତାକା, ଚୀନଦେଶୀୟ ବସ୍ତ୍ର, ସୀସକ, ସୀସା, (ବିଂ) ଯାହା ଚୀନ ଦେଶରେ ଉତ୍ପନ୍ନ, ଚୀନଦେଶୀୟ ।
ଚୀନକ—ପୁଂ. ବ. (ଚୀନ + କ) ଧାନ୍ୟବିଶେଷ, ଚୀନଦେଶବାସୀ ଲୋକ, ଚୀନାକର୍ପୂର, ସଉପ । [ବିଶେଷ ।
ଚୀନକର୍ପୂର—ପୁଂ.ବ. (କ.ଧା) କର୍ପୂର-
ଚୀନଜ—କ୍ଲୀ. ବ. (ଚୀନ + ଜନ + କ ଅ) ତୀକ୍ଷ୍ଣଲୌହ, ଇସ୍ପାତ, (ବିଂ) ଚୀନଦେଶଜାତ, (ସ୍ତ୍ରୀ) ଚୀନଜା ।
ଚୀନତାତାର—ଚୀନସମ୍ରାଟଙ୍କର ଶାସନାଧୀନ ତୁର୍କିସ୍ଥାନର ପୂର୍ବଭାଗ ।
ଚୀନପଟ୍ଟ—ପୁଂ. ବ. ଚୀନଦେଶରେ ଉତ୍ପନ୍ନ ପଟ୍ଟବସ୍ତ୍ର ।
ଚୀନପତି—ପୁଂ.ବ. ଚୀନଦେଶର ରାଜା, ଜନପଦବିଶେଷ ।
ଚୀନପଟ୍ଟନ—ମାନ୍ଦ୍ରାଜର (ଆଉ ଗୋଟିଏ ନାମ) ନାମାନ୍ତର ।

ଚୀନପିଷ୍ଟ—କ୍ଲୀ.ବ.(କ.ଧା)ସିନ୍ଦୂରବିଶେଷ ସୀସକ, ସୀସା ।
ଚୀନରାଜପୁତ୍ର—ପୁଂ. ବ. ରାଜପୁତ୍ର, ନାସପାତିଗଛ ।
ଚୀନବଙ୍ଗ—କ୍ଲୀ. ବ. ( କ.ଧା ) ସୀସକ, ସୀସା, ଚୀନଜାତ ବଙ୍ଗ । [ବିଶେଷ ।
ଚୀନା—ବିଂ. ଚୀନଦେଶୀୟ,(ବ)ଧାନ୍ୟ-
ଚୀନାଂଶୁକ—ବ.(କ.ଧା)ପଟ୍ଟବସ୍ତ୍ରବିଶେଷ ।
ଚୀନାକ—ପୁଂ. ବ. (ଚୀନ + ଅକ + ଅ) କର୍ପୂରବିଶେଷ, ସଉପ, ଶତପୁଷ୍ପ ।
ଚୀନାକର୍କଟୀ—ସ୍ତ୍ରୀ.ବ.ଚନ୍ଦ୍ରକୂଟ ପ୍ରଦେଶପ୍ରସିଦ୍ଧ କର୍କଟୀବିଶେଷ, କାକୁଡ଼ି ।
ଚୀନାଚନ୍ଦନ—ବ. ଏକପ୍ରକାର ଭରଢଆ ପକ୍ଷୀ ।
ଚୀନାମାଟି—ବ.ଚୀନଦେଶଜାତ ମୃତ୍ତିକା ।
ଚୀନାବାସନ—ବ. ଚୀନମାଟି ନିର୍ମିତ ସୁଦୃଢ଼ ଚିକ୍କଣ ବାସନ ।
ଚୀନାନାରଙ୍ଗୀ—ସ୍ତ୍ରୀ. ବ. ବୃକ୍ଷବିଶେଷ ।
ଚୀନାସିନ୍ଦୂର—ସ୍ତ୍ରୀ.ବ.ଏକପ୍ରକାର ଉତ୍କୃଷ୍ଟ ସିନ୍ଦୂର ।
ଚୀନି—(ଚୀନ ଶବ୍ଦଜ) କଦଳୀବିଶେଷ, ଏହାର ଫଳ ଅତିମିଠା ।
ଚୀପୁରପଲ୍ଲୀ—ମାନ୍ଦ୍ରାଜ ପ୍ରଦେଶାନ୍ତର୍ଗତ ବିଶାଖାପଟ୍ଟନ ଜିଲ୍ଲାର ଗୋଟିଏ ଜମିଦାରୀ ।
ଚୀର୍ଭଟ—ବ. ଗମ୍ଭା କଲରା ।
ଚୀର—କ୍ଲୀ. ବ. (ଚି + ର୍ମି.ର)କୌପୀନ, ଚୀବର, ଛିନ୍ନ ବସ୍ତ୍ରଖଣ୍ଡ, କାନି, ବଲ୍କଲ, ଗୋସ୍ତନ,ବସ୍ତ୍ରବିଶେଷ, ରେଖାବିଶେଷ, ଚୂଡ଼ା, ସୀସକ, ଲିଖନବିଶେଷ, ଗାବରିଗାବର ।
ଚୀରକ—ପୁଂ. ବ. (ଚୀର + କ)ବହିର୍ସ୍ଥ ଲେଖା, ବିକାର ଲେଖନ, କାଗଜର ଟିକିଖଣ୍ଡ, ଚିରକୁଟ ।
ଚୀରଧାରୀ—ପୁଂ.ବିଂ. ଚୀରଧାରଣକାରୀ, ଛିନ୍ନବସ୍ତ୍ରପରିଧାୟୀ, ବଲ୍କଲବାସାଃ, (ସ୍ତ୍ରୀ) ଚୀରଧାରିଣୀ । [ ଶାଗ ।
ଚୀରପତ୍ରିକା—ସ୍ତ୍ରୀ.ବ. ଚଞ୍ଚୁଶାକ, ବଥୁଆ
ଚୀରପର୍ଣ୍ଣ—ପୁଂ. ବ. (ବ.ବ୍ରୀ)ଶାଲବୃକ୍ଷ ।

ଚୀରଭଗ୍ନୀ—ସ୍ତ୍ରୀ. ବ. ସ୍ୱୀର ଜ୍ୟେଷ୍ଠା ଭଗିନୀ, ଦେଢ଼ଶାଶୁ ।
ଚୀରଭୃତ୍—ପୁଂ.ବିଂ. ବ. (ଚୀର + ଭୃତ୍ + କ.କ୍ୱିପ୍) ଚୀରୀ ଦେଖ ।
ଚୀରଲ୍ଲି—ପୁଂ. ବ. ପକ୍ଷୀବିଶେଷ ।
ଚୀରବାସାଃ—ତ୍ରି.ବିଂ.(ବ.ବ୍ରୀ)ଯେ ଜୀର୍ଣ୍ଣବସ୍ତ୍ର ପରିଧାନ କରେ ।
ଚୀରା—ବ.(ଚୀର + ଆ)କନା, ଚିରାକନା, ଲେଙ୍ଗୁଡ଼ି ।
ଚୀରି—ସ୍ତ୍ରୀ. ବ. (ଚି + ରି) ନେତ୍ରାଂଶୁକ, ଆଖିକୁ ଘୋଡ଼ାଇବା ପାଇଁ ବ୍ୟବହୃତ ଓଢ଼ଣୀ, ଝିଲିକା, କଚ୍ଛଟିକା ।
ଚୀରିକା—ସ୍ତ୍ରୀ.ବ.ଝିଲ୍ଲିକା, ଝିଲ୍ଲି, ଝିଙ୍କାରି ପୋକ ।
ଚୀରିଣୀ—ସ୍ତ୍ରୀ.ବ. ବଦରୀ କ୍ଷେତ୍ରର ନଦୀବିଶେଷ, (ସ୍ତ୍ରୀ.ବିଂ) ଚୀରଧାରିଣୀ ।
ଚୀରିତ—ତ୍ରି.ବିଂ.(ଚୀର + ଇତ)ଯାହାର ବଲ୍କଲ ଜନ୍ମିଅଛି ।
ଚୀରିତଚ୍ଛଦା—ସ୍ତ୍ରୀ. ବ. (ବ.ବ୍ରୀ)ପାଳଙ୍ଗ ଶାଗ ।
ଚୀରୀ—ପୁଂ.ବିଂ. (ଚୀର + ଇନ୍) ଚୀରଧାରୀ, ତାପସ, ଯାହାର ଚୀର ଅଛି ।
ଚୀରୀ—ସ୍ତ୍ରୀ. ବ. (ଚିର + ଈ) କଚ୍ଛଟିକା, ଝିଲ୍ଲୀ ।
ଚୀରୀଲ୍ଲି—ପୁଂ. ବ. ପକ୍ଷୀବିଶେଷ ।
ଚୀରୀବାକ—ପୁଂ.ବ.(ବ.ବ୍ରୀ)କୀଟବିଶେଷ, ମନୁଙ୍କ ମତରେ ଲୁଣ ଚୋରି କଲେ ପର ଜନ୍ମରେ ଚୀରୀବାକ ଜନ୍ମପ୍ରାପ୍ତ ହେବା । [ ବିଶେଷ ।
ଚୀରୁକ—କ୍ଲୀ.ବ. (ଚୀନ + ରୁ + କ)ଫଳ-
ଚୀର୍ଣ୍ଣ—ତ୍ରି. ବିଂ. (ଚୀର + ର୍ମି.ନ) କୃତ, ଶୀଳିତ, ବିଭକ୍ତ, ସମ୍ପାଦିତ, ବିଦାରିତ, ଚିରା ହୋଇଥିବା, ଅଭ୍ୟସ୍ତ, ଆଚରିତ (ବ୍ରତ) ।
ଚୀର୍ଣ୍ଣପର୍ଣ୍ଣ—ପୁଂ. ବ. (ବ.ବ୍ରୀ) ନିମ୍ବଗଛ, ଖଜୁରିଗଛ । [ ମାଟିଆଚଲ ।
ଚୀଲ—ସ୍ତ୍ରୀ.ବ. ପକ୍ଷୀବିଶେଷ, ଶଙ୍ଖଚିଲ,
ଚୀଲ୍ଲକା—ସ୍ତ୍ରୀ. ବ. (ଚୀ + ଲ୍ଲ + କ + ଆ) ଝିଲ୍ଲିକା, ଝିଙ୍କାରିପୋକ ।

ଚୀବର—କ୍ଲୀ. ବି. (ଚି+ସଂ.ବର) ଭିକ୍ଷାପାତ୍ର, ଭିକ୍ଷୁ ପ୍ରାବରଣ, ଲୁହ୍ଗାର ଗୁଣ୍ଡି, ଯୋଗୀ, ସନ୍ନ୍ୟାସୀମାନେ ଯେଉଁ ଖଣ୍ଡି ବସ୍ତ୍ର ପରିଧାନ କରନ୍ତି, ବୌଦ୍ଧ ସନ୍ନ୍ୟାସୀମାନଙ୍କର ପରିଚ୍ଛଦର ଗୋଟିଏ ଅଂଶ ।

ଚୀବରୀ—ପୁଂ. ବି. ( ଚୀବର+ଇନ୍ ) ବୁଦ୍ଧଭିକ୍ଷୁକ, ଭିକ୍ଷୁକ, (ବିଂ) ଚୀବରଧାରୀ ।

ଚୁଆ—ଗ୍ରା. ବି. ଏକପ୍ରକାର କ୍ଷୁଦ୍ର ବୃକ୍ଷ, ଇନ୍ଦୁର, ସୁଗନ୍ଧ ଦ୍ରବ୍ୟବିଶେଷ, ଔଷଧ ଲତାବିଶେଷ, ଝର ଜଳ ନିମନ୍ତେ ଖୋଳା ଯାଇଥିବା କ୍ଷୁଦ୍ର ତଡ଼ାଗ ବା ଗଣ୍ଡି, (ପ୍ରା. ସମ୍ବ) ବି. କୂଅ, କୂପ ।

ଚୁଇଁ—ଗ୍ରା. ବିଂ. ଅତିଶ୍ରେଷ୍ଠ, ଅତିଶ୍ରେଷ୍ଠ (ଶିଶୁ) ।

ଚୁଇଲି—ପ୍ରା. (ସମ୍ବ.) ବି. ଖୋସାମଦ୍, ଗୁହ୍ୟବାକ୍ୟ ।

ଚୁଁ—ଗ୍ରା. ବି. ( ଧ୍ୱନ୍ୟନୁକରଣ ) ଚୁଁଚୁଁ ଦେଖ; ଚୁମ୍ବନଜନିତ ଶବ୍ଦ ।

ଚୁଁକରିବା—ଗ୍ରା. କ୍ରି. ଜିଭ ଓ ଦାନ୍ତମୂଳ ସାହାଯ୍ୟରେ ପାଟିଦ୍ୱାରା ଚୁଁ ଚୁଁ ଶବ୍ଦ କରିବା ।

ଚୁଁକୃତ—ବି.(ଚୁଁ+କୃତ) ଚୁମ୍ବନ ଦେଲାବେଳେ କରିବା ଚୁଁଚୁଁ ଶବ୍ଦ ।

ଚୁଁଚୁଁ—ଗ୍ରା. ବି. ସବଳ ବ୍ୟକ୍ତିର କୃତକର୍ମରେ ଦୁର୍ବଳ ବ୍ୟକ୍ତିର ବିରୋଧ ବା ଅସମ୍ମତିସୂଚକ ଶବ୍ଦ ।

ଚୁଁଚୁଁ—ଗ୍ରା. ବି. (ଧ୍ୱନ୍ୟନୁକରଣ) ବୋହୂଭୁଆସୁଣୀମାନେ ଗୁରୁଜନମାନଙ୍କ ଦୃଷ୍ଟି ଆକର୍ଷଣ କରିବା ପାଇଁ କଥା କହି ନ ଡାକି ଦାନ୍ତ ଓ ଜିଭ ସାହାଯ୍ୟରେ ଉଚ୍ଚାରଣ କରିବା ଚୁଁଚୁଁ ମଧୁର ଶବ୍ଦ ।

ଚୁଁଝିରି—ପ୍ରା. (ସମ୍ବ) ବିଂ. ଚୁଗୁଲିଆ ।

ଚୁକ୍—ଗ୍ରା.ବି.ଭ୍ରାନ୍ତି, ଭ୍ରମ, ବିମ୍ମୃତି, ଅଭାବ ।

ଚୁକ୍‌ଚୁକିଆ—ପ୍ରା.(ସମ୍ବ) ବିଂ. ଆଗବୋଲା, ନିରର୍ଥକ କଥା ବା ପଚରା ନ ହେଉଣୁ କଥା କହିବା (ବ୍ୟକ୍ତି) ।

ଚୁକ—ଗ୍ରା.ପୁଂ.ବି.(ଅଶ୍ଳୀଳ) ଚୁକା ଦେଖ; (ଯା.ବି) ଠକ୍, ଆମ୍ବିଳ ।

ଚୁକା—ଗ୍ରା.ପୁଂ.ବିଂ.(ଅଶ୍ଳୀଳ) ଯେ ଅନ୍ୟ ବ୍ୟକ୍ତିର କାମ ବୃତ୍ତିକୁ ଅସ୍ୱାଭାବିକ ପ୍ରକ୍ରିୟା ( ଅର୍ଥାତ୍ ମୁଖ ଦ୍ୱାରା ଶାନ୍ତ କରାଏ), ଗ୍ରା.ବି. (ଅଶ୍ଳୀଳ) ମୁଖରତି, ହସ୍ତମୈଥୁନ ।

ଚୁକାଇବା—ଗ୍ରା.କ୍ରି.ନିଷ୍ପତ୍ତିକରିବା,ଶେଷହିସାବ ନିକାଶ କରିବା, ଗ୍ରା.କ୍ରି(ଅଶ୍ଳୀଳ) ଅନ୍ୟ ବ୍ୟକ୍ତିର ମୁଖଦ୍ୱାରା ବା ହାତ ଦ୍ୱାରା ଆପଣାର କାମବୃତ୍ତି ଚରିତାର୍ଥ କରାଇବା ।

ଚୁକାଣିଆ—ଗ୍ରା.ବି.ଯେ କାର୍ଯ୍ୟର ପାରିଶ୍ରମିକ ପୂର୍ବରୁ ନିର୍ଦ୍ଧାରଣ କରିଦିଏ ।

ଚୁକାଣ୍ଡିଆ—ଗ୍ରା.ପୁଂ.ବିଂ. ବେହିଆ, ଭଣ୍ଡ, ଚୁକା ଦେଖ ।

ଚୁକାମାରିବା—ପ୍ରା. (ଜୟପୁର)କ୍ରି. ଗାଣ୍ଡିମାରିବା ଦେଖ ।

ଚୁକିବା—ଗ୍ରା.କ୍ରି.ଅନ୍ୟ ପାନକର ଭ୍ରମରେ ପଡ଼ିବା, (ଅଶ୍ଳୀଳ) ଅନ୍ୟ ବ୍ୟକ୍ତିର କାମ ପ୍ରବୃତ୍ତି ଚରିତାର୍ଥ କରିବା ନିମନ୍ତେ ତାହାର ଉପସ୍ଥକୁ ଚୁଚୁମିବା ।

ଚୁକୁଚୁକୁ—ଗ୍ରା. ଅବ୍ୟ. (ଧ୍ୱନ୍ୟନୁକରଣ) ଗୁକୁଗୁକୁ ଶବ୍ଦ, ଦୁଗ୍ଧାଦି ଜିଭ ଦ୍ୱାରା ପିଇବାର ଶବ୍ଦ, ବାଳକର ମା'ଦୁଧ ଚୁଚୁମି ଖାଇବାର ଶବ୍ଦ ।

ଚୁକୁଣୀ—ଗ୍ରା.ସ୍ତ୍ରୀ.ବିଂ.ଯେ ସ୍ତ୍ରୀ ଅସ୍ୱାଭାବିକ ଭାବରେ ଅର୍ଥାତ୍ ମୁଖ ଦ୍ୱାରା ପୁରୁଷର କାମପ୍ରବୃତ୍ତି ଶାନ୍ତ କରେ ।

ଚୁକୁରାଇବା—ଗ୍ରା. କ୍ରି. (ଅଶ୍ଳୀଳ) ଦୁଇଟି ସ୍ତ୍ରୀଲୋକ ପରସ୍ପରକୁ ଆଲିଙ୍ଗନ କରି ପରସ୍ପର ଯୋନିମଣି ଘର୍ଷଣପୂର୍ବକ ଉଭୟଙ୍କର ଇନ୍ଦ୍ରିୟ ବୃତ୍ତି ଚରିତାର୍ଥ କରିବାର ଚେଷ୍ଟା କରିବା ।

ଚୁକୁରୀ—ଗ୍ରା.ସ୍ତ୍ରୀ.ବିଂ.(ଅଶ୍ଳୀଳ) ଯେଉଁ ସ୍ତ୍ରୀ ଅନ୍ୟ ସ୍ତ୍ରୀକୁ ପୁନଃପୁନଃ ଆଲିଙ୍ଗନ ଓ ଚୁମ୍ବନାଦି ଦ୍ୱାରା ନିଜର ଇନ୍ଦ୍ରିୟବୃତ୍ତି ଚରିତାର୍ଥ କରେ ।

ଚୁକୁରୁ—ଗ୍ରା. ପୁଂ. ବିଂ. ଚୁକା ଦେଖ ।

ଚୁକା—ପୁଂ. ବି. (ଚୁକ୍+ଆର+ଅ) ହିଁହିଁନାଦ ।

ଚୁକ୍ତି—ଗ୍ରା.ବି. ନିୟମ, ସମାଧାନ, ଶେଷନିଷ୍ପତ୍ତି, ଅଙ୍ଗୀକାର, ଶେଷ, ଅନ୍ତ, କରାର ।

ଚୁକ୍ତିଆଇନ୍—ଚୁକ୍ତି ବିଷୟକ ଆଇନ୍ ।

ଚୁକ୍ତିନାମା ବା ପତ୍ର—ଗ୍ରା.ବି. ଅଙ୍ଗୀକାର ପତ୍ର ।

ଚୁକ୍ତିଭଙ୍ଗ—ଗ୍ରା.ବି.ଅଙ୍ଗୀକାରର ଲଙ୍ଘନ ।

ଚୁକ୍ର—କ୍ଲୀ.ବି. ( ଚୁକ୍+ସଂ.ର) ଅମ୍ଳରସ, ଅମ୍ଳଦ୍ରବ୍ୟବିଶେଷ, ଖଟାପାଳଙ୍ଗ ଶାକ, ପତ୍ରଶାକବିଶେଷ, ଶୁକ୍ତବିଶେଷ, କାଞ୍ଜିକବିଶେଷ, ରସାମ୍ଳ, ସନ୍ଧାନବିଶେଷ, ଅମ୍ଳବେତସ ଶାକ ।

ଚୁକ୍ରକ—କ୍ଲୀ. ବି. ( ଚୁକ୍ର+କ ) ଶାକବିଶେଷ, ଖଟାପାଳଙ୍ଗ, ଅମ୍ଳବେତସ ଶାଗ, ଏକପ୍ରକାର କାଞ୍ଜିରସାମ୍ଳ ।

ଚୁକ୍ରଫଳ—କ୍ଲୀ. ବି. ( ବ.ବ୍ରୀ ) ବୃକ୍ଷାମ୍ଳ, ତେନ୍ତୁଳି ।

ଚୁକ୍ରବାସ୍ତୁକ—କ୍ଲୀ.ବି.ଶାକବିଶେଷ, ଖଟାପାଳଙ୍ଗ ।

ଚୁକ୍ରବେଧକ—କ୍ଲୀ. ବି. କାଞ୍ଜିକବିଶେଷ ।

ଚୁକ୍ରା—ସ୍ତ୍ରୀ.ବି. (ଚୁକ୍ର+ଆ) ଖୁଙ୍ଗେଙ୍ଗା, ଖଟାପାଳଙ୍ଗ, ତିନ୍ତିଡ଼ି । [ ବିଶେଷ ।

ଚୁକ୍ରାମ୍ଳ—କ୍ଲୀ. ବି. ବୃକ୍ଷାମ୍ଳ,ତିନ୍ତିଡ଼ି, ଶାକ-

ଚୁକ୍ରାମ୍ଳା—ସ୍ତ୍ରୀ.ବି. (ବ.ବ୍ରୀ)ଅମ୍ଳଲୋଣିକା, ଖଟାପାଳଙ୍ଗ ।

ଚୁକ୍ରିକା—ସ୍ତ୍ରୀ. ବି. (ଚୁକ୍ର+ଇକ+ଆ) ଅମ୍ଳଲୋଣିକା, ଖଟାପାଳଙ୍ଗ,ତିନ୍ତିଡ଼ି ।

ଚୁକ୍ରୀ—ସ୍ତ୍ରୀ. ବି. (ଚୁକ୍ର+ଈ)ଖୁଙ୍ଗେଙ୍ଗା, ଖଟାପାଳଙ୍ଗ ।

ଚୁକ୍ରୀମା—ପୁଂ. ବି. (ଚୁକ୍ର+ଭା.ଇମନ୍) ଅମ୍ଳତ୍ୱ, ଚୁକ୍ରର ଭାବ ।

ଚୁକ୍ଷା—ସ୍ତ୍ରୀ. ବି. ହିଂସା ।

ଚୁଗୁଲି—ଯା. ବି. ଖଟି, ପଶ୍ଚାତ୍‌ରେ କୌଣସି ବ୍ୟକ୍ତିର ନିନ୍ଦା ।

ଚୁଗୁଲିଆ—ଗ୍ରା. ବିଂ. ଖଟୁଆ, ଯେ ପରୋକ୍ଷରେ ଅନ୍ୟର ନିନ୍ଦାକରେ ।

ଚୁଗୁଲିକରିବା—ଗ୍ରା. କ୍ରି. ପରୋକ୍ଷରେ ପରର ବଦନାମ କରିବା ।

ଚୁଗୁଲଖୋର୍—ଯା. ବିଂ. ନିନ୍ଦାକାରୀ,

ଖଚୁଆ, ଯେ ଖଚ କହେ, ଯେ ଖଚ କଥା ଶୁଣେ ।

ଚୁଙ୍ଗ୍ଚୁଙ୍ଗ୍—ଗ୍ରା. ବଂ. ଅସ୍ଥିର ।

ଚୁଙ୍ଗ୍ଚୁଙ୍ଗ୍ହେବା—ଗ୍ରା. କ୍ରି. ଅସ୍ଥିରହେବା ।

ଚୁଙ୍ଗ୍ଚୁଙ୍ଗିଆ—ଗ୍ରା. ପୁଂ. ବଂ. ଅସ୍ଥିର, ଚପଳ, ତରତରିଆ, ଯୁବା ଓ ସୁନ୍ଦର, ସୁସ୍ଥ ଓ ସବଳ ।

ଚୁଙ୍ଗା—ଗ୍ରା. ବି. ନଳ, ନଳୀ, ବାଉଁଶ ନଳ, କାହାଳୀ ।

ଚୁଙ୍ଗି—ଗ୍ରା. ବି. ନଳୀ, ସାନ ନଳ, ସାନ ଚିଲମ, ସହର ଭିତରକୁ ବାହାରୁ ବିକିଆଣିଥିବା ବ୍ୟକ୍ତିଠାରୁ ନିଆଯିବା ଶୁଳ୍କ, ଚୁଙ୍ଗା ଦେଖ, (ପ୍ରା. କାଷ୍ଠ. ବି) ଡ଼ବର ।

ଚୁଙ୍ଗିଭଡ଼କା—ଗ୍ରା. ବି. (ବ୍ୟଙ୍ଗ୍ୟାର୍ଥ) ଗୁଡ଼ାଖୁ ଖାଇବାର ହୁକା ।

ଚୁଙ୍ଗୁଡ଼ିବାଳୁଙ୍କୁଣ୍ଡ—ଗ୍ରା. ବି. ଯେଉଁ କୁଟୁମ୍ବରେ ଅନେକ ଗୁଡ଼ିଏ ଛୋଟ ପିଲା ଥାଆନ୍ତି ।

ଚୂଚି—ଗ୍ରା. ବି. ଦୁଧଭୁଣ୍ଡି, ସ୍ତ୍ରୀସ୍ତନାଗ୍ର, ଯୁବତୀସ୍ତନ ।

ଚୁଚୁ—ଗ୍ରା. ବି. ଚୁଚୁକାର ଦେଖ, କୁକୁରକୁ ପାଖକୁ ଡ଼ାକିବାର ଶବ୍ଦ, (ଗ୍ରା. ଅ) (କୌଣସି ବସ୍ତୁ ବା ଉଦ୍ଦେଶ୍ୟ ନଷ୍ଟ ହେଲେ ବା କେହି ମଲେ ବା ବିପନ୍ନ ହେଲେ ତଜ୍ଜନିତ ଦୁଃଖରେ ଅନ୍ୟ ବ୍ୟକ୍ତି ଦ୍ୱାରା ଉଚ୍ଚାରିତ ଶବ୍ଦ) ହାୟ ।

ଚୁଚୁକ—ପୁଂ. କ୍ଲୀ. ବି. (ଚୁଚୁ+କୈ+ଅ) କୁଚାଗ୍ରଭାଗ, ସ୍ତ୍ରୀ ସ୍ତନର ଭୁଣ୍ଡି, ଦକ୍ଷିଣ ଦେଶବିଶେଷ, ତଦ୍ଦେଶବାସୀ ।

ଚୁଚୁକରିବା—ଗ୍ରା. କ୍ରି. ପାଳିତ ପଶୁପକ୍ଷୀ ଆଦିଙ୍କୁ ଗେଲ କରିବା, ପାଖକୁ ଡ଼ାକିବା ପାଇଁ ଜିଭ ଓ ଦାନ୍ତଦ୍ୱାରା ଚୁଚୁ ଶବ୍ଦ କରିବା, ଅନୁତାପ ବା ଆକ୍ଷେପ ପ୍ରକାଶାର୍ଥ ଉକ୍ତ ଶବ୍ଦକରିବା ।

ଚୁଚୁକାର—ଗ୍ରା. ବି. ଜିଭ ଓ ଦାନ୍ତଦ୍ୱାରା ପବନକୁ ଈଷତ୍ ପାଟିଭିତରକୁ ଟାଣିନେବାଦ୍ୱାରା ଉତ୍ପନ୍ନ ଚୁଚୁ ଶବ୍ଦ ।

ଚୁଚୁକୃତ—ବି. (ଚୁଚୁ+କୃ+ଭୂ. ତ) ଚୁଚୁକାର ଶବ୍ଦ, ଚୁମ୍ବନ ଶବ୍ଦ, ସ୍ତ୍ରୀ କୁଚାଗ୍ର ।

ଚୁଚୁନ୍ଦ୍ରା—ଗ୍ରା. ବି. ଗନ୍ଧମୂଷିକ ।

ଚୁଚୁନ୍ଦ୍ରୁ—ଗ୍ରା. ବି. ଏକଜାତୀୟ ବାଣ, ଲଙ୍କାର ଯୋଗବିଶେଷ ।

ଚୁଚୁମା—ଗ୍ରା. ବି. ଜିଭ ଓ ଓଠଦ୍ୱାରା ଶୋଷିବା କର୍ମ ।

ଚୁଚୁମାଇବା—ଗ୍ରା. କ୍ରି. ଅନ୍ୟକୁ (ଯଥା—ଶିଶୁକୁ) କୌଣସି ବସ୍ତୁ (ଯଥା—ସ୍ତନାଗ୍ର) ଚୁଚୁମିବାକୁ ଦେବା

ଚୁଚୁମାଚୁଚୁମି—ଗ୍ରା. ବି. ବହୁବାର ଚୁଚୁମିବା କର୍ମ ।

ଚୁଚୁମିବା—ଗ୍ରା. କ୍ରି. ଜିଭ ଓ ଓଠଦ୍ୱାରା ବାରମ୍ବାର ଶୋଷିବା ।

ଚୁଚୂ—ପୁଂ. ବି. ସୁନିଷଣ୍ଣ ଶାକ, ସୁନୁସୁନିଆ ଶାଗ । [ ଭୁଣ୍ଡି ।

ଚୁଚୂକ—ପୁଂ. ବି. ସ୍ତନାଗ୍ର, ସ୍ତ୍ରୀ ସ୍ତନର

ଚୁଞ୍ଚୁ—ପୁଂ. ବି. ଶାକବିଶେଷ ।

ଚୁଣ୍ଡ—ଗ୍ରା. ବଂ. ଓ କ୍ରି. ବଂ. ଓ ବଂ. ର ବଂ. ଉଗ୍ର ଦେଖ ।

ଚୁଞ୍ଚୁ—ପୁଂ. ବି. ଛୁଚୁନ୍ଦରୀ, ଚୁଚୁନ୍ଦ୍ରାମୂଷା, ସଙ୍କର ଜାତିବିଶେଷ, ହରିଙ୍କ ବଂଶୀୟ ହରିତଙ୍କ ପୁତ୍ର, ( ଅମୁକ କର୍ମପାଇଁ ) ବିଖ୍ୟାତ, (ଅମୁକ ବିଷୟରେ) ପାରଙ୍ଗମ ।

ଚୁଞ୍ଚୁମାସ୍ୟନ—କ୍ଲୀ. ବି. ବାତ ଓ ଶ୍ଳେଷ୍ମାଜନିତ ବ୍ରଣର ଅବସ୍ଥାବିଶେଷ ।

ଚୁଞ୍ଚୁରା—ସ୍ତ୍ରୀ. ବି. (ଚୁଞ୍ଚୁ+ରା+ଅ+ଈ) ତେନ୍ତୁଳୀ ମଞ୍ଜିରେ ଖେଳାଯିବା ଖେଳ ।

ଚୁଞ୍ଚୁଳ—ପୁଂ. ବି. ଗୀତପ୍ରଥା ପ୍ରବର୍ତ୍ତକ ବିଶ୍ୱାମିତ୍ର ମୁନିଙ୍କର ଜଣେ ପୁତ୍ର ।

ଚୁଞ୍ଚୁଳା—ସ୍ତ୍ରୀ. ବି. ତେନ୍ତୁଳି ମଞ୍ଜିରେ ଯେଉଁ ଦ୍ୟୁତକ୍ରୀଡ଼ା କରାଯାଏ ।

ଚୁଞ୍ଚୁଳୀ—ସ୍ତ୍ରୀ. ବି. ତେନ୍ତୁଳି ମଞ୍ଜିରେ ଖେଳାଯିବା ଖେଳ ।

ଚୁଟ୍‌କି—ଗ୍ରା. ବି. ଯାହା ବିଶେଷ ପ୍ରୟୋଜନୀୟ ନୁହେଁ, ପଦାଙ୍ଗୁଷ୍ଠର ଅଳଙ୍କାରବିଶେଷ ।

ଚୁଟ୍‌କିଆଇନ୍ଦୁର—ବି. ଚୁଟିଆମୂଷା ।

ଚୁଟ୍‌କିଆ—ଗ୍ରା. ବଂ. ଛୋଟ, କ୍ଷୁଦ୍ର, ଖର୍ବାକାର, ଅଳ୍ପ, ବାଜେ, ଅନାୟାସ ଗେୟ (ସୁର) ।

ଚୁଟ୍‌କିନ—ଗ୍ରା. କ୍ରି. ବଂ. ଚଞ୍ଚଳ, ଅତି-ଶୀଘ୍ର, ହଠାତ୍ ।

ଚୁଟ୍‌ଚୁଟ୍—ଗ୍ରା. ଅବ୍ୟ. (ଧ୍ୱନ୍ୟନୁକରଣ) ଜଳମିଶ୍ରିତ କୌଣସି କ୍ଷୁଦ୍ର ବସ୍ତୁକୁ ନିଆଁରେ ଭାଜିଲେ ତାହା ଯେପରି ଅନୁଚ୍ଚ ଶବ୍ଦକରେ, ମୁହୂର୍ତ୍ତିକ୍ ମୁହୂର୍ତ୍ତି, ଉପର୍ଯ୍ୟୁପରି ।

ଚୁଟ୍‌ଚୁଟି—ପ୍ରା. (ସମ୍ପ) ବି. (ବାଇଗଣ) ଫଳର ଭରତା ।

ଚୁଟି—ଗ୍ରା. ବି. (ଫ-ଚୂଡ଼ା) ମସ୍ତକରେ ରଖାଯିବା ଲମ୍ବକେଶ ବା ଶିଖା, କେଶଗୁଚ୍ଛ ।

ଚୁଟିଆ—ଗ୍ରା. ବଂ. ଯାହା ମୁଣ୍ଡରେ ଶିଖା ଥାଏ, (ବି) ଏକପ୍ରକାର କ୍ଷୁଦ୍ର ମୂଷା ।

ଚୁଟିଆମୂଷା—ଗ୍ରା. ବି. ଡୁଙ୍ଗେଇ ମୂଷା, ଏକପ୍ରକାର କ୍ଷୁଦ୍ର ମୂଷା, (ପ୍ରା. ବସ୍ତର) ଗୁଣ୍ଡୁଚ ମୂଷା ।

ଚୁଟିକଟା—ଗ୍ରା. ବଂ. ଲଣ୍ଡା, ଲୁନ୍‌ଚିଖ, ଯାହାର ବାଳ କଟୁରା ହୋଇଥାଏ, (ବି) ମୁସଲମାନ ।

ଚୁଟିଝିଙ୍କିବା—ଗ୍ରା. କ୍ରି. କୌଣସି ବ୍ୟକ୍ତିକୁ ଦଣ୍ଡଦେବା ନିମନ୍ତେ କେଶାକର୍ଷଣ କରିବା ।

ଚୁଟିପିଠି—ଗ୍ରା. ବି. (ଚୁଟି ଓ ପିଠି) ମନୁଷ୍ୟକୁ ମାରିବାର ଦୁଇଟି ସ୍ଥାନ, ଯଥା—(୧) ଚୁଟିଧରିବା, (୨) ପିଠିରେ ବିଧାଦେବା ।

ଚୁଟିରଖିବା—ଗ୍ରା. କ୍ରି. ମୁଣ୍ଡରେ କେଶଗୁଚ୍ଛ ଛାଡ଼ିବା ।

ଚୁଟିହାତରେପଡ଼ିବା—ଗ୍ରା. ବି. କୌଣସି ଲମ୍ବକେଶଥିବା ବ୍ୟକ୍ତିର ଶିଖା ଅନ୍ୟର ମୁଠାରେ ଧୃତହେବା, (ଲ. ଅର୍ଥ) ଅନ୍ୟର କବଳସ୍ଥ ହେବା ।

ଚୁଡ଼୍ଚୁଡ଼୍—ଗ୍ରା. ଅବ୍ୟ. ଚୁଙ୍ଗୁଡ଼ିଆଦି ଜଳୀୟାଂଶଯୁକ୍ତ ପଦାର୍ଥକୁ ନିଆଁରେ ପକାଇଲେ ଯେଉଁ ଶବ୍ଦ ହୁଏ ।

ଚୁଡ଼୍ମୁଡ଼୍—ଗ୍ରା. ଅବ୍ୟ. ଟଟକା ମୁଢ଼ି ଓ ଚୂଡ଼ାଭଜାଆଦି ଚୋବାଇବାର ଶବ୍ଦ ।

ଚୂଡ଼ଙ୍ଗଗଡ଼—ଗ୍ରା. ବି. କଟକ ସହରର ଗୁରୁମାଇଲ ଉତ୍ତର ବାରଙ୍ଗ ନିକଟରେ ଥିବା ଗୋଟିଏ ପ୍ରାଚୀନ ଗଡ଼ ।

ଚୂଡ଼ଙ୍ଗଦହ—ଗ୍ରା. ବି. କଟକର ଉତ୍ତରରେ ଦୁଇକ୍ରୋଶ ଦୂରବର୍ତ୍ତୀ ସାରଙ୍ଗଗଡ଼ ନିକଟରେ ଅବସ୍ଥିତ ଜଳପୂର୍ଣ୍ଣ ପାଟବିଶେଷ । [ ଦେଖ ।

ଚୂଡ଼ଙ୍ଗଦେବ—ଗ୍ରା.ବି. ଚୋରଗଙ୍ଗଦେବ

ଚୂଡ଼ଙ୍ଗବନ୍ଧ—ଗ୍ରା.ବି. ଚୂଡ଼ଙ୍ଗ ଗଡ଼ଠାରୁ ଭୁବନେଶ୍ୱର ପର୍ଯ୍ୟନ୍ତ ରାଜା ଚୋରଗଙ୍ଗଦେବଙ୍କଦ୍ୱାରା କୃତ ଉଚ୍ଚ ଓ ପ୍ରଶସ୍ତ ପଥ ।

ଚୂଡ଼ା—ଗ୍ରା. ବି. ବଳୁଆ ଧାନକୁ ସାମାନ୍ୟରେ ଭଜା କୁଟି ଢିହଁରୁ ପ୍ରସ୍ତୁତ କରିବା ପତଳା ଖାଦ୍ୟ ।

ଚୂଡ଼ାକୁଟିବା—ଗ୍ରା. କ୍ରି. ଧାନକୁ ଓଦାକରି ଓଦାଅବସ୍ଥାରେ ଓସାଇ କୁଟି ଢିହଁରୁ ଚୂଡ଼ା ବାହାର କରିବା ।

ଚୂଡ଼ାଗୁଡ଼ଲ—ଗ୍ରା. ବି. ଜଳଖିଆପାଇଁ ଚୂଡ଼ା ଓ ମେଶାଇପାଇଁ ଗୁଡ଼ଲ, (ଯାହାକୁ ଲୋକେ ବିଦେଶ ଗଲାବେଳେ ସଙ୍ଗେ ବାନ୍ଧି ନିଅନ୍ତି) ଚୂଡ଼ା ଓ ଗୁଡ଼ଲ ।

ଚୂଡ଼ାଦହି—ଗ୍ରା. ବି. ଖାଦ୍ୟାର୍ଥ ବ୍ୟବହୃତ ଚୂଡ଼ା ମିଶ୍ରିତ ଦହି ।

ଚୂଡ଼ାଦହିଆ—ଗ୍ରା.ବି. (ବ୍ୟଙ୍ଗ୍ୟାର୍ଥ) ଯେଉଁ ବ୍ରାହ୍ମଣମାନେ ଅନ୍ୟର ଘରକୁ ଆମନ୍ତ୍ରିତ ହୋଇ ଚୂଡ଼ା ଓ ଦହି ଖାଇବାକୁ ଯାଆନ୍ତି, ଚୂଡ଼ାଦହିପ୍ରିୟ ।

ଚୂଡ଼ାଭଜା—ଗ୍ରା.ବି.ଚୂଡ଼ାକୁ ଭଜା ତିଆରି କରିବା ଖାଦ୍ୟ, ହୁଡ଼ୁମ୍ବ ।

ଚୂଡ଼ି,ଚୂଡ଼ୀ—ଗ୍ରା. ବି. ସ୍ତ୍ରୀଲୋକମାନଙ୍କ ହାତରେ ପିନ୍ଧିବା ଚଟକା ଓ ପତଳା ଅଳଂକାରବିଶେଷ, କମିଜର ହସ୍ତ ପ୍ରାନ୍ତର ପଟି, କଫ୍, ୧ପଣ ବା ୭୨୦ ଗୋଟା ଗୁଆ, ଗ୍ରାମୋଫୋନ ଯନ୍ତ୍ରରେ ଖଞ୍ଜାଯିବା ରେକର୍ଡ଼ ।

ଚୂଡ଼ିଆ—ଗ୍ରା. ବି. ମୁଣ୍ଡରେ ଚୁଳଥିବା ଏକପ୍ରକାର ଯୁଦ୍ଧପ୍ରିୟ ପକ୍ଷୀ, ଗୋବର ଚଢ଼େଇ ଚୂଳିଆ, ଏକପ୍ରକାର ଓଢ଼ଣୀ, ଏକପ୍ରକାର ଲୁଗାଯୋଡ଼ ।

ଚୂଡ଼ିଢିଆ—ଗ୍ରା. ( ଗଞ୍ଜାମ ) ବି.କେଉଟ ବା ଲିଆରି ଜାତି ।

ଚୂଡ଼ିଶିକଳିଇବା—ଗ୍ରା.କ୍ରି. (ଶୁଭ ବାଚନ) ହାତରୁ ଚୂଡ଼ି ଓହ୍ଲାଇବା, କାଢ଼ିଦେବା ।

ଚୁଡୁଚୁଡୁ—ଗ୍ରା. ବି. କୌଣସି ଜଳୀୟାଂଶ ଥିବା ପଦାର୍ଥ ଖରା ବା ନିଆଁରେ ପଡ଼ି ଖଡ଼ଖଡ଼ା ହୋଇ ଶୁଖି ଯିବା ।

ଚୂଡ଼େଢିଆଣୀ—ଗ୍ରା ( ଗଞ୍ଜାମ ) ବି. କେଉଟୁଣୀ ।

ଚୁଣୀ—ଗ୍ରା.ବି.ରକ୍ତବର୍ଣ୍ଣ କ୍ଷୁଦ୍ର ରତ୍ନବିଶେଷ ।

ଚୁଣ୍ଡା—ଗ୍ରା. ବି. ବୋତଲ ମୁହଁ ବା ଅନ୍ୟ ଛିଦ୍ର ମୁଦିବାପାଇଁ (ପାଳ ବା ଶଗଡ଼ିକନାର) ବିଣ୍ଡା ।

ଚୁଣ୍ଡାଦେବା—ଗ୍ରା.କ୍ରି. ବିଣ୍ଡା ଦେଇ ମୁହଁ ବନ୍ଦ କରି ଦେବା ।

ଚୁଣ୍ଡିବା—ଗ୍ରା. କ୍ରି. ଖାଇବା, ଖାଦ୍ୟକୁ ଗିଳି ପକାଇବା, ଶେଞ୍ଜିଦେବା, ପୂରାଇଦେବା ।

ଚୁତ—ପୁଂ. ବି. (ଚୁତ+ଅ) ମଳଦ୍ୱାର, ଯୋନି, ଗାଣ୍ଡି ।

ଚୁତଲ—ପ୍ରା. ( ସମ୍ବଲ )ବି. ଗାଣ୍ଡି, ପିଚ୍ଛା, ଗୁହ୍ୟଦ୍ୱାର ।

ଚୁତି—ସ୍ତ୍ରୀ. ବି. (ଚୁତ+ଇ) ମଳଦ୍ୱାର, ଯୋନି, ଗାଣ୍ଡି ।

ଚୁତିଆ—ଗ୍ରା. ବି. କମାରଙ୍କ ସଣ୍ଡୁଆସି, ଶ୍ରେଷ୍ଠ ହାତୁଡ଼ି, ( ଗ୍ରା. ବିଂ ) ପାଜି, କୁଳାଙ୍ଗାର, ଧୀଟ, ମୂର୍ଖ ।

ଚୁଦ୍—(ଧାତୁ) ପ୍ରବର୍ତ୍ତାଇବା, ଉତ୍ତେଜିତ କରିବା, ପ୍ରାର୍ଥନା କରିବା, ଆଦେଶ କରିବା, ପଠାଇବା, ଅଡ଼ାଇବା, ଅନ୍ୱେଷଣ କରିବା, ନିମନ୍ତ୍ରଣ କରିବା ।

ଚୁନ୍‌ଚୁନ୍‌କରିବା-ଗ୍ରା.କ୍ରି.ଚୁନାଇବା ଦେଖ ।

ଚୁନ୍‌ଚୁନିଆ—ଗ୍ରା. ବ ଓ ବିଂ. ଚୁନାଚୁନା ଦେଖ ।

ଚୁନଟ୍—ଗ୍ରା. ବି. ବସ୍ତ୍ରାଦିର କୁଞ୍ଚାକୁଞ୍ଚି, କୁରୁତା ଇତ୍ୟାଦିରେ ଯେଉଁ କୁଞ୍ଚା କନାରେ ସିଲାଇ କାମ କରାଯାଏ ।

ଚୁନନ—ଗ୍ରା. ବି. ବଚ୍ଛା, ନିର୍ବାଚନ ।

ଚୁନି—ଗ୍ରା. ବି. ମାଣିକ, ପଦ୍ମରାଗମଣି ।

ଚୁନିଦା—ଗ୍ରା. ବିଂ. ବହୁ ବସ୍ତୁ ବା ବ୍ୟକ୍ତି ମଧ୍ୟରୁ ବଛା ହୋଇଥିବା, ଉତ୍କୃଷ୍ଟ, ପ୍ରଧାନ, ମୋକ୍ଷ ।

ଚୁନ୍ନୀ—ଗ୍ରା. ବି. ରତ୍ନବିଶେଷ, ମାଣିକ ।

ଚୁନ୍ଦ—ପୁଂ.ବିଂ.ବୁଦ୍ଧଦେବଙ୍କର ଏକ ଶିଷ୍ୟ ।

ଚୁନ୍ଧ—ପ୍ରା. (ଲରିଆ) ବି. କେଶ, ବାଳ, (ପ୍ରା. ସମ୍ବ) ଚୁଟି, ଶିଖା ।

ଚୁନ୍ଧନା—ଗ୍ରା, କ୍ରି. ଲମ୍ବ କାଠକୁ ହାଣି ଗଢ଼ କରିବା ।

ଚୁନ୍ଦୀ—ସ୍ତ୍ରୀ. ବି. ( ଚୁନ୍ଦ୍+କ.ଅ+ଇ ) କୁଟ୍ଟନୀ, କୁଟ୍ଟିନୀ, ଦୂତୀ ।

ଚୁପ୍—ଗ୍ରା.ଅବ୍ୟ.ପାଟି ବନ୍ଦକର,ଚୁପ୍‌ହୋ, ବି. ମୌନ, ବିଂ. ନୀରବ ।

ଚୁପ୍‌କରି—ଗ୍ରା. କ୍ରି. ବିଂ. ନୀରବରେ, ଅନ୍ୟଦ୍ୱାରା,ଅତର୍କିତଭାବରେ,ଗୁପ୍ତରେ ।

ଚୁପ୍‌କରିବା—ଗ୍ରା. କ୍ରି. ମୌନାବଲମ୍ବନ କରିବା, ନୀରବ ହେବା, କଥା ବନ୍ଦ କରିବା, ନିଶ୍ଚଳ ହେବା, (ସକର୍ମକ) କୌଣସି ବ୍ୟକ୍ତିକୁ କଥା କୁହାଇ ନ ଦେବା ।

ଚୁପ୍‌ଚାପ୍—ଗ୍ରା.ବି. ମୌନ, ବିଂ. ନୀରବ, ନିଃଶବ୍ଦ, ନିଃଶ୍ଚଳ, ଗୋପନୀୟ, ଗୁପ୍ତ, ଫୁସ୍‌ଫାସ୍, ଯୋଉ ଘାଆଶୂନ୍ୟ, (କ୍ରି. ବିଂ) ନୀରବରେ, ଗୋପନରେ, ଅନୁଚ୍ଚ ସ୍ୱରରେ ।

ଚୁପ୍‌ଚୁପ୍—ଗ୍ରା. ଅବ୍ୟ. ଚୁପ ଦେଖ; (ବିଂ ଓ କ୍ରି. ବିଂ) ଚୁପ୍‌ଚାପ୍ ଦେଖ ।

ଚୁପ୍‌ରେ—ଗ୍ରା. ଅବ୍ୟ. ଚୁପ୍ ଦେଖ ।

ଚୁପ୍‌ମାରିବା—ଗ୍ରା. କ୍ରି. ମୌନାବଲମ୍ବନ କରିବା, ନୀରବ ହେବା, କଥା ବନ୍ଦ କରିବା, ନିଶ୍ଚଳ ହେବା ।

ଚୁପ୍‌ରହ—ଗ୍ରା. ଅବ୍ୟ. ଚୁପ୍ ଦେଖ ।

ଚୁପ୍‌ସଇତାନ୍—ଗ୍ରା. ବିଂ. ଯେ ବାହାରେ ନମ୍ର ଦେଖାଯାଏ କିନ୍ତୁ ଭିତରେ ଦୁଷ୍ଟାମି ଥାଏ ।

ଚୁପ୍‌ସେ—ଗ୍ରା. କ୍ରି.ବିଂ. ଚୁପ୍‌ଚାପ୍ ଦେଖ ।

ଚୁପ୍‌ହେବା--ଗ୍ରା.କ୍ରି.ଚୁପ୍‌କରିବା ଦେଖ ।

ଚୁପା—ଗ୍ରା. ବି. ଚୋପା ।

ଚୁପିଚୁପି—ଗ୍ରା. ଅବ୍ୟ. ଆସ୍ତେ ଆସ୍ତେ, ଅପ୍ରକାଶ୍ୟ ଭାବେ ।
ଚୁପୁଣୀକା—ସ୍ତ୍ରୀ. ବି. ଇଷ୍ଟକାବିଶେଷ ଯଜ୍ଞାଗ୍ନି ରଖିବାର କୁଣ୍ଡ ।
ଚୁପୁଲ—ଗ୍ରା. ବି. ଚପୁଲ ଦେଖ ।
ଚୁପୁସୀ—ଗ୍ରା.ସ୍ତ୍ରୀ. ବିଂ.ଯେଉଁ ସ୍ତ୍ରୀ ବାହାରେ ସୁଶୀଳା ଦେଖାଯାଏ କିନ୍ତୁ ଭିତରେ ଦୁଷ୍ଟାମି ଥାଏ ।
ଚୁବାଇବା—ଗ୍ରା. କ୍ରି. ଗ୍ରେବାଇବା ।
ଚୁବୁକ—କ୍ଳୀ. ବି. ଚିବୁକ ଦେଖ ।
ଚବ୍ର—କ୍ଳୀ. ବି. ମୁଖ, ମୁହଁ, ପାଟି ।
ଚୁଭୁଗ୍ରଚୁଭୁରୁ—ଗ୍ରା. ବିଂ. ଘଣ୍ଟାଚଟକା ହୋଇଥିବା (ଖାଦ୍ୟଜଳାଦି) ।
ଚୁଭୁରିବା—ଗ୍ରା.କ୍ରି. ଡାଲ ଗିଲାସ ପ୍ରଭୃତି ଜଳପାତ୍ରରେ ହାତକୁ ବୁଡ଼ାଇ ଦେଇ ପାଣି ମାଗ୍ର କରିଦେବା, ଖାଦ୍ୟାଦିକୁ ଘାଣ୍ଟାଘୁଣ୍ଟା କରି ରୁଚିହୀନ କରିବା ।
ଚୁମକ—ଗ୍ରା.ବି.ଧାତୁର କ୍ଷୁଦ୍ର କ୍ଷୁଦ୍ର ପତଳା ଖଣ୍ଡ, ଚେପଟା ଓ ଚକଚକଆ କ୍ଷୁଦ୍ର ଧାତୁ ଖଣ୍ଡ ।
ଚୁମ—ପ୍ରା. (ସିଂହଭୂମ) ଚୁମ୍ବନ ।
ଚୁମା—ଗ୍ରା. ବି. ଚୁମ୍ବନ ।
ଚୁମାଇବା—ଗ୍ରା. କ୍ରି. ଚୁମିବାର ଣିଜନ୍ତ ରୂପ ।
ଚୁମାଖାଇବା—ଗ୍ରା. କ୍ରି. ଚୁମ୍ବନଦେବା ।
ଚୁମାଚୁମିହେବା—ଗ୍ରା. କ୍ରି. ପରସ୍ପର ପରସ୍ପରକୁ ଚୁମ୍ବନ କରିବା ।
ଚୁମିବା—ଗ୍ରା.କ୍ରି.ଚୁମ୍ବିବା,ଚୁମ୍ବନକରିବା ।
ଚୁମୁ—ଗ୍ରା. ବି. ପାଣି ପିଇବାର ଶ୍ରେଷ୍ଠ ସାମସେଇ ।
ଚୁମୁକ—ଗ୍ରା.ପାନୀୟଦ୍ରବ୍ୟ ଖାଇବାବେଳେ ପାଣି ପାତ୍ରରେ ଓଷ୍ଠ ସଂଯୋଗ ।
ଚୁମୁଟିବା—ଗ୍ରା. କ୍ରି. ଚିମୁଟିବା ଦେଖ ।
ଚୁମୁଢ଼କାର—ବି. ( ଧ୍ୱନ୍ୟନୁକରଣ ) ଚୁମ୍ବନଜନିତ ଚୁଁ ଚୁଁ ଶବ୍ଦ ।
ଚୁମୁଲା—ଗ୍ରା. ବି. ଚିମୁଲା, ମୁଚୁଲା ।
ଚୁମୁରି—ପୁଂ, ବି. ଋଗ୍ବେଦ ପ୍ରସିଦ୍ଧ ଗୋଟିଏ ଅସୁର ।
ଚୁମ୍ବ—ପୁଂ. ବି. (ଚୁମ୍ବ+ଭା.ଅ) ଚୁମ୍ବନ, ମୁଖରେ ମୁଖସ୍ପର୍ଶ, ଚୁମା ।
ଚୁମ୍ବକ—ପୁଂ. ବି. ( ଚୁମ୍ବ+କ. ଅକ ) ଲୌହାକର୍ଷକ ମଣି, ଅୟସ୍କାନ୍ତ ମଣି, ନିକଟର ଉପରଭାଗ, ଚୁମ୍ବକ ପଥର, ଗ୍ରନ୍ଥାନ୍ତରରୁ ସମଶ୍ରେଣୀର ବା ସମଭାବ ଗର୍ଭକ ଉଦ୍ଧୃତାଂଶ, ପଦ୍ୟର ଉପରସ୍ଥିତ ଅବଲମ୍ବନ, ବିସ୍ତୃତ ବହୁ ଗ୍ରନ୍ଥର ସାର-ସଂଗ୍ରହ, (ବିଂ) ଯେ ଚୁମ୍ବନ କରେ, କାମୁକ,ଧୂର୍ତ୍ତ,ଧକ,ଗ୍ରନ୍ଥର ସାରସଂଗ୍ରାହକ ।
ଚୁମ୍ବକପଥର—ବି. ଲୌହାକର୍ଷକ ମଣି ।
ଚୁମ୍ବକଲୌହ—ଗ୍ରା. ବି. ଯେଉଁ ଲୁହାରେ ଚୁମ୍ବକ ପଥରର ଗୁଣ ନିହିତ କରି ଯାଇଥାଏ ।
ଚୁମ୍ବକଶଲାକା—ବି.ଲୌହାକର୍ଷକ ଚୁମ୍ବକ କଣ୍ଟା, ଚୁମ୍ବକ ଗୁଣ ବିଶିଷ୍ଟ ଲୁହା ଛଡ଼ ।
ଚୁମ୍ବନ—କ୍ଳୀ. ବି. ( ଚୁମ୍ବ+ଭା.ଅନ ) ମୁଖେ ମୁଖସଂଯୋଗବିଶେଷ, ଚୁମା ।
ଚୁମ୍ବନଦାନ—ବି. ( ୬ତତ୍ ) ଅନ୍ୟର ମୁଖ ଆଦର ଚୁମ୍ବନ । [ ଚୁମ୍ବନ ।
ଚୁମ୍ବନା—ସ୍ତ୍ରୀ. ବି. (ଚୁମ୍ବ+ଭା,ଅନ+ଆ)
ଚୁମ୍ବନୀୟ—କ୍ରି. ବିଂ. (ଚୁମ୍ବ + ର୍ମ.ଅନୀୟ) ଯାହାକୁ ଚୁମ୍ବନକରିବା ଉଚିତ, ଚୁମ୍ବନଯୋଗ୍ୟ । [ ଚୁମ୍ବନ ।
ଚୁମ୍ବା—ସ୍ତ୍ରୀ. ବି, ( ଚୁମ୍ବ+ଭା, ଅ+ଆ )
ଚୁମ୍ବିତ—କ୍ରି.ବିଂ.(ଚୁମ୍ବ+ର୍ମ.ତ) ଯାହାକୁ ଚୁମ୍ବନ କରି ହୋଇଅଛି, ପରସ୍ପର ସମ୍ମିଳିତ ।
ଚୁମ୍ବିବା—ଗ୍ରା. କ୍ରି. ସ୍ନେହରେ କୌଣସି ବ୍ୟକ୍ତିର ଗଣ୍ଡଦେଶ ଚିବୁକ ବା ମସ୍ତକରେ ଓଷ୍ଠ ଲଗାଇବା ବା ଚୁମ୍ବନ କରିବା, କୋମଳ ଭାବରେ ସ୍ପର୍ଶକରିବା,ଭେଟିବା, ହାବୁଡ଼ିବା, କଥା ସଙ୍ଗେ ସଙ୍ଗେ ଅର୍ଥ ଗୋଡ଼ାଇବା, ( ଲ. ଅର୍ଥ ) ଅନୁଭୂତ ହେବା, ବୋଧହେବା,ଆଗମନ କରିବା, ପିଇବା,ଉପଭୋଗ କରିବା ଭେଟିବା ।
ଚୁମ୍ବୀ—ପୁଂ. ବିଂ. (ଚୁମ୍ବ+କ.ଇନ୍) ଯେ ଚୁମ୍ବନ କରେ, ସଂଯୁକ୍ତ, ଚୁମ୍ବନ କରୁଥିବା, ସ୍ପର୍ଶ କରୁଥିବା, ସମ୍ବନ୍ଧୀୟ, ଆକ୍ରାନ୍ତ,(ସ୍ତ୍ରୀ) ଚୁମ୍ବିନୀ ।
ଚୁୟାଲ—ଗ୍ରା. ବି. ଚିବୁକାସ୍ଥି, ହନୁ, କ୍ଷରଣଶୀଳ, ପାହାଡ଼ିଆ ଲୋକ ।
ଚୁର୍—ଗ୍ରା.ବିଂ. ଅତ୍ୟନ୍ତ ନିଶାରେ ବିହ୍ୱଳ, ମାଦକ ସେବନର ଫଳରେ ବାହ୍ୟ-ଜ୍ଞାନ ଶୂନ୍ୟ ।
ଚୁର୍କି—ଗ୍ରା. ବି. ମସ୍ତକର ମଧ୍ୟଭାଗସ୍ଥ ଲମ୍ବ ଓ କ୍ଷୁଦ୍ର କେଶଗୁଚ୍ଛ ।
ଚୁର୍ମାର୍—ଯା. ବିଂ. ଚୂର୍ଣ୍ଣ ଓ ମର୍ଦ୍ଦିତ, ଚୂର୍ଣ୍ଣନ, ଚୂର୍ଣ୍ଣ, ଚୂନା ହୋଇଯିବା ।
ଚୁର—ପୁଂ. ବିଂ. ( ଚୁର+ଅ ) ଯେ ଚୋରି କରେ, ଚୋରି କରୁଥିବା, ଗ୍ରା. ବି. ଚୋର ।
ଚୁରଟ୍—ଯା. ବି. ଧୂଆଁ ମଧରେ ଟାଣିବା ପିକା, ସିଗାରେଟ ।
ଚୁରଣ—ବି. (ଚୁର+ଭା. ଅନ) ଚୋରି ।
ଚୁରା—ସ୍ତ୍ରୀ. ବି. ( ଚୁର+ଭା.ଅ+ଆ ) ଚୌର୍ଯ୍ୟ,ଚୋରି, ପରଦ୍ରବ୍ୟ ଅପହରଣ ।
ଚୁରାଇବା—ଗ୍ରା.କ୍ରି. ଚୂରାଇବା ଦେଖ ।
ଚୁରାଦି—ପୁଂ. ବି. ଚୁର ପ୍ରଭୃତି କେତେ-ଗୁଡ଼ିଏ ଧାତୁ ।
ଚୁରି—ପ୍ରା. ( ବାଲେଶ୍ୱର ) ବି.ଚୌର୍ଯ୍ୟ, ଚୋରି, ପର ଦ୍ରବ୍ୟର ଅପହରଣ ।
ଚୁରୀ—ସ୍ତ୍ରୀ. ବି. (ଚୁର+ଈ) ଉପକୂପ, କୂପ ନିକଟବର୍ତ୍ତୀ କ୍ଷୁଦ୍ର ଜଳାଶୟ ।
ଚୁରୁକ—ଗ୍ରା. ବି. ଚୁରକ ଦେଖ ।
ଚୁରୁଚୁରୁ—କ୍ରି. ବିଂ. (କ.ଧା) ଦୁର୍ଜ୍ଜନ ।
ଚୁଲ୍—ପ୍ରା. (ସମ୍ବ) ବି.କେଶ, ଚୁଳି ।
ଚୁଲ—କ୍ରି. ବିଂ. (ଚୁର + ଅ) ଚୋର ।
ଚୁଲକ—ବି. ଚୁଳୁକ ଦେଖ ।
ଚୁଲ୍ଲ—ଗ୍ରା. ବି. ଉହ୍ମେଇ, ଚୁଲ୍ଲୀ ।
ଚୁଲ୍ୟା—ମାଲବାର ଓ ସିଂହଳର ଏକ ପ୍ରକାର ମୁସଲମାନ ।
ଚୁଲ୍ଲୀ—ଗ୍ରା. ବି. ରନ୍ଧନ ନିମନ୍ତେ ଯେଉଁ କୁଣ୍ଡ ବା ଗର୍ତ୍ତରେ ନିଆଁ ଜଳାଯାଏ ।
ଚୁଲ୍ଲୀଉଠାଇବା—ଗ୍ରା. କ୍ରି. (ଲ. ଅର୍ଥ) ଏକ ସ୍ଥାନରୁ ବାସ ଭାଙ୍ଗି ଅନ୍ୟତ୍ର ଚାଲିଯିବା ।
ଚୂଳ୍ଳିକା—ପ୍ରା.( ସମ୍ବ. ) ବି.,କାନ୍ଥକୁର ।

ଚୁଲ୍ଲୀକଥାଉ—ଗ୍ରା.ଅବ୍ୟ. (ଅମୁକବିଷୟ) ଆଲୋଚନା କରିବାର ବର୍ତ୍ତମାନ ଲୋଡ଼ାନାହିଁ ।

ଚୁଲ୍ଲୀକଯିବା—ଗ୍ରା.କ୍ରି.(କୌଣସିବ୍ୟକ୍ତିର ଅନୁରୋଧ) ଆଗ୍ରାହ୍ୟ ହେବା, (କୌଣସି ଉପଦେଶ ବା ବାକ୍ୟ) କାହା ଦ୍ୱାରା ମନୋଯୋଗ ପୂର୍ବକ ଶୁଣା ନ ଯିବା, (ଗାଳିରେ ବ୍ୟବହୃତ) ପୋଡ଼ି ହୋଇ ମରିବା ।

ଚୁଲ୍ଲୀଚଉକା—ଗ୍ରା. ବି. ରାନ୍ଧିବା ପୂର୍ବରୁ ଚୁଲୀ ଓ ତାହାର ଚାରିପାଖେ ଗୋବର ପାଣିରେ ସଂସ୍କାର ହୋଇଥିବା ସୀମା ।

ଚୁଲ୍ଲୀଚଉକାଦେବା—ଗ୍ରା. କ୍ରି. ରାନ୍ଧିବା ପୂର୍ବରୁ ଚୁଲ୍ଲୀର ଚାରି ପାଖେ ଗୋବର ପାଣିରେ ଲିପି ସଂସ୍କାର କରିବା ।

ଚୁଲିଚାଳନାହିଁଅଘରବାସ—ଗ୍ରା. (ପ୍ରବଚନ) ଯେଉଁ ବ୍ୟକ୍ତିର ରହିବା ପାଇଁ ଗୃହ ଓ ରନ୍ଧନ କରିବା ପାଇଁ ଚୁଲ୍ଲୀ ନାହିଁ ।

ଚୁଲ୍ଲୀଚାଳରେ ବାସପାଇବା—ଗ୍ରା.କ୍ରି.ନିରାଶ୍ରୟ ଅବସ୍ଥାରେ କୌଣସି ସ୍ଥାନରେ ଯେନକେନ ପ୍ରକାରେ ଆଶ୍ରୟ ପାଇବା ।

ଚୁଲ୍ଲୀଜଳିବା—ଗ୍ରା.ବି. ଚୁଲ୍ଲୀ ମଧ୍ୟରେ ଥିବା କାଠ ଆଦି ଜଳିବା, ରୋଷେଇବାସ ହେବା ।

ଚୁଲ୍ଲୀଜାଳିବା—ଗ୍ରା. କ୍ରି. ଚୁଲ୍ଲୀର ନିଆଁକୁ ସତେଜକରିବା ।

ଚୁଲ୍ଲୀଝିଙ୍କା—ଗ୍ରା.ବି. ଚୁଲ୍ଲୀ ଉପରେ ହାଣ୍ଡି ବସିବା ପାଇଁ ସ୍ଥାପିତ ତିନିଗୋଟି ମାଟିପିଣ୍ଡ, ବନ୍ୟବୃକ୍ଷବିଶେଷ ।

ଚୁଲ୍ଲୀଝରକା—ଗ୍ରା.ବି. ଚୁଲ୍ଲୀ ଉପରେ ହାଣ୍ଡି ବସିବା ସମୟରେ ଚୁଲ୍ଲୀର ଝିଙ୍କା ଓ ହାଣ୍ଡି ମଧ୍ୟରେ ଯେଉଁ ବ୍ୟବଧାନ ଥାଏ ।

ଚୁଲ୍ଲୀପଶା—ଗ୍ରା.ପୁଂ. ବିଂ. ପୋଡ଼ି ହୋଇ ମରିବାର ଉପଯୁକ୍ତ (ବ୍ୟକ୍ତି),(ସ୍ତ୍ରୀ)ଚୁଲ୍ଲୀପଶୀ ।

ଚୁଲ୍ଲୀପାଉଁଶ—ଗ୍ରା. ବି.ଚୁଲ୍ଲୀରେ ଜଳିବା କାଠର ପାଉଁଶ, ( ବିରକ୍ତି ବା ଘୃଣା ବ୍ୟଞ୍ଜକ ) ନଷ୍ଟ ହୋଇଥିବା ବସ୍ତୁ ବା ବିଷୟ ।

ଚୁଲ୍ଲୀପୂଜା—ଗ୍ରା. (ଯାଜପୁର) ବି. ଭାଦ୍ରବ ଶୁକ୍ଳ ଏକାଦଶୀଦିନ ଉପରଓଳି ଚୁଲ୍ଲୀକୁ କରାଯିବା ପୂଜା ।

ଚୁଲ୍ଲୀଫୁଙ୍କା—ଗ୍ରା. ବି. ଚୁଲ୍ଲୀରେ ନିଆଁ ଜାଳିବା ପାଇଁ ମୁହଁ ବା ନଳ ଦ୍ୱାରା ଚୁଲ୍ଲୀରେ ଥିବା କାଠଆଦିକୁ ଫୁଙ୍କିବା ।

ଚୁଲ୍ଲୀଫୁଙ୍କିବା—ଗ୍ରା. କ୍ରି. ଚୁଲ୍ଲୀ ଜଳାଇବା ସକାଶେ ମୁହଁରେ ଫୁଙ୍କିବା, (ଲକ୍ଷଣାର୍ଥ) ଅନ୍ନାଦି ପାକ କରିବା ।

ଚୁଲ୍ଲୀମୁଣ୍ଡ—ଗ୍ରା. ବି. ଚୁଲ୍ଲୀର ନିକଟବର୍ତ୍ତୀ ସ୍ଥାନ, ଦୁଇଟି ଚୁଲ୍ଲୀର ମଧ୍ୟବର୍ତ୍ତୀ ସ୍ଥାନ, (ଲକ୍ଷଣାର୍ଥ)ଅନ୍ତଃପୁର, ପାକଶାଳା ।

ଚୁଲ୍ଲୀମୁଣ୍ଡକୁଆଶ୍ରାକରିବା—ଗ୍ରା.କ୍ରି.କେବଳ ଗଣ୍ଡାଏ ଖାଇବା ଲାଗି କୌଣସିଠାରେ ପଡ଼ି ରହିବା ।

ଚୁଲ୍ଲୀମୁହଁ—ଗ୍ରା. ବି. ଚୁଲ୍ଲୀରେ ନିଆଁ ଓ ଜାଳଦେବା ଓ ଫୁଙ୍କିବା ନିମନ୍ତେ ଚୁଲ୍ଲୀର ସାମନା ପାର୍ଶ୍ୱରେ ଯେଉଁ ରନ୍ଧ୍ର ହୋଇଥାଏ ।

ଚୁଲ୍ଲୀମୁହଁପୂଜା—ଗ୍ରା.ବି.ବୈଶ୍ୱଦେବ କର୍ମ ।

ଚୁଲ୍ଲୀରେ ପଶିବା—ଗ୍ରା. କ୍ରି. ଚୁଲ୍ଲୀକୁଯିବା ଦେଖ ।

ଚୁଲୁକ—ପୁଂ. ବି. (ଚୁଲ+ଉକ)ପୋଷ, ପ୍ରସୃତ, ହସ୍ତକୋଷ, ଘନକର୍ଦ୍ଦମ, କ୍ଷୁଦ୍ର ଭାଣ୍ଡବିଶେଷ, ମାଷମଜ୍ଜନୋକ୍ତ ଜଳଚକ୍ର, ଗୋତ୍ର ପ୍ରବର୍ତ୍ତକ ଋଷିବିଶେଷ ।

ଚୁଲୁକା—ସ୍ତ୍ରୀ. ବି. ନଦୀବିଶେଷ ।

ଚୁଲୁକିତ—ବିଂ.(ଚୁଲୁକ+ଇତ) ଗଣ୍ଡୂଷ ଦ୍ୱାରା ପୀତ, କର୍ଦ୍ଦମଯୁକ୍ତ, ପଙ୍କିଳ, (ସ୍ତ୍ରୀ) ଚୁଲୁକିତା ।

ଚୁଲୁକୀ—ପୁଂ. ବିଂ. ( ଚୁଲୁକ+ଇନ୍ ) ଚୁଲୁକଯୁକ୍ତ, (ବି) ମତ୍ସ୍ୟବିଶେଷ ।

ଚୁଲୁମ୍ପ—ପୁଂ.ବି.(ଚୁଲୁମ୍ପ+ଅ)ଅତିଶୟ ଯତ୍ନସହକୃତ ବାଳକର ପ୍ରତିପାଳନ ।

ଚୁଲୁମ୍ପା—ସ୍ତ୍ରୀ.ବି. (ଚୁଲୁମ୍ପ+ଆ)ଛାଗୀ ।

ଚୁଲୁମ୍ପୀ—ପୁଂ. ବି. ( ଚୁଲୁମ୍ପ+ଇନ୍ ) ମତ୍ସ୍ୟବିଶେଷ, ଏହାର ଆକୃତି ଶିଶୁମାରପରି ।

ଚୁଲ୍ଲ—କ୍ଲୀ. ବି. ଚକ୍ଷୁଷୀ, କ୍ଳିନ୍ନନେତ୍ର, କ୍ଲେଦଯୁକ୍ତ ଚକ୍ଷୁ, (ବିଂ) କ୍ଳିନ୍ନଚକ୍ଷୁବିଶିଷ୍ଟ ।

ଚୁଲ୍ଲକ—ପୁଂ. ବି: ଚୁଲୁକ ଦେଖ ।

ଚୁଲ୍ଲକୀ—ସ୍ତ୍ରୀ. ବି.(ଚୁଲ୍ଲି+କ.ଅକ+ଈ) ଶିଶୁମାର, ଶୁଶୁକ,ନଦୀର ଅପର ପାର୍ଶ୍ୱ, ଏକପ୍ରକାର ସ୍ଥାଳି, ରେକାବ ।

ଚୁଲ୍ଲା—ବି. (ଚୁଲ୍ଲି+କ.ଅ+ଆ) ନିଆଁଜାଳିବା ସ୍ଥାନ, ଚଡା, ଜୁଇ ।

ଚୁଲ୍ଲି—ସ୍ତ୍ରୀ.ବି. (ଚୁଲ୍ଲ+କ,ଇ)ପାକନିମିତ୍ତ ଅଗ୍ନି ରଖିବାର ସ୍ଥାନ, ଚଡା, ଜୁଇ ।

ଚୁଲ୍ଲୀ—ସ୍ତ୍ରୀ.ବି. (ଚୁଲ୍ଲି+ଈ)ଜୁଇ, ଚଡା, ଉହ୍ମେଇ, ଚୁଲ୍ଲୀ ।

ଚୁଚ୍ୟୁଷା—( ଚ୍ୟୁତ୍+ସନ୍ ) ଭଲ କରି ଗ୍ରେପିବା ।

ଚୁସ୍ତ—ଯା. ବିଂ. ଟାଣୁଆ, ଶକ୍ତ, ଦୃଢ଼, ଅଶିଥିଳ, ଚୌରସ, କର୍ମଠ, ଚାଲାଖ, ଯାହା ଶିଥିଳ ବା ଢ଼ିଲା ନୁହେ ।

ଚୁସ୍ତ—କ୍ଲୀ.ବି.ମାଂସପିଣ୍ଡବିଶେଷ,ସ୍ଥାଲୀରେ ଭଜା ହୋଇଥିବା ମାଂସ, ପଣସ ପ୍ରଭୃତି ଫଳର ଅସାର ଭାଗ ।

ଚୁହାଁ—ଗ୍ରା. କ୍ରି. ଗୃହିଁବା, ଅବଲୋକନ, (ବି) ଗ୍ରେଷିବା କର୍ମ, ଚୁଚୁମ୍ପା ।

ଚୁହିଁଇବା—ଗ୍ରା.କ୍ରି. ଗୃହିଁବାର ଣିଜନ୍ତରୂପ, ଚୁହିଁବାର ଣିଜନ୍ତରୂପ ।

ଚୁହାଁଚୁହିଁ—ଗ୍ରା. ବିଂ. ଅନ୍ୟୋନ୍ୟରେ ଦେଖାଦେଖି, ଚହାଁଚହିଁ, (ବି) ବହୁବାର ଗ୍ରେଷିବା ବା ଚୁଚୁମ୍ପିବା କର୍ମ ।

ଚୁହାଡ଼—ଗ୍ରା.ବି. ଅସଭ୍ୟ, ଜଙ୍ଗଲଜାତି, ହାଡ଼ି, ମେହେନ୍ତର, (ବିଂ) ଅସଭ୍ୟ, ଅଭଦ୍ର, ନୀଚ ।

ଚୁହାଣ—ଗ୍ରା.ବି. ଚୌହାଣ, ଚୌହାନବଂଶ, କ୍ଷତ୍ରିୟଙ୍କ ଶାଖାବିଶେଷ, ନୀଚ ଜାତିର ଗୃହଦାହକ ରାଜସେବକବିଶେଷ ।

ଚୁହାନ୍—ଗ୍ରା. ବି. ଚୌହାଣ, ଚୌହାନବଂଶ, କ୍ଷତ୍ରିୟଙ୍କ ଶାଖାବିଶେଷ ।

ଚୁହିଁବା—ଗ୍ରା. କ୍ରି. ଶୋଷିବା ।

ଚୂଚୁକ—କ୍ଲୀ. ବ.କୁଚାଗ୍ର, (ବି°) ଚୂଷଣ-ଶକ୍ତିସ୍ଥାନ ।

ଚୂଡ଼—ଗ୍ରା. ବ. (ଚୁଡ଼+ମଂ.ଅ) ହସ୍ତାଭରଣ, ବୃଷଭାଦି ପଶୁଙ୍କ ପିଠିରେ ବାହାରିଥିବା ମାଂସପିଣ୍ଡ, ଚୂଲ, ଚୁଟୀ, ଶଙ୍ଖଚୂଡ଼ ନାମକ ଦୈତ୍ୟ, ଗୁମ୍ଫ, ଘର ଓ ପାହାଡ଼ଆଦିର ଶିଖା, ଶ୍ରେଷ୍ଠ କୂଅ ।

ଚୂଡ଼କ—ପୁଂ. ବ ( ଚୂଡ଼+ମଂ.ଅକ ) ଚୂଡ଼ ଦେଖ ।

ଚୂଡ଼ା—ସ୍ତ୍ରୀ. ବ.( ଚୂଡ଼+ମଂ.ଅ+ଆ ) ମୟୂରଶିଖା, ଶିଖା, ବଡ଼ଘର, ତୃଣାଦି ନିର୍ମିତ ଗୃହର ଛାତ, ବାହୁର ଅଳଂକାର, ଅଗ୍ରଭାଗ, କୂପ, ଗୁଞ୍ଜା, କାଇଞ୍ଚ, ଚୂଡ଼ି, ଶୃଙ୍ଗ, ଝୁଣ୍ଟି, କେଶ, ଜଟ, ମସ୍ତକ, ମୁକୁଟ, ଶ୍ୱେତଗୁଞ୍ଜା, ମସ୍ତକଭୂଷଣ, (ଚୂଡ+ଭା.ଅ+ଆ)ପ୍ରଧାନ-ନାୟକ, ଦଶବିଧ ସଂସ୍କାର ମଧ୍ୟରେ ଏକପ୍ରକାର,ଚୂଡ଼ାକରଣ, ପ୍ରେରଣ ।

ଚୂଡ଼ାକରଣ—କ୍ଲୀ.ବ.(୬ତତ୍ର)ବ୍ରାହ୍ମଣାଦି ଦ୍ୱିଜାତି ବାଳକର ପ୍ରଥମ କ୍ଷୌର ବା କେଶମୁଣ୍ଡନ ରୂପ ସଂସ୍କାର, ବାଳପକା ।

ଚୂଡ଼ାକର୍ମ—କ୍ଲୀ.ବ.(୬ତତ୍ର)ଚୂଡ଼ାକରଣ ଦେଖ । [ ପର୍ବତ ।

ଚୂଡ଼ାନାଗ—ସିଂହଳଦ୍ୱୀପସ୍ଥିତ ଗୋଟିଏ

ଚୂଡ଼ାନ୍ତ—ପୁଂ. ବ. (୬ତତ୍ର) ଚୂଡ଼ାର ଶେଷଭାଗ, ସିଦ୍ଧାନ୍ତ, ଶେଷ ନିଷ୍ପତ୍ତି, ଚରମ ବା ଶେଷସୀମା, ପରାକାଷ୍ଠା ।

ଚୂଡ଼ାନ୍ତନିଷ୍ପତ୍ତି—ଗ୍ରା.ବ. ଶେଷ ନିଷ୍ପତ୍ତି ।

ଚୂଡ଼ାପ୍ରତିଗ୍ରହ—ପୁଂ.ବ. (ବ.ଗ୍ରା)ବୌଦ୍ଧମାନଙ୍କର ଗୋଟିଏ ତୀର୍ଥସ୍ଥାନ ।

ଚୂଡ଼ାଭୟ—ଗ୍ରା.ପୁଂ.ବ. ସିଂହଳଦ୍ୱୀପର ଜଣେ ରାଜା ।

ଚୂଡ଼ାମଣି—ପୁଂ.ବ(କ.ଧା)ଶିରସ୍ଥିତ ମଣି, କାକମାଚିକା, ଯୋଗବିଶେଷ, ଶୁଭାଶୁଭ ଗଣନାବିଶେଷ, ବଙ୍ଗଦେଶୀୟ ଶାସ୍ତ୍ର ବ୍ୟବସାୟୀ ପଣ୍ଡିତମାନଙ୍କର ଉପାଧିବିଶେଷ, ଶଙ୍ଖଚୂଡ଼ର ମସ୍ତକସ୍ଥିତ ମଣି, ଜଣେ ଧର୍ମଶାସ୍ତ୍ରକାର, ଜଣେ ଜ୍ୟୋତିଃଶାସ୍ତ୍ରକାର ।

ଚୂଡ଼ାମଣିରସ—ପୁଂ. ବ. କ୍ଷୟରୋଗର ଔଷଧବିଶେଷ ।

ଚୂଡ଼ାମନ୍—ଗ୍ରା.ବ. ଓଡ଼ିଶା ବାଲେଶ୍ୱର ଉପକୂଳର ପ୍ରାଚୀନ ବନ୍ଦରବିଶେଷ ।

ଚୂଡ଼ାମ୍ଳ—କ୍ଲୀ.ବ.(ବ.ଗ୍ରା)ବୃକ୍ଷାମ୍ଳ,ତିନ୍ତୁଳ ।

ଚୂଡ଼ାର—ବି. ବି°. (ଚୂଡ଼ା+ର+ଅ) ଚୂଡ଼ାଗତ,ଚୂଡ଼ାରେ ଅବସ୍ଥିତ, ଶିଖାଯୁକ୍ତ, (ବି) ମସ୍ତକ ।

ଚୂଡ଼ାରକ—ବି.ବି°.ଚୂଡ଼ାଯୁକ୍ତ,(ପୁଂ.ବ) ଋଷିବିଶେଷ, ଚୂଡ଼ାରକ ମୁନିଙ୍କ ଗୋତ୍ରାପତ୍ୟ ।

ଚୂଡ଼ାରତ୍ନ—କ୍ଲୀ.ବ.(୬ତତ୍ର)ଚୂଡ଼ାମଣି ।

ଚୂଡ଼ାଲ— ବି.ବି°. (ଚୂଡ଼ା+ଲ)ଚୂଡ଼ାଯୁକ୍ତ, ଶିଖାଯୁକ୍ତ ( ପ୍ରାଣୀ ), (କ୍ଲୀ. ବ) ମସ୍ତକ ।

ଚୂଡ଼ାଲା—ସ୍ତ୍ରୀ. ବ(ଚୂଡ଼ାଲ+ଆ)ଉଚ୍ଚଟାତୃଣ, ନିର୍ବିଷୀ ଘାସ, ନାଗର ମୁଥା, ଶ୍ୱେତଗୁଞ୍ଜା, ଧଳାକାଇଁଚ ।

ଚୂଡ଼ାବନ—କ୍ଲୀ.ବ. ଲହୋଡ଼ର ନିକଟବର୍ତ୍ତୀ ଗୋଟିଏ ଗିରି ।

ଚୂଡ଼ାବାନ୍—ପୁଂ. ବି°. (ଚୂଡ଼ା+ବାନ୍) ଚୂଡ଼ାବିଶିଷ୍ଟ, ଯାହାର ଚୂଡ଼ାଅଛି, (ସ୍ତ୍ରୀ) ଚୂଡ଼ାବତୀ । [ ଯୁକ୍ତ ।

ଚୂଡ଼ିକ—ବି. ବି°. (ଚୂଡ଼+ଇକ)ଚୂଡ଼ା-

ଚୂଡ଼ିକା—ସ୍ତ୍ରୀ. ବ. ଚୂଳିକା ।

ଚୂଡ଼ୀ—ପୁଂ. ବ. ( ଚୂଡ଼ା+ଇନ୍ ) ଚୂଡ଼ାଯୁକ୍ତ, ଯାହାର ଚୂଡ଼ା ଅଛି, (ସ୍ତ୍ରୀ) ଚୂଡ଼ିନୀ ।

ଚୂତ—ପୁଂ. ବ.( ଚୂଷ+ମଂ.ତ ) ଆମ୍ର (ବୃକ୍ଷ ଓ ଫଳ), (ଚ୍ୟୁତ+ଅ)କ୍ଲୀ. ବ. ମଳଦ୍ୱାର, ଭଗ, ପ୍ରସବଦ୍ୱାର, ଯୋନି ।

ଚୂତକ—ପୁଂ. ବ. (ଚୂତ+କ) ଚୂତ ଦେଖ ।

ଚୂତମୁକୁଳ—ବ.(୬ତତ୍ର)ଆମ୍ବବଉଳ ।

ଚୂତଲତା—ବ. (କ୍ରତତ୍ର) ଲଟାଣିଆଁ ଆମ୍ବଗଛ ।

ଚୂନ—ଗ୍ରା. ବ, (ସଂ-ଚୂର୍ଣ୍ଣ) ପଥର ଶିପ ପ୍ରଭୃତିକୁ ପୋଡ଼ିବା ଦ୍ୱାରା ଜାତ ଚୂନ ।

ଚୂନକଲା—ଗ୍ରା. ବ. କୌଣସି ବ୍ୟକ୍ତିକୁ ହାସ୍ୟାସ୍ପଦ କରିବା ବା ଦଣ୍ଡ ଦେବା ନିମନ୍ତେ ତାହାର ଏକ ଗାଲରେ ବୋଳାଯିବା ଚୂନ ଓ ଅନ୍ୟ ଗାଲରେ ବୋଳାଯିବା କଳା ।

ଚୂନକଳାଦେବା ( ମୁହଁରେ )—ଗ୍ରା. କ୍ରି. ଲଜ୍ଜିତ କରିବା ପାଇଁ ଅପରାଧୀ ବ୍ୟକ୍ତିର ଏକ ଗାଲରେ ଚୂନ ଓ ଏକ ଗାଲରେ କାଳି ବୋଳିବା ।

ଚୂନକାମ—ବ. (ଚୂନ+କର୍ମ) ଚୂନରେ କରାଯିବା ପଲସ୍ତରା ଓ ଗାନ୍ଥିନି ।

ଚୂନକୋଳି—ଗ୍ରା.ବ.ଏକପ୍ରକାର ସୁଖାଦ୍ୟ କୋଳି ।

ଚୂନଖାଇ—ଗ୍ରା.ବ. ଚୂନଦାନି, ପାନରେ ଲଗାଇବା ପାଇଁ ଅଭିପ୍ରେତ ଚୂନ ଯେଉଁ ଧାତୁପାତ୍ର ବା ଡବାରେ ରଖାଯାଏ । [ ଦେଖ ।

ଚୂନଚଉଁରା—ଗ୍ରା. ବ. ଚୂର୍ଣ୍ଣଚଉଁରା

ଚୂନପତ୍ର—ଗ୍ରା. ବ. ପାନ ସଙ୍ଗେ କମ୍ବା ଖାଲି ପାଟିରେ ପକାଇବା ନିମନ୍ତେ ଚୂନ ସଙ୍ଗେ ଏକତ୍ର ଦଳା ହୋଇଥିବା ଧୁଆଁପତ୍ର ।

ଚୂନଫେରା—ଗ୍ରା.ବ.୧ଫୁଟ ଲମ୍ବା ଚଉଡ଼ା ଓ ଗହୀରା ଚୂନ ମାପିବାର ପାତ୍ର ।

ଚୂନଭାଟି—ଗ୍ରା. ବ. ଯେଉଁ ଚୁଲିରେ ଗେଙ୍ଗୁଟି ବା ଶିପ ପୋଡ଼ାଯାଇ ଚୂନ ତିଆରି ହୁଏ ।

ଚୂନରା—ଗ୍ରା.ବ. (ସଂ-ଚୂର୍ଣ୍ଣକାର)ଯେଉଁ ଜାତି ଶିପ ଓ ଗେଙ୍ଗୁଟି ପୋଡ଼ି ଚୂନ ତିଆରି କରନ୍ତି ।

ଚୂନସଫେଦକରିବା—ଗ୍ରା. କ୍ରି. ଚୂନ ଗୋଳାଆ ପାଣିରେ ଘର ଧଉଳାଇବା ।

ଚୂନସୁରକି—ଗ୍ରା.ବ.ପକ୍କା ଗାନ୍ଥିନି କରାଯିବା ପାଇଁ ଚୂନ ସଙ୍ଗେ ଇଟାଗୁଣ୍ଡା ମିଶାଯାଇ ତିଆରି କରାଯିବା ମସଲା ।

ଚୂନହଳଦୀ—ଗ୍ରା.ବ.ଏକତ୍ର ମିଶ୍ରିତ କଲିଚୂନ ଓ ବଟା ହଳଦୀ ।

ଚୂନା—ସ୍ତ୍ରୀ.ବ.କୌଣସି ପଦାର୍ଥର ଚୂର୍ଣ୍ଣ, (ବି°) ଚୂର୍ଣ୍ଣୀକୃତ, ଅତିକ୍ଷୁଦ୍ର ।

ଚୂନାଇବା—ଗ୍ରା. କ୍ରି. ଅତି କ୍ଷୁଦ୍ର କ୍ଷୁଦ୍ର

ଖଣ୍ଡରେ କାଟିବା, ଚୂରିବା, ଚୂର୍ଣ୍ଣ-କରିବା ।

ଚୂନାକରିବା—ଗ୍ରା. କ୍ରି. କୌଣସି ବସ୍ତୁକୁ ଚୂର୍ଣ୍ଣରେ ପ୍ରସ୍ତୁତ କରିବା, (ଲ.ଅର୍ଥ)ଧ୍ୱଂସ ବା ବିନାଶ କରିବା ।

ଚୂନାକୁ ଗୁହଁ ପିଠା କରିବା—ଗ୍ରା. କ୍ରି. (ଲ.ଅର୍ଥ) ଉପାଦାନକୁ ଗୁହଁ ବରବାଦ କରିବା ।

ଚୂନାକୁଟିବା—ଗ୍ରା.କ୍ରି.ଗୁଡ଼ଲ ଇତ୍ୟାଦିକୁ କୁଟି ଚୂନା କରିବା ।

ଚୂନାଚୂନା—ଗ୍ରା.ବିଂ.ଚୂର୍ଣ୍ଣିତ, ଅତି କ୍ଷୁଦ୍ର କ୍ଷୁଦ୍ର ଖଣ୍ଡମାନଙ୍କରେ ବିଭକ୍ତ, (ବିଂ) ବଧୂପରିମିତ ଚୂର୍ଣ୍ଣ ।

ଚୂନାଧାନ—ଗ୍ରା. ବି. ବଡ଼ା ମଳାହୋଇ ଏକତ୍ର ଜମା କରାଯାଇଥିବା ଧାନ ।

ଚୂନାମାଛ—ଗ୍ରା. ବି. ଅତି ଛୋଟ ଛୋଟ ମାଛ ।

ଚୂନାହେବା—ଗ୍ରା.କ୍ରି. ଚୂର୍ଣ୍ଣହେବା, ନଷ୍ଟ ହେବା, ଭାଙ୍ଗିଯାଇ ଟିକିଟିକି ହେବା ।

ଚୂନି—ଗ୍ରା.ବି. ଚୂନା ହୋଇ ଚାଲୁଣୀରେ ଚଲାହେବା ପରେ ବାକି ରହିଯିବା କ୍ଷୁଦ୍ର କ୍ଷୁଦ୍ର ଅଂଶ, ପୋକଡ଼ କଣୀ ।

ଚୂନିଗବ—ଗ୍ରା ବି.ଏକପ୍ରକାର କ୍ଷୁଦ୍ର ଗବ ବା ଏରଣ୍ଡ । (ଦେଖ ।

ଚୂନିଚୂନି—ଗ୍ରା. ବି ଓ ବିଂ. ଚୂନାଚୂନା

ଚୂର—ଗ୍ରା.ବି.ଚୂର୍ଣ୍ଣକରିବା, ଗୁଣ୍ଡକରିବା, ଚୂର୍ଣ୍ଣ, ପାଉଡ଼ର ।

ଚୂରା—ଗ୍ରା. ବି. ଚୂର୍ଣ୍ଣକରିବା, ଚୂରିବା, ଚୂନା (ବିଂ) ଚୂର୍ଣ୍ଣ କରାଯାଇଥିବା ।

ଚୂରାଳ—ଗ୍ରା.ବି.ପୁଂ ଓ ସ୍ତ୍ରୀ.ଯେଉଁ ବ୍ୟକ୍ତି କୌଣସି ବସ୍ତୁକୁ ଚୂରେ ବା ପେଷେ ।

ଚୂରିବା—ଗ୍ରା. କ୍ରି. ଚୂନା କରିବା,ଗୁଣ୍ଡ କରିବା ।

ଚୂଷା—ସ୍ତ୍ରୀ. ବି. କ୍ଷୁଦ୍ର କୂପ । [ ବିଶେଷ ।

ଚୂରୁ—ପୁଂ. ବି. ( ଚୂର୍+ଉ ) କୂପ-

ଚୂର୍ଣ୍ଣ—କ୍ଲୀ. ବି.( ଚୂର୍ଣ୍ଣି + ର୍ମ.ଅ ) ଗୁଣ୍ଡା, ଚୂନା ସମ୍ବନ୍ଧ ଯୁକ୍ତ ଧୂଳି, ଅବିର, ଅଟା, ମଇଦା, ଛତୁଆ, ତାମ୍ବୁଳୋପକରଣ-ବିଶେଷ । (ଚୂର୍ଣ୍ଣ+ଭ.ଅ) ପେଷଣ, ଗୁଣ୍ଡ, ଚୂନ, କପର୍ଦ୍ଦକ, କଉଡ଼ି, (ବିଂ.) ଯାହା ଗୁଣ୍ଡ ହୋଇଅଛି, ଯାହା ନଷ୍ଟ ହୋଇଅଛି, ପିଷ୍ଟ, କୁଣ୍ଠିତ,(ସ୍ତ୍ରୀ)ଚୂର୍ଣ୍ଣା ।

ଚୂର୍ଣ୍ଣକ—କ୍ଲୀ. ବି. (ଚୂର୍ଣ୍ଣ+କ) ଗଦ୍ୟ ଗ୍ରନ୍ଥ ବିଶେଷ, ଶ୍ରୁତିକଟୁ ଦୋଷ ଶୂନ୍ୟ ଅଳ୍ପସମାସ ଯୁକ୍ତ ଧାତୁବିଶେଷ, ଚୂନା, ଗୁଣ୍ଡା,ମାନେବନ୍ଧ, କଠୋର ବର୍ଣ୍ଣ ଓ ଦୀର୍ଘ ସମାସ ବିରହିତ ଏବଂ ବୈଦର୍ଭୀ ରୀତିରେ ଲକ୍ଷିତ ରଚନା,ଅଟା, ଔଷଧ ଚୂର୍ଣ୍ଣ, ଶାଳିଧାନ୍ୟବିଶେଷ, ପ୍ରଦର୍ଶନ, ବୃକ୍ଷବିଶେଷ, ଯଷ୍ଟିକା ।

ଚୂର୍ଣ୍ଣକରିବା—ଗ୍ରା.କ୍ରି. ଗୁଣ୍ଡାକରିବା, ପେଷି ଚୂନା କରିବା, ( ଲ.ଅର୍ଥ ) ବିନାଶ କରିବା ।

ଚୂର୍ଣ୍ଣକାର—ପୁଂ. ସ୍ତ୍ରୀ. ବି. (ଚୂର୍ଣ୍ଣ+କୃ+ଅ) ନଟକାଗର୍ଭା ସ୍ତ୍ରୀ ଓ ପୁଣ୍ଡ୍ରକ ଜାତୀୟ ପୁରୁଷ ଔରସରେ ଉତ୍ପନ୍ନ ବର୍ଣ୍ଣସଙ୍କର ଜାତିବିଶେଷ, ଚୂନରା, ଯେ ଚୂନ ପୋଡ଼େ, ଅଟାପେଷାଳ ।

ଚୂର୍ଣ୍ଣକୁନ୍ତଳ—ପୁଂ. ବି. (କ.ଧା) ଅଳକ, ଝାପ୍ଟା, ଯେଉଁ କେଶ କୁଞ୍ଚୁକୁଞ୍ଚୁଆ ହୋଇ କପାଳ ଓ ଗାଲ ଉପରକୁ ଝୁଲି ପଡ଼ି-ଥାଏ, ଝାମ୍ପୁଡ଼ା ବାଳ । [ ଗେଙ୍ଗୁଟି ।

ଚୂର୍ଣ୍ଣଖଣ୍ଡ—କ୍ଲୀ. ବି. (୬ତତ୍ପୁ) କର୍କର,

ଚୂର୍ଣ୍ଣତା—ସ୍ତ୍ରୀ. ବି. (ଚୂର୍ଣ୍ଣ+ତା) ଚୂର୍ଣ୍ଣର ଭାବ, ଚୂର୍ଣ୍ଣତ୍ୱ,ଚୂନାହେବାର ଅବସ୍ଥା ।

ଚୂର୍ଣ୍ଣନ—କ୍ଲୀ. ବି. ( ଚୂର୍ଣ୍ଣ+ଭ. ଅନ ) ଗୁଣ୍ଡନ, ଚୂର୍ଣ୍ଣ କରିବା, ଚୂନାକରିବା ।

ଚୂର୍ଣ୍ଣନୀୟ—ବିଂ. (ଚୂର୍ଣ୍ଣ + ର୍ମ. ଅନୀୟ) ଚୂନା କରିଯିବାର ଯୋଗ୍ୟ ।

ଚୂର୍ଣ୍ଣପଦ—କ୍ଲୀ.ବି. (ବ.ବ୍ରୀ) ଗତିବିଶେଷ, ଏକପ୍ରକାର ବିଶେଷ ଅଙ୍ଗଭଙ୍ଗୀଘଟିତ ନୃତ୍ୟ ।

ଚୂର୍ଣ୍ଣପାରଦ—ପୁଂ. ବି. ହିଙ୍ଗୁଳ ।

ଚୂର୍ଣ୍ଣଯୋଗ—ପୁଂ.ବି. (୬ତତ୍ପୁ) ନାନାବିଧ ସୁଗନ୍ଧଦ୍ରବ୍ୟର ମିଶ୍ରଣ ।

ଚୂର୍ଣ୍ଣଶଃ—ଅବ୍ୟ. (ଚୂର୍ଣ୍ଣ+ଶସ୍) ଚୂର୍ଣ୍ଣ-ବିଚୂର୍ଣ୍ଣ, ଅତିଶୟ ଚୂର୍ଣ୍ଣ ।

ଚୂର୍ଣ୍ଣଶାକାଙ୍କ—ପୁଂ. ବି. ଚିତ୍ରକୂଟ ପ୍ରସିଦ୍ଧ ଏକପ୍ରକାର ଶାକ ।

ଚୂର୍ଣ୍ଣହାର—ବି.ଏକପ୍ରକାର ଜଙ୍ଗଲ ଗଛ ।

ଚୂର୍ଣ୍ଣା—ବି.ଆର୍ଯ୍ୟାଛନ୍ଦର ପ୍ରକାରବିଶେଷ ।

ଚୂର୍ଣ୍ଣାଦି—ପୁଂ. ବି. (ନ.ବ୍ରୀ) ପାଣିନୀୟ ଗୋଟିଏ ଗଣ ।

ଚୂର୍ଣ୍ଣି—ସ୍ତ୍ରୀ. ବି. (ଚୂର୍ଣ୍ଣ+ଇ) ପତଞ୍ଜଳି-କୃତ ପାଣିନି ବ୍ୟାକରଣର ଭାଷ୍ୟ, ଶତ-ସଂଖ୍ୟା କପର୍ଦ୍ଦକ,କାର୍ଷାପଣ, ଏକକାହାଣ, ଚୂର୍ଣ୍ଣନ, ଗୁଣ୍ଡନ ।

ଚୂର୍ଣ୍ଣିକା—ସ୍ତ୍ରୀ. ବି. (ଚୂର୍ଣ୍ଣ+ଇକ+ଆ) ସକ୍ତୁ, ଛତୁଆ, ଚୂନା ।

ଚୂର୍ଣ୍ଣିକୃତ—ପୁଂ. ବି. (ଚୂର୍ଣ୍ଣି+କୃ+କ୍ୱିପ୍) ମହାଭାଷ୍ୟକାରକ ପତଞ୍ଜଳି ମୁନି ।

ଚୂର୍ଣ୍ଣିତ—କ୍ରି. ବିଂ. (ଚୂର୍ଣ୍ଣ+ର୍ମ. ତ) ଯାହାକୁ ଚୂର୍ଣ୍ଣ କରାହୋଇଅଛି, ଧ୍ୱଂସ-ପ୍ରାପ୍ତ, ଟିକିଟିକି କରାଯାଇଥିବା ।

ଚୂର୍ଣ୍ଣିଦାସୀ—ସ୍ତ୍ରୀ.ବି. ଯେଉଁ ଗୃହଦାସୀକୁ ପେଷଣ କାର୍ଯ୍ୟରେ ନିଯୁକ୍ତ କରାଯାଏ ।

ଚୂର୍ଣ୍ଣୀ—ପୁଂ. ବିଂ. (ଚୂର୍ଣ୍ଣ+ଇନ୍)ଚୂର୍ଣ୍ଣ-ନିର୍ମିତ, ଯାହା ଚୂନରେ ସମ୍ମିଶ୍ର ହୋଇ-ଅଛି ।

ଚୂର୍ଣ୍ଣୀ—ସ୍ତ୍ରୀ. ବି. (ଚୂର୍ଣ୍ଣ+ଈ) କାର୍ଷାପଣ, କାହାଣ ପରିମିତ କଉଡ଼ି,ନଦୀବିଶେଷ ।

ଚୂର୍ଣ୍ଣୀକୃତ—କ୍ରି. ବିଂ. (ଚୂର୍ଣ୍ଣ+ଚ୍ୱି+କୃ+ତ) ଯାହା ପୂର୍ବେ ଚୂର୍ଣ୍ଣହୋଇ ନ ଥିଲା କିନ୍ତୁ ବର୍ତ୍ତମାନ ଚୂର୍ଣ୍ଣ କରା-ଯାଇଅଛି ।

ଚୂର୍ଣ୍ଣୀଭୂତ—ବିଂ. (ଚୂର୍ଣ୍ଣ+ଚ୍ୱି+ଭୂ+କ୍ତ) ଯାହା ପୂର୍ବେ ଚୂର୍ଣ୍ଣ ହୋଇ ନ ଥିଲା, ବର୍ତ୍ତମାନ ଚୂର୍ଣ୍ଣକରାହୋଇଅଛି,ସମ୍ପୂର୍ଣ୍ଣ-ରୂପେ ଧ୍ୱଂସପ୍ରାପ୍ତ ।

ଚୂର୍ତ୍ତି—ସ୍ତ୍ରୀ. ବି. (ଚର+ଭ.ତି)ଚର୍ବଣ ।

ଚୂଳ—ପୁଂ. ବି. (ଚୂର+ଅ) କେଶ, ଚୂଳି, ବାଳ, ଶିଖା, ଜଟ, ଷଣ୍ଢଆଦିଙ୍କ ପିଠିରେ ବାହାରିଥିବା ମାଂସପିଣ୍ଡି,କକୁଦ, କୁକୁଡ଼ା ମୟୂର ପ୍ରଭୃତି ପକ୍ଷୀଙ୍କର ମୁଣ୍ଡଉପରେ ବାହାରିଥିବା ପକ୍ଷଗୁଚ୍ଛ ।

ଚୂଳକ—ବି. (ଚୂଳ+କ) ଚୂଳ ଦେଖ, ଏକପ୍ରକାର ପାର୍ବତୀୟ ସିନ୍ଧୁ ।

ଚୂଳା—ସ୍ତ୍ରୀ. ବି. ଗୃହର ଉପରସ୍ଥ ଗୃହ, ଚୂଡ଼ା, ଚନ୍ଦ୍ରଶାଳା ।

ଚୂଳି—ଗ୍ରା. ବି. କଠରର ଆଗପାଖରେ ଛିଦ୍ର ହୋଇ ତହିଁରେ ଠିଆବାଗରେ ମାରିଥିବା ଛନ୍ଦାଗ୍ର କାଷ୍ଠଖଣ୍ଡ, ପାହାଡ଼ର ଗୋଜିଆ ଶିଖର ।

ଚୂଳିଆ—ଗ୍ରା. ବିଂ. ଯାହାର ଚୂଳି ଥାଏ, ଚୂଳଧାରୀ,ଯେଉଁ ଅଳଙ୍କାରଆଦି ଉପରେ ଚୂଳି ବା ଗୁବଥାଏ, ଗୋଜିଆ, (ବି) ବାମଣ୍ଡା ରାଜ୍ୟର ଗୋଟିଏ ଉଚ୍ଚ ପର୍ବତ ।

ଚୂଳିକ—କ୍ଲୀ. ବି. (ଚୂଳି+କ. ଇକ) ଘୃତପକ୍ୱ ଗହମପିଠା, ଲୁଚି, ପୁରି, କାକରା ।

ଚୂଳିକା—ସ୍ତ୍ରୀ. ବି. (ଚୂଳିକ+ଆ)ଚୂଳିକ ଦେଖ, ହସ୍ତୀର କର୍ଣ୍ଣମୂଳ, ହାତୀର କାନମୁଣ୍ଡା, ନାଟକର ଅଙ୍ଗବିଶେଷ ।

ଚୂଳିକା(ବଟୀ)—ଔଷଧବିଶେଷ ।

ଚୂଳିକୋପନିଷଦ୍—ସ୍ତ୍ରୀ. ବି. ଅଥର୍ବବେଦୀୟ ଖଣ୍ଡିଏ ଉପନିଷଦ୍ ।

ଚୂଳୀ—ପୁଂ. ବିଂ. (ଚୂଡ଼ା+ଇନ୍) ଚୂଡ଼ାଯୁକ୍ତ, ଯାହାର ଚୂଡ଼ାଅଛି, (ବି) ଏକ ଋଷି ।

ଚୂଷଣ—ବି. (ଚୂଷ+ଭା, ଅନ) ଜିଭ ଓ ଓଠଦ୍ୱାରା ଶୋଷିବା, ଚୁଚୁମିବା ।

ଚୂଷଣୀୟ—ତ୍ରି.ବିଂ. (ଚୂଷ+ର୍ମ.ଅନୀୟ) ଆସ୍ୱାଦନୀୟ, ଯାହା ଚୋଷା ହୋଇପାରେ, ଯାହା ଚୁଚୁମା ଯାଇପାରେ ।

ଚୂଷା—ସ୍ତ୍ରୀ. ବି. (ଚୂଷ+ଭା. ଅ+ଆ) ଚୂଷଣ, ଚୋଷିବା, ଶୋଷିବା, (କ.ଅ+ଆ) ହାତୀର କକ୍ଷରଜ୍ଜୁ, ହାତୀର ଅଣ୍ଟା ଚାରିପାଖେ ବନ୍ଧାଯିବା ଫେଟି ବା ରଜ୍ଜୁ ।

ଚୂଷିତ—ତ୍ରି. ବିଂ. (ଚୂଷ+ର୍ମ.ତ) ଆସ୍ୱାଦିତ, ଯାହା ଚୂଷଣ କରାହୋଇଅଛି, ( କ୍ଲୀ. ବି ) (ଚୂଷ+ଭା.ତ) ଚୂଷଣ, ଆସ୍ୱାଦନ ।

ଚୂଷିବା—ଗ୍ରା. କ୍ରି. ଶୋଷିବା, ଚୁଚୁମିବା, ଜିଭ ସାହାଯ୍ୟରେ କୌଣସିଦ୍ରବ୍ୟରୁ ରସ ଶୋଷି ନେବା । [ଖେଲନା ।

ଚୂଷୀ—ଗ୍ରା.ବି. ପିଲାମାନଙ୍କର ଏକପ୍ରକାର

ଚୂଷ୍ୟ—ତ୍ରି. ବିଂ.(ଚୂଷ+ର୍ମ.ଯ) ପେୟବିଶେଷ, ଚୋଷଣୀୟ, ଶୋଷିବାର ଯୋଗ୍ୟ । [ ଚୁଡ଼ା ।

ଚୂଡ଼ୁ—ଗ୍ରା. ବି. ଫଳାଦିର ଅସାର ଅଂଶ.

ଚେଇଚେଇ—ଗ୍ରା.ଅବ୍ୟ. ହାତୀକୁ ଆଗକୁ ଗୃଳିତ କରିବାପାଇଁ ବା ପାଖଆଡ଼କୁ ବୁଲାଇବାପାଇଁ ବା ଫେରାଇବାପାଇଁ ମାହୁନ୍ତଦ୍ୱାରା ବ୍ୟବହୃତ ଆଦେଶ ।

ଚେଇଁଉଠିବା—ଗ୍ରା. କ୍ରି. ପୁନର୍ବାର ସଚେତନହେବା, ପୁଣି ନିଜର କରାମତି ଦେଖାଇ ଲୋକଙ୍କୁ ଉତ୍ପୀଡ଼ନ କରିବା, ନିଦରୁ ଉଠିବା ।

ଚେଇଁବସିବା—ଗ୍ରା. କ୍ରି. ଉଜାଗରହୋଇ ଅର୍ଥାତ୍ ନ ଶୋଇ ବସିରହିବା ।

ଚେଇଁବା—ଗ୍ରା. କ୍ରି. ନିଦରୁ ଉଠିବା, ଜାଗରିତହେବା, ଆଲସ୍ୟଗ୍ରସ୍ତ ସଚେତନ ହେବା, ପୁନରୁଜ୍ଜୀବିତହେବା, ଚିଆଁଇବା, ନିଦ୍ରାରୁ ଜାଗରିତ କରିବା ।

ଚେଇଁଶୋଇବା—ଗ୍ରା. କ୍ରି. ନିଦ୍ରାର ବାହାନାକରି ବିଛଣାରେ ପଡ଼ିରହିବା ।

ଚେଓର—ଗ୍ରା. ବି. ସତ୍ୟଆମ୍ବା ଫଳ ।

ଚେଁଚେଁ—ଗ୍ରା.ଅବ୍ୟ (ଧ୍ୱନ୍ୟନୁକରଣ) ଚକୁଳିପିଠା ବା ଭଜାଭଜିବାର ଶବ୍ଦ, ଦେହରେ ତାତିଲାଲୁହା ମାଡ଼ିବାର ଶବ୍ଦ, ଚେମେଣି ବାଦୁଡ଼ି ଓ ଚୁଚୁନ୍ଦ୍ରା ମୂଷ ଆଦିଙ୍କର ଶବ୍ଦ ।

ଚେଁଖ—ଗ୍ରା. ବି. ତାତିଲା ଲୁହା ଦ୍ୱାରା ଦେହରେ ଚିଆଁଦେବା, ଚିଆଁ, ଦୁଃଖ, ପ୍ରତାରଣା,ଦୁଃଖର ଅନୁଭୂତିରୁ ମନୁଷ୍ୟ ଲଭିବା ଶିକ୍ଷା ।

ଚେଁଖଦେବା—ଗ୍ରା.କ୍ରି.ଦେହରେ ଗରମ ଲୁହାର ଦାଗ ବସାଇବା, ଯାତନା ଦେବା, ପ୍ରତାରଣା କରିବା ।

ଚେଁଖାଇବା—ଗ୍ରା. କ୍ରି. ପ୍ରତାରଣାରେ ପକାଇବା,ଠକାଇବା,ଚେତାଇଦେବା ।

ଚେଁଖିବା—ଗ୍ରା.କ୍ରି. (ଅକର୍ମକ)ପ୍ରତାରିତ ହେବା,(ସକର୍ମକ) ଚିଆଁଦେବା, ଦୁଃଖମୟ ଅନୁଭବ ଦ୍ୱାରା ଶିକ୍ଷାଲାଭକରିବା ।

ଚେଁଖେଦେବା—ଗ୍ରା. କ୍ରି. ଅତ୍ୟନ୍ତ କଷ୍ଟ ଦେବା, ଜବାବ୍ଧ କରିବା, ଠକାଇବା ।

ଚେଁଗ୍ରୁଁ—ଗ୍ରା. ଅବ୍ୟ. ( ଧ୍ୱନ୍ୟନୁକରଣ ) ଚେଁଏଁ ଗ୍ରୁଁଆଁ ଶବ୍ଦ ।

ଚେଁଚେଁ—ଗ୍ରା. ଅବ୍ୟ. ( ଧ୍ୱନ୍ୟନୁକରଣ ) ଅତି ରୁଗ୍ଣ ଓ ଦୁର୍ବଳ ବ୍ୟକ୍ତିର ଖନଖନ କଥା, ଉତପ୍ତ ଲୌହାଦିରେ ଜଳାଦି ଶୀତଳ ଦ୍ରବ୍ୟ ଢାଳିବା ଶବ୍ଦ ।

ଚେଁଚେଁଆ—ଗ୍ରା. ବିଂ. ଅତି ଦୁର୍ବଳ ଓ କ୍ଷୀଣ, ଚେଁଚେଁ ଶବ୍ଦ କରୁଥିବା ।

ଚେଁଚେଁହେବା—ଗ୍ରା.କ୍ରି.(ପକ୍ଷୀ)କେଁକେଁ ଶବ୍ଦ କରିବା, ( ଚକୁଳିଆଦି ପିଠା ) କଟାଇରେ ଢାଳିଲାବେଳେ ଶବ୍ଦ କରିବା, (ଚୁଚୁନ୍ଦ୍ରାଆଦି) ଚେଁଚେଁ ଶବ୍ଦ କରିବା ।

ଚେକ—ଯା. ବି. ହିସାବପତ୍ର ବା ଟିକଟଆଦିର ମୁକାବିଲା, ଖଜଣାଖାନାରୁ ବା ବ୍ୟାଙ୍କରୁ କୌଣସି ବ୍ୟକ୍ତିକୁ ଟଙ୍କା ଦିଆଯିବା ପାଇଁ ତାଙ୍କୁ ଯେଉଁ ବରାଦ ଚିଠି ବା ରୋକା ଦିଆଯାଏ, ଚେକ୍ ପାଉତି ଦେଖ ।

ଚେକ୍‌କରିବା—ଗ୍ରା.କ୍ରି.ହିସାବପତ୍ର ମୁକାବିଲା କରିବା, ରେଲ ବା ଭଡ଼ା ମଟର ବା ଟ୍ରାମଗାଡ଼ିର ଯାତ୍ରୀମାନଙ୍କଠାରୁ ଟିକଟକୁ ଦେଖି ମୁକାବିଲା କରିବା ।

ଚେକ୍‌କାଟିବା—ଗ୍ରା.କ୍ରି.କୌଣସି ବ୍ୟକ୍ତିକୁ ନିର୍ଦ୍ଦିଷ୍ଟ ପରିମିତ ଧନ ଦେବାପାଇଁ କୌଣସି ବ୍ୟାଙ୍କ୍ ବା ଖଜଣାଖାନାର ଭାରପ୍ରାପ୍ତ ବ୍ୟକ୍ତିଙ୍କ ନାମରେ ଚେକ୍ ( ରୋକା ବା ବରାଦପତ୍ର ) ଲେଖି ସେ ଚେକ୍ ଖଣ୍ଡି ଚେକ୍ ବହିରୁ ଚିରି ଟଙ୍କା ନେବା ବ୍ୟକ୍ତିଙ୍କୁ ଦେବା ବା ବ୍ୟାଙ୍କ୍‌କୁ ପଠାଇଦେବା ।

ଚେକ୍‌ଦାଖିଲ—ଯା. ବି. ଚେକ୍ ପାଉତି ଦେଖ ।

ଚେକ୍‌ପାଉତି—ଯା. ବି. ପ୍ରଜା ଖଜଣା ଦାଖଲ କଲେ ଜମିଦାର ବା ସରକାରର ପ୍ରଜାଙ୍କୁ ଯେଉଁ ପାଇବାର ନିଦର୍ଶନ ପତ୍ର ଦିଅନ୍ତି ।

ଚେକବହି—ଯା. ବି. ଯେଉଁ ବହିରେ

ଗୁଡ଼ାଏ ସାଧା ବର୍ଦ୍ଧପତ୍ର ଥାଏ ।

**ଚେକ୍‌ମୁଣ୍ଡା**—ଗ୍ରା. ବି. ମୁଣ୍ଡାଚେକ୍, ମୁଣ୍ଡି-ଚେକ୍, ପ୍ରଜାଙ୍କୁ ବା ଟଙ୍କା ଦାଖଲ କରିବା ବ୍ୟକ୍ତିକୁ ଦିଆଯିବା ରସିଦର ମୂଳ ଫାଳ ( ଯାହା ଟଙ୍କା ଗ୍ରହଣ କରିବା ବ୍ୟକ୍ତି ନିଜ ପାଖରେ ରଖେ) ।

**ଚେକ୍‌ରସିଦ**—ଯା. ବି. ଚେକ ପାଉତି ଦେଖ, ଯେ କୌଣସି ପ୍ରକାର ଧନ-ପ୍ରାପ୍ତିର ରସିଦ ହୋଇଥିବା ସ୍ୱୀକାର ପତ୍ର

**ଚେକା**—ଗ୍ରା.ବିଂ.ଚକା, ଗୋଲ, ଚନ୍ଦ୍ରା-କାର, (ବି)ପଦ୍ମାସନ,ଚକା,କୋଡ଼ି ବା ଚଗେଡ଼ ଦ୍ୱାରା ଉଠାଯିବା ବଡ଼ ଘାସ-ଲଗା ମାଟିଖଣ୍ଡ, ଗୋଲକାର ସୀମା-ବିଶିଷ୍ଟ ଭୂମି,ସାପ ଓ ଗମିପୋକଆଦିଙ୍କର କୁଣ୍ଡଳୀକୃତ ଅବସ୍ଥାନ । [ ଦେଖ ।

**ଚେକାଇବା**—ଗ୍ରା. କ୍ରି. ଚେକିଆଇବା

**ଚେକାଉଠାଇବା**—ଗ୍ରା.କ୍ରି.ଚେକାକାଟିବା ଦେଖ ।

**ଚେକାକାଟିବା**—ବନ୍ଧ ବା ସଡ଼କର ନୂଆ ମାଟି ଉପରେ ବସାଇବା ପାଇଁ ତୃଣା-ବୃତ ମାଟିର ଢେଲାମାନଙ୍କୁ କୋଡ଼ିରେ ହାଣିବା ।

**ଚେକାକୋଶଲୀ**—ଗ୍ରା.ବି.ଯେଉଁ କୋଶଲ ଶାଗର ଗଛ ଡେଙ୍ଗା ହୋଇ ନ ବଢ଼ି ଭୂମିରେ ଚକା ହୋଇ ମାଡ଼େ, ଖୁଣ୍ଟା କୁଶଲା ।

**ଚେକାଚେକା**—ଗ୍ରା.ବିଂ.ଗୋଲ ବହୁଖଣ୍ଡ ବିଶିଷ୍ଟ, ଚକାଚକା, ଗୋଲ ଗୋଲ (ବହୁତ ବସ୍ତୁ) ।

**ଚେକାଗୁଉଣି**—ଗ୍ରା.ବି. କୌଣସି ସ୍ଥାନକୁ ଘାସଯୁକ୍ତ ଚନ୍ଦ୍ରାକାର ମୃତ୍ତିକା ଖଣ୍ଡ ଦ୍ୱାରା ଆବୃତ କରିବା ।

**ଚେକି**—ଗ୍ରା.ବି.କ୍ଷୁଦ୍ର ଗୋଲାକାର ଖଣ୍ଡ, ଚକତି, ସ୍ୱର୍ଣ୍ଣ ରୌପ୍ୟାଦିର ମୁଦ୍ରା ।

**ଚେକିଆ**—ଗ୍ରା.ବି.ଚେକିଆସୁନା ଦେଖ ।

**ଚେକିଆଇବା**—ଗ୍ରା.କ୍ରି.ଚେକା ବା ଗୋଲ କରି କାଟିବା, ... ଗଣ୍ଡିକୁ ମୂଳରୁ ପୋଛିକରି କାଟି... । [ ମୁଦ୍ରା ।

**ଚେକିଆସୁନା**—ଗ୍ରା.... ମଉଡ଼, ସ୍ୱର୍ଣ୍ଣ

**ଚେକକନ୍ଦା**—ପ୍ରା. (ଗଞ୍ଜାମ) ବି.(ବୈଦ୍ୟକ) ଏକପ୍ରକାର ଗଛ ।

**ଚେକିଚେକି**—ଗ୍ରା. ବିଂ. କ୍ଷୁଦ୍ର କ୍ଷୁଦ୍ର ଖଣ୍ଡ-ଯୁକ୍ତ, କ୍ଷୁଦ୍ର ଓ ଗୋଲାକାର ( ବହୁ-ବସ୍ତୁ ।

**ଚେକିତ**—ସଂ.ବିଂ. (କିତ+ଅ)ଅତିଶୟ ବାସନା ଓ ଜ୍ଞାନଯୁକ୍ତ, ସର୍ବଜ୍ଞ, (ପୁଂ. ବି) ଋଷିବିଶେଷ ।

**ଚେକିତାନ**—ସଂ. ବିଂ. (ଚିତ୍+କ.ଅନ) ଅତ୍ୟନ୍ତ ଜ୍ଞାନଯୁକ୍ତ, ସର୍ବଜ୍ଞ, (ପୁଂ.ବି) ମହାଦେବ, ଦ୍ୱାପର ଯୁଗର ଜଣେ କ୍ଷତ୍ରିୟ ରାଜା ।

**ଚେକ୍‌ନାଇ**—ବଙ୍ଗ ପ୍ରଦେଶର ଅନ୍ତର୍ଗତ ପାବନା ଜିଲାର ଗୋଟିଏ ନଦୀ ।

**ଚେକ୍ରିୟ**—ସଂ. ବିଂ. ପରିଶ୍ରମୀ, କାର୍ଯ୍ୟ-କୁଶଳ । [ ମାଚକାଢ ।

**ଚେଗୋ**—ମାଲବାରବାସୀ ଏକପ୍ରକାର

**ଚେଙ୍ଗ**—ଗ୍ରା. ବି. ଶ୍ଲେଟ ଗଡ଼ିଶା ମାଛ, କାଢଥିବା ଓ ପଙ୍କରେ ରହିବା ଏକ-ପ୍ରକାର ଶ୍ଲେଟ ମାଛ ।

**ଚେଙ୍ଗା**—ପ୍ରା. ( ସିଂହଭୂମ ) ବିଂ. ଖଟା, ( ଗ୍ରା.ବିଂ ) ଯାହାକୁ ଅଗ୍ନିତପ୍ତ ଶଲା-କାରେ ଲାଞ୍ଛିବା ଉଚିତ,(ଗ୍ରା.ବି) ଚିଆଁ, ଦାଗ, ଲାଞ୍ଛନ, ବାଣୀ ।

**ଚେଙ୍କିବା**—ଗ୍ରା. କ୍ରି. କୌଣସି ଜୀବର ଦେହକୁ ତାତଲା ଲୁହାରେ ଲାଞ୍ଛିବା, ଦାଗିବା ।

**ଚେଙ୍ଗ**—ଗ୍ରା. ବି. ଶ୍ଲେଟ ଗଡ଼ିଶାମାଛ, ଲମ୍ବ କୁବ୍ଜପୃଷ୍ଠ କାଗଜର ଗୁଡ଼ି, ଏକ-ପ୍ରକାର ବାଣ, ଚେଙ୍ଗ ହାବିଳ, ଗନ୍ଧପା ସାର ପାଇଁ ହରିତାଳ ଓ ନୀଳ ବାଟି ପ୍ରସ୍ତୁତ କରାଯିବା ରଙ୍ଗ ।

**ଚେଙ୍ଗଡ଼ା**—ଗ୍ରା. ବିଂ. ଅପରିଣତ ବୁଦ୍ଧି, ଅପ୍ରବୀଣ, ଅର୍ବାଚୀନ, ( ବି ) ବାଉଁଶ ପାଡ଼ିଆରେ ତିଆରି ଡ଼ାଲା । [ କାର୍ଯ୍ୟ ।

**ଚେଙ୍ଗଡ଼ାମି**—ଗ୍ରା.ବି. ଅପରିଣତ ବୁଦ୍ଧିର

**ଚେଙ୍ଗମ**—ମାନ୍ଦ୍ରାଜ ପ୍ରେସିଡ଼େନ୍ସୀର ଗୋଟିଏ ଗିରି ବର୍ତ୍ମ ।

**ଚେଙ୍ଗରିଣି ବେଙ୍ଗରିଣି**—ଗ୍ରା.(ପ୍ରବଚନ) ବି.ଦୁଇଜଣଙ୍କ ମଧ୍ୟରେ କେବେହେଲେ ମନ ନ ମିଳିବାର ଅବସ୍ଥା, ଦୁଇଜଣ-ଙ୍କର ଖୁବ୍ ମନ ନ ମିଳିବା ଅବସ୍ଥା ।

**ଚେଙ୍ଗହାବିଳ**—ଗ୍ରା.ବି.ଏକପ୍ରକାର ବାଣ, ଶ୍ଲେଟ ହାବିଳ ।

**ଚେଙ୍ଗା**—ଗ୍ରା.ବି. ହାତର ବୁଢ଼ା ଆଙ୍ଗୁଠି ଓ ବଟି ଆଙ୍ଗୁଠି ଦ୍ୱାରା ଅନ୍ୟର ଜଙ୍ଘକୁ ଚିମୁଟିବା, ପୁଟିଆ, ଚେଙ୍ଗହାବିଳବାଣ, ଗଡ଼ିଶାମାଛ, (ବିଂ) ସତେଜ, ତାଜା, ନୀରୋଗ, ସୁସ୍ଥ, ଆଳସ୍ୟ ବା ନିଦ୍ରାମୁକ୍ତ, ଟାଣୁଆ (ଘିଅଆଦି) ।

**ଚେଙ୍ଗାରି**—ଗ୍ରା.ବି. ବଂଶ ଶଲାକାନିର୍ମିତ ପାତ୍ରବିଶେଷ, ଗୁଙ୍ଗଡ଼ା ।

**ଚେଙ୍ଗୁସ୍ୱା**—ଗ୍ରା. ବି. ଏକପ୍ରକାର ମାଛ, ଗଡ଼ିଶାମାଛ ।

**ଚେଞ୍ଚରୁଳ**—ପ୍ରା. ( ମେଦିନୀପୁର ) ବି. ଚମ୍ପେଇନେଉଳ । [ପଦ ।

**ଚେଞ୍ଚୁ**—ଗ୍ରା.ବି.ଗୋଟିଏ ପ୍ରାଚୀନ ଜନ-

**ଚେଞ୍ଜ**—ଯା. ବି. ପରିବର୍ତ୍ତନ, ବଦଳ ।

**ଚେଟ**—ପୁଂ. ବି. (ଚିଟ+ଣି.ଅ) ଦାସ, ଭୃତ୍ୟ,ପତି, ଭଣ୍ଡ,ଉପନାୟକବିଶେଷ, ଜାରଜ ପୁରୁଷର ଉପପତ୍ନୀ, ଇନ୍ଦ୍ରିୟ, ସିଂହଳର ରାଜା, ବାସବର ପ୍ରଧାନା ମହିଷୀ, ସନ୍ଧାନଦକ୍ଷ ନାୟକ ।

**ଚେଟକ**—ପୁଂ. ବି. ( ଚିଟ+ଣି.ଅକ ) ଚେଟ(ଦେଖ), ଦୂତ, ଆଡ଼ମ୍ବର, ଜାକ-ଜମକ, (ସ୍ତ୍ରୀ) ଚେଟିକା ।

**ଚେଟକୀ**—ପୁଂ. ବି. ଇନ୍ଦ୍ରଜାଲିକ, ବାଜୀ-ଗର, ଯାଦୁକର, (ସ୍ତ୍ରୀ) ଚେଟିକୀ ।

**ଚେଟା**—ଗ୍ରା. ବି. ଖର୍ଜ୍ଜୁର ବା ତାଳପତ୍ର ନିର୍ମିତ ଆସନ, ଚାଟେଇ, ପଟିଆ, ମସିଣା । [ ଓସାର ।

**ଚେଟାଳ**—ଗ୍ରା. ବିଂ. ବିସ୍ତୃତ, ଚଉଡ଼ା,

**ଚେଟିକା**—ସ୍ତ୍ରୀ.ବି.(ଚେଟକ+ଆ)ଦାସୀ, ଉପନାୟିକାବିଶେଷ, ରକ୍ଷିତା ସ୍ତ୍ରୀ ।

**ଚେଟୀ**—ସ୍ତ୍ରୀ. ବି. (ଚେଟ+ଈ) ଦାସୀ, ଉପନାୟିକା, ରକ୍ଷିତା ସ୍ତ୍ରୀ ।

**ଚେଟୁ**—ପ୍ରା. (ବସ୍ତର)ବି. ଅଣକ, ଡଙ୍କା ।

**ଚେଢ଼**—ପୁଂ. ବି. (ଚଢ଼+ଣି.ଅ) ଦାସ,

ଭୃତ୍ୟ, (ସ୍ତ୍ରୀ) ଚେଡ଼ୀ, (ପ୍ରା. ପୁର୍ଣ୍ଣ. ବି.) ପଣସ କଠା, ପଣସ ଫଳର କଷି ।
ଚେଡ଼କ—ପୁଂ. ବି. ( ଚଟ୍+ମିଂ.ଅକ ) ଦାସ, ଭୃତ୍ୟ ।
ଚେଡ଼ିକା—ସ୍ତ୍ରୀ.ବି.(ଚେଡ଼କ+ଆ)ଦାସୀ, ଉପନାୟିକା, ରକ୍ଷିତା ସ୍ତ୍ରୀ ।
ଚେଡ଼ୀ—ସ୍ତ୍ରୀ. ବି. (ଚେଡ଼+ଈ) ଦାସୀ, ଉପନାୟିକା, ରକ୍ଷିତା ସ୍ତ୍ରୀ ।
ଚେଡ଼ୀପୁଅ—ଗ୍ରା. ପୁଂ. ବି. ଦାସୀପୁତ୍ର, ନୀଚକୂଳଜାତ ବ୍ୟକ୍ତି ।
ଚେଣ୍ଟା—ଗ୍ରା.ପୁଂ.ବିଂ. ଯେ ଏକ କଥାକୁ କହି ବାରଂବାର ବିରକ୍ତ କରେ, ଅତି କୃପଣ ।
ଚେଣ୍ଟାଲ୍—ଗ୍ରା. ସ୍ତ୍ରୀ.ବି ଓ ବିଂ.ନଷ୍ଟା ସ୍ତ୍ରୀ, ଚଣ୍ଡାଳୀ ।
ଚେଣ୍ଟେବା—ଗ୍ରା. କ୍ରି. ଧିକ୍କମାକହେବା, ଗୋଟାଏ କଥାକୁ ବହୁବାର କହି ବିରକ୍ତ କରିବା, କୃପଣତା ପ୍ରକାଶ ପୂର୍ବକ ଦର ଦାମରେ ଧିକ୍କମାକକରିବା
ଚେଣ୍ଟେଇ—ଗ୍ରା.ସ୍ତ୍ରୀ.ବି.ସାମାନ୍ୟ ବାଳିକା, (ବିଂ) ଚେଣ୍ଟାର ସ୍ତ୍ରୀଲିଙ୍ଗ ।
ଚେଣ୍ଡିହାତ—ପ୍ରା. (କାନ୍ଥି, ମେଦିନୀପୁର, ଯାଜପୁର)ବି. ବାଆଁହାତ, ବାମହସ୍ତ ।
ଚେଣ୍ଡା—ଗ୍ରା. ବି. ଅଣ୍ଡିରା ମଇଁଷି, (ବିଂ) ଯୁବା, ବୟସ୍କ ।
ଚେଣ୍ଡିଆ—ଗ୍ରା. ବିଂ. ନବଯୁବା ।
ଚେତ୍—ଅବ୍ୟ. (ଚିତ୍+କ.କ୍ୱିପ୍)କାଦାଚିତ୍, ଯଦି, ପକ୍ଷାନ୍ତର, ଯେ ସ୍ଥଳରେ ସନ୍ଦେହ ନହୁଁ, (ଗ୍ରା.ବି) ସଂଜ୍ଞା,ଜ୍ଞାନ, ବିବେଚନା ।
ଚେତ୍‌ସିଂହ—ପୁଂ. ବି. କାଶ୍ମୀରର ଜଣେ ରାଜା ।
ଚେତ—ଗ୍ରା. ବି. ହେଜ, ଜ୍ଞାନ, ଜାଗରଣ ଇଚ୍ଛା, ସ୍ମରଣ ।
ଚେତକ—ବିଂ. (ଚିତ+କ.ଅକ) ଯେ ସ୍ମରଣ କରାଏ, ଯାହା କର୍ତ୍ତବ୍ୟାକର୍ତ୍ତବ୍ୟ ଜ୍ଞାନ ଜନ୍ମାଏ
ଚେତକୀ—ସ୍ତ୍ରୀ. ବି. ( ଚେତକ+ଈ ) ହରିତକୀ, ହରିଦ୍ରାସ ତପ୍ରକାର ହରଡ଼ା ମଧ୍ୟରେ ହିମାଳୟରେ ଉତ୍ପନ୍ନ ତିନ-ଖୋଟି ଶିରାଯୁକ୍ତ ହରଡ଼ା, ଜାତିପୁଷ୍ପ, ଜାଇଫୁଲ, ଶ୍ରୀବାଗର ସ୍ତ୍ରୀ, ରାଗିଣୀ-ବିଶେଷ ।
ଚେତନ—ପୁଂ. ବି. (ଚିତ+କ.ଅନ) ଆତ୍ମା, ଜୀବ, ପରମେଶ୍ୱର, ପ୍ରାଣୀ, (ଭା.ଅନ) ଚେତନା, ଜ୍ଞାନ, (ବିଂ) ପ୍ରାଣଯୁକ୍ତ, ଚେତନାବିଶିଷ୍ଟ, ସଜୀବ ।
ଚେତନକୀ—ସ୍ତ୍ରୀ. ବି. (ଚେତନ+କ+ଈ) ସୁଗନ୍ଧଯୁକ୍ତ, ହରୀତକୀ, ହରଡ଼ା ।
ଚେତନତା—ସ୍ତ୍ରୀ. ବି. (ଚେତନ+ତା) ଚୈତନ୍ୟ, ଚେତନର ଧର୍ମ ।
ଚେତନତ୍ୱ—କ୍ଲୀ. ବି. (ଚେତନ+ତ୍ୱ) ଚେତନତା, ଚୈତନ୍ୟ ।
ଚେତନପଦାର୍ଥ—ବି.ଜୀବ,ଯାହାର ଜୀବନର ଅନୁଭୂତି ଅଛି ।
ଚେତନା—ସ୍ତ୍ରୀ. ବି. (ଚିତ+ଅନ+ଆ) ବୁଦ୍ଧି, ମନର ବୃତ୍ତିବିଶେଷ, ଜ୍ଞାନ, ଚୈତନ୍ୟ, ଅନୁଭୂତି, ଜୀବନ, ସ୍ମୃତି, ମନ, ଜାଗରଣ ।
ଚେତନାବାନ୍—ପୁଂ. ବିଂ. (ଚେତନା+ବତ୍) ଚେତନ ଯୁକ୍ତ,ଯାହାର ଚେତନା ଅଛି ।
ଚେତନାବିଧାନ—କ୍ଲୀ. ବି. (୬ତତ୍) ଚୈତନ୍ୟ ସମ୍ପାଦନ ।
ଚେତନାବିହୀନ—ବିଂ. (୩ତତ୍)ଚୈତନ୍ୟ ରହିତ, ସଂଜ୍ଞାହୀନ, ଅଚେତନ ।
ଚେତନୀୟ—କ୍ରି. ବିଂ. (ଚିତ+ମିଂ.ଅନୀୟ) ଜ୍ଞେୟ, ଜାଣିବାଯୋଗ୍ୟ । [ ବିଶେଷ ।
ଚେତନୀୟା—ସ୍ତ୍ରୀ. ବି.ଋଦ୍ଧିନାମକ ଔଷଧ-
ଚେତପଶିବା—ଗ୍ରା. କ୍ରି.ସାବଧାନହେବା, ହେଜହେବା, ଚେତାପଶିବା ।
ଚେତୟ—କ୍ରି. ବିଂ. (ଚିତ+ଣିଚ୍+ଅ) ଚେତନାଯୁକ୍ତ ।
ଚେତୟିତବ୍ୟ—କ୍ରି.ବିଂ. ଯାହା ଚେତନା ଯୁକ୍ତ କରାହେବ, ଚେତନୀୟ ।
ଚେତୟିତା—ପୁଂ. ବିଂ. (ଚିତ+ଣିଚ୍.ତୃ) ଚେତନାଯୁକ୍ତ, (ସ୍ତ୍ରୀ) ଚେତୟିତ୍ରୀ ।
ଚେତବ୍ୟ—କ୍ରି. ବିଂ. (ଚି+ମିଂ.ତବ୍ୟ) ଚୟନୀୟ,ଯାହା ସଂଗ୍ରହକରିବା ଉଚିତ ।
ଚେତସ—କ୍ଲୀ. ବି. (ଚିତ୍+କ.ଅସ୍) ଚିତ୍ତ, ମନ, ବୁଦ୍ଧିତତ୍ତ୍ୱ, ଚିତ୍ତବୃତ୍ତି, ଚୈତନ୍ୟ, ଜ୍ଞାନ, ପ୍ରଜ୍ଞା, ଆତ୍ମା ।
ଚେତସକ—ପୁଂ. ବି. ଗୋଟିଏ ଜନପଦ
ଚେତା—ଗ୍ରା. ବି. ଚେତନା, ଚୈତନ୍ୟ, ଜ୍ଞାନ, ଜାଗରଣ, ସ୍ମରଣ, (ବିଂ)ଜାଗ୍ରତ, ଗତନିଦ୍ର, ମୋହରୁ ବିମୁକ୍ତ ।
ଚେତା—ପୁଂ. ବି. (ଚି+ତୃ) ଚେତନା ଯୁକ୍ତ, ହିଂସକ, ଯେ ହିଂସାକରେ, (ସ୍ତ୍ରୀ) ଚେତ୍ରୀ ।
ଚେତାଇବା—ଗ୍ରା. କ୍ରି. ଅନ୍ୟକୁ ସ୍ମରଣ କରାଇବା, ସତର୍କ କରିବା, ନିଦ୍ରାରୁ ଉଠାଇବା, ଜ୍ଞାନ ଉଦୟ କରିବା, ପୁନରୁଜ୍ଜୀବିତ କରିବା, ଆଳସ୍ୟ ଛଡ଼ାଇବା ।
ଚେତାକରାଇବା—ଗ୍ରା. କ୍ରି. ଅଚେତନ ଲୋକର ଚେତନା ଆଣିବା ।
ଚେତାଚଇତନ—ଗ୍ରା. ବି. ଚେତନା ।
ଚେତାନ—ବିଂ. ଚୈତନ୍ୟଯୁକ୍ତ, ଜ୍ଞାନ-ବିଶିଷ୍ଟ ।
ଚେତାନ—ଗ୍ରା. ବି. ଉତ୍ତେଜନା, ସତର୍କ କରିବା, ନିଦରୁ ଉଠାଇବା, ସ୍ମରଣ କରାଇବା ।
ଚେତାପଶିବା—ଗ୍ରା. ବି.ହଠାତ୍ କୌଣସି ବିଷୟରେ ସତର୍କତା ବା ଜ୍ଞାନର ଉଦୟ ହେବା, ସଂଜ୍ଞାଲାଭକରିବା ।
ଚେତାବୁଡ଼ିବା—ଗ୍ରା. ବି. (ରୋଗାଦି-ହେତୁରୁ) ବାହ୍ୟଜ୍ଞାନର ଲୋପ ହେବା ।
ଚେତାଳ—ଗ୍ରା.ପୁଂ. ଓ ସ୍ତ୍ରୀ. ବିଂ ଜାଗ୍ରତ, ଯେ ଆଗପଛ ବିଷୟର କାର୍ଯ୍ୟକରେ, ବ୍ୟୟ ସମ୍ବନ୍ଧରେ ସାବଧାନ ।
ଚେତାଂଶୁ—ପୁଂ. ବି. (ବେଦାନ୍ତ) ଜୀବ ।
ଚେତାହେବା—ଗ୍ରା. କ୍ରି. ସଚୈତନ୍ୟ ହେବା, ଚେତନାବସ୍ଥାକୁ ଆସିବା ।
ଚେତିତ—କ୍ରି. ବିଂ. (ଚିତ+ଣିଚ୍+ମିଂ.ତ) ଜ୍ଞାପିତ, ଜାଗ୍ରତ, ଯାହା ଜଣା ହୋଇଅଛି ।
ଚେତିବା—ଗ୍ରା. କ୍ରି. ନିଦରୁ ଉଠିବା,

ହେଉଥିବା, ଇନ୍ଦ୍ରିୟାଦିଦ୍ୱାରା ଜାଣିବା, , ସତର୍କହେବା, ମନେରଖିବା ।

ଚେତିଷ୍ଠ—ବି. ବଂ. (ଚେତ+ଇଷ୍ଠ) ଅତିଶୟ ଚୈତନ୍ୟଯୁକ୍ତ ।

ଚେତୁଆ—ଗ୍ରା. ବଂ. ଜାଗରୁକ, ସତର୍କ, ଯେ ଅନୁଭବଦ୍ୱାରା ଜ୍ଞାନଲାଭ କରେ ।

ଚେତୋଇବା—ଗ୍ରା. କ୍ରି. ଚେତାଇବା (ଦେଖ),ସ୍ମରଣକରିବା, ହେଜବା ।

ଚେତୋଜନ୍ମା—ପୁଂ. ବି. (ବ.ବ୍ରୀ)କାମଦେବ, କନ୍ଦର୍ପ, (ବଂ) ଯାହା ମନରେ ଜନ୍ମେ ।

ଚେତୋମାନ୍—ପୁଂ. ବଂ.(ଚେତ୍ର+ମତ୍) ପ୍ରଶସ୍ତଚିତ୍ତଯୁକ୍ତ, ମନସ୍ୱୀ,ଚୈତନ୍ୟଯୁକ୍ତ, ଯାହାର ଚେତନା ଅଛି ।

ଚେତୋମୁଖ—ପୁଂ. ବି.(ବ.ବ୍ରୀ)ବେଦାନ୍ତପ୍ରସିଦ୍ଧ ପ୍ରାଜ୍ଞ ।

ଚେତୋବିକାର—ପୁଂ. ବି. (୬ତତ୍) ଚିତ୍ତର ବିକୃତି, କ୍ରୋଧ ।

ଚେତ୍ତୃ—ପୁଂ. ବଂ.(ଚିତ+ତୃ) ଜ୍ଞାପୟିତା ଯେ ଜଣାଏ, (ସ୍ତ୍ରୀ) ଚେତ୍ରୀ ।

ଚେତ୍ୟ—ବି. ବଂ. (ଚିତ+ର୍ମି.ଯ)ଜ୍ଞେୟ, ଜ୍ଞାତବ୍ୟ, ସ୍ତୁତ୍ୟ, ଯାହାକୁ ସ୍ତବକରିବା ଉଚିତ ।

ଚେତ୍ୟା—ସ୍ତ୍ରୀ. ବ.(ଚେତ୍ୟ+ଆ)କ୍ଷେପଣୀୟ, ଯାହା କ୍ଷେପଣ କରିବାଉଚିତ ।

ଚେଦ୍—ଅବ୍ୟ.ଯଦି,ପକ୍ଷାନ୍ତର, ସନ୍ଦେହସୂଚନା (ଚେତ୍ରଶବ୍ଦଜ) ।

ଚେଦି—ପୁଂ. ବି. ଦେଶ ବିଶେଷ, ଶିଶୁପାଳ ଏହି ଦେଶର ରାଜାଥିଲେ, ତଦ୍ଦେଶବାସୀ, କୌଶିକଙ୍କ ପୁତ୍ର ।

ଚେଦିକ—ପୁଂ. ବି.(ବ.ବ୍ରୀ)ଚେଦିଦେଶ ।

ଚେଦିପତି—ପୁଂ. ବି. (୬ତତ୍) ଉପରିଚର ନାମକ ବସୁ,ଚେଦିଦେଶର ଅଧିପତି, ଦମଘୋଷଙ୍କ ପୁତ୍ର ଶିଶୁପାଳ, ନାନ୍ଦୀମୁଖଶ୍ରାଦ୍ଧରେ ପୂଜ୍ୟ ବସୁବିଶେଷ ।

ଚେଦିରାଜ—ପୁଂ. ବି. (ଚେଦି+ରାଜ+ଅ) ଶିଶୁପାଳ,ଉପରିଚର ବସୁ ।

ଚେଦିରାଜବଂଶ—ଏକବିଖ୍ୟାତ ରାଜବଂଶ ।

ଚେଦିସମ୍ବତ୍—ଅପରନାମ କଲଚୁରିସମ୍ବତ୍ ।

ଚେଡୁବ୍ୟା—ବ୍ରହ୍ମଦେଶାନ୍ତର୍ଗତ ଆରାକାନର ଗୋଟିଏ ଦ୍ୱୀପ ।

ଚେନ୍—ଯାଁ ବି. ଜଞ୍ଜିର, ଶିକୁଳି, କୁକୁଡାରେ ପକେଟଘଡ଼ି ଝୁଲାଇବା ଶିକୁଳି, ଭୂମି ମାପିବା ଶିକୁଳି,ଜରିବ ।

ଚେନମ୍ୟାନ୍—ଯା. ବି. ଭୂମି ମାପବେଳେ ଜଞ୍ଜିର ଟାଣିବା ଲୋକ, ଓଡ଼ିଶାରେ ଅମିନ୍‌ମାନଙ୍କ ସଙ୍ଗେ ନିଯୁକ୍ତ ଅଧସ୍ତନ କର୍ମଚାରୀ ।

ଚେନଲାଇନ୍—ଯା.ବି. ମାପ କରିବାପାଇଁ ଭୂମିରେ ଯେଉଁବାଟେ ଚେନ୍ ଓଟାରି ଯାଏ ।

ଚେନ୍‌ସର୍ଭେ—ଯା.ବି.ଲୁହାଶିକୁଳି ସାହାଯ୍ୟରେ ଆଧୁନିକ ପ୍ରଣାଳୀଦ୍ୱାରା ଜମି ମାପିବାର ପ୍ରକ୍ରିୟା ।

ଚେନ୍‌ସକସାର—କୋବଗୁରର ସନ୍ନିହିତ ପାର୍ବତ୍ୟ ପ୍ରଦେଶର ଏକ ଜାଜାବର ଜାତି ।

ଚେନ୍‌ସୁୟାର୍—ଦକ୍ଷିଣାତ୍ୟର ପୂର୍ବଘାଟ ନିବାସୀ ଏକ ଅସଭ୍ୟ ଜାତି ।

ଚେନା—ଗ୍ରା.ବି.କ୍ଷୁଦ୍ର ଲମ୍ବଖଣ୍ଡ,(ଯଥା-ଜମିର ଅତି କ୍ଷୁଦ୍ର ଖଣ୍ଡ,(ଗ୍ରା.ବଂ) ଅତିକ୍ଷୁଦ୍ର ।

ଚେନାପଟ୍ଟମ୍—ଗ୍ରା. ବି. ମାନ୍ଦ୍ରାଜ ।

ଚେନିବାଡ଼—ବଙ୍ଗଦେଶାନ୍ତର୍ଗତ ହଜାରିବାଗ ଜିଲ୍ଲାର ଗୋଟିଏ ପାହାଡ଼ ।

ଚେନ୍ଦ୍ର—ପ୍ରା. (ସମ୍ବ) ବି. କନା,କନ୍ଥା ।

ଚେନ୍ନଗିରି—ମହୀସୁର ରାଜ୍ୟାନ୍ତର୍ଗତ ଶିମୋଗା ଜିଲ୍ଲାର ଗୋଟିଏ ତାଲୁକ ।

ଚେପା—ଗ୍ରା. ବଂ. ଚେପ୍ଟା (ଦେଖ); ଯେଉଁ ପାହାଡ଼ର ଉପର ପାଖ ଭିତରକୁ ପଶିଯାଇଥାଏ, (ପ୍ରା. କଳାହାଣ୍ଡି ବି.) ବାହୁଙ୍ଗିର ପେଟରେ ବନ୍ଧାଯିବା ପତଳା କାଠ ବା ବାଉଁଶ ।

ଚେପାଙ୍ଗ—ମଧ୍ୟ ନେପାଳର ଅନ୍ତର୍ଗତ ଜଙ୍ଗଲ ନିବାସୀ ଗୋଟିଏ ଜାତି ।

ଚେପ୍ଟା—ଗ୍ରା. ବଂ. ଚଉଡ଼ା, ପ୍ରଶସ୍ତ, ଚେପା,ଯାହା ଭିତର ଆଡ଼କୁ ଦବିଯାଏ, ଚୂଡ଼ାପରି ଆକୃତି ବିଶିଷ୍ଟ, ପତଳା, ଚକଟା ।

ଚେପ୍ଟାଢୋଲ—ପ୍ରା. (ସମ୍ବ) ବି. ଆଶ୍ୱିନପର୍ବ ସମୟରେ ସମଲେଶ୍ୱରୀଠାକୁରାଣୀଙ୍କ ଭିଆଣ କରିବା ଉପଲକ୍ଷରେ ବଜାଯିବା ଏକପ୍ରକାର ଢୋଲ ।

ଚେପ୍ଟାନାକା—ଗ୍ରା. ପୁଂ. ବଂ. ଯାହାର ନାକ ଚେପ୍ଟା ବା ବସିଯାଇଥାଏ ।

ଚେପ୍ଟାମୁହାଁ—ଗ୍ରା. ପୁଂ. ବଂ. ଯେଉଁ ବ୍ୟକ୍ତିର ମୁହଁ ଚଟକା ।

ଚେପ୍ଟି—ଗ୍ରା.ବି. (ଅଶ୍ଳୀଳ) ଭଗ,ଯୋନି ।

ଚେପ୍ଟିଲଢ଼ାଇବା—ଗ୍ରା. କ୍ରି. ( ଅଶ୍ଳୀଳ ) କାମାତୁର ଦୁଇଜଣ ସ୍ତ୍ରୀ ପୁରୁଷ ସଂସର୍ଗ ଅଭାବରେ ପରସ୍ପରକୁ ଆଲିଙ୍ଗନ ପୂର୍ବକ ଯୋନି ଲିଙ୍ଗ ଘଷାଘଷି ହେବା ।

ଚେଭଡ଼ା—ଗ୍ରା. ପୁଂ. ବଂ. ଚଟା, ଯେ ମନୁଷ୍ୟକୁ ଅତିଶୟ ବିରକ୍ତ କରେ ।

ଚେଭଡ଼ାଇବା—ଅତ୍ୟନ୍ତ ବିରକ୍ତ କରିବା ।

ଚେଭରା—ଗ୍ରା. ବଂ. ଦାଗୀଥିବାରୁ ଯେଉଁ ବ୍ୟକ୍ତି ବାରମ୍ବାର ମାଗେ ।

ଚେମଟା—ଗ୍ରା. ବଂ. ଅତି କ୍ଷୀଣ ବା ପତଳା, ଶୀର୍ଣ୍ଣ ।

ଚେମଡ଼—ଗ୍ରା. ବଂ. ଘାତସହ,କଟାଳିଆ, ଚମପରି ଟାଆଁସା, ଯାହା ସହଜରେ ଛିଣ୍ଡେ ନାହିଁ,ଯାହା ଲଇଁଯାଏ ଭାଙ୍ଗେନାହିଁ ।

ଚେମଡ଼ଚଟି—ଗ୍ରା. ବି. ଚମଚଟା,ଚେମିଣି, ବାଦୁଡ଼ି,(ବଂ) ଯେ କୌଣସି ବିଷୟରେ ଅତି ଜିଦ୍ ବା ଅଳି କରେ ।

ଚେମଡ଼ାଲଇ—ଗ୍ରା. ବି. ଶାରିବା, ଚେରମାରୁ ।

ଚେମଣାବାବୁ—ଗ୍ରା. ବି. ନାଗପୁର ମରହଟ୍ଟା ରାଜା ମାଧୋଜୀ ଭୋନ୍‌ସଲାଙ୍କ ସାନଭାଇ ।

ଚେମଣୀ—ଗ୍ରା. ବି. ଚେମଣି ଚଢ଼େଇ, ବାଦୁଡ଼ି ।

ଚେମର—ପ୍ରା. (ସମ୍ବ) ବଂ. ଚେମଡ଼, ଅକ୍ଲାନ୍ତ ।

ଚେମା—ଗ୍ରା.ବି.ଏକପ୍ରକାର କଉ ଡ଼ି ଦେଲି

ଚେମ୍ବର—ପ୍ରା.(ସମ୍ବ) ବି. ଚେମଡ଼ଦେଖ,

( ଯା. ବ. ) କଚେରୀ, ହାକିମମାନଙ୍କ ଖାସ୍‌କାମରା, ଓକିଲମାନଙ୍କ ଖାସ୍ ବୈଠକ ଖାନା ବା ଅଫିସ୍ ।

ଚେୟ–ବି. ବଂ. (ଚି+ମ.ଯ) ଚୟନୀୟ, ଯାହା ସଂଗ୍ରହ କରିବା ଉଚିତ, ଯଥା-ବିଧିରେ ସଂସ୍କୃତ (ଅଗ୍ନି) ।

ଚେୟୂରୁ—ମାନ୍ଦ୍ରାଜ ପ୍ରେସିଡେନ୍‌ସୀର ଅନ୍ତର୍ଗତ କପାଡ଼କଲ୍ଲୀର ଗୋଟିଏ ନଦୀ ।

ଚେୟାଡ଼—ଗ୍ରା. ବ. ଶର, ଅସ୍ତ୍ରରୂପେ ବ୍ୟବହୃତ ବାଉଁଶ ପାଢଆ ।

ଚେର୍—ଗ୍ରା. ବ. ବୃକ୍ଷମୂଳରୁ ଭୂମି ଭିତରକୁ ଭେଦ କରିଥିବା ଲମ୍ବ ସୂକ୍ଷ୍ମ ରଜ୍ଜୁ ବହୁଅଂଶ,ପାଚଲା ଆମ୍ବତାଳାଦି ମଧ୍ୟରେ-ଥିବା ସୂକ୍ଷ୍ମ ତନ୍ତୁ, ( ଲ.ଅର୍ଥ ) ବଂଶଧର, ସନ୍ତାନସନ୍ତତି, ସମ୍ପର୍କ, ଦାକ୍ଷିଣାତ୍ୟର ଏକ ପ୍ରାଚୀନ ଜନପଦ ।

ଚେରଉପାଡ଼ିବା--ଗ୍ରା.କ୍ରି.କୌଣସି ଗଛକୁ ଭୂମିରୁ ଟାଣି ଉଦ୍ଧାର ମୂଳକୁ ଭୂମିମଧ୍ୟରୁ ଝିଙ୍କି ଆଣିବା, ମୂଳୋତ୍ପାଟନ କରିବା, (ଲ.ଅର୍ଥ)କୌଣସି ବ୍ୟକ୍ତିର ବା ବସ୍ତୁର ଉଚ୍ଛେଦ ସାଧନ କରିବା ।

ଚେରକାଟିବା—ଗ୍ରା. କ୍ରି. କୌଣସି ବୃକ୍ଷର ମୂଳକୁ କାଟିବା, (ଲ.ଅର୍ଥ) କୌଣସି ବ୍ୟକ୍ତିର ଅନିଷ୍ଟ ବା ଉଚ୍ଛେଦ ସାଧନ କରିବା ।

ଚେରଚଣା—ଗ୍ରା. ବ. ଭୂଇଁଚଣା, ମୁଗଫଳି, ଚିନାବାଦାମ୍ ।

ଚେରଚେଣ୍ଡା—ପ୍ରା.(ଦେଶ୍ୟ) ବ.ପୋଟଳ ।

ଚେରଦେବା—ଗ୍ରା. କ୍ରି. ଭୂମିର ଗଭୀର ପ୍ରଦେଶକୁ ଚେର ବିସ୍ତାର କରିବା, (ଲ.-ଅର୍ଥ) କୌଣସି ସ୍ଥାନରେ ସ୍ଥାୟୀଭାବରେ ଅବସ୍ଥାନ କରିବା, କୌଣସି ସ୍ଥାନରେ ନିଜର ଅଧିକାର ବା ସମ୍ପତ୍ତି ବା ସମ୍ପର୍କ ବା ଆଧିପତ୍ୟ ବିସ୍ତାର କରିବା, ନିଜର ବଂଶବୃଦ୍ଧି ଦ୍ୱାରା ବହୁସଂଖ୍ୟକ ବ୍ୟକ୍ତି ସମ୍ପୃକ୍ତ ପରିବାରର କର୍ତ୍ତା ହେବା,(ସ୍ତ୍ରୀ ପକ୍ଷରେ) ସନ୍ତାନ ପ୍ରସବ କରିବା, ମୂଳ-ଦେଶରୁ ଚେର କାଟିବା ।

ଚେରପାଚୁ—ଗ୍ରା. ବ. ପାଚଲା ଆମ୍ବ, ନଡ଼ଆକଡ଼ ପାଚଲା ତାଳ ଓ ତେନ୍ତୁ-ଳିରେ ଥିବା ବଡ଼ ବଡ଼ ଅଂଶୁ,(ଚେର) ଓ କ୍ଷୁଦ୍ର କ୍ଷୁଦ୍ର ଅଂଶୁ ।

ଚେରମହାମେଦ—ଗ୍ରା. ବ. ଏକପ୍ରକାର [ ବୃକ୍ଷ ।

ଚେରମେଲିବା—ଗ୍ରା. ବ. ଭୂମିମଧ୍ୟରୁ ଚେରର କ୍ରମଶ ବିସ୍ତାର ।

ଚେରମାରୁ—ଗ୍ରା. ବ. ଅନନ୍ତମୂଳ, ଚେମେଡ଼ି ଲଇ ।

ଚେରମୂଳ—ଗ୍ରା. ବ. ଔଷଧରେ ବ୍ୟବ-ହୃତ, ମୂଳାମୂଳିକା, ଜଡ଼ିବୁଟି, ଚୂର୍ଣ୍ଣିଗୁଣି, ଗୁଟିକା ଔଷଧ ।

ଚେରମେଦ—ଏକଜାତୀୟ ବୃକ୍ଷ ।

ଚେରା—ଆସାମର ଅନ୍ତର୍ଗତ ଖାସିପର୍ବତସ୍ଥ ଗୋଟିଏ କ୍ଷୁଦ୍ର ସାମନ୍ତ ରାଜ୍ୟ ।

ଚେରାଇବା—ଗ୍ରା. କ୍ରି. ବିସ୍ତାର କରିବା, (ଲ.ଅର୍ଥ) ଚେରହେବା କ୍ରମେ କ୍ରମେ ସନ୍ତତିଜ ଦେଖାଯିବା ।

ଚେରାତ—ପଞ୍ଜାବ ପ୍ରଦେଶର ପେଶାବାର ଜିଲ୍ଲାର ନଉସେରା ତହସିଲର ଗୋଟିଏ ସ୍ୱାସ୍ଥ୍ୟନିବାସ ।

ଚେରାନ—ସାରଣଜିଲ୍ଲାନ୍ତର୍ଗତ ଗଙ୍ଗାତୀର ବର୍ତ୍ତୀ ଗୋଟିଏ ପ୍ରାଚୀନ ସ୍ଥାନ ।

ଚେରାପୁଞ୍ଜୀ—ଆସାମର ଖାସିପର୍ବତସ୍ଥିତ ଚେରା ନାମକ ଗୋଟିଏ କ୍ଷୁଦ୍ର ରାଜ୍ୟାନ୍ତ-ର୍ଗତ ଗୋଟିଏ ଗ୍ରାମ ।

ଚେରାଙ୍ଗି—ଗ୍ରା.ବ.ପିତ୍ତ(ଲ.ଅର୍ଥ)ବାଲିଙ୍ଗି ।

ଚେରାଙ୍ଗୀ—ଗ୍ରା. ସ୍ତ୍ରୀ. ବଂ. ଡେଙ୍ଗେଇ, କ୍ଷୀଣାଙ୍ଗୀ ସ୍ତ୍ରୀ ।

ଚେରୁ—ବି. ବଂ. (ଚି+ରୁ)ଚୟନଶୀଳ, ଚୟନ କରିବା ଯାହାର ସ୍ୱଭାବ, ଭାରତର ପ୍ରାଚୀନ ଜାତି । [ ଆମ୍ବ ।

ଚେରୁଆ—ଗ୍ରା.ବଂ. ଚେରପୂର୍ଣ୍ଣ (ପାଚଲା

ଚେରୁଡ଼ା—ଗ୍ରା. ବ. ଚରୁଡ଼ାଦେଖ ।

ଚେଲ—କ୍ଲୀ.ବ(ଚଲ+ମ.ଅ) ପୋଷାକ, ପଟ୍ଟବସ୍ତ୍ର, (ବଂ.କ.ଅ) ଅଧମ, କୁତ୍ସିତ, (ସ୍ତ୍ରୀ) ଚେଲୀ ।

ଚେଲକ—ପୁଂ. ବ. ଜଣେ ମୁନି ।

ଚେଲଗଙ୍ଗା—ସ୍ତ୍ରୀ.ବ. ଗୋକର୍ଣ୍ଣର ନିକଟ-ବର୍ତ୍ତୀ ଗୋଟିଏ ନଦୀ ।

ଚେଲା—ଗ୍ରା. ବ. ସନ୍ନ୍ୟାସୀମାନଙ୍କର ଶିଷ୍ୟ, କାଷ୍ଠଖଣ୍ଡ, ଏକପ୍ରକାର ମତ୍ସ୍ୟ ।

ଚେଲାନ—ପୁଂ. ବ. ( ଚେଲ+ଆନ ) ଲତାବିଶେଷ, ତରଭୁଜ ।

ଚେଲାପିପଲ—ଗ୍ରା.ବ.ଏକଜାତୀୟ ବୃକ୍ଷ ।

ଚେଲାଲ—ପୁଂ. ବ. (ଚେଲ+ଅଲ,ଅ) ଲତାପନସ ।

ଚେଲାଶକ—ପୁଂ.ବ. (ଚେଲ+ଅଶ+ଅକ) ପ୍ରେତବିଶେଷ ।

ଚେଲି—ବ. ଗୁଚ୍ଛ ବା ନୀଚବ୍ୟକ୍ତି ।

ଚେଲୀ—ଗ୍ରା.ବ. ପଟ୍ଟବସ୍ତ୍ରବିଶେଷ,ରେଶମୀ କପଡ଼ା ।

ଚେଲିକା—ସ୍ତ୍ରୀ. ବ. ( ଚେଲ+କ.ଆ ) ପଟ୍ଟବସ୍ତ୍ର, ପରିଚ୍ଛଦ, ପୋଷାକ, ପାଟ-ଶାଢ଼ୀ ।

ଚେଲମା—ଗ୍ରା. ବ. ଗୁଡ଼ଲଧୁଆ ପାଣି ।

ଚେଲୀ—ସ୍ତ୍ରୀ.ବ. (ଚେଲ+ଈ)ପଟ୍ଟବସ୍ତ୍ର, ଚେଲୀକା ଦେଖ ।

ଚେଲୀମ—ଗ୍ରା.ବ. କ୍ଷୁଦ୍ର ମତ୍ସ୍ୟବିଶେଷ ।

ଚେଲୀ—ଗ୍ରା. ସ୍ତ୍ରୀ. ବ. ଶିଷ୍ୟା, ସନ୍ନ୍ୟାସୀ-ଆଦିଙ୍କଠାରୁ ଦୀକ୍ଷାଗ୍ରହଣ କରିଥିବା ସ୍ତ୍ରୀ ।

ଚେଲୁକ—ପୁଂ. ବ. ( ଚେଲ+ଉକ ) ବୌଦ୍ଧଭିକ୍ଷୁକବିଶେଷ ।

ଚେମ୍ମା—ସ୍ତ୍ରୀ. ବ. ରାଗିଣୀବିଶେଷ ।

ଚେଷ୍ଟକ—ପୁଂ. ବଂ.(ଚେଷ୍ଟ + କ.ଅକ) ଯେ ଚେଷ୍ଟା କରେ, ଚେଷ୍ଟାଯୁକ୍ତ, (ବ) ରତିବନ୍ଧବିଶେଷ ।

ଚେଷ୍ଟନ—କ୍ଲୀ. ବ. (ଚେଷ୍ଟ+ଭା.ଅନ) ଚେଷ୍ଟା, ଯତ୍ନକରିବା, (ବଂ) ଚେଷ୍ଟକ ଦେଖ ।

ଚେଷ୍ଟମାନ—ପୁଂ. ବଂ. ( ଚେଷ୍ଟ+କ. ଶାନଚ୍)ଯେ,ଚେଷ୍ଟାକରୁଅଛି,ଉଦ୍ୟୋଗୀ, ଚଳନ୍ତ, ଗତିଥିବା, (ସ୍ତ୍ରୀ)ଚେଷ୍ଟମାନା ।

ଚେଷ୍ଟୟିତା—ପୁଂ. ବଂ. (ଚେଷ୍ଟ+ଣିଚ୍ ତୃ) ଯେ ଚେଷ୍ଟା କରାଏ ।

ଚେଷ୍ଟା—ସ୍ତ୍ରୀ. ବ. (ଚେଷ୍ଟ+ଭା.ଅ + ଆ) କାୟିକ ବ୍ୟାପାରବିଶେଷ, ଉଦ୍ୟୋଗ, ଯତ୍ନ,ସାହାସ, ଇଚ୍ଛା, କାମନା,ବ୍ୟାପାର,

ଅଭୀଷ୍ଟ ସାଧାନାର୍ଥ କ୍ରିୟା, ଗତି, କାର୍ଯ୍ୟ, କର୍ମ ।
ଚେଷ୍ଟାନାଶ—ପୁଂ. ବି. (ବ.ବ୍ରୀ)ପ୍ରଳୟ ।
ଚେଷ୍ଟାନ୍ୱିତ—ବିଂ. (୩ତତ୍ପୁ) ଚେଷ୍ଟିତ, ଚେଷ୍ଟାଯୁକ୍ତ, (ସ୍ତ୍ରୀ)ଚେଷ୍ଟାନ୍ୱିତା ।
ଚେଷ୍ଟାବଳ—**କ୍ଲୀ. ବି.ଜ୍ୟୋତିଃଶାସ୍ତ୍ରପ୍ରସିଦ୍ଧ ଗ୍ରହମାନଙ୍କର ବଳବିଶେଷ** ।
†ଚେଷ୍ଟାବାନ୍—ପୁଂ.ବିଂ. (ଚେଷ୍ଟା+ବତ୍) **ଚେଷ୍ଟାଯୁକ୍ତ, ଯାହାର ଚେଷ୍ଟା ଅଛି,** (ସ୍ତ୍ରୀ) ଚେଷ୍ଟାବତୀ ।
ଚେଷ୍ଟାଶୂନ୍ୟ—ବିଂ. ( ୩ତତ୍ପୁ ) ନିଶ୍ଚେଷ୍ଟ, ଉଦ୍ୟମହୀନ, (ସ୍ତ୍ରୀ) ଚେଷ୍ଟାଶୂନ୍ୟା ।
ଚେଷ୍ଟାସାଧ୍ୟ—ବିଂ.(୩ତତ୍ପୁ)ଯାହା ଚେଷ୍ଟା ଦ୍ୱାରା ସାଧନ କରାଯାଇପାରେ ।
ଚେଷ୍ଟାର୍ହ—ବି.ବିଂ.(ଚେଷ୍ଟା+ଅର୍ହ+ଅ) ଯାହାର ଚେଷ୍ଟା କରିବା ଉଚିତ ।
ଚେଷ୍ଟିତ—ବି.ବିଂ(ଚେଷ୍ଟ+କ.ତ)ଚେଷ୍ଟାଯୁକ୍ତ, ଯେ ଚେଷ୍ଟା କରେ, ସଚେଷ୍ଟ, (ମି.ତ) ଯେଉଁ ବିଷୟ ପାଇଁ ଚେଷ୍ଟା କରାଯାଇଅଛି, ବି. (ଭା.ତ) ଗତି, କର୍ମ, ଉଦ୍ୟମ, ଚେଷ୍ଟା ।
ଚେଷ୍ଟିତବ୍ୟ—ବିଂ.( ଚେଷ୍ଟ+ମି.ତବ୍ୟ ) ଚେଷ୍ଟା କରିବା ଯୋଗ୍ୟ ।
ଚେହେଁକା—ଗ୍ରା. ବି. ଚମକ, ଭୟରେ ଚମକିବା ।
ଚେହେଁକିବା—ଗ୍ରା. କ୍ରି. ଭୟରେ ଚମକିବା, ତ୍ରାସଆହେବା ।
†ଚେହେରା—ଯା. ବି. ମୁଖମଣ୍ଡଳର ଛବି, ମୁଖଛବି, ସୌନ୍ଦର୍ଯ୍ୟ ।
ଚେହେରାବନ୍ତ—ଗ୍ରା.ବିଂ.ସୁନ୍ଦର ମୁଖଯୁକ୍ତ
†ଚେହେଲମ୍—ଯା.ବି. ମୁସଲମାନମାନଙ୍କ ସଫର ମାସର ୨୦ ତାରିଖରେ ପଡ଼ିବା ପର୍ବ, ମୁସଲମାନମାନଙ୍କ ମୃତ୍ୟୁର ୪୦ ଦିନ ।
ଚେହେଲମ୍‌ଫାତିଆ—ଯା.ବି.ମୁସଲମାନମାନଙ୍କ ମୃତ୍ୟୁ ପରେ ୪୦ ଦିନରେ ହେବା ଦେବାର୍ଚ୍ଚନାଦି ।   [ କର ।
ଚୈ—ଉତ୍ତର ପଶ୍ଚିମ ପ୍ରଦେଶର ବାଙ୍ଗା-
ଚୈ—(ଚବ୍ୟ ଶବ୍ଦଜ)ଚୈକା, କଟୁରସ-ଯୁକ୍ତ ରସବିଶେଷ ।   [ଜଣେ ଋଷି ।
ଚୈକିତ—ପୁଂ. ବି. ଗୋତ୍ର ପ୍ରବର୍ତ୍ତକ
ଚୈକିତ୍ୟ—ପୁଂ.ସ୍ତ୍ରୀ.ବି. ଚେକିତ ମୁନିଙ୍କର ଗୋତ୍ରାପତ୍ୟ ।
ଚୈକିତାନ—ପୁଂ.ବି. ଉପନିଷଦ୍ ପ୍ରସିଦ୍ଧ ଜଣେ ପୁରୁଷ ।
ଚୈକିତାନେୟ—ପୁଂ. ବି. ଉପନିଷଦ୍ ପ୍ରସିଦ୍ଧ ଜଣେ ଜ୍ଞାନୀପୁରୁଷ ।
ଚୈକିତାୟନ—ପୁଂ. ବି. ଚିକିତାୟନ ଋଷିଙ୍କର ପୁତ୍ର ।   [ ଗ୍ରନ୍ଥ ।
ଚୈକୟିତ—ବି.ବିଂ.ଚୈକୟିତ ମୁନିଙ୍କ
ଚୈକୟିତ୍ୟ—ପୁଂ. ସ୍ତ୍ରୀ. ବି. ଚକୟିତ ଋଷିଙ୍କ ଗୋତ୍ରାପତ୍ୟ, ତଦ୍‌ବଂଶୋତ୍ପନ୍ନ ।
ଚୈକୀର୍ଷିତ—ବି. ବିଂ. ଯାହାର ଚିକୀର୍ଷା ଅଛି, ଯେ କରିବାକୁ ଇଚ୍ଛାକରେ ।
ଚୈଟଯତ—ବି.ବିଂ.ଭୃତ୍ୟପର ଯତ୍ନଶୀଳ
ଚୈଟଯତାୟନୀ—ପୁଂ. ସ୍ତ୍ରୀ. ବି. ଚୈଟଯତଙ୍କ ଅପତ୍ୟ ।
ଚୈତନ୍ୟ—କ୍ଲୀ.ବି. (ଚେତନ+ଯ)ଚିତ୍ସ୍ୱରୂପ,ଆତ୍ମା, ଆତ୍ମଧର୍ମ, ଜ୍ଞାନ,ଚେତନା, ଅନୁଭୂତି, ବୋଧ, ପରମେଶ୍ୱର,ପ୍ରକୃତି, ପ୍ରସିଦ୍ଧ ବୈଷ୍ଣବ ସମ୍ପ୍ରଦାୟ ।
ଚୈତନ୍ୟଚନ୍ଦ୍ର—ପୁଂ. ବି. ସୁପ୍ରସିଦ୍ଧ ଧର୍ମ ପ୍ରଚାରକ, ଚୈତନ୍ୟ ଧର୍ମ ସମ୍ପ୍ରଦାୟ ପ୍ରବର୍ତ୍ତକ ।
ଚୈତନ୍ୟଚନ୍ଦ୍ରାମୃତ—ସଂସ୍କୃତ ଭାଷାରେ ଲିଖିତ ବୈଷ୍ଣବ ଗ୍ରନ୍ଥବିଶେଷ ।
ଚୈତନ୍ୟଚନ୍ଦ୍ରୋଦୟ--ମହାତ୍ମା ଚୈତନ୍ୟଚନ୍ଦ୍ରଙ୍କ ଚରିତ ବିଷୟକ ଖଣ୍ଡିଏ ସଂସ୍କୃତ ନାଟକ ।
ଚୈତନ୍ୟଚରିତାମୃତ—ଗ୍ରା. ବି. ବଙ୍ଗଳା ଭାଷାରେ ରଚିତ ବୈଷ୍ଣବ ଗ୍ରନ୍ଥବିଶେଷ ।
ଚୈତନ୍ୟଭାଗବତ--ଏହାର ଅପର ନାମ ଚୈତନ୍ୟ ମଙ୍ଗଳ ।
ଚୈତନ୍ୟଭୈରବୀ—ସ୍ତ୍ରୀ.ବି.ତନ୍ତ୍ରସାରୋକ୍ତ ଭୈରବୀବିଶେଷ ।
ଚୈତନ୍ୟମଙ୍ଗଳ—ବି. ଚୈତନ୍ୟ ଭାଗବତର ଅପର ନାମ, ଲୋଚନଦାସ ପ୍ରଣୀତ ଖଣ୍ଡିଏ ଗ୍ରନ୍ଥ ।
ଚୈତନ୍ୟମୟ—ପୁଂ.ବିଂ.ଚିନ୍ମୟ,ଚେତନାଯୁକ୍ତ ।
ଚୈତନ୍ୟରୂପୀ—ପୁଂ. ବିଂ. ଜ୍ଞାନସ୍ୱରୂପ, ଜ୍ଞାନମୟ, (ସ୍ତ୍ରୀ) ଚୈତନ୍ୟରୂପିଣୀ ।
ଚୈତନ୍ୟସମ୍ପ୍ରଦାୟ—ଭାରତବର୍ଷର ଆଧୁନିକ ବୈଷ୍ଣବ ସମ୍ପ୍ରଦାୟବିଶେଷ ।
ଚୈତନ୍ୟୋଦୟ—ବି. (୬ତତ୍ପୁ) ଚେତନାର ଉଦୟ, ଜ୍ଞାନୋଦୟ ।
ଚୈତସଘୃତସ୍ୱଳ୍ପ—ବି. ବୈଦ୍ୟକୋକ୍ତ ଔଷଧବିଶେଷ ।
ଚୈତ୍ତ—ବି.ବିଂ.(ଚିତ୍ତ+ଅ) ଚିତ୍ତସମ୍ବନ୍ଧୀ, ସ୍ମରଣାଦି, ବୌଦ୍ଧ ମତରେ ବିଜ୍ଞାନ ସ୍କନ୍ଧର ଅତିରିକ୍ତ ଅନ୍ୟ ସ୍କନ୍ଧ ମାତ୍ର ।
ଚୈତ୍ତକ—ବି. ବିଂ. (ଚୈତ୍ତ+କ)ଚିତ୍ତସମ୍ବନ୍ଧୀ ।
ଚୈତ୍ତିକ—ବିଂ. ( ଚିତ୍ତ+ଇକ ) ଚୈତ୍ତ ଦେଖ ।
ଚୈତ୍ୟ—ପୁଂ.କ୍ଲୀ.ବି. (ଚିତ୍ୟ+ଅ)ଆୟତନ, ଗୃହ, ଯଜ୍ଞାୟତନ,ଦେବାୟତନ, ମୃତ ବ୍ୟକ୍ତିର ସ୍ମୃତି ମନ୍ଦିର, ଦେବକୁଳ, ଦେଉଳ, ଚିତା, ଚୈତ୍ୟସ୍ଥ ଦେବଭେଦ, ବୁଦ୍ଧଦେବ, ବିମ୍ବ, ବେଲଗଛ, ବୁଦ୍ଧଙ୍କ ପ୍ରତିମୂର୍ତ୍ତି, ଉଦ୍ଦେଶ୍ୟ ବୃକ୍ଷ, ଶ୍ମଶାନତରୁ, କଳ୍ପତରୁ, ଚିତାଗ୍ନି,ଗ୍ରାମାଦି ପ୍ରସିଦ୍ଧ ମହାବୃକ୍ଷ, ଅଶ୍ୱତ୍ଥବୃକ୍ଷ, ବିହାର ବୌଦ୍ଧମଠ, ବୁଦ୍ଧବପ୍ର, (ବିଂ) ବୁଦ୍ଧବେଦ୍ୟ, ଚିତାସମ୍ବନ୍ଧୀୟ,(ସ୍ତ୍ରୀ)ଚୈତ୍ୟା ।
ଚୈତ୍ୟକ—ପୁଂ.ବି.(ଚୈତ୍ୟ+କୈ+ଅ) ଅଶ୍ୱତ୍ଥବୃକ୍ଷ, ଗିରି, ବ୍ରଜପୁର ବେଷ୍ଟକ ପଞ୍ଚଗିରି ଅନ୍ତର୍ଗତ ପର୍ବତଭେଦ, ବର୍ତ୍ତମାନ ନାମ ସୋଣାର ।
ଚୈତ୍ୟଗୃହ—କ୍ଲୀ. ବି- ଚୈତ୍ୟର ସନ୍ନିହିତ ଗୃହ ।
ଚୈତ୍ୟତରୁ—ପୁଂ.ବି. (କ.ଧା)ଗ୍ରାମାଦିର ପ୍ରସିଦ୍ଧ ବୃକ୍ଷ, ଅଶ୍ୱତ୍ଥବୃକ୍ଷ ।
ଚୈତ୍ୟଦ୍ରୁ—ପୁଂ. ବି. (କ.ଧା) ଅଶ୍ୱତ୍ଥବୃକ୍ଷ ।
ଚୈତ୍ୟଦ୍ରୁମ—ପୁଂ.ବି.(କ.ଧା) ଅଶ୍ୱତ୍ଥବୃକ୍ଷ, ଅଶୋକଗଛ, କଳ୍ପତରୁ ।

ଚୈତ୍ୟପାଳ—ପୁଂ. ବି. (ଚୈତ୍ୟ+ପାଳ+ଅ) ଚୈତ୍ୟରକ୍ଷକ ।
ଚୈତ୍ୟପୁଗ—ପୁଂ. ବି. କମଣ୍ଡଳୁ ।
ଚୈତ୍ୟଯଜ୍ଞ—ପୁଂ.ବି.ଅଶ୍ୱଳାୟନ ଗୃହ୍ୟସୂତ୍ରରେ ବର୍ଣ୍ଣିତ ଯଜ୍ଞବିଶେଷ ।
ଚୈତ୍ୟବନ୍ଦନ—ବି. ଜିନ ବା ବୁଦ୍ଧଙ୍କ ମୂର୍ତ୍ତି, ଜୈନ ବା ବୌଦ୍ଧ ମନ୍ଦିର. ଦେବାଳୟ ସମ୍ବନ୍ଧୀୟ ଧନର ରକ୍ଷା ।
ଚୈତ୍ୟବୃକ୍ଷ—ପୁଂ. ବି. (କ.ଧା) ଅଶ୍ୱତ୍ଥ ବୃକ୍ଷ ।
ଚୈତ୍ୟବିହାର—ପୁଂ. ବି. (ବ.ବ୍ରୀ)ଜିନଗୃହ, ବୌଦ୍ଧମଠ ।
ଚୈତ୍ୟଶୈଳ—ପୁଂ.ବି. ଚୈତ୍ୟପର୍ବତ ।
ଚୈତ୍ୟସ୍ଥାନ—କ୍ଲୀ. ବି. (୬ତତ୍ପୁ) ଯେଉଁ ସ୍ଥାନରେ ବୁଦ୍ଧଦେବଙ୍କ ପ୍ରତିମୂର୍ତ୍ତି ସ୍ଥାପିତ ଅଛି, ପବିତ୍ର ସ୍ଥାନ ।
ଚୈତ୍ର—କ୍ଲୀ. ବି.(ଚୈତ୍ରୀ+ଅ)ଯଜ୍ଞଭୂମି, ଦେବକୁଳ, ଦେଉଳ, ମୃତ, (ପୁଂ) ବୁଦ୍ଧ ଭିକ୍ଷୁକ, ବର୍ଷପର୍ବତ, ଚିତ୍ରାଗର୍ଭସଂଭୂତ ବୁଦ୍ଧଙ୍କ ପୁତ୍ର, ମଧୁମାସ, ଚୈତ୍ର ମାସ, ବାର୍ହସ୍ପତ୍ୟ ବର୍ଷଭେଦ, ବାର୍ହସ୍ପତ୍ୟ ଅର୍ଦ୍ଧମାସ, (ବିଂ) ଚିତ୍ରାନକ୍ଷତ୍ରଜାତ ।
ଚୈତ୍ରକ—ପୁଂ.ବି. (ଚୈତ୍ର+କ) ଚୈତ୍ରମାସ ।
ଚୈତ୍ରମଖ—ପୁଂ. ବି. (୬ତତ୍ପୁ) ଚୈତ୍ରମାସୀୟ ମଦନ ତ୍ରୟୋଦଶୀ ପ୍ରଭୃତି ଉତ୍ସବ ।
ଚୈତ୍ରରଥ—କ୍ଲୀ. ବି. (ଚିତ୍ରରଥ+ଅ) କୁବେରଙ୍କ ଉପବନ, ମୁନିବିଶେଷ, ମହାଭାରତର ଆଦିପର୍ବାନ୍ତର୍ଗତ ଗୋଟିଏ ପର୍ବାଧ୍ୟାୟ ।
ଚୈତ୍ରରଥି—ପୁଂ. ବି. (ଚିତ୍ରରଥ+ଇ) ଶଶବିନ୍ଦୁ ନୃପତି ।
ଚୈତ୍ରରଥୀ—ସ୍ତ୍ରୀ.ବି. (ଚିତ୍ରରଥ+ଅ+ଈ) ଶଶବିନ୍ଦୁ ରାଜାଙ୍କ କନ୍ୟା ।
ଚୈତ୍ରରଥ୍ୟ—କ୍ଲୀ.ବି.. (ଚୈତ୍ରରଥ+ଯ) କୁବେରଙ୍କ ଉଦ୍ୟାନ, ଚୈତ୍ରରଥ ।
ଚୈତ୍ରରାଜ—ପୁଂ. ବି. ଚମ୍ପାବତୀ ଦେଖିଭକ୍ତ ଗୋପର୍ଷି କୁଳଜା ପ୍ରଥମ ରାଜା ।
ଚୈତ୍ରବତୀ—ସ୍ତ୍ରୀ. ବି. ନଦୀବିଶେଷ ।
ଚୈତ୍ରବାହନୀ—ସ୍ତ୍ରୀ.ବି. (ଚିତ୍ରବାହନ+ଅ+ଈ) ଚିତ୍ରବାହନଙ୍କ କନ୍ୟା, ଅର୍ଜୁନଙ୍କ ପତ୍ନୀ, ବଭ୍ରୁବାହନଙ୍କ ମାତା, ଚିତ୍ରାଙ୍ଗଦା ।
ଚୈତ୍ରାୟନ—ପୁଂ.ବି. ଚିତ୍ରର ଗୋତ୍ରଜ, (ବିଂ) ଚିତ୍ରନବୃତ୍ତି ।
ଚୈତ୍ରାବଳୀ—ସ୍ତ୍ରୀ. ବି.ଚୈତ୍ରୀ ପୂର୍ଣ୍ଣିମା, ମଦନ ତ୍ରୟୋଦଶୀ ।
ଚୈତ୍ରି—ପୁଂ.ବି. ଚୈତ୍ରଗତ ପୂର୍ଣ୍ଣିମାଯୁକ୍ତ ଚୈତ୍ରମାସ ।
ଚୈତ୍ରିକ—ପୁଂ. ବି. (ଚୈତ୍ର+ଇକ) ଚୈତ୍ରମାସ । [ ମାସ ।
ଚୈତ୍ରୀ—ପୁଂ.ବି. (ଚୈତ୍ରୀ+ଇନ୍)ଚୈତ୍ର-
ଚୈତ୍ରୀ—ସ୍ତ୍ରୀ.ବି.(ଚିତ୍ରା+ଅ+ଈ)ଚିତ୍ରାନକ୍ଷତ୍ରଯୁକ୍ତ ପୂର୍ଣ୍ଣିମା, ଚୈତ୍ରପୂର୍ଣ୍ଣିମା ।
ଚୈଦିକ—ତ୍ରି.ବିଂ.(ଚେଦି+ଇକ)ଚେଦି ଦେଶଜ, ଚେଦି ଦେଶସମ୍ବନ୍ଧୀୟ,(ବି) ଚେଦି ଦେଶର ରାଜା, ତଦ୍ଦେଶବାସୀ ବ୍ୟକ୍ତି ।
ଚୈଦ୍ୟ—ପୁଂ. ବି. (ଚେଦି+ଯ) ଚେଦି ଦେଶର ରାଜା, ଶିଶୁପାଳ, ତ୍ରିପୁରଦେଶ, ତଦ୍ଦେଶବାସୀ, ଚେଦି ରାଜବସୁର ବଂଶୋତ୍ପନ୍ନ, (ବିଂ) ଚେଦିଦେଶଜ ।
ଚୈନ—ବିଂ.(ଚୀନ+ଅ)ଚୀନଦେଶୀୟ, ଚୀନଦେଶଜାତ ।
ଚୈନେୟ—ବିଂ. (ଚୀନ+ଏୟ) ଚୈନ ଦେଖ ।
ଚୈନ୍ତ୍ରତ—ପୁଂ.ସ୍ତ୍ରୀ. ବି. ଚନ୍ତ୍ରତା ନାମ୍ନୀ ସ୍ତ୍ରୀର ଗର୍ଭଜାତ ପୁତ୍ର ବା କନ୍ୟା, (ସ୍ତ୍ରୀ) ଚୈନ୍ତ୍ରତୀ । [ ଅପତ୍ୟ ।
ଚୈନ୍ତ୍ରତେୟ—ପୁଂ. ବି. ଚନ୍ତ୍ରାଯୁକ୍ତ ସ୍ତ୍ରୀର
ଚୈଲ—ତ୍ରି. ବିଂ. (ଚେଲ+ଅ) ବସ୍ତ୍ର ସମ୍ବନ୍ଧୀୟ, (କ୍ଲୀ. ବି) ବସ୍ତ୍ର,ପୋଷାକ ।
ଚୈଲକ—ପୁଂ.ବି.ଶୂଦ୍ର ପିତା ଓ କ୍ଷତ୍ରିୟ ମାତା ଗର୍ଭଜାତ ପ୍ରାଚୀନ ବର୍ଣ୍ଣସଙ୍କର ଜାତିବିଶେଷ ।
ଚୈଲକି—ପୁଂ. ବି. (ଚେଲକ+ଇ) ଚେଲକ ଋଷିଙ୍କ ପୁତ୍ର ।
ଚୈଲଧାବ—ପୁଂ.ବି.(ଚୈଲଧାବ+କ.ଅ) ରଜକ, ଧୋବା ।
ଚୈଲାଶକ—ପୁଂ. ବି. (ଚୈଲ+ଅଶ୍+ଅକ) କ୍ଷୁଦ୍ର ପ୍ରାଣୀବିଶେଷ, ଏହି ପ୍ରାଣୀ ବସ୍ତ୍ରକୀଟ ଭକ୍ଷଣକରି ଜୀବନ ଧାରଣ କରେ, (ବିଂ) ଯେ ବସ୍ତ୍ର ସମ୍ବନ୍ଧୀୟ କୀଟ ଭକ୍ଷଣ କରେ ।
ଚୈଲିକ—ପୁଂ. ବି. ବସ୍ତ୍ରଖଣ୍ଡ ।
ଚୋ—ଯା. ବି. ଗଣ୍ଠି, କୂପ ।
ଚୋ(କ)—କ୍ଲୀ. ବି. କଣ୍ଟୂପର୍ଣ୍ଣୀ ମୂଳ ।
ଚୋକ—ଗ୍ରା.ବି. ବୋମ୍ବାଇ ପ୍ରେସିଡ଼େନ୍ସୀର କାଠିଆବାଡ଼ ରାଜ୍ୟର ଉଦୟସର୍ବୀୟ ନାମକ ସ୍ଥାନର ଅନ୍ତର୍ଗତ ଗୋଟିଏ କ୍ଷୁଦ୍ର ରାଜ୍ୟ ।
ଚୋକଡ଼—ଗ୍ରା.ବି. ଗହମର ଚୋପା,ଭୂଷି ।
ଚୋକୁଟି—ପୁଂ. ବି. ପ୍ରବରବିଶେଷ ।
ଚୋକ୍କଣ—ପୁଂ. ବି. ଦାକ୍ଷିଣାତ୍ୟବାସୀ ଜଣେ ସଂସ୍କୃତ କବି ।
ଚୋକ୍କନାଥ—ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର ଜଣେ ସଂସ୍କୃତ ଗ୍ରନ୍ଥକାର ।
ଚୋକ୍ଷ—ପୁଂ. ବି. (ଚୁକ୍ଷ୍+କ.ଅ) ପବିତ୍ର ବନ ପ୍ରଦେଶ, ସ୍ୱାଭାବିକ ଶୁଦ୍ଧ ପ୍ରଦେଶ, (ବିଂ) ଗୀତ, ପ୍ରଶଂସିତ, ଶୁଚି, ପବିତ୍ର, ଦକ୍ଷ, ତୀକ୍ଷ୍ଣ, ମନୋଜ୍ଞ, ନିର୍ମଳ ।
ଚୋକ୍ଷ୍—ପ୍ରା. (ସମ୍ଭ) ବିଂ. ତୀକ୍ଷ୍ଣ ।
ଚୋଖ—ଗ୍ରା. ବି. ରାଗ, କ୍ରୋଧ, ମନୋଜ୍ଞତା, ସୌନ୍ଦର୍ଯ୍ୟ, ସଂଯୋଗ, ସ୍ଫୂର୍ତ୍ତି, ତେଜ, ବେଗ, (ବିଂ) ସଂଯୁକ୍ତ,ସୁନ୍ଦର, ତୀବ୍ର, ଶ୍ରେଷ୍ଠ, ବିଶୁଦ୍ଧ, ବେଗଗାମୀ, ତେଜୀ, ସ୍ଫୂର୍ତ୍ତିବାନ ।
ଚୋଖା—ଗ୍ରା. ବିଂ. ଚୋଖ ଦେଖ ।
ଚୋଖାର—ଗ୍ରା. ବିଂ. ଚୋଖ ଦେଖ,(ଗ୍ରା. ବି) ବେଗଗାମୀ ଚୋର ।
ଚୋଖି—ଗ୍ରା. ବି. (ସଂ-ଚୁକ୍ର) ଝଟାପାଳଙ୍ଗ ଶାକ, ସଙ୍ଗୀତର ରାଗବିଶେଷ,ଉତ୍କର୍ଷ, ବାଲିଙ୍ଗି ।
ଚୋଖୀମାଲ—ଗ୍ରା. ବି. ଅତି ଉତ୍ତମ ବା ଉତ୍କୃଷ୍ଟ ପଦାର୍ଥ ।

ଛରବା—ଗ୍ରା.କ୍ରି.ନିଃସୃତହେବା,ଝରିବା ।
ଛର୍ଦ୍ଦ—କ୍ଲୀ. ବ. (ଛର୍ଦ୍ଦି+ଘ.ଅ) ବମନ, ଛର୍ଦ୍ଦି, ଏକପ୍ରକାର ବମନରୋଗ ।
ଛର୍ଦ୍ଦନ—କ୍ଲୀ. ବ. (ଛର୍ଦ୍ଦି+ଭା.ଅନ)ବାନ୍ତି, ବମି, ଛର୍ଦ୍ଦି,ଉଦ୍ଗାର, (ପୁଂ.ବ) ଅଲଂବୁଷ ରାକ୍ଷସ, ଅଲମ୍ବୁଷ, ପିତାଳୀଉ, ନିମ୍ବବୃକ୍ଷ, ମଦନବୃକ୍ଷ, (ତ୍ରି,ବଂ) ବମନକାରୀ ।
ଛର୍ଦ୍ଦପନିକା—ସ୍ତ୍ରୀ. ବ. (ଛର୍ଦ୍ଦି+ଆପ+ଅନ+କ+ଆ) କର୍କଟୀ, କାକୁଡ଼ି ।
ଛର୍ଦ୍ଦି—ସ୍ତ୍ରୀ.ବ.(ଛର୍ଦ୍ଦ+ଣିଚ୍+ଇ)ବମନ ରୋଗ ।
ଛର୍ଦ୍ଦିକା—ସ୍ତ୍ରୀ. ବ. (ଛର୍ଦ୍ଦି+କ+ଆ)ବିଷ୍ଣୁକାନ୍ତା, ଏକପ୍ରକାର ବୃକ୍ଷ, ଅପରାଜିତା ଲତା, ଇନ୍ଦ୍ରବାସିକା, ବମନ ।
ଛର୍ଦ୍ଦିକାରପୁ—ପୁଂ.ବ (ଷତତ୍)କ୍ଷୁଦ୍ରେଲା, ଗୁଜୁରାତି ।
ଛର୍ଦ୍ଦିଘ୍ନ—ପୁଂ.ବ. (ଛର୍ଦ୍ଦି+ହନ୍+ଅ)ନିମ୍ବବୃକ୍ଷ, ମହାନିମ୍ବ, (ବଂ) ଯେଉଁ ଔଷଧ ବମନ ବନ୍ଦ କରାଏ ।
ଛର୍ଦ୍ଦିଷ୍ପ—ତ୍ରି. ବଂ. ଗୃହପାଳକ ।
ଛର୍ଦ୍ଦିସ୍—ସ୍ତ୍ରୀ. ବ. ( ଛର୍ଦ୍ଦ+ଇସ୍ ) ବମି, ବମନରୋଗ, ଉଦ୍ଗାର, ଗୃହ, ତେଜ ।
ଛର୍ଦ୍ଦୀ—ସ୍ତ୍ରୀ.ବ.ଛର୍ଦ୍ଦିରୋଗ,ଛର୍ଦ୍ଦନ ଦେଖ ।
ଛର୍ଦ୍ଦ୍ୟାପନକ—ପୁଂ.ବ.କର୍କଟୀ, କାକୁଡ଼ି ।
ଛଲ୍‌କିବା—ପ୍ରା. ( ସମ୍ବ ) କ୍ରି.ଛୁଡ଼ିକିବା, ଉଚ୍ଛୁଳିବା, ଚହଲିବା, ଗୋଡ଼ଆଦି ଭୂଇଁରେ ଝସିଯିବା ।
ଛଳ—କ୍ଲୀ. ବ. (ଚ୍ଛେ+ଭା.ଅଳ)ସ୍ୱରୂପାଚ୍ଛାଦନ, ଶାଠ୍ୟ, କାପଟ୍ୟ, ପ୍ରତାରଣା, ସ୍ଖଳନ, ବ୍ୟାଜ, ତ୍ରୁଟି,ନ୍ୟାୟ ମତସିଦ୍ଧ ଦୋଷଭେଦ, ମନକୁ ବାଧିଲାଭଳି କହିବା,ଅଭିପ୍ରାୟ, ଗୃଢ଼ୋକ୍ତି, ନାଟକୋକ୍ତ ବୀଥିର ଅଙ୍ଗଭେଦ, କୌଶଳ, ପ୍ରଯୁକ୍ତ ବାକ୍ୟରେ ଅର୍ଥାନ୍ତର କଳ୍ପନା,ବିପରୀତାର୍ଥବୋଧ,ବ୍ୟଙ୍ଗଭାବ, ଶ୍ଳେଷ ବଚନ, ବାହାନା,ମାନ, ଅପମାନ, ପ୍ରତିହିଂସା, ପରଦୁଃଖରେ ବେଦନାନୁଭବ,(ନ୍ୟାୟଶାସ୍ତ୍ର) ବକ୍ତାର ଉଦ୍ଦିଷ୍ଟ ଅର୍ଥକୁ ଗ୍ରହଣ ନକରି ବକ୍ତାର କଥିତ ବାକ୍ୟର ଅନ୍ୟ ଅର୍ଥ କଳ୍ପନାପୂର୍ବକ ବକ୍ତାର କଥନର ଖଣ୍ଡନ ।
ଛଳକ—ବଂ.(ଛଳ+ଅକ)ଛଳକାରକ, ମାୟାବୀ, କ୍ଲୀ.ବ. (ଛଳ+କ) ଛଳ, ବ୍ୟାଜ ।
ଛଳକାରକ—ତ୍ରି.ବଂ.(ଛଳ+କୃ+ଅକ) ଛଳକାରୀ, ମାୟାବୀ, ଶଠ ।
ଛଳଗ୍ରାହକ—ତ୍ରି.ବଂ. (ଛଳ+ଗ୍ରହ+ଅକ)ପ୍ରତାରକ, ପ୍ରବଞ୍ଚକ, ଠକ, ଶଠ ।
ଛଳଗ୍ରାହୀ—ପୁଂ.ବଂ. (ଛଳ+ଗ୍ରହ+କ. ଇନ୍) ଛିଦ୍ରାନ୍ୱେଷୀ, ବାକ୍ୟର ଦୋଷଦର୍ଶୀ, (ସ୍ତ୍ରୀ) ଛଳଗ୍ରାହିଣୀ ।
ଛଳଛଳ—ଗ୍ରା.ଣ.(ସଂ-ଉଚ୍ଛଳନ)ଲୋତକ ଜଳରେ ଭାସିବା, ଆଖିରୁ ବିଶେଷ ପରିମାଣରେ ଲୁହବୋହିବା, (ବଂ) ଲୋତକ ଜଳରେ ପୂର୍ଣ୍ଣ ।
ଛଳଧରିବା—ଗ୍ରା. କ୍ରି. କଥାର ଦୋଷ ଧରିବା; ଛଳବହିବା ଦେଖ ।
ଛଳ—ବ.(କ.ଧା)କପଟଧର୍ମ,ଧର୍ମଧ୍ୱଜିତା ।
ଛଳନ—କ୍ଲୀ. ବ. ( ଛଳ+ଣିଚ୍+ଭା. ଅନ)ପ୍ରତାରଣା, ଠକାମି, କପଟକରଣ, ବଞ୍ଚନ ।
ଛଳନା—ସ୍ତ୍ରୀ.ବ.(ଛଳନ+ଆ)ପ୍ରତାରଣା, ବଞ୍ଚନା, ଠକାମି ।
ଛଳପଶିବା—ଗ୍ରା,ବ.ଛଳବାକ୍ୟ କୌଣସି ବ୍ୟକ୍ତିର ମନରେ ଦୁଃଖପ୍ରଦ ହେବା ।
ଛଳବଚନ—ଗ୍ରା. ବ, ଛଳଗୁଣ କଥା, କୌଣସି ବ୍ୟକ୍ତି ପ୍ରତି ବ୍ୟବହୃତ ବ୍ୟଙ୍ଗୋକ୍ତି ।
ଛଳବଳକୌଶଳ—ଗ୍ରା. ବ. କାର୍ଯ୍ୟସିଦ୍ଧି ନିମନ୍ତେ ଅନ୍ୟପ୍ରତି ପ୍ରଯୁଜ୍ୟ ସକଳପ୍ରକାର ଉପାୟ, କପଟତା, ଶାରୀରିକ ବଳ ଓ ଫନ୍ଦି ।
ଛଳବହିବା—ଗ୍ରା.କ୍ରି.କୌଣସି ବ୍ୟଙ୍ଗୋକ୍ତିକୁ ଆପଣା ଦେହକୁ ଘିଞ୍ଚିବା, ବ୍ୟଙ୍ଗୋକ୍ତି ଦ୍ୱାରା ମର୍ମାହତ ହେବା ।
ଛଳବାହ୍ମଣୀ—ବଂ. ଛଳସାଗର, କପଟରେ ପରିପୂର୍ଣ୍ଣ ।
ଛଳାଇବା—ଗ୍ରା.କ୍ରି. ଥଟ୍ଟାକରିବା, ଉପହାସ କରିବା, ମନକୁ ବାଧିଲା ଭଳି କଥା କହିବା, ଶ୍ଳେଷରେ କହିବା, ପ୍ରତାରଣା କରିବା ।
ଛଳି—(ଚ୍ଛେ+ଣିର୍) ଆଚ୍ଛାଦନକରିବା ।
ଛଳିକ—କ୍ଲୀ. ବ. ନାଟକଭେଦ ।
ଛଳିତ—ତ୍ରି.ବଂ. (ଛଳ+ଣିର୍+ମଁ.ତ) ବିଡ଼ମ୍ବିତ, ପ୍ରତାରିତ, ବଞ୍ଚିତ, (କ୍ଲୀ ବ) (ଛଳ+ଭା.ତ)ବଞ୍ଚନା, ଛଳନା, ପ୍ରତାରଣା ।
ଛଳିତକ—କ୍ଲୀ.ବ.ଛଳିକ, ନାଟକଭେଦ ।
ଛଳିତରାମ—କ୍ଲୀ. ବ. (ବ.ଗ୍ରୀ)ତନ୍ନାମକ ନାଟକଭେଦ ।
ଛଳିତସ୍ୱାମୀ—ପୁଂ. ବ. କାଶ୍ମୀର ରାଜା ଚନ୍ଦ୍ରାପୀଡ଼ଙ୍କ ରାଜତ୍ୱ କାଳରେ ତାହାଙ୍କ ନଗରରକ୍ଷକ ଛଳିତକ କର୍ତ୍ତୃକ ପ୍ରତିଷ୍ଠିତ ଦେବମୂର୍ତ୍ତି ।
ଛଳିବା—ଗ୍ରା. କ୍ରି. (ସଂ-ଛଳ) ପ୍ରତାରଣା, କରିବା, ଭଣ୍ଡାଇବା,ଶ୍ଳେଷରେ କହିବା, ଆଚ୍ଛନ୍ନ କରିବା, ପ୍ରତିଯୋଗିତା କରିବା ।
ଛଳୀ—ପୁଂ.ବଂ. (ଛଳ+ଇନ୍)ପ୍ରତାରକ, ଛଳକାରୀ, କପଟୀ, (ସ୍ତ୍ରୀ)ଛଳିନୀ ।
ଛଳୁଆ—ଗ୍ରା.ପୁଂ.ବଂ. (ସଂ-ଛଳୀ) ଅଭିମାନୀ, କପଟୀ, ପ୍ରତାରକ ।
ଛଳେ—ଗ୍ରା.ବଂ.ପ୍ରତିହିଂସା ନେବାପାଇଁ
ଛଳେଇକରି—ଗ୍ରା. କ୍ରି. ବଂ. ସ୍ପଷ୍ଟରୂପେ ପ୍ରକାଶ ନକରି ( କୌଣସି ବିଷୟକୁ) କେବଳ ଇଙ୍ଗିତ ଦ୍ୱାରା କହିବା ।
ଛଲ୍ଲ—କ୍ଲୀ. ବ. ବଲ୍କଲ, ଛେଲି ।
ଛଲ୍ଲି—ସ୍ତ୍ରୀ.ବ (ଛଦ୍+ଲା+କ.ଇ)ବଲ୍କଳ, ଛାଲି, ଛାଲ, ଲତା, ସନ୍ତାନ, ବନ୍ୟପୁଷ୍ପବିଶେଷ ।
ଛଲ୍ଲୀ—ସ୍ତ୍ରୀ.ବ. (ଛଲ୍ଲି+ଈ) ଛଲ୍ଲିଦେଖ ।
ଛବି—ସ୍ତ୍ରୀ. ବ. (ଛୋ+ଣ+ଇ)ଆଲୋକ, ଶୋଭା, ଦୀପ୍ତି, କାନ୍ତି, ଚମଡ଼ା, ଚମର ବର୍ଣ୍ଣ,ରଙ୍ଗ, (ଗ୍ରା.ବ) ଚିତ୍ର, ପ୍ରତିକୃତି, ଫଟୋ, ଛାଇ, ଚେହେରା, ରୂପ, ପ୍ରତିବିମ୍ବ ।
ଛବିଆଙ୍କିବା—ଗ୍ରା.କ୍ରି.ଚିତ୍ର ଅଙ୍କିତ କରିବା ବା ଲେଖିବା ।

ଛବିଉଠାଇବା—ଗ୍ରା. କ୍ରି. ଫଟୋଗ୍ରାଫ୍ ଦ୍ୱାରା ପ୍ରତିରୂପ ଉଠାଇବା, ଚିତ୍ର ଦେଖି ସେହିପରି ଚିତ୍ର ଅଙ୍କିତ କରିବା ।

ଛବିଉଠିବା—ଗ୍ରା. ବି. ବୈଜ୍ଞାନିକ ପ୍ରଣାଳୀରେ ଛାୟା ଚିତ୍ର ଅଙ୍କିତ ହେବା, ଚିତ୍ରାଙ୍କନ ।

ଛବିଳ—ଗ୍ରା. ବି°. ( ସଂ-ଛବି ) ଚିହ୍ନିତ, - ଦୀପ୍ତିମୟ, ମନୋହର, ସୁନ୍ଦର, ଶୋଭାମୟ, ଛଇଲ ଦେଖ ।

.ଛବିଲ—ଗ୍ରା. ବି°. ଚିହ୍ନିତ, ଛଉକା ।

ଛବିଲ୍ଲାକର—ପୁଂ. ବି. ଜଣେ କବି ।

ଛବିଶ—ଗ୍ରା. ବି ଓ ବି°. ୨୬ସଂଖ୍ୟା, ୨୦ ଅପେକ୍ଷା ଛଅ ଅଧିକ ସଂଖ୍ୟା, ଛବିଶି ସଂଖ୍ୟକ ।

ଛବିଶାଶହେ—ଗ୍ରା.ବି ଓ ବି°. ୧୨୬ ଏକଶତ ଛବିଶ ସଂଖ୍ୟା, ଏକଶତ ଛବିଶ ସଂଖ୍ୟକ ।

ଛବୀ—ସ୍ତ୍ରୀ.ବି.(ଛବି + ଈ)ଶୋଭା,କାନ୍ତି ।

ଛଙ୍କି—ଗ୍ରା. ବି. ବେଶବିନ୍ୟାସ ।

ଛଷଠାଶହେ—ଗ୍ରା. ବି ଓ ବି°. ଏକଶହ ଛଅଷଠି, ୧୬୬ ସଂଖ୍ୟକ ।

ଛଷଠି—ଗ୍ରା. ବି. ଛଅଷଠୀ, ୬୬ସଂଖ୍ୟା ।

ଛୁ—ପୁଂ.ବି.(ଛୋ + କ୍ୱିପ୍) ଶାବକ, ଶିଶୁ, ଆଚ୍ଛାଦନ, ପାରଦ, (ବି°) ଛେଦନକର୍ତ୍ତା ।

ଛୁଆଣ—ଗ୍ରା. ବି. ଛୁଆଣି ଦେଖ ।

ଛୁଆଣି—ଗ୍ରା. ବି. ଆଚ୍ଛାଦନ, ଘରର ଛପରବନ୍ଧ, କୌଣସି ପଦାର୍ଥ ଉପରେ ଅନ୍ୟ ଧାତୁର ପତଳା ସ୍ତରର ଲେପନ, ଛୁଙ୍କିବା, ଛୁଣିବା ।

ଛୁଆଣିଆଁ—ଗ୍ରା. ବି. ଯେଉଁମାନେ ଘର ଛପର କରନ୍ତି, ଛୁଉଣିଆଁ ।

ଛୁଆଣିକରିବା—ଗ୍ରା.କ୍ରି.ଛୁଇଁବା ଦେଖ

ଛୁଇ—ଗ୍ରା. ବି. (ସଂ-ଛାୟା)ଭସ୍ମ,ପାଉଁଶ. ପ୍ରତିବିମ୍ବ, ଅନାତପ, ଖରାର ଅଭାବ, ଚନ୍ଦ୍ର ବା ସୂର୍ଯ୍ୟଙ୍କ ବିପରୀତ ଦିଗରେ ପଡ଼ିବା କୌଣସି ବସ୍ତୁର ପ୍ରତିରୂପ, ଭାଗଲପୁର ଜିଲ୍ଲାର ଗୋଟିଏ ପରଗଣା, (ଲ.ଅର୍ଥ)ଆଶ୍ରୟ, ବାହୁଛାୟା, ଶରଣ ।

ଛୁଇଁବା—ଗ୍ରା. କ୍ରି. ଛୁଆଣି କରିବା, ଆଚ୍ଛାଦନ କରିବା, ବିସ୍ତୃତ କରିବା, ଘେରିବା, ବ୍ୟାପିବା ।

ଛୁଇକାଛଅଘାମାରିବା—ଗ୍ରା.କ୍ରି.ଅବାସ୍ତବ. କଥାରେ ବୃଥା ଉତ୍ତେଜିତ ହେବା, ପ୍ରକୃତ କାରଣ ବା ଉତ୍ତେଜନା ନଥାଇ କଳି କରିବା ।

ଛୁଇଗଡ଼ିବା—ଗ୍ରା. ବି ଓ ବି°. ଛୁଇନେଉଟା ଦେଖ ।

ଛୁଇଘୋଡ଼ା(ଡ଼ୋ)ଇବା—ଗ୍ରା.ବି.ମେଘାବୃତ ଅବସ୍ଥା ।

ଛୁଇଛୁଇ—ଗ୍ରା. ବି. ଛାୟାବାହୁଲ୍ୟ, ବହୁ ଛାୟାର ଚିହ୍ନ, (ବି°) ଛାୟାମୟ, ଛାୟାବହୁଳ ।

ଛୁଇଛୁଇହେବା—ଗ୍ରା.କ୍ରି.ଛତର ଛୁଉଳ ହେବା, ଛୁରଖାର ହେବା, ଘୂରିବା, ଚକ୍ରାକାରରେ ଘୂର୍ଣ୍ଣିତ ହେବା ।

ଛୁଇତଳିଆ—ଗ୍ରା.ବି°.ଯେ ସର୍ବଦା ଛୁଇତଳେ ଥାଏ ଅର୍ଥାତ୍ ଯାହାଠାରେ ଖରା ଲାଗେନାହିଁ, ଛାୟାଯୁକ୍ତ ।

ଛୁଇଦେବା—ଗ୍ରା. କ୍ରି. ବିସ୍ତାର କରିବା, ଗୃହଆଡ଼େ ଘେରିବା ବା ବେଢ଼ିବା ।

ଛୁଇନପଡ଼ିବା—ଗ୍ରା.ବି.କୌଣସି ବ୍ୟକ୍ତିଠାରେ ଅନ୍ୟ ବ୍ୟକ୍ତିର ସାମାନ୍ୟ ସମ୍ପର୍କ ମଧ୍ୟ ନ ରହିବା ।

ଛୁଇନମାଡ଼ିବା—ଗ୍ରା.ବି (ଲ.ଅର୍ଥ)କୌଣସି ବ୍ୟକ୍ତିର ସଙ୍ଗେ ଲେଶମାତ୍ର ସମ୍ପର୍କ ନ ରଖିବା, କୌଣସି ବ୍ୟକ୍ତିର ଦେହ ସ୍ପର୍ଶ ତ ଦୂରର କଥା ଉକ୍ତ ବ୍ୟକ୍ତିର ଦେହ ଛାୟାକୁ ସୁଦ୍ଧା ସ୍ପର୍ଶ ନ କରିବା ।

ଛୁଇନିଦ—ଗ୍ରା. ବି. ସଚେତ ନିଦ୍ରା, ସାମାନ୍ୟ ନିଦ୍ରା, ତନ୍ଦ୍ରା, ନିଦ୍ରାର ପ୍ରଥମ ଆକର୍ଷଣରେ ଚେତନା ।

ଛୁଇନେଉଟା—ଗ୍ରା.ବି°.ଯେଉଁ ସମୟରେ ଅପରାହ୍ଣ ଆରମ୍ଭ ହୁଏ, ଦ୍ୱିପ୍ରହରର ପରବର୍ତ୍ତୀ (ସମୟ),(ଗ୍ରା.ବି) ଦ୍ୱିପ୍ରହର ଟପିଯିବା ଅବସ୍ଥା ବା ସମୟ ।

ଛୁଇପଡ଼ିବା—ଗ୍ରା. ବି. ଛାୟାର ପତନ, କୌଣସି ବ୍ୟକ୍ତି ବା ପଦାର୍ଥ ଉପରେ ଅନ୍ୟ ବ୍ୟକ୍ତିର ବା ପଦାର୍ଥର ଛାୟା ପତିତହେବା, (ଲ.ଅର୍ଥ) ସମ୍ପର୍କଶୀଳ ହେବା, ଅନ୍ୟର ସଙ୍ଗେ ସାମାନ୍ୟ ସମ୍ପର୍କ ରହିବା ।

ଛୁଇବା—ଗ୍ରା. କ୍ରି. ଛୁଇଁବା ଦେଖ ।

ଛୁଇବାଇ ଲେନ୍ଦରା—ଗ୍ରା.ବି.ଏକବ୍ୟକ୍ତିର ଦେହରୁ ଅନ୍ୟ ବ୍ୟକ୍ତିର ଦେହକୁ ଖଣ୍ଡିଏ କାଠି ବା କୁଟା ଲାଗିଥିବା ଅବସ୍ଥା, ଏକ ବ୍ୟକ୍ତିସଙ୍ଗେ ଅନ୍ୟର ଅଡ଼ୁଆ ବା ସମ୍ପର୍କ । [ଦେଖ ।

ଛୁଇବାଳିବା—ଗ୍ରା. ବି. ଛୁଇ ପଡ଼ିବା

ଛୁଇମଟାଳିବା—ଗ୍ରା.କ୍ରି.; ଛୁଇ ନେଉଟା-ଦେଖ ।

ଛୁଇଯିବା—ଗ୍ରା.କ୍ରି.(ଅକର୍ମକ) ବ୍ୟାପିବା, ପରିବ୍ୟାପ୍ତ ହେବା ।

ଛୁଇରହିବା—ଗ୍ରା.କ୍ରି.କେତେ ସମୟପର୍ଯ୍ୟନ୍ତ ଆଚ୍ଛନ୍ନ କରିବା ।

ଛୁଇହେବା—ଗ୍ରା.କ୍ରି.ଆଚ୍ଛାଦିତ ହେବା । ଛୁଇଯିବା ଦେଖ ।

ଛୁଉଣି—ଗ୍ରା.ବି.ସେନା ନିବେଶ, ତମ୍ବୁ ଶିବିର, ଡେରା,ଆଚ୍ଛାଦନ,ଘର ଛପରବନ୍ଧ, ଆନଦ୍ଧବାଦ୍ୟ, ଧାତୁର ପତଳା ପାତିଆ ବା ସ୍ତର ଦ୍ୱାରା,ଆଚ୍ଛାଦନ,ବି°. ଆଚ୍ଛାଦିତ, ଛପରବନ୍ଧ ହୋଇଥିବା, ଉପରେ ପତଳାହୋଇ ମଡ଼ା ଯାଇଥିବା, ଚମଡ଼ା ଆଦି ଦ୍ୱାରା ଆନଦ୍ଧ ( ଢୋଲ ମୃଦଙ୍ଗାଦି ) ।

ଛୁଉଣିଆଁ—ଗ୍ରା.ବି.ଯେ ଘର ଛପରବନ୍ଧ କରେ ।

ଛୁଉଳି—ଗ୍ରା.ବି.(ସଂ.ଛଳ) କପଟ ବ୍ୟବହାର, ପରିହାସ, ଛଇ ଫସିକତା ।

ଛୁଏଁ—ଗ୍ରା.ଅବ୍ୟ. (ସଂ. ସ୍ୱୟଂ) ନିଜେ, ସ୍ୱତଃ, ମନକୁ, ସ୍ୱେଚ୍ଛାକ୍ରମେ, କାର୍ଯ୍ୟତଃ, ଫଳତଃ ।

ଛୁଗ—ପୁଂ.ବି° (ଛଗ + ମି.ଅ) ସୁନାମଖ୍ୟାତ ପଶୁବିଶେଷ, ଛେଳି,ଅଜ, ବି°. ଅଗମ୍ୟାଗମନକାରୀ ।

ଛୁଗଗୋନ୍ଦିକ—ବି°. ଅଗମ୍ୟଗମନ ବିଗ୍ରହସ୍ଥାନ, ଛେଳିଗୋନ୍ଦିଆ ।

ଛାଗଣ—ପୁଂ.ବ.(ଛଗଣ+ଅ)କରୀଷାଗ୍ନି, ଗଷିଆଁ ।

ଛାଗପାଳକ—ବିଂ. ଛେଳିରଖୁଆଳ,ଛେଳି ପୋଷିବା ଯାହାର ଜୀବିକା ।

ଛାଗଭୋଜୀ—ପୁଂ. ବି. ( ଛାଗ+ଭୁଜ+ ଇନ୍)ବୃକ,ନେକଡ଼ାବାଘ, (ବିଂ.)ଛାଗ-ଭକ୍ଷକ । [ ମୁଖ ।

ଛାଗମୟୁ—କ୍ଳୀ.ବି. କାର୍ତ୍ତିକେୟଙ୍କ ଷଷ୍ଠ

ଛାଗମାଂସ—କ୍ଳୀ. ବି. (୬ତତ୍ପୁ) ଛେଳିର ମାଂସ ।

ଛାଗମିତ୍ର—ପୁଂ.ବି. ଦେଶଭେଦ ।

ଛାଗମିତ୍ରକ—ତ୍ରି.ବିଂ (ଛାଗମିତ୍ର+ଇକ) ଛାଗମିତ୍ର ଦେଶଜାତ ।

ଛାଗମୁଖ—ପୁଂ.ବି.(ବ.ବ୍ରୀ)କୁମାରାନୁଚର-ଭେଦ, କାର୍ତ୍ତିକେୟ,କାର୍ତ୍ତିକେୟଙ୍କର ଷଷ୍ଠମୁଖ, ଦକ୍ଷ ପ୍ରଜାପତି, ବିଂ. ଛାଗ ମୁହଁପରି ମୁହଁ ଯାହାର ।

ଛାଗମୂତ୍ର—କ୍ଳୀ.ବି. ଛାଗ ପ୍ରସ୍ରାବ, ଛେଳି ମୂତ୍ର ।

ଛାଗରଥ—ପୁଂ.ବି.(ବ.ବ୍ରୀ) ଛାଗ ବାହନ, ଅଗ୍ନିଦେବ ।

ଛାଗଲ—ପୁଂ.ବି.(ଛଗଲ+ଅ) ଆତ୍ରେୟ ଋଷିଭେଦ, ଅଜ, ଛାଗ, କୁଆଁମଇତା, ଛେଳି ଚମଡ଼ାରେ ନିର୍ମିତ ତନ୍ତୁ ।

ଛାଗଲକ—ପୁଂ.ବି.(ଛାଗଲ+କ) ମତ୍ସ୍ୟ-ବିଶେଷ, ଭେକଟାମାଛ, ଛାଗଲଦେଖ ।

ଛାଗଲା—ସ୍ତ୍ରୀ.ବି. ଛାଗୀ ।

ଛାଗଲାଖୁ—ଗ୍ରା. ବି. ଛାଗଲାନ୍ତ୍ରୀ, ବୃଦ୍ଧ-ଦାରକ ବୃକ୍ଷ । [ ଦେଖ ।

ଛାଗଲାଗୃଷ—ପୁଂ. ବିଂ ଛାଗଗୋତ୍ରିକ

ଛାଗଲାଦ—ପୁଂ.ବି.(ଛାଗଲ+ଅଦ+ଅ) ବୃକ୍ଷଭେଦ, ବୃକ, ନେକଡ଼ା ବାଘ, ଛାଗଲାଦ୍ୟ ଘୃତ ।

ଛାଗଲାଦ୍ୟଘୃତ—ବି. ବୈଦ୍ୟକୋକ୍ତ ଘୃତୌଷଧବିଶେଷ । [ ଭେଦ ।

ଛାଗଲାଦ୍ୟତୈଳ—ଆୟୁର୍ବେଦୋକ୍ତତୈଳ

ଛାଗଲାନ୍ତ୍ରିକା—ସ୍ତ୍ରୀ. ବି. (ଛାଗଲ+ଅନ୍ତ୍ର +ଇକ+ଆ) ବୃଦ୍ଧଦାରକ ବୃକ୍ଷ,ବୃକୀ, ଢ଼.ଘୂଣୀ ।

ଛାଗଲାନ୍ତ୍ରୀ--ସ୍ତ୍ରୀ.ବି.ବୃଦ୍ଧଦାରକ ବୃକ୍ଷ.ବୃକ. ନେକଡ଼ା ବାଘ ।

ଛାଗଲାସ୍ତ୍ରୀ—ବି. (ଛାଗଲ+ଅସ୍ତ+ଇନ୍) ହେଟା, ଗଧିଆ ବାଘ ।

ଛାଗଲି—ପୁଂ.ବିଂ.ଛଗଲ ନାମକ ଋଷିଙ୍କ ଗୋତ୍ର ସମ୍ଭୂତ, ଛାଗଲଦେଶୀୟ ।

ଛାଗଲୀ—ସ୍ତ୍ରୀ.ବି. (ଛାଗଲ+ଈ) ଛାଗୀ, ଜଣେ ମୁନିପତ୍ନୀ ।

ଛାଗଲେୟ—ପୁଂ.ବି. ( ଛାଗଲ+ଏୟ ) ଜଣେ ସ୍ମୃତିକର୍ତ୍ତା ଋଷି ।

ଛାଗଲେୟୀ—ପୁଂ.ବି.ଛଗଳୀଋଷି,କଳା-ପୀଙ୍କ ଛାତ୍ର ।

ଛାଗବାହନ—ପୁଂ. ବି. ( ବ.ବ୍ରୀ ) ଅଗ୍ନି, ଅଗ୍ନିଦେବ ।

ଛାଗକ୍ଷୀର—କ୍ଳୀ.ବି.(୬ତତ୍ପୁ) ଛାଗଲଦୁଗ୍ଧ, ଛେଳିଦୁଗ୍ଧ । [ ଛେଳି ।

ଛାଗିକା—ସ୍ତ୍ରୀ.ବି.(ଛାଗୀ+କ+ଆ) ମାଈ-

ଛାଗୀ—ସ୍ତ୍ରୀ. ବି. (ଛାଗ+ଈ) ଛାଗମାତା, ଛେଳି, ମାଈଛେଳି ।

ଛାଗୀଦୁଗ୍ଧ—କ୍ଳୀ.ବି.(୬ତତ୍ପୁ)ଛେଳିଦୁଧ

ଛାଗୀପୟଃ—କ୍ଳୀ.ବି. (୬ତତ୍ପୁ)ଛେଳିଦୁଧ ।

ଛାଗୀପାଳକ--ପୁଂ.ବିଂ.ଯେ ଛେଳିପୋଷେ ଛେଳି ପୋଷିବା ଯାହାର ଜୀବିକା ।

ଛାଗ୍ୟାୟନ—ପୁଂ. ବି. ଛାଗର ଅପତ୍ୟ, ଛାଗଲର ସନ୍ତାନ ।

ଛାଙ୍କ—ଗ୍ରା.ବି. ପ୍ରଚୁର ଘିଅ ବା ତେଲରେ ସନ୍ତୁଳା, ଭଜିବା, ପୁଆଇବା, ପିଠାଆଦି ଛାଣିବା ।

ଛାଙ୍କିବା—ଗ୍ରା.କ୍ରି.ପରିବା ଆଦିକୁ ପ୍ରଚୁର ଘିଅରେ ଭଜିବା, ବସ୍ତ୍ରାଦିର ଛିଦ୍ରଦ୍ୱାରା ଦ୍ୱାରା ତରଳ ପଦାର୍ଥକୁ ଛାଣିବା, ଚୂଲ୍ଲୁଣିରେ ଲେଇବା ।

ଛାଚ—ଗ୍ରା.ବି.(ସଂ—ଶ୍ୱେତ ସର୍କରା)ସାଚ, ନବାତ, କନ୍ଦ, ଘରଚୁଲର ଓଳ, (ଗ୍ରା. ବିଂ.) ଧଳା, ଶ୍ୱେତ ।

ଛାଚକୋରା—ଗ୍ରା.ବି. କୋରା ନଡ଼ିଆ ଓ ନବାତରେ ତିଆରି ମିଷ୍ଟାନ୍ନ, ସାଚ-କୋରା ।

ଛାଚପାନ—ଗ୍ରା.ବି. ଏକପ୍ରକାର ସୁଗନ୍ଧ ପାନ, ସାଚପାନ ।

ଛାଚୁଣି—ଗ୍ରା.ବି. ଛାଞ୍ଚୁଣି, ଝାଡ଼ୁ ।

ଛାଞ୍ଚ—ଗ୍ରା.ବି. (ସଂ-ସଞ୍ଚ) ପ୍ରତିମା ଆଦି ତିଆରି କରିବାନିମନ୍ତେ ଆଉଟା ଧାତୁକୁ ଢାଳିବାରେ ନିର୍ଦ୍ଦିଷ୍ଟ ଆକାରର ପାତ୍ର, କାଠ, ମାଟି ଓ ମହମ ଆଦିରେ ନିର୍ମିତ ଆଦର୍ଶ, ପୋଥି ଲେଖାହେବା ପାଇଁ କଟାହୋଇ ସଜ୍ଜିତ ହୋଇଥିବା ତାଳପତ୍ର ଚୟ, ଅଲେଖା ତାଳପତ୍ର ପୋଥି, ଇଟା ତିଆରି କରିବାପାଇଁ ବ୍ୟବହୃତ ବାକ୍ସ ବା ଫର୍ମା ।

ଛାଞ୍ଚକଖାରୁ—ପ୍ରା. (ସିଂହ) ବି. ପାଣି-କଖାରୁ । [ ଝାଡ଼ୁ ।

ଛାଞ୍ଚୁଣି—ଗ୍ରା.ବି. କୋମଳ ସମାର୍ଜ୍ଜନୀ ବା

ଛାଟ—ଗ୍ରା. ବି. (ସଂ-କ୍ଷିପ୍ତ) ଛଡ଼ି, କ୍ଷୁଦ୍ର-ଯଷ୍ଟି, ଛାଟା, ବାୟୁତାଡ଼ିତ ବୃଷ୍ଟିଧାରା, ଚାବୁକ, ଚାବୁକ ବା ଛାଟଦ୍ୱାରା ପ୍ରହାର, ପଶୁତାଡ଼ନ ଯଷ୍ଟି ।

ଛାଟଛୁଟାଇବା—ଗ୍ରା. କ୍ରି. ଛାଟଦ୍ୱାରା ପ୍ରହାର କରିବା,(ଲ.ଅର୍ଥ) ବାଧାଦେବା, ବନ୍ଦକରିବା ।

ଛାଟଣା—ଗ୍ରା. ବି. ହଠାତ୍ ଝିଙ୍କିହେବାର ଆଘାତ,ଗୋରୁଙ୍କର ଚଟୁଆ ଫୁଲ୍‌ରୋଗ, ଛାଟଣି ।

ଛାଟଣି—ଗ୍ରା. ବି. ଛାଟ ଦେଖ; ଐ ଔ ଅକ୍ଷରମାନଙ୍କ ମାତ୍ରାଜ୍ଞାପକ ଓ ବ୍ୟଞ୍ଜନ ବର୍ଣ୍ଣର ମୁଣ୍ଡଉପରେ ଥିବା ଅଂଶ,ଐକାର ଔକାର ଏହି ଚିହ୍ନ, ଚାବୁକ ।

ଛାଟଦେବା—ଗ୍ରା. କ୍ରି. ସରୁ ଯଷ୍ଟିଦ୍ୱାରା ପ୍ରହାର କରିବା ।

ଛାଟି—ଗ୍ରା. ବି. ଦଉଡ଼ି, ଗୋରୁ ପୋତୁଅ ବନ୍ଧିବାର ମୁଣ୍ଡରେ ଫାଶଥିବା ଦଉଡ଼ି ।

ଛାଟିଆ—ଗ୍ରା. ବିଂ. ଚଉକିଆ, ପାଇକ, ଅତିଶ୍ରେଷ୍ଠ ଯଷ୍ଟି, ( ବିଂ ) ଯେ ଛାଟ ଧରିଥାଏ ।

ଛାଟିପିଟି—ଗ୍ରା.ବିଂ.ଛିନ୍ନଛତ୍ର, ଅସ୍ତବ୍ୟସ୍ତ, ଛିନ୍ନଭିନ୍ନ, (କ୍ରି.ବିଂ) ଇତସ୍ତତଃ ।

ଛାଟିପିଟିହେବା—ଗ୍ରା. କ୍ରି. କଷ୍ଟର ଆଧିକ୍ୟ ଯୋଗୁଁ ଭୂମିରେ ହାତଗୋଡ଼

ଇତସ୍ତତଃ କମ୍ପିଢ଼ିବା, ଛନ୍ନଛନ୍ନହେବା, ଅସ୍ତବ୍ୟସ୍ତହେବା ।

ଛାଟିପିଟିହୋଇ ପଳାଇବା—ଗ୍ରା. କ୍ରି. ଭୟରେ ଛନ୍ନଛନ୍ନ ହୋଇ ବାହାରିଯିବା, ଅତିଶୀଘ୍ର କୌଣସି ସ୍ଥାନ ତ୍ୟାଗ କରିବା ।

ଛାଟିବା—ଗ୍ରା. କ୍ରି. (ସଂ-କ୍ଷିପ୍ତ) ଅଙ୍ଗାଦି ବିକ୍ଷେପକରିବା, ଛାଞ୍ଚି ଦେବା, କାନ୍ଥରେ (ମାଟି) ଲେସିବା, ( ଗଛର ଡାଳକୁ ) ଅଗଆଡ଼ୁ ସମାନକରି କାଟିବା, ମୁଣ୍ଡର ବାଳକାଟିବା, ଛାଣିବା ।

ଛାଟିହୋଇପଡ଼ିବା—ଗ୍ରା. କ୍ରି. ଜୋରସହିତ ବୁଲାଇହୋଇ କମ୍ପିଢ଼ହୋଇ ପଡ଼ିବା ।

ଛାଟେ—ଗ୍ରା. ବି. ଖଣ୍ଡିଏ ଛାଟ ବା ବେତ, ଛାଟରେ ଏକଥରମାତ୍ର ପ୍ରହାର ।

ଛାଟେଇ—ଗ୍ରା. ବି. ଓଡ଼ିଶାର ଚଷା(ଶୂଦ୍ର) ମାନଙ୍କର ବଂଶୋପାଧିବିଶେଷ ।

ଛାଟେଣି—ଗ୍ରା. ବି. ହାତମୋଜା, ଦସ୍ତାନା, ହସ୍ତାବରଣ, ଛୋଟ ଛାଟ ବା ଚାବୁକ, ଛାଟିକାଣି, ଗୁଖୁଣି, ଏକପ୍ରକାର ସରୁ ଲମ୍ବ କଳାବର୍ଣ୍ଣର ସାପ, ପାଣିଛଟା ସାପ ।

ଛାଡ଼—ଗ୍ରା. ବି. ବିଚ୍ଛେଦ, ତ୍ୟାଗ, ଦୂରୀକରଣ, ମୁକ୍ତି, ଦେୟଆଦି ଦେବା ଦାୟିତ୍ୱରୁ ମୁକ୍ତି, ମାଫ୍, ମୁକ୍ତିଦେବାର ପତ୍ର, ଛାଡ଼ଚିଠି, ଅନୁମତି ପତ୍ର, ଭିନ୍ନ. ପଡ଼ିଆଜୁଆର, ବିରତି, ବିଶ୍ରାମ, ବ୍ୟବଧାନ, କାର୍ଯ୍ୟବନ୍ଦ, ତାଲିକା ଆଦିରେ ଅନ୍ତର୍ଭୁକ୍ତ ନ ହେବା ।

ଛାଡ଼ଖାଇ—ଗ୍ରା. ବି. କାର୍ତ୍ତିକ ପୂର୍ଣ୍ଣିମାର ପରଦିବସ ।

ଛାଡ଼ଜଙ୍ଗଲ—ଗ୍ରା. ବି. ଯେଉଁ ସରକାରୀ ବା ରାଜକୀୟ ଜଙ୍ଗଲରୁ କାଠଆଦି ଆଣିବାକୁ ପ୍ରଜାମାନଙ୍କୁ ଅନୁମତି ଆଣିବାକୁ ପଡ଼େ ନାହିଁ ।

ଛାଡ଼ତକ—ଗ୍ରା. ବି. ଘୋଡ଼ାର ଏକାବେଳକେ ଚାରିଗୋଡ଼ରେ ଦୌଡ଼ିବା ।

ଛାଡ଼ପତ୍ର—ଗ୍ରା. ବି. ସ୍ୱାମୀ ସ୍ତ୍ରୀକୁ ପରିତ୍ୟାଗକରି ବିବାହ ବନ୍ଧନକୁ ଛେଦନ କରିବାର ସମ୍ମତିସୂଚକ ପତ୍ର, କୌଣସି ବ୍ୟକ୍ତି ବା ବସ୍ତୁକୁ ହାଟରେ ପ୍ରହରୀ ଅଟକାଇ ନ ରଖି ଛାଡ଼ିଦେବାର ରାଜକୀୟ ଆଦେଶ ପତ୍ର, କୌଣସି ସମ୍ପତ୍ତିରୁ ଦାବୀ ଓ ସ୍ୱତ୍ୱ ପରିତ୍ୟାଗ ସୂଚକ ଦଲିଲ, ସମସ୍ତ ଦେୟ ପରିଶୋଧ ହୋଇଥିବାର ନିଦର୍ଶନପତ୍ର ବା ରସିଦ ।

ଛାଡ଼ବଡ଼—ଗ୍ରା. ବି. ଖଜଣାଆଦିର ମାଫ୍, ବିସର୍ଜନ ।

ଛାଡ଼ବାଡ଼—ଗ୍ରା. ବି. ଛଡ଼ାଛଡ଼ି, ପରସ୍ପରଙ୍କ ମଧ୍ୟରେ ବିଚ୍ଛେଦ, ପରସ୍ପର ମଧ୍ୟରେ ସମ୍ପର୍କ ରହିତ୍ୟ. (ଗ୍ରା.ବିଂ) ପରସ୍ପରଠାରୁ ପୃଥକ୍ ବା ବିଚ୍ଛିନ୍ନ ।

ଛାଡ଼—ଗ୍ରା. ଅବ୍ୟ. ଛଡ଼ା, ବ୍ୟତୀତ ।

ଛାଡ଼ିଆସିବା—ଗ୍ରା. କ୍ରି. କୌଣସି ବସ୍ତୁ ବା ବ୍ୟକ୍ତିକୁ କୌଣସି ସ୍ଥାନରେ ଭୁଲକ୍ରମେ ପକାଇଦେଇ ଚାଲିଆସିବା, ଘରକୁ ବା ସ୍ଥାନାଦିକୁ ପରିତ୍ୟାଗକରି ଆସିବା, କୌଣସି ସ୍ଥାନକୁ ଆସିଥିବା କୌଣସି ବ୍ୟକ୍ତି ସଙ୍ଗେ ସହଚରରୂପେ ଆସିବା, (ଯଥା—ଭାଇ ଭଉଣୀକୁ ଶ୍ୱଶୁର ଘରକୁ ଛାଡ଼ିଆସିଥିଲା, ବାଟରେ କୌଣସି ବସ୍ତୁ ବା ସ୍ଥାନକୁ ଅତିକ୍ରମକରି ଚାଲିଆସିବା) ।

ଛାଡ଼କରି—ଗ୍ରା. ଅବ୍ୟ. ଅନର୍ଗଳଭାବରେ ଅପର୍ଯ୍ୟାପ୍ତ ପରିମାଣରେ, କୋଷ୍ଠବଦ୍ଧ ନହୋଇ ତରଳଭାବରେ(ଝାଡ଼ାହେବା), ଛାଡ଼ ଦେଖ ।

ଛାଡ଼ଛାଡ଼—ଗ୍ରା. କ୍ରି. ବିଂ. ମଝିରେ କିଛିକିଛି ସମୟ ବ୍ୟବଧାନ ଥାଇ ।

ଛାଡ଼ିଛାଡ଼ିଯିବା—ଗ୍ରା. କ୍ରି. କ୍ରମଶଃ ଅଦୃଶ୍ୟ ହେବା, କୌଣସି ପଦାର୍ଥରୁ ରଙ୍ଗ ବା ଆଚ୍ଛାଦନ ବା ଛାଲ ସ୍ଥାନେ ସ୍ଥାନେ ଉଠିଯିବା ।

ଛାଡ଼ିଛୁଡ଼ିଦେବା—ଗ୍ରା. କ୍ରି. ଅବ୍ୟାହତି ଦେବା, ସମ୍ପୂର୍ଣ୍ଣରୂପେ ତ୍ୟାଗକରିବା ।

ଛାଡ଼ିଣ—ଗ୍ରା.(ପଦ୍ୟ)ଅବ୍ୟ.ଛଡ଼ା, ବ୍ୟତୀତ

ଛାଡ଼ିଦେବା—ଗ୍ରା.କ୍ରି. (ସକର୍ମକ)ତ୍ୟାଗକରିବା, ସମ୍ବନ୍ଧ ତୁଟାଇବା, କୌଣସି ବ୍ୟକ୍ତିକୁ ନେଇ କାହା ନିକଟରେ ବା କୌଣସି ସ୍ଥାନରେ ରଖିଦେଇ ଚାଲିଆସିବା, ସ୍ଥାନାନ୍ତରକୁ ଗମନନିମିତ୍ତ, କୌଣସି ବ୍ୟକ୍ତିକୁ ବାଟ ଦେଖାଇଦେବା ।

ଛାଡ଼ିପଳାଇବା—ଗ୍ରା.କ୍ରି.କୌଣସି ପଦାର୍ଥକୁ କୌଣସି ସ୍ଥାନରେ ତ୍ୟାଗକରି ଚାଲିଯିବା, ସଙ୍ଗ ତ୍ୟାଗକରି ଅନ୍ୟତ୍ର ଚାଲିଯିବା ।

ଛାଡ଼ିବା—ଗ୍ରା. କ୍ରି. (ସକର୍ମକ )ତ୍ୟାଗକରିବା, ସମ୍ବନ୍ଧ ତୁଟାଇବା, କୌଣସି କାର୍ଯ୍ୟରୁ ବିରତ ହେବା, ପାଖରୁ ଅନ୍ତର ହେବା, ( ଅକର୍ମକ ) ଫଳତଃ ( ଅମୁକ ଠାରୁ ) ଭିନ୍ନ ବୋଲି ଜଣାପଡ଼ିବା, କୌଣସିଠାରେ କୌଣସି ବସ୍ତୁ ବା ଶିଶୁକୁ ରଖିଦେଇ ସେ ସ୍ଥାନ ପରିତ୍ୟାଗ କରିବା, କୌଣସି ସ୍ଥାନ ତ୍ୟାଗକରି କୌଣସି ସ୍ଥାନକୁ ଯିବା, ଦେହରୁ ( ଜ୍ୱରଆଦି ରୋଗ ) ଉଛୁଳାଇବା, ନଛୋଡ଼ିବା, ସଂହତି ଶିଥିଳ ହେବା, କୌଣସି ଖାଦ୍ୟ ନ ଖାଇବା, ଯିବାକୁ ଅନୁମତି ଦେବା, ମୁକ୍ତି ଦେବା, କୌଣସି ବ୍ରତଧାରଣପୂର୍ବକ ବା ଅପଥ୍ୟ ଯୋଗୁଁ କୌଣସି ନିର୍ଦ୍ଦିଷ୍ଟ ଖାଦ୍ୟବସ୍ତୁ ବର୍ଜନ କରିବା,(ପଥ) ଉନ୍ମୁକ୍ତକରିବା, ହାତରେ ବା କୋଡ଼ରେ ନ ଧରିବା, ଖେଳାଇବା, ଭ୍ରମକ୍ରମେ ବାଦ୍‌ଦେବା ବା ତାଲିକାଭୁକ୍ତ ନ କରିବା, ( ଉପଦେଶଆଦି) ଗ୍ରହଣ ନ କରିବା, ଭୁଲିଯିବା, ତଳକୁ ଲମ୍ବାଇଦେବା, ନିସ୍ପନ୍ଦ ହେବା, (ଘୋଡ଼ାଆଦିକୁ)ଦଉଡ଼ାଇବା, ଲଙ୍ଘିଯିବା, ନିକ୍ଷେପ କରିବା, ନିର୍ଦ୍ଦିଷ୍ଟ ଦୂରତ୍ୱର ବ୍ୟବଧାନ ରଖିବା, ବାନ୍ତି କରିବା, ନିଜ ମନରୁ ସନ୍ଦେହଆଦି ଦୂରକରିବା, କାହାର ତତ୍ତ୍ୱାବଧାନରେ କୌଣସି ବ୍ୟକ୍ତିକୁ ରଖିବା, ମଝିରେ ନିର୍ଦ୍ଦିଷ୍ଟ ସମୟ ଅତିବାହିତ କରିବା, ଇତ୍ୟାଦି ପାଲଟିବା, ଗଣନା ନକରିବା, ସ୍ଖଳିତ ହେବା ।

ଛାଡ଼ିଯିବା—ଗ୍ରା. କ୍ରି. (ସକର୍ମକ) କୌଣସି ପଦାର୍ଥକୁ କୌଣସି ସ୍ଥାନରେ ତ୍ୟାଗ କରି ଚାଲିଯିବା, (ଅକର୍ମକ) କୌଣସି ବ୍ୟକ୍ତି ବା ବସ୍ତୁର ଦେହରେ ଲଗା-ହୋଇଥିବା ବା ସଲଗ୍ନ ଥିବା କୌଣସି ପଦାର୍ଥ ଚ୍ୟୁତହେବା, (ଅଭ୍ୟାସାଦି) ପରିତ୍ୟକ୍ତହେବା, ଲୋପ ପାଇବା ।

ଛାଡ଼ହେବା—ଗ୍ରା. କ୍ରି. (କୌଣସି ଅଭ୍ୟାସ) ସାଧାରଣତଃ ପରିତ୍ୟକ୍ତ ହେବା ।

ଛାଣି—ଗ୍ରା. ବି. ଛାଣା ହେବାର ବ୍ୟବହୃତ ଯନ୍ତ୍ର ।

ଛାଣିବା—ଗ୍ରା. କ୍ରି. ବସ୍ତ୍ରଦ୍ୱାରା ତରଳ ପଦାର୍ଥ ବା ଚୂର୍ଣ୍ଣକୁ ଛାଙ୍କିବା, ଛାଙ୍କିବା, ନିଃଶେଷକରିବା, ସାରାଂଶ ବାଛିନେବା, (ମାଛଆଦିକୁ) ଜାଲ ବା ଲୁଗା ଦ୍ୱାରା ଛାଣିନେବା, (ଲ. ଅର୍ଥ) ଧନଆଦି ବହୁ-ପରିମାଣରେ ଅର୍ଜନ କରିବା ।

ଛାଣ—ଗ୍ରା. ବି. ଛପ, ଛଇ, ଢଙ୍ଗ; କୁଣ୍ଡା ଦମନ୍ତେ (ଲୁଗ) ଛେଦନକରିବା ।

ଛାଣକାଟ—ଗ୍ରା. ବି. ପୋଷାକଆଦିର ଢଙ୍ଗ ।

ଛାଣ୍ଡିଛୁଣ୍ଡି—ଗ୍ରା. କ୍ରି. ବିଂ. ବାରମ୍ବାର କଟା-କଟି କରି, ନାନାପ୍ରକାରେ ବ୍ୟସ୍ତ-ସଂକୋଚ ପୂର୍ବକ ।

ଛାଣ୍ଡିବା—ଗ୍ରା. କ୍ରି. କିରୁଥିରେ କାଟିବା, ଅଗକାଟିବା, ବ୍ୟସ୍ତ ସଂକୋଚ କରିବା, କାଣ୍ଡିବା, ପାଛୁଡ଼ିବା, ବାଛିବା ।

ଛାତ—କ୍ରି. ବିଂ. (ଛୋ+ମି.ତ) ଛିନ୍ନ, ଦୁର୍ବଳ, କୃଶ, ସୂକ୍ଷ୍ମ, (ସ୍ତ୍ରୀ) ଛାତା, (ଗ୍ରା. ବି) ଚାଳ, ଘର ଉପରସ୍ଥ ଆଚ୍ଛାଦନ ।

ଛାତକ—ଗ୍ରା. ବି. ଶ୍ରୀହଟ୍ଟଜିଲ୍ଲାର ସୁର୍ମାନଦୀ-ତୀରରେ ଅବସ୍ଥିତ ଗୋଟିଏ ନଗର ।

ଛାତନା—ଗ୍ରା. ବି. ବାଙ୍କୁଡ଼ା ରାଜ୍ୟର ଗୋଟିଏ ପ୍ରାଚୀନ ସାମନ୍ତ ରାଜ୍ୟ ।

ଛାତା—ଗ୍ରା. ବି. ମଥୁରାଜିଲ୍ଲାର ଗୋଟିଏ ତହସିଲ ।

ଛାତି—ଗ୍ରା. ବି. (ସଂ-ଛଦି) କଣ୍ଠଦେଶ ଓ ପେଟ ମଧ୍ୟସ୍ଥ ଶରୀରର ସାମନା ପାଖ, ବକ୍ଷସ୍ଥଳ, ବୁକୁ, ମନଃ, ଅନ୍ତଃକରଣ, ହୃଦୟ, ସାହସ, ସ୍ତ୍ରୀଲୋକଙ୍କର ସ୍ତନ ଧୈର୍ଯ୍ୟ, କଷ୍ଟସହିଷ୍ଣୁତା ।

ଛାତିଉପରେବସିବା—ଗ୍ରା. କ୍ରି. କୌଣସି ବ୍ୟକ୍ତି ଉପରେ ବେଆଇନ ଅଧିକାର ପରିଚାଳନ କରିବା ।

ଛାତିଏ—ଗ୍ରା. ବିଂ. ଛାତି ଯେତିକି ଉଚ୍ଚ ସେତିକି ଉଚ୍ଚ ପରିମିତ ବା ଗଭୀର ।

ଛାତିକିଛାତିଦେଇ—ଗ୍ରା. କ୍ରି. ବିଂ. ସମ୍ପୂର୍ଣ୍ଣ ସହାୟତା ବା ସହଯୋଗ ପୂର୍ବକ (କୌଣସି କାର୍ଯ୍ୟ କରିବା) ।

ଛାତିକିପଥରକରିବା—ଗ୍ରା. କ୍ରି. ସହିବା, ଧୈର୍ଯ୍ୟ ଧରିବା, ଦୁଃଖଆଦି ସହିବା ପାଇଁ ହୃଦୟକୁ ଦୃଢ଼ କରିବା, କଷ୍ଟକର କର୍ମ କରିବା ପାଇଁ ବା ଦେଖିବା ପାଇଁ ହୃଦୟକୁ କଠୋର ବା କଷ୍ଟୁର କରିବା ।

ଛାତିକିମାରିବା—ଗ୍ରା. କ୍ରି. ଛାତିରେ ମାରି-ଦେବା, ଦେଖ, (ବି) ଛାତିରେ ବେଦନା ହେବା ।

ଛାତିକୁଲୁଣିନପାଇବା—ଗ୍ରା. ବି. (ଲ. ଅର୍ଥ) ମନମୋଟ ହେବା, ଗର୍ବିତ ହେବା ।

ଛାତିକୁଣ୍ଢେମୋଟହେବା—ଗ୍ରା. କ୍ରି (ଲ. ଅର୍ଥ) ଆନନ୍ଦ ବା ସାହସ ବା ଗର୍ବରେ ଛାତି ଫୁଲି ଉଠିବା ।

ଛାତିଖାଇବା—ଗ୍ରା. କ୍ରି. ଉଚ୍ଚରେ ଏକ, (ଅନ୍ୟର) ଛାତି ପର୍ଯ୍ୟନ୍ତ ହେବା ।

ଛାତିଠୁଙ୍କିବା—ଗ୍ରା. କ୍ରି. ଛାତିରେ କରତଳ ଆଘାତପୂର୍ବକ ପ୍ରକାଶ୍ୟ ପ୍ରତିଜ୍ଞା କରିବା, କୌଣସି କଠିନ କାର୍ଯ୍ୟ କରିବା ପାଇଁ ପ୍ରତିଜ୍ଞା କରିବା ବା ହେମନ୍ତ ବାନ୍ଧିବା, ଛାତିରେ ମାରିଦେବା ଦେଖ ।

ଛାତିଜଳିବା—ଗ୍ରା. ବି. ଅଜୀର୍ଣ୍ଣ ଯୋଗୁଁ ହୃଦୟ ମଧ୍ୟରେ ଦାହର ଅନୁଭୂତ, ଈର୍ଷା ବା କ୍ରୋଧରେ ସନ୍ତପ୍ତହେବା ।

ଛାତିଜଳାଇବା—ଗ୍ରା. କ୍ରି. କୌଣସି ବ୍ୟକ୍ତି ଈର୍ଷା କ୍ରୋଧ ବା ଶୋକରେ ସନ୍ତପ୍ତ ହେବାର କାରଣ ହେବା ।

ଛାତିଥଣ୍ଡାହେବା—ଗ୍ରା. ବି. ଉଦ୍‌ବେଗ ବା ଭୟ ବା ଆଶଙ୍କା ଦୂର ହେବାରୁ ମନରେ ଶାନ୍ତିହେବା ।

ଛାତିଥରା—ଗ୍ରା. ବି. ହୃତ୍‌ପିଣ୍ଡର ସ୍ପନ୍ଦନ, ଭୟ ବା ରୋଗାଦି ହେତୁରୁ ଛାତିରେ ଅନୁଭୂତ ହେବା କମ୍ପନ । [ ଭୟ ।

ଛାତିଦକ—ଗ୍ରା. ବି. ହୃଦୟରେ ଜନ୍ମିବା

ଛାତିଦକଦକହେବା—ଗ୍ରା. ବି. ହୃଦୟ ଯନ୍ତ୍ରର ପ୍ରତିକ୍ଷଣରେ ସ୍ପନ୍ଦନ, ଭୟରେ ବା ସନ୍ଦେହରେ ମନ ଉଦ୍‌ବିଗ୍ନ କରିବା, ହୃତ୍କମ୍ପ ।

ଛାତିଦମଦମହେବା—ଗ୍ରା. ବି. ହଠାତ୍ ଉପସ୍ଥିତ ଭୟ ବା ଚିନ୍ତା ବା ଖୁବ୍ ଦୌଡ଼ିଯିବା ଯୋଗୁଁ ଛାତିର ଦୁକୁଦୁକ ଉପର୍ଯ୍ୟୁପରି ନାଚିବା ।

ଛାତିଦମ୍ଭ—ଗ୍ରା. ବିଂ. ସାହସୀ, ନିର୍ଭୀକ, ଧୈର୍ଯ୍ୟଶୀଳ, ସହନଶୀଳ, (ବି) ସାହସ, ଧୈର୍ଯ୍ୟ, କଷ୍ଟ ସହନଶୀଳତା ।

ଛାତିଦରଜ—ଗ୍ରା. ବି. ନିମୋନିଆଁ, କାଶ, ଯକ୍ଷ୍ମାଆଦି ଯୋଗୁଁ ବକ୍ଷସ୍ଥଳର ଭିତରେ ଅନୁଭୂତ ବେଦନା, ଆଘାତଆଦି ଯୋଗୁଁ ବକ୍ଷସ୍ଥଳର ବାହାରେ ଅନୁଭୂତ ବେଦନା, ଆଘାତଆଦି ଯୋଗୁଁ ବକ୍ଷ-ସ୍ଥଳର ଜଣାଯିବା ଦରଜ ବା ବ୍ୟଥା ।

ଛାତିଧରା—ଗ୍ରା. ବି. ଶରଦ ବା ରୋଗ ଯୋଗୁଁ ଛାତିରେ ଦରଜ ବା ବେଦନା ଅନୁଭବ ।

ଛାତିଧରିବା—ଗ୍ରା. ବି. ଛାତିଧରା ଦେଖ, (ଗ୍ରା. କ୍ରି) ଧୈର୍ଯ୍ୟଧରିବା ।

ଛାତିପତାଇବା—ଗ୍ରା. କ୍ରି. ପ୍ରହାର ବା ଗୁଳିଆଦି ବାଜିବା ପାଇଁ ନିଜର ବକ୍ଷ-ସ୍ଥଳକୁ ଦେଖାଇଦେବା, (ଲ. ଅର୍ଥ) କୌଣସି ବିପଦ ସମ୍ଭାଳିବା ପାଇଁ ନିଜେ ପ୍ରସ୍ତୁତ ରହିବା, (ଗ୍ରା. ବି) କୌଣସି କାର୍ଯ୍ୟ କରିବାକୁ ସାହସୀ ହେବା ।

ଛାତିପଥରକରିବା—ଗ୍ରା. କ୍ରି. ଛାତିକି ପଥର କରିବା ଦେଖ ।

ଛାତିପଥରପରିହେବା—ଗ୍ରା. ବି. ବହୁତ କଷ୍ଟ ସହି ସହି ସହନଶୀଳ ହେବା ।

ଛାତିଫଟା—ଗ୍ରା. ବିଂ. ହୃଦୟ ବିଦାରକ, ମର୍ମଭେଦୀ (ଦୁଃଖ), ଦୁର୍ଦ୍ଦହ (ବୋଝ) ।

ଛାତିଫାଟିଯିବା—ଗ୍ରା. କ୍ରି. ଧୈର୍ଯ୍ୟଚ୍ୟୁତ ହେବା, ବୁକୁ ବା କଳିଜା ଫାଟି ପ୍ରାଣ-

ତ୍ୟାଗ କରିବା, ଅତିତୃଷ୍ଣାରେ ହୃଦୟରେ ବେଦନା ଅନୁଭୂତହେବା ।

ଛାତିଫୁଲାଇଗୁଳିବା—ଗ୍ରା. କ୍ରି. ଗର୍ବରେ ଗୁଳିବା ।

ଛାତିଫୁଲିଇବା— ଗ୍ରା. କ୍ରି. ଆନନ୍ଦ ବା ଗର୍ବରେ ସ୍ଫୀତହେବା ।

ଛାତିରେ ଧକପଶିବା—ଗ୍ରା.କ୍ରି.ହୃଦୟରେ ଭୟ ବା ଆଶଙ୍କା ଜାତହେବା ।

ଛାତିରେ ପକାଇବା—ଗ୍ରା.କ୍ରି.ଶିଶୁକୁ ଛାତି ଉପରେ ଧରିବା, (ଲ.ଅର୍ଥ) ଶିଶୁକୁ ଅତି ସ୍ନେହ ବା ଆଦରରେ ପାଳନ କରିବା ।

ଛାତିରେ ପଥର ପକା (କେ)ଇବା—ଗ୍ରା. କ୍ରି. ( ଲ.ଅର୍ଥ ) ଦୁଃଖ ସହିବା, ଅନ୍ୟ ବ୍ୟକ୍ତି ଚିନ୍ତାନ୍ୱିତ ହେବାର କାରଣ ହେବା ।

ଛାତିରେପଥରଲଦିବା—ଗ୍ରା. କ୍ରି. ଆସନ୍ନ ଦୁଃଖ ବା ବିପଦ ଯୋଗୁଁ ଅତି ଚିନ୍ତାନ୍ୱିତ ହେବା, ଅନ୍ୟ ବ୍ୟକ୍ତିକୁ ବିଶେଷ ଚିନ୍ତାନ୍ୱିତ କରିବା ।

ଛାତିରେ ବାଳଉଠିବା—ଗ୍ରା. କ୍ରି. ଛାତି ଉପରେ ରୋମ ଉଠିବା, ଯୁବାବସ୍ଥାରେ ପଦାର୍ପଣ କରିବା, ବିଶ୍ୱାସିପଣ ପ୍ରକାଶ କରିବା ।

ଛାତିରେମୁଣ୍ଡରେହେବା—ଗ୍ରା.ବି. କନ୍ୟା ରଜସ୍ୱଳା ହେବାରୁ ତାର ସ୍ତନଦ୍ୱୟ ସ୍ଫୀତ ଓ ସ୍ଥୂଳ ହେବା ।

ଛାତିରେ ମାଡହେବା—ଗ୍ରା. କ୍ରି. ନାରୀର ଶୋକାବେଗରେ ବକ୍ଷସ୍ଥଳରେ କରତାଡ଼ନା କରିବା ।

ଛାତିଲଗାଇବା—ଗ୍ରା. କ୍ରି. ଆଲିଙ୍ଗନ କରିବା,ଛାତିଦ୍ୱାରା ବଳପ୍ରୟୋଗକରିବା ବା ପେଲିବା, ପରସ୍ପର ଛାତି ଲଗାଇ ପରସ୍ପରକୁ ସାହାଯ୍ୟ କରିବା ।

ଛାତିରେ ହାତଦେବା—ଗ୍ରା. କ୍ରି. ଶପଥ କରିବାବେଳେ ବକ୍ଷସ୍ଥଳରେ କରତଳ ଲଗାଇବା, ସ୍ତ୍ରୀଲୋକର ସ୍ତନକୁ କରଦ୍ୱାରା ଧରିବା ।

ଛାତିସମ୍ଭାଳିବା—ଗ୍ରା.କ୍ରି.କୌଣସି ବିପଦ ବା ଦୁଃଖକୁ ସମ୍ଭାଳି ବଞ୍ଚି ରହିବା ।

ଛାତ୍ର—ପୁଂ. ବି. ( ଛାତ୍ର+ଅ ) ଶିଷ୍ୟ, ଅନ୍ତେବାସୀ, ପଢୁଆ, ଶିକ୍ଷାର୍ଥୀ, (କ୍ଲୀ. ବି) ମଧୁବିଶେଷ, ମଦ୍ୟବିଶେଷ, (ସ୍ତ୍ରୀ) ଛାତ୍ରୀ ।

ଛାତ୍ରକ—କ୍ଲୀ. ବି. (ଛାତ୍ର+କ) ଛାତ୍ରର ଭାବ ବା ଧର୍ମ, ମଧୁ, ମଦ୍ୟ ।

ଛାତ୍ରଗଣ୍ଡ—ପୁଂ.ବି.(ଛାତ୍ର+ଗଣ୍ଡ)ଅଳ୍ପଜ୍ଞାନବିଶିଷ୍ଟ ଛାତ୍ର,ନିର୍ବୁଦ୍ଧିଆ ଓ ଅମନୋଯୋଗୀ ପଢୁଆ ପିଲା ।

ଛାତ୍ରଜୀବନ—କ୍ଲୀ.ବି.(୬ତତ୍ପୁ)ପାଠାବସ୍ଥା ।

ଛାତ୍ରଦର୍ଶନ—କ୍ଲୀ.ବି.(ଛାତ୍ର + ଦୃଶ୍+ର୍ମ. ଅନ) ମଧୁରୁଲ୍ୟ, ସଦ୍ୟୋଜାତ ଘୃତ, ହୈୟଙ୍ଗବୀନ, (୬ତତ୍ପୁ) ଛାତ୍ରମାନଙ୍କର ଦର୍ଶନ ।

ଛାତ୍ରନିବାସ,ଛାତ୍ରାବାସ—ପୁଂ.ବି(୬ତତ୍ପୁ) ଯେଉଁଠାରେ ଛାତ୍ରମାନେ ରହି ପାଠ ପଢ଼ନ୍ତି, ମଠ, ବୋର୍ଡ଼ିଂ ।

ଛାତ୍ରବୃତ୍ତି—ସ୍ତ୍ରୀ. ବି. (୬ତତ୍ପୁ)ଛାତ୍ରମାନଙ୍କର ଉତ୍ସାହ ବର୍ଦ୍ଧନାର୍ଥ ଦେୟ ପାରିତୋଷିକ, ଛାତ୍ରର ଜୀବିକା ।

ଛାତ୍ରବ୍ୟଂସକ—ପୁଂ. ବି. ଧୂର୍ତ୍ତ ଛାତ୍ର ।

ଛାତ୍ରି—ସ୍ତ୍ରୀ.ବି.(ଛାତ୍ର+ଈ) ଶିଷ୍ୟା,ବିଦ୍ୟାଶିକ୍ଷାର୍ଥିନୀ, ଅଧ୍ୟୟନକାରିଣୀ ।

ଛାତ୍ରିକ୍ୟ—କ୍ଲୀ.ବି.(ଛତ୍ରିକ+ଯ) ଛତ୍ରଯୁକ୍ତ କାର୍ଯ୍ୟର ଭାବ ।

ଛାଦ—କ୍ଲୀ. ବି. (ଛାଦ+ଣ.ଅ) ଘରର ଛାତ, ବୃକ୍ଷର ପତ୍ର, ଛାଲି, ଚମଡ଼ା, ପଟଳ, ଗୁଳ, ବସ୍ତ୍ର, କପଡ଼ା ।

ଛାଦକ—ପୁଂ. ବିଂ. ( ଛାଦ+କ.ଅକ ) ଆଚ୍ଛାଦନକାରୀ, (ପୁଂ.ବି) ଯେ ଘର ଛାଏ, ଯେ ଲୁଗା ପାରିଦିଏ ।

ଛାଦନ—କ୍ଲୀ. ବି. ( ଛାଦ+ଣ.ଅନ ) ଛଦନ,ଅନ୍ତର୍ଦ୍ଧାନ, ଛାତ, ଛାଲି,ଚମଡ଼ା, ଦେହ ଆବରଣବସ୍ତ୍ର, ଓଢ଼ଣା, ଘୋଡ଼ଣି, (ଭା.ଅନ)ଆଚ୍ଛାଦନ,ଆବରଣ, ଘୋଡ଼ାଇବା, ଘରଛାଇବା, ପତ୍ର, (ପୁଂ.ବି) ମଲାମ୍ଳାନ ବୃକ୍ଷ, (ବିଂ) ଆଚ୍ଛାଦନକର୍ତ୍ତା ।

ଛାଦିତ—ବି. ବିଂ. (ଛାଦ+ର୍ମ.ତ)ଆଚ୍ଛାଦିତ, ଛନ୍ନ, ଆବୃତ, ଲୁଚିଯାଇଥିବା, (ସ୍ତ୍ରୀ) ଛାଦିତା ।

ଛାଦୀ—ପୁଂ.ବିଂ.(ଛାଦ+ଇନ୍)ଆଚ୍ଛାଦନକର୍ତ୍ତା, ଯେ ଘୋଡ଼ାଏ, (ସ୍ତ୍ରୀ.ବି) ଚର୍ମ, ଚମଡ଼ା ।

ଛାଦ୍ମିକ—ବି. ବିଂ. ବାହାରେ ଧାର୍ମିକ ଅନ୍ତରେ ଘୋର କପଟୀ, ଅନ୍ତଃକପଟିଆ ।

ଛାନି—ଗ୍ରା.ବି. ଚକ୍ଷୁର ଡୋଳା ଉପରେ ମାଡ଼ିଥିବା ପତଳା ଚମଡ଼ା, ମେଢ଼ଆବିନ୍ଦୁ ।

ଛାନିଆ—ଗ୍ରା. ବି. ( ସଂ-ଛନ୍ନ ) ଛନକା, ହଠାତ୍ ଉପସ୍ଥିତ ଭୟ, ଶଙ୍କା, ହଠାତ୍ ଉପସ୍ଥିତ ଭୟ ଯୋଗୁଁ ହୃଦୟରେ ହେବା ଆବେଗ, ଚମକ, (ବିଂ) ଭୀତ, ତ୍ରସ୍ତ, ଭୀରୁ, ଭୟାକୁ ।

ଛାନ୍ଦ—ଗ୍ରା.ବି(ସଂ-ଛନ୍ଦଃ)ପଦ୍ୟର ରାଗିଣୀ, ଗୀତର ରାଗ, ଏକରାଗିଣୀରେ ବନ୍ଧାଯାଇଥିବା ପଦ୍ୟ ।

ଛାନ୍ଦତ—ପୁଂ. ବି. ବେଦିଭେଦ ।

ଛାନ୍ଦବନ୍ଧ—ଗ୍ରା. ବିଂ. ( ସ-ଛନ୍ଦୋବନ୍ଧ ) ରାଗିଣୀରେ ରଚିତ ।

ଛାନ୍ଦମାଳା—ଗ୍ରା.ବି. ଓଡ଼ିଶାର ଭକ୍ତ କବି ମଧୁସୂଦନଙ୍କ ରଚିତ ପଦ୍ୟପୁସ୍ତକ ।

ଛାନ୍ଦସ—ପୁଂ.ବି. (ଛନ୍ଦସ୍+ଅ) ବେଦାଧ୍ୟାପକ, ବେଦାଧ୍ୟାତା, ଶ୍ରୋତ୍ରିୟ, ( ବିଂ ) ବେଦଜାତ, ବୈଦିକ, ମୂର୍ଖ, ବେଦସମ୍ବନ୍ଧୀୟ, (ସ୍ତ୍ରୀ) ଛାନ୍ଦସୀ ।

ଛାନ୍ଦସକ—କ୍ଲୀ.ବି.ଛାନ୍ଦସର କର୍ମ ଅଥବା ଭାବ ।

ଛାନ୍ଦସଜ୍ୟୋତିଃ—ପୁଂ. ବି. ସୂର୍ଯ୍ୟ ।

ଛାନ୍ଦସସୂତ୍ର—କ୍ଲୀ.ବି (ଛନ୍ଦସ୍+ଷ.ତତ୍ପୁ)ବେଦସମ୍ବନ୍ଧୀୟସୂତ୍ର, ଛନ୍ଦଃସମ୍ବନ୍ଧୀୟସୂତ୍ର ।

ଛାନ୍ଦସୀୟ—ବି. ବିଂ. ଛାନ୍ଦସସମ୍ବନ୍ଧୀୟ ।

ଛାନ୍ଦୋଗ୍ୟ—କ୍ଲୀ. ବି. (ଛାନ୍ଦସ୍ + ଗମ୍ + ଯ) ସାମବେଦୀୟ ଋଷିଏ ଉପନିଷତ୍ତ, ଛନ୍ଦୋଗମାନଙ୍କର ସମୂହ, ଛନ୍ଦୋଗର ଧର୍ମ ।

ଛାନ୍ଦୋଭାଷ—ବି.ବିଂ.ଛନ୍ଦୋଭାଷସମ୍ବନ୍ଧୀୟ

ଛାନ୍ଦୋମାନ—ବି. ବିଂ. ଛନ୍ଦର ପରମାଣ

ବା ସଂଖ୍ୟା ସମ୍ବନ୍ଧୀୟ ।
ଛନ୍ଦୋମିକ—ବି. ବଂ. ଛନ୍ଦୋମ ଯଜ୍ଞ-ସମ୍ବନ୍ଧୀୟ ।
ଛନ୍ଦୋବତର୍—ବି. ବଂ. ଛନ୍ଦସମୂହସମ୍ବନ୍ଧୀୟ, ଛନ୍ଦୋବସ୍ତାରସମ୍ବନ୍ଧୀୟ ।
ଛପ୍—ଗ୍ରା. ବ. (ମୁସଲମାନ ବ୍ୟବହୃତ) ବିବାହ ଉପଲକ୍ଷରେ କନ୍ୟା ପକ୍ଷରୁ ବରକୁ ଉପହାର ଦିଆଯିବା ରୁମାଲ ଯାରକୋଣରେ ଗଣ୍ଠିପଡ଼ ବନ୍ଧା ଯାଇଥିବା ସୁନା ବା ରୁପାରେ ୪ଗୋଟି ମୁଦଆ ।
ଛପ୍‌କା—ଗ୍ରା. କି. ହାତରେ କୌଣସି ପଦାର୍ଥକୁ ଚପିକର ଧରିବା ।
ଛପ୍‌ବା—ପ୍ରା. (ସମ୍ବ) କି. ବୋଳିବା, ଲେପିବା ।
ଛପ—ଗ୍ରା. ବ. ( ସଂ-ଚପ୍‌ଧାତୁ ) ମୁଦ୍ରା, ଚିହ୍ନ, ଛପା, ଆବରଣ, ଲୁଚାଇବା, ହରନାମ ମୁଦ୍ରା, ମୁଦ୍ରଣ, ମୋହର, ଛେପ, ଥୁକ, ଅକ୍ଷର ଲେଖା ହୋଇଥିବା ଧାତୁଫଳକ ।
ଛପଚଲ୍ଲଣ—ଗ୍ରା.ବଂ. (ସଂ-ଛବ ଓ ଚକ୍ଷଣ) ନାନାବର୍ଣ୍ଣରେ ଚିତ୍ରିତ, ଚିତ୍ରବିଚିତ୍ର, ଶବଳ, ମନୋହର, ଛବିଲ, ଧୋବଧାଉଳିଆ ।
ଛପଛପକା—ଗ୍ରା. ବଂ. ବହୁବର୍ଣ୍ଣ ଚିତ୍ରିତ ।
ଛପଦେବା—ଗ୍ରା.କି.ଛପମାରିବା ଦେଖ ।
ଛପର—ପ୍ରା. (ସମ୍ବ) ବ. ମଇଁଷି ଗାଧୁଆ ଗ୍ରେଟ ଜଳାଶୟ ।
ଛପା—ଗ୍ରା. ବ. (ସଂ-ଛବ) ମାର୍କା, ମୁଦ୍ରିତ ଚିହ୍ନ, ମୁଦ୍ରଣ, ମୋହର, ମୁଦ୍ରା,ନାମାଙ୍କିତ ମୁଦ୍ରା ବା ଫଳକ; ହରନାମାଙ୍କିତ ଫଳକ, (ଗ୍ରା.ବଂ) ମୁଦ୍ରିତ, ଚିହ୍ନିତ ।
ଛପାକରିବା—ଗ୍ରା. କି. ମୁଦ୍ରିତ କରିବା ।
ଛପାକଲ—ଗ୍ରା. ବ. ମୁଦ୍ରାଯନ୍ତ୍ର ।
ଛପାଖାନା—ଗ୍ରା. ବ. ପ୍ରେସ୍,ମୁଦ୍ରାଳୟ ।
ଛପାମାରିବା—ଗ୍ରା. କି. ମୋହରଦ୍ୱାରା ମୁଦ୍ରିତ କରିବା,.ଛାପିବା, ଦାଗଦେବା, (ଲ.ଅ) ଦୋଷାରୋପ କରିବା,କଳଙ୍କଯୁକ୍ତ କରିବା ।
ଛାପେ—ଗ୍ରା. ବ. ଦେହରୁ ଝାଳଆଦି ପୋଛିବା ଛୋଟ ଗାମୁଛା ।
ଛାପିଛାପିଦେବା—ଗ୍ରା. କି. କନା ବା ଛାପାକାଗଜରେ ବାରମ୍ବାର ଛାପିବା ।
ଛାପିବା—ଗ୍ରା. କି. ମୁଦ୍ରାଙ୍କନ କରିବା, ମୋହର ମାରିବା, ଇଡ଼ଯାଇଥିବା ତେଲ କାଳିଆଦିକୁ କନାଦ୍ୱାରା ଶୋଷାଇବା, ଛିପିବା, ଲୁଚିବା, ମାର୍କାଦେବା ।
ଛାବଲ—ଗ୍ରା. ବ. ଏକପ୍ରକାର ଖେଳ ।
ଛାମୁଁ—ଗ୍ରା. ବ. (ସଂ-ସମ୍ମୁଖ) ସମ୍ମୁଖ, ନୈକଟ୍ୟ, ( ଉତ୍ତମ ପୁରୁଷ ) ରାଜା ବା ସମ୍ମାନାର୍ହ ବ୍ୟକ୍ତିଙ୍କ ସମୀପ, ସାନ୍ନିଧ୍ୟ, ହଜୁର,ଦେବତାଙ୍କ ସାନ୍ନିଧ୍ୟ ବା ସାମ୍ମୁଖ୍ୟ, (ବଂ) ସମ୍ମୁଖରେ ଥିବା; (ଗ୍ରା. ଅବ୍ୟ. ) ଶ୍ରୀ ମହାରାଜ, ମଣିମା, ଶ୍ରୀଦେବ, ଶ୍ରୀହଜୁର, ଆଜ୍ଞା, ଅବଧାନ, ହଁ ।
ଛାମୁଆଁ—ଗ୍ରା. ବଂ. ସମ୍ମୁଖସ୍ଥ, ସମ୍ମୁଖ ବା ସନ୍ନିଧିରେ ଥିବା,(ଗ୍ରା.ବ) ରାଜାଙ୍କ ପାର୍ଶ୍ୱଚର ଭୃତ୍ୟ, ଆଜ୍ଞାବହ ।
ଛାମୁକରଣ—ଗ୍ରା. ବ. ରାଜା ବା ବଡ଼ଲୋକଙ୍କ ନିକଟରେ ସର୍ବଦା ଉପସ୍ଥିତ-ଥିବା ଘରୋଇ . ହିସାବପତ୍ର ରଖିବା କର୍ମଚାରୀ, ପେସ୍କାର ।
ଛାମୁଖୁଣ୍ଟିଆସେବକ—ଗ୍ରା.ବ. ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ସେବକବିଶେଷ ।
ଛାମୁଚହଣ—ଗ୍ରା. ବ. ରାଜାଙ୍କ ସମକ୍ଷ-ବ୍ୟବହାର ।
ଛାମୁଚିଟାଉ—ଗ୍ରା.ବ. ରାଜାଙ୍କ ଆଦେଶ-ପତ୍ର, ସନନ୍ଦ ।
ଛାମୁଣ୍ଡିଆ—ଗ୍ରା. ବ. (ସଂ-ଛାୟାମଣ୍ଡପ) ବିବାହାଦି ଉତ୍ସବ ନିମନ୍ତେ କରାଯାଇଥିବା ତାଳପତ୍ରାଦି ରଚିତ ଛାୟାଯୁକ୍ତ ଅସ୍ଥାୟୀ ମଣ୍ଡପ ।
ଛାମୁଦାନ୍ତ—ଗ୍ରା. ବ. ପାଟିର ସମ୍ମୁଖରେ-ଥିବା ଦାନ୍ତ, ଆଗଦାନ୍ତ ।
ଛାମୁଦହୁଡ଼—ଗ୍ରା. ବ. ରାଜା ବା ଦେବତାଙ୍କ ଆଗରେ ଧରାଯିବା ମସାଲ ।
ଛାମୁଦୁଆର—ଗ୍ରା. ବ. ସଦରଦରଜା ।
ଛାମୁରୁ—ଗ୍ରା. ବ. ଶ୍ରୀ ହଜୁରରୁ,ଆପଣଙ୍କ ଠାରୁ ।
ଛାମୁରେ—ଗ୍ରା. ଅବ୍ୟ. ଶ୍ରୀ ହଜୁରରେ, ହଜୁରଙ୍କ ନିକଟରେ, ଆପଣଙ୍କ ନିକଟରେ, ସମ୍ମୁଖରେ ।
ଛାମୁଲାଗି—ଗ୍ରା. ବଂ. ରାଜାଙ୍କ ନିଜର ବ୍ୟବହୃତ ।
ଛାମୁହେବା—ପ୍ରା. (ଗଞ୍ଜା) କି. ନମସ୍କାର କରିବା ।
ଛାୟ—କ୍ଲୀ. ବ. ଅନାତପ, ଛାଇ ।
ଛାୟା—ସ୍ତ୍ରୀ. ବ. (ଛୋ+କ.ଯ+ଆ) ଅନାତପ, ପ୍ରତିବିମ୍ବ, କାନ୍ତି, ଶୋଭା, ଦୀପ୍ତି, ଛାଇ, ଖରାର ଅଭାବ, ଆଲୋକର ବିପରୀତ ଦିଗ, ଆବାସ ସ୍ଥାନ, ଦୁର୍ଗା, କାତ୍ୟାୟନୀ, ମାୟା, ବିଷାଦ,ଅନୁକରଣ, ସୂର୍ଯ୍ୟଙ୍କର ଏକପତ୍ନୀ, ତମଃ,ଅନ୍ଧକାର, ସାଦୃଶ୍ୟ,ଛନ୍ଦୋଭେଦ, ରାଗିଣୀବିଶେଷ, ପରିଣାମଭେଦ,ଭୂତପ୍ରେତାଦିଙ୍କ ପ୍ରଭାବ, ସୂର୍ଯ୍ୟ ବା ଚନ୍ଦ୍ରକିରଣ ବା ଆଲୋକ କୌଣସି ବସ୍ତୁଉପରେ ପଡ଼ିଲେ ଆଲୋକର ବିପରୀତ ଦିଗରେ ଯେଉଁ ଅନ୍ଧକାରମୟ ପ୍ରତିବିମ୍ବ ଲକ୍ଷିତ ହୁଏ ।
ଛାୟାକ—ବି.ବଂ. ଛାୟାଯୁକ୍ତ ।
ଛାୟାକର—ବି. ବଂ. (ଛାୟା + କୃ + କ.ଅ) ଛତ୍ରଧାରୀ, ଅନାତପଜନକ,(ସ୍ତ୍ରୀ) ଛାୟାକରୀ ।
ଛାୟାକ୍ରୀଡ଼ା—ବି. କୁହୁକ, ବସ୍ତ୍ରଉପରେ ଛାୟା ପକାଇ ଦେଖାଇବା ନାନାପ୍ରକାର ଅଦ୍ଭୁତ ଚିତ୍ର, ବାୟୋସ୍କୋପ୍ ।
ଛାୟାଗଣିତ—ବି.(କ.ଧା) ଜ୍ୟୋତିଷ ଶଙ୍କୁ ଯୋଗେ ତହିଁର ଛାୟାଦ୍ୱାରା ବିଷୁବମଣ୍ଡଳରେ ଅବସ୍ଥିତ ନିର୍ଦ୍ଧାରଣପୂର୍ବକ ଗ୍ରହମାନଙ୍କର ଗତିଆଦି ନିର୍ଣ୍ଣୟ କରାଯିବା ପ୍ରକ୍ରିୟାବିଶେଷ ।
ଛାୟାଗ୍ରହ—ପୁଂ. ବ. (ଛାୟା + ଗ୍ରହ + କ.ଅ) ଦର୍ପଣ ।
ଛାୟାଗ୍ରାହିଣୀ—ବି. ହନୁମାନ ସୀତାଙ୍କୁ ଠାବକରିବାକୁ ଯିବାବେଳେ ସମୁଦ୍ରରେ ପଡ଼ିବା ହନୂମାନର ଛାୟାକୁ ଧରି

ହନୁମାନଙ୍କୁ ଜଳକୁ ଝିଙ୍କିଆଣିଥିବା ରାକ୍ଷସୀ ।
ଛାୟାଙ୍କ—ପୁଂ. ବି. (ବ.ବ୍ରୀ) ଚନ୍ଦ୍ର ।
ଛାୟାଚିତ୍ର—ବି. ଆଲୋକଜନିତ ଛାୟା ଉଠାଇବା, ଫଟୋଗ୍ରାଫିକ୍ ।
ଛାୟାଚ୍ଛନ୍ନ—ବିଂ. (୩ତତ୍) ଅନ୍ଧକାରାଚ୍ଛନ୍ନ, ଛାୟାଦ୍ୱାରାଗ୍ରସ୍ତ ।
ଛାୟାତନୟ—ପୁଂ. ବି. (୬ତତ୍) ଛାୟା-ପୁତ୍ର, ଶନିଗ୍ରହ ।
ଛାୟାତରୁ—ପୁଂ.ବି. (କ.ଧା) ଛାୟାପ୍ରଧାନ ବୃକ୍ଷ, ସୁରପୁନ୍ନାଗ, ନମେରୁ ବୃକ୍ଷ, ଛାୟାଥିବା ଗଛ, ବଟ ଗଛ ।
ଛାୟାତୋଡ଼ୀ—ସ୍ତ୍ରୀ. ବି. ତୋଡ଼ୀ ଓ ଛାୟାଯୋଗେ ଉତ୍ପନ୍ନ ରାଗବିଶେଷ ।
ଛାୟାତ୍ମଜ—ପୁଂ.ବି. (୬ତତ୍) ଶନିଗ୍ରହ ।
ଛାୟାଦାନ—ବି.(୬ତତ୍) ଗ୍ରହାରିଷ୍ଟ ଶାନ୍ତି ପାଇଁ ଗୋଟିଏ ପାତ୍ରରେ ଘିଅ ବା ତେଲ ପୂର୍ଣ୍ଣକରି ତହିଁରେ ଦାତାର ପ୍ରତିବିମ୍ବ ପ୍ରତିଫଳିତ କରାଇବା ପରେ ଦକ୍ଷିଣା ସହିତ ଉକ୍ତ ଘୃତ ବା ତୈଳପୂର୍ଣ୍ଣ ପାତ୍ରର ଦାନ, ବୃକ୍ଷ ପଥିକମାନଙ୍କୁ ଛାଇଦେବା ।
ଛାୟାଦେବୀ—ସ୍ତ୍ରୀ. ବି. ଗାୟତ୍ରୀଦେବୀ ।
ଛାୟାଦେହ—ପୁଂ. ବି. (କ.ଧା)ଭୂତାଦିର ଛାୟାମୟ ଅବାସ୍ତବ ଶରୀର । [ବୃକ୍ଷ ।
ଛାୟାଦ୍ରୁମ—ପୁଂ. ବି. ଛାୟାତରୁ, ନମେରୁ
ଛାୟାନଟ—ପୁଂ. ବି. ରାଗିଣୀବିଶେଷ ।
ଛାୟାନଟ୍ଟ—ପୁଂ. ବି. ଛାୟାନଟ ରାଗ ବିଶେଷ ।
ଛାୟାପଟ—ବି. ଆଖିର କଳାଡୋଳା ପଛରେ ଥିବା ଯେଉଁ ପଟ ଉପରେ ଦୃଷ୍ଟ-ବସ୍ତୁର ଚିତ୍ର ପ୍ରତିଫଳିତ ହୁଏ ।
ଛାୟାପଥ—ପୁଂ. ବି. (କ.ଧା) ଦେବପଥ, ଆକାଶ, ଜ୍ୟୋତିଃଚକ୍ର ମଧ୍ୟବର୍ତ୍ତୀ ଅର୍ଦ୍ଧମଣ୍ଡଳାକୃତ ପ୍ରଦେଶ ବିଶେଷ, ଜ୍ୟୋତିଷ୍କ ମଧ୍ୟବର୍ତ୍ତୀ ମଣ୍ଡଳାକାର ନକ୍ଷତ୍ର ଶ୍ରେଣୀ, ସ୍ୱର୍ଗଗଙ୍ଗା ।
ଛାୟାପଦ—ବି. (ବ.ବ୍ରୀ) ଖରାପଡ଼ୁଥିବା ସ୍ଥାନରେ ବାରଆଙ୍ଗୁଳ ଉଚ୍ଚ ଏକ ଶଙ୍କୁ ପୋତି ତହିଁର ଛାୟାଦ୍ୱାରା ଦିନର ସମୟ ନିରୂପଣ କରାଯିବା ପ୍ରାଚୀନ କାଳର ଯନ୍ତ୍ରବିଶେଷ ।
ଛାୟାପାଦ—ବି. ସୂର୍ଯ୍ୟଙ୍କ ଛାୟାଦ୍ୱାରା ଦିବସର ସମୟ ନିରୂପଣ ।
ଛାୟାପୁରୁଷ—ପୁଂ. ବି. ଆକାଶରେ ଦୃଷ୍ଟ ନିଜ ଛାୟାରୂପ ପୁରୁଷ, ଅଶରୀରୀ ମୂର୍ତ୍ତି ।
ଛାୟାବାଜି—ସ୍ତ୍ରୀ. ବି. କୁହୁକ, ଇନ୍ଦ୍ରଜାଲ, ବାୟୋସ୍କୋପ୍ ।
ଛାୟାଭୃତ— ପୁଂ. ବି. ( ଛାୟା+ଭୃ+କ୍ୱିପ୍) ଚନ୍ଦ୍ର ।
ଛାୟାମଣ୍ଡପ—ବି. ଛାମୁଣ୍ଡିଆ ଦେଖ ।
ଛାୟାମୟ—ବି. ବିଂ. ( ଛାୟା+ମୟ ) ଅଜ୍ଞାନମୟ ।
ଛାୟାମାନ—ପୁଂ. ବି. (ଛାୟା+ମା+ଅନ) ଚନ୍ଦ୍ର, କ୍ଲୀ. (୬ତତ୍)ଛାୟାର ମାନ ବା ପରିମାଣ ।
ଛାୟାମିତ୍ର—କ୍ଲୀ.ବି.(ତତ୍)ଆତପତ୍ର, ଛତା ।
ଛାୟାମୂର୍ତ୍ତି—ସ୍ତ୍ରୀ. ବି. (କ.ଧା) ବାୟୁଶରୀର-ଦେହ, ପ୍ରେତମୂର୍ତ୍ତି, ସ୍ଥୂଳଦେହହୀନ ମୂର୍ତ୍ତି ।
ଛାୟାମୃଗ—ବି. (କ.ଧା) ଚନ୍ଦ୍ରଙ୍କଠାରେ ଦେଖାଯିବା ମୃଗରୂପୀ ଛାୟା, ମାୟାମୃଗ
ଛାୟାମୃଗଧର—ପୁଂ. ବି. (ଛାୟା+ମୃଗ+ଧୃ+କ.ଅ) ଚନ୍ଦ୍ର ।
ଛାୟାଯନ୍ତ୍ର—ବି. ଖରାର ଛାଇଦ୍ୱାରା ସମୟ ନିରୂପଣ କରାଯିବା ପ୍ରାଚୀନ ଭାରତରେ ବ୍ୟବହୃତ ଯନ୍ତ୍ରବିଶେଷ, ସୂର୍ଯ୍ୟଘଣ୍ଟା ।
ଛାୟାରମଣ—ବି. (୬ତତ୍) ସୂର୍ଯ୍ୟଦେବ ।
ଛାୟାରୂପ—ବି. ଛାୟାପୁରୁଷ ଦେଖ ।
ଛାୟାବାନ୍—ପୁଂ. ବିଂ.( ଛାୟା+ବତ୍ ) ଛାୟାବିଶିଷ୍ଟ,କାନ୍ତିଯୁକ୍ତ, (ସ୍ତ୍ରୀ) ଛାୟାବତୀ ।
ଛାୟାବିପ୍ରତିପତ୍ତି—ସ୍ତ୍ରୀ.ବି. (୬ତତ୍)ମରଣ-ସୂଚକ ଦେହକାନ୍ତ୍ୟାଦିର ଅନ୍ୟଥାଭାବ ।
ଛାୟାବେଦୀ—ବି. ଛାମୁଣ୍ଡିଆ,ଛାୟାମଣ୍ଡପ ।
ଛାୟାବ୍ୟବହାର—ଯେକୌଣସି ପଦାର୍ଥର ଛାୟାଦ୍ୱାରା ତାହାର ପରିମାଣ ସ୍ଥିରକରିବା ।
ଛାୟାସାଇଁ—ଗ୍ରା. ବି. ସୂର୍ଯ୍ୟ ।
ଛାୟାସୁତ—ପୁଂ. ବି. (୬ତତ୍) ଶନିଗ୍ରହ, ଯମ ।
ଛାର—ଗ୍ରା. ବିଂ. କ୍ଷାର, ଭସ୍ମ, ଅଧମ, ହେୟ, ଅଯୋଗ୍ୟ, ହୀନ, ମନ୍ଦ, ଜ୍ଞାନହୀନ ।
ଛାରଖି—ଗ୍ରା. (ସମ୍ବ) ବି. ସ୍ୱାମୀଙ୍କର ସ୍ତ୍ରୀ ପରିତ୍ୟାଗ, ବିବାହ ବନ୍ଧନର ଛେଦନ ଲୋକ, ଅନଭ୍ୟାସ, ( ବିଂ ) ଅଭ୍ୟାସ ନକରିବା ଯୋଗୁଁ ପରିତ୍ୟକ୍ତ( କର୍ମ ), ଅନଭ୍ୟସ୍ତ ।
ଛାରକପାଳ—ଗ୍ରା. ବି. ଦୁରଦୃଷ୍ଟ, ମନ୍ଦ-ଭାଗ୍ୟ, ବିଂ, (ବ.ବ୍ରୀ) ମନ୍ଦଭାଗ୍ୟବିଶିଷ୍ଟ (ବ୍ୟକ୍ତି) ।
ଛାରକପାଳିଆ—ଗ୍ରା. ବିଂ. ଦୁର୍ଭାଗ୍ୟ,ମନ୍ଦ-କପାଳଯୁକ୍ତ ।
ଛାରଖାର—ଗ୍ରା. ବି. ଭସ୍ମସାତ୍, ଧ୍ୱଂସ, ସର୍ବନାଶ, (ବିଂ)ଉଚ୍ଛିନ୍ନ, ବିନଷ୍ଟ, ଧ୍ୱସ୍ତ, ଭସ୍ମସାତ୍, ନାରଖାର ।
ଛାରପୋକ—ଗ୍ରା. ବି. ରକ୍ତପାୟୀ କ୍ଷୁଦ୍ର କୀଟବିଶେଷ, ମତ୍କୁଣ,ତଲ୍ପକୀଟ,ଓଡ଼ଶ ।
ଛାଲ୍‌କାଟ୍‌କାଟ୍—ଗ୍ରା.ଅବ୍ୟ.ଡୁଡୁଖେଳରେ ଆକ୍ରମଣକାରୀ ବାଳକ ଅନ୍ୟପକ୍ଷର ସୀମାମଧ୍ୟକୁ ଯାଇ ଅପରପକ୍ଷର କୌଣସି ବାଳକ ଦେହକୁ ଗୋଡ଼ଦ୍ୱାରା ଆଘାତ କରିବା ପୂର୍ବରୁ ଏକ ନିଃଶ୍ୱାସରେ ବାର-ମ୍ବାର ଉଚ୍ଚାରଣ କରିବା ଶବ୍ଦ ।
ଛାଲ—ପୁଂ.ବି. କ୍ଲୀ. (ଛୋ+ଅଲ) ବଲ୍କଲ, ତ୍ୱକ୍, ଚର୍ମ, ଚମଡ଼ା ।
ଛାଲଉଠିବା—ଗ୍ରା. ବି. କୌଣସି ବସ୍ତୁ ଉପରୁ ଚୋପା ବା ବକଳ ଛାଡ଼ିଯିବା ।
ଛାଲଉତାରିବା—ଗ୍ରା. କି. ଜୀବର ଦେହରୁ ଚମକୁ କାଢ଼ିବା, ଗଛରୁ ବକଳ ଛଡ଼ା-ଇବା, ଚୋପା ଛଡ଼ାଇବା,ବହୁତ ପ୍ରହାର କରିବା ।
ଛାଲନ—ଯା. ବି. ବ୍ୟଞ୍ଜନ,ତରକାରୀ ।
ଛାଲି—ଗ୍ରା. ବି. ଛେଲି, ବଲ୍କଲ ।
ଛାଲିଆ—ଗ୍ରା. ବି. (ଫା-ଛଲ୍ଲି) ପତ୍ରସହିତ ଝାଙ୍କୁଡ଼ୋଳ ଗୁଡ଼ାଏ ଏକତ୍ର ବନ୍ଧାଯାଇ କରାଯାଇଥିବା ପିଞ୍ଛ ବା ଛାଞ୍ଚୁଣି ।
ଛାଲ୍‌କ୍ୟ—ପୁଂ. ବି. (ଛଲ୍ଲକ+ଯ) ଗାନ୍ଧ-

ଭେଦ, ଏ ଗାନ କେବଳ ଦେବଲୋକ ମାନଙ୍କର ।

ଛାଲସ୍ୱାଗ—ଗୁଜରାଟର ରେବାକାନ୍ଥା ବିଭାଗର ଅନ୍ତର୍ଗତ ଗୋଟିଏ କ୍ଷୁଦ୍ର ରାଜ୍ୟ ।

ଛାଲି—ଗୁଜରାଟର ଗ୍ରାଲବାର ରାଜ୍ୟର ଅନ୍ତର୍ଗତ ଗୋଟିଏ କ୍ଷୁଦ୍ର ରାଜ୍ୟ ।

ଛାଗା—ସ୍ତ୍ରୀ. ବି. ସୁରପୁନ୍ନାଗ ବୃକ୍ଷ, ଛଡ଼ଆନା ଗଛ ।

ଛି—ଗ୍ରା. ଅବ୍ୟ. (ସଂ-ଧିକ୍) ତିରସ୍କାର, ଅବଜ୍ଞାସୂଚକ ଅବ୍ୟୟ, ଧିକ୍ ।

ଛି କରିବା—ଗ୍ରା. କ୍ରି. ଘୃଣାରେ ତ୍ୟାଗ କରିବା, ଉପେକ୍ଷା କରିବା ।

ଛିକ୍କଣ—କ୍ଳୀ.ବି. ଛିଙ୍କ ।

ଛିକ୍କଣୀ—ସ୍ତ୍ରୀ.ବି. ସୋମରାଜ୍ୟାଦି ବର୍ଗର ବର୍ଷାସ୍ଥ ଶାକବିଶେଷ, ବିଲରେ ଜନ୍ମିବା ଏକପ୍ରକାର ଲଟାଳିଆ ଗୁଳ୍ମ, ବିଲନାଶ

ଛିକ୍କର—ପୁଂ.ବି.( ଛିକ + କୃ + ଅ )ମୃଗ ଭେଦ, ଏକପ୍ରକାର ମୃଗ ।

ଛିକ୍କା—ସ୍ତ୍ରୀ.ବି. ( ଛିକ + କୈ + ଘ.ଅ- + ଆ) କ୍ଷୁତ୍, ଛିଙ୍କ, ସିକ୍ୟ, ସିକା ।

ଛିକ୍କାର—ପୁଂ.ବି. ( ଛିକ + କୃ + ଅ ) ମୃଗଭେଦ ।

ଛିକ୍କିକା—ସ୍ତ୍ରୀ.ବି. ( ଛିକା + ଇକ + ଆ ) ଛିକ୍କଣୀ ଦେଖ ।

ଛିକ୍କିଣୀ—ସ୍ତ୍ରୀ. ବି. ଛିକ୍କଣୀ ଦେଖ ।

ଛିଗ୍ଲା—ଗ୍ରା.ବି. ଶ୍ଳେଷ ବା ବ୍ୟଙ୍ଗଯୁକ୍ତ ତିରସ୍କାର, ଘୃଣାବ୍ୟଞ୍ଜକ ଦୁର୍ନାମ, ଗ୍ରା.ବିଂ.ଶ୍ଳେଷ ବା ବ୍ୟଙ୍ଗଯୁକ୍ତ (ବଚନ), ଘୃଣାବ୍ୟଞ୍ଜକ ।

ଛିଗୁଲାଇବା—ଗ୍ରା.କ୍ରି.ଉପହାସ ବା ବ୍ୟଙ୍ଗ-କରି ତିରସ୍କାର କରିବା, ଛି ଛି କରି କହିବା ।

ଛିଙ୍କ—ଗ୍ରା.ବି. ( ସଂ, ଛିକ୍କା ) କ୍ଷୁତ୍, ନାସି-କାରୁ ହଠାତ୍ ଜୋର ସହିତ ବାହାର କ ଶବ୍ଦ ।

ଛିଙ୍କପଡ଼ିଲା—ଗ୍ରା.ଅବ୍ୟ. ଛିଙ୍କିବା ଲୋକର ମଙ୍ଗଳ ହେଉ ।

ଛିଙ୍କିବା—ଗ୍ରା.କ୍ରି.(ସଂ.ଛିକ୍କା) ନାସିକା ମଧ୍ୟରୁ ବେଗ ଓ ଶବ୍ଦ ସହିତ ହଠାତ୍ ପ୍ରବଳ ବାହାର କରିବା ।

ଛିଚୁକୁଟ—ପ୍ରା.( ଗଞ୍ଜାମ ) ବି. ରାଜ-ମନ୍ଦ ଫିକିର ।

ଛିଚୁକୁନ୍ଦା—ପ୍ର. ( ଗଞ୍ଜାମ )ବି. ପରର ଦୋଷ ଦେଖି ଇ ସୁଖୀ ହେବା ।

ଛି ଛି—ଗ୍ରା.ବି. ( ସଂ.ଧିକ୍କାର ) ଧିକ୍କାର, ଘୃଣା ବଚନ, ଗ୍ରା.ବିଂ. ଘୃଣ୍ୟ,ଧିକ୍କାରଯୁକ୍ତ ( ବାକ୍ୟ ) ।

ଛି ଛିଁକର—ଗ୍ରା.ବି ଓ ବିଂ. ଛି,ଛି ଦେଖ ।

ଛି ଛି—ଗ୍ର .ଅବ୍ୟ. ଛି ଦେଖ ।

ଛି ଛିକରିବା—ଗ୍ରା.କ୍ରି. ଧିକ୍କାର କରିବା ( ଲକ୍ଷଣାର୍ଥ ) ତୁଳନାରେ ବଳି ପଡ଼ିବା ।

ଛି ଛିରିବା—ପ୍ରା. ( ସମ୍ବଲ ) କ୍ରି. ଛିଡ଼-କିବା, ଦୂରକୁ ନିକ୍ଷିପ୍ତହେବା,ଛିଟିକିବା ।

ଛିଜ୍—ପ୍ରା. ( ସମ୍ବଲ ) ବି.ଛୁଞ୍ଚି ।

ଛିଞ୍ଚ—ଗ୍ରା.ବି. ( ସଂ,ସେଚନ ) ଜଳ ଆଦି ଅଳ୍ପ ଅଳ୍ପ ଗ୍ରୁଟିବା,ଜଳସେଚନ ।

ଛିଞ୍ଚଡ଼ା—ଗ୍ରା.ବି. ( ବର୍ଷାଜଳ ) ଗ୍ରୁଟିବା, ଗ୍ରୁଟ, ବର୍ଷା ବିନ୍ଦୁର ତିର୍ଯ୍ୟକ୍ ପତନ, ଛିଞ୍ଚିଡ଼ିବା, ବିଂ.ସିକ୍ତ, ଇତସ୍ତତଃ ବିକ୍ଷିପ୍ତ ।

ଛିଞ୍ଚା—ଗ୍ରା.ବି. ଜଳସେଚନ, କୌଣସି କ୍ଷୁଦ୍ରବସ୍ତୁକୁ, ପତଳାକରି ବିଞ୍ଚାଇବା, ଗ୍ରା.ବିଂ. ସିକ୍ତ, ବୁଣା ନହୋଇଥିବା (ବନାତ) । [ କର୍ମ ।

ଛିଞ୍ଚା ଛିଞ୍ଚି—ଗ୍ରା.ବି. ବହୁବାର ପାଣି ସିଞ୍ଚିବା

ଛିଞ୍ଚାଡ଼ିବା—ଗ୍ରା.କ୍ରି. ( ସଂ,ସଞ୍ଚାଳନ ) ଇତସ୍ତତଃ ସଂଚାଳନକରିବା,ଜୋରରେ ହଲାଇବା ବଳପୂର୍ବକ ଛାଟିବା ( ଯଥା-ହାତଗୋଡ଼ ) ଫିଙ୍ଗିବା ।

ଛିଞ୍ଚା ଛିଞ୍ଚି—ଗ୍ରା.ବି. ମୁମୂର୍ଷୁ ବା ମୂର୍ଚ୍ଛିତ ବ୍ୟକ୍ତିକୁ ସଚେତ କରିବା ଉଦ୍ଦେଶ୍ୟରେ ତାହା ଉପରେ ପାଣି ଛିଞ୍ଚିବା ଓ ବିଞ୍ଚଣାରେ ବିଞ୍ଚିବା ।

ଛିଞ୍ଚିବା—ଗ୍ରା.କ୍ରି. ଜଳାଦି ସେଚନ କରିବା, ଅଳ୍ପ ପରିମାଣରେ ବର୍ଷାହେବା,କୌଣସି କ୍ଷୁଦ୍ର ବସ୍ତୁକୁ ଅଳ୍ପ ଅଳ୍ପକରି ସ୍ତରକୁ ସ୍ତର ବିଛାଇବା ।

ଛିଟ୍କା—ଗ୍ରା.ବି. ଛିଞ୍ଚାଡ଼ିବା, ଇତସ୍ତତଃ ସଂଚାଳନ, ଛିଟା,ଛିଞ୍ଚା, ଛିଡ଼କା,ବଥା, ବିନ୍ଧା, ଆଖିର ଛିଟକ, ଗ୍ରା.ବିଂ. କ୍ଷୁଦ୍ର ।

ଛିଟ୍କଣିଆ—ଗ୍ରା.ବି. ଖୁଚୁରା, ବଳିପଡ଼ିଥିବା ସାମାନ୍ୟ ଅଂଶ ।

ଛିଟ୍କିବା—ଗ୍ରା.କ୍ରି.( ଅଗ୍ନି କଣା ବା ଦ୍ରବ-ପଦାର୍ଥ )କ୍ଷୁଦ୍ର କଣାରେ ବିକ୍ଷିପ୍ତ ହେବା, ମଣ୍ଡିଆଦି ବିନ୍ଧିବା,ବଥାଇବା ।

ଛିଟ୍ନା—ପ୍ରା.(ସମ୍ବ) ବି. ବାଉଁଶର ସରୁ କାଠରେ ତିଆରି ହୋଇଥିବା ଛୋଟ ଟୋକେଇ ।

ଛିଟ—ଗ୍ରା. ବି. (ସଂ—ଚିତ୍ର) ଏକ ବା ତତୋଽଧିକ ପକ୍କାରଙ୍ଗର ଚିତ୍ରଯୁକ୍ତ କାର୍ପାସବସ୍ତ୍ର,ଗ୍ରା.ବିଂ.ଚିତ୍ରିତ,ଶବଳିତ ।

ଛିଟା—ଗ୍ରା.ବି.(ସଂ—କ୍ଷିପ୍ତ)କ୍ଷୁଦ୍ରବିନ୍ଦୁକଣା, ଶୀକର,ଛୋଟ ଦାଗ, ପରମାଣବିଶେଷ, ଗ୍ରେଟଗୁଳି, ବଟିକା, ମଦକ୍, ଗୁଳିର-ଗ୍ରେଟ ବଟିକା, ପ୍ରା.(ସମ୍ବ) ବି. ଦୋଷ-ନିନ୍ଦା, ବିଂ. ମଳିନ ।

ଛିଟାଦେବା—ଗ୍ର.କ୍ରି. ବିନ୍ଦୁ ବିନ୍ଦୁ ପ୍ରକ୍ଷେପ କରିବା, ଗ୍ରୁଟିକରି ଛିଞ୍ଚିବା, ଝୋଟି-ଦେବା, ପ୍ରା.(ସମ୍ବ) କ୍ରି. ଦୋଷଦେବା, ନିନ୍ଦା କରିବା ।

ଛିଟିକଣି—ଗ୍ରା.ବି. ମୂଷାଯନ୍ତ୍ର, ମୂଷା-ମାରିବା ବା ଧରିବା କଳ, ଦୁର୍ଗପ୍ରାଚୀର ମଧ୍ୟସ୍ଥ ତିର୍ଯ୍ୟକ୍ ଗଡ଼, କାନ୍ଥିରେ ତେରଛାହୋଇ ପୋତା ହୋଇଥିବା ବଣା, ତୁମ୍ବ ବାଣର ମୁହଁ ବା ପେନ୍ଦ-ଭିତରେ ଆଗରୁ ରଖାଯାଇଥିବା ବଳା କତା, ଠେକା ଫୋପାଡ଼ିବା ଦଉଡ଼ି, ଗୁଖୁଣି, ଛନ୍ଦ, ଢେଙ୍କିଆ, କବାଟକୁ ବନ୍ଦ କରିବା ନିମନ୍ତେ ଦିଆଯାଇଥିବା ହୁକ ।

ଛିଟିକିପଡ଼ିବା—ଗ୍ରା. କ୍ରି. ଛିଡ଼କିବା, ଦ୍ରୁତ ଗତିରେ ଦୂରକୁ ନିକ୍ଷିପ୍ତହେବା ।

ଛିଟିକିବା—ଗ୍ରା.କ୍ରି. ଛିଟ୍କିବା ଦେଖ ।

ଛିଟିରପିଟିର—ଗ୍ରା.ବିଂ. ଅତି ଗ୍ରେଟ ଓ ସାମାନ୍ୟ (ବସ୍ତୁ) । [ ବିନ୍ଦୁ ।

ଛିଡ଼କା—ଗ୍ରା.ବି. ଛିଟା,ଛିଟାହୋଇଥିବା

ଛିଡ଼କିବା—ଗ୍ରା. କ୍ରି. ବହୁଦୂରକୁ ବେଗ

ସହିତ ଚମକିବା, ତାର୍ଯ୍ୟଙ୍କ ଭାବରେ ବନ୍ଦୁ ବନ୍ଦୁ ହୋଇ କ୍ଷିପ୍ରହେବା ।
ଛଡ଼ପୁଡ଼—ଗ୍ରା.ବି. (ସଂ—ଛିଦ୍ର) ନାନା ଛିଦ୍ର କଥା ବା ଗୁପ୍ତଦୋଷ ।
ଛଡ଼ା—ଗ୍ରା. ବ. ଦଣ୍ଡାୟମାନ ହେବା, ସିଧ ଭାବରେ ଠିଆହେବା,ଦଣ୍ଡାୟମାନ ଅବସ୍ଥା, ଛଣ୍ଡିବା, ଛିନ୍ନହେବା, ଛଣ୍ଡ କନା, ଗ୍ରା. ବଂ. ଦଣ୍ଡାୟମାନ, ଠିଆ, ଲମ୍ବଭାବରେ ଡକ୍ତ ଉଠିଥିବା, ଛଣ୍ଡା, ଛିନ୍ନ, ଭଗ୍ନ, ଖାଦ୍ୟାଭାବରୁ ଦୁର୍ବଳ ଓ ଅକର୍ମଣ୍ୟ ( ଗୋରୁ ବଳଦ ଆଦି ) ।
ଛଡ଼ାଇବା—ଗ୍ରା.କ୍ରି. ଛଡ଼ିବାର ଣିଜନ୍ତ ରୂପ, ଛିନ୍ନକରିବା,ଛଣ୍ଡାଇବା,(ବିବାଦ) ତୁଟାଇବା, ଚରିବା, ଖଟାଦେଇ ଦୁଧକୁ ପାଣି ଫଟାଇବା, ଭାଙ୍ଗିଦେବା,ଗଣିତ ସମସ୍ୟାକୁ ସମାଧାନ କରିବା, ବୃକ୍ଷରୁ ପତ୍ର ଫୁଲ ଆଦି ତୋଳିବା ।
ଛଡ଼ାକରିବା—ଗ୍ରା. କ୍ରି. ଦଣ୍ଡାୟମାନ ହେବାର ବା କୌଣସି ବ୍ୟକ୍ତି ଠିଆ ହୋଇ ରହିବାର ବ୍ୟବସ୍ଥା କରିବା, ( ଗୃହଆଦି ) ନିର୍ମାଣ କରି ସମ୍ପୂର୍ଣ୍ଣ କରିବା,(ବିବାଦ)ଘଟାଇବା,ତୋଳିବା ।
ଛଡ଼ା ଛଡ଼ା—ଗ୍ରା.ବଂ ସ୍ଥାନେ ସ୍ଥାନେ ଠିଆହୋଇଥିବା, କାର୍ଯ୍ୟ କରିବାକୁ ଅନିଚ୍ଛୁକ ।
ଛଡ଼ାଛଡ଼ା—ଗ୍ରା.ବ. ଛଣ୍ଡାଛଣ୍ଡି,ବନ୍ଧୁବାର ଛଡ଼ିବା କର୍ମ ।
ଛଡ଼ାହେବା—ଗ୍ରା. କ୍ରି. ଦଣ୍ଡାୟମାନହେବା, ଲମ୍ବଭାବରେ ଡକ୍ତ ଉଠିବା, ଅବସ୍ଥାନ କରିବା ଘଟିବା, ନିମନ୍ତ୍ରହେବା, (ଲିଙ୍ଗ) ଟିଙ୍ଗାଇବା, ଉଦ୍ରିକ୍ତହେବା ।
ଛଡ଼କଡି—ଗ୍ରା.ବଂ. ଦୂରକୁ ନିକ୍ଷିପ୍ତ ।
ଛଡ଼ଛଡ଼—ପ୍ରା.(ସମ୍ବ)ବ. ଓ.ବଂ.ଚଣ୍ଡାଳୀ
ଛଡ଼ପଡ଼ିବା—ଗ୍ରା.କ୍ରି.ସ୍ଥ ନଭ୍ରଷ୍ଟ ହୋଇ ଉପରୁ ତଳକୁ ଖସିବା, ସୂକ୍ଷ୍ମତରହେବା ।
ଛଡ଼ିବା—ଗ୍ରା.କ୍ରି. ଛିନ୍ନହେବା,ଚିରିଯିବା, ବିଚ୍ଛିନ୍ନ ବା ପୃଥକ୍‌ହେବା, ସ୍ଥ ନଭ୍ରଷ୍ଟହେବା, ମୀମାଂସାହେବା, ତଳକୁ ଖସି ପଡ଼ିବା, ଦୁଧ ଫାଟିଯାଇ ଜଳୀୟାଂଶ ଓ ଛେନା ପୃଥକ୍ ହେବା, କମିଯିବା, ତୁଟିଯିବା, ଭାଙ୍ଗିଯିବା, ଲୁପ୍ତହେବା, (ଗଣିତ) କୌଣସି ରାଶିକୁ କୌଣସି ରାଶିରେ ହରିଲେ ଭାଗଶେଷ ନରହିବା, ନଖଦ୍ୱାରା ସମ୍ମୁଡ଼ାହୋଇ ବା ପଥର ଆଦି ଉପରେ ଘୋଷାରି ହୋଇ ଶରୀର କ୍ଷତ ବିକ୍ଷତ ହେବା, ସୂକ୍ଷ୍ମତର ହେବା, ମରିବା, ଶେଷହେବା, ନିସ୍ପତ୍ତିହେବା, ସ୍ୱୀକୃତହେବା,ବିବାଦୀ ହେବା,ନଦୀ-ବଢ଼ି କମିଯିବା ।
ଛଣ୍ଡା—ଗ୍ରା.ବ.(ସଂ—କ୍ଷିପ୍ର)ଛଟା ଦେଖ ।
ଛଣ୍ଡ—ଗ୍ରା.ବ. ଛଡ଼ିବା, ଛଣ୍ଡାଇବା, ବଂ. ଛିନ୍ନ, ବିଦୀର୍ଣ୍ଣ, ଫଟା, କ୍ଷୀଣ, ଶୀର୍ଣ୍ଣ ।
ଛଣ୍ଡାଇବା—ଗ୍ରା. କ୍ରି. ଛଡ଼ାଇବା ଦେଖ ( ବିଚାର ) ମୀମାଂସା କରିବା, ସ୍ୱୀକାର କରିବା, ସମ୍ପନ୍ନ କରିବା, ଜବରଦସ୍ତି ଛଡ଼ାଇନେବା, (ଗଣିତ) ବଡ଼ ରାଶିକୁ ସାନରାଶି ଦ୍ୱାରା ହରଣ କରି କୌଣସି ଭାଗଶେଷ ନରଖିବା ।
ଛଣ୍ଡାକନା—ଗ୍ରା.ବି. ଛିନ୍ନ ବସ୍ତ୍ର, କନ୍ଥା ।
ଛଣ୍ଡାଗଣ୍ଡ—ଗ୍ରା. ବ. ପ୍ରହେଳିକା,ବ୍ୟାସ-କୂଟ, ମର୍ମଭେଦୀ ବ୍ୟଙ୍ଗୋକ୍ତି,ଏକପ୍ରକାର ଶ୍ଳେଷାର୍ଥକ ପ୍ରହେଳିକା, (ଯେଉଁ ପ୍ରହେଳିକାକୁ ଶୁଣିବାମାନେ ଅଶ୍ଳୀଳପରି ବୋଧହୁଏ, କିନ୍ତୁ ପ୍ରକୃତରେ ଅଶ୍ଳୀଳ ନୁହେ ) ଯଥା —ପାରି ମଙ୍ଗୁଣି ଫିଟା କଲୁ, ଯେଉଁ ପୁରୁଷର ଯେତେ ଇଚ୍ଛା) ଅର୍ଥାତ୍ ଆସନ ପକାଅ ଓ ପୋଥିର ଡୋର ଫିଟାଇ ମନଇଚ୍ଛା ମୁତାବକ ପୋଥିକୁ ପଢ଼ ।
ଛଣ୍ଡାଛଣ୍ଡି—ଗ୍ରା. ବ ଓ ବଂ. ଅନ୍ୟୋନ୍ୟରେ ସମ୍ମୁଡ଼ା ସମ୍ମୁଡ଼ି ।
ଛଣ୍ଡାଣ—ଗ୍ରା.ବ. ଛେଦକରଣ,ଛେଦନ, ମୃଦଙ୍ଗ ଘୁମୁରା ବା ପଖାଉଜ ଆଦି ବଜାଇବା ବେଳେ ଉକୁଟକୁ ଛଣ୍ଡାଇବାର ସନ୍ନିବେଶରେ ଉଚ୍ଚ ଶବ୍ଦ ହେବା ପଦ୍ୟ,(ଗଣିତ) ବଡ଼ ରାଶିକୁ ଗ୍ରେଷ୍ଟ ରାଶିରେ ଏପରି ହରଣ କରିବା ଯେଉଁ ପରି କିଛି ଭାଗଶେଷ ନ ରହିବ,ଗ୍ରା.ବ. ସମ୍ଭବ ଭଜକ ସଂଖ୍ୟା ।
ଛଣ୍ଡାଳ—ଗ୍ରା.ବ.ସ୍ତ୍ରୀ. ବ୍ୟଭିଚାରିଣୀ ସ୍ତ୍ରୀ. ନଷ୍ଟଚରିତ୍ରା ସ୍ତ୍ରୀ.ବଂ. ପରପୁରୁଷଗାମିନୀ, ନଷ୍ଟା ।
ଛଣ୍ଡାଳୀ—ଗ୍ରା. ବ. ବେଶ୍ୟାବୃତ୍ତି, ସ୍ତ୍ରୀର ନଷ୍ଟଚରିତ୍ରତା, ପରପୁରୁଷ ପ୍ରତି ହାବଭାବ ଦ୍ୱାରା କାମେଚ୍ଛା ପ୍ରକାଶ ।
ଛଣ୍ଡିବା—ଗ୍ରା.କ୍ରି. ଛଡ଼ିବା ଦେଖ ।
ଛିତ୍—ତ୍ରି.ବଂ.(ଛିଦ୍+କ୍ୱିପ୍) ଛେଦନକର୍ତ୍ତା,ବ. ଛେଦନ, ଅପହରଣ ।
ଛିତ—ତ୍ରି.ବଂ.(ଶ୍ଚୋ+ମି.ତ)ଛିନ୍ନ,ଛଣ୍ଡା
ଛିଡ଼—ବଂ.(ଛିଦ୍+ମି.ତ)ଛିନ୍ନ,ଛଣ୍ଡ ।
ଛିତ୍ତରାଜଦେବ—ଗ୍ରା. ବ. କୋଙ୍କଣ-ଦେଶୀୟ ଶିଳାହାର ବଂଶୀୟ ଜଣେ ନୃପତି ।
ଛିତ୍ତି—ସ୍ତ୍ରୀ. ବ. (ଛିଦ୍+ଭା.ତି) ଛେଦ, ଛେଦନ, ପୁଂ.ବ. (କ.ତି) କରଞ୍ଜବୃକ୍ଷ, କରମଙ୍ଗ ଗଛ ।
ଛିତ୍ୱର—ତ୍ରି.ବଂ(ଛିଦ୍+କ.ବର)ଛେଦକ, ଧୂର୍ତ୍ତ, ବୈରୀ, ଚତୁର, ବିପକ୍ଷ, (ପୁ) ଶତ୍ରୁ, (ସ୍ତ୍ରୀ) ଛିତ୍ୱରୀ ।
ଛିଦ୍‌କେଲ—ପ୍ରା. (ସମ୍ବ)ବ.କଳାବିନ୍ଦୁଯୁକ୍ତ ଈଷତ୍ ନାଲି କପୋତବିଶେଷ ।
ଛିଦକ—କ୍ଲୀ.ବ. (ଛିଦ୍ର+କ.ଅକ)ବଜ୍ର ।
ଛିଦା—ସ୍ତ୍ରୀ. ବ. ( ଛିଦ୍+ଭା.ଅ+ଆ ) ଛେଦନ, ଅପହରଣ ।
ଛିଦି—ସ୍ତ୍ରୀ. ବ. ( ଛିଦ୍+ଇ ) କୁରାଢ଼ି କୁଠାର, ବଜ୍ର, (ବଂ) ଛେଦନକର୍ତ୍ତା, ଛେଦକ ।
ଛିଦିର—ପୁଂ.ବ.(ଛିଦ୍+କ.ଇର) ଅଗ୍ନି, କୁଠାର, ତରବାରି, ଖଡ୍ଗ, ରଜ୍ଜୁ, ଦଉଡ଼ି ।
ଛିଦୁର—ପୁଂ.ବଂ.(ଛିଦ୍+ଉର)ଛେଦକ, ଛେଦନକର୍ତ୍ତା, ବୈରୀ, ଧୂର୍ତ୍ତ, (ବଂ) ସ୍ୱୟଂ ଛିନ୍ନ, (ସ୍ତ୍ରୀ) ଛିଦୁରା ।
ଛିଦ୍ୱର—ବ ଓ ବ . (ଛିଦ୍+କ.ବର) ଛିତ୍ୱର ଦେଖ ।
ଛିଦ୍ୟମାନ—ତ୍ରି. ବଂ. (ଛିଦ୍+ମି.ଆନ)

ଯାହାକୁ ଛେଦନ କରାହୋଇଅଛି ।

ଛିଦ୍ର--ବି.(ଛିଦ୍ର+ମି.ର)କଣା,ଗାତ,ଗହ୍ୱର ଅପକର୍ଷ, ଭେଦ, ଅବକାଶ, ଦୂଷଣ, ଦୋଷ, (ଜ୍ୟୋତିଷଶାସ୍ତ୍ର) ଲଗ୍ନଠାରୁ ଅଷ୍ଟମସ୍ଥାନ, (ଜ୍ୟୋତିଷଶାସ୍ତ୍ର)ନବସଂଖ୍ୟା, (ଗ୍ରା..ବି) ପରନିନ୍ଦା, ଗୃହଚ୍ଛିଦ୍ର, ଅତି ସାମାନ୍ୟ ଦୋଷ, ଘରଭଙ୍ଗାକଥା,(ବିଂ) ଛିଦ୍ରଯୁକ୍ତ, କ୍ଷୁଦ୍ର, ଶ୍ରେଷ୍ଠ ।

ଛିଦ୍ରକର୍ଣ୍ଣ—ବି. ବିଂ. (ବ.ବ୍ରୀ) ଛିଦ୍ରଯୁକ୍ତ କର୍ଣ୍ଣବିଶିଷ୍ଟ, ଯାହାର କାନରେ ଫୋଡ଼ ଅଛି ।

ଛିଦ୍ରକହିବା—ଗ୍ରା.କ୍ରି. ପରର ଗୁପ୍ତଦୋଷ ପ୍ରକାଶ କରିବା ।

ଛିଦ୍ରଖୋଜିବା—ଗ୍ରା. କ୍ରି. ପରର ଦୋଷ ବା ତ୍ରୁଟି ଅନୁସନ୍ଧାନ କରିବା ।

ଛିଦ୍ରତା—ସ୍ତ୍ରୀ. ବି. (ଛିଦ୍ର+ଭା.ତା) ଛିଦ୍ରଯୁକ୍ତତା, ଛିଦ୍ରଯୁକ୍ତର ଭାବ ।

ଛିଦ୍ରଦର୍ଶନ—ବି.ବିଂ. (ଛିଦ୍ର+ଦୃଶ୍+କ. ଅନ)ଯେ ଛିଦ୍ର ଦର୍ଶନ କରେ, ଦୋଷଦର୍ଶୀ ।

ଛିଦ୍ରଦର୍ଶୀ—ପୁଂ. ବିଂ. (ଛିଦ୍ର+ଦୃଶ୍+ କ.ଇନ୍) ସୁଯୋଗାପେକ୍ଷୀ, ଦୋଷଦର୍ଶକ, ଛିଦ୍ରାନ୍ୱେଷୀ, ଶତ୍ରୁ, (ପୁଂ.ବି) ଯୋଗଭ୍ରଷ୍ଟ, ବ୍ରାହ୍ମଣଭେଦ, (ସ୍ତ୍ରୀ)ଛିଦ୍ରଦର୍ଶିନୀ ।

ଛିଦ୍ରବୈଦେହୀ—ସ୍ତ୍ରୀ. ବି. ଗଜପିପ୍ପଳୀ ।

ଛିଦ୍ରଭେଦ—ବି. (୬ତତ୍ପୁ) ଦୋଷର ବୈଲକ୍ଷଣ୍ୟ ।

ଛିଦ୍ରଶ୍ୱାସୀ—ପୁଂ. ବିଂ. (ଛିଦ୍ର+ଶ୍ୱସ+ ଇନ୍) ଯେଉଁମାନେ କେତେଗୋଟି ଦେହ ପାର୍ଶ୍ୱସ୍ଥିତ ଛିଦ୍ର ଦ୍ୱାରା ଶ୍ୱାସତ୍ୟାଗ କରନ୍ତି । [କୁମ୍ଭୀର ।

ଛିଦ୍ରାତ୍ମା—ପୁଂ.ବିଂ. (ବ.ବ୍ରୀ) ଖଳସ୍ୱଭାବ,

ଛିଦ୍ରାନୁସନ୍ଧାନ,ଛିଦ୍ରାନ୍ୱେଷଣ—କ୍ଲୀ. ବି. (୬ତତ୍ପୁ)ପରର ଦୋଷ ବା ତ୍ରୁଟି ଅନୁସନ୍ଧାନ କରିବା ।

ଛିଦ୍ରାନୁସନ୍ଧାୟୀ—ପୁଂ. ବିଂ. ଯେ ଛିଦ୍ର ଅନ୍ୱେଷଣ କରେ, ଶତ୍ରୁ ।

ଛିଦ୍ରାନୁସରଣ—ବି.ବିଂ.ଯେ ଛିଦ୍ର ଅନ୍ୱେଷଣ କରେ, ଶତ୍ରୁ ।

ଛିଦ୍ରାନ୍ୱେଷୀ—ପୁଂ. ବିଂ. (ଛିଦ୍ର+ଅନୁ+ ଇଷ+କ.ଇନ୍) ଯେ ଛିଦ୍ର ବା ଦୋଷ ଅନୁସନ୍ଧାନ କରେ, ଶତ୍ରୁଭେଦ ।

ଛିଦ୍ରାଫଳ—କ୍ଲୀ. ବି. (ଛିଦ୍ର+ଆ+ଫଳ +ଅ) ମାଉଫଳ ।

ଛିଦ୍ରାଳଦେହୀ—ପୁଂ.ବି.ଅସଂଖ୍ୟ ଛିଦ୍ରଯୁକ୍ତ ଜଳଶୋଷକ ଜୀବ, ସ୍ପଞ୍ଜ ।

ଛିଦ୍ରିତ—ବି. ବିଂ. (ଛିଦ୍ର+ମି.ତ) ବିଦ୍ଧ, ନିର୍ଭିନ୍ନ, କୃତବେଧ, ଜାତଛିଦ୍ର, ଛିଦ୍ରଯୁକ୍ତ, (ସ୍ତ୍ରୀ) ଛିଦ୍ରିତା ।

ଛିଦ୍ରୀ—ପୁଂ.ବିଂ.(ଛିଦ୍ର+ଇନ୍)ଛିଦ୍ରଯୁକ୍ତ ।

ଛିଦ୍ରୋଦର—ପୁଂ.କ୍ଲୀ.ବି.(ବ.ବ୍ରୀ)ଷତୋଦରରୋଗ ।

ଛିନ୍‌କାନିଆ—ଗ୍ରା. ବିଂ. ଅସ୍ତବ୍ୟସ୍ତ ।

ଛିନ୍‌ଛତର—ଗ୍ରା.ବିଂ. ଇତସ୍ତତଃ ବିକ୍ଷିପ୍ତ, ଛନ୍ଦଭଙ୍ଗ ଦେଇଥିବା ।

ଛିନ୍‌ଛୋଟ—ଗ୍ରା. ବିଂ. (ଆକାରରେ ବା ପରିମାଣରେ) କ୍ଷୁଦ୍ର, ନଅଣିଆ, ହୀନ, ନଗଣ୍ୟ, (ବି) କ୍ଷୁଦ୍ରତା, ନଅଣ, ଅତି-ଅଳ୍ପ ପରିମାଣ ।

ଛିନ୍‌ଭିନ୍—ଗ୍ରା. ବିଂ. ଛିନ୍ନଭିନ୍ନ ଦେଖ. ଛନ୍‌ଛତର, ଖିନ୍‌ଭିନ୍, ପୂର୍ଣ୍ଣରୂପେ ଅନୁସନ୍ଧାନ କରାଯାଇଥିବା, ତନ୍ନତନ୍ନ କରି ବୁଝାଇ ଦିଆଯାଇଥିବା ।

ଛିନା—ଗ୍ରା. ବିଂ. ନିର୍ଜନ ।

ଛିନାଳ—ଗ୍ରା.ବିଂ. ଭ୍ରଷ୍ଟା, କୁଳଟା, (ବି) ଭ୍ରଷ୍ଟାର ଚତୁରତା, ଛିଣ୍ଡାଳପଣ ।

ଛିନାଳପଣ—ଗ୍ରା.ବି.ଭ୍ରଷ୍ଟା ସ୍ତ୍ରୀର ଗୃହଖିଆ ।

ଛିନାଳୀ—ଗ୍ରା. ସ୍ତ୍ରୀ. ବିଂ. କୁଳଟା, (ବି) ଛିଣ୍ଡାଳପଣ, ଭ୍ରଷ୍ଟାର ଚତୁରତା ।

ଛିନ୍ଦ—ପ୍ରା. (ବସ୍ତର) ବି. ଖଜୁରିକୋଳି ଓ ଗଛ ।

ଛିନ୍ଦବାଡ଼ା—ମଧ୍ୟପ୍ରଦେଶର କମିଶନର୍ ଶାସନାଧୀନ ନର୍ମଦାବିଭାଗର ଗୋଟିଏ ଜିଲ୍ଲା ।

ଛିନ୍ଦପଡ଼ା (ଛେଣ୍ଡିପଦା)—କଟକ ଜିଲ୍ଲାର ଅନୁଗୋଳ ରାଜ୍ୟାନ୍ତର୍ଗତ ଗୋଟିଏ ପ୍ରଧାନ ଗ୍ରାମ ।

ଛିନ୍ଦୁ—ବି.(ଫ୍ର-ଚନ୍ଦେଲ ବା ଚନ୍ଦ୍ରାନ୍ୱେୟ) ଜାତିବିଶେଷ ।

ଛିନ୍ନ—ବି. ବିଂ. (ଛିଦ୍+ମି.ତ) କୃତଛେଦନ, ଖଣ୍ଡିତ, କର୍ତ୍ତିତ, ବିଦୀର୍ଣ୍ଣ, ପୃଥକ୍‌କୃତ, ଯାହା ଛିଣ୍ଡିଯାଇଅଛି, ଉତ୍ପାଟିତ, (ସ୍ତ୍ରୀ) ଛିନ୍ନା ।

ଛିନ୍ନକ—ବି.ବିଂ.(ଛିନ୍ନ+କ)ଈଷତ୍‌ଛିନ୍ନ ।

ଛିନ୍ନକର୍ଣ୍ଣ--ବି.ବିଂ.ଛିନ୍ନକର୍ଣ୍ଣରୂପ ଦୁର୍ଲକ୍ଷଣଯୁକ୍ତ, ଛିଣ୍ଡାକାନ ।

ଛିନ୍ନଗୋମୂତ୍ରଛନ୍ଦ—ଗ୍ରା.ବି. କାବ୍ୟାଳଙ୍କାର ବିଶେଷ ।

ଛିନ୍ନଗ୍ରନ୍ଥିକା—ସ୍ତ୍ରୀ.ବି. ଛିପର୍ଣ୍ଣିକାଲତା ।

ଛିନ୍ନଛନ—ଗ୍ରା.ବିଂ. ଛିନ୍‌ଛତର ଦେଖ ।

ଛିନ୍ନତରକ—ବି. ବିଂ. (ଛିନ୍ନ+ତର+ କ) ଅତିଶୟ ଛିନ୍ନ ।

ଛିନ୍ନଦ୍ୱୈଧ—ପୁଂ. ବିଂ.(ବ.ବ୍ରୀ) ନିବୃତ୍ତସଂଶୟ, ନିଃସଂଶୟ ।

ଛିନ୍ନନାସ—ପୁଂ.ବି.(ବ.ବ୍ରୀ)ଯାହାର ନାକ ଛିଣ୍ଡି ପଡ଼ିଅଛି, ଛିଣ୍ଡାନାକା ।

ଛିନ୍ନପକ୍ଷ—ବି. ବିଂ. (ବ.ବ୍ରୀ) ଛିନ୍ନପକ୍ଷୀ, ଯାହାର ଡେଣା ବା ପକ୍ଷ ଛେଦନ କରାହୋଇଅଛି ।

ଛିନ୍ନପର୍ଣ୍ଣୀ—ସ୍ତ୍ରୀ. ବି. (ବ.ବ୍ରୀ) ଅମ୍ବଷ୍ଠା, ଅକନବନ୍ଧି ଲତା ।

ଛିନ୍ନପଦ—ପୁଂ. ବିଂ. (ବ.ବ୍ରୀ) ଯାହାର ଗୋଡ଼ କଟିଯାଇଅଛି ।

ଛିନ୍ନପୁଷ୍ପ—ପୁଂ.ବି. ତଳପୁଷ୍ପ ବୃକ୍ଷ,ତିଳକ ବୃକ୍ଷ ।

ଛିନ୍ନବଛିନ୍ନ--ବିଂ.(ଦ୍ୱନ୍ଦ୍ୱ)ଛିନ୍ନଭିନ୍ନ ଦେଖ ।

ଛିନ୍ନଭିନ୍ନ—ବି.ବିଂ. (ଦ୍ୱନ୍ଦ୍ୱ) ଇତସ୍ତତଃ, ବିକ୍ଷିପ୍ତ, ଉଚ୍ଛିନ୍ନ, ଲଣ୍ଡଭଣ୍ଡ, ବିନଷ୍ଟ ।

ଛିନ୍ନମସ୍ତକ—ପୁଂ.ବିଂ(ବ.ବ୍ରୀ)ମସ୍ତକହୀନ, ନିର୍ମୁଣ୍ଡ, (ସ୍ତ୍ରୀ) ଛିନ୍ନମସ୍ତକା, (ବ.କ.ଧା) କଟା ହୋଇ ଗଣ୍ଡିରୁ ବିଚ୍ଛିନ୍ନ ହୋଇଥିବା ମୁଣ୍ଡ ।

ଛିନ୍ନମସ୍ତା—ସ୍ତ୍ରୀ. ବି. (ବ.ବ୍ରୀ) ଦଶମହାବିଦ୍ୟା ମଧ୍ୟରେ ଏକ ମହାବିଦ୍ୟା, ଦୁର୍ଗାଙ୍କର ରୁଦ୍ରଚଣ୍ଡିକା ବା ମସ୍ତକହୀନା ମୂର୍ତ୍ତି,(ସ୍ତ୍ରୀ.ବି-ବ.ବ୍ରୀ) ମସ୍ତକହୀନା (ସ୍ତ୍ରୀ) ।

ଛିନ୍ନମସ୍ତିକା—ସ୍ତ୍ରୀ.ବି.ଛିନ୍ନମସ୍ତା ଦେଖ ।

ଛିନ୍ନରୁହ—ପୁଂ. ବି. (ଛିନ୍ନ+ରୁହ+ଅ)

ତଳକବୃକ୍ଷ, ପୁନ୍ନାଗ ।

ଛିନ୍ନରୁହା—ସ୍ତ୍ରୀ. ବ. ( ଛିନ୍ନରୁହ + ଆ ) ଗୁଡୁଚୀ, ଗୁଳୁଚଲତା ।

ଛିନ୍ନବେଣ୍ଟିକା—ସ୍ତ୍ରୀ.ବ.ଅକାନବନ୍ଧ ଲତା ।

ଛିନ୍ନବ୍ରଣ—ବ. କଟାଘାଆ, ଅସ୍ତ୍ରଘାତ ଉପରେ ହେବା ବ୍ରଣ ।

ଛିନ୍ନଶ୍ୱାସ—ପୁଂ.ବ. (କ.ଧା) ସୁଶ୍ରୁତୋକ୍ତ ଶ୍ୱାସରୋଗବିଶେଷ, ଧଇଁରୋଗ ।

ଛିନ୍ନହସ୍ତ—ପୁଂ. ବିଂ. (ବ.ବ୍ରୀ) ଯାହାର ହାତ କଟିଯାଇଅଛି, ଖଣ୍ଡିଆହାତଆ, (ବି) ଦେହରୁ କଟାଯାଇଥିବା ହାତ ।

ଛିନ୍ନା—ସ୍ତ୍ରୀ. ବ. ( ଛିନ୍ନ + ଆ )ଗୁଡୁଚୀ, ଗୁଳୁଚଲଇ, ବେଶ୍ୟା, ଛିଣ୍ଡାଳ ।

ଛିନ୍ନୋଦ୍ଭବା—ସ୍ତ୍ରୀ. ବ. ଗୁଡୁଚୀ, ଗୁଳୁଚଲଇ ।

ଛିପ୍‌ଲି—ପ୍ରା. (ସମ୍ବ)ବ. ଚଟି ଜୋତା ।

ଛିପ୍‌ଲିଆ—(ହିନ୍ଦ) ବ. ବାଳକ ।

ଛିପ—ଗ୍ରା. ବ.ମତ୍ସ୍ୟଧାରଣଯନ୍ତ୍ର, ନୌକାବିଶେଷ, ଝଙ୍କାର, ଛେପ । [ଜଳ

ଛିପି—ଗ୍ରା.ବ.ଠିପି, ବୋତଲର ମୁହଁବନ୍ଦ ।

ଛିପିୟା—ଅଯୋଧ୍ୟାପ୍ରଦେଶରେ ଗୋଣ୍ଡା ଜିଲ୍ଲାର ଗୋଟିଏ କ୍ଷୁଦ୍ର ଗ୍ରାମ ।

ଛିପୀ—ଗ୍ରା. ବ.ଛିଦ୍ରରୋଧକ କାଷ୍ଠ,ଠିପି ।

ଛିବ୍‌ଲି—(ହିନ୍ଦ) ବ.ଚପଳ ବାଳକ ।

ଛିରକା—ଗ୍ରା. ବ.ସାଦୃଶ୍ୟ, ଜୋରପୂର୍ବକ ଅଳ୍ପ ପରିମାଣରେ କୌଣସି ଦ୍ରବ ପଦାର୍ଥ ଗ୍ରୋଟ ଛିଦ୍ର ଦ୍ୱାରା ନିକ୍ଷେପ କରିବା ।

ଛିଲ୍‌କା—ଗ୍ରା. ବ. ପତଳାଚୋପା, ଚଞ୍ଚୁ ହୋଇଥିବା ଅଂଶ, ବଲ୍କଲ, ବେତ ବାଉଁଶର ପତଳା ଚୋପା ।

ଛିଲ—ଗ୍ରା. ବ. ଧନୁର୍ଗୁଣ, ମୌର୍ବୀ ।

ଛିଲ୍‌କବା—ଗ୍ରା. କ୍ରି. ଛିଡ଼କିବା ଦେଖ ।

ଛିଲମିଲ୍—ଗ୍ରା.ବ. ମୁସଲମାନ ଫକୀରଙ୍କ ଗଳାର ମାଳାବିଶେଷ ।

ଛିଲହିଣ୍ଡ—ପୁଂ. ବ. (ଛିଲ+ହିଣ୍ଡ+ଅ) ପାତାଳଗରୁଡ଼ ଗଛ ।

ଛୁ—ଗ୍ରା. ବ.(ସଂ-କ୍ଷିପ୍ର) ପଳାୟନ,ଚମ୍ପଟ ।

ଛୁଆ—ଗ୍ରା.ବ. ଜନ୍ତୁମାନଙ୍କ ପିଲା,ମାନବ-ଶିଶୁ, (ବିଂ) ଅଳ୍ପବୟସ୍କ, କ୍ଷୁଦ୍ର ।

ଛୁଆଁ—ଗ୍ରା. ବିଂ. ପାକସ୍ପୃଶ୍ୟ, ଆତ୍ମୀୟ-ଯୁକ୍ତ, ରତୁମତୀ ହୋଇଥିବା (ସ୍ତ୍ରୀ) ସ୍ପର୍ଶ କରିଥିବା, ଦୂଷିତ ବ୍ୟକ୍ତି ବା ପଦାର୍ଥକୁ ସ୍ପର୍ଶ କରିଥିବା ଯୋଗୁଁ ଅଶୁଚି ବା ଦୂଷିତ, ଛପରବନ୍ଦ ହୋଇଥିବା, (ବି) ରତୁମତୀ ହେବା, ଛପରବନ୍ଦ, ସ୍ପର୍ଶ-କରିବା ।

ଛୁଆଁଅଛୁଆଁ—ଗ୍ରା.ବିଂ.ସ୍ପୃଶ୍ୟ ଓ ଅସ୍ପୃଶ୍ୟ ବ୍ୟକ୍ତି ବା ବସ୍ତୁ, ଯାହାକୁ ଛୁଇଁଲେ ମନୁଷ୍ୟ ଛୁଆଁ ହେବ ଓ ଯାହାକୁ ଛୁଇଁଲେ ମନୁଷ୍ୟ ଛୁଆଁ ହେବନାହିଁ ।

ଛୁଆଁଚ—ଗ୍ରା.ବିଂ.ଦୂଷିତ,ଅଶୁଚି,ଅସ୍ପୃଶ୍ୟ, (ବି) ସ୍ତ୍ରୀ ରଜସ୍ୱଳାହେବା ଅବସ୍ଥା ।

ଛୁଆଁଛୁଇଁ—ଗ୍ରା.ବ. ଅନ୍ୟୋନ୍ୟ ଗାତ୍ର ସ୍ପର୍ଶ କରିବା, ସ୍ପର୍ଶକରିବା, ସ୍ପୃଶ୍ୟାସ୍ପୃଶ୍ୟ ବସ୍ତୁର ପ୍ରଭେଦ, (ଗ୍ରା.ବିଂ)ଅନ୍ୟୋନ୍ୟ ସଙ୍ଗେ ସ୍ପୃଷ୍ଟ ।

ଛୁଆଁଛୁତ—ଗ୍ରା. ବ. ଅସ୍ପୃଶ୍ୟ ବ୍ୟକ୍ତି ବା ବସ୍ତୁର ସ୍ପର୍ଶନ, ସ୍ପୃଶ୍ୟାସ୍ପୃଶ୍ୟ ବିଚାର ବା ପ୍ରଭେଦ,(ଗ୍ରା.ବିଂ)ଅସ୍ପୃଶ୍ୟସ୍ପର୍ଶନଜନିତ, ଅସ୍ପୃଶ୍ୟ ଓ ସ୍ପୃଶ୍ୟ ।

ଛୁଆଁରା,ଛୁଆରା—ଗ୍ରା.ବ.ଆରବଦେଶୀୟ ଶୁଖିଲା ଖଜୁରୀ କୋଳି, ଖୁର୍ମା, ପିଣ୍ଡି-ଖଜୁର ।

ଛୁଆଁରୋଗ—ଗ୍ରା. ବ. ଯେଉଁ ରୋଗ କେବଳ ସ୍ପର୍ଶ ଦ୍ୱାରା ସଂକ୍ରାମିତ ହୁଏ ।

ଛୁଆଁହେବା—ଗ୍ରା.କ୍ରି.ସ୍ତ୍ରୀରତୁମତୀ ହେବା, ରଜସ୍ୱଳାହେବା ।

ଛୁଆଁଡି—ଗ୍ରା.ସ୍ତ୍ରୀ.ବିଂ. ପ୍ରସୂତା. ଯେଉଁ ସ୍ତ୍ରୀ ଅଳ୍ପଦିନ ହେଲା ପିଲା ଜନ୍ମ କରିଅଛି, ପୋଷଣ୍ଡା ।

ଛୁଆଲସିଂହ—ଗ୍ରା.ବ.ଉତ୍କଳର ରାଜପ୍ରଦତ୍ତ ଉପାଧିବିଶେଷ ।

ଛୁଆଳୀ—ଗ୍ରା.ସ୍ତ୍ରୀ.ବିଂ. ଛୁଆଣ୍ଡି ଦେଖ ।

ଛୁଇ—ପ୍ରା.(ସମ୍ବ)ବି.ଚୂନପରି ଏକପ୍ରକାର ଧଳାମାଟି, ଖଡ଼ିମାଟି, ପ୍ର. (ବସ୍ତ୍ର)ବ. କ୍ଷୁଦ୍ରଖଣ୍ଡ, ଚକ୍‌ଖଡ଼ି ।

ଛୁଇଁ—ଗ୍ରା.ବ.ଶଜନାଦିର ଫଳବିଶେଷ, ଲମ୍ବ ଓ ସରୁ ଗାଳକେଶ ।

ଛୁଇଁବା—ଗ୍ରା. କ୍ରି. ସ୍ପର୍ଶକରିବା ।

ଛୁକ୍‌ଲି—ପ୍ରା. (ସମ୍ବ)ବ. ଗ୍ରୁଲ, ହୁକ୍ ।

ଛୁକରିବା—ଗ୍ରା.କ୍ରି.ଗୋପନରେ ପଳାଇବା । [ ବଘର ।

ଛୁଙ୍କ—ଗ୍ରା. ବ. ତିଅଣ ଆଦି ବଘାରିବା,

ଛୁଙ୍କିବା—ଗ୍ରା.କ୍ରି.ଅଳ୍ପଘିଅ ବା ତେଲରେ ଫୁଟଣା ମସଲା ଦେଇ ସିଦ୍ଧ ତିଅଣକୁ ବଘାରିବା ।

ଛୁଗ୍ଗା—ପ୍ରା. (ସମ୍ବ)ବିଂ. (ସଂ-ତୁଚ୍ଛ) ତୁଚ୍ଛା, ଖାଲି, ରିକ୍ତ ।

ଛୁଗ୍ଗାକରିବା—ଗ୍ରା.କ୍ରି.ଗୋପନରେ ପଳାୟନ କରିବା ।

ଛୁଚ୍ଛୁ—ପ୍ରା. (ସମ୍ବ)ବ. ଚୁଚୁନ୍ଦରା ।

ଛୁଚ୍ଛୁକା—ସ୍ତ୍ରୀ. ବ. ( ଛୁଚ୍ଛୁ+କୋ+ଆ ) ଛୁଚୁନ୍ଦରୀ, ଚୁଚୁନ୍ଦରା ମୂଷା ।

ଛୁଚ୍ଛୁନ୍ଦର—ପୁଂ. ବ. (ଛୁଚ୍ଛୁମ୍+ଦୃ+ଅ) ମୂଷିକଭେଦ, ଗନ୍ଧମୂଷିକ ।

ଛୁଚ୍ଛୁନ୍ଦରୀ—ପୁଂ.ବ. (ଛୁଚ୍ଛୁମ୍+ଦୃ+ଇନ୍) ମୂଷିକଭେଦ, ଚୁଚୁନ୍ଦୁରା ମୂଷା, ଗନ୍ଧ-ମୂଷିକ ।

ଛୁଚ୍ଛୁ—ସ୍ତ୍ରୀ. ବ. ଛୁଚ୍ଛୁକା, ଗନ୍ଧମୂଷିକା ।

ଛୁଞ୍ଚିପନ୍ଥ—ଗ୍ରା.ବ.କେରେଇରେ ପିଠଉକୁ କେବଳ ଦୁଇପାଖ ଦ୍ୱାରା ଉପର୍ଯ୍ୟୁପରି ଛୁଞ୍ଚି ପ୍ରସ୍ତୁତ କରିବା ପତଳା ଚକୁଳି, ଛୁଞ୍ଚିପନ୍ଥ ।

ଛୁଞ୍ଚି—ଗ୍ରା. ବ. (ସଂ-ସୂଚି)ଲୁଗାସିଇଁବାର ସରୁ ମୁନିଆ କଣ୍ଟା ।

ଛୁଞ୍ଚିଆ—ଗ୍ରା. ବ ଛୁଞ୍ଚିପରି ମୁନିଆ ।

ଛୁଞ୍ଚିମାଛୁପରଖ—ଗ୍ରା.ବ.ଅତିସୂକ୍ଷ୍ମ ପରୀକ୍ଷା, ପୁଙ୍ଖାନୁପୁଙ୍ଖ ପ୍ରଦର୍ଶନ ।

ଛୁଞ୍ଚିମାରିବା—ଗ୍ରା.ବ.ଦେହର ସୂଚିବେଧ ପରି ବେଦନା ଅନୁଭୂତ ।

ଛୁଞ୍ଚିମୁହଁଆ(ପକ୍ଷୀ)—ଗ୍ରା. ବ. ଶାଖାଶ୍ରୟୀ କ୍ଷୁଦ୍ର ପକ୍ଷୀବିଶେଷ ।

ଛୁଞ୍ଚିମୁହାଁ—ଗ୍ରା.ପୁଂ.ବିଂ. ଯେଉଁ ବ୍ୟକ୍ତିର ମୁହଁ ବା ଓଠ ଗୋଜିଆହୋଇ ବାହାରିଥାଏ ।

ଛୁଟକୁରିଆ—ଗ୍ରା.ବିଂ. ସାମାନ୍ୟ ଗ୍ରୋଟ ।

ଛୁଟ୍‌ଛୁଟ୍—ଗ୍ରା.କ୍ରି.ବି°.ମୁହୁର୍ମୁହୁ, ଅନୁକ୍ଷଣ
ଛୁଟଣ—ଗ୍ରା. ବି. ବିରାମ, ବିରତି, ମୁକ୍ତି, ଅବସର, ବିଶ୍ରାମ ।
ଛୁଟା—ଗ୍ରା.ପୁଂ.ବି°. ଲେଙ୍ଗଡ଼ା, ଖ୍ରୋଟା, ଖଞ୍ଜ, (ସ୍ତ୍ରୀ) ଛୁଟୀ ।
ଛୁଟାଇବା—ଗ୍ରା.କ୍ରି. ମୁକ୍ତକରିବା, ମୁକୁଳାଇବା, ହୁଗୁଳାଇବା, ପ୍ରହାରକରିବା, ଦଉଡ଼ାଇବା, କମେଇବା ।
ଛୁଟାଛୁଟି—ଗ୍ରା. ବି. ଦୌଡ଼ାଦୌଡ଼ି, ହରି. ଲଣ୍ଡଭଣ୍ଡ, ଏକର ପଶ୍ଚାତ୍ ଅନ୍ୟର ଧାବନ ।
ଛୁଟି— ଗ୍ରା. ବି. କାର୍ଯ୍ୟର ଫୁରୁସେତ୍ ବା ଅବକାଶ ମିଳିବା ସମୟ, ମୁକ୍ତି,କାର୍ଯ୍ୟରୁ ନିବୃତ୍ତି, ସ୍କୁଲ୍, କଚେରି, କାରଖାନା-ଆଦିର ସାମୟିକ କାର୍ଯ୍ୟ ବନ୍ଦ ।
ଛୁଟିଦିନ—ଗ୍ରା. ବି. ଅବସର ବାସର, ଯେଉଁଦିନ ସ୍କୁଲ୍, କଚେରି ବା କାରଖାନାଆଦିର କାମ କୌଣସି ବିଶେଷ ଉପଲକ୍ଷରେ ବନ୍ଦଥାଏ ।
ଛୁଟିବା—ଗ୍ରା. କ୍ରି. ଜୋରରେ ଗୃଳିବା, ଦଉଡ଼ିବା, ପଳାଇଯିବା, ( ଜଳୀୟ ପଦାର୍ଥ ) କୌଣସି ସ୍ଥାନରୁ ବାହାର ବେଗରେ ବହିବା, ( ସମସ୍ତ ) ଅତି-ବାହିତ ହେବା, ଫିଟିଯିବା,(ଗୁଳି,ତୀର, ଉଲ୍କା) ଖୁବ୍ ଜୋର୍‌ରେ ଗତିକରିବା ।
ଛୁଟିମିଳିବା—ଗ୍ରା.ବି. କାର୍ଯ୍ୟରୁ ସାମୟିକ ଅବସରପ୍ରାପ୍ତି, ଦାୟିତ୍ୱରୁ ମୁକ୍ତିଲାଭ ।
ଛୁଟିହେବା—ଗ୍ରା. କ୍ରି. (କୌଣସି ବ୍ୟକ୍ତି) କାର୍ଯ୍ୟରୁ ଅବସର ଲାଭ କରିବା ।
ଛୁଟୀ—ଗ୍ରା. ବିଦାୟ, ଅବସର ।
ଛୁଟୁକା—ଗ୍ରା.ବି°(ସଂ-କ୍ଷୁଦ୍ର)କ୍ଷୁଦ୍ର,ଖୁଚୁରା, ଟିକିଟିକି, ଅତି ଖ୍ରୋଟ, ଅନିର୍ଦ୍ଦିଷ୍ଟ,ତୁଚ୍ଛ ।
ଛୁଟୁପୁଟୁ—ଗ୍ରା.କ୍ରି.ବି°. ଛଟପଟ ଦେଖ ।
ଛୁଡ଼ିବା—ଗ୍ରା. କ୍ରି. ଖ୍ରେଡ଼ିବା ଦେଖ ।
ଛୁତ—ଗ୍ରା. ବି. (ସଂ-ସ୍ୟନ୍ଦିତ)ପ୍ରସ୍ରାବ ।
ଛୁତକ—ଗ୍ରା. ବି. (ସଂ-ସୂତକ) ଛୁତିକଆ ଦେଖ ।
ଛୁତଦେବା—ଗ୍ରା. (ଯାଜ) କ୍ରି. ଗାଈ ବା ବଳଦ ବାଛୁରି ଜନ୍ମହେବାବେଳେ ବାହେତା ହେତାକୁ ଟିକିଏ ମାଟି ଗୋବର ଓ କେରାଏ ଦୁବଘାସ ଦେବା ।
ଛୁତପଡ଼ିବା—ଗ୍ରା. ବି. ପ୍ରସ୍ରାବ ସଙ୍ଗେ ସୂତାପରି ଶୁକ୍ରଘଟିତ ଲାଳ ପଡ଼ିବା, ପ୍ରମେହରୋଗ, ଛୁତପୋଡ଼ା ଦେଖ ।
ଛୁତପୋଡ଼ା—ଗ୍ରା. ବି. ପ୍ରସ୍ରାବ ପୋଡ଼ା, ପ୍ରସ୍ରାବ ଦ୍ୱାରରେ ଯନ୍ତ୍ରଣାବୋଧ ।
ଛୁତା—ଗ୍ରା.ବି.(ସଂ-ସୂତ୍ର)ଛଳ, ବାହାନା ।
ଛୁତାର—(ସୂତ୍ରଧାର ଶବ୍ଦଜ) ସୂତ୍ରଧାର, (ପ୍ରା. ମେଦିନୀ)ବଢ଼େଇ ।
ଛୁତି—ଗ୍ରା. ବି.(ସଂ-ସ୍ପୃଶ୍‌ଧାତୁ)ସ୍ପର୍ଶଜନିତ ଅପବିତ୍ରତା, କଳଙ୍କ, ଅଳିଆ, ଦାୟିତ୍ୱ, ସମ୍ପର୍କ, ଛୁଇଁବା ଯୋଗୁଁ ରୋଗ ବୀଜର ସଂକ୍ରମଣ ।
ଛୁତିଆ—ପ୍ରା. (ବସ୍ତର) ବି. ଛୁଆଁ, ସ୍ପର୍ଶ-ଜନିତ ଅଶୁଦ୍ଧି, (ବି°) ଅସ୍ପୃଶ୍ୟ ।
ଛୁତିକଆ—ଗ୍ରା.ବି. (ସଂ-ସୂତକ)ସନ୍ତାନ-ଜନ୍ମ ଯୋଗୁଁ ଜ୍ଞାତିମାନଙ୍କୁ ଲାଗିବା ଅଶୌଚ, ପରିବାରରେ ସନ୍ତାନ ଜନ୍ମ ।
ଛୁତୁକ—ଗ୍ରା. ବି,ଛୁତିକଆ ଦେଖ, (ଗ୍ରା. ବି°) ଶିଶୁଜନ୍ମସମ୍ବନ୍ଧୀୟ ।
ଛୁଦ୍ର—କ୍ଲୀ. ବି.( ଛିଦ+ର ) ପ୍ରତାରକ, ରଶ୍ମି ।
ଛୁନା—ଗ୍ରା. ବି°. ଦୁଃଖିତ, ଚିନ୍ତିତ ।
ଛୁପ—ପୁଂ. ବି. ( ଛୁପ୍+ଭା.ଅ ) କ୍ଷୁପ, କ୍ଷୁଦ୍ର ଶାଖାଯୁକ୍ତ ବୃକ୍ଷ, ସ୍ପର୍ଶ, ଚପଳତା, ଯୁଦ୍ଧ, (ହି.ବି°) ଚପଳ ।
ଛୁଚୁକ —କ୍ଲୀ. ବି. ଚିବୁକ ।
ଛୁରକି—ଗ୍ରା.ବି. ନୀଚଜାତୀୟା ସ୍ତ୍ରୀମାନଙ୍କ ଦ୍ୱାରା ବ୍ୟବହୃତ କଟକଟା ଦାଗଥିବା ପିତଳର ଚୁଡ଼ି ।
ଛୁରଣ୍ଡ—ପୁଂ. ବି. ପକ୍ଷୀ ।
ଛୁରା—ସ୍ତ୍ରୀ. ବି. ( ଛୁର+ଣ.ଅ+ଆ ) ବଡ଼ଛୁରି,(ଛୁର+ଅ) ସୁଧା, କଳିଚୂନ, ଚୂର୍ଣ୍ଣ, ଗୁଣ୍ଡା, (ପ୍ରା. ସମ୍ବ)କ୍ଷୁର, ଖୁର ।
ଛୁରି(ରୀ)—ସ୍ତ୍ରୀ. ବି. (ଛୁର+ଣ+ଇ-ଈ) କାଟିବା କ୍ଷୁଦ୍ର ଅସ୍ତ୍ର, ଛୁରିକା, ଛୁରୀ, ଅସିପୁତ୍ରୀ, (ମି.ଈ) ବନ୍ଧ୍ୟାଗୋରୁ, (ଗ୍ରା. ବି.—ଲ. ଅର୍ଥ ) ଦାଢ଼ୁଆ ଛୁରିପରି ଯନ୍ତ୍ରଣାଦାୟକ ।
ଛୁରିଅନା—ଗ୍ରା. ବି. ପୁଷ୍ପବୃକ୍ଷବିଶେଷ ।
ଛୁରିଆ—ପ୍ରା. (ସମ୍ବ) ବି. ଖଡ଼ୁରା ଜାତିଙ୍କ ପରି ପିତଳର କାମ କରିବା ଜାତି-ବିଶେଷ ।
ଛୁରିକା—ସ୍ତ୍ରୀ. ବି. (ଛୁର+ଣ.ଅକ+ଆ) ଅସ୍ତ୍ରବିଶେଷ, ଛୁରୀ, ଅସିପୁତ୍ରୀ ।
ଛୁରିକାପତ୍ରୀ—ସ୍ତ୍ରୀ.ବି.(ବି.ସ୍ତ୍ରୀ)ଶ୍ୱେତାବୃକ୍ଷ, ବିଛୁଆତି ଲତା ।
ଛୁରିଚଳା(ଲେ)ଇବା—ଗ୍ରା.କ୍ରି. ଛୁରିରେ କାଟିବା, (ଲ.ଅର୍ଥ)ଅନିଷ୍ଟକରିବା ।
ଛୁରିତ—ତ୍ରି.ବି°. (ଛୁର+ମି.ତ)ଖଚିତ, ରଞ୍ଜିତ,ଲିପ୍ତ,ଜଡ଼ିତ, ବ୍ୟାପ୍ତ,ଶୋଭିତ, ଖୋଦାଇ କରାଯାଇଥିବା, (ବି)ଲାସ୍ୟ-ନାମକ ନୃତ୍ୟର ଏକଭେଦ, ବିଜୁଳିର ଚମକ ।
ଛୁରିତକି—ଗ୍ରା.ବି. ଛୁରିଅନାଗଛ, ଉଚ୍ଚ-ହାସ୍ୟ ।
ଛୁରିପତ୍ରକ—କ୍ଲୀ. ବି. ବିଛୁଆତିଲତା ।
ଛୁରିପତ୍ରିକ(ପାତ୍ରୀ)—ବି.ବିଛୁଆତିଲତା ।
ଛୁରିମାର—ପଞ୍ଜାବ ପ୍ରଦେଶର ଏକ-ଶ୍ରେଣୀୟ ଫକୀର ।
ଛୁରୀକ—ବି. ଛୁରିଅନାଫୁଲ ଓ ଗଛ ।
ଛୁଲିବା—ପ୍ରା.(ସମ୍ବ)କ୍ରି. ଚ୍ଛାଲ ଛଡ଼ାଇବା, ତାଞ୍ଛିବା ।
ଛୁଲି—ପ୍ରା. ( ମେଦିନୀ ) ବି. ଚର୍ମରୋଗ ବିଶେଷ, ଛଉ ।
ଛୁହାରା—ଯା. ବି.ଅର୍ଦ୍ଧପକ୍ୱ ପିଣ୍ଡଖର୍ଜୁର, ଆରବଦେଶୀୟ ଶୁଖିଲା ପିଣ୍ଡଖଜୁରି ।
ଛୂରିକା—ସ୍ତ୍ରୀ. ବି.,ଛୁରୀ ଦେଖ ।
ଛୂରିକାପତ୍ରୀ—ସ୍ତ୍ରୀ. ବି. ବୃଶ୍ଚିକାଳିଲତା, ବିଛୁଆତିଲତା ।
ଛୂରୀ—ସ୍ତ୍ରୀ. ବି. ଛୁରିକା, ଛୁରୀ ।
ଛେ—ଗ୍ରା. (ଅବ୍ୟ) ଛି ଦେଖ ।
ଛେଉଣ୍ଡ—ଗ୍ରା.ପୁଂ.ସ୍ତ୍ରୀ.ବି°.(ସଂ-ଛେମଣ୍ଡ) କୁଟୁମ୍ବବିହୀନ ଏକାକୀ ବ୍ୟକ୍ତି, ପିତୃହୀନ ବା ମାତୃହୀନ ବା ଉଭୟହୀନ(ବାଳକ), (ସ୍ତ୍ରୀ) ଛେଉଣ୍ଡୀ ।
ଛେକ—ପୁଂ. ବି. ( ଛେ+ମି.ଇକ )

ପାଳିତ ପଶୁପକ୍ଷୀ, ଗୃହାସକ୍ତ ମୃଗପକ୍ଷୀ-ଆଦି, ମଧୁମାଛି, ଅନୁପ୍ରାସ ବିଶେଷ, (ବି°) ନାଗର,ପଣ୍ଡିତ, ବିଦଗ୍ଧ, ଚତୁର, ବିରାମ, ବେଦନାଦିରେ ଉଣ୍ଡିପଦେବା, (ଗ୍ରା.ବି) ଛକ, ଦାଗ, ଯୁକ୍ତଚିହ୍ନ, ଥର, (ପ୍ରା. ପୁଂ) ଖାଦ୍ୟାଦି ରନ୍ଧନର ଏକ-ଥର ବା ପାଗ ।

ଛେକକୁଛେକ—ଗ୍ରା.ଅବ୍ୟ. ଥରକୁଥର, ବହୁବାର, ବାରମ୍ବାର ।

ଛେକାନୁପ୍ରାସ—ବି. ଅନୁପ୍ରାସ ବା ଶବ୍ଦା-ଳଂକାରବିଶେଷ ।

ଛେକାପହ୍ନୁତି—ସ୍ତ୍ରୀ. ବି. ବାକ୍ୟର ଅର୍ଥା-ଳଂକାରବିଶେଷ ।

ଛେକାଲ—ବି. ବି°. ନାଗର ।

ଛେକିବା—ଗ୍ରା.କ୍ରି.ଦଉଡ଼ି ବା ପଶାଖେଳା-ଳିର ହାତ ମୁଠାରେ ଥିବା କଉଡ଼ି ବା ପଶା କାଠିକୁ ତଳେ ଗୁଡ଼ାଇଦେଲେ ସଙ୍କଳ୍ପିତ ଦାନ ପଡ଼ିବ ଏହି ଉଦ୍ଦେ-ଶ୍ୟରେ ମୁଠା ମଧ୍ୟରେ ପଶା କାଠି ବା କଉଡ଼ି ଗୁଡ଼ିକୁ ସଞ୍ଚିତ କରିବା, ଶତ୍ରୁକୁ ଆକ୍ରମଣ କରିବାକୁ ଗୋପନ ଭାବରେ ଜଗିରହିବା, ଉଗାଳିବା, ବିପକ୍ଷ ପକ୍ଷର ସାକ୍ଷୀକୁ କୂଟ ପ୍ରଶ୍ନ କରିବା, ଜେରା-କରିବା ।

ଛେକିଳ—ବି. ବି°. ଛେକ ଦେଖ ।

ଛେକେ—ଗ୍ରା.ଅବ୍ୟ.ଥରେ,(ବି°)ସାରେ, ଏକସାର ।

ଛେକୋକ୍ତି—ସ୍ତ୍ରୀ. ବି. (ଚତୁର)ବକ୍ରୋକ୍ତି, ଛଳବଚନ ।

ଛେଙ୍ଗା—ପ୍ରା. (ସମ୍ବ)ବି. ସାନଗାତ ।

ଛେଚଡ଼—ଗ୍ରା.ପୁ°.ସ୍ତ୍ରୀ. ବି°. ନଷ୍ଟଚରିତ୍ର, ଲମ୍ପଟ, ଖେଚଡ଼ା, ଦୁଷ୍ଟ, ପ୍ରତାରକ, ଠକ, ନୀଚ ପ୍ରକୃତିକ ।

ଛେଚଡ଼ା—ଗ୍ରା.ଅସତ୍ର, ଅଭଦ୍ର, ବ୍ୟଞ୍ଜନ ବିଶେଷ ।

ଛେଚଡ଼ା—ଗ୍ରା. ବି°. ଛେଚଡ଼ ଦେଖ, ମାଡ଼ ଖାଇ ଖାଇ ଗଇଁଆ, ଛେଚୁ ବା କୁଟା ଖାଇବାରେ ଅଭ୍ୟସ୍ତ, ବାରମ୍ବାର ଛେଚୁ ହେବା ଯୋଗୁଁ ଯାହାର ଅଙ୍ଗ-ଭଙ୍ଗ ଛିନ୍ନଭିନ୍ନ ହୋଇ ଯାଇଥାଏ ।

ଛେଚଡ଼ାଙ୍ଗି—ଗ୍ରା.ବି. ଝଲତା, ବଗୁଲିଆ ପଣ, ନଷ୍ଟଚରିତ୍ରତା,ଦଣ୍ଡର(ଶଷ୍ଦାଦି) ।

ଛେଚୁ—ଗ୍ରା. ବି. ଛେଚିବା, ଉପର୍ଯ୍ୟୁପରି ଆଘାତପୂର୍ବକ ପେଷଣ ବା କୁଟନ, ପୋଷା ହୋଇଥିବା ପଦାର୍ଥ, ମାଡ଼ ବିଶେଷ, ପ୍ରହାର,(ବି°)କୁଟାଯାଇଥିବା, ପିଷ୍ଟ ।

ଛେଚୁକୁଟା—ଗ୍ରା.ବି.ଉପର୍ଯ୍ୟୁପରି ଛେଚିବା କର୍ମ ।

ଛେଚୁଛେଚ—ଗ୍ରା.ବି.ପରସ୍ପର ପରସ୍ପରକୁ ଛେଚିବା ବା ପ୍ରହାର କରିବା, ବସ୍ତୁ-ପଦାର୍ଥକୁ ଶିଳାଆଦିରେ ଛେଚିବା କର୍ମ, ( ଗ୍ରା. ବି° ) ପରସ୍ପର ପରସ୍ପର ଦ୍ୱାରା ପ୍ରହାରିତ ।

ଛେଚକୁଟିହେବା—ଗ୍ରା. ବି. ଶରୀରର ଅଙ୍ଗମାନବିଶେଷ ବଥାଇବା, (ଗ୍ରା.କ୍ରି) ବିଶେଷ ଆୟାସସହକାରେ ପରିଶ୍ରମ କରିବା ।

ଛେଚକୋଡ଼ହେବା—ଗ୍ରା. କ୍ରି. ଦୁଃଖରେ ଅତ୍ୟନ୍ତ ବ୍ୟତିବ୍ୟସ୍ତ ଓ ଛଟପଟ ହେବା ।

ଛେଚିବା—ଗ୍ରା.କ୍ରି(ସଂ-କୁଶ୍ଧାତୁ)କୁଟିବା, ମାଡ଼କରି ଉପର୍ଯ୍ୟୁପରି ଆଘାତକରିବା, ଦଳିବା, ଉପର୍ଯ୍ୟୁପରି ବିଶେଷ ପ୍ରହାର କରିବା, ବିଶେଷ ପରିମାଣରେ ବୃଷ୍ଟି କରିବା, ଭୂମିରେ ବାଡ଼େଇବା, ଚୂନ କରିବା, ଚିକିଟିକି କରିବା ।

ଛେଚିହେବା—ଗ୍ରା.କ୍ରି. ଉର୍ଦ୍ଧ୍ୱରୁ ଖସିପଡ଼ି ତଳେ ଶରୀର କଚ ହୋଇଯିବା, ଛେଚକୁଟିହେବା ।

ଛେଛର—ପ୍ରା. (ସମ୍ବ)ବି°. ଶବ୍ଦ, ଫଟା ।

ଛେଛେ—ଗ୍ରା. ଅବ୍ୟ. ଛୁ ଦେଖ, ମାପ-ପାତ୍ର ପୂର୍ଣ୍ଣ ଭାବରେ ନ ପୂରାଇ ଦର-ଖଣ୍ଡିଆ ମାପ ।

ଛେଣା—ଗ୍ରା. ବି. ବାରସୀ ଦ୍ୱାରା ପଟ ପ୍ରଭୃତି ଘୃଞ୍ଚିବା, ଖଣତି ପରି ଅସ୍ତ୍ର-ବିଶେଷ ।

ଛେଣି—ଗ୍ରା.ବି.ପଥର ବା ଲୁହା କାଟିବା ଉପଯୋଗୀ ନହଣ,ସ୍ତମ୍ଭ ବା କୋଟଚିପ-ଆଦିରେ ଛିଦ୍ର କରିବା ଅସ୍ତ୍ର ।

ଛେଣିକଟିବା—ଗ୍ରା. କ୍ରି.ସ୍ତମ୍ଭ ଆଦିକୁ ଯନ୍ତ୍ର ଦ୍ୱାରା ଛିଦ୍ର କରିବା, ପଞ୍ଚ୍‌କରିବା, ଛେଣିରେ କାଟିବା ।

ଛେଣିବା—ପ୍ରା. ( ସିଂହଭୂମ )କ୍ରି. ହାତ ପତାଇ ଉପରୁ ପଡ଼ିବା ଜିନିଷକୁ ଧରି-ପକାଇବା ।

ଛେଡ଼୍—ଗ୍ରା. ଅବ୍ୟ. ଛୁ ଦେଖ ।

ଛେଡ଼ଖାନା—ଯା. ବି. ପାଇଖାନା ।

ଛେଡ଼ିରା—ଗ୍ରା.ବି (ସଂ-ଛିଦ୍ରାକ)ଛିଦ୍ରଯୁକ୍ତ, ଝାମ୍ପୁଡ଼ା ।

ଛେତବ୍ୟ—କ୍ରି. ବି°, ଛେଦନୀୟ ।

ଛେତ୍ତା—ପୁ°. ବି°. (ଛିଦ୍+ତୃ)ଛେଦନ-କର୍ତ୍ତା, ଛେଦକ ।

ଛେଦ—ପ୍ରା. (ସମ୍ବ)ବି. ଅବସାନ ।

ଛେଦକା—ପ୍ରା.(ସମ୍ବ)ବି. ଚଟକା, ଅଟ-ଖାର ।

ଛେଦ୍‌ଳପିଲ୍—ପ୍ରା.(ସମ୍ବ)ବି. ମାଆ ବାପ-ଙ୍କର କୋଡ଼ପୋଛା ପିଲ ।

ଛେଦ—କ୍ରି.ବି°. (ଛିଦ୍+କ.ଅ)ଛେଦନ-କାରୀ,ଭଞ୍ଜକ,(ପୁ°.ବି)ଛେଦନ,କାଟିବା, ଫାଟ, ନାଶ, ଅପଗତ, ଶ୍ୱେତାମ୍ବର ଜୈନମାନଙ୍କର ଧର୍ମଗ୍ରନ୍ଥ ସଙ୍କଳର ଗୋଟିଏ ବିଭାଗ, ଖଣ୍ଡନ, କଟାଚିହ୍ନ, ପରିଚ୍ଛେଦ, ଅଧ୍ୟାୟ, ବିରତି, ଛିଦ୍ର, ଦୋଷ, ଖଣ୍ଡ, ଭାଗ, ପଥର କାଟିବା, ପୂର୍ଣ୍ଣଛେଦ, (ଗ୍ରା.ବି) ଦେବତାଙ୍କ ନିକ-ଟରେ ବଳି ଦିଆଯିବା ପଶୁ ।

ଛେଦକ—ପୁ°. ବି°. ( ଛିଦ୍+କ.ଅକ ) ଯେ ଛେଦନ କରେ, ଛେଦନକାରକ, ବିନାଶକାରୀ, କର୍ତ୍ତନକାରୀ, ଭଞ୍ଜକ ।

ଛେଦକାର—ଗ୍ରା. ବି. ଯେଉଁ ବ୍ୟକ୍ତି (ଧୋବାଆଦି) ଖଡ଼୍ଗଆଦିରେ ଦେବ-ତାଙ୍କ ଆଗରେ ବୋଦା ହାଣେ, ପଥର କଟା କାରିଗର ।

ଛେଦନ—କ୍ଲୀ. ବି. ( ଛିଦ୍+ଭା. ଅନ ) ଛେଦନ, ଅସ୍ତ୍ରଦ୍ୱାରା ଦ୍ୱିଧାକରଣ, ନାଶ, ଅପନୋଦନ, କାଟିବା ଅସ୍ତ୍ର, ଉଚ୍ଛେଦ, ଯେଉଁ ଔଷଧ କଫଆଦିକୁ ଗଳାରୁ

ବାହାର କରିବାଏ, (ଛି.ବି°) ଛେଦକ।

ଛେଦନୀ—ସ୍ତ୍ରୀ.ବି. (ଛିଦ୍+ଣ.ଅନ+ଈ) କର୍ତ୍ତରୀ, କଟାରୀ, କର୍ତ୍ତିନାସ୍ତ, କଟୁରୀ।

ଛେଦନୀୟ—ବି.ବି°. (ଛିଦ୍+ମ.ଅନୀୟ) ଛେଦ୍ୟ,ଛେଦନର ଉପଯୁକ୍ତ;(ବି)ମର୍ମର ଫଳର ଗଛ, କଣ୍ଟକ ବୃକ୍ଷ।

ଛେଦପକା(କେ)ଇବା—ଗ୍ରା. କ୍ରି. ଦେବତାଙ୍କ ଆଗରେ ପଶୁ ବଳିଦେବା।

ଛେଦପଡ଼ିବା—ଗ୍ରା. କ୍ରି. ଦେବତାଙ୍କ ନିକଟରେ (କୌଣସି ପଶୁ) ବଳିରୂପେ ହଣା ଯିବା।

ଛେଦଭେଦ—ଗ୍ରା. ବି. କପଟ ବା ଛଳ ବ୍ୟବହାର, କୂଟନୀତି, ପରଛିଦ୍ର, ଗୁପ୍ତ-ଦୋଷ।

ଛେଦର—ଗ୍ରା. ବି. (ସଂ-ଛିଦ୍ର )·ଏକପ୍ରକାର ସୂତା, ଦଉଡ଼ିସୂତା, ଇତସ୍ତତଃ ହେବା, (ବି°) କ୍ଷୁଦ୍ରକ୍ଷୁଦ୍ର ଖଣ୍ଡ ମିଶ୍ରିତ, ଗ୍ରନ୍ଥିଯୁକ୍ତ ଯେ ପରିବାର ମଧ୍ୟରେ କଳହ ଜାତ କରାଏ, କୃପଣ, ଦ୍ୱଂସ୍ର।

ଛେଦା—ଗ୍ରା.ବି.ଧାଡ଼ ନଥିବା ପିଦ୍ଧାଳୁଗା, ଘୁଡ଼ରେ ରହିଯିବା ସାନ ସାନ ଆଖୁ ଗେଣ୍ଡା, ଏକପ୍ରକାର ବସାଦଢ଼, ହାଣିବା, କାଟିବା, ( ଗ୍ରା. ବି° ) କର୍ତ୍ତିତ, କଟା ହୋଇଥିବା।

ଛେଦାଇବା—ଗ୍ରା.କ୍ରି. ଛେଦିବାର ଣିଜନ୍ତ-ରୂପ, (କିବା ଆଣିବାର ସୁବିଧାପାଇଁ ପୂର୍ଣ୍ଣ ଖାତହାଣ୍ଡିଆଦିରୁ କେତେକ ଅଂଶ ଚଟି ଆଦିଦ୍ୱାରା ଅନ୍ୟପାତ୍ରରେ ରଖିବା) (ଲ.ଅର୍ଥ) ଥିବା ବେତନ ବା ମୂଲ୍ୟରୁ ଏକାଥରେ ନ ନେଇ କାମ କରୁଥିବା ଲୋକ ପ୍ରତିଦିନ ନିର୍ଦ୍ଦିଷ୍ଟ ମୂଲ୍ୟରୁ କିଛି କିଛି ନେବା।

ଛେଦାଦ—ପୁ°. ବି. ( ବ.ଙ୍ଗ )ପ୍ରତ୍ୟୟ-ନିମିତ୍ତ ଶବ୍ଦଗଣ।

ଛେଦି—ବି. ବି°. (ଛିଦ୍+ଇନ୍) ଛେଦନ-କର୍ତ୍ତା, ବଜ୍ର, ବର୍ଦ୍ଧକି।

ଛେଦିତ—ବି.ବି°.(ଛିଦ୍+ଣିଚ୍+ମ.ତ) ଦ୍ୱିଧାକୃତ, ଖଣ୍ଡିତ, କର୍ତ୍ତିତ, ଯାହା ଅନ୍ୟଦ୍ୱାରା ଛେଦନ କରାଯାଇଅଛି।

ଛେଦିବା—ଗ୍ରା.କ୍ରି. (ସଂ-ଛିଦ୍‌ଧାତୁ)ଛେଦନ କରିବା, ହାଣିବା, କାଟିବା, କୁଲାରେ ପାଛୁଡ଼ି ଶସ୍ୟାଦିରୁ ଖୁଦ ବା କଣି ଗୁଣ୍ଡକ ଅଲଗା କରିବା, ଦୂର କରିବା, ନାଶ କରିବା।

ଛେଦୀ—ବି. ବି°. ( ଛେଦ+ଇନ୍ ) ଛେଦଯୁକ୍ତ, ଛେଦକର୍ତ୍ତା।

ଛେଦ୍ୟ—ବି. ବି°. ( ଛିଦ୍+ମ. ଯ ) ଛେଦନୀୟ, ଛେଦନର ଉପଯୁକ୍ତ,ଯାହା ବିଚ୍ଛିନ୍ନ କରାଯାଇ ପାରେ, ( ପୁ°. ବି ) କପୋତ ପକ୍ଷୀ, ଚକ୍ଷୁରୋଗର ପ୍ରତି-ଷେଧର ଗୋଟିଏ ଉପାୟ।

ଛେଦ୍ୟକଣ୍ଠ—ପୁ°. ବି. ପାରାବତ;ପାରା।

ଛେନା—ଗ୍ରା. ବି. ଆମିକ୍ଷା, ପନୀର, ଦୁଗ୍ଧ-ବିକାରବିଶେଷ, ଦଧି ଓ ଦୁଗ୍ଧରୁ ଅଗ୍ନି ସଂଯୋଗରେ ବା ଅମ୍ଳରସ ଯୋଗେ ଯେଉଁ ଖାଦ୍ୟପିଣ୍ଡ ବାହାରେ, (ବର-କ୍ତିରେ ବ୍ୟବହୃତ ଶବ୍ଦ) କିଛି ନାହିଁ, ପ୍ରା. (ସମ୍ବ) ଘଷିପାଉଁଶ।

ଛେନାଗୁଡ଼—ଗ୍ରା. ବି. ମିଷ୍ଟାନ୍ନରୂପେ ବ୍ୟବହୃତ ଛେନା ଓ ଗୁଡ଼, ପିଲାଙ୍କୁ ଭଣ୍ଡାଇଲାପରି ଅଳ୍ପମୂଲ୍ୟର ଲୋଭନୀୟ ବସ୍ତୁ।

ଛେନାଛୁଣ୍ଡାଇବା—ଗ୍ରା. କ୍ରି. ଦୁଧରେ ଖଟା ବା ଫିଟିକିରି ମିଶାଇ କମ୍ବା ଦହିକୁ ନିଆଁରେ ବସାଇ ସେଥିରୁ ଛେନା ପ୍ରସ୍ତୁତ କରିବା।

ଛେନାପଣା—ଗ୍ରା.ବି. ଛେନା ଓ ନବାତ-ଯୁକ୍ତ ପାନୀୟ।

ଛେନାପାଣି—ଗ୍ରା.ବି. ଛେନା ଛୁଣ୍ଡିଯିବା-ପରେ ଦୁଧ ବା ଦହିରେ ରହିଯିବା ଜଳୀୟାଂଶ।

ଛେନାରୁ ଗେପ ଛଡ଼ା(ଡ଼େ)ଇବା—ଗ୍ରା.କ୍ରି. (ବ୍ୟଙ୍ଗ) ବୃଥା ବା ନିଷ୍ଫଳ କଥାରେ ମାତିବା, ଅତିଶକ୍ତରୂପେ ତନ୍ନ ତନ୍ନକରି ଆଲୋଚନା ବା ତର୍କ କରିବା।

ଛେପ—ଗ୍ରା. ବି. (ସଂ-କ୍ଷୀବ) ନିଷ୍ଠୀବନ, ଥୁଥୁ,ଥୁକ, ପାଟିରୁ ବାହାରିବା ଲାଳମୟ ବସ୍ତୁ।

ଛେପଖଙ୍କାର—ଗ୍ରା.ବି. (ଛେପ) ମୁଖରେ ପ୍ରସ୍ତୁତ ନିଷ୍ଠୀବନ ଓ ଖଙ୍କାର, ଗଳାରୁ ନିଃସୃତ ଶ୍ଳେଷ୍ମା।

ଛେପଢୋକିବା—ଗ୍ରା. କ୍ରି. ମୁଖନିଃସୃତ ଛେପକୁ ଗଳାଧଃକରଣ କରିବା, (ଲ.ଅର୍ଥ) କହିଥିବା ସତ୍ୟପାଳନ ନକରିବା

ଛେପପକା(କେ)ଇବା—ଗ୍ରା. କ୍ରି. ମୁହଁରୁ ଥୁକ ବାହାରକୁ ଫିଙ୍ଗିବା। [ଇବା।

ଛେପିବା—ପ୍ରା.(ଗଞ୍ଜାମ) କ୍ରି. ଛେପ ପକା-

ଛେବଲ—ଗ୍ରା. ବି°. (ସଂ-ଚପଲ)ଚପଳ-ସ୍ୱଭାବ, ବାଳସ୍ୱଭାବ, ଚଞ୍ଚଳ।

ଛେମ—ଗ୍ରା. ବି. ( ସଂ-କ୍ଷମ ) ଅଧିକାର, କ୍ଷମତା, ଯୋଗ୍ୟତା।

ଛେମଣ୍ଡ—ପୁ°. ବି°. ମାତୃପିତୃହୀନ (ବାଳକ), ଅନାଥ।

ଛେରଛେରମଗା—ପ୍ରା. (ସମ୍ବ) ବି. ପୌଷ ପୂର୍ଣ୍ଣିମାରେ ଗଣ୍ଡ ପାଣ ଭୂଇଁଆ ଆଦି ନୀଚ ଜାତୀୟ ଲୋକ ବଡ଼ ଘରମାନଙ୍କୁ ନିଜ ପରବ ଖରଚପାଇଁ ଧାନ ମାଗିଯିବା।

ଛେରଲୁଗା—ଗ୍ରା.ବି°.ପୁ°.ଛେରୁଆ ଦେଖ।

ଛେର—ଗ୍ରା. ବି. ତରଳ ମଳ, ଭୂମିରେ ଯେଉଁ ସୁଗନ୍ଧ ଜଳ ସିଞ୍ଚାଯାଏ, ଛେର ରୋଗ, ଗୋ ବସନ୍ତ, ଠାକୁରାଣୀ ରୋଗ, ଭୂମିରେ ସିଞ୍ଚାଯିବା ଗୋବର ପାଣି, ( ବି° ) ତରଳ ପୁରୀଷ ତ୍ୟାଗକାରୀ, ଛେରୁଆ।

ଛେରଛେର—ଗ୍ରା. ବି. ବହୁପରିମାଣରେ ଛେରିବା।

ଛେରଦେବା—ଗ୍ରା.କ୍ରି. ଭୂମିରେ ଗୋବର ପାଣି ସିଞ୍ଚିବା।

ଛେରପହଁରା—ଗ୍ରା.ବି. ପଥ ବା ଭୂମିରେ ଜଳସେଚନକରି ଓଲାଇବା।

ଛେରିବା—ଗ୍ରା. କ୍ରି. ତରଳ ମଳ ତ୍ୟାଗ କରିବା,(ଲ.ଅର୍ଥ) ରୋଗ ବା ଭୟହେତୁ ତରଳ ପୁରୀଷ ତ୍ୟାଗ କରିବା।

ଛେରୁ—ଗ୍ରା. ପୁ°. ବି°. ଛେରୁଆ ଦେଖ।

ଛେରୁଆ—ଗ୍ରା. ପୁ°. ବି°. ଅତ୍ୟନ୍ତ ଭୀତ, ଛେରରୋଗାକ୍ରାନ୍ତ।

ଛେଲି—ପ୍ରା. (ସମ୍ବ) ବି. ଛେଳି, ଅଜ।

ଜଳୁଘ୍ନ—ପୁଂ.ବି. (ଜଳୁ+ହନ+କ.ଅ) ଖାଜପୁର ବୃକ୍ଷ, ଟଭା, ଲେମ୍ବୁ, (କ୍ଲୀ.ବ) ବଡ଼ଙ୍ଗ, ହେଙ୍ଗୁ, (ଜି.ବିଂ) ପ୍ରାଣିଘାତକ, ଜୀବନାଶକ।
ଜଳୁଘ୍ନୀ—ସ୍ତ୍ରୀ.ବି.(ଜଳୁଘ୍ନ+ଈ)ବଡ଼ଙ୍ଗ।
ଜଳୁଣି—ଗ୍ରା. ବି. ଖଳ ଦେଖ।
ଜଳୁନାଥ—ବି. (୬ତତ୍ପୁ) ଯମ।
ଜଳୁନାଶକ—ବିଂ.ଜଳୁଘ୍ନ, ପ୍ରାଣୀଘାତକ, (ବି) ହେଙ୍ଗୁ।
ଜଳୁନାଶନ—କ୍ଲୀ ବି. (ଜଳୁ+ନଶ+ଣିଚ୍+ଅନ) ହେଙ୍ଗୁ, ବଡ଼ଙ୍ଗ।
ଜଳୁପତି—ବି. ଯମ, ଚିତ୍ରଗୁପ୍ତ, ଯମଙ୍କ ପାଞ୍ଜିଆ। [ କେଓଡ଼ା।
ଜଳୁପାଦପ—ପୁଂ. ବି. କୋଷାମ୍ର ବୃକ୍ଷ,
ଜଳୁଫଳ—ପୁଂ. ବି. (ବ.ବ୍ରୀ) ଉଦୁମ୍ବର ବୃକ୍ଷ, ଡିମିରି ଗଛ ଓ ଫଳ।
ଜଳୁମାନ୍—ପୁଂ. ବିଂ. (ଜଳୁ+ମତୁ) ଯହିଁରେ ଅଧିକ ପରିମାଣରେ ଜଳୁ ଅଛନ୍ତି, (ସ୍ତ୍ରୀ) ଜଳୁମତୀ।
ଜଳୁମାରି—ପୁଂ. ବିଂ.(ଜଳୁ+ମୃ+ଣିଚ୍+ଇନ୍) ଜୀବଘାତୀ।
ଜଳୁମାରୀ—ସ୍ତ୍ରୀ. ବି. (ଜଳୁ+ମୃ+ଣିଚ୍+ଈ) ଜମ୍ବୁକବୃକ୍ଷ, ପାତିଲେମ୍ବୁ, କାଗଜିଲେମ୍ବୁ।
ଜଳୁରାଜ—ବି.(୬ତତ୍ପୁ)ଜଳୁରାଣ ଦେଖ।
ଜଳୁରାଣ—ଗ୍ରା. ବି. (୬ତତ୍ପୁ) ଯମ।
ଜଳୁରାୟ—ଗ୍ରା. ବି. ଯମ।
ଜଳୁଲା—ସ୍ତ୍ରୀ. ବି. (ଜଳୁ+ଲା+ଅ+ଆ) କାଶତୃଣ, କାଉଁଶି।
ଜଳୁସାଇଁ—ଗ୍ରା. ବି. ଯମ।
ଜଳୁହନ୍ତ୍ରୀ—ସ୍ତ୍ରୀ. ବି. (ଜଳୁ+ହନ୍+ତୃ+ଈ) ବଡ଼ଙ୍ଗ, (ବି) ଜଳୁଘାତକ।
ଜଳୁ—ଜି. ବିଂ. (ଜନ+ତୁ) ଜନନୀୟ, ଜନକ। [ ପୋକ।
ଜନା—ଗ୍ରା.ବି. ପିମ୍ପୁଡ଼ିଜାତୀୟ ବଡ଼ କଳା
ଜନାଖାଇ—ଗ୍ରା. ବି. ଏରଣ୍ଡାଦିବର୍ଗର ଏକପ୍ରକାର ବନ୍ୟ ତରୁ।
ଜନାପିମ୍ପୁଡ଼ି—ଗ୍ରା.ବି. ଜନା ଓ ପିମ୍ପୁଡ଼ି।
ଜନ୍ମ—କ୍ଲୀ. ବି. (ଜନ୍+ମନ୍) ଉତ୍ପତ୍ତି, ଉଦ୍ଭବ, ଆଦ୍ୟକ୍ଷଣ ସମ୍ବନ୍ଧ, ଅପୂର୍ବ ଦେହ ଗ୍ରହଣ, ଆବିର୍ଭାବ, ଜୀବନ, ସଂସାର, ଜୀବଲୋକ।
ଜନ୍ମକରିବା—ଗ୍ରା. କ୍ରି. ଗର୍ଭରୁ ଉତ୍ପାଦନ କରିବା, ପ୍ରସବ କରିବା।
ଜନ୍ମକର୍ମ—ବି. (କ.ଧା) ଜାତକର୍ମ, ପୁତ୍ରେଷ୍ଟି ଯାଗ।
ଜନ୍ମକାଳ—ପୁଂ.ବି. (୬ତତ୍ପୁ)ଜନ୍ମସମୟ, ଯେଉଁ ସମୟରେ ଜନ୍ମଲାଭ ହୁଏ।
ଜନ୍ମକୀଲ—ପୁଂ.ବି. ବିଷ୍ଣୁ, କାରଣ ବିଷ୍ଣୁ ସେବାରେ ପୁନର୍ଜନ୍ମ ହୁଏ ନାହିଁ।
ଜନ୍ମକୃତ୍—ପୁଂ.ବି. (ଜନ୍ମ+କୃ+କ୍ୱିପ୍) ପିତା, ଜନ୍ମଦାତା। [ ଜାତକ।
ଜନ୍ମକୋଷ୍ଠୀ—ବି. (୬ତତ୍ପୁ) ଜନ୍ମପତ୍ରିକା,
ଜନ୍ମକ୍ଷେତ୍ର—କ୍ଲୀ. ବି. (ଜନ୍ମ+କ୍ଷେତ୍ର) ଜନ୍ମଭୂମି, ଜନ୍ମସ୍ଥାନ, ମାତୃଭୂମି।
ଜନ୍ମଗତ—ବିଂ. (୨ତତ୍ପୁ) ଯାହା ଜନ୍ମ ସମୟରୁ କୌଣସି ଜୀବ ବା ବ୍ୟକ୍ତି-ଠାରେ ଅଛି, ବଂଶାନୁଗତ।
ଜନ୍ମଗତଅଧିକାର—ବି.ଯେଉଁ ଅଧିକାର ମନୁଷ୍ୟ ଜନ୍ମିକା ମାତ୍ରେ ଲାଭକରେ।
ଜନ୍ମଗ୍ରହ—ବି. (୬ତତ୍ପୁ) ଜନ୍ମଗ୍ରହଣ ଦେଖ।
ଜନ୍ମଗ୍ରହଣ—ବି. (୬ତତ୍ପୁ) ଅଭ୍ୟୁଦୟ, ଆବିର୍ଭାବ, ଉତ୍ପତ୍ତି।
ଜନ୍ମଘଟିତ—ବିଂ.(୨ତତ୍ପୁ)ଜନ୍ମସମ୍ବନ୍ଧୀୟ।
ଜନ୍ମଜନ୍ମ—ବି. ଜନ୍ମଜନ୍ମାନ୍ତର ଦେଖ।
ଜନ୍ମଜନ୍ମାନ୍ତର—ବି. (ଦ୍ୱନ୍ଦ୍ୱ) କୌଣସି ଜୀବର ଏକଜନ୍ମ ଓ ତାହାର ପରବର୍ତ୍ତୀ ଅନ୍ୟ ଜନ୍ମମାନ, ପ୍ରତି ଜନ୍ମ, ଅନନ୍ତ-କାଳ। [ ଘଟିଥିବା।
ଜନ୍ମଜନ୍ମାନ୍ତରୀଣ—ବିଂ. ପ୍ରତି ଜନ୍ମରେ
ଜନ୍ମଜରାମରଣ—ବି. (ଦ୍ୱନ୍ଦ୍ୱ) ଉତ୍ପତ୍ତି ବାର୍ଦ୍ଧକ୍ୟ ଓ ମୃତ୍ୟୁ।
ଜନ୍ମଜ୍ୟେଷ୍ଠ—ଜି. ବିଂ. ପ୍ରଥମଜାତ।
ଜନ୍ମତାରା—ସ୍ତ୍ରୀ.ବି. ଜନ୍ମ ସମ୍ପତ୍ ପ୍ରଭୃତି ନବତାରାର ଅନ୍ତର୍ଗତ ପ୍ରଥମ ତାରା।
ଜନ୍ମତିଥି—ପୁଂ. ସ୍ତ୍ରୀ. ବି. (୬ତତ୍ପୁ) ଜନ୍ମ ସମୟରେ ଯେଉଁ ତିଥି ଥାଏ ତାହାର ସଜାତୀୟ ତିଥି।
ଜନ୍ମତଃ—ଗ୍ରା. ଅବ୍ୟ. ଜନ୍ମ ସମୟରୁ, ଆଜନ୍ମ, ଜନ୍ମଦ୍ୱାରା, ଜାତିରେ।
ଜନ୍ମଦ—ପୁଂ. ବି. (ଜନ୍ମ+ଦା+ଅ) ପିତା, (ବିଂ) ଉତ୍ପାଦନକାରୀ।
ଜନ୍ମଦାତା—ପୁଂ. ବି. ଜନ୍ମଦ ଦେଖ।
ଜନ୍ମଦିନ—କ୍ଲୀ.ବି. (୬ତତ୍ପୁ) ଜନ୍ମଦିବସ, ଯେଉଁ ଦିନରେ ଜୀବ ଜନ୍ମହୁଏ, ସ୍ୱନକ୍ଷତ୍ର, ବାର୍ଷିକ।
ଜନ୍ମଦୁଃଖୀ—ପୁଂ. ବିଂ. ଜନ୍ମ କାଳରୁ ଯନ୍ତ୍ରଣା ଅନୁଭବ କରୁଥିବା (ବ୍ୟକ୍ତି)।
ଜନ୍ମଦେବା—ଗ୍ରା. କ୍ରି. ଜନ୍ମ କରିବା ଦେଖ।
ଜନ୍ମନକ୍ଷତ୍ର—କ୍ଲୀ.ବି.ଜନ୍ମସମୟର ନକ୍ଷତ୍ର, ଯେଉଁ ନକ୍ଷତ୍ରରେ କୌଣସି ବ୍ୟକ୍ତି ଜନ୍ମଗ୍ରହଣ କରିଥାଏ।
ଜନ୍ମନିୟନ୍ତ୍ରଣ—ବି. କୃତ୍ରିମ ଉପାୟରେ ସ୍ତ୍ରୀ ଗର୍ଭବତୀ ନ ହେବାର ଉପାୟ ଅବଲମ୍ବନ।
ଜନ୍ମପ—ପୁଂ. ବି. (ଜନ+ପ+କ)ଜନ୍ମ ଲଗ୍ନପତି, ଜନ୍ମରାଶିର ଅଧିପତି।
ଜନ୍ମପତି—ପୁଂ.ବି. ଜନ୍ମ ଲଗ୍ନପତି, ଜନ୍ମ ରାଶିର ଅଧିପତି।
ଜନ୍ମପତ୍ର—କ୍ଲୀ.ବି. ଜୀବନ ଚରିତ, ଜନ୍ମ ବିବରଣ, କୋଷ୍ଠୀ, ଜାତକ।
ଜନ୍ମପତ୍ରିକା—ସ୍ତ୍ରୀ. ବି. (୬ତତ୍ପୁ) କୋଷ୍ଠୀ, ଜାତକ। [ ଦେଖ।
ଜନ୍ମପରିଗ୍ରହ—ବି. (୬ତତ୍ପୁ) ଜନ୍ମଗ୍ରହଣ
ଜନ୍ମପାଦପ—ପୁଂ. ବି. (ଜନ୍ମ+ପାଦପ) ଯେଉଁ ବୃକ୍ଷତଳରେ ଜୀବର ଜନ୍ମହୁଏ, ପାରିବାରିକ ବୃକ୍ଷ। [ ମାତା।
ଜନ୍ମପ୍ରତିଷ୍ଠା—ସ୍ତ୍ରୀ.ବି. (୬ତତ୍ପୁ) ଜନ୍ମସ୍ଥାନ,
ଜନ୍ମଫଳ—ବି. (ବ.ବ୍ରୀ) ଡିମିରିଗଛ ଓ ତାହାର ଫଳ।
ଜନ୍ମଫେର—ଗ୍ରା. ବି.ଦେହାନ୍ତରଧାରଣ, ରୂପାନ୍ତର।
ଜନ୍ମବର୍ତ୍ମା—କ୍ଲୀ. ବି. (୬ତତ୍ପୁ) ଯୋନି।
ଜନ୍ମବସୁଧା—ସ୍ତ୍ରୀ.ବି. ଜନ୍ମସ୍ଥାନ,ଜନ୍ମଭୂମି।
ଜନ୍ମବାଦ—ପୁଂ. ବି. (୬ତତ୍ପୁ) ଜୀବର

ଉତ୍ପତ୍ତି ବିଷୟକ ମତବାଦ ।
ଜନ୍ମବାର—ପୁଂ. ବି. ( ୬ତତ୍ ) ଯେଉଁ ବାରରେ ଜନ୍ମ ହୁଏ, ଜନ୍ମଦିନ ।
ଜନ୍ମବିଧବା—ବି. ବାଲ ବିଧବା, ଅକ୍ଷତ-ଯୋନି ବିଧବା ।
ଜିନ୍ମବୃତ୍ତାନ୍ତ—ବି. ( ୬ତତ୍ ) ଉତ୍ପତ୍ତିର ବିବରଣ ।
ଜନ୍ମବୈଲକ୍ଷଣ୍ୟ—କ୍ଲୀ.ବି. ପୈତୃକ ପଦ୍ଧତିର ବିପରୀତାଚରଣ ।
ଜନ୍ମଭ—କ୍ଲୀ. ବି. ( ଜନ୍ମ+ଭା-କ.ଅ ) ଜନ୍ମନକ୍ଷତ୍ର, ଜନ୍ମଲଗ୍ନ, ଜନ୍ମରାଶି, ଜନ୍ମ ନକ୍ଷତ୍ରର ସଜାତୀୟ ନକ୍ଷତ୍ରାଦି ।
ଜନ୍ମଭରି-ଗ୍ରା.କ୍ରି.ବିଂ.ଜନ୍ମକାଳ ମଧ୍ୟରେ ।
ଜନ୍ମ ଭାକ୍—ପୁଂ.ବି.(ଜନ୍ମ+ଭଜ+କ୍ୱିପ୍) ଜୀବ, ପ୍ରାଣୀ ।
ଜନ୍ମଭାଷା—ସ୍ତ୍ରୀ.ବି. ମାତୃଭାଷା, ସ୍ୱଦେଶର ଭାଷା ।
ଜନ୍ମଭୂ—ସ୍ତ୍ରୀ. ବି. ଜନ୍ମଭୂମି, ମାତୃଭୂମି ।
ଜନ୍ମଭୂମି—ସ୍ତ୍ରୀ. ବି. (୬ତତ୍) ଜନ୍ମସ୍ଥାନ, ମାତୃଭୂମି, କୌଣସି ବ୍ୟକ୍ତି ଯେଉଁ-ଠାରେ ଜନ୍ମଗ୍ରହଣ କରିଥାଏ ।
ଜନ୍ମଭୃତ୍—କ୍ରି.ବିଂ.(ଜନ୍ମ+ଭୃ+କ୍ୱିପ୍) ପ୍ରାଣୀ । [ ଜନ୍ମହୁଏ ।
ଜନ୍ମମାସ—ପୁଂ. ବି. ଯେଉଁ ମାସରେ
ଜନ୍ମମୃତ୍ୟୁ—କ୍ଲୀ. ବି. (ଦ୍ୱନ୍ଦ୍ୱ) ଉତ୍ପତ୍ତି ଓ ମରଣ ।
ଜନ୍ମଯୋଗ—ପୁଂ.ବି.କୋଷ୍ଠୀ, ଜନ୍ମପତ୍ରୀ ।
ଜନ୍ମରାଶି—ପୁଂ. ବି. ( ୬ତତ୍ ) ଯେଉଁ ରାଶିରେ ଜନ୍ମହୁଏ ।
ଜନ୍ମରୋଗୀ—ପୁଂ.ବି. ଯେ ଆଜନ୍ମ ରୋଗ ଭୋଗକରି ଆସିଅଛି ।
ଜନ୍ମର୍କ୍ଷ—ପୁଂ. ବି. (ଜନ୍ମ+ଋକ୍ଷ) ଯେଉଁ ନକ୍ଷତ୍ରରେ ଲୋକର ଜନ୍ମହୁଏ, ପ୍ରଥମ ନକ୍ଷତ୍ରର ନାମ ।
ଜନ୍ମଲଗ୍ନ—କ୍ଲୀ.ବି. ଯେଉଁ ଲଗ୍ନରେ ଜନ୍ମ-ହୁଏ, ମନୁଷ୍ୟଜନ୍ମ ଗ୍ରହଣ କରିବା ସମ-ୟରେ ଯେଉଁ ରାଶିର ଉଦୟ ହୋଇ-ଥାଏ ।
ଜନ୍ମଲାଭ—ବି.(୬ତତ୍)ଜନ୍ମଗ୍ରହଣ ଦେଖ ।
ଜନ୍ମଶଯ୍ୟା—ସ୍ତ୍ରୀ.ବି. ଜନ୍ମନିମିତ୍ତ ଶଯ୍ୟା, ପ୍ରସବାର୍ଥ ଶଯ୍ୟା ।
ଜନ୍ମସାଫଲ୍ୟ—କ୍ଲୀ. ବି.(୬ତତ୍)ଜନ୍ମୋ-ଦ୍ଦେଶ୍ୟର ସଫଳତା ।
ଜନ୍ମସ୍ଥାନ—କ୍ଲୀ.ବି. ଜନ୍ମଭୂମି, ମାତୃଗର୍ଭ କୁଣ୍ଡଳୀର ଯେଉଁ ସ୍ଥାନରେ ମନୁଷ୍ୟର ଜନ୍ମ ସମୟର ଗ୍ରହଅବସ୍ଥାନ କରେ ।
ଜନ୍ମାଧିପ—ପୁଂ. ବି. (୬ତତ୍) ଶିବଙ୍କର ଗୋଟିଏ ନାମ, ଜନ୍ମରାଶିପତି, ଜନ୍ମ-ଲଗ୍ନପତି ।
ଜନ୍ମାନ୍ତର—କ୍ଲୀ.ବି. (କ.ଧା) ଅନ୍ୟଜନ୍ମ, ପୂର୍ବଜନ୍ମ, ଲୋକାନ୍ତର, ପରଲୋକ ।
ଜନ୍ମାନ୍ତରକୃତ—କ୍ଲୀ.ବି. ଅନ୍ୟଜନ୍ମରେ ଅନୁଷ୍ଠିତ କର୍ମ ।
ଜନ୍ମାନ୍ତରବାଦ—ବି. ମୃତ୍ୟୁପରେ ଜୀବର ଏ ସଂସାରରେ ପୁନର୍ବାର ଜନ୍ମହେବା ବିଷୟକ ବିଶ୍ୱାସ ।
ଜନ୍ମାନ୍ତରୀଣ—କ୍ରି. ବିଂ. (ଜନ୍ମାନ୍ତର+ଈନ) ଯାହା ଜନ୍ମାନ୍ତରରେ ଘଟିଅଛି ବା ଘଟିବ ।
ଜନ୍ମାନ୍ତରୀୟ—କ୍ରି. ବିଂ. ଜନ୍ମାନ୍ତର ସମ୍ବ-ନ୍ଧୀୟ, ଯାହା ଜନ୍ମାନ୍ତରରେ ଘଟିଅଛି ବା ଘଟିବ ।
ଜନ୍ମାନ୍ଧ—କ୍ରି.ବିଂ.୫ତତ୍, ଆଜନ୍ମଦୃଷ୍ଟିହୀନ. ଯେ ଅନ୍ଧ ହୋଇ ଜନ୍ମିଅଛି ।
ଜନ୍ମାବଚ୍ଛିନ୍ନ—କ୍ରି. ବିଂ. (୫ତତ୍) ଯାବ-ଜ୍ଜୀବନ, ଜୀବନାବଧି, ଜନ୍ମହେବାଠାରୁ ବରାବର ଘଟୁଥିବା ।
ଜନ୍ମାବଧି—ଗ୍ରା. କ୍ରି. ବିଂ. ଜଣକର ଜନ୍ମ-ହେବା ଦିନରୁ, ଆଜନ୍ମ ।
ଜନ୍ମାଷ୍ଟମୀ—ସ୍ତ୍ରୀ.ବି. (୬ତତ୍) ଶ୍ରୀକୃଷ୍ଣଙ୍କର ଜନ୍ମତିଥି ଅଷ୍ଟମୀ,ଭାଦ୍ରମାସର କୃଷ୍ଣାଷ୍ଟମୀ ।
ଜନ୍ମାସ୍ପଦ—କ୍ଲୀ.ବି. ଜନ୍ମସ୍ଥାନ, ଜନ୍ମଭୂମି, ମାତୃଭୂମି ।
ଜନ୍ମିବା—ଗ୍ରା. କ୍ରି. ଭୂମିଷ୍ଠହେବା, ଜାତ-ହେବା,ଉଠିବା,ଉଦୟହେବା,ଦେଖା-ଯିବା ।
ଜନ୍ମୀ—ପୁଂ. ବି. (ଜନ୍ମ+ଇନ୍) ପ୍ରାଣୀ, ଜୀବ, ଜନ୍ତୁ ।
ଜନ୍ମେଜୟ—ବି. ଜନମେଜୟ ଦେଖ; ବିଷ୍ଣୁ, ପ୍ରସିଦ୍ଧ ନାଗବିଶେଷ ।
ଜନ୍ମେଶ—ପୁଂ. ବି. ଜନ୍ମରାଶିର ଅଧିପତି ।
ଜନ୍ମୋତ୍ସବ—ବି. ( କ.ଧା ) କୌଣସି ସନ୍ତାନର ଜନ୍ମହେବା ଉପଲକ୍ଷ୍ୟେ ଅନୁଷ୍ଠିତ ଉତ୍ସବ. ଜନ୍ମାଷ୍ଟମୀ ଉତ୍ସବ ।
ଜନ୍ୟ—କ୍ଲୀ.ବି. (ଜନ+ଯ) ହଟ,ହାଟ, ଜାତି, ଇତରଲୋକ, ବଜାର,ପରୀବାଦ, ନିନ୍ଦା, ସଂଗ୍ରାମ, ଯୁଦ୍ଧ, (ପୁଂ.ବି) ଜନକ, ଉତ୍ପାଦକ, ପିତା, ମହାଦେବ, ଦେହ, ଶରୀର, ଜନ୍ମଜନ୍ମ, କମ୍ପଦନ୍ତୀ, ନବୋ-ଢ଼ାର ଭୃତ୍ୟ, ନବୋଢ଼ାର ପ୍ରିୟଜନ, ନବୋଢ଼ାର ଜ୍ଞାତି, ନବୋଢ଼ାର ମିତ୍ର, ବରପାତ୍ର, ବରର ବୟସ୍ୟ, (ବିଂ) ଯେ ଜନ୍ମଗ୍ରହଣ କରେ, ଉତ୍ପାଦିତ,ଉତ୍ପାଦକ, ଜନ ସମ୍ବନ୍ଧୀୟ, ଦେଶ ସମ୍ବନ୍ଧୀୟ, ଜାୟମାନ, ଜନନ, ଜନ୍ୟ, ଜନହିତ, ମନୁଷ୍ୟର ହିତକର,ଜାତୀୟ,(ସ୍ତ୍ରୀ)ଜନ୍ୟା ।
ଜନ୍ୟତା—ସ୍ତ୍ରୀ. ବି. (ଜନ୍ୟ+ତା) ଉତ୍ପା-ଦ୍ୟତା ।
ଜନ୍ୟା—ସ୍ତ୍ରୀ. ବି. (ଜନ୍ୟ+ଆ) ବଧୂର ସହଚରୀ, ବଧୂ, ମାତାର ସଖୀ, ପ୍ରୀତି, ସ୍ନେହ, ବରଯାତ୍ରୀ ସମୂହ, ମାତା, ଆନନ୍ଦ ।
ଜନ୍ୟୁ—ପୁଂ. ବି. (ଜନ+କ.ଯୁ) ଅଗ୍ନି, ବ୍ରହ୍ମା, ବିଧାତା, ପ୍ରାଣୀ, ଜନ୍ତୁ, (ଭା.ଯୁ) ଜନନ, ଉତ୍ପତ୍ତି, ଜନ୍ମ, ଚତୁର୍ଥ ମନ୍ୱ-ନ୍ତରରେ ସପ୍ତର୍ଷିମାନଙ୍କ ମଧ୍ୟରେ ଜଣେ (ହରିବଂଶ) ।
ଜପ—କ୍ରି. ବିଂ. ( ଜପ+କ.ଅ ) ଜପ-କାରକ, ପୁଂ. ବି. ( ଭା,ଅ ) ପାଠ, ଅଧ୍ୟୟନ, ମନ୍ତ୍ରାଦିର ଆବୃତ୍ତି,ମନେମନେ ପୁନଃପୁନଃ ପାଠ ।
ଜପକରିବା—ଗ୍ରା. କ୍ରି. ମନେମନେ ମନ୍ତ୍ରାଦି ପୁନଃପୁନଃ ଆବୃତ୍ତି କରିବା, ଜପମାଳା ସାହାଯ୍ୟରେ ସଂଖ୍ୟା ଗଣନା କରି ମନ୍ତ୍ରାଦି ପୁନଃ ପୁନଃ ଜପିବା, ମାଳଗଡ଼ାଇବା, କୌଣସି କଥାକୁ ମନେ ମନେ ଘୋଷି ହେବା ।

ଜପଜୀ—ଗ୍ରା. ବି. ଶିଖମାନଙ୍କର ଧର୍ମଗ୍ରନ୍ଥ ବିଶେଷ ।
ଜପତପ—ଗ୍ରା.ବି. ମନ୍ତ୍ର ଜପ ଓ ତପସ୍ୟା
ଜପତା—ସ୍ତ୍ରୀ. ବି. (ଜପ + ଭା.ତା) ଜପ କାରକର ଧର୍ମ ।
ଜପନ—କ୍ଳୀ. ବି. ( ଜପ + ଭା. ଅନ ) ଜପିବା, (କ. ଅନ) ଉପକାରୀ ବ୍ୟକ୍ତି ।
ଜପନୀୟ—ବି. ବିଂ. ( ଜପ+ଅନୀୟ ) ଯାହା ଜପ କରିବାକୁ ହୁଏ, ଜପକରିବାର ଯୋଗ୍ୟ ।
ଜପପରାୟଣ—ବି. ବିଂ. (ବ.ବ୍ରୀ) ଜପାସକ୍ତ, ଜପନଶୀଳ ।
ଜପମାଳା—ସ୍ତ୍ରୀ.ବି. (କ.ଧା) ଯେଉଁ ମାଳା ଅବଲମ୍ବନକରି ଜପ କରିବାକୁ ହୁଏ, ମୁକ୍ତା, ସ୍ଫଟିକ,ରୁଦ୍ରାକ୍ଷ ପ୍ରଭୃତି ମାଳା ।
ଜପଯଜ୍ଞ—ପୁଂ. ବି. ( କ.ଧା ) ଜପରୂପ ଯଜ୍ଞ, (ଦ୍ୱନ୍ଦ୍ୱ) ଜପ ଓ ଯଜ୍ଞ ।
ଜପସ୍ଥାନ—କ୍ଳୀ. ବି. ଜପସାଧନା ସ୍ଥାନ, ଜପର ସ୍ଥାନ ।
ଜପହୋମ—ପୁଂ.ବି. (କ.ଧା) ଜପଯଜ୍ଞ ।
ଜପା—ସ୍ତ୍ରୀ. ବି. ( ଜପ+ଣ, ଅ + ଆ ) ଜବାପୁଷ୍ପ ବୃକ୍ଷ, ଜବାପୁଷ୍ପ,ମନ୍ଦାର ଗଛ ଓ ଫୁଲ । [ ଜପ ।
ଜପାଜପି—ଗ୍ରା.ବି. ନାନାପ୍ରକାର ମନ୍ତ୍ର ଓ
ଜପିତ—ବିଂ. (ଜପ+ମ୍.ତ) ଯାହା ଜପ କରାଯାଇଅଛି ।
ଜପୀ—ପୁଂ. ବିଂ. (ଜପ+ଇନ୍) ଜପକାରୀ, (ସ୍ତ୍ରୀ) ଜପିନୀ ।
ଜପ୍ତ—ଯା. ବିଂ. ଅଟକ ରଖାଯିବା, କ୍ରୋକକରାଯାଇଥିବା କୌଣସି(ପଦାର୍ଥ) ରଜା ବା ସରକାରଙ୍କ ଦ୍ୱାରା ଅଧିକୃତ. ବାଜ୍ୟାପ୍ତ, ଡାକରା କରାଯାଇଥିବା,(ବି) କ୍ରୋକ୍, ରଜା ବା ସରକାରଙ୍କ ଦ୍ୱାରା ଅପରାଧୀର ସମ୍ପତ୍ତି ଅଟକ ।
ଜପ୍ତ—ବି. ବିଂ. (ଜପ୍+ତ) ଯାହା ଜପ କରାହୋଇଅଛି ।
ଜପ୍ତବ୍ୟ—ବି.ବିଂ. (ଜପ୍+ତବ୍ୟ) ଯାହା ଜପ କରାହେବ, ଜପନୀୟ ।
ଜପ୍ୟ—ବି. ବିଂ. (ଜପ+ଯ)ଜପଯୋଗ୍ୟ, ଜପନୀୟ, ଧେୟ, (ବି) ଜପ କରାଯାଇଥିବା ମନ୍ତ୍ର । [ ପୀଠ ।
ଜପ୍ୟେଶ୍ୱର—କ୍ଳୀ. ବି. ଗୋଟିଏ ପ୍ରସିଦ୍ଧ
ଜବ—ପ୍ରା. (ଯମ୍ବ) ଅବ୍ୟ. ଯେବେ,ଯେଉଁ ସମୟରେ, ଯଦି, (ଗ୍ରା.ବି) ଲୁଣରନ୍ଧା, ଘାସକାଟିବା ଅସ୍ତ୍ର ।
ଜବତକ୍—ଗ୍ରା.ଅ. ଯେତେଦିନ ପର୍ଯ୍ୟନ୍ତ ।
ଜବ—ପୁଂ. ବି. ( ଜୁ+ଭା,ଅ ) ବେଗ, (ଜୁ+କ.ଅ) ବିଂ. ବେଗବାନ୍, ଦ୍ରୁତଗାମୀ ।
ଜବଖାର—ଗ୍ରା. ବି. ଜବକ୍ଷାର ଦେଖ ।
ଜବତ୍—ଯ. ବିଂ. ସ୍ୱାଧିକୃତ, ସ୍ୱାଧିକାରରେ ଆନୀତ, କରାୟତ୍ତ, ଜପ୍ତ ଦେଖ ।
ଜବତ୍‌କରିବା—ଗ୍ରା. କ୍ରି. କୌଣସି ସମ୍ପତ୍ତିକୁ କ୍ରୋକ୍ କରିବା, କୌଣସି ବ୍ୟକ୍ତିକୁ ଦଣ୍ଡଦେଇ ବାଧ୍ୟ କରିବା ।
ଜବତ—ଗ୍ରା. ବିଂ. ଜବତ୍ ସମ୍ବନ୍ଧୀୟ, ଜବତ୍ କରାଯାଇଥିବା, ଅଧିକୃତ ।
ଜବନ—କ୍ଳୀ. ବି. (ଜୁ + ଭା,ଅନ) ଗତି. ବେଗ, (ଜୁ+କ.ଅନ) ବେଗବାନ୍, ଦ୍ରୁତଗାମୀ, ( ବି ) ବେଗବାନ୍ ଅଶ୍ୱ, ଆରବ ଦେଶବିଶେଷ, ମ୍ଳେଚ୍ଛ ଜାତିବିଶେଷ,ମୁସଲମାନ ଜାତି,ଶିକାରୀ ମୃଗ, ଘୋଟକ, ଜବଦ୍ୱୀପର ଅଧିବାସୀ, ଟଲିମିକେୟଙ୍କର ଜଣେ ସୈନିକ ।
ଜବନାଳ—କ୍ଳୀ. ବି. ଫଳୌଷଧି ଶସ୍ୟ ବିଶେଷ, ଜନାର, ମକ୍କା ।
ଜବନିକା—ସ୍ତ୍ରୀ. ବି. (ଜୁ+ଣ.ଅନ + କ +ଆ)ଜବନ ଜାତୀୟ ସ୍ତ୍ରୀ, ବ୍ୟବଧାୟକ ବସ୍ତ୍ରବିଶେଷ, ତିରସ୍କରଣୀ, ପର୍ଦ୍ଦା, କନାଟବାଡ଼ ।
ଜବନିକାପତନ—ବି. ରଙ୍ଗମଞ୍ଚରେ ଅଭିନୟ ଶେଷରେ ପରଦା ପଡ଼ିବା, ଅଭିନୟାଦିର ସମାପ୍ତି ।
ଜବନିମା—ପୁଂ. ବି. (ଜବନ+ଇମନ୍ +ଅ) ଜବ, ବେଗ ।
ଜବନୀ—ସ୍ତ୍ରୀ.ବି.ଜବନଜାତୀ ଔଷଧବିଶେଷ, ଯବନ ସ୍ତ୍ରୀ ।
ଜବବାନ୍—ପୁଂ. ବିଂ. ( ଜବ + ବତ୍ ) ବେଗବାନ୍,ଜବଯୁକ୍ତ, (ସ୍ତ୍ରୀ) ଜବବତୀ ।
ଜବଯୁକ୍ତ—ପୁଂ. ବିଂ. (ଙତତ୍) ବେଗବାନ୍, ବେଗଶାଳୀ ।
ଜବର—ଯା. ବିଂ. କ୍ଷମତାଶାଳୀ, ପ୍ରକାଣ୍ଡ, ଅଧିକ, ଖୁବ୍ ଭାରି,ଉତ୍କୃଷ୍ଟ,ଚକଚକିଆ ।
ଜବରଗୁଜବ—ଯା. ବି. ଭାରି ହାଣୁଆ ଜନରବ ।
ଜବରଦସ୍ତ—ଯା.ବିଂ. ବଳବାନ୍,ହାଣୁଆ, ଦୁର୍ଦ୍ଦମନୀୟ, ଅଟଳ, ଦୃଢ଼, ଜୁଲମ୍‌ବାଜ୍, ବଳପ୍ରୟୋଗକାରୀ ।
ଜବରଦସ୍ତି—ଯା. ବି. ଅତ୍ୟାଚାର,ଜୁଲମ, ପୀଡ଼ନ, ବାଧ୍ୟ କରିବା, ଅନ୍ୟାୟ ।
ଜବରଦୋର୍—ଯା.ବିଂ. ଜବରଦସ୍ତ ଦେଖ ।
ଜବରାନ୍—ଯା. କ୍ରି. ବିଂ. ବଳପୂର୍ବକ, (ବିଂ)ଅତ୍ୟାଚାରୀ,ଅବୈଧ ବଳପ୍ରୟୋଗକାରୀ ।
ଜବରାନ୍‌କରିବା—ଗ୍ରା. କ୍ରି. ବଳପ୍ରୟୋଗ କରିବା, କୌଣସି କାର୍ଯ୍ୟ କରିବାକୁ ବାଧ୍ୟ କରିବା, ଅତ୍ୟାଚାର କରିବା ।
ଜବରାନ—ଯ.କ୍ରି.ବିଂ. ଜବରାନ୍ ଦେଖ, (ବି) ଜବରଦସ୍ତି ଦେଖ ।
ଜବନୀ—ସ୍ତ୍ରୀ.ବି. କଷାୟ ଫଳଯୁକ୍ତ ଏକପ୍ରକାର ବୃକ୍ଷ ।
ଜବସ୍—ପୁଂ. ବି. ବେଗ, ଜବ ।
ଜବସ—ପୁଂ. ବି. (ଜୁ+କ.ଅସ) ଘାସ, ତୃଣ ।
ଜବା—ସ୍ତ୍ରୀ. ବିଂ. (ଜବ+ଆ) ବେଗବତୀ, ଦ୍ରୁତଗାମିନୀ, (ବି) ସ୍ୱନାମଖ୍ୟାତ ପୁଷ୍ପ ବା ବୃକ୍ଷ, ମନ୍ଦାର ଫୁଲ ଓ ଗଛ, (ଯା. ବି) ମୁସଲମାନମାନେ ଜନ୍ତୁର କଣ୍ଠ କାଟିବା ସମୟରେ ପଢ଼ିବା ମନ୍ତ୍ର ।
ଜବାଇ—ଯା.ବି. ମୁସଲମାନମାନଙ୍କ ଦ୍ୱାରା କୋରାନର ନିର୍ଦ୍ଦିଷ୍ଟ ମନ୍ତ୍ରପାଠପୂର୍ବକ ପଶୁଆଦିଙ୍କର କଣ୍ଠଛେଦନ, ପଶୁହତ୍ୟା, ହଲାଲ ।
ଜବାକୁସୁମ—କ୍ଳୀ. ବି. ମନ୍ଦାର ଫୁଲ, ଜବାଫୁଲ ।
ଜବାଦ—କ୍ଳୀ. ବି. ସୁଗନ୍ଧ ଦ୍ରବ୍ୟଭେଦ ।

ଜବାଧିକ—ବି. ସଂ. (ବ.ଗ୍ରୀ) ଅତଶୟ ବେଗବାନ୍, ପୁଂ. ବି. (ଶତତ୍ପ) ଅଧିକ-ବେଗବଶିଷ୍ଟ ଘୋଟକ ।

ଜବାନ୍—ଯା. ବି. ଜିହ୍ୱା, ଭାଷା, ବାକ୍ୟ, ପ୍ରତଜ୍ଞା, ମନୁଷ୍ୟ, ବୀରପୁରୁଷ, (ଯା.ବିଂ) ଜୋୟାନ, ବଳବାନ୍, କାର୍ଯ୍ୟଦକ୍ଷ, ଯୁବକ, ବୀର ।

ଜବାନ୍‌ଦରାଜ୍—ଯା. ବିଂ. ଯେ ଧୃଷ୍ଟତା ପୂର୍ବକ ଅନୁଚିତ କଥା କହେ, ମୁହଁ ବାଲିଙ୍କି କରିବା ଲୋକ ।

ଜବାନ୍‌ଦେବା—ଗ୍ରା. କି. ନିଶ୍ଚିତ କଥା କହିବା, ସ୍ଥିର ଜବାବ ଦେବା ।

ଜବାନ୍‌ବନ୍ଦ—ଯା.ବି. କୌଣସି ଅଦାଲତ ବା ହାକିମଙ୍କ ଦ୍ୱାରା ଲିପିବଦ୍ଧ ପକ୍ଷର ବା ସାକ୍ଷୀର ଇଜହାର,ସାକ୍ଷୀ ବା ପକ୍ଷର କଥିତ ପ୍ରମାଣ ।

ଜବାନ୍‌ବନ୍ଦକରିବା-ଗ୍ରା.କି.ସାକ୍ଷଦେବା ।

ଜବାନି—ଯା. ବି. ଉକ୍ତି, କଥା, କଥିତ-ଭାଷା, ମୌଖିକ ସାକ୍ଷ, ଯୁବାକାଳ, (ବିଂ) ମୌଖିକ, କଥିତ ।

ଜବାନଳ—ପୁଂ. ବି. ପ୍ରଚଣ୍ଡ ବାୟୁ ।

ଜବାନୀ—ସ୍ତ୍ରୀ. ବି. ଘାସବିଶେଷ,ଔଷଧ-ବିଶେଷ, ବୃକ୍ଷବିଶେଷ ।

ଜବାବ୍—ଯ. ବି. ଉତ୍ତର, ଅଙ୍ଗୀକାର, ପ୍ରତ୍ୟୁତ୍ତର,କର୍ମଚ୍ୟୁତ. ଚାକିରିରୁ କାର୍ଯ୍ୟରୁ ଛଡ଼ାଇଦେବା, କୈଫିୟତ୍ ।

ଜବାବ୍‌କରିବା—ଗ୍ରା. କି. ପ୍ରତବଚନ କରିବା, ଚୁକ୍ତି କରିବା, ଅଙ୍ଗୀକାର କରିବା ସମ୍ବନ୍ଧରେ ସୀମା ନିର୍ଦ୍ଧାରଣ କରିବା । [ ଦାୟିତ୍ୱ ।

ଜବାବ୍‌ଦାର୍—ଯା. ବିଂ. ଦାୟୀ, ( ବି )

ଜବାବ୍‌ଦେଇ—ଯା.ବି.ଜବାବଦେହି ଦେଖ

ଜବାବଦେବା—ଗ୍ରା. କି. ଶବ୍ଦ କରିବା, ଉତ୍ତର ଦେବା, ଭୃତ୍ୟକୁ ବରଖାସ୍ତ କରିବା, ପ୍ରଭୁ ବା ଗୁରୁଜନମାନଙ୍କୁ ଅବ-ନୟ ସୂଚକ ଉତ୍ତର ଦେବା, ଚାକିରିରୁ ଇସ୍ତଫା ଦେବା, ମକଦ୍ଦମାରେ ପ୍ରତ-ବାଦୀ ବା ମୁଦାଲି ନଜର, ବକ୍ତବ୍ୟ ବା ଉତ୍ତର ଦାଖଲ କରିବା ।

ଜବାବଦେହି—ଯା.ବି. ଦାୟିତ୍ୱ, କୈଫି-ୟତ୍, ( ବିଂ ) ଗୁରୁତର ଦାୟିତ୍ୱପୂର୍ଣ୍ଣ କୈଫିୟତ୍ ଦେବାର ଉପଯୁକ୍ତ, ଯାହା-ଉପରେ ଦାୟିତ୍ୱ ଥାଏ ।

ଜବାବଭ୍ରଷ୍ଟ—ଗ୍ରା. ବିଂ. ଯେ ଆପଣାର ଜବାବ ବା ପ୍ରତଶ୍ରୁତ ରକ୍ଷା ନ କରେ ।

ଜବାବସୁଆଲ—ଯା. ବି. ସୁଆଲ ଜବାବ, ଉତ୍ତର ପ୍ରତ୍ୟୁତ୍ତର, ପ୍ରଶ୍ନୋତ୍ତର, ବାଦ-ବିବାଦ ।

ଜବାଗୀ—ଯା. ପ୍ରତ୍ୟୁତ୍ତର ଦେବା, ଯଦ୍ୱାରା ପ୍ରତ୍ୟୁତ୍ତର ଦଆଯାଏ ।

ଜବାର୍—ଯା.ବି. ସିତାର ଯନ୍ତ୍ରର ଲୋହର ପେଟପାଖ ଉପରେଥିବା ପୀଡ଼ା ବା ଚୌକିର ପରେ ତାରକୁ କୌଶଳରେ କସାଇବା ।

ଜବାଲ—ପୁଂ. ବି. ଯବାଲ ଦେଖ ।

ଜବାଲା—ସ୍ତ୍ରୀ. ବି. ସତ୍ୟକାମ ଋଷିଙ୍କ ମାତା ।

ଜବାହାର—ଯା. ବି. ଜହରତ୍ ଦେଖ ।

ଜବାହର—ଯା. ବି. ଜହରତ୍ ଦେଖ ।

ଜବୀ—ପୁଂ. ବିଂ. (ଜବ + ଇନ୍) ବେଗ-ବାନ୍, ଦ୍ରୁତଗାମୀ, (ବି)-ଘୋଡ଼ା,ଓଟ ।

ଜବେ—ଗ୍ରା. କି. ବିଂ. ବେଗରେ,ଶୀଘ୍ର, (ବି) ଜବାଇ ଦେଖ ।

ଜଭନ—କ୍ଲୀ. ବି. (ଜଭ + ଅନ) ମୈଥୁନ, ମୈଥୁନଦ୍ୱାରା ଧର୍ଷଣ ।

ଜଭ୍ୟ—ପୁଂ. ବି. (ଜଭ + ଯ) ଶସ୍ୟର ଅନିଷ୍ଟକାରୀ ଏକପ୍ରକାର କୀଟ ।

ଜମ୍—ଅବ୍ୟ. ପତ୍ନୀ, ଜାୟା ।

ଜମ୍‌କିବା—ଗ୍ରା. କି. ଉଶ୍ଚିବା, ଜମିବା, ପୂର୍ବାପେକ୍ଷା ଧନୀ ବା ବିଭବଶାଳୀ ହେବା ।

ଜମ୍‌ଧରିବା—ଗ୍ରା. କି. ଜଙ୍ଗ ବା କଳଙ୍କି-ଲାଗି ଦୁଇଟି ପଦାର୍ଥ ଦୃଢ଼ଭାବରେ ପର-ସ୍ପର ସହତ ସଂଲଗ୍ନ ହୋଇଯିବା ।

ଜମ୍‌ରୁଖ୍—ପ୍ରା. (ସମ୍ବ) ବି. ପିଜୁଳି ।

ଜମଉତ—ଗ୍ରା. ବି. ଜମାଇତ ଦେଖ ।

ଜମକ—ଗ୍ରା. ବି. ଜାକଜମକ, ଆଡ଼ମ୍ବର, ଘନଘଟା, ଔଜଲ୍ୟ, ଶ୍ରୀବୃଦ୍ଧି, ଯାହା-ଦ୍ୱାରେ ବହୁଦର୍ଶକ ଉତ୍ସାହିତ ହୋଇ ସମବେତ ହେବା ବା ରୁଣ୍ଡହେବା, ଦଳ, ଏକତା, (ବିଂ) ଗହଳିଆ, ଆଡ଼-ମ୍ବର ପୂର୍ଣ୍ଣ, ବହୁଲୋକଙ୍କୁ ଏକସ୍ଥାନକୁ ଆକର୍ଷଣ କରିବାର ଉପଯୁକ୍ତ ।

ଜମାକା(କେ)ଇବା—ଗ୍ରା. କି. ଆଡ଼ମ୍ବର ଦେଖାଇବା ।

ଜମକିଉଠିବା—ଗ୍ରା. କି. ଆଡ଼ମ୍ବର ବା କୋଲାହଳ ପୂର୍ଣ୍ଣହେବା ।

ଜମଜ—କି. ବିଂ. ଯମଜାତ, ଯୁଗପତ୍ ସଂଜାତ ।

ଜମଝାଲ—ଗ୍ରା. ବି. ବିଶେଷ ପରିଶ୍ରମ ବା ହଠାତ୍ ଉପସ୍ଥିତ ଭୟଯୋଗୁଁ ସମସ୍ତ ଶରୀରରୁ ବହିବା ଝାଳ, ଆପାଦ ମସ୍ତକ ବୋହିଯିବା ଝାଳ ।

ଜମତ୍—କି. ବିଂ. ଉଜ୍ଜ୍ୱଳ, ଦୀପ୍ତିକର ।

ଜମଦଗ୍ନି—ପୁଂ. ବି. ଜଣେ ବୈଦିକ ଋଷି, ପରଶୁରାମଙ୍କ ପିତା ।

ଜମନ—ବି. ( ଜମ + ଭା.ଅନ ) ଭକ୍ଷଣ, ମୈଥୁନ, ଖାଦ୍ୟଦ୍ରବ୍ୟ, ( ଗ୍ରା ) ଜମାଟ ବାନ୍ଧିବା ।

ଜମଶେଦ୍—ପାରସ୍ୟ ଦେଶର ପ୍ରଧାନ ପିଶଦାଦ ବଂଶୀୟ ୪ର୍ଥ ନରପତ ।

ଜମଶେଦୀ——ଭାରତବର୍ଷର ପଶ୍ଚିମ ପ୍ରାନ୍ତରେ ମୁର୍ଘାବ ନଦୀତଟବାସୀ ପାର୍ବ-ତିକ ଜାତବିଶେଷ ।

ଜମା—ଯା.ବି.ସ୍ତୂପୀକୃତ, ନ୍ୟସ୍ତ, ସଂଚିତ, ସଂଗୃହୀତ, ମୋଟସଂଖ୍ୟା, ଆୟ,ନିର୍ଦ୍ଦିଷ୍ଟ-କର, ପ୍ରଜାର ଦେୟ, ମୋଟ ଖଜଣା, ଜମିବା, ଏକାଠି ଠୁଳହେବା, ତରଳ ପଦାର୍ଥ ବସିଯିବା, ଘନୀଭାବ, ପାଣ୍ଠି, ମୋଟପ୍ରାପ୍ତି, ଅନ୍ୟ ଲୋକ ନିକଟରେ ଧନାଦର ନ୍ୟାସ ବା ଡିପାଜିଟ୍, (ଅବ୍ୟ) ଆଦୌ, ଠିକଏ ହେଲେ, ଅତ ଅଳ୍ପ ମଧ୍ୟ ।

ଜମାଇବା—ଗ୍ରା.କି. ଜମାକରିବା, ଏକାଠି କରିବା, ସଞ୍ଚୟକରିବା, ତରଳ ପଦା-ର୍ଥକୁ ଘନ ବା ଗାଢ଼ କରିବା, ଦୃଢ଼ ସଂଲଗ୍ନ କରିବା, ଗାଢ଼ାଲିଙ୍ଗନ କରିବା,

କାଠ ପଟା ଆଦିର ସନ୍ଧିସ୍ଥଳରେ ଲାଖ ଗୁଞ୍ଜି ତାକୁ ସମତୁଲ କରିବା, ବହୁଲୋକଙ୍କୁ ଏକତ୍ର ଠୁଳ କରିବା, ପ୍ରା. (ସମ୍ବ)କ୍ରି. ଦହି ବସାଇବା ।

ଜମାଉତ୍—ଯା.ବି. ବହୁଲୋକଙ୍କ ମିଳନ, ତୀର୍ଥ ପର୍ଯ୍ୟଟକ ହିନ୍ଦୁ ବୈରାଗୀବିଶେଷ ।

ଜମାଉତ୍‌ବସ୍ତ—ଯା.ବି.ଅବୈଧ ଜନତା, ବେଆଇନ ଜନତା, (ବିଂ) ଅବୈଧ ଉଦ୍ଦେଶ୍ୟରେ ଏକତ୍ର ସମବେତ ।

ଜମାଏ—ପ୍ରା. (ବସ୍ତୁର) ସର୍ବ, ସକଳ, ସମସ୍ତେ ।

ଜମାକରିବା—ଗ୍ରା. କ୍ରି. ଏକତ୍ର କରିବା, ସଞ୍ଚୟ କରିବା, ଗଚ୍ଛିତ ରଖିବା, ପ୍ରା. (ସମ୍ବ)କ୍ରି. ଦହି ଜମାଇଁବା ।

ଜମାଖରଚ—ଯା. ବି. ଆୟ ଏବଂ ବ୍ୟୟ, ଚଳିତ ହିସାବ, ଆୟବ୍ୟୟର ହିସାବ, ସେକଡ଼, ( ଗଣିତ ) ବ୍ୟବକଳନ, ବିୟୋଗ ।

ଜମାଗୁଜସ୍ତା—ଯା.ବି. ଗତବର୍ଷର ଜମା ଅର୍ଥାତ୍ ଗତବର୍ଷର କାଗଜରେ ପ୍ରଜାର ନାମରେ ଯେ ଜମା ଲେଖାଯାଏ ।

ଜମାଜମି—ଗ୍ରା. ବି. ଠୁଳକରିବା କର୍ମ, ଜମିର ଖଜଣା ଓ ଜମି ।

ଜମାଟ—ଯା. ବିଂ. ଏକତ୍ର ସମ୍ମିଳିତ, ସ୍ତୂପୀକୃତ, ଶୀତଯୋଗୁଁ ବସିଯାଇଥିବା (ତରଳବସ୍ତୁ), ବ୍ୟାପ୍ତ, ଆଡ଼ମ୍ବରପୂର୍ଣ୍ଣ, ଅନାହୃତ, (ବି) ଭିଡ଼, ଘୁଳଚିହ୍, ଘମାଘୋଟ ।

ଜମାଟବାନ୍ଧିବା—ଗ୍ରା. କ୍ରି. ଜଳାଦି ଦ୍ରବଦ୍ରବ୍ୟ ବରଫ ରୂପେ ଘନ ହୋଇ ବସିଯିବା ।

ଜମାଦାର—ଯା. ବି. ବିହାରାଞ୍ଚଳରେ ନୂନିଆ ଜାତିର ଚୌକିଦାର ବିଭାଗର ଗୋଟିଏ ଶ୍ରେଣୀ, ଦେଶୀୟ ସେନା ବିଭାଗର କର୍ମଚାରୀବିଶେଷ, ଇଂରେଜୀ ଭାରତୀୟ ସିପାହିଙ୍କ ଉପରସ୍ଥ ସିପାହି, ସୁବେଦାରଙ୍କ ନିମ୍ନସ୍ଥ କର୍ମଚାରୀ, ହେଡ଼୍ କନ୍‌ଷ୍ଟେବଲ୍,ଶୁଳ୍କ ଏବଂ ଅନ୍ୟାନ୍ୟ ବିଭାଗର କର୍ମଚାରୀବିଶେଷ, କେତେଲୋକଙ୍କର ଅଧିନାୟକ ।

ଜମାଦାରି—ଯା.ବି.ଜମାଦାରଙ୍କ କାର୍ଯ୍ୟ, ଜମାଦାରର ଚାକିରି ।

ଜମାଧାର୍ଯ୍ୟଯୋଗ୍ୟ—ଗ୍ରା. ବିଂ. ଯେଉଁ ଜମିପାଇଁ ପ୍ରଜା ଜମିଦାରଙ୍କୁ କିଛି ଖଜଣା ଦେଉ ନଥାଏ ଅଥଚ ଯାହା ଖଜଣାର ଯୋଗ୍ୟ ।

ଜମାନ୍‌ଗୁରୁ—ପ୍ରା.(ସମ୍ବ)ବି.ପଣିଆ ଗୁଡ଼ ।

ଜମାନତ୍—ଯା. ବି. ଜାମିନ୍ ଦେଖ ।

ଜମାନତ୍‌ନାମା—ଯା.ବି. ଜାମିନ୍‌ନାମା ।

ଜମାନବିଶ—ଯା.ବି ଜମିଦାରି ଶିରସ୍ତାରେ ପ୍ରଜାମାନଙ୍କ ଜମି ଜମାର ହିସାବ ଲେଖା କର୍ମଚାରୀ ।

ଜମାନ—ଯା.ବି. ସମୟ, କାଳ, ଅମଲ, ରାଜତ୍ୱ ବା ପ୍ରଭୁତ୍ୱ କାଳ ।

ଜମାନହିଁ—ଗ୍ରା.ଅବ୍ୟ.ଜମାରୁନାହିଁ ଦେଖ ।

ଜମାନି—ଯା.ବିଂ. ସଂଗୃହୀତ, କଠିନତାପନ୍ନ ।

ଜମାବନ୍ଦି—ଯା.ବି. ପ୍ରଜାର ଜମି ଜମାର ହିସାବ, ଜମି ଉପରେ ଖଜଣା ନିର୍ଦ୍ଧୟ କରାଯିବା ।

ଜମାବୃଦ୍ଧି—ଗ୍ରା.ବି.କୌଣସି ଜମି ନିମନ୍ତେ ପ୍ରଜା ଦେଉଥିବା ଖଜଣାର ବୃଦ୍ଧି ।

ଜମାମସ୍‌ଜିଦ୍—ଦିଲ୍ଲୀସହରସ୍ଥ ମୁସଲମାନମାନଙ୍କର ଗୋଟିଏ ବିଖ୍ୟାତ ଉପାସନା ଗୃହ, ବିଜୟପୁର ନଗରସ୍ଥ ଗୋଟିଏ ମସ୍‌ଜିଦ୍, ପୁନାନଗରସ୍ଥ ଗୋଟିଏ ବିଖ୍ୟାତ ମସଜିଦ୍ ।

ଜମାରୁ—ଗ୍ରା.ଅ.ଆଦୌ,ମୂଳରୁ, ମୁଣ୍ଡରୁଁ, ଅତି ଅଳ୍ପ ହେଲେ ମଧ୍ୟ ।

ଜମାରୁନାହିଁ—ଗ୍ରା. ଅ. ଆଦୌ ନାହିଁ, କେବେ ନୁହେଁ, କଦାପି ନୁହେଁ ।

ଜମାଲ—ସେଖ ଜମାଲ ମୌଲନା ଦିଲ୍ଲୀନିବାସୀ ଜଣେ ସୁପ୍ରସିଦ୍ଧ କବି ।

ଜମାହେବା—ଗ୍ରା. କ୍ରି. ଏକତ୍ରହେବା ।

ଜମି(ଜମିନ୍)—ଯା. ବି. ଭୂମି, ଭୂଖଣ୍ଡ, ପ୍ରଜା ବା ରଇତର ଅଧିକୃତ ଯୋତ, ପୃଥିବୀ, ସ୍ଥାନ, ମାଟି ।

ଜମିଆସିବା—ଗ୍ରା.କ୍ରି. ଜମିବାକୁ ଆରମ୍ଭ କରିବା, ଘନୀଭୂତ ହେବାକୁ ଆରମ୍ଭ କରିବା ।

ଜମିଏତଉଲେମା—ଯା.ବି.ସଭା,ସମ୍ମିଳନୀ ।

ଜମିଜମା—ଯା.ବି. ରଇତ ଅଧିକୃତ ଜମି ଓ ତହିଁ ପାଇଁ ଜମିଦାରଙ୍କୁ ଦେୟ ଖଜଣା, ରଇତି ବୃତ୍ତି ।

ଜମିଦାର—ଯା. ଭୂମ୍ୟଧିକାରୀ, ଭୂସ୍ୱତ୍ୱାଧିକାରୀ ।

ଜମିଦାରପୁଅ—ଗ୍ରା. ବି. ଜମିଦାର ବଂଶଜାତ ବ୍ୟକ୍ତି ।

ଜମିଦାରୀ—ଯା.ବି. ଜମିଦାରଙ୍କ ଅଧିକୃତ ସମ୍ପତ୍ତି, ଜମିଦାରଙ୍କ ସତ୍ତ୍ୱ ବା ଅବସ୍ଥା, (ବିଂ) ଜମିଦାରୀ ସମ୍ବନ୍ଧୀୟ ।

ଜମିନ୍‌ଅସ୍ମାନ୍—ଯା. ବି. ମର୍ତ୍ତ୍ୟ ଓ ସ୍ୱର୍ଗ, ପୃଥିବୀ ଓ ଆକାଶ ।

ଜମିନ୍ ଅସ୍ମାନ୍ ଫରକ—ଯା. ବି. ଦୁଇଟି ପଦାର୍ଥ ମଧ୍ୟରେ ସ୍ୱର୍ଗ ମର୍ତ୍ତ୍ୟର ପ୍ରଭେଦ ।

ଜମିବା—ଗ୍ରା. କ୍ରି. ଠୁଳହେବା, ଏକତ୍ର ହେବା, (ଧନ) ଗଚ୍ଛିତ ହେବା, ବୃଦ୍ଧି ପାଇବା, ଘନୀଭୂତ ହେବା, ସ୍ତର ବାନ୍ଧିବା, ସ୍ଥିର ବା ନିଶ୍ଚଳ ହେବା, ମଜ୍ଜିଯିବା, (ଲ.ଅର୍ଥ)ଜମାଟ ଧରିବା, ଘମାଘୋଟ ହେବା, କୌଣସି ବ୍ୟକ୍ତିର ବୈଷୟିକ ଅବସ୍ଥା,ବିଭବଶାଳୀହେବା ।

ଜମିବାଡ଼ି—ଗ୍ରା. ବି. ଭୂସମ୍ପତ୍ତି, ସବୁ ଶ୍ରେଣୀର ଭୂସମ୍ପତ୍ତି ।

ଜମିରହିବା—ଗ୍ରା. କ୍ରି. ଲାଗିରହିବା,ଦୃଢ଼ରୂପେ ଆସକ୍ତ ହେବା ।

ଜମିଲ—ଗ୍ରା.ବି.ବଡ଼ ଟାଣୁଆ ଗୁଳ୍ମବିଶେଷ

ଜମ୍ପତି—ପୁଂ.ବି. (ଜାୟା +ପତି)ଦମ୍ପତି, ଜାୟାପତି, ସ୍ତ୍ରୀ ଓ ପୁରୁଷ, ପତିପତ୍ନୀ ।

ଜମ୍ବୁ—ବି. (ଜମ୍+ଜ.ବ)ପଙ୍କ, କାଦୁଅ, ଶୈବାଳ, କେତକୀ ବୃକ୍ଷ, ( ଲ.ଅର୍ଥ ) ଜଞ୍ଜାଳ ।

ଜମ୍ବାଦ୍ୟତୈଳ—ବି. ବୈଦ୍ୟକୋକ୍ତ କର୍ଣ୍ଣରୋଗର ତୈଳବିଶେଷ ।

ଜମ୍ବାଲ—ପୁଂ.ବି. ପଙ୍କ, କର୍ଦ୍ଦମ, କାଦୁଅ, ଶୈବାଳ, ଶିଉଳି, କେତକୀଫଲଗଛ ।

ଜମ୍ବାଳିନୀ—ସ୍ତ୍ରୀ. ବ. ( ଜମ୍ବାଳ+ଇନ୍+ଈ). ନଦୀ, ଶୈବଳିନୀ, ପଦ୍ମିନୀ ।

ଜମ୍ବିର(ଳ)—ପୁଂ. ଚ. ଜମ୍ବୀର, ଏକ-ପ୍ରକାର ଲେମ୍ବୁ, ଟଭା ।

ଜମ୍ବୀର—ପୁଂ. ବ. ( ଜମ୍+ମଁ.ଈର ) ମରୁବକବୃକ୍ଷ, କ୍ଷୁଦ୍ର ତୁଳସୀଗଛ, ଶ୍ୱେତ ତୁଳସୀଗଛ, ପୁଦନା, ମରୁଆ, ଲେମ୍ବୁ-ଗଛ, ଜମ୍ବୀର ଗଛ ।

ଜମ୍ବୁ—ସ୍ତ୍ରୀ.ବ. (ଜମ୍+କ.ଉ)ବୃକ୍ଷଭେଦ, ଜାମୁଗଛ ଓ କୋଳି, ସୁମେରୁ ପର୍ବତର ନଦୀବିଶେଷ, ଜମ୍ବୁନଦୀ, ସପ୍ତଦ୍ୱୀପରୁ ଏକତମ, ବରୁଣ, ଜମ୍ବୁଦ୍ୱୀପ, କର୍ଣ୍ଣାଟ ପ୍ରଦେଶବାସୀ ଏକ ନୀଚ ଜାତି, ଓଡ଼ିଶାର କଟକଜିଲାରେ ପ୍ରବାହିତ ଗୋଟିଏ ନଦୀ ।

ଜମ୍ବୁକ—ପୁଂ.ବ.ଜାମ୍ବୁ ବୃକ୍ଷଭେଦ, ଫଣଫଣା ଗଛ, ଶ୍ୟୋନାକ ବୃକ୍ଷ, କେତକ ବୃକ୍ଷ, ସୁବର୍ଣ୍ଣ କେତକୀ, ଶୃଗାଳ, ବରୁଣ ବୃକ୍ଷ, ଧୂର୍ତ୍ତବ୍ୟକ୍ତି, ବରୁଣ, କାର୍ତ୍ତିକେୟଙ୍କର ଅନୁଚରବିଶେଷ, (ବିଂ) ନୀଚ ।

ଜମ୍ବୁକତୃଣ—କ୍ଲୀ. ବ. ଭୂତୃଣ, ଗନ୍ଧଖଡ଼, ଧନକୀ ।

ଜମ୍ବୁକେଶ୍ୱର—କ୍ଲୀ. ବ. ଗୋଟିଏ ପ୍ରସିଦ୍ଧ ଶୈବତୀର୍ଥ ।

ଜମ୍ବୁକୋଳ—ସିଂହଳର ମହାବଂଶବର୍ଣ୍ଣିତ ନାଗଦ୍ୱୀପର ଅନ୍ତର୍ଗତ ଗୋଟିଏ ପ୍ରାଚୀନ ନଗର ।

ଜମ୍ବୁଖଣ୍ଡ—ପୁଂ. ବ. ଜମ୍ବୁଦ୍ୱୀପ ।

ଜମ୍ବୁଜମ୍ବାଳ—ବ. ( ଜମ୍ବୁ+ଜମ୍ବାଳ ) ସୁନା ।

ଜମ୍ବୁଦ୍ୱୀପ—ପୁଂ.ବ.ପୃଥିବୀର ସପ୍ତଦ୍ୱୀପାନ୍ତର୍ଗତ ଗୋଟିଏ ଦ୍ୱୀପ । [ ନାଗ ।

ଜମ୍ବୁଧ୍ୱଜ—ପୁଂ. ବ. ଜମ୍ବୁଦ୍ୱୀପ, ଜଣେ

ଜମ୍ବୁନଦ—ବ.ପୁରାଣମତେ ସ୍ୱର୍ଗର ସାତଗୋଟି ନଦୀ ମଧ୍ୟରୁ ଏକତମ (ଗ୍ରା.ବ) ସୁବର୍ଣ୍ଣ, ସୁନା ।

ଜମ୍ବୁନଦସାର—ବ.(୬ତତ୍) ସ୍ୱର୍ଣ୍ଣ,ସୁନା ।

ଜମ୍ବୁନଦୀ—ସ୍ତ୍ରୀ. ବ. ଜମ୍ବୁନଦୀ ଦେଖ ।

ଜମ୍ବୁପର୍ବତ—ପୁଂ. ବ. ଜମ୍ବୁଦ୍ୱୀପ ।

ଜମ୍ବୁପ୍ରସ୍ଥ—ପୁଂ. ବ. କାଶ୍ମୀର ରାଜ୍ୟାନ୍ତର୍ଗତ ଗୋଟିଏ ନଗରର ନାମ ।

ଜମ୍ବୁବନଜ—କ୍ଲୀ. ବ. ଶ୍ୱେତ ଜବାପୁଷ୍ପ, ଧଳା ମନ୍ଦାରଫୁଲ ।

ଜମ୍ବୁମାନ୍—ପୁଂ. ବ. ( ଜମ୍ବୁ+ମତ୍ ) ଗୋଟିଏ ପର୍ବତର ନାମ, ବାନର ବିଶେଷ ।

ଜମ୍ବୁମାର୍ଗ—କ୍ଲୀ. ବ. ପୁଷ୍କରସ୍ଥ ଏକତୀର୍ଥ ।

ଜମ୍ବୁମାଳୀ—ପୁଂ.ବ.ଏକ ରାକ୍ଷସର ନାମ ।

ଜମ୍ବୁରା—ସଂ.ବ.ଘୋଡ଼ା ଓ ଓଟ ଉପରେ ବାହିତ କ୍ଷୁଦ୍ର ତୋପ ।

ଜମ୍ବୁଲିଦ୍ର—ପୁଂ. ବ. ପାତାଳବାସୀ ଏକ ନାଗରାଜ ।

ଜମ୍ବୁଳ—ପୁଂ. ବ. (ଜମ୍ବୁ+ଲା+କ.ଅ) ବରକନ୍ୟା ପକ୍ଷରେ ପରିହାସ ବାକ୍ୟ, ଜମ୍ବୁବୃକ୍ଷ, କେତକୀପୁଷ୍ପ ବୃକ୍ଷ, କର୍ଣ୍ଣପାଳିର ରୋଗବିଶେଷ ।

ଜମ୍ବୁସର—ବୋମ୍ବାଇ ପ୍ରେସିଡେନ୍‌ସୀର ଅନ୍ତର୍ଗତ ଭରୁଚ ଜିଲାର ଗୋଟିଏ ପ୍ରାଚୀନ ବନ୍ଦର ।

ଜମ୍ବୁସ୍ୱାମୀ—ଜଣେ ଜୈନ ସ୍ଥବିର ।

ଜମ୍ବୂ—ସ୍ତ୍ରୀ.ବ. ନାଦେୟନାମୀ ବୃକ୍ଷ, ଜାମୁଗଛ, ଜାମୁଫଳ, ସ୍ୱନାମ ପ୍ରସିଦ୍ଧ ନଦୀ, ଜମ୍ବୁଦ୍ୱୀପ । [ ଦେଖ ।

ଜମ୍ବୂକ—ପୁଂ. ବ. (ଜମ୍+ଊକ) ଜମ୍ବୁକ

ଜମ୍ବୂକା—ସ୍ତ୍ରୀ. ବ. କାକଳୀ ଦ୍ରାକ୍ଷା ।

ଜମ୍ବୂକୀ—ସ୍ତ୍ରୀ. ବ. ଶୃଗାଳୀ ।

ଜମ୍ବୂଖଣ୍ଡ—ପୁଂ. ବ. ଜମ୍ବୁଖଣ୍ଡ ଦେଖ ।

ଜମ୍ବୂନଦପ୍ରଭ—ପୁଂ.ବ.ଭାବି ବୁଦ୍ଧଦେବଙ୍କ ନାମ ।

ଜମ୍ବୂନଦୀ—ସ୍ତ୍ରୀ. ବ. ଜମ୍ବୁଦ୍ୱୀପସ୍ଥ ବିଶାଳ ଜମ୍ବୁ ବୃକ୍ଷରୁ ପତିତ, ଜମ୍ବୁଫଳର ରସଜାତ ନଦୀ, ବ୍ରହ୍ମଲୋକରୁ ପ୍ରବାହିତ ସପ୍ତନଦୀ ମଧ୍ୟରେ ଗୋଟିଏ ନଦୀ ।

ଜମ୍ବୂବୃକ୍ଷ—ପୁଂ. ବ. ଜାମୁଗଛ ।

ଜମ୍ବୂମାର୍ଗ—ପୁଂ.ବ.ପୁଷ୍କରସ୍ଥ ତୀର୍ଥଭେଦ ।

ଜମ୍ବୂରାଜ—ପୁଂ. ବ. ରାଜଜମ୍ବୁ, ଜାମରୁଲ ।

ଜମ୍ବୂଲ—ପୁଂ. ବ. ଜାମୁଗଛ, କେତକ ବୃକ୍ଷ.(କ୍ଲୀ.ବ) ବରପକ୍ଷୀୟ ସ୍ତ୍ରୀମାନଙ୍କର ପରିହାସ ବଚନ, ବର କନ୍ୟା ପକ୍ଷର ପରସ୍ପର ହାସ୍ୟ ପରିହାସ ।

ଜମ୍ବୂଲମାଳିକା—ସ୍ତ୍ରୀ. ବ. ଜମ୍ବୁଲ ପୁଷ୍ପମାଳା, ବର କନ୍ୟା ପକ୍ଷର ପରିହାସ ବଚନ ସମୂହ, କନ୍ୟା ଏବଂ ବରର ମୁଖଚନ୍ଦ୍ରିକା ।

ଜମ୍ବୋଷ୍ଠ—କ୍ଲୀ. ବ.ବୈଦ୍ୟମାନଙ୍କର ଅସ୍ତ୍ର ଚିକିତ୍ସାର୍ଥ ଶଳାକାବିଶେଷ ।

ଜମ୍ଭ—ପୁଂ. ବ. ( ଜମ୍ଭ+ଅ ) ଜଣେ ଦୈତ୍ୟ, ମହିଷାସୁରର ପିତା, ପ୍ରହ୍ଲାଦର ଗୋଟିଏ ପୁତ୍ର. ପ୍ରହ୍ଲାଦର ଏକଭାଇ, ହିରଣ୍ୟକଶିପୁର ଶ୍ୱଶୁର ଓ କନ୍ୟାଧୁର ପିତା, ଦନ୍ତ, ଜମ୍ବୀର, ଲେମ୍ବୁ, ଭକ୍ଷଣ, ଅଂଶ, ହନୁ, ତୂଣ, ବଳିର ସଖା ଏକ ଦୈତ୍ୟ, ସୁନ୍ଦର ପିତାର ନାମ, ଦାନ୍ତପାଟି, ଦମ୍ଭ,ଟୀକା, ବ୍ୟାଘ୍ର, ଦନ୍ତସ୍ଥାନୀୟ ଜ୍ୱାଳା, ରମ୍ଭା ନାମରେ ଏକ ଅସୁର, ଜୃମ୍ଭା, ହାଇ ।

ଜମ୍ଭକ—ପୁଂ. ବ. (ଜମ୍ଭ+କ) ଜମ୍ବୀର, ଲେମ୍ବୁ, ଶସ୍ତ୍ର, ଦେବତା, ଶିବ, ସ୍ୱନାମଖ୍ୟାତ ନୃପତିବିଶେଷ, (ତ୍ରି.ବିଂ)ରମଣକାରୀ, ହିଂସକ, ଭକ୍ଷକ, ପ୍ରସ୍ଫୁଟିତ ହୋଇଥିବା, ଯେ ହାଇମାରେ ।

ଜମ୍ଭକା—ସ୍ତ୍ରୀ. ବ. ( ଜମ୍ଭ+ଅକ+ଆ ) ଜୃମ୍ଭା, ହାଇ ।

ଜମ୍ଭକୁଣ୍ଡ—କ୍ଲୀ.ବ. ବରଜାକ୍ଷେତ୍ରାନ୍ତର୍ଗତ ଗୋଟିଏ ତୀର୍ଥ ।

ଜମ୍ଭଗ—ପୁଂ. ବ. ( ଜମ୍ଭ+ଗମ୍+ଅ) ଅତିଶୟ ଭୋଜନଲୋଲୁପ ଏକ ରାକ୍ଷସ ।

ଜମ୍ଭଦ୍ୱିଟ୍—ପୁଂ.ବ.(ଜମ୍ଭ+ଦ୍ୱିଷ୍+କ୍ୱିପ୍) ଇନ୍ଦ୍ର, ବିଷ୍ଣୁ ।

ଜମ୍ଭନ—କ୍ଲୀ.ବ. ( ଜମ୍ଭ+ଭା,ଅନ )ରତି. ରମଣ,ଭକ୍ଷଣ,ଜୃମ୍ଭା,ହାଇ ।

ଜମ୍ଭଭେଦନ—ବ. ( ଜମ୍ଭ+ଭିଦ୍+କ. ଅନ ) ଜମ୍ଭଭେଦୀ ଦେଖ ।

ଜମ୍ଭଭେଦୀ—ପୁଂ.ବ.( ଜମ୍ଭ+ଭିଦ୍+କ. ଇନ୍ ) ଇନ୍ଦ୍ର, ବଜ୍ର ।

ଜମ୍ଭର—ପୁଂ. ବ. ( ଜମ୍ଭ+ର+ଅ )

ଜମ୍ବୀର ।
ଜମ୍ଭରିପୁ—ବି. (୬ତତ୍) ଇନ୍ଦ୍ର, ବଜ୍ର ।
ଜମ୍ଭଲ—ପୁଂ.ବି. ( ଜମ୍ଭ + ଲ ) ଲେମ୍ବୁ, ଜମ୍ବୀର, ବୃକ୍ଷବିଶେଷ ।
ଜମ୍ଭଲଦତ୍ତ—ପୁଂ.ବି. ବେତାଳ ପଞ୍ଚବିଂଶତି ନାମକ ସଂସ୍କୃତ ଗ୍ରନ୍ଥକାର ।
ଜମ୍ଭଲା—ସ୍ତ୍ରୀ.ବି. ( ଜମ୍ଭ + ଲା + ଆ ) ରାକ୍ଷସୀବିଶେଷ ।
ଜମ୍ଭଳିକା—ସ୍ତ୍ରୀ.ବି. ସଙ୍ଗୀତ ବିଶେଷ ।
ଜମ୍ଭା—ସ୍ତ୍ରୀ.ବି. ( ଜଭି+ଣିଚ୍ ଅ+ଆ ) ଜୃମ୍ଭା,ହାଇ ।
ଜମ୍ଭାରାତି( ରି )—ପୁଂ.ବି.(୬ତତ୍ )ଇନ୍ଦ୍ର, ଅଗ୍ନି,ବଜ୍ର,ବିଷ୍ଣୁ ।
ଜମ୍ଭାସୁର—ବି. ମହାପରାକ୍ରମୀ ଦୈତ୍ୟବିଶେଷ ।
ଜମ୍ଭୀ—କ୍ଳୀ.ପୁଂ.ବି. (ଜଭ+ଣିଚ୍ ଇନ୍) ଲେମ୍ବୁ,ଜମ୍ବୀର, ତ୍ରି.ବିଂ. ଜୃମ୍ଭାଯୁକ୍ତ ।
ଜମ୍ଭୀର—ପୁଂ.ବି..(ଜଭ+ଈର )ଜମ୍ବୀର, ମରକତ ।
ଜମ୍ଭୁରା—ଯା. ବି. ଦୁଇ ସଣ୍ଢୁଆସି ବା ଚମୁଟା,ପ୍ରଥମା ଉପରେ ମଡ଼ାଯିବା ଏକପିଠି ତମ୍ବାଳିଆ ଓ ଅନ୍ୟପିଠି ଧଳା ପିତଳର ପତଳା ପାତିଆ, ଏକପ୍ରକାର ବନ୍ଧୁକ ।
ଜମ୍ଭ୍ୟ—ପୁଂ.ବି. ( ଜମ୍ଭ + ଯ )ଦନ୍ତ ।
ଜୟ—ପୁଂ.ବି. ( ଜି+ଅ)କୁନ୍ତୀ କାର୍ଯ୍ୟତା, ବିରାଟ ଭବନସ୍ଥ ଛଦ୍ମବେଶୀ ଯୁଧିଷ୍ଠିର, ଜୟନ୍ତ, ଯୁଦ୍ଧାଦି ସ୍ଥଳେ ଶତ୍ରୁ ପରାଜୟ, ଶତ୍ରୁଦମନ, ଉତ୍କର୍ଷ ଲାଭ, ଅୟନ,ବଶୀକରଣ,ଯେ ଜୟୀ ହୁଏ, ଇକ୍ଷ୍ୱାକୁ ବଂଶୀୟ ଏକାଦଶ ରାଜଚକ୍ରବର୍ତ୍ତୀ, ନାରାୟଣଙ୍କ ପାର୍ଶ୍ୱଚର,ନାଗବିଶେଷ,ଜଣେ ଦାନବରାଜ,ଦଶମ ମନ୍ୱନ୍ତରୀୟ ଜଣେ ଋଷି,ଧ୍ରୁବ ବଂଶୀୟ ବତ୍ସର ନୃପତିଙ୍କ ପୁତ୍ର, ବିଶ୍ୱାମିତ୍ର ଋଷିଙ୍କ ଏକପୁତ୍ର,ଉର୍ବଶୀଗର୍ଭ ଜାତ ପୁରୁରବାଙ୍କ ଏକ ପୁତ୍ର, ଜଣେ ରାଜର୍ଷି, ଧୃତରାଷ୍ଟ୍ରଙ୍କର ଏକପୁତ୍ର, ସଞ୍ଜୟ ରାଜାଙ୍କର ଏକପୁତ୍ର,ଯୁଯୁଧାନ ନୃପତିଙ୍କ ପୁତ୍ର, ଭରତାଦିଶାସ୍ତ୍ରବିଶେଷ,ଦକ୍ଷିଣଦ୍ୱାରଗୃହ, ବାର୍ହସ୍ପତ୍ୟ ସମ୍ବତ୍ସର,ପ୍ରୋଷ୍ଠପଦ-ନାମକ ଷଷ୍ଠ ଯୁଗର ତୃତୀୟ ବତ୍ସର, ଅଗ୍ନିମନ୍ଥ ବୃକ୍ଷ,ପୀତମୁଦ୍ଗ,ସୂର୍ଯ୍ୟ,ଇନ୍ଦ୍ର,ଦେବଭେଦ, ଇନ୍ଦ୍ରପୁତ୍ର,ଜୟନ୍ତ,ବିଦେହ ରାଜବଂଶୀୟ ସୁଶ୍ରୁତଙ୍କ ପୁତ୍ର,ସଂସ୍କୃତର ଏକ ପୁତ୍ର, ମଞ୍ଜୁଙ୍କ ପୁତ୍ରଭେଦ, କଙ୍କେର ପୁତ୍ର, ଅଶୋକ,ଶ୍ରୁତଙ୍କ ଏକପୁତ୍ର ।
ଜୟକ—ତ୍ରି.ବିଂ. (ଜୟ+କ ) ଜୟଯୁକ୍ତ
ଜୟକଣ୍ଠ—ସୂକ୍ତି କର୍ଣ୍ଣାମୃତ ଲ୍ଲୃତ ଜଣେ ପ୍ରାଚୀନ କବି । [ ଦେଖ ।
ଜୟକରଣ—ଜୟଗ୍ରାମ ନାରାୟଣପଞ୍ଚାନନ
ଜୟକାଣ୍ଡ—ଗ୍ରା.ବି. ହାତର ଆଙ୍ଗୁଠିରେ ବାହାରିବା ଦୁଷ୍ଟ ବ୍ରଣ,ନର୍ଗୁଣି ।
ଜୟକୃଷ୍ଣ—ଜଣେ ସଂସ୍କୃତ ଗ୍ରନ୍ଥକାର, ରୂପଦୀପକ ପଙ୍କଲ ରଚୟିତା, ଜଣେ ହିନ୍ଦି କବି ।
ଜୟକୃଷ୍ଣ ତର୍କବାଗୀଶ— ଜଣେ ସ୍ମାର୍ତ୍ତ ପଣ୍ଡିତ, ଏ ଶ୍ରାଦ୍ଧଦର୍ପଣ ନାମକ ଗ୍ରନ୍ଥର ଟୀକାକାର ।
ଜୟକେଶରୀ—ଦୁର୍ଗ ଶ୍ଲୋକାର୍ଥ ନାମକ ଦୁର୍ଗାମହାତ୍ମ୍ୟର ଟୀକାକାର ।
ଜୟକୋଲାହଳ—ପୁଂ. ବିଂ. ( ବ.ବ୍ରୀ ) କଳକଳ ଧ୍ୱନି, ଜୟଧ୍ୱନି, ଜୟସୂଚକ ଶବ୍ଦବିଶେଷ,ଜୟସୂଚକ,ପାଶକଭେଦ ।
ଜୟକ୍ଷେତ୍ର—କ୍ଳୀ.ବି. ପୁଣ୍ୟସ୍ଥାନବିଶେଷ ।
ଜୟଗଡ଼—ବୋମ୍ବାଇ ପ୍ରେସିଡେନ୍ସୀର ରତ୍ନଗିରି ଜିଲାନ୍ତର୍ଗତ ଗୋଟିଏ ବନ୍ଦର ।
ଜୟଗୋପାଳ--ସେବାଫଳବିବରଣ ଟୀକା ପ୍ରଣେତା ।
ଜୟଗୋପାଳଦାସ——ଭକ୍ତିଭାବପ୍ରଦୀପ ନାମକ ଭକ୍ତିଗ୍ରନ୍ଥର ରଚୟିତା ।
ଜୟଘୋଷଣ--କ୍ଳୀ.ବି.ଜୟଶବ୍ଦୋଚ୍ଚାରଣ, ଉଚ୍ଚୈଃସ୍ୱରରେ ଜୟ ଘୋଷଣା ।
ଜୟଚନ୍ଦ୍ର—କନୋଜର ରାଠୋର ବଂଶୀୟ ଶେଷରାଜା, ଜୟପୁର ନିବାସୀ ଜଣେ ଗ୍ରନ୍ଥକାର, ନାଗରକୋଟ ବା କାଙ୍ଗଡ଼ାର ରାଜା ।
ଜୟଜୟ—ଗ୍ରା. ବି. ଅମୁକଙ୍କର ଜୟହେଉ ଇତ୍ୟାକାର ଘୋଷଣା,(ଗ୍ରା.ଅବ୍ୟ) ଅମୁକଙ୍କର ଜୟହେଉ ।
ଜୟଜୟନ୍ତ—ସ୍ତ୍ରୀ. ବି. ସଙ୍ଗୀତର ରାଗିଣୀ ବିଶେଷ ।
ଜୟଡିଣ୍ଡିମ—ବି. (କ.ଧା) ଯେଉଁ ବାଦ୍ୟ ବା ଢୋଲବଜାଇ ଜୟଘୋଷଣା କରାଯାଏ, ବଡ଼କାଠ, ଜୟଘୋଷ ।
ଜୟଢକ୍କା—ସ୍ତ୍ରୀ. ବି. (କ.ଧା) ଜୟଡିଣ୍ଡିମ ଦେଖ ।
ଜୟତ୍ସେନ—ବି. ବିରାଟ ଭବନରେ ନକୁଳଙ୍କର ଛଦ୍ମବେଶ ।
ଜୟତାଳ—ବି. ସଙ୍ଗୀତର ତାଳର ୬୦ ମୋକ୍ଷ ଭେଦରୁ ଏକ ।
ଜୟତଶ୍ରୀ—ବି. ଦୀପକରାଗର ଭାର୍ଯ୍ୟା, ରାଗିଣୀବିଶେଷ ।
ଜୟତା—ବି ଶ୍ରୀରାଗର ଏକ ରାଗିଣୀ ।
ଜୟତୀର୍ଥ—କ୍ଳୀ. ବି. ତୀର୍ଥବିଶେଷ, ଜଣେ ବିଖ୍ୟାତ ଦାର୍ଶନିକ ।
ଜୟତୁଙ୍ଗନାଡ଼—ତ୍ରିବାଙ୍କୁଡ଼ ରାଜ୍ୟର ଗୋଟିଏ ପ୍ରାଚୀନ ବିଭାଗ ।
ଜୟତୋଡ଼ା—ମାନଭୂମି ଜିଲାର ଅନ୍ତର୍ଗତ ଗୋଟିଏ ପରଗଣା ।
ଜୟଦ—ତ୍ରି. ବିଂ. (ଜୟ + ଦା + କ୍ୱିପ୍) ଜୟଦାତା ଦେଖ ।
ଜୟଦତ୍ତ—ପୁଂ. ବି. ଇନ୍ଦ୍ର ପୁତ୍ର, ଜଣେ ରାଜା, ଜଣେ ବିଖ୍ୟାତ ଆୟୁର୍ବେଦବିତ୍
ଜୟଦାତା—ପୁଂ. ବିଂ. (୬ତତ୍) ବିଜୟଦାୟକ, ଯାହାର ଅନୁଗ୍ରହରେ ଜୟଲାଭ ହୁଏ ।
ଜୟଦୁନ୍ଦୁଭି—ବି. ଜୟଡିଣ୍ଡିମ ଦେଖ ।
ଜୟଦୁର୍ଗା—ସ୍ତ୍ରୀ. ବି. ଦୁର୍ଗାମୂର୍ତ୍ତିବିଶେଷ ।
ଜୟଦେବ—ଗ୍ରା. ପୁଂ. ବି. ଗୀତଗୋବିନ୍ଦ ନାମକ ସଂସ୍କୃତ ଗୀତକାବ୍ୟ ରଚୟିତା ।
ଜୟଦ୍ବଳ—ପୁଂ. ବି. ( ବ.ବ୍ରୀ ) ବିରାଟ ଭବନରେ ସହଦେବଙ୍କ ଛଦ୍ମବେଶ ।
ଜୟଦ୍ରଥ—ବି. ( ବ.ବ୍ରୀ ) ମହାଭାରତବର୍ଣ୍ଣିତ ହିନ୍ଦୁ ବା ସୌରାଷ୍ଟ୍ର ଦେଶର ରାଜା ଓ ଦୁର୍ଯ୍ୟୋଧନଙ୍କ ଭଣୋଇ ଦୁଃଶୀଳାଙ୍କ ସ୍ୱାମୀ ।
ଜୟଧର୍ମ୍ମା—ପୁଂ. ବି. ଜଣେ କୁରୁ ସେନାପତି ।

**ଜୟଧ୍ୱଜ**—ପୁଂ. ବି. କାର୍ତ୍ତବୀର୍ଯ୍ୟାର୍ଜୁନଙ୍କ ପୁତ୍ର ଅବନ୍ତୀର ଏକ ରାଜା,ଜୟପତାକା ଦେଖ ।

**ଜୟଧ୍ୱନି**—ବି. (ଷତତ୍) ଜୟ ଜୟ ଶବ୍ଦ, ଜେଜେକାର, ବିଜୟୋଲ୍ଲାସ, ସୂଚକ ରବ ।

**ଜୟନ**—କ୍ଲୀ. ବି.(ଜି+ଣ.ଅନ) ହସ୍ତିନକ-ସଜ୍ଜା, ଅଶ୍ୱାଦିର ସଜ୍ଜା, (ଭା.ଅନ) ଜୟ ।

**ଜୟନଗର**- ବି.ମାନଭୂମ ଜିଲ୍ଲାର ଗୋଟିଏ ପରଗଣା,ମଗଧପତି ଇନ୍ଦ୍ରଦ୍ୟୁମ୍ନଙ୍କ ଦୁର୍ଗ, ବଙ୍ଗଦେଶରେ ଦ୍ୱାରଭଙ୍ଗା ଜିଲାନ୍ତର୍ଗତ ଗୋଟିଏ କ୍ଷୁଦ୍ର ନଗର,ଚବିଶ ପରଗଣା-ନ୍ତର୍ଗତ ଗୋଟିଏ ନଗର ।

**ଜୟନନ୍ଦୀ**—ସୂକ୍ତିକର୍ଣ୍ଣାମୃତଧୃତ ଜଣେ ପ୍ରାଚୀନ କବି ।

**ଜୟନରେନ୍ଦ୍ରସିଂହ**—ପାତସ୍ଥାଲର ଜଣେ ମହାରାଜ ।

**ଜୟନାଥ**—ତମସା ନଦୀ ପ୍ରବାହିତ ପ୍ରଦେଶର ଜଣେ ମହାରାଜ ।

**ଜୟନାଦ**—ପୁଂ. ବି. (କ.ଧା) ଜୟଧ୍ୱନି, ଜୟ ଜୟ ଶବ୍ଦ, ସିଂହନାଦ ।

**ଜୟନାରାୟଣ**—ଜଣେ ସଂସ୍କୃତ ଗ୍ରନ୍ଥ-କାର, ସପ୍ତସତୀ ଚଣ୍ଡୀର ଜଣେ ଟୀକା-କାର ।

**ଜୟନାରାୟଣ ତର୍କପଞ୍ଚାନନ**—ଜଣେ ବିଖ୍ୟାତ ଆଲଙ୍କାରିକ ଓ ନୈୟାୟିକ ପଣ୍ଡିତ ।

**ଜୟନାରାୟଣଦୀକ୍ଷିତ**—ତର୍କମଞ୍ଜରୀ ନାମକ ନ୍ୟାୟଗ୍ରନ୍ଥ ରଚୟିତା ।

**ଜୟନୀ**—ସ୍ତ୍ରୀ. ବି. (ଜୟନ + ଈ) ଇନ୍ଦ୍ରଙ୍କ କନ୍ୟା ।

**ଜୟନ୍ତ**—ପୁଂ. ବି. (ଜି+ଅନ୍ତ) ଇନ୍ଦ୍ରଙ୍କର ପୁତ୍ର, ପାକଶାସନି, ବିଷ୍ଣୁ, ଶିବ, ଚନ୍ଦ୍ର, ବିରାଟ ଗୃହରେ ଛଦ୍ମବେଶୀ ଭୀମଙ୍କ ନାମ, ମରୁତ୍ୱତୀ ଗର୍ଭଜାତ ଧର୍ମଙ୍କର ଏକପୁତ୍ର, ଦଶରଥଙ୍କର ଜଣେ ମନ୍ତ୍ରୀ, ପର୍ବତବିଶେଷ, ଯାତ୍ରିକ ଯୋଗବିଶେଷ, ତାଳବିଶେଷ ।

**ଜୟନ୍ତ**—ଜୟନ୍ତୀ ବା ଦୀପିକା ନାମରେ କାବ୍ୟପ୍ରକାଶର ଜଣେ ଟୀକାକାର, ଜଣେ ପ୍ରସିଦ୍ଧ ନୈୟାୟିକ, ସାରସ୍ୱତ ବ୍ୟାକରଣର " ବାଦଘଟ୍ଟ ମୁଦ୍ଗର " ନାମକ ଟୀକାକାର, ପ୍ରକାଶ ପୁତ୍ରର ମଧୁସୂଦନର ପୁତ୍ର, ପଦ୍ୟାବଳୀଧୃତ ଜଣେ ପ୍ରାଚୀନ କବି ଜୟନ୍ତ ସ୍ୱାମୀ ନାମରେ ଖ୍ୟାତ ।

**ଜୟନ୍ତପୁର**—ନିମିରାଜ ସ୍ଥାପିତ ଗୋଟିଏ ନଗର ।

**ଜୟନ୍ତିକା**—ସ୍ତ୍ରୀ. ବି. (ଜୟନ୍ତ+କୈ+ଅ+ଆ) ହରିଦ୍ରା, ଏକ ପ୍ରାଚୀନ ରାଷ୍ଟ୍ର, ଦୁର୍ଗାଙ୍କର ଏକ ସଖୀ ।

**ଜୟନ୍ତିୟା**(ଜୟନ୍ତୀ)—ବର୍ତ୍ତମାନ ଆସାମ ପ୍ରଦେଶର ଅନ୍ତର୍ଗତ ଗୋଟିଏ ରାଜ୍ୟ ।

**ଜୟନ୍ତିୟାପାହାଡ଼**—ଆସାମ ପ୍ରଦେଶର ଏକ ଉପବିଭାଗ ।

**ଜୟନ୍ତୀ**—ସ୍ତ୍ରୀ. ବି. (ଜୟନ୍ତ + ଈ) ଦୁର୍ଗା, ପତାକା, ସ୍ୱନାମଖ୍ୟାତ ବୃକ୍ଷବିଶେଷ, ଅଷ୍ଟମୀ ତିଥିଘଟିତ ଯୋଗବିଶେଷ, ଇନ୍ଦ୍ରଙ୍କ କନ୍ୟା, ହନୁମାନଙ୍କର ବର୍ଷକ ମଧ୍ୟରେ ୭ ଦିନ କରାଯିବା ବ୍ରତ,କଦମ୍ବ ରାଜଗଣର ରାଜଧାନୀ, ବନବାସୀର ଅପର ନାମ, (ବିଂ)ଜୟକାରିଣୀ, ଜୟ-କରିଥିବା ସ୍ତ୍ରୀ ।

**ଜୟନ୍ତୀକ୍ଷେତ୍ର**—ଗ୍ରା. ବି. ଆଧୁନିକ ମୁଖ-ଲିଙ୍ଗର ପୁରାତନ ନାମ ।

**ଜୟନ୍ତୀତୀର୍ଥ**—ବି. ହନୁମାନଙ୍କର ତୀର୍ଥ-ବିଶେଷ ।

**ଜୟନ୍ତୀପୁର**—ଶ୍ରୀହଟ୍ଟଜିଲ୍ଲାର ଉତ୍ତର ପୂର୍ବାଂଶେ ଗୋଟିଏ ଗ୍ରାମ ଓ ଥାନା ।

**ଜୟନ୍ତୀବ୍ରତ**—ବି. ହନୁମାନଙ୍କର ବର୍ଷକ ମଧ୍ୟରେ ୭ ଦିନ କରାଯିବା ବ୍ରତ ।

**ଜୟପତାକା**—ସ୍ତ୍ରୀ.ବି.ଜୟସୂଚକ ପତାକା, ଜୟସୂଚକ ନିଶାଣ, ଜୟଲାଭ ପରେ ଯେଉଁ ପତାକା ଉଡ଼ାଇବାକୁ ହୁଏ ।

**ଜୟପତ୍ର**—କ୍ଲୀ. ବି. ଅଶ୍ୱମେଧ ଯଜ୍ଞୀୟ ଅଶ୍ୱର କପାଳରେ ବନ୍ଧାଲିପିବିଶେଷ, କୌଣସି ବିବାଦର ବିଚାର ପରେ ଯହିଁରେ ରାଜକୀୟ ମନ୍ତବ୍ୟ ଲେଖାହୁଏ, ମକଦ୍ଦମାର ରାୟ, ଫୈସଲା ।

**ଜୟପର୍ଣ୍ଣୀ**—ବି. ଜାଇଫଳୀ ।

**ଜୟପରାୟଣ**—ପୁଂ.ବି. ଦ୍ୱନ୍ଦ୍ୱ;ଦ୍ୱାର ଜଣ ।

**ଜୟପାଳ**—ପୁଂ. ବି. (ଜୟ+ପାଳି+ଅ) ବିଧି,ବିଷ୍ଣୁ, ଭୂପାଳ, ବୃକ୍ଷବିଶେଷ, ଜନକ ।

**ଜୟପୁତ୍ରକ**—ପୁଂ. ବି. ପାଶକଭେଦ, ଜତୁପୁତ୍ରକ ।

**ଜୟପୁର**—ଗ୍ରା. ବି. ରାଜପୁତାନାନ୍ତର୍ଗତ ଗୋଟିଏ ବିଖ୍ୟାତ ଦେଶୀୟ ରାଜ୍ୟ, ବିଶାଖାପତ୍ତନ ଜିଲ୍ଲାନ୍ତର୍ଗତ ଜମିଦାରୀ ରାଜ୍ୟବିଶେଷ ।

**ଜୟପୁରଦୁର୍ଗ**—ଅଜୟଗଡ଼ର ଗୋଟିଏ ପ୍ରାଚୀନ ନାମ ।

**ଜୟପ୍ରିୟ**--ପୁଂ.ବି.ବିରାଟନୃପତିଙ୍କ ଭ୍ରାତା ।

**ଜୟବନ୍ତ**—ଗ୍ରା. ବିଂ. ଜୟଶୀଳ ଦେଖ ।

**ଜୟବିଜୟ**--ବି.ବିଷ୍ଣୁଙ୍କ ଦ୍ୱାରରକ୍ଷକ ଦ୍ୱୟ ।

**ଜୟବିଜୟଦ୍ୱାର**—ଗ୍ରା. ବି. ବିଷ୍ଣୁ ମନ୍ଦିର ଓ ବିଶେଷତଃ ଜଗନ୍ନାଥଙ୍କ ମନ୍ଦିରର ଗ୍ରୀମୂଦୁଆର ।

**ଜୟଭଙ୍ଗ**—ପୁଂ. ବି. (ଷତତ୍) ଜୟର ଭ୍ରଂଶ ବା ନାଶ, ପରାଭବ ।

**ଜୟମଙ୍ଗଳ**—ପୁଂ. ବି. ରାଜବାହନ ଯୋଗ୍ୟ ହସ୍ତୀ, ଧ୍ରୁବକ ଜାତୀୟ ତାଳ ବିଶେଷ, ରାଜାଙ୍କର ପାଟହାତୀ, ଅଭ୍ୟୁ-ଦୟ, ଔଷଧବିଶେଷ,ଜୟସିଂହ ରାଜ୍ୟର ସଭାପଣ୍ଡିତ,ଜଣେ ବିଖ୍ୟାତ ଟୀକାକାର

**ଜୟମଙ୍ଗଳୀ**—ମହୀସୁର ରାଜ୍ୟରେ ପ୍ରବା-ହିତ ଗୋଟିଏ ନଦୀ ।

**ଜୟମଲ**--ଜଣେ ବିଖ୍ୟାତ ରାଜପୁତ ବୀର ଓ ବେଦନୋରର ଅଧିପତି, ଜଣେ ଧର୍ମଶୀଳ ରାଜା ।

**ଜୟମାଧବ**—ସୂକ୍ତିକର୍ଣ୍ଣାମୃତ ଧୃତ ଜଣେ କବି ।

**ଜୟମାଳା**—ବି. (କ.ଧା) ବିଜୟ ଚିହ୍ନ ସ୍ୱରୂପ ବିଜୟୀଙ୍କର ପିନ୍ଧିବା ମାଳା, ବରଣମାଳା ।

**ଜୟଯଜ୍ଞ**—ପୁଂ. ବି. ଅଶ୍ୱମେଧ ଯଜ୍ଞ ।

**ଜୟରଥ**—ସୁବିଖ୍ୟାତ କାଶ୍ମୀର କବି, ଜୟଦ୍ରଥଙ୍କ ଭ୍ରାତା,ଏ ତନ୍ତ୍ରାଲୋକ ଗ୍ରନ୍ଥର ଟୀକାକାର ।

**ଜୟରାଜ**—ପୁଂ. ବି. ଶରଭପୁରର ଜଣେ

ବିଖ୍ୟାତ ରାଜା ।
ଜୟରାତ—ପୁଂ. ବି. କଳିଙ୍ଗ ରାଜପୁତ୍ର, କୌରବ ପକ୍ଷୀୟ ଜଣେ ଯୋଦ୍ଧା ।
ଜୟରାମ—ଏହି ନାମରେ ଅନେକ ସଂସ୍କୃତ ଗ୍ରନ୍ଥକାରଙ୍କ ନାମ ମିଳେ ।
ଜୟଲକ୍ଷ୍ମୀ—ସ୍ତ୍ରୀ.ବି. (୬ତତ୍)ବିଜୟଲକ୍ଷ୍ମୀ, ଜୟର ଅଧିଷ୍ଠାତ୍ରୀ ଦେବୀ ।
ଜୟଲେଖ—ପୁଂ. ବି. ଜୟପତ୍ର,ଯହିଁରେ ଜୟବିଷୟକ ଘଟନା ଲିଖିତ ଥାଏ ।
ଜୟବରାହତୀର୍ଥ—କ୍ଲୀ. ବି. ନର୍ମଦାତୀରସ୍ଥ ତୀର୍ଥବିଶେଷ ।
ଜୟବାନ୍—ପୁଂ. ବିଂ. ( ଜୟ + ବତ୍ ) ଜୟୀ, ବିଜୟୀ, ଜୟଶୀଳ ।
ଜୟବାହିନୀ—ସ୍ତ୍ରୀ. ବି. ( ଜୟ + ବହ + ଇନ୍ + ଈ) ଶଚୀ, ଇନ୍ଦ୍ରାଣୀ, ଜୟଯୁକ୍ତ ସୈନ୍ୟ ।
ଜୟଶଙ୍ଖ—ବି. ( କ.ଧା ) ଯେଉଁ ଶଙ୍ଖ ବଜାଇ ଜେତାଙ୍କ ବିଜୟ ଘୋଷଣା କରାଯାଏ ।
ଜୟଢେ—ପୁଂ. ବି. ଜୟଧ୍ୱଜ ।
ଜୟଶାଳ—ଜୟଶାଳମେର ଦୁର୍ଗ ଓ ନଗର ପ୍ରତିଷ୍ଠାତା ।
ଜୟଶାଳମେର—ରାଜପୁତାନାନ୍ତର୍ଗତ ଗୋଟିଏ ଦେଶୀୟ ରାଜ୍ୟ ।
ଜୟଶୀଳ—ବିଂ. (ଜୟ+ଶୀଳ) ଜୟଯୁକ୍ତ, ଯେ ସର୍ବଦା ଜୟଲାଭ କରେ ।
ଜୟଶୃଙ୍ଗ—ପୁଂ.ବି.(କ.ଧା) ରଣବିଷାଣ, ଶିଙ୍ଗା, ଯେଉଁ ଶିଙ୍ଗା ବଜାଇ ଜେତାଙ୍କର ଜୟଲାଭ ବିଷୟ ଘୋଷଣା କରାଯାଏ ।
ଜୟଶ୍ରୀ—ସ୍ତ୍ରୀ. ବି. ( ୬ତତ୍ ) ଜୟଲକ୍ଷ୍ମୀ ଦେବୀ, ସଙ୍ଗୀତର ତାଳବିଶେଷ,ସନ୍ଧ୍ୟା କାଳରେ ଗେୟ ସମ୍ପୂର୍ଣ୍ଣ ଜାତିର ରାଗବିଶେଷ ।
ଜୟସିଂହ—ପ୍ରା. ବି. ମିବାରର ବିଖ୍ୟାତ ରାଣା ରାଜସିଂହଙ୍କ ପୁତ୍ର ।
ଜୟସିଂହ(ସବାଇ)—ଜୟପୁରର ଜଣେ ବିଖ୍ୟାତ ରାଜା ଓ ଭାରତବର୍ଷର ଜଣେ ଅଦ୍ୱିତୀୟ ଜ୍ୟୋତିର୍ବିଦ୍ ।
ଜୟସିଂହଦେବ-ଜୟମାଧବମାନସୋଲ୍ଲାସ ନାମକ ସଂସ୍କୃତ ଗ୍ରନ୍ଥକାର ।
ଜୟସିଂହମିଶ୍ର—ଚଣ୍ଡୀସ୍ତୋତ୍ରର ଜଣେ ଟୀକାକାର ।
ଜୟସିଂହସୂରି—ଜଣେ ବିଖ୍ୟାତ ନୈୟାୟିକ ନ୍ୟାୟସାରଦୀପିକା ରଚୟିତା ।
ଜୟସେନ—ପୁଂ. ବି. ମଗଧର ଜଣେ ରାଜା, ଆୟୁନୃପବଂଶୀୟ ଅହୀନ ରାଜାଙ୍କ ପୁତ୍ର, ସାର୍ବଭୌମ ନୃପତିଙ୍କ ପୁତ୍ର ।
ଜୟସ୍କନ୍ଧାବାର—କ୍ଲୀ.ବି. ବିଜୟୀ ରାଜାର ସେନାନିବେଶ ।
ଜୟସ୍ତମ୍ଭ—ପୁଂ.ବି. (କ.ଧା) ଜୟସୂଚକ ସ୍ତମ୍ଭ, କୌଣସି ବିଷୟ ଲାଭର ସ୍ମାରକ ରୂପେ ନିର୍ମାଣ କରାଯିବା ସ୍ତମ୍ଭ ।
ଜୟସ୍ୱାମୀ—ପୁଂ.ବି. କାତ୍ୟାୟନ କଳ୍ପସୂତ୍ରର ଟୀକାକାର ।
ଜୟା—ସ୍ତ୍ରୀ. ବି. (ଜି+କ.ଅ+ଆ)ଦୁର୍ଗା, ଜୟନ୍ତୀ ବୃକ୍ଷ, ତିଥିବିଶେଷ, ପୁଣ୍ୟଦାୟିନୀ ଦ୍ୱାଦଶୀ ତିଥିବିଶେଷ,ହରିତକୀ. ଦୁର୍ଗାଙ୍କ ସଖୀ, ଶମୀବୃକ୍ଷ, ଗଙ୍ଗାଇ. ନୀଳଦୁବ, ଅଗବଥୁ ଗଛ, ପତାକାବିଶେଷ, ଜ୍ୱରଘ୍ନ ଔଷଧିବିଶେଷ, ତନ୍ତ୍ରୀଯୁକ୍ତ ପ୍ରାଚୀନ ବାଦ୍ୟବିଶେଷ, ମାଘଶୁକ୍ଳ ଏକାଦଶୀ, ମନ୍ଦାରଫୁଲ ।
ଜୟାଦିତ୍ୟ—ପୁଂ. ବି. କାଶ୍ମୀରର ଜଣେ ବିଖ୍ୟାତରାଜା ଓ କାଶିକାବୃତ୍ତିପ୍ରଣେତା ।
ଜୟାନୀକ—ପୁଂ. ବି. ଦ୍ରୁପଦ ରାଜାଙ୍କର ଏକପୁତ୍ର, ବିରାଟ ରାଜାଙ୍କର ଏକ ଭ୍ରାତା ।
ଜୟାପୀଡ଼—ପୁଂ.ବି.ଖ୍ରୀଷ୍ଟୀୟ ୮ମ ଶତାବ୍ଦୀର କାଶ୍ମୀରର ଜଣେ ରାଜା ।
ଜୟାଞ୍ଜନ—କ୍ଲୀ.ବି.ସ୍ରୋତୋଞ୍ଜନଭେଦ ।
ଜୟାଦ୍ୱୟ—କ୍ଲୀ.ବି. ଜୟନ୍ତୀ ଓ ହରିତକୀଦ୍ୱୟ ।
ଜୟାବତୀ—ସ୍ତ୍ରୀ.ବି. (ଜୟା + ବତ୍+ଈ) କୁମାରାନୁଚର ମାତୃଭେଦ, ରାଗିଣୀବିଶେଷ, ଧବଳଶ୍ରୀ ଓ ବେଳାବଳୀ ଯୋଗେ ଉତ୍ପନ୍ନ ।
ଜୟାବହା—ସ୍ତ୍ରୀ. ବି. (ଜୟ+ଆ+ବହ+ଆ) ଭଦ୍ରାଦନ୍ତୀ ବୃକ୍ଷ ।
ଜୟାଶିଃ—ସ୍ତ୍ରୀ. ବି. ଜୟାଶୀର୍ବାଦ ।
ଜୟାଶ୍ରୟା—ସ୍ତ୍ରୀ.ବି. (ଜୟ+ଆ+ଶ୍ରି+ଅ+ଆ) ଜଡ଼ଗା ତୃଣ । [ ଭ୍ରାତା ।
ଜୟାଶ୍ୱ—ପୁଂ.ବି. ବିରାଟରାଜାଙ୍କର ଏକ
ଜୟାହ୍ୱା—ସ୍ତ୍ରୀ. ବି. (ବି.ବ୍ରୀ) ଭଦ୍ରଦନ୍ତୀ ବୃକ୍ଷ । [ ଶୀଳ ।
ଜୟିଷ୍ଣୁ—ପୁଂ. ବିଂ. (ଜି+ଇଷ୍ଣୁ) ଜୟ-
ଜୟୀ—ପୁଂ.ବିଂ. (ଜି+ଇନ୍)ଜୟଶୀଳ, ବିଜୟୀ, ବିଜେତା ।
ଜୟୁଃ—ପୁଂ.ବିଂ.(ଜି+ଉସ୍)ଜୟଶୀଳ ।
ଜୟେତ୍—ପୁଂ. ବି. ପୂରୟା ଓ କଲ୍ୟାଣ ଯୋଗେ ଉତ୍ପନ୍ନ ରାଗିଣୀବିଶେଷ ।
ଜୟେତ୍‌ଗୌରୀ—ସ୍ତ୍ରୀ. ବି. ଜୟେତ୍ ଓ ଗୌରୀ ଯୋଗେ ଉତ୍ପନ୍ନ ରାଗିଣୀବିଶେଷ
ଜୟେଶ୍ରୀ—ସ୍ତ୍ରୀ. ବି. ରାଗିଣୀବିଶେଷ, ଗୌରୀ ଓ ଶ୍ରୀଯୋଗେ ଉତ୍ପନ୍ନ ହୁଏ ।
ଜୟେନ୍ଦ୍ର—ପୁଂ.ବି.କାଶ୍ମୀରରାଜ ବିଜୟଙ୍କ ପୁତ୍ର । [ ଲିଙ୍ଗ ।
ଜୟେଶ୍ୱର—ପୁଂ.ବି.ଏକ ପ୍ରାଚୀନ ଶିବ-
ଜୟୋନ୍ମତ୍ତ—ବି. ବିଂ. (୫ତତ୍) ବିଜୟଲାଭେ ଉନ୍ମାଦଗ୍ରସ୍ତ ବା ଜ୍ଞାନଶୂନ୍ୟ ।
ଜୟୋଲ୍ଲାସ—ପୁଂ. ବି. (କ.ଧା) ବିଜୟଜନିତ ଆନନ୍ଦ । [ ଯୋଗ୍ୟ ।
ଜୟ୍ୟ—ବି. ବିଂ. (ଜି+ଯ) ଜୟକରଣ
ଜର୍‌କଦି—ଯା.ବି. ଜରିକାମ, ଜରି ବୁଣା ହୋଇଥିବା କାରୁକାର୍ଯ୍ୟ, (ବିଂ) ଯେଉଁ ଲୁଗାଆଦି ଉପରେ ଜରିର କାରୁକାର୍ଯ୍ୟ କରାଯାଇଥାଏ ।
ଜର୍‌କା—ପ୍ରା.(ସମ୍ବ)ବିଂ.ଜଳକା, ଯାହାର ଆଖିଆଏ ମାତ୍ର ସ୍ପଷ୍ଟ ରୂପେ ଦେଖି ନ ପାରେ ।
ଜର୍‌ଡ଼ଗ୍ରୀ—ଯା.ବି.ଦାବି ଓ ଖର୍ଚ୍ଚା ସହିତ ଡିଗ୍ରୀ ହୋଇଥିବା ଟଙ୍କା ।
ଜର୍‌ଦା—ଯା. ବି. ( ମୁସଲମାନଙ୍କର ଖାଦ୍ୟ)ସୁବାସିତ ହଳଦିଆ ଭାତ, ପାନ ସଙ୍ଗେ ଖାଇବାପାଇଁ ସୁଗନ୍ଧି ତମାଖୁ ଗୁଣ୍ଡା, ସୁରତି, ହଳଦିଆ ଘୋଡ଼ା, ଏକପ୍ରକାର ହଳଦିଆ ଛିଟ ।

ଜର୍‌ଦାଣୀ—ଯା. ବ. ମକଦ୍ଦମାରେ ପ୍ରତିବାଦୀ ଉପରେ ବାଦୀ ଦା'ବ କରିଥିବା ଧନର ପରିମାଣ ।
ଜରଦୀ—ଯା. ବ. ହଳଦିଆବର୍ଣ୍ଣ, ଅଣ୍ଡା ମଧ୍ୟସ୍ଥ ହଳଦିଆ ଅଂଶ,(ବି) ହଳଦିଆ
ଜରସମନ—ଯା. ବ. ବନ୍ଧକୀତ ସମ୍ପତ୍ତିର ମୂଲ୍ୟ ।
ଜର—ପୁଂ. ବ. ( ଜୃ+ଭା.ଅ ) ଜରା, ବୟୋହାନି, ବୃଦ୍ଧାବସ୍ଥା, ଜୀର୍ଣ୍ଣହେବା, ବିନାଶ, ବିଂ.(କ.ଅ) ଜରାଜୀର୍ଣ୍ଣ, ବୃଦ୍ଧ, (ଗ୍ରା.ବ) ଜ୍ୱର ।
ଜରଭ—ଗ୍ରା. ବ. ଗଞ୍ଜାମର ବଡ଼ଗଡ଼ ରାଜ୍ୟର ନଦୀ ।
ଜରଜର—ଗ୍ରା. (ପଦ୍ୟ) ବିଂ. ଅଭିଭୂତ, ଆକ୍ରାନ୍ତ, ଜର୍ଜରିତ, ସନ୍ତପ୍ତ, ଲିପ୍ତ, ଥରଥର, ଜରାଗ୍ରସ୍ତ, (ବ) ଜର ହେଲା ପରି ବୋଧହେବା ।
ଜରଠ—ତ୍ରି.ବିଂ. (ଜୃ+କ.ଅଠ) ଜର୍ଜର, ପାଣ୍ଡୁ, କଠିନ, ବୃଦ୍ଧ, ଜୀର୍ଣ୍ଣ, ସୁପରିପକ୍ୱ, ନିଷ୍ଠୁର, ପାଚିଲା, (ପୁଂ.ବ) ଜରା, ବୃଦ୍ଧାବସ୍ଥା, ପାଣ୍ଡୁରୋଗ ।
ଜରଡ଼ୀ—ସ୍ତ୍ରୀ. ବ. (ଜୃ+ଅଡ଼+ଈ) ତୃଣବିଶେଷ ।
ଜରଣ—କ୍ଲୀ.ବ.(ଜୃ+ଣିଚ୍+ଅନ) ପ୍ରଶଂସା, ବାର୍ଦ୍ଧକ୍ୟ, ହିଙ୍ଗୁ, କୁଷ୍ଠୌଷଧ, ଧଳାଜୀରା (ବ) ଜାରକ, କୃଷ୍ଣଜାରକ, ସୌବର୍ଚ୍ଚ ଲବଣ, କାଶମର୍ଦ୍ଦ, ଦଶପ୍ରକାର ଗ୍ରହଣ ମଧ୍ୟରୁ ଏକ—ଯହିଁରେ ପଶ୍ଚିମ ଦିଗରୁ ମୋକ୍ଷହୁଏ, ବିଂ.(ଜୃ+କ.ଅନ) ଜୀର୍ଣ୍ଣ, ବୃଦ୍ଧ, ଜୀର୍ଣ୍ଣଶକ୍ତିବର୍ଦ୍ଧକ ।
ଜରଣଦ୍ରୁମ—ପୁଂ. ବ. ଅଶ୍ୱକର୍ଣ୍ଣବୃକ୍ଷ, ଶାହାଡ଼ାଗଛ, ସାଗୁଆନଗଛ ।
ଜରଣା—ସ୍ତ୍ରୀ. ବ. (ଜରଣ+ଆ) କୃଷ୍ଣଜାରକ, ଜୀର୍ଣ୍ଣ, ବୃଦ୍ଧତ୍ୱ, ଜରା ମୋକ୍ଷ, ସ୍ତୁତି, ମୁକ୍ତି, ପ୍ରଶଂସା । [ କାରକ ।
ଜରଣି— ତ୍ରି. ବିଂ. (ଜୃ+ଅନି) ସ୍ତୁତି-
ଜରଣିପ୍ରା—ତ୍ରି. ବିଂ.ସ୍ତୁତିକାରକ ।
ଜରଣ୍ଡ—ତ୍ରି. ବିଂ. ଜୀର୍ଣ୍ଣ ।
ଜରଣ୍ୟା—ସ୍ତ୍ରୀ.ବ. ଜରା ।

ଜରଣ୍ୟ—ତ୍ରି.ବିଂ.ଆପଣାର ସ୍ତୁତି ଅଭିଳାଷୀ ।
ଜରତ୍—ତ୍ରି.ବିଂ.(ଜୃ+ଅତ୍) ପକ୍ୱ,ବୃଦ୍ଧ, ପୁରାତନ, (ପୁଂ.ବ) ବୃଦ୍ଧାବସ୍ଥା ।
ଜରତ୍‌କର୍ଣ୍ଣ—ପୁଂ.ବ. ଜଣେ ଋଷି ।
ଜରତ୍‌କାରୁ—ପୁଂ. ବ. ଜଣେ ଋଷି, ଯାଯାବର, ସ୍ତ୍ରୀ. ଜରତ୍କାରୁଙ୍କପତ୍ନୀ, ମନସାଦେବୀ, ବାସୁକିଙ୍କ ଭଗିନୀ ।
ଜରତ୍କାରୁ ପତ୍ନୀ(ପ୍ରିୟା)-ସ୍ତ୍ରୀ.ବ.(୬ତତ୍) ମନସାଦେବୀ ।
ଜରତା—ଗ୍ରା.ସ୍ତ୍ରୀ.ବ. ଓଡ଼ିଆ ଭକ୍ତିଗ୍ରନ୍ଥବର୍ଣ୍ଣିତ ଗୋଟିଏ ବୃଦ୍ଧାବେଶ୍ୟାର ନାମ ।
ଜରତୀ—ସ୍ତ୍ରୀ.ବିଂ.(ଜରତ୍+ଈ) ବୃଦ୍ଧା, ବୁଢ଼ୀ, ଜରାଗ୍ରସ୍ତା ।
ଜରଥୁସ୍ତ୍ର—ପ୍ରାଚୀନ ପାରସିକ ଧର୍ମ୍ମପ୍ରବର୍ତ୍ତକ ।
ଜରଦଷ୍ଟି—ତ୍ରି. ବିଂ. ଅତିବୃଦ୍ଧ, (ସ୍ତ୍ରୀ.ବ) ଦୀର୍ଘଜୀବନ ।
ଜରଦ୍‌ଗବ—ପୁଂ.ବ.(କ.ଧା) ଜୀର୍ଣ୍ଣବୃଷ, ବୁଢ଼ାଷଣ୍ଢ,(ବ.ଗ୍ରୀ-ନାମ) ହିତୋପଦେଶବର୍ଣ୍ଣିତ ବୃଦ୍ଧଗୃଧ୍ର,(ଲକ୍ଷଣାର୍ଥ) ଅତି ବୁଢ଼ା ଓ ଅକର୍ମା ମନୁଷ୍ୟ ।
ଜରଦ୍‌ଗବବୀଥି—ସ୍ତ୍ରୀ.ବ.ଚନ୍ଦ୍ରଙ୍କବୀଥିଭେଦ, ବିଶାଖା, ଅନୁରାଧା ଓ ଜ୍ୟେଷ୍ଠା ନକ୍ଷତ୍ରଯୁକ୍ତ ଚନ୍ଦ୍ରମାଙ୍କ ବୀଥି ।
ଜରଦ୍‌ଗବୀ-ସ୍ତ୍ରୀ.ବ.ବୃଦ୍ଧାଗାଭୀ,ବୁଢ଼ୀଗାଈ ।
ଜରଦା—ଯା.ବିଂ. ପୀତ, ହଳଦିଆ, ବ. ପାନସଙ୍ଗେ ଖିଆଯିବା ସୁଗନ୍ଧ ମସଲାଯୁକ୍ତ ତମାଖୁପତ୍ରର ଚୂର୍ଣ୍ଣ,ହଳଦିଆ ମଠା ।
ଜରଦ୍ୱିଷ—ପୁ.ବିଂ. (ଜରତ୍+ଦ୍ୱିଷ+କ୍ୱିପ୍) ଉଦକଜୀର୍ଣ୍ଣକାରୀ ।
ଜରନ୍—ପୁଂ.ବିଂ. (ଜୃ+କ.ଅତ୍) ଜୀର୍ଣ୍ଣ, ବୃଦ୍ଧ, ପୁରାତନ, ସ୍ତ୍ରୀ. ଜରତୀ ।
ଜରନ୍ତ—ପୁଂ.ବ.ମହିଷ,ବୃଦ୍ଧ,ସ୍ତ୍ରୀ.ଜରନ୍ତୀ ।
ଜରମାନ—ପୁଂ.ବ. ଜଣେ ଋଷି ।
ଜରସ୍ୱିତା—ପୁଂ. ବ. ଜରତ୍କାରୀ, ସ୍ତ୍ରୀ. ଜରସ୍ୱିନୀ ।
ଜରୟୁ—ତ୍ରି.ବିଂ. ବୃଦ୍ଧହୋଇଥିବା ।
ଜରସ—କ୍ଲୀ.ବ.ଜରା-ପୁଂ.ବ. ଶ୍ରୀକୃଷ୍ଣଙ୍କର, ଏକ ପୁତ୍ର ।
ଜରସାନ—ପୁଂ. ବ. ( ଜୃ+ଅସ+ଆନ) ପୁରୁଷ ।
ଜରା—ସ୍ତ୍ରୀ.ବ.(ଜୃ+ଭା.ଅ+ଆ) ବୃଦ୍ଧାବସ୍ଥା, ବାର୍ଦ୍ଧକ୍ୟ ଏକ କାମରୂପା ରାକ୍ଷସୀ, ଷଷ୍ଠୀଦେବୀ, ବିଖସା, ଜଣେ ବ୍ୟାଧ, କ୍ଷୀରକୋଳି ବୃକ୍ଷ, ସ୍ତୁତି, ଅତିସ୍ନିଗ୍ଧବାଦନୀ ସ୍ତ୍ରୀ, (ଗ୍ରା.ବ) ଜରିବା, ଜୀର୍ଣ୍ଣହେବା, ତୈଳାଦିରୁ ମିଶ୍ରିତ ଜଳୀୟାଂଶ ଅଗ୍ନି ଉତ୍ତାପରେ ଦୂରହେବା ।
ଜରାଗ୍ରସ୍ତ—ତ୍ରି. ବିଂ. (୩ତତ୍) ଜରାଭିଭୂତ, ଯାହାକୁ ଜରା ଗ୍ରାସ କରିଅଛି,ବାର୍ଦ୍ଧକ୍ୟପ୍ରପୀଡ଼ିତ ।
ଜରାଜୀର୍ଣ୍ଣ—ପୁଂ. ବିଂ. ( ୩ତତ୍ ) ଅତିବାର୍ଦ୍ଧକ୍ୟ ହେତୁ ଜୀର୍ଣ୍ଣଶୀର୍ଣ୍ଣ ।
ଜରାଡ଼ୁ—ଗ୍ରା. ବ. ଏକପ୍ରକାର ମାଛ ।
ଜରାତୁର—ପୁଂ. ବିଂ. ( ୩ତତ୍ ) ଜୀର୍ଣ୍ଣ, ଜରାରୋଗଗ୍ରସ୍ତ, ବୃଦ୍ଧାବସ୍ଥା ଯୋଗୁଁ ଅତି ଦୁର୍ବଳ, (ସ୍ତ୍ରୀ) ଜରାତୁରା ।
ଜଦବା—ବ. ଟିଣ୍ଡିକା । [ ସନ୍ଧ ।
ଜରାପୁଷ୍ଟ—ପୁଂ.ବ.(୩ତତ୍) ରାଜା ଜରା-
ଜରାବସ୍ଥା—ବ. (ଜରା+ଅବସ୍ଥା) ଅତିବୃଦ୍ଧ ଅବସ୍ଥା ।
ଜରାବୋଧ—ପୁଂ.ବ. (ଜରା+ବୁଧ+ଅ) ସ୍ତୁତି ଦ୍ୱାରା ବୋଧମାନ ଅଗ୍ନି ।
ଜରାବୋଧୀୟ—ପୁଂ. ବ. ସାମଭେଦ ।
ଜରାଭୀରୁ—ପୁଂ.ବ. (୫ତତ୍) କାମଦେବ, (ବିଂ) ଜରାଠାରୁ ଭୟଶୀଳ, ବାର୍ଦ୍ଧକ୍ୟଭୀତ । [ ମରଣ ।
ଜରାମୃତ୍ୟୁ—ପୁଂ.ବ.(ଦ୍ୱନ୍ଦ୍ୱ) ବାର୍ଦ୍ଧକ୍ୟ ଓ
ଜରାସୂଣି—ପୁଂ. ବ. ରାଜା ଜରାସନ୍ଧ ।
ଜରାୟୁ—ପୁଂ. ବ. ( ଜରା+ଇ+କ.ଉ ) ଭ୍ରୂଣସ୍ଥ ଶିଶୁ, ଯୋନି, ଗର୍ଭବେଷ୍ଟନ ଚର୍ମ ଥଳୀ, ଅଗ୍ନିଜାର ବୃକ୍ଷ, ଜଟାୟୁପକ୍ଷୀ, କୁମାରାନୁଚର ମାତୃଭେଦ ।
ଜରାୟୁଜ—ତ୍ରି.ବିଂ. (ଜରାୟୁ+ଜନ+କ.ଅ) ଗର୍ଭାଶୟଜାତ, ଯେ ଗର୍ଭାଶୟରେ ଜନ୍ମଗ୍ରହଣ କରନ୍ତି ।
ଜରାସନ୍ଧ—ପୁଂ.ବ.ମଗଧର ଏକ ବିଖ୍ୟାତ

ରାଜା, ଚନ୍ଦ୍ରବଂଶୀୟ ରାଜା, ବୃହଦ୍ରଥଙ୍କ ପୁତ୍ର ।

ଜରି—ଯା. ବି. ସୁନ୍‌ଲି ଓ ରୁପ୍‌ଲି ସୂତା, ବସ୍ତ୍ରାଦିରେ କାରୁକାର୍ଯ୍ୟ କରିବା ନିମନ୍ତେ ପ୍ରସ୍ତୁତ ସୁନା ଓ ରୁପାର ବା ପିତଳର ଅତି ସୂକ୍ଷ୍ମତନ୍ତୁ,(ଗ୍ରା.ବି) ଜରିଗଛ, ଗିରି ଗହ୍ୱର, ଗୁମ୍ଫା ।

ଜରିଆ—ଯା. ବି. ଦ୍ୱାରା, ବାଟେ ।

ଜରିଆରେ—ଯା. ଅବ୍ୟ.ଦ୍ୱାରା,ବାଟେ ।

ଜରିଗଛ—ଗ୍ରା. ବି. ବନଜାତୀୟ ଏକ-ପ୍ରକାର ବନ୍ୟ ଗଛ ।

ଜରିଗୁଳ୍ମ—ଗ୍ରା. ବି. ସାନ ଜରିଗଛ ।

ଜରିତ—ବି.ବଂ.(ଜରା+ଇତ)ଜରାଯୁକ୍ତ, ଜର୍ଜରିତ ।

ଜରିତା—ସ୍ତ୍ରୀ. ବି. ମନ୍ଦପାଳ ଋଷିଙ୍କ ସ୍ତ୍ରୀ, ପକ୍ଷିଣୀବିଶେଷ ।

ଜରିତାରି—ପୁଂ.ବି.ଜରିତାଙ୍କ ଗର୍ଭଜାତ ମନ୍ଦପାଳ ଋଷିଙ୍କ ଜ୍ୟେଷ୍ଠ ପୁତ୍ର ।

ଜରିତା—ପୁଂ.ବି.(ଜୃ+ତୃ)ସ୍ତୁତିକାରକ, (ବି. ସ୍ତ୍ରୀ) ଜୀର୍ଣ୍ଣା ସ୍ତ୍ରୀ ।

ଜରିଦାର୍—ଗ୍ରା.ବଂ. ଜରିଯୁକ୍ତ (ବସ୍ତ୍ରାଦି) ।

ଜରିପଞ୍ଜରି—ଗ୍ରା. ବି. ସୁନ୍‌ଲି ବା ରୁପ୍‌ଲି କାମହୋଇଥିବା ସ୍ୱଚ୍ଛକାଚର ପ୍ରଦୀପ ବା ଦୀପାଧାର ।

ଜରିପ୍—ଯା.ବି. ନିର୍ଦ୍ଦିଷ୍ଟ ପରିମାଣବିଶିଷ୍ଟ, ଦଣ୍ଡ ବା ଶିକୁଳି ଦ୍ୱାରା ଜମିର ମାପ, ୧୦୦ ଲିଙ୍କ୍ ବା ୬୬ ଫୁଟ ଭୂମି ମାପିବାର ଚେନ୍,୧ଚେନ ପରିମିତ ଦୈର୍ଘ୍ୟ ।

ଜରିପ୍‌କସ୍—ଯା. ବି. ଜମି ମାପବେଳେ ଯେଉଁ ଲୋକ ଶିକୁଳି ଟାଣେ,ଚେନ୍‌ମାନ୍ ।

ଜରିପ୍‌ବନ୍ଦୋବସ୍ତ—ଯା.ବି. ଭୂମିକୁ ମାପକରି ଭୂମିଉପରେ ରାଜସ୍ୱ ବନ୍ଦୋବସ୍ତ ବା ସ୍ଥିର କରିବାର ପ୍ରକ୍ରିୟା ।

ଜରିପ୍‌ଭଉଁରିଆ—ଗ୍ରା. ବି. ଚେନଦ୍ୱାରା ମାପ କରାଯାଇଥିବା ପ୍ରତ୍ୟେକ କ୍ଷେତ୍ରର ବିବରଣ ।

ଜରିବସ୍ତ୍ର—ଗ୍ରା. ବି. ମୁହଁରେ ଓ ଧଡ଼ିରେ ଜରି ଲଗିଥିବା ଲୁଗା ।

ଜରିବା—ଗ୍ରା. କ୍ରି. ଉତ୍ତମରୂପେ ଭେଦି-ଯିବା, ଜଡ଼ିତହେବା, ମିଳିମିଶି ଯିବା, ଅଗ୍ନି ଉତ୍ତାପରେ (ଘୃତ,ତୈଳାଦି) ନିର୍ଜଳ ହେବା, (ଲ.ଅର୍ଥ) ଜୀର୍ଣ୍ଣଶୀର୍ଣ୍ଣ ହେବା, (ଖାଦ୍ୟ) ଜୀର୍ଣ୍ଣହେବା, ପ୍ରା. (ସମ୍ବ) କ୍ରି. ଗୋମେଷାଦି ଚରିବା ।

ଜରିବୁଟା—ଯା. ବି. ଲୁଗାଆଦିରେ ଜରି-ଦ୍ୱାରା ବୁଣାଯାଇଥିବା ନକ୍ଷତ୍ରାକାର ବିନ୍ଦୁ ଓ ବର୍ତ୍ତୁଳ ଚିହ୍ନମାନ ।

ଜରିବୁଟୀ—ଗ୍ରା. ବି. ଜଡ଼ିବୁଟି ଦେଖ ।

ଜରିମା—ବି.(ଜରା+ଇମନ୍) ବୃଦ୍ଧ ଅବସ୍ଥା ।

ଜରିମାନ୍—ଯା. ବି. ହଲପ୍ ।

ଜରିମାନା—ଯା.ବି. ଗୁଣାଗାର,ଅର୍ଥଦଣ୍ଡ, ଡଣ୍ଡ ।

ଜରିମୁହଁ—ଗ୍ରା.ବି. ଜରିବୁଣା ହୋଇଥିବା ଲୁଗାର ମୁହଁ ବା ପ୍ରାନ୍ତ ।

ଜରୀ—ପୁଂ. ବଂ.( ଜୃ + ଇନ୍ ) ବୃଦ୍ଧ, ଜରାଯୁକ୍ତ, ଜୀର୍ଣ୍ଣ, (ଯା.ବି) ସୁନାରୁପାର ସରୁ ସୂତା ।

ଜରୁ—ଯା. ବି. ପତ୍ନୀ, ଭାର୍ଯ୍ୟା, ସ୍ତ୍ରୀ ।

ଜରୁଆ—ଗ୍ରା.ପୁଂ.ବଂ. ଜ୍ୱର,ରୋଗାକ୍ରାନ୍ତ, ଯେ ବହୁକାଳ ଜ୍ୱର ଭୋଗୁଥାଏ ।

ଜରୁର୍—ଯା. ଅବ୍ୟ. ଅତିଚଞ୍ଚଳ, ଶୀଘ୍ର, ଅନତିବିଳମ୍ବେ, ନିଶ୍ଚୟ, (ବଂ) ଜରୁରି ।

ଜରୁରତ୍—ଯା. ବି. ଅତ୍ୟନ୍ତ ଆବଶ୍ୟକ ହେବା, ଆଶୁପ୍ରୟୋଜନ ।

ଜରୁରି—ଯା.ବଂ.ଅନତିବିଳମ୍ବେ କର୍ତ୍ତବ୍ୟ, ଯାହା ନ ହେଲେ ନ ଚଳେ, ଅତ୍ୟନ୍ତ ଆବଶ୍ୟକ, ଅନିବାର୍ଯ୍ୟ ।

ଜରୂଥ—ପୁଂ. ବି. (ଜୃ + କ.ଊଥ) ଶ୍ଲଥ-ମାଂସ,ମାଂସ, (ବଂ) ଜରଣୀୟ,ପରୁଷ-ଭାଷୀ, କଟୁଭାଷୀ, (ସ୍ତ୍ରୀ) ଜରୂଥା ।

ଜର୍ଜ—ଯା. ବି. ଇଂରାଜ ପୁରୁଷ ବ୍ୟକ୍ତିଙ୍କ ନାମବିଶେଷ ।

ଜର୍ଜର—ପୁଂ.ବି. (ଜର୍ଜ+କ.ଅ) ଶୈଳଜ, ଶିଳାଜତୁ, ଗୈରିକ, ଗେରୁ, ଶକ୍ରଧ୍ୱଜ, ଇନ୍ଦ୍ରଧ୍ୱଜ, ଜରାତୁର, ( ବଂ ) ଜୀର୍ଣ୍ଣ, ଅଭିଭୂତ, ଚୂର୍ଣ୍ଣିତ, ଛିଦ୍ରପ୍ରାପ୍ତ, ଶ୍ଲଥ, ବୁଢ଼ା, ଆକ୍ରାନ୍ତ, ବିଦୀର୍ଣ୍ଣ, ଜରଜର, ଖଣ୍ଡିତ ।

ଜର୍ଜରାନନା—ସ୍ତ୍ରୀ. ବି. କୁମାରାନୁଚର ମାତୃଭେଦ ।

ଜର୍ଜ୍ଝରିତ—କ୍ରି. ବଂ. (ଜର୍ଜ+ଣିଚ୍+ମ.ତ) ଜୀର୍ଣ୍ଣୀକୃତ ଜୀର୍ଣ୍ଣ ଶୀର୍ଣ୍ଣ,ଖଣ୍ଡିତ,ଯାହାକୁ ଜର୍ଜର କରାହୋଇଅଛି ।

ଜର୍ଜ୍ଝରୀକ—କ୍ରି. ବଂ. (ଜର୍ଜ୍ଝ+ଈକ) ଜୀର୍ଣ୍ଣ-ଶୀର୍ଣ୍ଣ, ପୁରାତନ ଓ ବହୁ ଛିଦ୍ରଯୁକ୍ତ, ବହୁଛିଦ୍ର ବିଶିଷ୍ଟ (ଦ୍ରବ୍ୟ), ଜରାତୁର ।

ଜର୍ଜରୀଭୂତ—ବଂ. (ଜର୍ଜର+ଚ୍ୱି+ଭୂ +ତ) ପୂର୍ବେ ଯାହା ଜର୍ଜର ନ ଥିଲା ବର୍ତ୍ତମାନ ଜର୍ଜର ହୋଇଅଛି, ଜୀର୍ଣ୍ଣ ଶୀର୍ଣ୍ଣ । [ ବିଖ୍ୟାତ ନଦୀ ।

ଜର୍ଡନ—ବି.ତୁରସ୍କରେ ପ୍ରବାହିତ ଗୋଟିଏ

ଜର୍ଣ୍ଣ—ପୁଂ. ବି.(ଜୃ +ନନ୍) ଚନ୍ଦ୍ର,ବୃକ୍ଷ, (ବଂ) ଜୀର୍ଣ୍ଣ ।

ଜର୍ଣ୍ଣଲ—ଯା. ବି. ସୈନାଧ୍ୟକ୍ଷ, ସାମୟିକ ସମ୍ବାଦ ପତ୍ର ।

ଜର୍ଣ୍ଣିଲ୍‌ଜର୍ଣ୍ଣିଲ୍—ଯା. ବି. ପଲଟନଙ୍କ ଉପରସ୍ଥ ଅଧ୍ୟକ୍ଷ ।

ଜର୍ତ୍ତି—ପୁଂ. ବି. ଯୋନି, ହସ୍ତୀ ।

ଜର୍ତ୍ତିକ—ପୁଂ. ବି.(ଜୃ +ତିକ) ବାହ୍ଲିକ-ଦେଶ, ବାହ୍ଲିକଦେଶବାସୀ ଲୋକ ।

ଜର୍ତ୍ତିଲ—ପୁଂ. ବି. ବନଜାତ ତିଳ ।

ଜର୍ତ୍ତୁ—ପୁଂ. ବି. (ଜନ+ତୁ) ଏଠାରେ ରେଫର ଆଦେଶ ହେଲା ) ଯୋନି, ହସ୍ତୀ । [ ଦେଖ ।

ଜର୍ଦ୍ଦା—ଯା.ବି.ପୀତବର୍ଣ୍ଣ,ହରିଦ୍ରା,ଜରଦା

ଜର୍ଦ୍ଦାଲୁ—ଯା. ବି. ଏକପ୍ରକାର କାବୁଲୀ ମିଷ୍ଟ ଓ ଶୁଷ୍କ ଫଳ ।

ଜର୍ଭର—କ୍ରି. ବଂ. (ଜୃଭ+ଅର) ଗାନ୍ଧ-ର୍ବନାମ କର୍ତ୍ତା, ଜୃମ୍ଭନକାରୀ,ସ୍ତୁତିକାରକ ।

ଜର୍ମ୍—ଯା. ବି. ରୋଗବୀଜ, ଜୀବାଣୁ ।

ଜର୍ମାନ୍—ଯା. ବଂ. ଜର୍ମାନ୍ ଦେଶୀୟ ବା ଜାତୀୟ । [ ବିଶେଷ ।

ଜର୍ମାନୀ—ଯା. ବି. ଇଉରୋପୀୟ ରାଜ୍ୟ

ଜର୍ବର—ପୁଂ. ବି. ଜଣେ ନାଗ ପୁରୋ-ହିତ, ଏ ଯଜ୍ଞକରି ସାପମାନଙ୍କୁ ମୃତ୍ୟୁରୁ ରକ୍ଷା କରିଥିଲେ ।

ଜହ୍ନିଲ—ପୁଂ. ବି. ଅରଣ୍ୟ ଚଳ ।

ଜଳ—କ୍ଲୀ. ବି. (ଜିଲ+କ.ଅ) ପାନୀୟ, ପାଣି, ବାରି, ଉଦକ,ଉଶୀର, ବେଣାଚେର, ପୂର୍ବାଷାଢ଼ା ନକ୍ଷତ୍ର, ଜନ୍ମକୁଣ୍ଡଳୀର ଚତୁର୍ଥ ସ୍ଥାନ, ସୁଗନ୍ଧବାଲା, (ବିଂ) ଜଡ଼, ଶୀତଳ ।

ଜଳକ—କ୍ଲୀ.ବି. ଶଙ୍ଖ,ଶମ୍ବୂକ,ଶାମୁକା ।

ଜଳକଣା—ବି. (୬ତତ୍); ପାଣିର ଅତି ଛୋଟ ଛୋଟ ବିନ୍ଦୁ ।

ଜଳକଣ୍ଟକ—ପୁଂ. ବି. (ଜଳ+କଣ୍ଟକ) ଶୃଙ୍ଗାଟକ, ସିଙ୍ଗଡ଼ା, କୁମ୍ଭୀ, କୁମ୍ଭୀର ।

ଜଳକନ୍ଦ—ପୁଂ. ବି. କଦଳୀ ।

ଜଳକପି—ପୁଂ. ବି. (୬ତତ୍) ଶିଶୁମାର, ଶୁଶୁକ ।

ଜଳକପୋତ—ପୁଂ.ବି. ଜଳପାରାବତ ।

ଜଳକର—ବି. (କ.ଧା) କ୍ଷେତ୍ରରେ ଜଳ ମଡ଼ାଇବାପାଇଁ ଜଳସ୍ୱାମୀକୁ କ୍ଷେତ୍ରସ୍ୱାମୀ ଯେଉଁ ଖଜଣା ଦିଏ,ବିଂ ( ଜଳ+କୃ +କ.ଅ) ଯହିଁରୁ ଜଳ ବାହାରେ ।

ଜଳକରଙ୍କ—ପୁଂ. ବି. (୬ତତ୍) ନାରିକେଳ, ପଦ୍ମ, ଶଙ୍ଖ, ଜଳଲତା,ମେଘ ।

ଜଳକଳ୍କ—ପୁଂ.ବି. (୬ତତ୍); ଜମ୍ବାଳ, କର୍ଦ୍ଦମ, ପଙ୍କ ।

ଜଳକଲ୍ଲୋଳ—ପୁଂ.ବି.(୬ତତ୍);ଜଳର ମହାତରଙ୍ଗ, ଜଳର କଳ କଳ ଶବ୍ଦ ।

ଜଳକଷ୍ଟ—କ୍ଲୀ. ବି. (୫ତତ୍) ଜଳାଭାବ ଜନିତ କ୍ଲେଶ, ଜଳାଭାବ ।

ଜଳକା—ଗ୍ରା. ବି. ଦୃଷ୍ଟିଶକ୍ତି କମିଯିବା ରୋଗ,(ପୁଂ.ବିଂ)ଯେ ସ୍ପଷ୍ଟ ଦେଖିପାରେ ନାହିଁ ।

ଜଳକାକ—ପୁଂ. ବି. ଜଳଚର ପକ୍ଷୀବିଶେଷ,ପାଣିକୁଆ, ଦାତ୍ୟୂହ,ଡାହୁକ ।

ଜଳକାକରିବା—ଗ୍ରା.କ୍ରି. (ଲ.ଅର୍ଥ) ଆଖିଆଗରେ କୌଣସି ବ୍ୟକ୍ତିକୁ ଠକାଇବା ।

ଜଳକାଙ୍କ୍ଷ—ପୁଂ. ସ୍ତ୍ରୀ. ବି. (ଜଳ+କାଙ୍କ୍ଷ +ଅ) ହସ୍ତୀ, (ବିଂ) ଜଳାଭିଳାଷୀ ।

ଜଳକାଙ୍କ୍ଷୀ—ପୁଂ. ବିଂ. (ଜଳ+କାଙ୍କ୍ଷ +ଇନ୍) ଜଳାଭିଳାଷୀ, ( ପୁଂ. ବି ) ହସ୍ତୀ, (ସ୍ତ୍ରୀ) ଜଳକାଙ୍କ୍ଷିଣୀ ।

ଜଳକାନ୍ତ—ପୁଂ. ବି. (୬ତତ୍);ଜଳାଧିଷ୍ଠାତା, ବରୁଣ, ସମୁଦ୍ର ।

ଜଳକାନ୍ତାର—ପୁଂ.ବି.(ବ.ବ୍ରୀ);ବରୁଣ ।

ଜଳକାମୁକ—ପୁଂ. ବି.(୬ତତ୍); କୁଟୁମ୍ବିନୀ ବୃକ୍ଷ, (ବିଂ) ଜଳାଭିଳାଷୀ ।

ଜଳକିରାଟ—ପୁଂ. ବି. (ଜଳ+କିର+ଅଟ+ଅ)ଗ୍ରାହ,ଜଳଜନ୍ତୁଭେଦ,ଘଡ଼ିଆଳ, କୁମ୍ଭୀର ।

ଜଳକୁକ୍କୁଟ—ପୁଂ. ବି. (ଜଳ+କୁକୁଟ) ପକ୍ଷୀଭେଦ, ଗାଙ୍ଗଚିଲ, (ସ୍ତ୍ରୀ) ଜଳକୁକ୍କୁଟୀ, ଗାଙ୍ଗଚିଲ୍ଲୀ । [ ବିଶେଷ ।

ଜଳକୁକ୍କୁଭ—ପୁଂ. ବି. ଜଳଚର ପକ୍ଷୀ

ଜଳକୁନ୍ତଳ—ପୁଂ. ବି. ଶୈବାଳ, ଜଳକେଶ, ଶିଉଳି ।

ଜଳକୁକ୍କୁକ—ପୁଂ.ବି.ଜଳଜାତ ବୃକ୍ଷଭେଦ ।

ଜଳକୂପୀ—ସ୍ତ୍ରୀ. ବି. ( ଜଳ+କୂପୀ ) କୂପଚକ୍ରି, ପୁଷ୍କରିଣୀ ।

ଜଳକୂର୍ମ—ପୁଂ. ବି. ( ଜଳ+କୂର୍ମ ) ଶିଶୁମାର, ଶୁଶୁକ ।

ଜଳକୃତ୍—ତ୍ରି. ବିଂ. ଜଳକାର, ଜଳଉତ୍ପାଦକ ।

ଜଳକେତୁ—ପୁଂ. ବି. ପତାକାବିଶେଷ ।

ଜଳକେଳି—ପୁଂ.ବି.(୬ତତ୍);ଜଳକ୍ରୀଡ଼ା ।

ଜଳକେଶ—ପୁଂ.ବି. (୬ତତ୍)ଶୈବାଳ, ଶିଉଳି ।

ଜଳକୋଷ—ବି. (କ.ଧା) ଅଣ୍ଡକୋଷର ଜଳବୃଦ୍ଧି ରୋଗ, କୁରୁଣ୍ଡ ।

ଜଳକ୍ରିୟା—ସ୍ତ୍ରୀ. ବି. ( କ.ଧା ) ଜଳତର୍ପଣ,ପିତୃଗଣଙ୍କ ଉଦ୍ଦେଶ୍ୟରେ ଜଳସାଧ୍ୟ ତର୍ପଣରୂପ କାର୍ଯ୍ୟ ।

ଜଳକ୍ରୀଡ଼ା—ସ୍ତ୍ରୀ. ବି. (୬ତତ୍); ଜଳରେ ସନ୍ତରଣରୂପ କ୍ରୀଡ଼ା, ଜଳଖେଳ ।

ଜଳଖଗ—ପୁଂ. ବି. (୬ତତ୍); ଜଳଚର ପକ୍ଷୀବିଶେଷ ।

ଜଳଖିଆ—ଗ୍ରା. ବି. ଶୁଷ୍କ ଲଘୁ ଖାଦ୍ୟ ବା ମିଷ୍ଟାନ୍ନ ।

ଜଳଗ—ପୁଂ.ବିଂ. (ଜଳ+ଗମ+କ.ଅ) ଜଳଗତ, ଜଳମଗ୍ନ ।

ଜଳଗଣ୍ଡୂଷ—କ୍ଲୀ. ବି. (୬ତତ୍);ଗଣ୍ଡୂଷ ବା ଚୋପପୂର୍ଣ୍ଣ ଜଳ ।

ଜଳଗନ୍ଧେଭ—ପୁଂ. ବି. ଜଳହସ୍ତୀ ।

ଜଳଗର୍ଭ—ପୁଂ. ବି. ବୁଦ୍ଧଙ୍କର ପ୍ରଧାନ ଶିଷ୍ୟ ଆନନ୍ଦଙ୍କର ପୂର୍ବଜନ୍ମର ନାମ, (ବିଂ. ବ.ବ୍ରୀ)ଜଳପୂର୍ଣ୍ଣ, (ସ୍ତ୍ରୀ) ଜଳଗର୍ଭା ।

ଜଳଗୁଲ୍ମ—ପୁଂ.ବି. ଜଳାବର୍ତ୍ତ, ଜଳଘୂର୍ଣ୍ଣୀ, କଚ୍ଛପ, ଜଳଚତ୍ୱର ।

ଜଳଗୃହ—କ୍ଲୀ. ବି. (କ.ଧା) ସରୋବର ପ୍ରଭୃତିର ମଧ୍ୟସ୍ଥିତ ଗୃହ ।

ଜଳଘଟ—ବି.(କ.ଧା) ଜଳପୂର୍ଣ୍ଣ ମାଠିଆ, ଯେଉଁ ମାଠିଆରେ ପାଣି ଅଣାଯାଏ ।

ଜଳଘଟିକା—ବି. ( କ.ଧା ) ଜଳଦ୍ୱାରା ନିୟନ୍ତ୍ରିତ ସମୟଜ୍ଞାପକ ଯନ୍ତ୍ର ।

ଜଳଘାଟ—ଗ୍ରା. ବି. ଜଳାଶୟାଦିର ଯେଉଁଠାକୁ ଲୋକେ ଗାଧୋଇବାକୁ ବା ପାଣି ଆଣିବାକୁ ଯାଆନ୍ତି ।

ଜଳଙ୍ଗ—ପୁଂ. ବି. (ଜଳ+ଗମ+ଅ) ମହାକାଳ ଲତା ।

ଜଳଙ୍ଗମ—ପୁଂ. ବି. (ଜଳ+ଗମ୍+କ.ଅ) ଗୃଣ୍ଡାଳ, ଚଣ୍ଡାଳ ।

ଜଳଙ୍ଗୀ—ସ୍ତ୍ରୀ.ବି. ନଦୀୟା ଜିଲ୍ଲାର ପ୍ରଧାନ ତିନିଗୋଟି ନଦୀ ମଧ୍ୟରୁ ଗୋଟିଏ ।

ଜଳଚତ୍ୱର—କ୍ଲୀ. ବି. ( ବ.ବ୍ରୀ ) ଅଳ୍ପଜଳଯୁକ୍ତ ଦେଶ ।

ଜଳଚର—ତ୍ରି.ବିଂ. (ଜଳ+ଚର+ଅ) ଜଳଚାରୀ ଜଳବିହାରୀ, (ବି) ଗ୍ରାହାଦି ଜଳଜନ୍ତୁ ।

ଜଳଚରଜୀବ—ପୁଂ. ବିଂ. ମତ୍ସ୍ୟଜୀବୀ ।

ଜଳଚାରୀ—ପୁଂ. ବି. (ଜଳ+ଚର+କ.ଇନ୍) ମତ୍ସ୍ୟ, ସାରସାଦି, ( ବିଂ ) ଯେଉଁପ୍ରାଣୀ ଜଳରେ ବିଚରଣ କରେ ।

ଜଳଚିକିତ୍ସା—ବି. ( ୩ତତ୍ ) ଭିନ୍ନଭିନ୍ନ ରୋଗଗ୍ରସ୍ତ ରୋଗୀକୁ ଜଳର ବିଭିନ୍ନ ବ୍ୟବହାର ଦ୍ୱାରା ନୀରୋଗ କରିବାର ପ୍ରଣାଳୀ ।

ଜଳଛତ୍ର—ଗ୍ରା. ବି. ତୃଷାର୍ତ୍ତ ପଥିକମାନଙ୍କୁ ଜଳ ବା ଅନ୍ୟ ପାନୀୟ ଯୋଗାଇବା ନିମନ୍ତେ ସ୍ଥାପିତ ଜଳସତ୍ର ।

ଜଳଛବି—ଗ୍ରା. ବି. ଜଳ ସାହାଯ୍ୟରେ

ଯେଉଁ ଚସକୁ ଖଣ୍ଡିଏ କାଗଜରୁ ଅନ୍ୟ ଖଣ୍ଡିଏ କାଗଜକୁ ଉଠାଇ ନିଆଯାଏ ।

ଜଳଜ—କ୍ଲୀ. ବ. (ଜଳ + ଜନ + କ.ଅ) ପଦ୍ମ, ଶଙ୍ଖ, ଲୋଣାର ନାମକ କ୍ଷାର, (ପୁଂ. ବ.) ମତ୍ସ୍ୟ, ହିଜ୍ଜଳବୃକ୍ଷ, ଶୈବାଳ, ମୋଥ ବା ନାରବେତ, ଜଳବେତ, କୋଚିଲାଗଛ, କର୍କଟ, ମୀନ, କୁମ୍ଭ ରାଶିର ଅର୍ଦ୍ଧେକ, (ବିଂ) ଜଳଜାତ ।

ଜଳଜକୁସୁମ—କ୍ଲୀ.ବ. ଜଳଜାତକୁସୁମ ।

ଜଳଜଦ୍ରବ୍ୟ—କ୍ଲୀ. ବ. ମୁକ୍ତାଶଙ୍ଖପ୍ରଭୃତି ସମୁଦ୍ରଜ ଦ୍ରବ୍ୟ ।

ଜଳଜନ୍ତୁ—ପୁଂ.ବ. (୬ତତ୍ପୁ)ଜଳଜପ୍ରାଣୀ ଯାଦଃ,ମାଛପ୍ରଭୃତି ।

ଜଳଜନ୍ତୁକା—ସ୍ତ୍ରୀ.ବ.(୬ତତ୍ପୁ) ଜଳୌକା, ଜୋକ ।

ଜଳଜନ୍ମ—କ୍ଲୀ.ବ. (ବ.ବ୍ରୀ)ପଦ୍ମ,ଶାବର-କନ୍ଦକ ।

ଜଳଜମି—ଗ୍ରା.ବ. ଯେଉଁ ଜମିରେ ବର୍ଷା ଦିନରେ ଜଳ ଜମି ରହିବାରୁ ଭଲ ଧାନ ଫସଲ ହୁଏ, (ପ୍ରା. ବାଲେଶ୍ୱର ) ବ. ଅତି ନିକୃଷ୍ଟ ଧାନଜମି ।

ଜଳଜମ୍ବୁକା—ସ୍ତ୍ରୀ.ବ. ( ଜଳ + ଜମ୍ବୁକା ) କ୍ଷୁଦ୍ର ଜମ୍ବୁ,ଗିଲିର ଜାମ୍ବୁ ।

ଜଳଜଳ—ବିଂ. ଜଳପୂର୍ଣ୍ଣ, ପାଣି ସରସର,ଉପରେ ଜଳ ବୋଲାହେଲା ପରି ଉଜ୍ଜ୍ୱଳ ଦେଖାଯିବା,ଚକ ଚକିଆ,ନିନିମେଷ( ଦୃଷ୍ଟି ),ତେଲିଆ, ବହୁ ଛିଦ୍ରଯୁକ୍ତ, କ୍ରି.ବିଂ. ଏକ ଦୃଷ୍ଟିରେ, ନିର୍ନିମେଷ ନୟନରେ, ଗ୍ରା.ବି. ତରକାରିର ତରୁ ଜଳୀୟାଂଶ ।

ଜଳଜଳରହିବା—ଗ୍ରା.କ୍ରି. ଏକ ଦୃଷ୍ଟିରେ ରହିଁ ରହିବା,ଭକ ଭକ ହୋଇ ରହି ରହିବା ।

ଜଳଜଳା—ଗ୍ରା.ବିଂ.ବହୁ ଜଳା ବା ଛିଦ୍ରଯୁକ୍ତ ( ହାଣ୍ଡି ), ପୁଂ.ବିଂ. ଅଳ୍ପଜ୍ଞ, ବେହିଆ ।

ଜଳଜଳାମୁହାଁ—ଗ୍ରା. ବିଂ. ପୁଂ. ଅତି-ନିର୍ଲଜ୍ଜ ।

ଜଳଜଳିଆ—ଗ୍ରା.ବିଂ.ପୁଂ.ଜଳକା ଦେଇ; ଯେଉଁ ହାଣ୍ଡିରେ ଛିଦ୍ର ଥାଏ, ଜ୍ୱରଆଦି ଯୋଗୁଁ ଫୁଲ୍କା ବସୁଥିବା ( ମୁହଁ-ଗାଲାଦି ) ।

ଜଳଜାଜୀବ—ପୁଂ.ବ. (ଜଳଜ+ଆଜୀବ-+ଅ ) ଜଳଚରଘାତକ, ଧୀବର ।

ଜଳଜାନ—ଗ୍ରା.ବ. ହାଇଡ୍ରୋଜେନ ।

ଜଳଜାସନ—ପୁଂ.ବ.(ବ.ବ୍ରୀ) ପଦ୍ମାସନ, ବ୍ରହ୍ମା ।

ଜଳଜିହ୍ୱ—ପୁଂ.ବ.(ବ.ବ୍ରୀ)ନକ୍ର,କୁମ୍ଭୀର ।

ଜଳଜୀବୀ—ପୁଂ.ବ. (ଜଳ + ଜୀବ + ଇନ୍) ମତ୍ସ୍ୟପଜୀବୀ ।

ଜଳଡମ୍ବ—ପୁଂ. ବ. ( ୬ତତ୍ପୁ ) ଶମ୍ବୁକ, ଶାମୁକା, ଗେଣ୍ଡା ।

ଜଳତଣ୍ଡୁଲୀୟ—ପୁଂ. ବ. କଣ୍ଟକଶାକ ।

ଜଳତରଙ୍ଗ—ପୁଂ. ବ. (୬ତତ୍ପୁ) ଜଳର-ତରଙ୍ଗ,ଢେଉ, ପାଣିର ଲହରି,ବାଦ୍ୟ-ଯନ୍ତ୍ର ବିଶେଷ ।

ଜଳତର୍ପଣ—ବ. (୩ତତ୍ପୁ) ପିତୃଲୋକଙ୍କ ଉଦ୍ଦେଶ୍ୟରେ ଅଞ୍ଜଳି ଦ୍ୱାରା ମନ୍ତ୍ରୋ-ଚ୍ଚାରଣ ପୂର୍ବକ ଜଳଦାନ ।

ଜଳତାପିକ—ପୁଂ. ବ. (ଜଳତାପି+କ) ଇଲିଶମତ୍ସ୍ୟ,କାକଟୀମତ୍ସ୍ୟ,ଜଳତାଳ ।

ଜଳତାପୀ—ପୁଂ. ବ. (ଜଳତା+ଆ+ଇନ୍) ଇଲିଶମତ୍ସ୍ୟ ।

ଜଳତାଳ—ପୁଂ. ବ. (ଜଳତା+ଅଲ+ଅ) ଇଲିଶମତ୍ସ୍ୟ ।

ଜଳତିକ୍ତିକା—ସ୍ତ୍ରୀ. ବ. ଶଲ୍ଲକୀବୃକ୍ଷ, ଶାଲୁଇ ଗଛ ।

ଜଳତ୍ରା—ସ୍ତ୍ରୀ. ବ.(ଜଳ+ତ୍ରୈ+ଅ+ଆ) ଛତ୍ର, ଛତା, ଜଙ୍ଗମକୁଟୀ ।

ଜଳତ୍ରାସ—ପୁଂ. ବ. ( ୫ତତ୍ପୁ ) ଜଳକୁ ଭୟ, ଜଳଦେଖି ଭୟପାଇବା, ଜଳା-ତଙ୍କ ରୋଗ ।

ଜଳଦ—ପୁଂ. ବ.(ଜଳ+ଦା+କ.ଅ) ମେଘ, ମୁଥା, କର୍ପୂର,ଶାକଦ୍ୱୀପାନ୍ତର୍ଗତ ବର୍ଷବିଶେଷ, ( ତ୍ରି. ବିଂ ) ଜଳଦାତା, ଜଳଦାନକାରୀ ।

ଜଳଦକାଳ—ପୁଂ.ବ.(୬ତତ୍ପୁ)ବର୍ଷାକାଳ

ଜଳଦକ୍ଷୟ—ପୁଂ.ବ.(ବ.ବ୍ରୀ) ଶରତ୍କାଳ

ଜଳଦଗମ୍ଭୀର—ବ. (କ.ଧା)ମେଘଗର୍ଜନ-ପରି ଗମ୍ଭୀର ।

ଜଳଦତାଳ—ସ୍ତ୍ରୀ. ବ. ଦ୍ରୁତବିତାଳୀ ରାଗିଣୀ ବିଶେଷ ।

ଜଳଦର୍ଦ୍ଦୁର—ପୁଂ.ବି.ଜଳରୂପ ଦର୍ଦ୍ଦୁର ସ୍ୱର ବାଦ୍ୟଭେଦ, ତାଳିଦେଇ ଜଳବାଦନ ।

ଜଳଦସ୍ୟୁ—ପୁଂ.ବ. (କ.ଧା)ଯେଉଁମାନେ ଜଳପଥଦେଇ ଡକାୟତି ବୃତ୍ତି କରନ୍ତି ।

ଜଳଦାଗମ—ପୁଂ. ବ. (୬ତତ୍ପୁ) ବର୍ଷା-କାଳ, ବର୍ଷାଋତୁର ଆରମ୍ଭ ।

ଜଳଦାନ—ବ. (୬ତତ୍ପୁ) ଅନ୍ୟବ୍ୟକ୍ତିକୁ ପିଇବାକୁ ଜଳଦେବା, ଜଳତର୍ପଣ, କୌଣସି ଦ୍ରବ୍ୟ ଦାନକରିବା ପୂର୍ବରୁ ବ୍ରାହ୍ମଣହସ୍ତକୁ ଟିକିଏ ଜଳଦେବା ।

ଜଳଦାଶନ—ପୁଂ. ବ. (ଜଳଦ+ଅଶ+ମଁ.ଅନ) ଶାଲବୃକ୍ଷ ।

ଜଲ୍ଦି—ଯା. କ୍ରି. ବିଂ. ଅତିଶୀଘ୍ର ।

ଜଳଦୀକ୍ଷା—ବ. ଖ୍ରୀଷ୍ଟାନ୍‌ଧର୍ମରେ ଦୀକ୍ଷିତ-ହେବା ବ୍ୟକ୍ତିର ପାଣିରେ ବୁଡ଼ିବାରୂପ କର୍ମ ।

ଜଳଦୁର୍ଗ—କ୍ଲୀ. ବ. (କ.ଧା) ଦୁର୍ଗଭେଦ, ପରିଖା ଦ୍ୱାରା ଆବୃତ୍ତ ଦୁର୍ଗ, ଗଡ଼ ।

ଜଳଦେବ—ପୁଂ. ବ.(କ.ଧା) ପୂର୍ବାଷାଢ଼ା ନକ୍ଷତ୍ର, କେତୁଗ୍ରହଯୁକ୍ତ ନକ୍ଷତ୍ରଭେଦ, ଜଳସ୍ଥିତ ଦେବତା, ଜଳାଧିଷ୍ଠାତ୍ରୀ ଦେବତା ବରୁଣ ।

ଜଳଦେବତା—ସ୍ତ୍ରୀ. ବ. (୬ତତ୍ପୁ) ଜଳ-ସ୍ଥିତ ଦେବତା, ବରୁଣ ।

ଜଳଦୋଷ-ବ. (୬ତତ୍ପୁ)ଶରୀରାଭ୍ୟନ୍ତରସ୍ଥ ଦୂଷିତଜଳର ବୃଦ୍ଧି,ଜଳୋଦରରୋଗ, ଅଣ୍ଡକୋଷରେ ଦୂଷିତ ଜଳର ବୃଦ୍ଧି, କୁରୁଣ୍ଡ ।

ଜଳଦ୍ରବ୍ୟ—କ୍ଲୀ. ବ. ମୁକ୍ତା, ଶଙ୍ଖପ୍ରଭୃତି ସମୁଦ୍ରଜାତ ଦ୍ରବ୍ୟ ।

ଜଳଦ୍ରାକ୍ଷା—ସ୍ତ୍ରୀ. ବ. ଶାକାକ୍ଷୀଶାକ ।

ଜଳଦ୍ରୋଣୀ—ସ୍ତ୍ରୀ. ବ. ଜଳସେଚନୀ, ସେଣା, ସୋଡ଼ୁଅ ।

ଜଳଦ୍ୱୀପ—ପୁଂ. ବ. ( ଜଳ + ଦ୍ୱୀପ ) ଦ୍ୱୀପଭେଦ ।

ଜଳଧର—ପୁଂ. ବ. ( ଜଳ + ଧୃ+ଅ ) ମେଘ, ମୁଥା, ସମୁଦ୍ର,ତିନିଶ ବୃକ୍ଷ,(ବିଂ)

ଜଳଧାରକ ।
ଜଳଧରମାଳା—ସ୍ତ୍ରୀ. ବ. (୬ତତ୍)ମେଘଶ୍ରେଣୀ, ମେଘସମୂହ, ଛନ୍ଦୋବିଶେଷ ।
ଜଳଧରକେଦାର—ସ୍ତ୍ରୀ. ବ. ମେଘ ଓ କେଦାରଯୋଗେ ଉତ୍ପନ୍ନ ରାଗିଣୀବିଶେଷ ।
ଜଳଧାର—ପୁଂ. ବ. (ଜଳ + ଧାର + ଅ) ଶାକଦ୍ୱୀପସ୍ଥିତ ପର୍ବତ ।
ଜଳଧାରାତପସ୍ୱୀ--ଏକପ୍ରକାର ସନ୍ୟାସୀ ।
ଜଳଧାରୀ—ବି.ପଥର ବା ଧାତୁର ପାଣି ଯହିଁମଧ୍ୟରେ ଶିବଲିଙ୍ଗ ସ୍ଥାପିତ କରାଯାଏ ।
ଜଳଧାମା—ଗ୍ରା. ବି°. ଜଳଜାତ ।
ଜଳଧି—ପୁଂ. ବ. ( ଜଳ+ଧା+ଇ ) ସମୁଦ୍ର, ଅବ୍ଧି, ଦଶଶଙ୍ଖ ସଂଖ୍ୟା,ଏକଶତ ଲକ୍ଷ କୋଟିରେ ଏକ ଜଳଧି ହୁଏ ।
ଜଳଧିଗା—ସ୍ତ୍ରୀ. ବ. (ଜଳଧି + ଗମ+କ. ଅ + ଆ) ନଦୀ, ଲକ୍ଷ୍ମୀ ।
ଜଳଧିଜ—ପୁଂ.ବି. (ଜଳଧି+ଜନ + କ. ଅ) ଚନ୍ଦ୍ର, (ବି°) ସମୁଦ୍ରଜାତଦ୍ରବ୍ୟ, ସମୁଦ୍ରୋଦ୍ଭବ ।
ଜଳଧିଜା—ସ୍ତ୍ରୀ. ବ. (୫ତତ୍)ମହାଲକ୍ଷ୍ମୀ ।
ଜଳଧେନୁ—ସ୍ତ୍ରୀ.ବ.ବରାହପୁରାଣବିଧାନାନୁସାରେ ଦାନନିମିତ୍ତ କଳ୍ପିତ ଧେନୁ ।
ଜଳନକୁଳ—ପୁଂ. ବ. ଜଳଜନ୍ତୁବିଶେଷ ଓଧ ।
ଜଳନାଳୀ—ସ୍ତ୍ରୀ. ବ. (୬ତତ୍)ପାଣିନାଳ, ଲୁଳା, ପ୍ରଣାଳୀ, ନର୍ଦ୍ଦମା, ପାଣିମାହାଳ
ଜଳନିକାଶ—ବ.(୬ତତ୍) ଜଳର ନିର୍ଗମନ ।
ଜଳନିର୍ଗମ--ପୁଂ.ବ.(ବ.ଗ୍ରା)ପୟଃପ୍ରଣାଳୀ, ଡ୍ରେନ୍, ଜଳନିର୍ଗମ ମାର୍ଗ, ( ୬ତତ୍ ) କୌଣସି ସ୍ଥାନରୁ ଜଳ ବୋହିଯିବା ।
ଜଳନିର୍ଗମନ—ସ୍ତ୍ରୀ. ବ.( ୬ତତ୍ ) ଜଳନିର୍ଗମ ମାର୍ଗ, ନର୍ଦ୍ଦମା, ପୟଃପ୍ରଣାଳୀ, ପାଣି ମାହାଳ ।
ଜଳନୀଳିକା—ସ୍ତ୍ରୀ. ବ. (ଜଳନୀଳୀ+କ+ଆ) ଶୈବାଳ, ଶିଉଳ ।
ଜଳନୀଳୀ—ସ୍ତ୍ରୀ. ବ. (ଜଳ+ନୀଲ+ଅ +ଈ) ଶୈବାଳ, ଶିଉଳ ।
ଜଳନ୍ଧର—ଗ୍ରା. ବ. ଗଙ୍ଗାମର ଗୋଟିଏ ପ୍ରାଚୀନ ରାଜ୍ୟ ।
ଜଳନ୍ତା—ଗ୍ରା. ବି°. ଜଳୁଥିବା, ଯହିଁରେ ଜଳିଲା ନିଆଁ ଥାଏ ।
ଜଳନ୍ତାନିଆଁରେ କୁଣାପକା(କେ)ଇବା--ଗ୍ରା. କ୍ରି. (ଲ.ଅର୍ଥ) କ୍ରୋଧ, ବିପତ୍ତି ବା ବାଂକ୍ରି ବେଳେ ଉତ୍ତେଜିତ କରିବ ବା ସେସବୁ ବଢ଼ାଇବାଭଳି କୌଣସି କାର୍ଯ୍ୟକରିବା (ଯଥା—କଟାଘାଆରେ ଚୂନ ମାଡ଼ିବା) ।
ଜଳନ୍ଦମ—ପୁଂ. ବ. ଦାନବଭେଦ ।
ଜଳନ୍ଧର—ପୁଂ. ବ. (ଜଳ° + ଧୃ+କ. ଅ)ଅସୁରବିଶେଷ,ଜଣେ ଋଷି,ଯୋଗୀଙ୍କ ଭେଦ, ତୀର୍ଥବିଶେଷ, ପର୍ବତବିଶେଷ, ପଞ୍ଜାବପ୍ରଦେଶସ୍ଥ ନଗରବିଶେଷ ।
ଜଳପକ୍ଷୀ—ପୁଂ. ବ.ଜଳଚର ପକ୍ଷୀ ।
ଜଳପଟ୍ଟ—ଗ୍ରା. ବ. ଟରକା, ଜଳାକବାଟ ।
ଜଳପତି—ପୁଂ. ବ. ( ୬ତତ୍ ) ବରୁଣ, ସମୁଦ୍ର, ପୂର୍ବାଷାଢ଼ା ନକ୍ଷତ୍ର ।
ଜଳପଥ—ପୁଂ. ବ. (୬ତତ୍) ଜଳମାର୍ଗ, ପ୍ରଣାଳୀ, ଜଳନିର୍ଗମ ମାର୍ଗ, (୬ତତ୍) ନଦୀ ଓ ସମୁଦ୍ରଆଦି,ଯେଉଁ ବାଟରେ ଲୋକେ ନୌକାଦି ଦ୍ୱାରା ଯିବାଆସିବା କରନ୍ତି ।
ଜଳପାଇ—ଗ୍ରା. ବ. ବରପୋଲ ନାମକ ଗଛ ଓ ତହିଁର ଫଳ, ଜୁଆର ପାଣି ପଶୁଥିବା ସମୁଦ୍ର ଉପକୂଳସ୍ଥ ନିମ୍ନଭୂମି ।
ଜଳପାତ୍ର—ବ. ( ୬ତତ୍ ) ପାଣିରଖିବା ପାତ୍ର ।
ଜଳପାନ—ବ. (୬ତତ୍)ପାଣିପିଇବା ।
ଜଳପାଳି—ପ୍ରା.(ବାଲେଶ୍ବର)ବ. ସ୍ତ୍ରୀକୁ ମିଳୁଥିବା ମାସିକ ଅର୍ଥ ସାହାଯ୍ୟ ।
ଜଳପାରାବତ—ପୁଂ. ବ. ପକ୍ଷୀବିଶେଷ, କୌପୀ, ଜଳକପୋତ, ପାଣିକୁଆ ।
ଜଳପିଚକା—ଗ୍ରା. ବ. ସୁଗନ୍ଧ ଜଳ ପୂର୍ଣ୍ଣ କରି ଉତ୍ସବାଦିକୁ ନିମନ୍ତ୍ରିତ ଲୋକଙ୍କ ଉପରକୁ ମାରିବା ପିଚକାରୀ ।
ଜଳପିଣ୍ଡ—କ୍ଲୀ. ବ. ଅଗ୍ନି ।
ଜଳପିପ୍ପଲୀ—ସ୍ତ୍ରୀ. ବ. ପିପ୍ପଳୀବିଶେଷ, କଟଢେଙ୍ଗା ।
ଜଳପିପ୍ପଳିକା—ସ୍ତ୍ରୀ. ବ. ଜଳପିପ୍ପଳୀ ।
ଜଳପିପ୍ପିକା—ସ୍ତ୍ରୀ. ବ. ମତ୍ସ୍ୟ ।
ଜଳପୁର—ପୁଂ.ବ.(୬ତତ୍)ଜଳସମୂହ ।
ଜଳପୁଷ୍ପ—କ୍ଲୀ. ବ. ପଦ୍ମ ପ୍ରଭୃତି ଜଳଜ ପୁଷ୍ପ ।
ଜଳପୂର—ପୁଂ. ବ. ଜଳପୂର୍ଣ୍ଣ ନଦୀ ।
ଜଳପୃଷ୍ଠଜା—ସ୍ତ୍ରୀ. ବ. (ଜଳପୃଷ୍ଠ + ଜନ +ଅ + ଆ) ଶୈବାଳ, ଶିଉଳ ।
ଜଳପ୍ରଣାଳୀ—ସ୍ତ୍ରୀ. ବ. (କ.ଧା)ନର୍ଦ୍ଦମା ।
ଜଳପ୍ରଦାନ—କ୍ଲୀ. ବ. (୬ତତ୍) ପ୍ରେତ ଉଦ୍ଦେଶ୍ୟରେ ଜଳଦାନ,ତର୍ପଣ ପ୍ରଭୃତି ।
ଜଳପ୍ରଦାନିକ—କ୍ଲୀ.ବ. ସ୍ତ୍ରୀପର୍ବର ଅନ୍ତର୍ଗତ ଜଳପ୍ରଦାନିକ ପର୍ବାଧ୍ୟାୟ ।
ଜଳପ୍ରପା—ସ୍ତ୍ରୀ. ବ. (୬ତତ୍) ଦଳଦାନ ଗୃହ, ଜଳସତ୍ର ପାନୀୟ ଶାଳା ।
ଜଳପ୍ରପାତ—ପୁଂ.ବ(୬ତତ୍)ଜଳପତନ, ଉଚ୍ଚସ୍ଥାନରୁ ଜଳପତନ ।
ଜଳପ୍ରବାହ—ବ. ( ୬ତତ୍ ) ଜଳର ସ୍ରୋତ ।
ଜଳପ୍ରାନ୍ତ—ପୁଂ. ବ. ( ୬ତତ୍ ) ଜଳର ସମୀପ ସ୍ଥାନ ।
ଜଳପ୍ରାୟ—କ୍ଲୀ. ବ. (ବ.ଗ୍ରା)ଜଳବହୁଳ ସ୍ଥାନ, ଅନୂପଦେଶ, (ବି°) ଜଳବହୁଳ, ଜଳପୂର୍ଣ୍ଣ ।
ଜଳପ୍ରିୟ—ପୁଂ.ବ. (ବ.ଗ୍ରା)ଗୃଦ୍ଧକପକ୍ଷୀ, ମତ୍ସ୍ୟ, (ବି°. ବ.ଗ୍ରା) ଯେ ଜଳକୁ ଭଲପାଏ ।
ଜଳପ୍ରେତ—ପୁଂ.ବ.(୬ତତ୍)ଜଳର ଭୂତ ।
ଜଳପ୍ଲବ—ପୁଂ.ବ.(ଜଳ + ପ୍ଲୁ + କ.ଅ) ଜଳନକୁଳ, ଓଧ, (ସ୍ତ୍ରୀ) ଜଳପ୍ଲବୀ ।
ଜଳପ୍ଲାବନ—କ୍ଲୀ. ବ. (୩ତତ୍) ବନ୍ୟା, ଜଳରେ ଦେଶ ବୁଡ଼ିଯିବା, ପ୍ରଳୟବିଶେଷ ।
ଜଳପ୍ଲାବିତ—ତ୍ରି. ବି°. (୩ତତ୍)ଜଳରେ ମଗ୍ନ, ଜଳରେ ଆଚ୍ଛନ୍ନ (ଦେଶ) ।
ଜଳଫଳ—କ୍ଲୀ.ବ. (ଜଳ+ ଫଳ)ଶୃଙ୍ଗା-

ଟକ, ଶିଙ୍ଗଡ଼ା, ପାମାଫଳ ।
ଜଳଫିମ୍ପି—ଗ୍ରା. ବ. ଜଳଫିମ୍ପି, ଡାହୁକ-ଜାତୀୟ କୂଳେଚରବର୍ଗର ପକ୍ଷୀବିଶେଷ, ଜଳକୁକ୍କୁଟ । [ ମତ୍ସ୍ୟ ।
ଜଳବନ୍ଧ—ପୁଂ. ବ. (ଜଳ+ବନ୍ଧ+ଅ)
ଜଳବନ୍ଧକ-ପୁଂ. ବ. ( ଜଳ+ବନ୍ଧ+ଅକ)ଜଳସ୍ରୋତର ପ୍ରତିରୋଧକ ସେତୁ
ଜଳବନ୍ଧୁ—ପୁଂ. ବ. (ବ.ଗ୍ରୀ) ମତ୍ସ୍ୟ ।
ଜଳବାଳକ—ପୁଂ. ବ. ବିନ୍ଧ୍ୟପର୍ବତ ।
ଜଳବାଳିକା—ସ୍ତ୍ରୀ.ବ.ବିଦ୍ୟୁତ୍, ବିଜୁଳି ।
ଜଳଭଞ୍ଜନ—କ୍ଳୀ. ବ. (୭ତତ୍)ଜଳପାତ୍ର
ଜଳଭୀତ—ସ୍ତ୍ରୀ. ବ. (୫ତତ୍) ଜଳାତଙ୍କ ରୋଗ । [ ରୋଗ ।
ଜଳଭୀତି—ସ୍ତ୍ରୀ. ବ. (୫ତତ୍) ଜଳାତଙ୍କ
ଜଳଭୁ—ପୁଂ.ବ. (ଜଳ+ଭୂ+କ୍ୱିପ୍) ମେଘ,ଏକପ୍ରକାର କର୍ପୂର,(ସ୍ତ୍ରୀ.)ଜଳର ଆଧାର ଭୂମି ।
ଜଳଭୂତ—ପୁଂ. ବ. ( ୭ତତ୍ ) ଜଳର ପ୍ରେତ ବା ପିଶାଚ ।
ଜଳଭୂମି—ବ.(କ.ଧା)ଜଳପ୍ରବାହ ଭୂମି, ଜଳାଭୂମି ।
ଜଳଭୂଷଣ—କ୍ଳୀ.ବ. ବାୟୁ ।
ଜଳଭୃତ୍—ପୁଂ. ବ. (ଜଳ+ଭୃ+କ୍ୱିପ୍)ମେଘ, ଏକପ୍ରକାର କର୍ପୂର, ଜଳ-ରଖିବାର ପାତ୍ର,(ବିଂ)ଯେ ଜଳକୁ ଧାରଣ କରେ ।
ଜଳମକ୍ଷିକା—ସ୍ତ୍ରୀ.ବ.(୭ତତ୍)ଜଳର କୃମି, ଜଳର ପୋକ ।
ଜଳମଗ୍ନ—ବିଂ.(୭ତତ୍) ପାଣିରେ ବୁଡ଼ି-ଯାଇଥିବା, ପାଣିରେ ବୁଡ଼ି ରହିଥିବା ।
ଜଳମଜ୍ଜନ—କ୍ଳୀ.ବ. (୭ତତ୍) ଜଳରେ ବୁଡ଼ିବା ।
ଜଳମଣ୍ଡୂକ—କ୍ଳୀ.ବ. ମଣ୍ଡୂକରବ ସଦୃଶ ବାଦ୍ୟ କାରକ ।
ଜଳମଦ୍‌ଗୁ—ପୁଂ.ବ.ମାଛରଙ୍କାଚଢ଼େଇ ।
ଜଳମଧୂକ—ପୁଂ. ବ. ଜଳାଶୟ ନିକ-ଟରେ ଜନ୍ମୁବା ଏକପ୍ରକାର ମହୁଆ ଗଛ, ମହାଦେବଙ୍କର ଗୋଟିଏ ମୂର୍ତ୍ତି, ଜଳ-ମଧ୍ୟ ଚନ୍ଦ୍ରାଦି ।

ଜଳମନ୍ଦିର (୭ତତ୍) ଗ୍ରୀଷ୍ମକାଳରେ ଶାନ୍ତି ଓ ଶୀତଳତା ଲାଭ ନିମନ୍ତେ ନିର୍ମିତ ହୋଇଥିବା ଚତୁର୍ଦ୍ଦିଗରେ ଜଳ ବେଷ୍ଟିତ ଗୃହ ।
ଜଳମୟ—ତ୍ରି.ବିଂ.(ଜଳ+ମୟ) ଜଳ-ବହୁଳ, ଜଳପୂର୍ଣ୍ଣ, (ସ୍ତ୍ରୀ.) ଜଳମୟୀ ।
ଜଳମଳ—ବ.(୭ତତ୍)ଫେଣ,ଫେମିଲ ।
ଜଳମସି—ପୁଂ. ବ (ଜଳ+ମସ+ଇ) ମେଘ, କର୍ପୂରବିଶେଷ ।
ଜଳମାର୍ଗ—ପୁଂ.ବ.ପ୍ରଣାଳୀ,ଜଳନିର୍ଗମ-ମାର୍ଗ, ଡ୍ରେନ୍ , ଜଳପଥ ।
ଜଳମାର୍ଜାର—ପୁଂ. ବ. (୭ତତ୍) ଜଳ-ନକୁଳ, ଉଧ, ଉଦ୍‌ବିଡ଼ାଳ ।
ଜଳମାତୃକା—ସ୍ତ୍ରୀ.ବ.(କ.ଧା) ଜଳରେ ବାସ କରୁଥିବା ସାତଗୋଟି ଦେବୀ, ଜଳସ୍ଥିତା ମାତୃଭେଦ ।
ଜଳମାନଯନ୍ତ୍ର—ଯେଉଁ ଯନ୍ତ୍ରଦ୍ୱାରା କେଉଁ-ଠାରେ କେତେ ଜଳ ଅଛି ପରିମାଣ ଜଳର ଆପେକ୍ଷିକ ଗୁରୁତ୍ୱ ଜଣାଯାଏ ।
ଜଳମାନୁଷ—ବ. (କ.ଧା) ଏକ କଳ୍ପିତ ଜଳଜନ୍ତୁ, ଯାହା ଦେହର ନାଭିଠାରୁ ଉପରଭାଗ ମନୁଷ୍ୟପରି ଓ ତଳଅଂଶ ମାଛପରି ।
ଜଳମୁକ୍—ପୁଂ. ବ. ( ଜଳ+ମୁଚ୍+କ୍ୱିପ୍ ) ମେଘ, କର୍ପୂରଭେଦ, ତ୍ରି.ବିଂ. ଜଳମୋଚକ କର୍ତ୍ତା ।
ଜଳମୂର୍ତ୍ତି—ପୁଂ. ବ. ( ବ.ଗ୍ରୀ ) ଶିବ, ମହାଦେବ । [ ପଥର ।
ଜଳମୂର୍ତ୍ତିକା—ସ୍ତ୍ରୀ. ବ. କରକା, କୁଆ-
ଜଳମୋଦ—ପୁଂ. ବ. (ଜଳ+ମୁଦ+ଣିଚ୍+ଅ) ଉଶୀର, ଖସ୍‌ଖସ୍, ବେଣା-ଚେର ।
ଜଳମୂଲ—କ୍ଳୀ.ବ. ନଦୀ. ଅଞ୍ଜନ ।
ଜଳଯନ୍ତ୍ର—କ୍ଳୀ. ବ. (୭ତତ୍) ଧାରାଯନ୍ତ୍ର, କୂପାଦିରୁ ପାଣି କାଢ଼ିବାର ଯନ୍ତ୍ରବିଶେଷ, କପିଯନ୍ତ୍ର, କାଳଜ୍ଞାପକ ଘଟିଯନ୍ତ୍ରଭେଦ, ଜଳଘଡ଼ି, ଜଳ ଗୁଣିବାର ଯନ୍ତ୍ର, ପିଚ-କାରୀ ।
ଜଳଯନ୍ତ୍ରଗୃହ—କ୍ଳୀ.ବ.ଜଳ ମଧ୍ୟସ୍ଥିତ-

ଗୃହ, ଜଳଟୁଙ୍ଗି, ଗୃହପାଖେ ଜଳ-ବେଢ଼ିଥିବା ଆରାମଗୃହ ।
ଜଳଯନ୍ତ୍ରନିକେତନ—କ୍ଳୀ. ବ. ଜଳଯନ୍ତ୍ର-ଗୃହ ଦେଖ । [ ଦେଖ ।
ଜଳଯନ୍ତ୍ରମନ୍ଦିର—କ୍ଳୀ. ବ. ଜଳଯନ୍ତ୍ର ଗୃହ
ଜଳଯାତ୍ରା—ସ୍ତ୍ରୀ.ବ.(୭ତତ୍) ଅଭିଷେକାଦି ଶୁଭକର୍ମ ନିମିତ୍ତ ଜଳ ଆଣିବା ପାଇଁ ଯାତ୍ରା, ରାଜପୁତମାନଙ୍କର ଅନୁଷ୍ଠିତ ଏକ ବ୍ରତ, ବୈଷ୍ଣବମାନଙ୍କର ଜ୍ୟେଷ୍ଠ-ପୂର୍ଣ୍ଣିମାଦିନ ଅନୁଷ୍ଠିତ, ଉତ୍ସବ, ଜଳ ଆଣିବାପାଇଁ ଯିବା ।
ଜଳଯାତ୍ରୀ—ପୁଂ. ବିଂ. ଜଳପଥରେ ଗମନକାରୀ ବ୍ୟକ୍ତି ।
ଜଳଯାନ—କ୍ଳୀ.ବ.(୭ତତ୍) ଜଳଗମନ-ସାଧନ ନୌକା,ପୋତ, ଜାହାଜାଦି ।
ଜଳଯୋଗ—ବ. ଜଳଖିଆ ।
ଜଳରଙ୍କ—ପୁଂ.ବ.ବକପକ୍ଷୀ,କାଙ୍କପକ୍ଷୀ।
ଜଳରଙ୍କୁ—ପୁଂ. ବ. ଦାତ୍ୟୂହ ପକ୍ଷୀ, ଡାହୁକ ପକ୍ଷୀ ।
ଜଳରଞ୍ଜ—ପୁଂ.ବ. (ଜଳ+ରଞ୍ଜ+କ.ଅ) ବକପକ୍ଷୀ, କଙ୍କପକ୍ଷୀ । [ ସର୍ପ ।
ଜଳରଣ୍ଡ—ପୁଂ.ବ.ଜଳାବର୍ତ୍ତ,ଜଳକଣା,
ଜଳରଥ—ବ. (୭ତତ୍) ନୌକା ।
ଜଳରସ—ପୁଂ. ବ. (ବ.ଗ୍ରୀ) ଲବଣ ।
ଜଳରାକ୍ଷସ—ସ୍ତ୍ରୀ. ବ. ଲବଣସମୁଦ୍ରସ୍ଥିତ ସିଂହିକାନାମକ ରାକ୍ଷସୀ ।
ଜଳରାଶି—ପୁଂ.ବ. (୬ତତ୍) ଜଳସମୂହ, (ବ.ଗ୍ରୀ) ସମୁଦ୍ର ।
ଜଳରୁଣ୍ଡ—ପୁଂ.ବ.ଜଳରଣ୍ଡ, ଜଳାବର୍ତ୍ତ, ଜଳକଣିକା, ସର୍ପ ।
ଜଳରୁହ—କ୍ଳୀ.ବ.(ଜଳ+ରୁହ+କ.ଅ) ଜଳଜ, ପଦ୍ମ, (ବିଂ) ଜଳରୋହି ପ୍ରାଣୀ-ମାତ୍ର, ଜଳଜାତ ।
ଜଳରୂପ—ପୁଂ.ବ. (ବ.ଗ୍ରୀ) ମକରରାଶି, (୬ତତ୍) ଜଳର ଆକାର, (ସ୍ତ୍ରୀ) ଜଳ-ରୂପୀ ।
ଜଳଲତା—ସ୍ତ୍ରୀ. ବ. ତରଙ୍ଗ, ଢେଉ ।
ଜଳଲ୍ଲଗୀ—ଗ୍ରା.ବ.ଦେବବିଗ୍ରହଙ୍କ ଉପରେ ପାଣି ଢାଳିବା, (ବିଂ) ଯେଉଁ ଦେବ

ବଗଡ଼ ଉପରେ ପାଣି ଢଳାଯାଉଥାଏ ।
ଜଳଲୋହିତ—ପୁଂ. ବ. ରାକ୍ଷସବିଶେଷ ।
ଜଳବରଣ୍ଡ—ପୁଂ. ବ. ଜଳବସନ୍ତ, ମସୂରିକା, ହାଡ଼ଫୁଟି ।
ଜଳବଲ୍କଲ —ପୁଂ. ବ. କୁମ୍ଭିକା, ଦଳ, ବୋରଝାଞ୍ଜି ।
ଜଳବଲ୍ଲୀ—ସ୍ତ୍ରୀ. ବ. ଶୃଙ୍ଗାଟକ, ଶିଙ୍ଗଡ଼ା
ଜଳବସ୍ତି—ବ. ନାଭି ବୁଡ଼ିବା ଭଳି ପାଣିରେ ବସି ଗୋଡ଼ର ଦୁଇ ବୁଢ଼ା-ଆଙ୍ଗୁଠି ଭୂଇଁରେ ଲଗାଇ ଶୂନ୍ୟରେ ଅବସ୍ଥିତ, ଦୁଇଗୁଲ୍‌ଫ ଉପରେ ଗୁହ୍ୟକୁ ଆକୁଞ୍ଚନ ପ୍ରସାରଣ କରିବା, (ଏହାକୁ ଉତ୍କଟ ଆସନ ବୋଲଯାଏ ।
ଜଳବାଦିତ—କ୍ଲୀ.ବ. ଜଳବାଦ୍ୟ ।
ଜଳବାଦ୍ୟ—କ୍ଲୀ. ବ.ହାତତାଳି ଦ୍ୱାରା ଜଳବାଦନ ।
ଜଳବାନୀର—ପୁଂ. ବ. ଜଳବେତସ ।
ଜଳବାୟସ—ପୁଂ.ବ.(୬ତତ୍)ମଦ୍‌ଗୁପକ୍ଷୀ ପାଣିକୁଆ ପକ୍ଷୀ ।
ଜଳବାୟୁ—ବ. କୌଣସି ସ୍ଥାନର ଜଳ ଓ ବାୟୁର ବିଶେଷତ୍ୱ ।
ଜଳବାୟୁପରିବର୍ତ୍ତନ—ବ. ଏକସ୍ଥାନର ଜଳବାୟୁ ଦ୍ୱାରା ଶରୀର ସ୍ୱାସ୍ଥ୍ୟ ନଷ୍ଟ ହେଲେ ସ୍ୱାସ୍ଥ୍ୟ ପରିବର୍ତ୍ତନ ପାଇଁ ଏକ ସ୍ଥାନରୁ ଅନ୍ୟସ୍ଥାନକୁ ବାସ ପରିବର୍ତ୍ତନ
ଜଳବାଳକ—ପୁଂ. ବ. ବିନ୍ଧ୍ୟପର୍ବତ ।
ଜଳବାସ—କ୍ଲୀ. ବ. ଉଶୀର, (ପୁଂ. ବ) (ଜଳ + ବସ + ଣିଚ୍+ଅ) ବିଷ୍ଣୁକନ୍ଦ, ସଲିଳନିବାସ, ଜଳରେ ଅବସ୍ଥାନ ।
ଜଳବାହ—ପୁଂ.ବ. (ଜଳ+ବହ+ଅ) ମେଘ, (ବିଂ)ଜଳବାହକ, ପାଣିବୁହାଳି ।
ଜଳବାହକ—ପୁଂ.ବିଂ. ଜଳବହନକାରୀ, ଭାରୁଆ, (ସ୍ତ୍ରୀ) ଜଳବାହିକା ।
ଜଳବାହନ—ପୁଂ. ବିଂ. ଜଳ ଯେ ବହନ କରେ ।
ଜଳବ—ଗ୍ରା. ବ. କୁଣ୍ଡଳାକୃତ ଘୃତପକ୍ୱ ମିଷ୍ଟାନ୍ନବିଶେଷ ।
ଜଳବିଜ୍ଞାନ—ବ. ଜଳସମ୍ବନ୍ଧେ ବିଶିଷ୍ଟ ଜ୍ଞାନ ବା ବିଦ୍ୟା, ବାରିବିଜ୍ଞାନ ।

ଜଳବିନ୍ଦୁ—ବ. (୬ତତ୍) ପାଣିର ଟୋପା, ପାଣିର ଶୀକର ।
ଜଳବିନ୍ଦୁଜା—ସ୍ତ୍ରୀ. ବ. (ଜଳ+ବିନ୍ଦୁ+ଜନ+ଅ+ଆ) ଯାବନାଳୀ ଶର୍କରା, ମେନା, ତୀର୍ଥଭେଦ, ( ବିଂ ) ଜଳବିନ୍ଦୁଜାତ ।
ଜଳବିପ୍ରୁଷ—ଗ୍ରା. ବ. ଜଳବିନ୍ଦୁ ।
ଜଳବିମ୍ବ—ବ. (୬ତତ୍) ପାଣିଫୋଟକା ।
ଜଳବିଲ୍ୱ—ପୁଂ. ବ. କର୍କଟ, କଙ୍କଡ଼ା, ପଞ୍ଚାଙ୍ଗ, କଚ୍ଛପ, ଜଳଚତ୍ୱର ।
ଜଳବିଷୁବ—କ୍ଲୀ. ବ. ତୁଳାସଂକ୍ରାନ୍ତି, କାର୍ତ୍ତିକ ମାସର ସଂକ୍ରାନ୍ତି ।
ଜଳବିହାର—ପୁଂ. ବ. (୭ତତ୍) ଜଳକେଳି, ଜଳକ୍ରୀଡ଼ା । [ ପୁନ୍ଥ ।
ଜଳବୀର୍ଯ୍ୟ—ପୁଂ. ବ. ଭରତଙ୍କର ଏକ
ଜଳବୁଦ୍‌ବୁଦ—ବ.(୬ତତ୍)ପାଣିଫୋଟକା ।
ଜଳବୃଦ୍ଧି—ବ. (୬ତତ୍) ଶରୀରାଭ୍ୟନ୍ତରସ୍ଥ ଦୂଷିତ ଜଳର ବୃଦ୍ଧି,ଜଳୋଦର ରୋଗ, ଅଣ୍ଡକୋଷରେ ଦୂଷିତ ଜଳବୃଦ୍ଧି, କୁରଣ୍ଡ ।
ଜଳବୃଶ୍ଚିକ—ପୁଂ.ବ. ଚିଙ୍ଗୁଡ଼ି ମାଛ,ବଗ୍ଧ-ମାଳିଆ ଚିଙ୍ଗୁଡ଼ି ।
ଜଳବେଣୀ—ବ. (୬ତତ୍) ଜଳର ଧାର, ଜଳସ୍ରୋତ ।
ଜଳବେତସ—ପୁଂ. ବ. ବାନୀର ବୃକ୍ଷ, ପାଣିବେଗୁନିଆ ଗଛ ।
ଜଳବୈକୃତ—କ୍ଲୀ. ବ. ଅମଙ୍ଗଳ ସୂଚକ ନଦୀପ୍ରଭୃତିର ଜଳବିକାରଭେଦ ।
ଜଳବ୍ୟଥ—ପୁଂ. ବ. ମତ୍ସ୍ୟବିଶେଷ, କଉମାଛ ।
ଜଳବ୍ୟାଧ—ପୁଂ. ବ. (ଜଳ+ବ୍ୟଧ+ଅ) କଙ୍କତୋଟ ମତ୍ସ୍ୟ, କଙ୍କାଳମାଛ ।
ଜଳବ୍ୟାଳ—ପୁଂ. ବ. ପାଣିଧଣ୍ଡ ସାପ, କ୍ରୂରକର୍ମା ଜଳଜନ୍ତୁ ।
ଜଳବ୍ରାହ୍ମୀ—ସ୍ତ୍ରୀ. ବ. ହିଡ଼ମିଚ୍ଛ ଶାଗ, ହିଲମୋଚିକା ।
ଜଳଶଯ୍ୟ—ପୁଂ. ବ. (ଜଳ+ଶୀ+ଅ) ବିଷ୍ଣୁ । [ ବିଷ୍ଣୁ ।
ଜଳଶୟନ—ପୁଂ.ବ. (ଜଳ+ଶୀ+ଅନ)

ଜଳଶାୟୀ—ପୁଂ.ବ. (ଜଳ + ଶୀ + ଇନ୍) ଏକ ରକମ ସନ୍ନ୍ୟାସୀ, ଏମାନେ ଉଦୟାସ୍ତ ପର୍ଯ୍ୟନ୍ତ ଜଳରେ ଦେହ ରଖି ତପସ୍ୟା କରନ୍ତି, ପ୍ରଳୟ ଜଳ ଉପରେ ଶୟିତ ବିଷ୍ଣୁ, (ବିଂ)ଜଳ ଉପରେ ଶୟନ କରିଥିବା,(ଗ୍ରା.ବ) ଶିବଲିଙ୍ଗଙ୍କୁ ପାଣିରେ ବୁଡ଼ାଇ ରଖିବା, (ଗ୍ରା.ବିଂ) ପାଣିରେ ବୁଡ଼ାଇ ରଖାଯାଇଥିବା (ଦେବବିଗ୍ରହ) ।
ଜଳଶୀକର—ବ.( ୬ତତ୍) ପାଣିର କ୍ଷୁଦ୍ର କଣା ।
ଜଳଶୁକ୍ତି—ସ୍ତ୍ରୀ. ବ. ( ୬ତତ୍ ) ଶମ୍ବୁକ, ଶାମୁକା ।
ଜଳଶୂକ—କ୍ଲୀ. ବ. ଶୈବାଳ,ଶିଉଳି ।
ଜଳଶୂକର—ପୁଂ. ବ. (୬ତତ୍) କୁମ୍ଭୀର
ଜଳଶୌଚ—କ୍ଲୀ. ବ. ( କ.ଧା ) ମଳ ତ୍ୟାଗାନ୍ତେ ଗୁହ୍ୟଦ୍ୱାରାଦି ଜଳଦ୍ୱାରା ଧୌତକରଣ ।
ଜଳସତ୍ର—ବ. (୬ତତ୍) ପାଣିଛତ୍ର,ଯେଉଁଠାରେ ତୃଷାର୍ତ୍ତ ବ୍ୟକ୍ତିଙ୍କୁ ଜଳଦାନ କରାଯାଏ । [ ପୁତ୍ର ।
ଜଳସନ୍ଧ—ପୁଂ. ବ. ଧୃତରାଷ୍ଟ୍ରଙ୍କର ଏକ
ଜଳସମୁଦ୍ର—ପୁଂ. ବ. ଲବଣାଦି ସାତ ସମୁଦ୍ର ମଧ୍ୟରେ ଶେଷ ସମୁଦ୍ର ।
ଜଳସରସ୍—କ୍ଲୀ.ବ. ସରୋବରବିଶେଷ ।
ଜଳସର୍ପିଣୀ—ସ୍ତ୍ରୀ. ବ. (ଜଳ + ସୃପ + ଇନ୍+ଈ) ଜଳୌକା, ଜୋକ ।
ଜଳସା—ଯା. ବ. ମହୋତ୍ସବ, ମଜ୍ଲିସ, ସମ୍ମିଳନୀ, ମଜଲିସ୍ ।
ଜଳସାତ୍—ଗ୍ରା. ବିଂ. ଜଳରେ ନିକ୍ଷିପ୍ତ, ଜଳରେ ପରିଣତ । [ବିଶେଷ ।
ଜଳସିଂହ—ପୁଂ. ବ. ହିମଜାତୀୟ ଜଳଜୀବ
ଜଳସିକ୍ତ—ବିଂ. ( ୭ତତ୍ ) ପାଣି ଛିଞ୍ଚା ହୋଇଥିବା, ଯାହାଉପରେ ପାଣି ଛିଞ୍ଚା ହୋଇଅଛି, ଆର୍ଦ୍ର ।
ଜଳସୂଚି—ପୁଂ. ବ. କଙ୍କତୋଟ ମତ୍ସ୍ୟ, କାଙ୍କଳିଆ ମାଛ, ଶୃଙ୍ଗାଟକ, ଶିଙ୍ଗଡ଼ା, ଶୁଶୁକ,ଶିଶୁମାର,(ସ୍ତ୍ରୀ)ଜଳୌକା,କାକ ।
ଜଳସେକ—ପୁଂ. ବ. (୭ତତ୍) ଜଳ-ସେଚନ ।

ଜଳସେଚନ—କ୍ଲୀ.ବି. (୬ତତ୍)ଜଳଦ୍ୱାରା ଛିଞ୍ଚିବା, ଜଳଦ୍ୱାରା ଓଦାକରିବା ।

ଜଳସ୍ତମ୍ଭ—ବି. (୬ତତ୍) ନଦୀ ଓ ସମୁଦ୍ର ଗର୍ଭରୁ ଉତ୍ଥିତ କିମ୍ବା ତହିଁରେ ମେଘରୁ ପତିତ ପ୍ରକାଣ୍ଡ ସ୍ତମ୍ଭାକାର ଜଳରାଶି ।

ଜଳସ୍ତମ୍ଭନ—କ୍ଲୀ.ବି. ( ଜଳ+ସ୍ତମ୍ଭ+ ଅନ) ମନ୍ତ୍ରାଦି ଦ୍ୱାରା ଜଳଗତି ପ୍ରଭୃତିର ନିବାରଣ ।

ଜଳସ୍ଥଳ—କ୍ଲୀ. ବି. (୬ତତ୍) ଜଳକୁମ୍ଭ, ଜଳାଶୟ, ଜଳାଧାର, (ଦ୍ୱନ୍ଦ୍ୱ) ସଲିଳ ଓ ଭୂମି ।

ଜଳସ୍ଥା—ସ୍ତ୍ରୀ.ବି. (ଜଳ + ସ୍ଥା+ଅ+ଆ) ଗଣ୍ଡଦୂର୍ବା, (ବି°) ଜଳସ୍ଥିତ ।

ଜଳସ୍ଥାନ—କ୍ଲୀ. ବି. ଜଳାଶୟ ।

ଜଳସ୍ଥାୟ—ପୁଂ.ବି.ଜଳସ୍ଥାନ, ସରୋବର

ଜଳସ୍ପର୍ଶ—ବି.(୬ତତ୍) ପାଣିକୁ ଛୁଇଁବା, ପାଣି ପିଇବା । [ ଦେଖ ।

ଜଳସ୍ରୋତ—ବି. (୬ତତ୍) ଜଳପ୍ରବାହ

ଜଳହ—କ୍ଲୀ. ବି. ( ଜଳ+ହନ+ଅ ) କ୍ଷୁଦ୍ର ବଳ ଯନ୍ତ୍ରଗୃହ ।

ଜଳହରଣ—କ୍ଲୀ. ବି. ୬ତତ୍; ( ଜଳ+ ହରଣ ) ଜଳର ସ୍ଥାନାନ୍ତରନୟନ, ଛନ୍ଦୋଭେଦ ।

ଜଳହସ୍ତୀ—ପୁଂ. ବି. (୬ତତ୍)ଜଳହାତୀ, ଜଳସ୍ଥିତ ହସ୍ତୀବିଶେଷ, ବୃହଦାକାର ଏକପ୍ରକାର ସାମୁଦ୍ରିକ ଜୀବ ।

ଜଳହାର—ତ୍ରି. ବି°. (ଜଳ+ହୃ+ଅ) ଜଳହରଣକାରୀ, ଜଳବାହକ, ଭରିଆ, (ସ୍ତ୍ରୀ) ଜଳହାରୀ ।

ଜଳହାରକ—ତ୍ରି. ବି°. ( ଜଳ+ହୃ+ ଅକ) ଜଳବାହକ, ଯେ ପାଣି ବୁହେ।

ଜଳହାରୀ—ପୁଂ. ବି. (ଜଳ+ହୃ+ଇନ୍) ଯେ ଜଳ ବହନ କରେ, ଜଳବାହକ, (ସ୍ତ୍ରୀ) ଜଳହାରିଣୀ ।

ଜଳହାସ—ପୁଂ.ବି.(ଜଳ+ହାସ)ସମୁଦ୍ର-ଫେଣା, ଫେଣ ।

ଜଳହୋମ—ପୁଂ. ବି. (୬ତତ୍)ବୈଶ୍ୱ-ଦେବାଦିର ଉଦ୍ଦେଶ୍ୟରେ ଜଳରେ ଆହୁତି ପ୍ରଦାନ ।

ଜଳହ୍ରଦ—ପୁଂ. ବି. ଜଳବହୁଳ ହ୍ରଦ, ଜଳାଶୟ ।

ଜଳା—ଗ୍ରା. ବି. ଜଳପ୍ଲାବିତ ସ୍ଥାନ,ଛିଦ୍ର, ରନ୍ଧ୍ର, ଜଳକବାଟି ।

ଜଳାଇବା—ଗ୍ରା. କ୍ରି. ପ୍ରଦୀପ୍ତ କରିବା, ନିଆଁ ଲଗାଇବା, ଅଗ୍ନିକୁ ତେଜିବା, (ଲ.ଅର୍ଥ)ଜ୍ୱାଳାଦେବା, ବିରକ୍ତକରିବା, ପୋଡ଼ିଦେବା ।

ଜଳାକବାଟ—ଗ୍ରା.ବି. ଝରକା, ଗବାକ୍ଷ।

ଜଳାକର—ପୁଂ. ବି ୬ତତ୍; (ଜଳ+ ଆକର) ସମୁଦ୍ର, ନଦୀ ପ୍ରସ୍ରବଣ ।

ଜଳାକା—ସ୍ତ୍ରୀ.ବି. (ଜଳ+ଆ+କୈ+ ଅ+ଆ) ଜଳୌକା, ଜୋକ ।

ଜଳାକାଶ—ପୁଂ.ବି. ଜଳ ପ୍ରତିବିମ୍ବଯୁକ୍ତ, ଜଳବିଶିଷ୍ଟ ଆକାଶ ମେଘ ଓ ନକ୍ଷତ୍ର-ଯୁକ୍ତ ଆକାଶ ।

ଜଳାକ୍ଷୀ—ସ୍ତ୍ରୀ. ବି. (ଜଳ+ଅକ୍ଷ+ଈ) ଜଳପିପ୍ପଳୀ ।

ଜଳାଖୁ—ପୁଂ.ବି. (୬ତତ୍) ଜଳନକୁଳ, ଉଦ୍ବିଡ଼ାଳ, ଜଳମାର୍ଜାର, ଓଧ ।

ଜଳାଙ୍କ—ବି.ଯେଉଁ ଅଞ୍ଚଳରୁ ବର୍ଷାପାଣି ଗଡ଼ିଆସି କୌଣସି ନଦୀରେ ପଡ଼େ ।

ଜଳାଚରଣୀୟ—ବି°. ଯେଉଁ ଜାତିର ସ୍ପୃଷ୍ଟ ଜଳ ବ୍ରାହ୍ମଣାଦିର ବ୍ୟବହାର ଯୋଗ୍ୟ ।

ଜଳାଞ୍ଜଳ—ପୁଂ.ବି.(ଜଳ+ଅଞ୍ଜ+ଅଳ) ଶୈବାଳ, ସ୍ୱଭାବତଃ ଜଳନିର୍ଗମ ।

ଜଳାଞ୍ଜଳି—ପୁଂ. ବି. ( ୬ତତ୍ ) ଜଳର ଅଞ୍ଜଳି, ଆଞ୍ଜୁଳି ପ୍ରମାଣ ଜଳ, ତର୍ପଣ, ଦାହପରେ ପ୍ରେତ ଉଦ୍ଦେଶ୍ୟରେ ଜଳ-ଦାନ, ( ଲ.ଅର୍ଥ ) ଯେଉଁ ମୃତ ବ୍ୟକ୍ତି ଉଦ୍ଦେଶ୍ୟରେ ଜଳାଞ୍ଜଳି ଦିଆଯାଏ ତାହାସଙ୍ଗେ ଜଳାଞ୍ଜଳି ଦାତା ସମ୍ବନ୍ଧ ତ୍ୟାଗକରି କରିଥିବାଦୃଷ୍ଟିରେ,କୌଣସି ଦୃଷ୍ଟିରେ କୌଣସି ବିଷୟ ସଙ୍ଗେ ସମ୍ବନ୍ଧ ତ୍ୟାଗ ।

ଜଳାଟନ—ପୁଂ. ବି. ( ଜଳ+ଅଟ+ ଅନ) କଙ୍କପକ୍ଷୀ, ବକପକ୍ଷୀ ।

ଜଳାଟମୀ—ସ୍ତ୍ରୀ. ବି. (ଜଳ+ଅଟ+ଅନ ଈ) ଜଳୌକା, ଜୋକ ।

ଜଳାଣୁକ—କ୍ଲୀ.ବି. (ଜଳ+ଅଣୁ+କୈ +ଅ)ପୋତାଧାନ, ମାଛବିହନ ।

ଜଳାଣ୍ଟକ—ପୁଂ.ବି(ଜଳ+ଅଣ୍ଟ+ଅକ) ନକ୍ରରାଜ, ଗ୍ରାହ, କୁମ୍ଭୀର ।

ଜଳାଣ୍ଡକ—କ୍ଲୀ.ବି. (ଜଳ+ଅଣ୍ଡ+କୈ +ଅ) ପୋତାଧାନ, ମାଛବିହନ ।

ଜଳାତଙ୍କ—ପୁଂ. ବି. (ବି.ଗ୍ରା) ରୋଗ-ବିଶେଷ ।

ଜଳାତ୍ମକ—ବି°. (ବି.ଗ୍ରା) ଜଳମୟ, (ସ୍ତ୍ରୀ)ଜଳାତ୍ମିକା ।

ଜଳାତ୍ମିକା—ସ୍ତ୍ରୀ. ବି. (ବି.ଗ୍ରା)ଜଳୌକା, ଜୋକ, କୂପ ।

ଜଳାତ୍ୟୟ—ପୁଂ.ବି. (ବି.ଗ୍ରା)ଶରତ୍‌କାଳ ଜଳର ଅପଗମ ।

ଜଳାଧାର—ପୁଂ. ବି. (୬ତତ୍) ସମୁଦ୍ର, ଜଳାଶୟ, ଜଳପାତ୍ର, (ବି°. ବି.ଗ୍ରା) ଜଳସ୍ଥିତ ।

ଜଳାଧିଦୈବତ—ପୁଂ. କ୍ଲୀ. ବି. ଜଳର ଅଧିଷ୍ଠାତ୍ରୀ ଦେବତା ବରୁଣ, ପୂର୍ବାଷାଢ଼ା ନକ୍ଷତ୍ର ।

ଜଳାଧିପ—ପୁଂ. ବି. ( ଜଳ+ଅଧିପ ) ୬ତତ୍; ଜଳର ଅଧିପତି ବରୁଣ, ସମ୍ବ-ତ୍ସର ବିଶେଷରେ ରବି ପ୍ରଭୃତି ଗ୍ରହ-ମାନେ ଜଳପତି ହୁଅନ୍ତି ।

ଜଳାନ୍ତକ—ପୁଂ.ବି. (ଜଳ+ଅନ୍ତ+କ) ସପ୍ତସମୁଦ୍ର ମଧ୍ୟରେ ଗୋଟିଏ ସମୁଦ୍ର, ସତ୍ୟଭାମାଙ୍କ ଗର୍ଭଜାତ ଶ୍ରୀକୃଷ୍ଣଙ୍କର ଏକପୁତ୍ର ।

ଜଳାପାତ—ପୁଂ.ବି.(୬ତତ୍) ଉଚ୍ଚସ୍ଥାନରୁ ପ୍ରବଳ ବେଗରେ ଜଳପତନ ।

ଜଳାପୋଡ଼ା—ଗ୍ରା.ବି.ଶରୀରର ପ୍ରଦାହ ।

ଜଳାମ୍ବର—ପୁଂ. ବି. ଜଣେ ବୋଧିସତ୍ତ୍ୱ-ପୂର୍ବଜନ୍ମର ନାମ ରାହୁଲଭଦ୍ର ।

ଜଳାମ୍ବିକା—ସ୍ତ୍ରୀ. ବି. ( ଜଳ+ଅମ୍ବିକା ) କୂପ ।

ଜଳାମ୍ବୁଗର୍ଭା—ସ୍ତ୍ରୀ. ବି. ଗୋପାର ପର-ଜନ୍ମର ନାମ ।

ଜଳାୟୁକା—ସ୍ତ୍ରୀ. ବି. ଜଳୌକା,ଜୋକ ।

ଜଳାର୍କ—ପୁଂ. ବି. ( କ.ଧା ) ଜଳରେ ପ୍ରତିବିମ୍ବିତ ସୂର୍ଯ୍ୟ ।
ଜଳାର୍ଣ୍ଣବ—ପୁଂ. ବି. (୬ତତ୍ପୁ)ଜଳସମୁଦ୍ର, ବର୍ଷାକାଳ, (ଗ୍ରା. ବି) ସବୁଆଡ଼େ ପାଣି ଘୋଟିଯିବା ଅବସ୍ଥା ।
ଜଳାର୍ଥୀ—ପୁଂ. ବି°. ( ଜଳ+ଅର୍ଥ+ଇନ୍) ଜଳାଭିଳାଷୀ, ତୃଷାର୍ତ୍ତ, ପିପାସାକୁଳ ।
ଜଳାର୍ଦ୍ର—ପୁଂ. ବି. (୩ତତ୍ପୁ) ଓଦାଲୁଗା, (ବି°) ଜଳସିକ୍ତ, ଓଦା, ଭିଜା ।
ଜଳାର୍ଦ୍ରା—ସ୍ତ୍ରୀ.ବି. କ୍ଲିନ୍ନବସ୍ତ୍ର, ଜଳଦ୍ୱାରା ଅର୍ଦ୍ର, ବ୍ୟଜନ, ଭିଜା ପଙ୍ଖା, ( ବି°) ଜଳସିକ୍ତା, ଜଳଦ୍ୱାରା ଆର୍ଦ୍ରା । [ସି ।
ଜଲାଲ୍‌ଉଦ୍ଦୀନ୍‌ପୂର୍ବୀ—ବଙ୍ଗଦେଶର ଜଣେ
ଜଲାଲ୍‌ବୁଖାରୀ ସୈୟଦ୍—ଜଣେ ବିଖ୍ୟାତ ମୁସଲମାନ ପଣ୍ଡିତ ।
ଜଳାଳୁ—ପୁଂ. ବି.ପାନୀୟାଳୁ, ପାଣିଆଳୁ
ଜଳାଳୁକ—କ୍ଳୀ. ବି. (ଜଳାଳୁ+କୈ+ଅ)ପଦ୍ମମୂଳ,ମୃଣାଳମଳ,ପଦ୍ମନାଡ଼ଗଣ୍ଡି ।
ଜଳାଳୁକା—ସ୍ତ୍ରୀ. ବି.(ଜଳ+ଉଲ+ଅକ+ଆ) ଜଳୌକା, ଜୋକ, ଶାମୁକ, ଗେଣ୍ଡା ପ୍ରଭୃତି ।
ଜଳାଲୋକା—ସ୍ତ୍ରୀ. ବି. ( ଜଳ+ଆ+ଲୋକ+ମି.ଅ) ଜଳୌକା, ଜୋକ ।
ଜଳାବର୍ତ୍ତ—ପୁଂ. ବି. (ଜଳ+ଆବର୍ତ୍ତ) ୬ତତ୍ପୁ;ଜଳଗୁଳ୍ମ, ଜଳଭ୍ରମ, ଜଳଭଉଁରୀ
ଜଳାଶୟ—ପୁଂ. ବି. (ଜଳ+ଆଶୟ) ୬ତତ୍ପୁ;ଜଳାଧାର, ସମୁଦ୍ର, ନଦ,ନଦୀ, ପୁଷ୍କରଣୀ ପ୍ରଭୃତି, ଜଡ଼ାମ୍ବା, (କ୍ଳୀ. ବି) (ଜଳ+ଶୀ+ଅ) ଉଶୀର, ନୀମଜ୍ଜକ-ତୃଣ,ଶୃଙ୍ଗାଟକ,ଶିଙ୍ଗଡ଼ା,(ବି°)ଜଳଶାୟୀ
ଜଳାଶୟା—ସ୍ତ୍ରୀ. ବି. ଗୁଣ୍ଡାଳା ବୃକ୍ଷ ।
ଜଳାହ୍ୱ—ପୁଂ. ବି. (ବ.ବ୍ରୀ)ଦୃଢ଼ଗୁଣ୍ଡତୃଣ ।
ଜଳାଶ୍ରୟା—ସ୍ତ୍ରୀ. ବି. ଶୂଲୀତୃଣ,ବଲକା ।
ଜଳାଷ—କ୍ଳୀ. ବି. ସୁଖ, ସମସ୍ତଙ୍କର ସୁଖକର, ଜଳ ।
ଜଳାସାହ—ତ୍ରି. ବି°. ଜଳସହନକାରୀ ।
ଜଳାଷ୍ଟିକା—ସ୍ତ୍ରୀ. ବି. ପୁଷ୍କରଣୀ ।
ଜଳାସୁକା—ସ୍ତ୍ରୀ. ବି. (ଜଳ+ଅସ+କ+ଆ) ଜଳୌକା, ଜୋକ ।
ଜଳାହ୍ୱୟ—କ୍ଳୀ. ବି. ଉତ୍ପଳ, କଇଁ ।
ଜଳିଆ—ଗ୍ରା. ବି°. ଜଳପୂର୍ଣ୍ଣ, ପାଣିଆଁ, ଜଳପରି ପତଳା ।
ଜଳିଉଠିବା—ଗ୍ରା.ବି. (ପ୍ରଜ୍ୱଳିତ ଅଗ୍ନିର) ଶିଖା ଉପରକୁ ଉଠିବା,(ଗ୍ରା.କ୍ରି)ଅଗ୍ନିମୟ-ହେବା ।
ଜଳିକା—ସ୍ତ୍ରୀ. ବି. ଜଳୌକା, ଜୋକ ।
ଜଳିକାଠ—ମଯୂରଭଞ୍ଜ ରାଜ୍ୟରେ ଏକପ୍ରକାର ଅନୁଷ୍ଠିତ କ୍ରୀଡ଼ା ।
ଜଳିବା—ଗ୍ରା. କ୍ରି. ପ୍ରଦୀପ୍ତହେବା, ଅଗ୍ନି ପ୍ରାପ୍ତ ହେବା, ଜାଜ୍ୱଲ୍ୟମାନ ହେବ ,ଜଳ ପୋଡ଼ା କରିବା,(ଶରୀର)ପ୍ରଦାହକରିବା, ଶିଖାଯୁକ୍ତହେବା, ପ୍ରଚଣ୍ଡହେବା,(ଲକ୍ଷଣାର୍ଥ) ଈର୍ଷାରେ ଦଗ୍ଧହେବା ବା କ୍ଳିଷ୍ଟହେବା ।
ଜଳିଯିବା—ଗ୍ରା. କ୍ରି.ପୋଡ଼ିଯିବା,ଜଳିକରି ଭସ୍ମହୋଇଯିବା; ( ଲ. ର୍ଥ ) କ୍ଳିଷ୍ଟହେବା ।
ଜଳିଲ—ଗ୍ରା. ବି°. ଜ୍ୱଳନ୍ତ, ଜଳୁଥିବା, ପୋଡ଼ସାଇଥିବା ।
ଜଳୀ—ଗ୍ରା.ବି.ପରିଖା,ଗଡ଼ଖାଇ,ଜଳପାଠ
ଜଳୁଆ—ଗ୍ରା. ବି°. ପାଣିଚିଆ, ପାଣିପରି ଜଳାର୍ଦ୍ର ।
ଜଳୁକ—ବି. (ଜସ୍+ଉକ) ଜୋକ ।
ଜଳୁକା—ସ୍ତ୍ରୀ. ବି. (ଜସ୍+ଉକ+ଆ) ଜଳୌକା, ଜୋକ ।
ଜଳୁଖୋଗା—ଗ୍ରା. ବି. ହିମାଳୟର ଗୋଟିଏ ଗିରି ସଙ୍କଟ ।
ଜଳୂକା—ସ୍ତ୍ରୀ. ବି. (ଜସ୍+ଉକ+ଆ) ଜଳୌକା, ଜୋକ ।
ଜଳେଚର—ପୁଂ. ବି. (ଜଳେ+ଚର+କ.ଅ)ଜଳଚରପକ୍ଷୀ, ହଂସ, ବକପ୍ରଭୃତି, (ବି°) ଜଳଚର ।
ଜଳେଚୁମ୍ବା—ସ୍ତ୍ରୀ. ବି. ହସ୍ତିଶୁଣ୍ଡା ବୃକ୍ଷ, ହାତିଶୁଣ୍ଡା ଗଛ ।
ଜଳେଜ—କ୍ଳୀ. ବି. (ଜଳେ+ଜନ+ଅ) ପଦ୍ମ, (ତ୍ରି. ବି°) ଜଳଜାତ ।
ଜଳେଜାତ—କ୍ଳୀ. ବି. (ଜଳେ+ଜାତ) ପଦ୍ମ, (ତ୍ରି. ବି°) ଜଳଜାତ ।
ଜଳେନ୍ଦ୍ର—ପୁଂ. ବି. ( ଜଳ+ଇନ୍ଦ୍ର ) ୬ତତ୍ପୁ;ବରୁଣ, ମହାସମୁଦ୍ର, ଜମ୍ଭଳାକ୍ଷ, ମହାଦେବ, ପୂର୍ବପକ୍ଷ ।
ଜଳେନ୍ଧନ—ପୁଂ.ବି. (ବ.ବ୍ରୀ)ବାଡ଼ବାଗ୍ନି, ସୌରବିଦ୍ୟୁତ୍ ଆଦିର ତେଜ ।
ଜଳେଭ—ପୁଂ.ବି.(ଜଳ+ଇଭ)ଜଳହସ୍ତୀ
ଜଳେୟୁ—ପୁଂ.ବି.ପୁରୁବଂଶୀୟ ରୌଦ୍ରାଶ୍ୱ ନୃପତିଙ୍କ ଏକପୁତ୍ର ।
ଜଳେରୁହା—ସ୍ତ୍ରୀ. ବି. (ଜଳେ+ରୁହ+ଅ) କ୍ଷୁଦ୍ରମୁଣ୍ଡୀ ବୃକ୍ଷ । [ଭେଦ ।
ଜଳେଲା—ସ୍ତ୍ରୀ.ବି. କୁମାରାନୁଚର ମାତୃ-
ଜଳେବାହ—ପୁଂ. ବି. ଯେ ପାଣିରେ ବୁଡ଼ି ପାଣିଥିବାପଦାର୍ଥ ଖୋଜି ବାହାର କରେ ।
ଜଳେଶ—ପୁଂ. ବି.(ଜଳ+ଈଶ) ୬ତତ୍ପୁ, ବରୁଣ,ସମୁଦ୍ର,ଜଳାଧିପତି,ବର୍ଷଭେଦ ।
ଜଳେଶୟ—ପୁଂ. ବି. (ଜଳେ+ଶୀ+କ.ଅ) ସମୁଦ୍ର,ମତ୍ସ୍ୟ, ବିଷ୍ଣୁ, ( ବି° ) ଜଳରେ ଅବସ୍ଥାନକାରୀ ।
ଜଳେଶ୍ୱର—ପୁଂ. ବି (ଜଳ+ଈଶ୍ୱର) ୬ତତ୍ପୁ; ବରୁଣ,ସମୁଦ୍ର, ହିମାଳୟସ୍ଥିତ ତୀର୍ଥଭେଦ, ଜଳାଧିପତି ।
ଜଳେଶ୍ୱର—ଉ.ପ.ଅଞ୍ଚଳରେ ଏହାଜିଲ୍ଲାର ଗୋଟିଏ ତହସିଲ ।
ଜଳୋଦର—କ୍ଳୀ.ବି. (ବ.ବ୍ରୀ)ଜଠରାମୟ, ଉଦରରୋଗ ବିଶେଷ, ଉଦରୀରୋଗ ।
ଜଳୋଦ୍ଧତଗତି—ସ୍ତ୍ରୀ. ବି. ଛନ୍ଦୋବିଶେଷ, (ତ୍ରି. ବି°.)ଜଳଦ୍ୱାରା ଉଦ୍ଧତଗତିଯୁକ୍ତ ।
ଜଳୋଦ୍ଭବ—ତ୍ରି.ବି°.ଜଳଜାତ ବସ୍ତୁମାତ୍ର ।
ଜଳୋଦ୍ଭବା-ସ୍ତ୍ରୀ.ବି. ଗୁଣ୍ଡାଲାକ୍ଷୁପ,କାଳାନୁଶାରିବା, ଶିଉଳି, ଲଘୁବ୍ରାହ୍ମୀ, ହିମାଳୟସ୍ଥିତ ସ୍ଥାନବିଶେଷ, (ବି°) ଜଳଜାତ ।
ଜଳୋଦ୍ଭୂତା—ସ୍ତ୍ରୀ.ବି. (ଜଳ+ଉଦ୍ଭୂତା) ଗୁଣ୍ଡାଲାକ୍ଷୁପ ।
ଜଳୋରଗୀ—ସ୍ତ୍ରୀ. ବି. (ଜଳ+ଉରଗୀ) ଜଳୌକା, ଜୋକ ।
ଜଳୌକା—ସ୍ତ୍ରୀ.ବି. ଜଳୋକା, ଜୋକ ।

ଜଳୌକିକା—ସ୍ତ୍ରୀ.ବି.ଜଳୌକା,ଜୋକ ।
ଜଳୋଚ୍ଛ୍ୱାସ—ପୁଂ. ବି. (ତତ୍ପୁ) ଜଳର ସ୍ଫୀତି, ଢେଉ, ଜୁଆର, ଅଧିକ ଜଳ ଉପାୟଦ୍ୱାରା ବହିଃନିଷ୍କାସନ, ସେତୁ-ଭଙ୍ଗାଦିର ଭୟରେ ଅଧିକଜଳ ବହି ନିଃସାରଣ,ପୁଷ୍କରିଣୀ ପ୍ରଭୃତିରେ ଜଳ ପ୍ରବେଶ ନିମିତ୍ତ ଉପାୟ ।
ଜଳୌକ—ପୁଂ. ବି.କାଶ୍ମୀର ରାଜ ପ୍ରତାପାଦିତ୍ୟଙ୍କ ପୁତ୍ର । [ ଜୋକ ।
ଜଳୌକସ୍—ପୁଂ.ବି.(ବ.ବ୍ରୀ) ଜଳୌକା
ଜଳୌକା—ସ୍ତ୍ରୀ. ବି. (ବ.ବ୍ରୀ) ଜୋକ ।
ଜଳୌକାଃ—ସ୍ତ୍ରୀ. ବି. (ବ.ବ୍ରୀ) ଜୋକ ।
ଜଳୌକ—ଭି. ପଶ୍ଚିମାଞ୍ଚଳର ଅନ୍ତର୍ଗତ ଗ୍ରେଟବ୍ରିଟେନଙ୍କର ଶାସନାଧୀନ ଗୋଟିଏ ଜିଲ୍ଲା ।
ଜଳୌଷଧି—ସ୍ତ୍ରୀ. ବି. (କ.ଧା) ଜଳରେ ଉତ୍ପନ୍ନ ଔଷଧିବିଶେଷ, ବ୍ରାହ୍ମୀଶାକ ପ୍ରଭୃତି ।
ଜଳ୍ପ—ପୁଂ. ବି. (ଜଳ୍ପ+ଭା.ଅ) କଥନ, ଗପିବା, ପରମତ ଖଣ୍ଡନ ପୂର୍ବକ ସ୍ୱମତ ସ୍ଥାପନ, ବହୁଭାଷଣ, ବାଚାଳତା, ପ୍ରଗଳ୍ଭତା, ଉକ୍ତି ।
ଜଳ୍ପକ—ପୁଂ. ବିଂ. (ଜଳ୍ପ+କ) ଯେ ଅନେକ ବକେ,ଯେ ବୃଥାରେ ଅନେକ କଥାକହେ ବାଚାଳ, ବହୁଭାଷୀ ।
ଜଳ୍ପନ—କ୍ଲୀ. ବି. (ଜଳ୍ପ+ଭା.ଅନ) ଜଳ୍ପ ଦେଖ ।
ଜଳ୍ପନା—ସ୍ତ୍ରୀ. ବି. ଜଳ୍ପ ଦେଖ ।
ଜଳ୍ପାଇଗୁଡ଼ି—ରାଜସାହୀ କୋଚବିହାର ବିଭାଗର ଉ: ପୂ: ଭାଗରେ ଅବସ୍ଥିତ ବଙ୍ଗଳାର ଗ୍ରେଟବ୍ରିଟେନଙ୍କ ଶାସନାଧୀନ ଗୋଟିଏ ଜିଲ୍ଲା ।
ଜଳ୍ପାକ—ତ୍ରି. ବିଂ. (ଜଳ୍ପ+ଆକ) ବଧୂ କୁତ୍ସିତଭାଷୀ, ଜଳ୍ପକ ଦେଖ ।
ଜଳ୍ପିତ—ତ୍ରି. ବିଂ. (ଜଳ୍ପ+ମି.ତ) ଉକ୍ତ, କଥିତ, ଗପ କରାଯାଇଥିବା (ବିଷୟ), ପ୍ରସ୍ତାବିତ, (ବି. ଭା.ତ) ଜଳ୍ପ ଦେଖ ।
ଜଳ୍ପିବା—ଗ୍ରା. କ୍ରି. ବୃଥା ଗଳ୍ପକରିବା ।
ଜଳ୍ପେଶ—କାଳିକାପୁରାଣ ବର୍ଣ୍ଣିତ ଏକ ବିଖ୍ୟାତ ଶିବଲିଙ୍ଗ ।
ଜଳ୍ପେଶ—ଜଳ୍ପାଇଗୁଡ଼ୀ ଜିଲାର ଅନ୍ତର୍ଗତ ପଶ୍ଚିମ ଦ୍ୱାରସ୍ଥ ଗୋଟିଏ ନଗର ।
ଜଲ୍ଲାଦ—ଯା. ବି. ଯେଉଁ ରାଜଭୃତ୍ୟ ରାଜାଦେଶରେ ମୃତ୍ୟୁଦଣ୍ଡରେ ଦଣ୍ଡିତ ଅପରାଧୀର ମୁଣ୍ଡ କାଟେ ।
ଜଲ୍ହୁ—ପୁଂ. ବି. ଅଗ୍ନି ।
ଜଷମ—ଯା. ବି. ସ୍ତ୍ରୀମାନଙ୍କର ବାହୁରେ ପନ୍ଧିବା ଅଳଙ୍କାରବିଶେଷ,ଅନନ୍ତକଡ଼ା ।
ଜସାନ୍‌ଜାତି—ଗ୍ରା. ବି. ମାଳବ ପ୍ରଦେଶର ଜାତିବିଶେଷ ।
ଜସାବର—ମଥୁରା ନିକଟସ୍ଥ ଅରଙ୍ଗବାସୀ ରାଜପୁତ ଜାତିବିଶେଷ ।
ଜସୁର—ପୁଂ. ବି. (ଜସ+କ. ଉର) ବଜ୍ର, ଚଡ଼ଚଡ଼ି, (ବିଂ) ଉପକ୍ଷୟଯୁକ୍ତ ।
ଜସ୍ୱସ୍ୱାମୀ—ପୁଂ.ବି.ଜଣେ ଭକ୍ତ ବୈଷ୍ଣବ ।
ଜସ୍ତା—ଗ୍ରା. ବି. ଦସ୍ତା, ରୂପ ପରି ଧଳା-ଧାତୁବିଶେଷ ।
ଜସ୍ତୁ—କ୍ଲୀ. ବି. କ୍ଲାନ୍ତ, ଶ୍ରମବୋଧ ।
ଜସ୍ୱନ—ତ୍ରି. ବିଂ. (ଜସ+ବନ) ଉପକ୍ଷୟ କର୍ତ୍ତା ।
ଜହ୍—ଗ୍ରା. ବିଂ. ପ୍ରଚୁର, ଯଥେଷ୍ଟ ।
ଜହର—ଯା. ବି. ବିଷ, ଗରଳ, ପ୍ରାଣ-ନାଶକ ବିଷ, ରତ୍ନ, ମଣି, ( ଗ୍ରା. ବି ) ରାଜପୁତାନାର ସ୍ତ୍ରୀମାନେ ନିଜନିଜର ସ୍ୱାମୀଙ୍କ ମୃତ୍ୟୁପରେ ଯେଉଁ ଅଗ୍ନିକୁଣ୍ଡରେ ପଶି ନିଜର ସତୀତ୍ୱ ରକ୍ଷା କରୁଥିଲେ, (ପ୍ରା.ଗଞ୍ଜାମ.ବି.) ଯଥେଷ୍ଟ, ପର୍ଯ୍ୟାପ୍ତ ।
ଜହର ଖାଇଲପରି ହେବା—ଗ୍ରା. କ୍ରି. ଅତ୍ୟନ୍ତ ବ୍ୟାକୁଳିତ ହେବା ।
ଜହରତ—ଯା. ବି. ମଣିମୁକ୍ତାଦି ନାନା-ଜାତୀୟ ବହୁମୂଲ୍ୟର ପ୍ରସ୍ତର, (ବିଂ) ମଣିମୁକ୍ତାଦି ସମ୍ବନ୍ଧୀୟ ।
ଜହରତ୍—ଯା. ବି. ଜହର ବହୁମୂଲ୍ୟ ପ୍ରସ୍ତର, ବହୁମୂଲ୍ୟ ମଣିମୁକ୍ତାଦି,ମଣିମୁକ୍ତା ଖଚିତ ଅଳଙ୍କାର ।
ଜହର—ଯା. ବିଂ. ଜହରପରି କଟୁ ବା ଅତି ଉଗ୍ର, ବିଷ ବ୍ୟବସାୟୀ, ଜବର-ଦସ୍ତିଆ ।
ଜହଲ୍—ପ୍ରା. ( ସମ୍ବ ) ବି. ପୁଲିସଦ୍ୱାରା ମାଜିଷ୍ଟ୍ରେଟଙ୍କ ନିକଟକୁ ଅଭିଯୁକ୍ତ ଆସାମୀର ଚାଲାଣ ।
ଜହଲ୍ଲକ୍ଷଣା—ସ୍ତ୍ରୀ. ବି. ଲକ୍ଷଣାଭେଦ, ଜହତ୍‌ସ୍ୱାର୍ଥା ।.
ଜହା—ସ୍ତ୍ରୀ. ବି. ମୁଣ୍ଡିତିକା, ମୁଣ୍ଡିରୀ ।
ଜହାନକ—ପୁଂ.ବି. (ଜହ+ଅନ+କ) ପ୍ରଳୟ, ବ୍ରହ୍ମାଣ୍ଡର ନାଶ ।
ଜହସ୍ତମ୍ବ—ତ୍ରି. ବିଂ. ଯେ ସର୍ବଦା ସ୍ତମ୍ଭରେ ଆଘାତ କରେ ।
ଜହୁ—ପୁଂ.ବି. (ଜ+ହା+ଉ) ଅପତ୍ୟ, କୁରୁବଂଶୀୟ ଜଣେ ରାଜା ।
ଜହୁରୀ—ଯା. ବି. ଯେ ବହୁମୂଲ୍ୟ ମଣି-ରତ୍ନାଦିର ବ୍ୟବସାୟ କରେ ।
ଜହ୍ନ—ଗ୍ରା. ବି. ଚନ୍ଦ୍ରମା, ଚନ୍ଦ୍ର ।
ଜହ୍ନଆଲୁଅ--ଗ୍ରା.ବି.ଚନ୍ଦ୍ରକିରଣ,ଜ୍ୟୋତ୍ସ୍ନା
ଜହ୍ନମାମୁ—ଗ୍ରା. ବି. (ଶିଶୁରଞ୍ଜନ ଭାଷା) ଚନ୍ଦ୍ର ।
ଜହ୍ନରାତି—ଗ୍ରା. ବି. ରାତ୍ରି ରାତି, ଯେଉଁ ରାତିରେ ଚନ୍ଦ୍ରକିରଣ ପଡ଼ିଥାଏ ।
ଜହ୍ନା—ଗ୍ରା. ବି. ଶସ୍ୟବିଶେଷ, ଭୁଟା, ଜହ୍ନରୀ, ଫୁଟିଫୁଟିକା ବା ଅମରପୋଇ ଟୁଲ୍ଲୁ ।
ଜାହ୍ନବୀ—ସ୍ତ୍ରୀ. ବି.ଜହ୍ନୁସମ୍ବନ୍ଧିନୀ ପ୍ରଜା, ଜାହ୍ନବୀ, ଜହ୍ନୁକନ୍ୟା ।
ଜହ୍ନି—ଗ୍ରା.ବି. ତରକାରୀରୂପେ ବ୍ୟବହୃତ ଏକପ୍ରକାର ତରଡ଼ା ଜାତୀୟ ଲତାଫଳ ।
ଜହ୍ନିଓଷା—ଗ୍ରା.ବି. ଅବିବାହିତା ବାଳିକା-ମାନେ ଆଶ୍ୱିନମାସରେ କରୁଥିବା ଏକପ୍ରକାର ଉପବାସ ।
ଜହ୍ନିଫୁଲପରି ଆୟୁଷପାଇବା—ଗ୍ରା. କ୍ରି. (ବ୍ୟଙ୍ଗୋକ୍ତି) ଅଳ୍ପାୟୁ ହେବା ।
ଜହ୍ନିମଞ୍ଜିପରଗୋରା--ଗ୍ରା.ବିଂ.(ବ୍ୟଙ୍ଗୋକ୍ତି) ଜହ୍ନିଫଳର ମଞ୍ଜିପରି ଘୋର କୃଷ୍ଣବର୍ଣ୍ଣ ଚର୍ମବିଶିଷ୍ଟ ।
ଜହ୍ନୁ—ପୁଂ. ବି. ( ହା+କ.ନୁ ) ବିଷ୍ଣୁ, ଭରତ ବଂଶୀୟ ଆଜମୀର ରାଜାଙ୍କ ପୁତ୍ର, କୁରୁକ୍ଷେତ୍ରପତି କୁରୁଙ୍କର ପୁତ୍ର, ରାଜା ସୁହୋତ୍ରଙ୍କ ପୁତ୍ର ।

ଜହ୍ନୁଆଶ୍ରମ—ଗ୍ରା. ବି. ପ୍ରୟାଗତୀର୍ଥ,ଗଙ୍ଗା ଯମୁନାର ସଙ୍ଗମ ସ୍ଥଳ ।

ଜହ୍ନୁକନ୍ୟା—ସ୍ତ୍ରୀ.ବି. (୬ତତ୍)ଗଙ୍ଗାନଦୀ ।

ଜହ୍ନୁସପ୍ତମୀ—ସ୍ତ୍ରୀ.ବି. (୬ତତ୍) ବୈଶାଖ ମାସର ଶୁକ୍ଳ ସପ୍ତମୀ ।

ଜହ୍ନୁସୁତା—ସ୍ତ୍ରୀ. ବି. (୬ତତ୍) ଜାହ୍ନବୀ, ଗଙ୍ଗା ।

ଜହ୍ଲା--ଗ୍ରା.ବି. ରୁପାପାତିଆ ମାଛ,ଖଙ୍ଗାର-ଖାଇ ମାଛ,ଜଉଡ଼ି ମାଛ ।

ଜହ୍ମନ୍—କ୍ଳୀ. ବି. (ହ୍ୱା + ମନ୍) ଉଦକ, ଏହାର ପାଠାନ୍ତର ଜନ୍ମ ।

ଜା—ସ୍ତ୍ରୀ. ବି. ( ଜନ+ଆ ) ମାତା, ସ୍ୱାମୀଙ୍କ ସାନଭାଇର ପତ୍ନୀ, ଦେବର-ପତ୍ନୀ, ଜାୟମାନ ।

ଜାଇ—ଅହମଦନଗରଜିଲ୍ଲାନିବାସୀ ଏକ-ଜାତୀୟ ନୀଚ ବ୍ରାହ୍ମଣ, (ଗ୍ରା.ବି) ମୁଗ, ହରଡ଼ ପ୍ରଭୃତିର ଫାଳ ବା ଡାଲି,ଧଳା ବାସନାଯୁକ୍ତ ଏକପାଖୁଡ଼ିଆ ଫୁଲ,ଜାଇ-ଫୁଲ,ମୁଗ ପ୍ରଭୃତିର ଚୋପା ଛଡ଼ାଯାଇ-ଥିବା ଡାଲି, ଦେହରେ ଦେଖାଯିବା କଳା ଦାଗ, ଜାଇକାଠି ଦେଖ ।

ଜାଇକାଠି—ଗ୍ରା. ବି,ଗଞ୍ଜାମରେ ମିଳୁଥିବା ଏକପ୍ରକାର ତୃଣ ।

ଜାଇପତ୍ରୀ—ଗ୍ରା. ବି. ( ସଂ ଜାତିପତ୍ରୀ ) ଜାତିଫଳ ବା ଜାଇଫଳର ଚୋପା ଉପରେ ଜାଲପରି ମାଡ଼ିଥିବା ଏକପ୍ରକାର ପତଳା ସୁଗନ୍ଧଯୁକ୍ତ ମସଲା ।

ଜାଇଫଳ—ଗ୍ରା. ବି. ( ସଂ, ଜାତିଫଳ ) ମଲକ୍କା ଦ୍ୱୀପ ଓ ଦକ୍ଷିଣଭାରତର ମସଲା-ଫଳବିଶେଷ ।

ଜାଇଫୁଲ—ଗ୍ରା. ବି. ଧଳା ବାସନାଯୁକ୍ତ ଏକପାଖୁଡ଼ିଆ ଫୁଲବିଶେଷ ।

ଜାଇମନ୍ଦା—ଗ୍ରା. ବି. କୌଣସି କୌଣସି ମନୁଷ୍ୟଙ୍କ ଦେହରେ ଜନ୍ମକାଳରୁ ଦେଖାଯିବା ବିସ୍ତୃତ ଚିକଚିହ୍ନ ।

ଜାଇରଗଡ଼ା—ଗ୍ରା. ବି. ବ୍ରତ ଓ ବିବାହାଦି ପୂର୍ବରୁ ଗୋଟିଏ ଶୁଭଦିନ ଦେଖି ଉକ୍ତ ଉତ୍ସବ ନିମନ୍ତେ ପ୍ରୟୋଜନୀୟ ଜାଇ-ପାଇଁ ପ୍ରଥମେ ମୁଗକୁ ଚକି ପ୍ରଭୃତିରେ ରଗଡ଼ିବା କର୍ମ ।

ଜାଉ—ଗ୍ରା. ବି.( ସଂ-ଜବାଗୁ ) ମାଣ୍ଡିଆ, ଯବ,ଖୁଦ ଓ ଚାଉଳ ଆଦିରେ ପାଣି ବା ଦୁଗ୍ଧ ଦେଇ ସିଝାଇ ପ୍ରସ୍ତୁତ କରିବା ପାଣିପାଣିଆଁ ଓ ବହଳିଆ ଖାଦ୍ୟ,ଅନ୍ନ-ମଣ୍ଡ, ଛଅଗୁଣ ଜଳରେ ଉତ୍ତମରୂପେ ସିଦ୍ଧ କରିଯିବା ଚାଉଳ ।

ଜାଉଆ—ଗ୍ରା. ବିଂ. ଜାଉପରି ତରଳ ଓ କଅଁଳ, ଲଟେଇ ।

ଜାଉପାଣି—ଗ୍ରା. ବି.ଅତିପାଣିଆ ଜାଉ ।

ଜାଏଦାଦ୍—ଯା. ବି.ଭୂସମ୍ପତ୍ତି, ଜମିବାଡ଼ି, ସ୍ଥାବର ଓ ଅସ୍ଥାବର ସମ୍ପତ୍ତି ।

ଜାଙ୍ଘିକ—ବିଂ. ( ଜଙ୍ଘା+ଇକ ) ଜଙ୍ଘା-ଜୀବୀ, ଦ୍ରୁତଗାମୀ, ( ବି )ଉଷ୍ଟ୍ର, ଓଟ ।

ଜାକ୍—ଗ୍ରା. ବି. ସ୍ପର୍ଦ୍ଧା,ମୁହଁବାଙ୍କିଙ୍ଗି,ଗର୍ବ ।

ଜାକ—ଗ୍ରା. ବିଂ.( ସଂ-ଯନ୍ତ୍ରକ ) ସଂକୀର୍ଣ୍ଣ, ଚୋସ୍ତ, ଭିଡ଼, ଘନସମାବିଷ୍ଟ, ସଙ୍କୁଚିତ, ( ବି. ) ଭିଡ଼, ଗହଳି ।

ଜାକଜମକ—ଗ୍ରା. ବି. ( ସଂ-ଚାକଚକ୍ୟ ) ଚାକଚକ୍ୟ, ଆଡ଼ମ୍ବର,ସମାରୋହ,(ବିଂ) ଚକଚକିଆ, ଆଡ଼ମ୍ବରପୂର୍ଣ୍ଣ, ଉଜ୍ଜ୍ୱଳ ।

ଜାକଡ଼୍—ଗ୍ରା. ବି. କ୍ରେତା ବିକ୍ରେତାଠାରୁ ପରୀକ୍ଷାର୍ଥ ଗ୍ରହଣ କରିବା ପଣ୍ୟଦ୍ରବ୍ୟର ମୂଲ୍ୟ ବିକ୍ରେତା ନିକଟରେ ଜମାରଖିବା ଓ ପସନ୍ଦ ନ ହେଲେ ଦ୍ରବ୍ୟ ଫେରାଇ ଦେଇ ମୂଲ୍ୟ ଫେରି ପାଇବାର ଅଙ୍ଗୀ-କାର ବା ଚୁକ୍ତି, ପରୀକ୍ଷାର୍ଥ ବା ଦେଖିବା ପାଇଁ ପଣ୍ୟଦ୍ରବ୍ୟ ( ବସ୍ତ୍ର ଅଳଙ୍କାରାଦି ) ନିର୍ଦ୍ଦିଷ୍ଟଦିନ ସକାଶେ ନେବାର ସର୍ତ୍ତ ।

ଜାକଜାକହେବା--ଗ୍ରା.କ୍ରି.କୌଣସି କାର୍ଯ୍ୟ କରିବାକୁ କୁଣ୍ଠିତ ହେବା ।

ଜାକିଜୁକିହେବା—ଗ୍ରା.କ୍ରି, ଦେହକୁ ସଙ୍କୁ-ଚିତ କରିବା, ବ୍ୟସ୍ତ କରିବାକୁ କୁଣ୍ଠିତ ହେବା ।

ଜାକିଧରିବା—ଗ୍ରା. କ୍ରି. ଦୃଢ଼ ଭାବରେ କୁଣ୍ଢାଇ ଧରିବା ।

ଜାକିବା—ଗ୍ରା. କ୍ରି. ( ସଂ-ଯନ୍ତ୍ର )କୌଣସି ବସ୍ତୁକୁ ଲୁଚାଇ କରି ରଖିବା, କଳ ପାଟିରେ ଗୁଆ ଆଦି ପୂରାଇବା, ଚୋସ୍ତ କରିବା,ଧରିରଖିବା,ଦୁଇଆଡ଼ୁ ଚାପିବା, ଭିଡ଼ି ଧରିବା, ବ୍ୟସ୍ତ କୁଣ୍ଠ ହେବା,ଦୃଢ଼ ରୂପେ ଆଲିଙ୍ଗନ କରିବା, ସଙ୍କୁଚିତ କରିବା, କାଖରେ ଭିଡ଼ିଧରି ବନ୍ଧିବା ।

ଜାକିହେବା—ଗ୍ରା. କ୍ରି. ( କୁର୍ଣ୍ଣିଆଦି ) ଦେହକୁ କସାକସ ହେବା,କସ୍ ହେବା, ବହୁଲୋକ ଏକସ୍ଥାନରେ ଠେସା ଠେସି ହୋଇ ରହିବା ।

ଜାକୁଆ—ଗ୍ରା. ବିଂ. ଜାକସାର, ଅତ୍ୟନ୍ତ ସଙ୍କୀର୍ଣ୍ଣ,କସାକସ, (ପୁଂ )ଯେ ଜାକେ, କୃପଣ ।

ଜାଗତ—ବିଂ. ( ଜଗତୀ+ଅ ) ଜଗତୀ ଛନ୍ଦଯୁକ୍ତ ମନ୍ତ୍ରାଦି ।

ଜାଗତିଆର—ଗ୍ରା. ବିଂ. (ସଂ-ଜାଗରିତ) ସାବଧାନ ବା ସତର୍କ, ଚେତାଳି, ଉନ୍ନିଦ୍ର ।

ଜାଗତ୍ୟ—ବିଂ. ପାର୍ଥିବ ବସ୍ତୁ ।

ଜାଗଭାଟ—ପୁଂ. ବି. ରାଜପୁତାନାବାସୀ ଭାଟବିଶେଷ ।

ଜାଗର—ପୁଂ.ବି. (ଜାଗୃ+ଭା.ଅ)ଜାଗ-ରଣ, ନିଦ୍ରାଭଙ୍ଗ,ସତର୍କତା, ଚେଇଁବା, ପାଗୁଳି, କବଚ, ଚେତା, (ଗ୍ରା.ବିଂ) ଉନ୍ନିଦ୍ର, ( ଗ୍ରା.ବି ) ଶିବରାତ୍ରି ଉତ୍ସବ, ଫାଲ୍ଗୁନ କୃଷ୍ଣଚତୁର୍ଦ୍ଦଶୀ, ଯେଉଁ ପ୍ରଦୀପ ଦେବତାଙ୍କ ମନ୍ଦିରରେ ଦିବାନିଶି ଜଳୁଥାଏ, ଯେଉଁ ଧାତୁମୟ ପାତ୍ରରେ ଦୀପ ଜଳାଯାଏ ।

ଜାଗରକ—ବିଂ. ( ଜାଗୃ+କ.ଅକ ) ନିଦ୍ରାରହିତ, ଜାଗରୁକ ।

ଜାଗରଜାଳିବା— ଗ୍ରା. କ୍ରି. ରାତିସାକ ଦେବତାଙ୍କ ନିକଟରେ କିମ୍ବା ଶିବରାତ୍ରିର ରାତିରେ ମହାଦେବଙ୍କ ନିକଟରେ ଦୀପ ଜାଳି ନିଜେ ଉଜାଗର ହୋଇ ବସି ରହିବା ।

ଜାଗରଣ—କ୍ଳୀ. ବି. (ଜାଗୃ+ଭା.ଅନ) ଚେତନ, ନିଦ୍ରାଭଙ୍ଗ, ଚେଇଁବା, ( ଲ.ଅର୍ଥ ) ଅଭ୍ୟୁଦୟାକାଙ୍କ୍ଷା, ନିଜର ଉନ୍ନତିର ଚେଷ୍ଟା ।

ଜାଗରଦୀପ—ଗ୍ରା.ବି. ଦେବତାଙ୍କ ନିକ-

ଟରେ ରାତଯାକ ଜଳାଯିବା ଦୀପ ।

ଜାଗର୍ୟା—ସ୍ତ୍ରୀ. ବି. (ଜାଗୃ+ଭା.ଅ+ଆ) ନିଦ୍ରାରାହିତ୍ୟ, ଜାଗରଣ, ସାବଧାନତା, ଅପ୍ରମାଦ ।

ଜାଗରଣ—ପୁଂ. ବିଂ. ( ଜାଗୃ+ଇନ ) ଜାଗରିତ ଦେଖ ।

ଜାଗରିତ—କ୍ଲୀ. (ଜାଗୃ+ଭା.ତ) ଜାଗରଣ, ନିଦ୍ରାଭାବ, ସାଙ୍ଖ୍ୟ ଓ ବେଦାନ୍ତ ମତରେ ମନର ଯେଉଁ ଅବସ୍ଥାରେ ଇନ୍ଦ୍ରିୟ ଦ୍ୱାରା ସବୁପ୍ରକାର ବ୍ୟବହାର ଓ କାର୍ଯ୍ୟର ଅନୁଭବ ହୁଏ, (ବିଂ.କ. ତ) ବିନିଦ୍ରା, ଯେ ଶୋଇନାହିଁ,ଯାହାର ନିଦ୍ରା ଭଙ୍ଗ ହୋଇଅଛି, ସାବଧାନ ।

ଜାଗରିତା—ପୁଂ.ବିଂ. (ଜାଗୃ+ତୃ) ଯେ କୌଣସି ବ୍ୟକ୍ତିକୁ ନିଦ୍ରାରୁ ଉଠାଏ, ଜାଗରଣଶୀଳ, ବିନିଦ୍ର ।

ଜାଗରିତସ୍ଥାନ—ପୁଂ. ବି. ବେଦାନ୍ତମତ୍‌ ପ୍ରସିଦ୍ଧ ବୈଶ୍ୱାନର ଆତ୍ମା ।

ଜାଗରିତାନ୍ତ—ପୁଂ.ବି. ଜାଗରିତ ମଧ୍ୟ, ଜାଗରିତ ଇନ୍ଦ୍ରିୟ ଦ୍ୱାରା ଆତ୍ମାର ବିଷୟ ଗ୍ରହଣରୂପ ଅବସ୍ଥାବିଶେଷ ।

ଜାଗରିଷ୍ଣୁ—ପୁଂ. ବିଂ. (ଜାଗୃ+ଇଷ୍ଣୁ) ଜାଗରଣଶୀଳ, ନିଦ୍ରାରହିତ ।

ଜାଗରୀ—ପୁଂ.ବି.(ଜାଗର+ଇନ୍)ଜାଗରଣଶୀଳ, ଜାଗରୂକ, ନିଦ୍ରାରହିତ, (ସ୍ତ୍ରୀ) ଜାଗରିଣୀ ।

ଜାଗରୂକ—ପୁଂ.ବିଂ. (ଜାଗୃ+କ.ଊକ) ଜାଗରଣଶୀଳ, ସତର୍କ, ସାବଧାନ, ହୁସିଆର, ( ବି ) ଚୈତନ୍ୟ, (ସ୍ତ୍ରୀ) ଜାଗରୂକା ।

ଜାଗର୍ତ୍ତି—ସ୍ତ୍ରୀ.ବି. (ଜାଗୃ+ଭା,ତି) ଜାଗରଣ, ଅପ୍ରମାଦ ।

ଜାଗର୍ଯ୍ୟା—ସ୍ତ୍ରୀ. ବି. (ଜାଗୃ+ଯ+ଆ) ଜାଗରଣ, ନିଦ୍ରାଭଙ୍ଗ, ସାବଧାନତା ।

ଜାଗା—ଯା. ବି. ସ୍ଥାନ, ବସ୍ତୁ ରଖିବାର ପାତ୍ର, ଜାଗାଘର ଦେଖ ।

ଜାଗାଘର—ପ୍ରା. (ପୁରୀ)ବି. ଆଖଡ଼ାଘର, ସଙ୍ଗୀତ ବା ମଲ୍ଲବିଦ୍ୟା ଅଭ୍ୟାସ କରିବାର ସ୍ଥାନ ।

ଜାଗାଜାଗା—ଯା.କ୍ରି.ବିଂ.ସ୍ଥାନେ ସ୍ଥାନେ, ଜାଗେ ଜାଗେ ଦେଖ ।

ଜାଗାବିର୍‌ଜାଗା—ଯା.କ୍ରି. ବିଂ. ପ୍ରତ୍ୟେକ ସ୍ଥାନରେ, ସବୁଠାରେ,ଭିନ୍ନଭିନ୍ନ ସ୍ଥାନମାନଙ୍କରେ ।

ଜାଗିବା—ଗ୍ରା.କ୍ରି.ଚେଇଁବା, ନିଦ୍ରାରହିତ ହେବା, ସତର୍କରହିବା, ନିଜର ଉନ୍ନତି କରିବାକୁ ଚେଷ୍ଟା କରିବା, (ଲ.ଅଥ) ଆଳସ୍ୟ ବା ଜଡ଼ତା ବା ନିରୁତ୍ସାହ ପରିତ୍ୟାଗପୂର୍ବକ ଉଦ୍ୟମ କରିବା, (ଅଗ୍ନି) ଜ୍ୱଳି ଉଠିବା, ( ସକର୍ମକ ) ନିଆଁ ଯେପରି ଲିଭି ନଯାଏ ସେପରି କରି ନିଆଁକୁ ଜଳାଇରଖିବା, ସତେଜ ହେବା, ସମୃଦ୍ଧହେବା ।

ଜାଗିର—ଯା. ବି. ନିର୍ଦ୍ଦିଷ୍ଟ କାର୍ଯ୍ୟ କରିବା ପାଇଁ ଭୂମ୍ୟଧିକାରୀ ବା ଭୂପତିଙ୍କଠାରୁ କାର୍ଯ୍ୟକାରୀ ବ୍ୟକ୍ତି ପାଇଥିବା ନିଷ୍କର ଭୂମି ବା ଗ୍ରାମ, ବେତନ ପରିବର୍ତ୍ତେ ଭୃତ୍ୟକୁ ପ୍ରଦତ୍ତ ଭୂମି ।

ଜାଗିରଦାର୍‌—ଯା. ବି. ଜାଗିର ଭୋଗ କରିବା ବ୍ୟକ୍ତି ।

ଜାଗୁଡ଼—ପୁଂ.ବି.ଦେଶବିଶେଷ, କୁଙ୍କୁମ, ଜାଗୁଡ଼ ଦେଶବାସୀ ।

ଜାଗୁଳାଇ—ଗ୍ରା. ସ୍ତ୍ରୀ. ବି. ଗ୍ରାମଦେବୀ ବା ଯୋଗିନୀବିଶେଷ, ଶ୍ରାବଣ କୃଷ୍ଣପଞ୍ଚମୀ ରାତିରେ ଗ୍ରାମର ପ୍ରତିଦ୍ୱାରେ ପିଠା ଭୋଗ ପାଇବା ଦେବୀବିଶେଷ ।

ଜାଗୁଳାଇପଞ୍ଚମୀ—ଗ୍ରା. ବି. ଶ୍ରାବଣମାସ କୃଷ୍ଣପକ୍ଷ ପଞ୍ଚମୀ ।

ଜାଗୁଲ—ଗ୍ରା. ବି. ବସାଦହି ବସାଇବା ନିମିତ୍ତ ନିର୍ମିତ ଚଉଡ଼ାମୁହାଁ କ୍ଷୁଦ୍ର ମାଟିପାତ୍ର, ପରୁଲ ।

ଜାଗୃବି—ପୁଂ. ବି. ଅଗ୍ନି, ନୃପ, ( ବିଂ ) ଜାଗରଣଶୀଳ, ସଦା ନିଜ କାର୍ଯ୍ୟରେ ଅପ୍ରମତ୍ତ ।

ଜାଗେଜାଗେ—ଯା. କ୍ରି. ବିଂ. ସ୍ଥାନେ ସ୍ଥାନେ,ଭିନ୍ନଭିନ୍ନ ସ୍ଥାନରେ ।

ଜାଗ୍ରତ୍‌—ବିଂ. (ଜାଗୃ+କ.ଅତ୍‌) ଜାଗରଣଶୀଳ, ନିଦ୍ରାହୀନ, (ବି) ଜାଗରଣ ଅବସ୍ଥା ।

ଜାଗ୍ରତ—ଗ୍ରା. ପୁଂ. ବିଂ. ଜାଗରଣଶୀଳ, ସାବଧାନ, ସତର୍କ, ଯେ ଚେଇଁଛି, ଜାଗରୂକ,ଯେଉଁ ଅବସ୍ଥାରେ ଜୀବ ସବୁ ଜାଣିପାରେ, (ବି) ଚେଇଁବା, ନିଦ୍ରାହୀନତା ।

ଜାଗ୍ରତ୍‌ସ୍ୱପ୍ନ—ପୁଂ.ବି.ଜାଗ୍ରତ ଅବସ୍ଥାରେ ଯେଉଁ ସ୍ୱପ୍ନ ଦେଖାଯାଏ, ଅସମ୍ଭବ କଳ୍ପନା, ଆକାଶକୁସୁମ ।

ଜାଗ୍ରତି—ବି.(ଜାଗୃ+ଭା.ତି)ଜାଗରଣ ।

ଜାଗ୍ରିୟା—ସ୍ତ୍ରୀ. ବି. ଜାଗରଣ ।

ଜାଘନୀ—ସ୍ତ୍ରୀ. ବିଂ. (ଜଘନ+ଅ+ଈ) ଊରୁ, ପୁଚ୍ଛକାଣ୍ଡ, ବାଳଦଣ୍ଡ, ଲାଙ୍ଗୁଡ଼ ।

ଜାଘୂର—ଆଫଗାନୀ ଜାତିବିଶେଷ ।

ଜାଙ୍ଗଲ—କ୍ଲୀ.ବି. (ଜଙ୍ଗଲ+ଅ)ମାଂସ, କପିଞ୍ଜଳପକ୍ଷୀ,ବାରିହୀନ ଦେଶ, ଲହଲଙ୍ଗଳିଆ,ହରିଣାଦି ବନ୍ୟପଶୁ, ତିତିର ପକ୍ଷୀ, (ବିଂ) ବନ୍ୟ, ବନ୍ୟଚର, ବନଜାତ, ଅସଭ୍ୟ, ଅରଣ୍ୟମୟ, ଜଙ୍ଗଲ ସମ୍ବନ୍ଧୀୟ ।

ଜାଙ୍ଗଲପଥିକ--ପୁଂ.ବି.ଜଙ୍ଗଲବାଟେଇ, ଜଙ୍ଗଲର ପଥ ଦ୍ୱାରା ଆହୃତ ।

ଜାଙ୍ଗଲି—ବି ଓ ବିଂ.ଜାଙ୍ଗଲିକ ଦେଖ ।

ଜାଙ୍ଗଲିକ—ପୁଂ. ବି. (ଜାଙ୍ଗଲ+ଇକ) ବିଷବୈଦ୍ୟ, ସାପୁଆକେଳା, (ବିଂ) ଜଙ୍ଗଲବାସୀ ।

ଜାଙ୍ଗଲୀ—ବି. (ଜାଙ୍ଗଲ+ଈ) ବାଇଚଙ୍କ, କପିକଚ୍ଛୁ,ବିଷବିଷୟକ ବିଦ୍ୟା ।

ଜାଙ୍ଗୀରପତନ—ଗ୍ରା. ବି.ଡାକାନଗରର ପୁରାତନ ନାମ ।

ଜାଙ୍ଗୁଲ—ବି.(ଜଙ୍ଗୁଲ+ଅ)ବିଷ, ତରଡ଼ା

ଜାଙ୍ଗୁଲି—ପୁଂ. ବି. ସାପୁଆକେଳା, ବିଷବୈଦ୍ୟ ।

ଜାଙ୍ଗୁଲିକ—ପୁଂ.ବି.ବିଷବୈଦ୍ୟ,ସାପୁଆ, ବିଷ ବ୍ୟବସାୟୀ । [ ଗାରଡ଼ ।

ଜାଙ୍ଗୁଲୀ—ବି.ସାପ ବିଷ ଝାଡ଼ିବା ବିଦ୍ୟା,

ଜାଙ୍ଘନୀ—ସ୍ତ୍ରୀ. ବି. ଜଙ୍ଘା ।

ଜାଙ୍ଘପ୍ରହ୍ରତକ—ବିଂ. ଜଙ୍ଘାଦ୍ୱାରା ଆଘାତଜନକ ।

ଜାଙ୍ଘଲାୟନ—ପୁଂ. ବ. ପ୍ରବରଋଷି-ଭେଦ ।

ଜାଙ୍ଘି—ବିଂ.(ଜଙ୍ଘା+ଇ)ଜଙ୍ଘାସମ୍ବନ୍ଧୀୟ, ଜଙ୍ଘାଭୂତ ।

ଜାଙ୍ଘିକ—ବିଂ. (ଜଙ୍ଘା+ଇକ)ଜଙ୍ଘାଳୁ, ଦ୍ରୁତଗାମୀ, ଜଙ୍ଘୋପଜୀବୀ,(ସ୍ତ୍ରୀ)ଜାଙ୍ଘିକୀ, (ବି) ଉଷ୍ଟ୍ର, ଶ୍ରୀକାଶବୃକ୍ଷ ।

ଜାଙ୍ଘିକାହ୍ୱୟ—ପୁଂ. ବ. ଶ୍ରୀକାଶମୃଗ ।

ଜାଗ୍ରଇ—ଯା. ବ. (ସଂ-ଯାଚନ)କୌଣସି ପଣ୍ୟଦ୍ରବ୍ୟକୁ ପରୀକ୍ଷା କରି ତାହାର ପ୍ରକୃତ ମୂଲ୍ୟ ଓ ଯୋଗ୍ୟତା ସ୍ଥିରୀକରଣ କରିବା, ପରଖ ।

ଜାଜପୁର—କ୍ଲୀ. ବ. ବୈତରଣୀ ନଦୀ-କୂଳସ୍ଥ ଓଡ଼ିଶାର ପ୍ରାଚୀନ ନଗର ।

ଜାଜଲ—ପୁଂ. ବ. ଅଥର୍ବବେଦର ଏକଶାଖା ।

ଜାଜଲି—ପୁଂ. ବ. ଜଣେ ପ୍ରସିଦ୍ଧ ଋଷି ।

ଜାଜଲଦେବ—ଦାକ୍ଷିଣାତ୍ୟବାସୀ ଜନୈକ ରାଜା ।

ଜାଜମ—ଯା. ବ. ମେଜଉପରେ ପକା-ଇବାର ଚିତ୍ରିତ ବସ୍ତ୍ରବିଶେଷ ।

ଜାଜନ—ବିଂ. ଯୋଧଶୀଳ,ଯୁଦ୍ଧସ୍ୱଭାବୀ ।

ଜାଜ୍ୱଲ୍ୟମାନ—ବିଂ. (ଯଙ୍ଲୁଗନ୍ତଜ୍ୱଲ+କ. ଆନ) ଦେଦୀପ୍ୟମାନ, ବିଶେଷ ଭାବରେ ଦୀପ୍ତି ପାଉଥିବା, ଅତିଜ୍ୱଳନ୍ତ ।

ଜାଝାଲ—ପୁଂ. ବ. ବୃକ୍ଷଭେଦ ।

ଜାଞ୍ଚ—ଯା.ବ. ଭୂମିମାପକାର୍ଯ୍ୟ ଠିକ୍‌ରୂପେ ହୋଇଛି କି ନା ଏହା ପରୀକ୍ଷା କରିବା, ପ୍ରତାଳ, ତନ୍ନ ତନ୍ନ କରି ଦୋଷଗୁଣ ପରୀକ୍ଷା କରିବା ।

ଜାଞ୍ଜିବାର୍— ଗ୍ରା. ବ. ଇଂରାଜ ସାମ୍ରାଜ୍ୟର ଅଧୀନ ଜଣେ ଆରବୀ ରାଜାଙ୍କ ଶାସିତ ପୂର୍ବ ଆଫ୍ରିକାର ରାଜ୍ୟବିଶେଷ ।

ଜାଟ—ଗ୍ରା. ବ. ଭାରତବର୍ଷୀୟ ଗୋଟିଏ ବିସ୍ତୃତ ଜାତି ।

ଜାଟାଳି—ସ୍ତ୍ରୀ. ବ. କିଂଶୁକ ବୃକ୍ଷ ସଦୃଶ ବୃକ୍ଷଭେଦ, ମୋଖା ।

ଜାଟାଳିକା—ସ୍ତ୍ରୀ. ବ. କୁମାରାନୁଚର ମାତୃଭେଦ ।

ଜାଟାସୁରି—ପୁଂ. ବ. ଜାଟାସୁର ପୁତ୍ର ।

ଜାଠର—ପୁଂ. ବ. ( ଜଠର+ଅ ) ଜାଠରାଗ୍ନି, ପାଚକାଗ୍ନି, (ବିଂ) ଉଦର-ସମ୍ବନ୍ଧୀୟ, (ସ୍ତ୍ରୀ) ଜାଠରୀ ।

ଜାଠରୀ—ସ୍ତ୍ରୀ. ବ. କୁମାରାନୁଚର ମାତୃ-ଭେଦ । [ ରୋଗ ।

ଜାଠର୍ଯ୍ୟ—ବ. (ଜଠର+ଯ) ଉଦର

ଜାଡ଼—ଗ୍ରା. ବ. ( ସଂ-ଜାଡ୍ୟ ) ଥଣ୍ଡା, ଶୀତ,ହିମ,ଶୀତକାଳ,(ବିଂ)ଜଡ଼, ମୂକ ।

ଜାଡ଼କରିବା—ଗ୍ରା. ବ. ଶୀତକରିବା ।

ଜାଡ଼ଦିନ—ଗ୍ରା. ବ. ଶୀତଋତୁ ।

ଜାଡ଼ମୋନାଲ—ଯା. ବ. ଉତ୍ତର ଜାତୀୟ ପକ୍ଷୀବିଶେଷ । [ ପୁତ୍ର ।

ଜାଡ଼ର—ପୁଂ. ସ୍ତ୍ରୀ. (ଜଡ଼+ଅର) ଜଡ଼ର

ଜାଡ଼ା—ଗ୍ରା.ବ. କଚ୍ଛପ୍ରଦେଶୀୟ ଜାଡ଼େଜା ରାଜବଂଶୀୟ ଜନୈକ ରାଜା ।

ଜାଡ଼ା—ପୁଂ.ବିଂ.ଜଡ଼,ମୂକ,(ପ୍ରା.ବନ୍ତି ର. (ବି.)ଜଡ଼ା, ଗଦ ।

ଜାଡ଼ି—ଗ୍ରା. ବ. ଶୀତପ୍ରକାର, ଥଣ୍ଡା ।

ଜାଡ଼ିବା—ଗ୍ରା. କି. (ସଂ-ଜଡ଼, ଜାଡ୍ୟ) ଅତ୍ୟନ୍ତ ଶୀତହେତୁ ଶରୀର ଅବଶ ହୋଇଯିବା, କୋଲମାରିବା,ଜମିଯିବା, ଜମାଟ ବାନ୍ଧିବା, ଜଡ଼ପ୍ରାୟ ହେବା, ଅତିଶୟ ଶୀତଳ ହେବା ।

ଜାଡ଼ବେଙ୍ଗ—ଗ୍ରା.ବ. ଏକପ୍ରକାର ବେଙ୍ଗ, କୁଜବେଙ୍ଗ ।

ଜାଡ଼ୀ—ଗ୍ରା. ସ୍ତ୍ରୀ.ବିଂ(ସଂ-ଜଡ଼)ମୂକା ସ୍ତ୍ରୀ, (ବିଂ) ଜଡ଼ତା ।

ଜାଡ଼ୁଆ—ଗ୍ରା. ପୁଂ. ବିଂ.ସ୍ପଷ୍ଟ ଉଚ୍ଚାରଣ-ଶକ୍ତିରହିତ, ଜଡ଼ମକ, ଜାଡ଼ସମ୍ବନ୍ଧୀୟ, ଜାଡ଼ଦିନରେ ଜାତ, ଶୀତକାଳୀନ ।

ଜାଡ଼େଇବା—ଗ୍ରା. କି. ଜାଡ଼ିବା ଦେଖ ।

ଜାଡ଼େଜା—କଚ୍ଛପ୍ରଦେଶୀୟ ରାଜପୁତ ବଂଶ ।

ଜାଡ୍ୟ—କ୍ଲୀ.ବ. (ଜଡ଼+ଭା,ଯ) ଜଡ଼ତା, ସ୍ତମ୍ଭ, ମୂର୍ଖତା,ଥଣ୍ଡା, ଶୀତ, ଶୀତବୋଧ, ଶୈଥିଲ୍ୟ, ଆଲସ୍ୟ, ନିର୍ଜ୍ଜୀବଭାବ ।

ଜାଡ୍ୟାପହ—ପୁଂ. ବିଂ. (ଜାଡ୍ୟ+ଅପ +ହନ୍+କ.ଅ) ଯେ ବା ଯାହା ଜଡ଼ତା ନାଶକରେ ।

ଜାଡ୍ୟାରି—ପୁଂ. ବ. ଜମ୍ବୀର ।

ଜାଣ—ଗ୍ରା. ବ. (ସଂ-ଜାଲ) ଚିଲ୍‌କା ବା ସମୁଦ୍ର ଉପକୂଳରେ ମାଛ ଧରିବାପାଇଁ ନିରୂପିତ ସ୍ଥାନ ।

ଜାଣକାର—ଗ୍ରା. ବ. (ସଂ-ଜ୍ଞାନୀ) ବିଜ୍ଞ, ଚତୁର, ବହୁଦର୍ଶୀ ।

ଜାଣତ——ଗ୍ରା. ବିଂ. ( ସଂ-ଜାନନ୍ତ ) ଜ୍ଞାନର ବିଷୟୀଭୂତ, ଯେ ଜାଣିଥାଏ ବା ଅନୁଭବ କରିଥାଏ,ବିଜ୍ଞ,(ବି)ଜ୍ଞାନ ।

ଜାଣତରେ –ଗ୍ରା.କି.ବିଂ. ଜ୍ଞାତସାରରେ, ଜାଣୁ ଜାଣୁ, ଜ୍ଞାନତଃ ।

ଜାଣନ୍ତ—ଗ୍ରା. ବିଂ. ଜାଣତ ଦେଖ ।

ଜାଣନ୍ତା—ଗ୍ରା. ବିଂ. ଜ୍ଞାତ, ଯେ ଜାଣେ ।

ଜାଣନ୍ତପ୍ରମାଣେ—ଗ୍ରା.କି.ବିଂ.ଜାଣତରେ ।

ଜାଣବାହାଣ—ଜାଣମାନଙ୍କରେ ମାଛ ଧରିବାପାଇଁ ଜାଲ ପକାଇବା ।

ଜାଣି—ଗ୍ରା. ପଦ୍ୟ. ଅବ୍ୟ. ତୁଲ୍ୟ, ପରି, ଫଳତଃ, ଫଳରେ ।

ଜାଣିବା—ଗ୍ରା. କି. (ସଂ-ଜ୍ଞା ଧାତୁ)ଚିହ୍ନିବା, ଜ୍ଞାତହେବା, ଅବଗତହେବା, ଅନୁଭବ କରିବା, ବୁଝିବା, ହୃଦୟଙ୍ଗମ କରିବା, ବାରିବା, ବସ୍ତୁର ପ୍ରଭେଦ ହୃଦୟଙ୍ଗମ କରିବା, ( ଗ୍ରା.ବିଂ ) ଯେ ସବୁବିଷୟ ଜାଣିଥାଏ, ଅଭିଜ୍ଞ, ଚତୁର, ବୁଦ୍ଧିମାନ୍, ବିଜ୍ଞ, ଜ୍ଞାନୀ ।

ଜାଣିବାପଣ—ଗ୍ରା. ବ. ବୁଝିବାଶକ୍ତି, ଅଭିଜ୍ଞତା, ଜ୍ଞାନୀପଣ, ବିଜ୍ଞତା ।

ଜାଣିବାର—ଗ୍ରା. ବିଂ. ଜାଣିବା ଦେଖ ।

ଜାଣିବାଶୁଣିବା—ଗ୍ରା. କି. ଉତ୍ତମରୂପେ ବୁଝି ଜାଣିବା, ଉତ୍ତମରୂପେ ପରିଚିତ ହେବା ।

ଜାଣିବାଶୁଣିବାଲୋକ—ଗ୍ରା.ବ. ବିଜ୍ଞବ୍ୟକ୍ତି, ବିଦ୍ୱାନ୍, ଅନୁଭବୀ ବ୍ୟକ୍ତି ।

ଜାଣିଶୁଣି—ଗ୍ରା. କି. ବିଂ. ଉତ୍ତମରୂପେ ଅବଗତହୋଇ, ବୁଝିସୁଝି ।

ଜାଣୁଜାଣୁ—ଗ୍ରା. କି. ବିଂ. ଜାଣିଶୁଣି ଦେଖ ।

ଜାତ—ବିଂ. ( ଜନ+କ.ତ ) ଉତ୍ପନ୍ନ,

ଯାହା ଜନ୍ମିଅଛି, ପ୍ରସୂତ, ସ୍ଫୁଟ, ବ୍ୟକ୍ତ, ପ୍ରତ୍ୟସ୍ତ, କାରଣଦ୍ୱାରା କାର୍ଯ୍ୟରୂପେ ଘଟିଥିବା, ଘଟିଥିବା, ନ୍ୟସ୍ତ, ଭୁକ୍ତ, ନବଜାତ (ଶିଶୁ), (ଖ୍ରୀ.ତ-ବ) ଶ୍ରେଣୀ, ଜାତି, ସମ୍ବନ୍ଧ, ବ୍ୟକ୍ତି, ପ୍ରକଟନ, ଜନ୍ମ, ଉତ୍ପତ୍ତି, ପ୍ରକାର, ମେଳା, ଉତ୍ସବ ।

ଜାତକ—କ୍ଲୀ. ବି. (ଜାତ + କ) ଜନ୍ମ-ପତ୍ରିକା, ବୌଦ୍ଧଗ୍ରନ୍ଥବିଶେଷ,ଜାତକର୍ମ, ନବଜାତ ସନ୍ତାନ, ଜନ୍ମକୋଷ୍ଠୀ, ଜାତ ଶିଶୁର ଶୁଭାଶୁଭ ନିର୍ଣ୍ଣୟକ ଗ୍ରନ୍ଥ, ଭିକ୍ଷୁ (ବିଂ) ଉତ୍ପନ୍ନ, ଜାତ ।

ଜାତକମେଳହେବା—ଗ୍ରା. ବି. ପ୍ରସ୍ତାବିତ ବରକନ୍ୟାଙ୍କର ଜାତକରେ ଥିବା ଗ୍ରହ ଲଗ୍ନାଦି ପରସ୍ପରଙ୍କ ମିଳନପ୍ରତି ଅନୁକୂଳ ଥିବା ଦେଖାଯିବା ।

ଜାତକରେ ନାହିଁ—ଗ୍ରା.ବାକ୍ୟ. (ଅମୁକ ବିଷୟ—ଅମୁକର)ପ୍ରକୃତିବିରୁଦ୍ଧ ଅଟେ

ଜାତକର୍ମ—କ୍ଲୀ. ବି. (୬ତତ୍) ହିନ୍ଦୁମାନ-ଙ୍କର ଦଶସଂସ୍କାରମଧ୍ୟରୁ ଚତୁର୍ଥ ସଂସ୍କାର ସନ୍ତାନ ଜନ୍ମସମୟରେ ହିନ୍ଦୁପିତାଙ୍କର ଅନୁଷ୍ଠେୟ ସଂସ୍କାରବିଶେଷ ।

ଜାତକାମ—ପୁଂ. ବିଂ. (ବ.ବ୍ରୀ) ଜାତ-କାମନା, ଯାହାର କାମନା ଜନ୍ମିଅଛି ।

ଜାତକୋପ—ପୁଂ. ବିଂ. ( ବ.ବ୍ରୀ ) ଜାତକ୍ରୋଧ ଦେଖ ।

ଜାତକ୍ରିୟା—ସ୍ତ୍ରୀ. ବି. ଜାତକର୍ମ ଦେଖ ।

ଜାତକ୍ରୋଧ—ପୁଂ. ବିଂ. (ବ.ବ୍ରୀ) ମହା-କୁପିତ, ଅତ୍ୟନ୍ତ ରୁଷ୍ଟ, ରୋଷାନ୍ଧ ।

ଜାତକ୍ଲମ—ପୁଂ. ବିଂ. (ବ.ବ୍ରୀ) ଯାହାର କ୍ଲାନ୍ତି ଜନ୍ମିଅଛି,ପରିଶ୍ରାନ୍ତ,ଅତ୍ୟନ୍ତ କ୍ଲାନ୍ତ ।

ଜାତଚକ୍ଷୁ—ପୁଂ. ବିଂ. (ବ.ବ୍ରୀ) ଯାହାର ଆଖି ଫିଟିଅଛି, (ଯଥା—କୁକୁରଛୁଆ, ବିରାଡ଼ିଛୁଆ) ।

ଜାତଦନ୍ତ—ପୁଂ. ବିଂ. (ବ.ବ୍ରୀ) ଯାହାର ଦନ୍ତ ଉଠିଅଛି (ଶିଶୁ) ।

ଜାତପକ୍ଷ—ପୁଂ. ବିଂ. (ବ.ବ୍ରୀ) ପକ୍ଷୀ-ଶାବକ, ଯାହାର ପକ୍ଷ ଗଜୁରିଅଛି ।

ଜାତପତ୍ର—ବିଂ. (ବ.ବ୍ରୀ) ଯାହାର ପତ୍ର ଅଙ୍କୁରିତ ହୋଇଅଛି, ଉଦ୍ଗତପତ୍ର ।

ଜାତପୁତ୍ର—ପୁଂ. ବିଂ. (ବ.ବ୍ରୀ) ଯାହାର ପୁତ୍ର ହୋଇଅଛି, ପୁତ୍ରବାନ୍, ( ସ୍ତ୍ରୀ ) ଜାତପୁତ୍ରା ।

ଜାତପ୍ରତ୍ୟୟ—ପୁଂ.ବିଂ. (ବ.ବ୍ରୀ) ଯାହାର ବିଶ୍ୱାସ ଜନ୍ମିଅଛି ।

ଜାତମାତ୍ର—କ୍ରି. ବିଂ. ଜନ୍ମିବାମାତ୍ରେ,(ବିଂ) ଯେ ଏହିକ୍ଷଣି ଜନ୍ମ ହୋଇଅଛି ।

ଜାତରୂପ—କ୍ଲୀ. ବି. (ବ.ବ୍ରୀ) ସୁବର୍ଣ୍ଣ, ସୁନା, (ପୁଂ) ଧୂଦୁରାଗଛ, (ବିଂ) ଶୃଷ୍ଟ ରୂପ,ଯେ ମୂର୍ତ୍ତି ଧାରଣ କରିଅଛି,ସୁନ୍ଦର ।

ଜାତରୂପମୟ—ବିଂ. ସୁବର୍ଣ୍ଣମୟ ।

ଜାତରୂପଶୀଳ—ପୁଂ.ବି. ଗୋଟିଏ ସୁବର୍ଣ୍ଣ-ମୟ ଦେଶ ।

ଜାତବାସଗୃହ—କ୍ଲୀ. ବି. ଅନ୍ତୁଡ଼ିଘର, ଏନ୍ତୁଡ଼ିଶାଳ ।

ଜାତବିଦ୍ୟା—ସ୍ତ୍ରୀ. ବି. ହୋମପରେ ପ୍ରାୟଶ୍ଚିତ୍ତବୋଧ ବାକ୍ୟବିଶେଷ ।

ଜାତବେଦସ—ବି. (ଜାତବେଦସ୍ + ଅ) ଅଗ୍ନିସମ୍ବନ୍ଧୀୟ ।

ଜାତବେଦାଃ—ପୁଂ. ବି. (ବ.ବ୍ରୀ) ଅଗ୍ନି, ଅନଳ ।

ଜାତବେଦସୀୟ—ବିଂ. ଅଗ୍ନି ସମ୍ବନ୍ଧୀୟ ।

ଜାତବେଶ୍ମ—କ୍ଲୀ.ବି. ଅନ୍ତୁଡ଼ିଘର,ଏନ୍ତୁଡ଼ି-ଶାଳ ।

ଜାତବ୍ୟବହାର—ପୁଂ. ବିଂ ବ.ବ୍ରୀ; (ହିନ୍ଦୁସ୍ମୃତି) ବୟଃପ୍ରାପ୍ତ, ସାବାଳକ, ପ୍ରାପ୍ତବୟସ୍କ ।

ଜାତଶତ୍ରୁ—ପୁଂ.ବିଂ. (ବ.ବ୍ରୀ) ଶତ୍ରୁମାନ୍

ଜାତଶ୍ରମ—ବିଂ. ( ବ.ବ୍ରୀ ) ପରିଶ୍ରାନ୍ତ, ଜାତକ୍ଲମ ।

ଜାତସ୍ନେହ—ପୁଂ.ବିଂ. (ବ.ବ୍ରୀ) ଯାହାର ସ୍ନେହ ଜନ୍ମିଅଛି ।

ଜାତସ୍ପୃହ—ପୁଂ. ବିଂ. (ବ.ବ୍ରୀ) ଯାହାର ସ୍ପୃହା ଜନ୍ମିଅଛି ।

ଜାତାଙ୍କୁର—ବିଂ. ( ବ.ବ୍ରୀ ) ଯାହାର ଗଜା ବାହାରି ଅଛି, ଅଙ୍କୁରିତ ।

ଜାତାନ୍ଧ—ପୁଂ. ବିଂ. (ବ.ବ୍ରୀ) ଜନ୍ମାନ୍ଧ ।

ଜାତାପତ୍ୟ—ପୁଂ.ବିଂ. (ବ.ବ୍ରୀ) ଯାହାର ପୁଅ ଜନ୍ମହୋଇଅଛି,(ସ୍ତ୍ରୀ)ଜାତାପତ୍ୟା ।

ଜାତାପତ୍ୟା—ସ୍ତ୍ରୀ. ବିଂ. (ବ.ବ୍ରୀ) ଯେଉଁ ସ୍ତ୍ରୀର ସନ୍ତାନ ଜନ୍ମିଅଛି, ସନ୍ତାନ ପ୍ରସବିନୀ, ପୁତ୍ରବତୀ । [ଅପତ୍ୟ ।

ଜାତାୟନ—ପୁଂ. ବି. ଜାତଗୋତ୍ରର

ଜାତାଶୌଚ—ବି. (କ.ଧା) ଶିଶୁ ଜନ୍ମ-ହେଲେ କୁଟୁମ୍ବମାନଙ୍କୁ ଲାଗିବା ଅଶୌଚ, ଛୁତିକଆ, ସୂତକାଶୌଚ ।

ଜାତି—ସ୍ତ୍ରୀ. ବି. (ଜନ + ତି) ଜନ୍ମ,ବଂଶ, ଗୋତ୍ର, ଅକ୍ଷୁଣ୍ଣିକା, ଆମଳକୀ, ଜାତି-ଫୁଲ, ମାଳତୀ, ବେଦଶାଖା ଭେଦ, ଛନ୍ଦୋଭେଦ, ଷଡ୍ଜାଦି ସପ୍ତସ୍ୱର, ଅଲ-ଙ୍କାରଭେଦ, ଚୁଲ୍ଲି, କାମ୍ପିଲ୍ଲ, ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଶୂଦ୍ରାଦି ବର୍ଣ୍ଣଭେଦ, ନୟାୟିକ ପଦାର୍ଥବିଶେଷ, ଗୁଣ ଧର୍ମ ଆକୃତି ଆଦିର ସମତାଯୋଗୁଁ ଜଣା-ଯିବା ବର୍ଗ, କୋଟି, ପ୍ରକାରଭେଦ, ଶାଖା,ଶ୍ରେଣୀ,ପାଟକ, ଏକଦେଶବାସୀ ବ୍ୟକ୍ତିଗଣ, କୁଳ, ମନୁଷ୍ୟ ଯେଉଁ କୁଳରେ ଜନ୍ମିଥାଏ, ନାଟଧର୍ମ, ସଙ୍ଗୀତ, ଜାଇଫଳ, ଜାଇତ୍ରୀ, (ଗ୍ରା.ବି) ପ୍ରକାର, (ବିଂ) ଜାତିଆ, ଉତ୍କୃଷ୍ଟ ।

ଜାତିଅଟକହେବା—ଗ୍ରା. କ୍ରି. ଅକ୍ରିୟା-ଆଦି କରିବାହେତୁ ସମାଜଚ୍ୟୁତ ହେବା ।

ଜାତିଆ—ଗ୍ରା.ବିଂ. (ସଂ-ଜାତୀୟ) କୁଳୀନ, ଉଚ୍ଚବଂଶୀୟ, ଉତ୍ତମ ଜାତୀୟ, ଯେ ଅସ୍ପୃଶ୍ୟ ଜାତିର ଲୋକକୁ ଛୁଇଁ ନ ଥିବାରୁ ପବିତ୍ର ଅଛି ।

ଜାତିଆଣ—ଗ୍ରା. ବିଂ. ଜାତି ବା ସମାଜ ସମ୍ବନ୍ଧୀୟ, ଜାତୀୟ, ଜାତିଆନ୍ ।

ଜାତିକର୍ମ—ଗ୍ରା. ବି. ଜାତିଗତ ବ୍ୟବ-ସାୟ, ଜାତି ବା ପାଟକ ବିଶେଷର ନିର୍ଦ୍ଦିଷ୍ଟ କର୍ମ ।

ଜାତିକା—ଗ୍ରା. ବିଂ. ଜାତୀୟ, ଶ୍ରେଣୀୟ, ପ୍ରକାରର ।

ଜାତିକାମ—ଗ୍ରା. ବି. ହାଟୁଆମାନଙ୍କର ଆପଣା ଆପଣା ପାଟକର ସାମାଜିକ ବୈଠକ ବା ଭୋଜି ।

ଜାତିକଜାତି—ଗ୍ରା. ବିଂ. ଭିନ୍ନଜାତିର ବା ପ୍ରକାରର, ନାନାଜାତୀୟ, (ବି) ଭିନ୍ନ-

ଭିନ୍ନ ଜାତିମାନେ, ଅନେକ ପ୍ରକାର ।
ଜାତିକୁଳ—ଗ୍ରା. ବି. ବଂଶ, ବଂଶମର୍ଯ୍ୟାଦା, ବଂଶଗୌରବ ।
ଜାତିକୋଶ—କ୍ଲୀ. ବି. ଜାତିଫଳ, ଜାଇଫଳ । [ ଫଳ ।
ଜାତିକୋଷ—କ୍ଲୀ. ବି. ଜାଇଫଳ,ଜାତି-
ଜାତିକୋଷୀ—ସ୍ତ୍ରୀ.ବି. ଜାତିପତ୍ରୀ,ଜାୟତ୍ରୀ, ଜାଇତ୍ରୀ ।
ଜାତିଚ୍ୟୁତ—ବିଂ. (୫ତତ୍) ଜାତିଭ୍ରଷ୍ଟ, ଜାତିହରାଇଥିବା, ସମାଜରୁ ବହିଷ୍କୃତ, ଅଭକ୍ଷ୍ୟାଆଦି ଦ୍ୱାରା ସମାଜରୁ ପତିତ ।
ଜାତିଚ୍ୟୁତି—ବି. (୫ତତ୍) ଜାତିନାଶ, ଅକାର୍ଯ୍ୟଆଦିଦ୍ୱାରା ନିଜର ଜାତି ହରାଇବା, ଜାତିଧ୍ୱଂସ ।
ଜାତିଜାତି—ଗ୍ରା.ବିଂ. ଭିନ୍ନ ଭିନ୍ନ ଜାତିର ବା ପ୍ରକାରର, ନାନାଜାତୀୟ ।
ଜାତିଜ୍ଞାପକ—ବିଂ. (ଜାତି+ଜ୍ଞାପକ) ଜାତିବାଚକ ଦେଖ ।
ଜାତିତତ୍ତ୍ୱ—ବି. (୬ତତ୍) ମାନବଜାତିର ମୂଳବିଭାଗ ଓ ପରସ୍ପର ସମ୍ବନ୍ଧ ବିଷୟକ ବିଜ୍ଞାନ ।
ଜାତିଧର୍ମ—ପୁଂ.ବି.(କ.ଧା) ବ୍ରାହ୍ମଣାଦିର ଧର୍ମ, ଜାତିଗତ ପେଷା, ଭିନ୍ନଭିନ୍ନ ଜାତିର ଆଚରଣୀୟ ବ୍ୟବସାୟ, ବିଭିନ୍ନ ଶ୍ରେଣୀର ଜୀବର କ୍ରିୟା ବା ଗୁଣ,(ଦ୍ୱନ୍ଦ୍ୱ) ଜାତି ଓ ଧର୍ମ ।
ଜାତିଧର୍ମନିର୍ବିଶେଷରେ—ଗ୍ରା. କ୍ରି.ବିଂ. ଜାତି ଧର୍ମ ବିଷୟରେ ପ୍ରଭେଦ ବିଚାର ନ କରି ।
ଜାତିଧ୍ୱଂସ -ବି.(୬ତତ୍)ଜାତିଚ୍ୟୁତି ଦେଖ ।
ଜାତିନାଶ—ବି. ( ୬ତତ୍ ) ଜାତିଚ୍ୟୁତି ଦେଖ ।
ଜାତିନେବା—ଗ୍ରା.କ୍ରି.କୌଣସି ଲୋକର ସାମାଜିକ ବିଶିଷ୍ଟତା ନଷ୍ଟକରାଇବା, କୌଣସି ବ୍ୟକ୍ତିକୁ ଅପବିତ୍ର କରାଇବା ବା ଅଖାଦ୍ୟ ଖୁଆଇ ତାହାକୁ ଜାତିଭ୍ରଷ୍ଟ କରାଇବା, କୁଳସ୍ତ୍ରୀର ସତୀତ୍ୱ ନାଶ କରିବା ।
ଜାତିପତି—ଗ୍ରା. ବି. ଜାତିକୁଳ ଦେଖ, ଜାତି ଓ ସମାଜ ।
ଜାତିପତ୍ରୀ—ବି. ଜାଇତ୍ରୀ ।
ଜାତିପନ୍ତି—ଗ୍ରା. ବି. ଜାତିପତି ଦେଖ ।
ଜାତିପାଞ୍ଚକ—ଗ୍ରା. ବି. ହାଟୁଆଜାତିର ସମସ୍ତଲୋକ, ଶୂଦ୍ରଜାତିର ଭିନ୍ନ ଭିନ୍ନ ଶାଖା ।
ଜାତିପାତ—ବି.( ୬ତତ୍ ଅକାର୍ଯ୍ୟ ଆଦି ଦ୍ୱାରା ନିଜର ଜାତି ହରାଇବା ।
ଜାତିପୁଅ—ଗ୍ରା. ବି. ଜାତିଭାଇ ।
ଜାତି (ତି)ପତ୍ରୀ—ସ୍ତ୍ରୀ. ବି. ଗନ୍ଧଦ୍ରବ୍ୟବିଶେଷ, ଜାୟତ୍ରୀ, ଜାଇଫଳତ୍ୱକ୍ ।
ଜାତିଫଳ—କ୍ଲୀ. ବି. ଜାଇଫଳ ।
ଜାତିଫଳାଦିଚୂର୍ଣ୍ଣ—ବୈଦ୍ୟକ ଔଷଧବିଶେଷ ।
ଜାତିବର୍ଣ୍ଣ—ପୁଂ.ବି.(ଦ୍ୱନ୍ଦ୍ୱ) ଆର୍ଯ୍ୟମ୍ଳେଚ୍ଛାଦି ଜାତି ଓ ବ୍ରାହ୍ମଣାଦିବର୍ଣ୍ଣ, ହିନ୍ଦୁ ମୁସଲମାନ ଖ୍ରୀଷ୍ଟାନ ପ୍ରଭୃତି ଜାତି ଏବଂ ଶରୀରର ରଙ୍ଗ ।
ଜାତିବାଚକ—ବିଂ. ( ଜାତି+ବାଚକ ) ଯାହାଦ୍ୱାରା କୌଣସି ବ୍ୟକ୍ତି ବା ପଦାର୍ଥର ଶ୍ରେଣୀ ବା ଜାତି ବୁଝାଯାଏ, ଗଣସମ୍ବନ୍ଧୀୟ ।
ଜାତିବାସନହେବା—ଗ୍ରା. କ୍ରି. ଜାତିରୁ ଅଲଗ ହେବା ।
ଜାତିବାହାର—ଗ୍ରା.ବି. ଜାତିଚ୍ୟୁତି, ଜାତିଭ୍ରଷ୍ଟହେବା,(ବିଂ)ଜାତିଭ୍ରଷ୍ଟ,ଜାତିଚ୍ୟୁତ
ଜାତିବିଦ୍ୱେଷ—ପୁଂ. ବି. ଏକଜାତିର ଅପର ଜାତିପ୍ରତି ହିଂସା ବା ଘୃଣା ।
ଜାତିବୈର—କ୍ଲୀ. ବି.ସ୍ୱାଭାବିକ ଶତ୍ରୁତା ।
ଜାତିବୋଧକ—ବି. (ଜାତି+ବୋଧକ) ଜାତିବାଚକ ଦେଖ ।
ଜାତିବ୍ୟବହାରବିଧାନ—କ୍ଲୀ.ବି.ବିଭିନ୍ନଜାତିର ଲୋକମାନଙ୍କର ପରସ୍ପର ବ୍ୟବହାର ବିଷୟକ ନିୟମ ।
ଜାତିବ୍ରାହ୍ମଣ—ପୁଂ. ବି. ବ୍ରହ୍ମକର୍ମରହିତ ବ୍ରାହ୍ମଣବଂଶଜ ବ୍ୟକ୍ତି ।
ଜାତିଭାଇ—ଗ୍ରା. ବି. ଏକଜାତୀୟ ଲୋକ, ସ୍ୱଜାତିଭୁକ୍ତ ବ୍ୟକ୍ତି ।
ଜାତିଭାତ—ଗ୍ରା. ବି. ଏକଜାତି ସମାଜ ବା ଗୋଷ୍ଠୀର ବ୍ୟକ୍ତିମାନଙ୍କର ଏକତ୍ର ଭୋଜନ ବା ଭୋଜି ।
ଜାତିଭୁକ୍ତହେବା—ଗ୍ରା. କ୍ରି. (ନବାଗତ ବା ପତିତବ୍ୟକ୍ତି ) ନିର୍ଦ୍ଦିଷ୍ଟ ସମାଜରେ ଗୃହୀତହେବା ।
ଜାତିଭେଦ—ପୁ. ବି. (୬ତତ୍) ବ୍ରାହ୍ମଣ କ୍ଷତ୍ରିୟାଦି ଜାତିର ପୃଥକ୍ ଜ୍ଞାନ ।
ଜାତିଭ୍ରଂଶ—ପୁଂ.ବି.ଜାତିଧ୍ୱଂସ,ଜାତିନାଶ ।
ଜାତିଭ୍ରଂଶକର—କ୍ଲୀ. ବି. ଯାହା କଲେ ଜାତିନଷ୍ଟ ହୁଏ,ପାପବିଶେଷ,(ବିଂ)ଯାହା ଲୋକଙ୍କୁ ଜାତିଭ୍ରଷ୍ଟ କରେ ।
ଜାତିମହ—ପୁଂ. ବି. ଜନ୍ମୋତ୍ସବ ।
ଜାତିମର୍ଯ୍ୟାଦା—ବି. ଜାତୀୟଗୌରବ (ଗ୍ରା.ବି.) ଜାତି ଓ ମର୍ଯ୍ୟାଦା ।
ଜାତିମାତ୍ର—କ୍ଲୀ. ବି. କେବଳଜାତି, ଜାତିରେବ ।
ଜାତିମାନ୍—ପୁଂ.ବିଂ. ଉଚ୍ଚପଦାଭିଷିକ୍ତ ।
ଜାତିମାଳା—ସ୍ତ୍ରୀ. ବି. ଜାତିସମୂହର ବିଶେଷ ବିବରଣ ଜ୍ଞାପକ ଗ୍ରନ୍ଥବିଶେଷ ।
ଜାତିମାରିବା—ଗ୍ରା.କ୍ରି.ଅଭକ୍ଷ୍ୟ ବା ଅଖାଦ୍ୟ ଦ୍ୱାରା କୌଣସି ବ୍ୟକ୍ତିର ଜାତି ଧ୍ୱଂସ ହେବା ।
ଜାତିରୁଯିବା—ଗ୍ରା.କ୍ରି.ଜାତିଚ୍ୟୁତ ହେବା ।
ଜାତିରେଚଳିବା—ଗ୍ରା.ଜାତିରେ ମିଶିବା (ନବାଗତ ବା ପତିତବ୍ୟକ୍ତି ) ନିର୍ଦ୍ଦିଷ୍ଟ ସମାଜରେ ଗୃହୀତହେବା ।
ଜାତିଶକ୍ତିବାଦ—ପୁଂ. ବି. ଶବ୍ଦର ଜାତି ଶକ୍ତି ସମର୍ଥକ କଥାବିଶେଷ ।
ଜାତିଶବ୍ଦ—ପୁଂ. ବି. ପ୍ରକାରବିଷୟକ, ଜାତିବିଶେଷ । [ ଫଳ ।
ଜାତିଶସ୍ୟ—କ୍ଲୀ. ବି. ଜାଇଫଳ, ଜାତି-
ଜାତିଶଙ୍କର—ପୁଂ. ବି. ବର୍ଣ୍ଣଶଙ୍କର, ଭିନ୍ନଭିନ୍ନ ଜାତି ପିତା ଓ ମାତାଙ୍କ ଔରସଜାତ ।
ଜାତିସଂଘ—ପୁଂ. ବି. (୬ତତ୍)ବହୁଜାତିର ଏକତ୍ର ମିଳନ ବା ମିଳିତ ଦଳ ।
ଜାତିସମ୍ପନ୍ନ—ବିଂ. ସଦ୍ବଂଶଜ, ଉଚ୍ଚବଂଶୀୟ ।
ଜାତିସାର—ବି. ଜାଇଫଳ ।

ଜାତିସ୍ମର—ପୁଂ. ବ.(୬ତତ୍) ତୀର୍ଥଭେଦ, (ବିଂ) ଯାହାର ପୂର୍ବଜନ୍ମ ବୃତ୍ତାନ୍ତ ସ୍ମରଣ ଥାଏ ।
ଜାତିସ୍ମରତା—ସ୍ତ୍ରୀ. ବ.(ଜାତିସ୍ମର+ତା) ପୂର୍ବଜନ୍ମର ସ୍ମରଣ ।
ଜାତିସ୍ମରତ୍ୱ—କ୍ଲୀ. ବ. (ଜାତିସ୍ମର+ତ୍ୱ) ପୂର୍ବଜନ୍ମବୃତ୍ତାନ୍ତ ସ୍ମରଣ ।
ଜାତିସ୍ମରଣ—କ୍ଲୀ. ବ. ପୂର୍ବଜନ୍ମସ୍ମରଣ ।
ଜାତିସ୍ୱଭାବ—ବ. (୬ତତ୍) ଜାତିଧର୍ମ, ଏକଜାତୀୟ ଜୀବମାନଙ୍କର ପ୍ରକୃତିର ବିଶିଷ୍ଟତା, ଆକୃତି ଓ ଗୁଣ ବର୍ଣ୍ଣନାତ୍ମକ ଅଳଙ୍କାରବିଶେଷ ।
ଜାତିହରାଇବା,ଜାତିହରେଇବା--ଗ୍ରା. କ୍ରି. ଅଖିଦ୍ୟାଆହାରଦ୍ୱାରା ଆପଣାର ଜାତି ନଷ୍ଟକରିବା, ଜାତ୍ୟନ୍ତରଗ୍ରହଣ କରିବା, ଆପଣାଜାତିରୁ ଯାଇ ଅନ୍ୟଜାତିରେ ବା ଧର୍ମରେ ପଶିବା ।
ଜାତିହୀନ—ବିଂ. (୩ତତ୍) ଜାତିଚ୍ୟୁତ, ସମାଜଭ୍ରଷ୍ଟ, ମ୍ଳେଚ୍ଛଜାତିର ।
ଜାତିହେବା—ଗ୍ରା. କ୍ରି. ପ୍ରାୟଶ୍ଚିତ୍ତ ବା ଦଣ୍ଡଭୋଗ ପରେ(ପତିତବ୍ୟକ୍ତି) ପୁନର୍ବାର ଆପଣା ସମାଜରେ ପ୍ରବେଶ କରିବା ।
ଜାତୀ—ସ୍ତ୍ରୀ. ବ.(ଜନ୍+ତ+ଈ)ଜାଇଫୁଲ ଗଛ,ଜାତୀପୁଷ୍ପ, ଆମଳକୀ,ଅଁଳା, ମାଳତୀଫୁଲ ।
ଜାତୀପତ୍ର—ବ. ଜାୟତ୍ରୀ । [ ଫଳ ।
ଜାତୀଫଳ—କ୍ଲୀ. ବ. ଜାଇଫଳ, ଜାତୀ
ଜାତୀଫଳତୈଳ—କ୍ଲୀ. ବ. ଜାତୀଫଳସ୍ନେହ, ଜାଇଫଳର ତେଲ ।
ଜାତୀୟ—ବିଂ.(ଜାତି+ଈୟ) ଜାତିସମ୍ବନ୍ଧୀୟ, ତଦ୍ଧିତପ୍ରତ୍ୟୟ ବିଶେଷ, ଶ୍ରେଣୀର, ପ୍ରକାରର, ବର୍ଣ୍ଣସମ୍ବନ୍ଧୀୟ, କୌଣସି ବିଶିଷ୍ଟ ଜାତିର ସାଧାରଣ ।
ଜାତୀୟଅନୁଷ୍ଠାନ--ବ.ଏକଜାତୀୟ ସମସ୍ତ ବ୍ୟକ୍ତିଙ୍କର ମଙ୍ଗଳକର ସାଧାରଣ କାର୍ଯ୍ୟ ।
ଜାତୀୟକ—ବିଂ.(ଜାତୀୟ+କ)ଜାତୀୟ ।
ଜାତୀୟଧନ—ଗ୍ରା. ବ. ଜାତିବିଶେଷର ସାଧାରଣ ହିତକର କାର୍ଯ୍ୟରେ ବ୍ୟୟିତ ହେବା ନିମନ୍ତେ ସେହି ଜାତିର ବ୍ୟକ୍ତିମାନଙ୍କ ସମବେତ ଉଦ୍ୟମରେ ସଂଗୃହୀତ ଧନରାଶି ।
ଜାତୀୟବିଧାନ—ବ.ଜାତୀୟବିଧି(ଦେଖ) ।
ଜାତୀୟବିଧି—ବ. ଅନ୍ତର୍ଜାତୀୟ ନିୟମ, ଜାତିବିଶେଷର ବିଶେଷ ବିଧି ।
ଜାତୀୟସ୍ୱଭାବ—ବ.ଏକଜାତୀୟ ବ୍ୟକ୍ତି ବା ଜୀବଙ୍କର ବିଶିଷ୍ଟ ପ୍ରକୃତି ।
ଜାତୀରସ—କ୍ଲୀ. ବ. ବୋଲନାମକ ଗନ୍ଧଦ୍ରବ୍ୟବିଶେଷ ।
ଜାତୀଲତା—ବ. (ଜାତୀ+ଲତା) ଜାଇଫଳ ଗଛ ।
ଜାତୀଶ୍ୱର—ବ.(୬ତତ୍)ଜାତିଶ୍ରେଷ୍ଠବ୍ୟକ୍ତି, ବ୍ରାହ୍ମଣ, ଜାତିର ପ୍ରଭୁ ବା ମୁଖ୍ୟ ବ୍ୟକ୍ତି ।
ଜାତୁ—ଅବ୍ୟ(ଜୈ+କ.ତୁ) କଦାଚିତ୍, ସମ୍ଭାବିତାର୍ଥ, (କଦାର୍ଥେ,ତୁ) ନିଷେଧାର୍ଥକ) ନା ।
ଜାତୁକ—କ୍ଲୀ. ବ. (ଜାତୁ+କ) ହିଙ୍ଗୁ ।
ଜାତୁକପର୍ଣ୍ଣିକା—ସ୍ତ୍ରୀ. ବ. ଶାକଜାତୀୟ ବୃକ୍ଷଭେଦ ।
ଜାତୁକପର୍ଣ୍ଣୀ—ସ୍ତ୍ରୀ. ବ. ବୃକ୍ଷବିଶେଷ ।
ଜାତୁଜ—ପୁଂ. ବ. ( ଜାତୁ+ଜନ୍+ଅ ) ଗର୍ଭିଣୀର ଅଭିଳାଷ, ସାଧ, ଦୋହଦ ।
ଜାତୁଧାନ—ପୁଂ. ବ. (ବ.ବ୍ରୀ) ରାକ୍ଷସ, ଅସୁର ।
ଜାତୁଷ—ବିଂ.ଜତୁବିକାର, ଜତୁନିର୍ମିତ ।
ଜାତୂ—କ୍ଲୀ. ବ. (ଜାନ୍+କ୍ୱିପ୍) ବଜ୍ର ।
ଜାତୂକର୍ଣ୍ଣ—ପୁଂ ବ. ଋଷିଭେଦ ।
ଜାତୂକର୍ଣ୍ଣୀ—ସ୍ତ୍ରୀ. ବ. ବିଖ୍ୟାତ ପଣ୍ଡିତ ଓ କବି ଭବଭୂତିଙ୍କ ଜନନୀ ।
ଜାତୂକର୍ଣ୍ଣି—ପୁଂ. ଓ ସ୍ତ୍ରୀ. ଜାତୂକର୍ଣ୍ଣଙ୍କର ଅପତ୍ୟ ।
ଜାତୁଷ୍ଠିର—ବିଂ.ଦେବଦାଅଛିର, ଅଚଳ ।
ଜାତେଷ୍ଟି— ସ୍ତ୍ରୀ. ବ. (୬ତତ୍) ପୁତ୍ର ଜନ୍ମ ହେଲେ ଯେଉଁ ଯାଗ କରାଯାଏ, ଜାତକର୍ମ ।
ଜାତେଷ୍ଟିନ୍ୟାୟ—ପୁଂ. ବ. ଜୈମିନି ପ୍ରଦର୍ଶିତ ନ୍ୟାୟଭେଦ ।
ଜାତୋକ୍ଷ—ପୁଂ. ବ. ଯୁବାବୃଷ, ବଳଦ, ଉତ୍ପନ୍ନ ଉକ୍ଷା ।
ଜାତ୍ୟ—ବିଂ. ( ଜାତି+ଯ ) କୁଳୀନ, ସୁଜାତ, ଶ୍ରେଷ୍ଠ, ସୁନ୍ଦର, କାନ୍ତ, ସମକୋଣୀ (କ୍ଷେତ୍ର),(ସ୍ତ୍ରୀ) ଜାତ୍ୟା ।
ଜାତ୍ୟଂଶ—ଗ୍ରା. ବ. ବ୍ୟକ୍ତିବିଶେଷରେ କୁଳ ବା ଜାତି ସମ୍ବନ୍ଧୀୟ ଅବସ୍ଥିତି, ବଂଶ, କୁଳ, ଗୋତ୍ର, ଉପଜାତି, ଜାତିମଧ୍ୟସ୍ଥ ବିଭାଗ ।
ଜାତ୍ୟଚତୁର୍ଭୁଜ—ବ. ଯେଉଁ ଚତୁର୍ଭୁଜର କୋଣମାନ ସମକୋଣ ।
ଜାତ୍ୟତ୍ରିଭୁଜ—ପୁଂ. ବ. ସମକୋଣୀ ତ୍ରିଭୁଜ ।
ଜାତ୍ୟନ୍ତର—ବ. (କ.ଧା)ଅନ୍ୟ ଜାତି ।
ଜାତ୍ୟନ୍ତରଗ୍ରହଣ—ବ. ନିଜର ଜାତି ସମାଜ ବା ଧର୍ମ ଛାଡ଼ି ଅନ୍ୟଜାତି ବା ଧର୍ମ ଗ୍ରହଣ କରିବା ।
ଜାତ୍ୟନ୍ଧ—ବିଂ. ( ୩ତତ୍ ) ଜନ୍ମାନ୍ଧ, ଆଜନ୍ମ ଦୃଷ୍ଟିହୀନ ।
ଜାତ୍ୟଭିମାନ—ବ.(୬ତତ୍)ଉଚ୍ଚଜାତିରେ ଜନ୍ମହେତୁ ଅହଂକାର,କୌଳୀନ୍ୟଗର୍ବ ।
ଜାତ୍ୟାସନ—କ୍ଲୀ. ବ. ଯୋଗୀଙ୍କ ଆସନ ବିଶେଷ ।
ଜାତ୍ୟୁତ୍ତର—କ୍ଲୀ. ବ. ନ୍ୟାୟ କଥିତ ଅସଦୁତ୍ତର ବିଶେଷ ।
ଜାଦବ—ଗ୍ରା.ବ.ବୋମ୍ବାଇପ୍ରେସିଡେନ୍ସିର ଅନ୍ତର୍ଗତ ବେଲେଗାଁ ଜିଲାର ଗୋଟିଏ ଜାତି ।
ଜାଦା—ଯା. ବ. ପୁତ୍ର, କୁମାର ।
ଜାଦୀ—ସ୍ତ୍ରୀ. ବ. ପୁତ୍ରୀ, କୁମାରୀ ।
ଜାଦୁ—ଯା. ବ. କୁହୁକ, ମୋହ, ମାୟା, ଭେଲ୍କି, ଇନ୍ଦ୍ରଜାଲ, ଭୌତିକବିଦ୍ୟା, ବଶୀକରଣ ଓ ତାନ୍ତ୍ରିକ ବିଦ୍ୟା,(ଗ୍ରା.ବ.) ଚର୍ମରୋଗବିଶେଷ, ଦାଦୁ, ଦଦ୍ରୁ ।
ଜାଦୁଆ—ଗ୍ରା. ବିଂ. ଦାଦୁରୋଗ ବିଶିଷ୍ଟ, ଦାଦୁଆ ।
ଜାଦୁକର—ଯା.ବ.ଐନ୍ଦ୍ରଜାଲିକ, କୁହୁକୀ ।
ଜାଦୁକଶ—ଯା. ବ. ଭୋଜବାଜୀ, କୁହୁକ ।
ଜାଦୁଗର—ଯା. ବ. ମୋହକ, କୁହୁକୀ,

ଭେଲକୀକର୍ତ୍ତା, ଐନ୍ଦ୍ରଜାଲିକ ।
ଜାଦୁଗଣ୍ଡ—ଯା.ବି. ଗୁଣ, କୁହୁକ, ମାୟା, ଭେଳିକବାଜି ।
ଜାଦୁଘର—ଗ୍ରା. ବି. ପ୍ରାକୃତିକ ଓ ଶିଳ୍ପ ବିଜ୍ଞାନଜାତ ପଦାର୍ଥସମୂହ ସଂଗୃହୀତ ହୋଇ ରଖାଯାଇଥିବା ସ୍ଥାନ,କୌତୁକାଗାର ।
ଜାଦୁବିଦ୍ୟା—ଗ୍ରା.ବି.ଭେଳିକବାଜି, ବଶୀକରଣ ବିଦ୍ୟା ।
ଜାନ୍—ଯା.ବି. ଜୀବନ, ପ୍ରାଣବାୟୁ, ଦମ୍, ଆତ୍ମା, କୌଣସି ରାଗର ପ୍ରଧାନ ସ୍ୱର, (ପ୍ରା. ସମ୍ବ ବି.) ଦହି କରିବା ପାଇଁ ଦୁଧରେ ପକାଇବା ମହି ।
ଜାନ୍‌ଖାଇବା—ଗ୍ରା. କ୍ରି. ଅତି ବିରକ୍ତ ବା ବ୍ୟତିବ୍ୟସ୍ତ କରିବା, ବାରମ୍ବାର ଜିଦ୍ କରିବା ।
ଜାନ୍‌ଦେବା—ଗ୍ରା.କ୍ରି.କୌଣସି କାର୍ଯ୍ୟରେ ଜୀବନ ସମର୍ପଣ କରିବା, ପ୍ରାଣତ୍ୟାଗ କରିବା ।
ଜାନ୍‌ନେବା—ଗ୍ରା.କ୍ରି. ପ୍ରାଣରେ ମାରିବା, ଜାନଖାଇବା ଦେଖ ।
ଜାନ—ପୁଂ. ବି. (ଜନ୍+ଭ୍ରି.ଅ)ଉତ୍ପତ୍ତି, (ଜନ୍+ଣ+ଅ)ପ୍ରାଣ, ସାରାଂଶ, (ସ୍ତ୍ରୀ. ବିଂ) ଜନସମ୍ବନ୍ଧୀୟ, ଜ୍ଞାତା ।
ଜାନକ—ବିଂ.(ଜନକ+ଅ)ପିତୃସମ୍ବନ୍ଧୀୟ ।
ଜାନକି—ପୁଂ. ବି. (ଜନକ୍+ଇ)ଭାରତ ପ୍ରସିଦ୍ଧ ନୃପଭେଦ ।
ଜାନକୀ—ସ୍ତ୍ରୀ. ବି. (ଜନକ+ଈ) ସୀତା, ରାମପତ୍ନୀ, ବୈଦେହୀ ।
ଜାନକୀକୋଟ—ସାରଣପୁର ଜିଲ୍ଲାର ଗୋଟିଏ ପ୍ରାଚୀନ ଗଡ ।
ଜାନକୀତୀର୍ଥ— ଅଯୋଧ୍ୟା ନିକଟବର୍ତ୍ତୀ ସରଯୂ ନଦୀର ଗୋଟିଏ ଘାଟ ।
ଜାନକୀନନ୍ଦନକବୀନ୍ଦ୍ର--ବୃତ୍ତଦର୍ପଣଛନ୍ଦୋଗ୍ରନ୍ଥ ପ୍ରଣେତା । [ ଚନ୍ଦ୍ର ।
ଜାନକୀନାଥ—ପୁଂ.ବି. (୬ତତ୍ପୁ) ଶ୍ରୀରାମ-
ଜାନତ୍—ଗ୍ରା. ବିଂ. ଜ୍ଞାତ, ସୁପରିଚିତ ।
ଜାନନ୍ତି—ପୁଂ. ବି. ଋକ୍‌ବେଦୀୟ ତର୍ପଣୀୟ ଋଷିବିଶେଷ ।

ଜାନପଦ—ବିଂ. (ଜନପଦ+ଅ) ଜନପଦଜାତ, ଗ୍ରାମ୍ୟ, ନଗରସମ୍ବନ୍ଧୀୟ, ଦେଶସ୍ଥ, ଦେଶାନ୍ତରାଗତ, (ସ୍ତ୍ରୀ)ଜାନପଦୀ, (ବି) ଜନପଦ, ଗ୍ରାମ, ଦେଶ, ନାଗରିକ, ଦେଶୀଆଲୋକ, ମଫସଲ ବାସିନ୍ଦା, କର, ମାଲଗୁଜାରି, ( ହିନ୍ଦୁସ୍ଥାନ) ପ୍ରଜାବର୍ଗଙ୍କ ମଧ୍ୟରେ ପରସ୍ପର ବ୍ୟବହାର ସମ୍ବନ୍ଧରେ ଲେଖାଥିବା ଦଲିଲର ଏକ ଶ୍ରେଣୀ ।
ଜାନପଦିକ—ବିଂ. ( ଜନପଦ+ଇକ ) ଜନପଦସମ୍ବନ୍ଧୀୟ ।
ଜାନପଦୀ—ସ୍ତ୍ରୀ. ବି. ( ଜନପଦ+ଈ ) ବୃତ୍ତି, ଅପ୍ସରାବିଶେଷ ।
ଜାନବର—ଯା. ବି. ଜନ୍ତୁ, ପ୍ରାଣୀ ।
ଜାନବାଜ—ଯା.ବିଂ. ସତେଜ, ସାହସୀ, ଗୁଲ୍ଲକ ।
ଜାନବାଦିକ—ବିଂ. (ଜନବାଦ+ଇକ) ଜନବାଦସମ୍ବନ୍ଧୀୟ (କଥାଦି) ।
ଜାନବନ୍ତ—ଗ୍ରା.ବିଂ.ଜଣାଶୁଣା,ପରିଚିତ ।
ଜାନଶ୍ରୁତି—ପୁଂ. ବି. ଜନଶ୍ରୁତ ଋଷିଙ୍କ ଅପତ୍ୟ ।
ଜାନଶ୍ରୁତେୟ—ପୁଂ.ବି ଜନଶ୍ରୁତର ପୁତ୍ର, ଔପବିରାଜର୍ଷି ।
ଜାନସାହେବ—ହିନ୍ଦିଭାଷାର ଖ୍ରୀଷ୍ଟୀୟ-ପଦ୍ୟ ରଚୟିତା ମି. ଜନ ।
ଜାନା—ପ୍ରା. (ମେଦି) ବି. ଶୂଦ୍ରମାନଙ୍କର ବଂଶୋପାଧିବିଶେଷ ।
ଜାନାନା—ଯା. ବି. ସ୍ତ୍ରୀଜାତି ।
ଜାନାଲା—ଯା. ବି. ବାତାୟନ, ଗବାକ୍ଷ, ଝରକା ।
ଜାନି—ବି. (ବ.ଗ୍ରା)ସ୍ତ୍ରୀ, ଭାର୍ଯ୍ୟା ।
ଜାନିବ୍—ଯା. ବି. ଅଂଶ ।
ଜାନିବଦାର୍—ଯା. ବିଂ. ପ୍ରତିପାଳକ, ସାହାଯ୍ୟକାରୀ । [ ପାଳନ ।
ଜାନିବଦାରୀ—ଯା. ବି. ସାହାଯ୍ୟ, ପ୍ରତି-
ଜାନୀ—ଯା.ବିଂ. ବେଶ୍ୟାସକ୍ତ, (ବି)ଚକ୍ଷୁପତା । [ ଆଣ୍ଠୁ ।
ଜାନୁ—କ୍ଲୀ. ବି. (ଜନ୍+ଉ) ଉରୁସନ୍ଧି,
ଜାନୁଆର୍—ଯା. ବି. ଜୀବ, ଜନ୍ତୁ, ପ୍ରାଣୀ, ପଶୁ,ପଶୁବତ୍ ମୂର୍ଖ ଓ ବର୍ବରସ୍ୱଭାବ ବ୍ୟକ୍ତି ।
ଜାନୁଆରି—ଯା. ବି. ଇଂରାଜି ବର୍ଷର ପ୍ରଥମ ମାସର ନାମ, ଖ୍ରୀଷ୍ଟବର୍ଷର ପ୍ରଥମ ମାସର ନାମ ।
ଜାନୁକ—ବି. (ଜାନୁ+କ) ଜାନୁ ।
ଜାନୁକାରକ—ପୁଂ. ବି. ସୂର୍ଯ୍ୟଙ୍କ ପାର୍ଶ୍ୱଗାମିବିଶେଷ ।
ଜାନୁଗତି—ବି. (୬ତତ୍ପୁ) ଆଣ୍ଠୋଇବା, ଆଣ୍ଠୁରେ ଭରଦେଇ ଚାଲିବା,ଗୁରୁଣ୍ଡିବା ।
ଜାନୁଘଣ୍ଟ—ଗ୍ରା. ବି. ସତ୍ୟଯୁଗର ରାଜଚକ୍ରବର୍ତ୍ତୀବିଶେଷ,ଜାନୁରେ ଘଣ୍ଟା ବାନ୍ଧି ଭିକ୍ଷା ମାଗିବା ଭିକ୍ଷୁକବିଶେଷ ।
ଜାନୁଜଙ୍ଘ—ପୁଂ. ବି. ନୃପଭେଦ,(ଗ୍ରା.ବି) ଗୋଡର ଆଣ୍ଠୁଠାରୁ ପିଣ୍ଡି ପର୍ଯ୍ୟନ୍ତ ଅଂଶ ।
ଜାନୁପାଣି—ବି. ଆଣ୍ଠୋଇ ଚାଲିବା ।
ଜାନୁପ୍ରହୃତିକ—କ୍ଲୀ.ବି.ମଲ୍ଲଯୁଦ୍ଧବିଶେଷ ।
ଜାନୁମାନୁ—ଗ୍ରା.ବି.ଜାନୁ ଓ ମାନୁ, ଚମ୍ପାନିବାସୀ ଦୁଇଜଣ ମନସା ଭକ୍ତ ।
ଜାନୁଯୌବନ—ଗ୍ରା. ବି. ( ଯୁବତିର ) ଜାନୁ ଓ ଅନ୍ୟ ଅବୟବମାନଙ୍କରେ ଯୌବନ ଯୋଗୁଁ ବିକଶିତ ଲକ୍ଷଣାଦି ।
ଜାନୁବିଜାନୁ—କ୍ଲୀ. ବି. ଖଡ୍ଗଯୁଦ୍ଧର ପ୍ରକାରଭେଦ ।
ଜାନୁହତ—ବିଂ. ଜନପରିକଳିତ ।
ଜାନେକା—ଗ୍ରା. ବି. ଏକପ୍ରକାର କ୍ଷୁଦ୍ରଜାତି ବୃକ୍ଷ ।
ଜାନ୍ୟ—ପୁଂ. ବି. ଋଷିବିଶେଷ ।
ଜାପ—ପୁଂ. ବି. (ଜପ+ଅ) ମନ୍ତ୍ରଜପାଦି, ଜପକର୍ତ୍ତା, ଜାପାନବାସୀ ।
ଜାପକ—ପୁଂ. ବିଂ. ( ଜପ+କ.ଅକ ) ଜପକର୍ତ୍ତା, ଯେ ଜପକରେ, ( ସ୍ତ୍ରୀ ) ଜାପିକା ।
ଜାପଟ—ପ୍ରା. (କଟକ)ବି. ଗଦା ହୋଇଥିବା ଧାନ ଉପରେ ଦିଆଯିବା ମୁଦ୍ରା ବା ମୁଦ ।
ଜାପନ—କ୍ଲୀ.ବି. (ଜପ+ଣି+ଭ୍ରି.ଅନ) ନିରସନ, ମନାକରିବା, ପ୍ରତ୍ୟାଖ୍ୟାନ, ଜପନିଷ୍ପାଦନ, ନିବର୍ତ୍ତନ ।

ଜାପାନ—ଏସିଆ ମହାଦେଶାନ୍ତର୍ଗତ ଗୋଟିଏ ବିସ୍ତୃତ ଦେଶ ।
ଜାପାନୀ—ଗ୍ରା. ବିଂ. ଜାପାନଦେଶୀୟ, ଜାପାନରେ ବାସ କରୁଥିବା (ବ୍ୟକ୍ତି) ।
ଜାପିନ—ବିଂ. ଜପକାରକ ।
ଜାପିବା—ଗ୍ରା. କ୍ରି. ଚାପିବା, ଚପିବା ।
ଜାପ୍ୟ—ବିଂ. (ଜପ+ଯ)ଜପଯୋଗ୍ୟ ।
ଜାଫରାନ୍—ଯା. ବି. ଅଫଗାନି କାଷ୍ଠବିଶେଷ, ସୁଗନ୍ଧଫୁଲ, କୁଙ୍କୁମ, ପାରସ୍ୟ ଓ କାଶ୍ମୀରଦେଶୀୟ ଶାକବିଶେଷରେ ପୁଷ୍ପମଧ୍ୟସ୍ଥ ଗର୍ଭକେଶର ।
ଜାଫଫୁ—ନେପାଳର ନେବା ଜାତିର ଗୋଟିଏ ଶାଖା ।
ଜାବ—ଗ୍ରା.ବି.ଗବାଦିର ଖାଦ୍ୟ, ଆର୍ଦ୍ର ।
ଜାବଟ—ଗ୍ରା. ବି. ବୃନ୍ଦାବନ ନିକଟସ୍ଥ ଗ୍ରାମବିଶେଷ ।
ଜାବଡ଼—ଗ୍ରା. ବିଂ. ଦୃଢ଼, ଘଞ୍ଚ, (ଗ୍ରା.କ୍ରି) ଦ୍ରୁତବେଗ । ଧରିବା ।
ଜାବଡ଼ା—ଗ୍ରା.ବି. ଚିପୁଡ଼ା, ଦୃଢ଼ ଭାବରେ
ଜାବଡ଼ିଧରିବା—ଗ୍ରା. କ୍ରି. ଖୁବ୍ ଚିପି କରି ଧରିବା ।
ଜାବତା—ଯା. ବି. ରାଜବିଧି, ନିୟମ, ଆଇନ୍, କାଇଦା, ଆୟ ଓ ଅଧିକାର, ( ଗ୍ରା.ବିଂ ) ଆଇନ୍‌ସଙ୍ଗତ, ଆଇନର ଭାବ ଅନୁଯାୟୀ, ଭାବମତ, (ପ୍ରା.ଗଞ୍ଜାମ ବି) ତାଲିକା ।
ଜାବତାକରିବା—ଗ୍ରା.କ୍ରି.କାଇଦାକରିବା, ଶାସନକରିବା, ଗାଳିଦେବା ।
ଜାବଦା—ପ୍ରା.(ସିଂହ)ବି. (ପାଣି) ଯାହା ପିଇଲେ ଖାଦ୍ୟ ଜୀର୍ଣ୍ଣ ହୁଏ ନାହିଁ,ଯାହା ଖାଦ୍ୟ ଜୀର୍ଣ୍ଣ କରିବାରେ ସାହାଯ୍ୟ କରେ ନାହିଁ ।
ଜାବପଡ଼ିବା—ଗ୍ରା.ବି.କ୍ରୋଧ ବା ବାତାଦି ରୋଗଯୋଗୁଁ ମୁଠାଇ ଧରିଥିବା ବସ୍ତୁରୁ ଧରିବା ବ୍ୟକ୍ତିର ମୁଠା ନ ଫିଟିବା ଅବସ୍ଥା ।
ଜାବାଲ—ପୁଂ. ବି. (ଜବାଲ+ଅ) ମୁନିବିଶେଷ,ସତ୍ୟକାମ, ମହାଶଳର ଉପାଧି, ବୈଦ୍ୟକଗ୍ରନ୍ଥବିଶେଷ, ଅଜାଜୀବ,ଛେଳି ରଖୁଆଳ, ଉପନିଷଦବିଶେଷ, ଦର୍ଶନ ଶାସ୍ତ୍ରବିଶେଷ । [ ଆଚାର୍ଯ୍ୟ ।
ଜବାଲାୟନ—ପୁଂ. ବି. ଜଣେ ବୈଦିକ
ଜାବାଲି—ପୁଂ. ବି. ( ଜାବାଲା+ଇ ) କଶ୍ୟପବଂଶୀ ଜଣେ ମୁନି, ଗୃହଗୋପକ୍ଷୀ, ଛେଳି ରଖୁଆଳ, ଜାବାଲ ।
ଜାବାଲିନ୍—ପୁଂ. ବି. ବେଦର ଗୋଟିଏ ଶାଖା ।
ଜାମ୍—ଯା. ବି. (କାଠିୟାବାଡ଼) ପଶ୍ଚିମ ଭାରତ ଓ କାଠିୟାବାଡ଼ ଅଞ୍ଚଳର ରାଜାମାନଙ୍କ ଉପାଧିବିଶେଷ, ଜାମସାହେବ, (କଳିଙ୍ଗିଆଇ) ଦୁଇଟି ବସ୍ତୁ ପରସ୍ପର ସହିତ ଦୃଢ଼ ଭାବରେ ଲଗିଥିବା, ଗୁଡ଼ ମିଶ୍ରିତ ଚଟଣୀ, ମୁରବ୍ବା ।
ଜାମ୍‌ଖାଇବା—ଗ୍ରା. କ୍ରି. ଦୁଇଟି ପଦାର୍ଥ ପରସ୍ପର ସହିତ ଦୃଢ଼ ଭାବରେ ଲଗିଥିବା ।
ଜାମ୍‌ଦାନୀ—ଯ .ବି. ବୁଣା ହେଲା ବେଳୁଁ ସୂକ୍ଷ୍ମ ସୂକ୍ଷ୍ମ ରନ୍ଧ୍ର ଓ କାରୁକାର୍ଯ୍ୟଥିବା ସୂତା ଲୁଗା, ତନ୍ତରେ ବୁଣା ହେବାବେଳେ ଫୁଲ ପଡ଼ିଥିବା ଲୁଗା ।
ଜାମ୍‌ସେଦ୍‌ପୁର୍—ଗ୍ରା. ବି. ବମ୍ବେଇ ଅଞ୍ଚଳର ଜଗତ୍‌ବିଖ୍ୟାତ ସ୍ବର୍ଗୀୟ ପାର୍ଶୀ ବଣିକ୍ ।
ଜାମ—ପ୍ରା.(ହିନ୍ଦି)ବି. ଜମ୍ବୁ, ଜାମୁକୋଳି, (ପ୍ରା. ଦୁମୁହର) ପିଜୁଳିଗଛ ଓ ଫଳ ।
ଜାମଦଗ୍ନ—ପୁଂ.ବି.ଚତୁରହଯାଗଭେଦ ।
ଜାମଦଗ୍ନେୟ —ପୁଂ.ବି.(ଜମଦଗ୍ନି +ଏୟ) ପର୍ଶୁରାମ, ଭାର୍ଗବ ।
ଜାମଦଗ୍ନ୍ୟ—ପୁଂ. ବି. ( ଜମଦଗ୍ନି+ଯ) ପର୍ଶୁରାମ, ଭାର୍ଗବ ।
ଜାମନି—ମଧ୍ୟଭାରତ ବୁନ୍ଦେଲଖଣ୍ଡ ଇଲାକାର ଗୋଟିଏ ନଦୀ ।
ଜାମରୁଲ୍—ଗ୍ରା.ବି. ଫଳବିଶେଷ, ଜମ୍ବୁକାଦିବର୍ଗର ଉଦ୍ୟାନଜାତ ଫଳ ତରୁବିଶେଷ । [ ଜାଗ ।
ଜାମର୍ଯ୍ୟ—ବିଂ. ପ୍ରାଣୀମାନଙ୍କର ଅମର-
ଜାମଳ—କ୍ଲୀ. ବି. ତନ୍ତ୍ରଶାସ୍ତ୍ରବିଶେଷ ।
ଜାମଲି—ଖାଜୁଆ ଜାତିର ଗୋଟିଏ ସହର ।
ଜାମା—ସ୍ତ୍ରୀ. ବି.(ଜମ୍+ଅ+ଆ)କନ୍ୟା, ଦୁହିତା, ଝିଅ, ପୁତ୍ରବଧୂ, ବନ୍ଧୁ ।
ଜାମାଇଁ—ଗ୍ରା. ବି. ଜ୍ବାଇଁ, ଜାମାତା ।
ଜାମାତା—ପୁଂ. ବି. (ଜାୟା+ମା+କ, ତୃ) ଜାମାତା, କନ୍ୟାର ସ୍ବାମୀ, ସୂର୍ଯ୍ୟାବର୍ତ୍ତି, ଧବ, ବଲ୍ଲଭ, ସୂର୍ଯ୍ୟମୁଖୀଫୁଲ, ପ୍ରଭୁ, ଖାମିନ୍ଦ ।
ଜାମାତୃକ—ବିଂ. ଜାମାତାସମ୍ବନ୍ଧୀୟ, (ବି) ଜାମାତା ଦେଖ ।
ଜାମାତୃତ୍ବ—କ୍ଲୀ. ବି. ଜାମାତାର କାର୍ଯ୍ୟ ।
ଜାମାନିମା—ଗ୍ରା.ବି.କୁର୍ତ୍ତି ଓ ପାଇଜାମା, କୋଟ, ପାଣ୍ଟ ।
ଜାମାଜୋଡ଼— ଗ୍ରା.ବି.କୁର୍ତ୍ତି ଓ ଜୋତା, ମନୁଷ୍ୟ ପିନ୍ଧିବା କୁର୍ତ୍ତି ( କୁରୁତା ), (ଜାମା) ଓ ଲୁଗା, ଚଦର, ଯୋଡ଼, ପୋଷାକ, ପୋଷାକ ଦ୍ବାରା ସଜ୍ଜା ।
ଜମାରୁ—ଯା.ବି. ସାଧା କିମ୍ବା ସରୁଧଡ଼ିଆ ପିନ୍ଧା ଲୁଗା ।
ଜାମାଲପୁର—ମୟମନସିଂ ଜିଲ୍ଲାର ଗୋଟିଏ ମହକୁମା ।
ଜାମି—ସ୍ତ୍ରୀ.ବି. (ଜମ+ଇ)ଭଗିନୀ, କୁଳସ୍ତ୍ରୀ, ଦୁହିତା, ପୁତ୍ରବଧୂ, ସପିଣ୍ଡି ସ୍ତ୍ରୀ, ବନ୍ଧୁ, ଉଦକ, ଅଙ୍ଗୁଳି ।
ଜାମିକୃତ୍—ପୁଂ.ବିଂ.(ଜାମି+କୃ+କ୍ବିପ୍) ସମ୍ବନ୍ଧକାରୀ ।
ଜାମିତ୍ର—କ୍ଲୀ.ବି.(ଜାମି+ତ୍ରୈ+କ.ଅ) ଲଗ୍ନର ସପ୍ତମ ସ୍ଥାନ ।
ଜାମିତ୍ରବେଧ—ବି. (ଜ୍ୟୋତିଷ) ପାପଗ୍ରହର ସପ୍ତମ ସ୍ଥାନରେ ଚନ୍ଦ୍ରଙ୍କ ଅବସ୍ଥିତରୂପ ଅଶୁଭଯୋଗ ।
ଜାମିତ୍ବ—କ୍ଲୀ.ବି.(ଜାମି+ତ୍ବ)ସମ୍ବନ୍ଧ ।
ଜାମିନ୍—ଯା.ବି. "ପ୍ରତିଭୂ", ପରପାଇଁ ଦାୟିତ୍ବ ଗ୍ରହଣକରିବା ବ୍ୟକ୍ତି "ମୁଚ୍ଛଲିକା" ପରର କର୍ମପାଇଁ ଦାୟୀରହିବାନିମନ୍ତେ କୌଣସି ବ୍ୟକ୍ତି ନିଜର ଯେଉଁ ସମ୍ପତ୍ତିକୁ ଆବଦ୍ଧ ରଖେ ବା ଯେଉଁ ଅର୍ଥଦଣ୍ଡ ଦେବାକୁ ଅଙ୍ଗୀକାର କରେ, "ଦୁଇଟଙ୍କ ଅଟାଣୁଆଁ ବା

ପୃଥକ୍ ବସ୍ତୁ ଛାଣ କରିବାପାଇଁ ତହିଁ ତଳେ ଯୋଡ଼ାଯିବା କାଠ ବା ଧାତୁର ଖଣ୍ଡ" 'ଆଶ୍ରୟ' କ୍ରିଆ, ଗଚ୍ଛିତ ଟଙ୍କା, (ଯାହା ଅଙ୍ଗୀକାର ପାଳନ ନ କଲେ ବାଜେୟାପ୍ତ ହୁଏ)।

ଜାମିନ୍‌ଜବତ୍ର—ଯା.ବି.କାର୍ଯ୍ୟସାଧିତ ନ ହେଲେ ଜାମିନ୍ ଦିଆଯାଇଥିବା ସମ୍ପତ୍ତିର କୋରକ୍ଷ।

ଜାମିନ୍‌ଦାର୍—ଯା.ବି. ଯେ ଜାମିନ୍ ହୁଏ,ଯେ ଅନ୍ୟର ଋଣ ଆଦିର ଦାୟିତ୍ୱ ସକାଶେ ନିଜେ ଦାୟୀ ରହେ।

ଜାମିନ୍‌ଦାରି—ଯା.ବି. ପ୍ରତିଭୂତ୍ୱ।

ଜାମିନ୍‌ଦେବା—ଗ୍ରା. କ୍ରି. ଆପଣାର କାର୍ଯ୍ୟପାଇଁ ଦାୟୀ ହୋଇ ଜାମିନ୍‌ନାମା (ଅଙ୍ଗୀକାର ପତ୍ର) ଲେଖିଦେବା ନିମନ୍ତେ ଅନ୍ୟ ବ୍ୟକ୍ତିଙ୍କୁ ଉପସ୍ଥିତ କରାଇବା।

ଜାମିନ୍‌ନାମା—ଯା.ବି. ମୁଚୁଲ୍‌କା, ପ୍ରତିଭୂର ସମ୍ପାଦିତ ଅଙ୍ଗୀକାରପତ୍ର।

ଜାମିନ୍‌ନେବା—ଗ୍ରା.କ୍ରି.ଉପସ୍ଥିତ ଆସାମୀର ଭବିଷ୍ୟତ୍ କାର୍ଯ୍ୟ ବା ଦାୟିତ୍ୱନିମନ୍ତେ ଉପଯୁକ୍ତ ଓ ଯଥେଷ୍ଟ ଜାମିନ ଗ୍ରହଣ କରିବା।

ଜାମିନ୍‌ଭତ୍ତା—ଗ୍ରା. ବି. ଜାମିନ୍‌ଦାର ପରପାଇଁ ଆପଣା ଉପରେ ଯେଉଁ ଦାୟିତ୍ୱ ଗ୍ରହଣ କରିଥାଏ ସେଥିନିମନ୍ତେ ପରଠାରୁ ପାଇବା ପୁରସ୍କାର।

ଜାମିନ୍ ହେବା—ଗ୍ରା.କ୍ରି. ଅନ୍ୟର କାର୍ଯ୍ୟପାଇଁ ଦାୟୀ ରହିବାର ଅଙ୍ଗୀକାର କରିବା।

ଜାମିଶଂସ—ପୁଂ.ବି.ଭଉଣୀଭାଇ ଦ୍ୱାରା ଯେ ଅଭିଶାପ ଦିଆଯାଏ।

ଜାମୀ--ସ୍ତ୍ରୀ.ବି.(ଜମି+ଈ)ଜାମି ଦେଖ।

ଜାମୁ—ଗ୍ରା. ବି. (ସଂ-ଜମ୍ବୁ) ଫଳବୃକ୍ଷବିଶେଷ,ଜାମୁଗଛ ଓ ତାହାର ଫଳ।

ଜାମୁକ—ଗ୍ରା.ବି.ବାଣୁଆଁମାନେ ବନ୍ଧୁକର ପାର୍ଶ୍ୱସ୍ଥ ରନ୍ଧ୍ରରେ ନିଆଁ ଲଗାଇବାପାଇଁ ଯେଉଁ ଦଉଡ଼ିରେ ନିଆଁ ରଖିଥାଆନ୍ତି, ସଳିତା, ପଲିତା।

ଜାମୁଡ଼ା—ଗ୍ରା. ବି. ବ୍ରଣକଣ, ବଣ୍ଡି, କଇଞ୍ଛା, ଜାମୁଲା।

ଜାମୁଡ଼ାଲ(ନାଚ)—ଗ୍ରା.ବି. ଆଦିମ ଅଧିବାସୀଙ୍କ ମଧ୍ୟରେ ପ୍ରଚଳିତ ନୃତ୍ୟବିଶେଷ। [ ବିଶେଷ।

ଜାମୁର୍ଧି—ପ୍ରା.(ସମ୍ବ) ବି. କ୍ଷୁଦ୍ରବୃକ୍ଷ-

ଜାମେୟ—ପୁଂ. ବି. ( ଜାମୀ+ଏୟ ) ଭଣଜା, ଭଗ୍ନୀଜା।

ଜାମେୱାର—ଯା.ବି. ସର୍ବାଙ୍ଗରେ ଫୁଲକାମ ବୁଣାହୋଇଥିବା ଏକପ୍ରକାର ଶାଲ।

ଜାମ୍ପୁଇ—ତ୍ରିପୁରାର ପର୍ବତବିଶେଷ।

ଜାମ୍ବବ—କ୍ଲୀ.ବି.( ଜମ୍ବୁ+ଅ ) ଜାମ୍ବୁଫଳ, ସୁବର୍ଣ୍ଣ, ଜାମୁକୋଳିରୁ ପ୍ରସ୍ତୁତ ମଦ, (ପୁଂ) ରାମାୟଣ ବର୍ଣ୍ଣିତ ଭାଲୁମାନଙ୍କର ରାଜା, ଜାମ୍ବବାନ୍।

ଜାମ୍ବବକ—କ୍ଲୀ. ବି. ଜମ୍ବୁଫଳ।

ଜାମ୍ବବତୀ—ସ୍ତ୍ରୀ. ବି. ( ଜାମ୍ବବତ୍+ଈ ) ଶ୍ରୀକୃଷ୍ଣଙ୍କପତ୍ନୀ, ନାଗଦମନୀ, ଜାମ୍ବବାନଙ୍କ କନ୍ୟା।

ଜାମ୍ବବାନ୍—ପୁଂ. ବି. (ଜାମ୍ବ+ବତ୍) ଋକ୍ଷରାଜ, ସୁଗ୍ରୀବଙ୍କ ମନ୍ତ୍ରୀ, ଶ୍ରୀକୃଷ୍ଣଙ୍କଶ୍ୱଶୁର, ଜାମ୍ବବତୀଙ୍କ ପିତା।

ଜାମ୍ବବି—ପୁଂ. ବି. (ଜାମ୍ବବ+ଇ)ବଜ୍ର।

ଜାମ୍ବବୀ—ସ୍ତ୍ରୀ.ବି.(ଜାମ୍ବବ+ଈ) ନାଗଦମନୀବୃକ୍ଷ।

ଜାମ୍ବବୌଷ୍ଠ—କ୍ଲୀ.ବି. ଜମ୍ବୋଷ୍ଠ, ବ୍ରଣଦଗ୍ଧକାରୀ ସୂକ୍ଷ୍ମାସ୍ତ୍ରବିଶେଷ। [ ଫଳ।

ଜାମ୍ବୀର—କ୍ଲୀବି.(ଜମ୍ବୀର+ଅ)ଜମ୍ବୀର-

ଜାମ୍ବୀଲ- କ୍ଲୀ.ବି.(ଜମ୍ବୀଲ+ଅ) ଜମ୍ବୀଲ ଫଳାକାର ଜାନୁମଧ୍ୟଭାଗ, ଆଣ୍ଠୁଗଣ୍ଠିର ଚକିହାଡ଼।

ଜାମ୍ବୁଘୋର—ବି. ବମ୍ବାଇ ମରୁକୋଟ ରାଜ୍ୟର ପ୍ରଧାନ ସହର।

ଜାମ୍ବୁନଦ—କ୍ଲୀ.ବି.(ଜମ୍ବୁନଦ+ଅ)ସୁବର୍ଣ୍ଣ, ଧୁସ୍ତୁର, ଜମ୍ବୁନଦୀ, (ବିଂ) ଜମ୍ବୁନଦୀରୁ ଉତ୍ପନ୍ନ।

ଜାମ୍ବୁନଦେଶ୍ୱରୀ—ସ୍ତ୍ରୀ. ବି. ଜାମ୍ବୁନଦର ଅଧିଷ୍ଠାତ୍ରୀ ଦେବୀ।

ଜାମ୍ବୁବାନ୍—ପୁଂ.ବି. ଋକ୍ଷରାଜ, ଜାମ୍ବବାନ୍।

ଜାମ୍ବୁମାଳୀ—ପୁଂ. ବି. ପ୍ରହସ୍ତ ନାମକ ଅସୁରର ପୁତ୍ର, ରାବଣର ସେନାପତି।

ଜାମ୍ବୋଡ—ପୁଂ.ବି. ବେଲଗ୍ରାମ ଜିଲ୍ଲାର ଗୋଟିଏ ପର୍ବତ ବା ପାହାଡ଼।

ଜାମ୍ବୋଷ୍ଠ--କ୍ଲୀ.ବି. ବ୍ରଣଦଗ୍ଧକାରୀ ସୂକ୍ଷ୍ମାସ୍ତ୍ରଭେଦ।

ଜାୟ—ଯା.ବି.ଲେଖା,ବିବରଣ,ହିସାବ, ତପସିଲ, ହିସାବକରାଯିବା କୌଣସି ବିଷୟରେ ସ୍ମାରକଚିହ୍ନ,ଲେଖିତ ବିସ୍ତୃତ ବିବରଣ, (ବିଂ)ଉତ୍ତମ, ନ୍ୟାୟାନୁଗତ, ଉଚିତ।

ଜାୟକ—କ୍ଲୀ. ବି. କାଲୀୟକ, ପୀତବର୍ଣ୍ଣ ସୁଗନ୍ଧ କାଷ୍ଠବିଶେଷ,ପୀତଚନ୍ଦନ।

ଜାୟଗା—ଯା.ବି.ସ୍ଥାନ,ଭୂମି,ଜମି ପରିସର,ଫାଙ୍କ, ସୁଯୋଗ, ସୁବିଧା, ପାଦ, ଆଶ୍ରୟସ୍ଥଳ, ଆବାସସ୍ଥଳ, ବସା।

ଜାୟଗୀର—ଯା.ବି. ରାଜଦତ୍ତ ନିଷ୍କର ଭୂସମ୍ପତ୍ତି, ବୃତ୍ତି।

ଜାୟଗୀରଦାର୍—ଯା. ବିଂ. ଯାହାର ଜାୟଗୀର ଅଛି, ଯାହାର ବୃତ୍ତି ଅଛି।

ଜାୟଜାତ୍—ଯା.ବି.ସମ୍ପତ୍ତି, ଭୂସମ୍ପତ୍ତି।

ଜାୟଦାଦ୍—ଯା.ବି. ସମ୍ପତ୍ତି, ଭୂସମ୍ପତ୍ତି।

ଜାୟବେଜାୟ—ଯା. ବିଂ. ନ୍ୟାୟ ଓ ଅନ୍ୟାୟ,ଉତ୍ତମ ଓ ମଧ୍ୟମ, ବକ୍ତବ୍ୟ ଏବଂ ଅବକ୍ତବ୍ୟ, ଉଚିତ ଓ ଅନୁଚିତ, (ବିଂ) ଉଚିତ ଓ ଅନୁଚିତ କର୍ମ।

ଜାୟମାନ—ପୁଂ. ବି. (ଜନ+କ.ଆନ) ଉତ୍ପଦ୍ୟମାନ,ଯାହା ଜାତ ହେଉଅଛି।

ଜାୟା—ସ୍ତ୍ରୀ.ବି.(ଜନ+ଯ+ଆ) ପତ୍ନୀ, ଭାର୍ଯ୍ୟା, (ସ୍ତ୍ରୀ.) ଲଗ୍ନର ସପ୍ତମ ସ୍ଥାନ।

ଜାୟାଘ୍ନ—ପୁଂ. ବି. (ଜାୟା+ହନ+ଅ) ପତ୍ନୀନାଶକ ଯୋଗଯୁକ୍ତ ପୁରୁଷ, ତଳକାଳକ,ଜ୍ୟୋତିଷୋକ୍ତ ଯୋଗବିଶେଷ, (ବିଂ) ଯେଉଁବ୍ୟକ୍ତିର ଉପରୋକ୍ତ ଯୋଗ ଥାଏ।

ଜାୟାଜୀବ—ପୁଂ. ବି. (ବି.ଗ୍ର) (ଜାୟା+ଆ+ଜୀବ+ଅ) ନଟ, ଭଡୁଆ,

ବେଶ୍ୟାପତି, ବକପକ୍ଷୀ ।
ଜାୟାତ୍ୱ—କ୍ଲୀ. ବ.(ଜାୟା+ତ୍ୱ) ପତ୍ନୀତ୍ୱ, ଭାର୍ଯ୍ୟାତ୍ୱ ।
ଜାୟାନୁଜୀବୀ—ପୁଂ.ବ. (ଜାୟା+ଅନୁ+ଜୀବ+ଇନ୍)ନଟ,କୁଳଟାପତି,କାଙ୍ଗାଳ, ଦରିଦ୍ର, ବକପକ୍ଷୀ ।
ଜାୟାପତି—ପୁଂ. ବ. (ଦ୍ୱନ୍ଦ୍ୱ) ସ୍ୱାମୀ ଓ ସ୍ତ୍ରୀ, ଦମ୍ପତି, ଜମ୍ପତି ।
ଜାୟୀ—ପୁଂ. ବିଂ. (ଜି+ଇନ୍) ଜୟୀ, ଜୟଯୁକ୍ତ,(ପୁଂ.ବ)ସଙ୍ଗୀତରେ ଯୋଷା, ଧ୍ରୁବକଜାତୀୟ ତାଳ ।
ଜାୟୁ—ପୁଂ. ବ. (ଜି+କ,ଉ) ଔଷଧ, ବୈଦ୍ୟ, (ବିଂ) ଜାୟୁମାନ, ଜେତା, ଜୟଶୀଳ । [ ଜୟଶୀଳ ।
ଜାୟେନ୍ୟ--ପୁଂ.ବ.(ଜି+ନ୍ୟଣ୍)ଜାୟନ୍ୟ,
ଜାର୍—ପୁଂ. ବ. ରୁଷିଆସାମ୍ରାଜ୍ୟ ରାଜତନ୍ତ୍ରାଧୀନଥିବା ସମୟରେ ତହିଁର ସମ୍ରାଟଙ୍କ ଉପାଧି ।
ଜାର—ପୁଂ. ବ. (ଜୃ+ଅ) ଗୁପ୍ତପତି, ଉପପତି, ପରପୁରୁଷ, (ବିଂ)ଜରୟିତା, ପାରଦାରକ ।
ଜାରକ—ବିଂ.(ଜୃ+କ.ଅକ)ଜୀର୍ଣ୍ଣକାରକ ପାକକାରୀ, ହଜମୀ ।
ଜାରକକାଗଜି—ଗ୍ରା. ବ. ଜୁଆଣୀମିଶାଇ ଲେମ୍ବୁରସଦ୍ୱାରା ଜାରଣକର ପ୍ରସ୍ତୁତ କରାଯାଇଥିବା ଲେମ୍ବୁର ଆଚୁର ।
ଜାରକର୍ମ—ବ. (ଷତତ୍) ବ୍ୟଭିଚାର, ପରସ୍ତ୍ରୀଗମନ ।
ଜାରଜ—ପୁଂ. ବ. (ଜାର+ଜନ+ଅ) ଉପପତି ଜାତ ପୁତ୍ର,ବେଜନ୍ମା, ବେଧଫଲ, (ପୁଂ.ବିଂ) କ୍ଷେତ୍ରଜ (ସନ୍ତାନ) ।
ଜାରଜଯୋଗ— ପୁଂ. ବ. ଜ୍ୟୋତିଷ ଯୋଗବିଶେଷ ।
ଜାରଜାତ—ପୁଂ. ବ.(ଜାର+ଜନ+ତ) ଉପପତିଜାତ ପୁତ୍ର, ବେଧଫଲ, (ବିଂ) ଜାରଜ । [ ଦେଖ ।
ଜାରଜାତକ—ବ ଓ ବିଂ.ପୁଂ. ଜାରଜାତ
ଜାରଜାତକା—ଗ୍ରା. ବ. ଓ ବିଂ. ଜାରଜ ଦେଖ ।
ଜାରଣ—ପୁଂ. ବ. (ଜୃ+ଣି+ଭା.ଅନ) କ୍ଷୟକରଣ, ଘନପଦାର୍ଥ ତରଳପଦାର୍ଥରେ ମିଳାଇଦିବା, ପରପାକ କରଣ, ପାଣିରେ ମିଳାଇଦେବା, ଜୀର୍ଣ୍ଣକରଣ, ଧାତୁଦ୍ରବ୍ୟାଦିରମାରଣ ବା ଶୋଧନ, ଔଷଧାର୍ଥ ପାରଦଧାତୁର ଏକାଦଶସଂସ୍କାର, ଭସ୍ମକରଣ (ବିଂ. କ, ଅନ)ଜୀର୍ଣ୍ଣକାରକ ଔଷଧ ବିଶେଷ,ଲୌହ ଅଭ୍ର ପ୍ରଭୃତି ।
ଜାରଣମାରଣ—ଗ୍ରା. ବ. ଧାତୁଦ୍ରବ୍ୟାଦିର ଶୋଧନ, (ଲ.ଅର୍ଥ) କୌଣସିବ୍ୟକ୍ତିକୁ ଆୟତ୍ତକରିବା ସକାଶେ ନରମ ଗରମ ସତ୍ତ‌ଅସତ୍ତ ସବୁପ୍ରକାର ଉପାୟ ।
ଜାରଣୀ—ସ୍ତ୍ରୀ.ବ. ( ଜାରଣ+ଈ )ସ୍ଥୂଳଜୀରକ, ମୋଟାଜୀରା । [ ପତିତ୍ୱ
ଜାରତା—ସ୍ତ୍ରୀ. ବ. (ଜାର+ତା) ଉପ-
ଜାରଭର—ପୁଂ. ବ. (ଜାର+ଭୃ+ଅ) ଜାରପୋଷକ ।
ଜାରମଦ୍ଦୁରା—ଗ୍ରା. ବ. ଜାଲମଦ୍ଦୁରା, ସର୍ପଖାଦକ ଚରଜାତୀୟ ପକ୍ଷୀଙ୍କ ପେଟରୁ ବାହାରିବା କୋଚଲାମଞ୍ଜିପରି ଦେଖାଯାଉଥିବା ଏକପ୍ରକାର କଳା ଓ ହଳଦିଆ ବର୍ଣ୍ଣର ପଥୁରିଆ ଜିନିଷ ।
ଜାରି—ଗ୍ରା. ପୁଂ. ବି. ଜାର, ଉପପତି, (ସ୍ତ୍ରୀ.ବ) ଉପପତ୍ନୀ, ରକ୍ଷିତା ସ୍ତ୍ରୀ ।
ଜାରିଣଙ୍କା—ସ୍ତ୍ରୀ. ବ. ଉପପତିର ଭୟ ।
ଜାରିଣବର—ଗ୍ରା. ବ. ଯେଉଁ ଶବରର ବାଣ ଶ୍ରୀକୃଷ୍ଣଙ୍କ ପାଦରେ ବାଜିବାରୁ ତାହାଙ୍କର ମୃତ୍ୟୁ ଘଟିଥିଲା ।
ଜାରି—ଯା. ବ. ଆରମ୍ଭ, ସୂତ୍ରପାତ, ପ୍ରବର୍ତ୍ତନ, ପ୍ରଚାର,ଅଧିକାର, ପ୍ରୟୋଗ, ଶାସନ, ବ୍ୟବହାର, ପ୍ରଚଳନ,ପ୍ରଭାବ, କାର୍ଯ୍ୟ,ବଳାତ୍କାର,ଜାହିର,ଆତ୍ମପ୍ରଶଂସା, ତେଜ, କଡ଼ାକଡ଼ିନିୟମର ପ୍ରଚାର, ପ୍ରବାହ, (ବିଂ) ପ୍ରଚଳିତ, ପ୍ରତିଷ୍ଠିତ, ପ୍ରବର୍ତ୍ତିତ,ପ୍ରଚାରିତ,ପ୍ରବାହିତ,ଶାସିତ ।
ଜାରିକରିବା—ଗ୍ରା.କ୍ରି. କାର୍ଯ୍ୟରେ ପରିଣତ କରିବା, ପ୍ରଚାରକରିବା, ପ୍ରବର୍ତ୍ତନ କରିବା,ନିୟମ ପ୍ରଚାର କରିବା,ପ୍ରତିଷ୍ଠିତକରିବା, ଜବରଦସ୍ତକରିବା, ଦଣ୍ଡ ଆଦି ଦେଇ ଆୟତ୍ତ କରିବା ।
ଜାରିଣୀ—ସ୍ତ୍ରୀ. ବ. (ଜାର+ଇନ୍+ଈ) କାମୁକୀ, ସ୍ୱୈରିଣୀ,କୁଳଟା ସ୍ତ୍ରୀ ।
ଜାରିତ—ବିଂ.(ଜୃ+ଣି+କର୍ମ,ତ)ଶୋଧିତ, ମାରିତ, ଭସ୍ମୀକୃତ (ଧାତ୍ୱାଦି) ।
ଜାରିବା—ଗ୍ରା. କ୍ରି. ଜାରଣ କରିବା, ଧାତୁଦ୍ରବ୍ୟାଦି ଶୋଧନ କରିବା, ଧାତୁ ଆଦି ଭସ୍ମକରିବା, ତୈଳାଦିକୁ ଉତ୍ତାପରେ ଜଳଶୂନ୍ୟ କରିବା, ଜୀର୍ଣ୍ଣକରିବା, ଘନପଦାର୍ଥକୁ ପାଣିରେ ମିଳାଇବା, ନିସ୍ତେଜକରିବା ।
ଜାରୀ—ସ୍ତ୍ରୀ. ବ. (ଜୃ+ଣିର୍+ଅ+ଈ) ଔଷଧଭେଦ, କଣ୍ଠଦୋଷ ଶୋଧନ ।
ଜାରୁ—ପୁଂ. ବ. (ଜୃ+ଉ)ଜରାୟୁ,(ବିଂ) ଜାରକ ।
ଜାରୁଜ—ବିଂ. ( ଜାରୁ+ଜନ+ଅ ) ଜରାୟୁଜାତ ମନୁଷ୍ୟାଦି ପ୍ରାଣୀ ।
ଜାରୁଧି—ପୁଂ. ବ. ସୁମେରୁର କର୍ଣ୍ଣିକା କେଶରଭୂତ ପର୍ବତବିଶେଷ ।
ଜାରୁଲ—ଗ୍ରା. ବ. ଆସାମ ଓ ଚଟ୍ଟଗ୍ରାମ ଏବଂ ବ୍ରହ୍ମଦେଶରେ ଜାତ ପ୍ରସିଦ୍ଧ କାଠଗଛ ।
ଜାରୂଥୀ—ସ୍ତ୍ରୀ. ବ. ନଗରୀ ବିଶେଷ ।
ଜାରୂଥ୍ୟ—ବିଂ.ମାଂସଦାନପୁଷ୍ଟ,ସ୍ତୋତ୍ରାର୍ହ, ତ୍ରିଗୁଣ ଦକ୍ଷିଣାଯୁକ୍ତ ଯଜ୍ଞ ।
ଜାର୍ତ୍ତିକ—ବିଂ.ଜାର୍ତ୍ତିକଦେଶ ବା ତନ୍ନାମକ ଜାତିସମ୍ବନ୍ଧୀୟ ।
ଜାର୍ଯ୍ୟ—ବିଂ. (ଜୃ+ଯ) ସ୍ତୁତ୍ୟ ।
ଜାର୍ଯ୍ୟକ—ପୁଂ. ବ. ମୃଗଭେଦ ।
ଜାଲ୍—ଯା. ବ. କପଟଲେଖନ, କୃତ୍ରିମ ଲେଖା ।
ଜାଲ୍‌କାରିଆ—ଗ୍ରା.ବିଂ.ଯେ କପଟଲେଖା ଲେଖେ, ଜାଲିଆ ।
ଜାଲ୍‌ଜାଲିଆ—ଗ୍ରା.ବିଂ. ଜାଲପରି ଦିଶୁଥିବା, ଝଲରା, ଜାଲୁଜାଲୁଆ, ଅସ୍ପଷ୍ଟ ଦେଖାଯିବା, ଜାଲମୟ, ଛିଦ୍ରବିଶିଷ୍ଟ, ଉପରେ ଜାଲପରି ସବୁ ଆବରଣଥିବା ।
ଜାଲ୍‌ଟଙ୍କା—ଗ୍ରା. ବ. ମେକିଟଙ୍କା,ନିକୃଷ୍ଟ ଧାତୁରେ ପ୍ରସ୍ତୁତ ମୁଦ୍ରା ।

ଜାଲ୍‌ଦଲିଲ୍—ଯା. ବି. ଅସଲ କାଗଜର ବିକୃତ ପ୍ରତିଲିପି ।

ଜାଲ୍‌ଦସ୍ତଖତ—ଯା. ବି. କୃତ୍ରିମ ସ୍ୱାକ୍ଷର, କୌଣସି ବ୍ୟକ୍ତି ଦ୍ୱାରା କପଟଭାବରେ ଲିଖିତ ବା ସ୍ୱାକ୍ଷରିତ ଅନ୍ୟର ନାମ ।

ଜାଲ୍‌ଦସ୍ତାବିଜ୍—ଯା. ବି.ଜାଲ ଦଲିଲ ।

ଜାଲଧରିବା—ଗ୍ରା. କ୍ରି. ଦଲିଲ ଆଦିର କୃତ୍ରିମତା ଅବଧାରଣା କରିବା ।

ଜାଲ୍‌ନୋଟ--ଯା.ବି.କୃତ୍ରିମ କାଗଜମୁଦ୍ରା ।

ଜାଲ୍‌ଫିସାଦ୍—ଯା.ବି. କପଟ ଲେଖା ଓ ପ୍ରତାରଣା ।

ଜାଲ୍‌ଫିସାଦୀ—ଗ୍ରା. ବି. ଜାଲଫିସାଦ ଦେଖ; (ଯା.ବିଂ) ଯେ କୃତ୍ରିମ ଲେଖା ଲେଖେ ଓ ପ୍ରତାରଣା କରେ ।

ଜାଲ୍‌ସାଜ୍—ଯା.ବିଂ. ଜାଲୁଆ,ପ୍ରତାରକ ।

ଜାଲ୍‌ସାଜି—ଯା. ବି. ଠକାମି,ପ୍ରତାରଣା ।

ଜାଲ--ବି.(ଜଲ+କ.ଅ)ଜୀବ ଜନ୍ତୁ ମତ୍ସ୍ୟ ପକ୍ଷିଆଦି ବନ୍ଧନନିମିତ୍ତ ସୂତ୍ରାଦିନିର୍ମିତ ଯନ୍ତ୍ରବିଶେଷ,ଫାନ୍ଦ,ଜାଲ, ଆଖିର ତାରା-ଉପରେ ପରଳ ମାଡ଼ିବା ରୋଗ,ଲୂତାତନ୍ତୁ, ବୁଢ଼ିଆଣି ସୂତାର ଗୋଲାକାର ଫାନ୍ଦ, ରଥାଦିର ଆବରଣ, ଘଟାଟୋପ, ଗବାକ୍ଷ, ଝରକା, କଳିକା, କୋରକ, କଢ଼ି, ସରୁ ଜାଲି କାମ ସମୂହ, ଭେଳ-ବାଜି, ଇନ୍ଦ୍ରଜାଲ, ଭେଲକି, ମିଥ୍ୟା, ପ୍ରତାରଣା, ଛଳ, କପଟ, ଦମ୍ଭ, ଗର୍ବ, ଅଭିମାନ, ଖାର, କଦମ୍ବ ଗଛ, ଏକପ୍ରକାର ତୋପ, (ଗ୍ରା.ବି) ଜାଳଣିକାଠ ଇନ୍ଧନ, ଅଗ୍ନିର ତାପ, ପୋଡ଼ା, ପୋଡ଼ିବା କ୍ରିୟା, ତାପ ।

ଜାଲ—ଗ୍ରା. ବି. (ସଂ-ଜାଲ) ଜୀବଜନ୍ତୁଆଦି ଧରିବା ନିମନ୍ତେ ପ୍ରସ୍ତୁତ ସୂତ୍ରାଦି ନିର୍ମିତ ଯନ୍ତ୍ର, ଫାନ୍ଦ, ଫାସ, ବୁଢ଼ିଆଣୀ-ସୂତା, ମାଛଧରିବାର କ୍ଷୁଦ୍ର କ୍ଷୁଦ୍ର ଛିଦ୍ର-ଯୁକ୍ତ ଯନ୍ତ୍ର ।

ଜାଲକ—କ୍ଲୀ. ବି. (ଜାଲ+କ) ଫୁଲ-କଢ଼ି, କ୍ଷୁଦ୍ର ଜାଲ, ଅସ୍ଫୁଟ କଳିକା, କୁଷ୍ମାଣ୍ଡାଦି କ୍ଷୁଦ୍ର ଫଳ,କଷି, କୋରକ, ଦମ୍ଭ, କୁଳାୟ, ଆନାୟ, ସମୂହ, ଜଲ-କୃତ ଦ୍ରବ୍ୟ, ଭୂଷଣବିଶେଷ, ମୋଚକ ଫଳ, ଗବାକ୍ଷ, ପକ୍ଷୀବସା, କଦଳୀ, କ୍ଷୁଦ୍ର ପଦାର୍ଥର ସମଷ୍ଟି ।

ଜାଳକରିବା—ଗ୍ରା. କ୍ରି. ଜାଳଣିକାଠ ସଂଗ୍ରହ କରିବା, ଅନ୍ୟ ବ୍ୟବହାରପାଇଁ ଅଭିପ୍ରେତ କାଠକୁ ଜାଳିବା କାଠରେ ପରିଣତ କରିବା, ଅଗ୍ନି ଉଦ୍ଦୀପନ କରିବା, ଜାଳିବା ।

ଜାଲକାରକ—ପୁଂ. ବି. (ଜାଲ+କୃ+କ.ଅକ) ମର୍କଟକ, ବୁଢ଼ିଆଣୀ କୈବର୍ତ୍ତ, ମାକଡ଼ସା, (ବିଂ) ଜାଲକାର୍ମ୍ମୀ ।

ଜାଲକର୍ମା—ସ୍ତ୍ରୀ.ବି. ମେଷୀ,ମାଈ ମେଣ୍ଢା, ଭେଡ଼ୀ, ମେଣ୍ଢୀ ।

ଜାଲକୀ—ପୁଂ. ବି. ଆୟୁଧଜୀବିଭେଦ, ଶସ୍ତ୍ରବ୍ୟବସାୟୀ ।

ଜାଲକୀଟ—ପୁଂ. ବି. ମର୍କଟକ, ବୁଢ଼ିଆଣୀ, ଲୂତା, ମାଙ୍କଡ଼ସା ଜାଲସ୍ଥ ମଶକାଦି କୀଟ ।

ଜାଲକୀୟ—ପୁଂ. ବିଂ. ଜାଲକୀ, ଶସ୍ତ୍ର-[ବ୍ୟବସାୟୀ ।

ଜଲକ୍ଷୀର୍ଯ୍ୟ—କ୍ଲୀ.ବି.କ୍ଷୀରବିଷ ବୃକ୍ଷଭେଦ ।

ଜାଲଗଣ୍ଠି—ଗ୍ରା.ବି. ବର୍ଷାସ୍ଥ ତୃଣବିଶେଷ, ଜାଲର ଘରମାନଙ୍କ ଶେଷରେ ପଡ଼ିଥିବା ଗଣ୍ଠି ।

ଜାଲଗର୍ଦ୍ଦଭ—ପୁଂ. ବି. ରୋଗବିଶେଷ, କ୍ଷତ ଘା ପ୍ରଭୃତି ।

ଜାଲଗୋଣିକା—ଗ୍ରା. ବି. ଦଧିମନ୍ଥନ ଭାଣ୍ଡବିଶେଷ ।

ଜାଲଜୀବୀ—ବି.ଧୀବର,ଜାଲୁଆ,କେଉଟ ।

ଜାଳଣିକାଠ—ଗ୍ରା. ବି. ( ସଂ-ଜ୍ୱଳନ ) ଇନ୍ଧନ, ଜାଳିବାରେ ବ୍ୟବହୃତ କାଷ୍ଠ ।

ଜାଲତି—ଗ୍ରା. ବି. ଗ୍ରୋଟଜାଲ, ଆମ୍ବ-ତୋଳା ଖୁଣ୍ଟୁଣୀ, ତୁଣ୍ଡୀ, ପଶୁମାନଙ୍କ ମୁହଁ ଓ ନାକ ଢାଙ୍କିବା ଜାଲ ।

ଜାଲଧକା--ଉତ୍ତରବଙ୍ଗସ୍ଥ ଗୋଟିଏ ନଦୀ

ଜାଲନ୍ଧର—ଶତଦ୍ରୁ ଓ ଚନ୍ଦ୍ରଭାଗା ନଦୀର ମଧ୍ୟବର୍ତ୍ତୀ ସ୍ଥାନ, ତ୍ରିଗର୍ତ୍ତ, ଜାଲନ୍ଧର ଜିଲା ଓ ସହରର ନାମ, ଜାଲନ୍ଧର ଦେଶ-ବାସୀ ଦୈତ୍ୟବିଶେଷ, ଋଷିବିଶେଷ, ଯୋଗଶାସ୍ତ୍ରୋକ୍ତ ଆସନ ଓ ମୁଦ୍ରା-ବିଶେଷ ।

ଜାଲନ୍ଧରାୟନ—ପୁଂ. ବି. ଜଲନ୍ଧରର ଅପତ୍ୟ ।

ଜାଲପକାଇବା,ଜାଲପକେଇବା--ଗ୍ରା. କ୍ରି. ମାଛ ଧରିବାପାଇଁ ପୋଖରୀଆଦି ଜଳାଶୟରେ ଜାଲ ବିସ୍ତାର କରିବା, ( ଲ. ଅର୍ଥ) ଅଭିଷ୍ଟିତ ବସ୍ତୁ ମିଳିବା ଉଦ୍ଦେଶ୍ୟରେ ଉଦ୍ୟମ କରିବା ।

ଜାଲପାଦ୍—ପୁଂ. ବି. (ବି.ଗ୍ରା) ହଂସ, (ବିଂ) ଯାହାର ପାଦର ଆଙ୍ଗୁଠିଯାକ ପରସ୍ପରସହିତ ଲାଗି ରହିଥାଏ ।

ଜାଲପାଦ—ପୁଂ. ବି. (ବି.ଗ୍ରା) ହଂସ, ଶରାଳପକ୍ଷୀ, ହଂସପାଦର ଅଙ୍ଗୁଳିପରି ଯୁକ୍ତାଙ୍ଗୁଳି ଜୀବ,ଲିପ୍ତ ପଦ ଜୀବ,ଜାବାଲି ଋଷିଙ୍କର ଜଣେ ଶିଷ୍ୟ ।

ଜାଲପ୍ରାୟା—ସ୍ତ୍ରୀ. ବି. ଲୌହମୟ ଅଙ୍ଗ-ରକ୍ଷା, ବର୍ମ, ସାଞ୍ଜୁ, କବଚ ।

ଜାଲଫାନ୍ଦ—ଗ୍ରା. ବି. ଜାଲର ଘର ।

ଜାଲଫାଶ—ଗ୍ରା. ବି.ଜାଲର ଘର,ଯେଉଁ ଜାଲରେ ଫାଶ ଲାଗିଥାଏ ଅର୍ଥାତ୍ ଯାହାର ଦଉଡ଼ିକୁ ଘିଞ୍ଚିଦେଲେ ସଙ୍କୁଚିତ ହୋଇଯାଏ ।

ଜାଲବ—ପୁଂ. ବି. ବଲବଲ ଦୈତ୍ୟର-ପୁତ୍ର, ଦୈତ୍ୟବିଶେଷ ।

ଜାଲବର୍ବୁରକ—ପୁଂ.ବି. ଗ୍ରୋଟଶାଖାଯୁକ୍ତ ଏକପ୍ରକାର ବବୁର ଗଛ ।

ଜାଲବସାଇବା, ଜାଲବସେଇବା—ଗ୍ରା. କ୍ରି. ଜୀବଜନ୍ତୁଙ୍କୁ ଧରିବାପାଇଁ ଫାନ୍ଦ ପକାଇବା ।

ଜାଲବନ୍ତ—ବିଂ. ଜାଲଧର, କପଟ, ବର୍ମାବୃତ, ତନ୍ତ୍ରବନ୍ତ ।

ଜାଲବାଡ଼—ଗ୍ରା. ବି. ମାଛଡ଼େଇଁ ପଳାଇ ଯିବେ ନାହିଁବୋଲି ଦିଆଯିବା ଜାଲର ବାଡ଼ ।

ଜାଲବାଲ—ପୁଂ.ବି.ମତ୍ସ୍ୟଭେଦ,ବାଲିଆ ।

ଜାଲବାହାଣ—ଗ୍ରା.ବି. ମାଛଧରିବାପାଇଁ ଜାଲକୁ ମେଲି ମେଲି ଅଗ୍ରସର ହେବା ।

ଜାଲବୁଣିବା—ଗ୍ରା.କ୍ରି. ସୂତ୍ରାଦିଦ୍ୱାରା ଜାଲ ପ୍ରସ୍ତୁତ କରିବା ।

ଜାଲଭୁକ୍—ବି°. ଯାହାର ଅଙ୍ଗୁଳ ଜାଲ-ବଦ୍ଧ ଚର୍ମାବଦ୍ଧ ।
ଜାଲମାନ୍ନ—ପୁଂ. ବି. ଶସ୍ୟବ୍ୟବସାୟୀ ବିଶେଷ, ଝିଗତ୍ରିର ଅଧୀବାସୀ ଭେଦ ।
ଜାଲହ୍ରଦ—ବି°.ଜଳବହୁଳ ହ୍ରଦୋତ୍ପନ୍ନ, ଜଳପ୍ରଚୁର ହ୍ରଦସମ୍ବନ୍ଧୀୟ ।
ଜାଳା—ଗ୍ରା. ବି. ନର୍ଯ୍ୟାତନ, ତାପ, ଜଳାପୋଡ଼ା, ଦାଉ, ବାଧା ।
ଜାଲା—ଗ୍ରା. ବି. ବଡ଼ ଗରା ବା ମାଠିଆ, ପାଣି ରଖିବାର ବଡ଼ କଳସୀ,ଶିର୍ଣାକାର ସ୍ଥୂଳୋଦର ମୃତ୍ପାତ୍ର, କୁଣ୍ଡ, ବଡ଼-ହାନ୍ଦିଆ, ଅଗ୍ନି । [ ଝରକା ।
ଜାଲାକ୍ଷ—ପୁଂ. ବି. ( ବ.ବ୍ରୀ ) ଗବାକ୍ଷ,
ଜାଲାଲଖେରା--ନାଗପୁର ଜିଲାର ଗୋଟିଏ ପ୍ରଧାନ ନଗର ।
ଜାଲାଲପୁର—ସୁରାଟ ଜିଲାର ଗୋଟିଏ ଉପବିଭାଗ ।
ଜାଲାଲପୁରଦେହ୍ନା—ଅଯୋଧ୍ୟା ପ୍ରଦେଶର ଗୋଟିଏ ସହର ।
ଜାଲାଲପୁରନହଙ୍ଗା--ଫଇଜାବାଦ ଜିଲାର ଗୋଟିଏ ନଗର ।
ଜାଲାଲବାଦ—କାବୁଲ ବାଗର ଗୋଟିଏ ନଗର ।
ଜାଲାଲି—ଆଲିଗଡ଼ ଜିଲାର କୋଇଲ ତହସିଲର ଗୋଟିଏ ନଗର ।
ଜାଲାଷ—କ୍ଲୀ. ବି. ଶାସ୍ତ୍ରୀର ଔଷଧ ବିଶେଷ ।
ଜାଲି—ଗ୍ରା. ବି. (ଫ-ଜାଲ) ଜାଲପରି ପତଳା ଆବରଣ,ଜାଲପରି ଛିଦ୍ରବିଶିଷ୍ଟ ପଦାର୍ଥ ବା ଭୂଷଣ, ବହୁ କ୍ଷୁଦ୍ର ଛିଦ୍ର-ବିଶିଷ୍ଟ ଜାଲ, ସୁନା ରୂପାଆଦି ଧାତୁର ତାରକସି କାମ,ଦୋଷ,ଦୁଃଖ, ଝରକା, ଘରର ଛପର, ଛାଇରହିବାପାଇଁ ଭୁଅ ଉପରେ ଦିଆଯାଇଥିବା ତାଟ ।
ଜାଲିଆ—ଗ୍ରା. ବି°. ଜାଲକାରୀ, କୃତ୍ରିମ-କାରୀ, ଶଠ, ଠକ, କପଟୀ, ( ବି ) ପାଚିଆ, କେଉଟ, ଜାଲୁଆ ।
ଜାଲିଆତି—ଗ୍ରା. ବି. ଜାଲକର୍ମ, ଠକାମି, ଶଠତା, ପ୍ରବଞ୍ଚନା, କପଟତା ।

ଜାଲିକ—ପୁଂ. ବି. ( ଜାଲ + ଇକ ) ଧୀବର, କେଉଟ, ଜାଲଜୀବୀ, ଜୋକ, ମାକଡ଼ସା, ଇନ୍ଦ୍ରଜାଲିକ, ଝରକା, କଦଳୀ, ବ୍ୟାଧ, (ବି°) ପ୍ରତାରକ ।
ଜାଲିକବାଟ—ଗ୍ରା.ବି. ଜାଲିକାମ ହୋଇ-ଥିବା କବାଟ ।
ଜାଲିକା—ସ୍ତ୍ରୀ. ବି. (ଜାଲ+ଇକ+ଆ) ସ୍ତ୍ରୀ ମୁଖାବରକ ବସ୍ତ୍ରବିଶେଷ,ଗିରସାର, ଜଳୌକା,ଓଢ଼ଣୀ,ମାକଡ଼ସା,ବୁଢ଼ିଆଣୀ, ଲୁହା, ଫାଶ, ବିଧବା, ଅଙ୍ଗରକ୍ଷିଣୀ, କ୍ଷାରକ ।
ଜାଲିଚଟୁ—ଗ୍ରା. ବି. ଛିଦ୍ରଯୁକ୍ତ କରଚୁଲି, ଭାତପ୍ରଭୃତି ଛାଣିବାର ଛିଦ୍ରଯୁକ୍ତ ଚଟୁ ।
ଜାଲିଜାଲିଆ—ଗ୍ରା. ବି°. ଜାଲିଜାଲିଆ, ଦେଖ ।
ଜାଲିଣି—ଗ୍ରା. ବି. ନିଆଁ ଜାଳିବାପାଇଁ ବ୍ୟବହୃତ କାଠ, ଚୁଲିରେ ଜଳାହେବା କାଠ, ଯେଉଁ କାଠରେ ସହଜରେ ନିଆଁ ଲାଗେ ଓ ଯାହା ଚୁଲିରେ ପ୍ରଥମେ ନିଆଁ ଧରାଇବାପାଇଁ ବ୍ୟବହୃତ ହୁଏ, ଲାଗୁଆଣୀ ।
ଜାଲିନୀ—ସ୍ତ୍ରୀ. ବି. ଚିତ୍ରଶାଳା,କୋଷାତକୀ· ପଟୋଳଲତା,ଜହ୍ନୀ, ପ୍ରମେହ ପୀଡ଼କା ଭେଦ, ତରଡ଼ା, ଜାଲକାଷ୍ଠ ।
ଜାଲିବା —ଗ୍ରା. କ୍ରି. ଜଳାଇବା, ଅଗ୍ନି-ଲଗାଇବା, ଦହନ କରିବା, ଉତ୍ତପ୍ତ କରିବା ।
ଜାଲିବାଡ଼—ଗ୍ରା. ବି. ଜାଲପରି ଛନ୍ଦା-ହୋଇ ଘେରା ହୋଇଥିବା ବାଡ଼ ।
ଜାଲିବୋଟ—ଯା. ବି. ଶ୍ରେଷ୍ଠ ସୌଖୀନ୍ ଡଙ୍ଗା ।
ଜାଲିମ—ଯା. ବି°. କ୍ରୂର, ପ୍ରବଳ ପରା-କ୍ରମଶାଳୀ, ଅତ୍ୟାଚାରୀ, ଜୁଲମବାଜ୍, (ବି) ରାଗ, କୋପ, ଜୁଲମ, ଅତ୍ୟାଚାର, ଗର୍ବ, ଦମ୍ଭ, ଡାଙ୍ଗ, ପରାକ୍ରମ ।
ଜାଲିମ୍‌କାଢ଼ିବା—ଗ୍ରା. କ୍ରି. ହାକିମି ଦେଖାଇବା, ଗର୍ବଦେଖାଇବା ।
ଜାଲିମ୍‌ବାଜ୍—ଯା. ବି°. ଅତ୍ୟାଚାରୀ, ଜୁଲମବାଜ୍, ଖରା ଚଡ଼ାମଙ୍କ ସିଆ

(ବ୍ୟକ୍ତି),ଗର୍ବୀ,ପ୍ରଭୁତ୍ବପ୍ରିୟ,ଲୁଲୁମବଢ଼ିଆ ।
ଜାଲି—ସ୍ତ୍ରୀ. ବି. (ଜାଲ+ଇ) ଜହ୍ନୀ, ପଟୋଳ ।
ଜାଲୁଜାଲୁଆ—ଗ୍ରା. ବି°. ଜଲଜଲୁଆ ଦେଖ ।
ଜାଲେନ୍ଦ୍ର—ପୁଂ. ବି. ଓଡ଼ିଶାର ଜଣେ ପ୍ରାଚୀନ ରାଜା ।
ଜାଲ୍ମ—ବି. (ଜଲ୍+କ.ମ) ଖଳବ୍ୟକ୍ତି, ନୀଚବ୍ୟକ୍ତି,ପଢ଼ତ ବ୍ୟକ୍ତି,ଇତରଲୋକ, (ପୁଂ. ବି°) ଅବିବେଚକ, ହିଂସ୍ର, ମୂର୍ଖ, କଠୋର, ଜଡ଼, ନିଷ୍ଠୁର,କ୍ରୂର, ପାମର, ନୀଚ, ଦୁରାତ୍ମା, ଘୃଣିତ, ନୀଚଜାତି, ପଢ଼ତ (ବ୍ୟକ୍ତି), ଯେଉଁ ବ୍ୟକ୍ତି ଉତ୍ତମ-ରୂପେ ପଢ଼ିବା ବୋଲି ନ ପାରେ ।
ଜାଲ୍ମକ—ବି°. (ଜାଲ୍ମ+କ) ଜାଲ୍ମଦେଖ, (ବି) ମିନ୍ଦ, ବ୍ରାହ୍ମଣ, ଗୁରୁଦ୍ରୋହୀ ।
ଜାଲ୍ଷ—ପୁଂ. ବି. ( ଜଲ + ଷ ) ଶିବ, ମହାଦେବ, ( ବି° ) ଜଲରେ ଧାରଣ ଯୋଗ୍ୟ ।
ଜାବଙ୍ଗା—ପୁଂ. ବି. ଆହ୍ମଦନଗର ଜିଲାର ଜଣେ କୋଲି ସର୍ଦ୍ଦାର ।
ଜାବଡ଼— ଗୋୟାଲିୟରର ଅନ୍ତର୍ଗତ ଗୋଟିଏ ପ୍ରଧାନ ସହର ।
ଜାବନ୍ୟ—କ୍ଲୀ. ବି. ବେଗ, ଦ୍ରୁତଗତି ।
ଜାବାଡ଼ି— ମାନ୍ଦ୍ରାଜ ଉତ୍ତରବରୁର ତାଲୁ-କାର ଗିରିମାଳା ।
ଜାଷକ—କ୍ଲୀ. ବି. କାଳୀୟକ, କାଳିଆ ସୁଗନ୍ଧିକାଷ୍ଠ ।
ଜାଷ୍କମଦ—ପୁଂ. ସ୍ତ୍ରୀ. ବି. ପକ୍ଷୀବିଶେଷ ।
ଜାସାମ—ପ୍ରା. (ବସ୍ତର) ବି. ମନ୍ଦାର ।
ଜାସୁସ୍—ଯା. ବି. ଗୁପ୍ତ ଭାବରେ ଅପରା-ଧୀର ପତ୍ତା ଲଗାଇବା ବ୍ୟକ୍ତି, ଗୁପ୍ତ-ଚର, ଭେଦୁଆ ।
ଜାସୂ—ଯା. ବି°. ଅତି ଦକ୍ଷ, ନିପୁଣ, ଚତୁର, ପ୍ରବଞ୍ଚକ, ଧୂର୍ତ୍ତ, ଅଗ୍ରଗଣ୍ୟ, ସର୍ଦ୍ଦାର, ଗୁପ୍ତଚର ।
ଜାସ୍ତ—ଯା. ବି. ହେପାଜତ୍, ଯତ୍ନ ।
ଜାସ୍ତି—ଯା. ବି. ଆଧିକ୍ୟ, (ବି°.) ଅତ୍ୟ-ଧିକ, ଅଧିକତର ।

ଜାମ୍ପତି—ପୁ.ବ. (ଷତତ୍) (ଜାୟା+ପତି) ଜାମାତା, ଜୁଆଇଁ ।

ଜାମ୍ପତ୍ୟ—କ୍ଲୀ. ବ. ଜାୟା ପତି କାର୍ଯ୍ୟ, ସ୍ୱାମୀ ସ୍ତ୍ରୀର କର୍ତ୍ତବ୍ୟ ।

ଜାହ— ତଦ୍ଧିତ ପ୍ରତ୍ୟୟ ବିଶେଷ ।

ଜାହକ—ପୁଂ. ବି. (ହା+କ.ଅକ) ଔଧ, ଜୋକ, ଖଟ, ଶଯ୍ୟା, ବିରାଡ଼ି, ବିଳେଶୟ ଜୀବ, ଏଣ୍ଡୁଅ, ଗେଣ୍ଡା ।

ଜାହାଁଜାହାଁ—ଗ୍ରା. ଅବ୍ୟ (ଫ.ଯତ୍) ଯେଉଁ ଯେଉଁ ସ୍ଥାନମାନଙ୍କୁ, ଯେଉଁ ଯେଉଁ ସ୍ଥାନମାନଙ୍କରେ, ସବୁସ୍ଥାନରେ ।

ଜାହିଁତାହାଁ—ଗ୍ରା. ଅବ୍ୟ ଯେଉଁଠାରେ ଇଚ୍ଛା ସେଠାରେ, ସବୁଠାରେ, ପ୍ରତ୍ୟେକ ସ୍ଥାନରେ ।

ଜାହାଁପନା—ଯା, ବି. ପୃଥିବୀପତି, ଜଗଦାଶ୍ରୟ, ପ୍ରଭୁ (ଅବ୍ୟ) ହୁଜୁର, ହଜୁର ।

ଜାହାଁବାଜ୍—ଯା. ବିଂ. ବହୁଦର୍ଶୀ, ଅନୁଭବୀ, ତୀକ୍ଷ୍ଣବୁଦ୍ଧି, କଟବୁଦ୍ଧି, ଟେଚେଡ଼ା ।

ଜାହାଙ୍ଗୀର—ଯା. ବି. ସମ୍ରାଟଆକବରଙ୍କ ଜ୍ୟେଷ୍ଠପୁତ୍ର ।

ଜାହାଙ୍ଗୀରକୁଲଖାଁକାବୁଲ—ଯା. ବି. ଜହାଙ୍ଗୀରଙ୍କ ଅଧୀନସ୍ଥ ଜଣେ ଅମୀର ।

ଜାହାଙ୍ଗୀରକୁଲଖାଁ—ଯା. ବି. ସମ୍ରାଟ ଆକବରଙ୍କ ଜଣେ ପ୍ରସିଦ୍ଧ କର୍ମଚାରୀ ।

ଜାହାଙ୍ଗୀରମିର୍ଜ୍ଜା—ଯା.ବି.ଦ୍ୱିତୀୟ ଆକବରଙ୍କ ଜ୍ୟେଷ୍ଠପୁତ୍ର ।

ଜାହାଙ୍ଗୀରାବାଦ—ବୁଲନ୍ଦସହର ଜିଲ୍ଲାର ଗୋଟିଏ ସହର ।

ଜାହାଙ୍ଗୀରାବାଦ—ଅଯୋଧ୍ୟାସୀତା ପୁର ଜିଲ୍ଲାର ଗୋଟିଏ ପ୍ରଧାନ ସହର ।

ଜାହାଜ—ଯା. ବି. ପୋତ, ଅର୍ଣ୍ଣବଯାନ, ବୋଇତ ।

ଜାହାଜଗଡ଼—ପଞ୍ଜାବରୋହତକ ଜିଲ୍ଲାର ଗୋଟିଏ ଦୁର୍ଗ ।

ଜାହାଜପୁର—ରାଜପୁତାନା ଉଦୟପୁର ରାଜ୍ୟର ଗୋଟିଏ ସହର ।

ଜାହାଜିଆ—ଗ୍ରା. ବିଂ. ପୋତାଧ୍ୟକ୍ଷ, କାପ୍ତାନ୍, ନାବିକ, (ବିଂ) ଜାହାଜ ସମ୍ବନ୍ଧୀୟ ।

ଜାହାଜୀ—ଯା. ବି. ନାବିକ, ଖଲାସୀ ।

ଜାହାଜୀଗୁଆ—ଗ୍ରା. ବି. ଏକପ୍ରକାର ବଡ଼ ଗୁଆ ।

ଜାହାନ୍‌ଆରାବେଗମ୍—ସମ୍ରାଟ ଶାହାଜାହାନଙ୍କ କନ୍ୟା ।

ଜାହାନ୍‌ବାନୋବେଗମ୍—ସମ୍ରାଟ ଆକବରଙ୍କ ପୁତ୍ର ମୁରାଦଙ୍କ କନ୍ୟା ।

ଜାହାନମ୍—ଯା. ବି. ନରକ ।

ଜାହାନ୍‌ଶାତୁର୍କୀ—ଯା. ବି. ସିକନ୍ଦର ତୁର୍କୀଙ୍କ ପୁତ୍ର, ଫରାଇସୁଫ୍ ତୁର୍କୀଙ୍କ ପୁତ୍ର

ଜାହାନ୍‌ସଜ୍—ସୁଲତାନ୍ ଆଲ୍ଲାଉଦ୍ଦୀନଙ୍କ ଉପାଧି ।

ଜାହାନାବାଦ୍—ବଙ୍ଗଳା ହୁଗୁଳିଜିଲ୍ଲାର ଗୋଟିଏ ଉପବିଭାଗ ।

ଜାହାନିଆଁ—ଯା.ବି.ଜନୈକ ମୁସଲମାନ ପରିବ୍ରାଜକ ମହାପୁରୁଷ ।

ଜାହାନ୍ଦାରଶାହ—ଯା. ବି. ସମ୍ରାଟ ବାହାଦୁରଶାହଙ୍କ ଜ୍ୟେଷ୍ଠ ପୁତ୍ର ।

ଜାହାନ୍ଦାରଶାହ—ଯା. ବି. ବାଦଶାହ ଶାହଆଲମଙ୍କ ଜ୍ୟେଷ୍ଠ ପୁତ୍ର ।

ଜାହିର—ଯା. ବି. ଗୁପ୍ତବିଷୟ ପ୍ରକାଶ, ପ୍ରଚାର, (ବିଂ) ବାହ୍ୟ, ବ୍ୟକ୍ତ, ପ୍ରକାଶିତ, ପ୍ରକଟିତ, ଉନ୍ମୁକ୍ତ, ସ୍ଫୁଟ ।

ଜାହିରକରିବା—ଗ୍ରା. କ୍ରି. ସାଧାରଣରେ ପ୍ରକାଶ କରିବା, ଦେଖାଇବା, ଦଣ୍ଡଆଦି ଦେଇ କୌଣସି ବ୍ୟକ୍ତି ବା ଜନ୍ତୁକୁ କରାୟତ୍ତକରିବା ।

ଜାହିରା—ଯା.ବି ଓ ବିଂ.ଜାହିର ଦେଖ ।

ଜାହିରାତ୍—ଯା. ବି. ସର୍ବସାଧାରଣଙ୍କ ନିମନ୍ତେ ଦିଆଯିବା ବିଜ୍ଞାପନ, ଜାହିରାତ୍ ନାମା ।

ଜାହୁଷ—ପୁଂ. ବି. ରାଜଭେଦ ।

ଜାହ୍ନବ—ପୁଂ. ବି. ଜନପଦବିଶେଷ ।

ଜାହ୍ନବୀ—ସ୍ତ୍ରୀ.ବି.(ଜହ୍ନୁ+ଅ+ଈ)ଗଙ୍ଗା, ଭାଗୀରଥୀ, ଗଡ଼ଜାଲରାଜ୍ୟସ୍ଥ ଗୋଟିଏ ନଦୀ, ଗଙ୍ଗାର ଶାଖା ।

ଜି—ପୁଂ. ବିଂ. (ଜି+କ.କ୍ୱିପ୍) ଜେତା, ଜୟକାରୀ, ବିଜୟୀ, (ବି)ପିଶାଚ ।

ଜିଅର୍‌ବାର—ଯା. ଗ୍ରା. ବି. ( ଧନର ) ଅପବ୍ୟୟ, କ୍ଷତି, (ବିଂ) ଅପବ୍ୟୟିତ, କ୍ଷତିଗ୍ରସ୍ତ ।

ଜିଅଲ—ଗ୍ରା.ବି. (ଫ-ଜିଙ୍ଗିନୀ) କାଶିମୂଳାଗଛ, ମାଗୁରଆଦି ମାଛ ।

ଜିଆ—ଗ୍ରା.ବି.କେଞ୍ଚୁଆ, ମହୁଲତା ନାମକ କୀଟ, ମନୁଷ୍ୟପେଟରୁ ସମୟେ ସମୟେ ମଳସଙ୍ଗେ ବାହାରିବା ବଡ଼ କୃମି, ଗଡ଼ିଶା ମାଛପରି ଏକପ୍ରକାର ମାଛ ।

ଜିଆଁ—ପ୍ରା. (ସମ୍ବ)ବି. ସନ୍ତାନ, ପିଲା, ବାଳକ ।

ଜିଆଁଣିଆ—ଗ୍ରା. ବିଂ. ଜଳର କ୍ରମ ବୃଦ୍ଧି ଦେଖି ଯେଉଁ ନଦୀରେ ବନ୍ୟା ଆସିବାର ସମ୍ଭାବନା କରାଯାଏ ।

ଜିଆଦ—ଗ୍ରା. ବି. କ୍ଷୁଦ୍ର ମୃଗବିଶେଷ ।

ଜିଆଦା—ଯା.ବିଂ. ଅଧିକତର, ପ୍ରଚୁର, ଉଦ୍ବୃତ୍ତ, ବହୁତ, (ବି) ଆଧିକ୍ୟ, ବଳିପଡ଼ିବା ଅଂଶ ବା ପଦାର୍ଥ ।

ଜିଆନାଡ଼—ଗ୍ରା. ବି. ଜିଆ (ଦେଖ) ।

ଜିଆପୁତା—ପ୍ରା. (ମେଦି) ବି. ପୁତ୍ରଞ୍ଜୀବ (ଦେଖ) ।

ଜିଉ—ପ୍ରା. (ମେଦି) ବି.(ଫ-ଦ୍ୟୂତ) ବିବାହ ସମୟରେ ବରକନ୍ୟାଙ୍କର କଉଡ଼ି ଖେଳ, ଜୁଆଖେଳ, (ଯା.ବି) ଜିହ୍ୱାଦ ଦେଖ, (ଗ୍ରା. ବି) ଜି ଦେଖ ।

ଜିଉନା—ପ୍ରା.(ଜାସପୁର) ବି.ଧନ, ଅର୍ଥ ।

ଜିଉନ୍ତିଆ—ପ୍ରା. (ସମ୍ବ) ବି. ଜିତାଷ୍ଟମୀ, ଆଶ୍ୱିନକୃଷ୍ଣାଷ୍ଟମୀ ବ୍ରତ, ଦୁତିବାହନ ଓଷା ।

ଜିକ୍‌ଜିକ୍—ଗ୍ରା. ବି. ( ଫ-ଚାକଚକ୍ୟ ) ଚାକଚକ୍ୟ, (ଗ୍ରା.ବିଂ) ଜକ୍‌ଜକ୍, ଚକ୍‌ଚକ୍, (ଗ୍ରା. କ୍ରି. ବିଂ) ଚକଚକହୋଇ ।

ଜିକ—ଗ୍ରା. ବି. ଜବ, ଚାକଚକ୍ୟ ।

ଜିକନ—ଗ୍ରା. ପୁଂ. ବି. ଜଣେ ପ୍ରାଚୀନ ସ୍ମୃତିକାରକ ।

ଜିକର—ଯା. ବି. କଥାବାର୍ତ୍ତା, ସୂଚନା, ପ୍ରସଙ୍ଗ ।

ଜିକରମଜଗୁର୍— ଯା. ବି. ଖୁସି ଗଳ୍ପ, କଥାବାର୍ତ୍ତା ।

ଜିଗତ୍ନୁ—ପୁଂ. ବି. ପ୍ରାଣ, ଗମନଶୀଳ ।

ଜିଗମିଷା—ସ୍ତ୍ରୀ. ବି. (ଗମ୍+ସନ+ଭା.ଅ +ଆ) ଗମନକରିବାର ଇଚ୍ଛା ।

ଜିଗମିଷିତ—ବି°. (ଜିଗମିଷା + ଇତ) ଜିଗମିଷୁ (ଦେଖ) ।

ଜିଗମିଷୁ—ବି°. ( ଗମ୍+ସନ+ଉ ) ଗମନେଚ୍ଛୁ ।

ଜିଗର—ଯା. ବି. ପରମାର୍ଥ ବିଷୟକ ଜ୍ଞାନ, ନବନ୍ଧାଡଣର୍ଯ୍ୟ, ଜିଦ, ବାରମ୍ବାର ଅନୁରୋଧ ।

ଜିଗରଦାର୍—ଯା. ବି°. ଜିଦଖୋର, ଏକଜିଦିଆ, ବିରକ୍ତିକାରୀ ।

ଜିଗା—ଯା. ବି. ମୁକୁଟ, ରାଜାଙ୍କର ମସ୍ତକାଭରଣ ।

ଜିଗିର୍—ଯା. ବି. ଚିତ୍କାର, ପ୍ରତ୍ୟକ୍ଷ, ସ୍ପଷ୍ଟପ୍ରକାଶ ।

ଜିଗର୍ତ୍ତି—ପୁ°.ବି.(ଗୃ + ତି)ଆଚ୍ଛାଦକ ।

ଜିଗୀଷା—ସ୍ତ୍ରୀ.ବି.(ଜି+ସନ୍+ଭା.ଅ+ଆ) ଜୟେଚ୍ଛା, ପ୍ରକର୍ଷ, ଉଦ୍ୟମ, ଉଚ୍ଚାଭିଳାଷ, ପ୍ରତିଦ୍ୱନ୍ଦିତା, ଜୟକରିବାର ଇଚ୍ଛା ।

ଜିଗୀଷିତ—ବି°. ( ଜିଗୀଷା+ଇତ ) ଜିଗୀଷୁ ଦେଖ ।

ଜିଗୀଷୁ—ବି°. ( ଜି+ସନ+କ.ଉ ) ଜୟେଚ୍ଛୁ, ଉତ୍କର୍ଷଲାଭେଚ୍ଛୁ, ଉଦ୍ୟମଶୀଳ, ଉଚ୍ଚାଭିଳାଷୀ ।

ଜିଗ୍ୟୁ—ପୁ°. ବି°. ଜୟଶୀଳ, ବିଜୟୀ ।

ଜିଘତ୍ନୁ—ପୁ°.ବି. ଜିଘାଂସା, ହନନେଚ୍ଛା, ବଧକରିବାର ଇଚ୍ଛା ।

ଜିଘତ୍ସା—ସ୍ତ୍ରୀ. ବି. (ଅଦ୍+ସନ୍+ଭା.ଅ+ଆ) କ୍ଷୁଧା, ଚେଷ୍ଟା, ଭୋଜନେଚ୍ଛା, ବୁଭୁକ୍ଷା ।

ଜିଘତ୍ସିତ—ବି°.(ଜିଘତ୍ସା+ଇତ) ବୁଭୁକ୍ଷୁ, କ୍ଷୁଧିତ, ଭୋଜନେଚ୍ଛୁ ।

ଜିଘତ୍ସୁ—ବି°. (ଅଦ୍+ସନ୍+କ.ଉ) ଭୋଜନେଚ୍ଛୁ, ବୁଭୁକ୍ଷୁ, କ୍ଷୁଧିତ ।

ଜିଘାଂସକ—ବି°. ପ୍ରତିହିଂସକ, ହନନେଚ୍ଛୁ, ଅନିଷ୍ଟସାଧନର ପ୍ରବୃତ୍ତିବିଶିଷ୍ଟ ।

ଜିଘାଂସା—ସ୍ତ୍ରୀ. ବି. (ହନ୍+ସନ୍+ଅ +ଆ)ହନନକରିବାଇଚ୍ଛା, ପ୍ରତିହିଂସା, ବଧକରିବା ଇଚ୍ଛା ।

ଜିଘାଂସାବୃତ୍ତି—ବି. (ଜିଘାଂସା+ବୃତ୍ତି) ଜୀବହତ୍ୟାକାର୍ଯ୍ୟ, ଜୀବହିଂସା ।

ଜିଘାଂସିତ—ବି°. ( ଜିଘାଂସା+ଇତ ) ଜିଘାଂସୁ (ଦେଖ), (ମି.ତ) ଯାହାକୁ ମାରିପକାଇବାକୁ ଅନ୍ୟଲୋକ ଚେଷ୍ଟା କରୁଥାଏ ।

ଜିଘାଂସିନ୍—ପୁ°. ବି°. ଜିଘାଂସାକାରୀ ।

ଜିଘାଂସୁ—ବି°. (ହନ୍+ସନ୍+କ.ଉ) ହନନେଚ୍ଛୁ, ହିଂସା ପରାୟଣ ।

ଜିଘୃକ୍ଷା—ସ୍ତ୍ରୀ.ବି.(ଗ୍ରହ + ସନ୍ + ଭା.ଅ+ ଆ) ଗ୍ରହଣକରିବାର ଇଚ୍ଛା, ଗ୍ରହଣେଚ୍ଛା, ଲୋଭ ।

ଜିଘୃକ୍ଷିତ—ବି°. (ଗ୍ରହ + ସନ୍+କ.ତ) ଗ୍ରହଣେଚ୍ଛୁ ।

ଜିଘୃକ୍ଷୁ—ବି°. ( ଗ୍ରହ+ସନ୍+କ.ଉ) ଗ୍ରହଣେଚ୍ଛୁ ।

ଜିଘ୍ର—ପୁ°. ବି°. (ଘ୍ରା + କ.ଅ) ଘ୍ରାଣକର୍ତ୍ତା, ଅନୁମାନକାରୀ, ସନ୍ଦେହକାରୀ ।

ଜିଘ୍ରନ୍—ପୁ°. ବି°. (ଘ୍ରା+କ,ଅନ୍ତ)ଯେ ଶୁଙ୍ଘିଅଛି, (ସ୍ତ୍ରୀ) ଜିଘ୍ରନ୍ତୀ ।

ଜିଙ୍ଗି—ସ୍ତ୍ରୀ. ବି. ମଞ୍ଜିଷ୍ଠା ।

ଜିଙ୍ଗିନୀ—ସ୍ତ୍ରୀ. ବି. ଶାଲ୍ମଳୀକାଖ୍ୟ ବୃକ୍ଷ ଭେଦ, କୃଷ୍ଣଶିମିଳି, କାକଶିମିଳି ।

ଜିଙ୍ଗୀ—ସ୍ତ୍ରୀ. ବି (ଜିଙ୍ଗ+କ.ଈ)ମଞ୍ଜିଷ୍ଠା ।

ଜିଜା—(ହିନ୍ଦି) ବି. ଭଗିନୀପତି ।

ଜିଜିଆ—ଯା. ବି. ମୁସଲମାନ୍ ସମ୍ରାଟଙ୍କ ଅମଳରେ ଭାରତବର୍ଷର ମୁସଲମାନ୍ ଧର୍ମ ଗ୍ରହଣ କରି ନ ଥିବା ପ୍ରଜାଙ୍କଠାରୁ ଆଦାୟ କରାଯିବା କର ।

ଜିଜିବାଇ—ସ୍ତ୍ରୀ. ବି. ମହାରାଷ୍ଟ୍ରବୀର ଶିବାଜୀଙ୍କ ମାତା ।

ଜିଜିବେଗମ୍—ଆକବରଙ୍କ ଧାତ୍ରୀ, ମିର୍ଜା ଆଜିଜ୍‌କୋକାର ଗର୍ଭଧାରିଣୀ ।

ଜିଜୀବିଷା—ସ୍ତ୍ରୀ. ବି. (ଜୀବ + ସନ୍+ +ଭା.ଅ + ଆ)ଜୀବନେଚ୍ଛା, ବଞ୍ଚିବାର ଇଚ୍ଛା, ଜୀବନପ୍ରତି ମାୟା ।

ଜିଜୀବିଷୁ—ବି°. (ଜୀବ+ସନ୍+କ.ଉ) ଜୀବନେଚ୍ଛୁ, ବଞ୍ଚିବା ଇଚ୍ଛୁକ, ଜୀବନାଭିଳାଷୀ ।

ଜିଜହୋତି—ବୁନ୍ଦେଲଖଣ୍ଡର ପ୍ରାଚୀନ ନାମ ।

ଜିଝୋତିଆ—କନୌଜ ବ୍ରାହ୍ମଣମାନଙ୍କର ଗୋଟିଏ ଶାଖା, ବୁନ୍ଦେଲଖଣ୍ଡ ବଣିକଙ୍କ ଶାଖା ।

ଜିଜ୍ଞାପୟିଷୁ—ବି°.(ଜ୍ଞା+ଣିଚ୍+ସନ୍+ଉ) ଜଣାଇବା ପାଇଁ ଇଚ୍ଛୁକ ।

ଜିଜ୍ଞାସକ—ପୁ°. ବି°. (ଜ୍ଞା + ସନ୍ + କ.ଅକ) ଯେ କୌଣସି ବିଷୟ ଜାଣିବାକୁ ଇଚ୍ଛୁକ ହୋଇ ପ୍ରଶ୍ନ କରେ, ପ୍ରଶ୍ନକାରୀ ।

ଜିଜ୍ଞାସନ—କ୍ଲୀ. ବି. (ଜ୍ଞା+ସନ୍+ଭା.ଅନ) କଥନ, ପ୍ରଶ୍ନକରଣ, ଅନୁସନ୍ଧାନ ।

ଜିଜ୍ଞାସନୀୟ —ବି°. (ଜିଜ୍ଞାସ+ମି.ଅନୀୟ) ଜିଜ୍ଞାସ୍ୟ ଦେଖ ।

ଜିଜ୍ଞାସମାନ—ପୁ°.ବି°.(ଜ୍ଞା+ସନ୍+କ. ଆନ) ଜିଜ୍ଞାସୁ, ଅନୁସନ୍ଧିତ୍ସୁ, ଯେ ପ୍ରଶ୍ନ କରୁଅଛି ।

ଜିଜ୍ଞାସା—ସ୍ତ୍ରୀ. ବି.(ଜ୍ଞା+ସନ୍+ଭା.ଅ+ ଆ) ଜାଣିବା ଇଚ୍ଛା, ଅନୁସନ୍ଧାନ ଇଚ୍ଛା, ପ୍ରଶ୍ନ ପରୀକ୍ଷା, କୌତୁହଳ ।

ଜିଜ୍ଞାସାବାଦ—ବି. (ଜିଜ୍ଞାସା+ବଦ+ଭା.ଅ) ଜିଜ୍ଞାସା ଓ ବାର୍ତ୍ତା, ସମ୍ବାଦ ଦାନ ଓ ଗ୍ରହଣ, ଆଳାପ ।

ଜିଜ୍ଞାସାର୍ହ—ବି°. (ଜିଜ୍ଞାସା+ଅର୍ହ)ଜିଜ୍ଞାସାର ଯୋଗ୍ୟ (ବିଷୟ), ପ୍ରଶ୍ନ କରିବାର ଉପଯୁକ୍ତ (ବ୍ୟକ୍ତି) ।

ଜିଜ୍ଞାସିତ—ବି°. ( ଜ୍ଞା+ସନ+ମି.ତ ) ଯାହାକୁ ପ୍ରଶ୍ନ କରାଯାଏ, ଯେଉଁ ବିଷୟରେ ପ୍ରଶ୍ନ କରାଯାଏ ।

ଜିଜ୍ଞାସୁ—ପୁ°. ବି°. (ଜ୍ଞା+ସନ୍+କ.ଉ) ଜିଜ୍ଞାସାକାରୀ, ପ୍ରଶ୍ନକାରୀ, ଜାଣିବାକୁ ଇଚ୍ଛୁକ, ମୁମୁକ୍ଷୁ ।

ଜିଜ୍ଞାସ୍ୟ—ବି°. ( ଜ୍ଞା+ସନ୍+ମି.ଯ ) ଜିଜ୍ଞାସିତବ୍ୟ, ଜିଜ୍ଞାସନୀୟ, ଜିଜ୍ଞାସାର ବିଷୟୀଭୂତ, ପ୍ରଶ୍ନର ଯୋଗ୍ୟ, ପ୍ରଷ୍ଟବ୍ୟ, ଯେଉଁ ବ୍ୟକ୍ତିଙ୍କୁ ପଚାରିବା ଉଚିତ, ଅନୁସନ୍ଧେୟ ।

ଜିଜ୍ଞାସ୍ୟମାନ—ପୁ°. ବି°. (ଜ୍ଞା+ସନ୍+

ର୍ମ:ଆନ)ଯେଉଁ ବିଷୟ ଜିଜ୍ଞାସା କରା-
ଯାଇଅଛି, ଯାହା ସମ୍ବନ୍ଧରେ ପ୍ରଶ୍ନ ବା
ଅନୁସନ୍ଧାନ କରାଯାଉଅଛି ।
ଜିଜ୍ଞାସୁ—ପୁଂ. ବିଂ. ଜିଜ୍ଞାସୁ ଦେଖ ।
ଜିଞ୍ଜିର—ଯା. ବି. ଶୃଙ୍ଖଳ, ଶିଙ୍କୁଳି ।
ଜିଞ୍ଜୀରା—ବୋମ୍ବାଇପ୍ରଦେଶର ଗୋଟିଏ
କ୍ଷୁଦ୍ର ସ୍ୱାଧୀନରାଜ୍ୟ ।
ଜିଠୁସ୍ତା— ଚବିଶପ୍ରଗଣାର ଗୋଟିଏ ପ୍ରସିଦ୍ଧ
ଗ୍ରାମ ଓ ବଜାର ।
ଜିଡ଼—ଗ୍ରା.ବି. (ସଂ-ଜଟୀ)ପ୍ଲକ୍ଷବୃକ୍ଷ, ବଟ-
ଜାତୀୟ ବୃକ୍ଷବିଶେଷ ।
ଜିଡ଼ା—ପ୍ରା.(କଳିକା)ଛୁଡ଼ା,ଦଣ୍ଡାୟମାନ ।
ଜିଣ—ଗ୍ରା. ବି. ଜୟଲାଭ ।
ଜିଣନ୍ତା—ଗ୍ରା. ପୁଂ. ବିଂ. ( ସଂ-ଜେତା )
ଜେତା, ଯେ ଜୟଲାଭ କରିଅଛି, ଯେ
ଜୟଲାଭ କରେ ।
ଜିଣା—ଗ୍ରା.ବି.ଯୁଦ୍ଧରେ ଜୟ, ଖେଳରେ
ଜୟଲାଭ, ଜୟଲାଭ ଫଳରେ କୌଣସି
ବସ୍ତୁର ପ୍ରାପ୍ତି, ( ଗ୍ରା.ବିଂ ) ଜୟକାରୀ,
ଜୟୀ, ଜୟଲବ୍ଧ, ଜିତ, ପରାଜିତ,
ଶ୍ରେଷ୍ଠ ।
ଜିଣାପଟ—ଗ୍ରା. ବି. (ସଂ-ଜୟ ଓ ପକ୍ଷ)
ଯୁଦ୍ଧ କରୁଥିବା ବା ଖେଳୁଥିବା ଦୁଇ
ବିପକ୍ଷ ଦଳ ମଧ୍ୟରୁ ଜେତା ପକ୍ଷର ଜୟ
କରିବାର ସୁଯୋଗ,ଜିତାପଟ, ଯୁଦ୍ଧ
ବା ଖେଳରେ ଜୟଲାଭ କରିବା ପକ୍ଷ ।
ଜିଣିବା—ଗ୍ରା.କ୍ରି. (ଶତ୍ରୁକୁ) ଜୟକରିବା,
ପରାସ୍ତ କରିବା, ଜିତିବା, ପାରହେବା,
ଅତିକ୍ରମ କରିବା, ବଳିବା, ଅପେକ୍ଷା-
କୃତ ଅଧିକହେବା ।
ଜିତ୍—ପୁଂ.ବିଂ. (ଜି+କ.କ୍ୱିପ୍) ଜେତା,
ଯେ ଜୟ କରିଥାଏ ।
ଜିତ—ବିଂ.(ଜି+ର୍ମ.ତ)ପରାଜିତ, ପରା
ଭୂତ, ବଶୀଭୂତ,(କ୍ଲୀ.ବି) ଜୟ, ଆର୍ହ-
ତୁପାସକ ଭେଦ ।
ଜିତକର୍ଣ୍ଣ—ପୁଂ. ବି. ଚୌହାନବଂଶୀୟ
ଜଣେ ରାଜା ।
ଜିତକାଶି—ପୁଂ. ବି. ଦୃଢ଼ ମୁଷ୍ଟିଯୋଦ୍ଧୃ-
ଭେଦ, ମୁଠାକରାଯାଇଥିବା କରତଳ ।

ଜିତକାଶୀ—ପୁଂ. ବିଂ. (ଜିତ + କାଶ+
ଇନ୍)ଜୟଯୁକ୍ତ, ଜୟଗର୍ବିତ,ଜୟଶୀଳ ।
ଜିତକ୍ରୋଧ—ପୁଂ. ବିଂ. (ବ.ବ୍ରୀ)କ୍ରୋଧ-
ଶୂନ୍ୟ, ଶାନ୍ତପ୍ରକୃତିକ, କ୍ଷମାଶୀଳ, (ବି)
ଜିଷ୍ଣୁ ।
ଜିତନେମି—ପୁଂ. ବି. (ବ.ବ୍ରୀ) ଅଶ୍ୱଥ-
ନିର୍ମିତ ଦଣ୍ଡ, ବିଷ୍ଣୁ, (ବିଂ)କ୍ରୋଧଶୂନ୍ୟ ।
ଜିତମନ୍ୟୁ—ପୁଂ.ବିଂ.(ବ.ବ୍ରୀ)ଜିତକ୍ରୋଧ
ଦେଖ ।
ଜିତଲ—ଯା. ବି. ମୁସଲମାନୀ ମୁଦ୍ରା-
ବିଶେଷ ।
ଜିତଲୋକ—ପୁଂ.ବିଂ.(ବ.ବ୍ରୀ)ଯେ ପୁଣ୍ୟ
କର୍ମ ଦ୍ୱାରା ସ୍ୱର୍ଗାଦିକୁ ଜୟ କରେ,
ଅଭିଭୂତ ଲୋକ ।
ଜିତବତୀ—ସ୍ତ୍ରୀ. ବି. ଉଶୀନରଙ୍କ
ଦୁହିତା,ନରଦେବୀଙ୍କ ଜାର ପ୍ରିୟସଖୀ,
(ବିଂ) ଯେଉଁ ସ୍ତ୍ରୀ ଜୟ କରିଅଛି ।
ଜିତବାନ୍—ପୁଂ. ବିଂ. ( ଜିତ+ବତ୍ )
କୃତଜୟ, ଯେ ଜୟ କରିଅଛି ।
ଜିତବ୍ରତ—ପୁଂ. ବିଂ. ଆୟତ୍ତୀକୃତ ବ୍ରତ,
(ବି) ପୃଥୁବଂଶୀୟ ହବିର୍ଦ୍ଧାନ ରାଜାଙ୍କ
ପୁତ୍ର ।
ଜିତଶତ୍ରୁ—ପୁଂ. ବିଂ. (ବ.ବ୍ରୀ) ବିଜୟୀ,
ଯେ ଶତ୍ରୁକୁ ପରାଜୟ କରିଅଛି ।
ଜିତା—ସ୍ତ୍ରୀ. ବି. (ଜି+ର୍ମ.ତ+ଆ)ପରା-
ଜିତା, ଯେଉଁ ସ୍ତ୍ରୀକୁ ପରାଜୟ କରା-
ଯାଇଅଛି ।
ଜିତାକ୍ଷର—ପୁଂ. ବିଂ. (ବ.ବ୍ରୀ) ଉତ୍ତମ
ପାଠକ,ଯେ ଅକ୍ଷର ଦେଖିବା ମାତ୍ରକେ
ପଢ଼ିପାରେ ।
ଜିତାତ୍ମତ୍ୱ—କ୍ଲୀ. ବି. (ଜିତାତ୍ମନ୍+ଭା.ତ୍ୱ)
ଜିତେନ୍ଦ୍ରିୟତା ।
ଜିତାତ୍ମା—ପୁଂ.ବିଂ. (ବ.ବ୍ରୀ)ଜିତେନ୍ଦ୍ରିୟ,
ଯେ ମନୁଷ୍ୟକୁ ଜୟ କରିଅଛି, (ବି)
ଶ୍ରାଦ୍ଧଭାଗାର୍ହ ଦେବଭେଦ ।
ଜିତାପଟ—ଗ୍ରା. ବି. ଜିଣାପଟ ଦେଖ ।
ଜିତାପଣ—ଗ୍ରା. ବି. ଜୟଶୀଳତା ।
ଜିତାମିତ୍ର—ପୁଂ. ବିଂ. ( ବ.ବ୍ରୀ ) ଶତ୍ରୁ
ପରାଜୟକର୍ତ୍ତା, ଯେ ଶତ୍ରୁକୁ ଜୟ

କରିଅଛି,କାମାଦିରିପୁଜେତା,(ବି)ବିଷ୍ଣୁ ।
ଜିତାମିତ୍ରମଲ୍ଲ—ପୁଂ. ବି. ନେପାଳର
ଠାକୁର ବଂଶୀୟ ଜଣେ ପ୍ରସିଦ୍ଧ ରାଜା ।
ଜିତାରି—ପୁଂ. ବିଂ. (ବ.ବ୍ରୀ) ଶତ୍ରୁଜୟୀ,
ଜିତଶତ୍ରୁ, (ପୁଂ.ବି)ବୁଦ୍ଧ ।
ଜିତାଷ୍ଟମୀ—ସ୍ତ୍ରୀ. ବି. ଗୌଣାଶ୍ୱିନ କୃଷ୍ଣା-
ଷ୍ଟମୀ, ଜିମୂତାଷ୍ଟମୀ,ଦୁତିବାହନ ଓଷା ।
ଜିତ ହବ—ପୁଂ. ବିଂ. (ବ.ବ୍ରୀ) ବିଜୟୀ,
ଜିତକାଶୀ, ଯୁଦ୍ଧରେ ଜୟୀ ।
ଜିତାହାର—ପୁଂ. ବିଂ. ( ବ.ବ୍ରୀ ) ଯେ
କ୍ଷୁଧାକୁ ଜୟ କରିଅଛି, ଆହାରଜେତା,
ସଂଯତାହାରୀ । [ ବିଜୟ ।
ଜିତି—ସ୍ତ୍ରୀ. ବି. (ଜି+ଭା.ତି)ଜୟ, ଲାଭ,
ଜିତିବା—ଗ୍ରା. କ୍ରି. ଜିଣିବା, ଜୟଲାଭ
କରିବା, ପରାସ୍ତ କରିବା, ଅତିକ୍ରମ
କରିବା । [ ମୃଗ ।
ଜିତିହରଣ—ଗ୍ରା.ବି.ହରିଣବିଶେଷ, କସ୍ତୁରୀ
ଜିତୁମ—ପୁଂ.ବି.ମିଥୁନରାଶି (ଜ୍ୟୋତିଷ) ।
ଜିତେନ୍ଦ୍ରିୟ—ପୁଂ.ବିଂ. ଇନ୍ଦ୍ରିୟଜୟକାରୀ,
ଶାନ୍ତ, (ବି) କାମବୃଦ୍ଧି ବୃକ୍ଷ, ବ୍ରହ୍ମଚାରୀ,
ତପସ୍ୱୀ ।
ଜିତେନ୍ଦ୍ରିୟତା—ସ୍ତ୍ରୀ. ବି. (ଜିତେନ୍ଦ୍ରିୟ+
ତ+ଆ ) ଇନ୍ଦ୍ରିୟ ଜୟକାରୀ ଭାବ,
ଇନ୍ଦ୍ରିୟଦମନ, ଇନ୍ଦ୍ରିୟ ସଂଯମ ।
ଜିତେନ୍ଦ୍ରିୟତ୍ୱ--କ୍ଲୀ.ବି.(ଜିତେନ୍ଦ୍ରିୟ+ତ୍ୱ)
ଇନ୍ଦ୍ରିୟ ଜୟକାରୀ ଭାବ, ଇନ୍ଦ୍ରିୟଦମନ,
ଇନ୍ଦ୍ରିୟ ସଂଯମ ।
ଜିତେନ୍ଦ୍ରିୟାହ୍ୱ—ପୁଂ.ବି.କାମବୃଦ୍ଧି ବୃକ୍ଷ ।
ଜିତୋମ—ପୁଂ. ବି. ଜିତୁମ, ମିଥୁନରାଶି,
(ପୁ .ବିଂ) ଜୟଶୀଳଙ୍କ ମଧ୍ୟରେ ଶ୍ରେଷ୍ଠ ।
ଜିତ୍ପାଳ—ପୁଂ. ବି. ତୋମର ବଂଶର
ସ୍ଥାପିୟିତା ମାଳବର ରାଜା ।
ଜିତ୍ୟା—ସ୍ତ୍ରୀ. ବିଂ. (ଜି+ଯ+ଆ) ବୃହ-
ଦ୍ହଳ, ବଡ଼ ଲଙ୍ଗଳ, ହେଙ୍ଗ, ଲଙ୍ଗଳର
ଲୁହା । [ ଦେଶାଦ ।
ଜିତ୍ୱନ—ପୁଂ. ବିଂ. ଜୟଶୀଳ, ଅଦୂର-
ଜିତ୍ୱର—ପୁଂ. ବିଂ. (ଜି + ବର) ଜେତା,
ଜୟଶୀଳ, ବିଜୟୀ ।
ଜିତ୍ୱରୀ—ସ୍ତ୍ରୀ.ବି. କାଶୀ, ବାରାଣସୀ, (ବିଂ)

ଜିହ୍ବରର ସ୍ତ୍ରୀଲିଙ୍ଗ ।
ଜିଦ୍—ଯା. ବି. ବିରୋଧ, ବିରୁଦ୍ଧମତ, ଜିଗର, ହଠ, ଝୋଙ୍କ, ନିର୍ବନ୍ଧ, ଆଗ୍ରହାତିଶଯ୍ୟ ।
ଜିଦ୍‌କରିବା—ଗ୍ରା.କ୍ରି. କୌଣସି ବିଷୟ-ପାଇଁ ଜିଗର କରିବା, ହଠକରିବା ।
ଜିଦ୍‌ଖୋର୍—ଯା. ବିଂ. ଜିଗରିଆ, ଏକ-ଜିଦିଆ, ଯେ ନିଜକଥା ବଜାଏ ରଖିବା ପାଇଁ ଅନ୍ୟର ଉପଦେଶ ବା ଯୁକ୍ତିକୁ ମାନେ ନାହିଁ ।
ଜିନ୍—ଯା.ବି. ଘୋଡ଼ା ପିଠିରେ ବସିବା ପାଇଁ ପକାଇବା ଚର୍ମାସନ, ଅଶ୍ୱପୃଷ୍ଠର ଚର୍ମାସନ, ଭୂତ, ପ୍ରେତ, ଦୈତ୍ୟ ।
ଜିନ୍‌ଉଦ୍ଧାରଣ—ଗ୍ରା. ବି. ମୁସଲମାନ ରାଜାଙ୍କ ଅମଳରେ ପ୍ରଦତ୍ତ ଲାଖରାଜ ବୃତ୍ତିବିଶେଷ ।
ଜିନ୍‌ଗର୍—ଯା.ବି.ଘୋଡ଼ାର ଜିନ୍ ତିଆରି-କରିବା ଜାତିବିଶେଷ ।
ଜିନ୍‌ପୋଷ—ଯା. ବି. ଘୋଡ଼ାର ଜିନ୍ ଉପରେ ପକାଯିବା ଆସ୍ତରଣ ।
ଜିନ—ପୁଂ.ବି.(ଜି+କ.ନ)ବୁଦ୍ଧ, ଅର୍ହତ୍, ବିଷ୍ଣୁ, (ବି) ବିଜୟଶୀଳ, ଅତିବୃଦ୍ଧ, ଜିହ୍ବର ।
ଜିନ—ଯା. ବି. ବସ୍ତ୍ରବିଶେଷ, ଜିନ୍‌କନା, (ପ୍ରା.ବି) ବନ୍ୟବୃକ୍ଷବିଶେଷ ।
ଜିନତ—ଯା. ବି. ଶୋଭା, ସୌନ୍ଦର୍ଯ୍ୟ ।
ଜିନଯୋନି—ପୁଂ. ବି. ମୃଗ, ହରିଣ ।
ଜିନା – ପ୍ରା. (ସିଂହ) ଅବ୍ୟ. ଜୀଇଁ ଥାଉଁ-ଥାଉଁ, ଜୀବିତକାଳ ମଧ୍ୟରେ ।
ଜିନାକାରୀ—ଯା. ବି. ପରସ୍ତ୍ରୀ ଗମନ, ବ୍ୟଭିଚାର ।
ଜିନପୋକ—ପ୍ରା. (ମେଦ)ବି. ଖଦ୍ୟୋତ, ଜାଳୁଜୁଳିଆ ପୋକ । [ ରିଜ ।
ଜିନିସ—ଯା. ବି. ବସ୍ତୁ, ପଦାର୍ଥ, ଦ୍ରବ୍ୟ,
ଜିନିସପତ୍ର—ଗ୍ରା.ବି. ଦ୍ରବ୍ୟାଦି, ପଣ୍ୟ-ଦ୍ରବ୍ୟ ସମୂହ,ଘରର ଉପକରଣସମୂହ ।
ଜିନିସପାତି—ଗ୍ରା.ବି. ଜିନିସପତ୍ର ଦେଖ ।
ଜିନିସାତ୍—ଯା. ବି. ଜିନିସପତ୍ର ଦେଖ ।
ଜିନ୍ଦଗି—ଯା. ବି. ଜୀବନ, ଜୀବିତକାଳ ।
ଜିବାଞ୍ଜିବ—ପୁଂ. ବି. ଚକୋରପକ୍ଷୀ, ଚକୁଆ ।
ଜିବିଆ—ଗ୍ରା. ବି. ଜିହ୍ୱା ଆକୃତିର ଗଜା ବା ମିଷ୍ଟାନ୍ନବିଶେଷ ।
ଜିବ୍ରା—ଯା. ବି. ଘୋଟକ ଓ ଗର୍ଦ୍ଦଭର ଆକୃତିବିଶିଷ୍ଟ ବନ୍ୟଜନ୍ତୁବିଶେଷ ।
ଜିଭ—ଗ୍ରା.ବି.ଜିହ୍ୱା,କଲମ ଓ ନିବ୍‌ଆଦିର ଜିହ୍ୱା ଆକାରର ଅଗ୍ରଭାଗ ।
ଜିଭଆଗରେଥିବା—ଗ୍ରା. କ୍ରି. (କୌଣସି ବିଷୟ ବା ଗ୍ରନ୍ଥ ) କୌଣସି ବ୍ୟକ୍ତିର ଉତ୍ତମ ରୂପେ କଣ୍ଠସ୍ଥ ହୋଇଥିବା, କୌଣସି ବିଷୟ ବା ନାମ ଖୁବ୍ ଜଣା-ଥାଇ ସୁଦ୍ଧା କଥା ପଡ଼ିଲାବେଳେ ସ୍ମୃତି ପଥରେ ନ ପଡ଼ିବା ।
ଜିଭକାମୁଡ଼ିବା—ଗ୍ରା. କ୍ରି. ଅଜାଣତରେ ଜିଭର ଅଗ୍ରକୁ ଦନ୍ତରେ କ୍ଷତ କରିବା, ଲଜ୍ଜା ବା ବିସ୍ମୟରେ କିଂକର୍ତ୍ତବ୍ୟ-ବିମୂଢ଼ ବା ମ୍ରିୟମାଣ ହେବା ।
ଜିଭଚିରିବା—ଗ୍ରା.କ୍ରି.ଦନ୍ତକାଠିର ଫାଳ ଦ୍ୱାରା ଜିଭରୁ ମଇଳା ସଫା କରିବା ।
ଜିଭରେଘା—ଗ୍ରା.ବି.ତୁଣ୍ଡ ଘା, (ଲ.ଅର୍ଥ) କଥା କହି ନ ପାରିବା ।
ଜିଭରେହାଡ଼ହେବା—ଗ୍ରା: ବି. ମିଥ୍ୟା କଥା କହିବା ପାଇଁ ସାହସ ହେବା ।
ଜିଭଲଡ଼ବଡ଼—ଗ୍ରା. ବି. ପେଟୁପଣ ।
ଜିଭଲେଉଟିବା—ଗ୍ରା.କ୍ରି.ଶବ୍ଦ ଉଚ୍ଚାରଣ କରି ପାରିବା, କହିପାରିବା ।
ଜିଭହୁଡ଼ିବା—ଗ୍ରା. କ୍ରି. ଅକଥ୍ୟ କଥା-କହିବା ।
ଜିଭି—ପ୍ରା. (ସିଂହ)ବି. ଶଗଡ଼ ଦଣ୍ଡାରେ ଲାଗିଥିବା ଆଗସାରି (ଫାଳ) ।
ଜିମିଖାନା—ଯା. ବି. ସାଧାରଣଙ୍କ କୁସ୍ତି କସରତ୍ ଓ ଖେଳ କରିବାର ସୁବିଧା-ଜନକ ସ୍ଥାନ, ଜଗାଘର ।
ଜିମନାଷ୍ଟିକ୍—ଯା. ବି. ବିଶିଷ୍ଟ ଆକୃତି-ବିଶିଷ୍ଟ କାଷ୍ଠାଦିନିର୍ମିତ ଯନ୍ତ୍ରାଦି ସାହା-ଯ୍ୟରେ କରାଯିବା ବ୍ୟାୟାମ, କୌଶଳ-ପୂର୍ଣ୍ଣ ମଲ୍ଲବିଦ୍ୟା ।
ଜିମା—ଯା.ବି. ନ୍ୟାସ, ସଂରକ୍ଷା, ଆୟତ୍ତି, ଅଧିକାର, ଦାୟିତ୍ୱ, ଜବାବଦେହି, କାର୍ଯ୍ୟର ଭାର, (ଅବ୍ୟ) ମାରଫତ୍ ।
ଜିମାକରିବା—ଗ୍ରା. କ୍ରି.କୌଣସି ବସ୍ତୁକୁ କୌଣସି ବ୍ୟକ୍ତି ନିକଟରେ ନ୍ୟସ୍ତ-କରିବା ।
ଜିମାଦାର—ଯା. ବି. ଓ ବି. ସଂରକ୍ଷଣ-କର୍ତ୍ତା, ଯାହା ନିକଟରେ କୌଣସି ବସ୍ତୁ ଗଚ୍ଛିତ ଥାଏ, କୌଣସି ବିଷୟ-ପାଇଁ ଦାୟୀ ।
ଜିମାନାମା—ଯା. ବି. କୌଣସି ବସ୍ତୁକୁ କୌଣସି ବ୍ୟକ୍ତି ନିକଟରେ ଗଚ୍ଛିତ ରଖିବାର ନିଦର୍ଶନ ଲିପି ।
ଜିମାନେବା—ଗ୍ରା. କ୍ରି. କୌଣସି ବସ୍ତୁକୁ ଆପଣା ଅଧିକାର ବା ଦାୟିତ୍ୱରେ ରଖିବାକୁ ନେବା ।
ଜିମାୟୁଦ୍ଦୀନ୍‌ବରଣୀ--ଗ୍ରା.ପୁଂ.ବି.ଜଣେ ମୁସଲମାନ ଇତିହାସ ଲେଖକ ।
ଜିୟାଗଞ୍ଜ—ବି. ବଙ୍ଗଳା ମୁର୍ଶିଦାବାଦ ଜିଲ୍ଲାର ଗୋଟିଏ ପ୍ରଧାନ ସହର ।
ଜିୟାଧନେଶ୍ୱରୀ—ସ୍ତ୍ରୀ. ବି. ଆସାମର ଗୋଟିଏ ନଦୀ ଓ ବ୍ରହ୍ମପୁତ୍ରର ଉପନଦୀ ।
ଜିର୍‌ଗା—ଯା. ବି. ମୁସଲମାନମାନଙ୍କ ଜାତୀୟ ବା ରାଜନୈତିକ ସମ୍ମିଳନୀ ।
ଜିର୍‌ପୋଷ—ଯା. ବି. ହୁକାବସାଯିବା ବୈଠକର ମୁହଁରେ ଯେଉଁ ଚିହ୍ନିତ ବସ୍ତ୍ରଖଣ୍ଡ ଘୋଡ଼ାଇ ଦିଆଯାଏ ।
ଜିରଙ୍ଗ—ଆସାମର ଖାସି ପର୍ବତର ଗୋଟିଏ କ୍ଷୁଦ୍ରରାଜ୍ୟ । [ ନାମ ।
ଜିରଙ୍ଗଗଡ଼—ଜୁନାଗଡ଼ର ପ୍ରାଚୀନ
ଜିରଣ—ଗ୍ରା.ବି. ବିଶ୍ରାମ କରିବା ।
ଜିରାଇତ—ପ୍ରା. (ଗଞ୍ଜାମ)ବି.କାଳସମୟପାଇଁ ଚାଷକରିବା ନିମନ୍ତେ ରଇତକୁ ଦିଆ-ଯାଇଥିବା ଜମିଦାରଙ୍କ ନିଜ ଚାଷଜମି ।
ଜିରାଫ—ଯା. ବି. ଦୀର୍ଘକାୟ ଚତୁଷ୍ପଦ ପଶୁବିଶେଷ ।
ଜିଲ୍—ଗ୍ରା. ବି. ବେହେଲାରୁ ନିଃସୃତ ଚାରିଗୋଟି ସ୍ୱର ମଧ୍ୟରୁ ଏକତମ, କେଁ କେଁଇଆ ସ୍ୱର, ବେହେଲାରତୀବ୍ର ସ୍ୱର-ବିଶିଷ୍ଟ ତାର ବା ତନ୍ତ୍ରୀ, ତବଲା ବା

ପଟଖୋଳର ବାମପାଖରୁ ଉଠିବା ସ୍ୱର, ( ଯା. ବିଂ. ) ଔଜ୍ଜଲ୍ୟ ।

ଜିଲ୍‌କଜ—ଯା. ବି. ମୁସଲମାନ ମାସବିଶେଷ ।

ଜିଲ୍‌ପାଠ—ଯା. ବି. ରାଗିଣୀବିଶେଷ ।

ଜିଲ୍‌ହେଜ୍—ଯା. ବି. ମୁସଲମାନ ମାସବିଶେଷ, ମହରମ୍‌ର ପୂର୍ବ ମାସ ।

ଜିଲତ୍—ଯା. ବି. ଲଜ୍ଜା,ଅପମାନ,ବେଇଜତ, ଅନାଦର, ଦୁର୍ଦ୍ଦଶା, ଦୁର୍ଗତି ।

ଜିଲଦ୍—ଯା. ବି.ବହିର ମଲାଟ ଉପରେ ବନ୍ଧାହେବା ଚମଡ଼ା, ପୁସ୍ତକର ଖଣ୍ଡ, ଚମଡ଼ା ।

ଜିଲ୍ଲା— ଯା. ବି. ପ୍ରଦେଶର ଶାସନବିଭାଗ, ଆଭା, ଔଜ୍ଜଲ୍ୟ, ଚିକ୍କଣତା, ( ବିଂ ) ପଲିସ କରାଯାଇଥିବା, ଚକଚକିଆ ।

ଜିଲ୍ଲାଦାର୍—ଯା. ବିଂ. କେନାଲ ରେଭିନ୍ୟୁ ବା ସରକାରୀ ଜଳକର ଅସୁଲ କର୍ମଚାରୀ,ତହସିଲଦାରଙ୍କ ଉପରିସ୍ଥ କର୍ମଚାରୀ, ସର୍ବରାକାର ( ବିଂ ) ଦୀପ୍ତିମାନ୍, ମସୃଣ ।

ଜିଲ୍ଲାବନ୍ଦୀ—ଯା. ବିଂ. ଆୟ ବ୍ୟୟ ସମ୍ବନ୍ଧୀୟ ହିସାବ ।

ଜିଲଙ୍ଗା—ଗ୍ରେଟ ନାଗପୁର ଅନ୍ତର୍ଗତ ଗୋଟିଏ ପାହାଡ଼ ।

ଜିଲ୍ଲା—ଯା. ବି. ଜିଲ୍ଲ ( ଦେଖ ) ।

ଜିଲ୍ଲେ—ଗ୍ରା. ବିଂ. ଅମୁକ ଜିଲ୍ଲ ମଧ୍ୟସ୍ଥ ।

ଜିଷ୍ଣୁ—ପୁଂ. ବି. ( ଜି+କ.ଷ୍ଣୁ ) ବିଷ୍ଣୁ, ଅର୍ଜ୍ଜୁନ, ଇନ୍ଦ୍ର, ସୂର୍ଯ୍ୟ, ବସୁ, ବିଷ୍ଣୁ, (ବିଂ) ଜୟଶୀଳ, ଜେତା, ( ପୁଂ. ବି ) ଭୌତ୍ୟମନୁର ଜଣେ ପୁତ୍ର ।

ଜିଷ୍ଣୁଗୁପ୍ତ—ପୁଂ. ବି. ନେପାଳର ଜଣେ ପ୍ରସିଦ୍ଧ ରାଜା ।

ଜିହାଦ୍—ଯା. ବି. ଧର୍ମରକ୍ଷା ବା ଧର୍ମପ୍ରଚାର ନିମନ୍ତେ ଭିନ୍ନ ଧର୍ମାବଲମ୍ବୀଙ୍କ ସହିତ ମୁସଲମାନମାନଙ୍କ ଯୁଦ୍ଧ, ନିଜର ଧର୍ମରକ୍ଷାର୍ଥ ଯୁଦ୍ଧ ।

ଜିହାନ—ବିଂ. ( ହା+କ.ଅନ ) ଯାଉଥିବା, ପ୍ରାପ୍ତ ହେଉଥିବା,(ସ୍ତ୍ରୀ) ଜିହାନା ।

ଜିହାନକ—ବି. ( ଜିହାନ+କ ) ସୃଷ୍ଟିର ବିନାଶ, ପ୍ରଳୟ ।

ଜିହାସା—ସ୍ତ୍ରୀ.ବି.(ହା+ସନ୍+ଭା.ଅ+ଆ) ତ୍ୟାଗ କରିବାର ଇଚ୍ଛା, ଘୃଣା ।

ଜିହାସୁ—ପୁଂ.ବିଂ. ( ହା+ସନ+କ.ଉ ) ତ୍ୟାଗ କରିବାକୁ ଇଚ୍ଛୁକ ।

ଜିହୀର୍ଷା—ସ୍ତ୍ରୀ.ବି.( ହୃ+ସନ୍+ଭା.ଅ+ଆ)ହରଣ ବା ଚୋରି କରିବାର ଇଚ୍ଛା, ହରଣେଚ୍ଛା ।

ଜିହୀର୍ଷୁ—ପୁଂ.ବିଂ.( ହୃ+ସନ୍+କ,ଉ ) ହରଣ କରିବାକୁ ଇଚ୍ଛୁକ, ହରଣାଭିଳାଷୀ ।

ଜିହ୍ମ—ବିଂ.( ହା+କ,ମ ) ତାଲୁ, ବଙ୍କା, ବକ୍ର, କୁଟିଳ, ଖଳ, କପଟୀ, ଜଡ଼, ମିଥ୍ୟାବାଦୀ, କୁଣ୍ଠିତ, ଅପ୍ରସନ୍ନ, ଅଧାର୍ମିକ, ଦୀନ,( ବି )ମିଥ୍ୟା, ମିଛ,ଖଳତା, ଅସନ୍ତୁପଣ, ତଗରଗଛ ।

ଜିହ୍ମଗ—ପୁଂ.ବିଂ.(ଜିହ୍ମ+ଗମ୍+କ.ଅ) ଯେ ବକ୍ରଗତି କରେ, ବକ୍ରଗାମୀ,, (ବି) ସର୍ପ, ଶର ।

ଜିହ୍ମଗତି—ପୁଂ. ସ୍ତ୍ରୀ. ବି ଓ ବିଂ. ଜିହ୍ମଗ ଦେଖ ।

ଜିହ୍ମଗାମୀ—ବି ଓ ବିଂ.(ଜିହ୍ମ+ଗମ+କ ଇନ) ଜିହ୍ମଗ ଦେଖ ।

ଜିହ୍ମତା—ସ୍ତ୍ରୀ. ବି. କୁଟିଳତା, ବକ୍ରତା, ସର୍ପ ।

ଜିହ୍ମବାର—ବିଂ. ନିମ୍ନଦେଶରେ ଥିବା, ପିହିତଦ୍ୱାର, ଆଚ୍ଛାଦିତ ଦ୍ୱାର ।

ଜିହ୍ମମେହନ—ପୁଂ. ସ୍ତ୍ରୀ. ବି. (ଜିହ୍ମ+ମିହ+ଅନ) ଭେକ ।

ଜିହ୍ମମୋହନ—ପୁଂ. ବି. (ଜିହ୍ମ+ମୁହ+ଅନ) ଭେକ ।

ଜିହ୍ମଶଲ୍ୟ—ପୁଂ.ବି.(ବ.ବ୍ରୀ) ଖଦିରବୃକ୍ଷ ।

ଜିହ୍ମଶୀ—ବିଂ. ( ଜିହ୍ମ+ଶୀ+କ୍ୱିପ୍ ) ବକ୍ରଭାବେ ଶୟିତ, କୁଟିଳଶୟିତ ।

ଜିହ୍ମାଶୀ—ପୁଂ.ବିଂ. (ଜିହ୍ମ+ଅଶ+ଇନ୍) ମନ୍ଦଭୋଜୀ,ଯେ ଆସ୍ତେ ଆସ୍ତେ ଭୋଜନ କରେ ।

ଜିହ୍ମିତ—ବିଂ. (ଜିହ୍ମ+ମି.ତ) ବକ୍ରୀକୃତ, ନମିତ, କୁଟିଳ, ଘୂର୍ଣ୍ଣିତ ।

ଜିହ୍ମୀକର—ପୁଂ. ବିଂ. ବକ୍ରକର ।

ଜିହ୍ୱ—ପୁଂ. ସ୍ତ୍ରୀ. ବି. ( ଲିହ୍+ଣ. ବ ) ଜିହ୍ୱା, ଜିଭ, ରସନା, ରସେନ୍ଦ୍ରିୟ, ଅଗ୍ନିଶିଖା, ବାକ୍ୟ, ତଗରମୂଳ ।

ଜିହ୍ୱକ—ବି. (ଜିହ୍ୱ+କ) ଏକପ୍ରକାର ସନ୍ନିପାତ ରୋଗ ।

ଜିହ୍ୱଲ—ପୁଂ.ବିଂ.(ଜିହ୍ୱ+ଲା+କ.ଅ) ଲୁବ୍ଧ, ଭୋଜନଲୋଲୁପ, ପେଟୁ ।

ଜିହ୍ୱା—ସ୍ତ୍ରୀ.ବି. (ଜିହ୍ୱ+ଆ) ରସଜ୍ଞାନେନ୍ଦ୍ରିୟ, ଜିହ୍ୱ ଦେଖ ।

ଜିହ୍ୱାଗ୍ର—କ୍ଲୀ. ବି. ( ୬ତତ୍ ) ଜିହ୍ୱାର ଅଗ୍ରଭାଗ, ଜିଭର ଅଗ ।

ଜିହ୍ୱାଗ୍ରବର୍ତ୍ତୀ—ବିଂ. ( ୬ତତ୍ ) ଯାହା (କଥାପ୍ରଭୃତି) ମନୁଷ୍ୟର ଜିଭଅଗରେ ଥାଏ, ଯେଉଁ କଥାକୁ ମନୁଷ୍ୟ ବିନ୍ଦୁ ଚିନ୍ତାମାନେ କହିପାରେ ।

ଜିହ୍ୱାଜପ—ପୁଂ. ବି. (ତନ୍ତ୍ରସାରମତେ) ତନ୍ତ୍ରସାରୋକ୍ତ ଜପଭେଦ ।

ଜିହ୍ୱାତଳ—କ୍ଲୀ. ବି. ଜିହ୍ୱାର ପୃଷ୍ଠଭାଗ ।

ଜିହ୍ୱାନିର୍ଲେଖନ—କ୍ଲୀ. ବି. ( ୬ତତ୍ ) ଜିହ୍ୱାମାର୍ଜନ, ଜିଭଛେଲାଇବା ।

ଜିହ୍ୱାପ—ପୁଂ.ବିଂ. (ଜିହ୍ୱା+ପା+କ.ଅ) ଯେ ଜିହ୍ୱାଦ୍ୱାରା ପାଣିପିଏ, (ବି) କୁକୁର, ବ୍ୟାଘ୍ର, ବିଡ଼ାଳ, ଭାଲୁ, ଚିତାବାଘ ।

ଜିହ୍ୱାମଳ—କ୍ଲୀ. ବି. ଜିହ୍ୱାସ୍ଥିତ ମଳ, ଜିଭର ଛଉଆ ।

ଜିହ୍ୱାମୂଳ—କ୍ଲୀ. ବି. ( ୬ତତ୍ ). କଣ୍ଠର ଯେଉଁ ଅଂଶରୁ ଜିହ୍ୱା ବାହାରିଥାଏ ।

ଜିହ୍ୱାମୂଳୀୟ—ବିଂ. (ଜିହ୍ୱାମୂଳ+ଈୟ) ଜିହ୍ୱାମୂଳରୁ ଉଚ୍ଚାରିତ,(ବି) ଜିହ୍ୱାମୂଳରୁ ଉଚ୍ଚାର୍ଯ୍ୟ ବର୍ଣ୍ଣ ।

ଜିହ୍ୱାରଦ—ପୁଂ. ବି. ପକ୍ଷୀ ।

ଜିହ୍ୱାରୋଗ—ପୁଂ. ବି. ମୁଖରୋଗାନ୍ତର୍ଗତ ରସନାଜାତ ବ୍ୟାଧି ।

ଜିହ୍ୱାଳ—ବିଂ. ଜିଭଥିବା, ଜିହ୍ୱାଯୁକ୍ତ ।

ଜିହ୍ୱାଲାଳସା—ବି. ( ୬ତତ୍ ) ରୁଚିକର ଖାଦ୍ୟପ୍ରତି ଅତିରିକ୍ତ ବାସନା, ଜିଭନାଲଗ ।

ଜିହ୍ୱାଲିହ୍—ପୁଂ. ବି. (ଜିହ୍ୱା+ଲିହ+

କ. କ୍ୱିପ୍) କୁକୁର, ବରାଡ଼ । [ କରା ।
ଜିହ୍ୱାଲୌଲ୍ୟ—ବ.ପେଟୁକତା, ଔଦାର-
ଜିହ୍ୱାବାନ୍—ପୁଂ. ବ. ଯଜୁର୍ବେଦୀୟ ବଂଶାନ୍ତର୍ଗତ ଋଷିବିଶେଷ,(ବିଂ) ଜିହ୍ୱା-ଯୁକ୍ତ ।
ଜିହ୍ୱାଶଲ୍ୟ—ପୁଂ.ବ.ଖଦିରବୃକ୍ଷ,ଖଦିର ।
ଜିହ୍ୱାସୁଖ—କ୍ଲୀ. ବ. (୬ତତ୍) ରୁଚିକର ଖାଦ୍ୟ ଖାଇବାଯୋଗୁଁ ଜାତ ସୁଖ ।
ଜିହ୍ୱାସ୍ତମ୍ଭ—ବ. ( ୬ତତ୍ ) ଜିହ୍ୱାର (ଜିଭର) ପକ୍ଷାଘାତ ରୋଗ ।
ଜିହ୍ୱାସ୍ୱାଦ—ପୁଂ. ବ. ଲେହନ,ଋଟିବା ।
ଜିହ୍ୱିକା—ସ୍ତ୍ରୀ. ବ. (ଜିହ୍ୱା+ଇକ+ଆ) ଜିହ୍ୱାରୁ ମଇଳାକାଢ଼ିବା କର୍ମ ।
ଜିହ୍ୱୋଲ୍ଲେଖନ—କ୍ଲୀ.ବ. (୬ତତ୍) ଜିହ୍ୱା-ନିର୍ଲେଖନ ଦେଖ ।
ଜିହ୍ୱୋଲ୍ଲେଖନିକା—ସ୍ତ୍ରୀ. ବ. ଜିଭଛେଲା ।
ଜୀ—ଗ୍ରା. ବ. (ସଂ-ଜୀବ) ଜୀବନ, ପ୍ରାଣ, ମନ, ହୃଦୟ, ଆକାଙ୍କ୍ଷା, (ସ୍ନେହଭକ୍ତି ଓ ବାତ୍ସଲ୍ୟସୂଚକ ଅବ୍ୟୟ) ଭକ୍ତି, ସ୍ନେହ ବା ବାତ୍ସଲ୍ୟର ପାତ୍ର, ଶ୍ରୀମାନ୍, ମହାଶୟ, (ଗ୍ରା. ଅବ୍ୟ) ସମ୍ବୋଧନାର୍ଥ ଭୃତ୍ୟ ପ୍ରଭୁଙ୍କୁ ଉତ୍ତର ପ୍ରଦାନ କରିବାର ବ୍ୟବହୃତ ଓ ଭକ୍ତିସୂଚକ ସମ୍ବୋଧନ, ହଁ ମହାଶୟ ।
ଜୀଅନ୍ତ—ଗ୍ରା. ବିଂ. ଜୀଇଁଥିବା ।
ଜୀଅନ୍ତା—ଗ୍ରା. ବିଂ. ଜୀଇଁଥିବା ।
ଜୀଆଇବା—ଗ୍ରା.କ୍ରି. ବଞ୍ଚାଇବା, ଜୀବିତ କରିବା, ନିର୍ଜୀବ ବସ୍ତୁକୁ ଜୀବଦାନ କରିବା, ରକ୍ଷାକରିବା, କୌଣସି ଜୀବକୁ ପୋଷିବା, ରଖିବା, ପାଳିବା, ଜୀବିତ ରଖିବା ।
ଜୀଆଁ—ଗ୍ରା. ବିଂ. (ସଂ-ଜୀବିତ) ସଜୀବ, ଜୀବିତ, (ଗ୍ରା.ବି) ଜୀଇଁବା, ବଞ୍ଚିବା ।
ଜୀଆଁଇବା—ଗ୍ରା.କ୍ରି. ଜୀଆଇବା ଦେଖ ।
ଜୀଆଁଇରଖିବା—ଗ୍ରା.କ୍ରି. ମାଛଆଦି ପାଳି ଜୀଅନ୍ତା ରଖିବା ।
ଜୀଇଁଉଠିବା—ଗ୍ରା.ବ.(ମୃତବସ୍ତୁ ବା ବ୍ୟକ୍ତି ସଜୀବହେବା । [ ଥିବା ।
ଜୀଇଁରହିବା—ଗ୍ରା.କ୍ରି.ବଞ୍ଚିରହିବା, ଜୀବିତ

ଜୀଇଁବା—ଗ୍ରା. କ୍ରି. ବଞ୍ଚିରହିବା, ନ ମରିବା, ସଜୀବ ରହିବା ।
ଜୀଭ—ଗ୍ରା. ବ. ଜିହ୍ୱା, ଜିଭ, ଜୀ ଦେଖ ।
ଜୀଉଣିପନ୍ଥା—ଗ୍ରା. ବ. ( ସଂ-ଜୀବନ+ପନ୍ଥା) ଜୀବିକା, ଜୀବନୋପାୟ ।
ଜୀତ—ବିଂ. ଜୀନ ଦେଖ ।
ଜୀତକାମୀ—ଗ୍ରା. ବିଂ. ଜୟାଭିଳାଷୀ ।
ଜୀତଗଛ—ଗ୍ରା. ବ. ବାଦାମଗଛ ।
ଜୀତଲ—ଗ୍ରା. ବ. ଏକପ୍ରକାର ପ୍ରାଚୀନ ତାମ୍ରମୁଦ୍ରା ।
ଜୀତ—ସ୍ତ୍ରୀ. ବ. ଜୟ, ହାନି ।
ଜୀନ୍—ଯା. ବ. ଜିନ୍ ।
ଜୀନ—ବିଂ.(ଜ୍ୟା+କ.ତ)ଜୀର୍ଣ୍ଣ, ପ୍ରାଚୀନ, ବୃଦ୍ଧ, ସ୍ଥବିର ।
ଜୀମୂତ—ପୁଂ. ବ. ( ଜୀ+ମୂ+କ.ତ ) ପର୍ବତ, ମେଘ, ମୁଥା, ଦେବତାଡ଼-ବୃକ୍ଷ, ଇନ୍ଦ୍ର, ଭୃତିକର, ଜହ୍ନିଲତା, ଋଷିବିଶେଷ, ମଲ୍ଲବିଶେଷ, ଛନ୍ଦୋ-ବିଶେଷ, ଦଶାର୍ହଙ୍କ ପୌତ୍ର, ବପୁଷ୍ମତଙ୍କ ପୁତ୍ର । [ ଦେଖ ।
ଜୀମୂତକ—ପୁଂ. ବ. (ଜୀମୂତ + କ) ଜୀମୂତ
ଜୀମୂତକୂଟ—ପୁଂ.ବ.(୬ତତ୍)କ୍ଷୁଦ୍ରଶୈଳ, ପାହାଡ଼ ।
ଜୀମୂତକେତୁ—ପୁଂ. ବ. (ବ.ବ୍ରୀ) ଜୀମୂତ-ବାହନଙ୍କର ପିତା,ହିମାଳୟସ୍ଥ ବିଦ୍ୟା-ଧରମାନଙ୍କର ରାଜା ।
ଜୀମୂତମୂଳ—କ୍ଲୀ. ବ. ଶଠୀ, ଶୁଣ୍ଠି ।
ଜୀମୂତବାହନ—ପୁଂ.ବ. (ବ.ବ୍ରୀ)ମେଘ-ବାହନ ଇନ୍ଦ୍ର, ଜୀମୂତକେତୁଙ୍କ ପୁତ୍ର, ଶାଳିବାହନଙ୍କ ପୁତ୍ର ।
ଜୀମୂତବାହୀ—ପୁଂ. ବ. (ଜୀମୂତ+ବହ+ଇନ୍) ଧୂମ, ଇନ୍ଦ୍ର ।
ଜୀମୂତାଷ୍ଟମୀ-ବ.ଆଶ୍ୱିନମାସର କୃଷ୍ଣାଷ୍ଟମୀ ।
ଜୀର—ପୁଂ. ବ. ( ଜୃ+କ,ଅ ) ଜୀରକ, ଖଡ୍ଗ, ଅଣୁ, (ବିଂ) ଜବଶୀଳ, କ୍ଷିପ୍ର, ଶନ୍ଦୁର ବୟୋହାନିକର ।
ଜୀରକ—ପୁଂ. ବ. ସ୍ୱନାମପ୍ରସିଦ୍ଧ ମସଲ ବିଶେଷ, ଜୀରା ।
ଜୀରକାଦିମୋଦକ—ବ. ବୈଦ୍ୟକୋକ୍ତ

ମୋଦକ ଔଷଧବିଶେଷ ।
ଜୀରକାଦ୍ୟଚୂର୍ଣ୍ଣ—ବ. ଆୟୁର୍ବେଦୋକ୍ତ ଔଷଧବିଶେଷ ।
ଜୀରଣ—ପୁଂ. ବ. ଜୀରକ, ଜୀରା ।
ଜୀରଦାନୁ—ପୁଂ. ବିଂ. ( ଜୀର+ଦା+ନୁ) ଶୀଘ୍ରଦାନ, କ୍ଷିପ୍ରଦାତା ।
ଜୀରା—ଗ୍ରା. ବ. ଆସାମର ଗୋଟିଏ ଗ୍ରାମ, ଗୁଜରାଟର ଗୋଟିଏ ସହର, ଜୀରକ, ମସଲାବିଶେଷ । [ ବିଶେଷ ।
ଜୀରାଗୁଡ଼—କ୍ଲୀ.ବ. ବୈଦ୍ୟକୋକ୍ତ ଔଷଧ
ଜୀରାଧୂର—ବିଂ. ବଡ଼ ବା ବୃପଦରହିତ ।
ଜୀରାମରିଚ—ଗ୍ରା. ବ. (ସହଚର) ଏକତ୍ର ବଟା ହୋଇ ବା ଗୁଣ୍ଡ ହୋଇ ତିଅଣକୁ ସୁଗନ୍ଧ ଓ ସୁସ୍ୱାଦୁବିଶିଷ୍ଟ କରିବା ପାଇଁ ବ୍ୟବହୃତ ଜୀରା ଓ ମରିଚ ।
ଜୀରାରୁ ଶିରାକାଢ଼ିବା—ଗ୍ରା. କ୍ରି. କୌଣସି କଥାରୁ ଅତି ସାମାନ୍ୟ କଥା ବାହାର କରି ତାକୁ ବଡ଼ ବୋଲି ଗଣନା କରିବା ।
ଜୀରି—ପୁଂ. ବ. (ଜୃ+ରି)ମନୁଷ୍ୟ,(ବିଂ) ଜାରକ, ଅଭିଭାବକ ।
ଜୀରିକା—ସ୍ତ୍ରୀ. ବ. ବଂଶପତ୍ରୀତୃଣ, ବାଉଁଶ-ପତ୍ରର ଘାସ ।
ଜୀର୍ଣ୍ଣ—ପୁଂ. ବିଂ. ( ଜୃ+କ.ତ ) ବୃଦ୍ଧ, ପ୍ରାଚୀନ, ପୁରାତନ, ଜର୍ଜରିତ, କ୍ଷୟ-ପ୍ରାପ୍ତ, ଶୀର୍ଣ୍ଣ, କ୍ଷୀଣ, ଜାରିତ, ଯାହା ପରିପାକ ହୋଇଅଛି,ଅକାର୍ପଣ୍ୟ(ମି.ତ) ପରିପକ୍ୱ, (ବି) ଜୀରା, ଜୀରକ ।
ଜୀର୍ଣ୍ଣକ—ବିଂ. ଜୀର୍ଣ୍ଣପ୍ରକାର ।
ଜୀର୍ଣ୍ଣକରିବା—ଗ୍ରା. କ୍ରି. ହଜମକରିବା, (ଲ.ଅର୍ଥ) ଖରଚକରିବା, ଆତ୍ମସାତ୍ କରିବା ।
ଜୀର୍ଣ୍ଣଜ୍ୱର—ବ. ପୁରାତନ ଜ୍ୱର,ଦିନ ୨୧ରୁ ଅଧିକ ହୋଇଥିବା ଜ୍ୱର ।
ଜୀର୍ଣ୍ଣଜ୍ୱରାଙ୍କୁଶରସ—ପୁଂ. ବ. ବୈଦ୍ୟ-କୋକ୍ତ ଔଷଧବିଶେଷ ।
ଜୀର୍ଣ୍ଣତା—ସ୍ତ୍ରୀ. ବ. ( ଜୀର୍ଣ୍ଣ+ଭା.ତା ) ପରିପାକ, ଜରା, ବାର୍ଦ୍ଧକ୍ୟ, ପୁରୁଣା ଯୋଗୁଁ ବସ୍ତୁର କ୍ଷୟପ୍ରାପ୍ତ ଅବସ୍ଥା ।
ଜୀର୍ଣ୍ଣଦାରୁ—ପୁଂ. ବ. ବୃଦ୍ଧଦାରକବୃକ୍ଷ,

ବଧାଗ୍ର ।

ଜୀର୍ଣ୍ଣଦେହ—ପୁଂ. ବିଂ. (ବ.ଗ୍ରୀ) ବୃଦ୍ଧ ଶରୀର, ଅତି ବୁଢ଼ା, (କ.ଧା,ବ) ଜୀର୍ଣ୍ଣ ଶରୀର, ବୃଦ୍ଧବ୍ୟକ୍ତି ।

ଜୀର୍ଣ୍ଣପତ୍ର—କ୍ଲୀ. ବ. (କ.ଧା) ପୁରୁଣା ବା ପାଚିଲା ପତ୍ର, (ବିଂ. ବ.ଗ୍ରୀ) ପୁରାତନ ପତ୍ରବିଶିଷ୍ଟ, (ପୁଂ.ବ) କଦମ୍ବ, ପଠିକାଲୋଧ୍ର । [ ତୃଣ ।

ଜୀର୍ଣ୍ଣପତ୍ରିକା—ସ୍ତ୍ରୀ.ବ. (ବ.ଗ୍ରୀ)ବଂଶପତ୍ରୀ-

ଜୀର୍ଣ୍ଣପର୍ଣ୍ଣ—ପୁଂ. ବ. (ବ.ଗ୍ରୀ) କଦମ୍ବ, (କ୍ଲୀ.ବ) ପୁରାତନ ପତ୍ର, ପାଚିଲା ପତ୍ର, (ବିଂ) ଜୀର୍ଣ୍ଣପତ୍ରବିଶିଷ୍ଟ ।

ଜୀର୍ଣ୍ଣପଞ୍ଜି—ସ୍ତ୍ରୀ.ବ. ବୃଦ୍ଧଦାରକ ବୃକ୍ଷ ।

ଜୀର୍ଣ୍ଣବଜ୍ର—କ୍ଲୀ. ବ. ବୈକ୍ରାନ୍ତମଣି ।

ଜୀର୍ଣ୍ଣବଟିକା—ବ.ଖାଦ୍ୟର ଜୀର୍ଣ୍ଣକାରକ ବଡ଼ି ।

ଜୀର୍ଣ୍ଣବସ୍ତ୍ର—କ୍ଲୀ.ବ.(କ.ଧା)ପୁରୁଣା ଚିରୁ-ଲୁଗା, ଦରକା, (ବିଂ.ବ.ଗ୍ରୀ) ଯାହାର ଲୁଗା ଚିରା ଓ ପୁରୁଣା ।

ଜୀର୍ଣ୍ଣବାଟିକା—ବ.(କ.ଧା)ପୁରୁଣାଭଙ୍ଗା-ଘର, ପୁରୁଣା ଓ ଖଣ୍ଡିଆ ଘର ।

ଜୀର୍ଣ୍ଣବୁଧ୍ନ—ପୁଂ. ବ. ପଠିକାଲୋଧ୍ର ।

ଜୀର୍ଣ୍ଣବୁଧ୍ନକ—କ୍ଲୀ. ବ. ପଠିକାଲୋଧ୍ର, ନାଗରମୁଥା ।

ଜୀର୍ଣ୍ଣଶୀର୍ଣ୍ଣ—ବିଂ. ପୁରୁଣା, ପୁରୁଣା ଓ କ୍ଷୟପ୍ରାପ୍ତ ।

ଜୀର୍ଣ୍ଣଶୂଳ—ବ. ଖାଦ୍ୟ ଜୀର୍ଣ୍ଣହେବା ସମୟରେ ପେଟମାରିବା ରୋଗ, ପରିଣାମ ଶୂଳ ।

ଜୀର୍ଣ୍ଣସଂସ୍କାର—ପୁଂ. ବ. (୬ତତ୍) ପୁନର୍ନବୀକରଣ, ପୁରୁଣା ଓ ଭଙ୍ଗାବସ୍ତୁର ମରାମତି । [ ଅଛି ।

ଜୀର୍ଣ୍ଣସଂସ୍କୃତ--ବିଂ.ଯାହା ମରାମତି ହୋଇ-

ଜୀର୍ଣ୍ଣା—ସ୍ତ୍ରୀ.ବିଂ.(ଜୀର୍ଣ୍ଣ + ଆ) ପ୍ରାଚୀନା, ବୃଦ୍ଧା, ପୁରାତନୀ, (ବ) ମୋଟାଜୀରା ।

ଜୀର୍ଣ୍ଣାସ୍ଥିମୃତ୍ତିକା—ସ୍ତ୍ରୀ.ବ.ଯେଉଁ ମାଟିରେ ହାଡ଼ଗୁଣ୍ଡା ମିଶି ସଢ଼ିଅଛି, କୃତ୍ରିମ ମୃତ୍ତିକାବିଶେଷ ।

ଜୀର୍ଣ୍ଣି—ସ୍ତ୍ରୀ.ବ.(ଜୃ+ତି) ଜୀର୍ଣ୍ଣତା, ଜରା, ବାର୍ଦ୍ଧକ୍ୟ, କ୍ଷୀଣତା, ପରିପାକ ।

ଜୀର୍ଣ୍ଣୋଦ୍ଧାର—ବ. (ଜୀର୍ଣ୍ଣ+ଉଦ୍ଧାର) ୬ତତ୍; ଜୀର୍ଣ୍ଣସଂସ୍କାର, ପୁରୁଣା ଜିନିଷର ମରାମତି ।

ଜୀର୍ଣ୍ଣୋଦ୍ଧୃତ--ବିଂ.ମରାମତିକରାଯାଇଥିବା

ଜୀବ—ବ. (ଜୀବ୍+କ.ଅ)ଜନ୍ତୁ, ପ୍ରାଣୀ, ପ୍ରାଣବାୟୁ, (ଷ୍ଣ.ଅ) ଜୀବନ, ପ୍ରାଣ, ବୈଦିକମରୁତ୍ ଦେବତାମାନଙ୍କ ମଧ୍ୟରୁ ଏକତମ, ଜୀବାତ୍ମା, ଚୈତନ୍ୟ, ପ୍ରବୃତ୍ତି, ଇଚ୍ଛା, ପେଷା,ପୁଷ୍ୟାନକ୍ଷତ୍ର,ଜୀବଦଶା, ଆୟୁ, ବଷ୍ଟ୍ର, ବୃହସ୍ପତି, କାର୍ଯ୍ୟକାରଣ ସମ୍ବନ୍ଧ, (ବିଂ) ଜୀବିତ ।

ଜୀବଂଜୀବ—ବ. ଯେ ଦୀର୍ଘକାଳ ବଞ୍ଚେ, ଚକୋରପକ୍ଷୀ ।

ଜୀବକ—ପୁଂ. ବ. ( ଜୀବ+କ. ଅକ ) ଆଶୀର୍ବାଦକାରୀ ବ୍ୟକ୍ତି, ବୃଦ୍ଧଦେବଙ୍କ ଚିକିତ୍ସକ ଓ ଆତ୍ରେୟ ମୁନିଙ୍କ ଶିଷ୍ୟ, ଜୀବକ ଅଷ୍ଟବର୍ଗାନ୍ତର୍ଗତ ଔଷଧବିଶେଷ, ଦୀର୍ଘଜୀବୀ ବ୍ୟକ୍ତି, ଆହିତୁଣ୍ଡିକ, ସାପୁଆ, ପୀତଶାଳ ବୃକ୍ଷ, କ୍ଷପଣକ, ( ବିଂ ) ପ୍ରାଣଧାରକ, ସେବକ, ଭୃତ୍ୟ, ବୃଦ୍ଧିଜୀବୀ, ସୁଧଖୋର ।

ଜୀବକଣା—ବ. ରକ୍ତରେ ଥିବା ଜୀବାଣୁ ।

ଜୀବକୁଳ—ବ. ଜୀବଲୋକ ଦେଖ ।

ଜୀବଗୋସ୍ୱାମୀ—ପୁଂ. ବ. ଗୌଡ଼ୀୟ ବୈଷ୍ଣବ ସମ୍ପ୍ରଦାୟର ଷଡ଼ ଗୋସ୍ୱାମୀ ମଧ୍ୟରୁ ଏକତମ ।

ଜୀବଗୃଭ—(ବୈଦିକ) ଜୀବନ୍ତେ ଗ୍ରହଣ ।

ଜୀବଗୃହ—(୬ତତ୍) ଦେହ, ଶରୀର ।

ଜୀବଗ୍ରାହ—ପୁଂ. ବିଂ. ବନ୍ଦୀ ।

ଜୀବଘନ—ପୁଂ. ବ. ହିରଣ୍ୟଗର୍ଭ,ବ୍ରହ୍ମା ।

ଜୀବଘୋଷସ୍ୱାମୀ—ପୁଂ.ବ. ଜଣେ ସଂସ୍କୃତ ବୈୟାକରଣ ।

ଜୀବଚ୍ଛଡ଼ିବା—ଗ୍ରା. କ୍ରି. ମରିବା, ଜୀବନଶକ୍ତିଲୋପହେବା ।

ଜୀବଜ—ବିଂ. ( ଜୀବ + ଜନ + କ.ଅ ) ଜୀବଜାତ, ଜୀଅନ୍ତା, ଜୀଅନ୍ତା ଜନ୍ମିଥିବା (ଶିଶୁ) । [ ଦେଖ ।

ଜୀବଜଗତ୍—ବ. (୬ତତ୍) ଜୀବଲୋକ

ଜୀବଜନ୍ତୁ—ଗ୍ରା. ବ. ବିବିଧଜୀବ, ପ୍ରାଣୀସମୂହ, ସାଧାରଣ ପ୍ରାଣୀ ।

ଜୀବଜୀବ—ପୁଂ. ବ. ଜୀବଞ୍ଜୀବ, ଚକୋର ପକ୍ଷୀ ।

ଜୀବଜୀବକ—ପୁଂ. ବ. ଚକୋର ପକ୍ଷୀ ।

ଜୀବତ୍ —ବିଂ. ( ଜୀବ+କ. ଅତ୍ ) ବଞ୍ଚିଥିବା, ଜୀଅନ୍ତା ।

ଜୀବତ୍ପତି—ସ୍ତ୍ରୀ. ବିଂ. ସଧବା, ଯେଉଁ ସ୍ତ୍ରୀର ପତି ଜୀବିତ ଅଛି, ଅହ୍ୟ ।

ଜୀବତ୍ପତ୍ନୀ—ସ୍ତ୍ରୀ. ବିଂ. (ଜୀବତ୍+ପତି ସ୍ତ୍ରୀ.ଈ) ଜୀବତ୍ପତି ଦେଖ ।

ଜୀବତ୍ପତ୍ନୀକ—ପୁଂ. ବିଂ. ( ବ.ଗ୍ରୀ ) ଯାହାର ସ୍ତ୍ରୀ ଜୀବିତା ।

ଜୀବତ୍ପିତର—ବିଂ. ( ବ.ଗ୍ରୀ ) ଯାହାର ପିତା ଜୀବିତ ।

ଜୀବତ୍ପିତୃକ—ପୁଂ.ବିଂ. ଯାହାର ପିତା ଜୀବିତ ଅଛନ୍ତି ।

ଜୀବତ୍ପୁତ୍ରିକା—ସ୍ତ୍ରୀ.ବିଂ.(ବ.ଗ୍ରୀ) ଯାହାର ପୁତ୍ର ଜୀବିତ ଅଛି ।

ଜୀବତ୍ମାନ୍--ଗ୍ରା.ବିଂ. ଜୀବିତ,ବର୍ତ୍ତମାନ ।

ଜୀବତତ୍ତ୍ୱ—କ୍ଲୀ. ବ. ( ୬ତତ୍ ) ପ୍ରାଣୀବିଜ୍ଞାନ,ଯହିଁରେ ଜୀବମାନଙ୍କର ଜାତି-ସ୍ୱଭାବଇନ୍ଦ୍ରିୟାଦିପ୍ରଭୃତି ବର୍ଣ୍ଣିତ ଅଛି ।

ଜୀବତୋକା—ସ୍ତ୍ରୀ.ବିଂ. (ଜୀବିତ+ତୋକ +ଆ) ଯେଉଁ ସ୍ତ୍ରୀର ସନ୍ତାନମାନେ ଜୀବିତ ଅଛନ୍ତି । [ ଦେଖ ।

ଜୀବତ୍ତୋକା—ସ୍ତ୍ରୀ. ବିଂ. ଜୀବତୋକା

ଜୀବତ୍ୟାଗ—ବ. (୬ତତ୍) ମୃତ୍ୟୁ ।

ଜୀବତ୍ୱ—କ୍ଲୀ.ବ. ଜୀବର ଭାବ ବା ଧର୍ମ ।

ଜୀବଥ—ପୁଂ. ବ. ( ଜୀବ+କ,ଅଥ ) ଜୀବନ, କଚ୍ଛପ, କଇଁଛ, ମୟୂର, ମେଘ, ଧର୍ମ, ପୁଣ୍ୟ, ( ବିଂ. ) ଧାର୍ମିକ, ଦୀର୍ଘଜୀବୀ, ଦୀର୍ଘାୟୁଃ ।

ଜୀବଦ—ପୁଂ. ବ. (ଜୀବ+ଦା + କ,ଅ) ବୈଦ୍ୟ, ଜୀବକବୃକ୍ଷ, ଜୀବନ୍ତୀବୃକ୍ଷ, (ଜୀବ+ଦୋ+କ.ଅ) ଶତ୍ରୁ, (ବିଂ) ଯେ ଜୀବଦାନ କରେ, ଯେ ବଞ୍ଚାଏ, ଜୀବନଦାତା ।

ଜୀବଦା—ସ୍ତ୍ରୀ. ବ. ଜୀବନ୍ତୀବୃକ୍ଷ ।

ଜୀବଦାତା—ପୁଂ. ବ୍ୟଂ. ( ଜୀବ+ଦା+କ.ତୃ )ଜୀବଦାୟୀ,ଜୀବକ ଦେଖ, (ସ୍ତ୍ରୀ) ଜୀବଦାତ୍ରୀ ।

ଜୀବଦାତ୍ରୀ—ସ୍ତ୍ରୀ.ବ. ଋଦ୍ଧିନାମକ ଔଷଧ, ଜୀବନ୍ତୀବୃକ୍ଷ ।

ଜୀବଦାନ—କ୍ଲୀ.ବ.(୬ତତ୍ପୁ) ପ୍ରାଣଦାନ, ଜୀବନ୍ୟାସ, ଜୀବକୁ ମୃତ୍ୟୁ ମୁଖରୁ ରକ୍ଷାକରିବା ।

ଜୀବଦାନୁ—ବ୍ୟଂ. ଜୀବକୁ ଯେ ଧାରଣ କରେ ।

ଜୀବଦୃଷ୍ଟା—ସ୍ତ୍ରୀ. ବ. ଜୀବନ୍ତୀବୃକ୍ଷ ।

ଜୀବଦଶା—ସ୍ତ୍ରୀ. ବ. (୬ତତ୍ପୁ) ଜୀବନକାଳ, ଅମଳ, ପ୍ରାଣଥିବା ପର୍ଯ୍ୟନ୍ତ ।

ଜୀବଧନ—କ୍ଲୀ.ବ. ଜୀବରୂପ ଧନ, ଧନ ବା ସମ୍ପତ୍ତିରୂପେ କୌଣସି ବ୍ୟକ୍ତିର ଥିବା ଗୋମେଷାଦି ପ୍ରାଣୀ, ପ୍ରାଣଧନ, ଆପଣା ପ୍ରାଣର ସଙ୍ଗାଳ,ପ୍ରିୟତମ ବ୍ୟକ୍ତି ।

ଜୀବଧବ—ବ. (ଜୀବ+ଧବ) ୬ତତ୍ପୁ; ଜନ୍ତୁଗଣ, ଯମ ।

ଜୀବଧବପୁର—ବ. ୬ତତ୍ପୁ; ଯମପୁର ।

ଜୀବଧାନୀ—ସ୍ତ୍ରୀ. ବ. ( ଜୀବ+ଧା+ଅନ+ଇ ) ସର୍ବଜୀବର ଆଧାର ରୂପା ପୃଥିବୀ ।

ଜୀବଧାରୀ—ବ. (ଜୀବ+ଧୃ+କ.ଇନ୍) ପ୍ରାଣୀ ।

ଜୀବନ—କ୍ଲୀ.ବ.(ଜୀବ+ଭା.ଅନ)ପ୍ରାଣ, ଜୀବିତାବସ୍ଥା, ପେଶା, ବୃତ୍ତି, ପ୍ରାଣୀ, (ଣ.ଅନ) ଜୀବାତ୍ମା, ବାୟୁ, ପ୍ରାଣବାୟୁ, ମଜ୍ଜା, ଜଳ, ପ୍ରାଣର ସଙ୍ଗାଳ, ହୃଦୟଙ୍ଗମ, ସଦ୍ୟୋଜାତ ଘୃତ, ( କ.ଅନ ) ପୁତ୍ର, ପରମେଶ୍ୱର,ଜୀବକ, ଗଙ୍ଗାନଦୀ, (ବ୍ୟଂ) ପୋଷଣକର୍ତ୍ତା, ଜୀବଦାତା, ଜୀବାଧିଷ୍ଠାତା ।

ଜୀବନ ଉତ୍ସର୍ଗକରିବା—ଗ୍ରା.କ୍ରି.କୌଣସି କାର୍ଯ୍ୟ ବା ବ୍ୟକ୍ତି ନିମନ୍ତେ ଆପଣାର ପ୍ରାଣକୁ ପାଣି ଛଡ଼ାଇବା ।

ଜୀବନ ଉପରେ ପଡ଼ିବା—ଗ୍ରା. ବ. ପ୍ରାଣାନ୍ତକ ସଙ୍କଟାପନ୍ନ ହେବା ଅବସ୍ଥା ।

ଜୀବନକ—କ୍ଲୀ. ବ. (ଜୀବନ+କ)ଅନ୍ନ, ହରୀତକୀ, ହରଡ଼ା ।

ଜୀବନଚରିତ—ବ. (୬ତତ୍ପୁ) କୌଣସି ବ୍ୟକ୍ତିର ଜୀବିତ କାଳରେ ଘଟିବା ବିଷୟମାନଙ୍କ ବିବରଣ ବା ବର୍ଣ୍ଣନା ।

ଜୀବନ ଛାଡ଼ିବା—ଗ୍ରା.କ୍ରି. ଓ ବ୍ୟଂ. ଜୀବଛାଡ଼ିବା, ମରିବା, ଜୀବନୀଶକ୍ତି ଲୋପ ହେବା ।

ଜୀବନଜ—ବ. (୫ତତ୍ପୁ) (ଜୀବନ+ଜନ+କ.ଅ) ପଦ୍ମ, ଜଳଜ ।

ଜୀବନତରଙ୍ଗ—ବ.(୬ତତ୍ପୁ)ଜଳତରଙ୍ଗ, (ରୂପକ.କ.ଧା)ତରଙ୍ଗପରି ଦୋଳାୟମାନ ପ୍ରାଣ ।

ଜୀବନଦ—ପୁଂ. ବ୍ୟଂ. (ଜୀବନ+ଦା+କ.ଅ) ଜୀବନଦାତା, ଯେ ପ୍ରାଣଦିଏ, ଜଳଦାତା, ବର୍ଷା କରୁଥିବା, ବର୍ଷୁଥିବା ।

ଜୀବନଦେବା—ଗ୍ରା. କ୍ରି. ମରିବା, ଅନ୍ୟପାଇଁ ପ୍ରାଣହାରିବା ।

ଜୀବନଧନ—ବ. (ରୂପକ କ.ଧା) ଜୀବଧନ ଦେଖ ।

ଜୀବନଧରିବା—ଗ୍ରା. କ୍ରି. ବଞ୍ଚିବା ।

ଜୀବନଧର୍ମ—ବ. ( ୬ତତ୍ପୁ ) ଜୀଅନ୍ତା ପ୍ରାଣୀର ସ୍ୱାଭାବିକ କର୍ମ ।

ଜୀବନଧାରଣ—ବ.(୬ତତ୍ପୁ) ପ୍ରାଣଧାରଣ, ବଞ୍ଚିରହିବା ।

ଜୀବନପଶିବା—ଗ୍ରା. ବ. ଦେହରେ ପ୍ରାଣବାୟୁ ସଞ୍ଚରିବା ।

ଜୀବନବାହାରଯିବା—ଗ୍ରା. ବ. ଜୀବନଯିବା ଦେଖ ।

ଜୀବନବିକିବା—ଗ୍ରା. କ୍ରି. ନିଜର ପ୍ରାଣକୁ (ଅନ୍ୟବ୍ୟକ୍ତି ଠାରେ) ସମର୍ପଣ କରିବା, ଦାସତ୍ୱ ସ୍ୱୀକାର କରିବା ।

ଜୀବନବୃତ୍ତ—ବ.(୬ତତ୍ପୁ)ଜୀବନଚରିତ, ଜୀବନୀ । [ ପେଷା ।

ଜୀବନବୃତ୍ତି—ବ. ( ୬ତତ୍ପୁ ) ଜୀବିକା,

ଜୀବନମରଣ—ବ. ଜୀଇଁବା ଓ ମରିବା ।

ଜୀବନମରଣସମସ୍ୟା—ବ. ଜୀବନ ରହିବ କି ଯିବ ଏହିପରି ସଙ୍କଟ ।

ଜୀବନମୁକ୍ତ—ଗ୍ରା. (ପଦ୍ୟ) ବ୍ୟଂ. ଜୀବନ୍ମୁକ୍ତ ଦେଖ ।

ଜୀବନମୂର୍ଚ୍ଛା—ଗ୍ରା. ବ. ଜୀବନତ୍ୟାଗ, ପ୍ରାଣଛାଡ଼ିବା, (ବ୍ୟଂ) ଯେଉଁ କାର୍ଯ୍ୟରେ ଜୀବନ ସଙ୍କଟ ଥାଏ, ଯହିଁରେ ପ୍ରାଣ ସଙ୍କଟାପନ୍ନ ହୁଏ ।

ଜୀବନଯିବା—ଗ୍ରା. ବ. ମରିବା, ପ୍ରାଣାନ୍ତକ କଲବଲ ହେବା, ମୁମୂର୍ଷୁ ଅବସ୍ଥା ।

ଜୀବନଯୋନି—ବ. ଦେହରେ ପ୍ରାଣ ସଞ୍ଚାରଣ କାରଣ, ସଞ୍ଜୀବନ ମନ୍ତ୍ର ।

ଜୀବନଶଙ୍ଗାଳ—ଗ୍ରା. ବ. ଜୀବଧନ, ପ୍ରିୟତମ ବ୍ୟକ୍ତି ।

ଜୀବନନଷ୍ଟି—ଗ୍ରା. ବ. ମୃତ୍ୟୁ, ପ୍ରାଣିକ୍ଷୟ ।

ଜୀବନସଙ୍ଗିନୀ—ସ୍ତ୍ରୀ. ବ. (୬ତତ୍ପୁ) ସମଗ୍ର ଜୀବିତକାଳର ସହଚରୀ, ସହଧର୍ମିଣୀ ।

ଜୀବନସଙ୍ଗୀ—ପୁଂ. ବ. (୬ତତ୍ପୁ) ସ୍ୱାମୀ, ପ୍ରିୟତମବ୍ୟକ୍ତି ।

ଜୀବନସାଧନ—କ୍ଲୀ. ବ. (୬ତତ୍ପୁ) ଜୀବନର ହେତୁ, ଶସ୍ୟ, ଜୀବନଧାରଣର ଉପାୟ ।

ଜୀବନସ୍ପୃହା—ସ୍ତ୍ରୀ. ବ. ଜୀବନର ଇଚ୍ଛା, ବଞ୍ଚିବାର ଇଚ୍ଛା ।

ଜୀବନହାରିବା—ଗ୍ରା. କ୍ରି. ମରିବା, ପ୍ରାଣ ବିସର୍ଜନ କରିବା ।

ଜୀବନହେତୁ—ପୁଂ. ବ. ଜୀବନରକ୍ଷାର ଉପାୟ, ଜୀବନସାଧନ, ବିଦ୍ୟା, ଶିଳ୍ପ-ଭୃତି ସେବା, ଗୋରକ୍ଷା, ବିପଣି, କୃଷି, ବୃତ୍ତି, ଭିକ୍ଷା, କୁଶୀଦ, ଏହି ଦଶବିଧ ଜୀବନୋପାୟ ।

ଜୀବନା—ସ୍ତ୍ରୀ. ବ. ( ଜୀବନ+ଆ ) ମହୌଷଧ, ଜୀବନ୍ତୀ ବୃକ୍ଷ ।

ଜୀବନାଘାତ—କ୍ଲୀ. ବ. (୬ତତ୍ପୁ) ବିଷ ।

ଜୀବନାଥ—ଗ୍ରା. ପୁଂ. ବ. ଅଲଂକାର ଶେଖର ପ୍ରଣେତା, କେତେଖଣ୍ଡ ଚିକିତ୍ସା ଗ୍ରନ୍ଥ ରଚୟିତା, ଛନ୍ଦୋଦୟପ୍ରଣେତା ।

ଜୀବନାନ୍ତ—ବ. ( ଜୀବନ+ଅନ୍ତ ) ୬ତତ୍ପୁ; ମୃତ୍ୟୁ, ଜୀବନକାଳର ଶେଷ ।

ଜୀବନାବଧି—ଗ୍ରା. କ୍ରି. ବ୍ୟଂ. ଜନ୍ମସମୟରୁ, ଜନ୍ମାବଧି, ମରଣପର୍ଯ୍ୟନ୍ତ ।

ଜୀବନାବାସ—ପୁଂ. ବ. (ବ.ବ୍ରୀ)ବରୁଣ,

(୬ତତ୍) ଜୀବନାସ୍ପୃତନ, ଦେଖ(ବଂ) ଜଳବାସୀ ।

ଜୀବନାଶ—ପୁଂ.ବ.(୬ତତ୍)ପ୍ରାଣସଂହାର, ପ୍ରାଣିଧ୍ୱଂସ, ମୃତ୍ୟୁ, (ବଂ) (ଜୀବନ+ଅଣ+କ.ଅ) ସଂଘାତକ, ପ୍ରାଣନାଶକ, (ଜୀବନ+ଆଶ) ବ.ବ୍ରୀ; ଯାହାର ବଞ୍ଚିବାରେ ଆଶା ଅଛି,ଜୀବନାଶାସମ୍ପନ୍ନ ।

ଜୀବନନ୍ଦା—ସ୍ତ୍ରୀ. ବ. ହରିତକୀ,ହରଡ଼ା ।

ଜୀବନୀ—ସ୍ତ୍ରୀ. ବଂ. (ଜୀବ+ଣି.ଅନ+ଈ) ଆୟୁବୃଦ୍ଧି କାରକ, ପ୍ରାଣଦା, ଯାହା ଜୀବନଦାନକରେ, (ବ) ଜୀବନ୍ତୀବୃକ୍ଷ, ମହାମେଦା, ମେଦା, କାକୋଲି, (ଗ୍ରା.ବ) ଜୀବନଚରିତ, ଜୀବିକା ।

ଜୀବନୀୟ—କ୍ଲୀ. ବ. (ଜୀବନ+ଈୟ) ଜଳ, (ସ୍ତ୍ରୀ) ଜୀବନ୍ତୀବୃକ୍ଷ, ଉପଜୀବ୍ୟ, ଜୀବନଧାରଣର ଉପାୟ, (ବଂ) ଯାହା ପ୍ରାଣଧାରଣନିମନ୍ତେ ପ୍ରୟୋଜନୀୟ,ଆୟୁର୍ବୃଦ୍ଧିକର ।

ଜୀବନୀୟଗଣ—ପୁଂ. ବ. ମେଦା, ମହାମେଦାପ୍ରଭୃତି ଜୀବନୀୟଅଷ୍ଟବର୍ଗ ଔଷଧ ବିଶେଷ ।

ଜୀବନୀୟା—ସ୍ତ୍ରୀ. ବ. ଜୀବନ୍ତୀବୃକ୍ଷ ।

ଜୀବନୀଶକ୍ତି—ସ୍ତ୍ରୀ. ବ. ଯେଉଁଶକ୍ତିଦ୍ୱାରା ଜୀବମାନେ ବଞ୍ଚିରହନ୍ତି, ପ୍ରାଣ ।

ଜୀବନେଣୀ—ସ୍ତ୍ରୀ. ବ. ସୈଂହଳୀବୃକ୍ଷ, ଏକପ୍ରକାର ପିପ୍ପଳୀଗଛ ।

ଜୀବନୋପାୟ—ପୁଂ. ବ. (୬ତତ୍) ଜୀବନ ରକ୍ଷାର ଉପାୟ, ଜୀବିକା, ଜୀବନୌଷଧି ।

ଜୀବନୌଷଧ—କ୍ଲୀ. ବ.(୬ତତ୍)ଔଷଧବିଶେଷ, ଯେଉଁ ଔଷଧଦ୍ୱାରା ମୃତପ୍ରାଣୀ ଜୀଏ ।

ଜୀବନ୍ତ—ପୁଂ.ବ.ଔଷଧ,ପ୍ରାଣ,ଜୀବଶାକ, (ବଂ) ବଞ୍ଚିଥିବା, ସଜୀବ (କ୍ରି. ବଂ) ସଜୀବଅବସ୍ଥାରେ ।

ଜୀବନ୍ତା—ଗ୍ରା. ବଂ. ଜୀବନ୍ତ(ଦେଖ) ।

ଜୀବନ୍ତି—କ୍ରି. (ପ୍ରା-ପଦ୍ୟ) ସଂ-ଜୀବଧାତୁ ନିତ୍ୟ ବର୍ତ୍ତମାନକାଳ ପ୍ରଥମପୁରୁଷ ବହୁବଚନର କ୍ରିୟା, ଯଥା(ସେମାନେ) ଜୀବନଧାରଣ କରନ୍ତି ବା ଜୀଅନ୍ତି ।

ଜୀବନ୍ତକ—ପୁଂ. ବ. ଜୀବାନ୍ତକ ।

ଜୀବନ୍ତିକା—ସ୍ତ୍ରୀ. ବ. (ଜୀବନ୍ତୀ+କ+ଆ) ବୃକ୍ଷୋପରଜାତ ବୃକ୍ଷ, ମଲଙ୍ଗ, ନିର୍ମୂଳୀ, ଗୁଳୁଚି,ଜୀବଶାକ,ସୁନୁସୁନିଆ ଶାଗ, ହରିତକୀ, ହରଡ଼ା, ଶମୀ ।

ଜୀବନ୍ତୀ—ସ୍ତ୍ରୀ. ବ. ଶାକଲତାବିଶେଷ, ସୁରାଷ୍ଟ୍ରଦେଶଜ ହଳଦିଆ ହରଡ଼ା,ଶମୀ, ଗୁଡ଼ୁଚୀ, ମଲଙ୍ଗ, ନିର୍ମୂଳୀ, ଶର୍କରପର ମଧୁର ପୁଷ୍ପଲତା ।

ଜୀବନ୍ତ୍ୟାଦ୍ୟଘୃତ—କ୍ଲୀ.ବ.ଚକ୍ରଦତ୍ତୋକ୍ତ ପକ୍ୱଘୃତଭେଦ ।

ଜୀବନ୍ମୁକ୍ତ—ବଂ. (ଜୀବତ+ମୁକ୍ତ) ଜୀବଦ୍ଦଶାରେ ମୋକ୍ଷପ୍ରାପ୍ତ, ସଂସାରରେ ଥାଇ ମଧ୍ୟ ନିର୍ବିକାର ଓ ନିର୍ଲିପ୍ତ, ଆତ୍ମତତ୍ତ୍ୱଜ୍ଞ, ଜ୍ଞାନୀ ।

ଜୀବନ୍ମୁକ୍ତି—ସ୍ତ୍ରୀ. ବ. (୬ତତ୍) ତତ୍ତ୍ୱଜ୍ଞାନ ହେତୁରୁ ଜୀବଦ୍ଦଶାରେ ସଂସାର ମାୟାବନ୍ଧନରୁ ପରିତ୍ରାଣ ଲାଭ, ସଂସାରେ ଥାଇ ନିର୍ବିକାର ଓ ନିର୍ଲିପ୍ତ ଭାବ, ତପସ୍ୟାଦି ଦ୍ୱାରା ମୃତ୍ୟୁପରେ ପୁନର୍ଜନ୍ମ ନ ଲଭିବା ବିଷୟରେ ନିଶ୍ଚିନ୍ତତା ।

ଜୀବନ୍ମୃତ—ପୁଂ. ବଂ.(ଜୀବତ୍+ମୃତ) ଜୀବିତାବସ୍ଥାରେ ମୃତକଳ୍ପ, ଜୀଇଁ ଥାଉଁଥାଉଁ ମଲାପରି, ମୃତପ୍ରାୟ ।

ଜୀବନ୍ମୃତ୍ୟୁ—ବ.ଜୀବଦ୍ଦଶାରେ ମୃତ୍ୟୁତୁଲ୍ୟ ଅବସ୍ଥା,ଅତିଯନ୍ତ୍ରଣାମୟ ଜୀବନ ।

ଜୀବନ୍ୟାସ—ପୁଂ. ବ. (୬ତତ୍) ପ୍ରାଣ ପ୍ରତିଷ୍ଠାର ମନ୍ତ୍ର,ଯଦ୍ଦ୍ୱାରା ଦେହରୂପ ଗୃହରେ ପ୍ରାଣର ଅଧିଷ୍ଠାନ ହୁଏ ।

ଜୀବପତି—ସ୍ତ୍ରୀ. ବ ଓ ବଂ. (ବ.ବ୍ରୀ) ସଧବା, ଅହ୍ୟ, ଯେଉଁ ସ୍ତ୍ରୀର ସ୍ୱାମୀ ବଞ୍ଚି ଅଛି,(ପୁଂ. ବ. ୬ତତ୍) ଯମ ।

ଜୀବପତ୍ନୀ—ସ୍ତ୍ରୀ. ବଂ. ଜୀବତ୍ପତିକା, ସଧବା, ଅହ୍ୟ ।

ଜୀବପନ୍ଥିପ୍ରବୃତ୍ତିକା—ସ୍ତ୍ରୀ. ବଂ. ଉତ୍ତରର କ୍ରୀଡ଼ାବିଶେଷ ।

ଜୀବପନ୍ତୀ—ସ୍ତ୍ରୀ. ବ. ଜୀବନ୍ତୀ ।

ଜୀବପୁତ୍ରକ—ପୁଂ. ବ. ଇଙ୍ଗୁଦବୃକ୍ଷ, ପୋଇଗୁନ୍ଦିଆ ଗଛ ।

ଜୀବପୁତ୍ରଂକ—ପୁଂ. ବ. ଇଙ୍ଗୁଦବୃକ୍ଷ, ପୋଇଗୁନ୍ଦିଆଗଛ ।

ଜୀବପୁତ୍ରା—ସ୍ତ୍ରୀ. ବଂ.ଯେଉଁ ନାରୀର ପୁତ୍ର ଜୀବିତ ଅଛି ।

ଜୀବପୁଷ୍ପ—କ୍ଲୀ. ବ.ଜନ୍ତୁରୂପ ପୁଷ୍ପ ।

ଜୀବପୁଷ୍ପା—ସ୍ତ୍ରୀ. ବ. ବୃହଜ୍ଜୀବନ୍ତୀ ।

ଜୀବପ୍ରାଣ—ବ. (୬ତତ୍) ପ୍ରାଣୀମାନଙ୍କର ପ୍ରାଣସ୍ୱରୂପ ବାୟୁ ।

ଜୀବପ୍ରିୟା—ସ୍ତ୍ରୀ. ବ. ହରିତକୀ, ହରଡ଼ା, (ବଂ) ଜୀବବଲ୍ଲଭ ।

ଜୀବଭଦ୍ରା—ସ୍ତ୍ରୀ. ବ. ଜୀବନ୍ତୀଲତା, (କ୍ଲୀ. ବ) ଜୀବର କୁଶଳ ।

ଜୀବମନ୍ଦିର—କ୍ଲୀ. ବ. (୬ତତ୍) ଶରୀର, ଦେହ, ଆତ୍ମାରଆଧାର ।

ଜୀବମାତୃକା—ସ୍ତ୍ରୀ. ବ. (୬ତତ୍)ଜୀବର ମଙ୍ଗଳ ସାଧିକା ସପ୍ତମାତୃକାବିଶେଷ, ନାମ ଯଥା—କୁମାରୀ, ଧନଦା, ନନ୍ଦା, ବିମଳା, ମଙ୍ଗଳା,ବଳା,ପଦ୍ମା ।

ଜୀବଯାଜ—ପୁଂ. ବ. ପଶୁଦ୍ୱାରା ଯଜାନ ।

ଜୀବଯିବା—ଗ୍ରା.ବ. ପ୍ରାଣତ୍ୟାଗ, ମୁମୂର୍ଷୁ ଅବସ୍ଥା, ପ୍ରାଣବାୟୁ ବହିର୍ଗତ ହେବା ଅବସ୍ଥା ।

ଜୀବଯୋନି—ସ୍ତ୍ରୀ. ବ.ସଜୀବ ବସ୍ତୁ ।

ଜୀବରକାରଣ—ଗ୍ରା.ବ.ଜୀବ ବା ପ୍ରାଣର ମୋକ୍ଷ ବା ମୁକ୍ତି, ଜୀବର ମୋକ୍ଷଦାତା ।

ଜୀବରକ୍ତ—କ୍ଲୀ. ବ. ଗର୍ଭଧାରଣର ଉପଯୁକ୍ତ, (ସ୍ତ୍ରୀ) ରଜଃ ।

ଜୀବରତ୍ନ—କ୍ଲୀ. ବ. ପୁଷ୍ପରାଗ ।

ଜୀବରହସ୍ୟ—କ୍ଲୀ. ବ. (୬ତତ୍) ପ୍ରାଣିସମ୍ବନ୍ଧୀୟ ଗୋପନୀୟ ତତ୍ତ୍ୱ ।

ଜୀବରାଜଦୀକ୍ଷିତ—ଗ୍ରା.ପୁଂ.ବଂ. ଜନୈକ ସଙ୍ଗୀତ ଶାସ୍ତ୍ରକାର, ଲଘୁଚନ୍ଦ୍ରାଲଙ୍କାର ପ୍ରଣେତା ।

ଜୀବରାମ—ଗ୍ରା. ପୁଂ. ବ. ସାମଗ୍ରୀବାଦ-ପ୍ରଣେତା,ସ୍ୱସ୍ତିବାଚନପଦ୍ଧତି ପ୍ରଣେତା ।

ଜୀବଲା—ସ୍ତ୍ରୀ. ବ. ସୈଂହଳୀ, ସିଂହ-ପିପଳୀ ।

ଜୀବଲୋକ—ବ. (୬ତତ୍) ସଂସାର,

ପୃଥିବୀର ସୂକ୍ଷ୍ମପ୍ରାଣି ସମୂହ,ମର୍ତ୍ତ୍ୟଲୋକ, ସମୁଦାୟ ମନୁଷ୍ୟଜାତି, ଜୀବଯୋନି, ସଂସାରରେ ଜୀବରୂପେ ଜନ୍ମ ।
ଜୀବବଧ—ବି. ( ୬ତତ୍ ) ପ୍ରାଣିହତ୍ୟା, ପ୍ରାଣିହତ୍ୟାଜନିତ ପାପ ବା ଅପରାଧ ।
ଜୀବବନ୍ଧୁ—ବି.(୬ତତ୍)ପ୍ରାଣବନ୍ଧୁ,ଜୀବନ-ସଙ୍ଗୀ, ବନ୍ଧୁକ ପୁଷ୍ପ, ବନ୍ଧୁଳିଫୁଲ ।
ଜୀବବର୍ଗ—ପୁଂ. ବି. ଜୀବସମୂହ ।
ଜୀବବଳି—ବି. (୬ତତ୍) ଯଜ୍ଞାର୍ଥ ବା ଦେବତାଆଦିଙ୍କ ଉଦ୍ଦେଶ୍ୟରେ ଗୋ-ମେଷାଦି ଜୀବଙ୍କର ହତ୍ୟା ।
ଜୀବବଲ୍ଲୀ—ସ୍ତ୍ରୀ. ବି. କ୍ଷୀରକାକୋଲୀ ।
ଜୀବବସ୍ତୁ—ବି. ( ୬ତତ୍ ) ଜୀବର ସୂକ୍ଷ୍ମ ଅବସ୍ଥାର ରୂପ ।
ଜୀବବାଣୀବିଦ୍—ଗ୍ରା. ବିଂ. ଯେ ସକଳ ପ୍ରକାର ପ୍ରାଣୀମାନଙ୍କ ଭାଷା ଜାଣନ୍ତି ।
ଜୀବବାନ୍—ପୁଂ. ବିଂ. ( ଜୀବ+ବତ୍ ) ସଜୀବ । [ ପ୍ରଣେତା ।
ଜୀବବୃଦ୍ଧ—ପୁଂ. ବି. ଜୀବାନନ୍ଦ ନାଟକ
ଜୀବବୃତ୍ତି—ସ୍ତ୍ରୀ. ବି. (୬ତତ୍)ପଶୁପାଳନ ବ୍ୟବସାୟ,ଜୀବ ଦେହରେ ଥିବା ସ୍ୱାଭା-ବିକ ଗୁଣମାନ ।
ଜୀବସଙ୍ଘ—ପୁଂ. ବି. କୃମିସଙ୍ଘ ।
ଜୀବଶଂସ—ପୁଂ.ବି.ଜୀବକତ୍ରୀକ କାମନା ।
ଜୀବଶର୍ମ୍ମା—ପୁଂ. ବି. ଜଣେ ପ୍ରସିଦ୍ଧ ଜ୍ୟୋତିର୍ବିଦ୍ ।
ଜୀବଶାକ—ପୁଂ. ବି. ସୁନସୁନିଆ ଶାଗ, ମାଳବଦେଶପ୍ରସିଦ୍ଧ ଶାକବିଶେଷ ।
ଜୀବଶୁକ୍ଳା—ସ୍ତ୍ରୀ. ବି. ଜୀବହୃତକଣ୍ଠ ଶୁକ୍ଳବର୍ଣ୍ଣ ଲତା,କ୍ଷୀରକାକୋଲୀ ।
ଜୀବଶୂନ୍ୟ—ବିଂ. (୩ତତ୍) ପ୍ରାଣହୀନ, ମୃତ, ଜଡ଼, ନିର୍ଜୀବ, ଜୀବଜନ୍ତୁଶୂନ୍ୟ, ପ୍ରାଣିହୀନ ।
ଜୀବଶେଷ—ପୁଂ. ସ୍ତ୍ରୀ. ବିଂ. ମୁମୂର୍ଷୁ, ଯାହାର ଜୀବନମାତ୍ର ଅବଶିଷ୍ଟ ଅଛି ।
ଜୀବଶୋଣିତ—କ୍ଲୀ. ବି. ସ୍ତ୍ରୀମାନଙ୍କର ଆର୍ତ୍ତବ ଶୋଣିତ ।
ଜୀବଶ୍ରେଷ୍ଠା—ସ୍ତ୍ରୀ.ବି. ବୃଦ୍ଧି ନାମକ ଔଷଧ
ଜୀବସଂକ୍ରମଣ—କ୍ଲୀ.ବି.(୬ତତ୍)ଦେହା-ନ୍ତରପ୍ରାପ୍ତି, ଜନ୍ମାନ୍ତର ପରିଗ୍ରହ ।
ଜୀବସଙ୍କ୍ଷ—ପୁଂ. ବି. ( ବ.ବ୍ରୀ ) କାମ-ବୃଦ୍ଧିକର ଔଷଧ, କାମବୃଦ୍ଧି ବୃକ୍ଷ ।
ଜୀବସାଧନ—କ୍ଲୀ. ବି. (୬ତତ୍) ଧାନ୍ୟ, ଧାନ ।
ଜୀବସୁତା—ସ୍ତ୍ରୀ. ବିଂ. (ବ.ବ୍ରୀ) ଯାହାର ପୁତ୍ର ଜୀବିତ ଅଛି,ଜୀବପୁତ୍ରା ।
ଜୀବସୂ—ସ୍ତ୍ରୀ. ବି. ଯେଉଁ ନାରୀ ଜୀବନ୍ତ ସନ୍ତାନ ପ୍ରସବ କରେ, ଜୀବତୋକା ।
ଜୀବସ୍ଥାନ—କ୍ଲୀ. ବି. (୬ତତ୍) ମର୍ମସ୍ଥାନ, ହୃଦୟ, ପ୍ରାଣୀମାନଙ୍କର ବସତି ସ୍ଥଳ, ପୃଥିବୀ । [ ଦେଶ ।
ଜୀବହତ୍ୟା—ବି. (୬ତତ୍) ଜୀବବଧ
ଜୀବହିଂସା—ବି. ( ୬ତତ୍ ) ଜୀବବଧ, ପ୍ରାଣିମାନଙ୍କ ପ୍ରତି ନିଷ୍ଠୁର ବ୍ୟବହାର ।
ଜୀବହୀନ—ବିଂ. ( ୩ତତ୍ ) ପ୍ରାଣହୀନ, ମୃତ, ପ୍ରାଣିହୀନ, (ବି) ଷଡ଼କ୍ଷର ମନ୍ତ୍ର-ବିଶେଷ ।
ଜୀବା—ବି. ଧନୁର ଜ୍ୟା, ( ଜ୍ୟାମିତି ) ବୃତ୍ତର ଦୁଇମୁଣ୍ଡକୁ ଯୋଗ କରୁଥିବା ରେଖା, ଜୀବନ୍ତୀ, ବଚ୍, ଜୀବନ,ଭୂମି, ଜୀବନୋପାୟ ।
ଜୀବାଣୁ—ବି. (ଜୀବ+ଅଣୁ) ରୋଗବୀଜ, କ୍ଷୁଦ୍ରତମ ଜୀବର ସାରାଂଶ ।
ଜୀବାତୁ—ପୁଂ ଓ କ୍ଲୀ. ବି. (ଜୀବ+ଣ. ଆତୁ) ଭକ୍ତ, ଅନ୍ନ, ଜୀବନୌଷଧ, (ଭା.ଆତୁ) ଜୀବନ, ଜୀବିକା ।
ଜୀବାତୁମାନ୍—ପୁଂ. ବି. ଯଜ୍ଞକର ଯେଉଁ ଦେବତାଙ୍କ ନିକଟରେ ଆୟୁଷ୍କାମନା କରାହୁଏ, ଆୟୁଷ୍କାମ ଯଜ୍ଞର ଦେବତା-ବିଶେଷ ।
ଜୀବାତ୍ମା—ପୁଂ. ବି. ଦେହୀ, ଦେହସ୍ଥ ଆତ୍ମା, ଜୀବପୁରୁଷ, ପ୍ରାଣ, ସୁଖ ଦୁଃଖ-ଭୋକ୍ତା ।
ଜୀବାଧାନ—କ୍ଲୀ. ବି. (୬ତତ୍) ଶରୀର, ଦେହ, ପ୍ରାଣରକ୍ଷା, ପ୍ରାଣଧାରଣ ।
ଜୀବାଧାର—ପୁଂ. ବି. (୬ତତ୍) ହୃଦୟ, ଶରୀର, ଜଗତ୍, ବିଶ୍ୱବ୍ରହ୍ମାଣ୍ଡ, ଜୀବ-ଜଗତ୍ ।
ଜୀବାନ୍ତକ—ପୁଂ.ବି. (୬ତତ୍) ପ୍ରାଣଘାତୀ ଅସ୍ତ୍ର, ବ୍ୟାଧ, (ବିଂ) ପ୍ରାଣଘାତି, ପ୍ରାଣା-ନ୍ତକର, ଜୀବନାଶକ ।
ଜୀବାର୍ଦ୍ଧପିଣ୍ଡକ—ପୁଂ. ବି. ଚକ୍ରସ୍ଥିତ ରାଶିକଳାର ୧୮୦୦ ଭାଗରୁ ଅଷ୍ଟମଭାଗ ।
ଜୀବାଳା—ସ୍ତ୍ରୀ. ବି. ସୈହଳୀ, ପିପ୍ପଳୀ ।
ଜୀବାବଶେଷ—ବି. ( ୬ତତ୍ ) ଭୂଗର୍ଭରୁ ପ୍ରାପ୍ତ ବହୁକାଳପୂର୍ବେ ମୃତପ୍ରାଣୀର ଦେହାବଶେଷ, ପ୍ରସ୍ତରୀଭୂତ ବହୁକାଳ ପୂର୍ବର ଜୀବଦେହ, ଜୀବନମାତ୍ର ଅବଶିଷ୍ଟ ରହିବା ଅବସ୍ଥା, ପ୍ରାଣୀର ଆସନ୍ନ ମୃତ୍ୟୁ ଓ ଶେଷ ଅବସ୍ଥା ।
ଜୀବାସ୍ତିକାୟ—ପୁଂ.ବି. ଅର୍ହନ୍ମତ ପ୍ରସିଦ୍ଧ ଜୀବଭେଦ ।
ଜୀବିକା—ସ୍ତ୍ରୀ. ବି. (ଜୀବ+ଣ. ଅକ+ଆ) ଜୀବନୋପାୟ, ବୃତ୍ତି, ପେଶା, ଜୀବନ, ଜୀବ, ଜୀବନ୍ତୀ ।
ଜୀବିକାନିର୍ବାହ—ବି. (୬ତତ୍) କୌଣସି ଉପାୟଦ୍ୱାରା ପେଟ ପୋଷିବା ।
ଜୀବିତ—କ୍ଲୀ. ବି. (ଜୀବ+ଭା.ତ)ଆୟୁ, ଜୀବଦଶା,ଜୀବନ, (ବିଂ) ଯେ ବଞ୍ଚିଅଛି, ଜୀବନ୍ତ, ସଜୀବ, ଜୀଅନ୍ତା ।
ଜୀବିତକାଳ—ବି. (୬ତତ୍) ଜୀବଦଶା, ବଞ୍ଚିଥିବାସମୟ, ଅମଳ ।
ଜୀବିତଘ୍ନ—ବିଂ. (ଜୀବିତ+ହନ୍+ଅ) ପ୍ରାଣନାଶକ, ଯେ ଜୀବନ ନଷ୍ଟକରେ ।
ଜୀବିତଜ୍ଞା—ସ୍ତ୍ରୀ.ବି.ନାଡ଼ୀ,ଏହା ଦେଖିଲେ ଜୀବ ଥିବା ନ ଥିବା ଜଣାପଡ଼େ ।
ଜୀବିତନାଥ—ପୁଂ. ବି. (୬ତତ୍) ଜୀବି-ତେଶ, ପ୍ରାଣନାଥ, ଦୟିତ, ସ୍ୱାମୀ ।
ଜୀବିତପ୍ରୟୋଜନ—ବି.(୬ତତ୍)ଜୀବିକା, ଜୀବବଞ୍ଚିବାର ଅତି ଆବଶ୍ୟକ ବସ୍ତୁ-ସମୂହ ।
ଜୀବିତବାନ୍—ପୁଂ. ବିଂ. (ଜୀବିତ+ବତ୍) ବଞ୍ଚିଥିବା ।
ଜୀବିତହାରୀ—ପୁଂ. ବିଂ. (୬ତତ୍) ପ୍ରାଣ-ନାଶକ,ମାରାତ୍ମକ, (ସ୍ତ୍ରୀ) ଜୀବିତହାରିଣୀ ।
ଜୀବିତାନ୍ତକ—ପୁଂ. ବି. (୬ତତ୍) ଜୀବି-ତାନ୍ତକ, ଯମ, (ବିଂ) ପ୍ରାଣିହିଂସାକାରୀ ।

ଜୀବନ୍ତାବସ୍ଥା—ସ୍ତ୍ରୀ. ବ.(୬ତତ୍ପୁ)ଜୀବଦ୍ଦଶା, ଜୀଇଥିବାସମୟ ।

ଜୀବତେଶ—ପୁଂ. (୬ତତ୍ପୁ) ପ୍ରାଣନାଥ, ଯମ, ଚନ୍ଦ୍ର, ସୂର୍ଯ୍ୟ, ଜଗଦୀଶ୍ୱର, ସ୍ୱାମୀ, (ବଂ) ଜୀବିତେଶ୍ୱର ।

ଜୀବିତେଶ୍ୱର—ପୁଂ. ବ. (୬ତତ୍ପୁ) ଜୀବିତେଶ ଦେଖ ।

ଜୀବୀ—ପୁଂ. ବଂ. (ଜୀବ + ଇନ୍) ପ୍ରାଣଧାରକ,ଯେ ଜୀଏ, ପ୍ରାଣୀ,ଜୀବନୋପାୟଯୁକ୍ତ ।

ଜୀବେନ୍ଧନ—କ୍ଲୀ. ବ. (ରୂପକ- କ.ଧା) ଜୀବରୂପ କାଷ୍ଠ ।

ଜୀବେଷ୍ଟି—ସ୍ତ୍ରୀ .ବ. ବୃହସ୍ପତିସବ, ଯେଉଁ ଯଜ୍ଞ ବୃହସ୍ପତିଙ୍କର ଉଦ୍ଦେଶ୍ୟରେ କରାଯାଏ ।

ଜୀବୋତ୍ପତ୍ତିବାଦ—ପୁଂ.ବ.(୬ତତ୍ପୁ)ଜୀବର ଉତ୍ପତ୍ତି ବିଷୟକ ପ୍ରତିବାଦ ।

ଜୀବୋପାଧି—ପୁଂ. ବ. (୬ତତ୍ପୁ) ସ୍ୱପ୍ନ, ସୁଷୁପ୍ତି, ଜାଗରଣରୂପ ଅବସ୍ଥାତ୍ରୟ ।

ଜୀବୋର୍ଣ୍ଣା—ସ୍ତ୍ରୀ. ବ. (୬ତତ୍ପୁ) ଜୀବିତ ମେଷାଦିର ଲୋମ ।

ଜୀବ୍ୟା—ସ୍ତ୍ରୀ. ବ. ହରିତକୀ, ଜୀବନ୍ତୀ, ଗୋକ୍ଷୁରଦୁଗ୍ଧ, ଜୀବନୋପାୟ ।

ଜୁଅ—ଗ୍ରା. ବ. (ସଂ-ଦ୍ୟୂତ)ଦ୍ୟୂତକ୍ରୀଡ଼ା, ପଣରଖି ଖେଳିବା,ନବବିବାହିତ ବର କନ୍ୟାଙ୍କର ସାତମଙ୍ଗଳା ମଧ୍ୟରେ ଖେଳିବା କଉଡ଼ିଖେଳ ।

ଜୁଆ—ଗ୍ରା.ବ.ଆମ୍ବ ଆଦି କଞ୍ଚା ଖଟା ଫଳକୁ ଲୁଣ ମସଲ ଓ ତେଲଦେଇ ଆଚାର କରିବା,(ସଂ-ଦ୍ୟୂତ)ଜୁଅ ଦେଖ,(ଗ୍ରା.ବଂ.) ଲୁଣମସଲତେଲଆଦି ଦ୍ୱାରା ପାଗ କରାଯାଇଥିବା (ଅମ୍ବଆଦି) (ପ୍ରା. ସମ୍ବ. ସିଦ୍ଧ ବ.) ଶଗଡ଼ର ଯୁଆଳି,(ପ୍ରା. ଯାଜ. ବ.) ଦୁଧକୁ ଦହିଆଦି କରିବାପାଇଁ ତହିଁରେ ମିଶାଯିବା ଖଟାବସ୍ତୁ ବା ମହି ।

ଜଆଇଁ—ଗ୍ରା. ବ.(ସଂ-ଜାମାତା)କନ୍ୟାର ସ୍ୱାମୀ, ନବବିବାହିତ ବର ।

ଜୁଆଇଁକୁଣିଆ—ଗ୍ରା.ବ.(ଲ.ଅର୍ଥ)ଶ୍ୱଶୁର ଘରେ ଜୁଆଇଁ ପାଇବା ଆଦର ପରି ଆଦର ପାଉଥିବା ବ୍ୟକ୍ତି ।

ଜୁଆଇଁନିମନ୍ତ୍ରଣ—ଗ୍ରା. ବ. ଶ୍ୱଶୁରଙ୍କ ଗୃହକୁ ଉତ୍ସବାଦି ଉପଲକ୍ଷରେ ଜାମାତାଙ୍କୁ ନିମନ୍ତ୍ରଣ କରିଯିବା, ବିବାହପୂର୍ବରୁ ଶ୍ୱଶୁର ନିଜଘରଠାରୁ ବର ବରଯାତ୍ରି ସମେତ ବିବାହ ଦିବସ ଆସିବା ପାଇଁ ବରଙ୍କ ନିକଟକୁ ବସ୍ତ୍ର, ମହାପ୍ରସାଦ, ନାରିକେଳ, ଓ ସବିଧି ଲେଖାସହ ପଠାଯିବା ନିମନ୍ତ୍ରଣ ବିଧି ।

ଜୁଆଇବା—ଗ୍ରା.କ୍ରି. ତେଲ ବା ଘିଅଆଦି ରଖିବା ଦ୍ୱାରା ହାଣ୍ଡି ଘଡ଼ିଆଦି ମୃତ୍ପାତ୍ରକୁ ସଜ କରିବା,ଆମ୍ବୁଲ ଓ ଆଚାର ତେନ୍ତୁଳିଆଦିରେ ମସଲ ଲୁଣ ଓ ତେଲଆଦି ଦେଇ ମୁଖରୋଚକ କରିବା ।

ଜୁଆଁଣିଆଘାସ—ଗ୍ରା. ବ. ଏକପ୍ରକାର ମୋଟା କରଡ଼ା ଘାସ ।

ଜୁଆଁଳ—ପ୍ରା.(ସମ୍ବ)ବ.ଜାଆଁଳା,ଯମଜ ।

ଜୁଆଁଳିଆ—ପ୍ରା. ( ସମ୍ବ ) ବ. ଯମଜ ସନ୍ତାନ, ଜାଆଁଳପିଲା ।

ଜୁଆଙ୍ଗ—ପ୍ରା. ବ. ଓଡ଼ିଶା ଗଡ଼ଜାତର ପର୍ବତୀୟ ଜାତିବିଶେଷ, ଓଡ଼ିଶାର ଆଦିମ ଅଧିବାସୀ ।

ଜୁଆଚୋର—ଗ୍ରା.ବଂ.ଧୂର୍ତ୍ତ, ବଞ୍ଚକ, ଶଠ, ପ୍ରତାରକ ।

ଜୁଆଚୋରି—ଗ୍ରା.ବ.ପ୍ରତାରଣା, ବଞ୍ଚନା, ଶଠତା, ଠକାମି ।

ଜୁଆଣ—ଗ୍ରା.ବ. ଦହିଆଦି କରିବା ପାଇଁ ଦୁଧ ଆଦିରେ ଦିଆଯିବା ମହି ପ୍ରଭୃତି ।

ଜୁଆଣପାଣି— ଗ୍ରା. ବ. ମନ୍ତ୍ରପୂତଜଳ, ଫଳପାଣି ।

ଜୁଆଣୀ—ଗ୍ରା. ବ. (ସଂ-ଯବାନୀ) ସୁଗନ୍ଧ ମସଲାବିଶେଷ, ଧାନ୍ୟାଦିବର୍ଗର କୃଷିଜାତ ଶାକବିଶେଷର ଫଳ ।

ଜୁଆଣୀଅରକ—ଗ୍ରା.ବ.ଜୁଆଣୀରୁ ବୈଜ୍ଞାନିକ ପ୍ରକ୍ରିୟାରେ ପ୍ରସ୍ତୁତ ନିର୍ଯ୍ୟାସ ।

ଜୁଆନ୍—ଗ୍ରା. ବଂ. (ସଂ-ଯୁବନ୍) ଯୁବା, ଯୁବକ, ପରିଣତ ବୟସ୍କ ।

ଜୁଆନ୍‌ବୟସ—ଗ୍ରା. ବ. ଯୌବନ ।

ଜୁଆର—ଗ୍ରା. ବ. (ସଂ-ଜଳବାର)ସମୁଦ୍ରର ଜଳସ୍ଫୀତି, ସମୁଦ୍ରର ଜଳୋଚ୍ଛ୍ୱାସ, (ବିପ-ଭଟ) ନୂଆ ପାଣିରେ ହଳଧର ଜମିରେ ଉଠିବା କକଡ଼ା ପ୍ରଭୃତି ଘାସ ।

ଜୁଆରି—ଗ୍ରା. ବ. ବାଜରାଶସ୍ୟ, ଭୁଟ୍ଟା, (ପ୍ରା. ସିଦ୍ଧ ବ.) ମକ୍କା, ମକା ।

ଜୁଆରିବା—ଗ୍ରା. କ୍ରି. (ମାଛସାହାଣ)ମନ୍ଦା ଧରି ନଇ ମୁହାଁଣ ବା ଘାଇ ମୁହଁକୁ ଆସିବା ।

ଜୁଆରି—ଗ୍ରା. ବ. (ସଂ-ଦ୍ୟୂତରତ)ଜୁଆଖେଳାଳି, ଦ୍ୟୂତକାର, (ବଂ) ଦ୍ୟୂତକ୍ରୀଡ଼ାରତ ।

ଜୁଆଳକଣ୍ଢିଆ—ଗ୍ରା.ବଂ. ଯେଉଁ ବଳଦ ଜୁଆଳକୁ ଫିଙ୍ଗିଦେଲେ ଆଉ ଧରା ଦିଏ ନାହିଁ ।

ଜୁଆଳି—ଗ୍ରା. ବ.ବଳଦ ଯୋଚୁଥିବା ଲମ୍ବା ଘୋଡ଼ାଆଦି ଯୋଡ଼ିବାର ବାଉଁଶ ବା କାଷ୍ଠଖଣ୍ଡ, ଯେଉଁ କାଷ୍ଠଖଣ୍ଡ ବଳଦାଦିଙ୍କ କାନ୍ଧରେ ରହେ ।

ଜୁଆଳିପଡ଼ିବା—ଗ୍ରା.ବ. (ଲ.ଅର୍ଥ)ମନୁଷ୍ୟ କୌଣସି ବନ୍ଧନରେ ବା ଗୁରୁତର କାର୍ଯ୍ୟରେ ନିଯୁକ୍ତ ହେବା, ବିବାହ ବନ୍ଧନରେ ଆବଦ୍ଧ ହେବା ।

ଜୁଆଶକଟା—ଗ୍ରା. କ୍ରି. ଜୁଆଖେଳ ଓ ଶକଟା ବା ଗଞ୍ଜପା ଖେଳ ।

ଜୁଇ—ଗ୍ରା . ବ. (ସଂ ଯୁଥି) ଯୁଇଫୁଲ ଓ ଗଛ, (ସଂ-ଜ୍ୟୋତି) ନିଆଁ, ଚିତାଗ୍ନି, ଏକପ୍ରକାର ଶ୍ରେଷ୍ଠ ପକ୍ଷୀ, (ସଂ-ଜୀବକ) ଶ୍ରେଷ୍ଠ ଔଷଧ ବୃକ୍ଷବିଶେଷ ।

ଜୁଇଁ—ପ୍ରା. (ବାଲେ)ବ. (ସଂ-ଜାମାତା) ଜୋଇଁ, ଜୁଆଇଁ, ଜାମାତା ।

ଜୁଉଳ—ଗ୍ରା.ବ.ଜୋଅଳ,ଜଅଳ,ଲଙ୍ଗଳ ମୁଣ୍ଡାରେ ଲଙ୍ଗଳ ଲୁହା ରହିବା ପାଇଁ ଖୋଳା ହୋଇଥିବା ଘର ଉପରେ ମରାଯାଇଥିବା ⌐ ଏହି ଆକାରର ଲୁହାର କୋକିଆ କଣ୍ଟା ।

ଜୁକ୍‌ଜୁକ୍—ଗ୍ରା. ଅବ୍ୟ, ସାମାନ୍ୟଆଲୋକ ସହିତ ଜକ୍‌ଜକ୍ ଦେଖାଯିବା, ଅଳ୍ପ ଅଳ୍ପ ହୋଇ ଅଗ୍ନି ଜଳିବା ।

ଜୁକୁଜୁକିଆ—ଗ୍ରା. ବଂ. ଅଳ୍ପ ସାମାନ୍ୟ

ପାଣିଥିବା ମାଟି ବା ତଅଣ ବା ଖତ ।
ଜୁଖ— ଗ୍ରା. ବି. (ସଂ-ଯୁଜ୍‌ଧାତୁ)ପରମାଣ, ତଉଲ, ଓଜନ, ତୁଳନା ।
ଜୁଖା—ଗ୍ରା. ବି. ଜାନ୍ତ ।
ଜୁଖିବା—ଗ୍ରା. କ୍ରି. ତଉଲିବା, ତୁଳିବା, ଯୁକ୍ତକରିବା, କଣ୍ଟିବା ।
ଜୁଗୁଆ—ଗ୍ରା. ସମ୍ବ.ବି.ଜଗୁଆଳ,ଜଗିଆ ।
ଜୁଗୁପିଷୁ--ବିଂ. ( ଗୁପ+ସନ୍+ଉ ) ନିନ୍ଦୁକ ।
ଜୁଗୁପ୍ସକ—ବିଂ. ( ଗୁପ+ସନ୍+ଅକ ) ନିନ୍ଦାକାରୀ,ଘୃଣାକାରୀ,ଯେ ଅକାରଣରେ ନିନ୍ଦା କରେ ।
ଜୁଗୁପ୍ସନ—କ୍ଲୀ. ବି. (ଗୁପ+ସନ୍+ଭା. ଅନ) କୁତ୍ସା, ନିନ୍ଦା, ଘୃଣା, ଅପବାଦ, (ବିଂ. କ.ଅନ) ନିନ୍ଦକ, ନିନ୍ଦାଶୀଳ ।
ଜୁଗୁପ୍ସା—ସ୍ତ୍ରୀ. ବି. (ଗୁପ+ସନ୍+ଭା.ଅ +ଆ) ଜୁଗୁପ୍ସନ (ଦେଖ) ।
ଜୁଗୁପ୍ସିତ—ବିଂ. (ଗୁପ+ସନ୍+ର୍ମ.ତ) ନିନ୍ଦିତ, ଘୃଣିତ, ଯାହାକୁ ଅପବାଦ ଦିଆଯାଉଥାଏ ।
ଜୁଗୁପ୍ସୁ—ବିଂ. ନିନ୍ଦୁକ ।
ଜୁଗୁବଣି--ବିଂ.ସ୍ତ୍ରୀଲୋକମାନଙ୍କର ସଂବଭକ୍ତ, ସ୍ତ୍ରବକାସ୍ତ୍ରମାନଙ୍କୁ ଯେ ବିଭାଗ କରେ ।
ଜୁଗୋପିଷା—ସ୍ତ୍ରୀ. ବି. (ଗୁପ+ସନ୍+ଭା.ଅ+ଆ) ଗୋପନେଚ୍ଛା, ଗୋପନ କରିବାର ଇଚ୍ଛା ।
ଜୁଙ୍ଗ—ପୁଂ.ବି.(ଜୁଙ୍ଗ+ଅ)ବୃଦ୍ଧଦାରକ, ବିଧାରକ ଗଛ, ଜୁଙ୍ଗାକ ।
ଜୁଙ୍ଗା—ସ୍ତ୍ରୀ. ବି. ବୃଦ୍ଧଦାରକ ।
ଜୁଙ୍ଗିତ—ବିଂ. (ଜୁଙ୍ଗ+ତ) ପରିତ୍ୟକ୍ତ, କ୍ଷତଗ୍ରସ୍ତ ।
ଜୁଙ୍ଗୀ—ବି. ନିକୃଷ୍ଟକାଠ ବିଶେଷ ।
ଜୁଜ୍—ଯା. ବି.(ଛାପାଖାନାରେବ୍ୟବହୃତ ଶବ୍ଦ) ଫରମା ୪, ୮, ୧୨,୧୬,ପୃଷ୍ଠାରେ ଭଙ୍ଗାହୋଇଥିବା କାଗଜର ଫର୍ଦ୍ଦ ।
ଜୁଜ୍‌ବନ୍ଦି—ଯା.ବି. ଏକଫର୍ଦ୍ଦକାଗଜ, ୪, ୮, ୧୨, ୧୬ ପୃଷ୍ଠାରେ ଭଙ୍ଗାହୋଇ ଏହିପରି ଅନେକ ଗୁଡ଼ିଏ ଫରମାର ଏକତ୍ର ସିଲେଇ ।
ଜୁଜୁ--ଗ୍ରା. ବି.( ସଂ-ଜୁଃ+ପିଶାଚ୍) କଳ୍ପିତ ଭୟ ସଞ୍ଚାରକ ମୂର୍ତ୍ତି, କୋକିମିନା ଭୂତ ପ୍ରେତାଦି, ଭୀତସଞ୍ଚାରକ ରୂପ ।
ଜୁଜ୍ଝ—ଗ୍ରା. ବି. (ସଂ-ଯୁଦ୍ଧ) ଯୁଦ୍ଧ ।
ଜୁଜ୍ଝା—ଗ୍ରା. ବି. (ସଂ-ଯୁଦ୍ଧ) ଯୁଦ୍ଧ ।
ଜୁଜ୍ଝା(ଜ୍ଝେ)ଇବା—ଗ୍ରା.କ୍ରି. ( ସଂ-ଯୁଦ୍ଧ ) ଅନ୍ୟକୁ ଯୁଦ୍ଧରେ ପ୍ରବର୍ତ୍ତାଇବା ।
ଜୁଜ୍ଝିବା—ଗ୍ରା. କ୍ରି. ଯୁଦ୍ଧକରିବା ।
ଜୁଟ୍--(ଧାତୁ)ଏକତ୍ରହେବା, ମିଳିତହେବା, ଯୁକ୍ତହେବା ।
ଜୁଟ୍—ବି.(ସଂ-ଯୁକ୍ତ)ଏକତ୍ରହେବାଅବସ୍ଥା, ସଂହତ, ସମ୍ମିଳନ, ସଙ୍ଗମ, ଜୋଡ଼ା, ଯୁଗ, ଦଳ, ମଣ୍ଡଳୀ, (ବିଂ) ସମ୍ମିଳିତ, ଦଳବଦ୍ଧ ।
ଜୁଟ୍‌ଖାଇବା—ଗ୍ରା. କ୍ରି. ପରସ୍ପର ମିଳିତ ହେବା, ପରସ୍ପରସଙ୍ଗମ କରିବା,ଜୋଡ଼ ପଡ଼ିବା, ପରସ୍ପର ସର୍ବତୋଭାବରେ ମେଳ ହେବା ।
ଜୁଟ୍‌ବାନ୍ଧିବା—ଗ୍ରା. କ୍ରି. ମେଳହେବା, ( ବହୁବ୍ୟକ୍ତି ) କୌଣସିଉଦ୍ଦେଶ୍ୟରେ ଦଳ ବାନ୍ଧିବା, ଜମାଟବାନ୍ଧିବା ।
ଜୁଟ୍‌ଲଗିବା--ଗ୍ରା. କ୍ରି. ଜୁଟ୍‌ଖାଇବା (ଦେଖ) ।
ଜୁଟ୍‌ହେବା—ଗ୍ରା. କ୍ରି. (ସଂ-ଯୁକ୍ତ) ଏକତ୍ର ହେବା,ଦଳବଦ୍ଧହେବା,ସମ୍ମିଳିତହେବା ।
ଜୁଟକ—ପୁଂ. ବି. ( ଜୁଟ୍+କ.ଅକ ) ମସ୍ତକର କେଶର ଶିଖା, ଚଟି, ଜଟା, ଜଟ, ଗୋଛା, ଏକପ୍ରକାର କର୍ପୂର, (ଗ୍ରା. ବିଂ) ଯେ ଜାରପୁରୁଷ ନିକଟରେ ଉପପତ୍ନୀ ଆଣି ପହଞ୍ଚାଏ, ଭଡ଼ୁଆ ।
ଜୁଟା—ଗ୍ରା. ବି. ( ସଂ-ଜୁଟ୍ ) ଜୁଟାଇବା କାର୍ଯ୍ୟ, ଭଡ଼ୁଆକାମ, ଜାରପୁରୁଷପାଖେ ପରସ୍ତ୍ରୀ ଭେଟାଇବା କାମ, (ବିଂ) ଯେ ଜାରପୁରୁଷ ପାଖରେ କପଟୀ ସ୍ତ୍ରୀକୁ ଭେଟାଏ, ଯେ ବରକନ୍ୟାକୁ ଜୁଟାଏ, (ପ୍ରା. ସମ୍ବ. ବି) ଉଚ୍ଛିଷ୍ଟ, ଅଇଣ୍ଠା, (ବିଂ) ଅଇଣ୍ଠା ହୋଇଥିବା ।
ଜୁଟା(ଟେ)ଇବା—ଗ୍ରା.କ୍ରି. ଏକତ୍ରକରିବା ସଂଗ୍ରହକରିବା,ଏକାଧିକ ବ୍ୟକ୍ତିଙ୍କୁ ଏକସ୍ଥାନରେ ଏକତ୍ର କରାଇବା, ପ୍ରଣୟାର୍ଥୀ ପୁରୁଷ ଓ ସ୍ତ୍ରୀଙ୍କ ମଧ୍ୟରେ ମିଳନ ଘଟାଇବା, କୌଶଳ ବା ଯୋଗାଡ଼ ଯନ୍ତ୍ର ଦ୍ୱାରା ଅଭିପ୍ରେତ ସ୍ଥାନରେ କୌଣସି ବସ୍ତୁକୁ ପହଞ୍ଚାଇବା, ବିବାହସମ୍ପର୍କରେ ବରକନ୍ୟାଯୋଗାଡ଼ଦେବା,ସ୍ତ୍ରୀପୁରୁଷଙ୍କୁ ସଙ୍ଗମ କରାଇବା ।
ଜୁଟାଜୁଟି—ଗ୍ରା. ବି.(ସହଚର)ଜୁଟାଇବା ଦେଖ ।
ଜୁଟିକା—ସ୍ତ୍ରୀ. ବି.(ଜୁଟ୍+ର୍ମ.ଅକ+ଆ) ଗୋଛା, ଶିଖା, ଚୁଟି, ଗୁଚ୍ଛ, କର୍ପୂର ବିଶେଷ ।
ଜୁଟିବା—ଗ୍ରା. କ୍ରି. (ସଂ-ଜୁଟ୍‌ଧାତୁ) ମିଳିତ ହେବା, ଏକତ୍ରହେବା, ପ୍ରାପ୍ତହେବା, ମିଳିବା, ହାତକୁ ଆସିବା, କୌଣସି ସ୍ଥାନରେ ବା ନିକଟରେ ଆସି ଉପସ୍ଥିତ ହେବା, ଭେଟିବା ।
ଜୁଠା—ପ୍ରା. (ସମ୍ବ)ବି ଓ ବିଂ. (ସଂ-ଜୁଷ୍ଟ) ଜୁଟା ଦେଖ ।
ଜୁଡ୍—(ଧାତୁ) ବନ୍ଧନକରିବା ।
ଜୁଡ଼ଜ୍ୱର—ପ୍ରା. ( ସମ୍ବ ) ବି. ଶରଦ ଓ ଗରମି ରୋଗ, (ବିଂ) ଶରଦ ଓ ଗରମ, ନରମ ଓ ଶକ୍ତ ।
ଜୁଡ୍‌ବୁଡ୍—ଗ୍ରା.ଅବ୍ୟ. ତେଲ ବା ପାଣି ଦ୍ୱାରା ଅତ୍ୟନ୍ତ ଆର୍ଦ୍ର,(ତେଲ ବା ପାଣି) ସରସର, ଜରବୁଡ଼ ।
ଜୁଡ଼ା—ଗ୍ରା.ବି.ସ୍ତ୍ରୀଲୋକମାନଙ୍କର ଏକତ୍ର ବନ୍ଧା ହୋଇଥିବା ମୁଣ୍ଡର କେଶ, ଖୋଷା, ଖୋପା ।
ଜୁଡ଼ାପକାଇବା—ଗ୍ରା. କ୍ରି. ମୁଣ୍ଡ କେଶକୁ ସଜ୍ଜିତ କରି ଗଣ୍ଠିବାନ୍ଧିବା, ଜୁଡ଼ାପାଡ଼ିବା ବା ବାନ୍ଧିବା ।
ଜୁଡ଼ି—ପ୍ରା.(ବାଲେ-ମେଦ)ବି.(ସଂ-ଯୁଗ୍ମ) ସମଧର୍ମୀ, ସହଚର, ଏକ ସଙ୍ଗେ ବଗିରେ ଲାଗିଥିବା ଦୁଇଟି ଘୋଡ଼ା, ଯୁଗ, ଦୁଇଟି ଘୋଡ଼ା ଟାଣିବା ଗାଡ଼ି, ଯୁଗ୍ମ ବସ୍ତୁ ବା ଜୀବ ମଧ୍ୟରୁ ଏକ ।
ଜୁଡ଼ିଦାର—ପ୍ରା. (ବାଲେ)ବି. ଗାଡ଼ିରେ ଏକସଙ୍ଗେ ଲାଗିବା ଯୋଡ଼ାଏ ଘୋଡ଼ାରୁ

ଗୋଟିଏ,(ବିଂ)ଯେଉଁ ଗାଡ଼ିରେ ଦୁଇଟି ଘୋଡ଼ା ଲାଗି ଥାଆନ୍ତି ।

ଜୁଡ଼ିବା—ଗ୍ରା. କ୍ରି. ଜୋଡ଼ିବା ଦେଖ ।

ଜୁଡ଼ିସିଅଲ୍—ଯା.ବିଂ. ବିଚାର ବିଭାଗୀୟ, ନ୍ୟାୟ ବିଚାର ସମ୍ବନ୍ଧୀୟ ।

ଜୁଡ଼େନ୍—ପ୍ରା. (ସମ୍ବ) ବିଂ. ପରସ୍ପରସହିତ ଯୁକ୍ତହୋଇଥିବା ବା ଲାଗିହୋଇଥିବା (ଦୁଇବସ୍ତୁ) ।

ଜୁଣ—ଗ୍ରା.ବି. (ସଂ-ଯୋଜନ) ଗୃହକୋଣ ଯୋଜନ,(ଅନ୍ୟ, ସଂ-ଉଲ୍ମୁକ,ଉଲପ, ଜୁର୍ଣ୍ଣି) ଘରଛୁଆଣି କରିବା ଓ ମୁନ୍ଦୁରି ବୁଣିବା ନିମନ୍ତେ ବ୍ୟବହୃତ ତୃଣ-ବିଶେଷ ।

ଜୁତ୍—ଗ୍ରା. ବି. (ସଂ-ଯୁତ) ଉତ୍କୃଷ୍ଟ ଧାତୁ ସହିତ ନିକୃଷ୍ଟ ଧାତୁର ମିଳନ ବା ମିଶ୍ରଣ, (ସଂ-ଦ୍ୟୁତ) ସ୍ୱାସ୍ଥ୍ୟ, ଶରୀର, ସୌନ୍ଦର୍ଯ୍ୟ, ଶୋଭା, ଘଟଣ, (ସଂ-ଜ୍ୟୋତିଃ) ତେଜ ।

ଜୁତିବା—ପ୍ରା. (ସମ୍ବ) କ୍ରି. ଚଷିବା ।

ଜୁତ—ଗ୍ରା. ବି. (ସଂ-ଦ୍ୟୂତ) ଜୁଆଖେଳ, (ସଂ-ଯୁକ୍ତ ବା ଯୋକ୍ତ୍ର) ଯୁଗବନ୍ଧନ ରଜ୍ଜୁ, ଜୁଆଳିରେ ବଳଦାଦଙ୍କର ବେକ ବନ୍ଧା ହେବା ରଜ୍ଜୁ, ଦଉଡ଼ି ।

ଜୁତା—ଗ୍ରା. ବି. (ସଂ-ଯୁକ୍ତ) ଚର୍ମପାଦୁକା, ଜୋତା, ଜୁତାଦ୍ୱାରା ମାଡ଼ ।

ଜୁତାକସିବା—ଗ୍ରା. ବି. ଜୁତାରେ ପ୍ରହାର କରିବା । [ ଖାଇବା ।

ଜୁତାଖାଇବା—ଗ୍ରା.କ୍ରି. ଜୁତାରେ ପ୍ରହାର

ଜୁତାଖିଆ—ଗ୍ରା.ପୁଂ.ବିଂ. (ଗାଳି) ନିର୍ଲଜ୍ଜ, ଜୋତା ମାଡ଼ଖାଇବାର ଉପଯୁକ୍ତ ।

ଜୁତାଦେବା—ଗ୍ରା. କ୍ରି. ଜୁତାରେ ପ୍ରହାର କରିବା ।

ଜୁତାଫିତା—ଗ୍ରା. ବି. ଜୁତାରେ ବନ୍ଧା-ହେବା ଫିତା ।

ଜୁତାବୁହା—ଗ୍ରା. ବିଂ. ପାଦୁକା ବହକ, ପ୍ରଭୁଙ୍କ ଜୁତାକୁ ବହନକରିବା(ଭୃତ୍ୟ) ।

ଜୁଢ—ବି. ବେଗ, (ଗ୍ରା.ବି ସଂ-ଜ୍ୟୋତିଃ) ଜ୍ୟୋତିଃ, ଦୀପ୍ତି, ତେଜଃ ।

ଜୁଢଆ—ଗ୍ରା. ବି. (ସଂ-ଦ୍ୱିତୀୟ) ଦୁଢଆ, ଶୂଦ୍ରମାନଙ୍କ ମଧ୍ୟରେ ବିଧବା ବିବାହ ପ୍ରଥା ।

ଜୁଦ—ଗ୍ରା. ବିଂ. (ସଂ-ଦ୍ୟୁତ) ସୁନ୍ଦର, ରୁଚିକର, ସୁବିଧାଜନକ, ( ଗ୍ରା. ବି ) ଜୋଦ ଦେଖ ।

ଜୁଦା—ଯା. ବିଂ. ପୃଥକ୍, ଭିନ୍ନ, ସ୍ୱତନ୍ତ୍ର, ପୃଥକାନ୍ନବାସ ।

ଜୁନ୍—ଯା.ବି. ଇଂରେଜୀ ଗଣନାର ମାସ ।

ଜୁନା—ପ୍ରା. (ସମ୍ବ ଓ କଳାହାଣ୍ଡି) ବିଂ. ଜୀର୍ଣ୍ଣ ଓ ପୁରୁଣା, ଅତିପୁରୁଣା, ( ବି ) ରାଜପୁତରାଜାମାନଙ୍କର ଭୂକ୍ତାଂଶବିଶେଷ ।

ଜୁନାଗଡ଼—ଗ୍ରା. ବି. ବୋମ୍ବାଇର ଗୋଟିଏ କରଦ ରାଜ୍ୟ ।

ଜୁନାମାନ୍—ପ୍ରା. (ହିନ୍ଦି) ବି. ଚୂନାମାଛ ।

ଜୁନାର—ଗ୍ରା. ବି. ବୋମ୍ବାଇ ବିଭାଗର ଗୋଟିଏ ଉପବିଭାଗ ।

ଜୁନିଅର—ଯା. ବିଂ. ବୟସ ବା କାର୍ଯ୍ୟ-କାଳ ଦୃଷ୍ଟିରେ ଶ୍ରେଷ୍ଠ,(ବିପ) ସିନିଅର ।

ଜୁନ୍ଦଖାଁ—ସମ୍ରାଟ ଆକ୍‌ବରଙ୍କ ସମୟର ଜଣେ ପଠାଣ ।

ଜୁବନ୍ଧ—ପ୍ରା. (ଗଞ୍ଜା) ବି. ବଳର ପରି-ମାଣ ବା କ୍ଷେତ୍ରଫଳ ।

ଜୁବିଲି—ଯା.ବି. (ହେବ୍ରୁଭାଷାରୁ ଆନୀତ) ରାଜାଆଦିଙ୍କ ରାଜତ୍ୱ କରିବାର ୫୦ବର୍ଷ ବା ୬୦ବର୍ଷ ପୂର୍ଣ୍ଣହେଲେ ଯେଉଁ ଉତ୍ସବ କରାଯାଏ ।

ଜୁବ୍ବା—ଯା. ବି. କାନ୍ଧରୁ ଆଣ୍ଠୁ ପର୍ଯ୍ୟନ୍ତ ଲମ୍ବିବା ଖୁଡମେଲ୍ କୁର୍ତ୍ତା ।

ଜୁମ୍—ଗ୍ରା. ବି. ଯାତ୍ରାଆଦିରେ ବହୁଲୋକ ସମାଗମ, ନିଶାର ଗାଢ଼ତା, ଆହ୍ଲାଦ, ଆନନ୍ଦ, ମଉଜ ।

ଜୁମ—ଗ୍ରା.ବି. ଚଟ୍ଟଗ୍ରାମ ପାର୍ବତ୍ୟ ପ୍ରଦେ-ଶର ଏକପ୍ରକାର କୃଷିକାର୍ଯ୍ୟ ।

ଜୁମର—ଗ୍ରା. ବି. ସଂସ୍କୃତ ବ୍ୟାକରଣ ଗ୍ରନ୍ଥବିଶେଷ ।

ଜୁମଲ୍—ଯା. ବି. ମୋଟ, ସମଗ୍ର,ସମଷ୍ଟି ।

ଜୁମା—ଯା. ବି. ( ମୁସଲମାନମାନଙ୍କ ) ଶୁକ୍ରବାର ।

ଜୁମାନମାଜ୍—ଯା. ବି. ଶୁକ୍ରବାରଦିନ ମୁସଲମାନଙ୍କର ପାଠକରିବା ସ୍ତବ ।

ଜୁମାମସଜିଦ୍—ଯା. ବି. ଯେଉଁ ଭଜନା-ଳୟରେ ମୁସଲମାନମାନେ ଶୁକ୍ରବାର-ଦିନ ସମବେତହୋଇ ନମାଜ ପଢ଼ନ୍ତି ବା ଭଜନ କରନ୍ତି ।

ଜୁମିବା—ଗ୍ରା.କ୍ରି. କୌଣସି ଘଟଣାକ୍ରମେ ବହୁଲୋକ ଏକତ୍ର ହେବା, ( ନିଶା ) ଜମକହେବା, ଗାଢ଼ହେବା ।

ଜୁମିୟାମଗ—ଗ୍ରା. ବି. ଚଟ୍ଟଗ୍ରାମ ପର୍ବତ-ବାସୀ ମଗଜାତି ।

ଜୁମିଲ୍—ଯା. ଅବ୍ୟ. ବାବତ୍ତିଲୁ ।

ଜୁମେରାତ୍—ଯା.ବି. (ମୁସଲମାନ୍‌ମାନଙ୍କ) ଗୁରୁବାର ।

ଜୁର୍—ପ୍ରା. (ସମ୍ବ) ବି. ଜୋଡ଼, ଜଳମଧ୍ୟ ସ୍ଥାନ ।

ଜୁର—ଗ୍ରା. ବି. ବଳାତ୍କାର ହରଣ, ଲୁଟି, ଅପବ୍ୟୟ, ବିନାଶ, ଓଲଟ ପାଲଟ କରିବା, (ବିଂ) ବଳାତ୍କାର ଅପହୃତ, ଲୁଣ୍ଠିତ, ଅପବ୍ୟୟିତ,ବିନଷ୍ଟ, ଅସ୍ତବ୍ୟସ୍ତ, ଖିନ୍‌ଖରାପ, ଓଲଟପାଲଟ ।

ଜୁରକରିବା—ଗ୍ରା.କ୍ରି. ବଳାତ୍କାର ହରଣ କରିବା, ବିନାଶ କରିବା, ଲୁଟିକରିବା, (ଲ.ଅର୍ଥ) ଜିଣିବା, ବଳପଡ଼ିବା ।

ଜୁରମାର—ଗ୍ରା. ବି. ଗୁରଖାର, ଇତ-ସ୍ତତଃ ବିକ୍ଷେପ, ଲୁଟପାଟ, ବିନାଶ, (ବିଂ) ବିନଷ୍ଟ, ଲୁଣ୍ଠିତ ।

ଜୁରି—ଯା. ବି. ଅଦାଲତରେ ଜଜଙ୍କ ସହିତ ଦଉରା ମକଦ୍ଦମା ବିଚାରକରିବା କାର୍ଯ୍ୟରେ ସହାୟତା କରିବା ନିମନ୍ତେ ବସିବା ବ୍ୟକ୍ତିଗଣ ।

ଜୁରୁ—ପ୍ରା. (ବସ୍ତ) ବି. ଜୋକ ।

ଜୁର୍ମ—ଯା. ବି. ଅପରାଧ ।

ଜୁର୍ମାନା—ଯା.ବି. ଜୋରିମାନା,ଅର୍ଥଦଣ୍ଡ ।

ଜୁଲ —ପ୍ରା. (ବସ୍ତ)ବି. ଅସର୍ପା,ଅସରପା ।

ଜୁଲ୍‌ଜୁଲ୍—ଗ୍ରା. ଅ. ମିଟିମିଟିକର, ସ୍ନିଗ୍ଧ-ଭାବରେ ଆଖିପିଟୁଛି (ଦୃଷ୍ଟିକରିବା), ସ୍ନିଗ୍ଧଭାବରେ ( ଆଲୋକ ଦେବା ), ଜୁକ୍‌ଜୁକ୍ ।

ଜୁଲ୍‌ଜୁଲାପୋକ—ଗ୍ରା. ବି. ଜୁଲୁଜୁଲା

ପୋକ ଦେଖ ।
ଜୁଲ୍‌ପି—ଗ୍ରା. ବ. (ଯା-ଜୁଲ୍‌ଫି,ଫ-କାକପକ୍ଷ) କପାଳ ପାଖରୁ ଇତସ୍ତତଃ କର୍ଣ୍ଣମୂଳ ପର୍ଯ୍ୟନ୍ତ ଲମ୍ବିଥିବା କୁଞ୍ଚିତ ବା ବକାଗ୍ର କେଶଗୁଚ୍ଛ, କଳ୍ପୀ, ଗାଲମୁଣ୍ଡା, ବାବୁରିବାଳ ।
ଜୁଲ—ଗ୍ରା. ବ. ଜୁଲୁକି ଦେଖ ।
ଜୁଲକି—ଗ୍ରା. ବ. ଜୁଲୁକି ଦେଖ ।
ଜୁଲମ୍—ଯା. ବ. ଉତ୍ପୀଡ଼ନ,ଅତ୍ୟାଚାର, ବଳାତ୍କାର, ଉତ୍ପୀଡ଼ନ ଜନିତ କଷ୍ଟ, ନିଷ୍ଠୁରତା, ଅନ୍ୟାୟ । [ କରିବା ।
ଜୁଲମ୍‌କରିବା—ଗ୍ରା. କ୍ରି. ଅତ୍ୟାଚାର
ଜୁଲମ୍‌ଦାର୍—ଯା. ବି॰. ଉତ୍ପୀଡ଼କ, ଅତ୍ୟାଚାରୀ ।
ଜୁଲା—ଯା. ବ. ମୁସଲ୍‌ମାନ୍ ତନ୍ତୀ ।
ଜୁଲାଇ—ଯା. ବ. ଇଂରାଜି ବର୍ଷର ସପ୍ତମ ମାସ ।
ଜୁଲାପ୍—ଯା. ବ. ଜୋଲାପ, ରେଚକ ଔଷଧ, ଭେଦୀ, ମଳଭେଦକ ଔଷଧ, କଳମ୍ବୀଆଦି ବର୍ଗର ଲତାବିଶେଷ ।
ଜୁଲି—ଗ୍ରା. ବ. (ଫ-ଚୁଲ୍ଲୀ) ପାଣିଯିବାର ସରୁ ମାହାର ବା ନାଳ ।
ଜୁଲୁ—ଗ୍ରା. ବ. ଦକ୍ଷିଣଆଫ୍ରିକାର କାଫ୍ରିଜାତିର ଗୋଟିଏ ଶାଖା ।
ଜୁଲୁଦେଶ—ଗ୍ରା. ବ. ଦକ୍ଷିଣଆଫ୍ରିକାର ନେଟାଲ ଉପନିବେଶର ଉତ୍ତର ପୂର୍ବସ୍ଥିତ ପ୍ରଦେଶ ।
ଜୁଲୁକି—ଗ୍ରା. ବ. କବାଟରେ କଳଣୀକୁ ଅଟକାଇବାର ଲୁହା ବା କାଠର ଆଙ୍କୁଡ଼ି, ଛିଟିକିଣି, ଚିଙ୍କିଆ, ଧୁଡ଼ୁକା, ଝରକା ।
ଜୁଲୁଜୁଲାପୋକ—ଗ୍ରା. ବ. (ଫ + ଜ୍ୟୋତିରିଙ୍ଗଣ)ଯେଉଁପୋକ ରାତିରେ ଉଡ଼ି ଗତିକଲାବେଳେ ମିଟିମିଟି ଆଲୁଅ ଦିଶେ, ଖଦ୍ୟୋତ,ଜୁଲୁଜୁଲିଆ ପୋକ ।
ଜୁବିଷ୍କ—ପୁଂ. ବ. ଜଣେ ବିଖ୍ୟାତ ଶକ ରାଜା ।
ଜୁଷ୍—ବି॰. (ଜୁଷ+କ.କ୍ୱିପ୍) ସେବକ, ସହାୟ, ପ୍ରଣୟୀ, ପୂଜକ (ଗ୍ରା. ବ.) ଝୋଳ, ସୁରୁଆ, ଜୁଷ, ।
ଜୁଷାଣ—ପୁଂ. ବ. ଯଜ୍ଞୀୟ ମନ୍ତ୍ରଭେଦ ।
ଜୁଷ୍କ—ପୁଂ.ବ. କାଶ୍ମୀରର ଜଣେ ରାଜା ।
ଜୁଷ୍କକ—ପୁଂ. ବ. ଜୁଷ୍ ଦେଖ ।
ଜୁଷ୍ଟ—ବ.(ଜୁଷ୍+ର୍ମ.ତ) ପୂଜିତ,ସେବିତ ଉଚ୍ଛିଷ୍ଟ, ସନ୍ତୁଷ୍ଟ, ଉପକୃତ, ଉଚ୍ଛିଷ୍ଟ ।
ଜୁଷ୍ଟି—ସ୍ତ୍ରୀ. ବ. (ଜୁଷ୍+ତି) ପ୍ରୀତି ।
ଜୁଷ୍ୟ—କ୍ରି. ବି॰. (ଜୁଷ୍+ର୍ମ.ଯ) ପୂଜ୍ୟ, ଉପାସ୍ୟ, ସେବ୍ୟ ( କ୍ଲୀ. ବ.) ଅବଶ୍ୟସେବନ ।
ଜୁହା—ପ୍ରା. ଫ ହ୍ରି. ବ. ଜୁଆ ଦେଖ ।
ଜୁହାଁ—ପ୍ରା.(ଲଣ୍ଡଆ)ବ. ଉକୁଣି, (ଗ୍ରା.ବ) ଲୁଚିବା, ଗୋପନରେ ରହିବା, ଲୁଗ୍ ।
ଜୁହାଡ଼ି—ପ୍ରା.(ସିଂହ)ବ. ଜୁଆରି, ଦ୍ୟୂତାସକ୍ତ ବ୍ୟକ୍ତି ।
ଜୁହାର—ଗ୍ରା.ବ.(ଫ-ଅବହାର)ଦଣ୍ଡବତ୍, ନମସ୍କାର, ଅଭିବାଦନ ।
ଜୁହାରକରିବା—ଗ୍ରା. କ୍ରି. ନମସ୍କାର କରିବା, ଦଣ୍ଡବତ୍‌ହେବା, ହାତଯୋଡ଼ି ମିନତି କରିବା, ହାରମାନିବା, ଶଙ୍କିରହିବା । [ ଦେଖ ।
ଜୁହାରିବା—ଗ୍ରା. କ୍ରି. ଜୁହାର କରିବା
ଜୁହାଲ—ପ୍ରା. (କଳାହାଣ୍ଡି)ବ. ଶଗଡ଼ର ଜୁଆଳି ।
ଜୁହିଁବା—ଗ୍ରା. କ୍ରି. କୌଣସି ବ୍ୟକ୍ତିକୁ ଧରିବା ନିମିତ୍ତ ଛକି ରହିବା, ଲୁଚିକରି ରହିବା, କୌଣସି ମନ୍ତ୍ରଣା ବା କଥା ଶୁଣିବାକୁ ଗୋପନରେ ରହିବା ।
ଜୁହୁ—ବ.(ହୁ+ଣ.କ୍ୱିପ୍) ଯଜ୍ଞୀୟ କାଷ୍ଠବିଶେଷ।
ଜୁହ୍ନା—ପ୍ରା. (ଗଞ୍ଜାମ)ବି॰. ଜୁନା ଦେଖ ।
ଜୁହୁରାଣ—ପୁଂ.ବ.ଚନ୍ଦ୍ର, (ବି॰)କୌଟିଲ୍ୟକାରୀ, ଯେ ଅତ୍ୟନ୍ତ କୁଟିଳ ବ୍ୟବହାର କରେ । [ ହୁତାଗ୍ନି ।
ଜୁହୁବାନ—ପୁଂ.ବ. ଅଗ୍ନି, ବୃକ୍ଷ, କଠିନ
ଜୁହୂ—ସ୍ତ୍ରୀ. ବ. ପଲାଶକାଷ୍ଠନିର୍ମିତ ଅର୍ଦ୍ଧଚନ୍ଦ୍ରାକୃତି ଯଜ୍ଞପାତ୍ର ।
ଜୁହୂରାଣ—ପୁଂ.ବ.ଅଗ୍ନି,ଚନ୍ଦ୍ର,ଅଧ୍ୱର୍ଯ୍ୟୁ ।
ଜୁହୂବାନ୍—ପୁଂ. ବ. ଅଗ୍ନି ।
ଜୁହୋତି—ସ୍ତ୍ରୀ. ବ. ହୋମବିଶେଷ ।
ଜୁହ୍ୱାସ୍ୟ—ପୁଂ. ବ. ଜୁହୂରୂପ ମୁଖଯୁକ୍ତ ହୋମୀୟ ବହ୍ନି ।
ଜ—ସ୍ତ୍ରୀ॰ବ. ଆକାଶ, ସରସ୍ୱତୀ, ପିଶାଚୀ, ଜବନ, ତ୍ୱରାଗମନ, ଗମନ, (ବି॰) ଜବଯୁକ୍ତ ।
ଜୂକ—ଗ୍ରୀ. ଗ୍ରୀକ୍ ବ. ତୁଳାରାଶି ।
ଜୂଟ—ପୁଂ. ବ. (ଜୂଟ+କ.ଅ) ଶିବଙ୍କ ଜଟା ସମୂହ, ରାଶି, ଗଦା, ସ୍ତୂପ, ବନ୍ଧନ ।
ଜୂଟକ—କ୍ଲୀ.ବ. (ଜୂଟ+କ.ଅକ)କେଶବନ୍ଧ, ଜଟା, ଜୁଡ଼ା, ଚୁଟି, ରାଶି, ଗଦା, ସ୍ତୂପ, ସମୂହ ।
ଜୂତ—ବି॰. ଗତ, ଆକୃଷ୍ଟ ।
ଜୂତି—ସ୍ତ୍ରୀ. ବ. (ଜୂତ+ଭା.ତି) ବେଗ, ତଉର ଦୁଃଖିତାଭାବ, ଗନ୍ଧ ।
ଜୂତିକା—ସ୍ତ୍ରୀ. ବ. କର୍ପୂରବିଶେଷ ।
ଜୂଦା—ଯା. ବି॰. ପୃଥକ୍, ଅଲଗା ।
ଜୂନ—ଯା. ବ. ସିନ୍ଧୁ ଓ ଶତଦ୍ରୁ ନଦୀର ମଧ୍ୟବର୍ତ୍ତୀ ମରୁବାସୀ ଜାତିବିଶେଷ ।
ଜୂଭୁ—ଗ୍ରା. ବ. ଛଳ, ଓଜର ।
ଜୂର—ଗ୍ରା. ବ ଓ ବି॰. ଜୁର ଦେଖ ।
ଜୂର୍ଣ୍ଣ—ପୁଂ.ବ.ତୃଣଭେଦ, ଜୁଣ ଦେଖ ।
ଜୂର୍ଣ୍ଣାଖ୍ୟ—ବ.ତୃଣବିଶେଷ, ଜୁଣ ଦେଖ ।
ଜୂର୍ଣ୍ଣାହ୍ୱୟ—ପୁଂ. ବ' ଦେବଧାନ୍ୟ, ଦେଧାନ ।
ଜୂର୍ତ୍ତି—ସ୍ତ୍ରୀ.ବ.ବେଗ, ସ୍ୱୀରେଗ, ଆଦିତ୍ୟ, ଦେହ, ବ୍ରହ୍ମା, ବୋଧ, (ବି॰) ବେଗଯୁକ୍ତ, ଦ୍ରବଯୁକ୍ତ ।
ଜୂର୍ତ୍ତି—ସ୍ତ୍ରୀ. ବ.(ଜ୍ୱର + ଭା.ତି)ଉତ୍କଟ ଜ୍ୱର
ଜୂର୍ଯ୍ୟ—ବି॰. ଜୀର୍ଣ୍ଣ, ବୃଦ୍ଧ ।
ଜୂଷ—କ୍ଲୀ.ବ. ଜୁଷ ଦେଖ, କ୍ୱାଥ, ଅଣ, ଡ଼ାଲିଆଦିର ଅଣ, ସୁରୁଆ । [ ପୁଷ୍ଟ ।
ଜୂଷଣ—କ୍ଲୀ. ବ. ବୃକ୍ଷବିଶେଷ, ଧାତକୀ-
ଜୃମ୍ଭ—ବ.(ଜୃମ୍ଭ+ଭା.ଅ)ମୁଖବ୍ୟାଦାନ, ଆଁ କରିବା, ହାଇ, ସ୍ଫୁରଣ, ପ୍ରକାଶ୍ୟ, ଆଳସ୍ୟ, ଆଳସ୍ୟରୁ ଉତ୍ପନ୍ନ ଜଡ଼ତା ।
ଜୃମ୍ଭକ—ବି॰.ଜୃମ୍ଭାକାରକ, ଯେ ସର୍ବଦା ହାଇମାରେ, ନିଦ୍ରାକାରକ, ଆଳସ୍ୟ-

କର, (ବ) ରୁଦ୍ରଗଣ, ଦକ୍ଷଙ୍କ ପତ୍ନୀଙ୍କ କନ୍ୟାଦ୍ୱୟଙ୍କ ଗର୍ଭରେ କୃଶାଶ୍ୱ ମହର୍ଷିଙ୍କ ଔରସଜାତ ଶତପୁତ୍ର, ଅସ୍ତ୍ରବିଶେଷ ।

ଜୃମ୍ଭକାସ୍ତ୍ର—ବ. (ଜୃମ୍ଭକ+ଅସ୍ତ୍ର)କୃଶାଶ୍ୱମୁନିଙ୍କ ଶତପୁତ୍ର ଅଧିଷ୍ଠିତ ଅସ୍ତ୍ର, ଯେଉଁ ଅସ୍ତ୍ର ଜୃମ୍ଭଣ କରାଯାଏ, ଯେଉଁ ଅସ୍ତ୍ରରେ ଆହତ ଯୋଦ୍ଧୃଗଣ ନିଦ୍ରାରେ ଅବସନ୍ନ ହୋଇ ମରନ୍ତି ।

ଜୃମ୍ଭଣ—କ୍ଲୀ. ବ. ( ଜୃନ୍‌ଭ+ଭା.ଅନ ) ମୁଖବ୍ୟାଦାନ, ହାଇ, ଆଁ, ଜଡ଼ତା ।

ଜୃମ୍ଭିତ—ପୁଂ. ବିଂ. (ଜୃନ୍‌ଭ+କ.ଅତ୍‌) ବିକାଶପ୍ରାପ୍ତ, ପ୍ରସ୍ଫୁଟିତ, ପ୍ରକାଶ୍ୟମାନ, ହାଇ ମାରୁଥିବା ।

ଜୃମ୍ଭମାଣ—ବିଂ. ( ଜୃନ୍‌ଭ+କ.ଆନ ) ଯେ ହାଇ ମାରୁଅଛି, ଆଁ କରିଥିବା, ପ୍ରକାଶମାନ, (ସ୍ତ୍ରୀ) ଜୃମ୍ଭମାଣା ।

ଜୃମ୍ଭା—ସ୍ତ୍ରୀ. ବ. ( ଜୃନ୍‌ଭ+ଭା.ଆ) ଜୃମ୍ଭ ଦେଖ ।

ଜୃମ୍ଭିକା—ସ୍ତ୍ରୀ.ବ. (ଜୃମ୍ଭ+କ+ଆ)ହାଇ, ଆଳସ୍ୟ ରୋଗବିଶେଷ ।

ଜୃମ୍ଭିତ—ବିଂ.(ଜୃନ୍‌ଭ+କ.ତ) ବିସ୍ଫାରିତ, ହାଇ ମାରୁଥିବା, ମୁହଁ ଆଁ କରିବା, ଚେଷ୍ଟିତ, (ବ.ନ.ତ) ରମ୍ଭା, ସ୍ଫୋଟକ, ସ୍ତ୍ରୀମାନଙ୍କର ଇଚ୍ଛା ବା ଇଚ୍ଛା ।

ଜୃମ୍ଭିନୀ—ସ୍ତ୍ରୀ.ବ. (ଜୃନ୍‌ଭ+ଇନ୍‌+ଈ) ଏଲାପର୍ଣ୍ଣୀ ।

ଜେ—ଗ୍ରା. ଅବ୍ୟ. (ସଂ-ଜୟ) ନମସ୍କାର, ମହାଶୟ, ଆପଣଙ୍କୁ ଧନ୍ୟବାଦ, ଆପଣଙ୍କର ବା ଅମୁକଙ୍କର ଜୟହେଉ ।

ଜେଇଁ ଜାଇଁରଖିବା—ଗ୍ରା. କ୍ରି.(ସଂ-ଜୀବନ) ନାନା ଉପାୟ ଅବଲମ୍ବନପୂର୍ବକ କୌଣସି ପ୍ରାଣୀ ବା ବୃକ୍ଷଆଦିଙ୍କୁ ସଜୀବ ରଖିବା ।

ଜେଇଁବା—ଗ୍ରା.କ୍ରି.ଜୀଇଁବା,ଜୀଆଁଇବା ।

ଜେଉଠ—ଗ୍ରା.ବ.(ସଂ-ଜମ୍ବ ଜମ୍ବ) ଅଳ୍ପ-ଅମ୍ଳ ସ୍ୱାଦଯୁକ୍ତ ଫଳ ଓ ତାହାର ବୃକ୍ଷ ।

ଜେଜ—ଗ୍ରା. ପୁଂ ଓ ସ୍ତ୍ରୀ. ବ. ପିତାମହ, ପିତାମହୀ ।

ଜେଜବାପା—ଗ୍ରା. ପୁଂ. ବ. ପିତାମହ, ଗୋସାଇଁବାପା । [ ବୁଢ଼ିମା ।

ଜେଜିମା—ଗ୍ରା.ସ୍ତ୍ରୀ.ବ.ପିତାମହୀ,ଗୋସାଇଁମା

ଜେଜୀ—ସ୍ତ୍ରୀ. ବ. ପିତାମହୀ, ବୁଢ଼ିମା ।

ଜେଜୁର—ବ. ବୋମ୍ବାଇ ପ୍ରଦେଶର ଅନ୍ତର୍ଗତ ଗୋଟିଏ ନଗର ଓ ରେଲ ଷ୍ଟେସନ ।

ଜେଜେ—ଗ୍ରା.ଅବ୍ୟ.ଜେ ଦେଖ, (ଗ୍ରା.ବ) ପିତାମହ,ମାନ୍ୟବ୍ୟକ୍ତି, ଦେବତା, (ବିଂ) ମାନ୍ୟାର୍ହ, ପୂଜ୍ୟାର୍ହ ।

ଜେଜେକରିବା—ଗ୍ରା. କ୍ରି. ନମସ୍କାର ବା ପ୍ରଣାମ କରିବା ।

ଜେଜେକାର—ଗ୍ରା. ବ. ଧନ୍ୟବାଦାର୍ଥକ ସ୍ତୁତିଗାନ, ଜୟଜୟ ଧ୍ୱନି ।

ଜେଜେନାନୀ—ଗ୍ରା.ସ୍ତ୍ରୀ.ବ.ଜ୍ୟେଷ୍ଠାଭଗିନୀ, ପିଉସୀ, ଜେଜେବାପାଙ୍କ ଭଉଣୀ ।

ଜେଜେବାପା—ଗ୍ରା.ପୁଂ.ବ. ପିତାମହ ।

ଜେଜେମାଆ—ଗ୍ରା. ସ୍ତ୍ରୀ. ବ. ପିତାମହୀ ।

ଜେଠଓ୍ୱା—ବ. ଏକ ରାଜପୁତ ବଂଶ ।

ଜେଠା—ଗ୍ରା. ବ. ପିତାଙ୍କ ବଡ଼ ଭାଇ, ବଡ଼ବାପା, (ବିଂ) ଫାଜିଲ, ପ୍ରଗଲ୍‌ଭ ।

ଜେଠାଇ—ଗ୍ରା.ସ୍ତ୍ରୀ. ବ. ଜ୍ୟେଷ୍ଠପିତୃବ୍ୟଙ୍କ ସ୍ତ୍ରୀ, ବଡ଼ବାପାଙ୍କ ଭାର୍ଯ୍ୟା ।

ଜେଠୀ—ଗ୍ରା.ବ. ବଣିଆଁମାନଙ୍କ ବଂଶୋପାଧିବିଶେଷ, ସ୍ତ୍ରୀଙ୍କ ବଡ଼ ଭଉଣୀ, ବଡ଼ଶାଶୁ ।

ଜେଡ଼ଶାଶୁ—ଗ୍ରା.ସ୍ତ୍ରୀ.ବ.ସ୍ତ୍ରୀଙ୍କ ବଡ଼ଭଉଣୀ

ଜେଡ଼ଶ୍ୱଶୁର—ଗ୍ରା.ପୁଂ. ବ. ସ୍ୱାମୀଙ୍କ ବଡ଼ଭାଇ ।

ଜେଡ୍‌ତ୍ରା—ଗ୍ରା.ପୁଂ. ବ. ଜେଠା ଦେଖ ।

ଜେଡ଼୍‌ତାଶୁର—ଗ୍ରା. ପୁଂ. ବ. ଶ୍ୱଶୁରଙ୍କ ବଡ଼ଭାଇ ।

ଜେଣ୍ଡ୍‌ଆଭେସ୍ତା—ଯା.ବ.ପାରସ୍ୟମାନଙ୍କ ଧର୍ମଗ୍ରନ୍ଥ । [ ପୁତ୍ର ।

ଜେତସିଂହ—ପୁଂ. ବ. ରାଜା ଜୟମଲ୍ଲଙ୍କ

ଜେତବନ—କ୍ଲୀ.ବ.ପ୍ରାଚୀନ ଅଯୋଧ୍ୟାର ଗୋଟିଏ ଉପବନ ।

ଜେତବ୍ୟ—ବିଂ. (ଜି+ର୍ମ.ତବ୍ୟ)ଜେୟ, ଜୟଯୋଗ୍ୟ ।

ଜେତା—ପୁଂ.ବିଂ.(ଜି+କ.ତୃ)ଜୟକର୍ତ୍ତା, ଜୟୀ, (ବ) ବିଷ୍ଣୁ, ଜୟଲାଭକରିଥିବା ବ୍ୟକ୍ତି ।

ଜେତ୍ର—ବିଂ. ଜେତବ୍ୟ, ଜେୟ ।

ଜେନା—ଗ୍ରା. ବ. ରାଜପୁତ୍ର, କ୍ଷତ୍ରିୟମାନଙ୍କର ରକ୍ଷିତା ସ୍ତ୍ରୀର ଗର୍ଭଜାତ ସନ୍ତାନମାନଙ୍କ ଉପାଧି, ଶୂଦ୍ର ଓ ଖଣ୍ଡାୟତମାନଙ୍କ ଉପାଧି, ପାଣମାନଙ୍କର ବଂଶୋପାଧି ।

ଜେନାବଳି—ଗ୍ରା.ବ.ଗ୍ରାମଦେବୀବିଶେଷ ।

ଜେନାମଣି—ଗ୍ରା.ବ. ରାଜପୁତ୍ର, ଯୁବରାଜ

ଜେନ୍ତାକ—ପୁଂ. ବ. ସ୍ୱେଦବିଶେଷ ।

ଜେନ୍ୟ—ବିଂ. ଜୟଶୀଳ, ଜିଷ୍ଣୁ, ଉତ୍ପାଦ୍ୟ, ଜେତବ୍ୟ ।

ଜେନ୍ୟାବସୁ—ବିଂ.ଯାହାର ପ୍ରକୃତ ଧନ ଅଛି, (ପୁଂ. ବ.) ଇନ୍ଦ୍ର ।

ଜେବ—ଯା.ବ. ଜାମାର ପକେଟ, କୁରୁତାର ପକେଟ ।

ଜେବ୍ରା—ଯା. ବ. ଜିବ୍ରା ଦେଖ ।

ଜେମନ୍—ବିଂ. ଜୟଶୀଳ (ପୁଂ. ବ) ଜୟ, ଜୟସାମର୍ଥ୍ୟ ।

ଜେମନ—କ୍ଲୀ.ବ.(ଜିମ+ଭା.ଅନ)ଭକ୍ଷଣ, ଭୋଜନ, ଖାଇବା ।

ଜେମନାଲୟ—ବ.(୬ତତ୍‌)ଖାଦ୍ୟାଗାର, ହୋଟେଲ ।

ଜେମା—ଗ୍ରା. ସ୍ତ୍ରୀ. ବ. ରାଜକନ୍ୟା ।

ଜେମାଦେଈ—ଗ୍ରା. ସ୍ତ୍ରୀ. ବ. ଜେମା, ରାଜକନ୍ୟା ।

ଜେମାମଣି—ଗ୍ରା. ବ. ରାଜକନ୍ୟାଙ୍କ ପ୍ରତି ସ୍ନେହ ସମ୍ବୋଧନ ।

ଜେୟ—ବିଂ. (ଜି+ର୍ମ.ଯ) ଜେତବ୍ୟ, ଜୟକରିବାର ଯୋଗ୍ୟ ।

ଜେର୍—ଯା. ବ. ହିସାବରେ ପରପୃଷ୍ଠାର ପୂର୍ବପଥର ନିମ୍ନରେ ଲେଖାଥିବା ଜମାଖର୍ଚ୍ଚର ମୋଟହିସାବ ।

ଜେର୍‌କଡ଼ି—ଯା. ବ. ଘୋଡ଼ା ଲଗାମର ଓଠତଳ ଅଂଶରୁ ପେଟିତଳକୁ ଆସିଥିବା ଚର୍ମରଜ୍ଜୁରେ ଫଳଗ୍ନ ମୁଦଆ ।

ଜେରଗଡ଼ାଇବା—ଗ୍ରା. କ୍ରି. ହିସାବ

ଖାତାର ପୂର୍ବପୃଷ୍ଠାର ସର୍ବ ନମ୍ନରେ ମୋଟହୋଇଥିବା ସଂଖ୍ୟାକୁ ଅପର ପୃଷ୍ଠାର ଅଗ୍ରକୁ ଆଣି ଲେଖିବା ।

ଜେର୍‌ବନ୍ଧ—ଯା. ବ. ଘୋଟକର ମୁଖ ବା କୋମର ବନ୍ଧନୀ ।

ଜେରବାର୍—ଯା. ବଂ. ଆକାନ୍ତ, ବିପନ୍ନ, ହଇରାଣ, କ୍ଷତିଗ୍ରସ୍ତ, ବିପଦଗ୍ରସ୍ତ, ଋଣଭାରାକ୍ରାନ୍ତ, ଜର୍ଜରିତ, ନିଃଶେଷିତ, ଭାରଗ୍ରସ୍ତ,(ବି) ଅପବ୍ୟୟ, କ୍ଷତି ।

ଜେର୍‌ବାରକରା(ରେ)ଇବା—ଗ୍ରା. କ୍ରି. ଅନ୍ୟବ୍ୟକ୍ତିକୁ ଅପବ୍ୟୟରେ ପକାଇବା

ଜେର୍‌ବାରକରିବା—ଗ୍ରା. କ୍ରି. ଅନ୍ୟ ବ୍ୟକ୍ତିକୁ ଅପବ୍ୟୟରେ ପକାଇବା ।

ଜେର୍‌ବାର୍‌ହେବା—ଗ୍ରା.କ୍ରି.ବାଧ୍ୟହୋଇ ଅପବ୍ୟୟଗ୍ରସ୍ତ ହେବା ।

ଜେରବାରି—ଯା. ବଂ.ଯେ ଅନ୍ୟବ୍ୟକ୍ତିକୁ ଅପବ୍ୟୟଗ୍ରସ୍ତ କରାଏ,(ବି) ବାଧ୍ୟହୋଇ ଅପବ୍ୟୟ କରିବା ଅବସ୍ଥା ।

ଜେରା—ଗ୍ରା. ବ. ଯଥାର୍ଥ କଥା ଜାଣିବାପାଇଁ ଅପରପକ୍ଷ କର୍ତ୍ତୃକ ସାକ୍ଷ୍ୟ ପ୍ରତି କୂଟ ପ୍ରଶ୍ନ ।

ଜେରାକରିବା—ଗ୍ରା. କ୍ରି. ଅପରପକ୍ଷରେ ସାକ୍ଷୀକୁ କୂଟପ୍ରଶ୍ନ କରିବା ।

ଜେରାବଖାନା—ଗ୍ରା. ବ. ସୁନ୍ଦରବନର ଗୋଟିଏ ଅଂଶ ।

ଜେରାରେପଡ଼ିଯିବା—ଗ୍ରା. କ୍ରି. ବିପକ୍ଷ ପକ୍ଷର କୂଟପ୍ରଶ୍ନର ଉତ୍ତର ଦେବାକୁ ଯାଇ ଧାବରେଇ ଯିବା ।

ଜେରୁଜାଲମ୍—ଯା. ବ. ଯିଶୁଖ୍ରୀଷ୍ଟ ଯେଉଁ ନଗରରେ ଜନ୍ମ ହୋଇଥିଲେ, ଆସିଆ ମହାଦେଶସ୍ଥ ଗୋଟିଏ ନଗର, ଯିଶୁଖ୍ରୀଷ୍ଟଙ୍କ ଜନ୍ମସ୍ଥାନ ।

ଜେଲ୍—ଯା. ବ. କାରାଗାର,କଏଦଦଣ୍ଡ, କଏଦଦଣ୍ଡର ଆଜ୍ଞା ।

ଜେଲ୍ ୱାର୍ଡର୍—ଯା. ବ. ଜେଲ୍‌ଖାନାରେ କଏଦୀଙ୍କୁ ଜଗିବା ସିପାହି ।

ଜେଲ୍‌ଖଟିବା—ଗ୍ରା.କ୍ରି. କାରାଦଣ୍ଡ ଭୋଗ କରିବା ।

ଜେଲ୍‌ଖଲାସ୍—ଯା.ବଂ. କାରାମୁକ୍ତ, (ବି) କାରାମୁକ୍ତି ।

ଜେଲ୍‌ଖାନା—ଯା. ବ. ଜେଲ୍(ଦେଖ) ।

ଜେଲ୍‌ଦଣ୍ଡ—ଗ୍ରା. ବ. କାରାଦଣ୍ଡ, କଏଦଦଣ୍ଡ, କାରାବାସ ଦଣ୍ଡ ।

ଜେଲ୍‌ଦେବା—ଗ୍ରା. କ୍ରି. ଆସାମୀକୁ କାରାଦଣ୍ଡ ଭୋଗକରିବାକୁ ପଠାଇବା, କାରାଦଣ୍ଡ ଆଦେଶ ଦେବା ।

ଜେଲ୍‌ପାଇବା—ଗ୍ରା. କ୍ରି. କାରାଦଣ୍ଡରେ ଦଣ୍ଡିତ ହେବା,କାରାଦଣ୍ଡଭୋଗ କରିବା

ଜେଲର—ଯା. ବ.ଜେଲ୍‌ଖାନାର ପ୍ରଧାନ କର୍ମଚାରୀ ବା ଅଧ୍ୟକ୍ଷ ।

ଜେଲ୍—ଯା. ବ. ଦେଶ ବା ରାଜ୍ୟର କ୍ଷୁଦ୍ର କ୍ଷୁଦ୍ର ବିଭାଗ ।

ଜେଲାଟିନ୍—ଯା.ବ.ଖାଦ୍ୟଜନ୍ତୁ ଓ ବିଶେଷତଃ ମାଛଙ୍କ ହାଡ଼ କାତ ଓ ଚମଡ଼ାକୁ ସିଝାଇ ପ୍ରସ୍ତୁତକରିବା ଏକପ୍ରକାର ସ୍ୱଚ୍ଛ ଓ ଚକଚକିଆ ଅଠା ।

ଜେଶର(ଲ)ମୀର—ଗ୍ରା.ବ.କଚ୍ଛପ୍ରଦେଶର ଜଣେ ବିଖ୍ୟାତ ଦସ୍ୟୁ ।

ଜେସର—ଗ୍ରା. ବ. କଚ୍ଛପ୍ରଦେଶର ଧର୍ଙ୍ଗ ଜାତିବିଶେଷ ।

ଜେହ୍ଲ—ଗ୍ରା.ବ. ବେହାର ପ୍ରଦେଶରେ ଚମ୍ପାରଣ ଜିଲାର ଗୋଟିଏ ସହର ।

ଜେହଲ—ବ. କାରାଗାର, ଜେଲ୍ ।

ଜୈଗୀଷବ୍ୟ—ପୁଂ. ବ. ମହାଭାରତୋକ୍ତ ଅଦ୍ଭୁତ କର୍ମ,ଯୋଗବିତ୍ ମୁନିବିଶେଷ ।

ଜୈତାପୁର—ଗ୍ରା.ବ. ବୋମ୍ବାଇ ପ୍ରଦେଶର ଗୋଟିଏ ବନ୍ଦର ଓ ଦୁର୍ଗ ।

ଜୈତ୍ର—ପୁଂ. ବଂ. (ଜି + ତ୍ର) ଜେତା, ଜୟଶୀଳ, ଜୟକାରକ, (ବି) ଔଷଧ ବିଶେଷ, ପାରଦ, ରଥବିଶେଷ ।

ଜୈତ୍ରପାଳ—ପୁଂ.ବ.ଦେବଗିରିର ରାଜା, ଶ୍ରୀକୃଷ୍ଣ ରାଜର ପିତା ।

ଜୈତ୍ରମଣି—ବ. (କ.ଧା) ଜୟକ୍ଷମ ମଣି, ଜୟକାରକ ମଣି, ଯେଉଁ ମଣିକୁ ପିନ୍ଧିଥିବା ବ୍ୟକ୍ତି ନଷ୍ଟେ ଶତ୍ରୁକୁ ଜୟକରେ ।

ଜୈତ୍ରରଥ—ବଂ. ( ଜୈତ୍ର+ରଥ ) ଜୟଶୀଳ ।

ଜୈତ୍ରୀ—ସ୍ତ୍ରୀ. ବ. ଜୟନ୍ତୀବୃକ୍ଷ, ଜାଞ୍ଚକୋଷ,(ସ୍ତ୍ରୀ.ବଂ)ଜୟଯୁକ୍ତ, ଜୟଶୀଳା ।

ଜୈନ—ପୁଂ. ବ. (ଜିନ+ଅ) ଜିନୋପାସକ, ଜିନଙ୍କ ପ୍ରବର୍ତ୍ତିତ ଧର୍ମ, (ବଂ) ଜିନମୁନି ସମ୍ବନ୍ଧୀୟ ।

ଜୈନଧର୍ମ—ବ.ଜିନ ବା ଋଷଭଙ୍କ କର୍ତ୍ତୃକ ପ୍ରବର୍ତ୍ତିତ ଧର୍ମ ।

ଜୈନୀ—ଗ୍ରା. ବ. ଜିନମତାବଲମ୍ବୀ ।

ଜୈନେନ୍ଦ୍ର—ବଂ. ବ୍ୟାକରଣ ରଚୟିତା ଏବଂ ଅଷ୍ଟାଦଶଆଦ୍ୟ ଶାବ୍ଦିକଙ୍କ ମଧ୍ୟରୁ ଏକତମ ।

ଜୈନେନ୍ଦ୍ର ବ୍ୟାକରଣ—ବ. ଖଣ୍ଡିଏ ପ୍ରାଚୀନ ସଂସ୍କୃତ ବ୍ୟାକରଣ ।

ଜୈନ୍ୟ—ବଂ.(ଜୈନ+ଯ)ଜୈନ ସମ୍ବନ୍ଧୀୟ ।

ଜୈପାଳ—ପୁଂ. ବ. ଜୈପାଳବୃକ୍ଷ, କନକାଚଳ (କ୍ଲୀ.ବ.)ଜୟପାଳର ବୀଜ, କନକାମ୍ଳି ।

ଜୈମିନି—ପୁଂ. ବ. ଜଣେ ମୁନି ।

ଜୈମିନିଦର୍ଶନ—କ୍ଲୀ. ବ. ଜୈମିନିଋଷିଙ୍କ କୃତ ବେଦର ପୂର୍ବ ମୀମାଂସାନାମକ ଦର୍ଶନ ।

ଜୈମିନିଭାରତ—କ୍ଲୀ. ବ. ( ୬ତତ୍ ) ମହର୍ଷିଜୈମିନି ପ୍ରଣୀତ ଭାରତସଂହିତା ।

ଜୈମିନୀୟ—ବଂ. ଜୈମିନି ସମ୍ବନ୍ଧୀୟ, (ପୁଂ. ବ.) ସାମବେଦର ଏକ ଶାଖା ।

ଜୈମୂତ—ବଂ. (ଜୀମୂତ+ଅ) ଜୀମୂତ ମୁନି ସମ୍ବନ୍ଧୀୟ ।

ଜୈୟ—ପୁଂ.ବ.ପ୍ରସିଦ୍ଧ ମହାଭାଷ୍ୟ ଟୀକାକାର ।

ଜୈବ—ବଂ.(ଜୀବ+ଅ) ଜୀବସମ୍ବନ୍ଧୀୟ, ପ୍ରାଣିଜ, ଜାନ୍ତବ, ବୃହସ୍ପତିସମ୍ବନ୍ଧୀୟ, ବୃହସ୍ପତିଙ୍କ କ୍ଷେତ୍ର ମୀନ ଓ ଧନୁରାଶି, ପୁଷ୍ୟ ।ନକ୍ଷତ୍ର, ପୁଷ୍ୟା ନକ୍ଷତ୍ରପାତ ।

ଜୈବନ୍ତ୍ୟାୟନ—ପୁଂ. ବ. ଜଣେ ଯଦୁବଂଶ ପ୍ରବର୍ତ୍ତକ ।

ଜୈବନ୍ତ୍ୟାୟନ—ବଂ ଜୀବନ୍ତର ଅଦୂର ଦେଶାଦ ।

ଜୈବନ୍ତି—ପୁଂ.ବ.(ଜୀବନ୍ତ+ଇ) ଜୀବନ୍ତଙ୍କ ଅପତ୍ୟ ।

ଜୈବାତୃକ—ପୁଂ. ବ. (ଜୀବ+କ. ଅନ୍ତୁକ) ଚନ୍ଦ୍ର, କର୍ପୂର, ପୁତ୍ର, ଔଷଧ,

(ବିଂ) (କ. ଅତ୍ୟନ୍ତ) ଦୀର୍ଘଜୀବୀ, କୃଶ ।
ଜୈବ—ବିଂ.(ଜୀବ+ଇ) ଜୀବର ଅଦୂର ଦେଶାଦି ।
ଜୈବେୟ—ପୁଂ. ବି. (ଜୀବ+ଏୟ) ବୃହସ୍ପତିଙ୍କର ପୁତ୍ର,(ବିଂ.) ଜୀବ ସମ୍ବନ୍ଧୀ
ଜୈଷ୍ଣବ—ବିଂ.(ଜିଷ୍ଣୁ+ଅ)ଜିଷ୍ଣୁସମ୍ବନ୍ଧୀୟ, ଅର୍ଜୁନସମ୍ବନ୍ଧୀୟ ।
ଜୈହ୍ମ୍ୟ—କ୍ଲୀ. ବି. (ଜିହ୍ମ+ଯ) ଜିହ୍ମତା, କୁଟିଳତା ।
ଜୈହ୍ୱ୍ୟ—ବିଂ.(ଜିହ୍ୱା+ଯ)ଜିହ୍ୱା ସମ୍ବନ୍ଧୀୟ
ଜୋ—ଗ୍ରା. ବି ସୁବିଧା, ଚାଷବପନାଦିର ପ୍ରକୃତ ସମୟ,ଜୋ ଓ କାଠି,ତନ୍ତୁବାୟ କର୍ତ୍ତୃକ ବ୍ୟବହୃତ ଯଷ୍ଟି ଦଣ୍ଡ ବିଶେଷ, ଯଦ୍ଦ୍ୱାରା ଟାଣୀ ଓ ଭରଣୀ ସୂତାକୁ ଟାଣି ରଖାଯାଏ ।
ଜୋଇ—ପ୍ରା. (ଯାଜ) ବି. ଜୁଇଗାଡ଼, ଚିତାଗର୍ତ୍ତ,(ପ୍ରା.ସମ୍ବ.ବି.)ଜୋଏ ଦେଖ
ଜୋଇବା—ଗ୍ରା. କ୍ରି. ଜୁଆଇବା ଦେଖ ।
ଜୋଏ—ପ୍ରା. (ସମ୍ବ) ବି. ଅଗ୍ନି, ନିଆଁ, ଆଲୋକ ।
ଜୋକ—ଗ୍ରା.ବି. ଜଳୌକା,ରକ୍ତଶୋଷକ ଜଳଚର ପଦହୀନ କୀଟବିଶେଷ ।
ଜୋକା—ଗ୍ରା. ବି. ଶର୍ଦ୍ଦିହେତୁ ଦାନ୍ତମୂଳରେ ହେବା ଫୁଲ, ଜୋକଆ, ଦୁଇଆଡ଼େ ଚକ୍ରାଗ୍ର ଏକପ୍ରକାର ଲୁହାକଣ୍ଟା
ଜୋକଆ—ଗ୍ରା.ବି. ଜୋକାଦେଖ,ଓଲୁଆ
ଜୋଖ—ଗ୍ରା.ବି. ତୁଳନା,ଉପମା,ଓଜନ, ତୌଲ,ସନ୍ଧିସ୍ଥଳ, (ବିଂ) ତୁଲ୍ୟ, ସଦୃଶ ।
ଜୋଖମ୍—ଗ୍ରା. ବି. ବିପଦ, ଆପଦ, ଦୁଃଖ, ଦାୟିତ୍ୱ, କଷ୍ଟ ।
ଜୋଖମ୍ଦାର—ଗ୍ରା. ବିଂ. ଯାହା ଉପରେ କୌଣସି ଦାୟିତ୍ୱ ଥାଏ,ଦାୟୀ(ବ୍ୟକ୍ତି), ଦାୟିତ୍ୱପୂର୍ଣ୍ଣ (କାର୍ଯ୍ୟ), ଯେ ବହୁକଷ୍ଟ ସହେ ।
ଜୋଖା—ଗ୍ରା. ବି. ମୋଟାମୋଟି ପରିମାଣ, ମୋଟାମୋଟି ମାପ, ହିସାବ ମିଳାଇବା,ଏକପଦାର୍ଥରେ ଅନ୍ୟପଦାର୍ଥ ଯୋଗ କରିବା,ତୁଳନାକରଣ,ଜୋଟ, ମେଳ, ଜୋକା ଦେଖ, ( ଗ୍ରା. ବିଂ ) ତୁଲ୍ୟ, ସଂଯୁକ୍ତ, ସଦୃଶ ।
ଜୋଖାଜୋଖି— ଗ୍ରା. ବି. ଜୋଡ଼ିବା କାର୍ଯ୍ୟାଦି ।
ଜୋଖିବା—ଗ୍ରା. କ୍ରି. ଗଣନା କରିବା, ହିସାବ ମିଳାଇବା, ମୋଟାମୋଟି ପରିମାଣ କରିବା,ଉପମାଦେବା,ଜୋଡ଼ିବା, ତୁଳନା କରିବା ।
ଜୋଗଣ—ଗ୍ରା. ବି. ରାଜାଙ୍କର ଭୋଜନ, ମଣୋହି, ( ବିଂ ) ରାଜାଙ୍କ ଭୋଜନର ସାମଗ୍ରୀରୂପେ ବ୍ୟବହୃତ ।
ଜୋଗଣିଆ—ଗ୍ରା. ବି. ରାଜାଙ୍କ ପାଚକ, ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ସେବକ ବିଶେଷ, ଯେଉଁ ବ୍ୟକ୍ତି ସୁଆର ବା ପାଚକମାନଙ୍କୁ କାଠପରିବା ବାଟାମସଲା-ଆଦି ଯୋଗାଏ ।
ଜୋଗସାଜସ—ଗ୍ରା. ବି. ଏକମେଳ, ସଲ୍ଲା,(ବିଂ)ମେଳବାନ୍ଧି କରାଯିବା କର୍ମ ।
ଜୋଗା—ଗ୍ରା. ବିଂ. ପାରଙ୍ଗମ, ଯୋଗ୍ୟ, ଉପଯୁକ୍ତ (ବ୍ୟକ୍ତି), ଗୁଣବାନ୍,ବିଦ୍ୱାନ୍ ।
ଜୋଗାଡ଼—ଗ୍ରା. ବି, କୌଣସି ବିଷୟର ଆୟୋଜନ; ଉପାଦାନ ସଂଗ୍ରହ, କନ୍ୟା ବାପଘରୁ ଶାଶୂ ଘରକୁ ଯିବାସମୟରେ ତା ସଙ୍ଗେ ପଠାଯିବା ସାମଗ୍ରୀସମୂହ, ଉଚିତ ବନ୍ଦୋବସ୍ତ, ଚେଷ୍ଟା, ଦେବତା ଓ ରାଜାଆଦିଙ୍କ ଖାଦ୍ୟନିମନ୍ତେ ପ୍ରସ୍ତୁତ ବିବିଧ ଉପକରଣ ବା ସଜ୍ଜା, ଉପାୟ ।
ଜୋଗାଡ଼କରିବା—ଗ୍ରା. କ୍ରି. ଉପକରଣ ସଂଗ୍ରହ କରିବା, କୌଣସି କାର୍ଯ୍ୟସାଧନର ଉପାୟମାନ କରିବା, ଉଦ୍ୟମ କରିବା ।
ଜୋଗାଡ଼ଯନ୍ତ୍ର—ଗ୍ରା. ବି. କୌଣସି କାର୍ଯ୍ୟ ନିମନ୍ତେ ପ୍ରୟୋଜନୀୟ ସମସ୍ତ ଉପାୟ ଓ ଉପକରଣ, ବନ୍ଦୋବସ୍ତ, ବ୍ୟବସ୍ଥା, ଉଦ୍ୟମ, ଚେଷ୍ଟା ।
ଜୋଗାଡ଼ିବା— ଗ୍ରା. କ୍ରି. କୌଣସି କାର୍ଯ୍ୟପାଇଁ ସମସ୍ତ ଉପକରଣ ପ୍ରସ୍ତୁତ କରି ରଖିବା,ଯୋଗାଡ଼ କରିବା,ବ୍ୟବସ୍ଥା କରିବା, ରନ୍ଧନ ପୂର୍ବରୁ ରନ୍ଧନ ସାମଗ୍ରୀ ସମସ୍ତ ପ୍ରସ୍ତୁତକରି ରଖିବା ।
ଜୋଗାଜୋଗ—ଗ୍ରା. ବି. ଏକଯୋଗ, ଏକମେଳ, ଜୋଗସାଜସ, ସୁଯୋଗ, ସୁବିଧା ।
ଜୋଙ୍ଗ—କ୍ଲୀ.ବି. କାଳୀୟକ ଗନ୍ଧଦ୍ରବ୍ୟ-ଭେଦ, କୃଷ୍ଣାଗୁରୁ । [ ଚନ୍ଦନ ।
ଜୋଙ୍ଗକ—କ୍ଲୀ. ବି. କୃଷ୍ଣାଗୁରୁ, ଅଗୁରୁ
ଜୋଙ୍ଗଟ—ପୁଂ.ବି. ଗର୍ଭିଣୀର ଅଭିଳାଷ ।
ଜୋଟ୍—ଗ୍ରା. ବି. ଜୁଟ୍ ଦେଖ ।
ଜୋଟ୍ଖାଇବା—ଗ୍ରା. କ୍ରି. ବହୁପଦାର୍ଥ ଏକତ୍ର ଘନଭାବରେ ମିଳିଯିବା, ଅଭିନ୍ନ-ଭାବରେ ମିଳିତ ହେବା, ସ୍ତ୍ରୀ ପୁରୁଷ ସଙ୍ଗମଦ୍ୱାରା ସମ୍ମିଳିତ ହେବା,ବିପରୀତ ଦିଗରୁ ପରସ୍ପର ଆସି ବାରୁଡ଼ିବା, (ଦୁଇଜଣଙ୍କମତ) ଏକହେବା ।
ଜୋଟ—ବି. (ଜୁଟ+ଅ) ଏକତ୍ର ସଂଯୋଗ, ସମ୍ମିଳନ, ସଂହତ, ସଙ୍ଗମ, ଦଳ ।
ଜୋଟକରା(ରେ)ଇବା—ଗ୍ରା.କ୍ରି. ଗବାଦି ପଶୁସମୂହଙ୍କୁ ଏକତ୍ର କରାଇ ସଙ୍ଗମ କରାଇବା, ଦୁଇବସ୍ତୁକୁ ମିଳେଇବା ।
ଜୋଟଜାଟ—ଗ୍ରା. ବି. ଯୋଗାଡ଼ଯନ୍ତ୍ର, ମିଳାମିଶା, ପରସ୍ପର ମିଳନ,ବହୁ ପଦାର୍ଥଙ୍କୁ ଏକତ୍ର ସଂଗ୍ରହକରଣ, ଜୁଟାଜୁଟି, ପ୍ରେମିକ ପ୍ରେମିକାଙ୍କ ମିଳନ ଘଟାଇବା, ଜାରକର୍ମରେ ପରସ୍ତ୍ରୀ ଜୁଟାଇବା ।
ଜୋଟଣ—ଗ୍ରା. ବି. ମିଳନ, ଜୁଟିବା, ଯୋଚିବା,ସଂଯୋଜିବା,ଜୁଟାଇବା କର୍ମ ।
ଜୋଟବାନ୍ଧିବା—ଗ୍ରା. କ୍ରି. (ବହୁ ପଦାର୍ଥ ବା ଜୀବ) ଏକତ୍ର ହେବା, (ଦୁଇଜୀବ) ସଙ୍ଗମାର୍ଥ ଏକତ୍ର ହେବା,ଘନୀଭୂତହେବା
ଜୋଟା—ଗ୍ରା. ବି. ମିଳନ, ସଂଯୋଗ, ଜୁଟିବା,(ବିଂ) ସଂଯୁକ୍ତ,ମିଳିତ,ସଂଘଟିତ ।
ଜୋଟା(ଟେ)ଇବା—ଗ୍ରା. କ୍ରି. ଜୁଟାଇବା ଦେଖ ।
ଜୋଠାଣୀ—ପ୍ରା. (ବସ୍ତର)ବି. ବଡ଼ଯାଆ ।
ଜୋଡ଼—ଗ୍ରା. ବି. ମିଳନ, ଯୋଡ଼ା,ଯୁଗ୍ମ, ଯୁଗଳ, ଏକତ୍ରାବସ୍ଥିତ ପୁରୁଷ ଓ ସ୍ତ୍ରୀ, ଦମ୍ପତି,ଇତର ଜନ୍ତୁ ମିଥୁନଙ୍କ ସଙ୍ଗମ, ଧୋଡ଼ଗୁଡ଼ର, (ଗଣିତ) ଯୋଗ, ବହୁ-ସଂଖ୍ୟାର ମିଶ୍ରଣ,ଦୁଇଟି ପୃଥକ୍ ପଦାର୍ଥ

ବା ଅଂଶକୁ ଏକତ୍ର ଯୋଗ କରିବା, ଦୁଇଟି ପଦାର୍ଥ ବା ଅଂଶ ଯୁକ୍ତହେବା ସ୍ଥାନ, ବହୁଦୂର ବିସ୍ତୃତ ଜଳାଶୟ, ଶାଖାନଦୀ, ଉପନଦୀ, (ପ୍ରା. ପୁରି) ପାଣି ନଡ଼ିଆ ଓ ଖୁରୁଡ଼ ନଡ଼ିଆର ପରିମାଣ ବିଶେଷ, (ବିଂ) ସମସଂଖ୍ୟକ(ସଂଖ୍ୟା)।

ଜୋଡ଼ଖାଇବା—ଗ୍ରା. କ୍ରି. (ଦୁଇବସ୍ତୁ), ଏକତ୍ର ସଂଯୁକ୍ତ ବା ସମ୍ମିଳିତ ହେବା, (ସ୍ତ୍ରୀ ପୁରୁଷ) ସଙ୍ଗମ କରିବା, (ଇତର ପ୍ରାଣୀ ମୈଥୁନ) ହଳୁଆପଡ଼ିବା।

ଜୋଡ଼ଛଡ଼ା(ଡ଼େ)ଇବା—ଗ୍ରା.କ୍ରି. ଦୁଇଟି ସଂଯୁକ୍ତ ବସ୍ତୁ ବା ଜୀବଙ୍କୁ ପୃଥକ୍ କରାଇବା।

ଜୋଡ଼ତୋଡ଼—ଗ୍ରା. ବି. କୌଶଳ,ଛଳକପଟ, ଆୟୋଜନ, ଯୋଡ଼ିବା ଓ ଭାଙ୍ଗିବାକ୍ରିୟା। [ଦେଖ।

ଜୋଡ଼ପଡ଼ିବା—ଗ୍ରା. କ୍ରି. ଜୋଡ଼ଖାଇବା

ଜୋଡ଼ଫିଟିବା—ଗ୍ରା. କ୍ରି. ଦୁଇଟି ବସ୍ତୁ ବା ଜୀବ ଛଡ଼ାଛଡ଼ି ହୋଇଯିବା।

ଜୋଡ଼ବାନ୍ଧିବା—ଗ୍ରା.କ୍ରି. ଜୀବ ବା ବସ୍ତୁକୁ ଜୋଡ଼ା ଜୋଡ଼ା କରିବା, (ଦୁଇଜଣ) ଏକତ୍ର ସମ୍ମିଳିତ ହେବା।

ଜୋଡ଼ବିଜୋଡ଼—ଗ୍ରା. ବିଂ. ଜୋଡ଼ା ଜୋଡ଼ା ହୋଇ ନ ଥିବା,ଏକଜୋଡ଼ାର ଗୋଟିଏ ବସ୍ତୁ ଅନ୍ୟଜୋଡ଼ାର ବସ୍ତୁସଙ୍ଗେ ରଖାଯାଇଥିବା, ସମ ଓ ଅସମ (ବସ୍ତୁ), ଅସମ।

ଜୋଡ଼ମୁହଁ—ଗ୍ରା. ବି. ଜୋଡ଼ା ହୋଇଥିବା ଦୁଇଟି ବସ୍ତୁର ସମ୍ମିଳନ ସ୍ଥାନ।

ଜୋଡ଼ହସ୍ତ—ଗ୍ରା. ବି. ପ୍ରାର୍ଥନା କରିବା ଉପଲକ୍ଷ୍ୟରେ ଦୁଇହାତର ଅଞ୍ଜଳି ବନ୍ଧନ, ହାତଯୋଡ଼ିବା।

ଜୋଡ଼ା—ଗ୍ରା. ବି. ଯୁଗ୍ମ, ଯୁଗଳ, ଦୁଇଟି ସମଭାବାପନ୍ନ ବସ୍ତୁ ବା ଜୀବ, ଦମ୍ପତି, ଜୋଡ଼ିବା, ଦୁଇଟି ବସ୍ତୁକୁ ସଂଯୁକ୍ତ କରିବା, ଏକହଳ ପକ୍ଷୀ, ଡାହାଣ ଓ ବାମ ଅଙ୍ଗରେ ବ୍ୟବହାର୍ଯ୍ୟ ବସ୍ତ୍ରଦ୍ୱୟ, ଜୋତା ଓ ଅଳଙ୍କାର ପ୍ରଭୃତି,ଅଧୋବାସ ଉତ୍ତରୀୟ ବସ୍ତ୍ର, ଧୋତି ଚଦର, ଯମଜ, (ବିଂ) ଏକତ୍ର ଯୁକ୍ତହୋଇଥିବା,ଜାଉଁଳି, ଯମଜ, ଝଲାହୋଇ ସଂଯୁକ୍ତ ହୋଇଥିବା, ଦୁଇସଂଖ୍ୟକ।

ଜୋଡ଼ାଇ—ଗ୍ରା. ବି. ଗାନ୍ଥୁନି, ମାଟି ବା ଚୂନଦ୍ୱାରା ଇଟା ବା ପଥର ବସାଇବା, (ବିଂ) ଗାନ୍ଥୁନି କରାଯାଇଥିବା।

ଜୋଡ଼ା(ଡ଼େ)ଇବା—ଗ୍ରା.କ୍ରି. ଅନ୍ୟଦ୍ୱାରା ଯୋଡ଼ିବାକ୍ରିୟା କରାଇବା,ଦୁଇଜନ୍ତୁଙ୍କୁ ଏକତ୍ର ସଙ୍ଗମ କରାଇବା, ଜୋଡ଼ା ଜୋଡ଼ାକରି ସଜ୍ଜିତ କରିବା,ଜୋଡ଼ିବା

ଜୋଡ଼ାଏ—ଗ୍ରା. ବି ଓ ବିଂ. ଦୁଇଟା, ଦୁଇଟାମାତ୍ର।

ଜୋଡ଼ାକ—ଗ୍ରା.ବି.ବିଂ. ଜୋଡ଼ାଏ ଦେଖ।

ଜୋଡ଼ାକୁଜୋଡ଼ା—ଗ୍ରା. କ୍ରି. ବିଂ. ଜୋଡ଼ା ଜୋଡ଼ା ଦେଖ।

ଜୋଡ଼ାଜୋଡ଼ା—ଗ୍ରା. କ୍ରି. ବିଂ. ଦୁଇଟି ଲେଖାଏଁ ହୋଇ ସଙ୍ଗ ହୋଇଥିବା।

ଜୋଡ଼ାଜୋଡ଼ି—ଗ୍ରା. ବି. ଦୁଇଟି ଭଗ୍ନ ଅଂଶ ବା ପଦାର୍ଥକୁ ଏକତ୍ର କରିବା, ପୃଥକ ପୃଥକ ଦୁଇବସ୍ତୁ ବା ଉପକରଣର ଏକତ୍ରୀକରଣ, ଭଗ୍ନ ବା ଛିନ୍ନ ପଦାର୍ଥକୁ ମରାମତି କରିବା, (ଗ୍ରା. ବିଂ) ମରାମତି ହୋଇଥିବା,ନାନା ଖଣ୍ଡ ଏକତ୍ର କରାଯାଇଥିବା।

ଜୋଡ଼ାଭଉଣୀ—ଗ୍ରା. ବି. ଏକ ପୁରୁଷର ଥିବା ଦୁଇଟି ସ୍ତ୍ରୀ।

ଜୋଡ଼ାମସାଲ—ଗ୍ରା. ବି. ରାଜାଆଦିଙ୍କ ଗମନରେ ବାମ ଦକ୍ଷିଣ ପାଖରେ ଜଳାଯାଉଥିବା ମସାଲ ବା ଦିହୁଡ଼ି।

ଜୋଡ଼ାମୁହଁ—ଗ୍ରା.ବି. ଜୋଡ଼ମୁହଁ ଦେଖ।

ଜୋଡ଼ାଶଙ୍ଖ—ଗ୍ରା. ବି. ଜଣକ ଦ୍ୱାରା ଏକତ୍ର ନିନାଦିତ ଶଙ୍ଖଯୁଗ୍ମ।

ଜୋଡ଼ି—ଗ୍ରା. ବି. ଯୁଗ୍ମ, ଦ୍ୱୟ, ଦୁଇଟି ପଦାର୍ଥ, ବଗିଗାଡ଼ିରେ ଲଗିବା ଦୁଇଟି ଘୋଡ଼ା, ଘୋଡ଼ାଆଦି ଏକସମୟରେ ଦୁଇ ପଛଗୋଡ଼ରେ ମାରିବା ନାତ, ଲମ୍ବ ଅଥଚ କମ୍‌ଚୌଡ଼ା ଜଳାଶୟ, ଜାଉଁଳି।

ଜୋଡ଼ିଏ—ଗ୍ରା.ବି.ବିଂ. ଜୋଡ଼ାଏ ଦେଖ।

ଜୋଡ଼ିକବାଟ—ଗ୍ରା. ବି. ଦୁଇଟି ଫାଳଥିବା କବାଟ।

ଜୋଡ଼ିକ(କୁ)ଜୋଡ଼ି—ଗ୍ରା. କ୍ରି. ବିଂ. ଯୁଗ୍ମ ଯୁଗ୍ମ ହୋଇ, ଏକଜୋଡ଼ା ପରେ ଅନ୍ୟ ଯୋଡ଼ା।

ଜୋଡ଼ିଘୋଡ଼ା—ଗ୍ରା.ବି. ଜୋଡ଼ିଗାଡ଼ିରେ ଲଗିବା ଅଶ୍ୱଯୁଗଳ।

ଜୋଡ଼ିଜାଡ଼ିଦେବା—ଗ୍ରା. କ୍ରି. ଭାଙ୍ଗିଯାଇଥିବା ଅନେକ ସ୍ଥାନ ବା ପଦାର୍ଥକୁ ଜୋଡ଼ିବା।

ଜୋଡ଼ିଜୋଡ଼ି—ଗ୍ରା.କ୍ରି. ବିଂ. ଜୋଡ଼ିକ ଜୋଡ଼ି ଦେଖ।

ଜୋଡ଼ିନାଗରା—ଗ୍ରା. ବି. ଏକସମୟରେ ଜଣେ ବାଦକର ଦୁଇହାତ ଦ୍ୱାରା ବାଦିତ ହାଣ୍ଡି ଆକୃତି ଆନଦ୍ଧ ବାଦ୍ୟଦ୍ୱୟ

ଜୋଡ଼ିପୋଇଲି—ଗ୍ରା.ବି.ପ୍ରଭୁ ବା ସାଆନ୍ତାଣୀଙ୍କ ସେବାରେ ଖଟିବା ଦାସୀଦ୍ୱୟ।

ଜୋଡ଼ିବା—ଗ୍ରା. କ୍ରି. ଦୁଇଟି ପଦାର୍ଥ ବା ଅଂଶକୁ ଏକତ୍ର ସଂଯୁକ୍ତ କରିବା, ଏକାଧିକ ସଂଖ୍ୟାକୁ ମିଶାଇବା, ହିସାବ ମିଳାଇବା, ଗୀତ ବା ପଦ୍ୟାଦି ରଚନା କରିବା, ପୃଥଗବସ୍ଥିତ ଉପାଦାନମାନଙ୍କୁ ଏକତ୍ର ସଂଗ୍ରହ କରିବା, ଭାଙ୍ଗିଯାଇଥିବା ପଦାର୍ଥର ଅଂଶକୁ ଅଠାଆଦି ଦ୍ୱାରା ସଂଯୋଜିତ କରିବା ବା ଝଳାବା।

ଜୋଡ଼ିବେତ—ଗ୍ରା. ବି. ଜାଉଁଳିବେତ, ଦଣ୍ଡିତ ବ୍ୟକ୍ତିଙ୍କୁ ପ୍ରହାରକରିବା ନିମନ୍ତେ ଏକତ୍ର ବନ୍ଧା ହୋଇଥିବା ଦୁଇଟି ବେତ।

ଜୋଡ଼ିମାରିବା—ଗ୍ରା. କ୍ରି. (ଘୋଡ଼ାଆଦି ପଶୁ) ଦୁଇପଛଗୋଡ଼ରେ ଏକ ସମୟରେ ନାତ ମାରିବା।

ଜୋଡ଼ିସାଲ—ଗ୍ରା. ବି. ଏକତ୍ର ବ୍ୟବହୃତ ଦୁଇଟି ସାଲ, ଦୋସାଲ।

ଜୋତ—ଗ୍ରା. ବି. ଯୁଗବନ୍ଧନ ରଜ୍ଜୁ,ହଳ ବା ଶଗଡ଼ର ଜୁଆଳିକୁ ଯଥାକ୍ରମେ ଈଶ ବା ଦଣ୍ଡା ସଙ୍ଗେ ବାନ୍ଧିବା ଦଉଡ଼ି,ଧାନକଲେଇଆଦି ବାଛି ବଳରୁ ବୋହି

ଆଣିବା ପାଇଁ ବ୍ୟବହୃତ ଦଉଡ଼ା, (ଯା. ଲ) କର୍ଷଣଯୋଗ୍ୟ ଭୂମି, ରଇତ ଜମି ।

ଜୋତଆବାଦକରବା—ଗ୍ରା. କ୍ରି. ଭୂମି ଗୃଷକରବା, ରଇତ ବୃତ୍ତିକୁ (ପ୍ରଜା) କର୍ଷଣକରବା ।

ଜୋତଦାର୍—ଯା. ବ. ପ୍ରଜାସ୍ୱତ୍ୱଯୁକ୍ତ ଜମିର ଅଧିକାରୀ ।

ଜୋନ—ଯା.ବ. ରସ୍ୱତବୃତ୍ତି, ଭୂସମ୍ପତ୍ତି, ସମ୍ପତ୍ତି, ସଙ୍ଗତ, ବ୍ୟବସାୟର ପୁଞ୍ଜି, ପାଣ୍ଠି, ଉପାୟ, ସୁବଧା ସୁଯୋଗ ।

ଜୋନସମ୍ପନ୍ନ—ଗ୍ରା. ବଂ. ସଙ୍ଗତସମ୍ପନ୍ନ, ସମ୍ପତ୍ତିଶାଳୀ ।

ଜୋନବସ୍ଥାନ— ଗ୍ରା. ବଂ. ସମ୍ପତ୍ତିସ୍ଥାନ, ଅତ୍ୟଲ୍ପ ଗରବ, ସଙ୍ଗତସ୍ଥାନ, ଦେବାଳୟ ।

ଜୋବଗ—ଗ୍ରା. ବଂ. ମଇଳା, ମଳଯୁକ୍ତ, ଅପରିଚ୍ଛନ୍ନ, ଅଳଆୟୁକ୍ତ, ଅପରିଷ୍କୃତ, ବିବର୍ଣ୍ଣ, ( ଗ୍ରା.ବ ) ମହାନଦୀ କୂଳରେ ଅବସ୍ଥିତ କଟକର ଉପକଣ୍ଠସ୍ଥ ଗ୍ରାମ ବା ନଗରାଂଶ ।

ଜୋଯଖ୍—ଯା.ବ.(ମୁସଲମାନମାନଙ୍କର) ନରକ ।

ଜୋର୍—ଯା. ବ. ବଳ, ବେଗ, ଜବର-ଦସ୍ତି, ପରାକ୍ରମ, ଶକ୍ତି, ଅଧିକାର, ଜବର, କଥା ଉପରେ ଦେବା ଗୁରୁତ୍ୱ, ଉଚ୍ଚାରଣର ଗୁରୁତ୍ୱ ।

ଜୋରଜବରଦସ୍ତି— ଯା. ବ. ଜୋର-ଜୁଲମ୍ ଦେଖ । [ ଦେଖ ।

ଜୋର୍‌ଜାଗ—ଯା. ବ. ଜୋରଜୁଲମ୍

ଜୋର୍‌ଜୁଲମ୍—ଯା.ବ.ବଗ୍ରଜୋର, ବଳ-ପ୍ରକାଶ, ଜବର, ବଳପ୍ରୟୋଗ, ଉତ୍ପୀଡ଼ନ, ଅତ୍ୟାଚାର ।

ଜୋର୍‌ଦାର୍—ଯା.ବଂ. ଶକ୍ତିଶାଳୀ, ସମର୍ଥ, ପରାକ୍ରମଶାଳୀ, ବଳବାନ୍ ।

ଜୋରଦାର—ଯା. ବ. ବଳୁଆପଣିଆ ।

ଜୋରଦାରଆ—ଗ୍ରା. ବଂ. ଜୋରଦାର ଦେଖ । [ ଭାବରେ ।

ଜୋରସୋର୍—ଯା.କ୍ରି. ବଂ. ଅତକ୍ଷିପ୍ର-

ଜୋରକରବା—ଗ୍ରା. କ୍ରି. ବଳପ୍ରୟୋଗ କରବା, ବଳପୂର୍ବକ ବାଧ୍ୟ କରବା, ବଳପ୍ରୟୋଗ ଲୋଡ଼ବା ।

ଜୋରଦେବା—ଗ୍ରା. କ୍ରି. କୌଣସି ଅଙ୍ଗ ବା ଦ୍ରବ୍ୟ ଉପରେ ଆପଣାର ଭାରକୁ ନ୍ୟସ୍ତ କରବା, ( କହିଲାବେଳେ କଥା ବା ବିଷୟ ଉପରେ) ଗୁରୁତ୍ୱ ଦେବା ।

ଜୋରପାଇବା—ଗ୍ରା. ବ. ସମଧିକ ବଳ ଲାଭକରବା, ନଜର କୌଣସି କାର୍ଯ୍ୟ ସାଧନୋପଯୋଗୀ ବଳ ବା ଦାବିଥିବାର ଅନୁମାନହେବା । [ ଦେଖ ।

ଜୋରବର—ଯା. ବଂ. ଜୋରଦାର୍

ଜୋରବରସିଂହ—ଗ୍ରା. ବ.କାଶ୍ମୀରରାଜା ଗୋପାଳସିଂହଙ୍କର ଜଣେ ସେନାପତି

ଜୋରବାର—ଯା. ବ. ଶକ୍ତିମତ୍ତା, ସାମର୍ଥ୍ୟ-ବତ୍ତା, ବଳୁଆପଣିଆ ।

ଜୋରଆ—ପ୍ରା.(ସମ୍ବ)ବ. ଅନାର୍ଯ୍ୟ ଶବର ଜାତର ଗୋଟିଏ ଶାଖା ।

ଜୋରମାନା—ଯା. ବ. ଅର୍ଥଦଣ୍ଡ ।

ଜୋରୁ—ଯା. ବ. ଜାୟା, ସ୍ତ୍ରୀ, ଭାର୍ଯ୍ୟା ।

ଜୋଲା—ଗ୍ରା.ବ. ବଙ୍ଗବହାର ଓ ଉତ୍ତର ପଶ୍ଚିମ ପ୍ରଦେଶର ଇସ୍‌ଲାମ ଧର୍ମୀ ତନ୍ତୁ-ବାୟ ସମ୍ପ୍ରଦାୟ, (ବ) ନବୋଧ, ମୂର୍ଖ ।

ଜୋଲାପ୍—ଯା.ବ.ଜୋଲପ, ବରେଚକ-ଔଷଧ, ଭେଦୀଔଷଧ ।

ଜୋବାଟ—ଗ୍ରା.ବ.ମଧ୍ୟଭାରତର ଗୋଟିଏ କ୍ଷୁଦ୍ର ରାଜ୍ୟ ଓ ତାହାର ପ୍ରଧାନ ସହର ।

ଜୋଶ୍—ଯା. ବ. କ୍ରୋଧ, ରାଗ ।

ଜୋଷ—ପୁଂ. ବ. ( ଜୁଷ+ଅ ) ପ୍ରୀତି, ସେବନ, (କ୍ଲୀ.ବ) ମୌନ, ଉପବାସ, ସୁଖ, ସନ୍ତୋଷ, ସ୍ତୁତି, ପ୍ରଶଂସା ।

ଜୋଷକ—ପୁଂ.ବ.(ଜୁଷ+ଅକ)ସେବକ

ଜୋଷଣ,ଜୋଷନ—କ୍ଲୀ. ବ. ପ୍ରୀତି, ସେବା, ଜୋଷ ଦେଖ ।

ଜୋଷମ୍—ଅବ୍ୟ. (ଜୁଷ+ଣ.ଅମ୍)ମୀର-ବରେ, ଚୁପ୍, ସମ୍ପୂର୍ଣ୍ଣରୂପେ,ସ୍ୱଚ୍ଛନ୍ଦରେ, ସମ୍ୟକ୍‌ରୂପେ ।

ଜୋଷୟିତା—ପୁଂ. ବଂ. (ଜୁଷ+ଣିଚ୍+ତୃ) ସେବକ ।

ଜୋଷୟିତ୍ରୀ—ସ୍ତ୍ରୀ. ବଂ. (ଜୁଷ+ଣିଚ୍+ତୃ+ଈ) ସେବାକାରିଣୀ ।

ଜୋଷବାକ୍—ପୁଂ. ବ. ମିଥ୍ୟାବାକ୍ୟ ।

ଜୋଷସ୍—ଅବ୍ୟ. (ଜୁଷ+ଅସ୍) ତୁଷ୍ଣୀ, ମୀରବରେ, ସୁଖସ୍ୱଚ୍ଛନ୍ଦରେ ।

ଜୋଷା—ସ୍ତ୍ରୀ. ବ. (ଜୁଷ+କ.ଅ+ଆ) ନାରୀ, ସ୍ତ୍ରୀ । [ ବାଳିକା ।

ଜୋଷିକା—ସ୍ତ୍ରୀ. ବ. (ଜୁଷ+ଅକ+ଆ)

ଜୋଷିତ୍—ସ୍ତ୍ରୀ. ବ. (ଜୁଷ+କ.ଇତ୍) ସ୍ତ୍ରୀମାନ, ନାରୀ, ଜୋଷା ।

ଜୋଷିତା—ସ୍ତ୍ରୀ.ବ. (ଜୁଷ+କ.ଇତ୍+ଆ) ସ୍ତ୍ରୀମାନ, ଯୋଷା ।

ଜୋଷୀ—ଗ୍ରା. ବ. ଦକ୍ଷିଣପଶ୍ଚିମ ଭାରତ-ବାସୀମାନଙ୍କ ଜାତବଶେଷ ।

ଜୋଷ୍ଟା—ବଂ. (ଜୁଷ+ତୃ) ସେବକ ।

ଜୋଷ୍ୟ—ବଂ. ସେବ୍ୟ,ଉପାସ୍ୟ,(କ୍ଲୀ.ବ) ଅବଶ୍ୟ ସେବନ ।

ଜୋହର—ଗ୍ରା. ବ. ପ୍ରବଳଶତ୍ରୁକର୍ତ୍ତୃକ ଆକ୍ରାନ୍ତ ହୋଇ ପରାଜୟର ସମ୍ଭାବନା ଦର୍ଶନରେ ରାଜପୁତ ପ୍ରମୁଖ ଜାତର ଆତ୍ମୋତ୍ସର୍ଗ ।

ଜୋହୁକୁମ୍—ଯା. ଅବ୍ୟ. ଆପଣ ଯାହା କହିଲେ ତାହା ମୋର ଶିରୋଧାର୍ଯ୍ୟ, ଆଜ୍ଞା, ହଁ, (ଯା. ବଂ) ଯେ ଉପରସ୍ଥ ବ୍ୟକ୍ତିଙ୍କ ମନରକ୍ଷା କରବାପାଇଁ ସବୁ କାର୍ଯ୍ୟରେ ଓ କଥାରେ ହାଁଜୀ, ହାଁଜୀ କରେ, ଅର୍ଥାତ୍ ତାଙ୍କର ଅନ୍ୟାୟ କଥାକୁ ମଧ୍ୟ ସମର୍ଥନ କରେ ।

ଜୋହୂନ—ବଂ.(ବୈଦିକ)ଉଚ୍ଚଧ୍ୱନଯୁକ୍ତ ।

ଜୋହେରପୀର—ପୁନାଜଲ୍ଲାରଅଧିବାସୀ ମାନଙ୍କର ଉପାସ୍ୟ ଜଣେପୀର ।

ଜୌ—ଗ୍ରା. ବ. ଜଉ, ଜତୁ, ଲାଖ ।

ଜୌଗୃହ—ଗ୍ରା. ବ. ଜତୁଗୃହ ।

ଜୌରୁସ୍—ଯା. ବ. (ଯାପାନୀ)ଜ୍ୟୁରୁସ୍ ଦେଖ ।

ଜୌମର—କ୍ଲୀ. ବ. ( ଜୁମର+ଅ ) ଜୁମରନନ୍ଦକୃତସଂକ୍ଷିପ୍ତସାରବ୍ୟାକରଣ ।

ଜୌହର—ଯା.ବ. ରତ୍ନ, ମଣି,ଜୋହର ଦେଖ ।

ଜୌହରି—ଯା. ବଂ.ଜହରରତ୍ନବିକ୍ରେତା, ରତ୍ନବ୍ୟବସାୟୀ।
ଜ୍ଞ—ପୁଂ. ବି. (ଜ୍ଞା+କ.ଅ) ବ୍ରହ୍ମା, ବୁଧ, ପଣ୍ଡିତ, ଚନ୍ଦ୍ର,ଜ୍ଞାନୀ ବ୍ୟକ୍ତି, ମଙ୍ଗଳ ଗ୍ରହ, ବୁଧ ଗ୍ରହ,ଜ୍ଞାନ, (ବଂ) ଜ୍ଞାନୀ ମନୀଷୀ, ଦେଶକାଳଜ୍ଞ,ପଣ୍ଡିତ,ଅଭିଜ୍ଞ,ଅନୁଭବୀ।
ଜ୍ଞକ—ବଂ. (ଜ୍ଞ+କ) ଜ୍ଞାତା।
ଜ୍ଞତା—ବଂ.(ଜ୍ଞ+ତ+ଆ)ଜ୍ଞାତା।
ଜ୍ଞପିତ—ବଂ. (ଜ୍ଞା+ଣିଚ୍+ମି.ତ) ଜଣାଇ ଦିଆ ଯାଇଥିବା (ବିଷୟ), ପ୍ରକାଶିତ, ଜ୍ଞପିତ, ମାରିତ, ତୋଷିତ ଶାଣିତ, ନିଶମିତ, ଆଲୋକିତ, ଶିକ୍ଷା ଦିଆଯାଇଥିବା, ଯାହା ଜଣାଇ ଦିଆଯାଇଥାଏ।
ଜ୍ଞପ୍ତ—ବଂ. (ଜ୍ଞା+ଣିଚ୍+ମି.ତ) ଜ୍ଞପିତ ଦେଖ।
ଜ୍ଞପ୍ତି—ସ୍ତ୍ରୀ. ବି. (ଜ୍ଞପ+ତି) ବୁଦ୍ଧି, ଜ୍ଞାନ, ଜାଣିବା,ମାରଣ,ତୋଷଣ,ତୀକ୍ଷ୍ଣୀକରଣ, ସ୍ତୁତି, ବିଜ୍ଞାପନ।
ଜ୍ଞଂମନ୍ୟ—ବଂ. ଯେ ନିଜକୁ ବୁଦ୍ଧିମାନ୍ ବୋଲି ମନେକରେ।
ଜ୍ଞା—ସ୍ତ୍ରୀ. ବଂ. (ଜ୍ଞ+ଆ) ଅଭିଜ୍ଞା, (ବି) କବିତାର ଆଜ୍ଞା, ଜ୍ଞାନ।
ଜ୍ଞାତ—ବଂ. (ଜ୍ଞା+ତ) ବିଦିତ,ପରିଚିତ, ଅବଗତ, ଜଣାଇ ଦିଆଯାଇଥିବା, କୃତଜ୍ଞାନ।
ଜ୍ଞାତକ—ବଂ. (ଜ୍ଞାତ+କ) ବିଦିତ, ଯେ ଜଣାଏ।
ଜ୍ଞାତନନ୍ଦନ—ପୁଂ. ବି. ଅର୍ହତ୍‌ଭେଦ, ମହାବୀରଙ୍କ ନାମାନ୍ତର।
ଜ୍ଞାତଯୌବନା—ସ୍ତ୍ରୀ. ବି. (ବ.ବ୍ରୀ) ହିନ୍ଦୁ ଶାସ୍ତ୍ରରେ ବର୍ଣ୍ଣିତ ନାୟିକାଭେଦ, ଆପଣାର ଯୌବନ ବିଷୟ ଜାଣିଥିବା ବାଳିକା, ଏହିନାୟିକା ନବୋଢ଼ା, ବିଶ୍ରବ୍ଧନବୋଢ଼ା ଭେଦରେ ଦୁଇ-ପ୍ରକାର।
ଜ୍ଞାତଲ—ବଂ.(ଜ୍ଞାତ+ଲ+ଅ)ଜ୍ଞାନଯୁକ୍ତ
ଜ୍ଞାତବ୍ୟ—ବଂ. (ଜ୍ଞା+ମି.ତବ୍ୟ) ଜ୍ଞେୟ, ବେଦ୍ୟ, ଜଣାଇବାର ଯୋଗ୍ୟ, ଅବ-ଗନ୍ତବ୍ୟ, ବୋଧ୍ୟ।
ଜ୍ଞାତସାର—ପୁଂ. ବଂ. (ବ.ବ୍ରୀ) ଯେ ସାରକୁ ଜାଣିଅଛି, ସାରଜ୍ଞ, ଜ୍ଞାନ-ଗୋଚର, (ବି) ଜ୍ଞାନର ସୀମା।
ଜ୍ଞାତସାରରେ—ଗ୍ରା. କ୍ରି. ବି. ଜାଣିକରି, ଜାଣିଶୁଣି, ଜ୍ଞାନଗୋଚରରେ।
ଜ୍ଞାତସିଦ୍ଧାନ୍ତ—ପୁଂ. ବଂ. (ବ.ବ୍ରୀ) ଶାସ୍ତ୍ର-ତତ୍ତ୍ୱଜ୍ଞ, ବିଜ୍ଞାନବେତ୍ତା, ଯେ ଶାସ୍ତ୍ରକୁ ଉତ୍ତମରୂପେ ଜାଣେ, ତାନ୍ତ୍ରିକ।
ଜ୍ଞାତା—ପୁଂ. ବଂ. (ଜ୍ଞା+କ.ତୃ) ଜ୍ଞାନ-ବାନ୍, ଯେ କୌଣସି ବିଷୟ ଜାଣିଥାଏ, ଜ୍ଞାନୀ, (ସ୍ତ୍ରୀ) ଜ୍ଞାତ୍ରୀ।
ଜ୍ଞାତାର୍ଥ—ପୁଂ. ବଂ. (ବ.ବ୍ରୀ) ଯେ କୌଣସି ବିଷୟର ଅର୍ଥ ବା ମର୍ମ ବୁଝିଅଛି, ଯାହାର ଅର୍ଥ ଜଣାଯାଇଅଛି।
ଜ୍ଞାତି—ପୁଂ. ବି. (ଜ୍ଞା+ତି) ଦାୟାଦ, ଉତ୍ତରାଧିକାରୀ ସପିଣ୍ଡ,ସଗୋତ୍ର, ବାନ୍ଧବ, ସ୍ୱଜନ, ସମାନୋଦକ, ଗୋତ୍ର, ପିତା।
ଜ୍ଞାତିକାର୍ଯ୍ୟ—ପୁଂ. ବି. ଜ୍ଞାତିମାନଙ୍କ କର୍ତ୍ତବ୍ୟ କର୍ମ।
ଜ୍ଞାତିତ୍ୱ—କ୍ଲୀ. ବି. (ଜ୍ଞାତି+ତ୍ୱ) ଜ୍ଞାତିର ଧର୍ମ କର୍ମ ବା ବ୍ୟବହାର,ଜ୍ଞାତିର ଅନିଷ୍ଟ-ଚେଷ୍ଟା, ଜ୍ଞାତିପ୍ରତି ଅନିଷ୍ଟପ୍ରଦର୍ଶନ।
ଜ୍ଞାତିପୁତ୍ର—ପୁଂ.ବି. ଜ୍ଞାତିର ପୁତ୍ର, ଶେଷ ତୀର୍ଥଙ୍କର ମହାବୀର ସ୍ୱାମୀଙ୍କ ନାମାନ୍ତର
ଜ୍ଞାତିବନ୍ଧୁ—ବି. ରକ୍ତସମ୍ପର୍କୀୟ ଭାୟା ଓ ବିବାହ ସମ୍ପର୍କୀୟ ବାନ୍ଧବ, ସଗୋତ୍ର ଓ ଅସଗୋତ୍ର ଆତ୍ମୀୟ, ସଗୋତ୍ର ଓ ଅସ-ଗୋତ୍ର ସପିଣ୍ଡ ବ୍ୟକ୍ତିଗଣ।
ଜ୍ଞାତିବିରୋଧ—ବି. (୭ତତ୍) ଭାଇଆକଳି, ଜ୍ଞାତିମାନଙ୍କ ମଧ୍ୟରେ ଘଟିବା ବିବାଦ।
ଜ୍ଞାତିଭାଇ—ଗ୍ରା. ବି. ଜ୍ଞାତିକୁଟୁମ୍ବ, ବନ୍ଧୁ ପୁରୁଷ ଛଡ଼ା ଭାଇଲେଖା ବ୍ୟକ୍ତି।
ଜ୍ଞାତିଭେଦ—ପୁଂ. ବି. ଜ୍ଞାତିବିଚ୍ଛେଦ, ଜ୍ଞାତିବିରୋଧ ଦେଖ। [ପ୍ରଧାନ।
ଜ୍ଞାତିମୁଖ୍ୟ—ବଂ. ଜ୍ଞାତିମାନଙ୍କ ମଧ୍ୟରେ
ଜ୍ଞାତିଶତ୍ରୁ—ବି. (ଦ୍ୱନ୍ଦ୍ୱ) ଯେଉଁ ଲୋକ ଆପଣାର ଜ୍ଞାତି ଅଥଚ ଶତ୍ରୁ, ଭଗାରି।
ଜ୍ଞାତେୟ—କ୍ଲୀ. ବି. (ଜ୍ଞାତି+ଏୟ) ଜ୍ଞାତିତ୍ୱ ଦେଖ।
ଜ୍ଞାତୃ—କ୍ଲୀ. ବି. (ଜ୍ଞାତୃ+ଅ) ଜ୍ଞାତୃତ୍ୱ, ଜାଣିବାର କ୍ଷମତା।
ଜ୍ଞାନ—କ୍ଲୀ. ବି. (ଜ୍ଞା+ଭା.ଅନ) ବୋଧ, ପ୍ରତୀତି, ଜାଣିବା, ବୁଦ୍ଧି, ଇନ୍ଦ୍ରିୟ ଦ୍ୱାରା ଅନୁଭୂତ, ପରମାର୍ଥ ଜ୍ଞାନ, ଭଲମନ୍ଦ ବାଛିବାର ଶକ୍ତି, ହିତାହିତ ବିଚାରବୁଦ୍ଧି ତତ୍ତ୍ୱଜ୍ଞାନ, ପରଂବ୍ରହ୍ମ,ଚୈତନ୍ୟ, ସଂଜ୍ଞା, (ଗ୍ରା.ବି) ବାଳକର ଯୌବନପ୍ରାପ୍ତି।
ଜ୍ଞାନକରିବା—ଗ୍ରା. କ୍ରି. ବିଚାର କରିବା, ଖାତିର କରିବା, ଭ୍ରୂକ୍ଷେପ କରିବା, ଚେତିବା।
ଜ୍ଞାନକଳ୍ପ—ଶଙ୍କରାଚାର୍ଯ୍ୟଙ୍କର ଜଣେ ଶିଷ୍ୟ
ଜ୍ଞାନକାଣ୍ଡ—ପୁଂ. କ୍ଲୀ. ବି. (୬ତତ୍) ବେଦର ଅଂଶବିଶେଷ।
ଜ୍ଞାନକୀର୍ତ୍ତି—ଜଣେ ବୌଦ୍ଧାଚାର୍ଯ୍ୟ।
ଜ୍ଞାନକୃତ—ବଂ. (୩ତତ୍) ଜାଣିଶୁଣି କରାଯାଇଥିବା।
ଜ୍ଞାନକୃତପାପ—ବି. (କ.ଧା) ଯେଉଁ ପାପକୁ ପୂର୍ବରୁ ପାପ ବୋଲି ଜାଣିଶୁଣି ମନୁଷ୍ୟ ଆଚରଣ କରିଥାଏ।
ଜ୍ଞାନକେତୁ—ପୁଂ. ବି. ଜ୍ଞାନର ଚିହ୍ନ।
ଜ୍ଞାନକେତୁଧ୍ୱଜ—ପୁଂ.ବି.ଦେବର୍ଷି ଭେଦ
ଜ୍ଞାନଗମ୍ୟ—ବଂ.(୩ତତ୍)ଜ୍ଞେୟ,ବୋଧ-ଗମ୍ୟ, ଜ୍ଞାନଦ୍ୱାରା ଯାହା ଜଣାଯାଏ,(ବି) ଈଶ୍ୱର।
ଜ୍ଞାନଗର୍ଭ—ବଂ. (ବ.ବ୍ରୀ) ଜ୍ଞାନଯୁକ୍ତ, ଉପଦେଶପୂର୍ଣ୍ଣ, ଜ୍ଞାନମୟ। [ନ୍ତର।
ଜ୍ଞାନଗିରି—ବଂ. ଆନନ୍ଦଗିରିର ନାମା-
ଜ୍ଞାନଗୋଚର—ବଂ. (୭ତତ୍) ଜ୍ଞାନ-ଗମ୍ୟ ଦେଖ।
ଜ୍ଞାନଘନଆଚାର୍ଯ୍ୟ—ଗ୍ରା.ପୁଂ.ବି.ବେଦାନ୍ତ ତତ୍ତ୍ୱପରିଶୁଦ୍ଧି ପ୍ରଣେତା।
ଜ୍ଞାନଚକ୍ଷୁଃ—ବଂ.(କ.ଧା)ବେଦାଦି ଶାସ୍ତ୍ର-ଜ୍ଞାନରୂପ ନୟନ, ପଣ୍ଡିତ, ବୋଧବିଶି (ପୁଂ.ବି.)ବେଦଜ୍ଞାନ ରୂପ ନେତ୍ରବିଶିଷ୍ଟ।
ଜ୍ଞାନତଃ—ଅବ୍ୟ.(ଜ୍ଞାନ+ତସ୍) ଜ୍ଞାନ-ପୂର୍ବକ, ଜାଣିଶୁଣି।
ଜ୍ଞାନତତ୍ତ୍ୱ—ବି.(୬ତତ୍)ଆଧ୍ୟାତ୍ମିକ ଜ୍ଞାନ।

**ଜ୍ଞାନତିଲକଗଣି**—ଗ୍ରା. ପୁଂ. ବି. ଜଣେ ଜୈନଗ୍ରନ୍ଥ ପ୍ରଣେତା ।
**ଜ୍ଞାନତୃଷ୍ଣା**—ବି. ଜ୍ଞାନପିପାସା ଦେଖ.
**ଜ୍ଞାନଦ**—ବିଂ. ( ଜ୍ଞାନ+ଦା+କ.ଅ ) ଜ୍ଞାନଦାୟକ, ଯାହା ମନୁଷ୍ୟଙ୍କୁ ବୋଧଶକ୍ତି ଦିଏ, (ସ୍ତ୍ରୀ) ଜ୍ଞାନଦା ।
**ଜ୍ଞାନଦଗ୍ଧଦେହ**—ପୁଂ. ବି. (୩ତତ୍) ଚତୁର୍ଥାଶ୍ରମୀ, ଭିକ୍ଷୁ, ଯେ ଇଚ୍ଛା ଅନୁସାରେ ଦେହତ୍ୟାଗ କରିପାରେ ।
**ଜ୍ଞାନଦର୍ପଣ**—ବି. ( କ.ଧା ) ଜ୍ଞାନରୂପ ଆରସୀ,(ପୁଂ. ବି.)ପୂର୍ବଜ୍ଞାନ,ମଞ୍ଜୁଘୋଷ
**ଜ୍ଞାନଦାତା**—ପୁଂ. ବି. ( ୬ତତ୍ ) ଶିକ୍ଷକ, ଗୁରୁ, ଯେ ଜ୍ଞାନ ଦାନ କରେ, ( ସ୍ତ୍ରୀ ) ଜ୍ଞାନଦାତ୍ରୀ ।
**ଜ୍ଞାନଦାସ**— ଗ୍ରା.ବି. ଜଣେ ବୈଷ୍ଣବ କବି, ( ବ୍ୟଙ୍ଗୋକ୍ତି ) ବେହିଆ ।
**ଜ୍ଞାନଦୂଷଣ**—ଗ୍ରା. ବି. ଦୁଷ୍ଟବୁଦ୍ଧି ।
**ଜ୍ଞାନଦେବ**—ଗ୍ରା. ପୁଂ. ବି. ଗାୟତ୍ରୀ ଅର୍ଥରହସ୍ୟପ୍ରଣେତା ।
**ଜ୍ଞାନଧନ**—କ୍ଲୀ. ବି. ( ରୂପକ-କ.ଧା ) ଜ୍ଞାନରୂପ ଧନ, (ବିଂ. ନ. ବ୍ରୀ;) ଜ୍ଞାନୀ, ( ସ୍ତ୍ରୀ) ଜ୍ଞାନଧନା ।
**ଜ୍ଞାନନିଷ୍ଠ**—ବିଂ.(୭ତତ୍) ଜ୍ଞାନସାଧନଯୁକ୍ତ, ପରମାର୍ଥ ଚିନ୍ତାରେ ମଗ୍ନ,ତତ୍ତ୍ୱଜ୍ଞ ।
**ଜ୍ଞାନପତି**—ପୁଂ.ବି. ( ୬ତତ୍ ) ଜ୍ଞାନୋପଦେଶକ, ଗୁରୁ, ପରମେଶ୍ୱର ।
**ଜ୍ଞାନ ପାଇବା**—ଗ୍ରା. କ୍ରି. ( ବାଳିକା ) ପ୍ରଥମେ ଋତୁମତୀ ହେବା,ଅନୁଭବଦ୍ୱାରା ଅଭିଜ୍ଞତା ଲାଭ କରିବା, ( ବାଳକବାଳିକା) ବୟଃପ୍ରାପ୍ତ ବା ସାବାଳକ ହେବା, ଶିକ୍ଷାକରିବା ।
**ଜ୍ଞାନପିପାସା**—ସ୍ତ୍ରୀ. ବି. ( ୬ତତ୍ ) ଜ୍ଞାନତୃଷ୍ଣା, ଜ୍ଞାନଲାଭର ପ୍ରବଳ ଆକାଂକ୍ଷା ।
**ଜ୍ଞାନପିପାସୁ**—ପୁଂ. ବିଂ. ( ୬ତତ୍ ) ଜ୍ଞାନାର୍ଥୀ, ଜ୍ଞାନଲାଭର ଆକାଂକ୍ଷୀ ।
**ଜ୍ଞାନଭାସ୍କର**—ପୁଂ. ବି. ଜ୍ଞାନରୂପସୂର୍ଯ୍ୟ, ଜ୍ୟୋତିଷ ଗ୍ରନ୍ଥବିଶେଷ, ଷଡ୍‌ବର୍ଗ ଫଳପ୍ରଣେତା ।
**ଜ୍ଞାନଭ୍ରଂଶ**—ବି. ( ୬ତତ୍ ) ଜ୍ଞାନଲୋପ ।
**ଜ୍ଞାନଭ୍ରଷ୍ଟ**—ପୁଂ. ବି. ( ବ.ବ୍ରୀ ) ଯାହାର ଜ୍ଞାନଭ୍ରଂଶ ଘଟିଅଛି, ପାଗଳ, ହିତାହିତ ବିବେଚନାଶୂନ୍ୟ ।
**ଜ୍ଞାନମନ୍ତ୍ରି**—ଗ୍ରା. ବି. ଭାତ, ଅନ୍ନ, ଗୁଡ଼ଳ, ଖାଦ୍ୟଇନ୍ଦ୍ରିୟ ହ, ଖାଦ୍ୟଶସ୍ୟ ।
**ଜ୍ଞାନମୟ**—ପୁଂ.ବି.ପରମେଶ୍ୱର, ପରଂବ୍ରହ୍ମ । [ଭେଦ ।
**ଜ୍ଞାନମୁଦ୍ରା**—ସ୍ତ୍ରୀ. ବି. ରାମ ପୂଜାଙ୍ଗ ମୁଦ୍ରା
**ଜ୍ଞାନଯଜ୍ଞ**—ପୁଂ. ବି. ତତ୍ତ୍ୱଜ୍ଞ, ଆତ୍ମାକୁ ବ୍ରହ୍ମାଗ୍ନିରେ ହୋମ କରିବା ।
**ଜ୍ଞାନଯୋଗ**—ବି.(କ.ଧା) ଆତ୍ମତତ୍ତ୍ୱଜ୍ଞାନ ଲାଭ କରିବାର ଶାସ୍ତ୍ରନିର୍ଦ୍ଦିଷ୍ଟ ପ୍ରଣାଳୀ, (୭ତତ୍) ଜ୍ଞାନସଙ୍ଗେ ସମ୍ବନ୍ଧ ।
**ଜ୍ଞାନରାଜ**—ଗ୍ରା. ପୁଂ. ବି. ସିଦ୍ଧାନ୍ତସୁନ୍ଦର ନାମକ ଜ୍ୟୋତିଗ୍ରନ୍ଥପ୍ରଣେତା ।
**ଜ୍ଞାନଲକ୍ଷଣା**—ସ୍ତ୍ରୀ.ବି.ଅଲୌକିକ ପ୍ରତ୍ୟକ୍ଷ ସାଧନ ସନ୍ନିକର୍ଷଭେଦ । [ଇଚ୍ଛା ।
**ଜ୍ଞାନଲିପ୍ସା**—ସ୍ତ୍ରୀ.ବି. (୬ତତ୍) ଜ୍ଞାନଲାଭର
**ଜ୍ଞାନଲିପ୍ସୁ**—ପୁଂ. ବିଂ. (୬ତତ୍) ଜ୍ଞାନଲାଭର ଅଭିଳାଷୀ ।
**ଜ୍ଞାନବାଦ**—ପୁଂ. ବି. ଭକ୍ତି ଓ କର୍ମକୁ ପ୍ରଧାନ ନ ବୋଲି ଜ୍ଞାନକୁ ପ୍ରଧାନ ବୋଲି କହିବା, ଜ୍ଞାନର କଥନ ।
**ଜ୍ଞାନବାଦୀ**—ପୁଂ.ବିଂ.(ଜ୍ଞାନବାଦ+ଇନ୍ ପରମାର୍ଥ ବିଷୟରେ ଜ୍ଞାନ କେବଳ ପ୍ରଧାନ (ଭକ୍ତି ବା କର୍ମ ନୁହେ) ଏହି ରୂପ ମତାବଲମ୍ବୀ, (ସ୍ତ୍ରୀ)ଜ୍ଞାନବାଦିନୀ ।
**ଜ୍ଞାନବାନ୍**—ପୁଂ. ବିଂ. ( ଜ୍ଞାନ + ବତ୍ ) ଯାହାର ଜ୍ଞାନଅଛି, ଜ୍ଞାନଯୁକ୍ତ, ଜ୍ଞାନୀ, ବୋଧଶକ୍ତିବିଶିଷ୍ଟ,ତତ୍ତ୍ୱଜ୍ଞ,(ସ୍ତ୍ରୀ)ଜ୍ଞାନବତୀ
**ଜ୍ଞାନବାପୀ** —ସ୍ତ୍ରୀ. ବି. (କ.ଧା) କାଶୀସ୍ଥ ବାପୀରୂପ ତୀର୍ଥବିଶେଷ ।
**ଜ୍ଞାନବିପର୍ଯ୍ୟ**—ବି.(୬ତତ୍)ବୁଦ୍ଧିଭ୍ରଂଶ ।
**ଜ୍ଞାନବିରୁଦ୍ଧ**—ବିଂ. ( ୭ତତ୍ ) ଜ୍ଞାନର ବିଶ୍ୱାସ ବା ଜାଣିବା କଥାର ବିପରୀତ ।
**ଜ୍ଞାନସଞ୍ଜ**—ବି. (କ.ଧା) ଜ୍ଞାନରୂପ ମନ୍ତ୍ର, ଶିଷ୍ୟ ଜ୍ଞାନଲାଭ କରିବା ନିମନ୍ତେ ଗୁରୁଙ୍କ ଦ୍ୱାରା ଦିଆଯିବା ପ୍ରଥମ ଶିକ୍ଷା ।
**ଜ୍ଞାନଶାଳୀ**—ପୁଂ.ବି . (ଜ୍ଞାନ+ଶାଳିନ୍) ଜ୍ଞାନୀ, ଜ୍ଞାନବାନ୍, (ସ୍ତ୍ରୀ)ଜ୍ଞାନଶାଳିନୀ ।
**ଜ୍ଞାନଶାସ୍ତ୍ର**—କ୍ଲୀ. ବି. ମୁକ୍ତିଶାସ୍ତ୍ର ।
**ଜ୍ଞାନଶୂନ୍ୟ**—ବିଂ. ( ୩ତତ୍ ) ଅଜ୍ଞାନ, ଅବୋଧ,ମୂଢ଼,ସଂଜ୍ଞାରହିତ,ଅଚେତନ ।
**ଜ୍ଞାନସାଗର**—ପୁଂ. ବି. ତପାଗଚ୍ଛ ଜୈନ ସମ୍ପ୍ରଦାୟଭୁକ୍ତ ଦେବସୁନ୍ଦରର ପଞ୍ଚଶିଷ୍ୟ ମଧ୍ୟରୁ ଜଣେ,ରତ୍ନସିଂହଙ୍କ ଶିଷ୍ୟ, ଲବ୍ଧିସାଗର ଗୁରୁ, ପରମହଂସପଦ୍ଧତି ପ୍ରଣେତା ।
**ଜ୍ଞାନସାଧନ**—କ୍ଲୀ.ବି. (୬ତତ୍) ଇନ୍ଦ୍ରିୟ, ତତ୍ତ୍ୱଜ୍ଞାନଲାଭର ଚେଷ୍ଟା, (ବିଂ)ଜ୍ଞାନଲାଭ କରିବାରେ ସହାୟକ ।
**ଜ୍ଞାନହିନ୍ଦୁଯୋଗୀନ୍ଦ୍ର**—ଗ୍ରା.ପୁଂ. ବି. ବିଷ୍ଣୁସହସ୍ରନାମ ଭଦୋଟୀକାପ୍ରଣେତା ।
**ଜ୍ଞାନାହତ**—ବିଂ. (ବ.ବ୍ରୀ) ଅଜ୍ଞାନ ।
**ଜ୍ଞାନାକର**—ପୁଂ. ବି. (୬ତତ୍) ଜ୍ଞାନର ଆକର, ବୁଦ୍ଧଦେବ ।
**ଜ୍ଞାନାଙ୍କୁର**—ପୁଂ.ବି. (୬ତତ୍) ସାମାନ୍ୟ ଜ୍ଞାନ, ପ୍ରଥମଜ୍ଞାନ ।
**ଜ୍ଞାନାଙ୍କୁଶ**—ପୁଂ.ବି. (କ.ଧା) ଜ୍ଞାନରୂପ ଅଙ୍କୁଶ, ଅଙ୍କୁଶ ଦ୍ୱାରା ଯେପରି ହସ୍ତୀ ପ୍ରଭୃତିଙ୍କୁ ବଶୀଭୂତ କରାଯାଏ--ତଦ୍ରୂପ ଜ୍ଞାନ ଦ୍ୱାରା ପ୍ରମତ୍ତ ଇନ୍ଦ୍ରିୟମାନଙ୍କୁ ବଶୀଭୂତ କରାଯାଏ ।
**ଜ୍ଞାନାଞ୍ଜନ**—କ୍ଲୀ.ବି. (କ.ଧା) ଅଞ୍ଜନପରି ଦିବ୍ୟ ଦୃଷ୍ଟିକୁ ଅଞ୍ଜନପରି ଜ୍ଞାନ ।
**ଜ୍ଞାନାଞ୍ଜନଶଳାକା**—ସ୍ତ୍ରୀ. ବି. ( ୬ତତ୍ ) ଶିଷ୍ୟକୁ ଗୁରୁ ଦେଇଥିବା ଶିକ୍ଷା ।
**ଜ୍ଞାନାନନ୍ଦ**—ପୁଂ.ବି. ଜ୍ଞାନରୂପ ଆନନ୍ଦ, ଜ୍ଞାନ, ଶିବଗୀତାପ୍ରଣେତା, ସିଦ୍ଧାନ୍ତ ମୁକ୍ତାବଳୀର ପ୍ରଣେତା ।
**ଜ୍ଞାନାନନ୍ଦକଳାଧରସେନ**—ଗ୍ରା. ପୁଂ.ବି. ଅମରୁଶତକ ଟୀକା ପ୍ରଣେତା ।
**ଜ୍ଞାନାନନ୍ଦନାଥ**—ଗ୍ରା. ପୁଂ. ବି. ଗଜମାତଙ୍ଗୀପଦ୍ଧତିପ୍ରଣେତା ।
**ଜ୍ଞାନାପନ୍ନ**—ବିଂ. (୩ତତ୍) ଜ୍ଞାନପ୍ରାପ୍ତ, ଜ୍ଞାନୀ, ଯେ ଜାଣେ, (ସ୍ତ୍ରୀ) ଜ୍ଞାନାପନ୍ନା ।
**ଜ୍ଞାନାପୋହ**—ପୁଂ. ବି. ଜ୍ଞାନଲୋପ, ବିସ୍ମରଣ ।

ଜ୍ଞାନାଭ୍ୟାସ—ପୁଂ. ବି. (୬ତତ୍) ଜ୍ଞାନର ଆଲୋଚନା, ବିଦ୍ୟାଚର୍ଚ୍ଚା ।
ଜ୍ଞାନାମୃତ—କ୍ଲୀ. ବି. ଜ୍ଞାନରୂପ ସୁଧା ।
ଜ୍ଞାନାମୃତଯତି—ଉପନିଷଦ୍ ଓ ସାଂଖ୍ୟ-ସୂତ୍ରର ଟୀକାକାର ।
ଜ୍ଞାନାର୍ଣ୍ଣବ—ପୁଂ. ବି. ଜ୍ଞାନରୂପ ସମୁଦ୍ର ।
ଜ୍ଞାନାବରଣୀୟ—ବିଂ. ଯାହାଦ୍ୱାରା ଜ୍ଞାନ ଅବରୁଦ୍ଧ ହୁଏ । [ ବିଶେଷ ।
ଜ୍ଞାନାସନ—ବି. ରୁଦ୍ରଯାମଳୋକ୍ତ ଆସନ
ଜ୍ଞାନୀ—ପୁଂ. ବିଂ.(ଜ୍ଞାନ+ଇନ୍)ଜ୍ଞାନଯୁକ୍ତ, ବ୍ରହ୍ମସାକ୍ଷାତ୍କାରଯୁକ୍ତ, ବିଜ୍ଞ, ପଣ୍ଡିତ, ବିଚକ୍ଷଣ, ବୋଧସମ୍ପନ୍ନ, ବୁଦ୍ଧିମାନ୍ (ପୁଂ.ବି.)ଆତ୍ମତତ୍ତ୍ୱଜ୍ଞ ବ୍ୟକ୍ତି, ଦୈବଜ୍ଞ ।
ଜ୍ଞାନେନ୍ଦ୍ରସ୍ୱାମୀ—ପୁଂ. ବି. ବ୍ରହ୍ମସୂତ୍ରାର୍ଥ-ପ୍ରକାଶିକାପ୍ରଣେତା ।
ଜ୍ଞାନେନ୍ଦ୍ରିୟ—କ୍ଲୀ.ବି.(୬ତତ୍) ଜ୍ଞାନସାଧନ ଇନ୍ଦ୍ରିୟ, (ହିନ୍ଦୁଶାସ୍ତ୍ରାନୁସାରେ) ବାହ୍ୟ ବସ୍ତୁକୁ ଜାଣି ପାରିବା ନିମନ୍ତେ ଶରୀରର ଇନ୍ଦ୍ରିୟ ସକଳ, ଶରୀରସ୍ଥ ପଞ୍ଚେନ୍ଦ୍ରିୟ ।
ଜ୍ଞାନୋତ୍ତମ—ଗ୍ରା. ବି. ଗୌଡ଼େଶ୍ୱରାଚାର୍ଯ୍ୟଙ୍କର ଉପାଧି ବିଶେଷ । [ ପ୍ରଣେତା ।
ଜ୍ଞାନୋତ୍ତମମିଶ୍ର—ନୈଷ୍କର୍ମ୍ୟସିଦ୍ଧିଚନ୍ଦ୍ରିକା-
ଜ୍ଞାନୋଦୟ—ପୁଂ. ବି. (୬ତତ୍) ଜ୍ଞାନର ଉତ୍ପତ୍ତି, ମନୁଷ୍ୟ ମନରେ ଜ୍ଞାନ ବା ବୋଧରୂପ ସୂର୍ଯ୍ୟଙ୍କର ଆବିର୍ଭାବ,ମନୁଷ୍ୟ ଜନ୍ମହେବା ପରେ ସର୍ବ ପ୍ରଥମେ ନିଜର ଜଗତରେ ଅସ୍ତିତ୍ୱ ବିଷୟର ଉପଲବ୍ଧି ।
ଜ୍ଞାନୋପଦେଶ—ଶ୍ରୀ ଶଙ୍କରାଚାର୍ଯ୍ୟ ପ୍ରଣୀତ ଉପଦେଶାତ୍ମକ ଗ୍ରନ୍ଥବିଶେଷ ।
ଜ୍ଞାନୋତ୍ପତ୍ତି—ସ୍ତ୍ରୀ. ବି. (୬ତତ୍) ଜ୍ଞାନର ଉଦୟ ।
ଜ୍ଞାନୋଲ୍କା—ସ୍ତ୍ରୀ. ବି. ସମାଧିଭେଦ ।
ଜ୍ଞାପକ—ପୁଂ. ବିଂ. (ଜ୍ଞା+ଣିଚ୍+କ. ଅକ) ସୂଚକ, ଯେ ଜଣାଇଦିଏ,ଆବେଦକ, ବୋଧକ, (ବି) ଶିକ୍ଷକ ।
ଜ୍ଞାପନ—କ୍ଲୀ. ବି. (ଜ୍ଞା+ଣିଚ୍+ଭା.ଅନ) ଜଣାଇବା, ବିଦିତ କରାଇବା, ଆବେଦନ, ଶିକ୍ଷାଦେବା ।
ଜ୍ଞାପନୀୟ—ବିଂ. (ଜ୍ଞା+ଣିଚ୍+ର୍ମ. ଅନୀୟ) ନିବେଦନୀୟ, ଜଣାଇବାର ଯୋଗ୍ୟ ।
ଜ୍ଞାପୟିତା—ପୁଂ.ବିଂ.(ଜ୍ଞା+ଣିଚ୍+କ.ତୃ) ଜ୍ଞାପକ,ବୋଧକ, ଯେ ଜଣାଇଦିଏ ।
ଜ୍ଞାପିକଦେବ—ସ୍ମୃତିସାରପ୍ରଣେତା ।
ଜ୍ଞାପିତ—ବିଂ. (ଜ୍ଞା+ଣିଚ୍+ର୍ମ.ତ) ଯାହା ଜଣା ହୋଇଅଛି, ନିବେଦିତ, ଜଣାଇ ଦିଆଯାଇଥିବା । [ ଦେଖ ।
ଜ୍ଞାପ୍ତି—ସ୍ତ୍ରୀ. (ଜ୍ଞା+ଣିଚ୍+ତି) ଜ୍ଞାପନ
ଜ୍ଞାପ୍ୟ—ବିଂ. ଜ୍ଞାପନଯୋଗ୍ୟ, ଜଣାଇବାର ଯୋଗ୍ୟ ।
ଜ୍ଞାସ—ପୁଂ. ବି. (ଜ୍ଞା+ଅସ୍) ଜ୍ଞାତି ।
ଜ୍ଞାପ୍ସ୍ୟମାନ—ବିଂ.(ଜ୍ଞାପ+ସନ୍+ର୍ମ. ଆନ) ଜାଣିବାକୁ ଇଚ୍ଛୁକ ।
ଜ୍ଞୀପ୍ସା—ସ୍ତ୍ରୀ. ବି. (ଜ୍ଞପ+ସନ୍+ଅ+ଆ) ଜାଣିବା ନିମିତ୍ତ ଇଚ୍ଛା ।
ଜ୍ଞୁ—ବି. (ବୈଦିକ)ଜାନୁ ।
ଜ୍ଞୁବାଧ—ଅବ୍ୟ. (ବୈଦିକ)ଜାନୁପକାଇ ।
ଜ୍ଞେୟ—ବିଂ. (ଜ୍ଞା+ର୍ମ.ଯ) ଜାଣିବାର ଯୋଗ୍ୟ, ଜ୍ଞାନଯୋଗ୍ୟ, ଜ୍ଞାତବ୍ୟ, ଜ୍ଞାନବିଷୟ, ଯାହା ଜାଣିବାର ଆବଶ୍ୟକ, ସମ୍ଭବ ।
ଜ୍ଞେୟଜ୍ଞ—ବିଂ. ଆତ୍ମଜ୍ଞାନୀ, ତତ୍ତ୍ୱଜ୍ଞ ।
ଜ୍ଞେୟତା—ସ୍ତ୍ରୀ. ବି. (ଜ୍ଞେୟ+ଭା.ତ+ଆ) ଜ୍ଞେୟତ୍ୱ ।
ଜ୍ମନ୍—ବି. (ବୈଦିକ) ଅନ୍ତରୀକ୍ଷ, ନାମ, ପୃଥିବୀରେ ବର୍ତ୍ତମାନ ଜନ୍ତୁ ।
ଜ୍ମୟା—ବିଂ. ପୃଥିବୀରେ ଯାହାର ଉତ୍ପତ୍ତି ହୁଏ ।
ଜ୍ୟ—ବିଂ. ଉତ୍ପୀଡ୍ୟ ।
ଜ୍ୟା—ସ୍ତ୍ରୀ.ବି.(ଜ୍ୟା+କ.କ୍ୱିପ୍) ଧନୁର୍ଗୁଣ, ମୌର୍ବୀ, ପୃଥିବୀ, ମାତା, ବୃତ୍ତର ପ୍ରାନ୍ତଦ୍ୱୟକୁ ଯୋଗ କରିଥିବା ସରଳ ରେଖା ।
ଜ୍ୟାକା—ସ୍ତ୍ରୀ.ବି. କୁତ୍ସିତ ଜ୍ୟା ।
ଜ୍ୟାଘାତ—ବି. (୬ତତ୍) ଧନୁର୍ଗୁଣର ପ୍ରହାର ବା ଚୋଟ ।
ଜ୍ୟାଘାତବାରଣ—କ୍ଲୀ. ବି. ଧନୁର୍ଦ୍ଧାରୀମାନେ ହାତରେ ବାନ୍ଧିବା ଚମଡ଼ା ।
ଜ୍ୟାଘୋଷ—ପୁଂ. ବି. (୬ତତ୍) ଜ୍ୟାଶବ୍ଦ, ଧନୁର ଟଙ୍କାର, ଧନୁର ଗୁଣକୁ ଟାଣିଦେଇ ଛାଡ଼ିଦେଲେ ଯେଉଁ ଶବ୍ଦ ହୁଏ ।
ଜ୍ୟାନ୍—କ୍ଲୀ. ବି. ଉତ୍ପୀଡ଼ନ ।
ଜ୍ୟାନି—ସ୍ତ୍ରୀ. ବି. (ଜ୍ୟା+ନି) ବୟୋହାନି, ତଟିନୀ ।
ଜ୍ୟାବାଲୀ—ଗ୍ରା. ବି. ଭୂଦେଶ ।
ଜ୍ୟାମିତି—ସ୍ତ୍ରୀ. ବି. (ଜ୍ୟା+ମା+ତି) ଭୂମିର ପରିମାଣ ବିଷୟକ ଶାସ୍ତ୍ର,କ୍ଷେତ୍ରତତ୍ତ୍ୱ, ଭୂପରିମିତି ।
ଜ୍ୟାମିତିକ—ବିଂ. (ଜ୍ୟାମିତି+ଇକ) ଜ୍ୟାମିତିଶାସ୍ତ୍ର ସମ୍ବନ୍ଧୀୟ ।
ଜ୍ୟାୟାନ୍—ପୁଂ. ବିଂ. (ବୃଦ୍ଧ+ଈୟସ୍) ବୃଦ୍ଧତମ, ଜୀର୍ଣ୍ଣ, ପ୍ରଶସ୍ତ, ଶ୍ରେଷ୍ଠ, ତେଜୀୟାନ୍, ପ୍ରଶଂସାର୍ହ, ସର୍ବପ୍ରଥମ, ଅଗ୍ରଜ, ସର୍ବୋତ୍ତମ, ଗୁରୁତର (ସ୍ତ୍ରୀ)ଜ୍ୟାୟସୀ ।
ଜ୍ୟାୟିଷ୍ଠ—ବିଂ. ଜ୍ୟେଷ୍ଠ ।
ଜ୍ୟାକ୍ଷେପ—ବି. (୬ତତ୍) ଧନୁରେ ଗୁଣ ଚଢ଼ାଇବା । [ ଗୁଣଦେବା ।
ଜ୍ୟାକ୍ଷେପଣ—ବି. (୬ତତ୍) ଧନୁରେ
ଜ୍ୟାବୀଜ—ବି. ବଳବାନ୍ ଧନୁ ।
ଜ୍ୟୁଜୁତ୍ସୁ—ଯା. (ଯାପାନୀ) ବି. ଯାପାନଦେଶ ପ୍ରଚଳିତ ଆକ୍ରମଣାର୍ଥ ଓ ଆତ୍ମରକ୍ଷାର୍ଥ ପ୍ରଯୁଜ୍ୟ ଅଙ୍ଗଚାଳନ ।
ଜ୍ୟେଷ୍ଠ—ପୁଂ.ବିଂ. (ବୃଦ୍ଧ+ଇଷ୍ଠ)ଅଗ୍ରଜ, ଅତିବୃଦ୍ଧ, ଶ୍ରେଷ୍ଠ, ପ୍ରବୀଣ, ପ୍ରଶସ୍ୟ, (ବି) ବଡ଼ଭାଇ, ଜ୍ୟେଷ୍ଠମାସ, ପରମେଶ୍ୱର, ପ୍ରାଣ । [ ଇନ୍ଦ୍ର ।
ଜ୍ୟେଷ୍ଠତମ—ବିଂ.ଅତିଶୟ ଜ୍ୟେଷ୍ଠ, (ବି)
ଜ୍ୟେଷ୍ଠତାତ—ପୁଂ.ବି.(କ.ଧା) ପିତାଙ୍କର ବଡ଼ଭାଇ,ଦଦେଇ, ଦେଡ଼ୁତା, ଦେଠା, ବବା ।
ଜ୍ୟେଷ୍ଠତାତ—ବିଂ. ଜ୍ୟେଷ୍ଠ ଦେଖ ।
ଜ୍ୟେଷ୍ଠତ୍ୱ—କ୍ଲୀ. ବି. (ଜ୍ୟେଷ୍ଠ+ଭା.ତ୍ୱ) ଜ୍ୟେଷ୍ଠତା ।
ଜ୍ୟେଷ୍ଠପାଳ—ପୁଂ. ବି.କାଶ୍ମୀର ରାଜ୍ୟର ଜଣେ ରାଜା
ଜ୍ୟେଷ୍ଠପୁଷ୍କର—କ୍ଲୀ. ବି ପୁଷ୍କରତୀର୍ଥ ।
ଜ୍ୟେଷ୍ଠବର୍ଣ୍ଣ—ପୁଂ. ବି. (କ.ଧା) ବ୍ରାହ୍ମଣ, ହିନ୍ଦୁମାନଙ୍କର ଚାରିବର୍ଣ୍ଣମଧ୍ୟରେ ଉତ୍କୃଷ୍ଟ

ବର୍ଣ୍ଣ ବା ଜାତି ।
**ଜ୍ୟେଷ୍ଠବଲା**—ସ୍ତ୍ରୀ.ବି.ସହଦେବୀ ଲତା ।
**ଜ୍ୟେଷ୍ଠରାଜ**—ବି°. ଅତିଶ୍ରେଷ୍ଠ ।
**ଜ୍ୟେଷ୍ଠବାପୀ**—ସ୍ତ୍ରୀ. ବି. କାଶୀସ୍ଥତୀର୍ଥ-ବିଶେଷ ।
**ଜ୍ୟେଷ୍ଠବୃତ୍ତି**—ସ୍ତ୍ରୀ.ବି. କନିଷ୍ଠ ଭ୍ରାତୃ ପ୍ରଭୃତିଙ୍କ ପ୍ରତି ଉତ୍ତମ ବ୍ୟବହାର ।
**ଜ୍ୟେଷ୍ଠଶ୍ୱଶ୍ରୂ**—ସ୍ତ୍ରୀ. ବି.(କ.ଧା) ପତି ବା ପତ୍ନୀର ଜ୍ୟେଷ୍ଠ ଭଗିନୀ, ଦେଢ଼ଶାଶୁ ।
**ଜ୍ୟେଷ୍ଠସ୍ଥାନ**—କ୍ଲୀ.ବି.କାଶୀସ୍ଥ ତୀର୍ଥଭେଦ ।
**ଜ୍ୟେଷ୍ଠା**—ସ୍ତ୍ରୀ. ବି. ( ଜ୍ୟେଷ୍ଠ+ଆ ) (ଜ୍ୟୋତିଷ) ୨୭ଗୋଟି ନକ୍ଷତ୍ର ମଧ୍ୟରୁ ଅଷ୍ଟାଦଶ ନକ୍ଷତ୍ର, ଝିଣ୍ଟିପିଟି, ମଧ୍ୟମାଙ୍ଗୁଳି, ଗଙ୍ଗା, ନାୟିକାବିଶେଷ,ଅଲକ୍ଷ୍ମୀ, ବାର୍ହସ୍ପତ୍ୟ ଦ୍ୱାଦଶବର୍ଷମାନଙ୍କର ଅଷ୍ଟମ-ବର୍ଷ, ତାରଯୁକ୍ତ ବାଦ୍ୟଯନ୍ତ୍ର ବିଶେଷ ।
**ଜ୍ୟେଷ୍ଠାଂଶ**—ବି. ( ଜ୍ୟେଷ୍ଠ+ଅଂଶ ) କ.ଧା ;ହିନ୍ଦୁଶାସ୍ତ୍ରାନୁସାରେ ପୈତୃକ ସମ୍ପତ୍ତିରୁ ବଡ଼ଭାଇ ସାନଭାଇମାନଙ୍କଠାରୁ ପାଇବା ଅଧିକାଂଶ ।
**ଜ୍ୟେଷ୍ଠାମୂଲୀୟ**—ପୁଂ. ବି. ଜ୍ୟେଷ୍ଠମାସ ।
**ଜ୍ୟେଷ୍ଠାମ୍ବୁ**—କ୍ଲୀ. ବି. (ଜ୍ୟେଷ୍ଠ+ଅମ୍ବୁ) ଚାଉଳଧୂଆ ପାଣି ।
**ଜ୍ୟେଷ୍ଠାଶ୍ରମ**—ପୁଂ.ବି.(କ.ଧା)ଗୃହସ୍ଥାଶ୍ରମ, ଗାର୍ହସ୍ଥ୍ୟ ।
**ଜ୍ୟେଷ୍ଠାଶ୍ରମୀ**—ପୁଂ. ବି°. ଦ୍ୱିତୀୟାଶ୍ରମୀ, ଗୃହୀ, ଗୃହସ୍ଥ ।
**ଜ୍ୟେଷ୍ଠୀ**—ସ୍ତ୍ରୀ.ବି.ଝିଣ୍ଟିପିଟି,ଗୃହଗୋଧିକା ।
**ଜ୍ୟୈଷ୍ଠ**—ପୁଂ.ବି.(ଜ୍ୟେଷ୍ଠା+ଅ)ଜ୍ୟେଷ୍ଠା-ନକ୍ଷତ୍ରଯୁକ୍ତ ପୂର୍ଣ୍ଣିମା ବିଶିଷ୍ଟ ଚାନ୍ଦ୍ରମାନ ମାସ, ଜ୍ୟେଷ୍ଠମାସ । [ ଅପତ୍ୟ ।
**ଜ୍ୟୈଷ୍ଠିନେୟ**—ପୁଂ.ସ୍ତ୍ରୀ.ବି. ପ୍ରଧାନ ସ୍ତ୍ରୀର
**ଜ୍ୟୈଷ୍ଠୀ**—ସ୍ତ୍ରୀ. ବି. (ଜ୍ୟେଷ୍ଠା+ଅ+ଈ) ଜ୍ୟେଷ୍ଠା ନକ୍ଷତ୍ରଯୁକ୍ତ ପୂର୍ଣ୍ଣିମା, ଜ୍ୟେଷ୍ଠ-ପୂର୍ଣ୍ଣିମା, ଦେବସ୍ନାନ ପୂର୍ଣ୍ଣିମା ।
**ଜ୍ୟୈଷ୍ଠ୍ୟ**- କ୍ଲୀ.ବି.(ଜ୍ୟେଷ୍ଠ+ଯ)ଶ୍ରେଷ୍ଠତ୍ୱ, ବୟୋଜ୍ୟେଷ୍ଠତ୍ୱ ।
**ଜ୍ୟୋକ୍**--ଅବ୍ୟ.(ଜ୍ୟା+ଉକ)ଦୀର୍ଘକାଳ, ପ୍ରଶ୍ନ, ଶୀଘ୍ରାର୍ଥ, ଉଜ୍ଜ୍ୱଳତ୍ୱ ।

**ଜ୍ୟୋତିଃ**—ସ୍ତ୍ରୀ. ବି. (ଦ୍ୟୁତ୍+କ.ଇସ୍) ଆଲୋକ, ତେଜଃ, ଗ୍ରହନକ୍ଷତ୍ରାଦି, ଆଖିର ପିତୁଳା, ଚୈତନ୍ୟ, ଆତ୍ମା, ଜ୍ୟୋତିଃଶାସ୍ତ୍ର, ଅଗ୍ନି, ସୂର୍ଯ୍ୟ, ପୁତ୍ର, ଶିଖା, ଦୀପ୍ତି, ଜ୍ୱାଳା, ମେଥି ।
**ଜ୍ୟୋତିଃଶାସ୍ତ୍ର**—କ୍ଲୀ. ବି. (କ.ଧା) ଗ୍ରହ-ନକ୍ଷତ୍ରାଦିଙ୍କର ଗତି ସ୍ଥିତି ସଞ୍ଚାରାଦି ଅନୁସାରେ ଶୁଭାଶୁଭ ନିରୂପଣ ବିଷୟକ ଶାସ୍ତ୍ର,ଗ୍ରହ,ଉପଗ୍ରହ,ନକ୍ଷତ୍ର ଓ ଧୂମକେତୁ ପ୍ରଭୃତିର ସ୍ୱରୂପ, ସଞ୍ଚାର, ପରିଭ୍ରମଣ-କାଳ ଗ୍ରହଣ ପ୍ରଭୃତିର ବ୍ୟାପାର ନିରୂପଣ ବିଷୟକ ବିଦ୍ୟା ।
**ଜ୍ୟୋତିରଗ୍ର**—ବି°. (ବ.ବ୍ରୀ) ଆଦିତ୍ୟ-ପ୍ରମୁଖ ।
**ଜ୍ୟୋତିରନକ**—ବି. ଜ୍ୟୋତିର୍ମୁଖ,ଅଗ୍ନି
**ଜ୍ୟୋତିରାତ୍ମା**—ପୁଂ. ବି. (ବ.ବ୍ରୀ)ସୂର୍ଯ୍ୟ, ଅଗ୍ନି ପ୍ରଭୃତି ।
**ଜ୍ୟୋତିରିଙ୍ଗ**—ପୁଂ. ବି. (ଜ୍ୟୋତିଃ+ଇନଗ୍+କ.ଅ) ଖଦ୍ୟୋତ,ଜୁଳୁଜୁଳିଆ ପୋକ ।
**ଜ୍ୟୋତିରିଙ୍ଗଣ**—ପୁଂ. ବି. (ଜ୍ୟୋତିଃ+ଇନଗ୍+କ.ଅନ) ଖଦ୍ୟୋତ, ଜୁଳୁଜୁଳା ପୋକ ।
**ଜ୍ୟୋତିରୀଶ**--ପୁଂ.ବି.ସୂର୍ଯ୍ୟ,ପରମେଶ୍ୱର ।
**ଜ୍ୟୋତିରୀଶ୍ୱର**—ପଞ୍ଚସାୟକ ଓ ଧୂର୍ତ୍ତ-ସମାଗମପ୍ରହସନର ପ୍ରଣେତା ।
**ଜ୍ୟୋତିର୍ଗଣେଶ୍ୱର** - ପୁଂ.ବି.ପରମେଶ୍ୱର ।
**ଜ୍ୟୋତିର୍ଗ୍ରନ୍ଥ**--ପୁଂ.ବି.ଜ୍ୟୋଃଶାସ୍ତ୍ରଦେଖ ।
**ଜ୍ୟୋତିର୍ଜ୍ଞ**—ବି°. (ଜ୍ୟୋତିଃ+ଜ୍ଞା+ଅ) ଜ୍ୟୋତିର୍ବିଦ୍, ଦୈବଜ୍ଞ ।
**ଜ୍ୟୋତିର୍ମଣ୍ଡଳ**—ବି. ( ୬ତତ୍ ) ଗ୍ରହ-ନକ୍ଷତ୍ରାଦିଙ୍କ ସଞ୍ଚାରସ୍ଥଳ, ଆକାଶମଣ୍ଡଳ, ଯାବତ୍ ଜ୍ୟୋତିର୍ମୟ ପଦାର୍ଥର ସମଷ୍ଟି ।
**ଜ୍ୟୋତିର୍ମୟ**—ପୁଂ. ବି. ଜ୍ୟୋତିରାତ୍ମକ, ଜ୍ୟୋତିଃପୂର୍ଣ୍ଣ, ଦୀପ୍ତିଶାଳୀ ।
**ଜ୍ୟାତିର୍ମଲ୍ଲ**—ରା. ପୁଂ. ବି. ନେପାଳର ଜଣେ ରାଜା ।
**ଜ୍ୟୋତିର୍ଲିଙ୍ଗ**—ବି. ଶିବଲିଙ୍ଗବିଶେଷ, ମହାଦେବ ।

**ଜ୍ୟୋତିର୍ଲୋକ**—ପୁଂ. ବି. ଧ୍ରୁବଲୋକ ।
**ଜ୍ୟୋତିର୍ବିଜ୍ଞାନ**--ବି.ଜ୍ୟୋତିଃଶାସ୍ତ୍ର ଦେଖ ।
**ଜ୍ୟୋତିର୍ବିଦ୍**—ପୁଂ. ବି°. (ଜ୍ୟୋତିଃ+ବିଦ୍+କ.କ୍ୱିପ୍)ଜ୍ୟୋତିଶାସ୍ତ୍ରଜ୍ଞ,ଦୈବଜ୍ଞ ।
**ଜ୍ୟୋତିର୍ବିଦ୍ୟା**—ସ୍ତ୍ରୀ. ବି. (ଜ୍ୟୋତିଃ+ବିଦ୍ୟା) ଜ୍ୟୋତିଶାସ୍ତ୍ର ଦେଖ ।
**ଜ୍ୟୋତିର୍ବିନ୍ଦୁ**—ପୁଂ.ବି.୬ତତ୍; କଣାମାତ୍ର ଜ୍ୟୋତି ।
**ଜ୍ୟୋତିର୍ବୀଜ**—କ୍ଲୀ. ବି. ଖଦ୍ୟୋତ, ଜୁଳୁଜୁଳିଆ ପୋକ ।
**ଜ୍ୟୋତିର୍ବେତ୍ତା**—ପୁଂ.ବି°.(ଜ୍ୟୋତିଃ+ବିଦ+କ.ତୃ) ଜ୍ୟୋତିର୍ବିଦ୍ ଦେଖ ।
**ଜ୍ୟୋତିଶ୍ଚକ୍ର**—କ୍ଲୀ.ବି. ରାଶିଚକ୍ର, ଭଚକ୍ର, କୁଣ୍ଡଳୀ, ଚନ୍ଦ୍ର ସୂର୍ଯ୍ୟାଦିସହ ନକ୍ଷତ୍ର ସମୂହ, ଜ୍ୟୋତିର୍ମଣ୍ଡଳ ଦେଖ ।
**ଜ୍ୟୋତିର୍ହସ୍ତା**—ସ୍ତ୍ରୀ. ବି. ଦୁର୍ଗାଦେବୀ ।
**ଜ୍ୟୋତିଷ** —କ୍ଲୀ. ବି.( ଜ୍ୟୋତିଃ+ଅ ) ଜ୍ୟୋତିଶାସ୍ତ୍ର ଦେଖ ।
**ଜ୍ୟୋତିଷଚକ୍ର**—ବି. (୬ତତ୍) ରବିମାର୍ଗ ଯେଉଁ ତାରାରାଶି ମଧ୍ୟଦେଇ ଯାଇଅଛି, ରାଶିଚକ୍ର ।
**ଜ୍ୟୋତିଷବେଧଶାଳା**—ବି. ଜ୍ୟୋତିଷ-ଜ୍ଞାନ ପର୍ଯ୍ୟାଲୋଚନ ମନ୍ଦିର,ମାନମନ୍ଦିର ।
**ଜ୍ୟୋତିଷିକ**—ପୁଂ. ବି°. (ଜ୍ୟୋତିଷ+ଇକ) ଜ୍ୟୋତିଃଶାସ୍ତ୍ରାଧ୍ୟୟନକାରୀ, ଜ୍ୟୋତିର୍ବେତ୍ତା ।
**ଜ୍ୟୋତିଷୀ**—ପୁଂ.ବି°.ଜ୍ୟୋତିଃଶାସ୍ତ୍ରାଭିଜ୍ଞ, ଗଣକ,ଜ୍ୟୋତିର୍ବେତ୍ତା, (ସ୍ତ୍ରୀ.ବି)ତାରା ।
**ଜ୍ୟୋତିଷ୍କ**—ପୁଂ. ବି. (ଜ୍ୟୋତିଷ+କୃ+ଅ) ମେଥି, ଚିତାଗଛ,ନାଗଆଗଛ, ମେରୁଶୃଙ୍ଗ,ନଭୋମଣ୍ଡଳସ୍ଥ ଗ୍ରହନକ୍ଷତ୍ରାଦି, ଜ୍ୟୋତିର୍ମୟ ପଦାର୍ଥ ।
**ଜ୍ୟୋତିଷ୍କମଣ୍ଡଳ**—କ୍ଲୀ. ବି. ( ୬ତତ୍ ) ମଣ୍ଡଳାକାର ଜ୍ୟୋତିର୍ମୟ ଗ୍ରହନକ୍ଷତ୍ରାଦି, ନଭୋମଣ୍ଡଳସ୍ଥିତ ମେଷାଦି ଦ୍ୱାଦଶରାଶି ଓ ନକ୍ଷତ୍ର ସମନ୍ୱିତ ସ୍ଥାନବିଶେଷ ।
**ଜ୍ୟୋତିଷ୍କର**—ବି. (ଜ୍ୟୋତିଃ+କୃ+କ.ଅ) ଜ୍ୟୋତିଷ୍କ ଦେଖ ।
**ଜ୍ୟୋତିଷ୍କା**—ସ୍ତ୍ରୀ. ବି. (ଜ୍ୟୋତିଷ୍କ+ଆ)

ଜ୍ୟୋତିଷ୍ମତୀ ଲତା ।
ଜ୍ୟୋତିଷ୍କୃତ୍—ବି, (ଜ୍ୟୋତିଃ+କୃ+କ୍ୱିପ୍) ଆଦିତ୍ୟ । [ ବିଶେଷ ।
ଜ୍ୟୋତିଷ୍ଟୋମ—ପୁଂ.ବି. (ବ.ବ୍ରୀ) ଯଜ୍ଞ-
ଜ୍ୟୋତିଷ୍ପଥ—ପୁଂ.ବି. (୬ତତ୍) ଆକାଶ ।
ଜ୍ୟୋତିଷ୍ମତୀ—ସ୍ତ୍ରୀ. ବି. (ଜ୍ୟୋତିଷ୍ମତ୍+ଈ) ଲତାବିଶେଷ, ଫୁଟିଫୁଟିକା ଗୁଳ୍ମ, ଛନ୍ଦୋବୃତ୍ତିବିଶେଷ, ଅଗ୍ନିପ୍ରସ୍ତ, ନଦୀବିଶେଷ, (ସ୍ତ୍ରୀ.ବିଂ) ଜ୍ୟୋତିଷ୍ମାନର ସ୍ତ୍ରୀଲିଙ୍ଗ ।
ଜ୍ୟୋତିଷ୍ମାନ୍—ପୁଂ. ବିଂ. (ଜ୍ୟୋତିଃ+ମତ୍) ଉଜ୍ଜ୍ୱଳ, ରଶ୍ମିରେ ଆଲୋକ ବିକିରଣକାରୀ, (ବି) ସୂର୍ଯ୍ୟ, ପର୍ବତବିଶେଷ ।
ଜ୍ୟୋତିସ୍ତତ୍ତ୍ୱ—କ୍ଳୀ.ବି.(୬ତତ୍)ଜ୍ୟୋତିଷତତ୍ତ୍ୱ ଦେଖ;ରଘୁନନ୍ଦନ ଭଟ୍ଟାଚାର୍ଯ୍ୟକୃତ ଜ୍ୟୋତିଃଶାସ୍ତ୍ର ଗ୍ରନ୍ଥ । [ବିଶେଷ ।
ଜ୍ୟୋତିଃସିଦ୍ଧାନ୍ତ—ବି. ଜ୍ୟୋତିଃଗ୍ରନ୍ଥ-
ଜ୍ୟୋତୀରଥ—ପୁଂ. ବି. (ବ.ବ୍ରୀ) ଧ୍ରୁବନକ୍ଷତ୍ର, ନିର୍ବିଷଜାତୀୟ ସର୍ପ ।
ଜ୍ୟୋତୀରସ—ପୁଂ. ବି. ନକ୍ଷତ୍ର ଓ ପାରଦରସ ।
ଜ୍ୟୋତୀରୂପସ୍ୱୟମ୍ଭୂ—ପୁଂ. ବି. ବ୍ରହ୍ମା ।
ଜ୍ୟୋତ୍ସ୍ନା—ସ୍ତ୍ରୀ.ବି.(ଜ୍ୟୋତିଷ୍+ନ+ଆ) କୌମୁଦୀ,ଚନ୍ଦ୍ରଜ୍ୟୋତି, କାନ୍ତି, ଝଟକ, ଶୋଭା, ଚନ୍ଦ୍ରକିରଣ ।
ଜ୍ୟୋତ୍ସ୍ନାକାଳୀ—ସ୍ତ୍ରୀ.ବି.ସୋମଙ୍କର କନ୍ୟା
ଜ୍ୟୋତ୍ସ୍ନାପ୍ରିୟ—ପୁଂ. ବି. (ବ.ବ୍ରୀ) ଚକୋର ପକ୍ଷୀ ।
ଜ୍ୟୋତ୍ସ୍ନାବାନ୍—ପୁଂ.ବିଂ. ଜ୍ୟୋତ୍ସ୍ନାଯୁକ୍ତ, କିରଣ ବିଶିଷ୍ଟ ।
ଜ୍ୟୋତ୍ସ୍ନାବୃକ୍ଷ—ପୁଂ. ବି. (୬ତତ୍) ଦୀପାଧାର, ଦୀପରୁଖା, ପିଲସଜ ।
ଜ୍ୟୋତ୍ସ୍ନାମୟ—ବିଂ. (ଜ୍ୟୋତ୍ସ୍ନା+ମୟ) ଚନ୍ଦ୍ରକିରଣଦ୍ୱାରା ଆଲୋକିତ ।
ଜ୍ୟୋତ୍ସ୍ନୀ—ସ୍ତ୍ରୀ. ବି. (ଜ୍ୟୋତ୍ସ୍ନ+ଈ) ଶୁକ୍ଳମରୀଚ, ପଟୋଳ, ଜହ୍ନି, ରେଣୁକା ନାମକ ଗନ୍ଧଦ୍ରବ୍ୟ । [ ଅଧିପତି ।
ଜ୍ୟୋତ୍ସ୍ନେଶ—ପୁଂ.ବି.(୬ତତ୍)ଜ୍ୟୋତ୍ସ୍ନାର

ଜ୍ୟୌତିଷ—ବିଂ. ଜ୍ୟୋତିଷ ସମ୍ବନ୍ଧୀୟ, (ବି) ଜ୍ୟୋତିଃଶାସ୍ତ୍ର । [ ଦୈବଜ୍ଞ ।
ଜ୍ୟୌତିଷିକ—ପୁଂ. ବିଂ. ଜ୍ୟୋତିର୍ବିଦ୍,
ଜ୍ୟୌତ୍ସ୍ନ—ବିଂ. (ଜ୍ୟୋତ୍ସ୍ନା+ଅ) ଦୀପ୍ତ, ଜ୍ୟୋତ୍ସ୍ନାଯୁକ୍ତ ।
ଜ୍ୟୌତ୍ସ୍ନିକା—ସ୍ତ୍ରୀ. ବି. (ଜ୍ୟୋତ୍ସ୍ନା+ଇକ+ଆ) ଜ୍ୟୋତ୍ସ୍ନାଯୁକ୍ତ ରାତ୍ରି, ଜହ୍ନରାତି ।
ଜ୍ୱର—ପୁଂ.ବି. (ଜ୍ୱର+ଣ.ଅ)ଗାତ୍ରଦାହ, ଗାତ୍ରତାପଯୁକ୍ତ ରୋଗ, ମନୋଦୁଃଖ, ପୀଡ଼ା, (ଗ୍ରା. ବିଂ) ଅତ୍ୟାଗ୍ରହୀ ।
ଜ୍ୱରକାଳକେତୁରସ—ପୁଂ. ବି. ଜ୍ୱରଘ୍ନ ଔଷଧବିଶେଷ ।
ଜ୍ୱରକୁଞ୍ଜରପାରୀନ୍ଦ୍ରରସ—ପୁଂ.ବି. ଜ୍ୱରଘ୍ନ ଔଷଧବିଶେଷ ।
ଜ୍ୱରକେଶରୀ—ପୁଂ. ବି. ଜ୍ୱରନାଶକ ଔଷଧବିଶେଷ ।
ଜ୍ୱରଘ୍ନ—ବିଂ. (ଜ୍ୱର+ହନ୍+କ. ଅ) ଯାହା ଜ୍ୱରକୁ ଆରୋଗ୍ୟ କରେ, ଜ୍ୱରନାଶକ (ଔଷଧ) ।
ଜ୍ୱରଧୂମକେତୁରସ—ପୁଂ. ବି. ଜ୍ୱରନାଶକ ଔଷଧବିଶେଷ ।
ଜ୍ୱରନାଗମୟୂରଚୂର୍ଣ୍ଣ—କ୍ଳୀ.ବି. ଜ୍ୱରନାଶକ ଔଷଧବିଶେଷ ।
ଜ୍ୱରନାଶନ—ବିଂ. ( ଜ୍ୱର + ନାଶନ ) ଜ୍ୱରଘ୍ନ ଦେଖ; (ଗ୍ରା. ବି) ଅଷ୍ଟ୍ରେଲିଆରୁ ଆଣିତ ବୃକ୍ଷବିଶେଷ ।
ଜ୍ୱରପ୍ରକୋପ—ବି.(୬ତତ୍)ଜ୍ୱରର ତେଜ ବା ବାଢ଼ ।
ଜ୍ୱରବୋଧ—ବି. (ଜ୍ୱର+ବୋଧ) ଜ୍ୱର ଅନୁଭବ, ଜ୍ୱରହେବା ଅବସ୍ଥା ।
ଜ୍ୱରଭୈରବରସ-ପୁଂ. ବି. ଜ୍ୱରଘ୍ନ ଔଷଧ ବିଶେଷ ।
ଜ୍ୱରମାତଙ୍ଗକେଶରୀରସ—ପୁଂ.ବି. ଜ୍ୱରଘ୍ନ ଔଷଧବିଶେଷ ।
ଜ୍ୱରମୁରାରିରସ—ପୁଂ. ବି. ଜ୍ୱରଘ୍ନ ଔଷଧ ବିଶେଷ ।
ଜ୍ୱରରାଜ—ପୁଂ.ବି.ଜ୍ୱରଘ୍ନ ଔଷଧବିଶେଷ ।
ଜ୍ୱରବଳି—ବି. ଜ୍ୱରଶାନ୍ତିନିମିତ୍ତ ପୂଜା-
ବିଧାନବିଶେଷ ।
ଜ୍ୱରହନ୍ତୃ—ବିଂ.(ଜ୍ୱର+ହନ୍+କ.ତୃ) ଜ୍ୱରଘ୍ନ ଦେଖ ।
ଜ୍ୱରହନ୍ତ୍ରୀ—ସ୍ତ୍ରୀ. ବି. ମଞ୍ଜିଷ୍ଠା ।
ଜ୍ୱରାକ୍ରାନ୍ତ— ପୁଂ. ବିଂ. (୩ତତ୍) ଜ୍ୱରପ୍ରପୀଡ଼ିତ ।
ଜ୍ୱରାଗ୍ନି—ପୁଂ. ବି. ଜ୍ୱରରୂପ ଅଗ୍ନି, ଜ୍ୱରଜନିତ ତାପ ।
ଜ୍ୱରାଙ୍କୁଶ—ବିଂ. (୬ତତ୍)ଜ୍ୱରଘ୍ନ ଦେଖ ।
ଜ୍ୱରାଙ୍ଗୀ—ସ୍ତ୍ରୀ. ବି. ଭଦ୍ରଦନ୍ତିକା ।
ଜ୍ୱରାତିସାର— ପୁଂ. ବି. ଜ୍ୱର ସଙ୍ଗେ ହେବା ପତଳା ଝାଡ଼ା ବା ଗ୍ରହଣୀ ।
ଜ୍ୱରାନ୍ତକ—ପୁଂ. ବିଂ. (୬ତତ୍) ଜ୍ୱରଘ୍ନ, ଦେଖ, (ବି) ନେପାଳନିମ୍ବ, ଆରଗ୍ୱଧ, ସୁନାରି ।
ଜ୍ୱରାପହା—ସ୍ତ୍ରୀ. ବି. ବେଲଶୁଣ୍ଠା, (ବିଂ) ଜ୍ୱରନାଶକ, ଜ୍ୱରଘ୍ନ ଦେଖ ।
ଜ୍ୱରାରି—ବିଂ. (୬ତତ୍) ଜ୍ୱରଘ୍ନ ଦେଖ ।
ଜ୍ୱରାଶନ—ବିଂ. (୬ତତ୍) ଜ୍ୱରଘ୍ନ ଦେଖ ।
ଜ୍ୱରିତ—ପୁଂ. ବିଂ. (ଜ୍ୱର+ଇତ)ଜ୍ୱରଯୁକ୍ତ, ଜ୍ୱରାକ୍ରାନ୍ତ, (ସ୍ତ୍ରୀ) ଜ୍ୱରିତା ।
ଜ୍ୱରୀ—ପୁଂ.ବିଂ. (ଜ୍ୱର+ଇନ୍)ଜ୍ୱରଯୁକ୍ତ, ଜ୍ୱରାକ୍ରାନ୍ତ, (ସ୍ତ୍ରୀ) ଜ୍ୱରିଣୀ ।
ଜ୍ୱଳ—ପୁଂ. ବି. (ଜ୍ୱଳ+ଅ)ଜାଲ, ଦୀପ୍ତି, (ବିଂ) ଦୀପ୍ତିବିଶିଷ୍ଟ ।
ଜ୍ୱଳକା—ସ୍ତ୍ରୀ. ବି. ଅଗ୍ନିଶିଖା ।
ଜ୍ୱଳଜ୍ୱଳ—ବିଂ. ପ୍ରଦୀପ୍ତ, (କ୍ରି.ବିଂ)ପ୍ରଚଣ୍ଡ ତେଜରେ ।
ଜ୍ୱଳତ୍—ପୁଂ. ବିଂ. ( ଜ୍ୱଳ+କ.ଅତ୍ ) ଦୀପ୍ତିଯୁକ୍ତ, ଜଳୁଥିବା ।
ଜ୍ୱଳଦଗ୍ନି,ଜ୍ୱଳଦନଳ—ପୁଂ.ବି. (କ.ଧା) ଜ୍ୱଳନ୍ତ ଅଗ୍ନି ।
ଜ୍ୱଳନ୍—ପୁଂ. ବିଂ. ( ଜ୍ୱଳ+କ.ଅତ୍ ) ଜଳୁଥିବା, ଜ୍ୱଳନ୍ତ, ଦୀପ୍ତିଶାଳୀ ।
ଜ୍ୱଳନ—ବିଂ.(ଜ୍ୱଳ+କ.ଅନ)ଦୀପ୍ତିଶୀଳ, ଜଳୁଥିବା, (ଜ୍ୱଳ+ଭା.ଅନ)ବି. ନିଆଁ ଲଗାଇବା, ଜଳିବା, ଦୀପ୍ତି, ଅଗ୍ନି, ଧଳାଚିତାଗଛ, ଜ୍ୱାଳା, ଅଗ୍ନିଶିଖା, ଦାହ ।

ଜ୍ୱଳନାନ୍ତ—ବୌଦ୍ଧ ମତରେ ଦଶସହସ୍ର ଦେବ ପୁତ୍ରର ନାୟକ ।
ଜ୍ୱଳନାଶ୍ମା—ପୁଂ.ବି.(କ.ଧା) ସୂର୍ଯ୍ୟକାନ୍ତମଣି, ଅଗ୍ନି ଉଦ୍ଗୀରଣଶୀଳ ପ୍ରସ୍ତର ।
ଜ୍ୱଳନ୍ତ—ଗ୍ରା.ବିଂ. (ସଂ-ଜ୍ୱଳତ୍)ପ୍ରଜ୍ୱଳିତ, ଦୀପ୍ତ, ଜାଜ୍ଜ୍ୱଲ୍ୟମାନ, ଜଳୁଥିବା ।
ଜ୍ୱଳନ୍ତନିଦର୍ଶନ—ଗ୍ରା. ବି. ନିଃସନ୍ଦେହ ପ୍ରମାଣ, ଜାଜ୍ଜ୍ୱଲ୍ୟମାନ ଉଦାହରଣ ।
ଜ୍ୱଳନ୍ତା—ଗ୍ରା. ବିଂ. ପ୍ରଦୀପ୍ତ, ଜଳୁଥିବା ।
ଜ୍ୱଳିତ—ବିଂ. ( ଜ୍ୱଳ+କ.ତ ) ଦଗ୍ଧ, ଉଜ୍ଜ୍ୱଳ, ଦୀପ୍ତ, ଆଲୋକିତ, ଯାହା ଜଳି ଉଠିଅଛି ।
ଜ୍ୱଳିନୀ—ସ୍ତ୍ରୀ. ବି. ମୂର୍ବାଲତା ।
ଜ୍ୱାଳ—ପୁଂ.ସ୍ତ୍ରୀ.ବି. (ଜ୍ୱଳ + କ.ଅ)ଅଗ୍ନିଶିଖା, (ବିଂ) ଦୀପ୍ତିଯୁକ୍ତ ।
ଜ୍ୱାଳଗରଗଦ—ପୁଂ. ବି. ଜ୍ୱାଳଗର୍ଦ୍ଦଭନାମକ କ୍ଷୁଦ୍ର ରୋଗବିଶେଷ ।
ଜ୍ୱାଳା—ସ୍ତ୍ରୀ. ବି. ( ଜ୍ୱାଳ + କ.ଅ + ଆ ) ଦଗ୍‌ଧାନ୍ନ,ଅଗ୍ନିଶିଖା, ଉଜ୍ଜ୍ୱଳଆଲୋକ, ସ୍ୱନାମଖ୍ୟାତ ଋଷିପତ୍ନୀ, ଶରୀରର ପ୍ରଦାହ, ଜଳାପୋଡ଼ା, ଦେହରେ ନିଆଁ ଖୁଣ୍ଟା ମାଡ଼ିବା ଦ୍ୱାରା ଯେଉଁ କଷ୍ଟ ଅନୁଭୂତ ହୁଏ, ଦୁଃଖ, କଷ୍ଟ, କ୍ଲେଶ, ପ୍ରାବଲ୍ୟ, ଦାଉ, ଅତ୍ୟାଚାର, ନିର୍ଯ୍ୟାତନା, ପୋଡ଼ାଭାତ, ଦଗ୍ଧାନ୍ନ, (ଯୋଗୀ ବା ବାମ୍ଭ ସାଧକମାନଙ୍କର ବ୍ୟବହୃତ ଶବ୍ଦ) ମୁଖ ।
ଜ୍ୱାଳାଜିହ୍ୱ—ପୁଂ.ବି. ଅଗ୍ନି, ଚିତ୍ରକବୃକ୍ଷ ।
ଜ୍ୱାଳାତନ—ଗ୍ରା.ବିଂ. ଉତ୍ପୀଡ଼ିତ, ବିରକ୍ତ, ଦାହପ୍ରାପ୍ତ, କ୍ଲେଶାନ୍ୱିତ ।
ଜ୍ୱାଳାମାଳିନୀ—ସ୍ତ୍ରୀ. ବି. ଦେବୀବିଶେଷ ।
ଜ୍ୱାଳାବକ୍ତ୍ର—ପୁଂ. ବି. (ବ.ବ୍ରୀ) ଶିବ, ମହାଦେବ, ବ୍ରହ୍ମା ।
ଜ୍ୱାଳାମୁଖୀ- ସ୍ତ୍ରୀ.ବି.(ଜ୍ୱାଳା+ମୁଖ+ଈ) ପଞ୍ଜାବର ଅନ୍ତର୍ଗତ ହିନ୍ଦୁତୀର୍ଥବିଶେଷ, ପୀଠଭେଦ, ଆଗ୍ନେୟଗିରି, ଚୀନିକ ତୁରସ୍କର ହିନ୍ଦୁତୀର୍ଥବିଶେଷ ।
ଜ୍ୱାଳିତ—ବିଂ. (ଜ୍ୱଳ+ଣିଚ୍+ମିଂ.ତ) ଜଳାଯାଇଥିବା, ଦାହିତ, ଦୀପିତ, ସନ୍ତାପିତ, କ୍ଲେଶିତ ।
ଜ୍ୱାଳିନୀ—ସ୍ତ୍ରୀ. ବି. ଦୁର୍ଗା, ପାର୍ବତୀ ।
ଜ୍ୱାଳୀ—ପୁଂ. ବି. (ଜ୍ୱଳ+ଇନ୍) ଶିବ, (ବି) ଦୀପ୍ତିମାନ୍, ଶିଖାଯୁକ୍ତ ।
ଜ୍ୱାଳେଶ୍ୱର—ପୁଂ. ବି. ମତ୍ସ୍ୟପୁରାଣୋକ୍ତ ତୀର୍ଥବିଶେଷ ।

# ଝ

ଝ—ବ୍ୟଞ୍ଜନବର୍ଣ୍ଣର ନବମବର୍ଣ୍ଣ ଚବର୍ଗର ଚତୁର୍ଥବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ତାଳୁ ।
ଝ—ପୁଂ. ବି. (ଝଟ୍+କ.ଅ)ଝଞ୍ଜାବାତ, ଜଳବର୍ଷଣ, ଦେବଗୁରୁ, ଦୈତ୍ୟରାଜ, ଇନ୍ଦ୍ର, ଧ୍ୱନିଭେଦ, ଉଚ୍ଚବାଟ, ଝିଣ୍ଟୀଶ, (ବିଂ) ନିଦ୍ରିତ, ନଷ୍ଟ ।
ଝଅଁଝଅଁ—ଗ୍ରା. ଅବ୍ୟ. (ଧ୍ୱନ୍ୟନୁକରଣ) ଝଇଁଝାଇଁ ଦେଖ ।
ଝଁଝଁ—ଗ୍ରା. ଅବ୍ୟ. ଝାଇଁଝାଇଁ ଦେଖ ।
ଝକ୍‌ଝକ୍—ଗ୍ରା. ବି. ଦୀପ୍ତି, କାନ୍ତି, ଝଟକ, ଧିକ୍‌ମାକି, ସର୍ବଦା କଳହ, ଦରଦାର ବିଷୟରେ ଉପର୍ଯ୍ୟୁପରି ଓଜର ଆପତ୍ତି, (ଗ୍ରା.ବିଂ) ଦୀପ୍ତିଶାଳୀ,ଝଟକୁଥିବା,ଜକଜକ, କଳହପ୍ରିୟ, ବାବଦୂକ, ବାରମ୍ବାର କଥା କହୁଥିବା, (ଗ୍ରା. କ୍ରି. ବିଂ) ଜକଜକହୋଇ ।
ଝକଝକିଆ—ଗ୍ରା. ପୁଂ. ବିଂ. କଳହୀ, ଯେ ଦରଦାମ୍‌ରେ ବହୁତ ଓଜର ଆପତ୍ତି କରେ, ଝଟକୁଥିବା ।
ଝକ—ଗ୍ରା. ବି. କାନ୍ତି, ଦୀପ୍ତି, ଚମକ, ଝଟକା ।
ଝକମକ—ଗ୍ରା.ବିଂ.ଦୀପ୍ତିଶାଳୀ,ଜାଜ୍ୱଲ୍ୟମାନ
ଝକମକି—ଗ୍ରା.ବି. ଅଗ୍ନିସ୍ଫୁଲିଙ୍ଗ ଉତ୍ପାଦକ ପ୍ରସ୍ତରଖଣ୍ଡ, ଚକମକି,(ଯହିଁରେ ଲୁହା ବା ପଥର ଆଘାତ କଲେ ନିଆଁ ଝୁଲ ବାହାରେ ।
ଝକମାରି—ଗ୍ରା. ବି. ତ୍ରୁଟି, ଅପରାଧ, ଅନୁତାପ, ଖେଦ, ନିର୍ବୋଧତା, ଅବିବେଚକତାର କାର୍ଯ୍ୟ, ଭୁଲ (ଗ୍ରା. ବିଂ) ଅବିବେଚକ, ବିଗ୍ଭରଶୂନ୍ୟ (କର୍ମ), ତ୍ରୁଟିଯୁକ୍ତ ।
ଝକମାରିବା—ଗ୍ରା. କ୍ରି. ବୋକାମିକାର୍ଯ୍ୟ କରିବ, ସମସ୍ତ ବୃଥାନଷ୍ଟ କରିବା, ନିଜରବେକୁବି ବା ତ୍ରୁଟି ସ୍ୱୀକାରକରିବା, ନିଜକୃତ ଦୋଷ ନିମନ୍ତେ ଅନୁତାପ କରିବା, ଦୁଃଖଭୋଗ କରିବା ।
ଝକାଝକ—ଗ୍ରା. ବି. ଝିଙ୍କାଝିଙ୍କି, ଟଣାଓଟରା, ଟଣାଟଣି ପୂର୍ବକ ବିବାଦ, ପଣ୍ୟଦ୍ରବ୍ୟର ଭାଉସମ୍ବନ୍ଧେ ବାଦ ପ୍ରତିବାଦ, ବିବାଦ, ( ଗ୍ରା. ବିଂ ) ଝଙ୍କାଝଙ୍କ ଦେଖ; (ପ୍ରା. ସମ୍ବ. ବିଂ) ଜକ୍‌ଜକ୍ ।
ଝକି ବା ଝକ୍କି—ଗ୍ରା.ବି.ଝୁଙ୍କି,ଗୁରୁଦାୟିତ୍ୱ, ଦୁଃଖ, କଷ୍ଟ, ଜଗର, ଖିଆଲ, (ବିଂ) ଜଗରବାଜ୍, ଏକଜିଦିଆ, ଅବ୍ୟବସ୍ଥିତ ଚିତ୍ତ ।
ଝଗଡ଼—ଗ୍ରା. ବି. ରାଜାଙ୍କର ସ୍ନାନଗୀତ, କୃଷ୍ଣଚୂଡ଼ାଗଛ, ଝଗଡ଼ା, ଜଞ୍ଜାଳ ।
ଝଗଡ଼ା—ଗ୍ରା. ବି. କଳହ, ଝକାଝକ୍ ଦେଖ, ଜଞ୍ଜାଳ ।
ଝଗଡ଼ିଆ—ଗ୍ରା. ବିଂ. କଳହପ୍ରିୟ ।
ଝଗଡ଼ିବା—ଗ୍ରା.କ୍ରି. କଳିକରିବା, ବକିବା, ଅଳିକରିବା, ଲଢ଼ିବା ।
ଝଗର୍—ପ୍ରା.(ସମ୍ବ)ବି.କଳି,ଗାଳି,ଝଗଡ଼ା ।
ଝଙ୍କା—ଗ୍ରା.ବି.ବଡ଼ଅଗଭାର ଟୋକେଇ, ପାଚୁର୍ଯ୍ୟ,ବଡ଼ବଡ଼ପେନ୍ଥା(ଫଳଆଦିର), ଗ୍ରା. ବିଂ. ଝଙ୍କାଳିଆ ଦେଖ ।
ଝଙ୍କାଝଙ୍କ—ଗ୍ରା. ବି. ଝକାଝକ୍ ଦେଖ; ଗ୍ର .ବିଂ.)ବହୁଳ, ପ୍ରଚୁର, ପେନ୍ଥାପେନ୍ଥା ଫଳ ଆଦିରେ ପୂର୍ଣ୍ଣ, (ଗ୍ରା. କ୍ରି. ବିଂ) ବଡ଼ବଡ଼ଟୋକେଇ ପୂର୍ଣ୍ଣକରି, ପ୍ରଚୁର ପରିମାଣରେ, ଟଣାଓଟରା ହୋଇ, ଉଭୟ ପକ୍ଷରୁ ଖୁବ୍ ବଳପ୍ରୟୋଗ ପୂର୍ବକ
ଝଙ୍କାଝଙ୍କା—ଗ୍ରା.ବିଂ. ଝଙ୍କାଝଙ୍କି ଦେଖ, ଝଙ୍କାଳିଆ ଦେଖ ।
ଝଙ୍କାଝଙ୍କି—ଗ୍ରା. ବି. ଝକାଝକ୍ ଦେଖ ।
ଝଙ୍କାମାରିବା—ଗ୍ରା. କ୍ରି. ( ଗଛଆଦି )

ଜ୍ୱଳନାନ୍ତ—ବୌଦ୍ଧ ମତରେ ଦଶସହସ୍ର ଦେବ ପୁତ୍ରର ନାୟକ ।

ଜ୍ୱଳନାଶ୍ମା—ପୁଂ.ବି.(ଜ.ଧା) ସୂର୍ଯ୍ୟକାନ୍ତ-ମଣି, ଅଗ୍ନି ଉଦ୍ଗୀରଣଶୀଳ ପ୍ରସ୍ତର ।

ଜ୍ୱଳନ୍ତ—ଗ୍ରା.ବିଂ. (ସଂ-ଜ୍ୱଳତ୍)ପ୍ରଜ୍ୱଳିତ, ଦୀପ୍ତ, ଜାଜ୍ୱଲ୍ୟମାନ, ଜଳୁଥିବା ।

ଜ୍ୱଳନ୍ତନିଦର୍ଶନ—ଗ୍ରା. ବି. ନିଃସନ୍ଦେହ ପ୍ରମାଣ, ଜାଜ୍ୱଲ୍ୟମାନ ଉଦାହରଣ ।

ଜ୍ୱଳନ୍ତା—ଗ୍ରା. ବିଂ. ପ୍ରଦୀପ୍ତ, ଜଳୁଥିବା ।

ଜ୍ୱଳିତ—ବିଂ. ( ଜ୍ୱଳ+କ.ତ ) ଦଗ୍ଧ, ଉଜ୍ଜ୍ୱଳ, ଦୀପ୍ତ, ଆଲୋକିତ, ଯାହା ଜଳି ଉଠିଅଛି ।

ଜ୍ୱଲିନୀ—ସ୍ତ୍ରୀ. ବି. ମୂର୍ବାଲତା ।

ଜ୍ୱାଳ—ପୁଂ.ସ୍ତ୍ରୀ.ବି. (ଜ୍ୱଳ+କ.ଅ)ଅଗ୍ନି-ଶିଖା, (ବିଂ) ଦୀପ୍ତିଯୁକ୍ତ ।

ଜ୍ୱାଳଗରଗନ୍ଦ—ପୁଂ. ବି. ଜ୍ୱାଳଗର୍ଦ୍ଦଭ-ନାମକ କ୍ଷୁଦ୍ର ରୋଗବିଶେଷ ।

ଜ୍ୱାଳା—ସ୍ତ୍ରୀ. ବି. ( ଜ୍ୱାଳ+କ.ଅ+ଆ ) ଦଗ୍ଧାନ୍ନ,ଅଗ୍ନିଶିଖା, ଉଜ୍ଜ୍ୱଳଆଲୋକ, ସ୍ୱନାମଖ୍ୟାତ ଋଷିପତ୍ନୀ, ଶରୀରର ପ୍ରଦାହ, ଜାଳାପୋଡ଼ା, ଦେହରେ ନିଆଁଖୁଣ୍ଟା ମାଡ଼ିବା ଦ୍ୱାରା ଯେଉଁ କଷ୍ଟ ଅନୁଭୂତ ହୁଏ, ଦୁଃଖ, କଷ୍ଟ, କ୍ଳେଶ, ପ୍ରାବଲ୍ୟ, ଦାଉ, ଅତ୍ୟାଗ୍ରହ, ନିର୍ଯ୍ୟା-ତନା, ପୋଡ଼ାଭାତ, ଦଗ୍ଧାନ୍ନ, (ଯୋଗୀ ବା ବାୟୁ ସାଧକମାନଙ୍କର ବ୍ୟବହୃତ ଶବ୍ଦ) ମୁଖ ।

ଜ୍ୱାଳାଜିହ୍ୱ—ପୁଂ.ବି. ଅଗ୍ନି, ଚିତ୍ରକବୃକ୍ଷ ।

ଜ୍ୱାଳାତନ—ଗ୍ରା.ବିଂ. ଉତ୍ପୀଡ଼ିତ, ବିରକ୍ତ, ଦାହପ୍ରାପ୍ତ, କ୍ଳେଶାନ୍ୱିତ ।

ଜ୍ୱାଳାମାଳିନୀ—ସ୍ତ୍ରୀ. ବି. ଦେବୀବିଶେଷ ।

ଜ୍ୱାଳାବକ୍ତ୍ର—ପୁଂ. ବି. (ବ.ବ୍ରୀ) ଶିବ, ମହାଦେବ, ବ୍ରହ୍ମା ।

ଜ୍ୱାଳାମୁଖୀ- ସ୍ତ୍ରୀ.ବି.(ଜ୍ୱାଳା+ମୁଖ+ଈ) ପଞ୍ଜାବର ଅନ୍ତର୍ଗତ ହିନ୍ଦୁତୀର୍ଥବିଶେଷ, ପୀଠଭେଦ, ଆଗ୍ନେୟଗିରି, ଚୀନକ ତୁରସ୍କର ହିନ୍ଦୁତୀର୍ଥବିଶେଷ ।

ଜ୍ୱାଳିତ—ବିଂ. (ଜ୍ୱଳ+ଣିଚ୍+ମି.ତ) ଜଳାଯାଇଥିବା, ଦାହିତ, ଦୀପିତ, ସନ୍ତାପିତ, କ୍ଲେଶିତ ।

ଜ୍ୱାଳିନୀ—ସ୍ତ୍ରୀ. ବି. ଦୁର୍ଗା, ପାର୍ବତୀ ।

ଜ୍ୱାଳୀ—ପୁଂ. ବି. (ଜ୍ୱଳ+ଇନ୍) ଶିବ, (ବି) ଦୀପ୍ତିମାନ୍, ଶିଖାଯୁକ୍ତ ।

ଜ୍ୱାଳେଶ୍ୱର—ପୁଂ. ବି. ମତ୍ସ୍ୟପୁରାଣୋକ୍ତ ତୀର୍ଥବିଶେଷ ।

# ଝ

ଝ—ବ୍ୟଞ୍ଜନବର୍ଣ୍ଣର ନବମବର୍ଣ୍ଣ ଚବର୍ଗର ଚତୁର୍ଥବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ତାଳୁ ।

ଝ—ପୁଂ. ବି. (ଝଟ୍+କ.ଅ)ଝଞ୍ଜାବାତ, ଜଳବର୍ଷଣ, ଦେବଗୁରୁ, ଦୈତ୍ୟରାଜ, ଇନ୍ଦ୍ର, ଧ୍ୱନିଭେଦ, ଉଚ୍ଚବାଟ, ଝିଣ୍ଟୀଶ, (ବିଂ) ନିଦ୍ରିତ, ନଷ୍ଟ ।

ଝଅଁଝଅଁ—ଗ୍ରା. ଅବ୍ୟ. (ଧ୍ୱନ୍ୟନୁକରଣ) ଝଇଁଝାଇଁ ଦେଖ ।

ଝଁଝଁ—ଗ୍ରା. ଅବ୍ୟ. ଝାଇଁଝଇଁ ଦେଖ ।

ଝକ୍‌ଝକ୍—ଗ୍ରା. ବି. ଦୀପ୍ତି, କାନ୍ତି, ଝଟକ, ଧିକମାଳି, ସର୍ବଦା କଳହ, ଦରଦାର ବିଷୟରେ ଉପର୍ଯ୍ୟୁପରି ଓଜର ଆପତ୍ତି, (ଗ୍ରା.ବିଂ) ଦୀପ୍ତିଶାଳୀ,ଝଟକୁଥିବା,ଜକ-ଜକ, କଳହପ୍ରିୟ, ବାବଦୂକ, ବାରମ୍ବାର କଥା କହୁଥିବା, (ଗ୍ରା. କ୍ରି. ବିଂ) ଜକଜକହୋଇ ।

ଝକଝକିଆ—ଗ୍ରା. ପୁଂ. ବିଂ. କଳହୀ, ଯେ ଦରଦାମ୍‌ରେ ବହୁତ ଓଜର ଆପତ୍ତି କରେ, ଝଟକୁଥିବା ।

ଝକ—ଗ୍ରା. ବି. କାନ୍ତି, ଦୀପ୍ତି, ଚମକ, ଝଟକା ।

ଝକମକ—ଗ୍ରା.ବିଂ.ଦୀପ୍ତିଶାଳୀ,ଜାଜ୍ୱଲ୍ୟମାନ

ଝକମକି—ଗ୍ରା.ବି. ଅଗ୍ନିସ୍ଫୁଲିଙ୍ଗ ଉତ୍ପାଦକ ପ୍ରସ୍ତରଖଣ୍ଡ, ଚକମକି,(ଯହିଁରେ ଲୁହା ବା ପଥର ଆଘାତ କଲେ ନିଆଁଝୁଲ ବାହାରେ ।

ଝକମାରି—ଗ୍ରା. ବି. ତ୍ରୁଟି, ଅପରାଧ, ଅନୁତାପ, ଖେଦ, ନିର୍ବୋଧତା, ଅବି-ବେଚକତାର କାର୍ଯ୍ୟ, ଭୁଲ (ଗ୍ରା. ବିଂ) ଅବିବେଚକ, ବିଗ୍ଭରଶୂନ୍ୟ (କର୍ମ), ତ୍ରୁଟିଯୁକ୍ତ ।

ଝକମାରିବା—ଗ୍ରା. କ୍ରି. ବେକୁବୀକାର୍ଯ୍ୟ କରିବ, ସମସ୍ତ ବୃଥାନଷ୍ଟ କରିବା, ନିଜରବେକୁବୀ ବା ତ୍ରୁଟି ସ୍ୱୀକାରକରିବା, ନିଜକୃତ ଦୋଷ ନିମନ୍ତେ ଅନୁତାପ କରିବା, ଦୁଃଖଭୋଗ କରିବା ।

ଝକାଝକ—ଗ୍ରା. ବି. ଝିଙ୍କାଝିଙ୍କି, ଟଣା-ଓଟରା, ଟଣାଟଣି ପୂର୍ବକ ବିବାଦ, ପଣ୍ୟଦ୍ରବ୍ୟର ଭାଉସମ୍ବନ୍ଧେ ବାଦ ପ୍ରତି-ବାଦ, ବିବାଦ, ( ଗ୍ରା. ବିଂ ) ଝଙ୍କାଝଙ୍କ ଦେଖ; (ପ୍ରା. ସମ୍ବ. ବିଂ) ଜକ୍‌ଜକ୍ ।

ଝକ ବା ଝକ୍କି—ଗ୍ରା.ବି.ଝୁଙ୍କି,ଗୁରୁଦାୟିତ୍ୱ, ଦୁଃଖ, କଷ୍ଟ, ଜଗର, ଖିଆଲ, (ବିଂ) ଜଗରବାଜ୍, ଏକଜିଦଆ, ଅବ୍ୟବସ୍ଥିତ ଚିତ୍ତ ।

ଝଗଡ଼—ଗ୍ରା. ବି. ରାଜାଙ୍କର ସ୍ନାନଗୀତ, କୃଷ୍ଣଚୂଡ଼ାଗଛ, ଝଗଡ଼ା, ଜଞ୍ଜାଳ ।

ଝଗଡ଼ା—ଗ୍ରା. ବି. କଳହ, ଝକାଝକ୍ ଦେଖ, ଜଞ୍ଜାଳ ।

ଝଗଡ଼ିଆ—ଗ୍ରା. ବିଂ. କଳହପ୍ରିୟ ।

ଝଗଡ଼ିବା—ଗ୍ରା.କ୍ରି. କଳିକରିବା, ବକିବା, ଅଳିକରିବା, ଲଢ଼ିବା ।

ଝଗର୍—ପ୍ରା.(ସମ୍ବ)ବି.କଳି,ଗାଳି,ଝଗଡ଼ା ।

ଝଙ୍କା—ଗ୍ରା.ବି.ବଡ଼ଅଗଣ୍ଡିର ଟୋକେଇ, ପାଚୁଡ଼ି,ବଡ଼ବଡ଼ପେଛା(ଫଳଆଦିର), ଗ୍ରା. ବିଂ. ଝଙ୍କାଲିଆ ଦେଖ ।

ଝଙ୍କାଝଙ୍କ—ଗ୍ରା. ବି. ଝକାଝକ୍ ଦେଖ; ଗ୍ର .ବିଂ.)ବହୁଳ, ପ୍ରଚୁର, ପେଛାପେଛା ଫଳ ଆଦିରେ ପୂର୍ଣ୍ଣ, (ଗ୍ରା. କ୍ରି. ବିଂ) ବଡ଼ବଡ଼ଟୋକେଇ ପୂର୍ଣ୍ଣକରି, ପ୍ରଚୁର ପରିମାଣରେ, ଟଣାଓଟରା ହୋଇ, ଉଭୟ ପକ୍ଷରୁ ଖୁବ୍ ବଳପ୍ରୟୋଗ ପୂର୍ବକ

ଝଙ୍କାଝଙ୍କା—ଗ୍ରା.ବିଂ. ଝଙ୍କାଝଙ୍କି ଦେଖ, ଝଙ୍କାଲିଆ ଦେଖ ।

ଝଙ୍କାଝଙ୍କି—ଗ୍ରା. ବି. ଝକାଝକ୍ ଦେଖ ।

ଝଙ୍କାମାରିବା—ଗ୍ରା. କ୍ରି. ( ଗଛଆଦି )

ଝାମ୍ପୁଲିଆହୋଇ ବଢ଼ିବା ।

ଝଙ୍କାର—ଗ୍ରା. ବ. (ଝମ୍+କୃ+ଭ.ଅ) ଝମ୍‌ଝମ୍‌ଶବ୍ଦ,ଗୁଞ୍ଜନ,ଭ୍ରମରାଦିଙ୍କର ଗୁଣୁ ଗୁଣୁଶବ୍ଦ, ପବନର ବେଗଦ୍ୱାରା ବୃକ୍ଷାଦିର ପତ୍ର ଓ ଶାଖା ସଞ୍ଚାଳିତ ହେବାର ଶବ୍ଦ, ସାଇଁ ସାଇଁ, ବୀଣାଦି ଯନ୍ତ୍ରର କ୍ୱଣନ, ଧନୁର ଟଙ୍କାର,କ୍ରୋଧ,ବିରକ୍ତି, କୋଳାହଳ, ଘୋଓଘାଆ ।

ଝଙ୍କାରିଣୀ—ସ୍ତ୍ରୀ. ବ. (ଝଙ୍କାର+ଇନ୍ +ଈ) ଗଙ୍ଗାନଦୀ, ଝିଣ୍ଟୀରି ।

ଝଙ୍କାରିତ—ବିଂ. (ଝଙ୍କାର+ଇତ) ଝଙ୍କାରଯୁକ୍ତ ।

ଝଙ୍କାରିବା—ଗ୍ରା. କ୍ରି. ଶବ୍ଦାୟିତ କରିବା, ଝଣଝଣ ଶବ୍ଦକରିବା ।

ଝଙ୍କାଳିଆ—ଗ୍ରା. ବିଂ. ଝାମ୍ପୁଲି, ଛତାପରି ବିସ୍ତୃତ, ବିସ୍ତାରିତ ।

ଝଙ୍କି—ଗ୍ରା. ବ. ଏକଜାତି, ଜଗର, ଝୁଙ୍କି (ଗ୍ରା. ବିଂ) ଏକଗୁଆଁ, ଏକଜିଦିଆ ।

ଝଙ୍କିବା—ଗ୍ରା. କ୍ରି. ( ଧ୍ୱନ୍ୟନୁକରଣ ) ଝାଇଁଝାଇଁ ଶବ୍ଦକରିବା ।

ଝଙ୍କିଲ—ଗ୍ରା.ବ. ଏକଜାତୀୟ ବଡ଼ ବକ ।

ଝଙ୍କୃତ—ବିଂ. ( ଝମ୍+କୃ+ର୍ମ.ତ ) ଝଣଝଣ ଶବ୍ଦଦ୍ୱାରା ନିନାଦିତ, ଗୁଞ୍ଜିତ, ସିଞ୍ଜିତ, ନିକ୍ୱଣିତ ।

ଝଙ୍କୃତା—ସ୍ତ୍ରୀ. ବ. ତାରାଦେବୀ ।

ଝଙ୍କୃତି—ସ୍ତ୍ରୀ. ବ. କାଂସ୍ୟାଦିର ଧ୍ୱନି, ଝଙ୍କାର ଦେଖ ।

ଝଙ୍ଗା—ଗ୍ରା. ବ.ପଞ୍ଜାବର ଗୋଟିଏ ଜିଲ୍ଲା ।

ଝଜ୍ଝା—ଗ୍ରା. ବ. (ସଂ-ଭୟବ୍ୟସ୍ତ) ଭୟଜନିତ କିଂ କର୍ତ୍ତବ୍ୟ ବିମୂଢ଼ତା,ଛନକା, ଗୁଜୁଆଁ,ହଠାତ୍ ଭୟଯୋଗୁଁ ଆବାକାବା ହେବା,ଆନନ୍ଦବାଦ୍ୟାଦିର ଅନୁକ ଶବ୍ଦ (ବିଂ) ଗୁଜୁଆଁ,ଭୟବ୍ୟସ୍ତ,କିଂ କର୍ତ୍ତବ୍ୟବିମୂଢ଼, କାର୍ଯ୍ୟବ୍ୟସ୍ତ । [ ଦେଖ ।

ଝଞ୍ଜକା ବା ଝଞ୍ଝକା—ଗ୍ରା. ବ. ଝଜ୍ଝା

ଝଞ୍ଜଟ—ଗ୍ରା. ବ.(ସଂ-ଝଞ୍ଝା) ଗୋଲମାଲ, ଅଡ଼ୁଆ, ଆନ୍ଦୋଳନ, କଷ୍ଟ, ବିରକ୍ତି, ମାନସିକ ବ୍ୟସ୍ତତା, ଲେଣ୍ଡେରା,ଜଞ୍ଜାଳ, କାର୍ଯ୍ୟାଧିକ୍ୟ, କ୍ଳେଶ, ଦ୍ୱିଧାଭାବଜଡ଼ିତ ଅବସ୍ଥା, କିଂ କର୍ତ୍ତବ୍ୟ ବିମୂଢ଼ତା ।

ଝଞ୍ଜଟିଆ—ଗ୍ରା. ବିଂ. (ସଂ-ଜଞ୍ଜାଳ)ଧନ୍ଦାମୟ,ଅତିବ୍ୟସ୍ତ,ଅଡ଼ୁଆ,ଗୋଲମାଲିଆ, ବିରକ୍ତିଜନକ, ଦୁଷ୍କର, କଷ୍ଟସାଧ୍ୟ ।

ଝଞ୍ଜ(ଞ୍ଝ)ନା—ବ.(ଝମ୍+ଝନ୍+ଅ+ଆ) ବିଜୁଳି, ବିଦ୍ୟୁତ୍, ବଜ୍ର, ବଜ୍ରଧ୍ୱନି ।

ଝଞ୍ଜ(ଞ୍ଝ)ନି—ଗ୍ରା.ଅବ୍ୟ, (ସଂ-ଝଣତ୍କାର) ଧାତବ ଅସ୍ତ୍ରାଦିର ପରସ୍ପରସଂଘର୍ଷଣଜନିତ ଶବ୍ଦ, ଝଣତ୍କାର, ବଜ୍ରଧ୍ୱନି ।

ଝଞ୍ଜା(ଞ୍ଝା)—ସ୍ତ୍ରୀ. ବ. (ଝମ୍+ଜନ୍+ଅ+ଆ) ବତାସ, ଝଡ଼, ତୋଫାନ, ଝଙ୍କାରଧ୍ୱନି, ବୃଷ୍ଟି, ଝାଞ୍ଜ,ପ୍ରଚଣ୍ଡାନିଳ ।

ଝଞ୍ଝାଟ—ଗ୍ରା. ବ. ବ୍ୟସ୍ତତା, ଦୁଃଖ,କ୍ଳେଶ, ଅଶାନ୍ତି, ଜ୍ୱାଳା ।

ଝଞ୍ଝାଟିଆ—ଗ୍ରା. ବିଂ. ବିଶୃଙ୍ଖଳାକାରୀ, ଯେ ଝଞ୍ଝାଟକରେ ।

ଝଞ୍ଝାନିଳ—ପୁଂ. ବ. ବର୍ଷାକାଳବାୟୁ, ଝଞ୍ଝାବାତ, ବର୍ଷାସହିତ ବତାସ, ଘୂର୍ଣ୍ଣିବାୟୁ ।

ଝଞ୍ଝାପବନ—ବ. ( କ.ଧା ) ତୋଫାନ ବର୍ଷାସହିତ ବତାସ, ଝଣ୍ଟିଆଭୂତ, ଘୂର୍ଣ୍ଣିବାୟୁ, ଗର୍ଜନଯୁକ୍ତ ବନ ।

ଝଞ୍ଜା(ଞ୍ଝା)ବର୍ତ୍ତି—ବ. (କ.ଧା) ଝଣ୍ଟିଆଭୂତ ଘୂର୍ଣ୍ଣିବାୟୁ,ଅତିପ୍ରବଳ ଝଡ଼ ।

ଝଞ୍ଝାମାରୁତ—ପୁଂ.ବ.ବେଗବାନ୍‌ବାୟୁ ।

ଝଞ୍ଜା(ଞ୍ଝା)ରିବା—ଗ୍ରା. କ୍ରି. ଦେଖାଇବା ନିମନ୍ତେ ଆସ୍ଫାଳନ ପୂର୍ବକ ଅସ୍ତ୍ରାଦି ସଞ୍ଚାଳନକରିବା,ନିଜର ଉତ୍କର୍ଷ ପ୍ରକାଶ କରିବା । [ ଝାଞ୍ଜ ।

ଝଞ୍ଜ(ଞ୍ଝା)ଳ—ଗ୍ରା.ବ.ଧାତବ ବାଦ୍ୟବିଶେଷ

ଝଞ୍ଝାବାୟୁ—ପୁଂ.ବ.ଝଞ୍ଝାପବନ ଦେଖ ।

ଝଟ୍—ଗ୍ରା. କ୍ରି.ବିଂ.(ସଂ-ଝଟିତ) ଅତିଶୀଘ୍ର, ତତ୍‌କ୍ଷଣାତ୍,ସତ୍ୱର, ଅତିଦ୍ରୁତଗତିରେ, (ଗ୍ରା. ବ) ବେଗତି, ତ୍ୱରା ।

ଝଟ୍‌କରି—ଗ୍ରା. କ୍ରି. ବିଂ. ଝଟ୍ ଦେଖ ।

ଝଟ୍‌ଝଟ୍—ଗ୍ରା. କ୍ରି. ବିଂ. ଝଟ୍ ଦେଖ ।

ଝଟଝଟ—ଗ୍ରା. ବ. ଦୀପ୍ତି, ଝଟକ,ଉଷା, ଭୋର,ଫସରଫାଟିବାବେଳ,(ଗ୍ରା.ବିଂ) ଉଜ୍ଜ୍ୱଳ, ଦୀପ୍ତିମାନ୍, ଜାଜ୍ୱଲ୍ୟମାନ, (ଗ୍ରା. କ୍ରି. ବିଂ) ଅତିଶୀଘ୍ର, ତୁରନ୍ତ, ଝଟପଟ ।

ଝଟଝଟି—ଗ୍ରା. ବ. ଉଷା, ଭୋର, ଅନ୍ଧାରୁଆ ସକାଳ ।

ଝଟଝଟିଆ—ଗ୍ରା.ବିଂ.ତ୍ୱରାଯୁକ୍ତ,ତରବରିଆ, ତ୍ୱରିତ,ଦୀପ୍ତିମାନ୍,(ଗ୍ରା.ବ.)ବଡ଼ିଭୋର ।

ଝଟପଟ୍—ଗ୍ରା. ବ. ଝଟ୍‌ଝଟ୍ ଦେଖ ।

ଝଟପଟିଆ—ଗ୍ରା.ବିଂ. ଝଟଝଟିଆ ଦେଖ ।

ଝଟକ—ଗ୍ରା. ବ.(ସଂ-ଗୃକଚକ୍ୟ) ଦୀପ୍ତି, କାନ୍ତି, ତେଜ, (ଗ୍ରା. ବିଂ) କ୍ଷଣିକ ଆଭାଯୁକ୍ତ, (କ୍ରି. ବିଂ) ଅତିଶୀଘ୍ର ।

ଝଟକା—ଗ୍ରା. ବ. ପବନର ତୋଡ଼, ଲଙ୍ଗୁଡ଼ଆଦି ଦ୍ୱାରା କ୍ଷିପ୍ରଆଘାତ, ଝିଙ୍କା, ( ପ୍ରା. ଗଞ୍ଜା. ବ. ) ଏକଘୋଡ଼ାଯୁକ୍ତ ଦୁଇଚକିଆ ଶଗଡ଼, ଏକାଗାଡ଼ି ।

ଝଟକିବା—ଗ୍ରା. କ୍ରି. ଶୋଭାପାଇବା, ଚକ୍‌ଚକ୍‌ହେବା, ଜାଜ୍ୱଲ୍ୟମାନ ହେବା ସାଧାରଣରେ ଉଜ୍ଜ୍ୱଳରୂପେ ପ୍ରକାଶିତ ହେବା, ଖ୍ୟାତହେବା, ପ୍ରସିଦ୍ଧହେବା ।

ଝଟଝଟ—ଗ୍ରା. ବ. ଚକଚକିଆ ।

ଝଟଝଟି—ଗ୍ରା.ବ. ଉଷା, ଭୋର, ଅନ୍ଧାରୁଆ ସକାଳ ।

ଝଟଝଟିଆ—ଗ୍ରା. ବିଂ. ତ୍ୱରାଯୁକ୍ତ, ତରବରିଆ, ତ୍ୱରିତ, ଦୀପ୍ତିମାନ୍, (ଗ୍ରା.ବ) ବଡ଼ିଭୋର ।

ଝଟପଟ—ଗ୍ରା. ବ. ଝଟଝଟ ଦେଖ ।

ଝଟପଟିଆ—ଗ୍ରା.ବିଂ. ଝଟଝଟିଆ ଦେଖ, ତ୍ୱରିତ ।

ଝଟିତ—ଗ୍ରା.କ୍ରି.ବିଂ. (ସଂ-ଝଟିତି)ହଠାତ୍, ଅତିଶୀଘ୍ର ।

ଝଟମଟ—ଗ୍ରା. ବିଂ. ଦୀପ୍ତିମନ୍ତ, ଝକମକ, ଜକଜକ ।

ଝଟା—ଗ୍ରା. ବ.ବୃକ୍ଷଗୁଳ୍ମଆଦିର ସଂଗୃହୀତ, ସରୁସରୁ ଶାଖାଗୁଚ୍ଛ, ଝାଟି ଶିମ୍ବ ।

ଝଟାଝଟ୍—ଗ୍ରା.କ୍ରି.ବିଂ. ଝଟ୍‌ଝଟ୍ ଦେଖ ।

ଝଟାପଟ୍—ଗ୍ରା.କ୍ରି.ବିଂ.ଝଟଝଟ ଦେଖ ।

ଝଟାତ୍—ଗ୍ରା.କ୍ରି.ବିଂ. ଝଟ୍, ହଠାତ୍ ।

ଝଟିକା—ଗ୍ରା.ବ.ଝଡ଼,ତୋଫାନ,ବତ୍ୟାର ।

ଝଟିତ—କ୍ରି.ବିଂ. (ଝଟ+କ.ଇତ)ଅତି-

ଶୀଘ୍ର, ଦ୍ରୁତବେଗରେ ।

ଝଡ଼ଝଡ଼—ଗ୍ରା. ଅବ୍ୟ. କାନ୍ଥରୁ ଶୁଖିଲା ମାଟି ପଡ଼ିବା ଶବ୍ଦ, ଖେଳଖଳ ଧ୍ୱନି, ଗଛରୁ ଶୁଖିଲାପତ୍ର ଝଡ଼ି ପଡ଼ିବାର ଶବ୍ଦ

**ଝଡ଼**—ଗ୍ରା.ବି.ଝଟିକା, ବାତ୍ୟା,ତୋଫାନ, ଝଞ୍ଜାବାତ, ଅବଶ୍ରାନ୍ତ ବୃଷ୍ଟିସହ ପ୍ରବଳ ବାତ୍ୟା ।

**ଝଡ଼ଙ୍ଗ**—ଗ୍ରା.ବି. ଚିଲ୍କାରେ ଏକପ୍ରକାର ଲୁଣିମାଛ ।

**ଝଡ଼ଝାଟି**—ଗ୍ରା.ବି.ଝଡ଼ତୋଫାନ ଦେଖ ।

**ଝଡ଼ତୋଫାନ**—ଗ୍ରା.ବି. ବାତ୍ୟା ଓ ବୃଷ୍ଟି

**ଝଡ଼ବତାସ**—ଗ୍ରା. ବି. ଝଡ଼ତୋଫାନ, **ବାତ୍ୟା ଓ ବୃଷ୍ଟି** ।

**ଝଡ଼ବୃଷ୍ଟି**—ଗ୍ରା. ବି. ଝଡ଼ତୋଫାନ, ବ୍ୟାତ୍ୟା ଓ ବୃଷ୍ଟି ।

ଝଡ଼ା—ଗ୍ରା. ବି. ( ସଂ-ଝଟଧାତୁ ) ଦେହ ଝାଡ଼ଝୁଡ଼ିହେବା, ଝଡ଼ନା, ଲୁଗାଆଦିରୁ ଧୂଳିଆଦି ଝାଡ଼ିବା,ଗୁଣ୍ଡୁଣୀଦ୍ୱାରାଓଲାଇବ, **ମନୁଷ୍ୟ ଦେହର ସଂଗ୍ଳନ, ମନୁଷ୍ୟ ଦେହରୁ ମନ୍ତ୍ରଦ୍ୱାରା ଭୂତ ପ୍ରେତାଦି ଛଡ଼ାଇବା, ମନ୍ତ୍ରାଦି ଦ୍ୱାରା ମାର୍ଜନ,ଖାବ୍ରାଗାଳି, ସମ୍ମାର୍ଜିତ ଅଳିଆ, ପରିଷ୍କାରକରଣ, ଗଛରୁ ଝଡ଼ିବା ଫଳପୁଷ୍ପଆଦି, ପତାକା, ଗୋରୁଆଦିଙ୍କ କୌଣସି ଘାଆସ୍ଥାନରେ ପୋକ ହୋଇଥିଲେ ପକାଇବା ଅଭିମନ୍ତ୍ରିତ ଧୂଳି ବା ପାଉଁଶ, କୌଣସି ଜାଗାରୁ ମଇଳା କୁଟାକାଠିଆଦି ପରିଷ୍କାର କରିବା, (ବିଂ) ସମ୍ମାର୍ଜିତ, ଗଛରୁ ଝଡ଼ିଥିବା, ଯହିଁ ମାଛକଣ୍ଟାଆଦି ଝଡ଼ା ହୋଇଥାଏ, ଯାହା ଝଡ଼ି ପଡ଼ିଥାଏ ।**

ଝଡ଼ା(ଡ଼େ)ଇବା—ଗ୍ରା. କ୍ରି. ଝାଡ଼ିବାର-ଣିଜନ୍ତରୂପ,ଝଡ଼ିବାର ଣିଜନ୍ତରୂପ ।

ଝଡ଼େଇହେବା—ଗ୍ରା. କ୍ରି. ଭୁକ୍ତ ଖାଦ୍ୟାଦିର ଜୀର୍ଣ୍ଣହେବା ଉଦ୍ଦେଶ୍ୟରେ ବ୍ୟାୟା-**ମାଦି କରିବା**,ମଉହେବା,ମସ୍ତହେବା ।

ଝଡ଼ାଝଡ଼ି—ଗ୍ରା.ବି. ଅନେକଥର ଝାଡ଼ିବା **କର୍ମ**, ପରସ୍ପର ଦେହରୁ ଧୂଳି ଝାଡ଼ିବା **କର୍ମ**, ବହୁବାର ଘର ଝାଡ଼ିବା କର୍ମ ।

**ଝଡ଼ାବେଶର**—ଗ୍ରା. **ବି**. ହିଡ଼ା ମାଛରୁ କଣ୍ଟାଯାକ ବାହାର କରାଯାଇ ତହିଁରେ ବଟା ସୋରିଷ ଦେଇ ତିଆର କରାଯାଇଥିବା ବ୍ୟଞ୍ଜନ ।

ଝଡ଼ାମହୁର—ଗ୍ରା. ବି. ଯେଉଁ ମହୁର ତିଅଣରୁ ମାଛକଣ୍ଟା କଢ଼ା ହୋଇଥାଏ ।

ଝଡ଼ି—ଗ୍ରା. ବି. ଝଡ଼ ଦେଖ ।

ଝଡ଼ିପଡ଼ିବା—ଗ୍ରା. କ୍ରି. ସ୍ୱସ୍ଥାନରୁ ଚ୍ୟୁତ ହୋଇ ତଳକୁ ଖସି ପଡ଼ିବା ।

ଝଡ଼ିପାଗ—ଗ୍ରା. ବି. ଝଡ଼ିଯୁକ୍ତ ଋତୁ, ବର୍ଷାଋତୁ ।

ଝଡ଼ିପୋକ—ଗ୍ରା.ବି. ପକ୍ଷ ଲାଗିଥିବା ଉଇ ବା ପିମ୍ପୁଡ଼ି, କାଲେଇପୋକ ।

ଝଡ଼ିବରଷା—ଗ୍ରା. ବି. ତୋଫାନ ଓ ମେଘବର୍ଷା ।

ଝଡ଼ିବା—ଗ୍ରା.କ୍ରି. (ସଂ-ଝଟ୍ଧାତୁ)ବୃକ୍ଷାଦିରୁ (ପତ୍ରାଦି ଫଳ) ସ୍ୱସ୍ଥାନଚ୍ୟୁତ ହୋଇ ତଳେ ପଡ଼ିବା, ସ୍ଖଳିତହେବା, କୃଶହେବା, କ୍ଷୀଣହେବା, (ଅନ୍ନାଦି) ଜୀର୍ଣ୍ଣ ହେବା, (ଲ.ଅର୍ଥ) ବହୁଧା ପ୍ରକାଶିତହେବା,ଝରିବା,ଭାଙ୍ଗିଯାଇ ତଳେ ପଡ଼ିବା ଲୁପ୍ତହେବା, ମନ୍ତ୍ରାଦି ଦ୍ୱାରା ଆକ୍ରାନ୍ତ ବ୍ୟକ୍ତିର ଦେହରୁ ( ଭୂତପ୍ରେତବିଷ ) ଛାଡ଼ିବା, କମିବା ।

ଝଡ଼ିଲଗାଣ—ଗ୍ରା. ବି. ତୋଫାନ ସହିତ ବହୁଦିନବ୍ୟାପୀ ଅନବରତ ବର୍ଷା ।

ଝଣ୍—ଗ୍ରା.ବି. (ଧ୍ୱନ୍ୟନୁକରଣ) ଝଣଝଣ ଦେଖ ।

ଝଣଝଣ—ଗ୍ରା. ଅବ୍ୟ. ଶିମ୍ବକାଷ୍ଠସ୍ଥ ଛୁଇଁ ଶୁଖିଗଲେ ତା ଭିତରେ ଥିବା ମଞ୍ଜିର ଶବ୍ଦ, ଧାତୁଖଣ୍ଡଆଦିର ପରସ୍ପର ଆଘାତ ପ୍ରତଘାତର ଶବ୍ଦ । [ କାଂସ୍ୟ ।

ଝଣଝଣାୟମାନ—ବିଂ. ଝଣଝଣ ଶବ୍ଦ-

ଝଣଝଣି—ଗ୍ରା. ଅବ୍ୟ. ଝଣଝଣ ଦେଖ ।

ଝଣଝଣିଆ—ଗ୍ରା.ବିଂ.ଝଣଝଣ ଶବ୍ଦକାରୀ, ଶୁଷ୍କ, ଶୁଖିଲା ।

ଝଣଝାଣ—ଗ୍ରା. ଅବ୍ୟ. ଝଣଝଣ ଦେଖ ।

ଝଣତ୍କାର—ଗ୍ରା.ବି. କଙ୍କଣାଦିର ଝଣଝଣ ଶବ୍ଦ ।

ଝଣତା—ଗ୍ରା. ବି. ଧଳନ୍ତା, ବିସ୍ୱାଦ ।

ଝପ୍—ଗ୍ରା. କ୍ରି. ବିଂ. ଅତିଶୀଘ୍ର, ତୁରନ୍ତ, ଝଟ୍, ହଠାତ୍, କ୍ଷଣମାତ୍ର ବିଳମ୍ବ ନ କରି ଝଟତି, ଝପ୍‌ଝପ, ପାଣିରେ କାଠଆଦି ପଡ଼ିବା ଶବ୍ଦ ।

ଝପ୍‌କରି—ଗ୍ରା. କ୍ରି. ବିଂ. ଝପ୍ ଦେଖ ।

ଝପ୍‌ଝପ୍—ଗ୍ରା. ଅବ୍ୟ. ମେଘ ବର୍ଷିବାର ଶବ୍ଦ, ପାଣିରେ କୁଦି ପଡ଼ିବାର ପଦ-ଶବ୍ଦ, ଝପରଝପର, ଅତିଶୀଘ୍ର ।

ଝପ୍‌ଝାପ୍—ଗ୍ରା. ଅବ୍ୟ. ଝପ୍‌ଝପ୍ ଦେଖ, (କ୍ରି.ବିଂ) ଝପ୍ ଦେଖ ।

ଝପଟସିଂହ—ଗ୍ରା. ବି. କ୍ଷତ୍ରିୟଙ୍କର ରାଜଦତ୍ତ ଉପାଧିବିଶେଷ ।

ଝପଟ୍—ଗ୍ରା. ବି. ଦୌଡ଼, ଧାଇଁବା, କୁଦାମାରି ଦଉଡ଼ିବା ।

ଝପଟା—ଗ୍ରା. ବି. ଝପଟ ଦେଖ ।

ଝପଟା(ଟେ)ଇବା—ଗ୍ରା.କ୍ରି.ଦଉଡ଼େଇବା

ଝପଟାଝପଟି—ଗ୍ରା. ବି. ବହୁଲୋକ ବା ଜନ୍ତୁ ଦଉଡ଼ିବା, ଗୋଡ଼ାଆଗୋଡ଼ି, ପରସ୍ପରକୁ ଗୋଡ଼ାଇବା ।

ଝପଟିବା—ଗ୍ରା. କ୍ରି. (ସଂ-ଝମ୍ପ) ଦ୍ରୁତଗତିରେ ଦଉଡ଼ିବା, ଧାବିତହେବା, ଲମ୍ଫସହ ଦଉଡ଼ିବା ।

ଝପରଝପର—ଗ୍ରା.ଅବ୍ୟ.(ଧ୍ୱନ୍ୟନୁକରଣ) ସାନଟୋପାରେ ଅବିଶ୍ରାନ୍ତ ବର୍ଷିବା ।

ଝପାଝପ୍—ଗ୍ରା.କ୍ରି.ବିଂ.ଝପ୍ ଦେଖ, (ଗ୍ରା. ଅବ୍ୟ) ଝପ୍‌ଝପ୍ ଦେଖ ।

ଝବା—ଗ୍ରା.ବି.ଗ୍ରେଟ ମାଠିଆ ବା କଳସୀ, କ୍ଷେତରେ ଧାନ ବା ଅନ୍ୟ ଶସ୍ୟମାନ ଏକସ୍ଥାନରେ ବହଳ ହୋଇ ଓ ଏକ ଏକ ସ୍ଥାନରେ ପତଳା ହୋଇ ଉଠିଥିବା ଅବସ୍ଥା,(ଗ୍ରା.ବିଂ)ଏକ ଅଂଶରେ ବହଳଆ ଓ ଏକ ଅଂଶରେ ପତଳା ହୋଇ ଶସ୍ୟ ଗଛ ଉଠିଥିବା ଅବସ୍ଥାଯୁକ୍ତ (କ୍ଷେତ), (ପ୍ରା. ସମ୍ବ. ବି.) ସ୍ତ୍ରୀଲୋକଙ୍କ ମୁଣ୍ଡର ଅଳଂକାରବିଶେଷ ।

ଝମ୍—ଗ୍ରା. ଅବ୍ୟ. ବର୍ଷାର ଝଙ୍କାରଶବ୍ଦ, ଧାତୁମୟ ପଦାର୍ଥଦ୍ୱୟର ପରସ୍ପର ବାଜିବାର ଶବ୍ଦ, ଅଳଂକାରାଦିର ଶବ୍ଦ, (କ୍ରି.ବିଂ) ବିଶେଷ ପରିମାଣରେ ବୃଷ୍ଟି ।

ଝମକ—ଗ୍ରା. ବି. ଧମକ, କ୍ଷମତା, ଶୃଙ୍ଖଳା, ଝଟକ, କୋଧଜନିତ ଆବେଗ, ଝମ୍‌ଝମ୍ ଶବ୍ଦ ।

ଝମକଝମକ—ଗ୍ରା. ଅବ୍ୟ. ଝାଞ୍ଜ, ମୃଦଙ୍ଗାଦି ବାଜିବାର ଶବ୍ଦ ।

ଝମକା—ଗ୍ରା. ବି. ଝମକ ଦେଖ ।

ଝମକା(କେ)ଇବା—ଗ୍ରା. କି. ଧମକାଇବା, ଝମ୍‌ଝମ୍ ଶବ୍ଦ କରିବା, କୌଣସି ତେଜୋମୟ ପଦାର୍ଥ (ଅସ୍ତ୍ରାଦି) କୁ ଦେଖାଇବା, ଇତସ୍ତତଃ ଚାଳିତ କରିବା ।

ଝମକିବା—ଗ୍ରା. କି. ଚମକି ପଡ଼ିବା, ଦୀପ୍ତି ପାଇବା, ଝମ୍‌ଝମ୍ ଶବ୍ଦ କରିବା, (ଅନ୍ଧକଣା) ସାବଧାନ ହୋଇ ପଦାଘାତ କରିବା । [ ଦେଖ ।

ଝମ୍‌ଝମ୍—ଗ୍ରା. ଅବ୍ୟ. ଝମ୍ ଦେଖ, ଝିମଝିମ

ଝମରଝମର—ଗ୍ରା. ଅବ୍ୟ ଘୁଙ୍ଗୁର ଆଦି ଅଳଙ୍କାରର ଚାଳନଜନିତ ଶବ୍ଦ ।

ଝମ୍ପ—ପୁଂ. ବି. (ଝମ୍ + ପା + ଅ) ଲମ୍ଫ, କୁଦା, ଡିଆଁ ।

ଝମ୍ପନ—ବି. (ଝମ୍ପ + ଭା.ଅନ) କୁଦିବା, ଶିକାରକୁ ଆକ୍ରମଣ କରି ମାଡ଼ିବସିବା ।

ଝମ୍ପା—ବି. ଝମ୍ପ ଦେଖ, ଝାମ୍ପିବା, ଜବରଦସ୍ତି ଛଡ଼ାଇନେବା ବଳପୂର୍ବକ ଅପହରଣ ।

ଝମ୍ପାକ—ପୁଂ. ବି. (ଝମ୍ପ + ଅକ + କ.ଅ) ବାନର, କପି, ମାକଡ଼ ।

ଝମ୍ପାଣ—ପ୍ରା.(ପୁରା)ବି. ଗାରୁଡ଼ୀ ମନ୍ତ୍ର ପଢ଼ନ ଗୁଣିଆ ବା ସର୍ପ ବୈଦ୍ୟମାନେ ବିଷଧର ସାପମାନଙ୍କୁ ଧରି ମନ୍ତ୍ର ବଳରେ ସେମାନଙ୍କୁ ବେକରେ ଗୁଡ଼ାଇ ଓ ଖେଳାଇ ନିଜର ମନ୍ତ୍ରଶକ୍ତି ଦେଖାଇବା କ୍ରିୟା ।

ଝମ୍ପାରୁ—ପୁଂ. ବି. (ଝମ୍ପ + ଋ + କ.ଉ) ବାନର, କପି, ମାଙ୍କଡ଼ ।

ଝମ୍ପାଶୀ—ପୁଂ.ବି. (ଝମ୍ପ + ଅଶ୍ + ଇନ୍) ମାଛରଙ୍କା ପକ୍ଷୀ ।

ଝମ୍ପୀ—ପୁଂ. ବି. (ଝମ୍ପ + ଇନ୍) ବାନର, କପି, ମାକଡ଼ ।

ଝମ୍ବର—ଗ୍ରା. ବି. ଗୁଜରାଟ ଝାଲବାର ଜିଲ୍ଲାର ଗୋଟିଏ କ୍ଷୁଦ୍ର ଜମିଦାରୀ ।

ଝର—ବି.( ଝୃ + ଣ.ଅ ) ନିର୍ଝର, ଝରଣା, ପୁଆରି, ଭୂଗର୍ଭସ୍ଥ ଜଳପ୍ରବାହ, ସମୂହ, ବେଗ, ଲଗାଣ, ଅବିରତ ଧାରାରେ ବୃଷ୍ଟି, କୌଣସି ବସ୍ତୁର ଅବିରତ ପତନ, ଆଞ୍ଚ, ତାପ, ଜ୍ୱାଳା, କୋଳପଭିତରର ଜଳ ।

ଝରକା—ଗ୍ରା. ବି. (ସଂ-ଜାଳକ) ବାତାୟନ, ଗବାକ୍ଷ, ଜଳାକବାଟୀ ।

ଝରଝର—ଗ୍ରା. ଅବ୍ୟ. ( ଧ୍ୱନ୍ୟନୁକରଣ ) ପାଣିଧାର ତଳକୁ ବହିଯିବାର ଶବ୍ଦ, ଝରଣାର ଜଳପତନ ଶବ୍ଦ, ( ଗ୍ରା. ବି°) ବିଶେଷ ପରିମାଣରେ ପଡ଼ୁଥିବା ( ଜଳୀୟ ପଦାର୍ଥ ), (ଗ୍ରା. କ୍ରି. ବି°) ଝରିବା ପ୍ରକାରେ, ଅବିରତ ପ୍ରବାହରେ ।

ଝରଣ—ଗ୍ରା. ବି. ନିଃସରଣ, ବୋହିପଡ଼ିବା, ଝରଣା ଦେଖ ।

ଝରଣା—ଗ୍ରା. ବି. (ସଂ-ଝର) ନିର୍ଝର, ପାଣିଆଦି ଝରିବା କର୍ମ, ( କେଣ୍ଡାରୁ ଧାନ--ଗଛରୁ ପତ୍ର ) ଭୂମିରେ ଖସି ପଡ଼ିବା ।

ଝରି—ଗ୍ରା. ବି. ପୁଷ୍ପର ଲମ୍ବମାନ ଗୁଚ୍ଛ ବା ଫେନ୍ଥା, ମୁଣ୍ଡରେ ପିନ୍ଧାଯିବା ଫୁଲଗଭା, ଜୁଡ଼ାର ଅଳଙ୍କାର ବିଶେଷ, ଝରିକାଠିରୁ ଓହଳିଥିବା ଘୁଙ୍ଗୁରଲଗା ଜଞ୍ଜିରମାନ, ଝରିଗୁଡ଼ ଦେଖ; ( ଲ. ଅର୍ଥ—ଅନ୍ୟଶବ୍ଦସଙ୍ଗେ ପ୍ରଯୁକ୍ତ ) ଭୂଷଣ ସ୍ୱରୂପ, ଉତ୍କୃଷ୍ଟବ୍ୟକ୍ତି, ଝଡ଼ା, ବାଲୁଙ୍ଗାଧାନ, ଶୂଦ୍ରଜାତିବିଶେଷ, ଏମାନେ ନଈବାଲିକୁ ଚାଳିଇ ସେଥିରୁ ସୁନାର ଅତିକ୍ଷୁଦ୍ର କଣାମାନ ଝାଡ଼ନ୍ତି ଓ ମାଛମାରି ଜୀବିକାନିର୍ବାହ କରନ୍ତି, ରାଜାଙ୍କ ଅବିବାହିତା ବା ରକ୍ଷିତା ଦାସୀ, (ଗ୍ରା. ବି°.) ଝରିଥିବା, ଝଡ଼ି ପଡ଼ିଥିବା ।

ଝରି ( ରେ ) ଇବା—ଗ୍ରା. କ୍ରି. ଝରିବାର ଣିଜନ୍ତରୂପ, କ୍ଷରିତକରାଇବା, ବୁହାଇବା, ( ଲୁହ ) ଗଡ଼ାଇବା ( ବୃଷ୍ଟି ) ନିକ୍ଷେପ କରିବା ।

ଝରିକାଠି—ଗ୍ରା. ବି. ଝୁମ୍ପା ଓହଳିଥିବା ଗୋଜିକାଠି ।

ଝରିଗୁଡ଼—ଗ୍ରା. ବି. ପାଣିଆଗୁଡ଼, କନ୍ଦ ତିଆରି କଲାବେଳେ ଗୁଡ଼ରୁ ଝରିଥିବା ପାଣିଆ ଗୁଡ଼ ।

ଝରିଝୋର— ପ୍ରା. ସମ୍ବ. ଅବ୍ୟ. ଅନର୍ଗଳ, ସର୍ବଦା ।

ଝରି—ଗ୍ରା. ବି. ( ସଂ-ଝର ) ସରୁମୁହଁ ଓ ଲମ୍ବାବେକ ଥିବା ଜଳପାତ୍ର, ଝୋରେଇ, ଗଡ଼ୁ, ପଥର ବା ଗୋଲପଜଳ ଛାଣିବାର ଛିଦ୍ରଯୁକ୍ତ ପାତ୍ର, ଯନ୍ତ୍ର ବା ରନ୍ଧା ସାହାଯ୍ୟରେ କାଠଅଦରେ କରାଯିବା ଲମ୍ବ ସରୁ ନାଳି, ଏକପ୍ରକାର ଟାଣୁଆ ଘାସ, କୋଳପ ମଧ୍ୟରେ ଥିବା ଜଳ ବା ଘୋଡ଼ା ।

ଝରିଆ—ଗ୍ରା. ବି. ମଧ୍ୟପ୍ରଦେଶରେ କଥିତ ଏକପ୍ରକାର ଓଡ଼ିଆଭାଷା, (ପ୍ରା--ସମ୍ବ-ବି.) ଝଡ଼ତୋଫାନ । [ କ୍ଷରିତ ।

ଝରିତ—ବି°. ନିର୍ଝରବିଶିଷ୍ଟ, ଗଳିତ,

ଝରିବା—ଗ୍ରା. କ୍ରି. ( ସଂ-ଝର ) ( ଜଳୀୟପଦାର୍ଥ ) କ୍ଷରିବା, ଧୀରରେ ବହିବା, ଗଡ଼ିବା, ସ୍ରବିବା ।

ଝରିଯ୍ରା—ଗ୍ରା. ବି. ମାନଭୂମ ଜିଲ୍ଲାର ଗୋଟିଏ ଜମିଦାରୀ ।

ଝରୀ—ସ୍ତ୍ରୀ. ବି. ( ଝର + ଈ ) ନିର୍ଝର, ଝରଣା, ସମୂହ ।

ଝର୍ଝର—ପୁଂ. ବି. (ଝର୍ଝ + କ.ଅ) ଶବ୍ଦବିଶେଷ, ଝାଞ୍ଜ, ଝରଣାର ଶବ୍ଦ, ବାଦ୍ୟବିଶେଷ, ଡିଣ୍ଡିମ, ଢେଙ୍କୁରି, ପଟହ, କଳିଯୁଗ, ଦ୍ୱିରଣାକ୍ଷର ପୁଷ୍ପବିଶେଷ, ବେତ୍ରଦଣ୍ଡ, ଝଲ୍ଲିକା, ଜାଲିଚଟୁ, ଗୋଡ଼ରେ ପିନ୍ଧିବା ଅଳଙ୍କାରବିଶେଷ ।

ଝର୍ଝରକ—ପୁଂ.ବି. (ଝର୍ଝର + କ) କଳିଯୁଗ ।

ଝର୍ଝରା—ସ୍ତ୍ରୀ.ବି. (ଝର୍ଝର + ଆ) ବେଶ୍ୟା ।

ଝର୍ଝରୀବତୀ—ସ୍ତ୍ରୀ. ବି. (ଝର୍ଝର + ବତୁ + ଈ) ଗଙ୍ଗାନଦୀ, କୁରୁବକ, (ବି°) ଝଙ୍କାରିଣୀ ।

ଝର୍ଝରିକା—ସ୍ତ୍ରୀ. ବି. (ଝର୍ଝରି + କ + ଆ) ଚାରିଦେଶୀ ।

ଝର୍ଝରୀ—ପୁଂ.ବି. (ଝର୍ଝର+ଇନ୍)ଶିବ, ସ୍ତ୍ରୀ.ବି; (ଝର୍ଝର+ଈ) ବାଦ୍ୟବିଶେଷ, ଗ୍ଲେଟ ଝାଞ୍ଜ,ବେଶ୍ୟା, ଚଟକା ନାଗରୀ, ଭୃଙ୍ଗ, ଛାୟା ।

ଝର୍ଝରୀକ—ପୁଂ.ବି. ଶରୀର,ଦେଶ,ଚିତ୍ର ।

ଝଲକ—ଗ୍ରା. ବି. ଅଞ୍ଜଳି ପରିମାଣ ତରଳ ଦ୍ରବ୍ୟ, ଔଜ୍ଜ୍ୱଲ୍ୟ, ଦୀପ୍ତି, ତେଜ, କାନ୍ତି, ଅଗ୍ନିଶିଖା,ଆଲୋକ ତରଙ୍ଗ,କଂସାଳ-ବାଦ୍ୟ, ନୋଲକ, ଫାସିଆରେ ଝୁଲୁ-ଥିବା ଗୋଲରତ୍ନ ବା ଧାତୁଗୋଲକ, ଆନ୍ଦୋଳନ, କର୍ଣ୍ଣାଳଙ୍କାର ବିଶେଷ, ସ୍ଫୁରିତବସ୍ତୁ, ଢେଉ, ତରଙ୍ଗ, (ଗ୍ରା. ବିଂ) ପ୍ରତିବିମ୍ବିତ, ଦୀପ୍ତ, ଝଟକୁଥିବା,ଉଜ୍ଜ୍ୱଳ ।

ଝଲକା—ଗ୍ରା. ବି. ତରଙ୍ଗ, ଆଘାତଦ୍ୱାରା ଉପରକୁ ଉଠିଆସିବା, ଊର୍ମିପ୍ରବାହ, କର୍ଣ୍ଣଭୂଷଣବିଶେଷ ।

ଝଲକା(କେ)ଇବା—ଗ୍ରା.କ୍ରି. ଝଲକିବାର ଣିଜନ୍ତରୂପ, ଦୀପ୍ତିମୟ କରାଇବା, ଜଳପାତ୍ରକୁ ଦୋହଲାଇ ତହିଁରେ ଥିବା ଜଳୀୟ ବସ୍ତୁକୁ ଆନ୍ଦୋଳିତ କରିବା ।

ଝଲକାଏ—ଗ୍ରା. ବିଂ. ଜଳୀୟ ପଦାର୍ଥର ଏକଊର୍ମି ବା ଢେଉ ପରିମିତ,ମୁନ୍ଦାଏ ।

ଝଲକିବା—ଗ୍ରା.କ୍ରି. ଦୋହଲିବା, ହଲିବା, ଝୁଲିବା,ଜଳଆଦି ପାତ୍ରରେ ଚହଲିବା, ଆନ୍ଦୋଳିତ ହେବା, ଝଟକିବା, ଚହ-ଲିବା, ଉଛୁଳି ପଡ଼ିବା,ଉଦ୍‌ବେଗ୍ନହେବା, ଚଞ୍ଚଳହେବା, ଇତସ୍ତତଃ ହେବା, ସ୍ପଷ୍ଟରୂପେ ପ୍ରକଟିତ ହେବା, ବିକସିତ ହେବା ।

ଝଲ୍କା—ବି. (ଝଲ୍+ଅକ+ଆ) ଶିଖା, ଜ୍ୱାଳା, ଅର୍ଚ୍ଚିଃ ।

ଝଲଝଲ—ବି. ପାଣି ଟୋପା ଟୋପା ହୋଇ ପଡ଼ିବାର ଶବ୍ଦ, ହାତୀକାନ ବାଡ଼େଇବାର ଶବ୍ଦ ।

ଝଲ୍‌ଝଲ—ଗ୍ରା. ଅବ୍ୟ. ଦୀପ୍ତିଯୁକ୍ତ,ଅତ୍ୟନ୍ତ ପତଳାହେତୁ ଯାହାର ଏପାଖ ସେପାଖ ଫୁଟି ଦେଖାଯାଉଥାଏ, ଜାଲଜାଲୁଆ (ଲୁଗା),ଦୋହଲୁଥିବା ।

ଝଲଝଲିଆ—ଗ୍ରା. ବି. ହସ୍ତୀର କର୍ଣ୍ଣ, ଆସ୍ଫାଳନ, ( ଗ୍ରା. ବିଂ ) ପତଳା, ସରୁ, ଜାଲଜାଲୁଆ ।

ଝଲଝଲିଆ—ଗ୍ରା. ବିଂ. ଦୀପ୍ତିଯୁକ୍ତ,ଝୁଲୁ-ଥିବା, ଖୁବ୍ ପତଳା ଜାଲଜାଲୁଆ(ଲୁଗା)

ଝଲମ—ଗ୍ରା. ବି. ଦେଉଳର ପୀଢ଼ ବା ଗୃହର ଯେଉଁ ଅଂଶ କାନ୍ଥଉପରୁ ବାହାରକୁ ବଳିପଡ଼ିଥାଏ ।

ଝଲମଲ୍—ଗ୍ରା. ବିଂ. ଚକ୍କଣ, ଦୀପ୍ତି ଦ୍ୱାରା ତରଙ୍ଗାୟିତ, ଦୀପ୍ତିଶାଳୀ, ଜକଜକ, ଅଗ୍ନିର ଦ୍ୟୁତିସହ ଝଟକୁଥିବା,ସୁନ୍ଦର, ଖୁବ୍‌ପତଳା, ଜାଲଜାଲୁଆ, ( ଗ୍ରା. ବି ) ସୂତାର ଏକପ୍ରକାର ପତଳା କନା ।

ଝଲମଲିଆ—ଗ୍ରା.ବିଂ. ଝଲମଲ୍ ଦେଖ ।

ଝଲରୀ—ଗ୍ରା.ବିଂ.(ସଂ-ଜାଲ)ଜାଲିଜାଲୁଆ, ଯେଉଁ ବସ୍ତ୍ର ଜାଲପରି ବହୁ ଛିଦ୍ରବିଶିଷ୍ଟ ଓ ପତଳା ।

ଝଲରୀ—ସ୍ତ୍ରୀ. ବି. ହୁଡ଼ୁକ୍,ଝର୍ଝରବାଦ୍ୟ, ବାଳଚନ୍ଦ, କେଶସମୂହ ।

ଝଲସା(ସେ)ଇବା—ଗ୍ରା.କ୍ରି.ଈଷତ୍ ଦଗ୍ଧ କରିବା, (ଆଖିକୁ) ଆଲୋକାଧିକ୍ୟ ଦ୍ୱାରା ପୀଡ଼ାଯୁକ୍ତ କରିବା ।

ଝଲସିବା—ଗ୍ରା. କ୍ରି. (ଆଖି) ଉତ୍ତାପ ବା ଆଲୋକର ଆଧିକ୍ୟ ଯୋଗୁଁ ପୀଡ଼ାଯୁକ୍ତ ହେବା ଓ ବୁଜିହୋଇଯିବା, ଜକଜକ ହେବା, ଝଟକିବା, କ୍ଷଣେ ଉଜ୍ଜ୍ୱଳ ଓ କ୍ଷଣେ ପ୍ରଭାହୀନହୋଇ ଝଟକିବା ।

ଝଲା—ବି. (ଝଲ+ଆ) ଆତପର ଉର୍ମି, ଖରାର ତରଙ୍ଗ,କନ୍ୟା, ଝିଅ,ବାଳିକା, ଝିଙ୍କାରୀ, ଖରା, ଝଟକୁଥିବା ଆଲୋକ, ଆଭା, ଚାକଚକ୍ୟ,(ଗ୍ରା.ବି) ଝାଳିବାକର୍ମ, ଦୁଇଖଣ୍ଡ ଧାତୁକୁ ଅନ୍ୟ ଧାତୁଦ୍ରବ୍ୟଦ୍ୱାରା ସଂଯୁକ୍ତକରି ମିଶାଇବା, (ବିଂ) ପରସ୍ପର ସଂଯୁକ୍ତହୋଇ ମିଶାଯାଇଥିବା (ଧାତୁଖଣ୍ଡ ଦ୍ୱୟ) ।

ଝଲା(ଲେ)ଇବା—ଗ୍ରା. କ୍ରି. ଝଳିବା ଓ ଝାଳିବାର ଣିଜନ୍ତରୂପ, ପୂର୍ବସ୍ଫୁଟିତକୁ ଜ୍ୱଳନ୍ତ ଭାବରେ ପ୍ରତିଭାତ କରାଇବା, ସଂଲଗ୍ନ କରାଇବା, ମିଶାଇବା ।

ଝଲାଲି—ଗ୍ରା. ବି. ଝଳାଝଳି କରିବା ବ୍ୟବସାୟୀ(ବ୍ୟକ୍ତି), ଯେ ଅଳଙ୍କାରାଦି ଝାଳେ, (ସଂ-ବି) ଗୁଆ ।

ଝଲି—ଗ୍ରା. ବି. (ସଂ-ଜ୍ୱଳଧାତୁ) ଦୀପ୍ତି, ଚକ୍କଣତା, ଶୋଭା, ଆଲୋକ ତରଙ୍ଗ, (ବିଂ) ଦୀପ୍ତି, ଦୀପ୍ତିମାନ୍, ତୋଫା, ଜକଜକ କରୁଥିବା, ଚକ୍କଣ ।

ଝଲିବା—ଗ୍ରା. କ୍ରି. ଚକ୍କଣହେବା, ଶୋଭା ପାଇବା, ଝଟକିବା, ପ୍ରବେଶ କରିବା, (ଦୁଇପଦାର୍ଥ) ଏକତ୍ର ବା ଅବିଭକ୍ତ ଭାବରେ ମିଶିବା, ଧାତୁଖଣ୍ଡଦ୍ୱୟ ଏକତ୍ର ସଂଯୁକ୍ତ ହେବା, କ୍ଷରିବା, ଝରିବା, ବୋହିବା, ଉଦ୍ଭାସିତ ହେବା ।

ଝଲୁ—ପ୍ରା. (ସମ୍ବ) ବି. ଏକସଙ୍ଗେ ଜଣରୁ ଅଧିକ ହାଣ୍ଡି ବସିବା ପାଇଁ ପଖ ଥିବା ଚୂଲି ।

ଝଲେଇ—ଗ୍ରା.ବି. ଭଙ୍ଗା ଅଳଂକାର ବା ବାସନକୁ ଝାଳିବା ମଜୁରି ।

ଝଲ୍ଲ—ଗ୍ରା.ବି.ବ୍ରାତ୍ୟ (ସଂସ୍କାରହୀନ)କ୍ଷତ୍ରିୟ ଓ ସବର୍ଣ୍ଣା ସ୍ତ୍ରୀ ଔରସ ବର୍ଣ୍ଣସଙ୍କର ଜାତି, ଭଣ୍ଡ, ବିଦୂଷକ, ପଟହବାଦ୍ୟ, ଜ୍ୱାଳା, ତେଜ, ଯେଉଁ ବ୍ୟକ୍ତି ବାଜି ରଖି ଲଢ଼େଇ କରେ ।

ଝଲ୍ଲକ—ବି.(ଝଲ୍ଲ+କୈ+କ.ଅ)କଂସାର କରତାଳ, ଗିନି, ( ଝଲ୍ଲକ୍, ଝଲ୍ଲକୀ-ଅନ୍ୟରୂପ ।

ଝଲ୍ଲକଣ୍ଠ—ବି. (ବ.ବ୍ରୀ) ପାରାବତ ।

ଝଲ୍ଲରୀ—ସ୍ତ୍ରୀ. ବି. ଝର୍ଝର ବାଦ୍ୟବିଶେଷ, ହୁଡ଼ୁକ, ବାଳକକେଶ, କ୍ଲେଦ, ବାଳଚନ୍ଦ ।

ଝଲ୍ଲରୀ—ସ୍ତ୍ରୀ. ବି. (ଝଲ+ର+କ.ଅ+ଈ) ବାଦ୍ୟବିଶେଷ, ନାଗରୀ, ହୁଡ଼ୁକା, କ୍ଲେଦ, ଶୁଦ୍ଧତା, ଝାଞ୍ଜ, ସ୍ୱେଦ,ମୁଦ୍ରିକାକାର କେଶଗୁଚ୍ଛ ।

ଝଲ୍ଲିକା—ବି. (ଝଲ୍ଲ+କ+ଆ) ଜ୍ୱାଳା, ଦୀପ୍ତି, ଗାମୁଛା, ଦେହରୁ ବାହାରିବା ମଳ, ସୂର୍ଯ୍ୟ କିରଣର ତେଜ ।

ଝଲ୍ଲୀ—ସ୍ତ୍ରୀ.ବି.(ଝଲ+ଈ)ଝର୍ଝରବାଦ୍ୟ, ଝାଞ୍ଜ ।

ଝଲ୍ଲୀଷକ—କ୍ଲୀ. ବି. ନୃତ୍ୟଭେଦ ।

ଝଲ୍ଲେଲ—ପୁଂ.ବି. ଡର୍କୁଲସକ, ଡାକୁଡ଼ ବାଟୁଳି ।

ଝଲେଲ—ପୁଂ. ବି. ଡର୍କୁଲସକ ।

ଝଷ—କ୍ଲୀ.ବି. ବନ, ପୁଂ.ବି. (ଝଷ+ର୍ମ. ଅ) ମତ୍ସ୍ୟ, ମାଛ, ଗ୍ରୀଷ୍ମ, ତାପ, ମୀନରାଶି, ମକର ରାଶି, ମରୁଭୂମି, ଭୟଙ୍କର ଅରଣ୍ୟ, ମକର, ମଗର ।

ଝଷକେତନ—ପୁଂ. ବି. (ବ.ବ୍ରୀ)କନ୍ଦର୍ପ, କାମଦେବ । [ କାମଦେବ ।

ଝଷଧ୍ଵଜ—ପୁଂ. ବି. ( ବ.ବ୍ରୀ ) କନ୍ଦର୍ପ,

ଝଷନିକେତ—ବି. (୬ତତ୍)ଜଳାଶୟ ।

ଝଷଶ୍ରେଷ୍ଠ—ବି. (୭ତତ୍) ରୋହିମାଛ ।

ଝଷା— ସ୍ତ୍ରୀ. ବି. (ଝଷ+ର୍ମ.ଅ+ଆ) ନାଗବଳା ।

ଝଷାଙ୍କ—ପୁଂ. ବି. କନ୍ଦର୍ପ, କାମଦେବ ।

ଝଷାଶନ—ପୁଂ. ସ୍ତ୍ରୀ. ବି. ଶିଶୁମାର, ଶୁଶୁକ ।

ଝଷୋଦରୀ—ସ୍ତ୍ରୀ. ବି. ବ୍ୟାସଦେବଙ୍କ ମାତା, ମତ୍ସ୍ୟଗନ୍ଧା ।

ଝସା(ସେଁ)ଇପଶିବା—ଗ୍ରା. କ୍ରି.(ସଂ-ଧର୍ଷଣ + ପ୍ରବେଶ) କୌଣସି ସ୍ଥାନରେ ବଳପୂର୍ବକ ପ୍ରବେଶ କରିବା, ବହୁଲୋକଙ୍କ ଠେଲିପେଲି କୌଣସି ସ୍ଥାନକୁ ଯିବା ।

ଝା-ଓଝା— ଗ୍ରା. ବି. ମୈଥିଳୀ ବ୍ରାହ୍ମଣମାନଙ୍କର ଉପାଧି, (ସ୍ତ୍ରୀ.ବି) ଝଞ୍ଜାବାତ, ଧ୍ଵନି । [ ଦେଖ ।

ଝାଆଁଝାଆଁ—ଗ୍ରା. ଅବ୍ୟ. ଝାଇଁଝାଇଁ

ଝାଆଁରି—ଗ୍ରା. ବି. (ସଂ-ଝାବୁକ) ନଦୀଗର୍ଭସ୍ଥ ବାଲି ଓ ପଥର ସନ୍ଧିରେ ଉଠିବା ଏକପ୍ରକାର କ୍ଷୁପ ବା ବୁଦାଳିଆ ଗୁଳ୍ମ ।

ଝାଇ—ଗ୍ରା. ବି. ଗୁଡ଼ରେ ପାଗ କରିବା ।

ଝାଇଁ—ଗ୍ରା.ବି.(ସଂ-ଧ୍ମା ଧାତୁ) ତୀବ୍ରଗ୍ରୀଷ୍ମ, ଗରମି, ଗ୍ରୀଷ୍ମକାଳ, (ଗ୍ରା.ଅବ୍ୟ) ଝାଇଁଝାଇଁ, ଝୋଲ୍ମାରିବା, ଉତ୍ତପ୍ତ, ଅତିଶକ୍ତ ରୂପେ ଭଜା ହୋଇ ଯାଇଥିବା, ଗ୍ରୀଷ୍ମ କାଳରେ ଉତ୍ପନ୍ନ, (ଯଥା-ଝାଇଁମୁଗ)ଗ୍ରା.ବି ଝାଇଁଚିଙ୍ଗୁଡ଼ି, ଅତି ଶ୍ରେଷ୍ଠ ମାଛ, ଭଜା ହୋଇ ଗୋଡ଼ା ଯାଇଥିବା ଗୁଡ଼ିଲ ଭଜା ।

ଝାଇଁକରି—ଗ୍ରା. କ୍ରି. ବିଂ. ( ସଂ-ଝଟିତି ) ଝଟ୍, ଝାଇଁଶବ୍ଦକରି ।

ଝାଇଁଝାଇଁ—ଗ୍ରା. ଅବ୍ୟ. ଝାଞ୍ଜଆଦି ବାଜିବାର ଶବ୍ଦ, ଝିଙ୍କାରିମାନଙ୍କର ରାବିବା ଶବ୍ଦ, ମଶା ଗର୍ଜିବାର ଶବ୍ଦ, ଝିମିଝିମି, ଝୋଲ୍ମାରିବାର ଅନୁଭୂତି, ଭାଁଭାଁ,କାନରେ ଉପର୍ଯ୍ୟୁପରି ଗର୍ଜକାଦି ବାଜିବା ଅନୁଭୂତି ।

ଝାଇଁଝାଇଁ ହେବା—ଗ୍ରା. ବି. ଝିମିଝିମି ହେବା, ଘଣ୍ଟାଘଣ୍ଟି ବା ଝାଞ୍ଜ ବାଜିବାର ବହୁକାଳସ୍ଥାୟୀ ଶବ୍ଦ ବା ଧ୍ଵନି, ଖରା ଦ୍ଵାରା ଶସ୍ୟଆଦି ଉତ୍ତମରୂପେ ଶୁଖିଯିବା

ଝାଇଁପାଣି—ଗ୍ରା. ବି. ଯେଉଁ ପାଣିକୁ ଅଗ୍ନି ଉପରେ ଗରମ ନ କରି ତହିଁ ମଧ୍ୟରେ ତାତିଲା ଲୁହାଆଦି ମାଡ଼ି ଗରମ କରାଯାଏ, ପୋଡ଼ି ଯାଇଥିବା ଗୁଡ଼ିଲ ଭଜାର ପାଣି,(ଏହା ରୋଗୀର ପାନୀୟ)

ଝାଇଁମୁଗ—ଗ୍ରା.ବି. ଗ୍ରୀଷ୍ମକାଳରେ ଅମଳ ହେବା ଏକପ୍ରକାର ମୁଗ ।

ଝାଉ,ଝାଉଁ—ଗ୍ରା. ବି. ସରୁ ତାରଭଳି ପତ୍ରବିଶିଷ୍ଟ ଗଛ, ଏହା ସମୁଦ୍ର ତୀରରେ ବାଲିରେ ବେଶି ହୁଏ ।

ଝାଉଁଝାଉଁ—ଗ୍ରା. ଅବ୍ୟ ଝାଞ୍ଜ ଓ ଘଣ୍ଟା-ଆଦିର ଝଣଝଣ ଶବ୍ଦ । [ ନଡ଼ିଆ ।

ଝାଉଁନଡ଼ିଆ—ପ୍ରା.(ମେଦିନୀ)ବି.ଖଜୁରିଡ଼ି

ଝାଉଁଳା—ଗ୍ରା ବି. (ସଂ-ଶ୍ୟାମଳ)ନେତ୍ରରୋଗବିଶେଷ,ଝାଉଁଳିଯିବା,ମଉଳିଯିବା, ( ବିଂ ) ମଉଳିଯାଇଥିବା ।

ଝାଉଁଳିବା—ଗ୍ରା.କ୍ରି. (ସଂ-ଶ୍ୟାମଳ)ବୃକ୍ଷଆଦି ଖରାରେ ବା ଶୁଖିକରି ନିସ୍ତେଜ ହେବା, (ମୁହଁ) ଲଜ୍ଜାରେ ବା ଭୟରେ ଶୁଖିଯିବା ।

ଝାଏଁ—ପ୍ରା. (ସମ୍ବ) ବି. ଝୋଲ୍ମାରିବା, (କ୍ରି.ବିଂ) ଝଟିତି, ଝଟ୍ ।

ଝାଏଁଜ—ପ୍ରା. (ସମ୍ବ) ବି. ( ସଂ-ଝର୍ଝର ) ଝାଞ୍ଜ, (ସଂ-ଧ୍ମାଧାତୁ)ଝାଞ୍ଜି, ଖରା, ତାତି, ଖରାର ତେଜ, ଅଂଶୁ ।

ଝାଏଁନେ—ପ୍ରା. (ସମ୍ବ) କ୍ରି. ବିଂ. ଝଟ୍, ଶୀଘ୍ର, ଅତିଚଞ୍ଚଳ । [ ମାରିବା ।

ଝାଏଁମାରିବା—ପ୍ରା. (ସମ୍ବ) ବି. ଝୋଲ୍

ଝାଁଝାଁ—ଗ୍ରା.ଅବ୍ୟ. ଝାଇଁଝାଇଁ ଦେଖ ।

ଝାଙ୍କ—ଗ୍ରା. ବି. ( ସଂ-ଝଙ୍କାର ) ମତ୍ତତା, କଳି ବା କ୍ରୋଧର ସ୍ପୃହା, (ସଂ-ଜାଳକ) ଝଙ୍କା ବା ବଡ଼ ଟୋକେଇ, (ସଂ-ଯୂଥ) କ୍ଷୁଦ୍ର ଜୀବମାନଙ୍କର ପଙ୍କ୍ତି ବା ଦଳ, ଡାଳ, ଘୂର୍ଣ୍ଣନ, ଝିଙ୍କା ।

ଝାଙ୍କଛଡ଼ା(ଡ଼େ)ଇବା—ଗ୍ରା.କ୍ରି. କୌଣସି ବ୍ୟକ୍ତିକୁ ଅତିରିକ୍ତ ପରିଶ୍ରମକରାଇ ଆକ୍ରାନ୍ତ କରାଇବା, କଳିର ସ୍ପୃହା ଉଠାଇବା ।

ଝାଙ୍କଛାଡ଼ିଯିବା—ଗ୍ରା. ବି. ଦୁଇଜଣଙ୍କ ମଧ୍ୟରେ କଳି ବା ବାଗବିତଣ୍ଡାର ସ୍ପୃହା ଉଠି ନବର୍ତ୍ତିବା ।

ଝାଙ୍କଡ଼ା—ଗ୍ରା.ବିଂ. (ସଂ-ଝାଟ)ଛେଚେରା, ଛତାପରି ଅଗ୍ରଭାଗ ବିସ୍ତୃତ, ଝାମ୍ପୁଡ଼ା ।

ଝାଙ୍କର—ପ୍ରା. (ସମ୍ବ)ବି. ଅନାର୍ଯ୍ୟ ଜାତିବିଶେଷ, ଗ୍ରାମର ଚଉକିଦାର ।

ଝାଙ୍କରା—ଗ୍ରା. ବିଂ. ଝାଙ୍କଡ଼ା ଦେଖ ।

ଝାଙ୍କିବା—ଗ୍ରା.କ୍ରି.ଲୁଚିକରି ଚାହିଁବା ଓ ଚାହିଁକରି ଲୁଚିବା, ଉହ୍ଲଙ୍କିକରି କୌଣସି ଉଚ୍ଚ ସ୍ଥାନର ଅନ୍ତରାଳରେ ମୁଣ୍ଡ ଟେକି ଚାହିଁବା, ( ସଂ-ଝମ୍ପ ) ଇତସ୍ତତଃ ବା ତଳକୁ ଟାଣିବା, ଆକର୍ଷଣ କରିବା, ( ନିଦ୍ରା ଓ ନିଶାଆଦି ) ଆକ୍ରମଣ କରି ଅବନତକରିବା, ଝୁଙ୍କାଇବା, ଘୁରାଇବା, ଝାମ୍ପିବା, ଦୋହଲାଇବା, ଜୋରରେ ହଲାଇବା ।

ଝାଙ୍କିମାରିବା—ଗ୍ରା. କ୍ରି. ଲୁଚିକରି ବାରମ୍ବାର ଚାହିଁବା ।

ଝାଙ୍କିହେବା—ଗ୍ରା.କ୍ରି. ଟାଣିହେବା, ତଳକୁ ଖସି ଆସିବା, ଘୂର୍ଣ୍ଣିତହେବା, (ମୁଣ୍ଡ) ବୁଲାଇହେବା ।

ଝାଙ୍କେ—ଗ୍ରା. ଅବ୍ୟ. ଏକଝାଙ୍କ, ଏକସ୍ପୃହ, ସୁହେ, ଝୁଙ୍କେ ।

ଝାଙ୍କଡ଼—ପ୍ରା.(ସମ୍ବ)ପୁଂ. ବି. (ସଂ-ଜାଙ୍ଗଳିକ) ଧାଙ୍ଗଡ଼, ଟୋକା ।

ଝାଞ୍ଜ—ଗ୍ରା.ବି. (ସଂ-ଝର୍ଝର) କଂସା ମିଶା ପିତ୍ତଳର ବୃହଦାକାର ଓ ପତଳା

କରତାଳ ।

ଝାଞ୍ଜର—ଗ୍ରା. ବି. ( ସଂ-ଝର୍ଝର ) ଲୁହା-ପିତ୍ତଳର ବହୁଛିଦ୍ର ବା ଜାଲବିଶିଷ୍ଟ ଚାଲୁଣୀ ।

ଝାଞ୍ଜରିବା—ଗ୍ରା. କ୍ରି. କୌଣସି ପଦାର୍ଥକୁ ( ପୋକଆଦି ଖାଇ ) ବହୁଛିଦ୍ରଯୁକ୍ତ କରିବା ।

ଝାଞ୍ଜି—ଗ୍ରା. ବି. ଗରମ ଉତ୍ତାପ, ତାତି, ତାତିପବନ, ଚେଉ, (ସଂ-ଜର୍ଜର—ଶୈବାଳ) ଚୋରଝାଞ୍ଜି, ଭାସମାନ ଜଳ-ବିଶେଷ,(ବିଂ) ଅସହ୍ୟତାପଯୁକ୍ତ, ଉତ୍ତପ୍ତ

ଝାଞ୍ଜିତାତି—ଗ୍ରା. ବି. ଅସହ୍ୟ ଉତ୍ତାପ ।

ଝାଞ୍ଜି ପିଟିବା—ଗ୍ରା. ବି. ଉତ୍ତପ୍ତ ବାୟୁ ବେଗରେ ବହିବା ।

ଝାଟ—ବି.(ଝଟ + କ.ଅ) ନିକୁଞ୍ଜ, ଲତା-ଗୃହ, କାନ୍ତାର, ଗୁଳ୍ମ, କ୍ଷୁଦ୍ର ବୃକ୍ଷ,ବୁଦା, ମାର୍ଜନା, ଓଳାଇବା, (ଗ୍ରା.ବି) ଝାଟି, ଗ୍ରୁଟ, ଗ୍ରୁଟିଆ । [ ଝାଡ଼ିବା ।

ଝାଟପାଟ—ଗ୍ରା.ବି.ଗ୍ରୁଞ୍ଚୁଣିରେ ଓଳାଇବା,

ଝାଟଲ—ପୁଂ. ବି. ଘଣ୍ଟାପାଟଳ ବୃକ୍ଷ ।

ଝାଟା—ବି. (ଝଟ + ଣିଚ୍ + ଣ.ଅ)ସମ୍ମାର୍ଜନୀ, ଯୂଇ, ଭୁଇଁ ଅଁଳା ।

ଝାଟି—ଗ୍ରା. ବି. (ସଂ-ଝାଟ) ବୃକ୍ଷର ସାନ-ସାନ ସରୁ ସରୁ ଶାଖାମାନଙ୍କ ଗୁଛ, ଅଡ଼ୁଆତଡ଼ୁଆ ଓଳଟା ଗୁଳ୍ମ, ବାଉଁଶ-କଣି,ହରଡ଼ଆଦି ଗଛର ସରୁ ଦଣ୍ଡ ।

ଝାଟିଆ—ଗ୍ରା. ବି. ଝାଟି ଦେଖ, (ଗ୍ରା.ବିଂ) ଝାଟିପୂର୍ଣ୍ଣ, ଅଡ଼ୁଆତଡ଼ୁଆ ।

ଝାଟିକା—ବି. ଯୂଇ ଦେଖ ।

ଝାଟିମାଟି—ଗ୍ରା. ବି. ଝାଟି ଦ୍ୱାରା ବାଡ଼ ଦେଇ ତା ଉପରେ ମାଟି ଛାଟି କାନ୍ଥ ତିଆରିବା ପ୍ରଣାଳୀ ।

ଝାଟୁଆ—ଗ୍ରା. ବି. (ସଂ-ଗ୍ରୁଟ=ମାର୍ଜନା) ଗ୍ରୁଞ୍ଚୁଣୀ, ଗ୍ରୁଞ୍ଚୁଣୀ ଦ୍ୱାରା ଓଳଆ ହୋଇ-ଥିବା ଅଳିଆ ବା ଆବର୍ଜନା, (ଗ୍ରା.ପୁଂ. ବିଂ) ( ସଂ-ଦୁଷ୍ଟ ) ଧୃଷ୍ଟ (ବ୍ୟକ୍ତି), ଯେ ଅଡ଼ୁଆ ଲଗାଏ ।

ଝାଟେଇବା—ଗ୍ରା. କ୍ରି. (ସଂ-ଝାଟ)ଝାଟୁ-ଆଇବା, ଆବର୍ଜନା ସବୁ ଓଳାଇବା ।

ଝାଡ଼—ଗ୍ରା.ବି. (ସଂ-ଝାଟ)ଅରଣ୍ୟ, ବଣ, ଜଙ୍ଗଲ, ବୁଦା, କାଣ୍ଡ, ଗୁଛ, ବହୁ-ସଂଖ୍ୟକ ପ୍ରଦୀପମଣ୍ଡିତ କାଚର ଆଲୋକା-ଧାର, ବହୁଶିଖା ଶାଖାଯୁକ୍ତ କାଚର ଦୀପ ବୃକ୍ଷ, (ପ୍ରା.ସମ୍ଭବ.) ସୁନା ଓ ରୁପା ତାରରେ ନିର୍ମିତ ଶାଖାପତ୍ରଯୁକ୍ତ ବୃକ୍ଷା-କୃତିବିଶିଷ୍ଟ ଅତରଦାନ୍ ।

ଝାଡ଼କୁନ୍ଦୁରୁ—ଗ୍ରା. ବି. ମଟକା, ପଟୋଳ ଜାତୀୟ ବନ୍ୟଲତା ଫଳ ।

ଝାଡ଼ଖଣ୍ଡ—ଗ୍ରା. ବି. ( ସଂ-ଝାଟ + ଖଣ୍ଡ ) ଜଙ୍ଗଲ ମୁଲକ, ବଣୁଆ ରାଜ୍ୟ ବା ଦେଶ, ବୈଦ୍ୟନାଥ ଧାମ ।

ଝାଡ଼ଖଣ୍ଡପାଇଗ୍ର ବା ବାଦସା—ଗ୍ରା. ବି. ଝାଡ଼ଖଣ୍ଡ ବା ଅରଣ୍ୟ ପ୍ରଦେଶର ରାଜା ।

ଝାଡ଼ଜୟପୁର— ଗ୍ରା. ବି. ଦାକ୍ଷିଣାତ୍ୟ ବିଶାଖାପଟ୍ଟଣା ଜିଲ୍ଲାନ୍ତର୍ଗତ ଉତ୍କଳୀୟ ଜମିଦାରି ରାଜ୍ୟ ।

ଝାଡ଼ଝଡ଼—ଗ୍ରା. ବି. କୌଣସି ପାତ୍ରରୁ କୌଣସି ପଦାର୍ଥ ସମ୍ପୂର୍ଣ୍ଣରୂପେ ନିଃଶେଷିତ ହୋଇଥିବା ଅବସ୍ଥା, ଝାଡ଼ଫୁଙ୍କ ଦେଖ, କୌଣସି ସ୍ଥାନ ଉତ୍ତମରୂପେ ସମ୍ମାର୍ଜନ କରିବା, ଝଡ଼ାଝଡ଼ି,(ଗ୍ରା.ବିଂ) ସମ୍ପୂର୍ଣ୍ଣରୂପେ ନିଃଶେଷିତ,(ଗ୍ରା.କ୍ରି.ବିଂ) ସମ୍ପୂର୍ଣ୍ଣରୂପେ ନିଃଶେଷିତ କରି ଧୂଳି ଅଳିଆ ଆଦି ପରିଷ୍କାର କରିବା ।

ଝାଡ଼ଣ—ଗ୍ରା.ବି.(ସଂ-ଝଟ୍ ଧାତୁ)ସମ୍ମାର୍ଜନୀ, ପୋଛା, ଗାମୁଛା, ଝାଡ଼ିବା କର୍ମ, ଝଡ଼ା, ଗାଳିବୃଷ୍ଟି, ସୋଧନ ।

ଝାଡ଼ନ—ଗ୍ରା. ବି. ଝାଡ଼ଣ ଦେଖ ।

ଝାଡ଼ପା(ଫା)ନ(ନୁ)ସ—ଗ୍ରା. ବି. ରୋସନୀ ଓ ମଜଲିସରେ ସଜାସିବା କାଚର ଆଲୋକ ସ୍ତମ୍ଭମାନ, ଏକପ୍ରକାର ବାଣ ବା ଆତସବାଜି, ଯାହା ଜଳା ଗଲେ ଝାଡ଼ପରି ଦେଖାଯାଏ ।

ଝାଡ଼ଫୁଙ୍କ—ଗ୍ରା. ବି. ରୋଗ ବା ଭୂତାଦି ଅପସାରଣାର୍ଥ ମନ୍ତ୍ର ଉଚ୍ଚାରଣ ପୂର୍ବକ ରୋଗାକ୍ରାନ୍ତ ବା ଭୂତାକ୍ରାନ୍ତ ବ୍ୟକ୍ତିର ଅଙ୍ଗରେ ଆଙ୍ଗୁଠି ଲୋଇବା (ଝାଡ଼ିବା) ଓ ଅଙ୍ଗମାନଙ୍କରେ ଫୁତ୍କାର ଦେବା, (ଫୁଙ୍କିବା) ।

ଝାଡ଼ମାଲି—ଗ୍ରା. (ଗଞ୍ଜାମ)ବି. ଡାହାଣୀ ଓ ଭୂତଆଦି ଛଡ଼ାଇବା ପାଇଁ ବ୍ୟବହୃତ ମନ୍ତ୍ରତନ୍ତ୍ର ସମ୍ବଳିତ ଗୁଣିବିଦ୍ୟା ।

ଝାଡ଼ା—ଗ୍ରା. ବି. ମଳ, ଗୁହ, ବିଷ୍ଠା,ଅଧିକ ମଳ ନିଃସରଣ, ମଳତ୍ୟାଗ, ସିତାରର ସବୁ ତାରମାନ ଏକସଙ୍ଗେ ବାଜିବା ।

ଝାଡ଼ାକଇ—ଗ୍ରା. ବି. ଓଲଉଠା ରୋଗ, ବିସୂଚିକା ।

ଝାଡ଼ାକବଜ—ଗ୍ରା.ବି.କୋଷ୍ଠବଦ୍ଧ ହେବା ।

ଝାଡ଼ାକର—ଗ୍ରା. ବି.ବୋମ୍ବାଇ ପ୍ରଦେଶା-ନ୍ତର୍ଗତ ଏକଶ୍ରେଣୀର ମୁସଲମାନ ।

ଝାଡ଼ାକରା(ରେ)ଇବା—ଗ୍ରା. କ୍ରି. ଔଷଧାଦି ପ୍ରୟୋଗଦ୍ୱାରା କୋଷ୍ଠ ଶୁଦ୍ଧି କରାଇବା ।

ଝାଡ଼ାତଲବ—ଗ୍ରା. ବି. ପୋଖରିମାଡ଼ିବା, ମଳୋତ୍ସର୍ଗର ବେଗ, ଗୁରୁଶଙ୍କା ।

ଝାଡ଼ାପରିଷ୍କାର—ଗ୍ରା.ବି.କୋଷ୍ଠ ପରିଷ୍କାର, କୋଷ୍ଠଶୁଦ୍ଧି ।

ଝାଡ଼ାଫେରିବା—ଗ୍ରା. କ୍ରି. ମଳତ୍ୟାଗ କରିବା, ପୋଖରିପାଣି ବସିବା ।

ଝାଡ଼ାବାନ୍ତି—ଗ୍ରା. ବି. ଝାଡ଼ାକଇ, ଓଲ-ଉଠା, ବିସୂଚିକା ।

ଝାଡ଼ାହେତା—ଗ୍ରା.ବି. ମଳୋତ୍ସର୍ଗ, ଅତି-ରିକ୍ତ ମଳନିଃସରଣ ଦ୍ୱାରା ଆକ୍ରାନ୍ତ ହେବା ।

ଝାଡ଼ଝୁଡ଼—ଗ୍ରା. କ୍ରି. ବିଂ. ଉତ୍ତମରୂପେ ପରିଷ୍କାର ପୂର୍ବକ, ଉତ୍ତମରୂପେ ଓଳଆ ପୋଛିଆ କରି,ନିଃଶେଷକରି.କିଛିମାତ୍ର ବାକି ନ ରଖି, କୌଣସି ବ୍ୟକ୍ତି ନିକ-ଟରେ କପର୍ଦ୍ଦକ ବା ସମ୍ବଳମାତ୍ର ନ ଛାଡ଼ି, ଦେହରେ ରୋଗର ଚିହ୍ନମାତ୍ର ନ ରଖି ।

ଝାଡ଼ଝୁଡ଼ିଦେବା— ଗ୍ରା. କ୍ରି. କୌଣସି ବ୍ୟକ୍ତିର ଦେହର ସବୁ ଅଙ୍ଗରୁ ଧୂଳି ଝାଡ଼ିବା, ମଇଳା ଆଦି ଗାମୁଛାଦିରେ ସଫା କରିବା,କୌଣସି ସ୍ଥାନକୁ ଓଳାଇ କରି ପରିଷ୍କାର କରିବା, କୌଣସି ବ୍ୟକ୍ତିକୁ ନିଃସମ୍ବଳ କରିଦେବା, ଶୂନ୍ୟ କରିଦେବା, ରୋଗୀ ବା ଭୂତାବିଷ୍ଟ

ବ୍ୟକ୍ତିର ସର୍ବାଙ୍ଗକୁ ମନ୍ତ୍ରପାଠ ପୂର୍ବକ ଏକାଧିକଥର ଝାଡ଼ିବା ।
ଝାଡ଼ଝୁଡ଼ିହେବା—ଗ୍ରା.ବି. ଆପଣାଦେହ ଓ ଅଙ୍ଗ ପ୍ରତ୍ୟଙ୍ଗକୁ ହଲାଇ ଦେହରୁ ଧୂଳିଆଦି ଖସାଇଦେବା,ଆପଣା ପିନ୍ଧିବା ଲୁଗାପଟାକୁ ଜୋରରେ ହଲାଇ ତହିଁରେ ଲାଗିଥିବା ଅଳିଆ ଓ ଧୂଳି ଆଦି ଦୂର କରିବା, ଦେହରେ ଲାଗିଥିବା ଧୂଳି ଓ ମଇଳାକୁ ହାତ କମ୍ବା ଗାମୁଛା ଦ୍ୱାରା ପୋଛିବା ।
ଝାଡ଼ଣୀ—ଗ୍ରା. ବି. ଝାଡ଼ଣ ଦେଖ ।
ଝାଡ଼ିବା—ଗ୍ରା. କ୍ରି. କୌଣସିସ୍ଥାନ ବା ବସ୍ତୁକୁ ସମ୍ମାର୍ଜନୀ ଦ୍ୱାରା ଓଲାଇବା, କୌଣସିପଦାର୍ଥରୁ (ଯଥା—ଗଛଡାଳରୁ) ତହିଁର କୌଣସି ଅଂଶ (ଯଥା—ଫଳ)କୁ ପୃଥକ୍ କରିବା ଉଦ୍ଦେଶ୍ୟରେ ଉକ୍ତ ପଦାର୍ଥକୁ ଦୋହୋଲାଇବା, ଝୁଣିବା, କୁଲାରେ ଚୂନା ଆଦିକୁ ହଲାଇ ବାହାର କରିବା,ଭୂତପ୍ରେତାଦି ରୋଗ ବା ସର୍ପ-ବିଷ ନିବାରଣାର୍ଥ ମନ୍ତ୍ରପଢ଼ି କୌଣସି ବ୍ୟକ୍ତିର ଅଙ୍ଗରେ ହାତକୁ ବୁଲାଇବା, ବାଘ ବିରାଡ଼ି କୁକ୍କୁର ଆଦି ହିଂସ୍ରଜନ୍ତୁ ଶିକାରକୁ ମୁହଁରେ ଧରି ଜୋରପୂର୍ବକ ଇତସ୍ତତଃ ଛିଞ୍ଚାଡ଼ିବା, କୁବାକ୍ୟ ଦ୍ୱାରା ଗାଳିଦେବା, ବଳ ଝଡ଼ାଇବା, ଜୋର-କରି ଇତସ୍ତତଃ ସଞ୍ଚାଳିତ କରିବା, ଘରଗୁଆଣିଦେଲେ ନଡ଼ା ଆଦିକୁ ଉଲଟି ଗୋଳକୁ ପରିଷ୍କାର କରିବା,ଖସା-ଇବା, କମ୍ପାଇବା, ଖାଲିକରିବା,ଖାଙ୍କା କରିବା, ପନାସିଆଦିର ବଡ଼ାର ମୁଣ୍ଡିକୁ ଧରି ହଲାଇ ତହିଁରେ ଥିବା ଅକର୍ମଣ୍ୟ ଅଂଶକୁ ପକାଇବା ।
ଝାଡ଼ୁ—ଗ୍ରା. ବି. (ସଂ-ଝଟଧାତୁ) ସମ୍ମାର୍ଜନୀ, ଗୁଞ୍ଜୁଣୀ, କାଢ଼ୁଣୀ, ପହିଁଲମୁଠା ।
ଝାଡ଼ୁଆ—ଗ୍ରା.ବିଂ. ବଣୁଆ, ଜଙ୍ଗଲବାସୀ. ଆରଣ୍ୟକ (ଗ୍ରା. ବି) ଝାଡ଼ୁଆବ୍ରାହ୍ମଣ ଦେଖ ।
ଝାଡ଼ୁଆବ୍ରାହ୍ମଣ—ଗ୍ରା. ବି. ଆରଣ୍ୟକ ବ୍ରାହ୍ମଣ, ଗଉଡ଼ ଓ କରଣମାନଙ୍କ ଶ୍ରେଣୀ ବିଶେଷ ।
ଝାଡ଼ୁକରିବା—ଗ୍ରା. କ୍ରି. ସମ୍ମାର୍ଜନୀ ଦ୍ୱାରା ଗୃହାଦି ଓଲାଇବା ।
ଝାଡ଼ୁକେଶ—ଯା. ବି. ଝାଡ଼ୁବାଲ ।
ଝାଡ଼ୁଣୀ—ଗ୍ରା. ବି. ଝାଡ଼ୁ ଦେଖ ।
ଝାଡ଼ୁଦୁମା—ଗ୍ରା.ବି.ଯେଉଁ ହାତୀର ଲାଙ୍ଗୁଡ଼ ଝାଡ଼ୁପରି ଅଗ୍ରବିସ୍ତୃତ ।
ଝାଡ଼ୁବରଦାର—ଯା. ବି. ଝାଡ଼ୁବାଲା, ଯେ ରାସ୍ତା ଗୃହାଦି ଝାଡ଼ି ସଫାକରେ ।
ଝାଡ଼େଶ୍ୱର—ଗ୍ରା. ବି. ଦେବୀବିଶେଷ ।
ଝାଣ୍ଡା—ପ୍ରା. ମେଦି. ବି. ଝାଡ଼ୁ ଦେଖ ।
ଝାଣ୍ଡିବା—ଗ୍ରା. କ୍ରି. ଘର ବା କୌଣସି ସ୍ଥାନକୁ ଝାଡ଼ୁ ଦ୍ୱାରା ପରିଷ୍କାର କରିବା ।
ଝାଣ୍ଡେଇବା—ପ୍ରା. ମେଦି. କ୍ରି. ଝାଣ୍ଡିବା ଦେଖ, ଝାଣ୍ଡିବାର ଣିଜନ୍ତରୂପ ।
ଝାନ୍‌ସି—ଗ୍ରା. ବି. ରାଜପୁତାନାନ୍ତର୍ଗତ ଗୋଟିଏ ବଡ଼ ସହର ।
ଝାପ୍ଟା—ଗ୍ରା. ବି. (ଫ-ଝମ୍ପି)ବେଗରେ କୌଣସି ତରଳ ପଦାର୍ଥ(ଯଥା—ଜଳ) ଅନ୍ୟ କଠିନ ପଦାର୍ଥ ଉପରେ ଜୋରରେ କରିବା ଆଘାତ ବା ଛିଞ୍ଚାଡ଼ି, (ଫ-ଚପେଟ) ଝଡ଼ ବା ପବନର ଏକ ପ୍ରବଳ ଧକା, ( ସଂ-ଯୁଗ୍ମ ) ମୁଣ୍ଡରେ ଲଗାଇବା ସୁନାର ଜଞ୍ଜିର ଓ ଝୁମ୍ପାଲଗା ଅଳଙ୍କାର ବିଶେଷ ।
ଝାପ୍‌ସା—ଗ୍ରା. ବିଂ. (ସଂ-ଅସ୍ପଷ୍ଟ) ଅସ୍ପଷ୍ଟ ଭାବରେ ଦେଖାଯିବା (ବସ୍ତୁ), ଅସ୍ପଷ୍ଟ ଭାବରେ ଦେଖି ପାରିବା, କାଲୁକାଲୁଆ (ଦୃଷ୍ଟି), ଗ୍ରା. ବି. ଗୁଲଣା, ୪୦ବର୍ଷ ଟପିବା ବ୍ୟକ୍ତିଙ୍କର ଅକ୍ଷରଆଦି ସଫା ପଢ଼ି ନ ପାରିବା ଅବସ୍ଥା, ଚକ୍ଷୁରୋଗ ବିଶେଷ, ଜଳକାଧରିବା ରୋଗ ।
ଝାପ୍‌ସାଝାପସା—ଗ୍ରା.କ୍ରି.ବିଂଅସ୍ପଷ୍ଟଭାବରେ ଦେଖିବା ପ୍ରକାରେ ।
ଝାପଡ଼ା—ପ୍ରା. ସମ୍ବ. ବି.କୁଙ୍କୁମ ଗଛ ।
ଝାପି—ପ୍ରା. ସମ୍ବ. ବି. ପେଟରା ।
ଝାବକ—ବି. ଝାଉଁ ଦେଖ ।
ଝାବର—ଗ୍ରା. ବି. ଅଗାଡ଼ି ।
ଝାବୁ—ବି. (ଝା + ବା + କ.ଉ) ଝାଉଁ ଦେଖ ।
ଝାବୁକ—ବି. (ଝାବୁ + କ)ଝାଉଁଦେଖ ।
ଝାମ—ଗ୍ରା. ବି. ମଥାଭ୍ରମ, ମୂର୍ଚ୍ଛା, ଝୋଲ ମାରିବା, ଅଗ୍ନିର ତାତି, ଅଗ୍ନିମାନ୍ଦ୍ୟ, ଅପରାଧୀର ଜଳନ୍ତା ନିଆଁଉପରେ ଚାଲିବା ପରୀକ୍ଷା, ଗାଡ଼ିର ଚକର ପରିଧିରେ ବେଢ଼ିଥିବା ଲୌହବଳୟ, ପଣାସଂକ୍ରାନ୍ତିରେ ଯେଉଁ ଦହକ ନିଆଁରେ ପାଟୁଆମାନେ ଚାଲନ୍ତି, ( ଗ୍ରା. ବିଂ ) ମୂର୍ଚ୍ଛିତ, କ୍ଷୀଣ, ଦୁର୍ବଳ ।
ଝାମକ—କ୍ଲୀ.ବି.ଅତିପୋଡ଼ାଇଟା, ଝାମା ।
ଝାମଖେଳ—ଗ୍ରା. ବି. ଚୈତ୍ରସଂକ୍ରାନ୍ତିରେ ପାଟୁଆମାନଙ୍କର ନିଆଁଉପରେ ଚାଲିବା ଉତ୍ସବ । [ ମାରିବା ।
ଝାମମାରିବା—ଗ୍ରା.ବି. ମଥାଭ୍ରମ,ଝୋଲ-
ଝାମଯିବା—ଗ୍ରା. କ୍ରି. ମୂର୍ଚ୍ଛିତ ହେବା ।
ଝାମର—ପୁଂ. ବି. ତକୁଶାନ, ତାକୁଡ଼ି ପ୍ରଭୃତି ଶାଣ ଦେବାର କ୍ଷୁଦ୍ର ପ୍ରସ୍ତର ବିଶେଷ ।
ଝାମା—ଗ୍ରା. ବି. ଅତିରିକ୍ତ ଦାହରେ ପିଣ୍ଡୀକୃତ ଇଷ୍ଟକ ଖଣ୍ଡ, ଝାମା ଇଟା ।
ଝାମି—ପ୍ରା. ( ବାଲେ ) ବି. ଗୁଡ଼ିକଆ, ପିଜୁଳି ।
ଝାମୁ—ଗ୍ରା.ବି.ଝାମ ଦେଖ,ଝାଉଁ ଦେଖ, ଝାମୁଯାତ ଦେଖ ।
ଝାମୁ(ଆଁ)ଆ—ଗ୍ରା. ବି. ଯେଉଁ ବ୍ରତଧାରୀ ବ୍ୟକ୍ତିମାନେ ଜଳନ୍ତା ନିଆଁର ଗାତରେ ପଣାସଂକ୍ରାନ୍ତି ଦିନ ଚାଲନ୍ତି ।
ଝାମୁଓସା—ଗ୍ରା.ବି. ଝାମୁଯାତ ସମୟରେ କୌଣସି କୌଣସି ବ୍ୟକ୍ତି ମହାଦେବଙ୍କ ଉଦ୍ଦେଶ୍ୟରେ ପାଳନ କରିବା ବ୍ରତ ।
ଝାମୁଗୀତ—ଗ୍ରା.ବି. ଦଣ୍ଡଗୀତ, ଝାମୁ ବା ଦଣ୍ଡ ଜାତ ସମୟରେ ଦଣ୍ଡୁଆମାନେ ନାଚ ନାଚ ଯେଉଁ ଗୀତ ବୋଲନ୍ତି ।
ଝାମୁଯାତ—ଗ୍ରା.ବି. ପାଟୁଆ ଯାତ, ଦଣ୍ଡ-ଯାତ ।
ଝାମ୍ପି—ଗ୍ରା. ବି. କୁଦା, ଲମ୍ଫ, ପୋଲୁହ ଦେଖ, ପକ୍ଷୀମାନଙ୍କର ଚଞ୍ଚୁ ବା ଝାମ୍ପି, ଝାମ୍ପିଲି ଗଛ, ( ଫ-ଫପୁଟ ) ମୁଣ୍ଡରେ

ପିନ୍ଧିବା ତାଳପତ୍ରର ନଧେଣ୍ଡ ନ ଥିବା ଛତାବିଶେଷ, ଟୋପର, ଘୋଡ଼ଣୀଯୁକ୍ତ ବଡ଼ ଟୋକେଇ, (ପ୍ରା.ଯଜ.ବ) ଯେଉଁ ଡାଟର ପିଠିପାଖରେ ବଡ଼ କରିବା ପାଇଁ ବନ୍ଧା ହୋଇଥିବା ବର ପିଣ୍ଡୀକୃତ ହୋଇ ସ୍ଥାପିତ ହୁଏ।

ଝାମ୍ପଡ଼ା—ଗ୍ରା.ବି. (ସଂ-ପିଧାନ) ଛତର, ଛତାକାର ଅଗ୍ରଭାଗଯୁକ୍ତ, ଇତସ୍ତତଃ ମୁକୁଳା ହୋଇଥିବା ଅଳ୍ପଲମ୍ବ(ବାଳ), ଯେ (ହିଂସ୍ର ପଶୁପକ୍ଷୀ) ଶିକାରକୁ ଚକ୍କା ମାରେ। [ମୁଣ୍ଡା ଦେଖ।

ଝାମ୍ପଡ଼ାମୁଣ୍ଡା—ଗ୍ରା. ପୁଂ. ବିଂ. ଝାମ୍ପୁଡ଼ା-

ଝାମ୍ପମାରିବା—ଗ୍ରା. ବି. (ହିଂସ୍ର ପଶୁପକ୍ଷୀମାନେ) ନଖଦ୍ୱାରା ଆକର୍ଷଣ କରି କୌଣସି ପଦାର୍ଥକୁ ନେଇଯିବା, ଶିକାର ଉପରେ ବଳପୂର୍ବକ ଅବମଣ କରି ପଡନ୍ତ ହେବା।

ଝାମ୍ପରି—ପ୍ରା.(ଗଞ୍ଜାମ)ବି.ଶ୍ରେଷ୍ଠ ଜଳାଶୟ।

ଝାମ୍ପଲ—ଗ୍ରା.ପୁଂ. ବିଂ. ଝାମ୍ପୁଲ ଦେଖ, ଝାମ୍ପୁଲିଶିଙ୍ଗା ଦେଖ।

ଝାମ୍ପି—ଗ୍ରା. ବି. (ସଂ-ସଂପୁଟ) ମୁଣ୍ଡରେ ପିନ୍ଧାଯିବା ତାଳପତ୍ରଆଦିର ଟୋପି, ଆଭରଣଯୁକ୍ତ ବଡ଼ ଟୋକେଇ, (ପ୍ରା. ସମ୍ବ.ବି.) ପେଟରା, ପେଡ଼ି।

ଝାମ୍ପିବା—ଗ୍ରା.ବି. ଝାମ୍ପମାରିବା ଦେଖ।

ଝାମ୍ପୁ(ଡ଼ା)ରି—ଗ୍ରା.ବିଂ. ଝାମ୍ପଡ଼ା ଦେଖ।

ଝାମ୍ପୁଡ଼ାମୁଣ୍ଡା—ଗ୍ରା. ପୁଂ. ବିଂ. ଯାହାର ମୁଣ୍ଡରେ ଶ୍ରେଷ୍ଠ ଶ୍ରେଷ୍ଠ କେଶ ଆଲୁଳାୟିତ ବା ଅଡୁଆ ହୋଇଥାଏ, ଯାହାର ମୁଣ୍ଡର ବାଳ ଝାମ୍ପୁଡ଼ା ହୋଇଥାଏ।

ଝାମ୍ପୁ(ଡ଼ୀ)ରିମୁଣ୍ଡି—ଗ୍ରା.ସ୍ତ୍ରୀ.ବିଂ: ଝାମ୍ପୁଡ଼ାମୁଣ୍ଡାର ସ୍ତ୍ରୀଲିଙ୍ଗ।

ଝାମ୍ପୁଲିଶିଙ୍ଗା—ଗ୍ରା.ବିଂ. ଯେଉଁ ଗୋରୁର ଶିଙ୍ଗଦ୍ୱୟ ଦୁଇଆଡ଼େ ବିପରୀତ ଦିଗରେ ବାହାରକୁ ବାହାରିଥାଏ।

ଝାର—ପ୍ରା. (ଇଡର) ବି. ( ସଂ-ଝାଟ ) ଜଙ୍ଗଲ, ଝାଡ଼, (ପ୍ରା. କଳାହାଣ୍ଡି. ବି) ଘାସ।

ଝାରି—ପ୍ରା.(ବସ୍ତର) ବି. ଜାଲଚଟୁ।

ଝାରୁ—ପ୍ରା.(ମେଦ୍ଦ)ବି.ଝରଣା,ଗଡ଼୍‌ଡାଲ।

ଝାଲୌନି—ରାଜପୁତାନାନ୍ତର୍ଗତ ସିରୋହି ରାଜ୍ୟର ଗୋଟିଏ ନଗର।

ଝାର୍ଝର—ପୁଂ. ବି. ଝର୍ଝର ବାଦ୍ୟକାରୀ।

ଝାର୍ଝରିକ—ପୁଂ. ବି. ( ଝର୍ଝର + ଇକ ) ଝର୍ଝର ବାଦ୍ୟକାରୀ।

ଝାଲ୍—ଗ୍ରା. ବି.ରାଗ, କଟୁ,(ବିଂ) ତୀକ୍ଷ୍ଣ, ତୀବ୍ର,ରାଗୁଆ,(ପ୍ରା.ସମ୍ବ.ବି)ଝାଳ,ସ୍ୱେଦ।

ଝାଳ—ଗ୍ରା. ବି. (ସଂ-ଜଳ) ସ୍ୱେଦ, ଘର୍ମ, ଦୁଇଟି ଭିନ୍ନ ଧାତୁଖଣ୍ଡକୁ ଗଳିତ ଧାତୁ ଦ୍ୱାରା ଯୋଡ଼ିବା,ଝାଳିବା, (ପ୍ରା. ମେଦ୍ଦ. ବି.) ଲଙ୍କାମରିଚ।

ଝାଳଗମ୍‌ଗମ୍—ଗ୍ରା. ବିଂ. ଝାଳରେ ବୁଡ଼ିଯାଇଥିବା, ଘର୍ମାକ୍ତ।

ଝାଳପୋଗ୍ରୁଧନ—ଗ୍ରା. ବି. ଝାଳବୁହା କଉଡ଼ି, କଠୋର ପରିଶ୍ରମ ଦ୍ୱାରା ଉପାର୍ଜିତ ଧନ।

ଝାଳବହିବା—ଗ୍ରା. ବି. ସ୍ୱେଦନିର୍ଗମନ।

ଝାଳବୁହା—ଗ୍ରା. ବିଂ. କଠୋର ପରିଶ୍ରମ ଦ୍ୱାରା ଉପାର୍ଜିତ।

ଝାଳବୁହାକଉଡ଼ି—ଗ୍ରା.ବି. ଝାଳପୋଗ୍ରୁଧନ ଦେଖ।

ଝାଲର—ଗ୍ରା. ବି. (ସଂ-ଜାଲ) ତରଙ୍ଗ ବା ଜାଲ ଆକାରର ଯେଉଁ କାରୁକାର୍ଯ୍ୟ ବିଶିଷ୍ଟ ବସ୍ତ୍ରଖଣ୍ଡ ବା ସୂତୁଲିମାନ ମଶାରି ଓ ଗୃହଦୁଆ ଆଦିର ଧଡ଼ିରୁ ଲଟକିଥାଏ, ମୟୂରଚନ୍ଦ୍ରିକା, (ପ୍ରା.ସିଂହ. ବି) ଏକପ୍ରକାର ଧାନ।

ଝାଲରଦାର—ଗ୍ରା. ବିଂ. ଝାଲରଯୁକ୍ତ, ଯେଉଁଥିରେ ଝାଲର ଓହଳିଥାଏ।

ଝାଲରି—ଗ୍ରା.ବି. ଝାଲର ଦେଖ,କବାଟ ସବାର ପ୍ରଭୃତିରେ ଏକତ୍ର ସଂଯୋଜିତ ଝରକାପରି ପରସ୍ପର ଅସଂଲଗ୍ନ କାଷ୍ଠଖଣ୍ଡମାନ, ଝିଲମିଲ।

ଝାଲରିଆ—ଗ୍ରା.ବିଂ. (ସଂ-ଜାଲ) ଜାଲଜାଲୁଆ, ଝାଲରଯୁକ୍ତ, ମୟୂରଚନ୍ଦ୍ରିକାଯୁକ୍ତ।

ଝାଲା—ଗ୍ରା. ବି. ଗୁଜରାଟ ଓ ମାରବାଡ଼ ଅଞ୍ଚଳ ଅଧିବାସୀ ରାଜପୁତ ଜାତିବିଶେଷ।

ଝାଲାବାର—ଗ୍ରା. ବି. ରାଜପୁତାନାନ୍ତର୍ଗତ ଗୋଟିଏ ଦେଶୀୟ ରାଜ୍ୟ, କାଠିଆୱାଡ଼ର ଗୋଟିଏ ବିଭାଗ।

ଝାଲି—ଗ୍ରା. ବି. (ସଂ-ଜାଲ) ପୁଚ୍ଛ, ଲଞ୍ଜ, ଲାଙ୍ଗୁଡ଼,ଆଗର,ଝାଲର,କାନଭିତରର ସୂକ୍ଷ୍ମଚର୍ମ।

ଝାଲି—ବି.କଞ୍ଚା ଆମ୍ବଚକୁଡ଼ା କଟାହୋଇ ସେଥିରେ ଲୁଣ ଓ ହେଙ୍ଗୁ ମିଶାଯାଇ କଞ୍ଜିରେ ସନ୍ତୁଳାହୋଇ ପ୍ରସ୍ତୁତ କରାଯିବା ଆଚାର।

ଝାଳିବା—ଗ୍ରା. କ୍ରି. ଧାତୁନିର୍ମିତ ପାତ୍ର ଓ ଅଳଂକାରାଦିର ଅଂଶମାନଙ୍କୁ ଗଳିତ ଧାତୁଦ୍ୱାରା ସଂଯୋଜନ କରିବା, ସଂଲଗ୍ନ କରିବା, ଅଳଂକାରାଦିକୁ ଉଜ୍ଜ୍ୱଳକରିବା, ଉଝାଳିବା,କୂଅ ପୋଖରୀ ଆଦିର ପଙ୍କକୁ ଉଦ୍ଧାର କରିବା।

ଝାଲୁଆ—ଗ୍ରା. ବି. ଘର୍ମାକ୍ତ, ସ୍ୱେଦଯୁକ୍ତ, ଯହିଁରୁ ସର୍ବଦା କ୍ଷୁଦ୍ର ଜଳକଣାମାନ ବହେ, (ପ୍ରା.ମେଦ୍ଦ.ବିଂ)ରାଗୁଆ,ରାଗ।

ଝାଳେଇବା—ଗ୍ରା. କ୍ରି. (ଅଙ୍ଗରୁ) ସ୍ୱେଦସ୍ରାବ ହେବା, ସ୍ୱେଦମୋଚନ କରିବା, (ଅଙ୍ଗ) ଘର୍ମାକ୍ତହେବା,କୌଣସି ବସ୍ତୁର ଦେହଯାକ କ୍ଷୁଦ୍ର କ୍ଷୁଦ୍ର ଜଳକଣାରେ ଆଚ୍ଛନ୍ନହେବା, ବାମ୍ଫଆଣିଦ୍ୱାରା ବା କୃତ୍ରିମ ଉପାୟରେ ମନୁଷ୍ୟର ଦେହରୁ ସ୍ୱେଦୋଦ୍ଗମ କରାଇବା।

ଝାସ—ଗ୍ରା.ବି. କୌଣସି ସତ୍ୟର ପରୀକ୍ଷା ବା ପ୍ରାଣତ୍ୟାଗ ନିମନ୍ତେ ଜଳ ବା ଅଗ୍ନିକୁ ଡେଇଁବା,ଅଗ୍ନି ବା ସୂର୍ଯ୍ୟଙ୍କର ତେଜ, ତାଢ, ତାପ, ଧାସ।

ଝାସଦେବା—ଗ୍ରା. ବି. ଝାସିବା ଦେଖ।

ଝାସିବା—ଗ୍ରା. କ୍ରି. ପ୍ରାଣତ୍ୟାଗ ବା ଆତ୍ମହତ୍ୟା ନିମନ୍ତେ ଅଗ୍ନିକୁ ବା ଜଳକୁ ଡେଇଁପଡ଼ିବା, ପରଜନ୍ମରେ ବାଞ୍ଛିତ ଫଳଲାଭର ସଙ୍କଳ୍ପକରି ଜୀବନର ଉତ୍ସର୍ଗ କରିବା ନିମିତ୍ତ କୌଣସି ମହାତୀର୍ଥରେ ଜଳକୁ ଡେଇଁପଡ଼ିବା, ହଠାତ୍ ଆକ୍ରମଣ କରିବା, ଡେଇଁପଡ଼ିବା, ଦ୍ରୁତ-

ଗଡ଼ରେ ପ୍ରବେଶ କରିବା, କୌଣସି ଜୀବ ବା ଶିକାର ଉପରକୁ କୁଦିବା ।

ଝି—ଗ୍ରା.ସ୍ତ୍ରୀ. ବି. (ସଂ-ଦୁହିତା) ତନୟା, କନ୍ୟା, ଝିଅ, (ପ୍ରା. ମେଦ୍ଧ. ସ୍ତ୍ରୀ. ବି.) ଦାସୀ, (ପ୍ରା. ହିନ୍ଦ୍ର. ସ୍ତ୍ରୀ. ବି) ପିଉସୀ ।

ଝିଅ—ଗ୍ରା.ସ୍ତ୍ରୀ. ବି. (ସଂ-ଦୁହିତା) କନ୍ୟା, ବାଳିକା, କନ୍ୟାସ୍ଥାନୀୟା ବାଳିକା, ଅମୁକବଂଶଜାତା ବା ଅମୁକଜାତୀୟା ସ୍ତ୍ରୀ ।

ଝିଅଝିଆଣି—ଗ୍ରା. ବି. କୌଣସି ପରିବାରର କନ୍ୟା ଓ କନ୍ୟାସ୍ଥାନୀୟା ବାଳିକାଗଣ, ଝିଅ ଓ ଝିଆରୀଆଦି, ପିତୃଗୃହରେ ସ୍ଥିତା ବା ପିତୃଗୃହକୁ ଆଗତା ବିବାହିତା କନ୍ୟା ।

ଝିଅପୁଅ—ଗ୍ରା. ବି. କନ୍ୟା ଓ ପୁତ୍ର, ସନ୍ତାନସନ୍ତତି ।

ଝିଅବୋହୂ—ଗ୍ରା. ବି. କନ୍ୟା ଓ ପୁତ୍ରବଧୂ, ପରିବାରରେ ଜାତା ଓ ବିବାହଦ୍ୱାରା ପରିବାରକୁ ଆନୀତା ଯୁବତୀ ସ୍ତ୍ରୀଗଣ ।

ଝିଅମାଆ—ପ୍ରା. (ଗଞ୍ଜା) ବି. ରାଣୀଙ୍କ ଝିଅକୁ ପାଳିଥିବା ଅନ୍ତଃପୁରସ୍ଥା ଧାଈ ।

ଝିଅଜ ମାଆ—ଗ୍ରା. ସ୍ତ୍ରୀ. ବି. କେବଳ ଦୁହିତା ପ୍ରସବିନୀ ସ୍ତ୍ରୀ ।

ଝିଆଣିଆଁ—ଗ୍ରା.ବି. ପରିବାରସ୍ଥ କନ୍ୟାସ୍ଥାନୀୟା ସ୍ତ୍ରୀଗଣ, ( ଗ୍ରା. ବିଂ ) କନ୍ୟାସମ୍ବନ୍ଧୀୟ, କନ୍ୟାର ବ୍ୟବହାର ଯୋଗ୍ୟ, କନ୍ୟାକୁ ପଠାଇବାର ଉପଯୁକ୍ତ ବା ଅଳ୍ପମୂଲ୍ୟର (ବେଶରଆଦି) ।

ଝିଆରୀ—ଗ୍ରା. ସ୍ତ୍ରୀ. ବି. ( ସଂ-ଦୁହିତୃ ) ଭ୍ରାତୃଷ୍ପୁତ୍ରୀ, ବଡ଼ ବା ସାନଭାଇର ଝିଅ ।

ଝିଆରୀଜ୍ୱାଇଁ—ଗ୍ରା. ପୁଂ. ବି. (ସଂ—ଭ୍ରାତୃଜାମାତା) ଝିଆରୀର ସ୍ୱାମୀ ।

ଝିଁଝିଁ—ଗ୍ରା.ଅବ୍ୟ.ଝିଙ୍କାରୀରବ, ଝିଲ୍ଲୀରବ ।

ଝିଙ୍କ—ଗ୍ରା. ବି. (ଶାନ୍ତାଳୀଭାଷା) ମୂଷାଜାତୀୟ କ୍ଷୁଦ୍ର ବନ୍ୟ ଚତୁଷ୍ପଦ ଜନ୍ତୁବିଶେଷ ।

ଝିଙ୍କକାଠି—ଗ୍ରା. ବି. ଝିଙ୍କ ଜୀବଙ୍କ ଦେହର କାଠି ।

ଝିଙ୍କର—ଗ୍ରା. ବି. (ସଂ-କଙ୍କର) ଭଙ୍ଗାହାଣ୍ଡିର ଖପରା, ହାଣ୍ଡିର ଭଙ୍ଗ ଫନ୍ଦ, ଖପରଲି, ଘରଛୁଆଣି କରିବାର ଖପରା, ଝିଙ୍କଜନ୍ତୁ ।

ଝିଙ୍କା—ଗ୍ରା. ବି. (ସଂ-ଧୃଷଧାତୁ) ଚୁଲ୍ଲୀର ଉପର ପରିଧିରେ ଥିବା ଗୁବ ବା ଶୃଙ୍ଗ ବା ମୃତ୍ପିଣ୍ଡ, ସ୍ତ୍ରୀମାନଙ୍କର ମୁଣ୍ଡର ଅଳଂକାରବିଶେଷ, ଗୋଜିକାଠି, ଓଟରା ବା ସବଳେ ଆକର୍ଷଣ, (ଗ୍ରା.ବିଂ) ଓଟରା ହେବା, ଊଣା ।

ଝିଙ୍କା(ଙ୍କେ)ଇବା—ଗ୍ରା. କ୍ରି. ଝିଙ୍କିବାର ଣିଜନ୍ତରୂପ ।

ଝିଙ୍କାଓଟରା—ଗ୍ରା. ବି. ଝିଙ୍କାଝିଙ୍କି ଦେଖ, ବଳୁବାର ଝିଙ୍କିବା କର୍ମ ।

ଝିଙ୍କାଝିଙ୍କି—ଗ୍ରା. ବି. ଅନ୍ୟୋନ୍ୟରେ ଓଟାରିବା କର୍ମ, ଟଣାଓଟରା, (ଗ୍ରା.ବିଂ) ଅନ୍ୟୋନ୍ୟରେ ଓଟରାଓଟରି ହେଉଥିବା, ପରସ୍ପର ଦ୍ୱାରା ଆକର୍ଷିତ ।

ଝିଙ୍କାମାରିବା—ଗ୍ରା.କ୍ରି.କୌଣସି ପଦାର୍ଥ ଯଥା—ରଜ୍ଜୁ ବା ଉଙ୍ଗାର ଅଙ୍ଗୁଳିକୁ ବଳପୂର୍ବକ ଆକର୍ଷଣ କରିବା ।

ଝିଙ୍କାରୀ—ଗ୍ରା. ବି. (ସଂ-ଝିଣ୍ଟୀ)ଝିଲ୍ଲୀ ।

ଝିଙ୍କିବା—ଗ୍ରା. କ୍ରି. (ସଂ-ଧୃଷଧାତୁ)ବଳପୂର୍ବକ ଆକର୍ଷଣ କରିବା, ଓଟାରିବା, ଝାଙ୍କିବା, ରଜ୍ଜୁଆଦିକୁ ବଳପୂର୍ବକ ଟାଣି ଆଣିବା, ( ଲ.ଅର୍ଥ ) ଏକତ୍ର ସଂଗ୍ରହ କରିବା ପାଇଁ ବଳପୂର୍ବକ ଓଟାରିବା, ଊଣା କରିବା, ପ୍ରହାର କରିବା ପାଇଁ ଅସ୍ତ୍ରାଦିକୁ ବଳପୂର୍ବକ ଟାଣି ଆଣିବା ।

ଝିଙ୍ଗା—ପ୍ରା.(ସିଂହ)ବି.ଲତାଫଳବିଶେଷ. ଜହ୍ନି ।

ଝିଙ୍ଗାକ—କ୍ଳୀ. ବି. ଝିଙ୍ଗା ଦେଖ ।

ଝିଙ୍ଗାସ—ଗ୍ରା.ବି(ସଂ-ଧୃଷଧାତୁ) କୌଣସି ବ୍ୟକ୍ତିର ମନକୁ ବିନ୍ଧେଇ କରି କହିବା କଥା, ଭର୍ତ୍ସନା, କଟୁବଚନ ।

ଝିଙ୍ଗାସିବା—ଗ୍ରା.କ୍ରି.କଟୁବାକ୍ୟ କହିବା, ଭର୍ତ୍ସନା କରିବା ।

ଝିଙ୍ଗିଣୀ— ସ୍ତ୍ରୀ. ବି. ଜହ୍ନି, ଜହ୍ନିଗଛ ଓ ତାହାର ଫଳ, ଏକପ୍ରକାର କାକୁଡ଼ି, ମସଲ, ଏକପ୍ରକାର ବନ୍ୟଗଛ ।

ଝିଙ୍ଗୀ—ସ୍ତ୍ରୀ. ବି. ଜହ୍ନିଗଛ ଓ ତାହାର ଫଳ ।

ଝିଜିର—ପ୍ରା(ମେଦ୍ଧ)ବି.ସୁନା ବା ରୂପାରେ ତିଆରି ହୋଇଥିବା ଅଙ୍ଗୁଳିତ୍ରା ।

ଝିଞ୍ଜୋ(ଝି)ଟ—ଗ୍ରା. ବି. ସଙ୍ଗୀତର ରାଗିଣୀ ବିଶେଷ, ଝିଞ୍ଜୁଟ ।

ଝିଞ୍ଜୋ(ଝି)ଟ ଲଗା(ଗେ)ଇବା—ଗ୍ରା. କ୍ରି. ଅଡ଼ୁଆ ଲଗାଇବା, ନାନା ଗୋଳମାଳିଆ କାର୍ଯ୍ୟକରିବା, ଅତ୍ୟନ୍ତ ବିରକ୍ତ କରି ବାରମ୍ବାର ପ୍ରାର୍ଥନା କରିବା, ବିରକ୍ତ କରିବା ।

ଝିଞ୍ଜୋ(ଞ୍ଜି)ଟିଆ—ଗ୍ରା. ବିଂ. (ସଂ-ଜଞ୍ଜାଳ) ଜଞ୍ଜାଳିଆ, ଗୋଳମାଳିଆ, ଅଡ଼ୁଆତଡ଼ୁଆ, ଯେଉଁ ଲୋକ ଅନ୍ୟ ଲୋକ ସଙ୍ଗେ ଗୋଳମାଳ ବା ଅଡ଼ୁଆ ଲଗାଏ, ଯେଉଁ ଲୋକ ଉପର୍ଯ୍ୟୁପରି ପ୍ରାର୍ଥନା ଦ୍ୱାରା ପ୍ରାର୍ଥିତ ବ୍ୟକ୍ତି ମନରେ ବିରକ୍ତି ଜାତ କରାଏ ।

ଝିଞ୍ଜା(ଞ୍ଜି)ଟ—ଗ୍ରା. ବି. ଝିଞ୍ଜୋଟ ଦେଖ ।

ଝିଞ୍ଜାର—ଗ୍ରା. ବି. ବସ୍ତ୍ର ଓ ପୁସ୍ତକାଦିକୁ ଟିକିଟିକି କରି କାଟିବା ପୋକ ।

ଝିଞ୍ଜାରିବା—ଗ୍ରା. କ୍ରି. (ସଂ-ଜର୍ଜର)ବିଦାରିବା, ବହୁ ଛିଦ୍ର କରିବା, ଜୀର୍ଣ୍ଣ ବା ସାରହୀନ କରିବା, ଭିଣି ନଷ୍ଟ କରିବା ।

ଝିଞ୍ଜିର—ଗ୍ରା. ବି. ଜଞ୍ଜିର, ଶିକୁଳି ।

ଝିଞ୍ଜିମ—ବି. ଦାବାନଳଦଗ୍ଧ ବନ ।

ଝିଞ୍ଜିରୀ—ସ୍ତ୍ରୀ.ବି. କ୍ଷୁପବିଶେଷ, ଚୋପଫଳ, ବୃନ୍ତା ।

ଝିଣ୍ଟିଣ୍ଟୋ—ବି. କ୍ଷୁପବିଶେଷ, ରଠା, ପୀତପୁଷ୍ପା ।

ଝିଣ୍ଟୀ—ବି.କୀଟବିଶେଷ. ଝିଲ୍ଲୀ, ଝିଙ୍କାରୀ ।

ଝିହ୍କ—ଗ୍ରା. ବି. ହଠାତ୍ କ୍ଷଣକାଳ ଝିଙ୍କିବା, (ପ୍ରା. ଗଞ୍ଜା.ବି) ଆହାର ଦେଇ ପକ୍ଷୀମାନଙ୍କୁ ମାରିବାରେ ବ୍ୟବହୃତ ସ୍ପ୍ରିଙ୍ଗ୍ ବା କମାଣିଯୁକ୍ତ କାଠର ଯନ୍ତ୍ରବିଶେଷ ।

ଝିହ୍କମାରିବା—ଗ୍ରା.କ୍ରି.କୌଣସି ରଜ୍ଜୁକୁ (ଯଥା—ଘୋଡ଼ାରବାଗ, ନାହାଟାଣିବା ଦଉଡ଼ି) ହଠାତ୍ କ୍ଷଣକାଳ ପାଇଁ ବଳ-

ପୂର୍ବକ ଝିଙ୍କି ଦେଇ ପୁନର୍ବାର ଶିଥିଳ କରିବା ।

ଝିଟ୍‌ପିଟ୍—ଗ୍ରା.ବି.ଝିଟିପିଟି, ଗୃହଗୋଧିକା

ଝିଟିପିଟି—ଗ୍ରା. ବି. (ସଂ-ଜ୍ୟୋଷ୍ଠୀ) ପଲ୍ଲୀ ବା ଗୃହଗୋଧିକା, ଗୃହରେ ଥିବା ସରୀସୃପବିଶେଷ ।

ଝିଣିଝିଣି—ଗ୍ରା. ବି. ଅଙ୍ଗସୁପ୍ତି, ବହୁକାଳ ଏକ ଅବସ୍ଥାରେ ରହିଗଲେ ରକ୍ତ ସଞ୍ଚାଳନର ରୋଧ ହେବାରୁ ଅଙ୍ଗବିଶେଷର ଯେଉଁ ଅବଶ ଅବସ୍ଥା ବୋଧ ହୁଏ, ଝିମିଝିମି ।

ଝିଣିଝିଣିଆ(ଆଁ)—ପ୍ରା.(ଯାଜ)ବି. ଏକପ୍ରକାର ଆମ୍ବ, ଯାହାକୁ ଖାଇଲେ ତଣ୍ଟି ଓ ପାଟି ଝିମିଝିମି ହୋଇଯାଏ ।

ଝିଣ୍ଟିକା—ଗ୍ରା.ବି. ଲମ୍ବପଦବିଶିଷ୍ଟ ପତଙ୍ଗ ବିଶେଷ, ଝିଲି । [ ଛୁଞ୍ଚିବା ।

ଝିଣ୍ଟିବା—ଗ୍ରା. କ୍ରି. ଗୋବରପାଣିଆଦି

ଝିଣ୍ଟୀ—ସ୍ତ୍ରୀ. ବି. ବାଡ଼ିକ ଢଙ୍ଗର ବନ୍ୟ କ୍ଷୁପବିଶେଷ, ଦାସକେରେଣ୍ଟା, ଏହା ନାଲି, ହଳଦିଆ, ନେଳ ଓ ଧଳା ଭେଦରେ ୪ପ୍ରକାର ।

ଝିଣ୍ଟୀଶ—ପୁଂ. ବି. ଝାଣ୍ଟି, ଝାଟିମୂଳ,ଶିବ

ଝିନ—ଗ୍ରା.ବିଂ. (ସଂ-ଚୀନ)ସୂକ୍ଷ୍ମ, ବାରିକ୍, ଅତ୍ୟନ୍ତ ପାତଳ,(ଗ୍ରା.ବି)ଅତି ସରୁ ଲୁଗା

ଝିନପତନୀ—ଗ୍ରା.ବି. ଅତ୍ୟନ୍ତ ସୂକ୍ଷ୍ମ ବସ୍ତ୍ର, ଅତ୍ୟନ୍ତ ପତଳା ପାଟଲୁଗା, ହାଡ଼ିଆ-ଶାଢ଼ି ।

ଝିନୁକ—ଗ୍ରା. ବି. ଶୁକ୍ତି, ଶାମୁକା ।

ଝିନ୍ଦ—ଗ୍ରା. ବି. ପଞ୍ଜାବର ଅନ୍ତର୍ଗତ ଗୋଟିଏ ଦେଶୀୟ ରାଜ୍ୟ ।

ଝିନ୍ଦନମହାରାଣୀ—ପଞ୍ଜାବ କେଶରୀ ମହାରାଜ ରଣଜିତ୍‌ସିଂହଙ୍କ ପ୍ରିୟତମା ପତ୍ନୀ ।

ଝିପ୍‌ଝିପ୍—ଗ୍ରା. ଅବ୍ୟ. ଝିପିଝିପି ଦେଖ ।

ଝିପା—ପ୍ରା.(ସମ୍ବ)ବି. ଏକପ୍ରକାର ଦୁବ-ଘାସ ।

ଝିପିଝିପି—ଗ୍ରା. ଅବ୍ୟ. ଟ୍ରେଟ ଟ୍ରେଟ ଟୋପାରେ ବର୍ଷା ହେବା, (ଗ୍ରା.ବି) ସାମାନ୍ୟ ଓ କ୍ଷୁଦ୍ର ଟୋପାରେ ବର୍ଷା ।

ଝିମ୍‌ଝିମ୍—ଗ୍ରା. ବି. ଝିମିଝିମି ଦେଖ ।

ଝିମ୍‌ଝିମ୍‌ମାରିବା—ଗ୍ରା. ବି. ଝାଇଁଝାଇଁ ଦେଖ, ଅନଶନାଦିଜନିତ ଦୁର୍ବଳତା ବୋଧ ।

ଝିମ—ହିନ୍ଦୁଙ୍ଗ ଜିଲ୍ଲାର ଗୋଟିଏ ନଦୀ ।

ଝିମା—ଗ୍ରା. ବି. ଏକପ୍ରକାର ବାତରୋଗ, ମୂର୍ଚ୍ଛାବାତ, ( ଗ୍ରା.ବିଂ ସଂ-କ୍ଷୀଣ ) ଅବଶ, କାଲୁଆ, ଅଳସୁଆ ।

ଝିମା(ମେ)ଇବା—ଗ୍ରା. କ୍ରି.(ଦେହ)ଝିମିଝିମି ବୋଧହେବା, ଅଙ୍ଗାଦି ଅବଶ ହୋଇ ଚଳତ୍‌ଶକ୍ତିହୀନ ହେବା,ଅଙ୍ଗାଦି ( ଅବଶ ହେବାପରି ) ଧୀରେ ଧୀରେ କୌଣସି କାର୍ଯ୍ୟ କରିବା, ଧିମେଇବା, (ପ୍ରା. ଯାଜପୁର.କ୍ରି.)ନିଦ୍ରାତୁର ହୋଇ ଢଳାଇବା ବା ଝାଙ୍କିହେବା ।

ଝିମାଣି—ଗ୍ରା. ବି.ଦୁଇଦଳ ବାଳକମାନଙ୍କ ମଧ୍ୟରେ ଏକପ୍ରକାର ଖେଳ, ଡୁ ଡୁ ଖେଳ, କୁଆଖେଳ, ଅସ୍ତ୍ରଶସ୍ତ୍ର ପ୍ରସ୍ତୁତ କରିବା କାରଖାନାର ଅଗ୍ନି ।

ଝିମାବାତ—ଗ୍ରା. ବି. ଝିମା ଦେଖ ।

ଝିମିକ—କଟକଜିଲ୍ଲାର ଗୋଟିଏ ଉପ-ବିଭାଗ ଓ ସହର ।

ଝିମିଝିମି—ଗ୍ରା. ଅବ୍ୟ. (ସଂ-ଝିଞ୍ଝିମ)ବହୁକାଳ ଏକ ଅବସ୍ଥାରେ ଅବସ୍ଥିତ ଯେଉଁ ରକ୍ତ ସଞ୍ଚାଳନରେ ବ୍ୟାଘାତ ହେବାରୁ ଅଙ୍ଗ ବିଶେଷରେ ଅବଶତା ଅନୁଭୂତ ବା ଯନ୍ତ୍ରଣାବୋଧ ।

ଝିମି(ଟି)ଣ୍ଟେ—ଗ୍ରା.ବି. ମୂହୂର୍ତ୍ତ, ନିମିଷମାତ୍ର

ଝିମିଟକେ—ଗ୍ରା. କ୍ରି. ବିଂ. ମୂହୂର୍ତ୍ତକେ ।

ଝିମିଟି—ଗ୍ରା. ବି. ଡୁ ଡୁ ଖେଳ ।

ଝିମିଣ୍ଟେ—ଗ୍ରା. କ୍ରି. ବିଂ. ନିମେଷମାତ୍ର ।

ଝିମିରି—ଗ୍ରା.ବିଂ. ଯେଉଁମାନେ ଅସ୍ତ୍ରଶସ୍ତ୍ର ତିଆର କରନ୍ତି, ହତିଆର କାରିଗର ।

ଝିମିରିଖେଳ—ଗ୍ରା. ବି. ଝିମାଣି, ଡୁ ଡୁ ଖେଳ ।

ଝିମିଶାଳ—ଗ୍ରା. ବି. ଅସ୍ତ୍ରଶସ୍ତ୍ରାଦି ପ୍ରସ୍ତୁତ କରିବାର କାରଖାନା ।

ଝିମେଇଝିମେଇ—ଗ୍ରା. କ୍ରି. ଅତି କ୍ଷୀଣଭାବରେ, ଧୀରେଧୀରେ, ଆଳସ୍ୟ ସହକାରେ, ନିଦ୍ରାତୁର ହୋଇ ଇତସ୍ତତଃ ଢୁଲାଇବା ପ୍ରକାରେ ।

ଝିରକ—ଗ୍ରା. ବି. କଟକଜିଲ୍ଲାର ଗୋଟିଏ ଉପବିଭାଗ ଓ ସହର ।

ଝିରି—ସ୍ତ୍ରୀ. ବି. ଝିଲ୍ଲି, ଝିଙ୍କାରି ।

ଝିରିକା—ବି. ଝିଙ୍କାରି ।

ଝିରିଝିରି—ଗ୍ରା. ଅବ୍ୟ (ସଂ-ଧୀର) ପାଣି ଅଳ୍ପ ଅଳ୍ପ ଝରିବା ପ୍ରକାରେ ।

ଝିଲ୍‌ଝିଲ୍—ଗ୍ରା.ଅବ୍ୟ. ଚକ୍‌ଚକ୍, ଜକଜକ୍

ଝିଲ୍‌ମିଲ୍—ଗ୍ରା.ବି.ଖଡ଼ଖଡ଼ି, କବାଟ ବନ୍ଦ ହୋଇଥିବା ଅବସ୍ଥାରେ ମଧ୍ୟ ଘର ଭିତରକୁ ବାୟୁ ଓ ଆଲୋକ ପଶିବା ଭଳି ଅନେକ ଖଣ୍ଡ ପଟାରେ ତିଆରି ଏକପ୍ରକାର କବାଟ, (ଗ୍ରା. ବିଂ) ଖୁବ୍ ପତଳା, ଜାଲଜାଲୁଆ, ଅତି ଉଜ୍ଜ୍ୱଳ, ଯାହାର ଦୃଷ୍ଟିଶକ୍ତି ଉତ୍ତମ ନୁହେ ।

ଝିଲ—ଗ୍ରା.ବି (ସଂ-ଜଳ)ଜଳପାଟ, ଦହ, ବର୍ଷାପାଣିରେ ଯେଉଁ ବହୁ ବିସ୍ତୃତ ନିମ୍ନଭୂମି ଜଳପୂର୍ଣ୍ଣ ହୋଇଥାଏ, ଅଗଭୀର ଜଳାଶୟ ।

ଝିଲ(ଲି)କେଇବା—ଗ୍ରା. କ୍ରି. (ପବନ) ଧୀରେ ଧୀରେ ବହିବା ।

ଝିଲ(ଲି)ପି—ଗ୍ରା. ବି. କର୍ଣ୍ଣମୂଳ ପାଖେ ଯେଉଁ କର୍ତ୍ତିତ ବଙ୍କକେଶ ଥାଏ ।

ଝିଲମ—ରାବଲପିଣ୍ଡି ବିଭାଗର ଗୋଟିଏ ଜିଲ୍ଲା, ପଞ୍ଚନଦ ମଧ୍ୟରୁ ଗୋଟିଏ ନଦୀ ।

ଝିଲିକନା—ଗ୍ରା. ବି. ମଝିରେ ଛିଦ୍ରଯୁକ୍ତ କନା, ଯାହା ମଧ୍ୟରେ ବଟା ବରିକୁ ପୁରାଇ ଘିଅ କରେଇରେ ଅଜାଡ଼ିଲେ ଝିଲି ତିଆରି ହୁଏ ।

ଝିଲିମିଲି—ଗ୍ରା.ବି ଓ ବିଂ. ଝିଲ୍‌ଝିଲ୍ ଦେଖ

ଝିଲିମିଲିକ—ଗ୍ରା. ବି. (ସଂ-ହୁଳ ବା ଧୂଳ ଧାତୁ ) ଜୁଲୁଜୁଲିଆ ପୋକ, ଯେଉଁ କବାଟ ବନ୍ଦଥାଇ ସୁଦ୍ଧା ତହିଁ ଫାଙ୍କ ଖୋଲିହିବା ଓ ବନ୍ଦ କରିବା ପାଇଁ କଳ ଲଗିଥାଏ, ସ୍ତ୍ରୀମାନଙ୍କର ସୀମନ୍ତରେ ପିନ୍ଧାହିବା ଜାଲିଦାର ଭୂଷଣବିଶେଷ ।

ଝିଲ୍ଲି—ପୁଂ.ବି.ଝିଙ୍କାରି, ଚମଡ଼ା ତନ୍ତୁରେ ନିର୍ମିତ କାଗଜ, (ଗ୍ରା.ବି. ସଂ-ଛଲ୍ଲୀ) (କାନ ଭିତରର) ସୂକ୍ଷ୍ମଚର୍ମ, (କାନର)

ଜାଲ, କୁଣ୍ଡଳାକାର ସରୁସରୁ ନାମ-
ଥିବା ମିଷ୍ଟାନ୍ନବିଶେଷ, ନାଡ଼ୁ, ଝିଙ୍କାରି-
ରବ ।
ଝିଲ୍ଲିକା—ବି. (ଝିଲ୍ଲ + ଇକ + ଆ) ଝିଲ୍ଲି,
ଝିଙ୍କାରି ପୋକ । [ ଦେଖ ।
ଝିଲ୍ଲୀ—ସ୍ତ୍ରୀ. ବି. ଝିଙ୍କାରି ପୋକ, ଝିଲ୍ଲି
ଝିଲ୍ଲୀକଣ୍ଟ—ପୁଂ. ବି. (କ. ଗ୍ରା) ଗୃହକପୋତ,
ପାର, ପାରାବତ ।
ଝିଲ୍ଲୀକା—ସ୍ତ୍ରୀ. ବି. ( ଝିଲ୍ଲୀ + କ + ଆ )
ଝିଙ୍କାରି, ଝିଲ୍ଲି ଦେଖ । [ ଶବ୍ଦ ।
ଝିଲ୍ଲୀଧ୍ୱନି—ବି. (୬ତତ୍ର) ଝିଙ୍କାରିପୋକର
ଝିଲ୍ଲୀରବ—ବି. ( ୬ତତ୍ର ) ଝିଲ୍ଲିଧ୍ୱନି,
ଝିଙ୍କାରି ପୋକର ରବ ।
ଝୁକା—ଗ୍ରା. ( ସମ୍ବ ) ବି. ଫଳଆଦିର
ପେଣ୍ଡା, ଜନ୍ତୁ ଶିକାର କରିବା ପାଇଁ
ଲୁଚକରି ଜଗିବା ।
ଝୁକିବା—ଗ୍ରା. (ସମ୍ବ.) କି. ଲକ୍ଷଭ୍ରଷ୍ଟ-
ହେବା, କ୍ଷେତରେ ଗୁଆଆଦି କରିବା-
ପାଇଁ ପାଗବଳମ୍ବହେବା, ଅପାଗହେବା ।
ଝୁକ୍ନ୍ଧ—ଗ୍ରା. ବି. ନଇଁ ପଡ଼ିବା, ଅବନତ ।
ଝୁଙ୍କ—ଗ୍ରା. ବି. (ସଂ-ଧୁକ୍ଷ) ନତ, ନତ-
ହେବା, ନିଶାର ଆକ୍ରମଣ ଯୋଗୁ
ଟଳିବା, ମାଦକଦ୍ରବ୍ୟର ପ୍ରଭାବ, ନିଶା,
କ୍ରୋଧାବେଗ, ରାଗର ହପ୍ପା, କୌଣସି
ପଦାର୍ଥର ଅପେକ୍ଷାକୃତ ଅଧିକ ଓଜନ
ହେତୁ ଜରାତୁର, ଏକପାଖ ଢଳକୁ
ଝୁଙ୍କିବା, ବେଶି ଓଜନ ।
ଝୁଙ୍କା—ଗ୍ରା. ବି. ଝୁଙ୍କିବା, ନଇଁବା,
ଝିଙ୍କା ଦେଖ ।
ଝୁଙ୍କା(ଙ୍କେ)ଇବା—ଗ୍ରା. କି. ଝୁଙ୍କିବାର
ଣିଜନ୍ତ ରୂପ ।
ଝୁଙ୍କାଝୁଙ୍କି—ଗ୍ରା. ବି. ନୁଆଁଇବା କର୍ମ ।
ଝୁଙ୍କି—ଗ୍ରା. ବି. ଦାୟିତ୍ୱ, ଉତ୍ସାହ, ଖିଆଲ,
କ୍ଲେଶଜନକ ଭାର, ଝୁଙ୍କ ଦେଖ ।
ଝୁଙ୍କିପଡ଼ିବା—ଗ୍ରା. କି. ଆଗକୁ ନଇଁ ପଡ଼ିବା
ଝୁଙ୍କିବା—ଗ୍ରା. କି. (ସଂ-ଧୁକ୍ଷ) ନିଶାରେ
ଟଳିବା, ଟଳିବା, ଆଗକୁ ନଇଁ ପଡ଼ିବା,
କ୍ରୋଧ ଜଳିବା, କଷ୍ଟାସହ୍ୟକାରେ ଲଗିବା,
କୌଣସି ବ୍ୟକ୍ତି ଉପରେ ଗୁରୁଦାୟିତ୍ୱ
ବା ଅଭିଯୋଗ ଲଦାହେବା, ଗୋଟାଏ
ପାଖକୁ ଢଳିବା ।
ଝୁଞ୍ଝଲ—ଗ୍ରା. ବି. ବାଦ୍ୟବିଶେଷ, ଝଞ୍ଜ ।
ଝୁଟ୍—ଗ୍ରା. ବିଂ. (ସଂ-ଅଯୁକ୍ତ) କୁତ୍ସିତ,
ମିଥ୍ୟାବାଦୀ, ସତ୍ୟଲଙ୍ଘନକାରୀ, ମିଥ୍ୟ,
(ବି) ମିଥ୍ୟ କଥା ।
ଝୁଟ୍ମୁଟ୍—ଗ୍ରା. ବିଂ. ମିଥ୍ୟା ।
ଝୁଟା—ଗ୍ରା. ବି. ( ସଂ-ଜୁଷ୍ଟ ) ଅଇଣ୍ଠା,
ଉଚ୍ଛିଷ୍ଟ, ମିଥ୍ୟାକଥା, (ବିଂ) ଝୁଟ୍ ଦେଖ ।
ଝୁଟାଉଠା(ଠେ)ଇବା—ଗ୍ରା. କି. ପରର
ଅଇଣ୍ଠାକୁ ପରିଷ୍କାର କରିବା, ଅତି ହୀନ-
କର୍ମ କରିବା ।
ଝୁଟି—ଗ୍ରା. ବି. କାନ୍ଥରେ ନାନାବର୍ଣ୍ଣର
ଲେଖିବା ଚିତ୍ର, ଚିତା, ଚିତ୍ରବଳୀ, ଝୋଟି
ଦେଖ ।
ଝୁଟୁଆ—ଗ୍ରା. (ସିଂହ) ବି. ଶିମ୍ବ ।
ଝୁଡ଼ୁଙ୍ଗା—ଗ୍ରା. (ସିଂହ) ବି. ଝୁଡୁଙ୍ଗ ଦେଖ ।
ଝୁଡ଼ି—ଗ୍ରା. ବି. ବାଉଁଶ ବା ବେତରେ
ତିଆରି ଗଣ୍ଡୁଆ ବା କୋଡ଼ି, ଟୋକେଇ ।
ଝୁଡୁଙ୍ଗ—ଗ୍ରା. ବି. (ସଂ-ଚବଟ) ଏକ-
ପ୍ରକାର ଛୁଞ୍ଚ, ଏକପ୍ରକାର ଲୁଣିମାଛ ।
ଝୁଣ୍ଝୁଣ୍—ଗ୍ରା. ଅବ୍ୟ ଝୁଣୁଝୁଣୁ ଦେଖ ।
ଝୁଣ୍ଝୁଣିଆ—ଗ୍ରା. ବି. ଏକପ୍ରକାର ଔଷଧ
ଗୁଳ୍ମ, ଝୁଣୁଝୁଣୁକା, (ଗ୍ରା. ବିଂ) ଜଳସ୍ଥନ-
ହୋଇ ଭିନ୍ନ ଭିନ୍ନ ଖଣ୍ଡରେ ବିଭକ୍ତ
ହୋଇଥିବା, ଯାହା ଝୁଣୁଝୁଣୁ ଶବ୍ଦକରେ ।
ଝୁଣା—ଗ୍ରା. ବି. (ସଂ-ଧୂନକ) ସାଲବୃକ୍ଷର
ସୁଗନ୍ଧ ନିର୍ଯ୍ୟାସ, ଚନ୍ଦନରସ, ଦନ୍ତଦ୍ୱାରା
ଜୋରରେ ଆଘାତକରି ଓଟାରିବା,
ଝୁଣିବା, ଜୋରପୂର୍ବକ ଦୋହଁବା,
(ସଂ-ଝୁଣୀ) ଶୁଖିଲା ନଡ଼ିଆ, ଖୁରଡ଼ନଡ଼ିଆ
ଝୁଣିପକା(କେ)ଇବା—ଗ୍ରା. କି. ଝୁଣିବା
ଦେଖ, ଅଳ୍ପ କରି କରି ବ୍ୟତିବ୍ୟସ୍ତ
କରିବା ।
ଝୁଣିବା—ଗ୍ରା. କି. ଟିକ ଟିକ କରି
ଛିଣ୍ଡାଇବା, ରେକଟିବା, ଉପର୍ଯ୍ୟୁପରି
ଦାନ୍ତରେ କାମୁଡ଼ିବା, କ୍ଷତବିକ୍ଷତକରିବା,
ଦାନ୍ତରେ କାମୁଡ଼ି ଝୁମେଇବା ବା
ଟୋହିବା, ଝେଙ୍କିବା, କମ୍ପାଇବା, ଅତି-
ବିରକ୍ତ କରିବା ।
ଝୁଣ୍ଟି(ଣ୍ଡୀ)—ବି. ଖୁରୁଡ଼ ନଡ଼ିଆ, ଶୁଖିଲା
ନଡ଼ିଆ । [ ଦେଖ ।
ଝୁଣୁଝୁଣିଆ—ଗ୍ରା. ବି ଓ ବିଂ. ଝୁଣ୍ଝୁଣିଆ
ଝୁଣୁଝୁଣୁ—ଗ୍ରା. ଅବ୍ୟ. ରୁଣୁଝୁଣୁ, ଘୁଙ୍ଗୁର
ଆଦିର ମଧୁର ଧ୍ୱନି ।
ଝୁଣୁଝୁଣୁକା—ଗ୍ରା. ବି. ବନ୍ୟଗୁଳ୍ମବିଶେଷ ।
ଝୁଣ୍ଟ—ପୁଂ. ବି. (ଝଟ + କ. ଅ) କାଣ୍ଡ-
ହୀନ ବୃକ୍ଷ, ସ୍ତମ୍ବ, ଗୁଳ୍ମ, ବୁଦା, ବୃକ୍ଷ, ଗଛ ।
ଝୁଣ୍ଟା—ଗ୍ରା. ବି. ( ସଂ-ଝୁଣ୍ଟ ) କାଣ୍ଡହୀନ
ବୃକ୍ଷ, ବୁଦା, ରଜା ବା ଦେବତାଙ୍କ
ନାମଧରି ବା ରାଣପକାଇ କୌଣସି
ବସ୍ତୁ ( ଯଥା—ଫସଲ ) କୁ ଅଟକ
କରିବା ନିମନ୍ତେ ଭୂମିରେ ପୋତାଯିବା
ପତାକା ବା ତାଗା, ଗୁଳୁ ଗୁଳୁ ଗୋଡ଼ର
ଅଗ୍ରଭାଗ କୌଣସି କଠିନ ବସ୍ତୁଦ୍ୱାରା
ଆଘାତପ୍ରାପ୍ତ ହେବା ।
ଝୁଣ୍ଟାଇହେବା—ଗ୍ରା. କି. ଝୁଣ୍ଟିବା ଦେଖ ।
ଝୁଣ୍ଟାଦେବା—ଗ୍ରା. କି. ଝୁଣ୍ଟାମାରିବା
ଦେଖ ।
ଝୁଣ୍ଟାମାରିବା—ଗ୍ରା. କି. ରଜା ବା
ଦେବତାଙ୍କ ରାଣପକାଇ କୌଣସି
ପଦାର୍ଥ ବା ଫସଲକୁ ଅଟକ କରିବା
ନିମନ୍ତେ ଭୂମିରେ ଗୋଟିଏ ପତାକା
ପୋତିବା ।
ଝୁଣ୍ଟି—ଗ୍ରା. ବି. ଉତ୍ସବ ବା ବାହାଘର
ଉପଲକ୍ଷେ ପିଠଉରେ ଘରେ ଓ ଘର-
ବାହାରେ କାନ୍ଥରେ କରାଯିବା ଚିତ୍ର-
ମାନ, (ପ୍ରା. ମେଦ. ବି.) ମସ୍ତକର ଚୂଡ଼ା,
ଚୁଟି, ମୁଣ୍ଡର ଗଣ୍ଠି, ଷଣ୍ଢ ଓଟ ଆଦିଙ୍କ
ଚୂଳ, (ପ୍ରା. ସମ୍ବ. ବି.) ସକାଳୁ ଦୁଆରେ
ଗୋବରପାଣି ଛିଞ୍ଚିବା, ଛେରାଦେବା ।
ଝୁଣ୍ଟିଆ—ଗ୍ରା. ବି. ସ୍ତ୍ରୀମାନେ ଗୋଡ଼ର
ମଝିଆଙ୍ଗୁଠିରେ ପିନ୍ଧିବା ମୁଦ୍ରିକାଯୁକ୍ତ
ଝଣ ଝଣ-ଶବ୍ଦକାରୀ ଅଳଂକାରବିଶେଷ,
(ପ୍ରା. ସମ୍ବ. ବି.) ଗୋଡ଼ର ବୁଢ଼ାଆଙ୍ଗୁଠିରେ
ପିନ୍ଧାଯିବା ମୁଦି ।
ଝୁଣ୍ଟିବା—ଗ୍ରା. କି. ଗୁଳୁ ଗୁଳୁ ଗୋଡ଼ର
ଅଙ୍ଗୁଳି କୌଣସି କଠିନ ପଦାର୍ଥରେ

ଆଘାତ ପାଇବା, ପ୍ରତିବନ୍ଧକରେ ପାଦାଗ୍ର ବାଜିବାଯୋଗୁଁ ଗତିରୁଦ୍ଧ ହେବା, ପ୍ରତିହତଗତି ହେବା, କୌଣସି କଥା କହୁ କହୁ ବା ପଢ଼ୁ ପଢ଼ୁ ଅଟକିଯିବା, (ଲ. ଅର୍ଥ) ନଜାଣି ଭ୍ରମରେ କାର୍ଯ୍ୟକରିବା, ଭ୍ରମଯୁକ୍ତ କାର୍ଯ୍ୟକରିବା, ଭ୍ରାନ୍ତିରେ ପଡ଼ିବା, ଭୁଲ୍‌କରିବା, ଅନାଦର କରିବା, ଖାତିର ନ କରିବା, (ପ୍ରା. ସମ୍ବ. କ୍ରି.) ଗୋବରପାଣି ପକାଇବା, ଛେରା ଦେବା ।

ଝୁଣ୍ଟେଇବା—ଗ୍ରା. କ୍ରି. ଗୋଡ଼ର ଆଙ୍ଗୁଠି କୌଣସି କଠିନ ପଦାର୍ଥରେ ଆଘାତ ପାଇବା ।

ଝୁନା—ପ୍ରା. (କଟ୍ଟ) ବି. ଝୁଣା, (ଗ୍ରା. ବି) କ୍ଷୁଦ୍ର ଚୂନାମାଛ ।

ଝୁପ୍—ଗ୍ରା. ଅବ୍ୟ. ଝପ୍ ଦେଖ ।

ଝୁପ୍‌ଝାପ୍—ଗ୍ରା. ଅବ୍ୟ. ଝପ୍ ଝପ୍ ଦେଖ ।

ଝୁପ୍‌ଝାପ୍—ଗ୍ରା. ଅବ୍ୟ. ଟିପ୍‌ଟିପ୍ ଦେଖ ।

ଝୁବା—ଗ୍ରା. ବି. କ୍ଷୁଦ୍ରକଳସୀ, କ୍ଷୁଦ୍ର-ମାଠିଆ ।

ଝୁମ୍‌କା—ଗ୍ରା. ବି. ଝୁମୁକା ଦେଖ ।

ଝୁମ୍‌ଝୁମ୍—ଗ୍ରା. ଅବ୍ୟ. ଅଳଂକାରାଦିର ମଧୁର କ୍ୱଣନ ବା ଝଣି ଝଣି ଧ୍ୱନି ।

ଝୁମ୍‌ଝୁମୁକା—ଗ୍ରା. ବି. ଝୁମୁଝୁମୁକା ଦେଖ ।

ଝୁମ୍‌ରା—ଗ୍ରା. ବି. ତନ୍ଦ୍ରା, ଢୁଳାଇବା, ଘୁମାଇବା ।

ଝୁମ୍‌ରା(ରେ)ଇବା—ଗ୍ରା. କ୍ରି. ଘୁମାଇବା, ଢୁଳାଇବା ।

ଝୁମରି—ପ୍ରା. (ସିଂହ) ବି. ରାଗିଣୀବିଶେଷ ।

ଝୁମା—ଗ୍ରା. ବି. (ସଂ-ମୂର୍ଚ୍ଛା) ମୂର୍ଚ୍ଛା, ଭ୍ରମ, ନିଶାଖେଳରେ ଟଳିବା, ନିଦଖେଳରେ ଟଳିବା ।

ଝୁମିବା—ଗ୍ରା. କ୍ରି. (ସଂ-ମୂର୍ଚ୍ଛା) ମୂର୍ଚ୍ଛା ବା ଭ୍ରମରେ ମୁଣ୍ଡବୁଲାଇବା, ଘୁମାଇବା, ଯୁଦ୍ଧକରିବା, ଢୁଳାଇବା ।

ଝୁମୁକା—ଗ୍ରା. ବି. (ସଂ ଧ୍ୱନି) ଶିଶୁମାନଙ୍କର ଖେଳନାବିଶେଷ, ଅନେକ [illegible] ହୁଗୁଳା ଲୁହାମୁଦିଆ ଲାଗିଥିବା [illegible] ମାନଙ୍କର ନୃତ୍ୟକାରିବଲା, ସୁନାରି କାପ, ଏକଜାତୀୟ ଲତା ଓ ତାହାର ଫୁଲ ।

ଝୁମୁକା—ଗ୍ରା. ବି. ନାଚିବା ସମୟରେ ଗୋଡ଼ରେ ବନ୍ଧାଯିବା ଘୁଙ୍ଗୁର ବା ଘାଗୁଡ଼ି ।

ଝୁମୁରିବା—ଗ୍ରା. କ୍ରି. ଝୁମୁରୁ ଝୁମୁରୁ ଶବ୍ଦଉତ୍ପାଦନ କରିବା, ଝୁମା ଦେଖ ।

ଝୁମ୍ପା—ଗ୍ରା. ବି. ଫିତା ବା ପାଟଫୁଲ ଅଗରେ ଲାଗିଥିବା ଫୁଲ, ଗୁଚ୍ଛ ବା ଆପା, ପେନ୍ଥା, ମୁଣ୍ଡର ଜୁଡ଼ାରେ ପିନ୍ଧାଯିବା ପାଟଫୁଲ ବା ଉଡ଼ାଅଗରେ ଲାଗିଥିବା ପେନ୍ଥା ବା ଗଚ୍ଛିତଯୁକ୍ତ, ଝୁଲୁଥିବା ଅଳଙ୍କାରର ଗୁଚ୍ଛଯୁକ୍ତ ଅଂଶବିଶେଷ ।

ଝୁମ୍ପାଲଗା—ଗ୍ରା. ବି. (ଅଳଙ୍କାରାଦି) ଯହିଁରେ ଝୁମ୍ପା ବା ପେନ୍ଥା ଲାଗିଥାଏ ।

ଝୁମ୍ପି—ଗ୍ରା. ବି. ସ୍ତ୍ରୀଲୋକଙ୍କ କର୍ଣ୍ଣାଳଙ୍କାର ବିଶେଷ, ଫିରଫିରା, କପାଳ ଉପରକୁ ଲମ୍ବିଥିବା ବାଳ, ଚୂର୍ଣ୍ଣକୁନ୍ତଳ, ଝୁମ୍ପା ଦେଖ ।

ଝୁମ୍ପୁଡ଼ି—ଗ୍ରା. ବି. ବନ୍ୟଗୁଳ୍ମବିଶେଷ, ଝାମ୍ପୁଡ଼ା ବା ବସ୍ତୁତାରା ଗୁଳ୍ମ, କ୍ଷୁଦ୍ରବୁଦା, ଋଷିମାନଙ୍କର ଆଶ୍ରୟ ନିମନ୍ତେ କରାଯିବା ପର୍ଣ୍ଣଶାଳା, କୁଡ଼ିଆ, କ୍ଷୁଦ୍ର ଘର ।

ଝୁମ୍ପୁଡ଼ିଘର—ଗ୍ରା. ବି. କ୍ଷୁଦ୍ର ଓ ନୀଚ ଘର, କୁଡ଼ିଆ ।

ଝୁମ୍ପୁଡ଼ିବଣ—ଗ୍ରା. ବି. ଯେଉଁ ବଣ ବୁଦିବୁଦିକିଆ ଗୁଳ୍ମରେ ପୂର୍ଣ୍ଣ ।

ଝୁମ୍ପୁଡ଼ିମୁଣ୍ଡା—ଗ୍ରା. ସ୍ତ୍ରୀ. ବିଂ. ଝାମ୍ପୁଡ଼ା ମୁଣ୍ଡାର ସ୍ତ୍ରୀଲିଙ୍ଗ ।

ଝୁରୁଝୁରୁ—ଗ୍ରା. ଅବ୍ୟ. କୌଣସି ଚୂନା ଶୁଖିଲା ପଦାର୍ଥ ଝଡ଼ିପଡ଼ିବାର ଅନୁଚ୍ଚ ଶବ୍ଦ, ଝୁଡ଼୍ ଝୁଡ଼୍, (ପ୍ରା. ସମ୍ବ. ବିଂ) ଅତିବୃଦ୍ଧ (ବ୍ୟକ୍ତି), ମୁମୂର୍ଷୁ ।

ଝୁରିବା—ପ୍ରା. (ସମ୍ବ) କ୍ରି. (ଅଗ୍ନିର ଉତ୍ତାପ) ଦେହକୁ କାଟିବା ।

ଝୁରମାଇବା—ପ୍ରା. (ସମ୍ବ) କ୍ରି. ଘୁମାଇବା ।

ଝୁରଲ—ପ୍ରା. (ସମ୍ବ) ବି. ପତଙ୍ଗବିଶେଷ, ଅସରପା ।

ଝୁରି—ଗ୍ରା. ବି. (ସଂ-ଧୂର) ଶଗଡ଼ ଯୁଆଳିର ମଧ୍ୟଭାଗ, (ଯେଉଁଠାରେ ଶଗଡ଼ ଦଣ୍ଡାର ଅଗ୍ରଭାଗ ଜୁଆଳି ସଙ୍ଗେ ସଂଯୋଜିତ ହୁଏ) ଚୂର୍ଣ୍ଣ, ଚୂନା, କୌଣସି ବସ୍ତୁର କ୍ଷୁଦ୍ର କ୍ଷୁଦ୍ର ଖଣ୍ଡ, ବିରହର ସନ୍ତାପ, ପ୍ରିୟ ବ୍ୟକ୍ତିର ବିଚ୍ଛେଦଜନିତ ଶୋକ, ଝୁରିବା, (ଗ୍ରା. ବିଂ) ଚୂର୍ଣ୍ଣିତ, କ୍ଷୁଦ୍ର କ୍ଷୁଦ୍ର, ସ୍ୱତନ୍ତ୍ର ଖଣ୍ଡବିଶିଷ୍ଟ, ଛୋଟ ଛୋଟ ।

ଝୁରି—ଗ୍ରା. ବି. ଛୋଟ ଛୋଟ ଜାଳକାଠ, (ଗ୍ରା. ବି) କ୍ଷୁଦ୍ର ଗଛ, ଚୂନା, ଚୂନାମାଛ, (ପ୍ରା. ଗଞ୍ଜା. ଗ୍ରା.—ଇତର) ବି. ଠାକୁରାଣୀଙ୍କ ଆଗରେ କୁକୁଡ଼ାଆଦି ବଳି ଦେବା ଉପଲକ୍ଷରେ ଠାକୁରାଣୀଙ୍କ ନାମରେ ତାଙ୍କ ଆଗେ ଟିକିଏ ମଦ ତଳେ ଢାଳିଦେବା ।

ଝୁରିବା—ଗ୍ରା. କ୍ରି. (ସଂ-ଝୁ ଧାତୁ) ପ୍ରିୟ ବ୍ୟକ୍ତିର ବିଚ୍ଛେଦରେ ଅଶ୍ରୁମୋଚନ କରିବା, ଅନୁପସ୍ଥିତ ପ୍ରିୟବ୍ୟକ୍ତି ବା ବସ୍ତୁ ବା ଜୀବର ଗୁଣ ସ୍ମରଣ କରି ଅହରହଃ ଶୋଚନା କରିବା, ପ୍ରତିବେଶୀ ବା ପ୍ରତିଦ୍ୱନ୍ଦୀର ମୁଖରେ ଈର୍ଷାନ୍ୱିତ ହୋଇ ଆପଣାର ଦୁର୍ଭାଗ୍ୟକୁ ନିନ୍ଦା କରିବା, ପରଶ୍ରୀକାତର ହେବା ।

ଝୁରୁଲ—ଗ୍ରା. ବି. ଅସରପା ପତଙ୍ଗବିଶେଷ ।

ଝୁଲ୍‌ପି—ପ୍ରା. (ସମ୍ବ) ବି. ଜୁଲ୍‌ପି ଦେଖ ।

ଝୁଲ୍‌ପିଆ—ଗ୍ରା. ପୁଂ. ବିଂ. ଯେଉଁ ବ୍ୟକ୍ତି ଜୁଲ୍‌ପି ବାଳ ରଖେ ।

ଝୁଲ୍‌ପୁଲ୍—ପ୍ରା. (ସମ୍ବ) କ୍ରି. ବଡ଼ିସକାଳ, ଉଷା, ବଡ଼ଭୋର ।

ଝୁଲ—ଗ୍ରା. ବି. ଘରର ଅଳନ୍ଧୁ, ଧୂଆଁମାର, ଅଳଂଧୂମ, ଅଗ୍ନିକଣା, ମୟୂରର ପୁଚ୍ଛ, ହାତୀ ଉପରର ଚିହ୍ନିତ ଆସ୍ତରଣ, ଯାହା ଝୁଲୁଥାଏ ବା ଝୁଲି ପଡ଼ିଥାଏ, ଲମ୍ବମାନ, ଭିତରେ ଗୋଡ଼ି ଥିବାରୁ ବାଜୁଥିବା ଏକପ୍ରକାର ଝୁଣ୍ଟିଆ, ପାଦ ମଝି ଆଙ୍ଗୁଠିର ଅଳଙ୍କାରବିଶେଷ ।

ଝୁଲଙ୍ଗୋ—ପ୍ରା. (ସମ୍ବ) ବିଂ. ଶ୍ଳଥ, ହୁଗୁଳା ।

ଝୁଲଣ—ଗ୍ରା. ବି. (ସଂ-ଦୋଳନ) ଦୋଳନ

ଦୋଳଖେଳିବା, ଶ୍ରାବଣ ଶୁକ୍ଳ ଦଶମୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ରାଧାକୃଷ୍ଣ ଯୁଗଳ ମୂର୍ତ୍ତିଙ୍କର ଦୋଳରେ ଝୁଲିବା ଉତ୍ସବ ।

**ଝୁଲଣା**—ଗ୍ରା.ବି.(ସଂ-ଦୋଳନ)ଝୁମ୍ପା, ଝୁଲି, ଦୋଳି ।

ଝୁଲି—ଗ୍ରା.ବି. (ସଂ-ଦୁଲଧାତୁ)ଝୁଲିବା, ଦେହର ଇତସ୍ତତଃ ଚାଳନ, ଦଣ୍ଡି, ନାସିକାର ଅଳଂକାରବିଶେଷ,ଦୋଳା, ଦୋଳି, ସଙ୍ଗୀତର ଏକପ୍ରକାର ସହଜ ତାଳ, ହାଣ୍ଡୋଲା, ଯାନବିଶେଷ, ଝୋଲ ଦେଖ,ନତାନ୍ତ ପତଳା ବସ୍ତ୍ରାଦି, ଝୁଲିପୋଲ, ଯେଉଁ ପୋଲ ଉପରେ-ଥିବା ଦଉଡ଼ିକୁ ହାତରେ ଧରି ତହିଁରେ ଝୁଲିଲାପରି ହୋଇ ମନୁଷ୍ୟମାନେ ପାର ହୁଅନ୍ତି, ( ହରିଦ୍ୱାରର ଉତ୍ତରରେ ଲକ୍ଷ୍ମଣ ଝୁଲା) ।

ଝୁଲି(ଲେ)ଇବା—ଗ୍ରା. କ୍ରି. ଝୁଲିବାର ଣିଜନ୍ତ ରୂପ ।

ଝୁଲିଝୁଲି—ଗ୍ରା.ବି.ପରସ୍ପରକୁ ଝୁଲାଇବା

ଝୁଲି—ଗ୍ରା. ବି. ବୈଷ୍ଣବମାନଙ୍କର ମାଳ ଜପିବାର ମୁଣି, କୋଥଳି, ମୁଣା,(ଗ୍ରା. ସମ୍ବ. ବି.) ଡବଲ ଅଣ୍ଟିଆ, ଦୁଇଧାଡ଼ି ହାଣ୍ଡି ବସିବା ଅଣ୍ଟିଆ ବା ଲମ୍ବ ଚୁଲି ।

ଝୁଲିବା—ଗ୍ରା.କ୍ରି.(ସଂ-ଦୁଲଧାତୁ)ତଳକୁ ଲମ୍ବି ଦୋହୋଲିବା, ଲଟକିବା,ଓହଳି ପଡ଼ିବା,ଫାସିଦେଇବା, ଟଳିବା, ଇତସ୍ତତଃ ଦୋଳାୟମାନ ହେବା ।

ଝୁଲ୍ଲି—ଗ୍ରା. (ସମ୍ବ)ବି. (ସଂ-ଚୁଲ୍ଲି)ଅଣ୍ଟିଆ, ଦୁଇରୁ ବେଶି ହାଣ୍ଡି ବସିବା ଚୁଲି ।

ଝୁ(ଣ)ଟି—ଗ୍ରା.ବି. ଏକଜାତୀୟ ଗୁବାକ, ଅମଙ୍ଗଳ ସୂଚକ ଶବ୍ଦ, ଅଶୁଭ ଶକୁନ, ଝାଡ଼ଜଙ୍ଗଲ, ବୁଦାଳିଆ ବଣ ।

ଝୃ (ଧାତୁ)—ଜୀର୍ଣ୍ଣହେବା,ପୁରୁଣା ହୋଇ ଯିବା ।

ଝେଙ୍ଗୁଣାକିଗୁଣାଡ଼ଣା—ଗ୍ରା.ଅବ୍ୟ. ଝାଞ୍ଜିର ଉତ୍କଟ ଶବ୍ଦବିଶେଷ ।

ଝୋଟ—ଗ୍ରା. ବି. (ସଂ-ଜୂଟ)ନଳିତା ବା କାଉଁରିଆ ନାମକ ଗୁଳ୍ମର ଗୁଳ୍ମ ବା ବକଳରୁ ଉତ୍ପନ୍ନ ଶୁକ୍ଳ ଓ ଦୀର୍ଘ ତନ୍ତୁ-ବିଶେଷ, ପଟ, ବଳଦ ବା ବୃଷର ଚୂଳ, କାଛିମୂଳ ।

ଝୋଟିଦେବା—ଗ୍ରା. କ୍ରି. ଘର କାନ୍ଥରେ ପିଠଉ ଦ୍ୱାରା ଚିତ୍ର କରିବା, ସ୍ତ୍ରୀଲୋକ-ମାନେ ଘରରେ କୃତ୍ରିବର୍ଣ୍ଣ ସ୍ଥାୟୀ ଚିତ୍ର କରିବା ।

ଝୋଣ୍ଡ—ବି. ଗୁଆଗଛ ।

ଝୋପ—ଗ୍ରା.ବି. (ସଂ-କ୍ଷୁପ)ବୁଦା, କ୍ଷୁଦ୍ର ଗଛ, ବହୁଶାଖାଯୁକ୍ତ ବୃକ୍ଷ ।

ଝୋପଡ଼ି—ଗ୍ରା. ବି°. (ସଂ-କ୍ଷୁପ) ବୁଦ-ବୁଦିଆ, କ୍ଷୁପବହୁଳ(ବଣ),କ୍ଷୁଦ୍ର ଘର, କୁଡ଼ିଆ ।

ଝୋବା—ଗ୍ରା. ବି. ଗ୍ରେଟ ମାଠିଆ ।

ଝୋରିଆ—ଗ୍ରା.ବି. ମାନ୍ଦ୍ରାଜପ୍ରଦେଶବାସୀ ମିଶ୍ର ବୃଦ୍ଧ ଜାତିବିଶେଷ, ଝୋରିଆ ଜାତିର ଭାଷା ।

ଝୋଳ—ଗ୍ରା.ବି.(ସଂ-ଜଳ) ଅଣ, ରନ୍ଧା-ମାଛ ଡାଲି ତିଅଣଆଦିରେ ଥିବା ଜଳୀୟ ଅଂଶ, ତିଅଣର ପାଣି ।

ଝୋଲ—ଗ୍ରା.ବି.ଝୁଲି ଦେଖ, ନିଆଁଝୁଲି ଅଗ୍ନିକଣା ।

ଝୋଲଝୋଲ—ଗ୍ରା. ବି°. ପାଣିପାଣିଆଁ, (ବ୍ୟଞ୍ଜନ), ଯେଉଁ ତିଅଣରେ ଜଳୀୟ ଅଂଶ ଅଧିକ ଥାଏ ।

ଝୋଲି—ଗ୍ରା. ବି. (ସଂ-ଦୁଲଧାତୁ)ଏକ-ପ୍ରକାର ଯାନ, ଝୁଲି, ହାଣ୍ଡୋଲା, ବଡ଼ଅଳିଆ, ପତଳା ଗୁଦଡ଼ି, ଲୁଗାର ମୁଣି ବା ଥଳି, ଝୁଲି, ଜପାମାଳ ରଖି-ବାର ମୁଣି, ଭିକ୍ଷୁକର ମୁଣି ।

ଝୋଲିମରି—ଗ୍ରା.ବି. ଅଚେତନ ଅବସ୍ଥା, ମୂର୍ଚ୍ଛା, ମଥାଭ୍ରମ, (ବି°) ମୂର୍ଚ୍ଛାପ୍ରାପ୍ତ, ଅଚେତନ ।

ଝୋଲିମାରିବା—ଗ୍ରା.ବି.ଅଚେତନହେବା, ମଥାଭ୍ରମ ଜାତହେବା, ଦୁର୍ବଳତା, ମୂର୍ଚ୍ଛିତ ହେବା ।

ଝୋଲି—ଗ୍ରା. ବି. (ସଂ-ଦୁଲଧାତୁ)ଗ୍ରେଟ ମୁଣା,ମୁଣି, ଗ୍ରୋଟ ଝୋଲି, ଝୁଲିମୁଣି ।

ଝୋଳିଆ—ଗ୍ରା. ବି°. ଯେଉଁ ତିଅଣରେ ବେଶି ପରିମାଣରେ ଝୋଳଥାଏ, (ଗ୍ରା. ବି) ଉପଯୁକ୍ତ ଖାଦ୍ୟ ।

ଝ୍ୟୁ—(ଧାତୁ) ଯିବା, ଗତିକରିବା ।

# ଞ

ଞ—ବ୍ୟଞ୍ଜନ ବର୍ଣ୍ଣମାଳାର ଦଶମାକ୍ଷର ଓ ଚବର୍ଗର ପଞ୍ଚମବର୍ଣ୍ଣ, ଏହା ଗୋଟିଏ ଅନୁନାସିକ ବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ତାଳୁ ଓ ଅନୁନାସିକ ।

ଞ—ପୁଂ. ବି. ଷଣ୍ଢ, ବଳୀବର୍ଦ୍ଦ, ବଳଦ, ଗାନ, ଗାୟକ, ଘର୍ଘରଧ୍ୱନି, ଯୋଗୀ, ଶବ୍ଦ, ଶୁକ୍ରାଚାର୍ଯ୍ୟ, କ୍ରୂରଜନ, ସ୍ୱଧର୍ମ-ଭ୍ରଷ୍ଟ ବ୍ୟକ୍ତି, (ବି°) କ୍ରୂର, ସ୍ୱଧର୍ମଭ୍ରଷ୍ଟ ।

ଞକାର—ପୁଂ. ବି. ଞ ସ୍ୱରୂପ ବର୍ଣ୍ଣ ।

ଞ—ପୁଂ. ବି. ପ୍ରତ୍ୟୟବିଶେଷ ।

# ଟ

ଟ—ବ୍ୟଞ୍ଜନ ବର୍ଣ୍ଣର ଏକାଦଶାକ୍ଷର, ଟ ବର୍ଗର ପ୍ରଥମାକ୍ଷର, କୁବେର, ଯମ, ଓ ବାୟୁର ନିତ୍ୟସ୍ଥାନ—ଏହାର ଉଚ୍ଚାରଣ ସ୍ଥାନ ମୂର୍ଦ୍ଧା ।

ଟ—କ୍ଲୀ. ବି. ( ଟକ୍+ଅ ) କରଙ୍କ, ଗୋଲ ଡବା, ନାରକେଲ ମାଳା,(ପୁଂ.) ଶିବ, ବାମନ, ପାଦ, ଚତୁର୍ଥାଂଶ,ଶବ୍ଦ-ବିଶେଷ,ମୁଣ୍ଡର ଖପୁରି, ନଡ଼ିଆସଢ଼େଇ, ବି°.ଜଗତ୍ ବିଖ୍ୟାତ, ତ୍ରିଭୁବନ ବିଖ୍ୟାତ

ଟଉ—ଗ୍ରା.ବି.ଦସ୍ତାଧାତୁ,ରଙ୍ଗମିଶ୍ରିତ ଧାତୁ ।

ଟଂ—ଗ୍ରା.ଅବ୍ୟ.(ଧ୍ୱନ୍ୟନୁକରଣ) ଟଙ୍କାର ଶବ୍ଦ, ଘଣ୍ଟାଆଦି ବାଜିବାର ବିଶିଷ୍ଟ ଶବ୍ଦ, ଧନୁର୍ଗୁଣ ଟାଣି ଛାଡ଼ିବାର ଶବ୍ଦ ।

ଟଂଟଂ—ଗ୍ରା. ଅବ୍ୟ. ଏକାଧିକ ଥର ଟଂ ଶବ୍ଦ, ଟଂ ଦେଖ ।

ଟଁଟଁ—ଗ୍ରା. କ୍ରି. ପୂର୍ଣ୍ଣ ମାତ୍ରାରେ ସମ୍ପୂର୍ଣ୍ଣ-ରୂପେ, ଟଁ ଟଁ ହେ କହେ, ବି°. ପୂର୍ଣ୍ଣ

ଦୋଳଖେଳିବା, ଶ୍ରାବଣ ଶୁକ୍ଳ ଦଶମୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ରାଧାକୃଷ୍ଣ ଯୁଗଳ ମୂର୍ତ୍ତିଙ୍କର ଦୋଳରେ ଝୁଲିବା ଉତ୍ସବ।

**ଝୁଲଣା**—ଗ୍ରା.ବି.(ସଂ-ଦୋଳନ)ଝୁମ୍ପା, ଫୁଲି, ଦୋଳି।

ଝୁଲି—ଗ୍ରା.ବି. (ସଂ-ଦୁଲଧାତୁ)ଝୁଲିବା, ଦେହର ଇତସ୍ତତଃ ଗୁଳନ, ଦଣ୍ଡି, ନାସିକାର ଅଳଂକାରବିଶେଷ,ଦୋଳା, ଦୋଳି, ସଙ୍ଗୀତର ଏକପ୍ରକାର ସହଜ ତାଳ, ହାଣ୍ଡୋଳା, ଯାନବିଶେଷ, ଝୋଲ ଦେଖ,ନଦୀର ଉପରେ ପତଳା ବନ୍ଧାହୋଇ ଝୁଲୁଥିବା ପୋଲ, ଯେଉଁ ପୋଲ ଉପରେ ଥିବା ଦଉଡ଼ିକୁ ହାତରେ ଧରି ଉପରେ ଝୁଲିଲାପରି ହୋଇ ମନୁଷ୍ୟମାନେ ପାର ହୁଅନ୍ତି, ( ହରିଦ୍ୱାରର ଉତ୍ତରରେ ଲକ୍ଷ୍ମଣ ଝୁଲା)।

ଝୁଲି(ଲେ)ଇବା—ଗ୍ରା. କ୍ରି. ଝୁଲିବାର ଣିଜନ୍ତ ରୂପ।

ଝୁଲିଝୁଲି—ଗ୍ରା.ବି.ପରସ୍ପରକୁ ଝୁଲାଇବା

ଝୁଲି—ଗ୍ରା. ବି. ବୈଷ୍ଣବମାନଙ୍କର ମାଳ ଜପିବାର ମୁଣି, କୋଥଳି, ମୁଣା,(ଗ୍ରା. ସମ୍ବ. ବି.) ଉବାଲ ଅହୁଆ, ଦୁଇଧାଡ଼ି ହାଣ୍ଡି ବସିବା ଅହୁଆ ବା ଲମ୍ବ ଚୁଲ୍ଲି।

ଝୁଲିବା—ଗ୍ରା.କ୍ରି.(ସଂ-ଦୁଲଧାତୁ)ତଳକୁ ଲମ୍ବି ଦୋହୋଲିବା, ଲଟକିବା,ଓହଳି ପଡ଼ିବା,ଫାସିଦେଇବା, ଟଳିବା, ଇତସ୍ତତଃ ଦୋଳାୟମାନ ହେବା।

ଝୁଲ୍ଲୁ—ଗ୍ରା. (ସମ୍ବ)ବି. (ସଂ-ଚୁଲ୍ଲି)ଅହୁଆ, ଦୁଇରୁ ବେଶି ହାଣ୍ଡି ବସିବା ଚୁଲି।

ଝୁ(ଣ)ଲି—ଗ୍ରା.ବି. ଏକଜାତୀୟ ଗୁବାକ, ଅମଙ୍ଗଳ ସୂଚକ ଶୂନ୍ୟଶବ୍ଦ, ଅଶୁଭ ଶକୁନ, ଝାଡ଼ଜଙ୍ଗଲ, ବୁଦାକିଆ ବଣ।

ଝୁ(ଧାତୁ)—ଜୀର୍ଣ୍ଣହେବା,ପୁରୁଣା ହୋଇ ଯିବା।

ଝେଁଗୁଣାଝିଗୁଣାଝେଣା—ଗ୍ରା.ଅବ୍ୟ. ଝିଞ୍ଜିର ଉଚ୍ଚାରବିଶେଷ।

ଗ୍ଲେଟ—ଗ୍ରା. ବି. (ସଂ-ଜୂଟ)ନଳିତା ବା କାଉଁରିଆ ନାମକ ଗୁଳ୍ମର ଗୁଳ ବା ବକଳରୁ ଉତ୍ପନ୍ନ ଶୁକ୍ଳ ଓ ଦୀର୍ଘ ତନ୍ତୁବିଶେଷ, ପଟ, ବଳଦ ବା ବୃଷର ଚୂଳ, କାନ୍ଧମୂଳ।

ଝୋଳିଦେବା—ଗ୍ରା. କ୍ରି. ଘର କାନ୍ଥରେ ପିଠଉ ଦ୍ୱାରା ଚିତ୍ର କରିବା, ସ୍ତ୍ରୀଲୋକମାନେ କୋଠରରେ କୃତ୍ରିବର୍ଣ୍ଣ ସ୍ୱାସ୍ତି ଚିତ୍ର କରିବା।

ଝୋଣ୍ଡ୍ରା—ବି. ଗୁଆଗଛ।

ଝୋପ—ଗ୍ରା.ବି. (ସଂ-କ୍ଷୁପ)ବୁଦା, କ୍ଷୁଦ୍ର ଗଛ, ବହୁଶାଖାଯୁକ୍ତ ବୃକ୍ଷ।

ଝୋପଡ଼ି—ଗ୍ରା. ବିଂ. (ସଂ-କ୍ଷୁପ) ବୁଦାବୁଦିକିଆ, କ୍ଷୁପବହୁଳ(ବଣ),କ୍ଷୁଦ୍ର ଘର, କୁଡ଼ିଆ।

ଝୋବା—ଗ୍ରା. ବି. ଗ୍ଲୋଟ ମାଠିଆ।

ଝୋରିଆ—ଗ୍ରା.ବି. ମାନ୍ଦ୍ରାଜପ୍ରଦେଶବାସୀ ମିଶ୍ର ଶୂଦ୍ର ଜାତିବିଶେଷ, ଝୋରିଆ ଜାତିର ଭାଷା।

ଝୋଲ—ଗ୍ରା.ବି.(ସଂ-ଜଳ) ଅଣ, ରନ୍ଧାମାଛ ଡାଲି ତିଅଣଆଦିରେ ଥିବା ଜଳୀୟ ଅଂଶ, ତିଅଣର ପାଣି।

ଝୋଲି—ଗ୍ରା.ବି.ଝୁଲି ଦେଖ, ନଥାଁ ଝୁଲି ଅଗ୍ନିକଣା।

ଝୋଲଝୋଲ—ଗ୍ରା. ବିଂ. ପାଣିପାଣିଆଁ, (ବ୍ୟଞ୍ଜନ), ଯେଉଁ ତିଅଣରେ ଜଳୀୟ ଅଂଶ ଅଧିକ ଥାଏ।

ଝୋଲି—ଗ୍ରା. ବି. (ସଂ-ଦୁଲଧାତୁ)ଏକପ୍ରକାର ଯାନ, ଝୁଲି, ହାଣ୍ଡୋଳା, ବଡ଼ଥଳିଆ, ପତଳା ଗୁଦର, ଲୁଗାର ମୁଣି ବା ଥଳି, ଝୁଲି, ଜପାମାଳ ରହିବାର ମୁଣି, ଭିକ୍ଷୁକର ମୁଣି।

ଝୋଲିମରା—ଗ୍ରା.ବି. ଅଚେତନ ଅବସ୍ଥା, ମୂର୍ଚ୍ଛା, ମଥାଭ୍ରମ, (ବିଂ) ମୂର୍ଚ୍ଛାପ୍ରାପ୍ତ, ଅଚେତନ।

ଝୋଲିମାରିବା—ଗ୍ରା.ବି.ଅଚେତନହେବା, ମଥାଭ୍ରମ ଜାତହେବା, ଦୁର୍ବଳତା, ମୂର୍ଚ୍ଛିତ ହେବା।

ଝୋଲି—ଗ୍ରା. ବି. (ସଂ-ଦୁଲଧାତୁ)ଗ୍ଲୋଟ ମୁଣା,ମୁଣି, ଗ୍ଲୋଟ ଝୋଲି, ଝୁଲିମୁଣି।

ଝୋଲିଆ—ଗ୍ରା. ବିଂ. ଯେଉଁ ତିଅଣରେ ବେଶି ପରିମାଣରେ ଝୋଲଥାଏ, (ଗ୍ରା. ବି) ଉପଯୁକ୍ତ ଖାଦ୍ୟ।

ଝ୍ୟୁ—(ଧାତୁ) ଯିବା, ଗତିକରିବା।

# ଞ

ଞ—ବ୍ୟଞ୍ଜନ ବର୍ଣ୍ଣମାଳାର ଦଶମାକ୍ଷର ଓ ଚବର୍ଗର ପଞ୍ଚମବର୍ଣ୍ଣ, ଏହା ଗୋଟିଏ ଅନୁନାସିକ ବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ତାଳୁ ଓ ଅନୁନାସିକ।

ଞ—ପୁଂ. ବି. ଷଣ୍ଢ, ବଳୀବର୍ଦ୍ଦ, ବଳଦ, ଗାନ, ଗାୟକ, ଘର୍ଘରଧ୍ୱନି, ଯୋଗୀ, ଶବ୍ଦ, ଶୁକ୍ରାଗ୍ରଯ୍ୟ, କ୍ରୂରଜନ, ସ୍ୱଧର୍ମଭ୍ରଷ୍ଟ ବ୍ୟକ୍ତି, (ବିଂ) କ୍ରୂର, ସ୍ୱଧର୍ମଭ୍ରଷ୍ଟ।

ଞକାର—ପୁଂ. ବି. ଞ ସ୍ୱରୂପ ବର୍ଣ୍ଣ।

ଞ—ପୁଂ. ବି. ଦ୍ରବ୍ୟବିଶେଷ।

# ଟ

ଟ—ବ୍ୟଞ୍ଜନ ବର୍ଣ୍ଣର ଏକାଦଶାକ୍ଷର, ଟ ବର୍ଗର ପ୍ରଥମାକ୍ଷର, କୁବେର, ଯମ, ଓ ବାସୁକିର ନାଭ୍ୟସ୍ଥାନ—ଏହାର ଉଚ୍ଚାରଣ ସ୍ଥାନ ମୂର୍ଦ୍ଧା।

ଟ—କ୍ଲୀ. ବି. ( ଟକ୍+ଅ ) କରଙ୍କ, ଗୋଲ ଡବା, ନାରକେଳ ମାଳା,(ପୁଂ.) ଶିବ, ବାମନ, ପାଦ, ଚତୁର୍ଥାଂଶ,ଶବ୍ଦବିଶେଷ,ମୁଣ୍ଡର ଖପୁରି, ନଡ଼ିଆସଢ଼େଇ, ବିଂ.ଜଗତ୍ ବିଖ୍ୟାତ, ତ୍ରିଭୁବନ ବିଖ୍ୟାତ

ଟଉ—ଗ୍ରା.ବି.ଦସ୍ତାଧାତୁ,ରଙ୍ଗମିଶ୍ରିତ ଧାତୁ।

ଟଂ—ଗ୍ରା.ଅବ୍ୟ.(ଧ୍ୱନ୍ୟନୁକରଣ) ଟଙ୍କାର ଶବ୍ଦ, ଘଣ୍ଟଆଦି ବାଜିବାର ବିଶିଷ୍ଟ ଶବ୍ଦ, ଧନୁର୍ଗୁଣ ଟାଣି ଗୁଡ଼ିବାର ଶବ୍ଦ।

ଟଂଟଂ—ଗ୍ରା. ଅବ୍ୟ. ଏକାଧିକ ଥର ଟଂ ଶବ୍ଦ, ଟଂ ଦେଖ।

ଟଁଟଁ—ଗ୍ରା. କ୍ରି. ପୂର୍ଣ୍ଣ ମାତ୍ରାରେ ସମ୍ପୂର୍ଣ୍ଣରୂପେ, ଟଁ ଟଁ ହେ କରେ, ବିଂ. ପୂର୍ଣ୍ଣ

ଦୋଳଖେଳବା, ଶ୍ରାବଣ ଶୁକ୍ଳ ଦଶମୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ରାଧାକୃଷ୍ଣ ଯୁଗଳ ମୂର୍ତ୍ତିଙ୍କର ଦୋଳରେ ଝୁଲିବା ଉତ୍ସବ।

**ଝୁଲଣା**—ଗ୍ରା.ବି.(ସଂ-ଦୋଳନ)ଝୁମ୍ପା, ଫୁଲି, ଦୋଳ।

**ଝୁଲି**—ଗ୍ରା.ବି. (ସଂ-ଦୁଲଧାତୁ)ଝୁଲିବା, ଦେହର ଇତସ୍ତତଃ ଚାଳନ, ଦଣ୍ଡି, ନାସିକାର ଅଳଂକାରବିଶେଷ,ଦୋଳା, ଦୋଳି, ସଙ୍ଗୀତର ଏକପ୍ରକାର ସହଜ ତାଳ, ହାଣ୍ଡୋଳା, ଯାନବିଶେଷ, ଝୋଲ ଦେଖ,ନତାନ୍ତ ପତଳା ବସ୍ତ୍ରାଦି, ଝୁଲିପୋଲ, ଯେଉଁ ପୋଲ ଉପରେ-ଥିବା ଦଉଡ଼ିକୁ ହାତରେ ଧରି ତଳେରେ ଝୁଲିଲାପରି ହୋଇ ମନୁଷ୍ୟମାନେ ପାର ହୁଅନ୍ତି, ( ହରଦ୍ୱାରର ଉତ୍ତରରେ ଲକ୍ଷ୍ମଣ ଝୁଲି) ।

**ଝୁଲି(ଲେ)ଇବା**—ଗ୍ରା. କ୍ରି. ଝୁଲିବାର ଣିଜନ୍ତ ରୂପ ।

**ଝୁଲିଝୁଲି**—ଗ୍ରା.ବି.ପରସ୍ପରକୁ ଝୁଲାଇବା

**ଝୁଲି**—ଗ୍ରା. ବି. ବୈଷ୍ଣବମାନଙ୍କର ମାଳ ଜପିବାର ମୁଣି, କୋଥଳି, ମୁଣା,(ଟା. ସମ୍ବ. ବି.) ଉଦଳ ଅହୁଆ, ଦୁଇଧାଡ଼ି ହାଣ୍ଡି ବସିବା ଅହୁଆ ବା ଲମ୍ବ ଚୁଲି।

**ଝୁଲିବା**—ଗ୍ରା.କ୍ରି.(ସଂ-ଦୁଲଧାତୁ)ତଳକୁ ଲମ୍ବି ଦୋହୋଲିବା, ଲଟକିବା,ଓହଳି ପଡ଼ିବା,ଫାସିଦେଇବା, ଟଳିବା, ଇତସ୍ତତଃ ଦୋଲାୟମାନ ହେବା ।

**ଝୁଲୁ**—ପ୍ରା. (ସମ୍ବ)ବି. (ସଂ-ଚୁଲ୍ଲି)ଅହୁଆ, ଦୁଇରୁ ବେଶି ହାଣ୍ଡି ବସିବା ଚୁଲି ।

**ଝୁ(ଣ)ଲି**—ଗ୍ରା.ବି. ଏକଜ ଖାସ୍ତ ଗୁବାକ, ଅମଙ୍ଗଳ ସୂଚକ ଶବ୍ଦ୍ୟଶବ୍ଦ, ଅଶୁଭ ଶକୁନ, ଝାଙ୍କୁଜଙ୍ଗଲ, ବୁଦାଳିଆ ବଣ।

**ଝୃ (ଧାତୁ)**—ଜୀର୍ଣ୍ଣହେବା,ପୁରୁଣା ହୋଇ ଯିବା ।

**ଝେଁଶୁଣାହିଗୁଣାଝଣା**—ଗ୍ରା.ଅବ୍ୟ. ଝଞ୍ଜାଟ ଉକ୍ତିବିଶେଷ ।

**ଝେଣ୍ଟ**—ଗ୍ରା. ବି. (ସଂ-ଜୂଟ)ନଳିତା ବା କାଉଁରିଆ ନାମକ ଗୁଳ୍ମର ଗୁଳି ବା ବକଳରୁ ଉତ୍ପନ୍ନ ଶୁକ୍ଳ ଓ ଦୀର୍ଘ ତନ୍ତୁବିଶେଷ, ପଟ, ବଳଦ ବା ବୃଷର ଚୂଳ, କାଛିମୂଳ ।

**ଝୋଁକିଦେବା**—ଗ୍ରା. କ୍ରି. ଘର କାନ୍ଥରେ ପିଠଉ ଦ୍ୱାରା ଚିତ୍ର କରିବା, ସ୍ତ୍ରୀଲୋକମାନେ ଘରରେ କୁଟୁବର୍ଣ୍ଣ ସ୍ଥାୟୀ ଚିତ୍ର କରିବା ।

**ଝୋଁଣ୍ଡ**—ବି. ଗୁଆଗଛ ।

**ଝୋପ**—ଗ୍ରା.ବି. (ସଂ-କ୍ଷୁପ)ବୁଦା, କ୍ଷୁଦ୍ର ଗଛ, ବହୁଶାଖାଯୁକ୍ତ ବୃକ୍ଷ ।

**ଝୋପଡ଼ି**—ଗ୍ରା. ବିଂ. (ସଂ-କ୍ଷୁପ) ବୁଦାବୁଦିଳିଆ, କ୍ଷୁପବହୁଳ(ବଣ),କ୍ଷୁଦ୍ର ଘର, କୁଡ଼ିଆ ।

**ଝୋବା**—ଗ୍ରା. ବି. ଶ୍ଳେଟ ମାଟିଆ ।

**ଝୋଡିଆ**—ଗ୍ରା.ବି. ମାନ୍ଦ୍ରାଜପ୍ରଦେଶବାସୀ ମିଶ୍ର ଦ୍ରବିଡ଼ଜାତିବିଶେଷ, ଝୋଡିଆ ଜାତିର ଭାଷା ।

**ଝୋଳ**—ଗ୍ରା.ବି.(ସଂ-ଜଳ) ଅଣ, ରନ୍ଧାମାଛ ଡାଲି ତିଅଣଆଦିରେ ଥିବା ଜଳୀୟ ଅଂଶ, ତିଅଣର ପାଣି ।

**ଝୋଲ**—ଗ୍ରା.ବି.ଝୁଲି ଦେଖ, ନଆଁଝୁଲି ଅଗ୍ନିକଣା ।

**ଝୋଳଝୋଳ**—ଗ୍ରା. ବିଂ. ପାଣିପାଣିଆଁ, (ବ୍ୟଞ୍ଜନ), ଯେଉଁ ତିଅଣରେ ଜଳୀୟ ଅଂଶ ଅଧିକ ଥାଏ ।

**ଝୋଲି**—ଗ୍ରା. ବି. (ସଂ-ଦୁଲଧାତୁ)ଏକପ୍ରକାର ଯାନ, ଝୁଲି, ହାଣ୍ଡୋଳା, ବଡ଼ଅଳିଆ, ପତଳା ଚାଦର, ଲୁଗାର ମୁଣି ବା ଅଳି, ଝୁଲି, ଜପାମାଳ ରଖିବାର ମୁଣି, ଭିକ୍ଷୁକର ମୁଣି ।

**ଝୋଲିମରି**—ଗ୍ରା.ବି. ଅଚେତନ ଅବସ୍ଥା, ମୂର୍ଚ୍ଛା, ମଥାଭ୍ରମ, (ବିଂ) ମୂର୍ଚ୍ଛାପ୍ରାପ୍ତ, ଅଚେତନ ।

**ଝୋଲିମାରିବା**—ଗ୍ରା.ବି.ଅଚେତନହେବା, ମଥାଭ୍ରମ ଜାତହେବା, ଦୁର୍ବଳତା, ମୂର୍ଚ୍ଛିତ ହେବା ।

**ଝୋଲି**—ଗ୍ରା. ବି. (ସଂ-ଦୁଲଧାତୁ)ଗ୍ରେଟ ମୁଣା,ମୁଣି, ଗ୍ଲୋଟ ଝୋଲି, ଝୁଲିମୁଣି ।

**ଝୋଳିଆ**—ଗ୍ରା. ବିଂ. ଯେଉଁ ତିଅଣରେ ବେଶି ପରିମାଣରେ ଝୋଳଥାଏ, (ଗ୍ରା. ବି) ଉପଯୁକ୍ତ ଖାଦ୍ୟ ।

**ଝ୍ୟୁ**—(ଧାତୁ) ଯିବା, ଗତିକରିବା ।

# ଞ

**ଞ**—ବ୍ୟଞ୍ଜନ ବର୍ଣ୍ଣମାଳାର ଦଶମାକ୍ଷର ଓ ଚବର୍ଗର ପଞ୍ଚମବର୍ଣ୍ଣ, ଏହା ଗୋଟିଏ ଅନୁନାସିକ ବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ତାଳୁ ଓ ଅନୁନାସିକ ।

**ଞ**—ପୁଂ. ବି. ଷଣ୍ଢ, ବଳୀବର୍ଦ୍ଦ, ବଳଦ, ଗାନ, ଗାୟକ, ଘର୍ଘରଧ୍ୱନି, ଯୋଗୀ, ଶବ୍ଦ, ଶୁକ୍ରାଗ୍ରହ୍ୟ, ଝଙ୍କାର, ସ୍ୱଧର୍ମଭ୍ରଷ୍ଟ ବ୍ୟକ୍ତି, (ବିଂ) କ୍ରୂର, ସ୍ୱଧର୍ମଭ୍ରଷ୍ଟ ।

**ଞକାର**—ପୁଂ. ବି. ଞ ସ୍ୱରୂପ ବର୍ଣ୍ଣ ।

**ଞ**—ପୁଂ. ବି. ପ୍ରତ୍ୟୟବିଶେଷ ।

# ଟ

**ଟ**—ବ୍ୟଞ୍ଜନ ବର୍ଣ୍ଣର ଏକାଦଶାକ୍ଷର, ଟ ବର୍ଗର ପ୍ରଥମାକ୍ଷର, କୁବେର, ଯମ, ଓ ବାୟୁର ନିତ୍ୟସ୍ଥାନ—ଏହାର ଉଚ୍ଚାରଣ ସ୍ଥାନ ମୂର୍ଦ୍ଧା ।

**ଟ**—କ୍ଲୀ. ବି. ( ଟକ୍+ଅ ) କରଙ୍କ, ଗୋଲ ଡବା, ନାରିକେଳ ମାଳା,(ପୁଂ.) ଶିବ, ବାମନ, ପାଦ, ଚତୁର୍ଥାଂଶ,ଶବ୍ଦବିଶେଷ,ମୁଣ୍ଡର ଖପୁରି, ନଡ଼ିଆସଢ଼େଇ, ବିଂ.ଜଗଦ୍ ବିଖ୍ୟାତ, ତ୍ରିଭୁବନ ବିଖ୍ୟାତ

**ଟଉ**—ଗ୍ରା.ବି.ଦସ୍ତାଧାତୁ,ରଙ୍ଗମିଶ୍ରିତ ଧାତୁ ।

**ଟଂ**—ଗ୍ରା.ଅବ୍ୟ.(ଧ୍ୱନ୍ୟନୁକରଣ) ଟଙ୍କାର ଶବ୍ଦ, ଘଣ୍ଟଆଦି ବାଜିବାର ବିଶିଷ୍ଟ ଶବ୍ଦ, ଧନୁର୍ଗୁଣ ଟାଣି ଛାଡ଼ିବାର ଶବ୍ଦ ।

**ଟଂଟଂ**—ଗ୍ରା. ଅବ୍ୟ. ଏକାଧିକ ଥର ଟଂ ଶବ୍ଦ, ଟଂ ଦେଖ ।

**ଟଁଟଁ**—ଗ୍ରା. କ୍ରି. ପୂର୍ଣ୍ଣ ମାତ୍ରାରେ ସମ୍ପୂର୍ଣ୍ଣରୂପେ, ଟଁ ଟଁ ହେଉ କଟେ, ବିଂ. ପୂର୍ଣ୍ଣ

ପର୍ଯ୍ୟାପ୍ତ, ଚରିତାର୍ଥ, କୃତାର୍ଥ, ସମ୍ପୂର୍ଣ୍ଣରୂପେ ସନ୍ତୁଷ୍ଟ ।

ଟକ୍‌କରି—ଗ୍ରା. କ୍ରି. (ଅ-ତ୍ୱର) ଏକାବେଳକେ, ଅତିଶୀଘ୍ର ।

ଟକ୍‌ଟକ୍—ଗ୍ରା. ଅବ୍ୟ. ଭାତ ଫୁଟିବାର ଶବ୍ଦ, ଧକ୍ ଧକ୍, ପୂଯପୂର୍ଣ୍ଣ ବଥ ଓ ଘାଆ ଆଦିର ବ୍ୟଥା, ଗ୍ରା. କ୍ରି. ବି॰. ଚଞ୍ଚଳ ଚଞ୍ଚଳ, ଉପର୍ଯ୍ୟୁପରି ।

ଟକ୍ ଟକ୍ ନାଲ—ଗ୍ରା. ବି॰. ରଙ୍ଗ ଚହଚହ, ନାଲି ଟୁକୁ ଟୁକୁ ।

ଟକ୍‌ଟକ୍ ସଡ଼୍ ସଡ଼୍—ଗ୍ରା. ଅବ୍ୟ. ପୂଯପୂର୍ଣ୍ଣ ବ୍ରଣ ବା ଘାଆ ଯୋଗୁଁ ଅନୁଭୂତ ତୀବ୍ର ବେଦନା ।

ଟକ୍ ଟକ୍ ହେବା—ଗ୍ରା. କ୍ରି. (ବ୍ରଣ ଓ କାଛୁ ଆଦି) ପାଚଯାଇ ଫାଟିବା ପୂର୍ବରୁ ବେଦନାଯୁକ୍ତ ହେବା, (ଘାଆ) ବ୍ୟଥାଯୁକ୍ତ ହେବା, କୌଣସି ଗୁପ୍ତକଥା ପ୍ରକାଶ କରିବା ନିମନ୍ତେ ଅଧୀର ବା ବ୍ୟଗ୍ର ହେବା, କୌଣସି ଲୋଭନୀୟ ବସ୍ତୁ ଖାଇବା ନିମନ୍ତେ ଅତ୍ୟନ୍ତ ଲାଳାୟିତ ହେବା, ଖାଇବା ପାଇଁ ଅତ୍ୟନ୍ତ ବ୍ୟଗ୍ର ବା ଚଞ୍ଚଳ ହେବା, ଘଡ଼ିଆଦି ଠକ୍ ଠକ୍ ହୋଇ ବାଜିବା ।

ଟକ—ଗ୍ରା. ବି. (ଅ-ତନ୍ତ) ଖଟା ପଦାର୍ଥ, କୌଣସି ବିଶେଷ ଖାଦ୍ୟ ଖାଇବା ନିମନ୍ତେ ଆଗ୍ରହାତିଶଯ୍ୟ ବା ଲାଳସା ।

ଟକଟକା—ଗ୍ରା. ବି॰. ପୁଂ. ଖାଇବା ପାଇଁ ବ୍ୟଗ୍ର, ଲାଳାୟିତ, ନାଳଟିଆ, ଲୋଭନୀୟ ଖାଦ୍ୟପ୍ରତି ଲାଳସାଯୁକ୍ତ, ଲୁରୁଲୁରିଆ, ତରତରିଆ ବାଚାଳ, ବାବଦୂକ, ପ୍ରଗଳ୍ଭ, ବାଗୁଲ ।

ଟକଟକିଆ—ଗ୍ରା. ବି॰. ପୁଂ. ଟକଟକା ଦେଖ; ଲୋଭନୀୟ, ପ୍ରଲୋଭନ; ଜନକ ଖାଦ୍ୟଦ୍ରବ୍ୟ ।

ଟକଟାକ୍—ଗ୍ରା.ଅବ୍ୟ. ଟକ୍‌ଟକ୍ ଦେଖ ।

ଟକତନ୍ତ୍ରୀ—ସ୍ତ୍ରୀ. ବି. ଆର୍ଯ୍ୟ ବାଦ୍ୟ ଯନ୍ତ୍ରବିଶେଷ ।

ଟକମକ—ଗ୍ରା.ଅବ୍ୟ.ଟକ୍‌ଟକ୍ ଦେଖ ) ।

ଟକର ଟକର—ଗ୍ରା.ଅବ୍ୟ.ଟକ୍‌ଟକ୍ ଦେଖ ।

ଟକରା(ଲା)—ଗ୍ରା. ବି॰. ପୁଂ. ଯେଉଁ ଲୋକ, ଖାଇବା ପାଇଁ ଅତ୍ୟନ୍ତ ଲାଳାୟିତ, ବା କୌଣସି ବିଶେଷ ଖାଦ୍ୟ ଦ୍ରବ୍ୟ ପ୍ରତି ଅତ୍ୟନ୍ତ ଲୋଭୀ ।

ଟକଲାଗିବା—ଗ୍ରା. ବି. ଅରେ ଦୃଷ୍ଟିର ପରେ କୌଣସି ବ୍ୟକ୍ତିର କୌଣସି ଖାଦ୍ୟପଦାର୍ଥ ପ୍ରତି ବଳବତୀ ଲାଳସା ଜାତହେବା ।

ଟକଲିଆ—ଗ୍ରା.ପୁଂ.ବି. ଟକଲା ଦେଖ ।

ଟକାଟକ୍—ଗ୍ରା.ବି. କୌଣସି ବିଷୟରେ ଦୁଇ ଜଣଙ୍କର ପ୍ରତିଯୋଗିତା, ପ୍ରତିଦ୍ୱନ୍ଦ୍ୱିତା,ସ୍ପର୍ଦ୍ଧା,କଦାକଦ୍, କଦମଗମର

ଟକାଟକି—ଗ୍ରା. ବି. ଟକାଟକ୍ ଦେଖ; ବି॰. ସ୍ପର୍ଦ୍ଧାନ୍ୱିତ, କଦାକଦ୍‌ହେବା (ବ୍ୟକ୍ତିଦ୍ୱୟ) ।

ଟକାର—ପୁଂ. ବି. ଟସ୍ୱରୂପାକ୍ଷର ।

ଟକ୍କ—ପୁଂ. ବି. ଦେଶବିଶେଷ ।

ଟକ୍କର—ପୁଂ. ବି. ଆଘାତକରଣ, ଦୁଇ ବସ୍ତୁର ପରସ୍ପର ଧକ୍କା ଲାଗିବା ଦ୍ୱାରା ଆଘାତ, ଟକାଟକ୍ ବା କଦାକଦ୍, ଠୋକର ।

ଟକ୍କରମାରିବା—ଗ୍ରା. କ୍ରି. ପ୍ରତିଯୋଗୀରୂପେ ପରୀକ୍ଷା କ୍ଷେତ୍ରରେ ଅବତୀର୍ଣ୍ଣ ହେବା, ବାଜି ମାରିବା, ଠୋକର ବା ଧକ୍କାମାରିବା ।

ଟକ୍କାରିକା—କାପୁରୁଷ ବଂଶର ଆଦି ପୁରୁଷର ବାସସ୍ଥାନ ।

ଟକ୍କୁ—ବି. ଟାକୁଡ଼ି ।

ଟଗଣ—ପୁଂ.ବି. ମାତ୍ରାବୃତ୍ତରେ ଛନ୍ଦୋବିଶେଷ ଭେଦାତ୍ମକ ଗଣବିଶେଷ ।

ଟଗର—ପୁଂ.ବି.ଟାଙ୍ଗଣା କ୍ଷାର, ଟାଙ୍ଗଣା, ସୋହାଗା, ହେଲା, ବିଳାସ ବିଷୟ, କ୍ରୀଡ଼ା, ତଗର ଶବ୍ଦଜ ପୁଷ୍ପବିଶେଷ, (ବି॰) ଟେରା, କେକରାକ୍ଷ ।

ଟଗରା—ଗ୍ରା. ବି॰. ଗୃଲାକ, ପିହାଣା, ଚତୁର, ଧୃଷ୍ଟ, (ସ୍ତ୍ରୀ. ବି॰) କେକରାକ୍ଷୀ, ଟେରୀ (ସ୍ତ୍ରୀ) ।

ଟଙ୍କ—ପୁଂ. ବି. (ଟଙ୍କ+ମି.ଅ)ପ୍ରସ୍ତରବିଦାରକ ଅସ୍ତ୍ର, ଟାଙ୍ଗିଆ, କୁରାଢ଼ି, ଗର୍ବ, ପରିମାଣ ବିଶେଷ,ଚାରିମସା ପରିମାଣ,ଏକଟଙ୍କାର ଦ୍ୱିପଞ୍ଚମାଂଶ,ଗୋଡ଼, ମୁଦ୍ରା, ରୌପ୍ୟମୁଦ୍ରା, ଜଙ୍ଘ,ଟାଙ୍ଗଣା, କୋଷ, ଧନାଗାର, ଶ୍ରୀ ଭୈରବ ଓ କାନାଡ଼ ରାଗ ଯୋଗହୋଇ ରଚିତ ସମ୍ପୂର୍ଣ୍ଣ ଜାତିର ରାଗିଣୀ, ନୀଳକପିତ୍ଥ, (ଶ.ଅ) ପାହାଡ଼, କ୍ଷୁଦ୍ରଶୈଳ, ଗଣ୍ଡଶୈଳ, ଖଡ୍ଗ, ଟାଙ୍ଗରଭୂମି, (ଅମ୍ଭ.ଅ) ଖଣ୍ଡାରଖାପ, ଖଣତା, କୋଡ଼, ଗଇନ୍ତି, କ୍ରୋଧ,ରାଗ, ଗ୍ରା.ବି.ଅମ୍ଳସ୍ୱାଦ,ଅମ୍ଳରସ, (ଗ୍ରା. ବି॰) ଅତ୍ୟନ୍ତଖଟା ଲାଗୁଥିବା ।

ଟଙ୍କ—ଗ୍ରା. ବି. ରାଜପୁତନା ଅନ୍ତର୍ଗତ ଦେଶୀୟ ମୁସଲମାନ ରାଜ୍ୟବିଶେଷ ।

ଟଙ୍କକ—ପୁଂ. ବି. (ଟଙ୍କ+କ) ରଜତମୁଦ୍ରା, ତମ୍ବାମୁଦ୍ରା, ଟଙ୍କା ।

ଟଙ୍କକପତି—ପୁଂ. ବି. (୬ତତ୍ପୁ) ରୂପକାଧ୍ୟକ୍ଷ, ଟାଙ୍କଶାଳାର ଅଧିପତି ।

ଟଙ୍କକଶାଳା—ସ୍ତ୍ରୀ. ବି. (୬ତତ୍ପୁ) ମୁଦ୍ରାଗୃହ, ଟାଙ୍କଶାଳ ।

ଟଙ୍କଟୀକ—ପୁଂ.ବି.(ଟଙ୍କ+ଟୀକ)ଶିବ ।

ଟଙ୍କଣ—ପୁ. ବି. (ଟଙ୍କ+କ.ଅନ)କ୍ଷାର ବିଶେଷ, ସୁହାଗା, ଟାଙ୍ଗଣା, (ଭା.ଅନ) ବନ୍ଧନ ।

ଟଙ୍କଧର—ବି. (ଟଙ୍କ+ଧୃ+ଅ)ମହାଦେବ

ଟଙ୍କନ—ବି. (ଟଙ୍କ+ଭା.ଅନ) ଟାଙ୍ଗଣା, ଉଲ୍ଲେଖ, ଟଙ୍କା, ବନ୍ଧନ ।

ଟଙ୍କପତି—ପୁଂ. ବି. (୬ତତ୍ପୁ) ଟାଙ୍କଶାଳାର କର୍ତ୍ତା ବା ଅଧ୍ୟକ୍ଷ ।

ଟଙ୍କପାଣି—ଗ୍ରା. ବି. ଖଟପାଣି, ଆମ୍ଳିକ, ତେନ୍ତୁଳି, ଓଡ଼ିଶାର ଗୋଟିଏ ଗ୍ରାମ, ତୀର୍ଥ ବିଶେଷ ।

ଟଙ୍କବଥୁଆ—ଗ୍ରା. ବି. ଏକପ୍ରକାର ଖଟା ବଥୁଆ ଶାଗ ।

ଟଙ୍କବାନ୍—ପୁଂ. ବି. ପର୍ବତଭେଦ ।

ଟଙ୍କବିଜ୍ଞାନ—କ୍ଳୀ. ବି. (୬ତତ୍ପୁ) ନାନାଦେଶୀୟ ଓ ନାନାକାଳୀନ ଟଙ୍କାସମ୍ବନ୍ଧୀୟ ବିଦ୍ୟା ।

ଟଙ୍କବିଶୋଧନ—କ୍ଳୀ. ବି. (୬ତ... ମୁଦ୍ରାର ବିଶଦି ...

ଥିବା ଟଙ୍କାକୁ ଖାଣ୍ଡି କରିବା ।

ଟଙ୍କମାରିବା—ଗ୍ରା. ବି. କୌଣସି ଆମ୍ବିଳା ଖାଦ୍ୟରୁ ଉପଯୁକ୍ତ ଉପାୟ ପ୍ରୟୋଗ ଦ୍ୱାରା ଅମ୍ଳସ୍ୱାଦ କମିବା

ଟଙ୍କମାରିବା—ଗ୍ରା. କ୍ରି. କୌଣସି ଜଳୀୟ ପଦାର୍ଥ ବାସିରହି ଆମ୍ବିଳା ହୋଇଯିବା, (ଗ୍ରା. ବି.) ଅମ୍ଳରସଯୋଗୁଁ ଦାନ୍ତରେ ଦୁଃଖ ବା ବିକାର ବୋଧହେବା ।

ଟଙ୍କଶାଳା—ସ୍ତ୍ରୀ. ବି. (୬ତତ୍) ଟାଙ୍କ-ଶାଳା, ଯେଉଁ କାର୍ଯ୍ୟାଳୟ ବା କାର-ଖାନାରେ ଟଙ୍କା ବା ମୁଦ୍ରାପ୍ରସ୍ତୁତ ହୁଏ ।

ଟଙ୍କା—ସ୍ତ୍ରୀ. ବି. (ଟଙ୍କ+କ+ଅ+ଆ) କଙ୍କ, ତାରଦେଶୀ, ପ୍ରାଚୀନକାଳର ତାମ୍ରମୁଦ୍ରା ବିଶେଷ, ଏକ ତୋଳା ଓଜନର ପ୍ରାଚୀନ ଭାରତର ରୌପ୍ୟ-ମୁଦ୍ରା, ( ଗ୍ରା.ବି. ) ଷୋହଳ ଅଣା ବା ପ୍ରୂର୍ତ୍ତିମାତ୍ରା ପରିମାଣ, ଧନ, ଅର୍ଥ, ଲୁଗାକୁ ସିଲାଇ କରିବା ।

ଟଙ୍କାଏକାନ୍ତର—ଗ୍ରା.ବି.ପ୍ରାୟ ଏକଟଙ୍କା, ଏକଟଙ୍କା ବା ତହିଁରୁ କିଛି କମି ବା ବେଶିଧନ । [ ଦେଖ ।

ଟଙ୍କାକଉଡ଼ି—ଗ୍ରା. ବି. ଟଙ୍କାଟୋକର

ଟଙ୍କାକିଆ—ଗ୍ରା. ବିଂ ଯହିଁର ମୂଲ୍ୟ ଏକଟଙ୍କାମାତ୍ର, ଯହିଁର ପ୍ରତ୍ୟେକର ମୂଲ୍ୟ ଏକଟଙ୍କା ।

ଟଙ୍କାଗଛ —ଗ୍ରା. ବି. (ଲକ୍ଷଣାର୍ଥ) ଧନୋ ପାର୍ଜନକାରୀ ବ୍ୟକ୍ତି, ଯେଉଁବ୍ୟକ୍ତିଠାରୁ କୌଣସି ବ୍ୟକ୍ତି ପ୍ରଚୁର ପରିମାଣରେ ଧନପାଏ ।

ଟଙ୍କାଗଣିବା—ଗ୍ରା. କ୍ରି. ମୁଦ୍ରାକୁ ସୁମାରି କରିବା, (ଲକ୍ଷଣାର୍ଥ) ନଗଦ ଅର୍ଥ ବା ମୁଦ୍ରାଦେବା ।

ଟଙ୍କାଟୋକର—ଗ୍ରା. ବି. ଧନ, ଅର୍ଥ ।

ଟଙ୍କାନଳ—ପୁଂ. ବି. ବ୍ରହ୍ମଦାରୁ ବୃକ୍ଷ ।

ଟଙ୍କାପଇସା—ଗ୍ରା. ବି. ଟଙ୍କାଟୋକର, ଧନ, ଅର୍ଥ ।

ଟଙ୍କାଭଙ୍ଗା(ଙ୍ଗେ)ଇବା—ଗ୍ରା. କ୍ରି.ଆପଣା ପାଖରେ ଥିବା ଟଙ୍କାକୁ ବଦଳାଇ ତାହା ବିନିମୟରେ କ୍ଷୁଦ୍ରତର ମୁଦ୍ରା ଆଣିବା ।

ଟଙ୍କାର—ପୁଂ. ବି. (ଟନ+କୃ+ଭା.ଅ) ବିସ୍ମୟ, ଧନୁଗୁଣର ଶବ୍ଦ, ଯଶ, ଖ୍ୟାତି, ଆଶ୍ଚର୍ଯ୍ୟ ।

ଟଙ୍କାରଦାରିଣୀ—ସ୍ତ୍ରୀ. ବି. ତାରଦେଶୀ, ଦେଶବିଶେଷ ।

ଟଙ୍କାରିତ—ବିଂ.(ଟଙ୍କାର+ଇତ)ଟଙ୍କାର ଶବ୍ଦଯୁକ୍ତ (ଧନୁ) ।

ଟଙ୍କାରୀ—ସ୍ତ୍ରୀ. ବି. ତାରଦେଶୀ, ଦଶ-ମହାବିଦ୍ୟାରୁ ଏକ ବୃକ୍ଷଭେଦ, ଟଙ୍କାରି-ଗଛ ।

ଟଙ୍କାସୁନା—ଗ୍ରା. ବି. ଟଙ୍କା, ଅର୍ଥ, ଧନ ।

ଟଙ୍କି—ଗ୍ରା. ବି. ଲାଖରାଜ ଭୂମିନିମନ୍ତେ ଲାଖରାଜଦାରମାନେ ସରକାରଙ୍କୁ ଦେବା ନିରୂପିତ ସାମନ୍ୟ ରାଜକର, (ବିଂ)ଯେଉଁ ଜମି ନିମନ୍ତେ ଟଙ୍କି ଖଜଣା ଦେୟ ଅଟେ ।

ଟଙ୍କିଆ—ଗ୍ରା. ବିଂ. ଯହିଁର ମୂଲ୍ୟ ବା ପରିମାଣ ଏତେ ଟଙ୍କା ଅଟେ ।

ଟଙ୍କିକା—ବି.ପଥର କାଟିବାର ଟାଙ୍ଗିଆ ।

ଟଙ୍କିଦାର—ଗ୍ରା. ବି. ଟଙ୍କି ଖଜଣା ଦିଆ-ଯିବା ବୃତ୍ତିର ଅଧିକାରୀ ।

ଟଙ୍କିବାଯ୍ୟାପ୍ତି—ଗ୍ରା. ବି. ଯେଉଁ ଟଙ୍କି ଜମିର ସନନ୍ଦ ଦେଖି ସରକାର ସନ୍ତୁଷ୍ଟ ନହୋଇ ସେ ଜମିଉପରେ ଅଧିକା ଖଜଣା ବସାଇ ଅଛନ୍ତି ।

ଟଙ୍କିଲ—ବିଂ. (ଟଙ୍କ୍+ଇଲ) ପାହାଡ଼ିଆ ଟାଙ୍ଗର ।

ଟଙ୍କୀ— ବି. ଶ୍ରୀ ରାଗର ରାଗିଣୀବିଶେଷ ।

ଟଙ୍କେ—ଗ୍ରା.ବି. ଟଙ୍କାଏ, ଏକଟଙ୍କାମାତ୍ର

ଟଙ୍ଗ—ପୁଂ.କ୍ଳୀ.ବି(ଟଙ୍କ+ଣ.ଅ)ଟାଙ୍ଗିଆ, ସୋହାଗା, ଟାଙ୍ଗଣା, ଚୁରିମସା ପରି-ମାଣ, ଗୋଡ଼ର ପେଣ୍ଡୁ, ଖନିତ୍ର, କଙ୍କ, ଖନନାସ୍ତ୍ର, (ଗ୍ରା.ବିଂ) ସଙ୍କୋଚ ।

ଟଙ୍ଗଟଙ୍ଗ—ଗ୍ରା.ଅବ୍ୟ. ସାଧାରଣ ଭାବରେ ଗୋଡ଼ ଉଠାଇ ଦେହକୁ ସିଧା କରି ପଦକ୍ଷେପକରି ଚାଲିବାପ୍ରକାରେ, ଅନାସ୍ଥା ବା ଗର୍ବ ପ୍ରକାଶ କରି ଚାଲି-ଯିବା ପ୍ରକାରେ, ଜମିକୁ ଗହିରିଆ ଚାଷ ନକରି ଉପର ଠାଉରିଆ କରି ହଳକୁ ବୁଲାଇବା ପ୍ରକାରେ ।

ଟଙ୍ଗଟାଙ୍ଗ—ଗ୍ରା.ଅବ୍ୟ.ଟଙ୍ଗଟଙ୍ଗ ଦେଖ ।

ଟଙ୍ଗଣ—ପୁଂ. କ୍ଳୀ. ବି. (ଟଙ୍କ+କ.ଅନ) ଟାଙ୍ଗଣା, ସୋହାଗା, ଯୋଡ଼ାହେବା, ସଲଗ୍ନ କରାଯିବା ।

ଟଙ୍ଗା—ଗ୍ରା. ବି. ବାନ୍ଧକରି ଝୁଲାଇବା, ଲିଆରୁ ଧାନ ବାହାରକରିବା ସକାଶେ ବାଉଁଶ କାଠରେ ତିଆରି ହୋଇଥିବା ଏକପ୍ରକାର ଟୋକେଇ, ଲିଆକେଲା, ଖଇଝଡ଼ା, (ବିଂ) ଝୁଲି ହୋଇଥିବା, ଝୁଲୁଥିବା ।

ଟଙ୍ଗାମାରିବା—ପ୍ରା. (ଗଞ୍ଜାମ) କ୍ରି. ଘଣ୍ଟା-ମାରିବା, ଘଣ୍ଟା ବଜାଇବା ।

ଟଙ୍ଗାରି—ବି.(ଟଙ୍ଗ+ଅରି)ସାନ କୁରାଡ଼ି, ଟାଙ୍ଗିଆ, (ଗ୍ରା.ବି) ଅନୁଗୁଳର ପର୍ବତ-ବିଶେଷ ।

ଟଟ୍‌ଟଟ୍—ଗ୍ରା. ଅବ୍ୟ. ( ଧ୍ୱନ୍ୟନୁକରଣ ) ଅବ୍ୟକ୍ତ 'ଟ ଟ' (ଜିଭ ଓ ତାଳୁ ଦ୍ୱାରା ଉତ୍ପନ୍ନ ) ଶବ୍ଦ, ପଶୁଆଦିଙ୍କୁ ଚାଳନା କରିବା ନିମନ୍ତେ ପାଟିରେ ଉଚ୍ଚାରିତ ହେବା ଡାକରା ।

ଟଡ଼ମା—ସ୍ତ୍ରୀ. ବି. ଜ୍ୟୋତ୍ସ୍ନା, ଝିଟିପିଟି ।

ଟଡ଼ୁରି—ସ୍ତ୍ରୀ. ବି. ପଟହବାଦ୍ୟ,ଡାଉଁ-ଡାଉଁ ଢୋଲର ଶବ୍ଦ, ମିଥ୍ୟାବାକ୍ୟ, ବାଲିଙ୍ଗି, ବାଗାଡ଼ମ୍ବର, ଅଟା ।

ଟଟ୍ଟା—ବୋମ୍ବାଇ ପ୍ରେସିଡ଼େନ୍‌ସୀର ଅନ୍ତ-ର୍ଗତ ସିନ୍ଧୁ ପ୍ରଦେଶରେ କରାଚି ଜିଲ୍ଲାର ବିରଳ ଉପବିଭାଗର ଗୋଟିଏ ତାଲୁକ ।

ଟଟ୍ଟୀ—ଯା. ବି. ମଳମୂତ୍ର ତ୍ୟାଗ ଓ ତାହାର ସ୍ଥାନ, ପାଇଖାନା ।

ଟଟ୍ଟୁ—ଗ୍ରା. ବି. ଦୃଢ଼କାୟ, ସହିଷ୍ଣୁ ଏବଂ ଖ୍ରେଟ ଘୋଡ଼ା, ତଟ୍ଟୁ ।

ଟଡ଼ୁରି—ପୁଂ. ବି. ଡଉଁରର ଶବ୍ଦ ।

ଟଡ଼—ଗ୍ରା.ବି. ରାଜପୁତ ସ୍ଥାନ ଇତିବୃତ୍ତ ପ୍ରଣେତା ଇଂରେଜ ଲେଖକ ।

ଟଣକିବା—ଗ୍ରା.କ୍ରି.ବିଂ.ଟଣଟଣ ଶବ୍ଦକରି, ତୀବ୍ର ବେଦନା ବା ବିଥାକରି, ହଠାତ୍ ।

ଟଣ୍‌ଟଣ୍—ଗ୍ରା.ଅ. ଘଣ୍ଟି ବାଜିବାର ଶବ୍ଦ, ଶରୀରରେ ଧମ୍‌ଧମ୍ ବା ଧକ୍‌ଧକ୍ ବେଦନା

ଅନୁଭୂତ, କାନବନ୍ଧିବାର ତୀବ୍ର ବେଦନା

**ଟଣକ**—ଗ୍ରା.ବି. ବ୍ୟଥାପ୍ରଦ ବଥ, ବ୍ରଣ, ହାତ ଆଙ୍ଗୁଠିର ଗଣ୍ଠି ଦ୍ୱାରା ଶରୀରର ହାଡ଼ୁଆ ସ୍ଥାନରେ କରାଯିବା ଆଘାତ, ଆଘାତ, ଠଣା, (ଗ୍ରା.ବି) ଟାଣ ।

**ଟଣକା**—ଗ୍ରା. ବି. ଯେଉଁ ଦଉଡ଼ି ଦୁଇଗୋଟି ପଦାର୍ଥକୁ ବା ଏକ ପଦାର୍ଥର ଦୁଇ ବିପରୀତ ଅଂଶକୁ ପରସ୍ପର ଆଡ଼କୁ ଟାଣିଧରି ରଖେ, ଶରୀରରେ ଅନୁଭୂତ ବନ୍ଧା ।

**ଟଣକିବା**—ଗ୍ରା. କ୍ରି. (କାନ)ବନ୍ଧିବା ।

**ଟଣା**—ଗ୍ରା.ବି. ଟାଣିବା, ତନ୍ତରେ ଲୁଗା ବୁଣିବା ପାଇଁ ଲମ୍ବ ବାଗର ସୂତା ଦେବା, ଟାଣୀ, ଶରୀରର ବେଦନା, (ବିଂ) ବିସ୍ତାରିତ ହୋଇଥିବା ।

**ଟଣାଓଟରା**—ଗ୍ରା. ବି. ପରସ୍ପର ଓଟରା-ଓଟର ବା ଝିଙ୍କାଝିଙ୍କି,(ସମସ୍ତ ବା ଧନର) ଅଭାବ ବା ନଅଣ୍ଟ ।

**ଟଣାଯିବା**—ଗ୍ରା. କ୍ରି. ଟାଣିବା କ୍ରିୟାର କର୍ମବାଚ୍ୟ ରୂପ ।

**ଟପ୍‌ଟପ୍**—ଗ୍ରା. ଅ. ଟପଟପ ଦେଖ ।

**ଟପ୍‌ଟାପ୍**—ଗ୍ରା. ଅବ୍ୟ ଓ କ୍ରି.ବିଂ. ଟପଟପ ଦେଖ ।

**ଟପଟପ୍**—ଗ୍ରା.ଅବ୍ୟ.ବଡ଼ ବଡ଼ ଟୋପାରେ ବର୍ଷାହେବା,ଆଖିରୁ ବଡ଼ବଡ଼ ଟୋପାରେ ବହୁତ ଲୁହ ବହିବା, କୌଣସି ପଦାର୍ଥକୁ ମୁନିଆଁ ପଦାର୍ଥରେ ଫୁଟାଇବା, ପରର ମନକୁ ବାଧିଲାପରି ନିଷ୍ଠୁର ବଚନ କହିବା, (କ୍ରି.ବିଂ)ତୀକ୍ଷ୍ଣଭାବରେ ।

**ଟପରଟପର**—ଗ୍ରା. ଅବ୍ୟ. ବଡ଼ ବଡ଼ ଟୋପାରେ ମେଘବର୍ଷା ବା ଶବ୍ଦ ।

**ଟପା**—ଗ୍ରା.ବି. (ଫ-ଲମ୍ଫ) ସରଳ ତାଳଯୁକ୍ତ ଗୀତବିଶେଷ, ଚିଠି ନେବାର ଡାକ, ପୋଷ୍ଟ; ଟପିବା, ଡେଇଁବା, ଭାଗ ମିଳାଇ, ଏକ ଗ୍ରାମରୁ ଗ୍ରାମାନ୍ତର ବାଟେ ଦୂରଦେଶରୁ ପଦାର୍ଥ ବୁହାଯିବାର ବନ୍ଦୋବସ୍ତ, ପାଳି ।

**ଟପାଟପ**—ଗ୍ରା.କ୍ରି.ବିଂ ବିଲମ୍ବ ନକରିବା ଶୀଘ୍ର ଶୀଘ୍ର, ବନ୍ଦୁ ବନ୍ଦୁ ପଡ଼ିବା, ଗୋଟା ଗୋଟା କରି ଏକାଥରକେ, ଟପ ଟପ ଭାବରେ ।

**ଟପିବା**—ଗ୍ରା. କ୍ରି. ଲମ୍ଫ ପ୍ରଦାନ କରି ଡେଇଁଯିବା, ଅତିକ୍ରମ କରିବା, ବନ୍ଦପଡ଼ିବା ।

**ଟଭ୍‌କନି**—ଗ୍ରା.ଅବ୍ୟ.(ପାଣିରେ କୌଣସି ପଦାର୍ଥ ଭାସିପଡ଼ି) ହଠାତ୍(ବୁଡ଼ିଯିବା)

**ଟଭ୍‌ଟଭ୍**—ଗ୍ରା.ଅବ୍ୟ.ଜଳଦ୍ୱାରା ଅଧିକ ପୂର୍ଣ୍ଣପାତ୍ର ଚହଲିଲେ ଯେଉଁ ଶବ୍ଦହୁଏ ।

**ଟଭ୍‌ଟାଭ୍**—ଗ୍ରା.ଅବ୍ୟ.ଜଳରେ କଉଆଦି ମାଛ ଉପରକୁ କ୍ଷଣେ ଉଠି ପୁଣି ବୁଡ଼ିଯିବାର ଶବ୍ଦ ।

**ଟମର**—ଗ୍ରା. ବି. ଜାହାଜର ମାସ୍ତୁଲର ଅଗ ପାଖରେ ବନ୍ଧାହେବା ପାଲ ।

**ଟମ୍ଭ**—ଗ୍ରା. ବି. ଲେମ୍ବୁ ଜାତୀୟ ବଡ଼ ଖଟାଫଳ ।

**ଟମ୍ବର**—ଗ୍ରା. ବି. ବନ୍ୟବୃକ୍ଷବିଶେଷ ।

**ଟମ୍‌ଟମ୍**—ଗ୍ରା. ବି. ଦୁଇଚକିଆ ଖୋଲା ଘୋଡ଼ାଗାଡ଼ି ବିଶେଷ ।

**ଟମକ**—ଗ୍ରା.ବି. ନାଗରା, ଢେଣ୍ଟୁରା ।

**ଟମକନିଶାଣ**—ଗ୍ରା.ବି.ଟମକ ଓ ନିଶାଣ, ସାନ ଓ ବଡ ନାଗରା ।

**ଟମକବାଜିବା**—ଗ୍ରା.ବି.କୌଣସି ବିଷୟ ସର୍ବତ୍ର ଉଦ୍‌ଘୋଷିତ ହେବା ।

**ଟମକଆ**—ଗ୍ରା. ବି. ଢେଣ୍ଟୁରା ଦେବା ଲୋକ ।

**ଟମଟମା**—ଗ୍ରା.ବି. ଢେଣ୍ଟୁରା, ନାଗରା ।

**ଟମରସ**—ଗ୍ରା.(ବୋମଣ୍ଡା) (ବି). ପିଜୁଳି, ଗୁଅଳିଆ ।

**ଟମାଟମ୍**—ଗ୍ରା.ବିଂ ଅତି ଭୋଜନରେ ପୂର୍ଣ୍ଣ (ପେଟ) ।

**ଟରଟର**—ଗ୍ରା.କ୍ରି. ବିଂ ବକ୍ରହୋଇ ଗୃଧ୍ର ରହିବା ପ୍ରକାରେ,ବକ୍‌ବକ୍,ସମ୍ମୁଖ ରୂପେ ।

**ଟରର୍**—ଗ୍ରା.ବିଂ ନିଶାରେ ଅଜ୍ଞାନ ବା ଅସ୍ଥିର, ଟଳଟଳାୟମାନ, କ୍ରୋଧାନ୍ଧ ।

**ଟରଣୀ(ଟର୍ଣ୍ଣୀ)**—ଗ୍ରା.ବି. ଅର୍ଥ ଲୋଭରେ ମୁକ୍ତାର ଓକିଲଙ୍କ ନିକଟରେ ମକଦ୍ଦମା ଜୁଟାଇବାଲୋକ, ଜାର ପୁରୁଷ ନିକଟରେ ପରସ୍ତ୍ରୀ ଜୁଟାଇବା ବ୍ୟକ୍ତି ।

**ଟର୍ଚ୍ଚଲାଇଟ୍**—ଗ୍ରା. ବି. ମଶାଲ ଆକାରର ବେଶ୍ମ ଲାଗିଥିବା ବିଜୁଳିବତି ।

**ଟଳଟଳ**—ଗ୍ରା.ବିଂ. ଉତ୍କଣ୍ଠିତ, ଅସ୍ଥିର, ଟଳୁଥିବା, ଦୋହଲୁଥିବା,ଯାହାର ମୂଳ ଭୂମିରେ ସ୍ଥିରହୋଇ ବସି ନଥାଏ, କ୍ରି. ବିଂ.ଦୋହଲୁ ଥିବା ପ୍ରକାରେ, ଅସ୍ଥିରଭାବରେ,ଆସନ୍ନ ବିଚଳନର ଭୟ ଜନ୍ମାଉଥିବା ପ୍ରକାରେ ।

**ଟଳଟଳାୟମାନ**—ପୁଂ. ବିଂ. ଟଳୁଥିବା, ଅସ୍ଥିର, କମ୍ପମାନ ।

**ଟଳଟଳିଆ**—ଗ୍ରା.ବିଂ ଓ କ୍ରି.ବିଂ. ଟଳଟଳ ଦେଖ ।

**ଟଳନ**—କ୍ଲୀ.ଚି.,ବିଚ୍ଛେଦ,ବିଚଳିତହେବା, ସ୍ଖଳନ । [ ଦେଖ ।

**ଟଳମଟଳ**—ଗ୍ରା.ବିଂ ଓ କ୍ରି ବିଂ. ଟଳଟଳ

**ଟଳମଳ**—ଗ୍ରା.ବିଂ ଓ କ୍ରି ବିଂ. ଟଳଟଳ ଦେଖ ।

**ଟଳା**—ଗ୍ରା.କ୍ରି. ବିଚଳିତ ହେବା ।

**ଟଳା(ଳେ)ଇବା**—ଗ୍ରା.କ୍ରି.ଟାଳିବା ଦେଖ ।

**ଟଳାଟଳିକରିବା**—ଗ୍ରା.କ୍ରି. ଟାଳଟୁଳ ବା ଭଣ୍ଡାଭଣ୍ଡି କରିବା, ହମ୍ ହଲସା ଦେଇ ସମୟକୁ ଅତିକ୍ରାନ୍ତ କରିବା ।

**ଟଳିପଡ଼ିବା**—ଗ୍ରା.କ୍ରି. ଢଳିକରି ତଳେ ପଡ଼ିଯିବା, (ଲକ୍ଷଣାର୍ଥ) ମରିବା, ଲୁପ୍ତହେବା ।

**ଟଳିବା**—ଗ୍ରା.କ୍ରି.(ମନ)ବିଚଳିତ ହେବା, ଖସିପଡ଼ିବା,(ପବନରେ) ଦୋହଲିବା, (ପ୍ରତିଜ୍ଞାକଥା)ଅନ୍ୟଥା ହେବା,(ଉପାୟ) ନିଷ୍ଫଳ ହେବା, (ନିର୍ଦ୍ଦିଷ୍ଟବେଳା)ଅତିକ୍ରାନ୍ତହେବା,(ବଳ) କମିବା, (ଧୈର୍ଯ୍ୟ) ନାଶହେବା,(ମନୁଷ୍ୟ ନିଦ୍ରାରେ) ଘାରିହେବା,(ମନ) ତରଳିଯିବା,(ଆଦେଶ) ଅତିକ୍ରମ କରିବା, ସ୍ଥାନଚ୍ୟୁତ ହେବା, (ଆଦେଶ) ଲଙ୍ଘିତହେବା,(ଲକ୍ଷଣାର୍ଥ) ହାରିବା. ଅକୃତକାର୍ଯ୍ୟହେବା ।

**ଟଲେମି**—ବି. ଜଣେ ବିଖ୍ୟାତ ଗ୍ରୀକ୍ ଜ୍ୟୋତିର୍ବିଦ୍ ଗଣିତଜ୍ଞ ଓ ଭୌଗଳିକ ପଣ୍ଡିତ ।

**ଟବର୍ଗ**—ପୁଂ. ବ୍ୟାକରଣର ସଜ୍ଞାନ୍ତର୍ଗତ

ତୃତୀୟ ବର୍ଣ୍ଣ, ଟ, ଠ, ଡ, ଢ, ଣ, ଏହି ପାଞ୍ଚଟି ବର୍ଣ୍ଣକୁ ଟବର୍ଗ ବୋଲାଯାଏ ।

ଟବର—ବି.ପୁଷ୍କରିଣୀ, ଜଳାଶୟ,କୁଟୀର, ଜ୍ଞାତି, କୁଟୁମ୍ବ, ପରିବାର ।

ଟହକ—ଗ୍ରା. ବିଂ. ସୁନ୍ଦର, ରମଣୀୟ, ରକ୍ତବର୍ଣ୍ଣ ।

ଟହଟହ—ଗ୍ରା. ଅବ୍ୟ. ( ସଂ-ଅଟ୍ଟହାସ୍ୟ ) ଉଚ୍ଚହାସ୍ୟଧ୍ୱନି, (ବିଂ ର ବିଂ) ଅତ୍ୟନ୍ତ ଗାଢ଼ (ରକ୍ତବର୍ଣ୍ଣ) ।

ଟହବର—ଗ୍ରା. ବି. ଶିବିକା, ପାଲିଙ୍କି, ତାମ୍ଯାନ୍ ।

ଟହଲ—ଗ୍ରା. ବି. ପରିକ୍ରମା, ବୁଲାବୁଲି, ସ୍ୱାସ୍ଥ୍ୟରକ୍ଷାର୍ଥେ ଭ୍ରମଣ,ଚାକିରି,ସେବା ।

ଟହଲଦାର୍—ଗ୍ରା. ବି. ଟହଲିଆ ଦେଖ ।

ଟହଲମାରିବା—ଗ୍ରା. କ୍ରି. ଏକପ୍ରାନ୍ତରୁ ଅନ୍ୟପ୍ରାନ୍ତକୁ ବିନାକାର୍ଯ୍ୟରେ ବୁଲିଯିବା

ଟହଲିଆ—ଗ୍ରା. ପୁଂ. ବି. ସେବାକାରୀ, ଯେଉଁ ଚାକର ପ୍ରଭୁଙ୍କର ସେବା କରେ ।

ଟହଲିବା—ଗ୍ରା. କ୍ରି. ପରିକ୍ରମା କରିବା, ଆଗକୁ ପଛକୁ ବୁଲାବୁଲି କରିବା ।

ଟା—ସ୍ତ୍ରୀ. ବି.ପୃଥିବୀ,(ଗ୍ରା.ଅବ୍ୟ.)ସଂଖ୍ୟା ବା ପରିମାଣ ସୂଚକ ପ୍ରତ୍ୟୟ ।

ଟାଆଁଶା— ଗ୍ରା. ବିଂ. କର୍କଶ ( ଲୋମ ବା କେଶ),ନିଷ୍ଠୁର (କଥା), ଚେମଡ଼ା ।

ଟାଇଁକରି—ଗ୍ରା.କ୍ରି. ବିଂ. ଟାଇଁ ଟାଇଁ ଶବ୍ଦକରି, ଗୁଞ୍ଜନ ।

ଟାଇଁଟାଇଁ—ଗ୍ରା.ଅବ୍ୟ.କଠିନ ବା ଧାତୁ-ମୟ ପଦାର୍ଥରେ କୌଣସି କଠିନ ବସ୍ତୁ ବାଡ଼େଇବାର ଧ୍ୱନି,କଠୋର ସ୍ୱରରେ, ଟାଉଁ ଟାଉଁ, ଚଡ଼ ଚଡ଼ ।

ଟାଇଟ୍—ଯା.ବିଂ. ଟୁସ୍ତ,କସିହୋଇଥିବା ।

ଟାଇଟଲ୍—ଯା. ବି. ଲୋକଙ୍କୁ ଦିଆଯିବା ଉପାଧି ।

ଟାଇପ୍—ଯା.ବି. ଛାଞ୍ଚରେ ଢଳା ହୋଇ-ଥିବା ସୀସାରେ ତିଆରି ଛାପିବାର ଅକ୍ଷର ।

ଟାଇମ୍—ଯା. ବି. ସମୟ,ନିର୍ଦ୍ଦିଷ୍ଟ ସମୟ ।

ଟାଉଁଟାଉଁ—ଗ୍ରା. କ୍ରି. ବିଂ. (କର୍କଶ ସ୍ୱରରେ) କଥାକହିବା ।

ଟାଉଁଟାଉଁଆ—ବିଂ. ବିରକ୍ତି ସୂଚକ ବା ବିରକ୍ତି ପ୍ରକାଶକ ବା କର୍କଶ (କଥା), ରୁକ୍ଷପ୍ରକୃତିକ(ବ୍ୟକ୍ତି) ।

ଟାଉଁଶା—ଗ୍ରା. ବିଂ. ଟାଆଁଶା ଦେଖ ।

ଟାଉକା—ଗ୍ରା.ବି. ଯେଉଁଚୋର ସାମାନ୍ୟ ପଦାର୍ଥ ଚୋରି କରେ ।

ଟାଉଟାଉ—ଗ୍ରା. କ୍ରି. ବିଂ. (ସଂ-ତ୍ୱରିତ) ଅତିଶୀଘ୍ର.ତ୍ୱରିତଭାବରେ,(ବିଂ)ଚଞ୍ଚଳ, ଅସ୍ଥିର ।

ଟାଉଟାଉଆ—ଗ୍ରା. ବିଂ. ତୁରୁତୁରିଆ, ଅବ୍ୟବସ୍ଥିତ ଚିତ୍ତ ।

ଟାଉନ୍—ଯା. ବି. ସହର, ନଗର ।

ଟାକ୍—ଗ୍ରା. ବି. (ସଂ-ଟଙ୍କନ) କଳରେ ସିଲାଇ କରାଯିବା ପୂର୍ବରୁ ହାତଦ୍ୱାରା ଛୁଞ୍ଚିରେ କରାଯାଇଥିବା ଟାଙ୍କାସିଲାଇ ।

ଟାକର—ଗ୍ରା. ବି. ଠଣା, ଆଙ୍ଗୁଠିର ଗଣ୍ଠିଦ୍ୱାରା ମୁଣ୍ଡର ଖପୁରିରେ କରାଯିବା ଆଘାତ ।

ଟାକରଖାଇ—ଗ୍ରା. ବି. ଚିଲିକାର ଏକ-ପ୍ରକାର ମାଛ ।

ଟାକରଖାଇବା—ଗ୍ରା. କ୍ରି. ( ଲ.ଅର୍ଥ ) ପରଦ୍ୱାରା ଅପମାନିତ ହେବା ।

ଟାକରମାରିବା—ଗ୍ରା. କ୍ରି. ଠଣାମାରିବା, ଆଘାତ କରିବା, (ଲ.ଅର୍ଥ) ଉପହାସ କରିବା, ବଳିଯିବା, ଉତ୍କୃଷ୍ଟହେବା ।

ଟାକରା—ଗ୍ରା. ବି. ତାଳୁ ଓ ଜିଭଦ୍ୱାରା କୃତଅବ୍ୟକ୍ତ ଟକ୍ ଟକ୍ ଶବ୍ଦ ।

ଟାକରାଫୁଟା( ଟେ )ଇବା—ଗ୍ରା. କ୍ରି. ତାଳୁରେ ଜିଭଲଗାଇ ଶବ୍ଦ କରିବା ।

ଟାକିବସିବା—ଗ୍ରା.କ୍ରି.ଟାକିରହିବା ଦେଖ ।

ଟାକିବା—ଗ୍ରା. କ୍ରି. ଟାକିରହିବା ଦେଖ ।

ଟାକିରହିବା—ଗ୍ରା.କ୍ରି. କୌଣସି ପଦାର୍ଥ ମିଳିବବୋଲି ଚାହିଁବସିବା, ଉତ୍କଣ୍ଠା ସହକାରେ ଅପେକ୍ଷା କରିବା, ଆଶା-କରିବା, ନିର୍ନିମେଷ ଦୃଷ୍ଟିରେ ଚାହିଁ ରହିବା, ନାକେଇବା ।

ଟାକୁ—ଗ୍ରା. ବି. ( ସଂ-ତର୍କୁ ) ଅରଟର ଲୌହଶଲାକା, ତାକୁଡ଼ ।

ଟାକୁଆ—ଗ୍ରା. ବି. (ସଂ-ଟଙ୍କ) ପକ୍ୱ ଆମ୍ବ-ଫଳର ମଞ୍ଜି । [ ବିଶେଷ ।

ଟାକୁଆଳି—ଗ୍ରା. ବି. ବଡ଼ ବନ୍ୟ ବୃକ୍ଷ-

ଟାକୁଟାକୁକରିବା—ଗ୍ରା. କ୍ରି. ଟାକୁ ଟାକୁ ହେବା ଦେଖ ।

ଟାକୁଟାକୁହେବା—ଗ୍ରା. କ୍ରି. ଭୋକରେ ପାଟୁ ପାଟୁ ହେବା ବା ବିକଳହେବା, ଖାଇବାପାଇଁ ଟାକିରହିବା ।

ଟାକ୍ସ—ଯା. ବି. କର, ଶୁଳ୍କ, ଟିକସ ।

ଟାକ୍ସି—ଯା. ବି. ଭଡ଼ାରେ ଚାଲିବା ମଟରଗାଡ଼ି ।

ଟାଙ୍କ—ଗ୍ରା.ବି. (ସଂ-ଟଙ୍କ) ଜଙ୍ଘ,ଗୋଡ଼, ଛୁଞ୍ଚିଦ୍ୱାରା ସିଲାଇ ।

ଟାଙ୍କି—ଯା. ବି. ବହୁପରିମିତ ଜଳ ବା ତୈଳ ସଞ୍ଚୟ କରିବାର ବୃହତ୍ ଲୌହ-ମୟ ଆଧାର, (ଗ୍ରା. ବି) ପଥର କାଟି-ବାର ନିହଣ ।

ଟାଙ୍କିଟୁଙ୍କିଦେବା—ଗ୍ରା. କ୍ରି. ପେଟେ ଭୋଜନ କରିବା, ପେଟଭର୍ତ୍ତିକରି ଖାଇବା ।

ଟାଙ୍କିଧରିବା—ଗ୍ରା. କ୍ରି. ଖୁବ୍ କସିକରି ଟାଣିଧରିବା, ଓହଳାଇ ଧରିବା ।

ଟାଙ୍କିବା—ଗ୍ରା. କ୍ରି. ଛୁଞ୍ଚିଦ୍ୱାରା ସିଲାଇ କରିବା, ଦୁଇଖଣ୍ଡ କନାକୁ ତାଗା ଗଳାଇ ସିଇଁବା, ହାତଦ୍ୱାରା କୌଣସି ପଦାର୍ଥକୁ ଟେକିକରି ଧରିବା ।

ଟାଙ୍କିହେବା—ଗ୍ରା.କ୍ରି. କସିହେବା,ଉଚ୍ଚୁଚ ହେବା ।

ଟାଙ୍କୁ—ଗ୍ରା. ବି. କଟିତଳ ଓ ପିଚ୍ଛ ଉପ-ରର ଅସ୍ଥିମୟ ଅଂଶ, ଠେଙ୍ଗୁ, ଜଙ୍ଘ, ଜଙ୍ଘ ଓ ତଳକୁ ଥିବା ଗୋଡ଼ର ଅଂଶ ।

ଟାଙ୍କୁଆ—ଗ୍ରା.ବି. ଉଇହୁଙ୍କା ମଧ୍ୟରେ ଥିବା ଉଇ ବସା (ଏଥିରୁ ଛତୁ ଜନ୍ମେ) ।

ଟାଙ୍କୁରା—ଗ୍ରା.ବି. ରୋମାଞ୍ଚ,ପୁଲକୋଦ୍ଗମ ।

ଟାଙ୍କୁରଉଠିବା—ଗ୍ରା. କ୍ରି. ରୋମାଞ୍ଚିତ-ହେବା, ପୁଲକିତହେବା ।

ଟାଙ୍କୁରିବା—ଗ୍ରା.କ୍ରି.(ଦେହର ଲୋମମାନ) ଭୟ, ଶୀତ, ଚିନ୍ତା ବା ପ୍ରେମାତି-ଶଯ୍ୟରେ ଠିଆହେବା, ପୁଲକିତହେବା, (ଶରୀର) ରୋମାଞ୍ଚିତ ହେବା ।

ଝାଙ୍କୁହାଣିବା—ଗ୍ରା. କ୍ରି. ଦୁଇ ଜଙ୍ଘ ନିକଟରୁ ଗୋଡ଼କୁ ହାଣିଦେବା, (ଲ. ଅର୍ଥ) କୌଣସି ବ୍ୟକ୍ତିକୁ ଅକର୍ମଣ୍ୟ କରିଦେବା ।

ଝାଙ୍ଗଣ—ଯା. ବି. ଟଟ୍ଟୁଘୋଡ଼ା, କ୍ଷୁଦ୍ରାକୃତି ଘୋଟକବିଶେଷ, (ଲ.ଅର୍ଥ) ଖୁବ୍ ଚଞ୍ଚଳ ଓ କର୍ମଠ ବ୍ୟକ୍ତି, (ଗ୍ରା.ବି) କୃଷିଜାତ ବାର୍ଷିକ ଶସ୍ୟବିଶେଷ ।

ଝାଙ୍ଗଣା—ଗ୍ରା. ବି. ସୋହାଗା, ଉପଧାତୁବିଶେଷ ।

ଝାଙ୍ଗର—ଗ୍ରା. ବି. ବୃକ୍ଷଲତାହୀନ ପାହାଡ଼ିଆ ଭୂମି, ମସ୍ତକର କେଶହୀନତା, (ଗ୍ରା.ବି°) ଝାଙ୍ଗରି ଦେଖ ।

ଝାଙ୍ଗରି—ଗ୍ରା.ବି.(ସଂ-ଝଙ୍କ)ରୋଗବିଶେଷ, ଯେଉଁ ରୋଗହେଲେ ମୁଣ୍ଡର ବାଳ ଉପୁଡ଼ିଯାଏ, ଟାଲ୍ୱାଟ, (ଗ୍ରା. ବି°.) ଚନ୍ଦାମୁଣ୍ଡିଆ, କେଶହୀନ (ମସ୍ତକ) ।

ଝାଙ୍ଗରିମୁଣ୍ଡା—ଗ୍ରା. ପୁଂ. ବି°. ଯାହା ମୁଣ୍ଡରୁ ବାଳ ଉପୁଡ଼ି ଯାଇଅଛି ।

ଝାଙ୍ଗା—ଗ୍ରା. ବି. ଏକବଳଦିଆ ବା ଏକଘୋଡ଼ିକିଆ ଦୁଇଚକିଆ ସ୍ପ୍ରିଙ୍ଗ୍‌ଲଗା ଗାଡ଼ି, ଝଟକା, ଏକା ।

ଝାଙ୍ଗି—ଗ୍ରା. ବି. ଗ୍ରେଟ କୁରାଢ଼ି, ଫାରସା, ଶସ୍ତ୍ରବିଶେଷ, କ୍ଷୁଦ୍ର ପାହାଡ଼, ଝାଙ୍ଗର, ପାହାଡ଼ିଆ ସ୍ଥାନ ।

ଝାଙ୍ଗିଆ—ଗ୍ରା. ବି. ଗ୍ରେଟ କୁରାଢ଼ି ।

ଝାଙ୍ଗିଆପଶା—ଗ୍ରା.ବି. ଝାଙ୍ଗିଆର ଯେଉଁ ଫୋଡ଼ଥିବା ଅଂଶରେ ବେଣ୍ଟ ଲଗେ, ଝାଙ୍ଗିଆ ବେଣ୍ଟକୁ ଧରି ଯେଉଁ ଅଂଶ ଦ୍ୱାରା ଝେଲାଦିକୁ ପ୍ରହାର କରନ୍ତି ।

ଝାଙ୍ଗିବା—ଗ୍ରା. କ୍ରି. ଝୁଲାଇବା, ଲଟକାଇବା, କୌଣସି ବସ୍ତୁକୁ ଦଉଡ଼ିରେ ବାନ୍ଧି ଓହଳାଇବା ।

ଝାଙ୍ଗିହେବା—ଗ୍ରା. କ୍ରି. କୌଣସି ବସ୍ତୁ ଦଉଡ଼ି ଦ୍ୱାରା ଝୁଲିହୋଇ ରହିବା ବା କଷି ହୋଇ ରହିବା ।

ଝାଟଲୁ—ଗ୍ରା.(ସମ୍ବ) ବି°. ଚନ୍ଦାମୁଣ୍ଡିଆ ।

ଝାଣ—ଗ୍ରା. ବି. (ସଂ-କଠିନ) କର୍କଶତା, କାଠିନ୍ୟ, ହେମନ୍ତ, ଧୈର୍ଯ୍ୟ, ଗର୍ବ, ଦମ୍ଭ, ଆଣ୍ଟ, ଜୋର, କୌଣସି ବିଷୟ ପ୍ରତି ସ୍ପୃହା, ମମତା, ସ୍ରୋତର ବେଗ, ଆକର୍ଷଣ, ନିଷ୍ଠୁରତା, ଶକ୍ତି, ଦୈହିକ ଓ ମାନସିକ ବଳ, ମାନସିକ ଆକର୍ଷଣ, (ଗ୍ରା.ବି°) କଠିନ, ତୀକ୍ଷ୍ଣ, ଦାମ୍ଭିକ, ଉଚ୍ଚୈଃସ୍ୱରବିଶିଷ୍ଟ, ସଙ୍ଗତିସମ୍ପନ୍ନ, କଷ୍ଟସହିଷ୍ଣୁ, ମହାର୍ଘ, ସବଳ ।

ଝାଣକରିବା—ଗ୍ରା. କ୍ରି. ଭ୍ରୁକୁଡ଼ାଇବା, ଆଣ୍ଟଦେଖାଇବା, ଦାମ୍ଭିକତା ପ୍ରକାଶ କରିବା ।

ଝାଣଖରି—ଗ୍ରା. ବି. ପ୍ରଚଣ୍ଡ ବା ଅସହ୍ୟ ସୂର୍ଯ୍ୟକିରଣ ।

ଝାଣଝୁଣା—ଗ୍ରା. (ପଦ୍ୟ) ବି°. ଅତ୍ୟନ୍ତ ପୀଡ଼ାଦାୟକ, ମର୍ମନ୍ତୁଦ ।

ଝାଣଝାଣକଥା—ଗ୍ରା.ବି.କର୍କଶ ବା ଅସହ୍ୟ ବାକ୍ୟ ।

ଝାଣଝୁଣ—ଗ୍ରା. ବି. ଗର୍ବ, ଦାମ୍ଭିକତା, ଝଣା, ଓଟରା, ଅତ୍ୟନ୍ତ ଅଭାବଗ୍ରସ୍ତ ଅବସ୍ଥା ।

ଝାଣପଣ—ଗ୍ରା. ବି. ଦମ୍ଭ, ଗର୍ବ, ଦାମ୍ଭିକତା, ସମ୍ପତ୍ତିଶାଳୀତା ।

ଝାଣମୁହାଁ—ଗ୍ରା.ପୁଂ.ବି°.ଯେଉଁ ଲୋକର ମୁହଁ ଝାଣ ଅର୍ଥାତ୍ ଯେଉଁ ଲୋକ ଆପଣାର ଦୋଷ ବା ଅପରାଧକୁ ମୁହଁରେ ସ୍ୱୀକାର କରେ ନାହିଁ ।

ଝାଣି—ଗ୍ରା. ବି. ଲୁଗା ବୁଣିବାବେଳେ ତନ୍ତରେ ଯେଉଁ ସୂତାକୁ ଝାଣିକରି ରଖାଯାଇଥାଏ, ବସ୍ତ୍ରର ଲମ୍ବ ବାଗର ସୂତା, (ଗ୍ରା.କ୍ରି.ବି°) କର୍କଶରୂପେ, ନିଷ୍ଠୁର ଭାବରେ ।

ଝାଣିଓଟାର—ଗ୍ରା. କ୍ରି. ବି°. ଝାଣିଝୁଣି ଦେଖ ।

ଝାଣିଝୁଣି—ଗ୍ରା. କ୍ରି. ବି°. ନିଃଶେଷକରି, ସମସ୍ତ ଝାଣିନେଇ, ଖୁବ୍ ଜୋରରେ, ଚଡ଼ ପାଟିକରି, ଗର୍ବପ୍ରକାଶ ବା ଆସ୍ଫାଳନ ପୂର୍ବକ ।

ଝାଣିବା—ଗ୍ରା. କ୍ରି. ଟିଙ୍କିବା, ଓଟାରିବା, ଆକର୍ଷଣ କରିବା, (ଛତା) ଉପରେ ବିସ୍ତୃତ କରିବା, (ଗାର,ଚିହ୍ନ) ଆଙ୍କିବା, (ସୂତା)କାଟିବା, ଲମ୍ବଭାବରେ ଝାଙ୍ଗିବା, (ରେଖାଆଦି) ଲମ୍ବରେ ବଢ଼ାଇବା, (ପାଣିକୁ) ନିଃଶେଷ କରିବା, (ଗଞ୍ଜେଇ ଧୂଆଁ ଆଦି) ଶୋଷିନବା, (ପେଟ, କାନ) ବ୍ୟଥା କରିବା,(ମଣ୍ଡୁରି,ଗୁନ୍ଦୁଆ ଆଦିରୁ) ମୁନ୍ଦରେ ଦଉଡ଼ି ବାନ୍ଧି ବିସ୍ତାର ପୂର୍ବକ ବାନ୍ଧିବା, ଓଟାରିବା ।

ଝାଣିଭରଣୀ—ଗ୍ରା. ବି. ଲୁଗା ବୁଣିବାର ତନ୍ତରେ ବ୍ୟବହୃତ ଲମ୍ବବାଗର ଓ ଚଉଡ଼ା ବାଗର ସୂତା ।

ଝାଣିହେବା—ଗ୍ରା. କ୍ରି. କଷ୍ଟରେ କଥା କହିବା ବା ନିଶ୍ୱାସ ମାରିବା, ଓଟାରହେବା, ଉଚ୍ଚୈଃସ୍ୱରରେ କଥାକହିବା ।

ଝାଣେ—ଗ୍ରା. କ୍ରି. ବି°. ଜୋରକରି, ଝାଣକରି, ଉତ୍ତମରୂପେ ।

ଝାପ—ଗ୍ରା. ବି. ସ୍ଥାୟୀ ଜଳସ୍ରୋତସଙ୍ଗେ ଯେଉଁ ପ୍ରାକୃତିକ କ୍ଷୁଦ୍ର ଜଳାଶୟର ସମ୍ବନ୍ଧ ନ ଥାଏ ।

ଝାପରି—ଗ୍ରା. ବି. (ସଂ-ଝଠସି) ଥଟ୍ଟା, ତାମସା, ରଙ୍ଗ, ପରିହାସ, ରହସ୍ୟ, ପରିହାସଯୋଗ୍ୟ ବ୍ୟକ୍ତି ।

ଝାପରିକରିବା—ଗ୍ରା.କ୍ରି. ପରିହାସକରିବା, ଥଟ୍ଟାଖେଳିବା ।

ଝାପୁ—ଗ୍ରା. ବି. ଘୋଡ଼ାର ଖୁରା, ଜୀବର ପାଦଚିହ୍ନ, ଜୀବର ପାଦ,ଦ୍ୱୀପ,(ବ୍ୟଙ୍ଗ) ମନୁଷ୍ୟର ଦୁଇହାତ ଓ ଦୁଇଗୋଡ଼, ଘୁରିକାଡ଼ ।

ଝାର—ବି: ଘୋଡ଼ା, ଗାଣ୍ଡିଆଲୋକ, ଅସ୍ୱାଭାବିକ ପ୍ରକ୍ରିୟାରେ ପୁରୁଷର କାମପ୍ରବୃତ୍ତି ଚରିତାର୍ଥ କରାଇବା ବ୍ୟକ୍ତି, କୁଟୁଣା ।

ଝାଲ—ଗ୍ରା. ବି. (ସଂ-ଝଳ) ଛଳ,ବିଳମ୍ବ, ନିଜର ଦାୟିତ୍ୱ ଅନ୍ୟ ଉପରେ ପକାଇବା, ଛଳନା ।

ଝାଲ—ଗ୍ରା. ବି. କୌଣସି ନଦୀ ବା ଜଳାଶୟର ଗଭୀର ଅଂଶ, ଖାଲ,ଗଣ୍ଡ, (ପ୍ରା. ସମ୍ବ. ବି) ପୋଖରୀ, ବନ୍ଧ, ବଡ଼ ହୁଡ଼ିଆ ଘାଇ ।

ଝାଲଝୁଲ—ଗ୍ରା.ବି. ଭଣ୍ଡାଭଣ୍ଡି,ଠକାଠକି,

ଛଳନା ଦ୍ୱାରା ବାରମ୍ବାର କାଳକ୍ଷେପଣ, ମୂଳୋତ୍ପାଟନ ।

**ଟାଳମଟାଳ**—ଗ୍ରା. ବି. ଟାଳଟୁଳ, ଟଳବା, ଦୋହଲିବା, ପତନୋନ୍ମୁଖ ଅବସ୍ଥା, ଓଲଟାଇଦେବା, ଛଳନାଦ୍ୱାରା ବିଳମ୍ବ କରିବା ।

**ଟାଲ(ଟାଇଲ)**—ଗ୍ରା.ବି. କୋଠାର ଛାତ ବା ମେଜିଆରେ ବସ୍ତୁହେବା ଚତୁଷ୍କୋଣ ବା ବର୍ଗକ୍ଷେତ୍ରାକାର ପତଳା ଇଟା ।

**ଟାଳିବା**—ଗ୍ରା. କ୍ରି. ଟଳାଇବା, ବିଚଳିତ କରିବା, ମୂଳୋତ୍ପାଟନ କରିବା, ଭଣ୍ଡାଇବା, ଛଳନା କରିବା, (ଅଙ୍ଗୀକାର) ଅନ୍ୟଥା କରିବା, (ଆଜ୍ଞା)ଅବଜ୍ଞାକରିବା ।

**ଟାହି**—ଗ୍ରା.ବି. (ସଂ-ଅଟ୍ଟହାସ)କୌତୁକ, ପରିହାସ, ଟାପରା ।

**ଟାହିଆ**—ଗ୍ରା. ବି. ଠାକୁରଙ୍କ ପ୍ରଭୃ ପଛଆଡ଼େ ଦିଆଯିବା ବା ମୁଣ୍ଡକୋଡ଼ାରେ ଖୋସାଯିବା ଫୁଲଦ୍ୱାରା ସଜ୍ଜିତ ଆଭରଣ ବିଶେଷ ।

**ଟାହିଟାପରା**—ଗ୍ରା. ବି. କୌତୁକ, ଥଟ୍ଟା, ପରିହାସ ।

**ଟାହୁଲି**—ଗ୍ରା. ବି. ଟାହି ଦେଖ ।

**ଟି**--ଗ୍ରା.ଅବ୍ୟ.ବାକ୍ୟପୂରଣ ଓ ଶବ୍ଦଉପରେ ଜୋରଦେବାପାଇଁ ବ୍ୟବହୃତ ପ୍ରତ୍ୟୟ ବିଶେଷ, (ପ୍ରଶ୍ନାର୍ଥକ) ନିଶ୍ଚେ, ଆଶ୍ଚର୍ଯ୍ୟାର୍ଥ ପ୍ରକାଶକ, ଏକମାତ୍ର, ଗୋଟିଏ ସଂଖ୍ୟକ, କ୍ଷୁଦ୍ରାର୍ଥକ, କାରୁଣ୍ୟବ୍ୟଞ୍ଜକ ।

**ଟିଆ**—ଗ୍ରା.ବି. (ସଂ-ଟିଟ୍ଟିଭ) ଟିଟ୍ଟିଭପକ୍ଷୀ, ଏକପ୍ରକାର ଶୁକପକ୍ଷୀ, ଟେହିବା, ଉତ୍ତେଜନା, କୌଣସି ଜାଗାରେ ଦିଆଯିବା ଠେସ ।

**ଟିଉଟର୍**—ଯା. ବି. ଶିକ୍ଷକ, ଗୁରୁ ।

**ଟିଉବ୍**—ଯା. ବି. ନଳ ।

**ଟିଉସନ୍**—ଯା. ବି. ଶିକ୍ଷକତା, ଘରେ ସ୍କୁଲ ଛାତ୍ରମାନଙ୍କୁ ପଢ଼ାଇବା ।

**ଟିଏ**—ଗ୍ରା. (ପ୍ରତ୍ୟୟ) ଏକଗୋଟି ମାତ୍ର ।

**ଟିକ୍‌ଟିକ୍**—ଗ୍ରା. ବି. (ସଂ-ଟଟ୍ଟନୀ) ଗୃହଗୋଧିକା, ଝିଟିପିଟି, ଅତି କ୍ଷୁଦ୍ର କ୍ଷୁଦ୍ର ଖଣ୍ଡ, (ଗ୍ରା. ବି) କ୍ଷୁଦ୍ର କ୍ଷୁଦ୍ର ଖଣ୍ଡରେ ବିଭକ୍ତ ।

**ଟିକ**—ଗ୍ରା. ଅବ୍ୟ. (ସଂ-ସ୍ତୋକ) ଅଳ୍ପପରିମାଣ, ସମାନ୍ୟ, ଚକଟେ ।

**ଟିକକ**—ଗ୍ରା. ବିଂ. (ସଂ-ସ୍ତୋକ) ଅତିସାମାନ୍ୟ, ଅତି ଅଳ୍ପ, ଅତି କ୍ଷୁଦ୍ର, (ଗ୍ରା.-ବି) ଅତି ସାମାନ୍ୟ ବସ୍ତୁ ।

**ଟିକକଠାଇଁ**—ଗ୍ରା. କ୍ରି. ବିଂ. କଣ୍ଟୁମାତ୍ର ଅବଶିଷ୍ଟ ନ ରଖି ।

**ଟିକଟ**--ଯା.ବି.ରେଲଆଦିରେ ଚଢ଼ି ଯିବାନିମନ୍ତେ ଯାତ୍ରୀ ଭଡ଼ା ଦେଇଥିବାର ଚିହ୍ନସ୍ୱରୂପ କର୍ମୀମାନଙ୍କ ଠାରୁ ପ୍ରାପ୍ତ କ୍ଷୁଦ୍ରକାଗଜଖଣ୍ଡ, ଡାକଟିକଟ, କୌଣସି ବସ୍ତୁଉପରେ ମରାଯାଇଥିବା ଚିହ୍ନଟ କାଗଜ, ଥିଏଟର, ମେଳା, ପ୍ରଦର୍ଶନୀ ଆଦିକୁ ଯିବାପାଇଁ ଦର୍ଶକଙ୍କୁ ଦିଆଯିବା ଅନୁମତି ସୂଚକ କାଗଜ, ରେଜେଷ୍ଟ୍ରିଖାନାରୁ ଦଲିଲ ସମ୍ପାଦକଙ୍କ ଖଣ୍ଡକୁ ମିଳିବା ନିଦର୍ଶନ କାଗଜଖଣ୍ଡ ।

**ଟିକମ୍**—ଗ୍ରା. ବି. (ସଂ-ସ୍ତୋକ) ଅତି ଖର୍ବାକୃତି ବ୍ୟକ୍ତି, ବାଙ୍କର, (ଗ୍ରା.ବି) ବାଙ୍କରା, ଖର୍ବକାୟ ।

**ଟିକର**—ଗ୍ରା. ବି. (ସଂ-କଙ୍କର) ଗୋଡ଼ି, ଢିପ, ବାଲିସ୍ତୂପ ବା ବନ୍ଧ, (ବିଂ) ଉଚ୍ଚ ବା ନଗିଡ଼ା(ଭୂମି), ପଥୁରିଆ, ଗୋଡ଼ିଆ, (ଭୂମି) ।

**ଟିକା**—ଗ୍ରା. ବି. (ସଂ-ତିଲକ) କପାଳରେ ଦେବା ଯିବା ଗୋରୋଚନା ଓ ଚନ୍ଦନ ଆଦିର ଟୋପା, ସ୍ୱର୍ଣ୍ଣ ରୌପ୍ୟାଦିନିର୍ମିତ ପଦକ, ବସନ୍ତରୋଗ ନିବାରଣପାଇଁ ମନୁଷ୍ୟ ହାତରେ କ୍ଷତକରି ଦିଆଯିବା ଔଷଧ, ତାସ୍ ଖେଳରେ ଏକସଂଖ୍ୟକ ତାସ୍, (ଲ.ଅର୍ଥ) ବହୁଲୋକଙ୍କ ମଧ୍ୟରେ ଶ୍ରେଷ୍ଠତ୍ୱ ସୂଚକ ଚିହ୍ନ, ପ୍ରଜାଙ୍କର ରାଜାଙ୍କୁ ପ୍ରଣାମ କରିବା ଉପଲକ୍ଷରେ ଦିଆଯିବା ଭେଟି, ରାଜା ବା କ୍ଷତ୍ରିୟମାନଙ୍କ ଘରେ ବୈବାହିକ ମହାପ୍ରସାଦ ନିବନ୍ଧର ଅଙ୍ଗବିଶେଷ, ଟିକାଲଗି, ଗୋରୁଆଦିଙ୍କ ମୁଣ୍ଡରେ ଥିବା ଚିହ୍ନ, ( ବିଂ ) ଶ୍ରେଷ୍ଠ, ଉତ୍କୃଷ୍ଟ, ପ୍ରଧାନ, ମୁଖିଆ ।

**ଟିକା(କେ)ଇତ**—ଗ୍ରା. ବି. ଯୁବରାଜ, ରାଜାଙ୍କର ଜ୍ୟେଷ୍ଠପୁତ୍ର, ରାଜ୍ୟର ଭାବୀ ଉତ୍ତରାଧିକାରୀ ।

**ଟିକାଏ**—ଗ୍ରା. ଅବ୍ୟ. ଟିକକ ଦେଖ, (ଗ୍ରା. କ୍ରି. ବିଂ.) ଅଳ୍ପକ୍ଷଣମାତ୍ର ।

**ଟିକାଗି(ଘେ)ନିବା**—ଗ୍ରା. କ୍ରି. ବସନ୍ତ ରୋଗର ଟିକା ନିଜଅଙ୍ଗରେ ଗ୍ରହଣ କରିବା, କପାଳରେ ଚିତା ଧାରଣ କରିବା ।

**ଟିକାପୁତ**—ଗ୍ରା. ବି. ଟିକାଇତ ଦେଖ ।

**ଟିକାଲଗି**—ଗ୍ରା. ବି. ବିବାହ ପ୍ରସଙ୍ଗରେ ରାଜାଙ୍କ ଘରେ କନ୍ୟାପକ୍ଷର ମୁରବୀ ବର ଘରକୁ ଯାଇ କରିବା ସ୍ୱୀକାର ବା ନିର୍ବନ୍ଧବିଧି ।

**ଟିକି**—ଗ୍ରା. ଅବ୍ୟ. (ପ୍ରଶ୍ନାର୍ଥକ-ନିଶ୍ଚୟାର୍ଥକ) ଗ୍ରା. ପୁଂ ଓ ସ୍ତ୍ରୀ. ବିଂ. ଅତି କ୍ଷୁଦ୍ର, ଗ୍ରା. ପ୍ରତ୍ୟୟ, ୨ୟା ବିଭକ୍ତି ଏକବଚନ, ଆଦର ବା ସ୍ନେହାର୍ଥ ।

**ଟିକିଏ**—ଗ୍ରା.ବି ଓ ବିଂ.(ସଂ-ସ୍ତୋକ) ଅତି କ୍ଷୁଦ୍ର, ଚକଟେ, କଣ୍ଟିଏ, (ଗ୍ରା. ଅବ୍ୟ.) ସାମାନ୍ୟ ପରିମାଣରେ, ଅଳ୍ପସମୟପାଇଁ ।

**ଟିକିଏମେଖିଏ**—ଗ୍ରା. ବି. ଅତି ସାମାନ୍ୟ ପରିମାଣ, ଚକଟେ, (ବିଂ)ଅତିସାମାନ୍ୟ, ଅଳ୍ପ ।

**ଟିକିଏମାତ୍ର**—ଗ୍ରା. ବି ଓ ବିଂ. ଟିକିଏ କଣିଏ ଦେଖ ।

**ଟିକିକ**—ଗ୍ରା.ଅବ୍ୟ.ବି ଓ ବିଂ. ଟିକକ ଦେଖ ।

**ଟିକିଟିକି**—ଗ୍ରା.ବି ଓ ବିଂ.ଟିକ୍‌ଟିକ୍‌ଦେଖ ।

**ଟିକିପିଲା**—ଗ୍ରା.ବି. ଅତିଛୋଟ ପିଲା, ଶିଶୁ ।

**ଟିକିଲି**—ଗ୍ରା. ବି. ସ୍ତ୍ରୀଲୋକମାନଙ୍କର ଭ୍ରୂଲତା ମଧ୍ୟରେ ଦେବା ପତଳା ଓ ଚକ୍ରାକାର ଟେପି ।

**ଟିଙ୍କ**—ଗ୍ରା. ବି. ( ସଂ-ଅଷ୍ଟପଦୀ ) ପଶୁଙ୍କ ଦେହରେ ଲାଗିରହିଥିବା ରକ୍ତଶୋଷକ ଅଷ୍ଟପଦୀ କୀଟବିଶେଷ ।

**ଟିଙ୍ଗ୍‌ଟିଙ୍ଗା**—ଗ୍ରା. ପୁଂ. ବିଂ. ଚଢ଼ଲ ।

**ଟିଙ୍ଗା**—ଗ୍ରା. ବି. ( ସଂ-ଶୃଙ୍ଗ ) ଲିଙ୍ଗର ଉତ୍ଥାନ ବା ଉଦ୍ରେକ, (ଗ୍ରା.ବିଂ) ଟିଙ୍ଗ୍‌ଶୂଳ ।

ଟିଙ୍ଗା(ଙ୍ଗେ)ଇବା—ଗ୍ରା. କ୍ରି. (ସଂ-ତୁଙ୍ଗ) (ଲିଙ୍ଗ) ଉଦ୍ଧୃତକରିବା ।

ଟିଙ୍ଗିଶୂଳା—ଗ୍ରା. ବିଂ. ପୁଂ. ଚଞ୍ଚଳ, ଯେ ସାମାନ୍ୟ କଥାରେ ରାଗିଉଠେ ।

ଟିଙ୍ଗିଶୂଳିଆ—ଗ୍ରା. ପୁଂ. ବିଂ. ଟିଙ୍ଗିଶୂଳା ଦେଖ ।

ଟିଚ୍କାର—ଗ୍ରା.ବି. (ସଂ-ଧିକ୍କାର) ଅବଜ୍ଞା, ନିନ୍ଦା ବା ଭର୍ତ୍ସନାସୂଚକ ଶବ୍ଦ ।

ଟିଟି—ଗ୍ରା. ବି. ପକ୍ଷୀବିଶେଷ ।

ଟିଟ୍ଟିଭ—ପୁଂ. ବି. (ଟିଟ୍ଟି+ଭାଷ+କ.ଥ) ପକ୍ଷୀବିଶେଷ, ଟିଟିର ପକ୍ଷୀ, ଟେଣ୍ଟେଇ ପକ୍ଷୀ ।

ଟିଟ୍ଟିଭକ—ପୁଂ. ବି. ( ଟିଟ୍ଟିଭ+କ ) ଟିଟ୍ଟିଭ ପକ୍ଷୀ, ଟିଟିର । [ ଶବ୍ଦ ।

ଟିଣ୍ଟିଣ୍—ଗ୍ରା.ଅବ୍ୟ. ଘଣ୍ଟିଆଡ ବାଜିବାର

ଟିଣ—ଗ୍ରା. ବି. ଟିନ୍ ବା ରଙ୍ଗନାମକ ଧାତୁ, ରଙ୍ଗ। ତରଳାହୋଇ ଲିପା ହୋଇଥିବା ଲୁହାର ଚଦର,ଦସ୍ତାଲିପା ଲୁହାର କୁଞ୍ଚୁକୁଞ୍ଚିଆ ଚଦର,ଟିଣପତ୍ରର ଜିନିଷ ।

ଟିଣା—ଗ୍ରା. ପୁଂ. ବିଂ. ରାଗୀ, ଯେ ଅଳ୍ପ-କଥାରେ ଚିଡ଼ିଯାଏ, ଚଞ୍ଚଳ, ଯେ ନିଜର ଅନ୍ୟାୟ ସ୍ୱୀକାର କରେ ନାହିଁ, (ବି) ଏକପ୍ରକାର ଘାସ ।

ଟିଣ୍ଡିନିକା—ସ୍ତ୍ରୀ. ବି. ଜଳଶିରିଷ ଗଛ, ଜୋକ ।

ଟିଣ୍ଡିଶ—ପୁଂ. ବି. ଭେଣ୍ଡୀ (ଫଳ) ।

ଟିନ୍‌ଟିନ୍—ଗ୍ରା.ଅବ୍ୟ. ଟିଣ୍ ଟିଣ୍ ଦେଖ ।

ଟିପ୍‌ଟିପ୍—ଗ୍ରା. ଅବ୍ୟ.(ବର୍ଷା)ଗ୍ରୋଟ ଗ୍ରୋଟ ଟୋପାରେ ପଡ଼ିବା ।

ଟିପ—ଗ୍ରା. ବି. ଅଙ୍ଗୁଳିର ଅଗ୍ରଭାଗ,ଅଙ୍ଗୁଳିର ଅଗପବ, ଦୁଇଆଙ୍ଗୁଠିର ଅଗ-ମଧ୍ୟରେ ଧରାଯିବା ( ଲୁଣଆଦିର ) ପରିମାଣ,ଆଙ୍ଗୁଠିର ଅଗ୍ରଭାଗ ଅନ୍ୟ ବସ୍ତୁ ଦେହରେ ଚୁପି ହୋଇଯାଇଥିବାର ଚିହ୍ନ, କରଜପତ୍ର, ତମସୁକ, ଟିପଚିହ୍ନ, ତାସ୍ ବା ଗଞ୍ଜପା ପାରରେ ୧ଠାରୁ ୧୦ ପର୍ଯ୍ୟନ୍ତ ସଂଖ୍ୟା ନିର୍ଦ୍ଦେଶକ ବିନ୍ଦୁ ।

ଟିପଗୁଳିବା—ଗ୍ରା.କ୍ରି. ଟିପଦେବା ଦେଖ, ଲେଖିବା, (ଲ.ଅର୍ଥ) କୌଣସି ବ୍ୟକ୍ତି ଅନ୍ୟଦ୍ୱାରା ବ୍ୟକ୍ତିଙ୍କୁ କଳଙ୍କ ଲଗାଇ-ଦେଇ ନ ଜାଣିଲାପରି ଭୁଲହୋଇ ବସିବା ।

ଟିପଚିହ୍ନ—ଗ୍ରା.ବି.ଆଙ୍ଗୁଠିର ଅଗ୍ରଭାଗରେ କାଳିଲଗାଇ ତଦ୍ୱାରା କାଗଜରେ ବସାଯିବା ଚିହ୍ନ ।

ଟିପଚିହ୍ନଦେବା—ଗ୍ରା. କ୍ରି. କୌଣସି ଦଲିଲ ସମ୍ପାଦନ କରିବାର ନିଦର୍ଶନ ସ୍ୱରୂପ (ଦଲିଲର ସମ୍ପାଦନକାରୀ ବ୍ୟକ୍ତି) କାଳିବୋଳା ବାମହାତ ବୁଢ଼ାଆଙ୍ଗୁଠିର ଛାପା ଲଗାଇବା ।

ଟିପଟାଣକରିବା—ଗ୍ରା. କ୍ରି. କୌଣସି ପଦାର୍ଥକୁ ଦୁଇଆଙ୍ଗୁଠିର ଟିପମଧ୍ୟରେ ଦୃଢ଼ଭାବରେ ଧରିବା ।

ଟିପଣା—ଗ୍ରା. ବି. (ସଂ-ଟିପ୍ପନ) ସ୍ମାରକ-ଲିପି, ଜାତକ ବା ଜନ୍ମପତ୍ରିକାରୁ ଉଦ୍ଧୃତ ସଂକ୍ଷିପ୍ତ ଲିପି, କୋଷ୍ଠୀ, ଆଙ୍ଗୁଠିରେ ଥିବା ଭିନ୍ନ ଭିନ୍ନ ଗାର ।

ଟିପଣୀ—ଗ୍ରା. ବି. ( ସଂ-ଟିପ୍ପନୀ ) ଟିପଣା ଦେଖ; ସଂକ୍ଷିପ୍ତ ଟୀକା ।

ଟିପା—ଗ୍ରା.ବି. (ସଂ-ଟିପ୍ପଣୀ) ଲେଖିରଖି-ଥିବା ସ୍ମାରକ ଟୀକା, ସଂକ୍ଷିପ୍ତନୋଟ୍, ଚିତା, ଟୋପା, ମଇଁଷିଙ୍କ ବେକରେ ବନ୍ଧାହୋଇଥିବା ଗୋଟିଏ ପୋଲ ବାଉଁଶନଳି ଓ ତାହାର ଦୁଇ ପାଖରେ ଝୁଲୁଥିବା ଦୁଇଖଣ୍ଡ କାଠି,ପାଇକମାନେ ବାଆଁ ହାତରେ ଧରିବା ଗୋଲକୋଣିଆ ଢାଲ, କୁହୁଁରେ ସିଲଇ କରିବା କର୍ମ, (ପ୍ରା. ସମ୍ବ. ବି.) ବସନ୍ତନିବାରକ ଟୀକା ।

ଟିପା(ପେ)ଇବା—ଗ୍ରା. କ୍ରି. ଗୋଡ଼ର ଅଗ୍ରଭାଗକୁ ଭୂମିରେ ଲଗାଇ ଗ୍ରୋଟେଇ ଗ୍ରୋଟେଇ ଚାଲିବା,ଟିପିବାର ଣିଜନ୍ତରୂପ

ଟିପାଟିପି—ଗ୍ରା. ବି. ଅନ୍ୟୋନ୍ୟରେ ଠାରାଠାରି, ଠାରଠୁର, ସଂକ୍ଷେପରେ ଲେଖିବା, ସ୍ମାରକ ଲିପି, ଗୋପନରେ କଥାଭାଷା ।

ଟିପାରା—ଗ୍ରା.ବି.(ସଂ-ତ୍ରିପୁରା)ବଙ୍ଗଦେଶସ୍ଥ ତ୍ରିପୁରାରାଜ୍ୟ ।

ଟିପି—ପ୍ରା. (ସମ୍ବ.) ବି.ଅଗ, ଅଗ୍ରଭାଗ ।

ଟିପିଚଢ଼େଇ—ଗ୍ରା.ବି.କ୍ଷୁଦ୍ର ପକ୍ଷି ବିଶେଷ ।

ଟିପିଟିପି—ଗ୍ରା.ଅବ୍ୟ.ଟିପିଟିପି ଦେଖ ।

ଟିପିବା—ଗ୍ରା.କ୍ରି.ନଖଆଦି ଦ୍ୱାରା ସାମାନ୍ୟ ଆଘାତ କରିବା, ଅଙ୍ଗମାନଙ୍କୁ ଅଙ୍ଗୁଠି-ଟିପଦ୍ୱାରା ଚୁପିବା, ସ୍ମରଣାର୍ଥ କୌଣସି ବିଷୟ ସଂକ୍ଷେପରେ ଲେଖିରଖିବା, ନୋଟ୍ କରିବା, ଠାର ବା ସଙ୍କେତ ଦ୍ୱାରା କୌଣସି ଭାବ ପ୍ରକାଶ କରିବା, କାନରେ ତୁନିକରି କହିବା, ଗୋପ-ନରେ କହିବା, ଉତ୍ତେଜିତ କରିବା, ସିଲଇ କରିବା ।

ଟିପୁଶାହ—ଆର୍କଟର ଜଣେ ପ୍ରସିଦ୍ଧ ମୁସଲମାନ ଫକୀର ।

ଟିପୁସୁଲତାନ୍—ମହୀସୁରରାଜା ହାଇଦର ଆଲିଙ୍କ ପୁତ୍ର ।

ଟିପେ—ଗ୍ରା. ବି. ବିଂ. ଚିମୁଟାଏ, ଟିପରେ ଧରିବା ଭଳି,(ଗ୍ରା. କ୍ରି. ବିଂ)ଲେଶମାତ୍ର, ସାମାନ୍ୟ ପରିମାଣରେ ।

ଟିପେଇ—ଗ୍ରା. ବି. ( ସଂ-ତ୍ରିପଦୀ ) ତିନି ଗୋଡ଼ିଆ ଷ୍ଟୁଲ ବା ଗ୍ରୋଟ ଚଉକି, ଶଗଡ଼ର ଟୁଁରମୁଣ୍ଡିକୁ ଟେକି ଧରିବାର ଠେଙ୍ଗା ।

ଟିମ—ଗ୍ରା. ପୁଂ. ବି. (ସଂ-ଡିମ୍ବ) ଶିଶୁ, ହୃଷ୍ଟପୁଷ୍ଟ ବାଙ୍ଗର ବ୍ୟକ୍ତି, (ବିଂ)ଯାହା-ପେଟ ଟୁମାଟୁମ୍ ହୋଇ ଫୁଲିଥାଏ, ବାଙ୍ଗୁର ଓ ସ୍ଥୂଳକାୟ (ବ୍ୟକ୍ତି) ।

ଟିମା—ଗ୍ରା. ବି ଓ ବିଂ. ପୁଂ ଓ ସ୍ତ୍ରୀ. ଟିମ ଦେଖ ।

ଟିମା(ମେ)ଇବା—ଗ୍ରା. କ୍ରି. ପୂର୍ଣ୍ଣ ପାନ ଭୋଜନ ବା ବାୟୁଦୋଷ ଯୋଗୁଁ (ପେଟ) ଢୋଲଭଳି ଫୁଲିବା ।

ଟିମ୍ବିର—ପ୍ରା. (ଗଞ୍ଜାମ) ବି. ବରୁଡ଼ ।

ଟିରିକ—ଗ୍ରା. ବି. (ସଂ-ତୀର)ମେରୁଦଣ୍ଡର ନିମ୍ନସ୍ଥାନ, ଗୁହ୍ୟଦ୍ୱାର ।

ଟିଲ୍—ଗ୍ରା. ବି. କେହିକାହାକୁ ଗୁଣ ପକା-ଇବା ସମୟରେ ଗୁଣର ଦୋଷ ବାଧିବ ନାହିଁ ବୋଲି ଦ୍ୱିତୀୟ ବ୍ୟକ୍ତିର ତର୍ଜନୀ ଓ ମଧ୍ୟମା ଅଙ୍ଗୁଳିକୁ ଛନ୍ଦି ରଖିବା ।

ଟିଲ୍ଲ—ପ୍ରା. (ମେଦନା) ବି. ଖାଲଜମିକୁ ଘେରିଥିବା ଉଚ୍ଚଜମି ।

ଟିହ୍ଵା—ଗ୍ରା. ବି. ଟିଆ ଦେଖ ।

ଟିହ୍ଵାଟେହ୍ଵ—ଗ୍ରା. ବି. କୌଣସି କୁକାର୍ଯ୍ୟ ନିମନ୍ତେ ଉତ୍ତେଜିତ କରିବା ।

ଟିହୁଙ୍କିବା—ଗ୍ରା. କ୍ରି. ଉତ୍କ୍ଷିପ୍ତହେବା ।

ଟୀକା—ସ୍ତ୍ରୀ. ବି. (ଟୀକ+ଭା.ଅ+ଆ) ସବିସ୍ତରବ୍ୟାଖ୍ୟା, ବିବୃତି, ବ୍ୟାଖ୍ୟାନ, ଗ୍ରନ୍ଥର ଅର୍ଥର ବିଶଦୀକରଣ ।

ଟୀକାକାର—ପୁଂ. ବି. (ଟୀକା+କୃ+କ. ଅ) ବ୍ୟାଖ୍ୟାର ପ୍ରଣେତା ।

ଟୀଙ୍କରି—ପ୍ରା. (ସମ୍ବ)ବି. ହୁଙ୍କା ।

ଟୁଆଁ—ଗ୍ରା.ବିଂ.(ସଂ-ସ୍ତୋକ)କ୍ଷୁଦ୍ର,ଟିକି ।

ଟୁଆଲ—ପ୍ରା.(ଗଞ୍ଜା)ବି. ମୋଟ ଓ ଶ୍ରେଷ୍ଠ ଗାମୁଛା ।

ଟୁଇଁଟାଇଁହେବା—ଗ୍ରା. କ୍ରି. ଲୁଚି ଲୁଚି ହୋଇ କଥାଭାଷା ହେବା ।

ଟୁଇଁବା—ଗ୍ରା. କ୍ରି. ବଥ ବା ଫୋଟକାକୁ ଫୋଡ଼ିବା ।

ଟୁଇଲ୍—ଯା. ବି. ଏକଜାତୀୟ ମୋଟା ଓ ଚିକ୍କଣ ସୂତାଲୁଗା ।

ଟୁଁ—ଗ୍ରା. ଅବ୍ୟ. ମୃଦୁ ମଧୁର ଧ୍ଵନି ।

ଟୁଁଟାଁ—ଗ୍ରା. ଅବ୍ୟ. ମୃଦୁ ମଧୁର ଧ୍ଵନି ।

ଟୁକ୍‌ଟାକ୍—ଗ୍ରା. ଅବ୍ୟ. ଟକ୍‌ଟକ୍ ଦେଖ ।

ଟୁକ୍‌ନା—ପ୍ରା.(ସମ୍ବ) ବି. ଗୋରୁଙ୍କୁ କୁଣ୍ଡା ଓ ତୋରାଣି ଖୁଆଇବା ପାଇଁ ବ୍ୟବହୃତ କୁଣ୍ଡବିଶେଷ ।

ଟୁକ୍‌ରି—ଗ୍ରା. ବି. ଟୁକୁରି ଦେଖ ।

ଟୁକି—ଗ୍ରା.ବି.(ସଂ-ସ୍ତୋକ)ଚିଭିଜନପ୍ରିୟ ।

ଟୁକଣା—ପ୍ରା.(ବାଲେ)ବି.କ୍ଷୁଦ୍ର ଜଳପାତ୍ର, (ଗ୍ରା.ବି) ଟୁକୁଣା ଦେଖ ।

ଟୁକନା—ପ୍ରା. (ବସ୍ତର)ବି. ଟୋକେଇ ।

ଟୁକା—ଗ୍ରା. ବି. ଟୋକା ଦେଖ ।

ଟୁକିବା—ଗ୍ରା.କ୍ରି. (ସଂ-ସ୍ତୋକ) ଶସ୍ୟାଦି ଟିକ ଟିକ ଗୋଟାଇବା, ଟିକ ଖୁଣ୍ଟି ଖାଇବା ।

ଟୁକୀ—ଗ୍ରା. ବି. ପଥରେଗିନା, ପଥୁରି ।

ଟୁକୁଟୁକୁ—ଗ୍ରା.ଅବ୍ୟ. ଓ ବିଂର ବିଂ. ଟକ୍‌ଟକ୍ ଦେଖ ।

ଟୁକୁଣା—ଗ୍ରା. ବି. ପିତଳର ଶ୍ରେଷ୍ଠ ଗରା ବା ଡାଲ ବା ପାକପାତ୍ର ।

ଟୁକୁରା—ଗ୍ରା.ବି.(ସଂ-ସ୍ତୋକ) କ୍ଷୁଦ୍ର ଅଂଶ ବା ଖଣ୍ଡ, ଟିକି ଅଂଶ ବା ଭାଗ ।

ଟୁକୁରାଟୁକୁରାକରିବା—ଗ୍ରା.କ୍ରି. ଖଣ୍ଡଖଣ୍ଡ କରି ବିଭକ୍ତ କରିବା, ଟିକିଟିକିକରିବା ।

ଟୁକୁଲ—ପ୍ରା. (କଳାହାଣ୍ଡି. ବାଲେ.ସମ୍ବ) ବି. ଟୋକା ଦେଖ ।

ଟୁକୁଲି—ଗ୍ରା. ବି. ବାଳିକା ।

ଟୁଙ୍ଗ୍‌ଟାଙ୍ଗ୍—ଗ୍ରା.ଅବ୍ୟ.ଟଙ୍ଗଟାଙ୍ଗ ଦେଖ ।

ଟୁଙ୍ଗ୍‌ଟୁଙ୍ଗ୍—ଗ୍ରା.ଅବ୍ୟ.ଟଙ୍ଗଟଙ୍ଗ, ଧୀରଭାବରେ (ଗଡ଼ିକରି),ଗୋଟିଏ ଗୋଟିଏ ଗୁଳିକରି ।

ଟୁଙ୍ଗର—ପ୍ରା(ସିଂହଭୂମ)ବି. ଶ୍ରେଷ୍ଠ ପାହାଡ଼ ।

ଟୁଙ୍ଗା—ଗ୍ରା.ବି. (ସଂ-ତୁଙ୍ଗ) କ୍ଷତ୍ରିୟମାନଙ୍କର ବଂଶାନୁଗତ ଉପାଧି ବିଶେଷ ।

ଟୁଙ୍ଗି—ଗ୍ରା. ବି. କ୍ଷୁଦ୍ର ଗୃହ ।

ଟୁଙ୍ଗେଇବା—ଗ୍ରା. କ୍ରି. ମୁଣ୍ଡକୁ ଉପରୁ ତଳକୁ ଓ ତଳୁ ଉପରକୁ ହଲାଇବା, ଟୁଙ୍ଗାରିବା, ଟିକିଟିକି କରି ହାଣିବା, କୋଚେଇବା ।

ଟୁଣ୍ଟୁଣ୍—ଗ୍ରା.ଅବ୍ୟ.ଘଣ୍ଟି ବାଜିବାର ଶବ୍ଦ, (ବିଂ) ପ୍ରସବୋନ୍ମୁଖୀ, ଆସନ୍ନପ୍ରସବା ।

ଟୁଣା—ଗ୍ରା.ବି.(ସଂ-ତନ୍ତ୍ର) ଗାରଡ଼ି, ଗୁଣିବିଦ୍ୟା, ମନ୍ତ୍ରଯନ୍ତ୍ର ।

ଟୁଣାବାଜ୍—ଗ୍ରା. ବି. ଗୁଣିଆ, ଗାରଡ଼ିଆ, ଗୁଣି ବିଦ୍ୟାରେ ନିପୁଣ ।

ଟୁଣୁକା—ଗ୍ରା. ବି. ଜଡ଼ିବୁଟି, ସାମାନ୍ୟ ଉପାଦାନବିଶିଷ୍ଟ ଔଷଧ, ମନ୍ତ୍ରଯନ୍ତ୍ର, ଗୁଣିବିଦ୍ୟା ।

ଟୁଣ୍ଟୁକି—ପୁଂ.ବି.(ଟୁଣ୍ଟୁ+କୈ+ଅ)ପକ୍ଷୀବିଶେଷ, ଶ୍ୟୋନାକ ବୃକ୍ଷ, ଫଣଫଣାଗଛ, କୃଷ୍ଣ ଖଦିର ବୃକ୍ଷ, (ବିଂ) ଅଲ୍ପନ୍ତୁର, (ସ୍ତ୍ରୀ) ଟଙ୍କମାବୃକ୍ଷ ।

ଟୁନାକା—ସ୍ତ୍ରୀ. ବି. ତାଳମୂଳୀ ଗଛ ।

ଟୁପ୍—ଗ୍ରା. ଅବ୍ୟ. ଟୁପ୍‌ଟୁପ୍ ଦେଖ ।

ଟୁପ୍‌ଟୁପ୍—ଗ୍ରା.ଅବ୍ୟ.ଧୀରେ ଧୀରେ ବର୍ଷା ହେବାର ଶବ୍ଦ, ଅନୁଚ୍ଚସ୍ଵରରେ ଦୁଇ ବା ତତୋଧିକ ବ୍ୟକ୍ତିଙ୍କର କଥାବାର୍ତ୍ତା ହେବାର ଶବ୍ଦ, ଫୁସ୍‌ଫୁସ୍ ।

ଟୁପ୍‌ଟୁପିଆ—ପ୍ରା. (ସମ୍ବ) ବି. ଗୋଳା, ମୁଣିଆଁ ।

ଟୁପ୍‌ଲି—ପ୍ରା.(ସମ୍ବ)ବି.ଶ୍ରେଷ୍ଠ ଟୋକେଇ ।

ଟୁପର—ପ୍ରା. (ସମ୍ବ) ବି. ଅଧପୋଟଳ, (ବିଂ) ନାଲି, ରକ୍ତାଭ ।

ଟୁପା—ପ୍ରା. (ସମ୍ବ)ବି. ବଡ଼ ଟୋକେଇ, (ପ୍ରା.ସିଂହ ବି) ପାଚିଆ, ବାଉଁଶିଆ ।

ଟୁପି—ଗ୍ରା. ବି. ଟୋପି ।

ଟୁପୁର୍‌ଟୁପୁର୍—ଗ୍ରା. ବି. ଟୁପ୍‌ଟୁପ୍ ଦେଖ ।

ଟୁବ—ଗ୍ରା. ବି. ଶ୍ରେଷ୍ଠ ଜଳପୂର୍ଣ୍ଣ ଗାଡ଼ି, ଅତି କ୍ଷୁଦ୍ର ଜଳାଶୟ, ଖାତ ।

ଟୁବା—ଗ୍ରା.ବି. ପାଣିରେ ବୁଡ଼ିବା, ଡୁବା, ପାଣିରେ ହାତ ବାଡ଼େଇବାର ଶବ୍ଦ ।

ଟୁମା(ମେ)ଇବା—ଗ୍ରା. କ୍ରି. ପୂଯପୂର୍ଣ୍ଣ କୌଣସି ବ୍ରଣ ଫାଟି ନ ଯାଇ ଫୁଲିଉଠିବା, ( ଜଳାଶୟ ) ମୁହଁ ପର୍ଯ୍ୟନ୍ତ ଜଳରେ ପୂର୍ଣ୍ଣହେବା ।

ଟୁର—ପ୍ରା. (ସମ୍ବଲ) ବି. ସ୍ତ୍ରୀଲୋକଙ୍କର ଗୋଡ଼ରେ ପିନ୍ଧିବା ବଳୟ ବା ଅଳଂକାରବିଶେଷ ।

ଟୁରା—ଗ୍ରା. ବି. ପିତୃମାତୃହୀନ ଶିଶୁ, ଚିଛମୁଣ୍ଡ ପିଲା, (ବିଂ) ଠୁରା, ବାଙ୍ଗର, ପିତୃମାତୃହୀନ ।

ଟୁଲ୍‌ଟୁଲ—ଗ୍ରା.ବିଂ. ଟଳଟଳ, ଅତିକ୍ଷୀଣ, ଛୁଲାଉଥିବା ।

ଟୁଲି—ଗ୍ରା. ବି. ଛିଦ୍ର, କଣା, ପଡ଼ାଗାଁ, ଶ୍ରେଷ୍ଠ ଗାଁ, ଚେପା,(ବିଂ) ଚେପା ହୋଇ ଯାଇଥିବା (ପାତ୍ରାଦି) ।

ଟୁଲି—ଗ୍ରା. ବି. ଧାନ କ୍ଷେତରେ ହେବା ଏକପ୍ରକାର ଘାସ ।

ଟୁସିକଲିସ—ଗ୍ରା.ବି. ଏକପ୍ରକାର ଶ୍ରେଷ୍ଠ କଲସ ଓ ତାହାର ଗଛ ।

ଟେ—ଗ୍ରା.ପ୍ରତ୍ୟୟ, (ଅନାଦରାର୍ଥକ)ଟାଏ, ଗୋଟାଏ, ଏକଗୋଟା ।

ଟେଁଟେଁ—ଗ୍ରା.ଅବ୍ୟ.ଟିଟ୍ଟିଭପକ୍ଷୀର ଧ୍ଵନ୍ୟନୁକରଣ ।

ଟେକ—ଗ୍ରା.ବି.ମହତ୍ତ୍ଵ, ସମ୍ମାନ,ମର୍ଯ୍ୟାଦା, ଆଧିକ୍ୟ, ପ୍ରାଧାନ୍ୟ, ପ୍ରଶଂସା, ଗର୍ବ,

ଅଭିମାନ, ସୁନାମ, (ଗ୍ରା. ବି°) ଶ୍ରେଷ୍ଠ, ଉତ୍କୃଷ୍ଟ ।

ଟେକନ୍ହା—ଗ୍ରା.(ଦେଶ୍ର)ବି°. ଅଖାଡ଼ୁଆ ।

ଟେକା—ଗ୍ରା. ବି. (ସଂ-ଲୋଷ୍ଟ୍ରକ)ଟେଲା, ମାଟି, ଇଟା ବା ପଥରର ଛୋଟ ଖଣ୍ଡ, (ଗ୍ରା.ବି )ଉତ୍ତୋଳିତ,ଟେକିବା(ବ୍ୟକ୍ତି) ।

ଟେକାଟେକି—ଗ୍ରା.ବି.ଧରାଧରି, ଉପରକୁ ଉଠାଇବା, ପରସ୍ପରର ପ୍ରଶଂସା, ଆତ୍ମ-ପ୍ରଶଂସା ।

ଟେକାଦୁଧ—ଗ୍ରା.ବି. ମାତୃସ୍ତନର ଅଭାବ-ବଶତଃ ସ୍ତନ୍ୟପାୟୀ ଶିଶୁମାନଙ୍କ ନିମନ୍ତେ ବ୍ୟବହୃତ ଗାଈଦୁଧ ।

ଟେକାପକାଇବା—ଗ୍ରା. କ୍ରି. ଟେକା-ମାରିବା ଦେଖ ।

ଟେକାପାଣି—ଗ୍ରା.ବି. କୂପରୁ ଉତ୍ତୋଳିତ ଜଳ, କୂଅପାଣି ।

ଟେକାପାଣି ଟେକାଭାତ—ଗ୍ରା.ବି.ସମାଜ-ଚ୍ୟୁତ ବା ଅସ୍ପୃଶ୍ୟ ବ୍ୟକ୍ତିକୁ ନ ଛୁଇଁ ତାହାକୁ ଦେବା ପାଣି ଓ ଭାତ ।

ଟେକାଫାନ୍ଦ—ଗ୍ରା.ବି.ପଶୁପକ୍ଷୀ ଧରିବାର ଏକପ୍ରକାର ଫାସ ବା ଫାନ୍ଦ ।

ଟେକାମାରିବା—ଗ୍ରା. କ୍ରି. ଦୂରସ୍ଥିତ କୌଣସି ଜୀବ ବା ବସ୍ତୁକୁ ଲକ୍ଷ୍ୟକରି ଟେକାକୁ ଜୋରରେ ଫିଙ୍ଗିବା ।

ଟେକିଟାକିଦେବା—ଗ୍ରା.କ୍ରି. ତଳୁ ସମ୍ପୂର୍ଣ୍ଣ ରୂପେ ଉଠାଇବା, ବିଶେଷ ପ୍ରଶଂସା କରିବା ।

ଟେକିଦେବା—ଗ୍ରା.କ୍ରି. କୌଣସି ବସ୍ତୁ ବା ପୁତ୍ର ବା କନ୍ୟାକୁ ହାତରେ ଧରି ବା ଉଠାଇ ଅନ୍ୟ ବ୍ୟକ୍ତିର ହସ୍ତରେ ଅର୍ପଣ କରିବା, ତଳୁ ଉପରକୁ ଉଠାଇବା ।

ଟେକିବା—ଗ୍ରା. କ୍ରି. ଉତ୍ତୋଳନ କରିବା, ଉଠାଇବା, ପ୍ରଣ ସାବିତିବା, ଖୋସା-ମତ କରିବା, (ସ୍ୱରକୁ) ଅପେକ୍ଷାକୃତ ଉଚ୍ଚ କରିବା, (ବେଗ) ବଢ଼ିବା, ତଳୁ-ସମ୍ପୂର୍ଣ୍ଣରୂପେ ଉଠାଇବା, ( ଲ:ଅର୍ଥ ) ଅନ୍ୟର ମୁଖକୁ ସାହାସ ସହିତ ଗ୍ରହିବା, ନେବା, ଲୋଇବା, ନିମ୍ନତର ବସ୍ତୁକୁ ଉଚ୍ଚତର କରିବା ।

ଟେକିହେବା—ଗ୍ରା. କ୍ରି. ଆତ୍ମପ୍ରଶଂସା କରିବା, ଉପରକୁ ଉଠାଯିବା ।

ଟେକେର—ପ୍ରା. (ସମ୍ବ)ବି. ବାରୁଡ଼ି ।

ଟେଙ୍ଗଟା—ପ୍ରା. (ସମ୍ବ)ବି. ଏଣ୍ଡୁଅ ।

ଟେଙ୍ଗନା—ପ୍ରା. (ସମ୍ବ)ବି. କଣ୍ଠିଆମାଛ ।

ଟେଙ୍ଗର—ପ୍ରା.(ବାଲେ)ବି.ହାଡ଼ଗୋଡ଼ ।

ଟେଙ୍ଗ(ଙ୍ଗେ)ଇବା—ଗ୍ରା. କ୍ରି. ଟିଙ୍ଗାଇବା ଦେଖ ।

ଟେଟେଙ୍ଗା—ପ୍ରା. (ସମ୍ବ)ବି. ଏଣ୍ଡୁଅ ।

ଟେଣ୍ଟମେଣ୍ଟ—ପ୍ରା. (ଗଞ୍ଜା) ବି. ଲିଖିତ ବର୍ଣ୍ଣନାପତ୍ର ।

ଟେଣ୍ଟେଇ—ଗ୍ରା. ବି. ଟିଟ୍ଟିଭ ଦେଖ ।

ଟେଣ୍ଟେଇଗୋଡ଼—ଗ୍ରା.ବି. ନଳୀଗୋଡ଼ ।

ଟେଣ୍ଟେଇଗୋଡ଼ୀ—ଗ୍ରା. ସ୍ତ୍ରୀ. ବି. ଯେଉଁ ସ୍ତ୍ରୀର ଗୋଡ଼ ଟେଣ୍ଟେଇ ଚଢ଼େଇର ଗୋଡ଼ପରି ସରୁ ଓ ଲମ୍ବ ।

ଟେଣ୍ଡର—ଯା.ବି.କୌଣସି କାର୍ଯ୍ୟ ନିର୍ଦ୍ଦିଷ୍ଟ ରେଟ୍‌ରେ ଠିକାରେ କରିବା ପାଇଁ ଉମେଦୁଆର ଲୋକମାନଙ୍କ ପ୍ରସ୍ତାବ ।

ଟେନ—ପ୍ରା. (ସମ୍ବ)ବି°. ଅତି ଶ୍ରେଷ୍ଠ ।

ଟେନିସ୍—ଯା. ବି. ହାଲୁକା ପେଣ୍ଡୁ ଓ ଜାଲଚଟ ଆକାରର ବେଣ୍ଟଥିବା ବାଟ୍ ଦ୍ୱାରା ମଝିରେ ଥିବା ଜାଲ ବାଡ଼ର ଦୁଇ ପାଖରେ ଦୁଇଦଳ ବିପକ୍ଷ ଖେଳା-ଳିଙ୍କ ମଧ୍ୟରେ ଖେଳାଯିବା ଏକ-ପ୍ରକାର ଖେଳ ।

ଟେପାଘର—ପ୍ରା. (ଗଞ୍ଜା)ବି. ଡାକଘର ।

ଟେବୁଲ୍—ଯା. ବି. ମେଜ, ପାଦବିଶିଷ୍ଟ କାଷ୍ଠ ବା ପ୍ରସ୍ତରାଦିର ପଟା ।

ଟେମ୍—ପ୍ରା. (ସମ୍ବ)ବି. ଆଡ଼ମ୍ବର ।

ଟେମୁରୁ—ପ୍ରା. (ବସ୍ତର)ବି. କେନ୍ଦୁ ।

ଟେର୍—ଗ୍ରା. ବି. (ଫ-ତାର୍ଯ୍ୟକ୍) ତଥ୍ୟ-ସମ୍ବାଦ, ସୂଚନା, ଜାନାରି, ପ୍ରମାଣ, ଅନୁସନ୍ଧାନ, ଇସାରା, ଦର୍ଶନ, ସୀମା, ଶେଷ, ଚିହ୍ନମାତ୍ର, ସନ୍ଧି ।

ଟେର—ବି°. ବକ୍ରଚକ୍ଷୁବିଶିଷ୍ଟ, ଟେରା ।

ଟେରକ—କ୍ରି.ବି°.ବକ୍ରଚକ୍ଷୁବିଶିଷ୍ଟ, ଟେର

ଟେରା—ଗ୍ରା. ପୁଂ. ବି°. ଯାହାର ଆଖି-ଡୋଳା ଠିକ୍ ମଧ୍ୟ ସ୍ଥାନରେ ନାହିଁ, ବକ୍ରଚକ୍ଷୁ, (ବି) ତମ୍ବୁ, ପଟ୍ଟଭବନ, ଲୁଗାର ପରଦା ।

ଟେରାଇ—ଗ୍ରା. ବି. ହିମାଳୟପର୍ବତର ପାଦଦେଶସ୍ଥ ନୀଚ ଭୂମି ।

ଟେରାଇବା—ଗ୍ରା.କ୍ରି.ବକ୍ରଦୃଷ୍ଟିରେ ଗ୍ରହିବା

ଟେରାଷ—ପୁଂ. ବି°.(ବ.ଗ୍ରା)ଟେରା, ଯେ ବଙ୍କାଇକରି ଗ୍ରହେଁ ।

ଟେରାଫିଟା—ଗ୍ରା. ବି. ଦେବତାଙ୍କର ଦ୍ୱିପ୍ରହର ଧୂପପରେ ଯାତ୍ରୀମାନଙ୍କର ଦର୍ଶନ କରିବାର ଅବସର, ଦେବତା-ଙ୍କର ସକାଳ ଧୂପଆଦି ଉତ୍ତାରଧୂପର ପୂଜାର ସମାପ୍ତି ।

ଟେରାବାଡ଼—ଗ୍ରା. ବି. କନାଟିବାଡ଼, ବସ୍ତ୍ର ନିର୍ମିତ ଯବନିକା, ପରଦା ।

ଟେରି—ବି. (ଫ-ତାର୍ଯ୍ୟକ୍) ମୁଣ୍ଡ ବାଳର ତାର୍ଯ୍ୟକ ବିନ୍ୟାସ, ଫିଟେଇ ।

ଟେରୀ—ଗ୍ରା. ସ୍ତ୍ରୀ. ବି°.ଟେରାର ସ୍ତ୍ରୀଲିଙ୍ଗ, ବକ୍ରଚକ୍ଷୁ ବିଶିଷ୍ଟା (ସ୍ତ୍ରୀ) ।

ଟେରୁ—ଗ୍ରା.ବି°. (ସଂ-ଟେରକ) ଟେରା ।

ଟେରେଇଟେରେଇଗ୍ରହିବା —ଗ୍ରା. କ୍ରି. ଟେରାଇବା ଦେଖ ।

ଟେଲା—ଗ୍ରା. ବି. (ସଂ-ଦଳ)ବଡ଼ଟେକା, ଲୋଷ୍ଟ୍ର,ଢେଲା, ମାଟିର ବଡ଼ ବଡ଼ ଖଣ୍ଡ, ( ମାଛ ମାଂସଆଦିର ) ବଡ଼ ବଡ଼ ଖଣ୍ଡ ବା ମୁଣ୍ଡା ।

ଟେଲିଗ୍ରାଫ୍—ଯା.ବି.ବିଦ୍ୟୁତ୍ ସାହାଯ୍ୟରେ ତାରଦ୍ୱାରା ଏକସ୍ଥାନରୁ ଅନ୍ୟସ୍ଥାନକୁ ଲିଖିତ ସମ୍ବାଦ ପ୍ରେରଣ କରିବାର ପ୍ରକ୍ରିୟା ।

ଟେଲିଗ୍ରାମ—ଯା.ବି.ଟେଲିଗ୍ରାଫ୍ ଦେଖ ।

ଟେଲିପାଥୀ—ଯା. ବି. ମାନସିକ ଶକ୍ତି ବଳରେ ଦୂରସ୍ଥ ବ୍ୟକ୍ତିର ମନକୁ ଠଉ-ରାଇବା ବା ଜାଣିବା ପ୍ରକ୍ରିୟା ।

ଟେଲିଫୋନ୍—ଯା. ବି. ଦୂରସ୍ଥ ବ୍ୟକ୍ତିଙ୍କସଙ୍ଗେ ବୈଦ୍ୟୁତିକ ତାର ସାହାଯ୍ୟରେ କଥବାର୍ତ୍ତା ହେବାପାଇଁ ବ୍ୟବହୃତ ଯନ୍ତ୍ରବିଶେଷ ।

ଟେଲିସ୍କୋପ—ଯା.ବି.ଦୂର ବୀକ୍ଷଣଯନ୍ତ୍ର ।

ଟେହ୍ଲବା—ଗ୍ରା. କ୍ରି. ଟେଇବା ଦେଖ ।

ଟୋକଚଳିବା—ଗ୍ରା.ବି. ସାମାନ୍ୟପ୍ରକାରେ ଖାଇବା ନିର୍ବାହ ଚଳିବା ।

ଟୋକଣା—ଗ୍ରା. ବି. ବଡ଼ ପିତ୍ତଳ ହଣ୍ଡା ।

ଟୋକରା(ରେ)ଇବା--ଗ୍ରା.କ୍ରି.ଠୋକରା-ଇବା ଦେଖ ।

ଟୋକା—ଗ୍ରା. ବି. (ସଂ-ତୋକ) ପିଲା, ବାଳକ, ଯୁବକ,ଅନୁଭବହୀନ ଯୁବକ, ଅପରିଣତ ବୟସ୍କ ଯୁବକ ।

ଟୋକା(କୋ)ଇ—ଗ୍ରା. ବି. ବାଉଁଶ ବା ବେତ ପାଉଆରେ ବୁଣା ଛୋଟ ବୋଝ

ଟୋକାଟାକର—ଗ୍ରା. ବି. ବାଳକମାନେ, ଅପରିଣତ ଓ ଅନୁଭବହୀନ ଯୁବକଗଣ ।

ଟୋକାଟାକିଆ—ଗ୍ରା.ବିଂ. ବାଳସୁଲଭ, ବାଳୋଚିତ, ଚପଳ, (ଗ୍ରା.ବି.) ଟୋକା-ଟାକର ଦେଖ ।

ଟୋକାଳିଆ—ଗ୍ରା. ବିଂ. ବାଳସୁଲଭ, ବାଳୋଚିତ, ଯୁବକସୁଲଭ ।

ଟୋକିବା—ଗ୍ରା. କ୍ରି. ଟିପିବା, ଦୋଷ ଦେଖାଇବା, ବାରିବା, ବୁଣାଯାଇଥିବା କୌଣସି କ୍ଷୁଦ୍ର ପଦାର୍ଥ ଭୂମିରୁ ଖୁଣ୍ଟି-କରି ଖାଇବା,ଖୁଣ୍ଟିବା,ଚଣାଆଦି କଠିନ ପଦାର୍ଥକୁ ଗୋଟି ଗୋଟି କରି ଖାଇବା, ମୂଷା ପୁସ୍ତକାଦିକୁ ଛିନ୍ନ କରିବା ।

ଟୋକେଇକୁଣ୍ଢେଇ—ଗ୍ରା. ବି. ଗୃହର ପ୍ରୟୋଜନୀୟ କ୍ଷୁଦ୍ର କ୍ଷୁଦ୍ର ଉପକରଣ-ମାନ ।

ଟୋଟ(ଟା)ଲ—ଯା. ବି ଏକାଧିକ ସଂଖ୍ୟାର ସମଷ୍ଟି, ମିଶାଣ ।

ଟୋଟା—ଗ୍ରା. ବି. ବନ୍ଧୁକରେ ପୂରାଇ ଫାଏର କରିବା ନିମନ୍ତେ ପ୍ରସ୍ତୁତ ବାରୁଦ ଓ ଗୁଳିପୂର୍ଣ୍ଣ ନଳୀ, କାରତୁଷ ।

ଟୋଡ଼ରମଲ—ଗ୍ରା. ବି. ସମ୍ରାଟ-ସାହାଜାହାନଙ୍କର ଜନୈକ ସଭାସଦ ।

ଟୋଡ଼ର—ପ୍ରା.(ଭବିଷ୍ୟପୁରାଣ)(ବି). ବେଙ୍ଗ ।

ଟୋପ—ଗ୍ରା.ବି.ଚୁଆ, ଭୂମିରେ ଖୋଳା-ହେବା ଗର୍ତ୍ତ, ଗାଡ଼, ଅନ୍ଧକୂପ,ବଣ-ହାତୀଙ୍କୁ ଧରିବା ପାଇଁ ଭୂମିରେ ଖୋଳାହେବା ଗାତ, (ଲକ୍ଷଣାର୍ଥ) କୌଣସି ବ୍ୟକ୍ତିକୁ ବିପନ୍ନ କରିବା-ପାଇଁ ସୂକ୍ଷ୍ମ କୌଶଳ,ଟୋପି, ଟୋପର ଦେଖ ।

ଟୋପଚଉର—ଗ୍ରା.ବି. ବାହ୍ୟ ଆଚରଣ ।

ଟୋପର—ଗ୍ରା.ବି. (ସଂ-ସ୍ତୂପ) ବାଉଁଶ-ପାତିଆ ବା ତାଳପତ୍ରରେ ପ୍ରସ୍ତୁତ ମୁଣ୍ଡର ଆବରଣ ବା ଢାଙ୍କୁଣି, ଝାମ୍ପି, ଟୋପି, ମୁକୁଟ, ଟୋପ ବା ଭୂମଧ୍ୟସ୍ଥ ଗର୍ତ୍ତ. ପକ୍ଷିବିଶେଷ ।

ଟୋପରବାଇଗଣ—ଗ୍ରା. ବି. କଷି ଓ କଣ୍ଟାଳିଆ ବାଇଗଣ ।

ଟୋପଲି—ପ୍ରା. (ମେଦିନୀ) ସ୍ତ୍ରୀ. ଛୋଟ ବୋଝଗ୍ର ବା ଗଣ୍ଠୁଲି, ବୁଜୁଲା ।

ଟୋପା—ଗ୍ରା. ବି. ଜଳାଦି ତରଳ ପଦାର୍ଥର ବୁନ୍ଦା, କପାଳରେ ଦେବା ସିନ୍ଦୂର, ଚନ୍ଦନାଦିର ଚନ୍ଦ୍ରାକାର ଚିତା, ଛୋଟ ବିନ୍ଦୁ, (ପ୍ରା. ସମ୍ଭ. ବିଂ) ଗୁଡ଼ିଲ-ଧୂଆ ବାଉଁଶିଆ ।

ଟୋପାଟୋପା--ଗ୍ରା.ଅ. ବିନ୍ଦୁବିନ୍ଦୁ ହୋଇ ।

ଟୋପି—ଗ୍ରା. ବି. କପାଳରେ ଦେବା ଛୋଟକାକାର କ୍ଷୁଦ୍ର ବିନ୍ଦୁ, ଜଳାଦି ତରଳ ପଦାର୍ଥର କ୍ଷୁଦ୍ର ବିନ୍ଦୁ, ମସ୍ତକା-ବରଣ, ବନ୍ଧୁକ ନଳୀର ମୂଳରେ ଥିବା ଛିଦ୍ରପାଖେ ଖଞ୍ଜାହୋଇଥିବା ବାରୁଦ ଯୁକ୍ତ ଧାତୁମୟ ଖୋଳ,ଠିକିଲି,ଛୋଟ ଡାଲି, ଗୁଣ୍ଡି,ଅତିକ୍ଷୁଦ୍ର ଟୋକେଇ ଆକୃତି ପାତ୍ର ।

ଟୋପିଟୋପି—ଗ୍ରା. ଅ. କ୍ଷୁଦ୍ର କ୍ଷୁଦ୍ର ଟୋପାରେ ।

ଟୋପିଦାର—ଗ୍ରା.ବିଂ. ଯେଉଁ ବନ୍ଧୁକର ନଳୀର ମୂଳରେ ଥିବା ଛିଦ୍ରଉପରେ ଟୋପି ଖଞ୍ଜାଯାଇ ସେ ଟୋପି ଉପରେ ଘୋଡ଼ାର ଆଘାତ ହେଲେ ନଳୀ ମଧ୍ୟସ୍ଥ ବାରୁଦରେ ନିଆଁ ଲାଗି ବନ୍ଧୁକ ଫାଏର ହୁଏ ।

ଟୋରି—ଯା. ବି. ଇଂଲଣ୍ଡର ଗୋଟିଏ ପ୍ରାଚୀନ ରାଜନୈତିକ ଦଳର ସଭ୍ୟ ରକ୍ଷଣଶୀଳ ଦଳଭୁକ୍ତ ବ୍ୟକ୍ତି ।

ଟୋଲ—ଗ୍ରା. ବି. ଗୁରୁ ଆଘାତ ଯୋଗୁଁ ପିତ୍ତଳବାସନ ଆଦିରେ ଯେଉଁ ଅଂଶ ବସିଯାଏ ବା ଦବିଯାଏ, ମଦ୍ଦଳଚଟର ଫଳ ।

ଟୋଳିକ—ଗ୍ରା. ବି. ( ସଂ-ପିତ୍ତାଳିକ ) ଦୋଇତକଖାରୁ, ପାନରେ ଧରିବା ଏକପ୍ରକାର ରୋଗ, ଗୋରୁ ମହିଷ-ଆଦିଙ୍କୁ ଧରିବା ରୋଗବିଶେଷ ।

ଟୋଲଙ୍କ—ଗ୍ରା. ବି. ଏକଜାତୀୟ ବନ୍ୟ କଣ୍ଟାଳିଆ ଗଛ ଓ ତାହାର ଖାଦ୍ୟଫଳ, କଣ୍ଟାଟୋଲ ।

ଟୋଲ୍—ପ୍ରା. (ପୁରୀ) ପୂର୍ବକାଳ ରାଜାଙ୍କର ପ୍ରଥମ ଅଧିବାସୀ ବୈଦିକ ବ୍ରାହ୍ମଣମାନଙ୍କ ବଂଶର ପୂର୍ବମର୍ଯ୍ୟାଦା ସୂଚକ ଉପାଧି-ବିଶେଷ, ପଣ୍ଡା ।

ଟୋଲ୍(ଲେ)ଇବା—ଗ୍ରା. କ୍ରି. (ସକର୍ମକ) କୌଣସି ପାତ୍ରକୁ ଟୋଲ୍ କରିବା, (ଅକର୍ମକ) କୌଣସି ପାତ୍ର ଟୋଲ୍ ହୋଇଯିବା, ଚେପା ବା ଟୋଲେଇ-ଯିବା ।

ଟୋଲି—ପ୍ରା.(ନାଗ୍ରା) ବି.ଅଧପାଚି.(ଗ୍ରା.ବି) ଧାନବିଲରେ ହେବା ଏକପ୍ରକାର ଘାସ ।

ଟ୍ରଙ୍କ୍—ଯା. ବି. ଲୁହା ବା ମୋଟ ଟିଣ-ପାତିଆର ସାନ ସିନ୍ଦୁକ ବା ବାକସ ।

ଟ୍ରଲି—ଯା.ବି. ରେଲ ଲାଇନ୍ ପରିଦର୍ଶକ ଇଞ୍ଜିନିଅରଙ୍କ ଦ୍ୱାରା ବ୍ୟବହୃତ ଠେଲା-ଗାଡ଼ି । [ ବଦଳି ।

ଟ୍ରାନ୍ସଫର—ଯା.ବି. ବଦଳି, ସ୍ଥାନ ପରି-

ଟ୍ରାମ୍—ଯା. ବି. ଲୌହଲାଇନ୍ ଉପରେ ଗୃଳିତ ଏକପ୍ରକାର ଚାରିଚକିଆ ଗାଡ଼ି ।

ଟ୍ରେଜରର୍—ଯା. ବି. ଧନାଗାରରକ୍ଷକ ।

ଟ୍ରେଜରି—ଯା. ବି. ଖଜଣାଖାନା, ରାଜ-କୀୟ ଧନାଗାର, ଲୁହାସିନ୍ଦୁକ ।

ଟ୍ରେଡ଼ମାର୍କ— ଯା. ବି. ଭିନ୍ନ ଭିନ୍ନ ପଣ୍ୟ-ଦ୍ରବ୍ୟ ଉପରେ ଚିହ୍ନିତ ଉକ୍ତଦ୍ରବ୍ୟର ନିର୍ମାତାଙ୍କ ଉଦ୍ଭାବିତ ବିଶିଷ୍ଟ ଚିହ୍ନ ।

ଟ୍ରେନ୍—ଯା. ବି. ରେଲଗାଡ଼ି ।

ଟ୍ରେନିଙ୍ଗ୍—ଯା. ବି. କୌଣସି ବିଷୟରେ ଯୋଗାହେବା ନିମନ୍ତେ ପାଇବା ଶିକ୍ଷା ।

ଟ୍ରେସ୍—ଯା.ବି. ଅସଲ ନକ୍ସାରୁ ଟ୍ରେସିଂ କାଗଜ ବା ଟ୍ରେସିଂ କ୍ଲଥ ସାହାଯ୍ୟରେ ଅଙ୍କିତ ନକ୍ସା ।



**ଠ**—ବ୍ୟଞ୍ଜନ ବର୍ଣ୍ଣର ଦ୍ୱାଦଶ ଅକ୍ଷର, ଟ ବର୍ଗର ଦ୍ୱିତୀୟ ବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ମୂର୍ଦ୍ଧା ।

ଠ—ପୁଂ.ବି. ଶିବ, ମହାଧ୍ୱନି, ଚନ୍ଦ୍ରମଣ୍ଡଳ, ମଣ୍ଡଳ, ଶୂନ୍ୟ, (ବିଂ) ଇନ୍ଦ୍ରିୟ ଗୋଚର, ଗ୍ରା.ବି. ଶୂନ, ଶୂନ୍ୟସଂଖ୍ୟା ।

ଠଅ—ଗ୍ରା.ବି. ଶୂନ୍ୟାକାର, ପୂର୍ଣ୍ଣ ବୃତ୍ତା-କୃତ, (ବିଂ) ଶୂନ୍ୟ ସଂଖ୍ୟା ।

ଠଇ —ଗ୍ରା.ଅବ୍ୟ. (ପଞ୍ଚମୀ ବିଭକ୍ତି ସୂଚକ ପ୍ରତ୍ୟୟ ବିଶେଷ, ଅନ୍ୟ ଶବ୍ଦସଙ୍ଗେ ବ୍ୟବହୃତ) ରୁ, ଠାରୁ, ଅପେକ୍ଷା ।

ଠଉର—ଗ୍ରା. ବି. (ସଂ-ସ୍ଥିର) ସ୍ଥିରତା, ଠିକ, ଦୃଢ଼, ଅବସ୍ଥିତ, ଇନ୍ଦ୍ରିୟ-ଗୋଚର, ଠିକଣା, ଅନୁମାନ, (ବିଂ) ସ୍ଥିର, ସ୍ଥିରୀକୃତ, ଇନ୍ଦ୍ରିୟ ଦ୍ୱାରା ଅନୁ-ଭୂତ, ଅନୁମିତ ।

ଠଉରକରିବା—ଗ୍ରା.କ୍ରି. ଠିକଣା କରିବା, ଅନୁମାନ କରିବା ।

ଠଉରଠିକଣା—ଗ୍ରା. ବି. ସୁବନ୍ଦୋବସ୍ତ, କୌଣସି ବ୍ୟକ୍ତି ବା ବସ୍ତୁର ପତ୍ତା ।

ଠଉରା(ରେ)ଇବା—ଗ୍ରା.କ୍ରି. (ସଂ-ସ୍ଥିର) ଅନୁସନ୍ଧାନ ପୂର୍ବକ ସ୍ଥିରକରିବା, ଅନୁମାନ କରିବା, ଖୋଜିବା, ଚିହ୍ନିବା, କଳ୍ପନା ଦ୍ୱାରା ସ୍ଥିର କରିବା ବା ଭାବିବା, ଇନ୍ଦ୍ରିୟଗୋଚରକୁ ଆଣିବା ।

ଠଉରିବା—ଗ୍ରା. କ୍ରି. ସ୍ଥିରହେବା, ସିଦ୍ଧାନ୍ତହେବା, ଠାକିବା, ଅପେକ୍ଷା-କରିବା, ଅନୁମିତହେବା, ସହ୍ୟକରିବା, ଠଉରାଇବା ଦେଖ ।

ଠଂ—ଗ୍ରା.ଅବ୍ୟ. ଧାତୁମୟ ଦ୍ରବ୍ୟସଙ୍ଗେ କୌଣସି କଠିନ ପଦାର୍ଥ ବାଜିଲେ ଯେଉଁ ଶବ୍ଦ ଜାତ ହୁଏ ।

ଠଂଠଂ—ଗ୍ରା.ଅବ୍ୟ. ଠଂ ଦେଖ ।

ଠକ୍—ଗ୍ରା. ଅବ୍ୟ. (ସଂ-ସ୍ତୁକ୍) କାଠଆଦି କୌଣସି ଦୃଢ଼ ବସ୍ତୁରେ ଅନ୍ୟ ଦୃଢ଼-ବସ୍ତୁ ଥରେ ବାଜିବାର ଶବ୍ଦ ।

ଠକ୍‌କରି—ଗ୍ରା. ଅବ୍ୟ. ହଠାତ୍ ।

ଠକଠକ୍—ଗ୍ରା. ଅବ୍ୟ. କାଷ୍ଠାଦି ଦୃଢ଼-ବସ୍ତୁରେ ଅନ୍ୟ ଦୃଢ଼ ବସ୍ତୁ ଏକାଧିକଥର ବାଜିବାର ଶବ୍ଦ, ଧାତବ ପଦାର୍ଥ ଛଡ଼ା ଅନ୍ୟ କଠିନ ବସ୍ତୁ ଦ୍ୱୟର ଏକାଧିକଥର ଘାତ ପ୍ରତି-ଘାତଜନିତ ଶବ୍ଦ, (ଗ୍ରା.ବି.) ବାରମ୍ବାର ଦୁଇଜଣଙ୍କର କଳିକଜିଆ ।

ଠକ୍‌ଠାକ୍—ଗ୍ରା. ଅବ୍ୟ. ତତ୍‌କ୍ଷଣାତ୍, ହଠାତ୍, ନଗଦ, ରୋକ୍‌ସୋକ୍ ।

ଠକ—ଗ୍ରା.ବିଂ. ଠଗ, ପରଗ୍ଲାନିକାରକ, ଛଳକାରକ, ଛଳମୟ, ନିଷ୍ଠୁର, ଖଳ, ଚତୁର, ପ୍ରତାରକ, ପ୍ରବଞ୍ଚକ, (ବିଂ) ଚୋରକ ବ୍ୟକ୍ତି, ରାଜପଥର ଦସ୍ୟୁ ।

ଠକର—ଗ୍ରା. ବି. ଠୋକର ଦେଖ ।

ଠକର ଠକର—ଗ୍ରା.ବି. ବଣ ନିକଟସ୍ଥ ଭୂମିରେ ଫସଲ କରିବା ଲୋକଙ୍କ ଦ୍ୱାରା ବନ୍ୟ ଜନ୍ତୁଙ୍କୁ ହୁରୁଡ଼େଇବା-ପାଇଁ ଖଡ଼ ଉପରେ ଠକଠକ୍ ବଜା-ଯିବା ବାଉଁଶରେ ତିଆରି ଏକପ୍ରକାର ବାଦ୍ୟଯନ୍ତ୍ର ।

ଠକା—ଗ୍ରା.ବି. ଠକେଇ, ଠକିବା କର୍ମ, (ପ୍ରା. ସମ୍ବ. ବିଂ) ଠିକ୍, ଅସଲ, ଖାଣ୍ଟି ।

ଠକା(କେ)ଇ—ଗ୍ରା. ବି. ପ୍ରବଞ୍ଚନା, ପ୍ରତାରଣା ।

ଠକା(କେ)ଇବା—ଗ୍ରା. କ୍ରି. ପ୍ରତାରଣା କରିବା, ଭଣ୍ଡିବା, କୌଣସି କାର୍ଯ୍ୟକୁ ଉପର ଠାଉରିଆ କରି ସମ୍ପନ୍ନ କରିବା, (କୋଲପ ବା ତାଲାକୁ) ବନ୍ଦ ନ କରି ବନ୍ଦ ହେବାଭଳି ଅଟକାଇ ରଖିଦେବା, (କୌଣସି ବ୍ୟକ୍ତିକୁ) କୌଣସି ସ୍ଥାନରେ ବା ଗୃହରେ ଅସ୍ଥାୟୀ ଭାବରେ ରଖା-ଇବା ।

ଠକାଠକ୍—ଗ୍ରା.ଅବ୍ୟ.ସଂସାରରେ ଅଚଳ ଅବସ୍ଥା, ଆସନ୍ନ ମୃତ୍ୟୁସମୟ ।

ଠକାଠକି—ଗ୍ରା. ବି. ଭଣ୍ଡାଭଣ୍ଡି, ଭଣ୍ଡା-ଇବା, ପରସ୍ପର ପ୍ରତାରଣା ।

ଠକାମି—ଗ୍ରା. ବି. ପରଗ୍ଲାନି, ପରନିନ୍ଦା, ପ୍ରତାରଣା, ଠକାଇ ଦେଖ ।

ଠକାର—ପୁଂ. ବି. ଠ ସ୍ୱରୂପାକାର, ଠ ସ୍ୱରୂପ ବର୍ଣ୍ଣ, ଠ କାର, (ଗ୍ରା. ବିଂ) ଠ ପରି ଆକାର, ପୂର୍ଣ୍ଣ ଗୋଲ ।

ଠକିବା—ଗ୍ରା. କ୍ରି. ପ୍ରତାରଣା କରିବା, ପ୍ରତାରିତହେବା, ଭଣ୍ଡାଇବା, ଛଳନା-କ୍ରମେ କାଳକ୍ଷେପ କରିବା ।

ଠକିଯିବା—ଗ୍ରା. କ୍ରି. ପ୍ରତାରିତ ହେବା, ଥକିଯିବା, ଚଳତ୍‌ଶକ୍ତି ବିହୀନ ହେବା ।

ଠକୁର—ପୁଂ. ବି. ଦେବପ୍ରତିମା, ଗଣ୍ୟ-ମାନ୍ୟବ୍ୟକ୍ତି, ବ୍ରାହ୍ମଣ ସ୍ଥାନର ଉପାଧି ବିଶେଷ ।

ଠଗ—ଗ୍ରା. ବି ଓ ବିଂ. ଶଠ, ବଞ୍ଚକ, ଡକାଇତ, ଠକ ଦେଖ ।

ଠଙ୍—ପ୍ରା. (ସମ୍ବ) ବି. ମୂଲ୍ୟ, ଦାମ୍, (ଅବ୍ୟ) କୌଣସି ପଦାର୍ଥକୁ ହଠାତ୍ କାଟିଦେବା ପ୍ରକାରେ ।

ଠଠାଠି—ଗ୍ରା. ବି. ଅତ୍ୟନ୍ତ ଦୀନ ବା ନିର୍ଦ୍ଧନ ଅବସ୍ଥା, ଅଭାବ, ଅର୍ଥାଭାବ ।

ଠଣ୍—ଗ୍ରା. ଅବ୍ୟ. ଠଣ୍ ଠଣ୍ ଦେଖ ।

ଠଣ୍‌ଠଣ୍—ଗ୍ରା.ଅବ୍ୟ.ଧାତୁମୟ ପଦାର୍ଥର ପରସ୍ପର ଆଘାତ ଜନିତ ଶବ୍ଦ, ଟଙ୍କା ଗଣିବାର ଶବ୍ଦ, ଘଣ୍ଟିଶବ୍ଦ, (ବିଂ) ଅପ-ର୍ଯ୍ୟାପ୍ତ, ଗଜ ଗଜ, ଧନ, (ଗ୍ରା: କ୍ରି.ବିଂ) ନଗଦ୍ ।

ଠଣ—ଗ୍ରା. ବି. ଅଙ୍ଗର ଶୋଭା, ଠାଣୀ, ସୌନ୍ଦର୍ଯ୍ୟ, ଗଠନ, (ବିଂ) ସୁନ୍ଦର ।

ଠଣା—ଗ୍ରା. ବି. କାନ୍ଥକୁଡ଼ି, ନିର୍ଦ୍ଦିଷ୍ଟ ସ୍ଥାନ, ବନ୍ଧାଙ୍ଗୁଳିର ଗଣ୍ଠିଦ୍ୱାରା ମସ୍ତକର ଖପୁ-ରିରେ ଆଘାତ, ବାସସ୍ଥଳ, ଶିବିର-ପହରା, ଡାକ, ଫୁଲ, କଣମାଛ ।

ଠନ୍—ଗ୍ରା. ଅବ୍ୟ. ଅବ୍ୟକ୍ତ ଶବ୍ଦ, ରିକ୍ତତା-ବୋଧକ ଶବ୍ଦ ।

ଠନ୍‌ଠନ୍—ଗ୍ରା.ଅବ୍ୟ.ଘଣ୍ଟାବାଜିବାର ଶବ୍ଦ ।

ଠନ୍‌କା—ପ୍ରା. (ସମ୍ବ) ବି. ପ୍ରସ୍ରାବପୋଡ଼ା ରୋଗ ।        [ ଠାରୁ ।

ଠନୁ—ପ୍ରା.(ସମ୍ବ)ଅବ୍ୟ.(ଅମୁକ) ସ୍ଥାନରୁ,

ଠମକ—ଗ୍ରା. ବି. ହାବଭାବ ସହିତ ଗତି-

ଭଙ୍ଗି, ଛଇ, ନୃତ୍ୟଭଙ୍ଗିରେ ଘୂରିବା ।
ଠର—ଗ୍ରା. ବି. ନେତ୍ର ବକ୍ତ୍ର ହସ୍ତ ଦି ସଙ୍କେତଦ୍ୱାରା ମନୋଭାବର ଅଭିବ୍ୟକ୍ତି, ଇଙ୍ଗିତ, ଇସାରା ।
ଠରଠରି—ଗ୍ରା.ବି. ପରସ୍ପର ସଙ୍କେତଦ୍ୱାରା ମନୋଗତ ଭାବର ଆଦାନ ପ୍ରଦାନ, ଠାରଠୁରି ।
ଠସ—ଗ୍ରା. ବି. ଛଳନା, ରହସ୍ୟ, ଥଟ୍ଟା, ଚାପରା,ପରିହାସ, (ବିଂ) ପରିହାସଯୁକ୍ତ (କଥା), ମିଥ୍ୟା ।
ଠସା—ଗ୍ରା. ବି. ଲୁହା କମ୍ପା କଂସାର ଏକପ୍ରକାର ଗ୍ରନ୍ଥ ।
ଠହର—ପ୍ରା. (ସମ୍ବ) ବିଂ. ସ୍ଥିର ।
ଠହରିବା—ପ୍ରା. (ସମ୍ବ) କ୍ରି. ଅପେକ୍ଷା କରିବା, ସମ୍ଭାଳିବା ।
ଠା—ଗ୍ରା. ବି ଓ ଅବ୍ୟ. ଠାଆ ଦେଖ ।
ଠାଆ—ଗ୍ରା. ବି. ସ୍ଥାନ,ଜାଗା,ବ୍ୟବଧାନ, (ରାଜାଆଦିଙ୍କ) ଭୋଜନ, ଭୋଜନ ସ୍ଥାନରେ ଭୋଜନପାତ୍ର ରଖାଯିବା ପୂର୍ବରୁ ଭୂମିରେ ମୁରୁଜଦ୍ୱାରା ଲେଖାଯିବା ଚିହ୍ନ, (ଗ୍ରା.ଅବ୍ୟ.) (ଅମୁକ) ସ୍ଥାନର ।
ଠାଆକୁଠ ଆ—ଗ୍ରା. ଅବ୍ୟ. ସ୍ଥାନକୁ ସ୍ଥାନ, ଏକସ୍ଥାନପରେ ଅନ୍ୟସ୍ଥାନରେ, ବହୁସ୍ଥାନରେ ।
ଠାଆଠାଆ—ଗ୍ରା. ଅବ୍ୟ. ଭିନ୍ନ ଭିନ୍ନ ସ୍ଥାନରେ, ଅନେକ ସ୍ଥାନରେ ।
ଠାଆଠାଆକେ—ଗ୍ରା. ଅବ୍ୟ. ଠାଆକୁଠାଆ ଦେଖ ।
ଠାଆଠିକଣା—ଗ୍ରା.ବି.ସୁବ୍ୟବସ୍ଥା,ସ୍ଥିରତା ।
ଠାଆପିଢ଼ା—ଗ୍ରା. ବି. ଭୋଜନ ସ୍ଥାନରେ ମୁରୁଜଦେଇ ଓ ପିଢ଼ା ପକାଇ ଭୋଜନ ସ୍ଥାନ ପ୍ରସ୍ତୁତ କରିବା ।
ଠାଆବଢ଼ା—ଗ୍ରା. ବି. ଭୋଜନ ସ୍ଥାନରେ ଜଣକପାଇଁ ସଜ୍ଜିତ ଭୋଜନ ଦ୍ରବ୍ୟ ।
ଠାଆବଢ଼ିବା—ଗ୍ରା.ବି.ଭୋଜନର ସମାପ୍ତି ।
ଠାଆସଜ—ଗ୍ରା. ବି. ଭୋଜନ ପାତ୍ରାଦି, ଏକସାଜ ଭୋଜନ ପାତ୍ର ।
ଠାଇଁ—ଗ୍ରା. ବି. (ସଂ-ସ୍ଥାନ) ସ୍ଥାନ,ଦିଗ, ଆଶ୍ରୟ, ଶୂଦ୍ରସମାଜରେ ବିଧବାର ଦ୍ୱିତୀୟ ବିବାହ, (ଅବ୍ୟ) ଠାରେ ।
ଠାଇକରି—ଗ୍ରା. କ୍ରି. ବିଂ. ଠୋକରି, ଶବ୍ଦ ଓ ଜୋରକରି(ଚଟକଣା ମାରିବା ବା ଆଘାତ କରିବା) ।
ଠାଇଠାଇ—ଗ୍ରା. କ୍ରି. ବିଂ. (ବନ୍ଧୁକର) ଗାଲରେ ଜୋରରେ ଉପର୍ଯ୍ୟୁପରି ଚାପୁଡ଼ା ମାରିବା ପ୍ରକାରେ ।
ଠାଉକା—ଗ୍ରା.ବି. ଘୂରି, ଯେଉଁ ଚୋରର ପୂର୍ବରୁ କୌଣସି ବସ୍ତୁ ଠାବ କରି ବା ଲକ୍ଷ୍ୟକରି ପରେ ଚୋରି କରେ ।
ଠାଉରିଆ—ଗ୍ରା. ବି. ଠାଉକା ଦେଖ ।
ଠାଏ—ଗ୍ରା. ଅବ୍ୟ. (ଅମୁକ) ସ୍ଥାନରେ, ଏକସ୍ଥାନରେ, (ବିଂ) ଏକଠାଆ ମାତ୍ର (ତରକାରୀ) ।
ଠାଏଁ—ଗ୍ରା. ଅବ୍ୟ. ଠାଏ ଦେଖ ।
ଠାଏଁଠାଏଁ—ଗ୍ରା.କ୍ରି.ବିଂ.ସ୍ଥାନେ ସ୍ଥାନେ, ଭିନ୍ନଭିନ୍ନ ସ୍ଥାନରେ,କେତେକ ସ୍ଥାନରେ
ଠାଏଁଠାଏଁ—ଗ୍ରା.କ୍ରି. ବିଂ. ଠାଏଁ ଠାଏଁ ଦେଖ ।
ଠାକର—ଗ୍ରା. ବି. ବାଣବିଶେଷ, ଭୂମ୍ବୀବାଣ, ଦେଉଳ ବା କୋଠାର ଗୁମ୍ଫ ଉପରେ ସର୍ବଶେଷରେ ଯେଉଁ ପଥର ବା ଟାଇଲ୍ ଖଣ୍ଡ ପକାଇ ଗୁମ୍ଫ ମୁଦାଯାଏ, ଧମା, ଚେଲା, ଚଣା, (ଗ୍ରା.ବିଂ) ଶୁଷ୍କ, ନିଜଳ, ପୋଲ, ନୀରସ, ପରିପୁଷ୍ଟ ମାଂସ ନ ଥିବା (ଗାଲ), ମାଉଁସିଆ ହୋଇ ନ ଥିବା(ଆମ୍ବଲଫଡ଼ା) ।
ଠାକିବା—ଗ୍ରା. କ୍ରି. ସ୍ଥିରହେବା, ବଞ୍ଚିବା, କୌଣସି ସ୍ଥାନରେ ସ୍ଥିର ଭାବରେ କିଛି ଦିନ ରହିବା ।
ଠାକୁ—ଗ୍ରା.ଅବ୍ୟ.(ଅମୁକବ୍ୟକ୍ତି ବା ସ୍ଥାନର) ନିକଟକୁ, ସ୍ଥାନକୁ ।
ଠାକୁଠାକୁହେବା—ଗ୍ରା. କ୍ରି. ଶୋକରେ ବା ମୁମୂର୍ଷୁ ଅବସ୍ଥାରେ ପାଟିରୁ ଟାକୁ ଟାକୁ କରିବା, ପାଟୁପାଟୁ ହେବା ।
ଠାକୁର—ଗ୍ରା. ବି.(ସଂ-ଠକ୍କୁର) ଦେବ, ମହାପ୍ରଭୁ, ଦେବପ୍ରତିମା, ପ୍ରଭୁ, ଗୁରୁ ବ୍ୟକ୍ତି, ବ୍ରାହ୍ମଣଙ୍କୁ ସମ୍ବୋଧନ, ବଙ୍ଗୀୟ ବ୍ରାହ୍ମଣମାନଙ୍କ ବଂଶୋପାଧିବିଶେଷ, କ୍ଷତ୍ରିୟମାନଙ୍କ ବଂଶୋପାଧିବିଶେଷ, ଭାରତ ପଶ୍ଚିମାଞ୍ଚଳରେ ଭଣ୍ଡାରୀମାନଙ୍କ ବଂଶୋପାଧିବିଶେଷ, (ପ୍ରା. ସିଂହ. ବି) ରାଜାମାନଙ୍କ ବଂଶୋପାଧିବିଶେଷ ।
ଠାକୁରଘର—ଗ୍ରା. ବି. ଦେବାଳୟ, ଦେଅଙ୍କ ଘର, ଦେବମନ୍ଦିର ।
ଠାକୁରପୂଜା—ଗ୍ରା. ବି. ଦେବୋପାସନା, ପ୍ରତିମାପୂଜା ।
ଠାକୁରବାଡ଼ି—ଗ୍ରା.ବି.ଠାକୁରଘର ଦେଖ ।
ଠାକୁରବାପା—ଗ୍ରା. ବି. ପିତାମହ ।
ଠାକୁରରାଜା—ଗ୍ରା. ବି. ପୁରୀର ରାଜା ।
ଠାକୁରସେବା—ଗ୍ରା. ବି. ଠାକୁରପୂଜା, ଦେବୋପାସନା ।
ଠାକୁରାଣୀ—ଗ୍ରା. ସ୍ତ୍ରୀ. ବି. ଠାକୁରର ସ୍ତ୍ରୀଲିଙ୍ଗ,ଦେବୀ,ରାଣୀ, ସ୍ୱାମିନୀ, ଗୃହିଣୀ, ଗୁରୁପତ୍ନୀ, ମହାଲକ୍ଷ୍ମୀ, ପାର୍ବତୀ, ବସୁମାତା, ଗ୍ରାମଦେବତା, ଶୀତଳାଦେବୀ, ବସନ୍ତରୋଗ, କେନ୍ଦୁଝର ରାଜ୍ୟର ପର୍ବତବିଶେଷ ।
ଠାକୁରାଣୀଉଭାହେବା—ଗ୍ରା. କ୍ରି. ଠାକୁରାଣୀ ଲାଗିବା ଦେଖ ।
ଠାକୁରାଣୀଓହ୍ଲା(ହ୍ଲେ)ଇବା—ଗ୍ରା. କ୍ରି. ଠାକୁରାଣୀ ଛାଡ଼ିବା ଦେଖ ।
ଠାକୁରାଣୀଗାଧୁଆ—ଗ୍ରା. ବି. ରଜସଂକ୍ରାନ୍ତିର ପରବର୍ତ୍ତୀ ୩ୟ ଦିବସ ପ୍ରଭାତରେ ଦେବୀ ବସୁମତୀଙ୍କୁ ସ୍ନାନ କରାଇ ପୂଜା କରିବାର ବିଧି, ଠାକୁରାଣୀ ମାଜଣା ।
ଠାକୁରାଣୀଛାଡ଼ିବା—ଗ୍ରା. କ୍ରି. ଠାକୁରାଣୀ ଲାଗିଥିବା ବ୍ୟକ୍ତିର ଦେହରୁ ଦେବତାଙ୍କର ଆବେଶ ଛାଡ଼ିଯିବା ।
ଠାକୁରାଣୀମାଜଣା—ଗ୍ରା.ବି. ଗ୍ରାମଦେବତାଙ୍କୁ ବିଧି ପୂର୍ବକ ସ୍ନାନ କରାଇବା ।
ଠାକୁରାଣୀଯାତ୍ରା—ଗ୍ରା. ବି. ଫାଲ୍ଗୁନଶୁକ୍ଳ ଦ୍ୱିତୀୟାଠାରୁ ଚୈତ୍ରମାସ ଶେଷପର୍ଯ୍ୟନ୍ତ କରାଯିବା ଉତ୍ସବ, ଓଡ଼ିଶା ବିଭାଗରେ ତାଳଚେର ରାଜ୍ୟର ଗୋପାଳପ୍ରସାଦ ଗ୍ରାମରେ ଚୈତ୍ରଶୁକ୍ଳପକ୍ଷ ଚତୁର୍ଦ୍ଦଶୀତିଥିରେ ହେବା ହିଙ୍ଗୁଳା ଦେବୀଙ୍କର

ଉତ୍ସବ ।
ଠାକୁରାଣୀଲାଗିବା—ଗ୍ରା. ବି. କାଳସୀ ଲାଗିବା, ଦେବତା ଉଶ୍ୱାହେବା, ମନୁଷ୍ୟ ଦେହରେ ଦେବତାଙ୍କର ଆବେଶ ବା ଆବିର୍ଭାବ ।
ଠାକେରା—ଗ୍ରା.ବିଂ.ଚାଙ୍ଗଡ଼ା, (ବ ଓ ବିଂ) ଠାକରା ଦେଖ ।
ଠାଟ—ଗ୍ରା. ବି. ଅଙ୍ଗଭଙ୍ଗି, ଶରୀରର ଗଠନ, ଶରୀର, ଗୃହ ଘରର ଆଟ ।
ଠାଠା—ଗ୍ରା.ଅବ୍ୟ.ଠାଆକୁ ଠାଆ ଦେଖ ।
ଠାଠିକ—ଗ୍ରା. ବିଂ. ଅତିସୁନ୍ଦର ଆକୃତି ବିଶିଷ୍ଟ ।
ଠାଡ଼—ପ୍ରା. (ସମ୍ବ) ବି. ଦଣ୍ଡାୟମାନ ।
ଠାଣା—ଗ୍ରା. ବି. ( ସଂ-ସ୍ଥାନ ) ପ୍ରହରୀର ସ୍ଥାନ ।
ଠାଣି—ଗ୍ରା. ବି. ଅଙ୍ଗଭଙ୍ଗି, ଆକୃତି, କଥାର ଭଙ୍ଗି, ଦୃଢ଼ ଢଙ୍ଗ, ସ୍ଥିରତା, ଧୈର୍ଯ୍ୟ ।
ଠାଣିମାଣି—ଗ୍ରା. ବି. ଠାଣି ଦେଖ ।
ଠାଣେଦାର୍—ଗ୍ରା.ବି.ଥାନାଦାର, ଥାନାର ଭାରପ୍ରାପ୍ତ ଅଫିସର,(ଲ.ଅର୍ଥ)ପରାକ୍ରମଶାଳୀ ବ୍ୟକ୍ତି ।
ଠାଦେବା—ଗ୍ରା. କ୍ରି. ଆଶ୍ରୟ ଦେବା, ସ୍ଥାନ ଦେବା ।
ଠାନ୍—ପ୍ରା.(ସମ୍ବ)ବି.ଠା,ସ୍ଥାନ, ଆଧାର ।
ଠାନ୍ଠାନ୍—ପ୍ରା.(ସମ୍ବ)କ୍ରି. ବିଂ. ସ୍ଥାନେ ସ୍ଥାନେ ।
ଠାନୁ—ପ୍ରା. (ସମ୍ବ)ଅବ୍ୟ. ଠାରୁ ।
ଠାପରା—ଗ୍ରା.ପୁଂ. ବିଂ. ଠାପୁଆ ଦେଖ ।
ଠାପୁଆ—ଗ୍ରା. ପୁଂ. ବିଂ. ମଠୁଆ, କର୍ମକୋଡ଼ି, ଅଳସୁଆ, ଯେଉଁ ଲୋକ ବାହାନା କରି କାର୍ଯ୍ୟରୁ ବା ପରିଶ୍ରମରୁ ଅବ୍ୟାହତି ପାଇବାକୁ ଚେଷ୍ଟା କରେ ।
ଠାପୁର୍ଠାପୁର୍—ଗ୍ରା.ଅବ୍ୟ.ଘୋଡ଼ା ଟାପୁ ମାଟିରେ ବାଜିଲେ ଯେଉଁ ଶବ୍ଦ ହୁଏ ।
ଠାପେ(ପୋ)ଇବା—ଗ୍ରା. କ୍ରି. ବାହାନା କରିବା, ଛଳ ଦେଖାଇବା, ଗ୍ରେଟେଇ ଗ୍ରେଟେଇ ଚାଲିବା ।
ଠାବ—ଗ୍ରା.ବି. (ସଂ-ସ୍ଥାନ)ସ୍ଥାନ, ଜାଗା, କୌଣସି ବ୍ୟକ୍ତିର ବାସସ୍ଥାନ, ଠିକଣା, ସନ୍ଧାନ, ଆଶ୍ରୟ, ପାତ୍ର, ଆଧାର ।
ଠାବକରିବା—ଗ୍ରା.କ୍ରି. ଅନୁସନ୍ଧାନ ଦ୍ୱାରା କୌଣସି ଅଜ୍ଞାତ ବିଷୟ ବା ସମ୍ବାଦ ସ୍ଥିରକରି ବୁଝିବା, ଠିକଣା କରିବା, ରହିବା, ଅବସ୍ଥାନ କରିବା ।
ଠାବକୁ—ଗ୍ରା.(ପଦ୍ୟ)କ୍ରି. ବିଂ. ନିକଟକୁ, ପାଖକୁ ।
ଠାବଠାବକେ—ଗ୍ରା.ଅବ୍ୟ.ସ୍ଥାନେ ସ୍ଥାନେ, କେତେ ସ୍ଥାନରେ । [ଦେବା ।
ଠାବଦେବା—ଗ୍ରା. କ୍ରି. ଆଶ୍ରୟ ବା ସ୍ଥାନ
ଠାବର—ଗ୍ରା. ଅବ୍ୟ. ଠାବରେ ।
ଠାବରୁ—ଗ୍ରା. ଅବ୍ୟ. ଠାରୁ ।
ଠାବରେ—ଗ୍ରା.ଅବ୍ୟ.ନିକଟରେ,ପାଖରେ, ଠାରେ ।
ଠାବେଠାବେ—ଗ୍ରା. ଅବ୍ୟ. କୌଣସି କୌଣସି ସ୍ଥାନରେ ।
ଠାମ—ଗ୍ରା. ବି. ଗଠଣ, ଗଠନ ।
ଠାଯ଼ୁଁ—ଗ୍ରା. ପୁଂ. ବିଂ. ଯେଉଁ ପୁରୁଷ ବିଧବା ସ୍ତ୍ରୀକୁ ଶୂଦ୍ରମାନଙ୍କ ସମାଜରେ ପ୍ରଚଳିତ ଦ୍ୱିତୀୟ ପ୍ରଥା ଅନୁସାରେ ବିବାହ କରେ,(ସ୍ତ୍ରୀ) ଠାଯ଼ୁଁଣୀ ।
ଠାରଠୁର୍—ଗ୍ରା.ବି.ନେତ୍ର ଓ ହସ୍ତ ଦ୍ୱାରା ସଙ୍କେତ ଦ୍ୱାରା ଅନ୍ୟୋନ୍ୟରେ ମନୋଭାବର ଆଦାନ ପ୍ରଦାନ ।
ଠାରା—ଗ୍ରା.ବି. ଉପସ୍ଥିତ ତୃତୀୟ ବ୍ୟକ୍ତିର ଅଜ୍ଞାତରେ ଦୁଇଜଣଙ୍କ ମଧ୍ୟରେ ଭାବର ଆଦାନ ପ୍ରଦାନ ନିମନ୍ତେ କରାଯିବା ଚକ୍ଷୁ ଓ ଅଙ୍ଗାଦି ଦ୍ୱାରା ସଂକେତ,ଇଙ୍ଗିତ, ଇସାରା ।
ଠାରିବା—ଗ୍ରା.କ୍ରି. ନେତ୍ର ବକ୍ତ୍ର ଓ ହସ୍ତାଦିର ଭଙ୍ଗି ଦ୍ୱାରା ସଙ୍କେତ ବା ଇଙ୍ଗିତ କରିବା, କୌଣସି ବିଷୟର ସଂକ୍ଷିପ୍ତ ସ୍ମାରକ ଲେଖା କାଗଜ ଆଦିରେ ଟିପି ରଖିବା ।
ଠାରୁ—ଗ୍ରା.ଅବ୍ୟ.(୫ମୀବିଭକ୍ତିର ଚିହ୍ନ)ରୁ, ସ୍ଥାନରୁ, ନିକଟରୁ, ଅପେକ୍ଷା, ସମୟରୁ ଆରମ୍ଭ କରି, (ପ୍ରା.ସମ୍ବ. ବିଂ.) ଚନ୍ଦା, ଚାଙ୍ଗାରି ।
ଠାରେ—ଗ୍ରା.ଅବ୍ୟ.(୭ମୀବିଭକ୍ତିରଚିହ୍ନ)ରେ, ନିକଟରେ, ହେଁ, ସଙ୍ଗେ, (ଅମୁକକଥା) ଘଟିଥାଇ ସୁଦ୍ଧା, (ଅମୁକ ବିଷୟ ଘଟିବା) ଅବସ୍ଥାରେ, ସ୍ଥାନରେ,ଆଡ଼େ, ଗର୍ଭରେ (ଜାତ) ।
ଠାସକୁମାରିବା—ଗ୍ରା. କ୍ରି. ପର ଉପରେ ନିର୍ଭର କରିବା, ଅନୁମାନ କରିବା, ଅଣ୍ଟାଳିବା ।
ଠାସିବା—ଗ୍ରା. କ୍ରି. କୌଣସି ପଦାର୍ଥକୁ କୌଣସି ପାତ୍ର ବା ସଂକୀର୍ଣ୍ଣ ସ୍ଥାନରେ ପୂରାଇ ଉପରୁ ଖୁନ୍ଦିବା, ଠେସିବା, ଜୋର କରି ପେଲିବା, ସୁନାରୁପା-ଆଦିକୁ ଠସାରେ ରଖି ମାଡ଼ ଦେବା ।
ଠାସୁଆ—ଗ୍ରା.ପୁଂ. ବିଂ. କୌଣସି ବିଷୟ ନ ଜାଣି ଅନ୍ଦାଜରେ ସେ ବିଷୟ କହିବାରେ ଅଭ୍ୟସ୍ତ ।
ଠି—ଗ୍ରା. ଅବ୍ୟ. (୭ମୀ ବିଭକ୍ତିର ଚିହ୍ନ) ଠାରେ, ଠେଇଁ, ଠାଇଁ ।
ଠିଅ—ଗ୍ରା.ବି(ସଂ-ସ୍ଥିର ବା ସ୍ଥିତ)ମର୍ଯ୍ୟାଦା, ଟେକ, ଜିଦ୍, ଅବଲମ୍ବନ, କୌଣସି ବସ୍ତୁକୁ ଟେକି ରଖିବା ନିମନ୍ତେ ତହିଁରେ ଲଗାଯିବା ଖୁଣ୍ଟଆଦି, ଯଷ୍ଟିଆଦିର ଜିହ, ଗୋବ ।
ଠିଆ—ଗ୍ରା. ବି. (ସଂ-ସ୍ଥିତ) ଦଣ୍ଡାୟମାନ ହେବା, ଉଶ୍ୱାହେବା, ଛିଡ଼ା, ଡେଙ୍ଗ, ଭୂପୃଷ୍ଠକୁ ସମକୋଣଭାବରେ ଅବସ୍ଥିତ, (ବିଂ) ଦଣ୍ଡାୟମାନ ଛିଡ଼ା ।
ଠିଆକରତ—ଗ୍ରା. ବି. ଯେଉଁ କରତକୁ ଦୁଇଜଣ ମନୁଷ୍ୟ ଠିଆ ହୋଇ ଧରି କାଟନ୍ତି ।
ଠିଆକରା(ରେ)ଇବା—ଗ୍ରା.କ୍ରି. କୌଣସି ବ୍ୟକ୍ତି ବା ପଦାର୍ଥକୁ ଦଣ୍ଡାୟମାନ କରାଇବା, ଠିଆହୋଇ ଅପେକ୍ଷା କରିବା ନିମନ୍ତେ ବାଧ କରାଇବା, ଦଣ୍ଡଭୋଗ ନିମନ୍ତେ କୌଣସି ବ୍ୟକ୍ତିକୁ ଠିଆ ହେବାକୁ ବାଧ କରିବା, ( ଲ.ଅର୍ଥ ) ଘରର ନିର୍ମାଣ ସମ୍ପୂର୍ଣ୍ଣରୂପେ କରିବା, କୌଣସି ଅନୁଷ୍ଠାନକୁ ପ୍ରତିଷ୍ଠା କରିବା ।
ଠିଆଗୋଇଠା—ଗ୍ରା. ବି. ଠିଆ ହୋଇ-

ଥିବା ଅବସ୍ଥାରେ ଏକ ଗୋଡ଼ରେ ଅନ୍ୟ ବ୍ୟକ୍ତିଙ୍କୁ ମାରିବା ଗୋଇଠା ।

**ଠିଆଚଢା**—ଗ୍ରା.ବି.କପାଳରେ ଲମ୍ବକରି କାଟିଥିବା ତିଳକ, ଊର୍ଦ୍ଧ୍ୱପୁଣ୍ଡ୍ର ।

**ଠିଆଚରି**—ଗ୍ରା ବି.ଠିଆହୋଇ କୁଦିବା ।

**ଠିଆଠିଆ**—ଗ୍ରା. ବିଂ. କିଛିକାଳ ପର୍ଯ୍ୟନ୍ତ ଦଣ୍ଡାୟମାନ, ଠିଆ ହୋଇ ଅପେକ୍ଷା କରୁଥିବା, ( କ୍ରି.ବିଂ ) ଠିଆ ହୋଇ ହୋଇ ଅର୍ଥାତ୍ ନବସି, ଅତିଶୀଘ୍ର ।

**ଠିଆପହଁରି**—ଗ୍ରା. ବି. ପାଣିରେ ଠିଆହେବା ବାଗରେ ପହଁରିବା ।

**ଠିଆପହରି**—ଗ୍ରା. ବି. ଖାଡ଼ା ପହରି, ବରାବର ଦଣ୍ଡାୟମାନ ଅବସ୍ଥାରେ ପହରା ଦେବା ବା ଜଗିବା ।

**ଠିଆପାଲି**—ଗ୍ରା. ବି. ଯେଉଁ ସତ୍ୟପୀର ପୂଜାରେ ପୂଜକମାନେ ଠିଆ ହୋଇ ବା ନାଚ ନାଚ ପାଲି ବୋଲନ୍ତି ।

**ଠିଆବାଗରେ**—ଗ୍ରା.କ୍ରି.ବିଂ. ଦଣ୍ଡାୟମାନ ଅବସ୍ଥାରେ, ଲମ୍ବ ବାଗରେ ।

**ଠିଆମରୁଡ଼ି**—ଗ୍ରା. ବି କେଣ୍ଡା ବାହାରି କ୍ଷୀର ନ ଖାଇଥିବା ଅବସ୍ଥାରେ ଜଳାଭାବରୁ ଧାନଗଛ ମରିଯିବା ।

**ଠିଆମୁରୁରି**—ଗ୍ରା.ପୁଂ.ବିଂ. ଯେଉଁ ବ୍ୟକ୍ତି ଠିଆରେ ଠିଆରେ ପ୍ରସ୍ରାବ କରେ ।

**ଠିଆମେଲି**— ଗ୍ରା. ବିଂ. ସମ୍ପୂର୍ଣ୍ଣରୂପେ ଉନ୍ମୁକ୍ତ (ଦ୍ୱାର) ।

**ଠିଆରିଆ**—ଗ୍ରା. ( କଟକ ) ବିଚାରହୀନ, ଅଭଦ୍ର, ଅବିବେଚକ । [ ଦେଖ ।

**ଠିଆରେଠିଆରେ**—ଗ୍ରା.କ୍ରି.ବିଂ.ଠିଆଠିଆ

**ଠିଆହେବା**—ଗ୍ରା. କ୍ରି. ଛିଡ଼ାହେବା, ଗୋଡ଼ରେ ଦଣ୍ଡାୟମାନ ହେବା, ଲମ୍ବ ବାଗରେ ଅବସ୍ଥାନ କରିବା, ବିଦ୍ୟମାନ ହେବା, (ଲିଙ୍ଗ) ଉଦ୍ରିକ୍ତ ହେବା, ବିପକ୍ଷତା ଆଚରଣ କରିବା, ସମକକ୍ଷ ହେବ, (ଲ. ଅର୍ଥ ) ଉପଯୁକ୍ତ ହେବା, ଯୋଗ ହେବା, ଗୃହାଦି ସମ୍ପୂର୍ଣ୍ଣରୂପେ ନିର୍ମିତହେବା, ଅନୁଷ୍ଠିତହେବା, ନିର୍ବାଚନ ପାଇଁ ପ୍ରାର୍ଥୀହେବା ।

**ଠିଏଠିଏ**—ଗ୍ରା.କ୍ରି. କେବଳ ମାତ୍ର ଠିଆ ବା ଡିଗିକୁ ଆଶ୍ରାକରି, ଠିଆରେ ଠିଆରେ ଦେଖ ।

**ଠିକ୍**—ଗ୍ରା. ବିଂ. ପ୍ରକୃତ, ଯଥାର୍ଥ, ଶୁଦ୍ଧ, ଉପଯୁକ୍ତ,ତତ୍ସ୍ୱରୂପ, ସ୍ୱାଭାବିକ,ସତ୍ୟ, ଅବିଚଳ, ନିଶ୍ଚିତ, ସ୍ଥିର, ନିର୍ଦ୍ଦିଷ୍ଟ, ନ୍ୟାୟପର, ସତ,ଦୋଷଶୂନ୍ୟ, ଅଟଳ, ଉତ୍ତମ, ସୁଶାସିତ, (କ୍ରି. ବିଂ) ସତେ ସତେ, ସତ୍ୟରେ ସମ୍ପୂର୍ଣ୍ଣରୂପେ,ନିଶ୍ଚିତରୂପେ, ପ୍ରକୃତରେ,ଅବିକଳ,ନ୍ୟାଯ୍ୟତଃ, ଉପଯୁକ୍ତରୂପ, କ୍ଷଣମାତ୍ର ଆଗପଛ ନ କରି,ସୁନ୍ଦର ଭାବରେ ।

**ଠିକ୍କରିବା**—ଗ୍ରା. କ୍ରି. ( ଲକ୍ଷଣାର୍ଥ ) ସୁଶାସିତ କରିବା ବା ଜବତ୍ କରିବା, ସମ୍ପନ୍ନ କରିବା, ନିଶ୍ଚୟ ବା ସ୍ଥିର କରିବା, ବାଟକୁ ଆଣିବା ।

**ଠିକ୍ଠାକ୍**—ଗ୍ରା.ବିଂ ଓ କ୍ରି.ବିଂ.ସୁନିଶ୍ଚିତ, ସ୍ଥିରୀକୃତ, ନିୟମାଧୀନ, ନିରୂପିତ, ସୁସମାହିତ, କମ୍ ବା ବେଶି ନ ହୋଇ ନିଷ୍ପତ୍ତି କରାଯାଇଥିବା ।

**ଠିକଠିକଣା**—ଗ୍ରା. ବି. ସ୍ଥିରତା, ବନ୍ଦୋବସ୍ତ, ସ୍ଥିରୀକରଣ,ଇୟତ୍ତା,ସୁବ୍ୟବସ୍ଥା ।

**ଠିକ**—ଗ୍ରା. ବି.ନିଷ୍କର୍ଷ, ସମଷ୍ଟି, ସ୍ଥିରତା, ସଂକ୍ଷିପ୍ତ ବା ସାରକଥା, (ବିଂ) ସାର, ସୁନ୍ଦର, ସମ୍ପୂର୍ଣ୍ଣ ।

**ଠିକକରିବା**—ଗ୍ରା. କ୍ରି. ସମଷ୍ଟି କରିବା, ଯୋଗ କରିବା, ଏକାଧିକ ସଂଖ୍ୟାର ଯୋଗଫଲ ବାହାର କରିବା ।

**ଠିକଠିକ**—ଗ୍ରା. ବିଂ. କୌଣସି ସମାଜର ବା ସ୍ଥାନର ବିଶିଷ୍ଟ ବା ଗଣ୍ୟମାନ୍ୟ (ବ୍ୟକ୍ତିଗଣ),ସାର, ବଛାବଛା ।

**ଠିକଣା**—ଗ୍ରା. ବି. ସ୍ଥିରତା, ଅନ୍ତ, ନିଶ୍ଚିନ୍ତତା, କୂଳ କିନାରା, ଚିହ୍ନ, ନିଦର୍ଶନ, କଳନା, ସନ୍ଧି, ବାସସ୍ଥାନ, ସତ୍ୟ ବା ସୁନିଶ୍ଚିତ ସମ୍ବାଦ, ଯୋଗାଡ଼, ଶେଷ ଉଦ୍ଦେଶ୍ୟ, କୌଣସି ବିଷୟର ସ୍ଥିରୀକରଣ ।

**ଠିକଣାକରିବା**—ଗ୍ରା. କ୍ରି. ଅନୁସନ୍ଧାନ ଦ୍ୱାରା କୌଣସି ବିଷୟର ସୁନିଶ୍ଚିତ ସମ୍ବାଦ ସଂଗ୍ରହକରିବା, ଠାବକରିବା, ସୁଧାରିବା, ଯୋଗାଡ଼ କରିବା, ସ୍ଥିରକରିବା, ଖୋଜି ବାହାର କରିବା ।

**ଠିକଣ ଲଗିବା**—ଗ୍ରା.ବି. କୌଣସି ବିଷୟର ତତ୍ତ୍ୱ ମିଳିବା, ସ୍ଥିରୀକରଣ ।

**ଠିକଦେବା**—ଗ୍ରା.କ୍ରି ଠିକ କରିବା ।

**ଠିକ ମୁଣ୍ଡ**—ଗ୍ରା. ବି. ଶେଷକାଳ, ମୃତ୍ୟୁକାଳ, ଅଭିପ୍ରେତ ଶେଷସ୍ଥାନ ।

**ଠିକରି**—ଗ୍ରା. ବି. କୌଣସି ଦ୍ରବ୍ୟ କୌଣସି ଦ୍ରବ୍ୟ ଉପରେ ପଡ଼ି ଛିଟିକି ଆସିବା, ଏକପ୍ରକାର ଡ଼ାଲି, ଗୁଡ଼ାଖୁ ଓ ଗଞ୍ଜେଇ ଖାଇବା ଚିଲମର କଣ୍ଠଦେଶରେ ଦିଆଯିବା ଗୋଡ଼, ଅଟକ, ଅଇଁଠା,ଚୁଲି,ରନ୍ଧନପାତ୍ର,ହାଣ୍ଡି ଆଦି ।

**ଠିକା**—ଗ୍ରା. ବି. ( ସଂ-ସ୍ଥିରୀକରଣ ) କୌଣସି କାମପାଇଁ ଆଗରୁ ସ୍ଥିରୀକୃତ ମୂଲ୍ୟ ବା ଦର, ପୂର୍ବରୁ ପାରିଶ୍ରମିକ ଚୁକ୍ତିକରି କରାଯିବା କାର୍ଯ୍ୟ, କାନଟ୍ରାକ୍ଟି କାମ, ଅସ୍ଥାୟୀ କାମ ବା ଚାକିରି, ମଜୁରୀରେ କରାଯିବା କାମ,ଇଜାରା, ନିର୍ଦ୍ଦିଷ୍ଟ କରରେ କିଛିକାଳ ପାଇଁ ଦିଆଯିବା ଭୂସମ୍ପତ୍ତିର ପଟ୍ଟା ବା କୃଷିଜମି,(ଗ୍ରା.ବି.) ଅସ୍ଥାୟୀ, ଆଗରୁ ପାରିଶ୍ରମିକ ସ୍ଥିର ହୋଇଥିବା ( କାର୍ଯ୍ୟ ) ।

**ଠିକା (କେ)ଇବା**—ଗ୍ରା. କ୍ରି. ଠିକଣା ବା ସ୍ଥିର ବା ମନୋନୀତ କରିବା, ଠିକ୍ କରିବା ।

**ଠିକାଠିକା**—ଗ୍ରା. ବିଂ.ଗୋଟିଏ ଗୋଟିଏ, ଗୋଟି ଗୋଟିକିଆ, ବିରଳ ।

**ଠିକାଦାର**—ଗ୍ରା.ବିଂ. କାନଟ୍ରାକ୍ଟର, କାନଟ୍ରାକ୍ଟି, କଣ୍ଟ୍ରାକ୍ଟର, ଇଜାରାଦାର ।

**ଠିକାଦାରି**—ଗ୍ରା.ବି.ଠିକାଦାରର କାର୍ଯ୍ୟ ।

**ଠିକାଦେବା**—ଗ୍ରା.କ୍ରି.କୌଣସି କାର୍ଯ୍ୟକୁ ନିରୂପିତ ପାରିଶ୍ରମିକ ଓ ସମୟରେ ଶେଷ କରିବା ନିମନ୍ତେ କାନଟ୍ରାକ୍ଟି ଉପରେ ଅର୍ପଣ କରିବା ।

**ଠିକାନେବା**—ଗ୍ରା.କ୍ରି. କୌଣସି କାର୍ଯ୍ୟକୁ ଠିକା ପ୍ରଣାଳୀରେ ନିଷ୍ପନ୍ନ କରିବା ନିମନ୍ତେ ଭାର ଗ୍ରହଣ କରିବା ।

ଠିକିବା—ଗ୍ରା.କ୍ରି.(ସଂ-ସ୍ତୃକ୍)ଠିକ ଇବା ଦେଖ; ଗଡ଼ରୁଦ୍ଧହେବା, ଅଟକା-ଯିବା, ସମଧିକ ହେବା, ନିଷ୍ଟିତ ହେବା।

ଠିକିଯିବା—ଗ୍ରା. କ୍ରି. କାର୍ଯ୍ୟ କ୍ଷେତ୍ରରେ ବାଧା ପାଇବା, ଅକୃତକାର୍ଯ୍ୟ ହେବା।

ଠିକିର—ଗ୍ରା. ବି. ତାସ୍ ଖେଳରେ ନାଲିରଙ୍ଗ ଚଉକୋଣିଆ ଆକାରର ଚିହ୍ନଥିବା ତାସ୍।

ଠିକେ—ଗ୍ରା.ଅବ୍ୟ.ଠିକ୍ କଥା କହିବାକୁ ଗଲେ,(କ୍ରି.ବିଂ)ସଂକ୍ଷେପରେ,ସ୍ଥୂଳତଃ।

ଠିକେଠିକେ—ଗ୍ରା. କ୍ରି.ବିଂ.ସଂକ୍ଷେପରେ, ସ୍ଥୂଳତଃ।

ଠିକ୍କା—ଗ୍ରା.ବି.ତାସ୍ ଖେଳରେ ଗୋଟିଏ ବିନ୍ଦୁ ବା ସଂଖ୍ୟାଥିବା ତାସ୍ ଖଣ୍ଡ,ଟିକ୍କା।

ଠିପି—ଗ୍ରା. ବି. ଶିଶି ପ୍ରଭୃତିର ମୁହଁ ବନ୍ଦ କରିବା ନିମିତ୍ତ ଦିଆଯାଇଥିବା ଘୋଡ଼ଣି ବା ଖିଲ।

ଠିର୍କା—ଗ୍ରା.ବି. ବାଉଁଶ ନିର୍ମିତ ବାଦ୍ୟ-ଯନ୍ତ୍ରବିଶେଷ।

ଠିର୍କା(କେ)ଇବା—ଗ୍ରା. କ୍ରି. କୌଣସି ବ୍ୟକ୍ତିକୁ ବା ଜୀବକୁ ଆଗରୁ ସାବଧାନ କରିଦେବାରୁ କୌଣସି ସ୍ଥାନରୁ ସେ ଘୁଞ୍ଚିଯିବାର ଉପାୟ କରିବା।

ଠିଙ୍କେଇବା—ଗ୍ରା. କ୍ରି. ମାଟିରୁ ପାଗ ବା ଆର୍ଦ୍ରତା ଶୁଖିଯିବା।

ଠିଲ୍—ଗ୍ରା. ବି. (ସଂ-ସ୍ଥୂଳ) ସମ୍ପୂର୍ଣ୍ଣ, ପ୍ରଚୁର।

ଠୁଁ(ଠୁଁ)—ଗ୍ରା. ଅବ୍ୟ.(୫ମୀ ବିଭକ୍ତିର ଚିହ୍ନ) ଠାରୁ, ଅପେକ୍ଷା, ଅମୁକ କାଳରୁ, ଅବଧି।

ଠୁକୁଠାକ୍—ଗ୍ରା. ଅବ୍ୟ ଓ ବି. ଠୁକୁ ଠୁକୁ ଦେଖ।

ଠୁକ—ଗ୍ରା. ବି. ଠୋକ ଦେଖ।

ଠୁକର—ଗ୍ରା. ବି. ଠୋକର ଦେଖ।

ଠୁକାଠୁକି—ଗ୍ରା.ବି. ଦୁଇ ଜଣଙ୍କ ମଧ୍ୟରେ ସାମାନ୍ୟ ଉତ୍ତର ପ୍ରତ୍ୟୁତ୍ତର ବା କଳି, ପରସ୍ପର ମଧ୍ୟରେ ସାମାନ୍ୟ ଶବ୍ଦରେ ଆଘାତ ପ୍ରତିଘାତ।

ଠୁକଠୁକଦେବା—ଗ୍ରା.କ୍ରି. ଶୁପୁଡ଼େଇବା, ଧୀରେ ଧୀରେ ଆଘାତ କରିବା।

ଠୁକିବା—ଗ୍ରା.କ୍ରି. ଧୀରେଭାବରେ କଠିନ ପଦାର୍ଥରେ ଆଘାତକରିବା, ଠୁକୁ-ରାଇବା। [ ଦେଖ।

ଠୁକୁଠାକ୍—ଗ୍ରା.ଅବ୍ୟ ଓ ବି. ଠୁକୁ ଠୁକୁ

ଠୁକୁଠୁକୁ—ଗ୍ରା.ଅବ୍ୟ.ଦୁଇଟି ପଦାର୍ଥରେ, ଆଘାତଜନିତ ଧୀର ଅନୁଚ୍ଚ ଶବ୍ଦ, ବି. ଗୃହର ଆଭ୍ୟନ୍ତରୀଣ କଳହ—ଯାହାକି ସାଧାରଣରେ ପ୍ରକଟ ହୋଇ ନ ଥାଏ।

ଠୁକୁର୍ ଠୁକୁର୍—ଗ୍ରା.ଅବ୍ୟ. ଠୁକୁ ଠୁକୁ ଦେଖ।

ଠୁକୁରା(ରେ)ଇବା—ଗ୍ରା. କ୍ରି. ଠୁକୁଠୁକୁ ଶବ୍ଦ କରି ବା ଦୃଢ଼ ପଦାର୍ଥରେ ସାମାନ୍ୟ ଆଘାତ କରି କୌଣସି କାର୍ଯ୍ୟ କରିବା, ଠୋକରାଇବା, ଅଣ୍ଟଦ୍ୱାରା କଠିନ ବସ୍ତୁରେ ସାମାନ୍ୟ ଆଘାତ କରିବା।

ଠୁକେଇ ଠୁକେଇ—ଗ୍ରା.କ୍ରି.ବିଂ ଭୂମିରେ ନାତିଧୀର ନାତିଶୀଘ୍ର ପାଦ ପକାଇ (ଚାଲିବା)।

ଠୁଙ୍କା—ଗ୍ରା. ବି. ଗୋଇଠି ଠେଙ୍ଗାରେ ପ୍ରହାର, ଆବଦ୍ଧ କରିବା, ଆକର୍ଣ୍ଣ ଭୋଜନ,ପାଦକୁ ସମ୍ପୂର୍ଣ୍ଣରୂପେ ଭୂମିରେ ଲଗାଇ ତାହା ଉପରେ ସମସ୍ତ ଭାର ଦେଇ ବସିବା।

ଠୁଙ୍କାଠୁଙ୍କ—ଗ୍ରା.ଅବ୍ୟ. ପରସ୍ପର ମଧ୍ୟରେ ଗୋଇଠି ଠେଙ୍ଗାର ଦ୍ୱାରା ମାଡ଼ ମରାମରି।

ଠୁଙ୍କିବା—ଗ୍ରା.କ୍ରି. ଠେଙ୍ଗାଣି ବା ରେଳ ବାଡ଼ିର ଗୁଳିଦ୍ୱାରା ପ୍ରହାର କରିବା, ଆକର୍ଣ୍ଣଭୋଜନ କରିବା, କାରାବନ୍ଦନ ଆଦେଶ ଦେବା, ଆଘାତ କରିବା, ପିଟିବା, ମାଡ଼ଦେବା, ଖୀଲ ଆଦିକୁ ଗୋଇଠି ଛିଦ୍ରରେ ବାଡ଼େଇ ପୂରାଇବା, (ନାଲିସଆଦି) ଦାଏର କରିବା।

ଠୁଙ୍ଗା—ଗ୍ରା.ବିଂ. ଶାଖା ପତ୍ରାଦି ବିହୀନ ଥୁଣ୍ଟା (ଗଛ), ବସ୍ତ୍ରାଦି ଦ୍ୱାରା ଅନାବୃତ (ଶରୀର),ଏକାକୀ, (ଗ୍ରା.ବି) ପତ୍ର ବା କାଗଜର ଠୋଲି।

ଠୁଠା—ପ୍ରା. (ସମ୍ବ) ବିଂ. ଯାହାର ହାତ ଗୋଡ଼ ବା ଅଙ୍ଗୁଳି ଆଦି ଛିଣ୍ଡି ଯାଇଅଛି, ପଙ୍ଗୁ, ଥୁଣ୍ଟା,।

ଠୁଠୁ—ପ୍ରା.(ସମ୍ବ)ବି.ସାତଗାଡ଼ି ଖେଳ।

ଠୁଣ୍କା—ଗ୍ରା.ବି. ଟୁଣୁକା (ଦେଖ); ବିଂ. ଭଙ୍ଗପ୍ରବଣ।

ଠୁଣ୍ଠୁଣ୍—ଗ୍ରା.ଅବ୍ୟ.ଟୁଣଟୁଣ ଶବ୍ଦ,ନଗଦ, ରୋକ୍‌ଠୋକ୍।

ଠୁଣ୍ଟ—ପ୍ରା.(ସମ୍ବ) ବି. ଚଞ୍ଚୁ, ଥଣ୍ଟ।

ଠୁଣ୍ଟା—ପ୍ରା.(ସମ୍ବ) ବିଂ.ଥୁଣ୍ଟା ଦେଖ।

ଠୁଣ୍ଟି—ପ୍ରା.(ସମ୍ବ)ବି.ଓଷ୍ଠ, ଚିବୁକ, ଥଣ୍ଟ।

ଠୁଣ୍ଡି—ପ୍ରା.(ସମ୍ବ) ବି. ଓଷ୍ଠ, ଚିବୁକ।

ଠୁରା—ଗ୍ରା.ବିଂ.ପୁଂ. (ସଂ-ଖଞ୍ଜନ) ଖଞ୍ଜ-କାୟ, ବାଙ୍ଗର। [ ବେଙ୍ଗ।

ଠୁରାବେଙ୍ଗ—ଗ୍ରା.ବି. କୁଲିବେଙ୍ଗ, ଟିକି

ଠୁଳ—ଗ୍ରା. ବିଂ. (ସ-ସ୍ଥୂଳ) ଗଦା କରା-ଯାଇଥିବା, ଏକୀଭୂତ, ଜୁଣ୍ଡ, ଦଳବଦ୍ଧ, ସମଷ୍ଟି କରାଯାଇଥିବା (ବହୁସଂଖ୍ୟା), (ବି) ମୋଟ,ସମଷ୍ଟି,ଗଦା, ଥାକ, ରାଶି।

ଠୁଳକରିବା—ଗ୍ରା. କ୍ରି. ଗଦା କରିବା, ଜମାକରିବା, ସଂଗ୍ରହ କରିବା, ବହୁ ଲୋକଙ୍କୁ ଏକତ୍ର କରାଇବା, ବହୁ ବସ୍ତୁକୁ ଏକତ୍ର ମିଶାଇବା, ( ବହୁ ସଂଖ୍ୟାକୁ ) ଯୋଗ କରିବା। [ ଦେଖ।

ଠୁଳା(ଳେ)ଇବା—ଗ୍ରା. କ୍ରି. ଠୁଳକରିବା

ଠୁଳି—ଗ୍ରା. ବି. ମୁଣ୍ଡର ଖପୁରି।

ଠୁଳି—ଗ୍ରା. ବି. ବାଡ଼ି ଆଦିର ମୁଣ୍ଡରେ-ଥିବା ଗୋଲାକାର ପିଣ୍ଡ ଓ ତଳପାଖେ ଅର୍ଥାତ୍ ଭୂମିରେ ଲାଗୁଥିବା ଅଂଶରେ ମରାଯାଇଥିବା, ଲୌହାଦିର ଗୋଲକ ପିଣ୍ଡ।

ଠୁଳେ—ଗ୍ରା. କ୍ରି. ବିଂ. ( ସ-ସ୍ଥୂଳତଃ ) ସ୍ଥୂଳରେ, ଆଦୌ, ମୂଣ୍ଡହୁଁ, ମୂଳରୁ, ଏକତ୍ର, ସମଷ୍ଟିରେ, କହିଁନ୍ଥାଏ।

ଠୂଳ—ଗ୍ରା. ବି. ( ସ-ସ୍ଥୂଳ—ତାନ୍ତ୍ରିକ-ସାଧନା)ମାତ୍ରା, ଚିହ୍ନ, ନିଶାଣ, ଜୀବାତ୍ମା ଓ ଅଜୀବ ବା ପରମାତ୍ମାର ଅଜୀବ ସ୍ଥାନ, ଅର୍ଦ୍ଧମାତ୍ରା, (ବିଂ) କେବଳ ସ୍ଥୂଳ ରୂପଧାରୀ।

ଠୂଳରୂପ—ଗ୍ରା.ବି.ସ୍ଥୂଳରୂପ, ଦେହଧାରୀ, ଆକାର।

ଠେ—ଗ୍ରା. ଅବ୍ୟ. (ସଂ-ସ୍ଥାନେ) ଠାଇଁ, ସ୍ଥାନରେ, ଠାରେ, ପ୍ରତି, ଆଡ଼େ ।

ଠେଁ—ଗ୍ରା. ଅବ୍ୟ. ଠେ ଦେଖ ।

ଠେଁକି—ପ୍ରା. (ସମ୍ବ) ବି. ମାଟିର ଛୋଟ ଘଡ଼ି ।

ଠେଁକେ—ପ୍ରା. (ସମ୍ବ)ଅବ୍ୟ. ଠାରେ ।

ଠେଁଠ—ପ୍ରା. (ଲକ୍ଷ୍ମୀଆ)ଗଳା, ବେକ ।

ଠେଁସ—ଗ୍ରା.ବି.ଅବଲମ୍ବନ, ଠିଆ, ଆଉଜିବା, ପେଲ, ଧକ୍କା ।

ଠେଁସଦେବା—ଗ୍ରା.କ୍ରି. କୌଣସି ପଦାର୍ଥକୁ ଆଶ୍ରୟ କରିବା, ଦୃଢ଼ ସଲଗ୍ନ ହୋଇ ଆଉଜିବା, ପେଲିଦେବା ।

ଠେଁସା—ଗ୍ରା. ବି. ଅଧାର, ଭରା, ଆଶ୍ରୟ, ଠେଲ, ପେଲ, ଆଦେଶ ନ ମାନିବା, ଅବାଧ୍ୟତା, (ପୁଂ.ବିଂ) ଅବାଧ୍ୟ, କାର୍ଯ୍ୟର ଦାୟିତ୍ୱ ଆପଣାର ଉପରକୁ ନ ନେବା ।

ଠେଁସାଠେସି—ଗ୍ରା.ବି. ପେଲାପେଲି,ଧକ୍କାଧକ୍କି, ଠେଲାଠେଲି, ଦୁଇ ଜଣଙ୍କର କୌଣସି କାର୍ଯ୍ୟ କରିବା ନିମନ୍ତେ ଅନିଚ୍ଛାସୂଚକ ବିରୋଧ ।

ଠେଁସିବା—ଗ୍ରା. କ୍ରି. ପେଲିବା, ଧକ୍କାମାରିବା, କଥା ନ ମାନିବା, ଘୁଷିବା, ଭରାଦେବା, ଅଧିକାହେବା ।

ଠେକ—ଗ୍ରା.ବି. ଅବଲମ୍ବନ,ଭିରା, ଠିଆ, ଠେସ, ଡେଙ୍ଗ, ଉଚ୍ଚତା, ବାଧା, ମାଡ଼, (ବିଂ) ଡେଙ୍ଗା, ଉଚ୍ଚ, ଅପେକ୍ଷାକୃତ ଡେଙ୍ଗା, ଉଚ୍ଚତର ।

ଠେକର—ଗ୍ରା.ବି.ଲମ୍ବକାଠ କିମ୍ବା ପଥର ରଖିବା ନିମନ୍ତେ ତହିଁ ତଳେ ଆଡ଼ବାଗରେ ଦିଆଯିବା ଆଡ଼କାଠ ।

ଠେକରା—ଗ୍ରା.ବିଂ.ଠେକ, ଉଚ୍ଚ,ଅପେକ୍ଷାକୃତ ଡେଙ୍ଗା, (ବି)ଡେଣୁଆ,ବୋଲୁଅ, ଟିମା, ଅଗ ସରୁ ଓ ମୂଳ ମୋଟ କୀଳା, ଖଟଆଦି ଡିକିଡିକି ହେଉଥିଲେ ତଳେ ଦିଆଯିବା ପତଳା ପଟାଆଦି ।

ଠେକା—ଗ୍ରା. ବି. ମୁଣ୍ଡରେ ଲୁଗା ଦ୍ୱାରା ଗୁଡ଼ିଆ ହୋଇଥିବା ପରିଧାନ, ପାଗ, ପଗଡ଼ି, ହାବିଲଦାରର ମୁଣ୍ଡରେ ବନ୍ଧାଯିବା ନାତିନୀଙ୍କ ନଳୀ, ମାଟିର ଘଡ଼ି, (ପ୍ରା.ମେଦନୀ--ବି.)ଛୋକେଇ, ପାଛିଆ ।

ଠେକି—ଗ୍ରା.ବି.ମାଟିର ଛୋଟ କଳସୀ ବା ଘଡ଼ି,(ପ୍ରା.ମଧ୍ୟପ୍ରଦେଶ—ବି.)ଚକି ।

ଠେକିବା—ଗ୍ରା.କ୍ରି. ଗୋଟିଏ ଟାଣ ବସ୍ତୁ ଅନ୍ୟ ଗୋଟିଏ ଟାଣ ବସ୍ତୁରେ ବାଜିବା, ବାଧାପାଇବା, ସଂସାରରେ ଦୁଃଖ ପାଇବା, (ଲ.ଅର୍ଥ) ମାଙ୍କାରେ ଖୁବ୍ ବେଶି ହୋଇଯିବା,ଚଢ଼ା ହୋଇଯିବା ।

ଠେକୁଆ—ଗ୍ରା. ବି. (ସଂ-ଶଶକ) ଶଶକ, ଶଶା, ଖଟିଆ, ଢେଲା ପିଟିବାର କାଠରେ ତିଆରି ଛୋଟ ହାତୁଡ଼ି ।

ଠେଙ୍ଗ—ଗ୍ରା. ବି. (ସଂ-ଟଙ୍କ) ଉଚ୍ଚଭୂମି, ଡିପାଜମି, ଗୋଡ଼, ଚଟୁଆ, ଜଙ୍ଘ,(ବିଂ) ଡିପା । [ ଶୁଷ୍କ ।

ଠେଙ୍ଗଣା—ଗ୍ରା.ବି. ଡିପଜମି, (ବିଂ)ଡିପ,

ଠେଙ୍ଗଣି--ଗ୍ରା.ବି.ଛୋଟ ଠେଙ୍ଗା, ଗୋରୁ ରଖୁଆଳର ପାଞ୍ଚଣ ।

ଠେଙ୍ଗା—ଗ୍ରା. ବି. ଲାଠି, ଲାଠିଦ୍ୱାରା ଆଘାତ, ବଡ଼ ବାଡ଼ି ।

ଠେଙ୍ଗା(ଙ୍ଗେ)ଇବା—ଠେଙ୍ଗା ଦ୍ୱାରା ପ୍ରହାର କରିବା ।

ଠେଙ୍ଗାଖାସି—ପ୍ରା. ( ସମ୍ବ ) ବି. ବଡ଼ଜୋରରେ ହେଉଥିବା କାସ, ଦମକାସ, ଶୁଖିଲା କାସ ।

ଠେଙ୍ଗାଜର—ଗ୍ରା. ବି. ଦିନାନ୍ତିନସ୍ଥାୟୀ ଏକପ୍ରକାର ଜ୍ୱର ।

ଠେଙ୍ଗାଠେଙ୍ଗି—ଗ୍ରା. ବି. ଠେଙ୍ଗାରେ ମାଡ଼ମରାମରି,ଠେଙ୍ଗାରେ ବିଶେଷ ମାଡ଼

ଠେଙ୍ଗାବାଡ଼ି—ଗ୍ରା. ବି. ଲାଠି ଓ ବାଡ଼ି, ସବୁପ୍ରକାର ଅର୍ଥାତ୍ ସାନ ଓ ବଡ଼ ଯଷ୍ଟି

ଠେଙ୍ଗି—ଗ୍ରା. ବି.(ସଂ-ଟଙ୍କ)କଟି ତଳର ଉଭୟ ପାର୍ଶ୍ୱସ୍ଥ ହାଡ଼ ।

ଠେଙ୍ଗୁଣି—ଗ୍ରା. ବି. ଛୋଟ ଠେଙ୍ଗା, ପାଚଣ ।

ଠେଣ୍ଟ—ପ୍ରା.(ସମ୍ବ)ବି. ଖଣ୍ଟ, ଉକାଯୁକ୍ତ ।

ଠେପା—ପ୍ରା. (ସମ୍ବ) ବି. ମେଖ, ଖୁଣ୍ଟି, କୀଳା ।

ଠେଷୀ—ଗ୍ରା.ସ୍ତ୍ରୀ.ବି. ବୃଦ୍ଧା ସ୍ତ୍ରୀ, ବୁଢ଼ୀ ।

ଠେଲ୍‌କୋ—ପ୍ରା. (ସମ୍ବ) ବି. ଛୋଲଙ୍ଗ, ବନ୍ୟ ଖାଦ୍ୟଫଳବିଶେଷ ।

ଠେଲ—ଗ୍ରା. ବି. ଠେଲାଠେଲି, ଲୋକଭିଡ଼, ଗାଢ଼ଜନତା, ଠେସ ।

ଠେଲା—ଗ୍ରା. ବି. ପଛଆଡ଼ୁ ପେଲିବା, ପେଲ, ତଳୁ ଉପରକୁ ଘୂପ, ଲେଡ଼ା, ଧକ୍କା,(ପ୍ରା.ସମ୍ବ.ବି.) ଗୋରୁଙ୍କ ରୋଗରେ ବ୍ୟବହୃତ ଔଷଧବିଶେଷ ।

ଠେଲା(ଲେ)ଇବା—ଗ୍ରା. କ୍ରି. ଠେଲିବା କ୍ରିୟାର ଣିଜନ୍ତରୂପ ।

ଠେଲାଗାଡ଼ି—ଗ୍ରା. ବି. ଯେଉଁ ଗାଡ଼ିକୁ ପଛଆଡ଼ୁ ଜଣେ ମନୁଷ୍ୟ ଠେଲି କରି ଚଳାଏ, ଟ୍ରଲି । [ ଜାଲ ।

ଠେଲାଜାଲ—ପ୍ରା(ସିଂହଭୂମ)ବି.ପେଲଣା

ଠେଲାଠେଲି—ଗ୍ରା. ବି. ପେଲା ପେଲି, ପରସ୍ପରକୁ ପେଲିବା, ଭିଡ଼, (ବିଂ) ଅତ୍ୟନ୍ତ ଲୋକଗହଳପୂର୍ଣ୍ଣ (ସ୍ଥାନ) ।

ଠେଲିବା—ଗ୍ରା. କ୍ରି. ପଛଆଡ଼ୁ ପେଲିବା, ପେଲିବା ।

ଠେସ—ଗ୍ରା. ବି. ଠେଁସ ଦେଖ ।

ଠେସିବା—ଗ୍ରା.କ୍ରି. ହେଚିବା, ପିଟିବା ।

ଠୋ—ଗ୍ରା. ଅବ୍ୟ. ଠୋଠୋ ଦେଖ, (ସଂ-ବି) ମଣ୍ଡଳ ।

ଠୋକ—ଗ୍ରା.ବି. ସମଷ୍ଟି, ଥୋକ, ଗଣ୍ଠି, ଗଦା ।

ଠୋକର—ଗ୍ରା.ବି.କଠିନ ଦ୍ରବ୍ୟ ସଙ୍ଗେ କଠିନ ଦ୍ରବ୍ୟର ଜୋରରେ ଲାଗିବା ଆଘାତ, ଝୁଣ୍ଟିପଡ଼ିବା, ବାଧା, ଠଣା, କଥା କହୁଥିବା ବ୍ୟକ୍ତିଙ୍କ କଥାର ତୀବ୍ର ମନ୍ତବ୍ୟ ପ୍ରକାଶପୂର୍ବକ ତାଙ୍କୁ କଥା କହିବାର ମଝିରେ ମଝିରେ ଦିଆଯିବା ବାଧା, (ଲ.ଅର୍ଥ) ଅପ୍ରୀତିକର ସାଂସାରିକ ଅନୁଭବଜନିତ ଶିକ୍ଷା ।

ଠୋକରଖାଇବା—ଗ୍ରା. କ୍ରି. ଝୁଣ୍ଟିପଡ଼ିବା, ବାଧାପାଇବା ।

ଠୋକରଦେବା—ଗ୍ରା.କ୍ରି. ଠଣା,ଠୁକିବା, କଥାକହୁଥିବା ବ୍ୟକ୍ତିକୁ କଥା କହୁଥିବା ମଝିରେ ମଝିରେ ତୀବ୍ରମନ୍ତବ୍ୟ ପ୍ରକାଶ ପୂର୍ବକ ବାଧାଦେବା, କୌଣସି ବ୍ୟକ୍ତିକୁ

ସାବଧାନ ବା ସତର୍କ କରଦେବା ।

ଠୋକରଲଗିବା—ଗ୍ରା. ବି. ଗୃଲୁଥିବା ବ୍ୟକ୍ତିର ଆଙ୍ଗୁଠି ବା ଘୋଡ଼ାର ଟାପୁ ଭୂମିରୁ ବାହାରପଡ଼ କୌଣସି କଠିନ ବସ୍ତୁରେ ବାଜିବା ।

ଠୋକର—ଗ୍ରା. ବି. ଠୋକର ଦେଖ ।

ଠୋକର(ରେ)ଇବା—ଗ୍ରା. କ୍ରି. କଠିନ ପଦାର୍ଥକୁ ଚୁଞ୍ଚିଦ୍ୱାରା ଧୀରେ ଧୀରେ ଆଘାତ କରିବା, କୌଣସି କଠିନ ପଦାର୍ଥରେ ଅନ୍ୟ କଠିନ ବସ୍ତୁକୁ ଧୀରେ ଧୀରେ ଅର୍ଥାତ୍ ଠୁକୁ ଠୁକୁ କରି ଆଘାତ କରିବା ।

ଠୋକଠ—ଗ୍ରା. କ୍ରି. ବିଂ. ( ସଂ-ସ୍ପଷ୍ଟ ) ସ୍ପଷ୍ଟରୂପେ (କହିବା), ଠୋ ଶବ୍ଦ କାଢ଼ି କରି, ସଶବ୍ଦରେ, ହଠାତ୍, ଅଗ୍ରପଶ୍ଚାତ୍ କିଛି ବିଚାର ନ କରି ।

ଠୋଙ୍ଗା—ଗ୍ରା. ବି. (ସଂ-ଦ୍ରୋଣ) କାଗଜ ବା ପତ୍ରର ଠୋଲା, ଦନା, ଚଉପଦ, ପଲଙ୍ଗା ଇତ୍ୟାଦି ।

ଠୋଟିଆ—ପ୍ରା. (ବସ୍ତ୍ର) ବିଂ. ଅକିଞ୍ଚନ, ଅସହାୟ ।

ଠୋଠୋ—ଗ୍ରା.ଅବ୍ୟ. ଠୋ ଠୋ ଦେଖ; (ଗ୍ରା. କ୍ରି. ବିଂ) ଉଚ୍ଚଶବ୍ଦ ଉତ୍ପନ୍ନ କରି, (ବିଂ ଓ କ୍ରି. ବିଂ) ଉଚ୍ଚ ଓ ସ୍ପଷ୍ଟକଥା ।

ଠୋଠୋ—ଗ୍ରା. ଅବ୍ୟ. କୁରାଢ଼ିରେ ବଡ଼ କାଠ ହାଣିବାର ଶବ୍ଦମାନ,ଉପର୍ଯ୍ୟୁପରି କୁରାଢ଼ି ଚୋଟର ଶବ୍ଦ, ନଡ଼ିଆଆଦି କଠିନ ପଦାର୍ଥକୁ ପଥର ଉପରେ ଜୋରରେ ଏକାଧିକଥର ବାଡ଼େଇବାର ଶବ୍ଦ, କଠିନ ପଦାର୍ଥ ବାଡ଼େଇହୋଇ ହଠାତ୍ ଫାଟିଯିବାର ଶବ୍ଦ,ବଳରୁ ପାଣି ଶୁଖିଯାଇ ଭୂମି ଫାଟିଯିବା,ଖୁବ୍ ଜୋରରେ ଏକାଧିକଥର ଚାପୁଡ଼ା ମାରିବାର ଶବ୍ଦ, ବହୁବାର ବିକଟହାସ୍ୟର ଶବ୍ଦ, ଅଟ୍ଟହାସ୍ୟର ଧ୍ୱନି ।

ଠୋଠୋହସିବା—ଗ୍ରା. କ୍ରି. ଉଚ୍ଚହାସ୍ୟ କରିବା ।

ଠୋପଟକା—ଗ୍ରା. ଅବ୍ୟ. ଠୋ ଶବ୍ଦକରି, ତତ୍‌କ୍ଷଣାତ୍, ସଙ୍ଗେ ସଙ୍ଗେ ।

ଠୋପଟକାକଥା—ଗ୍ରା. ବି. ଆକସ୍ମିକ ବିଷୟ, ସ୍ପଷ୍ଟ ଓ ସତ୍ୟକଥା, କୌଣସି ପ୍ରଶ୍ନର ବା ପ୍ରାର୍ଥନାର ସଙ୍ଗେ ସଙ୍ଗେ ଦିଆଯିବା ଉତ୍ତର ।

ଠୋଲକା—ଗ୍ରା. ବି. (ସଂ-ସ୍ଥୂଳ) କାକରା ପିଠା, ଯେଉଁ ପିଠାପିଠାର ଦୁଇପାଖ ଫୁଲିଆଏ, (ବିଂ) ଫୁଲିଥିବା, ଫୁଲୁକା ।

ଠୋଲା—ଗ୍ରା. ବି. ଦନା, ପତ୍ରାଧାର, ଠୁଙ୍ଗା, ପଲଙ୍ଗା, ଚଉପଦ ଆଦି ।

ଠୋଲି—ଗ୍ରା. ବି. ଗ୍ରୋଟ ଠୋଲା,ଗ୍ରୋଟ ଚଉପଦ ।

ଠୋସ୍—ଗ୍ରା. ବିଂ. (ସଂ-କର୍କଶ) କର୍କଶ, ରୂକ୍ଷ, ସ୍ପଷ୍ଟରୂପେ ଉଚ୍ଚାରିତ, ସ୍ଥୂଳକାୟ, ସ୍ପଷ୍ଟବାଦୀ (ବାକ୍ୟ) ଟାଣୁଆ, କଠିନ, ମୋଟା, ଘନ, (ଗ୍ରା.ବି) କଥାକହିଲାବେଳେ କୌଣସି ବାକ୍ୟ ବା ଶବ୍ଦ ଉପରେ ଦିଆଯିବା ବିଶେଷ ଜୋର ।

ଠୌର—ଗ୍ରା. ବି. ଠଉର ଦେଖ; ନଷ୍ଟସ୍ମୃତି ।



ଡ—ବ୍ୟଞ୍ଜନ ବର୍ଣ୍ଣର ତ୍ରୟୋଦଶ ଅକ୍ଷର, ଓ ଟ ବର୍ଗର ତୃତୀୟ ବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ମୂର୍ଦ୍ଧା ।

ଡ—ପୁଂ. ବି. (ଡୀ+କ.ଅ) ଶିବ,ଶବ୍ଦ, ଭୟ, ତ୍ରାସ, ବାଡ଼ବାଗ୍ନି, ଡମ୍ବରୁ, କ୍ଷୀଣମଧ୍ୟ ଆନନ୍ଦ ବାଦ୍ୟଯନ୍ତ୍ରବିଶେଷ, (ସ୍ତ୍ରୀ) ଡାକିନୀ, (ଡା+କ.ଅ) ବୃଷପକ୍ଷୀ, ଚଷାପୁଅ ଚଢ଼େଇ,ଭଦଭଦଳିଆ ପକ୍ଷୀ ।

ଡଅଣା—ଗ୍ରା. ବି. ଗୋରୁ ଓ ମଇଁଷିକୁ ଦାଗିବାପାଇଁ ବ୍ୟବହୃତ ବକ୍ରାଗ୍ର ଲୌହଦଣ୍ଡ ।

ଡଅଁର—ଗ୍ରା. ବି. (ସଂ-ଦର)ଜଳଭଉଁରି, ନଦୀର ଗଭୀର ଅଂଶ । [ ବ୍ୟକ୍ତି ।

ଡଇଁ—ପ୍ରା.(ଗଞ୍ଜାମ)ବି.ଖେଳରେ ହାରିବା

ଡଇଁଆ—ଗ୍ରା. ବିଂ. ଡହାଣା, (ଆମିଷ ଆଦିରେ) ବିଶେଷ ଲାଳାୟିତ ।

ଡଇଁଡଇଁ—ଗ୍ରା. ବି. ଉପବାସକ୍ଲିଷ୍ଟ, ଧଡ଼ିଆ, ଶୀର୍ଣ୍ଣକାୟ ।

ଡଉଁରିଆ—ଗ୍ରା. ବି. (ସଂ-ଡମରୁ) ତାବିଜ, ମର୍ଦ୍ଦଳାକାର ଧାତୁମୟ ଅଳଙ୍କାରବିଶେଷ, ତେଉଁରିଆ ।

ଡଉଲ—ଗ୍ରା. ବିଂ. (ସଂ-ଡମ୍ବର) ସୁନ୍ଦରଗଠଣ, ସୁଗଠିତ ଶରୀରବିଶିଷ୍ଟ, ( ବି ) ଢଙ୍ଗ, ରୀତି,ଛାଞ୍ଚ,ଆଚରଣ,ସୁଗଠନ, ମୂର୍ତ୍ତି, ଗଠନ ।

ଡଉଲିଆ—ଗ୍ରା. ବିଂ. ସୁଠାମ, ସୁଗଠିତ, ଘଟଣ, ସୁନ୍ଦର ।

ଡକଡ଼କା—ଗ୍ରା. ବିଂ ଓ ବି. ପୁଂ. ଡ଼ବଡ଼ବା, ଯେଉଁ ଲୋକ ପେଟରେ କିଛିକଥା ଗୋପନ ନ ରଖି କହି ବୁଲେ, ଅତ୍ୟୁକ୍ତିକାରକ,ବାବଦୂକ,ଗପଡ଼ି ।

ଡକରା—ଗ୍ରା.ବି. ଆହ୍ୱାନ,ଡ଼ାକ,ନିମନ୍ତ୍ରଣ ।

ଡକରାବିଶ୍ୱେଷଣ—ଗ୍ରା. ବି. ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିରର ପୂର୍ବପାଖରେ ଥିବା ଶିବଲିଙ୍ଗବିଶେଷ ।

ଡକରାହକରା—ଗ୍ରା. ବି. ଡ଼ାକହାକ ।

ଡକା—ଗ୍ରା. ବି. (ସଂ-ଢକ୍କା) ଦୋ'କାଳ, ଧ୍ୱନି, ରବ, ଚିତ୍କାର, କ୍ରନ୍ଦନର ଗୋଳ, ଚହଲ, ଅପବାଦ, ( ବିଂ ) ଆହୂତ, ନିମନ୍ତ୍ରିତ ।

ଡକା(କେ)ଇତ—ଗ୍ରା. ବି. ଖଣ୍ଡା, ଡାକୁ, ବଳପ୍ରୟୋଗପୂର୍ବକ ଗୃହେର ନିମନ୍ତେ ଦଳବଦ୍ଧ ବହୁସଂଖ୍ୟକ ବ୍ୟକ୍ତି, ଦସ୍ୟୁ ।

ଡକାଇତି—ଗ୍ରା.ବି. ବଳପ୍ରୟୋଗ ପୂର୍ବକ ଦଳବଦ୍ଧ ଦସ୍ୟୁଙ୍କ ଦ୍ୱାରା ଲୁଣ୍ଠତରାଜ, ଦଳବଦ୍ଧ ହୋଇ ଲୁଣ୍ଠନ କରିବା ।

ଡକା(କେ)ଇବା—ଗ୍ରା. କ୍ରି. ଡାକିବା କ୍ରିୟାର ଣିଜନ୍ତରୂପ, ଡ଼ାକି ଆଣିବା ନିମନ୍ତେ ଲୋକପଠାଇବା, ତଲବ କରିବା ।

ଡକାଗ୍ରଡ଼ବା—ଗ୍ରା. କ୍ରି. ଡକାପାଡ଼ିବା, ଦେଖ ।

ଡକାଡ଼କ—ଗ୍ରା. ବି. ପରସ୍ପର ଆହ୍ୱାନ,

ସାବଧାନ ବା ସତର୍କ କରଦେବା ।

**ଠୋକରଲଗିବା**—ଗ୍ରା. ବି. ଚାଲୁଥିବା ବ୍ୟକ୍ତିର ଆଙ୍ଗୁଠି ବା ଘୋଡ଼ାର ଟାପୁ ଭୂମିରୁ ବାହାରିପଡ଼ି କୌଣସି କଠିନ ବସ୍ତୁରେ ବାଜିବା ।

**ଠୋକର**—ଗ୍ରା. ବି. ଠୋକର ଦେଖ ।

**ଠୋକରି(ରେ)ଇବା**—ଗ୍ରା. କ୍ରି. କଠିନ ପଦାର୍ଥକୁ ଚଞ୍ଚୁଦ୍ୱାରା ଧୀରେ ଧୀରେ ଆଘାତ କରିବା, କୌଣସି କଠିନ ପଦାର୍ଥରେ ଅନ୍ୟ କଠିନ ବସ୍ତୁକୁ ଧୀରେ ଧୀରେ ଅର୍ଥାତ୍ ଠୁକୁ ଠୁକୁ କରି ଆଘାତ କରିବା ।

**ଠୋକଟ**—ଗ୍ରା. କ୍ରି. ବି°. ( ସଂ-ସ୍ପଷ୍ଟ ) ସ୍ପଷ୍ଟରୂପେ (କହିବା), ଠୋ ଶବ୍ଦ ଜାତ କରି, ସଶବ୍ଦରେ, ହଠାତ୍, ଅଗ୍ରପଶ୍ଚାତ୍ କିଛି ବିଚାର ନ କରି ।

**ଠୋଙ୍ଗା**—ଗ୍ରା. ବି. (ସଂ-ଦ୍ରୋଣ) କାଗଜ ବା ପତ୍ରର ଠୋଲି, ଦନା, ଚଉପଦି, ପଲଙ୍ଗା ଇତ୍ୟାଦି ।

**ଠୋଟିଆ**—ଗ୍ରା. (ବସ୍ତ୍ର) ବି°. ଅକିଞ୍ଚନ, ଅସହାୟ ।

**ଠୋଠୋ**—ଗ୍ରା.ଅବ୍ୟ. ଠୋ ଠୋ ଦେଖ; (ଗ୍ରା. କ୍ରି. ବି°) ଉଚ୍ଚଶବ୍ଦ ଉତ୍ପନ୍ନ କରି, (ବି° ଓ କ୍ରି. ବି°) ଉଚ୍ଚ ଓ ସ୍ପଷ୍ଟକଥା ।

**ଠୋଠୋ**—ଗ୍ରା. ଅବ୍ୟ. କୁରାଢ଼ିରେ ବଡ଼ କାଠ ହାଣିବାର ଶବ୍ଦମାନ,ଉପର୍ଯ୍ୟୁପରି କୁରାଢ଼ି ଚୋଟର ଶବ୍ଦ, ନଡ଼ିଆଆଦି କଠିନ ପଦାର୍ଥକୁ ପଥର ଉପରେ ଜୋରରେ ଏକାଧିକଥର ବାଡ଼େଇବାର ଶବ୍ଦ, କଠିନ ପଦାର୍ଥ ବାଡ଼େଇହୋଇ ହଠାତ୍ ଫାଟିଯିବାର ଶବ୍ଦ,ବାଲିରୁ ପାଣି ଶୁଖିଯାଇ ଭୂମି ଫାଟିଯିବା,ଖୁବ୍ ଜୋରରେ ଏକାଧିକଥର ଗୁମ୍ପୁଡ଼ା ମାରିବାର ଶବ୍ଦ, ବହୁବାର ବିକଟହାସ୍ୟର ଶବ୍ଦ, ଅଟ୍ଟହାସ୍ୟର ଧ୍ୱନି ।

**ଠୋଠୋହସିବା**—ଗ୍ରା. କ୍ରି. ଉଚ୍ଚହାସ୍ୟ କରିବା ।

**ଠୋପଟକା**—ଗ୍ରା. ଅବ୍ୟ. ଠୋ ଶବ୍ଦକରି, ତତ୍କ୍ଷଣାତ୍, ସଙ୍ଗେ ସଙ୍ଗେ ।

**ଠୋପଟକାକଥା**—ଗ୍ରା. ବି. ଆକସ୍ମିକ ବିଷୟ, ସ୍ପଷ୍ଟ ଓ ସତ୍ୟକଥା, କୌଣସି ପ୍ରଶ୍ନର ବା ପ୍ରାର୍ଥନାର ସଙ୍ଗେ ସଙ୍ଗେ ଦିଆଯିବା ଉତ୍ତର ।

**ଠୋଲକା**—ଗ୍ରା. ବି. (ସଂ-ସ୍ଥୂଳ) କାକରା ପିଠା, ଯେଉଁ ଘିଅପିଠାର ଦୁଇପାଖ ଫୁଲିଥାଏ, (ବି°) ଫୁଲିଥିବା, ଫୁଲୁକା ।

**ଠୋଲି**—ଗ୍ରା. ବି. ଦନା, ପତ୍ରାଧାର, ଠୁଙ୍ଗା, ପଲଙ୍ଗା, ଚବୁଡ଼ି ଆଦି ।

**ଠୋଲି**—ଗ୍ରା. ବି. ଶ୍ରେଷ୍ଠ ଠୋଲି,ଶ୍ରେଷ୍ଠ ଚଉପଦି ।

**ଠୋସ୍**—ଗ୍ରା. ବି°. (ସଂ-କର୍କଶ) କର୍କଶ, ରୁକ୍ଷ, ସ୍ପଷ୍ଟରୂପେ ଉଚ୍ଚାରିତ, ସ୍ଥୂଳକାୟ, ସ୍ପଷ୍ଟବାଦୀ (ବାକ୍ୟ) ଟାଣୁଆ, କଠିନ, ମୋଟା, ଘନ, (ଗ୍ରା.ବି) କଥାକହିଲାବେଳେ କୌଣସି ବାକ୍ୟ ବା ଶବ୍ଦ ଉପରେ ଦିଆଯିବା ବିଶେଷ ଜୋର ।

**ଠୌର**—ଗ୍ରା. ବି. ଠଉର ଦେଖ; ନଷ୍ଟସ୍ମୃତା ।



**ଡ**—ବ୍ୟଞ୍ଜନ ବର୍ଣ୍ଣର ତ୍ରୟୋଦଶ ଅକ୍ଷର, ଓ ଟ ବର୍ଗର ତୃତୀୟ ବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ମୂର୍ଦ୍ଧା ।

**ଡ**—ପୁଂ. ବି. (ଡୀ+କ.ଅ) ଶିବ,ଶବ୍ଦ, ଭୟ, ତ୍ରାସ, ବାଡ଼ବାଗ୍ନି, ଡମ୍ବରୁ, କ୍ଷୀଣମଧ୍ୟ ଆନନ୍ଦ ବାଦ୍ୟଯନ୍ତ୍ରବିଶେଷ, (ସ୍ତ୍ରୀ) ଡାକିନୀ, (ଡା+କ.ଅ) ବୃଷପକ୍ଷୀ, ଚଷାପୁଅ ଚଢ଼େଇ,ଭଦଭଦଳିଆ ପକ୍ଷୀ ।

**ଡଅଣା**—ଗ୍ରା. ବି. ଗୋରୁ ଓ ମଇଁଷିକୁ ଦାଗିବାପାଇଁ ବ୍ୟବହୃତ ବକ୍ରାଗ୍ର ଲୌହଦଣ୍ଡ ।

**ଡଅଁର**—ଗ୍ରା. ବି. (ସଂ-ଦର)ଜଳଭଉଁରି, ନଦୀର ଗଭୀର ଅଂଶ । [ ବ୍ୟକ୍ତି ।

**ଡଇଁ**—ଗ୍ରା.(ଗଞ୍ଜାମ)ବି.ଖେଳରେ ହାରିବା

**ଡଇଁଆ**—ଗ୍ରା. ବି°. ଡହାଣା, (ଆମିଷ ଆଦିରେ) ବିଶେଷ ଲାଳାୟିତ ।

**ଡଇଁଡଇଁ**—ଗ୍ରା. ବି. ଉପବାସକ୍ଳିଷ୍ଟ, ଧଡ଼ୁଆ, ଶୀର୍ଣ୍ଣକାୟ ।

**ଡଉଁରିଆ**—ଗ୍ରା. ବି. (ସଂ-ଡମରୁ) ଡାବିଜ, ମର୍ଦ୍ଦଳାକାର ଧାତୁମୟ ଅଳଙ୍କାରବିଶେଷ, ଡେଉଁରିଆ ।

**ଡଉଲ**—ଗ୍ରା. ବି°. (ସଂ-ଡମ୍ବର) ସୁନ୍ଦରଗଠଣ, ସୁଗଠିତ ଶରୀରବିଶିଷ୍ଟ, ( ବି ) ଢଙ୍ଗ, ରୀତି,ଛାଞ୍ଚ,ଆଚରଣ,ସୁଗଠନ, ମୂର୍ତ୍ତି, ଗଠନ ।

**ଡଉଲିଆ**—ଗ୍ରା. ବି°. ସୁଠାମ, ସୁଗଠିତ, ଘଟଣ, ସୁନ୍ଦର ।

**ଡକଡ଼କା**—ଗ୍ରା. ବି° ଓ ବି. ପୁଂ. ଡ଼ବଡ଼ବା, ଯେଉଁ ଲୋକ ପେଟରେ କିଛିକଥା ଗୋପନ ନ ରଖି କହି ବୁଲେ, ଅତ୍ୟୁକ୍ତିକାରକ,ବାବଦୂକ,ଗପଡ଼ି ।

**ଡକରା**—ଗ୍ରା.ବି. ଆହ୍ୱାନ,ଡ଼ାକ,ନିମନ୍ତ୍ରଣ ।

**ଡକରାବିଶ୍ରୀଷଣ**—ଗ୍ରା. ବି. ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିରର ପୂର୍ବପାଖରେ ଥିବା ଶିବଲିଙ୍ଗବିଶେଷ ।

**ଡକରାହକରା**—ଗ୍ରା. ବି. ଡ଼ାକହାକ ।

**ଡକା**—ଗ୍ରା. ବି. (ସଂ-ଢକ୍କା) ହୋବାଳି, ଧ୍ୱନି, ରବ, ଚିତ୍କାର, କ୍ରନ୍ଦନର ରୋଳ, ଚହଳ, ଅପବାଦ, ( ବି° ) ଆହୂତ, ନିମନ୍ତ୍ରିତ ।

**ଡକା(କେ)ଇତ**—ଗ୍ରା. ବି. ଖଣ୍ଡା, ଡାକୁ, ବଳପ୍ରୟୋଗପୂର୍ବକ ଚୋରି ନିମନ୍ତେ ଦଳବଦ୍ଧ ବହୁସଂଖ୍ୟକ ବ୍ୟକ୍ତି, ଦସ୍ୟୁ ।

**ଡକାଇତି**—ଗ୍ରା.ବି. ବଳପ୍ରୟୋଗ ପୂର୍ବକ ଦଳବଦ୍ଧ ଦସ୍ୟୁଙ୍କ ଦ୍ୱାରା ଲୁଣ୍ଠତରାଜ, ଦଳବଦ୍ଧ ହୋଇ ଲୁଣ୍ଠନ କରିବା ।

**ଡକା(କେ)ଇବା**—ଗ୍ରା. କ୍ରି. ଡାକିବା କ୍ରିୟାର ଣିଜନ୍ତରୂପ, ଡାକି ଆଣିବା ନିମନ୍ତେ ଲୋକପଠାଇବା, ତଲବ କରିବା ।

**ଡକାଗୁଡ଼ିବା**—ଗ୍ରା. କ୍ରି. ଡକାପଡ଼ିବା, ଦେଖ ।

**ଡକାଡ଼କ**—ଗ୍ରା. ବି. ପରସ୍ପର ଆହ୍ୱାନ,

ଉଚ୍ଚୈଃସ୍ୱରରେ ବହୁବାର ଡାକିବା, (ବ୍ୟଂ) ପରସ୍ପରଦ୍ୱାରା ଆହୂତ ।
ଡକାପକା(କେ)ଇବା—ଗ୍ରା. କ୍ରି. ଡକା-ପାଡ଼ିବା ଦେଖ ।
ଡକାପାଡ଼ିବା—ଗ୍ରା. କ୍ରି. ଉଚ୍ଚୈଃସ୍ୱରରେ ଶବ୍ଦକରିବା, କାନ୍ଦବୋବାଳି କରିବା ।
ଡକାବୋବାଳି—ଗ୍ରା. କ୍ରି. କାନ୍ଦବୋବାଳି, ଅତି ଆର୍ତ୍ତସ୍ୱରରେ ରୋଦନ ।
ଡକାମଝା—ଗ୍ରା. ସ୍ତ୍ରୀ. ବ୍ୟଂ. ଡାକକଟି, ଯେଉଁ ସ୍ତ୍ରୀର କଟି ଡମରୁ ପରି ସରୁ, ଡମରୁମଧ୍ୟା ।
ଡକାର—ଯା. ବ. ଉଦ୍ଗାର, ବମନ, ବାନ୍ତି, (ସ୍ତ୍ରୀ. ବ) ଡ ସ୍ୱରୂପ ବର୍ଣ୍ଣ ।
ଡକାହକା—ଗ୍ରା. ବ. ଡକାଡକି, ଅନ୍ୟୋନ୍ୟ ଆହ୍ୱାନ, ଡାକହାକ ।
ଡାକୁଣୀ—ଗ୍ରା. ବ. (ସଂ-ଡାକିନୀ) ଡାକିନୀ, କାଳୀଙ୍କ ଗଣଭୁକ୍ତା ଅପଦେବତା, ଯୋଗିନୀ, ଡାହାଣୀ, ଦୁଷ୍ଟା ସ୍ତ୍ରୀ, ଝାଡ଼ାକଇ ରୋଗ ।
ଡକ୍କାଘ—ସ୍ତ୍ରୀ. ବ. ଚଣ୍ଡାଳଗଣା, କେନ୍ଦେର, କନ୍ଦୋଳ ଖଣା ।
ଡଗଡଗ(ଗୃଲିବା)—ଗ୍ରା. କ୍ରି. ବ୍ୟଂ. ଶୀଘ୍ର ଶୀଘ୍ର(ଗୃଲିବା), ଲମ୍ବ ଲମ୍ବ ପାହୁଣ୍ଡ ପକାଇ(ଗୃଲିବା) ।
ଡଗଡଗା—ଗ୍ରା. ପୁଂ. ବ୍ୟଂ. ଯେଉଁ ବ୍ୟକ୍ତି ଡ଼ଗ ଡ଼ଗ ହୋଇ ଗୃଲେ, (ବ) ଏକ-ପ୍ରକାର କଳାରଙ୍ଗର ପିମ୍ପୁଡ଼ି ।
ଡଗରକରିବା—ପ୍ରା. (ହିନ୍ଦି) କ୍ରି. ତଲାସ କରିବା ।
ଡଗର—ଗ୍ରା. ବ. ଦୂତ, ପଦଚିହ୍ନ, ରାସ୍ତା, ପଦାତି, ପିଆଦା, ଗୁପ୍ତଚର, ମନୁଷ୍ୟ ଚଲାବାଟ ଅର୍ଥାତ୍ ଯେଉଁ ରାସ୍ତାରେ ଗାଡ଼ିଆଦି ଯାଇ ନ ପାରେ, ଯେଉଁ ବ୍ୟକ୍ତି ରାଜାଙ୍କାକୁ ସାଧାରଣରେ ପ୍ରଗୃର କରେ, (ପ୍ରା. ହିନ୍ଦି. ବ.) ଖୋଜିବା, ଅନ୍ୱେଷଣ ।
ଡଗରଡଗର—ଗ୍ରା. କ୍ରି. ବ୍ୟଂ. ଡଗ ଡଗ ଦେଖ । [ ଦେଖ ।
ଡଗରଫସର—ଯା. ବ. ଡଗର ଫସର
ଡଗରା—ଗ୍ରା. ବ. ଯେଉଁ ବ୍ୟକ୍ତିଦ୍ୱାରା ରାଜାଦେଶ ଉଦ୍ଘୋଷିତ ହୁଏ, ଭାଟ, ଗୁପ୍ତଚର, ଖଣ୍ଡାଏତ, ବାର୍ତ୍ତାବହ, ଖଣ୍ଡାଏତ ମାନଙ୍କର ଶାଖାବିଶେଷ, ( ବ୍ୟଂ ) ଯେ ଡ଼ଗ ଡ଼ଗ ହୋଇ ଗୃଲେ ।
ଡଗରା(ରେ)ଇକା—ଗ୍ରା. ବ. ଡ଼ଗରାର କାର୍ଯ୍ୟ, ଡ଼ଗରାଙ୍କୁ ପ୍ରଦତ୍ତ ଜାଗିର, ଯେ ଢେଙ୍ଗୁରାଦିଏ, (ବ୍ୟଂ) ଡଗରା ସମ୍ବନ୍ଧୀୟ ।
ଡଗରେଇବା—ଗ୍ରା. କ୍ରି. ବାଟଦେଖାଇ ନେବା, ଗୋରୁ ଓ ପଶୁମାନଙ୍କର ପଦ-ଚିହ୍ନ ଅନୁସରଣ କରିବା ।
ଡଗଲଫସ(ର)ଲ—ଯା. ବ. ଦମ୍ଦିଲସା, ଭଣ୍ଡାଇବା, ଟାଳଟୁଳ, ଦଗାବାଜି, ହେଳା ।
ଡଗା—ଗ୍ରା. ବ. ମାଟିର ମଦ୍ୟଭାଣ୍ଡ, ଅଧିଆ ।
ଡଙ୍ଗ—ଗ୍ରା. ବ. ବୃକ୍ଷ ଓ ଲତାର କୋମଳ ଅଗ୍ରଭାଗ, କୌଣସି ଲତା ଗଛର ଶାଖା ପ୍ରଶାଖା, ପ୍ରାଣୀର ଦେକ, ଦେକମୁଣ୍ଡା, ସାପ, ସାପର ବିଷଦାନ୍ତ, ନାହୁଡ଼ ।
ଡଙ୍ଗମାରିବା—ଗ୍ରା. କ୍ରି. ସାପମାରିବା, ପ୍ରାଣୀର ଦେକମୁଣ୍ଡା ବ୍ୟଥାକରିବା ।
ଡଙ୍ଗମୋଡ଼ଦେବା—ଗ୍ରା. କ୍ରି. ଲତା ବା ବୃକ୍ଷାଦିର କୋମଳ ଅଗ୍ରଭାଗକୁ ମୋଡ଼ି ପକାଇବା, କୌଣସି ପ୍ରାଣୀର ଦେକ-ଠାରୁ ମୁଣ୍ଡକୁ ମୋଡ଼ି ମାରପକାଇବା ।
ଡଙ୍କା—ଗ୍ରା. ବ. (ସଂ-ଡଙ୍କା) ଦୁନ୍ଦୁଭି, ଧେଣ୍ଡୁରା, ଢେଙ୍ଗୁରା, ଅଙ୍କୁଶ, ଲୁହା ବା ପିତ୍ତଳର କରଚୁଲି ।
ଡଙ୍କା(ଙ୍କେ)ଇବା—ଗ୍ରା. କ୍ରି. ( ଲତା ) ବୃଦ୍ଧିପାଇ ଡ଼ଙ୍ଗ ବା ଅଗ୍ରଭାଗ ବିସ୍ତାର କରିବା, ଲଟାଇବା ।
ଡଙ୍କାମାରିବା—ଗ୍ରା. କ୍ରି. ହାଣ୍ଡିରେ ସିଝୁ-ଥିବା ତଣ୍ଡୁଳ ଆଦିକୁ ଅଙ୍କୁଶଦ୍ୱାରା ଗୋଳାଇବା ।
ଡଙ୍କାସ୍ତ—ଗ୍ରା. ବ. (ସଂ-ଟଙ୍କାସ୍ତ) ଏକ-ପ୍ରକାର ବନ୍ୟ କ୍ଷୁପ ।
ଡଙ୍କି—ଗ୍ରା. ବ. ତମ୍ବା ବା ପିତ୍ତଳନିର୍ମିତ ଗ୍ରେଷ୍ଟ ଗ୍ରମୁଚ, ଦେକମୁଣ୍ଡାରେ ଉଠିବା ମାରାତ୍ମକ ରୋଗବିଶେଷ, ମାଲଖମ୍ବରେ କରାଯିବା ଏକପ୍ରକାର କସରତ୍, (ପ୍ରା. ସମ୍ବ. ବ) ବାନ୍ତିରୋଗ, ଏକପ୍ରକାର ଲତା ।
ଡଙ୍କୁଣୀ—ଗ୍ରା. ସ୍ତ୍ରୀ. ବ. (ସଂ—ଡାକିନୀ) ଡାଙ୍କେଣୀ ଦେଖ ।
ଡଙ୍ଗରା—ସ୍ତ୍ରୀ. ବ. ଲଉଫଳ, ଦୀର୍ଘ-କର୍କଟୀ, କାକୁଡ଼ି ।
ଡଙ୍ଗା—ଗ୍ରା. ବ. (ସଂ-ଦ୍ରୋଣ) କ୍ଷୁଦ୍ରନୌକା, ନାହା, ନୌକା, ନୌକାକାର ପାତ୍ର, ଦ୍ରୋଣୀ ।
ଡଙ୍ଗାବାହିବା—ଗ୍ରା. କ୍ରି. କାତ ବା ଆହୁଲମାନ ନୌକା ଚଳାଇବା ।
ଡଙ୍ଗି—ଗ୍ରା. ବ. କ୍ଷୁଦ୍ର ଡ଼ଙ୍ଗା, କୌଣସି ସ୍ଥାନକୁ କୃତ୍ରିମପାଣି ନେବାର କ୍ଷୁଦ୍ର ଜଳପ୍ରଣାଳୀ, କମ୍ଟଉଡ଼ା ଲମ୍ବ କିଆରି ।
ଡଙ୍ଗୁରନାଚ—ଗ୍ରା. ବ. କୋନ୍ଧ ବା ଭୁୟାଁ-ମାନଙ୍କ ମଧ୍ୟରେ ପ୍ରଚଳିତ ଏକପ୍ରକାର ନୃତ୍ୟ ।
ଡଜନ୍—ଯା. ବ. ୧୨ ଗୋଟି ବସ୍ତୁର ସମାହାର, (ବ୍ୟ) ୧୨ ସଂଖ୍ୟକ, ୧୨ ଗୋଟି ।
ଡଜନ୍ଦରଆ—ଗ୍ରା. ବ୍ୟଂ ଓ କ୍ରି. ବ୍ୟଂ. ଏକସଙ୍ଗେ ୧୨ ଗୋଟା ଲେଖାଏଁ ବିକ୍ରି କରାଯିବା (ପଣ୍ୟଦ୍ରବ୍ୟ) ।
ଡଜଲ—ପ୍ରା. (ସମ୍ବ) ବ୍ୟଂ. ମହାର୍ଘ, ମହଙ୍ଗା ।
ଡଣସେନା—ପ୍ରା. (କେନ୍ଦୁଝର) ବ. ପାଇକ-ମାନଙ୍କର ଅଧକ୍ଷ ବା ସର୍ଦ୍ଦାର ।
ଡଣ୍ଡା—ଗ୍ରା. ବ. (ସଂ-ଦଣ୍ଡ) ତୋଡ଼ଜାତୀୟ ଏକପ୍ରକାର ମାଛ । [ ଦେଖ ।
ଡଣ୍ଡା(ଣ୍ଡେ)ଇବା—ଗ୍ରା. କ୍ରି. ଦଣ୍ଡାଇବା
ଡଫଲସଙ୍ଗ—ପ୍ରା. (କେନ୍ଦ୍ରାପଡ଼ା) ବ. ଯେ ଢୋଲକୁ ଢାଲ କରି କହି ବୁଲେ ।
ଡଫୋର—ଗ୍ରା. ବ୍ୟଂ. ଡବଡ଼ବା, ବାବଦୂକ, ପ୍ରଗଲ୍ଭ, ବହୁଭାଷୀ, ଆଗଚଲା, ଆଗବୋଲା, ଉଦ୍ଧତ, ଫମ୍ପା, ପୋଲା, (ବ) ଆନକ-ବାଦ୍ୟବିଶେଷ ।
ଡବ୍ନା—ପ୍ରା. (ସମ୍ବ) ବ. ଫାନ୍ଦର ଢାଙ୍କୁଣୀ ।
ଡବ୍ର—ପ୍ରା. (ସମ୍ବ) ବ୍ୟଂ. ଢ଼େବର, ବାମ ।
ଡବକା—ପ୍ରା. (ହିନ୍ଦି) ବ. ଘରର ଶ୍ରେଣୀ ।
ଡବଡ଼ବ—ଗ୍ରା. ଅବ୍ୟ. ଜଳପୂର୍ଣ୍ଣ ମାଠିଆର ମୁହଁ ତଳକୁ କରି ପାଣି ଅଜାଡ଼ିଲେ

ଯେଉଁ ଶବ୍ଦ ହୁଏ,ବେକପର୍ଯ୍ୟନ୍ତ ପାଣି-
ଥିବା ମାଟିଆ ବା ପଇଡ଼କୁ ହଲାଇଲେ
ତହିଁରେ ଜାତହେବା ଶବ୍ଦ, (କ୍ରି.ବିଂ)
ଅଜସ୍ର ଭାବରେ, ବିଶେଷ ପରିମାଣରେ
(ଜଳ ଅଜାଡ଼ିବା) ।
ଡବ୍‌ଡ଼ବା—ଗ୍ରା. ବିଂ. (ସଂ-ବାବଦୂକ)
ଡକଡ଼କା ଦେଖ ।
ଡବଲ—ଯା. ବି. ଦୁଇଗୁଣ ପରିମାଣ
ବା ସଂଖ୍ୟା, (ବିଂ) ଦ୍ୱିଗୁଣିତ, ଦୁଇଗୁଣ
ପରିମିତ ।
ଡବଲପଇସା—ଗ୍ରା. ବି. ଦୋ ପଇସି,
ଅଧଅଣା ପରିମିତ ତାମ୍ରମୁଦ୍ରା ।
ଡବଲପ୍ରମୋସନ—ଯା.ବି. ଉତ୍କୃଷ୍ଟ ଛାତ୍ର
ଏକାଥରକେ ଗୋଟିଏ କ୍ଲାସକୁ ଟପି
ତାହା ଉପର କ୍ଲାସକୁ ପାଇବା ପ୍ରମୋ-
ସନ୍ ।
ଡବଲି—ଯା. (ଆସାମ ଗୁହା ବଗିଚା) ବି.
ଠିକା କାମ ।
ଡବା—ଗ୍ରା.ବି. (ସଂ-ଦର୍ବି) ଲୌହଧାତୁ-
ମୟ ଫରୁଆ, ରେଲଗାଡ଼ିର ଗୋଟିଏ
କୋଠରି ।
ଡବାଳିବା—ଗ୍ରା. କ୍ରି. ବହୁପରିମାଣରେ
ପାଣି ଅଜାଡ଼ି ଦେବା,ବହୁପରିମାଣରେ
ପାଣି ଝରିବା,ବହୁପରିମାଣରେ ଆଖିରୁ
ଲୁହ ବାହାରିବା ।
ଡବି—ପ୍ରା. (ସମ୍ବ) ବି. ଧାତୁର ଫରୁଆ,
କରଣ୍ଡ,ଡବା ।
ଡବିଡ—ବି.କାଷ୍ଠନିର୍ମିତମୃଗ,ଶିଶୁକ୍ରୀଡ଼ନକ
ମୃଗାଦିର ମୂର୍ତ୍ତି ।
ଡଭର—ଗ୍ରା.ବି.(ସଂ-ଡମ୍ବର)ବାଦ୍ୟ,ଡମ୍ବର,
ଭୋର୍, (ବିଂ) ଦେଖିବାକୁ ସୁନ୍ଦର,
ସ୍ଥୂଳକାୟ, ଡଉଲଡ଼ାଉଲ ।
ଡବା(ଭା)—ଗ୍ରା. ବିଂ. ମୋଟା ଓ ପୋଲ,
ଢୋଲ, ଫମ୍ପା (ବାଉଁଶ), ବଡ଼ ।
ଡ଼(ବା)ଭା ବାଉଁଶ—ଗ୍ରା. ବି. ମୋଟ ଓ
ଫମ୍ପା ବାଉଁଶ ।
ଡମ—ପୁଂ.ବି. (ଡମ+କ.ମ) ଅସ୍ପୃଶ୍ୟ
ବର୍ଣ୍ଣସଙ୍କର ଜାତିବିଶେଷ ।
ଡମଗୁରୁଡ଼ୁ—ଗ୍ରା.ବି. ଏକପ୍ରକାର ବନ୍ୟ
ଶକ୍ତ କାଠଗଛ ।
ଡମ୍‌ଡମ୍—ଗ୍ରା. ଅବ୍ୟ. ଢମଢମ, ଢାଉଁ
ଢାଉଁ, ଢୋଲ ବାଜିବାର ଶବ୍ଦ ।
ଡମଣୀ—ଗ୍ରା. ବି. କବାଟକୁ ଝୁଲାଇବା
ନିମନ୍ତେ ଚଉକାଠରେ ଲଗିଥିବା ଶୃଙ୍ଗ
ବା କୀଲକବିଶିଷ୍ଟ ଧାତୁଖଣ୍ଡ ।
ଡମଣୀକବଜା—ଗ୍ରା.ବି. କବାଟକୁ ଚଉ-
କାଠ ସଙ୍ଗେ ଝୁଲାଇବା ନିମନ୍ତେ ଆବ-
ଶ୍ୟକ ଦୁଇଖଣ୍ଡ ଲୌହଖଣ୍ଡ ଡମଣୀ
କବଜା ।
ଡମର—କ୍ଲୀ.ବି.(ଡମ୍+ଋ+ଭା.ଅ)ଭୟ-
ପାଇ ପଳାଇବା, କୋଳାହଳ, ଭିନ୍ନ
ଭିନ୍ନ ଗ୍ରାମମାନଙ୍କ ମଧ୍ୟରେ ଯୁଦ୍ଧ, ଆକ୍ର-
ମଣ, ପରଚକ୍ରାଦି ଭୟ, ଅସ୍ତ୍ର, କଳହ,
ଦଙ୍ଗା, ମହାମର ।
ଡମରୁ—ପୁଂ.ବି.(ଡମ+ଋ+କ.ଉ)ମଝି
ସରୁ ଓ ଦୁଇପାଖ ଚୌଡ଼ା ଚର୍ମାନଦ୍ଧ-
ବାଦ୍ୟବିଶେଷ, ଚମତ୍କାର ।
ଡମରୁକା—ସ୍ତ୍ରୀ.ବି. (ଡମରୁ+କ+ଆ)
ତନ୍ତ୍ରୋକ୍ତ ମୁଦ୍ରାବିଶେଷ ।
ଡମରୁଧର—ପୁଂ. ବି. (ଡମରୁ+ଧୃ+
କ.ଅ) ମହାଦେବ ।
ଡମରୁମଧ୍ୟ—ପୁଂ.ବିଂ.(ବ.ବ୍ରୀ) ଡମରୁପରି
ଯାହାର ମଧ୍ୟ ବା କଟିଭାଗ ସରୁ,(ପୁଂ.ବି)
ଯୋଜକ, ଯେଉଁ ସଙ୍କୀର୍ଣ୍ଣ ଭୂଭାଗ ଦୁଇ
ବୃହତ୍ ଭୂଭାଗକୁ ପରସ୍ପର ସଂଯୁକ୍ତ
କରେ ।
ଡମରୁମଧ୍ୟା—ସ୍ତ୍ରୀ.ବି. (ବ.ବ୍ରୀ)ସରୁକଙ୍କାଳୀ,
ଯେଉଁ ସ୍ତ୍ରୀର ମଧ୍ୟଭାଗ ସରୁ ।
ଡମାଡ଼ଉଲ—ଗ୍ରା. ବିଂ. ଅମିତବ୍ୟୟୀ,
ଅସ୍ଥିର, ଅବ୍ୟବସ୍ଥିତଚିତ୍ତ, (ବି) ଅଯଥା
ଆଡ଼ମ୍ବର,ଗୋଲମାଲ, ଘୋଘା, ଘଣ୍ଟା-
ଚକଟା, ଧରପଗଡ଼ ।
ଡମାଢୋଲ—ପ୍ରା. (ଯାଜପୁର) ବିଂ.
ପେଟୁଆ ଓ ହୃଷ୍ଟପୁଷ୍ଟ ।
ଡମୁଣୀ—ଗ୍ରା. ବି.ଡମଣୀ ଦେଖ;(ସ୍ତ୍ରୀ.ବି.)
ଡମଜାତୀୟା (ସ୍ତ୍ରୀ) ।
ଡମ୍ଫ—ଗ୍ରା. ବି. (ସଂ-ଦମ୍ଭ) ଛଳ, କପଟ,
ଏକ ପ୍ରକାର ପ୍ରାଚୀନ ଆନନ୍ଦଯନ୍ତ୍ର,
ଗୃଙ୍ଗୁଡ଼ିବିଶେଷ ।
ଡମ୍ଫା—ଗ୍ରା. ବିଂ. (ସଂ-ଦମ୍ଭ) ଡବଡବା,
ବାବଦୂକ, ବହୁଭାଷୀ, ଆଗଟବୋଲା,
ଫମ୍ପା, ପୋଲା, (ବି) ଆନନ୍ଦବାଦ୍ୟ-
ବିଶେଷ, ଡେମ୍ଫନାଗରା ।
ଡମ୍ଫିବା—ଗ୍ରା. କ୍ରି. ଅତିରଞ୍ଜିତ କଥା
କହିବା, ବାଲିଙ୍ଗି କରିବା, ଗପିବା ।
ଡମ୍ବର—ପୁଂ.ବି. (ଡମ୍ବ+ଅର)ସମୂହ,
ଆଡ଼ମ୍ବର,ଆୟୋଜନ,ଉତ୍କର୍ଷ, ବିସ୍ତାର,
ବିଳାସ, ଧାତୁଦିଭ କୁମାରାନୁଚରଭେଦ,
(ବିଂ) ଉଦ୍ଧତ, ବିଖ୍ୟାତ, ଉତ୍କୃଷ୍ଟ ।
ଡମ୍ବରୁ—ଗ୍ରା. ବି. (ସଂ-ଡମରୁ) ଡମରୁ
ଦେଖ,ଉଲକାନରେ ପିନ୍ଧାଯିବା ସୁନାର
ଅଳଙ୍କାର ବିଶେଷ ।
ଡମ୍ବରୁଧର—ଗ୍ରା. ପୁଂ. ବି. ମହାଦେବ ।
ଡୟନ—କ୍ଲୀ.ବି. (ଡୀ+ଅନ)କର୍ଣ୍ଣୀରଥ,
ପାଲ୍କୀ, ଡୁଲି, ନଭୋଗତି, ଉଡ଼ିବା,
ଆକାଶରେ ଉଡ଼ିବା ।
ଡର—ଗ୍ରା. ବି. ଭୟ, ତ୍ରାସ, ଶଙ୍କା,
ଅନିଷ୍ଟାଦିର ଆଶଙ୍କା ।
ଡରକୁଲା—ଗ୍ରା.ପୁଂ.ବିଂ. ଭୀରୁ, ଭୟାଳୁ ।
ଡରଡର—ଗ୍ରା.ବିଂ.ଭୟଶଙ୍କିତ ହେବା ।
ଡରଭୟ—ଗ୍ରା. ବି. କୌଣସି ପ୍ରକାରର
ଭୟ, ଢଳେମାନ ଭୟ ।
ଡରମାଡ଼ିବା—ଗ୍ରା. ବି. (ଅମୁକକୁ) ଭୟ
ବୋଧହେବା ।
ଡରମି—ପ୍ରା. (ବସ୍ତର) ବି. ଡାଳିମ୍ବ
(ଗଛ ଓ ଫଳ) ।
ଡରା—ଗ୍ରା. ବି. ଡରାଣ ଦେଖ ।
ଡରା(ରେ)ଇବା—ଗ୍ରା. କ୍ରି.ଡରିବାକ୍ରିୟାର
ଣିଜନ୍ତରୂପ, ଭୟଦେଖାଇବା, ଧମ-
କାଇବା, ମାରିବାକୁ ବା ଆଘାତ କର-
ବାକୁ ଧମକାଇବା ।
ଡରାଡର—ଗ୍ରା. ବି. ଅନ୍ୟୋନ୍ୟରେ
ଭୟ ଦେଖାଇବା, ଭୟପାଇବା,ଡରାଣ,
ଭୟ ଦେଖାଇବା ।
ଡରାଣ—ଗ୍ରା. ବି. ଭୟଦେଖାଇବା,ଧମକ,
ଏକବ୍ୟକ୍ତି ଦ୍ୱାରା କୌଣସି କାର୍ଯ୍ୟର
ସୁସମ୍ପାଦନର ଆଶାକୁ ଦୃଢ଼ତର କରିବା

ଉଦ୍ଦେଶ୍ୟରେ ଦ୍ୱିତୀୟ ବ୍ୟକ୍ତିଠାରୁ ନିଆ ଯିବା ଜାମିନ୍‌ନାମା ।

ଡରବା—ଗ୍ରା.କ୍ରି. (ସଂ-ଦର) ଭୀତହେବା, ହଠାତ୍ ଭୟପାଇବା,ଆଶଙ୍କା କରିବା ।

ଡରମର—ଗ୍ରା. କ୍ରି. ବିଂ. ଅତ୍ୟନ୍ତ ଭୀତ ହୋଇ, ମନରେ ବିଶେଷ ଭୟରଖି, ଭୟର କାରଣରୁ ।

ଡରମରିବା—ଗ୍ରା. କ୍ରି ସର୍ବଦା ଆଶଙ୍କିତ ହେବା, ଭୟରେ ସମୟ ବିତାଇବା ।

ଡରୁଆ—ଗ୍ରା. ପୁଂ. ବିଂ. ଭୀତ, ଭୀରୁ, ଯେ ଡ଼ରେ, ଯେ ଡରାଏ ।

ଡରେଇହଲେଇ—ଗ୍ରା. କ୍ରି. ବିଂ. ନାନା ପ୍ରକାର ଭୟ ଦେଖାଇ,ଧମକା ଚମକା କରି ।

ଡଲକ—ବି. ଛୁଟିକିଣି, ଚୋକେଇ ।

ଡଲ୍ଲ—ଗ୍ରା. ବି. (ସଂ-ଡଲ୍ଲକ) ବାଉଁଶ ପାତିଆରେ ତିଆରି ବଡ଼ଗୁଙ୍ଗୁଡ଼ା, (ପ୍ରା. ସମ୍ବ. ବି) ବାଉଁଶିଆ, ଗାଣ୍ଡୁଆ ।

ଡଲ୍ଲକ—କ୍ଲୀ. ବି. ବିଶାଖଦତ୍ତନିର୍ମିତ ପାତ୍ର-ବିଶେଷ, ଅନାର୍ଯ୍ୟ ଭାଷା, କାଶ୍ମୀରର ରାଜାବିଶେଷ, ଡଲକ ଦେଖ ।

ଡଲ୍ଲନାଗ୍ରାର୍ଯ୍ୟ—ନିବନ୍ଧସଂଗ୍ରହ ନାମକ ସୁଶ୍ରୁତର ପ୍ରସିଦ୍ଧ ଟୀକାକାର ।

ଡସ୍‌ନା—ପ୍ରା. (ସମ୍ବ.) ବି. ବିଛଣା ।

ଡହକ—ଗ୍ରା.ବି. (ସଂ-ଦହ ଧାତୁ) ଦହନ ତାପ, ଅଗ୍ନିର ଜ୍ୱାଳା, ଶରୀର ଦାହ, ପ୍ରଦାହ, ଅସହ୍ୟ ଗ୍ରୀଷ୍ମ, ଝାଞ୍ଜି, (ବିଂ) ତାତଲ, ଉତପ୍ତ, ନିଆଁରେ ପୋଡ଼ିଯାଇ ନାଲି ହୋଇଥିବା, ଜାଜ୍ୱଲ୍ୟମାନ ।

ଡହକବକଲ—ଗ୍ରା. ବିଂ. ଡହଲ ବକଲ, ପୀଡ଼ାରେ ଅସ୍ଥିର, ଶୋକାକୁଳ, (ବି) ପୀଡ଼ାଜନିତ ଆତୁରତା ବା ଅଧୀରତା ।

ଡହକା(କେ)ଇବା—ଗ୍ରା. କ୍ରି. ଡହକିବା କିମ୍ବାର ଣିଜନ୍ତରୂପ,ନିଆଁକୁ ଫୁଙ୍କି ବା ବିଞ୍ଚି ରଡ଼କରିବା ।

ଡହକିବା—ଗ୍ରା. କ୍ରି. ଦହକିବା, ରଡ଼ ନିଆ ଯୁକ୍ତ ହେବା,ଉତ୍ତପ୍ତହୋଇ ପାଚି-ଯିବା ।

ଡହଡ଼—ଗ୍ରା. ବିଂ. ଦହଡ଼ ଦେଖ ।

ଡହଡହ—ଗ୍ରା. ବିଂ. ଦହଡ଼ ଦେଖ ।

ଡହର—ଗ୍ରା.ବି. ଗଭୀର, ଅତଳସ୍ପର୍ଶ ସ୍ଥାନ, ନୌକାଖୋଲ, ଡଗର ବାଟ ।

ଡହରକରଞ୍ଜ—ଗ୍ରା. ବି. ବୃକ୍ଷଭେଦ ।

ଡହଳ—ଗ୍ରା. ପୁଂ. ବି.ଡମ୍ଫା, ଡବଡବା, ଯାହାପେଟରେ କୌଣସି କଥା ରହେ-ନାହିଁ, ଗପଛୁ, ବାରବୁଲା, ଅସ୍ଥିର, ଯେଉଁ ବ୍ୟକ୍ତି ପରକଥା କହିବୁଲେ. (ଜାହାଜିଆଁ ଭାଷା) ପୃଷ୍ଠଦେଶ ।

ଡହଲା—ଗ୍ରା. ବିଂ. ( ସଂ-ଲାଳସିତ ) ବିକଳା, ଖାଇବା ନିମନ୍ତେ ଆତୁର, ଟକଳା,ଅତିଶୟଲୁବ୍ଧ ଖାଦ୍ୟଲୋଲୁପ ।

ଡହୁ—ପୁଂ. ବି.(ଦହ+ଉ)ବୃକ୍ଷବିଶେଷ, କେଉଠଗଛ ଓ ତାହାର ଫଳ)ମାଦାର ଲକୁଚ ।

ଡହୁ—ପୁଂ. ବି. ଡହୁ, ଡେଓ,କେଉଠ ।

ଡା—ସ୍ତ୍ରୀ. ବି.(ଡାକିନୀ) ଗ୍ରା.ଅବ୍ୟ.ଡାଡା ଦେଖ,(ଯା. ବି)ହୁସେନର ମୃତ୍ୟୁ ସ୍ମର-ଣାର୍ଥ ମୁସଲମାନମାନଙ୍କ ପର୍ବଦିନ ।

ଡାଆଁ—ଗ୍ରା. ବିଂ. ଡାହାଣ ଦେଖ ।

ଡାଆଁଣିବାଆଁଣି—ଗ୍ରା. ବି. ଦକ୍ଷିଣ ଓ ବାମପାର୍ଶ୍ୱଦ୍ୱୟ ।

ଡାଆଣୀ—ଗ୍ରା. ବିଂ. ଡାହାଣୀ ଦେଖ ।

ଡାଆଣିଆ—ଗ୍ରା. ବିଂ. ଡାହାଣିଆ ଦେଖ ।

ଡାଆଣୀ—ଗ୍ରା.ସ୍ତ୍ରୀ. ବି.ଡାହାଣୀ ଦେଖ ।

ଡାଇ—ଗ୍ରା. ବି. ଅସ୍ତ୍ରାଘାତ, ଯା. ବି. ପଣାକାଠି, ଗୁଞ୍ଜ,ଦୋ,ରଙ୍ଗ ।

ଡାଇପକାଇବା—ପ୍ରା.( ସମ୍ବ) କ୍ରି.(ଗାଇ) ଗର୍ଭସ୍ରାବ ପକାଇବା ।

ଡାଇରି—ଯା. ବି. ଦୈନିକ ଘଟଣାର ସ୍ମାରକଲିପି ବା ବିବରଣ, ଦୁଧ ଦହି ଲହୁଣୀ ଆଦି ସଂଗୃହୀତହୋଇ ବିକ୍ରୟ କରାଯିବାର ସ୍ଥାନ ।

ଡାଇରିଆ—ଯା.ବି.ପତଳା ଝାଡ଼ାରୋଗ ।

ଡାଇରେକ୍ଟର—ଯା. ବି. ଶିଳ୍ପ, କୃଷି ବା ଶିକ୍ଷା ବିଭାଗର ପ୍ରାଦେଶିକ କର୍ତ୍ତୃପକ୍ଷ, କଉଥ କମ୍ପାନୀ ବା ସଙ୍ଘର ପରିଚାଳକ ବ୍ୟକ୍ତି ।

ଡାଉଁଶ—ଗ୍ରା.ବି.(ସଂ-ଦଂଶ)କୁକୁରମାଛି, ଜୀବଙ୍କ ଦେହରୁ ରକ୍ତ ଶୋଷଣକରିବା ବଡ଼ମାଛିବିଶେଷ ।

ଡାଁଡ—ପ୍ରା. (ସମ୍ବ) ବି. ଦାଣ୍ଡ, ଦଣ୍ଡା ।

ଡାଁଡୀ—ପ୍ରା.(ସମ୍ବ.) ବି.ମେହେନ୍ତରାଣୀ ।

ଡାକ—ପୁଂ. ବି. ଶିବାନୁଚର ବିଶେଷ, ପିଶାଚଗଣ ବିଶେଷ, (ଗ୍ରା. ବି)ଚିତ୍କାର, ଧ୍ୱନି,ଉଚ୍ଚଶବ୍ଦ,ଡାକରା,ଜୀବଜନ୍ତୁଙ୍କ ରବ, ଉପସ୍ଥିତ ହେବାପାଇଁ ତଲବ, କଣ୍ଠଧ୍ୱନି, ପ୍ରେରିତ ପତ୍ରାଦିକୁ ସ୍ଥାନାନ୍ତରକୁ ବହି-ନେବାର ରୀତି, ପୋଷ୍ଟଦ୍ୱାରା ପ୍ରେରିତ ଚିଠିପତ୍ରାଦି, ସରକାରୀ କର୍ମଚାରୀଙ୍କ ନିକଟକୁ ପ୍ରତିଦିନ ଯିବାଆସିବା ପତ୍ରାଦି, ଡାକରିଷି, ଯେଉଁ ପ୍ରାଚୀନ ଋଷି ପ୍ରବଚ-ନାଦି ରଚନା କରିଥିବାର କଥିତ, ବୋଲି, ଜନଶ୍ରୁତି, ପ୍ରବାଦ, ଖ୍ୟାତ, ସୁଖ୍ୟାତ,ଉଚ୍ଚସ୍ୱରରେ ଡାକିଲେ ଯେତେ ଦୂରକୁ ଶୁଣାଯାଏ, ଉଚ୍ଚୈଃସ୍ୱରରେ ଆର୍ତ୍ତ ବ୍ୟକ୍ତିର ପ୍ରାର୍ଥନା,(ବିଂ)ବିଖ୍ୟାତ ।

ଡାକରିଷି—ଗ୍ରା. ବି. କେତେକ ପ୍ରବଚନ ରଚୟିତା ପ୍ରାଚୀନ ଋଷିଙ୍କ କଳ୍ପିତ ନାମ

ଡାକରିଷିବଚନ—ଗ୍ରା.ବି.ପଦ୍ୟାକାରରେ ବହୁ କାଳରୁ ପ୍ରଚଳିତ କୃଷି ବର୍ଷା ଜ୍ୟୋତିଷ ଆଦି ସମ୍ବନ୍ଧୀୟ ସଂକ୍ଷିପ୍ତ ପ୍ରବ-ଚନ, ପ୍ରବାଦବାକ୍ୟ (ଯଥା—ଆଗରେ ମଙ୍ଗଳ ପଛରେ ରବି, ଘର ଘରକେ ପଡ଼ିଇ ବୋବି ଇତ୍ୟାଦି) ।

ଡାକଗାଡ଼ି—ଗ୍ରା. ବି. ଯେଉଁ ଗାଡ଼ି ଶଗଡ଼ ଓ ମଟର ଆଦିଦ୍ୱାରା ଡାକ ବୁହାଯାଏ, ସାଧାରଣଯାତ୍ରୀ ନେବା ରେଳଗାଡ଼ି-ଠାରୁ ଦ୍ରୁତଗତିରେ ଚାଲୁଥିବା ରେଳଗାଡ଼ି

ଡାକଘର—ଗ୍ରା. ବି. ଦୂରଦେଶକୁ ବା ଦେଶରୁ ପ୍ରେରିତ ଚିଠିପତ୍ର ଆଦାନ ପ୍ରଦାନାର୍ଥ ନିର୍ଦ୍ଦିଷ୍ଟ ସରକାରୀ ଗୃହ, ପୋଷ୍ଟଅଫିସ୍ ।

ଡାକଛାଡ଼ିବା—ଗ୍ରା. କ୍ରି. ଡାକ ମାରିବା, ବିପନ୍ନ ଅବସ୍ଥାରେ ସାହାଯ୍ୟ ପାଇ ଚିତ୍କାର କରିବା ।

ଡାକଟିକଟ—ଗ୍ରା. ବି. ଡାକରେ ପଠା-ଯିବା ଚିଠିଆଦି ଦୂର ଦେଶକୁ ନେବାର

ପାରିଶ୍ରମିକ ପାଇଁ ପତ୍ରାଦିର ଓଜନ ଅନୁପାତରେ ପ୍ରେରକ ଯେଉଁ ଧନ ଦିଅନ୍ତି ତହିଁ ବିନିମୟରେ ଡାକଘରୁ ମିଳିବା ରାଜଚିହ୍ନାଙ୍କିତ ଟିକଟ ।

ଡାକଡୁକକରିବା—ଗ୍ରା. କ୍ରି. ଆହ୍ୱାନ କରିବା, ଡାକିବା ।

ଡାକନାମ—ଗ୍ରା. ବି. ଲେଖକମାନେ ଆପଣା ଆପଣା ନାମ ପ୍ରକାଶ ନ କରି ଲେଖାରେ ଗ୍ରହଣ କରିବା ଅନ୍ୟ ନାମ, ଯେଉଁ ନାମରେ କୌଣସି ବ୍ୟକ୍ତିକୁ ସାଧାରଣତଃ ଲୋକେ ଡାକନ୍ତି, ଶ୍ରଦ୍ଧାନାମ

ଡାକପକା(କେ)ଇବା—ଗ୍ରା. କ୍ରି. ଡାକମାରିବା ଦେଖ ।

ଡାକପାଣି—ଗ୍ରା. ବି. ଯେଉଁ ଅଭିମନ୍ତ୍ରିତ ଜଳର ଶକ୍ତିଦ୍ୱାରା ବିଦେଶପ୍ରସ୍ଥିତ ବ୍ୟକ୍ତି ଉଦ୍‌ବିଗ୍ନ ହୋଇ ଘରକୁ ଫେରିଆସେ, ଗର୍ଭିଣୀଙ୍କ ସନ୍ତାନ ଦେବା ବେଳରୁ ଯେଉଁ ପାଣିନେଇ ମୁଣ୍ଡରେ ଛିଞ୍ଚନ୍ତି (ଏହା- କଲେ ରୋଗ ହୁଏ ନାହିଁ) ।

ଡାକପାଣିକରିବା—ଗ୍ରା. କ୍ରି. ବିଦେଶ- ପ୍ରସ୍ଥିତ ବ୍ୟକ୍ତିକୁ ଉଦ୍‌ବିଗ୍ନ କରାଇ ଘରକୁ ଫେରାଇ ଆଣିବା ନିମନ୍ତେ ଗୁଣିଆ ଦ୍ୱାରା ଅଭିମନ୍ତ୍ରିତ ଜଳ ପ୍ରୟୋଗକରିବା

ଡାକପିଅନ୍—ଗ୍ରା.ବି. ଡାକ ଚିଠି ବାଣ୍ଟିବା ଚପରାସୀ ।

ଡାକପୁଆବାଟ—ଗ୍ରା. ବି. ଯେଉଁ ଦୂରତା ପର୍ଯ୍ୟନ୍ତ ଡାକହେଲେ ଶୁଭିବ,ଡାକେ- ବାଟ ।

ଡାକବଙ୍ଗଳା(ଲା)—ଯା.ବି.ଯେଉଁ ବଙ୍ଗଳା ବା କୋଠି ବା ବିଶ୍ରାମାଗାରରେ ଡାକ ବୋହିବା ବେହେରାମାନେ ଅପେକ୍ଷା କରନ୍ତି ଓ ମଫସଲ ଗସ୍ତ କରୁଥିବା ସରକାରୀ ଓ ବେସରକାରୀ ଓ ଭଦ୍ର ଲୋକମାନେ ସାମୟିକ ଆଶ୍ରୟ ନିଅନ୍ତି ।

ଡାକବଦଳ—ଗ୍ରା. ବି. ଡାକବୋହିବା ଘୋଡ଼ା ବା ବେହେରାମାନଙ୍କ ପରି- ବର୍ତ୍ତନ, ଜଣେ ଡାକରନର୍ ନିର୍ଦ୍ଦିଷ୍ଟ ଦୂରତ୍ୱ ଅତିକ୍ରମ କରିବା ପରେ ପର- ବର୍ତ୍ତୀ ଦୂରତ୍ୱପାଇଁ ନିଯୁକ୍ତ ଡାକରନର ହାତରୁ ଡାକ ମୁଣିର ଭାର ଗ୍ରହଣ କରିବା ।

ଡାକବସା(ସେ)ଇବା—ଗ୍ରା.କ୍ରି.ବାଟମଝିରେ ମଝିରେ ଡାକଗାଡ଼ିର ଘୋଡ଼ା ଓ ଡାକସବାରର ଘୋଡ଼ାମାନଙ୍କର ବଦଳା ବଦଳିହେବାର ବନ୍ଦୋବସ୍ତ କରିବା ।

ଡାକବସିବା—ଗ୍ରା.କ୍ରି. ଶୀଘ୍ର ଦୂରଦେଶକୁ ଯିବା ଆସିବା କରିବାପାଇଁ ଯାନାଦିର ଓ ଡାକର ବନ୍ଦୋବସ୍ତ ।

ଡାକବହି—ଗ୍ରା. ବି. ଯେଉଁ ପୁସ୍ତକରେ ପ୍ରେରିତ ପତ୍ରାଦି ପାଇବାର ସ୍ୱାକ୍ଷର ବା ନିଦର୍ଶନ ଗ୍ରହୀତାଙ୍କଠାରୁ ନିଆଯାଏ ।

ଡାକବାକ୍ସ—ଗ୍ରା. ବି. ଯେଉଁ ବାକସରେ ଡାକରେ ଯିବାପାଇଁ ଚିଠି ପକାଯାଏ ।

ଡାକବାବୁ—ଗ୍ରା. ବି. ଡାକଘରର ଅଧ୍ୟକ୍ଷ କର୍ମଚାରୀ, ପୋଷ୍ଟମାଷ୍ଟର ।

ଡାକବାଲା—ଗ୍ରା. ବି. ଡାକପିଅନ, ଡାକ- ହରକରା ।

ଡାକବିଭାଗ—ଗ୍ରା. ବି. ଦୂରଦେଶ ସହିତ ଚିଠିପତ୍ର ଆଦାନ ପ୍ରଦାନ କରିବା ନିମନ୍ତେ ନିଯୁକ୍ତ କର୍ମଚାରୀମାନଙ୍କ ଦ୍ୱାରା ଗଠିତ ସରକାରୀ ବିଭାଗ ।

ଡାକମାରିବା—ଗ୍ରା. କ୍ରି. ଉଚ୍ଚୈଃସ୍ୱରରେ ଚିତ୍କାର କରିବା ବା ଡାକିବା ।

ଡାକମାସୁଲ—ଗ୍ରା. ବି. ଡାକରେ ଚିଠି ବହିବାପାଇଁ ଡାକ ବିଭାଗ ପ୍ରେରକ ମାନଙ୍କଠାରୁ ଆଦାୟ କରିବା ଶୁଳ୍କ ।

ଡାକମୁନସି—ଗ୍ରା. ବି. ଡାକବାବୁ ଦେଖ ।

ଡାକମୋହର—ଗ୍ରା. ବି. ଡାକଚିଠିମାନଙ୍କ ଉପରେ ଡାକବିଭାଗୀୟ କର୍ମଚାରୀମାନେ ଯେଉଁ ଛାପା ମୁଦ୍ରିତ କରନ୍ତି ।

ଡାକରସିଦ୍—ଯା. ବି. ମନିଅର୍ଡର ବା ରେଜିଷ୍ଟରି ଚିଠି ଆଦି ଡାକଘରେ ଅର୍ପଣ କରିବା ବ୍ୟକ୍ତିଙ୍କୁ ପୋଷ୍ଟମାଷ୍ଟର ଯେଉଁ ରସିଦ ଦିଅନ୍ତି ।

ଡାକରା—ଗ୍ରା. ବି. ନିମନ୍ତ୍ରଣ, ଆହ୍ୱାନ ।

ଡାକରାପଡ଼ିବା—ଗ୍ରା.ବି.କୌଣସି ବ୍ୟକ୍ତିର ନାମୋଚ୍ଚାରଣ ପୂର୍ବକ ଆହ୍ୱାନ, (କ୍ରି) ଆହୂତ ହେବା ।

ଡାକରାହେବା—ଗ୍ରା. କ୍ରି ଓ ବି. ଡାକରା ପଡ଼ିବା ଦେଖ । [ ସଂକ୍ରାନ୍ତି ।

ଡାକସଂକ୍ରାନ୍ତି—ପ୍ରା॰ (ମେଦିନୀ) ବି.ଗର୍ଭିଣୀ

ଡାକହରକରା—ଗ୍ରା. ବି. ଡାକବାଲା, ଡାକ ପିଅନ ।

ଡାକହାକ—ଗ୍ରା. ବି. ପ୍ରଭୁଙ୍କ ପ୍ରଦତ୍ତ ଆଦେଶମାନଙ୍କର ପାଳନ, ଆହ୍ୱାନ, ଡାକରା, (ଗ୍ରା. ବି॰) ଡକାଡ଼କି, ପର- ସ୍ପରକୁ ଡାକିବା (ବ୍ୟକ୍ତିଗଣ) ।

ଡାକହାକଶୁଣିବା—ଗ୍ରା. କ୍ରି. ପ୍ରଭୁଦତ୍ତ ନାନାପ୍ରକାର ଆଦେଶକୁ ବା ଆହ୍ୱାନକୁ ଶୁଣି ସଙ୍ଗେ ସଙ୍ଗେ ତଦନୁସାରେ କାର୍ଯ୍ୟ କରିବା ।

ଡାକହାକହେବା—ଗ୍ରା. କ୍ରି. ପରସ୍ପର ଡକାଡ଼କିହେବା ।

ଡାକିନୀ—ସ୍ତ୍ରୀ. ବି. (ଡାକ+ଇନ୍+ଈ) କାଳୀଙ୍କ ଗଣ ବା ଅନୁଚରବିଶେଷ, ପିଶାଚୀବିଶେଷ, କୁହୁକିନୀ, ଡାହାଣୀ ।

ଡାକିବା—ଗ୍ରା. କ୍ରି. ଆହ୍ୱାନକରିବା, ନିମନ୍ତ୍ରଣକରିବା, ଉପସ୍ଥିତ ହେବାପାଇଁ ତଲବକରିବା, ଉଚ୍ଚୈଃସ୍ୱରରେ ଚିତ୍କାର କରିବା, ରାବକରିବା, ସମ୍ବୋଧନକରିବା, ଦେବତା ଆଦିଙ୍କ ନାମନେବା ବା ପ୍ରାର୍ଥନା କରିବା, ସ୍ପଷ୍ଟରୂପେ କହିବା, (ବିଲ) ଶୁଖିକରି ଫାଟିବା, (ଲ. ଅର୍ଥ) ନିର୍ଦ୍ଦେଶ କରିବା, ଉଲ୍ଲେଖ କରିବା ।

ଡାକିଲେଓକରିବା—ଗ୍ରା. କ୍ରି. (ନାମୋ- ଚ୍ଚାରଣ ପୂର୍ବକ ଆହୂତ ବ୍ୟକ୍ତି)ଜବାବ- ଦେବା, (ଲି. ଅର୍ଥ ) ସଙ୍ଗେ ସଙ୍ଗେ ଅଭିପ୍ସିତଫଳ ପ୍ରଦାନ କରିବା ।

ଡାକିହାକି—ଗ୍ରା.କ୍ରି.ବି॰.ପ୍ରକାଶ୍ୟ ଭାବରେ

ଡାକୁ—ଗ୍ରା. ବି. ଡକାଇତ, ପ୍ରବଞ୍ଚକ ବ୍ୟକ୍ତି, ଡକାଇତ, (ବି॰) ବିଖ୍ୟାତ, ପ୍ରବଞ୍ଚକ ।

ଡାକୁଆ—ଗ୍ରା.ବି.ଦଣ୍ଡୁଆସି ବା ଚଉକିଆ, ଆହ୍ୱାନବାହକ ବ୍ୟକ୍ତି ।

ଡାକେବାଟ—ଗ୍ରା.ବି.ଏକ କୁହାଟ ବାଟ, ଜଣକର ଉଚ୍ଚଡାକ ଯେତେ ଦୂରକୁ ଶୁଭେ ସେହି ଦୂରତ୍ୱର ପଥ ।

ଡାକୋର—ଗ୍ରା. ବି. ଗୁଜରାଟର ସହର ବିଶେଷ ।
ଡାକ୍ତର—ଯା. ବି. ପାଶ୍ଚାତ୍ୟ ରୀତିରେ ଚିକିତ୍ସା କରିବା ଚିକିତ୍ସକ ।
ଡାକ୍ତରଖାନା—ଯା.ବି.ପାଶ୍ଚାତ୍ୟ ଚିକିତ୍ସା ପ୍ରଣାଳୀରେ ଚିକିତ୍ସା କରାଯିବାର ଆଳୟ, ଚିକିତ୍ସାଳୟ ।
ଡାକ୍ତରି—ଗ୍ରା. ବି. ପାଶ୍ଚାତ୍ୟ ଚିକିତ୍ସା ପ୍ରଣାଳୀ, ( ବିଂ ) ପାଶ୍ଚାତ୍ୟ ଚିକିତ୍ସା ସମ୍ବନ୍ଧୀୟ ।
ଡାକ୍ତରିଔଷଧ—ଗ୍ରା. ବି. ପାଶ୍ଚାତ୍ୟ ଚିକିତ୍ସାନୁମୋଦିତ ଔଷଧ ।
ଡାଗର—ପ୍ରା. (ମେଦି)ବିଂ. ପୁଂ ଓ ସ୍ତ୍ରୀ. ବଡ଼, ଡେଙ୍ଗା ।
ଡାଗରା—ଗ୍ରା.ବି. ଢଙ୍କା, ବଡ଼ ଉକୁଣୀ ।
ଡାକ୍ନି(ଙ୍କ, ଙ୍କେ)ଣୀ—ଗ୍ରା.ସ୍ତ୍ରୀ.ବି. ଡାକିନୀ, କାଳୀଙ୍କ ଗଣଭୁକ୍ତା ଅପଦେବତା, ଯୋଗିନୀ,ଝାଡ଼ାକଇ ରୋଗ । [ମାଙ୍କ ।
ଡାଙ୍କେଣୀବାଡ଼—ଗ୍ରା.ବି. ହଇଜା, ମହା-
ଡାଙ୍—ପ୍ରା. (ଲରଆ)ବି. ଅଳଗୁଣି ।
ଡାଙ୍ଗ—ଗ୍ରା.ବି.(ସଂ-ଦଣ୍ଡ)କାଠି, ବେଣାଦି ସରୁ ପ୍ରହରଣାସ୍ତ୍ର, ବାଡ଼ି, ସରୁ ଓ ଲମ୍ବ ପତ୍ରଶୂନ୍ୟ ବୃକ୍ଷକାଣ୍ଡ, (ଗ୍ରା.ବିଂ) ଅସ୍ଥି-କଙ୍କାଳସାର (ବ୍ୟକ୍ତି) ।
ଡାଙ୍ଗଡ଼ୁଙ୍ଗା—ଗ୍ରା.ବି.ଛୋଟ ଛୋଟ କାଠି, କାଠିକୁଟା ।
ଡାଙ୍ଗର—ଗ୍ରା. ବିଂ. (ସଂ-ଦୀର୍ଘ) ଡେଙ୍ଗା, ଡେଙ୍ଗା ଓ ସ୍ଥୂଳଦେହ ।
ଡାଙ୍ଗରା—ଗ୍ରା.ବିଂ.ପତ୍ର ଓ ଅଗ୍ରଶାଖାକାଣ୍ଡ-ବିଶିଷ୍ଟ, (ବି) ଡାଳ, (ପ୍ରା. ବସ୍ତର. ବି) ଫଟିକାକୁଡ଼ ।
ଡାଙ୍ଗି—ଗ୍ରା. ବି. ଡାଙ୍ଗ ଦେଖ ।
ଡାଙ୍ଗିଆ—ଗ୍ରା. ବି. ଡାଙ୍ଗ ଦେଖ, ବଳି ପଶୁ ହାଣିବା ସମୟରେ ଯେଉଁ ସରୁ ଲମ୍ବ କାଠ ଖଣ୍ଡର ମୁଣ୍ଡରେ ଛନ୍ଦିକିଣି ଲଗାଇ ପଶୁର ବେକକୁ ବାନ୍ଧି ହାଣନ୍ତି ।
ଡାଙ୍ଗୁଆ—ପ୍ରା.(ବାଲେ)ବି.ଏକାକୀ, (ପ୍ରା. ସିଂହଭୂମ ) ଅବିବାହିତ ପୁରୁଷ, ଯାହାର ସ୍ତ୍ରୀ ମରିଯାଇଥାଏ, (ପ୍ରା.ସୋନପୁର. ବି) ମାନଙ୍କ ପରି ଶୂଦ୍ରଜାତୀୟ ଠାକୁରାଣୀଙ୍କ ସେବକବିଶେଷ ।
ଡଡ଼—ଗ୍ରା. ବି. ଦଣ୍ଡ, କରତପତ୍ର ଶାସ୍ତ୍ରାଜ୍ଞା ।
ଡାଡ଼ା—ଗ୍ରା. ଅବ୍ୟ. ଗୀତ ବୋଲିବା ପୂର୍ବରୁ ଉଚ୍ଚାରିତ ସ୍ୱରବନ୍ଧ ।
ଡାଣ୍ଡା—ପ୍ରା. (ସମ୍ବ)ବି. ଆଖୁ ।
ଡାଣ୍ଡୀ—ପ୍ରା.(ସମ୍ବ)ବି. ମେହେନ୍ତ୍ରାଣୀ ।
ଡାଫଣ—ଗ୍ରା. ବି. ଡାମ୍ଫଣ, ମୋଟଲୁଗା ବସ୍ତ୍ରାଦି ସିଲେଇ କରିବାର ବଡ଼ ଛୁଞ୍ଚ, ଫୋଡ଼ଣୀ ।
ଡାବ—ଗ୍ରା. ବି. ଡାବଲ, ଶ୍ରେଷ୍ଠବାଡ଼, ଏକପ୍ରକାର ଜାଉ ଔଷଧର ବ୍ୟବସ୍ଥା-ପତ୍ର, ଆଡ଼ମ୍ବର, କୌଣସି ଗୀତାଦି ଲେଖାଥିବା ମୋଟା ତାଳପତ୍ର, (ବିଂ) ସୁନ୍ଦର,(ପ୍ରା.ବାଲେ.ବି)ପଇଡ଼.ନଡ଼ିଆ ।
ଡାବନ୍ଧଣ—ଗ୍ରା. ବି. ଜଙ୍ଗଲରେ ହେବା ଏକପ୍ରକାର ତୃଣ ।
ଡାବଲ—ଗ୍ରା. ବି. ପୁଆ ଖେଳରେ ବ୍ୟବହୃତ ଶ୍ରେଷ୍ଠ ବାଡ଼ି, କ୍ଷୁଦ୍ର ବାଡ଼ି ।
ଡାବଲପୁଆ—ଗ୍ରା.ବି. ଗୁଚିଚାଣ୍ଡ ଖେଳ, ଗୁଲିଡାଙ୍ଗ ଖେଳ, ଏକପ୍ରକାର ପୁଆ-ଖେଳ ।
ଡାବଲହାତିଆ—ଗ୍ରା.ପୁଂ. ବିଂ. ଅତିରିକ୍ତ ଦାନଶୀଳ ।
ଡାବା—ପ୍ରା.(ଗଞ୍ଜାମ)ବି. କରିଦିନାଆଦିର ବଡ଼ଟିଣ ।
ଡାବିବା—ପ୍ରା.(ସମ୍ବ)କ୍ରି.ଚାକିବା, ଡାଙ୍କୁ-ଣିରେ ଘୋଡ଼ାଇବା ।
ଡାବୁ—ପ୍ରା. ( ଗଞ୍ଜା. କଟକ )ବି. ଧନ, ଅର୍ଥ, ନଗଦ ପଇସା, ଗୃହ ପାତ୍ରଲ ।
ଡାମର—ପ୍ରା. (ସମ୍ବ) ବି. ଆଲକାତରା, ଗାଲ ।
ଡାମର—ବି. ତନ୍ତ୍ରଗ୍ରନ୍ଥବିଶେଷ ।
ଡାମରା—ଗ୍ରା.ବି. ସହର ସହରୁଣୀମାନେ ଜଙ୍ଗଲରୁ କାଟିବା ଜାଲ କାଠକୁ ଲଇରେ ବଡ଼ା ବାନ୍ଧି ସାଇବା ପରେ ଉକ୍ତ ବଡ଼ାକୁ ମଟ୍ଟବୁନ୍ଦ କରିବା ପାଇଁ ବଡ଼ା ମଝିରେ ମାରିବା ଖିଲା ।
ଡାମରକାଉ—ଗ୍ରା. ବି. (ସଂ-ଦ୍ରୋଣକାକ) ବଡ଼କୁଆ ।
ଡାମେଜ୍—ଯା.ବି.କ୍ଷତିପୂରଣ, ଖେସାରତ ।
ଡାମ୍ଫଣ—ଗ୍ରା. ବି. ଡାଫଣ ଦେଖ ।
ଡାମ୍ଫଣିଆ—ଗ୍ରା. ବି. (ସଂ-ଦର୍ଭ) ଧାନ କିଆରୀରେ ହେବା ଏକପ୍ରକାର ଲମ୍ବ ମୂନିଆଁ ଘାସ ।
ଡାମ୍ଫରା—ଗ୍ରା. ବି. (ନାଉରୀଭାଷା) ଦୁଇଟି ଡଙ୍ଗା ପରସ୍ପରକୁ ଆଘାତ କରିବା ।
ଡାମ୍ବର—ଗ୍ରା. ବି. ଶୋଭା ।
ଡାରେଡ଼ାରେ—ଗ୍ରା.ଅବ୍ୟ. ଡାଡ଼ା ଦେଖ
ଡାଲ୍ନା—ଗ୍ରା. ବି. ଶିମ୍ବୁଲା, ଡାଲିରେ ବିଭିନ୍ନ ପରିବା ପକାଇ ଯେଉଁ ବ୍ୟଞ୍ଜନ ପ୍ରସ୍ତୁତ ହୁଏ ।
ଡାଳ—ଗ୍ରା. ବି. (ସଂ-ଦଳ) ବୃକ୍ଷଶାଖା, (ଲ.ଅର୍ଥ) ଋଣ ଦିଆଯାଇଥିବା ମୂଳଧନ ଉପରେ ହିସାବ ହେବା ସୁଧ, ସନ୍ତାନ ସନ୍ତତି ।
ଡାଳଖାଇ—ପ୍ରା. (ସମ୍ବ)ବି. ନୀଚଜାତୀୟ ସ୍ତ୍ରୀମାନେ ଅଶ୍ଳୀଳ ଓ ଆଦରସଯୁକ୍ତ ଗୀତ ବୋଲି କରିବା ଏକପ୍ରକାର ନାଚ
ଡାଳଚିନି—ଗ୍ରା.ବି. (ସଂ-ଦାରୁଚିନି)ଗୁଡ଼-ତ୍ୱକ୍, ବୃକ୍ଷବିଶେଷର ସୁମିଷ୍ଟ ସୁବାସିତ ବଲ୍କଳ ।
ଡାଳଭଙ୍ଗାକୋଶ—ଗ୍ରା.ବି. ଡାଳ ଖଣ୍ଡେ ଭାଙ୍ଗି ହାତରେ ନେଇ ଯେତେଦୂର ପଥ ଚାଲିପରେ ତାହା ଝାଉଁଳି ପଡ଼େ ସେତିକି ଦୂରତ୍ୱ, ପ୍ରାୟ ତିନିମାଇଲ ।
ଡାଳମା—ଗ୍ରା.ବି. ମୁଗ ବା ହରଡ଼ ଡାଲି ସଙ୍ଗେ ପରିବା ପକାଇ କରାଯିବା ତରକାରି, ଡାଲନା ।
ଡାଳମାଙ୍କୁଡ଼ୀ—ଗ୍ରା.ସ୍ତ୍ରୀ. ବି. ଏକଡାଳରୁ ଅନ୍ୟ ଡାଳକୁ ମାଙ୍କଡ଼ଙ୍କ ପରି ଡେଇଁ ଖେଳିବା ପିଲମାନଙ୍କର ଏକପ୍ରକାର ଖେଳ, ଶାଖାମୃଗ, ମେଘ ବର୍ଷା ନ ହେଲେ ଗୋଟିଏ ପିଲାର ସର୍ବାଙ୍ଗକୁ ଜାମୁ ଡାଳରେ ଘୋଡ଼ାଇ ତା ମୁଣ୍ଡରେ ଗୋଟାଏ ବେଙ୍ଗ ରଖି ବାଜା ବଜାଇ ଦାଣ୍ଡରେ ବୁଲାଇବା ରୀତି ।

ଡାଳମେଲବା—ଗ୍ରା. କ୍ରି. (ବୃକ୍ଷାଦି) ବହୁ ଦୂରକୁ ଶାଖା ବିସ୍ତାର କରିବା,(ଲ.ଅର୍ଥ) ବହୁ ସନ୍ତାନସନ୍ତତି ଜନ୍ମ କରିବା, ନାନାଆଡ଼େ ନାନା ସମ୍ପର୍କ ଲଗାଇବା ।

ଡାଳରତ୍ନ—ଗ୍ରା.ବି.ବୃକ୍ଷ ଶାଖାର ଭୂଷଣ, କୋକିଳ ।

ଡାଳସିଙ୍ଗା—ଗ୍ରା ବି. ବନ୍ୟବୃକ୍ଷବିଶେଷ ।

ଡାଲି—ଗ୍ରା.ବି. ବଂଶନିର୍ମିତ ପାତ୍ରବିଶେଷ, ଡଲା, ସିଧା, ପଞ୍ଝା, ବନ୍ଧୁବାନ୍ଧବ, ହାକିମ ହୁକୁମା, ଅତିଥି ଭଦ୍ରଲୋକ ଓ ଶ୍ରେଷ୍ଠ-ଦାତାମାନଙ୍କ ନିକଟକୁ ଆଦର ସମ୍ମାନ ଅନୁଗ୍ରହ ଆକର୍ଷଣାର୍ଥ ବିଶିଷ୍ଟ ପର୍ବ ଆଦି ଉପଲକ୍ଷରେ ପଠାଯିବା ଖାଦ୍ୟ ସାମଗ୍ରୀ-ଚୟପୂର୍ଣ୍ଣ ଉପଢୌକନ ବା ଭେଟି, ବାକ୍ସ ବା ପେଡ଼ିଆଦିର ଢାଙ୍କୁଣୀ, ଟେବୁଲ ଓ ଆଲମାରିଆଦିର ଦରଜା ।

ଡାଳି—ଗ୍ରା. ବି. (ସଂ-ଦଳ) ଶ୍ରେଷ୍ଠ ଡାଳ, ଶାଖା ବା ଡାଳ ଆକୃତିରେ କରାଯିବା ଛନ୍ଦ, ଚଉକର ଦଣ୍ଡିର ପ୍ରତ୍ୟେକ ଅଧ, ନଆଁ ଜଳୁଥିବା ଉମ୍ନେଇ, ଜଳନ୍ତା ନିଆଁ, ଏକପ୍ରକାର ପାଣିଧି ବା ଶିକାର ପ୍ରଣାଳୀ ।

ଡାଲି—ଗ୍ରା.ବି. (ସଂ-ଦଲ) ରଗଡ଼ା ମୁଗ ଆଦି ଶସ୍ୟ, ରଗଡ଼ା ଓ ଚୋପା ଛଡ଼ା ମୁଗ, ହରଡ଼, ଚଣାଆଦିର ଡାଲି, ଜାଇ ଡାଲି, ଖାଦ୍ୟ ସାମଗ୍ରୀ ସମ୍ବଳିତ ଉପଢୌକନ, ଭେଟି, ଡାଲି ।

ଡାଳିଆ—ଗ୍ରା.ବି.ଶ୍ରେଷ୍ଠ ଡାଳ ପତ୍ରବିହୀନ ସରୁ ଡାଳିମାନ,(ପ୍ରା.ବାଲେ.ବି) ମାଟିରେ ତିଆରି କ୍ଷୁଦ୍ର କଳସୀ, ଘଡ଼ି ।

ଡାଲିଆ—ଗ୍ରା. ବି. ଶ୍ରେଷ୍ଠ ଡାଲି, ପେଡ଼ିଆଦିର ଢାଙ୍କୁଣୀ ।

ଡାଲିକାଠ—ଗ୍ରା. ବି. ବୃକ୍ଷଶାଖାର ଶ୍ରେଷ୍ଠ ସରୁ ଖଣ୍ଡମାନ ।

ଡାଳିକୋଳି—ଗ୍ରା. ବି. ପିଜୁଳି ।

ଡାଳିପୋହଳା—ଗ୍ରା.ବି.ମାଳାରେ ଗୁନ୍ଥାଯିବା ଲମ୍ବ ଲମ୍ବ ଗଡ଼ରେ କଟା ହୋଇଥିବା ପ୍ରବାଳ ଖଣ୍ଡ ।

ଡାଲିଭାତ—ଗ୍ରା. ବି. ଭୋଜନାର୍ଥ ପ୍ରସ୍ତୁତ ଡାଲି ଓ ଭାତ ।

ଡାଳିମ୍ବ—ଗ୍ରା. ବି. (ସଂ-ଦାଡ଼ିମ୍ବ) ପ୍ରସିଦ୍ଧ ଅମ୍ଳ ମଧୁର ରୁଚିକର ବହୁ ବୀଜପୂର୍ଣ୍ଣ ଫଳ ଓ ବୃକ୍ଷ, ଗୁଡ଼ଭଜା ବଟାକୁ ଘିଅରେ ପୁରାଇ କରାଯିବା ଏକପ୍ରକାର ଲଡ଼ୁ, ଏକଜାତୀୟ କଡ଼ା ପଥର, ରାମାୟଣ-ବର୍ଣ୍ଣିତ ମର୍କଟ ସେନାପତି ।

ଡାଳିମ୍ବଦଶନା—ଗ୍ରା. ସ୍ତ୍ରୀ. ବିଂ. ଯେଉଁ ସ୍ତ୍ରୀର ଦନ୍ତ ଡାଳିମ୍ବ ମଞ୍ଜିପରି ସୁନ୍ଦର ।

ଡାଳିମ୍ବମନଶିଳା—ଗ୍ରା. ବି. ଏକପ୍ରକାର ମନଃଶିଳା ।

ଡାଳହଳଦ—ଗ୍ରା. ବି. ଦାରୁହରିଦ୍ରା, ଦାରୁହଳଦ ।

ଡାଳୁଆ—ଗ୍ରା. ବି. ଗ୍ରୀଷ୍ମକାଳରେ ଉତ୍ପାଦିତ ଏକପ୍ରକାର ଧାନ ।

ଡାସ୍—ପ୍ରା.ବି. ଲେଖିବାବେଳେ ବ୍ୟବହୃତ ବିଶିଷ୍ଟ ବିରାମଚିହ୍ନ ସୂଚକ ଏକପ୍ରକାର ଗାର ।

ଡାହ—ଗ୍ରା. ବିଂ. ବି. ଦାହ ଦେଖ ।

ଡାହାଙ୍ଗିର—ଗ୍ରା.ବି. ଏକପ୍ରକାର କାତିଥିବା ଲୁଣିମାଛ ।

ଡାହାଣ—ଗ୍ରା. ବିଂ. ଦକ୍ଷିଣ, ବାମେତର, (ହାତଗୋଡ଼ଆଦି) ।

ଡାହାଣ ହାତ ଚଳିବା ବା ଗୁଳିବା—ଗ୍ରା. କ୍ରି. ଭୋଜନକରିବା ।

ଡାହାଣା—ଗ୍ରା.ପୁଂ.ବିଂ. ଖାଦ୍ୟଲୋଲୁପ, ଡହଳା, ଯେ ଅନ୍ୟ ବ୍ୟକ୍ତିର ଖାଇବା ପଦାର୍ଥ ପ୍ରତି ଲୋଲୁପ ଦୃଷ୍ଟି ପକାଏ, ଯେ ଖାଇବା ଲୋକର ପେଟରେ ପଶେ, ଯେଉଁ ଲୋକ କୌଣସି ସୁନ୍ଦର ବସ୍ତୁ ବା ଜୀବ ପ୍ରତି ଲୋଲୁପ ଦୃଷ୍ଟି ପକାଏ ବା ତାକୁ ଖୁଣିଦିଏ ।

ଡାହାଣିଆ—ଗ୍ରା.ବିଂ. ବହୁଲୋକ ଯେଉଁ ଖାଦ୍ୟ ପଦାର୍ଥରେ ଦୃଷ୍ଟି ପକାଇବାରୁ ତାହା ସୁସ୍ଵାଦୁ ଲାଗେ ନାହିଁ, ଆଖିଦୃଷ୍ଟିଆ ।

ଡାହାଣୀ—ଗ୍ରା. ସ୍ତ୍ରୀ. ବି. (ସଂ-ଡାକିନୀ) ଡାକିନୀ, ଯୋଗିନୀ, ଅପଦେବତା, ପିଶାଚୀ, ଗୁଣିବିଦ୍ୟାରେ ପାରଙ୍ଗମା ସ୍ତ୍ରୀ, ଡାଙ୍କୁଣୀ, ଯେଉଁ ସ୍ତ୍ରୀ ପରର ଖାଦ୍ୟଦ୍ରବ୍ୟପ୍ରତି ବା ସୁନ୍ଦର ଶିଶୁପ୍ରତି ଲୋଲୁପ ଦୃଷ୍ଟି ପକାଏ, ମାୟାବିନୀ ।

ଡାହାଣୀଖାଇବା—ଗ୍ରା. ବି. ପୁଅରୋଗ, ଶିଶୁକୁ ଡାହାଣୀ ଦୃଷ୍ଟି କରିବା ଯୋଗୁଁ ଶିଶୁ ଶୀର୍ଣ୍ଣ ହେବା ।

ଡାହାଣୀପଶିବା—ଗ୍ରା. ବି. ଡାହାଣୀ ଖାଇବା ଦେଖ ।

ଡାହାଣୀଲାଗିବା—ଗ୍ରା. ବି. କୌଣସି ବ୍ୟକ୍ତିଠାରେ ଅପଦେବତାଙ୍କର ଆବିର୍ଭାବ ହେବା ।

ଡାହାମିଛ—ଗ୍ରା.ବି. ଗୁଚ୍ଛାମିଛ, କଞ୍ଚାମିଛ, ସମ୍ପୂର୍ଣ୍ଣ ମିଥ୍ୟା କଥା,(ବିଂ) ସମ୍ପୂର୍ଣ୍ଣରୂପେ ମିଥ୍ୟା ।

ଡାହାଲ—ଗ୍ରା.ବି. ପ୍ରାଚୀନଦେଶବିଶେଷ, ଡାହାଲକୁକୁର ଦେଖ ।

ଡାହାଲକୁକୁର—ଗ୍ରା. ବି. ଏକପ୍ରକାର ଦୀର୍ଘକାୟ କ୍ଷୀଣକଟି ଲମ୍ବପାଦ ଗୋଜିଆ ମୁହାଁ ଶିକାରୀ କୁକୁର ।

ଡାହାଳିଆ—ଗ୍ରା. ବିଂ. କ୍ଷୀଣକାୟ ଓ ଡେଙ୍ଗା (ବ୍ୟକ୍ତି) ।

ଡାହୁ—ଗ୍ରା.ବି.ବୃକ୍ଷର ଡାଳ, ଶ୍ରେଷ୍ଠଡାଳ, ପାର୍ବତ୍ୟ ଜଙ୍ଗଲ । [ ଦଗ ।

ଡାହୁ—ଗ୍ରା. ବି. (ଜାହାଜିଆ ଦେ)ବାମ-

ଡାହୁକ—ବି.(ଦହ+କ.ଉକ)କୂଳେଚର ପକ୍ଷିବିଶେଷ ।

ଡାହୁକା—ଗ୍ରା. ପୁଂ. ବିଂ. ନଳୀଗୋଡ଼ା ।

ଡାହୁଲ—ପ୍ରା.(ସମ୍ବ)ସ୍ତ୍ରୀ.ବି. ଯେଉଁ ଗାଈ ଗଲ୍ଭର ପକାଏ ।

ଡ଼ି—ଗ୍ରା. ଅବ୍ୟ. ଡ଼ଗ୍ରୀର ବା ଡ଼ିସିମିଲର ସାଙ୍କେତିକ ଚିହ୍ନ ।

ଡ଼ଆଁ—ଗ୍ରା.ବି(ସଂ-ଡ଼ୀନ)ଲମ୍ଫ,ଡେଇଁବା, କୁଦିବା, ଦଉଡ଼ିବା, ଚକ୍ଷୁଆଦିର ସ୍ପନ୍ଦନ, ଡ଼ଆଁ ବାଡ଼, ଯେଉଁ ବାଡ଼କୁ ଲୋକେ ଡେଇଁ ଯିବା ଆସିବା କରନ୍ତି,(ଗ୍ରା.ବିଂ) ଯେ କୁଦେ, ସଂକ୍ରାମକ (ରୋଗ), ବହୁ ଅନ୍ତର ବା ବ୍ୟବଧାନରେ ଅବସ୍ଥିତ (ଗ୍ରାମଆଦି), (ପ୍ରା. ସମ୍ବ) ଡ଼ଇ ।

ଡ଼ଆଁଇଦେବା—ଗ୍ରା.କ୍ରି.ଅତିକ୍ରମ କରିବା,

ବାଦ୍‌ଦେବା, (ରୋଗ) ଅନ୍ୟ ବ୍ୟକ୍ତିର ଦେହକୁ ସଂକ୍ରମଣ କରଦେବା ।

**ଡିଆଁଇବା**—ଗ୍ରା.କ୍ରି.(ସଂ-ଡୀନ)ଡେଇଁବା କ୍ରିୟାର ଣିଜନ୍ତରୂପ, ଗୋଟିଏ ଉଚ୍ଚ ପଦାର୍ଥକୁ ଅତିକ୍ରମ କରାଇ କୌଣସି ବସ୍ତୁକୁ ନିକ୍ଷେପ କରିବା, କୌଣସି ଉଚ୍ଚ କାଠିଆଦି ବା ଚଉଡ଼ା ପଦାର୍ଥକୁ ଅତିକ୍ରମ କରିବା, ଟପିବା, ଡେଇଁବା, କୁଦିବା, ଦଉଡ଼ିବା, ହସ୍ତସ୍ଥିତ ପଦାର୍ଥକୁ ଉପରକୁ ଫୋପାଡ଼ି ପୁନର୍ବାର ଧରିବା, ନାଚିବା, ସ୍ପନ୍ଦିତ ହେବା, (ରୋଗ) ସଂକ୍ରମଣ କରିବା ।

**ଡିଆଁଡେଇଁ**—ଗ୍ରା. ବି. କୁଦା, ଲମ୍ଫ, ଦଉଡ଼ିବା, ଏକାଧିକ ଥର ଡେଇଁବା କର୍ମ ।

**ଡିଆଁପୋକ**—ଗ୍ରା. ବି. ଯେଉଁ ପୋକମାନେ ଡେଇଁ ଡେଇଁ ଚାଲନ୍ତି ।

**ଡିଆଁମାରିବା**—ଗ୍ରା. କ୍ରି. କୁଦିବା, ଲମ୍ଫଦେବା, ଦଉଡ଼ିବା, ଶୀଘ୍ର କୌଣସି ସ୍ଥାନ ତ୍ୟାଗ କରିବା ।

**ଡିଆଁରୋଗ**—ଗ୍ରା.ବି. ସଂକ୍ରାମକ ରୋଗ ।

**ଡିଆସିଲି**—ଗ୍ରା.ବି. ଦିଆସିଲିଇ, ନିଆଁକାଠି ।

**ଡିକ୍ସନାରି**—ଯା. ବି. ଅଭିଧାନ ଗ୍ରନ୍ଥ, ଭାଷାକୋଷ, ଶବ୍ଦକୋଷ, ଯେଉଁ ପୁସ୍ତକରେ କୌଣସି ଭାଷାର ଶବ୍ଦମାନଙ୍କର ଅର୍ଥ ଲେଖା ହୋଇଥାଏ ।

**ଡିଗ୍‌ବାଜି**—ଗ୍ରା.ବି.କ୍ରୀଡ଼ାବିଶେଷ,ଶୂନ୍ୟକୁ କୁଦି ଲେଉଟି ପଡ଼ିବା, ମାଙ୍କଡ଼ଚିଢ଼ ।

**ଡିଗ୍‌ବାଜିକର**—ଗ୍ରା.ବିଂ. କ୍ରୀଡ଼ାକାରୀ ।

**ଡିଗ୍ରୀ**—ଯା. ବି. ଫଇସଲା, ଅଦାଲତଙ୍କ ନିଷ୍ପତ୍ତି ବ୍ୟବସ୍ଥା, ମକଦ୍ଦମାରେ କୌଣସି ପକ୍ଷର ଜୟଲାଭ, ତାପମାନ ଯନ୍ତ୍ରରେ ତାପର ନିର୍ଦ୍ଦିଷ୍ଟ ପରିମାଣ, ସମକୋଣର ୧/୯୦ ଅଂଶ, କୋଣର ପରିମାପକ ଭାଗ,ସମ୍ମାନସୂଚକ ଉପାଧି ।

**ଡିଗ୍ରୀଜାରି**—ଯା.ବି.ଅଦାଲତଙ୍କ ନିଷ୍ପତ୍ତିକୁ କାର୍ଯ୍ୟରେ ପରିଣତ କରାଯିବାର ପଦ୍ଧତି ।

**ଡିଙ୍ଗର**—ବି.( ଲିନ୍‌ଗ+ଅର ) ମୋଟାଲୋକ, ଦୁଷ୍ଟଲୋକ, ଠକ, ଗୋଲାମ, (ବିଂ) ଦୁଷ୍ଟ, ଶଠ,ଧୂର୍ତ୍ତ,କଣା, (ଗ୍ରା.ବି.) ଟାଙ୍ଗର, ପାହାଡ଼ିଆ ଭୂମି ।

**ଡିଙ୍ଗରଆଖିଆ**—ଗ୍ରା. ବିଂ. ପୁଂ. ଯାହାର ଆଖି ଫୁଟି ଯାଇଥାଏ ।

**ଡିଙ୍ଗରା**—ପ୍ରା. ( ସମ୍ବ ) ବିଂ. ଦୁଷ୍ଟ, ବି. ଧେଣ୍ଡୁରା, ଡେଙ୍ଗୁରା ।

**ଡିଙ୍ଗଲି**—ପ୍ରା. ( ଗ୍ରେଟ ନାଗପୁର ଓ ସିଂହଭୂମ)ବି. ବୋଇତି କଖାରୁ ।

**ଡିଙ୍ଗା**—ଗ୍ରା. ବି. କେଶଗୁଚ୍ଛ, ଝୁଲୁଣୀ, ଡାଗରା ।

**ଡିଙ୍ଗାଇବା**—ପ୍ରା. ( ବାଲେଶ୍ୱର ) କ୍ରି. ଟାଣିହେବା ।

**ଡିଙ୍ଗୀ**—ଗ୍ରା.ବି.(ସଂ-ଦ୍ରୋଣୀ)ଗ୍ରେଟଡଙ୍ଗା, ଛୋଟଡଙ୍ଗା ।

**ଡିଡ଼କା**—ସ୍ତ୍ରୀ.ବି.ଯୌବନ କାଳର ରୋଗବିଶେଷ, ବ୍ରଣ, ବିରଣ୍ଡି ।

**ଡିଡ଼ାର**—ଯା.ବି. ରାଜା ଓ ଜମିଦାରମାନଙ୍କର ନଜର ଗୃହବାସ ଗୋରୁ ଗାଈ ଆଦିଙ୍କ ତତ୍ତ୍ୱ ନେଉଥିବା ବ୍ୟକ୍ତିଙ୍କୁ ଦିଆଯିବା ଜାଗିର ।

**ଡିଡ଼ି**—ଗ୍ରା.ଅବ୍ୟ. ହଳ ଓ ଗାଡ଼ିରେ ଲାଗିଥିବା ବଳଦମାନଙ୍କୁ ଚାଳନ କରିବାପାଇଁ ଚାଳକର ଉଚ୍ଚାରିତ ଧ୍ୱନି ।

**ଡିଡ଼ିମା**—ପୁଂ.ବି. ଟିଟ୍ଟିଭ ଶ୍ରେଣୀସ୍ଥ ପକ୍ଷୀ ।

**ଡିଣା**—ଗ୍ରା.ବି.ପାନ ରଖିବା ପାତ୍ରବିଶେଷ, ଶସ୍ୟଆଦି ମାପିବାର ଗୌଣୀ ବା ଡବା ।

**ଡିଣ୍ଡା**—( ପ୍ରା. ବସ୍ତର. ବି. )ସ୍ତ୍ରୀ. ଯୁବତୀ, (ପ୍ରା. ସିଂହଭୂମ. ବି. ପୁଂ ଓ ସ୍ତ୍ରୀ ) ଅବିବାହିତ ପୁରୁଷ ବା ସ୍ତ୍ରୀ ।

**ଡିଣ୍ଡିମ**—ପୁଂ.ବି. ( ଡିଣ୍ଡି +ମି+କ.ଅ ) ଆନନ୍ଦ, ହାଣ୍ଡି ପରି ଏକମୁଖା ବାଦ୍ୟ, ନାଗରା, କୁଷ୍ମପାକଫଳ, କରଞ୍ଜା ।

**ଡିଣ୍ଡିମେଶ୍ୱର ତୀର୍ଥ**—ପୁଂ. ବି. ଶିବପୁରାଣୋକ୍ତ ତୀର୍ଥବିଶେଷ ।

**ଡିଣ୍ଡିର**—ପୁଂ.ବି. ସମୁଦ୍ର ଫେଣ, ପାଣିର ଫେଣ, ଫେମ୍ପାଲ ।

**ଡିଣ୍ଡିଶ**—ବି. ଭେଣ୍ଡି ।

**ଡିତ୍ଥ**—ବି. କାଠର ତିଆରି ହାତୀ, ବଶିଷ୍ଟ ଲକ୍ଷଣଯୁକ୍ତ ପୁରୁଷ ।

**ଡିତ୍ଥଡିବିତ୍ଥ**—ବି. କାଠର ତିଆରି ମୃଗଆଦି ଖେଳନା ।

**ଡିନାର୍**—ଯା. ବି. ସାହେବ୍‌ମାନଙ୍କର ଦିନର ପ୍ରଧାନ ଭୋଜନ, ସାହେବୀଖାନା ।

**ଡିନାର୍**—ଯା.ବି. ପାରଶ୍ୟଦେଶ ପ୍ରଚଳିତ ସ୍ୱର୍ଣ୍ଣ ମୁଦ୍ରା ।

**ଡିପୁ(ପୋ)**—ଯା.ବି.ଯେଉଁଠାରେ ମାଲସବୁ ସଂଗୃହୀତ ହୋଇ ଜମା ରହେ, ଗୋଦାମ, ଭଣ୍ଡାର, ଗଞ୍ଜ, ଯେଉଁଠାରେ ବିଦେଶକୁ ପଠାଯିବା କୁଲିମାନଙ୍କୁ ଏକତ୍ର ବା ରୁଣ୍ଡ କରାଯାଏ ।

**ଡିପୋଜିଟ୍**—ଯା. ବି. ଧନ ଅନ୍ୟବ୍ୟକ୍ତି ନିକଟରେ ଗଚ୍ଛିତ ରଖିବା, ଅମାନତ, ନ୍ୟାସ ।

**ଡିପ୍ଲୋମା**—ଯା. ବି. କୌଣସି ବିଦ୍ୟାରେ ପାରଦର୍ଶିତା ଲାଭ କରିଥିବା ଛାତ୍ରକୁ ଶେଷ ପରୀକ୍ଷା ପରେ ବିଦ୍ୟାଳୟର ସର୍ବୋଚ୍ଚ କର୍ତ୍ତୃପକ୍ଷଙ୍କଠାରୁ ମିଳିବା ସନନ୍ଦ ।

**ଡିବା**—ଗ୍ରା.ବି.( ସଂ-ଦର୍ବୀ ) ପାନବଟା, ଧାନ ମାପିବାର ଗ୍ରେଟ ଗୌଣୀ,ସମ୍ପୁଟ, ସରୁଆ, କରଣ୍ଡ, ଡବା ।

**ଡିବି**—ଗ୍ରା.ବି. ଗ୍ରେଟ, ହାଣ୍ଡି, ଆଟିକା, ଡିବା ଦେଖ ।

**ଡିବିଡିବି**—ଗ୍ରା. ଅବ୍ୟ. ନାଗରା ବା ଡମ୍ବରୁ ବାଜିବାର ଶବ୍ଦ, (ଗ୍ରା.ବି.) ଆମେରିକାରୁ ଆସିଥିବା ଉଦ୍ୟାନତରୁବିଶେଷ ।

**ଡିବିରି**—ଗ୍ରା.ବି. ପେଟର ମୁହଁରେ ଲଗାଯିବା ପେଞ୍ଚବିଶିଷ୍ଟ ମୁନ୍ଦିଆ ବା ଭୁଣ୍ଡି, କିରାସିନ୍ ତେଲ ଜଳିବାର ଧାତୁମୟ ପ୍ରଦୀପ ।

**ଡିମ୍**—ପ୍ରା. ସମ୍ବ. ବି. ଡିମ୍ବ, ଅଣ୍ଡା ।

**ଡିମା**—ଗ୍ରା. ବିଂ. ଆବୁଆବୁଆ, ଡିମ୍ବପରି ଫୁଲିଥିବା ( ଆଖି ) ।

**ଡିମ୍ବ**—ବି. ( ଡିନ୍‌ବ+କ.ଅ ) ଅଣ୍ଡା, ମାଛଆଦି ଜୀବଙ୍କ ମଞ୍ଜି, ପତଙ୍ଗମାନଙ୍କ

ଚୈଶବ କାଳୀନ ଆକୃତ, ଗର୍ଭସ୍ଥ ଶିଶୁ ଭ୍ରୂଣ, ଶିଶୁଜନ୍ତୁ, ଛୁଆ, ମନୁଷ୍ୟ ଶିଶୁ,(ଶ. ଅ) ଭସ୍ମଜନିତ ଚନ୍ଦ୍ରକାଶ୍ରିତ, ବିକାର, ଫୌଜଦାରୀ, ବିବାଦ, ବିପ୍ଲବ, ଫୁସ୍‌ଫୁସ୍,ପ୍ଲୀହା କଲେବର

ଡିମ୍ବଉଷୁମା—ଗ୍ରା.ବି. ପକ୍ଷୀ ମାତା ଡିମ୍ବ ଉପରେ ବସି ତାକୁ ଉଷ୍ମକରିବା ।

ଡିମ୍ବଉଷୁମା(ମେ)ଇବା—ଗ୍ରା. କ୍ରି. (ପକ୍ଷୀ-ମାତା) ଡିମ୍ବ ପ୍ରସବ କଲାପରେ ନିର୍ଦ୍ଦିଷ୍ଟ କାଳ ଉକ୍ତ ଡିମ୍ବଉପରେ ଅନବରତ ବସି ତାହାକୁ ଉଷ୍ଣତାଯୁକ୍ତ କରିବା, (ଲ.ଅର୍ଥ) କୌଣସି କାର୍ଯ୍ୟରେ ଅନ-ବରତ ନିଯୁକ୍ତ ରହିବା, ଘରୁବାହାରି କିଛିକାଳପାଇଁ କେଉଁଆଡ଼େ ନ ଯିବା ।

ଡିମ୍ବକେଶର—ଗ୍ରା.ବି. ଡିମ୍ବମଧ୍ୟରେ ଥିବା ହଳଦିଆ ଅଂଶ ।

ଡିମ୍ବକୋଷ—ବି. ପୁଷ୍ପର ଗର୍ଭକେଶର, ନିମ୍ନସ୍ଥ ଶୂନ୍ୟ ଗର୍ଭଅଂଶ, ପୁଷ୍ପଯୋନି ।

ଡିମ୍ବଜ—ବିଂ. (ଡିମ୍ବ+ଜନ+କ.ଅ) ଡିମ୍ବରୁ ଜାତ, ଅଣ୍ଡଜ, ଯେଉଁ ଜୀବ-ମାନେ ଡିମ୍ବରୁ ଜନ୍ମନ୍ତି ।

ଡିମ୍ବଦେବା—ଗ୍ରା. କ୍ରି. ଡିମ୍ବପାଡ଼ିବା, ଡିମ୍ବ ଜନ୍ମ କରିବା ।

ଡିମ୍ବପାଡ଼ିବା—ଗ୍ରା. କ୍ରି. ଡିମ୍ବ ଜନ୍ମକରିବା ।

ଡିମ୍ବଫୁଟା(ଟେ)ଇବା—ଗ୍ରା. କ୍ରି. ଡିମ୍ବକୁ ନିର୍ଦ୍ଦିଷ୍ଟକାଳ ଉଷୁମାଇବା ପରେ ତାହାର ବହିରାବରଣ ଫଟାଇବା ।

ଡିମ୍ବଫୁଟିବା—ଗ୍ରା. କ୍ରି. ଉପଯୁକ୍ତ ସମସ୍ତ ପକ୍ଷୀମାତା ଦ୍ୱାରା ଉଷୁମ ହେବାପରେ ଡିମ୍ବଫାଟିଯାଇ ତହିଁରୁ ଛୁଆ ବାହାରିବା

ଡିମ୍ବାଡିମ୍ବା—ଗ୍ରା. ବିଂ. ଆବୁ ଆବୁଆ, ଡିମ୍ବପରି ଫୁଲିଥିବା (ଆଖି),ଡିମ୍ବାକୃତ ।

ଡିମ୍ବାହବ—ବି. ନୃପତିହୀନ ଯୁଦ୍ଧ,ଯେଉଁ ଯୁଦ୍ଧରେ ଉଭୟପକ୍ଷର ନରପତିମାନେ ଯୁଦ୍ଧଭୂମିରେ ଉପସ୍ଥିତ ନ ଥାନ୍ତି ।

ଡିମ୍ବିକା—ସ୍ତ୍ରୀ. ବି. (ଡିମ୍ବ+ଇକ+ଆ) କାମୁକୀ ସ୍ତ୍ରୀ, ଜଳବିମ୍ବ, ଜଳବୁଦ୍‌ବୁଦ, ଶ୍ୟୋଣାକ ବୃକ୍ଷ, ଫଣଫଣା ଗଛ ।

ଡିମ୍ବିରି—ଗ୍ରା. ବି. ଶ୍ରେଷ୍ଠ ଜାତର ଡିମିରି ଗଛ ଓ ତହିଁର ଫଳ ।

ଡିମ୍ବିରିଫୁଲ—ଗ୍ରା. ବି. ଡିମିରି ଗଛର ଫୁଲପରି ଅସମ୍ଭବ ବିଷୟ, ଆକାଶ କୁସୁମ ।

ଡିମ୍ଭ—ପୁଂ.ବି. (ଡିନ୍‌ଭ+କ.ଅ) ଶିଶୁ, କଅଁଳା ପିଲା, ଶାଲ୍ୱଦେଶର ଅଧିପତି, ଜରାସନ୍ଧର ସେନାପତି, (ବିଂ) ମୂର୍ଖ, ଅଜ୍ଞ, ନିର୍ବୋଧ ।

ଡିମ୍ଭକ—ପୁଂ.ବି.(ଡିମ୍ଭ+କ) ଡିମ୍ଭଦେଖ ।

ଡିମ୍ଭଚକ୍ର—କ୍ଲୀ. ବି. ମନୁଷ୍ୟର ଶୁଭାଶୁଭ ନିର୍ଣ୍ଣାୟକ ଚକ୍ରବିଶେଷ ।

ଡିମ୍ଭଜ—କ୍ରି. ବିଂ. ଡିମ୍ବଜ ଦେଖ ।

ଡିମ୍ଭା—ସ୍ତ୍ରୀ. ବି. (ଡିମ୍ଭ+ଆ) ଅତି ଶିଶୁ ।

ଡିର୍ରା—ପ୍ରା. (କଳା) ବି. ଉଚ୍ଚଭୂମିଖଣ୍ଡ

ଡିରି—ପ୍ରା.(ସମ୍ବ)ବି. ଲଡ଼ାଆଦିର ଡଙ୍କ ।

ଡିଲଡ଼ଉଲ—ଯା. ବି. ମନ ଓ ରୂପ, ମାନସିକ ଶକ୍ତି ଓ ଶାରୀରିକ ସ୍ୱାଚ୍ଛନ୍ଦ୍ୟ, ଶରୀରର ଆକୃତି । [ କକୁଦ ।

ଡିଲ୍ଲ—ପ୍ରା. (ବସ୍ତ) ବି. ଷଣ୍ଢର ଚୂଳ,

ଡିଲ୍ଲୀ—ମୋଗଲ ସାମ୍ରାଜ୍ୟର ରାଜଧାନୀ, ବର୍ତ୍ତମାନ ଦିଲ୍ଲୀ ।

ଡିଷ୍ଟ୍ରିକ୍ଟ—ଯା. ବି. ଜିଲ୍ଲା, ଶାସନ ବିଭାଗର ଗୋଟିଏ ଅଞ୍ଚଳ ।

ଡିହ—ଯା. ବି. ମାଟିର ଢିପା ବା ଢିପ, ବାସଯୋଗ୍ୟ ଉଚ୍ଚଭୂମି, ଯଷ୍ଟିର ସ୍ଥୂଳ ଅଗ୍ରଦ୍ୱାର ଭୂଷା, ଏକ ତହସିଲଦାରଙ୍କ ଅଧୀନ କେତେକ ଗ୍ରାମର ସମଷ୍ଟି, (ଗ୍ରା.ବିଂ) ଡିହ ଦେଖ ।

ଡିହକୁତା—ଗ୍ରା. ବିଂ. (ବ୍ୟଙ୍ଗ) କୁକୁର ଯେପରି ନିଜର ବାସସ୍ଥାନ ନିକଟରେ ପ୍ରଭୁତ୍ୱ ଦେଖାଏ ଯେଉଁ ବ୍ୟକ୍ତି ସେହି-ପରି ଆପଣାର ବାସସ୍ଥାନ ନିକଟରେ ପ୍ରୌଢ଼ି ଦେଖାଇ ହୁଏ, ଗେହେଶୂର ।

ଡିହବାନ୍ଧିବା—ଗ୍ରା. କ୍ରି. ଘରକରିବା ନିମନ୍ତେ କୌଣସି ନିମ୍ନଭୂମିରେ ମାଟି-ପକାଇ ଉଚ୍ଚକରିବା ।

ଡିହମାରିବା—ଗ୍ରା. କ୍ରି. ବାଡ଼ିର ମୁଣ୍ଡିରେ ଆଘାତ କରିବା, ଭୂଷିବା ।

ଡିହରେପୋଖରୀଖୋଳିବା—ଗ୍ରା. କ୍ରି. (ଲ.ଅର୍ଥ) କାହାରିକୁ ସର୍ବସ୍ୱାନ୍ତକରିବା ।

ଡିହରେବିଲୁଆଡ଼େଇଁବା—ଗ୍ରା.ବି. (ଲ.-ଅର୍ଥ) ବଂଶ ସମୂଳେ ଲୋପହେବା,ବାସଗୃହ ଶ୍ମଶାନରେ ପରିଣତ ହେବା ।

ଡିହା—ଗ୍ରା. ବି. ଏକଜାତୀୟ ଗୋଖୁର ସାପ, ( ବିଂ ସଂ-ଧୃଷ୍ଟ) ଯେଣ୍ଡା, ଯେଉଁ ଭୃତ୍ୟ ପ୍ରଭୁର ଆଦେଶକୁ ଅବଜ୍ଞା କରେ, ଠେସାଁ(ବ୍ୟକ୍ତି), ଅବଜ୍ଞାସୂଚକ (କଥା) ।

ଡିହି—ଗ୍ରା. ବିଂ. ଡିହ ବା ଉଚ୍ଚଜମିରେ ଉତ୍ପାଦିତ (ଫସଲ), ଡିହସମ୍ବନ୍ଧୀୟ, ଡିହରେ ବାସକରୁଥିବା ।

ଡୀନ—କ୍ଲୀ. ବି. (ଡୀ+କ୍ତ.ତ) ପକ୍ଷିମାନ-ଙ୍କର ଗତିବିଶେଷ,ଆଗମ ଶାସ୍ତ୍ରବିଶେଷ, ଭଡ଼ା, ହିନ୍ଦୁଧର୍ମର କ୍ରିୟାକାଣ୍ଡ ବର୍ଣ୍ଣନା କରାଯାଇଥିବା ଶାସ୍ତ୍ର,(କ.ତ) ଉଡ୍ଡୀୟ-ମାନ ।

ଡୀନଡୀନକ—କ୍ଲୀ. ବି. ପକ୍ଷିମାନଙ୍କର ଗତିବିଶେଷ, ନଭୋଗତି ।

ଡୀନାବଡୀନକ—କ୍ଲୀ. ବି. ପକ୍ଷିମାନଙ୍କର ଗତିବିଶେଷ,ଏକର ଗତିସଙ୍ଗେ ଅନ୍ୟର ଗତିମିଶ୍ରଣ ।

ଡୁ—ଗ୍ରା. ବି. ଡୁଡୁ ଖେଳ ।

ଡୁଆ—ଗ୍ରା. ବି. ଡୁହା ଦେଖ, (ପ୍ରା. ସମ୍ବ. ବି) ଅଣଙ୍କ, ଡଙ୍କା, କରଚୁଲି, ଚଟୁ, (ପ୍ରା. ଆଠ. ବି.) ତେଲପଲା, ପିଲାଙ୍କୁ ଦୁଧଖୁଆଇବାର ଗୁମରୁ ।

ଡୁଇଁ—ପ୍ରା.(ଗଞ୍ଜାମ)ବି.ଖେଳରେ ହାରିବା ।

ଡୁଇଁଡାଇଁ—ଗ୍ରା.ବିଂ. (ସଂ-ଆନ୍ଦୋଳିତ) ବ୍ୟାକୁଳ, କାତର, ଚିନ୍ତିତ,ଦୁଃଖିତ ।

ଡୁଗ୍‌ଡୁଗି—ପ୍ରା. (ମେଦ) ବି. ସାପୁଆ ଓ ବାଜିଗର ଯେଉଁ କ୍ଷୁଦ୍ର ଡମ୍ବରୁ ବାଦ୍ୟ ବଜାନ୍ତି ।

ଡୁଗି—ଗ୍ରା. ବି. ତବଲାର ସହଚର ବାଦ୍ୟ, ବାଇଁଆ, ( ପ୍ରା. ଗଞ୍ଜା. ବି ) ଏକପ୍ରକାର ଗଞ୍ଜପା ଖେଳ ।

ଡୁଗିତବଲା—ଗ୍ରା. ବି. ବାଆଁହାତରେ ଛିପିବାପାଇଁ ବାଇଁଆ ଓ ଡାହାଣ ହାତରେ ଛିପିବାପାଇଁ ତବଲା ଏହିପରି ଦୁଇଟି ଏକସଙ୍ଗେ ବଜାଯିବା ଆନଦ୍ଧ

ବାଦ୍ୟଯନ୍ତ୍ର ।

ଡୁଙ୍ଗ୍ଲ—ପ୍ରା. (ସମ୍ବ. ପୁଙ୍ଗ. ଓ ସିଂହ) ବି. କ୍ଷୁଦ୍ରଗିରି,ପାହାଡ଼, ମୁଣ୍ଡିଆ ।

ଡୁଙ୍ଗିବା—ଗ୍ରା. କ୍ରି. ଶଗଡ଼ର ଭିନ୍ନ ଭିନ୍ନ ଅଂଶକୁ ଏକତ୍ର ସଂଯୋଜିତ କରି କାର୍ଯ୍ୟରେ ପରିଣତ କରିବା, ଝାଙ୍କିବା, ଲୁଚକରି ଗୁହିଁବା ।

ଡୁଙ୍ଗୀ—ଗ୍ରା. ବି. (ସଂ-ଦ୍ରୋଣୀ) କ୍ଷୁଦ୍ର-ନୌକାବିଶେଷ, ତନ୍ତୀଙ୍କର ଭରଣୀ ସୂତା ଗୁଡ଼ାହୋଇଥିବା ନଳୀ,କଣ୍ଡା ।

ଡୁଙ୍ଗୁରଡୁଙ୍ଗୁର—ଗ୍ରା.ଅବ୍ୟ. ଢୋଲଆଦି ବାଜିବାର କ୍ଷୀଣଶବ୍ଦ ।

ଡୁଙ୍ଗେଇ—ଗ୍ରା. ବି. ଝୁଙ୍ଗେଇ ମୂଷା, ଏକରକମ ଗ୍ରେଟ ମୂଷା ।

ଡୁଡୁ—ଗ୍ରା. ବି. ବାକ୍ ଡୁଡୁ ବା ଗୁଡ଼ୁ ଗୁଡ଼ୁ ଖେଳ,ଏକପ୍ରକାର ବ୍ୟାୟାମ ସାଧ୍ୟ କ୍ରୀଡ଼ା ।

ଡୁଡୁକା—ପ୍ରା. (ସମ୍ବ) ବି. ଲତାଫଳ ବିଶେଷ, ଏକପ୍ରକାର ଜହ୍ନି ।

ଡୁଡୁମା—ଗ୍ରା.ବି. ବିଶାଖାପାଟଣା ଜିଲ୍ଲାର ଜୟପୁର ରାଜ୍ୟର ରାଜଧାନୀଠାରୁ ତିନି ସ୍ବୁରି ମାଇଲ ଦୂରରେ ଥିବା ଗୋଟିଏ କମନୀୟ ଜଳପ୍ରପାତ ।

ଡୁଣ୍ଡୁ—ଗ୍ରା. ବି. ଫଣାଶୂନ୍ୟ ଏକପ୍ରକାର ନିର୍ବିଷ ଜଳଚର ସର୍ପ, ପାଣିଧଣ୍ଡ, ଢେମଣା ସାପ ।

ଡୁପ୍ଲିକେଟ୍—ଘା. ବିଂ. ଦୋହରି, ଯୋଡ଼ିରୁ ଏକ, ମୂଳବସ୍ତୁର ଅବିକଳ ନକଲ ବା ସମାନ (ବସ୍ତୁ) ।

ଡୁପ୍ଲେ—ଭାରତବର୍ଷୀୟ ଫରାସୀ ଅଧିକାରର ବିଖ୍ୟାତ ଶାସନକର୍ତ୍ତା ଓ ସେନାପତି ।

ଡୁବ—ଗ୍ରା. ବି. ନିମଗ୍ନ, ଜଳରେ ଅବଗାହନ, ଡୁବା ଦେଖ ।

ଡୁବକ—ଗ୍ରା. ବି. ପାଦ୍ରୀ, ଖ୍ରୀଷ୍ଟାନ୍‌ମାନଙ୍କ ଜଳଦୀକ୍ଷା ଦେବା ସମୟରେ ଯେଉଁ ପୁରୋହିତ ବା ପାଦ୍ରୀଦୀକ୍ଷା ପ୍ରାର୍ଥୀ ବ୍ୟକ୍ତିକୁ ପବିତ୍ର କୁଣ୍ଡର ପାଣିରେ ବୁଡ଼ାନ୍ତି ।

ଡୁବକଟ୍ରସ୍ଟର ସମ୍ପ୍ରଦାୟ—ଗ୍ରା.ବି. ଡୁବକ ଧର୍ମଯାଜକଙ୍କ ସଙ୍ଘ ।

ଡୁବକସମ୍ପ୍ରଦାୟ—ଗ୍ରା. ବି. ଖ୍ରୀଷ୍ଟାନମାନଙ୍କ ମଧ୍ୟରେ ଗୋଟିଏ ସମ୍ପ୍ରଦାୟ ।

ଡୁବନ—ଗ୍ରା. ବି. ନିମଜ୍ଜନ, ପାଣିରେ ବୁଡ଼ାଇବା, ଖ୍ରୀଷ୍ଟାନ୍ ଧର୍ମରେ ଦୀକ୍ଷିତ ହେବା ପୂର୍ବରୁ ପବିତ୍ର କୁଣ୍ଡରେ ସ୍ନାନ ।

ଡୁବସ୍ଥ—ଗ୍ରା.ବି. ନିମଜ୍ଜକ,ଯେ ଜଳରେ ଅଧିକକ୍ଷଣ ଡୁବି ରହିପାରେ ।

ଡୁବା—ଗ୍ରା. ବି. ଡୁବିବା, ବୁଡ଼, କ୍ଷୁଦ୍ର ଜଳାଶୟ, ଗାଡ଼ିଆ ।

ଡୁବାଇ—ଗ୍ରା. ବି. ପାଣିକୁଆ ପକ୍ଷୀ ।

ଡୁବା(ବୋ)ଇବା—ଗ୍ରା.କ୍ରି.ଡୁବିବାକ୍ରିୟାର ଣିଜନ୍ତରୂପ,କୌଣସି ବ୍ୟକ୍ତି ବା ବସ୍ତୁକୁ ପାଣିରେ ନିମଜ୍ଜିତ କରାଇବା, ଡୁବାଇବା, ମଗ୍ନକରାଇବା,ଜାତିଧର୍ମାଦି ଲୋପ କରାଇବା, ପରର ସର୍ବନାଶ ଘଟାଇବା, ନଷ୍ଟ କରିବା, ଅପବାଦ ଦେଇ ଜାତିଚ୍ୟୁତ କରାଇବା, ବଂଶକୁ ନିର୍ବଂଶ କରାଇବା, ପ୍ରାପ୍ୟ ଧନକୁ ବହୁକାଳ ଆଦାୟ ନଦେଇ ତମାଦି କରାଇବା, ଧନ ନଷ୍ଟ ବା କ୍ଷତି କରାଇବା, ଗମାଇବା, ଅନ୍ୟର ମର୍ଯ୍ୟାଦା, ଇଜ୍ଜତ ବା ସୁନାମକୁ ଖର୍ବ କରାଇବା, (ସୁନାମ) କଳଙ୍କିତ କରିବା ।

ଡୁବା(ବୋ)ଇମାରିବା—ଗ୍ରା.କ୍ରି. କୌଣସି ବ୍ୟକ୍ତିକୁ ଜଳରେ ବୁଡ଼ାଇ ବଧକରିବା, (ଲ.ଅର୍ଥ) ଅନ୍ୟବ୍ୟକ୍ତିର ସର୍ବନାଶ କରିବା ।

ଡୁବିତ—ଗ୍ରା. ବିଂ. ନିମଜ୍ଜିତ, ପାଣିରେ ବୁଡ଼ା ହୋଇଥିବା, ଜଳସଂସ୍କାର ଦ୍ୱାରା ଖ୍ରୀଷ୍ଟଧର୍ମରେ ଦୀକ୍ଷିତ ।

ଡୁବିବା—ଗ୍ରା କ୍ରି. ଜଳାଦିରେ ବୁଡ଼ିବା, ନିମଜ୍ଜିତହେବା. ଆଚ୍ଛାଦିତ ହେବା, ଆକ୍ରାନ୍ତ ହେବା, ଅସ୍ତଗାମୀ ହେବା, ଅଦୃଶ୍ୟ ହେବା, ବିନଷ୍ଟ ହେବା, ଅବନତି ପ୍ରାପ୍ତହେବା, କୌଣସି ପ୍ରାପ୍ୟଧନ ଆଦି ତମାଦି ଆଦି କାରଣରୁ ଆଦାୟ ହୋଇ ନପାରିବା, ନଷ୍ଟହେବା, ଲୁପ୍ତ ହେବା, ପାଣିରେ ବୁଡ଼ି ସ୍ନାନକରିବା ।

ଡୁବିମରିବା—ଗ୍ରା. କ୍ରି. ପାଣିରେ ବୁଡ଼ି ଆତ୍ମହତ୍ୟା କରିବା, (ଲ.ଅର୍ଥ)ଅତ୍ୟନ୍ତ କ୍ଷତିଗ୍ରସ୍ତ ହେବା, ଋଣଗ୍ରସ୍ତ ହେବା ।

ଡୁବୁଡୁବୁ—ଗ୍ରା. ବିଂ. ଆକଣ୍ଠ ନିମଜ୍ଜିତ, ମଗ୍ନପ୍ରାୟ, ପାଣିରେ ବୁଡ଼ିଯାଇ କ୍ଷଣ କ୍ଷଣକେ ଉପରକୁ ବାହାରୁଥିବା ।

ଡୁବୁରି—ଗ୍ରା. ବି. ବୁଡ଼ାଳି, ଯେଉଁବ୍ୟକ୍ତି ଗଭୀର ଜଳରେ ବୁଡ଼ି କୌଣସି ଜିନିଷ ମାଛ ମୁକ୍ତା ଆଦି ଆଣିପାରେ ।

ଡୁଭ—ଗ୍ରା. ବି. ଖୋବ, ଅତି କ୍ଷୁଦ୍ର ଜଳାଶୟ ।

ଡୁମୁଡୁମୁ—ଗ୍ରା.ଅବ୍ୟ. ଢୋଲବାଜିବାର ଅନୁରୂପ ଶବ୍ଦ, ଡୁଙ୍ଗୁର୍ ଡୁଙ୍ଗୁର୍ ଶବ୍ଦ ।

ଡୁମୁଡୁମୁ—ଗ୍ରା.ବିଂ.ଡୁମୁଡୁମୁ ଶବ୍ଦଯୁକ୍ତ

ଡୁମୁସି—ଗ୍ରା.ବିଂ. ଜଳରେ ଓଦାହୋଇ ଫୁଲିଥିବା ।

ଡୁମର—ପ୍ରା. (ବସ୍ତର) ବି. ଡମ୍ବିରି ।

ଡୁମର—ପ୍ରା. (ସମ୍ବ.) ବିଂ. ଚିପ, ଉଚ୍ଚ (ଭୂମି) ।

ଡୁମା—ପ୍ରା. (ସମ୍ବ.)ବି. ବଡ଼ ଜାଆଁଯ୍ବା ଅଣ୍ଡିରି ଗୋବରା ଚଢ଼େଇ,(ପ୍ରା. ବସ୍ତର-ର) ଅସୁର. (ପ୍ରା.କଲାହାଣ୍ଡି -ସ୍ତ୍ରୀ. ବି)- ଡାହାଣୀ,(ଗ୍ରା.ବିଂ) ଡମ୍ବାଡମ୍ବା ଦେଖ ।

ଡୁମା(ମେ)ଇବା—ଗ୍ରା. କ୍ରି. ଟୁମାଇବା ଦେଖ ।

ଡୁମାଡୁମା—ଗ୍ରା.ବିଂ.ଡମ୍ବାଡମ୍ବା ଦେଖ ।

ଡୁମାଲ—ଗ୍ରା.ବି. ଗଉଡ଼ ଜାତିର ଶାଖା ବିଶେଷ । [ ବିଶେଷ ।

ଡୁମୁଡୁମା—ଗ୍ରା. ବି. ବନ୍ୟଶାକ ଗୁଳ୍ମ

ଡୁମୁଡୁମୁ—ଗ୍ରା.ଅବ୍ୟ. ଡୁମୁଡୁମୁ ଦେଖ ।

ଡୁମୁର—ପୁଂ. ବି. ଡୁମୁର, ଡିମିରି, ଉଦୁମ୍ବର ।

ଡୁମୁରପର୍ଣ୍ଣୀ—ସ୍ତ୍ରୀ. ବି. ଦନ୍ତୀବୃକ୍ଷ ।

ଡୁରୁ—ପ୍ରା. (ବାଲେଶ୍ୱର) ବି. ଡୋରିଆ ଲୁଗା ।

ଡୁରି—ପ୍ରା. (ସମ୍ବ.) ବି. ମହୁଲ ।

ଡୁର୍କା—ପ୍ରା. (କଲାହାଣ୍ଡି) ବି. ଛୋଟ ବାଘ, ନେପାଳି ବାଘ ।

ଡୂଲ୍—ପ୍ରା. (ସମ୍ବ.) ବି. କ୍ଷେତରୁ ପାଣି ବୋହିଯାଇ ଜମାହେବା ଗାତ ।

**ଡୁଲ୍‌କ୍କ**—ଗ୍ରା. ବି. ଡୋଲକ, ଶ୍ରେଷ୍ଠ-**ଢୋଲ** ।

**ଡୁଲି**—ସ୍ତ୍ରୀ.ବି. ଡୁଲି କମଠୀ, କଚ୍ଛପ ସ୍ତ୍ରୀ, ଯାନବିଶେଷ, ଦୋଳା, ଶସ୍ୟରଖିବା ନିମନ୍ତେ ବାଉଁଶ ପାଢଆରେ ବୁଣା କଣ୍ଡପାତ୍ର, କୋଡ଼ମେଇ ।

**ଡୁଲିକା**—ସ୍ତ୍ରୀ. ବି. ଖଞ୍ଜନାକାର ପକ୍ଷୀ-ବିଶେଷ ।

**ଡୁଲ୍ଲି**—ସ୍ତ୍ରୀ. ବି. କଳଶାକ ।

**ଡୁଶ୍**—ଯା. ବି. କୋଷ୍ଠବଦ୍ଧ ହେଲେ ସାବୁନପାଣି ବା ଲୁଣପାଣି ପୂର୍ଣ୍ଣ ଗୋଟିଏ ପାତ୍ରରେ ରବର ନଳ ଲଗାଇ ନଳ ଦ୍ୱାରା ପେଟ ଭିତରକୁ ପାଣିଦେଣ୍ଡି ଝାଡ଼ା କରାଇବା ଯନ୍ତ୍ର ।

**ଡୁସିବା**—ପ୍ରା. (କଳାହାଣ୍ଡି) କ୍ରି ନିଆଁ ଲଗାଇବା ।

**ଡୁହା**—ଗ୍ରା. ବି. (ସଂ-ଦ୍ୱିପଦା)ସଙ୍ଗୀତର ଘୋଷାପଦ ।

**ଡୁହାଧରିବା**—ଗ୍ରା. କ୍ରି. ଗାୟକ ବ୍ୟକ୍ତି ସଙ୍ଗୀତର ପଦମାନ ବୋଲିବା ପରେ (ତାଙ୍କର ସହଚରମାନେ) ସଙ୍ଗୀତର ଘୋଷାପଦକୁ ବାରବାର ଗାଇବା ।

**ଡୁହୁର**—ପ୍ରା. (ସମ୍ବ) ବି. ଲଙ୍ଗଳର ଶିଆର ।

**ଡେଇଁଡେଇଁ**—ଗ୍ରା. ବିଂ. ପୁସ୍ତକର କେତେ ଅଂଶ ଛାଡ଼ିଦେଇ,(ପଢ଼ିଯିବା), ବହୁବାର ଉଲ୍ଲଙ୍ଘନକରି(ଯିବା),ପାଦକୁ ଉଚ୍ଚକୁ ଉଠାଇ (ଚାଲିବା) ।

**ଡେଇଁଦେବା**—ଗ୍ରା. କ୍ରି. ଡିଆଁଇବା, ଡେଇଁବାର ଣିଜନ୍ତ ରୂପ ।

**ଡେଇଁପଡ଼ିବା**—ଗ୍ରା. କ୍ରି. ଲମ୍ଫଦେବା, ଅଗ୍ନି ଆଦିକୁ ଝାସଦେବା, କୁଦିଯିବା ।

**ଡେଇଁବା**—ଗ୍ରା. କ୍ରି. ଲମ୍ଫଦେବା, କୁଦିବା, ଉଲ୍ଲମ୍ଫନ କରିବା, ଉଲ୍ଲଙ୍ଘନ କରିବା, କମ୍ପିତହେବା, ସ୍ପନ୍ଦିତହେବା, (ରୋଗଆଦି) ଏକ ବ୍ୟକ୍ତିଠାରୁ ସଂକ୍ରମଣ କରିବା, ଦଉଡ଼ି ବୁଲିବା,ବିରକ୍ତହେବା ଛିଆଁଇବା, କୌଣସି ସୀମାକୁ ଟପିବା, ପାଠକରିବାବେଳେ ପୁସ୍ତକାଦିର ଅଂଶ ବିଶେଷ ତ୍ୟାଗକରି ଆଗକୁ ପଢ଼ିଯିବା, କେତେକ ଅଂଶ ଛାଡ଼ି ପଢ଼ିଯିବା, (ଅକର୍ମକ—ନିର୍ଦ୍ଧାରିତ ସମୟର ସୀମା) ଅତିକ୍ରାନ୍ତ ହେବା, ଟପିଯିବା ।

**ଡେଇଁଯିବା**—ଗ୍ରା. କ୍ରି. ଲମ୍ଫଦେଇ ଅତିକ୍ରମ କରିଯିବା, କୁଦିଯିବା ।

**ଡେଉଁରିଆ**—ଗ୍ରା. ବି.(ସଂ-ଡମରୁ)ଡଉଁରିଆ, ତାବିଜ, ମର୍ଦ୍ଦଳାକାର ଧାତୁମୟ ଅଳଙ୍କାର ବିଶେଷ ।

**ଡେକ୍‌ଚି**—ଯା. ବି. ତମ୍ବା ବା ଆଲ୍ୟୁମିନିଅମ ଧାତୁରେ ନିର୍ମିତ ହାଣ୍ଡି ବା ରନ୍ଧନପାତ୍ର ।

**ଡେକ୍‌ନା**—ପ୍ରା. (ଲରିଆ) ବି. ଓଡ଼ଶ, ଗୁରପୋକ ।

**ଡେସ୍କ**—ଯା. ବି. ମେଜ ଆଦିରେ ଲଗାଯିବା କାଠର ଗୁଙ୍ଗୁଡ଼ି ବା ଢାଲୁ, ଦରାଜ, ଲେଖିବାର ଗଡ଼ାଣିଆ ଶ୍ରେଷ୍ଠ ମେଜ ।

**ଡେକ୍ସନାସ୍ତ**—ଯା. ଡିକ୍ସନାସ୍ତ ଦେଖ ।

**ଡେଗିବା**—ଗ୍ରା.କ୍ରି.ଡେଇଁବା,ଝାମ୍ପିବା ।

**ଡେଙ୍କା**—ପ୍ରା.(ସମ୍ବ.)ବି.ଠେକା,ପଗଡ଼ି ।

**ଡେଙ୍ଗ୍**—ପ୍ରା. (ଭଜିଖ୍ୱା) ବିଂ. ଡେଙ୍ଗା ।

**ଡେଙ୍ଗ**—ଗ୍ରା. ବି. (ସଂ-ତୁଙ୍ଗ) ଲମ୍ବରେ ଉଚ୍ଚତା, ଠିଆ ବାଗରେ କୌଣସି ବସ୍ତୁର ଉଚ୍ଚତା, (ବିଂ) ଡେଙ୍ଗା ।

**ଡେଙ୍ଗବେକାର**—ଗ୍ରା.ବି. ବନ୍ୟ ବର୍ଷାୟୁ କଣ୍ଟକୀ କ୍ଷୁପ, ଅଗରା, ଗାଆଁଘଉଡ଼ା ।

**ଡେଙ୍ଗା**—ଗ୍ରା. ବି. (ସଂ-ତୁଙ୍ଗ) ପୁଂ. ବି. ଉଚ୍ଚଲୋକ ବା ବସ୍ତୁ, (ବିଂ) ଦୀର୍ଘ, ଠିଆ ବାଗରେ, ଲମ୍ବା ।

**ଡେଙ୍ଗାଭେଙ୍ଗା**—ଗ୍ରା. ବି. ଶ୍ୱେତ ବୃହତୀ ।

**ଡେଙ୍ଗ**—ଯା. ବି. ଠେଙ୍ଗାଜର ।

**ଡେଙ୍ଗୁରକ**—ଗ୍ରା. ବି. ନାଗରା ।

**ଡେଙ୍ଗୁରା**—ଗ୍ରା. ବି.(ସଂ-ଡିଣ୍ଡିମ)ଧେଣ୍ଡୁରା, ଢକ୍କା, ନାଗରା ।

**ଡେଙ୍ଗୁରାଦେବା**—ଗ୍ରା. କ୍ରି. ଡେଙ୍ଗୁରା ପିଟିବା ଦେଖ ।

**ଡେଙ୍ଗୁରାପିଟା**—ଗ୍ରା. ବି. କୌଣସି ବିଷୟରେ ପ୍ରକାଶ୍ୟ ଭାବରେ ପ୍ରକଟନ, (ବିଂ) ସର୍ବସାଧାରଣରେ ପ୍ରକଟିତ ।

**ଡେଙ୍ଗୁରାପିଟିବା**—ଗ୍ରା. କ୍ରି. ଧେଣ୍ଡୁରା ଦେବା, ଢକ୍କା ବଜାଇବା, କୌଣସି ବିଷୟକୁ ଘୋଷଣା କରିବା ନିମନ୍ତେ ଢକ ବଜାଇବା । [ଯୁକ୍ତା ସ୍ତ୍ରୀ

**ଡେଙ୍ଗେଇ**—ଗ୍ରା. ସ୍ତ୍ରୀ. ବିଂ. ଲମ୍ବଶରୀର-

**ଡେଙ୍ଗେନ୍**—ପ୍ରା.(ସମ୍ବ.)ବିଂ.ଡେଙ୍ଗେଇ

**ଡେଣା**—ଗ୍ରା.ବି.(ସଂ-ଡୀଧାତୁ)ପକ୍ଷୀମାନେ ଯେଉଁ ପକ୍ଷ ସାହାଯ୍ୟରେ ଉଡ଼ନ୍ତି,ମାଛ-ମାନେ ଯେଉଁ ପକ୍ଷ ସାହାଯ୍ୟରେ ପହଁରନ୍ତି, ମନୁଷ୍ୟର ବାହୁ, (ଲ.ଅର୍ଥ) ମନୁଷ୍ୟର ପ୍ରଧାନ ସହାୟ ।

**ଡେଣାଝଟିପଡ଼ିବା**—ଗ୍ରା. କ୍ରି. ଡେଣାଛିଡ଼ି ପଡ଼ିବା ।

**ଡେଣାଛିଡ଼ିପଡ଼ିବା**—ଗ୍ରା. କ୍ରି. (ଲ.ଅର୍ଥ) ପ୍ରଧାନ ସହାୟକ ବ୍ୟକ୍ତି ମୃତ ବା ଅନ୍ୟ-ଗତ ଯୋଗୁଁ ମନୁଷ୍ୟ ସହାୟହୀନହେବା

**ଡେଣୁଆଁ**—ଗ୍ରା. ବି. ଡେଲା, ଟେକା, ଟେଲା, ବୋଲୁଅ ।

**ଡେଣ୍ଡିଆ**—ପ୍ରା.(ସମ୍ବ)ବିଂ.ଖଣ୍ଡିଆ,ବିକ୍ଷତ ।

**ଡେଣ୍ଡୁ**—ପ୍ରା. (ସମ୍ବ.) ବି. ଧଣ୍ଡସାପ ।

**ଡେନ୍**—ଯା. ବିଂ. ଡେନ୍‌ମାର୍କଦେଶୀୟ, (ବି) ଡେନ୍‌ମାର୍କଦେଶୀୟ ବ୍ୟକ୍ତି ।

**ଡେନ୍‌ମାର୍କ**—ଯା. ବି. ଇଉରୋପର ଜର୍ମାନରାଜ୍ୟର ଉତ୍ତରରେ ଦ୍ୱୀପ ଓ ଉପଦ୍ୱୀପ ସମ୍ବଳିତ ଗୋଟିଏ ରାଜ୍ୟ ।

**ଡେନା**—ପ୍ରା. (ସମ୍ବ) ବି. ଡେଣା ।

**ଡେବରି(ରି)ଆ**—ଗ୍ରା. ପୁଂ. ବିଂ. ଯେଉଁ ବ୍ୟକ୍ତିର ବାମହସ୍ତ ଦକ୍ଷିଣହସ୍ତ ଅପେକ୍ଷା ଅଧିକ ଦକ୍ଷ ବା କାର୍ଯ୍ୟକାରୀ ।

**ଡେବ(ବ)ି**—ଗ୍ରା.ବିଂ.ବାମପାର୍ଶ୍ୱସ୍ଥ,ବାଆଁ

**ଡେମିବା**—ପ୍ରା.(ସମ୍ବ)କ୍ରି.ଶିଳରେ ଛେଚିବା ।

**ଡେମ୍ଫ**—ଗ୍ରା. ବି. (ସଂ-ଦଣ୍ଡ) ପତ୍ର ଫୁଲ ଓ ଫଳ ଆଦିର ବୃନ୍ତ ବା ନାଡ଼, ପ୍ରାଦେଶ ପରିମାଣ, ବିସ୍ତାରିତ କରତଳ ବୁଢ଼ା ଆଙ୍ଗୁଠିର ମୂଳରୁ ବଣି ଆଙ୍ଗୁଠିର ଅଗପର୍ଯ୍ୟନ୍ତ ବିସ୍ତାରର ପରିମାଣ, (ଯ.ବି)ଏକପ୍ରକାର ଆନଦ୍ଧବାଦ୍ୟ,ଡମ୍ଫ ।

**ଡେମ୍ଫେ**—ଗ୍ରା. ବି ଓ ବିଂ. ଏକଡେମ୍ଫ

ପରମାଣ ।

ଡେର—ଗ୍ରା. ବି. ଠିଆବାଗ, କୌଣସି ବସ୍ତୁର ଅଗ୍ରଭାଗ କାନ୍ଥ ବା ବାଡ଼ ପାଖକୁ ସଂଲଗ୍ନକରି ତାହାକୁ ଠିଆକରି ରଖିବାର ଅବସ୍ଥା, ଠିଆ ।

ଡେରା—ଯା. ବି. ତମ୍ବୁ, ବସ୍ତ୍ରଗୃହ, ଗୁଡ଼ୁଣି, (ଗ୍ରା. ବିଂ) କାନ୍ଥଆଦିରେ ଠିଆବାଗରେ ଆଉଜା ହୋଇଥିବା, (ପ୍ରା. ଚଣ୍ଟ୍ରାମ ବି.) ତୃଣାଜାତ, ଏକଜାତୀୟ ତନ୍ତ୍ରୀ, ବସାଘର, ଅସ୍ଥାୟୀ ବାସସ୍ଥାନ ।

ଡେରା(ରେ)ଇବା—ଗ୍ରା. କ୍ରି. ଡେରିବା କ୍ରିୟାର ଣିଜନ୍ତରୂପ, ଅନ୍ୟ ବ୍ୟକ୍ତି ଦ୍ୱାରା କୌଣସି ପଦାର୍ଥକୁ ଡେରିକରି ରଖାଇବା ।

ଡେରାଘର—ପ୍ରା.(ସମ୍ବ.)ବି.ଗ୍ରାମର ସାଧାରଣ ଅତିଥିଶାଳା, ବସାଘର ।

ଡେରାହିବା ବା ହେବା--ଗ୍ରା.କ୍ରି.ଡେରିବା କ୍ରିୟାର କର୍ମବାଚ୍ୟ ରୂପ,ଲମ୍ବବାଗରେ କାନ୍ଥ ଆଦିକୁ ଲଗାଇ କଣ୍ଠରୂପେ ରଖାହିବା, ଗର୍ଭବତୀ ଅବସ୍ଥାରେ ମରିବା ।

ଡେରି—ଯା. ବି. ବିଳମ୍ବ, କାଳବିଳମ୍ବ, (ବିଂ) ବିଳମ୍ବିତ, ବିଳମ୍ବ ହୋଇଥିବା, ( ଲ.ଅର୍ଥ ) ନିଜକୁ ନିଜେ ସମ୍ମାନିତ ମନେ କରିବା,ଗର୍ବଭାବ ଦେଖାଇବା ।

ଡେରିକରିବା—ଗ୍ରା.କ୍ରି. ବିଳମ୍ବକରିବା ।

ଡେରିଦେବା—ଗ୍ରା. କ୍ରି.ଡେରିବା ଦେଖ, ନୌକାର ମଙ୍ଗକୁ କାତଦ୍ୱାରା ସଂଯତ କରିବା ।

ଡେରିବା—ଗ୍ରା. କ୍ରି.କୌଣସି ଲମ୍ବବସ୍ତୁର ଅଗ୍ରଭାଗକୁ କାନ୍ଥ ବାଡ଼ ଆଦିକୁ ସଂଲଗ୍ନ କରି ଉକ୍ତ ବସ୍ତୁକୁ ଠିଆ କରାଇବା, ଆଉଜାଇବା, କୌଣସି କଥା ବା ଶବ୍ଦ ଶୁଣିବା ନିମନ୍ତେ କାନକୁ ସେହିଆଡ଼େ ବୁଲାଇବା, ନିବିଷ୍ଟ ଚିତ୍ତରେ ଶୁଣିବାକୁ କାନ ପାତିବା, ବିସ୍ତାର କରିବା, ସିଧା କରିବା, ନୌକାର ଆଗମଙ୍ଗକୁ କାତ ଦ୍ୱାରା ନିର୍ଦ୍ଦିଷ୍ଟ ଦିଗ ଆଡ଼କୁ ବୁଲାଇବା, (ପ୍ରା. ସମ୍ବ. କ୍ରି) ଡେଇଁବା ।

ଡେରିହେବା—ଗ୍ରା. କ୍ରି. ବିଳମ୍ବଘଟିବା, (ଗ୍ରା. କ୍ରି) ଡେରିବା କ୍ରିୟାର କର୍ମବାଚ୍ୟ ରୂପ,ନିଜର ବାହାଦୂରି ଦେଖାଇ ହେବା, ଆପଣାର ଦେହକୁ ଭୂତଳରୁ ସକୋଣ ଭାବରେ ରଖିବା ।

ଡେରିହୋଇବସିବା—ଗ୍ରା.କ୍ରି ଗୋଡ଼ରେ ଭରାଦେଇ ବସିବା, କେବଳ ଗୋଡ଼ର ତଳପାକୁ ଭୂମିରେ ଲଗାଇ ଦେହର ଅନ୍ୟ କୌଣସି ଅଂଶ ଭୂମିରେ ନ ଲଗାଇ ବସିବା, ଊର୍ଦ୍ଧ୍ୱଜାନୁ ହୋଇ ବସିବା ।

ଡେଲଗାଁ—ଗ୍ରା. ବିଂ. କୁବ୍ଜପୃଷ୍ଠ, କୁବ୍ଜ ବା ଉପରକୁ ବଙ୍କାହୋଇଯାଇ ଉପରକୁ ଥିବା (ପଟା), ଉପରକୁ ବାଙ୍କିଥିବା ।

ଡେଲି—ଯା. ବିଂ. ଦୈନିକ ।

ଡେଲ୍‌ଙ୍ଗିବା—ଗ୍ରା. କ୍ରି. ବଙ୍କା ବା କୁବ୍ଜ ହୋଇଯିବା ।

ଡେଲ୍ଟା—ଯା.ବି.ନଦୀ ସମୁଦ୍ରରେ ପଡ଼ିବା ସ୍ଥାନ ବା ମୁହାଣରେ ପଙ୍କଦ୍ୱାରା ଗଠିତ ତ୍ରିକୋଣାକାର ଭୂମି ।

ଡେସପାଚ୍—ଯା. ବି. ଗୁରୁତର ବିଷୟସୂଚକ ସରକାରୀ ଚିଠି ।

ଡେସିମଲ—ଯା. ବି. ଦଶମିକ, ଏକସଂଖ୍ୟାର ଦଶମାଂଶର ଭାଗ, ଏକ ଏକର ଭୂମିର $\frac{୧}{୧୦୦}$ $\frac{୧}{୧୦୦୦}$ $\frac{୧}{୧୦୦୦୦}$ ପ୍ରଭୃତି ଅଂଶ ।

ଡୋକରା—ଗ୍ରା.ବିଂ. ଲକ୍ଷ୍ମୀଛଡ଼ା,ଅତିବୃଦ୍ଧ. ଧୋକଡ଼ା, ଶ୍ଳଥଚର୍ମା ।

ଡୋଜ୍—ଯା. ବି.ଔଷଧର ମାତ୍ରା, ପାନ ।

ଡୋବ(ଭ)ର—ଯା. ବି. ଇଂଲଣ୍ଡ ଓ ଫ୍ରାନ୍ସ ମଧ୍ୟରେ ଥିବା ସଙ୍କୀର୍ଣ୍ଣ ଜଳଭାଗ ବା ପ୍ରଣାଳୀ ।

ଡୋଭା—ଗ୍ରା.ବି. ଆବୁ, ଚୁଆ, ଅତିକ୍ଷୁଦ୍ର ଜଳାଶୟ ।

ଡୋମ୍ନା—( ପ୍ରା. କନ୍ଧଭାଷା-ବି ) କନ୍ଧମାନଙ୍କ ପୁରୋହିତ ।

ଡୋମ—ଭାରତବର୍ଷର ପ୍ରାଚୀନ ଶ୍ରେଣୀର ନୀଚ ଜାତିବିଶେଷ ।

ଡୋମ୍ବର—ଗ୍ରା. ବି. କର୍ଣ୍ଣାଟକ ପ୍ରଦେଶର ଜାତିବିଶେଷ ।

ଡୋର—କ୍ଳୀ.ବି. ତାର, ସୂତାଆଦିର ସରୁ ଦଉଡ଼ି, ରସୀ, ହସ୍ତ ପ୍ରଭୃତିର ବନ୍ଧନ ସୂତ୍ର, ଗ୍ରା.ବି. ଆକର୍ଷଣ, ସ୍ନେହବନ୍ଧନ, କରଧୂନ, ଅଣ୍ଟାସୂତା, ଦଉଡ଼ୀ, ରଙ୍ଗ, ଗାର, ରେଖା । [ ଦେଖ ।

ଡୋରକ—କ୍ଳୀ.ବି. (ଡ଼ୋର + କ)ଡୋର

ଡୋରକଉପୁନୀ—ଗ୍ରା. ବି. ବୈଷ୍ଣବମାନେ ଗୁରୁଙ୍କଠାରୁ ଦୀକ୍ଷାନେଇ ସନ୍ୟାସଧର୍ମ ଗ୍ରହଣ କରିବା ସମୟରେ ସନ୍ୟାସଧର୍ମର ଚିହ୍ନସ୍ୱରୂପ ଗୁରୁଙ୍କଠାରୁ ପାଇଥିବା ଅଣ୍ଟାରେ ବନ୍ଧାଯିବା ଡ଼ୋର ଏବଂ କଉପୁନୀ ।

ଡୋରଦେବା—ଗ୍ରା.ବି. ଡ଼ୋର ବାନ୍ଧିବା, (ଲ.ଅର୍ଥ) କୌଣସି କର୍ମର ସମାପ୍ତି କରିବା ।

ଡୋର ବନ୍ଧାହେବା—ଗ୍ରା,ବି.( ଲ.ଅର୍ଥ ) କୌଣସି କାର୍ଯ୍ୟର ସମାପ୍ତି ବା ନିବୃତ୍ତି ।

ଡୋରଲଗା(ଗେ)ଇବା—ଗ୍ରା.କ୍ରି.(ଲ.ଅର୍ଥ) ସ୍ନେହର ଡ଼ୋରଦ୍ୱାରା ଝିଙ୍କିବା, ଆକର୍ଷଣ କରିବା ।

ଡୋରା—ଗ୍ରା.ବି.( ସଂ-ଡ଼ୋର ) ରେଖା, ସୋରା, ଧାଡ଼ି, ସରି, ଦଉଡ଼ି, ରଜ୍ଜୁ, ଭିନ୍ନଭିନ୍ନ ବର୍ଣ୍ଣର ଅଙ୍କନ,ନାନା ବର୍ଣ୍ଣରେ ଚିତ୍ରିତ ।

ଡୋରାଡୋରା—ଗ୍ରା. ବିଂ. ସୀମାନ୍ତର ଚିହ୍ନ ରେଖାବିଶିଷ୍ଟ । [ ଦେଖ ।

ଡୋରି—ଗ୍ରା.ବି. ( ସଂ-ଦୋର ) ଡ଼ୋର

ଡୋରିଆ—ଗ୍ରା. ବି. ରେଖାରଞ୍ଜିତ ବସ୍ତ୍ର, ମୁଗେଇ ଲୁଗା ।

ଡୋରିଆ ରେଙ୍ଗୁ—ପ୍ରା. ଗଞ୍ଜା. ବି. ଲହରିଯୁକ୍ତ ଲୁହାର ବଡ଼ ବଡ଼ ପତର ।

ଡୋଲ୍—ଗ୍ରା.ବି. ମାସୁଲ (ନାଉରୀଭାଷା), ( ପ୍ରା. ସମ୍ବ. ବି. ) ଡୋଲି, ଧାନ୍ୟାଦି ରଖିବାର ବଡ଼ପାତ୍ର ।

ଡୋଲ୍‌ଡାଲ୍—ଯା.ବି.ଡୁଲ୍‌ଡ଼ାଲ୍,ବହିର୍ଦେଶ ଯିବା, ମଳୋତ୍ସର୍ଗ ।

ଡ଼ୋଳା—ଗ୍ରା.ବି. ( ସଂ- ଦୁଲଧାତୁ )ଚକ୍ଷୁ ମଧ୍ୟସ୍ଥ ଅଣ୍ଡାକାର କୋମଳପିଣ୍ଡ, ଚକ୍ଷୁ-

ଗୋଲକ, ଆଖିର ପିତୁଳା ।

ଡୋଲ୍—ଗ୍ରା.ବି. (ସଂ-ଦୋଲା) ଶିବିକା, ହାନ୍ଦୋଳା, ଡ଼ୋଲି, ଝଟିଆ, ।

ଡ଼ୋଲାପ୍ରତିମା—ଗ୍ରା.ବି. ଆଖିର କଳା-ଡ଼ୋଳା ମଧ୍ୟରେ ପ୍ରତିବିମ୍ବିତ ହେଉଥିବା ଚକ୍ଷୁର ଅଗ୍ରସ୍ଥିତ ପଦାର୍ଥର ପିତୁଳୀ ବା ରୂପ,ଆଖିର ପୁଅ,ଚକ୍ଷୁର ପିତୁଳୀ,(ଲ. ଅର୍ଥ ) ନିଜର ଆଖିର ପିତୁଳାପରି ସ୍ନେହ ଓ ଆଦରର ପାତ୍ର ।

ଡ଼ୋଲା ବୁଲ୍(ଲେ)ଇବା—ଗ୍ରା.ବି. ଆଖିର କଳା ଡ଼ୋଳାକୁ ଇତସ୍ତତଃ ଚାଳନ କରି ଚାରିଆଡ଼େଦେଖିବା,(ଲ.ଅର୍ଥ)ଅଭିପ୍ସିତ ଦ୍ରବ୍ୟପାଇଁ ନାନା ଆଡ଼ ଖୋଜିବା ।

ଡ଼ୋଲି—ଗ୍ରା.ବି.ଡ଼ୋଲି, ଝଟିଆ,ଧାନ୍ୟାଦି ରଖିବାର ବଡ଼ପାତ୍ର, କୋଡ଼ମେଇ,୪୦ ଗୌଣୀ, ଶସ୍ୟାଦିର ମାପବିଶେଷ,ଦୁଇ ପଉଟି, (ବ୍ୟଙ୍ଗାର୍ଥ) ପେଟ, ଉଦର ।

ଡ଼ୋଲିପୂରିବା—ଗ୍ରା. ବି. ପୂର୍ଣ୍ଣ ଭୋଜନ ଦ୍ୱାରା ଉଦର ପୂର୍ତ୍ତି ।

ଡ଼ୌଙ୍କୀ—ପ୍ରା.ବସ୍ତର.ସ୍ତ୍ରୀ.ବି. ମାଇପୀ, ସ୍ତ୍ରୀ ।

ଡ଼ୌଲ୍—ଗ୍ରା.ବି ଓ ବିଂ. ଡଉଲ ଦେଖ, (ପ୍ରା. ଉନ୍ନିଖିଆ) ଯୋଗ୍ୟତା ।

ଡୌଲତ—ଗ୍ରା.ବି. ଦୌଲତ ଦେଖ ।

ଡ୍ରଇଙ୍—ଯା. ବି. ରେଖାଚିତ୍ର ।

ଡ୍ର-କରିବା—ଯା. ଗ୍ରା. କ୍ରି. ବାଙ୍କ୍ ବା ଟ୍ରେଜେରୀ ଆଦିରେ ଅମାନତ ଥିବା ଟଙ୍କାକୁ ଉଆପସ ବା ଉଠାଇ ଆଣିବା, (ପ୍ରା. ଗଞ୍ଜା. କ୍ରି.) ମାସିକ ବେତନରେ କର୍ମ କରିବା ।

ଡ୍ରନ୍—ଯା. ବି. ଖେଳରେ ବା ପରୀକ୍ଷାରେ କୌଣସି ପକ୍ଷର ହାରଜିତ ନ ହୋଇ ସମାନ ହେବା ।

ଡ୍ରାଇଭର୍—ଯା. ବି. ରେଲ ଓ ମଟର-ଗାଡ଼ି ଆଦିର କଳର ଚାଳକ, କଚୁଆନ୍, ଗାଡ଼ିଆନ୍ ।

ଡ୍ରାମ—ଯା.ବି. ୬୦ଟୋପା ପରିମାଣ ବା ୬୦ଗ୍ରେନ୍ ପାଶ୍ଚାତ୍ୟ ଓଜନ, ପ୍ରାୟ ୪ ମସା ।

ଡ୍ରିଲ୍—ଯା. ବି. ନିୟମିତ ଅଙ୍ଗଚାଳନ-ଦ୍ୱାର ଅଭ୍ୟାସ, ସିପାହୀଆଦିଙ୍କର ଦୈନିକ ପରେଡ୍ ।

ଡ୍ରେନ୍—ଯା.ବି. ନର୍ଦ୍ଦମା, ଜଳପ୍ରଣାଳୀ, ନଳା, ସଫେଇନାଳ ।

ଡ୍ରେସ୍—ଯା.ବି. ପୋଷାକ୍, ଡ଼ାକ୍ତରମାନଙ୍କର ଅସ୍ତ୍ରୋପଚାର ପରେ କ୍ଷତ ସ୍ଥାନକୁ ପଟିଆଦି ଦ୍ୱାରା ବାନ୍ଧିବା କର୍ମ ।



ଢ—ବ୍ୟଞ୍ଜନ ବର୍ଣ୍ଣର ଚତୁର୍ଦ୍ଦଶ ଅକ୍ଷର, ଏବଂ ଟ ବର୍ଗର ଚତୁର୍ଥ ବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ମୂର୍ଦ୍ଧା ।

ଢ—ପୁଂ. ବି. ଢୋଲ, ଢକା, କୁକ୍କୁର, କୁକ୍କୁର ଲାଙ୍ଗୁଳ,ଧ୍ୱନି,ସର୍ପ,ବିଂ. ନିର୍ଗୁଣ ।

ଢଅ—ଗ୍ରା.ବି.(ସଂ-ଧବ)ଧବଗଛ ଦେଖ ।

ଢଉ—ଗ୍ରା.ବି. ଢାଉ ଦେଖ.ଧବଗଛ ଦେଖ ।

ଢଂକାର—( ପ୍ରା. ସମ୍ବ. ବି. ) ଢକ୍କାର, ହାକୁଟି ।

ଢଂଢଂ—ଗ୍ରା.ଅବ୍ୟ. ଘଣ୍ଟାଧ୍ୱନି, ଟଂଟଂ, ଢୋଲ ବାଦ୍ୟର ଧ୍ୱନି ।

ଢଁଢଁ—ଗ୍ରା.ଅବ୍ୟ.ଏକାଧିକଥର ଅଧୋ-ବାୟୁର ନିର୍ଗମନଜନିତ ଉଚ୍ଚଶବ୍ଦ ।

ଢକ୍କିନ—ଗ୍ରା.କ୍ରି.ବିଂ.ଅତି ଅଳ୍ପ ସମୟ ମଧ୍ୟରେ, ଝଟ୍ (ଢୋକେଦେବା), ଏକା-ଢୋକକେ ।

ଢକ—ଗ୍ରା.ବି. ( ସଂ-ବଟକ ) ବଣିଆଙ୍କ ବ୍ୟବହୃତ ବଟକରି, କେବଳ ଖୋଲ, ଫର୍ମା ଆବରଣ ।

ଢକଢକ—ଗ୍ରା.ଅବ୍ୟ. ପାଣି ଏକାଧିକଥର ଢୋକିକରି ପିଇବାର କଣ୍ଠ ଶବ୍ଦ ।

ଢକ୍ଢ଼କହେବା—ଗ୍ରା. କ୍ରି. ଦୋହଲିବା, ହଲର ହଲର ହେବା, ରୋଗ ବା ଅନାହାରଯୋଗୁଁ କୌଣସି ଜୀବ ଦୁର୍ବଳ ଓ କ୍ଷୀଣହେବା, (ଖ ଇବାକୁ) ଟକ ଟକ ହେବା ।

ଢକଢ଼କିଆ—ଗ୍ରା. ବିଂ. ହୁଗୁଳା, ଶ୍ଳଥ, ଅତି ଦୁର୍ବଳ ଓ କ୍ଷୀଣ ।

ଢକର—ଗ୍ରା.ବି. ଶଗଡ଼ ଚାଳିବା ବେଳେ ଚକର ପରିଧି ବଳଦଙ୍କ ଗାଣ୍ଠିକୁ ଖାଇ ନ ଯିବା ପାଇଁ ଦୁଇଚକ ଆଗରେ ଦଣ୍ଡାସହିତ ବନ୍ଧାଯାଇଥିବା ବାଉଁଶ-ଖଣ୍ଡ ।

ଢକା—ଗ୍ରା. ବି. ଢ଼ାକା, ଢେଙ୍କା,ଡିଣ୍ଡିମ, ବାଦ୍ୟ, ଢୋଲ, ବଡ଼କାଠ, ପଟହ ।

ଢକାଇ—ଗ୍ରା. ବିଂ. ଢ଼ାକାରେ ତିଆରି ।

ଢ଼କା(କେ)ଇବା—ଗ୍ରା. କ୍ରି. ଢ଼ଙ୍କାଇବା ଦେଖ ।

ଢ଼କାର—ପୁଂ.ବି. ଢ଼ ସ୍ୱରୂପ ବର୍ଣ୍ଣ,(ଗ୍ରା.-ବି) ହାକୁଟି, ବାନ୍ତି ।

ଢ଼କୋଢ଼କୋ—ଗ୍ରା.ଅବ୍ୟ.ଢ଼କଢ଼କଦେଖ ।

ଢ଼କ୍କ—ପୁଂ. ବି. ଦେଶବିଶେଷ, ଢ଼ାକା-ନଗର ।

ଢ଼କ୍କା—ବି. ( ଢ଼କ୍+କୈ+କ.ଅ ) ବଡ଼ ଢ଼ୋଲ, ବଡ଼କାଠ, ନାଗରା ।

ଢ଼କ୍କାନାଦଚଳଜ୍ଜଳା—ସ୍ତ୍ରୀ. ବି. ଗଙ୍ଗା ।

ଢକ୍କାରବା—ସ୍ତ୍ରୀ.ବି.(ବ.ଗ୍ରା)ତାରିଣୀଦେଖ ।

ଢ଼କ୍କାରି—ସ୍ତ୍ରୀ. ବି. (ଢ଼କ+କୃ+ଅ+ଇ) ତାରିଣୀ ।

ଢଗ୍—ପ୍ରା. (ସମ୍ବ) ବି. ବଣିଆଙ୍କ ବଟ-କରି, ଢ଼କ । [ ଉକ୍ତି ।

ଢ଼ଗବରି—ପ୍ରା.(ସମ୍ବ)ବି. ଆଳୁଅ, ପ୍ରଦୀପ ।

ଢ଼ଗ—ଗ୍ରା. ବି. ଢେଗ, ପରିହାସ ବା ବ୍ୟଙ୍ଗାତ୍ମକ ପଦ୍ୟ ବା ମିତାକ୍ଷର ମିଳିତ ବଚନ, ପ୍ରବଚନ ।

ଢ଼ଗଢ଼ମା—ଗ୍ରା. ବି. ଢ଼ଗଢ଼ମାଳି ଦେଖ ।

ଢ଼ଗଢ଼ମାଳି—ଗ୍ରା. ବି. ଢ଼ଗ ଓ ଢ଼ମାଳି, ବାଜେ ବା ଅପ୍ରୟୋଜନୀୟ କଥା ।

ଢ଼ଗଣ—ପୁଂ.ବି. ମାତ୍ରାବୃତ୍ତେ ତ୍ରୈମାତ୍ରିକ ପ୍ରସ୍ତାରବିଶେଷ, ଏହା ତିନିପ୍ରକାର, ଯଥା—ଧ୍ୱଜା, ତାଳ, ତାଣ୍ଡବ ।

ଢ଼ଗପକା(କେ)ଇବା—ଗ୍ରା. କ୍ରି. ଢ଼ଗ-ମେଲିବା ଦେଖ ।

ଢ଼ଗମେଲିବା—ଗ୍ରା. କ୍ରି. କୌଣସି ବ୍ୟକ୍ତି ବା ଘଟନାକୁ ଲକ୍ଷ୍ୟ ବା ଉପହାସ କରି

ଗୋଲକ, ଆଖିର ପିତୁଳା ।

ଡୋଲ୍—ଗ୍ରା.ବି. (ସଂ-ଦୋଳା) ଶିବିକା, ହାଣ୍ଡୋଲା, ଡ଼ୋଲି, ଝଣ୍ଟିଆ, ।

ଡ଼ୋଲାପ୍ରତିମା—ଗ୍ରା.ବି. ଆଖିର କଳା-ଡ଼ୋଳା ମଧ୍ୟରେ ପ୍ରତିବିମ୍ବିତ ହେଉଥିବା ଚକ୍ଷୁର ଅଗ୍ରସ୍ଥିତ ପଦାର୍ଥର ପିତୁଳୀ ବା ରୂପ,ଆଖିର ପୁଅ,ଚକ୍ଷୁର ପିତୁଳୀ,(ଲ. ଅର୍ଥ) ନିଜର ଆଖିର ପିତୁଳାପରି ସ୍ନେହ ଓ ଆଦରର ପାତ୍ର ।

ଡ଼ୋଲା ବୁଲ୍(ଲେ)ଇବା—ଗ୍ରା.ବି. ଆଖିର କଳା ଡ଼ୋଲାକୁ ଇତସ୍ତତଃ ଚାଳନ କରି ଚାରିଆଡ଼େ ଦେଖିବା,(ଲ.ଅର୍ଥ)ଅଭିପ୍ସିତ ଦ୍ରବ୍ୟପାଇଁ ନାନା ଆଡ଼ ଖୋଜିବା ।

ଡ଼ୋଲି—ଗ୍ରା.ବି.ଡ଼ୋଲି, ଝଣ୍ଟିଆ,ଧାନ୍ୟାଦି ରଖିବାର ବଡ଼ପାତ୍ର, କୋଡ଼ମେଇ,୪୦ ଗୌଣୀ, ଶସ୍ୟାଦିର ମାପବିଶେଷ,ଦୁଇ ପଉଟି, (ବ୍ୟଙ୍ଗାର୍ଥ) ପେଟ, ଉଦର ।

ଡ଼ୋଲିପୂରିବା—ଗ୍ରା. ବି. ପୂର୍ଣ୍ଣ ଭୋଜନ ଦ୍ୱାରା ଉଦର ପୂର୍ତ୍ତି ।

ଡ଼ୋଲ୍ଲି—ପ୍ରା.ତ୍ରିପୁର.ସ୍ତ୍ରୀ.ବି. ମାଇପୀ, ସ୍ତ୍ରୀ ।

ଡ଼ୌଲ୍—ଗ୍ରା.ବି ଓ ବିଂ. ଡଉଲ ଦେଖ, (ପ୍ରା. ଉଦିଭାଷା) ଯୋଗ୍ୟତା ।

ଡୌଲତ—ଗ୍ରା.ବି. ଦୌଲତ ଦେଖ ।

ଡ୍ରଇଙ୍ଗ୍—ଯା. ବି. ରେଖାଚିତ୍ର ।

ଡ୍ରକରିବା—ଯା. ଗ୍ରା. କ୍ରି. ବାଙ୍କ୍ ବା ଟଙ୍କଣାଖାନା ଆଦିରେ ଅମାନତ୍ ଥିବା ଟଙ୍କାକୁ ଉଠାପସ ବା ଉଠାଇ ଆଣିବା, (ପ୍ରା. ଗଞ୍ଜାମ. କ୍ରି.) ମାସିକ ବେତନରେ କର୍ମ କରିବା ।

ଡ୍ରନ୍—ଯା. ବି. ଖେଳରେ ବା ପରୀକ୍ଷାରେ କୌଣସି ପକ୍ଷର ହାରଜିତ ନ ହୋଇ ସମାନ ହେବା ।

ଡ୍ରାଇଭର୍—ଯା. ବି. ରେଲ ଓ ମଟର-ଗାଡ଼ି ଆଦିର କଳର ଚାଳକ, କଚୁଆନ୍, ଗାଡ଼ିଆନ୍ ।

ଡ୍ରାମ—ଯା.ବି. ୬୦ଟୋପା ପରିମାଣ ବା ୬୦ଗ୍ରେନ୍ ପାଶ୍ଚାତ୍ୟ ଓଜନ, ପ୍ରାୟ ୪ ମାସା ।

ଡ୍ରିଲ୍—ଯା. ବି. ନିୟମିତ ଅଙ୍ଗଚାଳନ-ଦ୍ୱର ଅଭ୍ୟାସ, ସିପାହିଆଦିଙ୍କର ଦୈନିକ ପରେଡ୍ ।

ଡ୍ରେନ୍—ଯା.ବି. ନର୍ଦ୍ଦମା, ଜଳପ୍ରଣାଳୀ, ନଳା, ପଇଁଠଇନାଳ ।

ଡ୍ରେସ୍—ଯା.ବି. ପୋଷାକ୍, ଡାକ୍ତରମାନଙ୍କର ଅସ୍ତ୍ରୋପଚାରର ପରେ କ୍ଷତ ସ୍ଥାନକୁ ପଟିଆଦି ଦ୍ୱାରା ବାନ୍ଧିବା କର୍ମ ।



ଢ—ବ୍ୟଞ୍ଜନ ବର୍ଣ୍ଣର ଚତୁର୍ଦ୍ଦଶ ଅକ୍ଷର, ଏବଂ ଟ ବର୍ଗର ଚତୁର୍ଥ ବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ମୂର୍ଦ୍ଧା ।

ଢ—ପୁଂ. ବି. ଢୋଲ, ଢକା, କୁକ୍କୁର, କୁକ୍କୁର ଲାଙ୍ଗୁଳ,ଧ୍ୱନି,ସର୍ପ,ବିଂ. ନିର୍ଗୁଣ ।

ଢଅ—ଗ୍ରା.ବି.(ସଂ-ଧବ)ଧବଗଛ ଦେଖ ।

ଢଉ—ଗ୍ରା.ବି. ଢାଉ ଦେଖ.ଧବଗଛ ଦେଖ ।

ଢଂକାର—(ପ୍ରା. ସମ୍ବ. ବି.) ଢକ୍କାର, ହାକୁଟି ।

ଢଂଢଂ—ଗ୍ରା.ଅବ୍ୟ. ଘଣ୍ଟାଧ୍ୱନି, ଟଂଟଂ, ଢୋଲ ବାଦ୍ୟର ଧ୍ୱନି ।

ଢଁଢଁ—ଗ୍ରା.ଅବ୍ୟ.ଏକାଧିକଥର ଅଧୋ-ବାୟୁର ନିର୍ଗମନଜନିତ ଉଚ୍ଚଶବ୍ଦ ।

ଢକ୍‌କିନି—ଗ୍ରା.କ୍ରି.ବିଂ.ଅତି ଅଳ୍ପ ସମୟ ମଧ୍ୟରେ, ଝଟ୍ (ଢୋକଦେବା), ଏକାଢୋକକେ ।

ଢକ—ଗ୍ରା.ବି. ( ସଂ-ବଟକ ) ବଣିଆଙ୍କ ବ୍ୟବହୃତ ବଟକରି, କେବଳ ଖୋଲ, ଫର୍ମା ଆବରଣ ।

ଢକଢକ—ଗ୍ରା.ଅବ୍ୟ. ପାଣି ଏକାଧିକଥର ଢୋକକରି ପିଇବାର କଣ୍ଠ ଶବ୍ଦ ।

ଢକ୍‌ଢକହେବା—ଗ୍ରା. କ୍ରି. ଦୋହଲିବା, ହଲର ହଲର ହେବା, ରୋଗ ବା ଅନାହାରଯୋଗୁଁ କୌଣସି ଜୀବ ଦୁର୍ବଳ ଓ କ୍ଷୀଣହେବା, (ଖ ଇବାକୁ) ଟକ ଟକ ହେବା ।

ଢକଢକିଆ—ଗ୍ରା. ବିଂ. ହୁଗୁଳା, ଶ୍ଳଥ, ଅତି ଦୁର୍ବଳ ଓ କ୍ଷୀଣ ।

ଢକର—ଗ୍ରା.ବି. ଶଗଡ଼ ଚାଳିବା ବେଳେ ଚକର ପରିଧି ବଳଦଙ୍କ ଗାଣ୍ଡିକୁ ଖାଇ ନ ଯିବା ପାଇଁ ଦୁଇଚକ ଆଗରେ ଦଣ୍ଡାସହିତ ବନ୍ଧାଯାଇଥିବା ବାଉଁଶ-ଖଣ୍ଡ ।

ଢକା—ଗ୍ରା. ବି. ଢାକା, ଢେଙ୍କା,ଡିଣ୍ଡିମ, ବାଦ୍ୟ, ଢୋଲ, ବଡ଼କାଠ, ପଟହ ।

ଢକାଇ—ଗ୍ରା. ବିଂ. ଢାକାରେ ତିଆରି ।

ଢ଼କା(କେ)ଇବା—ଗ୍ରା. କ୍ରି. ଢଙ୍କାଇବା ଦେଖ ।

ଢକାର—ପୁଂ.ବି. ଢ ସ୍ୱରୂପ ବର୍ଣ୍ଣ,(ଗ୍ରା.-ବି) ହାକୁଟି, ବାନ୍ତି ।

ଢ଼କୋଢ଼କୋ—ଗ୍ରା.ଅବ୍ୟ.ଢ଼କଢ଼କଦେଖ ।

ଢକ୍କା—ପୁଂ. ବି. ଦେଶବିଶେଷ, ଢାକା-ନଗର ।

ଢ଼କ୍କା—ବି. ( ଢକ୍+କୈ+କ.ଅ ) ବଡ଼ ଢୋଲ, ବଡ଼କାଠ, ନାଗରା ।

ଢ଼କ୍କାନାଦଚଲଲ୍ଲା—ସ୍ତ୍ରୀ. ବି. ଗଙ୍ଗା ।

ଢ଼କ୍କାରବା—ସ୍ତ୍ରୀ.ବି.(ବ.ଗ୍ରା)ତାରିଣୀଦେଖ ।

ଢ଼କ୍କାରୀ—ସ୍ତ୍ରୀ. ବି. (ଢକ+କୃ+ଅ+ଈ) ତାରିଣୀ ।

ଢଗ୍—ପ୍ରା. (ସମ୍ବ) ବି. ବଣିଆଙ୍କ ବଟ-କରି, ଢକ । [ ଉତ୍ତର ।

ଢ଼ଗବିରି—ପ୍ରା.(ସମ୍ବ)ବି. ଆଳୁଅ, ପ୍ରଦୀପ ।

ଢ଼ଗ—ଗ୍ରା. ବି. ଢେଗ, ପରିହାସ ବା ବ୍ୟଙ୍ଗାତ୍ମକ ଯତ ବା ମିଛାକ୍ଷର ମିଳିତ ବଚନ, ପ୍ରବଚନ ।

ଢ଼ଗଢ଼ମା—ଗ୍ରା. ବି. ଢ଼ଗଢ଼ମାଳ ଦେଖ ।

ଢ଼ଗଢ଼ମାଳ—ଗ୍ରା. ବି. ଢ଼ଗ ଓ ଢ଼ମାଳି, ବାଜେ ବା ଅପ୍ରୟୋଜନୀୟ କଥା ।

ଢ଼ଗଣ—ପୁଂ.ବି. ମାତ୍ରାବୃତ୍ତେ ତ୍ରୈମାତ୍ରିକ ପ୍ରସ୍ତାରବିଶେଷ, ଏହା ଛଅପ୍ରକାର ଯଥା—ଧ୍ୱଜା, ତାଳ, ତାଣ୍ଡବ ।

ଢ଼ଗପକା(କେ)ଇବା—ଗ୍ରା. କ୍ରି. ଢ଼ଗ-ମେଲିବା ଦେଖ ।

ଢ଼ଗମେଲିବା—ଗ୍ରା. କ୍ରି. କୌଣସି ବ୍ୟକ୍ତି ବା ଘଟଣାକୁ ଲକ୍ଷ୍ୟ ବା ଉପହାସ କରି

ଢଗ ବୋଲିବା ।

ଢଙ୍କ—ଗ୍ରା.ବ.(ସଂ-କଣ୍ଟକାରୀ)ଶିମ୍ବାଦବର୍ଗର ଲତା ଓ ତାହାର ଛୁଇଁ, ବାଇଢଙ୍କ ।

ଢଙ୍କଣ—ଗ୍ରା.ବ.ଢେଙ୍କଣ, ସରୁବାଉଁଶର ଲଗି. ଓଲଥା ଗୋରୁ ବେକରେ ଦେବା କାଠଘଣ୍ଟ ।

ଢଙ୍କପଣି-ଗ୍ରା.ବିଂ.ଢଙ୍କସରପାଣି ଦେଖ ।

ଢଙ୍କର—ଗ୍ରା. ବିଂ. ଢଙ୍କସରପାଣି ଦେଖ ।

ଢଙ୍କସର—ଗ୍ରା.ବିଂ.ଢଙ୍କସରପାଣି ଦେଖ ।

ଢଙ୍କସରପାଣି—ଗ୍ରା. ବିଂ. ଅତ୍ୟନ୍ତ ଜଳୀୟ, ପାଣିଆଁ ।

ଢଙ୍କା—ଗ୍ରା. ବ. ଆଚ୍ଛାଦନ,ବଡ଼ ନାଗରା. ଢାକ।ଅଞ୍ଚଳ, (ବିଂ) ଆଚ୍ଛାଦିତ ।

ଢଙ୍କା(ଙ୍କେ)ଇବା—ଗ୍ରା.କ୍ରି.ଢାଙ୍କିବାକ୍ରିୟାର ଣିଜନ୍ତ ରୂପ, ଘୋଡ଼ାଇବା,ଢାଙ୍କିବା ।

ଢଙ୍କୁଣ—ଗ୍ରା.ବ. ଲମ୍ବବେଣ୍ଟଯୁକ୍ତ ବରଗୁ ।

ଢଙ୍କୁଆଣି—ଗ୍ରା.ବ. ଢଙ୍କୁଣଧାରୀ ପାଇକ ।

ଢଙ୍ଗ—ଗ୍ରା.ବ. (ସଂ-ଭଙ୍ଗୀ) ଛାଞ୍ଚ,ଘଡ, ଭଙ୍ଗୀ, ଭଦ୍ରତା, ପ୍ରକାର, ଉପାୟ, ଗଢଣ,ଲକ୍ଷଣ, ଗ୍ଭଲି, ଚଳନ, ଛଇ ।

ଢଙ୍ଗକାଢ଼ିବା—ଗ୍ରା.କ୍ରି.ଛଇଦେଖାଇବା ।

ଢଙ୍ଗଢଙ୍ଗ—ଗ୍ରା. ଅବ୍ୟ. ଢଙ୍ଗର ଢଙ୍ଗର ଦେଖ ।

ଢଙ୍ଗଢଙ୍ଗିଆ—ଗ୍ରା. ବିଂ. ହୁଗୁଳା, ଗଳଗଳିଆ (ଅଳଙ୍କାର), ଆଡ଼ମ୍ବରପୂର୍ଣ୍ଣ ।

ଢଙ୍ଗଢାଙ୍ଗ—ଗ୍ରା. ବ. (ସଂ-ଭଙ୍ଗୀ) ଆଡ଼ମ୍ବର, ଗ୍ଭଲିଚଳନ, ଆଗ୍ଭର ବ୍ୟବହାର, ଘଡ, ପ୍ରଥା ।

ଢଙ୍ଗରଢେଙ୍ଗର—ଗ୍ରା. ଅବ୍ୟ. ଅନେକ ଗୁଡ଼ାଏ ଢୋଲ ଅନୁଚ୍ଚ ସ୍ୱରରେ ବାଜିବାର ଶବ୍ଦ,(ଗ୍ରା.ବିଂ) ହୁଗୁଳା,ଗଳଗଳ ।

ଢଙ୍ଗିଆ—ଗ୍ରା. ବିଂ. ଆଡ଼ମ୍ବରପ୍ରିୟ ।

ଢଣ—ଗ୍ରା. ବ. (ସଂ-ଧନୁଃ) ଧନୁ ।

ଢଣ୍ଟକୁଇଲି—ଗ୍ରା. ବ. ଇତର;(ସଂ-ଧନୁକୁଲ) ନୀଚଜାତିମାନଙ୍କର ଉପାସନା ବିଶେଷ ।

ଢଣ୍ଟଢଣଢୋଇବୁଲିବା—ଗ୍ରା.କ୍ରି.ଦିନଯାକ ନ ଖାଇ ନ ପିଇ ଉଦ୍ଦେଶ୍ୟହୀନ ଭାବରେ ଚଉଦିଆଡ଼େ ବୁଲିବା ।

ଢଣଢଣିଆ—ଗ୍ରା. ବିଂ. ଉଦ୍ଭ୍ରାନ୍ତ ବୁଲି ବୁଲି ବିରକ୍ତ ଓ ଶୀର୍ଣ୍ଣ ହୋଇଥିବା,ଉଦ୍ଦେଶ୍ୟହୀନ ଭାବରେ ବୁଲୁଥିବା (ବ୍ୟକ୍ତି) ।

ଢଣା—ଗ୍ରାଂ.ବ. ପରିଶ୍ରାନ୍ତ,କ୍ଲାନ୍ତ,(ଗ୍ରା.ବ) ଗୋରୁଙ୍କୁ ଧରିବା ରୋଗବିଶେଷ ।

ଢଣୁଆ—ଗ୍ରା. ବିଂ. ( ସଂ—ଦୋହନ ) ଦୁହାଁଳ ଗାଈ, ଢେଣୁଆ ଗାଈ ।

ଢଣୀ—ସ୍ତ୍ରୀ. ବ. ବାକ୍ୟଭେଦ ।

ଢପ—ଗ୍ରା.ବ. (ସଂ-ଭାବ) ଛାଞ୍ଚ,ଆକୃତି, ଗଠନ, ଛଇ, ଆଚରଣ, ଆଗ୍ଭର, ଫେସନ, ଘଡ, ଅଭ୍ୟାସ, ପ୍ରକାର, ସ୍ୱଭାବ, ରୂପ ।

ଢପ୍ଢପ୍—ଗ୍ରା. ଅବ୍ୟ. ଚମଡ଼ା ଓଦା ଢିଲା ହୋଇଥିବା ବା ଉପରେ ଲୁଗା ପକାହୋଇଥିବା ଆନଦ୍ଧ ବାଦ୍ୟଉପରେ ଆଘାତଜନିତ ଶବ୍ଦ, ଘୋଡ଼ାର ଟାପୁ ଟାଣୁଆ ମାଟିରେ ପଡ଼ିବାର ଶବ୍ଦ,(ଗ୍ରା.-ବିଂ) ଢକ ଢକ, ଶିଥିଳ, ହୁଗୁଳା(ଅଳଙ୍କାର) ।

ଢପରକ୍ଷା—ଗ୍ରା. ବ.ଫେସନ ବା ଢଙ୍ଗକୁ ସର୍ବଦା ବଜାଏ ରଖିବା ।

ଢପରଢପର—ଗ୍ରା.ଅବ୍ୟ.ଢପଢ଼ପ ଦେଖ ।

ଢବା—ଗ୍ରା. ବ. ଡବା, ମାଲଗାଡ଼ିର ଖଣ୍ଡେ ଗାଡ଼ି,ରେଲଗାଡ଼ିର କୋଠରି, (ବିଂ) ଟୁଙ୍ଗା, ଡଙ୍ଗା, ମୋଟା ଓ ବଡ଼, (ପା. ଗଞ୍ଜାମ. ବା)ଝିଙ୍କର ଛୁଅଣିଘର, ଝୋପଡ଼ି ଘର ।

ଢବାଡନାଗା—ଗ୍ରା. ବ. କୋଠାଘରର ଝରକା ।

ଢବାଳିଆ—ଗ୍ରା. ବିଂ. ଢବା ଦେଖ ।

ଢମ୍ଭ—ଗ୍ରା.(ସମ୍ଭ)ବ. ଭୁଟିଆଣି ଖେଳ, ଲୁଚକାଳି ଖେଳ ।

ଢମ—ଗ୍ରା. ବ. (ସଂ-ଦମ୍ଭ) ଅହଂକାର, ଗର୍ବ, ଦମ୍ଭ, ଗୁଡ଼ଚ,ସାରହୀନ ବାହ୍ୟାଡ଼ମ୍ବର, ଢଙ୍ଗ, ଘଡ ।

ଢମ(ମୁ)କ—ଗ୍ରା. (ସର୍ବ) କହି ନ ହେବା ବିଷୟ, ଫଲଣା,ଅମୁକ,ଅନିର୍ଦ୍ଦିଷ୍ଟନାମା, ଉଦ୍ଦିଷ୍ଟନାମା (ବ୍ୟକ୍ତି ବା ବିଷୟ) ।

ଢମକହିବା—ଗ୍ରା. କ୍ରି. ଗୁଡ଼ଚକହିବା ।

ଢମଢମ—ଗ୍ରା. ଅବ୍ୟ. ଢୋଲବାଜିବାର ଶବ୍ଦ ।

ଢମଢମାଳି—ଗ୍ରା. ବ. ବାହ୍ୟାଡ଼ମ୍ବର ।

ଢମଣା—ଗ୍ରା. ବ. ଏକପ୍ରକାର ନିର୍ବିଷ ଫଣାହୀନ ଲମ୍ବସର୍ପ, ଢାମଣା ସାପ ।

ଢମପଣ—ଗ୍ରା. ବ. ଢମ ଦେଖ ।

ଢମା—ଗ୍ରା. ବିଂ. (ସଂ-ଧାମକ) ଗୋରୁଙ୍କୁ କୁଣ୍ଡାପାଣି ଖୁଆଇବା କାମରେ ବ୍ୟବହୃତ ଉଚ୍ଚରପାଖେ ତଳେଇ ଛୁଆଣି ହୋଇଥିବା ବାଉଁଶର ଟୋକେଇ । (ବିଂ) ଗର୍ବୀ, ଢମପ୍ରିୟ, ବଡ଼ ।

ଢମାଆଖିଆ—ଗ୍ରା. ବିଂ. ଢେମାଆଖିଆ ଦେଖ ।

ଢମାଳି—ଗ୍ରା.ବ.(ସଂ-ଦମ୍ଭ)ଢମ, କବିତ୍ୱହୀନ ବ୍ୟଙ୍ଗ ବା ପରିହାସ ବଚନ, ପରିହାସ, ଗର୍ବ, ଅହଂକାର ।

ଢମାଳିଆ—ଗ୍ରା. ବିଂ. ଗର୍ବୀ, ନିଃସାର ଅଥଚ ବାହ୍ୟାଡ଼ମ୍ବରଯୁକ୍ତ ବଚନସର୍ବସ୍ୱ ।

ଢମାଳୁଣୀ—ଗ୍ରା. ସ୍ତ୍ରୀ. ବ. ଅପଦେବତା, ନୀଚଦେବୀ, ଅପୂଜ୍ୟଦେବତାବିଶେଷ ।

ଢମ୍ପା—ଗ୍ରା. ବିଂ. ଆବୃଦ୍ଧ ।

ଢମ୍ପା(ମ୍ପେ)ଇବା—ଗ୍ରା. କ୍ରି. ଢାଙ୍କିବାକ୍ରିୟାର ଣିଜନ୍ତରୂପ, ଢାଙ୍କିବା,ଘୋଡ଼ାଇବା ।

ଢଳଢଳ—ଗ୍ରା.ବିଂ.ଲୋତକପୂର୍ଣ୍ଣ (ଅକ୍ଷି) ତରଳ ଓ ଚଞ୍ଚଳ, ଈଷତ୍କମ୍ପିତ, ଅସ୍ଥିର, ଆନ୍ଦୋଳିତ, ଟଳଟଳ, ଝକ୍ଝକ୍, ଚକ୍ଚକ୍,ସ୍ନିଗ୍ଧ ।

ଢଳଢଳିଆ—ଗ୍ରା.ବିଂ.ଢଳଢଳ ଦେଖ ।

ଢଳହଳ—ଗ୍ରା. ବିଂ. ଢଳଢଳଦେଖ ।

ଢଳା—ଗ୍ରା. ବ. (ସଂ-ହ୍ଲାଳ ଧାତୁ) ଢଳିପଡ଼ିବା, ଢଳିବା, ଏକ ପାଖକୁ ସାମାନ୍ୟରେ ନଇଁ ପଡ଼ିବା, ଢଳିବା କର୍ମ, (ଦୃଷ୍ଟିକୁ) ବାଙ୍କ କରିବା, ଧାତୁ ଢାଳିବା ଗ୍ଭଞ୍ଚ, ଧାତୁକୁ ତରଳାଇ ଗ୍ଭଞ୍ଚରେ ଢାଳିବା କର୍ମ, (ବିଂ) ଢଳିଥିବା, ସାମାନ୍ୟରେ ଏକ ପାଖକୁ ଟଳିଥିବା, ଆଉଟା ହୋଇ ଗ୍ଭଞ୍ଚରେ ଇଡ଼ା ହୋଇଥିବା,

ବାର୍ତ୍ତା, ଖବର, ମର୍ମ, ଗୂଢ଼ାର୍ଥ, (ଗ୍ରା.ବି) ଶିକ୍ଷା, ଏକକଡ଼ାର ୧୬ଭାଗରୁ ଏକଭାଗ, ଚେତ, ହେଜ, ଠିକଣା ।

**ତତ୍ତ୍ୱକରିବା**—ଗ୍ରା.କ୍ରି.ଚେତିବା, ହେଜିବା, ହେତୁକରିବା, ଦୃଢ଼ ଭାବରେ ଚିନ୍ତା କରିବା, (କୌଣସି ଉପଦେଶାଦି) ଧ୍ୟାନକରିବା ।

**ତତ୍ତ୍ୱଜିଜ୍ଞାସା**—ବି. (୬ତତ୍) ପରଂବ୍ରହ୍ମ ତତ୍ତ୍ୱ ଜାଣିବାର ଇଚ୍ଛା ।

**ତତ୍ତ୍ୱଜିଜ୍ଞାସୁ**—ବିଂ. (୨ତତ୍) ବ୍ରହ୍ମ ବା ପାରମାର୍ଥିକ ବିଷୟ ଜାଣିବାକୁ ଇଚ୍ଛୁକ, ପ୍ରକୃତ କଥା ଜାଣିବାକୁ ଇଚ୍ଛୁକ ।

**ତତ୍ତ୍ୱଜ୍ଞ**—ତ୍ରି. ବିଂ. (ତତ୍ତ୍ୱ+ଜ୍ଞା+କ.ଅ) ତତ୍ତ୍ୱଜ୍ଞାନୀ, ଯାହାର ଈଶ୍ୱର ବିଷୟକ ଜ୍ଞାନ ଜନ୍ମିଅଛି, ବ୍ରହ୍ମଜ୍ଞ, ଦର୍ଶନଶାସ୍ତ୍ରଜ୍ଞ, ମର୍ମଜ୍ଞ, ଯେ ସତ୍ୟକୁ ଜାଣେ ।

**ତତ୍ତ୍ୱଜ୍ଞାନ**—କ୍ଲୀ. ବି.(୬ତତ୍) ବ୍ରହ୍ମଜ୍ଞାନ, ନୈୟାୟିକମାନଙ୍କ ମତରେ ପ୍ରମାଣ, ପ୍ରମେୟ, ସଂଶୟ, ପ୍ରୟୋଜନ, ଦୃଷ୍ଟାନ୍ତ, ସିଦ୍ଧାନ୍ତ, ଅବୟବ, ତର୍କ, ନିର୍ଣ୍ଣୟ, ବାଦ, ଜଳ୍ପ, ବିତଣ୍ଡା, ହେତ୍ୱାଭାସ, ଛଳ, ଜାତି, ନିଗ୍ରହସ୍ଥାନ ଏହି ଷୋଡ଼ଶ ପଦାର୍ଥର ଜ୍ଞାନ ତତ୍ତ୍ୱଜ୍ଞାନ, ଈଶ୍ୱର ଜ୍ଞାନ ସ୍ୱରୂପବୋଧ, ଯଥାର୍ଥଜ୍ଞାନ ।

**ତତ୍ତ୍ୱଜ୍ଞାନାର୍ଥଦର୍ଶନ**—କ୍ଲୀ. ବି. ଅଖିଳ ଦୁଃଖ ନିବୃତ୍ତି ରୂପ ଓ ପରମ ଆନନ୍ଦ ପ୍ରାପ୍ତିରୂପ ମୋକ୍ଷ; ତାହାର ଆଲୋଚନା ହିଁ ତତ୍ତ୍ୱଜ୍ଞାନାର୍ଥଦର୍ଶନ ।

**ତତ୍ତ୍ୱଜ୍ଞାନୀ**—ପୁଂ. ବିଂ.(ତତ୍ତ୍ୱଜ୍ଞାନ+ଇନ୍) ବ୍ରହ୍ମଜ୍ଞ, ତତ୍ତ୍ୱଜ୍ଞ, ବ୍ରହ୍ମଜ୍ଞାନୀ, ମର୍ମଜ୍ଞ, ଯେ ବ୍ରହ୍ମକୁ ଜାଣିଅଛି, ଯେ ସତ୍ୟକୁ ଜାଣେ ।

**ତତ୍ତ୍ୱତଃ**—ଅବ୍ୟ. ପରମାର୍ଥତଃ, ଯଥାର୍ଥ ରୂପେ, ବସ୍ତୁତଃ, ସ୍ୱରୂପତଃ ।

**ତତ୍ତ୍ୱତା**—ସ୍ତ୍ରୀ.ବି.(ତତ୍ତ୍ୱ+ତା)ଯଥାର୍ଥତା, ପରମାର୍ଥତା, ବାସ୍ତବିକତା ।

**ତତ୍ତ୍ୱଦର୍ଶୀ**—ତ୍ରି. ବିଂ. ଯେ ତତ୍ତ୍ୱଦର୍ଶନ କରିଅଛି, ଯାହାର ତତ୍ତ୍ୱଜ୍ଞାନ ଜନ୍ମିଅଛି ।

**ତତ୍ତ୍ୱଦର୍ଶିତା**—ସ୍ତ୍ରୀ.ବି. ବିଚକ୍ଷଣତା, ତତ୍ତ୍ୱଜ୍ଞତା, ଦର୍ଶନ ଶାସ୍ତ୍ରେ ଅଭିଜ୍ଞତା ।

**ତତ୍ତ୍ୱଦର୍ଶୀ**—ପୁଂ. ବିଂ. ଜ୍ଞାନୀ, ବିଚକ୍ଷଣ, ଦର୍ଶନଶାସ୍ତ୍ରଜ୍ଞ, ତତ୍ତ୍ୱବିତ୍, (ବି)ରୈବତ ମନୁର ଗୋଟିଏ ପୁତ୍ର ।

**ତତ୍ତ୍ୱଦୀପନ**—କ୍ଲୀ.ବି. ତତ୍ତ୍ୱାଲୋକ, ଯାହା ଦ୍ୱାରା ତତ୍ତ୍ୱଜ୍ଞାନ ଉଦ୍ଦୀପିତ ହୁଏ ।

**ତତ୍ତ୍ୱଦେବା**—ଗ୍ରା. କ୍ରି. କୌଣସି ବସ୍ତୁର ଗୂଢ଼ାର୍ଥ ଅନ୍ୟକୁ କହିବା, ଶିକ୍ଷାଦେବା ।

**ତତ୍ତ୍ୱନିରୂପଣ**—କ୍ଲୀ. ବି. (୬ତତ୍) ସତ୍ୟ ନିର୍ଦ୍ଧାରଣ, ସ୍ୱରୂପନିର୍ଣ୍ଣୟ, ଯଥାର୍ଥ ସ୍ଥିରୀକରଣ, ବ୍ରହ୍ମନିରୂପଣ ।

**ତତ୍ତ୍ୱନିର୍ଣ୍ଣୟ**—ପୁଂ. ବି. (୬ତତ୍) ସ୍ୱରୂପାବଧାରଣ, ଈଶ୍ୱର ନିରୂପଣ, ବ୍ରହ୍ମନିର୍ଣ୍ଣୟ, ସିଦ୍ଧାନ୍ତ ।

**ତତ୍ତ୍ୱନେବା**—ଗ୍ରା. କ୍ରି. ସମ୍ବାଦ ନେବା, ଖୋଜିବା, କୌଣସି କାର୍ଯ୍ୟର ତତ୍ତ୍ୱାବଧାନ କରିବା, କାର୍ଯ୍ୟ ଚଳିବା ପ୍ରତି ଦୃଷ୍ଟି ରଖିବା ।

**ତତ୍ତ୍ୱନ୍ୟାସ**—ପୁଂ. ବି. ତନ୍ତ୍ରୋକ୍ତପୂଜାଙ୍ଗ ନ୍ୟାସ ବିଶେଷ ।

**ତତ୍ତ୍ୱପ୍ରକାଶ**—ପୁଂ.ବି.ତତ୍ତ୍ୱଦୀପନ ଦେଖ ।

**ତତ୍ତ୍ୱବୋଧ**—ବି. (୬ତତ୍) ଯଥାର୍ଥଜ୍ଞାନ, ତତ୍ତ୍ୱଜ୍ଞାନ ।

**ତତ୍ତ୍ୱବୋଧିନୀ**—ସ୍ତ୍ରୀ. ବି. ଯାହା ଦ୍ୱାରା ତତ୍ତ୍ୱଜ୍ଞାନ ଜନ୍ମେ ।

**ତତ୍ତ୍ୱଭାବ**—ପୁଂ. ବି. ପ୍ରକୃତି, ସ୍ୱଭାବ ।

**ତତ୍ତ୍ୱଭାଷୀ**—ପୁଂ. ବିଂ. ଯଥାର୍ଥବାଦୀ, ସ୍ପଷ୍ଟବାଦୀ ।

**ତତ୍ତ୍ୱମଙ୍ଗଲମ୍**—ମାନ୍ଦ୍ରାଜ ପ୍ରେସିଡେନ୍ସୀର ଅନ୍ତର୍ଗତ କୋଚିନ୍ ରାଜ୍ୟର ଚତୁର ଜିଲ୍ଲାର ଗୋଟିଏ ସହର ।

**ତତ୍ତ୍ୱମସି**—ବେଦାନ୍ତୋକ୍ତ ବ୍ରହ୍ମଜ୍ଞାନୀମାନଙ୍କର ଈଶ୍ୱରଧ୍ୟାନ ମନ୍ତ୍ର ।

**ତତ୍ତ୍ୱମସିସୂକ୍ତ**—ଜ୍ଞାନଯୋଗ ସମ୍ବନ୍ଧୀୟ ବୈଦିକ ବଚନ ।

**ତତ୍ତ୍ୱରାୟର**—ଖ୍ରୀଷ୍ଟୀୟ ୧୭ଶ ଶତାବ୍ଦୀର ଜନୈକ ବିଖ୍ୟାତ ତାମିଲଶୈବସନ୍ନ୍ୟାସୀ ।

**ତତ୍ତ୍ୱବାଦ**—ବି. (କର୍ମଧା) ଦର୍ଶନଶାସ୍ତ୍ର ସମ୍ବନ୍ଧୀୟ ବିଚାର ।

**ତତ୍ତ୍ୱବାଦୀ**—ପୁଂ. ବିଂ. (ତତ୍ତ୍ୱ+ବଦ+କ.ଇନ୍) ଯଥାର୍ଥବାଦୀ, ସ୍ପଷ୍ଟବକ୍ତା, ଦର୍ଶନଶାସ୍ତ୍ରବେତ୍ତା ।

**ତତ୍ତ୍ୱବିଦ୍**—ବିଂ. (ତତ୍ତ୍ୱ+ବିଦ୍+କ.କ୍ୱିପ୍) ତତ୍ତ୍ୱଦର୍ଶୀ ଦେଖ, (ବି) ପରମେଶ୍ୱର, ଦର୍ଶନଶାସ୍ତ୍ରରେ ପଣ୍ଡିତ ।

**ତତ୍ତ୍ୱବିବେକ**—ପୁଂ. ବି. ଜ୍ୟୋତିଷଶାସ୍ତ୍ର ବିଷୟକ ଗ୍ରନ୍ଥ ବିଶେଷ ।

**ତତ୍ତ୍ୱବେତ୍ତା**—ପୁଂ. ବି. ତତ୍ତ୍ୱଜ୍ଞାନୀ ।

**ତତ୍ତ୍ୱଶାସ୍ତ୍ର**—ବି. (କ.ଧା) ଦର୍ଶନଶାସ୍ତ୍ର, ଅଧ୍ୟାତ୍ମବିଦ୍ୟା ।

**ତତ୍ତ୍ୱହୀନ**—ବିଂ.(୬ତତ୍)ତତ୍ତ୍ୱଜ୍ଞାନଶୂନ୍ୟ, ଈଶ୍ୱରଜ୍ଞାନରହିତ, (ସ୍ତ୍ରୀ) ତତ୍ତ୍ୱହୀନା ।

**ତତ୍ତ୍ୱାର୍ଥସୂତ୍ର**—କ୍ଲୀ.ବି.ଜୈନଧର୍ମର ମୂଳତତ୍ତ୍ୱ ପ୍ରକାଶକ ସୂତ୍ରଗ୍ରନ୍ଥବିଶେଷ ।

**ତତ୍ତ୍ୱାନୁସନ୍ଧାନ**—କ୍ଲୀ.ବି. (୬ତତ୍)ପ୍ରକୃତ ଅବସ୍ଥାର ଅନ୍ୱେଷଣ, ତଥ୍ୟାନୁସନ୍ଧାନ, ସ୍ୱରୂପ ନିରୂପଣର ଚେଷ୍ଟା, କୌଣସି ବିଷୟରେ ତଥ୍ୟ ଖୋଜିବା ।

**ତତ୍ତ୍ୱାନୁସନ୍ଧାୟୀ**—ତ୍ରି. ବିଂ. ଯେ ତଥ୍ୟ ଖୋଜେ, ଯେ ତତ୍ତ୍ୱାନୁସନ୍ଧାନ କରେ, ତତ୍ତ୍ୱାନ୍ୱେଷୀ ।

**ତତ୍ତ୍ୱାନୁସନ୍ଧିତ୍ସା**—ବି.(ତତ୍ତ୍ୱ+ଅନୁ+ସମ୍+ଧା+ସନ୍+ଅ+ଆ)ପ୍ରକୃତ ତଥ୍ୟ ଅନୁସନ୍ଧାନ କରିବା ଇଚ୍ଛା ।

**ତତ୍ତ୍ୱାବଧାନ**—କ୍ଲୀ.ବି. (୬ତତ୍)କୌଣସି ବିଷୟ ପ୍ରକୃତରୂପେ ସମ୍ପୂର୍ଣ୍ଣ ହୋଇଅଛି କି ନା ଏହି ବିଷୟର ତତ୍ତ୍ୱ ନେବା, କାର୍ଯ୍ୟ ପରିଚାଳନ ।

**ତତ୍ତ୍ୱାବଧାୟକ**—ପୁଂ. ବି. ତତ୍ତ୍ୱାବଧାନକାରୀ, ଯେ କାର୍ଯ୍ୟର ତତ୍ତ୍ୱନିଏ ।

**ତତ୍ତ୍ୱାବଧାରକ**—ପୁଂ.ବି. ଯେ କୌଣସି ବିଷୟରେ ତତ୍ତ୍ୱ ନିରୂପଣ କରେ, ସ୍ୱରୂପପରିଜ୍ଞାତା, (ବି) କାର୍ଯ୍ୟର ଅଧ୍ୟକ୍ଷ, ପରିଚାଳକ ।

**ତତ୍ତ୍ୱାବଧାରଣ**—କ୍ଲୀ.ବି. (୬ତତ୍) ତତ୍ତ୍ୱନିର୍ଣ୍ଣୟ, ସ୍ୱରୂପଜ୍ଞାନ, ଯଥାର୍ଥବୋଧ ।

**ତତ୍ତ୍ୱାବବୋଧ**—ପୁଂ. ବି. (୬ତତ୍)ତତ୍ତ୍ୱଜ୍ଞାନ ଦେଖ ।

ତତ୍ର—ଅବ୍ୟ.(ତଦ୍+ତ୍ର)ସେ ସମୟରେ, ତଦ୍‌ବିଷୟେ, ସେଠାରେ ।

**ତତ୍ରତ୍ୟ**—ବି. ଵଂ. (ତତ୍ର+ତ୍ୟ) ସେ ସମୟେ ଯାହା ଘଟେ, ସେ ସ୍ଥାନ ସମ୍ବନ୍ଧୀୟ, ସେଠାକାର, ସେଠାରେ ଘଟିଥିବା ।

**ତତ୍ରଭବତ୍**—ବି. ଵଂ. ପୂଜ୍ୟ, ମାନ୍ୟ, ଶ୍ଳାଘ୍ୟ, ମାନ୍ୟାସ୍ପଦ ।

**ତତ୍ରଭବତୀ**—ସ୍ତ୍ରୀ.ବି. (ତତ୍ରଭବତ୍+ଈ) ମାନ୍ୟା, ପୂଜ୍ୟା ।

**ତତ୍ରଭବାନ୍**—ପୁଂ. ଵଂ. ସେ ମହାଶୟ, ମାନ୍ୟାସ୍ପଦ, ମାନ୍ୟବର ।

**ତତ୍ରସ୍ଥ**—ବି. ଵଂ. (ତତ୍ର+ସ୍ଥା+କ.ଅ) ତତ୍ରସ୍ଥିତ, ସେଠାକାର, ତତ୍ରତ୍ୟ ।

**ତତ୍ରାଚ**—ଗ୍ରା. ଅବ୍ୟ. ତଥାପି, ତେବେ-ସୁଦ୍ଧା ।

**ତତ୍ରାପି**—ଅବ୍ୟ. (ତତ୍ର+ଅପି) ତଥାପି, ତଥାଚ, ତେବେସୁଦ୍ଧା, ତେବେହେଁ ।

ତଥା—ଅବ୍ୟ. (ତଦ୍+ଥା) ଆହୁରମଧ୍ୟ, ମଧ୍ୟ, ସେହିପରି ସ୍ଥଳରେ, ସେହି ଅବସ୍ଥାରେ, ସେହିପ୍ରକାର, ମାନ୍ୟ, ଅଭ୍ୟୁପଗମ, ପୂର୍ବପର୍ଣ, ପ୍ରକୃତରେ, ତାହାହିଁ, ଏବଂ, ତହିଁରେ, ତନ୍ନିମିତ୍ତ, ସେଥିପାଇଁ, ( ସଂ-ନଷ୍ଟସ୍ୟାର୍ଥକ ) ସମୁଚ୍ଚୟାର୍ଥକ, ସ୍ୱୀକାରାର୍ଥକ, ସାଦୃଶ୍ୟାର୍ଥକ ଅବ୍ୟୟ ।

ତଥାକଥିତ—ଵଂ. ଏହି ନାମରେ ପ୍ରଚଳିତ ବା ଏହିପ୍ରକାର ଉକ୍ତ । [କଭ ।

**ତଥାକର**—ଅବ୍ୟ. କୌଣସି ପ୍ରକାରେ

**ତଥାଗତ**—ଵଂ.(ତଥା+ଗତ)ତଥାଭୂତ, ସେହିରୂପେ ଘଟିଥିବା, ସେହିରୂପେ ଆସିଥିବା,(ବ)ବୁଦ୍ଧଦେବଙ୍କର ଗୋଟିଏ ନାମ । [ ଭେଦ ।

ତଥାଗତଗର୍ଭ—ପୁଂ. ବ. ବୌଦ୍ଧଶାସ୍ତ୍ର-

ତଥାଗତ ଗୁଣଜ୍ଞାନାଚନ୍ତ୍ୟବିଷୟାବତାର-ନିର୍ଦ୍ଦେଶ—ପୁଂ. ବ. ବୌଦ୍ଧଶାସ୍ତ୍ରଭେଦ ।

ତଥାଗତଗୁପ୍ତ—ପୁଂ. ବ. ଜଣେ ବୌଦ୍ଧ ରାଜା ।

ତଥାଗତଗୁହ୍ୟକ—ପୁଂ. ବ. ନେପାଳୀ ବୌଦ୍ଧମାନଙ୍କର ୯ଟଣ୍ଡ ପ୍ରଧାନ ଶାସ୍ତ୍ର ମଧ୍ୟରୁ ଏକଖଣ୍ଡ ।

ତଥାଗତଭଦ୍ର—ନାଗାର୍ଜୁନଙ୍କର ଜଣେ ପ୍ରଧାନ ଶିଷ୍ୟ ।

ତଥାଗୁଣ—ବି.ଵଂ. ତଦ୍ରୂପ ଗୁଣସମ୍ପନ୍ନ ।

ତଥାଚ—ଅବ୍ୟ. ତଥାପି, ଏବଂ, ପୁନଶ୍ଚ, ତେବେସୁଦ୍ଧା, ତେବେହେଁ, ପୂର୍ବୋକ୍ତ କଥାର ସମର୍ଥନ ଓ ଦୃଢ଼ୀକରଣ ।

ତଥାତା—ସ୍ତ୍ରୀ.ବ. ତଥାତ୍ୱ, ତଥାଭୂତତ୍ୱ, ସେହିପ୍ରକାର ।

ତଥାତ୍ୱ—କ୍ଳୀ. ବ. ତଥାଭୂତତ୍ୱ, ସେହି-ପ୍ରକାର ।

ତଥାପି—ଅବ୍ୟ. (ଯଥା+ଅପି) ତଥାପି, ତାହାହେଲେହେଁ, ଏବେସୁଦ୍ଧା ।

ତଥାଭାବୀ—ପୁଂ.ଵଂ. ତଦ୍‌ସ୍ୱଭାବସମ୍ପନ୍ନ ।

ତଥାଭୂତ—ବି. ଵଂ. (ତଥା+ଭୂ+କ.ତ) ସେହିପ୍ରକାରେ ସମ୍ପନ୍ନ, ସେହି ରୂପେ ଉତ୍ପନ୍ନ ବା ସମ୍ଭୂତ, ସେହିରୂପେ ଘଟିଥିବା, ତଦ୍ରୂପ ।

ତଥାମୁଖ—ବି. ଵଂ. ସେହି ଦିଗକୁ ମୁଖ ଫେରାଇଥିବା ।

ତଥାସ୍ତୁ--ଗ୍ରା.ଅବ୍ୟ.ସେସ୍ଥାନେ,ସେଠାରେ ।

ତଥାରାଜ—ପୁଂ.ବ.ବୁଦ୍ଧ,ଗୌତମ ବୁଦ୍ଧ ।

ତଥାରୂପ—ବି.ଵଂ. ସେହିରୂପ, ତଦନୁ-ରୂପ ।

ତଥାରୂପୀ—ପୁଂ.ଵଂ. ତଥାରୂପ ଦେଖ ।

ତଥାବିଧ—ବି. ଵଂ. ( ବ.ବ୍ରୀ ) ତାଦୃଶ, ସେହି ପ୍ରକାରର, ତଦ୍‌ବିଧ ।

ତଥାବିଧେୟ—ବି.ଵଂ.ସେହିରୂପ କର୍ତ୍ତବ୍ୟ

ତଥାବ୍ରତ—ବି. ଵଂ. ସେହିରୂପ ବ୍ରତ-ପରାୟଣ ।

ତଥାସ୍ତୁ—ଅବ୍ୟ. (ତଥା+ଅସ୍ତୁ) ତାହା-ହେଉ, ସେହିରୂପ ହେଉ ।

ତଥାସ୍ୱର—ବି.ଵଂ.ସେହିରୂପ ଉଚ୍ଚାରିତ, ସେହିରୂପ ସ୍ୱରବିଶିଷ୍ଟ ।

ତଥାହି—ଅବ୍ୟ. ନିଦର୍ଶନ, ପ୍ରସିଦ୍ଧି, ସେହିପରି, ଏବଂ ମଧ୍ୟ, ଆହୁରମଧ୍ୟ, ପୂର୍ବୋକ୍ତ ଅର୍ଥର ଦୃଢ଼ୀକରଣ, ସମର୍ଥନ, ଉଦାହରଣ ସ୍ୱରୂପ ।

ତଥି—ଗ୍ରା. (ପଦ୍ୟ)ବି. ଵଂ. ସେଠାରେ, ତହିଁ, ତହିଁରେ, (ଗ୍ରା-ସର୍ବ.) ତାହା ।

ତଥିପରେ—ଗ୍ରା. (ପଦ୍ୟ) ବି. ଵଂ. ତହିଁ ଉତ୍ତାରୁ, ତହିଁ ଉପରେ ।

ତଥିରେ—ଗ୍ରା. (ପଦ୍ୟ)ଅବ୍ୟ. ତହିଁରେ ।

ତଥେବ—ବି. ଵଂ. (ତଥା+ଇବ) ଠିକ୍ ସେହିପରି, ତଦ୍ରୂପହିଁ, ସେହିପରି ମଧ୍ୟ, ଏବଂ ମଧ୍ୟ, ଆହୁରମଧ୍ୟ, (ଵଂ) ସେହି ପ୍ରକାରର, ତଦ୍ରୂପ । [ ଦେଖ ।

ତଥେବଚ—ବି. ଵଂ ଓ ଵଂ. ତଥେବ

ତଥୈବ—ବି.ଵଂ.(ତଥା+ଏବ)ତଥେବ ଦେଖ ।

ତଥୈବଚ—ବି. ଵଂ. ସେହି ରୂପହି, ସେହିପ୍ରକାରହିଁ, ଶାଠ୍ୟପୂର୍ବକ ନୁହେ ।

ତଥୈବାସ୍ତୁ—ତାହାହିଁ ହେଉ, ସେହିପରି ହେଉ ।

ତଥ୍ୟ—କ୍ଳୀ. ବ. (ତଥା+ଭା.ଯ) ସତ୍ୟ, ଯାଥାର୍ଥ୍ୟ, ପ୍ରକୃତ ଅବସ୍ଥା, ସ୍ଥିରତା, ଅସଲ ତତ୍ତ୍ୱ, ଗୂଢ଼ମର୍ମ, (ଵଂ) ଯଥାର୍ଥ, ସତ୍ୟ, ପ୍ରକୃତ ।

ତଥ୍ୟଜ୍ଞାନ—କ୍ଳୀ. ବ.( କ.ଧା ) ଯଥାର୍ଥ-ଜ୍ଞାନ, ପ୍ରକୃତଜ୍ଞାନ ।

ତଥ୍ୟଭାଷୀ—ପୁଂ. ଵଂ. ଯଥାର୍ଥବାଦୀ, ସତ୍ୟବାଦୀ, ଯେ ପ୍ରକୃତ କଥା କହେ ।

ତଥ୍ୟବାଦୀ—ପୁଂ.ଵଂ. (ତଥ୍ୟ+ବଦ+ଇନ୍ ) ସତ୍ୟବାଦୀ, ଯଥାର୍ଥବାଦୀ, ଯେ ପ୍ରକୃତ କଥା କହେ ।

ତଥ୍ୟବାର୍ତ୍ତା—ବ.(କ.ଧା)ଯଥାର୍ଥ ସମ୍ବାଦ, ତଥ୍ୟାନୁସନ୍ଧାନ ।

ତଥ୍ୟବୋଧ—ପୁଂ.ବ.ତଥ୍ୟଜ୍ଞାନ, ଯଥାର୍ଥ ଜ୍ଞାନ ।

ତଥ୍ୟାନୁସନ୍ଧାନ—କ୍ଳୀ.ବ (୬ତତ୍)ପ୍ରକୃତ ଅବସ୍ଥାର ଅନୁସନ୍ଧାନ,ସ୍ୱରୂପ ନିରୂପଣର ଚେଷ୍ଟା, ଯଥାର୍ଥନିର୍ଣ୍ଣୟ ପ୍ରୟାସ, ତତ୍ତ୍ୱା-ନ୍ୱେଷଣ ।

ତଥ୍ୟାନୁସନ୍ଧାୟୀ—ପୁଂ. ଵଂ. ( ୬ତତ୍ ) ପ୍ରକୃତ ବ୍ୟାପାରର ଅନୁସନ୍ଧାନକାରୀ, ତତ୍ତ୍ୱନିରୂପଣପ୍ରୟାସୀ ।

ତଦ୍—ସର୍ବ.ବୁଦ୍ଧିସ୍ଥ ପରାମର୍ଶବିଶେଷ, ସେ, ସେହି, ତାହାକୁ, ତାହାଦ୍ୱାରା, ତହିଁରୁ,

(କ୍ଲୀ.ବ) ବ୍ରହ୍ମ ।
ତଦଂଶ—ପୁଂ.ବ.(୬ତତ୍)ତାହାର ଭାଗ ।
ତଦ୍ଗତ—ବିଂ. ( ୬ତତ୍ ) ଏକାଗ୍ର, ଅଭିନିବିଷ୍ଟ ।
ତଦ୍ବଂଶୀୟ—ପୁଂ. ବିଂ. ସେହି ବଂଶରୁ ଜାତ, ସେହି ବଂଶସମ୍ବନ୍ଧୀୟ ।
ତଦ୍ବତ—ବି. ବିଂ. (ତଦ୍+ବତ୍)ସେହିପର, (ବିଂ) ତଦନୁଯାୟୀ, ତତ୍ସମ ।
ତଦ୍ବର—ଯା. ବ. ତଦବର ଦେଖ ।
ତଦ୍ବ୍ୟତିରିକ୍ତ—ବି: (୫ତତ୍) ତାହାଠାରୁ ପୃଥକ୍, (ଗ୍ରା.ଅବ୍ୟ)ଏହାଛଡ଼ା, ତାହାଙ୍କ ଛଡ଼ା ।
ତଦ୍ଭିନ୍ନ—ବିଂ.(ତଦ୍+ଭିନ୍ନ)ତାହାଛଡ଼ା ।
ତଃଦଃ—ଗ୍ରା. ଅବ୍ୟ. ପୂର୍ବୋକ୍ତ ଜମିର ଦକ୍ଷିଣରେ ଅବସ୍ଥିତ ।
ତଦତିରିକ୍ତ—ବି. ବିଂ. (୫ତତ୍) ତହିଁରୁ ଅଧିକ, ତହିଁରୁ ବେଶି, ତାହା ଅପେକ୍ଷା ଅଧିକ ।
ତଦଧିକ—ବି.ବିଂ. (୫ତତ୍) ତଦତିରିକ୍ତ, ତହିଁରୁ ଅଧିକ, ତହିଁରୁ ବେଶି ।
ତଦଧୀନ—ବ .(ତତ୍+ଅଧୀନ)ତାହାଙ୍କ ଅଧୀନ ।
ତଦନନ୍ତର—ବି.ବିଂ.(ତତ୍+ଅନନ୍ତର) ତହିଁପରେ, ତତ୍ପରେ ।
ତଦନନ୍ୟ—ବିଂ.(୬ତତ୍)ସେହି, ତାହାଠାରୁ ଅନ୍ୟ ନୁହେ ।
ତଦନୁ—ବି. ବିଂ. (ତଦ୍+ଅନୁ) ତହିଁପରେ, ସେହିପର ।
ତଦନୁକାଙ୍କ୍ଷୀ—ପୁଂ.ବିଂ.ତାଙ୍କ ବା ତାହାର ଅନୁସାରେ ଯେ ଚଳେ ।
ତଦନୁକ୍ରମ—ବି.ବିଂ. ସେହି ଅନୁସାରେ, (ବିଂ) ସେହିପର ଧାରା ବା ଅନୁକ୍ରମ ଯାହାର ଅଛି ।
ତଦନୁକ୍ରମେ—ଗ୍ରା.ବି.ବିଂ. ସେହି ଅନୁସାରେ ।
ତଦନୁଗାମୀ—ପୁଂ.ବିଂ. (୬ତତ୍)ତାହାର ଅନୁଗମନକାରୀ, ତଦନୁଯାୟୀ, ତଦନୁବର୍ତ୍ତୀ, (ସ୍ତ୍ରୀ) ତଦନୁଗାମିନୀ ।
ତଦନୁଗ୍ରହ—ବ. ( ୬ତତ୍ ) ତାହାଙ୍କର ଅନୁଗ୍ରହ ।
ତଦନୁଗୃହୀତ—ବିଂ.(୩ତତ୍) ତାହାଙ୍କର ଅନୁଗ୍ରହପ୍ରାପ୍ତ ।
ତଦନୁଯାୟୀ—ବିଂ.(ତଦ୍+ଅନୁଯାୟୀ) ସେହି ବସ୍ତୁପର, (ଗ୍ରା.ବି.ବିଂ) ତଦନୁସାରେ, ସେହିରୂପେ ।
ତଦନୁରୂପ—ବିଂ. ( ତତ୍+ଅନୁରୂପ ) ସେହି ପ୍ରକାରର, ତଦ୍ରୂପ,(ଗ୍ରା.ବି.ବିଂ) ତଦନୁସାରେ, ସେହିରୂପେ ।
ତଦନୁରୂପେ—ଗ୍ରା.ବି.ବିଂ.ତଦନୁସାରେ ସେହିରୂପେ ।
ତଦନୁବର୍ତ୍ତୀ—ପୁଂ.ବିଂ. (୬ତତ୍)ତଦନୁଗାମୀ, ତାହାର ଅନୁବର୍ତ୍ତୀ, ( ସ୍ତ୍ରୀ ) ତଦନୁବର୍ତ୍ତିନୀ ।
ତଦନୁସାର—ବିଂ. ତାହାପର, ତହିଁର ଅନୁକୂଳ ।
ତଦନୁସାରୀ—ପୁଂ. ବିଂ. ( ତତ୍+ଅନୁସାରିନ୍) ତଦନୁକାଙ୍କ୍ଷୀ ଦେଖ ।
ତଦନୁସାରେ—ଗ୍ରା. ବି. ବିଂ. ସେହି ଅନୁସାରେ ।
ତଦନ୍ତ—ବି.ବିଂ. ଏହିରୂପେ ସମ୍ପନ୍ନ ବା ଶେଷ ହୋଇଥିବା, ତହିଁରେ ଶେଷ ହୋଇଥିବା, (ପୁଂ.କ୍ଲୀ.ବ.) (୬ତତ୍) ତାହାର ଅନ୍ତ ବା ଶେଷ, ତାହାର ସୀମା,ସ୍ୱରୂପ ନିର୍ଣ୍ଣୟ, ତତ୍ତ୍ୱାବଧାରଣ, ପରୀକ୍ଷା, ଅଭିପ୍ରାୟ, ତଦାରଖ, ବିବରଣ ବୃତ୍ତାନ୍ତ,(ବି.ବିଂ) ତତ୍ପରେ, ତଦନନ୍ତର, ତାହା ଶେଷ ହୁଅନ୍ତେ ।
ତଦନ୍ତଃପାତୀ—ବିଂ. ( ୬ତତ୍ ) ତହିଁର ମଧ୍ୟଗତ, ତହିଁର ମଧ୍ୟବର୍ତ୍ତୀ, ତହିଁ ମଧ୍ୟରେ ନିବିଷ୍ଟ ବା ନିହିତ ।
ତଦନ୍ତକରିବା—ଗ୍ରା. କ୍ରି. ଅନୁସନ୍ଧାନ କରିବା ।
ତଦନ୍ତର—ବି.ବିଂ.ତଦନନ୍ତର ଦେଖ ।
ତଦନ୍ତରେ—ଗ୍ରା. ବି.ବିଂ. ତହିଁପରେ, ଅନୁସନ୍ଧାନର ଫଳରେ ।
ତଦନ୍ତର୍ଗତ—ବିଂ. (୬ତତ୍)ତଦନ୍ତଃପାତୀ ଦେଖ ।
ତଦନ୍ତବର୍ତ୍ତୀ—ବିଂ.(୬ତତ୍)ତଦନ୍ତଃପାତୀ [ ଦେଖ ।
ତଦନ୍ତେ—ଗ୍ରା.ବି.ବିଂ. ତହିଁପରେ ।
ତଦନ୍ୟ—ବିଂ. ତଦଭିନ୍ନ, ତାହାଠାରୁ ପୃଥକ୍ ।
ତଦନ୍ୟବାଧିତାର୍ଥପ୍ରସଙ୍ଗ—ପୁଂ.ବ.ପ୍ରମାଣବାଧିତ ଅର୍ଥର ପ୍ରସଙ୍ଗରୂପ ତର୍କଭେଦ ।
ତଦପି—ବି.ବିଂ. ତଥାପି,ତେବେସୁଦ୍ଧା, ସେହିମଧ୍ୟ ।
ତଦପେକ୍ଷା—ଗ୍ରା.ଅବ୍ୟ, ତାହାଠାରୁ ।
ତଦଭାବ—ବ. (୬ତତ୍) ତାହାର ଅଭାବ, ସେହି ବିଷୟ, ବସ୍ତୁ ବା ମନୁଷ୍ୟର ଅଭାବ ।
ତଦଭାବେ—ବି.ବିଂ.ତହିଁର ଅଭାବରେ, ତାହା ନ ମିଳିଲେ, ତାହାଙ୍କ ଅନୁପସ୍ଥିତିରେ ।
ତଦଭିନ୍ନ—ବି. ବିଂ. ( ୫ତତ୍ ) ଅବିକଳ ସେହିପର, ସେହି, ତତ୍ସ୍ୱରୂପ ।
ତଦମନା—ଗ୍ରା.ବିଂ. ତହିଁର ଅମନୋଯୋଗୀ ।
ତଦର୍ଥ—ବି. ବିଂ. ତତ୍ପ୍ରୟୋଜନକ, ତଦୁଦ୍ଦେଶକ, (ବ) ସେହି ଅର୍ଥ,ସେହି କାରଣ, ତଦଭିପ୍ରାୟ ।
ତଦର୍ଥତା—ବ.(ତଦର୍ଥ+ଭା.ତା)ତାଦର୍ଥ୍ୟ ।
ତଦର୍ଥେ—ଗ୍ରା. ବି. ବିଂ. ସେଥିପାଇଁ, ସେହିନିମନ୍ତେ, ସେହି ଉଦ୍ଦେଶ୍ୟରେ ।
ତଦର୍ପଣ—କ୍ଲୀ. ବ. (୬ତତ୍) ତାହାଙ୍କୁ ପ୍ରଦାନ, ତାହାଠାରେ ନ୍ୟସ୍ତକରଣ, ପ୍ରତ୍ୟର୍ପଣ ।
ତଦର୍ପିତ—ବିଂ. (ତତ୍+ଅର୍ପିତ)ତାହାଙ୍କୁ ପ୍ରଦତ୍ତ, ତାହାଙ୍କଠାରେ ନ୍ୟସ୍ତ,ତାହାଙ୍କ ଉଦ୍ଦେଶ୍ୟରେ ଉତ୍ସୃଷ୍ଟ, ତାହାଙ୍କଦ୍ୱାରା ଦତ୍ତ ।
ତଦର୍ପିତଚିତ୍ତ—ବିଂ. (ତତ୍+ଅର୍ପିତ+ଚିତ୍ତ) ତନ୍ମୟଚିତ୍ତ, ତାହାଙ୍କଠାରେ ମନକୁ ଅର୍ପଣ କରିଥିବା ।
ତଦର୍ପିତଚିତ୍ତବୃତ୍ତି—ବିଂ. ତନ୍ମୟଚିତ୍ତ, ତାହାଙ୍କଠାରେ ମନକୁ ଅର୍ପଣ କରିଥିବା ।
ତଦର୍ପିତପ୍ରାଣ—ବିଂ. (ବ.ବ୍ରୀ) ତାହାଙ୍କଠାରେ ପ୍ରାଣ ସମର୍ପଣ କରିଥିବା, ତଦ୍ଗତପ୍ରାଣ, (ବି.କ.ଧା) ତାଙ୍କୁ ଉତ୍ସର୍ଗ କରି

ଯାଇଥିବା ଜୀବନ ।
ତଦର୍ହ—ବି. ବଂ. ତଦ୍‌ଯୋଗ୍ୟ ।
ତଦବଧି—କ୍ରି ବଂ. ସେହି କାଳରୁ, ସେହି ସମୟରୁ, ସେହି ସ୍ଥାନରୁ ।
ତଦବସ୍ଥ—ପୁଂ.ବଂ. (ବ.ବ୍ରୀ) ପୂର୍ବଭାବ ପନ୍ନ, ତାହାପର ଅବସ୍ଥାପ୍ରାପ୍ତ, ତଦ୍ରୂପ, ଅବିକଳ ସେହି,ଯେ ସେହି ଅବସ୍ଥାରେ ଅଛି, (ଗଣିତ ପୌନଃ ପୁନିକ ଦଶମିକରେ ଯେଉଁ ଦଶମିକାଂଶରେ ପୌନଃପୁନିକ ଚିହ୍ନ ନ ଥାଏ) ।
ତଦବସ୍ଥତା—ବି. (ତଦବସ୍ଥ+ଭା.ତା) ତାଦବସ୍ଥ୍ୟ, ତଦ୍ରୂପତା ।
ତଦବସ୍ଥା—ବି. (ତତ୍+ଅବସ୍ଥା) ସେହି ଅବସ୍ଥା ।
ତଦବସ୍ଥାପନ୍ନ—ବଂ. ସେହି ଅବସ୍ଥାପ୍ରାପ୍ତ, ପୂର୍ବଭାବାପନ୍ନ,ତାହାପର ଅବସ୍ଥାପ୍ରାପ୍ତ ।
ତଦବିର୍—ଯା. ବି. ଅଭିଷ୍ଟ ସାଧନୋପାୟ, ଉଦ୍ୟମ, ଉଦ୍‌ଯୋଗ, ପ୍ରତୀକାର, ଚେଷ୍ଟା, ଅନୁଷ୍ଠାନ, ଆୟୋଜନ ।
ତଦା—ଅବ୍ୟ. (ତତ୍+ଦା) ତତ୍‌କାଳେ, ତେତେବେଳେ, ସେହି ସମୟରେ ।
ତଦାକାର—ବି. ସେହିରୂପ,ବଂ.(ବ.ବ୍ରୀ) ସେହି ଆକୃତିବିଶିଷ୍ଟ ।
ତଦାକାରକାରିତା—ବଂ. ସେହିରୂପର ଅନୁକରଣରେ ଗଠିତ, ସେହି ରୂପର ମିଳିତ ହୋଇଥିବା ।
ତଦାକାରତଦାକାରବୃତ୍ତି—ବି. (କ.ଧା) ସେହି ରୂପରେ ମିଳିତ ହୋଇଥିବା ବୃତ୍ତି, ବଂ.(ବ.ବ୍ରୀ) ଯାହାର ବୃତ୍ତି ତାହାର ଆକାରରେ ନିବିଷ୍ଟ ହୋଇଅଛି ।
ତଦାତ୍ମକ—ବଂ. (ବ.ବ୍ରୀ) ତାହାପର, ତାହାଠାରେ ଅର୍ପିତ ଚିତ୍ତବୃତ୍ତି ଯାହାର ।
ତଦାତ୍ମା—ପୁଂ.ବଂ. (ବ.ବ୍ରୀ) ତାହାପର, ତତ୍ସ୍ୱରୂପ, ଅଭିନ୍ନହୃଦୟ ।
ତଦାତ୍ୱ—କ୍ଲୀ.ବି. (ତଦା+ତ୍ୱ) ତତ୍‌କାଳ, ବର୍ତ୍ତମାନ ସମୟ ।
ତଦାନୀଂ—ଅବ୍ୟ.ସେହିସମୟରେ,ତଦା
ତଦାନୀନ୍ତନ—ବି.ବଂ. (ତଦାନୀଂ+ତନ,
ସେହି ସମୟର, ସେ ସମୟରେ ଘଟିଥିବା ।
ତଦାପ୍ରଭୃତି—ଅବ୍ୟ.ସେହି ଅବଧି, ତଦବଧି,ତତ୍‌କାଳାବଧି,ସେହିଦିନ ଠାରୁ ।
ତଦାମୁଖ—ବି. ବ୍ରଂ. (ବ.ବ୍ରୀ) ଆରମ୍ଭ, ପ୍ରବୃତ୍ତ ।
ତଦାଯୁକ୍ତକ—ପୁଂ. ବି. (ଷତତ୍) ରାଜକାର୍ଯ୍ୟ ବିଶେଷ ।
ତଦାରକ—ଯା. ବି. ତଦାରଖ ଦେଖ ।
ତଦାରଖ—ଯା.ବି. ତଦନ୍ତ,ଅନୁସନ୍ଧାନ, ପୂର୍ବରୁ ସତର୍କତା, ସ୍ଥାନୀୟ ପରୀକ୍ଷା, ପ୍ରତୀକାର, କୌଣସି ଅପରାଧ ବା ଦୁର୍ଘଟନା ନ ଘଟିବା ବିଷୟରେ ପ୍ରବାଦ, ହଜିଲା ଦ୍ରବ୍ୟ ବା ଫେରାର୍ ଆସାମୀକୁ ଖୋଜିବା ।
ତଦାରଖି—ଯା. ବି. ତଦାରଖ ଦେଖ ।
ତଦର୍—ବି. ତଦ୍‌ବିଷୟକ ସ୍ତୋତ୍ର ।
ତଦିତର—ବଂ. ( ଷତତ୍ ) ତାହାଠାରୁ ଅନ୍ୟ, ତଦନ୍ୟ ।
ତଦର୍ଥ—ବି.ବଂ. ତଦ୍‌ବିଷୟକ ସ୍ତୋତ୍ର, ଯାହାର ପ୍ରୟୋଜନ ଅଛି ।
ତଦୀୟ—ବି.ବଂ.ତତ୍ସମ୍ବନ୍ଧୀୟ,ତାହାର, ତାହାଙ୍କ ଅଧିକୃତ ।
ତଦୁତ୍ତର—ବି. (ତଦ୍+ଉତ୍ତର) ତହିଁର ଉତ୍ତରଦିଗ, ତହିଁର ଜବାବ ।
ତଦୁତ୍ତରେ—କ୍ରି ବଂ. ତହିଁର ଉତ୍ତର ଦିଗରେ, ତହିଁର ଉତ୍ତର ସ୍ୱରୂପ,(ଗ୍ରା. ଅନ୍ୟ) ପର୍ବୋକ୍ତ ଜମିର ଉତ୍ତରରେ ।
ତଦୁତ୍ତରୀରେ—ଗ୍ରା. କ୍ରି. ବଂ. ତାହାପରେ, ତହିଁ ବାଦ୍ ।
ତଦୁପଯୋଗୀ—ବଂ. (ଷତତ୍) ତାହାର ଉପଯୋଗୀ ବା ଉପଯୁକ୍ତ ।
ତଦୁପରି—କ୍ରି ବଂ. (ଷତତ୍) ତାହାର ଉପରେ, ତାହାର ଊର୍ଦ୍ଧ୍ୱରେ, ତହିଁରୁ ଅଧିକା ।
ତଦୁପଲକ୍ଷେ—ପୁଂ. ବି. ସେହି ସୂତ୍ରେ ।
ତଦୂର୍ଦ୍ଧ୍ୱ—କ୍ରି. ବଂ. ତହିଁର ଉପରେ, ତହିଁ ଅଧିକା, ତାକୁ ବଳି, ତାକୁ ଅତିକ୍ରମ କରି, ତଦୁପରି ।
ତଦୂର୍ଦ୍ଧ୍ୱେ—ଗ୍ରା.କ୍ରି.ବଂ. ତଦୂର୍ଦ୍ଧ୍ୱ ଦେଖ ।
ତଦେକ—ବି. ବଂ. ତାହାର ସହିତ ଏକଭାବାପନ୍ନ, ତତ୍ସ୍ୱରୂପ, ତଦ୍ରୂପ ।
ତଦେକଚିତ୍ତ—ବଂ.(ବ.ବ୍ରୀ) ତଦେକାତ୍ମା, ତାହା ସହିତ ଅଭିନ୍ନଚିତ୍ତ ।
ତଦେକାତ୍ମା—ବି. ବଂ.(ବ.ବ୍ରୀ) ଅଭିନ୍ନହୃଦୟ, ତାହାସହିତ ଏକ,ତତ୍ସ୍ୱରୂପ ।
ତଦ୍‌ଗତ—ବି. ବଂ. (ଷତତ୍) ଏକାଗ୍ର, ଅଭିନିବିଷ୍ଟ, ତନ୍ନିଷ୍ଠ, ତଦାସକ୍ତ ।
ତଦ୍‌ଗତଚିତ୍ତ—ବଂ. (ବ.ବ୍ରୀ) ତାହାଙ୍କଠାରେ କିମ୍ବା ସେହି ବିଷୟରେ ଚିତ୍ତବୃତ୍ତି ଅର୍ପିତ କରିଥିବା,ତଦର୍ପିତଚିତ୍ତ ।
ତଦ୍‌ଗତଚେତାଃ—ପୁଂ. ବଂ. ( ବ.ବ୍ରୀ ) ତଦ୍‌ଗତଚିତ୍ତ ଦେଖ ।
ତଦ୍‌ଗତଜୀବନ—ପୁଂ. ବଂ. ( ବ.ବ୍ରୀ ) ତାହାଙ୍କଠାରେ ଯାହାଙ୍କର ପ୍ରାଣ ଆସକ୍ତ ।
ତଦ୍‌ଗୁଣ—ବି. ବଂ. (ବ.ବ୍ରୀ) ତତ୍ତୁଲ୍ୟ ଗୁଣଯୁକ୍ତ, (ବି) କାବ୍ୟର ଅର୍ଥାଳଂକାର ବିଶେଷ,(ଷତତ୍)ତାହାର ଗୁଣ,(କ.ଧା) ପ୍ରଧାନ ବିଶେଷଣ, ପ୍ରସିଦ୍ଧ ଗୁଣ ।
ତଦ୍‌ଗୁଣସଂବିଜ୍ଞାନ—ପୁଂ. ବଂ. ( ବ.ବ୍ରୀ ) ସମାସବିଶେଷ । [ଦିଗ ।
ତଦ୍ଦକ୍ଷିଣ—ବି. (ଷତତ୍) ତହିଁର ଦକ୍ଷିଣ-
ତଦ୍ଦକ୍ଷିଣେ—କ୍ରି. ବଂ. ତହିଁର ଦକ୍ଷିଣ ଦିଗରେ, ପୂର୍ବ ଲିଖିତ ଜମିର ଦକ୍ଷିଣ ଦିଗରେ ।
ତଦ୍ଦଣ୍ଡ—କ୍ରି. ବଂ. ସେହି ମୁହୂର୍ତ୍ତରେ, ତତ୍କ୍ଷଣାତ୍, ( ବଂ ) ସେହି ମୁହୂର୍ତ୍ତ, ସେହି ବାଡ଼ି,ସେହି ଯଷ୍ଟି ।
ତଦ୍ଦଣ୍ଡେ—କ୍ରି. ବଂ. ସେହି ମୁହୂର୍ତ୍ତରେ, ତତ୍କ୍ଷଣାତ୍, ସେହିକ୍ଷଣିକା, ଗୋଡ଼େଗୋଡ଼େ ।
ତଦ୍ଦିନ—ଅବ୍ୟ. ସେହିଦିବସ, ମଧ୍ୟାହ୍ନରେ, ପ୍ରତିଦିନ ।
ତଦ୍ଦିନେ—ଗ୍ରା. କ୍ରି. ବଂ. ସେହି ଦିନ ମଧ୍ୟରେ, ସେହି ଦିନ ପର୍ଯ୍ୟନ୍ତ ।
ତଦ୍ଦେଶୀୟ—ବଂ. ସେହିଦେଶ ସମ୍ବନ୍ଧୀୟ, ସେ ଦେଶର ।
ତଦ୍ଦନ—ବି.ବଂ. କୃପଣ,କ୍ଲୀ.ବି. (କ.ଧା)

ସେହିଧନ, (୬ତତ୍) ତାହାଙ୍କ ଧନ ବା ସମ୍ପତ୍ତି ।

ତଦ୍ଧର୍ମ—ବି. ବିଂ. ( ବ.ବ୍ରୀ ) ତଥାଭୂତ ଧର୍ମଯୁକ୍ତ ।

ତଦ୍ଧିତ—କ୍ଲୀ. ବି. ( ୬ତତ୍ ) ତାହାର ମଙ୍ଗଳ, ତାହାଙ୍କ ପକ୍ଷେ ହିତ, ( ବିଂ ) (୬ତତ୍) ତାହାଙ୍କ ଯୋଗ୍ୟ, ପ୍ରିୟ ବା ମଙ୍ଗଳ ଜନକ, ପୁଂ.ବି, ( ବ.ବ୍ରୀ ) ଶବ୍ଦୋତ୍ତର ଜାୟମାନ ପ୍ରତ୍ୟୟ ଅର୍ଥାତ୍ ଶବ୍ଦର ଉତ୍ତର ଯେଉଁ ସମସ୍ତ ପ୍ରତ୍ୟୟ ହେଲେ ପୁନର୍ବାର ଶବ୍ଦ ଉତ୍ପନ୍ନ ହୁଏ ।

ତଦ୍ଧିତପଦ—ବି. ବିଶେଷ୍ୟ ବିଶେଷଣ ଓ ସର୍ବନାମ ଶବ୍ଦପରେ ପ୍ରତ୍ୟୟ ଯୋଗ କରାଯାଇ ଯେଉଁ ପଦମାନ ନିଷ୍ପନ୍ନ ହୁଏ ।

ତଦ୍ଧିତପ୍ରକରଣ—ବି. ବ୍ୟାକରଣର ଯେଉଁ ଅଂଶରେ ତଦ୍ଧିତପ୍ରତ୍ୟୟମାନଙ୍କ ସମ୍ବନ୍ଧରେ ଚର୍ଚ୍ଚା କରାଯାଇଥାଏ ।

ତଦ୍ଧିତପ୍ରତ୍ୟୟ—ବି.ବିଶେଷ୍ୟ ବିଶେଷଣ ଓ ସର୍ବନାମ ଶବ୍ଦର ଉତ୍ତରବିଶେଷ, ବିଶେଷଅର୍ଥରେ ଯେଉଁ ଯେଉଁ ପ୍ରତ୍ୟୟମାନ ହୁଏ ।

ତଦ୍ବଳ—ପୁଂ.ବି. ବାଣବିଶେଷ, (୬ତତ୍) ତାହାଙ୍କ ବଳ, ତାହାଙ୍କ ସୈନ୍ୟ ।

ତଦ୍ଭବ—ବିଂ. ତାହିଁରୁ ଉତ୍ପନ୍ନ ବା ଜାତ, ଭାଷାର ଯେଉଁ ଶବ୍ଦମାନ ମୂଳ ସଂସ୍କୃତ ଶବ୍ଦରୁ ଅପଭ୍ରଷ୍ଟ ହୋଇଅଛି ।

ତଦ୍ଭାବ—ପୁଂ.ବି. (୬ତତ୍) ସେହି ଅବସ୍ଥା, ତାହାର ସ୍ୱଭାବ ଧର୍ମାଦି ।

ତଦ୍ଭାବାପନ୍ନ—ବି.ବିଂ. ( ୨ତତ୍ ) ତଦବସ୍ଥା, ସେହି ଭାବପ୍ରାପ୍ତ, ତାହାର ଭାବପ୍ରାପ୍ତ, ଯେ ସେହିଭାବେ ରହିଅଛି ।

ତଦ୍ଭିନ୍ନ—ବି. ବିଂ. ( ୫ତତ୍ ) ତଦନ୍ୟ, ତଦିତର, ତାହାଠାରୁ ପୃଥକ୍ ।

ତଦ୍ଭୁଜ—ବି. ତରଭୁଜ ଦେଖ ।

ତଦ୍ୟପି—ଅବ୍ୟ. ତଥାପି ।

ତଦ୍ରୂପ—ବି. ବିଂ, ତତ୍ସଦୃଶ, ସେହି ପ୍ରକାରର; ( କ୍ରି.ବିଂ ) ସେହି ରୂପେ, ତଦନୁସାରେ, ସେହି ପ୍ରକାରେ ।

ତଦ୍ରୂପେ—ଗ୍ରା. କ୍ରି. ବିଂ. ସେହିପରି ।

ତଦ୍ବତ୍—ଅବ୍ୟ. ତତ୍ସଦୃଶ କ୍ରିୟାଯୁକ୍ତ, ତତ୍ତୁଲ୍ୟ ଅର୍ଥ, ତତ୍ସଦୃଶ, ବି.ବିଂ. (ତତ୍+ବତ୍) ତଦ୍ବିଶିଷ୍ଟ, ତତ୍ତୁଲ୍ୟ, ତାହାର ପରି, ତଦ୍ରୂପ ।

ତଦ୍ବତୀ—ସ୍ତ୍ରୀ. ବି. ତଦ୍ବିଶିଷ୍ଟ ।

ତଦ୍ବାଚକ—ବି. ବିଂ. (ତଦ୍+ବାଚକ) ତଦର୍ଥକ, ତତ୍ପ୍ରକାଶକ, ତାହା କହୁଥିବା, ସେହି ଅର୍ଥବୋଧକ ।

ତଦ୍ବିଧ—ବି.ବିଂ.ତତ୍ପ୍ରକାର,ତଥାବିଧ, ସେହିପ୍ରକାର ।

ତଦ୍ବିଷୟ—ବିଂ (ତତ୍+ବିଷୟ) ସେହି ବିଷୟ ବା କଥା ।

ତଦ୍ବ୍ୟତିରିକ୍ତ—ବି.ବିଂ. (ତଦ୍+ବ୍ୟତିରିକ୍ତ) ତାହା ଛଡ଼ା, ପୃଥକ୍,ତଦିତର, ତଦ୍ଭିନ୍ନ, ତଦନ୍ୟ ।

ତଦ୍ବ୍ୟତିରେକେ—ଗ୍ରା.କ୍ରି.ବିଂ.ତାହାଛଡ଼ା ।

ତଦ୍ବ୍ୟତୀତ—ବିଂ. (୨ତତ୍) ତଦତିରିକ୍ତ, ତାହାଛଡ଼ା, ତଦ୍ଭିନ୍ନ, ତଦନ୍ୟ, ତଦିତର ।

ତନ୍ଖା—ଯା. ବି. ଦରମା, ବେତନ, ବରାଦ ରତି, କୌଣସି ବ୍ୟକ୍ତିକୁ ଟଙ୍କା ଦେବା ନିମନ୍ତେ କର୍ମଗୃହ ବା ପ୍ରଜାଙ୍କ ପ୍ରତି ପ୍ରଭୁଙ୍କର ଆଦେଶପତ୍ର, ପ୍ରା.(ଗଞ୍ଜା) ବା ବନ୍ଧକ ଦେଇ ଋଣଆଣିବା ।

ତନ୍ଖି—ଯା. ବି. ତତ୍ତ୍ୱାବଧାନ ।

ତନ—ପୁଂ. ବି. ଧନ ।

ତନ—ଗ୍ରା. ବି. ଲକ୍ଷ୍ମୀକବନ୍ଧ, ପୃଥ,ତନୁ, (ତନ-ପ୍ରତ୍ୟୟ) ଘଟିବା ଅର୍ଥରେ କାଳ ଓ ସ୍ଥାନବାଚକ ଶବ୍ଦ, ସଦା, ଅଦ୍ୟ, ଅଧୁନାପ୍ରଭୃତି ଶବ୍ଦସଙ୍ଗେ କରାଯିବା ପ୍ରତ୍ୟୟ ।

ତନକ—ପୁଂ. ବି. ବେତନକ ।

ତନଘନ—ଗ୍ରା. ବି. ବିଂ ଓ କ୍ରି. ବିଂ. ତନାଘନା ଦେଖ ।

ତନବାଳ—ପୁଂ. ବି. ଜନପଦବିଶେଷ ଓ ତତ୍ସ୍ଥାନବାସୀ ।

ତନୟ—ପୁଂ. ବି. ( ତନ୍+କ. ଅୟ ) ପୁତ୍ର, ଜନ୍ମଲଗ୍ନଠାରୁ ପଞ୍ଚମ ସ୍ଥାନ ।

ତନୟବତ୍ସଳ—ବିଂ.(୭ତତ୍)ପୁତ୍ରବତ୍ସଳ, ପୁତ୍ରପ୍ରତି ଅତ୍ୟନ୍ତ ସ୍ନେହଶୀଳ ।

ତନୟବତ୍ସଳତା—ବି. (୭ତତ୍) ପୁତ୍ରପ୍ରେମ, ସନ୍ତାନପ୍ରତି ମମତା, ଅପତ୍ୟସ୍ନେହ ।

ତନୟା—ସ୍ତ୍ରୀ.ବି. (ତନୟ+ଆ)ଦୁହିତା, କନ୍ୟା, ଚକ୍ରକୁଲ୍ୟା, ପୃଶ୍ନିପର୍ଣ୍ଣୀ, ଘୃତକୁମାରୀ, କୃଷ୍ଣତୁଳସୀ ।

ତନୟିତ୍ନୁ—ପୁଂ. ବି. (ତନ୍+କ.ଇତ୍ନୁ) ଅଶନି, ମେଘ, ବଜ୍ର ।

ତନା—ସ୍ତ୍ରୀ. ବି. ଧନ ।

ତନାଘନା—ଗ୍ରା. ବି. ତରବର, ତମ୍ବି ତାଗିଦା,(ବିଂ) ଅତି ତ୍ୱରାଯୁକ୍ତ,(କ୍ରି.ବିଂ) ତ୍ୱରାଯୁକ୍ତ ଭାବରେ ।

ତନାଘନାକରିବା—ଗ୍ରା. କ୍ରି. ଅତ୍ୟନ୍ତ ତ୍ୱରାଯୁକ୍ତକରିବା, ଅତ୍ୟନ୍ତ ତମ୍ବିକରିବା ।

ତନାଜା—ଯା. ବି. ଅରୁଆ, ବଗଡ଼ା, ଶତ୍ରୁତା, ଅଦାଉତି ।

ତନାଦି—ପୁଂ.ବି. ଧାତୁପାଠୋକ୍ତ ଧାତୁଗଣବିଶେଷ । [ ଗବାକ୍ଷ ।

ତନାଦି—ଯା. ବି. ଜାଲାକବାଟି,ଝରକା,

ତନି—ପ୍ରା. (ମେଦ) ବି. ତୋଡ଼ାଣୀ ।

ତନିକା—ସ୍ତ୍ରୀ. ବି. ( ତନ+ଅକ+ଆ ) ବନ୍ଧନରଜ୍ଜୁ, କାଛୁ ।

ତନିମା—ପୁଂ. ବି. ( ତନୁ+ଇମନ୍ ) ତନୁତ୍ୱ, ସୂକ୍ଷ୍ମତ୍ୱ, କୃଶତା, ଯନ୍ତୁତ୍ ।

ତନିଷ୍ଠ—ବି. ବିଂ. ( ତନୁ+ଇଷ୍ଠ ) ଅତି ଅଳ୍ପ, କ୍ଷୀଣତର, ଅତି କୃଶ ।

ତନୀୟାନ୍—ବି. ବିଂ. ଅତି ଅଳ୍ପ, ଅତି କୃଶ, ଅନେକ ମଧ୍ୟରୁ ଜଣେ ।

ତନୁ—ସ୍ତ୍ରୀ.ବି. ( ତନ+ଣ.ଉ ) ଅଙ୍ଗ, ମୂର୍ତ୍ତି, ଶରୀର ଚର୍ମ, ଶରୀର, ଯୋଗଶାସ୍ତ୍ରୋକ୍ତ ଅସ୍ମିତ ପ୍ରଭୃତି କ୍ଲେଶ, ଜ୍ୟୋତିଷୋକ୍ତ ଲଗ୍ନସ୍ଥାନ, (ବିଂ) କୃଶ, ଅଳ୍ପ, ବିରଳ, ଶ୍ରେଷ୍ଠ, କ୍ଷୀଣ, କୋମଳ ।

ତନୁକ—ବି ଓ ବିଂ.ତନୁ ଦେଖ,ଧାତକୀପୁଷ୍ପ, ବାହାଡ଼ା, ଦାରୁଚିନି ।

ତନୁଃ—ବି. ( ତନ୍+ଅଧି.ଉସ )ଶରୀର, ଦେହ ।

ତନୁକୂପ—ବି. ( ୬ତତ୍ ) ଲୋମକୂପ,

ଲୋମକୂଳ ।    [ ଆମ୍ବଡ଼ା ।

ତନୁକ୍ଷୀର—ପୁଂ.ବି.(ବ.ବ୍ରୀ)ଅମ୍ରାତକବୃକ୍ଷ,

ତନୁଗୃହ—କ୍ଳୀ.ବି. ଜ୍ୟୋତଷୋକ୍ତ ଲଗ୍ନ-ସ୍ଥାନ ।

ତନୁଚ୍ଛଦ—ପୁଂ.ବି.(ତନୁ+ଛଦ+କ.ଅ) କବଚ, ବର୍ମ, ସାଞ୍ଜୁ, ଚମଡ଼ା, ଦେହ-ଚର୍ମ, ଦେହାବରଣ ।

ତନୁଚ୍ଛାୟ—ପୁଂ.ବି.(ବ.ବ୍ରୀ) ଅଳ୍ପଚ୍ଛାୟା ବିଶିଷ୍ଟ,(ବି) ବବୁରଗଛ, କଣ୍ଟା କୁସୁମ-ଗଛ, ଜଳବବୁରଗଛ ।

ତନୁଚ୍ଛାୟା—ବି.(୬ତତ୍) ଶରୀରର ଛାୟା, ଦେହର ଛାଇ, (ସ୍ତ୍ରୀ.ବି) ତନୁଚ୍ଛାୟର ସ୍ତ୍ରୀଲିଙ୍ଗ ରୂପ ।

ତନୁଜ—ପୁଂ.ବି. (ତନୁ+ଜନ୍+କ,ଅ) ପୁତ୍ର, ଜ୍ୟୋତଷୋକ୍ତ ଲଗ୍ନଠାରୁ ପଞ୍ଚମ ସ୍ଥାନ, ( ବିଂ ) ଶରୀରରୁ ଉତ୍ପନ୍ନ, (ସ୍ତ୍ରୀ) ତନୁଜା ।

ତନୁଜା—ସ୍ତ୍ରୀ.ବି. କନ୍ୟା, ଦୁହିତା ।

ତନୁତା—ସ୍ତ୍ରୀ.ବି. (ତନୁ+ତା) ତନୁତ୍ୱ, ଅଳ୍ପତ୍ୱ, କୃଶତା, ଦୁର୍ବଳତା, ଲଘୁତା ।

ତନୁତ୍ୟକ୍—ତ୍ରି.ବିଂ. ଯେ ତନୁ ତ୍ୟାଗ-କରେ, ତନୁ ତ୍ୟାଗକାରୀ ।    [ ମୃତ୍ୟୁ ।

ତନୁତ୍ୟାଗ—ପୁଂ.ବି. (୬ତତ୍)ଦେହତ୍ୟାଗ,

ତନୁତ୍ର—କ୍ଳୀ.ବି. ( ତନୁ+ତ୍ରୈ+କ.ଅ ) ବର୍ମ, ଅଙ୍ଗରକ୍ଷା, ସାଞ୍ଜୁ, କବଚ ।

ତନୁତ୍ରବାନ୍—ପୁଂ. ବି. ତନୁତ୍ରଧାରୀ, ବର୍ମଧାରୀ, କବଚଧାରୀ ।

ତନୁତ୍ରାଣ—କ୍ଳୀ.ବି.(ତନୁ+ତ୍ରୈ+କ.ଅନ) ବର୍ମ, ସାଞ୍ଜୁ, କବଚ ।

ତନୁତ୍ୱକ୍—ସ୍ତ୍ରୀ. ବି. କ୍ଷୁଦ୍ରାଗ୍ନିମନ୍ଥ ବୃକ୍ଷ, ଦାରୁଚିନି, ଶ୍ରେଷ୍ଠ ଚନ୍ଦନଆଦି ଗଛ, (ବିଂ) କ୍ଷୁଦ୍ରତ୍ୱକ୍‌ଯୁକ୍ତ ।

ତନୁଦାନ—ବି.( ୬ତତ୍ ) ଦେହଦାନ, ନିଜର ଦେହକୁ କୌଣସି ଉଦ୍ଦେ-ଶ୍ୟରେ ଅର୍ପଣ, ( କ.ଧା ) ଅଳ୍ପଦାନ, ( ସ୍ତ୍ରୀପକ୍ଷରେ ) ଆପଣାକୁ ପୁରୁଷକୁ ସମ୍ଭୋଗାର୍ଥ ଅର୍ପଣ କରିବା ।

ତନୁଧାମ—ସ୍ତ୍ରୀ.ବି.(୬ତତ୍)ତନୁର ଆଶ୍ରୟ ।

ତନୁପତ୍ର—ପୁଂ. ବି. ଇଙ୍ଗୁଦବୃକ୍ଷ, ପୁଇ ଗୃନ୍ଦି ଆଦି ଗଛ,(ବିଂ)ଅଳ୍ପ ପତ୍ରଯୁକ୍ତ ବୃକ୍ଷ-ମାନେ ।

ତନୁପାତଳ—ତ୍ରି.ବିଂ.କ୍ଷୀଣ ଦେହବିଶିଷ୍ଟ ।

ତନୁଭବ—ପୁଂ.ବି. ପୁତ୍ର,(ସ୍ତ୍ରୀ) କନ୍ୟା ।

ତନୁଭସ୍ତ୍ରା—ସ୍ତ୍ରୀ.ବି. ନାସିକା, ନାକ ।

ତନୁଭସ୍ତ୍ରି—ପୁଂ.ବି. ପତଳା ।

ତନୁଭିଣା—ତ୍ରି.ବି.ଦେହ ବିଦୀର୍ଣ୍ଣ ହେବା ।

ତନୁଭୂମି—ସ୍ତ୍ରୀ. ବି. ବୌଦ୍ଧ ଶ୍ରାବକମାନ-ଙ୍କର ଜୀବନର ଏକଅଂଶ ।

ତନୁଭୃତ୍—ତ୍ରି.ବିଂ. ( ତନୁ+ଭୃ+କ.-କ୍ୱିପ୍ )ଦେହଧାରୀ,ଦେହୀ, (ପୁଂ ବା ସ୍ତ୍ରୀ.ବି) ଜୀବ, ପ୍ରାଣୀ ।

ତନୁମଧ୍ୟା—ସ୍ତ୍ରୀ.ବି. କୃଶମଧ୍ୟା, (ସ୍ତ୍ରୀ) ଷଡ଼-କ୍ଷର ଛନ୍ଦୋବିଶେଷ, (ବିଂ) କ୍ଷୀଣକଟି-ବିଶିଷ୍ଟା (ସ୍ତ୍ରୀ) ।

ତନୁମାନ୍—ପୁଂ.ବି.(ତନୁ+ମତ୍)ଦେହୀ, ଶରୀରୀ, ସ୍ତ୍ରୀ. ତନୁମତୀ ।

ତନୁରସ—ପୁଂ.ବି. ଘର୍ମ, ଝାଳ ।

ତନୁରୁଚି—ବି. (୬ତତ୍) ଶରୀରର କାନ୍ତି, ଶରୀରର ସୌନ୍ଦର୍ଯ୍ୟ ।

ତନୁ(ନୂ)ରୁଟ୍—ପୁଂ. ବି. ( ତନୁ+ରୁହ-+କ୍ୱିପ୍ )ଲୋମ, ରୋମ ।

ତନୁରୁହ—କ୍ଳୀ.ବି. (ତନୁ+ରୁହ+କ.ଅ) ଲୋମ, ପକ୍ଷୀର ପର, ପୁତ୍ର କନ୍ୟା, ସନ୍ତାନ ।

ତନୁଲ—ତ୍ରି.ବିଂ.(ତନ୍+କ.ଉଲ)ବିସ୍ତୃତ

ତନୁବାତ—ପୁଂ.ବି. ( ବ.ବ୍ରୀ ) ନରକ-ବିଶେଷ,(ବିଂ) ଅଳ୍ପ ବାୟୁଯୁକ୍ତ(ସ୍ଥାନ)

ତନୁବାର—କ୍ଳୀ.ବି. (ତନୁ+ବୃ+କ.ଅ) କବଚ, ସନ୍ନାହ, ସାଞ୍ଜୁ ।

ତନୁବୀଜ—ପୁଂ.ବି. ରାଜବଦର ବୃକ୍ଷ, ନଅର କୋଳି,(ବିଂ) ସ୍ୱଳ୍ପ ବୀଜଯୁକ୍ତ

ତନୁବ୍ରଣ—ପୁଂ.ବି. ବଲ୍ମୀକ ରୋଗ ।

ତନୁସଞ୍ଚାରିଣୀ—ସ୍ତ୍ରୀ.ବି.(ତନୁ+ସମ୍+-ଚର+ଇନ୍+ଈ) ଯୁବତୀ ସ୍ତ୍ରୀ ।

ତନୁସର—ପୁଂ. ବି. ( ତନୁ+ସୃ+ଅ ) ସ୍ୱେଦ, ଘର୍ମ ।    [ ଦ୍ୱାର ।

ତନୁ(ନୂ)ହ୍ରଦ—ପୁଂ. ବି. ପାୟୁ, ଗୁହ୍ୟ

ତନୂ—ବି ଓ ବିଂ.(ତନୁ ଦେଖ) ।

ତନୂକରଣ—କ୍ଳୀ. ବି. ( ତନୁ+ଚ୍ୱି+କରଣ )ବଡ଼ ପଦାର୍ଥକୁ ଛୋଟ କରିବା ।

ତନୂକୃତ୍—ତ୍ରି.ବି.( ତନୁ+କୃ+କ୍ୱିପ୍ ) ସୂକ୍ଷ୍ମ ରୂପ ଶରୀରକାରୀ ।

ତନୂକୃତ—ତ୍ରି.ବି. (ତନୁ+କୃ+ର୍ମ.ତ) ଅଳ୍ପୀ କୃତ, ଛଷ୍ଟ, ତୀକ୍ଷ୍ଣ ହୋଇ ସାନ ହୋଇଥିବା ।

ତନୂକୃଥ—(ବୈଦିକ)ପୁତ୍ର ନିମିତ୍ତ ସ୍ତୁତ ।

ତନୂଜ—ପୁଂ.ବି ଓ ବିଂ.ତନୁଜ ଦେଖ ।

ତନୂଜନି—ପୁଂ.ବି.(ବ.ବ୍ରୀ) ପୁତ୍ର, (ସ୍ତ୍ରୀ) କନ୍ୟା ।

ତନୂଜା—ସ୍ତ୍ରୀ.ବି. କନ୍ୟା ।

ତନୂଜାଙ୍ଗ—କ୍ଳୀ.ବି. ପକ୍ଷ, ପାଳକ ।

ତନୂତଳ—ପୁଂ.ବି. ପରିମାଣବିଶେଷ,ଏକ ବ୍ୟାମ, ଏକ ବେଣି ।

ତନୂଦୂଷି—ତ୍ରି.ବି. ଶରୀରର ଦୂଷଣ ବା ନାଶକାରୀ ।

ତନୂଦେବତା—ପୁଂ.ବି.ଅଗ୍ନି ମୂର୍ତ୍ତିଭେଦ

ତନୂଦେଶ—ପୁଂ.ବି. ଅଙ୍ଗପ୍ରତ୍ୟଙ୍ଗ ।

ତନୂଦ୍ଭବ—ପୁଂ.ବି.(ତନୂ+ଉତ୍+ଭୂ+-କ.ଅ) ପୁତ୍ର, ସ୍ତ୍ରୀ, କନ୍ୟା, (ପୁଂ.ବି) ଦେହରୁ ଜାତ ।

ତନୂନ—କ୍ଳୀ.ବି.(ବ.ବ୍ରୀ) ବାୟୁ ।

ତନୂନପ—କ୍ଳୀ.ବି.( ତନୁ+ଉନ+ପା-+କ.ଅ ) ଘୃତ ।

ତନୂନପାତ୍—ପୁଂ ବି.(ତନୁନପ+ଅ+କ୍ୱିପ୍)ଅଗ୍ନି ,ପ୍ରଜାପତିଙ୍କର ଗୋତ୍ର (କ୍ଳୀ.) ଘୃତ, ଅଗ୍ନ୍ୟୁଦ୍ଦେଶ୍ୟକ ପ୍ରଯାଜଭେଦ ।

ତନୂନପ୍ତା—ପୁଂ. ବି. (୬ତତ୍) ବାୟୁ ।

ତନୂପା—ପୁଂ. ବି. (ତନୁ+ପା+କ.କ୍ୱିପ୍) ଜଠରାଗ୍ନି ,ଦେହପାଳକ ମାତ୍ର।

ତନୂପାନ—ତ୍ରି.ବିଂ.ଶରୀର ପାଳକ,ଅଙ୍ଗ-ରକ୍ଷକ ।

ତନୂପାବନ—ତ୍ରି. ବିଂ. ତନୁ ବା ଜୀବନ ରକ୍ଷାକାରୀ ।

ତନୂପୃଷ୍ଠ—ପୁଂ. ବି. ସୋମଯାଗ ଭେଦ ।

ତନୂବଳ—କ୍ଳୀ.ବି.(୬ତତ୍)ଶରୀରର ବଳ

ତନୂର—ଯା. ବି. ଚୁଲୀ, ଚୁଲ୍ଲି, ଘିଅମ୍ବିଇ ।

ତନୂରୁହ—କ୍ଳୀ. ବି. (ତନୂ+ରୁହ+କ,

ଅ) ଲୋମ, ପକ୍ଷୀମାନଙ୍କର ପକ୍ଷ, ପକ୍ଷୀର ଡେଣା, ପୁଚ୍ଛ, ଗରୁଡ଼ ।

**ତନୂରୁହାଙ୍କୁର**—ବି. ଲୋମ ।

**ତନୂଜ**—ପୁଂ. ବି. ଉତ୍ତମ ମନୁଙ୍କର ପୁତ୍ର ଜଣେ ନୃପ ।

**ତନୂବଶୀ**—ପୁଂ. ବି. ଅଗ୍ନି ।

**ତନୁଶୁଭ୍ର**—ବି. ବିଂ. ଶରୀରଭୂଷକ ।

**ତନୂହବିଃ**—କ୍ଲୀ. ବି. ବେଦମନ୍ତ୍ର ଦ୍ୱାରା ସଂସ୍କୃତ ଘୃତାଦି ହବନୀୟ ବସ୍ତୁ ।

**ତନୂହ୍ରଦ**—ପୁଂ. ବି. ପାୟୁ, ଗୁହ୍ୟଦ୍ୱାର ।

**ତନ୍ତ**—ଗ୍ରା. ବି. (ସଂ-ତନ୍ତ୍ର) ଲୁଗାବୁଣିବା ଯନ୍ତ୍ର, ଚମଦଉଡ଼ି, ବୀଣା ବେହେଲାଆଦିର ଚମଡ଼ାର ତାର ।

**ତନ୍ତକଣ୍ଟାଳିକ**—ଗ୍ରା. ବି. ଯେଉଁବ୍ୟକ୍ତି କୌଣସି କାର୍ଯ୍ୟକୁ ବିଗାଡ଼ିଦିଏ, ବିଶ୍ୱାସଘାତକ ଲୋକ ।

**ତନ୍ତଗୀଡ଼**—ଗ୍ରା. ବି. ତନ୍ତ ଯନ୍ତ୍ର ତଳେ ଥିବା ଗର୍ତ୍ତ, ତନ୍ତରେ ଲୁଗାବୁଣିବା ସମୟରେ ତନ୍ତ ଯାହା ଭିତରକୁ ଗୋଡ଼ ଲମ୍ବାଇ ବସେ ।

**ତନ୍ତପଡ଼ିଆ**—ଗ୍ରା. ବି. ତନ୍ତରେ ବୁଣିବା କାର୍ଯ୍ୟ ବନ୍ଦହେବା ।

**ତନ୍ତବୁଣା**—ଗ୍ରା. ବି. ତନ୍ତରେ ବୁଣିବା କାର୍ଯ୍ୟ, (ଗ୍ରା. ବିଂ. ତନ୍ତରେ ବୁଣା ହୋଇ ଥିବା (ବସ୍ତ୍ର) ।

**ତନ୍ତରକଣ୍ଟା**—ଗ୍ରା. ବିଂ. ଶେଷ ସଙ୍ଘାତକ, ଯେ ଭିତରେ ବୃତ୍ତି ଉପରେ ବାଧ ଦିଏ ଓ ବାହାରେ ବନ୍ଧୁ ନ ପଡ଼େ ।

**ତନ୍ତରି**—ଗ୍ରା.ବି. ତେନ୍ତରି ଦେଖ ।

**ତନ୍ତଶାଳ**—ଗ୍ରା.ବି. ଯେଉଁ ଘରେ ତନ୍ତ ବସା ଯାଇଥାଏ ।

**ତନ୍ତି**—ସ୍ତ୍ରୀ.ବି.(ତନ୍+ର୍ମ.ତି) ଦୀର୍ଘ ପ୍ରସାରିତ ରଜ୍ଜୁ, ଗାଈ, ଗୌରୁ, (ଗ୍ରା.ବି) ଯେଉଁ ଜାତିର ଲୋକେ ଲୁଗା ବୁଣନ୍ତି, (ଗ୍ରା.ବିଂ) ନିର୍ବୋଧ, ଓଲୁ, ମୂର୍ଖ ।

**ତନ୍ତିଆ**—ଗ୍ରା. ବିଂ. ଅଠାଳିଆ ।

**ତନ୍ତିଆଣୀ**—ଗ୍ରା.ସ୍ତ୍ରୀ.ବି. ତନ୍ତିର ସ୍ତ୍ରୀଲିଙ୍ଗରୂପ, ତନ୍ତିଜାତୀୟା ସ୍ତ୍ରୀଲୋକ ।

**ତନ୍ତିପାଳ**—ପୁଂ.ବି.(ତନ୍ତି+ପାଳ+କ.ଅ) ଗୋପାଳକ, ଗଉଡ଼, ବିରାଟ ରାଜ୍ୟରେ, ସହଦେବଙ୍କର ଗୁପ୍ତ ନାମ ।

**ତନ୍ତୁ**—ପୁଂ.ବି. (ତନ୍+କ.ରୁ) ସୂତା, ତାର, ସୂରୁଲ, ବୁଢ଼ିଆଣୀ ଜାଲ, ହାଙ୍ଗର, ଗ୍ରାହ, ସୂତ୍ର, ସନ୍ତାନ,ଅପତ୍ୟ, ବଂଶପରମ୍ପରା(+ସ୍ତ୍ରୀ.ରୁ) ବିସ୍ତାର ।

**ତନ୍ତୁକ**—ପୁଂ.ବି. (ତନ୍ତୁ+କ) ସର୍ଷପ, ସୋରିଷ, (ସ୍ତ୍ରୀ)ନାଡ଼ୀ ।

**ତନ୍ତୁକାଷ୍ଠ**—କ୍ଲୀ.ବି.(ତନ୍ତୁ+କାଷ୍ଠ)ତାଷଣ, ଯାହାଦ୍ୱାରା ତନ୍ତିମାନେ ସୂତାକୁ ପରିଷ୍କାର କରନ୍ତି ବା ମାଜନ୍ତି ।

**ତନ୍ତୁକା**—ସ୍ତ୍ରୀ.ବି. (ତନ୍ତୁକ+ଆ) ନାଡ଼ୀ, ଶିରା, ଧମନୀ ।

**ତନ୍ତୁକୀଟ**—ପୁଂ.ବି. କୀଟବିଶେଷ, ଗୋଟିପୋକ, ତସରପୋକ, ମାକଡ଼ସା ।

**ତନ୍ତୁଣ**—ପୁଂ.ବି. (ତନ୍+ଉନ୍) ଗ୍ରାହ, ହାଙ୍ଗର, ସମୁଦ୍ରର ସାପ, କୁମ୍ଭୀର ।

**ତନ୍ତୁନାଗ**—ପୁଂ.ବି. ତନ୍ତୁଣ ଦେଖ ।

**ତନ୍ତୁନାଭ**—ପୁଂ.ବି.(ବ.ବ୍ରୀ)ମାକଡ଼ସା, ବୁଢ଼ିଆଣୀ, ଉର୍ଣ୍ଣନାଭ । [ଗଛ ।

**ତନ୍ତୁନିର୍ଯାସ**—ପୁଂ.ବି.(ବ.ବ୍ରୀ) ତାଳ-

**ତନ୍ତୁପର୍ବ**—କ୍ଲୀ.ବି.(ତନ୍ତୁ+ପର୍ବନ୍)ଗହ୍ମାପୂର୍ଣ୍ଣିମା, ରାକ୍ଷୀପୂର୍ଣ୍ଣିମା, ଶ୍ରାବଣ ମାସର ପୂର୍ଣ୍ଣିମା ।

**ତନ୍ତୁଭ**—ପୁଂ.ବି. (ତନ୍ତୁ+ଭା+କ.ଅ) ସର୍ଷପ, ସୋରିଷ, ବାଛୁରି ।

**ତନ୍ତୁମତ୍**—ପୁଂ.ବି. ଅଗ୍ନି ।

**ତନ୍ତୁମତୀ**—ସ୍ତ୍ରୀ. ବି.ମୁରାରଙ୍କ ମାତା

**ତନ୍ତୁର(ଲ)**—କ୍ଲୀ. ବି. (ତନ୍ତୁ+ରା+କ.ଅ) ମୃଣାଳ, ପଦ୍ମନାଡ଼ ।

**ତନ୍ତୁବର୍ଦ୍ଧକ**—ବି. (୬ତତ୍) ବୀଣା, ସିତାରଆଦି ଯନ୍ତ୍ରବଜାଇବା ବ୍ୟକ୍ତି ।

**ତନ୍ତୁବାନ୍**—ତ୍ରି. ବିଂ. ବୟନ ।

**ତନ୍ତୁବାପ**—ପୁଂ. ବି. (ତନ୍ତୁ+ବପ+କ.ଅ) ତନ୍ତି, ବୁଢ଼ିଆଣୀ, ତନ୍ତୁବାୟ, ତନ୍ତ୍ର, ତନ୍ତ ।

**ତନ୍ତୁବାୟ**—ପୁଂ. ବି. (ତନ୍ତୁ+ବେ+କ.ଅ) ମାକଡ଼ସା, ତନ୍ତୀ, ବୁଢ଼ିଆଣୀ ।

**ତନ୍ତୁବାୟଦଣ୍ଡ**—ପୁଂ. ବି. ତନ୍ତୁବାୟ ସାଧନ ଦଣ୍ଡ ।

**ତନ୍ତୁବିଗ୍ରହା**—ସ୍ତ୍ରୀ.ବି.(ବ.ବ୍ରୀ)କଦଳୀଗଛ ।

**ତନ୍ତୁଶାଳା**—ସ୍ତ୍ରୀ.ବି.(୬ତତ୍) ତନ୍ତୁବପନ ଗୃହ, ଲୁଗା ବୁଣିବାର ଘର ।

**ତନ୍ତୁସନ୍ତତ**—ତ୍ରି. ବିଂ. (ବ.ବ୍ରୀ) ବୁଣା (ଲୁଗା), ସିଲାଇ ହୋଇଥିବା (ଲୁଗା), ସ୍ୟୂତ, ସୂକ୍ଷ୍ମବସ୍ତୁତ ବସ୍ତ୍ର ।

**ତନ୍ତୁସନ୍ତତି**—ସ୍ତ୍ରୀ. ବି. (୬ତତ୍)ବୟନ ।

**ତନ୍ତୁସାର**—ପୁଂ. ବି. (ବ.ବ୍ରୀ) ଗୁବାକ ବୃକ୍ଷ, ଗୁଆଗଛ, (ବିଂ)ଅତିକୃଶ ବ୍ୟକ୍ତି ।

**ତନ୍ତ୍ର**—ବି. (ତନ୍+କ.ତ୍ର) ଶିବୋକ୍ତ ଶାସ୍ତ୍ର ବିଶେଷ, ଶିବ ଓ ଶିବଙ୍କର ପୂଜା ବା ଉପାସନା ବିଷୟକ ଶାସ୍ତ୍ର, ତନ୍ତ, ସୂତ୍ର ସୂତା, ମୀମାଂସା ସିଦ୍ଧାନ୍ତ, ବେଦର ଶାଖା ବିଶେଷ, ଔଷଧ, କାରଣ, ହେତୁ, ମୂଳ, ଉପାୟ, କୌଶଳ, ପରିଚ୍ଛଦ, ବସ୍ତ୍ର,ଝାଡ଼ିବା ମନ୍ତ୍ର,ମନ୍ତ୍ରଯନ୍ତ୍ର,ଅନ୍ୟବ୍ୟକ୍ତିଙ୍କ ପ୍ରତି ମାରଣ, ବଶୀକରଣ, ସ୍ତମ୍ଭନ, ମୋହନ, ଉଚାଟନାଦି, ପ୍ରୟୋଗବିଧି, ରାଜ୍ୟଶାସନ, ମିତ୍ର, ରାଜସମ୍ପତ୍ତିବ୍ୟାହାରୀ ଲୋକ, ସୈନ୍ୟ ରାଜ୍ୟ, ସମୂହ, ଅଧୀନତା, ବୀଣା ଆଦି ବାଦ୍ୟର ଚର୍ମନିର୍ମିତ ସୂକ୍ଷ୍ମସୂତ୍ର, ଉଦ୍ଦେଶ୍ୟ, ମତ, ସମ୍ପ୍ରଦାୟ, ଦଳ, କୁଳ, ପୂଜାବିଧି, କର୍ମକାଣ୍ଡ ପଦ୍ଧତି, ପରିଚ୍ଛେଦ, ପ୍ରବନ୍ଧ, ପ୍ରାଧାନ୍ୟ, ସ୍ୱରାଜ୍ୟଚିନ୍ତା, ବିଧାନ, ବିଧି, ଅନ୍ତର୍ନିହିତ ନିୟମ, ତନ୍ତ, ବସ୍ତ୍ରବୟନ ସାମଗ୍ରୀ, ଆହ୍ଲାଦ,ଆନନ୍ଦ, କୁଟୁମ୍ବଭରଣ ପୋଷଣାଦି କର୍ମ, ନିଶ୍ଚିତ, ସିଦ୍ଧାନ୍ତ, ପ୍ରମାଣକାର୍ଯ୍ୟ, ରାଜକର୍ମଚାରୀଗଣ, ଅଧିକାର, ପଦ, କର୍ମକ୍ଷେତ୍ର, ଶ୍ରେଣୀ, ବର୍ଗ, ଶପଥ ଗୃହ,ଧନ, (ବିଂ)ଶାସିତ,ଅଧୀନ, ଆୟତ୍ତ ।

**ତନ୍ତ୍ରକ**—କ୍ଲୀ. ବି. ନୂତନବସ୍ତ୍ର, (ଗ୍ରା. ବି) ତାରବାଦ୍ୟ ।

**ତନ୍ତ୍ରକାଷ୍ଠ**—କ୍ଲୀ. ବି. (ମ.ଧା) ତନ୍ତସ୍ଥିତ କାଷ୍ଠଭେଦ, ତାଷଣ, ତନ୍ତ ।

**ତନ୍ତ୍ରଣ**—କ୍ଲୀ.ବି. ଶାସନ ବା ପ୍ରବନ୍ଧ ଆଦି କରିବା କର୍ମ ।

ତନ୍ତ୍ରତା—ବି. (ତନ୍ତ୍ର+ତା) ଅଧୀନତା, ଷଡ଼ଯନ୍ତ୍ର, କୌଶଳ, ଘନିଷ୍ଠତା, ଏକ ସଙ୍ଗେ ବହୁକାର୍ଯ୍ୟର ପ୍ରାରମ୍ଭକରଣ, ଏକ କର୍ମ ପରବର୍ତ୍ତୀରେ ଅନ୍ୟ କର୍ମ କରଣ, ବହୁଉଦ୍ଦେଶ୍ୟ ସାଧନାର୍ଥ ଗୋଟିଏ କାର୍ଯ୍ୟ କରିବା ।

ତନ୍ତ୍ରଧାରକ—ପୁଂ. ବି. ଯେଉଁ ବ୍ୟକ୍ତି କର୍ମକାଣ୍ଡର ପଦ୍ଧତି ଅନୁସାରେ କର୍ମ କରୁଥିବା ବ୍ୟକ୍ତିଙ୍କୁ ମନ୍ତ୍ରପାଠ କରାଏ, କର୍ମକାଣ୍ଡର ପ୍ରଚାରକ ।

ତନ୍ତ୍ରମନ୍ତ୍ର—ବି. (୬ତତ୍) ତନ୍ତ୍ରୋକ୍ତମନ୍ତ୍ର, (ଗ୍ରା. ବି)ମନ୍ତ୍ରଯନ୍ତ୍ର, ଗୁଣିଗାରଡ଼ି ।

ତନ୍ତ୍ରଯାନ—ଗ୍ରା.ବି.ବୌଦ୍ଧଧର୍ମର ତାନ୍ତ୍ରିକ ଶାଖା ବିଶେଷ ।

ତନ୍ତ୍ରଯୁକ୍ତି—ବି. ଯେଉଁ ଯୁକ୍ତିର ସାହାଯ୍ୟରେ କୌଣସି ବାକ୍ୟର ଅର୍ଥ ବୁଝିହୁଏ ।

ତନ୍ତ୍ରବାପ—ପୁଂ. ବି.(ତନ୍ତ୍ର+ବପ+କ. ଅ)ତନ୍ତୁବାୟ,ତନ୍ତି,ମାକଡ଼ସା,ବୁଢ଼ିଆଣୀ ।

ତନ୍ତ୍ରବାୟ—ପୁଂ. ବି.(ତନ୍ତ୍ର+ବେ+କ. ଅ) ତନ୍ତୁବାୟ, ତନ୍ତି, ମାକଡ଼ସା, ତନ୍ତ୍ର, ତନ୍ତ୍ର । [ ପ୍ରଣାଳୀ ।

ତନ୍ତ୍ରସଂସ୍ଥା—ସ୍ତ୍ରୀ. ବି.(୬ତତ୍)ରାଜ୍ୟଶାସନ

ତନ୍ତ୍ରସ୍ଥିତି—ସ୍ତ୍ରୀ. ବି. (୬ତତ୍) ରାଜ୍ୟ ଶାସନ ପ୍ରଣାଳୀ ।

ତନ୍ତ୍ରସାଧନ(ନା)—ବି. (୬ତତ୍)ତନ୍ତ୍ରୋକ୍ତ ପଦ୍ଧତିକୁ ଅବଲମ୍ବନ କରି ସିଦ୍ଧିଲାଭ କରିବା ନିମନ୍ତେ କରାଯିବା କ୍ରିୟାକଳାପ ।

ତନ୍ତ୍ରସାର—ବି. (୬ତତ୍) ତନ୍ତ୍ରମନ୍ତ୍ର ମାନଙ୍କରୁ ସଂଗୃହୀତ ସାରାଂଶ ପୁସ୍ତକ ।

ତନ୍ତ୍ରସ୍କନ୍ଧ—ବି. ଜ୍ୟୋତିଃଶାସ୍ତ୍ରର ଯେଉଁ ଗଣନା ଦ୍ୱାରା ଗ୍ରହାଦିଙ୍କ ଗତି ନିରୂପିତ ହୁଏ, ଗଣିତ ଜ୍ୟୋତିଷ ।

ତନ୍ତ୍ରହୋମ—ପୁଂ.ବି. (କ.ଧା) ତନ୍ତ୍ରଶାସ୍ତ୍ରମତରେ ଅନୁଷ୍ଠିତ ହୋମ ।

ତନ୍ଦ୍ରା—ସ୍ତ୍ରୀ. ବି. ( ତନ୍ଦ୍ରି+ଷ୍ଣ.ଅ+ଆ ) ଅଳ୍ପନିଦ୍ରା ।

ତନ୍ତ୍ରାବାପ—ବି. (୬ତତ୍) ସ୍ୱରାଜ୍ୟ ଓ ପର ରାଜ୍ୟ ଚିନ୍ତନ ।

ତନ୍ତ୍ରାୟୀ—ପୁଂ. ବି.(ତନ୍ତ୍ର+ଇ+ଇନ୍) କାଳଚକ୍ରଗାମୀ ସୂର୍ଯ୍ୟାଦି ।

ତନ୍ଦ୍ରି—ସ୍ତ୍ରୀ. ବି. ତନ୍ଦ୍ରି, ତନ୍ଦ୍ରା ।

ତନ୍ଦ୍ରିକା—ସ୍ତ୍ରୀ. ବି. (ତନ୍ତ୍ର+କ+ଆ) ଗୁଡ଼ୁଚୀ, ଗୁଳୁଚଲତା ।

ତନ୍ଦ୍ରିଜ—ସ୍ତ୍ରୀ. ବି. ତନ୍ଦ୍ରୀ, ତନ୍ଦ୍ରା ।

ତନ୍ଦ୍ରିତ—ବିଂ. (ତନ୍ଦ୍ରି+ଇତ) ଆଳସ୍ୟଯୁକ୍ତ, ଅଳସ, ଅବସନ୍ନ, (ସ୍ତ୍ରୀ)ତନ୍ଦ୍ରିତା ।

ତନ୍ତ୍ରିପାଳ—ପୁଂ. ବି. (ତନ୍ତ୍ରି+ପାଳ) ଗୋମାତୃ ପାଳକ, ବିରାଟରାଜ୍ୟରେ ଗୁପ୍ତ ଭାବରେ ଅବସ୍ଥାନ କାଳରେ ସହଦେବଙ୍କ ଗୃହୀତ ନାମ ।

ତନ୍ତ୍ରିପାଳକ—ପୁଂ. ବି. (ତନ୍ତ୍ର+ଇ+ପାଳକ) ସୈନ୍ୟାଧ୍ୟକ୍ଷ,ଜୟଦ୍ରଥ ରାଜା ।

ତନ୍ତ୍ରୀ—ସ୍ତ୍ରୀ. ବି. (ତନ୍ତ୍ର+ଈ) ତନ୍ତ୍ର, ତାରଯୁକ୍ତ, ବାଦ୍ୟଯନ୍ତ୍ର, ତନ୍ତ୍ର ବିଦ୍ୟାସାଧକ ବ୍ୟକ୍ତି, , ବୀଣା ଗୁଣ, ଗୁଡ଼ୁଚୀ, ଦେହଶିରା, ନାଡ଼ୀ, ନଦୀଭେଦ,ଯୁବତୀଭେଦ, ରଜଜୁ ( ତନ୍ତ୍ର+ଇନ ) ଯେଉଁ ବ୍ୟକ୍ତି କୌଣସି ଅନୁଷ୍ଠାନର ତତ୍ତ୍ୱାବଧାନ କରେ, ବାଦ୍ୟ ବାଦକ, ଗାୟକ, (ବିଂ) ଦଳବଦ୍ଧ, ସମ୍ପ୍ରଦାୟବଦ୍ଧ ।

ତନ୍ତ୍ରୀମୁଖ—ପୁଂ. ବି. ହସ୍ତର ଅବସ୍ଥାନ ଭେଦ ।

ତନ୍ତୃଗ—କ୍ଲୀ.ବି.(୬ତତ୍)ମୃଦଙ୍ଗର ଅଗ୍ରଭାଗ ।

ତନ୍ଥୀ—ଅବ୍ୟ. ସ୍ୱୀକାର, ଅଭ୍ୟୁପଗମ ।

ତନ୍ଦରା—ପ୍ରା. (ଗଞ୍ଜାମ) ବି. (ସଂ-ହରା) ଉଦ୍‌ବେଗ, ଉତ୍କଣ୍ଠା-ଅସ୍ଥିରତା, (ବିଂ) ଉଦ୍‌ବିଗ୍ନ, ଅସ୍ଥିର,ହଇରାଣ ।

ତନ୍ଦରାକରିବା—ପ୍ରା.(ଗଞ୍ଜାମ)କ୍ରି.କୌଣସି କାର୍ଯ୍ୟ କରିବା ନିମନ୍ତେ କୌଣସି ବ୍ୟକ୍ତିକୁ ହଇରାଣ କରାଇବା ।

ତନ୍ଦରାପଡ଼ିବା—ଗ୍ରା. କ୍ରି. କୌଣସି ବିଷୟରେ ଉଦ୍‌ବିଗ୍ନହେବା ।

ତନ୍ଦୁର(ର)—ଯା. ବି. ପାଉଁରୁଟି ତିଆର କରାଯିବା ଚୁଲ୍ଲି ବା ଭାଟି ।

ତନ୍ଦୁରସ୍ତ—ଯା. ବିଂ. ନୀରୋଗ, ସୁସ୍ଥ ।

ତନ୍ଦୁରସ୍ତି—ଯା. ବି. ଆରୋଗ୍ୟ, ସ୍ୱାସ୍ଥ୍ୟ ।

ତନ୍ଦୁଲୀୟକ—ବି. ଲେଉଟିଆ ଶାଗ ।

ତନ୍ଦ୍ରବାପ—ପୁଂ. ବି. ତନ୍ତୁବାୟ, ତନ୍ତି, ମାକଡ଼ସା, ବୁଢ଼ିଆଣୀ । [ ତନ୍ତ୍ର ।

ତନ୍ଦ୍ରବାୟ—ପୁଂ. ବି. ତନ୍ତବାୟ, ତନ୍ତି,

ତନ୍ଦ୍ରା—ସ୍ତ୍ରୀ. ବି. (ତନ୍ଦ୍ର+ଷ୍ଣ.ଅ+ଆ) ନିଦ୍ରାବେଶ, ଅଳ୍ପନିଦ୍ରା, ଆଳସ୍ୟ,ଗ୍ଲାନି, ଢୁଳା, ଘୁମାଇବା, ଅବସାଦ ।

ତନ୍ଦ୍ରାଭିଭୂତ—ବିଂ. ( ୩ତତ୍ ) ନିଦ୍ରାରେ ଆସକ୍ତ ହୋଇଥିବା ।

ତନ୍ଦ୍ରାଯୁକ୍ତ—ବିଂ. (୩ତତ୍) ଢୁଳାଉଥିବା, ନିଦ୍ରାସକ୍ତ ।

ତାନ୍ଦ୍ରାଳୁ—ବି.ବିଂ.(ତନ୍ଦ୍ରା+ଆଳୁ)ଆଳସ୍ୟଯୁକ୍ତ, ନିଦ୍ରାଳୁ,ଅଳସ, କ୍ଳାନ୍ତ ।

ତନ୍ଦ୍ରାସକ୍ତ—ବିଂ. (୭ତତ୍) ତନ୍ଦ୍ରାଭିଭୂତ ଦେଖ ।

ତନ୍ଦ୍ରି—କ୍ଲୀ.ବି.(ତନ୍ଦ୍ରା+ଷ୍ଣ.ଇ)ଅଳ୍ପନିଦ୍ରା, ଆଳସ୍ୟ, ନିଦ୍ରାବେଶ, କ୍ଳାନ୍ତି, ମୂର୍ଚ୍ଛା ।

ତନ୍ଦ୍ରିକସନ୍ନିପାତ—ବି. ଏକପ୍ରକାର ସନ୍ନିପାତକ ଜ୍ୱର ।

ତନ୍ଦ୍ରିକା— ସ୍ତ୍ରୀ. ବି. (ତନ୍ଦ୍ର+ଇକ+ଆ) ତନ୍ଦ୍ରି ଦେଖ ।

ତନ୍ଦ୍ରିଜ—ପୁଂ. ବି. ଯଦୁବଂଶୀୟ କନବକ ନୃପତିଙ୍କ ପୁତ୍ର ।

ତନ୍ଦ୍ରିତ—ବିଂ. (ତନ୍ଦ୍ର+ଇତ) ଆଳସ୍ୟଯୁକ୍ତ, ନିଦ୍ରାସକ୍ତ, ତନ୍ଦ୍ରାଳୁ, କ୍ଳାନ୍ତ ।

ତନ୍ଦ୍ରିତା—ସ୍ତ୍ରୀ.ବି.ନିଦ୍ରାଳୁତା,ଆଳସ୍ୟତା ।

ତନ୍ଦ୍ରିପାଳ—ପୁଂ.ବି.ଯଦୁବଂଶୀୟ କନବକ ନୃପତିଙ୍କ ପୁତ୍ରଭେଦ ।

ତନ୍ଦ୍ରୀ—ସ୍ତ୍ରୀ. ବି. (ତନ୍ଦ୍ର+ଇ+ଈ) ତନ୍ଦ୍ରା, ନିଦ୍ରାବେଶ, ଆଳସ୍ୟ, ଭ୍ରୂକୁଟି, ଭ୍ରୂ, କ୍ଳାନ୍ତି, ମୂର୍ଚ୍ଛା ।

ତନ୍ନ—ଅବ୍ୟ. (ତତ୍+ନ) ତା ନୁହେ ।

ତନ୍ନତନ୍ନ—ଗ୍ରା. କ୍ରି. ବିଂ, ପୁଙ୍ଖାନୁପୁଙ୍ଖ, ବିଶଦ ଭାବରେ, ଅତି ସୂକ୍ଷ୍ମ ଭାବରେ, ବଗ୍ରର ପ୍ରଟକ, ଆଦ୍ୟୋପାନ୍ତ ।

ତନ୍ନ—ସ୍ତ୍ରୀ. ବି. ଚନ୍ଦକୁଲ୍ୟା, ଗୃହଳିଆ, ଗୃହୁଳିଆ ।

ତନ୍ନମିତ୍ର—କ୍ରି. ବିଂ. ସେହି କାରଣରୁ,

ସେହି ସକାଶେ, ତଦର୍ଥ ।

ତନ୍ନିବନ୍ଧନ—କ୍ରି.ବି°. ସେହି କାରଣରୁ, ସେହି ସକାଶେ, ବି°.(ନ.ବ୍ରୀ) ସେହି କାରଣଯୁକ୍ତ, ସେହି ବନ୍ଧନଯୁକ୍ତ, ବି. (କ.ଧା) ସେହିକାରଣ, ସେହିବନ୍ଧନ ।

ତନ୍ୱଙ୍ଗୀ—ସ୍ତ୍ରୀ. ବି. (ବ.ବ୍ରୀ) କ୍ଷୀଣାଙ୍ଗୀ, କୃଶାଙ୍ଗୀ, (ସ୍ତ୍ରୀ. ବି)କୃଶାଙ୍ଗୀ ସ୍ତ୍ରୀ, ଶାଲପର୍ଣ୍ଣୀବୃକ୍ଷ, ହଂସପକ୍ଷୀ ।

ତନ୍ୱୀ—ସ୍ତ୍ରୀ. ବି. (ତନୁ + ଈ) କ୍ଷୀଣାଙ୍ଗୀ, କୃଶାଙ୍ଗୀ, (ବି) ସଂସ୍କୃତ ବୃତ୍ତି ବିଶେଷ, ଶାଲପର୍ଣ୍ଣୀବୃକ୍ଷ, ଶ୍ରୀକୃଷ୍ଣଙ୍କର ଏକ ସ୍ତ୍ରୀ ।

ତନ୍ମତତା—ସ୍ତ୍ରୀ. ବି. ସେହିମତ ।

ତନ୍ମଧ୍ୟ—କ୍ଲୀ. ବି.(୬ତତ୍ପୁ) ତାହାର ମଧ୍ୟ, ତହିଁର ମଧ୍ୟ ।

ତନ୍ମଧ୍ୟରୁ—ଗ୍ରା. ଅବ୍ୟ ତହିଁର ମଧ୍ୟସ୍ଥଳରୁ, ସେମାନଙ୍କ ମଧ୍ୟରୁ ।

ତନ୍ମଧ୍ୟରେ—ଗ୍ରା. ଅବ୍ୟ. ତହିଁର ଅନ୍ତର୍ଦେଶରେ, ସେହିସମସ୍ତ ମଧ୍ୟରେ, ସେମାନଙ୍କ ମଧ୍ୟରେ ।

ତନ୍ମଧ୍ୟସ୍ଥ—କ୍ରି.ବି°. ତନ୍ମଧ୍ୟବର୍ତ୍ତୀ, ତହିଁର ମଧ୍ୟସ୍ଥିତ ।

ତନ୍ମନ—ଗ୍ରା.ବି°. ତନ୍ମନସ୍କ, ଅନନ୍ୟମନସ୍କ. ଏକାଗ୍ରଚିତ୍ତ ।

ତନ୍ମନା—ବି°. (ବ.ବ୍ରୀ) ତନ୍ମନ ଦେଖ ।

ତନ୍ମୟ—ପୁଂ. ବି°. ତତ୍ସ୍ୱରୂପ, ତଦ୍ଭାବାପନ୍ନ, ତଦାସକ୍ତଚିତ୍ତ, ତନ୍ନିମଗ୍ନ, ନିବିଷ୍ଟ ।

ତନ୍ମୟଚିତ୍ତ—ବି°. (ବ.ବ୍ରୀ) ତହିଁରେ ନିବିଷ୍ଟମନା ।

ତନ୍ମୟତା(ତ୍ୱ)—କ୍ଲୀ. ବି. ତଦ୍ଭାବ ପୂର୍ଣ୍ଣତା, ତତ୍ସ୍ୱରୂପତା, ତଦାତ୍ମକତ୍ୱ ।

ତନ୍ମୟାସକ୍ତ—ବି. ଭଗବାନଙ୍କଠାରେ ତନ୍ମୟହେବା ।

ତନ୍ମାତ୍ର—କ୍ଲୀ. ବି. (ତତ୍ + ମାତ୍ର) ସାଂଖ୍ୟ ମତରୁ ସୂକ୍ଷ୍ମ ଅମିଶ୍ର ପଞ୍ଚଭୂତ ବିଶେଷ, ସେହିମାତ୍ର, ତେତିକମାତ୍ର, (ବି°)ସେହି ମାତ୍ରକ, ସେହିପରିମିତ, ( କ୍ରି. ବି° ) କେବଳ ତାହାହିଁ, ତେତିକମାତ୍ର ।

ତନ୍ମାତ୍ରତା—ସ୍ତ୍ରୀ. ବି. ତନ୍ମାତ୍ରତ୍ୱ,ସାଂଖ୍ୟମତରେ,ସୂକ୍ଷ୍ମପଥ ଅମିଶ୍ର ପଞ୍ଚଭୂତବିଶେଷ ।

ତନ୍ମାତ୍ରିକ—କ୍ରି.ବି°. ତନ୍ମାତ୍ର ସମ୍ବନ୍ଧୀୟ ।

ତନ୍ୟତା—ପୁଂ. ବି. ବାୟୁ,ରାତ୍ରି, ବାଦ୍ୟ, ସଙ୍ଗୀତ ଯନ୍ତ୍ର ବିଶେଷ,ଗର୍ଜନ, ଅଶନି, ପର୍ଜ୍ଜନ୍ୟ ।

ତନ୍ୟତୁ—ପୁଂ. ବି. (ତନ+କ. ଯତୁ) ବାୟୁ, ରାତ୍ରି, ତନ୍ୟତା ଦେଖ ।

ତନ୍ୟୁ—କ୍ରି.ବି°.(ତନ + ଯୁ)ଅନାଦେଶଃ ।

ତପ୍ଲ—ପ୍ରା.(ସମ୍ବ.)ବି°. ତପ୍ତ, ତାତଲ ।

ତପ—ବି. (ତପ୍+କ.ଅ)ତପନ, ସୂର୍ଯ୍ୟ, ଆତପ, ଗ୍ରୀଷ୍ମକାଳ,ଉତ୍ତାପ, (ବି°)ତାପଦାୟକ, ଗରମ, (ସ୍ତ୍ରୀ) ତପା ।

ତପଃ—ବି. (ତପ୍+ଣ. ଅସ୍) ତପସ୍ୟା. ଧର୍ମାର୍ଥ ବ୍ରତ, ବ୍ରାହ୍ମଣାଦିଙ୍କ ଧର୍ମ ବା କର୍ତ୍ତବ୍ୟ, ଦେବତା ଆଦିଙ୍କ ଧ୍ୟାନ, ଅଦୃଷ୍ଟ, (ଭ୍ର + ଅସ୍) ଆଚରଣ, ଆଲୋଚନା, ସପ୍ତଭୁବନ ମଧ୍ୟରୁ ଗୋଟିଏ, ତପୋଲୋକ, ଶୀତଋତୁ, ମାଘମାସ. ଶରୀର ବା ଇନ୍ଦ୍ରିୟଗଣର ବଶୀକରଣ, ଅଗ୍ନି, ଲଗ୍ନର ନବମ ସ୍ଥାନ ।

ତପଃକର—ବି°. (ତପଃ+କୃ+କ.ଅ) ଯେ ତପସ୍ୟାକରେ, ତପସ୍ୱୀ, (ପୁଂ.ବି) ତପସ୍ୱୀ ମାଛ ।

ତପଃକୃଶ—ପୁଂ. ବି°. (୩ତତ୍ପୁ) ବ୍ରତ ବା ତପସ୍ୟା ଦ୍ୱାରା ଶୀର୍ଣ୍ଣଦେହ ବ୍ୟକ୍ତି ।

ତପଃକ୍ଲେଶ—ବି. (୬ତତ୍ପୁ) ତପସ୍ୟା ଜନିତ ଦୁଃଖ ବା ଶାରୀରିକ କଷ୍ଟ ।

ତପଃକ୍ଲେଶସହ—ବି°. ତପସ୍ୟା ଜନିତ କ୍ଲେଶ ଯେ ସହ୍ୟ କରେ, ଇନ୍ଦ୍ରିୟ ସଂଯମର କାରକ, ତପସ୍ୱୀ ।

ତପଃପରାୟଣ—ପୁଂ. ବି°. (ବ.ବ୍ରୀ)ତପସ୍ୟାରେ ରତ ।

ତପଃପ୍ରଧାନ—ପୁଂ. ବି°.(ବ.ବ୍ରୀ)ଯାହାର ତପସ୍ୟାହିଁ ପ୍ରଧାନ କାର୍ଯ୍ୟ ।

ତପଃପ୍ରଭାବ—ବି. (୬ତତ୍ପୁ) ତପୋବଳ, ତପସ୍ୟା ଜନିତ ବଳ । [ ଦେଖ ।

ତପଃଶକ୍ତି—ବି. ( ୬ତତ୍ପୁ ) ତପଃପ୍ରଭାବ

ତପଃଶୀଳ—ବି°. (ବ.ବ୍ରୀ) ତପସ୍ୟାରେ ସର୍ବଦା ଅନୁରକ୍ତ ।

ତପଃସାଧନ—ବି.(୬ତତ୍ପୁ)ତପସ୍ୟାକରିବା, ତପସ୍ୟାର ଉପକରଣ ।

ତପଃସ୍ଥଳୀ—ବି. (୬ତତ୍ପୁ) ତପସ୍ୟା କରିବାର ସ୍ଥାନ, କାଶୀଧାମ, ବାରାଣସୀ ।

ତପଃସ୍ଥାନ—ବି. (୬ତତ୍ପୁ) ତପୋବନ, ତପସ୍ୟା କରିବାର ସ୍ଥାନ ।

ତପଗୃଷ୍ଣ—ଗ୍ରା. ବି°. ଯେ ତପସ୍ୟାକରେ, (ବି) ତପସ୍ୱୀ ।

ତପତ୍ର—ପ୍ରା.(ସମ୍ବ)ବି°. ତପ୍ତ, ତାତଲ ।

ତପତ—ଗ୍ରା.(ପଦ୍ୟ)ବି°.ଉତ୍ତପ୍ତ, ଗରମ, ତତଲା ।

ତପତ—ଗ୍ରା. (ପଦ୍ୟ) ବି. ତାତ,ଉତ୍ତାପ, ତାପ, (ଲ.ଅର୍ଥ) ଦୁଃଖ, କ୍ଲେଶ ।

ତପତୀ—ସ୍ତ୍ରୀ. ବି. ( ତପ୍ + ଅତ୍ + ଈ ) ସୂର୍ଯ୍ୟକନ୍ୟା,ଛାୟାଗର୍ଭସଂଭୂତା,ସାବର୍ଣ୍ଣୀଙ୍କ ଅନୁଜା, କୁରୁବଂଶୀୟ ସମ୍ବରଣ ରାଜାଙ୍କ ପତ୍ନୀ, ସୂର୍ଯ୍ୟ ପତ୍ନୀ, ଛାୟା ଦେବୀ, ତାପ୍ତି ନଦୀ ।

ତପନ୍—ବି°. (ତପ୍+କ.ଅତ୍) ତାପଦ, ପ୍ରକାଶଯୁକ୍ତ, (ସ୍ତ୍ରୀ) ତପନ୍ତୀ ।

ତପନ—ବି. (ତପ୍+କ.ଅନ) ସୂର୍ଯ୍ୟ, ସୂର୍ଯ୍ୟକାନ୍ତମଣି,ନରକର ଭାଗବିଶେଷ, ଭଲିଆ, ଗ୍ରୀଷ୍ମକାଳ, ଅଗ୍ନିବିଶେଷ, ଆକନ୍ଦ ବୃକ୍ଷ, ଅର୍କ ଗଛ, ଖରା, ନାୟକ ବିୟୋଗରେ ନାୟିକା ପ୍ରଦର୍ଶିତ ହାବଭାବ, (ଭା+ଅନ) ଉତ୍ତାପ,ତାପ,ଦାହ, ଜ୍ୱଳନ, (ବି°-କ.ଅନ) ଉତ୍ତାପ ଜନକ, ସନ୍ତାପକ ।

ତପନକର—ପୁଂ.ବି. (ତପନ+କୃ+ଅ) ସୂର୍ଯ୍ୟ କିରଣ, ବହ୍ନି, ଖରା । [ ରଶ୍ମି ।

ତପନକିରଣ—ବି. (୬ତତ୍) ଖରା,ସୂର୍ଯ୍ୟ-

ତପନଚ୍ଛଦ—ପୁଂ. ବି. ଆଦିତ୍ୟ ପୁଷ୍ପ ବୃକ୍ଷ, ଅର୍କ ଗଛ, ଅଣ୍ଡାସୁଖିଆ ।

ତପନଜ—ପୁଂ. ବି. (ତପନ+ଜନ+କ ଅ) ତପନତନୟ ଦେଖ ।

ତପନଜା—ସ୍ତ୍ରୀ. ବି. (ତପନ + ଜନ+ କ.ଅ+ଆ) ତପନ ତନୟା ଦେଖ ।

ତପନତନୟ—ପୁଂ. ବି. (୬ତତ୍ପୁ)ସୂର୍ଯ୍ୟପୁତ୍ର ଯମ, କର୍ଣ୍ଣ, ଶନି, ସୁଗ୍ରୀବ ।

ତପନତନୟା—ସ୍ତ୍ରୀ. ବି. (୬ତତ୍) ଶମୀ ବୃକ୍ଷ, ଶାଇ ଗଛ, ସୂର୍ଯ୍ୟ କନ୍ୟା, ଯମୁନା ନଦୀ, ବ୍ରଜାଙ୍ଗନା, ଗୋପୀ, ଗୋଦାବରୀ ନଦୀ ।

ତପନତାପ—ବି. (୬ତତ୍) ସୂର୍ଯ୍ୟଙ୍କର ତେଜ, ଖରା ।

ତପନତାପନ—ପୁଂ. ବି. (କ.ଧା) ତପ-ପ୍ରଦ ସୂର୍ଯ୍ୟ, ( ୬ତତ୍ ) ସୂର୍ଯ୍ୟକିରଣ, (ବିଂ. କ.ଧା) ସୂର୍ଯ୍ୟବତ୍ ତାପଦାୟକ ।

ତପନମଣି—ପୁଂ. ବି. (୬ତତ୍) ସୂର୍ଯ୍ୟକାନ୍ତମଣି ।

ତପନାଂଶୁ—ପୁଂ. ବି. (୬ତତ୍) ସୂର୍ଯ୍ୟକିରଣ, ଖରା ।

ତପନାତ୍ମଜ—ପୁଂ. ବି. (୬ତତ୍) ତପନ ତନୟ ଦେଖ ।

ତପନୀ—ସ୍ତ୍ରୀ. ବି. (୬ତତ୍) ଗୋଦାବରୀ ନଦୀ, ଅକାନବିଣ୍ଡୀ ଲତା ।

ତପନୀୟ—କ୍ଲୀ. ବି. ସୁବର୍ଣ୍ଣ, କନକ, ଧୁତୁରା, କଳାଦୁଦୁରା, ( ବିଂ ) ଉତ୍ତପ୍ତ କରିବାର ଉପଯୁକ୍ତ ।

ତପନୀୟକ—ବି. (ତପନୀୟ + କ) ସ୍ୱର୍ଣ୍ଣ ।

ତପନେଷ୍ଟ—କ୍ଲୀ.ବି.(୬ତତ୍) ତାମ୍ର,ତମ୍ବା ।

ତପନୋପଳ—ପୁଂ. ବି.ସୂର୍ଯ୍ୟକାନ୍ତମଣି ।

ତପନ୍ତକ—ପୁଂ.ବି.ମହାରାଜ ଉଦୟନଙ୍କ ବିଦୂଷକ ବସନ୍ତକଙ୍କର ପୁତ୍ର, ନରବାହନ ଦତ୍ତଙ୍କ ବନ୍ଧୁ ।

ତପବନ୍ତ—ଗ୍ରା.ବିଂ. ତପୋବନ୍ତ ଦେଖ ।

ତପରଖ—ଗ୍ରା. ବି. ପରୀକ୍ଷା, ତଦାରଖ, ତତ୍ତ୍ୱାବଧାରଣ, ତନଖି ।

ତପଶ୍ଚର—ବି. (ତପସ୍ + ଚର + କ.ଅ) ତପସ୍ୟା କରୁଥିବା ବ୍ୟକ୍ତି,(ବିଂ)ତପସ୍ୟାକାରୀ ।

ତପଶ୍ଚରଣ—କ୍ଲୀ.ବି. ତପଶ୍ଚର୍ଯ୍ୟା,ତପସ୍ୟା, ତପଃସାଧନା, ତପସ୍ୟା କରିବା, ମୁନିବୃତ୍ତି । [ ତପସ୍ୟା ।

ତପଶ୍ଚର୍ଯ୍ୟା—ସ୍ତ୍ରୀ.ବି. (୬ତତ୍) ବ୍ରତଚର୍ଯ୍ୟା,

ତପଶ୍ଚାରୀ—ପୁଂ. ବି ଓ ବିଂ. (ତପସ୍+ଚର+କ.ଇନ୍) ତପଶ୍ଚର ଦେଖ ।

ତପସ୍—କ୍ଲୀ. ବି. ତପସ୍ୟା, ମୁନିବ୍ରତ, ଆଲୋଚନାତ୍ମକ ଈଶ୍ୱର ଜ୍ଞାନବିଶେଷ, କ୍ଷୁତ୍ପିପାସା, ମୌନାଦି ବ୍ରତବିଶେଷ ।

ତପସ—ପୁଂ. ବି. (ତପ+ଅସ ) ସୂର୍ଯ୍ୟ, ଚନ୍ଦ୍ର, ପକ୍ଷୀ ।

ତପସିଲ—ଯା. ବି. ବିବରଣ, ବିସ୍ତାରିତ ବିବରଣ, ତାଲିକା, ଫେରସ୍ତ, ଫର୍ଦ୍ଦ, କୈଫିୟତ, ବିଶ୍ଳେଷଣ,ବିଭଜନ,ସୂଚୀ, ଟୀକା, ( ଗ୍ରା.ବିଂ ) ଯାହାର ବିସ୍ତାରିତ ବିବରଣ ନିମ୍ନରେ ଦିଆଗଲା, ତପସିଲ ଲିଖିତ ।

ତପସଲମୁତାବକ—ଯା. ଅବ୍ୟ. ତାଲିକା ବା ବିସ୍ତୃତ ବିବରଣ ଅନୁସାରେ ।

ତପସୀମାଛ—ପ୍ରା.ବାଲେ. ବି. ଏକପ୍ରକାର ମାଛ, ବୋଦସି ମାଛ ।

ତପୋସାମୂର୍ତ୍ତି—ପୁଂ. ବି. ଦ୍ୱାଦଶ ମନ୍ୱନ୍ତରରେ ଚତୁର୍ଥ ସାବର୍ଣ୍ଣୀୟ ସମୟେ ସପ୍ତର୍ଷି ମଧ୍ୟରୁ ଜଣେ ।

ତପସ୍ତକ୍ଷ—ପୁଂ. ବି. (ତପସ୍+ତକ୍ଷ+କ.ଅ) ଇନ୍ଦ୍ର ।

ତପସ୍ତେଜ—ବି.(କ.ଧା)ତପାନଳ ଦେଖ

ତପସ୍ତତି—ପୁଂ. ବି. (୬ତତ୍)ଦ୍ୱିଜ,ବିପ୍ର ।

ତପସ୍ୟ—ପୁଂ.ବି. ଫାଲ୍ଗୁନମାସ,ଅର୍ଜୁନ, କୁନ୍ଦପୁଷ୍ପ, ତପଶ୍ଚରଣ,ତାପସ ମନୁଙ୍କର ଦଶପୁତ୍ର ମଧ୍ୟରୁ ଜଣେ,ବିଂ. (ତପସ୍+ଯ) ତପସ୍ୟାରେ ରତ, ତପୋନିଷ୍ଠ ।

ତପସ୍ୟା—ସ୍ତ୍ରୀ. ବି. (ତପସ୍+ଯ+ଆ) ପର୍ଯ୍ୟାୟ ବ୍ରତାଦାନ, ପରିଚର୍ଯ୍ୟା,ନିୟମ ସ୍ଥିତି, ବ୍ରତଚର୍ଯ୍ୟା, ଅଭୀଷ୍ଟ ଫଳ ପ୍ରାପ୍ତି ନିମିତ୍ତ କଠୋର ବ୍ରତ ସାଧନା, ଅରଣ୍ୟାଦି ବିଜନ ସ୍ଥାନରେ କଠୋର ନିୟମରେ ଦେବାରାଧନା,ତପସ୍ୟାମତ୍ସ୍ୟ ଦେଖ ।

ତପସ୍ୟାଚରଣ—ବି. (୨ତତ୍) ଯୋଗସାଧନ, ବ୍ରତାଦି କଠୋର ନିୟମ ପାଳନ । [ ଜାତ ।

ତପସ୍ୟାଜନିତ—ବିଂ. (୫ତତ୍) ତପସ୍ୟାରୁ

ତପସ୍ୟାବିଘ୍ନ—ବି.(୬ତତ୍) ତପସ୍ୟାଭଙ୍ଗ ଦେଖ ।

ତପସ୍ୟାଭଙ୍ଗ—ବି. (୬ତତ୍) କୌଣସି ବ୍ୟକ୍ତି କରୁଥିବା ତପସ୍ୟା ଅନୁଷ୍ଠାନରେ ଜାତହେବା ବାଧା ।

ତପସ୍ୟାମତ୍ସ୍ୟ—ପୁଂ. ସ୍ତ୍ରୀ. ବି. କଉମାଛପରି ଦଶ ବାରଆଙ୍ଗୁଳ ଲମ୍ବା ଚେପ୍ଟା ଈଷତ୍ ହଳଦିଆ କଣ୍ଟକପକ୍ଷୀ ଲୁଣିମାଛ ବିଶେଷ ।

ତପସ୍ୱାନ୍—ପୁଂ. ବି. ତପସ୍ୱୀ, ( ବିଂ ) ତପସ୍ୟା କରୁଥିବା, ତପୋରତ ।

ତପସ୍ୱିତା—ସ୍ତ୍ରୀ. ବି. (ତପସ୍ୱିନ୍+ତା) ତପସ୍ୱୀ ହେବାର ଅବସ୍ଥା, ତପସ୍ୱୀତ୍ୱ ।

ତପସ୍ୱିନୀ—ସ୍ତ୍ରୀ. ବି. ( ତପସ୍ୱିନ୍+ଈ ) ତପସ୍ୟାକାରିଣୀ ସ୍ତ୍ରୀ, ତପଶ୍ଚାରିଣୀ, ଜଟାମାଂସୀ, ଋଷିପତ୍ନୀ, ପତିବ୍ରତା ବା ସାଧ୍ୱୀ (ସ୍ତ୍ରୀ), କଟୁକୀ, ବଡ଼ ଗୋରଖମୁଣ୍ଡୀ, (ବିଂ) ଦୀନା,ଦୁଃଖିତା,ପତିବ୍ରତା ।

ତପସ୍ୱିପତ୍ର—ପୁଂ. ବି. ଦମନକ ବୃକ୍ଷ ।

ତପସ୍ୱୀ—ପୁଂ.ବି. (ତପସ୍+ବିନ୍) ସଂସାର ବିରକ୍ତ ଅରଣ୍ୟାଶ୍ରମବାସୀ ବ୍ୟକ୍ତି, ସଂଯତେନ୍ଦ୍ରିୟ ବ୍ୟକ୍ତି,ମୁନି,ତପସ୍ୟାମତ୍ସ୍ୟ ଦେଖ, ଘୃତକୁମାରୀ, ( ବିଂ ) ଧାର୍ମିକ, ବ୍ରତଧାରୀ, ଧର୍ମାର୍ଥ କ୍ଲେଶସହିଷ୍ଣୁ, ଶାନ୍ତସ୍ୱଭାବ, ନିର୍ଦ୍ଦୋଷଦାନ, ଦୟାରଯୋଗ୍ୟ ।

ତପା—ଯା. ବି. ଟପା, ପ୍ରଗନ୍ନା, ତାଲୁକ, ମୁସଲମାନ ରାଜତ୍ୱ ସମୟରେ କରଯାଇଥିବା ଦେଶାଂଶର ବିଭାଗ ।

ତପାତ୍ୟୟ—ପୁଂ. ବି. (ବ.ବ୍ରୀ) ବର୍ଷାକାଳ, ଗ୍ରୀଷ୍ମାବସାନ ।

ତପାନଳ—ବି. (କ.ଧା) ତପସ୍ୟାଜନିତ ତେଜଃ । [ ବସାନ ।

ତପାନ୍ତ—ପୁଂ. ବି. ଗ୍ରୀଷ୍ମକାଳ, ଗ୍ରୀଷ୍ମା-

ତପିତ—ବି. ବିଂ. ତପ୍ତ, ଉଷ୍ଣ, ଉଜ୍ଜ୍ୱଳ, ସଂସ୍କୃତ, ମାର୍ଜିତ (ସୁବର୍ଣ୍ଣ) ।

ତପିଷ୍ଠ—ବି.ବିଂ.ଅତିଶୟ ତାପକ, ଅତିଶୟ ତପ୍ତ ।

ତପିଷ୍ଣୁ—ବି. ବିଂ. ତାପକାରୀ, ତପନ ।

ତପୀ—ଗ୍ରା.ବି. ତପସ୍ୱୀ, (ବିଂ) ତପସ୍ୟାକାରୀ ।

ତପୀୟାନ୍—ପୁଂ. ବିଂ. ଅତିଶୟ ତାପ-

କାରୀ, ଅତଏବ ତପସ୍ୟାକାରକ ।

ତପୂ—ବି.ବିଂ.ତାପକ, ତାପଯୁକ୍ତ, ତପ୍ତ, ଉଷ୍ଣ ।

ତଃପୂଃ—ଗ୍ରା.ଅବ୍ୟ.ଭଉଁରିଆରେ କୌଣସି କ୍ଷେତ୍ର ପୂର୍ବବର୍ତ୍ତୀ କ୍ଷେତ୍ରର ପୂର୍ବଦିଗରେ ଥିଲେ ଏହି ସାଙ୍କେତିକ ଚିହ୍ନ ଲେଖାଯାଏ ।

ତପୂରଗ—ବି.ବିଂ.ଅଗ୍ରଗ, ଉଷ୍ଣତାଯୁକ୍ତ ।

ତପୂର୍ଜନ୍ମ—ବି. ଉତ୍ତପ୍ତ ଜନ୍ମ, ଅଗ୍ନି ।

ତପୂର୍ମୂର୍ଦ୍ଧା—ପୁଂ. ବି. (ବ.ବ୍ରୀ) ଯାହାର ମସ୍ତକ ଉତ୍ତପ୍ତ, ଅଗ୍ନି ।

ତପୂର୍ବଧ—ବି. ବିଂ. ଉତ୍ତପ୍ତ ଅସ୍ତ୍ରଯୁକ୍ତ ।

ତପୁଷି—ବି. ବିଂ. ତାପକ ।

ତପୁସ—ଗ୍ରା. ବି. ଜଣେ ଉତ୍କଳବାସୀ ବଣିକଙ୍କ ନାମ, ଯେ କି ପରେ ବୁଦ୍ଧଦେବଙ୍କ ଶିଷ୍ୟ ହୋଇଥିଲେ ।

ତପୁସୀ—ସ୍ତ୍ରୀ.ବି. କ୍ରୋଧ, (ଗ୍ରା.ବି) ରୁଷି ।

ତପୁଷ୍ଟା—ବି. ବିଂ. ଜ୍ୱାଳାରୁ ରକ୍ଷା ।

ତପୁସ୍—ପୁଂ. ବି. ସୂର୍ଯ୍ୟ, ଅଗ୍ନି, ତପନ, (ବିଂ) ତପନଶୀଳ, ତାପଯୁକ୍ତ ।

ତପ୍—ବି. (ତପ୍ + କ.ଅ) ଅଗ୍ନି, ସୂର୍ଯ୍ୟ, ଶତ୍ରୁ ।

ତପେ—ଗ୍ରା.ଅବ୍ୟ.ତପା ମଧ୍ୟରେ, ପ୍ରଗଣାର ଅନ୍ତର୍ଗତ ।

ତପେଇବା—ପ୍ରା.(ଗଞ୍ଜାମ) ବି. ଗୁଣ୍ଡିଦେବା, ପ୍ରା. (କଳାହାଣ୍ଡି) ବି. ତତେଇବା ।

ତପୋଜ—ବି.ବିଂ.ତପସ୍ୟାଜାତ, ଅଗ୍ନିଜାତ ।

ତପୋକା—ସ୍ତ୍ରୀ. ବି. ଜଳ ।

ତପୋଦ—ପୁଂ. ବି. ମଗଧର ଗୋଟିଏ ତୀର୍ଥ ।

ତପୋଦାନ—କ୍ଲୀ.ବି.ତୀର୍ଥଭେଦ, ତପୋଦାନ ଗୋଟିଏ ତୀର୍ଥ ।

ତପୋଧନ—ବି.ବିଂ.ତପୋରତ,ତପସ୍ୱୀ, ତପୋଯୁକ୍ତ, ଅତ୍ୟନ୍ତ ଧାର୍ମିକ, (ବି. ବ.ବ୍ରୀ) ଯୋଗୀ, ମୁନି, ଋଷି, ତପୋରୂପ ଧନ,ଦମନକ ବୃକ୍ଷ, ମୁଣ୍ଡୀରୀ ବୃକ୍ଷ, ଗୋରଖମୁଣ୍ଡୀ, ତପସ୍ୟା ଦ୍ୱାରା ଲଭ୍ୟ ସ୍ୱର୍ଗାଦି ।

ତପୋଧନା—ସ୍ତ୍ରୀ. ବି. ମୁଣ୍ଡୀରୀ ବୃକ୍ଷ, ଗୋରଖମୁଣ୍ଡୀ ।

ତପୋଧର୍ମ—ପୁଂ.ବି.ତପସ୍ୟା ହିଁ ଯାହାର ଧର୍ମ; ତପସ୍ୱୀ, ତପସ୍ୟାର ଧର୍ମ, ଗ୍ରୀଷ୍ମ କାଳର ଧର୍ମ ।

ତପୋଧୃତି—ପୁଂ.ବି.ତପୋରତ,ତପସ୍ୱିବିଶେଷ, ସପ୍ତର୍ଷିଭେଦ ଦ୍ୱାଦଶ ମନ୍ୱନ୍ତରରେ ଚତୁର୍ଥ ସାବର୍ଣ୍ଣୀୟ ସମସ୍ତ ସପ୍ତର୍ଷି ମଧ୍ୟରୁ ଜଣେ ।

ତପୋନିଧି—ପୁଂ. ବି. (ବ.ବ୍ରୀ) ତପସ୍ୱୀ, ମୁନି, ଅତ୍ୟନ୍ତ ଧାର୍ମିକ ବ୍ୟକ୍ତି ।

ତପୋନିଷ୍ଠ—ପୁଂ.ବିଂ. ତପସ୍ୟା ନିରତ, ତପଃପରାୟଣ, (ସ୍ତ୍ରୀ) ତପୋନିଷ୍ଠା ।

ତପୋଭଙ୍ଗ—ବି. (୬ତତ୍) ତପସ୍ୟାର ବ୍ୟାଘାତ, ତପୋବିଘ୍ନ ।

ତପୋଭୃତ୍—ବି. ବିଂ. ତପୋଧାରକ, ଯେ ତପସ୍ୟା ଧାରଣ କରେ ।

ତପୋଭ୍ରଷ୍ଟ—ବିଂ. (୫ତତ୍) ତପସ୍ୟ ସାଧନରୁ ବିଚଳିତ, ଯୋଗଭ୍ରଷ୍ଟ ।

ତପୋମୟ—ପୁଂ.ବିଂ.ତପଃ ପ୍ରଚୁର, ପୁଂ. (ବି) ଦ୍ରଷ୍ଟବ୍ୟ ପଦାର୍ଥ ଲୋଚନାତ୍ମକ ପରମେଶ୍ୱର ।

ତପୋମୟୀ—ସ୍ତ୍ରୀ.ବି.ତପଃ ପ୍ରଚୁର, ତପଃ ସ୍ୱରୂପା ।

ତପୋମାର୍ଗ—ପୁଂ. ବି. (କ.ଧା) ତପସ୍ୟାରୂପକ ପଥ, ଯୋଗମାର୍ଗ ।

ତପୋମୂର୍ତ୍ତି—ପୁଂ. ବି. ପରମେଶ୍ୱର, ତପସ୍ୱୀ ସପ୍ତର୍ଷି ମଧ୍ୟରୁ ଜଣେ ।

ତପୋମୂଳ—ବି. ବିଂ. (ବ.ବ୍ରୀ) ତପସ୍ୟା ହେତୁ ସ୍ୱର୍ଗାଦି, (ବି) ତାମସ ମନୁଙ୍କ ପୁତ୍ରଭେଦ ।

ତପୋରବି—ପୁଂ. ବିଂ. ସୂର୍ଯ୍ୟ ସଦୃଶ, ତେଜୋଯୁକ୍ତ, ତପସ୍କ ।

ତପୋରାଶି—ପୁଂ. ବି. ମହାମୁନି, ମୁନିଶ୍ରେଷ୍ଠ ।

ତପୋଲୋକ—ପୁଂ.ବି(କ.ଧା)ସପ୍ତ ଭୁବନ ମଧ୍ୟରୁ ତପଃ ନାମକ ଭୁବନ, ଊର୍ଦ୍ଧ୍ୱସ୍ଥିତ ଲୋକବିଶେଷ ।

ତପୋବଟ—ପୁଂ.ବି. ବ୍ରହ୍ମାବର୍ତ୍ତ ଦେଶ ।

ତପୋବନ—କ୍ଲୀ.ବି. (୬ତତ୍) ତାପସସେବ୍ୟ ବନବିଶେଷ, ମୁନିମାନଙ୍କର ଆଶ୍ରମ ସ୍ଥାନ, ତନ୍ନାମକ ତୀର୍ଥବିଶେଷ, ବୃନ୍ଦାବନସ୍ଥିତ ଗୋଟିଏ ବନ ।

ତପୋବନ୍ତ—ଗ୍ରା.ବିଂ.ତପୋନିଷ୍ଠ ଦେଖ ।

ତପୋବଳ—କ୍ଲୀ. ବି. (୬ତତ୍) ତପସ୍ୟାର ବଳ, ତପଃପ୍ରଭାବ ।

ତପୋବିଘ୍ନ—ବି. (୬ତତ୍) ତପସ୍ୟାରେ ଘଟିବା ବାଧା ।

ତପୋବୃଦ୍ଧ—ପୁଂ. ବି. ଯେ ତପସ୍ୟାଦ୍ୱାରା ଶ୍ରେଷ୍ଠତ୍ୱ ଲାଭ କରିଅଛି, ତପୋଜ୍ୟେଷ୍ଠ ।

ତପୋହଶନ—ପୁଂ. ବି. ତପୋମୂର୍ତ୍ତି ଦେଖ, ସପ୍ତର୍ଷିଭେଦ, ଦ୍ୱାଦଶମନୁଙ୍କ ପୁତ୍ରଭେଦ ।

ତପ୍ତ—ବି.ବିଂ. (ତପ + ର୍ମ.ତ) ଦୁଃଖିତ, ଅଗ୍ନିରେ ପୋଡ଼ା ହୋଇଥିବା, ପୃଷ୍ଠ ପାକଶୋଧିତ, ଉତ୍ତାପଯୁକ୍ତ, ଉଷ୍ଣ, ଗରମ,ଗଳିତ,କୁପିତ ଦୁଃଖଦ୍ୱାରା ଦଗ୍ଧ, ଆଚରିତ ।

ତପ୍ତକାଞ୍ଚନ—କ୍ଲୀ. ବି. (କ.ଧା) ଅଗ୍ନିସଂଯୋଗଦ୍ୱାରା ବିମଳ କାଞ୍ଚନ ।

ତପ୍ତକୁଣ୍ଡ—ବି. ଉଷ୍ଣ ପ୍ରସ୍ରବଣ, ଯେଉଁ ପ୍ରାକୃତିକ ଜଳଧାରା ଗରମ ହୋଇ ଭୂଗର୍ଭରୁ ବାହାରୁଥାଏ ।

ତପ୍ତକୁମ୍ଭ—ପୁଂ. ବି. (କ.ଧା) ଉତ୍ତପ୍ତ ମାଠିଆ, ନରକଭେଦ ।

ତପ୍ତକୃଚ୍ଛ୍ର—ପୁଂ. ବି. କ୍ଲୀ. (କ.ଧା) ଦ୍ୱାଦଶାହସାଧ୍ୟ ବ୍ରତବିଶେଷ ।

ତପ୍ତତୈଳଦ୍ରୋଣୀ—ସ୍ତ୍ରୀ. ବି. ନରକବିଶେଷ, ତାତିଲା ତେଲଥିବା ପାତ୍ର ।

ତପ୍ତପାଷାଣ କୁଣ୍ଡ—ପୁଂ. ବି. ନରକବିଶେଷ ।

ତପ୍ତବାଲୁକା—ପୁଂ. ବି. (ବ.ବ୍ରୀ) ନରକବିଶେଷ, ଉତ୍ତପ୍ତ ବାଲୁକାମୟ ।

ତପ୍ତବୈତରଣୀ—ସ୍ତ୍ରୀ. ବି. ହିନ୍ଦୁପୁରାଣ ମତରେ ମୃତ୍ୟୁପରେ ମନୁଷ୍ୟଙ୍କୁ ପ୍ରେତରୂପେ ଯେଉଁ ତପ୍ତ ଜଳପୂର୍ଣ୍ଣ ନଦୀ ପାରହେବାକୁ ପଡ଼େ ।

ତପ୍ତମାସ—ପୁଂ. ବି. ପକ୍ଷୀଜାତିବିଶେଷ, ମାଛରଙ୍କାବିଶେଷ ।

ତପ୍ତମୁଦ୍ରା—ସ୍ତ୍ରୀ. ବି. ଶରୀରରେ ଧାରଣୋପଯୋଗୀ ଅଗ୍ନି ସନ୍ତପ୍ତ ଭଗବାନଙ୍କର ଆୟୁଧାଦି ଚିହ୍ନ ।

ତପ୍ତରହସ—କ୍ଲୀ. ବି.(ତପ୍ତ+ରହଃ+ଅ) ବହ୍ନି ତପ୍ତବତ୍ ନିର୍ଜ୍ଜନ ସ୍ଥାନ, ଅନ୍ୟର ଅନଧିଗମ୍ୟ ସ୍ଥାନ ।

ତପ୍ତରାଜତୈଳ—କ୍ଲୀ. ବି. ଆୟୁର୍ବେଦୋକ୍ତ ତୈଳବିଶେଷ ।

ତପ୍ତରୂପକ—କ୍ଲୀ. ବି. (କ.ଧା) ବିଶୁଦ୍ଧ ରୌପ୍ୟ, ରୂପା ।

ତପ୍ତଲୌହ—ବି. ମାଣ୍ଡୂ ବା ପଟ୍ଟଷ୍ଟା-ବିଶେଷ, ପ୍ରାୟଶ୍ଚିତ୍ତବିଶେଷ ।

ତପ୍ତଶୂର୍ମିକୁଣ୍ଡ—କ୍ଲୀ.ବି.ନରକ ବିଶେଷ ।

ତପ୍ତଶୂର୍ମ୍ମୀ—ପୁଂ. ବି. ନରକବିଶେଷ ।

ତପ୍ତସୁରାକୁଣ୍ଡ—କ୍ଲୀ.ବି.ନରକବିଶେଷ ।

ତପ୍ତାନ୍ନ—କ୍ଲୀ.ବି.ତପ୍ତ ଅନ୍ନ,ଗରମ ଭାତ ।

ତପ୍ତାବୈତରଣୀ—ଗ୍ରା. ବି. ତପତା ବୈତରଣୀ,ଦୁଃସ୍ଥ ଅବସ୍ଥା,ଅନାହାରରେ ରହିବା ।

ତପ୍ତାୟୂମା—ସ୍ତ୍ରୀ.ବି. ଭୂମିଭେଦ, ଦରିଦ୍ର-ମାନେ ସନ୍ତପ୍ତ ହୋଇ ଯେଉଁ ଭୂମି ପ୍ରାପ୍ତ ହୁଅନ୍ତି ।

ତପ୍ୟ—ପୁଂ. ବି. (ତପ + ଯ)ଶିବ, (ବିଂ) ତପମୟ । [ ଦୁର୍ଯ୍ୟୋଧ ।

ତପ୍ୟତୁ—ବି. ( ତପ+ଯତୁ ) ତାପକ

ତଫାଉତ୍—ଯା.ବି. ଓ ବିଂ.ତଫାତ୍ ଦେଖ

ତଫା—ଯା.ବିଂ. ଉତ୍ତମ, ଉତ୍କୃଷ୍ଟ, ଚମତ୍କାର, ଅଦ୍ଭୁତ ।

ତଫାତ୍—ଯା. ବି. ବ୍ୟବଧାନ, ଅନ୍ତର, ଦୂରତ୍ୱ, ପ୍ରଭେଦ, (ବିଂ) ଦୂରସ୍ଥ, ଭିନ୍ନ, ବ୍ୟବଧାନରେ ଅବସ୍ଥିତ,(ଅବ୍ୟ)ଆଡ଼େଇ ଯାଅ, ଦୂରହୁଅ ।

ତଫାତ୍‌କରିବା—ଗ୍ରା.କ୍ରି. କୌଣସି ବ୍ୟକ୍ତି ବା ବସ୍ତୁକୁ ପୃଥକ୍ କରିବା ବା ଦୂରକୁ ସ୍ଥାନାନ୍ତରିତ କରିବା, ଆଡ଼େଇବା ।

ତମ—କ୍ଲୀ ବି. ( ତମ+କ.ଅ ) ରାହୁ. (ଣ+ଅ) ତମୋଗୁଣ, କ୍ରୋଧ, ଅନ୍ଧକାର, ଅଗଗୋଡ଼, ପଦାଗ୍ର, (ପୁଂ.ବି) ତମାଳବୃକ୍ଷ,(ବିଂ) କ୍ଲାନ୍ତ, (ସଂ-ପ୍ରତ୍ୟୟ) ଦୁଇ ଭୋତୋଧିକ ବ୍ୟକ୍ତି ବା ବସ୍ତୁ ମଧ୍ୟରେ ଆଧିକ୍ୟ ବା ନ୍ୟୂନତା ଅର୍ଥରେ ବିଶେଷଣ ଶବ୍ଦରୁ ଉତ୍ତର ହେବା ପ୍ରତ୍ୟୟ ବିଶେଷ ।

ତମଃ—ବି. (ତମ୍+ଣ.ଅସ୍) ଅନ୍ଧକାର, ଭ୍ରମ, ଭ୍ରାନ୍ତି, ରାହୁଗ୍ରହ, ତମୋଗୁଣ, ପାପ, ଶୋକ, ନରକ, ସ୍ଥୂଳ, ତମାଳବୃକ୍ଷ,ବରାହ, କାଳିମା, ମୋହ,ଅବିଦ୍ୟା, ମାୟା, ପାଦର ଅଗ୍ରଭାଗ, କଳଙ୍କ, ଅଜ୍ଞାନ,(ବିଂ. କ, ଅସ୍)କ୍ଲାନ୍ତ ।

ତମକ—ପୁଂ.ବି., (ତମ୍+ଣ.ଅକ)ଏକପ୍ରକାର ଶ୍ୱାସରୋଗ,ଦମା କାଶ ।

ତମକବଳ—ଗ୍ରା. ପୁଂ. ବି. ଚନ୍ଦ୍ର ।

ତମକା—ସ୍ତ୍ରୀ. ବି. ତମାଳବୃକ୍ଷ ।

ତମଙ୍ଗ—ପୁଂ. ବି. ମଞ୍ଚସ୍ଥାନ ।

ତମଙ୍ଗକ—ପୁଂ.ବି. ଇନ୍ଦ୍ରକୋଷ, ମଞ୍ଚକ, ବାରଣ୍ଡା, ବେଦୀ ।

ତମତ—କ୍ରି. ବିଂ. (ତମ+ତ) ତୃଷ୍ଣାପର, ତୃଷିତ, ଲାଳାୟିତ, ବାଞ୍ଛିତ ।

ତମତମ—ଗ୍ରା. ଅବ୍ୟ. (ରାଗରେ)ଜର୍ଜର ବା ଅଧୀର, କ୍ରୋଧାନ୍ଧ ।

ତମତମହେବା—ଗ୍ରା.କ୍ରି.କ୍ରୋଧାନ୍ଧହେବା ।

ତମତା—ବି. ( ତମ+ତା ) ଅନ୍ଧକାର, ଅନ୍ଧାର, ତମୋଭାବ ।

ତମପ୍ରଭ—ପୁଂ.ବି.(ବ.ବ୍ରୀ) ଅନ୍ଧକାରମୟ ନରକବିଶେଷ ।

ତମର—କ୍ଲୀ. ବି. (ତମ+ଅର) ଟିଙ୍ଗ, ରଙ୍ଗ, ସୀସା,ସୀସକ,(ଗ୍ରା-ସଙ.) ତୁମ୍ବର

ତମରସେରି—ମାନ୍ଦ୍ରାଜ ପ୍ରେସିଡେନ୍‌ସୀର ମାଲବାର ବିଭାଗର ଗୋଟିଏ ଗିରିପଥ ।

ତମରାଜ—ପୁଂ. ବିଂ. ଶର୍କରାବିଶେଷ ।

ତମନା—ସ୍ତ୍ରୀ. ବି. ଗୋଟିଏ ନଦୀ ।

ତମଲୁକ—ଗ୍ରା.ବି.ବଙ୍ଗଦେଶରେ ମେଦନୀପୁର ଜିଲାର ଗୋଟିଏ ଉପବିଭାଗ ।

ତମସ୍—କ୍ଲୀ. ବି. ତମଃ ଦେଖ ।

ତମସ—ପୁଂ. ବି. (ତମ+ଣ.ଅସ) କୂପ, ଅନ୍ଧକାର, ଅଜ୍ଞାନ, ତମୋଗୁଣ,(କ୍ଲୀ.ବି) ନଗରବିଶେଷ ।

ତମସା—ସ୍ତ୍ରୀ. ବି. ( ତମସ + ଆ ) ନଦୀ-ବିଶେଷ, ଏହା ଗୋଟିଏ ତୀର୍ଥସ୍ଥାନ, ଉତ୍ତର ପଶ୍ଚିମ ପ୍ରଦେଶରେ ଗଡ଼ୱାଲ ରାଜ୍ୟ ଓ ଡେରାଡୁନ ଜିଲାରେ ପ୍ରବାହିତ ନଦୀ ।

ତମସାକୃତ—କ୍ରି. ବିଂ. ତମସାଚ୍ଛନ୍ନ ।

ତମସାଚ୍ଛନ୍ନ—ବିଂ. ( ୩ତତ୍ ) ଅନ୍ଧକାର ଦ୍ୱାରା ଆବୃତ, ଅନ୍ଧକାରମୟ, ଅଜ୍ଞାନାଚ୍ଛନ୍ନ ।

ତମସୁକ—ଯା. ବି. ଦଲିଲ, ଋଣଲେଖ, ଖାତକର ମହାଜନକୁ ଲେଖିଦେବା ଋଣ ଗ୍ରହଣର ନିଦର୍ଶନ ପତ୍ର, ଗୋଜା ।

ତମସ୍କ—କ୍ରି. ବିଂ. ତମଃସ୍ୱରୂପ ।

ତମସ୍କାନ୍ତ—ପୁଂ.ବି.(୬ତତ୍)ତମଃସମୂହ ।

ତମସ୍ତତ—ସ୍ତ୍ରୀ. ବି. (୬ତତ୍) ଅନ୍ଧକାର ସମୂହ, ତମିସ୍ର, ଘୋର ଅନ୍ଧକାର ।

ତମସ୍ୱତୀ—ସ୍ତ୍ରୀ. ବି. (ତମସ୍ୱତ୍+ଈ)ରାତ୍ରି, ହରିଦ୍ରା, ଅନ୍ଧାର ରାତି ।

ତମସ୍ୱାନ୍—ବିଂ. (ତମସ+ମତ୍)ତମୋଯୁକ୍ତ, ଅନ୍ଧକାରମୟ ।

ତମସ୍ୱିନୀ—ସ୍ତ୍ରୀ.ବି. (ତମସ୍ୱିନ୍+ଈ)ରାତ୍ରି, ହରିଦ୍ରା, ଅନ୍ଧାରରାତି, ହଳଦୀ ।

ତମସ୍ୱୀ—ପୁଂ.ବିଂ. (ତମସ+ବିନ୍)ଅନ୍ଧାରୁଆ, ତମୋମୟ, ଅନ୍ଧକାରମୟ ।

ତମା—ସ୍ତ୍ରୀ.ବି. (ତମ+ଆ)ରାତ୍ରି, ତମୀ, ତମାଳବୃକ୍ଷ । [ ଗୁଡ଼ାଖୁ ।

ତମାଖୁ—ଗ୍ରା. ବି. ଦୋକତା, ଧୂଆଁପତ୍ର,

ତମାଗୁ—ଯା. ବି. ତଡ଼, ଗୁପତ୍ ।

ତମାଦି—ଯା.ବି. ନିର୍ଦ୍ଦିଷ୍ଟକାଳ ବିତିଯିବା, ନିର୍ଦ୍ଧାରିତ ସମୟ ଅତିକ୍ରାନ୍ତ ହେବା, କାଳାତିକ୍ରମଦୋଷ, (ବିଂ) ନିର୍ଦ୍ଧାରିତ ସମୟ ଅତିକ୍ରାନ୍ତ ହୋଇଥିବା ଯୋଗୁଁ ଆଇନାନୁସାରେ ଆଦାୟ କରାଯାଇ ନ ପାରିବା (ପ୍ରାପ୍ୟ ବା ଦାବୀ) ।

ତମାଦିଆଇନ୍—ଯା.ବି.ଯେଉଁ ଆଇନରେ ଭିନ୍ନ ଭିନ୍ନ ଶ୍ରେଣୀର ଦାବୀ ଭିନ୍ନ ଭିନ୍ନ ନିର୍ଦ୍ଦିଷ୍ଟ ସମୟ ପରେ ବାରିତ ହେବା ବିଷୟରେ ଉଲ୍ଲେଖ ଥାଏ ।

ତମାଦିଦୋଷ—ଗ୍ରା.ବି. ନିର୍ଦ୍ଧାରିତ ସମୟ ଅତିକ୍ରାନ୍ତ ହେବା ପରେ ମକଦ୍ଦମା ବା

ଦରଖାସ୍ତ ବାଦର ହେବା ଯୋଗୁଁ ଘଟିବା ଦୋଷ ।
**ତମାମ୍**—ଯା.ବିଂ. ସମସ୍ତ କରାଯାଇଥିବା, ମୁକ୍ତ, ସମ୍ପୂର୍ଣ୍ଣ, ସମୁଦାୟ, ଶେଷ, ପରିପୂର୍ଣ୍ଣ, (ବିଂ) ସମସ୍ତି, ସମାପ୍ତି, (ଅବ୍ୟ) ସମ୍ପୂର୍ଣ୍ଣରୂପେ, ଯାକ, ସାରା, ସମୁଦାୟ ଅଞ୍ଚଳରେ, ସବ, ସବୁ, ସମୁଦାୟ ।
**ତମାମି**—ଯା. କ୍ରି. ପୂର୍ଣ୍ଣତା, ସମାପ୍ତି ।
**ତମାଲ**—ବି. ( ତମ + କ.ଆଲ ) ବୃକ୍ଷବିଶେଷ, ତାପିଞ୍ଛବୃକ୍ଷ, ଖଡ୍ଗ, ଚନ୍ଦନର ଚିତା, କୃଷ୍ଣ ଖଦିର, ବାଉଁଶର ଛାଲ, ତେଜପତ୍ର, ବରୁଣଗଛ, ତିଳକ ବୃକ୍ଷ, ହିମାଳୟ ଓ ଦକ୍ଷିଣ ଭାରତରେ ଜନ୍ମିବା ବୃକ୍ଷବିଶେଷ ।
**ତମାଲକ**—କ୍ଲୀ. ବି. ସୁନୁସୁନିଆ ଶାଗ, ବାଉଁଶର ଛେପା, ତମାଲବୃକ୍ଷ ଦେଖ, ତମାଲପତ୍ର, ତେଜପତ୍ର, ସ୍ଥଳପଦ୍ମ ।
**ତମାଲପତ୍ର**—କ୍ଲୀ. ବି. (୬ତତ୍ପୁ ) ତମାଲ ଗଛର ପତ୍ର, ତମାଲଗଛ, ଚନ୍ଦନର ଚିତା ବା ତିଳକ । [ ଭେଦ ।
**ତମାଲପତ୍ର ଚନ୍ଦନଗନ୍ଧ**—ପୁଂ.ବି. ବୃକ୍ଷ-
**ତମାଲଶ୍ୟାମ**—ପୁଂ ବିଂ.(କ.ଧା)ତମାଲ ପରି କୃଷ୍ଣବର୍ଣ୍ଣ (ବ୍ୟକ୍ତି) ।
**ତମାଳଶ୍ୟାମଳ**—ପୁଂ.ବିଂ.(କ.ଧା)ତମାଳଶ୍ୟାମ ଦେଖ, (ସ୍ତ୍ରୀ) ଶ୍ୟାମଳା ।
**ତମାଳିକା**—ସ୍ତ୍ରୀ.ବି. (ତମାଲ+ଇକ+ଆ) ତାମ୍ରଲିପ୍ତ ପ୍ରଦେଶ, ତମଲୁକ ଦେଶ, ତାମ୍ରବଲ୍ଲୀ,ଭୂମ୍ୟାମଲକୀ,ଭୂଇଁଅଁଳା, ମଞ୍ଜିଷ୍ଠା ।
**ତମାଳିନୀ**—ସ୍ତ୍ରୀ.ବି.(ତମାଲ + ଇନ୍ + ଈ) ତମଲୁକ ବା ତାମ୍ରଲିପ୍ତ ଦେଶ ।
**ତମାଲୀ**—ସ୍ତ୍ରୀ. ବି. ତାମ୍ରବଲ୍ଲୀ, ମଞ୍ଜିଷ୍ଠା, ବରୁଣଗଛ ।
**ତମାସା**—ଯା.ବି.ତାମସା, ଖେଳ, ଜନମନୋରଞ୍ଜକ ଦୃଶ୍ୟ,ପ୍ରଦର୍ଶନୀ,ଆମୋଦ, ରହସ୍ୟ, ଅଦ୍ଭୁତ ବ୍ୟାପାର ।
**ତମି**—ପୁଂ. ବି. (ତମ + ଅଧି + ଇ)ରାତ୍ରି, ମୋହ । [ ଚନ୍ଦ୍ର ।
**ତମିନାଥ**—ପୁଂ.ବି. (୬ତତ୍ପୁ) ନିଶାନାଥ,
**ତମିସୀଚ**—ସ୍ତ୍ରୀ.ବି. ( ତମି+ସିଚ୍+ଇ ) ଅପ୍‌ସରାଭେଦ, (ବିଂ) ବଳବାନ୍ ।
**ତମିସ୍ର**—ପୁଂ.ବି.(ତମସ୍+ର)ଅନ୍ଧକାର, କ୍ରୋଧ, ନରକବିଶେଷ, ଅଜ୍ଞାନ, (ବିଂ) ଅନ୍ଧାରୁଆ, ତମୋମୟ ।
**ତମିସ୍ରପକ୍ଷ**—ପୁଂ. ବି. କୃଷ୍ଣପକ୍ଷ ।
**ତମିସ୍ରା**—ସ୍ତ୍ରୀ. ବି. (ତମିସ୍ର+ଆ)ଘନାନ୍ଧକାର, ଗାଢ଼ ଅନ୍ଧକାରମୟୀ ରାତ୍ରି, ତମୋଯୁକ୍ତ, ଅନ୍ଧକାର ରାତ୍ରି,(ସ୍ତ୍ରୀ. ବିଂ) ତମୋଯୁକ୍ତା ।
**ତମୀ**—ସ୍ତ୍ରୀ.ବି.(ତମ+ଈ) ରାତ୍ରି, ହରିଦ୍ରା, ହଳଦୀ, ପୁଂ.ବିଂ.(ତମ+ଇନ୍)ତମୋଯୁକ୍ତ, ଅନ୍ଧକାରଯୁକ୍ତ, ଅନ୍ଧାରୁଆ ।
**ତମୀଚର**—ବି. (ତମୀ + ଚର + କ.ଅ) ନିଶାଚର, ରାକ୍ଷସ ।
**ତମୀଜ**—ଯା. ବି. ଭଲ ଓ ମନ୍ଦ ଚିହ୍ନିବା ଶକ୍ତି, ବୁଦ୍ଧି; ଆଦବ କାଇଦା ।
**ତମେ**—ଗ୍ରା. ସର୍ବ. ତୁମେ ଦେଖ ।
**ତମେରୁ**—ତ୍ରି. ବିଂ. (ତମ+ଏରୁ)ଗ୍ଲାନଯୁକ୍ତ ।
**ତମୋଗା**—ତ୍ରି.ବିଂ.ଅନ୍ଧକାରରେ ଗମନକାରୀ, (ପୁଂ)ଖ୍ରୀଷ୍ଟର ନାମାନ୍ତର ।
**ତମୋଗୁ**—ପୁଂ. ବି. ରାହୁ ।
**ତମୋଗୁଣ**—ପୁଂ. ବି. (କ.ଧା) ମନୁଷ୍ୟ ପ୍ରକୃତିର ତିନିଗୋଟି ଗୁଣ ମଧ୍ୟରୁ ଅଧମ ଗୁଣ,ସୃଷ୍ଟିର ଆଦିମ ପ୍ରକୃତିର ଏକତମ ଗୁଣ,ଅହଂକାର,ସୃଷ୍ଟିର ପ୍ରଳୟକାରିଣୀ ଶକ୍ତି । [ ଦେଖ ।
**ତମୋଗୁଣିଆଁ**—ଗ୍ରା.ପୁଂ.ବିଂ ତମୋଗୁଣୀ
**ତମୋଗୁଣୀ**—ପୁଂ. ବିଂ. (ତମୋଗୁଣ + ଇନ୍) ତମୋଗୁଣପ୍ରଧାନ (ବ୍ୟକ୍ତି) ।
**ତମୋଘ୍ନ**—ପୁଂ ବି. (ତମସ୍+ହନ୍+କ. ଅ ).ସୂର୍ଯ୍ୟ, ବହ୍ନି, ଚନ୍ଦ୍ର, ବୁଦ୍ଧ, ବିଷ୍ଣୁ, ଶିବ, ଜ୍ଞାନ, ଦୀପ,(ବିଂ) ତମୋନାଶକ, ଯେ ଅନ୍ଧାର ନାଶକରେ; ତମୋହା ।
**ତମୋଜ୍ୟୋତିଃ**—ବି.(ବ.ବ୍ରୀ)ଜଳୁଜୁଳିଆ ପୋକ, ଖଦ୍ୟୋତ ।
**ତମୋଦର୍ଶନ**—କ୍ଲୀ. ବି. ପୈତ୍ତିକ ଜ୍ୱର ।
**ତମୋନାଶ**—ପୁଂ.ବି(୬ତତ୍ପୁ)ଅନ୍ଧକାରର ନାଶ ।
**ତମୋନାଶକ**—ପୁଂ. ବିଂ. ଯେ ଅନ୍ଧକାର
**ତମୋନୁଦ୍**—ବି. (ତମସ୍+ନୁଦ+କ. କ୍ୱିପ୍) ଅଗ୍ନି, ସୂର୍ଯ୍ୟ, ଚନ୍ଦ୍ର, ଦୀପ, ପୁନ, ଜ୍ଞାନ, (ବିଂ) ତମୋନାଶକ ।
**ତମୋନୁଦ**—ପୁଂ. ବି. (ତମସ୍+ନୁଦ +କ.ଅ) ଅଗ୍ନି, ଚନ୍ଦ୍ର, ଈଶ୍ୱର, ପୁନ, ଜ୍ଞାନ, ପ୍ରକୃତ,ପ୍ରେରକ, (ବିଂ) ତମୋନାଶକ, ଅଜ୍ଞାନନାଶକ ।
**ତମୋଽନ୍ତକୃତ୍**—ପୁଂ. ବି. ଯେ ସମସ୍ତ ଅଜ୍ଞାନ ନାଶକରେ, ସକଳ ଅନ୍ଧକାର ନାଶକ ।
**ତମୋଽନ୍ତ**—କ୍ଲୀ. ବି. ଗ୍ରହଣ ଭେଦ ।
**ତମୋଽନ୍ତ୍ୟ**—ବି. (ତମଃ+ଅନ୍ତ+ଯ) ସୂର୍ଯ୍ୟ ଓ ଚନ୍ଦ୍ର ଗ୍ରହଣରେ ଦଶପ୍ରକାର ଗ୍ରାସ ମଧ୍ୟରୁ ଏକ ।
**ତମୋଽନ୍ଧ**—ବିଂ.(୩ତତ୍ପୁ)ଅଜ୍ଞାନୀ,କ୍ରୋଧୀ
**ତମୋଽପହ**—ପୁଂ. ବି. (ତମଃ+ଅପ +ହନ୍+କ.ଅ) ସୂର୍ଯ୍ୟ, ଚନ୍ଦ୍ର, ଦୀପ, ଅଗ୍ନି, ବୋଧ, ( ବିଂ ) ତମନାଶକ, ମୋହନାଶକ ।
**ତମୋଭିଦ୍**—ପୁଂ. ବି. (ତମଃ + ଭିଦ୍+ +କ. କ୍ୱିପ୍) ଖଦ୍ୟୋତ, (ବିଂ)ତମୋଭେଦକ, ଅନ୍ଧକାର ବିନାଶକ ।
**ତମୋଭିଦ**—ପୁଂ. ବି. ଖଦ୍ୟୋତ, (ବିଂ) ତମୋଭେଦକ, ଅନ୍ଧକାରନାଶକ ।
**ତମୋଭୂତ**—ତ୍ରି.ବିଂ.ଅନ୍ଧକାରକୃତ,ଅଜ୍ଞ ।
**ତମୋମଣି**—ପୁଂ. ବି. ଜଳୁଜୁଳିଆପୋକ, ପୀତବର୍ଣ୍ଣ ରତ୍ନ, ଗୋମେଦକମଣି ।
**ତମୋମୟ**—ପୁଂ. ବିଂ. ( ତମସ୍ + ମୟ) ଅଜ୍ଞାନାଚ୍ଛନ୍ନ, କ୍ରୋଧାବିଷ୍ଟ, ଅନ୍ଧକାରାଚ୍ଛନ୍ନ, ଅହଂକାର ପରିପୂର୍ଣ୍ଣ, ( ବି ) ରାହୁ ।
**ତମୋଽରି**—ପୁଂ. ବି. ( ୬ତତ୍ପୁ ) ସୂର୍ଯ୍ୟ, ଚନ୍ଦ୍ର, ଅଗ୍ନି, ଜ୍ଞାନ, ଦୀପ ।
**ତମୋଲିପ୍ତୀ**—ସ୍ତ୍ରୀ. ବି. ଜନପଦବିଶେଷ, ତମଲୁକର ନାମାନ୍ତର ।
**ତମୋବିକାର**—ପୁଂ. ବି. (ବ.ବ୍ରୀ)ରୋଗ, ( ୬ତତ୍ପୁ ) ତମୋଗୁଣର ବିକାର ।
**ତମୋବୃଧ୍**—ତ୍ରି. ବିଂ. ( ତମ+ବୃଧ-

+କ୍ୱିପ୍ ) ଅଜ୍ଞାନାବଦ୍ଧ( ଜୀବ ),ଘୋର ଅନ୍ଧକାର ଆଚ୍ଛନ୍ନ ରଜନୀରେ ଭ୍ରମଣଶୀଳ, ବି. ରାକ୍ଷସ, ପେଚକ, ମାର୍ଜାର ।

ତମୋହର—ବି. ବିଂ. ( ତମସ୍+ହୃ+କ.ଅ ) ଅନ୍ଧକାରନାଶକ, ତମୋଘ୍ନ ଅଜ୍ଞାନନାଶକ ।

ତମୋହା—ବି. ବିଂ. ( ତମସ୍+ହନ୍+କ. କ୍ୱିପ୍)ଅଜ୍ଞାନନାଶକ, ଅନ୍ଧକାରନାଶକ, ବି. ଦୀପ, ଆଲୋକ, ସୂର୍ଯ୍ୟ, ଚନ୍ଦ୍ର, ଅଗ୍ନି ।

ତମ୍ପି—ଗ୍ରା. ବି. ଗୋଖର ଜାତୀୟ ଏକପ୍ରକାର ବିଷଧର ସର୍ପ, ( ପ୍ରା. ଗଞ୍ଜାମବିଂ. ) ଓଦା, ଆର୍ଦ୍ର, ସନ୍ତସନ୍ତିଆ ।

ତମ୍ପିମୁହାଁ—ଗ୍ରା. ପୁଂ. ବିଂ. ଯେଉଁ ବ୍ୟକ୍ତି ସ୍ୱଭାବତଃ କ୍ରୋଧୀ ବୋଲି ମୁହଁରୁ ଜଣାପଡ଼େ ।

ତମ୍ପା—ସ୍ତ୍ରୀ. ବି. ( ତମ୍+କ.ପ + ଆ ) ସୌରଭେୟୀ, ଗାଈ ।

ତମ୍ପୀ—ପ୍ରା.ଗଞ୍ଜାମ.ବି.ଗାଈ, ଗାଈ ।

ତମ୍ବରୁ—ଯା. ବି. ତମ୍ବୁର ଦେଖ ।

ତମ୍ବା—ସ୍ତ୍ରୀ. ବି. ( ତମ୍ବ+ଅ+ଆ ) ଗାଈ, ( ଗ୍ରା. ବି. ) ତାମ୍ରନାମକ ଧାତୁ

ତମ୍ବାପଟା—ଗ୍ରା. ବି. ତମ୍ବାର ପଟା,ଦାନପତ୍ର ବା ସନନ୍ଦ ଫଳକ ।

ତମ୍ବାଟିଆ ( ଳିଆ )—ଗ୍ରା. ବିଂ. ତାମ୍ରମିଶ୍ରିତ,ତାମ୍ରବର୍ଣ୍ଣବିଶିଷ୍ଟ,ଫିକା ନାଲିଆ ।

ତମ୍ବାଲୁ—ଗ୍ରା.ବି.କ୍ଷୁଦ୍ରବନ୍ୟ ବୃକ୍ଷବିଶେଷ ।

ତମ୍ବି—ଯା.ବି. ତର୍ଜନା,ଭର୍ତ୍ସନା, ଜବର, ତୋଡ଼, ଜୁଲମ, ଧମକ,ରାଗ, ତାକିଦ୍ ।

ତମ୍ବିକା—ସ୍ତ୍ରୀ. ବି. ଗାଈ, ଗାଈ ।

ତମ୍ବିତଲବ—ଯ .ବି.ଜବରକରି କୌଣସି ବସ୍ତୁ ତଲବକରିବା, ଦଣ୍ଡର ଭୟ ପ୍ରଦର୍ଶନ ପୂର୍ବକ ତାକିଦ୍ ।

ତମ୍ବିବାଜ୍—ଯା.ବିଂ. ଅତ୍ୟାଗ୍ରହୀ,ଜବରବାଜ୍ ।

ତମ୍ବୀ—ଯା. ବି. ଶାସନ, ତାଡ଼ନ ।

ତମ୍ବୀର—ପୁଂ. ବି. ଯୋଗଭେଦ ।

ତମ୍ବୁ—ଯା. ବି. ଶିବିର, ରାଉଟି, କନାଘର ।

ତମ୍ବୁଚି—ଯା. ବି. ତମ୍ବୁରଚି, ଢୋଲକିଆ; ଯେ ତମ୍ବୁର ବାଜା ବଜାଏ ।

ତମ୍ବୁ(ର)ରୁ—ଗ୍ରା. ବି. ତନଗୋଟି ତାରଯୁକ୍ତ ବାଦ୍ୟବିଶେଷ, ତନତାରା, ଯା.ବି. ଛୋଟ ଢୋଲ, ଢୋଲକ ।

ତମ୍ବୁରା—ଗ୍ରା. ବି. କମାରଙ୍କ ସଣ୍ଡାସୀ, ଯା. ବି. ଏକପ୍ରକାର ତୋପ ।

ତମ୍ବୁଲୀ—ଗ୍ରା. ବି. ପାନ ବିକ୍ରେତା ।

ତମ୍ବୌର—ଅଯୋଧ୍ୟାର ସୀତାପୁର ଜିଲାର ବିସବାନ୍ ତହସୀଲର ଗୋଟିଏ ପରଗଣା, ଏ ତହସୀଲର ଗୋଟିଏ ସହର

ତୟଫା—ଯା. ବି, ନର୍ତ୍ତକୀ ନୃତ୍ୟବିଶେଷ, ସମ୍ପ୍ରଦାୟ ବା ଦଳ । [ ଦେଖ ।

ତୟା(ର)ର—ଯା. ବି ଓ ବିଂ. ତିଆର

ତୟାର୍—( ପ୍ରା. ବାଲେଶ୍ୱର-ବି. ) ନଈ ମୁହାଣରୁ ଧରାଯିବା ଏକପ୍ରକାର ଲୁଣିମାଛ ।

ତର—ପୁଂ. ବି. (ତୃ+ଭା.ଅ ) ସନ୍ତରଣ. ପାରହେବା, କୃଶାନୁ, ଅଗ୍ନି ବୃକ୍ଷ, ପ୍ରତ୍ୟୟବିଶେଷ, ପଥ, ଗତି, ଆଘାତ. ( କରଣ.ଅ ) ଘାଟପାରି ମାହାସୁଲ, ନଦୀ ପାରକରିବା ନୌକା,ପାର ଉତାର କରିବା କର୍ମ, ଅଗ୍ନି, ବୃକ୍ଷ, ଉଡ଼ୁପ, ଭେଲା, ( ବିଂ. କ.ଅ ) ପାରଗାମୀ, ( ସଂ-ପ୍ରତ୍ୟୟ ) ଦୁଇ ବ୍ୟକ୍ତି ବା ବସ୍ତୁ ମଧ୍ୟରେ ଉତ୍କର୍ଷ ବା ଅପକର୍ଷସୂଚକ ପ୍ରତ୍ୟୟବିଶେଷ, ଦୁଇ ବସ୍ତୁ ମଧ୍ୟରୁ ଏକକୁ ନିର୍ଦ୍ଦେଶ କରିବାପାଇଁ କିମ୍, ତଦ୍ ଓ ଯଦ୍ ଶବ୍ଦ ସଙ୍ଗେ ବ୍ୟବହୃତ ପ୍ରତ୍ୟୟ, (ଗ୍ରା. ବି.) ତୁଳନା,ସୁଯୋଗ, ବିଳମ୍ବ, ଅବକାଶ,ଗ୍ରା. କ୍ରି. ବିଂ. ଶୀଘ୍ର,ତ୍ୱରିତ,(ସଂ)ତୋର, ତୋହର

ତରଃ—କ୍ଲୀ. ବି. ( ତୃ+ଣି.ଅସ୍ ). ବଳ, ଭେଳା, ମାଡ଼, ( ତୃ+ଭା.ଅସ୍ ) ବେଗ, ( ମ.ଅସ୍ ) ତୀର ।

ତରକଣା—ଗ୍ରା.ପଦ୍ୟ ବି.ତର୍କ,ଅନୁମାନ ।

ତରକତ୍ୟାଗୀ—ଗ୍ରା. ବି. ଯେଉଁ ଯୋଗୀ ଅନ୍ୟଠାରୁ ଭିକ୍ଷା ଗ୍ରହଣ କରେ ନାହିଁ ଓ ଯାହାପାଏ ତାହା କ୍ଷୁଧା ଶାନ୍ତିପାଇଁ ସଙ୍ଗେ ସଙ୍ଗେ ଭୋଜନ କରେ, ଯେ ବ୍ୟକ୍ତିର ଜ୍ଞାନ ଅତି ସାମାନ୍ୟ ଥିବାରୁ. ସେ ଧର୍ମ ବିଷୟରେ ତର୍କ କରେ ନାହିଁ ।

ତରକଶ୍—ଯା. ବି. ତୂଣୀର, ଶର ରଖିବାର ମୁଣି ।

ତରକଶୀ—ଯା. ବିଂ. ତୂଣୀରଯୁକ୍ତ ।

ତରକା—ଗ୍ରା.ବିଂ. (ସଂ-ଚକିତ )ଝୁରୁଡ଼ା, ଭୟାକ୍ରାନ୍ତ, ଯେ ସାମାନ୍ୟ କାରଣରୁ ଅସ୍ଥିର ହୋଇ ପଳାଇଯାଏ, ଚତୁର, କୌଶଳୀ, ଅତ୍ୟନ୍ତ ବେଗବାନ୍ , ଯା. ବି. ତରକା ହିଂସା ଦେଖ, ପରୋକ୍ଷ ଉତ୍ତରାଧିକାରୀଙ୍କୁ ମିଳିବା ମୃତ ବ୍ୟକ୍ତିର ସମ୍ପତ୍ତି, ( ପ୍ରା. ସିଂହଭୂମ, ବି. ) କାପ, ତଡ଼କା ।

ତରକା(କେ)ଇବା—ଗ୍ରା.କ୍ରି.ଝୁରୁଡ଼ାଇବା, ପୂର୍ବରୁ ସାବଧାନ କରାଇଦେବା ।

ତରକାରି—ଯା. ବି. ତିଅଣ, ପରିବା ଓ ମାଛଆଦିର ରାନ୍ଧୁତିଅଣ, ବ୍ୟଞ୍ଜନ.ଅଗୃହୀତ ଫଳମୂଳ ଦ, ପରିବା ।

ତରକାହିଂସା—ଯା. ବି. କୋରାନ ଅନୁସାରେ ମୃତ ବ୍ୟକ୍ତିର ପ୍ରତ୍ୟକ୍ଷ ଉତ୍ତରାଧିକାରୀମାନେ ଅଂଶ ନେବା ପରେ ଅବଶିଷ୍ଟ ସମ୍ପତ୍ତିକୁ ବାଣ୍ଟିନେବା ହିଂସାଦାରଙ୍କ ହିସା ।

ତରକିବ୍—ଯା. ବି. ସଂଯୋଗ, ମେଳ, ରଚନା, ରଚନାର ପ୍ରଣାଳୀ, ଉପାୟ ।

ତରକିବା—ଗ୍ର. କ୍ରି. (ସଂ—ସତର୍କ ) ପୂର୍ବରୁ ସାବଧାନ ହେବା, ଝୁରୁଡ଼ିବା, ଜାଣିବା, ଅନୁମାନ କରିବା ।

ତରକ୍ଷ—ପୁଂ.ବି. ବ୍ୟାଘ୍ରବିଶେଷ, ମଧୁଆ, ହେଟାବାଘ ।

ତରକ୍ଷୁ—ପୁଂ. ବି. (ତର+କ୍ଷି+କ.ଉ) ତରକ୍ଷ ଦେଖ ।

ତରକ୍ଷୁକ—ପୁଂ. ବି. ତରକ୍ଷ ଦେଖ ।

ତରଖା—ଯା.ବି. ତରଙ୍ଗ, ଦ୍ରୁତବେଗ ।

ତରଙ୍ଗ ତରଙ୍ଗ—ଗ୍ରା. କ୍ରି. ଚଙ୍ଗ ଚଙ୍ଗ, ଚପଳ, ଚଞ୍ଚଳ ।

ତରଙ୍ଗ—ପୁଂ. ବି. (ତୃ+ଅଙ୍ଗ) ପ୍ରବଳ ଅଶ୍ରୁଧାରା, ଅଙ୍ଗଭଙ୍ଗୀ,କମ୍ପନ, କଥାର

ଭଙ୍ଗୀ, ଊର୍ମି, ଢେଉ, ଲୁଗାର କୁଞ୍ଚ, ବସ୍ତ୍ର, ଅଶ୍ୱ ପ୍ରଭୃତିର ପ୍ଲୁତଗମନ, ସାଗର ବା ସମୁଦ୍ର ବା ତରଙ୍ଗିଣୀ ଉପାଧିଯୁକ୍ତ ସଙ୍ଗୀତ ବା କାବ୍ୟାଦି ଗ୍ରନ୍ଥର ଖଣ୍ଡ ବା ଭାଗ, ସ୍ୱର ଲହରୀ, ମୂର୍ଚ୍ଛନା, ଉତ୍ସାହ ଓ ଆନନ୍ଦଆଦିର ବୃଦ୍ଧି, (ଗ୍ରା. ବଂ) ଚଞ୍ଚଳ ।

ତରଙ୍ଗକ—ପୁଂ.ବ(ତରଙ୍ଗ+କ)ତରଙ୍ଗ ଦେଖ ।

ତରଙ୍ଗତାଡ଼ନ—କ୍ଲୀ.ବ.(୩ତତ୍)ତରଙ୍ଗ ଘାତ, ଢେଉ ଦ୍ୱାରା ପ୍ରହାର ।

ତରଙ୍ଗବତୀ—ସ୍ତ୍ରୀ. ବ. ( ତରଙ୍ଗ+ବତ୍+ଈ) ନଦୀ ।

ତରଙ୍ଗଭଙ୍ଗ—ପୁଂ. ବ. (୬ତତ୍) ଊର୍ମିରଚନା, ଢେଉଉଠା, ଊର୍ମିଭେଦ ।

ତରଙ୍ଗଭୀରୁ—ପୁଂ. ବ. ଚତୁର୍ଦ୍ଦଶ ମନୁଙ୍କ ପୁତ୍ରଭେଦ ।

ତରଙ୍ଗମାଳା—ସ୍ତ୍ରୀ.ବ. (୬ତତ୍) ଲହରୀ ପରମ୍ପରା, ଢେଉ ସକଳ ।

ତରଙ୍ଗା—ଗ୍ରା.ପୁଂ.ବଂ. ଚଞ୍ଚଳସ୍ୱଭାବ ।

ତରଙ୍ଗାକୁଳିତ—ବଂ.(୩ତତ୍) ତରଙ୍ଗଯୁକ୍ତ,ତରଙ୍ଗିତ, ତରଙ୍ଗ ଦ୍ୱାରା ଆନ୍ଦୋଳିତ ।

ତରଙ୍ଗାଭିଘାତ—ପୁଂ. ବ. ( ୩ତତ୍) ତରଙ୍ଗ ତାଡ଼ନ । [ ଦେଖ ।

ତରଙ୍ଗାୟମାନ—ବଂ. ତରଙ୍ଗାୟିତ

ତରଙ୍ଗାୟିତ—ବଂ. (ତରଙ୍ଗ+ଆୟ+କ୍ତ) ତରଙ୍ଗ ଉଠୁଥିବା, ଢେଉପରି ଚଞ୍ଚଳ ହେଉଥିବା, ତରଙ୍ଗଯୁକ୍ତ ।

ତରଙ୍ଗାଳି—ବ. ନଦୀ ।

ତରଙ୍ଗିଣୀ—ସ୍ତ୍ରୀ. ବ. (ତରଙ୍ଗ+ଇନ୍+ଈ) ନଦୀ ।

ତରଙ୍ଗିତ—ବି. ବଂ. (ତରଙ୍ଗ+ଇତ) ଢେଉପରି ଉଠୁଥିବା ଓ ପଡ଼ୁଥିବା, ଜାତତରଙ୍ଗ, ଚଞ୍ଚଳ, ଭଙ୍ଗିବିଶିଷ୍ଟ ।

ତରଙ୍ଗୀ—ପୁଂ. ବଂ. (ତରଙ୍ଗ+ଇନ୍) ତରଙ୍ଗଯୁକ୍ତ, ଲହରୀଯୁକ୍ତ, ମନମଉଜୀ, ବେପରୁଆ ।

ତରଙ୍ଗୋଚ୍ଛ୍ୱାସ—ପୁଂ. ବ. ( ୬ତତ୍ ) ଊର୍ମିର ସ୍ଫୀତି, ଢେଉ ଫୁଲିଉଠିବା ।

ତରଛ—ଗ୍ରା. ବଂ. ( ସଂ-ତ୍ରସ୍ତ ) ସନ୍ତ୍ରସ୍ତ, ହଠାତ୍ ଭୀତ, ଭୟବିହ୍ୱଳ, (ବି) ହଠାତ୍ ଉପସ୍ଥିତ ଭୟ, ଗ୍ଲାନଥା ।

ତରଛୁଆଁ—ଗ୍ରା. ବଂ. ହଠାତ୍ ଉପସ୍ଥିତ ଭୟ ଦ୍ୱାରା ବିହ୍ୱଳ, ଭୀରୁ, ଭୟାକୁଳ ।

ତରଜନ—ଗ୍ରା. ବ. ତର୍ଜନ ଦେଖ ।

ତରଜମା—ଯା.ବ.ଅନୁବାଦ, ଭାଷାନ୍ତରୀକରଣ, ଅନୂଦିତ ବିଷୟ ।

ତରଜୁଡ଼—ଯା. ବ. ବନ୍ଦୋବସ୍ତ, ଚର୍ଚ୍ଚା, ରକ୍ଷଣାବେକ୍ଷଣ, ଚିନ୍ତା, କଳ୍ପନା ।

ତରଡ଼ଙ୍ଗ(ଙ୍ଗା)—ଗ୍ରା. ବଂ. ତରତରିଆ, ଚପଳ, ଯେଉଁ ଲୋକ କୌଣସି ଗୁପ୍ତ କଥା ମନରେ ରଖି ନ ପାରେ,ଅଧୀର, କ୍ଷୀଣ, କୃଶ ।

ତରଡ଼ା—ଗ୍ରା. ବ. ଜହ୍ନିପରି ଏକପ୍ରକାର ଲତା ଓ ତାହାର ଫଳ, ତୋରଡ଼ା, ଦୁଡୁକା ।

ତରଣ—ବ. (ତୃ+ଭା.ଅନ) ପାରଗମନ, ଅତିକ୍ରମଣ, ପହଁରିବା, ଦେଶାନ୍ତର ଗମନ. (ଣ-ଅନ) ଭେଳା,ପ୍ଲବ, ଡଙ୍ଗା, ସ୍ୱର୍ଗ, ନିସ୍ତାର, (ଗ୍ରା.ବ) ଛୀଣ, ଯାଉ, ଖିନ୍ନସା ।

ତରଣତାରଣ—ପଞ୍ଜାବର ଅମୃତଶର ଜିଲ୍ଲାର ଦକ୍ଷିଣ ଭାଗରେ ଅବସ୍ଥିତ ଗୋଟିଏ ତହସୀଲ, ଉକ୍ତ ତହସୀଲର ପ୍ରଧାନ ସହର ।

ତରଣି—ପୁଂ. ବ. ( ତୃ+ଅନି )ସୂର୍ଯ୍ୟ, ଭେଳା, ସେବତୀଫୁଲ, ଅର୍କବୃକ୍ଷ, କିରଣ, ତାମ୍ର, ନୌକା, ଘୃତ କୁମାରୀ, ( ବଂ ) ଶୀଘ୍ରଗାମୀ, ତାରକ, ଉଦ୍ଧାରକର୍ତ୍ତା ।

ତରଣିଜା—ସ୍ତ୍ରୀ. ବ. ( ତରଣି+ଜନ+କ.ଅ+ଆ ) ଯମୁନା ନଦୀ ।

ତରଣିତନୟ—ପୁଂ. ବ. ସୂର୍ଯ୍ୟ ପୁତ୍ର, ଯମ, ଶନି, କର୍ଣ୍ଣ ।

ତରଣିଧନ୍ୟ—ପୁଂ. ବ.ଶିବ ।

ତରଣିପେଟକ—ପୁଂ. ବ. କାଷ୍ଠାମ୍ବୁବାହିନୀ ।

ତରଣିପୋତ—ପୁଂ.ବ.କାଷ୍ଠାମ୍ବୁ ବାହିନୀ ।

ତରଣିମଣି—ପୁଂ. ବ.ସୂର୍ଯ୍ୟପ୍ରିୟମାଣିକ୍ୟ, ପଦ୍ମରାଗ ମଣି । [ ମାଣିକ୍ୟ ।

ତରଣିରତ୍ନ—କ୍ଲୀ. ବ. ପଦ୍ମରାଗମଣି,

ତରଣିସୁତ—ପୁଂ. ବ. ( ୬ତତ୍ ) ଶନି, ଯମ, କର୍ଣ୍ଣ । [ ନଦୀ ।

ତରଣିସୁତା—ସ୍ତ୍ରୀ. ବ. (୬ତତ୍) ଯମୁନା

ତରଣୀ—ସ୍ତ୍ରୀ. ବ. ( ତୃ+ଅନ+ଈ ) ଭେଳା, ମାଡ଼,ସ୍ଥଳକମଳ, ଘିଅକୁଆଁରି, ନୌକା, ପଦ୍ମଚାରିଣୀ ଲତା, ଘୃତକୁମାରୀ ।

ତରଣୀସେନ—ପୁଂ.ବ. ବିଭୀଷଣର ପୁତ୍ର ଓ ଜଣେ ରାମଭକ୍ତ ।

ତରଣୀୟ—ବି. ବଂ. ( ତୃ+ଅନୀୟ ) ତରଣଯୋଗ୍ୟ ।

ତରଣ୍ଡ—କ୍ଲୀ. ପୁଂ. ବଂ. (ତୃ+ଣ.ଅଣ୍ଡ) ମାଛ ଧରିବା ବନଶୀର ସୂତା ବା ଜାଲର ସୂତା ମଧ୍ୟରେ ଲଗିଥିବା କାଠି ବା ସୋଲ, କାତ, ପ୍ଲବ, ଭେଳା, ନୌକା, କୁମ୍ଭତୁମ୍ବୀ ବା କଦଳୀ ପତ୍ରର ଭେଳା, ଦେଶବିଶେଷ ।

ଦେଶବିଶେଷ ।

ତରଣ୍ଡକ—କ୍ଲୀ. ବ. (ତରଣ୍ଡ+କ)ତୀର୍ଥଭେଦ, ତେରେଣ୍ଡ, ମାଛଧରିବା ବନଶୀର ସୂତା ବା ଜାଲର ସୂତା ମଧ୍ୟରେ ଲଗିଥିବା କାଠି ବା ସୋଲ ।

ତରଣ୍ଡପାଦା—ସ୍ତ୍ରୀ. ବ. ନୌକା ।

ତରଣ୍ଡୀ—ସ୍ତ୍ରୀ. ବ. ନୌକା ।

ତରତ୍ସମ—ବ. ପାବମାନ ସୂକ୍ତାନ୍ତର୍ଗତ ସୂକ୍ତଭେଦ ।

ତରତ୍ସମନ୍ଦୀୟ—କ୍ଲୀ. ବ. ପାବମାନ ସୂକ୍ତାନ୍ତର୍ଗତ ସୂକ୍ତଭେଦ ।

ତରତମ—ବି. ବଂ. (ଦ୍ୱନ୍ଦ୍ୱ) ନ୍ୟୂନାଧିକ, କମ୍‌ବେଶି, ଶ୍ରେଷ୍ଠ ବଡ଼, (ବି) ସାନବଡ଼ ଭେଦ ଜ୍ଞାନ, ଇତସ୍ତତଃ କରିବା, ସଂଶୟ ।

ତରତର—ଗ୍ରା. ବଂ. (ସଂ-ତ୍ୱରା) ଅଧୀର, ଅସ୍ଥିର, ସମୟାଭାବରୁ ବ୍ୟସ୍ତ, ଯେ ଆଗପଛ ବିଚାର ନ କରି ଯାହା ମନକୁ ଆସେ ତାହା କରି ପକାଏ ବା କହେ

ପକାଏ, (ଗ୍ରା.କ୍ରି.ବିଂ.) ଶୀଘ୍ର, ଚଞ୍ଚଳ, ସତ୍ବର, ଅସ୍ଥିରଭାବରେ ।

**ତରତବ୍**—ଯା. ବି. ନିୟମ, କ୍ରମ, ଧାରା, ବସ୍ତୁମାନଙ୍କର ଯଥା ସ୍ଥାନାବସ୍ଥିତି, (ବିଂ) କ୍ରମିକ, ଧାରାବାହିକ, ସଜ୍ଜିତ, ନିୟମାନୁଯାୟୀ ।

**ତରତବନମ୍ବର**—ଯା.ବି. କ୍ରମଅନୁସାରେ କୌଣସି ବସ୍ତୁର କ୍ରମିକ ସଂଖ୍ୟା ।

**ତରଦ୍**—ସ୍ତ୍ରୀ.ବି.ପ୍ଲବ, ଭେଳା, କାରଣ୍ଡବ ପକ୍ଷୀ ।

**ତରଧା**—ସ୍ତ୍ରୀ.ବି.(ତୃ+ଦୋ+ଅ)କଣ୍ଟକଯୁକ୍ତ ବୃକ୍ଷ, କଣ୍ଟକବୃକ୍ଷ ।

**ତରଦୀଦ୍**—ଯା. ବି. ରଦ୍ଦକରିବା, ଖଣ୍ଡନ, ପ୍ରତ୍ୟୁତ୍ତର ।

**ତରଦ୍ଦୁଦ୍**—ଯା. ବି. ଅସମ୍ମତ, ଚକ୍ରାନ୍ତ; କୌଶଳ, ଇତସ୍ତତଃ କରିବା ।

**ତରଦ୍ୱଟୀ**—ସ୍ତ୍ରୀ. ବି. ପକ୍ୱାନ୍ନଭେଦ ।

**ତରଦ୍ୱେଷମ୍**—ପୁଂ.ବି.ଶତ୍ରୁ ଆକ୍ରମଣକାରୀ ଇନ୍ଦ୍ର ।

**ତରନ୍ତ**—ପୁଂ. ବି. (ତୃ+ଅନ୍ତ) ସମୁଦ୍ର, ପ୍ଲବ, ଭେଳା, ଭେକ, ରାକ୍ଷସ, ବେଙ୍ଗ, ତେରେଣ୍ଡା ।

**ତରନ୍ତୀ**—ସ୍ତ୍ରୀ. ବି. (ତୃ+ଣ:ଅନ୍ତ+ଈ) ନୌକା, ତରଣୀ । [ଭେଦ ।

**ତରନ୍ତୁକ**—କ୍ଲୀ. ବି. କୁରୁକ୍ଷେତ୍ରସ୍ଥ ସ୍ଥାନ-

**ତରପଣ୍ୟ**—କ୍ଲୀ. ବି. (୬ତତ୍) ନଈପାର ମାହାସୁଲ ।

**ତରପଦୀ**—ବିଂ. (ତର+ପଦ+ଇନ୍) ସନ୍ତରଣ ପଟୁ, ଲିପ୍ତପଦବିଶିଷ୍ଟ(ହଂସାଦି), (ବି) ହଂସାଦି ଲିପ୍ତପଦବିଶିଷ୍ଟ ଜଳଚର ପକ୍ଷୀ ।

**ତରଫ**—ଯା. ବି. ନିକଟବର୍ତ୍ତୀ ଅଞ୍ଚଳ, ପାଖ, ପାର୍ଶ୍ୱ, କଡ଼, ପକ୍ଷ, ଦିଗ, ଶେଷ ସୀମା, ଧାର, ଚଟ୍ଟଗ୍ରାମ ବିଭାଗର ଗୋଟିଏ ପ୍ରଧାନ ଜମିବିଭାଗ, (ଗ୍ରା.ବିଂ) ପକ୍ଷୀୟ, ପକ୍ଷରୁ କାର୍ଯ୍ୟ କରୁଥିବା, (ଗ୍ରା. ଅବ୍ୟ) ପକ୍ଷରୁ ।

**ତରଫଦାର୍**—ଯା.ବିଂ. ପକ୍ଷୀୟ, ପକ୍ଷାବଲମ୍ବୀ, ପକ୍ଷପାତୀ, ଏକ ପକ୍ଷରୁ ମାଲିକ, (ବି) ମୁସଲମାନ ସମ୍ରାଟଙ୍କ ଅମଳରେ ବଙ୍ଗ ଦେଶର ରାଜସ୍ୱ କର୍ମଚାରୀ ଓ ଜମିଦାରଙ୍କୁ ପ୍ରଦତ୍ତ ଉପାଧିବିଶେଷ ।

**ତରଫଧରିବା**—ଗ୍ରା.କ୍ରି.କୌଣସି ଗୋଟିଏ ପକ୍ଷର ଅନୁକୂଳତା କରିବା ।

**ତରଫନେବା**—ଗ୍ରା. କ୍ରି. ତରଫ ଧରିବା ଦେଖ ।

**ତରଫମାଡ଼ିବା**—ଗ୍ରା. କ୍ରି. ତରଫ ଧରିବା ଦେଖ, କୌଣସି ପାଖକୁ ବା ଦିଗକୁ ଫୁଟିବା ବା ଗଳିଯିବା ।

**ତରଫା**—ଯା. ବିଂ. (ଅମୁକ) ପକ୍ଷୀୟ, ପକ୍ଷାବଲମ୍ବୀ, ଦିଗବ୍ୟାପୀ ।

**ତରବର**—ଗ୍ରା. ବିଂ. ତରତର ଦେଖ ।

**ତରବାର**—ପୁଂ. ବି. (ତର+ବୃ+ଣି. ଅ) ଖଡ୍ଗ, ଖଣ୍ଡା, କୃପାଣ ।

**ତରବାରି**—ପୁଂ.ବି. (ତର+ବୃ+ଣି.ଇ) ତରବାର, ଖଣ୍ଡା, ଖଡ୍ଗ ।

**ତରବାଲ**—ବି. (ତର+ବୃ+ଅ)ତରବାର, ଖଡ୍ଗ, ଖଣ୍ଡା, କୃପାଣ ।

**ତରବାଲିକା**—ସ୍ତ୍ରୀ. ବି. ଖଡ୍ଗ, କୃପାଣ ।

**ତରଭୁଜ**—ଗ୍ରା.ବି.କୁଷ୍ମାଣ୍ଡାଦିବର୍ଗର ଜଳ ବହୁଳ ମିଷ୍ଟଲତା ଫଳବିଶେଷ, ଖରଭୁଜ ।

**ତରମାଣ**—ବିଂ.(ତୃ+କ.ଆନ) ଯେ ପାର ହୋଇଅଛି, (ସ୍ତ୍ରୀ) ତରମାଣା, (ବି) ନୌକା, ତର ।

**ତରମିମ୍**—ଯା.ବି.ସଂଶୋଧନ, ପରିବର୍ତ୍ତନ, ଆଂଶିକ ଭାବରେ ଦାବୀକୁ ଅଗ୍ରାହ୍ୟ କରିବା,(ବିଂ) ସଂଶୋଧିତ,ପରିବର୍ତ୍ତିତ, ଆଂଶିକ ଅଗ୍ରାହ୍ୟ ହୋଇଥିବା ।

**ତରମୁଜ**—କ୍ଲୀ. ବି. ଫଳବିଶେଷ, ତରଭୁଜ ଦେଖ ।

**ତରମ୍ବୁଜ**—କ୍ଲୀ. ବି. ଫଳବିଶେଷ, ତରଭୁଜ ଦେଖ ।

**ତରଳ**—ପୁଂ. ବି. ହାର ମଧ୍ୟ ମଣି, ସ୍ୱାଦ, ଲୁହା, ଧୁକ୍ଧୁକି, ହୀରା, ତଳ, (ବିଂ) (ତୃ+କ.ଅଲ) ଚପଳ, କାମୁକ,ବର୍ତ୍ତୁଳ, ଭାସ୍ୱର,ପୋଲ ପଦାର୍ଥ, ପାଣିଆଁ, ଜଳପର ପତଳା, ବାଷ୍ପୀୟ, କମ୍ପମାନ, ବିଗଳିତ ହେଉଥିବା, ତରଙ୍ଗଯୁକ୍ତ ।

**ତରଳଜ୍ୟୋତି**—ବି. (କ.ଧା) ମଣିମୁକ୍ତାଦିରେ ଝଟକୁଥିବା ତେଜ,ଉଜ୍ଜ୍ୱଳକାନ୍ତି ।

**ତରଳତା**—ସ୍ତ୍ରୀ.ବି. ତରଳତ୍ୱ, ଚଞ୍ଚଳତା, ଦ୍ରବତ୍ୱ, କାମୁକତା, ଲମ୍ପଟ୍ୟ ।

**ତରଳନିପଦୀ**—ସ୍ତ୍ରୀ. ବି. ଛନ୍ଦୋବିଶେଷ ।

**ତରଳନୟନ**—ବି(କ.ଧା) ଯେଉଁ ଆଖିର ଡୋଳା ଚଞ୍ଚଳ ଏଣେତେଣେ ବୁଲୁଥାଏ, ଏକବର୍ଣ୍ଣ ବୃତ୍ତ,(ପୁଂ.ବିଂ. ବ.ବ୍ରୀ) ଯାହାର ଆଖି ଡୋଳା ଚଞ୍ଚଳ ।

**ତରଳନୟନା(ନୀ)**—ସ୍ତ୍ରୀ. ବିଂ. (ବ.ବ୍ରୀ) ଯେଉଁ ସ୍ତ୍ରୀର ଚକ୍ଷୁ ଡୋଳା ଚଞ୍ଚଳ ଗତିରେ ବୁଲୁଥାଏ, ଚଞ୍ଚଳାକ୍ଷୀ,ଛନ୍ଦୋଭେଦ, ଚଳାପାଙ୍ଗୀ ।

**ତରଳପଦାର୍ଥ**—ବି.(କ.ଧା) ଜଳୀୟ ବା ଦ୍ରବ ପଦାର୍ଥ ।

**ତରଳପ୍ରକୃତି**—ବି.(କ.ଧା)ଚଞ୍ଚଳସ୍ୱଭାବ, (ବିଂ. ବ.ବ୍ରୀ) ଚଞ୍ଚଳ ସ୍ୱଭାବବିଶିଷ୍ଟ ।

**ତରଳମତି**—ବି. (କ.ଧା) ଚଞ୍ଚଳବୁଦ୍ଧି, (ବିଂ. ବ.ବ୍ରୀ) ଚଞ୍ଚଳ ବୁଦ୍ଧିବିଶିଷ୍ଟ ।

**ତରଳଲୋଚନ**—ବି.ବିଂ. (ବ.ବ୍ରୀ)ଚଞ୍ଚଳ ନେତ୍ର, (କ୍ଲୀ.ବି. କ.ଧା) ଚଞ୍ଚଳନୟନ ।

**ତରଳଲୋଚନା**—ସ୍ତ୍ରୀ.ବି. (ବ.ବ୍ରୀ)ଚଞ୍ଚଳନୟନା(ସ୍ତ୍ରୀ),ବାମନୟନା, ହରିଣାକ୍ଷୀ ।

**ତରଳହେବା**—ଗ୍ରା. କ୍ରି. ତରଳିବା, ଦ୍ରବୀଭୂତ ହେବା, ତରଳ ଝାଡ଼ାହେବା ।

**ତରଳା**—ସ୍ତ୍ରୀ. ବି. (ତରଳ+ଆ) ମଦ୍ୟ, ଅନ୍ନମଣ୍ଡ, ମଧୁମକ୍ଷିକା, (ବିଂ) ଚଞ୍ଚଳା, ତରଳର ସ୍ତ୍ରୀଲିଙ୍ଗ ।

**ତରଳା(ଳୋ)ଇବା**—ଗ୍ରା.କ୍ରି.ଦ୍ରବ କରିବା, କୋମଳ କରାଇବା, ହୃଦୟରେ ଦୟା ଜାତ କରାଇବା, ଭାଙ୍ଗିବା, ନାଶକରିବା, ଲଘୁ କରିବା ।

**ତରଳିଆ**—ଗ୍ରା.ବିଂ. ପତଳା ଓ ଜଳୀୟ, ଈଷତ୍ ତରଳ, ଦ୍ରବୀଭୂତ ।

**ତରଳିକା**—ସ୍ତ୍ରୀ.ବିଂ.(ତରଳ+କ+ଆ) ଚଞ୍ଚଳା, (ବି) ଏକପ୍ରକାର ହାର, କାଦମ୍ବରୀ ଉପନ୍ୟାସର ସଖୀବିଶେଷ ।

**ତରଳିତ**—ବି.ବିଂ. (ତରଳ+ଇ+ଣି.

ତ) ଦ୍ରବୀଭୂତ, କମ୍ପିତ, ତରଙ୍ଗାୟିତ, ବିସ୍ତାରିତ, ଜାତତାରଲ୍ୟ ।

**ତରଳିବା**—ଗ୍ରା. କ୍ରି. ଦ୍ରବୀଭୂତ ହେବା, (ହୃଦୟ) ଚଞ୍ଚଳ ବା ଅସ୍ଥିର ହେବା, ଦୟାର୍ଦ୍ର ହେବା, ଝଟକଳତହେବା ।

**ତରଳୀକୃତ**—ବି°. ତରଳ+ଚ୍ୱି+କୃତ) କଠିନ ଅବସ୍ଥାରୁ ତରଳ ଅବସ୍ଥା କରାଯାଇଥିବା ।

**ତରବଟ**—କ୍ଲୀ. ବ. ବୃକ୍ଷଭେଦ ।

**ତରବତ୍**—ଯା.ବ.ଶିକ୍ଷା,ଶାବକା, ଆଶ୍ରୟ ।

**ତରଶୀ**—ଯା. ବ. ଶୁକ୍ଳପକ୍ଷର ପ୍ରଥମ ସପ୍ତ ଓ କୃଷ୍ଣ ପକ୍ଷର ଶେଷ ସପ୍ତଦିନ ।

**ତରସ୍**—କ୍ଲୀ.ବ.(ତୃ+ଅସ୍)ବଳ, ବେଗ, ଘାର, ବାନର, ରୋମ, ଗତ, ଭେଳା, (ବି°) ବେଗବାନ୍, ବଳଶାଳୀ,(କ୍ରି.ବି°) ଶୀଘ୍ର ।

**ତରସ**—କ୍ଲୀ. ବ. (ତରସ୍+ଅ)ମାଂସ, (ବି°) ବେଗଯୁକ୍ତ, (ଗ୍ରା. ବ) ମାନସିକ ଶକ୍ତି, ମାନ, ସମ୍ଭ୍ରମ, ଆଶା, ଶୃଙ୍ଖଳ୍ୟ, ଭୟ ।

**ତରସତ୍**—ପୁଂ. ସ୍ତ୍ରୀ. ବି°. ମୃଗଭେଦ ।

**ତରସର**—ପ୍ରା.(ସମ୍ବ)ଅବ୍ୟ.ଅତି କଷ୍ଟରେ

**ତରସହିବା**—ଗ୍ରା. କ. ସମୟହେବା, କାଳ ପାଇବା, ବେଳ ଅଣ୍ଟିବା,କଷ୍ଟକ୍ଷଣ ଅପେକ୍ଷା କରିବାର ସୁବିଧା ହେବା ।

**ତରସା**—ଅବ୍ୟ. (ତୃ+ଅସ୍+ଆ)ଶୀଘ୍ର ।

**ତରସାନ**—ପୁଂ.ବ.(ତୃ+ଆନ)ନୌକା ।

**ତରସ୍ତ**—ଗ୍ରା. (ପଦ୍ୟ) ବି°. ଭୀତ,ବ୍ୟସ୍ତ-ସମସ୍ତ, ତ୍ରସିତ, (କ୍ରି.ବି°) ଅତ୍ୟନ୍ତ ବ୍ୟସ୍ତ ହୋଇ ।

**ତରସ୍ଥାନ**—କ୍ଲୀ. ବ. (୭ତତ୍) ନଦୀ ପାର ହେବାର ଘାଟ, ଉତ୍ତରଣ ସ୍ଥାନ, ଘାଟ, ପାରର ଉତ୍ତର ନେବାର ସ୍ଥାନ ।

**ତରସ୍ୱାନ୍**—ପୁଂ. ବି°. (ତରସ୍ + ବତ୍) ବେଗଶାଳୀ, ଶୂର, ବେଗଯୁକ୍ତ, (ସ୍ତ୍ରୀ) ତରସ୍ୱତୀ ।

**ତରସ୍ୱିନୀ**—ସ୍ତ୍ରୀ. ବ. (ତରସ୍ୱିନ୍+ଈ) ବେଗବତୀ, ବଳଶାଳିନୀ ।

**ତରସ୍ୱୀ**—ପୁଂ.ବି°(ତରସ୍+ବିନ୍)ବେଗଯୁକ୍ତ, ବେଗଯୁକ୍ତ, ଶୂର,(ପୁଂ.ବ)ଗରୁଡ଼, ବାୟୁ, ପବନବାହକ ।

**ତରହ**—ଯା. ବ. ଭାବ ।

**ତରା**—ଗ୍ରା. ବ. (ସ-ତାରା) ନକ୍ଷତ୍ର, ଚକ୍ଷୁଗୋଳକ, (ଲ.ଅର୍ଥ) ଦୃଷ୍ଟି, ଛେଲିବା ।

**ତରାଇ**—ଗ୍ରା. ବ. ହିମାଳୟ ପର୍ବତର ପାଦଦେଶସ୍ଥ ଗୋଟିଏ ଉପତ୍ୟକା, କେନ୍ଦୁଝରଙ୍କ ବଂଶୋପାଧିବିଶେଷ, ନାଉରିଆ ।

**ତରାଜ(ଜୁ)**—ଯା. ବ. ନିକ୍ତି, ତଉଲିବା କାଠି ଓ ପଲା, ତୁଳାଦଣ୍ଡ ।

**ତରାଟ**—ଗ୍ରା. ବ. ଟଗର ଦେଖ, ଆଖି ଡୋଳା ବୁଲାଇ ଗୁହାଁରା ।

**ତରାଟିବା**—ଗ୍ରା. କ୍ରି. ଆଖିର ଡୋଳାକୁ ବିସ୍ତାର କରି ଗୁହାଁବା । [ଚେଷ୍ଟା ।

**ତରାଢ଼**—ପ୍ରା. (ସିଂହଭୂମ)ବ. ତରବାରି

**ତରାକ୍ଷୁ**—ବ. ନୌକାବିଶେଷ, ତଳ-ସମତଳଥିବା ବଡ଼ ଡଙ୍ଗା ।

**ତରାବଟ**—ଗ୍ରା.ବ. ଆର୍ଦ୍ରତା, ଶୀତଳତା, (ବି°) ଯାହା ଦେହକୁ ଶୀତଳ କରେ ।

**ତରାଲୁ**—ବ. (ତୃ+ଣ. ଆଲୁ) ବଡ଼ ନୌକା, ନାହା ।

**ତରାସ୍**—ଗ୍ରା. ବ. କିରଣ, ଝରା, ତାତ, ତ୍ରାସ, ଅକସ୍ମାତ୍ ଭୟ ।

**ତରାମ**—ଗ୍ରା. ବ. (ପଦ୍ୟ) ତ୍ରାସ, ଭୟ, ଆଞ୍ଚ, ଆଡ଼େଣି, ପଙ୍ଖା ଆକାରରେ ଛିଣ୍ଡ ବିଶେଷ, (ଯ.ବ) କଲମତରାସ, କଲମ କାଟିବା ଛୁରୀ ।

**ତରାସିଆ**—ପ୍ରା. (ଗଞ୍ଜାମ) ବ. ନାପିତ, ଭଣ୍ଡାରି, ଭଣ୍ଡାରିଙ୍କ ଉପାଧିବିଶେଷ ।

**ତରାସିବା**—ଗ୍ରା. (ପଦ୍ୟ)କ୍ରି. ଭୀତ କରାଇବା, ଛୁରୀରେ କାଟିବା,(ଚନ୍ଦ୍ରସୂର୍ଯ୍ୟାଦି) ତେଜ ପ୍ରକାଶ କରିବା, କିରଣଦେବା ।

**ତରି**—ସ୍ତ୍ରୀ. ବ. (ତୃ+ଣ.ଇ) ଭେଳା, ଲୁଗାଆଦି ରଖାଯିବା ପେଟରା ବା ପେଡ଼ି, ନୌକା, ବସ୍ତ୍ରର ଦଶୀ, ଦଶୀ, ଅବସ୍ଥା ।

**ତରିକ**—ପୁଂ.ବ. (ତୃ+ଇକ) ନାବିକ, ଘାଟ ମାସୁଲ ଆଦାୟ କରିବା ବ୍ୟକ୍ତି, ପ୍ଲବ, ଭେଳା ।

**ତରିକା**—ସ୍ତ୍ରୀ.ବ. (ତର + କ + ଆ)ତରି ଦେଖ, (ଯା.ବ) ଢଙ୍ଗ, ଚାଲିଚଳଣି, ଉପାୟ, ହିଂସା, ସମ୍ପର୍କ, ଖାଗ୍ରଦାରୀ ।

**ତରିକୀ**—ପୁଂ.ବ(ତରିକ+ଇନ୍)ନାବିକ ।

**ତରିଜା**—ଗ୍ରା.(ପଦ୍ୟ)ବ.ତର୍ଜନ,ବଢ଼େଇ, ବାଲିଙ୍ଗି,କ୍ରୋଧ, ପ୍ରଭାବ, ଦ୍ୱେଷ,ତେଜ, ଗର୍ବ ।

**ତରିଣୀ**—ସ୍ତ୍ରୀ. ବ. ନୌକା ।

**ତରିଣ୍ଡା**—ଗ୍ରା.ବ.ସମୁଦ୍ର ବା ନଦୀର ତଳ ଦେଶରେ ଲଙ୍ଗର ବା ହୁକ ଦ୍ୱାରା ଖଞ୍ଜା ଯାଇଥିବା ଭାସମାନ ଚିହ୍ନ ।

**ତରିତ**—କ୍ରି.ବି°.(ତର+ଇତ)ଉତ୍ତୀର୍ଣ୍ଣ, ପାରଗତ, ଅପର ପାରିକୁ ଗତ ।

**ତରିତରକାରୀ**—ଗ୍ରା. ବ. କଞ୍ଚା ପରିବା ।

**ତରିତା**—ସ୍ତ୍ରୀ. ବ. ତର୍ଜନୀ, ଝଣିଆଙ୍ଗୁଠି, ଗଞ୍ଜନ, ଗଞ୍ଜେଇ, (ବି°) ତରିତର ସ୍ତ୍ରୀଲିଙ୍ଗ ।

**ତରିତ୍ର**—ପୁଂ. ବ. (ତୃ+ଣ.ତ୍ର) ତରଣ ସାଧନ, ନୌକା, ଭେଳା ।

**ତରିଶୁ**—ଦିନାଜପୁର ଜିଲାର ବଡ଼ଗାଁ ଓ ପରଗଣା ମଧ୍ୟରେ ଗୋଟିଏ ଖ୍ୟାତ ଗ୍ରାମ ।

**ତରିରଥ**—ପୁଂ. ବ. ଅରିତ୍ର, କାତ ।

**ତରିବତ୍**—ଯା. ବ. ଶିକ୍ଷା, ଉପଦେଶ, ପ୍ରତିପାଳନ, ତାଲିମ, ତାଡ଼ନା, ସ୍ୱଭାବ, ଅଭ୍ୟାସ, ଭରଣ ପୋଷଣ, ଢଙ୍ଗ, ଭଦ୍ରତା ଅନୁମୋଦିତ ବ୍ୟବହାର ।

**ତରିବା**—ଗ୍ରା.କ୍ରି.ନଦୀ ଆଦି ପାରିହେବା, ଉତ୍ତୀର୍ଣ୍ଣହେବା, (ବିପଦାଦିରୁ) ମୁକ୍ତି ପାଇବା, ଉଦ୍ଧାର ପାଇବା ।

**ତରୀ**—ସ୍ତ୍ରୀ. ବ. (ତୃ+ଣ.ଈ) ତରି ଦେଖ, ନୌକା, ଗଦା, ବସ୍ତ୍ରପେଟିକା, ଧୂମ, ଦ୍ରୋଣୀ, ବସ୍ତ୍ରର ଦଶୀ ।

**ତରୀକ୍**—ଯା. ବ. ପଥ, ଭାବ, ଅବସ୍ଥା, ନିୟମ ।

**ତରୀୟସ୍ନ୍**—ପୁ. ବି°.ଅତିଶୟ ତାରକ, ଯେ ମୁକ୍ତ କରେ, ଯେ ପାର କରେ ।

**ତରୁଷ**—ପୁଂ. ବ. (ତୃ+ଉଷ) ଶୁଷ୍କ

ଗୋମୟ, ଘଷି, ନୌକା, ଶୋଭନାକାର ଭେଳା, ବ୍ୟବସାୟ, ସମୁଦ୍ର, ସମର୍ଥ, ସ୍ୱର୍ଗ ।

**ତରୀଷନ୍**—ପୁଂ. ବ.(ତୃ+ଈଷନ୍) ତରଣ

**ତରୀଷୀ**—ସ୍ତ୍ରୀ.ବ.(ତରୀଷ+ଈ) ଇନ୍ଦ୍ରକନ୍ୟା

**ତରୁ**—ପୁଂ. ବ. (ତୃ+ଉ) ବୃକ୍ଷ, (ତ୍ରି.ବଂ) ତାରକ, ତରବକାର ।

**ତରୁଆ**—ଗ୍ରା. ବ. ତଡ଼ା, କାଠ ବା ବାଉଁଶର ଗୋଟା ଠେଙ୍ଗା, ମେଢ଼ା ।

**ତରୁକୂଣି**—ପୁଂ. ବ. (ତରୁ+କୂଣ+ଇ) ପକ୍ଷୀବିଶେଷ ।

**ତରୁକ୍ଷ**—ତ୍ରି. ବଂ. (ତୃ+ଉକ୍ଷନ୍) ଗୋ ଅଶ୍ୱାଦିର ତାରକ, ଗୋ ଅଶ୍ୱାଦିର ପାଳନରେ ନିଯୁକ୍ତ ।

**ତରୁଖଣ୍ଡ**—ପୁଂ. ବ. ବୃକ୍ଷ ସମୂହ ।

**ତରୁଜ**—ତ୍ରି. ବଂ. (ତରୁ+ଜନ+ଅ) ବୃକ୍ଷଜ, ବୃକ୍ଷୋତ୍ପନ୍ନ ।

**ତରୁଜୀବନ**—ବ. (୬ତତ୍) ଗଛର ମୂଳ ବା ଚେର ।

**ତରୁଣ**—କ୍ଲୀ. ବ. କୁନ୍ଦଫୁଲ, ସ୍ଥୂଳଜୀରକ. ଏକପ୍ରକାର ମଲ୍ଲିଫୁଲ, ନବଯୁବକ, ଏରଣ୍ଡ ବୃକ୍ଷ, ପୁଂ. ବଂ.) (ତୃ+କ.ଅନ) ଯୁବା, ନୂତନ, ଅଭିନବ, ଟାଟକା, ଅପରିପକ୍ୱ, କୋମଳ ।

**ତରୁଣକ**—ପୁଂ. ବ. ତରୁଣ, ଯୁବା, ସଜଦହି, ପାଞ୍ଚ ଦିନର ପୁରୁଣା ଦହି ।

**ତରୁଣଜ୍ୱର**—ପୁଂ. ବ.(କ.ଧା) ନବଜ୍ୱର, ସାତଦିନ ପର୍ଯ୍ୟନ୍ତ ଜ୍ୱରକୁ ତରୁଣଜ୍ୱର କୁହାଯାଏ ।

**ତରୁଣତା**—ସ୍ତ୍ରୀ. ବ.(ତରୁଣ+ତା) ନବୀନତା, ନବଯୁବାବସ୍ଥା ।

**ତରୁଣଦଧି**—କ୍ଲୀ. ବ.(କ.ଧା) ପାଞ୍ଚଦିନର ପୁରୁଣାଦଧି, ସଦ୍ୟୋଜାତ ଦଧି ।

**ତରୁଣପୀଡିକା**—ବ. ମନଃଶିଳା ।

**ତରୁଣବୟସ୍କ**—ପୁଂ. ବଂ. (ବ.ବ୍ରୀ) ନବଯୁବକ ।

**ତରୁଣସୂର୍ଯ୍ୟ**—ବ. (କ.ଧା) ବାଳସୂର୍ଯ୍ୟ, ନବୋଦିତ ସୂର୍ଯ୍ୟ, ମଧ୍ୟାହ୍ନସୂର୍ଯ୍ୟ ।

**ତରୁଣାସ୍ଥି**—ବ. (କ.ଧା) ଜୀବଦେହର ଉପାସ୍ଥି ବିଶେଷ, ନରମହାଡ଼ ।

**ତରୁଣୀ**—ସ୍ତ୍ରୀ. ବଂ.(ତରୁଣ+ଈ) ତରୁଣର ସ୍ତ୍ରୀଲିଙ୍ଗ, ନବଯୌବନା, ଯୁବତୀ, ନବୀନା, (ସ୍ତ୍ରୀ. ବ) ନବଯୁବତୀ ସ୍ତ୍ରୀ, ଘିଅକୁଆଁରୀ, ଧଳାସେବତୀ ଫୁଲ, ସ୍ଥୂଳ କୃଷ୍ଣଜୀରକ, ଦନ୍ତୀ ବୃକ୍ଷ, ମେଘରାଗର ରାଗିଣୀ ବିଶେଷ ।

**ତରୁଣୀକଟାକ୍ଷମାଲ**—ପୁଂ. ବ. ତିଳକପୁଷ୍ପ [ ବୃକ୍ଷ ।

**ତରୁତଳ**—କ୍ଲୀ. ବ. (୬ତତ୍) ବୃକ୍ଷମୂଳ, ଗଛରତଳ ଗଛମୂଳରେ ଚତୁଃପାର୍ଶ୍ୱସ୍ଥ ସ୍ଥାନ, ତରସ୍ୱରୂପ ।

**ତରୁତୁଲିକା**—ସ୍ତ୍ରୀ. ବ. ବାଦୁଡ଼ି ।

**ତରୁତା**—ତ୍ରି. ବଂ. (ତୃ+ତୃ) ତାରକ ।

**ତରୁଥ**—ତ୍ରି. ବଂ.(ତୃ+ଉଥ) ତାରକ ।

**ତରୁଦୂଲିକା**—ସ୍ତ୍ରୀ. ବ. ବାଦୁଡ଼ି ।

**ତରୁଧର**—ଗ୍ରା. ବ. ମର୍କଟ, ମାଙ୍କଡ଼ ।

**ତରୁନଖ**—ପୁଂ. ବ. (୬ତତ୍) କଣ୍ଟକ, କଣ୍ଟା, ଗଛର କଣ୍ଟା ।

**ତରୁପଂକ୍ତି**—ସ୍ତ୍ରୀ.ବ. ବୃକ୍ଷ ଶ୍ରେଣୀ ।

**ତରୁଭୁକ୍**—ପୁଂ.ବ.(ତରୁ+ଭୁଜ+କ୍ୱିପ) ମଲାଙ୍ଗ, ନିର୍ମୂଳୀ, ବନ୍ଦାକ ।

**ତରୁଭୋଜୀ**—ବି.(ତରୁ+ଭୁଜ+କ.ଇନ୍) ତରୁଭୁକ୍ ଦେଖ ।

**ତରୁମାର୍ଜନୀ**—ସ୍ତ୍ରୀ. ବ. ଭୂଇଁଅଁଳା ।

**ତରୁମୂଳ**—କ୍ଲୀ. ବ. ବୃକ୍ଷ ମୂଳ, ଗଛର ଗଣ୍ଡିର ଭୂମି ନିକଟସ୍ଥ ଭାଗ, ଗଛର ଚେର

**ତରୁମୃଗ**—ପୁଂ.ସ୍ତ୍ରୀ.ବ.(୬ତତ୍) ଶାଖାମୃଗ, ବାନର, ମାଙ୍କଡ଼ ।

**ତରୁରାଗ**—କ୍ଲୀ. ବ. (୬ତତ୍) କିଶଳୟ, ଅଙ୍କୁର, ନବପଲ୍ଲବ ।

**ତରୁରାଜ**—ପୁଂ. ବ.(୬ତତ୍) ନଡ଼ିଆଗଛ, ମହାତରୁ, ବଟବୃକ୍ଷ, ଅଶ୍ୱତ୍ଥବୃକ୍ଷ, ତାଳ-ବୃକ୍ଷ, ପାରିଜାତପୁଷ୍ପ ବୃକ୍ଷ ।

**ତରୁରୁହ**—ପୁଂ.ବ.(ତରୁ+ରୁହ+କ.ଅ) ନିର୍ମୂଳୀ ଲତା, (ସ୍ତ୍ରୀ) ତରୁରୁହା ।

**ତରୁରୁହା**—ସ୍ତ୍ରୀ.ବ. ତରୁରୁହର ସ୍ତ୍ରୀଲିଙ୍ଗ ।

**ତରୁରୋହିଣୀ**—ସ୍ତ୍ରୀ. ବ. (ତରୁ+ରୁହ+ଇନ୍+ଈ) ତରୁରୁହା ଦେଖ ।

**ତରୁଲତା**—ଗ୍ରା. ବ. (ଦ୍ୱନ୍ଦ୍ୱ) ଉଦ୍ୟାନଜାତ ବର୍ଷସ୍ଥ ଲତା ବିଶେଷ ।

**ତରୁବର**—ପୁଂ. ବ. (୬ତତ୍) ବୃକ୍ଷ ଶ୍ରେଷ୍ଠ, ବୃହତ୍ ବୃକ୍ଷ ।

**ତରୁବଲ୍ଲୀ**—ସ୍ତ୍ରୀ. ବ. (କ.ଧା) ନିର୍ମୂଳୀ, ଯେଉଁ ଲତା ତରୁକୁ ଅବଲମ୍ବନ କରି ରହେ ।

**ତରୁବିଟପ**—ପୁଂ. ବ.(୬ତତ୍) ବୃକ୍ଷ ଶାଖା, ଗଛର ଡାଳ ।

**ତରୁବିଳାସିନୀ**—ସ୍ତ୍ରୀ. ବ. ନବମଲ୍ଲିକା, ମାଆଳୀ ଲତା ।

**ତରୁଶ**—ତ୍ରି.ବଂ. (ତରୁ+ଶ) ତରୁଯୁକ୍ତ ।

**ତରୁଶାୟୀ**—ପୁ. ବଂ. (ତରୁ+ଶୀ+କ. ଇନ୍) ମର୍କଟ, ପକ୍ଷୀ, (ବଂ) ଗଛରେ ଶୋଇଥିବା ।

**ତରୁଷ୍**—କ୍ଲୀ. ବ. ଯୁଦ୍ଧ ।

**ତରୁଷ**—ତ୍ରି. ବଂ.(ତୃ+ଉଷନ୍) ତାରକ ।

**ତରୁଷଣ୍ଡ**—ପୁଂ. ବ. ବୃକ୍ଷ ଶ୍ରେଣୀ ।

**ତରୁସ୍**—ତ୍ରି. ବଂ. (ତୃ+ଉସି) ତାରକ ।

**ତରୁସାର**—ବ. (୬ତତ୍) କର୍ପୂର, ବୃକ୍ଷ-ସାରମାତ୍ର ।

**ତରୁସ୍ଥ**—ତ୍ରି. ବଂ. ବୃକ୍ଷସ୍ଥିତ ।

**ତରୁସ୍ଥା**—ସ୍ତ୍ରୀ. ବ. ବନ୍ଦାକ, ପର, ଚଛ, ନିର୍ମୂଳୀ ।

**ତରୂଟ**—ପୁଂ.ବ. (ତରୁ+ଉଟ) ଉତ୍ପଳ-କନ୍ଦ, ପଦ୍ମମୂଳ ।

**ତରୂଣକ**—ପୁଂ. ବ. (ତରୁଣ+କନ୍) ତରୁଣ, ତରୁଣଦଧି ।

**ତରୂଷସ୍**—ତ୍ରି.ବଂ.(ତୃ+ଉଷସ୍) ତରଣକୁଶଳ, ଆପଦୁଦ୍ଧାରକ ।

**ତରେଇ**—ପ୍ରା. (ବସ୍ତର) ବ. ପେଖଣା, (ପ୍ରା. ମେଦିନୀପୁର ବ) ଜନ୍ତୀ ।

**ତରୋତାଜା**—ଯା.ବଂ. ସତେଜ, ସବୁଜ ବର୍ଣ୍ଣଯୁକ୍ତ ।

**ତରୌଚ**—ସିମଳା ପାହାଡ଼ର ଅନ୍ତର୍ଗତ ଓ ପଞ୍ଜାବଗଭର୍ଣ୍ଣମେଣ୍ଟର ଅଧୀନ ଗୋଟିଏ ଦେଶୀୟ ରାଜ୍ୟ ।

**ତର୍କ**—ପୁଂ. ,ବ. (ତର୍କ+ଭା.ଅ) ଯୁକ୍ତି, ବାଦାନୁବାଦ, ତଦନ୍ତ, ସନ୍ଧାନ,(ଣ.ଅ) ନ୍ୟାୟଶାସ୍ତ୍ର, ଅଳଙ୍କାରଶାସ୍ତ୍ର କାରଣ, ହେତୁ, ସମ୍ଭାବନା, ସନ୍ଦେହ, ଅନୁମାନ,

ଆକାଂକ୍ଷା, ପ୍ରସ୍ତାବ (ନ୍ୟାୟ) କୌଣସି ପ୍ରତିଜ୍ଞା ଅସମ୍ଭବ ଥିବା ବିଷୟ ଯୁକ୍ତି ଦ୍ୱାରା ପ୍ରମାଣିତ କରିବା ଦର୍ଶନଶାସ୍ତ୍ର, ଛଅଫ ଖ୍ୟା, ବାକ୍ୟର କୌଣସି ସ୍ଥାନର ପୂରଣ, ଉଦ୍ଦେଶ୍ୟ,(ଗ୍ରା.ବି)ଛଳ,କପଟ, ସତର୍କତା ।

ତର୍କକ—ପୁଂ. ବିଂ.(ତର୍କ+କ.ଅକ)ଯେ ସନ୍ଧାନ କରେ, ଅନୁସନ୍ଧିତ୍ସୁ, ଯାଚକ, ତର୍କକାରକ, (ସ୍ତ୍ରୀ) ତର୍କକା ।

ତର୍କକାରୀ—ପୁଂ. ବି. ତର୍କକାରକ, ତାର୍କିକ, ଯେ ତର୍କ କରେ, (ସ୍ତ୍ରୀ) ତର୍କକାରିଣୀ । [ ତର୍କଶାସ୍ତ୍ର ।

ତର୍କଗ୍ରନ୍ଥ—ପୁଂ. ବି. ତର୍କପ୍ରଧାନ ଗ୍ରନ୍ଥ,

ତର୍କଜାଲ—ବି. (୬ତତ୍) ବହୁତର୍କ, କୂଟ ତର୍କ ।

ତର୍କଜ୍ୱାଳା—ସ୍ତ୍ରୀ. ବି. ଯହିଁରେ ଉଦ୍ଦୀପନା ଅଛି, ବୌଦ୍ଧଶାସ୍ତ୍ର ବିଶେଷ ।

ତର୍କଣ—କ୍ଲୀ. ବି. ଚନ୍ଦନ, ବିଚାର ।

ତର୍କଣା—ସ୍ତ୍ରୀ. ବି. ତର୍କ+ଭା.ଅନ+ଆ) ଅନୁମାନ, ଯୁକ୍ତି ।

ତର୍କଣୀୟ—ବିଂ. (ତର୍କ+ଅନୀୟ) ଚନ୍ତନୀୟ, ବିଚାର୍ଯ୍ୟ ।

ତର୍କପଞ୍ଚାନନ—ବି. ନ୍ୟାୟ ଶାସ୍ତ୍ରରେ ବିଚକ୍ଷଣ ପଣ୍ଡିତଙ୍କୁ ଦିଆଯିବା ଉପାଧି ବିଶେଷ । [ ଦେଖ ।

ତର୍କବାଗୀଶ—ପୁଂ. ବି. ତର୍କପଞ୍ଚାନନ

ତର୍କବିତର୍କ—ପୁଂ. ବି. (ଦ୍ୱନ୍ଦ୍ୱ) ବାଦାନୁବାଦ,ଅନୁକୂଳ ଓ ପ୍ରତିକୂଳଆଲୋଚନା ।

ତର୍କବିଦ୍ୟା—ସ୍ତ୍ରୀ. ବି. ନ୍ୟାୟଶାସ୍ତ୍ର, ସିଦ୍ଧାନ୍ତର ଖଣ୍ଡନ ମଣ୍ଡନ ପ୍ରଣାଳୀ ଓ ନିୟମ ଯେଉଁ ବିଦ୍ୟାରୁ ଶିକ୍ଷା କରାଯାଏ, ଯୁକ୍ତିବିଦ୍ୟା ।

ତର୍କଲସ୍ୟ—ବି. ଗୃକୁଣ୍ଡା ଦେଖ ।

ତର୍କଶାସ୍ତ୍ର—କ୍ଲୀ. ବି. ନ୍ୟାୟ ଶାସ୍ତ୍ର, ତର୍କପ୍ରତିପାଦକ ଶାସ୍ତ୍ର ।

ତର୍କସ୍—ଯା. ବି. ତୂଣୀର, ଶରମୁଣ୍ଡା ।

ତର୍କସନ୍ଧ—ବି. କାବ୍ୟାଲଙ୍କାର ବିଶେଷ ।

ତର୍କା—ଗ୍ରା. ବିଂ. ତରକା ଦେଖ ।

ତର୍କାତର୍କି—ଗ୍ରା. ବି. ଏକାଧିକ ବ୍ୟକ୍ତିଙ୍କ ମଧ୍ୟରେ ବାଦାନୁବାଦ ବା ବିଚାର, ତର୍କ ବିତର୍କ (ଗ୍ରା. ବି ଓ ବିଂ) ପରସ୍ପର ଜଗାଜଗି, ଛକାଛକି ।

ତର୍କାଭାସ—ପୁଂ. ବି. (୬ତତ୍) ଭ୍ରାନ୍ତ-ସିଦ୍ଧାନ୍ତ, କୁତର୍କ, ଅକାଟ୍ୟଭଳିକର ଯୁକ୍ତି ।

ତର୍କାରି—ସ୍ତ୍ରୀ. ବି. (ତର୍କ+ଋ+ଅ+ଇ) ଜୟନ୍ତୀ ବୃକ୍ଷ । [ ଗଛ ।

ତର୍କିଣ—ପୁଂ.ବି.ଚକ୍ରମର୍ଦ୍ଦ ବୃକ୍ଷ, ଗୃକୁଣ୍ଡା

ତର୍କିତ—ବି. ବିଂ.(ତର୍କ+ମି.ତ) ଉତ୍ପ୍ରେକ୍ଷିତ,ସମ୍ଭାବିତ,ପ୍ରସ୍ତାବିତ,ବିଚାରିତ, ଆଲୋଚିତ, ଯହିଁ ସମ୍ବନ୍ଧେ ସନ୍ଦେହ କରାଯାଉ ଥାଏ, ଅନୁସନ୍ଧାନ କରା ଯାଇଥିବା, (ଭୂ.ତ) ଅନୁମାନ ।

ତର୍କିଲ—ପୁଂ.ବି.ଚକ୍ରମର୍ଦ୍ଦ ବୃକ୍ଷ,ଗୃକୁଣ୍ଡା ଗଛ ।

ତର୍କୀ—ପୁଂ.ବିଂ.(ତର୍କ+ଇନ୍)ତର୍କକାରୀ, ଯେ ତର୍କକରେ, ତାର୍କିକ, ତର୍କଶାସ୍ତ୍ରଜ୍ଞ. (ସ୍ତ୍ରୀ) ତର୍କିଣୀ ।

ତର୍କୁ—ସ୍ତ୍ରୀ. ବି. (କୃତ+ଉ)ସୂତ୍ରନିର୍ମାଣ ଯନ୍ତ୍ର, ତାକୁଡ଼ୀ ।

ତର୍କୁକ—କ୍ଲୀ. ବି. (ତର୍କୁ+କ) ସୂତ୍ର ନିର୍ମାଣ ଯନ୍ତ୍ର, ତାକୁଡ଼ୀ ।

ତର୍କୁଟ—କ୍ଲୀ.ବି.କାଟାକଟିକରିବା, କର୍ତ୍ତନ

ତର୍କୁଟୀ—ସ୍ତ୍ରୀ.ବି.ସୂତ୍ରନିର୍ମାଣଯନ୍ତ୍ର.ତାକୁଡ଼ି

ତର୍କୁପିଣ୍ଡ—ପୁଂ. ବି. ( ୬ତତ୍ )ତାକୁଡ଼ି ମୂଳରେ ଯେଉଁ ମାଟିପିଣ୍ଡ ଥାଏ, ତାକୁଡ଼ିମୂଳର ବାଟୁଳି ।

ତର୍କୁପିଣ୍ଡୀ—ସ୍ତ୍ରୀ. ବି. ( ୬ତତ୍ ) ତର୍କୁପିଣ୍ଡ ଦେଖ ।

ତର୍କୁଲାସକ—ପୁଂ. ବି. ( ତର୍କୁ+ଲସ+ଣିଚ୍+କ.ଅକ ) ସୂତାକାଟିବା କଳ, ଚରଖା, ଅରଟ ।

ତର୍କୁଶାଣ—ପୁଂ. ବି. ତାକୁଡ଼ି ଶାଣଦେବାର କ୍ଷୁଦ୍ର ପ୍ରସ୍ତରବିଶେଷ ।

ତର୍କ୍ୟ—ବିଂ. ( ତର୍କ+ମି.ଯ ) ତର୍କରଯୋଗ୍ୟ,ବିଚାର୍ଯ୍ୟ,ବାଦାନୁବାଦଯୋଗ୍ୟ, ଅନିଶ୍ଚିତ ।

ତର୍କ୍ଷୁ—ବି.ତରକ୍ଷୁ, ଗଧିଆ,ହେଟାବାଘ ।

ତର୍ଖ୍ୟ—ବି. ଯବକ୍ଷାର,ସୋରା ।

ତର୍ଜ(ଧାତୁ)—ଗାଳିଦେବା, ଧମକାଇବା, ଭୟ ଦେଖାଇବା, ଉପହାସ କରିବା ।

ତର୍ଜନ(ନା)—କ୍ଲୀ. ସ୍ତ୍ରୀ. ବି.( ତର୍ଜ+ଭା-ଅନ+ଆ ) ଭର୍ତ୍ସନ, ତିରସ୍କାର. ଭୟ ପ୍ରଦର୍ଶନ, ଧମକାଣ, ଉପହାସନ, ଆସ୍ଫାଳନ, କ୍ରୋଧପ୍ରକାଶ ।

ତର୍ଜନଗର୍ଜନ—ଗ୍ରା. ବି. କ୍ରୋଧବ୍ୟଞ୍ଜକ ଉଚ୍ଚନାଦ ଦ୍ୱାରା ଭୟପ୍ରଦର୍ଶନ, ଚଢ଼ିମର୍କଟି ହେବା, ତିରସ୍କରଣ ।

ତର୍ଜନୀ—ସ୍ତ୍ରୀ. ବି. ( ତର୍ଜ+ଣ.ଅନ+ଈ ) ବୁଢ଼ା ଆଙ୍ଗୁଠିର ପାଖ ଆଙ୍ଗୁଠି, ବଣିଆଙ୍ଗୁଠି, ଯାହାଦ୍ୱାରା ତର୍ଜନ କରାଯାଏ । [ ଭେଦ ।

ତର୍ଜନୀମୁଦ୍ରା—ସ୍ତ୍ରୀ. ବି. ତନ୍ତ୍ରୋକ୍ତ ମୁଦ୍ରା-

ତର୍ଜମା—ଯା. ବି. ଅନୁବାଦ, ଭାଷାନ୍ତର

ତର୍ଜିକ—ପୁଂ. ବି. ଦେଶବିଶେଷ ।

ତର୍ଜିତ—ବିଂ.( ତର୍ଜ+ମି.ତ ) ଭର୍ତ୍ସିତ, ତିରସ୍କୃତ, ଅପମାନିତ, ତାଡ଼ିତ, (ସ୍ତ୍ରୀ) ତର୍ଜିତା ।

ତର୍ଜିବା—ଗ୍ରା. କ୍ରି. ଭୟ ଦେଖାଇବା, ଡ଼ରାଇବା, ଧମକାଇବା, ଗାଳିଦେବା ।

ତର୍ଣ୍ଣ—ପୁଂ. ବି. ( ତୃ+କ.ଣ )ବାଛୁରି, କଅଁଳାବାଛୁରି, ସଦ୍ୟଜାତ ଶିଶୁ ।

ତର୍ଣ୍ଣକ—ପୁଂ. ବି. କଅଁଳାବାଛୁରି, ସଦ୍ୟଜାତ ଶିଶୁ ।

ତର୍ଣ୍ଣି—ପୁଂ. ବି. ( ତୃ+କ.ନି ) ସୂର୍ଯ୍ୟ, ( ଣ.ନି ) ଭେଲା, ଡ଼ଙ୍ଗା ।

ତର୍ତ୍ତରିକ—କ୍ଲୀ. ବି. ( ତୃ+ଣ.ଇକ ) ନୌକା, ଭେଲା, (ବିଂ—କ+ଇକ ) ପାରଗାମୀ, ଯେ ପାରହୁଏ ।

ତର୍ତ୍ତବ୍ୟ—ବିଂ. ( ତୃ+ତବ୍ୟ ) ପାରହେବାର ଯୋଗ୍ୟ, ତରଣୀୟ ।

ତର୍ତ୍ତୀବ—ଯା. ବିଂ. ତରତିବ ଦେଖ ।

ତର୍ଦ୍ଦ(ର୍ଦ୍ଦି) ସ୍ତ୍ରୀ, ବି. ଦର୍ବୀ, ଚଟୁ ।

ତର୍ପଣ—କ୍ଲୀ. ବି. ( ତୃପ+ଣିଚ୍+ଭା.-ଅନ ) ଦେବତା ଋଷି ଓ ପିତୃଲୋକଙ୍କ ତୃପ୍ତ୍ୟର୍ଥ ଜଳଦାନ, ପ୍ରୀଣନ, ତୃପ୍ତିସାଧନ, (ବିଂ) ତୃପ୍ତିଜନକ, ସୁଖକର, (ସ୍ତ୍ରୀ) ତର୍ପଣା ।

ତର୍ପଣୀ—ସ୍ତ୍ରୀ. ବ. ( ତୃପ+ଣିଚ୍+ଣ.-ଅନ+ଈ)କ୍ଷୀରଣୀବୃକ୍ଷ, ରୁଦ୍ରୁସ୍ୱାଦବୃକ୍ଷ, ଗଙ୍ଗା, (ସ୍ତ୍ରୀ. ବି°) ପ୍ରୀତିଦାୟିନୀ ।

ତର୍ପଣୀୟ—ବି°. ( ତୃପ+ର୍ମ.ଅନୀୟ ) ତୃପ୍ତିର ଯୋଗ୍ୟ ।

ତର୍ପଣେଚ୍ଛୁ—ପୁ°. ବ. ( ତର୍ପଣ+ଇଷ-+ଉ ) ତର୍ପଣାକାଙ୍କ୍ଷୀ, ତର୍ପଣ କରିବାକୁ ଇଚ୍ଛୁକ ।

ତର୍ପୟିତବ୍ୟ—ବି°. ( ତୃପ+ଣିଚ୍+ତବ୍ୟ ) ତୃପ୍ତି ବା ପ୍ରୀଣନଯୋଗ୍ୟ ।

ତର୍ପିଣୀ—ସ୍ତ୍ରୀ. ବ. ( ତୃପ+ଣିଚ୍ +ଇନ୍-+ଈ ) ପଦ୍ମଚାରିଣୀ ଲତା, ସ୍ଥଳ-ପଦ୍ମିନୀ ।

ତର୍ପିତ—ବି°. ( ତୃପ+ଣିଚ୍+ର୍ମ.ତ ) ପ୍ରୀଣିତ, ଯାହାକୁ ତୃପ୍ତ କରାଯାଇଅଛି, ସନ୍ତୋଷିତ ।

ତର୍ପୀ—ପୁ°. ବ. ( ତୃପ+ଣିଚ୍+କ.-ଇନ୍ ) ତର୍ପକ,ଯେ ତର୍ପଣକରେ,(ସ୍ତ୍ରୀ) ତର୍ପିଣୀ ।

ତର୍ବଟ—ପୁ°. ବ. ( ତର୍ବ+ଅଟ )ବର୍ଷ. ଚକ୍ରମର୍ଦ୍ଦବୃକ୍ଷ, ଗୁଜ୍ଜ୍ଞୀଗଛ ।

ତର୍ମ୍ମ—କ୍ଳୀ. ବ. ( ତୃ+କ.ମନ୍ ) ଯୂପ-କାଷ୍ଠର ଅଗ୍ରଭାଗ ।

ତର୍ମିମ—ଯା. ବ. ସଂଶୋଧନ ।

ତର୍ଷ—ପୁ°. ବ. ( ତୃଷ+ଭ.ଅ ) ଅଭି-ଲାଷ, ତୃଷ୍ଣା, ଶୋଷ, ଅସନ୍ତୋଷ, ପ୍ଳବ, ଭେଳା, ସମୁଦ୍ର, ସୂର୍ଯ୍ୟ ।

ତର୍ଷଣ—କ୍ଳୀ. ବ. ( ତୃଷ+ଣିଚ୍+ଭ.ଅନ ) ପିପାସା, ଅଭିଲାଷ, ଆଗ୍ରହ, ଇଚ୍ଛା ।

ତର୍ଷିତ—ବି°. ( ତୃଷ+ଣିଚ୍+ର୍ମ.ତ ) ତୃଷିତ, ପିପାସିତ, ଜାତାଭିଲାଷ, ବାଞ୍ଛିତ, ଉତ୍କଣ୍ଠିତ । [ ଯୁକ୍ତ ।

ତର୍ଷୁଲ—ବି°. ( ତୃଷ+ଉଲ ) ତୃଷ୍ଣା-

ତର୍ଷ୍ୟାବତ୍—ବି°. ତୃଷ୍ଣାଯୁକ୍ତ, ତୃଷିତ ।

ତର୍ହି—ଅବ୍ୟ. ( ତଦ୍+ହି ) ସେହି ସମୟରେ, ତଦା, ସେହିସମୟରେ ତେବେ । [ ଦେଶ ।

ତଲ୍—( ପ୍ରା, ସମ୍ବ. ବ. ) ତଳ, ଅଧୋ-

ତଳମୁହାଁ—ପ୍ରା. (ସମ୍ବ)ବି°. ଅଧୋମୁଖ ।

ତଳ—ବ. ( ତଳ+କ.ଅ ) ଅଧୋଭାଗ, ନିମ୍ନଦେଶ, ସ୍ୱରୂପ, ଗର୍ତ୍ତ, ଉପରଭାଗ, ମଧ୍ୟଦେଶ, ଭୂପୃଷ୍ଠ, ପୃଷ୍ଠଦେଶ, ଗଭୀରତା, ବନ, କାନନ, ସମତଳ କ୍ଷେତ୍ର, ଖଣ୍ଡାର ବେଣ୍ଟ, ଅବସ୍ଥିତିର ନିମ୍ନତା, ଗୃହର ସ୍ତର ବା ମହଲା, ପାଖ, ନିକଟ, ଗୁପୁଡ଼ା, ତାଳଗଛ, ଆଧାର, ସ୍ୱଭାବ, ସପ୍ତପାତାଳ ମଧ୍ୟରୁ ୧ମ ପାତାଳ,ପାତାଳ. ମର୍ତ୍ତ୍ୟଲୋକ, ପାତାଳ ଲୋକ, ସହାୟ, ଭାବ, ଅତୀତକାଳ, କରତଳ, ଲେଡ଼ି, ଗୋଡ଼ର ତଳପା, ଗୋଧିସାପ, ଜଳର ନିମ୍ନସ୍ଥ ଭୂମି, ଧନୁ ଡୋରର ଘର୍ଷଣରୁ ହାତକୁ ରକ୍ଷା କରିବା ପାଇଁ ବାମ ବାହୁରେ ପିନ୍ଧାଯିବା ଚମଡ଼ାର ପଟି, ଜ୍ୟାଘାତବାରଣ. ମୂଳଦେଶ, ମୂଳର ଚତୁଃପାର୍ଶ୍ୱସ୍ଥ ସ୍ଥାନ,ମଧ୍ୟାହ୍ନରେ କୌଣସି ପଦାର୍ଥର ତଳ ଯେତେଦୂର ଛାଇ ପଡ଼େ, ହାତର ଗଣ୍ଠି. ଗୃହଖଣ୍ଡ, ଶିବ. ବାଁ ହାତ ଦ୍ୱାରା ବୀଣାଆଦି ବଜାଇବା, ତଳଓ, ପୋଖରୀ, ନରକର ଅଂଶ-ବିଶେଷ, କାରଣ, ଅଙ୍କ, ପ୍ରାରମ୍ଭ, (ଗ୍ରା. ବି°)ନିମ୍ନସ୍ଥ, ତଳରେ ଥିବା. (ଗ୍ରା. ବି) ପୂର୍ବବର୍ତ୍ତୀ କାଳ, ଅତୀତ କାଳ, ନଦୀର ମୁହାଁଣ ନିକଟସ୍ଥ ବା ସମୁଦ୍ରର ଉପକୂଳସ୍ଥ ନିମ୍ନ ଓ ଓଦାଭୂମି ।

ତଳଅଗଣା—ଗ୍ରା. ବି.ଏକାଧିକ ପ୍ରାଙ୍ଗଣ-ବିଶିଷ୍ଟ ଗୃହପୁଞ୍ଜର ବାଡ଼ିଆଡ଼ର ନିକଟ-ବର୍ତ୍ତୀ ପ୍ରାଙ୍ଗଣ ।

ତଳଇ—ପ୍ରା. (ସମ୍ବର)ବି. ପୋଖରୀ ।

ତଳଉ—ଗ୍ରା. ବ. (ସଂ-ତଳକ)ପୋଖରୀ ।

ତଳଉପରକରିବା—ଗ୍ରା.କ୍ରି. ତଳେ ଥିବା ବସ୍ତୁକୁ ଉପରକୁ ଓ ଉପରେ ଥିବା ବସ୍ତୁକୁ ତଳକୁ ଆଣିବା,ଓଲଟପାଲଟ କରିବା ।

ତଳକ—କ୍ଳୀ. ବ. (ତଳ+କ) ପୁଷ୍କରିଣୀ, ଫଳବିଶେଷ ।

ତଳକ—ବି. ତୋଡ଼ିମାଛ ।

ତଳକନ୍ଦ—ଗ୍ରା. ବି. କରଡ଼ି ଆଳୁ ।

ତଳକର—ବି. ପୋଖରୀରୁ ଉତ୍ପନ୍ନ ଦ୍ରବ୍ୟ ( ଯଥା—ମାଛ, ଚିଙ୍ଗୁଡ଼ି, ପଦ୍ମଫୁଲ ) ମାନଙ୍କ ଯୋଗୁଁ ଜମିଦାର ଅସୁଲ କରିବା କର ।

ତଳକରିବା—ଗ୍ରା.କ୍ରି. ନୁଆଁଇବା, ଅବ-ନତ କରିବା (ଲ.ଅର୍ଥ)ବଳପଡ଼ିବା ।

ତଳକାବେରୀ—କାବେରୀ ନଦୀର ଉତ୍ପତ୍ତି ସ୍ଥାନ ।

ତଳକୋଟ—ପୁ°. ବି. ବୃକ୍ଷବିଶେଷ ।

ତଳଘାଟ—ମାନ୍ଦ୍ରାଜବିଭାଗର ସାଲେମ ଜିଲ୍ଲାର ଦକ୍ଷିଣାଂଶ । [ କଙ୍କାରୁ ।

ତଳଚକା—ପ୍ରା. ( ଗଞ୍ଜାମ ) ବି. ବୋଇତ

ତଳଚଲାନ୍ତ—ଗ୍ରା.ବି°.ସର୍ବସ୍ୱାନ୍ତ, ଛାର-ଖାର, ସମ୍ପୂର୍ଣ୍ଣ ରୂପେ ନିଃଶେଷିତ, ନିର୍ଦ୍ଧନ ।

ତଳତଳିଆ—ଗ୍ରା.ବି°.ସର୍ବନିମ୍ନ, ନିମ୍ନ ବା ତଳରେ ଥିବା, ପାତ୍ରରେ ତଳେ ରହି-ଯାଇଥିବା, (ଗ୍ରା.ବି) କୌଣସି ପାତ୍ରରୁ ତୈଳାଦି ଜଳୀୟ ପଦାର୍ଥ ନିଃଶେଷିତ ହୋଇଗଲେ ଶେଷରେ ପାତ୍ର ତଳେ ଯେଉଁ ବହଳିଆ ପଦାର୍ଥ ରହିଯାଏ ।

ତଳତାଳ—ପୁ°. ବି. କରତାଳ, ତାଳି, କୁବୁଲି, ବାଦ୍ୟଯନ୍ତ୍ର ବାଦ୍ୟଭେଦ ।

ତଳତ୍ର—କ୍ଳୀ. ବ. (ତଳ+ତ୍ରି+କ.ଅ) ଚର୍ମନିର୍ମିତ ଦସ୍ତାନା ବା ହସ୍ତ ବରଣ ।

ତଳତ୍ରାଣ—କ୍ଳୀ. ବ. କରତଳ ରକ୍ଷକ, ଚର୍ମନିର୍ମିତ ଦସ୍ତାନା ।

ତଳଦଗିଆ—ଗ୍ରା. ବି. ମୋଟଲବନ୍ଦୀର ଅଧିବାସୀ ।

ତଳଧ୍ୱନି—ପୁ°.ବି. (୬ତତ୍) କରତଳର ଶବ୍ଦ, ହାତତାଳି ବା ବାହୁସ୍ଫୋଟର ଶବ୍ଦ । [ ବେତନ ।

ତଳପ୍—ଯା. ବି. ଆହ୍ୱାନ, ହୁକୁମ,

ତଳପ—ଗ୍ରା. ବି. ( ସଂ-ତଳ୍ପ ) ବିଛଣା, ଶଯ୍ୟା ।

ତଳପେଟ—ଗ୍ରା. ବି. ଉଦରର ନାଭି-କୁଣ୍ଡର ନିମ୍ନସ୍ଥ ଅଂଶ, ଉଦରର ଅଧୋ-ଭାଗ ।

ତଳପ୍ରହାର—ପୁ°. ବି. (୬ତତ୍) ଚାପୁଡ଼ି,

ଚୃପଡ଼ା ।

ତଳଭର—ଗ୍ରା. ବି°. ନିମ୍ନଗାମୀ, ନିମ୍ନ-ସ୍ଥାନକୁ ଗଡ଼ି ଯାଉଥିବା, ଭୂମିରେ ଭର ଦେଇଥିବା ।

ତଳଭରା—ଗ୍ରା. ବି. ଭୂମିରେ ହାତ ଦ୍ୱାରା ଭର ବା ଠେସଦେବା ।

ତଳଭେଦ—ପୁଂ. ବି. ( ୬ତତ୍ ) ତଳ ଫୁଟିଯିବା ।

ତଳମଳ—ବି. ପାତ୍ର ବା ଭାଣ୍ଡ ତଳରେ ଲାଗିଯିବା ତେଲଆଦିର କାଣ୍ଟି ।

ତଳମାଳ—ଗ୍ରା. ବି. ସମୁଦ୍ର ଉପକୂଳସ୍ଥ ନିମ୍ନ ପ୍ରଦେଶ, ଅନୂପପ୍ରଦେଶ ।

ତଳମାଳିଆ—ଗ୍ରା. ବି°. ତଳମାଳରେ ବାସ କରୁଥିବା, ମୋଗଲବନ୍ଦିବାସୀ ।

ତଳମୀନ—ପୁଂ.ବି. ଜଳନିମ୍ନସ୍ଥିତ ମତ୍ସ୍ୟ, ଶଙ୍କୁଡ଼ିମାଛ ।

ତଳମୁହାଁ—ଗ୍ରା. ପୁଂ. ବି°. ଯେ ତଳକୁ ମୁହଁ ପୋତିଥାଏ, ଯାହାର ମୁହଁ ତଳ-ପାଖେ ଥାଏ ।

ତଳସ୍ତୁ—ଗ୍ରା. (ପଦ୍ୟ)ବି. ତଳିଁରେ ଲଗ୍ନ ବା ଧନ, (ଗ୍ରା.ବି)ତାଲ ।

ତଳଯୁଦ୍ଧ—କ୍ଳୀ.ବି. ମଲ୍ଲଯୁଦ୍ଧ, କୁସ୍ତି ଦ୍ୱନ୍ଦ୍ୱ-ଯୁଦ୍ଧ, ଚୃପଡ଼ାଘାତ ଦ୍ୱାରା ଯୁଦ୍ଧବିଶେଷ ।

ତଳଲୋକ—ପୁଂ. ବି. (କ.ଧା) ପାତାଳ-ବାସୀ, ନାଗଲୋକ, ଭୂମିର ତଳସ୍ଥିତ ଲୋକ ।

ତଲବ୍—ଯା. ବି. ତଲପ୍ ଦେଖ ।

ତଲବ—ବି°. ତଲବାଦ୍ୟକାରକ ।

ତଳବକାର—ପୁଂ.ବି. ସାମବେଦର ଏକ ଶାଖା, ଏକ ଉପନିଷଦର ନାମ ।

ତଲବଗାର—ଯା. ବି°. ଯେ ତଲବ କରିବାକୁ ଯାଏ ।

ତଲବତାଗଦା—ଯା. ବି. ବାରଂବାର ତଲବ, ତମ୍ବି ତାଗିଦା ।

ତଲବହେବା—ଗ୍ରା.କ୍ରି(ଝାଡ଼ା ପ୍ରସ୍ରାବଆଦି) ମାଡ଼ିବା, ବେଗ ଅନୁଭୂତ ହେବା ।

ତଳବା—ଭାଗଲପୁରର ଗୋଟିଏ ନାମ, (ପ୍ରା. ବସ୍ତର.କ୍ରି) ସନ୍ତୁଳିବା ।

ତଲବାନା—ଯା.ବି. ବାଦୀ ପ୍ରତିବାଦୀ ବା ସାକ୍ଷୀମାନଙ୍କ ପ୍ରତି ସମନ ବା ଅନ୍ୟ କୌଣସି ଆଦେଶ ପଠାଇବା ପାଇଁ ଯେଉଁ ଖରଚ ଲାଗେ, ସମନଫିସ୍ ।

ତଳବାର୍—ପୁଂ.ବି. (ତଳ+ଣିଚ୍+ବୃ +କ.ଅ) ତରବାରି, ଖଡ୍ଗ, ଖଣ୍ଡା ।

ତଲବି—ଯା.ବି. ତଲବ କରାଯାଇଥିବା ।

ତଳସାରକ—କ୍ଳୀ. ବି. ( ତଳ+ସୃ+ଣିଚ୍+ର୍ମ.ଅକ ) ଘୋଡ଼ାର ଗ୍ରୀବାରେ ବନ୍ଧାଯିବା ଦଉଡ଼ି, ଘୋଟକର ଭୋଜନ ପାତ୍ର ।

ତଳସ୍ଥ—ପୁଂ. ବି°. (ତଳ+ସ୍ଥା+କ.ଅ) ନିମ୍ନଦେଶରେ ସ୍ଥିତ ।

ତଳସ୍ଥିତ—ବି°. ତଳସ୍ଥ ଦେଖ ।

ତଳସ୍ପର୍ଶ—ବି.(୬ତତ୍)ଜଳାଶୟର ତଳ ଦେଶକୁ ଛୁଇଁବା, (ବି°.ବ.ବ୍ରୀ)ଜଳା-ଶୟର ତଳଦେଶକୁ ଛୁଇଁହେବା, ଅଗଭୀର ।

ତଳହୃଦୟ—କ୍ଳୀ.ବି.(୬ତତ୍)ପଦତଳର ମଧ୍ୟଭାଗ, ପାଦର ତଳ ।

ତଳା—ସ୍ତ୍ରୀ. ବି. (ତଳ+ଆ) ଜ୍ୟାଘାତ-ବାରଣ, ଧନୁର୍ଦ୍ଧରମାନଙ୍କର ଧନୁର ଜ୍ୟା ଘର୍ଷଣ ନିବାରଣ ନିମିତ୍ତ ବାମ ହସ୍ତର କହୁଣୀଠାରୁ ହାତଗଣ୍ଠି ପର୍ଯ୍ୟନ୍ତ ପିନ୍ଧା-ଯିବା ଚମଡ଼ାର ପଟି, (ଗ୍ରା.ବି) ତଳ-ଭାଗ, ନିମ୍ନସ୍ଥାନ, ଜୋତାର ତଳପାର ଚମଡ଼ା, ମୃଦଙ୍ଗାଦି ବାଦ୍ୟ ଉପରେ ଛୁଆଣି ହେବା ଚମଡ଼ା, (ପ୍ରା. ବାଲେ. ବି.) ଧାନର ତଳି ।

ତଲାଇ—ଗ୍ରା. ବି. (ଫ-ତଲାଟୀ) ବାଉଁଶ ପାତିଆରେ ବୁଣା ପଟି, ଝୁଅରା ।

ତଲାଓ—ଯା.ବି. ପୋଖରୀ, ଜଳାଶୟ ।

ତଲାକ୍—ଯା.ବି. ମୁସଲମାନ ସ୍ୱାମୀ ଦ୍ୱାରା ଆପଣା ସ୍ତ୍ରୀର ବିବାହ ବନ୍ଧନ ଛେଦନ, ସ୍ୱାମୀ ଦ୍ୱାରା ପତ୍ନୀତ୍ୟାଗ ।

ତଲାକ୍ଦିଆ—ଗ୍ରା.ସ୍ତ୍ରୀ.ବି° (ମୁସଲମାନଙ୍କ ବ୍ୟବହୃତ) ସ୍ୱାମୀ ଦ୍ୱାରାତଲାକ ବିଧିରେ ପରିତ୍ୟକ୍ତା ସ୍ତ୍ରୀ ।

ତଲାକ୍ଦେବା—ଗ୍ରା. କ୍ରି. ( ମୁସଲମାନଙ୍କ ବ୍ୟବହୃତ ) ସ୍ୱାମୀ ଆପଣା ସ୍ତ୍ରୀକୁ ପରି-ତ୍ୟାଗ କରିବା ନିମନ୍ତେ "ତଲାକ" ଏହି ଶବ୍ଦ ୩ଥର ଉଚ୍ଚାରଣ କରି ଶପଥ କରିବା, ବିବାହିତା ସ୍ତ୍ରୀକୁ ତ୍ୟାଗ କରିବା, ବିବାହ ବନ୍ଧନ ଛେଦନ କରିବା ।

ତଲାକ୍ନାମା—ଯା. ବି. ମୁସଲମାନଙ୍କ ସ୍ତ୍ରୀକୁ ସ୍ୱାମୀର ଦେବା ଛାଡ଼ପତ୍ର ।

ତଳାଚ—ସ୍ତ୍ରୀ.ବି.(ତଳ+ଅଞ୍ଚ+ଅଧି.ଇ) ନଳ ନିର୍ମିତ କଟ, ଚଟେଇ, ବେତ ବା ବାଉଁଶ ନିର୍ମିତ ଅସ୍ତରଣ, ତଲେଇ ।

ତଳାଜ—ବୋମ୍ବାଇ ପ୍ରଦେଶର କାଥିଆ-ବାଡ଼ ଭବନଗର ରାଜ୍ୟର ନଗର-ବିଶେଷ ।

ତଳାଡ଼ୁ—ଗ୍ରା. ବି. ତାମିଲଭାଷା ଲିଖିତ ଗଦ୍ୟବିଶେଷ ।

ତଳାତଳ—କ୍ଳୀ. ବି. (ତଳ+ତଳ) ହିନ୍ଦୁ ଶାସ୍ତ୍ର ମଧ୍ୟରେ ସପ୍ତପାତାଳ ମଧ୍ୟରୁ ଏକ-ତମ, ୪ର୍ଥ ପାତାଳ ।

ତଳାଭିଘାତ—ପୁଂ. ବି. କରତଳାଘାତ, ଚୃପଡ଼ା, ଚପେଟାଘାତ ।

ତଲାର—ଗ୍ରା.ବି.ତଲେଇ, ଝାମ୍ପ, ତାଳି-ପତ୍ରରେ ତିଆରି ଟେପି ବା ଝାମ୍ପି ।

ତଲଶା—ଯା. ବି. ବୃକ୍ଷଭେଦ ।

ତଲସ—ଯା.ବି.ଅନୁସନ୍ଧାନ, ଅନ୍ୱେଷଣ, ଖୋଜିବା ଅପରାଧୀ ବ୍ୟକ୍ତିର ଦେହ ବା ଲୁଗାପଟାଆଦିରେ କୌଣସି ନିଷିଦ୍ଧ ବସ୍ତୁ ଲୁଚିଛି ଅଛି କି ନା ତାହା ଜାଣିବା ପାଇଁ ଅପରାଧୀର ଲୁଗାପଟା ଦେଖିବା, ଅନୁପସ୍ଥିତ ବ୍ୟକ୍ତି ବା ପଦା-ର୍ଥକୁ ଲୋଡ଼ିବା ।

ତଲସକରିବା—ଗ୍ରା.କ୍ରି.ତଲସିବା ଦେଖ ।

ତଲସି—ଯା.ବି°.ତଲସ କରାଯାଉଥିବା, ତଲସ ନିମନ୍ତେ ଆବଶ୍ୟକ, ( ଯା. ବି ) ତଲସ ଦେଖ ।

ତଲସିଫିସ୍—ଯା. ବି. ମହାଫିସଖାନାରୁ କୌଣସି ସରକାରୀ କାଗଜ ବାହାର କରିବା ପାଇଁ ସରକାରଙ୍କୁ ଦିଆଯିବା ନିର୍ଦ୍ଦିଷ୍ଟ ଫିସ ବା ଧନ ।

ତଲସିଦେବା—ଗ୍ରା. କ୍ରି. ଗେରମାଲ ବା

ହଜିଥିବା ଦ୍ରବ୍ୟ ପାଇଁ ଆପଣା ଘର ବା ଦେହକୁ ଖୋଜିବା ନିମନ୍ତେ ପୋଲିସ ଆଦି ଅନ୍ୟ ବ୍ୟକ୍ତିଙ୍କୁ ସୁବିଧାଦେବା ।

ତଲିସିବା—ଗ୍ରା. କ୍ରି. ଅନୁସନ୍ଧାନକରିବା, ଖୋଜିବା, ସନ୍ଧାନ ବା ଖବରନେବା, ଅପରାଧୀ ବା ସନ୍ଦେହଣ୍ଟ ବ୍ୟକ୍ତିର ଦେହ ଓ ଲୁଗାପଟା ଦରାଣ୍ଡିବା ।

ତଳି—ଗ୍ରା.ବି. (ସଂ-ତଳ) ରୁଆ ହେବାର ଉପଯୁକ୍ତ ଗଜାଗଛ, ଗର୍ଭ, ନିମ୍ନଦେଶ, ତଳଭାଗ, ଅଧୋଦେଶ, ନିକଟବର୍ତ୍ତୀ ସ୍ଥାନ, କୌଣସି ଗୃହର ବା ବସ୍ତ୍ରର ଅବସ୍ଥିତ ପ୍ରଦେଶ, ପଦାର୍ଥର ନିମ୍ନତମ ଅଂଶ, (ଗ୍ରା.ବିଂ)ଅଧୋଭାଗରେ ବ୍ୟବହୃତ ବା ଅବସ୍ଥିତ, ପରେ ଜାତହେବା, ଅଧସ୍ତନ ।

ତଳିଆ—ଗ୍ରା. ବିଂ. ନିମ୍ନସ୍ଥ, ତଳେ ଅବସ୍ଥିତ, ତଳ ସମ୍ବନ୍ଧୀୟ, ଉପକଣ୍ଠସ୍ଥ, ନିକଟବର୍ତ୍ତୀ, ନିକଟରେ ବାସ କରୁଥିବା, ଅଧସ୍ତନ, ଅଧୀନସ୍ଥ, ନୀଚତର, ତଳେ ତଳେ ଯାଉଥିବା, ତଳଦେଶ ବା ଅଧୋଭାଗରେ ଥିବା, ପାଖେପାଖେ ଯାଉଥିବା, ପରେ ଜାତ ହୋଇଥିବା, (ପ୍ରା. ବାଲେ.ବି) ଘାଣ୍ଟ ତଅଣ, (ସ୍ତ୍ରୀ) ରକ୍ଷିତା ସ୍ତ୍ରୀ, ଦାସୀ ।

ତଳିଆପୁଅ—ଗ୍ରା. ପୁଂ. ବି. ଦାସୀପୁତ୍ର ।

ତଳିଆଭାରିଯା—ଗ୍ରା.ସ୍ତ୍ରୀ.ବି.ରକ୍ଷିତା ସ୍ତ୍ରୀ ।

ତଳିଆମହାନ୍ତ—ଗ୍ରା. ବି. ଗୋଲମଜାଡ, ମହାନ୍ତଙ୍କ ଗୋଲମ ।

ତଳିଆଗୁର—ଗ୍ରା. ବି. ଗୋଡ଼ର ତଳିପାରେ ହେବା କଷ୍ଟଦାୟକ ବ୍ରଣରୋଗ ବିଶେଷ ।

ତଳିକଟା—ଗ୍ରା. ବିଂ. ଗୋଡ଼କଟା, ଅଣବିଶ୍ୱାସୀ, ଯେ ଭିତରେ ଭିତରେ ଅନ୍ୟର ଅନିଷ୍ଟ କରେ ।

ତଳିକନା—ଗ୍ରା.ବି. ଋତୁସ୍ରାବ ସମୟରେ ସ୍ତ୍ରୀଲୋକମାନଙ୍କର ପିନ୍ଧିବା କୌପୁନି ଓ କନାପୁଡ଼ା, ଛୁଆଁକନା ।

ତଳିକା—ସ୍ତ୍ରୀ. ବି. ( ତଳ+କ+ଆ ) ତଳସାରକ, ଘୋଟକର ବକ୍ଷସ୍ଥଳ ବନ୍ଧନରଜ୍ଜୁ ।

ତଳିକାଟ—ଗ୍ରା. ବିଂ. ତଳଭାଗ ବା ତଳଅଂଶରୁ କଟା ଯାଇଥିବା, ମୂଳରେ ବା ମୂଳ ପାଖରେ କଟା ହୋଇଥିବା, ଉପର ସ୍ତରର ବସ୍ତୁ କଟା ହୋଇଯିବା ପରେ ନିମ୍ନସ୍ତରରୁ ଯେଉଁ ବସ୍ତୁ କଟା ହୋଇ ବାହାରେ ।

ତଳିଛୁଆ—ଗ୍ରା. ବି. ଶେଯରେ ଶୋଇ ଥିବା ଛୁଆ, ଅତି କ୍ଷୁଦ୍ର ଶିଶୁ ।

ତଳିତ୍ର—ସ୍ତ୍ରୀ.ବି.ତଡ଼ିତ୍, ବିଜୁଳି,ବିଦ୍ୟୁତ୍ ।

ତଳିତ—କ୍ଳୀ. ବି. (ତଲ+ସଂ.ତ)ଭଜାମାଂସ, ଭୃଷ୍ଟମାଂସ, (ବିଂ) ଭୃଷ୍ଟ, ଭଜା ହୋଇଥିବା, ସିଝିଲା ହୋଇଥିବା ।

ତଳିତଳାନ୍ତ—ଗ୍ରା. ବିଂ. ତଳିତଳାନ୍ତ ଦେଖ । [ ଦେଖ ।

ତଳିତଳିଆ—ଗ୍ରା.ବି ଓ ବିଂ. ତଳିତଳିଆ

ତଳିଧରିବା—ଗ୍ରା.କ୍ରି. ତଳାଇବା, ତଳଦେଶରେ ବୁଡ଼ିଯିବା, ତଅଣ କ୍ଷୀଣ ବା ଉଷୁମା ଯାଉଥିବା ଧାନ ଯଥେଷ୍ଟ ଜଳ ଅଭାବରୁ ବା ବାରମ୍ବାର ଘଣ୍ଟା ନ ହେବାରୁ ପୋଡ଼ିଯାଇ ହାଣ୍ଡିର ତଳେ ଲାଗିଯିବା ।

ତଳିନ—କ୍ଳୀ.ବି.ଶଯ୍ୟା, ( ବିଂ ) ବିରଳ, ସ୍ତୋକ, ସ୍ୱଚ୍ଛ, ଦୁର୍ବଳ ।

ତଳିପକା(କେ)ଇବା—ଗ୍ରା.କ୍ରି.ମନ୍ତ୍ରୀରୁ ଗୃହୀ ହେବାପରେ ତାହାଙ୍କୁ ଉପାଡ଼ିନେଇ ଅନ୍ୟନିର୍ବାସନକରିବାପାଇଁମନ୍ତ୍ରବୁଣିବା

ତଳିପା—ଗ୍ରା.ବି. ( ସଂ-ତଲ ଓ ପାଦ ) ପାଦର ତଳଭାଗ ।

ତଳିପେଟ—ଗ୍ରା. ବି. ନାଭିତଳେ ଥିବା ପେଟର ଅଂଶ ।

ତଳିପୋଛ—ଗ୍ରା.ବିଂ. ନିଃଶେଷିତ,ଖାଲି ।

ତଳିଭରୁଡ଼—ଗ୍ରା.ବି.ତଳିପାର ଗୋଇଠିର ମୋଟା ଚମ ଭିତରେ ଉଠିବା କଷ୍ଟସାଧ୍ୟ ବ୍ରଣବିଶେଷ ।

ତଳିମ—କ୍ଳୀ.ବି.(ତଲ+ଇମ)କୁଟ୍ଟିମ,ପକ୍କା ମେଜିଆ,ଗୃହ,ଛପର,ଶୂଳ,ଶଯ୍ୟା,ଖଡ୍ଗ, ବିତାନକ ।

ତଳିମନ୍ତ୍ର—ଗ୍ରା.ବି. ତୋଡ଼ାଣିରେ ଯେଉଁ ବହଳିଆ ଅଂଶପାତ୍ରର ତଳକୁ ରହିଯାଏ ।

ତଳିମଣ୍ଡା—(ଗ୍ରା.କଟକ.ବି.) ଅଳ୍ପଖାଦ୍ୟ ।

ତଳିମାଛ—ଗ୍ରା. ବି. ପଙ୍କଭିତରେ ଥିବା ମାଛ, ପଙ୍କ ଆମାଛ ।

ତଳିମୁଣ୍ଡା(ଝୁଣ୍ଟା)—ଗ୍ରା.ବି. ଯେଉଁଜମିରେ ତଳି ପକାଯାଏ ।

ତଳିହାତକରି ଧରିବା—ଗ୍ରା.କ୍ରି. କୌଣସି ପଦାର୍ଥର ତଳ ବା ତଳଭାଗକୁ ହାତରେ ଧରିବା, କୌଣସି ପଦାର୍ଥକୁ ତଳପଟ ଧରି ଟେକିବା ।

ତଲିଯାର—(ପ୍ରା. ଗଞ୍ଜା. ବି.) ବାରିହା, ଜଗୁଆଳ, ଚଉକିଦାର ।

ତଲୁ—ଗ୍ରା.ଅବ୍ୟ. ଅବଧି, କୌଣସି ସମୟରୁ ଆରମ୍ଭକରି ଏ ପର୍ଯ୍ୟନ୍ତ, ନିମ୍ନଦେଶରୁ ।

ତଲୁନ—ପୁଂ.ବି. ବାୟୁ, ଯୁବା ।

ତଲୁନୀ—ସ୍ତ୍ରୀ.ବି. ତରୁଣୀ,ଯୁବତୀ ।

ତଳେ—ଗ୍ରା. ଅବ୍ୟ. ( ସଂ-ତଳ ) ନିମ୍ନଦେଶରେ, ପୃଷ୍ଠଭାଗରେ, ଭିତରେ-ଭିତରେ, ଗୋପନରେ, ଗୁପ୍ତଭାବରେ (କୌଣସିଶ୍ରେଣୀ ବା ଦଳର)ଅନ୍ତର୍ଭୁକ୍ତହୋଇ, ପରବର୍ତ୍ତୀ ସମୟରେ, ପରେ, ଏଥିପୂର୍ବ,ଆଗେ,ନିମ୍ନତମ ପ୍ରଦେଶରେ, ଗୁପ୍ତସ୍ଥାନରେ,ପାଖେପାଖେ, ଭୂଇଁରେ, ଉପକଣ୍ଠରେ, ନିକଟରେ ।

ତଳେଇ—ଗ୍ରା. ବି. ବାଉଁଶପାତିଆରେ ବୁଣାହୋଇଥିବା ଆସନ, (ଗ୍ରା.ଯାଜ.ବି) ଲଘୁ, ନିଚା ।

ତଳେଇଦେଖିବା—ଗ୍ରା.କ୍ରି. ( ଲ.ଅର୍ଥ ) ଭିତରେ ପଶି ଅନୁସନ୍ଧାନ କରିବା, ତନ୍ନ ତନ୍ନ କରି ବିଚାର କରିବା ।

ତଳେଇବା—ଗ୍ରା. କ୍ରି. ତଳକୁ ବୁଡ଼ିବା, ତଳିଧରିବା, ତଳପର୍ଯ୍ୟନ୍ତ ଅନୁସନ୍ଧାନ କରିବା ।

ତଳେଇବା—ଗ୍ରା.କ୍ରି. ବୁଟଆଦି ଶସ୍ୟକୁ ଘିଅ ବା ତେଲରେ ସାମାନ୍ୟ ଭାଜିବା, ଫୁଆଇବା, ଉଖୁଡ଼ା କରିବାପାଇଁ ଲିଆକୁ ଗୁଡ଼ପାଗରେ ପକାଇ ଚଟୁଦ୍ୱାରା ଘାଣ୍ଟିବା

ତଲେକ୍ଷଣ—ପୁଂ.ବି.( ବ.ଦ୍ରୀ ) ଶୂକର,

(ସ୍ତ୍ରୀ) ତଳେଷଣୀ ।
ତଳେଗଡ଼ିବା--ଗ୍ରା.କ୍ରି.ଭୂମିରେ ଲୋଟିବା ।
ତଳେତଳେ—ଗ୍ରା. ଅବ୍ୟ. ଭିତରେ-ଭିତରେ ।
ତଳେଯିବା—ଗ୍ରା.କ୍ରି.( ଅମୁକ ) ରୂପେ ବିବେଚିତ ହେବା, ଯଥା—ଏ ପିଲାଙ୍କ ଆଖିରେ ଆମେ ମୂର୍ଖତଳେ ଗଲେଣି ।
ତଳୋଦରୀ—ସ୍ତ୍ରୀ.ବି. (ବ.ବ୍ରୀ)କୃଶୋଦରୀ ସ୍ତ୍ରୀ, ଭାର୍ଯ୍ୟା, ସ୍ତ୍ରୀ ।
ତଳୋଦା—ଗ୍ରା.ବି. ବୋମ୍ବାଇପ୍ରଦେଶର ଖାନ୍ଦେଶ ଜିଲାର ଉ:ପ: ଅଂଶରେ ଅବସ୍ଥିତ ଗୋଟିଏ ଉପବିଭାଗ ଓ ଉକ୍ତ ବିଭାଗର ପ୍ରଧାନସହର,(ସଂ-ବି) ନଗର ।
ତଳ୍କ—କ୍ଲୀ.ବି.(ତଳ+କ)ବନ ।
ତଲ୍ତୁଲିଆ—ଗ୍ରା.ବିଂ. କୋମଳ,ଅକଠିନ ।
ତଲ୍ପ—ପୁଂ.କ୍ଲୀ.ବି.(ତଲ+ପ)ଗୃହ,ଚନ୍ଦ୍ରଶାଳା, ଶଯ୍ୟା, ଭାର୍ଯ୍ୟା, ଦାର, କୋଠା ଅଟ୍ଟାଳିକା ।
ତଲ୍ପକ—ପୁଂ.ବି.( ତଲ୍ପ+କ ) ଶଯ୍ୟା ସଂସ୍କାରକାରକ ଭୃତ୍ୟ, ଶଯ୍ୟା ।
ତଲ୍ପକୀଟ—ପୁଂ.ବି.ଓଡ଼ଶ,ଘୁରପୋକ ।
ତଲ୍ପଗିରି--ପୁଂ.ବି.ଦାକ୍ଷିଣାତ୍ୟର ତିରୁପତିର ଅଦୂରରେ ବିଷ୍ଣୁଙ୍କ ନାମରେ ଉତ୍ସର୍ଗୀକୃତ ଗୋଟିଏ ପାହାଡ଼ ।
ତଲ୍ପଜ—ବିଂ. (ତଲ୍ପ+ ଜନ + ଅ)ସ୍ତ୍ରୀର ଗର୍ଭଜାତ,(ବି) କ୍ଷେତ୍ରଜପୁତ୍ର ।
ତଲ୍ପନ—କ୍ଲୀ. ବି. କରିପୃଷ୍ଠ, ପୃଷ୍ଠାସ୍ଥିରମାଂସ,ମେରୁଦଣ୍ଡଉପରେ ଥିବା ମାଂସ ।
ତଲ୍ପଶୀବନ୍—ପୁଂ.ବିଂ. ଶଯ୍ୟାଶାୟୀ ।
ତଲ୍ପୀ—ଗ୍ରା. ବି. ବସ୍ତା,ବିଛଣାପତ୍ରର ଗଣ୍ଠିଲି, ବୋକଚ ।
ତଲ୍ପେଶୟ—ପୁଂ.ବିଂ.ଶଯ୍ୟାଶାୟୀ ।
ତଲ୍ୟ—ପୁଂ.ବି.ରୁଦ୍ରଭେଦ,ଯଥାସାଧୁ ।
ତଲ୍ଲ—କ୍ଲୀ.ବି.(ତଲ + ଲ+କ.ଅ) ବିଲ, ଗହ୍ୱର, ଗଡ଼ି,ପୁଷ୍କରିଣୀ, (ବିଂ)ତହିଁରେ ଲୀନ ।
ତଲ୍ଲଜ--ପୁଂ.ବି.(ତତ୍+ଲଜ+ଅ)ପ୍ରଶସ୍ତବାଚକ, ଶ୍ରେଷ୍ଠତାବୋଧକ ଶବ୍ଦ ।
ତଲ୍ଲହ—ପୁଂ.ବି.କୁକ୍କୁର ।

ତଲ୍ଲାଟ—ଗ୍ରା. ବି. ପ୍ରଦେଶ, ବହୁଦୂରବ୍ୟାପକ ସ୍ଥାନ, ସାରବୁଲିଆ,ସାରାଦୃଷ୍ଟି ।
ତଲ୍ଲାସ—ଯା.ବି. ଅନୁସନ୍ଧାନ,ଅନ୍ୱେଷଣ, ଖୋଜା ।
ତଲ୍ଲିକା—ସ୍ତ୍ରୀ.ବି. ( ତତ୍ + ଲି+କ.ଅ- +କ+ଆ )ଚାବିଲୁଗାର ଛିଦ୍ରଉପରେ ପଡ଼ୁଥିବାତାଳି,ଗୁବକାଠି,କୁଞ୍ଚି,କୋଲପ ତାଲି ।
ତଲ୍ଲୀ—ସ୍ତ୍ରୀ.ବି.(ତତ୍+ଲସ+କ.ଅ+-ଈ) ବରୁଣଙ୍କ ସ୍ତ୍ରୀ, ନୌକା, ଯୁବତୀ, ଜୋତାର ତଳା,କାଣ୍ଡି ।
ତଲ୍ୱ—କ୍ଲୀ.ବି.ସୁଗନ୍ଧଦ୍ରବ୍ୟର ଘର୍ଷଣରେ ଉତ୍ପନ୍ନ ସୌରଭ । [ ଭେଦ ।
ତଲ୍ୱକାର—ପୁଂ.ବି.ସାମବେଦର ଶାଖା-
ତବ୍ଲା—ଗ୍ରା.ବି.ଫାରସୀ,ତାବଲ ଦେଖ ।
ତବ—ସର୍ବ. ( ଯୁଷ୍ମଦ୍ ଶବ୍ଦର ୬ ବିଭକ୍ତି ୧ବଚନ)ତୁମ୍ଭର, ତୋହର,ତୋର ।
ତବକ—ବିଂ. ତ୍ୱଦୀୟ, ତୁମ୍ଭସମ୍ବନ୍ଧୀୟ, ତୁମ୍ଭର,ଆପଣଙ୍କର,(ଯା.ବି)ମିଷ୍ଟାନ୍ନ ବା ତାମ୍ବୁଲଉପରେ ଆବରଣରୂପେ ବ୍ୟବହୃତ ସୁନାରୂପାର ଅତିସୂକ୍ଷ୍ମ ପାତିଆ, ତଉଡ଼ା ଓ ପତଳା ପିତଳ ବା ଅନ୍ୟ ଧାତୁର ଥାଳ,ଘୋଡ଼ାଆଦିଙ୍କ ଦେହରେ ଚକା ଚକା ଫୁଲଦାଗ ହେବା ଏକପ୍ରକାରରୋଗ,(ଗ୍ରା.ବି)ପରସ୍ତ, ପ୍ରସ୍ତ,ସ୍ତର, ଥାକ, ବନ୍ଧୁକ, ଅନ୍ତ୍ୟସ୍ତ ।
ତବକା—ଯା.ବି.ଚନ୍ଦର ଶିରରେ ପୃଷ୍ଠ ଗୋଲକାର ବୁନ୍ଦିଆ,(ପ୍ରା. ମେଦ. ବି. ) ତମାଖୁ । [ ଧାଙ୍ଗ ।
ତବଙ୍କୀ—ଯା.ବିଂ. ତବକଧାରୀ, ବନ୍ଧୁକ-
ତବକ୍ଷୀର—କ୍ଲୀ.ବି. କ୍ଷୀର ଜଳ, ପଲ୍ଟିକବିଶେଷ ।
ତବକ୍ଷୀରୀ—ସ୍ତ୍ରୀ.ବି. ଗନ୍ଧପତ୍ରୀ ।
ତବତ—ଗ୍ରା. ବିଂ.(ଫ ତପ୍ତ)ଉଷ୍ଣ,ତାତଲା, ତତଲା ।
ତବତଝଣ୍ଡା—ଗ୍ରା. ବି. ବାରଦାଣ୍ଡିଆ(ଗଛ) ଦେଖ, ଅପାମାଗ ।
ତବତବଇତରଣୀ—ଗ୍ରା. ବି. ତପ୍ତାବୈତରଣୀ ଦେଖ ।

ତବତ—ଗ୍ରା. ବି. (ଫ-ତପ୍ତତା) ଉଷ୍ଣତା, ତାତ, ଗରମି, ଜ୍ୱର ଆଦି ଯୋଗୁଁ ହେବା ଶରୀରର ଉତ୍ତାପ ।
ତବଦ—ଗ୍ରା. ବିଂ. (ଫ-ସ୍ତବ୍ଧ) ତବଦା ଦେଖ ।
ତବଦା—ଗ୍ରା. ବିଂ. ହୃଦସ୍ଥାନ, ନିଶ୍ଚଳ, ସ୍ତବ୍ଧ, ବନ୍ଦ କରାଯାଇଥିବା, ସ୍ତମ୍ଭିତ, (କଣ୍ଠ) ବଧିରୀକୃତ, ମୂର୍ଚ୍ଛିତ ।
ତବର—କ୍ଲୀ. ବି. ନିର୍ଦ୍ଦିଷ୍ଟ ଉଚ୍ଚସଂଖ୍ୟା ।
ତବରାଜ—ପୁଂ. ବି. ଯବାସ ଶର୍କରା ।
ତବର୍ଗ—ପୁଂ. ବି. "ତ, ଥ, ଦ, ଧ, ନ" ଏହି ପାଞ୍ଚିବର୍ଣ୍ଣ ତବର୍ଗ ଅଟେ ।
ତବଲ୍ଚୀ—ଯା. ବିଂ. ଯେଉଁ ବ୍ୟକ୍ତି ତବଲାବାଦ୍ୟ ବଜାଏ ।
ତବଲକ୍—ଯା. କ୍ରି.ବିଂ.ହରଦମ୍,ସର୍ବଦା ।
ତବଲା—ଯା. ବି. ଡାହାଣ ହାତରେ ବଜାଯିବା ପଟଖୋଳପରି ଏକମୁଖା ଆନଦ୍ଧବାଦ୍ୟବିଶେଷ, ତେଲଭଣ୍ଡି ବା ଫଲମପରି ଚଟ୍ଟକାପାତ୍ର, ତାଉଆ ।
ତବଲି—ଯା.ବି. ସିତାରତୁମ୍ବୀର ମୁହଁରେ ଲଗାଯିବା ପତଳା କାଠପଟା ।
ତବସ୍—କ୍ଲୀ. ବିଂ. (ତୁ+ଅସ୍) ବୃଦ୍ଧି, ମହତ୍ତ୍ୱ, (ବି) ବଳ ।
ତବସ୍ୟ—କ୍ଲୀ. ବି. ବଳସାଧନ ।
ତବସ୍ୱତ୍—ବିଂ. ବଳଯୁକ୍ତ ।
ତବାଗା—ଗ୍ରା. ବିଂ. ପ୍ରବୃଦ୍ଧ, ବଳଯୁକ୍ତ ।
ତବିଅତ—ଯା. ବି. ଶରୀରର ସ୍ୱାସ୍ଥ୍ୟ, ଦିଲ, ମେଜାଜ୍, ଚଉ ।
ତବିଅତ୍ଦାର୍—ଯା. ବିଂ. ଭାବୁକ, ରସିକ, ରସଜ୍ଞ, ସମଜ୍ଦାର ।
ତବିସ୍ୱନ୍—ବିଂ. ଅଧିବଳବାନ୍, ଶକ୍ତି ଓ ସମ୍ପଦଶାଳୀ ।
ତବିଷ—ପୁଂ. ବି. (ତବ+ଇଷ) ସ୍ୱର୍ଗ, ସମୁଦ୍ର, ବ୍ୟବସାୟ, ଶକ୍ତି, ସ୍ୱର୍ଣ୍ଣ, (ବିଂ) ବୃଦ୍ଧ, ମହତ୍ତ୍ୱ, ବଳବାନ୍ ।
ତବିଷୀ—ସ୍ତ୍ରୀ.ବି.ଭୂମି, ନଦୀ, ଦେବକନ୍ୟା ବଳ ।
ତବିଷୀମାନ୍—ପୁଂ. ବିଂ. ଦୀପ୍ତିମାନ୍, ଦୀପ୍ତ ।
ତବିଷୀୟୁ—ବିଂ. (ତବିଷୀୟ+ଉ) ବଳ

ଆଚରଣକାରୀ, ବଳପ୍ରୟୋଗକାରୀ ।

**ତବଷୀବାନ୍**—ପୁଂ. ବିଂ. (ତବଷୀ+ବତ୍) ବଳବାନ୍, ସାହସୀ ।

**ତବିଷ୍ୟା**—ସ୍ତ୍ରୀ. ବ. ବଳ, ଶକ୍ତି ।

**ତବୀବ୍**—ଯା. ବ. ବୈଦ୍ୟ, ଚିକିତ୍ସକ ।

**ତବ୍ୟ**--ବିଂ.(ତବ+ଯ)ବେଦାନ୍ତ ବିଶେଷ. (ଯା.) ଶକ୍ତିଶାଳୀ, (ସଂ-ପ୍ରତ୍ୟୟ) ଧାତୁର ଉତ୍ତର ଭବିଷ୍ୟତ୍ କାଳରେ ଯୋଗ୍ୟ ଉଚିତ ବା କର୍ତ୍ତବ୍ୟ ଅର୍ଥରେ ହେବାପ୍ରତ୍ୟୟବିଶେଷ(ଯଥା-ଶ୍ରୋତବ୍ୟ।

**ତଶ(ସ)ଲ୍ଲ**—ଯା. ବ. ହୁଡୁକ, ଅର୍ଗଳ, ପିତ୍ତଳର ରନ୍ଧନ ପାତ୍ର ।

**ତଷା**—ଗ୍ରା. ବ. (ସଂ-କୃଷି) ଦେଖ ।

**ତଷ୍ଟ**—ବିଂ.(ତକ୍ଷ+ମ୍ପ.ତ) ତଞ୍ଛାହୋଇ-ଥିବା, ରନ୍ଦାମରାଯାଇଥିବା, କୁଣ୍ଠା ବଣ୍ଟା ହୋଇଥିବା ତନୂକୃତ, ଦ୍ୱିଧାକୃତ, ତାଡ଼ିତ, ଗୁଣିତ ।

**ତଷ୍ଟା**—ପୁଂ. ବ.(ତକ୍ଷ୍+କ.ତୃ)ବଢ଼େଇ ସୂତ୍ରଧର, ବିଶ୍ୱକର୍ମା, ଦ୍ୱାଦଶଆଦିତ୍ୟଙ୍କ ମଧ୍ୟରୁ ଏକ, ସୃଷ୍ଟିକରିବା ବ୍ୟକ୍ତି ।

**ତଷ୍ଟି**—ସ୍ତ୍ରୀ. ବ. (ତସ୍+ଭା.ତି)ସାଗ୍ରହଦୃଷ୍ଟି, ଆଗ୍ରହାତିଶଯ୍ୟ, ଧ୍ୟାନବାଜ, ଏକଜିଦ, ଦୃଢ଼ତା ।

**ତଷ୍ଟିଦାର ବା ତଷ୍ଟି ରାମ**—ଗ୍ରା. ବ. ଏକ ଶ୍ରେଣୀର ପଣ୍ଡିତ ବ୍ରାହ୍ମଣ, ନଷ୍ଟୋଦ୍ଧବନ୍ଧ ଲୋକ ।

**ତସ୍ଦିକ୍(ଗ୍)**—ଯା. ବ.କୌଣସି ବିଷୟର ସତ୍ୟତା ସମ୍ବନ୍ଧେ ପ୍ରମାଣ ବା ସମର୍ଥନ, ସତ୍ୟପ୍ରମାଣ ।

**ତସ୍ଗ**—ପ୍ରା. ସମ୍ବ. ବ. ଭୂଲଆତନ୍ତୀଙ୍କ ବ୍ୟବହୃତ ସୂତା ଗଡ଼େଇ ରଖିବାର ଫର୍ମା ବା ନଟେଇ ।

**ତସ୍ଲିମ୍**—ଯା. ବ. (ମୁସଲମାନୀ ଭାଷା) ନମସ୍କାର, ପ୍ରଣାମ, ବନ୍ଦନା ।

**ତସର**—ଗ୍ରା. ବ. (ସଂ-ତ୍ରସର) ଟସର, ଏକପ୍ରକାର ଗୋଟୀ ପୋକର ଗୋଟୀରୁ ବାହାରିବା ରେଶମସୂତା, ମଠାଲୁଗା ।

**ତସରଗୋଟୀ**—ଗ୍ରା. ବି. ଯେଉଁ ଗୋଟୀ ବା କୋଷରୁ ମଠାସୂତା ବା ତସର-ବାହାରେ, ଖୋଷା ।

**ତସରପୋକ**—ଗ୍ରା. ବ. ଟସରପୋକ, ଯେଉଁ ପୋକ ଟସରଗୋଟୀ ବାନ୍ଧନ୍ତି, ଖୋଷାପୋକ ।

**ତସବୀ**—ଯା. ବ. ମୁସଲମାନମାନଙ୍କର ଜପମାଳା ।

**ତସବୀର**—ଯା.ବ. ପ୍ରତିମୂର୍ତ୍ତି, ଛବି,ପ୍ରତି-ରୂପ. (ଯା. ବିଂ).ଛବିପରି ସୁନ୍ଦର ।

**ତସିଦ୍**—ଯା. ବ. କଷ୍ଟ, ଦନ୍ଦଗଞ୍ଜ ।

**ତସ୍କର**—ପୁଂ. ବ. (ତତ୍+କୃ+କ.ଅ) ଚୋର, ଦସ୍ୟୁ, ଶ୍ରବଣ, କାନ,ଫିଙ୍ଗିଙ୍ଗ-ଶାଗ, ଗଣ୍ଠିଅଳା, ମଦନବୃକ୍ଷ, ଚୋର ନାମକ ଗନ୍ଧଦ୍ରବ୍ୟ ।

**ତସ୍କରଣ**—ସ୍ତ୍ରୀ. ବ. ଚୌର୍ଯ୍ୟ ।

**ତସ୍କରସ୍ନାୟୁ**—ପୁଂ. ବ.କାକନାସାଲତା ।

**ତସ୍କରୀ**—ସ୍ତ୍ରୀ.ବ.କୋପନା ନାରୀ,ଚୋରଣୀ

**ତସ୍ତର୍ମ**—ଯା. ବ. ରେକାବୀ, ଧାତୁର ପତଳା ଚେପ୍ଟ ଥାଳିଆ ।

**ତସ୍ତୁବ**—କ୍ଲୀ. ବ. ଚୈନବିଷଘ୍ନ ଔଷଧ ।

**ତସ୍ଥିବାନ୍**—ବିଂ.(ସ୍ଥା+କ.ବସ୍)ଅବସ୍ଥିତ, ସ୍ଥିତ, (ସ୍ତ୍ରୀ) ତସ୍ଥୁଷୀ ।

**ତସ୍ଥୁ**—ବିଂ. ( ସ୍ଥା+କ.ନୁ ) ସ୍ଥାବର, ଅଚଳନ୍ତ

**ତସ୍ଥୁସ୍**—ପୁଂ. ବ. (ସ୍ଥା+କସ୍) ମାଦକ ।

**ତସ୍ମିନ୍**—ତତ୍ ଶବ୍ଦର ୭ମୀବିଭକ୍ତି ୧ବଚନ ରୂପ ।

**ତସ୍ୟ**—(ସର୍ବ) ତତ୍ ଶବ୍ଦର ୬ଷ୍ଠୀ ବିଭକ୍ତି ୧ବଚନର ରୂପ ।

**ତହ**—ଯା. ବ.କାଗଜ ବା ଲୁଗାର ଭାଙ୍ଗ ବା ଚଉତ, ପ୍ରସ୍ଥ, ପରସ୍ତ, ସ୍ତର, ଧପାଙ୍ଗୀ,ଛଳନା ପୂର୍ବକ ସମ୍ପୃନେବା, ଠକିବା, ଭଣ୍ଡାଇବା ।

**ତହକରିବା**—ଗ୍ରା. କି ଚଉତେଇବା, ଲୁଗାକୁ ଭାଙ୍ଗିବା ।

**ତହକିକତ୍**—ଯା.ବ.ତଦନ୍ତ,ଅନୁସନ୍ଧାନ, ଜିଜ୍ଞାସା । [ ବ୍ୟସ୍ତ ।

**ତହଖରଚ**—ଗ୍ରା. ବ. ବୃଥାଖରଚ,ଅପ-

**ତହଖାନା**—ଯା. ବ. ମାଟିତଳେ ହୋଇ ଥିବା ଘର ।

**ତହଦେବା**—ଗ୍ରା. କି. ଧପାଙ୍ଗୀ ବଟେ-ଇବ, ଭୁଚେଇବା, ଠକିବ, ଛଳନା ପୂର୍ବକ ସମସ୍ତ ନେବା, ଭଣ୍ଡାଇବା ।

**ତହପେଚ**—ଯା. ବ. ପଗଡ଼ିର ତଳେ ମୁଣ୍ଡ ଉପରେ ଦଅଯିବା ଲୁଗା ବା ପତଳା କନାର ଟୋପି ।

**ତହମତ୍**—ଯା ବ. ନାଲିଶ, ମିଛକଥା, ଅପବାଦ, ମିଥ୍ୟାଦୋଷାରୋପ, (ଯା. କି. ବିଂ.) ବୃଥା, ମିଥ୍ୟାରେ, (ଯା. ବିଂ) ମିଥ୍ୟା ।

**ତହରିର୍**—ଯା. ବ. ଲେଖାଇ ମିହନ୍ତନା, ଲେଖକର ପାରିଶ୍ରମିକ ।

**ତହରିର୍ତକବିର୍**—ଯା. ବ. ପାରିଶ୍ରମିକ ଓ ନଜର ଉତ୍ସବାଦିର ଖରଚ ଆଦି ପାଇଁ ନାନା ଆକାରରେ ଆଦାୟ କରୁ-ଥିବା ଟନ, ଆବୱାବ୍ ।

**ତହଲ(ଗା)ଗେଇବା**—ଗ୍ରା. କି. ମିଛକଥା କହି ବିବ୍ରତକରିବା ।

**ତହଲିଲ**—ଯା. ବ. ଆରବୀୟ ସ୍ତ୍ରୀମାନ-ଙ୍କର ଏକପ୍ରକାର କର୍କଶ ଶବ୍ଦ ।

**ତହବିଲ**—ଯା. ବ. ଗଚ୍ଛିତଧନ, ସଞ୍ଚିତ-ଧନ, ରେକଡ଼, ପାଣ୍ଠି, ଜେଣାଖାନା ।

**ତହବିଲ୍ତାଷରଫ୍**—ଯା. ବ. ଆପଣା ହାତରେ (ଜିମାରେ) ନ୍ୟସ୍ତଥିବା ଅପ-ରର ଧନକୁ ଖାଇଦିବ ଅର୍ଥାତ୍ ଆତ୍ମ-ସାତ୍ କରିବା ।

**ତହବିଲଦାର**—ଯା. ବ. ଧନାଧ୍ୟକ୍ଷ,ଯାହା ଜିମା ଧନଥାଏ, ଖାଜାଞ୍ଚି ।

**ତହବିଲଦାରୀ**—ଯା. ବ. ଧନାଧ୍ୟକ୍ଷତା, କୋଷାଧ୍ୟକ୍ଷତା ।

**ତହସିଲ**—ଯ. ବ. ପ୍ରଦେଶାଂଶ, ଜିଲ୍ଲାର ରାଜସ୍ୱ ସମ୍ବନ୍ଧୀୟ ସବ୍‌ଡିଭିଜନ୍,ତାଲୁକ, ପରଗଣା, ପ୍ରଜାମାନଙ୍କଠାରୁ ଜେଣା ଅସୁଲ, ଟଙ୍କାକର ଆଦାୟ କରିବା, ଜଣେ ତହସିଲଦାରଙ୍କ ଅଧୀନ ଇଲାକା

**ତହସିଲଅଲ୍ଲଇ(ହି)ଦା**—ଯା. ବ. ଓଡ଼ି-ଶାରେ ଏକଶ୍ରେଣୀର ଜମିଦାର, ଏକ ଜମିଦାର ମଧ୍ୟରେ ଥିବା ସ୍ୱତନ୍ତ୍ର ଅନ୍ୟ ଶ୍ରେଷ୍ଠ ଜମିଦାର ।

**ତହସିଲଖରଚ୍ଚ**—ଗ୍ରା. ବି. ଖଜଣାଆଦାୟର ବ୍ୟୟ ନିର୍ବାହପାଇଁ ପ୍ରଜାମାନଙ୍କଠାରୁ ଯେଉଁ ଅତିରିକ୍ତ କର ଜମିଦାର ଆଦାୟ କରନ୍ତି ।

**ତହସିଲଦାର**—ଯା. ବି. ପ୍ରଜାମାନଙ୍କଠାରୁ ଜମିଦାରଙ୍କ ଖଜଣା ଆଦାୟ କରିବା କର୍ମଚାରୀ, ପ୍ରଦେଶାଂଶର ପ୍ରଧାନ କର ଆଦାୟକାରୀ କର୍ମଚାରୀ ।

**ତହସିଲଦାରୀ**—ଯା. ବି. ରାଜସ୍ୱସଂଗ୍ରାହକ ପଦ, ତହସିଲଦାରର କାର୍ଯ୍ୟ ।

**ତହସିଲପଞ୍ଚାଏତ୍**—ଗ୍ରା. ବି. ଗ୍ରାମ୍ୟ ପଞ୍ଚାଏତ୍‌ମାନଙ୍କ ମଧ୍ୟରୁ ଚଉକିଦାରୀ ଇତ୍ୟାଦି ନିମନ୍ତେ ଚୌକିଦାରୀ ଟିକସ ଆଦାୟ କରିବା ନିମନ୍ତେ ନିଯୁକ୍ତ ବ୍ୟକ୍ତି, ଯେଉଁ ପଞ୍ଚାଏତ୍ ପ୍ରଜାମାନଙ୍କଠାରୁ ଚୌକିଦାରୀ ଟିକସ ଆଦାୟ କରନ୍ତି ।

**ତହିଁ**—ଗ୍ରା. (ପଦ୍ୟ)ଅବ୍ୟ. ତଥି, ସେହି ସ୍ଥାନରେ, ସେଠାରେ, ସେ ବିଷୟରେ ସେଥିରେ, ଠାରେ, ତନ୍ମଧ୍ୟରେ,(ଅମୁକ ସ୍ତ୍ରୀର) ଗର୍ଭରେ, (ଗ୍ରା. ସର୍ବ)ତାହା ।

**ତହିଁଉତ୍ତାରୁ**—ଗ୍ରା. କ୍ରି. ବିଂ. ତତ୍ପରେ, ତାହାପରେ ।

**ତହିଁ କି)କୁ**—ଗ୍ରା. ଅବ୍ୟ. ସେଥିକୁ, ସେ ବିଷୟକୁ, ତେଣିକି,ସେଠାକୁ, ସେହି ବିଷୟରେ, (କଥୋପ କଥନରେ ବ୍ୟବହୃତ) କିନ୍ତୁ, ପରନ୍ତୁ, ସେଥିପାଇଁ, ତହିଁନିମନ୍ତେ ।

**ତହିଁକିରିହିଁ**--ଗ୍ରା.ଅବ୍ୟ.ତହିଁର ଅନୁରୂପ ।

**ତହିଁତହିଁ**—ଗ୍ରା. ଅବ୍ୟ.(ବହୁବଚନ)ସେହି ସେହି ସ୍ଥାନମାନଙ୍କରେ ।

**ତହିଁପରେ**—ଗ୍ରା. ଅବ୍ୟ. ତାହାପରେ ।

**ତହିଁପାଇଁ**—ଗ୍ରା. ଅବ୍ୟ. ସେଥିସକାଶେ, ସେହିକାରଣରୁ,ସେହିହେତୁର, ସେହିକର୍ମନିମନ୍ତେ ।

**ତହିଁର**—ଗ୍ରା. ଅବ୍ୟ. ତାହାର, ସେଥିର ।

**ତହିଁରୁ**—ଗ୍ରା.ଅବ୍ୟ. ସେଥିରୁ ତାଅପେକ୍ଷା, ସେଠାରୁ, ତାପରେ, ସେ ହେତୁରୁ ।

**ତହିଁରେ**—ଗ୍ରା. ଅବ୍ୟ. ସେଥିରେ, ଉକ୍ତ ବିଷୟରେ, ସେ ବିଷୟ ସମ୍ବନ୍ଧରେ, ସେଥିମଧ୍ୟରେ ।

**ତହୁଁ**—ଗ୍ରା. ଅବ୍ୟ. ସେଠାରୁ, ତହିଁରୁ, ସେଥିରୁ, ତାହା ଅପେକ୍ଷା, (ଅମୁକଙ୍କ) ଠାରୁ, ତତ୍ପରେ, ଉକ୍ତ ବିଷୟରୁ ବା କାର୍ଯ୍ୟରୁ, ବ୍ୟତୀତ, ଛଡ଼ା, ସେହି କାରଣରୁ, ନିକଟରୁ ।

**ତହୁଁତହୁଁ**—ଗ୍ରା. ଅବ୍ୟ. ତଦାତଦା, ସେହି ସେହି ସମୟରେ, ସେହି ସେହି ସ୍ଥାନମାନଙ୍କରୁ, ସେହି ସେହିମାନଙ୍କଠାରୁ, ସେହି ସେହି ସମୟରୁ, ସେହି ସେହି କାରଣମାନଙ୍କରୁ, ତେତିକି ତେତିକି ।

**ତା**—(ସଂ-ପ୍ରତ୍ୟୟ)ଭାବ ବା କର୍ମ ଅର୍ଥରେ ବିଶେଷ୍ୟ ଓ ବିଶେଷଣ ଶବ୍ଦରେ ଏହି ପ୍ରତ୍ୟୟ ଯୋଗହେଲେ ବିଶେଷ୍ୟ ପଦ ସୃଷ୍ଟି ହୁଏ, (ଯଥା—ଗୁରୁତା, ଲଘୁତା ଇତ୍ୟାଦି)—ସମୂହାର୍ଥେ ବିଶେଷ୍ୟପରେ ପ୍ରତ୍ୟୟ (ଯଥା—ଜନତା), ଗ୍ରା.ସର୍ବ. ତାହା,ତାଇ, ସେହି ସେହି କଥା,ବିଷୟ ବସ୍ତୁ ବା ଗୁଣ, ତାହା ତାହାର, (ଗ୍ରା. ଅବ୍ୟ.ନିଷ୍ପ୍ରୟୋଜନାର୍ଥକୋଟି,(ଯଥା--ସେହିତା) (କଥାପ୍ରସଙ୍ଗ ବା ବାକ୍ୟାରମ୍ଭରେ ) କିନ୍ତୁ, ତଥାପି, ତେବେ, (ଗ୍ରା. ବି) ନାଟଗୀତ ଆଦିର ଆରମ୍ଭରେ ବୋଲିବା ଉତ୍କଟ ବା ଉଚ୍ଚସ୍ୱର, କମାରଭାତି ନିଆଁକୁ ପବନ ଯୋଗାଇବା, ତାଇବା, ପକ୍ଷୀମାନଙ୍କର ଡ଼ିମ୍ବ ଉଷୁମାଇବା, ତା ଦେବା, (ଯା. ବି) କାଗଜର ଫର୍ଦ, ସାଙ୍କେତିକଚିହ୍ନ.(ଯଥା—ତା=ତାରିଖ ତା=ତାଲୁକ )

**ତାଆଦା(ଦି)ଦ୍**—ଯା.ବି.ତାଦାଦ୍,ସଂଖ୍ୟା, ମୂଲ୍ୟ, ମକଦ୍ଦମାରେ କରାଯାଇଥିବା ଦାବୀର ପରିମାଣ, ମକଦ୍ଦମାସଂକ୍ରାନ୍ତ ଦାବୀର କଳ୍ପିତମୂଲ୍ୟ, କବଲା, ଦାନପତ୍ର ଋଣପତ୍ର ଆଦି ଦଲିଲରେ ଲେଖାଥିବା ଧନର ମୂଲ୍ୟ ବା ପରିମାଣ ।

**ତାଆଦେବା**—ଗ୍ରା. କ୍ରି. (ସଂ-ତାପ) ପକ୍ଷୀ ଡ଼ିମ୍ବ ଉଷୁମାଇବା, ଭାତକୁ ତାଇବା ।

**ତାଆମାରିବା**—ଗ୍ରା. କ୍ରି. ଭାତକୁ ତାଇବା, ଦୁଇଖଣ୍ଡ ଲୁହାକୁ ତରଳଥିବା ଅବସ୍ଥାରେ ଯୋଡ଼ିକରି ଏକତ୍ର ପିଟିବା ।

**ତାଇ**—ଗ୍ରା.ସର୍ବ.ତାହାହିଁ,ସେହିକଥାହିଁ, ତାହାସୁଦ୍ଧା, ତାହାମଧ୍ୟ, (ଗ୍ରା.ବି) ସ୍ତ୍ରୋତ ତାଉଆ, ଚଟକା କରେଇ, ମୋହର ଚିହ୍ନ, ଗ୍ରୁପ, ( ପ୍ରା. ସମ୍ବ. ବି ) ମାଟି ତେଲଉଣି, (ଗ୍ରା.ବିଂ) ତୀକ୍ଷ୍ଣ, ଚମ୍ପଳିଆ, ତେଜଆନ୍, ନିଆଁରେ ପାଚକରି ନାଲି ହୋଇଥିବା (ଲୁହାଆଦି) ।

**ତାଇନ୍(ଦ୍)ନବିସ୍**—ଯା. ବି. କୌଣସି ଅଫିସରେ ସ୍ଥାୟୀ କର୍ମଚାରୀଙ୍କ ଲେଖାପଢ଼ିରେ ସାହାଯ୍ୟ କରିବା ନିମନ୍ତେ ନିଯୁକ୍ତ ବ୍ୟକ୍ତି ।

**ତାଇ(ଏ)ତ୍**— ଯା. ବି. ରୋଗିସେବା, ଶୁଶ୍ରୂଷା, ଶରୀର ବା ସ୍ୱାସ୍ଥ୍ୟ ପ୍ରତି ଦୃଷ୍ଟି ରଖିବା,ଶରୀରର ଯତ୍ନ ନେବା,ଗୃହିତା ।

**ତାଇତ୍**--ଗ୍ରା. ବି. ବାହୁର ଅଳଙ୍କାରବିଶେଷ, ସୁନାରୂପାର ବାଜୁ, (ସର୍ବ) ତାହାତ, ତାହାହିଁ, ତାହାସୁଦ୍ଧା ।

**ତାଇ(ଏ)ଫା**—ଯା. ବି. ନର୍ତ୍ତକୀଙ୍କ ଦଳ, ନର୍ତ୍ତକୀ, ବେଶ୍ୟା ।

**ତାଇବା**--ଗ୍ରା. କ୍ରି. ଉତ୍ତପ୍ତକରିବା, ତତାଇବା, ( ଲ.ଅର୍ଥ ) ଉତ୍ତେଜିତ କରିବା, ଭାତି ଦ୍ୱାରା ନିଆଁକୁ ପବନ ଯୋଗାଇବା ।

**ତାଇ(ବ)ଭି**—ଗ୍ରା.ସର୍ବ. ତଦପି, ତାହାହିଁ, ତାହାମଧ୍ୟ, ତାହା ସୁଦ୍ଧା ।

**ତାଇଲ୍‌ମାଇଲ୍**—ଗ୍ରା. କ୍ରି. ବିଂ. ଉପଯୁକ୍ତ ସମୟ ଦେଖି ଉପଯୁକ୍ତ କାର୍ଯ୍ୟ କରିବା ପ୍ରକାରରେ, ଦେଶ କାଳ ପାତ୍ରର ଉପଯୋଗୀ କାର୍ଯ୍ୟ କରିବା ପ୍ରକାରେ, ସଙ୍ଗେ ସଙ୍ଗେ, ତରତରିଆ ଭାବରେ କୌଣସି କାର୍ଯ୍ୟ କରିବା ପ୍ରକାରେ, ତାତ୍କାଳିକ ଭାବରେ,କଦର୍ଯ୍ୟ ଭାବରେ, ଅଯତ୍ନ ଭାବରେ ।

**ତାଉ**—ଗ୍ରା. ବିଂ. ( ସଂ ତପ୍ତ ) ବିଶେଷଭାବରେ ଉତ୍ତପ୍ତ,ଖୁବ ତାତିଲା, ନିଆଁରେ ତାତି ନାଲି ହୋଇଥିବା (ଲୁହା), ଅତି କ୍ରୁଦ୍ଧ, (ବିଂ. ସଂ-ତାପ) ଅଗ୍ନିର ପ୍ରଖର

ତେଜ, ଦାହକ, ତାପ, ଗ.ମେ. ଅତ୍ୟନ୍ତ କ୍ରୋଧାବେଗ, ଲୁହାଆଦି ନଆଁରେ ପାଚିକରି ନାଲି ହେବା ଅବସ୍ଥା, (ଯା. ବି) କାଗଜର ଫର୍ଦ ।

**ତାଉଆ**—ଗ୍ରା. ବି. (ଫ-ତପ୍ପକ) ଚଟକା ଲୁହା କଡେଇ, ଯହିଁରେ ରୁଟି ସେକା ଯାଏ ଓ ଚକୁଳି କରାଯାଏ ।

**ତାଉନ୍**—ଯା.ବି. ବାତଜର ।

**ତାଉସ୍**—ଯା. ବି. ମୟୂର ।

**ତାକ୍**—ଗ୍ରା.ବି. (ଫ-ତର୍କଧାତୁ) ଏକଦୃଷ୍ଟି, ସ୍ଥିରଦୃଷ୍ଟି, କୌଣସି ବସ୍ତୁ ପ୍ରତି ଆବଦ୍ଧ ଦୃଷ୍ଟି, ଦୃଷ୍ଟିର ଲକ୍ଷ୍ୟ, (ପ୍ରା. ସିଂହ.ବି) ସମୟ ବା ସୁବିଧାକୁ ଅପେକ୍ଷା କରି ବସିବା, ତକାଇବା ।

**ତାକ୍ତରକ**—ଗ୍ରା.ବି. ଛକାଛକ, ଚତୁରତା, ହୁସିଆର, ସତର୍କତା, ଟେଞ୍ଚାଟେଞ୍ଚି, ସୁତର, କୌଶଳ, ବିଶେଷ ସାବଧାନତା ସହକାରେ ଅନ୍ୱେଷଣ ।

**ତାକ୍ତରକା**—ଗ୍ରା. ବିଂ. କୌଶଳୀ, ଯେ ଖୋଞ୍ଜି ଉଣ୍ଡି କାମ ହାସଲ କରେ, ସୁଚତୁର ।

**ତାକ୍(ଗ୍)ଦା**—ଗ୍ରା.ବି. କୌଣସି ପ୍ରାପ୍ୟକୁ ଦୃଢ଼ତା ସହକାରେ ତଲବ କରିବା, ପୁନଃପୁନଃ ତଲବ, ଜାଗର କରିବା, ପାଉଣା ଆଦାୟ କରିବା ନିମନ୍ତେ ପୀଡ଼ନ ବା ଜାଗର, ସାବଧାନ କରାଇବା, ସତର୍କୀକରଣ ।

**ତାକ**—ଯା.ବି. ଥାକ, କାନ୍ଥଖୁଟ, ପରସ୍ତ, ଖଙ୍ଗ, ଆଲମାରିର ଥାକ ବା କୋଠରି, (ଗ୍ରା.ବି) ଗଣାଯାଇ ଉପର୍ଯ୍ୟୁପରି ରଖା ଯାଇଥିବା ମୁଦ୍ରାର ଗଦା ।

**ତାକରିଲିପି**—ବାମିୟାନର ଯମୁନାତଟ ପର୍ଯ୍ୟନ୍ତ ପ୍ରଦେଶରେ ପ୍ରଚଳିତ ଅକ୍ଷର, ଅକ୍ଷର ବିଶେଷ ।

**ତାକାବ**—ଯା. ବି. ଶକ୍ତି, ସାମର୍ଥ୍ୟ ।

**ତାକିଦ୍**—ଯା.ବି. ତମ୍ବି, ସଜବଜ ଅନୁରୋଧ, ତାଗିଦା, ସାବଧାନ କରାଇବା, ସ୍ମାରକ ଉପାୟ, ଆକଟ, ତଲବ, ଦୃଢ଼ାଜ୍ଞା, କଡ଼ାହୁକୁମ, ସ୍ୱୀକାର, ତମ୍ବାବଧାନ, ନିର୍ଦ୍ଧାରଣ, ବାରମ୍ବାର ଉତ୍ତେଜିତ ଇଚ୍ଛା, ( ବିଂ ) ସ୍ମାରକ, ଦୃଢ଼ (ଆଦେଶ) ।

**ତାକି(ଗି)ଦ୍ କରିବା**—ଗ୍ରା.କ୍ରି. ଆଦେଶ ଦ୍ୱାରା ସତର୍କ କରାଇଦେବା, ଆକଟ-କରିବା, ତଲବକରିବା ।

**ତାକୁଡ଼ି**—ଗ୍ରା.ବି. ( ଫ-ତର୍କୁଟୀ ) ସୂତା କାଟିବାର ଲୁହା ବା ବାଉଁଶର ଶଳାକା, ଅରଟରେ ଲଗିଥିବା ଲୌହ ଶଳାକା, (ବିଂ) ଗୋଟିଏ ତାକୁଡ଼ିରେ ଗୁଡ଼ାଆହେବା ପରିମିତ (ସୂତା) ।

**ତାକେ**—ଗ୍ରା.ସର୍ବ. ତାଙ୍କୁ, ତାହାଙ୍କୁ ।

**ତାକେ ବଡ଼ ବା ବଢ଼ିଆ**—ଗ୍ରା.ବିଂ. ତାଙ୍କଠାରୁ ବଡ଼, ତାଙ୍କଠାରୁ ବଳି, ତା ଠାରୁ ବଢ଼ିଆ

**ତାକ୍ଷକ**—ବିଂ. (ତକ୍ଷକ+ଅ) ତକ୍ଷକୀୟ ସମ୍ବନ୍ଧୀୟ ।

**ତାକ୍ଷଣ୍ୟ**—ପୁଂ.ବି. ତକ୍ଷର ପୁତ୍ର ।

**ତାକ୍ଷଶୀଳ**—ବିଂ.(ତକ୍ଷଶିଳା+ଅ) ତକ୍ଷଶିଳା ଜାତ, ତକ୍ଷଶିଳାଠାରୁ ଆଗତ ।

**ତାଗ**—ଗ୍ରା.ବି. ଅନେକଗୁଡ଼ିଏ ସୂତାକୁ ଏକତ୍ର ବଳାହୋଇ ତିଆରିହୋଇଥିବା ଦଉଡ଼ି, ଡୋର, ଦେବତାଆଦିଙ୍କ ନାମରେ ମାନସିକ କରି ରୁଗ୍ଣ ବା ସର୍ପଦଷ୍ଟ ଅଙ୍ଗରେ ବାନ୍ଧିବା ହଳୁଦି, ବ୍ରତାଦିସୂତ୍ର. ଅନନ୍ତ କଡ଼ା ।

**ତାଗଡ଼ା**—ପ୍ରା.ହିନ୍ଦି. ବି. ଛୁଆ, ଆଉଟାହୋଇ ଘନୀଭୂତ ଦୁଧ ।

**ତାଗ**—ଯା. ବି. ଭୂମିରେ ପୋତାଯିବା ଛଦ୍ରବଂଶ ଦଣ୍ଡ, ରାଜକର୍ମଚାରୀଙ୍କ ଦ୍ୱାରା କ୍ରୋକ୍ କରାଯିବା ବା ଇସ୍ତିହାର ଦିଆଯିବା ବା ଦଖଲ କରାଯିବା ସମୟରେ ଜମିଉପରେ ପୋତାଯିବା କ୍ଷୁଦ୍ରପତାକା, ଝଣ୍ଡା, ସରୁସୂତା, ତାଗା ସିଲେଇ, ବାହୁରେ ପିନ୍ଧାଯିବା ସୁନାର ଅଳଙ୍କାରବିଶେଷ ।

**ତାଗି**—ଗ୍ରା.ବି. ସରୁ ନହଣ, ସରୁ ବଟାଳି ।

**ତାଗିବା**—ଗ୍ରା.କ୍ରି. ସରୁନହଣଦ୍ୱାରା କାଠଆଦିରେ ଦାଗ କରିବା, କରତାହେବା ନିମନ୍ତେ କାଠଉପରେ କଳାସୂତାରେ ଦାଗକରିବା ।

**ତାଗି(ରି)ଣ**—ଗ୍ରା.ବି. ତାକ୍ୟପ୍ରି, ନାମଶ୍ରିର ।

**ତାଙ୍କ**—ଗ୍ରା.ସର୍ବ. ପୁଂ. ଓ ସ୍ତ୍ରୀ ତାହାଙ୍କ, ସେମାନଙ୍କ ।

**ତାଙ୍କୁଇ**—ଗ୍ରା.ସର୍ବ. ତାଙ୍କୁହିଁ, ତାହାଙ୍କୁମାତ୍ର, ସେମାନଙ୍କୁହିଁ କେବଳ, କୌଣସି ବ୍ୟକ୍ତି ବା ବ୍ୟକ୍ତିମାନଙ୍କୁ, ତାହାଙ୍କୁମଧ୍ୟ ।

**ତାଙ୍କେ**—ପ୍ରା.ଗଞ୍ଜା.ପୁଂ.ସ୍ତ୍ରୀ. ସେ ।

**ତାଚ୍ଛଲ୍ୟ**—ଗ୍ରା.ବି.(ଫ-ତୁଚ୍ଛ) ହେଳା, ଅବଜ୍ଞା, ଅଶ୍ରଦ୍ଧା, ଉପେକ୍ଷା, (ବିଂ) ଶ୍ରଦ୍ଧାଯୁକ୍ତ ।

**ତାଚ୍ଛୀଲ୍ୟ**—କ୍ଲୀ.ବି.( ତଦ୍+ଶୀଳ+ଯ ) ତଚ୍ଛୀଳତା, ତତ୍ସ୍ୱଭାବତା, ତତ୍ସାଦୃଶ୍ୟ ।

**ତାଜ**—ଯା. ବି. ଶିରୋଭୂଷଣ, ଟୋପି, ମୁକୁଟ, ଚେସ୍ତପାର ଏକରଙ୍ଗର ନାମ ।

**ତାଜକ**—ଯା.ବି. ତୁର୍କୀସ୍ଥାନଠାରୁ କାବୁଲ ପର୍ଯ୍ୟନ୍ତ ବାସ କରୁଥିବା ଇରାନୀ ମୁସଲମାନଜାତି, (କ୍ଲୀ.ବି.) ଜବନାଚାର୍ଯ୍ୟକୃତ ଜ୍ୟୋତିଶାସ୍ତ୍ରବିଶେଷ ।

**ତାଜଗୀ**—ଯ.ବିଂ. ତଟକା, ରସାଳ ।

**ତାଜନ୍**—ବିଂ. ଶୀଘ୍ର ।

**ତାଜପୋଶୀ**—ଯା.ବି. ରାଜାଙ୍କର ରାଜ୍ୟାଭିଷେକବିଧି ।

**ତାଜବିବି**—ଯା. ବି. ମୋଗଲ ସମ୍ରାଟ୍ ସାହାଜାହାନଙ୍କ ପ୍ରିୟତମା ବେଗମ୍ ।

**ତାଜମହଲ**—ଯା. ବି. ଆଗ୍ରାରେ ଥିବା ଜଗଦ୍ବିଖ୍ୟାତ ସମାଧି ମନ୍ଦିର ।

**ତାଜା**—ଯା.ବିଂ. ନୂତନ, ତଟକା, ସଜ, ସଦ୍ୟ, କଞ୍ଚା, କର୍ମଠ, ପୁଷ୍ଟ, ସବଳ ।

**ତାଜି**—ଯା.ବି. ଆରବଦେଶୀୟ ତେଜସ୍ୱୀ ଟାଙ୍ଗଣଘୋଡ଼ା, ଆରବଦେଶୀୟ ଶିକାରୀ କୁକ୍କୁର, ଆରବୀ ଭାଷା, ଜାତିବିଶେଷ ।

**ତାଜିଆ**—ଯା.ବି. ମହରମ୍ପର୍ବ ସମୟରେ ସିଆ ମୁସଲମାନମାନେ ଯେଉଁ ମେଢ଼ଉପରେ କାଗଜ ଜରିଆଦି ମଡ଼ାଇ ଶୋଭାଯାତ୍ରା କରନ୍ତି ଓ ଶେଷରେ ତାକୁ ନେଇ ନଦୀଆଦିରେ ବିସର୍ଜନ କରନ୍ତି ।

**ତାଜିକ**—କ୍ଲୀ. ବି. ଜବନାଚାର୍ଯ୍ୟକୃତ

କ୍ୟୋଡ଼ଗ୍ର ବୃକ୍ଷବିଶେଷ ।

**ତାଜିୟା**—ଯା. ବି. ମୃତବ୍ୟକ୍ତି ପାଇଁ ବିଳାପ ଓ ଶୋକପ୍ରକାଶ ।

**ତାଜିୟାଖାନା**—ଯା. ବି. ( ମୁସଲମାନମାନଙ୍କର ) ଶୋକାଗାର ।

**ତାଜିବ୍( ତାଜୁବ୍ )**—ଯା. ବିଂ. ଆଶ୍ଚର୍ଯ୍ୟଜନକ,ଅଦ୍ଭୁତ,ଅଗୂନକ,(ବି) ଆଶ୍ଚର୍ଯ୍ୟ ।

**ତାଜିବ୍‌ବ୍ୟାପାର**—ଗ୍ରା.ବି.ଅଦ୍ଭୁତଘଟଣା, ଆଶ୍ଚର୍ଯ୍ୟଜନକ ବିଷୟ ।

**ତାଜିମ୍**--ଯା.ବି.(ମୁସଲମାନୀ ଭାଷା)ସମ୍ମାନପ୍ରଦର୍ଶନ, ପୂଜ୍ୟବ୍ୟକ୍ତିଙ୍କୁ ସଲାମକରିବା, ସେ ଆସି ପହଞ୍ଚିଗଲେ ଠିଆହେବା ଇତ୍ୟାଦି ସମ୍ମାନସୂଚକ କର୍ମମାନ ।

**ତାଜୁବତ୍**—ଯା. ବି. ଆପତ୍ତି, ଓଜର, ତାଜୁବତ୍ ଦରଖାସ୍ତ ।

**ତାଞ୍ଛିବା**—ଗ୍ରା.କ୍ରି. ଚିଞ୍ଛିବା ଦେଖ ।

**ତାଞ୍ଜୋର**—ଗ୍ରା.ବି. ଦାକ୍ଷିଣାତ୍ୟରେ ଏକ ପ୍ରଧାନ ନଗର ଓ ଜିଲ୍ଲା ।

**ତାଟ**—ଗ୍ରା.ବି.ବାଉଁଶ ବା ତାଳପତ୍ରରେ ନିର୍ମିତ ଚଟକା ପ୍ରଶସ୍ତ ଡାଲା, ଶଗଡ଼ଉପରେ ବନ୍ଧାଯିବା ଛପର, ତଟି, ତାଟ,( ପ୍ରା. କେନ୍ଦୁଝର. ବି )ଗ୍ରାବଡ଼ ।

**ତାଟକ**—ବି.(ତଟ+କ.ଅକ)କାନଫୁଲ, କାନତଡ଼କା, କାପ ।

**ତାଟକା**—ଗ୍ରା.ବି. ବିହ୍ନଳ, ଭୟବିହ୍ୱଳତା, ଛନକା, ତ୍ରାସ, ବିପଦ, ଆପଦ, (ବିଂ) ବିସ୍ମିତ,ଆଚମ୍ବିତ,ଚ୍ଛନଆଁ, ଭୟବିହ୍ୱଳ, ତ୍ରସ୍ତ, ଅତରଛ, ଘାବର, ( ସଂ-ବି ) ତାଡ଼କା ଦେଖ ।

**ତାଟକିକା**—ସ୍ତ୍ରୀ. ବି. ତାଡ଼କା ଦେଖ ।

**ତାଟଙ୍କ**—-ବି. (ତଟ୍+ଅଙ୍କ ) ତାଟକ ଦେଖ।

**ତାଟଗ୍**—ପ୍ରା.ଯାଜ-ବି. ବଡ଼ଚିଙ୍ଗୁଡ଼ିମାଛ ।

**ତାଟସ୍ଥ୍ୟ**—କ୍ଲୀ. ବି. (ତଟସ୍ଥ+ଯ)ଔଦାସୀନ୍ୟ, ନୈକଟ୍ୟ ।

**ତାଟି**—ଗ୍ରା. ବି. (ସଂ-ଆସ୍ତରଣ) ଝାଞ୍ଜି, ତାଲାଇ, ବାଡ଼, ଦ୍ୱାରାବରଣ, ଶଗଡ଼ ଉପରେ ବନ୍ଧାଯିବା ଛପର ।

**ତାଟିଆ**—ଗ୍ରା. ବି. ଧାତୁନିର୍ମିତ ଶ୍ରେଷ୍ଠ ଗିନା, କଟୋରି ।

**ତାଟିକବାଟ**—ଗ୍ରା. ବି. ଗରିବଲୋକଙ୍କ ଗୃହରେ କବାଟ ରୂପେ ବ୍ୟବହୃତ ତାଟି, ତାଟି ଓ କବାଟ ।

**ତାଟିକବାଟପଡ଼ିବା**—ଗ୍ରା. ବି. ଗ୍ରାମରେ ମହାମାରୀ, ଓଲାଉଠା ବସନ୍ତ ଆଦି କୌଣସି ମାରାତ୍ମକ ଭୟ ଉପସ୍ଥିତହେବା ସମୟରେ ସନ୍ଧ୍ୟାବେଳୁ ଗ୍ରାମର ଲୋକ ଝାଣ୍ଟିଦୁଆରମାନ କିଳିଦେଇ ଘର ଭିତରେ ରହିବା, ସନ୍ଧ୍ୟାପରେ ଗ୍ରାମ ନିସ୍ତବ୍ଧ ହେବା ।

**ତାଟିକିଳା**—ଗ୍ରା.ବି.ଯେଉଁ ଘରେ କେହି ଲୋକ ନାହାନ୍ତି ଅର୍ଥାତ୍ ବାହାରକୁ ତାଟିକବାଟ ଫିଟାଇ ଯାତାୟାତ କରିବାକୁ କେହି ନାହାନ୍ତି,ସମସ୍ତେ ରୋଗାକ୍ରାନ୍ତ ହେବା ବା ମରିଯିବା ।

**ତାଟିଖଟିବା**—ଗ୍ରା. କ୍ରି. (ମେହେନ୍ତରାଣୀ) ପାଇଖାନା ସଫାକରିବା, ପାଇଖାନା କମାଇବା ।

**ତାଠଉଁ**—ଗ୍ରା. ସର୍ବ. ( ୫ମୀ ବିଭକ୍ତି) ତାଠାରୁ,ତାହାନିକଟରୁ,ତାହାଅପେକ୍ଷା

**ତାଡ଼**—ବି.(ତଡ଼+ଘ.ଅ)ତାଡ଼ନ ଦେଖ, ଶବ୍ଦ, ଧ୍ୱନି, ତୃଣାଦିର ମୁଷ୍ଟି ପରିମେୟ ଗୁଚ୍ଛ, ବେକା, ବାହୁରେ ପିନ୍ଧାଯିବା ବଳୟାକୃତି ଅଳଙ୍କାରବିଶେଷ,ପର୍ବତ, ହେନ୍ତାଳ(ଗଛ),ତମାଳଗଛ,ତାଳଗଛ, (ଗ୍ରା. ବି)ମଞ୍ଜି ଗଜାହେଲା ପରେ ଯେଉଁ ଶ୍ରେଷ୍ଠ ଗଛମାନଙ୍କୁ ଏକ ସ୍ଥାନରୁ ଟାଣି ନେଇ ଅନ୍ୟତ୍ର ଲଗାଯାଏ, ଚେଲୁଣି, ପଲମ, ନଉଡଠାରୁ ଶ୍ରେଷ୍ଠ ଓ ଆଣ୍ଟିକାଠାରୁ ବଡ଼ ହାଣ୍ଡି, ତାଡ଼ଆଁ, ଶଗଡ଼ ବା ହଳରେ ଲାଗିଥିବା ୨ଟି ବଳଦ ପରସ୍ପର ତଡ଼ାତଡ଼ି ବା ଠେଲାଠେଲି ହେବା; (ପ୍ରା. ବସ୍ତର. ବି.) ତାଳ ।

**ତାଡ଼ିଉଠା(ଠେ)ଇବା**—ଗ୍ରା. କ୍ରି. ରୋପଣାର୍ଥ କୌଣସି ବୀଜକୁ ପୋତି ସେଥିରୁ ଚାରା ଉଠାଇବା ।

**ତାଡ଼କ**—ପୁଂ. ବିଂ. ( ତଡ଼୍+ଣିଚ୍+କ.ଅକ) ପ୍ରହାରକାରୀ, ଯେଉଁ ବ୍ୟକ୍ତି ତାଡ଼ନ କରେ ।

**ତାଡ଼କା**—ସ୍ତ୍ରୀ. ବି. (ତାଡ଼+କ+ଅକ+ଆ) ରାକ୍ଷସୀ ବିଶେଷ, ଯାହାକୁ ରାମଚନ୍ଦ୍ର ପ୍ରଥମେ ବିଶ୍ୱାମିତ୍ରଙ୍କ ଯାଗଭୂମିରେ ବଧ କରିଥିଲେ ।

**ତାଡ଼କାଫଳ**—କ୍ଲୀ.ବି.ବଡ଼ ଅଳେଇଚ ।

**ତାଡ଼କାୟନ**—ପୁଂ.ବି. ବିଶ୍ୱାମିତ୍ରଙ୍କ ଏକ ପୁତ୍ର ।

**ତାଡ଼କାରି**—ପୁଂ. ବି. (୬ତତ୍)ରାମଚନ୍ଦ୍ର ।

**ତାଡ଼କେୟ**—ପୁଂ.ବି. (ତାଡ଼କା+ଏୟ) ତାଡ଼କା ରାକ୍ଷସୀର ପୁତ୍ର, ମାରୀଚ ।

**ତାଡ଼କେଶ୍ୱର**—ଗ୍ରା. ବି. ତାଳକେଶ୍ୱର ଦେଖ । [ ଦେଖ ।

**ତାଡଗୁବ**—ପ୍ରା. ବସ୍ତର. ବି. ତାଳସଜ

**ତାଡ଼ଘ**—ପୁଂ. ବିଂ. (ତାଡ଼+ହନ୍+ଅ) ଚାବୁକ ବା କୋରଡ଼ା ମାରିବାବାଲା ।

**ତାଡ଼ଘାତ**—ପୁଂ. ବି. ଯେ ହାତୁଡ଼ିରେ ପିଟି ଶିଳ୍ପ କର୍ମ କରେ ।

**ତାଡ଼ଙ୍କ**—ପୁଂ.-ବି. (ତାଟ୍+କ. ଅଙ୍କ) ତାଟଙ୍କ, କର୍ଣ୍ଣଭୂଷଣ, କାନତଡ଼କା, ତାଳପତ୍ର ।

**ତାଡ଼ନ**—କ୍ଲୀ. ବି. (ତଡ଼୍+ଣିଚ୍+ଘ. ଅନ) ଧମକାଇବା, ଆଘାତ, ତର୍ଜନ, ଭର୍ତ୍ସନ, ଗୁଣନ, ଶାସନଦଣ୍ଡ, ପ୍ରହାର, ଦଣ୍ଡ, ଗାଳିଦେବା, ମନ୍ତ୍ରର ବର୍ଣ୍ଣମାନଙ୍କୁ ଚନ୍ଦନରେ ଲେଖି ବାୟୁ ବୀଜପାଠ କରି ଉକ୍ତ ମନ୍ତ୍ରଉପରେ ଜଳଛିଞ୍ଚିବା କର୍ମ ।

**ତାଡ଼ନା**—ସ୍ତ୍ରୀ. ବି.ପ୍ରହାର,ଭର୍ତ୍ସନା,ଗାଳି, ଶାସନ,ଉତ୍ପୀଡ଼ନ,ଭୟପ୍ରଦର୍ଶନ,ହାରୁକା, ପେଲା, ତଡ଼ା ।

**ତାଡ଼ନୀ**—ସ୍ତ୍ରୀ. ବି. ( ତାଡ଼+ଣ.ଅନ+ଈ) ଅଶ୍ୱତାଡ଼ନଯଷ୍ଟି, ଚାବୁକ, କଶା, ଗ୍ରୁଟ, କୋରଡ଼ା ।

**ତାଡ଼ନୀୟ**—ବିଂ. ( ତାଡ଼+ନୀ.ଅନୀୟ ) ଶାସନଯୋଗ୍ୟ, ଦଣ୍ଡନୀୟ, ମାଡଖାଇବାର ଉପଯୁକ୍ତ ବ୍ୟକ୍ତି ।

**ତାଡ଼ନୀୟକ**—ପୁଂ.ବି.ବେତ୍ରଧାରୀଭୃତ୍ୟ ।

**ତାଡ଼ପକା(କେ)ଇବା**—ଗ୍ରା. କ୍ରି. କୌଣସି ମନ୍ତ୍ରୀକୁ ରାଜା ବାହାର ଦ୍ୱାରଗଛ ହେଲେ

ତାହା ସେଇବା ଉଦ୍ଦେଶ୍ୟରେ ମନ୍ତ୍ରି ପୋଡବା ବା ଲଗାଇବା ।

ତାଡ଼ପତ୍ର—କ୍ଲୀ.ବି. କର୍ଣ୍ଣଭୂଷଣ ବିଶେଷ, ତାଡ଼ଙ୍କା, (ଗ୍ରା. ବି) ତାଳପତ୍ର ।

ତାଡ଼ପତ୍ରି—ଗ୍ରା. ବି. ମାନ୍ଦ୍ରାଜ ବେଲ୍ଵିର କଲରର ଗୋଟିଏ ସହର ।

ତାଡ଼ପା—ଗ୍ରା. ବି. ତଡ଼କା,କାନତଡ଼କା. ବହୁକ୍ଷଣ ଉଚ୍ଚଶବ୍ଦ ଶୁଣିବା ଦ୍ୱାରା କର୍ଣ୍ଣର ସ୍ତବ୍ଧ ହେବା ଅବସ୍ଥା ।

ତାଡ଼ସ୍ଥିତା—ପୁଂ. ବିଂ. (ତାଡ଼+ସ୍ଥା) ତାଡ଼ନକାରୀ,ଆଘାତକାରୀ,ଶାସନକାରୀ ।

ତାଡ଼ା—ଗ୍ରା. ବି. କାଗଜ ଓ ପତ୍ରାଦିର ଗୋଚ୍ଛା, ତୃଣାଦିର ମୁଠା, ଲେନ୍ଥା, ବିଡା, ବନ୍ଡ଼ିଲ ।

ତାଡ଼ାଗ—ବି. ତଡ଼ାଗଭବ ଜଳ,ପୋଖରୀର ଜଳ ।

ତାଡ଼ାତାଡ଼ି—ଗ୍ରା. କ୍ରି; ବିଂ. ଶୀଘ୍ର ଶୀଘ୍ର, ବ୍ୟସ୍ତଭାବରେ, ତଡ଼ବଡ଼, ଅବିଳମ୍ବେ ।

ତାଡ଼ି—ଗ୍ରା. ବି. ତାଳ ଖଜୁର ଆଦି ଗଛର ମାଦକଗୁଣବିଶିଷ୍ଟ ରସ,ମଦ୍ୟ ।

ତାଡ଼ିଅଲ୍—ଗ୍ରା. ବିଂ. ତାଡ଼ିଆଦି ନିଶାପାନରେ ଅଭ୍ୟସ୍ତ ।

ତାଡ଼ିଆ—ଗ୍ରା. ବି. ମଧଭଜିଆ ହାଣ୍ଡି, ଜଗନ୍ନାଥଙ୍କର ଛେନାଦିଆ ଅମଲୁ ପିଠା ଭୋଗ, ଚଢ଼ିପଲମ ।

ତାଡ଼ିକା—ସ୍ତ୍ରୀ. ବିଂ. (ତାଡ଼ି+କ+ଆ) ତାଡ଼ିକ ଶବ୍ଦର ସ୍ତ୍ରୀଲିଙ୍ଗ ।

ତାଡ଼ିକାଟିବା—ଗ୍ରା. କ୍ରି. ତାଡ଼ିରସ ବାହାର କରିବା ନିମନ୍ତେ ଖଜୁରୀଆଦି ଗଛର ବେକକୁ କାଟିବା ।

ତାଡ଼ିଖଟି—ଗ୍ରା. ବି. ଯେଉଁଠାରେ ତାଡ଼ି ପିଇବାପାଇଁ ଲୋକେ ରୁଣ୍ଡ ହୁଅନ୍ତି, ତାଡ଼ିଦୋକାନ ।

ତାଡ଼ିତ—ବିଂ (ତାଡ଼+ର୍ଣି.ତ) ଆହତ, ତିରସ୍କୃତ, ଉତ୍ପୀଡ଼ିତ, ଦଣ୍ଡିତ, ତଡ଼ ହୋଇଥିବା, ଦୂରୀକୃତ, ମର୍ଦ୍ଦିତ, ବିଦ୍ଧ, (ତଡ଼ିତ୍+ଅ) ବିଦ୍ୟୁତ୍ ସମ୍ବନ୍ଧୀୟ, ବୈଦ୍ୟୁତିକ, ବିଦ୍ୟୁନ୍ମୟ, ( ବି.ଷ୍ଟ. ଅ ) ପଦାର୍ଥଦ୍ୱୟର ଘର୍ଷଣଦ୍ୱାରା ଉତ୍ପନ୍ନ ବୈଜ୍ଞାନିକ ଶକ୍ତି, ବିଦ୍ୟୁତ୍ ଶକ୍ତି ।

ତାଡ଼ିତପରିଗ୍ରାହକ—ପୁଂ. ବି. (ବିଜ୍ଞା) ଯେଉଁ ସକଳ ବସ୍ତୁ ଦ୍ୱାରା ତାଡ଼ିତ ଶକ୍ତି ଏକ ବସ୍ତୁରୁ ଅନ୍ୟବସ୍ତୁକୁ ପରିଚାଳିତ ହୁଏ ।

ତାଡ଼ିତପରିଚାଳିତ—ବି.ବିଂ.ଯାହା ବୈଦ୍ୟୁତିକ ଶକ୍ତି ଦ୍ରବ୍ୟରୁ ଦ୍ରବ୍ୟାନ୍ତରକୁ ଚାଳିତକରେ, (ସ୍ତ୍ରୀ) ଚାଳିତା ।

ତାଡ଼ିତବାର୍ତ୍ତା—ବି.ତାରଖବର,ବୈଦ୍ୟୁତିକ ସମ୍ବାଦ, ବିଦ୍ୟୁତ୍ ସହଯୋଗେ ପ୍ରେରିତ ସମାଚାର, ଟେଲିଗ୍ରାମ ।

ତାଡ଼ିତବାର୍ତ୍ତାବହ—ପୁଂ. ବି.ବିଜୁଳିଦ୍ୱାରା ଶୀଘ୍ର ସମ୍ବାଦ ପ୍ରେରଣଯନ୍ତ୍ର ।

ତାଡ଼ିତମାନଯନ୍ତ୍ର—ବି.ଯେଉଁ ଯନ୍ତ୍ରଦ୍ୱାରା ତାଡ଼ିତଶକ୍ତିର ସଞ୍ଚାଳନ ସମ୍ବନ୍ଧ ଓ ଉପସ୍ଥିତି ପ୍ରଭୃତି ପରୀକ୍ଷା ଦ୍ୱାରା ସ୍ଥିର କରାଯାଏ ।

ତାଡ଼ିତଶକଟ—ବି. ( କ.ଧା ) ବିଦ୍ୟୁତ୍ ପ୍ରଭାବରେ ଚାଳିତ ଗାଡ଼ି,ଟ୍ରାମଗାଡ଼ିପ୍ରଭୃତି

ତାଡ଼ିତସଂଗ୍ରାହକ—ବିଂ. ତାଡ଼ିତ ପରିଗ୍ରାହକ ଦେଖ ।

ତାଡ଼ିତାକର୍ଷଣ—କ୍ଲୀ. ବି. ଯେ ବିଜୁଳି ଗୁଣ ଦ୍ୱାରା ଏକ ପଦାର୍ଥ ଅପର ପଦାର୍ଥକୁ ଟାଣେ ।

ତାଡ଼ିତାପରିଗ୍ରାହକ—ପୁଂ. ବି. ଯେଉଁ ସବୁ ପଦାର୍ଥ ଦ୍ୱାରା ବିଦ୍ୟୁତ୍‌ଶକ୍ତି ସଞ୍ଚାଳନ ନିବାରଣ କରାଯାଏ ।

ତାଡ଼ିତାଲୋକ—ପୁଂ. ବି.(କ.ଧା)ବିଜୁଳି ଆଲୁଅ, ବୈଦ୍ୟୁତିକ ଆଲୋକ ।

ତାଡ଼ିଦେବା—ଗ୍ରା. କ୍ରି. ମୂଳୋତ୍ପାଟନ କରିବା ।

ତାଡ଼ିପତ୍ର—ଗ୍ରା. ବି. ତାଳପତ୍ର, ତାଳପତ୍ରାକୃତି ଖଡ଼ ବିଶେଷ ।

ତାଡ଼ିବା—ଗ୍ରା. କ୍ରି. ଗଛକୁ ଓପାଡ଼ିବା, ମୂଳୋତ୍ପାଟନ କରିବା, ମାଡ଼ିଖୋଳିବା, ( ଲ.ଅର୍ଥ ) ମାରିବା, ବାଡ଼େଇବା, (ହାତ ଆଦି ଗୁଆରେ)ଆଘାତକରିବା, ପୋତାକାଠ ସବୁ ବଳପୂର୍ବକ ଉଠାଇବା, କଚାଡ଼ିବା; ତାଡ଼ନା କରିବା ।

ତାଡ଼ିବାଲ—ଗ୍ରା. ବି. ଯେଉଁ ବ୍ୟକ୍ତି ତାଡ଼ିଗଛ କାଟି ତାଡ଼ି ବାହାରକରେ ଓ ବିକ୍ରୟକରେ ।

ତାଡ଼ୀ—ସ୍ତ୍ରୀ. ବି. ପତ୍ରପ୍ରଧାନ ବୃକ୍ଷ, ପତ୍ରଦ୍ରୁମ, ତାଳଗଛ, ତାଳୀ, ଅଭରଣ ବିଶେଷ, ତାଟଙ୍କ, ତାଡ଼ । [ ବ୍ରୀହ ।

ତାଡ଼ୁଆ—ଗ୍ରା. ବି. ଏକପ୍ରକାର ସେନା-

ତାଡ଼ୁଲ—ପୁଂ. ବି.(ତାଡ଼+ଉଲ)ତାଡ଼ସ୍ଥିତା, ତାଡ଼କ ।

ତାଡ୍ୟ—ବିଂ. (ତାଡ଼+ର୍ଣି.ଯ) ତାଡ଼ନଯୋଗ୍ୟ, ତାଡ଼ିତହେବା ଯୋଗ୍ୟ ।

ତାଡ୍ୟମାନ—( ତାଡ଼ି+ର୍ଣି.ଯ+ଆନ ) ଯାହାଙ୍କୁ ଦଣ୍ଡ ଦିଆଯାଉଅଛି, ପୀଡ଼୍ୟମାନ, ଆହନ୍ୟମାନ, ବାଦ୍ୟମାନ, (ବି) ଢୋଲ, ଢକ୍କା, ବାଦ୍ୟ ।

ତାଣ୍ଡ—କ୍ଲୀ. ବି. (ତଣ୍ଡି+ଅ) ନୃତ୍ୟ ।

ତାଣ୍ଡବ—କ୍ଲୀ. ବି. (ତଣ୍ଡୁ+ଅ) ନୃତ୍ୟ, ପୁରୁଷନୃତ୍ୟ,ଉଦ୍ଦଣ୍ଡ ବା ଉଦ୍ଧତ ନୃତ୍ୟ, ଶିବଙ୍କ ନୃତ୍ୟ, ତଣ୍ଡି, ତୃଣ ବିଶେଷ, (ଗ୍ରା. ବି.)ଭୀଷଣକୋଳାହଳ; ଯେଉଁ କୋଳାହଳରେ ପକ୍ଷମାନେ ଅଙ୍ଗଭଙ୍ଗୀ କରନ୍ତି ।

ତାଣ୍ଡବତାଳିକ—ପୁଂ. ବି. ମହାଦେବଙ୍କ ଦ୍ୱାରରକ୍ଷକ, ନନ୍ଦୀ ।

ତାଣ୍ଡବପ୍ରିୟ—ପୁଂ.ବି. ଶିବ, ମହାଦେବ, (ବିଂ) ନୃତ୍ୟପ୍ରିୟ, ଉଦ୍ଦଣ୍ଡ ନୃତ୍ୟପ୍ରିୟ ।

ତାଣ୍ଡବଲୀଳା—ବି.(କ.ଧା) ନୃତ୍ୟ, ଲୀଳା, ତାଣ୍ଡବଜନିତ ଲୀଳା ।

ତାଣ୍ଡବିତ—ବିଂ. ନର୍ତ୍ତିତ ।

ତାଣ୍ଡି—କ୍ଲୀ.ବି. (ତଣ୍ଡୁ+ଇ)ନୃତ୍ୟଶାସ୍ତ୍ର, (ପ୍ରା.ହିନ୍ଦି.ବି) ବଡ଼ପ୍ରାନ୍ତର ବା ପଡ଼ିଆ, (ପ୍ରା.ଗଞ୍ଜ .ବି) ଏକପ୍ରକାର ଗୁଡ଼ ।

ତାଣ୍ଡିନ—ପୁଂ. ବି. ମୁନିଭେଦ, ତଣ୍ଡି-ମୁନିପୁତ୍ର, ଯଜୁର୍ବେଦୀୟ କଳ୍ପସୂତ୍ର ପ୍ରଣେତା ।

ତାଣ୍ଡୀ—ପୁଂ.ବିଂ.ଯଜୁର୍ବେଦୀୟ ତାଣ୍ଡିନ୍ ଶାଖାଧ୍ୟାୟୀ ।

ତାଣ୍ଡୁ—ଯା.ବି. ଡବଲ ପୁଆ ଖେଳରେ ଶ୍ରେଷ୍ଠ ମୁଗୁରିଆ କାଠି ବା ପୁଆ ।

ତାଣ୍ଡ୍ୟ—ପୁଂ.ବି. ତଣ୍ଡିମୁନିଙ୍କର ଅପତ୍ୟ ।

ତାତ—ପୁଂ. ବି. (ତାୟ୍ + କ.ତ) ପିତା, ପବିତ୍ର ଧାର୍ମିକ ବ୍ୟକ୍ତି, ସ୍ନେହପାତ୍ର, ମାନ୍ୟବ୍ୟକ୍ତି,ପୂଜ୍ୟବ୍ୟକ୍ତି, ପୁତ୍ର, ପିତୃବ୍ୟ, (ଅବ୍ୟ) ସ୍ନେହସୂଚକ ସମ୍ବୋଧନ, ବତ୍ସ, (ବିଂ) ମାନ୍ୟ, ପୂଜ୍ୟ, (ପ୍ରା. ବସ୍ତୁର.ବି) ତପତ ଖାତ ।

ତାତଗୁ—ପୁଂ. ବି. ( ତାତ+ଗମ୍+କ. ଉ)ଖୁଲ୍ୟତାତ, ଖୁଡ଼ୁତା, ପିତୃବ୍ୟ,(ବିଂ) ଜନକହିତକାଙ୍କ୍ଷୀ ।

ତାତଜନୟିତ୍ରୀ—ସ୍ତ୍ରୀ.ବି. ପିତା ଓ ମାତା ।

ତାତତୁଲ୍ୟ—ପୁଂ.ବି.ପିତୃସମ, ମନୋଜବ, ପିତୃସନ୍ନିଭ, ତାତଗୁ ଦେଖ ।

ତାତନ—ପୁଂ. ବି. ଖଞ୍ଜନପକ୍ଷୀ ।

ତାତଲ—ପୁଂ.ବି.ରୋଗ, ପାକ, ଲୌହ, ଯଷ୍ଟି, ମନୋଜବ, (ବିଂ) ଉତ୍ତପ୍ତ ।

ତାତଲ୍ଲ—ଗ୍ରା. ବିଂ. (ସଂ-ତପ୍ତ) ଉତ୍ତପ୍ତ, ତାତଲ୍ଲ, ତତଲ୍ଲ ।

ତାତା—ଗ୍ର.ଅବ୍ୟ.ସଙ୍ଗୀତ ବାଦ୍ୟ ଓ ନୃତ୍ୟ ଆଦିର ଉକ୍ତି ।

ତାତାନାଡ଼ି—ଗ୍ରା. ବି. (ଶିଶୁରଞ୍ଜନ)ଏହା ବୋଲି ମାତାମାନେ ଶିଶୁମାନଙ୍କ ମୁଣ୍ଡରେ ଓ କାନ ମୁଣ୍ଡାରେ ମାଲିସ ମାଲିସ କରନ୍ତି ।

ତାତାର—ଯା.ବି. ମଧ୍ୟ ଆସିଆର ଦେଶବିଶେଷ, ତୁର୍କୀସ୍ଥାନ ।

ତାତାରି—ଯା.ବିଂ. ତାତାର ଦେଶ ସମ୍ବନ୍ଧୀୟ, ତାତାର ଦେଶବାସୀ, ( ବି ) ତାତାର ଦେଶ ବ୍ୟକ୍ତି ।

ତାତି—ପୁଂ. ବି. (ତାୟ୍+ର୍ମ.ତି) ପୁତ୍ର, (ତନ୍+ଭା.ତି)ବୃଦ୍ଧି, (ଗ୍ରା.ବି) ଗରମି, ତାପ, ଉତ୍ତାପ, ଜ୍ୱରଜନିତ ଦେହର ଉତ୍ତାପ, ଅଗ୍ନିଆଦିର ତେଜ, ଧାସ, ଝାଞ୍ଜି, (ଲ.ଅର୍ଥ) କ୍ରୋଧ ।

ତାତିପିଟିବା—ଗ୍ରା.ବି. ଝାଞ୍ଜି ବାଡ଼େଇବା, ଅତ୍ୟନ୍ତ ଉତ୍ତପ୍ତ ପବନ ବହିବା ।

ତାତିବା—ଗ୍ରା. କ୍ରି. ଉତ୍ତପ୍ତହେବା, ଜ୍ୱର ଯୋଗୁଁ (ଦେହ)ଉଷ୍ଣମହେବା, ପୋଡ଼ିଯିବା,(ଲ.ଅର୍ଥ)କ୍ରୋଧରେ ରାଗିଯିବା ।

ତାତିଯିବା—ଗ୍ରା. କ୍ରି. ପେଟ ଜଳିଯିବା, ଦଗ୍ଧହେବା, ( ପେଟ ଅନ୍ତ ) କ୍ଷୁଧାପୀଡ଼ିତ ହେବା ।

ତାତିଲ୍—ଯା.ବି.ଛୁଟି,ପଢ଼ା ବା କାର୍ଯ୍ୟରୁ ମିଳିବା ଅବସର, କାର୍ଯ୍ୟରହିତ୍ୟ ।

ତାତିଲ୍ଲ—ଗ୍ରା. ବିଂ. (ସଂ-ତପ୍ତ) ତାତଲ୍ଲ, ଉତ୍ତପ୍ତ, ଗରମ ।

ତାତ୍କାଳିକ—ବିଂ. (ତତ୍କାଳ+ଇକ) ସେହି ସମୟରେ ଘଟିଥିବା, ତତ୍କାଳୋତ୍ପନ୍ନ,ସେହି ସମୟର, ସମସାମୟିକ ।

ତାତ୍କାଲ୍ୟ—କ୍ଲୀ. ବି. ତତ୍କାଳତା ।

ତାତ୍ପର୍ଯ୍ୟ—କ୍ଲୀ.ବି. (ତତ୍ପର+ଭା.ଯ) ମର୍ମ,ଉଦ୍ଦେଶ୍ୟ, ସାରାଂଶ, ଅର୍ଥ, ଭାବାର୍ଥ, ଅଭିପ୍ରାୟ, ତତ୍ପରତା, ( ଗ୍ରା. ବିଂ ) ରମଣୀୟ, ତାଶଫ୍, ଉତ୍କୃଷ୍ଟ, ଉପଯୁକ୍ତ, ମନୋମତ ।

ତାତ୍ପର୍ଯ୍ୟକ—ବିଂ.ଭାବୋଦ୍ଦୀପକ, ଅର୍ଥବୋଧକ, ତତ୍ପର ।

ତାତ୍ପର୍ଯ୍ୟଗ୍ରହ—ପୁଂ. ବି. (୬ତତ୍)ମର୍ମାବଧାରଣ, ମର୍ମଗ୍ରହଣ ।

ତାତ୍ତ୍ୱିକ—ବିଂ. (ତତ୍ତ୍ୱ+ଇକ)ତତ୍ତ୍ୱସମ୍ବନ୍ଧୀୟ, ଯଥାର୍ଥ, ତତ୍ତ୍ୱଜ୍ଞାନଯୁକ୍ତ ।

ତାତ୍ୟ—ବିଂ. ତତ୍କାଳୀନ ।

ତାତ୍ତ୍ସ୍ତୋମ୍ୟ—କ୍ଲୀ.ବି. ସେହିରୂପ ସ୍ତୋମ ବା ସ୍ତୁତି । [ ତତ୍ସ୍ଥ ।

ତାତ୍ସ୍ଥ—କ୍ଲୀ. ବିଂ. ତହିଁରେ ଥିବା,

ତାତ୍ସ୍ଥ୍ୟ—ବି. ( ତତ୍ସ୍ଥ+ଯ ) ଏକ ବସ୍ତୁ ମଧ୍ୟରେ ଅନ୍ୟ ବସ୍ତୁର ସ୍ଥିତି, ବ୍ୟଞ୍ଜନାତ୍ମକ ଅଳଂକାରବିଶେଷ ।

ତାଥାଭାବ୍ୟ—ବିଂ. ଯେଉଁ ସ୍ୱରନ୍ତ ପରେ ଉଦାତ୍ତ ଉଚ୍ଚାରିତ ହୁଏ ।

ତାଦାର୍ଥିକ—ବିଂ. ସେହିପରି ।

ତାଦାର୍ଥ୍ୟ—କ୍ଲୀ. ବି. (ତଦର୍ଥ+ଯ) ଦୁଇ ଶବ୍ଦ ବା ବାକ୍ୟର ଏକାର୍ଥ ବୁଝାଇବାର ଅବସ୍ଥା, ତତ୍ସ୍ୱରୂପ, ଅଭେଦ୍ୟ ସମ୍ବନ୍ଧ, ତଦର୍ଥତା, ତଜ୍ଜନ୍ୟ, ତଦୁଦ୍ଦେଶ୍ୟ, ତନ୍ନିମିତ୍ତତା ।

ତାଦବସ୍ଥ୍ୟ—ବି. (ତଦବସ୍ଥା+ଯ) ସେହି ଅବସ୍ଥାରେ ରହିବାର ଭାବ, ତଦ୍ରୂପତା ।

ତାଦା(ଦ୍ରା)ଦ୍—ଯା. ବି. ମକଦ୍ଦମାର ପ୍ରାର୍ଥିତ ଦାବିର ପ୍ରକୃତ ବା କଳ୍ପିତ ମୂଲ୍ୟ ।

ତାଦାତ୍ମ୍ୟ—ବି. (ତଦାତ୍ମ+ଯ)ଏକାତ୍ମତା, ଏକାତ୍ମଭାବ, ତତ୍ସ୍ୱରୂପତା, ଅଭେଦ ।

ତାଦାତ୍ୱ୍ୟ—କ୍ଲୀ. ବି. ସେହି ସମୟରେ, ତଦାନୀ ।

ତାଦୁର୍ଗୀ—ସ୍ତ୍ରୀ. ବି. ବେଙ୍ଗର ନାମାନ୍ତର ।

ତାଦୃକ୍—ପୁଂ ଓ କ୍ଲୀ. ( ତତ୍+ଦୃଶ+ର୍ମ.କ୍ୱିପ୍) ତଦ୍ରୂପ, ତଦ୍ବିଧ, ସେହିପରି ।

ତାଦୃକ୍ଷ—ପୁଂ. ବିଂ. (ତତ୍+ଦୃଶ+ର୍ମ. ସ) ସେହିରୂପ, ତଦ୍ରୂପ, (ସ୍ତ୍ରୀ)ତାଦୃକ୍ଷା ।

ତାଦୃଗ୍ୱିଧ—ବିଂ. ସେହିପ୍ରକାର, ତାହାପରି ।

ତାଦୃଶ—ବିଂ. ( ତତ୍+ଦୃଶ୍+ର୍ମ.ଅ ) ସେହିପରି, ଏବଂବିଧ, ତତ୍ତୁଲ୍ୟ, ତାଦୃକ୍, ତଦ୍ବିଧ, (ସ୍ତ୍ରୀ) ତାଦୃଶୀ ।

ତାଦୃଶୀ—ସ୍ତ୍ରୀ.ବିଂ. (ତାଦୃଶ+ଈ)ତାହାପରି, ତତ୍ସଦୃଶୀ ।

ତାଦେହ—ଗ୍ରା. ସର୍ବ. ତାଦ୍ୱାରା ।

ତାଦ୍ଧର୍ମ୍ୟ—କ୍ଲୀ. ବି. ଏକଧର୍ମ, ଏକନିୟମତା ।

ତାଧିଆ—ଗ୍ରା. ବି. ନର୍ତ୍ତକ ବା ନର୍ତ୍ତକୀଙ୍କ ପଛରେ ବାଦ୍ୟ ବଜାଇବା ଲୋକ, ନର୍ତ୍ତକ ନର୍ତ୍ତକୀଙ୍କର ତାଳ ଅନୁସାରେ ନୃତ୍ୟ ।

ତାନ୍—ଗ୍ରା. ବିଂ. ଚୁର୍, ଭୋଳ, ବିହ୍ୱଳ, ଅଭିଭୂତ ।

ତାନ୍‌ସେନ୍—ଗ୍ରା. ବି. ମୋଗଲ ସମ୍ରାଟ୍ ଆକବରଙ୍କ ସମୟର ବିଖ୍ୟାତ ସଙ୍ଗୀତାଚାର୍ଯ୍ୟ ।

ତାନ—ପୁଂ.ବି.(ତାନ୍+ର୍ମ.ଅ) ସ୍ୱରଗ୍ରାମ, ଗୀତରେ ରାଗିଣୀର ଆଳାପ, ଘାତ, ସନ୍ତାନ, ଅବତାନ, ଜ୍ଞାନବିଶେଷ, ଗାନାଙ୍ଗଭେଦ, ସ୍ୱର, ସୁର୍, ଗୀତର ସ୍ୱର ବିସ୍ତାର, ଅନୁଲୋମ ଗତିରେ ଗମନ, (ଭା.ଅ) ଗାୟକର ସ୍ୱର, (ଗ୍ରା. ବି)ଲକ୍ଷ୍ୟ,ଉଦ୍ଦେଶ୍ୟ, କ୍ରୋଧାଦିର ତେଜ, ଧମକ, ଝାଙ୍କ, ତନ୍ତୀଙ୍କର ସଜାଡ଼ି ରଖିଥିବା ଟାଣୀ ଓ ଭରଣୀ ସୂତା,

ଜୋର୍, ବଳ, ଉଚ୍ଚୈଃସ୍ୱରରେ ଡ଼ାକ, କ୍ରୋଧମୟ ଚଡ଼ାସ୍ୱର,ନିରବଚ୍ଛିନ୍ନ ଅର।
ତାନକ—ଗ୍ରା.ବି.ଏକଅର୍ଥମାତ୍ର, ଅରକ।
ତାନକାଢ଼ିବା—ଗ୍ରା. କ୍ରି. କ୍ରୋଧ ପ୍ରକାଶ କରିବା, କ୍ରୋଧର ବାହ୍ୟ ଲକ୍ଷଣ।
ତାନକେ—ଗ୍ରା. ଅବ୍ୟ. ଅରକେ।
ତାନଛଣ୍ଡା(ଣ୍ଡେ)ଇବା—ଗ୍ରା. କ୍ରି. ଝୁଙ୍କ ଛିଣ୍ଡାଇବା, ହଠାତ୍ ବା ଜୋରପୂର୍ବକ କୌଣସି କାର୍ଯ୍ୟ କରିବା, ଏକାଥରକେ କାମ କରିବା, ଗାଳିମନ୍ଦ କରିବା।
ତାନଛଣ୍ଡିବା—ଗ୍ରା.ବି. ମାଡ଼କାମ, ଗାଳି-ଆଦି ଆରମ୍ଭ ହୋଇ ଏକା ହଠାତ୍‌କେ ଶେଷ ହେବା, ଝାଙ୍କଛିଣ୍ଡିବା।
ତାନତରଙ୍ଗ—ବି. ( ୬ତତ୍ ) ସଙ୍ଗୀତ ଲୟର ସ୍ୱରଲହରୀ।
ତାନଧରିବା—ଗ୍ରା. କ୍ରି. ଗୀତ ବୋଲି-ସିବା ଆଗରୁ ଉକ୍ତ ଗୀତର ସ୍ୱର ବା ରାଗକୁ ଆବୃତ୍ତି କରିବା, ଗୀତ ବୋଲିବା ପୂର୍ବରୁ ତାନା ନାନା ଆଦି ଦ୍ୱାରା ନିର୍ଦ୍ଦିଷ୍ଟ ସ୍ଥାନରେ ଯତିପାତ କରି ଉକ୍ତ ଗୀତର ସ୍ୱରକୁ ଆବୃତ୍ତି କରିବା।
ତାନପୁରା—ଗ୍ରା. ବି. ଗାନବାଦ୍ୟ ଯନ୍ତ୍ର-ବିଶେଷ, ବୀଣାଯନ୍ତ୍ରବିଶେଷ, ତମ୍ବୁରା।
ତାନବ—କ୍ଲୀ.ବି (ତନୁ+ଷ୍ଣ.ଅ)ଶୀର୍ଣ୍ଣତା, କୃଶତା, କ୍ଷୀଣତା, ଅଳ୍ପତା।
ତାନମାନ—ଗ୍ରା.ବି.ଗୀତର ସ୍ୱର ବିସ୍ତାର ଓ ସ୍ୱର ପରିମାଣ, ଗୀତର ସ୍ୱରର ଆଳାପ ଓ ତାଳ ପକାଇବା, ସୁର୍ ଓ ତାଳ, (ଲ.ଅର୍ଥ) କ୍ରୋଧଜନକ ସ୍ୱର ଓ ଅଙ୍ଗଭଙ୍ଗୀ।
ତାନମାନଉଠିବା—ଗ୍ରା. ବି. କୌଣସି ଗୀତକୁ ଗୃହୀ ତାଳ ପକାଯିବା।
ତାନମାନକାଢ଼ିବା—ଗ୍ରା.କ୍ରି. କ୍ରୋଧାନ୍ୱିତ ସ୍ୱରସହିତ ଅଙ୍ଗଭଙ୍ଗୀ କରିବା।
ତାନାତାନା—ଗ୍ରା.ଅବ୍ୟ. ଗୀତ ବୋଲିବା ପୂର୍ବରୁ ସ୍ୱରାଳାପର ଆବୃତ୍ତି।
ତାନି—ଗ୍ରା.ବିଂ.କ୍ରୋଧ ପ୍ରକୃତିକ ରାଗୀ, କ୍ରୋଧୀ।
ତାନୁ—ଗ୍ରା. (ମେଦ)ବି. ତୋଡ଼ାଣି।

ତାନୂନପାତ୍ର—ବିଂ. (ତନୂନପାତ୍+ଅ) ଅଗ୍ନି ସମ୍ବନ୍ଧୀୟ।
ତାନୂନପ୍ତ୍ର—କ୍ଲୀ.ବି. ବାୟୁ ଉଦ୍ଦେଶ୍ୟରେ ଦତ୍ତ ଦଧିମିଶ୍ରିତ ଘୃତ।
ତାନୂର—ପୁଂ. ବି. ( ତନ୍+କ.ଊର ) ଜଳାବର୍ତ୍ତ, ଜଳଭଉଁରୀ, ଘୂର୍ଣ୍ଣିବାୟୁ।
ତାନେ—ଗ୍ରା. କ୍ରି. ବିଂ. ଗୁଡ଼ାଏ, ହଠାଏ, ରୁହେ, ଥରେ।
ତାନ୍ତ—ବିଂ. (ତନ୍+କ.ତ)ମ୍ଳାନ, ପରି-ଶ୍ରୁଷ୍ଟ, କ୍ଳାନ୍ତ, ଶ୍ରାନ୍ତ, ଦୁର୍ବଳ, କ୍ଷୀଣ, ( ତ+ଅନ୍ତ)ବ.ବ୍ରୀ; ଯେଉଁ ଶବ୍ଦର ଅନ୍ତରେ ତ ଅକ୍ଷର ଅଛି।
ତାନ୍ତବ—କ୍ଲୀ. ବି. ( ତନ୍ତୁ+ଅ ) ବସ୍ତ୍ର, ସୂତାଲୁଗା, (ତ୍ରି.ବିଂ) ତନ୍ତୁ ନିର୍ମିତ, ସୂତ୍ର ନିର୍ମିତ, ଯେଉଁ ଧାତୁକୁ ପିଟି ସରୁ ତାର କରାଯାଇପାରେ।
ତାନ୍ତବଗୁଣ—ସ୍ତ୍ରୀ. ବି. କଠିନ ଦ୍ରବ୍ୟର ବିଶେଷ ଧର୍ମ, ଧାତୁର ଯେଉଁ ଗୁଣ ଯୋଗୁଁ ତାହାକୁ ଟାଣିଲେ ବା ପିଟିଲେ ସୂକ୍ଷ୍ମ ତାର ହୁଏ।
ତାନ୍ତରା—ଗ୍ରା. ବି. ତେନ୍ତେରା, ଶଗଡ଼ର ଅଖ ଉପରେ ବସିବା ନିମନ୍ତେ ତଳ ପାଖେ ଘର କଟା ଯାଇଥିବା ଯେଉଁ ଲମ୍ବା କାଠ ଦୁଇଖଣ୍ଡ ଉପରେ ଦଣ୍ଡା ସଂଲଗ୍ନ ଥାଏ।
ତାନ୍ତିଆଟୋପୀ—ଗ୍ରା.ବି. ସିପାହୀ ବିଦ୍ରୋହର ନାୟକ ବିଖ୍ୟାତ ନାନ ସାହେବର ପ୍ରଧାନ ମନ୍ତ୍ରୀ ଓ ପୃଷ୍ଠପୋଷକ।
ତାନ୍ତିଆଭିଲ୍ଲ—ଜଣେ ବିଖ୍ୟାତ ଭିଲ୍ଲ,ଦସ୍ୟୁ।
ତାନ୍ତୁବାୟି—ପୁଂ. ସ୍ତ୍ରୀ. ବି. ତନ୍ତୁବାୟର ଅପତ୍ୟ।
ତାନ୍ତ୍ର—କ୍ଲୀ.ବିଂ. (ତନ୍ତ୍ର+ଅ)ତାରବିଶିଷ୍ଟ, ତନ୍ତ୍ରଶାସ୍ତ୍ର ସମ୍ବନ୍ଧୀୟ।
ତାନ୍ତ୍ରିକ—ବିଂ. (ତନ୍ତ୍ର+ଇକ)ଜ୍ଞାନସିଦ୍ଧା-ନ୍ତଜ୍ଞ, ଶାସ୍ତ୍ରଜ୍ଞ, ତନ୍ତ୍ରଶାସ୍ତ୍ରର ମତା-ବଲମ୍ବୀ, କଳା ବା ବିଦ୍ୟାବିଶେଷରେ ପାରିଭାଷିକ ( ଶବ୍ଦ ), ତନ୍ତ୍ର ସମ୍ବନ୍ଧୀୟ, ତନ୍ତ୍ରସମ୍ବନ୍ଧୀୟ, ଶାସ୍ତ୍ରସମ୍ବନ୍ଧୀୟ ( ବି ) ସନ୍ନିପାତ ରୋଗବିଶେଷ।

ତାନ୍ତ୍ରିକପ୍ରୟୋଗ—ବି. ତନ୍ତ୍ରଶାସ୍ତ୍ରୋକ୍ତ କ୍ରିୟାକଳାପ।
ତାନ୍ତ୍ରିକବିଧି—ବି. (କ.ଧା) ତନ୍ତ୍ରଶାସ୍ତ୍ରୋକ୍ତ ବିଧାନ।
ତାନ୍ତ୍ରିକସଂସ୍କାର—ବି.(କ.ଧା)ତନ୍ତ୍ରଶାସ୍ତ୍ରୋକ୍ତ ଅଭିମନ୍ତ୍ରଣାଦିର ବିଧାନ।
ତାନ୍ତ୍ରିକୀ—ସ୍ତ୍ରୀ. ବି. ତନ୍ତ୍ରସମ୍ବନ୍ଧୀୟା।
ତାନ୍ଦନ—ପୁଂ. ବି. ବାୟୁ, ପବନ।
ତାନ୍ଦୁର—କ୍ଲୀ.ବି.ତନ୍ଦୁର ପ୍ରକ୍ଷେପ ସମ୍ଭେଦ
ତାନ୍ୱ—ପୁଂ. ବି. ( ତନୁ+ଅ ) ତନୁଜ, ପୁତ୍ର, ତନୁନାମକ ଋଷିଙ୍କ ଅପତ୍ୟ।
ତାନ୍ୱଙ୍ଗ—ପୁଂ. ବି. ତନ୍ୱଙ୍ଗର ଅପତ୍ୟ।
ତାପ୍‌ବା—ଗ୍ରା. (ସମ୍ବ)କ୍ରି. ନିଆଁ ଖରାଆଦି ପୋଇଁବା।
ତାପ—ପୁଂ. ବି. (ତପ+ଷ୍ଣ.ଅ) କ୍ଳେଶ-ଜନକ ଉତ୍ତାପ ସ୍ପର୍ଶ ଯୋଗେ ସନ୍ତାପ, କୃଚ୍ଛ୍ର, ଶୋକ, ଉତ୍ତାପ ଦହାଦିକା ଶକ୍ତି, ଦୁଃଖ, ଅଶାନ୍ତି, ଗୋଳମାଳ, କ୍ରୋଧ, ମାନସିକ ଦୁଃଖ, ଉଷ୍ଣତା, ଜ୍ୱର, ଆଧ୍ୟା-ତ୍ମିକ, ଆଧିଦୈବିକ ଓ ଆଧିଭୌତିକ ଦୁଃଖ, ତ୍ରିତାପ, ପ୍ରକୃତ କାର୍ଯ୍ୟର ସାମଞ୍ଜସ୍ୟ ବିଧାନର ବିଶେଷ ଉପଯୋଗୀ
ତାପକ—ପୁଂ.ବିଂ. (ତାପ+ଣିଚ୍+କ. ଅକ) ଦାହକ, ଯାହା ଉତ୍ତପ୍ତ କରେ, (ବି) ଜ୍ୱର, ରଜୋଗୁଣ।
ତାପକ୍ଳିଷ୍ଟ—ବିଂ.(୩ତତ୍)ଉଷ୍ଣତା ଯୋଗୁଁ କାତର, ଯାତନାରେ ଅସ୍ଥିର, ଜ୍ୱର-କ୍ରାନ୍ତ, (ସ୍ତ୍ରୀ) ତାପକ୍ଳିଷ୍ଟା।
ତାପଜ—ବିଂ. ( ତାପ+ଜନ୍+କ.ଅ ) ତାପରୁ ଉତ୍ପନ୍ନ।
ତାପଜନକ—ବିଂ. ( ତାପ+ଜନ+କ. ଅକ) ଉତ୍ତାପକାରୀ।
ତାପଡ଼ଲେହର—ଗ୍ରା. ବି. ଶୁଆଁଲିଇ।
ତାପଡ଼ାଶୁଙ୍ଖୁଆ—ଗ୍ରା. ବି. ବଡ଼ ଚିଙ୍ଗୁଡ଼ି ଶୁଖୁଆ।
ତାପତୀ—ସ୍ତ୍ରୀ. ବି. ସୂର୍ଯ୍ୟକନ୍ୟା, ତାପୀ, ତାପ୍ତୀ ନଦୀ।
ତାପତ୍ୟ—ପୁଂ ଓ ସ୍ତ୍ରୀ. ବି. (ତପତୀ+ଯ) ତପତୀର ଅପତ୍ୟ, କୁରୁ ଅର୍ଜୁନଙ୍କର

ଏକନାମ ।
ତାପତ୍ରୟ—କ୍ଲୀ.ବ.ତ୍ରିବିଧ ଦୁଃଖ, ଆଧ୍ୟାତ୍ମିକ, ଆଧିଦୈବିକ ଓ ଆଧିଭୌତିକ ଦୁଃଖତ୍ରୟ ।
ତାପଦ—ପୁଂ. ବ.(ତାପ + ଦା + କ.ଅ) ଯାହା ତାପଦିଏ, ସନ୍ତାପଦାୟକ ।
ତାପଦୁଃଖ—କ୍ଲୀ. ବ. ପାତଞ୍ଜଳ ଦର୍ଶନ ଅନୁସାରେ ଏକପ୍ରକାର ଦୁଃଖ ।
ତାପନ—କ୍ଲୀ.ବ.(ତପ + ଣିଚ୍ + ଭା.ଅନ) ତାପକରଣ,ଉତ୍ପୀଡନ,(ପୁଂ.ବ.--କ.ଅ) ସୂର୍ଯ୍ୟ, କାମଦେବଙ୍କର ପଞ୍ଚବାଣ ମଧ୍ୟରୁ ଏକ, ଢୋଲ, ସୂର୍ଯ୍ୟକାନ୍ତମଣି, ଅର୍କବୃକ୍ଷ, ତନ୍ତ୍ରୋକ୍ତ ଅଭିଚାର ବା ପ୍ରୟୋଗ ବିଶେଷ, ଯହିଁ ଫଳରେ ଶତ୍ରୁର ପୀଡ଼ା ଜନ୍ମେ, ନରକବିଶେଷ, (ବିଂ) ତାପପ୍ରଦ, (ଗ୍ରା. ବ) କୋର ପ୍ରବେଶ, (ବିଂ) ସନ୍ତାପିତ ।
ତାପନମ୍ୟ—ବିଂ. (ତାପ+ନମ+ମି.ଯ) ଯେଉଁ ପଦାର୍ଥ ( ଯଥା--ଧାତୁ ) ତାପ ପାଇଲେ ନରମ ହୁଏ ।
ତାପନୀ--ବ.ଉପନିଷଦଭେଦ,ଘଣ୍ଟି,ସୁନା ।
ତାପନୀୟ—ବିଂ. ( ତାପି + ମି.ଅନୀୟ ) ତପ୍ତ କରିବାର ଉପଯୋଗୀ ।
ତାପମାନ—ବ. ଯନ୍ତ୍ରବିଶେଷ, (ଷତତ୍ପୁ) ଉତ୍ତାପର ପରିମାଣ ବା ମାତ୍ରା ।
ତାପମାନଯନ୍ତ୍ର—ସ୍ତ୍ରୀ. ବ, ଯେଉଁ ଯନ୍ତ୍ର ଦ୍ୱାରା ଶରୀରର ବା ପଦାର୍ଥର ଉତ୍ତାପ ଜଣା ଯାଏ ।
ତାପୟିଷ୍ଣୁ—ବିଂ. (ତାପ+ଇଷ୍ଣୁ) ତାପନୀୟ, ଜ୍ୱଳନୀୟ, ଯନ୍ତ୍ରଣାଦାୟକ ।
ତାପର—ଗ୍ରା.ଅବ୍ୟ. ତହିଁଉପରେ, ତହିଁପରେ । [ ଭେଦ ।
ତାପଶ୍ଚିତ—କ୍ଲୀ.ବ.ଯଜ୍ଞଭେଦ, ଯଜ୍ଞାଗ୍ନି-
ତାପସ—ବିଂ. ତପସ୍ୱୀ ତପଶ୍ଚରଣଶୀଳ, (ପୁଂ.ବ) ତପସ୍ୱୀ, ମୁନି, ଦମନକବୃକ୍ଷ, ତେଜପତ୍ର, . ବକଫୁଲ, ଅଶ୍ୱବିଶେଷ, ଦାକ୍ଷିଣାତ୍ୟର ଦେଶବିଶେଷ, (କ୍ଲୀ.ବ) ତମାଳପତ୍ର ।
ତାପସକ—ପୁଂ. ବିଂ. ( ତାପସ+କ ) ସାମାନ୍ୟ ଯୋଗୀ ।
ତାପସଜ—କ୍ଲୀ. ବ. ତେଜପତ୍ର ।
ତାପସତରୁ—ପୁଂ. ବ. ଇଙ୍ଗୁଦୀ ବୃକ୍ଷ ।
ତାପସଦ୍ରୁମ—ପୁଂ. ବ. ଇଙ୍ଗୁଦୀ ବୃକ୍ଷ ।
ତାପସଦ୍ରୁମସନ୍ନିଭ—ସ୍ତ୍ରୀ. ବ. ଗର୍ଭଦାତ୍ରୀ କ୍ଷୁପ ।
ତାପସପତ୍ରୀ—ସ୍ତ୍ରୀ. ବ. ଦମନକ ବୃକ୍ଷ ।
ତାପସପ୍ରିୟ—ପୁଂ.ବିଂ, (ଷତତ୍ପୁ)ତପସ୍ୱୀମାନଙ୍କର ପ୍ରିୟ(ବସ୍ତୁ ବା ବ୍ୟକ୍ତି),ବ.ବ୍ରୀ, ତପସ୍ୱୀମାନେ ଯାହାର ପ୍ରିୟ, ଯେ ତପସ୍ୱୀମାନଙ୍କ ସୁଖ ପାଏ, (ବ) ପିୟାଳ ବୃକ୍ଷ,ତାପସତରୁ. ଇଙ୍ଗୁଦୀ ବୃକ୍ଷ ।
ତାପସପ୍ରିୟା—ସ୍ତ୍ରୀ. ବ. ଦ୍ରାକ୍ଷା, କସ୍‌ମିସ୍, ଅଙ୍ଗୁରଫଳ ।
ତାପସବୃକ୍ଷ—ପୁଂ. ବ. ଇଙ୍ଗୁଦୀବୃକ୍ଷ ।
ତାପସବୃତ୍ତି—ସ୍ତ୍ରୀ.ବ. (ଷତତ୍ପୁ) ତପସ୍ୟା, ତପଶ୍ଚରଣ ।
ତାପସୀ—ସ୍ତ୍ରୀ.ବ.(ତାପସ + ଈ) ତପସ୍ୟାକାରିଣୀ ସ୍ତ୍ରୀ,ତପସ୍ୱିର ପତ୍ନୀ ।
ତାପସେକ୍ଷୁ—ବ. ( ମଧ୍ୟ. କ.ଧା ) ଏକପ୍ରକାର ଆଖୁ ।
ତାପସେଷ୍ଟ—ପୁଂ.ବ.ତାପସପ୍ରିୟ ଦେଖ ।
ତାପସେଷ୍ଟା—ସ୍ତ୍ରୀ. ବ. ଦ୍ରାକ୍ଷା, କସ୍‌ମିସ୍, ଅଙ୍ଗୁର ।
ତାପସ୍ୟ—କ୍ଲୀ.ବ.ତାପସଧର୍ମ, ତପସ୍ୟା ।
ତାପସ୍ୱେଦ—ପୁଂ. ବ. (ମଧ୍ୟ.କଧା)ବାମ୍ଫୁଅଣି ଆଦି କୃତ୍ରିମକ୍ରିୟା ଦ୍ୱାରା ଦେହରୁ ଝାଳ ବୁହାଇବା କର୍ମ ।
ତାପହର—ପୁଂ. ବିଂ. (ତାପ+ହୃ+ଅ) ସନ୍ତାପହରଣକାରୀ, ସ୍ନିଗ୍ଧକର ।
ତାପହରୀ—ସ୍ତ୍ରୀ.ବ. (ତାପ + ହୃ + କ.ଅ + ଈ) ଏକପ୍ରକାର ଖେଚୁଡ଼ି, ବ୍ୟଞ୍ଜନ ବିଶେଷ ।
ତାପହର୍ତ୍ତା—ପୁଂ. ବିଂ.(ତାପ + ହୃ+ କ. ତୃ) ତାପହର, ସନ୍ତାପହର, (ସ୍ତ୍ରୀ) ତାପହର୍ତ୍ତ୍ରୀ ।
ତାପହାରୀ—ପୁଂ.ବିଂ. (ତାପ+ହୃ+କ. ଇନ୍) ତାପହର, ସନ୍ତାପହରଣକାରୀ, (ସ୍ତ୍ରୀ) ତାପହାରିଣୀ ।
ତାପାୟନ—ପୁଂ. ବ. ବାଜସନେୟୀ ଶାଖାଭେଦ ।
ତାପି—ଗ୍ରା. ବ. ଲମ୍ବା ସରୁଆ କରଣୀ, (ଗ୍ରା. ପୁରୀ. ବାଣପୁର) ରାଜମିସ୍ତ୍ରୀ ।
ତାପିକ—ବିଂ. (ତାପ+ଇକ) ଗ୍ରୀଷ୍ମଭବ, କଳାଦ ।
ତାପିଚ୍ଛ—ପୁଂ. ବ. ତମାଳବୃକ୍ଷ ।
ତାପିଞ୍ଛ—ପୁଂ. ବ. ତମାଳବୃକ୍ଷ, (କ୍ଲୀ.ବ) ତାପିଞ୍ଛପୁଷ୍ପ ।
ତାପିଞ୍ଜ—କ୍ଲୀ. ବ. ଧାତୁମାକ୍ଷିକ, (ପୁଂ.ବ) ତମାଳବୃକ୍ଷ ।
ତାପିତ—ବିଂ. (ତପ+ଣିଚ୍+ମି.ତ) ତାପଯୁକ୍ତ, ଦୁଃଖିତ, ପୀଡ଼ିତ, ଯନ୍ତ୍ରଣାଯୁକ୍ତ, (କ.ତ) କ୍ଷୁବ୍ଧ, ଅତ୍ୟାଗ୍ରହ ।
ତାପିନୀ—ସ୍ତ୍ରୀ. ବିଂ. (ତାପ + ଇନ୍ + ଈ) ତାପଯୁକ୍ତା, ସନ୍ତପ୍ତା, ଦୁଃଖିନୀ, ତାପଜନୟିତ୍ରୀ, (ବ) ଶାସ୍ତ୍ରର ନାମବିଶେଷ, (ଗ୍ରା.ବ)ବୈଷ୍ଣବ ଗ୍ରନ୍ଥବିଶେଷ, ବେଦାନ୍ତ, ନଦୀବିଶେଷ ।
ତାପିବା—ଗ୍ରା. କ୍ରି. (ନିଆଁ) ଲଗାଇବା, ଦଣ୍ଡଦେବା,ତଡ଼ାଇବା,ଦୁଃଖିତହେବା, ଦୁଃଖଦେବା, ଉଷୁମ ହେବା ।
ତାପୀ—ପୁଂ, ବିଂ. ( ତାପ+ କ.ଇନ୍ ) ସନ୍ତପ୍ତ, ତାପକ, ତାପଯୁକ୍ତ, (ପୁଂ. ବ) ବୁଦ୍ଧଦେବ, (ସ୍ତ୍ରୀ—ତାପ + ଈ)ସୂର୍ଯ୍ୟଙ୍କ କନ୍ୟା, ନଦୀଭେଦ ।
ତାପୀଜ—ପୁଂ. ବ. ମାକ୍ଷିକଧାତୁ, ସ୍ୱର୍ଣ୍ଣମାକ୍ଷିକ ।
ତାପୀସମ୍ଭବ—ବିଂ.ତାପୀ ନଦୀତୀରରେ ବା ନିକଟରେ ଉତ୍ପନ୍ନ,(କ୍ଲୀ.ବ) ଅଗ୍ନିପ୍ରସ୍ତର ବା ଖନିଜ ପଦାର୍ଥଭେଦ, ମଣିବିଶେଷ ।
ତାପେନ୍ଦ୍ର—ପୁଂ. ବ. (ଷତତ୍ପୁ) ସୂର୍ଯ୍ୟ ।
ତାପେଶ୍ୱର—ପୁଂ. ବ. ତୀର୍ଥ ବିଶେଷ ।
ତାପ୍ତୀ—ସ୍ତ୍ରୀ.ବ ଦାକ୍ଷିଣାତ୍ୟର ନଦୀବିଶେଷ
ତାପ୍ୟ—କ୍ଲୀ.ବ. (ତପ+ଯ)ଧାତୁବିଶେଷ, ସ୍ୱର୍ଣ୍ଣମାକ୍ଷିକ, (ବିଂ) ତାପନୀୟ ।
ତାପ୍ୟକ—କ୍ଲୀ. ବ. ଧାତୁମାକ୍ଷିକ, ସ୍ୱର୍ଣ୍ଣମାକ୍ଷିକ ।

ତାପ୍ୟତ୍ନୁସଙ୍କଳ—**କ୍ଲୀ. ବ.** ଧାତୁମାକ୍ଷିକ, ସ୍ୱର୍ଣ୍ଣମାକ୍ଷିକ ।

ତାବ୍ଦା—ଗ୍ରା. ବି°. (ସଂ-ସ୍ତବ୍ଧ) ସ୍ତବ୍ଧ, ବଧିଷ୍ଟକୃତ (କଣ୍ଠ), ସ୍ପର୍ଶାନୁଭୂତିରହିତ, ଚଳନ୍ତଶକ୍ତିରହିତ ।

ତାବ୍ଦାର୍—ଯା.ବି. ଦାସ,ଅଧୀନ ବ୍ୟକ୍ତି, ଚାକର, (ବି°) ଅଧୀନ ।

ତାବ୍ଦାରି—ଯା. ବି. (ମୁସଲମାନୀ ଭାଷା) ଅଧୀନତା, ଆନୁଗତ୍ୟ, ଚାକରି, ଟହଲ ଟହଲୁଆ ।

ତାବକ—ପୁଂ. ବି°.(ଯୁଷ୍ମଦ୍+ଅ)ତ୍ୱଦୀୟ, ତୁମ୍ଭର, ଆପଣଙ୍କ ଅଧୀନ ।

ତାବକୀନ—ପୁଂ. ବି. ( ଯୁଷ୍ମଦ୍+ଈନ ) ତାବକ ଦେଖ, (ସ୍ତ୍ରୀ) ତାବକୀନା ।

ତାବଡ଼—ଗ୍ରା. ବି. ଶାସନ କରିବା ।

ତାବଡ଼ା—ଗ୍ରା. ବି°. ତହିଁବଳି, ତାଠାରୁ ଅଧିକ ।

ତାବତ୍—ବି°.(ତଦ୍+ବତୁ)ତତ୍‌ସଂଖ୍ୟକ, ତତ୍ପରିମିତ, ସେତେ, ସେହିସମସ୍ତ. ସର୍ବ, ତାହାସମସ୍ତ, ସେମାନେ, ସବୁ. (ଅବ୍ୟ) ସେହି ସମସ୍ତ ପର୍ଯ୍ୟନ୍ତ, ତତ୍-କାଳେ, ସେହିକ୍ଷଣରେ, ତେତେଦୂର ପର୍ଯ୍ୟନ୍ତ, ସେହିପରିମାଣ ପର୍ଯ୍ୟନ୍ତ, (ବି°) ତତ୍ସଂଖ୍ୟକ, ସ୍ୱଳ୍ପ ।

ତାବତୀୟ—ବି°.(ତାବତ୍+ଈୟ)ସମସ୍ତ ବସ୍ତୁ ଓ ବ୍ୟକ୍ତି, ତାହାସବୁ, ସେମାନେ ସମସ୍ତେ ।

ତାବତ୍କାଳ—ବି. ସେହିସମୟ, (ଗ୍ରା.କ୍ରି. ବି°) ସେହିକାଳ ନିମନ୍ତେ, ସେତେ-ଦିନପର୍ଯ୍ୟନ୍ତ ।

ତାବନ୍ମାତ୍ର—ଅବ୍ୟ. ସେତିକି ।

ତାବାନ୍—ଯା. ବି. ଦଣ୍ଡ, ଜୋରିମାନା, କ୍ଷତିପୂରଣ ।

ତାବାଲ୍—ଗ୍ରା.ବି. ତବଲ, ତବଲ୍, ପିତ୍ତଳର ଗୋଲ୍‌ଟକ୍ଲୁଣ୍ଠ ।

ତାବିଜ—ଯା.ବି. ବାହୁଭୂଷଣ ବିଶେଷ, ବାଜୁ,କଣ୍ଠାଭରଣ ବିଶେଷ,ରକ୍ଷାକବଚ,

ତାବିଷ—ପୁଂ. ବି, (ତବ+ଇଷ) ସ୍ୱର୍ଗ, ସ୍ୱର୍ଣ୍ଣ, ସମୁଦ୍ର ।

ତାବିଷୀ—ସ୍ତ୍ରୀ. ବି. ଚନ୍ଦ୍ରକନ୍ୟା, ଦେବ-କନ୍ୟା, ନଦୀ, ଭୂମି, ପୃଥିବୀ ।

ତାବୁଳ—କ୍ଲୀ. ବି. ଯା. ବିଷଘ୍ନ ଔଷଧ ବିଶେଷ ।

ତାବେ—ଯା.ବି. ଅଧୀନତା, ଅଧିକାର ।

ତାବେଦାର୍—ଯା. ବି ଓ ବି°.ତାବ୍‌ଦାର୍ ଦେଖ ।

ତାବୋଲ୍—ଗ୍ରା. ଅବ୍ୟ. ସେଥିଯୋଗୁଁ, ତହିଁ ।

ତାମ—ପୁଂ. ବି. (ତମ+ଅ)ଦୁଃଖ, ପାପ, ଇଚ୍ଛା, ଭୟର ବିଷୟ, ଉଦ୍‌ବେଗ, କ୍ଳାନ୍ତ, ଶ୍ରାନ୍ତ, ଦୋଷ, ଗ୍ଳାନି ।

ତାମଜାନ—ଗ୍ରା. ବି. ଏକପ୍ରକାର ଖୋଲା ପାଲିଙ୍କି, ଆଗରେ ପଛରେ କାନ୍ଧେଇବା ପାଇଁ ବାଉଁଶ ଲଗିଥିବା ଚଉକି, ମେହେନା ।

ତାମର—କ୍ଲୀ. ବି. (ତାମ+ଋ+କ.ଅ) ଜଳ, ଘୃତ ।

ତାମରସ—କ୍ଲୀ. ବି. (ତାମର+ସସ୍+କ.ଅ) ସୁବର୍ଣ୍ଣ, ସାରସପକ୍ଷୀ, ଧାତୁରା, ରକ୍ତପଦ୍ମ, ସ୍ୱର୍ଗ, ତାମ୍ର, ସାରଣ, ଛନ୍ଦୋ-ବିଶେଷ ।

ତାମରସୀ—ସ୍ତ୍ରୀ. ବି. (ତାମରସ+ଈ) ପଦ୍ମିନୀ, ପଦ୍ମସମୂହ, ପଦ୍ମପୂର୍ଣ୍ଣ ଜଳାଶୟ ।

ତାମଲକୀ—ସ୍ତ୍ରୀ. ବି. ଭୂମ୍ୟାମଳକୀ, ଭୁଇଁ-ଅଁଳା ।

ତାମଲିପ୍ତ—ପୁଂ.ବି.(ତମ+ଲିପ୍ତ)ତାମ୍ର-ଲିପ୍ତ ଅଞ୍ଚଳ,ତମଲୁକ, ତମଲୁକଦେଶ

ତାମଲିପ୍ତକ—ପୁଂ. ବି. ତମଲୁକଦେଶ ।

ତାମଲୀ—ଗ୍ରା.ବି.ପାନବିକ୍ରେତା, ପାନବି, ଯେଉଁ ଶୂଦ୍ରଜାତି ପାନ ବ୍ୟବସାୟ କରନ୍ତି ।

ତାମସ—ପୁଂ.ବି.(ତମସ୍+ଅ)ଅନ୍ଧକାର, ପେଚକ, ଖଳବ୍ୟକ୍ତି, ଅଜ୍ଞାନ, ସର୍ପ, ଜ୍ୟୋତିର୍ମତାନୁସାରେ ସୂର୍ଯ୍ୟ ଓ ଚନ୍ଦ୍ରଙ୍କ ଦେହରେ ଦେଖାଯିବା ୩୩ପ୍ରକାର କେତୁ, ଭୂତ ପ୍ରେତାଦିର ଉପାସନା, (ବି°) ତମୋ-ଗୁଣରୁ ଉଦ୍ଭୂତ, ତାମସିକ, ନିନ୍ଦିତ, ଗର୍ହିତ, ପାପମୟ, ପ୍ରବଳତମଗୁଣ ଦ୍ୱାରା ଅନୁଷ୍ଠିତ, ଗାଢ଼ାନ୍ଧକାରାଚ୍ଛନ୍ନ,ଅନ୍ଧକାରମୟ, ଖଳ, ତମୋଗୁଣପ୍ରଧାନ ।

ତାମସଆହାର—ଗ୍ରା. ବି.ପ୍ରହରକ ପୂର୍ବରୁ ରନ୍ଧାହୋଇଥିବା ବା ପ୍ରସ୍ତୁତ ଗତରସ ପୂତିଗନ୍ଧଯୁକ୍ତ ବା ବାସୀ ଉଚ୍ଛିଷ୍ଟ ଓ ଅମେଧ୍ୟ ବସ୍ତୁର ଭୋଜନ ।

ତାମସକର୍ତ୍ତା—ପୁଂ. ବି°.(କ.ଧା)ଅନବହିତ, ବିବେକଶୂନ୍ୟ, ଉଦ୍ଧତ, ଶଠ, ପର-ଉପରେ ଦାୟିତ୍ୱ ପକାଇ ନିଜେ ଦାୟିତ୍ୱରୁ ନିଷ୍କୃତି ପାଇବାକୁ ଇଚ୍ଛୁକ,ଅଳସ, ବିଷାଦଯୁକ୍ତ ଓ ଦୀର୍ଘସୂତ୍ରୀ କର୍ମୀ ।

ତାମସକର୍ମ—ବି. (କ.ଧା) ଭାବୀ ଶୁଭାଶୁଭ ଫଳ ଲାଭ କ୍ଷତି ହିଂସା ପୌରୁଷ ଆଦି ବିଚାର ନକରି ମୋହଦ୍ୱାରା ଆରମ୍ଭ କରାଯିବା କର୍ମ ।

ତାମସକୀଲକ—ପୁଂ. ବି. ସୂର୍ଯ୍ୟ ଓ ଚନ୍ଦ୍ର-ମଣ୍ଡଳର ଦେହରେ ବେଳେବେଳେ ଦେଖାଯିବା କଳାଦାଗମାନ ।

ତାମସଗୁଣ—ବି. ତମୋଗୁଣ ।

ତାମସଜ୍ଞାନ—ବି. (କ.ଧା) ପ୍ରତିମାରେ ଈଶ୍ୱର ବିଦ୍ୟମାନ ଅଛନ୍ତି ଏହିପରି କାରଣରହିତ ଅଯୌକ୍ତିକ ତୁଚ୍ଛଜ୍ଞାନ ।

ତାମସତପଃ—ବି. (କ.ଧା)ପରର ଅନିଷ୍ଟ ସାଧନପାଇଁ ଆପଣାକୁ କଷ୍ଟଦେଇ ବିବେକ ବିରୁଦ୍ଧ ଭାବରେ କରାଯିବା ତପସ୍ୟା ।

ତାମସତ୍ୟାଗ—ବି. (କ.ଧା)ମୋହବଶତଃ ଯଜ୍ଞ, ଦାନ, ଓ ତପସ୍ୟାଦି କର୍ତ୍ତବ୍ୟ କର୍ମମାନଙ୍କ ତ୍ୟାଗ ।

ତାମସଦାନ—ବି. (କ.ଧା) ଦେଶକାଳ ବିଚାର ନକରି ଅସତ୍କାର ଓ ଅବଜ୍ଞା ସହକାରେ ଅପାତ୍ରରେ କରାଯିବା ଦାନ ।

ତାମସଧ୍ୟାନ—କ୍ଲୀ. ବି. ( ତନ୍ତ୍ରେ )ବଟୁକ ଭୈରବଙ୍କର ଧ୍ୟେୟ ରୂପ ବିଶେଷ ।

ତାମସପୁରାଣ—କ୍ଲୀ. ବି. (କ.ଧା) ମତ୍ସ୍ୟ, କୂର୍ମ, ଲିଙ୍ଗ, ଶୈବ, ସ୍କନ୍ଦ ଓ ଆଗ୍ନେୟ ପୁରାଣ ।

ତାମସପ୍ରକୃତ—ସ୍ତ୍ରୀ. ବି. (କ.ଧା) ହୀନ-ସ୍ୱଭାବ, ଜଡ଼ତା,ଅତିଅଳସତା, ତାମସୀ

ପ୍ରକୃତି, (ବି°. ବ.ଗ୍ରା)ତମୋଗୁଣାନ୍ୱିତ ସ୍ୱଭାବବିଶିଷ୍ଟ,ଜଡ଼, ଅଳସ, ଖଳ ।

ତାମସମୁନି—ବି. ତମୋଗୁଣର ବଶବର୍ତ୍ତୀ ମୁନିଗଣ ।

ତାମସଯଜ୍ଞ—ବି. ବିଧିହୀନ ଅନ୍ନଦାନ ରହିତ ବସ୍ତୁହୀନ ଦକ୍ଷିଣାଶୂନ୍ୟ ଏବଂ ଶ୍ରଦ୍ଧାବିରହିତ ଯଜ୍ଞ ।

ତାମସଶାସ୍ତ୍ର—କ୍ଲୀ. ବି. (କ.ଧା) ଅସୁର ମୋହନାର୍ଥ ଶିବକୃତ ପାଶୁପତାଦି କଣାଦକୃତ ନଗ୍ନମାଳପଟାଦି ଏବଂ ବୌଦ୍ଧଶାସ୍ତ୍ର ଓ ଜୈମିନିକୃତ ନିରୀଶ୍ୱର ସାଂଖ୍ୟ ଶାସ୍ତ୍ର ।

ତାମସସନ୍ନ୍ୟାସୀ—ବି. ଯେ ଗାର୍ହସ୍ଥ୍ୟସୁଖାସ୍ୱାଦନରେ ନିରପେକ୍ଷ ହୋଇ ମୋକ୍ଷ କାମନାର ଅଭିମାନ ଅହଙ୍କାରେ ବନରେ ବିଚରଣ କରି ତପସ୍ୟା କରେ ।

ତାମସସୁଖ—ବି. (କ.ଧା) ଯେଉଁ ସୁଖ ପ୍ରଥମରେ ଓ ଶେଷରେ ଆତ୍ମାର ମୋହକାରୀ ଏବଂ ନିଦ୍ରା ଆଳସ୍ୟ ଓ ପ୍ରମାଦରୁ ଜାତ ହୁଏ ।

ତାମସସ୍ମୃତି—ବି. (କ.ଧା) ଗୌତମ ଓ ବାର୍ହସ୍ପତ୍ୟ ସାମୁଦ୍ର ଯାମ ସାଂଖ୍ୟ ଓ ଔଶନସ ସ୍ମୃତି ।

ତାମସା—ଯା. ବି. କ୍ରୀଡ଼ା, ଖେଳ, ବାଜିଗରି, କୁହୁକ, ଲୋକ. ମନରଞ୍ଜନ ଦୃଶ୍ୟ, ପ୍ରଦର୍ଶନୀ,ଥଟା, ରହସ୍ୟ, ପରିହାସ, ସୁଆଙ୍ଗ, ଯାତ୍ରା, ନାଟ ଆଦିରେ ବାହାରିବା ଭିନ୍ନ ଭିନ୍ନ ଲୋକ ଓ ଜୀବଙ୍କ ପ୍ରତିରୂପ, ନାଟ ଯାତ୍ରା ଆଦି, ମେଳା, ଆମୋଦ ପ୍ରମୋଦ, ମଜା, କୌତୁକ ।

ତାମସିକ—ବି°. (ତମସ+ଇକ)ତମୋଗୁଣାନ୍ୱିତ,ତମୋଗୁଣରୁ ଜାତ,ଗର୍ହିତ, ନିନ୍ଦିତ, ତମୋଗୁଣଦ୍ୱାରା ପ୍ରଣୋଦିତ, ଅନ୍ଧକାରଚ୍ଛନ୍ନ, ( ଗ୍ରା. ବି° ) ଯାହା ଲୋକଙ୍କୁ ଦେଖାଇବାକୁ ଅବଲମ୍ବିତ ହୁଏ ଓ ଯାହା ଆନ୍ତରିକ ନୁହେ ।

ତାମସୀ—ସ୍ତ୍ରୀ. ବି. ( ତାମସ + ଈ )ଅନ୍ଧକାରବହୁଳ ରାତ୍ରି, ମହାକାଳୀ, ଦୁର୍ଗା, ମସୀ, କାଳୀ, ସ୍ୟାହି, ମାଂସୀ ବିଦ୍ୟା ବିଶେଷ, ଜଟାମାଂସୀ, ହିମାଳୟର ଶାକବିଶେଷ, (ଗ୍ରା.ସ୍ତ୍ରୀ.ବି)ତମସା ନଦୀ, (ବି°) ଘୋର ଅନ୍ଧକାରମୟୀ, ତମୋଗୁଣାନ୍ୱିତା ।

ତାମସୀଧୃତି—ବି. ଅବିବେଚକ ପୁରୁଷ ଯେଉଁ ଧୃତି ପ୍ରଭାବରୁ ସ୍ୱପ୍ନ, ଭୟ, ଶୋକ, ବିଷାଦ ଓ ଗର୍ବ ତ୍ୟାଗ କରି ନ ପାରେ ।

ତାମସୀବୁଦ୍ଧି—ବି. ମନୁଷ୍ୟର ଯେଉଁ ବୁଦ୍ଧି ଅଜ୍ଞାନାନ୍ଧକାରରେ ଆଚ୍ଛନ୍ନ ହୋଇ ଅଧର୍ମକୁ ଧର୍ମ ଓ ସମସ୍ତ ବିଷୟକୁ ବିପରୀତ ବୁଝେ ।

ତାମସୀଶ୍ରଦ୍ଧା—ବି. ଯେଉଁ ସ୍ୱଭାବଜ ଶ୍ରଦ୍ଧା ଯୋଗୁଁ ମନୁଷ୍ୟମାନେ ଭୂତପ୍ରେତ ସମୂହର ପୂଜା କରନ୍ତି ।

ତାମାଳେୟ—ବି°. ତମାଳବୃକ୍ଷର ଅଦୂର ଦେଶାଦି, ତମାଳନିକଟବର୍ତ୍ତୀ ।

ତାମିଲ—ଗ୍ରା. ବି. ଦାକ୍ଷିଣାତ୍ୟର ଦକ୍ଷିଣ ପ୍ରାନ୍ତ ବାସୀ ହିନ୍ଦୁଜାତି ଓ ଭାଷାବିଶେଷ, ଦ୍ରାବିଡ଼ ଭାଷାର ଗୋଟିଏ ପ୍ରଧାନ ଶାଖା, (ଯା.ବି) ଆଜ୍ଞାର ପାଳନ, (ଯା.ବି°) ପାଳିତ ଆଜ୍ଞା ।

ତାମିସ୍ର—ପୁଂ. ବି. (ତମିସ୍ରା+ଅ)ନରକବିଶେଷ, ନିଶାଚର, ଦ୍ୱେଷ, ଅବିଦ୍ୟାବିଶେଷ, ଇନ୍ଦ୍ରିୟ ବିଳାସ ଭୋଗର ବ୍ୟାଘାତଜନିତ କ୍ରୋଧ,କ୍ରୋଧ,ସାଂଖ୍ୟଦର୍ଶନୋକ୍ତ ଅଷ୍ଟାଦଶପ୍ରକାର ଅଜ୍ଞାନବିଶେଷ । [ କାରକ ,

ତାମ୍ରୁ—ବି°.(ତମ+ଉ) ସ୍ତୋତା, ସ୍ତୁତି-

ତାମ୍ପଡ଼ା—ଗ୍ରା. ବି. ବଡ଼ଗୋଡ଼ କୁଖୁଆ, (ବି°) କୃଶ ଓ ଲମ୍ବା ଶରୀରବିଶିଷ୍ଟ, ଡକଡକିଆ ।

ତାମ୍ବିଳି—ସ୍ତ୍ରୀ. ବି. ପାନ, ତାମ୍ବୂଳ ।

ତାମ୍ବି—ଗ୍ରା. ବି. ଟିଣ, ତରଳ ପଦାର୍ଥ ଓ ଶସ୍ୟାଦି ମାପିବା ପାଇଁ କାଠ ବା ଟିଣର ବଡ଼ପାତ୍ର ।

ତାମ୍ବୁ—ଯା.ବି.ବସ୍ତ୍ରଗୃହ, ଶିବିର, ରାହୁଟି, କନାଘର, (ଗ୍ରା.ବି) ଚଣାଆଦିର ମଞ୍ଜି ପାକଳ ହୋଇ ନଥିବା କଷିଫଳ ।

ତାମ୍ବୁରା—ଯା.ବି.ଗୋପୀଯନ୍ତ୍ର,ତାନପୁରା ।

ତାମ୍ବୂଳ—କ୍ଲୀ. ବି. (ତମ୍+ଊଳ) ପାନ, ପର୍ଣ୍ଣ, ପାନଖିଲ ।

ତାମ୍ବୂଳକରଙ୍କ—ପୁଂ. ବି. ତାମ୍ବୂଳପାତ୍ର, ପାନବଟା, ପାନଡ଼ବା ।

ତାମ୍ବୂଳକରଙ୍କବାହିନୀ—ସ୍ତ୍ରୀ.ବି.(ତାମ୍ବୂଳକରଙ୍କ+ବହ+ଇନ୍+ଈ) ପାନବଟା ବହନକାରିଣୀ ଦାସୀ, ଅନ୍ତଃପୁର ପରିଚାରିକା, ଚେଟୀ, ସଖୀ ।

ତାମ୍ବୂଳଦ—ବି°. ତାମ୍ବୂଳଦାତା, ଯେ ପାନ ଦିଏ,(ବି) ରାଜାମାନଙ୍କର ତାମ୍ବୂଳ ପ୍ରଦାନରେ ନିଯୁକ୍ତ ଭୃତ୍ୟ ।

ତାମ୍ବୂଳଦାୟକ—ପୁଂ. ବି° ଓ ବି°. ତାମ୍ବୂଳଦ ଦେଖ ।

ତାମ୍ବୂଳଧର—ପୁଂ. ବି. ଯେଉଁ ରାଜାର ପାନ ଧରି ଛିଡ଼ା ହୋଇଥାଏ ।

ତାମ୍ବୂଳପତ୍ର—ପୁଂ. ବି. (ବ.ଗ୍ରା)ପିଣ୍ଡାଳୁ, ଖମ୍ବଆଳୁ,ଦେଶୀଆଳୁ,(ସ୍ତ୍ରୀ.ବି -୬ତତ୍) ପାନ, ପାନଲତାର ପତ୍ର ।

ତାମ୍ବୂଳପାତ୍ର—କ୍ଲୀ.ବି.(୬ତତ୍)ତାମ୍ବୂଳକରଙ୍କ, ପାନବଟା, ପାନବଟୁଆ, ପାନଡ଼ବା ।

ତାମ୍ବୂଳରସ—ବି. (୬ତତ୍) ପାନରସ, ପାନପିକ ।

ତାମ୍ବୂଳରାଗ—ପୁଂ. ବି. (୬ତତ୍) ପାନପିକ, (ବ.ଗ୍ରା) ମସୂରଡ଼ାଲି ।

ତାମ୍ବୂଳବଲ୍ଲିକା—ସ୍ତ୍ରୀ. ବି. (୬ତତ୍)ପାନଗଛ, ତାମ୍ବୂଳ ଲତା ।

ତାମ୍ବୂଳବଲ୍ଲୀ—ସ୍ତ୍ରୀ.ବି.(୬ତତ୍)ପାନଗଛ, ପାନ ଲତା ।

ତାମ୍ବୂଳବାହକ—ପୁଂ. ବି. ରାଜଭୃତ୍ୟବିଶେଷ, ତାମ୍ବୂଳଦ ଦେଖ ।

ତାମ୍ବୂଳବାଟିକା—ସ୍ତ୍ରୀ.ବି. (୬ତତ୍)ପାନବଡ଼ିଆ, ପାନଖିଲ, ବଡ଼ିଆ ।

ତାମ୍ବୂଳାଧାର—ବି.(୬ତତ୍)ପାନବଟୁଆ, ପାନଡ଼ବା, ପାନବଟା ।

ତାମ୍ବୂଳାଧିକାର—ପୁଂ.ବି. ପାନଯୋଗାଇବା ବ୍ୟକ୍ତି ।

ତାମ୍ବୂଳିକ—ବି.(ତାମ୍ବୂଳ+ଇକ)ପାନରା

ପାନବକେନ୍ତା, ତାମ୍ବୂଳଜାତ ।
ତାମ୍ବୂଲୀ—ସ୍ତ୍ରୀ. ବ. ( ତାମ୍ବୂଲ+ଇନ୍ )
ପାନଗଛ,ପାନଲତା,ତାମ୍ବୂଳିକ ଦେଖ ।
ତାମ୍ର—କ୍ଲୀ. ବ. (ତମ୍+ର୍ମି.ର) ତମ୍ବା-
ଧାତୁ,(ତମ୍ର+ଅ) ଦେହରେ ରକ୍ତବର୍ଣ୍ଣ
ଦାଗଯୁକ୍ତ କ୍ଷୁଦ୍ର ରୋଗବିଶେଷ, (ବି°)
( ତମ୍+କ.ର ) ଅରୁଣବର୍ଣ୍ଣବିଶିଷ୍ଟ.
(ପୁଂ.ବ) ମହିଷାସୁରର ଏକ ବିଖ୍ୟାତ
ସେନାପତି । [ ତମ୍ବା ।
ତାମ୍ରକ—କ୍ଲୀ. ବ. ( ତାମ୍ର+କ ) ତାମ୍ର,
ତାମ୍ରକଣ୍ଟକ—ପୁଂ. ବ. ଝଇଁଆସ ପ୍ରଧାନ
କଣ୍ଟକ ବୃକ୍ଷବିଶେଷ ।
ତାମ୍ରକର୍ଣ୍ଣୀ—ସ୍ତ୍ରୀ.ବ. ଅଞ୍ଜନା ନାମ୍ନୀ ପଶ୍ଚିମ
ଦିଗ ହସ୍ତିନୀ ।
ତାମ୍ରକାର—ପୁଂ.ବ. ଯେ ତମ୍ବାର ଜିନସ
ତିଆରି କରେ, କଂସାର, ବର୍ଣ୍ଣସଙ୍କର
ଜାତିବିଶେଷ ।
ତାମ୍ରକିଲ—ପୁଂ. ବ. ଇନ୍ଦ୍ରଗୋପ କୀଟ,
ସାଧବ ପୋକ, ମଖମଲ କୀଟ ।
ତାମ୍ରକୀଟ—ବି. ସାଧବବୋହୂ, ଇନ୍ଦ୍ର-
ଗୋପ, ପାଟପୋକ ।
ତାମ୍ରକୁଟ—ପୁଂ. ବ. ତାମ୍ରକାର ଦେଖ ।
ତାମ୍ରକୁଣ୍ଡ—କ୍ଲୀ.ବ. ତାମ୍ରମୟ ଜଳାଧାର
ପାତ୍ରଭେଦ ।
ତାମ୍ରକୂଟ—ବି. ତମାଖୁ, ଧୂଆଁପତ୍ର,
ଦୋକତା, ମାଦକଦ୍ରବ୍ୟ ବିଶେଷ ।
ତାମ୍ରକୂଟକ—ବି. ଧୂଆଁପତ୍ର, ତମାଖୁ,
ଦୋକତା ।
ତାମ୍ରକୃମି—ପୁଂ. ବ. ଇନ୍ଦ୍ରଗୋପ, ପାଟ-
ପୋକ, ସାଧବବୋହୂ ପୋକ ।
ତାମ୍ରଗର୍ଭ—କ୍ଲୀ. ବ. ( ବ.ବ୍ରୀ ) ତୁତିଆ,
ମୟୂରଗ୍ରୀବା, ଏହା ତାମ୍ରରୁ ଉତ୍ପନ୍ନ ।
ତାମ୍ରଚକ୍ଷୁ—ପୁଂ. ବି°. (ବ.ବ୍ରୀ) ଯାହାର
ଚକ୍ଷୁ ରକ୍ତବର୍ଣ୍ଣ ।
ତାମ୍ରଚୂଡ଼—ପୁଂ.ସ୍ତ୍ରୀ. ବ. (ବ.ବ୍ରୀ) କୁକ୍କୁଟ,
କୁକୁଡ଼ା, କୁକ୍କୁରଦ୍ରୁମ, କୁକୁର ଶୁଙ୍ଘଆ
ଗଛ, (ସ୍ତ୍ରୀ) କୁମାରାନୁଚର ମାତୃଭେଦ,
(ବି°) ରକ୍ତଶିଖାଯୁକ୍ତ । [ ଭେଦ ।
ତାମ୍ରଚୂଡ଼ଭୈରବ—ପୁଂ. ବ. ଭୈରବ-

ତାମ୍ରକାକ୍ଷ—ପୁଂ. ବ. ସତ୍ୟଭାମାଙ୍କ ଗର୍ଭ-
ଜାତ ଶ୍ରୀକୃଷ୍ଣଙ୍କ ପୁତ୍ରବିଶେଷ ।
ତାମ୍ରତନୁ—ବି°. ( ବ.ବ୍ରୀ ) ତାମ୍ରପ୍ରାୟ
ଶରୀରବର୍ଣ୍ଣ, ଯାହାର ଦେହ ତମ୍ବା-
କାଠିପରି ଉଜ୍ଜ୍ୱଳ ।
ତାମ୍ରତୁଣ୍ଡ—ପୁଂ.ବ.ପାଟମାକଡ଼, ବାନର
ବିଶେଷ ।
ତାମ୍ରତ୍ରପୁଜ—ପୁଂ.ବ. (ତାମ୍ର+ତ୍ରପୁ+
ଜନ+ଅ) କାଂସ୍ୟ, କଂସା, ପିତ୍ତଳ ।
ତାମ୍ରତ୍ୱ—କ୍ଲୀ.ବ.ତାମ୍ରର ଭାବ,ରକ୍ତବର୍ଣ୍ଣ ।
ତାମ୍ରଦୁଗ୍ଧା—ସ୍ତ୍ରୀ.ବ.ଗୋରକ୍ଷ ଦୁଗ୍ଧା ।
ତାମ୍ରଦ୍ରୁ—ପୁଂ. ବ. ରକ୍ତଚନ୍ଦନ ।
ତାମ୍ରଦ୍ୱୀପ—ପୁଂ.ବ. ସିଂହଳଦ୍ୱୀପ, ଲଙ୍କା,
ତାମ୍ରପର୍ଣ୍ଣୀ ।
ତାମ୍ରଧାତୁ—ବ. ତମ୍ବା, ନାଲ ଚେଙ୍ଗୁଡ଼ା ।
ତାମ୍ରଧୂମ୍ର—ବି°.କୃଷ୍ଣ ଓ ରକ୍ତବର୍ଣ୍ଣ, ତମ୍ବା-
ଳିଆ, ତମ୍ବାଟିଆ ।
ତାମ୍ରଧ୍ୱଜ—ପୁଂ. ବ. ରତ୍ନନଗରର ରାଜା
ମୟୂରଧ୍ୱଜଙ୍କ ପୁତ୍ର ।
ତାମ୍ରପକ୍ଷା—ସ୍ତ୍ରୀ. ବ. ସତ୍ୟଭାମାଙ୍କ ଗର୍ଭ-
ଜାତା ଶ୍ରୀକୃଷ୍ଣଙ୍କର କନ୍ୟାବିଶେଷ ।
ତାମ୍ରପକ୍ଷୀ—ପୁଂ. ବ. ଶ୍ରୀକୃଷ୍ଣଙ୍କର ଏକ-
ପୁତ୍ର ।
ତାମ୍ରପଟ୍ଟ—କ୍ଲୀ.ବ. (କ.ଧା) ତାମ୍ରଫଳକ,
ତମ୍ବାପଟା, ତାମ୍ରଶାସନ, ତାମ୍ରମୟ
ଲେଖନପତ୍ରବିଶେଷ, ତମ୍ବାପାତିଆ ।
ତାମ୍ରପତ୍ର—ପୁଂ. ବ. (ବ.ବ୍ରୀ) ଜୀବଶାକ,
ରକ୍ତବର୍ଣ୍ଣ ପତ୍ରଯୁକ୍ତ ବୃକ୍ଷମାତ୍ର, ନୂଆ
କଅଁଳିଆ ପତ୍ର, ( କ.ଧା. ) ତମ୍ବାପଟା,
ତାମ୍ରମୟ ଲେଖନପତ୍ର ।
ତାମ୍ରପତ୍ରକ—ପୁଂ.ବ. ତାମ୍ରପତ୍ର ଦେଖ ।
ତାମ୍ରପର୍ଣ୍ଣ—ବ. ସିଂହଳଦ୍ୱୀପର ନାମାନ୍ତର ।
ତାମ୍ରପର୍ଣ୍ଣୀ—ବ.(ବ.ବ୍ରୀ) ବଡ଼ ପୋଖରୀ,
ସରୋବର, ପ୍ରସାରଣୀ ଲତା, ମଞ୍ଜିଷ୍ଠା,
କର୍ଣ୍ଣାଟ ବା ମାଳବଦେଶସ୍ଥ ନଦୀବିଶେଷ.
ଲଙ୍କାଦ୍ୱୀପ, ଶିଳାବିଶେଷ ।
ତାମ୍ରପର୍ଣ୍ଣୀୟ—ପୁଂ.ବ. ସିଂହଳଦ୍ୱୀପବାସୀ
ବୌଦ୍ଧ ।
ତାମ୍ରପଲ୍ଲବ—ପୁଂ. ବ. (ବ.ବ୍ରୀ) ଅଶୋକ

ବୃକ୍ଷ,(କ.ଧା)ରକ୍ତପଲ୍ଲବ, (ବି°. ବ.ବ୍ରୀ)
ରକ୍ତବର୍ଣ୍ଣ ପଲ୍ଲବବିଶିଷ୍ଟ । [ ଶ୍ୱେତ ।
ତାମ୍ରପାକ୍ଷୀ—ପୁଂ.ବ.ଗର୍ଦ୍ଦଭାଣ୍ଡବୃକ୍ଷ, ଗସ୍ୱା-
ତାମ୍ରପାତ୍ର—କ୍ଲୀ. ବ. (କ.ଧା) ତାମ୍ରମୟ
ପାତ୍ର, ତମ୍ବାବାସନ,ତାମ୍ରଶାସନ, ତମ୍ବା-
ପଟା ।
ତାମ୍ରପାଦୀ—ସ୍ତ୍ରୀ.ବ. (ବ.ବ୍ରୀ) ହଂସପାଦୀ-
ଲତା, ଲାଲରଙ୍ଗର ଲଜ୍ଜାଳୁ ଲତା ।
ତାମ୍ରପୁଷ୍ପ—ପୁଂ.ବ. (ବ.ବ୍ରୀ) ରକ୍ତକାଞ୍ଚନ
ପୁଷ୍ପବୃକ୍ଷ, ଭୂମିଚମ୍ପକ, (କ୍ଲୀ) ରକ୍ତପୁଷ୍ପ,
(ବି°) ରକ୍ତବର୍ଣ୍ଣ ପୁଷ୍ପବିଶିଷ୍ଟ ।
ତାମ୍ରପୁଷ୍ପିକା—ସ୍ତ୍ରୀ.ବି°.(ତାମ୍ର+ପୁଷ୍ପ+
କ.ଆ)ରକ୍ତନିବୃତ୍ତ, ଲାଲଡହୁଡ଼ ଲତା ।
ତାମ୍ରପୁଷ୍ପୀ—ସ୍ତ୍ରୀ. ବ. ( ତାମ୍ରପୁଷ୍ପ+ଈ )
ଧାତକୀ ପୁଷ୍ପ,ଧାଇଫୁଲ,ପାଟଲୀ ବୃକ୍ଷ ।
ତାମ୍ରପ୍ରୟୋଗ—ପୁଂ. ବ. ଔଷଧବିଶେଷ
ତାମ୍ରଫଳ—ପୁଂ. ବ. ଅଙ୍କୋଠବୃକ୍ଷ,
ଆଖ୍ରୋଟବୃକ୍ଷ,(କ୍ଲୀ.ବ) ରକ୍ତବର୍ଣ୍ଣଫଳ,
(ବି°) ରକ୍ତବର୍ଣ୍ଣ ଫଳବିଶିଷ୍ଟ ।
ତାମ୍ରଫଳକ—କ୍ଲୀ. ବ. (ଷ.ତତ୍) ତାମ୍ର-
ନିର୍ମିତ ପଟ୍ଟ, ତମ୍ବାର ଗୁଦର, ତମ୍ବା-
ପଟା ।
ତାମ୍ରମୁଖ—ବି°. (ବ.ବ୍ରୀ) ଅରୁଣବଦନ,
ଯାହାର ମୁଖ ତମ୍ବାପରି ରକ୍ତାଭ, (ବ)
ଇଉରୋପୀୟ ବ୍ୟକ୍ତି, ବାନର, ପାଟ-
ମାଙ୍କଡ଼ ।
ତାମ୍ରମୂଳା—ସ୍ତ୍ରୀ. ବ. ( ତାମ୍ରମୂଳ+ଆ )
ଦୁରାଳଭା, ଲଜ୍ଜାଳୁ ଲତା,କଚ୍ଛୁରା ବୃକ୍ଷ,
ମଞ୍ଜିଷ୍ଠା,(କ୍ଲୀ.ବ) ରକ୍ତମୂଳ, (ବି°)ରକ୍ତ-
ମୂଳକ ବୃକ୍ଷମାତ୍ର ।
ତାମ୍ରମୃଗ—ପୁଂ.ବ.ଲୋହିତବର୍ଣ୍ଣ ହରିଣ ।
ତାମ୍ରଯୋଗ—ପୁଂ. ବ. ଚନ୍ଦ୍ରୋଦ୍ରେକ-
ଔଷଧବିଶେଷ ।
ତାମ୍ରରସାୟନ—ସ୍ତ୍ରୀ ବ.ଗୋରକ୍ଷଦୁଗ୍ଧା ।
ତାମ୍ରଲିପ୍ତ—ବ. ତମଲୁକ ଦେଖ ।
ତାମ୍ରଲିପ୍ତକ—ପୁଂ. ବ. ତମଲୁକ ଦେଖ ।
ତାମ୍ରଲିପ୍ତିକା—ସ୍ତ୍ରୀ.ବ. ତାମଲୁକ ଦେଖ ।
ତାମ୍ରଲିପ୍ତୀ—ସ୍ତ୍ରୀ. ବ. ନଗରୀ ବିଶେଷ ।
ତାମ୍ରବର୍ଣ୍ଣ—ପୁଂ.ବ.ପଲ୍ଲିବାହ ତୃଣ, ମନୁଷ୍ୟ

ଦେହରେ ଚମଡ଼ା ତଳେ ଥିବା ଚତୁର୍ଥ ଚର୍ମର ସ୍ତର, ସିଂହଳଦ୍ୱୀପ, ରକ୍ତବର୍ଣ୍ଣ, (ବ୍ୟଂ) ତମ୍ବାଳିଆ ବର୍ଣ୍ଣର ।

**ତାମ୍ରବର୍ଣ୍ଣୀ**—ସ୍ତ୍ରୀ. ବ. ଔଡ୍ରପୁଷ୍ପ ବୃକ୍ଷ, ଜବାଫୁଲ,ରଙ୍ଗିଫୁଲର ଗଛ ।

**ତାମ୍ରବଲ୍ଲୀ**—ସ୍ତ୍ରୀ. ବ. ମଞ୍ଜିଷ୍ଠା, ଚନ୍ଦକୂଟ ଦେଶୀୟ ଲତା ବିଶେଷ ।

**ତାମ୍ରବୀଜ**—ପୁଂ. ବ. ( ବ.ଗ୍ରୀ ) କୁଲତ୍ଥ, (କ୍ଲୀ) ରକ୍ତବର୍ଣ୍ଣବୀଜ, (ବ୍ୟଂ) ରକ୍ତବର୍ଣ୍ଣ ବୀଜବିଶିଷ୍ଟ ବୃକ୍ଷ ।

**ତାମ୍ରବୃକ୍ଷ**—ପୁଂ. ବ. ରକ୍ତଚନ୍ଦନ ବୃକ୍ଷ, ରକ୍ତବର୍ଣ୍ଣ ବୃକ୍ଷ ।

**ତାମ୍ରବୃନ୍ତ**—ପୁଂ. ବ. ରକ୍ତବୃନ୍ତକ ବୃକ୍ଷମାତ୍ର, ରକ୍ତବୃନ୍ତ ।

**ତାମ୍ରଶାଟୀୟ**—ପୁଂ. ବ. ତାମ୍ରବର୍ଣ୍ଣ ପରିଚ୍ଛଦଧାରୀ ବୌଦ୍ଧସମ୍ପ୍ରଦାୟ ବିଶେଷ ।

**ତାମ୍ରଶାସନ**—କ୍ଲୀ. ବ. ତାମ୍ରପଟ୍ଟରେ ଲିଖିତ ରାଜଶାସନ ସୂଚକ ଲିପି, ତମ୍ବା ପଟା ।

**ତାମ୍ରଶିଖୀ**—ପୁଂ. ବ୍ୟଂ. (ତାମ୍ର+ଶିଖା+ଇନ୍) ତାମ୍ରବର୍ଣ୍ଣ ଶିଖାଯୁକ୍ତ, (ପୁଂ. ସ୍ତ୍ରୀ. ବ) କୁକ୍କୁଟ, କୁକୁଡ଼ା ।

**ତାମ୍ରସାର**—କ୍ଲୀ.ବ.ରକ୍ତଚନ୍ଦନ, (ପୁଂ.ବ) ରକ୍ତସାର (ବ୍ୟଂ) ରକ୍ତସାରକବୃକ୍ଷ ମାତ୍ର

**ତାମ୍ରସାରକ**—କ୍ଲୀ. ବ. ରକ୍ତଚନ୍ଦନ, (ପୁଂ. ବ) ଏକପ୍ରକାର ଖଦିର ।

**ତାମ୍ରା**—ସ୍ତ୍ରୀ. ବ.(ତାମ୍ର+ଆ) ସୈଂହଳୀ, ତାମ୍ରବଲ୍ଲୀ ଲତା, ଗୁଞ୍ଜା,କାଇଞ୍ଚ, ଦକ୍ଷପ୍ରଜାପତିଙ୍କ କନ୍ୟା ।

**ତାମ୍ରାକୁ**—ପୁଂ. ବ. ଉପଦ୍ୱୀପ ବିଶେଷ ।

**ତାମ୍ରାକ୍ଷ**—ପୁଂ. ବ. ବ. (ବ.ଗ୍ରୀ)କୋକିଳ (କ୍ଲୀ. ବ—କ.ଧା) ରକ୍ତବର୍ଣ୍ଣଚକ୍ଷୁ, ବି. ରକ୍ତବର୍ଣ୍ଣ ଲୋଚନବିଶିଷ୍ଟ ।

**ତାମ୍ରାଖ୍ୟ**—ପୁଂ. ବ. ଉପଦ୍ୱୀପ ବିଶେଷ ।

**ତାମ୍ରାଭ**—କ୍ଲୀ. ବ. (ବ.ଗ୍ରୀ)ରକ୍ତଚନ୍ଦନ, (ବ୍ୟଂ. ବ.ଗ୍ରୀ) ରକ୍ତବର୍ଣ୍ଣ ଆଭାଯୁକ୍ତ ।

**ତାମ୍ରାୟଣ**—ପୁଂ. ବ. ଯାଜ୍ଞବଲ୍କ୍ୟଙ୍କର ଜଣେ ଶିଷ୍ୟ ।

**ତାମ୍ରାୟନି**—ପୁଂ. ବ. ଶୁକ୍ଲଯଜୁର୍ବେଦୀ ଜଣେ ଋଷି,ଯାଜ୍ଞବଲ୍କ୍ୟଙ୍କ ଜଣେ ଶିଷ୍ୟ ।

**ତାମ୍ରାରୁଣ**—କ୍ଲୀ.ବ.ତୀର୍ଥଭେଦ, ଗୋଟିଏ ପ୍ରଧାନ ପୁଣ୍ୟସ୍ଥାନ ।

**ତାମ୍ରାର୍ଦ୍ଧ**—କ୍ଲୀ. ବ. କାଂସ୍ୟ, କଂସା ।

**ତାମ୍ରାବତୀ**—ସ୍ତ୍ରୀ.ବ.ନଦୀଭେଦ, ଏହି ନଦୀ ତାମ୍ରର ଆକାର ।

**ତାମ୍ରାଶ୍ମ**—କ୍ଲୀ. ବ. ପଦ୍ମରାଗ ମଣି ।

**ତାମ୍ରିକ**—ପୁଂ. ବ. ( ତାମ୍ର+ଇକ ) ତମ୍ବାରା, କଂସାରି, (ବ୍ୟଂ) ତାମ୍ରମିଶ୍ରିତ, ତାମ୍ରନିର୍ମିତ, ତାମ୍ରବର୍ଣ୍ଣବିଶିଷ୍ଟ ।

**ତାମ୍ରିକା**—ସ୍ତ୍ରୀ. ବ. (ତାମ୍ର+କ+ଆ) ସୂକ୍ଷ୍ମଛିଦ୍ରମୟ ତାମ୍ରପାତ୍ର, ଯାହା ଜଳରେ ଭସାଇଲେ ଛିଦ୍ର ଦ୍ୱାରା ଜଳ କ୍ରମଶଃ ପାତ୍ରମଧ୍ୟସ୍ଥକୁ ଉଠି ସମୟ ନିରୂପଣ କରେ, ଭାରତର ପ୍ରାଚୀନ ଘଟିକାଯନ୍ତ୍ର, ପ୍ରାଚୀନ ଭାରତର ତାମ୍ରମୁଦ୍ରା; ଯାହା କି ଏକପଣ କଉଡ଼ି ସଙ୍ଗେ ସମାନ ଥିଲା,ଗୁଞ୍ଜା, କାଇଁଚ, ପଟହ, ଢୋଲ, ଢକ୍କା ।

**ତାମ୍ରିମା**—ପୁଂ. ବ. (ତାମ୍ର+ଇମନ୍) ତମ୍ବାର ବର୍ଣ୍ଣ, ରକ୍ତବର୍ଣ୍ଣ ।

**ତାମ୍ରୀ**—ସ୍ତ୍ରୀ. ବ. (ତାମ୍ର+ଈ) ତାମ୍ରିକା ଦେଖ ।

**ତାମ୍ରେଶ୍ୱର**—ବ. ତମ୍ବାଭସ୍ମ ।

**ତାମ୍ରୋପଜୀବୀ**—ପୁଂ.ବ୍ୟଂ.ଯେ ତାମ୍ର ଦ୍ୱାରା ଜୀବିକା ନିର୍ବାହକରେ, କଂସାରି ।

**ତାମ୍ରୋଷ୍ଠ**—ବ. (କ.ଧା) ତମ୍ବାପରି ଓଷ୍ଠ, ରକ୍ତଭ ଓଷ୍ଠ । [ ଜବ ।

**ତାମ୍ର୍ୟ**—କ୍ଲୀ. ବ. (ତାମ୍ର+ଷ୍ୟ.ଯ)ତାମ୍ରର

**ତାୟ**—ଧାତୁ. ପାଳନ କରିବା, ବିସ୍ତାର କରିବା, ରକ୍ଷାକରିବା ।

**ତାୟନ**—କ୍ଲୀ: ବ. (ତାୟ+ଭା.ଅନ) ବୃଦ୍ଧି, ଉତ୍ତମଗତି ।

**ତାୟିକ**—ପୁଂ. ବ.(ତାୟ+ଇକ)ଦେଶବିଶେଷ ।

**ତାୟୁ**—ପୁଂ.ବ.(ତାୟ+ଉ)ଚୋର ।

**ତାର**—ବ୍ୟଂ.(ତୃ+ଅ)ଅତିଉଚ୍ଚ (ଶବ୍ଦ ବା ସ୍ୱର), ପରିଷ୍କୃତ, ଶୀଘ୍ର, ସ୍ଥୂଳ, ଉତ୍କୃଷ୍ଟ, ବିସ୍ତୃତ, (ପୁଂ. ବ—ଭା.ଅ) ଉତ୍ତରଣ, ଉଦ୍ଧାର, (ତୃ+ଣ.ଅ) ହାରମଧ୍ୟମଣି, ରଜ୍ଜୁ, ଧାତୁମୟ ତନ୍ତୁ ବା ସୂତ୍ର,(କ,ଅ) ରୌପ୍ୟ, ପ୍ରଣବ ଓ ଅନ୍ୟାନ୍ୟ ଏକାକ୍ଷର ବୀଜମନ୍ତ୍ର, ଉଚ୍ଚସ୍ୱର, ମୁକ୍ତାର ବିଶୁଦ୍ଧି, ଲାବଣ୍ୟ, ସୌନ୍ଦର୍ଯ୍ୟ ଓ ଉଜ୍ଜ୍ୱଳତା, ମୁକ୍ତା,ରାମାୟଣବର୍ଣ୍ଣିତ ବାନର ବିଶେଷ, ଚକ୍ଷୁର ତାରା, ଏକପ୍ରକାର ଗୌଣସିଦ୍ଧି, କେଁ କେଁସ୍ୱ ଁସ୍ୱର, ଶିବ, ମହାଦେବ, ବିଷ୍ଣୁ,୧୮ଅକ୍ଷର ବିଶିଷ୍ଟ ଏକ ବର୍ଣ୍ଣବୃତ୍ତ, ଆସ୍ପଦ, ତାରକାସୁରର ପିତା,ଅଖଣ୍ଡ-ନାମ, ଜ୍ୟୋତିଷୋକ୍ତ ଯୋଗ ବିଶେଷ, (ଗ୍ରା.ବ) ବିଶାଇରାଜ୍ୟ କଥିତ ସନ୍ଦ୍ରାଲ-ଭାଷା, ତାଡ଼ିତବାର୍ତ୍ତା, ଟେଲିଗ୍ରାମ, ଟେଲିଫୋନ, (ଗ୍ରା.ବ୍ୟଂ) ନୋଧାନ୍ୱିତ, (ଗ୍ରା. ସର୍ବ.) ତାହାର ।

**ତାରକ**—ପୁଂ.ବ.(ତୃ+ଣିଚ୍+କ.ଅକ) କର୍ଣ୍ଣଧାର, ଜ୍ୟୋତିଷୋକ୍ତ ଯୋଗବିଶେଷ, ଭେଳା, ତାରକା, ନକ୍ଷତ୍ର, ଚକ୍ଷୁରତାରା, ତାରକାସୁର, ଛନ୍ଦୋବିଶେଷ,ବାନରବିଶେଷ, ମୁକ୍ତା, ଆଖି, ରାମତାରକ ନାମକ ଷଡ଼କ୍ଷର ମନ୍ତ୍ର, ଭେଳଅ, ପରତାରିତା ବ୍ୟକ୍ତି, ( ବ୍ୟଂ ) (ତାର୍+କ.ଅକ)ଉଦ୍ଧାରକାରୀ,ରକ୍ଷକ, ଯେ ପାରକରେ, (ସ୍ତ୍ରୀ) ତାରକା ।

**ତାରକଜିତ୍**—ପୁଂ. ବ. (ତାରକ+ଜି କ୍ୱିପ୍) କାର୍ତ୍ତିକେୟ ।

**ତାରକତୀର୍ଥ**—କ୍ଲୀ.ବ.ତୀର୍ଥଭେଦ,ଗୟାତୀର୍ଥ

**ତାରକତାଣ୍ଡ**—କ୍ଲୀ. ବ. ରାଗବିଶେଷ ।

**ତାରକବ୍ରହ୍ମ**—କ୍ଲୀ. ବ. (କ.ଧା)ଷଡ଼କ୍ଷର ମନ୍ତ୍ର ବିଶେଷ, ପାପମୁକ୍ତିକାରୀ ରାମମନ୍ତ୍ର ବିଶେଷ, ଶିବତାରକ ମନ୍ତ୍ର ।

**ତାରକସ୍**—ଗ୍ରା. ବ. ଯେଉଁ ବିଶିଷ୍ଟ ଯନ୍ତ୍ର ସାହାଯ୍ୟରେ ଧାତୁର କାଠିରୁ ତାର ତିଆରିକରେ, ତାରକସି ଅଳଙ୍କାର ।

**ତାରକସି**—ଗ୍ରା. ବ. ଯେଉଁ କାରିଗର ଧାତୁରୁ ତାର ତିଆରି କରେ,ତାରକସି କାମ ।

**ତାରକହା**—ପୁଂ. ବ. (ତାରକ+ହନ୍ କ୍ୱିପ୍) କାର୍ତ୍ତିକେୟ ।

**ତାରକା**—ସ୍ତ୍ରୀ. ବ.(ତାରକ+ଆ)ନକ୍ଷତ୍ର,

ଲଜ୍ଜାଡାର, ଚକ୍ଷୁର ତାର, କନୀନକ, ତାଡ଼କା ରାକ୍ଷସୀ, ମୁକ୍ତା, ଇନ୍ଦ୍ରବାରୁଣୀ, ମହାକାଳ, ବାନରରାଜ ବାଳିର ସ୍ତ୍ରୀ. ତାରା, ନାରାଚନାମକ ଛନ୍ଦ ।

ତାରକାକ୍ଷ—ପୁଂ. ବି. ଅସୁର ବିଶେଷ ।

ତାରକାକ୍ଷ୍ୟ—ପୁଂ. ବି. ତାରକାକ୍ଷ ଅସୁର ବିଶେଷ ।

ତାରକାନାଥ—ପୁଂ.ବି. (୬ତତ୍) ଚନ୍ଦ୍ର ।

ତାରକାନ୍ତକ—ପୁଂ.ବି.(ତାରକ+ଅନ୍ତକ) କାର୍ତ୍ତିକେୟ ।

ତାରକାପତି—ପୁଂ.ବି. (୬ତତ୍) ଚନ୍ଦ୍ର ।

ତାରକାମୟ—ପୁଂ.ବିଂ. (ତାରକ+ଆମୟ) ଶିବ, ମହାଦେବ, (ବିଂ) ତାରକାରେ ପୂର୍ଣ୍ଣ ।

ତାରକାୟଣ—ପୁଂ.ବି. ବିଶ୍ୱାମିତ୍ରଙ୍କ ପୁତ୍ର ବିଶେଷ ।

ତାରକାରି—ପୁଂ. ବି.(୬ତତ୍) ତାରକାସୁରର ଶତ୍ରୁ, କାର୍ତ୍ତିକେୟ ।

ତାରକାକ୍ଷୀ—ସ୍ତ୍ରୀ.ବିଂ.ସୁନ୍ଦର ନୟନବିଶିଷ୍ଟା ।

ତାରକାସୁର—ପୁଂ. ବି. ଅସୁରବିଶେଷ, କାର୍ତ୍ତିକେୟଙ୍କ ଦ୍ୱାରା ନିହତ ଅସୁରବିଶେଷ ।

ତାରକିତ—କ୍ଲୀ.ବିଂ.(ତାରକ+ଇତ) ନକ୍ଷତ୍ରଯୁକ୍ତ, ନକ୍ଷତ୍ରଶୋଭିତ ।

ତାରକିଣୀ—ସ୍ତ୍ରୀ.ବି.(ତାରକ+ଇନ୍+ଈ) ନକ୍ଷତ୍ରଯୁକ୍ତା ରାତ୍ରି, ରାତ୍ରି ।

ତାରକୀ—ବିଂ.(ତାରକ+ଇନ୍)ତାରକାଯୁକ୍ତ, ନକ୍ଷତ୍ରଶୋଭିତ,ନକ୍ଷତ୍ର ଭୂଷିତ ।

ତାରକେଶ୍ୱର—ପୁଂ.ବି. ଔଷଧବିଶେଷ, ତୀର୍ଥବିଶେଷ, ଶିବ, ମହାଦେବ, କଲିକତାର ୩୬ ମାଇଲ ଦୂରରେ ଥିବା ବଙ୍ଗଦେଶର ପ୍ରସିଦ୍ଧ ଶିବବିଗ୍ରହ ଓ ତାଙ୍କ ନାମ ଅନୁସାରେ ଏକ ଗ୍ରାମର ନାମ ।

ତାରକ୍ଷିତ—ପୁଂ.ବି. ଦେଶବିଶେଷ ।

ତାରଗ୍ରାମ—ବି. କିଲ୍‌ମୁର, ଝ୍‌ବ୍‌ଗାଷ୍ଟ ବା କେଁକେଁୟା ସର୍ଟ, ବନ୍ଦେଲ ହାରମୋନିୟମ୍ ଆଦିର ତାନ୍ତ୍ରିଣ ସପ୍ତକ ।

ତାରଚନ୍ଦ୍ରଶୁଦ୍ଧି—ବି. (୬ତତ୍) ଜ୍ୟୋତିଃଶାସ୍ତ୍ରର ଗଣନାମତେ ମନୁଷ୍ୟ ପକ୍ଷରେ ଶୁଭ ଚନ୍ଦ୍ର ଓ ତାରକ ଘଟିବା ଅବସ୍ଥା ।

ତାରଜ—ବି. ଧାତବ ଦ୍ରବ୍ୟଭେଦ ।

ତାରଟୀ—ସ୍ତ୍ରୀ. ବି. ବୃକ୍ଷବିଶେଷ ।

ତାରଣ—ପୁଂ. ବିଂ. (ତୃ+ଣିଚ୍+କ.ଅନ) ତ୍ରାଣକାରୀ, ଉଦ୍ଧାରକାରୀ, ରକ୍ଷାକାରୀ, (କ୍ଲୀ.ଭା.ଅନୀବପଦାଦିରୁ) ଉଦ୍ଧାର କରିବା, ଅନ୍ୟକୁ ପାରି କରିବା, ମୁକ୍ତି, (କ.ଅନ) ଉଦ୍ଧାରକ ବ୍ୟକ୍ତି, ବିଷ୍ଣୁ, (ଣ.ଅନ) ଭେଳା ।

ତାରଣମାରଣ—ବି. ଉଦ୍ଧାର କରିବା ଓ ମାରିପକାଇବା ।

ତାରଣି—ସ୍ତ୍ରୀ.ବି. (ତୃ+ଣିଚ୍+ଣ.ଅନ) ନୌକା, ଡଙ୍ଗା ।

ତାରଣୀ—ସ୍ତ୍ରୀ.ବି.(ତରଣ+ଈ) କାଶ୍ୟପଙ୍କ ପତ୍ନୀ, ଯାଜୋପଯାଜଙ୍କ ମାତା ।

ତାରଣେୟ—ପୁଂ ବି. (ତାରଣି+ଏୟ) ତାରଣୀର ଅପତ୍ୟ ।

ତାରତଣ୍ଡୁଲ—ପୁଂ, ବି. (କ.ଧା) ଧବଳ, ଯାବନାଳ, ଧଳାଜନରା ଶସ୍ୟ ।

ତାରତମ—ଗ୍ରା. ବି. ପ୍ରଭେଦ ।

ତାରତମେ—ଗ୍ରା.ଅବ୍ୟ. କ୍ରି.ବିଂ. ନ୍ୟୂନାଧିକ ହୋଇ, ଭିନ୍ନଭିନ୍ନ ରୂପେ, ପୃଥକ୍ ରୂପେ ।

ତାରତମ୍ୟ—କ୍ଲୀ. ବି. (ତାର+ତମ+ଯ) ନ୍ୟୂନାଧିକ୍ୟ,କମ୍ ବେଶି,ଇତରବିଶେଷ ପ୍ରଭେଦ, ତୁଳନା, କ୍ରମୋଚ୍ଚ ବା କ୍ରମନିମ୍ନ କରିବା ।

ତାରତର—ଗ୍ରା.ବି. ଦୀପ୍ତି, ଶୋଭା, (ଗ୍ରା. ବିଂ) ଦେଦୀପ୍ୟମାନ, ସୁନ୍ଦର, ଅଧିକ, (ସଂ-ବିଂ. ତାର+ତର) ଅପେକ୍ଷାକୃତ ଉଚ୍ଚସ୍ୱର, ଅପେକ୍ଷାକୃତ ଉଜ୍ଜ୍ୱଳ, ଅପେକ୍ଷାକୃତ ସୁନ୍ଦର ।

ତାରତାର—କ୍ଲୀ. ବି. ସାଂଖ୍ୟଶାସ୍ତ୍ରୋକ୍ତ ଗୌଣ ତୁଷ୍ଟାଖ୍ୟ ସିଦ୍ଧିବିଶେଷ ।

ତାରନାଥ—ପୁଂ. ବି. (୬ତତ୍) ଚନ୍ଦ୍ର, ବୌଦ୍ଧ ପଣ୍ଡିତ ।

ତାରନାଦ—ପୁଂ. ବି. ଉଚ୍ଚନାଦ, ଉଚ୍ଚଶବ୍ଦ ।

ତାରନ୍ତା—ଗ୍ରା.ପୁଂ.ବିଂ. (ସଂ-ତ୍ରାଣକର୍ତ୍ତା) ଉଦ୍ଧାରକର୍ତ୍ତା ।

ତାରପତି—ବି. (୬ତତ୍) ଚନ୍ଦ୍ର ।

ତାରପର—ଗ୍ରା.ପୁଂ ଓ ସ୍ତ୍ରୀ. ବିଂ. ଗୁଣରେ ବା ରୂପରେ ଅଧିକ, ଅତୁଳନୀୟ, ଅତ୍ୟୁତ୍କୃଷ୍ଟ, (ଅବ୍ୟ) ତାହାପର, ତତ୍ପରଦିନ ।

ତାରପର୍(ଣ)ନ—ପୁଂ. ବି. ଦେବଦାରୁ ଜାତୀୟ ସର୍ଜ ବା ସରଳ ବୃକ୍ଷରୁ ବାହାରିବା ନିର୍ଯ୍ୟାସରୁ ପ୍ରସ୍ତୁତ ତୈଳ ।

ତାରପୁଷ୍ପ—ପୁଂ.ବି.(ବ.ବ୍ରୀ) କୁନ୍ଦବୃକ୍ଷ ।

ତାରମାକ୍ଷିକ—କ୍ଲୀ. ବି. ଉପଧାତୁଭେଦ, ରୌପ୍ୟମାକ୍ଷିକ ନାମକ ଉପଧାତୁ ।

ତାରୟିତା—ପୁଂ.ବିଂ (ତୃ+ଣିଚ୍+କ. ତୃ) ଯେ ଉଦ୍ଧାର କରେ,ତାରକ ଦେଖ ।

ତାରଳ—ପୁଂ.ବି. (ତରଳ+ଅ)ତରଳ, ସନ୍ତୁଷ୍ଟ, କାମୁକ, ଲମ୍ପଟ ।

ତାରଲ୍ୟ—କ୍ଲୀ.ବି. (ତରଳ+ଯ)ତରଳ ବସ୍ତୁର ଧର୍ମ, ତରଳତା, ଟଳଟଳଭାବ, ଅବ୍ୟବସ୍ଥିତଚିତ୍ତତା, ଜଳର ଚଳଚଳ ଭାବ, ଅସ୍ଥିରତା, ଚାଞ୍ଚଲ୍ୟ ।

ତାରବର—ବି. (୬ତତ୍) ଚନ୍ଦ୍ର ।

ତାରବାୟୁ—ପୁଂ. ବି. ଅତ୍ୟୁଚ୍ଚ ଶବ୍ଦଯୁକ୍ତ ବାୟୁ ।

ତାରବିମଳା—ସ୍ତ୍ରୀ. ବି. ଉପଧାତୁବିଶେଷ, ତାରମାକ୍ଷିକ ଦେଖ ।

ତାରଶୁଦ୍ଧି—ବି. ଜ୍ୟୋତିଃଶାସ୍ତ୍ରୋକ୍ତ ନଅଗୋଟି ତାର ନାମକ ଯୋଗ ମଧ୍ୟରୁ ସମ୍ପଦ,କ୍ଷେମ, ସାଧକ, ମିତ୍ର ଓ ପରମମିତ୍ର ଯୋଗମାନ ଘଟିବା ଅବସ୍ଥା ।

ତାରଶୁଦ୍ଧିକର—କ୍ଲୀ.ବି.ସୀସକ ସଂଯୋଗରେ ରୌପ୍ୟକୁ ବିଶୁଦ୍ଧ କରିବା ।

ତାରସାର—ପୁଂ.ବି. ଉପନିଷଦ୍‌ଭେଦ ।

ତାରହାର—ପୁଂ. ବି. ସ୍ଥୂଳ ମୁକ୍ତାହାର ।

ତାରହାସୀ—ସ୍ତ୍ରୀ.ବିଂ.ମନୋହର ହାସ୍ୟଯୁକ୍ତା (ସ୍ତ୍ରୀ) ।

ତାରା—ସ୍ତ୍ରୀ. ବି. (ତୃ+ଣିଚ୍+କ.ଅ+ଆ) ବୌଦ୍ଧ ଦେବତାବିଶେଷ, ବାନରବିଶେଷ, ନକ୍ଷତ୍ର, ଦୁର୍ଗା, ମହାବିଦ୍ୟା-

ବିଶେଷ, ବୃହସ୍ପତିଙ୍କ ସ୍ତ୍ରୀ, ବାନରରାଜ ବାଲୀର ସ୍ତ୍ରୀ, କନୀନିକା, ଜୈନଶକ୍ତି-ବିଶୁଦ୍ଧମୁକ୍ତା, ସଂଖ୍ୟାରେ ଉଚ୍ଚ ସପ୍ତକ-ବିଶେଷ, ଭାଗ୍ୟ, କପାଳ, ଦଶ ମହା-ବିଦ୍ୟା ମଧ୍ୟରୁ ୨ୟ ମହାବିଦ୍ୟା, (ପ୍ର. ଯନ୍ତ୍ରର) ତଳ, କୋଲପ ।

ତାରକାନ୍ତ—ପୁଂ. ବି. (୬ତତ୍) ଚନ୍ଦ୍ର ।

ତାରାକୁମାର—ପୁଂ. ବି. (୬ତତ୍)ଦୁର୍ଗାଙ୍କ ପୁତ୍ର, କାର୍ତ୍ତିକେୟ, ଗଣେଶ ।

ତାରାକୂଟ—କ୍ଳୀ. ବି. (ଜ୍ୟୋତିଷ) ତାରା ବିଷୟକ କୂଟଭେଦ ।

ତାରାକ୍ଷ—ପୁଂ. ବି. ଦୈତ୍ୟବିଶେଷ, ତାରକାସୁରର ପୁତ୍ର, ତାରାକ୍ଷ ନାମଧାରୀ ବାନରବିଶେଷ ।

ତାରାଗଡ଼—ଗ୍ରା. ବି. ପଞ୍ଜାବର ଅନ୍ତର୍ଗତ ଗିରିଦୁର୍ଗ ।

ତାରାଗୁଚ୍ଛ—ବି. ଅନେକ ଗୁଡ଼ିଏ ଶ୍ରେଣୀ ଶ୍ରେଣୀ ତାରାମାନଙ୍କ ମିଶ୍ରଣରେ ହୋଇଥିବା ପୁଞ୍ଜ ।

ତାରାଗ୍ରହ—ଗ୍ରା. ନି. ମଙ୍ଗଳ ବୁଧ ଗୁରୁ ଶୁକ୍ର ଓ ଶନି ଏହି ପଞ୍ଚଗ୍ରହ ।

ତାରାଚକ୍ର—କ୍ଳୀ. ବି. ଦୀକ୍ଷାକାଳରେ ପ୍ରଦେୟ ମନ୍ତ୍ରର ଶୁଭାଶୁଭ ପରୀକ୍ଷାପକ ଚକ୍ରବିଶେଷ ।

ତାରାଚମନ—କ୍ଳୀ. ବି. ତାରା ପୂଜା ବିଷୟକ ଆଚମନବିଶେଷ ।

ତାରାଜନିତ—ବି. (୬ତତ୍) ତାରାପୁତ୍ର ଅଙ୍ଗଦ, ବୁଧଗ୍ରହ ।

ତାରାତାରିଣୀ—ପ୍ରା(ଗଞ୍ଜା)ସ୍ତ୍ରୀ.ବି. ଦେବୀବିଶେଷ ।

ତାରାଦେବୀ—ସ୍ତ୍ରୀ.ବି. ମହାବିଦ୍ୟା, ହିମାଳୟର ଗମ୍ଭୀର ଗହ୍ବର ଓ ଗିରିଶୃଙ୍ଗବିଶେଷ ।

ତାରାଧିପ—ପୁଂ. ବି. (୬ତତ୍) ଚନ୍ଦ୍ର, ଶିବ, ବୃହସ୍ପତି, ବାଲି ଓ ସୁଗ୍ରୀବ, ନକ୍ଷତ୍ରାଧିପ ।

ତାରାନଗର—ଗ୍ରା.ବି. ବରଦ ପ୍ରଦେଶର ଗୋଟିଏ ପ୍ରାଚୀନ ଗ୍ରାମ ।

ତାରାନାଥ—ପୁଂ.ବି.(୬ତତ୍)ଚନ୍ଦ୍ର, ନିଶାପତି, ବୌଦ୍ଧ ପଣ୍ଡିତବିଶେଷ ।

ତାରାପତନ—ବି. (୬ତତ୍) ଉଲ୍କାପାତ ।

ତାରାପତି—ପୁଂ.ବି. (୬ତତ୍)ଚନ୍ଦ୍ର, ବୃହସ୍ପତି,ଶିବ,ବାଲି,ସୁଗ୍ରୀବ,ଜଣେ ବୃଦ୍ଧି କବି

ତାରାପଥ—ପୁଂ,ବି. (୬ତତ୍) ଆକାଶ, ନଭୋମଣ୍ଡଳ ।

ତାରାପୀଡ଼—ପୁଂ.ବି.(୬ତତ୍) ଚନ୍ଦ୍ର,ମତ୍ସ୍ୟପୁରାଣରେ ବର୍ଣ୍ଣିତ ଅଯୋଧ୍ୟାର ନୃପତିବିଶେଷ, କାଶ୍ମୀରର ବିଖ୍ୟାତ ରାଜା ।

ତାରାପୁଞ୍ଜ—ବି.(୬ତତ୍) ଏକସ୍ଥାନରେ ପରସ୍ପର ନିକଟରେ ଥିବା ନକ୍ଷତ୍ରସମୂହ ।

ତାରାପୁର—ଗ୍ରା.ବି. ବୋମ୍ବାଇପ୍ରଦେଶର ଗୋଟିଏ ନଗର ।

ତାରାପ୍ରମାଣ—କ୍ଳୀ. ବି. ନକ୍ଷତ୍ରର ସ୍ୱରୂପ ନିର୍ଣ୍ଣାୟକ ସଂଖ୍ୟାବିଶେଷ ।

ତାରାଭ—ପୁଂ.ବି.(ବି.ବ୍ରୀ) ନାରଦ ।

ତାରାଭବ—ପୁଂ.ବି.(ବି.ବ୍ରୀ)ବୁଧ, ଅଙ୍ଗଦ

ତାରାଭା—ବି.(ବି.ବ୍ରୀ) ନାରଦ ମୁନି ।

ତାରାଭୂଷା—ସ୍ତ୍ରୀ.ବି.(ବି.ବ୍ରୀ) ରାତ୍ରି ।

ତାରାଭ୍ର—ପୁଂ.ବି. କର୍ପୂର ।

ତାରାମଣ୍ଡଳ—କ୍ଳୀ.ବି.(୬ତତ୍) ନକ୍ଷତ୍ରମଣ୍ଡଳ, ଦେବ ମନ୍ଦିରବିଶେଷ,ଈଶ୍ୱରମଣ୍ଡଳ ଭେଦ, ବହୁ ନକ୍ଷତ୍ରଙ୍କ ମିଶ୍ରଣରେ ହୋଇଥିବା ଆକାଶମଣ୍ଡଳ ।

ତାରାମଣ୍ଡୂରଗୁଡ଼—ପୁଂ.ବି. ଔଷଧବିଶେଷ,

ତାରାମୟୀ—ସ୍ତ୍ରୀ.ବି. ତାରାସ୍ୱରୂପା ।

ତାରାମାଳା—ସ୍ତ୍ରୀ.ବି.(ଗ୍ରା)ଜୁଡ଼ା ଉପରେ ପିନ୍ଧାଯିବା ଅଳଙ୍କାରବିଶେଷ ।

ତାରାମୃଗ—ପୁଂ.ବି.(କ.ଧା) ମୃଗଶିରା ନକ୍ଷତ୍ର, ମାୟାମୃଗ, ଯେଉଁ ମୃଗରୂପ ରାକ୍ଷସକୁ ଦେଖି ସୀତା ପ୍ରଲୋଭିତ ହୋଇଥିଲେ ।

ତାରାୟଣ—ବି(୬ତତ୍) ଆକାଶ ।

ତାରାଶ—ପୁଂ.ବି. ବହ୍ମାକ୍ଷିକ ଉପଧାତୁବିଶେଷ ।

ତାରାରତ୍ନ—ବି.ତାରକାସ୍ୱରୂପ ରତ୍ନ,ରତ୍ନପରି ଶୋଭମାନ ନକ୍ଷତ୍ର ।

ତାରାବତୀ—ସ୍ତ୍ରୀ.ବି.ଚନ୍ଦ୍ରଶେ[illegible] ପତ୍ନୀ,କାଞ୍ଚନପୁର ରାଜା ଧର୍ମଧ୍ୱ[illegible]

ତାରାବଳୀ—ସ୍ତ୍ରୀ. ବି. ମଣିଭଦ୍ର ଯକ୍ଷର କନ୍ୟା ।

ତାରାବାଈ—ସ୍ତ୍ରୀ.ବି.ଭାରତ ପ୍ରସିଦ୍ଧ ଶିବାଜିଙ୍କ ପୁତ୍ରବଧୂ ।

ତାରାଷୋଢ଼ା—ସ୍ତ୍ରୀ. ବି. ତାରାପୂଜାଙ୍ଗ ଷୋଢ଼ା ନ୍ୟାସବିଶେଷ ।

ତାରାସ୍ଥାନ—ବି. ସୁରବିଶେଷ ।

ତାରି—ଗ୍ରା.ବି°. ନିଆଁରେ ପାକ କରାଯାଉଥିବା ସିରାରୁ ଯେଉଁ ଧାର ବାହାରେ, (ଏଠେ) ତାରୁଯୁକ୍ତ, ଯେଉଁ ମସିଣା ବା ଲୁଗାରେ ଏକାବୁଣାରେ ଏକ ଦୁଇ ବା ଗୁରୁସୂତା ଲଗିଥାଏ, (ଯଥା-ତଉତାରି)

ତାରିକ—କ୍ଳୀ.ବି. (ତୃ+ଣିଚ୍+ଇକ) ଘାଟପାର ମାସୁଲ, ପାରିଆଣି ।

ତାରିଖ(କ)—ଯା.ବି. ମାସର ଦିନ, ମକଦ୍ଦମା ଶୁଣାଣି ହେବା ଦିନରୁ ନିର୍ଦ୍ଧାରିତ ଦିନ ।

ତାରିଣୀ—ସ୍ତ୍ରୀ. ବି°. (ତୃ+ଣିଚ୍+କ. ଇନ୍) ରକ୍ଷାକର୍ତ୍ତ୍ରୀ, ତ୍ରାଣକର୍ତ୍ତ୍ରୀ, (ସ୍ତ୍ରୀ.ବି) ଦୁର୍ଗା, ତାରଣକର୍ତ୍ତ୍ରୀ ସ୍ତ୍ରୀ.(ପ୍ରା. ଗଞ୍ଜାମ) ପାହାଡ଼ ବିଶେଷ,ଯହିଁରେ ତାରାତାରିଣୀଦେବୀ ପ୍ରତିଷ୍ଠିତ, (ଗ୍ରା. ବି.) ମଙ୍ଗଳବାରଦିନ ମଙ୍ଗଳାଙ୍କ ଉପାସନା କରି ସ୍ତ୍ରୀଲୋକମାନେ ହାତରେ ଯେଉଁ ବ୍ରତ ସୂତା ପିନ୍ଧନ୍ତି ।

ତାରିଣୀମଙ୍ଗଳବାର—ଗ୍ରା. ବି. ଚୈତ୍ରମାସର ଓ ଗୁଣ୍ଡିଚାର ପରବର୍ତ୍ତୀ ମଙ୍ଗଳବାର ।

ତାରିଫ୍—ଯା. ବି. ବ୍ୟାଖ୍ୟାନ, ପ୍ରଶଂସା, ଉତ୍କୃଷ୍ଟତା, (ବି°) ଉତ୍କୃଷ୍ଟ, ପ୍ରଶଂସିତ, (କ୍ରି. ବି°) ଉତ୍କୃଷ୍ଟରୂପେ ।

ତାରିବା—ଗ୍ରା. କ୍ରି. ଉଦ୍ଧାର କରିବା, ରକ୍ଷାକରିବା, ନିସ୍ତାରକରିବା, ପାର କରିବା,ସଂସାର ବନ୍ଧନରୁ ମୁକ୍ତକରିବା, ରକ୍ଷି କରିବା ପାଇଁ ରୋଗୀକୁ ପି[illegible] ପରି ଭୂମିରେ ବସାଇ [illegible] ବ୍ୟବହାରକରିବା,କାଠର ପ[illegible] ଅଧ ଦ୍ୱାରା ଠେଲିବା ।

ତାରୁ—ପ୍ରା. (ଗଞ୍ଜା) ବି. ଆଲକାତରା,

କୋଲ୍‌ଟାର ।
ତାରୁଣ୍ୟ— କ୍ଲୀ. ବି. ( ତରୁଣ + ଯ ) ଯୌବନ, ତରୁଣ ଅବସ୍ଥା, ନବୀନତା ।
ତାରେ—ଗ୍ରା. ପଦ୍ୟ. ସର୍ବ. ତାହାକୁ ।
ତାରେୟ—ପୁଂ. ବି. ( ତାରା+ଏୟ ) ବାଳିପୁତ୍ର, ଅଙ୍ଗଦ, ବୃହସ୍ପତିଙ୍କ ଭାର୍ଯ୍ୟା ତାରାଙ୍କ ପୁତ୍ରବୁଧ ।
ତାର୍କବ—ବିଂ.(ତର୍କୁ+ଅ)ତର୍କୁବିକାର ।
ତାର୍କିକ—ବିଂ. (ତର୍କ+ଇକ) ନ୍ୟାୟ ବିଶାରଦ, ଦାର୍ଶନିକ, ତର୍କପଟୁ, ତର୍କଶାସ୍ତ୍ରବେତ୍ତା ।
ତାର୍କ୍ଷ—ପୁଂ. ବି.(ତୃକ୍ଷ+ଅ)କାଶ୍ୟପଋଷି, ବିନତାର ଗର୍ଭଜାତ ପୁତ୍ର, ଗରୁଡ଼ ।
ତାର୍କ୍ଷଜ—କ୍ଲୀ. ବି. ରସାଞ୍ଜନ ।
ତାର୍କ୍ଷୀ—ସ୍ତ୍ରୀ. ବି. ପାତାଳଗରୁଡ଼ ଲତା ।
ତାର୍କ୍ଷ୍ୟ—ପୁଂ. ବି.(ତୃକ୍ଷ + ଯ)ତୃକ୍ଷମୁନିଙ୍କ ପୁତ୍ର, ରକ୍ତବର୍ଣ୍ଣ, ଗରୁଡ଼ାଗ୍ରଜ, ଅରୁଣ, ଗରୁଡ, ବାହନ, ସର୍ପ, ଶାଳବୃକ୍ଷ,ସ୍ୱର୍ଣ୍ଣ, ଅଶ୍ୱକର୍ଣ୍ଣ ବୃକ୍ଷ, ସ୍ୟନ୍ଦନ, ପର୍ବତଭେଦ, ବିହଙ୍ଗମାତ୍ର, କ୍ଷତ୍ରିୟ ବିଶେଷ, ମହାଦେବ, ରସାଞ୍ଜନ, ଘୋଡ଼ା, ଅର୍ଜୁନ ।
ତାର୍କ୍ଷ୍ୟକେତନ—ପୁଂ. ବି. ( ବ.ବ୍ରୀ ) ଗରୁଡ଼ଧ୍ୱଜ, ବିଷ୍ଣୁ ।
ତାର୍କ୍ଷ୍ୟଜ—କ୍ଲୀ. ବି. ରସାଞ୍ଜନ ।
ତାର୍କ୍ଷ୍ୟଧ୍ୱଜ—ପୁଂ. ବି. (ବ.ବ୍ରୀ) ବିଷ୍ଣୁ, ଗରୁଡ଼ଧ୍ୱଜ ।
ତାର୍କ୍ଷ୍ୟନାୟକ—ପୁଂ.ବି.(୭ତତ୍)ଗରୁଡ଼
ତାର୍କ୍ଷ୍ୟନାଶକ—ପୁଂ. ବି. (୬ତତ୍) ସର୍ପନାଶକ,ଗରୁଡ଼ ।
ତାର୍କ୍ଷ୍ୟପ୍ରସବ—କ୍ଲୀ. ବି. ଅଶ୍ୱକର୍ଣ୍ଣ ବୃକ୍ଷ ।
ତାର୍କ୍ଷ୍ୟଶୈଳ—କ୍ଲୀ. ବି. ରସାଞ୍ଜନ ।
ତାର୍କ୍ଷ୍ୟୀ—ସ୍ତ୍ରୀ. ବି. ବନଲତାବିଶେଷ ।
ତାର୍ଣ୍ଣ—ବିଂ. (ତୃଣ + ଅ) ତୃଣସମ୍ବନ୍ଧୀୟ ତୃଣଜନ୍ୟ ବହ୍ନି, ତୃଣବହ୍ନିୟୁରୂପ ଅର୍ଥ, ସ୍ଥାନଜାତକର ।
ତାର୍ଣ୍ଣିକ—ବିଂ. ତୃଣଯୁକ୍ତ ଦେଖ ।
ତାର୍ଣ୍ଣବିନ୍ଦବୀୟ—ବିଂ. (ତୃଣବିନ୍ଦୁ+ଈୟ) ତୃଣବିନ୍ଦୁଙ୍କ ଉଦ୍ଦେଶ୍ୟରେ ଦେୟ ।
ତାର୍ଣ୍ଣୟନ୍ତ—ପୁଂ. ବି. ତୃଣନାମକ ଋଷିଙ୍କର ଗୋତ୍ରାପତ୍ୟ ।
ତାର୍ତ୍ତୀୟ—ବିଂ. (ତୃତୀୟ+ଅ) ତୃତୀୟପାଦ ନ୍ୟାସ । [ ସମ୍ବନ୍ଧୀୟ ।
ତାର୍ତ୍ତୀୟସବନ—ବିଂ. ତୃତୀୟସବନ
ତାର୍ତ୍ତୀୟହ୍ନିକ—ବିଂ.ତୃତୀୟଦିନସମ୍ବନ୍ଧୀୟ
ତାର୍ତ୍ତୀୟିକ—ବିଂ. (ତୃତୀୟ+ଇକ)ତୃତୀୟ
ତାର୍ପ୍ୟ—ବିଂ.( ତୃପ + ଅ ) ତୃପାଲତାଜାତ ବସ୍ତ୍ର ।
ତାର୍ଯ୍ୟ—ବିଂ. (ତୃ+ମଂ.ଯ) ତରଣୀୟ, ପାରହେବାର ଉପଯୁକ୍ତ,(ବି)ପାରଆଣି, ଘାଟମାସୁଲ ।
ତାର୍ଷ୍ଟାଧ—ପୁଂ. ବି. ବୃକ୍ଷବିଶେଷ ।
ତାଲ୍—ପ୍ରା. (ସମ୍ଭ. ଆଠମଲ୍ଲକ,ବାମଣ୍ଡା) ବି. ନିରର୍ଥକ ବାକ୍ୟାଂଶ, ତ, ଟି ।
ତାଳ—ବି. (ତଳ+ଣ.ଅ) ଗୀତବାଦ୍ୟ ଓ ନୃତ୍ୟ ବିଷୟରେ କାଳକ୍ରିୟାର ପରିମାଣ ବିଶେଷ, ଗୀତବାଦ୍ୟର ବିଶ୍ରାମ ସ୍ଥଳ, ସ୍ୱନାମ ପ୍ରସିଦ୍ଧ ସ୍ତମ୍ଭବତ୍ ଦୀର୍ଘତରୁ ଓ ତାହାର ଫଳ, ତୃଣରାଜ, ହରିତାଳ, ଦୁଇକରତଳର ପରସ୍ପର ଆଘାତଜନିତ ଶବ୍ଦ ବା ତାଳି, ଖଡ୍ଗାର ମୁଠା,ହାତର ବୃଦ୍ଧାଙ୍ଗୁଳି ଓ ମଧ୍ୟମାଙ୍ଗୁଳିର ପ୍ରସାରର ପରିମାଣ, ମନୁଷ୍ୟର ପାଦଠାରୁ କେଶ ଅଗ୍ର ପର୍ଯ୍ୟନ୍ତ ଉଚ୍ଚତାର ପରିମାଣ, ଦୁର୍ଗାଙ୍କ ସିଂହାସନ, ବେତ, କରତଳ, ଲେଡ଼ୁ, କଂସର ତିଆରି ଝାଞ୍ଜ ବା କୁବୁଜି,ତାଳପତ୍ର,ଭୂତଯୋନି ବିଶେଷ, ଶିବ ନୃତ୍ୟ, କବେଣିଠାରୁ ଚିବୁକ ପର୍ଯ୍ୟନ୍ତ ଲମ୍ବ, ମଧ୍ୟମାଙ୍ଗୁଳିର ଅଗ୍ରଠାରୁ କରତଳ ବା କଟିର ଆରମ୍ଭପର୍ଯ୍ୟନ୍ତ ଦୈର୍ଘ୍ୟ, ବାହାସ୍ଫୋଟ, ତାଳୀଶପତ୍ର, ପ୍ରକୋଷ୍ଠରେ ଲଗିଥିବା ପଥର ବା କାଚର ଏକଖଣ୍ଡ, ତାଲ୍ଲ. କେଳିବ, ବେଲି, ନରକବିଶେଷ, ମହାଦେବ, ଅକର୍ମକ ବିପଦ, ଗୋଲାକାରପିଣ୍ଡ,(ବିଂ)ବିସ୍ତୃତ, ରାଶୀକୃତ, ବୃହତ୍, (ଗ୍ରା.ବି) ପଶୁଙ୍କର ସଙ୍ଗମ, ମେଣ୍ଢାଆଦି ପଶୁର ଲଢ଼େଇ, ପ୍ରତିଯୋଗିତା, ବିଧା ।
ତାଳକ—ବି. (ତାଳ + କ) ହରିତାଳ, ସୁଗନ୍ଧମୃତ୍ତିକା, ଦ୍ୱାରରୋଧକ ଯନ୍ତ୍ର, ତାଲ୍ଲା, କୋଲପ, କଜଣି ।
ତାଳକଟ—ପୁଂ. ବି. ଦେଶଭେଦ ।
ତାଳକନ୍ଦ—କ୍ଲୀ. ବି. ତାଳମୂଳୀ ।
ତାଳକାନ୍ଧ—ଗ୍ରା.ବି.ଗୁଡ଼ିଏ ତାଳଫଳର ଗୋଟିଏ ଡେମ୍ଫରେ ପରସ୍ପର ଲଗାଲଗି ହୋଇ ଫଳିଥିବା ଗୁଚ୍ଛ ।
ତାଳକାଭ—ପୁଂ.ବିଂ.(ବ.ବ୍ରୀ)ହରିଦ୍ବର୍ଣ୍ଣ, ହଳଦିଆ ।
ତାଳକୀ—ସ୍ତ୍ରୀ. ବି. (ତାଳକ+ଈ)ତାଡ଼ି, ମଦ୍ୟ, ତାଳରସ । [ ବଳରାମ ।
ତାଳକେତୁ—ପୁଂ. ବି. (ବ.ବ୍ରୀ) ଭୀଷ୍ମ,
ତାଳକେଶ୍ୱର—ପୁଂ.ବି.ଔଷଧବିଶେଷ ।
ତାଳକେଟ—ଗ୍ରା.ବି. ତାଳବାହୁଙ୍ଗା ଓ ତାହାର ଚିରା ଖଣ୍ଡମାନ ।
ତାଳକୋଶା—ଗ୍ରା. ବି, ବୃକ୍ଷଭେଦ ।
ତାଳକ୍ଷୀର—ପୁଂ. ବି. ତାଳରସ, ତାଳଶର୍କରା, ତାଳରସରୁ ତିଆରି ଗୁଡ଼ ବା ଚିନି ।
ତାଳକ୍ଷୀରକ—କ୍ଲୀ.ବି.ତାଳକ୍ଷୀର ଦେଖ
ତାଳଖାଇବା—ଗ୍ରା. କ୍ରି.( ଘୋଡ଼ା କୁକୁର ଆଦି) ଯୋଡ଼ପଡ଼ିବା, ( ଦୁଇଟିବସ୍ତୁ ) ପରସ୍ପର ମେଳହୋଇବା ।
ତାଳଚୁଙ୍କ—ଗ୍ରା. ବି. (ସଂ-ତାଳାଙ୍କୁର) ଗଜାହୋଇଥିବା ତାଳମଞ୍ଜିର ମଧ୍ୟସ୍ଥ ସୁସ୍ୱାଦୁ କୋମଳ-ଶସ ।
ତାଳଖୋଡ଼(ଳା)ପା—ଗ୍ରା.ବି. ତାଳମଞ୍ଜିର ଉପର କଠିନାଂଶ ବା ଆବରଣ ।
ତାଳଖୋଳ—ଗ୍ରା.ବି.ଶ୍ରୀଚୈତନ୍ୟଦେବଙ୍କ ପ୍ରବର୍ତ୍ତିତ ନାମ ସଙ୍କୀର୍ତ୍ତନରେ ବ୍ୟବହୃତ କରତାଳ ବା ଝାଞ୍ଜ ଓ ମୃଦଙ୍ଗ ।
ତାଳ ଖୋଳ ଧରି ହେଟିବା—ଗ୍ରା. କ୍ରି. ( ଲ.ଅର୍ଥ ) ପରସ୍ପର ମଧ୍ୟରେ ବିଶେଷ ଭାବରେ କଳହ ଉତ୍ପନ୍ନ ହେବା ।
ତାଳଗର୍ଭ—ପୁଂ.ବି.ତାଳମଞ୍ଜା,ତାଳକନ୍ଦା
ତାଳଚୋଟମ—ଗ୍ରା.ବି. ଗଇଁଠ ଗୁଣ୍ଡ଼ଲ ଚୂନାର ବାଷ୍ପସିଦ୍ଧ ଗୋଲ ପିଷ୍ଟକବିଶେଷ ।
ତାଳଗୋଟମା—ଗ୍ରା. ବି. କଞ୍ଚା ଛୋଟ ତାଳଫଳ ।

ତାଳଘାଟ—ଗ୍ରା. ବି. ବୋମ୍ବାଇ ବିଭାଗର ଗିରିପଥ ବିଶେଷ ।

ତାଳଙ୍କ—ପୁଂ. ବି. ତାଟଙ୍କ, କର୍ଣ୍ଣଭୂଷଣ ।

ତାଳଚଟକ—ବି.ଶ ଖାଞ୍ଜନ୍ପକ୍ଷୀବର୍ଗର ପାଂଶୁବର୍ଣ୍ଣ ପକ୍ଷିବିଶେଷ ।

ତାଳଚେର—ଗ୍ରା.ବି.ଓଡ଼ିଶାର ଦେଶୀୟ ଗୋଟିଏ ଗଡ଼ଜାତ ରାଜ୍ୟ ।

ତାଳଜ—ବି. (ତାଳ + ଜନ୍ + କ.ଅ) ତାଳଗଛର ରସ, ତାଡ଼ି ।

ତାଳଜଙ୍ଘ—ପୁଂ. ବି. ଦେଶବିଶେଷ, ତାଳଜଙ୍ଘରାଜା, ଗ୍ରହଭେଦ, (ବିଂ ବି.ଗ୍ରୀ) ତାଳଗଛପରି ଜଙ୍ଘବିଶିଷ୍ଟ ।

ତାଳଜଙ୍ଘା—ସ୍ତ୍ରୀ. ବି. ରାକ୍ଷସୀ ବିଶେଷ ।

ତାଳଜଟା—ସ୍ତ୍ରୀ. ବି. (୬ତତ୍ପୁ) ଅଣ୍ଡିରା ତାଳଗଛର କଢ଼ା ବା ଜଟା,(ପୁଂ)ପୁଷ୍ପମଞ୍ଜରୀ, ତାଳପ୍ରଲମ୍ବ ।

ତାଳଦଣ୍ଡା—ଗ୍ରା. ବି. କଟକଜିଲ୍ଲାର କେନାଲ ବିଶେଷ ।

ତାଳଧ୍ୱଜ—ପୁଂ. ବି. (ବ.ବ୍ରୀ) ବଳରାମ, ଭୀଷ୍ମ,ପର୍ବତ ବିଶେଷ,(କ୍ଳୀ.ବି)ବଳରାମଙ୍କ ରଥର ନାମ ।

ତାଳଧ୍ୱଜା—ସ୍ତ୍ରୀ.ବି.ପୁରୀବିଶେଷ, ତାଳଗଛର ପତ୍ର ।

ତାଳନବମୀ—ବି.ଭାଦ୍ର ଶୁକ୍ଳ ନବମୀ,ବ୍ରତବିଶେଷ ।

ତାଳପକା(କେ)ଇବା—ଗ୍ରା.କ୍ରି. ଗୀତ ବା ନାଟର ତାଳ ଅନୁସାରେ ତାଳ ବା ବାଦ୍ୟ ବଜାଇବା ।

ତାଳପଡ଼ିବା—ଗ୍ରା. ବି. ତାଳ ଭୂମିରେ ପଡ଼ିଲାବେଳେ ଯେପରି ଧୁମ୍‌ଧୁମ୍ ଶବ୍ଦ ହୁଏ ସେହିପରି ଶବ୍ଦ ସହିତ କୌଣସି ଲୋକ ଉପରେ ବିଧା ମାଡ଼ ବସିବା, ଗୀତ ବା ନାଟର ତାଳ ଅନୁସାରେ ତାଳ ବା ବାଦ୍ୟବଜାଇବା, ପ୍ରତିଯୋଗିତା କରିବା, ଗଛରୁ ପାଚିଲା ତାଳ ତଳକୁ ଖସିବା ।

ତାଳପତ୍ର—କ୍ଳୀ. ବି. (୬ତତ୍ପୁ)କର୍ଣ୍ଣଭୂଷଣବିଶେଷ, ତାଟଙ୍କ, ତାଳଗଛର ପତ୍ର, ଚକ୍ଷୁବିଶେଷ ।

ତାଳପତ୍ରିକା—ସ୍ତ୍ରୀ.ବି.ମୂଷଲୀ,ତାଳମୂଳୀ ।

ତାଳପତ୍ରୀ—ସ୍ତ୍ରୀ. ବି. ମୂଷିକପର୍ଣ୍ଣୀ, ମୂଷାକାନି ।

ତାଳପର୍ଣ୍ଣ—କ୍ଳୀ. ବି. ମୁରାନାମକ ଗନ୍ଧଦ୍ରବ୍ୟ, ଗନ୍ଧପତ୍ର ଦେଖ ।

ତାଳପର୍ଣ୍ଣିକା—ବି. ମୁରାନାମକ ଗନ୍ଧଦ୍ରବ୍ୟ, ମୁରାମାଂସୀ, ତାଳମୂଳୀ, ସଉପ ।

ତାଳପର୍ଣ୍ଣୀ—ସ୍ତ୍ରୀ. ବି. ମଧୁରିକା, ସୁରା ।

ତାଳପାରୁ—ଗ୍ରା. ବି. ପାଚିଲା ତାଳକୁ ଚପୁଡ଼ି ଦେଲେ ଟାକୁଆ ଉପରେ ଯେଉଁ ତେରୁଆ ଅଂଶମାନ ଥାଏ ।

ତାଳପିଠା—ଗ୍ରା. ବି. ପାଚିଲା ତାଳରସ ବା ମଣ୍ଡି ସଙ୍ଗେ ବଟା ଚାଉଳ ମିଶାଇ କରାଯିବା ପିଷ୍ଟକବିଶେଷ ।

ତାଳପୁର—ହିନ୍ଦୁଦେଶର ଶେଷ ସ୍ୱାଧୀନ ଅମିରମାନଙ୍କର ବଂଶଗତ ଉପାଧି ।

ତାଳପୁଷ୍ପ—କ୍ଳୀ. ବି. ତାଳରଣ୍ଡି, ତାଳର ଜଟା ।

ତାଳପୁଷ୍ପକ—କ୍ଳୀ. ବି. ପ୍ରପୌଣ୍ଡରୀକ, ତାଳବୃକ୍ଷର କୁସୁମ ।

ତାଳପ୍ରଲମ୍ବ—କ୍ଳୀ. ବି. (୬ତତ୍ପୁ) ତାଳର ଜଟା, ତାଳଜଟା ବା କଢ଼ା ।

ତାଳଭଙ୍ଗ—ବି. ( ୬ତତ୍ପୁ ) ବେତାଳହେବା, ଗୀତ ବାଦ୍ୟର ତାଳ ଅନୁଯାୟୀ ନ ପଡ଼ିବା ।

ତାଳଭୃତ୍—ପୁଂ. ବି. ( ତାଳ + ଭୃ + କ୍ୱିପ୍) ବଳରାମ ।

ତାଳମକ୍ଷା—ବି. (ତାଳ + ମକ୍ଷା) ତାଳସଜ ଦେଖ ।

ତାଳମଞ୍ଜି—ଗ୍ରା. ବି. ପାଚିଲା ତାଳ ଫଳ ମଧ୍ୟରେ ଥିବା ଟାକୁଆ ।

ତାଳମଟୁଆ—ଗ୍ରା.ବି.ତାଳପତ୍ରର ବାହାର ବା ଆଗ ପାଖର ଶିରା, ଋଡ଼ ।

ତାଳମଣ୍ଡା—ଗ୍ରା. ବି. ତାଳରସ ବା ମଣ୍ଡିରେ ତିଆରି ମଣ୍ଡା ପିଠା ।

ତାଳମର୍ଦ୍ଦକ—ପୁଂ. ବି, ବାଦ୍ୟବିଶେଷ, ତାଳମର୍ଦ୍ଦଳ, ତାଳ ଓ ଖୋଳ ।

ତାଳମାଟନା—ଗ୍ରା. ବି. ଔଷଧ ବୃକ୍ଷବିଶେଷ, କୋଇଲଖିଆ ଦେଖ ।

ତାଳମାନ—ବି. (ଦ୍ୱନ୍ଦ୍ୱ)ସଙ୍ଗୀତର ତାଳ ଓ ମାନ ।

ତାଳମୂଳଆକଣ୍ଠା—ଗ୍ରା. ବି, ଯେଉଁ ଲୁହା କଣ୍ଟା ତାଳଗଛ ପରି ଅଗରୁ ମୂଳ ପର୍ଯ୍ୟନ୍ତ କ୍ରମଶଃ ସରୁ ହୋଇ ଗଢ଼ା ହୋଇଥାଏ ।

ତାଳମୂଳିକା—ସ୍ତ୍ରୀ. ବି. ତାଳମୂଳୀ ।

ତାଳମୂଳୀ—ସ୍ତ୍ରୀ. ବି. ସ୍ୱନାମଖ୍ୟାତ କ୍ଷୁପବିଶେଷ, ଦୀର୍ଘ କନ୍ଦମୂଳ ଜାତୀୟ କ୍ଷୁଦ୍ର ବୃକ୍ଷବିଶେଷ । [ ତେର ।

ତାଳମୂଷଳୀ—ଗ୍ରା.ବି, ତାଳମୂଳୀ ଗୁଳ୍ମର

ତାଳଯନ୍ତ୍ର—କ୍ଳୀ.ବି.ସୁଶ୍ରୁତୋକ୍ତ ଶଲ୍ୟୋଦ୍ଧାରଣାର୍ଥ ଯନ୍ତ୍ରବିଶେଷ ।

ତାଳରସ—ବି. (୬ତତ୍ପୁ) ଅଣ୍ଡିରା ତାଳଗଛର ଅପକ୍ୱ ଜଟାରୁ ବାହାରିବା ତାଡ଼ି ।

ତାଳରେଚନକ—ପୁଂ.ବି.ନଟ, ନର୍ତ୍ତକ, ନାଟୁଆ ।

ତାଳଲକ୍ଷଣ—ପୁଂ.ବି.(ବ.ବ୍ରୀ) ବଳରାମ ।

ତାଳଲକ୍ଷ୍ମା—ପୁଂ.ବି.(ବ.ବ୍ରୀ) ବଳରାମ ।

ତାଳବନ—କ୍ଳୀ.ବି. ବୃନ୍ଦାବନସ୍ଥିତ ତାଳପ୍ରଚୁର ବନଭେଦ । [ ଧନ୍ୟ ।

ତାଳବର—ଯା.ବିଂ.ଭାଗ୍ୟବାନ୍, ସ୍ୱନାମ-

ତାଳବରଡ଼ା—ଗ୍ରା, ବି. ତାଳ ଗଛର ଛତ୍ରାକୃତ ପତ୍ର ।

ତାଳବାୟା—ଗ୍ରା.ବି.ତାଳ ଗଛରେ ବସା ବାନ୍ଧି ରହୁଥିବା ଘରଚଟିଆ ଆକୃତିର ପକ୍ଷୀବିଶେଷ ।

ତାଳବାହୁଙ୍ଗା—ଗ୍ରା. ବି. ତାଳଗଛର ପତ୍ରଯୁକ୍ତ ଶାଖା ।

ତାଳବୁଣ୍ଡ—ଗ୍ରା. ବି. ତାଳବଣ, ତାଳଗଛର ଗୋଟା ।

ତାଳବୃନ୍ତ—କ୍ଳୀ. ବି. ବ୍ୟଞ୍ଜନ, ତାଳପତ୍ର ପଙ୍ଖା, (ପୁଂ.ବି)ସୋମବିଶେଷ ।

ତାଳବୃନ୍ତକ—ବି. ତାଳପତ୍ର ନିର୍ମିତ ବ୍ୟଞ୍ଜନ, ତାଳପତ୍ରର ପଙ୍ଖା ।

ତାଳବେଚନକ—ପୁଂ.ବି. (ତାଳ + ବଚ୍ + ଅନ + କ) ନାଟୁଆ, ନର୍ତ୍ତକ ।

ତାଳବେତାଳ—ବି.(ଦ୍ୱନ୍ଦ୍ୱ) ସ୍ୱନାମଖ୍ୟାତ ଉପଦେବତାଦ୍ୱୟ, ମହାଦେବଙ୍କ ଅନୁ-

ତରଦ୍ରବ୍ୟ ।

ତାଳବ୍ୟ—ବିଂ. (ତାଳୁ + ଯ) ତାଳୁସମ୍ବନ୍ଧୀୟ, ତାଳୁ ସାହାଯ୍ୟରେ ଉଚ୍ଚାରିତ ।

ତାଳବ୍ୟବର୍ଣ୍ଣ—ବି. ଇ, ଈ, ଚ ବର୍ଗ, ଓ ଶ ଏହିବର୍ଣ୍ଣ ବା ଅକ୍ଷରମାନ ।

ତାଳବ୍ୟଶ—ବି. ତାଳୁରୁ ଉଚ୍ଚାରିତ 'ଶ' ଅକ୍ଷର ।

ତାଳସିମୁଳୀ—ଗ୍ରା. ବି. ତାଳମୂଳୀର ଚେର, (ବିଂ) ଚିରସ୍ଥାୟୀ, ଚିରସ୍ଥାୟୀ ।

ତାଳସଜ—ଗ୍ରା. ବି. ଗ୍ରେଟ କଞ୍ଚା ତାଳ ଫଳ ମଧ୍ୟରୁ ବାହାରିବା ସୁଖାଦ୍ୟ କୋମଳ ପଦାର୍ଥ, ତାଳାସ୍ଥିମଜ୍ଜା ।

ତାଳସ୍ତନୀ—ସ୍ତ୍ରୀ. ବିଂ.(ବ.ବ୍ରୀ)ତାଳ ଫଳ ପରି ପୃଥୁଳ ସ୍ତନଯୁକ୍ତା (ସ୍ତ୍ରୀ) ।

ତାଲା—ଗ୍ରା. ବି. (ସଂ-ତାଳକ) ଦ୍ୱାରାବରୋଧ ଯନ୍ତ୍ର, କୁଲୁପ, କୋଠାର ମହଲା, ଉଚ୍ଚନାଦଜନିତ ଶ୍ରବଣ ଶକ୍ତି ରୋଧକ ଅବରୋଧ, ବିଂ.(ଏତେ) ତଳବିଶିଷ୍ଟ ।

ତାଲାଖ୍ୟା—ସ୍ତ୍ରୀ. ବି. ( ତାଳ + ଆଖ୍ୟା + ଅ)ବ.ବ୍ରୀ; ମୁରାନାମକ ଗନ୍ଧଦ୍ରବ୍ୟ ।

ତାଳାଙ୍କ—ପୁଂ.ବି. (ବ.ବ୍ରୀ) ବଳଦେବ, ଶ୍ରୀକୃଷ୍ଣଦେବ, ଶିବ, କରପତ୍ର, ଶାକବିଶେଷ, ମହାଲକ୍ଷଣ ସମ୍ପନ୍ନ ପୁରୁଷ, ପୁସ୍ତକ, ପୋଥି ।

ତାଳାଙ୍କୁର—କ୍ଲୀ. ବି. ତାଳଝୁଙ୍କୁ ଦେଖ, (ପୁଂ.ବି) ମନଃଶିଳା ।

ତାଲାଚାବି—ଗ୍ରା. ବି. ତାଲା, କୋଲପ, କୋଲପ ଓ ତହିଁର କଞ୍ଚି ।

ତାଲାଦେବା—ଗ୍ରା.କ୍ରି.ଘରର କବାଟରେ କୋଲପ ପକାଇବା, ଦ୍ୱାର ବନ୍ଦ କରିବା ।

ତାଳାନ୍ତ—ବି. ସଙ୍ଗୀତରେ ଦିଆଯିବା ତାଳର ବିରାମ, (ଗ୍ରା.ବି)ଅତ୍ୟନ୍ତ କ୍ଲାନ୍ତ, (ଗ୍ରା.ବିଂ) ଆକ୍ରାନ୍ତ, ଅତିକ୍ଲାନ୍ତ ।

ତାଳାବଚର—ପୁଂ. ବି. ( ତାଳ+ଅବ +ଚର+ଅ)ନଟ, ନର୍ତ୍ତକ, ନାଟୁଆ ।

ତାଲାମୁଦ—ଗ୍ରା. ବି. କୌଣସି ଘରେ କୋଲପ ପଡ଼ି ତହିଁ ଉପରେ ଜଉଆଦି ମୁଦ ବା ମୋହର ଦିଆଯିବା ।

ତାଳାସ୍ଥିମଜ୍ଜା—ବି. ତାଳସଜ, ତାଳଝୁଙ୍କୁ ।

ତାଳି—ସ୍ତ୍ରୀ.ବି.ଭୂମ୍ୟାମଲକୀ.ଭୂଇଁଅଁଳା, (ଗ୍ରା.ବି) ଦୁଇ କରତାଳର ପରସ୍ପର ଆଘାତଜନିତ ଶବ୍ଦ, ଚିରା ଲୁଗାର ଛିଦ୍ରରେ ପକାଯିବା ବସ୍ତ୍ରଖଣ୍ଡ, କୁଟାରେ ପକାଇବା ଚିଲା, ଆଘାତ, ଶ୍ରବଣାବରୋଧ ।

ତାଳିକ୍—ଯା. ବି. ସ୍ଥଗିତ,ତାଲିକା ।

ତାଳିକ—ପୁଂ. ବି. (ତାଳ+ଇକ)କରତାଳି, କରତଳ, ଗୃପୁଡ଼ା, ବନ୍ଧନ, ମୋହରମାରିବା, ମୁଦକରିବା ।

ତାଳିକଟ—ପୁଂ. ବି. ଦେଶବିଶେଷ ।

ତାଳିକା—ସ୍ତ୍ରୀ. ବି.( ତାଳ+କ+ଆ ) ଚପେଟ, ଗୃପତ୍ର, ତାଳମୂଳୀ, ତାମ୍ରବଲ୍ଲୀ, ମଞ୍ଜିଷ୍ଠା,ତାଲା, ଫର୍ଦ୍ଦ, ତାଲିକା, କାଗଜର ପୁଳିନ୍ଦା ।

ତାଲିକା—ଯା. ବି. ଫର୍ଦ୍ଦ, ଦ୍ରବ୍ୟର ନାଏ, ଫର୍ଦ୍ଦ,ଲିଷ୍ଟ ।

ତାଳିତ—କ୍ଲୀ. ବି. ବାଦ୍ୟଖଣ୍ଡ, ରଞ୍ଜିତ ବସ୍ତ୍ର, ଗୁଣ, ଟଙ୍କ . ଦଉଡ଼ି ।

ତାଳିଦେବା—ଗ୍ରା.କ୍ରି.ହାତ ତାଳି ଦେବା, ଦୁଇ କରତଳ ଦ୍ୱାରା ଶବ୍ଦ କରିବା, ତାଳି ପକାଇବା, (ଲ.ଅର୍ଥ ) ଯୋଗଦେବା, ଉପହାସ କରିବା ।

ତାଳିପକା(କୋ)ଇବା—ଗ୍ରା.କ୍ରି. ଜୀର୍ଣ୍ଣ ବସ୍ତ୍ର ବା ଧାତୁ ପାତ୍ରର ଛିଦ୍ରରେ ନୂତନ ବସ୍ତ୍ର ବା ଧାତୁଖଣ୍ଡ ପକାଇବା ।

ତାଲିମ—ଯା. ବି. ଅଭ୍ୟାସ ଦ୍ୱାରା ଶିକ୍ଷା, ଶିକ୍ଷାଦାନ, ପ୍ରାଥମିକ ଶିକ୍ଷା, (ବିଂ) ଶିକ୍ଷିତ ।

ତାଲିମ୍‌କରିବା—ଗ୍ରା. କ୍ରି. ପ୍ରାଥମିକ ଶିକ୍ଷା ଦେବା, ମଣକରିବା ।

ତାଲିମ୍‌ତରିବତ୍—ଯା. ବି. ଶିକ୍ଷା ।

ତାଳିଶ୍—ପୁଂ.ବି. (ତଳ+ଇଶ)ପର୍ବତ ।

ତାଳୀ—ସ୍ତ୍ରୀ. ବି. ( ତାଳ+ଈ ) ତାଡ଼ୀ, ତାଳଜାତ ସୁରା, ତାଳଗଛ, ବାଡ଼ିଅଁଳା, ହେନ୍ତାଳଗଛ, ତାଳବନ, ତାଲା, ଗୃହକାଠି, ତାଳମୂଳୀ, ଭୂମ୍ୟାମଲକୀ, ଅଡ଼ହର, ହରଡ଼, ତାଳୀଶପତ୍ରାଖ୍ୟ ବୃକ୍ଷ ।

ତାଳୀପତ୍ର—କ୍ଲୀ. ବି. ତାଳୀଶପତ୍ର ।

ତାଳୀପୁଲକ—ପୁଂ. କ୍ଲୀ. ବି. କରତାଳ, ମନ୍ଦିରା, କୁରୁଜ ।

ତାଳୀଶ—କ୍ଲୀ. ବି. ସ୍ୱନାମଖ୍ୟାତ ବୃକ୍ଷବିଶେଷ, ତାଳୀଶ ପତ୍ର ।

ତାଳୀଶକ—କ୍ଲୀ. ବି. ତାଳୀଶ ଦେଖ ।

ତାଳୀଶପତ୍ର—କ୍ଲୀ. ବି. ଭୂମ୍ୟାମଲକୀ, ତାଳୀଶପତ୍ରାଖ୍ୟ, ହିମାଳୟର ଦେବଦାରୁବର୍ଗର ତରୁ ବିଶେଷର ପତ୍ର ।

ତାଳୁ—କ୍ଲୀ. ବି. (ତୃ+ଣ+ଉ) ଜିହ୍ୱେନ୍ଦ୍ରିୟର ଅଧିଷ୍ଠାନ ସ୍ଥାନ, ମୂର୍ଦ୍ଧା ଓ ଦନ୍ତର ମଧ୍ୟବର୍ତ୍ତୀ ସ୍ଥାନ, ପାଟି ଉପରେ ସ୍ଥିତ, (ଗ୍ରା.ବି)ମନୁଷ୍ୟ ମୁଣ୍ଡର ଊର୍ଦ୍ଧ୍ୱତମ ଅଂଶ, ପର୍ବତାଦିର ଶିଖ ।

ତାଳୁଆ—ଗ୍ରା. ବି. ତାଳୁ, ମୁଣ୍ଡର ତାଳୁ, (ଗ୍ରା.ବିଂ)ଯେ ଠିକ୍‌ମତେ ଗୀତର ତାଳ ପକାଏ ।

ତାଳୁଉଠା(ଠେ)ଇବା—ଗ୍ରା. କ୍ରି. ପିଲା ଜନ୍ମହେବା ମାତ୍ରେ ତାହାର ପାଟିରେ ଆଙ୍ଗୁଠି ପୂରାଇ ତାଳୁ ଉପରଆଡ଼କୁ ଟିପିଦେବା ।

ତାଳୁକ—କ୍ଲୀ. ବି. ତାଳୁ, ତାଳୁରୋଗ, ଠାକରା ।

ତାଲୁକ—ଯ. ବି. ଜମିଦାରୀ ମାହାଲ, ଭୂସମ୍ପତ୍ତିର ଗୋଟିଏ ବିଭାଗ,ଅଧିକାର, ଧରଗଟୋ, ଭୂସମ୍ପତ୍ତି ।

ତାଲୁକଦାର—ଯା. ବି. ଭୂମ୍ୟଧିକାରୀ, ତାଲୁକର ଅଧିକାରୀ,ଗୁଜରାଟର ପ୍ରତ୍ୟେକ ସମ୍ପତ୍ତିଶାଳୀ ଲୋକ ।

ତାଲୁକଦାରୀ—ଯା. ବି. ତାଲୁକଦାର ବା ଜମିଦାରର କାର୍ଯ୍ୟ ବା ବୃତ୍ତି ।

ତାଳୁକଣ୍ଟକ—ବି. ଶିଶୁମାନଙ୍କର ତାଳୁଗତ ରୋଗବିଶେଷ ।

ତାଲୁକମୁଲକ—ଯା. ବି. ମହାଲମୁଲକ, ଜମିଦାରୀ, ନାନାଶ୍ରେଣୀର ଭୂସମ୍ପତ୍ତି ।

ତାଲୁକା—ଯା. ବି. ତାଲୁକ ଦେଖ ।

ତାଳୁକା—ସ୍ତ୍ରୀ.ବି.ତାଳୁର ଦୁଇଟି ନାଡ଼ୀ, (ଗ୍ରା.ବି) ପାଟିର ତାଳୁ,ଗୋଡ଼ତଳପାର

ମଧ୍ୟଭାଗ; ଗୋଡ଼ତଳପା ବା ତାଳୁକାରେ ଉଠିବା ବ୍ରଣ; ମୁଣ୍ଡର ତାଳୁ ।

**ତାଳୁକଣ୍ଟ**—ପୁଂ. ବ. (ବ.ବ୍ରୀ) କୁମ୍ଭୀର, (ସ୍ତ୍ରୀ.ବ) ତାଳୁକଣ୍ଟା; ଘଣ୍ଟିକା ।

**ତାଳୁପାକ**—ବ. ସୁଶ୍ରୁତୋକ୍ତ ତାଳୁଗତ ରୋଗବିଶେଷ ।

**ତାଳୁପାତ**—ବ. ଶିଶୁମାନଙ୍କର ତାଳୁଗତ ରୋଗ ଭେଦ ।

**ତାଳୁପୀଡ଼କ**—ପୁଂ.ବ. ତାଳୁପାତ ରୋଗ ବା ତାଳୁପଡ଼ିବା ।

**ତାଳୁଯନ୍ତ୍ର**—କ୍ଳୀ. ବ. ମତ୍ସ୍ୟର ତାଳୁପରି ଦ୍ୱାଦଶାଙ୍ଗୁଳ ଯନ୍ତ୍ରଭେଦ ।

**ତାଳୁର**—ପୁଂ. ବ. ( ତାଳ+ଉର ) ଆବର୍ତ୍ତ, ଜଳଭଉଁରି ।

**ତାଳୁରନ୍ଧ୍ର**—କ୍ଳୀ. ବ. (୬ତତ୍) ତାଳୁମଧ୍ୟସ୍ଥିତ ଛିଦ୍ରବିଶେଷ, ବ୍ରହ୍ମରନ୍ଧ୍ର ।

**ତାଳୁବିଦ୍ରଧି**—ପୁଂ. ବ. ତାଳୁଗତ ଶୋଥ ବିଶେଷ । [ ହେବା ।

**ତାଳୁବିଶୋଷଣ**—କ୍ଳୀ. ବ. ତାଳୁ ଶୁଷ୍କ-

**ତାଳୂର**—ପୁଂ.ବ. (ତାଳ+ଊର) ତାଳୁର ଦେଖ ।

**ତାଳୂଷକ**—କ୍ଳୀ. ବ. ତାଳୁ ଦେଖ ।

**ତାଳେଇବା**—ଗ୍ରା. କ୍ରି. ଫୁଲିବା, ଦରଜ ହେବା ।

**ତାଳେଶ୍ୱରନଦୀ**—ଗ୍ରା. ବ. ଯଶୋର ଜିଲ୍ଲାର ଗୋଟିଏ ନଦୀ ।

**ତାବକ**—ବିଂ.(ଯୁଷ୍ମଦ୍+ଅ)ତ୍ୱତ୍ସମ୍ବନ୍ଧୀୟ, ତ୍ୱଦୀୟ ।

**ତାବକୀନ**—ବିଂ. ତ୍ୱତ୍ସମ୍ବନ୍ଧୀୟ, ତ୍ୱଦୀୟ, ତୁମ୍ଭର ।

**ତାବତ୍**—ଅବ୍ୟ. ସାକଲ୍ୟ, ଅବଧି, ଅବଧାରଣ, ପ୍ରଶଂସା, ପକ୍ଷାନ୍ତର, ସଂଗ୍ରାମ, ଅଧିକାର,ତଦା, (ବିଂ) ପରିମାଣବିଶିଷ୍ଟ ।

**ତାବତ୍କ**—ବି.ବିଂ.ସେହିମୂଲ୍ୟରେ କିଣା ।

**ତାବତ୍କୃତ୍ୱସ**—କ୍ରି. ବିଂ. ତତ୍ସଂଖ୍ୟକ ।

**ତାବଦ୍ଦ୍ୱୟସ**—ବିଂ. ତାବତ୍ ଦେଖ ।

**ତାବତିକ**—ବିଂ. ସେହି ପରିମାଣରେ କିଣାହୋଇଥିବା ।

**ତାବତଥ**—ବିଂ. ତାବତ୍ର ପୂରଣ,ସେହି ପରିମାଣର ପୂରଣ ।

**ତାବନ୍ମାତ୍ର**—ବିଂ. ସେହିପରିମିତ ।

**ତାବର**—କ୍ଳୀ. ବ. ଧନୁର୍ଗୁଣ ।

**ତାବିଜ**—ଗ୍ରା. ବି. ମୁସଲମାନୀ କବଚ, ଅଳଙ୍କାରବିଶେଷ ।

**ତାବିଷ**—ପୁଂ. ବ. ସ୍ୱର୍ଗ, ସମୁଦ୍ର ।

**ତାବିଷୀ**—ସ୍ତ୍ରୀ. ବ. ଦେବକନ୍ୟା, ନଦୀ, ପୃଥିବୀ ।

**ତାବୀଷ**—ପୁଂ.ବ. ସ୍ୱର୍ଗ,ସମୁଦ୍ର, କାଞ୍ଚନ ।

**ତାବୀଷୀ**—ସ୍ତ୍ରୀ.ବ.ଚନ୍ଦ୍ରକନ୍ୟା,ଇନ୍ଦ୍ରକନ୍ୟା

**ତାବୁର**—ବି. ବୃଷରାଶି ।

**ତାଷ୍ଟ୍ର**—ବିଂ. ବିଶ୍ୱକର୍ମାନିର୍ମିତ ।

**ତାସ୍**—ଯା. ବ. ଖେଳିବାପାଇଁ ବ୍ୟବହୃତ ଚିତ୍ରିତ ମୋଟା କାଗଜ ଖଣ୍ଡମାନ

**ତାସ୍କ**—ପ୍ରା. (ସମ୍ବ) ବ. ଗିନା,ଠାଳିଆ ।

**ତାସ୍ଖେଳ ବା ଖେଳା**—ଗ୍ରା ବ. ତାସ୍ ସାହାଯ୍ୟରେ କରାଯିବା କ୍ରୀଡ଼ା ।

**ତାସଙ୍ଗ**—ପ୍ରା. (ସମ୍ବ) ବ. କଂସାପାତ୍ର, କୁମ୍ଭାକୃତି କଂସା ।

**ତାସଙ୍କି**—ପ୍ରା. (ସମ୍ବ) ବ. ଗିନା, କଟୋରି, ସାନ ଥାଳି ।

**ତାସଂଶବାନ**—ଗ୍ରା. ବ. ଲୁଗା ବୁଣାଯିବା ପୂର୍ବରୁ ଟାଣି ସୂତାକୁ ମଣ୍ଡଦେଇ ମାଜିବା, ତନ୍ତୀମାନେ ଯେଉଁ ମାର୍ଜନୀଦ୍ୱାରା ସୂତାକୁ ମାଜନ୍ତି ।

**ତାସା**—ଗ୍ରା. ବ. ପଲମ ଉପରେ ଚମଡ଼ା ଛୁଆଣି ହୋଇଥିବା ଆନଦ୍ଧ ବାଦ୍ୟବିଶେଷ ।

**ତାସୁନ**—ପୁଂ. ବ. (ତାସ+ଉନ) ଶଣ ବୃକ୍ଷ, (ବିଂ) ତତ୍ସମ୍ବନ୍ଧୀୟ ।

**ତାସୁନୀ**—ସ୍ତ୍ରୀ. ବ. ( ତାସୁନ+ଈ ) ଶଣନିର୍ମିତ ମେଖଳା ।

**ତାସ୍କର୍ଯ୍ୟ**—କ୍ଳୀ. ବ. ( ତସ୍କର+ଯ ) ତସ୍କରତା, ଚୌର୍ଯ୍ୟ ।

**ତାସ୍ୟନ୍ଦ୍ର**—କ୍ଳୀ. ବ. ସାମଭେଦ ।

**ତାହା**—ଗ୍ରା.(ସର୍ବ-ତତ୍)ସେହି, ତାହାର ତାହାକୁ, ତାକୁ, ସେହି ।

**ତାହାଁ**—ଗ୍ରା. (ସର୍ବ) ତହିଁ, ସେଠାରେ ।

**ତାହାଁତକ୍**—ଗ୍ରା. ଅବ୍ୟ. ତେତେଦୂର, ତାବତ୍, ସେହିସ୍ଥାନ ପର୍ଯ୍ୟନ୍ତ, ସେହିକାଳ ପର୍ଯ୍ୟନ୍ତ ।

**ତାହିଁତାହିଁ**—ଗ୍ରା. (ସର୍ବ) ସେହି ସେହି ସ୍ଥାନମାନଙ୍କରେ, ତାବତ୍.ତହିଁ ତହିଁ, ସେହି ସେହି ସ୍ଥାନମାନଙ୍କ ପର୍ଯ୍ୟନ୍ତ ।

**ତାହାଠି(କି)କୁ**—ଗ୍ରା. (ସର୍ବ) ସେହିବ୍ୟକ୍ତି ନିକଟକୁ, ତାହାଠାରୁ,ତାହାଅପେକ୍ଷା ।

**ତାହାଠୁଁ**—ଗ୍ରା. (ସର୍ବ) ସେହିବ୍ୟକ୍ତିଠାରୁ, ତଦପେକ୍ଷା ।

**ତାହାକୋଲି**—ଗ୍ରା. ଅବ୍ୟ. ତହୁଁ, ସେହି ହେତୁରୁ, ସେଥିଯୋଗୁଁ ।

**ତାହା(ର)ହିଁ**—ଗ୍ରା. (ସର୍ବ) ତାହାରହିଁ, ନିଶ୍ଚୟ ତାହାର ଅନ୍ୟ କାହାର ନୁହେ ।

**ତାହାହେଲେ**—ଗ୍ରା. ଅବ୍ୟ. ତେବେ, ଉକ୍ତ ବିଷୟ ହେଲେ ବା ଘଟିଲେ, ସେପରି ଘଟନାରେ, ସେପରିସ୍ଥଳରେ ।

**ତାହି**—ଗ୍ରା. (ସର୍ବ) ତାହାମାତ୍ର, କେବଳ ତାହା ।

**ତାହିଁ**—ଗ୍ରା. ଅବ୍ୟ. ତହିଁ, ସେଠାରେ, (ଗ୍ରା.ସର୍ବ) ତହିଁ ଦେଖ ।

**ତାହିତ**—ଗ୍ରା.ବ ଓ ସର୍ବ.ତାଇତ ଦେଖ ।

**ତାହିବା**—ଗ୍ରା. କ୍ରି. ତାଇବା ଦେଖ ।

**ତାହିହେବା**—ଗ୍ରା. କ୍ରି. ( ଶ୍ୱାସରୋଗୀ ) ଶ୍ୱାସର ହିକ୍କାରେ ଉଠିବା ପଡ଼ିବା ପ୍ରକାରେ କ୍ଷୁବ୍ଧହେବା ।

**ତାହୁତ୍**—ଯା. ବ. ଚୁକ୍ତି, କର, ଖଜଣା ।

**ତାହୁତଖାନା**—ଯା. ବ. ଚକିତ୍ସାଳୟ, ହାଁସପାତାଳ ।

**ତାହେରପୁର**—ଗ୍ରା. ବ. ବଙ୍ଗଳାର ଗୋଟିଏ ପରଗଣା ।

**ତି**—ଅବ୍ୟ. ଇତଶବ୍ଦାର୍ଥ,(ଗ୍ରା:ବିଂ)ତିନି ।

**ତିଅ(ଭ)ଣ**—ଗ୍ରା. ବ. ( ସଂ-ତେମନ ) ବ୍ୟଞ୍ଜନ, ତରକାରୀ ।

**ତିଅଣଶାଗ**—ଗ୍ରା. ବ. ଭାତସଙ୍ଗେ ଖିଆଯିବା ବ୍ୟଞ୍ଜନାଦି ।

**ତିଅର**—ଗ୍ରା. ପୁଂ. ବ. ( ସଂ-ଧୀବର ) ମାଛମାରିବା ଜାତିବିଶେଷ,ଏକପ୍ରକାର ସାମୁଦ୍ରିକ ମାଛ, ବଜୁଲାମାଛ ।

**ତିଆ**—ପ୍ରା.(ଗଞ୍ଜାମ)ବ.ତିଆପୁଇ ଖେଳର

୩, ୭, ୧୧ ଓ ୧୫ ସଂଖ୍ୟକ ଦାନ ।

ଢଆଡ଼ୀ—ଗ୍ରା.ବି. (ସଂ-ତ୍ରିପାଠୀ)ବୈଦିକ ବ୍ରାହ୍ମଣମାନଙ୍କର ବଂଶଗତ ଉପାଧି ବିଶେଷ, ତ୍ରିପାଠୀ ।

ଢଆଡ—ଗ୍ରା. ବିଂ, ତୃତୀୟ, ସାମାନ୍ୟ ।

ଢଆର(ର)—ଯା. ବିଂ. ପ୍ରସ୍ତୁତ, ନିର୍ମିତ, ସୁସଜ୍ଜିତ, ଉଦ୍ୟତ, ତତ୍ପର, ମୁସ୍ତେଜ, ବ୍ୟବହାରରେ ଲାଗିବାପାଇଁ ସମ୍ପୂର୍ଣ୍ଣରୂପେ ଉପଯୁକ୍ତ, ନିଷ୍ପନ୍ନ, ସମ୍ପନ୍ନ, ଉତ୍ତମରୂପେ ପରିପୁଷ୍ଟ, ମଜବୁତ ଓ ହୃଷ୍ଟପୁଷ୍ଟ, ସ୍ଥୂଳ, ବନ୍ଦୋବସ୍ତ କରାଯାଇଥିବା, (ବି) ନିର୍ମାଣ, ରଚନା, ସଜ୍ଜୀକରଣ, ତତ୍ପରତା, ପୁଷ୍ଟତା ।

ଢଆର(ର)କରିବା--ଗ୍ରା.କ୍ରି.ପ୍ରସ୍ତୁତ କରିବା, ନିର୍ମାଣ କରିବା, ରଚନା କରିବା, ସଜାକରିବା ।

ଢଆରଣ—ଗ୍ରା. ବି. ପ୍ରବୋଧବାକ୍ୟ,ଉପଦେଶ, ଗାଳି ।

ଢଆରିବା—ଗ୍ରା. କ୍ରି. ଗାଳିଦେବା,ଆକଟ କରିବା, ମନ୍ଦକଥାରୁ ନିବର୍ତ୍ତାଇବା, ବିଶିଷ୍ଟ ଉପଦେଶ ଦେବା, କୌଣସି ବିଷୟ ବୁଝାଇବା, ଫରମାସି କରିବା ।

ଢଆସୀ—ଗ୍ରା. ବିଂ. (ସଂ-ତ୍ର୍ୟହ) କୌଣସି ଘଟନା ବା ଉତ୍ସବାଦିର ତୃତୀୟ ଦିବସ, ତିନିଦିନର ।

ଢଉଣିଆ—ପ୍ରା. (ପୁରୀ) ବି. ପୁରୀ ବଡ଼ଦେଉଳରେ ମହାପ୍ରସାଦ ଢଅଣପାଇଁ ପରିବା କାଟିବା ଶୂଦ୍ରଜାତିବିଶେଷ ।

ଢଓଡ଼—ଗ୍ରା. ବି. କ୍ଷେତ୍ର ବା ଜମିର ତୃତୀୟ ଥର ଚଷ ।

ଢକ—ଗ୍ରା.ବି. ବାଘ୍ରା ଚଢ଼େଇ ।

ଢକ(ଖ)—ଗ୍ରା.ବି.ଏକକଡ଼ିଆ,କଡ଼ିଖୋର

ଢକନା—ଗ୍ରା.ବି. ତିନି ଶାଖାବିଶିଷ୍ଟ ଅସ୍ତ୍ର, (ବିଂ) ତିନିଗୋଟି ଶାଖା ବା ଗୋଜବିଶିଷ୍ଟ ।

ଢକାଠିଆ—ଗ୍ରା.ବି. ଜିନିସପତ୍ର ରଖିବା ନିମନ୍ତେ ତିନିଖଣ୍ଡି କାଠି କନ୍ଥର କୋଣରେ ପୋତି ଯାଇ ତିଆରହୋଇଥିବା ଆଧାର ।

ଢକାଦ—ପୁଂ.ବି.ପାଣିନିଙ୍କ ଗଣବିଶେଷ ।

ଢକ୍ତ—ପୁଂ.ବି.(ତିକ + କ.ତ) ପିତାରସ, ପିତା, ପର୍ପଟକ ଔଷଧି,(ବିଂ)ତିକ୍ତରସଯୁକ୍ତ, ସୁଗନ୍ଧ,(ଗ୍ରା.ବି) କୌଣସି ବ୍ୟକ୍ତିର ମୃତ୍ୟୁର ପରଦିନ ତାହାର କୁଟୁମ୍ବମାନେ ଅଣହଳଦିଆ ଅଣଫୁଟା ଡାଲି ଏବଂ ନିମ୍ବପିତା ସହିତ ଖାଇବା ଅନ୍ନାଦି, ମୃତ୍ୟୁର ପର ଦିବସ ।

ଢକ୍ତକ—ପୁଂ.ବି.(ତିକ୍ତ + କ)କୁଟଜବୃକ୍ଷ, କୁରେଇ ଗଛ, ବରୁଣଗଛ, ନିମ୍ବଗଛ, ପଟୋଳ, ଚିରେଇତା, କୃଷ୍ଣଖଦିର, ଇଙ୍ଗୁଦୀ, ତିକ୍ତରସ,(ବିଂ)ତିକ୍ତରସଯୁକ୍ତ ।

ଢକ୍ତକନ୍ଦିକା—ସ୍ତ୍ରୀ.ବି. ଗନ୍ଧପତ୍ରୀ ।

ଢକ୍ତକା—ସ୍ତ୍ରୀ.ବି.(ତିକ୍ତ + କ + ଆ)ପିତାଲାଉ, ତୁମ୍ବୀ । [ ଗୁଳ୍ମ ।

ଢକ୍ତକାଣ୍ଡ—ପୁଂ.ବି. ଭୂନିମ୍ବ, ଚିରେଇତା

ଢକ୍ତକାଣ୍ଡେରୁହା—ସ୍ତ୍ରୀ.ବି. କଟୁକୀ, ପିତ୍ତକଟୁକୀ ।

ଢକ୍ତଗନ୍ଧା —ସ୍ତ୍ରୀ.ବି.(ବ.ଗ୍ରୀ)ବରାହକାନ୍ତା ।

ଢକ୍ତଗନ୍ଧିକା—ସ୍ତ୍ରୀ.ବି.ବରାହକାନ୍ତା ।

ଢକ୍ତଗୁଞ୍ଜା—ସ୍ତ୍ରୀ.ବି. କରଞ୍ଜ, କ୍ଷୁଦ୍ରରସା, ରସଘା, ବଡ଼ପର୍ପଟୀ ।

ଢକ୍ତଦ୍ଧୃତ—ସ୍ତ୍ରୀ.ବି.ସୁଶ୍ରୁତୋକ୍ତଘୃତଭେଦ ।

ଢକ୍ତତଣ୍ଡୁଲୀ—ସ୍ତ୍ରୀ.ବି. ପିପ୍ପଳୀ ।

ଢକ୍ତତା—ସ୍ତ୍ରୀ.ବି.କଟୁତା, ତିକ୍ତରସ,ପିତାଗୁଣ, ତିକ୍ତସ୍ୱାଦ ।

ଢକ୍ତତୁଣ୍ଡୀ—ସ୍ତ୍ରୀ.ବି. ପିତାଲାଉ ।

ଢକ୍ତତୁମ୍ବୀ—ସ୍ତ୍ରୀ.ବି.କଟୁତୁମ୍ବୀ,ପିତାଲାଉ ।

ଢକ୍ତଦୁଗ୍ଧା—ସ୍ତ୍ରୀ.ବି.(ବ.ଗ୍ରୀ) କ୍ଷୀରଣୀବୃକ୍ଷ, ଅଜଶୃଙ୍ଗୀ, ସ୍ୱର୍ଣ୍ଣକ୍ଷୀରୀ, ମେଣ୍ଢାଶିଙ୍ଘା ।

ଢକ୍ତଧାତୁ—ପୁଂ.ବି.ପିତ୍ତ,(କ.ଧା ) ଶରୀରସ୍ଥ ପିତ୍ତ ।

ଢକ୍ତପତ୍ର—ପୁଂ. ବି. କର୍କୋଟକ, ପିତାପତ୍ର, କାଙ୍କଡ଼ ।

ଢକ୍ତପର୍ଣ୍ଣିକା—ସ୍ତ୍ରୀ.ବି. ଗୋରକ୍ଷ କର୍କଟୀ, କଇଁଚିକାକୁଡ଼, ମହାକାଳ ।

ଢକ୍ତପର୍ଣ୍ଣୀ—ସ୍ତ୍ରୀ. ବି. ଗୋରକ୍ଷ କର୍କଟୀ, ମହାକାଳ ।

ଢକ୍ତପର୍ବା—ସ୍ତ୍ରୀ.ବି. ଦୁବ,ହଳମୋଚିକା, ହଳଦିମିଶ୍ର ଶାଗ,ବ୍ରାହ୍ମୀଶାକ,ଗୁଳୁଚ,ଯଷ୍ଟିମଧୁ ଲତା, ସୂର୍ଯ୍ୟମୁଖୀ ।

ଢକ୍ତପୁଷ୍ପା—ସ୍ତ୍ରୀ.ବି.(ବ.ଗ୍ରୀ)ପାଠା,ଅକାନବିନ୍ଧ, ପିତ ଫୁଲ ।

ଢକ୍ତଫଳ—ପୁଂ.ବି. କତକବୃକ୍ଷ, ନିର୍ମଳାଫଳ, ରିଠାଫଳ, ତିକ୍ତଫଳକ ବୃକ୍ଷ ମାତ୍ର ।

ଢକ୍ତଫଳା—ସ୍ତ୍ରୀ.ବି.ଯବତିକ୍ତା ଲତା,କଣ୍ଟକାରୀ, ମୁଣ୍ଡିକାକୁଡ଼, ବାର୍ତ୍ତାକୀ,ଖରଭୂଜ, ତରଭୁଜ ।

ଢକ୍ତଭଦ୍ରକ—ପୁଂ.ବି. ପଟୋଳ ।

ଢକ୍ତମରିଚ—ପୁଂ.ବି.କନକବୃକ୍ଷ,ନିର୍ମଳାଫଳ, ରିଠା ।

ଢକ୍ତଯବା—ସ୍ତ୍ରୀ.ବି. ଶଙ୍ଖିନୀ ।

ଢକ୍ତରସ—ବି. (କ.ଧା) ଛଅଗୋଟି ରସ ମଧ୍ୟରୁ ଏକତମ,(ବିଂ) ପିତା ।

ଢକ୍ତରସା—ସ୍ତ୍ରୀ.ବି. ବ୍ରାହ୍ମୀଶାକ ।

ଢକ୍ତରାଜ—ଗ୍ରା.ବି. ରୋହତକ, ନିମ୍ବାଦିବର୍ଗର ତରୁବିଶେଷ । [ କଟୁକୀ ।

ଢକ୍ତରୋହିଣିକା—ସ୍ତ୍ରୀ.ବି. କଟୁକୀ, ପିତ୍ତ-

ଢକ୍ତରୋହିଣୀ—ସ୍ତ୍ରୀ.ବି. କଟୁକୀ,କଟଫଳ, ପିତ୍ତକଟୁକୀ ।

ଢକ୍ତଲା—ସ୍ତ୍ରୀ.ବି.ଶଙ୍ଖିନୀ । [ସମୂହ ।

ଢକ୍ତବର୍ଗ—ପୁଂ.ବି. ତିକ୍ତରସାତ୍ମକ ଦ୍ରବ୍ୟ-

ଢକ୍ତବଲ୍ଲୀ—ସ୍ତ୍ରୀ.ବି.ମୂର୍ବାଲତା,ତିକ୍ତଲତାମାତ୍ର ।

ଢକ୍ତବୀଜା—ସ୍ତ୍ରୀ.ବି.କଟୁତୁମ୍ବୀ, ପିତାଲାଉ ।

ଢକ୍ତଶାକ—ପୁଂ. ବି. ଖଦିରବୃକ୍ଷ, ବରୁଣ ବୃକ୍ଷ,ପତ୍ରସୁନ୍ଦର ବୃକ୍ଷ,(କ୍ଲୀ.ବି)ପିତାଶାଗ ।

ଢକ୍ତଶାକତରୁ—ପୁଂ. ବି. ଶ୍ୱେତପ୍ରସୂନକ ବୃକ୍ଷ ।

ଢକ୍ତଶାକଦ୍ରୁ—ପୁଂ. ବି. ବରୁଣବୃକ୍ଷ ।

ଢକ୍ତସାର—ପୁଂ. ବି. ଖଦିର, ବିଟଖଦିର ବୃକ୍ଷ, ଶୁଆବାବଲି ଗଛ, (କ୍ଲୀ. ବି)ଦୀର୍ଘ ରୋହିଷକ ତୃଣ, ଏକଜାତୀୟ ଘାସ, ତିକ୍ତସାରକ ବୃକ୍ଷମାତ୍ର, ତିକ୍ତସାର, ପିତାସାର ।

ଢକ୍ତା—ସ୍ତ୍ରୀ. ବି. କଟୁରୋହିଣୀ, କଟୁକୀ, ଅକାନବିନ୍ଧ,ଯବତିକ୍ତା ଲତା, ତରଭୁଜ,

ଲତାକସ୍ତୂରୀ ।
ତିକ୍ତାଖ୍ୟା—ସ୍ତ୍ରୀ. ବ. (ବ.ଗ୍ରୀ)ପିତାଲଉ ।
ତିକ୍ତାଙ୍ଗା—ସ୍ତ୍ରୀ.ବ.ପାତାଳଗରୁଡ଼ ଲତା ।
ତିକ୍ତାମୃତା—ସ୍ତ୍ରୀ. ବ. ଲତାବିଶେଷ ।
ତିକ୍ତାହ୍ୱସ୍ୱା—ସ୍ତ୍ରୀ.ବ. (ବ.ଗ୍ରୀ)ପିତାଲଉ ।
ତି କା—ସ୍ତ୍ରୀ. ବ. (ତିକ୍ତକ+ଆ) ପିତା-ଲଉ, କାକମାଚ, କଟୁକୀ ।
ତିକ୍ରିର—ବି. ତିତ୍ତିର, ସୁସ୍ୱରବାଦ୍ୟଯନ୍ତ୍ର. ମହୁରୀ, ଭୁମଣ୍ଡ, ନାଗେଶ୍ୱରଯନ୍ତ୍ର ।
ତିଷ(ଖ)—ଗ୍ରା. ବଂ. ତୀକ୍ଷ୍ଣ ଦେଖ ।
ତିଖଡ଼—ଗ୍ରା. ବ. ଗୋଲମାଲ, କଳି, ବିଘ୍ନ, ବିବାଦ ।
ତିଖର—ଗ୍ରା. ବ. କଷ୍ଟଭି, ମୀମାଂସା, (ଗ୍ରା. ବଂ) କଷ୍ଟକ୍ଷ୍ମ ।
ତିଗିରିଆ—ଗ୍ରା. ବ. ଓଡ଼ିଶାର ଗଡ଼ଜାତ ରାଜ୍ୟ ବିଶେଷ ।
ତିଗ୍ମ--କ୍ଲୀ.ବ.(ତିଜ୍+ମ)ତୀକ୍ଷ୍ଣତା,ଉଷ୍ଣତା, କଟୁତା, ପିପ୍ପଳୀ, ବଜ୍ର, ପୁରୁବଂଶୀୟ ରାଜା, କ୍ଷତ୍ରିୟବିଶେଷ, (ବଂ—କ.ମ) ପ୍ରଖର,ତୀକ୍ଷ୍ଣ,ଉଷ୍ଣ,ଉଦ୍ଧତ,କଟୁ,ରାଗ ।
ତିଗ୍ମକର—ପୁଂ. ବ ଓ ବଂ. ତିଗ୍ମାଂଶୁ ଦେଖ ।
ତିଗ୍ମକେତୁ—ପୁଂ.ବ. ଧ୍ରୁବବଂଶୀୟବତ୍ସର ଔରସରେ ସର୍ବାର୍ଥୀଙ୍କ ଗର୍ଭଜାତ ପୁତ୍ର ।
ତିଗ୍ମଜନ୍ମ—ବଂ. (ବ.ଗ୍ରୀ) ତୀକ୍ଷ୍ଣମୁଖ ।
ତିଗ୍ମତା—ସ୍ତ୍ରୀ. ବ.(ତିଗ୍ମ+ଭ.ତା)ତୀକ୍ଷ୍ଣତା, କଟୁତା, ଉଷ୍ଣତା,ପ୍ରଖରତା,ରାଗ, ସ୍ୱାଦ ।
ତିଗ୍ମତେଜା—ବଂ. (ବ.ଗ୍ରୀ) ତୀକ୍ଷ୍ଣତେଜ ଯୁକ୍ତ, ଅତି ତୀକ୍ଷ୍ଣ ।
ତିଗ୍ମଦୀଧିତ—ପୁଂ. ବ. ତିଗ୍ମାଂଶୁ,ସୂର୍ଯ୍ୟ ।
ତିଗ୍ମଭୃଷ୍ଟି--ବଂ. ତୀକ୍ଷ୍ଣ ତେଜଯୁକ୍ତ ।
ତିଗ୍ମମନ୍ୟୁ—ବଂ. (ବ.ଗ୍ରୀ) ଅତିକ୍ରୋଧୀ, (ପୁଂ. ବ) ମହାଦେବ ।
ତିଗ୍ମଯାତନା—ବ.(କ.ଧା)ଦାରୁଣ କ୍ଲେଶ ।
ତିଗ୍ମରଶ୍ମି—ପୁଂ. ବ ଓ ବଂ. ତିଗ୍ମାଂଶୁ ଦେଖ । [ ତିଗ୍ମରୁଚ ।
ତିଗ୍ମରୁକ୍—ବଂ. ( ବ.ଗ୍ରୀ ) ତୀକ୍ଷ୍ଣକାନ୍ତି,
ତିଗ୍ମବର୍ଚ୍ଚ—ପୁଂ. ବଂ. (ତିଗ୍ମ+ବର୍ଚ୍ଚ) ତୀକ୍ଷ୍ଣତାଯୁକ୍ତ, ଅତିତୀକ୍ଷ୍ଣ ।

ତିଗ୍ମଶୃଙ୍ଗ—ବଂ. ( ବ.ଗ୍ରୀ ) ତୀକ୍ଷ୍ଣଶୃଙ୍ଗ, ଯାହାର ଶିଙ୍ଗ ମୁନିଆ ।
ତିଗ୍ମଶୋଚକ—ବଂ. (ବ.ଗ୍ରୀ)ତୀକ୍ଷ୍ଣଜ୍ୱାଳ ।
ତିଗ୍ମହେତ—ବଂ. (ବ.ଗ୍ରୀ) ତୀକ୍ଷ୍ଣଜ୍ୱାଳା, ଯାହାର ଜ୍ୱାଳା ଅତ୍ୟନ୍ତ ତୀକ୍ଷ୍ଣ ।
ତିଗ୍ମାଂଶୁ—ପୁଂ. ବ. ( ବ.ଗ୍ରୀ ) ସୂର୍ଯ୍ୟ, (ବଂ) ପ୍ରଖର କିରଣଯୁକ୍ତ, ପ୍ରଖରକିରଣ
ତିଗ୍ମାସ୍ୱା—ପୁଂ. ବ. ଉର୍ବେର ପୁତ୍ର ଏକ ରାଜକୁମାର ।
ତିଗ୍ମାନୀକ—ବଂ. (ବ.ଗ୍ରୀ) ତୀକ୍ଷ୍ଣମୁଖ ।
ତିଗ୍ମାୟୁଧ—ବଂ. (ବ.ଗ୍ରୀ) ତୀକ୍ଷ୍ଣାୟୁଧ ।
ତିଗ୍ମେଷୁ—ବଂ. (ବ.ଗ୍ରୀ) ତୀକ୍ଷ୍ଣବାଣ ।
ତିଘର—ଗ୍ରା.ବ. କୌଣସି ବ୍ୟକ୍ତିର ବାସ ନିମନ୍ତେ କରାଯାଇଥିବା ତିନିସାର ବାସ-ସ୍ଥାନ ।
ତିଘିବା—ଗ୍ରା. କ୍ରି. ଶିକାରକୁ ଗୋଡ଼ା-ଇବା, ପଳାଇବା ।
ତିଛକ(କା)—ଗ୍ରା. ବ. ଯେଉଁଠାରେ ତିନି ଗୋଟି ରାସ୍ତା ପରସ୍ପର ମିଳିତ ହୋଇ-ଥାଏ ।
ତିଜ୍—ପ୍ରା. (ସମ୍ବ)ବ, ଚିଜ, ପଦାର୍ଥ ।
ତିଜ—ଯା. ବ. ଚିଜ, ବସ୍ତୁ, ପଦାର୍ଥ, ଗହଣା, ଅଳଂକାର ।
ତିଜବ୍ରତ—ବ. ବାଲ୍ତୃତୀୟା ବ୍ରତ ।
ତିଜାରତ୍—ଯା.ବ.ବ୍ୟବସାୟ, ବାଣିଜ୍ୟ, କାରବାର, ବେପାର, ମହାଜନୀ ।
ତିଜାରତୀ—ଯା. ବ. ପେଶା, ବ୍ୟବସାୟ, ( ବଂ ) ବାଣିଜ୍ୟସମ୍ବନ୍ଧୀୟ, ମହାଜନୀ-ସମ୍ବନ୍ଧୀୟ ।
ତିଜନ—ପୁଂ. ବ. (ତିଜ+ଇନ) ଚନ୍ଦ୍ର. ରାକ୍ଷସ । [ ରାକ୍ଷସ ।
ତିଜିଲ—ପୁଂ. ବ. (ତିଜ+ଇଲ) ଚନ୍ଦ୍ର,
ତିଣ୍ଟା—ସ୍ତ୍ରୀ. ବ. ଦ୍ରବୃତ୍ତ, ତିଉଡ଼ି ।
ତିତ—ଗ୍ରା.ବଂ.ତିକ୍ତ, କଟୁ, ସିକ୍ତ, ଭିଜା ।
ତିତଆଳୁ—ଗ୍ରା.ବ.ପିତାଆଳୁ, ତିକ୍ତସ୍ୱାଦ-ଯୁକ୍ତ ମୂଳବିଶେଷ ।
ତିତଉ—ପୁଂ.ବ(ତନ୍+ଇତଉ)ଗୃହଲକ୍ଷ୍ମୀ, ସଚ୍ଛିଦ୍ର ବାଉଁଶନିର୍ମିତ ପାତ୍ରବିଶେଷ, ଛଣା ।

ତିତାରା—ଗ୍ରା.ବ.ତିନିଗୋଟି ତାର ଥିବା ସିତାରପରି ବାଦ୍ୟଯନ୍ତ୍ରବିଶେଷ ।
ତିତାଲା—ଗ୍ରା. ବ. (ଫ-ତ୍ରିତଲ)ତେତାଲା, ତିନିମହଲା କୋଠା, ତୃତୀୟ ମହଲା, (ବଂ) ତ୍ରିତଲବିଶିଷ୍ଟ ।
ତିତିକ୍ଷ—ବଂ(ତିଜ+ସନ୍+ଅ)ଶୀତୋ-ଷ୍ଣାଦ ସହନଶୀଳ, ତିତିକ୍ଷୁ ଦେଖ ।
ତିତିକ୍ଷା—ସ୍ତ୍ରୀ ବ. (ତିତିକ୍ଷ+ଆ)ଧୈର୍ଯ୍ୟ, କ୍ଷମାଗୁଣ, କ୍ଷାନ୍ତି, ସହିଷ୍ଣୁତା, ଶୀତୋ-ଷ୍ଣାଦ ଦ୍ୱନ୍ଦ୍ୱସହନ ।
ତିତିକ୍ଷିତ—ବଂ. (ତିଜ୍+ସନ୍+ମଁ.ତ) ଯାହାର ତିତିକ୍ଷା କରାହୋଇଅଛି,କ୍ଷାନ୍ତ, ସହିଷ୍ଣୁ, (ସ୍ତ୍ରୀ) ତିତିକ୍ଷିତା ।
ତିତିକ୍ଷୁ—ବଂ. ( ତିଜ୍+ସନ୍+କ.ଉ ) କ୍ଷମାଶୀଳ,କ୍ଷାନ୍ତ,ସହିଷ୍ଣୁ , ତିତିକ୍ଷାଶୀଳ ।
ତିତିଭ—ବ. ଇନ୍ଦ୍ରଗୋପକୀଟ, ସାଧବ-ବୋହୂ ପୋକ,ମଖମଲ କୀଟ,ଖଦ୍ୟୋତ, ଜୁଳୁଜୁଳିଆ ପୋକ ।
ତିତିର—ବ. ତିତ୍ତିର ପକ୍ଷୀ ।
ତିତିଲ—କ୍ଲୀ.ବ. ନନ୍ଦକ, ନନ୍ଦିଆ, ମୃଣ୍ମୟ ପାତ୍ରବିଶେଷ,ତୈତିଳକରଣ(ଜ୍ୟୋତିଷ)
ତିତୀର୍ଷା—ବ. ( ତୃ+ସନ୍+ଇ+ଅ+ ଆ)ପାର ହେବାର ଇଚ୍ଛା, ତରଣେଚ୍ଛା ।
ତିତୀର୍ଷୁ—ପୁଂ. ବ. ( ତୃ+ସନ୍+ଉ ) ତରଣେଚ୍ଛୁ , ପାରହେବାକୁ ଇଚ୍ଛୁକ ।
ତିତ୍ତିର—ବ. (ତିତ୍ତି+ରା+ଅ) ବକ୍ଷିର ବର୍ଗର ପକ୍ଷୀବିଶେଷ, ତିତର ପକ୍ଷୀ, ଯଜୁର୍ବେଦୀୟ ତୈତିରୀୟ ଶାଖାଧ୍ୟାୟୀ ମୁନିବିଶେଷ ।
ତିତ୍ତିରି—ପୁଂ.ବି. (ତିତ୍ତି+ରା+କ.ଇ) ତିତ୍ତିର ଦେଖ, ଶୂଦ୍ରବିଶେଷର ଶାଖା, ନାଗବିଶେଷ, ମୁନିଗଣବିଶେଷ ।
ତିତ୍ତିରକ—ପୁଂ.ବ.ଶୂଦ୍ରବିଶେଷର ଶାଖା, ନାଗବିଶେଷ, ମୁନିଗଣବିଶେଷ ।
ତିତ୍ତିଭକ୍—କ୍ଲୀ. ବ. ତିତପେକ୍ଷୀର ପକ୍ଷକୁ ପୋଡ଼ି କରାଯିବା ଅଞ୍ଜନବିଶେଷ ।
ତିଥ—ପୁଂ.ବ. (ତିଜ+ଥ) ଅଗ୍ନି, କାମ, ଦେବ, କାଳ, ବର୍ଷକାଳ, (ଗ୍ରା. ବ.ସଂ-ବାମୀ ) କରମୂଳ, ପୁରୁଣା ଜନ୍ମସ

ତୁହିନାଦ୍ରି—ପୁଂ.ବି. ହିମାଳୟ ।
ତୁହୁଣ୍ଡ—ପୁଂ.ବି. ଦନୁବଂଶୀୟ ଦାନବ-ଭେଦ, ଧୃତରାଷ୍ଟ୍ର ପୁତ୍ରଭେଦ ।
ତୂଣ—ପୁଂ.ବି. ବାଣାଧାର, ଉପାସଙ୍ଗ, ତୂଣୀର, ନିଷଙ୍ଗ, ଇଷୁଧି, ତୂଣୀ ।
ତୂଣକ—କ୍ଲୀ.ବି. ଛନ୍ଦୋବିଶେଷ ।
ତୂଣକ୍ଷ୍ୱେଡ଼—ପୁଂ.ବି. କାଣ୍ଡ,ଶର ।
ତୂଣଧାର—ପୁଂ.ବିଂ. (ତୂଣ+ଧାର+ଅ) ତୂଣଧାରୀ, ଧାନୁଷ୍କ । [ଭେଦ ।
ତୂଣବ—ପୁଂ. ବି. ତୂଣାକାର ବାଦ୍ୟ-
ତୂଣବଧ୍ମ—ପୁଂ.ବି.ତୂଣବ ବାଦ୍ୟକାରକ ।
ତୂଣବାନ୍—ପୁଂ. ବିଂ. ( ତୂଣ+ବତ୍ ) ତୂଣଯୁକ୍ତ, ଧାନୁଷ୍କ ।
ତୂଣି—ପୁଂ.ବି.( ତୂଣ+ସ୍ୱା.ଇ ) ତୂଣ, ବାଣାଧାର, ସଙ୍କୋଚ ।
ତୂଣିକ—ପୁଂ.ବି. ନନ୍ଦୀବୃକ୍ଷ ।
ତୂଣୀ—ପୁଂ.ବି. ନନ୍ଦୀବୃକ୍ଷ,ବିଂ. ( ତୂଣ-+ଇନ୍ ) ତୂଣଯୁକ୍ତ, ତୂଣଧାରୀ ।
ତୂଣୀ—ସ୍ତ୍ରୀ.ବି.(ତୂଣ + ଈ)ତୂଣ,ଇଷୁଧି, ନୀଳୀବୃକ୍ଷ,ବାତରୋଗବିଶେଷ,ସଙ୍କୋଚ ।
ତୂଣୀକ—ପୁଂ.ବି. ନନ୍ଦୀବୃକ୍ଷ ।
ତୂଣୀର—ପୁଂ.ବି.(ତୂଣ+ମି.ଈର)ତୂଣ, ଇଷୁଧି, ବାଣାଧାର ।
ତୂଣୀରବାନ୍—ପୁଂ.ବିଂ. ( ତୂଣୀର+-ବତ୍ ) ତୂଣୀରଧାରୀ ।
ତୂତକ—କ୍ଲୀ.ବି.ତୁତ୍ଥ,ତୁତିଆ,ମୟୂରଗ୍ରୀବା
ତୂତୁଜାନ—ପୁଂ.ବିଂ. କ୍ଷିପ୍ର,ପ୍ରେର୍ଯ୍ୟମାଣ
ତୂତୁଜି—ସ୍ତ୍ରୀ. ବିଂ. କ୍ଷିପ୍ର, ଦାତା ।
ତୂତୁଜ୍ୟମାନସ—ପୁଂ. ବିଂ. କ୍ଷିପ୍ର ।
ତୂତୁମ—ବିଂ. ତୂର୍ଣ୍ଣ ।
ତୂଦ—ପୁଂ. ବି. ତୂତବୃକ୍ଷ, ତୁଁତଗଛ, ପାର୍ଶ୍ୱପିପ୍ପଳ ।
ତୂଦ —ଯା.ବି.ରଣି,ଗଦା, ସୀମାର ଚିହ୍ନ. ଶର, ବନ୍ଧୁକଆଦି ଦ୍ୱାରା ଲକ୍ଷ୍ୟଭେଦ ଶିକ୍ଷା କରିବାପାଇଁ ପ୍ରସ୍ତୁତ ମାଟିଗଦା ।
ତୂନୀ—ସ୍ତ୍ରୀ.ବି.ଦେଶଭେଦ,ଚୌଦେଶ୍ୟ ।
ତୂପର—ପୁଂ. ବି. ଶୃଙ୍ଗହୀନପଶୁ, (ସ୍ତ୍ରୀ) ତୂପରୀ ।
ତୂବର—ପୁଂ. ସ୍ତ୍ରୀ.ବି.(ତୁ + ବର)ଅଜାତ ଶୃଙ୍ଗ ପଶୁ, ମାଖନାଲୋକ, ଶ୍ମଶ୍ରୁହୀନ ପୁରୁଷ, ନପୁଂସକ, କଷାୟରସ ।
ତୂବରିକା—ସ୍ତ୍ରୀ.ବି.(ତୂବର + ଇକ+ଆ) ଫିଟିକିରି, ଟାଙ୍ଗଣା ।
ତୂବରୀ—ସ୍ତ୍ରୀ. ବି.(ତୂବର+ଈ)ସୌରାଷ୍ଟ୍ର ମୃତ୍ତିକା, ଆଢ଼କୀ ।
ତୂମକୂର—ଗ୍ରା.ବି. ମହୀଶୂର ରାଜ୍ୟାନ୍ତର୍ଗତ ଗୋଟିଏ ପ୍ରସିଦ୍ଧ ଜିଲ୍ଲା ।
ତୂୟ—କ୍ଲୀ.ବି. ଜଳ,କ୍ଷିପ୍ର,(ବିଂ)କ୍ଷିପ୍ରତାଯୁକ୍ତ
ତୂର—ବିଂ. (ତୂର + କ.କ୍ୱିପ୍)ବେଗଯୁକ୍ତ. (ବି.ଭା. କ୍ୱିପ୍) ବେଗ ।
ତୂର—କ୍ଲୀ. ବି. (ତୂର+କ.ଅ) ବାଦ୍ୟ-ଭେଦ, ତାଡ଼୍ୟମାନ ପଟହାଦି, ଭେରୀ, କାହାଳୀ, ତୂର୍ଯ୍ୟ, ମନୁଷ୍ୟ,(କ.ଅ)ହର୍କରା ଧାଉଡ଼ିଆ, (ଭା.ଅ) ତ୍ୱରାନ୍ୱିତହେବା, ବେଗ ।
ତୂରୀ—ସ୍ତ୍ରୀ. ବି. (ତୂର + ଈ) ଦୁଦୁରାଗଛ, ବାଦ୍ୟଯନ୍ତ୍ର ବିଶେଷ ।
ତୂର୍ଣ୍ଣ—କ୍ଲୀ. ବିଂ. (ତୂର+କ.ତ)ତ୍ୱରାଯୁକ୍ତ ସତ୍ୱର, (କ୍ରି. ବିଂ) ଅବିଲମ୍ବେ, ଶୀଘ୍ର, ତୁରନ୍ତ ।
ତୂର୍ଣ୍ଣାଶ—କ୍ଲୀ. ବି. ଉଦକ, ଜଳ ।
ତୂର୍ଣ୍ଣି—ପୁଂ. ବି. (ତୂର+ନି) ମଳ, ତ୍ୱରା, ବେଗ,ମନ,ଶ୍ଳୋକ,(ବିଂ)କ୍ଷିପ୍ର, କ୍ଷିପ୍ରଗାମୀ.
ତୂର୍ଣ୍ୟର୍ଥ—ବିଂ. କ୍ଷିପ୍ରଗମନଯୁକ୍ତ, ତ୍ୱରିତ-ଗମନଯୁକ୍ତ ।
ତୂର୍ତ୍ତ—କ୍ଲୀ. ବି. କ୍ଷିପ୍ର ।
ତୂର୍ଯ୍ୟ—କ୍ଲୀ.ବି.(ତୂର + ଯ)ବାଦ୍ୟଭେଦ. ଏକକାଳୀନ ବିବିଧବାଦ୍ୟ, ଚତୁର୍ଥାଂଶ. ଯୋଗର ଚତୁର୍ଥଅବସ୍ଥା,ତୁରୀୟଅବସ୍ଥା
ତୂର୍ଯ୍ୟଖଣ୍ଡ—ବି. ବାଦ୍ୟଭେଦ, ଝଞ୍ଜରୀ ।
ତୂର୍ଯ୍ୟଧ୍ୱନି—ପୁଂ. ବି. ( ୬ତତ୍ ) ବିବିଧ ବାଦ୍ୟଯନ୍ତ୍ରର ଶବ୍ଦ ।
ତୂର୍ଯ୍ୟାଚାର୍ଯ୍ୟ—ପୁଂ. ବି. (୬ତତ୍)ବାଦ୍ୟ-ଶିକ୍ଷକ, ଓସ୍ତାଦ୍ ।
ତୂର୍ଯ୍ୟାଜୀବ—ବିଂ. (ବ.ବ୍ରୀ) ବାଜାବାଲା, ବାଦ୍ୟବ୍ୟବସାୟୀ ।
ତୂର୍ବ—କ୍ଲୀ.ବିଂ.(ତୂର୍ବ+ଅ)କ୍ଷିପ୍ର,ତୂର୍ଣ୍ଣ ।
ତୂର୍ବଯାଣ—ବିଂ.କ୍ଷିପ୍ରଗାମୀ,ବି.ଜଣେ ରାଜା
ତୂର୍ବୀ—କ୍ଲୀ. ବି. କ୍ଷିପ୍ର ।
ତୂଳ—ବି. (ତୂଳ+ଅ) ତୂଳା, ଶିମିଳି-ତୂଳା, ଆକାଶ, ଡିମ୍ବିରିଗଛ,ତୁନ୍ତଗଛ, ଘାସର ବିଡ଼ା, ଧାତୁରା, ବାୟୁମଣ୍ଡଳ, ଫୁଲର କେଣ୍ଡ୍ରା ।
ତୂଳକ—କ୍ଲୀ. ବି. (ତୂଳ + କ)ତୂଳା, କପା ।
ତୂଳକାର୍ମୁକ—କ୍ଲୀ. ବି. ତୂଳସ୍ଫୋଟନାର୍ଥ ଧନୁଃ,ତୂଳାଭଣିବାର ଧନୁକାକାର ଯନ୍ତ୍ର
ତୂଳଚାପ—ପୁଂ. ବି. ତୂଳକାର୍ମୁକ, ତୂଳାଭଣିବାର ଧନୁକାକାର ଯନ୍ତ୍ର ବିଶେଷ ।
ତୂଳନାଳିକା—ସ୍ତ୍ରୀ. ବି.ତୂଳାର ବରଣା, ତୂଳା ଦଳା ହୋଇ କରାଯାଇଥିବା ଲମ୍ବପିଣ୍ଡ ।
ତୂଳନାଳୀ—ସ୍ତ୍ରୀ.ବି.ତୂଳନାଳିକା ଦେଖ ।
ତୂଳପିଚୁ—ପୁଂ. ବି. ତୂଳବୃକ୍ଷ, ତୂଳାର ଗଛ, କପାଗଛ ।
ତୂଳଫଳ—ପୁଂ.ବି.ଅର୍କବୃକ୍ଷ,ଅରଖଗଛ
ତୂଳମୂଳ—କ୍ଲୀ.ବି.କାଶ୍ମୀରର ଚନ୍ଦ୍ରଭାଗାସ୍ଥ ଗୋଟିଏ ଦେଶ ।
ତୂଳବତୀ—ସ୍ତ୍ରୀ. ବି. ବୃକ୍ଷବିଶେଷ ।
ତୂଳବୃକ୍ଷ—ପୁଂ. ବି. ତୂଳାର ଗଛ, ଶାଲ୍ମଳୀବୃକ୍ଷ, ଶିମିଳିଗଛ ।
ତୂଳଶର୍କରା—ସ୍ତ୍ରୀ.ବି. କାର୍ପାସବୀଜ, ତୂଳା-ମଞ୍ଜି, କପାମଞ୍ଜି ।
ତୂଳସେଚନ—କ୍ଲୀ. ବି. (ତୂଳ + ସିଚ + ଭା.ଅନ)ତୂଳସୂତ୍ର କର୍ତ୍ତନ, ତୂଳାରୁ ସୂତା କାଟିବା ।
ତୂଳା—ସ୍ତ୍ରୀ. ବି. ( ତୂଳ+ଅ+ଆ ) କାର୍ପାସୀ, କପାଗଛ, ଦୀପର ବତି,ବର୍ତ୍ତି, ଦଳିତା ।
ତୂଳାକୋଟି—ବି. ନୂପୁର ।
ତୂଳି—ସ୍ତ୍ରୀ. ବି. ତୂଳିକା ଦେଖ ।
ତୂଳିକା—ସ୍ତ୍ରୀ.ବି. (ତୂଳି+କ+ଆ)ତୂଳି, ତୋଷକ, କାଠକୁ ଭଅଁର କରିବା ଯନ୍ତ୍ର, ଧାତୁ ତରଳାହୋଇ ଢାଳାହେବା ଗ୍ରୁଞ୍ଚ, ଛବିଆଦିର ଚିତ୍ରରେଖା ନିରୂପଣାର୍ଥ ବ୍ୟବହୃତ କାଠି ।

ତୂଳକ୍ଷ୍ମା—ସ୍ତ୍ରୀ. ବ. (ତୂଳ+ଇନ୍+ଈ) ଶାଲ୍ମଳୀବୃକ୍ଷ, ଶିମିଳିଗଛ, ଲକ୍ଷ୍ମଣାକନ୍ଦ, (ବିଂ) ତୂଳଯୁକ୍ତ ।

ତୂଳଫଳା—ସ୍ତ୍ରୀ. ବ. ଶାଲ୍ମଳୀବୃକ୍ଷ, ଶିମିଳିଗଛ ।

ତୂଳୀ—ବି. (ତୂଳ+ଈ) ତୂଳା, ଧୋପିର-ବଢ, ତନ୍ତୀର ତାଣ୍ଡଣ, ଚିତ୍ରକରର ଚିତ୍ର-ଲେଖନୀ, ତୂଳିକା, ନୀଳଗୁଳ୍ମ ।

ତୂଷ—ବି. ଗ୍ରେକଡ଼, ଚଷୁ, ଧାନ୍ୟାଦି ଶସ୍ୟର ଚୋପା, ଭୁଷି ।

ତୂଷ୍ଣୀଂ--ଅବ୍ୟ ମୌନହୋଇ, ନୀରବରେ, ଶୀଘ୍ର, ଝଟପଟ, ଗୋଳମାଳ ନକରି ।

ତୂଷ୍ଣୀ—ଗ୍ରା. ଅବ୍ୟ.(ସଂ-ତୂଷ୍ଣୀଂ) ତୂଷ୍ଣୀଂ ଦେଖ ।

ତୂଷ୍ଣୀକାଂ—ଅବ୍ୟ.ମୌନ, ତୁନି ହେବା, ନୀରବ ।

ତୂଷ୍ଣୀଂଭାବ—ବି.ମୌନାବସ୍ଥା,ନୀରବତା ।

ତୂଷ୍ଣୀମ୍ଭୂତ—ବିଂ.ମୌନ,ନୀରବ,ନିସ୍ତବ୍ଧ

ତୂଷ୍ଣୀମୂବ—ପୁଂ. ବ. ମୌନାବଲମ୍ବନ, ନିସ୍ତବ୍ଧତା ।

ତୂଷ୍ଣୀଂଶୀଳ—ପୁଂ.ବିଂ.ମୌନୀ,ଗମ୍ଭୀର ।

ତୂଷ୍ଣୀକ—ପୁଂ. ବିଂ. (ତୂଷ୍ଣୀ+ଇକ) ମୌନୀ, ନୀରବ ।

ତୂସ—ଯା.ବି. ହିମାଳୟର ଅତଶୀତଳ ପ୍ରଦେଶରେ ବିଚରଣ କରୁଥିବା ଏକ ଜାତୀୟ ଛେଳିର ଷୁଦ୍ର ପତଳା ଲୋମ, ପଶମ, ପଶମରେ ତିଆରି କମ୍ବଳ ।

ତୂସୀ—ଯା. ବିଂ. ଲୋଟର ରଙ୍ଗପରି ଫିକାକଳା, ତୂସଲୋମନିର୍ମିତ, (ବି) ତୂସଲୋମରେ ବୁଣା ବହୁମୂଲ୍ୟ ଶାଲ ।

ତୃସ୍ତ—କ୍ଲୀ. ବ. (ତୃସ୍+ତ) ରେଣୁ, ଧୂଳି, ଜଟା, ଗୁପ, ପାପ, ଧନୁ, ସୂକ୍ଷ୍ମ-ପଦାର୍ଥ, ଅଣୁ ।

ତୃଂହଣ—କ୍ଲୀ. ବ. ହିଂସନ ।

ତୃକ୍ୱନ୍—ପୁଂ. ବ. ଚୋର, ଗ୍ରେର ।

ତୃକ୍ଷ—ପୁଂ. ବ.(ତୃକ୍ଷ+କ.ଅ)କଶ୍ୟପ-ଋଷି ।

ତୃକ୍ଷାକ—ପୁଂ.ବ.ଋଷିଭେଦ,ତଦପତ୍ୟ, ତାହାର ଅପତ୍ୟ ।

ତୃକ୍ଷି--ପୁଂ.ବ.ଏ ସଦସ୍ୟୁର ପୁତ୍ରଋଷିଭେଦ

ତୃଙ୍ଖ—କ୍ଲୀ. ବ. ଜାତୀଫଳ, ଜାଇଫଳ ।

ତୃଚ୍—କ୍ଲୀ. ବ. ସମାନଦେବତା ଓ ସମାନଛନ୍ଦକ ଋକ୍‌ତ୍ରୟ(ବିଂ) ଏହି ଋକ୍ ତ୍ରୟ ଅନୁବାକ ସୂକ୍ତାଦି ।

ତୃଟ୍—ସ୍ତ୍ରୀ. ବ. (ତୃଷ+ଭ.କ୍ୱିପ୍)ତୃଷ୍ଣା ପିପାସା, ଇଚ୍ଛା, ଆକାଙ୍କ୍ଷା, ଲିପ୍ସା ।

ତୃଟିକ—ଗ୍ରା. ବ. ଅଲକ୍ଷଣ ।

ତୃଣ—କ୍ଲୀ. ବ. (ତୃଣ୍+ମ.ତ) ଘାସ, କୁଟା, ଗନ୍ଧତୃଣ, ଧନଜି, ବାଉଁଶ, କାଣ୍ଡଶର, ନଳ, ନଡ଼ା, କୁଶଆଦି, (ଆଶୟାର୍ଥ)ଘାସପରି ନଗଣ୍ୟ ବା ତୁଚ୍ଛ ବ୍ୟକ୍ତି ବା ବସ୍ତୁ(ଗ୍ରା.ବ)ତୂଣୀର,ଶରମୃଣ

ତୃଣକ—କ୍ଲୀ. ବ. ସ୍ୱଳ୍ପତୃଣ, ଚୀନାକ, ଚୀନାଧାନ ।

ତୃଣକର୍ଣ୍ଣି--ପୁଂ.ବ.ଋଷିଭେଦ,ଜଣେ ଋଷି. ତାର୍ଣ୍ଣକର୍ଣ୍ଣି, ତୃଣକର୍ଣ୍ଣିର ଅପତ୍ୟ ।

ତୃଣକାଣ୍ଡ—କ୍ଲୀ. ବ. ତୃଣସମୂହ ।

ତୃଣକାୟ--ବିଂ.ତୃଣଭବ,ତୃଣରୁ ଜାତ

ତୃଣକୁଙ୍କୁମ--କ୍ଲୀ. ବ. ସୁଗନ୍ଧି ବିଶେଷ, ସୁଗନ୍ଧିଘାସ, ରୋହିଷତୃଣ ।

ତୃଣକୁଟି—ସ୍ତ୍ରୀ. ବ. ତୃଣଚ୍ଛାଦିତ ଘର, କୁଡ଼ିଆଘର, କୁଟୀର,ଘାସଛୁଆଣିଘର ।

ତୃଣକୁଟୀରକ—କ୍ଲୀ.ବ.ତୃଣନିର୍ମିତ ଘର କୁଟୀର, ଘାସଛୁଆଣି ଘର ।

ତୃଣକୂଟ—ପୁଂ.କ୍ଲୀ.ବ.ତୃଣରାଶି,ତୃଣ-ସ୍ତୂପ, ଘାସ ବା କୁଟାର ଗଦା ।

ତୃଣକୂର୍ମ—ପୁଂ. ବ. ତୁମ୍ବୀ ।

ତୃଣକେତକୀ—ସ୍ତ୍ରୀ.ବ.ତବକ୍ଷୀର ଭେଦ ।

ତୃଣକେତୁ—ପୁଂ. ବ. (ବ.ଗ୍ରୀ) ବାଉଁଶ ଗଛ, ତାଳବୃକ୍ଷ ।

ତୃଣକେତୁକ—ପୁଂ. ବ. ବାଉଁଶ ।

ତୃଣଗଡ଼—ପୁଂ. ବ. ସମୁଦ୍ରର ଏକ-ପ୍ରକାର କର୍କଟ, କଙ୍କଡ଼ା, କୀଟଭେଦ, ଉଚ୍ଚିଙ୍ଗଟ, ଉଚ୍ଚିଙ୍ଗଡ଼ା ।

ତୃଣଗନ୍ଧା—ସ୍ତ୍ରୀ.ବ.ବିଦାରୀ, ଶାଳପର୍ଣ୍ଣୀ ।

ତୃଣଗୋଧା—ସ୍ତ୍ରୀ.ବ.ଚନ୍ଦ୍ରକୋଳ, ତୃଣ-ଜଳୌକା, ବୁକଲାସ, ଏଣ୍ଡୁଅ ।

ତୃଣଗୌର—କ୍ଲୀ.ବ.ସୁଗନ୍ଧିଦ୍ରବ୍ୟଭେଦ, ତୃଣକୁଙ୍କୁମ ।

ତୃଣଗ୍ରନ୍ଥି—ସ୍ତ୍ରୀ. ବ. ସ୍ୱର୍ଣ୍ଣଜୀବନ୍ତୀ ବୃକ୍ଷ ।

ତୃଣଗ୍ରାହୀ—ପୁଂ.ବ. ମଣି ବିଶେଷ, ନୀଳ-ମଣି, ନୀଳକାନ୍ତମଣି, ନୀଳା ।

ତୃଣଚର—ବିଂ. (ତୃଣ+ଚର+କ.ଅ) ଯେଉଁ ଜୀବ ଘାସ ଆଦି ଚରନ୍ତି, (ବି) ଗୋମେଦମଣି ।

ତୃଣଜମ୍ଭ—ବିଂ. (ବ.ଗ୍ରୀ) ତୃଣଭକ୍ଷକ, ତୃଣବତ୍ ଦନ୍ତବିଶିଷ୍ଟ ।

ତୃଣଜାଲାୟୁକା—ସ୍ତ୍ରୀ. ବ. ଏକପ୍ରକାର ଜୋକ, ସମ୍ବାଳୁଆ ।

ତୃଣଜଳୁକା—ସ୍ତ୍ରୀ. ବ. ଜଳୌକାଭେଦ, ସମ୍ବାଳୁଆ ।

ତୃଣଜଳୌକାନ୍ୟାୟ—ପୁଂ. ବ. ତୃଣ-ଜଳୌକାପରି ଜୀବର ଅପର ଦେହ ସଂଯୋଗ ଦ୍ୱାରା ପୂର୍ବଦେହ ପରିତ୍ୟାଗ-ରୂପ ନ୍ୟାୟଭେଦ, ଜଳୌକା ଯେପରି ଗୋଟିଏ ତୃଣ ଆଶ୍ରୟ ନ କରି ପୂର୍ବାଶ୍ରିତ ତୃଣ ପରିତ୍ୟାଗ କରି ନ ପାରେ ।

ତୃଣଜାତି—ସ୍ତ୍ରୀ. ବ. (ବ.ଗ୍ରୀ) ଉଲୁଖଡ଼, ନଡ଼ା ଆଦି ।

ତୃଣଜୀବନ—ବିଂ.ଯେଉଁ ସବୁ ଜୀବ ତୃଣ-ଦ୍ୱାରା ପ୍ରାଣରକ୍ଷା କରନ୍ତି ।

ତୃଣଜୀବୀ—ବିଂ (ତୃଣ+ଜୀବ+ଇନ୍) ଯେ ଘାସଖାଇ ବଞ୍ଚେ, ତୃଣାଦ ।

ତୃଣଜ୍ଞାନକରିବା—ଗ୍ରା. କ୍ରି. ଅବଜ୍ଞା-କରିବା, କୌଣସି ବ୍ୟକ୍ତି ବା ବସ୍ତୁକୁ ଘାସପରି ହେୟ ମନେ କରିବା,ତୁଚ୍ଛ-ଜ୍ଞାନ କରିବା ।

ତୃଣଜ୍ୟୋତିଃ—କ୍ଲୀ. ବ. ଜ୍ୟୋତିଷ୍ମତୀ ଲତା, ଏହି ଲତା ରାତ୍ରିରେ ଦୀପ୍ତିଯୁକ୍ତ ହୁଏ ।

ତୃଣଜ୍ୟୋତିଷ୍ମତୀ—ଗ୍ରା. ବ. ଔଷଧଗୁଳ୍ମ ବିଶେଷ ।

ତୃଣତା—ସ୍ତ୍ରୀ. ବ. ( ତୃଣ+ଭ, ତା ) ଧନୁ,ତୃଣତ୍ୱ,ତୃଣର ଭାବ,ତୃଣର ଧର୍ମ ।

ତୃଣତ୍ୱ—କ୍ଲୀ.ବ. (ତୃଣ+ଭ.ତ୍ୱ)ତୃଣର ଅବସ୍ଥା, ଲଘୁତା, ହୀନତା, ଦୈନ୍ୟ ।

ତୃଣଦ୍ରୁମ—ପୁଂ. ବ. (ତୃଣ+ଦ୍ରୁମ+

କ୍ୱପ୍) ବାଡ଼ବାଗ୍ନି ।

ତୃଣଦ୍ରୁମ—ପୁଂ. ବ. ନାରିକେଳ ବୃକ୍ଷ, ତାଳ ଗଛ, ଗୁଆ ଗଛ, କେତକୀ ଗଛ, ହେନ୍ତାଳ ଗଛ, ଖଜୁରି ଗଛ ।

ତୃଣଧାନ୍ୟ—କ୍ଲୀ. ବ. (୬ତତ୍ର) ଧାନ୍ୟ-ବିଶେଷ, ନିବାର, ବାଳୁଙ୍ଗାଧାନ, କୋଦୁଅ, ଶୁଆଁ ଆଦି ଅପକୃଷ୍ଟଜାତ ଶସ୍ୟ, କ୍ଷୁଦ୍ର ଧାନ୍ୟ,କୁଧାନ୍ୟ । [ ଗଛ ।

ତୃଣଧ୍ୱଜ—ପୁଂ. ବ. ତାଳ ଗଛ, ବାଉଁଶ

ତୃଣଧାନ୍ୟକ—କ୍ଲୀ. ବ. କାଙ୍ଗୁ, ଶୁଆଁ, କୋଦୁଅ ପ୍ରଭୃତି ।

ତୃଣନିମ୍ବ—ପୁଂ. ବ. ନେପାଳ ନିମ୍ବ, କିରାତତିକ୍ତ, ଚିରେଇତା ।

ତୃଣପ—ପୁଂ. ବ. ( ତୃଣ+ପା+ଅ ) ଗନ୍ଧର୍ବଭେଦ ।

ତୃଣପଞ୍ଚମୂଳ—କ୍ଲୀ. ବ. ପଞ୍ଚାଙ୍ଗବିଶିଷ୍ଟ ପାଚନ, କୁଶ, ବାଉଁଶ, ଶର, ଦର୍ଭ, ଇକ୍ଷୁ ଏହି ପଞ୍ଚ ।

ତୃଣପତି—ପୁଂ. ବ. ରାଜ ଘାସ, କଳା ଘାସ, କଳା କର୍ପୂର ।

ତୃଣପତ୍ରିକା—ସ୍ତ୍ରୀ. ବ. ଇକ୍ଷୁଦର୍ଭ ତୃଣ, ଗୁଣ୍ଡ୍ରାଳିନୀ ତୃଣ ।

ତୃଣପତ୍ରୀ—ସ୍ତ୍ରୀ. ବ. ତୃଣପତ୍ରିକା,ଗୁଣ୍ଡ୍ରା-ଳିନୀ ।

ତୃଣପଦୀ—ସ୍ତ୍ରୀ. ବ. ତୃଣତୁଲ୍ୟ ମୂଳ-ଯୁକ୍ତ ଲତା, ଯେଉଁ ଲତା ତୃଣସଦୃଶ ମୂଳବିଶିଷ୍ଟ ।

ତୃଣପାଣି—ପୁଂ. ବ. ଋଷିଭେଦ ।

ତୃଣପୀଡ଼—କ୍ଲୀ. ବ. ଯୁଦ୍ଧଭେଦ ।

ତୃଣପୁଷ୍ପ—କ୍ଲୀ. ବ. ତୃଣକୁଙ୍କୁମ, ଗନ୍ଧ-ଦ୍ରବ୍ୟବିଶେଷ, ଗ୍ରନ୍ଥିପର୍ଣ୍ଣୀ ।

ତୃଣପୁଷ୍ପିକା—ସ୍ତ୍ରୀ. ବ. ସିନ୍ଦୂରପୁଷ୍ପୀ ବୃକ୍ଷ, ସିନ୍ଦୂରିଆ ଫୁଲ ଗଛ ।

ତୃଣପୁଷ୍ପୀ—ସ୍ତ୍ରୀ.ବ.ସିନ୍ଦୂରିଆ ଫୁଲ ଗଛ ।

ତୃଣପୂଳକ—ପୁଂ.କ୍ଲୀ.ବ.କ୍ଲୀବବିଶେଷ ।

ତୃଣଭୋଜୀ—ବିଂ. (ତୃଣ+ଭୁଜ+ଇନ୍) ତୃଣାଶୀ ଦେଖ ।

ତୃଣମଣି—ପୁଂ.ବ, ଏକପ୍ରକାର ସବୁଜ-ବର୍ଣ୍ଣ ମଣି ।

ତୃଣମତ୍କୁଣ—ପୁଂ.ବ. ପ୍ରତିଭୂ,ଜାମିନ୍ ।

ତୃଣମୟ—ବିଂ. (ତୃଣ+ମୟଟ୍) ତୃଣ-ବିକାର, ତୃଣରଚିତ, ଘାସପୂର୍ଣ୍ଣ,ତୃଣ-ବହୁଳ ।

ତୃଣମୟୀ—ସ୍ତ୍ରୀ. ବ. ତୃଣନିର୍ମିତା ।

ତୃଣମଲ୍ଲିକା—ସ୍ତ୍ରୀ.ବ. ମଲ୍ଲିକା ପୁଷ୍ପଭେଦ, କାଠମଲ୍ଲି ଗଛ ।

ତୃଣମୂଳ—କ୍ଲୀ.ବ.ପଞ୍ଚାଙ୍ଗବିଶିଷ୍ଟ ପାଚନ ।

ତୃଣମେରୁ—ପୁଂ. ବ. ରୁଦ୍ରାକ୍ଷ ବୃକ୍ଷ ।

ତୃଣରାଜ—ପୁଂ. ବ. ତାଳ ଗଛ,ନଡ଼ିଆ ଗଛ, ତୃଣଦ୍ରୁମ, ଆଖୁ, ଖଜୁରି ।

ତୃଣରାଜବର୍ଗ—ପୁଂ. ବ. ବୃକ୍ଷସମୂହ, ଗୁଆ, ତାଳ,ନଡ଼ିଆ,ଖଜୁରି, ହେନ୍ତାଳ ପ୍ରଭୃତି ।

ତୃଣବତ୍—ଅବ୍ୟ. (ତୃଣ+ବତ୍)ଘାସ-ପରି, ତୃଣସଦୃଶ, (ବିଂ) ଅକିଞ୍ଚିତ୍କର, ନଗଣ୍ୟ, ଘାସପରି ହେୟ, ତୁଚ୍ଛ, ତୃଣପୂର୍ଣ୍ଣ ।

ତୃଣବଲ୍ୱଜା—ସ୍ତ୍ରୀ. ବ. ବଲ୍ୱଜା ତୃଣ ।

ତୃଣବିନ୍ଦୁ—ପୁଂ. ବ. ଜଣେ ମହର୍ଷି, ସ୍ୱନାମଖ୍ୟାତ ଜଣେ ଋଷି ।

ତୃଣବିନ୍ଦୁସରୋବର—ପୁଂ. ବ. ତୃଣବିନ୍ଦୁ ଋଷିଙ୍କର ସରୋବର ରୂପ ତୀର୍ଥ, ଏହା କାମ୍ୟକ ବନରେ ଅବସ୍ଥିତ ।

ତୃଣବୀଜ—କ୍ଲୀ. ବ. ଶ୍ୟାମାକ, ଶୁଆଁ, ନିବାର ପ୍ରଭୃତି ।

ତୃଣବୀଜୋତ୍ତମ—ପୁଂ,ବ. ଶୁଆଁ ପ୍ରଭୃତି, ତୃଣଧାନ୍ୟ ।

ତୃଣବୃକ୍ଷ—ପୁଂ. ବ. ନଡ଼ିଆ, ତାଳ, ଗୁଆ,କେତକୀ,ଖଜୁରି,ହେନ୍ତାଳପ୍ରଭୃତି ।

ତୃଣବୃତ୍ତି—ବ.(୬ତତ୍ର) ତୃଣବତ୍ ଦେଖ ।

ତୃଣଶଯ୍ୟା—ସ୍ତ୍ରୀ.ବ. ତୃଣରଚିତ ଆସନ, ଘାସ ବା କୁଟାରେ ତିଆରି ବିଛଣା, ଚଟେଇ, ମସିଣା ।

ତୃଣଶୀତ—କ୍ଲୀ.ବ. ଗନ୍ଧତୃଣ,ରୋହିଷ ତୃଣ, ଜଳପିପ୍ପଳୀ ଦେଖ ।

ତୃଣଶୀତା—ସ୍ତ୍ରୀ. ବ. ଜଳପିପ୍ପଳୀ ।

ତୃଣଶୂନ୍ୟ—କ୍ଲୀ.ବ. କେତକୀ ପୁଷ୍ପ, ମଲ୍ଲି, ନାଗରଙ୍ଗ, (ବିଂ) ଯେଉଁଠାରେ ଘାସ ନାହିଁ, ତୃଣରହିତ, ଟାଙ୍ଗରା (ସ୍ଥାନ) ।

ତୃଣଶୂଳୀ—ସ୍ତ୍ରୀ. ବ. ଲତାଭେଦ ।

ତୃଣଶୋଣିତ—କ୍ଲୀ. ବ. ତୃଣକୁଙ୍କୁମ, କୁଙ୍କୁମଘାସ ।

ତୃଣଶୋଷକ—ପୁଂ. ସ୍ତ୍ରୀ. ବ. ରାଜିମନ୍ତ ଜାତୀୟ ସର୍ପଭେଦ ।

ତୃଣଶୌଣ୍ଡିକା—ସ୍ତ୍ରୀ. ବ. ଲଘୁଟକେତକୀ ବୃକ୍ଷ ।

ତୃଣଷଟ୍ପଦ—ପୁଂ.ବ. ବରୋଳ,ବିରୁଡ଼ି ।

ତୃଣସ—ବିଂ. ( ତୃଣ+ସ ) ତୃଣମୟ ଦେଖ ।

ତୃଣସଂଜ୍ଞକ—ପୁଂ.ବ. ତୃଣସମୂହ,କୁଶ, ବାଉଁଶ, ନଳ, ଦର୍ଭ,କାଣ୍ଡ,ଇକ୍ଷୁପ୍ରଭୃତି ।

ତୃଣସାରା—ସ୍ତ୍ରୀ. ବ. (ତୃଣ+ସାର+ଆ) କଦଳୀ ବୃକ୍ଷ, କଦଳୀ ଗଛ ।

ତୃଣସିଂହ—ପୁଂ. ବ. କୁଠାର, କୁରାଢ଼ୀ ।

ତୃଣସୋମାଙ୍ଗିରସ—ପୁଂ. ବ. ଦକ୍ଷିଣ-ଦିଗସ୍ଥିତ ଯୁଧିଷ୍ଠିରଙ୍କର ଋତ୍ୱିକ୍(ପୁରୋ-ହିତ) ଭେଦ । [ ସ୍ୱଭାବ ।

ତୃଣସ୍କନ୍ଦ—ପୁଂ. ବ. ତୃଣବତ୍ ଚଞ୍ଚଳ-

ତୃଣହର୍ମ୍ମ୍ୟ—ପୁଂ. କ୍ଲୀ. ବ. ତୃଣଯୁକ୍ତ ଅଟ୍ଟାଳିକା ।

ତୃଣା—ସ୍ତ୍ରୀ. ବ. ତୃଣାବର୍ତ୍ତ ଦେଖ ।

ତୃଣାଂହ୍ରିପ—ପୁଂ. ବ. ମନ୍ଥାନକ ତୃଣ ।

ତୃଣାଗ୍ନି—ପୁଂ. ବ. (କ.ଧା) ତୃଣାଗ୍ନି, ଘାସନିଆଁ, ଯେଉଁ ନିଆଁ ଶୀଘ୍ର ଲିଭି-ଯାଏ ।

ତୃଣାଙ୍କୁର—ପୁଂ, ବ. (୬ତତ୍ର) ବାଳୁଙ୍ଗା ଧାନର ଶୃଙ୍ଗ, ଧାନଚୁଙ୍କ ।

ତୃଣାଞ୍ଜନ—ପୁଂ. ବ. କୃକଲାସ,ଏଣ୍ଡୁଅ ।

ତୃଣାଟବୀ—ସ୍ତ୍ରୀ.ବ. (କ.ଧା) ତୃଣପ୍ରଚୁର ଅଟବୀ, ତୃଣମୟ ବନ, ଯେଉଁ ଜଙ୍ଗ-ଲରେ ଖୁବ୍ ଘାସ ବଢ଼ିଥାଏ ।

ତୃଣାଢ୍ୟ—କ୍ଲୀ. ବ. ପର୍ବତଜାତ ତୃଣ ।

ତୃଣାଦ—ବିଂ. (ତୃଣ+ଅଦ+କ,ଅ) ତୃଣଭୋଜୀ, (ସ୍ତ୍ରୀ) ତୃଣାଦୀ ।

ତୃଣାଦ୍ର—ପୁଂ. ବ. ତୃଣପ୍ରଭୃତି ।

ତୃଣାନ୍ନ—କ୍ଲୀ. ବ, ବାଳୁଙ୍ଗାଧାନ,ଶୁଆଁ-ଭାତ, ନିବାରଧାନ ଭାତ ।

ତୃଣାମଲ୍ଲ—କ୍ଲୀ. ବ. ହିମଳ୍ଳ, ତୃଣବଲ୍ଲୀ ତୀର୍ଥ ।

ତୃଣାମ୍ଳ—କ୍ଲୀ. ବ. (ତୃଣ+ଅମ୍ଳ)ଲବଣ ତୃଣ, ଆମ୍ଳିତଣାଗ, ଅମ୍ଳଲଣି ।

ତୃଣାବର୍ତ୍ତ—ପୁଂ. ବ. ଘୂର୍ଣ୍ଣିବାୟୁ.ଘଣ୍ଡିଆ-ଭୂତ, କଂସର ଅନୁଚରବିଶେଷ ।

ତୃଣାବଲ୍ଲୀତୀର୍ଥ—କ୍ଲୀ. ବ. ତୀର୍ଥବିଶେଷ, ତୃଣାମଲ୍ଲ ତୀର୍ଥ ।

ତୃଣାସନ—କ୍ଲୀ.ବ. (କ.ଧା) ତୃଣରଚିତ ଆସନ, ଚଟେଇ, ସପମସିଣା, ମୁନ୍ଦୁଗ, ହେଁସ ।

ତୃଣାସୃକ୍—କ୍ଲୀ. ବ. ତୃଣକୁଙ୍କୁମ,ସୁଗନ୍ଧ-ଦ୍ରବ୍ୟବିଶେଷ । [ ଘାସ ।

ତୃଣାହ୍ୱା—ସ୍ତ୍ରୀ. ବ. ତୃଣବିଶେଷ,ଚୀନା

ତୃଣୀକୃତ—ବିଂ. (ତୃଣ+ଚ୍ୱି+କୃ+ତ)ଯାହାକୁ ତୃଣବତ୍ ହୀନ ଜ୍ଞାନ କରାଯାଇଥାଏ, ଯାହାକୁ ଅନ୍ୟ କେହି ଘୋଡ଼ାଇ ପକାଏ ।

ତୃଣେକ୍ଷୁ—ପୁଂ. ବ. ବଲ୍ୱଜା,ଅଣଆଖୁଆ

ତୃଣେନ୍ଦ୍ର—ପୁଂ.ବ. (୬ତତ୍) ତୃଣରାଜ, ତାଳ ବୃକ୍ଷ ।

ତୃଣୋତ୍ତମ—ପୁଂ. ବ. ଉଖଳ ତୃଣ ।

ତୃଣୋତ୍ଥ—କ୍ଲୀ. ବ. ତୃଣକୁଙ୍କୁମ,କୁଙ୍କୁମ ଘାସ ।

ତୃଣୋଦ୍ଭବ—ପୁଂ.ବ. ଝରିଧାନ,ବାଲୁଙ୍ଗା-ଧାନ, ତୃଣଜାତ ଅଗ୍ନି,(ବିଂ.—ବି.ଗ୍ରା) ତୃଣଜାତମାତ୍ର ।

ତୃଣୋଲ୍କା—ସ୍ତ୍ରୀ. ବ. ତୃଣଜାତ ଉଲ୍କା, କୁଟାରେ ତିଆରି ହୁଳା,ନଆଁ ଦଉଡ଼ିଆ ।

ତୃଣୌକଃ—କ୍ଲୀ.ବ. (କ.ଧା) ଘାସଘର, ଛପରଘର ।

ତୃଣୌଷଧ—କ୍ଲୀ. ବ. ଏଲବାଲୁକ, ଗନ୍ଧଦ୍ରବ୍ୟବିଶେଷ ।

ତୃଣ୍ୟା—ସ୍ତ୍ରୀ. ବ. ( ତୃଣ+ଯ+ଆ ) ତୃଣସମୂହ,ତୃଣଶ୍ରେଣି, ଘାସ ବା କୁଟା-ଗଦା ।

ତୃତୀୟ—ବିଂ.(ତ୍ରି+ତୀୟ)ତିନିର ପୂରଣ-ବାଚକ ଶବ୍ଦ, ଦ୍ୱିତୀୟର ପରବର୍ତ୍ତୀ, ତ୍ରିଗୁଣିତ, (ଗ୍ରା.ବିଂ) ତିନି ।

ତୃତୀୟକ—ପୁଂ. ବ. ( ତୃତୀୟ+କ ) ବିଷମ ଜ୍ୱରବିଶେଷ, ପାଳିଜର, ତିନି ଦିନରେ ଥରେ ହେଉଥିବା ଜ୍ୱର, (ବିଂ) ତିନିଦିନ ଅନ୍ତରେ ଘଟିବା ।

ତୃତୀୟକବିପର୍ଯ୍ୟୟ—ପୁଂ.ବ. ତୃତୀୟକ ଜ୍ୱରବିଶେଷ ।

ତୃତୀୟତା—ସ୍ତ୍ରୀ. ବ. ତୃତୀୟତ୍ୱ ।

ତୃତୀୟପନ୍ଥା—ବି. ଦୁଇ ନିର୍ଦ୍ଦିଷ୍ଟ ପଥରୁ ବିଭିନ୍ନ ପଥ, ଏକ ସ୍ୱତନ୍ତ୍ର ବାଟ ।

ତୃତୀୟପୁରୁଷ—ବି. ଆମ୍ଭେ ଓ ତୁମ୍ଭେ ଛଡ଼ା ଅନ୍ୟ ବ୍ୟକ୍ତି ବା ବସ୍ତୁବାଚକ ପଦ, (ସେ,ତାହା) ବାହାରର ଲୋକ, ନିଃସମ୍ପର୍କୀୟ ଲୋକ । [ କ୍ଲୀବ ।

ତୃତୀୟପ୍ରକୃତି—ସ୍ତ୍ରୀ.ବ(ବ.ବ୍ରୀ)ନପୁଂସକ,

ତୃତୀୟଯୁଗ—ବି.ଦ୍ୱାପର ଯୁଗ ।

ତୃତୀୟଯୁଗପର୍ଯ୍ୟୟ—ପୁଂ. ବ. ଯେଉଁ ସମୟରେ ଦ୍ୱାପର ଯୁଗର ତୃତୀୟ ପର୍ଯ୍ୟାୟ ଉପସ୍ଥିତ ହୁଏ, ଦ୍ୱାପରଯୁଗର ପରବର୍ତ୍ତୀଧାର କଳି ସନ୍ଧିରୂପ କାଳ, ତୃତୀୟ ଯୁଗର ପରବର୍ତ୍ତୀ ।

ତୃତୀୟସବନ—କ୍ଲୀ. ବ. ତିନି କାଳରେ ସବନତ୍ରୟଯୁକ୍ତ ଅଗ୍ନିଷ୍ଟୋମାଦିର ତୃତୀୟ ଯଜ୍ଞ ।

ତୃତୀୟା—ସ୍ତ୍ରୀ. ବ. (ତୃତୀୟ+ଆ) ତିଥି-ବିଶେଷ, ପୂର୍ଣ୍ଣିମା ବା ଅମାବାସ୍ୟାର ପରବର୍ତ୍ତୀ ତୃତୀୟ ତିଥି, ପକ୍ଷର ତୃତୀୟା ତିଥି, ତୃତୀୟାବିଭକ୍ତି ।

ତୃତୀୟାଂଶ—ପୁଂ. ବ. (କ.ଧା) ତୃତୀୟ ଭାଗ, ଏକତୃତୀୟାଂଶ, କୌଣସି ପଦାର୍ଥର ତିନିଭାଗରୁ ଏକଭାଗ ।

ତୃତୀୟାକୃତ—ବିଂ. ତିନିବାର ଚଷ ହୋଇଥିବା (କ୍ଷେତ୍ର), ତିନିବାର କୃଷ୍ଟ, (୭ତତ୍)ତୃତୀୟା ତିଥିରେ ସମ୍ପାଦିତ ।

ତୃତୀୟାତତ୍ପୁରୁଷ—(ବ୍ୟାକରଣ)ଯେଉଁ ତତ୍ପୁରୁଷ ସମାସରେ ପ୍ରଥମ ପଦର ତୃତୀୟା ବିଭକ୍ତିର ଚିହ୍ନ ଲୋପ ହୋଇ-ଥାଏ ।

ତୃତୀୟାପ୍ରକୃତି—ସ୍ତ୍ରୀ.ବ(ବ.ବ୍ରୀ)ନପୁଂସକ, କ୍ଲୀବ, (ବି.କ.ଧା) କ୍ଲୀବତ୍ୱ, ନପୁଂସକ ବ୍ୟକ୍ତି, କ୍ଲୀବଲିଙ୍ଗ ।

ତୃତୀୟାବିଭକ୍ତି—( ବ୍ୟାକରଣ ) ଦ୍ୱାରା, କର୍ତ୍ତୃକ, ରେ ପ୍ରଭୃତି ଚିହ୍ନଯୁକ୍ତ କରଣ-କାରକର ବିଭକ୍ତି ।

ତୃତୀୟାଶ୍ରମ—ପୁଂ.କ୍ଲୀ.ବ. ବାନପ୍ରସ୍ଥାଶ୍ରମ, ଗୃହସ୍ଥାଶ୍ରମ ପରେ ଏହାକୁ ଅବଲମ୍ବନ କରନ୍ତି ।

ତୃତୀୟାସମାସ—ପୁଂ.ବ. ସମାସବିଶେଷ, ତୃତୀୟା ତତ୍ପୁରୁଷ ସମାସ ।

ତୃତୀୟୀ—ପୁଂ, ବିଂ. ( ତୃତୀୟ+ଇନ୍ ) ତୃତୀୟଭାଗାର୍ହ, ଏକତୃତୀୟାଂଶ ଧନ ପାଇବାର ଅଧିକାରୀ, ତୃତୀୟ ସ୍ଥାନରେ ଅଧିକାରୀ ।

ତୃନ୍ତୁ—ବିଂ.(ତୃଦ୍+ନୁ)ହିଂସକ, (ବି) ରାଜର୍ଷିଭେଦ । [ ଭିନ୍ନ ।

ତୃଦିଲ—ବିଂ.(ତୃଦ୍+ଇଲ) ଭେଦକ,

ତୃପତ୍ର—ପୁଂ.ବ. (ତୃପ+କ.ଅତ୍ର)ଚନ୍ଦ୍ର, ଛତ୍ର, ଛତା, ଇନ୍ଦ୍ର ।

ତୃପତ—ପୁଂ.ବ.(ତୃପ+କ.ଅତ)ଚନ୍ଦ୍ର, (ଗ୍ରା.ବିଂ) ତୃପ୍ତ ଦେଖ । [ ତୃପ୍ତ ।

ତୃପତି—ଗ୍ରା. ବ. ତୃପ୍ତି ଦେଖ, (ବିଂ)

ତୃପଲ—ପୁଂ. ବିଂ. କ୍ଷିପ୍ର, କ୍ଷିପ୍ରକାରୀ ।

ତୃପଲପ୍ରଭର୍ମା—ପୁଂ.ବିଂ. ପ୍ରସ୍ତରାଦି ଦ୍ୱାରା ପ୍ରହାରକାରକ, କ୍ଷିପ୍ରପ୍ରହାରକାରକ ।

ତୃପଲା—ସ୍ତ୍ରୀ.ବ.ଲତା,ତ୍ରିଫଳା, ହରିଡ଼ା, ବାହାଡ଼ା ଓ ଅଁଳା ।

ତୃପାଲା—ସ୍ତ୍ରୀ. ବ. ଲତା ।

ତୃପ୍ତ—ପୁଂ.ବିଂ.(ତୃପ+କ.ତ) ତୃପ୍ତି-ଯୁକ୍ତ, ସନ୍ତୁଷ୍ଟ, ହୃଷ୍ଟ, ଆହ୍ଲାଦିତ, ପୂର୍ଣ୍ଣ-କାମ, ପ୍ରସନ୍ନ, ପରିତୁଷ୍ଟ ।

ତୃପ୍ତା—ସ୍ତ୍ରୀ. ବ. ଗାୟତ୍ରୀଭେଦ ।

ତୃପ୍ତାଂଶୁ—ବିଂ.(ବ.ବ୍ରୀ) ତର୍ପିତାବୟବ, ଯାହାର ଶରୀର ତୃପ୍ତ ହୋଇଅଛି ।

ତୃପ୍ତି—ସ୍ତ୍ରୀ.ବ.(ତୃପ୍+ଭା.ତି) ଭକ୍ଷଣାଦି ଦ୍ୱାରା ଇଚ୍ଛା ନିବୃତ୍ତି, ସନ୍ତୋଷ, ପରି-ତୋଷ, ଆହ୍ଲାଦ ।

ତୃପ୍ତିକର—ପୁଂ.ବିଂ.ପ୍ରୀତିପ୍ରଦ, ଆହ୍ଲାଦ-ଜନକ ।

ତୃପ୍ତିଦା—ସ୍ତ୍ରୀ. ବ. ଗାୟତ୍ରୀଭେଦ ।

ତୃପ୍ରୀ—ପୁଂ.ବିଂ.(ତୃପ୍ତି+ଇନ୍)ତୃପ୍ତି-ଯୁକ୍ତ ।

ତୃପ୍ତିମାନ୍—ପୁଂ. ବିଂ. (ତୃପ୍ତି+ମତ୍) ତୃପ୍ତିଯୁକ୍ତ; (ସ୍ତ୍ରୀ) ତୃପ୍ତିମତୀ, ଉଦକ, ଜଳ ।

ତୃପ୍ନୁ—ବିଂ. (ତୃପ+କ୍ନୁ)ତୃପ୍ତିଶୀଳ ।

ତୃପ୍ର—ପୁଂ. ବି. (ତୃପ୍+କ.ର) ଘୃତ, ପୁରୋଡ଼ାଶ, ଦୁଃଖ,(ବିଂ.)ତୃପ୍ତି କରିବା ବ୍ୟକ୍ତି ।

ତୃପ୍ରାଳୁ—ପୁଂ.ବିଂ. ଦୁଃଖାସହନ, ଦୁଃଖ ସହ୍ୟ କରି ନ ପାରିବା ।

ତୃଫଳା—ସ୍ତ୍ରୀ. ବି. ତ୍ରିଫଳା, ହରଡ଼ା, ବାହାଡ଼ା ଓ ଅଁଳା ।

ତୃଫ୍—ବି. ସର୍ପଜାତି ।

ତୃଷ୍—ସ୍ତ୍ରୀ. ବି. (ତୃଷ+କ୍ୱିପ୍) ତୃଷା; ଇଚ୍ଛା, ଆକାଂକ୍ଷା ।

ତୃଷା—ସ୍ତ୍ରୀ. ବି. (ତୃଷ+ଭା.ଅ+ଆ) ଆକାଂକ୍ଷା, ଇଚ୍ଛା, ପିପାସା, ଲୋଭ ।

ତୃଷାକରିବା—ଗ୍ରା. ବି. ଶୋଷ କରିବା, ପିପାସୁ ହେବା, ଶୋଷେଇବା ।

ତୃଷାତୁର—ପୁଂ. ବିଂ. (୫ତତ୍) ତୃଷା ହେତୁ ଆତୁର, ତୃଷାର୍ତ୍ତ,(ସ୍ତ୍ରୀ)ତୃଷା-ତୁରା ।

ତୃଷାନ୍ୱିତ—ପୁଂ.ବିଂ.(୩ତତ୍)ତୃଷାର୍ତ୍ତ, ଲୁବ୍ଧ, ଇଚ୍ଛୁକ, ଲାଳାୟିତ ।

ତୃଷାବାନ୍—ପୁଂ ବିଂ. (ତୃଷା+ବତ୍) ଯାହାକୁ ଶୋଷ କରୁଥାଏ, ଶୋଷୀ, (ସ୍ତ୍ରୀ) ତୃଷାବତୀ ।

ତୃଷାଭୂ—ସ୍ତ୍ରୀ. ବି. କ୍ଳୋମ, ମୂତ୍ରାଧାର, ପେଟ ମଧ୍ୟରେ ଯେଉଁ ସ୍ଥାନରେ ଜୀବ ପିଇଥିବା ପାଣି ମୂତ୍ରାଶୟକୁ ଯିବା ପୂର୍ବରୁ ଜମା ରହେ ।

ତୃଷାର୍ତ୍ତ—ପୁଂ.ବିଂ.(୩ତତ୍) ଶୋଷ ଦ୍ୱାରା ଜର୍ଜରିତ, ପିପାସା ଦ୍ୱାରା କାତର, (ସ୍ତ୍ରୀ). ତୃଷାର୍ତ୍ତା ।

ତୃଷାଳୁ—ପୁଂ. ବିଂ. ( ତୃଷା+ଆଳୁ ) ତୃଷିତ, ପିପାସିତ ।

ତୃଷାହ—କ୍ଲୀ. ବି. (ତୃଷା+ହନ୍+ଅ) ଜଳ, ମଧୁରିକା, ପାନମହୁରି ।

ତୃଷିତ—ପୁଂ.ବିଂ.(ତୃଷ+କ.ତ)ତୃଷ୍ଣା-ନ୍ୱିତ, ଲୁବ୍ଧ, ଇଚ୍ଛୁକ; ତୃଷାର୍ତ୍ତ ।

ତୃଷିତୋତ୍ତରା—ସ୍ତ୍ରୀ.ବି.ଅଶନପର୍ଣ୍ଣୀବୃକ୍ଷ ।

ତୃଷୁ—କ୍ଲୀ.ବି.କ୍ଷିପ୍ର, (ବିଂ) କ୍ଷିପ୍ରତାଯୁକ୍ତ ।

ତୃଷ୍ୱଦ୍ୟନସ—ବିଂ. କ୍ଷିପ୍ରଗମନଯୁକ୍ତ ।

ତୃଷ୍ୱଚ୍ୟୁତ—ବିଂ. କ୍ଷିପ୍ରଗମନଶୀଳ ।

ତୃଷ୍ଟ—ବିଂ. (ତୃଷ୍+ତ) ଦାହଜନକ, ତୃଷିତ । [ ନଦୀ ।

ତୃଷ୍ଟାମା—ସ୍ତ୍ରୀ.ବି. (ତୃଷ୍ଟ+ଅମ+ଅ+ଆ)

ତୃଷ୍ଣକ୍—ବିଂ. (ତୃଷ+କ.ନଜ୍) ଲୁବ୍ଧ, ତୃଷିତ, ପିପାସିତ ।

ତୃଷ୍ଣା—ସ୍ତ୍ରୀ. ବି. ( ତୃଷ+ଭା.ଣ+ଆ ) ପିପାସା, ପାନେଚ୍ଛା, ଲୋଭ, ଶୋଷ-ଲାଳସା, ରୋଗଭେଦ ।

ତୃଷ୍ଣାକ୍ଷୟ—ପୁଂ. ବି. (୬ତତ୍) ଶାନ୍ତି, ପିପାସାନାଶ ।

ତୃଷ୍ଣାଘ୍ନ—ବିଂ. (ତୃଷ୍ଣା+ହନ୍+ଅ)ତୃଷ୍ଣା-ନାଶକ, (ବି)ଜଳ ।

ତୃଷ୍ଣାତୁର—ବିଂ(୩ତତ୍)ପିପାସା ହେତୁ କାତର, ତୃଷାର୍ତ୍ତ ।

ତୃଷ୍ଣାଦୂରକରିବା—ଗ୍ରା. କ୍ରି. ପିପାସା ନିବୃତ୍ତି କରିବା ।

ତୃଷ୍ଣାନିବୃତ୍ତି—ସ୍ତ୍ରୀ.ବି, (୬ତତ୍)ପିପାସାର ଉପଶମ ବା ତୃପ୍ତି, ବାସନାକ୍ଷୟ, ବୈରାଗ୍ୟ, ସାଂସାରିକ ବିଷୟ ପ୍ରତି ଅନାସକ୍ତି, ତୃପ୍ତି ।

ତୃଷ୍ଣାନ୍ୱିତ—ପୁଂ. ବିଂ. (୩ତତ୍) ତୃଷିତ, (ସ୍ତ୍ରୀ) ତୃଷ୍ଣାନ୍ୱିତା ।

ତୃଷ୍ଣାରି—ପୁଂ.ବି.(୬ତତ୍)ପର୍ପଟ, କ୍ଷେତ ପାପଡ଼ା, (ବିଂ) ତୃଷ୍ଣାନାଶକ ।

ତୃଷ୍ଣାର୍ତ୍ତ—ପୁଂ.ବିଂ.(୩ତତ୍) ପିପାସାଯୁକ୍ତ, ତୃଷିତ, (ସ୍ତ୍ରୀ) ତୃଷ୍ଣାର୍ତ୍ତା ।

ତୃଷ୍ଣାଳୁ—ପୁଂ. ବିଂ. ( ତୃଷ୍ଣା+ଆଳୁ ) ତୃଷିତ, ପିପାସାର୍ତ୍ତ ।

ତୃଷ୍ୟ—ବିଂ. (ତୃଷ୍+ମିଂ.ଯ) ଲୋଭ୍ୟ, ଲୋଭନୀୟ, ଏଷଣୀୟ, ବାଞ୍ଛନୀୟ,(କ୍ଲୀ. ବି) ଲୋଭ, ଶୋଷ ।

ତୃଷ୍ୟାବାନ୍—ପୁଂ. ବିଂ. ତୃଷ୍ଣାଯୁକ୍ତ ।

ତେ—ଅବ୍ୟ.ହୟ୍ୱା,ତାତ୍କାଳିକ,ଗୌଣ, ( ପ୍ରା. ପ୍ରତ୍ୟୟ. ବଙ୍ଗଳା ) ନିମିତ୍ତ ବା ହେତୁ ଅର୍ଥକ ବିଭକ୍ତି ।

ତେଇଶ(ଶି)—ଗ୍ରା.ବି.୨୩ ସଂଖ୍ୟା, (ବିଂ) ୨୩ ସଂଖ୍ୟକ ।

ତେଉଅରି—ଗ୍ରା: ବି. ପଶ୍ଚିମା ବ୍ରାହ୍ମଣଙ୍କ ଉପାଧିବିଶେଷ । [ ତ୍ରିବୃତ୍ତ ।

ତେଉ(ହୁ)ଡ଼ି—ଗ୍ରା. ବି, ତିହୁଡ଼ି, ତ୍ରିବୃତ୍,

ତେଓରି—ଗ୍ରା. ବି. ତାଳବିଶେଷ, ତନ୍ତ୍ରି ତାଳ । [ କଇଁଆ ।

ତେଁତର—ପ୍ରା. (ବସ୍ତର) ବି. ତେନ୍ତୁଳି,

ତେକାଣ୍ଟ—ଗ୍ରା. ବି. (ସଂ-ତ୍ରିକଣ୍ଟକ)ତିନି ମୁନ ଥିବା ଅସ୍ତ୍ର, ତେଣ୍ଟା, ଅସ୍ତ୍ରବିଶେଷ ।

ତେଗବାହାଦୁର—ଗ୍ରା.ବି.ଶିଖ ସମ୍ପ୍ରଦାୟର ନବମ ଗୁରୁ ।

ତେଗା—ସ୍ତ୍ରୀ.ବି.ଅପ୍ରସିଦ୍ଧ ଦେବତାଭେଦ

ତେଙ୍କରଇ—ମଦୁରାଜିଲାସ୍ଥିତ ଗୋଟିଏ ପୁଣ୍ୟ ସ୍ଥାନ ।

ତେଙ୍ଗଡ଼ା—ଗ୍ରା. ବି. ହାଣ୍ଡିଆଦି ରଖିବା ନିମନ୍ତେ ଦୁଇ କାନ୍ଥର କଣରେ ଖଣ୍ଡିଏ କାଠି ମରାଯାଇ ପ୍ରସ୍ତୁତ କରାଯିବା ତ୍ରିକୋଣାକାର ସ୍ଥାନ, ରନ୍ଧନଶାଳାରେ ହାଣ୍ଡି ରଖିବା ନିମନ୍ତେ ମାଟି କରାଯାଇଥିବା ପିଣ୍ଡି

ତେଙ୍ଗଲ—ବୈଷ୍ଣବଭେଦ,ମାନ୍ଦ୍ରାଜ ପ୍ରଦେଶରେ ବୈଷ୍ଣବମାନେ ଦୁଇ ସମ୍ପ୍ରଦାୟରେ ବିଭକ୍ତ, ବଡ଼ଗଲ ବା ଉତ୍ତରଦେଶୀ, ତେଙ୍ଗଲ ।

ତେଜ—ଗ୍ରା. ବି. (ସଂ-ତେଜସ୍) କାନ୍ତି, ଦୀପ୍ତି, ଦ୍ୟୁତି, ପରାକ୍ରମ, ପ୍ରତାପ, ରାଗ, ଉନ୍ମାଦନ, ଶକ୍ତି, ସ୍ଫୂର୍ତ୍ତି, ଗୃଞ୍ଜନ୍ଧ,ଦାଉ, ଜୋର, (ଯା.ବି) ତୀକ୍ଷ୍ଣତା, ଉଗ୍ରତା, ଅସହ୍ୟତା, ବେଗ, (ଯ. ବିଂ) ବହୁମୂଲ୍ୟ, ମହଙ୍ଗା(ବସ୍ତୁ),ତୀକ୍ଷ୍ଣ, ଦାଢ଼ୁଆ, ବେଗ-ବାନ୍, କଡ଼ା, କଡ଼ୁଆ, ରାଗୀ, ଉଗ୍ର, ପ୍ରଚଣ୍ଡ, (ଗ୍ରା.ବି)ବିଚକ୍ଷଣ,ଆଶୁଫଳପ୍ରଦ ଚଞ୍ଚଳ, ଅସ୍ଥିର, କଡ଼ାମିଜାଜ୍ ।

ତେଜଃ—କ୍ଲୀ. ବି.(ତିଜ+ଅସ୍)ପ୍ରତାପ, ଦୀପ୍ତି, ଜ୍ୟୋତି,ଆଭା,ଚମକ, ଆଲୋକ, ଘୋଡ଼ାକର ବେଗ,ଦାଉ,ପ୍ରତାପ,ପ୍ରଖର

ଜୋର, ବଳ, ଶକ୍ତି, ପରାକ୍ରମ, ରେତଃ, ଶୁକ୍ର, ବୀର୍ଯ୍ୟ, ସତ୍ତ୍ୱ, ପୌରୁଷ, ଘୃତ, ଦର୍ପ, ଉଦ୍ଧତପଣ, ପିତ୍ତ, ସୁବର୍ଣ୍ଣାଦିଧାତୁ, ଦ୍ରବ୍ଯ, ମଗଜ, ମଜ୍ଜା, କୌଣସି ବସ୍ତୁର ସାର ଭାଗ, ଲକ୍ଷ୍ମଣୀ, ସତ୍ତ୍ୱଗୁଣରୁ ଉତ୍ପନ୍ନ ଲିଙ୍ଗଶରୀର, ପଞ୍ଚମହାଭୂତରୁ ଏକତମ, ଅଗ୍ନି, ବୀରତା, ସାହସ, ଶାରୀରିକ ପ୍ରଭାବବିଶିଷ୍ଟ ବ୍ୟକ୍ତି, ଚରିତ୍ରବଳ, (ଯାହା ଅପମାନ ବା ମନ୍ଦବ୍ୟବହାର ସହ୍ୟ କରି ପାରେନାହିଁ) ଗୌରବ ମହତ୍ତ୍ୱ, ଚକ୍ଷୁରପ୍ରଭା ବା ନିର୍ମଳତା, ଉଜ୍ଜ୍ୱଳ ବସ୍ତ୍ର, ପ୍ରଚଣ୍ଡତା, ତୀବ୍ରତା, ସୂର୍ଯ୍ୟ ।

**ତେଜଃପୁଞ୍ଜ**—ପୁଂ.ବି.(୬ତତ୍ପୁ) ତେଜୋରାଶି ।

**ତେଜଃଫଳ**—କ୍ଲୀ.ବି.ବୃକ୍ଷଭେଦ, ତେଜଫଳ, ଶିମିଳିଫଳ ।

**ତେଜକରଣ**—ଗ୍ରା. ବି. ଗୋସ୍ୱାଲପୁରର ଜଣେ ବିଖ୍ୟାତ ରାଜା ।

**ତେଜକଲମ**—ଗ୍ରା. ବି. ଶୀଘ୍ର ଲିଖନ ।

**ତେଜକାଢ଼ିବା**—ଗ୍ରା.କ୍ରି.ରାଗ ଦେଖାଇବା, ପ୍ରଭାବ ଦେଖାଇବା,ଗର୍ବ ଦେଖାଇବା ।

**ତେଜଚନ୍ଦ**—ଗ୍ରା. ବି. ତେଜସମୂହ, ତେଜୋରାଶି ।

**ତେଜଣା**—ଗ୍ରା. ବି. (ସଂ-ତେଜନ)ତୀକ୍ଷ୍ଣକରଣ, ପଜାଇବା, ଜଳୁଥିବା ପ୍ରଦୀପର ବଳିତାକୁ ତେଜିବା ନିମନ୍ତେ ବ୍ୟବହୃତ ଶଲାକା ବା କାଠି, ଦୀପ ତେଜିବା ।

**ତେଜନ**—କ୍ଲୀ. ବି. (ତିଜ+ଣି.ଅନ). ତୀକ୍ଷ୍ଣୀକରଣ, ଦୀପ୍ତକରଣ, ଦୀପନ (ର୍ମି.ଅନ) ବାଉଁଶ, ମୁଞ୍ଜତୃଣ, ମୁରୁଗାଘାସ, କାଣ୍ଡଶର, ଶରତୃଣ ।

**ତେଜନକ**—ପୁଂ. ବି.(ତିଜ+ଣି+ଅନ+ଅକ) ତେଜନ ଦେଖ ।

**ତେଜନାହ୍ୱ**—ପୁଂ.ବି.(ବ.ବ୍ରୀ) ମୁଞ୍ଜତୃଣ. ମୁରୁଗାଘାସ. କାଣ୍ଡଶର ।

**ତେଜମା**—ସ୍ତ୍ରୀ. ବି. ମୂର୍ଦ୍ଧା, ଗୁଇଁକାଠ, ତେଜୋବତୀ, ଜ୍ୟୋତିଷ୍ମତୀ ।

**ତେଜପତ**—କ୍ଲୀ. ବି. ତେଜପତ୍ର,ସ୍ୱନାମଖ୍ୟାତ ପତ୍ରବିଶେଷ ।

ତେଜପାଳ—ପୁଂ. ବି. ଗୁର୍ଜରର ଜଣେ ବିଖ୍ୟାତ ମନ୍ତ୍ରୀ ।

ତେଜପୁର—ଗ୍ରା. ବି. ଆସାମ ଦରଙ୍ଗ ଜିଲ୍ଲାର ପ୍ରଧାନ ନଗର ।

ତେଜଲ—ପୁଂ. ବି. (ତିଜ+ଅଲ)କପିଞ୍ଜଳପକ୍ଷୀ,ଗୌର ତିତ୍ତିର.ଚାତକପକ୍ଷୀ ।

ତେଜବତୀ—ସ୍ତ୍ରୀ.ବି.ତେଜୋବତୀ ଦେଖ ।

ତେଜବନ୍ତ—ଗ୍ରା. ବିଂ.(ସଂ-ତେଜୋବନ୍ତ) ତେଜୋବାନ୍ ଦେଖ ।

ତେଜବର—ପ୍ରା.(ବାଲୋବ.ଯେ ତୃତୀୟଥର ବିବାହ କରିଅଛି ।

ତେଜସ୍—କ୍ଲୀ. ବି. (ତିଜ+ଅସ୍)ତେଜଃ ଦେଖ ।

ତେଜସିଂହ—ପୁଂ.ବି.ପ୍ରସିଦ୍ଧ ଶିଖ ସେନାପତି ।

ତେଜସ୍କର—ବିଂ. (ତେଜସ୍+କୃ+କ.ଅ)ବଳକାରକ,ପ୍ରଭାବଶାଳୀ. ଦୀପ୍ତିଶାଳୀ. ଉଦ୍ଦୀପକ, ତେଜୋବୃଦ୍ଧିକାରକ,ତେଜିଜନକ, (ସ୍ତ୍ରୀ) ତେଜସ୍କରୀ ।

ତେଜସ୍ୟ—ବିଂ. (ତେଜସ+ଯ) ତେଜଃସାଧନ, (ବି) ମହାଦେବ ।

ତେଜସ୍ୱ—ପୁଂ. ବି. ( ତେଜସ୍+ବ ) ମହାଦେବ, ଶିବ ।

ତେଜସ୍ୱତୀ—ସ୍ତ୍ରୀ. ବି.(ତେଜସ୍ୱତ+ଈ) ଗୁଣବର୍ମାର କନ୍ୟା,ଚଇ. ବଣପିପ୍ପଳୀ, ଗଜପିପ୍ପଳୀ,(ବିଂ)ତେଜସ୍ୱାନର ସ୍ତ୍ରୀଲିଙ୍ଗ ।

ତେଜସ୍ୱାନ୍—ପୁଂ.ବିଂ. (ତେଜସ୍+ବତ୍) ଦୀପ୍ତିମାନ୍, ପ୍ରଭାବଶାଳୀ, ବଳବାନ୍ । ତେଜୀୟାନ୍, ତେଜୋଯୁକ୍ତ,ବୀର୍ଯ୍ୟବାନ୍

ତେଜସ୍ୱିତା—ସ୍ତ୍ରୀ. ବି. ତେଜସ୍ୱିତ୍ୱ, ପ୍ରଭାବଶାଳିତା,ମାନସିକଶକ୍ତି,ବଳବତ୍ତା

ତେଜସ୍ୱିତ୍ୱ—କ୍ଲୀ. ବି. ତେଜବିଶିଷ୍ଟତ୍ୱ, ବଳବତ୍ତ୍ୱ ।

ତେଜସ୍ୱିନୀ—ସ୍ତ୍ରୀ.ବି.(ତେଜସ୍ୱିନ+ଈ) ଜ୍ୟୋତିଷ୍ମତୀଲତା, ମହାଜ୍ୟୋତିଷ୍ମତୀ, ତେଜୋବିଶିଷ୍ଟା, (ସ୍ତ୍ରୀ) ତେଜୋବତୀ ଦେଖ,(ସ୍ତ୍ରୀ.ବିଂ.)ତେଜସ୍ୱୀର ସ୍ତ୍ରୀଲିଙ୍ଗ ।

ତେଜସ୍ୱୀ—ପୁଂ. ବିଂ.(ତେଜସ୍+ବିନ୍) ଦୀପ୍ତିଶାଳୀ, ତେଜୋବିଶିଷ୍ଟ ପରାକ୍ରାନ୍ତ, ବଳବାନ୍, (ସ୍ତ୍ରୀ) ତେଜସ୍ୱିନୀ ।

ତେଜା—ଗ୍ରା. ବି. (ସଂ-ତେଜନ ) ଦୀପ ତେଜିବା, ଉତ୍ତେଜନା ।

ତେଜା(ଜୋ)ଇବା—ଗ୍ରା. କ୍ରି. ତେଜିବା କ୍ରିୟାର ଣିଜନ୍ତରୂପ,ତ୍ୟାଗକରାଇବା ।

ତେଜାବ୍—ଯା. ବି. ଅମ୍ଳସାର, ଏସିଡ୍ ।

ତେଜାରତ୍—ଯା. ବି. କରଜଦେଇ ସୁଧନେବାର ବ୍ୟବସାୟ, ମହାଜନୀ ।

ତେଜାରତି—ଯା.ବି.କରଜ ବ୍ୟବସାୟ, କୁସୀଦ,ସୁଧରେ ଟଙ୍କା ଲଗାଇବା ।

ତେଜାଲ—ଗ୍ରା. ବିଂ. ତେଜୋଯୁକ୍ତ, ତେଜସ୍ୱୀ, ତେଜୀ,(ଯ ବି)ମାଟିର ଉଠାଚୁଲି ।

ତେଜିଉଠିବା—ଗ୍ରା.କ୍ରି.ଖର ରଗିଯିବା । ଅପେକ୍ଷାକୃତ ତେଜସ୍କର ହେବା ।

ତେଜିତ—ବିଂ. ( ତିଜ+ଣି+ର୍ମି.ତ ) ଶାଣିତ,ତୀକ୍ଷ୍ଣୀକୃତ,ମାର୍ଜିତ,ଉତ୍ତେଜିତ ।

ତେଜିନୀ—ସ୍ତ୍ରୀ.ବି. ତେଜୋବତୀ ଲତା ।

ତେଜିବା—ଗ୍ରା. କ୍ରି. ଦୀପରୁ ବଳିତାକୁ ସତେଜ କରିବା, ଉତ୍ତେଜିତ କରିବା, ଚିହ୍ନାଇବା, ରଗାଇବା, ଉଚ୍ଚଦର ହେବା, ଦୁର୍ମୂଲ୍ୟ ହେବା, ବିଶେଷ ପ୍ରଭାବଶାଳୀ ହେବା, ତ୍ୟାଗକରିବା, ମାୟାମମତା ନ ରଖିବା ।

ତେଜିଷ୍ଠ—ପୁଂ.ବିଂ. (ତେଜସ୍+ଇଷ୍ଠ ) ଅତିତେଜସ୍ୱୀ, ଅତ୍ୟନ୍ତ ପ୍ରଭାବଶାଳୀ, (ସ୍ତ୍ରୀ) ତେଜିଷ୍ଠା ।

ତେଜୀ—ଗ୍ରା. ବିଂ. (ସଂ-ତେଜସ୍ୱୀ)ତେଜଃଶାଳୀ, ତେଜସ୍ୱୀ, ଦୀପ୍ତିଶାଳୀ, ତେଜୀୟାନ୍, ତେଜସ୍କର, ବଳିଷ୍ଠ, ପରାକ୍ରମୀ, ରାଗୀ, ପ୍ରଭାବଶାଳୀ, (ଯା.ବି) ତେଜୀ, ଚଢ଼ାଭାଉ, ଦାଢ଼, ତୀକ୍ଷ୍ଣତା,ଶୀଘ୍ରଗାମିତ୍ୱ, କଡ଼ା ଆଘ୍ରାଣ ।

ତେଜୀୟାଂସ—ଗ୍ରା.ବି.ତେଜୀୟାନ୍ ଦେଖ ।

ତେଜୀୟାନ୍—ପୁଂ.ବିଂ(ତେଜସ୍+ଇୟସ୍) ତେଜଯୁକ୍ତ,ତେଜସ୍ୱୀ,(ସ୍ତ୍ରୀ)ତେଜୀୟସୀ ।

ତେଜେୟୁ—ପୁଂ. ବି. ରୌଦ୍ରାଶ୍ୱନୃପଙ୍କ ପୁତ୍ରଭେଦ ।

ତେଜୋଗର୍ଭ—ବିଂ.(ବ.ବ୍ରୀ)ତେଜଃପୂର୍ଣ୍ଣ,

(ସ୍ତ୍ରୀ) ତେଜୋଗର୍ଭା ।
**ତେଜୋନାଥତୀର୍ଥ**—କ୍ଲୀ. ବ. ଶିବପୁରାଣୋକ୍ତ ତୀର୍ଥବିଶେଷ ।
**ତେଜୋନିଧି**—ବି°. (୬ତତ୍) ତେଜୋବିଶିଷ୍ଟ, ତେଜର ଆକର, ତେଜଃଶାଳୀ, (ପୁ°. ବି) ସୂର୍ଯ୍ୟ, ଅଗ୍ନି, ଦୁର୍ବାସା ।
**ତେଜୋମଣ୍ଡଳ**—କ୍ଲୀ. ବ. ଚନ୍ଦ୍ର ବା ସୂର୍ଯ୍ୟମଣ୍ଡଳ ।
**ତେଜୋମନ୍ଥ**—ପୁ°. ବ. ଗଣିକାରିକା ବୃକ୍ଷ, ଗନିଆରି ଗଛ ।
**ତେଜୋମୟୀ**—ପୁ°. ବି°. (ତେଜସ୍+ମୟ) ତେଜଃପ୍ରଚୁର, ତେଜୋବିକାର. ଜ୍ୟୋତିର୍ମୟ, ଦୀପ୍ତିଶାଳୀ, ଭାସ୍ୱର, (ସ୍ତ୍ରୀ) ତେଜୋମୟୀ ।
**ତେଜୋମୟୀ**—ବି°.ତେଜୋମୟ ଦେଖ ।
**ତେଜୋମାତ୍ରା**—ସ୍ତ୍ରୀ.ବ.ତୈଜସ ଅଂଶ ।
**ତେଜୋମୂର୍ତ୍ତି**—ପୁ°.ବ.(ତେଜଃ+ମୂର୍ତ୍ତି) ଜ୍ୟୋତିର୍ମୟରୂପ, ସୂର୍ଯ୍ୟ, (ତି°-ବ.ବ୍ରୀ) ତେଜାତ୍ମକ;ତେଜଃପ୍ରଚୁର,ଜ୍ୟୋତିର୍ମୟ ରୂପବିଶିଷ୍ଟ ।
**ତେଜୋରାଶି**—ପୁ°.ବ.(୬ତତ୍)ତେଜଃପୁଞ୍ଜ, ତେଜସମୂହ ।
**ତେଜୋରୂପ**—କ୍ଲୀ. ବ. (ବ.ବ୍ରୀ) ବ୍ରହ୍ମ. ତେଜରୂପ, ତେଜଃସ୍ୱରୂପ ।
**ତେଜୋବତୀ**—ସ୍ତ୍ରୀ. ବ.(ତେଜୋବତ୍+ଈ) ଗଜପିପ୍ପଳୀ, ଗୁଇଁକାଠ, ଚବିକା, ମହାଜ୍ୟୋତିଷ୍ମତୀ, ଅଗ୍ନିର ବିମାନ, ହିମାଳୟର ନିକଟବର୍ତ୍ତୀ ହରିଦ୍ୱାରାଦି ସ୍ଥାନରେ ଜନ୍ମିବା ବନକଣ୍ଟକୀ ବୃକ୍ଷବିଶେଷ,(ବି°)ତେଜୋବାନର ସ୍ତ୍ରୀଲିଙ୍ଗ
**ତେଜୋବାନ୍**—ପୁ°. ବି°. (ତେଜସ୍+ବତ୍) ତେଜୋଯୁକ୍ତ, ତେଜଃଶାଳୀ, ବୀର୍ଯ୍ୟବାନ୍,ବଳୁଆ,ଶକ୍ତିଶାଳୀ,କାନ୍ତିମାନ
**ତେଜୋବିଦ୍**—ପୁ°. ବି°.ଯାହାର ତେଜ ଅଛି । [ ଭେଦ
**ତେଜୋବିନ୍ଦୂପନିଷଦ୍**—ସ୍ତ୍ରୀ.ବ. ଉପନିଷଦ
**ତେଜୋବୀଜ**—କ୍ଲୀ. ବ. ମଜ୍ଜା
**ତେଜୋବୃକ୍ଷ**—ପୁ°. ବ. କ୍ଷୁଦ୍ରାଗ୍ନିମନ୍ଥ ବୃକ୍ଷ, ଛୋଟ ଗନିଆରି ବୃକ୍ଷ ।
**ତେଜୋବୃତ୍ତ**—କ୍ଲୀ.ବ.(୬ତତ୍)ବୀର୍ଯ୍ୟାନୁରୂପ ।
**ତେଜୋହ୍ୱା**—ସ୍ତ୍ରୀ.ବ.ତେଜୋବତୀ ଦେଖ ଚବିକା, ଗୁଇଁକାଠ ।
**ତେଜ୍ୟପୁତ୍ର**—ଗ୍ରା. ବ. (ସଂ-ତ୍ୟାଜ୍ୟପୁତ୍ର) ଯେଉଁ ପୁତ୍ରକୁ ତ୍ୟାଗ କରିବା ଉଚିତ, ଯେଉଁ ପୁଅକୁ ପିତା ତ୍ୟାଗକରେ, ତ୍ୟକ୍ତପୁତ୍ର ।
**ତେଜ୍ୟା**—ଗ୍ରା. ବ. ତ୍ୟଜନ, ତ୍ୟାଗ ।
**ତେଡ଼ା**—ଗ୍ରା.ବି°.ତୀର୍ଯ୍ୟକ୍,ବକ୍ର,ତେରେଛା
**ତେଡ଼କ**—ଗ୍ରା. ବି°.(ସଂ-ତାବତ୍)ସେହିପରିମିତ, ସେହିଆକାରବିଶିଷ୍ଟ, ତଦାକାର, ଅତ୍ୟନ୍ତ, (କ୍ରି. ବି°) ସେହିପରିମାଣରେ,ଅତ୍ୟନ୍ତବିଶେଷ ଭାବରେ
**ତେଡ଼େ**—ଗ୍ରା. ବି°. ତେଡକ ଦେଖ, (କ୍ରି. ବି°) ତେଡ଼କ ଦେଖ, ସେତେବଡ଼ ଗୁଣବିଶିଷ୍ଟ ।
**ତେଡ଼େକେ**—ଗ୍ରା.କ୍ରି.ବି°.ତେଡ଼କରେ ।
**ତେଡ଼େଭଳି**—ଗ୍ରା.ଅବ୍ୟ.ତାଦୃଶ,ତେଡ଼େବଡ଼ ।
**ତେଢ଼ା**—ଗ୍ରା. ବି°. (ସଂ-ତୀର୍ଯ୍ୟକ୍) ବକ୍ର, ବଙ୍କା, କୁଟିଳ, ତେରେଛା. ଉଗ୍ର, ରୁକ୍ଷ, ଠେସା, ଅପମାନସୂଚକ, ଅବାଧ୍ୟତାପୂର୍ଣ୍ଣ ଉତ୍ତରଦାୟକ (ଭୃତ୍ୟ) ।
**ତେଢ଼ାତେଢ଼ି**—ଗ୍ରା.ବ.ପରସ୍ପରକୁ ଅବଜ୍ଞା କରିବା, ଠେଁସାଠେଁସି, ଅନ୍ୟୋନ୍ୟ ପ୍ରତି ରୁକ୍ଷବାକ୍ୟ ପ୍ରୟୋଗକରିବା ।
**ତେଢ଼ିଆ**—ଗ୍ରା. ବି°. ତେଢ଼ା ଦେଖ ।
**ତେଢ଼ିବା**—ଗ୍ରା. କ୍ରି. (ସଂ-ତୀର୍ଯ୍ୟକ୍) (ପ୍ରଭୁ ଗୁରୁଜନଙ୍କ କଥାକୁ ) ଅବଜ୍ଞାକରିବା, ନମାନିବା, ଜବାବଦେବା, ମେଳ ନ ଖାଇବା ।
**ତେଢ଼େଇବା**—ଗ୍ରା. କ୍ରି. (ସଂ-ତୀର୍ଯ୍ୟକ୍) ବଙ୍କାହେବା, ତେରେଛା ହେବା ।
**ତେଣ**—ଗ୍ରା. ସର୍ବ. (ସଂ-ତତ୍ସ୍ଥାନ)ସେହିଆଡ଼, ସେହିଦିଗ, ସେହିଅଞ୍ଚଳ, (ବି°) ତେଣର ଦେଖ ।
**ତେଣର**—ଗ୍ରା. ସର୍ବ. ବି°. ସେହିଆଡ଼ର, ତତ୍ସମ୍ବନ୍ଧୀୟ ।
**ତେଣିକା**—ଗ୍ରା. ବି°. ତେଣର ଦେଖ ।
**ତେଣିକି**—ଗ୍ରା.ଅବ୍ୟ.ସେହିଦିଗକୁ ସେହିଆଡ଼କୁ, ସେହିସ୍ଥାନକୁ, ତତ୍ପରେ ।
**ତେଣୁ**—ଗ୍ରା. ଅବ୍ୟ. ସେହିଆଡ଼, ସେହିଦିଗରୁ, ବିପରୀତଦିଗରୁ, ତେଣୁକରି ଦେଖ ।
**ତେଣୁକରି**—ଗ୍ରା. ଅବ୍ୟ. ସେହିହେତୁରୁ, ସେହିକାରଣରୁ ।
**ତେଣେ**—ଗ୍ରା.ଅବ୍ୟ.ସେହିଆଡ଼େ,ସେହିବିଷୟରେ,ଅପରପକ୍ଷରେ, ସେହିଠାରେ ସେହିଅଞ୍ଚଳରେ, ବିପରୀତ ଦିଗରେ, ପରନ୍ତୁ ।
**ତେଣ୍ଟଣ**—ଗ୍ରା. ବି°. କୃପଣ, ଦିଆଣିଆ, ଯାହାକୁ କେହି ଠକି ନ ପାରେ ।
**ତେଣ୍ଟା**—ଗ୍ରା. ବ. ( ସଂ-କଣ୍ଟକ ) ବଡ଼ ମାଛକୁ ବିଦ୍ଧକରିବା ନିମନ୍ତେ ବ୍ୟବହୃତ ମୁନିଆଁ ଶସ୍ତ୍ର, ମୁନା, କଷ୍ଟ, ଦୁଃଖ, ଜଞ୍ଜାଳ, ହେଙ୍ଗାମ, ଆପଦ ।
**ତେଣ୍ଟୁ**—ପ୍ରା. (ଲରିଆ)ବ. ତଣ୍ଟି, ଗଳା ।
**ତେଣ୍ଟୁଆ**—ଗ୍ରା. ବ. (ସଂ-ଟିଙ୍କିଭ) ଟିଙ୍କିଭ ଦେଖ, ( ବି° ) ବିରି ଗୃହଲମିଶ୍ରିତ କରାଯିବା ପିଠାରେ ବିରିଅପେକ୍ଷା ଗୃହଳ ପିଠଉ ଅଧିକ ହୋଇଥିବା ।
**ତେଣ୍ଟେଇଗୋଡ଼**—ଗ୍ରା. ବ. ଟେଣ୍ଟେଇ ଗୋଡ଼ ଦେଖ ।
**ତେଣ୍ଟେଇଗୋଡ଼ୀ**—ଗ୍ରା.ସ୍ତ୍ରୀ.ବି°.ଟେଣ୍ଟେଇଗୋଡ଼ୀ (ଦେଖ),ନଳୀଗୋଡ଼ୀ (ସ୍ତ୍ରୀ) ।
**ତେଣ୍ଟେଇ**—ଗ୍ରା.ସ୍ତ୍ରୀ.ବି°. କଳାହୁଡ଼ି (ସ୍ତ୍ରୀ), ଚେଣ୍ଟେଇ, ନିର୍ଲ୍ଲଜା, ନଳୀଗୋଡ଼ୀ(ସ୍ତ୍ରୀ), (ବ) ଟିଙ୍କିଭ ଦେଖ ।
**ତେଣ୍ଡିବା**— ପ୍ରା. ବସ୍ତର. ବ.)ଏଣ୍ଡୁଅ ।
**ତେଣ୍ଡ୍ରା**—( ପ୍ରା. ଯାଜ. ବ. ) ବନସିତୋରରେ ଲାଗିଥିବା ମୟୂରପକ୍ଷ କାଠି ବା ସୋଲ ।
**ତେଣ୍ଡା**—ଗ୍ରା.ବ. (ସଂ-ତୀର୍ଯ୍ୟକ୍‌ଦଣ୍ଡ)ଗଭୀର ଜଳାଶୟ ବା କୂପ ଇତ୍ୟାଦିରୁ ଉପରକୁ ଜଳ ଉଠାଇବା ନିମନ୍ତେ ବ୍ୟବହୃତ ଢିଙ୍କିପରି ଯନ୍ତ୍ରବିଶେଷ ।
**ତେଣ୍ଡା( ଣ୍ଡ୍ରେ )ଇବା**—ଗ୍ରା.କ୍ରି. ତେଣ୍ଡ୍ରିବା

କ୍ରିୟାର ଣିଜନ୍ତ ରୂପ, ତେଣ୍ଡା-ଦ୍ୱାରା ପାଣି ଉଠାଇ ଲେଢାରେ ଢାଳିବା, ତେଣ୍ଡିବା, ଜଳୀୟପଦାର୍ଥ ଅନ୍ୟ ବ୍ୟକ୍ତିର ପାତ୍ରରେ ବେଶି ପରି-ମାଣରେ ଢାଳିବା ।

ତେଣ୍ଡାବାହାଲି—ଗ୍ରା.ବି. ତେଣ୍ଡାଦେଖ ।

ତେଣ୍ଡିବା—ଗ୍ରା.କ୍ରି. ତେଣ୍ଡାଦ୍ୱାରା ପାଣି-ଉଠାଇ ଢାଳିବା, ଜଳୀୟପଦାର୍ଥ ବେଶି ପରିମାଣରେ ପିଇବା ।

ତେତ(ତେ)କ—ଗ୍ରା.ବି ଓ ବିଂ. (ସଂ-ତତଃ) ସେତକ, ସେତିକ, ତନ୍ମାତ୍ର ।

ତେତମା—ଯା.ବି. ଅଡୁଆ, ଗୋଳମାଳ, କଳହ, ବିବାଦ, ଅବଶିଷ୍ଟ ରହିଯାଇ-ଥିବା ଅଂଶ, ପୁସ୍ତକର ପରିଶିଷ୍ଟ, (ବିଂ) ଅବଶିଷ୍ଟ, ବଳିଥିବା, ବାଜେ, ବୃଥା, ମୂଲ୍ୟପରକା, ସଂକ୍ଷିପ୍ତ, ଚମ୍ପୁକ ।

ତେତାଲି—ଗ୍ରା.ବିଂ.(ସଂ-ତ୍ରିତଳ),ତ୍ରିତଳ-ହର୍ମ୍ୟ, ତିନମହଲା, ତିତାଲି ଦେଖ ।

ତେତକ—ଗ୍ରା. ଅବ୍ୟ.( କ୍ରି.ବିଂ. ) ସର୍ବ, ସେହିପରିମାଣ, ତନ୍ମାତ୍ର, ସେତକ, ସେହି ପରିମିତ, ତେତେ, ସେତେ, ସେହି ପରିମାଣରେ ।

ତେତଣ(ଣି)—ଗ୍ରା. ବିଂ. ସଂ-ତ୍ରୟସ୍ତ୍ରିଂଶତ୍ ୩୩ ସଂଖ୍ୟା, ( ବିଂ ) ୩୩ ସଂଖ୍ୟକ, ୩୩ର ପୂରକ ।

ତେତେ—ଗ୍ରା.ସର୍ବ.ବିଂ. (କ୍ରି.ବିଂ.) ( ସଂ-ତତ )ସେତେ, ସେହି ପରିମାଣ,ସେହି-ପରିମିତ ।

ତେତେକେ—ଗ୍ରା. ଅବ୍ୟ. ( ସଂ-ତତଃ ) ସେତେକେ, ସେହି ପରିମିତ ବସ୍ତୁରେ, ତଦନନ୍ତର ।

ତେତେଗୁଡ଼ାଏ—ଗ୍ରା. ସର୍ବ. ସେହି ପରି-ମିତ, ସେହି ସଂଖ୍ୟକ । [ ସମୟ ।

ତେତେବେଳ—ଗ୍ରା.ସର୍ବ.ତେବେ,ସେହି-

ତେତେବେଳକୁ—ଗ୍ରା.ବି. ସେହିସମୟକୁ, ତେତେବେଳ । [ ୟରୁ ।

ତେତେବେଳୁଁ—ଗ୍ରା.ଅବ୍ୟ. ସେହି ସମ-

ତେତେବେଳେ—ଗ୍ରା.ଅବ୍ୟ. ସେହି ସମ-ୟରେ ।

ତେଦ(ର)ସ୍ତା—ଗ୍ରା. ଅବ୍ୟ. ତଦସ୍ତା-ଦେଖ ।

ତେନ—ପୁଂ.ବି. ମାଙ୍ଗଳୀକ ଗାନଭେଦ, ତାହାଦ୍ୱାରା ( ସଂ-ତତ୍ଶବ୍ଦର ) ୩ୟ ଏକବଚନର ରୂପ ।

ତେନାସରମ୍—ବ୍ରହ୍ମଦେଶର ଗୋଟିଏ ବସ୍ତୀର୍ଣ୍ଣ ଭୂଭାଗ ।

ତେନେ—(ପ୍ରା. ସମ୍ବ. ଅବ୍ୟ.) ତେଣେ-ଦେଖ ।

ତେନ୍ତୁଘ—ଗ୍ରା.ବି. ଅଖ ଉପରେ ଶଗଡ଼-ଦଣ୍ଡା ରଖାଯିବା ପାଇଁ ଦଣ୍ଡାତଳେ ଲଗା ଯାଇଥିବା କାଷ୍ଠ ଖଣ୍ଡଦ୍ୱୟ, ବନ୍ୟ ବୃକ୍ଷବିଶେଷ,ବଡ଼ ଓ ଡେଙ୍ଗା,(ବି)ତର-ତଶଆ ।

ତେନ୍ତୁଳି—ଗ୍ରା.ବି. ତିନ୍ତୁଳି, କଇଁଆ ।

ତେପଟ—ଗ୍ରା. ବି ଓ ବିଂ. ତପଟଦେଖ ।

ତେପନ—ଗ୍ରା.ବି.( ସଂ-ତ୍ରିପଞ୍ଚାଶତ୍ ) ୫୩ ସଂଖ୍ୟା, (ବିଂ)୫୩ ସଂଖ୍ୟକ, ୫୩ସଂଖ୍ୟାର ପୂରକ ।

ତେପାନ୍ତର—ଗ୍ରା. ବି. ବହୁଦୂରବିସ୍ତୃତ ପଡ଼ିଆ, ଜନଶୂନ୍ୟ ବିସ୍ତୀର୍ଣ୍ଣ ପ୍ରାନ୍ତର ।

ତେପାୟା—ଗ୍ରା.ବିଂ.ତ୍ରିପଦ, ତିନପାହିଆ ତ୍ରିପଦବିଶିଷ୍ଟ ପାତ୍ର ।

ତେପାଗ—ତ୍ରିପୁରା ଓ ଚଟ୍ଟଗ୍ରାମର ପାର୍ବ-ତୀୟ ଜାତିବିଶେଷ ।

ତେପୁନ୍ଦ—ଗ୍ରା.ବି. ଉପସର୍ଗ ଦର୍ପଣନାମକ ସଂସ୍କୃତ ଜ୍ୟୋତିର୍ଗ୍ରନ୍ଥ ରଚୟିତା ।

ତେବକା—ଗ୍ରା.ବିଂ. ସେହିକାଳର,ସେହି-ସମୟର ।

ତେମ—ପୁଂ.ବି. (ତିମ+ଭା.ଅ) ଆର୍ଦ୍ରତା ଆର୍ଦ୍ରୀଭାବ, ଓଦା ।

ତେମତ(ତି)—ଗ୍ରା. ଅବ୍ୟ. ବି. ବିଂ ଓ କ୍ରି. ବିଂ. ତେମନ୍ତ ଦେଖ ।

ତେମନ—କ୍ଲୀ. ବି. ( ତିମ+ଭା, ଅନ ) ଆର୍ଦ୍ରୀକରଣ, ଓଦା କରିବା, (ମି.ଅ) ବ୍ୟଞ୍ଜନ, ତିଅଣ ।

ତେମନୀ—ସ୍ତ୍ରୀ. ବି. ( ତେମନ+ଈ ) ଚୁଲ୍ଲିଭେଦ; ଉମ୍ନେଇ, ଚମନା, ଧୂମବହି-ର୍ଗତହେବାର ମାର୍ଗ ।

ତେମନ୍ତ—ଗ୍ରା. ବି ଓ କ୍ରି. ବିଂ. ସେହି-ପରି, ସେହିପ୍ରକାରେ ।

ତେମାହାପଥ—ଗ୍ରା. ବି. ତିନିପଥଦ୍ୱାରା ମିଳିତ, ତିନିବାଟି ।

ତେମୁହାଣ—ଗ୍ରା. ବି. ତିନିନଦୀର ସଙ୍ଗମ ସ୍ଥାନ ।

ତେୟାଅଶୀ—ଗ୍ରା.ବି ଓ ବିଂ.(ସଂ-ତ୍ର୍ୟଶୀତି) ୮୩ ସଂଖ୍ୟା, ୮୩ ସଂଖ୍ୟକ,୮୩ସଂଖ୍ୟାର ପୂରକ, ୮୦ରୁ ୩ ଅଧିକ ସଂଖ୍ୟା ।

ତେୟାନବେ—ଗ୍ରା.ବି ଓ ବିଂ. (ସଂ-ତ୍ରିନ-ବତି) ୯୩ ସଂଖ୍ୟା, ୯୩ ସଂଖ୍ୟକ, ୯୩ ସଂଖ୍ୟା ପୂରକ,୯୦ରୁ ୩ ଅଧିକ ସଂଖ୍ୟା ।

ତେୟାଳିଶ(ଶି)—ଗ୍ରା. ବି. ଓ ବିଂ. (ସଂ-ତ୍ରିଚତ୍ୱାରିଂଶତ୍)୪୩ସଂଖ୍ୟା, ୪୩ସଂଖ୍ୟକ, ୪୩ର ପୂରକ, ୪୦ରୁ ୩ ଅଧିକ ସଂଖ୍ୟା ।

ତେର—ଗ୍ରା. ବି. ତ୍ରୟୋଦଶ ସଂଖ୍ୟା, ୧୩, ତେର, (ବିଂ) ତେରସଂଖ୍ୟକ ।

ତେରଛା—ଗ୍ରା. ବିଂ. (ସଂ-ତିରସ୍) ଯାହା ସଂପୂର୍ଣ୍ଣ ଠିଆ ବା ପୂର୍ଣ୍ଣଆଡ଼ା ନୁହେଁ, ବାଙ୍କ, ବକ୍ର, କୁଟିଳ, କର୍ଣ୍ଣମାର୍ଗରେ ଅବସ୍ଥିତ, ତିର୍ଯ୍ୟକ୍ ।

ତେରଛା(ଛେ)ଇବା—ଗ୍ରା. ବି. ବକ୍ର-କରିବା,ବକ୍ରଗତି କରିବା,ବଙ୍କାହେବା ।

ତେରଛିବା—ଗ୍ରା.କ୍ରି.ତେରଛାଇବା ଦେଖ ।

ତେରଜ(ଜି)—ଯା. ବି. ଯୋଗ, ମିଶାଣ, ସଂକଳନ, ବହୁସଂଖ୍ୟାର ଯୋଗଫଳ, ବିବରଣପତ୍ର, କ୍ରମାନୁସାରେ ସ୍ତମ୍ଭା-କାରରେ ଉପରୁ ତଳକୁ ଓ ରେଖା-କାରରେ ବାଁରୁ ଡାହାଣକୁ ଲେଖା-ଯାଇଥିବା ସଂଖ୍ୟାମାନଙ୍କର ସମଷ୍ଟି କରାଯାଇ ହିସାବ ମିଳାଯିବାର ପ୍ରଣାଳୀ ।

ତେରଣ୍ଡା—ଗ୍ରା.ବି. ଦୁର୍ଭିକ୍ଷକାଳ,କାନ୍ତାର, ମହର୍ଘକାଳ ।

ତେରସ୍ତା—ଗ୍ରା. ବି. ତଦସ୍ତା, ତିରସ୍ତା, ଗତବର୍ଷର ପୂର୍ବ ବର୍ଷ ।

ତେରମେର—ଯା.ବି.ତେଡ଼ିମେର ଦେଖ ।

ତେରେତୋଈ—ଗ୍ରା.ବି. କୋହାଟ ଜିଲ୍ଲାର ଗୋଟିଏ ନଦୀ ।

ତେର୍ମେର—ଯା. ବି. କ୍ରୋଧୀ ବ୍ୟକ୍ତିର

ହିନ୍ଦୁସ୍ଥାନୀ ଭାଷା ବ୍ୟବହାର, କର୍କଶ ବାକ୍ୟର ପ୍ରୟୋଗ, ତୁ ତା ରେ ର ପ୍ରୟୋଗ ।

ତେରୁଆଳ—ଗ୍ରା.ବି. ଗ୍ରେଟ ଗ୍ରେଟ ଦାନାଯୁକ୍ତ ଗ୍ରୁଅବିଶେଷ ।

ତେରେଣ୍ଡା—ଗ୍ରା. ବି. ( ସଂ-ତରଣ୍ଡ ) ବନିସି ଡୋରରେ ଲଗିଥିବା ମୟୂରପକ୍ଷ ବା ସୋଲ ।

ତେଲ—ଗ୍ରା. ବି. ( ସଂ-ତୈଳ ) ସ୍ନେହ, ତୈଳ, ଫଳାଦିର ରସ, ମଥାଦିହ, ଚରବି, ମହାନଦୀର ଶାଖାନଦୀବିଶେଷ ।

ତେଲଉଣୀ-- ଗ୍ରା.ବି ତେଲୁଣୀ, ଉହୁଣିଆ, ପଲମାକୃତ ଗହିରିଆ ମାଟିପାତ୍ର ।

ତେଲକାଠିଅ—ଗ୍ରା. ବି. କାଠର ତିଆରି ବଇଠିଲ୍ଗା ତେଲଗିନା ।

ତେଲକାଣ୍ଟି—ଗ୍ରା. ବି. (ସଂ-ତୈଲକାଣ୍ଠ) ତୈଳକୁ କିଛିସମୟ ରଖିଦେଲେ ତୈଳଭାଣ୍ଡର ତଳଭାଗରେ ଯେଉଁ ମଳ ବସିଥାଏ, ତୈଳମଳ ।

ତେଲକୋଚଟ—ଗ୍ରା.ବି ଓ ବିଂ. ତେଲଚିକଟା ଦେଖ ।

ତେଲକୋରୁହାଁ—ଗ୍ରା. ବି. ଏକଜାତୀୟ ନାତି ଦୀର୍ଘ ବନ୍ୟ ବୃକ୍ଷ ।

ତେଲଗୁ—ଗ୍ରା. ବି. ( ସଂ-ତୈଲିଙ୍ଗ ) ତେଲଙ୍ଗା ଦେଖ ।

ତେଲଘଡ଼ି—ଗ୍ରା. ବି. ତେଲ ରଖିବାର ଗ୍ରେଟ ଘଟ ।

ତେଲଘଣା—ଗ୍ରା. ବି. ଯେଉଁ ଘଣା ବା ଖାଇରେ ତୈଳବୀଜ ପେଷାଯାଇ ତେଲ ବାହାର କରାଯାଏ ।

ତେଲଙ୍ଗା—ଗ୍ରା. ବି. ( ସଂ-ତୈଲିଙ୍ଗ ) ଦକ୍ଷିଣଭାରତର ଦେଶବିଶେଷ, ଆନ୍ଧ୍ରଦେଶ, ଉତ୍କଳର ଦକ୍ଷିଣକର୍ତ୍ତ୍ରୀଟ ଉପକୂଳସ୍ଥ ଦେଶ, ଦକ୍ଷିଣଭାରତର ଜାତିବିଶେଷ, ତୈଲିଙ୍ଗଜାତିବ୍ୟକ୍ତି, ତୈଲିଙ୍ଗ ଭାଷା, (ବିଂ) ତୈଲିଙ୍ଗଦେଶୀୟ ।

ତେଲଙ୍ଗାମୁକୁନ୍ଦଦେବ—ଗ୍ରା. ପୁଂ. ବି. ଓଡ଼ିଶାର ରାଜାବିଶେଷ ।

ତେଲଙ୍ଗୀ-ଗ୍ରା.ବିଂ.(ତୈଲିଙ୍ଗୀୟ)ତୈଲିଙ୍ଗଦେଶୀୟ, ତୈଲିଙ୍ଗଦେଶରେ ବ୍ୟବହୃତ ।

ତେଲଙ୍ଗୀବାଜା—ଗ୍ରା.ବି. ଦୁଇଟି ଢୋଲ ଦୁଇଟି ମହୁରି ଓ ହଳେ ଝାଞ୍ଜ ଏପରି ଅନ୍ତତଃ ପାଞ୍ଚପ୍ରକାର ଯନ୍ତ୍ରସମ୍ବଳିତ ବାଦ୍ୟ, ଘସାବାଦ୍ୟ ।

ତେଲଚଟା—ଗ୍ରା. ବି. ତୈଳପାୟିକା, ଅସରପା ପୋକ ।

ତେଲଚିକଟ(ଟା)—ଗ୍ରା. ବି. ତୈଳ ଲଗିବାଯୋଗୁଁ ବସ୍ତ୍ରାଦିର ବର୍ଣ୍ଣର ମଳିନତା, ତୈଳଲେପଯୋଗୁଁ କୌଣସି ବସ୍ତୁରେ ଉତ୍ପାଦିତ ଚିକ୍କଣତା, ( ବିଂ ) ତୈଳାକ୍ତ ହେବାରୁ ମଳିନତା ପ୍ରାପ୍ତ ।

ତେଲଜରଜର—ଗ୍ରା. ବି. (ସଂ-ତୈଳଜର୍ଜର) ଦେହରୁ ବୋହିପଡ଼ିବାଭଳି ତେଲ ବୋଳାହୋଇଥିବା ।

ତେଲଦେବା—ଗ୍ରା. କ୍ରି. ଲଣ୍ଠନ ବା ଦୀପରେ ଜଳାଇବା ତେଲ ପୂରାଇବା ।

ତେଲପିଠା —ଗ୍ରା. ବି. ତେଲରେ ଛଣାହୋଇଥିବା ପିଷ୍ଟକ ।

ତେଲପିଆ(ମ୍ପା)—ଗ୍ରା. ବି. କାଠ ବା ଚମଡ଼ାରେ ତିଆରି ତେଲ ରଖିବାର ବଡ଼ପାତ୍ର ।

ତେଲପେଡ଼ିବା—ଗ୍ରା. କ୍ରି.ଘଣାଦି ସାହାଯ୍ୟରେ ତୈଳବୀଜାଦିରୁ ତେଲ ବାହାର କରାହିବା ।

ତେଲବାଲିଆ—ଗ୍ରା.ବିଂ.ବାଲିମିଶା ଚିକଟ (ମାଟି), ଏହା ଉର୍ବର ।

ତେଲବାହାରକରାହିବା—ଗ୍ରା.କ୍ରି. ତେଲ ବାହାର କରିବା କ୍ରିୟାର ଣିଜନ୍ତ ରୂପ, (ଲ.ଅର୍ଥ)କଠିନ ପରିଶ୍ରମ କରାଇ ଥକାମରା କରିଦେବା ।

ତେଲବାହାରିହିବା—ଗ୍ରା.ବି. ଚିପିନିକଳିହିବା, ବିଶେଷରୂପେ ଆହତ ହେବା ।

ତେଲବୋଳିବା—ଗ୍ରା.କ୍ରି. ତେଲ ଲଗାଇବା ଦେଖ ।

ତେଲମାଖିବା—ଗ୍ରା. କ୍ରି. ତେଲ ଉତ୍ତମରୂପେ ଲଗାଇବା (ଦେହଆଦିରେ) ।

ତେଲମାରିବା—ଗ୍ରା. କ୍ରି. ନିଜ ଶରୀରରେ ଉପରଠାଉରିଆକରି ତେଲ ଲଗାଇବା, ଶୁଖିଲା ନଡ଼ିଆ ଗବଆଦିକୁ ସିଝାଇ ତେଲ ବାହାର କରିବା ।

ତେଲରାନ୍ଧିବା—ଗ୍ରା. କ୍ରି. ତୈଳବୀଜକୁ ସିଝାଇ ଜଳୀୟାଂଶ ନିଷ୍କାସିତ କରି ତେଲ ବାହାର କରିବା ।

ତେଲଲଗା—ଗ୍ରା. ବି. ତୈଳାଭ୍ୟଙ୍ଗ ।

ତେଲଲଗା(ଗେ)ଇବା—ଗ୍ରା. କ୍ରି. ଆପଣାର ବା ଅନ୍ୟର ଦେହରେ ତେଲ ବୋଳିବା ।

ତେଲସରସର—ଗ୍ରା. ବିଂ. ତେଲ ଜରଜର ଦେଖ ।

ତେଲହଳଦୀ—ଗ୍ରା.ବି. ଦେହରେ ଲଗାଇବାପାଇଁ ବଟାହଳଦୀ ଓ ତହିଁରେ ମିଶାହିବା ତେଲ ।

ତେଲି—ଗ୍ରା. ବି. ତେଲିଆ ଦେଖ ।

ତେଲି—ଗ୍ରା. ବି. (ସଂ-ତୈଳିକ) ତେଲ ପେଡ଼ିବା ଜାତି, ତୈଳକାର ଜାତି, (ଗ୍ରା. ଗଞ୍ଜା.ବି) ଗଞ୍ଜାମ ଜିଲ୍ଲାର ପାଟକ ବିଶେଷ ।

ତେଲିଆ—ଗ୍ରା. ବିଂ. ତୈଳାକ୍ତ, ତୈଳସ୍ୱାଦଯୁକ୍ତ, ଯେ ଦେହରେ ତେଲ ଲଗାଇଥାଏ, ଚିକ୍କଣିଆଁ, ଯହିଁରେ ତେଲ ଅଧିକ ପରିମାଣରେ ଅଛି ।

ତେଲିଆମାଟି—ଗ୍ରା.ବି.ଏକପ୍ରକାର ଉର୍ବରା ମୃତ୍ତିକା ।

ତେଲିଆମୁଣ୍ଡ—ଗ୍ରା. ବି. (ଲ.ଅର୍ଥ)ଯେଉଁ ବ୍ୟକ୍ତି ଅଭାବଗ୍ରସ୍ତ ନୁହେ ।

ତେଲିକୋଚଟ--ଗ୍ରା.ବିଂ. ତେଲି ଜାତିର ସ୍ୱଭାବସୁଲଭ ଗୁଣ ( କୃପଣତା ଓ ମହଳିଆପଣିଆଁ )ଯୁକ୍ତ ।

ତେଲିଚିକଟା—ଗ୍ରା.ବିଂ. ତେଲି ଜାତିର ସ୍ୱଭାବସୁଲଭ ଗୁଣଯୁକ୍ତ,ତେଲିକୋଚଟ ।

ତେଲିସାପ—ଗ୍ରା.ବି.ଦୋମୁଣ୍ଡିଆ ଦେଖ ।

ତେଲୁଣି—ଗ୍ରା. ସ୍ତ୍ରୀ. ବି. ତେଲି ଜାତୀୟା ସ୍ତ୍ରୀ, ପଲମ, ତେଲଉଣୀ ।

ତେଲୁଣୀପୋକ—ଗ୍ରା.ବି. (ସଂ-ତୈଳିନୀ) ଏକପ୍ରକାର ଶତପଦୀ ପୋକ ।

ତେବନ—କ୍ଳୀ. ବି. ( ତେବ+ଅଧି+

ଅନ) କେଳିକାନନ, ପ୍ରମୋଦକାନନ, (ଗ୍ରା.ଅନ) କ୍ରୀଡ଼ା ।

ତେବେ—ଗ୍ରା.ଅବ୍ୟ.(ସଂ-ତାବତ୍) ସେହି ସମୟରେ, ତଥା, ତାହାହେଲେ ।

ତେବେକେ—ଗ୍ରା.ଅବ୍ୟ.ତେବେହେଲେ ଦେଖ ।

ତେବେହେଲେ—ଗ୍ରା.ଅବ୍ୟ.(ସଂ-ତାବତ୍‌ହି)ତଥାପି, ତେବେବି, ତେବେହେଁ, ତେବେସୁଦ୍ଧା ।

ତେଷଠି—ଗ୍ରା.ବି. (ସଂ-ତ୍ରିଷଷ୍ଟି) ତେଷଠି ସଂଖ୍ୟା, ୬୦ ଅପେକ୍ଷା ତିନି ଅଧିକ ସଂଖ୍ୟା, ( ବିଂ ) ତେଷଠି ସଂଖ୍ୟକ, ୬୩ ସଂଖ୍ୟାର ପୂରକ ।

ତେସନ—ଗ୍ରା.ବି. ବିଂ. ସେହିପରି,(ବିଂ) ସେହି ପ୍ରକାରର ।

ତେସା—ଯା. ବି. ବିଂ.ସେହି ପ୍ରକାରେ, (ବିଂ) ସେହି ପ୍ରକାରର, (ବି) ସେହି-ପ୍ରକାର ।

ତେସ୍ତରି—ଗ୍ରା. ବି. (ସଂ-ତ୍ରିସପ୍ତତି) ୭୦ ଅପେକ୍ଷା ୩ ବେଶି, ୭୩ ସଂଖ୍ୟା, (ବିଂ) ୭୩ ସଂଖ୍ୟକ,୭୩ ସଂଖ୍ୟାର ପୂରକ ।

ତେହି(ହେ)ଲ--ପ୍ରା.(ବାଲେ)ବିଂ.ତୃତୀୟ ।

ତେହରି—ବୁନ୍ଦେଲ ଖଣ୍ଡର ଗୋଟିଏ ଦେଶୀୟ ରାଜ୍ୟ ।

ତେହାତ—ଗ୍ରା. ବିଂ. (ସଂ-ତ୍ରିହସ୍ତ) ତିନି ହାତ ପରିମିତ, (ବି) ତିନିହାତ ପରିମାଣ, ମନୁଷ୍ୟର ତିନିପୁରୁଷ ।

ତେହାରି—ଗ୍ରା.ବିଂ.ତିନିଗୁଣ, ତିନିଥାକ ।

ତେହ୍ନେ—ଗ୍ରା.(ପଦ୍ୟ)ବି. ବିଂ ଓ ଅବ୍ୟ. ସେହିପ୍ରକାରେ ।

ତୈକ୍ତ—ବି. ( ତିକ୍ତ+ଷ୍ଣ+ଅ ) ତିକ୍ତତା, ତିକ୍ତସ୍ୱାଦ ।

ତୈକ୍ଷ୍ଣ୍ୟ—କ୍ଲୀ.ବି. (ତୀକ୍ଷ୍ଣ+ଷ୍ଣ.ଯ)ତୀକ୍ଷ୍ଣତା, କଠୋରତା, କ୍ରୂରତା, କ୍ଷୁରଧାର, ଉଷ୍ଣତା ।

ତୈଗ୍ମ୍ୟ—କ୍ଲୀ. ବି. (ତିଗ୍ମ+ଯ) ତିଗ୍ମତା, ପ୍ରଖରତା । [ ଷ୍ଣ ।

ତୈଜନତ୍ୱଚ୍—ସ୍ତ୍ରୀ.ବି. ଏକପ୍ରକାର କ୍ଷୁଦ୍ର

ତୈଜସ—କ୍ଲୀ. ବି.(ତେଜସ୍+ଅ)ଘୃତ, ଧାତୁଦ୍ରବ୍ୟ, ତୀର୍ଥବିଶେଷ,ସାଂଖ୍ୟୋକ୍ତ-ରଜୋଗୁଣୋତ୍ପନ୍ନ ଇନ୍ଦ୍ରିୟାଦି,ପରାକ୍ରମ, ଖୁବ୍ ଜୋରରେ ଦୌଡ଼ିପାରିବା ଘୋଡ଼ା, ଭଗବାନ୍, ଯେଉଁ ଶାରୀରିକ ବଳ ଆହାରକୁ ରସ ଓ ରସକୁ ଧାତୁରେ ପରିଣତ କରେ, ରଜୋଗୁଣୋତ୍ପନ୍ନ ଅହଂକାର, ( ବିଂ ) ତେଜୋବିକାର, ଧାତୁ ନିର୍ମିତ,ଉଜ୍ଜ୍ୱଳ,ରଜୋଗୁଣୋତ୍ପନ୍ନ ।

ତୈଜସପାତ୍ର—ବି. ଧାତୁମୟ ପାତ୍ର, ବାସନବର୍ତ୍ତନ ।

ତୈଜସାବର୍ତ୍ତିନୀ—ସ୍ତ୍ରୀ. ବି. ଧାତୁଦ୍ରବ୍ୟ ତରଳାଇବା ପାତ୍ର, ମୂଚୀ, ଧାତୁ ଆଉଟିବା କୋଇ ।

ତୈଜସୀ—ସ୍ତ୍ରୀ. ବି. ଗଜପିପ୍ପଳୀ ।

ତୈତକ୍ଷ—ବିଂ(ତିତକ୍ଷା+ଅ)ତିତିକ୍ଷାଶୀଳ, ସହିଷ୍ଣୁ ।

ତୈତକ୍ଷ୍ୟ—ପୁଂ.ସ୍ତ୍ରୀ.ବି.ତୈତକ୍ଷ୍ୟ ଋଷିଙ୍କ ପୁତ୍ର ଓ ଗୋତ୍ରାପତ୍ୟ ।

ତୈତର—ପୁଂ. ସ୍ତ୍ରୀ. ବି. ତିତ୍ତିରିପକ୍ଷୀ ।

ତୈତଲ—ପୁଂ.ବି.(ତିତଲ+ଅ)ଗଣ୍ଡକ, ଗଣ୍ଡାର, ( ଜ୍ୟୋତିଷ ) ୪ର୍ଥ କରଣ, କରଣବିଶେଷ, ଦେବତା ।

ତୈତଲନ୍—ପୁଂ. ବି. ପ୍ରବରଭେଦ ।

ତୈତ୍ତିର—କ୍ଲୀ. ବି. ତିତ୍ତିରପକ୍ଷୀସମୂହ, ତିତ୍ତିରପକ୍ଷୀ, ଗଣ୍ଡକ ।

ତୈତ୍ତିରି—ପୁଂ.ବି. କୁକୁର ବଂଶୀୟ ନୃପଭେଦ, ଋଷିଭେଦ, କୃଷ୍ଣ ଯଜୁର୍ବେଦ ପ୍ରବର୍ତ୍ତକ ଋଷି ।

ତୈତ୍ତିରୀୟ—ପୁଂ.ବିଂ. (ତିତ୍ତିରି+ଈୟ) ତିତ୍ତିରିସମ୍ବନ୍ଧୀୟ,ତିତ୍ତିରି ମୁନିଙ୍କ ରଚିତ ଯଜୁର୍ବେଦ ଶାଖାଧ୍ୟାୟୀ (ବ୍ରାହ୍ମଣ), ବି. ଉପରୋକ୍ତ ଶାଖାର ଉପନିଷଦ୍ ବିଶେଷର ନାମ ।

ତୈତ୍ତିରୀୟକ—ପୁଂ.ବିଂ. ଯଜୁର୍ବେଦାନ୍ତର୍ଗତ ତୈତ୍ତିରୀୟ ଶାଖାଧ୍ୟାୟୀ ।

ତୈତ୍ତିରୀୟା—ସ୍ତ୍ରୀ.ବି.ଯଜୁର୍ବେଦର ଶାଖାବିଶେଷ ।

ତୈତ୍ତିରୀୟାରଣ୍ୟକ—ବି.(ତୈତ୍ତିରୀୟ+ଆରଣ୍ୟକ) ତୈତ୍ତିରୀୟ ଶାଖାର ଆରଣ୍ୟକ ଅଂଶ, ( ଏଥିରେ ବାନପ୍ରସ୍ଥ ଅବଲମ୍ବନ ପାଇଁ ଉପଦେଶ ଅଛି )

ତୈତ୍ତିରୀୟୋପନିଷଦ୍—ସ୍ତ୍ରୀ. ବି. ଉପନିଷଦ୍ ଭେଦ ।

ତୈନାତ—ଯା. ବି. ନିଯୁକ୍ତ ଲୋକ ।

ତୈମିର—ପୁଂ. ବି. (ତିମିର+ଅ)ନେତ୍ର ରୋଗବିଶେଷ, ତିମିର ଦେଖ ।

ତୈମିରିକ—ବିଂ.(ତିମିର+ଇକ)ନେତ୍ର ରୋଗଯୁକ୍ତ, ନେତ୍ରରୋଗସମ୍ବନ୍ଧୀୟ ।

ତୈୟାର—(ହିନ୍ଦି) ବିଂ. ପ୍ରସ୍ତୁତ, ତିଆର ଦେଖ ।

ତୈୟାରି—(ହିନ୍ଦି) ବିଂ. ପ୍ରସ୍ତୁତ, ତିଆର ଦେଖ, (ବି) ତିଆରି ଦେଖ ।

ତୈର—କ୍ଲୀ. ବି. (ତୀର+ଅ)କୂଳଜ ।

ତୈରଣୀ—ସ୍ତ୍ରୀ. ବି. (ତୀର+ଅନ+ଈ) କ୍ଷୁପବିଶେଷ,ତୈରଣ, ତୈର, କୁମାରୀ, ରାଗଦ ।

ତୈରଶ୍ଚ—ବିଂ. ତିର୍ଯ୍ୟଗ୍‌ଜାତସମ୍ବନ୍ଧୀୟ ।

ତୈର୍ଥ—ବିଂ. (ତୀର୍ଥ+ଅ) ତୀର୍ଥଦେୟ, ତୀର୍ଥକାର୍ଯ୍ୟ, ତୀର୍ଥକୃତ୍ୟ କର୍ମ, ତୀର୍ଥାଗତ ଦ୍ରବ୍ୟାଦି । [ ଭବ ।

ତୈର୍ଥକ—ବିଂ.(ତୀର୍ଥ+ଅକ)ତୀର୍ଥଦେଶ-

ତୈର୍ଥିକ—ପୁଂ. ବିଂ. ତୀର୍ଥସିଦ୍ଧାନ୍ତାଦିଜ୍ଞ, ଶାସ୍ତ୍ରକାର, ସିଦ୍ଧାନ୍ତାଭିଜ୍ଞ, ତୀର୍ଥଭବ, (ବି) କପିଳ କଣାଦାଦି ଦର୍ଶନଶାସ୍ତ୍ର ପ୍ରଣେତା ।

ତୈର୍ଥ୍ୟ—ବିଂ.(ତୀର୍ଥ+ଯ)ତୀର୍ଥସମୀପାଦି ।

ତୈର୍ଯ୍ୟଗୟନିକ— ବିଂ. ଯଜ୍ଞଭେଦ, ଯଜ୍ଞବିଶେଷ ।

ତୈର୍ଯ୍ୟଗ୍ୟୋନ—ବିଂ. ତିର୍ଯ୍ୟଗ୍ ଯୋନି ପଶୁ ପ୍ରଭୃତି ସର୍ଗଭେଦ ।

ତୈର୍ଯ୍ୟଗ୍ୟୋନ୍ୟ—ବିଂ. ତିର୍ଯ୍ୟଗ୍‌ଯୋନି, ପଶୁପ୍ରଭୃତିର ସର୍ଗଭେଦ ।

ତୈଳ—କ୍ଲୀ. ବି. (ତିଳ+ଅ) ତିଳସର୍ଷପାଦି ଜନିତ ସ୍ନେହଦ୍ରବ୍ୟ ଭେଦ, ତେଲ, ମାଳପା, ଲୋଭିନ୍ ଆୟୁର୍ବେଦୋକ୍ତ ପ୍ରକ୍ରିୟାରେ ପ୍ରସ୍ତୁତ ତୈଳ ।

ତୈଳକ—କ୍ଲୀ.ବି. ଅଳ୍ପପରିମାଣ ତୈଳ ।

ତୈଳକନ୍ଦ—ପୁଂ.ବି. ଏକପ୍ରକାର ବନ୍ୟ-

ଲତାର ମୂଳ, କନ୍ଦବିଶେଷ ।
ତୈଳକଲ୍କଜ—ପୁଂ. ବ. ତୈଳକାଣ୍ଡି, ପିଡ଼ୁଆ ।
ତୈଳକାର—ପୁଂ. ବ. (ତୈଳ+କୃ+କ.ଅ)ବର୍ଣ୍ଣସଙ୍କର ଜାତିବିଶେଷ,ତେଲି· [ ପୋକ ।
ତୈଳକିଟ୍ଟ—କ୍ଲୀ.ବ. ତୈଳମଳ,ତେଲର କାଣ୍ଡି, ପିଡ଼ୁଆ ।
ତୈଳକୀଟ—ପୁଂ.ବ.କୀଟଭେଦ, ତେଲୁଣୀ-
ତୈଳଙ୍ଗ—ପୁଂ. ବ. ଦେଶବିଶେଷ, ଦାକ୍ଷିଣାତ୍ୟର ପୂର୍ବଉପକୂଳସ୍ଥ ଅଞ୍ଚଳ, ତେଲଙ୍ଗ ଦେଶବାସୀ ବ୍ୟକ୍ତି ।
ତୈଳଙ୍ଗସ୍ୱାମୀ—ପୁଂ. ବ. କାଶୀର ସୁପ୍ରସିଦ୍ଧ ମହାପୁରୁଷ ।
ତୈଳଶ୍ଚୌରିକା—ସ୍ତ୍ରୀ.ବ. ତୈଳପାୟିକା, ଅସରପା ପୋକ ।
ତୈଳଚୌରିକା—ସ୍ତ୍ରୀ.ବ. ତେଲପୋକ, ତୈଳପାୟିକା, ଅସରପା ପୋକ ।
ତୈଳତ୍ୱ—କ୍ଲୀ. ବ.ତୈଳର ଭାବ,ତୈଳର ଗୁଣ ।
ତୈଳଦ୍ରୋଣୀ—ସ୍ତ୍ରୀ. ବ. କଣ୍ଠପର୍ଯ୍ୟନ୍ତ ମଜ୍ଜନାର୍ଥ ତୈଳପୂର୍ଣ୍ଣ କାଷ୍ଠାଦିନିର୍ମିତ ପାତ୍ରବିଶେଷ, ତେଲପୂର୍ଣ୍ଣ କାଠପିମ୍ପା ।
ତୈଳପକ—ପୁଂ. ବ. (ତୈଳ+ପା+କ) ତୈଳପାୟିକା, ଅସରପା ପୋକ ।
ତୈଳପକ୍ୱ—ବିଂ. ( ୭ତତ୍ ) ତେଲରେ ପାକ କରାଯାଇଥିବା,ତେଲରେ ଭଜାହୋଇଥିବା ।
ତୈଳପର୍ଣ୍ଣିକ—ପୁଂ. ବ. ଗ୍ରନ୍ଥିପର୍ଣ୍ଣି ବୃକ୍ଷ, ଗଣ୍ଠିଅଳା ଗଛ ।
ତୈଳପର୍ଣ୍ଣିକ—ପୁଂ. ବ. ହରିଚନ୍ଦନ, ଚନ୍ଦନଭେଦ, ବୃକ୍ଷବିଶେଷ ।
ତୈଳପର୍ଣ୍ଣୀ—ସ୍ତ୍ରୀ. ବ.ଶ୍ରୀବାସ,ହରିଚନ୍ଦନ, ଶ୍ୱେତଚନ୍ଦନ ।
ତୈଳପା—ସ୍ତ୍ରୀ. ବ. ତୈଳପାୟିକା, ଅସରପା ।
ତୈଳପାୟିନ୍—ପୁଂ. ବ. ତୈଳପାୟିକା, ଅସରପା ।
ତୈଳପାୟିକା—ସ୍ତ୍ରୀ. ବ. କୀଟବିଶେଷ, ଅସରପା ।
ତୈଳପିପୀଲିକା—ସ୍ତ୍ରୀ. ବ. ତୈଳପ୍ରିୟା ପିପୀଲିକା, ରଙ୍ଗପିମ୍ପୁଡ଼ି ।
ତୈଳପିଷ୍ଟକ—ପୁଂ.ବ. ତୈଳକିଟ୍ଟ,ତୈଳମଳ, ପିଡ଼ୁଆ ।
ତୈଳଫଳ—ପୁଂ. ବ. ଇଙ୍ଗୁଦ, ପୋଇଗୁନ୍ଦିଆ, ବିଭୀତକ, ବାହାଡ଼ା ।
ତୈଳଭାବିନୀ—ସ୍ତ୍ରୀ. ବ. ଜାଇଫୁଲ ଗଛ, ତୈଳବାସକ, ଗୁସେଲ ଫୁଲଗଛ ।
ତୈଳମର୍ଦ୍ଦନ—କ୍ଲୀ.ବ. ତେଲ ଲଗାଇବା ।
ତୈଳମାଳୀ—ସ୍ତ୍ରୀ. ବ. ବର୍ତ୍ତୀ, ଦୀପଦଶା, ତେଲବଳିତା ।
ତୈଳମାତା—ସ୍ତ୍ରୀ. ବ. ସ୍ୱଧା,ସ୍ୱଧା ଏହି ମନ୍ତ୍ରୋପଲକ୍ଷିତ ଶ୍ରାଦ୍ଧ ।
ତୈଳଯନ୍ତ୍ର—କ୍ଲୀ. ବ. ଘଣା, ତେଲ ବାହାର କରିବା ଯନ୍ତ୍ର ।
ତୈଳବକ—ପୁଂ.ବ.ତେଲୁଗୁଜାର ଦେଶ ।
ତୈଳବଲ୍ଲୀ—ସ୍ତ୍ରୀ. ବ. ଲଘୁଶତାବରୀ, ଶତମୂଳୀ ।
ତୈଳବୀଜ—କ୍ଲୀ.ବ.(ମଧ୍ୟ. କ.ଧା) ଯେଉଁ ବୀଜ ବା ଦାନାରୁ ତେଲ ପାଯାଯାଏ, ଚଳସର୍ଷପାଦି ।
ତୈଳଶାଳା—ସ୍ତ୍ରୀ.ବ.( ୬ତତ୍ ) ତେଲଶାଳ, ତେଲ ପ୍ରସ୍ତୁତ କରିବାର ଘର, ଘଣ ଘର ।
ତୈଳସାଧନ—କ୍ଲୀ.ବ.ଗନ୍ଧଦ୍ରବ୍ୟବିଶେଷ; ଶୀତଳ ଚିନି, କବାବ୍‌ଚିନି ।
ତୈଳସ୍ଫଟିକ—ପୁଂ. ବ. ଅମ୍ବରନାମକ ଗନ୍ଧଦ୍ରବ୍ୟ, ଅମ୍ବରୀ ।
ତୈଳସ୍ୟନ୍ଦା—ସ୍ତ୍ରୀ.ବ. ଶ୍ୱେତଗୋକର୍ଣ୍ଣୀ, କାକୋଳୀ ।
ତୈଳସେକ—ବ.( ୬ତତ୍ ) ଦେହରେ ଗରମ ତେଲ ମାଲିସ୍ ।
ତୈଳାକ୍ତ—ବିଂ. (୩ତତ୍) ତୈଳମର୍ଦ୍ଦିତ, ତେଲ ସରସର, ତେଲିଆ ।
ତୈଳାଣ୍ୟ—ପୁଂ.ବ. ଶିଳାରସ, ତୁରୁଷ୍କନାମକ ଗନ୍ଧଦ୍ରବ୍ୟ ।
ତୈଳଗୁରୁ—କ୍ଲୀ. ବ. ଦାହା ଗୁରୁନାମକ ସୁଗନ୍ଧଦ୍ରବ୍ୟ ।
ତୈଳାଟ—ବ. (ତୈଳ+ଅଟ+କ.ଅ) ଭରୁଣ୍ଡି, ବରଟାନ ମକ କୀଟ ।
ତୈଳାଧାର—ପୁଂ.ବ.( ୬ତତ୍ ) ତେଲ ରଖିବାର ପାତ୍ର ।
ତୈଳାଭ୍ୟଙ୍ଗ—ବ.( ୬ତତ୍ )ଦେହରେ ତେଲ ମାଲିସ କରିବା ।
ତୈଳାମ୍ବୁକା—ସ୍ତ୍ରୀ. ବ. ତୈଳପାୟିକା, ଅସରପା ।
ତୈଳିକ—ପୁଂ. ବ. ( ତୈଳ+ଇକ ) ତେଲକାର,ତେଲୀ,(ବିଂ) ତେଲ ସମ୍ବନ୍ଧୀୟ । [ ପୋକ ।
ତୈଳିନୀ—ସ୍ତ୍ରୀ.ବ.କୀଟଭେଦ, ତେଲୁଣୀ-
ତୈଳୀ—ପୁଂ.ବ. ତୈଳକାର, ତେଲି, (ସ୍ତ୍ରୀ) ତୈଳିନୀ ।
ତୈଳୀନ—କ୍ଲୀ.ବ.ତିଳର କ୍ଷେତ, ତିଳକ୍ଷେତ୍ର ।
ତୈଲୂକ—ବ. ଲୋଧ୍ର ।
ତୈବ୍ରଦାରକ—ବିଂ. ଶାଲ୍ମଦାରୁ ସମ୍ବନ୍ଧୀ ।
ତୈଷ—ପୁଂ.ବ. (ତୈଷୀ+ଅ) ପୌଷମାସ ।
ତୈଷୀ—ସ୍ତ୍ରୀ. ବ. ପୁଷ୍ୟା ନକ୍ଷତ୍ରଯୁକ୍ତା ପୌର୍ଣ୍ଣମାସୀ, ପୌଷପୂର୍ଣ୍ଣିମା ।
ତୋ—ଗ୍ରା.ଅବ୍ୟ.(ସ-ତୁ) ତ, ତେବେ, (ସର୍ବ) ତୋର, ତୁମ୍ଭର ।
ତୋକ୍‌ମାଗ୍ଲୀ—ସ. ବ. ଇଷତ୍ ଗୋଲ, ଲମ୍ବାବର୍ତ୍ତୁଲ ମଞ୍ଜିପର ଏକପ୍ରକାର ମଞ୍ଜି ।
ତୋକ—କ୍ଲୀ.ବ. ( ତୁ+କ ) ଅପତ୍ୟ, ପୁତ୍ର, ଦୁହିତା, ଶିଶୁ, ବାଳକ, ଗ୍ଲେଟପିଲ୍ଲା ।
ତୋକବାନ୍—ପୁଂ.ବିଂ.( ତୁକ+ବତୁ ) ପୁତ୍ରାଦିଯୁକ୍ତ, ପୁତ୍ର ପୌତ୍ରସହିତ ।
ତୋକେ— ପ୍ରା. ( କଳାହାଣ୍ଡି ) ସର୍ବ. ତୋତେ, ତୁମ୍ଭଙ୍କୁ ।
ତୋକ୍ମ—ପୁଂ.ବ. କଞ୍ଚା ଯବଧାନ, ହରିଦ୍ବର୍ଣ୍ଣ, ମେଘ, (କ୍ଲୀ) କର୍ଣ୍ଣମଳ, କାନଗୁହା, ଯବଧାନର ନୂଆ ଗଜା, ଗଜା, ଅଙ୍କୁର, ପଲ୍ଲବାଦିର ଅଙ୍କୁର ।
ତୋକ୍ମନ୍—କ୍ଲୀ. ବ. ନବପ୍ରସୂତ ସନ୍ତାନ, ଅପତ୍ୟ ।

ତୋଟମ୍—ସା.ବି. ଜନ୍ମ, କୁଳ ।
ତୋଟ୍ରି—ଗ୍ରା.ବି. ଧାନଗଛର ରୋଗବିଶେଷ । [ ଛନ୍ଦ ।
ତୋଟକ—କ୍ଲୀ.ବି. ଦ୍ୱାଦଶାକ୍ଷର ପାଦ-
ତୋଟା—ଗ୍ରା. ବି. ଆରାମ, ଉପବନ, ଆମ୍ବବଗିଚ୍ଛ, ବଗାଏତ ।
ତୋଟାଗୋପୀନାଥ—ପ୍ରା. ( ପୁରୀ ) ପୁରୀ ନିକଟସ୍ଥ ବଡ଼ ଅମ୍ବତୋଟାରେ ଥିବା ବିଷ୍ଣୁମୂର୍ତ୍ତି,ସତ୍ୟବାଦୀ ବକୁଳତୋଟାରେ ଥିବା ଗୋପାଳଜୀଉ ଠାକୁର ।
ତୋଟାଳିଆ—ଗ୍ରା.ପୁଂ.ବି. ତୋଟା ଜଗୁଆଳ, ଉପବନରକ୍ଷକ ମାଳୀ ।
ତୋଟି—ଗ୍ରା.ବି. ଗଳା, ଶଙ୍ଖନଳୀ, କଣ୍ଠନାଳି, ଗଳାର ସ୍ୱର ।
ତୋଟିକଟା—ଗ୍ରା. ବିଂ. ଗଳାକଟା, ତଣ୍ଟିକଟା, ତୋଟି କାଟିଦେଇ ଯେ ମନୁଷ୍ୟକୁ ମାରେ,ବିଶ୍ୱାସଘାତକ,ନରହନ୍ତା, ତୋଟି କାଟିଦେଇ ଅପହୃତ (ଧନ) ।
ତୋଟିକାଟିବା—ଗ୍ରା.କ୍ରି. ମନୁଷ୍ୟର ତଣ୍ଟିକାଟି ମାରିବା, ( ଲ.ଅର୍ଥ )କୌଣସି ବ୍ୟକ୍ତିର ସର୍ବନାଶ କରିବା, ବିଶ୍ୱାସଘାତକତା ଆଚରଣ କରିବା ।
ତୋଟିଗଡ଼(ଲ)ଗଡ଼(ଲ)ହେବା—ଗ୍ରା.କ୍ରି. କଞ୍ଚା ସାରୁ ବା ଓଲୁଅଆଦି ଖାଇବାରୁ ଗଳାଭିତରେ କୁଣ୍ଡାଇହେବା ।
ତୋଟିଚିପା—ଗ୍ରା.ବି. ନିଃଶ୍ୱାସ ବନ୍ଦକରି ପ୍ରାଣନାଶାର୍ଥ କୌଣସି ବ୍ୟକ୍ତିର ତୋଟି ଚିପିବା, ( ବିଂ ) ଯେ ତଣ୍ଟିଚିପି ମନୁଷ୍ୟକୁ ମାରେ,ଅନ୍ୟର ତଣ୍ଟିଚିପି ଜବରଦସ୍ତି ଅଣା ଯାଇଥିବା (ଧନ),(ଲ.ଅର୍ଥ) ଯେଉଁ ଧନ ପରକୁ ଉତ୍ପୀଡ଼ିତ କରି ସଂଗୃହୀତ ହୋଇଥାଏ ।
ତୋଟିଚିପିବା—ଗ୍ରା. କ୍ରି. ତୋଟିକୁ ଚିପି ନିଶ୍ୱାସ ବନ୍ଦକରିବା, ନିଷ୍ଠୁରଭାବରେ ବା ଗଳାକାଟି ମାରି ପକାଇବା, ( ଲ. ଅର୍ଥ ) ଧନ ଆଦାୟ କରିବାପାଇଁ ଜବରଦସ୍ତି ବା ଉତ୍ପୀଡ଼ନ କରିବା, କୌଣସି ବ୍ୟକ୍ତିର ସର୍ବନାଶ ଘଟାଇବା ।
ତୋଟି ଧରିବା—ଗ୍ରା. କ୍ରି. ତଣ୍ଟିଚିପି ଆକ୍ରାନ୍ତ କରିବା,ବିବ୍ରତକରିବା,ଅତ୍ୟନ୍ତ ବ୍ୟସ୍ତକରିବା ।
ତୋଟିବସିବା—ଗ୍ରା. ବି. ବହୁତ ପାଟିକରିବା ବା ଶରଦି ଆଦିଯୋଗୁଁ ଗଳାର ସ୍ୱର କମିଯିବା ।
ତୋଟିରେଲଗିବା—ଗ୍ରା. କ୍ରି. କୌଣସି ଖାଦ୍ୟଦ୍ରବ୍ୟ ତଳକୁ ନ ଖସି ନଳୀରେ ଅଟକି ରହିବା,(ଲ.ଅର୍ଥ)ଲୋଭପରବଶ ହୋଇ ବା ପରକୁ ଦେଖି ଆପଣାର ଅନୁଚିତ କର୍ମ କରିବା ଦ୍ୱାରା ବିପଦରେ ପଡ଼ିବା ।
ତୋଠ—ଗ୍ରା.ବି. (ସଂ-ଓଷ୍ଠ) ତୁଠଦେଖ ।
ତୋଠଉଁ—ଗ୍ରା. ସର୍ବ. ତୋଠାରୁ, ତୋ ନିକଟରୁ, ତୋ ଅପେକ୍ଷା, ତୋତେ ବଳି ।
ତୋଡ଼—ଗ୍ରା. ବି. ଜଳସ୍ରୋତର ବଳପୂର୍ଣ୍ଣ ବେଗ, ସ୍ରୋତର କ୍ଷିପ୍ରଗତି,ବେଗ, ରଗଡ଼, ଜୋର, ରାଗ, ବିବାଦ, କଳିକଜିଆ, ପ୍ରଚଣ୍ଡତା ।
ତୋଡ଼ତାଡ଼—ଗ୍ରା.ବି.ବାଦବିବାଦ,ବାକ୍‌ବିତଣ୍ଡା, ବାଦବିସମ୍ବାଦ ।
ତୋଡ଼ର—ଗ୍ରା. ବି. ଶୃଙ୍ଖଳାବିଶିଷ୍ଟ ପାଦର ବଳାବିଶେଷ । [ ତନ୍ତ୍ର ।
ତୋଡ଼ଲ—କ୍ଲୀ.ବି. ତନ୍ତ୍ରଭେଦ,ତୋଡ଼ଳ
ତୋଡ଼ା—ଗ୍ରା.ବି.ଥଳି,ଟଙ୍କାଆଦିର ମୁଣି , ଛଣି, ଫୁଲର ଗୁଚ୍ଛ ବା ପେଣ୍ଡା, ବନ୍ଧୁକରେ ନିଆଁ ଲଗାଇବାର ସଳିତା,ଗାଲକୁ ଚମୁଟିବା, ଗୋଡ଼ର ଅଳଙ୍କାରବିଶେଷ ।
ତୋଡ଼ାଣି—ଗ୍ରା.ବି. (ସଂ-ତୋୟ + ଅନ୍ନ- ବା ତୃଷା ନିବାରଣୀ) ପଖାଳଭିତରେ ଥିବା ଜଳୀୟାଂଶ, ତୋରାଣୀ ।
ତୋଡ଼ାଦାର୍—ଗ୍ରା.ବି.ଯେଉଁ ବାରୁଦରେ ନିଆଁ ଧରାଇବାନିମନ୍ତେ ବତି ବା କତାଦଉଡ଼ି ଦର୍କାର ହୁଏ ।
ତୋଡ଼ି—ଗ୍ରା.ବି. ଏକପ୍ରକାର ଅତିକ୍ଷୁଦ୍ର କାତିଯୁକ୍ତ ମାଛ, ରାଗିଣୀବିଶେଷ ।
ତୋଡ଼ିବା—ଗ୍ରା.କ୍ରି.( ସଂ-ତ୍ରୁଟ୍ ) ଭାଙ୍ଗିବା, ଗାଲକୁ ଚମୁଟିବା ।
ତୋଡ଼ମୁହାଁ—ଗ୍ରା.ପୁଂ.ବିଂ.ଯେଉଁମାନଙ୍କ ମୁହଁ ଗୋଲଆ, ଗୋଲାମୁହାଁ ।
ତୋଡ଼ଶିମ୍ବ—ଗ୍ରା. ବି. ତୋଡ଼ମାଛ ପରି ସରୁ ଓ ଲମ୍ବା ଏକପ୍ରକାର ଶିମ୍ବ ।
ତୋଡ଼ର—ଗ୍ରା. ବି. ଏକପ୍ରକାର ପାଦଭୂଷଣ, ତୋଡ଼ର ।
ତୋଢ଼ଲା—ଗ୍ରା.ବିଂ. ଅସ୍ପଷ୍ଟକଥନ, ଖନା, ଯାହାର ପାଟିଲାଗେ ।
ତୋତା—ଯା.ବି. ଶୁଆପକ୍ଷୀ, ଶୁଆ ।
ତୋତାପୁରି—ଗ୍ରା. ବି. (ନାମ). ଶ୍ରୀ ରାମକୃଷ୍ଣ ପରମହଂସଙ୍କ ସନ୍ନ୍ୟାସୀ ଗୁରୁ ।
ତୋତେ—ଗ୍ରା. ସର୍ବ. 'ତୁ'ର ଦ୍ୱିତୀୟାବିଭକ୍ତି ଏକବଚନ ।
ତୋତ୍ର—କ୍ଲୀ.ବି.(ତୁଦ୍+ଅ.ତ୍ର) ଗବାଦିତାଡନଦଣ୍ଡ, ପାଞ୍ଚଣ, ଅଙ୍କୁଶ, ହାତୀଅଙ୍କୁଶ ।
ତୋତ୍ରବେତ୍ର—କ୍ଲୀ.ବି.ବିଷ୍ଣୁଦଣ୍ଡ,ବିଷ୍ଣୁଙ୍କହସ୍ତସ୍ଥିତ ଦଣ୍ଡ, ସରୁପାଞ୍ଚଣ ।
ତୋଦ—ପୁଂ.ବି.( ତୁଦ୍ + ଭା.ଅ )ପୀଡ଼ା, ବଥାଇବା ।
ତୋଦନ—କ୍ଲୀ.ବି.(ତୁଦ୍ + ଭା.ଅନ)ପୀଡ଼ାଦେବା, ବେଦନା, ପୀଡ଼ା, ଅଙ୍କୁଶ, ମୂଷା, ଦଣ୍ଡ, ତୋତ୍ରଦେଖ ।
ତୋପ—ଯା. ବି. ବୃହତ୍ ଆଗ୍ନେୟାସ୍ତ୍ର, କମାଣ, କମାଣର ଶବ୍ଦ ।
ତୋପଖାନା—ଯା. ବି. ଯେଉଁଠାରେ ତୋପ ଥାଏ ।
ତୋପଚିନି—ବି. ଚିନିବିଶେଷ ।
ତୋପବାଜି—ଯା.ବି. ବୋମା,ତୋପପରି ଶବ୍ଦକରିବା ଏକପ୍ରକାର ବାଣ ।
ତୋପିବା—ପ୍ରା. ( ସମ୍ବ କ୍ରି ) ପୋତିବା, ରୋପଣକରିବା ।
ତୋଫା—ଯା.ବିଂ. ଅତ୍ୟୁତ୍ତମ, ଅତ୍ୟୁତ୍କୃଷ୍ଟ, ଉଜ୍ଜ୍ୱଳ, ସୁନ୍ଦର, ଅପୂର୍ବ ।
ତୋଫାନ—ଯା.ବି. ଝଞ୍ଜାବାୟୁ, ପ୍ରଖରଝଡ଼, ବାତ୍ୟା, ଝଡ଼ସହିତ ବର୍ଷା ।
ତୋଫାନିଆ—ଗ୍ରା.ବିଂ. ବାତୁଳ, ନିରଟମୋଟୁଆ(ବ୍ୟକ୍ତି), ଫିସାଦିଆ, ପ୍ରଚଣ୍ଡ ।

ତୋବଡ଼ା—ଯା.ବି. ବୁଟ କୋଳଥଆଦି ଦାନାପୂର୍ଣ୍ଣ ଥଳି, ଯାହା ଘୋଡ଼ା ମୁହଁରେ ବାନ୍ଧି ଲଟକାଇ ଦିଆଯାଏ, ଡାକ-ବାଲୁର ଥଳି ।

ତୋବା—ଯା.ଅବ୍ୟ.ପଶ୍ଚାତ୍ତାପ, ଅନୁତାପ. ଖେଦ, ଦୁଃଖ ହା ବିଧେ ! ହାୟ ! ଛିଛି

ତୋମର—କ୍ଲୀ.ବି.(ତୁ + ମ୍ବ + ଅ) ହସ୍ତ-କ୍ଷେପ୍ୟ ତୀକ୍ଷ୍ଣାଗ୍ର ଲୌହାସ୍ତ୍ରବିଶେଷ, ତେଣ୍ଟା, ବର୍ଚ୍ଛା, ଗୋଟିଏ ପ୍ରାଚୀନ ରାଜପୂତ କ୍ଷତ୍ରିୟ ରାଜବଂଶ ।

ତୋମରଧର—ପୁଂ. ବି. (ତୋମର + ଧୃ+କ.ଅ)ଅଗ୍ନି ,ତୋମରଧାରୀ ଯୋଦ୍ଧା

ତୋୟ—କ୍ଲୀ. ବି. (ତୁ + କ.ଯ) ଜଳ, ପୂର୍ବାଷାଢ଼ା ନକ୍ଷତ୍ର, ଲଗ୍ନସ୍ଥାନରୁ ଚତୁର୍ଥ ସ୍ଥାନ ।

ତୋୟକର୍ମ—କ୍ଲୀ. ବି. ତର୍ପଣ ।

ତୋୟକାମ—ପୁଂ. ବି. ପରିବ୍ୟାଧବୃକ୍ଷ, ଉଦ୍ଭିଦ୍,ଜଳବେତସ ଗଛ,(ବିଂ)ପିପାସୁ, ଜଳାଭିଳାଷୀ, ଜଳପ୍ରାର୍ଥୀ ।

ତୋୟକୁମ୍ଭ—ପୁଂ.ବି. ଶୈବାଳ,ଶିଉଳି ।

ତୋୟକୃଚ୍ଛ୍ର—କ୍ଲୀ. ବି. ଜଳମାତ୍ର ପାନ-କରି ଜୀବନଧାରଣରୂପ ବ୍ରତବିଶେଷ ।

ତୋୟକ୍ରୀଡ଼ା—ସ୍ତ୍ରୀ.ବି. ଜଳକ୍ରୀଡ଼ା, ଜଳ-କେଳି ।

ତୋୟଜ—ବିଂ. (ତୋୟ+ଜନ+ଅ) ଜଳଜ, ଜଳଜାତ ।

ତୋୟଡିମ୍ବ—ପୁଂ. ବି. (୬ତତ୍ପୁ)କରକା, କୁଆପଥର ।

ତୋୟଦ—ପୁଂ. ବି. (ତୋୟ+ଦା+କ.ଅ) ମେଘ, ମୁସ୍ତକ, (କ୍ଲୀ. ବି)ଘୃତ, (ବିଂ) ବିଧିପୂର୍ବକ ଜଳଦାତା ।

ତୋୟଦାଗମ—ପୁଂ. ବି.(୬ତତ୍ପୁ)ମେଘା-ଗମ, ବର୍ଷାକାଳ ।

ତୋୟଧର—ପୁଂ. ବି. ମେଘ, ମୁସ୍ତକ, ମୁଥା, ସୁନିଷଣ୍ଣଶାକ, ସୁନୁସୁନିଆଶାଗ ।

ତୋୟଧାର—ପୁଂ. ବି. ମେଘ, ମୁସ୍ତକ, ଜଳବର୍ଷଣ ।

ତୋୟଧାରା—ସ୍ତ୍ରୀ. ବି. ଜଳସନ୍ତତି, ଜଳର ଧାରା ।

ତୋୟଧି—ପୁଂ. ବି. ସମୁଦ୍ର, ସାଗର ।

ତୋୟଧିପ୍ରିୟ—କ୍ଲୀ.ବି.(ବ.ବ୍ରୀ)ଲବଙ୍ଗ ।

ତୋୟନିଧି—ପୁଂ. ବି. ସମୁଦ୍ର ।

ତୋୟନୀବୀ—ସ୍ତ୍ରୀ. ବି. (ବ.ବ୍ରୀ) ପୃଥିବୀ ।

ତୋୟପର୍ଣ୍ଣୀ—ସ୍ତ୍ରୀ. ବି. ଧାନ୍ୟବିଶେଷ, କାରବେଲ୍ଲିଲତା, କଲରାଗଛ ।

ତୋୟପୁଷ୍ପୀ—ସ୍ତ୍ରୀ. ବି. ପାଟଳାବୃକ୍ଷ ।

ତୋୟପ୍ରସ୍ଥା—ସ୍ତ୍ରୀ. ବି. ପାଟଳାବୃକ୍ଷ ।

ତୋୟପ୍ରସାଦନ—କ୍ଲୀ. ବି. କତକଫଳ, ନିର୍ମଳାଫଳ ।

ତୋୟଫଳା—ସ୍ତ୍ରୀ. ବି. (ବ.ବ୍ରୀ) ଫଳ ଲତାବିଶେଷ, କାକୁଡ଼ି, ତରଭୁଜ ।

ତୋୟମୁକ୍—ପୁଂ. ବି. (ତୋୟ+ମୁଚ୍ +କ୍ୱିପ୍) ମେଘ, ମୁସ୍ତକ ।

ତୋୟଯନ୍ତ୍ର—କ୍ଲୀ. ବି. କାଳଜ୍ଞାନାର୍ଥ ଘଟୀ-ଯନ୍ତ୍ରଭେଦ, ଜଳଯନ୍ତ୍ରଭେଦ ।

ତୋୟରାଟ୍—ପୁଂ. ବି.(ତୋୟ+ରା+କ୍ୱିପ୍) ସମୁଦ୍ର ।

ତୋୟରାଶି—ପୁଂ.ବି.ସମୁଦ୍ର,ଜଳସମୂହ ।

ତୋୟବଲ୍ଲିକା—ସ୍ତ୍ରୀ. ବି.(ତୋୟବଲ୍ଲୀ+କ+ଆ) କାରବେଲ୍ଲକ, କଲରା ।

ତୋୟବଲ୍ଲୀ—ସ୍ତ୍ରୀ. ବି. କାରବେଲ୍ଲକ, କଲରାଲତା ।

ତୋୟବୃକ୍ଷ—ପୁଂ. ବି. ଶୈବାଳ,ଶିଉଳି ।

ତୋୟବିମ୍ବ—କ୍ଲୀ. ବି. ଜଳବିମ୍ବ, ପାଣି-ଫେଟକା, ଜଳବୁଦ୍ବୁଦ ।

ତୋୟଶୁକ୍ତିକା—ସ୍ତ୍ରୀ. ବି. ଜଳଶୁକ୍ତିକା, ଶାମୁକା ।

ତୋୟଶୃଙ୍ଗ—ପୁଂ.ବି. ଶୈବାଳ,ଶିଉଳି ।

ତୋୟସୂଚକ—ପୁଂ. ସ୍ତ୍ରୀ. ବି. ଭେକ, ବେଙ୍ଗ,ଜଳବର୍ଷଣସୂଚକ ଯୋଗଭେଦ ।

ତୋୟାତ୍ମା—ପୁଂ. ବି. ପରମେଶ୍ୱର ।

ତୋୟାଧାର—ପୁଂ.ବି.ଜଳାଧାର,ପୁଷ୍କରିଣୀ

ତୋୟାଧିବାସିନୀ—ସ୍ତ୍ରୀ. ବି. (ତୋୟ+ଅଧି+ବସ+ଇନ୍+ଈ)ପାଟଳାବୃକ୍ଷ ।

ତୋୟାଳୟ—ପୁଂ. ବି. (୬ତତ୍ପୁ)ଉଦଧି, ସମୁଦ୍ର ।

ତୋୟାଶୟ—ପୁଂ. ବି.(୬ତତ୍ପୁ)ଜଳାଶୟ ।

ତୋୟେଶ—ପୁଂ. ବି. ବରୁଣଦେବତା, ଶତଭିଷାନକ୍ଷତ୍ର, ପୂର୍ବାଷାଢ଼ାନକ୍ଷତ୍ର ।

ତୋର—(ଗ୍ରା)ସର୍ବ. ତୁମ୍ଭର, ତୋହର ।

ତୋରଡ଼ା—ଗ୍ରା.ବି. ତରଡ଼ା, ଲତାଫଳ ବିଶେଷ, (ପ୍ରା. ଚଣ୍ଡାମ-ବି )କୁଆମଇଣ୍ଡା ।

ତୋରଣ—କ୍ଲୀ. ବି. ( ତୁର୍+ଅଧି+ଅନ) ବହିର୍ଦ୍ୱାର, ସିଂହଦ୍ୱାର,ଖିଲାଣଯୁକ୍ତ ସ୍ତମ୍ଭଦ୍ୱୟ, ଫାଟକ,ଗେଟ୍, ତୋରଣା-କାର ମାଳା, (ତୁର+ଅନ) କନ୍ଦର, ମହାଦେବ ।

ତୋରଣମାଳ—କ୍ଲୀ. ବି. ତୀର୍ଥ ବିଶେଷ, ଅବନ୍ତିକା ।

ତୋରଣସ୍ଫାଟିକା—ସ୍ତ୍ରୀ. ବି. (ବ.ବ୍ରୀ) ଦୁର୍ଯ୍ୟୋଧନଙ୍କ ସଭାମଣ୍ଡପ ।

ତୋରମାଣ—ପୁଂ. ବି. କାଶ୍ମୀରର ଜଣେ ପରାକ୍ରାନ୍ତ ରାଜା,ପଞ୍ଜାବର ଜଣେ ରାଜା, ମାଳବର ଜଣେ ରାଜା ।

ତୋରଶ୍ରବାଃ—ପୁଂ. ବି. ଅଙ୍ଗିରା ମୁନି ।

ତୋରା—ଗ୍ରା. ବିଂ. (ଫ-ତ୍ୱରା) ତ୍ୱରିତ, ତ୍ୱରାଯୁକ୍ତ, ତ୍ୱରାନ୍ୱିତ, ଚଞ୍ଚଳ, ସୁନ୍ଦର, ତୋଫା, ବ୍ୟଗ୍ର, (କ୍ରି.ବିଂ) ଚଞ୍ଚଳ,ଶୀଘ୍ର, ତୁରନ୍ତ, (ବି) ରାଗ, କ୍ରୋଧ ।

ତୋରି—ଗ୍ରା.ସର୍ବ. ତୋହରି,ତୋହରହିଁ ।

ତୋରେ—ଗ୍ରା. ସର୍ବ. ତୋଠାରେ, ତୋତେ ।

ତୋରେଇ—ପ୍ରା. (ବତୁର) ବି. ଜହ୍ନି ।

ତୋଲ—ପୁଂ. କ୍ଲୀ. ବି. (ତୁଲ+ଣି+ଅ) ତୋଳା, ଭରି, ଦଶ ( ମତାନ୍ତରେ-ବାର) ମସା, ଏକଟଙ୍କା ଓଜନ ।

ତୋଲକ—ପୁଂ. କ୍ଲୀ. ବି. (ତୋଲ+କ) ତୋଲ ଦେଖ, ନିକିତି, ତରାଜୁ, ବଟ-କରା, ମାପୁଣି,(ବିଂ)ଯେ ଓଜନ କରେ, ପରିମାପକ ।

ତୋଲନ—କ୍ଲୀ. ବି. ( ତୁଲ+ଣି,ଅନ ) ତୌଲିକରଣ, ଓଜନ, ଉତ୍ଥାପନ, ତୌଳିବା, ଉଠାଇବା ।

ତୋଲପାଡ଼—ଗ୍ରା. ବି. ଅତ୍ୟନ୍ତ ଆଲୋ-ଡ଼ନ, ପକାଉଠା, ଲେଉଟ ପାଉଟ, ଦୌରାତ୍ମ୍ୟ, ଘଣ୍ଟାଚକଟା,ତୁମୁଳଝଗଡ଼ା,

ତୋଳା—ବି. (ତୁଲ+ଅ+ଆ) ଉତ୍ଥା-

ପନ, ଉତ୍ତୋଳନ, ତୌଲ, ଓଜନ, (ଗ୍ରା.ବି) ଏକଟଙ୍କା ଓଜନ, ଏକଭରି, ଦଶମସା ପରିମାଣ, ଚୟନ,ତୋଳିବା, ଗଛରୁ ଫୁଲ ବା ଫଳ ସଂଗ୍ରହ କରିବା, ନିର୍ମାଣ ।

ତୋଲ୍—ପ୍ରା.(ସମ୍ପ୍ର)ବି. (ସଙ୍ଖ) ତୋତେ, ତୁମ୍ଭଙ୍କୁ ।

ତୋଲାକନ୍ୟା—ଗ୍ରା. ବି. ଅଭାବଗ୍ରସ୍ତପିତା ବିବାହ ବ୍ୟୟ ବହନ କରିବାକୁ ଅକ୍ଷମ ହୋଇ କନ୍ୟାକୁ ବିବାହ କରିବା ନିମିତ୍ତ ବରଗୃହରେ ସମର୍ପଣ କରନ୍ତି ।

ତୋଳ—ପ୍ରା. (ଆଳ) ବି. ସଉଳ ଦେଖ ।

ତୋଳିବା—ଗ୍ରା.କ୍ରି.ଗଛରୁ ପୁଷ୍ପାଦି ଚୟନ କରିବା, ଡାଳୁ ଗୋଟାଇବା, ସଂଗ୍ରହ କରିବା, (ସ୍ୱରକୁ) ଉଚ୍ଚତର କରିବା, ଉପରକୁ ଉଠାଇବା ।

ତୋଲ୍ୟ—ବିଂ. (ତୁଲ+ଣି.ଯ) ତୋଲନୀୟ, (ବି—ଭା,ଯ) ତୋଳନ ।

ତୋଶ—ପୁଂ.ବି. (ତୁଶ+ଭା,ଅ) ହିଂସା, ହିଂସକ ।

ତୋଷ—ପୁଂ. ବି. ( ତୁଷ+ଭା,ଅ ) ସନ୍ତୋଷ, ତୁଷ୍ଟି, ହର୍ଷ, ସୁଖ, ସ୍ୱାୟଂଭୁବମନ୍ୱନ୍ତରର ଜଣେ ଦେବତା, ଶ୍ରୀକୃଷ୍ଣଙ୍କ ଜଣେ ସଖା ।

ତୋଷକ—ବିଂ. (ତୁଷ୍+ଣିଚ୍+ଅକ) ଆନନ୍ଦଦାୟକ, ସୁଖଦ ।

ତୋଷଖାନା—ଯା. ବି. ଯେଉଁ ଘରେ ରାଜାମାନଙ୍କର ପୋଷାକ ପତ୍ର ଓ ଅଳଂକାରାଦି ରହେ, ଧନାଗାର ।

ତୋଷଣ—କ୍ଳୀ. ବି. (ତୁଷ୍+ଭା, ଅନ) ସନ୍ତୋଷ, ତୃପ୍ତି, ସନ୍ତୋଷୋତ୍ପାଦନ, (ଣି.ଅନ)ସନ୍ତୋଷସାଧନ ବସ୍ତୁ, (ବିଂ—କ.ଅକ) ସନ୍ତୋଷଉତ୍ପାଦକ ।

ତୋଷଦାମି—ଗ୍ରା.ବିଂ. ତୋଷକ ଦେଖ ।

ତୋଷୟିତବ୍ୟ—ବିଂ.(ତୁଷ+ଣି+ତବ୍ୟ) ତୋଷଣୀୟ ।

ତୋଷଲ—ପୁଂ. ବି. କଂସାନୁଚରଭେଦ (କ୍ଳୀ.ବି) ମୂଷଳ, ଅସ୍ତ୍ରବିଶେଷ, (ଗ୍ରା.ବିଂ) ପ୍ରାଚୀନ ଉତ୍କଳର ନଗର ଓ ରାଜ୍ୟବିଶେଷ, ପ୍ରାଚୀନ ଉତ୍କଳର ଯୋଦ୍ଧୃଜାତିବିଶେଷ ।

ତୋଷଖାନା—ଯା. ବି. ଯେଉଁ ଘରେ ବସ୍ତ୍ରାଦି ଏବଂ ଅନ୍ୟାନ୍ୟ ଗୃହସଜ୍ଜାର ଉପକରଣ ରଖାଯାଏ, ଧନାଗାର, ଭଣ୍ଡାର ।

ତୋଷାମତ୍(ଦ)—ଗ୍ରା.ବି. ଖୋଷାମୋଦ, ପ୍ରାର୍ଥନା, ଚାଟୁକ୍ତି ।

ତୋଷାମଦ(ଦ)—ଯା. ବି. ଚାଟୁବୃତ୍ତି ।

ତୋଷାମଦ(ଦ)ଆ—ଯା.ବିଂ. ଚାଟୁକାର, ଚାଟୁପୂର୍ଣ୍ଣ(ବାକ୍ୟ) ।

ତୋଷାଲି(ଳି)—ଗ୍ରା. ବି. ପ୍ରାଚୀନ ଉତ୍କଳର ରାଜଧାନୀବିଶେଷ ।

ତୋଷିତ—ବିଂ. (ତୁଷ+ଣିଚ୍+ମି.ତ) ତୃପ୍ତ, ତୁଷ୍ଟ, ତର୍ପିତ, ସନ୍ତୋଷିତ ।

ତୋଷୀ—ପୁଂ.ବିଂ. (ତୁଷ+ଇନ୍) ତୁଷ୍ଟ, ସନ୍ତୁଷ୍ଟ, ଆନନ୍ଦିତ, ଯେ ଅନ୍ୟକୁ ତୁଷ୍ଟ କରାଏ, ସନ୍ତୋଷପ୍ରଦ ।

ତୋଷ୍ୟ—ବିଂ. (ତୁଷ+ଯ) ତୋଷଣୀୟ ।

ତୋହ—ଗ୍ରା. ସର୍ବ. ତୋ, ତୋହର ।

ତୋହମତ୍—ଯା. ବି. ମିଥ୍ୟାଭିଯୋଗ, ମିଥ୍ୟା ଅପବାଦ, ମିଥ୍ୟା କଳଙ୍କ, (ବିଂ) ମିଥ୍ୟା ଅପବାଦ ଯୁକ୍ତ, (କ୍ରି.ବିଂ) ବୃଥା, ସର୍ବଦା, ଦିବା ନିଶି ।

ତୋହମତିଆ—ଯା. ବିଂ. ବୃଥା, ମିଥ୍ୟା ଅଭିଯୋଗକାରୀ, ମିଥ୍ୟା ଅପବାଦ ପ୍ରଚାରକ,ମିଥ୍ୟା ଅପବାଦଯୁକ୍ତ (ବିଷୟ, ବାକ୍ୟ) ।

ତୋହର—ଗ୍ରା. ସର୍ବ. ତୋଆ, ତୋହ ।

ତୋହରେ—ଗ୍ରା. ସର୍ବ. ତୋଦ୍ୱାରା, ତୋଠାରେ ।

ତୌକ୍ଷିକ—ପୁଂ.ବି. ଧନୁରାଶି ।

ତୌଜି—ଯା. ବି. ପ୍ରଜାର ନାମ, ଜମି, ଖଜଣାଆଦିର ହିସାବପତ୍ର ବା ତାଲିକା

ତୌତାତକ—କ୍ଳୀ.ବି. ତୁତାତ ଭଟ୍ଟକୃତ ଦର୍ଶନଶାସ୍ତ୍ର, କୌମାରିଲଶାସ୍ତ୍ର ।

ତୌତାତିତ—ପୁଂ. ବି. କୁମାରିଲ ଭଟ୍ଟଙ୍କର ନାମାନ୍ତର, ଜୈନମାନଙ୍କର ଶ୍ରେଣୀବିଶେଷ ।

ତୌଦିକ—ବି. ମୁକ୍ତା, ଶୁକ୍ତି ।

ତୌଦୀ—ସ୍ତ୍ରୀ.ବି. ବିଷନାଶକ ବୃକ୍ଷବିଶେଷ, ଘୃତକୁମାରୀ ।

ତୌରେତ୍—ଯା. ବି. ଇହୁଦୀମାନଙ୍କର ପ୍ରଧାନ ଧର୍ମଗ୍ରନ୍ଥ ।

ତୌର୍ଯ୍ୟ—କ୍ଳୀ. ବି. (ତୁର+ଯ) ବାଦ୍ୟବିଶେଷ,ବାଦ୍ୟଧ୍ୱନି,ଢୋଲ ଝାଞ୍ଜିଆଦି ଆନଦ୍ଧବାଦ୍ୟ ।

ତୌର୍ଯ୍ୟତ୍ରିକ—କ୍ଳୀ. ବି. ସମୁଦିତ ନୃତ୍ୟ ଗୀତ ଓ ବାଦ୍ୟ, ଏକସଙ୍ଗେ ଗାନ-ବାଜଣା ଓ ନୃତ୍ୟ ।

ତୌଲ—କ୍ଳୀ. ବି. (ତୁଲା+ଅ) ତୁଲାଦଣ୍ଡ, ତୁଳା, ତୁଲାରାଶି, ତରାଜୁ, ପରିମାଣବିଶେଷ, ଓଜନ ।

ତୌଲକର—ପୁଂ. ବିଂ. (ତୌଲ+କୃ+ଅ) ପରିମାପକ ।

ତୌଲିକ—ପୁଂ. ବି. ( ତୁଲି+ଅକ ) ଚିତ୍ରକାର, ଚିତ୍ରକର, (ତୁଲ+ଇକ) ପରିମାଣକାରୀ, ଯେଉଁ ବ୍ୟକ୍ତି ଓଜନ କରେ ।

ତୌଲିକିକ—ପୁଂ. ବି. (ତୁଲିକା+ଇକ) ଚିତ୍ରକାର ।

ତୌଲୀ—ପୁଂ. ବି. ( ତୁଲା+ଇନ୍ ) ତୁଲାରାଶି ।

ତୌଲ୍ୟ—ବିଂ. (ତୁଲା+ଯ) ତୁଲାଦ୍ୱାରା ପରିଚ୍ଛିନ୍ନ, (ତୁଲ୍ୟ+ଅ) ତୁଲ୍ୟ ।

ତୌଷାର—ବି. (ତୁଷାର+ଅ) କୁହୁଡ଼ି, କାକର, ବରଫ, (ବିଂ) ତୁଷାର ସମ୍ବନ୍ଧୀୟ ।

ତ୍ୟକ୍ତ—ବିଂ. (ତ୍ୟଜ+ମି.ତ) ବର୍ଜିତ, ହୀନ, ବିଷୟତ୍ୟାଗୀ, ବିସୃଷ୍ଟ, ଦତ୍ତ, ଯାହା ତ୍ୟାଗକରାହୋଇଅଛି, ବିକ୍ଷିପ୍ତ ।

ତ୍ୟକ୍ତଜୀବିତ—ପୁଂ.ବି. (ବି.ଗ୍ରା) ମଲା,ମୃତ ।

ତ୍ୟକ୍ତବିରକ୍ତ—ଗ୍ରା. ବିଂ. ଅତ୍ୟନ୍ତ ବିରକ୍ତ ଓ ବ୍ୟସ୍ତ, କିଂ କର୍ତ୍ତବ୍ୟବିମୂଢ଼ ।

ତ୍ୟକ୍ତବ୍ୟ—ବିଂ. (ତ୍ୟଜ+ତବ୍ୟ) ତ୍ୟଜନୀୟ, ତ୍ୟାଗଯୋଗ୍ୟ, ଯାହାକୁ ତ୍ୟାଗ କରିବା ଉଚିତ ।

ତ୍ୟକ୍ତଲଜ୍ଜ—ପୁଂ. ବିଂ. (ତ୍ୟକ୍ତ+ଲଜ୍ଜା)

(ବି.ଗ୍ରା) ନିର୍ଲଜ୍ଜ ।
ତ୍ୟକ୍ତା—ପୁଂ. ବିଂ. ( ତ୍ୟଜ+ କ.ତୃ )
ତ୍ୟାଗକାରୀ ।
ତ୍ୟଜନ—କ୍ଳୀ. ବି. ( ତ୍ୟଜ + ଭା,ଅନ )
ତ୍ୟାଗ, ବର୍ଜ୍ଜନ, ପରିହାର, ବୈରାଗ୍ୟ, ଦାନ ।
ତ୍ୟଜନୀୟ—ବିଂ. ( ତ୍ୟଜ+ଅନୀୟ )
ତ୍ୟାଗଯୋଗ୍ୟ, ତ୍ୟକ୍ତବ୍ୟ ।
ତ୍ୟଜ୍ୟପୁତ୍ର—ଗ୍ରା.ବି. ତ୍ୟାଜ୍ୟପୁତ୍ର ଦେଖ
ତ୍ୟଜ୍ୟମାନ—ବିଂ. (ତ୍ୟଜ + ମିଁ. ଆନ)
ଯାହାକୁ ତ୍ୟାଗ କରାହୋଇଅଛି ।
ତ୍ୟଦ୍—ବିଂ. (ତ୍ୟଦ୍+ଅ) ଆକାଶ,ବାୟୁ
ସର୍ବଦା ପରୋକ୍ଷାଭିଧାନାର୍ଥ ବସ୍ତୁ ।
ତ୍ୟାଗ—ପୁଂ. ବି. ( ତ୍ୟଜ୍+ଭା.ଅନ )
ବର୍ଜ୍ଜନ, ଦାନ, ପରିତ୍ୟାଗ, ଛାଡ଼, ବୈରାଗ୍ୟ, ନିକ୍ଷେପ, ଛାଡ଼ି ଚାଲିଯିବା, କୌଣସି ବସ୍ତୁରୁ ଆପଣା ସମ୍ପର୍କ କାଟିବା, କର୍ମଫଳର ତ୍ୟାଗ,(ଗ୍ରା.ବି)ସ୍ୱାର୍ଥତ୍ୟାଗ, (ବିଂ) ତ୍ୟକ୍ତ ।
ତ୍ୟାଗକରିବା—ଗ୍ରା. କ୍ରି. ଛାଡ଼ିବା ।
ତ୍ୟାଗପତ୍ର—କ୍ଳୀ. ବି. ( ମଧ୍ୟ—କ.ଧା )
ଛାଡ଼ପତ୍ର, ଦାନପତ୍ର, କରାରନାମା, ଇସ୍ତଫା, କୌଣସି ବିଷୟରୁ ସ୍ୱତ୍ୱପରିତ୍ୟାଗ କରିବା ନିମନ୍ତେ କରାରନାମା ।
ତ୍ୟାଗଶୀଳ—ପୁଂ. ବିଂ. (ବି.ଗ୍ରା) ଦାନଶୀଳ, ତ୍ୟାଗପ୍ରକୃତିକ, ସ୍ୱାର୍ଥତ୍ୟାଗୀ, ଆତ୍ମସୁଖତ୍ୟାଗୀ ।
ତ୍ୟାଗସ୍ୱୀକାର—ପୁଂ.ବି. ଆତ୍ମସ୍ୱାର୍ଥ ବିସର୍ଜ୍ଜନ, କାମନାବର୍ଜ୍ଜନ, ଆତ୍ମୋତ୍ସର୍ଗ ।
ତ୍ୟାଗୀ—ପୁଂ. ବିଂ. ( ତ୍ୟାଗ+ଇନ୍ )
ଦାତା, ଶୂର, ବୀର, ବର୍ଜନଶୀଳ, କର୍ମଫଳ ତ୍ୟାଗୀ, ବିବେକୀ, ବିରାଗୀ, ବୀତସ୍ପୃହ, (ସ୍ତ୍ରୀ) ତ୍ୟାଗିନୀ ।
ତ୍ୟାଗିମ—ବିଂ.ତ୍ୟକ୍ତ,ତ୍ୟାଗଦ୍ୱାରା ନିଷ୍ପନ୍ନ ।
ତ୍ୟାଜ୍ୟ—ବିଂ. (ତ୍ୟଜ+ମିଁ,ଯ) ବର୍ଜ୍ଜନୀୟ, ତ୍ୟକ୍ତ, ତ୍ୟାଗଯୋଗ୍ୟ, ଦାନଯୋଗ୍ୟ, ପିତୃଧନରୁ ବଞ୍ଚିତ ହେବାର ଉପଯୁକ୍ତ (ପୁତ୍ର) ।
ତ୍ୟାଜ୍ୟପୁତ୍ର—ବି. ( ତ୍ୟାଜ୍ୟ+ପୁତ୍ର )
ଯେଉଁ ପୁଅକୁ ପିତା ନିଜ ସମ୍ପତ୍ତିରୁ ବଞ୍ଚିତ କରନ୍ତି ।
ତ୍ର—(ସଂ-ପ୍ରତ୍ୟୟ--ସ୍ଥାନାଧିକାର ଅର୍ଥରେ ପ୍ରତ୍ୟୟ) ଠାରେ, (ଯଥା—ଯତ୍ର) ।
ତ୍ରଙ୍ଗ—ପୁଂ. ବି. (ତ୍ରଗି+ଅଚ୍) ପୁରଭେଦ, ରଜା ହରିଶ୍ଚନ୍ଦ୍ରଙ୍କର ରାଜଧାନୀ
ତ୍ରପ—ପୁଂ. ବି. (ତ୍ରପ୍+ଭା,ଅ) ଲଜ୍ଜା ।
ତ୍ରପମାନ—ବିଂ. (ତ୍ରପ + କ,ଆନ) ଲଜ୍ଜମାନ,ଯେ ଲଜ୍ଜା ପାଉଅଛି, (ସ୍ତ୍ରୀ) ତ୍ରପମାଣା ।
ତ୍ରପା—ସ୍ତ୍ରୀ. ବି. ( ତ୍ରପ+ଭା,ଅ+ଆ )
ଲଜ୍ଜା, ବ୍ରୀଡ଼ା, ବିନୟ, ଯଶଃ, କୁଳଟା, କୁଳ, କୀର୍ତ୍ତି, ଭ୍ରଷ୍ଟା ସ୍ତ୍ରୀ, ବେଶ୍ୟା ।
ତ୍ରପାକ—ପୁଂ. ବି. ( ତ୍ରପ+ଆ + କ )
ମ୍ଳେଚ୍ଛବିଶେଷ ।
ତ୍ରପାନିରସ୍ତ—ବିଂ. (୩ତତ୍) ନିର୍ଲଜ୍ଜ ।
ତ୍ରପାନ୍ୱିତ—ବିଂ. (୩ତତ୍) ଲଜ୍ଜାଯୁକ୍ତ ।
ତ୍ରପାରଣ୍ଡା—ସ୍ତ୍ରୀ. ବି. ବେଶ୍ୟା, ଗଣିକା, (ବିଂ) ଲଜ୍ଜାହୀନା ।
ତ୍ରପାବାନ୍—ପୁଂ. ବିଂ. ( ତ୍ରପା+ବତ୍ )
ଲଜ୍ଜାଶୀଳ, ସଲଜ୍ଜ ।
ତ୍ରପିତ—ବିଂ. (ତ୍ରପ + ମିଁ.ତ) ଲଜ୍ଜିତ ।
ତ୍ରପିଷ୍ଠ—ବିଂ. ( ତ୍ରପା+ଇଷ୍ଠ ) ଅତିଶୟ ଲଜ୍ଜିତ, ଅତି ଲଜ୍ଜାଶୀଳ, ଲାଜକୁଳୀ ।
ତ୍ରପୀୟାନ୍—ପୁଂ. ବିଂ. (ତ୍ରପା+ଇୟସ୍)
ଅତି ଲଜ୍ଜିତ, ଲଜ୍ଜାଶୀଳ, ଲାଜକୁଳୀ ।
ତ୍ରପୁ- କ୍ଳୀ. ବି. ( ତ୍ରପ୍+ଉ ) ସୀସକ, ରଙ୍ଗ, ବଙ୍ଗ, ଟିଣ ।
ତ୍ରପୁକର୍କଟୀ—ବି. କାକୁଡ଼ି, କଣ୍ଟିଆଳି କାକୁଡ଼ି । [ ଇତ ।
ତ୍ରପୁଟୀ—ସ୍ତ୍ରୀ.ବି. ସୂକ୍ଷ୍ମେଳା, ଗୁଜୁରାଟ ଅଳା-
ତ୍ରପୁଳ—କ୍ଳୀ. ବି. ରଙ୍ଗ, ବଙ୍ଗ ।
ତ୍ରପୁଷ(ସ)—କ୍ଳୀ. ବି. ରଙ୍ଗ, ବଙ୍ଗ, କଣ୍ଟକ ଫଳ, କାକୁଡ଼ି, ଶିମୁଳୀ ବୃକ୍ଷ ।
ତ୍ରପୁଷା(ସା)—ସ୍ତ୍ରୀ. ବି. କାକୁଡ଼ିଲତା ।
ତ୍ରପୁଷୀ(ସୀ)—ସ୍ତ୍ରୀ. ବି. ( ତ୍ରପୁଷ+ଈ )
କକଟୀ, କଣ୍ଟିଆଳି କାକୁଡ଼ି ।
ତ୍ରପ୍ୱାଦି—ପୁଂ. ବି. ରଙ୍ଗାଦି ସପ୍ତଧାତୁ ବିଶେଷ, ତ୍ରପୁ, ସୀସ, ତାମ୍ର, ରଜତ, କୃଷ୍ଣଲୌହ, ସୁବର୍ଣ୍ଣ, ଲୌହମଳ ।
ତ୍ରପ୍ସା—ସ୍ତ୍ରୀ. ବି. ଘନୀଭୂତ ଶ୍ଳେଷ୍ମାଦି, ଗ୍ରନ୍ଥି ବା କଣ୍ଠରେ ହୋଇଥିବା ଶ୍ଳେଷ୍ମା ବା କଫ । [ ଦଧି ।
ତ୍ର୍ୟପ୍ସ—କ୍ଳୀ. ବି. ପାତଳଦହି, ଘୋଳ-
ତ୍ରୟ—କ୍ଳୀ.ବି.(ତ୍ରି +ଅୟ) ତ୍ରିତୟ, ତିନି, ତ୍ରିତ୍ୱ ସଂଖ୍ୟାଯୁକ୍ତ, ପ୍ରମାଣ, ପ୍ରତ୍ୟକ୍ଷ, ଅନୁମାନ, ତିନିସଂଖ୍ୟାର ସମାହାର, ତିନିଜଣ ବ୍ୟକ୍ତି, ତିନିସଂଖ୍ୟା, ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଏହି ତିନିଭୁବନ, ବ୍ରହ୍ମା, ବିଷ୍ଣୁ ମହେଶ୍ୱର ଏହି ତିନିମୂର୍ତ୍ତି, ଋକ୍, ସାମ, ଯଜୁଃ ଏହି ତିନିବେଦ, ଗୃହିଣୀ, ଦୁର୍ଗା, (ବିଂ) ତ୍ରିଗୁଣଯୁକ୍ତ, ତ୍ରିଗୁଣିତ, ତ୍ରିସଂଖ୍ୟକ, ତୃତୀୟ, ତ୍ରିତ୍ୱ ସଂଖ୍ୟାଯୁକ୍ତ, ପ୍ରମାଣ ପ୍ରତ୍ୟକ୍ଷ ଅନୁମାନ ଓ ଆଗମ ଏହି ତିନିଯୁକ୍ତ ।
ତ୍ରୟଃପଞ୍ଚାଶତ୍—ବି ଓ ବିଂ. ୫୦ରୁ ତିନି ଅଧିକ, ୫୩ ସଂଖ୍ୟା,ତେପନସଂଖ୍ୟକ ।
ତ୍ରୟମ୍ବକ—ଗ୍ରା.ବି. ତ୍ର୍ୟମ୍ବକ, ଶିବ, ମହାଦେବ ।
ତ୍ରୟଯାଯ୍ୟ—ପୁଂ.ବି. ଜନ୍ମତ୍ରୟପ୍ରାପ୍ତ ।
ତ୍ରୟଶ୍ଚତ୍ୱାରିଂଶତ୍—ସ୍ତ୍ରୀ.ବି. ତିନି ଅଧିକ ଚତ୍ୱାରିଂଶତ୍ ସଂଖ୍ୟା, ୪୩ ସଂଖ୍ୟା,(ବିଂ) ୪୩ ସଂଖ୍ୟକ ।
ତ୍ରୟଷଷ୍ଟି—ସ୍ତ୍ରୀ. ବି.( କ.ଧା ) ତିନି ଅଧିକ ଷଷ୍ଟିସଂଖ୍ୟା, ୬୩ ସଂଖ୍ୟା, ( ବିଂ ) ୬୩ ସଂଖ୍ୟକ ।
ତ୍ରୟଃଷଷ୍ଟିତମ—ବିଂ.( ତ୍ରୟଷଷ୍ଟି+ତମ )
୬୩ସଂଖ୍ୟାର ପୂରଣ ।
ତ୍ରୟସ୍ତ୍ରିଂଶ—ତ୍ରି.ବିଂ.ତିନି ଅଧିକ ତ୍ରିଂଶତ୍ ସଂଖ୍ୟାର ପୂରଣ ।
ତ୍ରୟସ୍ତ୍ରିଂଶତ୍—ବି. ତିନି ଅଧିକ ତ୍ରିଂଶତ୍ ସଂଖ୍ୟା, ୩୩ସଂଖ୍ୟା । [ ପତି ।
ତ୍ରୟସ୍ତ୍ରିଂଶତ୍ପତି—ପୁଂ.ବି. ଇନ୍ଦ୍ର, ପ୍ରଜା-
ତ୍ରୟସ୍ତ୍ରିଂଶସ୍ତୋମ—ପୁଂ.ବି. ଯଜ୍ଞଭେଦ ।
ତ୍ରୟସ୍ତ୍ରିଂଶିନ୍—କ୍ଳୀ. ବି. ତ୍ରୟସ୍ତ୍ରିଂଶତ୍, ଋକ୍‌ଦ୍ୱାରା ଗୀୟମାନ ସାମଭେଦ ।
ତ୍ରୟସପ୍ତତି—ସ୍ତ୍ରୀ.ବି.ତିନି ଅଧିକ ସପ୍ତତି, ୭୩ ସଂଖ୍ୟା, ବିଂ) ୭୩ସଂଖ୍ୟକ ।

ତ୍ରୟଃସପ୍ତତିତମ—ବି°. ୭୩ ସଂଖ୍ୟାର ପୂରଣ ।

ତ୍ରୟୀ—ସ୍ତ୍ରୀ. ବ. ତିନସଂଖ୍ୟା, ଋକ୍, ଯଜୁ, ସାମ ଏହି ବେଦତ୍ରୟ,ବ୍ରହ୍ମା,ବିଷ୍ଣୁ,ମହେଶ୍ୱର ଏହି ତିନ,ପୁରନ୍ଧ୍ରୀ, ସୁମତି,ସୋମରାଜୀବୃକ୍ଷ, ଭବାନୀ, ଦୁର୍ଗା, ( ବି° ) ତ୍ରିତ୍ୱ ସଂଖ୍ୟାବିଶିଷ୍ଟା ।

ତ୍ରୟୀତନୁ—ପୁ°.ବ. ସୂର୍ଯ୍ୟ ।

ତ୍ରୟୀଧର୍ମ—ପୁ°.ବ.ବୈଦିକଧର୍ମ, ଜ୍ୟୋତିଷ୍ଟୋମାଦିଯଜ୍ଞ ପ୍ରଭୃତି ।

ତ୍ରୟୀମୟ—ପୁ°.ବ. ପରମେଶ୍ୱର, ସୂର୍ଯ୍ୟ, (ବି°) ତ୍ରୟୀଧର୍ମ ସୂଚକ ।

ତ୍ରୟୀମୁଖ—ପୁ°.ବ. ବ୍ରାହ୍ମଣ, ବିପ୍ର ।

ତ୍ରୟୋଦଶ—ତ୍ରି.ବି°.ତ୍ରୟୋଦଶସଂଖ୍ୟାର ପୂରଣ, ୧୩ ସ୍ଥାନୀୟ,୧୩ସଂଖ୍ୟକ,(ବ.) ୧୩ସଂଖ୍ୟା ।

ତ୍ରୟୋଦଶନ୍—ବ ଓ ବି°. ତିନଅଧିକ ଦଶ ସଂଖ୍ୟା, ୧୩ସଂଖ୍ୟା, ତ୍ରୟୋଦଶ ସଂଖ୍ୟାଯୁକ୍ତ, ୧୩ସଂଖ୍ୟକ ।

ତ୍ରୟୋଦଶାଙ୍ଗ ଗୁଗ୍ଗୁଲ—ପୁ°.ବ. ଗୁଗ୍ଗୁଲ ଔଷଧଭେଦ ।

ତ୍ରୟୋଦଶୀ—ସ୍ତ୍ରୀ.ବ.(ତ୍ରୟୋଦଶ+ ଈ) ଚନ୍ଦ୍ରର ତ୍ରୟୋଦଶ କଳାର ହ୍ରାସ ବା ବୃଦ୍ଧିଜନିତ ତିଥି ।

ତ୍ରୟୋନବତି—ସ୍ତ୍ରୀ.ବ.ତିନଅଧିକ ନବତିସଂଖ୍ୟା,୯୩ସଂଖ୍ୟା,(ବି°)୯୩ସଂଖ୍ୟକ ।

ତ୍ରୟୋବିଂଶ—ବି°.(ତ୍ରୟୋବିଂଶତି+ଅ) ୨୩ସଂଖ୍ୟାର ପୂରଣ ।

ତ୍ରୟୋବିଂଶତି—ବ. ୨୦ରୁ ତିନଅଧିକ ସଂଖ୍ୟା, ୨୩ସଂଖ୍ୟା,(ବି°) ୨୩ସଂଖ୍ୟକ ।

ତ୍ରୟୋବିଂଶତିତମ—ବି°. ୨୩ସଂଖ୍ୟାର ପୂରଣ ।

ତ୍ରୟ୍ୟାରୁଣ—ମାନ୍ଧାତାବଂଶୀୟ ତ୍ରିଧର୍ମଙ୍କ ପୁତ୍ର ନୃପଭେଦ,ପଞ୍ଚଦଶ ଦ୍ୱାପରଯୁଗର ବ୍ୟାସ, ଭରତବଂଶୀୟ ଉରୁକ୍ଷୟଙ୍କ ପୁତ୍ର ଜଣେ ରାଜା ।

ତ୍ରୟ୍ୟାରୁଣି—ପୁ°. ବ. ଜଣେ ମୁନି, ଲୋମହର୍ଷଣଙ୍କ ଶିଷ୍ୟ ।

ତ୍ରସ—ବି°.( ତ୍ରସ+କ.ଅ) ଗମନଶୀଳ, ଜଙ୍ଗମ, ବ.(ଅଧି+ଅବନ, ଜଙ୍ଗଲ ।

ତ୍ରସଦସ୍ୟୁ—ପୁ°.ବ. ପୁରୁକୁତ୍ସଙ୍କର ପୁତ୍ର ଓ ମାନ୍ଧାତାଙ୍କର ଏକ ପୌତ୍ର ।

ତ୍ରସନ—କ୍ଲୀ.ବ. (ତ୍ରସ + ଭ୍ବ.ଅନ) ତ୍ରାସ, ଆଶଙ୍କା, ଭୟ, ଉଦ୍‌ବେଗ,(ବି°.) ତ୍ରାସଯୁକ୍ତ, ଆଶଙ୍କିତ ।

ତ୍ରସର—ପୁ°.ବ.( ତ୍ରସ+ଅର ) ତନ୍ତୁବାୟର ଉପକରଣବିଶେଷ, କଣ୍ଡା ।

ତ୍ରସରେଣୁ—ପୁ°. ବ. ୩୦ଗୋଟି ପରମାଣୁର ସମଷ୍ଟି, ସୂକ୍ଷ୍ମକଣା, ( ସ୍ତ୍ରୀ ବ. ) ସୂର୍ଯ୍ୟ ପତ୍ନୀଭେଦ ।

ତ୍ରସୁର—ତ୍ରି.ବି°. ଭୀରୁ, ଡରୁଆ, ( ବ ) ପେଚକ, ବଲୁଆ, ଭାଲୁ ।

ତ୍ରସ୍ତ—ପୁ°. ବ. ( ତ୍ରସ+କ.ତ ) ଭୀତ, ଚକିତ, ଶୀଘ୍ର, ତ୍ରାସଯୁକ୍ତ, ଭୟକମ୍ପିତ, ପୀଡ଼ିତ, (ସ୍ତ୍ରୀ) ତ୍ରସ୍ତା ।

ତ୍ରସ୍ନୁ—ତ୍ରି.ବି°.(ତ୍ରସ + କ.ନୁ)ତ୍ରାସଶୀଳ ଭୟଚକିତ, କାପୁରୁଷ, ଅତରବୁଆ ।

ତ୍ରାଟକ—ବ. ଯୋଗର ଷଟ୍ କର୍ମରୁ ଷଷ୍ଠ କର୍ମ ବା ସାଧନ ।

ତ୍ରାଣ—କ୍ଲୀ.ବ.( ତ୍ରୈ+ଭ୍ବ.ଅନ )ରକ୍ଷଣ, ମୁକ୍ତି, ବିପଦରୁ ଉଦ୍ଧାର,(ବି°-କ.ଅନ) ରକ୍ଷାକର୍ତ୍ତା,(ମ.ତ) ରକ୍ଷିତ,(ବ)କବଚ, ଅସ୍ତ୍ର । [ ଦେଖ ।

ତ୍ରାଣକ—ପୁ°.ବ.(ତ୍ରୈ + କ.ଅକ) ତ୍ରାତା

ତ୍ରାଣକର୍ତ୍ତା—ପୁ°.ବି°.(୬ତତ୍ର)ରକ୍ଷାକର୍ତ୍ତା ରକ୍ଷକ, ଉଦ୍ଧାରକାରୀ, ପରିତ୍ରାତା,(ସ୍ତ୍ରୀ) ତ୍ରାଣକର୍ତ୍ତ୍ରୀ ।

ତ୍ରାଣା—ସ୍ତ୍ରୀ.ବ. ତ୍ରାୟମାଣା ଲତା ।

ତ୍ରାତ—ତ୍ରି.ବି°.(ତ୍ରୈ+ମ.ତ) ବିପଦରୁ ଉଦ୍ଧାର ହୋଇଥିବା, ରକ୍ଷିତ, (କ୍ଲୀ) ରକ୍ଷଣ ।

ତ୍ରାତବ୍ୟ—ତ୍ରି.ବି°.(ତ୍ରୈ+ତବ୍ୟ)ତ୍ରାଣର ଯୋଗ୍ୟ ।

ତ୍ରାତା—ପୁ°.ବ.(ତ୍ରୈ+ତୃ) ତ୍ରାତା,ରକ୍ଷାକର୍ତ୍ତା, ରକ୍ଷକ, (ସ୍ତ୍ରୀ) ତ୍ରାତ୍ରୀ ।

ତ୍ରାପୁଷ—ତ୍ରି. ବି°. ( ତ୍ରପୁସ୍+ଅ ) ଟିଣ ଧାତୁରେ ନିର୍ମିତ,ରଙ୍ଗନିର୍ମିତ(ପାତ୍ରାଦି) ।

ତ୍ରାମା—ତ୍ରି.ବି°.(ତ୍ରୈ+ମନ୍) ରକ୍ଷକ ।

ତ୍ରାୟନ୍ତିକା—ସ୍ତ୍ରୀ. ବ. ତ୍ରାୟମାଣା ଲତା, ଭଦଭଦଳିଆ ଲତା ।

ତ୍ରାୟନ୍ତୀ—ସ୍ତ୍ରୀ. ବ. ତ୍ରାୟମାଣା ଲତା, ଭଦଭଦଳିଆ ଲତା ।

ତ୍ରାୟମାଣ—ପୁ°.ବ. ( ତ୍ରୈ+ମ.ଆନ ) ରକ୍ଷ୍ୟମାଣ,(କ.ଆନ)ଯେ ଉଦ୍ଧାର ପାଉଅଛି, ତ୍ରାଣକାରୀ, (ସ୍ତ୍ରୀ) ତ୍ରାୟମାଣା, ବ. ତ୍ରାୟମାଣା ଦେଖ ।

ତ୍ରାୟମାଣା—ସ୍ତ୍ରୀ. ବ. ପାର୍ବତୀୟ ଔଷଧଲତାବିଶେଷ, ଭଦଭଦଳିଆ ଲତା ।

ତ୍ରାୟମାଣା ଘୃତ—କ୍ଲୀ. ବ. ଘୃତୌଷଧଭେଦ ।

ତ୍ରାୟମାଣିକା—ସ୍ତ୍ରୀ.ବ. ତ୍ରାୟମାଣା ଲତା, ଭଦଭଦଳିଆ ଲତା ।

ତ୍ରାୟବୃନ୍ତ—ପୁ°. ବ. ଅନୁପଦେଶଜାତ ଗଣ୍ଡୀରନାମକ ଶାକବିଶେଷ ।

ତ୍ରାୟୋଦଶ—ତ୍ରି.ବି°.(ତ୍ରୟୋଦଶୀ+ଅ) ତ୍ରୟୋଦଶୀଭବ, ତ୍ରୟୋଦଶୀରେ ଯାହା ଘଟେ ବା ହୁଏ ।

ତ୍ରାସ—ପୁ°. ବ. ( ତ୍ରସ+ଭ୍ବ.ଅ ) ଭୟ, ମଣିର ଦୋଷଭେଦ, ଭୀତି, ଶଙ୍କା, ବିରକ୍ତି, (ଗ୍ରା.ବ) ତାପ, ଖରା ବା ନିଆଁର ଝାସ, ନିକଟ,ଆଡ଼େଣି,ଆଖର ମଣ୍ଡଳ ।

ତ୍ରାସକ—ପୁ°. ବି°. ( ତ୍ରସ+ଣିଚ୍+କ. ଅକ ) ଭୀତିକାରକ, ନିବାରକ, (ସ୍ତ୍ରୀ) ତ୍ରାସିକା ।

ତ୍ରାସକର—ତ୍ରି.ବି°.(ତ୍ରାସ+କୃ+କ.ଅ) ଭୟଜନକ ।

ତ୍ରାସଜନକ—ବି°.( ୬ତତ୍ର ) ଭୟାନକ, ଭୟଙ୍କର,ଭୀଷଣ ।

ତ୍ରାସଦାୟୀ—ପୁ°.ବି°. ଭୟଦାତା ।

ତ୍ରାସନ—କ୍ଲୀ. ବ. ( ତ୍ରାସି+ଭ୍ବ.ଅନ ) ଭୟୋତ୍ପାଦନ, ଡରାଇବା, ( ବି°-କ. ଅନ) ଭୟୋତ୍ପାଦକ, ତ୍ରାସକ ଦେଖ ।

ତ୍ରାସନୀୟ—ତ୍ରି.ବି°.(ତ୍ରସ୍+ଣିଚ୍+ଅନୀୟ) ତ୍ରାସନର ଯୋଗ୍ୟ, ତାଡ଼ନୀୟ ।

ତ୍ରାସବିକାଶ—ବ. ( ୬ତତ୍ର ) ମନରେ ଭୟର ଉଦ୍‌ବେଗ ବା ସଞ୍ଚାର ।

ତ୍ରାସିତ—ତ୍ରି.ବି°. (ତ୍ରସ+ଣିଚ୍+ମ.ତ)

ଭୀତ, ବିଭୀଷିତ, ଯାହାକୁ ଭୟ ଦେଖା-ଯାଇଅଛି ।

ତ୍ରାସିବା—ଗ୍ରା. (ପଦ୍ୟ) କ୍ରି. ଭୟକରିବା, ଡରିବା, ଭୟ ଦେଖାଇବା ।

ତ୍ରାସୀ—ପୁଂ. ବି°. (ତ୍ରସ+ଣିଚ୍+ଇନ୍) ଭୟଶୀଳ, ଭୟଯୁକ୍ତ, ଭୀତ ।

ତ୍ରାହି—ଗ୍ରା. ଅବ୍ୟ. ରକ୍ଷାକର, ବଞ୍ଚାଅ ।

ତ୍ରାହିକଜ୍ୱର—ଗ୍ରା. ବି. ୩ଦିନ ଅନ୍ତରେ ଥରେ ହେବା ଜ୍ୱର ।

ତ୍ରାହିକରିବା—ଗ୍ରା. କ୍ରି. ଉଦ୍ଧାର କରିବା, ରକ୍ଷା କରିବା ।

ତ୍ରାହିତ୍ରାହି—ଗ୍ରା.ଅବ୍ୟ.ରକ୍ଷାକର,ଉଦ୍ଧାର-କର ।

ତ୍ରି—ତ୍ରି. ବି°. ତ୍ରିତ୍ୱସଂଖ୍ୟାବିଶିଷ୍ଟ, ତିନି, ତିନି ବାଚକ ଶବ୍ଦ କାଳ ପ୍ରଭୃତି ।

ତ୍ରିଂଶ—ତ୍ରି. ବି°. ( ତ୍ରିଂଶତ୍+ଅ ) ୩୦ ସଂଖ୍ୟାର ପୂରକ, ୩୦ ସଂଖ୍ୟା ସଙ୍ଗେ ଯୁକ୍ତ, ୩୦ ସଂଖ୍ୟକ ।

ତ୍ରିଂଶକ—ତ୍ରି. ବି°. ତ୍ରିଂଶତ୍ ସଂଖ୍ୟାନ୍ୱିତ ଦ୍ରବ୍ୟ ଦ୍ୱାରା କ୍ରୀତ ।

ତ୍ରିଂଶଚ୍ଛତ—କ୍ଲୀ.ବି. ତ୍ରିଂଶତ୍ ଅଧିକ ଶତ-ସଂଖ୍ୟା, ୧୩୦ ସଂଖ୍ୟା ।

ତ୍ରିଂଶତ୍—ବି. ସଂଖ୍ୟାବିଶେଷ,୩୦ସଂଖ୍ୟା, (ବି°) ୩୦ ସଂଖ୍ୟକ ।

ତ୍ରିଂଶତ୍କ—ବି°. (ତ୍ରିଂଶତ୍+କ) ତ୍ରିଂଶତ୍ ପରିମାଣ, ୩୦ ସଂଖ୍ୟକ ।

ତ୍ରିଂଶତି—ବି.ତ୍ରିଂଶତ୍ ସଂଖ୍ୟା,୩୦ସଂଖ୍ୟା, (ବି°) ୩୦ ସଂଖ୍ୟକ ।

ତ୍ରିଂଶତ୍ତମ—ତ୍ରି. ବି°. ତ୍ରିଂଶତ୍ ସଂଖ୍ୟାର ପୂରଣ ।

ତ୍ରିଂଶତ୍ପତ୍ର—କ୍ଲୀ.ବି. କୁମୁଦ,ଧଳାକଇଁ ।

ତ୍ରିଂଶାଂଶ—ପୁଂ. ବି. ରାଶିର ୩୦ ଭାଗରୁ ଏକଭାଗ, କୌଣସି ପଦାର୍ଥର ୩୦ଭାଗରୁ ଏକଭାଗ ।

ତ୍ରିକ—କ୍ଲୀ. ବି. ତ୍ରିତ୍ୱସଂଖ୍ୟା, ମେରୁଦଣ୍ଡର ନିମ୍ନଭାଗ, ପୃଷ୍ଠବଂଶାଧର,, କଟିଭାଗ, ତ୍ରିଫଳା, ତ୍ରିକଟୁ, ତ୍ରିମଦ, ଗୋକ୍ଷୁର, ତ୍ରିପଦ, ତ୍ରିଗୁଣଯୁକ୍ତ, ଯେକର ତିନିଟଙ୍କା ଯୁଡ଼, ସନ୍ଧିଭେଦ ।

ତ୍ରିକକୁଦ୍—ପୁଂ. ବି. ତ୍ରିକୂଟ ପର୍ବତ, ବିଷ୍ଣୁ, ଦଶରାତ୍ର ସାଧ୍ୟ ଯଜ୍ଞଭେଦ,(ବି°, ବ.ବ୍ରୀ) ତିନିକକୁଦ୍ ବିଶିଷ୍ଟ ।

ତ୍ରିକକୁଭ୍—ପୁଂ. ବି. ଉଦାନବାୟୁ,ନବ-ରାତ୍ର ସାଧ୍ୟ ଯଜ୍ଞଭେଦ ।

ତ୍ରିକକୁବ୍ଧାମ—ପୁଂ. ବି. ବିଷ୍ଣୁ ।

ତ୍ରିକଚ୍ଛ—ବି°. ତିନିକାନି ଖୋସି ଲୁଗା ପିନ୍ଧିଥିବା ।

ତ୍ରିକଟ—ପୁଂ. ବି. ଗୋକ୍ଷୁର ବୃକ୍ଷ ।

ତ୍ରିକଟୁ—କ୍ଲୀ. ବି. (ଦ୍ୱିଗୁ) ଶୁଣ୍ଠି, ମରିଚ, ପିପ୍ପଳୀ,ଏକତ୍ର ତିନି ଦ୍ରବ୍ୟର ସମାହାର

ତ୍ରିକଟୁକ—କ୍ଲୀ. ବି. ତ୍ରିକଟୁ,ଶୁଣ୍ଠି ମରିଚ, ପିପ୍ପଳୀ,ଏକତ୍ର ତିନି ଦ୍ରବ୍ୟର ସମାହାର ।

ତ୍ରିକଟୁକାଦ୍ୟମୋଦକ—ବି. ମୋଦକ-ଔଷଧବିଶେଷ । [ଭେଦ ।

ତ୍ରିକଟୁଗୁଟିକା—ସ୍ତ୍ରୀ. ବି. ଗୁଟିକା ଔଷଧ

ତ୍ରିକଣ୍ଟ—ପୁଂ. ବି. (ବ.ବ୍ରୀ) କଣ୍ଟା ସିଜୁ, ଗୋଖୁର, ହୁଣ୍ଟା ବୃକ୍ଷ, କଣ୍ଟିଆ ମାଛ, ପତ୍ରଗୁପ୍ତ, ( କ୍ଲୀ. ବି ) ମିଳିତ ବୃହତୀ, ଅଗ୍ନିଦମନୀ ଓ ଦୁରାଳଭା, ଅଙ୍କତନ୍ତ୍ର ।

ତ୍ରିକଣ୍ଟକ—ପୁଂ.ସ୍ତ୍ରୀ. ବି. ଲଘୁ ଗର୍ଗମତ୍ସ୍ୟ କଣ୍ଟିଆ ମାଛ, ଗୋକ୍ଷୁର ବୃକ୍ଷ, ( ବି° ) କଣ୍ଟକତ୍ରୟାନ୍ୱିତ ।

ତ୍ରିକଣ୍ଟକକ୍ୱାଥ—ପୁଂ. ବି. କ୍ୱାଥ ଔଷଧ-ବିଶେଷ ।

ତ୍ରିକତ୍ରୟ—ବି°. ତ୍ରିଫଳା, ତ୍ରିକଟୁ ଓ ତ୍ରିମୋଦର ସମାହାର ।

ତ୍ରିକତ୍ରୟାଦ୍ୟଲୌହ—ପୁଂ. ବି. ଔଷଧ-ବିଶେଷ ।

ତ୍ରିକନା—ଗ୍ରା. ବି. ତିନିମୁନିଆ ଅସ୍ତ୍ର,(ବି°) ତିନିଶାଖା ବିଶିଷ୍ଟ ।

ତ୍ରିକର୍ମା—ପୁଂ. ବି°. (ବ.ବ୍ରୀ) ଦାନ ଯଜ୍ଞ ଓ ଅଧ୍ୟୟନରତ (ବ୍ରାହ୍ମଣ), ତ୍ରିକର୍ମର ଅନୁଷ୍ଠାନକାରୀ ।

ତ୍ରିକଳିଙ୍ଗ—ବି. ତିନିଗୋଟି ଅଂଶଯୁକ୍ତ କଳିଙ୍ଗ ରାଜ୍ୟ ।

ତ୍ରିକଶ—କ୍ଲୀ. ବି. କଶାଘାତତ୍ରୟ,ତିନି-ବାର କଶାଘାତ କରଣ ।

ତ୍ରିକଶୂଳ—କ୍ଲୀ. ବି. ରୋଗବିଶେଷ, ତ୍ରିକରଣ ଶୂଳ ଅର୍ଥାତ୍ ବେଦନାବିଶେଷ ।

ତ୍ରିକା—ସ୍ତ୍ରୀ.ବି.(ତ୍ରିକ+ଆ)କୂପସମୀପସ୍ଥ ଜଳୋଦ୍ଧାରକ ତ୍ରିଦାରୁମୟ ଯନ୍ତ୍ର-ଭେଦ, ଟିଙ୍କାଠିଆ, କାନ୍ଥରେ ମରାଯିବା ତିନିଖଣ୍ଡି କାଠଯୁକ୍ତ ସ୍ଥାନ,କୂଅର ଫାନ୍ଦ ଉପରେ ପକାଯିବା ତିନିକୋଣିଆ କାଠ, କୂପନେମି ।

ତ୍ରିକାଣ୍ଡ—ପୁଂ. ବି. ଅମରସିଂହ କୃତ କୋଷଭେଦ, ନିରୁକ୍ତ ।

ତ୍ରିକାଣ୍ଡକୋଷ—ବି. ଗୋଟିଏ ସଂସ୍କୃତ ଅଭିଧାନର ନାମ ।

ତ୍ରିକାଣ୍ଡୀ—ସ୍ତ୍ରୀ. ବି. କାଣ୍ଡତ୍ରୟ, କ୍ଷେତ୍ର-ଭକ୍ତି, ତିନିଗୁଣିଆ ଦଉଡ଼ି ଆଦି ।

ତ୍ରିକାୟ—ପୁଂ. ବି. (ତ୍ରିକ+ଅୟ+ଅ) ବୁଦ୍ଧ ।

ତ୍ରିକାର୍ଷିକ—କ୍ଲୀ. ବି. ନାଗର, ଅତିବିଷା ଓ ମୁସ୍ତାରୂପ ମିଳିତ ଔଷଧଭେଦ, ତ୍ରିକର୍ଷ ପରିମାଣ, ୬ ତୋଲା ।

ତ୍ରିକାଳ—କ୍ଲୀ. ବି. ଭୂତ, ଭବିଷ୍ୟତ ଓ ବର୍ତ୍ତମାନ କାଳତ୍ରୟ,ଦିନର ତିନିବେଳ, ପ୍ରାତଃ, ମଧ୍ୟାହ୍ନ, ସାୟାହ୍ନ ।

ତ୍ରିକାଳଜ୍ଞ—ପୁଂ. ବି. (ତ୍ରିକାଳ+ଜ୍ଞା +ଅ) ବୁଦ୍ଧ, ଶିବ, (ବି°) ତିନିକାଳର ବୃତ୍ତାନ୍ତ ଯେ ଜାଣେ ।

ତ୍ରିକାଳଦର୍ଶିତା—ବି. ତ୍ରିକାଳଜ୍ଞର ଭାବ ।

ତ୍ରିକାଳଦର୍ଶୀ—ପୁଂ. ବି. ଋଷି,ବୁଦ୍ଧ,ଶିବ, (ବି°) ତ୍ରିକାଳଜ୍ଞ ଦେଖ ।

ତ୍ରିକୂଟ—ଗ୍ରା.ବି.ଯୋଗ ବା ତନ୍ତ୍ରଶାସ୍ତ୍ରୋକ୍ତ ଶରୀରମଧ୍ୟସ୍ଥ ବ୍ରହ୍ମରନ୍ଧ୍ର, ଦୁଇ ଭ୍ରୂମଧ୍ୟସ୍ଥ ସ୍ଥାନ, ମହା ବିଷମସମସ୍ୟା । [କୁଳ ।

ତ୍ରିକୁଳ—ଗ୍ରା. ବି. ପିତୃ, ମାତୃ ଓ ଶ୍ୱଶୁର

ତ୍ରିକୂଟ—ବି°. (ବ.ବ୍ରୀ) ତିନିଶୃଙ୍ଗ ବିଶିଷ୍ଟ, ବି. ( ପୁରାଣମତେ ) ଲବଣ ସମୁଦ୍ର ମଧ୍ୟରେ ଅବସ୍ଥିତ ତିନିଗୋଟି ଶିଖର ବିଶିଷ୍ଟ ପର୍ବତ (ଯାହା ଉପରେ ଲଙ୍କା ଅବସ୍ଥିତ),କ୍ଷୀରସମୁଦ୍ରସ୍ଥ ପର୍ବତ,ଯହିଁରେ ସୁନା ରୂପା ଓ ଲୁହାର ତିନିଗୋଟି ଶୃଙ୍ଗ ଅଛି ଓ ଯହିଁରେ ବୈକୁଣ୍ଠ ଅବସ୍ଥିତ, ସାମୁଦ୍ରିକ ଲବଣ, ଯୋଗଶାସ୍ତ୍ରୋକ୍ତ

ଶସ୍ତ୍ରାଭ୍ୟନ୍ତରସ୍ଥ ସ୍ଥାନ, ତ୍ରିକୂଟ, (ପ୍ରା. ଗଞ୍ଜା. ବ) ତିନଗୋଟି ଗ୍ରାମର କେନ୍ଦ୍ର ସ୍ଥଳ ।

ତ୍ରିକୂଟବାନ୍—ପୁଂ. ବ. ତ୍ରିକୂଟ ପର୍ବତ ।

ତ୍ରିକୂଟା—ସ୍ତ୍ରୀ. ବ. ଭୈରବୀଭେଦ ।

ତ୍ରିକୂର୍ଚ୍ଚକ—କ୍ଲୀ. ବ. ସୁଶ୍ରୁତୋକ୍ତ ଶସ୍ତ୍ରଭେଦ ।

ତ୍ରିକୋଣ—କ୍ଲୀ. ବ. ( ବ.ଗ୍ରା ) ଯୋନି, କାମରୂପର ପୀଠବିଶେଷ,ଲଗ୍ନର ନବମ ଓ ପଞ୍ଚମ ସ୍ଥାନ, ତ୍ରିଭୁଜ କ୍ଷେତ୍ରଭେଦ, ମୋକ୍ଷ, (ବିଂ) ତ୍ରିକୋଣବିଶିଷ୍ଟ, ତିନକୋଣିଆ, ତ୍ରିଭୁଜାକୃତ ।

ତ୍ରିକୋଣଫଳ—କ୍ଲୀ. ବ. ଶିଙ୍ଗଡ଼ା,ଶୃଙ୍ଗାଟକ, ତ୍ରିଭୁଜକ୍ଷେତ୍ରଫଳ ।

ତ୍ରିକୋଣଭବନ—କ୍ଲୀ.ବ. ତ୍ରିକୋଣସ୍ଥାନ, ଲଗ୍ନର ନବମ ଓ ପଞ୍ଚମ ସ୍ଥାନ ।

ତ୍ରିକୋଣଭୂମି--ନଈର ମୁହାଣରେ କାଳକ୍ରମେ ପଙ୍କ ଜମାହୋଇ ସୃଷ୍ଟ ହୋଇଥିବା ତିନିକୋଣିଆ ଭୂମି, ଡେଲ୍ଟା ।

ତ୍ରିକୋଣମଣ୍ଡଳଭୂମି—ବ. ଦ୍ୱୀପ,ଡେଲ୍ଟା ।

ତ୍ରିକୋଣମିତି—ବ. ରେଖା ଓ କୋଣ ସମ୍ବନ୍ଧୀୟ ଗଣିତ ଶାସ୍ତ୍ରବିଶେଷ ।

ତ୍ରିକୋଣାକାର—ବି. (କ.ଧା) ତିନକୋଣିଆ ଆକୃତି,ତ୍ରିଭୁଜପର ଆକାର, (ବିଂ. ବ.ଗ୍ରା) ତିନକୋଣିଆ, ତ୍ରିଭୁଜପରି ଆକାରଯୁକ୍ତ ।

ତ୍ରିକ୍ଷାର—କ୍ଲୀ. ବ. ଯବକ୍ଷାର, ସାଜିଖାର ଓ ଟାଙ୍କଣା ଏହି ତିନି ଖାରର ସମାହାର ।

ତ୍ରିକ୍ଷୁର—ପୁଂ. ବ. (ବ.ଗ୍ରା) କୋକିଳାକ୍ଷ ବୃକ୍ଷ, କୋଇଲେଖା ।

ତ୍ରିଖ—କ୍ଲୀ.ବ. ତ୍ରପୁଷ, ସୀସା,କାକୁଡ଼, ଟିଣ(ଧାତୁ) ।

ତ୍ରିଖଟ୍ୱ—କ୍ଲୀ. ବ. ଖଟ୍ୱାତ୍ରୟ ।

ତ୍ରିଖର୍ବ—ପୁଂ. ବ. ସାମବେଦର ଶାଖା ବିଶେଷାଧ୍ୟାୟୀ ।

ତ୍ରିଗଙ୍ଗ—ଅବ୍ୟ. ତୀର୍ଥଭେଦ.ତିନଗୋଟି ନଦୀର ସଙ୍ଗମସ୍ଥଳ,ତ୍ରିବେଣୀ,ପ୍ରୟାଗ ।

ତ୍ରିଗଣ—ପୁଂ. ବ. ତ୍ରିବର୍ଗ, ଧର୍ମ, ଅର୍ଥ ଓ କାମ ଏହି ତିନ ବର୍ଗ ।

ତ୍ରିଗନ୍ଧକ—କ୍ଲୀ. ବ. ତ୍ରିଜାତକ ।

ତ୍ରିଗମ୍ଭୀର—ପୁଂ. ବ. ଯାହାର ସତ୍ତ୍ୱ ସ୍ୱର ଓ ନାଭି ଗମ୍ଭୀର ତାହାକୁ ତ୍ରିଗମ୍ଭୀର କହନ୍ତି ।

ତ୍ରିଗର୍ତ୍ତ—ପୁଂ. ବ. (ତ୍ରି + ଗର୍ତ୍ତ) ତନ୍ନାମକ ଦେଶ, ପଞ୍ଜାବ ପ୍ରଦେଶାନ୍ତର୍ଗତ କାଙ୍ଗ୍ରା, ଜଳନ୍ଧର, ଗଣିତ ଶାସ୍ତ୍ରବିଶେଷ,ତ୍ରିଗର୍ତ୍ତ ଦେଶବାସୀ ଲୋକ ।

ତ୍ରିଗର୍ତ୍ତିକ—ପୁଂ. ବ. ତ୍ରିଗର୍ତ୍ତ ଦେଖ ।

ତ୍ରିଗର୍ତ୍ତଷଷ୍ଠ—ପୁଂ. ବ. ଆୟୁଧଜୀବି ସଙ୍ଘଭେଦ ।

ତ୍ରିଗର୍ତ୍ତା—ସ୍ତ୍ରୀ. ବ. (ତ୍ରିଗର୍ତ୍ତ+ଆ) କାମୁକା ସ୍ତ୍ରୀ,ଦୁର୍ଦ୍ଦୁରିକା କୀଟ,ଗୁଣ୍ଡୁରି ପୋକ,ନଚ୍ଚୁ ।

ତ୍ରିଗର୍ତ୍ତୀକ—ପୁଂ. ବ. ତ୍ରିଗର୍ତ୍ତ ଦେଖ ।

ତ୍ରିଗୁଣ—ବି. ଗୁଣତ୍ରୟ, ସତ୍ତ୍ୱ, ରଜଃ ଓ ତମ ଏହି ତିନଗୁଣ, ସୁଖ, ଦୁଃଖ ଓ ମୋହ, ତିନୋଟି ତାର ବା ଖିଅ,ତିନଗୁଣ, ତିନଥର, (ବିଂ) ତିନିଭଙ୍ଗୁଣିଆ, ତିନଖିଅ ଯୁକ୍ତ, ତିନଗୁଣିଆଁ,ତିନଥର ।

ତ୍ରିଗୁଣନେତ୍ର—ପୁଂ.ବିଂ. (ବ.ଗ୍ରା)ଯାହାର ଚକ୍ଷୁରେ ଶୁକ୍ଳ କୃଷ୍ଣ ଓ ରକ୍ତ ଏହି ତିନ ବର୍ଣ୍ଣର ଆଭାସ ଥାଏ ।

ତ୍ରିଗୁଣା—ସ୍ତ୍ରୀ. ବ. (ତ୍ରିଗୁଣ + ଆ)ଦୁର୍ଗା, ମାୟା, ସ୍ୱନାମଖ୍ୟାତ ଶାକଭେଦ ।

ତ୍ରିଗୁଣୀକୃତ—ବ.ତିନବାର ଚଷ ହୋଇଥିବାକ୍ଷେତ୍ର, ତଉଡ଼ହୋଇଥିବା ଜମି ।

ତ୍ରିଗୁଣାତ୍ମକ—କ୍ଲୀ. ବ. (ବ.ଗ୍ରା) ସତ୍ତ୍ୱ, ରଜଃ ଓ ତମ ଏହି ତ୍ରିଗୁଣ ବିଶିଷ୍ଟ, ତିନଗୁଣା, (ବ) ଅଜ୍ଞାନ ।

ତ୍ରିଗୁଣିତ—ବିଂ. ( ତ୍ରିଗୁଣ+ଇତ ) ତ୍ରିଗୁଣୀକୃତ, ତିନବାର ଗୁଣିତ,ତିନଦ୍ୱାରା ଗୁଣା ହୋଇଥିବା ।

ତ୍ରିଗୁଣୀ—ସ୍ତ୍ରୀ. ବ. ବେଲଗଛ, ଏହାର ପତ୍ର ତ୍ରିଗୁଣ ମୂଳ ।

ତ୍ରିଗୁଣୀକୃତ—ବ. (ତ୍ରିଗୁଣ+ଚ୍ୱୀ+କୃତ) ତିନଭଙ୍ଗୁଣିଆ, ତିନପଟ୍ଟେ ଭଙ୍ଗାଯାଇଥିବା ।

ତ୍ରିଗୁଲ—ବ. ବୋମ୍ବାଇ ପ୍ରଦେଶ ବାସୀ ଏକ ଜାତି ।

ତ୍ରିଗୂଢ଼—ବ. ସ୍ତ୍ରୀବେଶ ଧାରଣକରିଥିବା ପୁରୁଷର ନୃତ୍ୟ ।

ତ୍ରିଗ୍ରାମୀ—ସ୍ତ୍ରୀ. ବ. ତିନଗ୍ରାମର ମିଳନ, ଯେଉଁଠାରେ ତିନଗୋଟି ଗ୍ରାମ ମିଳିତ ହୋଇଅଛି ।

ତ୍ରିଘଣ୍ଟା—ବ. ନଗରବିଶେଷ,ଏହି ନଗର ହିମାଳୟ ଶୃଙ୍ଗ ଉପରେ ଅବସ୍ଥିତ, ଏଥିରେ ବିଦ୍ୟାଧରମାନେ ବାସକରନ୍ତି ।

ତ୍ରିଚକ୍ର—ପୁଂ. ବ. (ବ.ଗ୍ରା) ତିନିଚକିଆ ଗାଡ଼ି, ଅଶ୍ୱିନୀକୁମାର ଦ୍ୱୟଙ୍କ ରଥ ।

ତ୍ରିଚକ୍ଷୁଃ—ପୁଂ. ବିଂ. (ବ.ଗ୍ରା) ତ୍ରିନେତ୍ର, ତିନଆଖିଆ, (ବ) ମହାଦେବ ।

ତ୍ରିଚତୁର—ବି. ବିଂ. ତିନ ବା ଚାରି ।

ତ୍ରିଚତ୍ୱାରିଂଶ—ବି. ବିଂ. ତ୍ର୍ୟଧିକ ଚତ୍ୱାରିଂଶତ୍ ସଂଖ୍ୟାର ପୂରଣ,୪୩ ସଂଖ୍ୟାର ପୂରଣ ।

ତ୍ରିଚତ୍ୱାରିଂଶତ—ବ. ତିନ ଅଧିକ ଚତ୍ୱାରିଂଶତ, ୪୩ ସଂଖ୍ୟା,(ବିଂ)୪୩ସଂଖ୍ୟକ ।

ତ୍ରିଚତ୍ୱାରିଂଶତମ—ବିଂ. ୪୩ ସଂଖ୍ୟାର ପୂରଣ ।

ତ୍ରିଚିତ୍—ପୁଂ. ବ. (ତ୍ରି+ଚି+କ୍ୱିପ୍) ଅଗ୍ନିହୋତ୍ରୀ ଦ୍ୱୟ ଚୟନକାରୀ ।

ତ୍ରିଚିତ—ପୁଂ. ବ. ଗାର୍ହପତ୍ୟ ଅଗ୍ନିଭେଦ ।

ତ୍ରିଚିନାପଲ୍ଲୀ—ଗ୍ରା. ବ. କାବେରୀ ନଦୀ କୂଳରେ ଅବସ୍ଥିତ ଦାକ୍ଷିଣାତ୍ୟର ନଗର ବିଶେଷ ।

ତ୍ରିଜଗତ୍—କ୍ଲୀ. ବ. ସ୍ୱର୍ଗ, ମର୍ତ୍ତ୍ୟ,ପାତାଳରୂପ ଲୋକତ୍ରୟ, ତ୍ରିଭୁବନ, ତ୍ରିଲୋକ ।

ତ୍ରିଜଗତୀ—ସ୍ତ୍ରୀ. ବ. (ତ୍ରି + ଜଗତ + ଈ) ତ୍ରିଜଗତ୍ ଦେଖ ।

ତ୍ରିଜଟ—ପୁଂ. ବ. ମହାଦେବ, ଜଣେ ବ୍ରାହ୍ମଣର ନାମ, (ବିଂ. ବ.ଗ୍ରା) ଯାହା ମୁଣ୍ଡରେ ତିନୋଟି ଜଟ ଥାଏ ।

ତ୍ରିଜଟା—ପୁଂ. ବ. (ବ.ଗ୍ରା) ମହାଦେବ, ବେଲଗଛ; ( ସ୍ତ୍ରୀ ) ବନରେ କଙ୍କଣ ରାକ୍ଷସୀବିଶେଷ, ବିଭୀଷଣର କନ୍ୟା ।

ତ୍ରିଜାତ—କ୍ଲୀ. ବ. ଡାଲଚିନି,ତେଜପତ୍ର ଓ ଅଳେଇଚ ଏ ତିନି ସୁଗନ୍ଧଦ୍ରବ୍ୟ

ମିଶ୍ରଣରେ ପ୍ରସ୍ତୁତ ଔଷଧ ।
ତ୍ରିଜାତକ—କ୍ଲୀ. ବ. ତ୍ରିଜାତ ଦେଖ, (ଗ୍ରା.ବି°) ତିନପିତାର ଔରସ ଜାତ ।
ତ୍ରିଜାଙ୍ଗୀ—ଗ୍ରା. ବି°. ଚରଂଙ୍ଗୀ ।
ତ୍ରିଜ୍ୟା—ସ୍ତ୍ରୀ. ବ. ବ୍ୟାସାର୍ଦ୍ଧ ରେଖା ।
ତ୍ରିଣ—କ୍ଲୀ. ବ. ତୃଣ ।
ତ୍ରିଣତା—ସ୍ତ୍ରୀ. ବ. ( ବ.ସ୍ତ୍ରୀ ) ତୃଣତ୍ୱ, ତୃଣଧର୍ମ, ଧନୁ, ( ବି° ) ତିନସ୍ଥାନରେ ଜାତ ।
ତ୍ରିଣତ୍ୱ—କ୍ଲୀ. ବ. ତୃଣର ଭାବ, ତୃଣତ୍ୱ ।
ତ୍ରିଣୟନ—ପୁଂ. ବି°. (ତ୍ରି+ଣୟନ) ବ.ସ୍ତ୍ରୀ; ଶିବ, ମହାଦେବ ।
ତ୍ରିଣବ—ପୁଂ. ବ. ସପ୍ତବିଂଶାକୃତ୍ତ ସାମସ୍ତୋମ ଭେଦ ।
ତ୍ରିଣାକ—ବି. ତ୍ରିନାକ ଦେଖ ।
ତ୍ରିଣାଚକେତ—ପୁଂ. ବ. ଯଜୁର୍ବେଦର ଅଂଶବିଶେଷ, ଯାଜ୍ଞିକବିଶେଷ, ଯଜୁର୍ବେଦାଧ୍ୟାୟୀ, ନାଗ୍ରପୃଣ ।
ତ୍ରିତ—ବ. ଦେଶବିଶେଷ, ଋଷିବିଶେଷ, ବ୍ରହ୍ମାଙ୍କ ମାନସପୁତ୍ର, ମୁନିବିଶେଷ, ମହର୍ଷି ଗୌତମଙ୍କ ପୁତ୍ର,(ବି°) ଯାହାର କୀର୍ତ୍ତି ତିନଦିଗରେ ପ୍ରଖ୍ୟାତ ।
ତ୍ରିତକ୍ଷ—ସ୍ତ୍ରୀ.ବ.ତକ୍ଷତ୍ରୟ,ସୂତ୍ରଧର ତ୍ରୟ ।
ତ୍ରିତନ୍ତ୍ରୀ--ବ.ଖଣାବାଦ୍ୟବିଶେଷ,ସୀତାର ।
ତ୍ରିତୟ—କ୍ଲୀ. ବ. (ତ୍ରି+ତୟ) ୩ସଂଖ୍ୟା, ଧର୍ମ, ଅର୍ଥ ଓ କାମ ଏହି ତିନର ସମାହାର, (ବି°) ତ୍ରିସଂଖ୍ୟାନ୍ୱିତ ।
ତ୍ରିତଲ—ତ୍ରି.ବି°. (ବ.ସ୍ତ୍ରୀ)ତିନିତାଲଯୁକ୍ତ, ତିନିମହଲଯୁକ୍ତ, (ବ) ତୃତୀୟ ମହଲ ।
ତ୍ରିତାପ—କ୍ଲୀ. ବ. (ତ୍ରି+ତାପ) ଆଧ୍ୟାତ୍ମିକ, ଆଧିଭୌତିକ ଓ ଆଧିଦୈବିକ ଦୁଃଖତ୍ରୟ ।
ତ୍ରିଦଣ୍ଡ—ପୁଂ. ବ. ସନ୍ନ୍ୟାସାଶ୍ରମର ଚିହ୍ନ. (କ୍ଲୀ.ବ) ଦଣ୍ଡତ୍ରୟ, ବାଗ୍‌ଦଣ୍ଡ, ମନୋଦଣ୍ଡ,କାୟଦଣ୍ଡ ଏହି ତିନିପ୍ରକାର ଦଣ୍ଡ ।
ତ୍ରିଦଣ୍ଡକ—କ୍ଲୀ. ବ. ତ୍ରିଦଣ୍ଡ ଦେଖ ।
ତ୍ରିଦଣ୍ଡୀ—ପୁଂ. ବି°. (ତ୍ରିଦଣ୍ଡ+ଇନ୍) ତ୍ରିଦଣ୍ଡ ବିଶିଷ୍ଟ, ତ୍ରିସଷ୍ଟିବାଧକ,ତ୍ରିଦଣ୍ଡଧାରୀ, ( ବ ) ଯେଉଁ ବ୍ୟକ୍ତି ଆପଣାର କାୟ ମନୋବାକ୍ୟକୁ ସଂଯମ କରିଅଛି, ତ୍ରିଦଣ୍ଡଧାରୀ ପରିବ୍ରାଜକ, ସନ୍ନ୍ୟାସୀବିଶେଷ, ଯଜ୍ଞୋପବୀତ ।
ତ୍ରିଦଲ—ତ୍ରି. ବି°. ଯାହାର ତିନିଗୋଟି ପତ୍ରଥାଏ, ତ୍ରିପତ୍ର ବିଶିଷ୍ଟ,(ବ) ବେଲଗଛ ।
ତ୍ରିଦଲା—ସ୍ତ୍ରୀ. ବ. ( ତ୍ରିଦଲ+ଆ ) ଗୋଧାପଦୀ ଲତା, ହଂସପାଦୀ ଲତା ।
ତ୍ରିଦଲିକା—ସ୍ତ୍ରୀ. ବ. ଚର୍ମକଷା ଲତା, ଚମଡ଼ା କଷାଇବାର ଲତାବିଶେଷ ।
ତ୍ରିଦଶ—ପୁଂ. ବ. (ତ୍ରି+ଦଶ+କ.ଅ) ଦେବତା, ଅମର, (ବି°) ୩୦ ସଂଖ୍ୟା ବିଶିଷ୍ଟ ।
ତ୍ରିଦଶଗୁରୁ—ପୁଂ. ବ. (୬ତତ୍ତ୍ୱ) ଦେବଗୁରୁ, ବୃହସ୍ପତି ।
ତ୍ରିଦଶଗୋପ—ପୁଂ. ବ. ଇନ୍ଦ୍ରଗୋପ କୀଟ, ରକ୍ତବର୍ଣ୍ଣ କୀଟଭେଦ, ସାଧବପୋକ ।
ତ୍ରିଦଶତ୍ୱ—କ୍ଲୀ. ବ. ଦେବତ୍ୱ ।
ତ୍ରିଦଶଦୀର୍ଘିକା—ସ୍ତ୍ରୀ. ବ. ( ୬ତତ୍ତ୍ୱ ) ସ୍ୱର୍ଗଙ୍ଗା, ମନ୍ଦାକିନୀ ।
ତ୍ରିଦଶପତି—ପୁଂ. ବ. (୬ତତ୍ତ୍ୱ) ଇନ୍ଦ୍ର, ଦେବରାଜ ।
ତ୍ରିଦଶପୁଷ୍ପ—ବ. ଲବଙ୍ଗ ।
ତ୍ରିଦଶମଞ୍ଜରୀ—ସ୍ତ୍ରୀ. ବ. ତୁଳସୀ ଗଛ ।
ତ୍ରିଦଶବଧୂ—ସ୍ତ୍ରୀ. ବ. (୬ତତ୍ତ୍ୱ) ଅପ୍ସରା, ଦେବସ୍ତ୍ରୀ, ବିଦ୍ୟାଧରୀ । [ ଆକାଶ ।
ତ୍ରିଦଶବର୍ତ୍ମ—ପୁଂ. ବ. ନଭ, ସ୍ୱର୍ଗପଥ,
ତ୍ରିଦଶସର୍ଷପ—ପୁଂ. ବ. ଦେବସର୍ଷପ, ସର୍ଷପଭେଦ ।
ତ୍ରିଦଶାଙ୍କୁଶ—ପୁଂ. ବ. ବଜ୍ର ।
ତ୍ରିଦଶାଚାର୍ଯ୍ୟ—ପୁଂ.ବ. (୬ତତ୍ତ୍ୱ) ବୃହସ୍ପତି, ଦେବଗୁରୁ ।
ତ୍ରିଦଶାଧିପ—ପୁଂ.ବ. (୬ତତ୍ତ୍ୱ) ତ୍ରିଦଶର ଅଧିପତି, ଇନ୍ଦ୍ର ।
ତ୍ରିଦଶାଧ୍ୟକ୍ଷ—ପୁଂ. ବ. (୬ତତ୍ତ୍ୱ) ବିଷ୍ଣୁ ।
ତ୍ରିଦଶାୟନ—ପୁଂ. ବ. (୬ତତ୍ତ୍ୱ) ବିଷ୍ଣୁ ।
ତ୍ରିଦଶାୟୁଧ—ପୁଂ. ବ. (୬ତତ୍ତ୍ୱ) ବଜ୍ର, ଇନ୍ଦ୍ରଙ୍କର ଧନୁ, ଚଡ଼କ ।
ତ୍ରିଦଶାରି—ପୁଂ. ବ. (୬ତତ୍ତ୍ୱ) ଅସୁର, ରାକ୍ଷସ, ଦୈତ୍ୟ, ଦାନବ ।
ତ୍ରିଦଶାଲୟ—ପୁଂ. ବ. (୬ତତ୍ତ୍ୱ) ସ୍ୱର୍ଗ, ଦେବଲୋକ, ସୁମେରୁ ପର୍ବତ ।
ତ୍ରିଦଶାବାସ—ପୁଂ.ବ. ( ୬ତତ୍ତ୍ୱ ) ସ୍ୱର୍ଗ, ସୁମେରୁ ପର୍ବତ । [ ସୁଧା ।
ତ୍ରିଦଶାହାର—ପୁଂ.ବ. (୬ତତ୍ତ୍ୱ) ଅମୃତ,
ତ୍ରିଦଶେଶ୍ୱର—ପୁଂ.ବ.(୬ତତ୍ତ୍ୱ) ଇନ୍ଦ୍ର ।
ତ୍ରିଦଶେଶ୍ୱରୀ—ସ୍ତ୍ରୀ.ବ. ଦୁର୍ଗା, ଇନ୍ଦ୍ରାଣୀ, ସଚୀ, ପାର୍ବତୀ, ଲକ୍ଷ୍ମୀ ।
ତ୍ରିଦାଲିକା—ସ୍ତ୍ରୀ.ବ.ତ୍ରିଦଲିକାବୃକ୍ଷବିଶେଷ, ଚର୍ମକଷା ବୃକ୍ଷ ।
ତ୍ରିଦିନସ୍ପୃକ୍—ପୁଂ.ବ. ( ତ୍ରିଦିନ+ସ୍ପୃକ୍+କ୍ୱିପ୍ ) ତ୍ର୍ୟହସ୍ପର୍ଶ, କ୍ଷୟାହ, ଅବମ ଦିନଭେଦ ।
ତ୍ରିଦିବ—କ୍ଲୀ.ବ.( ତ୍ରି+ଦିବ୍+ଅଧି.ଅ ) ସ୍ୱର୍ଗ, ଆକାଶ, ନଭ, ସୁଖ ।
ତ୍ରିଦିବା—ସ୍ତ୍ରୀ.ବ. (ତ୍ରିଦିବ+ଆ) ନଦୀବିଶେଷ ।
ତ୍ରିଦିବାଧୀଶ—ପୁଂ.ବ.(୬ତତ୍ତ୍ୱ) ଇନ୍ଦ୍ର ।
ତ୍ରିଦିବେଶ—ପୁଂ.ବ.(୬ତତ୍ତ୍ୱ) ଦେବତା ।
ତ୍ରିଦିବେଶ୍ୱର—ପୁଂ.ବ.(୬ତତ୍ତ୍ୱ)ଇନ୍ଦ୍ର ।
ତ୍ରିଦିବୋଦ୍ଭବା—ସ୍ତ୍ରୀ.ବ.(ବ.ସ୍ତ୍ରୀ)ସ୍ଥୂଳେଲା, ବଡ଼ଅଲାଇଚ, ଗଙ୍ଗା,(ତ୍ରି. ବି°) ସ୍ୱର୍ଗଭବା ମାତ୍ର ।
ତ୍ରିଦିବୌକାଃ--ପୁଂ.ବ.(ବ.ସ୍ତ୍ରୀ)ଦେବତା ।
ତ୍ରିଦୃକ୍—ପୁଂ.ବ.(ବ.ସ୍ତ୍ରୀ) (ତ୍ରୀଣି+ଦୃଶ+କ୍ୱିପ୍ ) ତ୍ରିନେତ୍ର, ଶିବ ।
ତ୍ରିଦେବ—ବ.(ତ୍ରି+ଦେବ) ବ୍ରହ୍ମା,ବିଷ୍ଣୁ ଓ ଶିବ ।
ତ୍ରିଦୋଷ—କ୍ଲୀ.ବ.ବାତ, ପିତ୍ତ, ଓ କଫ ବିକାରବିଶେଷ, ରୋଗଭେଦ, ସନ୍ନିପାତ ବିକାର ।
ତ୍ରିଦୋଷଘ୍ନ—ତ୍ରି.ବି°.(ତ୍ରିଦୋଷ+ହନ+କ.ଅ)ତ୍ରିଦୋଷନାଶକ, ଯାହା ବାତ ପିତ୍ତ ଓ କଫର ପ୍ରକୋପକୁ ନାଶକରେ ।
ତ୍ରିଦୋଷଜ—ତ୍ରି.ବି°.(ତ୍ରିଦୋଷ+ଜନ+କ.ଅ)ବାତ, ପିତ୍ତ କଫଜନିତ ସନ୍ନିପାତ ପ୍ରଭୃତି ରୋଗବିଶେଷ ।

ତ୍ରିଧନ୍ୱା—ପୁଂ. ବିଂ. ସୁଧନ୍ୱାରାଜାଙ୍କ ଏକ ପୁତ୍ର ।

ତ୍ରିଧା—ଅବ୍ୟ. ( ତ୍ରି+ଧା ) ତ୍ରିବିଧ, ତ୍ରିପ୍ରକାରରେ, ତିନିଗୁଣ, ତିନିଥର, ତିନିଭାଗରେ, ତିନିଆଡ଼େ ।

ତ୍ରିଧାତୁ—ପୁଂ. ବି. ( ତ୍ରି+ଧାତୁ ) ଗଣେଶ, ଶରୀରସ୍ଥ ବାତ ପିତ୍ତ ଓ କଫ, ସୁନା ରୂପା ଓ ତମ୍ବା ।

ତ୍ରିଧାତ୍ୱ—କ୍ଲୀ. ବି. ( ତ୍ରିଧା+ତ୍ୱ ) ତ୍ରିପ୍ରକାରତ୍ୱ, ତିନିପ୍ରକାର ଭାବ ।

ତ୍ରିଧାମା—ପୁଂ. ବି. ( ବ. ବ୍ରୀ ) ବିଷ୍ଣୁ, ଶିବ, ବ୍ରହ୍ମା, ଅଗ୍ନି, ମୃତ୍ୟୁ, ତ୍ରିଧାମତ୍ରୟ, ସ୍ୱର୍ଗ, (ବିଂ) ତ୍ରିସଂଖ୍ୟାନ୍ୱିତ ।

ତ୍ରିଧାମୂର୍ତ୍ତି—ପୁଂ. ବି. ବ୍ରହ୍ମା, ବିଷ୍ଣୁ, ମହେଶ୍ୱରରୂପ ମୂର୍ତ୍ତି ତ୍ରୟଯୁକ୍ତ ପରମେଶ୍ୱର ।

ତ୍ରିଧାର—ବି. ( ତ୍ରି+ଧାର ) ତିନିଗୋଟି ଧାରର ସମାହାର, ( ବିଂ ) ତିନିଧାରବିଶିଷ୍ଟ, ତିନିଧାରରେ ବହିଯାଉଥିବା ।

ତ୍ରିଧାରକ—ପୁଂ. ବି. ( ତ୍ରି+ଧାର+କ ) ଗୁଣ୍ଡ୍ରତୃଣ, ଯାବ କନ୍ଦକସେରୁ ।

ତ୍ରିଧାରସ୍ନୁହୀ—ସ୍ତ୍ରୀ. ବି. ସ୍ନୁହୀବିଶେଷ, ଏକପ୍ରକାର ସିଜୁଗଛ, ଦେଉଳିଆ ସିଜ ।

ତ୍ରିଧାରା—ସ୍ତ୍ରୀ. ବି. ( କ. ଧା ) ତିନିଗୋଟି ଧାରା ବା ପାଣି ବହିବା ଧାର, ( ବିଂ, ବ. ବ୍ରୀ ) ତିନିଧାରରେ ବହି ଯାଉଥିବା ନଦୀ, ଗଙ୍ଗା, ଦେଉଳିଆ ସିଜୁ ।

ତ୍ରିଧାବିଶେଷ—ପୁଂ. ବି. ସୂକ୍ଷ୍ମାଦି ତ୍ରୟରୂପ ଶରୀରବିଶେଷ, ସୂକ୍ଷ୍ମଶରୀର ଏକ; ମାତା, ପିତୃଜ ଦ୍ୱିତୀୟ; ମହାଭୂତ ତୃତୀୟ, ଏହି ତିନିପ୍ରକାରବିଶେଷ ଶରୀର ।

ତ୍ରିଧାସର୍ଗ—ବି. ଦୈବ, ତିର୍ଯ୍ୟକ ଓ ମାନୁଷ ସର୍ଗଭେଦରେ ତିନିପ୍ରକାର ସୃଷ୍ଟି ।

ତ୍ରିନୟନ—ପୁଂ. ବି. ( ବ. ବ୍ରୀ ) ଶିବ, ମହାଦେବ, ( କ. ଧା ) ଲୋଚନତ୍ରୟ, ( ପୁଂ. ବିଂ ) ତିନିଚକ୍ଷୁବିଶିଷ୍ଟ, ତିନିଆଖିଆ ।

ତ୍ରିନୟନା—ସ୍ତ୍ରୀ. ବି. ଦୁର୍ଗା, କାଳୀ, ବଗଳାମୁଖୀଆଦି ଦଶ ମହାବିଦ୍ୟା ।

ତ୍ରିନବତି—ସ୍ତ୍ରୀ. ବି. ତିନିଅଧିକ ନବତି ସଂଖ୍ୟା, ୯୩ ସଂଖ୍ୟା, ( ବିଂ ) ୯୩ ସଂଖ୍ୟକ ।

ତ୍ରିନବତିତମ—ବିଂ. ତ୍ରିନବତିସଂଖ୍ୟାର ପୂରଣ, ୯୩ ସଂଖ୍ୟାର ପୂରଣ ।

ତ୍ରିନାକ—ପୁଂ. ବି. ( ତ୍ରି+ନ+ଅକ ) ତୃତୀୟ ନାକ, ଉତ୍ତମସ୍ଥାନ ।

ତ୍ରିନାଥ—ବି. ( ତ୍ରି+ନାଥ ) ତ୍ରିଦେବ ଦେଖ ।

ତ୍ରିନାଥମେଳା—ଗ୍ରା. ବି. ବ୍ରହ୍ମା ବିଷ୍ଣୁ ଓ ମହେଶ୍ୱରଙ୍କ ଉଦ୍ଦେଶ୍ୟରେ ପୂଜା ।

ତ୍ରିନାଭ—ପୁଂ. ବି. ( ବ. ବ୍ରୀ ) ବିଷ୍ଣୁ ।

ତ୍ରିନେତ୍ର—ପୁଂ. ବି. ( ବ. ବ୍ରୀ ) ମହାଦେବ, ଶିବ ।

ତ୍ରିନେତ୍ରଚୂଡ଼ାମଣି—ପୁଂ. ବି. ଚନ୍ଦ୍ର ।

ତ୍ରିନେତ୍ରରସ—ପୁଂ. ବି. ସନ୍ନିପାତ ରୋଗର ଔଷଧବିଶେଷ ।

ତ୍ରିନେତ୍ରା—ସ୍ତ୍ରୀ. ବି. ତ୍ରିନୟନା ଦେଖ ।

ତ୍ରିପକ୍ଷ(କ୍ଷୀ)—ବି. ତୃତୀୟପକ୍ଷ, ମୃତବ୍ୟକ୍ତିର ମୃତଦିବସଠାରୁ ୪୫ ଦିନପରେ କରାଯିବା ଶ୍ରାଦ୍ଧ ।

ତ୍ରିପଞ୍ଚ—ତ୍ରି. ବିଂ. ପଞ୍ଚଦଶ ସଂଖ୍ୟାନ୍ୱିତ, ୧୫ ସଂଖ୍ୟକ ।

ତ୍ରିପଞ୍ଚାଙ୍ଗ—ପୁଂ. ବି. ସମାଧିଭେଦ, ଏହି ସମାଧିରେ ୧୫ଟି ଅଙ୍ଗ ନାମ ନିୟମାଦି ।

ତ୍ରିପଞ୍ଚାଶ—ତ୍ରି. ବିଂ. ତିନିଅଧିକ ପଞ୍ଚାଶତ, ୫୩ ସଂଖ୍ୟକ, ୫୩ ସଂଖ୍ୟାର ପୂରଣ ।

ତ୍ରିପଞ୍ଚାଶତ୍—ସ୍ତ୍ରୀ. ବି. ତ୍ରିପଞ୍ଚାଶତ ସଂଖ୍ୟା, ୫୩ ସଂଖ୍ୟା, (ବିଂ) ୫୩ ସଂଖ୍ୟକ ।

ତ୍ରିପଞ୍ଚାଶତ୍ତମ—ତ୍ରି. ବିଂ. ତ୍ରିପଞ୍ଚାଶତ ସଂଖ୍ୟାର ପୂରଣ, ୫୩ ସଂଖ୍ୟାର ପୂରଣ ।

ତ୍ରିପଟା—ଗ୍ରା. ବି. ତିନିତାଳବିଶିଷ୍ଟ ସଙ୍ଗୀତ

ତ୍ରିପଟୁ—ପୁଂ. ବି. କାଚ ।

ତ୍ରିପଣ୍ଡ—ବିଂ. ( ତ୍ରି+ପଣ୍ଡ ) ଦୁରାତ୍ମା, ଦୁର୍ବୃତ୍ତ, ଶଠ, ପ୍ରତାରକ, ( ଗ୍ରା. ବି. ) କଦାକାର, ( ବିଂ. ଋ. ବିଂ. ) ବିକଟରୂପେ, ଭୟାନକରୂପେ, ଅତ୍ୟନ୍ତ ।

ତ୍ରିପଣ୍ଡକଳା—ଗ୍ରା. ବିଂ. ଘୋର କୃଷ୍ଣବର୍ଣ୍ଣ ।

ତ୍ରିପତାକ—କ୍ଲୀ. ବି. ରେଖା ତ୍ରୟାନ୍ୱିତ ଲଲାଟଦେଶ, ମଧ୍ୟମା ଓ ଅନାମିକା ବ୍ୟତୀତ ଉନ୍ନତ ହସ୍ତ ଅଙ୍ଗୁଳି ତ୍ରୟ ।

ତ୍ରିପତି—ସ୍ତ୍ରୀ. ବି. ତିରୁପତି ଦେଖ, ଭଗବାନ, ବିଷ୍ଣୁ ।

ତ୍ରିପତ୍ର—ପୁଂ. ବି. ବିଲ୍ୱବୃକ୍ଷ, ଦଳତ୍ରୟଯୁକ୍ତ ବିଲ୍ୱପତ୍ର ।

ତ୍ରିପତ୍ରକ—ପୁଂ. ବି. ( ତ୍ରିପତ୍ର+କ ) ପଳାଶବୃକ୍ଷ, (କ୍ଲୀ) ତୁଳସୀ, କୁନ୍ଦ, ବେଲପତ୍ର ତ୍ରୟ ।

ତ୍ରିପଥ—କ୍ଲୀ. ବି. ମାର୍ଗତ୍ରିତୟ, ତିନିବାଟୀ, ତିନିଛକିବାଟ, ଧର୍ମସାଧନର ତିନିମାର୍ଗ, ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ।

ତ୍ରିପଥଗା—ସ୍ତ୍ରୀ. ବି. ଗଙ୍ଗା, ( ବିଂ ) ତିନିବାଟରେ ବହି ଯାଉଥିବା ।

ତ୍ରିପଥଗାମିନୀ—ସ୍ତ୍ରୀ. ବି. ଗଙ୍ଗାନଦୀ ।

ତ୍ରିପଦ୍—ପୁଂ. ବି. ବିଷ୍ଣୁ ।

ତ୍ରିପଦ—ପୁଂ. ବି. ତ୍ରିବିକ୍ରମ, ପରମେଶ୍ୱର, ଅରତ୍ନିର ଦଶମଭାଗ ରୂପ ପଦତ୍ରୟ, ତିପାଇ, ତିନିଗୋଡ଼ିଆ ଷ୍ଟୁଲ ବା ଟେବଲ, ତ୍ରିଭୁଜ, ( ବିଂ ) ଯାହାର ତିନିଗୋଟି ଗୋଡ଼ ଥାଏ, ତିନିଗୋଡ଼ିଆ ।

ତ୍ରିପଦା—ସ୍ତ୍ରୀ. ବି. ହଂସପଦୀ ଲତା, ତ୍ରିପଦା ଗାୟତ୍ରୀ ।

ତ୍ରିପଦିକା—ସ୍ତ୍ରୀ. ବି. ( ତ୍ରିପଦ+ଇକ+ଆ ) ତ୍ରିପାଦୀ ଦେଖ ।

ତ୍ରିପଦୀ—ସ୍ତ୍ରୀ ବି. ( ତ୍ରି+ପଦ+ଈ ) ତିପାଇ, ତିନିଗୋଡ଼ିଆ ଟେବଲ, ଛନ୍ଦୋବିଶେଷ, ହସ୍ତୀର ପଦବନ୍ଧନ ରଜ୍ଜୁ, ତିନିଗୋଡ଼ିଆ ଶଙ୍ଖଧାର, ଗୋଧାପଦୀ ବା ହଂସପଦୀ ଗୁଳ୍ମ, ତିନି ଶ୍ଳୋକବିଶିଷ୍ଟ କବିତା, ବଣିଆଙ୍କ ଚିପେଇ, ଗାୟତ୍ରୀ ଦେଖ ।

ତ୍ରିପନ୍ନ—ପୁଂ. ବି. ଚନ୍ଦ୍ରର ଦଶ ଅଶ୍ୱ ମଧ୍ୟରୁ ଗୋଟିଏ ।

ତ୍ରିପରିକ୍ରାନ୍ତ—ପୁଂ. ବି. ଯାଜନ, ଅଧ୍ୟାପନ, ଓ ପ୍ରତିଗ୍ରହାଦି କର୍ମନିରତ ବ୍ରାହ୍ମଣ ।

ତ୍ରିପର୍ଣ୍ଣ—ପୁଂ. ବି. ପଳାଶବୃକ୍ଷ, (ବିଂ) ତ୍ରିଦଳ ପତ୍ର ତ୍ରୟ ।

ତ୍ରିପର୍ଣ୍ଣିକା—ସ୍ତ୍ରୀ. ବି. କନ୍ଦବିଶେଷ, ଏକପ୍ରକାର ମୂଳବିସ୍ତୃତ ତ୍ରିଦଳାନ୍ୱିତ କନ୍ଦକାଣ୍ଡୀୟ ଲତାଭେଦ, ଯବାସ ।

ତ୍ରିପର୍ଣ୍ଣୀ—ସ୍ତ୍ରୀ. ବି. ( ତ୍ରିପର୍ଣ୍ଣ+ଈ ) ଶାଳପର୍ଣ୍ଣୀ ଶାକ, ବନକାର୍ପାସ, ପୃଶ୍ନିପର୍ଣ୍ଣୀ ।

ତ୍ରିପର୍ଯ୍ୟାୟ—ବିଂ. ତିନିପର୍ଯ୍ୟାୟ ବା ତିନି

ଥାଏ ଯୁକ୍ତ । [ ପାଠ ।
ତ୍ରିପାଠ—ପୁଂ.ବି. ତ୍ରିପଦକ୍ରମ ସଂହିତାର
ତ୍ରିପାଠିନ୍—ପୁଂ.ବି. ଯେ ବେଦର ପାଦକ୍ରମ ସଂହିତା ପାଠକରନ୍ତି ।
ତ୍ରିପାଠୀ—ବିଂ.ଯେ ତିନିବେଦ ପାଠ କରିଅଛି,(ବି) ବ୍ରାହ୍ମଣମାନଙ୍କ ଉପାଧିବିଶେଷ ତିହାଡ଼ୀ, ତେବାରୀ, ।
ତ୍ରିପାଣ—କ୍ଳୀ.ବି. ତ୍ରିଃକୃତଃ ପାଣ୍ଡିତ ସୂତ୍ରଭେଦ, ଯେ ସୂତାକୁ ତିନିଥର ଓଡ଼ା କରି ଯାଇଅଛି, ବକ୍କଲ ।
ତ୍ରିପାଦ—ପୁଂ.ବି.ବିଷ୍ଣୁ , ପରମେଶ୍ୱର,ଜ୍ୱର ତ୍ରେତାଯୁଗର ଧର୍ମସ୍ୱରୂପ ବୃଷ, ( ବିଂ. ବ.ବ୍ରୀ) ତିନିପାଦ ପରିମିତ ।
ତ୍ରିପାଦ—ପୁଂ.ବି. ତ୍ରିବିକ୍ରମ, ବିଷ୍ଣୁ ।
ତ୍ରିପାଦିକା—ସ୍ତ୍ରୀ.ବି. ହଂସପାଦୀ ଲତା ।
ତ୍ରିପାପ—କ୍ଳୀ. ବି. ରାଶିଚକ୍ରସ୍ଥିତ ଦୋଷବିଶେଷ, ତ୍ରିପାପଯୋଗ, ତିନି ପାପଗ୍ରହର ସଂସ୍ଥାନ, ମହାପାତକ, ଅତିପାତକ,ଉପପାତକ ।
ତ୍ରିପାପଚକ୍ର—କ୍ଳୀ.ବି.ଜ୍ୟୋତିଷୋକ୍ତ ତ୍ରିପାପ ବିଷୟକ ଚକ୍ର ।
ତ୍ରିପିଟକ—ବି. ( ତ୍ରି+ପିଟକ ) ବୌଦ୍ଧ ଗ୍ରନ୍ଥବିଶେଷ ।
ତ୍ରିପିଣ୍ଡ—କ୍ଳୀ.ବି. ପିତ୍ରାଦି ତିନିଜଣ ନିମିତ୍ତ କର୍ତ୍ତବ୍ୟ ପାର୍ବଣ ଶ୍ରାଦ୍ଧ ।
ତ୍ରିପିଣ୍ଡୀ—ସ୍ତ୍ରୀ.ବି.ପିତ୍ରାଦି ଉଦ୍ଦେଶ୍ୟ ପିଣ୍ଡତ୍ରୟ ।
ତ୍ରିପିବ—ପୁଂ.ବି.(ତ୍ରି+ପା+ଅ)ଏକପ୍ରକାର ଲମ୍ବକାନ ଥିବା ଅଣ୍ଡିରି ଛେଳି ।
ତ୍ରିପିଷ୍ଟପ—କ୍ଳୀ.ବି.ସ୍ୱର୍ଗ,ଆକାଶ,ତ୍ରିଭୁବନ ।
ତ୍ରିପିଷ୍ଟପସଦ୍—ପୁଂ.ବି.(ତ୍ରିପିଷ୍ଟପ+ସଦ+କ୍ୱିପ୍) ଦେବତା ।
ତ୍ରିପୁ—ପୁଂ.ବି. ତ୍ରେନ, ତ୍ରପୁ ।
ତ୍ରିପୁଟ—ପୁଂ. ବି. ମଟରପାଲି, ସତାଲକ ଶର, ହସ୍ତଭେଦ, ତାଳ, ତାଳକଯନ୍ତ୍ର, ଗୋକ୍ଷୁରବୃକ୍ଷ,ଶର,ତାଳଭେଦ, ଚଣା, ମସୁର ।
ତ୍ରିପୁଟକ—ପୁଂ. ବି. ( ତ୍ରିପୁଟ+କ ) ବୈଦଳ,ଚଣା,ବ୍ରଣର ଆକାରଭେଦ ।

ତ୍ରିପୁଟା—ସ୍ତ୍ରୀ. ବି. ମଲ୍ଲିକା, ବେଲଫୁଲ, ଗୁଜୁରାତ, ସୂକ୍ଷ୍ମୈଳା, ତିହୁଡ଼ି, କର୍ଣ୍ଣସ୍ଫୋଟ ଲତା, ତଳ, ବଡ଼ ଅଳେଇଚ, ରକ୍ତତିହୁଡ଼ି, ଶ୍ୱେତତ୍ରିବୃତ, ତନ୍ତ୍ରୋକ୍ତ ଦେବୀବିଶେଷ, ସଙ୍ଗୀତର ରାଗିଣୀ ବିଶେଷ ।
ତ୍ରିପୁଟିନ୍—ପୁଂ. ବି. ଏରଣ୍ଡବୃକ୍ଷ, ଜଡ଼ାଗଛ, ଦ୍ୱିଦଳବିଶେଷ, ଚଣା ।
ତ୍ରିପୁଟୀ—ସ୍ତ୍ରୀ. ବି. (ତ୍ରିପୁଟ+ଈ)ତିହୁଡ଼ି, ସୂକ୍ଷ୍ମୈଳା, ଛୋଟଅଳାଇଚ, ଗବଗଛ, ଖେସାରି ।
ତ୍ରିପୁଟୀଫଳ—ପୁଂ. ବି. ଏରଣ୍ଡବୃକ୍ଷ ।
ତ୍ରିପୁଣ୍ଡ୍ର—କ୍ଳୀ. ବି. ତିଳକଭେଦ, ଲଲାଟସ୍ଥିତ ତିର୍ଯ୍ୟକ ରେଖାତ୍ରୟ, ବୈଶ୍ୟମାନେ କପାଳରେ କାଟିବା ଚିତା ।
ତ୍ରିପୁର—ସ୍ତ୍ରୀ. ବି. ମୟଦାନବ କୃତ ଅସୁରମାନଙ୍କର ପୁରତ୍ରୟ ।
ତ୍ରିପୁର—କ୍ଳୀ. ବି. ଅସୁରମାନଙ୍କର ପୁରତ୍ରୟ, ତାରକାସୁରର ତ୍ରିଭୁବନ, ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ।
ତ୍ରିପୁରଘ୍ନ—ପୁଂ. ବି. ମହାଦେବ ।
ତ୍ରିପୁରଦହନ—ପୁଂ.ବି.ଶିବ,ମହାଦେବ
ତ୍ରିପୁରଦାସ—ପୁଂ.ବି.ଏ କଣେ ଭଗବତ ଭକ୍ତ କାୟସ୍ଥ ।
ତ୍ରିପୁରପର—ବି. ମହାଦେବ ।
ତ୍ରିପୁରଭୈରବୀ—ସ୍ତ୍ରୀ.ବି.ଦେବୀବିଶେଷ ।
ତ୍ରିପୁରମଲ୍ଲିକା—ସ୍ତ୍ରୀ. ବି. ପୁଷ୍ପବୃକ୍ଷବିଶେଷ ।
ତ୍ରିପୁରମଲ୍ଲୀ—ବି. ତବଲମଲ୍ଲୀ, ମୁଗୁରାମଲ୍ଲୀ ।
ତ୍ରିପୁରା—ସ୍ତ୍ରୀ.ବି.ଦେବୀବିଶେଷ,ପ୍ରାଚୀନଚେଦୀରାଜ୍ୟ, ଅଧୁନିକ ତ୍ରିପୁରାଦେଶ ।
ତ୍ରିପୁରା—ସ୍ତ୍ରୀ.ବି. ପୂର୍ବ ବଙ୍ଗର ଗୋଟିଏରାଜ୍ୟ ।
ତ୍ରିପୁରାନ୍ତକ—ପୁଂ.ବି. ମହାଦେବ,ଶିବ ।
ତ୍ରିପୁରାରି—ପୁଂ.ବି. ଶିବ, ଜଣେ ଟୀକାକାର, ପାର୍ବତୀନାଥଙ୍କ ପୁତ୍ର ।
ତ୍ରିପୁରାଦାସ—ବି.ଅଷ୍ଟାଦଶ ଶତାବ୍ଦୀର ଓଡ଼ିଆ କବି ବିଶେଷ ।

ତ୍ରିପୁରାରିପାଲ—ପୁଂ.ବି. ଜଣେ ସଂସ୍କୃତ କବି ।
ତ୍ରିପୁରାରିରସ—ପୁଂ.ବି. ଔଷଧବିଶେଷ ।
ତ୍ରିପୁରୀ—ସ୍ତ୍ରୀ.ବି. ଚିପାରା ଜଳ, ରାଜ୍ୟ ଓ ନଗର ।
ତ୍ରିପୁରୁଷ—କ୍ଳୀ.ବି. ପିତ୍ରାଦି ପୁରୁଷତ୍ରୟ, ଭୋଗଭେଦ, ଯଜ୍ଞବିଶେଷ, ( ବିଂ ) ପୁରୁଷତ୍ରୟ ପରିମିତ ।
ତ୍ରିପୁରେଶାଦ୍ରି—ପୁଂ. ବି. କାଶ୍ମୀରସ୍ଥ ଗୋଟିଏ ପର୍ବତ ।
ତ୍ରିପୁଷ—ବି.କାକୁଡ଼ି, ଗହମ, (ଗ୍ରା.ବି.) ପ୍ରାଚୀନ ଉତ୍କଳର ଜନୈକ ବଣିକ ।
ତ୍ରିପୁଷା—ସ୍ତ୍ରୀ. ବି. କଳାତିହୁଡ଼ି, କୃଷ୍ଣ ତ୍ରିବୃତ୍ତ ।
ତ୍ରିପୁଷ୍କର—କ୍ଳୀ.ବି.ପୁଷ୍କରତ୍ରୟ, ଜ୍ୟେଷ୍ଠ, ମଧ୍ୟମ କନିଷ୍ଠଭେଦେ ପୁଷ୍କରତ୍ରୟ, ଅଶୁଭଯୋଗ,ବ୍ରହ୍ମକୃତ ତୀର୍ଥବିଶେଷ ।
ତ୍ରିପୃଷ୍ଠ—ପୁଂ. ବି. ଜୈନମତେ ୧ମ ବାସୁଦେବ, ସତ୍ୟଲୋକ ।
ତ୍ରିପୌରୁଷ—ତ୍ରିଂ. ବିଂ. ଏକାଦିକ୍ରମେ ତିନି ପୁରୁଷ ଧରି ଭୋଗ ।
ତ୍ରିପ୍ରଶ୍ନ—ପୁଂ.ବି. ଦିକ୍ ଦେଶ ଓ କାଳ ବିଷୟକ ପ୍ରଶ୍ନ,ତନ୍ମୂଳକଦିକ୍ ଦେଶ ଓ କାଳ ନିରୂପଣ ।
ତ୍ରିପ୍ରସୃତ—ପୁଂ.ବି. ଯେଉଁ ଗଜର ମେଢ୍ର କପୋଳ ଓ ନେତ୍ରରୁ ମଦ କ୍ଷରିତ ହୁଏ ।
ତ୍ରିପ୍ଲକ୍ଷ—ପୁଂ.ବି. ଜନପଦବିଶେଷ ।
ତ୍ରିଫଳା—ସ୍ତ୍ରୀ. ବି. ( ତ୍ରିଫଳ+ଆ ) ହରିଡ଼ା,ବାହାଡ଼ା ଓ ଅଁଳା,ତ୍ରିଫଳୀ, ଫଳତ୍ରୟ ।
ତ୍ରିଫଳାଘୃତ—କ୍ଳୀ.ବି. ଔଷଧବିଶେଷ ।
ତ୍ରିଫଳାଦ୍ୟଲୌହ—କ୍ଳୀ.ବି.ଔଷଧବିଶେଷ ।
ତ୍ରିଫଳାଦ୍ୟଘୃତ—କ୍ଳୀ.ବି. ଚକ୍ରଦତ୍ତୋକ୍ତ ଘୃତ ଔଷଧବିଶେଷ ।
ତ୍ରିଫଳାଦ୍ୟଘୃତ—କ୍ଳୀ. ବି. କୃମିରୋଗଘ୍ନ ଔଷଧବିଶେଷ ।
ତ୍ରିଫଳୀକୃତ—କ୍ଳୀ. ବି. ତ୍ରିଧା ବକୁଷୀକୃତ, ଯେ ଗୃହଳକୁ ତିନିଥର କଣ୍ଡା

ଯାଇଥିବା ।

ତ୍ରିବନ୍ଧନ—ପୁଂ. ବ. ହର୍ଯ୍ୟଶ୍ୱପୌତ୍ର ନୃପଭେଦ, ଜାଗ୍ରଦାଦି ଅବସ୍ଥାତ୍ରୟ ଯୁକ୍ତଜୀବ ।

ତ୍ରିବନ୍ଧୁ—ପୁଂ.ବ. ତ୍ରିଲୋକବନ୍ଧୁ ।

ତ୍ରିବଳ(ଳୀ)—ସ୍ତ୍ରୀ. ବ. ଉଦର କପାଳ ଓ କଣ୍ଠଦେଶ ପ୍ରଭୃତି ସ୍ଥାନରେ ମାଂସ ଓ ଚର୍ମର ସଂକୋଚ ଜନିତ ରେଖା ତ୍ରୟ । [ ବାୟୁ ।

ତ୍ରିବଲୀକ—କ୍ଲୀ.ବ. ପାୟୁ, ମଳଦ୍ୱାର,

ତ୍ରିବାହୁ—ପୁଂ.ବ. ରୁଦ୍ରାନୁଚର ଭେଦ, ଅସି ଯୁଦ୍ଧାକାର ଭେଦ ।

ତ୍ରିଭ—କ୍ଲୀ. ବ. ଲଗ୍ନାଦି ରାଶିତ୍ରୟ, ରାଶିତ୍ରୟ ମାତ୍ର, ନକ୍ଷତ୍ର ତ୍ରୟଯୁକ୍ତ ।

ତ୍ରିଭଙ୍ଗ—ପୁଂ.ବ. ଶ୍ରୀକୃଷ୍ଣଙ୍କ ମୂର୍ତ୍ତିବିଶେଷ, (ବିଂ.ତ୍ରି. ବ.ବ୍ରୀ) ଗ୍ରୀବା କଟି ଓ ଜାନୁ ଈଷତ୍ ବକ୍ରଭାବେ ଅବସ୍ଥାନକୁ ତ୍ରିଭଙ୍ଗ କହନ୍ତି, ତିନି ସ୍ଥାନରେ ବଙ୍କା ।

ତ୍ରିଭଙ୍ଗିମ—ବିଂ.(ବ.ବ୍ରୀ) ତ୍ରିଭଙ୍ଗ ସଦୃଶ ଠାଣି, ଠିଆହେଲାବେଳେ ଶରୀର ତିନିଠାରେ ବଙ୍କା ହୋଇଥିବା (ଅବସ୍ଥା ବା ଠାଣି) ।

ତ୍ରିଭଙ୍ଗୀ—ସ୍ତ୍ରୀ.ବ.ମାତ୍ରାବୃତ୍ତ ଛନ୍ଦୋଭେଦ, ତାଳର ୬୦ ମୁଖ୍ୟ ଭେଦର ଏକମତ, (ବିଂ) ତ୍ରିଭଙ୍ଗିମ ଦେଖ ।

ତ୍ରିଭଜୀବା—ସ୍ତ୍ରୀ.ବ. (୬ତତ୍) ରାଶି ତ୍ରୟର ଧନୁରାକାର କ୍ଷେତ୍ରର ଗ୍ରୀବା, ତ୍ରିଜ୍ୟା ।

ତ୍ରିଭଜ୍ୟା—ସ୍ତ୍ରୀ.ବ. ତ୍ରିଭଜୀବା, ବ୍ୟାସାର୍ଦ୍ଧ ରେଖା ।

ତ୍ରିଭଣ୍ଡି—ସ୍ତ୍ରୀ.ବ. ତ୍ରିବୃତା, ତିହୁଡ଼ି ।

ତ୍ରିଭଦ୍ର—କ୍ଲୀ.ବ.ସୁରତ, ଶୃଙ୍ଗାର ।

ତ୍ରିଭମୌର୍ବିକା—ସ୍ତ୍ରୀ.ବ.ତ୍ରିଜ୍ୟାବ୍ୟାସାର୍ଦ୍ଧ ରେଖା ।

ତ୍ରିଭାଗ—ପୁଂ.ବିଂ. ତୃତୀୟଭାଗ ବା ଅଂଶ

ତ୍ରିଭାନୁ—ପୁଂ. ବିଂ. ତୁର୍ବସୁବଂଶୀୟ ନୃପଭେଦ ।

ତ୍ରିଭାବ—ପୁଂ.ବ. ତ୍ରୈକାଳିକ ପଦାର୍ଥ ।

ତ୍ରିଭାର—ସ୍ତ୍ରୀ.ବ.ରାଜୋପକରଣ ବିଶେଷ

ତ୍ରିଭୁକ୍ତି—ପୁଂ. ବ. ତୀରହୁତ ଦେଶ, ତ୍ରିହୁତ ଦେଖ ।

ତ୍ରିଭୁଜ—କ୍ଲୀ. ବ. ନ.ବ୍ରୀ) ତ୍ରିବାହୁକ, ତ୍ରିକୋଣ କ୍ଷେତ୍ରଭେଦ, (ବିଂ)ତିନିବାହୁ ବିଶିଷ୍ଟ, ତିନୋଗୋଟି ସରଳରେଖା ଦ୍ୱାରା ଆବଦ୍ଧ କ୍ଷେତ୍ର ।

ତ୍ରିଭୁଜାକାର—ବ. (କ.ଧା) ତ୍ରିଭୁଜର ଗଠନ, (ବିଂ. ବ.ବ୍ରୀ) ତ୍ରିଭୁଜାକୃତି ବିଶିଷ୍ଟ ।

ତ୍ରିଭୁବନ—କ୍ଲୀ.ବ. ତ୍ରିଲୋକ, ସ୍ୱର୍ଗ,ମର୍ତ୍ତ୍ୟ ପାତାଳ ଏହି ଭୁବନ ତ୍ରୟ ।

ତ୍ରିଭୁବନଚନ୍ଦ୍ରଶ୍ରୀ—ଦକ୍ଷିଣାତ୍ୟର ରାଜ ବିଶେଷର ଉପାଧି ।

ତ୍ରିଭୁବନପାଲ—ନାଟକ ବିଳାସନାମକ ସଂସ୍କୃତ ଗ୍ରନ୍ଥ ରଚୟିତା ।

ତ୍ରିଭୁବନବିଜୟୀ—ପୁଂ.ବିଂ. ଯେ ତ୍ରିଭୁବନକୁ ଜୟକରେ ।

ତ୍ରିଭୁବନେଶ୍ୱରଲିଙ୍ଗ—କ୍ଲୀ. ବ. ଭୁବନେଶ୍ୱର ବା ଏକାମ୍ର କ୍ଷେତ୍ରର ପ୍ରଧାନ ଲିଙ୍ଗ ।

ତ୍ରିଭୂମ—ପୁଂ.ବିଂ.ପ୍ରାସାଦ ଭେଦ, ତ୍ରିତଲ ପ୍ରାସାଦ ତିନିମହଲା ଘର ।

ତ୍ରିଭୋନଲଗ୍ନ—କ୍ଷିତିଜ ବୃତ୍ତର ଊର୍ଦ୍ଧ୍ୱସ୍ଥ କ୍ରାନ୍ତିବୃତ୍ତର ଊର୍ଦ୍ଧ୍ୱମଧ୍ୟ ପ୍ରଦେଶ ।

ତ୍ରିମଙ୍ଗଲ—ଜଣେ ବିଖ୍ୟାତ ଦ୍ରାବିଡ଼ ପଣ୍ଡିତ ।

ତ୍ରିମଣ୍ଡଳା—ତ୍ରି. ଲୂତାଭେଦ, ଏହା ଦୁଇ ପ୍ରକାର ।

ତ୍ରିମଦ—ପୁଂ.ବିଂ. ବିଦ୍ୟା, ଧନ, ଜାତି ଏହି ତିନିପ୍ରକାର ମଦ ହେତୁନ୍ମ ଗର୍ବ, ମୁଥା, ଚିତ୍ରକ, ବିଡ଼ଙ୍ଗ ।

ତ୍ରିମଧୁ—କ୍ଲୀ.ବ. ଗୁଡ଼ାଦି ତ୍ରୟ, ଗୁଡ଼ଘିଅ, ଚିନି, ମଧୁ ଏ ତ୍ରିମଧୁ, ଋକ୍ ବେଦର ଅଂଶବିଶେଷ, ମଧୁ ବାତାଦି ଋକ୍ ତ୍ରୟ ଦେଖ, ଋଗ୍ବେଦୀୟ ଦେଶ ।

ତ୍ରିମଧୁର—କ୍ଲୀ.ବ. ଗୁଡ଼ ଘି, ଚିନି,ମଧୁ ।

ତ୍ରିମଲ୍ଲତନୟ—କାତ୍ୟାୟନ ସ୍ନାନ ସୂତ୍ରର ଜଣେ ଟୀକାକାର ।

ତ୍ରିମଲ୍ଲଭଟ୍ଟ—ଅଲଙ୍କାର ମଞ୍ଜରୀ ନାମକ ସଂସ୍କୃତ ଗ୍ରନ୍ଥ ରଚୟିତା ।

ତ୍ରିମଲ୍ଲଭଟ୍ଟବୈଦ୍ୟ—ଜଣେ ଆୟୁର୍ବେଦ ବିଦ୍ ପ୍ରସିଦ୍ଧ ତୈଲଙ୍ଗ ପଣ୍ଡିତ ।

ତ୍ରିମାତା—ତ୍ରି. ବିଂ. ତ୍ରିଲୋକ ନିର୍ମାଣକାରକ ।

ତ୍ରିମାତ୍ର—ପୁଂ. ବିଂ. ପ୍ଲୁତ ସ୍ୱର, ଅଖିତ ସ୍ୱର, ତ୍ରିମାତ୍ରିକ ଦେଖ ।

ତ୍ରିମାତ୍ରିକ—ବିଂ. (ତ୍ରି+ମାତ୍ରା+ଇକ) ଯେଉଁ ସ୍ଥାନରେ ତିନିଗୋଟି ମାତ୍ରାଥାଏ, ପ୍ଲୁତ (ଉଚ୍ଚାରଣ), ୧, ୨ ଓ ୩ ଗଣିବାକୁ ଯେତେ ସମୟ ଲାଗେ ସେତିକି ସମୟରେ ଉଚ୍ଚାରିତ (ଦୀର୍ଘସ୍ୱର) ।

ତ୍ରିମାର୍ଗ—କ୍ଲୀ. ବ. ତିନିପଥ, ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ।

ତ୍ରିମାର୍ଗଗା—ସ୍ତ୍ରୀ. ବ. (ତ୍ରିମାର୍ଗ+ଗମ+କ.ଅ+ଆ) ଗଙ୍ଗା, ତ୍ରିପଥ ଗାମିନୀ ଗଙ୍ଗା ।

ତ୍ରିମାର୍ଗଗାମିନୀ—ସ୍ତ୍ରୀ. ବ. ଗଙ୍ଗା ।

ତ୍ରିମାର୍ଗୀ—ସ୍ତ୍ରୀ. ବ. ଗଙ୍ଗା, ତ୍ରିପଥ,ତିନିଛକିଆ ବାଟ ।

ତ୍ରିମୁକୁଟ—ପୁଂ. ବ. ତ୍ରିକୂଟ ପର୍ବତ ।

ତ୍ରିମୁଖ—ପୁଂ. ବ. ଶାକ୍ୟମୁନି, ଗାୟତ୍ରୀ ଜପାଙ୍ଗ ଚତୁର୍ବିଂଶତି ମୁଦ୍ରାନ୍ତର୍ଗତ ମୁଦ୍ରାଭେଦ, (ବିଂ. ବ.ବ୍ରୀ ) ତିନିଗୋଟି ମୁହଁ ବିଶିଷ୍ଟ ।

ତ୍ରିମୁଖା—ସ୍ତ୍ରୀ. ବ. ବୌଦ୍ଧଦେବୀ ଭେଦ, ମାୟାଦେବୀ ।

ତ୍ରିମୁଖୀ—ସ୍ତ୍ରୀ. ବ. ବୌଦ୍ଧଦେବୀ ଭେଦ, ମାୟାଦେବୀ ।

ତ୍ରିମୁଣ୍ଡ—ବିଂ.(ବ.ବ୍ରୀ) ତିନିମୁଣ୍ଡ ବିଶିଷ୍ଟ, (ବି) ତ୍ରିଶିରା ରାକ୍ଷସ, ଜ୍ୱରପୁରୁଷ ।

ତ୍ରିମୁଣ୍ଡୀ—ଗ୍ରା. ବ. ତିନିଟା ସ୍ୱତନ୍ତ୍ର ଜଟ ପକାଇ ବାନ୍ଧିବା କେଶବିନ୍ୟାସ ।

ତ୍ରିମୁନି—କ୍ଲୀ ବ. ପାଣିନି କାତ୍ୟାୟନ ଓ ପତଞ୍ଜଳୀରୂପ ମୁନିତ୍ରୟ,ପାଣିନ୍ୟାଦି ମୁନିତ୍ରୟ ପ୍ରଣୀତ ବ୍ୟାକରଣ ।

ତ୍ରିମୂର୍ତ୍ତି—ପୁଂ. ବ. ବ୍ରହ୍ମା, ବିଷ୍ଣୁ, ମହେଶ୍ୱର, ଏପରି ଈଶ୍ୱରଙ୍କର ତ୍ରିରୂପାତ୍ମକ ପ୍ରକାଶ, (ସ୍ତ୍ରୀ. ବି). ବ୍ରହ୍ମଶକ୍ତିବିଶେଷ, ବୌଦ୍ଧଦେବୀ ଭେଦ ।

ତ୍ରିମୂର୍ଦ୍ଧ—ପୁଂ.ବିଂ. (ବ.ବ୍ରୀ) ମୂର୍ଦ୍ଧତ୍ରୟଯୁକ୍ତ।
ତ୍ରିମେଦ—ବି. (ତ୍ରି+ମେଦ) ତ୍ରିମଦ ଦେଖ।
ତ୍ରିମ୍ବକ—ନାଶିକ ଜିଲ୍ଲାସ୍ଥ ଗୋଟିଏ ବିଖ୍ୟାତ ସହର ଓ ତୀର୍ଥସ୍ଥାନ।
ତ୍ରିମ୍ବକଜୀ—ପେଶବା ବାଜୀରାଓଙ୍କର ଜଣେ ଅତି ବିଶ୍ୱାସୀ ଓ ଆଶ୍ରିତ।
ତ୍ରିମୂର୍ତ୍ତି—ଗ୍ରା.ବି. ଶ୍ରୀଁ ହ୍ଲୀଁ କ୍ଲୀଁ, ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର।
ତ୍ରିଯମ୍ବକ—ପୁଂ.ବି. (ବ.ବ୍ରୀ) ତ୍ରିନେତ୍ର, ମହାଦେବ, ଶିବ।
ତ୍ରିଯବ—କ୍ଲୀ.ବି. ପରିମାଣବିଶେଷ, ତିନି-ଯବରେ ଏକ କୃଷ୍ଣଳ, ରତି।
ତ୍ରିଯଷ୍ଟି—ସ୍ତ୍ରୀ.ବି. କ୍ଷୁପଭେଦ, କ୍ଷେତପାପଡ଼ା, (ବ.ବ୍ରୀ) ତ୍ରିଗୁଚ୍ଛହାର।
ତ୍ରିଯାନ—କ୍ଲୀ. ବି. ବୌଦ୍ଧଧର୍ମର ତିନି-ଭେଦ, (ମହାଯାନ, ମଧ୍ୟମ ଯାନ ଓ ହୀନଯାନ)। [ ଯାପ।
ତ୍ରିଯାମକ—କ୍ଲୀ. ବି. (ତ୍ରି+ଯମ+ଆକ)
ତ୍ରିଯାମା—ସ୍ତ୍ରୀ.ବି. (ବ.ବ୍ରୀ) ନିଶା, ରାତି, ହଳଦି, ଯମୁନା ନଦୀ, ନୀଳଚୁଲ୍ଲ, କଳା-ତିହୁଡ଼ି, କୃଷ୍ଣତ୍ରିବୃତ।
ତ୍ରିଯୁଗ—ବି. (ତ୍ରି+ଯୁଗ) ବସନ୍ତ, ବର୍ଷା ଓ ଶରତ ଏହି ତିନିକାଳ, ସତ୍ୟ, ତ୍ରେତା ଓ ଦ୍ୱାପରଯୁଗ, ବିଷ୍ଣୁ, (ବିଂ) ଷଡ଼ୈଶ୍ୱର୍ଯ୍ୟଶାଳୀ।
ତ୍ରିଯୁଗୀନାରାୟଣ—ଗ୍ରା.ବି. ଉତ୍ତରଖଣ୍ଡର-ତର ତୀର୍ଥବିଶେଷ।
ତ୍ରିଯୂହ—ପୁଂ.ବି. କପିଳବର୍ଣ୍ଣ ଘୋଟକ।
ତ୍ରିରତ୍ନ—କ୍ଲୀ. ବି. ବୌଦ୍ଧଧର୍ମର ପ୍ରଧାନ ତିନି ଧନ, ବୁଦ୍ଧ ଧର୍ମ ଓ ସଂଘ।
ତ୍ରିରଶ୍ମି—ସ୍ତ୍ରୀ. ବି. ତ୍ରିକୋଣ।
ତ୍ରିରସକ—କ୍ଲୀ. ବି. ତ୍ରିପ୍ରକାର ରସଯୁକ୍ତ ସୁରା, ତ୍ରିବାର ମଧୁପାନ।
ତ୍ରିରାତ୍ର—କ୍ଲୀ. ବି. ରାତ୍ରିତ୍ରୟ, ରାତ୍ରିସହିତ ଦିବସତ୍ରୟ, ଗର୍ଗତ୍ରିରାତ୍ର ନାମକ ଯୋଗ. ତିନିଦିନ ଉପବାସକରିବା ବ୍ରତବିଶେଷ
ତ୍ରିରାତ୍ରାଶୌଚ—ବି. ବ୍ୟକ୍ତିବିଶେଷର ଜନ୍ମ ବା ମୃତ୍ୟୁରେ ଶାସ୍ତ୍ରବିଧାନ ଅନୁ-ସାରେ ମନୁଷ୍ୟର ତ୍ରିରାତ୍ର ପର୍ଯ୍ୟନ୍ତ ପାଳିବା ଅଶୌଚ।
ତ୍ରିରୂପ—ପୁଂ ବି. (ବ.ବ୍ରୀ) ଅଶ୍ୱମେଧୀୟ ଅଶ୍ୱଭେଦ।
ତ୍ରିରେଖ—ପୁଂ. ବି. (ବ.ବ୍ରୀ) ଶଙ୍ଖ, (କ୍ଲୀ. ବି) ରେଖାତ୍ରୟ, ତିନିରେଖାର ସମା-ହାର। [ ନଗଣ।
ତ୍ରିଲ—ପୁଂ. ବି. (ବ.ବ୍ରୀ) ଲଘୁବର୍ଣ୍ଣଯୁକ୍ତ
ତ୍ରିଲଘୁ—ବି. ଛନ୍ଦୋଗ୍ରନ୍ଥ ପ୍ରସିଦ୍ଧ ନଗଣ, ଶୁଭଲକ୍ଷଣ ଯୁକ୍ତ ସ୍ଥାନତ୍ରୟ।
ତ୍ରିଲବଣ—କ୍ଲୀ. ବି. ଲବଣତ୍ରୟ, ମିଳିତ ସୈନ୍ଧବ, ବିଡ଼ ଓ ରୁଚକ।
ତ୍ରିଲିଙ୍ଗ—ତ୍ରି. ବିଂ. ପୁଂସ୍ତ୍ରୀାଦି ଲିଙ୍ଗତ୍ରୟ ଯୁକ୍ତ(ଶବ୍ଦ), ବି. ଅହଂକାରାଦି, ତୈଲଙ୍ଗ ବାତାଦିଧାତୁ ଦୋଷଜ ରୋଗ।
ତ୍ରିଲିଙ୍ଗକ—ତ୍ରି. ବିଂ. ପୁଂସ୍ତ୍ରୀାଦିଲିଙ୍ଗତ୍ରୟ ଯୁକ୍ତ (ଶବ୍ଦ), ଅହଂକାରାଦି।
ତ୍ରିଲିଙ୍ଗୀ—ସ୍ତ୍ରୀ. ବି. ଲିଙ୍ଗତ୍ରୟ।
ତ୍ରିଲୋକ—କ୍ଲୀ.ବି. ତ୍ରିଭୁବନ, ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ, (ପୁଂ. ବି) ଏହାରଅଧିବାସୀ।
ତ୍ରିଲୋକଧୃତ—ପୁଂ. ବି. (ତ୍ରିଲୋକ+ଧୃ+କ୍ୱିପ୍) ପରମେଶ୍ୱର।
ତ୍ରିଲୋକନାଥ—ପୁଂ.ବି.(୬ତତ୍ପୁ)ପରମେଶ୍ୱର, ବିଷ୍ଣୁ, ମହାଦେବ, ସୂର୍ଯ୍ୟ।
ତ୍ରିଲୋକାତ୍ମା—ପୁଂ. ବି. ପରମେଶ୍ୱର।
ତ୍ରିଲୋକୀ—ସ୍ତ୍ରୀ. ବି ତ୍ରିଲୋକ, ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ, ତ୍ରିଭୁବନ।
ତ୍ରିଲୋକୀନାଥ—ପୁଂ.ବି.ବିଷ୍ଣୁ, ମହାଦେବ
ତ୍ରିଲୋକେଶ—ପୁଂ. ବି. (୬ତତ୍ପୁ) ପରମେଶ୍ୱର, ସୂର୍ଯ୍ୟ, ମହାଦେବ।
ତ୍ରିଲୋକେଶ୍ୱର—ପୁଂ. ବି. (୬ତତ୍ପୁ) ତ୍ରିଲୋକନାଥ ଦେଖ।
ତ୍ରିଲୋଚନ—ପୁଂ. ବି. (ବ.ବ୍ରୀ) ଶିବ. (କ୍ଲୀ) କାଶିସ୍ଥିତ ଚତୁର୍ଦ୍ଦଶ ମହାଲିଙ୍ଗ ଅନ୍ତର୍ଗତ ଲିଙ୍ଗଭେଦ, (ବିଂ) ଲୋଚନ-ତ୍ରୟ ଯୁକ୍ତ।
ତ୍ରିଲୋଚନତୀର୍ଥ—ବିରଜା କ୍ଷେତ୍ରର ଅନ୍ତ-ର୍ଗତ ଗୋଟିଏ ତୀର୍ଥ।
ତ୍ରିଲୋଚନଦାସ—ଏ ବର୍ଦ୍ଧମାନର ଦଶ କ୍ରୋଶ ଦୂରରେ କୋ ଗ୍ରାମରେ ଜନ୍ମ ଲଭିଥିଲେ। [ କରଣ।
ତ୍ରିଲୋଚନଦାସ—ଜଣେପ୍ରସିଦ୍ଧ ବୈଷ୍ଣ-
ତ୍ରିଲୋଚନଦେବନ୍ୟାୟପଞ୍ଚାନନ—ନବ-ଦ୍ୱୀପର ଜଣେ ନୈୟାୟିକ ପଣ୍ଡିତ।
ତ୍ରିଲୋଚନଦ୍ୱିଜ—ଗ୍ରା.ବି.ପ୍ରାଚୀନ ଓଡ଼ିଆ-କବିବିଶେଷ।
ତ୍ରିଲୋଚନପାଳ—ମହାରାଜ ରାଜ୍ୟପାଳ-ଙ୍କର ପୁତ୍ର, ଏହିନାମରେ ପଶ୍ଚିମରେ ଜଣେ ପରାକ୍ରାନ୍ତ ରାଜାରାଜତ୍ୱ କରିଥିଲେ, ଲାଟ ଦେଶର ଚାଲୁକ୍ୟବଂଶୀୟ ଜଣେ ବିଖ୍ୟାତ ରାଜା।
ତ୍ରିଲୋଚନଭଟ୍ଟାଚାର୍ଯ୍ୟ—ନ୍ୟାୟ ସଙ୍କେତ ନାମକ ସଂସ୍କୃତଗ୍ରନ୍ଥ ରଚୟିତା।
ତ୍ରିଲୋଚନମିଶ୍ର—ଧର୍ମକୋଷ ନାମରେ ଧର୍ମଶାସ୍ତ୍ର ଗ୍ରନ୍ଥକାର।
ତ୍ରିଲୋଚନଶିବାଚାର୍ଯ୍ୟ—ରତ୍ନ ତ୍ରୟୋ-ଦ୍ୟୋତ ଓ ସିଦ୍ଧାନ୍ତସାରାବଳୀ ନାମରେ ଶୈବ ଶାସ୍ତ୍ରକାର।
ତ୍ରିଲୋଚନା—ସ୍ତ୍ରୀ. ବି. ଦୁର୍ଗା, ପାର୍ବତୀ।
ତ୍ରିଲୋଚନାଚାର୍ଯ୍ୟ—ବ୍ୟାକରଣକୋଷ୍ଠୀ ପଞ୍ଜି ନାମକ ସଂସ୍କୃତଗ୍ରନ୍ଥ ରଚୟିତା।
ତ୍ରିଲୋଚନାଦିତ୍ୟ—ଏକ ସଂସ୍କୃତଗ୍ରନ୍ଥକାର
ତ୍ରିଲୋଚନାଷ୍ଟମୀ—ସ୍ତ୍ରୀ. ବି. ଦୁର୍ଗାଷ୍ଟମୀ।
ତ୍ରିଲୋଚନୀ—ସ୍ତ୍ରୀ. ବି. ଦୁର୍ଗା, ପାର୍ବତୀ।
ତ୍ରିଲୋଚନେଶ୍ୱରତୀର୍ଥ—କ୍ଲୀ. ବି. ତୀର୍ଥ ବିଶେଷ। [ ତାମ୍ର।
ତ୍ରିଲୋହ—କ୍ଲୀ. ବି. ସୁବର୍ଣ୍ଣ ରଜତ ଓ
ତ୍ରିଲୋହକ—କ୍ଲୀ. ବି. ସୁବର୍ଣ୍ଣ ରଜତ ଓ ତାମ୍ର ଏହି ଧାତୁ ତ୍ରୟ।
ତ୍ରିଲୌହିକ—ତ୍ରି. ବିଂ. ସୁବର୍ଣ୍ଣ ରଜତ ଓ ତାମ୍ରମୟ ପାତ୍ରାଦି।
ତ୍ରିଲୋହୀ—ସ୍ତ୍ରୀ.ବି.ସୁବର୍ଣ୍ଣ ରଜତ ତାମ୍ରର ପରିମାଣ ଭେଦଦ୍ୱାରା ମୁଦ୍ରାଭେଦ।
ତ୍ରିବତ୍ସ—ପୁଂ. ବି. ତ୍ରିବର୍ଷ ବୟସ୍କପଶୁ, ତିନିବର୍ଷର ବୃଷ।
ତ୍ରିବନ୍ଦରମ୍—ତ୍ରିବାଙ୍କୋଡ଼ ରାଜ୍ୟର ଏକଗୋଟି ବନ୍ଦରର ନାମ।
ତ୍ରିବର୍ଗ—ପୁଂ. ବି. ଧର୍ମ ଅର୍ଥ ଓ କାମ,

ସୃଷ୍ଟି ସ୍ଥିତି ଓ ଲୟ, ତ୍ରିଫଳା, ତ୍ରିକଟୁ, ଆୟୁ ସ୍ଥିତି ଓ ବ୍ୟୟ, ସତ୍ତ୍ୱ, ରଜଃ ଓ ତମଃ, ବ୍ରାହ୍ମଣ, ସୁମିତ ଓ ଗାୟତ୍ରୀ ।

ତ୍ରିବର୍ଗପାରୀଣ—ବିଂ. (୬ତତ୍) ଧର୍ମ ଅର୍ଥ ଓ କାମ ଏହି ବର୍ଗର ପାରଗତ ।

ତ୍ରିବର୍ଗସାଧନ—ବି. ସଂସାରର ପ୍ରଧାନ ତିନିଗୋଟି ଆକାଙ୍କ୍ଷାର ପୂରଣ ଯାହା ଦ୍ୱାରା ତ୍ରିବର୍ଗ ସିଦ୍ଧ ହୁଏ ।

ତ୍ରିବର୍ଣ୍ଣ—ପୁଂ. ବି. (କ.ଧା) ବ୍ରାହ୍ମଣ କ୍ଷତ୍ରିୟ ଓ ବୈଶ୍ୟ, ବଣକପା ।

ତ୍ରିବର୍ଣ୍ଣକ—କ୍ଲୀ. ବି. ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ତ୍ରିଫଳା, ଶ୍ୟାମ, ରକ୍ତ ଓ ପୀତ, ଗୋକ୍ଷୁର, ତ୍ରିକଟୁ ।

ତ୍ରିବର୍ଣ୍ଣା—ସ୍ତ୍ରୀ.ବି. ବନକାର୍ପାସୀ, ବଣକପା

ତ୍ରିବର୍ତ୍ମ—କ୍ଲୀ. ବି. ତ୍ରିପଥ, (ବ.ବ୍ରୀ) ଦେବଯାନ ପିତୃଯାନ ଓ ଦକ୍ଷିଣଯାନରୂପ ମାର୍ଗତ୍ରୟ ଯୁକ୍ତ ଜୀବ ।

ତ୍ରିବର୍ତ୍ମଗା—ସ୍ତ୍ରୀ. ବି. ତ୍ରିପଥଗା, ଗଙ୍ଗା ।

ତ୍ରିବର୍ଷ—ବି. ତିନିବର୍ଷର ଜୀବ, (ପୁଂ. କ୍ଲୀ. ବି) ବର୍ଷତ୍ରୟ ।

ତ୍ରିବର୍ଷା—ସ୍ତ୍ରୀ. ବି. ତିନିବର୍ଷର ଗୌ, ତିନି ବର୍ଷୀୟା ଗାଈ ।

ତ୍ରିବର୍ଷିକା—ସ୍ତ୍ରୀ. ବି. ତିନିବର୍ଷର ଗୋ, ଗାଈ ।

ତ୍ରିବର୍ଷୀୟ—ତ୍ରି. ବିଂ. (ତ୍ରିବର୍ଷ+ଈୟ) ତ୍ରିବର୍ଷଜାତ, ତ୍ରିବର୍ଷବୟସ୍କ

ତିବାଙ୍କୁର— ତ୍ରିବାଙ୍କୋଡ଼ ବା ତିରୁବାଙ୍କୋଡ଼, ମାନ୍ଦ୍ରାଜ ପ୍ରଦେଶସ୍ଥ କରଦରାଜ୍ୟ ବିଶେଷ ।

ତ୍ରିବାର—ତ୍ରି. ବିଂ. ବାରତ୍ରୟ ଯୁକ୍ତ, (ପୁଂ. ବି.) ଗରୁଡ଼ଙ୍କର ଏକପୁତ୍ର ।

ତ୍ରିବାର୍ଷିକ—ବି. (ତ୍ରିବର୍ଷ+ଇକ) ତିନି ବର୍ଷରେ ଥରେ ଘଟିବା ।

ତ୍ରିବିକ୍ରମ—ପୁଂ. ବି. (ତ୍ରି+ବିକ୍ରମ) ବିଷ୍ଣୁ, ବାମନରୂପୀ ବିଷ୍ଣୁ, ତ୍ରିଲୋକ ଆକ୍ରମଣ ।

ତ୍ରିବିକ୍ରମ—ବି. ସଦୁକ୍ତିକର୍ଣ୍ଣାମୃତ ଧୃତ ସଂସ୍କୃତ କବି, ଜଣେ ଧର୍ମଶାସ୍ତ୍ରକାର, ଜଣେ ଅଭିଧାନ କର୍ତ୍ତା, କାଳବିଧାନ ନାମକ ଜ୍ୟୋତିର୍ଗ୍ରନ୍ଥକାର, ଉଦାହରଣ ନାମକ ସଂସ୍କୃତ କାବ୍ୟକାର, ଜଣେ ବିଖ୍ୟାତ ଜ୍ୟୋତିର୍ବିଦ୍, ମଦାଲସା ଚମ୍ପୂ ରଚୟିତା, ରାମକାଳୀ ମୁକୁନ୍ଦମାଳାନାମକ ସଂସ୍କୃତ ଗ୍ରନ୍ଥକାର ।

ତ୍ରିବିକ୍ରମଭଟ୍ଟାରକ—ଜଣେ ବିଖ୍ୟାତ ତାନ୍ତ୍ରିକ ।

ତ୍ରିବିକ୍ରମଦେବ—ପ୍ରାକୃତ ବ୍ୟାକରଣ ବୃତ୍ତି ରଚୟିତା, ଲୌହ ପ୍ରଦୀପ ନାମକ ବୈଦିକ ଗ୍ରନ୍ଥକାର ।

ତ୍ରିବିକ୍ରମପଣ୍ଡିତ—ପୁଣ୍ୟ ଗ୍ରାମର ଜଣେ ବିଖ୍ୟାତ ଶାସ୍ତ୍ରୀ ।

ତ୍ରିବିକ୍ରମପଣ୍ଡିତାଚାର୍ଯ୍ୟ-ବାୟୁସ୍ତୁତି ନୃସିଂହ ସ୍ତୁତି ଓ ବିଷ୍ଣୁ ସ୍ତୁତି ରଚୟିତା ।

ତ୍ରିବିକ୍ରମଭଞ୍ଜ—ଗ୍ରା.ବି. କନୈକ ଗଡ଼ଜାତ ରାଜ୍ୟର ଓଡ଼ିଆ କବି ।

ତ୍ରିବିକ୍ରମଶିଷ୍ୟ—ଯୋଗଦୀପିକାନାମରେ ବୈଦାନ୍ତିକ ଗ୍ରନ୍ଥକାର ।

ତ୍ରିବିକ୍ରମସୂର—ରଘୁ ସୂରଙ୍କର ପୁତ୍ର ।

ତ୍ରିବିକ୍ରମାଚାର୍ଯ୍ୟ-ଗୀର୍ବାଣଭାଷାଭୂଷଣ ନାମରେ ସଂସ୍କୃତ ଅଭିଧାନ କାର ।

ତ୍ରିବିକ୍ରମାନନ୍ଦ—ସାର ସଂଗ୍ରହ ଜ୍ଞାନଭୂଷା ନାମକ ବୈଦାନ୍ତିକ ଗ୍ରନ୍ଥକାର ।

ତ୍ରିବିଂଶ—ତ୍ରି. ବି ଓ ବିଂ. ୨୩ ସଂଖ୍ୟା, ୨୩ ସଂଖ୍ୟକ ।

ତ୍ରିବିଦ—ତ୍ରି. ବିଂ (ତ୍ରି+ବିଦ୍+କ୍ୱିପ୍) ତିନି ବେଦଜ୍ଞ ।

ତ୍ରିବିଦ୍ୟ—ପୁଂ. ବି. (ବ.ବ୍ରୀ) ତ୍ରିବେଦଜ୍ଞ ଦ୍ୱିଜ ।

ତ୍ରିବିଦ୍ୟା—ସ୍ତ୍ରୀ. ବି. ଋକ୍ ସାମ ଓ ଯଜୁଃ ଏହି ବେଦତ୍ରୟ ।

ତ୍ରିବିଧ—ତ୍ରି.ବିଂ. (ବ.ବ୍ରୀ) ତିନିପ୍ରକାରର

ତ୍ରିବିନତ—ତ୍ରି. ବିଂ. ବେଦ, ବ୍ରାହ୍ମଣ ଓ ଗୁରୁ ଏହି ତିନିଜଣ ନିକଟରେ ଯେ ନତ ହୁଏ ।

ତ୍ରିବିଷ୍ଟପ—କ୍ଲୀ. ବି. ତ୍ରିପିଷ୍ଟପ, ସ୍ୱର୍ଗ ।

ତ୍ରିବିଷ୍ଟପସଦ୍—ପୁଂ. ବି. (ତ୍ରିବିଷ୍ଟପ+ସଦ+କ୍ୱିପ୍) ଦେବତା ।

ତ୍ରିବିଷ୍ଟବ୍ୟ—ବି. ତ୍ରିଦଣ୍ଡରୂପ ଅବଷ୍ଟମ୍ଭତ୍ରୟ

ତ୍ରିବିସ୍ତ—ତ୍ରି. ବିଂ. ସ୍ୱର୍ଣ୍ଣକର୍ଷତ୍ରୟ ମୂଲ୍ୟ ଯୋଗ୍ୟ, ତିନିକର୍ଷ ସୁନା ମୂଲ୍ୟର ।

ତ୍ରିବୀର୍ଣ୍ଣ—ପୁଂ. ବି. ଶୁଭଲକ୍ଷଣ ଯୁକ୍ତ ପୁରୁଷ ।

ତ୍ରିବୀଜ—ପୁଂ.ବି. ଶ୍ୟାମାକ, ଶ୍ୟାମାଘାସ ।

ତ୍ରିବୃତ୍—ପୁଂ. ବି. (ତ୍ରି+ବୃ+କ.କ୍ୱିପ୍) ତିହୁଡ଼, ମସୁର ବା ଖେସାରି, ବିଂ. (ତ୍ରି+ବୃତ) (ବ.ବ୍ରୀ) ତ୍ରିଧା, ତ୍ରିଗୁଣିତ, ବି. ମିଶ୍ରିତ ତେଜ ଜଳ ଓ ଅନ୍ନ, ଯଜ୍ଞ, ଋକ୍ ବିଶେଷର ନରକ ।

ତିବୃତପର୍ଣ୍ଣୀ—ସ୍ତ୍ରୀ.ବି. ହିଲମୋଚିକାଶାକ, ହିଡ଼ିମିଚ୍ଛଶାଗ ।

ତ୍ରିବୃତ—ବିଂ. ବେଦବିହିତ ସପୁର, ତ୍ରିଗୁଣାତ୍ମକ, ତ୍ରିଗୁଣମୟ ।

ତ୍ରିବୃତବ୍ରହ୍ମ—ବି. ଓଁକାର ।

ତ୍ରିବୃତ୍—ତ୍ରି.ବିଂ. ତ୍ରିରାବୃତ, ତ୍ରିଗୁଣିତ ।

ତ୍ରିବୃତା—ସ୍ତ୍ରୀ. ବି. ତ୍ରିରାବୃତା, ତ୍ରିବୃତ ଦେଖ ।

ତ୍ରିବୃତ୍ତି—ସ୍ତ୍ରୀ. ବି. (କ.ଧା) ତ୍ରିବୃତ୍ ଦେଖ ।

ତ୍ରିବୃତ୍ତିକା—ସ୍ତ୍ରୀ. ବି. ତ୍ରିବୃତ, (ବିଂ.) ତ୍ରିଧାବୃତ୍ତିଯୁକ୍ତ, ଯାହାର ତିନୋଟି ବୃତ୍ତି ଅଛି ।

ତ୍ରିବୃଦ୍‌ବେଦ—ପୁଂ. ବି. ତ୍ରୟୀ ବେଦତ୍ରୟ, ତଦୁତ୍ପନ୍ନ ପ୍ରଣବ ।

ତ୍ରିବୃଷ—ପୁଂ. ଏକାଦଶ ଦ୍ୱାପରର ବ୍ୟାସ ।

ତ୍ରିବେଣୀ—ସ୍ତ୍ରୀ. ବି. (ବ.ବ୍ରୀ) ଗଙ୍ଗା, ଯମୁନା ଓ ସରସ୍ୱତୀର ସଙ୍ଗମସ୍ଥଳ, ପ୍ରୟାଗ, ହଠ ଯୋଗାନୁସାରେ ଶରୀରାଭ୍ୟନ୍ତରରେ ଇଡ଼ା ପିଙ୍ଗଳା ଓ ସୁଷୁମ୍ନା ନାଡ଼ୀତ୍ରୟର ସଙ୍ଗମସ୍ଥାନ, (ଗ୍ରା.ବି) ପୁରୀଜିଲ୍ଲାର ପ୍ରାଚୀନଦୀର ଗୋଟିଏ ତୀର୍ଥସ୍ଥାନ, ବଙ୍ଗଦେଶରେ ଗଙ୍ଗା ଓ ଭାଗୀରଥୀର ସଙ୍ଗମସ୍ଥଳ, ତ୍ରିବେଣୀଘାଟ ।

ତ୍ରିବେଣୀଅମାବାସ୍ୟା— ଗ୍ରା. ବି. ମାଘ ଅମାବାସ୍ୟା, ଏଦିନ ପ୍ରୟାଗରେ ମକର ସ୍ନାନ ଯୋଗ ଘଟେ ।

ତ୍ରିବେଣୀଘାଟ—ଗ୍ରା. ବି. ଭାଗୀରଥୀ ବା ଗଙ୍ଗାନଦୀ କୂଳରେ ସୁପ୍ରସିଦ୍ଧ ଘାଟ ।

ତ୍ରିବେଣୁ—ପୁଂ. ବି. ରଥ ମୁଣ୍ଡସ୍ଥିତ

ଅବୟବଭେଦ ।

ତ୍ରିବେଦ—ବି. (ତ୍ରି+ବେଦ) ତ୍ରୟୀ, ଋକ୍, ସାମ ଓ ଯଜୁଃ ଏହି ତିନିବେଦ, ବେଦତ୍ରୟ ବିହିତ କର୍ମ, (ବିଂ—ତ୍ରି+ ବିଦ୍+ଅ) ବେଦତ୍ରୟ ବେତ୍ତା ।

ତ୍ରିବେଦୀ—ପୁଂ. ବି. (ତ୍ରିବେଦ+ଇନ୍) ବେଦତ୍ରୟଜ୍ଞ, ତିନିବେଦର ପାରଙ୍ଗମ (ଗ୍ରା. ବି) ତ୍ରିପାଠୀ ।

ତ୍ରିବେଲା—ସ୍ତ୍ରୀ. ବି. ତ୍ରିବୃତ୍, ତିହୁଡ଼ି ।

ତ୍ରିବୈଶ୍ରିକ—ବିଂ. ସୁବର୍ଣ୍ଣର କର୍ଷତ୍ରୟ ମୂଲ୍ୟର ଯୋଗ୍ୟ ।

ତ୍ରିଶକ୍ତି—ସ୍ତ୍ରୀ.ବି.କାଳୀ ତାରା ଓ ତ୍ରିପୁରା ରୂପ ତନ୍ତ୍ରୋକ୍ତ ଦେବୀତ୍ରୟ, ଇଚ୍ଛା,ଜ୍ଞାନ ଓ କ୍ରିୟାରୂପ ଈଶ୍ୱରଙ୍କ ଶକ୍ତି ତ୍ରୟ,ଇଚ୍ଛା ଶକ୍ତି ଜ୍ଞାନଶକ୍ତି ଓ କ୍ରିୟାଶକ୍ତି ଏହି ତିନିଗୋଟି ଈଶ୍ୱରଙ୍କ ଶକ୍ତି, ରାଜାମାନଙ୍କର ପ୍ରଭାବ, ଉତ୍ସାହ ଓ ମନ୍ତ୍ରଜ ଏହି ଶକ୍ତିତ୍ରୟ, ଗାୟତ୍ରୀ ।

ତ୍ରିଶକ୍ତିଧୃତ—ପୁଂ. ବି. (ତ୍ରିଶକ୍ତି+ଧୃ କ୍ତ) ପରମେଶ୍ୱର,ବିଜିଗୀଷୁ ନୃପ ।

ତ୍ରିଶଙ୍କୁ—ବି.ସୂର୍ଯ୍ୟବଂଶୀୟରାଜା ହରିଶ୍ଚନ୍ଦ୍ରଙ୍କ ପିତା ଓ ପୃଥୁରାଜଙ୍କ ପୁତ୍ର, ବିରାଡ଼, ଝିଣ୍ଟିକା, ଚାତକପକ୍ଷୀ, ଖଦ୍ୟୋତ, କୁଳୁକୁଳିଆ, ଦକ୍ଷିଣାକାଶରେ ଧ୍ରୁବ ନକ୍ଷତ୍ରର ଉତ୍ତରରେ ଥିବା ଛକପରି ସ୍ଥିତ ନକ୍ଷତ୍ର ପୁଞ୍ଜ ମଧ୍ୟରୁ ଉପର ୩ ଗୋଟି ।

ତ୍ରିଶଙ୍କୁଜ—ପୁଂ. ବି. ହରିଶ୍ଚନ୍ଦ୍ରରାଜା ।

ତ୍ରିଶଙ୍କୁଯାଜୀ—ପୁଂ. ବି. ବିଶ୍ୱାମିତ୍ର ଋଷି ।

ତ୍ରିଶତ—ବି ଓ ବିଂ. ତିନିଶହ ।

ତ୍ରିଶତପ୍ରସାରଣୀତୈଳ—କ୍ଲୀ. ବି. ତୈଳ ଔଷଧଭେଦ ।

ତ୍ରିଶରଣ—କ୍ଲୀ. ବି.(ବି.ଗ୍ରା) ବୁଦ୍ଧ ।

ତ୍ରିଶର୍କରା—ସ୍ତ୍ରୀ. ବି. ତ୍ରିଗୁଣିତା ଶର୍କରା, ମିଳିତ ଶର୍କରା, ଗୁଡ଼ ଓ ମିଶିରି, ଏ ତିନିପ୍ରକାର ମଧୁରତ୍ରିକ ।

ତ୍ରିଶଳା—ସ୍ତ୍ରୀ. ବି. ଅର୍ହନ ମାତୃବିଶେଷ, ଶେଷ ଜୈନତୀର୍ଥଙ୍କର ବର୍ଦ୍ଧମାନର ମାତା ।

ତ୍ରିଶାଖ—ତ୍ରି. ବିଂ. (ବି.ଗ୍ରା) ଶିଖାକାର ଅଗ୍ରତ୍ରୟ ଯୁକ୍ତ, ତିନିଶାଖା ବା ଡାଳବିଶିଷ୍ଟ, ତିନିମୁନା, (ବି) ବେଲପତ୍ର ।

ତ୍ରିଶାଖପତ୍ର—ପୁଂ. ବି. ବିଲ୍ୱ ବୃକ୍ଷ ।

ତ୍ରିଶାଣ—ତ୍ରି. ବିଂ. ତ୍ରିଶାଣ ପରିମିତ, । ତ୍ରିଶାଣଦ୍ୱାରା କ୍ରୀତ ।

ତ୍ରିଶାଲକ—କ୍ଲୀ. ବି. ହିରଣ୍ୟନାଭାଖ୍ୟ ବାସ୍ତୁଭେଦ ।

ତ୍ରିଶିଖ—କ୍ଲୀ. ବି. (ବି.ଗ୍ରା) ତ୍ରିଶୂଳ, ଅସ୍ତ୍ରଭେଦ, କିରୀଟ, ରାବଣର ପୁତ୍ର ରାକ୍ଷସଭେଦ, ବେଲଗଛ, ତାମସ ମନ୍ୱନ୍ତରର ଇନ୍ଦ୍ର, (ବିଂ) ଶିଖାତ୍ରୟଯୁକ୍ତ ।

ତ୍ରିଶିଖର—ବି. (ବି.ଗ୍ରା) ତ୍ରିଶୃଙ୍ଗପର୍ବତ ।

ତ୍ରିଶିଖିଦଳୀ—ସ୍ତ୍ରୀ. ବି. ମାଳାକନ୍ଦ ନାମକ ମୂଳ ।

ତ୍ରିଶିଖୀ—ତ୍ରି. ବିଂ. ତ୍ରିଶିଖ ଦେଖ ।

ତ୍ରିଶିରା—ପୁଂ. ବି. (ବି.ଗ୍ରା) କୁବେର, ରାବଣର ପୁତ୍ରଭେଦ,ଜ୍ୱରପୁରୁଷ,ଜୈବାରଥ, ଖରର ଏକ ସେନାପତି,ସ୍ୱନାମଖ୍ୟାତ ତ୍ୱଷ୍ଟା ପ୍ରଜାପତିଙ୍କର ପୁତ୍ର, ଅସୁରବିଶେଷ ।

ତ୍ରିଶୀର୍ଷ—ତ୍ରି. ବିଂ. (ବି.ଗ୍ରା) ତ୍ରିଶିଖର ।

ତ୍ରିଶୀର୍ଷକ—କ୍ଲୀ. ବି. (ବି.ଗ୍ରା) ତ୍ରିଶୂଳ, ତିନିଫଳକଯୁକ୍ତ ଅସ୍ତ୍ର,(ବିଂ)ତିନିମୁଣ୍ଡିଆ

ତ୍ରିଶୁଚ—ପୁଂ. ବି. ସ୍ୱର୍ଗ, ଅନ୍ତରୀକ୍ଷ ଓ ପୃଥିବୀସ୍ଥିତ ଦୀପ୍ତିତ୍ରୟ ଯୁକ୍ତ ଧର୍ମ, (ବିଂ) ଆଧ୍ୟାତ୍ମିକାଦି ଶୋକତ୍ରୟ ଯୁକ୍ତ ।

ତ୍ରିଶୂଳ—ପୁଂ. ବି.(ବି.ଗ୍ରା) ସ୍ୱନାମଖ୍ୟାତ ଅସ୍ତ୍ର ବିଶେଷ, ତ୍ରିଫଳକ ଯୁକ୍ତ ମହାଦେବଙ୍କର ଅସ୍ତ୍ରବିଶେଷ ।

ତ୍ରିଶୂଳଘାତ—କ୍ଲୀ. ବି. ତୀର୍ଥ ବିଶେଷ ।

ତ୍ରିଶୂଳଧାରିଣୀ—ସ୍ତ୍ରୀ. ବି. ଦୁର୍ଗା ।

ତ୍ରିଶୂଳଧାରୀ—ପୁଂ.ବି. ମହାଦେବ ।

ତ୍ରିଶୂଳମୁଦ୍ରା—ସ୍ତ୍ରୀ.ବି. ମୁଦ୍ରାଭେଦ ।

ତ୍ରିଶୂଳିନୀ—ସ୍ତ୍ରୀ.ବି. ତ୍ରିଶୂଳଧାରିଣୀ ଦେଖ ।

ତ୍ରିଶୂଳୀ—ପୁଂ.ବି.ଶିବ,(ତ୍ରି.ବିଂ.)ତ୍ରିଶୂଳଧାରୀ, ଯେ ତ୍ରିଶୂଳ ଧାରଣ କରେ ।

ତ୍ରିଶୃଙ୍ଗ—ପୁଂ.ବି.(ବି.ଗ୍ରା)ତ୍ରିକୂଟପର୍ବତ, ତ୍ରିକୋଣ, ତ୍ରିଭୁଜ, (ବିଂ) ତିନିଗୋଟି ଶୃଙ୍ଗ ବିଶିଷ୍ଟ (ପଶୁ ବା ପର୍ବତ) ।

ତ୍ରିଶୃଙ୍ଗୀ—ପୁଂ.ବି.(ତ୍ରି+ଶୃଙ୍ଗ+ଇନ୍) ରୋହିମାଛ, ଶିଙ୍ଗିମାଛ, ରୁଦ୍ରାନୁଚରବିଶେଷ ।

ତ୍ରିଶୋକ—ପୁଂ. ବି. ଜୀବ, କଣ୍ୱପୁତ୍ର, ଋଷିବିଶେଷ,(ବିଂ.ବି.ଗ୍ରା) ତ୍ରିତାପଯୁକ୍ତ ।

ତ୍ରିଷଷ୍ଟି—ବି ଓ ବିଂ.ତ୍ର୍ୟଧିକଷଷ୍ଟି ସଂଖ୍ୟା ୬୦ରୁ ତିନିଅଧିକ, ୬୩ ।

ତ୍ରିଷଷ୍ଟିତମ—ତ୍ରି.ବିଂ. ତ୍ରିଷଷ୍ଟି ସଂଖ୍ୟାର ପୂରଣ, ୬୩ସଂଖ୍ୟାର ପୂରଣ ।

ତ୍ରିଷଷ୍ଟ—ବିଂ. (ତ୍ରିଷଷ୍ଟି+ଅ) ୬୩ ସଂଖ୍ୟାର ପୂରଣ ।

ତ୍ରିସୁପର୍ଣ୍ଣ—ପୁଂ.ବି. ବହ୍ବୃଚ ବେଦଭାଗଭେଦ, ତଦ୍‌ବ୍ରତ, ତଦ୍ ବ୍ରତଧାରୀ ପୁରୁଷ ।

ତ୍ରିଷ୍ଟ—ବି. ତିନିଚକିଆ ଗାଡ଼ି ।

ତ୍ରିଷ୍ଟୁପ୍(ଭ୍)—ସ୍ତ୍ରୀ.ବି. (ତ୍ରି+ସ୍ତୁଭ+କ୍ୱିପ୍), ଏକାଦଶ ଅକ୍ଷରପାଦକ ବର୍ଣ୍ଣବୃତ୍ତ ଛନ୍ଦୋଭେଦ ।

ତ୍ରିଷ୍ଟୋମ—ପୁଂ. ବି. କ୍ଷତ୍ର ଧୃତି ଯଜ୍ଞର ଉଭୟଦିଗରେ କର୍ତ୍ତବ୍ୟ ଯଜ୍ଞଭେଦ ।

ତ୍ରିଷ୍ଠ—ପୁଂ.ବି. (ତ୍ରି+ସ୍ଥା+ଅ) ଚକ୍ରତ୍ରୟସ୍ଥିତ ରଥ, ତିନିଚକିଆ ଗାଡ଼ି ।

ତ୍ରିଷନ୍—ତ୍ରି. ବିଂ. ବିଦ୍ୟାଦି ଶୀଳଯୁକ୍ତ, ବିଦ୍ୟା ଦାନ ଓ ଯଜ୍ଞଯୁକ୍ତ ।

ତ୍ରିସ—ଅବ୍ୟ. ତ୍ରିବାର, ତିନିବାର ।

ତ୍ରିସଂବତ୍ସର—କ୍ଲୀ.ବି. ତ୍ରିବର୍ଷ, ତିନିବର୍ଷ ସାଧ୍ୟ ଯଜ୍ଞବିଶେଷ ।

ତ୍ରିସଂସାର—କ୍ଲୀ.ବି.ତ୍ରିଜଗତ୍,ତ୍ରିଭୁବନ, ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ।

ତ୍ରିସତ୍ୟ—କ୍ଲୀ. ବି. ତିନିବାର ଧର୍ମ ବା ଦେବତା ସାକ୍ଷୀକରି ଆନ୍ତରିକଭାବରେ ଶପଥଗ୍ରହଣ ।

ତ୍ରିସନ୍ଧି—ସ୍ତ୍ରୀ. ବି. ପୁଷ୍ପଭେଦ, ସନ୍ଧ୍ୟାବହାଣ ଫୁଲ,(ଗ୍ରା.ବି.)ବିଷମସମସ୍ୟା ।

ତ୍ରିସନ୍ଧ୍ୟ—କ୍ଲୀ.ବି.(ତ୍ରି+ସନ୍ଧ୍ୟା)ପୂର୍ବାହ୍ନ, ମଧ୍ୟାହ୍ନ, ଅପରାହ୍ନ, ସନ୍ଧ୍ୟାତ୍ରୟ ।

ତ୍ରିସନ୍ଧ୍ୟକୁସୁମ—ସ୍ତ୍ରୀ. ବି. ସନ୍ଧ୍ୟାବହାଣ ଫୁଲ ।

ତ୍ରିସନ୍ଧ୍ୟବ୍ୟାପିନୀ—ସ୍ତ୍ରୀ. ବି. ଯେଉଁ ତିଥି

ତ୍ରିସନ୍ଧ୍ୟାକାଳ ବ୍ୟାପୀଥାଏ ।
ତ୍ରିସନ୍ଧ୍ୟା—ବ.ସକାଳ ଦ୍ୱିପ୍ରହର ଓ ସନ୍ଧ୍ୟାବେଳ, ଦିବସର ତିନବେଳ ।
ତ୍ରିସପ୍ତ—ବି ଓ ବି°.ଏକବିଂଶତି ସଂଖ୍ୟା, ୨୧ସଂଖ୍ୟା ।
ତ୍ରିସପ୍ତତି—ବି ଓ ବି°.ତିନଅଧିକ ସପ୍ତତି, ୭୩ସଂଖ୍ୟା, ୭୩ସଂଖ୍ୟକ ।
ତ୍ରିସପ୍ତତିତମ—ତ୍ରି. ବି°. ତ୍ରିସପ୍ତତିର ପୂରଣ, ୭୩ସଂଖ୍ୟାର ପୂରଣ ।
ତ୍ରିସମ—କ୍ଲୀ. ବ. ସମ ପରିମାଣରେ ହରିଡ଼ା, ନାଗରମୁଥା ଓ ଗୁଡ଼ମିଶ୍ରିତ ଔଷଧ ।
ତ୍ରିସର—ପୁଂ.ବ. କୃଶର, ରାଶି ଓ ଗୁଡ଼ଲରେ ପ୍ରସ୍ତୁତ ଏକପ୍ରକାର ଖେଚୁଡ଼ି ।
ତ୍ରିସରକ—କ୍ଲୀ.ବ. ତ୍ରିବାର ମଧୁପାନ ।
ତ୍ରିସର୍ଗ—ପୁଂ.ବ.(୩ତତ୍ର) ସତ୍ତ୍ୱ, ରଜ ଓ ତମ ଏହି ତିନ ଗୁଣର ସୃଷ୍ଟି ।
ତ୍ରିସବନ—ବ.(ତ୍ରି+ସବନ)ଦିନମଧ୍ୟରେ ତିନିଥର ସ୍ନାନ, ତ୍ରିସନ୍ଧ୍ୟାରେ ସ୍ନାନ ।
ତ୍ରିସବନସ୍ନାୟିନ୍—ପୁଂ.ବ.ତ୍ରିକାଳସ୍ନାୟୀ, ଯେ ପ୍ରାତଃ ମଧ୍ୟାହ୍ନ ଓ ସାୟାହ୍ନରେ ସ୍ନାନକରେ ।
ତ୍ରିସାମ—ପୁଂ.ବ. ପରମେଶ୍ୱର ।
ତ୍ରିସାମା—ସ୍ତ୍ରୀ. ବ. ମହେନ୍ଦ୍ର ପର୍ବତରେ ଜାତ ନଦୀବିଶେଷ ।
ତ୍ରିସାହସ୍ର—ତ୍ରି. ବି°. ତିନିସହସ୍ର ପରିମିତ,୩୦୦୦ ପରିମିତ ।
ତ୍ରିସିତା—ସ୍ତ୍ରୀ.ବ. ତ୍ରିଶର୍କରା, ଗୁଡ଼ ଚିନି ଓ ମିଶ୍ରିର ସମାହାର ।
ତ୍ରିସୀତ୍ୟ—ବି°.ତିନିବାର କୃଷ୍ଟ(କ୍ଷେତ୍ର), ତିନିଓଡ଼ ହଳ ହୋଇଥିବା, ଯେଉଁ ଜମି ତିନିବାର କର୍ଷିତ ହୋଇଅଛି ।
ତ୍ରିସୀମା—ସ୍ତ୍ରୀ.ବି°.( ବ.ବ୍ରୀ )ସୀମାତ୍ରୟବିଶିଷ୍ଟା, (ବି-କ.ଧା) ତିନିପ୍ରାନ୍ତ ।
ତ୍ରିସୁଗନ୍ଧ—କ୍ଲୀ. ବ. ଅଳେଇଚ, ଦାରୁଚିନି, ଓ ତେଜପତ୍ରର ସମାହାର ।
ତ୍ରିସୁପର୍ଣ୍ଣ—ପୁଂ.ବ.ତତ୍ତ୍ୱବ୍ରତ, ଏହି ବ୍ରତଧାରୀ ପୁରୁଷ । [ ରୂପ ଅଗ୍ନି ।
ତ୍ରିସୁବର୍ଚକ—ପୁଂ.ବ. ଆଙ୍ଗିରସଖ ବନ-
ତ୍ରିସୌଗନ୍ଧୀ—କ୍ଲୀ.ବ. ଅଳେଇଚ ଦାରୁଚିନି ଓ ତେଜପତ୍ର ।
ତ୍ରିସୌପର୍ଣ୍ଣ—କ୍ଲୀ.ବ.ସୁପର୍ଣ୍ଣ ଋଷି ଆଚରିତ ମନ୍ତ୍ରତ୍ରିକ୍ ଋକ୍‌ବେଦର ମନ୍ତ୍ର ତିନୋଟିର ନାମ, ତ୍ରିସୌପର୍ଣ୍ଣ ପରମେଶ୍ୱରଙ୍କର ନାମଭେଦ ।
ତ୍ରିସ୍କନ୍ଧ—କ୍ଲୀ. ବ. ଜ୍ୟୋତିଃଶାସ୍ତ୍ର, ତିନିଗୋଟି ଶାଖା ( ଗଣିତ, ସଂହିତା ଓ ହୋରା ) ।
ତ୍ରିସ୍ତନ—କ୍ଲୀ.ବ. ତ୍ର୍ୟହସାଧ୍ୟ ଯଜ୍ଞଭେଦ ।
ତ୍ରିସ୍ତନ୍ୟା—ସ୍ତ୍ରୀ. ବ. ରାକ୍ଷସୀଭେଦ, ଏହି ରାକ୍ଷସୀର ତିନୋଟି ସ୍ତନ ଥିଲା,ଗାୟତ୍ରୀ ।
ତ୍ରିସ୍ତାବା—ସ୍ତ୍ରୀ. ବ. ଅଶ୍ୱମେଧ ଯଜ୍ଞର ଅଙ୍ଗବେଦିଭେଦ, ବେଦୀର ସ୍ୱାଭାବିକ ପରିମାଣର ତ୍ରିଗୁଣ ଅଧିକ ।
ତ୍ରିସ୍ଥଳୀ—ସ୍ତ୍ରୀ. ବ. କାଶୀ ଗୟା ଓ ପ୍ରୟାଗରୂପ ତିନୋଟି ସ୍ଥାନ ।
ତ୍ରିସ୍ଥାନ—ବ. ସ୍ୱର୍ଗ ମର୍ତ୍ତ୍ୟ ଓ ପାତାଳସ୍ଥିତ ପରମେଶ୍ୱର, ଜାଗ୍ରଦାଦି ଅବସ୍ଥାତ୍ରୟ ସାକ୍ଷୀ ଜୀବ, ଜାଗ୍ରତ୍, ସ୍ୱପ୍ନ, ସୁଷୁପ୍ତି ତିନଅବସ୍ଥା ।
ତ୍ରିସ୍ରୋତସ୍—ସ୍ତ୍ରୀ. ବ. (ବ.ବ୍ରୀ) ଗଙ୍ଗା, ନଦୀଭେଦ, ଭାଗୀରଥୀ ।
ତ୍ରିସ୍ରୋତା—ଗ୍ରା. ବ. ଉତ୍ତର ବଙ୍ଗଳାର ଗୋଟିଏ ବୃହତ୍ ନଦୀ ।
ତ୍ରିସ୍ରୋତସୀ—ସ୍ତ୍ରୀ. ବ. ସ୍ରୋତ ତ୍ରୟଯୁକ୍ତ ନଦୀଭେଦ, ଗଙ୍ଗା ।
ତ୍ରିସ୍ପୃଶା—ସ୍ତ୍ରୀ.ବ.( ତ୍ରି+ସ୍ପୃଶ୍+କ.ଅ+ଆ ) ଏକାଦିନରେ ଏକାଦଶୀ ଦ୍ୱାଦଶୀ ଓ ତ୍ରୟୋଦଶୀ ଏହି ତିନି ତିଥିର ସଂଯୋଗ ।
ତ୍ରିସ୍ନାନ—କ୍ଲୀ. ବ. ତ୍ରିକାଳ ସ୍ନାନାଙ୍ଗ ବ୍ରତଭେଦ ।
ତ୍ରିହଲ୍ୟ—କ୍ଲୀ.ବ.ବାରତ୍ରୟ କୃଷ୍ଟ କ୍ଷେତ୍ର, ତିନବାରହଳକରା,ତିନିଓଡ଼ ହୋଇଥିବା ।
ତ୍ରିହାୟଣ—ତ୍ରି.ବି°. ତ୍ରିବର୍ଷ ବୟସ୍କ ( ଗବାଦି ), ତିନିବର୍ଷର(ସ୍ତ୍ରୀ),ତ୍ରିହାୟଣୀ ।
ତ୍ରିହାୟଣୀ—ସ୍ତ୍ରୀ.ବ.ତିନିବର୍ଷିଆ ଛେଳି, ଦ୍ରୌପଦୀ ।
ତ୍ରିହୁତ—ଗ୍ରା. ବ. ତୀରହୁତ, ମିଥିଳାନ୍ତର୍ଗତ ଦେଶ, ଆଧୁନିକ ବିହାରର ଦ୍ୱାରଭଙ୍ଗା ଓ ମଜଫରପୁର ଜିଲ୍ଲା ।
ତ୍ରୀଶଟ—ବ. ଜଣେ ପ୍ରାଚୀନ ବୈଦ୍ୟକ ଗ୍ରନ୍ଥକାର ।
ତ୍ରୀଷୁ—ବ. ବାଣତ୍ରୟ ପରିମିତ ସ୍ଥାନ ।
ତ୍ର୍ୟୁଷ୍କ—କ୍ଲୀ. ବ. ବାଣତ୍ରୟଯୁକ୍ତ ଧନୁ ।
ତ୍ର୍ୟୁଷ୍ଟକ—ପୁଂ. ବ. ଅଗ୍ନିଭେଦ ।
ତ୍ରୁଟି—ସ୍ତ୍ରୀ. ବ. ( ତ୍ରୁଟ୍+ଇ ) ଗ୍ରେଟ ଅଳେଇଚ, ଅଂଶ, ଖଣ୍ଡ, କ୍ଷୁଦ୍ର ଖଣ୍ଡ, କାର୍ତ୍ତିକେୟଙ୍କର ଏକ ମାତା, କମ୍ପିତ, କ୍ଷତ, ଅଭାବ, ଅପବାଦ, ଅନିଷ୍ଟ,ଭୁଲ୍, ଦୋଷ, ଅଙ୍ଗୀକାର, ଭଙ୍ଗ, ସ୍ଖଳନ, କ୍ଷଣକାଳ, ଦୁଇ, (ମତାନ୍ତରରେ) ଚାରି ଓ (ମତାନ୍ତରେ) ପାଞ୍ଚକ୍ଷଣ ପରିମିତ କାଳ, ସଂଶୟ, ସନ୍ଦେହ ।
ତ୍ରୁଟିତ—ତ୍ରି. ବି°. ( ତ୍ରୁଟ୍+ମଁ.ତ ) କହାଯାଇଥିବା, ଛିନ୍ନ, କର୍ତ୍ତିତ, ଭଗ୍ନ, ସ୍ଖଳିତ, ଆହତ, ଆଘାତିତ ।
ତ୍ରୁଟିଗ୍ରାଜ—ପୁଂ. ବ. କଚୁ, ଗାରୁ ।
ତ୍ରୁଟିସ୍ୱୀକାର—ପୁଂ.ବ. ଦୋଷସ୍ୱୀକାର, ନ୍ୟୂନତା ସ୍ୱୀକାର ।
ତ୍ରୁଟିଃସ୍—ଅବ୍ୟ. ତୁଟି ତୁଟି, ଅତ୍ୟନ୍ତ ତୁଟି ।
ତ୍ରୁଟୀ—ସ୍ତ୍ରୀ. ବ. ତ୍ରୁଟି ଦେଖ ।
ତ୍ରୂଷଣାଦମଣ୍ଡୁର—କ୍ଲୀ.ବ.ପାଣ୍ଡୁରୋଗାଧିକାରେ ରସେନ୍ଦ୍ରସାର ସଂଗ୍ରହୋକ୍ତ ଔଷଧଭେଦ ।
ତ୍ରୂଷଣାଦଲୌହ—କ୍ଲୀ.ବ.ଶୋଥାଧିକାରେ ରସେନ୍ଦ୍ରସାର ସଂଗ୍ରହୋକ୍ତ ଔଷଧଭେଦ ।
ତ୍ରୂଷଣାଦ୍ୟଲୌହ—କ୍ଲୀ. ବ. ସ୍ଥୌଲ୍ୟ ରୋଗାଧିକାରେ ରସେନ୍ଦ୍ରସାରସଂଗ୍ରହୋକ୍ତ ଔଷଧଭେଦ ।
ତ୍ରେତୟା—ଗ୍ରା. ବ. ସତ୍ୟ,ତ୍ରେତା,ଦ୍ୱାପର ଓ କଳି ଏହି ଚାରିଯୁଗ ମଧ୍ୟରୁ ୨ୟ ଯୁଗ ।
ତ୍ରେତା—ସ୍ତ୍ରୀ. ବ. (ତ୍ରି+ଇତ+ଆ)

ଦ୍ୱିତୀୟ ଯୁଗ, ଦକ୍ଷିଣ, ଗାର୍ହପତ୍ୟ, ଆହବନୀୟ ଏହି ତିନି ଅଗ୍ନି, ଦ୍ୟୂତ-କ୍ରୀଡ଼ାର ପାଶକକ୍ଷୟର ପତନବିଶେଷ, କଉଡ଼ି ଖେଳରେ ୩କଡ଼ା କଉଡ଼ି ଚିତହୋଇ ପଡ଼ିବା ସାର ।

ତ୍ରେତାଗ୍ନି—ବ. ଦକ୍ଷିଣ, ଗାର୍ହପତ୍ୟ ଓ ଆହବନୀୟ ଏହି ତିନିପ୍ରକାର ଅଗ୍ନି ।

ତ୍ରେତାପୁରୀ—ସ୍ତ୍ରୀ.ବ. ହିମାଳୟର ପାଦ-ଦେଶସ୍ଥ ତିବ୍ବତର ଗୋଟିଏ ବୌଦ୍ଧତୀର୍ଥ ।

ତ୍ରେତାଯୁଗ—କ୍ଳୀ. ବ. ଦ୍ୱିତୀୟ ଯୁଗ ।

ତ୍ରେତାଯୁଗାଦ୍ୟା—ସ୍ତ୍ରୀ.ବ. କାର୍ତ୍ତିକମାସର ଶୁକ୍ଳ ନବମୀ, ଏହିଦିନ ତ୍ରେତାଯୁଗର ଉତ୍ପତ୍ତି ।

ତ୍ରେତିନୀ—ସ୍ତ୍ରୀ.ବ. ତ୍ରେତାଗ୍ନି ସାଧ୍ୟ କ୍ରିୟା, ଦକ୍ଷିଣ, ଗାର୍ହପତ୍ୟ ଓ ଆହବନୀୟ ଏହି ଅଗ୍ନିତ୍ରୟ ସାଧ୍ୟ କ୍ରିୟା ।

ତ୍ରେଧା—ଅବ୍ୟ. (ତ୍ରି+ଧା) ତିନିପ୍ରକାର, ତିନିଭାଗରେ, ତିନିବାର ।

ତ୍ରୈଂଶ—କ୍ଳୀ. ବ. ତ୍ରିଂଶଦଧ୍ୟାୟ ପରିମିତ ବ୍ରାହ୍ମଣଭେଦ ।

ତ୍ରୈକକୁଦ୍—କ୍ଳୀ. ବ. ସୌବୀରାଞ୍ଜନ, ଏହାର ନାମ ସୁର୍ମ୍ମା ।

ତ୍ରୈକକୁଭ—କ୍ଳୀ.ବ. ଉଦାନବାୟୁ ସମ୍ବନ୍ଧୀୟ ନବରାତ୍ରି ସାଧ୍ୟ ଯଜ୍ଞଭେଦ ।

ତ୍ରୈକଣ୍ଟକ—ବ.ଲଘୁଗର୍ଗ ମତ୍ସ୍ୟର ପରିମାଣ ।

ତ୍ରୈକାଲଜ୍ଞ—ବଂ. (ତ୍ରିକାଲଜ୍ଞ+ଅ) ଯେ ତ୍ରିକାଳବିଷୟ ଅବଗତହୋଇଅଛି ତତ୍ସମ୍ବନ୍ଧୀୟ, ତ୍ରିକାଳଜ୍ଞ ସମ୍ବନ୍ଧୀୟ ।

ତ୍ରୈକାଲିକ—ବଂ. (ତ୍ରିକାଲ+ଇକ) ଭୂତ, ଭବିଷ୍ୟତ୍ ଓ ବର୍ତ୍ତମାନ କାଲ ସମ୍ବନ୍ଧୀୟ,ସକାଳ,ଦ୍ୱିପ୍ରହର ଓ ସନ୍ଧ୍ୟା-ସମ୍ବନ୍ଧୀୟ ।

ତ୍ରୈକାଲ୍ୟ—କ୍ଳୀ. ବ. ଭୂତ, ଭବିଷ୍ୟତ୍ ଓ ବର୍ତ୍ତମାନ କାଲ ।

ତ୍ରୈକୂଟକ—ଚେଦି ରାଜ୍ୟରେ କଲଚୁରି ବଂଶର ସମସାମୟିକକାଳେ ତ୍ରୈକୂଟକ-ବଂଶ ରାଜତ୍ୱ କରୁଥିଲେ ।

ତ୍ରୈଗର୍ତ୍ତ—ପୁଂ. ବ. ପିତାମହକ୍ରମେ ଏହି ଦେଶବାସୀ, ତ୍ରିଗର୍ତ୍ତ ଦେଶର ରାଜା ।

ତ୍ରୈଗର୍ତ୍ତିକ—ତ୍ରି. ବଂ. ତ୍ରିଗର୍ତ୍ତଦେଶର ଅଦୂର ଦେଶାଦି ।

ତ୍ରୈଗୁଣିକ—ବଂ. (ତ୍ରିଗୁଣ+ଇକ) ତିନିଗୁଣା, ତିନିଗୁଣ.ଗ୍ରହଣକାରୀ,ଯେଉଁ ମହାଜନ ମୂଳଧନର ତିନିଗୁଣ ସୁଧନେ

ତ୍ରୈଗୁଣ୍ୟ—କ୍ଳୀ. ବ. (ତ୍ରିଗୁଣ+ଯ) ସତ୍ତ୍ୱ ରଜଃ ଓ ତମଃ ଏହି ତିନିଗୁଣର ସମଷ୍ଟି, ଉକ୍ତ ୩ସର ଭଙ୍ଗାହେବା ଅବସ୍ଥା, (ବଂ) ତ୍ରିଗୁଣ ସମ୍ବନ୍ଧୀୟ ।

ତ୍ରୈତ—ପୁଂ. ବ. ଯୁଗପତ୍ତ୍ରିଜନ୍ମଧାରକ ଗର୍ଭିଜାତ ପଶୁ ।

ତ୍ରୈତନ—ପୁଂ. ବ. ଅତ୍ୟନ୍ତ ନିର୍ଘୃଣ ଦାସଭେଦ ।

ତ୍ରୈଦଶିକ—କ୍ଳୀ. ବ. ଦୈବ ଅଙ୍ଗୁଲାଗ୍ର ରୂପ ତୀର୍ଥଭେଦ, ଅଙ୍ଗୁଳର ଅଗ୍ରଭାଗ, ତ୍ରୈଦଶିକ ତୀର୍ଥ ।

ତ୍ରୈଧ—ଅବ୍ୟ. ତିନିପ୍ରକାର ।

ତ୍ରୈଧର୍ମ୍ୟ—କ୍ଳୀ. ବ. ଋଗାଦିବେଦ ସମ୍ବନ୍ଧୀୟ ହୋତ୍ର, ଅଧ୍ୱର୍ଯ୍ୟ ଓ ଉଦ୍ଗାତାର୍ହ-ଜ୍ୟୋତି ଷ୍ଟୋମାଦି ଯଜ୍ଞରେ କାମ୍ୟକର୍ମ

ତ୍ରୈଧାତବୀ—ସ୍ତ୍ରୀ.ବ. ଉଦବସାନୀୟାଖ୍ୟା ଯଜ୍ଞଭେଦ ।

ତ୍ରୈଧାତବୀୟ—କ୍ଳୀ. ବ. ଯଜ୍ଞଭେଦାଙ୍ଗ କର୍ମଭେଦ ।

ତ୍ରୈଧାତୁକ—ତ୍ରି.ବଂ. (ତ୍ରିଧାତୁ+କ) ସ୍ୱର୍ଣ୍ଣ ରୌପ୍ୟ ଓ ଲୌହରେ ତିଆରି, ସ୍ୱର୍ଣ୍ଣାଦି ଧାତୁତ୍ରୟ ନିଷ୍ପାଦ୍ୟ ।

ତ୍ରୈନିଷ୍କିକ—ତ୍ରି. ବଂ. ତ୍ରିନିଷ୍କଦ୍ୱାରା କ୍ରୀତ, ଯାହା ତିନି ନିଷ୍କଦେଇ କ୍ରୟ ହୋଇଅଛି ।

ତ୍ରୈପାରାୟଣିକ—ତ୍ରି. ବଂ. ତ୍ରିବାର ବେଦପାରାୟଣ କାରକ ।

ତ୍ରୈପୁର—ପୁଂ. ବ. (ତ୍ରିପୁର+ଅ) ତ୍ରିପୁର ଦେଶ, ପିତୃପିତାମହକ୍ରମେ ତ୍ରିପୁରବାସୀ, ତ୍ରିପୁରର ରାଜା,ତ୍ରିପୁର ସ୍ୱାମୀ ଅସୁରଭେଦ,ତ୍ରିପୁରାସୁର ।

ତ୍ରୈପୁରୁଷ—ବଂ. (ତ୍ରିପୁରୁଷ+ଅ) ତିନି ପୁରୁଷ ବ୍ୟାପୀ ।

ତ୍ରୈଫଲ—କ୍ଳୀ. ବ. ଚକ୍ରଦତ୍ତୋକ୍ତ ଘୃତ ଭେଦ ।

ତ୍ରୈବଲ—ପୁଂ. ବ. ଋଷିଭେଦ ।

ତ୍ରୈମାତୁର—ପୁଂ. ବ. (ତ୍ରିମାତୃ+ଉର)କୌଶଲ୍ୟା ଓ କୈକେୟୀଙ୍କ ପ୍ରଦତ୍ତ ଚରୁର ଫଳରେ ସୁମିତ୍ରାଙ୍କ ଗର୍ଭଜାତ ସନ୍ତାନ, ଲକ୍ଷ୍ମଣ ।

ତ୍ରୈମାସିକ—ବଂ. (ତ୍ରିମାସ+ଇକ) ତିନିମାସ ବୟସ୍କ, ତିନିମାସରେ ଘଟିବା

ତ୍ରୈମାସ୍ୟ—କ୍ଳୀ. ବ. (ତ୍ରିମାସ+ଯ) ତ୍ରିମାସ, ତିନିମାସ ।

ତ୍ରୈୟମ୍ବକ—ତ୍ରି.ତ୍ର୍ୟମ୍ବକ ଦେବତାଙ୍କର ଉଦ୍ଦେଶେ ପଶୁଭେଦ, ହୋମଭେଦ, ରୁଦ୍ର ଦେବତାଙ୍କ ବଳି ପ୍ରଭୃତି, ରୁଦ୍ର ଦେବତାଙ୍କ ଧନୁର୍ବିଦ୍ୟାଭେଦ ।

ତ୍ରୈୟମ୍ବକା—ସ୍ତ୍ରୀ. ବ. ଗାୟତ୍ରୀ ।

ତ୍ରୈରାଶିକ—ବ. (ତ୍ରିରାଶି+କ) ଗଣିତ-ଭେଦ,(ବଂ)ଜ୍ୟୋତିଷୋକ୍ତ ତିନିଗୋଟି ରାଶିସମ୍ବନ୍ଧୀୟ, ତିନିଗୋଟି ରାଶିର ପରସ୍ପର ଘଟିତ ଅଙ୍କ ପ୍ରଣାଳୀ ।

ତ୍ରୈରୂପ୍ୟ—କ୍ଳୀ. ବ. (ତ୍ରିରୂପ+ଯ) ତ୍ରିଧାରୂପ ।

ତ୍ରୈଲିଙ୍ଗ—କ୍ଳୀ. ବ. (ତ୍ରିଲିଙ୍ଗ+ଅ) ତ୍ରିଲିଙ୍ଗପ୍ରଧାନ କାର୍ଯ୍ୟ ।

ତ୍ରୈଲୋକ—ପୁଂ. ବ. (ତ୍ରିଲୋକ+ଯ) ତ୍ରୈଲୋକ୍ୟ, ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ।

ତ୍ରୈଲୋକ୍ୟ— ବ. (ତ୍ରିଲୋକ+ଯ) ତ୍ରିଲୋକ, ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ।

ତ୍ରୈଲୋକ୍ୟଚନ୍ତାମଣିରସ—ପୁଂ. ବ. ରସେନ୍ଦ୍ରସାରସଂଗ୍ରହୋକ୍ତ ଔଷଧଭେଦ ।

ତ୍ରୈଲୋକ୍ୟଡମ୍ବରରସ—ପୁଂ.ବ.ରସେନ୍ଦ୍ର-ସାରସଂଗ୍ରହୋକ୍ତ ଔଷଧଭେଦ ।

ତ୍ରୈଲୋକ୍ୟମଲ୍ଲ—ଚାଲୁକ୍ୟରାଜ ପ୍ରଥମ ଭୀମଦେବଙ୍କର ପରବର୍ତ୍ତୀ ରାଜା,ନେପା-ଳର ଜଣେ ରାଜା,ପାଶ୍ଚାତ୍ୟ ଚାଲୁକ୍ୟର ପ୍ରଥମ ସୋମେଶ୍ୱରଙ୍କର ନାମାନ୍ତର, ଗୋୟାଲିୟରର କଚ୍ଛ ପାରବଂଶଜ କୀର୍ତ୍ତିରାଜର ପୁତ୍ର ମୂଳଦେବଙ୍କର ନାମା-ନ୍ତର ।

ତ୍ରୈଲୋକ୍ୟମୋହନ—ପୁଂ. ବି. ତ୍ରିଲୋକର ବଶକାରୀ, ଅତ୍ୟନ୍ତ ସୁନ୍ଦର ।
ତ୍ରୈଲୋକ୍ୟମୋହିନୀ—ଗ୍ରା. ସ୍ତ୍ରୀ. ବି. ଅତି ସୁନ୍ଦରୀ ସ୍ତ୍ରୀ ।
ତ୍ରୈଲୋକ୍ୟଧର୍ମଦେବ—ଜନୈକ କାଲଞ୍ଜର ରାଜା ।
ତ୍ରୈଲୋକ୍ୟରାଜ—ପୁଂ. ବି. କାଶ୍ମୀରର ଜଣେ ରାଜା ।
ତ୍ରୈଲୋକ୍ୟବିଜୟ—ବି. ତ୍ରିଲୋକକୁ ଜିଣିବା, (ବିଂ) ଯେ ତ୍ରିଲୋକକୁ ଜୟ କରିଅଛି ।
ତ୍ରୈଲୋକ୍ୟବିଜୟା--ସ୍ତ୍ରୀ.ବି.ଭାଙ୍ଗ, ସିଦ୍ଧି ।
ତ୍ରୈଲୋକ୍ୟସୁନ୍ଦରରସ--ପୁଂ.ବି.ରସେନ୍ଦ୍ରସାରସଂଗ୍ରହୋକ୍ତ ଔଷଧଭେଦ ।
ତ୍ରୈବଣ—ତ୍ରି. ବିଂ. ତ୍ରିବଣସମ୍ବନ୍ଧୀୟ ।
ତ୍ରୈବଣି—ପୁଂ. ବି. ତ୍ରିବଣ ଋଷିଙ୍କର ଅପତ୍ୟ ।
ତ୍ରୈବର୍ଗିକ—ବିଂ. (ତ୍ରିବର୍ଗ+ଇକ) ଧର୍ମାର୍ଥ କାମ ସାଧନ ।
ତ୍ରୈବର୍ଗ୍ୟ—ତ୍ରି. ବିଂ. ତ୍ରିବର୍ଗ ସାଧନ ଧନାଦି ।
ତ୍ରୈବର୍ଣ୍ଣିକ—ପୁଂ.ବି. (ତ୍ରିବର୍ଣ୍ଣ+ଇକ) ବ୍ରାହ୍ମଣାଦି ତ୍ରୟରୂପ ଦ୍ୱିଜାତିର ଧର୍ମ,ବିଂ. ତ୍ରିବର୍ଣ୍ଣଜାତ,ବ୍ରାହ୍ମଣ,କ୍ଷତ୍ରିୟ,ବୈଶ୍ୟୋତ୍ପନ୍ନ । [ ହେବ ।
ତ୍ରୈବାର୍ଷିକ—ବି. ତିନିବର୍ଷେ ଯେଉଁ ବସ୍ତୁ
ତ୍ରୈବାର୍ଷିକ—ତ୍ରି. ବିଂ. ତିନିବର୍ଷରେ ଯାହା ହୋଇଅଛି,ତିନିବତ୍ସରବ୍ୟାପୀ ।
ତ୍ରୈବିକ୍ରମ—ବିଂ. ତ୍ରିବିକ୍ରମ ସମ୍ବନ୍ଧୀୟ, (ତ୍ରି.ବି) ବାମନାବତାର, ବିଷ୍ଣୁ ।
ତ୍ରୈବିଦ୍ୟ—ପୁଂ. ବିଂ. (ତ୍ରିବିଦ୍ୟା+ଅ) ତ୍ରିବେଦଜ୍ଞ,ତ୍ରିବେଦବେତ୍ତା,ତ୍ରିବେଦୀ ।
ତ୍ରୈବିଧ୍ୟ—କ୍ଲୀ. ବି. (ତ୍ରିବିଧ+ଯ) ତ୍ରିପ୍ରକାରତ୍ୱ, ତିନିପ୍ରକାର ।
ତ୍ରୈବିଷ୍ଟପ—ପୁଂ. ବି. (ତ୍ରିବିଷ୍ଟପ+ଅ) ଦେବତା, ଯେଉଁମାନେ ସ୍ୱର୍ଗରେ ବାସ କରନ୍ତି ।
ତ୍ରୈବିଷ୍ଟପେୟ—ପୁଂ. ବି. ଦେବତା ।
ତ୍ରୈବୃଷ୍ଣ—ପୁଂ. ବି. ରାଜ ବିଶେଷ ।

ତ୍ରୈବେଦିକ—ତ୍ରି.ବିଂ. ବେଦତ୍ରୟସ୍ୱାଧ୍ୟାୟନାର୍ଥ ବ୍ରତାଦି ।
ତ୍ରୈଶଙ୍କବ—ପୁଂ. ବି. ତ୍ରିଶଙ୍କୁର ପୁତ୍ର, ହରିଶ୍ଚନ୍ଦ୍ର ।
ତ୍ରୈଶାଣ—ତ୍ରି. ବିଂ. ତ୍ରିଶାଣ ପରିମିତ, ତ୍ରିଶାଣ ପରିମାଣ ଦ୍ୱାରା କ୍ରୀତ ।
ତ୍ରୈଶୋକ—କ୍ଲୀ. ବି. ବିଶ୍ୱାପୃତନା ଇତ୍ୟାଦି ଋଗ୍‌ବେଦର ଗେୟ ବ୍ରହ୍ମର ସ୍ତୁତିବିଷୟକ ସାମଭେଦ ।
ତ୍ରୈଷ୍ଟୁଭ—ତ୍ରି. ବିଂ. ତ୍ରିଷ୍ଟୁଭ୍ ଛନ୍ଦ ସମ୍ବନ୍ଧୀୟ ।
ତ୍ରୈସାନୁ--ପୁଂ.ବି.ତର୍ବସୁବଂଶୀୟ ଗୋଭାନୁ ପୁତ୍ର ନୃପଭେଦ ।
ତ୍ରୈସ୍ୱର୍ଯ୍ୟ—କ୍ଲୀ. ବି. ଉଦାତ୍ତ, ଅନୁଦାତ୍ତ ଓ ସ୍ୱରିତରୂପ ତିନିସ୍ୱର ।
ତ୍ରୈହାୟଣ—ତ୍ରି. ବିଂ. ତିନିବର୍ଷରେ ଘଟିବା, ତ୍ରିବର୍ଷ ସମ୍ବନ୍ଧୀୟ, (ବି) ତିନି ବର୍ଷକାଳ ।
ତ୍ରୋଟକ—ତ୍ରି. ବିଂ. (ତ୍ରୁଟ+ଣ.ଅକ) ଛେଦକ,(ବି)ବିଷଧର ପୋକ ବିଶେଷ, ତ୍ରୋଧମୟବାକ୍ୟ, ଦୃଶ୍ୟ କାବ୍ୟ ବା ନାଟକ ବିଶେଷ ।
ତ୍ରୋଟକୀ—ସ୍ତ୍ରୀ. ବି. (ତ୍ରୁଟ+ଅକ+ଈ) ରାଗିଣୀ ବିଶେଷ ।
ତ୍ରୋଟି—ସ୍ତ୍ରୀ. ବି. (ତ୍ରୁଟ+କ.ଇ)ମାଛର ମୁହଁ, ପକ୍ଷୀର ଚଞ୍ଚୁ,ତୋଡ଼ିମାଛ, କଙ୍କ ପକ୍ଷୀ, କାଫଡ଼ ବା କଟଫଳଗଛ ।
ତ୍ରୋଟିତ—ବି. (ତ୍ରୁଟ+ମି.ତ) ଭଗ୍ନ ଯାହା ତୁଟି ଯାଇଅଛି ।
ତ୍ରୋଟିହସ୍ତ—ପୁଂ. ବି. (ବ.ବ୍ରୀ) ପକ୍ଷୀ ।
ତ୍ରୋଟୀ—ସ୍ତ୍ରୀ. ବି. (ତ୍ରୁଟ+ଅ+ଈ) ତ୍ରୋଟି ଦେଖ, ଚଞ୍ଚି, ଚୋଞ୍ଚ ।
ତ୍ରୋଣ—ଗ୍ରା. ବି. ଶରମୁଣା ।
ତ୍ରୋତଲ—ବିଂ. ତୋତଲ ଦେଖ ।
ତ୍ରୋତ୍ର—କ୍ଲୀ. ବି. (ତ୍ରୈ+ତ୍ରନ) ଗବାଦି ତାଡ଼ନଦଣ୍ଡ, ପାଞ୍ଚଣବାଡ଼ି, ଅସ୍ତ୍ର ରୋଗ ବିଶେଷ । [ ଅଂଶ ।
ତ୍ର୍ୟଂଶ—ପୁଂ. ବି.ତୃତୀୟଅଂଶ, ତ୍ରିଗୁଣିତ
ତ୍ର୍ୟକ୍ଷ—ପୁଂ. ବି. (ତ୍ରି+ଅକ୍ଷି) ଶିବ,

ତ୍ରିନେତ୍ର, ଦୈତ୍ୟ ବିଶେଷ, (ବିଂ) ଯାହାର ତିନିଗୋଟି ଆଖି, ନେତ୍ରତ୍ରୟବିଶିଷ୍ଟ ।
ତ୍ର୍ୟକ୍ଷର—ବିଂ. (ବ.ବ୍ରୀ) ୩ ଅକ୍ଷର ଯୁକ୍ତ, (ବି) ପ୍ରଣବ,ଓଁକାର, ୩ ଅକ୍ଷରଯୁକ୍ତ ବର୍ଣ୍ଣ,ବିବାହର ଘଟକ,ଛନ୍ଦୋବିଶେଷ ।
ତ୍ର୍ୟକ୍ଷା—ସ୍ତ୍ରୀ. ବି. (ତ୍ର୍ୟକ୍ଷ+ଆ)ଦୁର୍ଗା ।
ତ୍ର୍ୟକ୍ଷୀ—ସ୍ତ୍ରୀ. ବି. ରାକ୍ଷସୀଭେଦ ।
ତ୍ର୍ୟଙ୍ଗ—କ୍ଲୀ. ବି. ସୌବିଷ୍ଟିକୃତ ହବିଃ ।
ତ୍ର୍ୟଙ୍ଗଟ—କ୍ଲୀ. ବି. (ତ୍ରି+ଅଙ୍ଗ+ଟ) ତିନି କୋଣିଆ ବା ଦଉଡ଼ି ଲଗିଥିବା ଶିକା ବିଶେଷ, ତେଙ୍ଗଡ଼ା, (ପୁଂ. ବି) ଈଶ୍ୱର, ଚନ୍ଦ୍ରମା ।
ତ୍ର୍ୟଙ୍ଗୁଳ—ତ୍ରି. ବିଂ. (ବ.ବ୍ରୀ)ଅଙ୍ଗୁଳିତ୍ରୟ ପରିମିତ, ଶାତଯୁକ୍ତ ।
ତ୍ର୍ୟଞ୍ଜନ—କ୍ଲୀ. ବି. କାଳାଞ୍ଜନ, ରସାଞ୍ଜନ ଓ ପୁଷ୍ପାଞ୍ଜନରୂପ ମିଳିତ ଅଞ୍ଜନତ୍ରୟ ।
ତ୍ର୍ୟଞ୍ଜଳ—କ୍ଲୀ. ବି.ସମାହୃତ ଅଞ୍ଜଳିତ୍ରୟ ।
ତ୍ର୍ୟଧିପତି—ପୁଂ. ବି.ତ୍ରିଲୋକର ଅଧିପତି, କୃଷ୍ଣ, ବିଷ୍ଣୁ ।
ତ୍ର୍ୟଧିଷ୍ଠାନ—ପୁଂ. ବି. ଜୀବ, ଜାଗ୍ରଦାଦି ଅବସ୍ଥା ତ୍ରୟ ସାକ୍ଷୀକୂଟସ୍ଥ ଚୈତନ୍ୟ ।
ତ୍ର୍ୟଧୀଶ—ପୁଂ. ବି.ତ୍ର୍ୟଧିପତି, ବିଷ୍ଣୁ ।
ତ୍ର୍ୟଧଗା—ସ୍ତ୍ରୀ. ବି. ଗଙ୍ଗା ।
ତ୍ର୍ୟନୀକ—ପୁଂ. ବି. ଫବସୂତ୍ରଭିମାଣ୍ଡ ଦେବତାଭେଦ, (ସ୍ତ୍ରୀ) ହସ୍ତ୍ୟଶ୍ୱରଥାଙ୍ଗ ସେନାଭେଦ ।
ତ୍ର୍ୟମୃତଯୋଗ—ପୁଂ. ବି. ତିଥିନକ୍ଷତ୍ର ଓ ବାର ବିଷୟକ ଯୋଗଭେଦ ।
ତ୍ର୍ୟମ୍ବକ—ପୁଂ.ବି. ଶିବ, ମହାଦେବଙ୍କର ଅଂଶରେ ଉତ୍ପନ୍ନ ଚନ୍ଦ୍ରଶେଖର ନାମରେ ପୋଷ୍ୟ ରାଜପୁତ୍ର, ଏକାଦଶ ରୁଦ୍ରଙ୍କ ମଧ୍ୟରୁ ଜଣେ ।
ତ୍ର୍ୟମ୍ବକସଖା—ପୁଂ. ବି.(୬ତତ୍)କୁବେର ।
ତ୍ର୍ୟମ୍ବକା—ସ୍ତ୍ରୀ.ବି. (ତ୍ର୍ୟମ୍ବକ+ଆ)ଦୁର୍ଗା ।
ତ୍ର୍ୟରୁଣ—ପୁଂ. ବି. ତ୍ରିବୃଷ୍ଣପୁତ୍ର ରାଜର୍ଷି ଭେଦ ।
ତ୍ର୍ୟରଷି—ତ୍ରି.ବିଂ.ରୋଚମାନ ଶୁଭ୍ରପୃଷ୍ଠାଦି ସ୍ଥାନତ୍ରୟ ଯୁକ୍ତ ଗବାଦି ।

ତ୍ର୍ୟବର—ତ୍ରି.ବିଂ. ସେବକତ୍ରୟ ବିଶିଷ୍ଟ ।
ତ୍ର୍ୟବି—ପୁଂ. ବି. ଅଷ୍ଟାଦଶ ମାସ ବୟସ୍କ ପଶୁ ।
ତ୍ର୍ୟବ୍ଦ—କ୍ଲୀ. ବି. ବର୍ଷତ୍ରୟ ।
ତ୍ର୍ୟଶୀତି—ବି ଓ ବିଂ. (ତ୍ରି+ଅଶୀତି) ୮୦ଅପେକ୍ଷା ତିନଅଧିକ ସଂଖ୍ୟା, ୮୩ ସଂଖ୍ୟା, ୮୩ସଂଖ୍ୟକ ।
ତ୍ର୍ୟଶୀତିତମ—ତ୍ରି. ବିଂ. ୮୩ସଂଖ୍ୟାର ପୂରଣ ।
ତ୍ର୍ୟଷ୍ଟକ—କ୍ଲୀ. ବି. ସୁଶ୍ରୁତୋକ୍ତ ଜଳ ନିକ୍ଷେପଣ ସ୍ଥାନଭେଦ ।
ତ୍ର୍ୟଷ୍ଟ—ତ୍ରି. ବି. ଚତୁର୍ବିଂଶତି ସଂଖ୍ୟା, ତତ୍‌ସଂଖ୍ୟେୟ,୮ର ତିନିଗୁଣ ସଂଖ୍ୟା ।
ତ୍ର୍ୟସ୍ର—କ୍ଲୀ. ବି. (ବ.ବ୍ରୀ) ତ୍ରିକୋଣ, ତ୍ରିଭୁଜ ।
ତ୍ର୍ୟହ—ପୁଂ. ବି. ଦିନତ୍ରୟ ।
ତ୍ର୍ୟହସ୍ପର୍ଶ—ପୁଂ. ବି. (ତ୍ରି+ଅହନ୍+ସ୍ପର୍ଶ) ଏକଦିନରେ ତିନି ତିଥିର ଯୋଗ ।
ତ୍ର୍ୟହସ୍ପୃକ୍—କ୍ଲୀ. ବି. ତିନିଦିନକୁ ସ୍ପର୍ଶ କରିଥିବା ଗୋଟିଏ ତିଥି ।
ତ୍ର୍ୟହୀନ—ପୁଂ.ବି.ତ୍ରିଦିନସାଧ୍ୟ କ୍ରତୁଭେଦ ।
ତ୍ର୍ୟହୈହିକ—ତ୍ରି.ବିଂ. ଦିନତ୍ରୟନିର୍ବାହୋ-ଚିତ ଧନଯୁକ୍ତ, ତିନିଦିନ ନିର୍ବାହ ହୋଇ ପାରେ ଏପରି ଧନଶାଳୀ ।
ତ୍ର୍ୟାକ୍ଷାୟଣ—ପୁଂ. ବି. ଶିଶୁପାଳ ହରି ହର ପୁତ୍ର ଅପତ୍ୟ । [ ବିଷୟ ।
ତ୍ର୍ୟାକ୍ଷାୟଣଭକ୍ତ—ପୁଂ. ବି. ତ୍ର୍ୟାକ୍ଷାୟଣର
ତ୍ର୍ୟାୟୁଷ—କ୍ଲୀ. ବାଲ୍ୟାଦି ଆୟୁତ୍ରୟ, ବାଲ୍ୟ ଯୌବନ ଓ ସ୍ଥବିରତ୍ୱ ।
ତ୍ର୍ୟାଶିର—ତ୍ରି. ଅଗ୍ନିର ବୃଷଭେଦ ।
ତ୍ର୍ୟାର୍ଷେୟ—ପୁଂ. ବି.ତ୍ରିପ୍ରବର, ଗୋତ୍ର-ଭେଦ, ଯେଉଁ ଗୋତ୍ରର ତିନୋଟି ପ୍ରବର ଅଛି ।
ତ୍ର୍ୟାହଣ--ପୁଂ ଓ ସ୍ତ୍ରୀ.ବି.ବଙ୍କିରପକ୍ଷୀଭେଦ ।
ତ୍ର୍ୟାହାବ—ପୁଂ.ବି. ଦେଶଭେଦ ।
ତ୍ର୍ୟାହିକ—ତ୍ରି. ବିଂ. ( ତ୍ରିହନ୍+ଇକ ) ତିନିଦିନ ଅନ୍ତରେ ଯେଉଁ ଜ୍ୱର ହୁଏ, ତିନିଦିନରେ ଘଟିତ ।
ତ୍ର୍ୟୁଦୟ—କ୍ଲୀ.ବି. ସୋମାଙ୍ଗ୍ୟ ଦ୍ରବ୍ୟ ।
ତ୍ର୍ୟୂଧନ—ପୁଂ.ବି. ବସନ୍ତାଦି ଋତୁପାଧୋ-(ସ୍ତନ) ଯୁକ୍ତ ବତ୍ସର ରୂପ ବୃଷଭ ।
ତ୍ର୍ୟୂଷଣ—ବି. କ୍ଲୀ. ମିଳିତ ଶୁଣ୍ଠି ପିପ୍ପଳୀ ଓ ମରିଚ ଚରକୋକ୍ତ ଘୃତବିଶେଷ ।
ତ୍ର୍ୟୂଷଣାଦି ମଣ୍ଡୂର—କ୍ଲୀ.ବି. ପାଣ୍ଡୁ ରୋଗା-ଧିକାର ଔଷଧ ବିଶେଷ ।
ତ୍ର୍ୟୂଷଣାଦ୍ୟ ବର୍ତ୍ତି—ସ୍ତ୍ରୀ.ବି. ବର୍ତ୍ତି ବିଶେଷ
ତ୍ର୍ୟୃଚ—କ୍ଲୀ.ବି. ଋଗ୍‌ବେଦର ତିନୋଟି ମନ୍ତ୍ର ବିଶେଷ । [ ସ୍ତ୍ରୀ ।
ତ୍ରୈଣୀ—ସ୍ତ୍ରୀ.ବି. ତିନି ସ୍ଥାନରେ କର୍ବୁରା
ତ୍ୱ—(ଭାବାର୍ଥ ଓ ଗୁଣବାଚକ–ତ୍ୱ ପ୍ରତ୍ୟୟ)
ତ୍ୱଂ-ସର୍ବ.(ଯୁଷ୍ମଦ୍ ଶବ୍ଦର ପ୍ରଥମୈକବଚନ) ତୁମ୍ଭେ, ଭବାନ୍, ଆପଣ ।
ତ୍ୱକ୍—ସ୍ତ୍ରୀ.ବି. ( ତ୍ୱଚ+କ୍‌ୱିପ୍ ) ଚର୍ମ, ଛାଲି, ଗଛର ବକଳ, ସ୍ପର୍ଶେନ୍ଦ୍ରିୟ, ଫଳର ଚୋପା, ଡାଳଚିନି, ତେଜପତ୍ର, ଛତାଉଷି
ତ୍ୱକ୍ କଣ୍ଡୁର—ପୁଂ. ବି. ବ୍ରଣ, କ୍ଷତ, ଘା,
ତ୍ୱକ୍‌କ୍ଷୀରା—ସ୍ତ୍ରୀ. ବି. (ତ୍ୱକ୍+କ୍ଷୀର+ଆ) ବଂଶଲୋଚନା ।
ତ୍ୱକ୍‌କ୍ଷୀରୀ—ସ୍ତ୍ରୀ. ବି. ( ତ୍ୱକ୍‌କ୍ଷୀର+ଈ ) ବଂଶଲୋଚନା ।
ତ୍ୱକ୍‌ଛଦ—ପୁଂ.ବି.(ତ୍ୱକ୍+ଛଦ+କ.ଅ) କ୍ଷୀରୀଶ ବୃକ୍ଷ, କ୍ଷୀରକଞ୍ଚୁକୀଗଛ, ଶେକଣ ଦେଖ ।
ତ୍ୱକ୍‌ଛେଦ—କ୍ଲୀ.ବି. (୬ତତ୍) ମୁସଲମାନ ପ୍ରଭୃତି ମ୍ଲେଚ୍ଛ ଜାତିମାନଙ୍କର ସଂସ୍କାର ବିଶେଷ ।
ତ୍ୱକ୍ ତରଙ୍ଗ—ପୁଂ. ବି. କଣ୍ଡୁ ପଦାର୍ଥ ।
ତ୍ୱକ୍‌ତ୍ର—କ୍ଲୀ.ବି. (ତ୍ୱକ୍+ତ୍ର+ଅ) ବର୍ମ, ସଞ୍ଜୁ, କବଚ ।
ତ୍ୱକ୍‌ପଞ୍ଚକ—କ୍ଲୀ.ବି.ନ୍ୟଗ୍ରୋଧ,ଉଦୁମ୍ବର, ଅଶ୍ୱତ୍ଥ, ଶିରୀଷ ଓ ପ୍ଲକ୍ଷ ଏହି ପାଞ୍ଚୋଟି ଗଛର ନାମ ତ୍ୱକ୍‌ପଞ୍ଚକ ।
ତ୍ୱକ୍‌ପତ୍ର—କ୍ଲୀ.ବି.ଗୁଡ଼ତ୍ୱକ୍,ଦାରୁଚିନି, ତେଜପତ୍ର ।
ତ୍ୱକ୍‌ପତ୍ରୀ—ସ୍ତ୍ରୀ.ବି. ହିଙ୍ଗୁପତ୍ରୀ, କଦଳୀ-ଚିନି, ଏକପ୍ରକାର ଫୁଲ, ତେଜପତ୍ର-ତ୍ୱାପ୍ୟପତ୍ର ।
ତ୍ୱକ୍‌ପାକ—ପୁଂ. ବି. ଶୀତପିତ୍ତ ରୋଗ, ପିତୁଲା, ଶୁକଦୋଷ ନିମିତ୍ତ ପୀଡ଼ିକା ରୋଗବିଶେଷ ।
ତ୍ୱକ୍‌ପାରୁଷ୍ୟ—କ୍ଲୀ.ବି. ତ୍ୱକ୍‌ର କାଠିନ୍ୟ
ତ୍ୱକ୍‌ପୁଷ୍ପ—କ୍ଲୀ. ବି. ରୋମାଞ୍ଚ, କିଲାସ, ଶୁଖିଲା କୁଣ୍ଡିଆ ।
ତ୍ୱକ୍‌ପୁଷ୍ପିକା—ସ୍ତ୍ରୀ.ବି.ଚର୍ମରୋଗବିଶେଷ, କୁଣ୍ଡିଆ, କାଛୁ ।
ତ୍ୱକ୍‌ସାର—ପୁଂ.ବି.ବାଂଶ,ବାଂଶର ତ୍ୱକ୍, ଗୁଡ଼ତ୍ୱକ୍, ଦାରୁଚିନି, ଶୋଣବୃକ୍ଷ, ନଳିତା ବା ଖୋଟଗଛ, (ବିଂ) ଫମ୍ପା, ପୋଲ । [ ବୃକ୍ଷ ।
ତ୍ୱକ୍‌ସାରଭେଦନୀ—ସ୍ତ୍ରୀ. ବି. କ୍ଷୁଦ୍ରଚଞ୍ଚୁ
ତ୍ୱକ୍‌ସାରା—ସ୍ତ୍ରୀ.ବି.(ତ୍ୱକ୍+ସାର+ଆ) ବଂଶଲୋଚନା ।
ତ୍ୱକ୍‌ସୁଗନ୍ଧ—ପୁଂ. ବି. ନାରଙ୍ଗଲେମ୍ବୁ, ଲବଙ୍ଗ ।
ତ୍ୱକ୍‌ସୁଗନ୍ଧା—ସ୍ତ୍ରୀ. ବି. ସୂକ୍ଷ୍ମେଲା, ଗ୍ରେଟ-ଅଳେଇଚ, ଏଳବାଲୁକ ।
ତ୍ୱକ୍‌ସ୍ୱାଦୀ—ସ୍ତ୍ରୀ.ବି.ଦାରୁଚିନି, ଗୁଡ଼ତ୍ୱକ୍ ।
ତ୍ୱଗଙ୍କୁର—ପୁଂ.ବି.(୬ତତ୍)ରୋମାଞ୍ଚ ।
ତ୍ୱଗାକ୍ଷୀରୀ—ସ୍ତ୍ରୀ.ବି. ବଂଶଲୋଚନା ।
ତ୍ୱଗ୍‌ଗନ୍ଧ—ପୁଂ. ବି. ନାରଙ୍ଗ ଲେମ୍ବୁ, ନାଗରଙ୍ଗ ।
ତ୍ୱଗ୍‌ଜ—କ୍ଲୀ.ବି. ରୋମ, ରୁଧିର, ରକ୍ତ ।
ତ୍ୱଗାଧାରଦେହ—ପୁଂ. ବିଂ. ଯାହା ଦେହର ଆଧାର ତାହା ଦେହାବରଣ, ଶାମୁକାଦି । [ ରୋଗ ।
ତ୍ୱଗ୍‌ଦୋଷ—ପୁଂ.ବି. କୁଷ୍ଠ ରୋଗ, ଚର୍ମ-
ତ୍ୱଗ୍‌ଦୋଷାପହା— ସ୍ତ୍ରୀ. ବି. ବାକୁଚୀ, ସୋମରାଜୀ ।
ତ୍ୱଗ୍‌ଦୋଷାରି—ପୁଂ. ବି. ହସ୍ତିକନ୍ଦ, ଏହା ତ୍ୱଗ୍‌ଦୋଷ ନଷ୍ଟକରେ ।
ତ୍ୱଗ୍‌ଦୋଷୀ—ପୁଂ.ବି.ତ୍ୱଗ୍‌ଦୋଷଯୁକ୍ତ, କୁଷ୍ଠରୋଗୀ ।
ତ୍ୱଗ୍‌ଭେଦ—ପୁଂ.ବି.(୬ତତ୍) ତ୍ୱକାର-ଭେଦ, ଚମଡ଼ାରେ ହେବା ଫୋଟକା ।
ତ୍ୱଗ୍‌ଭେଦକ—ପୁଂ.ବି.ତ୍ୱଗ୍‌ଭେଦକାରୀ, ଯେ ଚମଡ଼ା ଫୋଡ଼େ ।

ବ୍ୟୂହ ବିଶେଷ,ଅଶ୍ୱ, କୋଣ, ଦନ୍ଥଖୁଆ, ମନ୍ଥନଦଣ୍ଡ, ସୂର୍ଯ୍ୟଙ୍କ ପାଶ୍ୱପାର୍ଶ୍ୱିକ ଗ୍ରହ ବିଶେଷ, ରାଜଦଣ୍ଡ, ରାଜଚିହ୍ନ ବିଶେଷ, ପତାକାର ବାଉଁଶ, ଯମ, ସୈନ୍ୟ, ୨୪ ମିନିଟ୍,ଦିନକର ଷାଠିଏଗରୁ ଏକଭାଗ, ୬୦ଲିତା ପରିମିତ ସମୟ,ଦୈର୍ଘ୍ୟ ପରିମାଣ ବିଶେଷ, ୪ହାତ ଯନ୍ତ୍ରାଦିର ବେଣ୍ଟ, ହଳର ଈଶ, ନଳ, ଲଠା, ପଦକ, ଇକ୍ଷ୍ୱାକୁ ରାଜପୁତ୍ର ଦଣ୍ଡକରାଜା, ଗଛ ବା ଫୁଲର ଡେମ୍ଫ, ଅଭିମାନ, ଆତ୍ମସମ୍ମାନ, ଡଙ୍ଗାର ଆହୁଲ,କାତ,ଜାହାଜର ମାସ୍ତୁଲ,ତରାଜୁ ବା ବିଶାର କାଠି, ବିଷ୍ଣୁ, (ଗ୍ରା. ବି) ପଣାସଂକ୍ରାନ୍ତି ଦିନ ଆଉଁ ଲୋକମାନେ କରିବା ଉପାସନା ବିଶେଷ, ଝାମୁଯାତ, ବାରଂବାର ଭୂମିରେ ଦଣ୍ଡବତ, ପତିତ ହୋଇ ଉଠିବା ରୂପ ବ୍ୟାୟାମ ବିଶେଷ, ଅଳ୍ପ ସମୟ ।

ଦଣ୍ଡକ—ପୁଂ. କ୍ଲୀ.ବି. (ଦଣ୍ଡ + କ.ଅକ) ଛନ୍ଦୋଭେଦ, ଯେ ଦଣ୍ଡଦିଏ, ଇକ୍ଷ୍ୱାକୁ ବଂଶର ପୁତ୍ରଭେଦ, ବାତରୋଗ, ଅତି ଅଳ୍ପସମୟ । [ ଭୂମିକନ୍ଦ ।

ଦଣ୍ଡକନ୍ଦକ—ପୁଂ. ବି. ଧରଣୀ ବୃକ୍ଷ

ଦଣ୍ଡକର୍ତ୍ତା—ପୁଂ. ବି. ଦଣ୍ଡ ବିଧାୟକ, ଯେ ଦଣ୍ଡ ବିଧାନ କରେ ।

ଦଣ୍ଡକର୍ମ୍ମ—କ୍ଲୀ.ବି.ଦଣ୍ଡବିଧାୟକ କାର୍ଯ୍ୟ ।

ଦଣ୍ଡକଳ—ପୁଂ. ବି. ଛନ୍ଦୋଭେଦ ।

ଦଣ୍ଡକା—ସ୍ତ୍ରୀ. ବି. ନାଗବଳା ଲତା, ଦାକ୍ଷିଣାତ୍ୟର ଅରଣ୍ୟର ବିଶେଷ,ଜନସ୍ଥାନ ନାମକ ପ୍ରଦେଶ, ଦେଶ ବିଶେଷ ।

ଦଣ୍ଡକାକ—ପୁଂ.ବି.ଦ୍ରୋଣକାକ, ଡାମରାକୁଆ ।

ଦଣ୍ଡକାରଣ୍ୟ—କ୍ଲୀ.ବି. ଜନସ୍ଥାନ,ଦଣ୍ଡକାବନ, ଦଣ୍ଡକ ନାମକ ନୃପତିଙ୍କ ରାଜ୍ୟ ।

ଦଣ୍ଡକାଷ୍ଠ—ସ୍ତ୍ରୀ. ବି. ଦଣ୍ଡ ନିମିତ୍ତ କାଷ୍ଠ, ଦଣ୍ଡସମ୍ବନ୍ଧୀୟ କାଷ୍ଠ ।

ଦଣ୍ଡକିର—ଗ୍ରା. ବି. (ସଂ-ଦଣ୍ଡକ) ଏକପ୍ରକାର ଅତି ଶ୍ରେଷ୍ଠ ମାଛ, ଦଣ୍ଡେଇ ମାଛ ।

ଦଣ୍ଡଗୌରୀ—ସ୍ତ୍ରୀ. ବି. ଅପ୍ସରା ବିଶେଷ ।

ଦଣ୍ଡଗ୍ରହଣ—କ୍ଲୀ.ବି.ସନ୍ନ୍ୟାସାଶ୍ରମ ଅବଲମ୍ବନ

ଦଣ୍ଡଗ୍ରହଣକରିବା—ଗ୍ରା. କ୍ରି. ସନ୍ନ୍ୟାସ ବ୍ରତ ଅବଲମ୍ବନ କରିବା, ଆପଣା ଉପରେ ଢଳିଆସିବା ଶାସ୍ତିକୁ ନତମସ୍ତକରେ ସ୍ୱୀକାର କରିବା ।

ଦଣ୍ଡଗ୍ରାହ—ତ୍ରି. ବିଂ.(ଦଣ୍ଡ+ଗ୍ରହ+କ. ଅ) ଦଣ୍ଡଗ୍ରାହୀ, ଦଣ୍ଡଧାରକ ।

ଦଣ୍ଡଗ୍ରାହୀ—ପୁଂ.ବିଂ.(ଦଣ୍ଡ + ଗ୍ରହ + କ. ଇନ୍)ଯେ ଯଷ୍ଟି ଧରେ ।

ଦଣ୍ଡଘ୍ନ—ତ୍ରି. ବିଂ. (ଦଣ୍ଡ + ହନ୍+ଅ) ଦଣ୍ଡ ପାରୁଷ୍ୟକର୍ତ୍ତା, ଯେ ଦୈହିକ ଦଣ୍ଡବିଧାନ କରେ ।

ଦଣ୍ଡଚକ୍ର—ପୁଂ. ବି. ପୁରାଣୋକ୍ତ ଅସ୍ତ୍ର ଭେଦ, ସୈନ୍ୟ ବିଭାଗ ଭେଦ ।

ଦଣ୍ଡଚକ୍ରାଦିନ୍ୟାୟ—ପୁଂ.ବି.ନ୍ୟାୟଭେଦ, କୁମ୍ଭକାର ଗୋଟିଏ ଘଟ ନିର୍ମାଣ କରିବାପାଇଁ ଯେଉଁପରି ଦଣ୍ଡଚକ୍ର ସୂତ୍ର ସଲିଲ ପ୍ରଭୃତି ବହୁ ଉପକରଣ ବା ଯନ୍ତ୍ର ଆବଶ୍ୟକ କରେ ତଦ୍ରୂପ ଗୋଟିଏ କାର୍ଯ୍ୟରେ ବହୁ କାରଣ ସ୍ୱୀକାରକରିବା ନ୍ୟାୟ ।

ଦଣ୍ଡଢକ୍କା—ସ୍ତ୍ରୀ. ବି. ବାଦ୍ୟ ବିଶେଷ, ଦାମାମା, ନାଗରା, ଢୋଲ ।

ଦଣ୍ଡତାମ୍ରୀ—ତାମ୍ରୀ ବାଦ୍ୟ ଭେଦ ।

ଦଣ୍ଡତ୍ୱ—କ୍ଲୀ.ବି. ଦଣ୍ଡତା, ଦଣ୍ଡର ଭାବ ।

ଦଣ୍ଡଦାତା—ପୁଂ. ବିଂ. ଦଣ୍ଡଦାନକାରୀ, ଶାସ୍ତିପ୍ରଦାତା ।

ଦଣ୍ଡଦାସ—ପୁଂ. ବି. ଧନ ଅଭାବରୁ ଯେ ରାଜକୃତଦଣ୍ଡ ସକାଶେ ଦାସତ୍ୱ ସ୍ୱୀକାର କରେ ।

ଦଣ୍ଡଦେବକୁଳ—କ୍ଲୀ. ବି. ଧର୍ମାଧିକରଣ, ପୁଲିସ୍, ଅଦାଲତ ।

ଦଣ୍ଡଦେଶୀ—ଗ୍ରା. ବି. କେନ୍ଦୁଝରର ଅଧିଷ୍ଠାତ୍ରୀ ଦେବତା ।

ଦଣ୍ଡଧର—ପୁଂ. ବି.(ଦଣ୍ଡ + ଧୃ + କ.ଅ) ଯମ, ରାଜା, କୁମ୍ଭକାର, (ତ୍ରି. ବିଂ) ଲଗୁଡ଼ଧାରକ, ଯଷ୍ଟିହସ୍ତ, ଦଣ୍ଡଧାରୀ ।

ଦଣ୍ଡଧାର—ପୁଂ. ବି. ଯମ, ସ୍ୱନାମଖ୍ୟାତ ଏକ ନୃପତି, ପାଣ୍ଡବପକ୍ଷୀୟ ବୀର ଧୃତରାଷ୍ଟ୍ରଙ୍କର ଏକପୁତ୍ର, କୁମ୍ଭକାର; (ବିଂ) ଶାସକ, କୁମ୍ଭକାର ।

ଦଣ୍ଡଧାରଣ—କ୍ଲୀ. ବି. ଦଣ୍ଡ ଗ୍ରହଣ, ସନ୍ନ୍ୟାସାଶ୍ରମ ଅବଲମ୍ବନ ।

ଦଣ୍ଡଧାରୀ—ପୁଂ. ବିଂ. (ଦଣ୍ଡ+ଧୃ+କ. ଇନ୍) ଦଣ୍ଡଧର, ଦଣ୍ଡାଶ୍ରମୀ, ଯେ ଯଷ୍ଟି ଧରିଥାଏ, (ବି)ଦଣ୍ଡୀ,ସନ୍ନ୍ୟାସୀ, ରାଜା, ଯମ ।

ଦଣ୍ଡଧୃକ୍—ପୁଂ. ବିଂ. ଦଣ୍ଡଧାରୀ ।

ଦଣ୍ଡନ—କ୍ଲୀ. ବି. (ଦଣ୍ଡ+ଭା.ଅନ) ଦଣ୍ଡ ଦେବା, ଶାସନ, ଶାସ୍ତି, ମନ୍ଥନ ।

ଦଣ୍ଡନଦଣ୍ଡ—ବି. (କ.ଧା) ଦଣ୍ଡଦେବା ବାଡ଼ି, ଦଣ୍ଡଦେବା ନିମନ୍ତେ ବ୍ୟବହୃତ ଯଷ୍ଟି ।

ଦଣ୍ଡନମଣ୍ଡନ—ବି. ଅପରାଧପାଇଁ ଦଣ୍ଡ ଦେବା ଓ ଭଲ କାର୍ଯ୍ୟପାଇଁ ପୁରସ୍କାର ଦେବା ।

ଦଣ୍ଡନାଟ—ଗ୍ରା. ବି. ପଣାସଂକ୍ରାନ୍ତିପୂର୍ବରୁ ଇତର ଜାତିର ଲୋକମାନେ ମନାସି ଥିବା ଅନୁସାରେ ପାଟୁଆ,ଶବର ଶବରୁଣୀ, ଚଢ଼େୟା ଚଢ଼େୟାଣୀ ଆଦି ବେଶରେ ଗ୍ରାମେ ଗ୍ରାମେ ବୁଲି ବାଦ୍ୟ ସହ ଗୀତବୋଲି ନାଚିବା ଯାହା ।

ଦଣ୍ଡନାୟକ—ପୁ .ବି. (୬ତତ୍ପୁ)ସେନାପତି,ଦଣ୍ଡପ୍ରଣେତା ନୃପ,ଦଣ୍ଡଦେବାର ଅଧିକାରୀ, ବିଗ୍ରହପତି, ସୂର୍ଯ୍ୟଙ୍କର ଜଣେ ଅନୁଚର ।

ଦଣ୍ଡନପାତନ—କ୍ଲୀ. ବି. ଦଣ୍ଡଦେବା ।

ଦଣ୍ଡନୀତି—ସ୍ତ୍ରୀ. ବି. (ବ.ଗ୍ରୁ) ଅର୍ଥଶାସ୍ତ୍ର, ରାଜନୈତିକ ଶାସ୍ତ୍ର, ଯହିଁରେ ରାଜକୀୟ ରାଜ୍ୟ ଶାସନ ସମ୍ପର୍କୀୟ ଯାବତୀୟ ନିୟମାଦି ଅଛି ।

ଦଣ୍ଡନୀୟ—ତ୍ରି. ବିଂ. (ଦଣ୍ଡ+ମଂ.ଅନୀୟ) ଦଣ୍ଡର ଯୋଗ୍ୟ, ଦଣ୍ଡ୍ୟ, ଦଣ୍ଡ ପାଇବାର ଉପଯୁକ୍ତ ।

ଦଣ୍ଡନେତା—ପୁଂ. ବିଂ. (ଦଣ୍ଡ + ନୀ + ତୃ) ଦଣ୍ଡବିଧାତା, ଦଣ୍ଡର ନେତା ।

ଦଣ୍ଡପ—ପୁଂ. ବି. ( ଦଣ୍ଡ + ପା + ଅ )

ଦଣ୍ଡ ଦ୍ୱାରା ପାଳକ ରାଜା, ଯେ ଦଣ୍ଡ ଦ୍ୱାରା ଶାସନ କରେ ।

**ଦଣ୍ଡପାଂଶୁଳ**—ପୁଂ. ବି. ଦ୍ୱାରପାଳ, ଦୌବାରିକ, ଦରୁଆନ, ଦ୍ୱାରୀ ।

**ଦଣ୍ଡପାଟ**—ଗ୍ରା. ବି. ରାଜ୍ୟ ଅଂଶ ବିଶେଷ, ଜିଲ୍ଲା ବା ସବ୍‌ଡିଭିଜନ, ଓଡ଼ିଶାର ପୂର୍ବ କାଳର ଶାସନବିଭାଗ ବିଶେଷ, ତନ୍ତ୍ରୀ ଜାତି ବିଶେଷ, ( ପ୍ରା. ସିଂହଭୂମ ବି.) ପ୍ରଧାନ ସେନାପତି ।

**ଦଣ୍ଡପାଣି**—ପୁଂ. ବି. ଯମ, କାଶୀସ୍ଥିତ ଭୈରବ ଭେଦ, ସ୍ୱନାମଖ୍ୟାତ ଚନ୍ଦ୍ରବଂଶୀୟ ନୃପ ବିଶେଷ, ବୁଦ୍ଧ ମୂର୍ତ୍ତିଭେଦ, (ବିଂ. ବ.ବ୍ରୀ) ଦଣ୍ଡଧର । [ ବିଶେଷ ।

**ଦଣ୍ଡପାତ**—ପୁଂ. ବି. ସନ୍ନିପାତ ରୋଗ-

**ଦଣ୍ଡପାତନ**—କ୍ଲୀ. ବି. (୬ତତ୍ପୁ) ଦଣ୍ଡନିକ୍ଷେପ ।

**ଦଣ୍ଡପାଦ**—ବି.(ବ.ବ୍ରୀ)ଊର୍ଦ୍ଧ୍ୱୀକୃତ ପାଦ, ଉପରକୁ ଗୋଡ଼ ଟେକିଥିବା ।

**ଦଣ୍ଡପାରୁଷ୍ୟ**—କ୍ଲୀ.ବି. (୬ତତ୍ପୁ) ଅଷ୍ଟାଦଶ ବିବାଦାନ୍ତର୍ଗତ ବିବାଦବିଶେଷ, ବ୍ୟବହାର ବିଷୟଭେଦ, ତାଡ଼ନାଦି କଠିନ ଶାରୀରିକ ଦଣ୍ଡ ।

**ଦଣ୍ଡପାଲ**—ପୁଂ. ବି. (ଦଣ୍ଡ+ପାଳ+ଅ) ମତ୍ସ୍ୟଭେଦ, ଦ୍ୱାରପାଳ ।

**ଦଣ୍ଡପାଳକ**—ବି. ( ଦଣ୍ଡ+ପାଳକ ) ଧର୍ମାଧିକରଣିକ, ବିଚାରପତି, ଦ୍ୱାରପାଳ, ଦଣ୍ଡିପୋହଳା ମାଛ, ଦଣ୍ଡେଇ ମାଛ ।

**ଦଣ୍ଡପାଶକ**—ପୁଂ.ବି. ପ୍ରଧାନ ଦଣ୍ଡଦାତା, ଘାତୁକ, ଜଲ୍ଲାଦ ।

**ଦଣ୍ଡପାଶିକ**—ପୁଂ. ବି. ଜଲ୍ଲାଦ, ଘାତୁକ, କଟୁଆଲ ।

**ଦଣ୍ଡପାଣୀ**—ପୁଂ.ବି. ରାଜା, ଯେଉଁ ବ୍ୟକ୍ତି ଲୋକଙ୍କୁ ବାନ୍ଧି ବାଡ଼େଇବା ପାଇଁ ଠେଙ୍ଗା ଓ ପାଶ ଧରିଥାଏ ।

**ଦଣ୍ଡପିଙ୍ଗଳକ**—ପୁଂ.ବି. ଉତ୍ତରସ୍ଥ ଦେଶଭେଦ ।

**ଦଣ୍ଡପ୍ରଣାମ**—ଗ୍ରା. ବି. ଦଣ୍ଡବତ ଦେଖ ।

**ଦଣ୍ଡବତ୍**—ଅବ୍ୟ. (ଦଣ୍ଡ+ବତ୍) ଯଷ୍ଟିପରି ସିଧାଭାବରେ, (ବିଂ--ଦଣ୍ଡ+ବତ୍) ଯଷ୍ଟିଧାରୀ,(ବି) ଦଣ୍ଡବତ ଦେଖ, ଦଣ୍ଡୀ-ସନ୍ନ୍ୟାସୀ ।

**ଦଣ୍ଡବତ**—ଗ୍ରା.ବି. ଦଣ୍ଡପରି ଭୂମିରେ ପଡ଼ି ପ୍ରଣାମ, ସାଷ୍ଟାଙ୍ଗ ପ୍ରଣିପାତ, (ଅବ୍ୟ) ପ୍ରଣାମ ବା ନମସ୍କାରସୂଚକ ସମ୍ବୋଧନ ।

**ଦଣ୍ଡବତକରିବା**—ଗ୍ରା.କ୍ରି.ସାଷ୍ଟାଙ୍ଗ ପ୍ରଣାମ କରିବା, ନମସ୍କାର କରିବା ।

**ଦଣ୍ଡବନ୍ତ**—ପ୍ରା. (ଗଞ୍ଜାମ)ବି.ସଲାମିରୂପେ ଦିଆଯିବା ଧନ, ପ୍ରଣାମୀ ।

**ଦଣ୍ଡବଧ**—ପୁଂ. ବି. ପ୍ରାଣଦଣ୍ଡ ।

**ଦଣ୍ଡବାଳଧି**—ପୁଂ. ବି. (ନ.ବ୍ରୀ) ହସ୍ତୀ ।

**ଦଣ୍ଡବାହୁ**—ବି. ( ବ.ବ୍ରୀ ) ଦଣ୍ଡାକାର ବାହୁଯୁକ୍ତ, ଜଣେ କୁମାରାନୁଚର ।

**ଦଣ୍ଡଭୀତ**—ସ୍ତ୍ରୀ. ବି. ଦଣ୍ଡିତ ହେବାର ଭୟ ।

**ଦଣ୍ଡଭୃତ୍**—ପୁଂ. ବି. (ଦଣ୍ଡ+ଭୃ+କ୍ୱିପ୍) କୁମ୍ଭକାର, ରାଜା, ଯମ, ( ବିଂ ) ଦଣ୍ଡଧାରକ, ଦଣ୍ଡପାଣି ।

**ଦଣ୍ଡମଣ୍ଡ**—ଗ୍ରା. ବି. ନାନାପ୍ରକାର ଦଣ୍ଡ, ଦଣ୍ଡ ଓ ପୁରସ୍କାର, ଅଭିଶାପ ।

**ଦଣ୍ଡମତ୍ସ୍ୟ**—ପୁଂ. ବି. ଦଣ୍ଡାକାର ମତ୍ସ୍ୟଭେଦ, ଶକୁଳ ମାଛ, ବର୍ମୀମାଛ ।

**ଦଣ୍ଡମାଣ(ନ)ବ**—ବି.(କ.ଧା) ଦଣ୍ଡପ୍ରଧାନ ଜନ, ବାଳକ ।

**ଦଣ୍ଡମାତଙ୍ଗ**—ପୁଂ. ବି. ପିଣ୍ଡତଗର ।

**ଦଣ୍ଡମାଥ**—ପୁଂ. ବି. ପ୍ରଧାନ ପଥ ।

**ଦଣ୍ଡମାଥିକ**—ପୁଂ. ବି. ପ୍ରଧାନ ପଥରେ ଧାବମାନ ବ୍ୟକ୍ତି ।

**ଦଣ୍ଡମୁଦ୍ରା**—ସ୍ତ୍ରୀ. ବି. ଦଣ୍ଡାକାର ମୁଦ୍ରା, ତନ୍ତ୍ରସାରୋକ୍ତ ମୁଦ୍ରାଭେଦ ।

**ଦଣ୍ଡଯାତ୍ରା**—ସ୍ତ୍ରୀ. ବି. ଯୁଦ୍ଧଯାତ୍ରା, ଦିଗ୍‌ବିଜୟ, ଶୋଭାଯାତ୍ରା, ପଟୁଆର, ବରଯାନ, ମିଳିତହୋଇ ଗମନ, ବରଯାତ୍ରା,(ଗ୍ରା. ବି) ପଣାସଂକ୍ରାନ୍ତି ପୂର୍ବରୁ ପଣାସଂକ୍ରାନ୍ତି-ପର୍ଯ୍ୟନ୍ତ ଇତରଲୋକମାନଙ୍କ ଦ୍ୱାରା ପାଳିତ ଉତ୍ସବ ।

**ଦଣ୍ଡଯାମ**—ପୁଂ.ବି. ଯମ,ଦିନ,ଅଗସ୍ତ୍ୟମୁନି ।

**ଦଣ୍ଡଯୋଗ**—ପୁଂ.ବି. ଦଣ୍ଡବିଧାନ,ଶାସ୍ତି-ପ୍ରଦାନ ।

**ଦଣ୍ଡରା**—ସ୍ତ୍ରୀ. ବି. ଡଙ୍ଗରା ବୃକ୍ଷ, ଏକ-ପ୍ରକାର କାକୁଡ଼ି ।

**ଦଣ୍ଡବାଦୀ**—ପୁଂ. ବି. (ଦଣ୍ଡ+ବଦ+ଇନ୍) ଦ୍ୱାରପାଳ, (ବିଂ) ଦଣ୍ଡବକ୍ତା,ଯେ ଶାସ୍ତି ଦେବାର ଭୟପ୍ରଦର୍ଶନ କରେ ।

**ଦଣ୍ଡବାନ୍**—ପୁଂ. ବିଂ. ( ଦଣ୍ଡ + ବତ୍ ) ଦଣ୍ଡଧାରୀ, ଦଣ୍ଡୀ, (ସ୍ତ୍ରୀ) ଦଣ୍ଡବତୀ ।

**ଦଣ୍ଡବାର୍ଷ୍ୟ**—କ୍ଲୀ. ବି. ଅବସ୍ଥାନଭେଦ ।

**ଦଣ୍ଡବାସିକ**—ପୁଂ.ବି. ଦ୍ୱାରବାନ୍,ଦ୍ୱାରପାଳ ।

**ଦଣ୍ଡବାସୀ**—ପୁଂ. ବି. ଦ୍ୱାରପାଳ, ଗ୍ରାମର ଶାସନକର୍ତ୍ତା, ଚୌକିଦାର ।

**ଦଣ୍ଡବାହୀ**—ପୁଂ. ବିଂ. (ଦଣ୍ଡ+ବହ+ଇନ୍) ଦଣ୍ଡଧାରକ, ଯେ ଦଣ୍ଡ ବହନ କରେ ।

**ଦଣ୍ଡବିଧି**—ପୁଂ. ବି. ଦଣ୍ଡବିଧାନ, ଦଣ୍ଡ-ବିଧାୟକ ଆଇନ୍ ।

**ଦଣ୍ଡବିଧାତା**—ପୁଂ.ବିଂ. (୬ତତ୍ପୁ) ଦଣ୍ଡ-ବିଧାନ କର୍ତ୍ତା, ରାଜା,ବିଚାରପତି, ଦଣ୍ଡ-ଦାତା, (ସ୍ତ୍ରୀ) ଦଣ୍ଡବିଧାତ୍ରୀ ।

**ଦଣ୍ଡବିଧାନ**—କ୍ଲୀ. ବି. (୬ତତ୍ପୁ) ଶାସ୍ତି-ଦାନର ବ୍ୟବସ୍ଥା, ଦଣ୍ଡଦାନ ।

**ଦଣ୍ଡବିଷ୍କମ୍ଭ**—ପୁଂ. ବି. ଦଧିମନ୍ଥନ କରିବାର ସ୍ତମ୍ଭ ବା ଖୁଣ୍ଟି ।

**ଦଣ୍ଡବୃକ୍ଷ**—ପୁଂ. ବି. ସ୍ନୁହୀ ବୃକ୍ଷ, ମନସା ଗଛ, ସିଜୁଗଛ, ଦଣ୍ଡବୃକ୍ଷକ ।

**ଦଣ୍ଡବ୍ୟୂହ**—ପୁଂ.ବି. (କ.ଧା) ବ୍ୟୂହଭେଦ, ଦଣ୍ଡାକାରେ ସଜ୍ଜିତ ସୈନ୍ୟରଚନା ।

**ଦଣ୍ଡବ୍ରତଧର**—ପୁଂ. ବି. ଦଣ୍ଡରୂପ ବ୍ରତ-ଧାରୀ ରାଜା, ଦଣ୍ଡଧର, ଯମ, କୁମ୍ଭାର, (ବିଂ) ଦଣ୍ଡଧାରକ ।

**ଦଣ୍ଡଶାସ୍ତ୍ର**—ବି. ଦଣ୍ଡବିଧି ଦେଖ ।

**ଦଣ୍ଡସଂହିତା**—ସ୍ତ୍ରୀ.ବି. ଦଣ୍ଡବିଷୟକ ଶାସ୍ତ୍ର, ଫୌଜଦାରୀ ଆଇନ ।

**ଦଣ୍ଡସହାୟ**—ପୁଂ.ବି. ଦୁଷ୍ଟଦମନ ପ୍ରଭୃତିରେ ରାଜାଙ୍କର ସହାୟ ।

**ଦଣ୍ଡସେନ**—ପୁଂ.ବି. ପୁରୁବଂଶୀୟ ବିଷ୍ୱକ୍‌ସେନ ପୁତ୍ର ନୃପଭେଦ, ଦ୍ୱାପରଯୁଗର ଏକ ନୃପତି ।

ଦଣ୍ଡସେନା—ଗ୍ରା.ବି. ଓଡ଼ିଶା ଗଡ଼ଜାତରେ ପାଇକମାନଙ୍କର ବଂଶୋପାଧିବିଶେଷ ।
ଦଣ୍ଡସ୍ଥାନ—କ୍ଲୀ.ବି. ଦଣ୍ଡର ସ୍ଥାନବିଶେଷ, ଯେଉଁ ସ୍ଥାନରେ ଅପରାଧୀକୁ ଦଣ୍ଡ ଦିଆଯାଏ ।
ଦଣ୍ଡହସ୍ତ—କ୍ଲୀ. ବି. ତଗର ପୁଷ୍ପ ।
ଦଣ୍ଡା—ଗ୍ରା. ବି. ( ସଂ·ଦଣ୍ଡ ) ଶଗଡ଼ର ଲମ୍ବା ଦଣ୍ଡଦ୍ୱୟ, ଯଷ୍ଟି, ଲମ୍ବା ବାଡ଼ି, ଠେଙ୍ଗା, ଗ୍ରାମର ରାସ୍ତା, ପଢ଼ିଆ, ଆଖୁ-ଗଛର ପତ୍ରଶୂନ୍ୟ ଲମ୍ବା ଡାଙ୍ଗ ବା ଛଡ଼, ଗୋଦଣ୍ଡା, ଗୋରୁପ୍ରଭୃତିଙ୍କର ଯାତାୟତ ପଥ, ( ପ୍ରା. ଗଞ୍ଜାମ ) ଶଗଡ଼ର ଗୁଳା ।
ଦଣ୍ଡାକରିବା—ଗ୍ରା.କ୍ରି. କୌଣସି ବ୍ୟକ୍ତିକୁ ବିଶେଷ ପ୍ରହାର ଦେଇ ଠେଙ୍ଗାପରି ଲମ୍ବଭାବରେ ଭୂମିରେ ପକାଇବା ।
ଦଣ୍ଡାକ୍ଷ—କ୍ଲୀ. ବି. ତୀର୍ଥଭେଦ, ଏ ତୀର୍ଥ ଚର୍ମଣ୍ୱତୀନଦୀର ସମୀପରେ ।
ଦଣ୍ଡାଘାତ—ପୁଂ.ବି. (୬ତତ୍) ଦଣ୍ଡଦ୍ୱାରା ପ୍ରହାର, ଯଷ୍ଟିଦ୍ୱାରା ଆଘାତ ।
ଦଣ୍ଡାଜନ—କ୍ଲୀ. ବି. ଯତିମାନଙ୍କର ଦଣ୍ଡ ଓ ମୃଗଚର୍ମ, ଶଠତା, ପ୍ରତାରଣା ।
ଦଣ୍ଡାଜ୍ଞା—ସ୍ତ୍ରୀ. ବି. (୬ତତ୍) ଦଣ୍ଡାଦେଶ, ଶାସ୍ତିଦେବାର ହୁକୁମ ।
ଦଣ୍ଡାଦଣ୍ଡି—ଅବ୍ୟ. ବାଡ଼ିଦ୍ୱାରା ମରାମରି, ବାଡ଼ିଦ୍ୱାରା ପିଟାପିଟି ।
ଦଣ୍ଡାଦି—କ୍ଲୀ.ବି. ପାଣିନ୍ୟୁକ୍ତ ଗଣଭେଦ ।
ଦଣ୍ଡାଧିପ—ପୁଂ. ବି. (୬ତତ୍) ଦଣ୍ଡାଧିପତି, ରଜା ।
ଦଣ୍ଡାଧିପତି—ପୁଂ. ବି. (୬ତତ୍) ଦଣ୍ଡର ଅଧିପତି, ରଜା ।
ଦଣ୍ଡାଧୀନ—ବିଂ. (୬ତତ୍) ଦଣ୍ଡର ବଶୀଭୂତ, ଦଣ୍ଡପ୍ରାପ୍ତିର ଯୋଗ୍ୟ ।
ଦଣ୍ଡାପତାନକ—କ୍ଲୀ. ବି. ବାତରୋଗ ବିଶେଷ ।
ଦଣ୍ଡାପୂପନ୍ୟାୟ—ପୁଂ.ବି.(ଦଣ୍ଡ+ଅପୂପ+ନ୍ୟାୟ) ନ୍ୟାୟଭେଦ,ଦୁଷ୍କର କାର୍ଯ୍ୟର ସିଦ୍ଧିରୁ କୌଣସି ସୁକର କାର୍ଯ୍ୟର ସିଦ୍ଧି ବିଷୟ ଅନୁମାନ କରିବା ସ୍ଥଳରେ ଏହି ନ୍ୟାୟ ପ୍ରଯୁକ୍ତ ହୁଏ, ଯଥା:—ଗୋଟିଏ ପିଠାକୁ ଖଣ୍ଡିଏ ବାଡ଼ିରେ ଫୋଡ଼ି ରଖିଥିବା ଅବସ୍ଥାରେ ମୂଷା ଆସି ସେ ବାଡ଼ିର ଅଗରୁ କିୟଦଂଶ ଦନ୍ତଦ୍ୱାରା ଖଣ୍ଡିଆ କରିଥିବାରୁ ଗୃହସ୍ଥ ବାଡ଼ି ଅଗରେ ମୂଷାର ଦନ୍ତକ୍ଷତ ଚିହ୍ନ ଦେଖି ସ୍ଥିର କରେ ଯେ ମୂଷା ଯେବେ ବାଡ଼ିପରି ଟାଣୁଆ ପଦାର୍ଥର କିଛି ଅଂଶ ଖାଇଛି ସେ କଷ୍ଟରେ କୋମଳ ପିଠାକୁ ଖାଇପାରିବ, ଏଥିରେ ସନ୍ଦେହ ନାହିଁ ।
ଦଣ୍ଡାୟମାନ—ବିଂ. (ଦଣ୍ଡ+ଯ+ଆନ) ସିଧାହୋଇ ଠିଆହୋଇଥିବା, ଅନୁପବିଷ୍ଟ ।
ଦଣ୍ଡାର—ପୁଂ. ବି. (ଦଣ୍ଡ+ଋ+କ.ଅ) ଦଣ୍ଡାଥିବା ଶଗଡ଼, ଧନୁ, ବାହନ, ମତ୍ତହସ୍ତୀ, କୁମ୍ଭକାର ଚକ୍ର,ଯନ୍ତ୍ରଭେଦ ।
ଦଣ୍ଡାର୍ଣ୍ଣି—କ୍ଲୀ. ବି. ଚର୍ମଣ୍ୱତୀନଦୀର ସମୀପସ୍ଥ ତୀର୍ଥବିଶେଷ, (ପୁଂ. ବି. ୩ତତ୍) ଦଣ୍ଡଦ୍ୱାରା ଉତ୍ପୀଡ଼ିତ ବା ଜର୍ଜରିତ ।
ଦଣ୍ଡାର୍ହ—ପୁଂ. ବିଂ. (ଦଣ୍ଡ+ଅର୍ହ+କ. ଅ) ଦଣ୍ଡପାଇବାର ଉପଯୁକ୍ତ ।
ଦଣ୍ଡାଳୟ—ବି. (ଦଣ୍ଡ+ଆଳୟ) ଧର୍ମାଧିକରଣ, ଜେଲଖାନା, ଛନ୍ଦୋବିଶେଷ ।
ଦଣ୍ଡାଳୁ—ବି. ଖମ୍ବଆଳୁ ।
ଦଣ୍ଡାଶ୍ରମ—ବି. (ଦଣ୍ଡ+ଆଶ୍ରମ) ତୀର୍ଥଯାତ୍ରୀର ବ୍ରତ, ତୀର୍ଥକରିବାର ବ୍ରତଧାରଣ ।
ଦଣ୍ଡାଶ୍ରମଗ୍ରହଣକରିବା—ଗ୍ରା. କ୍ରି. ତୀର୍ଥଯାତ୍ରା କରିବାର ସଂକଳ୍ପକରି ଦଣ୍ଡଧାରଣ କରିବା ।
ଦଣ୍ଡାସନ—କ୍ଲୀ. ବି. ଆସନଭେଦ ।
ଦଣ୍ଡାହତ—କ୍ଲୀ. ବି. ତକ୍ର, ଦଧି, (ବିଂ) ଦଣ୍ଡଦ୍ୱାରା ତାଡ଼ିତ, ଠେଙ୍ଗାଦ୍ୱାରା ତାଡ଼ିତ ।
ଦଣ୍ଡି—ଗ୍ରା. ବି. (ସଂ·ଦଣ୍ଡ) ନାକପୁଡ଼ାର ମଧ୍ୟବର୍ତ୍ତୀ ସ୍ଥାନ,ନାକଦଣ୍ଡି,ନାକଦଣ୍ଡିରେ ପିନ୍ଧାଯିବା ଅଳଂକାରବିଶେଷ, ଭୁଲାଦଣ୍ଡ, କଣ୍ଠା,(ପ୍ରା.ଜୟପୁର ) କାଶତୃଣ ଦେଖ ।
ଦଣ୍ଡିଆ—ଗ୍ରା. ବି. (ସଂ·ଦାଣ୍ଡିକ) ଯେଉଁ କର୍ମଚାରୀ ହାଟରେ ପଣ୍ୟବିକ୍ରେତାମାନଙ୍କଠାରୁ ଶୁଳ୍କ ଆଦାୟ କରେ,ପଣ୍ୟଦ୍ରବ୍ୟାଦି ତଉଲିବା ବ୍ୟକ୍ତି, ଦଣ୍ଡିଦାର, ଦଲାଲ ।
ଦଣ୍ଡିକ—ପୁଂ. ବିଂ. (ଦଣ୍ଡ+ଇକ)ଦଣ୍ଡଧାରକ, ( ବି ) ଆଣ୍ଠୁ ଯୋଡ଼ା ଧରିବା ଲୋକ, ଦଣ୍ଡେଇ ମାଛ, ଛଡ଼ିବରଦ୍ୱାର ।
ଦଣ୍ଡିକା—ସ୍ତ୍ରୀ. ବି. ହାରବିଶେଷ, ରଜ୍ଜୁ, ଲମ୍ବହାର ଗୋଡ଼ବେଢ଼ି ।
ଦଣ୍ଡିତ—କ୍ରି. ବିଂ. ( ଦଣ୍ଡ+ର୍ମ.ତ ) କୃତଦଣ୍ଡ,ଯେ ଦଣ୍ଡ ପାଇଅଛି,ଶାସିତ ।
ଦଣ୍ଡିଦାର—ଗ୍ରା. ବି. ଯେ ପଣ୍ୟବିକ୍ରେତାଙ୍କଠାରୁ ପଣ୍ୟଦ୍ରବ୍ୟମାନ ଓଜନକରି କିଣିନେଇ ମହାଜନମାନଙ୍କୁ ବିକାଦିଏ ଓ ଏଥିପାଇଁ ପାଉସେଣ୍ଟ ପାଏ ।
ଦଣ୍ଡିଦାରି—ଗ୍ରା.ବି. ଦଣ୍ଡିଦାରର କର୍ମ ।
ଦଣ୍ଡିନାକ—ଗ୍ରା. ବି. ନାସିକା ରନ୍ଧ୍ରଦ୍ୱୟର ମଧ୍ୟବର୍ତ୍ତୀ ନାକଦଣ୍ଡୀ ।
ଦଣ୍ଡିପୋହଳା—ଗ୍ରା. ବି. (ସଂ·ଦଣ୍ଡୋତ୍ପଳ) ହ୍ରସ୍ୱ ବୃକ୍ଷବିଶେଷ, ବର୍ଷାୟୁ ରଜ୍ଜୁଶାକବିଶେଷ, ପୋହଳା ମାଛ ।
ଦଣ୍ଡିବା—ଗ୍ରା. କ୍ରି. ଦଣ୍ଡଦେବା, ବଳିପଡ଼ିବା ।
ଦଣ୍ଡିମ—ବିଂ. (ଦଣ୍ଡ+ଇମନ୍) ଦଣ୍ଡଧାରୀ, (ବି) ଯମ, ଛଡ଼ିବରଦ୍ୱାର,ଦ୍ୱାରପାଳ, ଜୈନବିଶେଷ,ସନ୍ନ୍ୟାସୀ, ଦମନକବୃକ୍ଷ ବା ଦଅଣା ଗଛ ।
ଦଣ୍ଡିଲ—ଗ୍ରା. ବିଂ. (ସଂ·ଉଦ୍ଦଣ୍ଡ) ଦୁଷ୍ଟ, ଉଦ୍ଦଣ୍ଡ, ଖଳବଜ୍ଜିଆ । [ ସମ୍ବଲପୁର ।
ଦଣ୍ଡୀ—ହିନ୍ଦୁମାନଙ୍କର ଗୋଟିଏ ଉପାସକ
ଦଣ୍ଡୁଆସି—ଗ୍ରା. ବି. ( ସଂ·ଦଣ୍ଡବାସୀ ) ଚଉକିଦାର, କଟୁଆଳ, କମାରର ବଡ଼ ସଣ୍ଡୁଆସି । [ ପାଟଆ ।
ଦଣ୍ଡୁରୁ—ପ୍ରା. (ବାଲେ) ବି. ଖାଲୋଇ,
ଦଣ୍ଡେଇ—ଗ୍ରା.ବି. ଦଣ୍ଡିକର ମାଛ,ଏକପ୍ରକାର ଟେଙ୍ଗ୍ରେଟ ମାଛ ।
ଦଣ୍ଡେହେଁ—ଗ୍ରା. ଅବ୍ୟ. କ୍ଷଣମାତ୍ର ।
ଦଣ୍ଡୋତ୍ପଳ—କ୍ଲୀ.ବି. ବୃକ୍ଷଭେଦ,ଦଣ୍ଡି-

ପୋହଳା ଗଛ, ଦୀର୍ଘବୃନ୍ତ ପୁଷ୍ପକ୍ଷୁପ, କାଠି ପୋହଳା ମାଛ ।

ଦନ୍ତୋତ୍ପଳା—ସ୍ତ୍ରୀ. ବି. ଶ୍ୱେତ ପୁଷ୍ପ, ଦନ୍ତୋତ୍ପଳ,ଧଳାଫୁଲ,ଦନ୍ତିପୋହଳା ।

ଦଣ୍ଡ୍ୟ—ପୁଂ. ବିଂ. (ଦଣ୍ଡ+ଯ) ଦଣ୍ଡନୀୟ, ଦଣ୍ଡାର୍ହ, ଦଣ୍ଡର ଯୋଗ୍ୟ ।

ଦନ୍ତ—ପୁଂ. ବି. (ଦମ+ଣି.ତ୍ର) ଦାନ୍ତ ।

ଦନ୍ତିଉର—ବୋମ୍ବାଇ ପ୍ରେସିଡେନ୍ସୀର ଅନ୍ତର୍ଗତ ଗୋଟିଏ ବନ୍ଦର ।

ଦନ୍ତିୟା—ବୁନ୍ଦେଲଖଣ୍ଡ ଅନ୍ତର୍ଗତ ଗୋଟିଏ ଦେଶୀୟ ରାଜ୍ୟ ।

ଦତ୍ତ—ବିଂ. (ଦା+ମିଁ.ତ) କୃତଦାନ, ଯାହା ଦାନକରାଯାଇଥାଏ,ନ୍ୟସ୍ତ,ଅର୍ପିତ, ଉତ୍ସୃଷ୍ଟ, ତ୍ୟକ୍ତ, ବିସୃଷ୍ଟ, (ସ୍ତ୍ରୀ) ଦତ୍ତା ।

ଦତ୍ତ—ବି.(ଖ୍ରି.ତ)ଦାନ, ପ୍ରାଚୀନ ଭାରତର ରାଜାବିଶେଷ, ବୈଶ୍ୟମାନଙ୍କର ବଂଶୋପାଧିବିଶେଷ, ଦତ୍ତାତ୍ରେୟ, ଅତ୍ରି-ମୁନିଙ୍କ ପୁତ୍ର,ଭଗବାନଙ୍କର ଅବତାର-ବିଶେଷ, ଦତ୍ତକପୁତ୍ର. (ଗ୍ରା.ବି) ଶୂଦ୍ର, ତାମ୍ବୁଲୀ ଓ ବଙ୍ଗାଳିଙ୍କ ବଂଶୋପାଧି-ବିଶେଷ ।

ଦତ୍ତକ—ପୁଂ. ବି. (ଦତ୍ତ+କ) ଦ୍ୱାଦଶ-ବିଧ ପୁତ୍ରର ଅନ୍ତର୍ଗତ ପୁତ୍ରବିଶେଷ, ଦତ୍ତକ ପୁତ୍ର, (ବିଂ) ଦତ୍ତହୋଇଥିବା, ପୋଷ୍ୟପୁତ୍ରରୂପେ ଗୃହୀତ ।

ଦତ୍ତକଚନ୍ଦ୍ରିକା—ବି. ପୋଷ୍ୟପୁତ୍ର ଗ୍ରହଣ ସମ୍ବନ୍ଧୀୟ ଗୋଟିଏ ଆଧୁନିକ ସଂସ୍କୃତ ସ୍ମୃତିଗ୍ରନ୍ଥ ।

ଦତ୍ତକପୁତ୍ର—ପୁଂ. ବି. ଦ୍ୱାଦଶପ୍ରକାର ପୁତ୍ର ମଧ୍ୟରେ ଏକପ୍ରକାର ପୁତ୍ର,ପୋଷ୍ୟ-ପୁତ୍ର ।

ଦତ୍ତକମୀମାଂସା—ବି. ନନ୍ଦ ପଣ୍ଡିତଙ୍କ ସଙ୍କଳିତ ସ୍ମୃତିଗ୍ରନ୍ଥବିଶେଷ ।

ଦତ୍ତକହୋମ—ବି. ପୋଷ୍ୟପୁତ୍ର ଗ୍ରହଣ କରିବା ଉପଲକ୍ଷରେ ଗ୍ରହୀତା ଯେଉଁ ହୋମ ଅନୁଷ୍ଠାନ କରନ୍ତି ।

ଦତ୍ତଚ୍ୟୁତାକ୍ଷର—ବି. ଶବ୍ଦାଳଙ୍କାର ବା ରଚନାଭଙ୍ଗିବିଶେଷ ।

ଦତ୍ତତୀର୍ଥକୃତ୍—ପୁଂ. ବି. ଗତଉତ୍ସର୍ପିଣୀର ୮ମ ଅର୍ହନଭେଦ ।

ଦତ୍ତନୃତ୍ୟୋପହାର—ତ୍ରି.ବିଂ. ନୃତ୍ୟଦ୍ୱାର କୃତ ଅଭିବାଦନ ।

ଦତ୍ତପ୍ରାଣ—ତ୍ରି.ବିଂ. ଯେ ଆପଣାର ଜୀବନ ଉତ୍ସର୍ଗ କରିଅଛି ।

ଦତ୍ତମନାଃ—ବିଂ. (ବ.ବ୍ରୀ) ମନୋଯୋଗୀ. କୌଣସି ବିଷୟରେ ଅର୍ପିତଚିତ୍ତ ।

ଦତ୍ତମାର୍ଗ—ବି.ପଥଛାଡ଼ିଦେବା,ଗତିରୋଧ ନ କରିବା ।

ଦତ୍ତବର—ତ୍ରି. ବିଂ. ଯାହା କର୍ତ୍ତୃକ ବର ଦିଆ ହୋଇଅଛି ।

ଦତ୍ତଶ(ମିଁନ୍)ତ୍ରୁ—ପୁଂ.ବି. ରାଜାଧିଦେବୁ-ଶୂରଙ୍କର ପୁତ୍ରଭେଦ ।

ଦତ୍ତଶୁଲ୍କ—ସ୍ତ୍ରୀ.ବି. ଯେଉଁ କନ୍ୟା ସକାଶେ ଶୁଳ୍କ ବା ପଣ ଦିଆହୋଇଅଛି ।

ଦତ୍ତହସ୍ତ—ତ୍ରି. ବିଂ. ରକ୍ଷିତ ।

ଦତ୍ତହାରୀ—ପୁଂ. ବି. (ଦତ୍ତ+ହୃ+କ. ଇନ୍) ଯେଉଁ ବ୍ୟକ୍ତି ଦତ୍ତପଦାର୍ଥକୁ ପୁନର୍ବାର ଛଡ଼ାଇନିଏ, ( ସ୍ତ୍ରୀ ) ଦତ୍ତ-ହାରିଣୀ ।

ଦତ୍ତହୋମ—ବି. ଦତ୍ତକହୋମ ଦେଖ ।

ଦତ୍ତା—ସ୍ତ୍ରୀ. ବି. ( ଦତ୍ତ+ଆ ) ପ୍ରଦତ୍ତ ହୋଇଥିବା, ଊଢ଼ା, ପରିଣୀତା (ସ୍ତ୍ରୀ) ।

ଦତ୍ତାକ୍ଷର—ବି. ଶବ୍ଦାଳଂକାରବିଶେଷ ।

ଦତ୍ତାତ୍ମା—ପୁଂ. ବି. (ତ.ବ୍ରୀ) ନିଜେ ଆସି ଅନ୍ୟର ପୁତ୍ରତ୍ୱ ସ୍ୱୀକାର କରିବା ବ୍ୟକ୍ତି, (ବିଂ) ଆତ୍ମସମର୍ପଣକାରୀ ।

ଦତ୍ତାତ୍ରେୟ—ବି. ବିଷ୍ଣୁଙ୍କର ଅବତାର, ଅତ୍ରିମୁନିଙ୍କ ପୁତ୍ର ।

ଦତ୍ତାତ୍ରେୟଦୈବଜ୍ଞ—ପୁଂ. ବି. ବିବାହ-ଭୂଷଣ ନାମକ ସଂସ୍କୃତଗ୍ରନ୍ଥ ପ୍ରଣେତା ।

ଦତ୍ତାପହାରୀ—ପୁଂ. ବିଂ. (ଦତ୍ତ+ଅପ+ହୃ+କ.ଇନ୍) ଦତ୍ତହାରୀ ଦେଖ ।

ଦତ୍ତାପ୍ରଦାନିକ—କ୍ଲୀ. ବି. କୌଣସି ବସ୍ତୁ ଦାନକରି ତାକୁ ଫେରାଇ ନେଲେ ଯେଉଁ ବିବାଦ ହୁଏ ।

ଦତ୍ତାମିତ୍ର—ପୁଂ.ବି. ସୌବୀର ନୃପଭେଦ

ଦତ୍ତାବଧାନ—ପୁଂ. ବିଂ. (ବ.ବ୍ରୀ) ଅବ-ହିତ, ମନୋଯୋଗୀ, ଅର୍ପିତଚିତ୍ତ ।

ଦତ୍ତାସନ—ତ୍ରି. ବିଂ. ପ୍ରଦତ୍ତାସନ,ଯାହାକୁ ଆସନ ଦିଆହୋଇଅଛି ।

ଦତ୍ତି—ସ୍ତ୍ରୀ. ବି. (ଦା+ଖି.ତି) ଦାନ ।

ଦତ୍ତିକ—ତ୍ରି. ବିଂ. ଅଳ୍ପଦତ୍ତ ।

ଦତ୍ତେୟ—ପୁଂ.ବି. (ଦା+ତେୟ)ଇନ୍ଦ୍ର ।

ଦତ୍ତୋପନିଷଦ୍—ସ୍ତ୍ରୀ.ବି.ଉପନିଷଦ୍‌ଭେଦ ।

ଦତ୍ତୋଳ—ପୁଂ. ବି. ପୁଲସ୍ତ୍ୟମୁନି ।

ଦତ୍ର—କ୍ଲୀ. ବି. ଧନ, ହିରଣ୍ୟ ।

ଦତ୍ରିମ—ତ୍ରି. ବିଂ. (ଦା+କ.ତ୍ରିମ) ଦାନ କରଯାଇଥିବା,ଦାନଜନିତ, ଦାନଦ୍ୱାରା କଷ୍ଟନ୍ନ, (ବିଂ)ଦତ୍ତକପୁତ୍ର,ପୋଷ୍ୟପୁତ୍ର ।

ଦଦ—ତ୍ରି.ବିଂ. ଦାତା, ଗ୍ରା.ବି.(ଶିଶୁଭାଷା) ମାତୃସ୍ତନ, ମାତୃସ୍ତନ୍ୟ, ଦୁଗ୍ଧ ।

ଦଦନ—କ୍ଲୀ. ବି. (ଦଦ+ଭା,ଅନ)ଦାନ ।

ଦଦରା—ଗ୍ରା. ବି. (ସଂ-ଦର୍ଦ୍ଦର) ଈଷତ୍ ଭଗ୍ନ, ଫଟା, ବିକଳ, ଜୀର୍ଣ୍ଣ ।

ଦଦା—ଗ୍ରା. ବି. (ସଂ-ତାତ) ବଡ଼ଭାଇ, ଅଜା,ପିତାମହ,(ପ୍ରା.ଗଞ୍ଜାମ)ପିତା,ବାପା ।

ଦଦାନ—ବିଂ. (ଦା+କ.ଅନ) ଦାତା, ଦାନକର୍ତ୍ତା, (ସ୍ତ୍ରୀ) ଦଦାନା ।

ଦଦି—ପୁଂ. ବିଂ. ଦାତା ।

ଦଦିତା—ପୁଂ. ବିଂ. ଦାତା ।

ଦଦ୍ଧଶାନପର୍ବ—ବି. ଅଗ୍ନି, ଦର୍ଶନୀୟ ଜ୍ୱାଳାଗ୍ନି ।

ଦଦେଇ—ଗ୍ରା. ବି. (ସଂ-ଜ୍ୟେଷ୍ଠତାତ) ପିତାଙ୍କ ଜ୍ୟେଷ୍ଠଭ୍ରାତା, ଦେଢ଼ବୁଢ଼ା,(ପ୍ରା. ଗଞ୍ଜାମ. ବି) ପିତା ।

ଦଦ୍ରୁ—ପୁଂ. ବି. ( ଦରିଦ୍ରା+କ. ଉ ) କଚ୍ଛପ, ଦାଦୁ, ଜାଦୁ ।

ଦଦ୍ରୁକ—ପୁଂ. ବି. ଦଦ୍ରୁରୋଗ ।

ଦଦ୍ରୁଘ୍ନ—ପୁଂ.ବି. (ଦଦ୍ରୁ+ହନ୍+ଅ) ଚକ୍ରମର୍ଦ୍ଦକ,ଚକୁଣ୍ଡା, (ବିଂ) ଦଦ୍ରୁରୋଗ ନାଶକ ।

ଦଦ୍ରୁଣ—ପୁଂ.ବିଂ. (ଦଦ୍ରୁ+ଣ) ଦଦ୍ରୁ-ରୋଗୀ, ଦଦ୍ରୁରୋଗଯୁକ୍ତ, ଜାଦୁରା,(ସ୍ତ୍ରୀ) ଦଦ୍ରୁଣା ।

ଦଦ୍ରୁନାଶିନୀ—ସ୍ତ୍ରୀ. ବି. ତୈଳନୀ କୀଟ ।

ଦଦ୍ରୁରୋଗୀ—ପୁଂ. ବିଂ. ଦଦ୍ରୁରୋଗ-ବିଶିଷ୍ଟ,ଜାଦୁଆ, (ସ୍ତ୍ରୀ) ଦଦ୍ରୁରୋଗିଣୀ ।

ଦଧି—ଗ୍ରା. ବ. ଦଦ ଦେଖ ।
ଦଧିମାନ୍—ପୁଂ. ବିଂ. (ଦଧି+ମତ୍)ଦଧି-ବିଶିଷ୍ଟ ।
ଦଧାନ—ବିଂ. ( ଧା+କ. ଅନ ) ଯେ ଧାରଣ କରେ, (ସ୍ତ୍ରୀ) ଦଧାନା ।
ଦଧାଳିଆ—ବୋମ୍ବାଇ ପ୍ରେସିଡେନ୍ସୀର ଅନ୍ତର୍ଗତ ମହୀକାନ୍ଥାର ଗୋଟିଏ ରାଜ୍ୟ ।
ଦଧି—କ୍ଲୀ. ବ. ( ଧା+କ.ଇ ) ଦୁଗ୍ଧ-ବିକାରବିଶେଷ, ଦହି, ବସ୍ତ୍ର, ( ବିଂ ) ଧାରଣକର୍ତ୍ତା, ଧାରକ ।
ଦଧିକର୍ମ୍ମ—ପୁଂ.ବ.ଦଧିସଂସ୍କାରକ ବୈଦିକ କର୍ମଭେଦ ।
ଦଧିକୂର୍ଚ୍ଚିକା—ସ୍ତ୍ରୀ.ବ.ଦୁଗ୍ଧବିକାରଭେଦ, ଛେନା,ବସାଦହିର ଥେଲକା ଖଣ୍ଡମାନ ।
ଦଧିକ୍ରା—ପୁଂ. ବ. ଅଶ୍ୱରୂପୀ ଅଗ୍ନି ସ୍ୱରୂପ ଦେବତା, ଅଶ୍ୱ ।
ଦଧିକ୍ରାବା—ପୁଂ.ବ. ଅଶ୍ୱରୂପ ଅଗ୍ନ୍ୟାତ୍ମକ ଦେବଭେଦ ।
ଦଧିଗ୍ରାମ—ଗ୍ରା. ବ. ଶ୍ରୀକୃଷ୍ଣଙ୍କର ଗୋଟିଏ ଲୀଳାଗ୍ରାମ ।
ଦଧିଚର—ପୁଂ. ବ. (ଦଧି+ଚର+ଣ. ଅ) ଦଧିମନ୍ଥନ ଦଣ୍ଡ, ଖୁଆ ।
ଦଧିଜ—କ୍ଲୀ. ବ. ( ଦଧି+ଜନ+ଅ ) ନବନୀତ, ନହୁଣୀ, ଛେନା ।
ଦଧିତ୍ଥ—ପୁଂ. ବ. ( ଦଧି+ସ୍ଥା+ଅ ) କପିତ୍ଥ, କଇଥ ଗଛ ଓ ଫଳ ।
ଦଧିତ୍ଥାଖ୍ୟ—ପୁଂ. ବ. ସରଳଦ୍ରବ, ଲୋବାନ ।
ଦଧିଧେନୁ—ସ୍ତ୍ରୀ. ବ. ଦାନାର୍ଥ କଳ୍ପିତ ଦଧିକୁମ୍ଭ ନିର୍ମିତ ଧେନୁଭେଦ ।
ଦଧିନଉଡ—ଗ୍ରା.ବ. ଦହିନଉଡି ଦେଖ ।
ଦଧିପୁଷ୍ପିକା—ସ୍ତ୍ରୀ. ବ. (ଦଧି+ପୁଷ୍ପ+କ.ଆ)ଶ୍ୱେତ ଅପରାଜିତାଫୁଲ ଓ ଲତା ।
ଦଧିପୁଷ୍ପୀ—ସ୍ତ୍ରୀ. ବ. କୋଳଶିମ୍ବୀ, ଶ୍ୱେତ ଅପରାଜିତା ।
ଦଧିପୂପ—ପୁଂ.ବ. (କ.ଧା) ଅପୂପଭେଦ ପିଷ୍ଟକବିଶେଷ, ଦହିବଡ଼ା ।
ଦଧିପୂର୍ବମୁଖ—ପୁଂ.ବ. ଦଧିମୁଖ ଦେଖ ।
ଦଧିଫଳ—ପୁଂ.ବ. କପିତ୍ଥ,କଇଥଫଳ ।

ଦଧିମଣ୍ଡ—ପୁଂ. ବ. ( ୬ତତ୍ ) ଦହିର ଜଳୀୟାଂଶ । [ ସମୁଦ୍ର
ଦଧିମଣ୍ଡୋଦ—ପୁଂ. ବ. (ବ.ବ୍ରୀ) ଦଧି-
ଦଧିମନ୍ଥନ—ବି. (୬ତତ୍)ଦହିମୋହିଁବା ।
ଦଧିମାଛ—ଗ୍ରା.ବ. ଶୁଭଅନୁକୂଳ,କୌଣସି ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟରେ ଯାତ୍ରା ।
ଦଧିମୁଖ—ପୁଂ. ବ. (ବ.ବ୍ରୀ) ଏକବାନର, ସୁଗ୍ରୀବଙ୍କ ମାଉଳ,ଏ ମଧୁବନର ରକ୍ଷକ ଓ ରାମଚନ୍ଦ୍ରଙ୍କ ସେନାପତି ଥିଲେ ।
ଦଧିବକ୍ତ୍ର—ପୁଂ. ବ. ଦଧିମୁଖ ଦେଖ ।
ଦଧିବାନ୍—ପୁଂ. ବିଂ. ( ଦଧି+ବତ୍ ) ଦଧିଯୁକ୍ତ, ଦଧିପ୍ରାପ୍ତ । [ ବିଷ୍ଟ୍ର ।
ଦଧିବାମନ—ବି. ଶାଳଗ୍ରାମ ମୂର୍ତ୍ତିବିଶେଷ,
ଦଧିବାରି—କ୍ଲୀ. ବ. ଦହିପାଣି, ଦହିର ଜଳୀୟାଂଶ ।
ଦଧିବାହନ—ପୁଂ. ବ. ଅଙ୍ଗନାମକ ରାଜାଙ୍କ ପୁତ୍ର ।
ଦଧିଶୋଣ—ପୁଂ. ବ. ବାନର ।
ଦଧିଷାଯ୍ୟ—ପୁଂ. ବ. ଘୃତ ।
ଦଧିସକ୍ତୁ—ବି. (ଦଧି+ସକ୍ତୁ) ଛତୁଆ ଓ ଦହିଚକଟା ।
ଦଧିସକ୍ତୁ—ପୁଂ. ବ. ଦଧିମିଶ୍ରିତ ଛତୁ, ଦହିଛତୁଆ ।
ଦଧିସମୁଦ୍ର—ବି. (୬ତତ୍) ପୁରାଣ ବର୍ଣ୍ଣିତ ସାତସମୁଦ୍ର ମଧ୍ୟରୁ ଏକତମ ।
ଦଧିସାର—ପୁଂ. ବ. (୬ତତ୍) ଦହିସର, ଦହିର ସ୍ନେହ ।
ଦଧିସର—ପୁଂ. ବ. ଦହିସର,ଲହୁଣୀ ।
ଦଧିସ୍କନ୍ଦ—ପୁଂ. ବ. ତୀର୍ଥଭେଦ ।
ଦଧିସ୍ନେହ—ପୁଂ. ବ. ଦହିସର, ସର, କଷ୍ଟୁର ।
ଦଧିସ୍ୱେଦ—ପୁଂ. ବ. ଘୋଳଦହି ।
ଦଧୀଚ—ପୁଂ. ବ. ଦଧୀଚମୁନି, ଶୁକ୍ରା-ଚାର୍ଯ୍ୟଙ୍କର ଏକ ପୁତ୍ର ।
ଦଧୀଚାସ୍ଥି—ପୁଂ. ବ. ( ଦଧୀଚ+ଅସ୍ଥି ) ବଜ୍ର, ହୀରକ,ଦଧୀଚ ମହର୍ଷିଙ୍କ ଅସ୍ଥିରେ ତିଆରି ବଜ୍ର ।
ଦଧୀଚି—ପୁଂ.ବ. ଜଣେ ଋଷି, ଦଧୀଚ ଦେଖ ।

ଦଧୀଚ୍ୟସ୍ଥି—କ୍ଲୀ. ବ. (୬ତତ୍) ଦଧୀଚ ମୁନିଙ୍କ ଅସ୍ଥି, ବଜ୍ର, ହୀରକ ।
ଦଧୀମୁଖ—ପୁଂ. ବ. ବାନରଭେଦ ।
ଦଧୃକ୍—ତ୍ରି. ବିଂ. ଧୃଷ୍ଟ, ନିର୍ଲଜ, ଧର୍ଷକ, ଅଲଜୁକ, ବେହିଆ ।
ଦଧୃଷକ—ତ୍ରି. ବିଂ. ( ଦଧୃଷ+କ୍ୱିପ୍ ) ଧର୍ଷକ, ଅଭିଭାବକ । [ ଜଣେ ।
ଦଧ୍ନ—ପୁଂ.ବ. ଯମ, ଚତୁର୍ଦ୍ଦଶଯମ ମଧ୍ୟରୁ
ଦଧ୍ୟଞ୍ଚ—ପୁଂ. ବ. (ଦଧି+ଅନ୍ଚ+କ୍ୱିପ୍) ଅଥର୍ବା ଋଷିଙ୍କ ପୁତ୍ର ଦଧୀଚମୁନି ।
ଦଧ୍ୟନ୍ନ—କ୍ଲୀ. ବ. (କ.ଧା) ଦଧିମିଶ୍ରିତ ଅନ୍ନ, ଦହିଭାତ ।
ଦଧ୍ୟମ୍ଳ—ବି. (କ.ଧା) ଦୁଧକୁ ଦହି ବସା-ଇବା ନିମନ୍ତେ ତହିଁରେ ପକାଯିବା ଖଟା ଦହି, ମହି । [ ସମୁଦ୍ର ।
ଦଧ୍ୟାକର—ପୁଂ. ବ. ( ୬ତତ୍ ) ଦଧି-
ଦଧ୍ୟାନୀ—ସ୍ତ୍ରୀ.ବ.(ଦଧି+ଆ+ନୀ+କ୍ୱିପ୍) ସୁଦର୍ଶନା,ସୁଦର୍ଶନ ଗୁଳୁଚ,ମଦନମସ୍ତ ।
ଦଧ୍ୟାଶିର—ତ୍ରି. ବିଂ. ଦୋଷପାତନ ।
ଦଧ୍ୟୁତ୍ତର—କ୍ଲୀ. ବ. ଦଧିସ୍ନେହ, ଦହିର ସର, ଦଧିସମୁଦ୍ର । [ ସର ।
ଦଧ୍ୟୁତ୍ତରଗ—କ୍ଲୀ. ବ. ଦଧିସ୍ନେହ, ଦହି-
ଦଧ୍ୟୁଦ—ପୁଂ. ବ. (ବ.ବ୍ରୀ) ଦଧିସମୁଦ୍ର ।
ଦଧ୍ୟୋଦନ—ପୁଂ. ବ. ଦଧିମିଶ୍ରିତ ଓଦନ, ଦହିଭାତ ।

ଦନା—ଗ୍ରା. ବ. (ସଂ-ଦ୍ରୋଣୀ) ପତ୍ରରେ ତିଆରି ପଲଙ୍ଗା ବା ଚଉପଦୀ, ପଶୁ-ମାନଙ୍କ ଯୋନି । [ ପଙ୍କ ସ୍ତ୍ରୀ ।
ଦନାୟୁସ୍—ସ୍ତ୍ରୀ. ବ. ଦକ୍ଷକନ୍ୟା, କଶ୍ୟ-
ଦନୁ—ସ୍ତ୍ରୀ. ବ. ,ଦକ୍ଷକନ୍ୟା, କଶ୍ୟପଙ୍କ ସ୍ତ୍ରୀ, ଯାହାଙ୍କଠାରୁ ରାକ୍ଷସମାନେ ଜାତ ହୋଇଥିଲେ ।
ଦନୁଜ—ପୁଂ. ବ. (ଦନୁ+ଜନ+କ. ଅ) ଅସୁର, ରାକ୍ଷସ, ଦାନବ ।
ଦନୁଜଦଳନୀ—ସ୍ତ୍ରୀ. ବ. ଦନୁଜନାଶିନୀ, ଦୁର୍ଗା ।
ଦନୁଜଦ୍ୱିଷ୍—ପୁଂ. ବ. (ଦନୁଜ+ଦ୍ୱିଷ +କ୍ୱିପ୍)ଦେବତା, ଦନୁଜଙ୍କର ଶତ୍ରୁ ।

**ଦନୁଜାରି**—ପୁଂ. ବ. (୬ତତ୍ର) ଦେବତାଗଣ ।

**ଦନୁଜେ(ନ୍ଦ୍ର)ଶ**—ବ. (୬ତତ୍ର)ଦାନବଙ୍କ ରାଜା, ହିରଣ୍ୟ କଶିପୁ ।

**ଦନୁଷ**—ପୁଂ. ବ. ରାକ୍ଷସ ।

**ଦନୁସମ୍ଭବ**--ପୁଂ. ବ.ଦନୁର ପୁତ୍ର, ଦାନବ

**ଦନୁସୂନୁ**—ପୁଂ. ବ. ଦାନବ ।

**ଦନ୍ତ**—ପୁଂ. ବ.(ଦମ+ଣ-ତ) ଅଦ୍ରି. କଟକ, କୁଞ୍ଜ, ପର୍ବତ ନିତମ୍ବ, ସାନୁ, ଦାନ୍ତ, ୩୨ସଂଖ୍ୟା, (ଗ୍ରା. ବ) କଡ଼ାକର ନଅ ଭାଗରୁ ଏକଭାଗ ।

**ଦନ୍ତକ**—ପୁଂ. ବ. ଦନ୍ତମାର୍ଜନ, ଶୈଳଶୃଙ୍ଗ,ପର୍ବତରୁ ବହିର୍ଗତ ପାଷାଣ ଭେଦ ଦନ୍ତ,(ବିଂ)ଦାନ୍ତଆ,ଦନ୍ତବିଶିଷ୍ଟ,ଦନ୍ତୁର

**ଦନ୍ତକର୍ଷଣ**— ପୁଂ. ବ. ଜମ୍ବୀର, ଟଭା ଲେମ୍ବୁ

**ଦନ୍ତକାଷ୍ଠ**—କ୍ଲୀ.ବ. ଦାନ୍ତକାଠି,ବିକଙ୍କତ ବୃକ୍ଷ, ଭୁଇଞ୍ଚ ଗଛ ।

**ଦନ୍ତକୂର**—ପୁଂ.ବ. ସଂଗ୍ରାମ, ଯୁଦ୍ଧ ।

**ଦନ୍ତବକ୍ର**—ପୁଂ.ବ. ଦେଶ ବିଶେଷ,ଦନ୍ତବକ୍ର ଦେଶ ରାଜା ।

**ଦନ୍ତଗ୍ରାହୀ**—ବିଂ. ଯେ ଦାନ୍ତ ଧରେ, ଯେ ଦାନ୍ତ ନଷ୍ଟକରେ ।

**ଦନ୍ତଘର୍ଷ**—ପୁଂ. ବ. ଦାନ୍ତ କଡ଼କଡ଼ କରିବା, ଦାନ୍ତ ଘେରିବାଇବା ।

ଦନ୍ତଘର୍ଷଣ—ବ. (୬ତତ୍ର) ଦାନ୍ତଘଷିବା ।

**ଦନ୍ତଘାତ**—ପୁଂ.ବ. ଦାନ୍ତଦ୍ୱାରା ଆଘାତ, କାମୁଡ଼ିବା, ସର୍ପଦଂଶନ ।

**ଦନ୍ତଚାଳ**—ପୁଂ.ବ.ଆରୁରୋଗପଦ୍ରବଭେଦ, ଦାନ୍ତହଲିବା ।

**ଦନ୍ତଚିକିତ୍ସକ**—ଗ୍ରା.ବ. ଦାନ୍ତ ବିଷୟରେ ପ୍ରବୀଣ ଡାକ୍ତର ।

ଦନ୍ତଚକ୍ର—ବ. ଦନ୍ତଘାତ ।

ଦନ୍ତଚ୍ଛଦ—ପୁଂ.ବ. ଓଷ୍ଠ, ଉପର ଓଷ୍ଠ ।

ଦନ୍ତଚ୍ଛଦୋପମା—ସ୍ତ୍ରୀ. ବ. ବିମ୍ବୀଲତା, କଇଁଣି କାକୁଡ଼ି ଗଛ ।

ଦନ୍ତଜାତ—ବି .ବିଂ. ଜାତଦନ୍ତ,ଯାହାର ଦାନ୍ତ ଉଠିଅଛି ।

ଦନ୍ତଜାହ—କ୍ଲୀ.ବ. ଦନ୍ତମୂଳ ।

ଦନ୍ତଦର୍ଶନ—କ୍ଲୀ.ବ. ଦାନ୍ତ ଦେଖାଇବା, ଦାନ୍ତକାମୁଡ଼ା ।

ଦନ୍ତଧାବନ—କ୍ଲୀ. ବ. ( ଦନ୍ତ+ଧାବ+ଣ.ଅନ) ଦନ୍ତକାଷ୍ଠ, ଖଇରଗଛ, ବଉଳଗଛ, (ଧାବ+ଅନ) ଦାନ୍ତଘଷିବା, ଦାନ୍ତ ପରିଷ୍କାର କରିବା ।

ଦନ୍ତଧାବନକ—ପୁଂ.ବ. ( ଦନ୍ତଧାବନ+କ) ଦନ୍ତଧାବନ ଦେଖ ।

ଦନ୍ତପଙ୍କ୍ତି—ସ୍ତ୍ରୀ. ବ. (୬ତତ୍ର) ଦାନ୍ତର ଧାଡ଼ି, ଦନ୍ତଶ୍ରେଣୀ ।

ଦନ୍ତପତ୍ର—କ୍ଲୀ. ବ. କର୍ଣ୍ଣାଭରଣବିଶେଷ, କୁଣ୍ଡଳ, ଗଜଦନ୍ତନିର୍ମିତ କର୍ଣ୍ଣଭୂଷଣବିଶେଷ ।

ଦନ୍ତପତ୍ରକ—କ୍ଲୀ.ବ. କୁନ୍ଦଫୁଲ ।

ଦନ୍ତପତ୍ରିକା—କଙ୍କତିକା, ପାନିଆ ।

ଦନ୍ତପବନ—କ୍ଲୀ. ବ. ( ଦନ୍ତ+ପୁ+ଅନ ) ଦନ୍ତକାଷ୍ଠ, ଦନ୍ତଧାବନ ।

ଦନ୍ତପାତ—ପୁଂ.ବ.ଦନ୍ତପତନ, ଘୋଡ଼ାମାନଙ୍କ ଦାନ୍ତପଡ଼ିବା ସମୟ, ୩୦ବର୍ଷ ସମୟ ।

ଦନ୍ତପାଲୀ—ସ୍ତ୍ରୀ.ବ. (୬ତତ୍ର) ଦନ୍ତାଗ୍ର ।

ଦନ୍ତପୁପ୍ପୁଟ—ବ. ଦନ୍ତମୂଳ ଫୁଲା, ଦନ୍ତମୂଳରେ ହେବା ଜେକିଆ ।

ଦନ୍ତପୁର(ରୀ)—ପ୍ରାଚୀନ କଳିଙ୍ଗରାଜ୍ୟସ୍ଥ ନଗରବିଶେଷ, କଳିଙ୍ଗର ରାଜଧାନୀ ।

ଦନ୍ତପୁଷ୍ପ—କ୍ଲୀ. ବ. କୁନ୍ଦଫୁଲ, କତକଫଳ, ନିର୍ମଳୀଫଳ ।

ଦନ୍ତଫଳା—ସ୍ତ୍ରୀ.ବ. (ବ.ବ୍ରୀ) ପିପ୍ପଳୀ ।

ଦନ୍ତଭଙ୍ଗ—ପୁଂ.ବ. ( ୬ତତ୍ର ) ଦାନ୍ତଭାଙ୍ଗିବା ।

ଦନ୍ତଭାଗ—ପୁଂ.ବ. ଗଜାଗ୍ରଭାଗ, ହସ୍ତୀର ସ୍କନ୍ଧଠାରୁ ମୁଖପର୍ଯ୍ୟନ୍ତ । [ ସ୍ୱରୂପ ।

ଦନ୍ତମୟ—ବି. ବିଂ. ଦନ୍ତନିର୍ମିତ, ଦନ୍ତ-

ଦନ୍ତମଳ—କ୍ଲୀ. ବ. (୬ତତ୍ର) ଦନ୍ତଲଗ୍ନ ମଳ, ପୁଷ୍ପିକା, ଦାନ୍ତ ଉପରେ ଓ ସନ୍ଧିରେ ଲାଗିବା ମଇଳା ।

ଦନ୍ତମାଂସ—କ୍ଲୀ. ବ. ଦନ୍ତଲଗ୍ନ ମାଂସ, ଦନ୍ତବେଷ୍ଟ ଦେଖ ।

ଦନ୍ତମାର୍ଜନ—ବ.(୬ତତ୍ର) ଦାନ୍ତଘଷିବା ।

ଦନ୍ତମାର୍ଜନୀ—ସ୍ତ୍ରୀ. ବ. ଦାନ୍ତଘଷା, ଦାନ୍ତ ରୋଗର ଔଷଧ, ଦନ୍ତକାଷ୍ଠ ।

ଦନ୍ତମୂଳ—କ୍ଲୀ. ବ. ଦାନ୍ତମୂଳ, ଦାନ୍ତର ରୋଗବିଶେଷ ।

ଦନ୍ତମୂଳିକା—ସ୍ତ୍ରୀ.ବ. ଦନ୍ତୀବୃକ୍ଷ ।

ଦନ୍ତମୂଳୀୟ—ପୁଂ.ବିଂ.ତବର୍ଗାଦି, ଦନ୍ତମୂଳ ସମ୍ବନ୍ଧୀୟ, ଦାନ୍ତମୂଳ ସାହାଯ୍ୟରେ ଉଚ୍ଚାରିତ ବର୍ଣ୍ଣ ।

ଦନ୍ତରୋଗ—ପୁଂ. ବ. ଦାନ୍ତମୂଳ ସମ୍ବନ୍ଧୀୟ ପୀଡ଼ା, ଦାନ୍ତପୀଡ଼ା ।

ଦନ୍ତଲେଖକ—ବି, ବିଂ. ଯେ ଦନ୍ତ ଲେଖନଦ୍ୱାରା ଜୀବିକା ନିର୍ବାହ କରେ ।

ଦନ୍ତଲେଖନ—କ୍ଲୀ. ବ. ଅସ୍ତ୍ରବିଶେଷ, ଦାନ୍ତମୂଳ ରେ ତହିଁରୁ ପୂଯଆଦି ବାହାର କରିବାପାଇଁ ବ୍ୟବହୃତ ସୁଶ୍ରୁତୋକ୍ତ ଅସ୍ତ୍ରବିଶେଷ ।

ଦନ୍ତବକ୍ର—ପୁଂ.ବ. ଶିଶୁପାଳର ଭାଇ ।

ଦନ୍ତବଲ୍କ—କ୍ଲୀ.ବ. ଦନ୍ତାବରଣ ଚର୍ମାତ୍ମକ ମାଂସଭେଦ, ଦାନ୍ତମୂଳରେ ଥିବା ମାଂସର ହିଡ଼ ।

ଦନ୍ତବସନ—ବ. ଦନ୍ତବାସ, ଓଷ୍ଠ ।

ଦନ୍ତବସ୍ତ୍ର—କ୍ଲୀ.ବ. ଓଷ୍ଠ, ଦନ୍ତବାସ ।

ଦନ୍ତବାସ—ପୁଂ.ବ. ଓଷ୍ଠ, ଦନ୍ତଚ୍ଛଦ ।

ଦନ୍ତବିକାଶ—ବ. (୬ତତ୍ର) ଦାନ୍ତଉଠିବା, ଦାନ୍ତଦେଖିବା । [ ଉବା ।

ଦନ୍ତବିଘାତ—ପୁଂ.ବ. ଦନ୍ତାଘାତ, କାମୁ-

ଦନ୍ତବିଦ୍ରଧି—ପୁଂ.ବ.ଦନ୍ତ ରୋଗବିଶେଷ ।

ଦନ୍ତବୀଜ—ପୁଂ.ବ. (ବ.ବ୍ରୀ) ଡାଳିମ୍ବ ।

ଦନ୍ତବୀଣା —ସ୍ତ୍ରୀ. ବ. ଦାନ୍ତରେ ବଜାଯିବା ବୀଣା ।

ଦନ୍ତବେଦନା— ସ୍ତ୍ରୀ. ବ. ଦନ୍ତବ୍ୟଥା, ଦାନ୍ତପୀଡ଼ା ।

ଦନ୍ତବେଷ୍ଟ—ପୁଂ.ବ. ଦନ୍ତ ରୋଗଭେଦ, ଦନ୍ତବେଷ୍ଟକ, ଦନ୍ତମୂଳକୁ ବେଷ୍ଟନ କରିଥିବା ମାଂସପିଣ୍ଡ ।

ଦନ୍ତବୈଦର୍ଭ—ପୁଂ. ବ. ଦନ୍ତ ରୋଗଭେଦ । [ ନାଶ ।

ଦନ୍ତବ୍ୟସନ—କ୍ଲୀ. ବ. ଦନ୍ତହାନି, ଦନ୍ତ-

ଦନ୍ତଶଙ୍କୁ—ପୁଂ. ବ. ସୁଶ୍ରୁତୋକ୍ତ ଅସ୍ତ୍ର-

ବିଶେଷ, ଦାନ୍ତ ଉପାଡ଼ିବା ନିମନ୍ତେ ବ୍ୟବହୃତ ସଣ୍ଢୁଆସି ।

ଦନ୍ତଶଠ—ପୁଂ. ବି. (ଦନ୍ତ+ଶଠ୍+ଅ) ଦନ୍ତଶଠ ଦେଖ ।

ଦନ୍ତଶଠ—ପୁଂ. ବି. ଜମ୍ବୀର, କପିତ୍ଥ, କର୍ମରଙ୍ଗକ, ନାଗରଙ୍ଗକ, କରମଙ୍ଗା, ଲେମ୍ବୁ, ଅମ୍ଳ, ଯାହା ଖାଇଲେ ଦାନ୍ତ ସଢ଼ି ପଡ଼େ ।

ଦନ୍ତଶଠା—ସ୍ତ୍ରୀ.ବି.ଚୁକ୍ରିକା, କ୍ଷୁଦ୍ରାମ୍ଳିକା, ଖଟାପାଳଙ୍ଗ ।

ଦନ୍ତଶର୍କରା—ସ୍ତ୍ରୀ. ବି. ( ୬ତତ୍ ) ଦନ୍ତ ରୋଗବିଶେଷ, ଦନ୍ତମଳ ।

ଦନ୍ତଶାଣ—ପୁଂ. ବି. ଅଷ୍ଟକଣ, ଚୂର୍ଣ୍ଣ-ଭେଦ, ମିଷି, ଦାନ୍ତ ରଙ୍ଗାଇବା ପାଇଁ ବ୍ୟବହୃତ ଗୁଣ୍ଡୀ ।

ଦନ୍ତଶୁଦ୍ଧି—ସ୍ତ୍ରୀ.ବି. ଦାନ୍ତର ବିଶୁଦ୍ଧତା ।

ଦନ୍ତଶୂଳ—ପୁଂ.ବି. ଦାନ୍ତ ରୋଗବିଶେଷ, ଦାନ୍ତ ବିନ୍ଧିବା ରୋଗ ।

ଦନ୍ତଶୋଧନ—ବିଂ. (୬ତତ୍) ଯାହାଦ୍ୱାରା ଦାନ୍ତ ସଫା କରାଯାଏ ।

ଦନ୍ତଶୋଧନ—ବି. (୬ତତ୍) ଦାନ୍ତ ସଫା କରିବା, (ବିଂ—ବ.ବ୍ରୀ) ଦନ୍ତଶୋଧକ ଦେଖ ।

ଦନ୍ତଶୋଧନୀ—ସ୍ତ୍ରୀ.ବି. ଦନ୍ତମାର୍ଜନୀ ଦେଖ ।

ଦନ୍ତଶୋଫ—ପୁଂ.ବି. ଦନ୍ତାର୍ବୁଦ, ଦନ୍ତ-ମୂଳରେ ହେବା କଷ୍ଟଦାୟକ ବ୍ରଣ ।

ଦନ୍ତସଂଘର୍ଷ—ପୁଂ.ବି. ଦନ୍ତଘର୍ଷଣ, ଦାନ୍ତ କଡ଼ମଡ଼ କରିବା, ଦାନ୍ତ ଜାମୁଡ଼ିବା ।

ଦନ୍ତସ୍ଫୁଟ—ଗ୍ରା. ବି. କୌଣସି ପଦ ବା ବାକ୍ୟର ଉଚ୍ଚାରଣର ସହଜତା, (ଲ. ଅର୍ଥ) ବୁଝିବାକୁ ସୁବୋଧତା ।

ଦନ୍ତହର୍ଷ—ପୁଂ. ବି, ଦନ୍ତ ରୋଗବିଶେଷ, ଦାନ୍ତ ବିନ୍ଧିବା ରୋଗ ।

ଦନ୍ତହର୍ଷକ—ପୁଂ. ବି. ଜମ୍ବୀର, ଲେମ୍ବୁ, (ବିଂ) ଯାହା ଖାଇଲେ ଦାନ୍ତର ଟକ-ମରିଯାଏ ।

ଦନ୍ତହର୍ଷଣ—ପୁଂ.ବି.(ଦନ୍ତ+ହୃଷ+ଅନ) ଜମ୍ବୀର, ଲେମ୍ବୁ, (ବି) ଯାହା ଖାଇଲେ ଦାନ୍ତର ଟକ ମରିଯାଏ ।

ଦନ୍ତହୀନ—ପୁଂ. ବିଂ. ( ୩ତତ୍ ) ଦାନ୍ତ ନଥିବା (ଲୋକ) ପାକୁଆ ନୀରଦ ।

ଦନ୍ତା—ଗ୍ରା. ବିଂ. ( ସଂ-ଦନ୍ତାଳ ) ବଡ଼ ଦାନ୍ତଯୁକ୍ତ (ହାତୀ), (ଲ.ଅର୍ଥ) ଅନେ-କଙ୍କ ମଧ୍ୟରେ ଉତ୍କୃଷ୍ଟ ଦଳପତି ହେବାର ଉପଯୁକ୍ତ, ପରାକ୍ରମଶାଳୀ, ଅତ୍ୟାଗ୍ରହୀ, ମୁଖର, (ବି) ବଡ଼ ଦାନ୍ତ-ଥିବା ହାତୀ, ଅଣ୍ଡିରା ହାତୀ,ମର୍କଟ ଦଳ-ପତି ।

ଦନ୍ତାଗ୍ର—କ୍ଲୀ.ବି. (୬ତତ୍) ଦାନ୍ତର ଅଗ ବା ମୁନ ।

ଦନ୍ତାଘାତ—ପୁଂ.ବି. (ଦନ୍ତ+ହନ+ଅ) ଲେମ୍ବୁ, ଦଶନାଘାତ, କାମୁଡ଼ାଚିହ୍ନ ।

ଦନ୍ତାଦ—ପୁଂ. ବି. ଦନ୍ତଖାଦକ କୃମି-ରୋଗବିଶେଷ, ଦାନ୍ତକୁ ପୀଡ଼ାଦେବା ପୋକ ।

ଦନ୍ତାଦନ୍ତି—ଅବ୍ୟ.କାମୁଡ଼ାକାମୁଡ଼ି, ପର-ସ୍ପରକୁ ଦନ୍ତରେ ଆଘାତ କରି, (ବି) ଉଭୟପକ୍ଷ କାମୁଡ଼ାକାମୁଡ଼ି ହୋଇ କରୁଥିବା ଯୁଦ୍ଧ ।

ଦନ୍ତାନ୍ତର—କ୍ଲୀ. ବି. ଦାନ୍ତର ମଧ୍ୟ, ଦୁଇ ଦାନ୍ତର ମଧ୍ୟସ୍ଥାନ ।

ଦନ୍ତାୟୁଧ—ପୁଂ. ବି.( ବ.ବ୍ରୀ ) ଶୂକର, ବରାହ ।

ଦନ୍ତାଳି—ଗ୍ରା. ବି. ଲତାପରି ଡେଙ୍ଗେ-ଇବା ବୁଦାବିଶେଷ ।

ଦନ୍ତାର୍ବୁଦ—ପୁଂ.ବି. (୬ତତ୍) ଦନ୍ତ-ରୋଗଭେଦ, ଦାନ୍ତମୂଳ ଫୁଲା ।

ଦନ୍ତାଳ—ବିଂ. ( ଦନ୍ତ+ଆଲ ) ଦନ୍ତ-ବିଶିଷ୍ଟ, ଦନ୍ତଯୁକ୍ତ,ବଡ଼ ଦାନ୍ତଯୁକ୍ତ,(ବି) ହସ୍ତୀ, ଅଣ୍ଡିରା ହସ୍ତୀ ।

ଦନ୍ତାଳିକା—ସ୍ତ୍ରୀ. ବି. ( ଦନ୍ତାଳ+କ+ ଆ )ଲଗାମ, ବାଗ ଘୋଡ଼ାର କଡ଼ିଆଳି ।

ଦନ୍ତାଳୀ—ସ୍ତ୍ରୀ.ବି. ( ଦନ୍ତ+ଅଲ+କ. ଅ+ଈ ) ବଲ୍‌ଗା, ଲଗାମ, ବାଗ, ଘୋଟକାଦିର ମୁଖରଜ୍ଜୁ, ଦନ୍ତଶ୍ରେଣୀ ।

ଦନ୍ତାଲେକ—ଗ୍ରା. ବି. ଯୋଗ୍ୟ ବା ପରା-କ୍ରମଶାଳୀ ବ୍ୟକ୍ତି ।

ଦନ୍ତାବଳ—ପୁଂ.ବି. (ଦନ୍ତ+ବଳ)ହସ୍ତୀ, ଅଣ୍ଡିରା ହାତୀ, ଦନ୍ତାଘାତୀ ।

ଦନ୍ତାବଳି—ସ୍ତ୍ରୀ. ବି. ( ଦନ୍ତ+ଆବଳି ) ଦନ୍ତପଙ୍କ୍ତି ।

ଦନ୍ତିକା—ସ୍ତ୍ରୀ. ବି. ( ଦନ୍ତ+କ+ଆ ) ଦନ୍ତୀବୃକ୍ଷ ।

ଦନ୍ତିକା—ସ୍ତ୍ରୀ.ବି. ଦନ୍ତୀବୃକ୍ଷ ।

ଦନ୍ତିଦନ୍ତ—ପୁଂ.ବି. (୬ତତ୍) ହସ୍ତୀଦନ୍ତ, ହାତୀର ଦାନ୍ତ ।

ଦନ୍ତିନୀ—ସ୍ତ୍ରୀ.ବି. ( ଦନ୍ତ+ଇନ୍+ଈ ) ଦନ୍ତୀବୃକ୍ଷ ।

ଦନ୍ତିମଦ—ପୁଂ. ବି. ହସ୍ତିମଦ ନାମକ ଗନ୍ଧ ଦ୍ରବ୍ୟଭେଦ ।

ଦନ୍ତୀମୂଳିକା—ସ୍ତ୍ରୀ.ବି. ଦନ୍ତୀବୃକ୍ଷ ।

ଦନ୍ତୀ—ପୁଂ.ବିଂ. ( ଦନ୍ତ+ଇନ୍ )ଦନ୍ତ-ବିଶିଷ୍ଟ, ଦନ୍ତଯୁକ୍ତ, (ବି) ହସ୍ତୀ, ସ୍ନୁହ୍ୟାଦି ବର୍ଗର ସ୍ଥୂଳ କ୍ଷୁପବିଶେଷ, ଦନ୍ତୀ-ଗଛ ।

ଦନ୍ତୁର—ପୁଂ.ବିଂ. (ଦନ୍ତ+ଉର)ଉନ୍ନତ-ଦନ୍ତ, ଦନ୍ତା, ଦାନ୍ତୁରା, ବଡ଼ ଦାନ୍ତଆ, ଉଚ୍ଚନୀଚ (ସ୍ଥାନ), ବିଷମାନ୍ତର, କୁଟିଳ, ବନ୍ଧୁର ।

ଦନ୍ତୁରକ—ପୁଂ. ବି. ଦେଶ ଭେଦ ।

ଦନ୍ତୁରଚ୍ଛଦ—ପୁଂ. ବି. ବୀଜପୂର, ଟଭା, ଲେମ୍ବୁ ।

ଦନ୍ତୁରିତ—ବିଂ. (ଦନ୍ତୁର+କ.ତ)ଦାନ୍ତ-ପରି ଦାନ୍ତଯୁକ୍ତ, କରତ ଦାନ୍ତପରି ହୋଇଥିବା, ଉଚ୍ଚନୀଚ, କଣ୍ଟକିତ, ଟାଙ୍କୁରିଥିବା ।

ଦନ୍ତୋଚ୍ଛିଷ୍ଟ—ବିଂ. (୩ତତ୍) ଦନ୍ତ ଦ୍ୱାରା ଉଚ୍ଛିଷ୍ଟ, ଦନ୍ତଦ୍ୱାରା ଚୋବିଆ ।

ଦନ୍ତୋଦ୍ଗମ—ପୁଂ.ବି.(୬ତତ୍)ଦାନ୍ତଉଠା ।

ଦନ୍ତୋତ୍ପାଟନ—କ୍ଲୀ. ବି. (୬ତତ୍) ଦାନ୍ତ ଉପାଡ଼ିବା ।

ଦନ୍ତୋଦ୍ଭବ—ବି. ( ୬ତତ୍ ) ପିଲାର ଦାନ୍ତଉଠିବା ।

ଦନ୍ତୋଦ୍ଭେଦ—ପୁଂ. ବି. ( ୬ତତ୍ ) ଦନ୍ତୋଦ୍ଗମ, ଦାନ୍ତଉଠା ।

ଦନ୍ତୋଲୂଖଳିକ—ପୁଂ. ବି. ଏକପ୍ରକାର ସନ୍ନ୍ୟାସୀ ।

ଦନ୍ତୋଷ୍ଠ—କ୍ଲୀ. ବ. ଦନ୍ତ ଓ ଓଷ୍ଠର ସମାହାର ।

ଦନ୍ତୌଷ୍ଠ୍ୟ—ପୁଂ. ବ. ଦନ୍ତ ଓ ଓଷ୍ଠଦ୍ୱାରା ଉଚ୍ଚାରିତ ବର୍ଣ୍ଣ ବିଶେଷ ।

ଦନ୍ତ୍ୟ—ତ୍ରି. ବିଂ. (ଦନ୍ତ+ଯ) ଦନ୍ତ ସମ୍ବନ୍ଧୀୟ, ଦନ୍ତଯୋଗେ ଉଚ୍ଚାରିତ (ବର୍ଣ୍ଣ)

ଦନ୍ତ୍ୟବର୍ଣ୍ଣ—ପୁଂ. ବ. ଦନ୍ତୋଦ୍ଭବ ବର୍ଣ୍ଣ, ଦନ୍ତ ସାହାଯ୍ୟରେ ଉଚ୍ଚାରିତ ବର୍ଣ୍ଣ ।

ଦନ୍ଥୁଡ଼ା—ଗ୍ରା. ବିଂ. (ସଂ-ଦନ୍ତୁର) ଦନ୍ଥୁରା ଦେଖ ।

ଦନ୍ଥୁରା—ଗ୍ରା. ବିଂ. ଦାନ୍ତ ନଷ୍ଟ ହୋଇ ଯାଇଥିବା, ଅନ୍ତରା, ବନ୍ଧୁରତାଯୁକ୍ତ ।

ଦନ୍ଦ୍ରେ—ପ୍ରା. (ସମ୍ବ) ବ. ବଡ଼ଗଣ୍ଡି ।

ଦନ୍ଦଶୂକ—ପୁଂ. ବ. (ଦନ୍ଶ+କ.ଉକ) ସର୍ପ, ରାକ୍ଷସ, (ବିଂ) ହିଂସ୍ର, କ୍ରୂର, ସର୍ବଦା ଦଂଶନ କରିବାକୁ ଉଦ୍ୟତ ।

ଦନ୍ଦ୍ରମ୍ୟମାଣ—ତ୍ରି. ବିଂ. (ଦ୍ରମ+ଯଙ୍+ଆନ) କୁଟିଳ ଗତିଯୁକ୍ତ ।

ଦପ୍‌ଦପ୍—ଗ୍ରା.ଅବ୍ୟ. ଦକଦକ, ଧକଧକ, ନିଆଁ ଯେପରି ସହିତ ଜଳିବା ପ୍ରକାରେ, ପାଦକୁ ଭୂଇଁରେ ଜୋରରେ ପକାଇ ଦର୍ପରେ ଚାଲିବାର ଢଙ୍ଗ ।

ଦପ୍ତର୍—ଯା. ବ. ଖାତା କିମ୍ବା ହିସାବ ବହି, ନଥି, ସିରସ୍ତା, ଅଫିସର କାଗଜ ପତ୍ର, ଅଫିସ, କାର୍ଯ୍ୟାଳୟ. (ଗ୍ରା.ଅବ୍ୟ) ଜୋର ସହିତ ଚାଲିବା ପ୍ରକାରେ,(ବିଂ) ଧମକ, ଦର୍ପ, କ୍ରୋଧର ଆବେଶ ।

ଦପ୍ତରି—ଯା. ବ. ଅଫିସର କଗୁଆଳ, ଯେ ବହି ଓ ଖାତା ଆଦି ବାନ୍ଧେ ଓ ରୁଲ ଆଦି କରେ ।

ଦଫ୍‌ଲ—ଗ୍ରା.ବ.ଆସାମାନ୍ତର୍ଗତ ପାର୍ବତ୍ୟ-ଜାତି ବିଶେଷ ।

ଦଫା—ଯା. ବ. ହିସାବାଦିର ପୃଥକ୍ ପୃଥକ୍ ବିଷୟ, ଧାରା, ବାର, ଥର, କିସ୍ତି, ଖେପ, ପରିଚ୍ଛେଦ, ଆଇନର ପ୍ରକରଣ, ଦଳ ।

ଦଫାଏତ୍ତ—ଯା. ବ. ଜମିଦାରମାନଙ୍କର ଖଜଣା ଛଡ଼ା ଅନ୍ୟ ବାଜେ ଆୟ ।

ଦଫାଦଫା—ଯା. କ୍ରି. ବିଂ. ପୁନଃ ପୁନଃ, ପୃଥକ୍ ପୃଥକ୍ ରୂପେ, ଥରକୁଥର, ପ୍ରତି ଥର, ଦଳଦଳ, ବାରଂବାର ।

ଦଫାଦାର୍—ଯା. ବ. କର୍ମଗୃହ, ଅଶ୍ୱା-ରୋହୀମାନଙ୍କର ଜମାଦାର, ମୂଲିଆ-ମାନଙ୍କ ସର୍ଦ୍ଦାର, ମେଣ୍ଟ ।

ଦଫାଦାରି—ଯା.ବ.ଦଫାଦାରର କାର୍ଯ୍ୟ

ଦଫାରଫା—ଯା. ବ. କୌଣସି ବିଷୟର ଶେଷ ନିଷ୍ପତ୍ତି, ଶେଷରଫା, ଆପୋଷରେ ନିଷ୍ପତ୍ତି, ସର୍ବନାଶ, କାର୍ଯ୍ୟକରିବାର ଅପଟୁତା ।

ଦଫାଦାର୍—ଯା. ଅବ୍ୟ. ଅନେକ ଥର, ଥରଥର କରି, ଭିନ୍ନ ଭିନ୍ନ ପରିଚ୍ଛେଦରେ

ଦଫାଶେଷ—ଗ୍ରା. ବ. ସର୍ବନାଶ, ସମ୍ପୂର୍ଣ୍ଣ ବିନାଶ, ଲୋପ ।

ଦଫେ—ଯା.କ୍ରି. ବିଂ, ପୁନଶ୍ଚ, ପୁନରପି, ଏକବାର, ଥରେ, ଏଥିପୂର୍ବେ ଥରେ ।

ଦବୋଇ,ଦର୍ଭବତୀ-ଗାଇକୋବାଡ଼ ରାଜ୍ୟର ଗୋଟିଏ ନଗର ।

ଦଭ୍ୟ—ତ୍ରି. ବିଂ. (ଦଭ+ଯ)ହନ୍ତବ୍ୟ, ହନନଯୋଗ୍ୟ ।

ଦଭ୍ର—ତ୍ରି. ବିଂ. (ଦନ୍ଭ+କ.ର)ଅଳ୍ପ, ଅଳ୍ପଯୁକ୍ତ, (ବ) ସମୁଦ୍ର, ଉଭରଦିଗ ।

ଦମ୍—ଯ. ବ. ଜୀବନ, ପ୍ରାଣ, ନିଃଶ୍ୱାସ, ନିଃଶ୍ୱାସ ନେବା ପାଇଁ ବିଶ୍ରାମ, ବଳ, ଜୋର୍, ବିଶ୍ରାମ, ଜୀବନୀ ଶକ୍ତି, ଫୁଙ୍କ-ସେବା, ଟେକାଇ ଧୂଆଁ ଟାଣିବାର ଥର, ଆବେଗ, ହିମ୍ମତ, ଦୀର୍ଘନିଃଶ୍ୱାସ, ଗାଢ଼ର ଦମ୍ ବା କମାଣି, ସ୍ପ୍ରିଙ୍ଗ, ତାର ବା ଲୁହା ପତ୍ରର ସ୍ଥିତି ସ୍ଥାପକ କୁଣ୍ଡଳୀ, ସିଦ୍ଧି ଗୁଡ଼ାପ ଛଡ଼ା ଗୋଟା ଆଗୁ,ମୁହୂର୍ତ୍ତ, ପ୍ରତାରଣା, ଭଣ୍ଡାଇବା ।

ଦମ୍‌କ—ଯ.ବ.ଦୁମ୍‌କା, ପ୍ରବଳବେଗରେ ବର୍ଷା, ତୋଫାନ,ତେଜ ଓ ରାଗ ପ୍ରଭୃତିର ହିମ୍ମତ, ବାତ୍ୟା,ଘନ ଘନ ନିଶ୍ୱାସ, ଅଣଚାଶ, (ବିଂ) ଦୁମ୍‌ଦୁମ, ଅତ୍ୟନ୍ତ ଭୟାନକ, ଶୀତଉତ୍ପାଦକ ।

ଦମ୍‌ଖାଇବା—ଗ୍ରା.କ୍ରି.ଗୁମ୍‌ହେବା,ତୁଷ୍ଣୀଂ-ଭୂତ ହେବା, ଚୁପ୍‌ହେବା, ସ୍ତମ୍ଭୀଭୂତ ହେବା, ମୌନ ।

ଦମ୍‌ଗଦା—ଯା. ବ. ସ୍ଥିତି ସ୍ଥାପନ ଗୁଣବିଶିଷ୍ଟ, କୁଣ୍ଡଳୀକୃତ ମୋଡ଼ାତାରର ଆସନ ।

ଦମ୍‌ଛୁଟିଯିବା—ଗ୍ରା.କ୍ରି.ବେଦମ୍ ହେବା, ଶ୍ୱାସ ରୋଧ ହେବା, ପରିଶ୍ରମଯୋଗୁଁ ଅତିଶୟ ନିଶ୍ୱାସ ମାରିବା,ନିଶ୍ୱାସ ବନ୍ଦ ହୋଇ ମରିଯିବା ।

ଦମ୍‌ଟାଣିବା—ଗ୍ରା. କ୍ରି. ଏକା ନିଶ୍ୱାସକେ ଗୁଡ଼ିଏ ପବନ ବା ଧୂଆଁ ପେଟ ଭିତରକୁ ନେବା ।

ଦମ୍‌ଦମ୍—ଗ୍ରା. ଅବ୍ୟ. ଗୁରୁ ଧଡ଼ ଧଡ଼, ଗୁରୁ ଦକଦକ, ଢୋଲବାଜା ଆଦିର ଢେ, ଦୁମ୍, ଦମ୍ବ ବା ଗର୍ବ ପ୍ରକାଶକ ଚାଲି, ଦୁମ୍‌ଦୁମ୍ ଚାଲିବା ।

ଦମ୍‌ଦମା—ଯା. ବ. ଲକ୍ଷ୍ୟଭେଦ ଶିକ୍ଷା ଉଦ୍ଦେଶ୍ୟରେ ପ୍ରସ୍ତୁତ ମାଟିର ସ୍ତୂପ,(ବି-) ଯାହା ଅତ୍ୟନ୍ତ ଶବ୍ଦ ଉତ୍ପାଦକ, ଯାହା ଗୁରୁ ଦମଦମ କରେ, (ଗ୍ରା.ବ)ଦାମଦମ୍ ଦେଖ, (ପ୍ରା. କଟକ-ବିଂ) ଡାଇମନକଟା ହାତର ଚୂଡ଼ା ଚୂଡ଼ି, ( ପ୍ରା.ସମ୍ବ ବ) ପାହାଚ, ଟିଡ଼ି, ନିଶୁଣି ।

ଦମ୍‌ଦିଲସା—ଯ. ବ. ଭଣ୍ଡାଇବା,ଛଳନା, ବୃଥା ଆଶା ଦେଇ ଠକିବା ।

ଦମ୍‌ଧରିବା—ଗ୍ରା. କ୍ରି. କୌଣସି ଦୁରୁହ କାର୍ଯ୍ୟ କରିବାକୁ ଅଧିକକ୍ଷଣ ଶ୍ୱାସରୋଧ କରି ରଖିବା ।

ଦମ୍‌ଫାଟିଯିବା—ଗ୍ରା.ବ.ଶ୍ୱାସରୁଦ୍ଧହେବା, ଗୁରୁ ଫାଟି ଯିବା, ଅତିରିକ୍ତ ପରିଶ୍ରମ ଯୋଗୁଁ ଶ୍ୱାସରୁଦ୍ଧ ହେବା ।

ଦମ୍‌ବାଜ—ଯା. ବିଂ.ଭଣ୍ଡ, ଯେ ଭଣ୍ଡାଏ, ପ୍ରତାରକ, ବଞ୍ଚକ, ଠକ ।

ଦମ୍‌ମାରିବା—ଗ୍ରା. କ୍ରି. ନିଃଶ୍ୱାସ ନେବା, ବିଶ୍ରାମ କରିବା, ଦମ୍‌ଟାଣିବା ଦେଖ ।

ଦମ୍‌ଲଗା(ଗେ)ଇବା—ଗ୍ରା.କ୍ରି.ଦମ୍‌ଟାଣିବା ଦେଖ ।

ଦମ—ପୁଂ. ବ. (ଦମ+ର୍ମ. ଅ) କର୍ଦ୍ଦମ, କାଦୁଅ, ଦକ, (ଦମ+ଭା.ଅ) ଦଣ୍ଡ, ଦମନ, ଚିତ୍ତର ସ୍ଥୈର୍ଯ୍ୟ, କୁକର୍ମରୁ ମନର ନିବୃତ୍ତି, ବଶୀକରଣ, ଇନ୍ଦ୍ରିୟ-

ନିଗ୍ରହ, ବିଦର୍ଭ ରାଜାଙ୍କ ଜ୍ୟେଷ୍ଠ ପୁତ୍ର, ଦମୟନ୍ତୀଙ୍କ ଭ୍ରାତା, ଚନ୍ଦ୍ରବଂଶୀୟ ଶିଶୁପାଳଙ୍କ ପିତା,ଚେଦିରାଜ, ଦମଘୋଷ ।

ଦମକ—ବି. ବଂ. (ଦମ+କ.ଅକ) ଦମନକର୍ତ୍ତା, ଶାସନକାରୀ,(ବି)ଶାସନକର୍ତ୍ତା, (ଗ୍ରା. ବି) ଗୃପ ଦମନ, ବେଗ, ଧକ୍କା, ଧମକ ।

ଦମକଳ—ଯା. ବି. ଯେଉଁ ଯନ୍ତ୍ର ଦ୍ୱାରା ବାୟୁ ଆକର୍ଷଣ ପୂର୍ବକ ଉପରକୁ ଜଳ ଟାଣିବାକୁ ହୁଏ, ପମ୍ପ ।

ଦମକା—ଗ୍ରା.ବି ଓ ବଂ. ଦମକା ଦେଖ ।

ଦମକାଣି—ଗ୍ରା. ବି ଓ ବଂ. ଦୁମୁକାଣି ଦେଖ ।

ଦମକିବା—ଗ୍ରା. କ୍ରି. କୌଣସି କାର୍ଯ୍ୟ କରୁ କରୁ ହଠାତ୍ ଅଟକି ରହିଯିବା, ଚମକି ପଡ଼ିବା,(ଗ୍ରାଠ)ଦମ ଦମ ହେବା ।

ଦମଘୋଷ—ପୁଂ.ବି.ଚନ୍ଦ୍ରବଂଶୀୟ ଜନୈକ ରାଜା, ଚେଦିଦେଶର ରାଜା ଶିଶୁପାଳଙ୍କ ପିତା ।

ଦମଘୋଷଜ—ପୁଂ. ବି. (ଦମଘୋଷ+ଜନ+କ.ଅ) ଶିଶୁପାଳ ।

ଦମଘୋଷନନ୍ଦନ—ପୁଂ. ବି. ( ୬ତତ୍ ) ଶିଶୁପାଳ । [ ଶିଶୁପାଳ ।

ଦମଘୋଷସୁତ—ପୁଂ. ବି. ( ୬ତତ୍ )

ଦମଥ—ପୁଂ. ବି. ( ଦମ + ଅଥ ) ଦମ, ଦଣ୍ଡ, ଶାସନ । [ ଦମନ ।

ଦମଥୁ—ପୁଂ. ବି. (ଦମ+ଭା.ଅଥୁ) ଦମ,

ଦମନ—ପୁଂ.ବି. (ଦମ+ଭା.ଅନ) ଦଣ୍ଡ, ଶାସନ,ଇନ୍ଦ୍ରିୟାଦିର ବାହ୍ୟବୃତ୍ତି ନିରୋଧ, ଇନ୍ଦ୍ରିୟନିଗ୍ରହ, ବଶୀକରଣ, ପୁଷ୍ପବୃକ୍ଷ ବିଶେଷ, ଦଅଣା,କୁନ୍ଦବୃକ୍ଷ,ଋଷିବିଶେଷ ଦମରାଜାର ଏକପୁତ୍ର,ବିଷ୍ଣୁ,ମହାଦେବ, ଶମ୍ଭୁ ।

ଦମନକ—ପୁଂ. ବି. (ଦମନ+କ) ବୃକ୍ଷବିଶେଷ, ଦଅଣା ଗୁଳ୍ମ,ଛନ୍ଦୋବିଶେଷ, ଗ୍ରନ୍ଥବିଶେଷ ।

ଦମନକଚତୁର୍ଦ୍ଦଶୀ—ଗ୍ରା. ବି. ଚୈତ୍ର ଶୁକ୍ଳ ଚତୁର୍ଦ୍ଦଶୀ, ଦଅଣାରେରଯାତ୍ରା, ଜଗନ୍ନାଥ ଓ ଲିଙ୍ଗରାଜ ମହାପ୍ରଭୁମାନଙ୍କର ନିର୍ଦ୍ଦିଷ୍ଟ ଯାତ୍ରାମଧ୍ୟରୁ ଏକତମ ।

ଦମନକାରୋପଣୋତ୍ସବ—ପୁଂ.ବି.ଶ୍ରୀକୃଷ୍ଣଙ୍କୁ ଦଅଣା ଅର୍ପଣାର୍ଥ ମହାପୂଜାରୂପ ଉତ୍ସବ ବିଶେଷ ।

ଦମନୀ—ସ୍ତ୍ରୀ. ବି. ଅଗ୍ନିଦମନୀ ବୃକ୍ଷ ।

ଦମନୀୟ—ବଂ. ( ଦମ+ମି. ଅନୀୟ ) ଦମନଯୋଗ୍ୟ, ଶାସନାର୍ହ ।

ଦମୟନ୍ତୀ—ସ୍ତ୍ରୀ. ବି. ଭଦ୍ରମଲ୍ଲିକା, ନଳରାଜାଙ୍କର ପତ୍ନୀ, ବୈଦର୍ଭ ରାଜା ଭୀମଙ୍କର କନ୍ୟା ।

ଦମୟିତା—ପୁଂ. ବଂ. (ଦମ+ଣିଚ୍+କ.ତୃ)ଶାସକ,ଦଣ୍ଡଦାତା,(ପୁଂ.ବି)ବିଷ୍ଣୁ ।

ଦମଲଚେରି—ମାନ୍ଦ୍ରାଜ ପ୍ରେସିଡେନ୍ସୀର ଅନ୍ତର୍ଗତ ଉତ୍ତର ଆର୍କଟର ଗିରିପଥ ।

ଦମା—ଯା.ବି. ହକ୍କା, ଶ୍ୱାସରୋଗ, ହପ୍ପା, ଦମାକାଶ, ଦମାଲୁ ଦେଖ ।

ଦମାକାଶ—ଗ୍ରା. ବି. ଏକପ୍ରକାର କାଶ, ଯେଉଁଥିରେ ସମସ୍ତ ସମୟରେ ଶ୍ୱାସର ହପ୍ପା ଉଠେ ।

ଦମାଦମ୍—ଗ୍ରା. କ୍ରି. ବଂ. ଦୁମ୍ଦାମ୍, ଧମାଧମ, ଗୋଟାକ ଉପରେ ଗୋଟାଏ ଦୁମ୍ ଦାମ୍ ହୋଇ ଉପର୍ଯ୍ୟୁପରି ବାଧା-ମାଡ଼ ବସିବା ମାତ୍ର ।

ଦମାଲୁ—ଗ୍ରା. ବି. ଏକପ୍ରକାର ବଡ଼ ନାଗରା ।

ଦମାହାର—ଗ୍ରା. ବି. (ଫ-ଦାମ) ବଳାହୋଇଥିବା ଦଉଡ଼ିପରି ହାର ବା କଣ୍ଠଭୂଷଣ, ଗୋପ ।

ଦମିତ—ବି.ବଂ. (ଦମ+ମି.ତ) ଶାସିତ, ବଶୀକୃତ, କ୍ଳେଶସହିଷ୍ଣୁ । [ କର୍ତ୍ତା ।

ଦମିତା—ପୁଂ. ବଂ. (ଦମ+ତୃ) ଶାସନ-

ଦମିବା—ଗ୍ରା. କ୍ରି. ଶାନ୍ତହେବା, ଶମିତ ହେବା, କ୍ଷାନ୍ତହେବା, ଦବିଯିବା ।

ଦମୀ—ପୁଂ. ବଂ. ( ଦମ+କ.ଇନ୍ ) ଜିତେନ୍ଦ୍ରିୟ, ସଂଯମୀ, ଦମନଶୀଳ,(ସ୍ତ୍ରୀ) ଦମିନୀ ।

ଦମୀସାରଥି—ପୁଂ.ବି. ବୁଦ୍ଧଙ୍କର ନାମାନ୍ତର ।

ଦମୁନାଃ—ପୁଂ. ବି. (ଦମ+କ.ଉନସ୍) ଦମନକାରୀ, (ବି) ଅଗ୍ନି, ଶୁକ୍ରାଚାର୍ଯ୍ୟ ।

ଦମୂନାଃ--ପୁଂ.ବି.(ଦମ+କ.ଉନସ୍)ଅଗ୍ନି ।

ଦମେ—ଅବ୍ୟ. ଶୀଘ୍ର, ( ଗ୍ରା. କ୍ରି. ବଂ ) ହପ୍ପାଏ, ଶୀଘ୍ରେ ।

ଦମ୍ପତି(ତୀ)—ପୁଂ. ବି. (ଜାୟା+ପତି) ଜୀବଙ୍କର ଏକଯୋଡ଼ା, ଅଣ୍ଡିରା ମାଈ ଦୁହେଁ, ପତିପତ୍ନୀ, ସ୍ତ୍ରୀ ଓ ପୁରୁଷ ।

ଦମ୍ପତିକଲହ—ବି. (୬ତତ୍)ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ କଳି, ଅଳ୍ପକ୍ଷଣସ୍ଥାୟୀ କଳହ ।

ଦମ୍ଭ—ବି. (ଦମ୍ଭ+ଭା.ଅ) ଦର୍ପ, ଅହଂକାର, ଆତ୍ମମ୍ଭରିତା, କପଟତା, କଳ୍କ, ଦୁଷ୍ଟତା, ଶଠତା, ଦୈତ୍ୟବିଶେଷ, କପଟ ଛଳନା, (ଗ୍ରା.ବି) ଧୈର୍ଯ୍ୟ, ସହିବାର କ୍ଷମତା,କଠିନତା,ଟାଣପଣ, ( ବଂ ) ଦୃଢ଼, ସୁସ୍ଥ, ଧୀର, ଟାଣ ।

ଦମ୍ଭକ—ପୁଂ. ବଂ. ( ଦମ୍ଭ+କ. ଅକ ) ପ୍ରତାରକ, ବଞ୍ଚକ, ଠକ, ଗର୍ବୀ,ଅହଂକୃତ ।

ଦମ୍ଭକରିବା—ଗ୍ରା.କ୍ରି.ଗର୍ବ କରିବା,ମନରେ ସାହସ ବାନ୍ଧିବା, ଅନ୍ୟର ସାହସ ଉପରେ ନିର୍ଭର କରିବା ।

ଦମ୍ଭଚର୍ଯ୍ୟା—ସ୍ତ୍ରୀ.ବି. ଶଠତା,ପ୍ରତାରଣା ।

ଦମ୍ଭଦେବା—ଗ୍ରା. କ୍ରି. ସାହସ ଦେବା, ହିମ୍ମତଦେବା, ଉତ୍ସାହିତ କରିବା ।

ଦମ୍ଭଧରିବା—ଗ୍ରା. କ୍ରି. ମନରେ ସାହସ ବାନ୍ଧିବା, ଧୈର୍ଯ୍ୟଧରିବା, ସମ୍ଭାଳିବା ।

ଦମ୍ଭନ—ବି. (ଦମ୍ଭ+ଭା.ଅନ). ଦମ୍ଭ, ମୋହନ, ଦର୍ପପ୍ରକାଶ, ବଡ଼ାଇ ।

ଦମ୍ଭପାଇବା—ଗ୍ରା. କ୍ରି. ଅନ୍ୟବ୍ୟକ୍ତିଠାରୁ ବଳ,ସାହସ ବା ସାହାଯ୍ୟର ପ୍ରତିଶ୍ରୁତି ପାଇବା ।

ଦମ୍ଭହର୍—ଗ୍ରା.ସ୍ତ୍ରୀ.ବଂ. ଧୈର୍ଯ୍ୟହାରିଣୀ ।

ଦମ୍ଭିଲ—ଗ୍ରା. ବଂ. (ଫ-ଦମ୍ଭୀ) ଟାଣୁଆ, ଟେକି, ବଳୁଆ, ସାହସୀ, ଦାମ୍ଭିକ ।

ଦମ୍ଭୀ—ପୁଂ. ବଂ. (ଦମ୍ଭ+ ଇନ୍) ଗର୍ବୀ, ଅହଂକାରୀ, ଶଠ, ପ୍ରବଞ୍ଚକ, ଦାମ୍ଭିକ ।

ଦମ୍ଭୋକ୍ତି—ବି. ( କ.ଧା ) ଦୃପ୍ତ ବାକ୍ୟ, ଦର୍ପପ୍ରକାଶ, ବଡ଼ାଇ ।

ଦମ୍ଭୋଦ୍ଭବ—ପୁଂ. ବି. ସାର୍ବଭୌମ

ନୃପଭେଦ, (ବଂ)ଦମ୍ଭରୁ ଜାତ ।
ଦମ୍ଭୋଳି—ପୁଂ. ବ. (ଦମ୍ଭ+କ.ଓଳି) ବଜ୍ର, କୁଳିଶ,ଅଶନି,ଘଡ଼ଘଡ଼ି,ଚଡ଼କ।
ଦମ୍ୟ—ପୁଂ. ବ. ( ଦମ+ଯ ) ଶ୍ରେଷ୍ଠ ଷଣ୍ଢ, ପ୍ରାପ୍ତଭାର ବହନଯୋଗ୍ୟ ବତ୍ସତର, ଧାମୁଡ଼ି, (ବଂ) ଦମନୀୟ, ଶାସନୀୟ, ଦମନାର୍ହ । [ କୃପା ।
ଦୟ—ପୁଂ. ବ. (ଦୟ+ଭା.ଅ) ଦୟା,
ଦୟମାନ—ପୁଂ. ବଂ. (ଦୟ+କ.ଆନ) ଯେ ପରଦୁଃଖରେ କାତର ହେଉଥାଏ ।
ଦୟା—ସ୍ତ୍ରୀ. ବ. ( ଦୟ+ଭା,ଅ+ଆ ) କରୁଣା, ଦୁଃଖିତ ଜୀବପ୍ରତି ଅନୁକମ୍ପା, ସ୍ନେହ, ଅନୁଗ୍ରହ, (ଗ୍ରା.ବ) ଦୟାନଦୀ, ପୁରୀଜିଲାର କୁଆଖାଇ ନଦୀର ଶାଖାନଦୀ ।
ଦୟାକର—ବ. (୬ତତ୍ପୁ) ଦୟାର ଆଧାର, କରୁଣାକର, (ବଂ) ଦୟାମୟ ।
ଦୟାକରି—ଗ୍ରା. କ୍ରି.ବଂ. ଅନୁଗ୍ରହପୂର୍ବକ, ଦୟାପ୍ରକାଶ ପୂର୍ବକ ।
ଦୟାକରିବା—ଗ୍ରା.କ୍ରି. ଅନୁଗ୍ରହ କରିବା, ଅନ୍ୟପ୍ରତି କରୁଣାର୍ଦ୍ର ହେବା ।
ଦୟାକୂର୍ଚ୍ଚ—ପୁଂ. ବ. ବୁଦ୍ଧ ।
ଦୟାଦାକ୍ଷିଣ୍ୟ—ବ. (ଦୟା+ଦାକ୍ଷିଣ୍ୟ) ଅନୁଗ୍ରହ ଓ ସୌଜନ୍ୟ ।
ଦୟାଦାସ—ଗ୍ରା. ବ. ଓଡ଼ିଆ କବି, ପଞ୍ଚସଖା ଅନନ୍ତଙ୍କ ଶିଷ୍ୟ, ଅନନ୍ତସାଗର ଗୀତାର ରଚୟିତା ।
ଦୟାଦୃଷ୍ଟି—ବ. (କ.ଧା) କୃପାପୂର୍ଣ୍ଣ ଦୃଷ୍ଟି, ଅନୁଗ୍ରହପୂର୍ଣ୍ଣ ଭାବ ।
ଦୟାଧର୍ମ—ବ. ଦୟାରୂପ ଗୁଣ, ଦୟା ଓ ଧର୍ମ ।
ଦୟାନନ୍ଦସରସ୍ୱତୀ—ଜନୈକ ଗୁଜରାଟୀ ବୈଦାନ୍ତିକ ପଣ୍ଡିତ ଓ ଧର୍ମମତ ପ୍ରବର୍ତ୍ତକ ।
ଦୟାନିଧାନ—ବ. ( ୬ତତ୍ପୁ ) ଦୟାର ଆଧାର,ଦୟାସାଗର,ଦୟାଶୀଳ ବ୍ୟକ୍ତି, (ବଂ) ଦୟାମୟ ।
ଦୟାନିଧି—ବ ଓ ବଂ. (୬ତତ୍ପୁ) ଦୟାକର ଦେଖ ।
ଦୟାପାତ୍ର—ବ. (୬ତତ୍ପୁ) କୃପାପାତ୍ର, ଦୟାର ଯୋଗ୍ୟ ।
ଦୟାପାଲ—ରୂପସିଦ୍ଧି ନାମରେ ଶାକଟାୟ ମତାନୁସାରୀ ସଂସ୍କୃତ ବ୍ୟାକରଣର ରଚୟିତା, ଅଙ୍ଗଦେଶର ରାଜା ।
ଦୟାଭାଜନ—ବଂ. (୬ତତ୍ପୁ) ଦୟାପାତ୍ର ଦେଖ ।
ଦୟାମୟ—ପୁଂ.ବଂ. ( ଦୟା+ମୟ ) ଅତିଶୟ ଦୟାଳୁ, କରୁଣାମୟ, କୃପାଯୁକ୍ତ, (ବ) ପରମେଶ୍ୱର ।
ଦୟାରତ୍ନ—ବ. (ଦୟା+ରତ୍ନ) ବୌଦ୍ଧଧର୍ମ ଗ୍ରନ୍ଥବିଶେଷ ।
ଦୟାରାମ—ଜଣେ ବିଖ୍ୟାତ ସ୍ମାର୍ତ୍ତ ପଣ୍ଡିତ ଶାଳଗ୍ରାମଶୀଳାମାହାତ୍ମ୍ୟ ରଚୟିତା, ଦେବକୀ ନନ୍ଦନର ପୁତ୍ର, କାଶ୍ମୀରବାସୀ ସାହେବରାମ ପୁତ୍ର ।
ଦୟାରାମବାଚସ୍ପତି—ମୁଗ୍ଧବୋଧର ଜଣେ ଟୀକାକାର ।
ଦୟାର୍ଦ୍ର—ପୁଂ.ବଂ. (୩ତତ୍ପୁ) ଦୟାଦ୍ୱାରା ଦ୍ରବୀଭୂତ, ଦୟାସିକ୍ତ ।
ଦୟାଳୁ—କ୍ରି.ବଂ. (ଦୟା+ଆଳୁ) ଦୟାଯୁକ୍ତ,କାରୁଣିକ, ସ୍ନେହବାନ୍,ପରଦୁଃଖକାତର, ଅନୁକୂଳ । [ ସ୍ମିତା ।
ଦୟାଳୁଶର୍ମା—ଗୋପାଳସହସ୍ରନାମ ରଚ-
ଦୟାବାନ୍—ପୁଂ. ବଂ. (ଦୟା+ବତ୍) ଦୟାଯୁକ୍ତ, ଦୟାଳୁ, କରୁଣାମୟ, (ସ୍ତ୍ରୀ) ଦୟାବତୀ ।
ଦୟାବୀର—ପୁଂ. ବ. ଦୟାଯୁକ୍ତ ବୀର, ଦୟାଯୁକ୍ତ ନାୟକଭେଦ ।
ଦୟାଶଙ୍କର—ଜଣେ ବିଖ୍ୟାତ ଧର୍ମଶାସ୍ତ୍ରବିତ୍ ପଣ୍ଡିତ, ଅନୁବନ୍ଧଖଣ୍ଡନବାଦ ରଚୟିତା, ଗ୍ରହଦୀପିକାପ୍ରଶ୍ନମନୋରମ ଟୀକା ଓ ମଙ୍ଗଳପଦ୍ଧତି ଟୀକା ପ୍ରଣେତା ।
ଦୟାଶୀଳ—ପୁଂ.ବଂ. ସ୍ୱଭାବତଃ ଦୟାଳୁ, କରୁଣାମୟ, ଦୟାବାନ୍ ।
ଦୟାସାଗର—ବ. ( ୬ତତ୍ପୁ ) ଅତ୍ୟନ୍ତ ଦୟାଳୁ ।
ଦୟାସିନ୍ଧୁ—ବ.(୬ତତ୍ପୁ) ଅତ୍ୟନ୍ତଦୟାଳୁ, ଦୟାସାଗର ।
ଦୟାହୀନ—ବଂ. (୩ତତ୍ପୁ) ନିର୍ଦ୍ଦୟ,ଦୟାଶୂନ୍ୟ, କରୁଣାରହିତ ।
ଦୟିତ—ପୁଂ. ବଂ. ( ଦୟ+ର୍ମ.ତ ) ପ୍ରିୟପାତ୍ର,କମନୀୟ(ପୁଂ.ବ.)ପତି,ସ୍ୱାମୀ।
ଦୟିତା—ସ୍ତ୍ରୀ. ବ. (ଦୟିତ+ଆ) ଭାର୍ଯ୍ୟା, ପତ୍ନୀ, ସ୍ତ୍ରୀ, (ବଂ) ପ୍ରିୟା, ପ୍ରିୟପାତ୍ରୀ।
ଦୟିତାଧୀନ—ପୁଂ. ବଂ. (୬ତତ୍ପୁ) ସ୍ତ୍ରୀର ବଶୀଭୂତ, ସ୍ତ୍ରୈଣ ।
ଦୟିଷ୍ଣୁ—କ୍ରି. ବଂ. ( ଦୟା+ଇଷ୍ଣୁ ) ଦୟାଶୀଳ ।
ଦୟ୍ୟୁ—କ୍ରି. ବଂ. ଦେବନକର୍ତ୍ତା ।
ଦର—ପୁଂ. କ୍ଲୀ. ବ. (ଦୃ+କ.ଅ)ଡର, ଭୟ, (ର୍ମ.ଅବ୍ୟ) ଗୁମ୍ଫା, ଗର୍ତ୍ତ, କମ୍ପ, ଶଙ୍ଖ, ବିଦାରଣ,ଫାଟ, (ଅବ୍ୟ) ଅଳ୍ପ, ସାମାନ୍ୟ,ଈଷତ୍, (ଗ୍ରା. ବ) ଖୋପୁର, କମତି, ଦ୍ରବ୍ୟର ମୂଲ୍ୟ, ଦାମ, ଭାଉ, (ଗ୍ରା. ବଂ ଓ ବଂ.)ଅର୍ଦ୍ଧ, ଅସମ୍ପୂର୍ଣ୍ଣରୂପେ, (କେତେକ ଶବ୍ଦର ପୂର୍ବରେ ଲାଗେ ଯଥା—ଦରଖଣ୍ଡିଆ) ।
ଦରଆଉଜା—ଗ୍ରା.ବଂ. ଅର୍ଦ୍ଧମୁଦ୍ରିତ ଦ୍ୱାର
ଦରଆଉଟା—ଗ୍ରା. ବଂ. ସମ୍ପୂର୍ଣ୍ଣ ରୂପେ ଆଉଟା ହୋଇ ନଥିବା (ଦୁଗ୍ଧ) ।
ଦରକଞ୍ଚା—ଗ୍ରା. ବଂ. ଦରପାଚିଲା, ପକ୍ୱ ଫଳ ମଧ୍ୟରେ ରହିଯାଇ ଥିବା ଅପର ପକ୍ୱ (ଅଂଶ), ସମ୍ପୂର୍ଣ୍ଣରୂପେ ସିଦ୍ଧ ବା ସିଝି ନଥିବା ।
ଦରକ—କ୍ରି. ବଂ. (ଦର+କ) ଭୀରୁ ।
ଦରକଣ୍ଟିକା—ସ୍ତ୍ରୀ. ବ. ଶତାବରୀ, ଶତମୂଳୀ. ଛତୁଆରି ।
ଦରକରିବା—ଗ୍ରା. କ୍ରି. ମୂଲଇବା,ଦର ଦାମ କରିବା, ଦର କଷାକଷି ।
ଦରକଣ୍ଡିଆ—ଗ୍ରା. ବଂ. ସମ୍ପୂର୍ଣ୍ଣ ରୂପେ ପରିଷ୍କୃତ ବା କଣ୍ଡା ହୋଇ ନଥିବା (ଗୁଡ଼ଳାଦି) । [ କତା ।
ଦରକାର—ଯ .ବ.ପ୍ରୟୋଜନ,ଆବଶ୍ୟ-
ଦରକାରୀ—ଯା.ବଂ. ପ୍ରୟୋଜନୀୟ,ଆବଶ୍ୟକୀୟ ।
ଦରଖଣ୍ଡିଆ—ଗ୍ରା. ବଂ. ଅର୍ଦ୍ଧସମ୍ପୂର୍ଣ୍ଣ, ଅସମାପ୍ତ, ଅସମ୍ପୂର୍ଣ୍ଣ (କର୍ମ) ।

ଦରଖାସ୍ତ—ଯା. ବି. ଆବେଦନ, ଅନୁରୋଧ, ନିବେଦନ ପତ୍ର, ପ୍ରାର୍ଥନା ।

ଦରଖାସ୍ତକାଗଜ—ଗ୍ରା. ବିଂ. ଆବେଦନ କାଗଜ, ମୁଦେଇ, ବାଦୀ ।

ଦରଖିଆ—ଗ୍ରା. ବିଂ. ଯେଉଁ ବ୍ୟକ୍ତିର ଖାଇବା କର୍ମ ସମ୍ପୂର୍ଣ୍ଣ ହୋଇ ନଥାଏ, ଯେଉଁ ଖାଦ୍ୟ ସମ୍ପୂର୍ଣ୍ଣ ରୂପେ ଖିଆ ଯାଇ ନଥାଏ ।

ଦରଗଳିତ—ବିଂ. ଦର ଦର ଧାରରେ ବୋହୁଥିବା ।

ଦରଗା(ଘା)—ଯା. ବି. କୌଣସି ମୁସଲମାନ ପୀର ବା ସିଦ୍ଧ ପୁରୁଷଙ୍କ ସମାଧି ସ୍ଥାନ ।

ଦରଙ୍ଗ—ଆସାମ ପ୍ରଦେଶର ଅନ୍ତର୍ଗତ ବ୍ରହ୍ମପୁତ୍ର ନଦୀର ଅଂଶନେଇ ଗୋଟିଏ ଜିଲ୍ଲା ।

ଦରଛିଣ୍ଡା(ଣ୍ଡେ)ଇବା—ଗ୍ରା. କ୍ରି. କୌଣସି ବସ୍ତୁର ଭାଉ ସ୍ଥିର କରିବା ।

ଦରଛିଣ୍ଡିବା—ଗ୍ରା. ବି. କ୍ରୟ ବିକ୍ରୟ ପୂର୍ବରୁ କୌଣସି ବସ୍ତୁର ଭାଉ ସ୍ଥିର କରାଯିବା ।

ଦରଜକରିବା—ଗ୍ରା. କ୍ରି. ଟିପିରଖିବା, ଲେଖିରଖିବା ନୋଟ୍ କରିବା, ବ୍ୟଥାଯୁକ୍ତହେବା (ଅଙ୍ଗ) ।

ଦରଜ—ଯା.ବି.ଟିପା,ଲେଖା, ଉଲ୍ଲେଖ, ବ୍ୟଥା, ବେଦନା, ପୀଡ଼ା, ମାସ୍ତୁ,(ଯା, ବିଂ) ଲେଖା ହୋଇଥିବା, ବ୍ୟଥାଯୁକ୍ତ. (ପ୍ରା. ଯାଜପୁର—ବି.) ଚନ୍ଦ୍ରା ।

ଦରଜଗମ—ଯା.ବିଂ.ଦଦରା,ଭଙ୍ଗା,ବ୍ୟଥିତ

ଦରଜା—ଯା.ବି.ଦ୍ୱାର, କବାଟ,ଫାଟକ, ଶ୍ରେଣୀ, କୋଠି, ବର୍ଗ ।

ଦରଜୀ—ଯା. ବି. ସୂଚୀକର୍ମଜୀବୀ, ସୌଚିକ, କୁରୁତା ଆଦି ସିଲେଇ କରିବା ଯାହାର କାମ ।

ଦରଣି—ପୁଂ. ସ୍ତ୍ରୀ.ବି. କୂଳଭଙ୍ଗ, ନଦୀର ତୀର ଭାଙ୍ଗିଯିବା ।

ଦରଣ୍ଡା—ଗ୍ରା. ବି. (ତୁଂଡନ) ଅନ୍ଧାରୁଆ ଖୋଜିବା,ଅଣ୍ଡାଳିବା, ଖୋଜାଖୋଜି ।

ଦରଣ୍ଡାଦରଣ୍ଡି—ଗ୍ରା. ବି. ବହୁସ୍ଥାନ ଅଣ୍ଡାଳିବା, ଖୋଜାଖୋଜି ।

ଦରତ୍—ସ୍ତ୍ରୀ. ବି. (ଦୃ+ସ୍ତ୍ରୀ.ଅତ୍) ଭୟ, (ମିଂ.ଅବ୍ୟ) ହୃଦୟ, (କ.ଅବ୍ୟ)ପ୍ରାକୃତ, ପର୍ବତ, ମ୍ଲେଚ୍ଛଜାତି ବିଶେଷ, ତୀର ।

ଦରଥ—ପୁଂ. ବି. ଦିକ୍ ସମୂହରେ ପ୍ରସରଣ, ଗତି ।

ଦରଦ—ବି. (ଦୃ+କ.ଅଦ) ପର୍ବତର ଉଚ୍ଚତମ ସ୍ଥାନ, ଶିଖର, ପର୍ବତ, ଜଳପ୍ରପାତ, ଝରଣା, ବ୍ରାତ୍ୟ କ୍ଷତ୍ରିୟ ଜାତିବିଶେଷ, (ମିଂ.ଅଦ)ହୃଦୟ, ନଦ୍ୟାଦିର ଉପକୂଳ, ତୀର, କାଶ୍ମୀର ସନ୍ନିହିତ ମ୍ଲେଚ୍ଛ ଦେଶ ବିଶେଷ, ତଦ୍ଦେଶବାସୀ, (ସ୍ତ୍ରୀ. ଅଦ) ଭୟ, ହିଙ୍ଗୁଳ, ସିନ୍ଦୂର, ପୁଂ.ବି. (ଦର+ଦା+କ.ଅ) ଭୀତି-ଉତ୍ପାଦକ ।

ଦରଦର—ଗ୍ରା. ବିଂ. ଝରଝର, ଅଜସ୍ର ପ୍ରବାହିତ, (ଗ୍ରା. କ୍ରି. ବିଂ) ଅବିରତ (ବୋହୁଥିବା) ।

ଦରଦାମ୍—ଗ୍ରା. ବି. କୌଣସି ଦ୍ରବ୍ୟ କିଣିବା ପୂର୍ବରୁ ତହିଁର ମୂଲ୍ୟ ନିରୂପଣାର୍ଥ କଥାବାର୍ତ୍ତା, ମୂଲଚାଲ ।

ଦରଦୀ—ଯା. ବିଂ. ସହାନୁଭୂତିସମ୍ପନ୍ନ, ବ୍ୟଥିତ, ହୃଦୟବାନ୍, ପର ଦୁଃଖରେ ଦୁଃଖିତ ।

ଦରଦୈତ୍ୟ—ବି. ଶଙ୍ଖାସୁର ।

ଦରଧରଣ—ଗ୍ରା. ବି. ବିକ୍ରୟ ଦ୍ରବ୍ୟର ମୂଲ୍ୟ ସ୍ଥିର କରିବା, ଦାମ୍ କରିବା ।

ଦରଧିଆ—ପ୍ରା.(ସମ୍ବା ବିଂ.ଅସନ୍ତୁଷ୍ଟ,ଅତୃପ୍ତ

ଦରପକ୍ୱ—ଗ୍ରା. ବିଂ.ଆଂଶିକ ପକ୍ୱ,ସମ୍ପୂର୍ଣ୍ଣରେ ପାଚି ନଥିବା, ଅଜୀର୍ଣ୍ଣ, ସମ୍ପୂର୍ଣ୍ଣ ରୂପେ ଜୀର୍ଣ୍ଣ ହୋଇ ନଥିବା ।

ଦରପଟିବା—ଗ୍ରା. ବି. କୌଣସି ଦ୍ରବ୍ୟର ଭାଉ କ୍ରେତା ଓ ବିକ୍ରେତାଙ୍କ ଦ୍ୱାରା ସ୍ୱୀକୃତ ବା ମନୋମତ ହେବା ।

ଦରପଢ଼ା—ଗ୍ରା. ବି. ଅଧପଢ଼ା, ବିଦ୍ୟା ଶିକ୍ଷାର ଅସମାପ୍ତି, ବାଦ୍ୟ ବିଶେଷ,(ଗ୍ରା. ବିଂ) କିଛି ଅଂଶ ପଢ଼ା ହୋଇଥିବା, ଧଆପାଠୁଆ ।

ଦରପଣି—ଗ୍ରା. କଟକ ଜିଲ୍ଲାର ଗୋଟିଏ କିଲ୍ଲା ଜାତ, ଜମିଦାରୀ ।

ଦରପଣିଅକ୍ଷର—ଗ୍ରା.ବି.ଲେଖା ଆଗରେ ଗୋଟିଏ ଦର୍ପଣ ଧଇଲେ ସେ ଦର୍ପଣରେ ଅକ୍ଷରମାନ ପ୍ରତିଫଳିତ ହୋଇ ପଢ଼ାଯାଇ ପାରିବାଭଳି ଲେଖାହୋଇ ଥିବା ଓଲଟା ଅକ୍ଷର ।

ଦରପନ୍ଥରା—ଗ୍ରା.ବିଂ. ଦରକାଣ୍ଡିଆ ଦେଖ, ଦରଖଣ୍ଡିଆ ଦେଖ,ଯେଉଁ ବ୍ୟକ୍ତି ନିର୍ଦ୍ଦିଷ୍ଟ ପଥ ବା ଦୂରତ୍ୱ ଅତିକ୍ରମ କରିନଥାଏ ।

ଦରପାଚିଲା—ଗ୍ରା.ବିଂ. ଅର୍ଦ୍ଧପକ୍ୱ, ଅପରିପକ୍ୱ, ଅପକ୍ୱ ।

ଦରପାମ୍ପିଡ଼ା—ପ୍ରା. ( ଯାଜପୁର ) ବି. ଘରପୋଡ଼ୁଆ ଗୁଳ୍ମ ।

ଦରପେଲ୍—ଗ୍ରା. ବିଂ. ଆଡ଼ପେଲ୍,ଦରଆଡ଼ିଜା ଦେଖ ।

ଦରପୋଡ଼ା—ଗ୍ରା. ବିଂ. ଅଧେ ପୋଡ଼ିଯାଇଥିବା, (ପ୍ରା.ଯାଜପୁର.ବିଂ) ଖଟା, ଅମ୍ଳସ୍ୱାଦବିଶିଷ୍ଟ ।

ଦରବର—ପୁଂ.ବି. ବିଷ୍ଣୁଙ୍କ ଶଙ୍ଖ,ପାଞ୍ଚଜନ୍ୟ ।

ଦରବସ୍ତ—ଯା.ଅବ୍ୟ.ସମଗ୍ର,ସମ୍ପୂର୍ଣ୍ଣରୂପେ ।

ଦରବସ୍ତହକୁକ—ଯା. ବି. ସମଗ୍ର ସତ୍ତ୍ୱାଧିକାର ।

ଦରବା—ଗ୍ରା. ବି. ଚଟଲୁଗା,ଦୁଇଟଣ୍ଡିକୁ ସିଲାଇକରି ପିନ୍ଧାଲୁଗାରୂପେ ଯେଉଁ ବସ୍ତ୍ରାଂଶ ବ୍ୟବହୃତ ହୁଏ ।

ଦରବାଜା—ଯା. ବି. ଦ୍ୱାର ।

ଦରବାନ୍—ଯା. ବି. ଦ୍ୱାରରକ୍ଷକ, ଦୌବାରିକ ।

ଦରବାନି—ଯା. ବି. ଦ୍ୱାରପାଳର କର୍ମ ।

ଦରବାର—ଯା. ବି. ରାଜକୀୟ ସଭା, ବିଶ୍ରାମାଳୟ, ସଭା, ଅଦାଲତ,କଚେରି, ପଞ୍ଜାବ ଅମୃତସରରେ ଥିବା ଶିଖମାନଙ୍କ ମନ୍ଦିର, ଯହିଁରେ ଶିଖମାନଙ୍କ ଧର୍ମଗ୍ରନ୍ଥ ଗ୍ରନ୍ଥସାହେବ ରଖାଯାଇଅଛି ।

ଦରବାରିଆ—ଯା. ବିଂ. ଯେଉଁ ବ୍ୟକ୍ତି ରାଜ ଦରବାରକୁ ସମ୍ବନ୍ଧିତ ହୁଏ ଓ ସେଠାରେ ନିର୍ଦ୍ଦିଷ୍ଟ ଆସନ ପାଏ, କଚେରିଆ,ମାମଲତ୍କାର,ରାଜସଭାରେ ସଭାସଦ୍ ।

**ଦରବିକଶିତ**—ବି°. (ଦର+ବିକଶିତ) ଈଷତ୍ ପ୍ରସ୍ଫୁଟିତ ।

**ଦରବୁଚକିଆ**—ଗ୍ରା.(ସମ୍ବ) ଅବ୍ୟ.ଅଳ୍ପା-ଅଳ୍ପିକି, ଅଧାଅଧି, ସାମାନ୍ୟରୂପେ ।

**ଦରବୁଢ଼ା**—ଗ୍ରା. ବି°. ଅର୍ଦ୍ଧ ବୃଦ୍ଧ,ପ୍ରବୀଣ, ଯେ ଅତି ବୃଦ୍ଧ ନୁହେ, ପ୍ରୌଢ଼, ଅଥଚ ବାର୍ଦ୍ଧକ୍ୟ ପହୁଞ୍ଚି ନ ହିଁ ।

**ଦରବେଶ**—ଯା.ବି. ମୁସଲମାନ ଭିକ୍ଷୁକ, ଫକୀର, ମୁସଲମାନ ସାଧୁ ।

**ଦରଭଙ୍ଗା**—ଗ୍ରା.ବି°. ଅଧାଭଙ୍ଗା,(ଗ୍ରା.ବି) ଦ୍ୱାରଭଙ୍ଗା ଦେଖ ।

**ଦରମରା**—ଗ୍ରା.ବି°. ଅର୍ଦ୍ଧମୃତ,ମୃତପ୍ରାୟ, ଅଧାମରା ।

**ଦରମା**—ଯା.ବି. ଗୃହ,ବେତନ,ଭୃତ୍ୟର ମାସିକ ପାରିଶ୍ରମିକ, ଏକପ୍ରକାର ନଳ, ଚଟେଇ, ମସିଣା ।

**ଦରମାଦିଆ**—ଗ୍ରା. ବି°. ଯେଉଁ ଖମିନ୍ଦ ଭୃତ୍ୟଙ୍କୁ ଦରମା ଦେଇ ଗୃହକର ରଖନ୍ତି ।

**ଦରମାନ୍**—ଯା. ବି. ଦେବତା ଆଦିଙ୍କ ନାମଧରି ଶପଥ କରିବା, ହଲପ ।

**ଦରମିୟାନ୍**—ଯା. ବି°. ମଧ୍ୟବର୍ତ୍ତୀ ।

**ଦରମେଲ**—ଗ୍ରା.ବି°.ସମ୍ପୂର୍ଣ୍ଣରୂପେ ଉନ୍ମୁକ୍ତ କରାଯାଇ ନ ଥିବା (ଦ୍ୱାର) ।

**ଦରରୋଜ**—ଯା. ବି. ପ୍ରତିଦିନ ।

**ଦରଳା**—ଗ୍ରା.ବି. ଚଳନିବା,ପଣ୍ଡାଚଳନା, ପୁଙ୍ଖାନୁପୁଙ୍ଖ ତଦନ୍ତ ।

**ଦରଓ୍ୱାଜା**—ଯା. ବି. ଦରଜା ଦେଖ ।

**ଦରଶନ**—ଗ୍ରା. (ପଦ୍ୟ) ବି. ଦର୍ଶନ, ଦେଖିବା,ଦେବତାଙ୍କୁ ଦର୍ଶନ କରିବା ।

**ଦରଶନୀ**—ଗ୍ରା. ବି. ଦର୍ଶନୀ ଦେଖ ।

**ଦରଶା(ଶେ)ଇବା**—ଗ୍ରା.କ୍ରି. ଦର୍ଶାଇବା, ଉପସ୍ଥାପିତ କରିବା, ଦେଖାଇବା ।

**ଦରଶ୍ଳଥ**—ବି°. (ଦର+ଶ୍ଳଥ) ଦରହୁଗୁଳା ।

**ଦରସଲ୍**—( ପ୍ରା. ବାଲେଶ୍ୱର. ଅବ୍ୟ. ) ଆଦୌ, ଜମାରୁ, ମୋଟେ ।

**ଦରସାନ**—ପୁଂ.ବି. ଦ୍ୟୋତ ।

**ଦରସିଝା**—ଗ୍ରା. ବି°. ସମ୍ପୂର୍ଣ୍ଣରୂପେ ସିଦ୍ଧ ହୋଇ ନଥିବା ।

**ଦରସ୍ଫୁଟହାସ**—ବି. ଈଷତ୍‌ହାସ୍ୟ, ପୁଂ. ବି°. ଈଷତ୍ ହାସ୍ୟକାରୀ ।

**ଦରହସା**—ଗ୍ରା.ପୁଂ.ବି°.ଉଚ୍ଚ ହାସ୍ୟକାରୀ, ଅଟ୍ଟହାସକାରୀ, ଈଷତ୍ ହାସ୍ୟକାରୀ ।

**ଦରହସିତ**—ପୁଂ.ବି°.ଈଷତ୍ ହାସ୍ୟଯୁକ୍ତ, ମୃଦୁହାସ ।

**ଦରହାସ**—ଯା. ବି. ପାରସ୍ୟ ଆରବାଦି ଦେଶ ପ୍ରଚଳିତ ରୌପ୍ୟ ମୁଦ୍ରାବିଶେଷ ।

**ଦରହାସ**—ବି. ( ଦର+ହାସ ) ଈଷଦ୍ଧାସ୍ୟ, ଯେଉଁ ହସରେ ଦାନ୍ତ ଦେଖାଯାଏ ।

**ଦରହାସୀ**—ଗ୍ରା.ସ୍ତ୍ରୀ. ବି°. ଈଷତ୍ ହାସ୍ୟଯୁକ୍ତା (ସ୍ତ୍ରୀ) ।

**ଦରାଜ**—ଯା. ବି°. ବିସ୍ତୃତ, ଦୀର୍ଘ, (ବି) ଟେବୁଲ ବା ଆଲମାରି ଭିତରେ ଥିବା ଡାଲା ।

**ଦରାଣ୍ଟି**—ଗ୍ରା.ବି. (ଫ-ଦାନ୍ତ) ଉଚ୍ଚ ସ୍ଥାନରୁ କଣ୍ଟା ବା ଡାଳପ୍ରଭୃତି କାଟିବା ପାଇଁ ଯେଉଁ ଲଗି ଅଗରେ ଖଣ୍ଡିଏ ଦାଆ ଦୃଢ଼ଭାବରେ ସଂଲଗ୍ନ ହୋଇଥାଏ ( ଏହା ବାଲେଶ୍ୱର ଅଞ୍ଚଳରେ ବିଶେଷ ବ୍ୟବହାର ଦେଖାଯାଏ ) ।

**ଦରାଣ୍ଡିବା**—ଗ୍ରା.କ୍ରି. ଅନ୍ଧାରୁଆ ବା ପାଣିଭିତରେ ହାତ ବୁଲାଇ ଦ୍ରବ୍ୟକୁ ଖୋଜିବା, ଅଣ୍ଡାଳିବା ।

**ଦରାଣ୍ଡିହେବା**—ଗ୍ରା. କ୍ରି. ଅନ୍ଧାରରେ ଇତଃସ୍ତତଃ ଖୋଜିହେବା, ବିକଳହୋଇ ଘଣ୍ଟିହେବା ।

**ଦରାବ**—ଯା.ବି. ଖୋଦକ ।

**ଦରି**—ସ୍ତ୍ରୀ.ବି.(ଦୃ+ଇ) କନ୍ଦର, ତକ୍ଷକବଂଶୀୟ ସର୍ପବିଶେଷ, ଗୁହା, କୁଞ୍ଚିତା ସ୍ତ୍ରୀ,(ଗ୍ରା.ବି.) ସତରଞ୍ଜି,ଆସ୍ତରଣ, ଛିଦ୍ରବିଶିଷ୍ଟ ଲୌହପିଣ୍ଡ, ଯାହା ଉପରେ କମାର ତାତଲ ଲୁହାପଟକୁ ରଖି ଛେଣିରେ ଛିଦ୍ର କରେ ।

**ଦରିଆ**—ଯା. ବି. ସମୁଦ୍ର, ସାଗର, ସମୁଦ୍ରପରି ବିସ୍ତୃତ ଜଳଭାଗ, (ପ୍ରା.ସମ୍ବ. ବି. )ଖାଇ, କେନାଲ ।

**ଦରିଆଦିଲ**—ଯା. ବି°. ଉଦାରହୃଦୟ, ମୁକ୍ତହସ୍ତ, ଦାନଶୀଳ ।

**ଦରିଆପତ୍**—ଯା.ବି. ବିଗୁର,ବିବେଚନା, ଅନୁସନ୍ଧାନ, (ବି°) ଜ୍ଞାତ, ବିବେଚିତ ।

**ଦରିଆପାଇଗ୍ରୁ**—ଯା.ବି. ସମୁଦ୍ରର ରାଜା ।

**ଦରିଆପାରି(ର)**-.ଗ୍ରା.ବି°.ସମୁଦ୍ରର ଅପରପାରରେ ଅବସ୍ଥିତ, (ବି) ବହୁଦୂରସ୍ଥ ଅଜ୍ଞାତସ୍ଥାନ,ଯେଉଁ ସ୍ଥାନକୁ ଯିବାକୁ ହେଲେ ସମୁଦ୍ରଯାତ୍ରା କରିବାକୁ ହୁଏ ।

**ଦରିଆପୀର**—ଯା.ବି. ସମୁଦ୍ରଯାତ୍ରୀ ମାଝିମାନଙ୍କ ପୂଜାକରିବା ଦେବତାବିଶେଷ,

**ଦରିତ**—ତ୍ରି.ବି°. (ଦର+ଇତ) ଭୀତ, ଶଙ୍କିତ, କମ୍ପିତ, (ଦୃ+ର୍ମ.ତ) ବିଦୀର୍ଣ୍ଣ, ବିଭକ୍ତ, (ଦ୍ର—ଣ+ତ) ଦୁଃଖ, କ୍ଲେଶ

**ଦରିଦ୍ର**—ପୁଂ. ବି°. ( ଦରିଦ୍ରା+କ.ଅ ) ନିର୍ଦ୍ଧନ, ଦୀନ, ରଙ୍କ,ଅଭାବଗ୍ରସ୍ତ, କ୍ଷୀଣ, ନିଃସ୍ୱ ।

**ଦରିଦ୍ରତା**—ସ୍ତ୍ରୀ. ବି. (ଦରିଦ୍ର+ଭା.ତା) ନିର୍ଦ୍ଧନତ୍ୱ, ଦାରିଦ୍ର୍ୟ,ଦରିଦ୍ରପଣିଆ ।

**ଦରିଦ୍ରନାରାୟଣ**—ବି. ନାରାୟଣରୂପେ କଳ୍ପିତ ଦରିଦ୍ର ବ୍ୟକ୍ତି ।

**ଦରିଦ୍ରନାରାୟଣସେବା**— ଦରିଦ୍ରଙ୍କ ସାହାଯ୍ୟ କରିବାଦ୍ୱାରା ନାରାୟଣଙ୍କ ସେବାକରିବା ।

**ଦରିଦ୍ରନିଧି**—ବି. ରଙ୍କରତନ, ଦରିଦ୍ରପକ୍ଷରେ ନିଧିପରି ପ୍ରିୟତମ ବ୍ୟକ୍ତି ।

**ଦରିଦ୍ରପଞ୍ଚାକ୍ଷର**—ଗ୍ରା.ବି.'କଣକରିବି'ଏହି ପାଞ୍ଚୋଟି ଅକ୍ଷର । [ ପଣିଆ ।

**ଦରିଦ୍ରବୁଦ୍ଧି**—ଗ୍ରା. ବି. ହୀନଦୃଷ୍ଟି, ରଙ୍କ-

**ଦରିଦ୍ରସଙ୍ଖାଳି**—ଗ୍ରା.ବି.ଗରିବର ଆଶ୍ରୟ, ଦୁଃଖୀର ସମ୍ବଳ, ଗରିବର ସମ୍ପତ୍ତି, ଦରିଦ୍ରନିଧି ଦେଖ ।

**ଦରିଦ୍ରା**—ସ୍ତ୍ରୀ. ବି°. ( ଦରିଦ୍ର+ଆ ) ଦରିଦ୍ରର ସ୍ତ୍ରୀଲିଙ୍ଗ,(ପୁଂ.ବି°)ଟଙ୍କାଳିଆ, ହୀନବୁଦ୍ଧିଆ, ଅତ୍ୟନ୍ତ ଦରିଦ୍ର ।

**ଦରିଦ୍ରାଣ**—କ୍ଳୀ.ବି. ଦରିଦ୍ରର ଅବସ୍ଥା ।

**ଦରିଦ୍ରାୟକ**—ତ୍ରି. ବି°. ଦୀନ,ଦରିଦ୍ର, ଦରିଦ୍ରତାଯୁକ୍ତ, ନିଷ୍କିଞ୍ଚନ ।

**ଦରିଦ୍ରିତ**—ବି°. ( ଦରିଦ୍ରା+କ୍ତ.ତ ) ଦାରିଦ୍ର୍ୟଯୁକ୍ତ, ନିଷ୍କିଞ୍ଚନ, ଦୁର୍ଗତ ।

ଦରିଦ୍ରତା—ପୁଂ.ବିଂ. ( ଦରିଦ୍ର+ତା ) ଦାରିଦ୍ର୍ୟଯୁକ୍ତ, ଦରିଦ୍ରାତ୍ମକ ।
ଦରିଦ୍ରୀକୃତ—ବିଂ.(ଦରିଦ୍ର+ଚ୍ୱି+କୃତ) ନିର୍ଦ୍ଧନୀକୃତ ।
ଦରୀ—ସ୍ତ୍ରୀ.ବି. (ଦର+ଈ) ଦରି ଦେଖ; ପୁଂ.ବିଂ. ( ଦର+ଇନ୍ ) ଭୟଯୁକ୍ତ, ଭୀତ, ବିଦାରଣଶୀଳ, ସକମ୍ପ ।
ଦରୀମୁଖ—କ୍ଲୀ.ବି. (୬ତତ୍) ଗିରିଗୁହାର ମୁଖ ।
ଦରୀବାନ୍—ପୁଂ. ବିଂ. ( ଦରୀ+ବତ୍ ) ଗୁହାବିଶିଷ୍ଟ ପର୍ବତ ।
ଦରୂଆନ୍—ଯା.ବି.ଦ୍ୱାରରକ୍ଷକ, ପ୍ରହରୀ ।
ଦରୂଆନି—ଯା.ବି. ଦ୍ୱାରରକ୍ଷକର କର୍ମ ବା ଚାକିରି ।
ଦରୋଦର—ପୁଂ. କ୍ଲୀ. ବି. ପଣା, ଦ୍ୟୂତ କ୍ରୀଡ଼ା, (ବିଂ) ଯେ ଜୁଆ ବା ପଣା ଖେଳେ ।
ଦରୋଟି—ଗ୍ରା.ବିଂ.(ସଂ-ଅର୍ଦ୍ଧସ୍ଫୁଟ)ଅବ୍ୟକ୍ତ, ଅସ୍ପଷ୍ଟ, ଅର୍ଦ୍ଧୋଚ୍ଚାରିତ, ଦରହିଙ୍ଗା, ଅପକ୍ୱ,ଅର୍ଦ୍ଧପକ୍ୱ,(କ୍ରି.ବିଂ.)ସାମାନ୍ୟରେ, ଅଳ୍ପଅଳ୍ପ ।
ଦରୋବସ୍ତ—ଯା. ବିଂ. ସମ୍ପୂର୍ଣ୍ଣ, ସମଗ୍ର, (ସର୍ବ) ସମସ୍ତ, ସବୁ ।
ଦର୍କାର—ଯା.ବି. ଦରକାର ଦେଖ ।
ଦର୍ଗା(ର୍ଘା) ଯାବି. ଦରଗା ଦେଖ ।
ଦର୍ତ୍ତା—କ୍ରି.ବିଂ. ( ଦୃ+ତୃ ) ଦାରୟିତା, ବିଦାରଣକର୍ତ୍ତା ।
ଦର୍ଦ୍ଦର—ପୁଂ.ବି. (ଦୃ+କ.ଅ) ପର୍ବତ, (ବିଂ)ଈଷତ୍ ଭଗ୍ନ,ଦଦରା,ଫଟା ପାତ୍ର ।
ଦର୍ଦ୍ଦରୀସ—ପୁଂ.ବି. ବ୍ୟଞ୍ଜନବିଶେଷ ।
ଦର୍ଦ୍ଦରୀକ—କ୍ଲୀ.ବି. ( ଦୃ+ଣିଚ୍+ଅକ ) ଛାଉଁବାଜା, ଭେକ, ବେଙ୍ଗ ମେଘ ।
ଦର୍ଦ୍ଦୁର—ପୁଂ.ବି. (ଦୃ+କ.ଉର)ବେଙ୍ଗ, ମେଘ, ବାଦ୍ୟଭେଦ, ପର୍ବତ, ରାକ୍ଷସଭେଦ, ଗ୍ରାମସମୂହ, ଦେଶଭେଦ, ଅଭ୍ରକ ଧାତୁଭେଦ ।
ଦର୍ଦ୍ଦୁରକ—ପୁଂ. ବି. ବାଦ୍ୟଭେଦ, ଭେକ, ବେଙ୍ଗ, ଦର୍ଦ୍ଦୁର ଦେଖ ।
ଦର୍ଦ୍ଦୁରଚ୍ଛଦା—ସ୍ତ୍ରୀ.ବି. (ବ.ବ୍ରୀ) ବ୍ରାହ୍ମୀ ।
ଦର୍ଦ୍ଦୁରା—ସ୍ତ୍ରୀ.ବି. ଚଣ୍ଡିକା, ଦୁର୍ଗା, ଭେକୀ, ମାଈବେଙ୍ଗ ।
ଦର୍ଦ୍ରୁ—ପୁଂ.ବି. ଦଦ୍ରୁରୋଗ, ଜାଦୁ ।
ଦଦ୍ରୁ—ପୁଂ. ବି. (ଦରିଦ୍ରା+ଉ) ଦଦ୍ରୁରୋଗ, ଜାଦୁ ।
ଦଦ୍ରୁଘ୍ନ—ପୁଂ.ବି. (ଦଦ୍ରୁ+ହନ+ଅ) ଚକ୍ରମର୍ଦ୍ଦକ, ଗୁଳୁଣ୍ଡା ।
ଦଦ୍ରୁଣ—ପୁଂ.ବି. ଜାଦୁରୋଗୀ,ଜାଦୁଆ
ଦଦ୍ରୁନାଶିନୀ—ସ୍ତ୍ରୀ. ବି. ତୈଳନୀ ବୃକ୍ଷ ।
ଦଦ୍ରୂ—ପୁଂ. ବି. ଜାଦୁରୋଗ ।
ଦଦ୍ରୂଣ—କ୍ରି.ବିଂ.ଜାଦୁରୋଗୀ,ଜାଦୁଆ ।
ଦଦ୍ରୁରୋଗିନ୍— ବିଂ. ଜାଦୁରୋଗୀ, ଜାଦୁଆ ।
ଦର୍ପ—ପୁଂ. ବି. ( ଦୃପ୍+ଘ.ଅ ) ଗର୍ବ, ଅହଂକାର, ଦମ୍ଭ, (କ.ଅ)କସ୍ତୁରୀ ମୃଗ, ମୃଗମଦ,କସ୍ତୁରୀ, ଉତ୍ତାପ,ଆତଙ୍କ,ମାନ, ଅଭିମାନ, (ଗ୍ରା.ବି) ଦାଉ, ଉତ୍ପୀଡ଼ନ, ମୁହଁବାଲିଙ୍ଗି ।
ଦର୍ପକ—ପୁଂ. ବି. (ଦୃପ୍+ଣିଚ୍+ଅକ) କାମଦେବ, ମଦନ, (ବିଂ) ଉଦ୍ଦୀପକ, ଉତ୍ତେଜକ, ଅହଂକାର ଓ ମୋହକାରକ ।
ଦର୍ପଚୂର୍ଣ୍ଣକରିବା—ଗ୍ରା. କ୍ରି. କୌଣସି ବ୍ୟକ୍ତିର ଗର୍ବକୁ ଅପମାନାଦି ଦ୍ୱାରା ଧ୍ୱଂସ କରିବା ।
ଦର୍ପଣ—କ୍ଲୀ. ବି. (ଦୃପ୍+ଣିଚ୍+ଅନ) ଚକ୍ଷୁ ସନ୍ଦୀପନ, ଆର୍ଶୀ,ଅଇନା,ମୁକୁର, ପର୍ବତଭେଦ, ନଦଭେଦ,ନୃପଭେଦ ।
ଦର୍ପଦ—କ୍ରି. ବିଂ. ( ଦର୍ପ+ଦା+ଅ ) ଗର୍ବଦାୟକ(ପଦାର୍ଥ), ବି. ବିଷ୍ଣୁ ।
ଦର୍ପହର—ପୁଂ. ବିଂ. (ଦର୍ପ+ହୃ+କ.ଅ) ଯେ ଅନ୍ୟର ଦର୍ପ ଚୂର୍ଣ୍ଣକରେ, ( ସ୍ତ୍ରୀ ) ଦର୍ପହରା ।
ଦର୍ପହା—ବିଂ. (ଦର୍ପ+ହନ+କ.କ୍ୱିପ୍) ଦର୍ପହାରକ,ଅନ୍ୟ ବ୍ୟକ୍ତିର ଗର୍ବନାଶକ, (ପୁଂ.ବି) ବିଷ୍ଣୁ ।
ଦର୍ପହାରୀ—ପୁଂ. ବିଂ. (ଦର୍ପ+ହୃ+କ. ଇନ୍) ଦର୍ପହର ଦେଖ, ( ସ୍ତ୍ରୀ ) ଦର୍ପହାରିଣୀ ।
ଦର୍ପାରମ୍ଭ—ପୁଂ.ବି. (୬ତତ୍) ଅହଂକାର ଆରମ୍ଭ, ମଦମତ୍ତି ।
ଦର୍ପିତ—କ୍ରି. ବିଂ. (ଦର୍ପ+ଇତ) ଅହଂକୃତ, ଗର୍ବିତ ।
ଦର୍ପିଷ୍ଠ—ଗ୍ରା. ବିଂ. ଅତି ଗର୍ବିତ ।
ଦର୍ପୀ—ପୁଂ.ବିଂ. (ଦର୍ପ+ଇନ୍) ଦାମ୍ଭିକ, ଅହଂକାରୀ, ପ୍ରତାପୀ, (ସ୍ତ୍ରୀ) ଦର୍ପିଣୀ ।
ଦର୍ଭ—ପୁଂ. ବିଂ. (ଦୃଭ+କ.ଅ) କୁଶ, ତୃଣ, ଦୂର୍ବା, ଶ୍ୟାମାକ, କାଶ, ବଲ୍ୱଜ, ମୌଞ୍ଜ ଏହି ଛଅପ୍ରକାର ।
ଦର୍ଭଟ—କ୍ଲୀ. ବି. ( ଦର୍ଭ+ଅଟନ୍ ) ନିଭୃତ ଗୃହ, ଗୁପ୍ତାଗାର ।
ଦର୍ଭପତ୍ର—ପୁଂ. ବି. କାଶ ।
ଦର୍ଭପୁଷ୍ପ—ପୁଂ. ବି. ସର୍ପବିଶେଷ, ଅହି ।
ଦର୍ଭମୟ—ପୁଂ. ବିଂ. ( ଦର୍ଭ+ମୟ ) କୁଶନିର୍ମିତ ( ବ୍ରାହ୍ମଣାଦି ), ତୃଣନିର୍ମିତ, କୁଶବ୍ୟାପ୍ତ ।
ଦର୍ଭମୂଳା—ସ୍ତ୍ରୀ. ବି. ଔଷଧଭେଦ ।
ଦର୍ଭର—କ୍ରି. ବିଂ. ଦର୍ଭାଙ୍କୁର ଅଙ୍କୁର ଦେଶାଦି ।
ଦର୍ଭରୂପ—ପୁଂ. ବି. ଦର୍ଭପ୍ରଚୁର ଅନୂପଦେଶଭେଦ ।
ଦର୍ଭହାସୀ—ଗ୍ରା. ସ୍ତ୍ରୀ. ବିଂ. ଦେଭ୍ରହାସୀ, ମନୋହର ହାସ୍ୟକାରିଣୀ ।
ଦର୍ଭାସନ—କ୍ଲୀ. ବି. (କ.ଧା) କୁଶାସନ, ପବିତ୍ରାସନ ।
ଦର୍ଭାହ୍ୱୟ—ପୁଂ. ବି. ମୁଞ୍ଜତୃଣଭେଦ ।
ଦର୍ଭି—ପୁଂ. ବି. ଜଣେ ଋଷି ।
ଦର୍ମାଣ—ଗୁରୁଦାସପୁର ଜିଲ୍ଲାର ଗୋଟିଏ ନଗର ।
ଦର୍ମ୍ମ—କ୍ରି. ବିଂ. (ଦୃ+ମ) ଦାରକ ।
ଦର୍ମ୍ମାନ୍—ପୁଂ.ବିଂ. (ଦୃ+ମନ୍)ଦାରକ ।
ଦର୍ଯ୍ୟ—ବିଂ. ( ଦର+ଯ ) ଦରହତ, ଭୟସାଧନ ।
ଦର୍ବ—ପୁଂ. ବି. (ଦୃ+କ.ବ) ରାକ୍ଷସ, ହିଂସ୍ରଜନ୍ତୁ, ପଞ୍ଜାବର ଉତ୍ତରରେ ଥିବା ମହାଭାରତୋକ୍ତ ଦେଶବିଶେଷ,ତଦ୍ଦେଶବାସୀ ଜାତିବିଶେଷ, ହିଂସ୍ର ବ୍ୟକ୍ତି ।
ଦର୍ବଟ—ପୁଂ. ବି. ଦ୍ୱାରପାଳ, ଦ୍ୱାସ୍ଥ,

ଗ୍ରାମରକ୍ଷକ, ଚଉକିଦାର ।
ଦର୍ବରକ—ପୁଂ. ବି. ଇନ୍ଦ୍ର,ବାୟୁ,ଆନକ-ବାଦ୍ୟବିଶେଷ ।
ଦର୍ବି(ର୍ବୀ)—ସ୍ତ୍ରୀ. ବି. ( ଦୃ+ବି+ଇ ) ବ୍ୟଞ୍ଜନାଦି କାରକ ଚଟୁ, କାଠଚଟୁ, ଡଙ୍କ, ସର୍ପଫଣା, ହାତ ।
ଦର୍ବିକ—ପୁଂ. ବି. ଦର୍ବି ଦେଖ ।
ଦର୍ବିକର—ପୁଂ. ବି. ( ଦର୍ବି+କୃ+ଅ ) ଫଣାଧର ସର୍ପ ।
ଦର୍ବିକା—ସ୍ତ୍ରୀ. ବି. ( ଦର୍ବି+କ+ଆ ) ଗୋଜିହ୍ୱା ଲତା, ବନ୍ୟକୋବି,କଜ୍ଜ୍ୱଳ, ଦର୍ବି ଦେଖ ।
ଦର୍ବିହୋମ—ପୁଂ.ବି. ଦର୍ବିସାଧନ ହୋମ-ଭେଦ ।
ଦର୍ବିହୋମିନ୍—ବିଂ. ଦର୍ବିହୋମକାରୀ ।
ଦର୍ବୀ—ସ୍ତ୍ରୀ. ବି. ଦର୍ବି ଦେଖ ।
ଦର୍ବୀକର—ପୁଂ. ବି. ସର୍ପ, ଫଣାଧର, ଚଟୁ ନିର୍ମାଣକାରୀ ବ୍ୟକ୍ତି ।
ଦର୍ବୀସଂକ୍ରମଣ—କ୍ଳୀ.ବି. ଗୋଟିଏ ତୀର୍ଥ ।
ଦର୍ଶ—ପୁଂ. ବି. (ଦୃଶ୍+ଅଧି.ଅ) ଅମାବାସ୍ୟା, ଦର୍ଶକାଳ ଯାଗଭେଦ, (ଭା.ଅ) ଦର୍ଶନ, ଚକ୍ଷୁଷଜ୍ଞାନ, (ବିଂ) ଦ୍ରଷ୍ଟା ।
ଦର୍ଶକ—ପୁଂ. ବି. ( ଦୃଶ୍+କ.ଅକ ) ଦ୍ୱାରପାଳ, (ବିଂ) ଦ୍ରଷ୍ଟା,ପ୍ରଧାନ.ନିପୁଣ, ଯେ ଦେଖେ, (ଦୃଶ୍+ଣିଚ୍+ଅକ) ଦର୍ଶୟିତା, ଯେ ଦେଖାଏ ।
ଦର୍ଶକଟଙ୍ଗାହାର—ଗ୍ରା. ବି. ମାଲଦହ ଜିଲ୍ଲାର ଗୋଟିଏ ରାଜସ୍ୱ ବିଭାଗ ।
ଦର୍ଶତ—ପୁଂ. ବି. ( ଦୃଶ+କ. ଅତ ) ସୂର୍ଯ୍ୟ, ଚନ୍ଦ୍ର, (ବିଂ) ଦର୍ଶନୀୟ ।
ଦର୍ଶତଶ୍ରୀ—ତ୍ରି. ବିଂ. (ବ.ବ୍ରୀ) ଦର୍ଶନୀୟ, ବିଭୂତି ।
ଦର୍ଶନ—କ୍ଳୀ. ବି. (ଦୃଶ୍+ଅନ) ନୟନ, ସ୍ୱପ୍ନ, ବୁଦ୍ଧି, ଧର୍ମ,ଦର୍ପଣ,ଇଜ୍ୟା, ବର୍ଣ୍ଣ, ଚକ୍ଷୁଷଜ୍ଞାନ, ଅବଲୋକନ, ଦେଖିବା, ପରିଦର୍ଶନ, ନିୟମ, ଆକୃତି, ଯୋଗୀ-ମାନଙ୍କର ପିନ୍ଧିବା ଏକପ୍ରକାର କୁଣ୍ଡଳ, ଅଦାଲତ ଆଦିରେ ଉପସ୍ଥିତ, ମତ, ଉଦ୍ଦେଶ୍ୟ, ଦୃଶ୍ୟ ବସ୍ତୁଚୟ, ଭେଟ, ମୁଲକାତ, ସାଂଖ୍ୟାଦି ଶାସ୍ତ୍ର, ମନସ୍ତତ୍ତ୍ୱ-ବିଦ୍ୟା, ଯାହା ଅକ୍ଷିରେ ଦେଖାପଡ଼େ, (ଗ୍ରା.ବି)ଦେବପ୍ରତିମାମାନଙ୍କୁ ଦେଖିବା ।
ଦର୍ଶନକରିବା—ଗ୍ରା. କ୍ରି. ଦେଖିବା, ଠାକୁର ଆଦିଙ୍କୁ ଦେଖିବା ।
ଦର୍ଶନପଥ—ପୁଂ. ବି. (୬ତତ୍ପୁ)ଦୃଷ୍ଟିପଥ ।
ଦର୍ଶନପାଇବା—ଗ୍ରା. କ୍ରି. କୌଣସି ବ୍ୟକ୍ତି ବା ବସ୍ତୁକୁ ଦେଖିବାକୁ ଅସୁବିଧା ଘଟିବା ।
ଦର୍ଶନପ୍ରତିଭୂ—ପୁଂ.ବି. (୬ତତ୍ପୁ) ଲଗାହାରି, ହାଜର ଜାମିନ୍‌ଦାର ।
ଦର୍ଶନମିଳିବ —ଗ୍ରା.ବି. କୌଣସି ବ୍ୟକ୍ତି-ଙ୍କର ବା ଦେବପ୍ରତିମାଙ୍କର ସାକ୍ଷାତ୍କାର ଲାଭହେବା ।
ଦର୍ଶନଲାଭ—ବି.(୬ତତ୍ପୁ) ସାକ୍ଷାତ୍କାର ।
ଦର୍ଶନା—ସ୍ତ୍ରୀ. ବି. ନଦୀବିଶେଷ ।
ଦର୍ଶନାର୍ଥୀ—ପୁଂ. ବି. (ଦର୍ଶନ+ଅର୍ଥ+ଇନ୍) ରାଜା ବା ଦେବତାଙ୍କୁ ଦର୍ଶନ କରିବାକୁ ଇଚ୍ଛୁକ ।
ଦର୍ଶନୀ—ଗ୍ରା. ବି. (ସଂ-ଦର୍ଶନ) ଦେବତା ଓ ରାଜାଆଦିଙ୍କୁ ଦେଖିବା,ଦର୍ଶକ ଯେଉଁ ଅର୍ଥ ତାଙ୍କ ଆଗରେ ରଖିଦିଏ,ସଲାମୀ, ପ୍ରଣାମୀ, ଓଳକ, ବୈଦ୍ୟ, ଜମିଦାର ଆଦିଙ୍କୁ ଦିଆଯିବା ପ୍ରଥମ ଭେଟି,ଭିଜାଟ୍, ଉପହାର, ଉପଢ଼ୌକନ ।
ଦର୍ଶନୀୟ—ତ୍ରି. ବିଂ. (ଦୃଶ୍+ର୍ମ.ଅନୀୟ) ମନୋଜ୍ଞ,ଦର୍ଶନଯୋଗ୍ୟ, ଦୃଶ୍ୟ,ସୁଦୃଶ୍ୟ, ଯାହା ଦେଖା ଯାଇପାରେ ।
ଦର୍ଶନେନ୍ଦ୍ରିୟ—କ୍ଳୀ. ବି. (କ.ଧା) ଚକ୍ଷୁ ।
ଦର୍ଶନୋପନିଷଦ୍—ସ୍ତ୍ରୀ. ବି. ଉପନିଷଦ୍ ଭେଦ ।
ଦର୍ଶଯାମିନୀ—ସ୍ତ୍ରୀ.ବି. (୬ତତ୍ପୁ) ଅନ୍ଧକାର ରାତ୍ରି, ଅମାବାସ୍ୟାର ରାତ୍ରି ।
ଦର୍ଶୟିତା—ପୁଂ. ବିଂ. (ଦୃଶ୍+ଣିଚ୍+କ.ତୃ)ଦର୍ଶକ,ପ୍ରକାଶକ,ଯେ ଦେଖାଏ ।
ଦର୍ଶବିପଦ୍—ପୁଂ. ବି. (ବ.ବ୍ରୀ) ଚନ୍ଦ୍ର, ଅମାବାସ୍ୟା ଯାହାର ବିପଦ ହୋଇଥାଏ ।
ଦର୍ଶା(ର୍ଶେ)ଇବା—ଗ୍ରା. କ୍ରି. ଦର୍ଶନ କରାଇବା,ଦେଖାଇବା, ପ୍ରମାଣ ଉପସ୍ଥାପିତ କରିବା, ପ୍ରମାଣିତ କରିବା ।
ଦର୍ଶାତ୍ୟୟ—ବି. (ଦର୍ଶ+ଅତ୍ୟୟ) ଅମାବାସ୍ୟାର ପରବର୍ତ୍ତିନୀ ଶୁକ୍ଳ ପ୍ରତିପଦ ।
ଦର୍ଶିତ—ତ୍ରି ବିଂ. (ଦୃଶ୍+ଣିଚ୍+ର୍ମ.ତ) ଯାହା ଦେଖାହୁଏ, ପ୍ରକାଶିତ, ଯାହା ଦେଖାଇ ଦିଆଯାଇଅଛି, ପ୍ରଦର୍ଶିତ ।
ଦର୍ଶିବନ୍—ତ୍ରି. ବିଂ. ଦ୍ରଷ୍ଟା ।
ଦର୍ଶିବା—ଗ୍ରା. କ୍ରି. ଦେଖାପଡ଼ିବା ।
ଦର୍ଶୀ—ପୁଂ. ବିଂ. ( ଦୃଶ୍+କ.ଇନ୍ ) ଦ୍ରଷ୍ଟା, ବିବେଚକ, ସାକ୍ଷାତ୍କାରକ,ଯେ ଦର୍ଶନ କରେ,ଯେ ଜାଣିଥାଏ,ଯାହାର ଦେଖିବାର ଶକ୍ତିଅଛି, ଅନୁଭବକାରୀ ।
ଦର୍ଶ୍ୟ—ତ୍ରି. ବିଂ. (ଦୃଶ୍+ଯ)ଦର୍ଶନୀୟ ।
ଦଲ୍‌ଦଲ୍‌ହେବା—ଗ୍ରା. କ୍ରି. ଶୀତରେ ଥରିବା ।
ଦଲ୍‌ଦଲ(ଲେ)ଇବା—ଗ୍ରା. କ୍ରି. କର୍ଦ୍ଦମ-ମୟ ହେବା, (ବ୍ରଣାଦି)ପୂଯ ଓ ଘାଆରେ ପୂର୍ଣ୍ଣହେବ, ଥରିବା, କମ୍ପିଉଠିବା ।
ଦଲ୍‌ଦଲିଆ—ଗ୍ରା. ବିଂ.ପତଳା କାଦୁଅ-ଯୁକ୍ତ, ସନ୍ତସନ୍ତିଆ,କାଦୁଅପ୍ରାୟ,ନରମ, ଯାହାକୁ ମଡ଼ାଦେଲେ ନଇଁଯାଏ, ନରମା, ପଙ୍କୁଆ, ସ୍ଥିତିସ୍ଥାପକ, ପୂଯ ଓ ଘାଆଦ୍ୱାରା ମାଡିଉଠିଥିବା (ବ୍ରଣାଦି) ।
ଦଲ୍‌ଦେବା—ଗ୍ରା. (ସମ୍ବ) କ୍ରି. ଖାଇ-ବସିଥିବା ବ୍ୟକ୍ତିଙ୍କୁ ଦ୍ୱିତୀୟଥର ପରଷିବା, ଦେଇଦେବା ।
ଦଲ—କ୍ଳୀ.ବି. (ଦଲ+କ.ଅ) ଉତ୍ସେଧ, ଖଣ୍ଡ, ପତ୍ର, ଧନ, ତମାଲପତ୍ର, ଅର୍ଦ୍ଧ-ଜଳଜ ତୃଣ,ଅସ୍ତ୍ରଚ୍ଛଦ, ଖାପ, ଅପଦ୍ରବ୍ୟ ସମୂହ, ସମ୍ପ୍ରଦାୟ,ଗୋଷ୍ଠୀ,ଅସ୍ତ୍ରଫଳକ, ଖୋଳ,ଅସ୍ତ୍ରାଦିର ଧାର,ଫୁଲର ପାଖୁଡ଼ା, ପଞ୍ଝା, ପଲ, (ଭା.ଅ) ଦଲନ,ଚକଟିବା, ମଳିବା,ମୁଗ ହରଡ଼ଆଦି ଶସ୍ୟର ଫାଳ, (ଗ୍ରା.ବି)ଗ୍ରାମବାସୀମାନଙ୍କ ମଧ୍ୟରେ ସ୍ପର୍ଦ୍ଧା-ପ୍ରତିଦ୍ୱନ୍ଦ୍ୱୀ ଗୋଷ୍ଠୀ, ଠାକୁରମାନଙ୍କୁ ଓ ସଂକୀର୍ତ୍ତନ ଦଲକୁ ମେଳନଆଦିକୁ ନିମନ୍ତ୍ରଣ କରିବାପାଇଁ ପ୍ରେରିତ ଫୁଲ ଓ ତୁଳସୀ,ଆଖଡ଼ା ଓ ଯାତ୍ରାଆଦିର ଦଲ ।
ଦଲକରଣ—ଗ୍ରା.ବି. ରାଜାଙ୍କ ଉଆସରେ ବା ଦେବାଳୟର କର୍ମଚାରୀବିଶେଷ,

ପ୍ରାଚୀନ ଓଡ଼ିଶା ରଜାମାନଙ୍କର ସ୍ତମ୍ଭ-କରଣ ।

ଦଳକା(କେ)ଇବା—ଗ୍ରା. କ୍ରି. କାଦୁଅ ବା ମାଟି ଦଳକାହୋଇ ଗୁଡ଼ିଯିବା, (କ୍ୱଚିତ୍) କମ୍ପାଇବା ।

ଦଳକୋଷ—ବ.(ବ.ଗ୍ରା) କୁନ୍ଦଫୁଲ ଗଛ

ଦଳଖିଆ—ଗ୍ରା.ବିଂ. ଯେ ଦଳଘାସ ଖାଏ, (ବି) ନିକୃଷ୍ଟଜାତୀୟ ଦେଶୀ ଘୋଡ଼ା ।

ଦଳଚଞ୍ଚନ—ଗ୍ରା. ବ. ଖୁଦ୍ ଖାର ।

ଦଳଗନ୍ଧ—ବ. ସପ୍ତପର୍ଣ୍ଣ, ଛତିଆନା, ସତନା ଗଛ ।

ଦଳଜ—ତ୍ରି. ବିଂ. (ଦଳ + ଜନ + ଅ) ଏକଦଳସ୍ଥିତ ।

ଦଳତ୍ତା—ତ୍ରି. ବିଂ. ଦ୍ୱିଧାକାରକ ।

ଦଳଦଳ—ଗ୍ରା.ବ.ପଲକୁପଲ,ପଞ୍ଝାପଞ୍ଝା ଏକଦଳ ପରେ ଅନ୍ୟଦଳ ।

ଦଳଦଳ—ଗ୍ରା. ବିଂ. ଦୁଲ୍ ଦୁଲ୍ ହୋଇ କମ୍ପିତ, ଦଳଦଳିଆ ଦେହ, (ବି) ଆନନ୍ଦବାଦ୍ୟାଦିର ଘୋରଶବ୍ଦ,କମ୍ପନ ।

ଦଳଦଳିଆ—ଗ୍ରା. ବିଂ. ପଙ୍କୁଆ, କାଦୁଅ (ଜମି), ସନ୍ତସନ୍ତିଆ ।

ଦଳନ—ବ. (ଦଳ+ଭା.ଅନ) ମର୍ଦ୍ଦନ, ମଳିବା, ଦମନ, ଶାସନ, ନିଷ୍ପୀଡ଼ନ, ଫୁଟାଇବା, ବିଦାରଣ, ଭେଦନ, ଚୂନା କରିବା, ପେଷିବା,ରଗଡ଼ିବା, ସଂହାର, (ପୁଂ.ବି-କ.ଅନ) ଶାସନକାରୀ, ଯେ ଦଳନ କରେ ।

ଦଳନିର୍ମୋକ—ପୁଂ. ବ. (ବ.ଗ୍ରା)ଭୂର୍ଜ-ପତ୍ର ଓ ବୃକ୍ଷ । [ ଢେଲା ।

ଦଳମ୍ମା—ସ୍ତ୍ରୀ.ବ. ଲେଷ୍ଟ୍ର, ଢେଲା,ଢେକା,

ଦଳପ—ପୁଂ. ବ. (ଦଳ+ପା+କ.ଅ) ସ୍ୱର୍ଣ୍ଣ, ଶସ୍ତ୍ରପ୍ରହରଣ, ବିଦାରକମାତ୍ର, ଦଳପତି ।

ଦଳପତି—ପୁଂ. ବ. (୬ତତ୍) ସର୍ଦ୍ଦାର, ଦଳର ପ୍ରଧାନ ବ୍ୟକ୍ତି, ପଲର ପ୍ରଧାନ ଜନ୍ତୁ, ଗୋଷ୍ଠୀର ନେତା ।

ଦଳପି(ଫି)ମ୍ପି—ଗ୍ରା. ବ. ଡାହୁକଜାତୀୟ ଏକପ୍ରକାର ଜଳଚର ପକ୍ଷୀ ।

ଦଳପୁଷ୍ପା—କେତକୀ, କିଆ ।

ଦଳବଦ୍ଧ—ବିଂ. ( ୭ତତ୍ ) ଦଳଭୁକ୍ତ, ଯେଉଁମାନେ ଦଳବାନ୍ଧି ରହନ୍ତି ।

ଦଳବଳ—ବ. ଗୋଷ୍ଠୀର ସମସ୍ତ ବ୍ୟକ୍ତି, ସୈନ୍ୟଦଳ, ଅନୁଚରବର୍ଗ, ସ୍ୱପକ୍ଷୀୟ ବ୍ୟକ୍ତିଗଣ ।

ଦଳବାନ୍ଧିବା—ଗ୍ରା.କ୍ରି. ଗୋଷ୍ଠୀବାନ୍ଧିବା, ମେଳବାନ୍ଧିବା,ବହୁବ୍ୟକ୍ତି ବା ଜୀବ ଏକତ୍ର ସଂହତ କରିବା ।

ଦଳବେହେରା—ଗ୍ରା. ବ. ପାଇକମାନଙ୍କ ସର୍ଦ୍ଦାର, ଜମାଦାର, ଗ୍ରାମର ସର୍ଦ୍ଦାର, ହାଟୁଆଜାତିର ଅଧିକାରୀ,ଗ୍ରାମର ରାଜସ୍ୱ ସଂକ୍ରାନ୍ତ ବିଷୟରେ ମୁଖ୍ୟବ୍ୟକ୍ତି ।

ଦଳମ—ଯା.ବ.ଘରଛଆଣିର ଉପକରଣ ସାମଗ୍ରୀଚୟ, ବୋଝ, ବଡ଼ କଡ଼ିକାଠ ।

ଦଳମା--ମାନଭୂମଜିଲ୍ଲାର ପ୍ରଧାନ ପାହାଡ଼ ।

ଦଳମାରଣୀ—ସ୍ତ୍ରୀ.ବ. କେମୁକ, କେଉ-ଗଛ, ସାରୁ ।

ଦଳମୌ—ଗ୍ରସ୍ତ ବେରେଲି ପ୍ରଦେଶାନ୍ତ-ର୍ଗତ ଗୋଟିଏ ପରଗଣା ।

ଦଳସୂଚି—ପୁଂ.ବ. କଣ୍ଟକ, କଣ୍ଟା,ଯେଉଁ ଗଛର ପତ୍ରରେ କଣ୍ଟାଥାଏ ।

ଦଳସ୍ଥ--ତ୍ରି.ବିଂ.ଦଳଭୁକ୍ତ,ଦଳରେ ଥିବା ।

ଦଳସ୍ନସା—ସ୍ତ୍ରୀ.ବ.(୬ତତ୍)ପତ୍ରର ଶିରା ।

ଦଳା—ଗ୍ରା. ବ. ଦଳନ, ଅନ୍ୟବ୍ୟକ୍ତିର ବା ଘୋଡ଼ାର ଶରୀରକୁ ହାତରେ ଘଷିବା,ଗାଈ ପ୍ରସବକାଳପରେ ପଡ଼ିବା ଫୁଲ, ମଳିବା,ଚକଟିବା, (ବିଂ)ଦଳିତ, ଦୋରହୋଇଥିବା,ଚକଟାହୋଇଥିବା ।

ଦଳାଇ—ଗ୍ରା. ବ. (ସଂ-ଦଳପତି) ଶୂଦ୍ରଙ୍କ ପଦବିଶେଷ, ଗ୍ରାମନାୟକ,ଜମାଦାର ।

ଦଳାକ୍ରାନ୍ତ—ତ୍ରି.ବିଂ. ଦଳସ୍ଥ,ଦଳଭୁକ୍ତ ।

ଦଳାଢ଼କ—ପୁଂ. ବ. (ଦଳ+ଆଢ଼କ) ସ୍ୱୟଂ ଜାତ ଜଳବୃକ୍ଷ, ଜଙ୍ଗଲିତିଲ, ପୃଶ୍ଣୀ, ଗୈରିକ, ନାଗକେଶର ବୃକ୍ଷ, ନାଟେଶ୍ୱର, କୁନ୍ଦପୁଷ୍ପ, କରିକର୍ଣ୍ଣ ବୃକ୍ଷ, ହସ୍ତିକର୍ଣ୍ଣ ପଲାଶ, ଫେନ, ଧାତକ, ମାହୁନ୍ତ,କୁମ୍ଭିକା,ବୁର୍ଟଙ୍ଗି,ଶିରିଷ ବୃକ୍ଷ, ବାତ୍ୟା, ମହାଜ୍ୱର ।

ଦଳାଢ଼ୀ—ପୁଂ. ବ.ପଙ୍କ,କର୍ଦ୍ଦମ, ପାଣିଆ କାଦୁଅ ।

ଦଳାଣ—ଯା. ବ. କୋଠାଘର,ପ୍ରକୋଷ୍ଠ, କୋଠରି, ଲମ୍ବା ଓ ଚଉଡ଼ା କୋଠରି, ଲମ୍ବା ବାରଣ୍ଡା ।

ଦଳାଦଳି—ଗ୍ରା. ବ. ପକ୍ଷାପକ୍ଷ ବିବାଦ, ବହୁବାର ଦଳିବା, ଧକାମକା, କୁଟା-କୁଟି, ଘଣ୍ଟାଘଣ୍ଟି, ପରସ୍ପର ମଧ୍ୟରେ ବିରୋଧ ।

ଦଳାମଳ—କ୍ଳୀ.ବ. ମରୁବକ ବୃକ୍ଷ,ମରୁଆ ଫୁଲ, ଦମନକ, ମଦନ ବୃକ୍ଷ, ଦଅଣା ଗଛ ।

ଦଳାମଳା—ଗ୍ରା.ବ.ଘଷା ମୋଡ଼ା,ଚକଟା ଚକଟି, ଶସ୍ୟାଦିର ଅମଳ ।

ଦଳାମ୍ଳ—କ୍ଳୀ. ବ. (ବ.ଗ୍ରା) ଚୁକ୍ରଶାଗ, ଝେଟାପାଳଙ୍ଗ ।

ଦଲାଲ—ଯା.ବ.କ୍ରୟ ବିକ୍ରୟରେ ମଧ୍ୟସ୍ଥ, ଦଣ୍ଡିଦାର ।

ଦଲାଲି—ଯା.ବ. କ୍ରୟ ବିକ୍ରୟରେ ମଧ୍ୟସ୍ଥ, ମଧ୍ୟସ୍ଥର ପ୍ରାପ୍ୟ କମିସନ୍, କ୍ରୟ ବିକ୍ର-ୟରେ ମଧ୍ୟସ୍ଥତା କାର୍ଯ୍ୟ ।

ଦଳାହ୍ୱୟ—କ୍ଳୀ. ବ. (ବ.ଗ୍ରା) ପତ୍ରକ, ତେଜପତ୍ର ।

ଦଳି—ପୁଂ.ସ୍ତ୍ରୀ. ବ. (ଦଳ + ଇ) ଲେଷ୍ଟ୍ର, ଢେଲା, ମାଟିର ଚିମା ।

ଦଳିକ—କ୍ଳୀ. ବ. ( ଦଳ + ମିଂ.ଇକ ) କାଷ୍ଠ, କାଠ ।

ଦଲି(ଲ୍ଲୀ)ଜ୍—ପ୍ରା. ( ମେଦିନୀ ) ଯା. ବ. ବୈଠକଖାନା,ବରଣ୍ଡା, ଦରବାର ଘର, ଏରୁଣ୍ଡିବନ୍ଧ ।

ଦଳିତ—ତ୍ରି. ବିଂ. ( ଦଳ+ମିଂ. ତ ) ପ୍ରସ୍ଫୁଟିତ, ପ୍ରଫୁଲ୍ଲ, ଖଣ୍ଡିତ, କର୍ତ୍ତିତ, ବିଦୀର୍ଣ୍ଣ, ଛିନ୍ନ, ଯାହା ଦଳାହୋଇଅଛି, ଘୋରହୋଇଥିବା, ମର୍ଦ୍ଦିତ, ନିଷ୍ପୀଡ଼ିତ, ପିଷ୍ଟ, ଚୂର୍ଣ୍ଣିତ, ଶାସିତ, ଉତ୍ପୀଡ଼ିତ, ବିଭକ୍ତ, ଉଦ୍ଘାଟିତ ।

ଦଳିତାଞ୍ଜନ—ବ. ( ଦଳିତ+ଅଞ୍ଜନ ) ଦଳାଯାଇଥିବା ଅଞ୍ଜନ ।

ଦଳିବା—ଗ୍ରା. କ୍ରି. ଚକଟିବା, ଦଳନ କରିବା, ମର୍ଦ୍ଦନ କରିବ, ଧ୍ୱଂସକରିବା,

(ଲ.ଅର୍ଥ)ଗର୍ବିତ୍ତ ଇତ୍ୟାଦି ବିନାଶକରିବା, ମଳିବା, ମକଚିବା, ପୀଡ଼ାଦେବା, ମନ୍ଥିବା ।

ଦଲିଲ—ଯା. ବି. ସତ୍ତ୍ୱାସତ୍ତ୍ୱ ନିର୍ଦ୍ଦେଶ ପତ୍ର, ମୋକଦ୍ଦମା ସଂକ୍ରାନ୍ତ କାଗଜାଦି, ଲିଖିତପ୍ରମାଣ ।

ଦଲିଲକର୍ତ୍ତା—ଗ୍ରା. ବି. ଯେଉଁ ବ୍ୟକ୍ତି ଦଲିଲ ସମ୍ପାଦନ କରିଦିଏ ବା ଥାଏ ।

ଦଲିଲଗ୍ରହୀତା—ଗ୍ରା. ବି. ଯେଉଁ ବ୍ୟକ୍ତିର ସପକ୍ଷରେ ଦଲିଲ ସମ୍ପାଦନ ହୋଇଥାଏ ।

ଦଲିଲଦସ୍ତାବିଜ୍—ଯା. ବି. ଲିଖିତ ନିଦର୍ଶନ ଆଦି ।

ଦଲିଲପ୍ରମାଣ—ଗ୍ରା.ବି. ଲିଖିତ ନିଦର୍ଶନ ଦ୍ୱାରା ଉପସ୍ଥାପିତ ପ୍ରମାଣ, ଲିଖିତ ନିଦର୍ଶନ ।

ଦଳହେବା—ଗ୍ରା. କ୍ରି. ଫାଟିଯିବା, ଭିନ୍ନହେବା, ମର୍ଦ୍ଦିତହେବା, ପେଷିତହେବା, ଅନ୍ୟଦ୍ୱାରା ଦଳାଇହେବା ।

ଦଳୀ—ବିଂ. (ଦଳ+ଇନ୍) ଦଳଯୁକ୍ତ, (ସ୍ତ୍ରୀ) ଦଳିନୀ ।

ଦଳୀପ୍‌ସିଂହ—ବି. ପଞ୍ଜାବକେଶରୀ ରଣଜିତ୍ ସିଂହଙ୍କର କନିଷ୍ଠ ପୁତ୍ର ।

ଦଳୀମୃଗ—ପୁଂ.ବି. କଳେଜୀୟ ଶ୍ରେଣୀସ୍ଥ ପ୍ରାଣୀବିଶେଷ ।

ଦଳୁଆ—ଗ୍ରା.ବିଂ. ଦଳପୂର୍ଣ୍ଣ, ଦଳମିଶ୍ରିତ ହେବା ଯେଉଁ ବସ୍ତୁ (ଜଳ), ଦଳିଆ ଦେଶ, (ପ୍ରା. ଗଞ୍ଜାମ.) ଏକଜାତୀୟ ଚଷା ।

ଦଳେ—ଗ୍ରା.ଅବ୍ୟ ଏକଦଳ, ଏକପନ୍ତି, ଏକପଲ ।

ଦଳେଇ—ଗ୍ରା.ବି. ଦଳାଇ ଦେଖ ।

ଦଳେଗଛ—ପୁଂ.ବି. ଉଣ୍ଡିକା, ସପ୍ତପର୍ଣ୍ଣୀ ବୃକ୍ଷ, ଛତିନାଗଛ ।

ଦଳୋଦ୍ଭବ—ବି. ବିଂ. (ଦଳ+ଉତ୍+ଭୂ+ଅ) ଦଳଜାତ ମଧୁଭେଦ ।

ଦଲ୍ଭ—ପୁଂ.ବି. ପ୍ରତାରଣା, ପାପ, ଚକ୍ର, ମୁନିଭେଦ । [ ଋଷିଙ୍କ ।

ଦଲଭ୍ୟ—ପୁଂ. ବି. ଗୋତ୍ରାପତ୍ୟ ଦଲ୍ଭ-

ଦଲ୍ମି—ପୁଂ.ବି. ଇନ୍ଦ୍ର, ବଜ୍ର ।

ଦଲ୍ମିମାନ—ପୁଂ.ବି. ବଜ୍ରଯୁକ୍ତ ।

ଦଲ୍ଲୀ—ହି. ବିଂ. ଦଳର ଅଦୂରଦେଶାଦି, ସନ୍ନିହିତ ଦେଶ ।

ଦବ—ପୁଂ.ବି. (ଦୁ+ଅ)ବନ, ବନାଗ୍ନି, ଅଗ୍ନି, ଉପତାପ, ସନ୍ତାପ, ପୋଡ଼ାଜଳା, ରାଗଦାହ ।

ଦବନ—ଗ୍ରା.ବି. (ସଂ-ଦମନ) ଆତଙ୍କ, ଭୀତି, ଛନିଆଁ, ଚମକ, ଟଙ୍କା ।

ଦବଥୁ—ପୁଂ.ବି. (ଦୁ+ସଂ.ଅଥୁ)ପରିତାପ, ଦୁଃଖ, ସନ୍ତାପ, ଉଦ୍‌ବେଗ, ଝଷ୍ଟୁକ୍ଳା, କଳାପୋଡ଼ା ।

ଦବଦଗ୍ଧକ—କ୍ଲୀ.ବି (ଦବ+ଦଗ୍ଧ+କୈ+ଅ) ରୋହିଷତୃଣ ।

ଦବଦବ—ଗ୍ରା.ବି.ଗ୍ରୁଡି ଦବଦବ ହେବା

ଦବଦବା—ଗ୍ରା. ବି. ଓଲଉଠା, ହଇଜା, ଆତଙ୍କ, ତ୍ରାସ ।

ଦବଦହନ—ପୁଂ ବି. (୬ତତ୍) ଦାବାଗ୍ନି, ବନାଗ୍ନି, ଦାବାନଳ ।

ଦବା—ଗ୍ରା. କ୍ରି. ଦେବା, ଦାନକରିବା

ଦବାଇ—ଯା.ବି. ଔଷଧ ।

ଦବାଇବା—ଗ୍ରା. କ୍ରି. ଦାବିବା କ୍ରିୟାର ଣିଜନ୍ତରୂପ, ଦାବିବା ଦେଖ ।

ଦବାଗ୍ନି—ପୁଂ.ବି. (ଦବ+ଅଗ୍ନି)ଦାବାନଳ ।

ଦବାନଳ—ପୁଂ.ବି. ବନାଗ୍ନି ।

ଦବିବା—ଗ୍ରା. କ୍ରି. ତଳକୁ ବସିଯିବା, ପଶ୍ଚାତ୍‌ପଦ ହେବା, ନିରସ୍ତ ହେବା, ଭୟରେ ଚୁପ୍‌ହେବା, କମ୍‌ହେବା ।

ଦବିଷ୍ଠ—ପୁଂ.ବିଂ. (ଦୂର+ଇଷ୍ଠ)ସୁଦୂର, ଅତିଶୟ ଦୂରବର୍ତ୍ତୀ, ଦୂରୀଭୂତ ।

ଦବୀୟାନ୍—ପୁଂ. ବିଂ. (ଦୂର+ଈୟସ୍) ଦବିଷ୍ଠ ଦେଖ ।

ଦବେଇରଖିବା—ଗ୍ରା. କ୍ରି. ଚୋରାଇରଖିବା, ଛପାଇରଖିବା, ଟଙ୍କ ନୂତ କରି ରଖିବା ।

ଦଶ—ବି.(ଦଶନ୍+ଅ) ଦଶସଂଖ୍ୟା,(ବିଂ) ଦଶସଂଖ୍ୟକ, ଗ୍ରା.ବି. ସର୍ବସାଧାରଣ, ମୃତବ୍ୟକ୍ତିର ମୃତ୍ୟୁର ଦଶଦିନର କର୍ମ

ଦଶଅବତାର—ବି. ଦୁଷ୍ଟଦଳନ ଓ ଶିଷ୍ଟପାଳନ ଓ ପୃଥିବୀକୁ ପାପରୁ ଉଦ୍ଧାରାର୍ଥ ବିଷ୍ଣୁଙ୍କର ପୃଥିବୀରେ ଦଶଥର ଅବତରଣ ବା ଜୀବରୂପ ଧାରଣ ।

ଦଶଆଙ୍ଗୁଠି—ଗ୍ରା. ବି. ଦୁଇହାତର ୧୦ ଗୋଟି ଓ ଦୁଇଗୋଡ଼ର ୧୦ ଗୋଟି ଆଙ୍ଗୁଳି ।

ଦଶଆଙ୍ଗୁଠି ପାଟିରେ ପୂରାଇବା—ଗ୍ରା.କ୍ରି. (ଲ.ଅର୍ଥ)ଲୋଭଗ୍ରସ୍ତ ହେବା ।

ଦଶଉତ୍ତର—ଗ୍ରା.ବିଂ.ଯେଉଁ ଶତସଂଖ୍ୟାର ପରେ ଦଶସଂଖ୍ୟା ଥାଏ ।

ଦଶକ—ବିଂ. (ଦଶ+କ) ଦଶର ଗୁଣିତକ ବା ଦଶସ୍ଥାନୀୟ (ସଂଖ୍ୟା), ଏକାଧିକ ଅଙ୍କର ଦକ୍ଷିଣାନ୍ତରୁ ବାମଆଡ଼କୁ ଗଣିଲେ ଦ୍ୱିତୀୟ ସ୍ଥାନ (ଅଙ୍କ), ଦଶଗୁଣିତ, (ବି) ଦଶବର୍ଷ, ଦଶାବ୍ଦି, ୧୦ ସଂଖ୍ୟାର ସମାହାର, (ଗ୍ରା. ବି.) ପଣକିଆର ଦଶସଂଖ୍ୟାର ଧାଡ଼ି ବା ଶ୍ରେଣୀ ।

ଦଶକଣ୍ଠ—ପୁଂ.ବି. (ବ.ବ୍ରୀ) ରାବଣ ।

ଦଶକଣ୍ଠଜିତ୍—ପୁଂ. ବି. (ଦଶକଣ୍ଠ+ଜି+କ୍ୱିପ୍) ରାମଚନ୍ଦ୍ର ।

ଦଶକତ୍—ଯା.ବି. ସ୍ୱାକ୍ଷର ।

ଦଶକଥା—ଗ୍ରା. ବି. ଏଣୁତେଣୁ ବହୁତ ପ୍ରକାର କଥା ବା ବିଷୟ ।

ଦଶକନ୍ଧର—ପୁଂ.ବି. (ବ.ବ୍ରୀ) ରାବଣ ।

ଦଶକନ୍ଧରଜିତ୍—ପୁଂ.ବି. ରାମଚନ୍ଦ୍ର ।

ଦଶକନ୍ୟାତୀର୍ଥ—କ୍ଲୀ.ବି. ତୀର୍ଥଭେଦ ।

ଦଶକର୍ମ—କ୍ଲୀ.ବି. ଗର୍ଭାଧାନାଦି ଦଶବିଧ କର୍ମ ।

ଦଶକର୍ମଜ୍ଞ—ପୁଂ. ବି. ଦଶକର୍ମର ମନ୍ତ୍ରାଦିରେ ପଣ୍ଡିତ

ଦଶକର୍ମପଟୁ—ପୁଂ. ବିଂ. ଦଶକର୍ମରେ ପାରଗ ।

ଦଶକର୍ମପଦ୍ଧତି—ସ୍ତ୍ରୀ. ବି. ଦଶକର୍ମ ବିଷୟକ ପଦ୍ଧତି, ଯେଉଁ ପୁସ୍ତକରେ ଗର୍ଭାଧାନାଦି ଦଶକର୍ମ ବିଷୟକ ମନ୍ତ୍ରାଦି ବିବରଣ ଲିଖିତ ଥାଏ ।

ଦଶକର୍ମାନ୍ୱିତ—ପୁଂ. ବିଂ. (୩ତତ୍) ଦଶକର୍ମ ଦ୍ୱାରା ଯୁକ୍ତ ଦଶକର୍ମାଭିଜ୍ଞ ।

ଦଶକାମଜବ୍ୟସନ—କ୍ଲୀ.ବି. କାମୋତ୍ପନ୍ନ

ଦଶବିଧ ବ୍ୟସନ ।
ଦଶକାଳ—ଗ୍ରା.ବି. ଅତି ବୃଦ୍ଧ ।
ଦଶକୁମାରଚରିତ—କ୍ଲୀ. ବି. ମହାକବି ଦଣ୍ଡି ପ୍ରଣୀତ ସଂସ୍କୃତ ଗଦ୍ୟଗ୍ରନ୍ଥବିଶେଷ
ଦଶକୁଳବୃକ୍ଷ—ପୁଂ. ବି. ତନ୍ତ୍ରୋକ୍ତ ଦଶଗୋଟି କୁଳବୃକ୍ଷ ।
ଦଶକେଗ୍ରେଟ—( ପ୍ରା. ଗ୍ରାମ. ବି. ) ବାଡ଼ରେ ପକାଇ ଖେଳିବା କାଠି, (କଉଡ଼ି) ଖେଳର ଦଶମ ଆଘାତ ।
ଦଶକ୍ରିୟା—ଗ୍ରା. ବି. ମୃତ୍ୟୁର ଦଶଦିନ ଯାକ ଯେଉଁ ଔର୍ଦ୍ଧ୍ୱଦେହିକ କ୍ରିୟା ବା ଶୁଦ୍ଧି ଶ୍ରାଦ୍ଧାଦି ମୃତବ୍ୟକ୍ତିର ଆତ୍ମାର ସଦ୍ଗତି ନିମିତ୍ତ ସମ୍ପାଦନ କରାଯାଏ ।
ଦଶକ୍ଷୀର—କ୍ଲୀ.ବି.ଦଶବିଧ ଦୁଗ୍ଧ, ଯଥା—ଗୋ,ଛାଗୀ, ଉଷ୍ଟ୍ରୀ, ମେଷୀ, ମହିଷୀ, ଅଶ୍ୱିନୀ,ନାରୀ, ହସ୍ତିନୀ, ମୃଗୀ ଓ ଗର୍ଦ୍ଦଭୀ ଏହି ଦଶବିଧ ଜନ୍ତୁର କ୍ଷୀର ।
ଦଶଖପରା—ଗ୍ରା. ବି. ମୃତ୍ୟୁର ଦଶଦିନ ପର୍ଯ୍ୟନ୍ତ ଦଶକ୍ରିୟା ଧରିଥିବା ଓ ମୁଖାଗ୍ନି ଦେଇଥିବା ବ୍ୟକ୍ତି ଦଶଘାଟରେ ଯେଉଁ ଖପରାରେ ଅନ୍ନରାନ୍ଧି ମୃତବ୍ୟକ୍ତିର ପ୍ରେତକୁ ପିଣ୍ଡଦିଏ, ଦଶଦିନର ଦଗ୍ଧହାଣ୍ଡି ।
ଦଶଗାଧ—ବି. ଶରୀରର ଦଶଟି ପ୍ରଧାନ ଅଙ୍ଗ, ମୃତାହର ଦଶଦିନ ପର୍ଯ୍ୟନ୍ତ କରାଯିବା ପ୍ରେତକର୍ମ ।
ଦଶଗୁଣ—ବି.ବିଂ.ଦଶାବୃତ୍ତ, ଦଶବାର ।
ଦଶଗ୍ରାମ—କ୍ଲୀ. ବି. ଦଶଖଣ୍ଡ ଗ୍ରାମଯୁକ୍ତ, ପରଗଣା ।
ଦଶଗ୍ରାମପତି—ପୁଂ.ବି.ଦଶଗ୍ରାମର ଅଧ୍ୟକ୍ଷ ।
ଦଶଗ୍ରାମିକ—ବି. ବିଂ. ଦଶଗ୍ରାମାଧିପତି, ଦଶଗ୍ରାମର ନିକଟ ଦେଶାଦି ।
ଦଶଗ୍ରାମୀ—ପୁଂ. ବିଂ. (ଦଶଗ୍ରାମ+ଇନ୍) ଦଶଗ୍ରାମର ଅଧିପତି, ଦଶଟି ଗ୍ରାମର ଶାସକ । [ ବିଶେଷ ।
ଦଶଗ୍ରୀବ—ପୁଂ. ବି. ରାବଣ, ଅସୁର-
ଦଶହରା—ଗ୍ରା. ବି. ଆଶ୍ୱିନଶୁକ୍ଳ ଦଶମୀ, ଜ୍ୟେଷ୍ଠମାସର ଶୁକ୍ଳଦଶମୀ ।
ଦଶଚନ୍ଦ୍ରମା—ଗ୍ରା. ବି. ( ଦର୍ଶ ବା ଅମାବାସ୍ୟାର ) ଚନ୍ଦ୍ର, ଦଶଗୋଟି ଚନ୍ଦ୍ର, (ଲ.ଅର୍ଥ)ନଖକ୍ଷତ ।
ଦଶଜଣ—ଗ୍ରା.ବି. ବହୁସଂଖ୍ୟକ ବା ଅନିର୍ଦ୍ଦିଷ୍ଟ ବ୍ୟକ୍ତି । [ ପୁଂସ ।
ଦଶଜ୍ୟୋତିଷ—ପୁଂ.ବି.ସୁଭ୍ରାଜଙ୍କ ଜ୍ୟେଷ୍ଠ
ଦଶତ୍—ସ୍ତ୍ରୀ.ବି. ଦଶବର୍ଷ,ଦଶକ, ଦଶସଂଖ୍ୟା ।
ଦଶତୟ—ବି. ବିଂ. ଦଶସଂଖ୍ୟା, ଦଶସଂଖ୍ୟାନ୍ୱିତ ।
ଦଶତି—ସ୍ତ୍ରୀ.ବି. ଶତସଂଖ୍ୟା, ଶହେ ।
ଦଶଘାଟ—ଗ୍ରା. ବି. ନଦ୍ୟାଦିର ଯେଉଁ ଘାଟରେ ଦଶଦିନ ପର୍ଯ୍ୟନ୍ତ ମୃତବ୍ୟକ୍ତିର ପ୍ରେତୋଦ୍ଦେଶ୍ୟରେ ଦଶକ୍ରିୟା କରାଯାଏ, ଦଶାହଦିନ ଦଶଘାଟରେ କ୍ରିୟାକର୍ତ୍ତା ଓ ଜ୍ଞାତିମାନଙ୍କର କ୍ଷୌରାଦି କର୍ମ ପୂର୍ବକ କରାଯିବା ସ୍ନାନାଦି କ୍ରିୟା ।
ଦଶଘାଟିଆ—ଗ୍ରା.ବି.ନିମ୍ନଶ୍ରେଣୀର ଯେଉଁ ବ୍ରାହ୍ମଣ ଦଶଘାଟରେ ପୌରହିତ୍ୟ କରେ, ଦଶଘାଟରେ ପିନ୍ଧାଯିବା ଲୁଗା, ଗ୍ରା.ବିଂ. ଅତି ନିକୃଷ୍ଟ ଓ ସ୍ଥୂଳ(ଲୁଗା) ।
ଦଶଦଶା—ବି. ( ଦଶ+ଦଶା ) ମନୁଷ୍ୟ ଜୀବନର ଦଶଅବସ୍ଥା,କାମାତୁର ବ୍ୟକ୍ତିର ଦଶଗୋଟି ଅବସ୍ଥା, ଭକ୍ତର ଦଶଗୋଟି ଅବସ୍ଥା ।
ଦଶଦଶୀ—ବି.ବିଂ. ଶତଗୁଣିତ ।
ଦଶଦାନ—ବି. ବୈତରଣୀ ଦାନ, ମନୁଷ୍ୟର ମୁମୂର୍ଷୁ ଅବସ୍ଥାରେ କରାଯିବା ଭୂମ୍ୟାଦି ଦଶବିଧ ଦାନ, ପଣାର ଦଶସଂଖ୍ୟକ ଦାନ ।
ଦଶଦିକ୍(ଶ୍)—ସ୍ତ୍ରୀ.ବି. ପୂର୍ବାଦି ଦିକ୍ସମୂହ, ଯଥା—ପୂର୍ବ, ପଶ୍ଚିମ, ଉତ୍ତର, ଦକ୍ଷିଣ, ଅଗ୍ନି,ବାୟୁ, ଈଶାନ, ନୈର୍‌ଋତ, ଊର୍ଦ୍ଧ୍ୱ, ଅଧଃ ।
ଦଶଦିକ୍‌ପାଳ—ପୁଂ.ବି. ଦଶଦିଗର ଅଧୀଶ୍ୱର, ଦିକ୍‌ପାଳ ଦେଖ ।
ଦଶଦିଗ—ଗ୍ରା. ବି. ଦଶଦିକ୍ ଦେଖ, ସବୁ ଦିଗମାନ ।
ଦଶଦିଗ ଅନ୍ଧାର ଦିଶିବା—ଗ୍ରା. ବି. କିଂକର୍ତ୍ତବ୍ୟବିମୂଢ଼ହେବା ।
ଦଶଦ୍ୱାର—ବି. ଶରୀରସ୍ଥ ଦଶଗୋଟି ଛିଦ୍ର ।
ଦଶଧା—ଅବ୍ୟ.(ଦଶ+ଧା)ଦଶପ୍ରକାରେ, ଦଶବାର, ଦଶଗୁଣ, ଦଶଥର ।
ଦଶନ—ବି. (ଦନ୍‌ଶ + ଣ.ଅନ) କବଚ, ଦନ୍ତ, ଦଂଷ୍ଟ୍ରା,(ଭା.ଅନ)ଦଂଶନ,କାମୁଡ଼ା, ପଲପରିମାଣ, ପର୍ବତର ଅଗ୍ରଭାଗ ।
ଦଶନଚ୍ଛଦ—ପୁଂ. ବି. ( ୬ତତ୍ ) ଓଷ୍ଠ, ଓଠ ।
ଦଶନପଦ୍ମ—ବି. (୬ତତ୍) ଓଠ ।
ଦଶନପଦ—କ୍ଲୀ. ବି. ଦଶନକ୍ଷତ ସ୍ଥାନ, ଦନ୍ତକ୍ଷତ ସ୍ଥାନ । [ ଓଷ୍ଠ ।
ଦଶନବସନ—ବି. (ଦନ୍‌ଶ+ବସ+ଅନ)
ଦଶନବାସ—କ୍ଲୀ. ବି. (ଦନ୍‌ଶ+ବସ+ଣ.ଅନ) ଥୁଡ଼ି, ଓଷ୍ଠ ।
ଦଶନବୀଜ—ପୁଂ.ବିଂ. (ବ.ବ୍ରୀ) ଡାଳିମ୍ବ ବୃକ୍ଷ, ଡାଳିମ୍ବ ମଞ୍ଜି ।
ଦଶନାଡ଼ୀ—ଗ୍ରା. ବି. ଶରୀରରେ ଥିବା ଦଶସଂଖ୍ୟକ ନାଡ଼ୀ ।
ଦଶନାଂଶୁ—ପୁଂ. ବି.(୬ତତ୍) ଦନ୍ତରୁଚି, ଦନ୍ତଶୋଭା ।
ଦଶନାଙ୍କ—ପୁଂ.ବି.(୬ତତ୍) ଦଶନକ୍ଷତ, ଦନ୍ତଚିହ୍ନ, ଦଶନାଘାତ ଚିହ୍ନ ।
ଦଶନାଢ୍ୟା—ସ୍ତ୍ରୀ. ବି. ଚୁହିକା, ଖଟାପାଳଙ୍ଗ ।
ଦଶନାମୀ—ଶଙ୍କରାର୍ଯ୍ୟଙ୍କ ଶିଷ୍ୟବିଶେଷ ।
ଦଶନାମୀସନ୍ୟାସୀ—ଗ୍ରା.ବି.ଦଶ ଉପାଧିଯୁକ୍ତ ସନ୍ୟାସୀମାନଙ୍କର ସମ୍ପ୍ରଦାୟ ।
ଦଶନୀ—ଗ୍ରା.ସ୍ତ୍ରୀ. ବିଂ. ଦନ୍ତଯୁକ୍ତା, ଦନ୍ତବିଶିଷ୍ଟା ।
ଦଶନୋଚ୍ଛିଷ୍ଟ—କ୍ଲୀ. ବି. ନିଶ୍ୱାସ, ଅଧରଚୁମ୍ବନ ।
ଦଶନ୍ଧ—ଗ୍ରା.ବି. (ସଂ-ଦଶବ୍ଦି) ଦଶବର୍ଷ, ଦଶବର୍ଷକାଳର ସମଷ୍ଟି ବା ସମାହାର ।
ଦଶପ—ପୁଂ.ବି.( ଦଶ+ପା+ଅ ) ଦଶଗ୍ରାମର ରକ୍ଷକ ।
ଦଶପଚିଶ—ଗ୍ରା. ବି. ଆଠପଚିଶ ଖେଳ, ଏକପ୍ରକାର କଉଡ଼ି ଖେଳ, ଗ୍ରା.ବିଂ,

ଦଶଠାରୁ ପଚଶି ମଧ୍ୟରେ ଅନିର୍ଦ୍ଦିଷ୍ଟ ସଂଖ୍ୟକ ।
ଦଶପଞ୍ଚତପସ୍—ପୁଂ. ବିଂ. ଯେ ପଞ୍ଚଜ୍ଞାନେନ୍ଦ୍ରିୟ ଓ ପଞ୍ଚକର୍ମେନ୍ଦ୍ରିୟ ଜୟକରି ପଞ୍ଚାଗ୍ନି ସାଧନ ପୂର୍ବକ ତପସ୍ୟାକରେ ।
ଦଶପଲ୍ଲୀ—ଗ୍ରା.ବି. ଓଡ଼ିଶାର ଏକ ଗଡ଼ଜାତର ନାମ ।
ଦଶପାରମିତାଧର—ପୁଂ.ବି. ବୁଦ୍ଧଦେବ ।
ଦଶପିଣ୍ଡ—ଗ୍ରା. ବି. ମୃତ୍ୟୁର ଦଶଦିନ ମଧ୍ୟରେ ପ୍ରତିଦିନ ଦଶଗୁଠରେ ପ୍ରେତ ଉଦ୍ଦେଶ୍ୟରେ ଦିଆଯିବା ପିଣ୍ଡ ।
ଦଶପୁର—କ୍ଲୀ. ବି. କୈବର୍ତ୍ତିମୁସ୍ତକ, ମାଳବର ଅନ୍ତର୍ଗତ ନଗର ବିଶେଷ ।
ଦଶପୁରୁଷ—ପୁଂ. ବି. ସ୍ୱଜନକାବଧି ପୁରୁଷଦଶକ, ନିଜକୁ ଧରି ଦଶପୁରୁଷ
ଦଶପୂର୍ବରଥ—ପୁଂ. ବି. ଦଶରଥ ।
ଦଶପେୟ—ପୁଂ. ବି. ଯଜ୍ଞଭେଦ ।
ଦଶବଳ—ପୁଂ. ବି. ବୁଦ୍ଧ, ଦାନଶୀଳ, କ୍ଷମା,ବୀର୍ଯ୍ୟ, ଧ୍ୟାନ, ପ୍ରଜ୍ଞା,ବଳ,ଉପାୟ, ପ୍ରଣିଧିତ, ଜ୍ଞାନ, ବୁଦ୍ଧଙ୍କର ଏହି ଦଶଟି ବଳ ଥିଲା ବୋଲି ଏହାଙ୍କ ନାମ ଦଶବଳ
ଦଶବାହୁ—ସ୍ତ୍ରୀ. ବି. (ବ.ବ୍ରୀ) ଦଶଭୁଜା, ଦୁର୍ଗା, (ବିଂ) ଦଶବାହୁଯୁକ୍ତା ।
ଦଶବାହ୍ମଚଣ୍ଡି—ଗ୍ରା. ବି. ବୃକ୍ଷ ବିଶେଷ ।
ଦଶଭୁଜ—ସ୍ତ୍ରୀ. ବି. (ବ.ବ୍ରୀ) ଦୁର୍ଗା ।
ଦଶଭୂମିଗ—ପୁଂ. ବି. ବୁଦ୍ଧ ।
ଦଶଭୂମିଶ—ପୁଂ. ବି. ବୁଦ୍ଧ ।
ଦଶମ—ତ୍ରି. ବିଂ. ଦଶ ସଂଖ୍ୟାର ପୂରଣ, ଦଶସଂଖ୍ୟକ, (ଗ୍ରା. ବି.) ଭାଗବତର ଦଶମସ୍କନ୍ଧ ।
ଦଶମଅବତାର—ବି. ବିଷ୍ଣୁଙ୍କର ଦଶମ ବା ଶେଷ ଅବତାର, କଲ୍କୀ ଅବତାର ।
ଦଶମଉଲି—ଗ୍ରା. ବି. ରାବଣ ।
ଦଶମଗ୍ରହ—ବି. ନବଗ୍ରହ ରୁଷ୍ଟହେଲେ ଯେପରି ମନୁଷ୍ୟକୁ ପୀଡ଼ା ଦିଅନ୍ତି ସେହିପରି ପୀଡ଼ାଦେବା ବ୍ୟକ୍ତି ଦଶମଗ୍ରହ ରୂପେ କଳ୍ପିତ ।
ଦଶମଥା—ଗ୍ରା. ବି. ରାବଣ ।
ଦଶମଦଶା—ବି. ମୃତ୍ୟୁ ପୂର୍ବର ଶେଷ ଅବସ୍ଥା, ମରଣାପନ୍ନ ଅବସ୍ଥା, ପ୍ରାଣାନ୍ତକ ଅବସ୍ଥା, ମରଣ ଅବସ୍ଥା ।
ଦଶମନ୍ୟାୟ—ବି. ନ୍ୟାୟ ବିଶେଷ ।
ଦଶମନ୍ତର—ପୁଂ. ବି. ଜନ୍ମ ଲଗ୍ନାଂଶ ବିଶେଷ.ଲଗ୍ନଠାରୁ ଦଶମ ସ୍ଥାନର ନାମ
ଦଶମହାବିଦ୍ୟା—ସ୍ତ୍ରୀ. ବି. ଶାକ୍ତମାନଙ୍କର ଉପାସ୍ୟ ଦଶ ଇଷ୍ଟଦେବ ମୂର୍ତ୍ତି, ତନ୍ତ୍ରୋକ୍ତ ମହାଶକ୍ତି ବା ଦୁର୍ଗାଙ୍କର ଦଶବିଧା ମୂର୍ତ୍ତି ।
ଦଶମାନ—ପୁଂ. ବି. ଜନପଦ ବିଶେଷ, ଦଶମାଳିକ ଦେଶ ।
ଦଶମାଳିକ—ପୁଂ. ବି. ଦେଶଭେଦ, ଦଶମାଳିକ ଦେଶ ରାଜା ଓ ଦେଶବାସୀ
ଦଶମାଂଶ—ବି.(କ.ଧା) ଦଶଭାଗରୁ ଏକଭାଗ ।
ଦଶମାସଦଶଦିନ—ଗ୍ରା. ବି. ଶାସ୍ତ୍ରମତେ ଭ୍ରୂଣର ଜନ୍ମହେବା ପୂର୍ବରୁ ମାତୃଗର୍ଭରେ ରହିବାର ସମୟ ।
ଦଶମାସିଆ—ଗ୍ରା.ବିଂ. ଯେ ମାତୃଗର୍ଭରେ ଗର୍ଭବାସର ନିର୍ଦ୍ଦିଷ୍ଟ ସମୟ ରହି ପୁଷ୍ଟି ଲାଭକରି ଜନ୍ମଗ୍ରହଣ କରିଥାଏ ।
ଦଶମାସ୍ୟ—ପୁଂ. ବିଂ. ଦଶମାସ ସ୍ଥିତ ଗର୍ଭସ୍ଥ ବାଳକ ।
ଦଶମିକ—ବି. (ଦଶମ+ଇକ ଗଣିତ) ଅଖଣ୍ଡ ରାଶିର ଦଶାଂଶର ଏକାଂଶ, (ବିଂ) ଦଶଗୁଣୋତ୍ତର ।
ଦଶମିକଭଗ୍ନାଂଶ—ବି. ଅଙ୍କଶାସ୍ତ୍ରର ଗୋଟିଏ ପ୍ରକରଣ, ଯେଉଁ ଭଗ୍ନାଂଶ ଦଶମିକ ରାଶିର ପରସ୍ପରସୂଚକ ।
ଦଶମୀ—ପୁଂ. ବିଂ. (ଦଶମ+ଇନ୍) ଯେଉଁ ବୃଦ୍ଧ ନବେବର୍ଷ ଅତିକ୍ରମ କରିଅଛି, ଅତି ବୃଦ୍ଧ, (ସ୍ତ୍ରୀ.ବି. ଦଶମ+ଈ) ତିଥି ବିଶେଷ, ଚନ୍ଦ୍ରର ଦଶମ କଳାର ହ୍ରାସ ବୃଦ୍ଧିଜନିତ ଦିନ, ଜୀବନର ଅନ୍ୟାବସ୍ଥା, ମରଣାବସ୍ଥା ।
ଦଶମୀଗତ—ବିଂ. ଅତି ବୃଦ୍ଧ ।
ଦଶମୀଦଶା—ବି. ମୃତ୍ୟୁ ।
ଦଶମୀସ୍ଥ—ତ୍ରି. ବିଂ. ଅତି ବୃଦ୍ଧ, ନବେ ବର୍ଷରୁ ଅଧିକ, କାମୁକମାନଙ୍କର କାମକୃତ ଦଶଦଶା ମଧ୍ୟରେ ନାଶରୂପ ଦଶାପ୍ରାପ୍ତ ।
ଦଶମୁଖ—ପୁଂ. ବି. (ବ.ବ୍ରୀ) ରାବଣ ।
ଦଶମୁଖାନ୍ତକ—ପୁଂ. ବି. (ଦଶମୁଖ+ଅନ୍ତକ) ରାମଚନ୍ଦ୍ର ।
ଦଶମୁଖରିପୁ—ପୁଂ.ବି.(୬ତତ୍) ରାମଚନ୍ଦ୍ର ।
ଦଶମୁଣ୍ଡ—ପୁଂ. ବି. (ବ.ବ୍ରୀ) ରାବଣ ।
ଦଶମୂତ୍ରକ—କ୍ଲୀ. ବି. ଦଶବିଧ ପ୍ରାଣୀର ମୂତ୍ର, ହସ୍ତୀ ମନୁଷ୍ୟାଦିର ମୂତ୍ର ।
ଦଶମୂଳ—କ୍ଲୀ.ବି.ଆୟୁର୍ବେଦୋକ୍ତ ଦଶଗୋଟି ଗଛର ମୂଳ,ଦଶମୂଳ ପାଚନ ।
ଦଶମୂଳଗୁଡ଼—ପୁଂ.ବି.ଔଷଧ ବିଶେଷ ।
ଦଶମୂଳଘୃତ—କ୍ଲୀ. ବି. ଚକ୍ରଦତ୍ତୋକ୍ତ ଜ୍ୱରନାଶକ ଘୃତଭେଦ ।
ଦଶମୂଳତୈଳ—କ୍ଲୀ. ବି. ଚକ୍ରଦତ୍ତୋକ୍ତ ଔଷଧ ଭେଦ ।
ଦଶମୂଳପାଚନ—ବି.ଦଶମୂଳକୁ ପାଣିରେ ସିଝାଇ ତିଆରି କରାଯିବା ପାଚନ ।
ଦଶମୂଳଶୁଣ୍ଠି—କ୍ଲୀ. ବି. ଜ୍ୱରଘ୍ନ ଔଷଧ ଭେଦ ।
ଦଶମୂଳାଦିକ୍ୱାଥ—ପୁଂ. ବି. ଜ୍ୱରନାଶକ ଔଷଧ ବିଶେଷ ।
ଦଶମୂଳାରିଷ୍ଟ—ପୁଂ. ବି. ବାଜୀକରଣ ଔଷଧ ବିଶେଷ ।
ଦଶମୂଳୀତୈଳ—କ୍ଲୀ.ବି. ବାର୍ଦ୍ଧକ୍ୟନାଶକ ଔଷଧ ଭେଦ ।
ଦଶମୂଳୀ—ବି. ଦଶମୂଳ ଦେଖ ।
ଦଶଯୋଗଭଙ୍ଗ—ପୁଂ. ବି. ସଂସ୍କାର କାର୍ଯ୍ୟର ନକ୍ଷତ୍ରବେଧ ବିଶେଷ ।
ଦଶରଥ—ପୁଂ. ବି. (ବ.ବ୍ରୀ) ଇକ୍ଷ୍ୱାକୁବଂଶୀୟ ଜଣେ ରାଜା, ରାମଚନ୍ଦ୍ରଙ୍କର ପିତା, ବାଳିଙ୍କର ପୁତ୍ର, ସମ୍ରାଟ୍ ଅଶୋକଙ୍କ ପୁତ୍ର ।
ଦଶରଥନନ୍ଦନ—ପୁଂ. ବି. ( ୬ତତ୍ ) ରାମଚନ୍ଦ୍ର ।
ଦଶରଥସୁତ—ପୁଂ.ବି.(୬ତତ୍)ରାମଚନ୍ଦ୍ର ।
ଦଶରଶ୍ମିଶତ—ପୁଂ. ବି. ସୂର୍ଯ୍ୟ, ସହସ୍ରକିରଣ ।
ଦଶରାତ୍ର—ପୁଂ.ବି. ଦଶରାତ୍ରସାଧ୍ୟ ଯାଗ-

ଭେଦ, (କ୍ଲୀ. ବ.) ରାଜ୍ୟଦଶକ ।
**ଦଶରୂପକ**—କ୍ଲୀ.ବ. ନାଟକାଦି ଲକ୍ଷଣ-ପ୍ରତିପାଦକ ଗ୍ରନ୍ଥଭେଦ ।
**ଦଶରୂପଭୃତ୍**—ପୁଂ. ବି. (ଦଶ+ରୂପ+ଭୃ+କ୍ୱିପ୍) ବିଷ୍ଣୁ ।
**ଦଶଲକ୍ଷଣକ**—ପୁଂ. ବି. (ବ.ବ୍ରୀ) ଧର୍ମର ଦଶ ଲକ୍ଷଣ ।
**ଦଶଲୋକରେ ବସିବା**—ଗ୍ରା. କ୍ରି. ଭଦ୍ର ସମାଜରେ ବା ପ୍ରତିବେଶୀମାନଙ୍କ ମଧ୍ୟରେ ଜଣେ ବୋଲି ଗଣିତ ହେବା
**ଦଶବକ୍ତ୍ର**—ପୁଂ. ବି. ରାବଣ ।
**ଦଶବଦନ**—ପୁଂ. ବି. ରାବଣ ।
**ଦଶବାଜୀ**—ପୁଂ. ବି. (ବ.ବ୍ରୀ) ଚନ୍ଦ୍ର ।
**ଦଶବାର୍ଷିକ**—ବିଂ. ଦଶ ବର୍ଷରେ ଯାହା ହୁଏ, ଦଶବର୍ଷ ଅନ୍ତରରେ ଘଟିବା, ଦଶସାଲି । [ ଶିବ ।
**ଦଶବାହୁ**—ପୁଂ. ବି. (ବ.ବ୍ରୀ) ମହାଦେବ,
**ଦଶବିଧ**—ବି. (ବ.ବ୍ରୀ) ଦଶପ୍ରକାର,(ବିଂ) ଦଶପ୍ରକାରର ।
**ଦଶବିଶ**—ପ୍ରା. (ଯାଜପୁର)ବି.ବିବାହର ଦଶମ ଦିବସରେ କନ୍ୟାର ଶ୍ୱଶୁର ଘରକୁ ଯିବା ।
**ଦଶବୀର**—କ୍ଲୀ. ବି. ଯଜ୍ଞ ବିଶେଷ ।
**ଦଶବ୍ରଜ**—ପୁଂ. ବି. ଋଷିଭେଦ ।
**ଦଶଶତ**—କ୍ଲୀ. ବି. ସହସ୍ର ସଂଖ୍ୟା,(ବିଂ) ତତ୍ ସଂଖ୍ୟକ ।
**ଦଶଶତନୟନ**—ପୁଂ. ବି. ଇନ୍ଦ୍ର ।
**ଦଶଶତରଶ୍ମି**—ପୁଂ. ବି. ସୂର୍ଯ୍ୟ ।
**ଦଶଶତାକ୍ଷ**—ପୁଂ. ବି. ଇନ୍ଦ୍ର ।
**ଦଶଶତାଙ୍ଘ୍ରି**—ସ୍ତ୍ରୀ.ବି. ଶତମୂଳୀ,ଶତାବରୀ
**ଦଶଶିର**—ଗ୍ରା. ବି. ଜଳି, ରାବଣ, ଶରୀରର ପ୍ରଧାନ ଦଶଗୋଟି ନାଡ଼ୀ ।
**ଦଶସଂସ୍କାର**—ବି. ଦଶକର୍ମ ଦେଖ ।
**ଦଶସପ୍ତା**—ସ୍ତ୍ରୀ.ବି.ସାମବେଦର ବିନ୍ୟାସ ଭେଦରେ ବିଷ୍ଟୁତି ଭେଦ ।
**ଦଶସହସ୍ର**—ବି. ଦଶହଜାରର ସଂଖ୍ୟା,ଏକ ଅଯୁତ, (ବିଂ) ଦଶହଜାର ସଂଖ୍ୟକ ।
**ଦଶସାଲି**—ଗ୍ରା. ବିଂ. ଦଶବର୍ଷବ୍ୟାପୀ, ଦଶବର୍ଷ ଅନ୍ତରରେ ଥରେ ଘଟିବା, ଦଶବର୍ଷ ମିଆଦପାଇଁ କରାଯିବା, ଦଶ-ବର୍ଷ ବୟସ୍କ ।
**ଦଶସାହସ୍ର**—କ୍ଲୀ. ବି. ଦଶହଜାର, ତତ୍ ସଂଖ୍ୟେୟ । [ ଭାଗାଦି ।
**ଦଶସାହସ୍ରିକ**—କ୍ଲୀ. ବି. ଅଯୁତ ପରିମିତ
**ଦଶହରା**—ସ୍ତ୍ରୀ. ବି. (ଦଶ+ହୃ+କ.ଅ+ଆ) ଆଶ୍ୱିନ ମାସର ଶୁକ୍ଳଦଶମୀ, ବିଜୟା ଦଶମୀ, ଜ୍ୟେଷ୍ଠ ଶୁକ୍ଳଦଶମୀ ।
**ଦଶହାଣ୍ଡି**—ଗ୍ରା. ବି. ଦାଇଜହାଣ୍ଡି, ମୃତ ବ୍ୟକ୍ତିର ଘରେ ଦଶାହଦିନ ଯେଉଁ ହାଣ୍ଡିରେ ଅନ୍ନପାକ ହୁଏ ଓ ଯାହା ଉକ୍ତଦିନ ରାତିରେ ଗ୍ରାମ ମୁଣ୍ଡରେ ଫୋପଡ଼ାଯାଏ ।
**ଦଶା**—ସ୍ତ୍ରୀ. ବି. ( ଦଶନ୍+ଅ+ଆ ) ଅବସ୍ଥା, ଦୀପର ବତି, ସଳିତା, ଚଉ, ବସ୍ତ୍ରାନ୍ତ,ଲୁଗାର ଦଶୀ,କାଳକୃତ ଗର୍ଭ-ବାସାଦିରୂପ ଅବସ୍ଥା, ଗ୍ରହଦଶା, ଜନ୍ମ କାଳୀନ ଗ୍ରହାଦିର ସ୍ଥିତି ଜନିତ ଭାବ, (ଗ୍ରା. ବି) କପାଳଦଶା, ଦୈବ ଦୁର୍ବି-ପାକ, ଦୁରବସ୍ଥା, ଭକ୍ତିଜନିତ ଭାବା-ବେଶ, ମୃତାହ ଦଶହିସ୍ୟ, ଅଦୃଷ୍ଟ, ଭାଗ୍ୟ, ଦଶାହିପଯୁକ୍ତ ତପ ।
**ଦଶାଇଶ**—ଗ୍ରା.ବି.(ସଂ-ଦଶଶୀର୍ଷ)ରାବଣ ।
**ଦଶାଂଶ**—ବି. ଦଶମିକ, ଦଶଭାଗରୁ ଏକ ଭାଗ । [ ମିକ ।
**ଦଶାଂଶିକ**—ବିଂ. (ଦଶାଂଶ+ଇକ)ଦଶ-
**ଦଶାକର୍ଷ**—ପୁଂ. ବି. (ଦଶା+ଆ+କୃଷ) ପ୍ରଦୀପ, ବସ୍ତ୍ରାଞ୍ଚଳ ଗ୍ରହଣ ।
**ଦଶାକର୍ଷୀ**—ପୁଂ. ବି.(ଦଶା+ଆ+କୃଷ+ଇନ୍) ଦଶାକର୍ଷ ଦେଖ ।
**ଦଶାକ୍ଷୟ**—ବି.(ଜ୍ୟୋତି)ନବଗ୍ରହର ଦଶା ଶେଷ, ଦଶଦଶାର ବିନାଶ ।
**ଦଶାକ୍ଷର**—କ୍ଲୀ.ବି.ପଂକ୍ତିନାମକ ଛନ୍ଦୋ-ଭେଦ, ସ୍ତ୍ରୀ ଦେବତା ମନ୍ତ୍ର, ଦଶାକ୍ଷର-ଯୁକ୍ତ ମନ୍ତ୍ର ଭେଦ ।
**ଦଶାଖଣ୍ଡନ**—ଗ୍ରା. ବି. ଦୁର୍ଦ୍ଦଶା ଯାଇ ସୁଦଶା ପଡ଼ିବା ।
**ଦଶାଖଣ୍ଡିବା**—ଗ୍ରା.କ୍ରି.କୌଣସିବ୍ୟକ୍ତିର ଦୁର୍ଦ୍ଦଶା ଦୂର କରିବା ।
**ଦଶାଗୁଗ୍ଗୁଳ**—ପୁଂ.ବି. ଭାବ ପ୍ରକାଶୋକ୍ତ ଔଷଧ ଭେଦ ।
**ଦଶାଙ୍ଗ**—ବି. ଦେବତା ପୂଜା ସମୟରେ ବ୍ୟବହୃତ .ଦଶଗୋଟି ସୁଗନ୍ଧ ଦ୍ରବ୍ୟ ଦ୍ୱାରା ପ୍ରସ୍ତୁତ ଧୂପ,ଦଶାଙ୍ଗପାଚନ ଦେଖ, ଦଶଗୋଟି ଅଙ୍ଗ ବା ଉପାଦାନ ବିଶିଷ୍ଟ ।
**ଦଶାଙ୍ଗପାଚନ**—ବି. ବୈଦ୍ୟଶାସ୍ତ୍ରୋକ୍ତ ଦଶଗୋଟି ପଦାର୍ଥକୁ ସିଝାଇ ତହିଁରୁ ପ୍ରସ୍ତୁତ କରାଯିବା କ୍ୱାଥ ।
**ଦଶାଙ୍ଗଲେପ**—ପୁଂ. ବି. ପ୍ରଲେପ ବିଷ-ୟରେ ଦେୟ ଦଶାଙ୍ଗ ଯୋଗ ବିଶେଷ ।
**ଦଶାଙ୍ଗୁଳ**—କ୍ଲୀ ବି. ଦଶାଙ୍ଗୁଳ ପରିମାଣ, ତରଭୁଜଫଳ,(ବିଂ)ଦଶାଙ୍ଗୁଳପରିମିତ ।
**ଦଶାଦଶ**—ଗ୍ରା.ବି. ଦଶମ ଦଶା,ମୃତ୍ୟୁ ।
**ଦଶାଧିପତି**—ପୁଂ. ବି. ଜ୍ୟୋତିଷୋକ୍ତ ଦଶାର ଅଧିପତି ରବ୍ୟାଦି ଗ୍ରହ,ଦଶଯୋଦ୍ଧାର ଅଧ୍ୟକ୍ଷ, ଜମାଦାର, ସର୍ଦ୍ଦାର ।
**ଦଶାନନ**—ପୁଂ. ବି. (ବ.ବ୍ରୀ) ରାବଣ ।
**ଦଶାନାଥ**—ବି. ( ଜ୍ୟୋତି ) ଦଶାଧିପତି ରବ୍ୟାଦି ଗ୍ରହ ।
**ଦଶାନିକ**—ପୁଂ. ବି. ଦନ୍ତୀବୃକ୍ଷ, ଜୟ-ପାଳ, କନକ ମଞ୍ଜି
**ଦଶାନ୍ତ**—ପୁଂ. ବି. (ଜ୍ୟୋତି) ବାର୍ଦ୍ଧକ୍ୟ, ବର୍ତ୍ତିକାନ୍ତ, ବୃଦ୍ଧାବସ୍ଥା ।
**ଦଶାପଡ଼ିବା**—ଗ୍ରା.ବି. ମନ୍ଦଭାଗ୍ୟ ଉଦୟ ।
**ଦଶାପବିତ୍ର**—କ୍ଲୀ. ବି.ଶ୍ରାଦ୍ଧାଦିରେ ଦେୟ ବସ୍ତ୍ର ଖଣ୍ଡ । [ ଦେଖ
**ଦଶାଭୋଗ**—ବି. (ଜ୍ୟୋତି) ଦଶାବିପାକ
**ଦଶାମୟ**—ପୁଂ. ବି. ରୁଦ୍ର ।
**ଦଶାର**—ବି.ବୋମ୍ବାଇ ପ୍ରେସିଡ଼େନ୍‌ସୀର ଅନ୍ତର୍ଗତ ଗୋଟିଏ କ୍ଷୁଦ୍ର ରାଜ୍ୟ ।
**ଦଶାରୁହା**—ସ୍ତ୍ରୀ. ବି. କୈବର୍ତ୍ତିକା ।
**ଦଶାର୍ଣ୍ଣ**—ପୁଂ.ବି. (ଦଶା+ଋଣ)ଦେଶ-ବିଶେଷ, ଦଶାର୍ଣ୍ଣ ଦେଶବାସୀ ଓ ରାଜା, ଦଶାରେ ମନ୍ତ୍ରବିଶେଷ ।
**ଦଶାର୍ଣ୍ଣକ**—ପୁଂ. ବି. ଦଶାର୍ଣ୍ଣ ଦେଖ ।
**ଦଶାର୍ଣ୍ଣା**—ସ୍ତ୍ରୀ. ବି.(ଦଶାର୍ଣ୍ଣ+ଆ) ଧସାନ୍ ନଦୀ ।
**ଦଶାର୍ଣ୍ଣେୟୁ**—ପୁଂ. ବି. ପୌରବ ରୁଦ୍ରା-

ଶୂଙ୍କ ନୃପଭେଦ ।

ଦଶାର୍ଣ୍ଣ—କ୍ଲୀ. ବ. ପଞ୍ଚସଂଖ୍ୟା, ତତ୍ସଂଖ୍ୟେୟସ୍ତ. ଦଳବଳ ବୃନ୍ଦ ।

ଦଶାର୍ହ—ପୁଂ.ବ. ବୃଷ୍ଣିନୃପପୌତ୍ର, ବୃଷ୍ଣିବଂଶୀୟ, ଏମାନଙ୍କର ଅଧିକୃତ ଦେଶ, (ପୁଂ.ବ) ବିଷ୍ଣୁ ।

ଦଶାବତାର—ବ. ଦଶଅବତାର ଦେଖ ।

ଦଶାବିପର୍ଯ୍ୟୟ—ବ.(୬ତତ୍) ଦୁରବସ୍ଥା, ଦୁର୍ଭାଗ୍ୟ ।

ଦଶାବିପାକ—ବ. (୬ତତ୍) ଯେଉଁଦିନ ମନୁଷ୍ୟଙ୍କୁ କୌଣସି ଦଶା ଭୋଗ କରିବାକୁ ହୁଏ ତାହାର ଭୋଗହେବା ।

ଦଶାବୈଗୁଣ୍ୟ—ବ. (୬ତତ୍) ଦୁରବସ୍ଥା, ଦୁର୍ଭାଗ୍ୟ ।

ଦଶାଶ୍ୱ—ପୁଂ. ବ. ଚନ୍ଦ୍ର, ଇକ୍ଷ୍ୱାକୁଙ୍କ ଦଶମ ପୁତ୍ର ।

ଦଶାଶ୍ୱମେଧ—କ୍ଲୀ. ବ. କାଶୀସ୍ଥିତ ତୀର୍ଥଭେଦ ।

ଦଶାଶ୍ୱମେଧଘାଟ—ବ. କାଶୀର ଗଙ୍ଗାତୀରସ୍ଥ ତୀର୍ଥଘାଟବିଶେଷ, ପ୍ରୟାଗାନ୍ତର୍ଗତ ତ୍ରିବେଣୀ ନିକଟସ୍ଥ ତୀର୍ଥଘାଟ ବିଶେଷ ।

ଦଶାଶ୍ୱମେଧିକ—କ୍ଲୀ. ବ. କାଶୀସ୍ଥିତ ତୀର୍ଥଭେଦ ।

ଦଶାସ୍ୟ—ପୁଂ. ବ. (ବ.ବ୍ରୀ)ରାବଣ ।

ଦଶାସ୍ୟଜିତ୍—ପୁଂ. ବ. ଶ୍ରୀରାମଚନ୍ଦ୍ର ।

ଦଶାହ—ପୁଂ. ବ. (ଦଶ+ଅହନ୍)ଦଶଦିନ, ଦଶଦିନବ୍ୟାପୀ କାଳ, ମୃତ ବ୍ୟକ୍ତିର ପ୍ରେତ ଉଦ୍ଦେଶ୍ୟରେ ଦଶମ ଦିନ କରାଯିବା କ୍ରିୟା, ମୃତ୍ୟୁର ଦଶମ ଦିନ ।

ଦଶି—ଗ୍ରା.ବ. ବସ୍ତ୍ରର ଅନ୍ତସୂତ୍ର, ଲୁଗାର ପଣତକାନିର ସୂତା ।

ଦଶିଆ—ଗ୍ରା.ବ. ମୋଟା ସୂତାରେ ବୁଣା ଯାଇଥିବା ଲୁଗା ।

ଦଶିପୋକ—ଗ୍ରା. ବ. ଏକପ୍ରକାର କୃମି, ଅତି କ୍ଷୁଦ୍ର ଓ ଚିକିଟିକି ଧଳାସୂତା ଭଳି ପୋକ ।

ଦଶୀ—ତ୍ରି. ବିଂ. ( ଦଶ+ଇନ୍ ) ଦଶସଂଖ୍ୟାଯୁକ୍ତ, ରାଜକର୍ତ୍ତୃକ ନିଯୁକ୍ତ ଦଶଗ୍ରାମାଧିପତି, ଦଶସଂଖ୍ୟା ପ୍ରମାଣକ, ସଦଶ ବସ୍ତ୍ର, ସଳିତାଥିବା (ଦୀପ), ବ. ନଗର ପାର୍ଶ୍ୱସ୍ଥ ଚର୍ମାଂଶ, ଲୁଗାର ପ୍ରାନ୍ତଭାଗ । [ ଭେଦ ।

ଦଶୀବଦର୍ଭ—ପୁଂ. ବ. ଦକ୍ଷିଣସ୍ଥ ଦେଶ-

ଦଶେନ୍ଦ୍ରିୟ—ବ. ( କ.ଧା ) ପାଞ୍ଚଗୋଟି କର୍ମେନ୍ଦ୍ରିୟ ଓ ପାଞ୍ଚଗୋଟି ଜ୍ଞାନେନ୍ଦ୍ରିୟ ।

ଦଶେନ୍ଧନ—ପୁଂ. ବ. ପ୍ରଦୀପ ।

ଦଶେର—ପୁଂ. ବ. (ଦନ୍ଶ+କ.ଏର) ହିଂସ୍ରଜନ୍ତୁ ।

ଦଶେରକ—ପୁଂ. ବ.( ଦଶେର+କ ) ମରୁଭୂମି, ତଦ୍ଦେଶସ୍ଥ ଜନପଦବିଶେଷ, ଦଶେରକ ଦେଶବାସୀଗଣ,ଦଶେରକ ରାଜ୍ୟର ରାଜସମୂହ ।

ଦଶେରୁକ—ପୁଂ. ବ. ମରୁଦେଶ ।

ଦଶେଶ—ପୁଂ.ବ.ଦଶାପତି ରବି ପ୍ରଭୃତି, ରାଜକର୍ତ୍ତୃକ ନିଯୁକ୍ତ ଦଶଗ୍ରାମାଧିପତି ।

ଦଶୈକାଶିକ—ତ୍ରି. ବିଂ. ଯାହାର ଶତ ପ୍ରତିଦଶକ ରୂପ ବୃଦ୍ଧି ଗୃହୀତା ବାର୍ଦ୍ଧୁଷିକଭେଦ ।

ଦଶୋର୍ମି—ପୁଂ.ବ.(ବ.ବ୍ରୀ)ବନ୍ଧୁ ହ୍ରଦସ୍ଥ, ଯାହାର ଅନେକ ହ୍ରଦ ଅଛି ।

ଦଶୋନସୀ—ପୁଂ. ବ. ବେଦୋକ୍ତ ସର୍ପଭେଦ ।

ଦଶୌଷଧକାଳ—ପୁଂ. ବ. ଦଶବିଧ ଔଷଧ କାଳ, ଦଶପ୍ରକାର ଔଷଧର ସମୟ ।

ଦଷ୍ଟ—ତ୍ରି. ବିଂ. ( ଦନ୍ଶ+ର୍ମ. ତ ) ଦଂଶିତ,କାମୁଡ଼ାହୋଇଥିବା, ଦନ୍ତଦ୍ୱାରା କ୍ଷତ, ଏହା ପ୍ରାୟ ଅନ୍ୟ ଶବ୍ଦସଙ୍ଗେ ଯୁକ୍ତହୋଇ ବ୍ୟବହୃତ ହୁଏ, ଯଥା—ସର୍ପଦଷ୍ଟ ଇତ୍ୟାଦି ।

ଦସ୍—(ଧାତୁ) ଉତ୍କ୍ଷେପଣ କରିବା, କ୍ଷୟ କରିବା,(ଗ୍ରା.ଧ୍ୱନ୍ୟର୍ଥକ ଅବ୍ୟୟ), ହଠାତ୍,ଦୁମ୍, ଯଥା—ଏ ଖବର ଶୁଣି ସେ ଦସ୍ କିନା ବସିପଡ଼ିଲା ପ୍ରକାରେ, ରୂପେ. କରି, ଯଥା—ସେ ଦୁମ୍ ଦସ ହୋଇ ବସିଗଲା ।

ଦସନା—ପ୍ରା. (ଆଠମଲିକ) ବ. ବିଛଣା ।

ଦସେରକ—ପୁଂ. ବ. ଦାସେରକ, ଦସେରକ ରାଜ୍ୟ ଓ ତଦ୍ଦେଶବାସୀ, ଉଷ୍ଟ୍ର ।

ଦସ୍ଖ(ଖ୍ଯ)ତ୍—ଯା. ବ. ଦସ୍ତଖତ ଦେଖ ।

ଦସ୍ତ—ଯା. ବ. ହାତ, ଦାସ୍ତ, ମଳତ୍ୟାଗ, ଝାଡ଼ା,ବିରେଚନ,ପତଳାଝାଡ଼ା, (ପ୍ରା. ଗଞ୍ଜାମ) ବସ୍ତାନି, ଗଞ୍ଜପା ଦେଖ ।

ଦସ୍ତକ୍—ଯା.ବ.ଅମଲଦସ୍ତକ୍ , ଅନୁମତି ପତ୍ର, ଆଦେଶପତ୍ର,ହୁକୁମ୍ ନାମା,ଅମଲ ନାମା, ଗିରଫଦାରି ବା ଅସୁଲ ପରୁଆନା ।

ଦସ୍ତକ(ଖ)ତ୍—ଯା.ବ. ସ୍ୱାକ୍ଷର,କୌଣସି ଲିଖିତ ପତ୍ରରେ ନିଜ ହାତରେ ଲେଖାହୋଇଥିବା ନିଜର ନାମ ଦସ୍ତକ(ଖ)ତ୍, ( କୌଣସି ଦଲିଲରେ ଆପଣା ନାମ) ସ୍ୱାକ୍ଷର କରିବା କର୍ମ ।

ଦସ୍ତଖତକରିବା—ଗ୍ରା.କ୍ରି. ସ୍ୱାକ୍ଷରକରିବା, (ଦସକତ କରିବା ବା ଦସଖତ ବା ଦସ୍ତକତ୍ କରିବା) ।

ଦସ୍ତଖତ—ଯା. ବିଂ. (କଚିରିଆ)ଯହିଁରେ ଦସ୍ତଖତ ଥାଏ, ଦସ୍ତଖତ କରାଯାଇଥିବା (ଦଲିଲ ବା ଲେଖା) ।

ଦସ୍ତଗୀର୍—ଯା. ବିଂ. ( କଚିରିଆ ) ସହାୟକ ।

ଦସ୍ତପରିଷ୍କାର—ଗ୍ରା. ବ. କୋଷ୍ଠଶୁଦ୍ଧି ।

ଦସ୍ତବଦସ୍ତ—ଯା.କ୍ରି. ବିଂ. (କଚିରିଆ—କବଲଆଦିରେ ବ୍ୟବହୃତ) ହାତେ ହାତେ, ହାତକୁହାତ. ନଗଦ ।

ଦସ୍ତବରଦାର୍—ଯା. ବିଂ. ( କଚିରିଆ ) ସ୍ୱଇଚ୍ଛାରେ କୌଣସି ସମ୍ପତ୍ତିରୁ ଅଧିକାର ବା ଦାବୀ ପରିତ୍ୟାଗ କରିଥିବା (ବ୍ୟକ୍ତି),(ବିପରୀତ) ଦାବୀଦାର ।

ଦସ୍ତବରଦାର ହେବା—ଗ୍ରା. କ୍ରି. (କଚିରିଆ) କୌଣସି ସମ୍ପତ୍ତିରୁ ବା ବିଷୟରୁ ଆପେ ଆପେ ଅନ୍ତର ହୋଇଯିବା, ଇସ୍ତଫାଦେବା ।

ଦସ୍ତବରଦାରି—ଯା. ବ. ( କଚିରିଆ )

ତ୍ୟାଗ, ଇସ୍ତଫା,ତ୍ୟାଗପତ୍ର ।

**ଦସ୍ତବସ୍ତ**--ଯା. ବି. କୃତାଞ୍ଜଳି, ଯୋଡ଼ହାତ, ପ୍ରାର୍ଥନାକାରୀ ଦ୍ୱାରା ଅଞ୍ଜଳୀକୃତ କରତଳଯୁଗ୍ମ, (ବିଂ) କୃତାଞ୍ଜଳି, ଯେ. ପ୍ରାର୍ଥନାବେଳେ ଦୁଇହାତକୁ ଯୋଡ଼ିଅଛି, ଅଞ୍ଜଳିବଦ୍ଧ ।

**ଦସ୍ତବୁ(ବୋ)କଚୁ**—ଯା. ବି. ଯେଉଁ ପୁଡ଼ାରେ ମନୁଷ୍ୟର ନିତ୍ୟ ବ୍ୟବହାର୍ଯ୍ୟ ଲୁଗାପଟା ବନ୍ଧାହୋଇ ରଖାଯାଏ ।

**ଦସ୍ତର୍**—ଯା. ବି. ପଗଡ଼ି, ସରକାରୀ କାଗଜବିଡ଼ା,(ପ୍ରା.ଗଞ୍ଜାମ--ବି.) ଦସ୍ତାନା ।

**ଦସ୍ତରଖାନ୍(ନା)**--ଯା. ବି. ଟେବଲ୍ଉପରେ ପକାଇବାର ଲୁଗା, ମୁସଲମାନ୍ ଓ ସାହେବମାନେ ଖାଇବାବେଳେ ଟେବଲ ବା ଭୂମିଉପରେ ଯେଉଁ ଗୁଡ଼ର ବସ୍ତ୍ର ଓ ଯହିଁ ଉପରେ ଖାଦ୍ୟପାତ୍ର ରଖାଯାଏ ।

**ଦସ୍ତରବନ୍ଦ(ନ୍ଦୀ)**--ଯା. ବି. କୌଣସି କାଗଜପତ୍ରର ଏକତ୍ର ସଂଗ୍ରହ, ରାଜକୀୟ କାଗଜପତ୍ର ଯାହାଙ୍କ ଅଧୀନରେ ରହେ, ( ଯା. ବିଂ ) ଏକତ୍ର ସଂଗୃହୀତ କାଗଜପତ୍ର ।

**ଦସ୍ତା**—ଗ୍ରା.ବି. (ସଂ-ଯଷଦ)ଧାତୁବିଶେଷ. ଯା. ବି.ଦସ୍ତା,ହତିଆର ଆଦର ବେଣ୍ଟ ।

**ଦସ୍ତାନା**—ଯା. ବି. ହସ୍ତମୋଜା, ହସ୍ତାଭରଣ, କରାଙ୍ଗୁଳିତ୍ରାଣ, ହସ୍ତାବରଣୀ, ଏକପ୍ରକାର ତରବାରୀ, ଯହିଁର ମୁଠ ଖୋଲପରି ହୋଇଥାଏ ଓ ଯାହାକୁ ଧରିବା ଲୋକର ହାତ କଚଟି ପର୍ଯ୍ୟନ୍ତ ଉକ୍ତ ଖୋଳମଧ୍ୟରେ ଆବୃତ ରହେ ।

**ଦସ୍ତାବର**—ଯା.ବିଂ.ବିରେଚକ(ଔଷଧ)

**ଦସ୍ତାବି(ବେ)ଜ୍**—ଯା.ବି.ଦଲିଲ, ଲିଖିତ ନିଦର୍ଶନପତ୍ର, ବ୍ୟବହାର ସମ୍ବନ୍ଧୀୟ-ଲେଖ, ଲେଖ୍ୟ ।

**ଦସ୍ତାବଜ୍ଜମାନତ୍**--ଯା.ବି.ଜାମିନ୍ ଦଲିଲ ଜାମିନୀ ଚୁକ୍ତିପତ୍ର, ଜାମିନ୍‌ନାମା ।

**ଦସ୍ତି**—ଯା.ବି.ହାତମୁଠା ପରିମାଣ, ପ୍ରାୟ ୪ଇଞ୍ଚ ବା ଆଙ୍ଗୁଳ ପରିମାଣ, ମସାଲ ଧରିବାର ମୁଠା,ମସାଲ,ହତିଆରଆଦର ଶ୍ରେଷ୍ଠ ବେଣ୍ଟ ।

**ଦସ୍ତିଦାନ**—ଗ୍ରା.ବି. ମସାଲର ବେଣ୍ଟ ବା ମୁଠା ଓ ମସାଲରେ ତେଲ ଢାଳିବାପାଇଁ ବ୍ୟବହୃତ ତେଲ କୁମ୍ପା ।

**ଦସ୍ତିଦାର**—ଯା. ବି. ମସାଲ୍‌ଚି, (ଗ୍ରା.ବି) ବଙ୍ଗଦେଶର ଶୂଦ୍ର ଓ ଭଣ୍ଡାରିଙ୍କ ବଂଶୋପାଧି ।

**ଦସ୍ତୁ**—ଗ୍ରା. ବି. ଶ୍ରେଷ୍ଠ ପିନ୍ଧାଲୁଗା, ଓ ବିଚକାନିଲୁଗା, ଦେବପ୍ରତିମା ଓ ଶିଶୁମାନଙ୍କର ପିନ୍ଧାଲୁଗା (କରିଆ) ।

**ଦସ୍ତୁର୍**—ଯା.ବି.ନିୟମ,ବିଧି,ସାଧାରଣଙ୍କ ଆଚରିତ ବ୍ୟବହାର ଲୌକିକାଚାର, ପ୍ରଥା,ରୀତି,ଚାଲି,କାଇଦା, ଆଦବ୍‌କାଇଦା, ଭଦ୍ର ସମାଜର ବ୍ୟବହାର ।

**ଦସ୍ତୁର୍ଅମଲ**—ଯା. ବି. ନିର୍ଦ୍ଦିଷ୍ଟ ନିୟମ ।

**ଦସ୍ତୁର୍ମତେ**—ଗ୍ରା. କ୍ରି. ବିଂ. ନିୟମାନୁସାରେ, ପ୍ରଥାନୁସାରେ ।

**ଦସ୍ତୁରି**—ଯା. ବି. କ୍ରୟ ବିକ୍ରୟ କାଳରେ ମଧ୍ୟସ୍ଥ ବ୍ୟକ୍ତି କ୍ରେତା ଓ ବିକ୍ରେତାଠାରୁ ଯେଉଁ ଅର୍ଥ ପାଏ, କମିସନ୍, ପାଉଦେସି, ଦଲାଲି, (ପ୍ରା.ଗଞ୍ଜାମ. ବି) ସ୍ୱାକ୍ଷର ।

**ଦସ୍ମ**—ବି. (ଦସ୍+କ.ମ) ଦସ୍ୟୁ,ଚୋର, ଅଗ୍ନି, ପ୍ରତାରକ, ଶଠ, ଖଳବ୍ୟକ୍ତି, ଯଜମାନ ।

**ଦସ୍ୟୁ**—ବି. (ଦସ+କ.ଯୁ) ଚୋର,ଡ଼ାକୁ, ଲୁଣ୍ଠକ, ଡ଼କାଇତ, ଉତ୍ପୀଡ଼ନକାରୀ ବ୍ୟକ୍ତି, ଅନ୍ତ୍ୟଜ ଜାତିବିଶେଷ, ଚଣ୍ଡ, ଶତ୍ରୁ, ଧର୍ମଚ୍ୟୁତ ବ୍ୟକ୍ତି, ଅସୁର, (ଗ୍ରା. ବି) ସୈନ୍ୟ । [ ଲୁଣ୍ଠନବୃତ୍ତି ।

**ଦସ୍ୟୁତା(ତ୍ୱ)**—ସ୍ତ୍ରୀ. ବି. ( ଦସ୍ୟୁ+ତା )

**ଦସ୍ୟୁପତି**—ବି. (୬ତତ୍) ଡ଼କାଇତଙ୍କ ସର୍ଦ୍ଦାର ।

**ଦସ୍ୟୁବୃତ୍ତି**—ବି. (୬ତତ୍) ଦସ୍ୟୁର କର୍ମ ବା ବ୍ୟବସାୟ, ଲୁଣ୍ଠନବୃତ୍ତି ।

**ଦସ୍ୟୁଭୟ**—ବି. ( ୫ତତ୍ ) ଡକାଇତ ଆକ୍ରମଣ କରିବା ଡ଼ର ବା ଆଶଙ୍କା ।

**ଦସ୍ୟୁସାତ୍**—ଅବ୍ୟ. ତସ୍କରାଧୀନ ।

**ଦସ୍ୟୁହ[illegible]**—ପୁଂ. ବି. ଅସୁର ବିଘାତକ, ଇନ୍ଦ୍ର ।

**ଦସ୍ର**—ବି. ( ଦସ୍+କ.ର ) ଶିଶିର, ଗଧ, ଯୋଡ଼ା,ଯୁଗ୍ମ,ଅଶ୍ୱିନୀକୁମାର ଦ୍ୱୟ, ଅଶ୍ୱିନୀନକ୍ଷତ୍ର । [ ନକ୍ଷତ୍ର ।

**ଦସ୍ରଦେବତା**—ସ୍ତ୍ରୀ.ବି. (ବ.ବ୍ରୀ) ଅଶ୍ୱିନୀ-

**ଦସ୍ରସୂ**—ସ୍ତ୍ରୀ. ବି. ( ଦସ୍ର+ସୂ+କ୍ୱିପ୍ ) ସୂର୍ଯ୍ୟପତ୍ନୀ, ସଂଜ୍ଞା ।

**ଦହ**—ଗ୍ରା. ବି. ବିସ୍ତୀର୍ଣ୍ଣ ଜଳାଶୟ, ହ୍ରଦ, ଅଳ୍ପପାଣି ଓ ବହୁତ ପଙ୍କ ଏବଂ ଜଳରେ ପୂର୍ଣ୍ଣ ଜଳାଶୟ,ପଙ୍କିଳ ଜଳାଶୟ, ଦହା ଦେଖ, ଦହଲ ଦେଖ, ( ବିଂ ) ଦଗ୍ଧ, ପୋଡ଼ାହୋଇଥିବା,ଦହନକାରୀ, (ପ୍ରା. ଆଠମଲ୍ଲିକ.ବି) ଗଣ୍ଡପାଣି,ନଦ୍ୟାଦିର ଗଭୀର ଜଳପୂର୍ଣ୍ଣ ଅଂଶ, ଗଣ୍ଡ, (ବିଂ) ଦହଲ ହୋଇଯାଇଥିବା(ସ୍ଥାନ)

**ଦହକ**—ଗ୍ରା. ବି. ଉହକ, ଉତ୍ତାପ, ଜ୍ୱାଳା, ରଡ଼, ଅଗ୍ନିର ଦାଉ ଦାଉ ହେବା ଅବସ୍ଥା,(ବିଂ) ଜ୍ୱଳନ୍ତ ରଡ଼ ।

**ଦହକଚୁଲି**—ଗ୍ରା. ବି. ଯେଉଁ ଚୁଲିରେ ଜାଳ ଜଳିବାପରେ ଅଙ୍ଗାର ବା ନିଆଁ ଦହକୁ ଥାଏ ।

**ଦହକାମଲ**—ବି. ବୃନ୍ଦାବନର ଗୋଟିଏ ଗ୍ରାମ, ଶ୍ରୀକୃଷ୍ଣଙ୍କର ଲୀଳାସ୍ଥାନ ।

**ଦହକିବା**—ଗ୍ରା. କ୍ରି. ଜଳିବା, ଦାଉ ଦାଉ ହୋଇ ଦୀପ୍ତି କରିବା, (ଲ.ଅର୍ଥ) କ୍ରୋଧରେ ଉନ୍ମତ୍ତ ହେବା ।

**ଦହଚଞ୍ଚ**—ଗ୍ରା. ବି. ବ୍ୟତିବ୍ୟସ୍ତ ହେବା, ପୀଡ଼ା, (ବିଂ) ବ୍ୟତିବ୍ୟସ୍ତ, ପ୍ରପୀଡ଼ିତ ।

**ଦହଚଞ୍ଚିଆ**—ଗ୍ରା. ବିଂ. ଯାହାଦ୍ୱାରା ବ୍ୟସ୍ତ ହେବାକୁ ହୁଏ, ପୀଡ଼ାଜନକ, କଷ୍ଟଦାୟକ ।

**ଦହଡ଼**—ଗ୍ରା.ବିଂ. (ସଂ-ଦଗ୍ଧ) ଉତ୍ତପ୍ତ, ତାତିଲା, ଗରମ, ଦାହଯୁକ୍ତ, ଯହିଁରୁ ବାମ୍ଫ ବାହାରୁଥାଏ ।

**ଦହଣି**—ପ୍ରା.(ମେଦ)ବି. ଗହର ମଝିରେ ଥିବା ଚାଷଜମି ।

**ଦହତ**—ଗ୍ରା. ବି. ଅଗ୍ନି ।

**ଦହଦହରୁ**—ଗ୍ରା. ଅବ୍ୟ. (ଶିଶୁରଞ୍ଜନ) ପିଲାମାନେ କୁକୁରକୁ ଡ଼ାକିବାର ଶବ୍ଦ,

ଶିଶୁରଞ୍ଜନାର୍ଥ ମାଆମାନେ ବୋଲିବା ପଦ।

**ଦହନ**—ବି. ( ଦହ + କ.ଅନ ) ଅଗ୍ନି, କୁଷ୍ଟଲେକ, ଧଳାଚିତା ଗଛ, ଚିତ୍ରକ ବୃକ୍ଷ, ଭଲ୍ଲାତକ, କପୋତ, (ଭା.ଅନ) ଦାହ, ପୋଡ଼ିଯିବା, (ବିଂ) ଦାହକ, (ସ୍ତ୍ରୀ) ଦହନା, (ଗ୍ରା-ବି) ନାଶ,(ଗ୍ରା.ବିଂ) ଦଗ୍ଧ।

**ଦହନକେତନ**—ବି.(ଷତତ୍ପୁ) ଧୂମ,ଧୂଆଁ

**ଦହନପ୍ଲୁଷ୍ଟ**—ବି. ବୈଦ୍ୟକ ପ୍ରସିଦ୍ଧ ପଦାର୍ଥ।

**ଦହନପ୍ରିୟ**—ସ୍ତ୍ରୀ. ବି. (ଷତତ୍ପୁ) ଅଗ୍ନିପ୍ରିୟା, ସ୍ୱାହାଦେବୀ।

**ଦହନବଲ୍ଲଭ**—ବି. ଅଗ୍ନି।

**ଦହନବଟପୀ**—ସ୍ତ୍ରୀ, ବି. ଲଙ୍କାଳକା, ଲହଲଙ୍କାଳିଆ।

**ଦହନର୍କ୍ଷ**—ବି. କୃତ୍ତିକାନକ୍ଷତ୍ର।

**ଦହନସାରଥି**—ବି. (ଷତତ୍ପୁ) ବାୟୁ।

**ଦହନାଗୁରୁ**—କ୍ଳୀ. ବି. ଦାହାଗୁରୁ, ସୁଗନ୍ଧ ଦ୍ରବ୍ୟବିଶେଷ।

**ଦହନାରାତି**—ପୁଂ. ବି. (ଷତତ୍ପୁ) ଜଳ।

ଦହନୀୟ—ବିଂ. ( ଦହ+ର୍ମ.ଅନୀୟ ) ଦାହ୍ୟ, ଯାହା ପୋଡ଼ିହୁଏ, ଜ୍ୱଳନୀୟ, ଦହନଯୋଗ୍ୟ।

**ଦହନୋପଲ**—ବି. (ଦହନ+ଉପଳ) ସୂର୍ଯ୍ୟକାନ୍ତମଣି, ଆତସୀକାଚ,ଚକମକି ପଥର।

ଦହନୋଲ୍କା—ବି. ଅଗ୍ନିର ବିଷ୍ଫୁଲିଙ୍ଗରୂପ ଉଲ୍କା।

**ଦହପାଣି**—ଗ୍ରା. ବି. ଲୁଣହାଣ୍ଡିବାବେଳେ ସିଝାଇବାପାଇଁ ହାଣ୍ଡିକୁ ଅଜାଡ଼ାଯିବା ଲୁଣମିଶ୍ରିତ ଘନଜଳ।

**ଦହର**—ବି.(ଦହ+କ.ଅର) ଛୁଞ୍ଚୁଣିମୂଷା, ଶିଶୁ, ସାନଭାଇ, ଚୁଚୁନ୍ଦ୍ରୀ, ନରକ, ବରୁଣ, (ବିଂ) ସ୍ୱଳ୍ପ, ଛୋଟ, ଦୁର୍ବୋଧ, ସୂକ୍ଷ୍ମ, (ସ୍ତ୍ରୀ) ଦହରା।

**ଦହରପୁଷ୍ପ**—କ୍ଳୀ. ବି. ତୈତ୍ତିରୀୟ ସଂହିତାର ଅଂଶବିଶେଷ।

**ଦହରସନ**—କ୍ଳୀ. ବି. ବୌଦ୍ଧମାନଙ୍କର ଗ୍ରନ୍ଥ ବା ସୂତ୍ରବିଶେଷ।

ଦହରାକାଶ—ପୁଂ. ବି. (ଷତତ୍ପୁ) ଚିଦାକାଶ, ଈଶ୍ୱର।

ଦହଲ—ଗ୍ରା.ବି. (ସଂ-ଦଲ ଚ୍ୟ) କାଦୁଅ, ପଙ୍କ, ଦଳଦଳ ବା ପଙ୍କୁଆ ଅବସ୍ଥା.ଅଳ୍ପ ପାଣି ବେଶି ପଙ୍କ ଓ ଜଳମୟ ପୋଖରୀ. ଗ୍ରା.ବିଂ. ଦହଲ ଦେଖ।

ଦହଲହେଠିବା—ଗ୍ରା.କ୍ରି. ଭୂମି କର୍ଦ୍ଦମମୟ ହେବା, ଦଲଦଲେଇବା।

ଦହଲ—ଗ୍ରା.ବିଂ. କାଦୁଆ, ପଙ୍କିଲ, ପଙ୍କ ଓ ଜଳମୟ, ଯହିଁରେ ଲୋକ ପଶିଗଲେ ସହଜେ ଉଠିପାରେ ନାହିଁ, ଗ୍ରା.ପୁଂ.ବିଂ.( ସଂ ସ୍ଥୂଳକାୟ ) ମୋଟା, ସ୍ଥୂଳକାୟ, ଗ୍ରା.ବି. ଦହଲ ଦେଖ।

**ଦହସନ୍ତ**—ଯା.ବି.ଭୟ, ତ୍ରାସ, କଠୋର ଦାୟିତ୍ୱ, ବନ୍ଧ, ଦହଗଞ୍ଜ, ବାଧା, ପୀଡ଼ା, ଦୁଃଖ, କଷ୍ଟ, ବିପଦ, (ବିଂ)ଖିଦ୍ରଜନକ, ପୀଡ଼ିତ, ବାଧାପ୍ରାପ୍ତ, ବ୍ୟତିବ୍ୟସ୍ତ।

ଦହା—ଯା.ବି. ଦହଲ (ଦେଖ),ମୁସଲମାନଙ୍କ ମହରମ୍ ମାସର ୧ ତାରିଖଠାରୁ ୧୦ତାରିଖ (ଏ) ସମୟରେ ମୁସଲମାନଙ୍କ ମହରମ୍ ପର୍ବ ହୁଏ।

ଦହି—ଗ୍ରା.ବି.(ସଂ ଦଧି)ବାସୀଦୁଧ,ଦୁଗ୍ଧବିକାର, ଦହିପରି ଅଲଅଲିଆ ପଦାର୍ଥ, ମସ୍ତିଷ୍କମଧ୍ୟରେ ଥିବା ଦଧିବତ୍ ଅଲଅଲିଆ ବସ୍ତୁ,(ପ୍ରା.ସମ୍ବ.ବି.)ବସାଦହି, (ପୁର୍ବ—ଲୁଣ ମରୁଯିବା ଅଞ୍ଚଳ—ବି.) ଲୁଣ ମରୁଥିବାର ବହଳିଆ,ଲୁଣିପାଣି।

ଦହିକାଡ଼—ଗ୍ରା.ବି.ଦହିରେ ଲୁଣ ମସଲା ଆଦି ଦେଇ ସିଦ୍ଧକରି ପ୍ରସ୍ତୁତ କରିବା ଏକପ୍ରକାର ବ୍ୟଞ୍ଜନ, (ପ୍ରା. ଯାଜପୁର ବି.) ମାର୍ଗଶିରମାସ ଗୁରୁବାରେ ଧନଲକ୍ଷ୍ମୀଙ୍କୁ ପୂଜା କରାଯିବା ଦହି ସଙ୍ଗେ ସିଝା ଅରୁଆ ଭାତ।

ଦହିକନ୍ଦା—ଗ୍ରା.ବି. ଏକପ୍ରକାର ଧାନ।

ଦହିଖୁଆ—ଗ୍ରା. ବି. ଯେଉଁ ପିଣ୍ଡାଗ୍ରଯଷ୍ଟିରେ ଦହିକୁ ମେଣ୍ଟାଇଁ ଲହୁଣୀବାହାର କରାଯାଏ।

ଦହିଗୁଡ଼ଭାତ—ଗ୍ରା. ବି. (ସଂ-ଅନ୍ନପ୍ରାଶନ) ନବାଗ୍ନର ପ୍ରବନ୍ଧନ କୁମାର ବର ଓ କୁମାରୀ କନ୍ୟା (ଅବବାହିତାବସ୍ଥାରେ) ଦହିଗୁଡ଼ ଖାଇବା ରୂପ, ସ୍ତ୍ରୀ ଆଚାର।

ଦହିଚୁଡ଼ା—ଗ୍ରା. ବି. (ସଂ-ଦଧି ଓ.ଚିପୀଟକ) ଚୂଡ଼ାଦହି, ଚୁଡ଼ାସଙ୍ଗେ ଦହି ଗୋଳାଇ ପ୍ରସ୍ତୁତ କରାଯିବା ଖାଦ୍ୟ, ହୁଳି, ଶ୍ରାଦ୍ଧ, ପ୍ରାୟଶ୍ଚିତ୍ତ ଓ ଉତ୍ସବାଦିର ଉପଲକ୍ଷେ କରାଯିବା ବ୍ରାହ୍ମଣଭୋଜନ।

ଦହିଛେନା—ଗ୍ରା. ବି. ଟୁପୋଲଦହିକୁ ନଆଁରେ ଦିଆଇ ଛଆଚ କରାଯିବା ଛେନା।

ଦହିଜାଯ—ଗ୍ରା.ବିଂ. (ସଂ-ଦହ୍ୟ)ଦଗ୍ଧ, ଦହିଗଞ୍ଜି. ପୀଡ଼ିତ, (ବି) ଦହନ।

ଦହିତେଡ଼ା—ଗ୍ରା. ବି. ଦହି ବାନ୍ଧିକରିବାପାଇଁ ବ୍ୟବହୃତ ପାତ୍ରବିଶେଷ।

ଦହିଦହିକା—ଗ୍ରା.ବି.(ସଂ-ଦଧାଳୀ)ଏକପ୍ରକାର ବନ୍ୟଶାକ ଲତା, ଦଦଗ୍ଧା।

ଦହିଦେବା—ଗ୍ରା. କ୍ରି. ଦହନକରିବା, ନଷ୍ଟକରିବା, ଦଳିଚକଟି ପକାଇବା, (ଲ.ଅର୍ଥ) ବର୍ଜିଯିବା।

ଦହିନଡ଼ିଆ—ଗ୍ରା.ବି. ଦେଉଳର ମୁଣ୍ଡିରେ ଚକ୍ରତଳେ ଥିବା ଦଧିଭାଣ୍ଡ ଆକାରରେ ଗୋଲାକାର ପଥର ବା ଚୂନର ଗୋଲକ, ଉନ୍ନପୂର୍ଣ୍ଣ ବଢ଼ୁଣ୍ଡି।

ଦହିନଡ଼ିଆ—ଗ୍ରା.ବିଂ. ମୁହଁରେ ପଲମ ଘୋଡ଼ା ହୋଇଥିବା ଦହିନଡ଼ିଆ ପରି ଆକୃତିବିଶିଷ୍ଟ।

ଦହିନା—ଯ.ବି. ଘୋଡ଼ାର ପାଟିମଧ୍ୟରେ ଦିଆଯିବା ଲୁହାର କଡେଇ।

ଦହିପଖାଳ—ଗ୍ରା.ବି. ଦଧାନ୍ନ,ଭାତ ସଙ୍ଗେ ଦହି ମିଶାଇ ପ୍ରସ୍ତୁତ କରାଯିବା ଏକପ୍ରକାର ରୁଚିକର ଖାଦ୍ୟ।

ଦହିବସା(ସେ)ଇବା—ଗ୍ରା.କ୍ରି. ବସାଦହି କରିବା ନିମନ୍ତେ ଈଷତ୍ ଗରମଦୁଧରେ ମହି ପକାଇବା।

ଦହିବସିବା—ଗ୍ରା. ବି. ଦୁଧ ମହିଦେବା ଦ୍ୱାରା ତାହା ବସାଦହିରେ ପରିଣତ ହେବା।

ଦହିବସା(ଡ଼ା)—ଗ୍ରା.ବି. ଦହିରେ ବଟୁରି ସାଇଥିବା ବରପିଠା ।

ଦହିବା—ଗ୍ରା.କ୍ରି.ପୋଡ଼ିଦେବା, ଦଗ୍ଧକରିବା, ନିଆଁ ଲଗାଇ ତହିଁରେ ଜାଳିଦେବା, (ଲ.ଅର୍ଥ) ଦହଗଞ୍ଜ କରିବା, ପୋଡ଼ିଦେବା ।

ଦହିବାଳି—ଗ୍ରା.ସ୍ତ୍ରୀ.ବି. ଯେଉଁ ସ୍ତ୍ରୀ ଦହି ବିକ୍ରି କରେ ।

ଦହିମାଛ—ଗ୍ରା.ବି. (ସଂ-ଦଧିମତ୍ସ୍ୟ) କୌଣସି ଶୁଭକାର୍ଯ୍ୟ ଉପଲକ୍ଷରେ ଅନୁକୂଳ କରୁଥିବା ବ୍ୟକ୍ତିକୁ ଦେଖାଇବା ଦହି ଓ ଖାଇଲା ମାଛ ।

ଦହିମାଛୁଆ—(ପ୍ରା. ଯାଜପୁର. ବି.) ଧୋବା ।

ଦହିମୁହାଁ—ଗ୍ରା.ବି. (ସଂ-ଦଧିମନ୍ଥନ) ଦଧିମନ୍ଥନ, ଗ୍ରା. ବିଂ. ଦଧିମନ୍ଥନରେ ବ୍ୟବହୃତ ।

ଦଧିମୁ(ମୋ)ହିଁବା—ଗ୍ରା.କ୍ରି. (ସଂ-ଦଧି ଓ ମଥ୍ ଧାତୁ) ଘୋଳଦହି ତିଆର କରିବାପାଇଁ ବସାଦହିକୁ ଖୁଆରେ ମନ୍ଥନକରିବା, ଦଧିମନ୍ଥନ କରିବା ।

ଦହିଲ—ଗ୍ରା.ବି.ଗଞ୍ଜପା ଓ ତାସ୍ ଖେଳରେ ଦଶଟିପ ଥିବା ତାସ ।

ଦହିହାଣ୍ଡି—ଗ୍ରା. ବି. ଯେଉଁ ହାଣ୍ଡିରେ ଦୁଧରେ ମହିପକାଇ ଦହି ବସାଯାଏ, ଯେଉଁ ହାଣ୍ଡିରେ ବସାଦହିକୁ ମୁହାଁଯାଏ, ଯେଉଁ ହାଣ୍ଡିରେ ଦହିଥାଏ ।

ଦହିହେବା—ଗ୍ରା.କ୍ରି. (ଲ.ଅର୍ଥ) ଦହଗଞ୍ଜ ହେବା ।

ଦହ୍ୟ—ଗ୍ରା.ବିଂ. (ସଂ-ଦାହ୍ୟ) ପୋଡ଼ା, ଦଗ୍ଧ, ଦହଗଞ୍ଜ, ଦଗ୍ଧନ, (ବି) ଦହଗଞ୍ଜ, ଆକୁଳତା ।

ଦହ୍ୟମାନ—ବିଂ (ଦହ+ମି.ଆନ) ଯାହା, ଜଳୁଅଛି, ଯାହା ଦଗ୍ଧ ହେଉଅଛି, ଜଳୁଥିବା, (ଲ.ଅର୍ଥ. ଯଥା—ହୃଦୟ ଦହଗଞ୍ଜ)।

ଦହ୍ର—ବି. (ଦହ+କ.ର) ଅଗ୍ନି, ବନଅଗ୍ନି, ଦାବାଗ୍ନି, ନରକ, ବରୁଣଦେବତା, ଜଠର, ହୃଦୟାକାଶ, ବନ ।

ଦହ୍ରାଗ୍ନି—ବି. ଜଠରାଗ୍ନି ।

ଦା—ସ୍ତ୍ରୀ. ବି. (ଦା+ଭା.କ୍ୱିପ୍) ଦାନ, ଶୋଧନ, (ଛେଦନାର୍ଥ,ଦୋ+କ୍ୱିପ୍) ଛେଦ, ଉପତାପ, ଉପରେ ଜଣାଯିବା ଉତ୍ତାପ, (ପାଳନାର୍ଥ,ଦୈ+କ୍ୱିପ୍) ରକ୍ଷଣ, ପାଳନ, (ସ୍ତ୍ରୀ. ବିଂ. ଦା+କ. ଅ+ଆ) ଦାତ୍ରୀ, ଦାୟିକା, ପ୍ରଦାୟିନୀ, ଗ୍ରା.ବି. (ସଂ-ଦାତ୍ର) ଦାଆ ଦେଖ ।

ଦାଆ—ଗ୍ରା. ବି. ଧାନ୍ୟାଦି କାଟିବାର କରତ ପରି ଦାନ୍ତୁରି କଟୁରି, ଧାନ୍ୟକର୍ତ୍ତିରୀ, କଟାରି, ।

ଦାଆଙ୍କୁଡ଼ି—(ପ୍ରା, ଯାଜପୁର. ବି.) ଉଚ୍ଚଜାଗାରୁ କଣ୍ଟା କାଟିବାପାଇଁ ଲଗିଅଗରେ ସଂଲଗ୍ନ ଦାଆ, ଦଗ୍ଧି ।

ଦାଆଣି—ଗ୍ରା. ବି. ବଳଦଙ୍କ ଦେହରେ ଚିଆଁ ବା ବାଣୀ ଦେବାପାଇଁ ବ୍ୟବହୃତ ଲୁହା ।

ଦାଆଦାନ୍ତିଆ—ଗ୍ରା.ବିଂ. ଦାଆପରି ଦନ୍ତୁର ।

ଦାଆବେଠି—(ପ୍ରା. ସମ୍ବ. ବି.) ଗ୍ରାମର ଗଉନ୍ତିଆ ବା ମାଫିଦାରମାନଙ୍କ ଜମିରୁ ଧାନ କଟା ହେବାପାଇଁ ବିନା ପାରିଶ୍ରମିକରେ ରୟତମାନେ ଦାଆଦ୍ୱାରା ଯେଉଁ ବେଠି କରନ୍ତି ।

ଦାଆବେଣ୍ଟ—ଗ୍ରା.ବି. ଦାଆକୁ ହାତରେ ଧରି ବ୍ୟବହାର କରିବା ନିମନ୍ତେ ତା ମୂଳରେ ଥିବା କାଠର ମୁଠା ।

ଦାଆବେଣ୍ଟିଆ—ଗ୍ରା. ବିଂ. ଦାଆ ବେଣ୍ଟପରି ଲମ୍ବ, ମୋଟ ଓ ବକ୍ର (କାକୁଡ଼ି ଆଦି ଫଳ) ।

ଦାଉ—ଗ୍ରା. ବି. ଦାୟ ଦେଖ, ଗ୍ରା. ବିଂ. (ସଂ-ଦାୟୀ) ଦାୟୀ, ଦାବୀଦାର ।

ଦାଇଁ—(ପ୍ରା. ସମ୍ବ. ବି.) ଦାଉଣୀ ।

ଦାଇକା—ଗ୍ରା. ବି. ଦାୟିକା, ଦାହିକା, ଯାତ୍ରା ଓ ପାଲାବାଲାଙ୍କ ମଧ୍ୟରେ ଉତ୍ତର ପ୍ରତ୍ୟୁତ୍ତର ଛଳରେ ଦୁଇପକ୍ଷ ପରସ୍ପରପ୍ରତି ଯେଉଁ ଛଳପୂର୍ଣ୍ଣ ଗୀତ ବୋଲନ୍ତି, ପ୍ରବଚନ ।

ଦାଇତ୍ୱ—ଗ୍ରା.ବି. (ସଂ-ଦାୟିତ୍ୱ)ଦାୟିତ୍ୱ ।

ଦାଇବା—ଗ୍ରା.ବି. ଦାଆରେ ଧାନ ଗଛଆଦିକୁ କାଟିବା, ମୂଳପୋଛ କରି ତୃଣ କାଟିବା, (ଲ.ଅର୍ଥ) ନିଜର ପୂର୍ବକୃତ କର୍ମଫଳ ଭୋଗକରିବା, ଦାହିବା ଦେଖ

ଦାଇମୁଦେଇ—ଗ୍ରା. ବି. କୌଣସି ଅଭିଯୋଗସମ୍ବନ୍ଧେ ପ୍ରକାଶ୍ୟଭାବରେ ଅଭିଯୋଗ ଉତ୍ଥାପନକରିବା ବ୍ୟକ୍ତି, ଦାବୀଦାର୍, ଗ୍ରା.ବିଂ. ଦାୟିତ୍ୱପୂର୍ଣ୍ଣ ଲୋକ ।

ଦାଇଲ୍(ଳ)—ଗ୍ରା.ବି.(ସଂ-ଦାତ୍ରୀ)ବିଆଳିଧାନ ବାଛିବାପାଇଁ ବ୍ୟବହୃତ ଶ୍ରେଷ୍ଠ ଦାଆ ।

ଦାଈ—ଗ୍ରା.ସ୍ତ୍ରୀ.ବି. (ସଂ-ଧାତ୍ରୀ) ଧାତ୍ରୀ, ଉପମାତା, ଯେ ଶିଶୁକୁ ସ୍ତନ୍ୟଦାନ ଦ୍ୱାରା ପାଳେ, ସ୍ତ୍ରୀମାନଙ୍କର ଗର୍ଭଚିକିତ୍ସା ବା ପ୍ରସବ କରାଇବା କାର୍ଯ୍ୟରେ ନିପୁଣା ସ୍ତ୍ରୀ ।

ଦାଉ—ଗ୍ରା. ବି. (ସଂ-ଦାବ) ଉତ୍ତାପ, (ସଂ-ଦାନ) ବାଧା, ସନ୍ତାପ, ତୋଡ଼, ପ୍ରତାପ, ଅତ୍ୟାଚାର, ଜୁଲମ, ଜ୍ୱାଳା, ପୀଡ଼ା, ବ୍ୟଥା, ବେଦନା, ଯନ୍ତ୍ରଣା, ମର୍ମସ୍ଥାନ ଆଘାତ କରିବାର ଉପଯୁକ୍ତ ସ୍ଥାନ, ସୁଯୋଗ, ସୁନ୍ଧି, ସୁବିଧା, ଅବଜ୍ଞା, ପ୍ରତିଶୋଧ ।

ଦାଉଆ—ଯା.ବି.ଦାବି, ସ୍ୱତ୍ୱ ଦାବିପୂର୍ବକ ପ୍ରାର୍ଥନା, ମକଦ୍ଦମା ଉପସ୍ଥାପିତ କରିବା, ବିବାଦ, ଗ୍ରା.ବିଂ. ଚତୁର, ଯେ ସୁବିଧା ଦେଖି କାର୍ଯ୍ୟକରେ ।

ଦାଉଁଆ—ଗ୍ରା.ବିଂ.ଯେ ଖଣ୍ଡ ବା ସୁଯୋଗ ଜାଣି କାମକରେ ।

ଦାଉଁଦାଉଁ—ଗ୍ରା.ଅବ୍ୟ. ଦୁମ୍‌ଦୁମ୍, ଧମାଧମ ଶବ୍ଦକରି ତ୍ରୁଟ ଦମ୍‌ଦମ୍ ହେବାର ଶବ୍ଦ, ଭୟରେ ବିଶେଷ ହୃତ୍‌କମ୍ପଯୁକ୍ତ ।

ଦାଉଁମାରିବା—ଗ୍ରା. କ୍ରି. ସୁଯୋଗ ବା ଖଣ୍ଡ ଜାଣି କାମ କରିବା, ଖଣ୍ଡ ଜାଣି ବା ସୁଯୋଗ ଦେଖି ଗୁଡ଼ାଏ ଲାଭ କରିବା, ହଠାତ୍ କୌଣସି ବସ୍ତୁକୁ ଝିଁପିକରି ନେଇଯିବା ।

ଦାଉକ—ବି. ଜଳଚର ପକ୍ଷିବିଶେଷ ।

ଦାଉକଲ—ଗ୍ରା. ବି. (ଜାହାଜିଆ ଶବ୍ଦ) ଯେଉଁ କଳ ସାହାଯ୍ୟରେ ଲଙ୍ଗର

ପାଣିରୁ ଉପରକୁ ଟେକାଯାଏ ।
ଦାଉଘାତ୍—ଗ୍ରା. ବି. ଅତ୍ୟାଗ୍ରବିଶେଷ, ଆଘାତ, ଅତ୍ୟନ୍ତ ଜ୍ୱାଳା ବା ପୀଡ଼ା, ବେଦନା, କ୍ଷତଆଦିର ପୀଡ଼ାଯୁକ୍ତ ଓ ଭୟାନକ ଅବସ୍ଥା, ( ଗ୍ରା. ବିଂ ) ଦାଉ-ଘାତଆ ଦେଖ ।
ଦାଉଘାତଆ—ଗ୍ରା. ବିଂ. ପୀଡ଼ା ବା ବେଦନାଯୁକ୍ତ, ମର୍ମନ୍ତୁଦ, ମର୍ମ ସ୍ଥାନରେ ଆଘାତ ଲାଗିବା ହେତୁ ବିଶେଷ କଷ୍ଟ-ଦାୟକ ।
ଦାଉଘାତି—ଗ୍ରା. ବିଂ. ଅନିଷ୍ଟକାରୀ, ଯେ ପ୍ରତିଶୋଧ ନେବାକୁ ଚେଷ୍ଟା କରେ ।
ଦାଉଣି—ଗ୍ରା. ବି. (ସଂ-ଦାମନୀ) ବେଙ୍କ-ଲାରେ ବଳଦମାନେ ଏକାଧିକ ପଘା ଲାଗିଥିବା ଯେଉଁ ଲମ୍ବ ଦଉଡ଼ିରେ ଯୋଗ ହୁଅନ୍ତି, ଗଳ କମ୍ବଳ, ବଳଦ-ଆଦିଙ୍କ ଠାରେ ଦାଗ (ବାଣୀ)ଦିଆଯିବା ପାଇଁ ବ୍ୟବହୃତ ତାତଲା ଲୁହା, (ଗ୍ରା. ଯାଜ.ବି)ମେଲରେ ଗଳାଯିବା ବେତର ଗୋଲକ ।
ଦାଉଣିଆ—ଗ୍ରା.ବିଂ. (ଦାଉଣିରୁ)କଳୁଆ, ଦାଉଣିଆ ହୋଇଥିବା ।
ଦାଉଣିଗିରି—ଗ୍ରା.ବି.କଳବଳରେ ପକାଇ କାର୍ଯ୍ୟ ହାସଲ କରିବା ପ୍ରବୃତ୍ତି ।
ଦାଉଣ୍ଡି—ଗ୍ରା.ବି. ଆନନ୍ଦବାଦ୍ୟବିଶେଷ ।
ଦାଉଣ୍ଡିଆ—ଗ୍ରା.ବିଂ. ଦାଉଣ୍ଡିସମ୍ବନ୍ଧୀୟ ।
ଦାଉଦ୍—ଗ୍ରା. ବି. ଓଡ଼ିଶାର ଜଣେକ ମୋଗଲ ଶାସନକର୍ତ୍ତା ।
ଦାଉଦ୍‌ଖାନି—ଯ. ବି. ଏକପ୍ରକାର ସରୁ ଚାଉଳ ।
ଦାଉଦ୍‌ନଗର—ବି.ଗୟାଜିଲାର ଆରଙ୍ଗା-ବାଦ ଉପବିଭାଗର ପ୍ରଧାନ ସହର ।
ଦାଉଦାଉ—ଗ୍ରା. କ୍ରି. ବିଂ. (ସଂ-ଦାବ + ଅଗ୍ନି)ଦୀପ୍ତି ପୂର୍ବକ (ଜଳିବା),ଜକଜକ, ଦାଉଁଦାଉଁ ଦେଖ, (ଗ୍ରା.ବିଂ) ଉଜ୍ଜ୍ୱଳ, ଜାଜ୍ଜ୍ୱଲ୍ୟମାନ, ଦୀପ୍ତିମୟ, (ଗ୍ରା. ଅବ୍ୟ) ଶବ୍ଦବିଶେଷ । [ ଗହମ ।
ଦାଉଦୀ—ଯା. ବି. ଏକପ୍ରକାର ଉତ୍କୃଷ୍ଟ
ଦାଉପେଚ—ଯ.ବି. କଳକଉଶଳ, ଖଞ୍ଜା-ଖଞ୍ଜି, ସୁଯୋଗ ।
ଦାଉସାଧିବା—ଗ୍ରା.କ୍ରି.ପ୍ରତିଶୋଧ ନେବା
ଦାଏ—ଗ୍ରା. ବି. ଦାୟ ଦେଖ ।
ଦାଏର୍—ଯ.ବିଂ.ବିଚାରାଧୀନ, ବିଚାରାର୍ଥ ଅଦାଲତରେ ଉପସ୍ଥାପିତ, (ବି) ଅଦା-ଲତରେ (ମୋକଦ୍ଦମା) ଉପସ୍ଥାପନ ।
ଦାଏରି—ଯା.ବିଂ. ଅଦାଲତରେ ନାଲିସ କରାଯାଇଥିବା, ବିଚାରାର୍ଥ ଉପସ୍ଥାପିତ ହୋଇ ଶେଷ ବିଚାର ହୋଇ ନ ଥିବା
ଦାଏଲ୍—ପ୍ରା. (ସମ୍ବ)ବି. ଡାଲ ।
ଦାଁଚ—ପ୍ରା. (ସମ୍ବ) ବି. ଚିଲଣ ।
ଦାଁଣ୍ଡି—ପ୍ରା.(ସମ୍ବଲ ଓ ସିଂହଭୂମି)ଶନ୍ତ୍ଡା ଦଣ୍ଡା । [ ଦଣ୍ଡ ।
ଦାକ—ପୁଂ. ବି. (ଦା + କ.ଥ)ଯଜମାନ,
ଦାକ୍ଷ— ବିଂ. (ଦକ୍ଷ+ଅ) ଦକ୍ଷସମ୍ବନ୍ଧୀୟ, ଦକ୍ଷଜାତ, (ସ୍ତ୍ରୀ) ଦାକ୍ଷୀ,(ବି) ତତ୍‌ବଂଶଜ, ଦାକ୍ଷିର ଗ୍ରନ୍ଥସମୂହ ।
ଦାକ୍ଷାୟଣ—ପୁଂ. ବି. ( ଦକ୍ଷ + ଅୟନ ) ସୁନା, ସ୍ୱର୍ଣ୍ଣମୁଦ୍ରା, ମୋହର, ଭୂଷଣ-ଆଦି ମନୋହର ଦ୍ରବ୍ୟ, ଦକ୍ଷଯଜ୍ଞ ଦେଖ ।
ଦାକ୍ଷାୟଣୀ—ସ୍ତ୍ରୀ.ବି. (ଦକ୍ଷ+ଅୟନ+ଈ ) ଦକ୍ଷ ପ୍ରଜାପତିଙ୍କ କନ୍ୟା, ସତୀ, ପାର୍ବତୀ, ଦୁର୍ଗା, (ଜ୍ୟୋତିଷ) ରେବତୀ ନକ୍ଷତ୍ର, ଅଶ୍ୱିନ୍ୟାଦି ୨୭ ନକ୍ଷତ୍ର,ରୋହିଣୀ ନକ୍ଷତ୍ର, କଶ୍ୟପଙ୍କ ସ୍ତ୍ରୀ, ଅଦିତି, ବିଂ. (ଦାକ୍ଷାୟଣ+ଇନ୍)ସ୍ୱର୍ଣ୍ଣନିର୍ମିତ ।
ଦାକ୍ଷାୟଣୀପତି—ପୁଂ. ବି.(ଷତତ୍ପୁ)ଶିବ, ମହାଦେବ, ତାରାପତି, ଚନ୍ଦ୍ର ।
ଦାକ୍ଷାୟଣୀରମଣ—ପୁଂ. ବି. ( ଷତତ୍ପୁ ) ଚନ୍ଦ୍ର ।
ଦାକ୍ଷାୟଣ୍ୟ—ପୁଂ. ବି. ଆଦିତ୍ୟ ।
ଦାକ୍ଷାଯ୍ୟ— ବି(ଦକ୍ଷ+ଆଯ୍ୟ+ଅ)ଗରୁଡ଼, ବିଷ୍ଣୁଙ୍କ ବାହନ, ଶାଗୁଣା, ଗୃଧ୍ର ।
ଦାକ୍ଷି—ବି.(ଦକ୍ଷ + ଇ) ଦକ୍ଷଙ୍କ ଅପତ୍ୟ ।
ଦାକ୍ଷିକନ୍ଥା—ବି. ବାହ୍ଲୀକ ।
ଦାକ୍ଷିଣ—ବିଂ. ( ଦକ୍ଷିଣା+ଅ ) ଦକ୍ଷିଣା-ସମ୍ବନ୍ଧୀୟ,(ଦକ୍ଷିଣ+ଅ)ଦକ୍ଷିଣସମ୍ବନ୍ଧୀୟ, (ବି) ଶତପଥ ବ୍ରାହ୍ମଣୋକ୍ତ ହୋମ-ବିଶେଷ ।
ଦାକ୍ଷିଣାତ୍ୟ—ପୁଂ. ବିଂ. ଦକ୍ଷିଣାତ୍ୟପୁର, ଚନ୍ଦ୍ରଲୋକଗାମୀ, (ବି) ବନ୍ଧବିଶେଷ, ଦର୍ବ ଦେଖ ।
ଦାକ୍ଷିଣାତ୍ୟ—ବିଂ.(ଦକ୍ଷିଣ + ତ୍ୟ) ଦକ୍ଷିଣ ଦିଗ୍‌ଭବ, ଦକ୍ଷିଣରେ ଅବସ୍ଥିତ, ଦକ୍ଷିଣ ଦେଶୀୟ, ଦକ୍ଷିଣୀ, ଦକ୍ଷିଣ ଦେଶବାସୀ, ଦକ୍ଷିଣିଆ, (ବି) ଦକ୍ଷିଣାପଥ, ବିନ୍ଧ୍ୟା-ଚଳର ଦକ୍ଷିଣରୁ କୁମାରିକା ଅନ୍ତରୀପ ପର୍ଯ୍ୟନ୍ତ ଅବସ୍ଥିତ ଦେଶ ।
ଦାକ୍ଷିଣାତ୍ୟପ୍ରଶ୍ନ – ବି.(ଆଧୁନିକ ପ୍ରୟୋଗ) ବୈବସ୍ତିକ ପ୍ରଶ୍ନ ଦେଖ ।
ଦାକ୍ଷିଣାତ୍ୟ—ପ୍ରା.ବି. (ଯାଜ)ଯାଜପୁର-ବାସୀ କୁଳୀନ ବ୍ରାହ୍ମଣଙ୍କ ଶାଖାବିଶେଷ
ଦାକ୍ଷିଣାପଥକ—ବିଂ. ଦକ୍ଷିଣାପଥ ଦେଶ-ଜାତ ।
ଦାକ୍ଷିଣ୍ୟ—ବି. ( ଦକ୍ଷିଣା+ଯ ) ଦୟା, ପରଚ୍ଛନ୍ଦାନୁବର୍ତ୍ତିନ,ଆନୁକୂଲ୍ୟ,ପ୍ରସନ୍ନତା, ଔଦାର୍ଯ୍ୟ, ଉଦାରତା, ସରଳତା, ଭଦ୍ରତା, ସୌଜନ୍ୟ, ଅନ୍ୟ ବ୍ୟକ୍ତିର ଚିତ୍ତକୁ ପ୍ରସନ୍ନ କରିବାର ଭାବ, (ବିଂ) ଦକ୍ଷିଣାର ଉପଯୁକ୍ତ, ଦକ୍ଷିଣାର୍ହ ।
ଦାକ୍ଷୀ—ସ୍ତ୍ରୀ. ବି. (ଦକ୍ଷ + ଈ)ଦକ୍ଷପ୍ରଜା-ପତିଙ୍କ କନ୍ୟା, ପାଣିନିଙ୍କ ମାତାଙ୍କ ନାମ, (ବିଂ.ଦାକ୍ଷ+ଈ) ଦକ୍ଷସମ୍ବନ୍ଧୀୟା, ଦକ୍ଷଜାତା, ଦାକ୍ଷ ଦେଖ । [ ମୁନି ।
ଦାକ୍ଷୀପୁତ୍ର—ପୁଂ. ବି. ( ଷତତ୍ପୁ ) ପାଣିନି
ଦାକ୍ଷୀସୁତ—ପୁଂ.ବି.(ଷତତ୍ପୁ) ପାଣିନିମୁନି
ଦାକ୍ଷେୟ—ପୁଂ. ବି. ଦାକ୍ଷୀପୁତ୍ର, ପାଣିନି ମୁନି ।
ଦାକ୍ଷ୍ୟ—ବି. ( ଦକ୍ଷ+ଭା.ଯ ) ଦକ୍ଷତା, ପଟୁତା, ନୈପୁଣ୍ୟ, ସାମର୍ଥ୍ୟ, କାର୍ଯ୍ୟ-କୁଶଳତା, (ଗ୍ରା.ବି) ଦାକ୍ଷିଣ୍ୟ,ପରଚ୍ଛନ୍ଦା-ନୁବର୍ତ୍ତିତ୍ୱ ।
ଦାଖଃ—ଗ୍ରା. ( ଜମିଦାରି ସାଙ୍କେତିକ ) ଦାଖଲ ଖଜଣା ।
ଦାଖଲ୍—ଯା. ବି. ହାଜର, ଉପସ୍ଥିତ, ପହଞ୍ଚାଇବା, ଉପସ୍ଥାପିତ କରିବା, ଅର୍ଥ ପ୍ରେରଣ, ପଠେ, ଟଙ୍କାଦେବା, ଉପା-

ଜାଟ୍, ନ୍ୟାସ, (ବିଂ) ହାଜର, ଉପସ୍ଥିତ, (କାଗଜ ପତ୍ରରେ ନାମଆଦି) ସନ୍ନିବିଷ୍ଟ, ଦରଜ ଦିଆଯାଇଥିବା, ଦିଆଯାଇଥିବା (ଧନ ବା ବସ୍ତୁ) ପ୍ରେରିତ, ଡିପାଜିଟ୍ କରାଯିବା ।

ଦାଖଲକରିବା—ଗ୍ରା. କ୍ରି. ପଇଠ ଦେବା, ପଠାଇବା, ଉପସ୍ଥାପିତ କରିବା, କାଗଜ ପତ୍ରରେ ନାମଆଦି ପୂରଣ କରିବା, ନାମଆଦି ଚଢ଼ାଇବା ।

ଦାଖଲକାରୀ—ଗ୍ରା. ବିଂ. ଯେଉଁ ବ୍ୟକ୍ତି ଅର୍ଥାଦି ଦାଖଲ କରେ ।

ଦାଖଲ୍‌ଖାରଜ୍—ଯା. ବି. ଖାରଜ ଦାଖଲ, କୌଣସି ସିରସ୍ତାରେ ଏକ ବ୍ୟକ୍ତି ବା ବସ୍ତୁର ନାମ କାଟି ଅନ୍ୟର ନାମ ସେହି ସ୍ଥାନରେ ପୂରଣ କରିବା, (କୌଣସି ଭୂସ୍ୱତ୍ୱ ପକ୍ଷେ) ପୂର୍ବାଧିକାରୀର ନାମ କାଟିଦେଇ ନୂତନ ଅଧିକାରୀଙ୍କ ନାମ ଜମିଦାରୀ ବା ସରକାରୀ ସିରସ୍ତାରେ ଲେଖିବା ।

ଦାଖଲ୍‌ଖାରଜ୍‌କରିବା—ଗ୍ରା. କ୍ରି. ସିରସ୍ତାର କାଗଜଆଦିରେ ପୁରାତନ ଅଧିକାରୀର ନାମ କାଟି ଦେଇ ନୂତନ ଅଧିକାରୀ ବା ସ୍ୱତ୍ୱବାନ୍ ବ୍ୟକ୍ତିର ନାମ ଦରଜ କରିବା ।

ଦାଖଲଖାରଜମନ୍ଦକୁମା—ଯା. ବି. ଯେଉଁ ସରକାରୀ କାର୍ଯ୍ୟ ବିଭାଗରେ ମୃତ ବ୍ୟକ୍ତି ବା ବିକ୍ରେତାର ନାମ ପରିବର୍ତ୍ତେ ଭୂସମ୍ପତ୍ତି ପକ୍ଷେ ଯଥାକ୍ରମେ ଓ୍ୟାରିସ ଓ ଖରିଦ୍‌ଦାରର ନାମ ବହିର ପରେ ଲେଖାଯାଏ ।

ଦାଖଲଖାରଜରୁ(ରୋ)ଷ(ଷୁ)ମ୍—ଯା. ବି. ଦାଖଲଖାରଜ ଫିସ ବା ସଲାମି ।

ଦାଖଲଦେବା—ଗ୍ରା. କ୍ରି. ନିର୍ଦ୍ଦିଷ୍ଟ ବ୍ୟକ୍ତିଙ୍କ ନିକଟରେ ଟଙ୍କ ଆଦି ପଠାଇବା ବା ପଇଠ ଦେବା ।

ଦାଖଲନେବା—ଗ୍ରା. କ୍ରି. ଅନ୍ୟ ବ୍ୟକ୍ତି ଦାଖଲ କରିବା ଟଙ୍କାକୁ ବିଧିମତେ ଗ୍ରହଣ କରିବା ।

ଦାଖଲହେବା—ଗ୍ରା. କ୍ରି. ଦରଜହେବା, ଲେଖାହେବା, ଉପସ୍ଥିତ ହେବା, (ଧନ ବା ବସ୍ତୁ) ଦିଆଯିବା ପଇଠ ହେବା ।

ଦାଖଲା—ଯା. ବି. ଟଙ୍କା ଦେବାର ପାଉତି, କେହି ଦାଖଲ କରିଥିବାର ନିଦର୍ଶନ ପତ୍ର ।

ଦାଖଲି—ଯା. ବିଂ. ଦାଖଲ କରାଯିବା ।

ଦା: ା:—ଗ୍ରା. ବି. ଦାଖଲ୍. ଖାରଜର ସାଙ୍କେତିକ ଅକ୍ଷରଦ୍ୱୟ ।

ଦାଖିଲ୍—ଯା. ବିଂ. ପ୍ରବିଷ୍ଟ, ଉପସ୍ଥାପିତ, ଅର୍ପିତ, ପେଶ, ତୁଲ୍ୟ, ସାମିଲ ।

ଦାଖିଲଖାରଜ—ଯା. ବି. ଦାଖଲଖାରଜ ଦେଖ ।

ଦାଖିଲଦାର—ଯା. ବିଂ. ଯେଉଁ ବ୍ୟକ୍ତି ଟଙ୍କା ବା ଦ୍ରବ୍ୟ ପ୍ରେରଣ କରେ ।

ଦାଖିଲା—ଯା. ବି. ଦାଖଲା ଦେଖ ।

ଦାଖିଲୀ—ଯା. ବି. ମୋଗଲ ସମ୍ରାଟଙ୍କର ସ୍ଥାୟୀସୈନ୍ୟ, (ବିଂ) ଦାଖଲ କରାଯିବା ।

ଦାଗ୍—ଯା. ବି. ଚିହ୍ନ, ଅଙ୍କ, କଳଙ୍କ, ଦାଗ ଦେଖ ।

ଦାଗ୍‌ବାଲ୍—ଯା. ବିଂ. ଚିହ୍ନିତ, ଅଙ୍କିତ, କଳଙ୍କିତ ।

ଦାଗ—ଗ୍ରା. ବି. ଚିହ୍ନ, କୌଣସି ପଦାର୍ଥ ଅନ୍ୟ ବସ୍ତୁକୁ ମାଡ଼ିବସିବା ପରେ ଯେଉଁ ଚିହ୍ନ ରହିଯାଏ, ଛେକ, ମାର୍କା, ମଳଚିହ୍ନ, କଳଙ୍କଚିହ୍ନ, କାଳୀଦାଗ, କ୍ଷତଚିହ୍ନ, ବାଣୀ, ଚିଆଁ, ଦେହରେ ଛେକ, ଚଉଡ଼ା ଦାଗ, ରେଖା, ଗାର, (ଲ. ଅର୍ଥ) ମନରେ ଜାତହେବା ଦୁଃଖ ବା ଦରଜ, ଲୁଗା ବା ଅନ୍ୟ ପଣ୍ୟ ଦ୍ରବ୍ୟ ଉପରେ ଛାପା ଯାଇଥିବା ମୂଲ୍ୟଜ୍ଞାପକ ଚିହ୍ନ, ବନ୍ଧୁକ ଦଗା, ବନ୍ଧୁକର ଏକଗୁଳି ବା ଏକ ଥର ଫାଇର, ପାଣିଆଁ ଔଷଧର ଏକ-ପାନ, ଯାହା ବେତଳ ଉପରେ କାଗଜ ଦାଗରେ ଚିହ୍ନିତ ହୋଇଥାଏ, ଗ୍ଲେଟ ରେଖା, (ଲ. ଅର୍ଥ) ବଦନାମ, ଅପଯଶ, କଳଙ୍କ, କାଳି, ଅଖ୍ୟାତି, ଅକୀର୍ତ୍ତି, ଦୁର୍ଗୁଣ, ଦୋଷ ।

ଦାଗରାଜ(ଜି)—ଯା. ବି. କୋଠାଆଦିର ସାମାନ୍ୟ ସାମାନ୍ୟ ଆଂଶିକ ମରାମତି ।

ଦାଗଲଗା(ଗେ)ଇବା—ଗ୍ରା. କ୍ରି. କୌଣସି ବସ୍ତ୍ରରେ ମଇଳା ଚିହ୍ନ ବସାଇବା, (କୌଣସି ବ୍ୟକ୍ତିଠାରେ) କଳଙ୍କ ଆରୋପ କରିବା, ଅନ୍ୟଠାରେ ଭବିଷ୍ୟତକୁ ଦେଖାଯିବା କଳଙ୍କ ଲଗାଇବା ।

ଦାଗଲାଗିବା—ଗ୍ରା. କ୍ରି. ମଳିଆ ହେବା, କୌଣସି ବ୍ୟକ୍ତିଠାରେ କଳଙ୍କ ଲାଗିବା

ଦାଗିବା—ଗ୍ରା. କ୍ରି. ଛକ ବା ଚିହ୍ନଦେବା, ଚଉଡ଼ାଦେବା, ଲୁଣ୍ଠିବା, ବନ୍ଧୁକ ଫାଇର କରିବା, ମଇଳା ଚିହ୍ନ ଦେବା ।

ଦାଗୀ—ଯା. ବିଂ. ଦାଗ ବା ଚିହ୍ନଯୁକ୍ତ, କଳଙ୍କିତ, ଯେ ଅପରାଧ କରି ରାଜ ଦ୍ୱାରରେ ପୂର୍ବେ ଦଣ୍ଡ ପାଇଅଛି, ଚିଆଁ ଦିଆ ଯାଇଥିବା, (ଯା. ବି) ଥରେ ସଜା ପାଇଥିବା ଲୋକ ।

ଦାଘ—ବି. (ଦହ + ଘ. ଅ) ଗରମୀ, ତାପ ।

ଦାଠାଙ୍ଗି—ଗ୍ରା. ବିଂ. ଅତ୍ୟନ୍ତ ଗୃଳଖ୍ ।

ଦାଡ଼କ—ବି. (ଦଡ଼ + କ. ଅକ) ଦନ୍ତ, ହିଂସ୍ରଜନ୍ତୁ ଆଦିଙ୍କର ବଡ଼ ଦାନ୍ତ ।

ଦାଡ଼ିଧାନ—ପ୍ରା. (ସମ୍ବ) ବି. ଝଇଚଡ଼ାଧାନ ।

ଦାଡ଼ିମ—ବି. (ଦଳ + କ. ଇମ) ଡାଳିମ୍ବ ଫଳ ଓ ଗଛ । [ ବୃକ୍ଷ ।

ଦାଡ଼ିମପତ୍ରିକ—ବି. (ବ. ବ୍ରୀ) ରୋହିତକ

ଦାଡ଼ିମପୁଷ୍ପ—ବି. (ବ. ବ୍ରୀ) ରୋହିତକ ବୃକ୍ଷ, (ତତ୍ପୁ) ଦାଡ଼ିମଫୁଲ ।

ଦାଡ଼ିମପୁଷ୍ପକ—ବି. ( ଦାଡ଼ିମପୁଷ୍ପ + କ ) ରୋହିତକ ବୃକ୍ଷ ଦେଖ ।

ଦାଡ଼ିମପ୍ରିୟ—ବି. (ବ. ବ୍ରୀ) ଶୁକ, ଶୁଆ, କୀରପକ୍ଷୀ ।

ଦାଡ଼ିମଭକ୍ଷଣ—ବି. କୀରପକ୍ଷୀ, ଶୁଆ, (ବିଂ) ଦାଡ଼ିମଭକ୍ଷକ ।

ଦାଡ଼ିମୀ—ବି. ( ଦଳ + ଇନ୍ + ଈ ) ଦାଡ଼ିମ ଦେଖ ।

ଦାଡ଼ିମୀସାର—ବି. ଦାଡ଼ିମ ଦେଖ ।

ଦାଡ଼ିମ୍ବ—ବି. ଦାଡ଼ିମ ଗଛ ଓ ଫଳ ।

ଦାଡ଼ୀ—ବି. ଦାଡ଼ିମ ଗଛ ଓ ଫଳ ।

ଦାଢ଼—ଗ୍ରା. ବି. (ସଂ-ଧାର) ଅସ୍ତ୍ରର ତୀକ୍ଷ୍ଣ ଧାର, ଦାଢ଼ୁଆ ଅସ୍ତ୍ର, ଏକକଡ଼ା କଉଡ଼ିର ୩୨ ଭାଗରୁ ଏକଭାଗ ପରିମାଣ,

ଅତି ସାମାନ୍ୟ ଅଂଶ, ନଦୀ ପୋଖରୀର ଜଳର ନିକଟବର୍ତ୍ତୀ ଉଚ୍ଚ ଭୂଭାଗ, କାଛୁ, ଅଡ଼ଙ୍ଗ ଇତ୍ୟାଦିର ଧଡ଼ି, ପ୍ରତାପ, ବଳ, ତେଜ, (ସଂ-ଦଂଷ୍ଟ୍ରା) ନାହୁଡ଼, ବିଷଦାନ୍ତ, ପଶୁ ଆଦିଙ୍କ ବଡ଼ ଦାନ୍ତ, (ଲ.ଅର୍ଥ) ସୀମା, ଆସନ୍ନବର୍ତ୍ତିତା, ଆଣ୍ଠ, ଦମ୍ଭ, ଗାରିମା, ବଦା, କୃଷିକର୍ମର ଯନ୍ତ୍ର ବିଶେଷ, (ଗ୍ରା. ବିଂ) ଉଦ୍ଧତ, ତୀକ୍ଷ୍ଣ ।

ଦାଢ଼କାଟିବା—ଗ୍ରା. କ୍ରି. ପ୍ରତାପ ଅନୁଭୂତ କରିବା, ହୁକୁମ ଚଳେଇବା ।

ଦାଢ଼ଖାଇବା—ଗ୍ରା. କ୍ରି. (ନଦୀ) କୂଳ ଖାଇବା, ଅତଡ଼ା ଝାଇବା ।

ଦାଢ଼ଦଡ଼ିଆ—ଗ୍ରା. ବିଂ. ଦାଆ ବା କରତ ପରି ଦନ୍ତୁର । [ ବଙ୍କା ମଇ ।

ଦାଢ଼ମଇ—ଗ୍ରା. ବି. ଚନ୍ଦ୍ର କଳାପରି

ଦାଢ଼ା—ବି. (ଦୋ+ଶ ଢ+ଆ) ବଡ଼ଦାନ୍ତ, ନାହୁଡ଼, ବିଷଦାନ୍ତ, ପ୍ରାର୍ଥନା, ସମୁଦ୍ର, (ଗ୍ରା. ବି) ତୀକ୍ଷ୍ଣଦାନ୍ତ ।

ଦାଢ଼ି—ଗ୍ରା. ବି. (ସଂ-ଦାଢ଼ିକା) ଶ୍ମଶ୍ରୁ, ଥୋଡ଼ି, ଚିବୁକ, ବଳଦ ବା ଷଣ୍ଢର ତଳ ପାଟିର ଦାନ୍ତ, ଦାଢ଼ା ଦେଖ ।

ଦାଢ଼ିଆ—ଗ୍ରା. ବିଂ. ଶ୍ମଶ୍ରୁଳ, ଦୀର୍ଘ ଶ୍ମଶ୍ରୁଯୁକ୍ତ, (ବି) ମୁସଲମାନ ।

ଦାଢ଼ିଆଣି—ଗ୍ରା. ବି. ଢଡ଼ିଆଳ କମ୍ଭୀର, ଅଣ୍ଡିଆ କମ୍ଭୀର ।

ଦାଢ଼ିକା—ବି. (ଦାଢ଼ା+କ+ଆ) ଶ୍ମଶ୍ରୁ, ଦାଢ଼ି ।

ଦାଢ଼ିପାଇବା—ଗ୍ରା. ବି. ଦାମୁଡ଼ି ବଳଦର ଦାନ୍ତ ଉଠିବା ।

ଦାଢ଼ୁଆ—ଗ୍ରା. ବିଂ. (ସଂ-ଧାର) ତୀକ୍ଷ୍ଣ ଧାରବିଶିଷ୍ଟ, ଶାଣିତ ।

ଦାର୍ଢ୍ୟ(ତା)—ଗ୍ରା. ବି. ଦାର୍ଢ୍ୟ, ଦୃଢ଼ତା, କଠୋରତା, ଅଟଳତା, ସ୍ଥିରତା ।

ଦାର୍ଢ୍ୟତାଭକ୍ତି—ଗ୍ରା. ବି. ଅଟଳଭକ୍ତି, କେତେକ ଦୃଢ଼ ଭକ୍ତଙ୍କ ବିବରଣପୂର୍ଣ୍ଣ ଓଡ଼ିଆ ଗ୍ରନ୍ଥବିଶେଷ ।

ଦାଣ—ପ୍ରା. (ସମ୍ପ) ବି. ଝିଲଣ ।

ଦାଣ୍ଟିବା—ଗ୍ରା. କ୍ରି. ଅଟକାଇବା, ଆକଟ କରିବା, ଜାବଡ଼ା କରିବା ଗାଣ୍ଠିବା, ଆକ୍ରାନ୍ତ କରିବା, ଦଣ୍ଟେଇବା, ଶଗଡ଼ର ପଛଆଡ଼ୁ ଦଣ୍ଡା ଧରି ଶଗଡ଼ର ଗତିକୁ ନିୟନ୍ତ୍ରିତ କରିବା, ଶାସନ କରିବା, ଦମନ କରିବା, ଧମକାଇବା, ଧଡ଼କାଇବା, ଦଣ୍ଡ ଦେବାର ଭୟ ଦେଖାଇବା ।

ଦାଣ୍ଡି—ଗ୍ରା. ବି. (ଦ-ଦଣ୍ଡ) ସଜନାଆଦି ଗଛର ଲମ୍ବଛୁଇଁ, ଖଡ଼ାର ଡାଙ୍ଗ, ପୋଇ, ଲାଉ, କଖାରୁ ଆଦି ଲତାର ସ୍ଥୂଳ ଓ ଅପେକ୍ଷାକୃତ କଠିନ ଅଂଶ, ଡାଙ୍ଗ । [ ଗୁଣ୍ଡିଆ ।

ଦାଣ୍ଡିଆ(ୟା) ଗ୍ରା. ବିଂ. ଟାଣୁଆ, ହାଡ଼ୁଆ,

ଦାଣ୍ଡ—ବି. ଦଣ୍ଡ ନୃପତଙ୍କ ଅପତ୍ୟ, ଦଣ୍ଡଧର, ଆୟୁଧଜୀବୀ ସଙ୍ଘଭେଦ, ଦଣ୍ଡ ସମୂହ, (ଗ୍ରା. ବି) ରାସ୍ତା, ବାଟ, ପଥ, ରାଜଦାଣ୍ଡ, ସଡ଼କ, ଗୃହର ବହିର୍ଭାଗ, ଗୃହର ସଦର ପାଖ, ଏକପ୍ରକାର ବ୍ୟାୟାମ, ଦଣ୍ଡ, କୁସ୍ତି, ବାହାର, ବହିର୍ଭାଗ, ବ୍ୟବସାୟ, ବାଣିଜ୍ୟ ସର୍ବସାଧାରଣ ବା ପ୍ରକାଶ୍ୟ ସ୍ଥାନ, ହାଟ, ବଜାର ଭିଡ଼ ।

ଦାଣ୍ଡଆଡ଼—ଗ୍ରା. ବି. ଗୃହର ଯେଉଁ ପାଖ ରାଜଦାଣ୍ଡ ସଂଲଗ୍ନ, ଘରର ସଦର ।

ଦାଣ୍ଡଆଡ଼େ—ଗ୍ରା. ଅବ୍ୟ. ଦାଣ୍ଡ ତରଫରେ, ଗୃହର ବହିର୍ଭାଗରେ, (ବି.) (ସ୍ତ୍ରୀମାନଙ୍କ ବ୍ୟବହୃତ) ଗୃହସ୍ୱାମୀ, ନିଜର ସ୍ୱାମୀ ।

ଦାଣ୍ଡକଥା—ଗ୍ରା. ବି. ଗୃହର ବାହାରର କଥା, ଯେଉଁ ବିଷୟ ଦାଣ୍ଡରେ ବା ପ୍ରକାଶ୍ୟ ଭାବରେ ଆଲୋଚିତ ହୁଏ, ବାହାର ଲୋକଙ୍କ ସଙ୍ଗେ ସମ୍ପର୍କଥିବା ପାରିବାରିକ କଥା ।

ଦାଣ୍ଡଝଙ୍କା—ଗ୍ରା. ବି. ଘରର ବାହାର ବା ଦାଣ୍ଡ ପାଖର ଚତ୍ୱର ବା ଅଗଣା ।

ଦାଣ୍ଡଘର—ଗ୍ରା. ବି. ଗୃହର ଦାଣ୍ଡ ପାଖରେ ଅବସ୍ଥିତ କୋଠରି ।

ଦାଣ୍ଡଚୁଆଁ—ମନୁଷ୍ୟ ବାହାର ଲୋକମାନଙ୍କ ସହ ବ୍ୟବହାର କରି ଘରକୁ ଗଲେ ଦେହର ଯେଉଁ ଅପବିତ୍ରତା ହୁଏ, (ବିଂ) ଘରୁ ବାହାରକୁ ଯାଇଥିବା ଯୋଗୁଁ ଅଶୁଚି (ଶରୀର) । [ ଦ୍ୱାର ।

ଦାଣ୍ଡଦୁଆର—ଗ୍ରା. ବି. ଗୃହର ସଦର

ଦାଣ୍ଡନିଷପ—ଗ୍ରା. ବି. କୌଣସି ବିଷୟରେ ପ୍ରକାଶ୍ୟ ବିଚାର ।

ଦାଣ୍ଡପକା(କେ)ଇବା—ଗ୍ରା. କ୍ରି. ଦଣ୍ଡ ପକାଇବା, ବ୍ୟାୟାମ କରିବା ।

ଦାଣ୍ଡପଟଆଗ—ଗ୍ରା. ବି. ବାହାରର ଲୋକଙ୍କୁ ଦେଖାଇ ସେମାନଙ୍କ ମନରେ ଆସ୍ଥା ବା ବିଶ୍ୱାସ ଜନ୍ମାଇବା ପାଇଁ ଗରିବ ବା ଦେଣଦାର ଲୋକର ଅନ୍ତଃସାର ଶୂନ୍ୟ ଆଡ଼ମ୍ବର, ବ୍ୟାବସାୟିକ ପ୍ରତିପତ୍ତି ।

ଦାଣ୍ଡପହଁରା—ଗ୍ରା. ବି. ଦାଣ୍ଡ ଓଳାଇବା, ପୁଷ୍ୟମାସ ରବିବାରଦିନ ଶୂଦ୍ରଜାତୀୟ ସ୍ତ୍ରୀମାନଙ୍କର କରିବା ଓଷା ।

ଦାଣ୍ଡପିଣ୍ଡ—ଗ୍ରା. ବି. ଦାଣ୍ଡକୁ ଲାଗିଥିବା ଘରର ପିଣ୍ଡା । [ ମୂଲ୍ୟ ।

ଦାଣ୍ଡଭାଉ—ଗ୍ରା. ବି. ବଜାରର ପ୍ରଚଳିତ

ଦାଣ୍ଡମଣି(ଣି)ଷ—ଗ୍ରା. ବି. ପରିବାରର ଆଭ୍ୟନ୍ତରୀଣ ବିଷୟ ସଙ୍ଗେ ସମ୍ପର୍କ ନଥିବା ବ୍ୟକ୍ତି, ବାହାରର ଲୋକ, ଅପରିଚିତ ବ୍ୟକ୍ତି ।

ଦାଣ୍ଡମର୍ଯ୍ୟାଦା—ଗ୍ରା. ବି. ଲୋକ ସାଧାରଣଙ୍କ ମଧ୍ୟରେ କୌଣସି ବ୍ୟକ୍ତିଙ୍କର ଥିବା ପ୍ରତିଷ୍ଠା ଓ ପ୍ରତିପତ୍ତି ।

ଦାଣ୍ଡର ବାଉଁରାଣୀ—ଗ୍ରା. ବି. ପଥର ବାଉଁରାଣୀ ଦେଖ ।

ଦାଣ୍ଡର ଭିକା(ଖା)ରି—ଗ୍ରା. ବି. ସାଧାରଣ ଭିକ୍ଷୁକ, ଅତି ଅଭାବଗ୍ରସ୍ତ ଓ ନିର୍ଦ୍ଧନ ବ୍ୟକ୍ତି ।

ଦାଣ୍ଡରାସ୍ତା—ଗ୍ରା. ବି. ଦାଣ୍ଡ, ରାସ୍ତା ।

ଦାଣ୍ଡରେ ପକା(କେ)ଇବା—ଗ୍ରା. କ୍ରି. କୌଣସି ବିଷୟ ସର୍ବସାଧାରଣରେ ବିଚାରାର୍ଥ ଉପସ୍ଥାପିତ କରିବା ।

ଦାଣ୍ଡରେ ବସିବା—ଗ୍ରା. କ୍ରି. ହୃତସର୍ବସ୍ୱ ଓ ଗୃହହୀନ ହୋଇ ଭିକାରି ପରି ହୋଇ ବସିବା ।

ଦାଣ୍ଡଲୋକେ—ଗ୍ରା. ବି. ସର୍ବସାଧାରଣ ।

ଦାଣ୍ଡାଜିନକ—ପୁଂ. ବି.(ଦଣ୍ଡ+ଅଜିନ +ଇକ) ପ୍ରତାରକ, କୁହୁକୀ, କପଟ ସନ୍ନ୍ୟାସୀ ରୂପ ଧାରଣ କରି ଯେ ଲୋକଙ୍କୁ ଠକାଏ,(ସ୍ତ୍ରୀ) ଦାଣ୍ଡାଜିନିକା ।

ଦାଣ୍ଡି—ଗ୍ରା. ବି. ( ସଂ-ଦଣ୍ଡ ) ଧାଡ଼ି, ଶ୍ରେଣୀ, ଶାଖାରାସ୍ତା, ଲମ୍ବ ସିଧା ବାଟ, ଶଗଡ଼ର ସର ପଦ୍ୟ ଅକ୍ଷରର ସମତା ନ ଥାଇ ମିତାକ୍ଷର ବିଶିଷ୍ଟ ପ୍ରାଚୀନ ଓଡ଼ିଆ ପଦ୍ୟ, ପାହାଡ଼ିଆ ଅଞ୍ଚଳରେ ବ୍ୟବହୃତ ମନୁଷ୍ୟ ପିଠିରେ ବୁହାଯିବା ଚଉକିପରି ଏକପ୍ରକାର ଯାନ, ପହରାଚାଳିଙ୍କର କୌଣସି ସ୍ଥାନରେ ଗମନାଗମନ, (ଗ୍ରା.ବିଂ) ଲମ୍ବ ଓ ସିଧା, ଧାଡ଼ିମୂଳିଆ, ଶ୍ରେଣୀବଦ୍ଧ, (ପ୍ରା.ସମ୍ବ.ବି) ଲଙ୍ଗଳର ଈଶ ।

ଦାଣ୍ଡିଆ—ଗ୍ରା. ବି. (ସଂ-ଦଣ୍ଡ) ଚକର ଅର, (ଗ୍ରା.ବିଂ) ସିଧା, ସଳଖ, ସିଧା ଓ ଲମ୍ବ ।

ଦାଣ୍ଡିକ—ପୁଂ. ବି. ( ଦଣ୍ଡ+ଇକ ) ଦଣ୍ଡିଆ, ଦଣ୍ଡୀଦାର, ଯେ ପଣ୍ୟଦ୍ରବ୍ୟ ଓଜନ କରି ଜୀବିକା ନିର୍ବାହ କରେ, ଦଣ୍ଡଅସି, ଯେ ଠେଙ୍ଗାଧରି ଜୀବିକା ନିର୍ବାହ କରେ, ଛଡ଼ିବରଦାର ।

ଦାଣ୍ଡିକୀଳା—ଗ୍ରା. ବି. ଶଗଡ଼ର ଅଖ-ମଧ୍ୟରେ ମରାଯାଇଥିବା କୀଳା ।

ଦାଣ୍ଡିକ୍ୟ—ବି. (ଦାଣ୍ଡିକ+ଯ) ଦାଣ୍ଡି-କର ଭାବ ।

ଦାଣ୍ଡିକର—ଗ୍ରା. ବି. ଯେଉଁ ଓଡ଼ିଆ ଗୀତରେ ପଦମାନଙ୍କର ଅକ୍ଷର ସଂଖ୍ୟା ସମାନ ନ ଥାଏ, ମାତ୍ର ମିତାକ୍ଷର ପରି ଶେଷବର୍ଣ୍ଣ ମାତ୍ର ମେଳୁଥାଏ ।

ଦାଣ୍ଡିଗୁ—ଗ୍ରା. ବି. (ପାନବରଜ ଭାଷା) ନୂଆ ପାନବରଜରେ ପଗକୁ ପଗ କଟା-ଯାଇ ବେଢ଼ିତହେବା ପାନଲତା ।

ଦାଣ୍ଡିଛଡ଼ିଯିବା—ଗ୍ରା. ବି. କୌଣସି ରାସ୍ତାରେ ଶଗଡ଼ଗାଡ଼ିଆଦି ଯାତାୟାତ କରିବା ଯୋଗୁଁ ଶଗଡ଼ସର ଚକ୍ରରେଖା ପଡ଼ିଯାଇଥିବା ।

ଦାଣ୍ଡିଦେବା—ଗ୍ରା. କ୍ରି. ବୁଲିବା, ନିର୍ଦ୍ଧାରିତ ସୀମାରେ ଯିବାଆସିବା କରି ପହରା ଦେବା ।

ଦାଣ୍ଡିପୋଥି—ଗ୍ରା.ବି. ଯେଉଁ ପୋଥିରେ ଧାଡ଼ିମୂଳିଆ ଲେଖାହୋଇଥାଏ, ଯେଉଁ ପୋଥିରେ ପଦ୍ୟର ଛନ୍ଦର ନିୟମ ନ ଥାଏ ।

ଦାଣ୍ଡିବୃତ୍ତ(ଋ)—ଗ୍ରା. ବି. ଅକ୍ଷର ନିୟମ ରକ୍ଷା କରି ନ ଯାଇ ଲେଖାଯାଇଥିବା ପଦ୍ୟ ।

ଦାଣ୍ଡିବୋଲିବା—ଗ୍ରା. କ୍ରି. ଯତିପାତ ବା ଛନ୍ଦକୁ ଦୃଷ୍ଟି ନ ରଖି ପଦ୍ୟକୁ ଗଦ୍ୟ-ଭଳି ବୋଲିଯିବା ।

ଦାଣ୍ଡିଭାରତ—ଗ୍ରା. ବି. ଶାରଳାଦାସଙ୍କ ରଚିତ ମିତାକ୍ଷରବିଶିଷ୍ଟ କିନ୍ତୁ ଅସମ ସଂଖ୍ୟକ ଅକ୍ଷରଯୁକ୍ତ ଓଡ଼ିଆ ମହାଭାରତ ।

ଦାଣ୍ଡିମାରିବା ବା ଗୁଡ଼ିବା—ଗ୍ରା. କ୍ରି. ବହୁଦୂର ବାଟ ଲମ୍ବେ ଲମ୍ବେ ଭ୍ରମଣ କରିବା; ଦାଣ୍ଡରେ ବୁଲିବା, ବୃଥାରେ ଏଣେତେଣେ ବୁଲିବା ।

ଦାଣ୍ଡିମାଳ—ଗ୍ରା. ବି. ପୁରୀଜିଲ୍ଲା ଖୋର୍ଦ୍ଧା ସବ୍‌ଡିଭିଜନର ଗୋଟିଏ ପ୍ରଗନା ।

ଦାଣ୍ଡିରାମାୟଣ—ଗ୍ରା. ବି. ବଳରାମଦାସଙ୍କ ରଚିତ ଦାଣ୍ଡିବୃତ୍ତର ଓଡ଼ିଆ ରାମାୟଣ ।

ଦାଣ୍ଡିରାସ୍ତା—ଗ୍ରା.ବି. ଯେଉଁ ପଥ ସିଧା-ହୋଇ ବହୁଦୂର ପର୍ଯ୍ୟନ୍ତ ଯାଇଥାଏ, ଶଗଡ଼,ଗାଡ଼ିଆଦି ଯିବାର ରାସ୍ତା,କୌଣସି ସ୍ଥାନରୁ ଅନ୍ୟସ୍ଥାନକୁ ଯିବାପାଇଁ ସରଳ-ତମ ବାଟ, ବଡ଼ରାସ୍ତାରୁ ବାହାରିଥିବା ଶ୍ରେଷ୍ଠ ରାସ୍ତା ।

ଦାଣ୍ଡୁ—ଗ୍ରା. ବି. ( ସଂ-ଦଣ୍ଡ ) ପେଣ୍ଡୁ-ଖେଳର ଚଟୁ, ବାଟ, ଡାବଲପୁଆ-ଖେଳର ପୁଆ ।

ଦାଣ୍ଡେ—ଗ୍ରା. ଅବ୍ୟ. ଜନର ସମ୍ମୁଖରେ, ସର୍ବସାଧାରଣରେ ।

ଦାଣ୍ଡେଇ—ଗ୍ରା.ସ୍ତ୍ରୀ.ବିଂ. ଯେଉଁ ବାଳିକା ବା ସ୍ତ୍ରୀ ଅଧିକାଂଶ ସମୟ ଘରେ ନ ରହି ଏଣେତେଣେ ବା ଦାଣ୍ଡରେ ବୁଲେ ।

ଦାତ—ବିଂ. (ଦୋ+ମଁ.ତ) ଛିନ୍ନ,କର୍ତ୍ତିତ. (ଦୈ+ମଁ.ତ) ଶୁଦ୍ଧ, ପବିତ୍ର, ( ସ୍ତ୍ରୀ ) ଦାତା ।

ଦାତବ୍ୟ—ବିଂ. (ଦା+ମଁ.ତବ୍ୟ) ଦେୟ, ଯାହା ଦେବାର ଉଚିତ,ଦାନଯୋଗ୍ୟ, ଯାହାଦେବା ଆବଶ୍ୟକ,ଖଇରାତ୍, ଯାହା ଦାନସ୍ୱରୂପ ଦିଆଯାଏ, (ଗ୍ରା.ବି) ଯେଉଁ-ଠାରେ ଦାନ ଦିଆଯାଏ, ଦାନ, (ଗ୍ରା.ବିଂ) ଖଇରାତ୍ କରାଯିବା, ପ୍ରବନ୍ଧ ।

ଦାତବ୍ୟଔଷଧାଳୟ—ଗ୍ରା. ବି. ଯେଉଁ ଡାକ୍ତରଖାନାରେ ରୋଗୀମାନଙ୍କୁ ବିନା ବ୍ୟୟରେ ଔଷଧ ଦାନ ଓ ପରିଚର୍ଯ୍ୟା କରାଯାଏ ।

ଦାତବ୍ୟବିଦ୍ୟାଳୟ—ଗ୍ରା. ବି. ଯେଉଁ ବିଦ୍ୟାଳୟରେ ପିଲାମାନେ ଦରମା ନ ଦେଇ ପାଠ ପଢ଼ନ୍ତି ।

ଦାତା—ପୁଂ. ବିଂ. (ଦା+କ.ତୃ) ଦାନ-କାରୀ, ଯେ ଦାନକରେ, ଦାନଶୀଳ, ବଦାନ୍ୟ, (ସ୍ତ୍ରୀ) ଦାତ୍ରୀ, ( ପୁଂ. ବି ) ଦାନକାରୀ ବ୍ୟକ୍ତି ।

ଦାତାକର୍ଣ୍ଣ—ବି. କର୍ଣ୍ଣ ଦେଖ. (ଗ୍ରା.ବି) କର୍ଣ୍ଣରାଜାଙ୍କ ପରି ଅସାଧାରଣ ଦାତା ବ୍ୟକ୍ତି ।

ଦାତାପଣ—ଗ୍ରା.ବି. ଦାତୃତ୍ୱ,ବଦାନ୍ୟତା ।

ଦାତାରାମ୍—ଯା.ବି. ଅକାତରରେ ଦାନ କରିବା ବ୍ୟକ୍ତିବିଶେଷ.ଦାନଶୀଳବ୍ୟକ୍ତି, ଦାନଶୀଳ ରାମ ବା ଭଗବାନ୍ ।

ଦାତାଷଣ୍ଡ(ଣ୍ଡ)—ଗ୍ରା.ବି.(ସଂ-ଦାନଶୌଣ୍ଡ) ଅକାତରରେ ଦାନ କରିବା ବ୍ୟକ୍ତି, ଦାନକରିବାକୁ ଉତ୍କଣ୍ଠିତ,ଦାନବୀର ।

ଦାତୃଗୁଣ—ଗ୍ରା. ବି. ( ସଂ-ଦାତୃତା ) ଦାତାପଣିଆଁ ।

ଦାତୃତା(ତ୍ୱ)—ବି. ( ଦାତୃନ୍+ଷ.ତା ) ଦାତାପଣିଆଁ, ବଦାନ୍ୟତା ।

ଦାତ୍ୟୂହ—ବି. (ଦୋ+ଷ.କ୍ତି--ଦାତି, ଦାତି+ଊହ+କ.ଅ) ଡାହୁକପକ୍ଷୀ; ଚାତକ ପକ୍ଷୀ, ମେଘ, ଜଳକାକ,ପାଣି-କୁଆ, କାଳକଣ୍ଠ ।

ଦାତ୍ୟୂହକ—ବି.(ଦାତ୍ୟୂହ+କ)ଡାହୁକ ।

ଦାଢ଼ୌହ—ବି. ଦାଢ଼୍ୟୌହ ଦେଖ ।
ଦାଣ—ବି. (ଦେ + ଣ.ଣି) ଦାଆ,କାତ, କଟାରି ।
ଦାତ୍ରୀ—ବି. ଦାନକର୍ତ୍ତ୍ରୀ, ଗଙ୍ଗା ।
ଦାତ୍ର—ବି. ଦାତା, ଯଜ୍ଞକର୍ମ ।
ଦାଦ୍—ଯା. ବି. ପ୍ରତିଶୋଧ ।
ଦାଦ୍ଖାନ—ଗ୍ରା.ବି. ଦାଦ୍ଖାନ ଦେଖ ।
ଦାଦ—ବି. (ଦଦ୍ + ଘ.ଅ) ଦାନ, (ଯା. ବି) ପ୍ରତିଶୋଧ, ନ୍ୟାୟବିଚାରର ପ୍ରାର୍ଥନା, ନିଷ୍ପାପ ।
ଦାଦନ—ଯା. ବି. କୌଣସି କାର୍ଯ୍ୟ ପାଇବା ଆଶାରେ ଧନ ଆଗଉରା ଦେବା. ଅଗ୍ରିମଦାନ, ଧନାଦି ଅଗ୍ରିମ ଦେବାର ରୀତି,ଧନ ବା ଶସ୍ୟାଦି ସୁଧରେ ଖଟା-ଇବା, ଧାନଦେଢ଼ି ଲଗାଇବା,ମୂଲିଆ-ମାନେ ଭବିଷ୍ୟତରେ କାମକରିବେ-ବୋଲି ତାଙ୍କୁ ଆଗଉରା ଟଙ୍କାଦେବା ।
ଦାଦନଦାର—ଯା. ବିଂ. ଯେ ଦାଦନ ଦିଏ ।
ଦାଦନୀ—ଯ. ବିଂ. ଦାଦନ ଦିଆଯିବା, ଆଗଉରା ଦିଆଯିବା, ଅଗ୍ରିମଦେୟ, ଦାଦନ ସମ୍ବନ୍ଧୀୟ, (ବି) ଆଗଉରା ଦିଆଯିବା ଧନ ବା ବସ୍ତୁ ।
ଦାଦଫିରାଦ—ପ୍ରା. (ଢେଙ୍କାନ) ବି. ନଜର, ଦୃଷ୍ଟି, (ଯା.ବି) ନ୍ୟାୟବିଚାରର ପ୍ରାର୍ଥନା ।
ଦାଦା—ପ୍ରା(ମେଦି.ସମ୍ବ) ବଡ଼ଭାଇ, ପିତା-ମହ, ଅଜା, ଦାଦି ଦେଖ ।
ଦାଦାଢ଼ି(ଡ଼ି)ଆ—ଗ୍ରା. ବିଂ. ଦାଆ ବା କରତ ଦାନ୍ତପରି ଦନ୍ତୁର ।
ଦାଦାଭଟ(ଭଟ୍ଟ)—ଗ୍ରା. ବି. ପୁନାର ଜ୍ୟୋତିଷ ଗ୍ରନ୍ଥର ଟୀକାକାର ପଣ୍ଡିତ ବ୍ରାହ୍ମଣ ।
ଦାଦାଭାଇନଉରୋଜୀ—ଗ୍ରା.ବି. ଭାରତର ପ୍ରସିଦ୍ଧ ସ୍ୱର୍ଗୀୟ ପାର୍ସୀଦେଶ ହିତୈଷୀ ।
ଦାଦି—ଗ୍ରା. ବି. (ସଂ-ତାତ) ବାପାଙ୍କ ଭାଇ, କକେଇ, (ପ୍ରା. ବସ୍ତର. ବି) ପିତାମହ ।
ଦାଦୁ—ଗ୍ରା. ବି. (ସଂ-ଦଦ୍ରୁ) ଜାଦୁ,ଦଦ୍ରୁ-ରୋଗ, ବଡ଼ବାପ ।
ଦାଦୁଆ—ଗ୍ରା. ପୁଂ. ବିଂ. (ସଂ-ଦଦ୍ରୁର) ଜାଦୁରା, ଦଦ୍ରୁରୋଗାକ୍ରାନ୍ତ, ଉପରେ ଜାଦୁ ମାଡ଼ିଲପରି ଦେଖାଯାଉଥିବା (ବସ୍ତୁ ବା ଚମଡ଼ା) ।
ଦାଦୁଖାଇ—ଗ୍ରା. ବି. (ସଂ-ଦଦ୍ରୁମର୍ଦ୍ଦନ) ଦାଦୁଖାଇ ଗଛ, କାଞ୍ଚନାଦି ବର୍ଗର ଏକପ୍ରକାର ଗଛ, ଚକୁଣ୍ଡା ଦେଖ ।
ଦାଦୁମଲମ—ଗ୍ରା. ବି. ଜାଦୁରୋଗ ନାଶ-କରିବାପାଇଁ ବ୍ୟବହୃତ ମଲମ ।
ଦାଦୁମାଡ଼ିବା—ଗ୍ରା. କ୍ରି. ଦଦ୍ରୁଦେହରେ ବିସ୍ତୃତ ଲାଭକରିବା ।
ଦାଦୁମାରିବା—ଗ୍ରା. କ୍ରି. ଜାଦୁରୋଗକୁ ଔଷଧଦ୍ୱାରା ଲୋପ କରିବା ।
ଦାଦୁମାରି—ଗ୍ରା. ବି. ଜାଦୁମାରି, ଦଦ୍ରୁଘ୍ନ ବୃକ୍ଷବିଶେଷ, ଧଉରାଞ୍ଜି ଗଛ ।
ଦାଧିକ—ବିଂ. (ଦଧି+ଇକ) ଦଧିଯୁକ୍ତ, (ବି) ଦଧିଘୃତ, ଘୃତୌଷଧବିଶେଷ ।
ଦାନ୍—ଯା.ବି.ଦାନୀ, ଆଧାର, ରଖିବାର ସ୍ଥାନ, (ପ୍ରା. ସମ୍ବ. ବି) ପାଦ, ଗୋଡ଼ ।
ଦାନ—ବି. (ଦା + ଭା.ଅନ) ଅର୍ପଣ, ତ୍ୟାଗ, ଦେବା, ବିତରଣ, ଦତ୍ତବସ୍ତୁ, (ମିଁ.ଅନ) ଗଜମଦ, ହସ୍ତୀର ମଦଜଳ, (ଦେ + ଭା.ଅନ) ରକ୍ଷା, ପାଳନ,(ଦୋ + ଭା.ଅନ) ଛେଦନ, କର୍ତ୍ତନ, (ଦୈ + ଭା.ଅନ) ଶୋଧନ, କୀଟଜ ମଧୁ, ପୁଣ୍ୟାର୍ଥ ଧନାଦି ବିତରଣ, ରାଜସ୍ୱ, କର, ରାଜନୀତିର ଚାରିଉପାୟ ମଧ୍ୟରୁ ଏକ, ଅର୍ଥାତ୍ ଦାନପୂର୍ବକ ଶତ୍ରୁ ବଶୀ-ଭୂତରେ କାର୍ଯ୍ୟସାଧନ କରିବାର ରୀତି, ଟିକସ, ମାହାସୁଲ. (ଗ୍ରା.ବି) ପଶାକାଠି ଗଡ଼ାଇଲେ ତନ୍ନିଚିୟାକ କାଟିରେ ଯେଉଁ ସଂଖ୍ୟକ ବିନ୍ଦୁ ଚିତହୋଇ ପଡ଼ି-ବାର ଦେଖାଯାଏ, କଉଡ଼ି ଖେଳରେ କଉଡ଼ି ମୁଠା ଦ୍ୱାରା ପକାଇଲେ ତାହା ଭୂମିରେ ଚିତହୋଇ ପଡ଼ିବା ଅନୁ-ସାରେ ଧରାଯିବା ସଂଖ୍ୟା, ବ୍ୟୟ, (ପ୍ରା. ସମ୍ବ. ବି) ଶୁଳ୍କ, ଚୁଙ୍ଗୀ ଟିକସ ।
ଦାନକ—ବି.(ଦାନ + କ)କୁତ୍ସିତ ଦାନ ।
ଦାନକରିବା—ଗ୍ରା. କ୍ରି. ଅନ୍ୟ ବ୍ୟକ୍ତିକୁ କୌଣସି ବସ୍ତୁ ବା ଧନ ଅର୍ପଣ କରିବା, ବିତରଣ କରିବା, ଦେବା ଦେଖ ।
ଦାନକର୍ମ—ବି. ଦାନକ୍ରିୟା ।
ଦାନକୁଲ୍ୟା—ବି. ହାତୀର ଗଣ୍ଡ ସ୍ଥଳରୁ ସ୍ରବିବା ଦାନବାରି ବା ମଦଜଳ ।
ଦାନକେଲୀ—ବି. ଶ୍ରୀରୂପ ଗୋସ୍ୱାମୀକୃତ ଭଣିକା ଲକ୍ଷଣାକ୍ରାନ୍ତ ଦୃଶ୍ୟକାବ୍ୟ ।
ଦାନଖାଇ(ଏ)ରାନ୍ତ—ଗ୍ରା. ବି. ଦାନ ।
ଦାନଗାଦ—ପ୍ରା.(ସମ୍ବ)ବି. ମ୍ୟୁନିସିପାଲିଟି ଏରିଆରେ ବିକ୍ରି କରିବା ପାଇଁ ମଫ-ସଲରୁ ପଣ୍ୟାଦି ଅଣୁଥିବା ବ୍ୟକ୍ତିଠାରୁ ଶୁଳ୍କ ଆଦାୟ କରାଯିବା କାର୍ଯ୍ୟାଳୟ ।
ଦାନଗାଦମାହାସୁଲ—ପ୍ରା(ସମ୍ବ)ବି, ସହର ମଧ୍ୟକୁ ଆସିବା ପଣ୍ୟଦ୍ରବ୍ୟ ଉପରେ ମିଉନିସିପାଲିଟି ଯେଉଁ ଶୁଳ୍କ ଆଦାୟ କରେ ।
ଦାନଗ୍ରହଣକରିବା—ଗ୍ରା. କ୍ରି, ଅନ୍ୟର ପ୍ରଦତ୍ତ ଦ୍ରବ୍ୟ ନେବା ।
ଦାନଘାଟୀ—ଗୋବର୍ଦ୍ଧନସ୍ଥ ଶ୍ରୀକୃଷ୍ଣଙ୍କର ଲୀଳାସ୍ଥାନ ।
ଦାନଜଳ—ବି.ମଦ ବାରି, ହସ୍ତୀର ଗଣ୍ଡ-ସ୍ଥଳାଦିରୁ ନିଃସୃତ ଜଳ, ଦାନ ସମ-ୟରେ ବ୍ରାହ୍ମଣ ହସ୍ତରେ ଦିଆଯିବା ଜଳ । [କର୍ମ ।
ଦାନଧର୍ମ—ଗ୍ରା. ବି. ଦାନଆଦି ପୁଣ୍ୟ-
ଦାନପତି—ବି. ଅକ୍ରୂରଙ୍କର ଏକ ନାମ, ଦୈତ୍ୟବିଶେଷ, (ବିଂ) ଅତିଶୟ ଦାତା, ମହାଦାନୀ ।
ଦାନପତ୍ର—ବି. (କ.ଧା) ଦତ୍ତପତ୍ର, କୌଣସି ସମ୍ପତ୍ତି ଅନ୍ୟକୁ ଦାନ କରି-ବାର ଲେଖା ।
ଦାନପଦ୍ଧତି—ବି.ଦାନ ବିଷୟକ ପଦ୍ଧତି, ଦାନର ପ୍ରଣାଳୀ, ଦାନର ନିୟମ ।
ଦାନପାତ୍ର—ବି. (୬ତତ୍ପୁ) ଦାନ ଗ୍ରହଣ କରିବାର ଉପଯୁକ୍ତ ବ୍ୟକ୍ତି ।
ଦାନପ୍ରତିଭାବ୍ୟ—ବି. ଋଣ ଦେବେ ଧାର୍ଯ୍ୟ ଜାମିନ୍ ।
ଦାନଫଳ—ବି. ଦାନର ଫଳ, ଦାନ ଯୋଗୁଁ ଧର୍ମ ସଞ୍ଚୟ ।

ଦାନବ—ପୁଂ. ବି. (ଦନୁ+ଅ) ଦନୁଜ, ଅସୁର, ରାକ୍ଷସ, (ସ୍ତ୍ରୀ) ଦାନବୀ ।

ଦାନବଗୁରୁ--ପୁଂ.ବି.(୬ତତ୍)ଶୁକ୍ରାଚାର୍ଯ୍ୟ ।

ଦାନବଜ୍ର—ବି. ବୈଶ୍ୟ ଜାତିର ଅଶ୍ୱବିଶେଷ ।

ଦାନବଦଳନୀ—ସ୍ତ୍ରୀ. ବି. (୬ତତ୍)ଦୁର୍ଗା ।

ଦାନବାରି--ବି.(ଦାନବ+ଅରି) ୬ତତ୍; ଦେବତା, ବିଷ୍ଣୁ, ( ଦାନ+ବାରି—ରୂପକ. କ.ଧା ) ହସ୍ତୀର ଗଣ୍ଡସ୍ଥଳରୁ କ୍ଷରିତ ମଦଜଳ ।

ଦାନବିଧି—ବି. ଦାନ କରିବାର ବିଧାନ ବା ନିୟମ । [ ଦେଖ ।

ଦାନବୀର—ବିଂ. ( ୬ତତ୍ ) ଦାନପତି

ଦାନବେନ୍ଦ୍ର—ବି. (୬ତତ୍) ରାଜା ବଳି ।

ଦାନବେୟ—ବି. ଦକ୍ଷକନ୍ୟା ଦନୁର ଅପତ୍ୟ ।

ଦାନବ୍ରତ—କ୍ଲୀ. ବି. ଦାନରୂପ ବ୍ରତ ।

ଦାନଶକ୍ତି—ସ୍ତ୍ରୀ. ବି. ଦାନ କରିବାର କ୍ଷମତା, ଦାତୃତ୍ୱ ।

ଦାନଶୀଳ—ପୁଂ. ବିଂ. (ବ.ବ୍ରୀ) ଦାନୀ, ବଦାନ୍ୟ, (ସ୍ତ୍ରୀ) ଦାନଶୀଳା ।

ଦାନଶୀଳତା(ତ୍ୱ)—ବି. ( ଦାନଶୀଳ+ଭା.ତା) ବଦାନ୍ୟତା ।

ଦାନଶୂର—ପୁଂ.ବି.ଦାନବୀର,ଶାକ୍ୟମୁନି

ଦାନଶୌଣ୍ଡ—ପୁଂ.ବିଂ.(୬ତତ୍) ଅତ୍ୟନ୍ତ ବଦାନ୍ୟ ।

ଦାନସଜ୍ଜା—ବି.(୬ତତ୍) ଦାନ କରିବାର ଉପକରଣ ।

ଦାନସାଗର—ବି. ( ୬ତତ୍ ) ଶ୍ରାଦ୍ଧାଦି ଉପଲକ୍ଷରେ ବ୍ରାହ୍ମଣଙ୍କୁ ଯେଉଁ ଷୋଡ଼ଶ ଦାନ ଦିଆଯାଏ ତନ୍ମଧ୍ୟର ପ୍ରତ୍ୟେକର ୧୬ ସଂଖ୍ୟାବିଶିଷ୍ଟ ଦାନ, ୧୬ ଗୋଟି ଷୋଡ଼ଶ, ଷୋଡ଼ଶଦାନ ଦେଖ ।

ଦାନଯୋଗ୍ୟ—ବିଂ. ( ୬ତତ୍ ) ଦାନର ଯୋଗ୍ୟ, ଦାନର ପାତ୍ର ।

ଦାନା—ସା.ବି. ଘୋଡ଼ା ଗୋରୁଆଦିଙ୍କ ଖାଇବା ନିମନ୍ତେ, ମଟରପରି ଶ୍ରେଷ୍ଠ ଶ୍ରେଷ୍ଠ ଗୋଲାକାର ବୀଜ, ଶ୍ରେଷ୍ଠଶ୍ରେଷ୍ଠ ଗୋଲ ବସ୍ତୁ, ଚୁଆ, ଖାଦ୍ୟ, ଅନ୍ନ, ଭୋଜ୍ୟ ବସ୍ତୁ, ମାଳା ଗୁନ୍ଥାଯିବା ସୁନାଆଦିର କ୍ଷୁଦ୍ର ଗୋଲକ, ଅନ୍ନ ସଂସ୍ଥାନ, ଜୀବିକା, (ଗ୍ରା.ବି. ସଂ-ଦାନବ) ରାକ୍ଷସ, ଅସୁର, ଭୂତ ।

ଦାନାକନା—ଗ୍ରା.ବି.ଅନ୍ନ ବସ୍ତ୍ର,ଖାଇବାକୁ ଅନ୍ନ ଓ ପିନ୍ଧିବାକୁ ବସ୍ତ୍ର ।

ଦାନାଖଞ୍ଜିବା—ଗ୍ରା.କ୍ରି. କୌଣସି ବ୍ୟକ୍ତିର ଜୀବିକା ନିର୍ବାହର ଉପାୟ କରିବା, ( ଈଶ୍ୱର ) କୌଣସି ବ୍ୟକ୍ତିର ପୋଷି ହେବାର ଉପାୟ କରିବା ।

ଦାନାଗଡ଼ା—ଗ୍ରା. ବି. ( ବଣିଆ ଶବ୍ଦ ) ବର୍ତ୍ତୁଳାକାର ଶ୍ରେଷ୍ଠ ଭଡ଼ ସୁନାର ଗୁଆକୁ ସମ୍ପୂର୍ଣ୍ଣ ଗୋଲାକାର କରିବାଲାଗି ବ୍ୟବହୃତ ଦୁଇଫାଳିଆ ଯନ୍ତ୍ରବିଶେଷ ।

ଦାନାଝଡ଼ାଖୁଣ୍ଟି—ଗ୍ରା. ବି. ଲଡ଼ୁଆଦିର ଦାନା ଜାଲଚଟୁରେ ଛାଣିବାବେଳେ ଚଟୁକୁ ଯେଉଁ ଖୁଣ୍ଟିରେ ବାଡ଼େଇ ଦାନାକୁ ଝଡ଼ାଇଦିଅନ୍ତି ।

ଦାନାଦାର—ସା. ବିଂ. ଦାନାପରି ଶ୍ରେଷ୍ଠ ଓ ଗୋଲ ଗୁଆଗୁଆ, ଯାହାଙ୍କ ଅଧୀନରେ କୌଣସି ମନୁଷ୍ୟ ଚାକିରି କରି ପେଟ ପୋଷି ହେଉଥାଏ ନିଜର ପ୍ରଭୁ ବା ପୋଷଣାଧିକାରୀ, ଜମିଦାର ।

ଦାନାଦେବା—ଗ୍ରା. କ୍ରି. ଦାନାଖଞ୍ଜିବା (ଦେଖ), ଘା ଇତ୍ୟାଦି ଗୁଆଦେବ, (ଘା ଶୁଖିବାର ଚିହ୍ନ) ।

ଦାନାଧିକ୍ୟ—ଗ୍ରା. ପ୍ର. ପୁଂ. ବି. (ସଂ-ଦାନାଧ୍ୟକ୍ଷ) ରାଜା ଶାସନ ସ୍ଥାପନକରିବା ସମୟରେ ଯେଉଁ ବ୍ରାହ୍ମଣଙ୍କୁ ସମସ୍ତ ଦାନଗ୍ରହୀତା ବ୍ରାହ୍ମଣମାନଙ୍କର ପ୍ରତିନିଧି ରୂପେ ଭୂମି ଦାନକରନ୍ତି, ପାଣିଗ୍ରାହୀ ।

ଦାନାଧ୍ୟକ୍ଷ—ବି. ଦାନାଧିକ୍ୟ ଦେଖ ।

ଦାନାପାଣି—ଗ୍ରା.ବି. ଆହାର ଓ ପାନୀୟ, ଟିଆପିଆ, ଜୀବିକା, ଜୀବନୋପାୟ, ଭରଣପୋଷଣ, ଚାକିରି ।

ଦାନାପାଣିଉଠିବା—ଗ୍ରା.କ୍ରି.ଚାକିରିଯିବା

ଦାନାପାଣି ଖଞ୍ଜିବା—ଗ୍ରା. କ୍ରି. କୌଣସି ବ୍ୟକ୍ତିକୁ ଜୀବିକାର ଉପାୟ କରିଦେବା ।

ଦାନାପାଣିଛୁଟିବା—ଗ୍ରା.କ୍ରି. ରୋଗ ବା ଚିନ୍ତା ବା ଦୁଃଖର ମନୋଦୁଃଖରେ ଅନ୍ନଜଳ ଗ୍ରହଣ ନ କରିବା ।

ଦାନାମାରିବା—ଗ୍ରା. କ୍ରି. ଅନ୍ୟବ୍ୟକ୍ତିର ଜୀବିକା ନିର୍ବାହର ପଥରୋଧ କରିବା, ଦାନାରେ ଧୂଳିଦେବା ।

ଦାନୀ—ପୁଂ.ବିଂ. (ଦାନ+ଇନ୍) ଦାତା, ଯେ ଦାନ ଗ୍ରହଣ କରେ, ଗ୍ରା.ବି. (ସଂ-ଆଧାନ) ଆଧାର, ପାତ୍ର, ମସାଲରେ ତେଲ ପକାଇବା ନିମନ୍ତେ ବ୍ୟବହୃତ ଆଧାର, ଯେଉଁ ବ୍ୟକ୍ତି ରାଜାଙ୍କ ପକ୍ଷରୁ କର ବା ଶୁଳ୍କ ଆଦାୟ କରେ, (ସମ୍ବଲପୁର)ବ୍ରାହ୍ମଣଙ୍କ ଉପାଧିବିଶେଷ ।

ଦାନୀଏଲ—ଗ୍ରା. ବି. ବାଇବେଲ ଲିଖିତ ଧର୍ମ ପ୍ରଚାରକଙ୍କ ନାମ ।

ଦାନୀୟ—ବିଂ. (ଦା+ର୍ମ.ଅନୀୟ) ଦାନଯୋଗ୍ୟ, ଦେୟବସ୍ତୁ, ( ଦା+ସଂଜ୍ଞା ଅନୀୟ ) ଦାନପାତ୍ର, ଦାନୁଆ ।

ଦାନୁ—ବି. ଦାତା, ବିକ୍ରାନ୍ତ, ବାୟୁ, ସୁଖ, ର୍ମ. ଦାନିବ, ଦାନ, ବର୍ଷଣ, ଦେଗୁ ଧନ ।

ଦାନୁଆ—ଗ୍ରା. ବିଂ. (ସଂ-ଦାନୀୟ) ଦାନକରିବାର ଯୋଗ୍ୟ, ଦଉହେବାର ଯୋଗ୍ୟ (ବସ୍ତୁ), ଦାନଗ୍ରହଣ କରିବାର ଯୋଗ୍ୟ (ବ୍ୟକ୍ତି), ଯେ ଦାନ ଗ୍ରହଣକରେ, (ଗାଳି, (ଲ.ଅର୍ଥ) ଅକର୍ମଣ୍ୟ ।

ଦାନୁଜ—ପୁଂ.ବି. ଧନଦାତା ।

ଦାନେଚ୍ଛା—ବି. (ଦାନ+ଇଚ୍ଛା) ୬ତତ୍, ଦାନକରିବାର ଇଚ୍ଛା, ଦୟା ।

ଦାନ୍ତ—ବିଂ. (ଦନ୍ତ+ଅ) ଦନ୍ତସମ୍ବନ୍ଧୀୟ, ଦନ୍ତନିର୍ମିତ, (ଦମ୍+ର୍ମ.ତ) ବଶୀକୃତ, ବଶିତ, ଦମିତ, (ଦମ୍+କ.ତ) ତପସ୍ୟାରେ କ୍ଲେଶସହିଷ୍ଣୁ, ଯେ ବାହ୍ୟେନ୍ଦ୍ରିୟ ବଶକରିଅଛି, ଜିତେନ୍ଦ୍ରିୟ, ଶାନ୍ତ, ସୌମ୍ୟ, ଶାସିତ, (ଦ+ଅନ୍ତ) ବ.ବ୍ରୀ, ଯେଉଁ ଶବ୍ଦର ଶେଷରେ ଦ ଅକ୍ଷର ଅଛି, (ବି) ଭୀମସେନ ରାଜାଙ୍କର ପୁତ୍ର, ଦମୟନ୍ତୀଙ୍କ ଭ୍ରାତା, ଦମନବୃକ୍ଷ(ଦେଖ), ମଦଣଫଳ (ଦେଖ), ଗ୍ରା.ବି. (ସଂ-ଦନ୍ତ)

ଦନ୍ତ, ହାତୀଦାନ୍ତ, ଦାନ୍ତପର ବାହାର-ଥିବା ମୁନିଆଁ ବସ୍ତୁ ।

ଦାନ୍ତଉଠିବା—ଗ୍ରା.ବି.ଦନ୍ତୋଦ୍ଗମ ହେବା ।

ଦାନ୍ତଉପାଡ଼ିବା—ଗ୍ରା.ଦାନ୍ତକୁ ଟାଣିଆଣି ମୂଳୋତ୍ପାଟନ କରିବା, ଗର୍ବ ଚୂର୍ଣ୍ଣ-କରିବା । [ ପଡ଼ିବା ।

ଦାନ୍ତଉପୁଡ଼ିବା—ଗ୍ରା. କ୍ରି. ଦାନ୍ତ ଖସି-

ଦାନ୍ତକଟକଟହେବା—ଗ୍ରା.ବି. ଦାନ୍ତମୂଳ ବିନ୍ଧିବା, ଦାନ୍ତ ଶୂଳେଇହେବା ।

ଦାନ୍ତକଡ଼ମଡ଼କରିବା—ଗ୍ରା.କ୍ରି.(କ୍ରୋଧ-ବା ସ୍ୱପ୍ନରେ) ଦାନ୍ତରେ ଦାନ୍ତ ଘଷି-ହୋଇ ଯିବାରୁ ଶବ୍ଦକରିବା, ଦାନ୍ତରେ ଦାନ୍ତକୁ ରଗଡ଼ି କଡ଼ମଡ଼ ଶବ୍ଦକରିବା ।

ଦାନ୍ତକଡ଼ମଡ଼—ଗ୍ରା.ବି. ଦାନ୍ତରେ ଦାନ୍ତ ଘଷିହୋଇ ଉତ୍ପନ୍ନ କଡ଼ମଡ଼ ଶବ୍ଦ, ଦନ୍ତଘର୍ଷ ।

ଦାନ୍ତକବାଟି—ଗ୍ରା. ବି. ହନୁସ୍ତମ୍ଭ, ହନୁ-ଗ୍ରହ ରୋଗ, ଉପ୍ପାଦରୁ ଦୁଇ ପାଟି-ଯାକ ଦାନ୍ତ ପଡ଼ିଯାଇ ଆଉ ନ ଫିଟିବା ଅବସ୍ଥା ।

ଦାନ୍ତକାଠି—ଗ୍ରା.ବି.(ସଂ-ଦନ୍ତକାଷ୍ଠ)ଦାନ୍ତ ଘଷିବା କାଠି ।

ଦାନ୍ତକାଠିଗଛ——(ପ୍ରା. ଯାଜପୁର.ବି.) ଦନ୍ତୀଗଛ ।

ଦାନ୍ତକାଠିପାଣି—ଗ୍ରା.ବି. ସକାଳୁ ଶଯ୍ୟା-ତ୍ୟାଗପରେ ମୁହଁ ଧୋଇବା ଓ ଦାନ୍ତ ଘଷିବାପାଇଁ ଲୋଡ଼ା ଦାନ୍ତକାଠି ଓ ଜଳ ।

ଦାନ୍ତକୋଳମାରିଯିବା—ଗ୍ରା.ବି. ବିଶେଷ ଖଟାଖାଇବା ଯୋଗୁଁ ଦାନ୍ତ ଦରଜ-ହେବ ପରି ହେବା ।

ଦାନ୍ତଖିର—ଗ୍ରା. ବି. ପୁରୁଣା ଦେଉଳ-ମାନଙ୍କର ପଥରସନ୍ଧିରେ ଓ ପାହାଡ଼ିଆ ଜାଗାରେ ଉଠିବା ଗୁଳ୍ମବିଶେଷ ।

ଦାନ୍ତଖୁଣ୍ଟା—ଗ୍ରା.ବି.ଯେଉଁ ସରୁ ଖଡ଼ିକା ଦ୍ୱାରା ଦାନ୍ତସନ୍ଧିରେ ଲାଗିଥିବା ଖାଦ୍ୟାଂଶ ବାହାର କରାଯାଏ ।

ଦାନ୍ତଖୁଣ୍ଟିବା—ଗ୍ରା.କ୍ରି. ଦାନ୍ତର ସନ୍ଧିରୁ ଖାଦ୍ୟଦ୍ରବ୍ୟର କଣାମାନ ମୁନିଆ ସରୁ କାଠିଦ୍ୱାରା ବାହାର କରିବା ।

ଦାନ୍ତଗଳା(ଳେ)ଇବା—ଗ୍ରା.କ୍ରି.କୌଣସି ପଦାର୍ଥ ମଧ୍ୟରେ ଦାନ୍ତ ପ୍ରବେଶ କରାଇ କ୍ଷତ କରିବା ।

ଦାନ୍ତଗଳିବା—ଗ୍ରା. କ୍ରି. କୌଣସି ବିଷୟ ବୋଧଗମ୍ୟ ହେବା ।

ଦାନ୍ତଘଷା—ଗ୍ରା. ବି. (ସଂ-ଦନ୍ତଘର୍ଷଣ) ଦାନ୍ତମାଜିବା. ଦନ୍ତଧାବନ ।

ଦାନ୍ତଘଷାଗୁଡ଼ାଖୁ—ଗ୍ରା.ବି.ଦାନ୍ତ ଘଷିବା-ପାଇଁ ବ୍ୟବହୃତ ଏକପ୍ରକାର ଗୁଡ଼ାଖୁ ।

ଦାନ୍ତଘଷିବା—ଗ୍ରା. ବି. ଦାନ୍ତ ସଫା କରିବା, ଦନ୍ତଧାବନ କରିବା ।

ଦାନ୍ତଘୃଷିବା—ଗ୍ରା. ପ୍ରା. (ସମ୍ବ) ଦାନ୍ତ ରଗଡ଼ିବା ।

ଦାନ୍ତଚିହ୍ନ—ଗ୍ରା.ବି(ସଂ-ଦନ୍ତଚିହ୍ନ)ଦନ୍ତରେ କରାଯିବା ଦାଗ, କାମୁଡ଼ା ଦାଗ ।

ଦାନ୍ତଚୋବାଇବା—ଗ୍ରା.କ୍ରି. ଦାନ୍ତ କଡ଼-ମଡ଼ କରିବା ଦେଖ ।

ଦାନ୍ତଚେଙ୍ଗୁଡ଼ା—ଗ୍ରା. ବିଂ. (ଗାଳି) ନିର୍ଲ୍ଲଜ, ଦରହସା, ଗ୍ରା. ବି. ( ଅଶିଷ୍ଟ ) ନିର୍ଲ୍ଲଜ ଆଚରଣ, ନିର୍ଲଜ ହସ, ନିର୍ଲଜତା-ସୂଚକ ଉଚ୍ଚହାସ୍ୟ ।

ଦାନ୍ତଚେଙ୍ଗୁଡ଼ିବା—ଗ୍ରା. କ୍ରି. ( ଇତର ଓ ଅଶିଷ୍ଟ ) ନିର୍ଲ୍ଲଜତାସୂଚକ ଉଚ୍ଚହାସ୍ୟ କରି ଦାନ୍ତମାନ ପ୍ରକାଶ କରିବା ।

ଦାନ୍ତଝାଡ଼ିଦେବା—ଗ୍ରା. କ୍ରି. ଗାଲରେ ଚଟକଣା ବା ମୁଥଆଦିର ଆଘାତ ଦ୍ୱାରା ଆହତ ବ୍ୟକ୍ତିର ଦାନ୍ତ ତଳକୁ ଝଡ଼ି ପଡ଼ିବାର ଉପାୟ କରିବା ।

ଦାନ୍ତଟକମାରିବା—ଗ୍ରା.ବି. ଦାନ୍ତ-କୋଳ ମାରିଯିବା ଦେଖ ।

ଦାନ୍ତଠକ ଠକ ହେବା—ଗ୍ରା.ବି. ଅତ୍ୟନ୍ତ ଶୀତ ଯୋଗୁଁ ଦାନ୍ତରେ ଦାନ୍ତବାଜିବା ।

ଦାନ୍ତଡାକ୍ତର—ଗ୍ରା.ବି. ଦନ୍ତ ଚିକିତ୍ସକ ।

ଦାନ୍ତଦେଖାଇବା—ଗ୍ରା. କ୍ରି. କ୍ରୋଧ ବା ବିରକ୍ତିରେ ଖିଙ୍କାରି ହେବା ।

ଦାନ୍ତ ନ ଗଳିବା—ଗ୍ରା. ବି. କୌଣସି ବିଷୟରେ ଦନ୍ତସ୍ଫୁଟ ନ ହେବା, କୌଣସି ବିଷୟକୁ ବୁଝି ନ ପାରିବା ।

ଦାନ୍ତନିକୁଟା—ଗ୍ରା. ବି. ଦାନ୍ତକୁ ସାମାନ୍ୟରେ ଦେଖାଇବା, ଦନ୍ତବିକୃତ, (ଗ୍ରା.ପୁଂ.ବିଂ)ଯେଉଁ ଲୋକ କଥା କହିବା ବେଳେ ସାମାନ୍ୟରେ ଦାନ୍ତ ଦେଖାଏ ।

ଦାନ୍ତ ନିକୁଟିବା—ଗ୍ରା. କ୍ରି. କୌଣସି ବ୍ୟକ୍ତିକୁ ଅନୁସରଣ ଓ ପ୍ରାର୍ଥନା କରି ନେହୁରା ହେବାବେଳେ ସାମାନ୍ୟରେ ଦାନ୍ତ ଦେଖାଇବା ।

ଦାନ୍ତନି(ନେ)ସିଡ଼ିବା—ଗ୍ରା.କ୍ରି ଦାନ୍ତଯାକ ସମ୍ମୁଦାୟ ଦେଖାଇ ଓଷ୍ଠଦ୍ୱୟକୁ ବିସ୍ତାର କରିବା ।

ଦାନ୍ତପଗୁ(ଗେ)ଇବା—ଗ୍ରା. କ୍ରି. ପାନ ଅଳତା ଆଦିର ବୋଳ ଦ୍ୱାରା ଦାନ୍ତକୁ ରଞ୍ଜିତ କରିବା ।

ଦାନ୍ତପଡ଼ିଯିବା—ଗ୍ରା.ବି.ଦାନ୍ତ ଉପୁଡ଼ିବା ଦେଖ, ଦାନ୍ତପାଟି ପଡ଼ିଯିବା ଦେଖ ।

ଦାନ୍ତପତରକରିବା—ଗ୍ରା. କ୍ରି. ଦାନ୍ତ ଘଷିବା ଓ ମୁହଁ ଧୋଇବା ।

ଦାନ୍ତପାଟି—ଗ୍ରା. ବି. ଦାନ୍ତର ମୂଳଲଗ୍ନ ମାଂସପିଣ୍ଡ, ଦନ୍ତମାଂସ, ପାଟିରେ ଥିବା ଦାନ୍ତର ଉପର ଓ ତଳଧାଡ଼ି ।

ଦାନ୍ତପାଟିପଗୁଇଦେବା—ଗ୍ରା.କ୍ରି.ଗୁଆପୁଡ଼ା ଆଦି ମାଡ଼ ଦ୍ୱାରା ଦାନ୍ତ ମୂଳକୁ ଦରଜ କରାଇଦେବା ।

ଦାନ୍ତପାଟିପଡ଼ିଯିବା—ଗ୍ରା.ବି.ଦୁଇ ପାଟିର ଦାନ୍ତ ଦୃଢ଼ରୂପେ ସଂଲଗ୍ନ ହୋଇଯିବା ବା ଜାବ ପଡ଼ିଯିବା ।

ଦାନ୍ତପାଟିଫୁଲା—ଗ୍ରା. ବି. ରୋଗବିଶେଷ, ଦାନ୍ତମୂଳର ମାଂସ ଫୁଲିଯିବା,ଜୋକାସ୍ତ ବାହାରିବା ।

ଦାନ୍ତପୋକଖାଇବା—ଗ୍ରା.ବି.ଦନ୍ତରୋଗ ବିଶେଷ, ଏକପ୍ରକାର ପୋକ ଦନ୍ତକୁ ଆକ୍ରମଣ ବା ନଷ୍ଟ କରିବା, ଦନ୍ତଶୂଳ ।

ଦାନ୍ତବନ୍ଧା(ନ୍ଧେ)ଇବା—ଗ୍ରା. କ୍ରି. ଦାନ୍ତ ଉପୁଡ଼ି ଯାଇଥିବା ସ୍ଥାନରେ କୃତ୍ରିମ ଦାନ୍ତ ବସାଇବା ।

ଦାନ୍ତବସା(ସେ)ଇବା—ଗ୍ରା. କ୍ରି.. ଦାନ୍ତ ଉପୁଡ଼ି ଯାଇଥିବା ସ୍ଥାନରେ କୃତ୍ରିମ ଦାନ୍ତ ବସାଇବା ।

ଦାନ୍ତବସାଇଦେବା—ଗ୍ରା. କ୍ରି. କାହାର ଦେହକୁ ବା କୌଣସି ବସ୍ତୁକୁ ଜୋରରେ କାମୁଡ଼ି ଦାନ୍ତଚିହ୍ନ ରଖିଦେବା, ଔଷଧାଦି ଦ୍ୱାରା ହଲୁଥିବା ଦାନ୍ତକୁ ଶକ୍ତ କରିବା ।

ଦାନ୍ତବସିଯିବା—ଗ୍ରା. କ୍ରି. ବସ୍ତୁ ସ୍ଥାନରେ ଦନ୍ତଚିହ୍ନ ରହିଯିବା, ହଲୁଥିବା ଦାନ୍ତ ଔଷଧ ପ୍ରୟୋଗରେ ଶକ୍ତ ହେବା ।

ଦାନ୍ତଭାଙ୍ଗିଦେବା—ଗ୍ରା.କ୍ରି. ଆଘାତ ଦେଇ ଦାନ୍ତ ଭାଙ୍ଗି ତାକୁ ନିର୍ବିଷ କରିବା, (ଲ୍ର.ଅର୍ଥ) କୌଣସି ବ୍ୟକ୍ତିଠାରୁ ପରର ଅନିଷ୍ଟ କରିବା ଶକ୍ତି କାଢ଼ିନେବା, ଗର୍ବ ଚୂର୍ଣ୍ଣକରିବା, କୌଣସି ବ୍ୟକ୍ତିକୁ କଠୋର ଦଣ୍ଡଦେବା ।

ଦାନ୍ତଭିଡ଼ିବା—ଗ୍ରା. କ୍ରି. କଥା କହିବା ବେଳେ କ୍ରୋଧ ବା ବିରକ୍ତିକୁ ଚାପି ରଖିବା ପାଇଁ ଦାନ୍ତପାଟିକୁ ଚାପି ରଖିବା, ପ୍ରତିହିଂସା ନେବାର ବା ଶାସ୍ତି ଦେବାର ସୂଚନା ସ୍ୱରୂପ କ୍ରୋଧରେ ଦାନ୍ତରେ ଦାନ୍ତକୁ ଚିପିଧରିବା, କୌଣସି ବ୍ୟକ୍ତିକୁ ସଙ୍କେତ ଦ୍ୱାରା କୌଣସି କାର୍ଯ୍ୟ କରିବାକୁ ମନା କରିବା ।

ଦାନ୍ତର—ପ୍ରା.(ସମ୍ବ)ବିଂ. ଦାନ୍ତୁର ଦେଖ ।

ଦାନ୍ତରେକୁଟା—ଗ୍ରା. ବିଂ. ଦାନ୍ତରେ ତୃଣଧରି ପ୍ରାର୍ଥନାକାରୀ, (ବି) ବିନୀତ ପ୍ରାର୍ଥନା କରିବାପାଇଁ ଦାନ୍ତରେ ତୃଣାଦି ଧରିବା, ଅତି ବିନୀତ ପ୍ରାର୍ଥନା ।

ଦାନ୍ତରେକୁଟାହେବା—ଗ୍ରା. କ୍ରି.କୌଣସି ବ୍ୟକ୍ତି ନିକଟରେ ଅତି ଦୀନ ଭାବରେ କୌଣସି ପ୍ରାର୍ଥନା କରିବା, ଦାନ୍ତରେ ତୃଣଧରି ପ୍ରାର୍ଥନା କରିବା, ଦାନ୍ତରେ ତୃଣାଦି ଧରି ଅପରାଧ ସ୍ୱୀକାର କରିବା, ଅତି ବିନୀତ ପ୍ରାର୍ଥନା କରିବା ।

ଦାନ୍ତରେ ତିରଣଦେବା—ଗ୍ରା.କ୍ରି. କିଛିମାତ୍ର ନ ଖାଇବା ।

ଦାନ୍ତ ଲଗା(ଗୋ)ଇଦେବା—ଗ୍ରା. କ୍ରି. ଅନ୍ୟର ଦେହକୁ ବା କୌଣସି ବସ୍ତୁକୁ କାମୁଡ଼ିବା ।

ଦାନ୍ତଲେ(ସେ)ସେଢ଼ିବା—ଗ୍ରା.କ୍ରି. ଦାନ୍ତ ନିସିଢ଼ିବା ଦେଖ ।

ଦାନ୍ତଶୂଳ—ଗ୍ରା.ବି(ସଂ-ଦନ୍ତଶୂଳ) ଦାନ୍ତ ବିନ୍ଧା, ଦାନ୍ତ କଟକଟ ହେବା ।

ଦାନ୍ତଶୂଳ ଲାଗିହେବା—ଗ୍ରା. ବି. ଦାନ୍ତଶୂଳ ଦେଖ ।

ଦାନ୍ତସଢ଼ିଯିବା—ଗ୍ରା. ବି. (ସଂ-ଦନ୍ତହର୍ଷ) ଅଧିକ ଖଟା ଜିନିଷ ଖାଇବା ଯୋଗୁଁ ଦାନ୍ତରେ ଏକପ୍ରକାର କ୍ଲେଶ ଅନୁଭୂତ ହେବା ।

ଦାନ୍ତସନ୍ଧା(ନ୍ଧି)—ଗ୍ରା.ବି. (ସଂ-ଦନ୍ତସନ୍ଧି) ଦାନ୍ତମାନଙ୍କ ମଧ୍ୟବର୍ତ୍ତୀ ସ୍ଥାନ ।

ଦାନ୍ତହଲିବା—ଗ୍ରା. ବି. ଦନ୍ତ ଶିଥିଳ ହେବା ।

ଦାନ୍ତା—ସ୍ତ୍ରୀ. ବି. ଅପ୍ସରାବିଶେଷ, (ଗ୍ରା. ପୁଂ. ବିଂ.) ଦନ୍ତବିଶିଷ୍ଟ ।

ଦାନ୍ତି—ସ୍ତ୍ରୀ. ବି. ( ଦମ୍+ଭା.ତି ) ଦମ, ଦମନ, ଶାସନ, କ୍ଲେଶ, ସହିଷ୍ଣୁତା, ଇନ୍ଦ୍ରିୟଦମନ,ବଶ୍ୟତା,ନମ୍ରତା, ବିନୟ ।

ଦାନ୍ତିଆ—ଗ୍ରା.ବି. ମାଛଧରା ଯନ୍ତ୍ରବିଶେଷ, ପୋଳୁହ, କନ୍ଧୁଣିଆ, ଘରର ବାରଣ୍ଡାରେ ବସିଥିବା ଖୁଣ୍ଟର ବେକଠାରୁ ଚାଳର ଅଗକୁ କର୍ଣ୍ଣ ଭାବରେ ଲଗାଯାଇଥିବା କାଠଖଣ୍ଡ, ମାଇପେ ପିନ୍ଧିବା ଏକପ୍ରକାର ଶଙ୍ଖା ବା ପିତ୍ତଳ ଖଡ଼ୁ, ଯାହା କହୁଣୀ ପାଖରେ ଥାଏ ଓ ଯାହାର ଦାନ୍ତ.ଦାଢ଼ପରି ହୋଇଥାଏ, ଗୃଷରେ ବ୍ୟବହୃତ ଯନ୍ତ୍ରବିଶେଷ, (ଗ୍ରା. ପୁଂ. ବିଂ.) ଯାହାର ଦାନ୍ତଥାଏ, (ସ୍ତ୍ରୀ) ଦାନ୍ତୀ, ଦାନ୍ତେଇ ।

ଦାନ୍ତିକ—ବିଂ. ଗଜଦନ୍ତ ନିର୍ମିତ ।

ଦାନ୍ତିବା—ଗ୍ରା. କ୍ରି. (ସଂ-ଦନ୍ତ) ଦନ୍ତୋଦ୍ଗମଯୁକ୍ତ ହେବା, ଦାନ୍ତେଇବା ।

ଦାନ୍ତୀ—ଗ୍ରା. ବି. ( ସଂ-ଦନ୍ତ ) ଦାନ୍ତପରି ବାହାରକୁ ବାହାରିଥିବା ଅଂଶ,ମାଇପେ ପିନ୍ଧିବା ଏକପ୍ରକାର ଶଙ୍ଖା ବା ପିତ୍ତଳ ଖଡ଼ୁ ।

ଦାନ୍ତୁଆଣି—ଗ୍ରା. ବି. (ସଂ-ଦନ୍ତଧାବନ ) ଦାନ୍ତ ଘଷିବା, ଦନ୍ତଧାବନ କର୍ମ, ଠାକୁର ଓ ରାଜାମାନଙ୍କ କାଠି ଲାଗି ମାଡ ।

ଦାନ୍ତୁଆଣିବଢ଼ିବା—ଗ୍ରା.ବି. ରାଜାମାନଙ୍କ କାଠିଲାଗି ମାଡର ସମାଧାନ ହେବା ।

ଦାନ୍ତୁନ୍—ଗ୍ରା.ବି.ମେଦିନୀପୁରର ଗୋଟିଏ ସବ୍‌ଡିଭିଜନ ଓ ତନ୍ନାମକ କ୍ଷୁଦ୍ର ନଗର

ଦାନ୍ତୁର—ଗ୍ରା.ପୁଂ.ବିଂ.(ସଂ-ଦନ୍ତୁର) ବଡ଼ ଦାନ୍ତବିଶିଷ୍ଟ,ବଡ଼ଦାନ୍ତୁଆ,(ସ୍ତ୍ରୀ)ଦାନ୍ତୁରୀ ।

ଦାନ୍ତେଇବା—ଗ୍ରା. କ୍ରି. (ସଂ-ଦନ୍ତ)ଦାନ୍ତ ଦ୍ୱାରା କୌଣସି ପଦାର୍ଥକୁ ଧୀରେ୨ ଖଣ୍ଡିଆ କରିବା, ଦାନ୍ତିବା ଦେଖ ।

ଦାନ୍ଦର—ଗ୍ରା. ବି. ବାଉଁଶର ମୋଟ ପାତିଆ ଦ୍ୱାରା ବୁଣା ଯାଇଥିବା ବଡ଼ ଖଇଞ୍ଚି ।

ଦାପ—ଗ୍ରା. ବି. (ସଂ-ଦର୍ପ)ଧାପ, ପୀଡ଼ନ, ବେଗ, ଅହଙ୍କାର, ବଳ, ଅତ୍ୟାଚାର ।

ଦାପକ—ପୁଂ. ବିଂ. ( ଦା+ଣିଚ୍+କ. ଅକ ) ଯେ ଦିଆଏ, ଯାହାର ପ୍ରବର୍ତ୍ତିନାରେ ଅନ୍ୟ ଲୋକ ଦିଏ, (ସ୍ତ୍ରୀ) ଦାପିକା ।

ଦାପଟ—ଗ୍ରା.ବି. (ସଂ-ଦର୍ପ)ଦମ୍ଭ,ପ୍ରତାପ, ତେଜ, ଗର୍ବ । [(ବିଂକ୍ରି) ।

ଦାପଟିଆ—ଗ୍ରା. ବିଂ. ପ୍ରତାପୀ, ବଳୁଆ

ଦାପନ—ବି. ( ଦା+ଣିଚ୍+ଭା.ଅନ ) ଦିଆଇବା, ଦାନପ୍ରବର୍ତ୍ତିନ, ଦାବିବା, ଚାପିବା, ମର୍ଦ୍ଦନ, ଦଳନ ।

ଦାପନୀୟ—ବିଂ. ( ଦାପି+ର୍ମ.ଅନୀୟ ) ଦଣ୍ଡନୀୟ,ଅନ୍ୟଦ୍ୱାରାଦାତବ୍ୟ,ଦଣ୍ଡାର୍ହ ।

ଦାପୟିତବ୍ୟ—ବିଂ. ଦଣ୍ଡର ଯୋଗ୍ୟ ।

ଦାପୟିତା—ପୁଂ. ବିଂ. (ଦାପି+କ.ତୃ) ଦାପକ ଦେଖ, (ସ୍ତ୍ରୀ) ଦାପୟିତ୍ରୀ ।

ଦାପିତ—ବିଂ.(ଦାପି+ର୍ମ.ତ)ଅନ୍ୟଦ୍ୱାରା ଦିଆହୋଇଥିବା, ମର୍ଦ୍ଦିତ, ଦଳିତ, ଶୋଧିତ, ସାଧିତ, ଧନାଦି ଦ୍ୱାରା ବଶୀକୃତ । [ଦେଖ ।

ଦାପ୍ୟ—ବିଂ. (ଦାପି+ର୍ମ.ଯ) ଦାପନୀୟ

ଦାବ—ବି. ( ଦୁ+କ.ଅ ) ବନାନଳ, ଦାବାଗ୍ନି, ( ଭା.ଅ ) ତାପ, ପ୍ରତାପ, ତେଜ, ତାଡ଼ନା, ଭର୍ତ୍ସନା, ବନ, ଅଗ୍ନି (ଗ୍ରା.ବି) ଚାପ, ଶାସନ, ଦମନ ।

ଦାବ୍‌ଖର—ପ୍ରା.(ବସ୍ତର)ବି. ଘର ଛୁଆଣିରେ ବ୍ୟବହୃତ ଏକପ୍ରକାର ତୃଣ ।

ଦାବଦଗ୍ଧ—ବିଂ. ( ୩ତତ୍ ) ବନାଗ୍ନି ଦ୍ୱାରା କୃତଦାହ, ଦାବାନଳ ସନ୍ତପ୍ତ, (ସ୍ତ୍ରୀ) ଦାବଦଗ୍ଧା ।

ଦାବଦହନ—ବି.(୬ତତ୍) ବଣ ପୋଡ଼ା ।

ଦାବଦାହ—ବି. (୩ତତ୍) ବନାଗ୍ନି ଦ୍ୱାରା ଦହନ, (୬ତତ୍) ଦାବାନଳସନ୍ତାପ ।

ଦାବା—ଯା. ବି. ମକଦ୍ଦମା, ନାଲିଶ, ନାଲିଶ କରିବା,ଅପରାଧର ଅଭିଯୋଗ, ଦାବି କରିବା, ସତରଞ୍ଜିଖେଳ,ନ୍ୟାସ୍ତ-ବଲ ଖେଳ, ସତରଞ୍ଜି ଖେଳର ମନ୍ତ୍ରୀ ।

ଦାବାଗିର୍—ଯା.ବି. ଦାବିଦାର ଦେଖ ।

ଦାବାଗ୍ନି—ପୁଂ. ବି. ( ଦାବ+ଅଗ୍ନି ) ୬ତତ୍; ବଣପୋଡ଼ା, ବନାଗ୍ନି ।

ଦାବାଦରବାର୍—ଯା.ବି. ମାଲ୍‌ମକଦ୍ଦମା, କୌଣସି ସମ୍ପତ୍ତିରେ ସ୍ୱତ୍ୱ ବା ଅଧିକାର ପ୍ରତିଷ୍ଠା କରିବାର ଚେଷ୍ଟା,ଅଭିଯୋଗ ।

ଦାବାଦାର୍—ଯା.ବି. ଯେ ନାଲିଶ୍ କରେ, ଦାବିଦାର୍ ଦେଖ ।

ଦାବାନଳ—ବି. (ଦାବ+ଅନଳ,୬ତତ୍); ବଣପୋଡ଼ା ।

ଦାବାବଡ଼—ଯା. ବି. ସତରଞ୍ଜି ଖେଳରେ ଉପକରଣ, ପାଲି ଓ ଗୋଟି ।

ଦାବି(ବୀ)—ଯା. ବି. ଆପଣା ସ୍ୱତ୍ୱ ବା ଅଧିକାର ପ୍ରାପ୍ତି ନିମନ୍ତେ ପ୍ରାର୍ଥନା,ସ୍ୱତ୍ୱ ବା ଅଧିକାରର ପ୍ରତିଷ୍ଠା, ମକଦ୍ଦମାରେ ଦାବିକରିବା ବିଷୟ, ମକଦ୍ଦମା ସମ୍ବନ୍ଧୀୟ ବିଷୟର ପରିମାଣ, ଦାବାଦ୍, (ଗ୍ରା.ବିଂ) ଦାବିକରାଯିବା (ଯଥା—ଦାବିଟଙ୍କା) ।

ଦାବିକରିବା—ଗ୍ରା. କ୍ରି. ନାଲିଶ କରିବା, ଧର୍ମାଧିକରଣରେ ସ୍ୱତ୍ୱ ବା ଅଧିକାର ପ୍ରାର୍ଥନା କରିବା, କର୍ତ୍ତୃପକ୍ଷଙ୍କଠାରେ ନିଜର ପ୍ରାପ୍ୟ ପାଇବା ପାଇଁ ପ୍ରାର୍ଥନା କରିବା,ଆପଣାର ନ୍ୟାଯ୍ୟ ପ୍ରାପ୍ୟ ଉପସ୍ଥାପିତ କରିବା ।

ଦାବିଦାର—ଯା. ବିଂ. ଆପଣାର ସ୍ୱତ୍ୱ ଦାବିକରିବା (ବ୍ୟକ୍ତି), ଅଧିକାରପ୍ରାର୍ଥୀ, ଦରଖାସ୍ତକାରୀ ।

ଦାବିପରିତ୍ୟାଗକରିବା—ଗ୍ରା.କ୍ରି.କୌଣସି ସମ୍ପତ୍ତିରେ ବା ମକଦ୍ଦମାରେ କରାଯାଇଥିବା ସ୍ୱତ୍ୱାଧିକାରର ପ୍ରାର୍ଥନାକୁ ଛାଡ଼ିଦେବା ।

ଦାବିବହିର୍ଭୂତ—ଗ୍ରା. ବିଂ. ମକଦ୍ଦମାରେ ଦାବି କରାଯାଇଥିବା ସମ୍ପତ୍ତି ବ୍ୟତୀତ ।

ଦାବିବା—ଗ୍ରା. କ୍ରି. ମାଡ଼ିଦେବା, ତଳକୁ ଚୁପିବା, ଗୋଡ଼ଆଦି ଅଙ୍ଗକୁ ଚପିବା, ମର୍ଦ୍ଦନ କରିବା, କମେଇଦେବା,ଶାସନ କରିବା, ଦମନ କରିବା, ମୌଖିକ ତାଡ଼ନ କରିବା, ନିବୃତ୍ତ କରାଇବା, ପରାସ୍ତ କରିବା, ନିଷେଧ କରିବା ।

ଦାବିଭୁକ୍ତ—ଗ୍ରା.ବିଂ. ଦାବିମଧ୍ୟରେ ଥିବା ।

ଦାବିରଖିବା—ଗ୍ରା. କ୍ରି. ଚୁପିଧରିବା, ଲୁଚାଇବା, କୌଣସି ବ୍ୟକ୍ତିକୁ ଶାସନାଧୀନରେ ରଖିବା, କୌଣସି ବ୍ୟକ୍ତି ଉପରେ କୌଣସି ବିଷୟରେ ଆପଣାର ଦାବି ଥିବାର ପ୍ରକାଶ କରିବା ।

ଦାଭି—ବି. ଗୁଜରାଟୀ ରାଜପୁତ୍ ଜାତିର ଏକ ପ୍ରଧାନ ଶ୍ରେଣୀ ।

ଦାଭ୍ୟ—ବିଂ. ଶାସିତହେବାର ଯୋଗ୍ୟ ।

ଦାମ୍—ଯା. ବି. ମୂଲ୍ୟ, କିମତ୍,ଜରସମନ୍, ଖର୍ଚ୍ଚ,ବଜାରଦର,କିଣିବାପାଇଁ ଦ୍ରବ୍ୟକୁ ମୂଲାଇବା କର୍ମ, ଖରଦ୍‌ମୂଲ୍ୟ, କୌଣସି ଦ୍ରବ୍ୟ ହସ୍ତଗତ ହେବାପାଇଁ ଯାହା ବ୍ୟୟ ହୋଇଥାଏ, ଧନ,ଟଙ୍କାକଉଡ଼ି ।

ଦାମ୍‌ଉଠିବା—ଗ୍ରା.ବି. ବିକିଦ୍ୱାରା କୌଣସି ବସ୍ତୁର ପ୍ରକୃତ ବା ଉଚିତ ମୂଲ୍ୟ ଆଦାୟ ହେବା, କୌଣସି ବସ୍ତୁ ପ୍ରସ୍ତୁତ ହେବାପାଇଁ ଯାହା ବ୍ୟୟ ହୋଇଥାଏ ବିକିଦ୍ୱାରା ତାହା ମିଳିବା ।

ଦାମ୍‌କରିବା—ଗ୍ରା. କ୍ରି. କୌଣସି ଦ୍ରବ୍ୟ କିଣିବାପାଇଁ ମୂଲାଇବା, ମୂଲ୍ୟ ନିରୂପଣ ବା ନିଶ୍ଚିତ କରିବା ।

ଦାମ୍‌ଚଢ଼ିବା—ଗ୍ରା. ବି. ମହାର୍ଘ ହେବା ।

ଦାମ୍‌ଡ଼ୀ—ପ୍ରା. (ସିଂହ) ବି. ସ୍ତ୍ରୀ. ଛଡ଼ା, ପ୍ରସବ କରି ନଥିବା ମାଈ ବାଛୁରୀ ।

ଦାମ୍‌ଦୁପଟ—ଗ୍ରା. ବି. ଖାତକ ଯେତେଟଙ୍କା ମୂଳ କରଜ ନେଇଥାଏ ସେତିକି ପରିମାଣ ସୁଧ ପରିଶୋଧ କରିବାର ପ୍ରଥା, କୌଣସି ବସ୍ତୁର ପ୍ରକୃତ ମୂଲ୍ୟର ଦ୍ୱିଗୁଣ ଦାମ ।

ଦାମ୍‌ପଡ଼ିବା—ଗ୍ରା. ବି. କ୍ରେତା ବିକ୍ରେତା ମଧ୍ୟରେ କ୍ରୟବସ୍ତୁର ମୂଲ୍ୟର ସ୍ଥିରୀକରଣ ।

ଦାମ—ବି. (ଦୋ+ମି.ମନ୍) ରଜ୍ଜୁ,ଦଉଡ଼ି, ସୂତୁଲି, ସୂତ୍ର, ଦାଉଣୀ, ଶସ୍ୟମର୍ଦ୍ଦନାର୍ଥ ଯେଉଁ ଲମ୍ବ ପଘାରେ ଅନେକଗୋରୁ ବନ୍ଧାହୋଇ ବେଙ୍ଗଲା ବୁଲନ୍ତି,ମାଳା, ହାର, ଗୁଚ୍ଛ, ଗୋଛା, ଫିତା, ଧଡ଼ିଆ, ଭୂଷଣବିଶେଷ, ସମୂହ, ଶ୍ରେଣି,ଲୋକ,ବିଶ୍ୱ, ପର୍ବତ, (ଦମ୍+ଭା.ଅ) ଇନ୍ଦ୍ରିୟଦମନ, (ବିଂ)ଦେବାବାଲା,ଦାତା,(ଯା.ବି) ଜାଲ ।

ଦାମକ—ବି. (ଦାମ+କ) ଗାଡ଼ିର ଜୁଆଳିରେ ବନ୍ଧାହେବା ଦଉଡ଼ି, ଶଗଡ଼ା ଦଉଡ଼ି, ଲଗାମ୍, ବାଗ୍, ଡ଼ୋର ।

ଦାମଢ଼ିଆ—ପ୍ରା. (ମେଦ) ବି. ଦାମୁଡ଼ା ।

ଦାମଦା—ପ୍ର. (କଳାହାଣ୍ଡି) ବି. ବଳଦ, ଛିନ୍ନମୁଷ୍କ ବୃଷ ।

ଦାମନପର୍ବ—ବି. (ଦମନ+ଅ+ପର୍ବ) ଦମନକ ଚତୁର୍ଦ୍ଦଶୀ ଦେଖ ।

ଦାମନି—ପୁଂ. ବି. ଦମନଙ୍କ ଅପତ୍ୟ, ଆୟୁଧଜୀବୀ ସଂଘଭେଦ ।

ଦାମନୀ—ସ୍ତ୍ରୀ.ବି. (ଦାମନ୍ + ଈ) ଦାଉଣୀ, ବେଙ୍ଗଲାରେ ଅନେକ ଗୋରୁଙ୍କୁ ଯୋଚିବାର ଦଉଡ଼ି, (ଯା.ବି) ଘୋଡ଼ା ପିଠିଉପରେ ପକାଯିବା ଚଉଡ଼ା ଲୁଗା ।

ଦାମଲିପ୍ତ—କ୍ଲୀ. ବି. ତମୋଲିପ୍ତ ନଗର, ତମୋଲୁକ୍ ।

ଦାମା—ସ୍ତ୍ରୀ. ବି. (ଦାମ+ଆ)· ଦଉଡ଼ା, (ଗ୍ରା.ବି) ଏକପ୍ରକାର ଚଢ଼େଇ,ଛତରିଆ ଦେଖ; ଦମାଲୁ, ଆନନ୍ଦ ବାଦ୍ୟଯନ୍ତ୍ର ବିଶେଷ, ବଡ଼ ନାଗରା ।

ଦାମାଞ୍ଚନ(ଳ)—ବି. ଘୋଡ଼ାଙ୍କ ଗୋଡ଼ ବନ୍ଧାଯିବା ଦଉଡ଼ି ।

ଦାମାଦ—ଯା. ବି. ଜାମାତା, ଜୁଆଁଇ ।

ଦାମାମା—ଗ୍ରା.ବି. ଦମାଲୁ,ଆନନ୍ଦବାଦ୍ୟଯନ୍ତ୍ରବିଶେଷ, ବଡ଼ ନାଗରା ।

ଦାମିଆ(ଳା)—ଯା. ବିଂ. ମୂଲ୍ୟବାନ୍ ।

ଦାମିନୀ—ସ୍ତ୍ରୀ. ବି. (ଦାମ+ଇନ୍+ଈ) ସୌଦାମିନୀ, ବିଦ୍ୟୁତ୍ ବିଜୁଳି ।
ଦାମୀ—ଯା. ବିଂ. ମୂଲ୍ୟବାନ୍ ।
ଦାମୁଡ଼(ଡ଼ି)—ଗ୍ରା.(ସମ୍ବ) ବି. (ସଂ-ଦମ୍ୟ) ଦାମୁଡ଼ି, ଯୁବା ବଳଦ ।
ଦାମୁଡ଼ି—ଗ୍ରା. ବି. (ସଂ-ଦମ୍ୟ) ଛିନ୍ନମୁଷ୍କ ଶିଶୁ ବୃଷ, ଯୁବାବଳଦ, ପଇସାର ଏକ-ଚତୁର୍ଥାଂଶ, ଏକଛଦାମ୍, ପାଞ୍ଚଗଣ୍ଡା କଉଡ଼ି,(ଗ୍ରା.ଗଞ୍ଜାମ.ବି)ଟାହୁଲା,ପଇସାର ଏକତୃତୀୟାଂଶ,ପିଲ୍ଲାକାଛୁଣୀ, (ଗ୍ରା.ସମ୍ବ. ବି) ଛଡ଼ା, ପ୍ରସବ କରି ନ ଥିବା ମାଈ-ଗୋରୁ ।
ଦାମୁଡ଼ୀ—ଗ୍ରା. ବି. ଦାମୁଡ଼ି ଦେଖ ।
ଦାମୁଲ—ଗ୍ରା. (ଗଞ୍ଜାମ)ବି.ଗଞ୍ଜାମର ଶୂଦ୍ର ଜାତିବିଶେଷ ।
ଦାମୋଦ—ବି.ଅଥର୍ବ ବେଦର ଏକଶାଖା
ଦାମୋଦର—ପୁଂ. ବି. (ଦାମ+ଉଦର) ବି.ସ୍ତ୍ରୀ; ଶ୍ରୀକୃଷ୍ଣ, ବିଷ୍ଣୁ, ଶାଳଗ୍ରାମ ଶିଳା ବିଶେଷ, ଶାଳଗ୍ରାମ ଦେବ, (ଗ୍ରା.ବି) ଭାଗୀରଥୀର ଗୋଟିଏ ଉପନଦୀ,ସାରଣୀ ନାମକ ଶାସ୍ତ୍ରର ପ୍ରଣେତା ଜଣେକ ଜ୍ୟୋତିଷୀ ।
ଦାମୋଦରପଟ୍ଟନାୟକ—ବି. ଉତ୍କଳର ସୁପରିଚିତ ସଙ୍ଗୀତ ସଂଗ୍ରାହକ ।
ଦାମୋଦରବିଦ୍ୟାବାଗୀଶ--ଗ୍ରା.ବି. କଟକ ଜିଲାର ଯାଜପୁରର ସ୍ୱର୍ଗୀୟ ପ୍ରସିଦ୍ଧ ପଣ୍ଡିତ । [ଦେଖ ।
ଦାମ୍ନୀ—ସ୍ତ୍ରୀ.ବି.(ଦାମନ୍+ଈ) ଦାମନୀ
ଦାମ୍ପତ୍ୟ—ବିଂ. (ଦମ୍ପତି+ସମ୍ବନ୍ଧାର୍ଥେ ଯ) ସ୍ୱାମୀପତ୍ନୀ ସମ୍ବନ୍ଧୀୟ, ବୈବାହିକ, (ବି) ସ୍ତ୍ରୀ ଓ ପୁରୁଷଙ୍କ ମଧ୍ୟରେ ପ୍ରେମ ବା ବ୍ୟବହାର, ଦମ୍ପତିଙ୍କ ଦ୍ୱାରା ଅନୁଷ୍ଠେୟ ଅଗ୍ନିହୋତ୍ରାଦି କର୍ମ । [କଳି ।
ଦାମ୍ପତ୍ୟକଳହ—ବି. ପତିପତ୍ନୀଙ୍କ ମଧ୍ୟରେ
ଦାମ୍ପତ୍ୟଜୀବନ—ବି. ବୈବାହିକ ଜୀବନ
ଦାମ୍ପତ୍ୟନିର୍ବାଚନ—ବି. ପତିପତ୍ନୀ ପରସ୍ପର ପରସ୍ପରକୁ ବାଛିନେବାରୂପ ଈଶ୍ୱର ସୃଷ୍ଟବିଧି, ଯୌନନିର୍ବାଚନ ।
ଦାମ୍ପତ୍ୟନୀତି—ସ୍ତ୍ରୀ.ବି. (କ.ଧା) ସ୍ୱାମୀ ସ୍ତ୍ରୀ ସମ୍ବନ୍ଧୀୟ ପ୍ରଣାଳୀ, ସ୍ୱାମୀ ଓ ସ୍ତ୍ରୀର ପରସ୍ପର ବ୍ୟବହାର ବିଷୟକ ଶାସ୍ତ୍ର ।
ଦାମ୍ପତ୍ୟପ୍ରଣୟ—ବି. ପତି ଓ ବିବାହିତା ପତ୍ନୀଙ୍କ ମଧ୍ୟରେ ପରସ୍ପର ସ୍ନେହ ।
ଦାମ୍ପତ୍ୟବନ୍ଧନ—ବି. ବିବାହବନ୍ଧନ ।
ଦାମ୍ଭିକ—ପୁଂ. ବିଂ. (ଦମ୍ଭ+ଇକ) ଅହଂକାରୀ, ଦର୍ପୀ,ଅବାଧ୍ୟ, କପଟାଶ୍ରୟୀ, ବଗଡ଼ ବୈଷ୍ଣବ, ଧୂର୍ତ୍ତ, ଯେ ବାଲଙ୍ଗି ବିହ୍ୱାଏ. ପ୍ରବଞ୍ଚକ, ଆଡ଼ମ୍ବରକାରୀ,(ବି) ବକପକ୍ଷୀ, ବଗ ।
ଦାମ୍ଭିକତା(ତ୍ୱ)—ବି. (ଦାମ୍ଭିକ+ତା) ଧୂର୍ତ୍ତତା, ଅହଂକାର, ଭୁରୁଡ଼ୁ, କପଟାଚରଣ ।
ଦାୟ—ବି. (ଦା+ର୍ମ.ଅ) ପୂର୍ବସ୍ୱାମୀର ମୃତ୍ୟୁପରେ ଯେଉଁ ସମ୍ପତ୍ତିରେ ଉତ୍ତରାଧିକାରୀମାନଙ୍କର ସ୍ୱତ୍ୱ ଜନ୍ମେ,ଯୌତୁକାଦି ଦାନ, ଉତ୍ତରାଧିକାରୀଦ୍ୱାରା ପ୍ରାପ୍ତ ସମ୍ପତ୍ତି, ପୈତୃକ ସମ୍ପତ୍ତି,ବିଭାଜ୍ୟ ବସ୍ତୁ, ପୂର୍ବସ୍ୱାମୀର ସ୍ୱାମୀତ୍ୱ ନାଶପରେ ତଦଧୀନ ଯେଉଁ ଦ୍ରବ୍ୟରେ ଅନ୍ୟମାନଙ୍କର ସ୍ୱତ୍ୱ ଜନ୍ମେ, ଧନ, ଅନ୍ୟକୁ ଦେବାଯୋଗ୍ୟ ଧନ, (ଭା.ଅ) ଦାନ, ସ୍ଥାନ, ଜୋତ,ଜଳ, (ଦୋ+ଭା.ଅ) ଛେଦନ ଜ୍ୱାଳା, ଦୁଃଖ, ବିପଦ,ଉପଦ୍ରବ,ଉତ୍ପାତ, ସଙ୍କଟାବସ୍ଥା, (ଦୈ+ଭା.ଅ) ଶୋଧନ, କ୍ଷୋଭ, ମନସ୍ତାପ,କ୍ଷତି, ବିଲୟ,ବିନାଶ, ଦେଣା, କଠୋର କର୍ତ୍ତବ୍ୟ, ଦାୟିତ୍ୱ, ଗୁରୁତ୍ୱ, ଅଡ଼ା, (ଦା+କ.ଅ) ଦାତା, (ଗ୍ରା.ବି) ଗରଜ, ପ୍ରୟୋଜନ, ଗୁରୁଦାୟିତ୍ୱପୂର୍ଣ୍ଣ କାର୍ଯ୍ୟ, ଭୟାନକ ଯନ୍ତ୍ରଣା, ଅଟଙ୍କିଆ ଅବସ୍ଥା,ବିଷମସମସ୍ୟା,ଦୁଃଖ ।
ଦାୟକ—ପୁଂ. ବିଂ. (ଦା+କ. ଅକ) ଯେ ଦିଏ, ଦାନକାରୀ, (ପ୍ରତ୍ୟୟ ରୂପେ ପ୍ରଯୁକ୍ତ) ଉତ୍ପାଦନକାରୀ, କ୍ଷତିପୂରଣକାରୀ, (ଦୋ+କ. ଅକ) ଛେଦକ, (ବି) ଦାତା, (ଦାୟ+କ) ଦାୟାଦ, କୁଟୁମ୍ବ, (ସ୍ତ୍ରୀ) ଦାୟିକା ।
ଦାୟଗ୍ରସ୍ତ—ବିଂ.(ଦାୟ+ଗ୍ରସ୍ତ) ୩ତତ୍; ଗୁରୁତର କର୍ତ୍ତବ୍ୟପ୍ରପୀଡ଼ିତ, ଦାୟିତ୍ୱଯୁକ୍ତ, ଗୁରୁତର ଦୁଃଖରେ ଜଡ଼ିତ ।
ଦାୟବନ୍ଧୁ—ପୁଂ. ବି. (୬ତତ୍) ଭ୍ରାତା ।
ଦାୟଭାଗ—ବି. ପୈତୃକ ଧନର ବିଭାଗ, ଉତ୍ତରାଧିକାରୀମାନଙ୍କ ମଧ୍ୟରେ ମୃତ ବ୍ୟକ୍ତିର ତ୍ୟକ୍ତ ସମ୍ପତ୍ତିର ବଣ୍ଟନ, ମୃତ ବ୍ୟକ୍ତିର ସମ୍ପତ୍ତି ଉତ୍ତରାଧିକାରୀମାନଙ୍କ ମଧ୍ୟରେ ବିଭାଗ କରିଦେବାର ଆଇନ, ଜୀମୂତବାହନ ନାମକ ପଣ୍ଡିତଙ୍କ କୃତ ପୈତୃକ ଧନ ବିଭାଗ ସମ୍ବନ୍ଧୀୟ ସଂସ୍କୃତ ସ୍ମୃତି ବା ଗ୍ରନ୍ଥ ।
ଦାୟମାଲ—ଯା.ବି. ଯାବଜ୍ଜୀବନ କାରାବାସ ବା ଦ୍ୱୀପାନ୍ତରବାସ ଦଣ୍ଡ ।
ଦାୟମାଲୀ—ଯା.ବିଂ.ଯାବଜ୍ଜୀବନ କାରାବାସ ବା ଦ୍ୱୀପାନ୍ତରବାସ ଦଣ୍ଡରେ ଦଣ୍ଡିତ ।
ଦାୟାଗତ—ବିଂ. (୩ତତ୍) ମଉରସି ହିସାବରେ ପଡ଼ିବା (ସମ୍ପତ୍ତି),ବି.(ହିନ୍ଦୁସ୍ମୃତି)ଯେଉଁ ଦାମ୍ ଦାୟ ବା ପୈତୃକ ସମ୍ପତ୍ତିରୂପେ ମିଳି ଅଛି ।
ଦାୟାଦ—ପୁଂ. ବି. (ଦାୟ+ଆ+ଦା+କ.ଅ) ପୁତ୍ର, ବଂଶଧର, ଉତ୍ତରାଧିକାରୀ, କୁଟୁମ୍ବ, ସଗୋତ୍ର, ସପିଣ୍ଡିତ, ବିଂ.(ଦାୟ+ଅଦ୍+କ.ଅ) ଧନଭାଗୀ, ମୃତବ୍ୟକ୍ତିର ତ୍ୟକ୍ତ ସମ୍ପତ୍ତିରେ ଉତ୍ତରାଧିକାରୀ, (ସ୍ତ୍ରୀ) ଦାୟାଦା (ଦୀ) ।
ଦାୟାଦା(ଦୀ)—ସ୍ତ୍ରୀ. ବି. (ଦାୟାଦ+ଆ) କନ୍ୟା, ଝିଅ ।
ଦାୟାଦ୍ୟ—କ୍ଲୀ. ବି. ସାପିଣ୍ଡ୍ୟ, ସାପିଣ୍ଡ୍ୟନିବନ୍ଧନ ଧନ ।
ଦାୟାଦ୍ୟତା—ସ୍ତ୍ରୀ.ବି. ଦାୟାଦର ଭାବ ।
ଦାୟିକ—ପୁଂ.ବିଂ.(ଦାୟିନ୍+କ)ଦାୟୀ, (ସ୍ତ୍ରୀ) ଦାୟିକା ।
ଦାୟିତ—ବିଂ. ଯାହା ଦାନ କରାଯାଇଅଛି, ପ୍ରଦତ୍ତ ।
ଦାୟିତ୍ୱ—ବି. (ଦାୟିନ୍+ଭା.ତ୍ୱ)ଆପଣାଠାରେ ଗୁରୁଭାର ଥିବା ଅବସ୍ଥା,ଜବାବଦେହୀ, ଗୁରୁଭାର, ଦେଣଦାର ହେବା ଅବସ୍ଥା ।
ଦାୟିତ୍ୱଜ୍ଞାନ—ବି.ନିଜ ଉପରେ ଗୋଟିଏ

ଗୁରୁତ୍ୱର ନ୍ୟସ୍ତ ଅଛି ଏହି ବୋଧ ।

ଦାୟିତ୍ୱଜ୍ଞାନଶୂନ୍ୟ—ବି॰ ଯେ ଆପଣା ଉପରେ ଥିବା ଦାୟିତ୍ୱର ଗୁରୁତା ଅନୁଭବ କରେ ନାହିଁ ।

ଦାୟିତ୍ୱହୀନ—ଗ୍ରା. ବି॰ ଯାହା ଉପରେ କୌଣସି ଦାୟିତ୍ୱ ନଥାଏ,ଯେଉଁ କାର୍ଯ୍ୟ ପାଇଁ କାହା ଉପରେ ଦାୟିତ୍ୱ ନଥାଏ ।

ଦାୟିଦାର୍—ଗ୍ରା.(ସମ୍ବ) ବି. ଦାୟୀ ।

ଦାୟୀ—ପୁଂ.ବି.(ଦା+କ.ଇନ୍)ଦାୟକ, ଦାନକାରୀ, ଦାତା,ଦେବାବାଲା, ଘଟାଇବା(ବ୍ୟକ୍ତି ବା ବସ୍ତୁ), (ଦାୟ+ଇନ୍) ଗୁରୁଭାରାକ୍ରାନ୍ତ, ଦାୟଗ୍ରସ୍ତ, ଯାହା ଉପରେ ଜବାବଦେହୀ ବା ଦାୟିତ୍ୱ ରହିଥାଏ, (ସ୍ତ୍ରୀ) ଦାୟିନୀ, ( ଗ୍ରା. ବି॰ ) ଦାୟୀଦାର, ଦୋଷୀ ।

ଦାୟେ—ଯା.ବି ଓ ବି॰.ଦାଏର ଦେଖ ।

ଦାରଓ୍ୱିନ—ଯା. ବି. ବିଖ୍ୟାତ ବିବର୍ତ୍ତନବାଦ ପ୍ରବର୍ତ୍ତକ ଇଂରାଜ ପଣ୍ଡିତ ।

ଦାରମଦାର୍—ଯା. ବି. ସମ୍ମତ, ନିର୍ଭର, ଚୁକ୍ତି, କୌଣସି କାର୍ଯ୍ୟର ଭାର,ଦାୟିତ୍ୱ

ଦାର—ବି. (ଦୃ+କ.ଅ) ଭାର୍ଯ୍ୟା, ସ୍ତ୍ରୀ. (ଭା. ଅବ୍ୟ) ବିଦାରଣ, ( ମି.ଅର୍ଥ୍ୟ ) କର୍ଷିତ କ୍ଷେତ୍ର,ଫାଟ, ଛିଦ୍ର, (କ.ଅବ୍ୟ) କାମ, (ପ୍ରା. ବସ୍ତର. ବି. )ଡାଲ, (ଯା. ପ୍ରତ୍ୟୟ) ଅଛି ଯାହାର ଏହି ଅର୍ଥସୂଚକ, (ଯଥା:—ବାଜାଦାର,ଚଉକିଦାର ।

ଦାରକ—ପୁଂ. ବି. (ଦୃ+କ.ଅକ)ପୁତ୍ର ଶିଶୁ, ବାଳକ, ଗ୍ରାମଶିଖ୍ୟ,ଗ୍ରାମ୍ୟ ଶୂକର, (ବି॰) ବିଦାରକ, ବିଦାରଣକାରୀ, (ସ୍ତ୍ରୀ) ଦାରିକା ।

ଦାରକର୍ମ—ବି. (ଦାର+କର୍ମ, ୬ତତ୍ତ୍ୱ) (ପୁରୁଷ ପକ୍ଷରେ) ବିବାହ ।

ଦାରକ୍ରିୟା—ବି. ଦାରକର୍ମ, ବିବାହ ।

ଦାରଗ୍ରହଣ—ବି. (୬ତତ୍ତ୍ୱ) ପତ୍ନୀଗ୍ରହଣ, ବିବାହ ।

ଦାରଣ—ବି.(ଦୃ+ଣିଚ୍+ଭା.ଅନ)ବିଦାରଣ, ଡାଙ୍ଗିଦେବା,ଚିରିଦେବା କାର୍ଯ୍ୟ, ଫଟାଇବା, (କ.ଅନ) ବିଦାରକ ଅସ୍ତ୍ର, ନିର୍ମଳୀଫଳ ଓ ଗଛ, ଯେଉଁ ଔଷଧ ଲେପନ କଲେ ଦଥ ଫାଟିଯାଏ,(ବି॰. କ.ଅନ ) ବିଦାରକ, ଯେ. ଚିରିଦିଏ, (ସ୍ତ୍ରୀ) ଦାରଣା ।

ଦାରଣୀ—ସ୍ତ୍ରୀ. ବି.(ଦାରଣ+ଈ)ଦୁର୍ଗା ।

ଦାରତ୍ୟାଗୀ—ପୁଂ. ବି॰. ଯେଉଁ ବ୍ୟକ୍ତି ସ୍ତ୍ରୀକୁ ପରିତ୍ୟାଗ କରିଥାଏ ।

ଦାରଦ—ବି.(ଦୃ+ଅଦ ବା ଦରଦ+ଭା. ଅ) ପାରଦ, ସମୁଦ୍ର, ସିନ୍ଦୂର, ହିଙ୍ଗୁଳ, ଦରଦଦେଶଜାତ ବିଷ ବିଶେଷ,(ବି॰) (ଦରଦ+ଅ)ଦରଦ ଦେଶ ସମ୍ବନ୍ଧୀୟ, ଦରଦ ଦେଶବାସୀ । [ ଦେଖ ।

ଦାରପରିଗ୍ରହ—ବି. ( ୬ତତ୍ତ୍ୱ ) ଦାରକର୍ମ

ଦାରବ—ବି॰. (ଦାରୁ+ଅ)କାଷ୍ଠନିର୍ମିତ, କାଷ୍ଠରୁ ଜାତ,ଦାରୁମୟ ।

ଦାରବଲଭୁଜ୍—ବି. ( ଦାର+ବଲ+ଭୁଜ୍+କ. କ୍ୱିପ୍) ସାରସ ପକ୍ଷୀ, ବକପକ୍ଷୀ ।

ଦାରସଂଗ୍ରହ—ବି. ଦାରଗ୍ରହଣ,ବିବାହ ।

ଦାରା—ଗ୍ରା.ସ୍ତ୍ରୀ.ବି.ଭାର୍ଯ୍ୟା,'ଦାର ଦେଖ ।

ଦାରାକ୍ଷା—ଗ୍ରା. ବି. (ସଂ-ଦ୍ରାକ୍ଷା) ଅଙ୍ଗୁର ଫଳର ଲତା, ଅଙ୍ଗୁର ଫଳ,କିସ୍‌ମିସ୍ ।

ଦାରାଧିଗମନ—କ୍ଲୀ. ବି. ବିବାହ ।

ଦାରାସୁତ—ବି. (ଦ୍ୱନ୍ଦ୍ୱ) ସ୍ତ୍ରୀ ପୁତ୍ର ।

ଦାରି—ବି.(ଦୃ+ଭା:ଅ+ର)ବିଦାରଣ, ଫାଡ଼ିବା, ଚିରିବା, ଭେଦ କରିବା ।

ଦାରିଆ—ଗ୍ରା. ପୁଂ. ବି॰. ବେଶ୍ୟାଠାରେ ଆସକ୍ତ ।

ଦାରିଆଭାଣ୍ଡ—ଗ୍ରା. ବି॰. ଯେଉଁ ବ୍ୟକ୍ତି ନିର୍ଲଜ୍ଜ ଭାବରେ ବେଶ୍ୟାଠାରେ ଆସକ୍ତ ଥାଏ ।

ଦାରିକା—ସ୍ତ୍ରୀ.ବି.(ଦାରକ+ଆ)କନ୍ୟା । ଝିଅ, ବେଶ୍ୟା, ଫାଟ, ବାଳିକା ।

ଦାରିତ—ବି॰. ( ଦୃ+ଣିଚ୍+ମି.ତ ) ବିଦୀର୍ଣ୍ଣ, ବିଦାରିତ, ଚିରା ଯାଇଥିବା, ଫଟା ହୋଇଥିବା ।

ଦାରିଦ୍ର—ବି.(ଦରିଦ୍ର+ଭା.ଅ) ନିର୍ଧନତା, ଦରିଦ୍ରତା ।

ଦାରିଦ୍ର୍ୟ—ବି. (ଦରିଦ୍ର+ଭା.ଯ) ନିର୍ଦ୍ଧନତା, ଦରିଦ୍ରତା ।

ଦାରିଦ୍ର୍ୟପଞ୍ଚାକ୍ଷର—ଗ୍ରା.ବି. ଦରିଦ୍ର ଲୋକ ସର୍ବଦା ଘୋଷୁ ପାଞ୍ଚଗୋଟି ଅକ୍ଷରବିଶିଷ୍ଟ ବାକ୍ୟ,'କଣ କରିବି' ।

ଦାରିବା—ଗ୍ରା. କ୍ରି. ଫାଡ଼ିବା, ଚିରିବା, ବିଦାରଣ କରିବା ।

ଦାରୀ—ବି. (ଦୃ+ଣିଚ୍+କ.ଈ) ଗୋଡ଼ଫାଟରୋଗ, ଗ୍ରା.ବି.ସ୍ତ୍ରୀ.(ସଂ. ଦାରିକା) ବେଶ୍ୟା, କସବୀ, ଗଣିକା, ନଟୀ, ନଷ୍ଟଚରିତ୍ରା ସ୍ତ୍ରୀ, ରକ୍ଷିତା ସ୍ତ୍ରୀ,ଉପପତ୍ନୀ, ଯା. ବୃତ୍ତି ବା କର୍ମ ବାଚକପ୍ରତ୍ୟୟ(ଯଥା—ଦୋକାନଦାରୀ) ।

ଦାରୀଦାସୀ—ଗ୍ରା. ବି. ବେଶ୍ୟା ଓ ଉପପତ୍ନୀ ରୂପେ ରକ୍ଷିତା ସ୍ତ୍ରୀ, ବେଶ୍ୟା ଓ ରକ୍ଷିତା ସ୍ତ୍ରୀମାନଙ୍କ ପ୍ରତି ଆସକ୍ତ ହେବା ।

ଦାରୀନଚ୍(ଚେ)ଇବା—ଗ୍ରା. କ୍ରି. ନର୍ତ୍ତକୀ ବେଶ୍ୟାର ପଛରେ ରହି ତାହାର ନୃତ୍ୟ ସଙ୍ଗେ ତାଲ ଅନୁସାରେ ବାଦ୍ୟ ବଜାଇବା, ଆପଣା ଆଗରେ ବେଶ୍ୟା ନାଚିବାର ଉପାୟ କରିବା,(ଲ.ଅର୍ଥ)ଅତ୍ୟନ୍ତ ନିର୍ଲଜ୍ଜରୂପେ କାର୍ଯ୍ୟ କରିବା, କୌଣସି ଲଜ୍ଜାଜନକ କାର୍ଯ୍ୟ କରିବା, ନିଜ ଘରର ସ୍ତ୍ରୀମାନଙ୍କୁ ଅଯଥା ସ୍ୱାଧୀନତା ଦେବା ।

ଦାରୀସାହି—ଗ୍ରା. ବି. ବେଶ୍ୟାପଡ଼ା, ଯେଉଁ ପଡ଼ାରେ ବେଶ୍ୟାମାନେ ଥାଆନ୍ତି ।

ଦାରୁ—ବି. (ଦୃ+ମି.ଉ) କାଷ୍ଠ, କାଠ, କାଷ୍ଠ ଖଣ୍ଡ, ଡାଳ, ଇନ୍ଧନ,ଦେବଦାରୁ ବୃକ୍ଷ, ପିତ୍ତଳ, ଶଳ୍ପକର, ଶିଳ୍ପୀ, ବଢ଼େଇ, ଦାତାବ୍ୟକ୍ତି, ବି॰. (ଦୋ+କ.ରୁ) ବିଦାରକ, ଛେଦକ, (ଦା+କ. ରୁ) ଦାନଶୀଳ, ଶୋଧକ,ଖଣ୍ଡନଶୀଳ, ମସକା,(ଗ୍ରା.ବି—ସଂ-ଦାରୁଦ) ବାରୁଦ, ଜଗନ୍ନାଥଙ୍କ ମୂର୍ତ୍ତି ନିର୍ମାଣରେ ବ୍ୟବହୃତ ନିମ୍ବକାଠ, (ଯା. ବି)ମଦ,ଔଷଧ, ଦବାଇ,(ପ୍ରା.ମେଦିନୀପୁର.ବି.)ନିମ୍ବଗଛ ।

ଦାରୁକ—ବି. (ଦୃ+ଣିଚ୍+କ. ଉକ) ଶ୍ରୀକୃଷ୍ଣଙ୍କ ସାରଥି, (ଦାରୁ+କ)ଦେବଦାରୁଗଛ, କାଠ ।

ଦାରୁକଦଳୀ—ବି. ଜଙ୍ଗଲୀ କଦଳୀ,

କାଠିଆ କଦଳୀ ।
ଦାରୁକା—ସ୍ତ୍ରୀ. ବି. (ଦାରୁ+କ+ଆ) କାଠର ପିତୁଳା, କାଠ କଣ୍ଢେଇ, ପର୍ବତ ବନ ବିଶେଷ, ହିନ୍ଦୁମାନଙ୍କର ତୀର୍ଥବିଶେଷ ।
ଦାରୁଖୁନ୍ଦାକଳୀ—ଗ୍ରା. ବି. ଯେଉଁ ବନ୍ଧୁକର ମୁହଁବାଟେ ବାରୁଦ ଖୁନ୍ଦାଯାଏ ।
ଦାରୁଗଣ୍ଠି—ଗ୍ରା. ବି. ଘରର ଦୁଇଟି ଶ୍ରେଣୀର ଯୋଡ଼ମୁହଁ, ବାରୁଦଗଣ୍ଠି, ବାଣର ଗର୍ତ୍ତରେ ଭାଗମାପ ଅନୁଯାୟୀ ଖୁନ୍ଦା ଯାଇଥିବା ବାରୁଦର ପରିମାଣ ।
ଦାରୁଗନ୍ଧା—ବି. ଗନ୍ଧ ବିରଜା, ଚୀଡ଼ା ନାମକ ଗନ୍ଧଦ୍ରବ୍ୟ ବିଶେଷ ।
ଦାରୁଗର୍ଭା—ସ୍ତ୍ରୀ. ବି.(ଦାରୁ+ଗର୍ଭ+ଆ) କାଠ କଣ୍ଢେଇ ।
ଦାରୁଚିନି—ଗ୍ରା.ବି.ଡାଲ୍‌ଚିନି, ଗୁଡ଼ତ୍ୱକ୍ ।
ଦାରୁଜ—ବିଂ. (ଦାରୁ+ଜନ୍+କ.ଅ) ବାଷ୍ଠନିର୍ମିତ, କାଷ୍ଠରୁ ଉତ୍ପନ୍ନ, (ବି) ପଖୋଜ, ମାଦଳ, ମର୍ଦ୍ଦଳ ।
ଦାରୁଣ—ବିଂ. (ଦୃ+ଣିଚ୍+କ.ଉନ) ଭୟଙ୍କର, ଅତି ଭୟାନକ, ଭୀଷଣ, ଅତ୍ୟଧିକ, ଉତ୍କଟ, କଠୋର, ଅତ୍ୟନ୍ତ ଉଗ୍ର, ତୀବ୍ର, ନୃଶଂସ, କ୍ରୂର, ନିଷ୍ଠୁର, ନିର୍ଦ୍ଦୟ, କଠିନ, କର୍କଶ, କଷ୍ଟପ୍ରଦ, ମର୍ମଭେଦୀ, ମର୍ମନ୍ତୁଦ, ଦୁଃସହ, ଦୁଃଖସାଧ୍ୟ, ବିଦାରକ, (ବି) ଚିତକ ବା ଧଳାଚିତାଗଛ, ମୁରସୁରର ସେନାନୀ, କ୍ରୂରତା, କଠୋରତା ସାହିତ୍ୟରେ ଭୟାନକ ରସ, ରୌଦ୍ରରସ, ରୌଦ୍ରନାମକ ନକ୍ଷତ୍ର; ବିଷ୍ଣୁ, ଶିବ, ରାକ୍ଷସ, ନରକବିଶେଷ, (ସ୍ତ୍ରୀ) ଦାରୁଣା ।
ଦାରୁଣକ—ବି. (ଦୃ+କ.ଉଣ+କ) ରୂପୀରୋଗ, ମୁଣ୍ଡର ବାଳ ତଳର ଚମ ଟାଣିହୋଇ ଓ ଧଳାହୋଇ ଝଡ଼ିପଡ଼ିବା ରୋଗ ।
ଦାରୁଣତ (ତ୍ୱ)—ବି. (ଦାରୁଣ+ଭା.ତା) ଦାରୁଣଭାବ, କଠୋରତା ।
ଦାରୁଣା—ସ୍ତ୍ରୀ.ବି.(ଦାରୁଣ+ଆ)ବୈଶାଖ କୃଷ୍ଣ ଚତୁର୍ଥୀ, ଅକ୍ଷୟତୃତୀୟା, ଦେବୀବିଶେଷ, ନର୍ମଦା ଖଣ୍ଡର ଅଧିଷ୍ଠାତ୍ରୀ ଦେବୀ ।. [ ହୃଦୟସ୍ଥ ।
ଦାରୁଣାତ୍ମା—ପୁଂ.ବିଂ.ଦୁରାତ୍ମା, କଠୋରଦାରୁଣାର—ବି. (ଷତତ୍ପୁ) ବିଷ୍ଣୁ ।
ଦାରୁଣ୍ୟ—କ୍ଲୀ.ବି. (ଦାରୁଣ+ଭା.ଯ) ଦାରୁଣଭାବ, କଠୋରତା, କାର୍କଶ୍ୟ, ଉଗ୍ରତା । [ ବିଶେଷ ।
ଦାରୁତୀର୍ଥ—କ୍ଲୀ.ବି.ଶିବ ପୁରାଣୋକ୍ତ ତୀର୍ଥଦାରୁଦହନ—ବି. (ଷତତ୍ପୁ) ଦାବାନଳ ।
ଦାରୁନିଶା—ସ୍ତ୍ରୀ.ବି. (କ.ଧା) ଦାରୁହଳଦୀ ଦେଖ ।
ଦାରୁପର୍ଣ୍ଣୀ—ବି. ହିଙ୍ଗୁପର୍ଣ୍ଣୀ ଦେଖ ।
ଦାରୁପାତ୍ର—ବି. (ଷତତ୍ପୁ) କାଷ୍ଠପାତ୍ର, କାଠର ପାତ୍ର ।
ଦାରୁପିପୀଲିକା—ବି.(କ.ଧା) କାଷ୍ଠ ପିପୀଲିକା, କାଠପିମ୍ପୁଡ଼ି ।
ଦାରୁପୀତା—ସ୍ତ୍ରୀ.ବି. ଦାରୁହଳଦୀ ।
ଦାରୁପୁତ୍ରୀ(କା)—ସ୍ତ୍ରୀ. ବି. (ଦାରୁ+ପୁତ୍ର+କ+ଆ) କାଠପିତୁଳା, କାଷ୍ଠର ପୁତ୍ତଳୀ, କାଠକଣ୍ଢେଇ ।
ଦାରୁଫଳ—ବି. (ଦାରୁପରି କଠିନ ଫଳ) ପିସ୍ତା ।
ଦାରୁବଧୂ—ସ୍ତ୍ରୀ.ବି. ଦାରୁପୁତ୍ରୀ ଦେଖ ।
ଦାରୁବ୍ରହ୍ମ—ଗ୍ରା. ବି. ପୁରୀରେ ବିରାଜିତ ଜଗନ୍ନାଥ ମହାପ୍ରଭୁ । [ କର୍ମ ।
ଦାରୁବ୍ରହ୍ମା—ବି. (ଦାରୁ+ବନ୍ଧନ୍) ବଣ୍ଟଦାରୁଭୂତ—ବିଂ. (ଦାରୁ+ଭୂତ) କାଠ ପାଲଟି ଯାଇଥିବା, ସ୍ତମ୍ଭୀଭୂତ, କାଠପରି ନିଷ୍ପନ୍ଦ, ଅବାକ୍ ।
ଦାରୁଭୂତମୁରାରି—ଗ୍ରା.ବିଂ. କିଂକର୍ତ୍ତବ୍ୟବିମୂଢ଼, କାଠରେ ପରିଣତ ।
ଦାରୁମୟ—ବିଂ. (ଦାରୁ+ମୟ) କାଷ୍ଠମୟ, କାଷ୍ଠନିର୍ମିତ, (ସ୍ତ୍ରୀ) ଦାରୁମୟୀ ।
ଦାରୁମୁଖ୍ୟାହ୍ୱୟା—ସ୍ତ୍ରୀ.ବି.ଗୋଧାଗୋଧି ।
ଦାରୁମୁଷି—ଗ୍ରା.ବି.(ସଂ-ଦାରୁବିଷ) ମିଠାବିଷ, କାଠବିଷ, ଏକପ୍ରକାର ମହୁରା ।
ଦାରୁମୂଷା—ସ୍ତ୍ରୀ.ବି. ଦାରୁମୁଷି ଦେଖ ।
ଦାରୁଯନ୍ତ୍ର—ବି. (କ.ଧା) ଯନ୍ତ୍ରଚାଳିତ କାଷ୍ଠପୁତ୍ତଳ, କାଷ୍ଠନିର୍ମିତ ଯନ୍ତ୍ର ।
ଦାରୁଯୋଷିତ—ସ୍ତ୍ରୀ.ବି.ଦାରୁପୁତ୍ରୀ, ଦେଖ ।
ଦାରୁସାର—ବି.(ଷତତ୍ପୁ) ଚନ୍ଦନ, (ଷତତ୍ପୁ) କାଠର ମଞ୍ଜ ।
ଦାରୁସିତା—ବି. ଦାରୁଚିନି, ଡାଲଚିନି ।
ଦାରୁସ୍ତ୍ରୀ—ସ୍ତ୍ରୀ. ବି. (କ.ଧା) ଦାରୁକା, କାଷ୍ଠପିତୁଳା ।
ଦାରୁହରିଦ୍ରା—ବି. ଦାରୁହଳଦୀ ଦେଖ ।
ଦାରୁହଳଦୀ—ଗ୍ରା. ବି. (ସଂ-ଦାରୁହରିଦ୍ରା) ପାର୍ବତ୍ୟ କଣ୍ଟକୀ କ୍ଷୁପବିଶେଷ ।
ଦାରୁହସ୍ତକ—ବି. (ଷତତ୍ପୁ) କାଠର ଅଶକ, କାଠର ଚାମଚ ।
ଦାରୋଗା—ଯା.ବି.ଓଭରସିଅର୍, ତତ୍ତ୍ୱାବଧାରକ କର୍ମଚାରୀ, କାମ ତନଖିବା କର୍ମଚାରୀ, ସୁପରଭାଇଜର, ପୁଲିସ ମୁନସୀ ବା ସବଇନସ୍‌ପେକ୍ଟରମାନଙ୍କ ଉପରସ୍ଥ କର୍ମଚାରୀ, ପୁଲିସ୍ ଇନ୍‌ସ୍‌ପେକ୍ଟର, ପୁଲିସ୍ ଥାନାର ଭାରପ୍ରାପ୍ତ ଉଚ୍ଚ କର୍ମଚାରୀ ।
ଦାରୋଗାଗିରି—ଯା. ବି. ଦାରୋଗାଙ୍କ ଚାକିରି ବା କର୍ମ ।
ଦାର୍ଜିଲିଙ୍ଗ୍—ଗ୍ରା. ବି. ହିମାଳୟର ଅଧିତ୍ୟକାରେ ଥିବା ଜିଲ୍ଲା ଓ ନାମାତ୍ମକ ନଗର ।
ଦାର୍ଢ୍ୟ—ବି. (ଦୃଢ଼+ଭା.ଯ) ସ୍ଥୈର୍ଯ୍ୟ, ଦୃଢ଼ତା, କାଠିନ୍ୟ, କଠିନତା, ଟାଣ, ଗଢ଼, ଚୁସ୍ତପଣିଆ, ଅଧ୍ୟବସାୟଯୁକ୍ତ ।
ଦାର୍ଢ୍ୟତା—ଗ୍ରା.ବି. (ସଂ-ଦାର୍ଢ୍ୟ)ଦୃଢ଼ତା, ଅଚଳତା, ଅଧ୍ୟବସାୟ ।
ଦାର୍ଢ୍ୟତ ଭକ୍ତି—ଗ୍ରା. ବି. ରାମଦାସଙ୍କ କୃତ କେତେକ ଦୃଢ଼ ଭକ୍ତଙ୍କ କାହାଣୀ ସମ୍ବଳିତ ଓଡ଼ିଆ ପଦ୍ୟଗ୍ରନ୍ଥ ।
ଦାର୍ତ୍ତିୟୁ—ବିଂ. ଚମଡ଼ା ନିର୍ମିତ ।
ଦାର୍ଦ୍ଦୁର—ବିଂ.(ଦର୍ଦ୍ଦୁର+ଅ)ଦର୍ଦ୍ଦୁର ବା ବେଙ୍ଗସମ୍ବନ୍ଧୀୟ, (ବି) ଏକପ୍ରକାର ଦକ୍ଷିଣାବର୍ତ୍ତୀ ଶଙ୍ଖ, ଲକ୍ଷା, ଲାଖ, ଜଳ ।
ଦାର୍ଦ୍ଦୁ(ର୍ଦ୍ଦୂ)ରିକ—ବି. (ଦାର୍ଦ୍ଦୁର+ଇକ) କୁମ୍ଭାର ।
ଦାର୍ବ—ବିଂ. (ଦାରୁ+ଅ) ଦାରୁନିର୍ମିତ, କାଷ୍ଠମୟ, (ବି) କାଶ୍ମୀରର ଅନ୍ତର୍ଗତ

ପ୍ରାଚୀନ ପ୍ରଦେଶବିଶେଷ ।
ଦାର୍ବକ—ବି. ଦାର୍ବ ଜନପଦବିଶେଷ ।
ଦାର୍ବଟ—ବି. (ଦାରୁ+ଅଟ+ଅଧି.ଅ) କିମ୍ବା ଦର୍ବଟ+ଅ) ମନ୍ତ୍ରଣା କରିବାର ଗୃହ, ଚନ୍ଦ୍ରାଗୃହ ।
ଦାର୍ବଣ୍ଡ—ବି.(ବ.ବ୍ରୀ)ମୟୂର,(ସ୍ତ୍ରୀ)ଦାର୍ବଣ୍ଡୀ ।
ଦାର୍ବାଘାଟ—ବି. ( ଦାରୁ+ଆ+ହନ-+କ.ଅ) କାଠହଣା ପକ୍ଷୀ, ଶତପତ୍ରକ ପକ୍ଷୀ ।
ଦାର୍ବାଘାତ—ବି. ( ଦାରୁ+ଆ+ହନ-+କ.ତ ) କାଠହଣାପକ୍ଷୀ ।
ଦାର୍ବିକା—ସ୍ତ୍ରୀ. ବି. ଦାରୁହଳଦ୍ରୀ କ୍ୱାଥୋଦ୍ଭବ, ତୁତ୍ଥ, ରସାଞ୍ଜନ, ଗୋଜିହ୍ୱା ବୃକ୍ଷ ।
ଦାର୍ବିପତ୍ରିକା—ସ୍ତ୍ରୀ.ବି. ଗୋ ଜିହ୍ୱାବୃକ୍ଷ ।
ଦାର୍ବୀ—ସ୍ତ୍ରୀ.ବି. (ଦୃ+କ.ଅ+ଈ)ଦାରୁହରିଦ୍ରା, ଦେବଦାରୁ ଗଛ, ଗୋଜିହ୍ୱାବୃକ୍ଷ, ହଳଦୀ । [ ନିର୍ମିତ ।
ଦାର୍ଭ—ବିଂ.(ଦର୍ଭ+ଅ) ଦର୍ଭ ବା କୁଶ-
ଦାର୍ଭ୍ୟ—ବିଂ. ଦର୍ଭଭବ, ଦର୍ଭୋତ୍ପନ୍ନ ।
ଦାର୍ଶ—ବିଂ, ଦର୍ଶଭବ, ନେତ୍ରଭବ ।
ଦାର୍ଶନିକ—ବିଂ. (ଦର୍ଶନ+ଇକ) ଦର୍ଶନ ଶାସ୍ତ୍ରସମ୍ବନ୍ଧୀୟ, ଦର୍ଶନଶାସ୍ତ୍ରଜ୍ଞ, ଦର୍ଶନଶାସ୍ତ୍ରବେତ୍ତା ।
ଦାର୍ଶପୌର୍ଣ୍ଣମାସିକ—ବିଂ. ଦର୍ଶ ପୌର୍ଣ୍ଣମାସଭବ, ଯାହା ଅମାବାସ୍ୟା ଓ ପୂର୍ଣ୍ଣିମାରେ ହୁଏ ।
ଦାର୍ଶିକ—ବିଂ.ଦର୍ଶପୌର୍ଣ୍ଣମାସ ସମ୍ବନ୍ଧୀୟ ।
ଦାର୍ଶ୍ୟ—ବିଂ. ଦାର୍ଶିକ ।
ଦାର୍ଷଦ—ବିଂ. ( ଦୃଷଦ+ଅ ) ପଥରନିର୍ମିତ, ପଥରରେ ଘୋରା ହୋଇଥିବା, ପଥରସମ୍ବନ୍ଧୀୟ, ପ୍ରସ୍ତରମୟ, ପ୍ରସ୍ତରବହୁଳ, ପଥୁରିଆ ।
ଦାର୍ଷଦ୍ୱତ—ବି. ଯଜ୍ଞବିଶେଷ, ଏହି ଯଜ୍ଞ ଦୃଷଦ୍ୱତୀ ନଦୀତୀରରେ କରିବାକୁ ହୁଏ ।
ଦାର୍ଷ୍ଟାନ୍ତ—ବିଂ. (ଦୃଷ୍ଟାନ୍ତ+ଅ) ଦୃଷ୍ଟାନ୍ତ ଦ୍ୱାରା ବ୍ୟାଖ୍ୟାତ ।
ଦାର୍ଷ୍ଟାନ୍ତିକ—ବିଂ. ( ଦୃଷ୍ଟାନ୍ତ+ଇକ ) ଦୃଷ୍ଟାନ୍ତଘଟିତ, ଦୃଷ୍ଟାନ୍ତସମ୍ବନ୍ଧୀୟ, ଦୃଷ୍ଟାନ୍ତରୂପେ ବ୍ୟବହୃତ, ଉପମେୟ ।
ଦାଲ—ବି. (ଦଲ+ଅ) ଡାଲିମହୁ, ଗଛ ଡାଳରେ ମହୁମାଛିମାନେ ଯେଉଁ ମହୁ ସଞ୍ଚୟ କରନ୍ତି, (ଦଲ+ସ୍ୱା.ଅ) ଦଳନ, ଦଳିବା, ଏକପ୍ରକାର କୋଦୁଅ ।
ଦାଲନ—ବି. ଦାନ୍ତରୋଗ ।
ଦାଲବ—ବି. ଏକପ୍ରକାର ସ୍ଥାବରବିଷ ।
ଦାଲା—ବି. ମହାକାଳ ଲତା ଦେଖ ।
ଦାଲି—ବି. (ଦଲ+ଅ+ଇ) ଡାଲି, ମୁଗ ଆଦିର ଡାଲି, ଦେବଦାଲୀ ଦେଖ, ଡାଲିମ୍ବ ଦେଖ ।
ଦାଲି—( ପ୍ରା. ସମ୍ବ. ବି. ) ମୁଗ, ବିରି, ହରଡ଼, ମସୁରଆଦିର ଚଅଣ, ମହୁଲି ମଞ୍ଜିକୁ ଭାଙ୍ଗିଲେ ତାହା ଭିତରୁ ଯେଉଁ ଦୁଇଫାଳିଆ ଶସ ବାହାରେ, ଲଙ୍ଗଳମୁଣ୍ଡା, ଗୋରୁଙ୍କୁ କୁଳୁଚିଆଦି ଖୁଆଇବା ଚମା ।
ଦାଲିକା—ବି. ମହାକାଳ ଲତା
ଦାଲିମ(ମ୍ବ)—ବି.(ଦଲ+କ.ଇମ୍) ଦାଡ଼ିମ ଦେଖ ।
ଦାଲୁ—( ପ୍ରା. ଯାଜପୁର. ବି. ) ମର୍କଟଦଳପତ୍ର, ବୁଢ଼ାମାଙ୍କଡ଼ ।
ଦାଲୁଅ—ଗ୍ରା.ବି. (ସଂ-ବୋର) ଖରାଦିନେ ପାଣି ରହିବା ଜାଗାରେ ଉତ୍ପାଦନ କରାଯିବା ଏକପ୍ରକାର ମୋଟ ଧାନ ।
ଦାଲୁକନା(ନ)—ଗ୍ରା.କ୍ରି. ବିଂ. ଦୁଲୁକନ, ଲଥୋକନ, ଦୁଲ୍ ଶବ୍ଦ ଉତ୍ପାଦନ କରି (ଭୂମିରେ ପଡ଼ିବା) ।
ଦାଲ୍ଭ୍ୟ—ବି. ଇନ୍ଦ୍ର ।
ଦାଶ—ପୁଂ. ବି. ( ଦାଶ୍+ଅ ) ଧୀବର, କେଉଟ, ଭୃତ୍ୟ, ( ଦଶ୍+ସଂ-ପ୍ର.ଅ ) ଦାନପାତ୍ର,(ଗ୍ରା.ବି.)ବ୍ରାହ୍ମଣ, କ୍ଷତ୍ରିୟ ଓ ଶୂଦ୍ରଙ୍କ ବଂଶୋପାଧିବିଶେଷ ।
ଦାଶକାଠି—(ପ୍ରା. ଗଞ୍ଜାମ. ବି.)ରାମତାଳି, କାଠର ଦୁଇଖଣ୍ଡି ଝୁମୁକାଲଗା ବାଦ୍ୟଯନ୍ତ୍ର ।
ଦାଶକାଠିଆ—(ପ୍ରା. ଗଞ୍ଜାମ. ବି.) ଦାଶକାଠି ବଜାଇ ଗୀତ ବୋଲିବା କେତେକ ଜାତିର ଲୋକ ।
ଦାଶଗ୍ରାମ—ବି. ଧୀବର ଗ୍ରାମ ।
ଦାଶଗ୍ରାମିକ—ବିଂ.ଦଶ ଗ୍ରାମର ସନ୍ନିକୃଷ୍ଟ (ଦେଶାଦି) ।
ଦାଶ(ସ)ନନ୍ଦିନୀ—ସ୍ତ୍ରୀ.ବି.ଧୀବର କନ୍ୟା, ସତ୍ୟବତୀ ।
ଦାଶନୀ—ବିଂ. (ଦଶନ+ଅ+ଈ)ଦଶନ ସମ୍ବନ୍ଧୀୟ, ଦନ୍ତସମ୍ବନ୍ଧୀୟ ।
ଦାଶନୀନୀତି—ବି. ସର୍ବଦା ଦୁର୍ବଳର ଅପକାର କରିବା ଉଦ୍ୟମ ବା ଧର୍ମ ।
ଦାଶପୁର—ବି.(୬ତତ୍) କେଉଟସାହି, କେଉଟିଆ ମୁଥା ।
ଦାଶମେୟ—ବି. ଦେଶବିଶେଷ, ଏହି ଦେଶ ଉତ୍ତର ଦିଗରେ ଅବସ୍ଥିତ ।
ଦାଶରଥ—ପୁଂ. ବି. ( ଦଶରଥ+ଅ ) ଅଯୋଧ୍ୟାର ରାଜା ଦଶରଥଙ୍କ ପୁତ୍ର ରାମଚନ୍ଦ୍ର, (ବିଂ)ଦଶରଥସମ୍ବନ୍ଧୀୟ ।
ଦାଶରଥି—ବି ଓ ବିଂ ପୁଂ. ଦାଶରଥ ଦେଖ ।
ଦାଶରାଜ୍ଞ—ବିଂ. ଦଶରାଜା ସମ୍ବନ୍ଧୀ ।
ଦାଶରାତ୍ରିକ—ବିଂ. ( ଦଶରାତ୍ର+ଇକ ) ଦଶରାତ୍ରବ୍ୟାପୀ, ଦଶରାତ୍ରସାଧ୍ୟ ।
ଦାଶାର୍ଣ୍ଣ—ବି. ( ଦଶାର୍ଣ୍ଣ+ଅ ) ଦଶାର୍ଣ୍ଣ ଦେଶ, ଦଶାର୍ଣ୍ଣ ଦେଶବାସୀ ବ୍ୟକ୍ତି ।
ଦାଶାର୍ହ—ବିଂ. (ଦଶାର୍ହ+ଅ) ଦଶାର୍ହ ଦେଶୀୟ, ଯଦୁବଂଶୀୟ, (ବି) ଶ୍ରୀକୃଷ୍ଣ ।
ଦାଶାଶନ—ପ୍ରା. (ଯାଜପୁର)ବି. ଦଶାଶ୍ୱମେଧ ଘାଟ । [ ନ୍ଧୀୟ ।
ଦାଶାଶ୍ୱମେଧ—ବିଂ. ଦଶାଶ୍ୱମେଧ ସମ୍ବ-
ଦାଶୀ—ସ୍ତ୍ରୀ. ବି. ( ଦାଶ+ଈ ) ଧୀବରୀ, ଭୃତ୍ୟା, ଦାସୀ, ପୋଇଲି ।
ଦାଶେୟ—ବିଂ. (ଦାଶ+ଏୟ) ଦାଶଠାରୁ ଉତ୍ପନ୍ନ, (ସ୍ତ୍ରୀ) ଦାଶେୟୀ, (ବି) ଧୀବର ପୁତ୍ର । [ ପୁତ୍ର ।
ଦାଶେର—ବି. ( ଦାଶୀ+ଏର ) ଧୀବରୀ
ଦାଶେରକ—ବି. ମାଳବ ଦେଶ, ମାରବାଡ଼ ଦେଶ, ମାଳବ ଦେଶୀୟ ଲୋକ, ମରୁଦେଶ ।
ଦାଶ୍ୱ—ପୁଂ.ବିଂ.(ଦାଶ୍+ୱ)ଦାନଶୀଳ ।
ଦାସ—ପୁଂ.ବି.(ଦାସ୍+ସଂ-ପ୍ର.ଅ) ସେବକ,

ଭୃତ୍ୟ, ଚାକର, କ୍ରୀତଦାସ, ଶୂଦ୍ର, ଧୀବର, ଅନୁଗତ ଜନ, ଶୂଦ୍ରର କୌଳିକ ଉପାଧି, ଦସ୍ୟୁ, ବୃତ୍ରାସୁର, ଆତ୍ମଜ୍ଞାନୀ ବ୍ୟକ୍ତି, (ସ୍ତ୍ରୀ) ଦାସୀ, (ଗ୍ରା.ବ) ଦାଶ ଦେଖ ।

ଦାସକ—ବ. ଦାସ, ଗୋତ୍ର ପ୍ରବର୍ତ୍ତକ ଋଷିବିଶେଷ ।

ଦାସକେରେଣ୍ଡା—ଗ୍ରା. ବ. (ସଂ-ଦାସିକା) ଔଷଧଗୁଳ୍ମ ବିଶେଷ, ଝିଣ୍ଟୀ ଦେଖ ।

ଦାସଚଇନବାଜପେୟୀ—ଗ୍ରା. ବ. ଉତ୍କଳର ଜଣେ ପ୍ରସିଦ୍ଧ ମୃଦଙ୍ଗକାର ।

ଦାସତ୍ୱ—ବ. ( ଦାସ + ଭା.ତ୍ୱ ) ଭୃତ୍ୟର ଅବସ୍ଥା, ଦାସ ବୃତ୍ତି, ଗୋଲାମି, ଚାକରି, ସେବାବୃତ୍ତି ।

ଦାସତ୍ୱପ୍ରଥା—ସ୍ତ୍ରୀ. ବ. ( ଷତତ୍ର ) ଘର ଦାସ ଦାସୀ ରଖିବାର ପଦ୍ଧତି ।

ଦାସଦାସୀ—ଗ୍ରା.ବ. ଚାକର ଚାକରାଣୀ ।

ଦାସନନ୍ଦିନୀ—ସ୍ତ୍ରୀ. ବ. (ଷତତ୍ର) ବ୍ୟାସଙ୍କ ମାତା ସତ୍ୟବତୀ ।

ଦାସପତ୍ନୀ--ସ୍ତ୍ରୀ.ବ.ଅପ୍,ଜଳ, ଦାସର ସ୍ତ୍ରୀ ।

ଦାସପୁର—ବ. କେଉଟସାହି, କୈବର୍ତ୍ତ ମୁସ୍ତକ ।

ଦାସବ୍ୟବସ୍ଥ—ବ.(କ.ଧା) ଦାସଦାସୀ କ୍ରୟବିକ୍ରୟରୂପ ବୃତ୍ତି ।

ଦାସବ୍ୟବସାୟୀ—ବ. ଘର ଦାସ ଦାସୀ କ୍ରୟବିକ୍ରୟର ବଣିକ ।

ଦାସମନୋଭାବ—ବ. ଦାସ ସୁଲଭ ପରାଧୀନତାଯୁକ୍ତ ମନୋଭାବ ।

ଦାସମୀୟ—ବଂ. ଦଶମ ଦେଶଭବ, ଗୃହସ୍ଥ ଶୂଦ୍ରାଭିରତ ସ୍ୱୀକାତ ।

ଦାସର—ବି.କର୍ଣ୍ଣାଟକ ଦେଶବାସୀ ଜାତିବିଶେଷ ।

ଦାସରାଜ—ବ. (ଦାସ + ରାଜନ୍)ଷତତ୍ର; ଧୀବରରାଜ, ବ୍ୟାସମାତା ସତ୍ୟବତୀଙ୍କ ପିତା ।

ଦାସାନୁଦାସ—ବ. ( ଷତତ୍ର ) ଭୃତ୍ୟର ଭୃତ୍ୟ ।

ଦାସିକା—ସ୍ତ୍ରୀ.ବ.(ଦାସୀ+କ.ଆ)ଭୃତ୍ୟା, ଚାକରାଣୀ, ସେବାକାରିଣୀ, ପୋଇଲି, ରକ୍ଷିତା ସ୍ତ୍ରୀ, ଶୂଦ୍ରା, ଧୀବରୀ, କେନ୍ଦୁଝୁଣ୍ଟୀ, ମାଳାମ୍ଳାନ, ମାଳ ବାଣ ଫୁଲ ଓ ଗଛ,କାକଜଙ୍ଘା ଦେଖ, ଦାସକେରେଣ୍ଡା ଦେଖ, ବେଖା ।

ଦାସୀ—ସ୍ତ୍ରୀ. ବ. ( ଦାସ+ଈ ) ଦାସିକା ଦେଖ, ଦାସର ସ୍ତ୍ରୀଲିଙ୍ଗ ରୂପ, (ଗ୍ରା. ବାଲେ. ବ. ) କାଳେଣୀ, ଠାକୁରାଣୀ ଯେଉଁ ସ୍ତ୍ରୀଠାରେ ବିଜେକରନ୍ତି ।

ଦାସୀତ୍ୱ—ବ. ଦାସୀର କାର୍ଯ୍ୟ, ଦାସୀର ଭାବ ।

ଦାସୀପରିବାର—ଗ୍ରା. ବ. ପୋଇଲୀ ଓ ରକ୍ଷିତା ସ୍ତ୍ରୀ, ବହୁସଂଖ୍ୟକ ଦାସୀ ।

ଦାସୀପୁଅ—ଗ୍ରା. ବ. ଦାସୀଆଉର ପୁଅ, ଦାସୀ ଜନ୍ମ କରିଥିବା ପୁଅ, ରକ୍ଷିତା-ସ୍ତ୍ରୀର ଗର୍ଭଜାତ ସନ୍ତାନ ।

ଦାସୀସଭ—ବ. ଦାସୀର ସଭା, ଦାସୀ-ସମୂହ ।

ଦାସେୟ—ପୁଂ.ବ(ଦାସ+ଏୟ)ଚାକର, ଭୃତ୍ୟ, ଧୀବର, ଦାସୀପୁତ୍ର, ଗୋଲାମ, ପୁଂ. ବଂ. (ଦାସୀ + ଏୟ + ଈ) ଦାସୀ ବା ରକ୍ଷିତା ସ୍ତ୍ରୀଠାରୁ ଉତ୍ପନ୍ନ, ପୋଇଲା, (ଦାସ + ଏୟ) ଧୀବର ଔରସଜାତ, (ସ୍ତ୍ରୀ) ଦାସେୟୀ ।

ଦାସେୟୀ—ସ୍ତ୍ରୀ.ବ. (ଦାସ + ଏୟ + ଈ) ଦାସ ରାଜକନ୍ୟା, ସତ୍ୟବତୀ, ବ୍ୟାସଙ୍କ ମାତା ।

ଦାସେର—ବ. ( ଦାସ+ଏର ) ଦାସ, (ଦାସୀ+ଏର) ଦାସୀପୁତ୍ର, ଉଷ୍ଟ୍ର,ଓଟ, ଧୀବର ।

ଦାସେରକ—ବ. ( ଦାସ+ଏର+କ ) ଦାସେର ଦେଖ ।

ଦାସ୍ତ—ଯା.ବ.ମଳତ୍ୟାଗ,ଝାଡ଼ା, ପାଳନ, ପୋଷଣ, ହେପାଜତ, ଗୃହିତା ।

ଦାସ୍ତାନ—ଯା. ବ. ବିବରଣ, ବୃତ୍ତାନ୍ତ, ବର୍ଣ୍ଣନା, ହାଲ ।

ଦାସ୍ୟ—ବ. (ଦାସ+ଭା.ଯ) ଗୋଲାମି, ପରାଧୀନତା, ସେବା, ଚାକରି ।

ଦାସ୍ୟବୃତ୍ତି—ସ୍ତ୍ରୀ. ବ. (କ.ଧା) ଚାକରି, ଦାସତ୍ୱ ।

ଦାସ୍ୟଭକ୍ତି—ବ. ଭକ୍ତ ଦାସ ବା ଭୃତ୍ୟ ଭାବରେ ଉପାସ୍ୟ ଦେବତାଙ୍କୁ ଯେଉଁ ଭକ୍ତି କରେ ।

ଦାସ୍ୟଭାବ—ବ. ପ୍ରଭୁଙ୍କ ପ୍ରତି ଭୃତ୍ୟର ଅନୁରାଗ ବା ଭକ୍ତି, ଦାସ୍ୟ ଦେଖ ।

ଦାସ୍ୟମାନ—ବଂ. ( ଦା+ଆନ ) ଯାହା ଭବିଷ୍ୟତରେ ଦିଆଯିବ ।

ଦାସ୍ୟାଦ୍ୟ—ବ. ଭୈଷଜ୍ୟରତ୍ନାବଳୀ ଉକ୍ତ ପାଚନ ଔଷଧବିଶେଷ ।

ଦାସ୍ର—କ୍ଲୀ. ବ. ଅଶ୍ୱିନୀ ନକ୍ଷତ୍ର ।

ଦାହ—ବ. ( ଦହ+ଭା.ଅ ) ଜାଳିବା, ଭସ୍ମୀକରଣ, ପୋଡ଼ିବା, ଦହନ, ଦେହାଂଶରେ ବା ବ୍ରଣାଦିରେ ଅଗ୍ନି-ପ୍ରୟୋଗ, ଦେହର ପୋଡ଼ା ଜଳା-ବେଗ, ଜ୍ୱର, ଜ୍ୱରଜନିତ ଦେହର ଉତ୍ତାପବୃଦ୍ଧି, ତାପ, ସନ୍ତାପ, ଆନ୍ତରିକ ବେଦନା, ଶୋକ, ମନୋଦୁଃଖ, ଶବକୁ ପୋଡ଼ିବା, ଶବଦାହ,(ଗ୍ରା.ବଂ.)ଦଗ୍ଧ, ପୋଡ଼ା ।

ଦାହକ—ବଂ. ( ଦହ+କ.ଅକ ) ଯେ ଲୋକଙ୍କ ଘରଆଦି ପୋଡ଼ିଦିଏ, ଦାହ-କାରୀ, ଯାହା କୌଣସି ବସ୍ତୁକୁ ଦଗ୍ଧ କରେ, ଯାହା ଜଳାପୋଡ଼ା ଉତ୍ପାଦନ କରେ, (ବି) ଯେଉଁ ସ୍ୱଜାତୀୟ ବ୍ୟକ୍ତି-ମାନେ ମୃତ ବ୍ୟକ୍ତିର ଶବକୁ ପୋଡ଼ି-ବାକୁ ନିଅନ୍ତି, ମଡ଼ାପାଙ୍ଗିଆ ଭାଇ,ଶବକୁ ସତ୍କାର କରିବାକୁ ନେବା ବ୍ୟକ୍ତିଗଣ, ଚିତ୍ରକ, ଚିତାଗଛ, ନାଲିଚିତା ଗୁଳ୍ମ, ଅଗ୍ନି ।

ଦାହକର୍ମ—ବ. ଶବଦାହ କର୍ମ ।

ଦାହକସର୍ପ—ଗ୍ରା. ବ. ବଙ୍ଗଦେଶର ସୁନ୍ଦରବନରେ ଦେଖାଯିବା ଏକ-ପ୍ରକାର ସାପ ।

ଦାହକାଷ୍ଠ—କ୍ଲୀ.ବ.(କ.ଧା) ଦାହାଗୁରୁ, ଅଗୁରୁ, ଏକପ୍ରକାର କାଷ୍ଠ, ଯାହାର ଧୂପ ଖୁବ୍ ସୁଗନ୍ଧ ।

ଦାହକ୍ରିୟା—ବ.(କ.ଧା)ଶବଦାହ କର୍ମ ।

ଦାହଘ୍ନ—ବଂ. ( ଦାହ+ହନ୍+କ.ଅ ) ଯାହା ଶରୀରର ପ୍ରଦାହ ନାଶ କରେ, ଜ୍ୱରନାଶକ ।

ଦାହଜ୍ୱର—ବ. ( ଦହ+ଜ୍ୱର).କ.ଧ;

ଯେଉଁ ଜ୍ୱରରେ ଦେହ ପୋଡ଼ାଜଳା କରେ । [ ଜଳା କରିବା ।

ଦାହଦେବା—ଗ୍ରା.କ୍ରି. (ଦେହ)ପୋଡ଼ା-

ଦାହନ—ବି. (ଦହ+ଣିଚ୍+ଭା.ଅନ) ପୋଡ଼ିଦେବା, ଜ୍ୱଳାଇବା, ପ୍ରଜ୍ୱାଳନ, ସନ୍ତାପନ ।

ଦାହାନାଗୁରୁ—ବି. ଦାହାଗୁରୁନାମକ ଗନ୍ଧଦ୍ରବ୍ୟବିଶେଷ । [ ଦେଖ ।

ଦାହନବାରଣ—ବି. ଓ ବିଂ. ଦାହହରଣ

ଦାହବାନ୍—ପୁଂ. ବିଂ. ( ଦାହ+ବତ୍ ) ଦାହଯୁକ୍ତ, ଜ୍ୱଳନ୍ତ,(ସ୍ତ୍ରୀ) ଦାହବତୀ ।

ଦାହବାହ—ବିଂ.(ଦାହ+ବହ+କ.ଅ) ଦାହାର୍ଥ ଶବକୁ ଶ୍ମଶାନକୁ ବହନେବା (ବ୍ୟକ୍ତି),ମୁର୍ଦ୍ଦାରକଢ଼ା (ଲୋକ),ମଢ଼ା—ସାଙ୍ଗିଆ (ଲୋକ) । [ ଯୁକ୍ତ ।

ଦାହମନ୍ତ—ବିଂ. (ଦାହ+ମନ୍ତ)ପ୍ରଦାହ-

ଦାହସର—ବି. ( ଦାହ+ସୃ+ମଁ.ଅ ) ଶବଦାହ ସ୍ଥାନ, ଶ୍ମଶାନ, ମଶାଣି ।

ଦାହସ୍ଥଳ—ବି. ( ୬ତତ୍ ) ଦାହସର ଦେଖ ।

ଦାହହରଣ—ବି.(ବ.ବ୍ରୀ) ବେଣାଚେର, (୬ତତ୍) ଦେହର ପୋଡ଼ାଜଳା ନିବାରଣ, (ବିଂ) ଦାହନିବାରକ ।

ଦାହା—ଗ୍ରା. ବି. ( ସଂ-ଦହନ ) ଦହନ, ଶରୀରର ପ୍ରଦାହ ।

ଦାହାଗୁରୁ —ବି. ଦାହକାଷ୍ଠ ଦେଖ ।

ଦାହିକା—ସ୍ତ୍ରୀ.ବିଂ. (ଦାହକ+ଆ)ଦାହକର ସ୍ତ୍ରୀଲିଙ୍ଗ ।

ଦାହିକାଶକ୍ତି—ବି. (କ.ଧା) ମନକୁ ନିଆଁ ଲାଗିବାର ଶକ୍ତି, ଅନ୍ୟବସ୍ତୁକୁ ପୋଡ଼ିବାର ଗୁଣ । [ ଜ୍ୱଳନ୍ତ ।

ଦାହିତ—ବିଂ.(ଦହ + ମଁ.ତ) ଭସ୍ମୀକୃତ,

ଦାହିବା—ଗ୍ରା. କ୍ରି. ପୋଡ଼ିଯିବା, ଆପେ ଦଗ୍ଧହେବା, ପୋଡ଼ାଜଳା କରିବା, ପୋଡ଼ିଦେବା, ଜଳାଇବା, ଧାନଆଦି ଫସଲ କାଟିବା, (ଲ.ଅର୍ଥ)ତପସ୍ୟାଆଦି କରି ସଫଳ ବା ସିଦ୍ଧହେବା, ନିଜର କର୍ମଫଳ ଭୋଗ କରିବା, (ପୁଣ୍ୟ)ଅର୍ଜନ କରିବା, ସାଧିବା, ସ୍ନାନକରିବା ।

ଦାହୀ—ପୁଂ. ବିଂ. (ଦହ+ଣିଚ୍+ଇନ୍) ଦହନକର୍ତ୍ତା, ଦଗ୍ଧକାରୀ, ଦାହଜନକ, (ସ୍ତ୍ରୀ) ଦାହିନୀ ।

ଦାହ୍ୟ—ବିଂ. ( ଦହ + ଣିଚ୍ + ମଁ.ଯ ) ଦହନଯୋଗ୍ୟ,ପୋଡ଼ାଯିବାର ଯୋଗ୍ୟ, ବିସ୍ଫୋରକ, ଯହିଁରେ ସହଜରେ ନିଆଁ ଧରେ ।

ଦାହ୍ୟପଦାର୍ଥ—ବି. (କ.ଧା) ଯେ ସବୁ-ପଦାର୍ଥ ଅଗ୍ନି ସଂଯୋଗମାତ୍ରେ ଜଳି-ଉଠେ ।

ଦି—ଗ୍ରା. ବିଂ. ( ସଂ-ଦ୍ୱି ) ଦୁଇସଂଖ୍ୟକ, ଅଳ୍ପସଂଖ୍ୟକ, (ଗ୍ରା.ବି) ଦୁଇସଂଖ୍ୟା, (ପ୍ରା. ସମ୍ବ.ଅବ୍ୟ. ସଂ-ଦିକ୍) କୁ,ପାଖକୁ, ନିକଟକୁ, ଦିଗରେ, ଆଡ଼େ, ଆଡ଼କୁ, ଅଞ୍ଚଳରେ ।

ଦିଅ—ଗ୍ରା.କ୍ରି. (ତୁମ୍ଭେ ବା ତୁମ୍ଭେମାନେ) ଦାନକର, ଦେଇଥାଅ, ( ଗ୍ରା.ଅବ୍ୟ ) ଭୁଲ, ଫୁର୍ତ୍ତିକର, କାର୍ଯ୍ୟ ଶେଷକର, ଏକଥା ଥାଉ, ଗୁଡ଼ ସେ କଥା ।

ଦିଅଁ(ଅ)—ଗ୍ରା. ( ସଂ-ଦେବ ) ଠାକୁର. ଦେବତା, ପରମେଶ୍ୱର, ଭଗବାନ୍, ଦେବତାଙ୍କ ମୂର୍ତ୍ତି ।

ଦିଅକରିବା—ଗ୍ରା.କ୍ରି. କୌଣସି ବ୍ୟକ୍ତିକୁ ଦେବତାପରି ପୂଜା କରିବା ।

ଦିଅଘର—ଗ୍ରା. ବି. ଠାକୁର ଘର ।

ଦିଅଣି—ଗ୍ରା. ବି. ଦୁଇଅଣାର ମୁଦ୍ରା, ଦୋଅଣି ।

ଦିଅଦେବତା—ଗ୍ରା. ବି. ଠାକୁରମାନେ ।

ଦିଅଫିଅ--ଗ୍ରା.ବି.ଠାକୁରମାନେ, ଦେବତା ଆଦି ।

ଦିଅର—ଗ୍ରା.ବି. (ସଂ-ଦେବର) ସ୍ୱାମୀଙ୍କ ସାନଭାଇ ।

ଦିଆ—ଗ୍ରା.ବିଂ.(ସଂ-ଦତ୍ତ ) ଦତ୍ତ, ପ୍ରଦତ୍ତ, ( ସଂ—ଦୟାଳୁ ) ଦୟାଳୁ,ଦୟାଶୀଳ, (ସଂ—ଦାତା)ଦାନଶୀଳ,ମୁକ୍ତହସ୍ତ.(ବି) ଦେବା, ଦେବାବ୍ୟକ୍ତି । [ ଉଇ ।

ଦିଆପୋକ—ପ୍ରା. (ସମ୍ବ) ବି. ଉଆଦେଖ

ଦିଆଇବା—ଗ୍ରା. କ୍ରି.ଅନ୍ୟଦ୍ୱାରା ଦେବା କିମ୍ବା କଟେଇବା ।

ଦିଆକ୍—ଗ୍ରା.ଅବ୍ୟ.(ଅମୁକ) ଦ୍ୱାରାପ୍ରଦତ୍ତ, (ଅମୁକର) ମାରଫତରେ ପ୍ରଦତ୍ତ ।

ଦିଆକ୍ ଖାଦ୍—ଯ.ଅବ୍ୟ. ନେଉଦେବା, ସ୍ୱୟଂ ଦେଇଥିବା ।

ଦିଆଦେଇ—ଗ୍ରା. ବି. ପରସ୍ପରକୁ ଦେବା, ନାମ ବସ୍ତୁ ଦେବା, ବହୁବାର ଦେବା ।

ଦିଆନ୍—ଗ୍ରା . ବି. ଦେଓ୍ୱାନ ଦେଖ ।.

ଦିଆନ—ଗ୍ରା .ବି ଓ ବିଂ.ଦେଓ୍ୱାନ ଦେଖ ।

ଦିଆନିଆ—ଗ୍ରା. ବି. ଦେବା ଓ ନେବା, ଆଦାନ ଓ ପ୍ରଦାନ, କାରବାର ।

ଦିଆପଣ—ଗ୍ରା. ବି. ଦାତାପଣ, ଦାତୃତ୍ୱ, ଦାନଶୀଳତା ।

ଦିଆର—ଯା.ବି. ନଦୀର ଧାର ଘୁଞ୍ଚିଯିବା ଯୋଗୁଁ ନଈକୂଳରେ ଯେଉଁ କୃଷି-ଯୋଗ୍ୟ ଜମି ଉତ୍ପନ୍ନ ହୁଏ ।

ଦିଆଲ୍—ଗ୍ରା. ବି. ଦେବାଲ, କାନ୍ଥ, ଦେଓ୍ୱାଲ ଦେଖ ।

ଦିଆଲି—ଗ୍ରା.ବି. (ସଂ-ଦୀପାବଳୀ) କାର୍ତ୍ତିକ ଅମାବାସ୍ୟା ।

ଦିଆଳୁ—ଗ୍ରା.ବି. (ସଂ-ଦାନଶୀଳ) ଦାନ-ଶୀଳ, ଦାତା, ଦୟାଶୀଳ ।

ଦିଆଶି—ପ୍ରା.(ବାଲେ)ବି. (ସଂ-ଦେବାଂଶ). ସର୍ବଜ୍ଞ, ଭବିଷ୍ୟଦ୍ ବକ୍ତା ।

ଦିଆଶିଲି—ଗ୍ରା.ବି. (ସଂ-ଦୀପ ଓ ଶଳାକା) ଦିଆସିଲି, ନିଆଁକାଠି, ଗନ୍ଧକ ବା ଲିପ୍ତ ବିସ୍ଫୋରକ କାଠି, ନିଆଁପେଡ଼ି, ନିଆଁ କାଠିଥିବା ବାକ୍ସ ।

ଦିଆଶିଲିକାଠି—ଗ୍ରା. ବି. ନିଆଁକାଠି, ଯେଉଁ କାଠିକୁ ଘଷିଦେଲେ ଜଳିଉଠେ ।

ଦିଆଶିଲିମାରିବା—ଗ୍ରା. କ୍ରି. ଆଲୁଅ ଲଗାଇବା ପାଇଁ ଦିଆସିଲି କାଠିକୁ ଘଷିବା ।

ଦିଉ—ପଶ୍ଚିମ ଭାରତର ପର୍ତ୍ତୁଗୀଜ ଅଧିକୃତ, ଗୋଟିଏ ଦ୍ୱୀପ ।

ଦିଉସ୍ତି—ଗ୍ରା. ସ୍ତ୍ରୀ. ବି. ( ସଂ-ଦ୍ୱିବସ୍ତା ) ଯେଉଁ ସ୍ତ୍ରୀର ଦୁଇଗୋଟି ସନ୍ତାନ ଜନ୍ମ-ହେବା ପରେ ଆଉ ଗର୍ଭ ହୁଏନାହିଁ ।

ଦିଉଉରଶତ—ଗ୍ରା. ବି ଓ ବି. ଏକ-ଶତ ଦୁଇ ।

ଦିଓଟା—ଗ୍ରା. ବି ଓ ବିଂ. ଦୁଇଗୋଟିମାତ୍ର,

ଖଣ୍ଡିଏ, ଅଳ୍ପମାତ୍ର ।

**ଦିଓଷ୍ଟି**—ଗ୍ରା. ବି ଓ ବିଂ. ଦିଓଷ୍ଟା ଦେଖ ।

**ଦିକ୍**—ବି. (ଦିଶ୍+ର୍ମି.କ୍ୱିପ୍) ପ୍ରଭୃତି ଦିଗ, ଭାଗ, ଅଂଶ, ସୀମା, ତରଫ, ପକ୍ଷ, ଆଡ଼, ଦେଶ, ଅଞ୍ଚଳ, ପୂର୍ବ, ପଶ୍ଚିମ, ଉତ୍ତର ଓ ଦକ୍ଷିଣ ଏହି ୪ଟି ଦିଗ, ପୂର୍ବ, ପଶ୍ଚିମ ଉତ୍ତର ଓ ଦକ୍ଷିଣ ଏହି ଚାରି ଦିଗ ଓ ଅଗ୍ନି, ବାୟୁ, ନୈର୍‌ଋତ ଓ ଈଶାନ୍ୟ ଏହି ଚାରି ବିଦିଗ; ଏପରି ୮ଟି ଦିଗ, ଦଶ-ସଂଖ୍ୟା, ସ୍ଥିତ, ଦନ୍ତକ୍ଷତବିଶେଷ, ଅଭିମୁଖ, ପାର୍ଶ୍ୱ, ପ୍ରଦେଶ, (ଯା.ବି) ବିରକ୍ତି, କଷ୍ଟ, (ବିଂ) ଦିକ୍‌ଦାର୍ ଦେଖ ।

**ଦିକ୍‌ଚକ୍ର**—ବି. ( ଦିକ୍+ଚକ୍ର ) ରୂପକ କ.ଧା; ଦିଗ୍‌ବଳୟ, ଆଠଦିଗର ସମୂହ ।

**ଦିକ୍‌ଦାର**—ଯା.ବିଂ. ବିରକ୍ତ, କଷ୍ଟପ୍ରାପ୍ତ, ବ୍ୟସ୍ତ, ଉତ୍ତ୍ୟକ୍ତ ।

**ଦିକ୍‌ଦାରୀ**—ଯା: ବି. ବିରକ୍ତି, ( ବିଂ ) ଦିକ୍‌ଦାରିଆ ଦେଖ ।

**ଦିକ୍‌ଦାରିଆ**—ଯା. ବିଂ. ବିରକ୍ତିକର, ବିରକ୍ତିଜନକ ।

**ଦିକ୍‌ଦିକ୍**—ଯା. ବି. ଦିକ୍‌ଦାର୍ ଦେଖ ।

**ଦିକ୍‌ପଟ**—ବି ଓ ବିଂ. ଦିଗମ୍ବର ଦେଖ ।

**ଦିକ୍‌ପତି**—ବି. ( ଦିକ୍+ପତି ) ୬ତତ୍ତ୍ୱ; ପୂର୍ବଆଦି ଦଶଦିଗର ରକ୍ଷକ ଦେବଗଣ, (ମତାନ୍ତରେ) ବ୍ରହ୍ମା ଓ ଅନନ୍ତଙ୍କୁ ଛାଡ଼ି ୮ଦିଗର ୮ଜଣ ଦିକ୍‌ପତି, (ମତାନ୍ତରେ) ସୂର୍ଯ୍ୟ, ଶୁକ୍ର, ମଙ୍ଗଳ, ରାହୁ, ଶନି, ସୋମ, ବୁଧ, ବୃହସ୍ପତି, ପୂର୍ବ ଦିକ୍‌କ୍ରମେ ଏହି ୮ଜଣ ଦିକ୍‌ପାଳ ଗ୍ରହ ।

**ଦିକ୍‌ପାଳ**—ବି. (ଦିକ୍+ପାଳ) ଦିକ୍‌ପତି ଦେଖ, (ଲ.ଅର୍ଥ) ଅସାଧାରଣ କ୍ଷମତାଶାଳୀ ବ୍ୟକ୍ତି ।

**ଦିକ୍‌ଶିକ୍**—ଗ୍ରା. ଅବ୍ୟ. ବିଲ୍‌କୁଲ୍, ସମ୍ପୂର୍ଣ୍ଣରୂପେ, (ଯା.ବିଂ) ଦିକ୍‌ଦାର ଦେଖ ।

**ଦିକ୍‌ଶୂଳ**—ବି. ଫଳିତ ଜ୍ୟୋତିଷ ଶାସ୍ତ୍ର ମତରେ ବିଶେଷ ବିଶେଷ ଦିଗକୁ ଯାତ୍ରା କରିବାରେ ଅଶୁଭ ବାର ।

**ଦିକ୍‌ସାଧନ**—ବି.(୬ତତ୍ତ୍ୱ)ଯେଉଁ ଉପାୟ ଦ୍ୱାରା ଭିନ୍ନ ଭିନ୍ନ ଦିଗ ମାନଙ୍କର ଜ୍ଞାନ ଜନ୍ମେ ।

**ଦିକ୍‌ସୁନ୍ଦରୀ**—ବି. ଦିକ୍‌କନ୍ୟା ଦେଖ ।

**ଦିକ**—ଗ୍ରା.ବି. (ସଂ-ଦିକ୍) ଦିକ୍ ଦେଖ ।

**ଦିକଡ଼ା**—ଗ୍ରା. ବି. ଦୁଇକଡ଼ା କଉଡ଼ି, ଦୁଇଗୋଟି (ନଡ଼ିଆ ଆଦି), ଗ୍ରା. ବିଂ. ଦିକଡ଼ାର ଦେଖ ।

**ଦିକଡ଼ାର**—ଗ୍ରା. ବିଂ. ଦୁଇକଡ଼ା କଉଡ଼ିର ମୂଲ୍ୟବିଶିଷ୍ଟ, ଅତି ଅଳ୍ପ ମୂଲ୍ୟର, ତୁଚ୍ଛ, ହେୟ, ଅକାମିକା ।

**ଦିକଡ଼ିଆ**—ଗ୍ରା. ବିଂ. ଅତି ନୀଚ, ତୁଚ୍ଛ, ନଗଣ୍ୟ, ଅତି ସାମାନ୍ୟ ମୂଲ୍ୟର ।

**ଦିକାଠିଆ**—ଗ୍ରା. ବି. ଦୁଇଖଣ୍ଡି କାଠି ମିଶାଇ କାନ୍ଥରେ ଦ୍ରବ୍ୟାଦି ରକ୍ଷାର୍ଥ ଯେଉଁ ଆସ୍ଥାନ କରାଯାଇ ଥାଏ ।

**ଦିକି**—ଯା. ବି. ଗ୍ରା. ଦିକ୍ ଦେଖ ।

**ଦିକିମାଖି**—ଗ୍ରା. ବି. ଜିଗର, ଧିକିମାଖି, ବାରମ୍ବାର କହିବା ଦ୍ୱାରା ବିରକ୍ତି ଉତ୍ପାଦନ ।

**ଦିକିଦିକିଆ**—ପ୍ରା. ( ସମ୍ବଲପୁର ) ବିଂ. ବିରକ୍ତିକର, ଜିଗରିଆ ।

**ଦିକୁଳ**—ଗ୍ରା. ବି. (ସଂ-ଦ୍ୱିକୁଳ) ପିତୃବଂଶ ଓ ମାତୃବଂଶ, କୌଣସି ବ୍ୟକ୍ତିର ପୁତ୍ରର ବଂଶଧରଗଣ ଓ କନ୍ୟାର ବଂଶଧର ଗଣ,(ସ୍ତ୍ରୀ ପକ୍ଷରେ) ପିତୃବଂଶ ଓ ଶ୍ୱଶୁରଙ୍କ ବଂଶ ।

**ଦିକ୍କ**—ପୁଂ. ବି. (ଦିକ୍+କ.କ) ବିଂଶତି ବର୍ଷ ବୟସ୍କ କରିଶାବକ, ହାତୀଛୁଆ ।

**ଦିକ୍କନ୍ୟା**—ବି. କନ୍ୟାରୂପେ କଳ୍ପିତ ଦିକ୍ ସମୂହ ।

**ଦିକ୍କର**—ପୁଂ. ବି. (ଦିକ୍+କୃ+କ.ଅ) ଯୁବକ, ଶିବ ।

**ଦିକ୍କରି(କ)**—ପୁଂ. ବି. ଯୁବକ, ଶିବ ।

**ଦିକ୍କରିକା**—ସ୍ତ୍ରୀ.ବି. ନଦୀବିଶେଷ, ଯୁବତୀ

**ଦିକ୍କରୀ**—ବି. ୬ତତ୍ତ୍ୱ; ( ଦିକ୍+କରିନ୍ ) ଦିଗ୍‌ଗଜ ଦେଖ ।

**ଦିକ୍କାନ୍ତା**—ସ୍ତ୍ରୀ. ବି. ଦିକ୍କନ୍ୟା ।

**ଦିକ୍କାମିନୀ**—ସ୍ତ୍ରୀ. ବି. ଦିକ୍‌ରୂପ ସ୍ତ୍ରୀ ।

**ଦିକ୍କୁମାର**—ବି. ଜୈନମତେ ଭବନାଧିପତି ।

**ଦିକ୍କୋଣ**—ବି. (ଦିକ୍+କୋଣ) ୬ତତ୍ତ୍ୱ, ଦିଗମାନଙ୍କର କୋଣ ।

**ଦିଖିତ**—ଗ୍ରା. ବି. ( ସଂ-ଦୀକ୍ଷିତ ) ଦୀକ୍ଷିତ ଦେଖ ।

**ଦିଗ୍**—ଗ୍ରା. ବି. (ସଂ-ଦିକ୍) ଦିକ୍ ଦେଖ ।

**ଦିଗ୍‌ଜ୍ଞାନ**—ବି. (ଦିକ୍+ଜ୍ଞାନ) ୬ତତ୍ତ୍ୱ; ପୃଥିବୀର ଦିଗମାନ ନିର୍ଣ୍ଣୟ କରିବାର ଜ୍ଞାନ, ସାମାନ୍ୟ ଜ୍ଞାନ ।

**ଦିଗ୍‌ଦର୍ଶନ**—ବି. (ଦିକ୍+ଦର୍ଶନ) ବହୁଦର୍ଶିତା, ଅଭିଜ୍ଞତା, ଦିଗମାନଙ୍କର ନିର୍ଣ୍ଣୟ, ଦିକ୍‌ନିର୍ଣ୍ଣୟ କରିବା ଯନ୍ତ୍ର, ସୂଚନା, ଉଦାହରଣ ସ୍ୱରୂପ ସୂଚିତ ବିଷୟ, ନମୁନା, ( ବିଂ. ) ଯାହା ଦ୍ୱାରା ଦିଗମାନ ନିର୍ଣ୍ଣିତ ହୁଏ ।

**ଦିଗ୍‌ଦର୍ଶନଯନ୍ତ୍ର**—ବି. ଯେଉଁ ଯନ୍ତ୍ର ସାହାଯ୍ୟରେ ଦିଗମାନଙ୍କ ସମ୍ବନ୍ଧେ ଜ୍ଞାନଲାଭ କରାଯାଏ ।

**ଦିଗ୍‌ଦାର**—ଯା. ବିଂ. ଦିକ୍‌ଦାର ଦେଖ ।

**ଦିଗ୍‌ଦାହ**—ବି. (୬ତତ୍ତ୍ୱ) ସୂର୍ଯ୍ୟାସ୍ତପରେ ସବୁ ଦିଗମାନ ଜଳଲପରି ନାଲିଦେଖାଯିବା ଦୈବୀଘଟନା ।

**ଦିଗ୍‌ଦିଗନ୍ତ(ର)**—ବି.(ଦିକ୍+ଦିକ୍+ଅନ୍ତ) ଦିଗମାନଙ୍କର ଅନନ୍ତ ବିସ୍ତାର, ଦିଗଠାରୁ ଦିଗ ସୀମା ପର୍ଯ୍ୟନ୍ତ ବିସ୍ତାର, ଦିଗ୍‌ବିଦିକ୍, ଚାରିଦିଗ ଓ ଚାରିକୋଣ, (କ୍ରି. ବିଂ.) ସବୁ ଦିଗରେ ।

**ଦିଗ୍‌ଦେବତା**—ବି. ଦିକ୍‌ପତି ଦେଖ ।

**ଦିଗ୍ଧ**—ବିଂ.(ଦିହ+ର୍ମି.ତ)ଲିପ୍ତ, ମିଶ୍ରିତ, (ସ୍ତ୍ରୀ)ଦିଗ୍ଧା,(ପୁଂ.ବି)ବିଷାକ୍ତବାଣ, କ୍ଲୀ. ବି. (ଦିହ+ଭା.ତ) ଲେପନ ।

**ଦିଗ୍‌ନାଗାର୍ଯ୍ୟ**—ଗ୍ରା. ବି.ଜଣେ ବୌଦ୍ଧ ଦାର୍ଶନିକ । [ ବଳ ।

**ଦିଗ୍‌ବଳ**—ବି.ଲଗ୍ନାଦିସ୍ଥିତ ଗ୍ରହମାନଙ୍କର

**ଦିଗ୍‌ବଳୟ**—ବି. (କ.ଧା) ଚକ୍ରବାଳ, ଦିଗନ୍ତ ।

**ଦିଗ୍‌ବଳୀ**—ପୁଂ.ବି. ଦିକ୍‌ନିମିତ୍ତ ବଳଯୁକ୍ତ ଗ୍ରହ, ତାଦୃଶ ରାଶିଭେଦ ।

**ଦିଗ୍‌ବସନ**—ପୁଂ. ବିଂ. (ଦିକ୍+ବସନ, ବ.ବ୍ରୀ) ଦିଗମ୍ବର, ଉଲଗ୍ନ, ଲଙ୍ଗଳା,

ନଗ୍ନ, (ସ୍ତ୍ରୀ) ଦିଗ୍‌ବସନା, (ପୁଂ. ବି) ମହାଦେବ ।
**ଦିଗ୍‌ବସନା**—ସ୍ତ୍ରୀ. ବିଂ. (ଦିକ୍+ବସନ+ଆ) ବି.ଗ୍ରା; ନଗ୍ନା, ଲଙ୍ଗଳା, (ସ୍ତ୍ରୀ. ବି) କାଳୀ ।
**ଦିଗ୍‌ବସ୍ତ୍ର**—ପୁଂ. ବି ଓ ବିଂ. (ବି.ଗ୍ରା) ଦିଗବସନ ଦେଖ ।
**ଦିଗ୍‌ବସ୍ତ୍ରା**—ସ୍ତ୍ରୀ. ବି ଓ ବିଂ. (ବି.ଗ୍ରା) ଦିଗ୍‌ବସନା ଦେଖ ।
**ଦିଗ୍‌ବାନ୍**—ବି. (ଦିକ୍+ବତ୍) ପହରାବାଲା, ଚୌକିଦାର ।
**ଦିଗ୍‌ବାରଣ**—ବି. (ଦିକ୍+ବାରଣ) ଦିଗମାନଙ୍କୁ ବାରିବା ବା ଚହ୍ନିବା ବା ଠଉରାଇବା, ଦିଗ୍ଗଜ ଦେଖ, ଦିଗ୍‌ବାରଣ ଯନ୍ତ୍ର, ଦିଗଦର୍ଶନ ଯନ୍ତ୍ର ।
**ଦିଗ୍‌ବାରଣଖୁଣ୍ଟ(ଣ୍ଟି)**—ଗ୍ରା.ବି. ଜାହାଜର ମାସ୍ତୁଲ, ଯେଉଁ ଉଚ୍ଚଖୁଣ୍ଟ ଉପରେ ଚଢ଼ି ଦିଗ୍ ନିର୍ଣ୍ଣୟ କରାଯାଏ, ଯେଉଁ ଉଚ୍ଚ ଖୁଣ୍ଟ ଉପରେ ଦିଗ ନିର୍ଣ୍ଣାୟକ ଚାରିଖଣ୍ଡି ବା ଆଠଖଣ୍ଡି କାଠିଥାଏ ।
**ଦିଗ୍‌ବାରଣଯନ୍ତ୍ର**—ବି. ଦିଗ୍‌ଦର୍ଶନ ଯନ୍ତ୍ର ଦେଖ ।
**ଦିଗ୍‌ବାସାଃ**—ପୁଂ.ବି ଓ ବିଂ. ଦିଗ୍‌ବସନ ଦେଖ ।
**ଦିଗ୍‌ବିଜୟ**—ବି. (୬ତତ୍) ବିଦ୍ୟା, ବୁଦ୍ଧି ବା ବଳଦ୍ୱାରା ସବୁ ଦିଗକୁ ଅଧିକାର ବା ଜୟ କରିବା ।
**ଦିଗ୍‌ବିଜୟୀ**—ପୁଂ.ବିଂ.(ଦିଗ୍+ବିଜୟୀ+ଇନ୍) ଯେ ପୃଥିବୀର ଯେଉଁ ଦିଗକୁ ଯାଏ ସେହି ଦିଗକୁ ଜୟ କରେ,(ସ୍ତ୍ରୀ) ଦିଗ୍‌ବିଜୟିନୀ ।
**ଦିଗ୍‌ବିଦିଗ୍‌ଜ୍ଞାନ**—ବି. (୬ ବା ୭ତତ୍) ଦିଗ ଓ ବିଦିଗ ଜ୍ଞାନପରି ସହଜ ଜ୍ଞାନ ବା ଅନାୟାସଲଭ୍ୟ ଜ୍ଞାନ, ଗୁରୁଲଘୁଜ୍ଞାନ, ହିତାହିତ ଜ୍ଞାନ, ନ୍ୟାୟାନ୍ୟାୟ ଜ୍ଞାନ ଇତ୍ୟାଦି, ଦିଗ୍ୱିଦିକ୍ ଦେଖ ।
**ଦିଗ୍‌ବିଦିଗ୍‌ଜ୍ଞାନଶୂନ୍ୟ**—ପୁଂ. ବିଂ. ଯେଉଁ ଲୋକ ପୃଥିବୀର ଗୃହଦିଗ ଓ ଘର ବିଦିଗର ନାମ ଜାଣେ ନାହିଁ, ଭଲମନ୍ଦ ଜ୍ଞାନ ଶୂନ୍ୟ (ବ୍ୟକ୍ତି), ଗୁରୁଲଘୁଜ୍ଞାନଶୂନ୍ୟ, କର୍ତ୍ତବ୍ୟାକର୍ତ୍ତବ୍ୟ ବିଚାରଶୂନ୍ୟ, (ବି) କର୍ତ୍ତବ୍ୟବିମୂଢ଼ ।
**ଦିଗ୍‌ବିଭାଗ**—ବି. (ଦିକ୍+ବିଭାଗ) ଦିକ୍ ଦେଖ ।
**ଦିଗ୍‌ବ୍ୟାପୀ**—ବିଂ. (ଦିକ୍+ବ୍ୟାପିନ୍) ଯାହା ଦିଗମାନଙ୍କୁ ବ୍ୟାପିଥାଏ ।
**ଦିଗ୍‌ଭାଗ**—ବି. ଦିକ୍ ଦେଖ ।
**ଦିଗ୍‌ଭ୍ରମ**—ବି. (୬ତତ୍) ଦିଗନିର୍ଣ୍ଣୟ କରିବା ସମ୍ବନ୍ଧେ ଭ୍ରାନ୍ତି ।
**ଦିଗଭ୍ରମଣ**—ବି. (୭ତତ୍) ଦିଗ୍‌ବିଦିକ୍ ବୁଲିବା, ଘରଆଡ଼େ ବୁଲିବା ।
**ଦିଗ୍‌ଭ୍ରାନ୍ତ**—ବିଂ. (୭ତତ୍) ଦିଗନିର୍ଣ୍ଣୟ କରିବାରେ ଅକ୍ଷମ, ଦିଗ୍‌ମୂଢ଼ ।
**ଦିଗ୍‌ଶିଖା**—ବି. ପୂର୍ବଦିଗ ।
**ଦିଗ୍‌ଶୂଳ**—ବି. ଦିକ୍‌ଶୂଳ ଦେଖ ।
**ଦିଗ**—ଗ୍ରା. ବି. (ସଂ ଦିକ୍) ଦିକ୍, ଏକ କଡ଼ା କଉଡ଼ିର ଦଶମାଂଶ, ପକ୍ଷ ।
**ଦିଗଂଶ**—ବି. (୬ତତ୍) କ୍ଷିତିଜ ବୃତ୍ତର ୩୬୦ଂ ଭାଗରୁ ଏକଭାଗ ।
**ଦିଗକ୍ଷର**—ବି. ଛନ୍ଦୋବିଶେଷ, ଛନ୍ଦଃ ଦେଖ ।
**ଦିଗଙ୍ଗନା(ବଧୂ)**—ସ୍ତ୍ରୀ. ବି. (୬ତତ୍) ଅଷ୍ଟଦିଗର ଅଧିବାସିନୀ ଦେବ୍ୟାଙ୍ଗନା ।
**ଦିଗଜୟ**—ଗ୍ରା.ବି. (ସଂ-ଦିଗ୍‌ବିଜୟ)ସମଗ୍ର ପୃଥିବୀକୁ ଜୟ କରିବା, ଦିଗ୍‌ବିଜୟ ଦେଖ ।
**ଦିଗଡ଼**—ଗ୍ରା. ବି. ଦୁଇଖଣ୍ଡ, (ବିଂ) ଦୁଇ ଖଣ୍ଡରେ ବିଭକ୍ତ ।
**ଦିଗଦାହନ**—ଗ୍ରା. ବି ବିଂ. (ସଂ-ଦିକ୍ ଦାହନ) ଯେ ଚତୁର୍ଦ୍ଦିଗ ଜାଳି ଦିଏ,(ବି) ଚତୁର୍ଦ୍ଦିଗରେ ଜ୍ୱଳନ କ୍ରିୟା,ଇନ୍ଦ୍ରଜିତଙ୍କ ଦେବଦଳନ ରଥରେ ଉଡ଼ୁଥିବା ପତାକା ବିଶେଷ, ଦିଗ୍‌ଦାହ ଦେଖ ।
**ଦିଗଦିଗନ୍ତ**—ଗ୍ରା.ବି.ଦିଗ୍‌ଦିଗନ୍ତ ଦେଖ ।
**ଦିଗନ୍ତ**—ବି. (ଦିକ୍+ଅନ୍ତ) ୬ତତ୍; ଦିଗର ଅନ୍ତ ବା ସୀମା, ଅନନ୍ତ ବ୍ୟବଧାନ, ବିଦିକ୍ ।
**ଦିଗନ୍ତବିସ୍ତାରିତ**—ବିଂ. (ଦିଗନ୍ତ+ବିସ୍ତାରିତ) ଯାହା ଅନନ୍ତ ସ୍ଥାନ ବ୍ୟାପିଅଛି, ଯାହା ବହୁ ଦୂରକୁ ବିସ୍ତୃତ ହୋଇଅଛି
**ଦିଗନ୍ତବିସ୍ତୃତ**—ବିଂ. ଦିଗନ୍ତବିସ୍ତାରିତ ଦେଖ ।
**ଦିଗନ୍ତବ୍ୟାପୀ**—ବିଂ. ଦିଗନ୍ତବିସ୍ତାରିତ [ ଦେଖ ।
**ଦିଗନ୍ତର**—ବି. (୬ତତ୍) ଅନ୍ୟ ଦିଗ, ଦିଗମାନଙ୍କ ମଧ୍ୟରେ ଥିବା ଅବକାଶ, ବିଦିକ୍ ।
**ଦିଗନ୍ତରେଖା**—ସ୍ତ୍ରୀ. ବି. ଦିଗ୍‌ବଳୟ ।
**ଦିଗବାରଣଖଣ୍ଡି**—ଗ୍ରା. ବି. ଯେଉଁ ଉଚ୍ଚ ଖଣ୍ଡି ଉପରେ ଉଠି ଶତ୍ରୁର ଗତିକୁ ଠଉରାଇବାକୁ ହୁଏ ।
**ଦିଗବାରମଉଲ**—ଗ୍ରା. (ବାଲେଶ୍ୱର) ବି. ଖାତକଆଦିଙ୍କ ଠାରୁ ଟଙ୍କା ଆଦାୟ ହେବା ପର୍ଯ୍ୟନ୍ତ ଖାତକ ଦ୍ୱାରରେ ବସିରହିବା ପାଇଁ ମୁନଏନ୍ ହୋଇଥିବା ପିଆଦା ।
**ଦିଗବିଦିଗ**—ଗ୍ରା. ବି. ଦିଗ୍ୱିଦିକ୍ ଦେଖ ।
**ଦିଗମ୍ବର**—ପୁଂ. ବିଂ. (ବି.ଗ୍ରା)ଲଙ୍ଗଳା, ବିବସ୍ତ୍ର, ନଗ୍ନ, (ସ୍ତ୍ରୀ) ଦିଗମ୍ବରୀ, (ପୁଂ.ବି) ଜୈନମାନଙ୍କ ସମ୍ପ୍ରଦାୟ ବିଶେଷ, ଶିବ, ମହାଦେବ,ବୌଦ୍ଧ ବିଶେଷ,ଅନ୍ଧକାର
**ଦିଗମ୍ବରତା(ତ୍ୱ)**—ସ୍ତ୍ରୀ. ବି. (ଦିଗମ୍ବର+ଭା.ତା) ନଗ୍ନ ଅବସ୍ଥା ।
**ଦିଗମ୍ବରୀ**—ସ୍ତ୍ରୀ. ବି. (ଦିଗମ୍ବର+ଈ) ବିବସ୍ତ୍ରା, (ବି) କାଳୀ, ଜୈନମାନଙ୍କର ସମ୍ପ୍ରଦାୟ ବିଶେଷ,ଦିଗମ୍ବର ସମ୍ପ୍ରଦାୟ ।
**ଦିଗର**—ଗ୍ରା. ଦ୍ୱିତୀୟ, ଅନ୍ୟ, ଅପରାପର ଇତ୍ୟାଦି ଗଣ ।
**ଦିଗାନ୍ତର**—ଗ୍ରା.ବି.(ସଂ-ଦିଗନ୍ତର)ଦିଗ୍ୱିଦିକ୍ ଦେଖ ।
**ଦିଗମ୍ବର**—ଗ୍ରା. ବିଂ. ଦିଗମ୍ବର ଦେଖ ।
**ଦିଗାମ୍ବରୀ**—ଗ୍ରା. ପୁଂ. ବି. ଋଷି, ବୈଷ୍ଣବ, ଦିଗମ୍ବରଜୈନ ।
**ଦିଗୀଶ୍ୱର**—ବି. (ଦିକ୍+ଈଶ୍ୱର)୬ତତ୍; ଇନ୍ଦ୍ରାଦି ଦଶଦିକ୍‌ପାଳ, ସୂର୍ଯ୍ୟାଦି ଗ୍ରହ, ଦିଗୀଶ ।
**ଦିଗୁଣ(ଣା)**—ଗ୍ରା. ବିଂ ଓ ବିଂ.ଦୁଇଗୁଣ ।
**ଦିଗୁଣେ**—ଗ୍ରା.କ୍ରି. ବିଂ. ଦୁଇ ସଂଖ୍ୟାରେ

ଗୁଣିଲେ ।

**ଦିଗୋଡ଼ିଆ**—ଗ୍ରା. ବି°. ଦ୍ୱିପଦବିଶିଷ୍ଟ, ଦୁଇଗୋଡ଼ ଥିବା (ଜନ୍ତୁ), ବି. ମନୁଷ୍ୟ, ଗୋରୁର ସ୍ୱାମୀ, ନିଜର ବାଛୁରୀକୁ ଅନ୍ୟ ବ୍ୟକ୍ତିକୁ ପାଳିବାକୁ ଦେବାର ଏକପ୍ରକାର ସର୍ତ୍ତ ।

**ଦିଗୋଡ଼ିଆପଶୁ**—ଗ୍ରା. ବି. ପଶୁତୁଲ୍ୟ ପୁରୁଷ, ଅବିବେକୀ, ମୂର୍ଖଲୋକ ।

**ଦିଗ୍ଗଜ**—ବି. (ଦିକ୍+ଗଜ) ୬ତତ୍ପୁ; ହିନ୍ଦୁ ପୁରାଣୋକ୍ତ ଯେଉଁ ୮ ଗୋଟି ହସ୍ତୀ ପୃଥିବୀର ଆଠ ଦିଗକୁ ରକ୍ଷା କରୁ-ଅଛନ୍ତି, (ବି°) ମହାକାୟ, ମହାଶକ୍ତି-ଶାଳୀ, ଧୁରନ୍ଧର, (ଗ୍ରା.ବି°) ମହାମୂର୍ଖ, (ହିଂ ର ବି°.)ମହା, ଅତ୍ୟନ୍ତ ।

**ଦିଗ୍ଗଜପଣ୍ଡିତ**—ଗ୍ରା. ବି. ମହାବିଦ୍ୱାନ୍ ବ୍ୟକ୍ତି, (ବ୍ୟଙ୍ଗ୍ୟାର୍ଥେ)ମହାମୂର୍ଖ ।

**ଦିଗ୍ଦାହ**—ବି. (ଦିକ୍+ଦାହ) (୬ତତ୍ପୁ) ଦିଗ୍‌ବଳୟରେ ସୂର୍ଯ୍ୟାସ୍ତ ପରେ ଓ ରାତିରେ ନିଆଁ ଲାଗିଲାଭଳି ରକ୍ତବର୍ଣ୍ଣ ଦେଖାଯିବାର ଆକସ୍ମିକ ଦୃଶ୍ୟ ।

**ଦିଗ୍ଧ**—ବି°. (ଦିହ୍+ର୍ମ.ତ)ଲିପ୍ତ, ମିଶ୍ରିତ, (ବି)ଅଗ୍ନି, ବିଷଲିପ୍ତ ବାଣ, (ଣ.ତ) ସ୍ନେହ,ତୈଳ,ପ୍ରବନ୍ଧ,(ଗ୍ରା.ତ) ଲେପନ ।

**ଦିଗ୍‌ବଳୟ**—ବି. (ଦିକ୍+ବଳୟ)ଚକ୍ର-ବାଳ, ଦିକ୍‌ଚକ୍ର,କୌଣସି ଉଚ୍ଚସ୍ଥାନରୁ ଚାରିଆଡ଼କୁ ଚାହିଁଲେ ଯେଉଁଠାରେ ପୃଥିବୀ ଆକାଶ ସଙ୍ଗେ ମିଶିଗଲାପରି ଦିଶେ,ପୃଥିବୀର ଚାରିପାଖରେ ଗୋଲ ହୋଇ ରହିଥିବା ଭଳି ଯେଉଁ ମଣ୍ଡଳ ବା ରେଖା ମନୁଷ୍ୟଙ୍କୁ ଦେଖାଯାଏ ।

**ଦିଗ୍‌ବିଦିଗ୍**—ବି.(ଦିକ୍+ବିଦିକ୍)ଦିଗ ଓ ଦିକ୍କୋଣ ମାନ,ଚାରିଦିଗ, ଚାରିକୋଣ, ଉପର ଓ ତଳ ଦଶଦିଗ, ଚତୁର୍ଦ୍ଦିଗ, ପୃଥିବୀର ସବୁ ତରଫ, ଅନୁକୂଳ ଓ ପ୍ରତିକୂଳ ଦିଗ, ଗୋଟିଏ ଦିଗ ଓ ତାହାଁର ପ୍ରତିକୂଳ ଦିଗ, ( ଲ.ଅର୍ଥ ) ଲଘୁଗୁରୁ, ହିତ ଅହିତ,ନ୍ୟାୟ୍ୟ ଅନ୍ୟାୟ୍ୟ ବିଷୟ ।

**ଦିଘି**—ଗ୍ରା. ବି. ( ସଂ—ଦୀର୍ଘିକା ) ବଡ଼-ପୋଖରୀ ।

**ଦିଙ୍କ**—ବି. ଉତ୍ତରକୁଣ୍ଡ ଉମ୍ବ, ଗ୍ରେଟଉଲୁଣୀ, ଲିଖ । [ ନକ୍ଷତ୍ର ।

**ଦିଙ୍‌ନକ୍ଷତ୍ର**—ବି. ଦିକ୍‌ଭେଦରେ ସ୍ଥିତ

**ଦିଙ୍‌ନାଗ**—ବି. ୬ତତ୍ପୁ; (ଦିକ୍+ନାଗ) ଦିଗ୍ଗଜ ଦେଖ ।

**ଦିଙ୍‌ନାରୀ**—ବି. (ଦିକ୍+ନାରୀ) ବେଶ୍ୟା କୁଳଟା (ସ୍ତ୍ରୀ) ।

**ଦିଙ୍‌ନିର୍ଣ୍ଣୟ**—ବି. ( ଦିକ୍+ନିର୍ଣ୍ଣୟ ) (୬ତତ୍ପୁ) ଦିଗମାନଙ୍କର ସ୍ଥିରୀକରଣ, କୌଣସି ବିଷୟର ସୂଚନା ।

**ଦିଙ୍‌ମଣ୍ଡଳ**—ବି. (ଦିକ୍+ମଣ୍ଡଳ) ଦିଗ-ମାନଙ୍କର ଚକ୍ରାକାର ଶେଷସୀମା, ଯାହାକୁ ଆଖିରୁ ଦେଖାଯାଏ, ଦିକ୍‌ଚକ୍ର. ଦିଗ୍ବଳୟ ।

**ଦିଙ୍‌ମାତଙ୍ଗ**—ବି. ଦିଗ୍ଗଜ ଦେଖ ।

**ଦିଙ୍‌ମାତ୍ର**—ବି. (ଦିକ୍+ମାତ୍ର) ଏକ ଦେଶମାତ୍ର, ଏକାଂଶ, ଅଂଶମାତ୍ର, କୌଣସି ବିଷୟର ସୂଚନାମାତ୍ର, (ବି°) ଅଳ୍ପମାତ୍ର ।

**ଦିଙ୍‌ମୂଢ଼**—ପୁଂ. ବି. ( ୬ତତ୍ପୁ ) ଦିଗ-ସମ୍ବନ୍ଧେ ଭ୍ରାନ୍ତ, (ସ୍ତ୍ରୀ) ଦିଙ୍‌ମୂଢ଼ା ।

**ଦିଙ୍‌ମୋହ**—ବି. ଦିଗଭ୍ରମ ଦେଖ ।

**ଦିଚଉକ**—ଗ୍ରା.ବି.ପଶାଖେଳରେ ତିନୋଟି କାଠିରେ ଚାରି ପଡ଼ିବା ଦାନ ।

**ଦିଚଉତ**—ଗ୍ରା. ବି°. ଦୁଇଥର ଭାଙ୍ଗ ହୋଇଥିବା ।

**ଦିଚାରି**—ଗ୍ରା.ବି ଓ ବି°. ଅଳ୍ପସଂଖ୍ୟକ ।

**ଦିଚାଳ(ଆ)**—ଗ୍ରା. ବି. ଯେଉଁ ଚାଳର ମଝାମଝିଠାରୁ ଚାଳ ଦୁଇଆଡ଼କୁ ଢାଲୁ ହୋଇଥାଏ, (ଗ୍ରା.ବି°) ଯେଉଁ ଘରର ଚାଳ ଦୁଇଆଡ଼କୁ ଢାଲୁ ହୋଇଥାଏ, ନାହାଚାଳିଆ ।

**ଦିଜ**—ଗ୍ରା.ବି. (ସଂ-ଦ୍ୱିଜ) ବ୍ରାହ୍ମଣ ।

**ଦିଜବର**—ଗ୍ରା.ବି. (ସଂ-ଦ୍ୱିଜବର) କର୍ମ-ନିଷ୍ଠ ବ୍ରାହ୍ମଣ ।

**ଦିଟା**—ଗ୍ରା. ବି ଓ ବି°. (ସଂ-ଦ୍ୱି) ଦୁଇଟା, ଦୁଇଗୋଟା, ଅଳ୍ପସଂଖ୍ୟକ, ଅଳ୍ପପରି-ମିତ ।

**ଦିଟି**—ଗ୍ରା.ବି ଓ ବି°. ଦିଟା ଦେଖ ।

**ଦିଟିକ୍ଲି**—ଗ୍ରା. ବି. ଅତି କ୍ଷୁଦ୍ର ଦୁଇଖଣ୍ଡ, (ବି°) ଦୁଇ କ୍ଷୁଦ୍ର ଖଣ୍ଡବିଶିଷ୍ଟ, ଦ୍ୱିଖଣ୍ଡିତ, ଦ୍ୱିଧାବିଭକ୍ତ ।

**ଦିଣ୍ଡ**—ବି. ଏକପ୍ରକାର ନାଚ ।

**ଦିଣ୍ଡା**—ଗ୍ରା.ସ୍ତ୍ରୀ. ବି. ଯୁବତୀ, (ବି°) ବନ୍ଧା, ଅସ୍ଖଳିତ ।

**ଦିଣ୍ଡି**—ଗ୍ରା. ବି. ( ସଂ-ଦଣ୍ଡ ) ନାଟକରେ ନୃତ୍ୟସହ ଗୀତହେବା ସଙ୍ଗୀତର ପ୍ରକାରଭେଦ ।

**ଦିଣ୍ଡିର**—ବି.ପ୍ରାଚୀନ କାଳର ଏକପ୍ରକାର ବାଜା, ଡିଣ୍ଡିମ, ଢୋଲ ।

**ଦିଣ୍ଡୀର**—ବି. ସମୁଦ୍ରଫେନ ।

**ଦିତ୍ସା**—ବି. ( ଦା+ସନ୍+ଅ+ଆ ) ଦିତ୍ସା ଦେଖ ।

**ଦିତ**—ପୁଂ. ବି°. ( ଦା+ର୍ମ.ତ ) ଛିନ୍ନ, ବିଦୀର୍ଣ୍ଣ, (ସ୍ତ୍ରୀ) ଦିତା ।

**ଦିତରଫା**—ଗ୍ରା.ବି°. ଦୁଇ ପକ୍ଷସମ୍ବନ୍ଧୀୟ, ଦୁଇପକ୍ଷରୁ ପ୍ରମାଣ ନିଆଯାଇ ବିଚାର କରାଯାଇଥିବା (ମକଦ୍ଦମା) ।

**ଦିତି**—ସ୍ତ୍ରୀ.ବି. (ଦୋ+ଭା.ତି) ଛେଦନ-କରଣ, ଖଣ୍ଡନ, ବିଦାରଣ, ଦକ୍ଷପ୍ରଜା-ପତିଙ୍କ କନ୍ୟା ଓ କଶ୍ୟପ ମୁନିଙ୍କର ଏକତମା ଭାର୍ଯ୍ୟା, ଅସୁରମାନଙ୍କ ମାତା

**ଦିତିଜ**—ପୁଂ.ବି. (ଦିତି+ଜନ୍+କ.ଅ) ଦୈତ୍ୟ, ଅସୁର, ରାକ୍ଷସ, (ସ୍ତ୍ରୀ)ଦିତିଜା ।

**ଦିତିସୁତ**—ପୁଂ. ବି.( ୬ତତ୍ପୁ ) ଦୈତ୍ୟ, ଅସୁର, ରାକ୍ଷସ, (ସ୍ତ୍ରୀ) ଦିତିସୁତା ।

**ଦିତ୍ୟ**—ପୁଂ. ବି. ଅସୁର, (ବି°) ଛେଦ-ନାର୍ହ, ଛେଦନଯୋଗ୍ୟ (ଧାନ୍ୟାଦି) ।

**ଦିତ୍ସା**—ସ୍ତ୍ରୀ. ବି. ( ଦା+ସନ୍+ଭା.ଅ +ଆ)ଦାନେଚ୍ଛା,ଦାନକରିବାର ଇଚ୍ଛା ।

**ଦିତ୍ସୁ**—ପୁଂ.ବି°. (ଦା+ସନ୍+କ.ଉ) ଦାନକରିବାକୁ ଇଚ୍ଛୁକ ।

**ଦିତ୍ସ୍ୟ**—ବି°. (ଦା+ସନ୍+ର୍ମ.ଯ)ଦାନ କରିବା ଯୋଗ୍ୟ ।

**ଦିଦମ୍ଭିଷୁ**—ପୁଂ. ବି°.(ଦମ୍ଭ+ସନ୍+ଉ) ଠକିବାକୁ ଇଚ୍ଛୁକ ।

**ଦିଦାଢ଼ୁଆ**—ଗ୍ରା. ବି°. (ସଂ-ଦ୍ୱିଧାର)ଦୁଇ-

ପାଖରେ ଧରିଥିବା (ଅସ୍ତ୍ର) ।
ଦିଦିବ—ବି. ବ୍ୟୋମ, ଆକାଶ ।
ଦିଦୀ—ପ୍ରା. ( ମେଦିନୀପୁର, ବାଲେଶ୍ୱର) ଭଉଣୀ, ନାନୀ ।
ଦିଦୀମା—( ପ୍ରା. ମେଦିନୀପୁର, ବାଲେଶ୍ୱର) ବି. ଆଈ ।
ଦିଦୃକ୍ଷମାଣ—ପୁଂ.ବିଂ. ( ଦୃଶ୍+ସନ୍+କ.ଆନ) ଦର୍ଶନେଚ୍ଛୁ, ଦର୍ଶନାଭିଳାଷୀ, (ସ୍ତ୍ରୀ) ଦିଦୃକ୍ଷମାଣା ।
ଦିଦୃକ୍ଷା—ବି.(ଦୃଶ୍+ସନ୍+ଭା.ଅ+କ.ଆ) ଦେଖିବାର ଇଚ୍ଛା,ଦର୍ଶନାଭିଳାଷ ।
ଦିଦୃକ୍ଷୁ—ପୁଂ. ବିଂ. ( ଦୃଶ୍+ସନ୍+ଭା.ଉ) ଦର୍ଶନେଚ୍ଛୁ ।
ଦିଦୃକ୍ଷେଣ୍ୟ—ବିଂ. ଦର୍ଶନକରିବାକୁ ଅଭିଲାଷଣୀୟ ।
ଦିଦୃକ୍ଷେୟ—ବିଂ. ଦର୍ଶନୀୟ ।
ଦିଦ୍ୟୁ—ବି. ବଜ୍ର, ବାଣ ।
ଦିଦ୍ୟୁତ୍—ବିଂ. (ଦ୍ୟୁ+କ.ଅତ୍) ଦୀପ୍ତିବିଶିଷ୍ଟ, (ବି) ବଜ୍ର । [ ଧେନୁ ।
ଦିଦ୍ୱୌମ୍ନୀ—ସ୍ତ୍ରୀ. ବି. ଦୁଇବର୍ଷ ବୟସ୍କା
ଦିଧକ୍ଷମାଣ—ପୁଂ. ବିଂ. (ଦହ୍+ସନ୍+କ.ଆନ୍)ଯେ ପୋଡ଼ିଦେବାକୁ ଇଚ୍ଛା କରୁଅଛି, (ସ୍ତ୍ରୀ) ଦିଧକ୍ଷମାଣା ।
ଦିଧକ୍ଷା—ବି.( ଦହ୍+ସନ୍+ଭା.ଅ+ଆ) ଦହନେଚ୍ଛା ।
ଦିଧକ୍ଷୁ—ବିଂ. ( ଦହ୍+ସନ୍+କ.ଉ ) ଦହନେଚ୍ଛୁକ ।
ଦିଧି—ବି.(ଧା+ଭା.ଇ) ଧୈର୍ଯ୍ୟ ଧାରଣ, ଧୀରତା ।
ଦିଧିଷାଯ୍ୟ—ପୁଂ. ବି. ଆରୋପିତ ବନ୍ଧୁ, ମିଥ୍ୟାବନ୍ଧୁ, (ବିଂ) ଧାରକ ।
ଦିଧିଷୁ—ପୁଂ.ବି. (ଧିଷ୍+ମୈ.ଉ) ଦୁଇବାର ବିବାହିତ ପୁରୁଷ, ଦ୍ୱିତୀୟବିବାହ କରିଥିବା ବିଧବାର ସ୍ୱାମୀ, ଠାୟୁଁ, ବରପାତ୍ର, ସ୍ୱାମୀ, ବର,ଗର୍ଭାଧାନକାରୀ ବ୍ୟକ୍ତି, (ସ୍ତ୍ରୀ) ଦିଧିଷୂ ଦେଖ, ବରପ୍ରାର୍ଥୀ କନ୍ୟା, ପୁନର୍ବିବାହିତା ଅକ୍ଷତଯୋନି ବିଧବା ।
ଦିଧିଷୂ—ସ୍ତ୍ରୀ. ବି. ଦୁଇବାର ବିବାହିତା ସ୍ତ୍ରୀ, ଦ୍ୱିତୀୟ ହୋଇଥିବା ବିଧବା, ଠାୟୁଁଣୀ, ଅଗ୍ରେଦିଧିଷୁ, ବଡ଼ଭଉଣୀ ଅବିବାହିତା ଥାଉଁ ଥାଉଁ ଯେଉଁ ସାନଭଉଣୀ ବିବାହ କରେ,ବିବାହିତା ସାନ ଭଉଣୀର ଅବିବାହିତା ବଡ଼ଭଉଣୀ ।
ଦିଧିଷୂପତି—ପୁଂ. ବି. ଠାୟୁଁ, ଦ୍ୱିତୀୟ ହୋଇଥିବା ବିଧବାର ସ୍ୱାମୀ, ଯେଉଁ ଲୋକ ଭାଇର ବିଧବା ସ୍ତ୍ରୀକୁ ବିବାହ ନ କରି ପାଣିବିକ ପ୍ରବୃତ୍ତି ଚରିତାର୍ଥ କରିବାପାଇଁ ତା ସଙ୍ଗେ ପାପପ୍ରଣୟ କରିଥାଏ ।
ଦିଧୀଷୂ—ବି. ଦିଧିଷୂ ଦେଖ ।
ଦିନ—ବି. ( ଦୋ+କ.ଇନ୍ ) ଦିବସ, ପୃଥିବୀ ନିଜର ଅକ୍ଷଦଣ୍ଡରେ ଥରେ ସୂର୍ଯ୍ୟଙ୍କ ଚାରିଆଡ଼େ ବୁଲିବାକୁ ଯେତେ ସମୟ ଲାଗେ, ଅହୋରାତ୍ର, ସପ୍ତାହର ଗୋଟିଏ ଦିବସ, ୨୪ ଘଣ୍ଟା ପରିମିତ ସମୟ, ସୂର୍ଯ୍ୟାଲୋକିତ ବେଳା, ସୂର୍ଯ୍ୟୋଦୟଠାରୁ ସୂର୍ଯ୍ୟାସ୍ତପର୍ଯ୍ୟନ୍ତ ସମୟ ବେଳ, କାଳ, ସମୟ, ନିର୍ଦ୍ଦିଷ୍ଟ ସମୟ,ତାରିଖ, ଶୁଭଯୋଗଯୁକ୍ତ ସମୟ, ତିଥି, (ଗ୍ରା.ବି) ଜୀବନକାଳ, ନିର୍ଦ୍ଧାରିତ ସମୟର ସୀମା, ମିଆଦ, ବୟସ, ଋତୁ, ପାଗ ।
ଦିନକ—ଗ୍ରା.ଅବ୍ୟ. ଏକଦିନ ମାତ୍ର,(ବିଂ) ଦିନକିଆ ଦେଖ ।
ଦିନକଟା(ଟେ)ଇବା—ଗ୍ରା. କ୍ରି. ଦିନପାତ କରିବା, ସମୟଯାପନ କରିବା ।
ଦିନକଟିବା—ଗ୍ରା. ବି. ଦିବସ ବା କାଳ ଅତିକ୍ରାନ୍ତହେବା, ନିର୍ଦ୍ଧାରିତ ସମୟ ଅତିକ୍ରାନ୍ତ ହେବା ।
ଦିନକଣା—ଗ୍ରା.ବି. (ସଂ-ଦିବାନ୍ଧ) ରୋଗ ଯୋଗୁଁ ଯାହାକୁ ଦିନରେ ଦେଖାଯାଏ ନାହିଁ କିନ୍ତୁ ରାତିରେ ଦେଖାଯାଏ,(ବି) ଦିବାନ୍ଧତା ରୋଗ । [ କାଳ ।
ଦିନକଯାକ—ଗ୍ରା. ଅବ୍ୟ. ଏକଦିବସ-
ଦିନକର—ପୁଂ.ବି. (ଦିନ+କୃ+କ.ଅ) ଦିବାକର, ସୂର୍ଯ୍ୟ, ଅର୍କଗଛ,(ଗ୍ରା.ଅବ୍ୟ ) ଏକଦିନେ, ଦିନେ,(ଗ୍ରା. ବିଂ )ଦିନକିଆ ଦେଖ ।
ଦିନକରତନୟ—ବି. ( ୬ତତ୍ ) ଶନି, ଯମ, କର୍ଣ୍ଣ, ସୁଗ୍ରୀବ ।
ଦିନକର ଦେବ—ବି. ସୂର୍ଯ୍ୟଦେବ ।
ଦିନକର୍ତ୍ତା—ପୁଂ.ବି. ସୂର୍ଯ୍ୟ, ଅର୍କବୃକ୍ଷ ।
ଦିନକର ସୁତ—ପୁଂ. ବି. (୬ତତ୍)ଦିନକରତନୟ ଦେଖ ।
ଦିନକରାତ୍ମଜ—ପୁଂ.ବି. (୬ତତ୍)ଦିନକରତନୟ ଦେଖ । [ନଦୀ ।
ଦିନକରାତ୍ମଜା—ସ୍ତ୍ରୀ. ବି. (୬ତତ୍)ଯମୁନା
ଦିନକାଳ—ଗ୍ରା. ବି. ଅସମୟ, ଉପଯୁକ୍ତସମୟ, ବିଶେଷ ସୁବିଧା, ଜୀବନସମୟ, ଅନ୍ତିମକାଳ ।
ଦିନକିଆ—ଗ୍ରା.ବିଂ. ଦିନକିଆ ଦେଖ ।
ଦିନକୁଦିନ—ଗ୍ରା. ଅବ୍ୟ. କ୍ରମଶଃ, ଏକଦିନରୁ ଅନ୍ୟଦିନ, ପ୍ରତ୍ୟହ, ନିତ୍ୟ, ପ୍ରତିଦିନ ।
ଦିନକୃତ୍—ପୁଂ. ବି. ( ଦିନ+କୃ+କ.କ୍ୱିପ୍ ) ଦିବାକର, ସୂର୍ଯ୍ୟ, ଅର୍କବୃକ୍ଷ ।
ଦିନକେ—ଗ୍ରା. ଅବ୍ୟ. ଏକଦିନ ମଧ୍ୟରେ, ପ୍ରତିଦିନ ।
ଦିନକେଶବ—ପୁଂ. ବି. ଅନ୍ଧକାର ।
ଦିନକ୍ଷୟ—ବି. (୬ତତ୍) ତିଥିକ୍ଷୟ, ଏକ ସୌରମାନ ଦିବସରେ ୩ ଗୋଟି ତିଥି ପଡ଼ିବା ଯୋଗୁଁ ଗୋଟିଏ ତିଥିର କ୍ଷୟ, ସାୟଂକାଳ, ସନ୍ଧ୍ୟା, ତ୍ର୍ୟହସ୍ପର୍ଶ ।
ଦିନକ୍ଷେପଣ—ବି. (୬ତତ୍) ଦିନପାତ, କାଳ କଟାଇବା, କାଳକ୍ଷେପଣ ।
ଦିନଗଡ଼ା(ଡ଼େ)ଇବା—ଗ୍ରା. କ୍ରି. ନିର୍ଦ୍ଧାରିତ ଦିବସକୁ ଅତିକ୍ରମଣ କରିବା, କାଳକ୍ଷେପଣ କରିବା, ଅନ୍ୟ ଦିବସକୁ କୌଣସି କାର୍ଯ୍ୟ ସ୍ଥଗିତ ରଖିବା,ଦିନଟାଳିବା ଦେଖ ।
ଦିନଗଡ଼ିବା—ଗ୍ରା. ବି. ନିର୍ଦ୍ଦିଷ୍ଟ ତାରିଖ ଅତିକ୍ରାନ୍ତ ହେବା, ଦ୍ୱିପ୍ରହର ଅତୀତ ହେବା, ଅପରାହ୍ଣ ଆସିବା ।
ଦିନଗଣିବା—ଗ୍ରା. କ୍ରି. କୌଣସି ଘଟଣା ଆଉ କେତେଦିନ ରହିଲା ବୋଲି ଉତ୍କଣ୍ଠିତ ଭାବରେ ଗଣନା କରି ଅପେକ୍ଷା

କରିବା, ଶୁଭକାର୍ଯ୍ୟାଦି ନିମନ୍ତେ ଗୋଟିଏ ଶୁଭଦିନ ପାଞ୍ଜିରୁ ଗଣନା କରିବା ।

ଦିନଗାଡ଼ି—ଗ୍ରା. ବି. ଯେଉଁ ରେଲଗାଡ଼ି ସ୍ଥାନୀୟ ଷ୍ଟେସନରେ ଦିନବେଳେ ପହଞ୍ଚେ ବା ଷ୍ଟେସନରୁ ଦିନବେଳେ ଛାଡ଼େ ।

ଦିନଚର୍ଯ୍ୟା—ସ୍ତ୍ରୀ. ବି. (୬ତତ୍) ମନୁଷ୍ୟ ପ୍ରତିଦିନ ସକାଳୁ ଉଠି ଦିନରେ ଓ ରାତିରେ ଯେଉଁ ଯେଉଁ ନିୟମିତ କାର୍ଯ୍ୟମାନ କରେ । [ ସୂର୍ଯ୍ୟ ।

ଦିନଚୂର—ବି. (ଦିନ + ଚର + କ. ଇନ୍)

ଦିନଜ୍ୟୋତିଃ—ବି. (ଦିନ + ଜ୍ୟୋତିଃ) ୬ତତ୍; ରୌଦ୍ର, ଖରା ।

ଦିନଟାଳିବା—ଗ୍ରା. କ୍ରି. ନିର୍ଦ୍ଦିଷ୍ଟ ସମୟକୁ ଅତିକ୍ରାନ୍ତ କରାଇବା, ଦ୍ୱିପ୍ରହରବେଳକୁ ଅତିକ୍ରାନ୍ତ କରାଇବା, ମକଦ୍ଦମା ଆଦିରେ ଅନ୍ୟ ତାରିଖ କରିବା ।

ଦିନଦଗ୍ଧା—ସ୍ତ୍ରୀ. ବି. ବାର ତିଥିର ଯୋଗ ବିଶେଷ, ରବିବାରେ ଦ୍ୱାଦଶୀ, ସୋମବାରେ ଏକାଦଶୀ, ମଙ୍ଗଳବାରେ ଦଶମୀ, ବୁଧବାରେ ତୃତୀୟା, ଗୁରୁବାରେ ଷଷ୍ଠୀ, ଶୁକ୍ରବାରେ ଦ୍ୱିତୀୟା, (ମତାନ୍ତରେ ଅମାବାସ୍ୟା ଓ ପୂର୍ଣ୍ଣିମା) ଏବଂ ଶନିବାରେ ସପ୍ତମୀ ତିଥି ହେଲେ ତାକୁ ଦିନଦଗ୍ଧା ବୋଲଯାଏ ।

ଦିନଦିନ—କ୍ରି. ବିଂ. ପ୍ରତିଦିନ, ରୋଜ୍ ରୋଜ୍ ।

ଦିନଦିନକର—ଗ୍ରା. ବିଂ. ଏକ ଏକ ଦିନରେ ଘଟିଥିବା, କୌଣସି କୌଣସି ସମୟରେ ବା କୌଣସି କୌଣସି ଦିନ ଘଟିଥିବା, ପ୍ରତିଦିନର ।

ଦିନଦିନରାତିରାତି—ଗ୍ରା. ଅବ୍ୟ. (ସଂ-ଦିନ ଓ ରାତି) ଅହର୍ନିଶ, କି ଦିନ କି ରାତି, ଦିନତମାମ ଓ ରାତିତମାମ, ଦିନ ସାକ ଓ ରାତିସାକ, ନିରନ୍ତର, ସର୍ବଦା, ଅବିଶ୍ରାନ୍ତରୂପେ ।

ଦିନଦିପହରେ—ଗ୍ରା. ଅବ୍ୟ. ଦିନାର୍ଦ୍ଧ ସମୟରେ, ପ୍ରକାଶ୍ୟ ରୂପେ, ଦିନରେ ଓ ସର୍ବ ସମକ୍ଷରେ ।

ଦିନଦୁଃଖିତ—ବି. (୬ତତ୍) ଚକ୍ରବାକ ପକ୍ଷୀ ।

ଦିନଦ୍ୟୁତି—ବି. (ବ. ବ୍ରୀ) ସୂର୍ଯ୍ୟ ।

ଦିନଧରିବା—ଗ୍ରା. କ୍ରି. ଶୁଭ କାର୍ଯ୍ୟାଦି ନିମନ୍ତେ ଗୋଟିଏ ଶୁଭଦିନ ପାଞ୍ଜିରୁ ଗଣନା କରିବା ।

ଦିନନାଥ—ପୁଂ. ବି. (୬ତତ୍) ସୂର୍ଯ୍ୟ ।

ଦିନନାୟକ—ପୁଂ. ବି. (୬ତତ୍) ସୂର୍ଯ୍ୟ ।

ଦିନନେବା—ଗ୍ରା. କ୍ରି. ଅନ୍ୟ ବ୍ୟକ୍ତିର ସଂସାର ଯାତ୍ରା ନିର୍ବାହ କରାଇବା, କାଳଯାପନ କରିବା । [ ବୃକ୍ଷ ।

ଦିନପ(ତି)—ବି. (୬ତତ୍) ସୂର୍ଯ୍ୟ, ଅର୍କ-

ଦିନପାକୀଅଜୀର୍ଣ୍ଣ—ବି. ବୈଦ୍ୟକ ଅନୁସାରେ ଏକପ୍ରକାର ଅଜୀର୍ଣ୍ଣ ରୋଗ ।

ଦିନପାତ—ବି. (ଦିନ + ପାତ) ୬ତତ୍; କାଳଯାପନ, ସଂସାରଯାତ୍ରା ନିର୍ବାହ ।

ଦିନପାଳ—ବି. (୬ତତ୍) ସୂର୍ଯ୍ୟ, ଅର୍କବୃକ୍ଷ ।

ଦିନପିଣ୍ଡ—ବି. (୬ତତ୍) ଜ୍ୟୋତିଷୋକ୍ତ ଅହର୍ଗଣ । [ ବୃକ୍ଷ ।

ଦିନପ୍ରଣୀ—ପୁଂ. ବି. (୬ତତ୍) ସୂର୍ଯ୍ୟ, ଅର୍କ-

ଦିନବନ୍ଧୁ—ବି. (ଦିନ + ବନ୍ଧୁ) ୬ତତ୍; ସୂର୍ଯ୍ୟ, ଅର୍କବୃକ୍ଷ ।

ଦିନବରଦିନ—ଗ୍ରା. ଅବ୍ୟ. ନିତି, ପ୍ରତିଦିନ, ଦିନକୁଦିନ, ଦିନେ ଛାଡ଼ି ଦିନେ

ଦିନବଳ—ବି. ଦ୍ୱିପଦ ରାଶି, ପଞ୍ଚମ, ଷଷ୍ଠ, ସପ୍ତମ, ଅଷ୍ଟମ, ଏକାଦଶ ଓ ଦ୍ୱାଦଶ ରାଶି । [ ବୃକ୍ଷ ।

ଦିନବାନ୍ଧବ—ବି. (୬ତତ୍) ସୂର୍ଯ୍ୟ, ଅର୍କ-

ଦିନବିତା(ତେ)ଇବା—ଗ୍ରା. କ୍ରି. ଦିନକଟାଇବା ଦେଖ ।

ଦିନବିତିବା—ଗ୍ରା. କ୍ରି. ଦିନକାଟିବା ଦେଖ ।

ଦିନବୁଡ଼ିବା—ଗ୍ରା. ବି. ସୂର୍ଯ୍ୟାସ୍ତ ସମୟ ହେଉ, ସୂର୍ଯ୍ୟ ଅସ୍ତ ହେବା, ଦିବାର ଅବସାନ ।

ଦିନବେଳ(ଳା)—ଗ୍ରା. ବି. ସୂର୍ଯ୍ୟୋଦୟଠାରୁ ସୂର୍ଯ୍ୟାସ୍ତ ସମୟ ପର୍ଯ୍ୟନ୍ତ କାଳ ।

ଦିନଭରି—ଗ୍ରା. କ୍ରି. ବିଂ. ସାରାଦିନ, ଦିନ ତମାମ୍ ।

ଦିନମଜୁରି—ଗ୍ରା. ବି. କୌଣସି କାର୍ଯ୍ୟ କରୁଥିବା ମୂଲିଆଙ୍କୁ ଦୈନିକ ରେଟରେ ଦିଆଯିବା ପ୍ରତିଦିନର ମୂଲ, (ବିଂ) ଦିନମଜୁରିଆ ଦେଖ ।

ଦିନମଜୁରିଆ—ଗ୍ରା. ବିଂ. ଯେଉଁ ବ୍ୟକ୍ତି ପ୍ରତିଦିନ ମୂଲ ଲାଗେ, ଦିନ ମୂଲିଆ ।

ଦିନମଟାଳିବା—ଗ୍ରା. କ୍ରି. ଦିନଟାଳିବା ଦେଖ ।

ଦିନମଣି—ବି. (୬ତତ୍) ସୂର୍ଯ୍ୟ, ଅର୍କବୃକ୍ଷ ।

ଦିନମୟୂଖ—ବି. ସୂର୍ଯ୍ୟ, ଅର୍କବୃକ୍ଷ ।

ଦିନମଲ—ବି. ମାସ ।

ଦିନମାନ—ବି. (୬ତତ୍—ଜ୍ୟୋତିଷ), କୌଣସି ଦିବସର ସୂର୍ଯ୍ୟୋଦୟଠାରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ସମୟର ପରିମାଣ, (ଗ୍ରା. ଅବ୍ୟ) ଦିନଭରି, ଦିନତମାମ ।

ଦିନମୁଖ—ବି. (ଦିନ + ମୁଖ) ୬ତତ୍; ପ୍ରାତଃକାଳ, ପ୍ରଭାତ, ପ୍ରତ୍ୟୁଷ, ସୂର୍ଯ୍ୟ, ପୂର୍ବାଦ୍ରି, ଉଦୟାଚଳ ।

ଦିନମୂର୍ଦ୍ଧା—ବି. (୬ତତ୍) ଉଦୟଗିରି, ପୂର୍ବାଚଳ ।

ଦିନଯାପନ—ବି. (୬ତତ୍) କାଳପାତ, କାଳ କଟାଇବା, କାଳକ୍ଷେପଣ ।

ଦିନଯାମିନୀ—ବି. (ଦ୍ୱନ୍ଦ୍ୱ) ଅହର୍ନିଶ, ଦିବାରାତ୍ର, ସର୍ବଦା ।

ଦିନଯିବା—ଗ୍ରା. ବି. ଜୀବିତକାଳ ବିତିବା, ସମୟ ଅତୀତ ହେବା, ଦିନ ବୁଡ଼ିବା ଦେଖ ।

ଦିନଯୌବନ—ବି. (ଦିନ + ଯୌବନ) ୬ତତ୍; ମଧ୍ୟାହ୍ନ, ଦ୍ୱିପ୍ରହର ।

ଦିନରତ୍ନ—ବି. (ଦିନ + ରତ୍ନ) ସୂର୍ଯ୍ୟ, ଅର୍କବୃକ୍ଷ ।

ଦିନରାତି—ଗ୍ରା. ବି. ଦିବସ ଓ ରଜନୀ, (ଅବ୍ୟ) ଦିନ ଦିନ ରାତି ରାତି ଦେଖ ।

ଦିନରାତିବସିବା—ଗ୍ରା. କ୍ରି. କିଛି କାମଦାମ ନ କରି ସାରାଦିନ ଓ ସାରା ରାତି ଆଳସ୍ୟରେ କଟାଇବା ।

ଦିନରାଶି—ବି. ଜ୍ୟୋତିଷୋକ୍ତ ଅହର୍ଗଣ, ଦିନସଙ୍ଖ୍ୟକ ବୃଷାଦି ରାଶି ।

ଦିନନଳିଆ—ଗ୍ରା. ବିଂ. ଦୁଇ ନଳଥିବା (ଦ୍ରବ୍ୟ), ବି. ଦୁଇ ନଳଥିବା ବନ୍ଧୁକ ।

ଦିନବ୍ୟାସ—ବି. ସୂର୍ଯ୍ୟ ସିଦ୍ଧାନ୍ତୋକ୍ତ ଅହୋରାତ୍ର ବୃତ୍ତ ବ୍ୟାସର ଅର୍ଦ୍ଧବ୍ୟାସ ।

ଦିନସରିବା—ଗ୍ରା. କ୍ରି. ଦିନଖିବା ଦେଖ ।

ଦିନସାରିବା—ଗ୍ରା. କ୍ରି. କାଳ କଟାଇବା, କାଳଯାପନ କରିବାକୁ ଅନ୍ୟକୁ ସୁବିଧା ଓ ସୁଯୋଗ ଦେବା ।

ଦିନହରିବା—ଗ୍ରା. କ୍ରି. କାଳ କାଟିବା, କାଳାତିପାତ କରିବା, ଜୀବନ ଯାପନ କରିବା, କାଳଯାପନ କରିବାକୁ ଅନ୍ୟକୁ ସୁବିଧା ଦେବା ।

ଦିନହେବା—ଗ୍ରା. ବି. ସକାଳ ହେବା, ସୂର୍ଯ୍ୟୋଦୟ ହେବା, କୌଣସି ନିର୍ଦ୍ଦିଷ୍ଟ ଦିନ ନିକଟବର୍ତ୍ତୀ ହେବା ।

ଦିନା—ଗ୍ରା. ବି.(ସଂଖ୍ୟାବାଚକ ଅନ୍ୟଶବ୍ଦ ପୂର୍ବେ ଲାଗେ)ଦିନ୍,(ଯଥା-ଦିନାଗୁରି) ।

ଦିନାଂଶ—ବି. ( ଦିନ+ଅଂଶ ) ୬ତତ୍, ଦିବସର ପ୍ରଧାନ ତିନିଭାଗରୁ ଏକ ।

ଦିନାକେତେ—ଗ୍ରା. ଅବ୍ୟ. ( ସଂ-ଦିନ ଓ କତି ) କେତେକ ଦିନପାଇଁ, ଅଳ୍ପଦିନ ପାଇଁ, କେତେଦିନବ୍ୟାପୀ ସମୟ, ବହୁକାଳ, କେତେକ କାଳପାଇଁ,(ଗ୍ରା. ବି) କେତେକ ଦିନ ।

ଦିନାଗମ—ବି. (୬ତତ୍) ପ୍ରଭାତ, ବଡ଼ିଭୋର ।

ଦିନାଜପୁର—ଗ୍ରା. ବି. ବଙ୍ଗ ରାଜସାହି ବିଭାଗର ଗୋଟିଏ ଜିଲ୍ଲା ଓ ସହର ।

ଦିନାକି—ଗ୍ରା.ବିଂ.(ସଂ-ଦୈନିକ)ଦୈନିକ, (ଗ୍ରା.ଅବ୍ୟ) ପ୍ରତିଦିନ ।

ଦିନାକିପାଞ୍ଜି—ଗ୍ରା.ବି.ଦୈନିକ ପଞ୍ଜିକା ।

ଦିନାନ୍ତ—ବି.(୬ତତ୍)ଅନ୍ଧକାର,ଅନ୍ଧାର ।

ଦିନାତ୍ୟୟ—ବି. (୬ତତ୍) ଦିବାବସାନ, ସାୟଂକାଳ ।

ଦିନାଦି—ବି. ( ୬ତତ୍ ) ପ୍ରାତଃକାଳ, ଦିବସର ଆଦ୍ୟଭାଗ,(ଗ୍ରା.ବିଂ)ଦୈନିକ, (ଗ୍ରା.ଅବ୍ୟ) ପ୍ରତ୍ୟହ, ପ୍ରତିଦିନ ।

ଦିନାଧୀଶ—ବି.୬ତତ୍(ଦିନ+ଅଧୀଶ) ଦିନପତି ଦେଖ ।

ଦିନାନ୍ତ—ବି.(୬ତତ୍) ସନ୍ଧ୍ୟା,ଦିବସର ଶେଷଭାଗ, ସୂର୍ଯ୍ୟାସ୍ତ ସମୟ ।

ଦିନାନ୍ତକ—ବି. ( ୬ତତ୍ ) ଅନ୍ଧକାର, ଅନ୍ଧାର ।

ଦିନାନ୍ତେ—ଗ୍ରା. ଅବ୍ୟ. ସନ୍ଧ୍ୟାବେଳେ, ପ୍ରତିଦିନ ।

ଦିନାନ୍ଧ—ପୁଂ. ବିଂ. ଯାହାକୁ ଦିନରେ ଦେଖାଯାଏ ନାହିଁ,ଦିବାନ୍ଧତା ରୋଗଗ୍ରସ୍ତ (ବ୍ୟକ୍ତି) ।

ଦିନାବସାନ—ବି. ( ୬ତତ୍ ) ସନ୍ଧ୍ୟା, ସୂର୍ଯ୍ୟାସ୍ତ ସମୟ ।

ଦିନାର୍—ଯା. ବି. ଆରବ ଓ ପାରସ୍ୟ ଦେଶ ପ୍ରଚଳିତ ମୁଦ୍ରାବିଶେଷ, ସମ୍ରାଟ ଆକବରଙ୍କ ସମୟରେ ଭାରତ ପ୍ରଚଳିତ ଅଧତୋଳା ଓଜନର ସ୍ୱର୍ଣ୍ଣମୁଦ୍ରା ।

ଦିନାମାର୍—ଗ୍ରା.ବି. ଡେନମାର୍କ ଦେଶର ଲୋକ ।

ଦିନାମାର୍‌ଡଙ୍ଗା—ଗ୍ରା. ବି. ଡେନମାର୍କର ଅଧିକାରଭୁକ୍ତ ବାଲେଶ୍ୱର ନଗର ଅନ୍ତର୍ଗତ ସ୍ଥାନବିଶେଷ ।

ଦିନାର୍ଦ୍ଧ—ବି. (୬ତତ୍)ଦିବସର ଅର୍ଦ୍ଧଭାଗ ସମୟ, ମଧ୍ୟାହ୍ନ ।

ଦିନାରମ୍ଭ—ବି. ପ୍ରଭାତକାଳ ।

ଦିନିଆଁ—ଗ୍ରା. ବିଂ. (ଅନ୍ୟ ଶବ୍ଦ ପରେ ଯୁକ୍ତ) ଦିନରେ ଘଟିବା, ଦିନବ୍ୟାପୀ, (ଯଥା:—ଖରାଦିନିଆଁ) ।

ଦିନିକିଆ—ଗ୍ରା. ବିଂ. (ସଂ-ଦୈନିକ) ଏକ ଦିବସ ସମ୍ବନ୍ଧୀୟ, ଏକଦିନ ବ୍ୟାପୀ, ଦୈନିକ ପରିବର୍ତ୍ତନଶୀଳ,ଅଚିରସ୍ଥାୟୀ, ଅଳ୍ପକ୍ଷଣସ୍ଥାୟୀ, କ୍ଷଣିକ, ସାମୟିକ, ଆକସ୍ମିକ ।

ଦିନୁ—ଗ୍ରା. ଅବ୍ୟ. (ଅମୁକ) ଦିବସଠାରୁ ଆରମ୍ଭକରି, (ଅମୁକ) ସମୟରୁ ।

ଦିନୁଦିନ(ନୁ)—ଗ୍ରା.ଅବ୍ୟ. ପ୍ରତିଦିନ,ନିତି, ଏକଦିନରୁ ଅନ୍ୟଦିନ ସମୟ,ଯଥାକ୍ରମେ ଏକଦିନର ପରେ ଅନ୍ୟ ଦିନରେ ।

ଦିନେ—ଗ୍ରା. ଅବ୍ୟ.କୌଣସି ଏକଦିବସରେ, ଅରେମାନ, ପୂର୍ବେ ବା ଭବିଷ୍ୟତରେ କୌଣସି ସମୟରେ ।

ଦିନେକ—ଗ୍ରା. ଅବ୍ୟ. କୌଣସି ଏକ ନିର୍ଦ୍ଦିଷ୍ଟ ଦିବସରେ ।

ଦିନେକେ—ଗ୍ରା.ଅବ୍ୟ. ଦିନକେ ଦେଖ ।

ଦିନେକାନ୍ତର—ଗ୍ରା. ଅବ୍ୟ. ଏକଦିନ ବା ତହିଁରୁ କିଛି କମ୍ ବେଶି ସମୟ, ପ୍ରାୟ ଏକଦିନ, ଦିନେ ବା ଦୁଇଦିନ, ଅତି ଅଳ୍ପଦିନ ।

ଦିନେଦିନେ—ଗ୍ରା. ଅବ୍ୟ. କୌଣସି କୌଣସି ଦିବସରେ,କୌଣସି କୌଣସି ସମୟରେ ।

ଦିନେ ନା ଦିନେ—ଗ୍ରା. ଅବ୍ୟ. ନିଶ୍ଚୟ କୌଣସି ଗୋଟିଏ ଦିନରେ, ନିଶ୍ଚେ କୌଣସି ସମୟରେ ।

ଦିନେଶ—ବି. (ଦିନ+ଈଶ ) ୬ତତ୍, ସୂର୍ଯ୍ୟ, ଅର୍କ ବୃକ୍ଷ ।

ଦିନେଶାତ୍ମଜ—ପୁଂ. ବି. (୬ତତ୍) ଯମ, ରାଜା କର୍ଣ୍ଣ, ସୁଗ୍ରୀବ, ଶନି, ସୂର୍ଯ୍ୟ ।

ଦିନେଶାତ୍ମଜା—ସ୍ତ୍ରୀ. ବି. (୬ତତ୍) ଯମୁନା ନଦୀ ।

ଦିନେଶ୍ୱର—ବି.(୬ତତ୍)ସୂର୍ଯ୍ୟ,ଅର୍କ ବୃକ୍ଷ, ସୂର୍ଯ୍ୟାଦି ବାରାଧିପତି ।

ଦିପ୍‌ସୁ—ପୁଂ. ବିଂ. (ଦମ୍ଭ+ସନ୍+ଉ) ଦମ୍ଭେଚ୍ଛୁ ।

ଦିପଖା—ଗ୍ରା. ବି. ଦୁଇଦିଗ, ଦୁଇପାର୍ଶ୍ୱ, ଦୁଇପାଖ, ଦିଫଡ଼ା, ଦୁଇହାତର ଦୁଇ ଡେଣା, (ଗ୍ରା.ବିଂ) ଦୁଇପାର୍ଶ୍ୱ ବା ପଖା ବିଶିଷ୍ଟ (ଚୁଲି) ।

ଦିପଖାଚୁଲି—ଗ୍ରା.ବି. ଦୁଇଟି ପଖାବିଶିଷ୍ଟ ଏକମୁହାଁ ଚୁଲି ।

ଦିପଟ—ଗ୍ରା.ବି. ଉଭୟ ପାର୍ଶ୍ୱ,ଯୋଡ଼ାଏ, ଦୁଇଗୁଣ ।

ଦିପଟା—ଗ୍ରା. ବି. ଦୁଇହଟା, ଦୁଇଥର, ଦୁଇପାଖ ।

ଦିପଟିଆ—ଗ୍ରା. ବିଂ. ଉଭୟ ପକ୍ଷକୁ ସମର୍ଥନ କରୁଥିବା ।

ଦିପତର—ଗ୍ରା. ବିଂ. (ସଂ-ଦ୍ୱିପତ୍ର) ଗଜା ଅବସ୍ଥାରୁ ଉପର ପତ୍ର ଧରିବାକୁ ଆରମ୍ଭ କରିଥିବା (ଗଛ), ଯେଉଁ ଗଛର ପତ୍ରସବୁ ଦୁଇ ଦୁଇଟା ହୋଇ ଡେମ୍ଫରେ ଲାଗିରହିଥାଏ ।

ଦିପଦଣ୍ଡ—ଗ୍ରା. ବିଂ. ପୋଖରୀର ମଧ୍ୟ-

ସ୍ଥଳରେ ପୋତାଯିବା ବେଲ କାଠର ଖୁଣ୍ଟ, ପୋଖରୀ ମଧ୍ୟସ୍ଥଳରେ ନିମନ୍ତେ ମଣ୍ଡପ ।

ଦ୍ୱିପଦହ୍ନ—ଗ୍ରା. ବି. ତୈଳ, ଜଳିବା ତେଲ, କେବଳ ଦୁଇପଦ କଥା ।

ଦ୍ୱିପହର—ଗ୍ରା. ବି. ( ସଂ-ଦ୍ୱିପ୍ରହର ) ମଧ୍ୟାହ୍ନ, ମଧ୍ୟଦିନ, ଅପରାହ୍ନ ।

ଦ୍ୱିପହରିଆ—ଗ୍ରା. ବିଂ. (ସଂ-ଦ୍ୱିପ୍ରହର) ଦ୍ୱିପ୍ରହର ସମ୍ବନ୍ଧୀୟ, (ଗ୍ରା.ବି)ଦ୍ୱିପ୍ରହର ବେଳ, ମଧ୍ୟାହ୍ନ, ଖରାବେଳ, ପୁଷ୍ପଶାକ ବିଶେଷ, ବଧୁଲି ଫୁଲ ।

ଦ୍ୱିପହରିଆମାହାତମ--ଗ୍ରା.ବି. ମୁସଲମାନ-ମାନଙ୍କର ମହରମ ପର୍ବର ଅଷ୍ଟମ ଦିନ, ଯେଉଁଦିନ ମହମ୍ମଦଙ୍କ ଝିଅର ପୁଅ ହୁମାମ୍ହସନଙ୍କ ସଙ୍ଗେ ଏଜିଦ୍ ବଂଶର ଯୁଦ୍ଧ ଆରମ୍ଭ ହୋଇଥିଲା ।

ଦ୍ୱିପାବଳିଅମାସ୍ୟା—ଗ୍ରା. ବି. (ସଂ-ଦୀପାବଳୀ ଅମାବାସ୍ୟା) କାର୍ତ୍ତିକ ମାସର ଅମାବାସ୍ୟା, ଯେଉଁଦିନ ଗୃହରେ ଏବଂ ଦେବାଳୟମାନଙ୍କରେ ଦୀପମାଳା ଜଳାଯାଏ ଏବଂ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ଶ୍ରାଦ୍ଧ ଦୀପଦାନାଦିର ଅନୁଷ୍ଠାନ କରାଯାଏ ।

ଦ୍ୱିପାଳି—ଗ୍ରା.ବି. (ସଂ-ଦୀପାବଳୀ)ମାଟିର ସାନ ଦୀପ, ଦୁଇପାଳି ବା ଥର ।

ଦ୍ୱିପାଳିବସ (ଯୋ)ଇବା—ଗ୍ରା.ବି.କୌଣସି ସ୍ଥାନକୁ ଆଲୋକିତ କରିବା ନିମନ୍ତେ ଜଳୁଥିବା ଦୀପ ରଖିବା ।

ଦ୍ୱିପିଠିଆ—ଗ୍ରା. ବିଂ. (ସଂ-ଦ୍ୱି+ପୃଷ୍ଠ) ଦୋରୁଖା, ଯେଉଁ ଲୁଗାର ଦୁଇପିଠି ବା ପାଖର ରଙ୍ଗ ବା ରୂପ ଏକପ୍ରକାର, ଯେଉଁ ଗ୍ରୁପାକାଗଜର ଦୁଇପିଠି ବା ପଟରେ ଗ୍ରୁପାହୁଏ, ଯେଉଁ ଘୋଡ଼ା ଜିନ ସବାର ଓ ଗାଡ଼ିଟଣା କାମରେ ଲାଗେ, ଯେଉଁ ବଳଦ ଗାଡ଼ି ଟାଣେ ଓ ହଳରେ ଲାଗେ ।

ଦ୍ୱିପିଢ—ଗ୍ରା.ବି.(ସଂ-ଦୀପ୍ର)ଦୀପ୍ତି ଦେଖ ।

ଦ୍ୱିପୁରବଟା—ଗ୍ରା. ବିଂ. ଦୁଇଥର ବଟା ଯାଇଥିବା (ହଳଦୀ ଇତ୍ୟାଦି) ।

ଦ୍ୱିଫାଙ୍କିଆ—ଗ୍ରା.ବିଂ. ଦୋଫାଙ୍କିଆ ଦେଖ ।

ଦ୍ୱିଫାଙ୍କୁଡ଼ିଆ—ଗ୍ରା.ବିଂ. ଦୁଇଶାଖା ବିଶିଷ୍ଟ, ଦୁଇଭାଗରେ ବିଭକ୍ତ ହୋଇଥିବା ।

ଦ୍ୱିଫାଳିଆ—ଗ୍ରା.ବିଂ.ଦୁଇଟିଫାଳ ବିଶିଷ୍ଟ ।

ଦିବ୍—ବି. ( ଦିବ୍+ଅଧି.କ୍ୱିପ୍ ) ସ୍ୱର୍ଗ, (ଦିବ୍+କ.ଅ) ଆକାଶ, ଦିନ ।

ଦିବ—ବି.(ଦିବ୍+କ.ଅ)ଦିବ୍ ଦେଖ,ବନ ।

ଦିବକ୍ଷସ୍—ଢ଼ି. ବିଂ. ସ୍ୱର୍ଗୀୟ, ( ପୁଂ.ବି ) ଇନ୍ଦ୍ର ।

ଦିବଙ୍ଗମ—ପୁଂ.ବିଂ. ଆକାଶଗାମୀ, ସ୍ୱର୍ଗ-ଗାମୀ ।

ଦିବନ୍—ପୁଂ.ଶ. ଦିନ ।

ଦିବରଷିଆ—ଗ୍ରା.ବିଂ. ( ସଂ-ଦ୍ୱିବାର୍ଷିକ ) ଦ୍ୱିବାର୍ଷିକ, ଯାହା ଦୁଇବର୍ଷରେ ଥରେ ଘଟେ ।

ଦିବସ—ପୁଂ.କ୍ଲୀ.ବି. ( ଦିବ୍+ଅଧି.ଅସ ) ଦିନ,ଦିନବେଳ,(ଗ୍ରା.ବି.) ଶ୍ରାଦ୍ଧଦିବସ ।

ଦିବସକର—ପୁଂ. ବି. ( ଦିବସ+କୃ-+କ.ଅ)ଅର୍କବୃକ୍ଷ,ସୂର୍ଯ୍ୟ,( ଅନ୍ୟରୂପ—ଦିବସନାଥ, ଦିବସମଣି, ଦିବସେଶ) ।

ଦିବସକୃତ୍—ପୁଂ. ବି. ସୂର୍ଯ୍ୟ, ଅର୍କବୃକ୍ଷ ।

ଦିବସନାଥ—ପୁଂ. ବି. (ଦିବସ+ନାଥ) ସୂର୍ଯ୍ୟ ।

ଦିବସଭର୍ତ୍ତା—ପୁଂ.ବି. ସୂର୍ଯ୍ୟ ।

ଦିବସମୁଖ—କ୍ଲୀ. ବି. ( ଦିବସ+ମୁଖ ) (୬ତତ୍) ପ୍ରାତଃକାଳ ।

ଦିବସମୁଦ୍ରା— ସ୍ତ୍ରୀ. ବି. ଏକଦିନର ବେତନ ବା ମୂଲ, ଦିନକର ମଜୁରି ।

ଦିବସବିଗମ—ପୁଂ. ବି. ଦିବାବସାନ, ଦିବସାତ୍ୟୟ,ସନ୍ଧ୍ୟାକାଳ,ସାୟଂକାଳ ।

ଦିବସା—ଗ୍ରା. ବି. (ସଂ-ଦିବସ) ଦିବସ ଦେଖ ।

ଦିବସାତ୍ୟୟ—ପୁଂ. ବି. ( ଦିବସ+ଅତ୍ୟୟ ) ୬ତତ୍; ସନ୍ଧ୍ୟା, ଦିନାନ୍ତ, ସାୟଂକାଳ ।

ଦିବସାନ୍ତର—ବି. ଅନ୍ୟଦିନ ।

ଦିବସାବସାନ—ବି. ସନ୍ଧ୍ୟା, ଦିନାନ୍ତ ।

ଦିବସାଲୋକ—ବି. (ଦିବସ+ଆଲୋକ) (୬ତତ୍) ଦିନର ଆଲୁଅ ।

ଦିବସ୍ପତି—ପୁଂ. ବି. ( ଦିବଃ+ପତି ) ୬ତତ୍; ଇନ୍ଦ୍ର, ସୂର୍ଯ୍ୟ ।

ଦିବସ୍ପତ୍ର—ପୁଂ. ବି. ଦ୍ୟୁଲୋକପ୍ରିୟ, ଦ୍ୟୁଲୋକପାଳକ ସୂର୍ଯ୍ୟ ।

ଦିବସ୍ପୃଥିବୀ—ସ୍ତ୍ରୀ.ବି. ସ୍ୱର୍ଗ ଓ ଭୂମି ।

ଦିବସ୍ପୃଶ୍—ପୁଂ. ବି. (୬ତତ୍) ପାଦଦ୍ୱାରା ସ୍ୱର୍ଗସ୍ପର୍ଶୀ ବସ୍ତୁ, ଆକାଶସ୍ପର୍ଶୀ ଶବ୍ଦାଦି ।

ଦିବା—ଅବ୍ୟ. ଦିନରେ, ଦିବସରେ, (ବି) ଦିବସ, ଦିନ ।

ଦିବାଇ—ବି. ଉତ୍ତର ପଶ୍ଚିମପ୍ରଦେଶ ବୁଲନ୍ଦସହର ଜିଲ୍ଲାର ଗୋଟିଏ ସହର ଓ ବାଣିଜ୍ୟସ୍ଥାନ ।

ଦିବାକର--ପୁଂ.ବି. ( ଦିବା+କର ) କ.ଗ୍ରା, ବା (ଦିବା+କୃ+କ.ଅ ) ସୂର୍ଯ୍ୟ, ଅର୍କବୃକ୍ଷ, କାକ, ପୁଷ୍ପବିଶେଷ, ( ଗ୍ରା.ପୁଂ.ବି. ) ଲୋକର ନାମ, ଜଣେ ସଂସ୍କୃତ କବିଙ୍କ ନାମ ।

ଦିବାକରମିଶ୍ର—ଗ୍ରା. ବି. (ନାମ) ଜଣେ ପ୍ରାଚୀନ ଉତ୍କଳୀୟ କବିଙ୍କ ନାମ ।

ଦିବାକରସୁତ—ପୁଂ.ବି.ସୂର୍ଯ୍ୟପୁତ୍ର,ଶନି, ଯମ,କର୍ଣ୍ଣ, ସୁଗ୍ରୀବ, (ସ୍ତ୍ରୀ) ଦିବାକର-ସୁତା, ଯମୁନା, ତପତୀ ।

ଦିବାକୀର୍ତ୍ତି—ପୁଂ.ବି.( କ.ଗ୍ରା ) ନାପିତ, ( ଦିବା+ଅକୀର୍ତ୍ତି ) ପେଚକ, ପେଚା, ଚଣ୍ଡାଳ ।

ଦିବାକୀର୍ତ୍ତ୍ୟ—କ୍ଲୀ. ବି. ବର୍ଷସାଧ୍ୟ ଗବା-ମୟନ ଯଜ୍ଞର ବିଷୁବସଂକ୍ରାନ୍ତ ଦିନ ଯେ ସାମଗାନ କରାଯାଏ ତାର ନାମ ।

ଦିବାଚର—ପୁଂ. ବିଂ. ( ଦିବା+ଚର-+କ.ଅ ) ଯେ ଦିବସରେ ବିଚରଣ କରେ, (ବି) ପକ୍ଷୀ, ଚଣ୍ଡାଳ, (ସ୍ତ୍ରୀ) ଦିବାଚରୀ ।

ଦିବାଗୃଷ୍ଟି—ପୁଂ. ବିଂ. ଦିବସ ଦୃଷ୍ଟିଥିବା ଭୂତ ବା ପ୍ରାଣୀ ।

ଦିବାଟନ—ବି. (ଦିବା+ଅଟ+କ. ଅନ) କାକ, କୁଆ ।

ଦିବାତନ—ପୁଂ.ବିଂ. ( ଦିବା+ତନ ) ଦିନରେ ଘଟିବା, ଦୈନିକ, ( ବି ) ଏକଦିନର ମଜୁରି, (ସ୍ତ୍ରୀ) ଦିବାତନୀ ।

**ଦିବାତର**—କ୍ଲୀ. ବ. ଅତ୍ୟନ୍ତ ପ୍ରକାଶକ ଦିବା ।

**ଦିବାନ୍**—ଯା.ବ. ଦେଓ୍ୟାନ୍ ଦେଖ ।

**ଦିବାନାଥ**—ପୁଂ.(ଦିବା+ନାଥ; ୬ତତ୍) ସୂର୍ଯ୍ୟ ।

**ଦିବାନ୍ଧ**—ଗ୍ରା.ବ. ଦେବାନ୍ଧ ଦେଖ ।

**ଦିବାନିଦ୍ରା**—ସ୍ତ୍ରୀ.ବ. (ଦିବା+ନିଦ୍ରା) ୭ତତ୍; ଦିନବେଳେ ଶୋଇବା ।

**ଦିବାନିଶ**—ଅବ୍ୟ (ଦିବା+ନିଶି. ଦ୍ୱନ୍ଦ୍ୱ) ଦିନରାତି, ଦିନ ଓ ରାତ୍ରିବ୍ୟାପୀ,ଅହୋରାତ୍ର ।

**ଦିବାନିଶି**—ଗ୍ରା. କ୍ରି. ବିଂ. ରାତଦିନ, ଦିନରେ ଓ ରାତିରେ, ଅହର୍ନିଶ, ସର୍ବଦା, ଅବିରତ ।

ଦିବାନ୍ଧ—ପୁଂ. ବ. (ଦିବା+ଅନ୍ଧ) (୭ତତ୍) ଦିବସରେ ଦୃଷ୍ଟିହୀନ, ଦିନକଣା, (ପୁଂ.ବ.) ପେଚକ ।

**ଦିବାନ୍ଧକା**—ସ୍ତ୍ରୀ.ବ. ଚୁଚୁନ୍ଦ୍ରା ।

**ଦିବାପୃଷ୍ଠ**—ପୁଂ.ବ. (ବ.ବ୍ରୀ) ସୂର୍ଯ୍ୟ ।

**ଦିବାପ୍ରଦୀପ**—ପୁଂ.ବ.(ଲ.ଅର୍ଥ)ଦିନରେ ଜଳାଇବା ଦୀପପରି ନିଷ୍ପ୍ରୟୋଜନ ବ୍ୟକ୍ତି ବା ବସ୍ତୁ ।

**ଦିବାବସୁ**—ପୁଂ. ବ. (ଦିବା+ବସୁ) (ବ.ବ୍ରୀ) ସୂର୍ଯ୍ୟ ।

**ଦିବାଭାଗ**—ବି. (ଦିବା+ଭାଗ) ୬ତତ୍; ଦିନସମୟ, ସୂର୍ଯ୍ୟୋଦୟଠାରୁ ସୂର୍ଯ୍ୟାସ୍ତ କାଳ ।

**ଦିବାଭିସାରିକା**—ସ୍ତ୍ରୀ.ବ. (ଦିବା+ଅଭିସାରିକା) ଯେଉଁ ନାୟିକା ଦିନବେଳେ ପ୍ରେମିକ ସଙ୍ଗେ ମିଳିତ ହେବାପାଇଁ ସଙ୍କେତ ସ୍ଥଳକୁ ଯାଏ ।

**ଦିବାଭୀତ**—ପୁଂ.ବ. (ଦିବା+ଭୀତ), (୫ମୀ ବା ୭ମୀତତ୍) ପେଚକ, ଚୋର, ଚନ୍ଦ୍ର, କୁମୁଦାକର ।

**ଦିବାଭୀତା**—ସ୍ତ୍ରୀ. ବ. ପେଚକ, (ବିଂ) ଦିବସଭୀତଯୁକ୍ତ । [ଯୁକ୍ତ ।

**ଦିବାଭୂତ**—ବି.ବିଂ.ଦିନପରି ଆଲୋକ-

**ଦିବାମଣି**—ପୁଂ. ବ. (ଦିବା+ମଣି) (୬ତତ୍) ଦିନମଣି, ସୂର୍ଯ୍ୟ, ଅର୍କବୃକ୍ଷ ।

ଦିବାମଧ୍ୟ—କ୍ଲୀ.ବ.(ଦିବ+ମଧ୍ୟ) ୬ତତ୍; ମଧ୍ୟାହ୍ନ, ଦ୍ୱିପ୍ରହର, ଦିନର ମଧ୍ୟଭାଗ ।

ଦିବାର—ଗ୍ରା.ଅବ୍ୟ. (ସଂ-ଦ୍ୱି+ବାର) ଦୁଇଥର ।

ଦିବାରତିନିବାର—ଗ୍ରା.ଅବ୍ୟ.(ସଂ-ଦ୍ୱିବାର ତିନିବାର) ଦୁଇଥର ତିନିଥର, ବହୁବାର ।

ଦିବାରାତ୍ର—ଅବ୍ୟ. (ଦିବା+ରାତ୍ରି.ଦ୍ୱନ୍ଦ୍ୱ) ଦିବାନିଶ ଦେଖ ।

ଦିବାରାତି—ଗ୍ରା.ଅବ୍ୟ. (ସଂ-ଦିବାରାତ୍ର) ଦିବାନିଶି ଦେଖ ।

ଦିବାଲ୍—ଯା. ବ. ଦେବାଲ୍ ଦେଖ ।

ଦିବାଲ୍‌ଗିର—ଯା. ବ. ଯେଉଁ ଦୀପ କାଚରେ ମଡ଼ାହୋଇ ଜଳେ ।

ଦିବାଲ—ଗ୍ରା. ବିଂ. (ସଂ-ଦୁର୍ବଳ) ଦୁର୍ବଳ, (ଯା. ବିଂ.) ଦିବାଲିଆ ଦେଖ ।

ଦିବାଲିଆ—ଯା. ବିଂ. ଋଣ ପରିଶୋଧ କରିବାକୁ ଅସମର୍ଥ(ବ୍ୟକ୍ତି), ଅସ୍ତବ୍ୟସ୍ତ, ଦୁଃଖଗ୍ରସ୍ତ ।

ଦିବାଲି—ଗ୍ରା. ବ. (ସଂ-ଦୀପାବଳୀ)ଦୀପାବଳୀ ଅମାବାସ୍ୟା ।

ଦିବାଶୟ—ଗ୍ରା. ପୁଂ. ବିଂ. (ଦିବା+ଶୀ+ଅ) ଉପ. ତତ୍ ବା ୭ତତ୍) ଯେ ଦିନରେ ଶୁଏ ।

ଦିବାସଞ୍ଚର—ବ. (ଦିବା+ସମ୍+ଚର+ଅ) ଦିବାଚର ପ୍ରାଣୀବିଶେଷ, (ପର୍ଯ୍ୟାୟ—ଶ୍ୟାମା, ଶ୍ୟେନ, ଶଶଘ୍ନ, ବଞ୍ଜୁଳ, ଶିଖୀ, ଶ୍ରୀକଣ୍ଠ, ଚକ୍ରବାକ,ବୃଷ, ଅଶ୍ୱୀରକ, ଖଞ୍ଜରୀଟ, ଶୁକ, ଧ୍ୱାଙ୍କ୍ଷ, କ୍ରୌଞ୍ଚ, କପୋତ, ଭରଦ୍ୱାଜ, କୁଲାଲ, କୁକ୍କୁଟ, ଖର, ହାରୀତ, ଗୃଧ୍ର, କପି, ଫେଣ୍ଟ, ପୃଷ୍ଠୀକୂଟ ଓ ଚଟକ ଏହିସବୁ ଦିବାଚର ପକ୍ଷୀ ।

ଦିବାସ୍ୱପ୍ନ—ପୁଂ.ବ.(ଦିବା+ସ୍ୱପ୍ନ)୭ତତ୍ ଦିବାନିଦ୍ରା, ଆକାଶ କୁସୁମ ରଚନା ।

ଦିବାସ୍ୱାପ—ପୁଂ. ବ.(ଦିବା-ସ୍ୱାପ)୭ତତ୍; ଦିବାନିଦ୍ରା ।

ଦିବାସ୍ୱାପା—ସ୍ତ୍ରୀ. ବ. ବଲ୍‌ଗାପକ୍ଷୀ ।

ଦିବି—ପୁଂ. ବ.(ଦିବ୍+କ.ଇ)ବୃଷପକ୍ଷୀ, (ଦେ--ଦିବ୍ ଶବ୍ଦର ୭ବିଭକ୍ତି ୧ବ)ସ୍ୱର୍ଗ, ଆକାଶ ।

ଦିବିକ୍ଷୟ—ପୁଂ. ବିଂ. ସ୍ୱର୍ଗବାସୀ ।

ଦିବିକ୍ଷିତ୍—ତ୍ରି. ବିଂ. (ଦିବି+କ୍ଷି+କ୍ୱିପ୍) ସ୍ୱର୍ଗବାସୀ ।

ଦିବିଗତ—ତ୍ରି.ବିଂ.(ଦିବି+ଗତ)ସ୍ୱର୍ଗଗତ ।

ଦିବିଚର—ପୁଂ.ବିଂ.(ଦିବି+ଚର+ଅ) ଆକାଶଗାମୀ, ସ୍ୱର୍ଗଗାମୀ, (ସ୍ତ୍ରୀ)ଦିବିଚରୀ ।

ଦିବିଚାରୀ—ପୁଂ. ବିଂ. (ଦିବି+ଚର+ଇନ୍) ଆକାଶଗାମୀ, ସ୍ୱର୍ଗଗାମୀ, (ସ୍ତ୍ରୀ) ଦିବିଚାରିଣୀ ।

ଦିବିଜ—ପୁଂ. ବ. (ଦିବି+ଜନ୍+ଅ) ଦ୍ୟୁଲୋକଜାତ,ସ୍ୱର୍ଗଜାତ,ଯେ ସ୍ୱର୍ଗରେ ଜନ୍ମି ଅଛି ।

ଦିବିଜାତ—ତ୍ରି. ବିଂ. (ଦିବି+ଜାତ) ସ୍ୱର୍ଗଜାତ, ଆକାଶଜାତ ।

ଦିବିତା—ସ୍ତ୍ରୀ. ବ. ଦୀପ୍ତି ।

ଦିବିମନ୍ତ୍ର—ତ୍ରି. ବିଂ. ଦୀପ୍ତି ଯୁକ୍ତ ।

ଦିବିଯଜ୍—ପୁ. ବିଂ. (ଦିବି+ଯଜ୍+କ୍ୱିପ୍) ଦ୍ୟୁଲୋକସ୍ଥ ଦେବଯାଜୀ, ଯେଉଁମାନେ ସ୍ୱର୍ଗରେ ଥାଇ ଦେବତାମାନଙ୍କର ଯାଗ କରନ୍ତି ।

ଦିବିଯୋନି—ତ୍ରି. ବିଂ. ସ୍ୱର୍ଗଜନ୍ମା ।

ଦିବିରଥ—ପୁଂ. ବ. ପୁରୁବଂଶ ଭୂମନ୍ୟୁ ପୁତ୍ର ନୃପବିଶେଷ, ଅଙ୍ଗଦେଶାଧିପତି ଦଧିବାହନଙ୍କ ପୁତ୍ର ।

ଦିବିଶ୍ରିତ୍—ପୁଂ.ବିଂ.ସ୍ୱର୍ଗରେ ବାସକାରୀ ।

ଦିବିଷଦ୍—ପୁଂ. ବ. (ଦିବି+ସଦ୍+କ. କ୍ୱିପ୍) ଦେବତା, (ବି) ସ୍ୱର୍ଗବାସକାରୀ ।

ଦିବିଷ୍ଠ—ପୁଂ. ବିଂ. (ଦିବି+ସ୍ଥା+କ.ଅ) ସ୍ୱର୍ଗସ୍ଥ, ସ୍ୱର୍ଗୀୟ, (ବି) ଦେବତା, (ସ୍ତ୍ରୀ) ଦିବିଷ୍ଠା ।

ଦିବିଷ୍ଠାମ୍ନ—ତ୍ରି. ବିଂ. ସ୍ୱର୍ଗେ ସ୍ଥାପନୀୟ ।

ଦିବିଷ୍ଟି—କ୍ଲୀ. ବ. ଯାଗ, ଯଜ୍ଞ ।

ଦିବିସ୍ଥ—ତ୍ରି. ବିଂ. (ଦିବି+ସ୍ଥା+ଅ) ସ୍ୱର୍ଗସ୍ଥ,ଯେଉଁମାନେ ସ୍ୱର୍ଗରେ ଅବସ୍ଥାନ କରନ୍ତି, ଅନ୍ତରୀକ୍ଷସ୍ଥିତ ।

ଦିବିସଦ୍—ଦିବିଷଦ୍ ଦେଖ ।

ଦିବିସ୍ପୃଶ୍—ତ୍ରି. ବିଂ. ଦ୍ୟୁଲୋକସ୍ପର୍ଶୀ ।

ଦିଗ୍ମ—ସ୍ତ୍ରୀ. ବ. (ଦିବ+ଈ)ଉପଜଳନ୍ତି କା ଷ୍ଠ ।
ଦିବୋକସ୍—ପୁଂ. ବ. (ଦିବ+ଓକସ୍) ବ.ଗ୍ରୀ; ଦେବତା, ଚାତକପକ୍ଷୀ ।
ଦିବୋଜା—ତ୍ରି, ବଂ. ଯେଉଁମାନେ ସ୍ୱର୍ଗଲୋକରୁ ଜନ୍ମଗ୍ରହଣ କରିଅଛନ୍ତି ।
ଦିବୋଦାସ—ପୁଂ. ବ. କାଶୀଖଣ୍ଡ ଓ ମହାଭାରତରେ ଉଲ୍ଲିଖିତ ଚନ୍ଦ୍ରବଂଶୀୟ ରାଜା, ମେନକାଗର୍ଭରୁ ଯଧ୍ରଶ୍ବ ଋଷିଙ୍କ ଔରସରେ ଜନ୍ମିଥିବା ଋଷି (ଏ ଅହଲ୍ୟାଙ୍କ ଭାଇ), ଚକ୍ରଦତ୍ତାଦର୍ପଣକାର ।
ଦିବୋଦୁହ—ତ୍ରି. ବ. ଦିବୋଧୁକ୍, ସ୍ୱର୍ଗରୁ କ୍ଷରିତ ଦୁଗ୍ଧ ।
ଦିବୋଦ୍ଭବ—ତ୍ରି. ବ. (ଦିବ+ଉତ୍+ଭୂ+ଅ) ସ୍ୱର୍ଗଜାତ, ଆକାଶଜାତ ।
ଦିବୋଦ୍ଭବା—ସ୍ତ୍ରୀ. ବ. (ଦିବ+ଉଦ୍ଭବ+ଆ) ଅଳାଇଚ ।
ଦିବୋରୁଚ୍—ତ୍ରି.ବଂ.ଆକାଶେ ଦୀପ୍ତିଶୀଳ ।
ଦିବୋଲ୍କା—ସ୍ତ୍ରୀ.ବ.(ଦିବା+ଉଲ୍କା)ଦିନବେଳେ ଆକାଶରୁ ଖସିବା ଉଲ୍କା ।
ଦିବୌକସ୍—ପୁଂ. ବ. (ଦିବ+ଓକସ୍) ଦେବତା, ଚାତକ, (ବଂ) ସ୍ୱର୍ଗବାସୀ ।
ଦିବୌକା—ବଂ.(ଦିବୌକସ୍ ଶବ୍ଦ ୧ ମା ୧ବ) ଦିବୋକସ୍ ଦେଖ ।
ଦିବ୍ବ—ବଂ. ଦିବ୍ୟ, ସୁନ୍ଦର ।
ଦିବ୍ୟ—ପୁଂ.ବଂ. (ଦିବ+ଭ.ଯ)ସ୍ୱର୍ଗୀୟ, ଆକାଶୀୟ, ଐନ୍ଦ୍ରଜାଲିକ, ଅଦ୍ଭୁତ (ଘଟନା), ଆକାଶସ୍ଥ, ଅଲୌକିକ, ମନୋହର, ସୁନ୍ଦର, ଉତ୍କୃଷ୍ଟ, ଶ୍ରେଷ୍ଠ, ଆକାଶରେ ଘଟୁଥିବା, ସ୍ୱର୍ଗୀୟ ବା ବିଶ୍ୱର ଆନନ୍ଦଦାୟକ, (ବ) ଶପଥ, ରାଣ, ଲବଙ୍ଗ, ହରିଚନ୍ଦନ, ଗୁଗ୍ଗୁଳ, ଯବ, ଅଁଳା, ଶତାବରୀ, ବ୍ରାହ୍ମୀଶାକ, ଧଳାଦୁବ, ହରଡ଼ା,ପୁଷ୍କର,ଶ୍ବେତବେଣ୍ଟ, କର୍ପୂର, କଚୁଣ୍ଠ,ଆମ୍ବଅଦା, ଜୀରା,ଅଷାଢୁଆ, ମହାମେଦା, ଚମ୍ପେଲି, ଖରାବେଳେ ବରଷୁଥିବା ପାଣିରେ ସ୍ନାନ, ପଞ୍ଚ ମକାର,ଶ୍ମଶାନ ଓ ଚିତାସାଧନରେ କରାଯିବା ତାନ୍ତ୍ରିକ ଆଚାର ବିଶେଷ, ଆକାଶରେ ଘଟିବା ଏକପ୍ରକାର ଉତ୍ପାତ, ନାଟକାଦିରେ ବର୍ଣ୍ଣିତ ଅଲୌକିକ ନାୟକ (ଯଥା—ରାମଚନ୍ଦ୍ର, କୃଷ୍ଣ), ଅପରାଧିତ ବିଷୟ ସିଦ୍ଧାନ୍ତ ହେବାପାଇଁ କରାଯିବା ପରୀକ୍ଷା, ମାଣ୍ଡୁ,ଶପଥ, (ଗ୍ରା. ବ.) ସତ୍ୟନିର୍ଣ୍ଣୟ ପରୀକ୍ଷା, (ଅବ୍ୟ) ଅତିଶୟ, (ପୁଂ. ବ) ଯମ, ବ୍ୟବହାର ବିଶେଷ ।
ଦିବ୍ୟକ—ପୁଂ. ବ. ସର୍ପବିଶେଷ, ଜନ୍ତୁବିଶେଷ ।
ଦିବ୍ୟକବଚ—ବ. ଦେବତାଙ୍କ ପ୍ରଦତ୍ତ ତନୁତ୍ରାଣ ବା ସାଞ୍ଜୁ,ଦେବତାଙ୍କ ସ୍ତବବିଶେଷ ।
ଦିବ୍ୟକୁଣ୍ଡ—କ୍ଲୀ.ବ.କାମରୂପେ କ୍ଷୋଭକଶୈଳର ପୂର୍ବପ୍ରାନ୍ତସ୍ଥ ପୁଷ୍କରିଣୀ ବିଶେଷ ।
ଦିବ୍ୟଗନ୍ଧ—ପୁଂ. ବ. (ଦିବ୍ୟ+ଗନ୍ଧ) ବ.ଗ୍ରୀ; ଗନ୍ଧକ, ଲବଙ୍ଗ, (କ୍ଲୀ,କ.ଧା) ମନୋରମ ଗନ୍ଧ, ସୁଗନ୍ଧ,ସୁଘ୍ରାଣ,(ବଂ) ସୁଗନ୍ଧଯୁକ୍ତ ।
ଦିବ୍ୟଗନ୍ଧା—ସ୍ତ୍ରୀ. ବ. ସ୍ଥୂଳୈଳା, ବଡ଼ ଅଳାଇଚ, ମହାପଞ୍ଚଶାକ ।
ଦିବ୍ୟଗାୟନ—ପୁଂ. ବ. (ବ.ଗ୍ରୀ)ଗନ୍ଧର୍ବ, ଦେବଯୋନିବିଶେଷ ।
ଦିବ୍ୟଚକ୍ଷୁ—ଗ୍ରା. ବ, (ସଂ-ଦିବ୍ୟଚକ୍ଷୁଃ) ଜ୍ଞାନଚକ୍ଷୁ, ସୁନ୍ଦର ବା ମନୋହର ଆଖି ।
ଦିବ୍ୟଚକ୍ଷୁଃ—କ୍ଲୀ. ବ. (ଦିବ୍ୟ+ଚକ୍ଷୁଃ) କ.ଧା; ଜ୍ଞାନଚକ୍ଷୁ,ଅତୀନ୍ଦ୍ରିୟାର୍ଥ ଦର୍ଶନଶକ୍ତି, ଚଷମା, ପ୍ରଚକ୍ଷୁ, ମାଙ୍କଡ଼, ଗନ୍ଧଦ୍ରବ୍ୟବିଶେଷ,(ପୁଂ.ବ)କୃଷ୍ଣ,ଅନ୍ଧଲୋକ, (ବଂ. ବ.ଗ୍ରୀ) ପରୋକ୍ଷ ବିଷୟ ଦେଖିବାର ଶକ୍ତିଯୁକ୍ତ, ସୁଲୋଚନ, ସୁନ୍ଦର ଚକ୍ଷୁ ବିଶିଷ୍ଟ, ଅନ୍ଧ ।
ଦିବ୍ୟଚିତ୍ତ—ବ. (ଦିବ୍ୟ+ଚିତ୍ତ) କ.ଧା; ଭଲ ମନ, ଅନୁକୂଳ ଚିତ୍ତ ।
ଦିବ୍ୟଜ୍ଞାନ—କ୍ଲୀ.ବ.(ଦିବ୍ୟ+ଜ୍ଞାନ)କ.ଧା; ପରୋକ୍ଷ ବିଷୟକ ଜ୍ଞାନ, ସ୍ୱର୍ଗୀୟ ଜ୍ଞାନ, ତତ୍ତ୍ୱଜ୍ଞାନ,ବଂ. (ଦିବ୍ୟ+ଜ୍ଞାନ) ବ.ଗ୍ରୀ; ସ୍ୱର୍ଗୀୟ ଜ୍ଞାନଯୁକ୍ତ ।
ଦିବ୍ୟଜ୍ୟୋତିଃ—ବ. (ଦିବ୍ୟ+ଜ୍ୟୋତିଃ) କ.ଧା, ସ୍ୱର୍ଗୀୟ ଆଲୋକ ।
ଦିବ୍ୟତା—ସ୍ତ୍ରୀ. ବ. (ଦିବ୍ୟ+ତା) ଦେବଭାବ ।
ଦିବ୍ୟତେଜାଃ—ସ୍ତ୍ରୀ.ବ. (ବ.ଗ୍ରୀ) ବ୍ରାହ୍ମୀଶାକ, (ପୁଂ. ବଂ.ବ.ଗ୍ରୀ) ଅଲୌକିକ ତେଜସ୍ୱୀ ।
ଦିବ୍ୟଦର୍ଶନ—ବଂ. ସ୍ୱର୍ଗୀୟ,ଐନ୍ଦ୍ରଜାଲିକ, ଅଦ୍ଭୁତ ଘଟଣା, (ବ) ଶପଥ, ରାଣ, ଲବଙ୍ଗ ।
ଦିବ୍ୟଦର୍ଶୀ—ପୁଂ. ବଂ. (ଦିବ୍ୟ+ଦୃଶ୍+କ.ଇନ୍)ଦିବ୍ୟଦୃଷ୍ଟିଯୁକ୍ତ,ଅତୀନ୍ଦ୍ରିୟାର୍ଥ ଦର୍ଶକ, (ସ୍ତ୍ରୀ) ଦିବ୍ୟଦର୍ଶିନୀ ।
ଦିବ୍ୟଦୃକ୍—ପୁଂ. ବଂ. (ଦିବ୍ୟ+ଦୃଶ୍+କ୍ୱିପ୍) ଅତୀନ୍ଦ୍ରିୟ ପଦାର୍ଥ ଦର୍ଶକ,ଦିବ୍ୟପଦାର୍ଥଦର୍ଶୀ ।
ଦିବ୍ୟଦୃଷ୍ଟି—ବ ଓ ବଂ.ଦିବ୍ୟଦର୍ଶନଦେଖ ।
ଦିବ୍ୟଦେହ—ବ.(ଦିବ୍ୟ+ଦେହ) କ.ଧା; ସ୍ୱର୍ଗୀୟ ଦେହ, ସାଧାରଣ ଚକ୍ଷୁର ଅଗୋଚର ଶରୀର ।
ଦିବ୍ୟଦୋହଦ—କ୍ଲୀ. ବ. ବାଞ୍ଛା ସିଦ୍ଧ ହେଲେ ଭକ୍ତ ଦେବତାଙ୍କୁ ଯେଉଁ ପଦାର୍ଥ ଅର୍ପଣ କରିବା ପାଇଁ ମନାସି ଥାଏ ।
ଦିବ୍ୟଧର୍ମୀ—ପୁଂ. ବଂ. (ଦିବ୍ୟ+ଧର୍ମ+ଇନ) ସୁଶୀଳ, ସୁସ୍ୱଭାବ, (ସ୍ତ୍ରୀ) ଦିବ୍ୟଧର୍ମିଣୀ । [ ସ୍ୱର୍ଗ ।
ଦିବ୍ୟଧାମ—ବ.(ଦିବ୍ୟ+ଧାମନ୍) କ.ଧା;
ଦିବ୍ୟନଦୀ—ସ୍ତ୍ରୀ. ବ. (ଦିବ୍ୟା+ନଦୀ) କ.ଧା; ସ୍ୱର୍ଗଗଙ୍ଗା, ମନ୍ଦାକିନୀ, ଦିବ୍ୟସରିତ୍ ।
ଦିବ୍ୟନାରୀ—ସ୍ତ୍ରୀ.ବ. (ଦିବ୍ୟା+ନାରୀ) କ.ଧା; ସ୍ୱର୍ଗାଙ୍ଗନା, ଅପ୍ସରା, ଦିବ୍ୟ ସ୍ତ୍ରୀ, ସ୍ୱର୍ବେଶ୍ୟା ।
ଦିବ୍ୟପଞ୍ଚାମୃତ—କ୍ଲୀ. ବ. (ଦିବ୍ୟ+ପଞ୍ଚାମୃତ) କ.ଧା; ଘିଅ, ଦୁଧ, ଦହି, ଲହୁଣୀ ଓ ଚିନି ମିଶି ପ୍ରସ୍ତୁତ ହୋଇଥିବା ପଞ୍ଚାମୃତ ।
ଦିବ୍ୟପୁରୁଷ—ପୁଂ. ବ. ଦେବପୁରୁଷ, ମନୁଷ୍ୟ ରୂପେ ଅବତୀର୍ଣ୍ଣ ଦେବ, ସ୍ୱର୍ଗଦୂତ, ଅତି ସୁନ୍ଦର ମନୁଷ୍ୟ ।

ଦିବ୍ୟପୁଷ୍ପ—ପୁଂ. ବି. ( ଦିବ୍ୟ+ପୁଷ୍ପ ) କ.ଧା; କରବୀର, ( କ୍ଳୀ ) ମନୋହର କୁସୁମ ।

ଦିବ୍ୟପୁଷ୍ପା—ସ୍ତ୍ରୀ.ବି. (ଦିବ୍ୟ+ପୁଷ୍ପ+ଆ) ମହାଦ୍ରୋଣା, ବଡ଼ ଦ୍ରୋଣପୁଷ୍ପୀ, ବଡ଼ ଗୟସ ଫୁଲ ।

ଦିବ୍ୟପୁଷ୍ପିକା—ସ୍ତ୍ରୀ. ବି. (ଦିବ୍ୟ+ପୁଷ୍ପ+କ+ଆ) ନାଲି ଅର୍କ ଗଛ ।

ଦିବ୍ୟପ୍ରଶ୍ନ—ପୁଂ. ବି. ( ଦିବ୍ୟ+ପ୍ରଶ୍ନ ) ଅନାଗତଜ୍ଞାପକ ପ୍ରଶ୍ନ ।

ଦିବ୍ୟବାକ୍ୟ—ବି. (ଦିବ୍ୟ+ବାକ୍ୟ)କ.ଧା; ଆକାଶବାଣୀ, ଦିବ୍ୟବାଣୀ ।

ଦିବ୍ୟଭୀରୁ—ବି. (ଦିବ୍ୟା+ଭୀରୁ) କ.ଧା; ଦିବ୍ୟନାରୀ ଦେଖ ।

ଦିବ୍ୟଭୋଜନ—ବି. (ଦିବ୍ୟ+ଭୋଜନ) କ.ଧା; ସୁଭୋଜନ, ସୁଖାଦ୍ୟ ଦ୍ରବ୍ୟର ଭୋଜନ, ପୂର୍ଣ୍ଣଭୋଜନ ।

ଦିବ୍ୟମାନ—କ୍ଳୀ. ବି. ଦେବିମାନ ।

ଦିବ୍ୟଯମୁନା—ସ୍ତ୍ରୀ.ବି. (ଦିବ୍ୟା+ଯମୁନା) ନଦୀବିଶେଷ ।

ଦିବ୍ୟରତ୍ନ—କ୍ଳୀ.ବି.(ଦିବ୍ୟ+ରତ୍ନ)କ.ଧା; ଚିନ୍ତାମଣି ନାମକ ରତ୍ନ, ବାଞ୍ଛିତ ଫଳଦାୟକ ରତ୍ନବିଶେଷ ।

ଦିବ୍ୟରଥ—କ୍ଳୀ.ବି. (ଦିବ୍ୟ+ରଥ)କ.ଧା; ଦେବଯାନ, ବିମାନ, ବେଲୁନ୍ ।

ଦିବ୍ୟରସ—ପୁଂ.ବି. (ଦିବ୍ୟ+ରସ)କ.ଧା; ପାରଦ, ମନୋଜ୍ଞରସ, ମଧୁର ରସ ।

ଦିବ୍ୟଲତା—ସ୍ତ୍ରୀ.ବି.ମୂର୍ବାଲତା, ମନୋଜ୍ଞ ଲତା ମାତ୍ର ।

ଦିବ୍ୟଲୋକ—ବି. ( ଦିବ୍ୟ+ଲୋକ ) କ.ଧା; ସ୍ୱର୍ଗଲୋକ, ଯେଉଁଠାରେ ଦେବତାମାନେ ବାସକରନ୍ତି ।

ଦିବ୍ୟବସ୍ତ୍ର—ପୁଂ. ବି. ( ଦିବ୍ୟ+ବସ୍ତ୍ର ) ସୂର୍ଯ୍ୟଶୋଭା, ସୂର୍ଯ୍ୟପ୍ରକାଶ, (ବିଂ.ବ.ବ୍ରୀ) ସୁନ୍ଦର ବସ୍ତ୍ରଯୁକ୍ତ, (ବି. କ.ଧା) ମନୋହର ବସ୍ତ୍ର ।

ଦିବ୍ୟଶ୍ରୋତ୍ର—କ୍ଳୀ.ବି. (ଦିବ୍ୟ+ଶ୍ରୋତ୍ର) କ.ଧା, ଯେଉଁ କାନକୁ ଅନ୍ୟମାନଙ୍କୁ ଶୁଣା ନ ଯିବା ଶବ୍ଦ ଶୁଣାଯାଏ ।

ଦିବ୍ୟସରିତ୍—ସ୍ତ୍ରୀ. ବି. (ଦିବ୍ୟା+ସରିତ୍) ଆକାଶ ଗଙ୍ଗା ।

ଦିବ୍ୟସାନୁ—ପୁଂ.ବି. ବିଶ୍ୱଦେବବିଶେଷ, ଦିବ୍ୟସାନୁକ ଗିରି ।

ଦିବ୍ୟସାର—ପୁଂ. ବି. (ଦିବ୍ୟ+ସାର) ବ.ବ୍ରୀ; ଶାଳବୃକ୍ଷ ।

ଦିବ୍ୟସିଂହ—ଶ୍ରୀହଟ୍ଟଜିଲାର ଉତ୍ତର ପଶ୍ଚିମାଂଶ ବ୍ୟାପୀ ସୁନାମଗଞ୍ଜ ସବ୍‌ଡିଭିଜନ ଏହା ଲଉଡରଜଙ୍ଗଲ ନାମେ ବିଖ୍ୟାତ

ଦିବ୍ୟସିଂହ—ଗ୍ରା. ପୁଂ. ବି. ଲୋକଙ୍କ ନାମ, (ବି) ବିଷ୍ଣୁଙ୍କର ନରସିଂହ ଅବତାର ।

ଦିବ୍ୟସିଂହଦେବ—ଗ୍ରା.ବି. ପୁରୀର ଜଣେ ରାଜା ।

ଦିବ୍ୟସୁନ୍ଦର—ବିଂ. ( ଦିବ୍ୟ+ସୁନ୍ଦର ) କ.ଧା;ଦ୍ୱନ୍ଦ୍ୱ; ସ୍ୱର୍ଗୀୟ ସୁନ୍ଦରତା ବିଶିଷ୍ଟ, ଉତ୍ତମ ସୁନ୍ଦର,ଖୁବ୍‌ସୁନ୍ଦର,ଅତିସୁନ୍ଦର ।

ଦିବ୍ୟସୂରି—ବି. (ଦିବ୍ୟ+ସୂରି) କ.ଧା. ଶ୍ରେଷ୍ଠପଣ୍ଡିତ,(ବି)ରାମାନୁଜ ସମ୍ପ୍ରଦାୟର ବାର ଜଣଙ୍କ ଉପାଧି ।

ଦିବ୍ୟସ୍ତ୍ରୀ—ସ୍ତ୍ରୀ. ବି.(ଦିବ୍ୟା+ସ୍ତ୍ରୀ)କ.ଧା; ଅପ୍ସରା ।

ଦିବ୍ୟା—ସ୍ତ୍ରୀ. ବିଂ. (ଦିବ୍ୟ+ଆ) ଦିବ୍ୟର ସ୍ତ୍ରୀଲିଙ୍ଗ,ସ୍ୱର୍ଗୀୟା,(ବି)ଉପନଦୀ ବିଶେଷ. ନାୟିକା ବିଶେଷ, (ଗ୍ରା.ବି. କଚଟିଆ) (ଫ-ଦେବ୍ୟାଃ) ବିଧବାମାନଙ୍କର ନାମ ପରେ ଲେଖାଯିବା ଉପାଧି ।

ଦିବ୍ୟାଂଶୁ—ବି. (ଦିବ୍ୟ+ଅଂଶୁ,) ବ.ବ୍ରୀ, ସୂର୍ଯ୍ୟ ।

ଦିବ୍ୟାଙ୍ଗନା—ସ୍ତ୍ରୀ. ବି.(ଦିବ୍ୟ+ଅଙ୍ଗନା) କ.ଧା;ସୁରକାମିନୀ, ସ୍ୱର୍ବେଶ୍ୟା,ଅପ୍ସରା ।

ଦିବ୍ୟାଦିବ୍ୟ—ପୁଂ. ବି.(ଦିବ୍ୟ+ଅଦିବ୍ୟ) ନାଟକର ନାୟକ ବିଶେଷ, (ସ୍ତ୍ରୀ) ଦିବ୍ୟାଦିବ୍ୟା ।

ଦିବ୍ୟାବଦାନ—କ୍ଳୀ. ବି.ବୌଦ୍ଧଅବଦାନ ଗ୍ରନ୍ଥବିଶେଷ ।

ଦିବ୍ୟାସନ—ବି. (ଦିବ୍ୟ+ଆସନ),କ.ଧା; ଉତ୍ତମ ଆସନ, ସୁନ୍ଦର ଆସନ, ଆସନ ବିଶେଷ ।

ଦିବ୍ୟାସ୍ତ୍ର—କ୍ଳୀ. ବି.(ଦିବ୍ୟ+ଅସ୍ତ୍ର),କ.ଧା; ଦେବତାମାନଙ୍କ ପ୍ରଦତ୍ତ ଅସ୍ତ୍ର, ମନ୍ତ୍ରକୃତ ଅସ୍ତ୍ର,ଶ୍ରେଷ୍ଠ ଅସ୍ତ୍ର,ସ୍ୱର୍ଗୀୟ ଅସ୍ତ୍ର ।

ଦିବ୍ୟେଲକ—ପୁଂ. ବି. ସର୍ପବିଶେଷ ।

ଦିବ୍ୟୋଦକ—କ୍ଳୀ. ବି. (ଦିବ୍ୟ+ଉଦକ) କ.ଧା; ଆକାଶରୁ ପତିତ ଜଳ, ମେଘଜଳ, କାକର, ଶିଶିର ।

ଦିବ୍ୟୋନ୍ମାଦ—ବି. (ଦିବ୍ୟ+ଉନ୍ମାଦ), କ.ଧା; ଧର୍ମସମ୍ବନ୍ଧୀୟ ବାତୁଳତା ।

ଦିବ୍ୟୋପପାଦ(ଦୁ)କ—ପୁଂ. ବି. (ଦିବ୍ୟ+ଉପ+ପଦ୍+ଅକ,ଉକ ) ମାତାପିତା ବିନା ଉତ୍ପନ୍ନ ଦେବତା ।

ଦିବ୍ୟୌଘ—ପୁଂ.ବି. ( ଦିବ୍ୟ+ଓଘ ) ଗୁରୁବିଶେଷ ।

ଦିବ୍ୟୌଷଧି—ସ୍ତ୍ରୀ.ବି.(ଦିବ୍ୟ+ଔଷଧି) ମନଃଶିଳା, ଦେବଦତ୍ତ ଔଷଧି ।

ଦିଭାଗକରିବା—ଗ୍ରା. କ୍ରି. (ସଂ-ଦ୍ୱିଭାଗ) କୌଣସି ବସ୍ତୁକୁ ସମାନ ଦୁଇଅଂଶରେ ବିଭକ୍ତ କରିବା ।

ଦିମ୍‌ଦିମ୍—ଗ୍ରା. ଅବ୍ୟ. (ଧ୍ୱନ୍ୟନୁକରଣ) ନୃତ୍ୟବାଦ୍ୟାଦିରେ ଅନୁକରଣ ଶବ୍ଦବିଶେଷ, ଦ୍ରିମ୍‌ଦ୍ରିମି ।

ଦିମାକ୍—ଯା.ବି. ମସ୍ତିଷ୍କ, ବୁଦ୍ଧି, ବୋଧଶକ୍ତି, ମନ, ମନୋଗତ ଭାବ, ଧୃଷ୍ଟତା, ମଗରାପଣ, ଅଭିମାନ, ପ୍ରତିଭା ।

ଦିମାକ୍‌ଚଟ୍ଟା—ଗ୍ରା. ବିଂ. ମଗରା,ଧୃଷ୍ଟ, ଗର୍ବିତ ।

ଦିମାକ୍‌ଦାର—ଯା. ବି. ( ଆ—ଦିମାକ୍, ଫା.-ଦାର୍) ଧୃଷ୍ଟ ।

ଦିମାକି—ଯା.ବି. (ଆ-ଦିମାଗ୍) ପ୍ରତିଭା, ବୁଦ୍ଧିବୃତ୍ତି, ମନୋଭାବ, ଦର୍ପ, ଗର୍ବ, ଅହଙ୍କାର, ଧୃଷ୍ଟତା, ଅଭିମାନ, (ବିଂ) ଦିମାକିଆ ।

ଦିମକିଆ—ଯା.ବିଂ.(ଫା.-ଦମାଗୀ)ଅହଂକାରୀ, ଗର୍ବୀ, ଅଭିମାନୀ, ଜଗଡ଼ିଆ, ଧୃଷ୍ଟ ।

ଦିମୁଣ୍ଡିଆ—ଗ୍ରା. ବିଂ. ( ସଂ-ଦ୍ୱିମୁଣ୍ଡ ) ଦୋମୁଣ୍ଡିଆ, ଯେ ଉଭୟ ପକ୍ଷ ସଙ୍ଗେ ମମତା ରଖେ, (ବି) ସର୍ପବିଶେଷ ।

ଦିମୁହାଁ—ଗ୍ରା. ବିଂ. ଦୋମୁହାଁ ଦେଖ ।

ଦିର୍ଖା—ପ୍ରା. (ସମ୍ବ) (ସଂ-ଦୀପରକ୍ଷା)ବି. କାନ୍ଥକୁରା, ଥାକ ।

ଦିର୍ହ(ହା)ମ୍—ଯା. ବି. (ଫା-ଗ୍ରୀକ୍—ଡ୍ରାଖ୍ମ) ମିଶର ଦେଶ ପ୍ରଚଳିତ ରୌପ୍ୟମୁଦ୍ରାବିଶେଷ, ମିଶର ଦେଶ ପ୍ରଚଳିତ ଓଜନବିଶେଷ, (ପ୍ରାୟ ୩୫ ମସା) ।

ଦିଵପକ—ପୁଂ. ବି. କନ୍ଦୁକ ।

ଦିଵେ—ଗ୍ରା. ବିଂ. (ସଂ-ଦିବ୍ୟ) ଦିବ୍ୟ, ସୁନ୍ଦର, ଉତ୍କୃଷ୍ଟ, (ବି) ଦିବ୍ୟସିଂହ ଡାକନାମ ।

ଦିଵସୁନ୍ଦର—ଗ୍ରା. ବିଂ. (ସଂ-ଦିବ୍ୟ ଓ ସୁନ୍ଦର) ଦିବ୍ୟସୁନ୍ଦର ଦେଖ ।

ଦିଲ୍—ଯା.ବି.ଅନ୍ତଃକରଣ, ଚିତ୍ତ,ହୃଦୟ. ମନ, ସାହସ, ଉତ୍ସାହ, ସ୍ମରଣଶକ୍ତି, ଇଚ୍ଛା ।

ଦିଲ୍ଖୁସ୍—ଯା. ବି. (ଫା-ଦିଲ+ଖୁସ୍) ମନର ପ୍ରଫୁଲ୍ଲତା, ଆନନ୍ଦ, (ବିଂ)ଚିତ୍ତହରଣକାରୀ ।

ଦିଲ୍ଗୀ—ଗ୍ରା.ବି. (ସଂ.ଦିଲ୍+ସଂ-ଲଗ୍ନ, ହିନ୍ଦୀରୁ ଅନୁକୃତ ) ମନଲଗାଇବା, ମନୋଯୋଗ, ମଉଜ, ଥଟ୍ଟା, ତାମସା, ପରିହାସ ।

ଦିଲ୍ଗୀବାଜ—ଗ୍ରା.ବିଂ.(ହି. ଦିଲ୍ଲଗୀ+ଫା, ପ୍ରତ୍ୟୟ-- ବାଜ୍ ) ମଉଜିଆ, ଆମୋଦପ୍ରିୟ, ଅଳ୍ପେଇ ।

ଦିଲ୍ଗୀର୍—ଯା. ବିଂ. ଦୁଃଖିତ, ମନଃପୀଡ଼ିତ ।

ଦିଲ୍ଗୀରି—ଯା.ବି. ଦୁଃଖ, ମନଃପୀଡ଼ା ।

ଦିଲ୍ଗିଲ୍—ଯା.ବିଂ. ସନ୍ଦେହଯୁକ୍ତ(ମନ), ବ୍ୟସ୍ତ, ବିଚଳିତ, ଉଦ୍‌ବିଗ୍ନ, ଅସ୍ଥିର, ଶୋକାନ୍ୱିତ,ମନୋଦୁଃଖ,(ବି)ସନ୍ଦେହ, ମାନସିକ ଅସ୍ଥିରତା, ଉଦ୍‌ବେଗ ।

ଦିଲଗିଲିଆ—ଯା.ବିଂ.ଦିଲ୍‌ଗିଲ୍ ଦେଖ

ଦିଲ୍‌ଦାର—ଯା. ବିଂ. (ଫା-ଦିଲ୍‌ଦାର, ଦାରଆଦିଲ୍) ପ୍ରଶସ୍ତମନା, ଉଦାରମନା. ମହାନୁଭବ, ଉଦାର, ଦମ୍ଭୁଆ, ମୁକ୍ତହସ୍ତ, ଦାନଶୀଳ, ରସିକ, ପ୍ରେମୀ. ମଉଜୀ (ଦିଲ୍‌ଦାର୍ୟ) ।

ଦିଲ୍ଵରଖାଁ—ପୁଂ. ବି. ମାଳଦେଶର ମୁସଲମାନ ରାଜବଂଶର ଆଦିପୁରୁଷ ।

ଦିଲ୍ଵାର—ବି.ପଞ୍ଜାବ ଅନ୍ତର୍ଗତ ବହାବଲପୁର ରାଜ୍ୟର ଗୋଟିଏ ଦୁର୍ଗ ।

ଦିଲ୍ଵାରା—ବିଂ. ରାଜପୁତାନା ଅନ୍ତର୍ଗତ ଜୟପୁର ରାଜ୍ୟର ଗୋଟିଏ ସହର ।

ଦିଲ୍ଲସା—ଗ୍ରା. ବି. ( ହିନ୍ଦୀ ) ସାନ୍ତ୍ୱନା, ପ୍ରବୋଧ, ଆଶ୍ୱାସନା, ଆଶା, ଦେବା ଦେବା ବୋଲି ଭଣ୍ଡିବା, ଦମ୍‌ଦିଲ୍ଲସା, (ଫା)ମନମତ, ଉତ୍ସାହ, ସନ୍ତୋଷ ।

ଦିଲୀପ—ପୁଂ. ବି. (ନାମ) ସୂର୍ଯ୍ୟବଂଶର ଜଣେ ରାଜା, ରଘୁଙ୍କ ପିତା, କୁରୁବଂଶଧର ଜଣେ ରାଜା ।

ଦିଲୀପରାଟ୍—ପୁଂ. ବି. ଦିଲୀପରାଜା ।

ଦିଲୀର—କ୍ଲୀ. ବି. ଗୋବରଛତୁ, ଛତୁ ।

ଦିଲ୍ଲୀ—ସ୍ତ୍ରୀ. ବି. (ସଂ-ଦେହଲୀ) ଦିଲ୍ଲୀନଗରୀ, ଯୁଧିଷ୍ଠିରଙ୍କ ରାଜଧାନୀ, ହସ୍ତିନାପୁର, ମୋଗଲ ସମ୍ରାଟ୍‌ଙ୍କ ରାଜଧାନୀ, ଡିଲ୍ଲୀ, ଭାରତର ରାଜଧାନୀ ଓ ଗୋଟିଏ ପ୍ରଦେଶ ।

ଦିଲ୍ଲୀକାଲଡ଼ୁ—ଗ୍ରା.ବି. (ହିନ୍ଦୀ)ଦେଖିବାକୁ ସୁନ୍ଦର କିନ୍ତୁ ପ୍ରକୃତ କଦର୍ଯ୍ୟ ପଦାର୍ଥ, ନାମବଡ଼ା ଦର୍ଶନଥୋଡ଼ା ବସ୍ତୁ ।

ଦିଲ୍ଲୀଶ୍ୱର—ବି. (ଦିଲ୍ଲୀ+ଈଶ୍ୱର)୬ତତ୍; ଦିଲ୍ଲୀସମ୍ରାଟ୍ , ମୋଗଲସମ୍ରାଟ୍ ।

ଦିଓ୍ୱାନ୍—ଗ୍ରା. ବି. ଦେଓ୍ୱାନ୍ ଦେଖ ।

ଦିଓ୍ୱାଲ୍—ଦିବାଲ (ଇତ୍ୟାଦି) ଦେଖ ।

ଦିଓ୍ୱାଲି—ଦିବାଲି ଦେଖ ।

ଦିଓ୍ୱାଲିଆ—ଦିବାଲିଆ ଦେଖ ।

ଦିଶ୍—ବି. (ଦିଶ୍+ମୂ.କ୍ୱିପ୍)ଦିକ୍ ଦେଖ ।

ଦିଶ—ଗ୍ରା. ବି. (ସଂ-ଦିଶ୍‌ଶବ୍ଦ) ଦିଗ, ଦିଶା, ଗୀତର ବୃତ୍ତି,ଗୀତବୋଲିବାର ରଗ ।

ଦିଶସ୍—ସ୍ତ୍ରୀ. ବି. ଦିଗ ।

ଦିଶହରା—ଗ୍ରା. ବିଂ. (ସଂ-ଦିଶା+ହୃଧାତୁ) କିଂକର୍ତ୍ତବ୍ୟ ବିମୂଢ଼, ବୁଦ୍ଧିଭ୍ରଷ୍ଟ, ଦିଗଭ୍ରାନ୍ତ,ଯେ ଧରିବାର ପାରେନାହିଁ ।

ଦିଶା—ସ୍ତ୍ରୀ. ବି.(ଦିଶ୍+ମୂ.ଆ) ଦିଗ, ପଦ୍ଧତି, ରୀତି, ଦୃଷ୍ଟାନ୍ତ ବିଶେଷ, ସନ୍ଧାନ, (ଗ୍ରା.ବି) ଗୀତ ବୋଲିବାର ରାଗ, ବଡ଼ଦେଉଳ ପାଖରେ ଲାଗିଥିବା ଶ୍ରେଷ୍ଠ ଦେଉଳ, ରୁଦ୍ରପତ୍ନୀ ବିଶେଷ, ମଳୋତ୍ସର୍ଗ, ମଳୋଦ୍‌ବେଗ ।

ଦିଶା(ଶେ)ଇବା—ଗ୍ରା. କ୍ରି. (ସଂ-ଦିଶ୍ ଧାତୁ ଣିଚ୍ ଦର୍ଶିଧାତୁ) ଦେଖାଇବା ।

ଦିଶାଖା—ଗ୍ରା. ବିଂ. (ସଂ-ଦ୍ୱିଶାଖା) ଦୁଇ ବୃହତ୍ ଶାଖାବିଶିଷ୍ଟ, ଯାହାର ଦୁଇଟି କେନା ବାହାରିଅଛି ।

ଦିଶାଗଜ—ପୁଂ. ବି. (ଦିଶା+ଗଜ) ୬ତତ୍; ଦିଗ୍‌ଗଜ ଦେଖ ।

ଦିଶାଚକ୍ଷୁସ୍—ପୁଂ. ବି. ଗରୁଡ଼ାତ୍ମଜବିଶେଷ ।

ଦିଶାଦାହ—ବି.(୬ତତ୍)ଦିଗ୍‌ଦାହ ଦେଖ ।

ଦିଶାପାଳ—ପୁଂ. ବି. (ଦିଶା+ପାଦ) ୬ତତ୍; ଦିକ୍‌ପତି, ଦିକ୍‌ପାଳ, ବ୍ରହ୍ମା କର୍ତ୍ତୃକ ନିଯୋଜିତ ବୈରାଜ ଆଦି ପ୍ରଜାପତି ପୁତ୍ର ।

ଦିଶାଫେରିବା—ଗ୍ରା.କ୍ରି.ଝାଡ଼ାଫେରିବା ।

ଦିଶାମୁଖ—ବି. (ଦିଶା+ମୁଖ) ୬ତତ୍; ଦିଗମାନଙ୍କର ମୁଖ, ଚତୁର୍ଦ୍ଦିଗ ।

ଦିଶାହାରା—ଗ୍ରା.ବି. ଦିଗଭ୍ରାନ୍ତ,କାର୍ଯ୍ୟାକାର୍ଯ୍ୟ ନିର୍ଣ୍ଣୟରେ ଅସମର୍ଥ,ଅନବଧାନ ।

ଦିଶିଆସିବା—ଗ୍ରା. କ୍ରି. ଆଭାସ ଦ୍ୱାରା ଜଣା ପଡ଼ିବା ।

ଦିଶିବା—ଗ୍ରା.କ୍ରି.(ସଂ-ଦୃଶ୍,ପ୍ରା.ଦିସ୍‌ଧାତୁ) ଦେଖାଯିବା, ଦୃଷ୍ଟିଗୋଚର ହେବା, ବୋଧ ହେବା, ଜଣାପଡ଼ିବା, ଜଣାଯିବା, ଉଦୟହେବା, ପୂର୍ବରୁ ଆଭାସ ଦ୍ୱାରା ଜଣାପଡ଼ିବା, ପ୍ରକାଶିତହେବା, ସୂଚିତହେବା,(ଦିଶାଇବା, ଦେଖାଇବା-ଣିଜନ୍ତ) ।

ଦିଶିଯିବା—ଗ୍ରା. କ୍ରି. ( ସଂ-ଦୃଶ୍‌ଧାତୁ ) ହଠାତ୍ ଦେଖାଯିବା, ହଠାତ୍ ବୋଧହେବା, ଜଣାପଡ଼ିବା, କଳ୍ପନା ଦ୍ୱାରା ପ୍ରତିଫଳିତ ବା ପ୍ରତିଭାତ ହେବା ।

ଦିଶୁ—ଗ୍ରା. ବି. (ସଂ-ଈଷତ୍) ସାମାନ୍ୟ ପରିମାଣ,ଅଳ୍ପସଂଖ୍ୟକ,(ବିଂ) ସାମାନ୍ୟ

ପରିମିତ,ଅଳ୍ପସଂଖ୍ୟକ,(ଅବ୍ୟ)ସାମାନ୍ୟ ପରିମାଣରେ, ଈଷତ୍, କେତେକ ଅଂଶରେ ।

ଦିଣ୍ଡୋଦଣ୍ଡ—ପୁଂ. ବି. ( ଦଣ୍ଡ୍ + ଦଣ୍ଡ ) ଅନାଦର ଦ୍ୱାରା ଦଣ୍ଡ ।

ଦିଶ୍ୟ—ପୁଂ.ବିଂ. (ଦିଶ୍+ଯ)ଦିକ୍‌ଭବ, ଦିଗରୁ ଜାତ, ଦିଗରୁ ଆଗତ, (ସ୍ତ୍ରୀ) ଦିଶ୍ୟା ।

ଦିଷ୍ଟ—ପୁଂ. ବି. (ଦିଶ୍+ମ-ତ) କାଳ, ସମୟ, ବୈବସ୍ୱତମନୁଙ୍କ ପୁତ୍ରବିଶେଷ, ଦାରୁହରିଦ୍ରା, ଉପଦେଶ, (କ୍ଳୀ) ଭାଗ୍ୟ, ଅଦୃଷ୍ଟ, (ବିଂ) ଆଦିଷ୍ଟ, ଉପଦିଷ୍ଟ, ସ୍ଥିରୀକୃତ, କଥିତ, ଦତ୍ତ, ପ୍ରଦର୍ଶିତ, ଉପରେ ଦିଆଯାଇଥିବା, ନ୍ୟସ୍ତ, (ସ୍ତ୍ରୀ) ଦିଷ୍ଟା ।

ଦିଷ୍ଟାନ୍ତ—ପୁଂ.ବି. (ଦିଷ୍ଟ+ଅନ୍ତ) ଜୀବନାନ୍ତ; କାଳାନ୍ତ, ମରଣ, ମୃତ୍ୟୁ, (ବଙ୍ଗ-ଦୃଷ୍ଟାନ୍ତର ଅପଭ୍ରଂଶ) ।

ଦିଷ୍ଟି—ସ୍ତ୍ରୀ. ବି. ( ଦିଶ୍+ଭା.ତି ) ହର୍ଷ, ଆନନ୍ଦ, କଥନ, (ଦିଶ୍+ମ.ତି) ଉପଦେଶ, ଭାଗ୍ୟ, ଉତ୍ସବ, ସୁଖ, ପରିମାଣ ବିଶେଷ, (ବଙ୍ଗ) ନଜର (ଦୃଷ୍ଟି ଶବ୍ଦର ଅପଭ୍ରଂଶ) ।

ଦିଷ୍ଟ୍ୟା—ଅବ୍ୟ. ( ଦିଷ୍ଟି ଶବ୍ଦର ତୃତୀୟା ୧ବ)ଆନନ୍ଦରେ,ହର୍ଷରେ, ମଙ୍ଗଳରେ, ଭାଗ୍ୟକ୍ରମେ ।

ଦିସ୍ତ—ବି. ବିଂ. ଦାତା ।

ଦିସ—ଗ୍ରା.କ୍ରି. ପ୍ରଦାନକର, (ବି.ପ୍ରା-କ) ପ୍ରକାର, ରକମ ।

ଦିସପିସ—ଗ୍ରା. ବି. ଉଦ୍ଦେଶ୍ୟ, ସନ୍ଧାନ, ନିର୍ଦ୍ଦେଶ, ନିର୍ଣ୍ଣୟ ।

ଦିସରି—ଗ୍ରା. ବି. ଦୁଇସରି ବା ସୂତ୍ର, ଦୁଇସରିଯୁକ୍ତ ହାର,(ବିଂ) ଦୁଇସରିଆ, ଦୁଇସୂତ୍ରଯୁକ୍ତ ।

ଦିସରିଆ—ଗ୍ରା.ବିଂ.ଦିନରିଆ, ଦୁଇସୂତ୍ରଯୁକ୍ତ, ଦିଯୋଡ଼ିଆ ।

ଦିସ୍ତା—ପା. ବିଂ. କାଗଜର ୨୪ ଫର୍ଦ୍ଦର ସମାହାର, ୨୪ଟି ଶରର ତାଡ଼ା,(ଫା) ହେମାମଦସ୍ତାର ପୁଆ, (ଯା.ବି) ଲୁଗାର ସୂତା ଦୁଇକଡ଼କୁ ଆଉଜନା ଦ୍ୱାରା ଅନ୍ୟ ସ୍ଥାନ, ମେଲ ହେବା ଅବସ୍ଥା,(ଯା.ବିଂ) କଶ ହେବା ଦୋଷରୁ ସୂତା ଆଉଜ ଏକସ୍ଥାନରେ ଗୋଗ୍ଯହେବା ।

ଦିସ୍ତାପଡ଼ିବା—ଗ୍ରା. କ୍ରି. କୌଣସି ଲୁଗା) ଧୁଆ ହେବାବେଳେ ସୂତାମାନ ସ୍ୱସ୍ଥାନରୁ ଘୁଞ୍ଚି ଏକ ସ୍ଥାନରେ ଗୋଗ୍ଯ ବାନ୍ଧିବା ଓ ଏକ ଏକ ସ୍ଥାନ ସୂତ୍ରଶୂନ୍ୟ ହେବା ।

ଦିସି—ବି. (ପ୍ରା.କ) ଦିନ, ଦିବସ ।

ଦିହ—ଗ୍ରା. ବି. ( ସଂ-ଦେହ ) ଦେହ, ଶରୀର, ସ୍ୱାସ୍ଥ୍ୟ, ମନ, ହୃଦୟ, ଅମଳ, ଜୀବତକାଳ ।

ଦିହ--ଅଯୋଧ୍ୟାର ଅନ୍ତର୍ଗତ ରାୟବାରେଲି ଜିଲ୍ଲାର ଗୋଟିଏ ସହର ।

ଦିହଇସ୍‌କନା(ନ)ହେବା—ଗ୍ରା.ବି.ସାମାନ୍ୟ ଅସୁସ୍ଥତା ହେବା ।

ଦିହଇସ୍‌ପରି ହେବା—ଗ୍ରା.ବି. ହଠାତ୍ ଶୀତଚକିତ ହେବା ।

ଦିହକ—ଗ୍ରା. ବି. ଜୀବିତ ରହିବା କାଳ, ଜୀବଦଶା, ( ଗ୍ରା.ଅବ୍ୟ. ) ଅମଳରେ, ଜୀବିତକାଳ ମଧ୍ୟରେ, ଦିହକଯାକ, ଦିହକରେ, ଦିହକେ ।

ଦିହକଅଁଶହେବା—ଗ୍ରା.ବି.ଶରୀର ଅସୁସ୍ଥ ବୋଧ ହେବା ।

ଦିହକୁ ନେବା—ଗ୍ରା.କ୍ରି.ଆପଣା ଉପରକୁ ଦାୟିତ୍ୱନେବା, ଆପଣାପ୍ରତି କେହି ଲକ୍ଷ କରୁଅଛି ବୋଲି ଅଭିମାନକରିବା, ମନୋଦୁଃଖ କରିବା ।

ଦିହ ଖରାପ ହେବା—ଗ୍ରା.ବି. ପୀଡ଼ାଗ୍ରସ୍ତ ହେବା ।

ଦିହଘଷିଆ—ଗ୍ରା.ବିଂ. (ସଂ-ଦେହଘର୍ଷଣ) ଯେ ସର୍ବଦା ପ୍ରଭୁର ସହବାସରେ ଥାଏ, ପଶୁପକ୍ଷୀ ମନୁଷ୍ୟ ପାଖେ ଚଳାଚଳ ହେବାକୁ ନିର୍ଭୟ ହେବା,ଦିହଘଷା, ଦିହଘଷରି ।

ଦିହଙ୍ଗ—ଆସାମର ଅନ୍ତର୍ଗତ ଲକ୍ଷ୍ମୀପୁର ଜିଲ୍ଲାର ଗୋଟିଏ ନଦୀ ।

ଦିହଚହିବା—ଗ୍ରା.କ୍ରି. (ସଂ-ଦେହସଞ୍ଚୟ) ଦେହକୁ ବାନ୍ଧିବା ଉପୁରେ ଜ୍ଞାନ ନ କରିବା, ଦିହ ଚହିବା ।

ଦିହଗୁଡ଼ିବା—ଗ୍ରା.କ୍ରି. ମରିବା ।

ଦିହକଗିବା—ଗ୍ରା.କ୍ରି. ଆପଣା ଦେହରେ ହାତ ବା ଆଘାତ ନ ଲାଗିବାପ୍ରତି ସାବଧାନ ହେବା, ସ୍ୱାସ୍ଥ୍ୟରକ୍ଷାପ୍ରତି ସାବଧାନ ହେବା ।

ଦିହଜଳିବା—ଗ୍ରା. ବି. ଉତ୍ତାପ ଅନୁଭବ କରିବା, ପୀଡ଼ା ଅନୁଭବ କରିବା, (ଲ.ଅର୍ଥ) ରାଗିଉଠିବା ।

ଦିହଝାଳେଇବା—ଗ୍ରା. ବି. ଦେହକୁ ସ୍ୱେଦୋଦ୍ଗମ ହେବା ।

ଦିହଝିମ୍‌ଝିମ୍‌ହେବା—ଗ୍ରା. ବି. ଅତ୍ୟନ୍ତ ଦୁର୍ବଳହେତୁ ଝୋଲମାଗିଯିବା, ହାତଗୋଡ଼ ପ୍ରଭୃତି ଏକସ୍ଥାନରେ ଅଚଳଭାବେ ବହୁସମୟ ରହିଲେ ଅବଶତା ଓ ଝାଇଁଝାଇଁ ଅନୁଭୂତ ହେବା ।

ଦିହଥରିବା—ଗ୍ରା. ବି. ଶରୀର କମ୍ପିତ ହେବା, ଭୟ ବା ଜ୍ୱରଯୋଗୁଁ ଶରୀର କମ୍ପିବା ।

ଦିହଦିହକ—ଗ୍ରା.ଅବ୍ୟ. ପୁରୁଷାନୁକ୍ରମେ, ପୁରୁଷଙ୍କ ଅମଳରୁ, କେତେକଙ୍କ ଜୀବନକାଳ ମଧ୍ୟରେ ।

ଦିହଦୁଃଖ—ଗ୍ରା.ବି. ( ସଂ-ଦେହଦୁଃଖ ) ଅସୁସ୍ଥତା, ଦିହଅସୁଖ ।

ଦିହଦୁଃଖହେବା—ଗ୍ରା.ବି.ଶରୀର ଅସୁସ୍ଥହେବା ।

ଦିହଦେବା—ଗ୍ରା.କ୍ରି. (ସ୍ତ୍ରୀପକ୍ଷରେ) ଆପଣାର ଅଙ୍ଗକୁ ଉପଭୋଗାର୍ଥେ ପୁରୁଷଠାରେ ଅର୍ପଣକରିବା, ଦିହଲଗାଇ କାମକରିବା ।

ଦିହ ନ ସହିବା—ଗ୍ରା.ବି.ବ୍ୟଥିତହେବା, ବ୍ୟାକୁଳହେବା, ପ୍ରାଣକୁ ବାଧିବା, ସହ୍ୟ ନ ହେବା ।

ଦିହପା—ଗ୍ରା. ବି. ( ସଂ—ଦେହ ଓ ପାଦ ) ଶରୀରସ୍ଥ ସମସ୍ତ ଅବୟବ, ସର୍ବାଙ୍ଗ, ସ୍ୱାସ୍ଥ୍ୟ ।

ଦିହପାଚିଯିବା—ଗ୍ରା.ବି. ଶରୀର ଅତିଶୟ ପୀଡ଼ାଯୁକ୍ତ ହେବା ।

ଦିହପାଣି—ଗ୍ରା.ବି.(ରାଜାଙ୍କ) ସ୍ନାନକ୍ରିୟା

ଦିହପାଣି ବଢ଼ିବା—ଗ୍ରା.ବି. ( ରାଜାଙ୍କ )

ସ୍ନାନବ୍ରତର ସମାପନ ।
ଦେହଫାଟ—ଗ୍ରା.ବି.ରୋଗବିଶେଷ,ଦେହର ଚମଡ଼ାର ଫାଟିଯିବା ରୂପ ରୋଗ-ବିଶେଷ । [ ଶକ୍‌ବଳ ।
ଦେହବଳ—ଗ୍ରା.ବି. (ସଂ-ଦେହବଳ)ଶାରୀ-
ଦେହବଳୁଆ—ଗ୍ରା.ବିଂ.ଶାରୀରିକ ବଳରେ ବଳୀୟାନ୍ ।
ଦେହବଳୁଆପଣ—ଗ୍ରା.ବି. ଦୈହିକ ବଳ-ପ୍ରୟୋଗ ନିପୁଣତା ବା ବାହାଦୁରି ।
ଦେହଭାରି ହେବା—ଗ୍ରା. ବି. ଗର୍ଭବତୀ-ହେବା, ଦେହର ଓଜନ ବଢ଼ିବା, ଦେହର ଅସୁସ୍ଥତା ବୋଧ, ଅନ୍ୟରୂପ—ଦେହଭାରୁଗହେବା) ।
ଦେହଭେଦ—ଗ୍ରା. ବି. ( ସଂ- ଦେହ ଓ-ଭେଦ ) ପ୍ରସବପୂର୍ବରୁ ସ୍ତ୍ରୀମାନଙ୍କର ମୃତପୂଜା ପଛି ପାଣିବନ୍ଧିବା ।
ଦେହମେହନତ—ଗ୍ରା. ବି.(ସଂ-ଦେହ ଓ ଫା-ମେହେନତ୍) ଶାରୀରିକ ପରିଶ୍ରମ ।
ଦେହମେହନତୀ—ଗ୍ରା.ବିଂ. ପରିଶ୍ରମୀ ।
ଦେହମୁଣ୍ଡ—ଗ୍ରା. ବି. (ସହଚର. ସଂ-ଦେହ ଓ ମୁଣ୍ଡ) ଶରୀର, ସର୍ବାଙ୍ଗ, ସ୍ୱାସ୍ଥ୍ୟ ।
ଦେହରଖା—ଗ୍ରା. ବିଂ. ହୃଷ୍ଟପୁଷ୍ଟ ଅଥଚ ପରିଶ୍ରମକାତର (ବ୍ୟକ୍ତି), (ବି.) ହୃଷ୍ଟ-ପୁଷ୍ଟ ପରିଶ୍ରମ କାତର ବ୍ୟକ୍ତି,ଦେହସଞ୍ଚା, ଦେହଛଞ୍ଚା ।
ଦେହରୁ ଛଡ଼ାଇବା—ଗ୍ରା. କ୍ରି. ଦେହରୁ ଛଡ଼ାଇବା ଦେଖ ।
ଦେହରେ ଠିକ୍ ବସିବା—ଗ୍ରା. କ୍ରି. ( କୌଣସି ପୋଷାକ ବା ଅଳଙ୍କାର ) ଶରୀରକୁ ଠିକ୍ ଖାପ ଖାଇବା ।
ଦେହରେ ନ ଲାଗିବା—ଗ୍ରା. ବି. ଦେହ ହୃଷ୍ଟପୁଷ୍ଟ ନ ହେବା,( ଗ୍ରା. କ୍ରି.)ଶରୀର ପୁଷ୍ଟିର ଅନୁକୂଳ ନ ହେବା ।
ଦେହରେମୁଣ୍ଡରେ ପାଇବା—ଗ୍ରା. କ୍ରି. ଗୋଟାକେତେ ପ୍ରହାର ବା ମାଡ଼-ଖାଇବା ।
ଦେହରେମୁଣ୍ଡରେ ଖେଳିବା—ଗ୍ରା. କ୍ରି. ଉନ୍ମତ୍ତ ସନ୍ଧ୍ୟା ଖେଳକରିବା ।
ଦେହରେମୁଣ୍ଡରେ ହେବା—ଗ୍ରା.ବି. ଯୁବ-ତୀର କୁଚଦ୍ୱୟ ଯୌବନଯୋଗୁଁ ଉନ୍ନତ-ହେବା, ( ଗ୍ରା.କ୍ରି. ) ଯୁବତୀ ସ୍ତନ-ଯୌବନବିଶିଷ୍ଟ ହେବା ।
ଦେହରେ ଲାଗିବା—ଗ୍ରା.କ୍ରି. ( କୌଣସି-ଖାଦ୍ୟ) କୌଣସି ବ୍ୟକ୍ତିର ଦେହରେ ବଳ ଓ ପୁଷ୍ଟି ଉତ୍ପାଦନ କରିବା, ପୁଷ୍ଟିସାଧନ କରିବା, ( କୌଣସି-ବ୍ୟକ୍ତିର ) ଶରୀରରେ ସଲଗ୍ନହେବା ବା ବୋଲାଯିବା,( ଗ୍ରା. ବି ) ଶରୀ-ରର ମାଂସ ବୃଦ୍ଧି ହେବା, ଦେହ ପୁଷ୍ଟି-ହେବା ।
ଦେହରେ ଯିବା—ଗ୍ରା. କ୍ରି. ( କୌଣସି ବ୍ୟକ୍ତିର ବସ୍ତ୍ର ବା ବିଷୟ ) ସ୍ୱାସ୍ଥ୍ୟର ଅନୁକୂଳ ହେବା, (ଲ.ଅର୍ଥ)(କୌଣସି-ବିଷୟ) କୌଣସି ବ୍ୟକ୍ତିର ସହ୍ୟ ହେବା ।
ଦେହଲଗା—ଗ୍ରା. ବିଂ. ସର୍ବଦା ପ୍ରଭୁଙ୍କ ଅଙ୍ଗ ସେବା କରୁଥିବା(ଭୃତ୍ୟ),ଦେହରେ ଲୀନ ବା ଜଡ଼ିତ ।
ଦେହଲଗାଇକାମକରିବା—ଗ୍ରା.କ୍ରି. ଶାରୀ-ରିକ ଶ୍ରମ ସ୍ୱୀକାର ପୂର୍ବକ କାର୍ଯ୍ୟ କରିବା । [ ଦାୟକ ।
ଦେହଶୂଳା—ଗ୍ରା. ବିଂ. ମାନସିକ କଷ୍ଟ-
ଦେହସହିବା—ଗ୍ରା. ବି. (କୌଣସି ବିଷୟ କୌଣସି ବ୍ୟକ୍ତିର ) ସହ୍ୟ ହେବା, ଅଭ୍ୟାସ ଦ୍ୱାରା କୌଣସି ବିଷୟ କୌଣସି ବ୍ୟକ୍ତିର ସ୍ୱାସ୍ଥ୍ୟର ଅନୁକୂଳ ହେବା । [ ସହନୀୟ ।
ଦେହସୁହା—ଗ୍ରା.ବିଂ.(ସଂ-ଦେହ ଓ ସହ୍ୟ)
ଦେହାଁସାକ—ଗ୍ରା. ସର୍ବ. (ସଂ-ଦ୍ୱି ) ଦୁହେଁ-ସାକ, ଦୁଇଜଣ, ଉଭୟେ, ଦୁହିଁକି-ଦୁହେଁ । [ କାଳ ।
ଦେହାନ୍ତ—ଗ୍ରା.ବି. (ସଂ-ଦେହାନ୍ତ)ଜୀବିତ-
ଦେହାଢ଼ି—ଗ୍ରା. ବି. ଜୀବିତକାଳ, (ବି) ଦେହାଢ଼ି ଦେଖ, (ବିଂ) ଦେହାଢ଼ିଆ, (ଅବ୍ୟ) ଦେହ, ଦେହଢ଼ି, ଦ୍ୱାରା ।
ଦେହାଢ଼ିଆ—ଗ୍ରା. ବିଂ. ( ସଂ-ଦ୍ୱି+ହସ୍ତ ) ଦ୍ୱିହସ୍ତ ପରିମିତ, ଦୁଇ ହାତରେ କରାଯିବା (କର୍ମ) ।
ଦୋହଙ୍କ—ଗ୍ରା. ସର୍ବ. (ଦ୍ୱିବଚନ. ଷଷ୍ଠୀ) ଦୁଇଜଣଙ୍କର, ଉଭୟଙ୍କର ।
ଦୋହିଙ୍କି—ଗ୍ରା.ସର୍ବ. (ଦ୍ୱିବଚନ, ଦ୍ୱିତୀୟା, ସଂ-ଦ୍ୱି) ଦୁହିଙ୍କୁ, ଦୁଇଜଣଙ୍କୁ, ଉଭ-ୟଙ୍କୁ, ଦିହିଙ୍କ, ଦିହିଙ୍କର ।
ଦିହିଙ୍କିଦିହେଁ—ଗ୍ରା. ସର୍ବ. ( ଦ୍ୱିବଚନ, ସହଚର ) ଦୁହିଁକାଦୁହେଁ, ଦୁଇଜଣ-ସାକ, ପରସ୍ପର, ଅନ୍ୟୋଽନ୍ୟରେ, (ଅନ୍ୟରୂପ—ଦିହିଙ୍କାଦିହେଁ, ଦିହିଁ-ଦିହେଁ, ଦୁହିଙ୍କୁ ଦୁହେଁ) ।
ଦିହୁଡ଼ା—ଗ୍ରା. ( ଗଞ୍ଜାମ ) ବି. ଦିହୁଡ଼ି, ମସାଲ ।
ଦିହୁଡ଼ି—ଗ୍ରା. ବି. (ସଂ-ଦେହଲୀ) ସଦର ଦରଜା, ସିଂହଦ୍ୱାର, (ସଂ-ଦୀପପାତ୍ର) ଡିହୁଡ଼ୀ, ମସାଲ ।
ଦିହୁଡ଼ିଆ—ଗ୍ରା. ବି. ( ସଂ-ଦ୍ୱୀପଧାରକ ) ଦୁହୁଡ଼ିଆ, ଯେ ମସାଲ ଧରିଥାଏ, ମସାଲ ଧରିଥିବା ଲୋକ, (ସଂ-ଦେହଲୀରକ୍ଷକ) ସିଂହଦ୍ୱାର ରକ୍ଷକ, (ଗ୍ରା.ବିଂ) ଗାଳି, ସର୍ବନାଶକାରୀ, ଯେ ବଂଶ ନାଶର ହେତୁ ହୁଏ,(ଗ୍ରା. ବିଂ) ଯେଉଁ ବଳଦର ସେ ସ୍ଥାନରେ ଧଳା ଚିହ୍ନ ଥାଏ ।
ଦିହେଁ—ଗ୍ରା. ସର୍ବ. (ଦ୍ୱିବଚନ ପ୍ରଥମା ବିଭକ୍ତି, ସଂ-ଦ୍ୱି )ଦୁହେଁ, ଦୁଇଜଣସାକ, ଉଭୟ ।
ଦିହେଦିହେମାରିବା—ଗ୍ରା. କ୍ରି. କୌଣସି ପୀଡ଼ା ବା ରୋଗ ଆକ୍ରମଣ କରିଥିବା କଥା ଦେହଭଙ୍ଗୀଦ୍ୱାରା ବାହାରେ ପ୍ରକାଶ ନ କରିବା,ରୋଗ ନିର୍ଯ୍ୟାତନକୁ ଗୁପ୍ତ ହୋଇ ସହିବା ।
ଦୀ—(ଧାତୁ) ସଂ. କ୍ଷୟପାଇବା,(ଦୀ,ଦାସ୍ତୀ, ଦୀଦ୍ଧ) (ଯ.ବ) ଗ୍ରାମ, ଦ୍ୱୀପ ।
ଦୀକ୍ଷ୍—( ସ -ଧାତୁ ) ଉପଦେଶଦେବା ଶିକ୍ଷାଦେବା,କୌଣସି ଧର୍ମ ବା ବ୍ରତରେ ଦୀକ୍ଷିତ ହେବା ପାଇଁ ସଂକଳ୍ପ କରିବା ବା ପ୍ରସ୍ତୁତ ହେବା,କୌଣସି ସଙ୍କଳ୍ପିତ ।
ଦୀକ୍ଷକ—ପୁଂ. ବି. ( ଦୀକ୍ଷ୍+କ.ଅକ ) ଦୀକ୍ଷାଦାତା, ଦୀକ୍ଷାଗୁରୁ, ଶିକ୍ଷକ, (ବିଂ) ମନ୍ତ୍ରଦାତା, ଦୀକ୍ଷାଦାତା, ଉପଦେଷ୍ଟା,

(ସ୍ତ୍ରୀ) ଦୀକ୍ଷିକା ।

**ଦୀକ୍ଷଣ**—କ୍ଲୀ. ବି. (ଦୀକ୍ଷ+ଭା.ଅନ)ଦୀକ୍ଷା-ଦେବା କର୍ମ ।

**ଦୀକ୍ଷଣୀୟ**—ପୁଂ.ବିଂ. (ଦୀକ୍ଷ୍+ର୍ମ.ଅନୀୟ) ଦୀକ୍ଷାଦାନର ପାତ୍ର, ଦୀକ୍ଷାଦ ନ ଯୋଗ୍ୟ, (ବି) ଦୀକ୍ଷାସାଧନ ଦ୍ରବ୍ୟ, ଦୀକ୍ଷାଦାନ ବେଳେ ହୋମରେ ବ୍ୟବହାର୍ଯ୍ୟ ଘୃତ, (ସ୍ତ୍ରୀ) ଦୀକ୍ଷଣୀୟା ।

**ଦୀକ୍ଷଣୀୟା**—ସ୍ତ୍ରୀ. ବି. ( ଦୀକ୍ଷଣୀୟ+ଆ ) ଇଷ୍ଟିଭେଦ, ଯଜ୍ଞବିଶେଷ ।

**ଦୀକ୍ଷଣୀୟେଷ୍ଟି**—ସ୍ତ୍ରୀ. ବି. ( ଦୀକ୍ଷଣୀୟା+ ଇଷ୍ଟି ) ଯଜ୍ଞବିଶେଷ, ( ପର୍ଯ୍ୟାୟ— ସୌମିକ) ।

**ଦୀକ୍ଷା**—ସ୍ତ୍ରୀ. ବି. (ଦୀକ୍ଷ୍+ ଅ+ଆ)ଗୁରୁଙ୍କ-ଠାରୁ ମନ୍ତ୍ରଗ୍ରହଣ, ମନ୍ତ୍ରୋପଦେଶ, ଶିକ୍ଷା, ଉପଦେଶ, ଅର୍ଚ୍ଚନା, ଯଜ୍ଞାଦିରେ ସଂସ୍କାର, ବ୍ରତାଦି କର୍ମ ଅନୁଷ୍ଠାନ, ନିୟମ, ସଂକଳ୍ପପୂର୍ବକ ବ୍ରତାଦିରେ ପ୍ରବୃତ୍ତ ହେବା, ପ୍ରବର୍ତ୍ତନା, କୌଣସି କର୍ମ ସାଧନାର୍ଥ ଆତ୍ମୋତ୍ସର୍ଗ, ( ଗ୍ରା.ବି) ତତ୍ତ୍ୱ, ରହସ୍ୟ ।

**ଦୀକ୍ଷାକର୍ତ୍ତା**—ପୁଂ. ବି. ଦୀକ୍ଷାଗୁରୁ, ଉପ-ଦେଷ୍ଟା ।

**ଦୀକ୍ଷାଗୁରୁ**—ପୁଂ. ବି. ( ଦୀକ୍ଷା + ଗୁରୁ ) (୬ତତ୍ ବା ମଧ୍ୟ-ପ.ଧା)ମନ୍ତ୍ରଦାତାଗୁରୁ, ମନ୍ତ୍ରୋପଦେଷ୍ଟା ଗୁରୁ, ଯେଉଁ ଧର୍ମ-ଯାଜକ ଅନ୍ୟକୁ କୌଣସି ଧର୍ମରେ ଦୀକ୍ଷିତ କରନ୍ତି, ଇଷ୍ଟଦେବ, ଆଚାର୍ଯ୍ୟ ।

**ଦୀକ୍ଷାଗ୍ରହଣ**—ବି.(ଦୀକ୍ଷା+ଗ୍ରହଣ)୬ତତ୍, ଗୁରୁଙ୍କଠାରୁ ମନ୍ତ୍ରଗ୍ରହଣ ।

**ଦୀକ୍ଷାତତ୍ତ୍ୱ**—କ୍ଲୀ.ବି. (ଦୀକ୍ଷା+ତତ୍ତ୍ୱ)ଦୀକ୍ଷା-ସମ୍ବନ୍ଧେ ଅବଶ୍ୟ ଜ୍ଞାତବ୍ୟ ବିଷୟ ।

**ଦୀକ୍ଷାନ୍ତ**—ପୁଂ.ବି. (ଦୀକ୍ଷା+ଅନ୍ତ)୬ତତ୍; ଅବଭୃଥ, ଯଜ୍ଞସମାପ୍ତି ।

**ଦୀକ୍ଷାପତି**—ପୁଂ. ବି. ( ଦୀକ୍ଷା+ପତି ) ୬ତତ୍; ଦୀକ୍ଷାପାଳକ ସୋମ ।

**ଦୀକ୍ଷାପାଳ**—ପୁଂ. ବି. ( ଦୀକ୍ଷା + ପାଳ ) ଦୀକ୍ଷାପତି ।

**ଦୀକ୍ଷାଯୂପ**—ପୁଂ.କ୍ଲୀ.ବି. ଦୀକ୍ଷାଙ୍କ ପଶ୍ଚାତ୍-ମାରଣାର୍ଥ କାଷ୍ଠମୟ ପଦାର୍ଥବିଶେଷ ।

**ଦୀକ୍ଷିତ**—ପୁଂ. ବିଂ. (ଦୀକ୍ଷ୍+ର୍ମ.ତ)ଦୀକ୍ଷା-ପ୍ରାପ୍ତ, ଶିକ୍ଷାପ୍ରାପ୍ତ,ସଙ୍କଳ୍ପିତ ବା ଉତ୍ସୃଷ୍ଟ, ଧର୍ମଯାଜକଙ୍କ ଦ୍ୱାରା କୌଣସି ଧର୍ମରେ ଦୀକ୍ଷିତ ବା ଦୀକ୍ଷା ପାଇଥିବା, (ଗ୍ରା.ବି) ଦୀକ୍ଷିତ ଦେଖ, (ସ୍ତ୍ରୀ) ଦୀକ୍ଷିତା ।

**ଦୀକ୍ଷିତା**—ସ୍ତ୍ରୀ.ବି. (ଦୀକ୍ଷିତ+ଆ)ଦୀକ୍ଷିତର ସ୍ତ୍ରୀଲିଙ୍ଗ,(ପୁଂ.ବିଂ—ଦୀକ୍ଷ୍+କ.ତୃ)ଯେ ଦୀକ୍ଷା ଦିଅନ୍ତି, (ପୁଂ.ବି) ମନ୍ତ୍ରଗୁରୁ (ସ୍ତ୍ରୀ) ଦୀକ୍ଷିତ୍ରୀ ।

**ଦୀକ୍ଷିତାୟନୀ**—ସ୍ତ୍ରୀ.ବି. (ଦୀକ୍ଷିତ+ଅୟନ +ଈ)କାମ୍ପିଲନଗରସ୍ଥ ଦୀକ୍ଷିତ ନାମକ ବ୍ରାହ୍ମଣଙ୍କ ସ୍ତ୍ରୀ ।

**ଦୀକ୍ଷିତ**—ଗ୍ରା.ବି. (ସଂ-ଦୀକ୍ଷିତ) ଯାଜ୍ଞିକ ବ୍ରାହ୍ମଣଙ୍କ ବଂଶୋପାଧିବିଶେଷ, ପଣ୍ଡା-ମାନଙ୍କର ବଂଶୋପାଧିବିଶେଷ ।

**ଦୀଗର**—ଦିଗର ଦେଖ ।

**ଦୀଘି(ଘୀ)**—ଗ୍ରା.ବି. (ଦୀର୍ଘିକାର ଅପଭ୍ରଂଶ) ବଡ଼ ପୋଖରୀ ।

**ଦୀତ**—ସ୍ତ୍ରୀ. ବି. ଦୀପ୍ତି ।

**ଦୀଦି(ଦୀ)**—( ବଙ୍ଗ ) ଗ୍ରା. ବି. ଜ୍ୟେଷ୍ଠା ଭଗିନୀ,(ସଂ-ଦ୍ୟୋତମାନ) ।

**ଦୀଦିବି**—ପୁଂ. କ୍ଲୀ. ବି. ଅନ୍ନ, ବୃହସ୍ପତି, ସ୍ୱର୍ଗ, ଭକ୍ଷ୍ୟଦ୍ରବ୍ୟ, (ବିଂ) ପୁନଃ ପୁନଃ ବା ଅତ୍ୟନ୍ତ ଦ୍ୟୋତକ ।

**ଦୀଧି**—(ଧାତୁ) ଦୀପ୍ତିପାଇବା ।

**ଦୀଧିତି**—ସ୍ତ୍ରୀ. ବି. (ଦୀଧି+ଭା.ତି) ରଶ୍ମି, କିରଣ, ଆଲୋକ, ଉଜ୍ଜ୍ୱଳତା, ନ୍ୟାୟ-ତତ୍ତ୍ୱଚିନ୍ତାମଣିର ଟୀକା ।

**ଦୀଧିତିକୃତ୍**—ପୁଂ. ବି. (ଦୀଧିତି+କୃ+ କ୍ୱିପ୍ ) ଚିନ୍ତାମଣିଟୀକାକାର ରଘୁନାଥ ଶିରୋମଣି ।

**ଦୀଧିତିମାନ୍**—ପୁଂ. ବି. (ଦୀଧିତି+ମତ୍) ମରୀଚିମାଳୀ, ସୂର୍ଯ୍ୟ, (ବିଂ) ଦୀପ୍ତିମାନ୍ ।

**ଦୀନ୍‌ଦାର**—ଯା. ବିଂ. ଧର୍ମବିଶ୍ୱାସୀ, (ବି) ଦୀନ୍‌ଦାରୀ ।

**ଦୀନ**—ପୁଂ. ବିଂ. (ଦୀ+କ.ତ) ଦରିଦ୍ର, ଗରିବ, ଅର୍ଥହୀନ, ଅଭାବଗ୍ରସ୍ତ,କାତର, ଶୋଚ୍ୟ, ଦୁଃଖିତ,ବ୍ୟଥିତ, ହୀନ,କ୍ଷୁବ୍ଧ, ସନ୍ତପ୍ତ, ବ୍ୟାକୁଳ, ତ୍ରସ୍ତ, ଭୀତ, କୃଶ, କ୍ଷୟପ୍ରାପ୍ତ, ବିନୀତ, ଅତିଶୟ ନମ୍ର,(ବି) ତଗର ଫୁଲ, (ଗ୍ରା) ଦୀନବନ୍ଧୁର ଡାକ-ନାମ, (ସ୍ତ୍ରୀ) ଦୀନା ।

**ଦୀନକୃଷ୍ଣଦାସ**—ଗ୍ରା. ବି. ଓଡ଼ିଶାର ଜନୈକ ପ୍ରାଚୀନ କବି, ଉତ୍କଳର ଜଣେ ପ୍ରାଚୀନ ବିଷ୍ଣୁଭକ୍ତ କବି, ବଙ୍ଗ-ଳାର ଜଣେ ପ୍ରାଚୀନପଦ୍ୟକର୍ତ୍ତା ।

**ଦୀନତା**—ସ୍ତ୍ରୀ.ବି.(ଦୀନ+ଭା.ତା ) ଦୈନ୍ୟ, ଦୀନଭାବ, ଦାରିଦ୍ର୍ୟ, ସନ୍ତାପ, ଦୁଃଖ, କାତରତା,ବ୍ୟାକୁଳତା, ଅତ୍ୟନ୍ତ ବିନୟ, (ଅନ୍ୟରୂପ—ଦୀନତ୍ୱ) ।

**ଦୀନଦୟାଳ**—ଗ୍ରା. ବିଂ. (ହିନ୍ଦୀରୁ ଅନୂ-ଦିତ—ସଂ-ଦୀନଦୟାଳୁ) ଦୁଃଖୀପ୍ରତି ସଦୟ ।

**ଦୀନଦୟାଳୁ**—ପୁଂ. ବିଂ. ଯେ ଦୁଃଖୀ-ଲୋକଠାରେ ଦୟା କରନ୍ତି, ଅନାଥର ସହାୟକ (ଈଶ୍ୱର) ।

**ଦୀନଦୟାଳୁପାଠକ**—ମୁହୂର୍ତ୍ତଭୈରବନାମକ ସଂସ୍କୃତ ଗ୍ରନ୍ଥ ରଚୟିତା ।

**ଦୀନଦୟାଳୁ ବାଜପେୟିନ୍**—ରଘୁବର ସଂହିତା ନାମକ ସଂସ୍କୃତ ଗ୍ରନ୍ଥପ୍ରଣେତା ।

**ଦୀନଦୁଃଖୀ**—ଗ୍ରା. ବିଂ. (ଏକାର୍ଥବୋଧକ ସହଚର ଶବ୍ଦ, ସଂ-ଦୀନ ଓ ଦୁଃଖୀ) ଅତିଦୁଃଖୀ, (ଗ୍ରା. ବି—ବହୁବଚନ ) ଗରିବଗୁରୁବା ।

**ଦୀନନାଥ**—ପୁଂ.ବି. (ଦୀନ+ନାଥ)୬ତତ୍, ଦୁଃଖୀଜନଙ୍କ ସ୍ୱାମୀ, ଦରିଦ୍ରର ପାଳକ, (ଈଶ୍ୱରଙ୍କପ୍ରତି) ଭଗବାନ୍,(ଗ୍ରା.ପୁଂ.ବି) ଲୋକଙ୍କ ନାମ ।

**ଦୀନନାଥ**—ପୁଂ. ବି. ଗୀର୍ବାଣବୋଧ ନାମକ ସଂସ୍କୃତକାବ୍ୟ ରଚୟିତା ।

**ଦୀନନାଥପଣ୍ଡିତ**—ପଞ୍ଜାବକେଶରୀ ମହା-ରାଜ ରଣଜିତ୍ ସିଂହଙ୍କ ରାଜସ୍ୱ ସଚିବ ।

**ଦୀନନାଥସୂରି**—ପୁଂ. ବି. ଜଣେ ସଂସ୍କୃତ କବି ।

**ଦୀନଭବାନନ୍ଦ**—ପୁଂ. ବି. ପ୍ରାଚୀନ ପଦ୍ୟ-କର୍ତ୍ତାବିଶେଷ ।

**ଦୀନବନ୍ଧୁ**—ପୁଂ. ବି ଓ ଗ୍ରା. ବି. ଦୀନ-

ନାଥ ଦେଖ, ଦରିଦ୍ରର ଆଶ୍ରୟ, ଭଗ-
ବାନ୍, ଲୋକର ଡ଼ାକ ନାମ ।
ଦୀନବନ୍ଧୁଦାଶ—ଗ୍ରା. ବି. ଉତ୍କଳର ଜଣେ
ପୁରୁଣା କବି ।
ଦୀନବନ୍ଧୁମିତ୍ର—ପୁଂ. ବି. ବଙ୍ଗର ପ୍ରଧାନ
ନାଟକକାର ।
ଦୀନବନ୍ଧୁରାୟ—ଗ୍ରା.ବି.ଜଣେ ଗଡ଼ଜାତର
ରାଜା ଓ ପ୍ରାଚୀନ କବି ।
ଦୀନଭାବ—ପୁଂ.ବି.(୬ତତ୍ପୁ)ଦୀନତା,ଦୈନ୍ୟ
ଦୀନଭାବାପନ୍ନ—ପୁଂ. ବିଂ. (ଦୀନ + ଭାବ
+ଆପନ୍ନ, ୬ଷ୍ଠୀ ଓ ୩ତତ୍ପୁ) ଅତ୍ୟନ୍ତ
କାତର ବା ସନ୍ତପ୍ତ, ଦୀନତାପ୍ରାପ୍ତ ।
ଦୀନମନାଃ—ବିଂ. (ଦୀନ+ମନସ୍,ବ.ବ୍ରୀ)
ଦୁଃଖିତମନାଃ ।
ଦୀନବାଉଲ—ବଙ୍ଗ ପାବନାଜିଲ୍ଲାବାସୀ
ଜଣେ ସଙ୍ଗୀତକାର ।
ଦୀନସତ୍ତ୍ୱ—କ୍ଳୀ.ବି. ହୀନପ୍ରାଣୀ,ବିଂ.(କ.ଧା
ବ.ବ୍ରୀ) ହୀନବଳ,(ସ୍ତ୍ରୀ)ଦୀନସତ୍ତ୍ୱା ।
ଦୀନସାଧକ—ପୁଂ. ବି. ମହାଦେବ ।
ଦୀନହୀନ—ପୁଂ. ବିଂ. ( ୫ତତ୍ପୁ ) ଅତି
ଦରିଦ୍ର, ନିତାନ୍ତ ଦୁଃଖୀ, (ସ୍ତ୍ରୀ) ଦୀନ-
ହୀନା ।
ଦୀନା—ସ୍ତ୍ରୀ. ବି. ମୂଷିକା, ( ସଂ-ସ୍ତ୍ରୀ.ବିଂ )
ଦୀନର ସ୍ତ୍ରୀଲିଙ୍ଗ, ଦୁଃଖିତା, ଦରିଦ୍ରା ।
ଦୀନାର—ବି. (ଗ୍ରୀକ୍. ଡେନାରିୟସ୍, ଆ.
ଦୀନାର୍—ସଂ-ଦୀନ + ଋ+ମ. ଅ )
ସ୍ୱର୍ଣ୍ଣମୁଦ୍ରା, ମୋହର, ସ୍ୱର୍ଣ୍ଣଭୂଷା, ପ୍ରାଚୀନ
ଭାରତର ସ୍ୱର୍ଣ୍ଣହାର ବା ଶିରୋଭୂଷଣ
ବିଶେଷ, ନିଷ୍କ ବା ୩୨ ରତି ପରିମିତ
ସ୍ୱର୍ଣ୍ଣ ।
ଦୀନେଶ—ପୁଂ.ବି. (୬ତତ୍ପୁ) ଦୀନନାଥ,
ଭଗବାନ୍, ଈଶ୍ୱର ।
ଦୀନେଶଚନ୍ଦ୍ରସେନ—"ବଙ୍ଗଭାଷା ଓ
ସାହିତ୍ୟ' ର ଲେଖକ ।
ଦୀପ୍ (ଧାତୁ)—ସଂ-ଦୀପ୍ତହେବା, ଉଜ୍ଜ୍ୱଳ
ହେବା, ଜ୍ୱଳିବା, ଅଳଂକୃତ କରିବା ।
ଦୀପ—ପୁଂ.ବି.(ଦୀପ୍+କ.ଅ).ଆଲୋକା-
ଧାର, ପ୍ରଦୀପ, ଆଲୋକ, ତେଲ ଓ
ବଳିତା ସାହାଯ୍ୟରେ ଜଳାଯିବା
ଆଧାର, ନିଆଁର ଶିଖା, ( ଲ.ଅର୍ଥ )
ପ୍ରଭାଶୀଳ ବ୍ୟକ୍ତି, (ସଂ-ଦ୍ୱୀପ) ଦ୍ୱୀପ,
(ବିଂ) ପ୍ରକାଶକ, ଯାହା ଉଜ୍ଜ୍ୱଳ କରେ,
(ପର୍ଯ୍ୟାୟ) ପ୍ରଦୀପ ।
ସ୍ନେହାଶ, ଦୀପକ, କଜ୍ଜ୍ୱଳଧ୍ୱଜ, ଶିଖା-
ତରୁ, ଗୃହମଣି, ଜ୍ୟୋତ୍ସ୍ନାବୃକ୍ଷ, ଦଶେ-
ନ୍ଧନ, ଦୋଷାତିଳକ, ଦୋଷାସ୍ୟ,
ନୟନୋତ୍ସବ ।
ଦୀପଆଡ଼ଆ ପାହାଡ଼—ଗ୍ରା. ବି. ଚିଲିକା
କୂଳବର୍ତ୍ତୀ ଗୋଟିଏ କ୍ଷୁଦ୍ର ପାହାଡ଼ ।
ଦୀପକ—କ୍ଳୀ. ବି. (ଦୀପ୍+ଣିଚ୍—ଦୀପି
+କ.ଅକ) କୁଙ୍କୁମ, କାବ୍ୟାଲଙ୍କାର-
ବିଶେଷ, ଯୁଆଣୀ, ମୟୂରଶିଖା, (ପୁଂ.)
ପ୍ରଦୀପ, ଛଞ୍ଚାଣ, ବାଜପକ୍ଷୀ, ବ୍ୟାଖ୍ୟା
ଓ ବିବରଣ ପୁସ୍ତକମାନଙ୍କର ଉପାଧି,
ସଙ୍ଗୀତର ରାଗବିଶେଷ, (ବିଂ)ଔଜ୍ଜ୍ୱଲ୍ୟ-
କାରକ, ଦୀପ୍ତିକର, ଶୋଭାଜନକ,
ପ୍ରକାଶକ, ଉଜ୍ଜ୍ୱଳ, ଯାହା ଆଲୁଅ
ଜଳାଏ, ଉଦ୍ଦୀପକ, ଉତ୍ତେଜକ, ଜୀର୍ଣ୍ଣି-
କାରକ, ଉଦାହରଣ ବା ବ୍ୟାଖ୍ୟା-
ଦ୍ୱାରା ଅର୍ଥ ପ୍ରକାଶକ, (ସ୍ତ୍ରୀ) ଦୀପିକା ।
ଦୀପକବୃକ୍ଷ—ବି. ଦୀପରୁଖା, ଝାଡ଼ ।
ଦୀପକମାଳା—ସ୍ତ୍ରୀ. ବି. ଦଶାକ୍ଷରଯୁକ୍ତ
ଛନ୍ଦୋବିଶେଷ ।
ଦୀପକଳିକା—ସ୍ତ୍ରୀ.ବି. (ଦୀପ + କଳିକା)
(୬ତତ୍ପୁ), ଦୀପର ଶିଖା, ଶୂଳପାଣିକୃତ
ଯାଜ୍ଞବଲ୍କ୍ୟସଂହିତାର ପ୍ରସିଦ୍ଧ ଟୀକା ।
ଦୀପକିଟ୍ଟ—ବି.(ଦୀପ+କିଟ୍ଟ—୬ତତ୍ପୁ)
ଦୀପଶିଖାରୁ ଉତ୍ପନ୍ନ କଳା ବା କଜ୍ଜଳ-
କଳା ।
ଦୀପକୂପୀ—ସ୍ତ୍ରୀ.ବି. ଦୀପର ବତି,ବଳିତା,
(ପର୍ଯ୍ୟାୟ) ତୈଳମାଳୀ, ଦୀପକିଂଶ,
ବଦାହିକା ।
ଦୀପଖୋଷ—ସ୍ତ୍ରୀ.ବି.ଦୀପବତି,ଶଳିତା ।
ଦୀପଗଛ—ବି. ଦୀପବୃକ୍ଷ ଦେଖ ।
ଦୀପଙ୍କର-ବୁଦ୍ଧାବତାରି ମଧ୍ୟରୁ ଗୋଟିଏ ।
ଦୀପଙ୍କରଶ୍ରୀଜ୍ଞାନଅତିଶ—ଜଣେ ବିଖ୍ୟାତ
ବୌଦ୍ଧ ଯତି ।
ଦୀପଜଳା—ଗ୍ରା.ବି. (ସଂ-ଦୀପ + ଜ୍ୱଳନ)
ଦୀପଜାଳିବା କାର୍ଯ୍ୟ, ଦୀପଜାଳିବା
କର୍ମ ।
ଦୀପଜାଳିବା—ଗ୍ରା.କ୍ରି. ଦୀପରେ ନିଆଁ
ଲଗାଇବା, ସନ୍ଧ୍ୟାବତୀ ଲଗାଇବା,
( ମହାଜନ ଭାଷା ) ଦେବାଳିଆ ବା
ବେମରାମତି ହେବା ବିଷୟ ପ୍ରକାଶ
କରିବା ।
ଦୀପତ—ଗ୍ରା.ପଦ୍ୟ.ବି. ଦୀପ୍ତ ଦେଖ ।
ଦୀପତରୁ—ବି. ( ଦୀପ+ତରୁ. ରୂପ-
କ.ଧା) ଦୀପରୁଖା, ଦୀପ ଧାର ପିଲ-
ସଜ, ବହୁପ୍ରଦୀପ ସୁସଜ୍ଜିତ ଝାଡ଼,
(ଅନ୍ୟରୂପ—ଦୀପପାଦପ) ।
ଦୀପତି—ଗ୍ରା.ବି. (ପ୍ରା+କ) ଦୀପ୍ତିଦେଖ ।
ଦୀପଦାଣ୍ଡି—(ପ୍ରା. ବସ୍ତର. ବି.)ଦୀପଦଣ୍ଡି-
ଦେଖ ।
ଦୀପଦଣ୍ଡା—(ପ୍ରା. ଯାଜପୁର. ବି.) ଦୀପ-
ଦଣ୍ଡି ଦେଖ ।
ଦୀପଦଣ୍ଡି—ଗ୍ରା.ବି. ( ସଂ-ଦ୍ୱୀପ + ଦଣ୍ଡ )
ଦୀପଦଣ୍ଡି ଦେଖ;( ଅନ୍ୟରୂପ-ଦୀପଦାଣ୍ଡି
ଦୀପିଦାଣ୍ଡି ) ।
ଦୀପଦାନ—ବି. ( ଦୀପ+ଦାନ, )
(୬ତତ୍ପୁ) ଶିବରାତ୍ରି, କାର୍ତ୍ତିକମାସର
ଦାମୋଦର ବ୍ରତ, ମରଣ ପନ୍ନ ବ୍ୟକ୍ତିର,
ମୋକ୍ଷ ଉଦ୍ଦେଶ୍ୟ ଦୀପଜଳାଇ ଉତ୍ସର୍ଗ
କରାଯିବା କର୍ମ ।
ଦୀପଦାନ—ଗ୍ରା.ବି.(ସଂ-ଦୀପ+ଆଧାନ)
ଆରତି ବା ପୂଜା ସମୟରେ ଦେବ-
ତାଙ୍କୁ ଦେଖାଇବାରେ ବ୍ୟବହୃତ ଦୀପ
ଯେଉଁ ପାତ୍ରରେ ରଖା ଯାଇଥାଏ,
ଦୀପବଇଠେ ।
ଦୀପଧ୍ୱଜ—ପୁଂ.ବି. (୬ତତ୍ପୁ) ଦୀପକିଟ୍ଟ,
କଜ୍ଜଳ, ଦୀପକୂପୀ ।
ଦୀପନ—ପୁଂ. ବି. ( ଦୀପ୍ + ଣିଚ୍—
ଦୀପି+ଭା.ଅନ ) କୁଙ୍କୁମ, ଟଗର-
ଗଛର ମୂଳ, ମୟୂରଶିଖା, ପଲଣ୍ଡୁ,
ପିଆଜ, କାସମର୍ଦ୍ଦ, ଶାଳିଞ୍ଚଶାକ, (କ୍ଳୀ.
ବି) ଉଦ୍ଦୀପନ, ଉତ୍ତେଜନ, ଆଲୋକିତ
କରଣ, କୁଙ୍କୁମ, ଟଗର ଗଛ ମୂଳ,
ପ୍ରକାଶନ, ତେଜପ୍ରକାଶ, ଜଠରାଗ୍ନିକୁ

ଉଦ୍ରେଜିତ କର କ୍ଷୁଧା ବୃଦ୍ଧି କରିବା କର୍ମ, ଅଗ୍ନିବର୍ଦ୍ଧକ ଔଷଧ, ମନ୍ତ୍ର ଦଶଗୋଟି ସଂସ୍କାରରୁ ଗୋଟିଏ, ପାରଦର ସପ୍ତମସଂସ୍କାର, (ତ୍ରି° ଦୀପି+କ.ଅକ) ଉତ୍ତେଜକ, ଉଦ୍ଦୀପକ, ଦାହକ, ଶୋଷିଜନକ, ଅଗ୍ନିବର୍ଦ୍ଧକ, ଜାର୍ଣ୍ଣିକାରକ, (ସ୍ତ୍ରୀ) ଦୀପନା।

**ଦୀପନବାଣ**—ବ. (ଦୀପ+ନବାଣ), ୬ତତ୍ପୁ; ଦୀପ ନଉଣିବା।

**ଦୀପନବାପଣ**—ବ. (ଦୀପ+ନବାପଣ) ୬ତତ୍ପୁ; ଦୀପ ନଷ୍ଟଇବା।

**ଦୀପନୀ**—ସ୍ତ୍ରୀ.ବ. (ଦୀପ+ଣିଚ୍+ଅନ+ଈ) ମେଥିକା, ମେଥି, ଯୁଆଣୀ।

**ଦୀପନୀୟ**—ବି.ବ°. (ଦୀପ୍+ଣିଚ୍+ଅନୀୟ) ଦୀପନଯୋଗ୍ୟ, ଉତ୍ତେଜିତ ହେବା ଯୋଗ୍ୟ, ଦାହ୍ୟ, (ପୁ°. ବ.) ଯୁଆଣୀ, ଔଷଧ ବର୍ଗବିଶେଷ।

**ଦୀପନୀୟଗଣ**—ବ. ଯୁଆଣୀ।

**ଦୀପପାଦପ**—ପୁ°.ବ. (ଦୀପ+ପାଦପ) ଦୀପତରୁ ଦେଖ।

**ଦୀପପୁଞ୍ଜ**—ବ. (ଦୀପ+ପୁଞ୍ଜ, ୬ତତ୍ପୁ) ସୁସଜ୍ଜିତ ଅନେକ ଗୁଚ୍ଛିଏ ପ୍ରଦୀପ, ଆଲୋକମାଳା।

**ଦୀପପୁଷ୍ପ**—ବ. ଚମ୍ପାଫୁଲ ଓ ଗଛ।

**ଦୀପପେଲ**—ଗ୍ରା.ବ°. (ଲ.ଅର୍ଥ) ଖୋସାମଦିଆ(ବ୍ୟକ୍ତି), ଯେ ଅତି ହୀନଭାବରେ ଅନ୍ୟବ୍ୟକ୍ତିର କଥା ଓ କର୍ମମାନ ଅନୁମୋଦନ କରେ, ଦୀପଟେକଚା, ଯାହାଦ୍ୱାରା ଦୀପ ଟେକାଯାଏ (ଲ. ଅର୍ଥ) ଅନ୍ୟ ବ୍ୟକ୍ତିର ସବୁ କାର୍ଯ୍ୟରେ ଅନୁମୋଦନ।

**ଦୀପପେଲିବା**—ଦେ.କ୍ରି. ଦୀପଟେକିବା।

**ଦୀପବୃକ୍ଷ**—ପୁ°.ବ. (ଦୀପ+ବୃକ୍ଷ,ମଧ୍ୟ-କ.ଧା) ଦୀପାଧାର, ଦୀପଧାରକବୃକ୍ଷ, ପିଲସୁଜ୍ ପ୍ରଭୃତି, ଦୀପତରୁ ଦେଖ।

**ଦୀପଭାଜନ**—କ୍ଳୀ. ବ. (ଦୀପ+ଭାଜନ) ୬ତତ୍ପୁ; ଦୀପପାତ୍ର।

**ଦୀପମଞ୍ଜୁଷା**—ବ. (ଆଧୁନିକ ପ୍ରୟୋଗ) ଫାନସ୍ ଦେଖ, ଦୀପପଞ୍ଜର ବା ଦୀପପିଞ୍ଜର।

**ଦୀପମାଳା**—ସ୍ତ୍ରୀ. ବ. (ଦୀପ+ମାଳା) (୬ତତ୍ପୁ) ଦୀପପୁଞ୍ଜ, ଶ୍ରେଣୀଭୂତ ପ୍ରଦୀପ, ଦଶାକ୍ଷର ଛନ୍ଦୋବିଶେଷ।

**ଦୀପମୁଣ୍ଡିଆ**—ଗ୍ରା. ବ. ବାଲୁଗାଁ ନିକଟବର୍ତ୍ତୀ ଚିଲିକାକୂଳସ୍ଥ ଗୋଟିଏ ପାହାଡ଼, ଦୀପଆଡ଼ୁଆ ପାହାଡ଼।

**ଦୀପରାଜ**—ବ. (ଦୀପ+ରାଜ, ୬ତତ୍ପୁ) ଦୀପପୁଞ୍ଜ।

**ଦୀପରୁଖା**—ବ. (ସଂ-ଦୀପବୃକ୍ଷ, ଦୀପରକ୍ଷା) ପ୍ରଦୀପ ରଖାଯିବାର ଆଧାର।

**ଦୀପଶତ୍ରୁ**—ପୁ°. ବ. (ଦୀପ+ଶତ୍ରୁ) ୬ତତ୍ପୁ; ପତଙ୍ଗ, ପୋତକ, ଉଡ଼ାପୋକ।

**ଦୀପଶଳାକା**—ସ୍ତ୍ରୀ. ବ. (ଦୀପ+ଶଳାକା) ୬ତତ୍ପୁ, ବଣଲୁ ଲେଖିବା କାଠି, ଲେଖଣୀ କାଠି, ଦୀପପେଲ, ଦିଆସିଲି।

**ଦୀପଶିଖା**—ସ୍ତ୍ରୀ.ବ. (ଦୀପ+ଶିଖା) ୬ତତ୍ପୁ; ଜଳୁଥିବା ପ୍ରଦୀପର ଅଗ୍ନିଶିଖା, ଦୀପଶିସା, ଦୀପଶିଖାରୁ ଉଦ୍ଭୂତ କଜ୍ଜଳ, ଦୀପକଳା, ଜଳିବା ଦୀପରୁ ଉଠିବା ଧୂଆଁ।

**ଦୀପଶୃଙ୍ଖଳା**—ବ. (ଦୀପ+ଶୃଙ୍ଖଳା) ୬ତତ୍ପୁ; ଦୀପପୁଞ୍ଜ ଦେଖ।

**ଦୀପାଧାର**—ପୁ°. ବ. (ଦୀପ+ଆଧାର) ୬ତତ୍ପୁ, ଦୀପରୁଖା, ଦୀପ ରଖିବାର ଆଧାର।

**ଦୀପାନ୍ୱିତ**—ବି. ବ°. ଦୀପଯୁକ୍ତ।

**ଦୀପାନ୍ୱିତା**—ସ୍ତ୍ରୀ. ବ. (ଦୀପ+ଅନ୍ୱିତ+ଆ) କାର୍ତ୍ତିକ ଅମାବାସ୍ୟା ରାତିରେ କରାଯିବା ଦୀପଦାନ ଉତ୍ସବ, କାର୍ତ୍ତିକମାସୀୟ ଅମାବାସ୍ୟା।

**ଦୀପାବର୍ତ୍ତ**—ବରିଣୀବିଶେଷ (ଦୀପକ ଓ ସବସ୍ୱତା ଯୋଗେ ଉତ୍ପନ୍ନ)।

**ଦୀପାବଳି**—ସ୍ତ୍ରୀ. ବ. (ଦୀପ+ଆବଳି) ୬ତତ୍ପୁ; ଦୀପସମୂହ, ଦୀପପୁଞ୍ଜ, ମାଗଶିର ଦୀପାବଳି ଅମାବାସ୍ୟା, କାର୍ତ୍ତିକ ଅମାବାସ୍ୟା, ଦୀପଶ୍ରେଣୀ।

**ଦୀପାବଳିଅମାବାସ୍ୟା**—ବ. ମାର୍ଗଶିର ଅମାବାସ୍ୟା, କାର୍ତ୍ତିକ ଅମାବାସ୍ୟା।

**ଦୀପାଳି(ଳୀ)**—ବ. (ଦୀପ+ଆଳି) ୬ତତ୍ପୁ; ଦୀପାବଳି, (ଗ୍ରା.ବ) ଶ୍ରେଷ୍ଠ ମାଟିଦୀପ।

**ଦୀପାଳୀଅମାବାସ୍ୟା**—ଗ୍ରା. ବ. କାର୍ତ୍ତିକ ଅମାବାସ୍ୟା, ଦେବାଲି ଅମାବାସ୍ୟା।

**ଦୀପିକା**—ସ୍ତ୍ରୀ. ବ. (ଦୀପକ+ଆ) ଟୀକା ଗ୍ରନ୍ଥବିଶେଷ, ଜ୍ୟୋତିଷ ଗ୍ରନ୍ଥ ବିଶେଷ, ଚନ୍ଦ୍ରକିରଣ, ଜ୍ୟୋତ୍ସ୍ନା, ରାଗିଣୀବିଶେଷ, ଆଲୋକ, ଶ୍ରେଷ୍ଠଦୀପ, (ବ°) ପ୍ରକାଶିକା।

**ଦୀପିକାତୈଳ**—କ୍ଳୀ. ବ. ତୈଳୌଷଧବିଶେଷ।

**ଦୀପିତ**—ପୁ°. ବ°. (ଦୀପ୍+ଣିଜନ୍ତ ଦୀପି+ର୍ମ.ତ) ଜ୍ୱଳିତ, ଉତ୍ତେଜିତ, ପ୍ରକାଶିତ, (ଗ୍ରା.ବ°-ପଦ୍ୟ) ଶୋଭିତ, ଦୀପ୍ତିଯୁକ୍ତ, ଉଜ୍ଜ୍ୱଳ, (ସ୍ତ୍ରୀ) ଦୀପିତା।

**ଦୀପିତା**—ପୁ°.ବ°. ଦୀପିତୃ, (ଦୀପ୍+କ.ତୃ) ୧ମା. ୧ବ. ଦୀପ୍ତିକାରକ, ପ୍ରକାଶକ।

**ଦୀପିତି**—ଗ୍ରା. ବ. ପଦ୍ୟ. (ସଂ-ଦୀପ୍ତି) ଦୀପ୍ତି ଦେଖ।

**ଦୀପିବା**—ଗ୍ରା. କ୍ରି. (ସଂ-ଦୀପ୍ ଧାତୁ) ଦୀପ୍ତହେବା, ତେଜ ବା ଆଲୋକ ଦେବା।

**ଦୀପ୍ତ**—ବି. ବ°. (ଦୀପ୍+କ.ତ) ପ୍ରଜ୍ୱଳିତ, ଜଳୁଥିବା, ଦହକୁଥିବା, ଦୀପ୍ତିଯୁକ୍ତ, ଉଜ୍ଜ୍ୱଳ, ଦଗ୍ଧ, (ବ) ସିଂହ, ସ୍ୱର୍ଣ୍ଣ, ହିଙ୍ଗୁଳ, ହିଙ୍ଗୁ, ନାସିକାଗତ ରୋଗବିଶେଷ। [ସ୍ୱର୍ଣ୍ଣ।

**ଦୀପ୍ତକ**—କ୍ଳୀ. ବ. (ଦୀପ୍ତ+ସ୍ୱାର୍ଥେ କ)

**ଦୀପ୍ତକରଣ**—ପୁ°.ବ. ସୂର୍ଯ୍ୟ, ଅର୍କ ବୃକ୍ଷ।

**ଦୀପ୍ତକୀର୍ତ୍ତି**—ବି. ବ°. (ବ.ବ୍ରୀ) ପ୍ରଦୀପ୍ତଯଶା, (ପୁ°.ବ) କାର୍ତ୍ତିକେୟ, (ସ୍ତ୍ରୀ.ବ) (କ.ଧା) ପ୍ରକଟିତଖ୍ୟାତି, ଉତ୍କର୍ଷିତଗୌରବ୍ୟଞ୍ଜକ।

**ଦୀପ୍ତକେତୁ**—ବି. ବ°. (ବ.ବ୍ରୀ) ଦୀପ୍ତଧ୍ୱଜଯୁକ୍ତ, (ପୁ°.ବ) ନୃପତିବିଶେଷ, ଦକ୍ଷସାମନ୍ତ ପୁତ୍ରବିଶେଷ।

**ଦୀପ୍ତଜିହ୍ୱା**—ସ୍ତ୍ରୀ. ବ. (ବ.ବ୍ରୀ) ଉଲ୍କାମୁଖୀ ଶୃଗାଳୀ, ଖୋକଶିଆଳୀ।

**ଦୀପ୍ତପିଙ୍ଗଳ**—ପୁ°. ବ. (ଦୀପ୍ତ+ପିଙ୍ଗଳ) ବ.ବ୍ରୀ, ସିଂହ, (କ.ଧା) ଉଜ୍ଜ୍ୱଳ ପିଙ୍ଗଳ-

ବର୍ଣ୍ଣ, (ବିଂ) ଉଜ୍ଜ୍ୱଳ ପିଙ୍ଗଳବର୍ଣ୍ଣ ବିଶିଷ୍ଟ, (ସ୍ତ୍ରୀ) ଦୀପ୍ତପିଙ୍ଗଳୀ ।

ଦୀପ୍ତମୂର୍ତ୍ତି—ବି. ବଂ. (ବୈ.ବ୍ରୀ) ସମୁଜ୍ଜ୍ୱଳ ମୂର୍ତ୍ତିଯୁକ୍ତ, (ପୁଂ.ବ) ବିଷ୍ଣୁ ।

ଦୀପ୍ତରସ—ପୁଂ. ବ. ( ଦୀପ୍ତ+ରସ ) ବ.ବ୍ରୀ, ଜିଆ, ଜିଆନାଡ଼ି, ( କ.ଧା ) ଉଜ୍ଜ୍ୱଳ ଦୀପ୍ତିଯୁକ୍ତ ରସ ।

ଦୀପ୍ତରୋମା—ପୁଂ.ବ.ବିଶ୍ୱଦେବବିଶେଷ

ଦୀପ୍ତଲୋଚନ—ପୁଂ.ବ. (ବ.ବ୍ରୀ) ବିରାଡ଼ି, ବାଘ,(କ.ଧା)ରୋଷକଷାୟିତ ଲୋଚନ, ନାଲ ଅାଖି, (ବ.ବ୍ରୀ,ବିଂ) ଉଜ୍ଜ୍ୱଳ ଚକ୍ଷୁବିଶିଷ୍ଟ, ନାଲଆଖିଆ ।

ଦୀପ୍ତଲୌହ—କ୍ଲୀ. ବ. (ଦୀପ୍ତ+ଲୌହ) କ.ଧା, କଂସା,କାଂସ୍ୟ,ଜ୍ୱଳିତଲୌହ ।

ଦୀପ୍ତବର୍ଣ୍ଣ—ବି. ବଂ. ସୁବର୍ଣ୍ଣତୁଲ୍ୟ ବର୍ଣ୍ଣଯୁକ୍ତ, ଯାହାର ବର୍ଣ୍ଣ ସୁନାପରି, (ପୁଂ) କାର୍ତ୍ତିକେୟ ।

ଦୀପ୍ତଶକ୍ତି—ବି.ବଂ. ପ୍ରକାଶମାନ ସାମର୍ଥ୍ୟ, (ବ) କାର୍ତ୍ତିକେୟ ।

ଦୀପ୍ତହୁତାଶ—ବ. ( ଦୀପ୍ତ+ହୁତାଶ ) କ.ଧା; ଦହକା ନିଆଁ, ଜଳନ୍ତା ନିଆଁ ।

ଦୀପ୍ତା—ସ୍ତ୍ରୀ.ବ. (ଦୀପ୍ତ+ଆ) ଲଙ୍ଗଳିକା ବୃକ୍ଷ,ଲମ୍ବଲଙ୍ଗଳିଆ,ଜ୍ୟୋତିଷ୍ମତୀଲତା

ଦୀପ୍ତାଂଶୁ—ପୁଂ. ବଂ. (ଦୀପ୍ତ+ଅଂଶୁ) ବ.ବ୍ରୀ, ସୂର୍ଯ୍ୟ, ଅର୍କ ବୃକ୍ଷ ।

ଦୀପ୍ତାକ୍ଷ—ପୁଂ.ବଂ. (ଦୀପ୍ତ+ଅକ୍ଷି)ବ.ବ୍ରୀ, ଦୀପ୍ତଲୋଚନ ଦେଖ, ( ବ ) ବିଡ଼ାଳ; ବିରାଡ଼ି ।

ଦୀପ୍ତାଗ୍ନି—ପୁଂ.ବ.(ଦୀପ୍ତ+ଅଗ୍ନି)ବ.ବ୍ରୀ, ଅଗସ୍ତିମୁନି, (କ.ଧା) ଜଳୁଥିବା ନିଆଁ, ତୀକ୍ଷ୍ଣଜଠରାନଳ, (ବିଂ)ତୀକ୍ଷ୍ଣଜଠରାନଳବିଶିଷ୍ଟ, ଅତ୍ୟନ୍ତ କ୍ଷୁଧାର୍ତ୍ତ ।

ଦୀପ୍ତାଙ୍ଗ—ପୁଂ. ବଂ. ( ଦୀପ୍ତ+ଅଙ୍ଗ ) ବ.ବ୍ରୀ, ଉଜ୍ଜ୍ୱଳ ଦେହକାନ୍ତିବିଶିଷ୍ଟ, ଉଜ୍ଜ୍ୱଳ ଅବୟବବିଶିଷ୍ଟ, (ବ) ମୟୂର, (କ.ଧା)ଉଜ୍ଜ୍ୱଳଦେହ,(ସ୍ତ୍ରୀ) ଦୀପ୍ତାଙ୍ଗୀ ।

ଦୀପ୍ତାନଳ—ବ. ବଂ. (ଦୀପ୍ତ+ଅନଳ) ଦୀପ୍ତାଗ୍ନି ଦେଖ ।

ଦୀପ୍ତି—ସ୍ତ୍ରୀ. ବ. (ଦୀପ+କ୍ତି) ଶୋଭା, ସୌନ୍ଦର୍ଯ୍ୟ, କାନ୍ତି, ତେଜଃ, ପ୍ରଭା, ଜ୍ୟୋତିଃ, ଉଜ୍ଜ୍ୱଳତା, ଦ୍ୟୁତି, ଆଭା, ପ୍ରଭା, କଂସା, ଲାକ୍ଷା, ଆଲୋକ,ସ୍ତ୍ରୀମାନଙ୍କର ଅଯତ୍ନଜ ଗୁଣ, ଅଭିବ୍ୟକ୍ତି, (ପୁଂ) ବିଶ୍ୱଦେବବିଶେଷ, (ଗ୍ରା.ବ) ଐଶ୍ୱର୍ଯ୍ୟ, ସୌଭାଗ୍ୟ ।

ଦୀପ୍ତିକ—ପୁଂ. ବ. ଦୁଗ୍ଧପାଷାଣ ବୃକ୍ଷ ।

ଦୀପ୍ତିକର—ପୁଂ. ବଂ. (ଦୀପ୍ତି+କର-ଉପପଦ ତତ୍ପୁ)ଜାଜ୍ୱଲ୍ୟମାନ, ତୋଫା, ଶୋଭାନ୍ୱିତ,ଜାଣ୍ଟିକାରକ, (ସ୍ତ୍ରୀ) ଦୀପ୍ତିକରୀ ।

ଦୀପ୍ତିକେଶ୍ୱରତୀର୍ଥ—କ୍ଲୀ.ବ.ତୀର୍ଥବିଶେଷ ।

ଦୀପ୍ତିମୟ—ପୁଂ.ବଂ(ଦୀପ୍ତି + ପାଚୁର୍ଯ୍ୟାର୍ଥେ ମୟ) ଦୀପ୍ତିକର ଦେଖ, (ସ୍ତ୍ରୀ) ଦୀପ୍ତିମୟୀ ।

ଦୀପ୍ତିମାନ୍—ପୁଂ. ବଂ: ( ଦୀପ୍ତି + ମତ୍, ଦୀପ୍ତିକର, ପ୍ରଭାଶାଳୀ, ଉଜ୍ଜ୍ୱଳ, (ସ୍ତ୍ରୀ) ଦୀପ୍ତିମତୀ ।

ଦୀପ୍ତିଶୀଳ—ପୁଂ.ବଂ (ଦୀପ୍ତି+ଯୁକ୍ତାର୍ଥେ ଶୀଳ) ଦୀପ୍ତିକର ଦେଖ, (ସ୍ତ୍ରୀ) ଦୀପ୍ତିଶୀଳା ।

ଦୀପ୍ତୋଦ—କ୍ଲୀ. ବ. ତୀର୍ଥବିଶେଷ ।

ଦୀପ୍ତୋପଲ—ପୁଂ. ବ. (ଦୀପ୍ତ+ଉପଲ) କ.ଧା; ଅଗ୍ନିପ୍ରାନ୍ତମଣି, ସୂର୍ଯ୍ୟକାନ୍ତମଣି

ଦୀପ୍ୟ—ବି. ବଂ. (ଦୀପ୍+ମି.ଯ)ଦୀପ୍ତିଯୋଗ୍ୟ,ପ୍ରକାଶଯୋଗ୍ୟ,ଦୀପନଯୋଗ୍ୟ, ପ୍ରଜ୍ୱଳନଯୋଗ୍ୟ,ଜାଣ୍ଟିକାରକ,(ପୁଂ.ବ) ମୟୂରଶିଖା, ରୁଦ୍ରଜଟା, ଜୀରକ, ଯୁଆଣୀ, ଗୃଢ଼ ।

ଦୀପ୍ୟକ—କ୍ଲୀ. ବ. ଅଜମୋଦା, ବଣଯୁଆଣୀ, ଯୁଆଣୀ, ମୟୂରଶିଖା, ରୁଦ୍ରଜଟା ।

ଦୀପ୍ୟମାନ—ପୁଂ.ବଂ(ଦୀପ୍+କ.ଶାନଚ୍) ଶୋଭମାନ, ଦୀପ୍ତିଶୀଳ, ଜାଜ୍ୱଲ୍ୟମାନ, (ସ୍ତ୍ରୀ) ଦୀପ୍ୟମାନା ।

ଦୀପ୍ୟା—ସ୍ତ୍ରୀ. ବ. ପିଣ୍ଡଖର୍ଜୁରୀ ।

ଦୀପ୍ର—ପୁଂ. ବଂ. (ଦୀପ୍+କ.ର)ଦୀପ୍ତିଶାଳୀ, ଉଜ୍ଜ୍ୱଳ, (ବ) ଅଗ୍ନି, (ସ୍ତ୍ରୀ)ଦୀପ୍ରା ।

ଦୀବ୍ୟମାନ—ବି. ବଂ. (ଦୀବ୍+ଶାନଚ୍) କ୍ରୀଡ଼କ, କ୍ଷେପକ ।

ଦୀୟମାନ—ପୁଂ. ବଂ. ( ଦା+ମି.ଆନ ) ଯାହା ଦିଆଯାଉଅଛି,(ସ୍ତ୍ରୀ) ଦୀୟମାନା, (ବିପ)ନୀୟମାନ ।

ଦୀର୍ଘ—ବି. ବଂ: ( ଦ୍ରାଘ+ଅ ) ଲମ୍ବା, ଡେଙ୍ଗା, ଉଚ୍ଚ, ବହୁତ,ଅଧିକ, ଆୟତ, ସୁଦୂର, ବିସ୍ତୃତ, ଗୁରୁ, ବନ୍ଧୁର, ବୃହତ୍, ବଡ଼, ବହୁକାଳବ୍ୟାପୀ,ଗଭୀର(ନିଶ୍ୱାସ), ବ. ( ବ୍ୟାକରଣ ) ଦ୍ୱିମାତ୍ରା ପରିମିତ ସ୍ୱରବର୍ଣ୍ଣ, ଗୁରୁସ୍ୱର, ଦ୍ୱିମାତ୍ର ସ୍ୱର, (ଜ୍ୟୋତିଷ) ସିଂହ, କନ୍ୟା, ତୁଳ ଓ ବିଛାରାଶି, ଉଷ୍ଟ୍ର, ଓଟ, ଦୂରଭବିଷ୍ୟତ୍, ପରମାଣ, ଲତାଶାଳଗଛ, ( ଗ୍ରା.ବ ) ଦୈର୍ଘ୍ୟ, ପ୍ରାଚୀନ ଜଳଯାନବିଶେଷ ।

ଦୀର୍ଘଏକାବଳୀ—ଛନ୍ଦୋବିଶେଷ, ଛନ୍ଦ ଦେଖ ।

ଦୀର୍ଘକଣା—ସ୍ତ୍ରୀ. ବ. ( ଦୀର୍ଘ+କଣା, ନିତ୍ୟ-କ.ଧା) ଗୌରଜୀରକ ।

ଦୀର୍ଘକଣ୍ଟକ—ପୁଂ. ବ. (ଦୀର୍ଘ+କଣ୍ଟକ) ବର୍ବୁରବୃକ୍ଷ ।

ଦୀର୍ଘକଣ୍ଠ—ପୁଂ. ବଂ. ( ଦୀର୍ଘ+କଣ୍ଠ ) ବ.ବ୍ରୀ; ଲମ୍ବବେକଥିବା (ଜନ୍ତୁ),ଲମ୍ବକଣ୍ଠ, (ବ) ବକପକ୍ଷୀ, (ସ୍ତ୍ରୀ) ଦୀର୍ଘକଣ୍ଠୀ, (ପୁଂ) ଦାନବବିଶେଷ ।

ଦୀର୍ଘକଣ୍ଠକ—ପୁଂ. ବ. (ଦୀର୍ଘକଣ୍ଠ+କ) ବକପକ୍ଷୀ । [ ମୂଳକ ।

ଦୀର୍ଘକନ୍ଦ—କ୍ଲୀ.ବ.(ଦୀର୍ଘ+କନ୍ଦ)ବ.ବ୍ରୀ;

ଦୀର୍ଘକନ୍ଦକ—ସ୍ତ୍ରୀ. ବ. (ଦୀର୍ଘକନ୍ଦ + କ) ମୂଳକ ।

ଦୀର୍ଘକନ୍ଦିକା—ସ୍ତ୍ରୀ. ବ. (ଦୀର୍ଘକନ୍ଦକ+ଆ) ମୂଷଲୀ, ତାଳମୂଳୀ ।

ଦୀର୍ଘକନ୍ଧର—ପୁଂ. ବ.(ଦୀର୍ଘ+କନ୍ଧର) ବ.ବ୍ରୀ; ବକପକ୍ଷୀ, (ସ୍ତ୍ରୀ) ଦୀର୍ଘକନ୍ଧରା, (ବିଂ) ଦୀର୍ଘକନ୍ଧରଯୁକ୍ତ ।

ଦୀର୍ଘକର୍ଣ୍ଣ—ପୁଂ.ବ(ଦୀର୍ଘ+କର୍ଣ୍ଣ)ବ.ବ୍ରୀ; ବଡ଼ କାନବିଶିଷ୍ଟ ଜନ୍ତୁ, ଜାତିବିଶେଷ ।

ଦୀର୍ଘକାଣ୍ଡ—ପୁଂ. ବ. (ଦୀର୍ଘ+କାଣ୍ଡ) କ.ଧା) ଅତି ବୃହତ୍ ବ୍ୟାପାର, ଗୁଣ୍ଡୁଚୁଣ, ବିସ୍ତର କାହାଣୀ, ଘନଘଟା,

କାରଖାନା, (ବିଂ.ବ.ବ୍ରୀ)ଯାହାର କାଣ୍ଡ ବା ଶାଖା ଲମ୍ବ ।
ଦୀର୍ଘକାଣ୍ଡା—ସ୍ତ୍ରୀ. ବ. ପାତାଳଗରୁଡ଼ୀ ଲତା, ଛିଣ୍ଡାଙ୍ଗା ।
ଦୀର୍ଘକାମୋଦୀ—ଗ୍ରା.ବ. ରାଗବିଶେଷ ।
ଦୀର୍ଘକାୟ—ପୁଂ. ବିଂ. (ଦୀର୍ଘ+କାୟ) ବ.ବ୍ରୀ; ଡେଙ୍ଗା, (ସ୍ତ୍ରୀ) ଦୀର୍ଘକାୟା ।
ଦୀର୍ଘକାଳ—କ୍ଲୀ. ବ. (ଦୀର୍ଘ + କାଳ) କ.ଧା; ବହୁକାଳ, ଅନେକଦିନ, ବହୁସମୟ ।
ଦୀର୍ଘକାଷ୍ଠ—ବ. (ଦୀର୍ଘ+କାଷ୍ଠ) କ.ଧା; କଡ଼ି ।
ଦୀର୍ଘକୀଳ—ପୁଂ.ବ. (ବ.ବ୍ରୀ) ଆଖ୍‌ରୋଟ ଗଛ, ଅଙ୍କୋଠବୃକ୍ଷ ।
ଦୀର୍ଘକୀଳକ—ପୁଂ. ବ. ( ଦୀର୍ଘକୀଳ+ ସ୍ୱାର୍ଥେ,କ) ଆଖ୍‌ରୋଟ ଗଛ ।
ଦୀର୍ଘକୁଳ୍ୟା—ସ୍ତ୍ରୀ. ବ. ଗଜପିପ୍ପଳୀ ।
ଦୀର୍ଘକୂରକ—କ୍ଲୀ.ବ. ରାଜାନ୍ନ, ଆନ୍ଧ୍ରଦେଶୋଦ୍ଭବ ଶାଳିଧାନବିଶେଷ ।
ଦୀର୍ଘକେଶ—ପୁଂ. ବିଂ. ବ.ବ୍ରୀ, ଦୀର୍ଘ କେଶ ଯାହାର, ଯାହାର ବାଳ ଲମ୍ବ, (ବି) ଭାଲୁ, (ସ୍ତ୍ରୀ) ଦୀର୍ଘକେଶୀ, ଦୀର୍ଘକେଶା ।
ଦୀର୍ଘକୋ(ଷ)ଶିକା—ସ୍ତ୍ରୀ. ବ. (ବ.ବ୍ରୀ) ଶାମୁକା, ଶୁକ୍ତି ।
ଦୀର୍ଘଗତି—ପୁଂ.ବ (ଦୀର୍ଘ+ଗତି)ବ.ବ୍ରୀ; ଉଷ୍ଟ୍ର, ଓଟ, (ବିଂ) ଦୀର୍ଘଗମନ ଦେଖ ।
ଦୀର୍ଘଗମନ—ତ୍ରି. ବ . (ଦୀର୍ଘ+ଗମ୍+ ଅନ) ଯେ ଦୀର୍ଘ ବା ଦ୍ରୁତ ଗମନ କରେ ।
ଦୀର୍ଘଗ୍ରନ୍ଥି—ପୁଂ. ବ. ଗଜପିପ୍ପଳୀ ।
ଦୀର୍ଘଗ୍ରୀବ—ପୁଂ. ବିଂ. ( ଦୀର୍ଘ+ ଗ୍ରୀବା ) ବ.ବ୍ରୀ; ଦୀର୍ଘଗ୍ରୀବାଯୁକ୍ତ, (ବି) ଓଟ, କଗ, ( ଅନ୍ୟରୂପ—ଦୀର୍ଘଘାଟିକ ) (ସ୍ତ୍ରୀ) ଦୀର୍ଘଗ୍ରୀବା ।
ଦୀର୍ଘଘାଟିକ—ପୁଂ. ସ୍ତ୍ରୀ..ବ..ଓଟ ।
ଦୀର୍ଘଚଞ୍ଚୁ—ପୁଂ. ବ. ପକ୍ଷୀବିଶେଷ ।
ଦୀର୍ଘଚିମ୍ବିକାବଳି—ଛନ୍ଦୋବିଶେଷ, ଛନ୍ଦ ଦେଖ ।
ଦୀର୍ଘଚ୍ଛଦ—ପୁଂ. ବ. ଇକ୍ଷୁ, ଆଖୁ, (ବିଂ) ଦୀର୍ଘଚ୍ଛଦକ, ଦୀର୍ଘପତ୍ରଯୁକ୍ତ ।
ଦୀର୍ଘଚ୍ଛନ୍ଦସ—କ୍ଲୀ. ବ. ଛନ୍ଦୋବିଶେଷ, ବଡ଼ଛନ୍ଦ ।
ଦୀର୍ଘଜଙ୍ଗଲ—ପୁଂ. ବ. ମତ୍ସ୍ୟବିଶେଷ ।
ଦୀର୍ଘଜଙ୍ଘ—ପୁଂ. ବିଂ(ବ.ବ୍ରୀ)ଲମ୍ବଜଙ୍ଘବିଶିଷ୍ଟ, (ପୁଂ. ବ.) ଓଟ, ବକ, (ସ୍ତ୍ରୀ) ଦୀର୍ଘଜଙ୍ଘା ।
ଦୀର୍ଘଜାନୁକ—ପୁଂ.ବ. ଓ ବିଂ. (ବ.ବ୍ରୀ) ଦୀର୍ଘଜଙ୍ଘ ଦେଖ ।
ଦୀର୍ଘଜିହ୍ୱ—ପୁଂ. ବ. (ଦୀର୍ଘ+ଜିହ୍ୱା ) ବ.ବ୍ରୀ; ସର୍ପ, ଦାନବବିଶେଷ, (ବିଂ) ବଡ଼ଜିହ୍ୱାବିଶିଷ୍ଟ (ସ୍ତ୍ରୀ) ଦୀର୍ଘଜିହ୍ୱା ।
ଦୀର୍ଘଜିହ୍ୱା—ସ୍ତ୍ରୀ. ବ. (ଦୀର୍ଘଜିହ୍ୱ+ଆ) ଦୀର୍ଘଜିହ୍ୱା ରାକ୍ଷସୀ ବିଶେଷ, କୁମାରାନୁଚର ମାତୃଗଣ ବିଶେଷ, (ବିଂ) ଦୀର୍ଘଜିହ୍ୱର ସ୍ତ୍ରୀଲିଙ୍ଗ ।
ଦୀର୍ଘଜିହ୍ୱୀ—ପୁଂ. ବ. କୁକ୍କୁର ।
ଦୀର୍ଘଜୀବନ—ବ. ( ଦୀର୍ଘ + ଜୀବନ ) କ.ଧା; ବହୁକାଳ ବଞ୍ଚିବା ।
ଦୀର୍ଘଜୀବୀ—ପୁଂ. ବିଂ. (ଦୀର୍ଘ + ଜୀବ + କ.ଇନ୍)ଦୀର୍ଘାୟୁଃ, ଚିରଜୀବୀ, (ସ୍ତ୍ରୀ) ଦୀର୍ଘଜୀବିନୀ ।
ଦୀର୍ଘତନୁ—ବିଂ. (ଦୀର୍ଘ + ତନୁ)ବ.ବ୍ରୀ; ଦୀର୍ଘଶରୀରବିଶିଷ୍ଟ,(ବି)ଦୀର୍ଘତରୁ ଦେଖ ।
ଦୀର୍ଘତନ୍ତୁ—ପୁଂ. ବ. ପ୍ରଭୃତି ସ୍ତବକ ଦେବାଦି ଦୀର୍ଘକାଳ ବ୍ୟାପୀ ସନ୍ତାନକ, (ଦୀର୍ଘ ଏହିପରି ତନ୍ତୁ) ।
ଦୀର୍ଘତପାଃ—ପୁଂ. ବିଂ. (ଦୀର୍ଘ+ ତପସ୍) ବ.ବ୍ରୀ; ଦୀର୍ଘକାଳ ତପସାଧନକାରୀ, (ବି) ଗୌତମଋଷି, ନୃପବିଶେଷ ।
ଦୀର୍ଘତମ—ପୁଂ. ବିଂ. (ଦୀର୍ଘ+ତମ) ଅନେକବସ୍ତୁ ମଧ୍ୟରେ ସବୁଠାରୁ ଲମ୍ବା, (ସ୍ତ୍ରୀ) ଦୀର୍ଘତମା ।
ଦୀର୍ଘତମାଃ—ପୁଂ. ବ. (ଦୀର୍ଘ+ତମସ୍) ଧନ୍ୱନ୍ତରିଙ୍କ ପିତା ଓ କାଶୀରାଜପୁତ୍ର, ବୃହସ୍ପତିଙ୍କ ଜ୍ୟେଷ୍ଠଭ୍ରାତା ଓ ଗୌତମଙ୍କ ପିତା, ଋଷିବିଶେଷ ।
ଦୀର୍ଘତର—ପୁଂ. ବିଂ. (ଦୀର୍ଘ+ତର) ଦୁଇ ବସ୍ତୁ ମଧ୍ୟରେ ଲମ୍ବ,(ସ୍ତ୍ରୀ)ଦୀର୍ଘତରା
ଦୀର୍ଘତରୁ—ପୁଂ.ବ.(ଦୀର୍ଘ + ତରୁ)କ.ଧା, ତାଳଗଛ, ଦୀର୍ଘବୃକ୍ଷମାତ୍ର,(ଅନ୍ୟରୂପ—ଦୀର୍ଘଦ୍ରୁ) ।
ଦୀର୍ଘତା—ସ୍ତ୍ରୀ. ବ. (ଦୀର୍ଘ+ଭା. ତା) ବହୁବ୍ୟାପିତା,ଲମ୍ବତ୍ୱ,ଲମ୍ବ, ବିସ୍ତାର ।
ଦୀର୍ଘତମିଷା—ସ୍ତ୍ରୀ.ବ. କର୍କଟୀ, କାକୁଡ଼ି ।
ଦୀର୍ଘତୁଣ୍ଡା—ସ୍ତ୍ରୀ. ବ.(ଦୀର୍ଘ+ତୁଣ୍ଡ+ଆ) ଛୁଞ୍ଛୁନ୍ଦରୀ,ଚୁଚୁନ୍ଦ୍ରାମୂଷା,(ବିଂ)ଦୀର୍ଘତୁଣ୍ଡଯୁକ୍ତ, (କ୍ଲୀ) ଦୀର୍ଘତୁଣ୍ଡ ।
ଦୀର୍ଘତୃଣ—ପୁଂ. ବ. ପଲ୍ଲିବାହ ତୃଣ, (କ୍ଲୀ) ଯେଉଁ ତୃଣ ଦୀର୍ଘ ।
ଦୀର୍ଘତ୍ରିପଦୀ—ଛନ୍ଦୋବିଶେଷ,ଛନ୍ଦ ଦେଖ
ଦୀର୍ଘଦଣ୍ଡ—ପୁଂ. ବ. (ଦୀର୍ଘ+ଦଣ୍ଡ) କ.ଧା, ଲମ୍ବବାଡ଼ି, ଦୀର୍ଘକାଳବ୍ୟାପୀ ରାଜଦଣ୍ଡ, ଶବଗଛ, ତାଳଗଛ (ବିଂ. ବ.ବ୍ରୀ) ଦୀର୍ଘଦଣ୍ଡ ଯାହାର ।
ଦୀର୍ଘଦଣ୍ଡୀ—ସ୍ତ୍ରୀ. ବ. ଗୋରକ୍ଷୀ ।
ଦୀର୍ଘଦର୍ଶିତା—ସ୍ତ୍ରୀ. ବ. ବହୁଦର୍ଶିତା, ଅନେକ ଦେଖି ଦେଖି ଯେଉଁ ଜ୍ଞାନ ଜନ୍ମିଥାଏ ।
ଦୀର୍ଘଦର୍ଶୀ—ପୁଂ. ବିଂ. (ଦୀର୍ଘ+ଦୃଶ୍+ ଇନ୍) ଦୂରଦର୍ଶୀ, ପରିଣାମଦର୍ଶୀ, ପ୍ରାଜ୍ଞ, ପଣ୍ଡିତ, ଯେ ବହୁଦୂର ପର୍ଯ୍ୟନ୍ତ ଦେଖିପାରେ, (ବି) ଶକୁନ, ଶାଗୁଣା, ଭାଲୁ, ପେଚା, (ସ୍ତ୍ରୀ) ଦୀର୍ଘଦର୍ଶିନୀ ।
ଦୀର୍ଘଦୃଷ୍ଟି—ପୁଂ. ବିଂ. (ଦୀର୍ଘ+ଦୃଷ୍ଟି) ବ.ବ୍ରୀ, ଦୀର୍ଘଦର୍ଶୀ ଦେଖ, ପଣ୍ଡିତ, ଦୂରଦର୍ଶୀ, ସୂକ୍ଷ୍ମଦର୍ଶୀ, ପରିଣାମଦର୍ଶୀ, (ବି) ଦୂରବୀକ୍ଷଣ ଯନ୍ତ୍ର, ଦୂରଦର୍ଶନ, ଭବିଷ୍ୟଦ୍‌ଦୃଷ୍ଟି ।
ଦୀର୍ଘଦ୍ରୁ—ପୁଂ.ବ.ତାଳବୃକ୍ଷ,ଶିମିଳୀଗଛ ।
ଦୀର୍ଘଦ୍ରୁମ—ପୁଂ.ବ.(କ.ଧ ) ଶିମିଳୀଗଛ, ତାଳଗଛ ।
ଦୀର୍ଘଦ୍ୱାର—ବ୍ରହ୍ମଖଣ୍ଡୋକ୍ତ ବଙ୍ଗାଳଦେଶାନ୍ତର୍ବର୍ତ୍ତୀ ଗୋଟିଏ ଜନପଦ ।
ଦୀର୍ଘନଖ—ବୁଦ୍ଧଙ୍କର ସାମୟିକ ଜଣେ ନିଷ୍ଠ ବ୍ରହ୍ମଚାରୀ ।
ଦୀର୍ଘନାଦ—ପୁଂ. ବିଂ. (ବ.ବ୍ରୀ) ଯହିଁରୁ

ଉଚ୍ଚଶବ୍ଦ ବାହାରେ, ଦୀର୍ଘଶବ୍ଦକାରୀ, (ବି) ଶଙ୍ଖ, କୁକ୍କୁର, କୁକୁଡ଼ା, ଅଁଠ-ଉଚ୍ଚଶବ୍ଦ, (କ.ଧା) ସ୍ତ୍ରୀ. ଦୀର୍ଘନାଦା ।

ଦୀର୍ଘନାଲ—ପୁଂ. ବି. ଯାବନାଲ, ଗୁଣ୍ଡ୍ର-ତୃଣ, (କ୍ଲୀ) ଦୀର୍ଘବୃନ୍ତ ।

ଦୀର୍ଘନାସ—ପୁଂ. ବିଂ. (ଦୀର୍ଘ+ନାସା) ବ.ବ୍ରୀ; ନାକୁଆ, ବଡ଼ନାକା, (ସ୍ତ୍ରୀ) ଦୀର୍ଘନାସିକା ।

ଦୀର୍ଘନିଦ୍ରା—ସ୍ତ୍ରୀ. ବି. (ଦୀର୍ଘ+ନିଦ୍ରା) ବହୁକାଳବ୍ୟାପୀ ନିଦ୍ରା, ମହାନିଦ୍ରା, ମୃତ୍ୟୁ ।

ଦୀର୍ଘନିଶ୍ୱାସ—ପୁଂ. ବି. (ଦୀର୍ଘ+ନିଶ୍ୱାସ) କ.ଧା; ଶ୍ରମ ବା ଆସନ୍ନ ମୃତ୍ୟୁପୀଡ଼ା-ଜନିତ ଦୀର୍ଘକାଳ ବ୍ୟାପୀ ନିଶ୍ୱାସ, ଖେଦନିଶ୍ୱାସ, ଦୁଃଖଜନିତ ଦୀର୍ଘକାଳ ସ୍ଥାୟୀ ନିଶ୍ୱାସ ।

ଦୀର୍ଘପକ୍ଷ—ପୁଂ. ବିଂ. (ବ.ବ୍ରୀ) ଦୀର୍ଘପକ୍ଷ-ବିଶିଷ୍ଟ, ଯାହାର ପକ୍ଷ ଲମ୍ବା, (ବି) କଳିଙ୍ଗପକ୍ଷୀ, ମୁନିଆଁ ଚଢ଼େଇ, ଲମ୍ବା-ଡେଣା ।

ଦୀର୍ଘପଟୋଳିକା—ସ୍ତ୍ରୀ. ବି. ଲତାଫଳ ବିଶେଷ, ମଧୁରତରଡ଼ା, କୁନ୍ଦୁରୁ, ଧୁନ୍ଦୁଲ, ଦୁଡ଼ୁକାବିଶେଷ, ଛଚନ୍ଦା, ଗସ୍ତାକଲରା ।

ଦୀର୍ଘପତ୍ର—ପୁଂ. ବିଂ. (ଦୀର୍ଘ+ପତ୍ର) ବ.ବ୍ରୀ; ଯେଉଁ ବୃକ୍ଷଲତାଦିର ବଡ଼ ପତ୍ର ଥାଏ, (ବି) ରାଜପଲାଣ୍ଡୁ, ନାଲି ପିଆଜ, ବିଷ୍ଣୁକନ୍ଦ, ହରିଦର୍ଭ, କୁଶ-ବିଶେଷ, ଆଖୁଗଛ, ତାଳଗଛ, କୋଚିଲା ଗଛ, (କ.ଧା) ଲମ୍ବପତ୍ରର ।

ଦୀର୍ଘପତ୍ରକ—ପୁଂ. ବିଂ. (ଦୀର୍ଘପତ୍ର+କ) ଦୀର୍ଘପତ୍ର ଦେଖ, (ବି) ନାଲିରସୁଣ, ଏରଣ୍ଡ, ଗର୍ଜ୍ଜଗଛ, ବେତସ, ବେତ. କସ୍ତାଲ, ଜଳମଧୂକ ।

ଦୀର୍ଘପତ୍ରା—ସ୍ତ୍ରୀ. ବିଂ. (ଦୀର୍ଘପତ୍ର+ଆ) ଦୀର୍ଘପତ୍ରର ସ୍ତ୍ରୀଲିଙ୍ଗ, (ବି) କେତକୀ, ବଣଜାମ୍ବୁ, ଚନ୍ଦପର୍ଣ୍ଣୀ, ଶାଳପର୍ଣ୍ଣୀ, ଦେଖ ।

ଦୀର୍ଘପତ୍ରିକା—ସ୍ତ୍ରୀ. ବିଂ. (ଦୀର୍ଘପତ୍ରକ+ଆ) ଦୀର୍ଘପତ୍ର ଦେଖ, (ବି) ଧଳାବଚ, ଘୃତକୁମାରୀ, ଶ୍ୱେତପୁନର୍ନବା, ଶାଳ-ପର୍ଣ୍ଣୀ ଦେଖ ।

ଦୀର୍ଘପତ୍ରୀ—ସ୍ତ୍ରୀ. ବି. (ଦୀର୍ଘପତ୍ର+ଈ) ପଳାଶୀଲତା, ମହାଚଂଚୁଶାକ ।

ଦୀର୍ଘପର୍ଣ୍ଣୀ—ସ୍ତ୍ରୀ. ବି. ପୃଶ୍ନିପର୍ଣ୍ଣୀ ।

ଦୀର୍ଘପଲ୍ଲବ—ପୁଂ. ବି. ଶଣବୃକ୍ଷ, (ବିଂ) ଆୟତପତ୍ରଯୁକ୍ତ, (ପୁଂ. କ୍ଲୀ) ଆୟତ-ପଲ୍ଲବ ।

ଦୀର୍ଘପାଦ—ପୁଂ. ବି. (ଦୀର୍ଘ+ପାଦ) ବ.ବ୍ରୀ; ବଡ଼ିଆକାଙ୍କ, ସାରସ, ହାଡ଼-ଗିଲାପକ୍ଷୀ, ବକପକ୍ଷୀ, (ବିଂ) ଯାହାର ଲମ୍ବଗୋଡ଼ଅଛି, ଲମ୍ବପାଦଆ, ଢେଙ୍ଗେଇ ଗୋଡ଼ିଆ, (ସ୍ତ୍ରୀ) ଦୀର୍ଘପାଦା, ଦୀର୍ଘପାଦୀ ।

ଦୀର୍ଘପାଦପ—ପୁଂ. ବି. (ଦୀର୍ଘ+ପାଦପ) କ.ଧା; ତାଳଗଛ, ଗୁଆଗଛ, ନଡ଼ିଆ ଗଛ ।

ଦୀର୍ଘପୁଣ୍ଡ୍ର—ପୁଂ. ବି. (କ.ଧା.) ଲମ୍ବା-ତିଳକ. (ବିଂ. ବ.ବ୍ରୀ) ଲମ୍ବାତିଳକ-ବିଶିଷ୍ଟ ।

ଦୀର୍ଘପୃଷ୍ଠ—ପୁଂ. ବି. (ଦୀର୍ଘ+ପୃଷ୍ଠ) ବ.ବ୍ରୀ; ସର୍ପ, (ବିଂ) ଲମ୍ବପିଠିଆ, (ସ୍ତ୍ରୀ) ଦୀର୍ଘପୃଷ୍ଠା ।

ଦୀର୍ଘପ୍ରଜ୍ଞ—ପୁଂ. ବିଂ. (ଦୀର୍ଘ+ପ୍ରଜ୍ଞା) ବ.ବ୍ରୀ; ବହୁଦର୍ଶୀ, (ବି) ଦ୍ୱାପରର ରାଜ ବୃଷପର୍ବା, ଦୀର୍ଘପ୍ରଜ୍ଞତା ।

ଦୀର୍ଘପ୍ରସ୍ଥ—ଗ୍ରା. ବି. (ସଂ-ଦୈର୍ଘ୍ୟ ଓ ପ୍ରସ୍ଥ) କୌଣସି ପଦାର୍ଥ ବା ଜମିର ଲମ୍ବ ଓ ଚଉଡ଼ା ।

ଦୀର୍ଘଫଳ—ପୁଂ. ବି. (ଦୀର୍ଘ+ଫଳ) ବ.ବ୍ରୀ; ଆରଗ୍ୱଧ, ସୁନାରୀ ଗଛ ଦେଖ, (ବିଂ) ଦୀର୍ଘଫଳ ବିଶିଷ୍ଟ, (ସ୍ତ୍ରୀ) ଦୀର୍ଘଫଳା ।

ଦୀର୍ଘଫଳକ—ପୁଂ. ବି. (ଦୀର୍ଘଫଳ+କ) ଅଗସ୍ତି ଗଛ ।

ଦୀର୍ଘଫଳା—ସ୍ତ୍ରୀ. ବିଂ. (ଦୀର୍ଘଫଳ+ଆ) ଦୀର୍ଘଫଳର ସ୍ତ୍ରୀଲିଙ୍ଗ; (ବି) ଜତୁକ ଲତା, କାପିଲଦ୍ରାକ୍ଷା ଲତା, ଅଙ୍ଗୁର, ଦୀର୍ଘଫଳିକା (ଅନ୍ୟରୂପ) ।

ଦୀର୍ଘଫଳିକା—ସ୍ତ୍ରୀ. ବି. (ଦୀର୍ଘଫଳ+ଆ) କାପିଲଦ୍ରାକ୍ଷା, ଜତୁକା ।

ଦୀର୍ଘବାଲା—ସ୍ତ୍ରୀ. ବିଂ. ବ.ବ୍ରୀ; (ଦୀର୍ଘ+ବାଲ+ଆ) ଦୀର୍ଘକେଶ ବିଶିଷ୍ଟା, (ବି) ଚମରୀ ଗୋ, (ପୁଂ) ଦୀର୍ଘବାଲ ।

ଦୀର୍ଘବାହୁ—ପୁଂ. ବି. (ଦୀର୍ଘ+ବାହୁ) ବ.ବ୍ରୀ; ଶିବାନୁଚରବିଶେଷ, ଧୃତରାଷ୍ଟ୍ରଙ୍କର ପୁତ୍ରଭେଦ, (ବିଂ) ଲମ୍ବବାହୁଯୁକ୍ତ, ଆଜାନୁଲମ୍ବିତ (ବାହୁ) ।

ଦୀର୍ଘବାହୁଗର୍ବିତ—ପୁଂ. ବି. ଦୈତ୍ୟ-ବିଶେଷ ।

ଦୀର୍ଘଭୁଜ—ପୁଂ. ବି. ଶିବାନୁଚରବିଶେଷ, ଦୀର୍ଘବାହୁ ଯୁକ୍ତ ବ୍ୟକ୍ତି ।

ଦୀର୍ଘମାତ୍ରା—ସ୍ତ୍ରୀ. ବି. (ଦୀର୍ଘ+ମାତ୍ରା) କ.ଧା; ବ୍ରାକେଟ୍ ବା ବନ୍ଧନୀ ଚିହ୍ନ, (ବ୍ୟାକରଣ) ବ୍ୟଞ୍ଜନ ବର୍ଣ୍ଣରେ ଯୁକ୍ତ ଦୀର୍ଘସ୍ୱର ।

ଦୀର୍ଘମାତ୍ରିକ—ବିଂ. (ଦୀର୍ଘ+ମାତ୍ରା+ଇକ) ଯେଉଁ ଛନ୍ଦରେ ଦୀର୍ଘମାତ୍ରା ଥାଏ ।

ଦୀର୍ଘମାରୁତ—ପୁଂ. ବି. (ଦୀର୍ଘ+ମାରୁତ) ବ.ବ୍ରୀ; ହାତୀ ।

ଦୀର୍ଘମୁଖ—ପୁଂ. ବି. ଯକ୍ଷବିଶେଷ, (ବିଂ) ଦୀର୍ଘମୁଖ ଯୁକ୍ତ ।

ଦୀର୍ଘମୁଖୀ—ସ୍ତ୍ରୀ. ବିଂ. (ଦୀର୍ଘ+ମୁଖ+ଈ) ଲମ୍ବମୁହିଁ, (ବି) ଚୁଚୁନ୍ଦ୍ରା, (ପୁଂ) ଦୀର୍ଘମୁଖ ।

ଦୀର୍ଘମୂଳ—ପୁଂ. ବି. କ୍ଷୀରମୋରଟା, କ୍ଷୀରକଣ୍ଟକ, ବିଲ୍ୱାନ୍ତକ ବୃକ୍ଷ, (କ୍ଲୀ) ବେଣାପର ପୀଡ଼ାଭତୃଣ ।

ଦୀର୍ଘମୂଳକ—କ୍ଲୀ. ବି. (ଦୀର୍ଘମୂଳ+କ) ମୂଳକ, ମୂଳା ।

ଦୀର୍ଘମୂଳା—ସ୍ତ୍ରୀ. ବି. (ଦୀର୍ଘମୂଳ+ଆ) ଶ୍ୟାମାଲତା, ଶାଳପର୍ଣ୍ଣୀ ।

ଦୀର୍ଘମୂଳିକା—ସ୍ତ୍ରୀ. ବି. (ଦୀର୍ଘମୂଳକ+ଆ) ଦୁରାଲଭା, ଦୁଲ୍ଲଭା ।

ଦୀର୍ଘମୂଳୀ—ସ୍ତ୍ରୀ. ବି. (ଦୀର୍ଘମୂଳ+ଈ) ଦୁଲ୍ଲଭା ଦୁରାଲଭା ।

ଦୀର୍ଘଯଜ୍ଞ—ତ୍ରି. ବିଂ. ଯେ ବହୁକାଳ ଧରି ଯଜ୍ଞ କରେ, (ପୁଂ) ଦ୍ୱାପରର ଜଣେ ଅଯୋଧ୍ୟା ନୃପତି ।

ଦୀର୍ଘଯାଥ—ତ୍ରି. ବିଂ. (ଦୀର୍ଘ+ଯା+ଥ) ଦୀର୍ଘକାଳ ଦ୍ୱାରା ଗନ୍ତବ୍ୟ ।

**ଦୀର୍ଘରଙ୍ଗା**—ସ୍ତ୍ରୀ. ବ. (ଦୀର୍ଘରଙ୍ଗ+ଆ) ବ.ବ୍ରୀ; ହଳଦୀ, ହରିଦ୍ରା ।

**ଦୀର୍ଘରତ**—ବି°.(ଦୀର୍ଘ+ରତ)ବ.ବ୍ରୀ; ଦୀର୍ଘକାଳ ରମଣକାରୀ, (ବି) କୁକୁର, (ସ୍ତ୍ରୀ) ଦୀର୍ଘରତା ।

**ଦୀର୍ଘରଦ**—ପୁଂ. ବ. (ଦୀର୍ଘ+ରଦ) ବ.ବ୍ରୀ;ବାରହା,ଶୂକର,(ବି°)ଦାନ୍ତୁରା ।

**ଦୀର୍ଘରବ**—ପୁଂ. ବି. ଉତ୍କଳର ଜଣେ ରାଜା ।

**ଦୀର୍ଘରସନ**—ପୁଂ. ବ ଓ ବି°. (ଦୀର୍ଘ+ରସନା) ବ.ବ୍ରୀ; ଦୀର୍ଘଜିହ୍ୱ ଦେଖ, (ସ୍ତ୍ରୀ) ଦୀର୍ଘରସନା ।

**ଦୀର୍ଘରାଗା**—ସ୍ତ୍ରୀ. ବ. (ଦୀର୍ଘ+ରାଗ) ବ.ବ୍ରୀ; ହଳଦୀ ।

**ଦୀର୍ଘରାତ୍ର**—ପୁଂ. ବ. (ଦୀର୍ଘ+ରାତ୍ରି) କ.ଧା;ବଡ଼ ରାତ୍ରି,ଦୀର୍ଘନିଶା,ଲମ୍ବ ରାତ୍ରି ବହୁକାଳ ।

**ଦୀର୍ଘରାବ**—ତ୍ରି. ବି°. ଉଚ୍ଚଶବ୍ଦକାରୀ ।

**ଦୀର୍ଘରୋଗୀ**—ପୁଂ. ବି°. ଚିରରୋଗୀ, ଯେ ସବୁବେଳେ ରୋଗଗ୍ରସ୍ତ ।

**ଦୀର୍ଘରୋମା**—ପୁଂ. ସ୍ତ୍ରୀ. ବି°. (ଦୀର୍ଘ+ରୋମନ୍) ବ.ବ୍ରୀ; ଲମ୍ବା ଲୋମ ବିଶିଷ୍ଟ, (ବି) ଭଲ୍ଲୁକ, ଭାଲୁ,ଧୃତରାଷ୍ଟ୍ରଙ୍କର ଏକ ପୁତ୍ର, ଶିବାନୁଚରବିଶେଷ ।

**ଦୀର୍ଘରୋହିଷ(କ)**—ବ. (ଦୀର୍ଘ+ରୋହିଷ) କ.ଧା; ଧନନ୍ତ୍ରୀ ଗୁଳ୍ମ, ସୁଗନ୍ଧ ତୃଣବିଶେଷ, (ପର୍ଯ୍ୟାୟ) ଦୃଢ଼କାଣ୍ଡ, ଦୃଢ଼ଚ୍ଛଦ, ଜଙ୍ଗେଷ୍ଟ; ଦୀର୍ଘନାଳ,ଊକ୍ତସାର । [ ଲତାଶାଳ

**ଦୀର୍ଘଲତାଦ୍ରୁମ**—ପୁଂ.ବ. ଅଶ୍ୱକର୍ଣ୍ଣ ବୃକ୍ଷ ।

**ଦୀର୍ଘଲୋଚନ**—ପୁଂ. ବି°. (ଦୀର୍ଘ+ଲୋଚନ) ବ.ବ୍ରୀ; ଯାହାର ଚକ୍ଷୁ ଦୀର୍ଘ, (ବି) ଶିବଙ୍କ ଅନୁଚରବିଶେଷ,ଧୃତରାଷ୍ଟ୍ରଙ୍କର ଏକ ପୁତ୍ର ।

**ଦୀର୍ଘଲୋହିତଯଷ୍ଟିକା**—ସ୍ତ୍ରୀ.ବ. ରକ୍ତଇକ୍ଷୁ, ନାଲିଆ ରଙ୍ଗର ଆଖୁ ।

**ଦୀର୍ଘବଂଶ**—ପୁଂ.ବ. ନଳ, ପ୍ରାଚୀନବଂଶସମ୍ଭୂତ, ସମ୍ଭ୍ରାନ୍ତକୁଳ ।

**ଦୀର୍ଘବକ୍ତ୍ର**—ପୁଂ. ସ୍ତ୍ରୀ. ବ. ହସ୍ତୀ, (ବି°) ଲମ୍ବବଦନ, (ସ୍ତ୍ରୀ) ଦୀର୍ଘବକ୍ତ୍ରା ।

**ଦୀର୍ଘବର୍ତ୍ତିକା**—ସ୍ତ୍ରୀ. ବ. କୁମ୍ଭୀର ।

**ଦୀର୍ଘବର୍ଷାଭୂ**—ପୁଂ. ସ୍ତ୍ରୀ. ବ. ଶ୍ୱେତ ପୁନର୍ନବା ।

**ଦୀର୍ଘବଲ୍ଲୀ**—ସ୍ତ୍ରୀ. ବ. ମହେନ୍ଦ୍ରବାରୁଣୀ, ବଡ଼ ମହାକାଳ, ପାତାଳ ଗରୁଡ଼ୀ ଲତା. ପଳାଶୀ ଲତା । [ ବୃକ୍ଷ ।

**ଦୀର୍ଘବୃକ୍ଷ**—ପୁଂ. ବ. ଶାଳ ବୃକ୍ଷ, ତାଳ

**ଦୀର୍ଘବୃନ୍ତ**—ପୁଂ.ବ. ସୁନାରି ଗଛ,ଲତାଦ୍ରୁମ, ଲତାଶାଳ ।

**ଦୀର୍ଘବୃନ୍ତକ**—ପୁଂ. ବ. (ଦୀର୍ଘବୃନ୍ତ+ସ୍ୱାର୍ଥେ. କ) ଦୀର୍ଘବୃନ୍ତ ଦେଖ ।

**ଦୀର୍ଘବୃନ୍ତା**—ସ୍ତ୍ରୀ.ବ. ଇନ୍ଦ୍ରଚିର୍ଭିଟୀ ଲତା

**ଦୀର୍ଘବୃନ୍ତକା**—ସ୍ତ୍ରୀ. ବ. ଏଳାପର୍ଣ୍ଣୀ ।

**ଦୀର୍ଘଶଯ୍ୟନ**—ବ. (ଦୀର୍ଘ+ଶଯ୍ୟନ) କ.ଧା; ମହାନିଦ୍ରା, ମୃତ୍ୟୁ ।

**ଦୀର୍ଘଶର**—ପୁଂ.ବ. ଯାବନାଳ ଧାନ୍ୟ ।

**ଦୀର୍ଘଶସ୍ୟ**—ପୁଂ. ବ. ଗାବଫଳ ।

**ଦୀର୍ଘଶାଖ**—ପୁଂ. ବ. ଶଣ ବୃକ୍ଷ, ଶାଳ ବୃକ୍ଷ ।

**ଦୀର୍ଘଶାଖିକା**—ସ୍ତ୍ରୀ. ବ. ମାଲାମ୍ନୀକ୍ଷୁପ ।

**ଦୀର୍ଘଶିମ୍ବିକା**—ପୁଂ. ବ. ରାଜକାବିଶେଷ, ଏକ ପ୍ରକାର ସୋରିଷ ।

**ଦୀର୍ଘଶୂକ**—ପୁଂ. ବ. ଶାଳଧାନ୍ୟ, ଶାଳଧାନ୍ୟବିଶେଷ ।

**ଦୀର୍ଘଶୂକକ**—କ୍ଲୀ. ବ. ରାଜାନ୍ନ, ଆନ୍ଧ୍ରଦେଶର ଆମନ ଧାନକୁ ରାଜାନ୍ନ ବୋଲୁଯାଏ ।

**ଦୀର୍ଘଶ୍ୱାସ**—ବ. (ଦୀର୍ଘ+ଶ୍ୱାସ) କ.ଧା; ଦୀର୍ଘନିଶ୍ୱାସ ଦେଖ ।

**ଦୀର୍ଘଶ୍ମଶ୍ରୁ**—ତ୍ରି.ବି°.ବଡ଼ ବଡ଼ ଦାଢ଼ିଯୁକ୍ତ, ବୃହତ୍ ଶ୍ମଶ୍ରୁଯୁକ୍ତ ।

**ଦୀର୍ଘଶ୍ରବାଃ**—ପୁଂ. ବ. ଦୀର୍ଘତମାଙ୍କ ପୁତ୍ର ଋଷିବିଶେଷ, (ବି°) ଦୀର୍ଘକର୍ଣ୍ଣଯୁକ୍ତ ।

**ଦୀର୍ଘଶ୍ରୁତ**—ତ୍ରି. ବି°. (ଦୀର୍ଘ+ଶ୍ରୁତ; ଉପ-ତତ୍) ଯାହା ବହୁଦୂର ପର୍ଯ୍ୟନ୍ତ ଶୁଣାଯାଏ, (ବ.ବ୍ରୀ) ସୁଦୂରବିଖ୍ୟାତ ।

**ଦୀର୍ଘସକ୍ଥ**—ତ୍ରି. ବି°. ଦୀର୍ଘୋରୁ, ଊ ।

**ଦୀର୍ଘସକ୍ଥ**—କ୍ଲୀ. ବ. ଶକଟ ।

**ଦୀର୍ଘସତ୍ର**—କ୍ଲୀ. ବ. (କ.ଧା) ବହୁକାଳ ସାଧ୍ୟ ଯଜ୍ଞ, ତୀର୍ଥବିଶେଷ, ଯାବଜ୍ଜୀବନ କର୍ତ୍ତବ୍ୟ ଅଗ୍ନିହୋତ୍ର କର୍ମ,(ବି°. ବ.ବ୍ରୀ) ଯେ ଦୀର୍ଘକାଳବ୍ୟାପୀ ଯଜ୍ଞ କରେ ।

**ଦୀର୍ଘସତ୍ରୀ**—ପୁଂ.ବ.ଦୀର୍ଘସତ୍ରକାରୀ ବ୍ୟକ୍ତି ।

**ଦୀର୍ଘସୁରତ**—ପୁଂ. ବ. (ଦୀର୍ଘ+ସୁରତ) ବ.ବ୍ରୀ; କୁକୁର, (ବି°.) ଦୀର୍ଘରତ, (ସ୍ତ୍ରୀ) ଦୀର୍ଘସୁରତା ।

**ଦୀର୍ଘସୂକ୍ଷ୍ମ**—ପୁଂ. ବ. ପ୍ରାଣାୟାମବିଶେଷ ।

**ଦୀର୍ଘସୂତ୍ର**—ପୁଂ.ବି°.(ଦୀର୍ଘ+ସୂତ୍ର)ବ.ବ୍ରୀ; ଚିରକ୍ରିୟ,ବିଳମ୍ବେ କାର୍ଯ୍ୟକାରୀ,ହେଳାଦରିଆ, ସବୁ କାମକୁ ବିଳମ୍ବରେ କରିବା ଯାହାର ସ୍ୱଭାବ, ଦୀର୍ଘତନ୍ତୁବିଶିଷ୍ଟ, (ସ୍ତ୍ରୀ) ଦୀର୍ଘସୂତ୍ରା ।

**ଦୀର୍ଘସୂତ୍ରତା**—ସ୍ତ୍ରୀ. ବ. (ଦୀର୍ଘସୂତ୍ର+ତ+ଆ) ଚିରକ୍ରିୟତା ।

**ଦୀର୍ଘସୂତ୍ରୀ**—ପୁଂ.ବି°. (ଦୀର୍ଘସୂତ୍ର+ଇନ୍) କ.ଧା;ଚିରକ୍ରିୟ, ବିଳମ୍ବେ କାର୍ଯ୍ୟକାରୀ, ଅଳସ, କାର୍ଯ୍ୟରେ କାଳକ୍ଷେପଣକାରୀ, ଦୀର୍ଘସୂତ୍ର ।

**ଦୀର୍ଘସୂତ୍ରେ**—ଗ୍ରା.କ୍ରି. ବି°. ବିଳମ୍ବ ସହକାରେ, ବହୁକାଳ ପରେ, ବହୁବିଳମ୍ବରେ ।

**ଦୀର୍ଘସ୍କନ୍ଧ**—ପୁଂ. ବ. (ଦୀର୍ଘ+ସ୍କନ୍ଧ) ବ.ବ୍ରୀ; ତାଳଗଛ ।

**ଦୀର୍ଘସ୍ୱର**—ପୁଂ.ବ.(ଦୀର୍ଘ+ସ୍ୱର)କ.ଧ; ଦ୍ୱିମାତ୍ରିକ ସ୍ୱରବର୍ଣ୍ଣ, ବହୁକାଳସ୍ଥାୟୀ ଶବ୍ଦ ।

**ଦୀର୍ଘା**—ସ୍ତ୍ରୀ.ବି°. (ଦୀର୍ଘ+ଆ) ଦୀର୍ଘର ସ୍ତ୍ରୀଲିଙ୍ଗ,(ବ) ପୃଶ୍ନିପର୍ଣ୍ଣୀ,ଦୀର୍ଘପୋଖରୀ ।

**ଦୀର୍ଘାକାର**—ତ୍ରି.ବି°.(ଦୀର୍ଘ+ଆକାର) ବ.ବ୍ରୀ; ଢେଙ୍ଗା, ଦୀର୍ଘଆକୃତିବିଶିଷ୍ଟ, ଲମ୍ବୁଡ଼ା, ( ପୁଂ.ସ୍ତ୍ରୀ.ବ )ଦୀର୍ଘଅବୟବ, ଲମ୍ବାଚେହେରା,ଢେଙ୍ଗାଶରୀର (କ.ଧା) ।

**ଦୀର୍ଘାଧର**—ପୁଂ.ବି°. (ଦୀର୍ଘ+ଅଧର) ବ.ବ୍ରୀ; ଯାହାର ଓଠ ଦୀର୍ଘ, (ବ) ଓଟ, (ସ୍ତ୍ରୀ) ଦୀର୍ଘାଧରା ।

**ଦୀର୍ଘାଧ୍ୱଗ**—ପୁଂ. ବ.(ଦୀର୍ଘ+ଅଧ୍ୱନ୍+ଗମ୍+କ.ଅ) ଯେ ଦୀର୍ଘ ପଥ ଚାଲେ,

(ବି) ଉଷ୍ଟ୍ର, ଦୂତ, (ଦୀର୍ଘଗତ—ଅନ୍ୟ ରୂପ)।

**ଦୀର୍ଘାୟୁଃ**—ତ୍ରି. ବିଂ. (ଦୀର୍ଘ+ଆୟୁଃ) ବ.ବ୍ରୀ; ଚିରଜୀବୀ, ବହୁକାଳ ଜୀବନଧାରଣକାରୀ, (ପୁଂ.ବି) ଶିମିଳୀଗଛ. କୁଆ, ମାର୍କଣ୍ଡେୟ ମୁନି. (କ.ଧା) ବହୁକାଳବ୍ୟାପୀ ପରମାୟୁ।

**ଦୀର୍ଘାୟୁତ୍ୱ**—କ୍ଲୀ. ବି. ଦୀର୍ଘାୟୁ।

**ଦୀର୍ଘାୟୁଧ**—ପୁଂ. ବି. (ଦୀର୍ଘ+ଆୟୁଧ) କ.ଧା; ବରଛା, କୁନ୍ତାସ୍ତ୍ର, ଶୂକର।

**ଦୀର୍ଘାୟୁଷ୍ଟ**—ପୁଂ. ବି. ବହୁକାଳ ଆୟୁ ଦୀର୍ଘଜୀବନ।

**ଦୀର୍ଘାୟୁଷ୍ୟ**—ପୁଂ. ବି. ଶ୍ୱେତମନ୍ଦାରକ, (ବିଂ) ଦୀର୍ଘାୟୁଯୁକ୍ତ।

**ଦୀର୍ଘାୟୁସ୍**—ପୁଂ. ବି. ଦୀର୍ଘାୟୁଷ୍ୟଯୁକ୍ତ, ଚିରଜୀବୀ।

**ଦୀର୍ଘାୟୁରସ୍ତୁ**—ବାକ୍ୟ. (ସଂ-ଦୀର୍ଘାୟୁଃ+ଅସ୍ତୁ) ଦୀର୍ଘଜୀବନ ଲଭ ହେବ।

**ଦୀର୍ଘାରଣ୍ୟ**—କ୍ଲୀ.ବି. (ଦୀର୍ଘ+ଅରଣ୍ୟ) ନିବିଡ଼ ବଡ଼ ବନ। [ ବୃକ୍ଷ।

**ଦୀର୍ଘାଲର୍କ**—ପୁଂ. ବି. ଶ୍ୱେତମନ୍ଦାରକ

**ଦୀର୍ଘାସ୍ୟ**—ପୁଂ. ବି. (ଦୀର୍ଘ+ଆସ୍ୟ) ବ.ବ୍ରୀ; ଆୟତ ମୁଖ, ହସ୍ତୀ, ଶିବାନୁଚରବିଶେଷ, ପଶ୍ଚିମୋତ୍ତର ଦେଶବିଶେଷ. (ବିଂ) ଯାହାର ମୁହଁ ଲମ୍ବା, (ବ.କ.ଧ) ଲମ୍ବଡ଼ାମୁହଁ।

**ଦୀର୍ଘାହ୍ନ**—ପୁଂ. ବି. (ଦୀର୍ଘ+ଅହ୍ନ) ବ.ବ୍ରୀ; ଗ୍ରୀଷ୍ମକାଳ (ଯେଉଁ ସମୟରେ ଦିନ ବଡ଼)।

**ଦୀର୍ଘିକା**—ସ୍ତ୍ରୀ. ବି. (ଦୀର୍ଘ+କ+ଆ) ବଡ଼ ପୋଖରୀ, ଲମ୍ବା ପୋଖରୀ, (ପର୍ଯ୍ୟାୟ-ବାପୀ), (ଗ୍ରା.ବି) ପ୍ରାଚୀନ ଅର୍ଣ୍ଣବପୋତବିଶେଷ।

**ଦୀର୍ଘୀକୃତ**—ବିଂ. (ଦୀର୍ଘ+ଚ୍ୱି+କୃତ) ଯାହାକୁ ଦୀର୍ଘ କରାଯାଇଅଛି, (ବି) ଦୀର୍ଘୀକରଣ।

**ଦୀର୍ଘୀଭୂତ**—ବିଂ. (ଦୀର୍ଘ+ଚ୍ୱି+ଭୂତ) ଯାହା ପୂର୍ବେ ଦୀର୍ଘ ନ ଥିଲା ବର୍ତ୍ତମାନ ହୋଇଅଛି, (ବି) ଦୀର୍ଘୀଭାବ।

**ଦୀର୍ଘୋଦରୁ**—ପୁଂ. ବି. ଓଳଂଗାଲଡ଼ା।

**ଦୀର୍ଘୋଚ୍ଚାରଣ**—କ୍ଲୀ. ବି. (ଦୀର୍ଘ+ଉଚ୍ଚାରଣ) ଶବ୍ଦମାନଙ୍କର ଗୁରୁ ଉଚ୍ଚାରଣ

**ଦୀର୍ଣ୍ଣ**—ପୁଂ.ବିଂ. (ଦୃ+ର୍ମ.ତ) ବିଦାରିତ, ଭଗ୍ନ, ଖଣ୍ଡିତ, (ଦୃ+କ.ତ) ଭୀତ, ବି.(ଦୃ+ଭା.ତ) ବିଦାରଣ, (ସ୍ତ୍ରୀ) ଦୀର୍ଣ୍ଣା।

**ଦୁ**—(ଧାତୁ) ଉତ୍କ୍ଷିପ୍ତ କରିବା, ପୋଡ଼ିଦେବା, ପୀଡ଼ା ଦେବା, ଦୁଃଖଦେବା, କଷ୍ଟ ବା ଦୁଃଖ ପାଇବା, ଗତିକରିବା।

**ଦୁ**—ଗ୍ରା. ବିଂ. (ସଂ-ଦ୍ୱି) ଦୁଇ।

**ଦୁଆ**—ଗ୍ରା. ବି. (ସଂ-ଦ୍ୱି) କଉଡ଼ି ଓ ପଶା ଖେଳର ୨ ସଂଖ୍ୟକ ସାର, ଦୁଇବିନ୍ଦୁଥିବା ତାସ, କାନ୍ଥ ଦେବା ସମୟେ ଦିଆଯିବା ଏକପସ୍ତ କାଦୁଅ.(ଦୋ-ଧାତୁ) ଧାନ କଟାଯିବା, (ବିଂ) ଦୁଇଥର ବଟା ହୋଇଥିବା, ଦୁଇଥର କୁଟାହୋଇଥିବା. ଦ୍ୱିତୀୟ, (ସଂ-ଧ୍ରୁବକ) ଗୀତରେ ପାଳିଆ ଧରିବା ବା ବୋଲିବା ପାଳି, କଟାଯାଇଥିବା, (ଯା.ବି).ଆଶୀର୍ବାଦ, ଈଶ୍ୱରଙ୍କୁ ଅନ୍ୟ ପାଇଁ ପ୍ରାର୍ଥନା, କୋରାନର ଗୋଟିଏ ମନ୍ତ୍ର।

**ଦୁଆଁ**—ଗ୍ରା.ବି.(ସଂ-ଦୋହନ, ଦୁହ୍ ଧାତୁ) ଦୁହାଁ ଦେଇ, (ପ୍ରା.ସମ୍ବଲ.ବି.) ଯଘା।

**ଦୁଆକ**—ଗ୍ରା. ବି. (ପାନବରଜିଆ ଭାଷା) ପାନଲଡ଼ାର ଦୁଇଟି ପୋତକୁ ବା କେଉଁକୁ ଏକଜାଗା ବାନ୍ଧିବାପାଇଁ ପ୍ରଥମଗଣ୍ଠି, ଯାହାକି ଦୁଇପୋତର ମଧ୍ୟରେ ଥାଏ।

**ଦୁଆଡ଼**—ଗ୍ରା. ବି. ପ୍ରାଚୀନ ଓଡ଼ିଶାରେ ଯୁଦ୍ଧରେ ବ୍ୟବହୃତ ଦୁଇ କେନା ଥିବା ଅସ୍ତ୍ରବିଶେଷ।

**ଦୁଆତ**—ଯା. ବି. (ଆରବୀ—ଦାବାତ୍) ମସ୍ୟାଧାର, କାଳିଘଣ୍ଡା।

**ଦୁଆତକଲମ**—ଯ.ବି.(ସହଚର, ଦାବାତ୍+କଲମ) କାଳିଘଡ଼ି ଓ କଲମ।

**ଦୁଆତପୂଜା**—ଗ୍ରା.ବି. ବିହାର ଅଞ୍ଚଳରେ କାର୍ତ୍ତିକ ଶୁକ୍ଳଦ୍ୱିତୀୟ ଦିନ ଅନୁଷ୍ଠିତ ପର୍ବବିଶେଷ। [ ତିଥି।

**ଦୁଆଦଶୀ**—ଗ୍ରା.ବି. (ସଂ-ଦ୍ୱାଦଶୀ) ଦ୍ୱାଦଶୀ

**ଦୁଆଦୁଇ**—(ପ୍ରା. ଗଞ୍ଜାମ. ବି.) (ସଂ-ଦୋଧାତୁ) ଦୁଆଦୋଇ, ଧାନ୍ୟାଦିର ଛେଦନ କର୍ମ।

**ଦୁଆନ**—(ପ୍ରା.ସିଂହଭୂମ) ବି. ଦେଓ୍ୱାନ୍।

**ଦୁଆପଡ଼ୁଆଁ**—ଗ୍ରା.ବି. (ସଂ-ଦ୍ୱିତୀୟ ଓ ପ୍ରଥମ) ଜ୍ୟେଷ୍ଠସନ୍ତାନ, ପରବର୍ତ୍ତୀ ଦ୍ୱିତୀୟସନ୍ତାନ, ମୃତ ଜ୍ୟେଷ୍ଠସନ୍ତାନ ତଳିଆ ଦ୍ୱିତୀୟସନ୍ତାନ।

**ଦୁଆପାଳ**—ଗ୍ରା.ବି. ଦୁଆରପାଳ ଦେଖ।

**ଦୁଆପିକା**—ପ୍ରା.(ଗଞ୍ଜାମ) ବି. ଏକପ୍ରକାର କଉଡ଼ିଖେଳ।

**ଦୁଆବ**—ଯା. ବି. (ଫା-ଦୁଆବା) (ସଂ-ଦ୍ୱି+ଅପ୍) ଦୁଇନଦୀର ମଧ୍ୟବର୍ତ୍ତୀ ଦେଶ, ଗଙ୍ଗା ଓ ଯମୁନାର ମଧ୍ୟବର୍ତ୍ତୀ ଦେଶ।

**ଦୁଆବଟା**—ଗ୍ରା. ବିଂ. (ସଂ-ଦ୍ୱିବଟ୍ଟନ) ଦୁଇଥର ବଟା ହୋଇଥିବା।

**ଦୁଆଯିବା**—ଗ୍ରା. କ୍ରି. (ସଂ-ଦୋ ଧାତୁ) (ଶସ୍ୟ) କଟାଯିବା।

**ଦୁଆର**—ଗ୍ରା. ବି. ଦରଜା, ଫାଟକ, ଦ୍ୱାରନିକଟସ୍ଥ ପିଣ୍ଡା, ପ୍ରାଙ୍ଗଣ, ଅଗଣା, ଶସ୍ତ୍ରବିଶେଷ।

**ଦୁଆରକିଳିବା**—ଗ୍ରା.କ୍ରି. (ସଂ-ଦ୍ୱାର ଓ କୀଲ୍‌ଧାତୁ) ଦ୍ୱାର ବନ୍ଦକରିବା, କବାଟ ରୁନ୍ଧିକରିବା।

**ଦୁଆରଗଡ଼ା**—(ପ୍ରା. ଯାଜପୁର. ବି.) ବ୍ରତ ବିବାହରେ ସଦର ଦୁଆରମୁହଁରେ ଓ କାନ୍ଥରେ ଦିଆଯିବା ଝୋଟି ବା ଚିତା।

**ଦୁଆରଜଗା(ଗେ)ଇବା**—ଗ୍ରା. କ୍ରି ଘର ଜଗିବ ପାଇଁ ଦ୍ୱାରଦେଶରେ ଲୋକ ରଖାଇବା।

**ଦୁଆରଜଗିଆ**—ଗ୍ରା. ବିଂ. ଯେ ଦ୍ୱାରରେ ପହରା ଦିଏ, (ବି) ଦ୍ୱାରରକ୍ଷକ, ଦ୍ୱାସ୍ଥ।

**ଦୁଆରଜଗିବା**—ଗ୍ରା.କ୍ରି. ଦୁଆରମୁହଁରେ ଠିଆହେବା, ଦ୍ୱାର ରକ୍ଷାକରିବା।

**ଦୁଆରଦିଆ**—ଗ୍ରା.ବି. ଦୁଆର କିଳିବା।

**ଦୁଆରଦୁଆର**—ଗ୍ରା.ଅବ୍ୟ. ପ୍ରତିଘର।

**ଦୁଆରଦୁଆରମାଗିବା**—ଗ୍ରା.କ୍ରି ପ୍ରତିଘର ମାଗିବୁଲିବା।

ଦୁଆର ନ ମାଡ଼ିବା—ଗ୍ରା. କ୍ରି.. କୌଣସି ବ୍ୟକ୍ତିର ଦ୍ୱାର ନିକଟକୁ ଆଦୌ ନ ଆସିବା ।

ଦୁଆରପଡ଼ିବା—ଗ୍ରା.ବି.ସାମାଜିକ ଗୋଳମାଳରେ କୌଣସି ଲୋକଙ୍କର ଘରକୁ ନ ଯିବା ବା ଖିଆପିଆ ନ କରିବା, ବସନ୍ତକାଦି ରୋଗଯୋଗୁଁ ଜନଶୂନ୍ୟ ହେବା ।

ଦୁଆରପାଳି—ଗ୍ରା. ବି. ( ସଂ-ଦ୍ୱି+ପାଳି ) ( ସଂ-ଦ୍ୱିରାଗମନ ) ବାହାହୋଇଥିବା କନ୍ୟାର ଦ୍ୱିତୀୟଥର ଶାଶୁଘରକୁ ଯିବା ।

ଦୁଆରଫିଟାଇବା—ଗ୍ରା.କ୍ରି.ବନ୍ଦ ହୋଇଥିବା କବାଟକୁ ମୁକ୍ତ ବା ମେଲାକରିବା ବନ୍ଦକବାଟକୁ ମେଲା କରିଦେବା,ଦୁଆର ମେଲାକରିବା ।

ଦୁଆରବନ୍ଧ—ଗ୍ରା.ବି. ( ସଂ-ଦ୍ୱାରବନ୍ଧ ) ଦେହଳୀ, କବାଟର ଚଉକାଠ;ଏରୁଣ୍ଡିବନ୍ଧ ।

ଦୁଆରମଡ଼ା—ଗ୍ରା. ବି. ଅନ୍ୟର ଘରକୁ ଯିବା, (କ୍ରି) ଦୁଆରମାଡ଼ିବା ।

ଦୁଆରମୁହଁ—ଗ୍ରା.ବି.(ସଂ-ଦ୍ୱାରମୁଖ)ଗୃହର ପ୍ରବେଶମାର୍ଗ ।

ଦୁଆରୀ—(ପ୍ରା. ଗଞ୍ଜାମ. ବି.) ଦୌରୀ ।

ଦୁଆରୀ—ଗ୍ରା.ବି.(ସଂ-ଦ୍ୱାରୀ) (ଫା-ଦର୍‌ବାନ୍) ଦ୍ୱାରରକ୍ଷକ, ଦରୁଆନ୍, ଦ୍ୱାରପାଳ, ଗ୍ରାମ୍ୟ ଯାତ୍ରାଦଳର ବିଦୂଷକ ।

ଦୁଆରୀପୂଜା—ଗ୍ରା.ବି. ଯାତ୍ରାରେ ଠାକୁର ଦାଣ୍ଡରେ ବିଜେ ହେଲାବେଳେ ଗୃହସ୍ଥ ସ୍ୱ ଦ୍ୱାରରେ ଯେଉଁ ଭୋଗାଦି ପୂଜା କରାଏ ବା କରେ ।

ଦୁଆଳି—ଗ୍ରା.ବି. (ସଂ-ଦୋଧାରୁ) ଧାନକଟାଳୀ, (ବିଂ) ଦୁହାଁଳି ଦେଖ ।

ଦୁଆଳିଆ—ଯା.ବିଂ.(ଫା-ଦିବାଲା)ଦେବାଳିଆ, ଋଣ ପରିଶୋଧରେ ଅସମର୍ଥ, ନିର୍ଦ୍ଧନ,ଗରିବ,ଦାନ କରି କରି ନିଃସ୍ୱ, ସର୍ବସ୍ୱାନ୍ତ ।

ଦୁଇ—ଗ୍ରା.ବି.(ସଂ-ଦ୍ୱି,ଦ୍ୱୟ,ଦ୍ୱୌ; ପ୍ରା-ଦୁଅ. ଇଂ. ଟୁ , ଜର୍ମାନୀ.ତ୍ୱଓ ).ଦୁଇସଂଖ୍ୟା, (ବିଂ) ଦ୍ୱିସଂଖ୍ୟକ, ଦ୍ୱିତୀୟ, କେତେକ, ଅଳ୍ପସଂଖ୍ୟକ, (ଗ୍ରା.ଅବ୍ୟ—ଗୃହାଳୀ) ଝାଡ଼ାଫେରା ଯିବାପାଇଁ ଛାତ୍ର ଗୁରୁଙ୍କୁ କରିବା ପ୍ରାର୍ଥନା ।

ଦୁଇଏକ—ଗ୍ରା.ବିଂ.(ସଂ-ଦ୍ୱି + ଏକ)କିଛି, କେତେକ ।

ଦୁଇକଡ଼ାରହୋଇଯିବା—ଗ୍ରା.କ୍ରି.ଅତ୍ୟନ୍ତ ହୀନ ଅବସ୍ଥାପନ୍ନ ହୋଇଯିବ , ଅପଦାର୍ଥ ହୋଇଯିବା,ଅତ୍ୟନ୍ତ ଅପମାନିତ ହେବା ଅତି ତୁଚ୍ଛ ବୋଲି ପରିଗଣିତ ହେବା ।

ଦୁଇଗୁଣ—ଗ୍ରା.ବି.ବିଂ ଓ କ୍ରି.ବିଂ. ସଂ-ଦ୍ୱିଗୁଣ) ପୂର୍ବାପେକ୍ଷା ଅଧିକ ବେଶି, ଦୋହରି, ଡବଲ ।

ଦୁଇଗୋଡ଼ିଆ—ଗ୍ରା.ବିଂ.ବି. ଦିଗୋଡ଼ିଆ ଦେଖ, ଦୁଇଦଳିଆ ଦେଖ ।

ଦୁଇଟା—ଗ୍ରା. ଦ୍ୱିସଂଖ୍ୟା ।

ଦୁଇଟିଆ—ଗ୍ରା. ବିଂ. ଦୁଇଜଣ ଏକତ୍ର ହୋଇଥିବା,ଦୁଇସଂଖ୍ୟା ସମନ୍ୱିତ ରାଶି, ଯୋଡ଼ିଯୋଡ଼ି ହୋଇ ।

ଦୁଇଠା—ଗ୍ରା.ବି.(ସଂ-ଦ୍ୱିସ୍ଥାନ)ଦୁଇସ୍ଥାନ; ଦୁଇଜାଗା, ଅବ୍ୟ. ଦୁଇସ୍ଥାନରେ, ଦୁଇଥର ।

ଦୁଇଦଳିଆ—ଗ୍ରା. ବିଂ. (ସଂ-ଦ୍ୱିଦଳ) ଯେଉଁ ବ୍ୟକ୍ତି ଦୁଇପକ୍ଷରେ ଯୋଗଦିଏ ।

ଦୁଇଦିନ—ଗ୍ରା. ବି. (ସଂ-ଦ୍ୱି+ଦିନ) (ଲ.ଅର୍ଥ) କେତେକସମୟ, କେତେଦିନ ମାତ୍ର ।

ଦୁଇଦିନିଆ(ଆ)—ଗ୍ରା. ବିଂ. (ସଂ-ଦ୍ୱି+ଦିନ) ଅଳ୍ପଦିନ ସ୍ଥାୟୀ, ଅଚିରସ୍ଥାୟୀ ।

ଦୁଇନାଆ(ହା)ରେ ଗୋଡ଼ଦେବା—ଗ୍ରା.କ୍ରି. ଦୁଇନାବରେ ଏକ ସମୟରେ ଗୋଡ଼ ପକାଇବା, (ଲ.ଅର୍ଥ) ଏକାବେଳକେ ଦୁଇଟି ଅବଲମ୍ବନ ଗ୍ରହଣ କରିବା ।

ଦୁଇପାଖିଆ(ଆଁ)—ଗ୍ରା. ବି. ଯେଉଁ ପରିବାରରେ ସ୍ୱାମୀ ସ୍ତ୍ରୀ ବ୍ୟତୀତ ଆଉ କେହି ନଥାନ୍ତି, (ବିଂ)କେବଳ ମାତ୍ର ବିବାହିତ ଦମ୍ପତିବିଶିଷ୍ଟ (ପରିବାର) ।

ଦୁଇପରାଣୀ—ଗ୍ରା. ବି. (ସଂ-ଦ୍ୱି+ପ୍ରାଣୀ) ସ୍ୱାମୀ ଓ ସ୍ତ୍ରୀ, ପିତୃମାତୃ ଓ ଅପତ୍ୟାଦିହୀନ ଦମ୍ପତି ।

ଦୁଇପଲିକପାଟ—(ପ୍ରା.ବସ୍ତର)ବି.ଜାଉଁଳି କବାଟ ।

ଦୁଇପହର—ଗ୍ରା. ବି. (ସଂ-ଦ୍ୱି+ପ୍ରହର) ଦିପହର ଦେଖ ।

ଦୁଇପହରିଆ—ଗ୍ରା. ବି. ବିଂ. ଦିପହରିଆ ଦେଖ ।

ଦୁଇହାତିଆ—ଗ୍ରା. ବିଂ.ଦିହାତିଆ ଦେଖ ।

ଦୁଉଛି—ଗ୍ରା. (ଇତର)କ୍ରି.(ଦିଶୁଛିକ୍ରିୟାର ରୂପାନ୍ତର) ଦିଶୁଛି, ଦେଖାଯାଉଛି ।

ଦୁଉଶୀ—ଗ୍ରା.ବି.ଗ୍ରେଟ ଜାହାଜ,ସୁଲୁପ୍ ।

ଦୁଃ—ଗ୍ରା. ଅବ୍ୟ. ଛି, ଧତ୍, ଧୁତ୍,(ଦୋ-କ.ଉକ୍ତି) ଦୁଷ୍ଟ,ନିନ୍ଦିତ, ନିଷିଦ୍ଧ,ଦୁଃଖ ।

ଦୁଃକୋଳ—ପୁଂ.ବି.ଗୈରନାମକ ଗନ୍ଧଦ୍ରବ୍ୟ

ଦୁଃଖ୍—(ଧାତୁ) ବି. କ୍ଲେଶଦେବା, କଷ୍ଟ ପାଇବା ।

ଦୁଃଖ—କ୍ଲୀ. ବି. (ଦୁଖ୍+ଘ.ଅ) କ୍ଲେଶ, କଷ୍ଟ,ବେଦନା,ଜ୍ୱାଳା,ଯନ୍ତ୍ରଣା, ଦୁର୍ଦ୍ଦଶା, ବିପଦ, ସଙ୍କଟ, ଅସୁଖ, ପୀଡ଼ା, ମନଃପୀଡ଼ା, କ୍ଷୋଭ, ଅଧର୍ମ ହେତୁ ଆତ୍ମାର ଗ୍ଲାନି, ଆକ୍ଷେପ, ଅନୁତାପ,(ଦୁଃଖମୟ) ସଂସାର,.ବିଂ. (ଦୁଃଖ+କ.ଅ) ଦୁଃଖଜନକ, କ୍ଲେଶକର, (ଗ୍ରା. ବି) ଦୁଃଖ ଦେଖ, (ବିପ) ସୁଖ, (ସ୍ତ୍ରୀ)ଦୁଃଖା ।

ଦୁଃଖକର—ବିଂ. (ଦୁଃଖ+କୃ+ କ.ଅ) କ୍ଲେଶକର, ଯାହା କଷ୍ଟଦିଏ ।

ଦୁଃଖକରିବା—ଗ୍ରା. କ୍ରି. ଆକ୍ଷେପ କରିବା, ଅଭିମାନ କରିବା, ବିରକ୍ତହେବା,ଦୁଃଖ ଧନ୍ଦା କରିବା, ମୂଲଲାଗିବା, ଆପଣାର ମନୋଦୁଃଖ ପରଆଗେ ପ୍ରକାଶ କରିବା ।

ଦୁଃଖଗ୍ରାମ—ପୁଂ.ବି.(ଦୁଃଖ+ଗ୍ରାମ)୬ତତ୍; ସଂସାର, ଦୁଃଖଲୋକ, ଦୁଃଖାୟତନ ।

ଦୁଃଖଜନକ—ବିଂ.(ଦୁଃଖ + ଜନ + କ. ଅକ) କଷ୍ଟଦାୟକ ।

ଦୁଃଖଜାତ—ତ୍ରି. ବିଂ. ସଂଜାତଦୁଃଖ, (କ୍ଲୀ) ୬ତତ୍; ଦୁଃଖସମୁଦାୟ ।

ଦୁଃଖଜୀବୀ— . ବିଂ. (ଦୁଃଖ + ଜୀବ୍+ କ.ଇନ୍) ଯେ କଷ୍ଟରେ ଜୀବନ ଯାପନ କରେ, (ସ୍ତ୍ରୀ) ଦୁଃଖଜୀବନୀ । [ ଖବ ।

ଦୁଃଖତା—ସ୍ତ୍ରୀ. ବି. (ଦୁଃଖ+ତା)ଦୁଃଖର

**ଦୁଃଖତ୍ରୟ**—କ୍ଲୀ. ବ. (ଦୁଃଖ+ତ୍ରୟ) ତ୍ରିବିଧ ସାଂସାରିକ ଦୁଃଖ, ତ୍ରିତାପ, (ଆଧ୍ୟାତ୍ମିକ, ଆଧିଭୌତିକ ଓ ଆଧି-ଦୈବିକ ଏହି ତ୍ରିବିଧ ଦୁଃଖ)।

**ଦୁଃଖଦ**—ପୁଂ. ବିଂ. (ଦୁଃଖ+ଦା+କ.ଅ) ଯାହା ଦୁଃଖଦିଏ, ଯନ୍ତ୍ରଣାଦାୟକ (ସ୍ତ୍ରୀ) ଦୁଃଖଦା।

**ଦୁଃଖଦଗ୍ଧ**—ପୁଂ. ବିଂ. (ଦୁଃଖ+ଦଗ୍ଧ) ୩ତତ୍; କ୍ଲେଶକର, ଦୁଃଖଜନକ, ଅତି ଦୁଃଖିତ।

**ଦୁଃଖଦାୟକ**—ପୁଂ. ବିଂ. (ଦୁଃଖ+ଦା+ଣ.ଅକ) ଯାହା ଦୁଃଖ ଦିଏ, (ସ୍ତ୍ରୀ) ଦୁଃଖଦାୟିକା।

**ଦୁଃଖଦିର**—ପୁଂ. ବ. (ଦୁଷ୍ଟ+ଖଦିର) ମହାସାର ଖଦିର ବିଶେଷ।

**ଦୁଃଖଦେବା**—ଗ୍ରା. କ୍ରି. କଷ୍ଟଦେବା, ପୀଡ଼ା ଦେବା।

**ଦୁଃଖଦୋହ୍ୟା**—ସ୍ତ୍ରୀ. ବିଂ. ଯେଉଁ ଗାଈ ଠାରୁ ଅତି କଷ୍ଟରେ ଦୁଗ୍ଧ ଦୁହାଁଯାଏ।

**ଦୁଃଖଧନ୍ଦା**—ଗ୍ରା. ବ. ସଂସାର ଯାତ୍ରା ନିର୍ବାହ ନିମନ୍ତେ ଦୈନିକ ପରିଶ୍ରମ, ବ୍ୟବସାୟ, ଜୀବିକା।

**ଦୁଃଖନିବହ**—ତ୍ରି. ବିଂ. (ଦୁଃଖ+ନି+ବହ+ର୍ମି.ଅ) ଦୁଃସହ।

**ଦୁଃଖପଡ଼ିବା**—ଗ୍ରା. କ୍ରି. ଦୁଃଖସହିବା, କଷ୍ଟ-ସହିବା, କଷ୍ଟପଡ଼ିବା, (ପ୍ରା) ବ. ଦୁଃଖର ସମୟ ଉପସ୍ଥିତ ହେବା।

**ଦୁଃଖପାଇବା**—ଗ୍ରା. କ୍ରି. କଷ୍ଟଭୋଗ କରିବା, ପ୍ରସବ ବେଦନା ଭୋଗକରିବା, ବିପନ୍ନହେବା।

**ଦୁଃଖପାଶୋର**—ଗ୍ରା ବିଂ. (ସଂ-ଦୁଃଖ-ବିସ୍ମରଣ) ଯାହା ଦ୍ୱାରା ମନୁଷ୍ୟ ଦୁଃଖ ଭୁଲିଯାଏ।

**ଦୁଃଖପ୍ରଦ**—ପୁଂ. ବିଂ. (ଦୁଃଖ+ପ୍ର+ଦା+କ.ଅ) ଦୁଃଖଦ, (ସ୍ତ୍ରୀ) ଦୁଃଖପ୍ରଦା।

**ଦୁଃଖବହୁଳ**—ବିଂ. (ଦୁଃଖ+ବହୁଳ) କ.ଗ୍ରା, ଦୁଃଖମୟ, ଯହିଁରେ ଦୁଃଖଭୋଗ ବେଶି, (ବି) ଦୁଃଖବହୁଳତା, (ସ୍ତ୍ରୀ) ଦୁଃଖବହୁଳା।

**ଦୁଃଖଭାଗୀ**—ପୁଂ. ବିଂ. (ଦୁଃଖ+ଭଜ୍+କ.ଇନ୍) ଦୁଃଖରେ ସାଥୀ, ଦୁଃଖୀ; ଦୁଃଖ ଭୋଗକାରୀ, (ସ୍ତ୍ରୀ) ଦୁଃଖଭାଗିନୀ।

**ଦୁଃଖଭଞ୍ଜନ**—ଗ୍ରା. ବିଂ. ଦୁଃଖ ସହିବାକୁ ଅଭିପ୍ରେତ।

**ଦୁଃଖଭୋଗ**—ପୁଂ. ବ. (ଦୁଃଖ+ଭୋଗ) ୬ତତ୍, କଷ୍ଟପାଇବା।

**ଦୁଃଖମୟ**—ପୁଂ. ବିଂ. (ଦୁଃଖ+ମୟ) ଦୁଃଖରେ ପୂର୍ଣ୍ଣ, (ସ୍ତ୍ରୀ) ଦୁଃଖମୟୀ।

**ଦୁଃଖର ବିଷୟ**—ଗ୍ରା. ବ. ଦୁଃଖଜନକ ବ୍ୟାପାର।

**ଦୁଃଖର ସାଥୀ**—ଗ୍ରା. ବ. ଯେଉଁ ଲୋକ ଅନ୍ୟର ଦୁଃଖ ଦେଖି ସହି ନପାରି ତାହାର ଦୁଃଖ ମୋଚନ କରିବାକୁ ଯାଏ, ଦୁଃଖରେ ଅନ୍ୟର ସହାୟ, ବିପଦ-ବନ୍ଧୁ।

**ଦୁଃଖଲବ୍ଧ**—ବିଂ. (ଦୁଃଖ+ଲବ୍ଧ) ୩ତତ୍. ଯାହା ଅତି କଷ୍ଟରେ ମିଳିଅଛି।

**ଦୁଃଖଲବ୍ଧିକା**—ସ୍ତ୍ରୀ. ବ. ଦୁଃଖରେ ଯାହା ମିଳେ, ଲକ୍ଷ୍ମୀ ବିଶେଷ।

**ଦୁଃଖଲଭ୍ୟ**—ବିଂ. (ଦୁଃଖ+ଲଭ୍ୟ) ୩ତତ୍, ଯାହା ଅତି କଷ୍ଟରେ ମିଳେ।

**ଦୁଃଖଲାଗିବା**—ଗ୍ରା. ବ. ହୃଦୟରେ ଦୁଃଖ ଅନୁଭବ କରିବା, (ଗ୍ରା. କ୍ରି) ଦୁଃଖମୟ ଜଣାପିବ।

**ଦୁଃଖଲୋକ**—ପୁଂ. ବ. ସଂସାର।

**ଦୁଃଖଶୀଳ**—ତ୍ରି. ବିଂ. (ଦୁଃଖ+ଶୀଳ୍+ଅ) ଯେ ସର୍ବଦା ଦୁଃଖାନୁଭବ କରେ।

**ଦୁଃଖସମୁଦ୍ର**—ବ. (ଦୁଃଖ+ସମୁଦ୍ର; ରୂପକ) ସମୁଦ୍ରପରି ଅସୀମ ଦୁଃଖ।

**ଦୁଃଖସାଗର**—ପୁଂ. ବ. ଦୁଃଖର ସମୁଦ୍ର।

**ଦୁଃଖସାଧ୍ୟ**—ବିଂ. (ଦୁଃଖ+ସାଧ୍ୟ), ୩ତତ୍; ଦୁଃସାଧ୍ୟ, ଯାହା କଷ୍ଟରେ ସାଧିତ ହୁଏ।

**ଦୁଃଖସୁଖ**—ବ. (ବିପରୀତାର୍ଥକ ସହଚର, ଦ୍ୱନ୍ଦ୍ୱ) ଦୁଃଖ ଓ ସୁଖ, କଷ୍ଟ ଓ ଆନନ୍ଦ, ସାଂସାରିକ ଅନୁଭବ।

**ଦୁଃଖସୁଖହେବା**—ଗ୍ରା. କ୍ରି. ଦୁଇଜଣଙ୍କ ମଧ୍ୟରେ ସ୍ୱ ସ୍ୱ ଦୁଃଖ ଓ ସୁଖ ବିଷୟରେ କଥାବାର୍ତ୍ତା ହେବା।

**ଦୁଃଖସଂସ୍ପର୍ଶ**—ବ. ଦୁଃଖସ୍ପର୍ଶ।

**ଦୁଃଖସଞ୍ଚାର**—ପୁଂ. ବ. କଷ୍ଟେ ଯାପନ, କଷ୍ଟଭୋଗ।

**ଦୁଃଖସ୍ପର୍ଶ**—ବ. ଦୁଃଖଭୋଗ।

**ଦୁଃଖହର**—ପୁଂ. ବ. (ଦୁଃଖ+ହୃ+କ.ଅ, ଉପ. ତତ୍; ୬ତତ୍) ଦୁଃଖନାଶକ, କ୍ଲେଶନିବାରକ।

**ଦୁଃଖହରା**—ସ୍ତ୍ରୀ. ବ. (ଦୁଃଖ+ହୃ+ଅ.ଆ) ଦୁଃଖନାଶିନୀ ଦୁର୍ଗା।

**ଦୁଃଖହାରୀ**—ପୁଂ. ବିଂ. (ଦୁଃଖ+ହୃ+ଇନ୍) ଦୁଃଖହର ଦେଖ, (ସ୍ତ୍ରୀ) ଦୁଃଖହାରିଣୀ।

**ଦୁଃଖାକର**—ପୁଂ. ବ. (ଦୁଃଖ+ଆକର) ଦୁଃଖର ଖଣି, ସଂସାର (ବିଂ) ଦୁଃଖଦାୟକ।

**ଦୁଃଖାତୁର**—ବିଂ. ଦୁଃସ୍ୱଭାବ, ଦୁଃଶାସନ।

**ଦୁଃଖାନ୍ୱିତ**—ତ୍ରି. ବିଂ. (ଦୁଃଖ+ଅନ୍ୱିତ) ଦୁଃଖଯୁକ୍ତ।

**ଦୁଃଖାର୍ତ୍ତ**—ତ୍ରି. ବିଂ: (ଦୁଃଖ+ଆର୍ତ୍ତ) (୩ତତ୍) ଦୁଃଖ ପୀଡ଼ିତ, ଯେ ଦୁଃଖରେ କାତର ହୋଇଅଛି।

**ଦୁଃଖାଦୁଃଖୀ**—ଗ୍ରା. ବ. ପରସ୍ପର ମଧ୍ୟରେ ଥିବା ମନୋମାଳିନ୍ୟ; ମନୋମାଳିନ୍ୟ।

**ଦୁଃଖାନ୍ତ**—ବ. (ଦୁଃଖ+ଅନ୍ତ), ୬ତତ୍; ଦୁଃଖର ଶେଷ, (ବି.ଗ୍ରା) ଯାହାର ପରିଣାମ ଦୁଃଖ, ଯେଉଁ ନାଟକ ବା ଉପନ୍ୟାସର ଶେଷରେ ଦୁଃଖମୟ ଘଟଣା ବର୍ଣ୍ଣିତ ହୋଇଅଛି।

**ଦୁଃଖିତ**—ପୁଂ. ବିଂ. (ଦୁଃଖ+ସଞ୍ଜାତାର୍ଥେ ଇତ ବା ଦୁର୍+ଖ୍ୟା+ର୍ମି.ତ) ଦୁଃଖ-ପ୍ରାପ୍ତ, କ୍ଷୁବ୍ଧ, ସନ୍ତପ୍ତ, ଦୁଃଖୀ, ଦୁଃଖଯୁକ୍ତ, ଅସୁଖୀ, କ୍ଲିଷ୍ଟ, (ବି) (ଦୁର୍+ଖ୍ୟା+ଷ.ତ) ଦୁଃଖ, (ସ୍ତ୍ରୀ) ଦୁଃଖିତା।

**ଦୁଃଖୀ**—ପୁଂ. ବିଂ. (ଦୁଃଖ+ଇନ୍) ଦୁଃଖିତ, ଦାରିଦ୍ର୍ୟପୀଡ଼ିତ, ଗରିବ, ଦୀନ, ଦୁର୍ଦ୍ଦଶା-ଗ୍ରସ୍ତ, (ଗ୍ରା. ବିଂ.) ଦୁଃଖଭୋଗକାରୀ, (ବି) ଦରିଦ୍ର ବ୍ୟକ୍ତି, (ସ୍ତ୍ରୀ) ଦୁଃଖିନୀ।

**ଦୁଃଖୀଧନ**—ଗ୍ରା. ବ. ଗରିବର ଧନ ଯେପରି ପ୍ରିୟ ସେହିପରି ପ୍ରିୟତମ ବସ୍ତୁ ବା ବ୍ୟକ୍ତି

**ଦୁଃଖୀରତନ**—ଗ୍ରା. ବ. ଦୁଃଖୀର ସମ୍ପତ୍ତି ଦୁଃଖୀଧନ ଦେଖ।

ଦୁଃଖୀଶ୍ୟାମଦାସ—ମେଦନୀପୁରର "ଗୋବିନ୍ଦ ମଙ୍ଗଳ" ନାମକ କାବ୍ୟ ରଚୟିତା ।
ଦୁଃପ୍ରାପ୍ୟ—ବି.ବିଂ. ଦୁଃଖଲଭ୍ୟ ।
ଦୁଃଶକୁନ—ବି. (ଦୁର୍+ଶକୁନ),କ.ଧା; ଅଶୁଭ ଲକ୍ଷଣ, ମନ୍ଦ ପକ୍ଷ ଲକ୍ଷଣ,(ବିଂ) (ବ.ବ୍ରୀ) ଅଶୁଭ ଲକ୍ଷଣବିଶିଷ୍ଟ ।
ଦୁଃଶଳ—ପୁଂ.ବିଂ: ଧୃତରାଷ୍ଟ୍ରଙ୍କର ଜଣେ ପୁତ୍ର ।
ଦୁଃଶଳା—ସ୍ତ୍ରୀ.ବି. ଧୃତରାଷ୍ଟ୍ରଙ୍କର କନ୍ୟା ଓ ଜୟଦ୍ରଥଙ୍କ ପତ୍ନୀ ।
ଦୁଃଶା—ଗ୍ରା.ବି. ଦୁଃଶାସନ ଦେଖ, ଦୁଃଶାସନର ଡାକନାମ ।
ଦୁଃଶାସ—ପୁଂ.ବି.(ଦୁର୍+ଶାସ୍+ମି.ଅ) ଦୁର୍ଦ୍ଦମ, ଦୁର୍ଦ୍ଦମନୀୟ, (ସ୍ତ୍ରୀ) ଦୁଃଶାସା ।
ଦୁଃଶାସନ—ପୁଂ.ବିଂ. (ଦୁର୍+ଶାସ୍+ମି.ଅନ) ଦୁର୍ଦ୍ଦମ୍ୟ, (ବି) ଦୁର୍ଯ୍ୟୋଧନର ଜଣେ ଭାଇ, (କ.ଧା—ଦୁ+ଶାସନ) ମନ୍ଦଶାସନ, କଷ୍ଟକର ଶାସନ ।
ଦୁଃଶୀଳ—ପୁଂ.ବିଂ.(ଦୁର୍+ଶୀଳ),ବ.ବ୍ରୀ; ଦୁଷ୍ଟସ୍ୱଭାବ, ଦୁଶ୍ଚରିତ, (ବି)ଦୁଃଶୀଳତା, (ସ୍ତ୍ରୀ) ଦୁଃଶୀଳା ।
ଦୁଃଶୀଳତା—ସ୍ତ୍ରୀ.ବି. (ଦୁଃଶୀଳ+ତା) ଅବିନୟତା, ଦୁଶ୍ଚରିତତା ।
ଦୁଃଶୋଧ—ବିଂ.(ଦୁର୍+ଶୁଧ+ମି.ଅ) ଯାହାକୁ ଶୋଧନ କରିବା ଅତି କଷ୍ଟକର, ଦୁଃଶୋଧ୍ୟ ।
ଦୁଃଶ୍ରବ—ବି.ବିଂ. (ଦୁର୍+ଶ୍ରୁ+ମି.ଅ) ଯାହା ଶୁଣିଲେ ମନରେ କଷ୍ଟ ହୁଏ, ଯାହା କଷ୍ଟରେ ଶୁଣାଯାଇ ପାରେ, ଅଶ୍ରାବ୍ୟ, ଶ୍ରୁତିକଟୁ, (ବି) ଦୁଃଶ୍ରବତା, କାବ୍ୟର ଦୋଷବିଶେଷ ।
ଦୁଃଶ୍ରାବ୍ୟ—ବିଂ. (ଦୁର୍+ଶ୍ରୁ+ମି.ଯ) ଦୁଃଶ୍ରବ ଦେଖ, (ବି) ଦୁଃଶ୍ରାବ୍ୟତା ।
ଦୁଃଷନ୍ଧି—ପୁଂ.ବି. ଦୁଷ୍ଟସନ୍ଧି, ମନ୍ଦସନ୍ଧି ।
ଦୁଃଷମ—ବି.ବିଂ.(ଦୁର୍+ସମ)ନିନ୍ଦନୀୟ, (ବି) ଦୁଃଷମତା ।
ଦୁଃଷମମ୍—ଅବ୍ୟ.ଗର୍ହ୍ଣ, ନିନ୍ଦା ।
ଦୁଃଷେଧ—ବି.ବିଂ.(ଦୁର୍+ସିଧ୍+ମି.ଅ) ଦୁର୍ନିବାର ଦେଖ ।

ଦୁଃସଂକଳ୍ପ—ବି. (ଦୁର୍+ସଂକଳ୍ପ;କ.ଧା) ମନ୍ଦସଂକଳ୍ପ, (ପୁଂ.ବିଂ. ବ.ବ୍ରୀ) ମନ୍ଦସଂକଳ୍ପକାରୀ, (ସ୍ତ୍ରୀ) ଦୁଃସଂକଳ୍ପା ।
ଦୁଃସଙ୍ଗ—ବି. (ଦୁର୍+ସଙ୍ଗ; କ.ଧା) କୁସଙ୍ଗ, ମନ୍ଦସଙ୍ଗ, (ପୁଂ.ବିଂ.) ମନ୍ଦସଙ୍ଗକାରୀ, (ସ୍ତ୍ରୀ) ଦୁଃସଙ୍ଗା ।
ଦୁଃସମ—ବି.ବିଂ.କୁତ୍ସିତ,ନିନ୍ଦନୀୟ ।
ଦୁଃସମୟ—ପୁଂ.ବି.(ଦୁର୍+ସମୟ)ମନ୍ଦସମୟ, ଅଶୁଭଯୁକ୍ତ କାଳ, ଦୁର୍ଭିକ୍ଷ, ବିପତ୍ତିକାଳ ।
ଦୁଃସହ—ପୁଂ.ବିଂ. (ଦୁର୍+ସହ+ମି.ଅ) ଅସହନୀୟ, ଅସହ୍ୟ, ଅତି କଷ୍ଟଦାୟକ, (ବି) ଦୁଃସହତା, (ସ୍ତ୍ରୀ) ଦୁଃସହା, (ବି) ଧୃତରାଷ୍ଟ୍ରଙ୍କର ପୁତ୍ରବିଶେଷ ।
ଦୁଃସହା—ସ୍ତ୍ରୀ.ବି. ନାଗଦମନୀ ଦେଖ ।
ଦୁଃସାଧୀ—ପୁଂ.ବି.(ଦୁର୍+ସାଧ+କ.ଇନ୍) ଦ୍ୱାରୀ, ଦ୍ୱାରପାଳ ।
ଦୁଃସାଧ—ବି.ବିଂ. (ଦୁର୍+ସାଧ+ମି.ଯ) ଯାହା କଷ୍ଟରେ ସାଧନକରାଯାଇପାରେ, କଷ୍ଟସାଧ୍ୟ, ଯେ ରୋଗ ସହଜେ ଭଲ ହୁଏ ନାହିଁ, ଅସାଧ୍ୟ, ଅପ୍ରତିକାର୍ଯ୍ୟ ।
ଦୁଃସାହସ—କ୍ଲୀ. ବି. (ଦୁର୍+ସାହସ) (କ.ଧା) ଅତ୍ୟଧିକ ସାହସ, ଅଖାଡୁଆପଣ, ଅନୁଚିତ ସାହସ, (ବିଂ—ବ.ବ୍ରୀ) ଦୁଃସାହସିକ, (ବି) ଦୁଃସାହସତା, (ସ୍ତ୍ରୀ) ଦୁଃସାହସା ।
ଦୁଃସାହସିକ—ପୁଂ. ବିଂ. (ଦୁଃ+ସାହସ+ଇକ) ବ.ବ୍ରୀ, ନିର୍ଭୀକ, ହାଇସାହସିଆ, ଅସମସାହସିକ, ଅନୁଚିତ ସାହସୀ, (ବି) ଦୁଃସାହସିକତା, ଦୁଃସାହସିତା, (ସ୍ତ୍ରୀ) ଦୁଃସାହସିକା, ଦୁଃସାହସିନୀ ।
ଦୁଃସୁ(ଷୁ)ପ୍ତ—ବି. ବିଂ. ଦୁଷ୍ଟ ସ୍ୱପ୍ନଯୁକ୍ତ, (କ୍ଲୀ) ଦୁଷ୍ଟସ୍ୱପ୍ନ ।
ଦୁଃସୂତ—ବି. ବିଂ. ଦୁଃସ୍ଥା ସୂତ ।
ଦୁଃସ୍ତ୍ରୀ—ସ୍ତ୍ରୀ, ବି. ଦୁଷ୍ଟା ସ୍ତ୍ରୀ ।
ଦୁଃସ୍ଥ—ପୁଂ. ବିଂ. (ଦୁର୍+ସ୍ଥା+କ.ଅ) ଦୁର୍ଦ୍ଦଶାଗ୍ରସ୍ତ, ଦୁଃଖିତ, ଦରିଦ୍ର, ମୂର୍ଖ, ଲୁବ୍ଧ, (ବି) ଦୁଃସ୍ଥତା, (ସ୍ତ୍ରୀ) ଦୁଃସ୍ଥା ।

ଦୁଃସ୍ଥିତ—ପୁଂ.ବିଂ(ଦୁର୍+ସ୍ଥା+କ.ତ) ଦୁଃଖରେ ପତିତ, ଦୁଃଖେ ଅବସ୍ଥିତ ।
ଦୁଃସ୍ଥିତି—ସ୍ତ୍ରୀ.ବି.(ଦୁର୍+ସ୍ଥିତି କ.ଧା; ଦୁର୍+ସ୍ଥା+ଭା.ତି) ମନ୍ଦ ଅବସ୍ଥା, ଅସ୍ଥିରତା,ଦୁଃଖେ ଅବସ୍ଥାନ,ଦୁର୍ଦ୍ଦଶା ।
ଦୁଃସ୍ପର୍ଶ—ପୁଂ. ବିଂ. (ଦୁର୍+ସ୍ପୃଶ୍+ମି.ଅ) ଯାହା ଛୁଇଁଲେ କଷ୍ଟ ହୁଏ, ଦୁଃଖରେ ସ୍ପର୍ଶନୀୟ, (ବି) କପିକଚ୍ଛୁ, ବାଇଡଙ୍ଗ, ଲତାକରଞ୍ଜ, କଣ୍ଟକାରୀ ଦେଖ, ଆକାଶଗଙ୍ଗା, (ବି) ଦୁଃସ୍ପର୍ଶତା, (ସ୍ତ୍ରୀ) ଦୁଃସ୍ପର୍ଶା ।
ଦୁଃସ୍ଫୋଟକ—ପୁଂ. ବି. (ଦୁର୍+ସ୍ଫୁଟ+ଅ) ଅସ୍ତ୍ରବିଶେଷ ।
ଦୁଃସ୍ୱପ୍ନ—ପୁଂ. ବି. (ଦୁର୍+ସ୍ୱପ୍ନ)କ.ଧ; ମନ୍ଦସ୍ୱପ୍ନ, ଅଶୁଭସ୍ୱପ୍ନ, ଶୋଇଥିବା ଲୋକର ଭୀତି ଉତ୍ପାଦକ ସ୍ୱପ୍ନ ।
ଦୁଃସ୍ୱଭାବ—ବି. (ଦୁର୍+ସ୍ୱଭାବ)କ.ଧ; ମନ୍ଦସ୍ୱଭାବ, (ପୁଂ.ବିଂ) ମନ୍ଦସ୍ୱଭାବାପନ୍ନ, (ସ୍ତ୍ରୀ) ଦୁଃସ୍ୱଭାବା ।
ଦୁଁଡ଼କିବା—ପ୍ରା. (ସିଂହଭୂମ) କି.ଡିଙ୍କିମାରିବା, ଉଣ୍ଡିବା ।
ଦୁକ୍(କୁ)ଦୁକ୍(କୁ)—ଗ୍ରା.ଅବ୍ୟ. (ଧ୍ୱନ୍ୟନୁକରଣ) ଦକଦକ, ହୃତ୍ପିଣ୍ଡର କମ୍ପନ ବା ସ୍ପନ୍ଦନ, ଧଡ଼ଧଡ଼, (ବିଂ) ଭୟରେ ଅସ୍ଥିର, ସ୍ପନ୍ଦିତ, କମ୍ପିତ ।
ଦୁକ୍(କୁ)ଦୁକ—ଗ୍ରା.ବି.ହୃଦୟ, ହୃତ୍ପିଣ୍ଡ, ହୃଦୟର ସ୍ପନ୍ଦନ, ଗଳାରେ ପିନ୍ଧିଥିବା ହାରବିଶେଷ ।
ଦୁକ୍(କୁ)ଦୁକପଡ଼ିବା—ଗ୍ରା. ବି. ଭୀତି ଦୁକ୍ ଦୁକ୍ ହେବା ।
ଦୁକ୍(କୁ)ଡା—ପ୍ରା. (ବାଲେ) ବି.ତମାଖୁ, ଧୂଆଁପତ୍ର ।
ଦୁକା—ଗ୍ରା. ବି. ଦୋକା ଦେଖ ।
ଦୁକାନ୍—ପ୍ରା. (ସମ୍ବଲ ଓ ସିଂହଭୂମ)ବି. ଦୋକାନ ।
ଦୁକାନ—ପ୍ରା.(ବାଲେ. ଓ ମେଦିନୀପୁର) ଦୋକାନ ।
ଦୁକୂଳ—କ୍ଲୀ. ବି. (ଦୁ+ଉଲ, କୁ ବା (ଦୁର୍+କୂଳ+କ.ଅ) ପଟ୍ଟଲୁଗା,

ପଟ୍ଟବସ୍ତ୍ର, ଶୁଭ୍ର ବା ଧଳାବସ୍ତ୍ର, ବୃକ୍ଷ-ବକଳାର ତନ୍ତୁରେ ନିର୍ମିତ ସୂକ୍ଷ୍ମ ବସ୍ତ୍ର, ସୂକ୍ଷ୍ମ ବସ୍ତ୍ର, ଉତ୍ତରୀୟ ବସ୍ତ୍ର ।

ଦୁକୂଳ—(ଶ୍ୟାମ)ଜାତକ ବର୍ଣ୍ଣିତ ଜଣେ ବୌଦ୍ଧ ଋଷି ।

ଦୁକୂଳଧାରୀ—ପୁଂ.ବିଂ. (ଦୁକୂଳ+ଧୃ+କ.ଇନ୍) (ଢ଼ପ) ସୂକ୍ଷ୍ମବସ୍ତ୍ର ପରିହିତ, ଉତ୍ତରୀୟଯୁକ୍ତ, (ସ୍ତ୍ରୀ) ଦୁକୂଳଧାରିଣୀ ।

ଦୁକୂଳିଆ—ଗ୍ରା. ବିଂ. ପଟ୍ଟବସ୍ତ୍ର ପରିଧାନ-କାରୀ, ଯେ ପାଟଲୁଗା ସର୍ବଦା ପିନ୍ଧିଥାଏ ।

ଦୁଖ—ଗ୍ରା. ବି. (ସଂ-ଦୁଃଖ) ଦୁଃଖ ଶବ୍ଦର ଅପଭ୍ରଂଶ, ରୋଗ, ପୀଡ଼ା, ପ୍ରସବ-ବେଦନା, କାତରତା, ଅପ୍ରସନ୍ନତା, ଦୁଃଖଧନ୍ଦା, ଦୁଃଖମୟ ବିଷୟ, ଅଶ୍ରୁ, ନିର୍ଦ୍ଧନତାଜନିତ-କଷ୍ଟ,(ବିଂ) ଦୁଃଖମୟ, କଷ୍ଟମୟ, ଦୁଃଖଜନକ ।

ଦୁଖଦେବା—ଗ୍ରା.କ୍ରି.ଅନ୍ୟକୁ କଷ୍ଟଦେବା ।

ଦୁଖପାଇବା—ଗ୍ରା. କ୍ରି. କ୍ଲେଶ, ଖେଦ କରିବା, ପ୍ରସବ କରିବା ପୂର୍ବରୁ କଷ୍ଟ ପାଇବା ।

ଦୁଖପାସୋରା—(କ-ପ୍ର) ଯେ ଦୁଃଖ କଷ୍ଟ ଭୁଲାଇଦିଏ, ଦୁଃଖ ନିବାରଣ, ଦୁଃଖହର ।

ଦୁଖଲାଗିବା—ଗ୍ରା. ବି. ମନରେ କଷ୍ଟ ଅନୁଭୂତ ହେବା ।

ଦୁଖା—ଗ୍ରା,ପୁଂ. ବି. (ସଂ-ଦୁଃଖ) ଅପରିଚିତ-ଆଣି ବାଳକର ନାମ ।

ଦୁଖାଇବା—ପ୍ରା.(ସମ୍ବ)କ୍ରି.ପୀଡ଼ିତହେବା, ବ୍ୟଥାଯୁକ୍ତହେବା, (ଗ୍ରା-କ୍ରି.) ଦୁଃଖ-ଦେବା ।

ଦୁଖାଦୁଖି—ଗ୍ରା. ବି.(ସଂ-ଦୁଃଖ) ପରସ୍ପର ମଧ୍ୟରେ ଥିବା ମାନ ଅଭିମାନ ବା ମନୋମାଳିନ୍ୟ ।

ଦୁଖାନ୍—ପ୍ରା.(ସମ୍ବ)ବି. (ସଂ-ଦୁଃଖ)ପୀଡ଼ା, ଦେହଦୁଃଖ, ବେଦନା, ବ୍ୟଥା,ଘୋଳା-ବନ୍ଧା ।

ଦୁଖିତ—ଗ୍ରା. ବିଂ. ଦୁଃଖିତ ଦେଖ ।

ଦୁଃଖୀ—ଗ୍ରା.ପୁଂ, ସ୍ତ୍ରୀ. ବିଂ.ଦୁଃଖୀ ଦେଖ, (ସ୍ତ୍ରୀ.ବି) ସ୍ତ୍ରୀଲୋକମାନଙ୍କ ନାମ, (ପୁଂ. ବି) ଦୁଖୀ ନାମକ ବ୍ୟକ୍ତିର ଡାକନାମ ।

ଦୁଖୀଧନ—ଗ୍ରା. ବି. ଦୁଃଖୀଧନ ଦେଖ ।

ଦୁଖେସୁଖେ—ଗ୍ରା. ଅବ୍ୟ. ଦୁଃଖାବସ୍ଥାରେ ଓ ସୁଖାବସ୍ଥାରେ, ସମ୍ପତ୍ତି ବା ବିପତ୍ତି କାଳରେ, ସମ୍ପତ୍ତିଥିବା ଓ ନଥିବା ଅବସ୍ଥାରେ ।

ଦୁନଙ୍ଗ—ଆଗ୍ରା ନଗରର ୨୦ ମାଇଲ ଉତ୍ତରସ୍ଥ ଗୋଟିଏ ନଗର ।

ଦୁଗଡ଼ିଆ—ମଧ୍ୟଭାରତର ଭୂପାଳ ରାଜ୍ୟର ଅନ୍ତର୍ଗତ ଖଣ୍ଡିଏ ଭୂସମ୍ପତ୍ତି ।

ଦୁଗା—ଗ୍ରା. ବି. କଉଡ଼ି ଖେଳରେ ଦୁଇ ପଡ଼ିବା ଦାନ, ଲେଙ୍କା, ଶକଟା ଖେଳରେ ଦୁଇ ପଡ଼ିବା ଦାନ, ଦୁଗୁ ।

ଦୁଗାନ—ପ୍ରା.(ଯଶୁ)ବି.ଦଉଲତ,ସମ୍ପଦ ।

ଦୁଗାର—ରାଜପୁତାନାର ଅନ୍ତର୍ଗତ ବୁନ୍ଦୀ ରାଜ୍ୟର ଗୋଟିଏ ସହର ।

ଦୁଗୁଣ—ଗ୍ରା. ବି. (ସଂ-ଦ୍ୱିଗୁଣ) ଦ୍ୱିଗୁଣ, ଦୁର୍ଗୁଣ, ଅପକାର, କଷ୍ଟ, ଅବଗୁଣ ବୁଝିବା, ବଚକ୍ରି,ଚିନ୍ତନା,(ବିଂ) ଅଳ୍ପ ପରିମିତ, ସାମାନ୍ୟ, ଦ୍ୱିଗୁଣିତ ।

ଦୁଗୁଣା—ଗ୍ରା. ବି. (ସଂ-ଦ୍ୱିଗୁଣିତ) ଉଙ୍କା-ଉପରେ ଆଡ଼ବାଗରେ ଦିଆଯାଇଥିବା କାଠଖଣ୍ଡମାନ, ଦୁଇଗୁଣ, (ଗ୍ରା.ବିଂ) ଦ୍ୱିଗୁଣିତ ।

ଦୁଗୁଣିଆ(ଆଁ)—ଗ୍ରା. ବିଂ. (ସଂ-ଦୁର୍ଗୁଣ) ଅବଗୁଣିଆ ଲୋକ, ଚଞ୍ଚଳ, ଦୁର୍ଗୁଣ-ଯୁକ୍ତ, ବିରକ୍ତିକର, ଦୁଇଥର ପାର କରାଯାଇଥିବା, ଦୁଇଗୁଣ ଯୁକ୍ତ ।

ଦୁଗୁଣେ—ଗ୍ରା. ଅବ୍ୟ.(ଅମୁକ ସଂଖ୍ୟାକୁ) ଦୁଇରେ ଗୁଣକଲେ ।

ଦୁଗୁଣେଇବା—ଗ୍ରା. କ୍ରି. (ସଂ-ଦୁର୍ଗୁଣ) ଚିଡ଼ାଇବା, ଏକ କର୍ମକୁ ପୁନଃ ପୁନଃ କରିବା, କଉଡ଼ି ଆଦିକୁ ଦ୍ୱିଗୁଣିତ କରିବା ।

ଦୁଗୁଧ—ଗ୍ରା. ବି. (ସଂ-ଦୁଗ୍ଧ) ଦୁଧ ।

ଦୁଗୁଧା—ଗ୍ରା.ବି ଓ ବିଂ.ଦୋଚଧା ଦେଖ ।

ଦୁଗୂଲ—କ୍ଲୀ. ବି. ଦୁକୂଳ, ପଟ୍ଟବସ୍ତ୍ର ।

ଦୁଗ୍ଧ—କ୍ଲୀ. ବି. (ଦୁହ୍+ର୍ମ.ତ) ଦୁଧ, କ୍ଷୀର, ମାତୃସ୍ତନ୍ୟ, (ଦୁହ୍+ଖ.ତ) ଦୋହନ, (ବିଂ) ଯାହାକୁ ଦୋହନ କରାଯାଇଅଛି, ପୂରିତ ।

ଦୁଗ୍ଧକୂପିକା—ସ୍ତ୍ରୀ. ବି. ଦୁଧପୁଳି, ପିଷ୍ଟକ ବିଶେଷ ।

ଦୁଗ୍ଧତାଳୀୟ—କ୍ଲୀ.. ବି. ଦୁଧଫେଣ, ରବଡ଼ି, ଦୁଧସର ।

ଦୁଗ୍ଧଦା—ସ୍ତ୍ରୀ. ବି. (ଦୁଗ୍ଧ+ଦା+ଆ) ଯେ ଦୁଧ ଦିଏ ।

ଦୁଗ୍ଧପରୀମାପକଯନ୍ତ୍ର—ଦୁଗ୍ଧର ପରୀକ୍ଷା କରିବାର ଯନ୍ତ୍ରବିଶେଷ ।

ଦୁଗ୍ଧପାଚନ—କ୍ଲୀ.ବି.(ଦୁଗ୍ଧ+ପଚ୍+ଣିଚ୍+ଅଧି. ଅନ) ଦୁଗ୍ଧ ଆଉଟିବା ପାତ୍ର, ଯେଉଁ ପାତ୍ର ବା ହାଣ୍ଡିରେ ଦୁଗ୍ଧ ଆଉଟା ହୁଏ ।

ଦୁଗ୍ଧପାତ୍ର—ବି. ଦୁଗ୍ଧପାଚନ ଦେଖ ।

ଦୁଗ୍ଧପାୟୀ—ବିଂ. (ଦୁଗ୍ଧ+ପା+କ. ଇନ୍) ଯେ ଦୁଧ ପିଏ ।

ଦୁଗ୍ଧପାୟୀ ଜନ୍ତୁ—ଗ୍ରା.ବି.ଯେଉଁ ଜନ୍ତୁ-ମାନେ ଜନ୍ମ ହେବା କ୍ଷଣି ମାତୃସ୍ତନ୍ୟ ପାନ କରି ବଞ୍ଚନ୍ତି ।

ଦୁଗ୍ଧପାଷାଣ—ପୁଂ. ବି. ଦୁଧଖଡ଼ି,ଏକ-ପ୍ରକାର ଗଛ, (ପର୍ଯ୍ୟାୟ) ଦୁଗ୍ଧପାଷା-ଣକ, ଦୁଗ୍ଧାଶ୍ମା,କ୍ଷୀରୀ,ଗୋମେଦସନ୍ନିଭ, ବଜ୍ରାଭ, ଦୀପ୍ତିକ, ଦୁଗ୍ଧୀ, କ୍ଷୀରଖଦ ।

ଦୁଗ୍ଧପୁଚ୍ଛୀ—ସ୍ତ୍ରୀ. ବି. (ଦୁଗ୍ଧ+ପୁଚ୍ଛ+ଈ) ବୃକ୍ଷବିଶେଷ, (ପର୍ଯ୍ୟାୟ) ସେକ-କାନ୍ତ, କଣାଭଙ୍ଗା, ନସଙ୍କସା ।

ଦୁଗ୍ଧପୋଷ୍ୟ—ତ୍ରି. ବିଂ. (ଦୁଗ୍ଧ+ପୋଷ୍ୟ) ଙତତ୍; ଯେଉଁ ଶିଶୁ ଜନ୍ମା-ବଧି ସ୍ତନ୍ୟପାନ କରି ବଞ୍ଚିଅଛି, (ବି) ଶିଶୁ, (ସ୍ତ୍ରୀ) ଦୁଗ୍ଧପୋଷ୍ୟା ।

ଦୁଗ୍ଧଫେନ—ବି. (ଦୁଗ୍ଧ+ଫେନ) ୬ତତ୍; ଦୁଗ୍ଧ ଉତୁରିଲେ ତହିଁରୁ ଯେଉଁ ଫେଣ ବାହାରେ, ଏକପ୍ରକାର ଗଛ, କ୍ଷୀରଡିଣ୍ଡୀର ଗଛ, (ପର୍ଯ୍ୟାୟ) ଶାର୍ଙ୍ଗ ।

ଦୁଗ୍ଧଫେନନିଭ—ତ୍ରି. ବିଂ. (ଦୁଗ୍ଧ-ଫେନ+ନିଭ)୬ତତ୍;କ.ଧା;ଦୁଧଫେଣ ପରି ଶୁଭ୍ର ଓ ନରମ, ସୁନ୍ଦର ।

ଦୁଗ୍ଧଫେନୀ—ସ୍ତ୍ରୀ. ବି. କ୍ଷୁଦ୍ର କ୍ଷୁପବିଶେଷ, (ପର୍ଯ୍ୟାୟ) ପୟଃଫେନୀ, ଫେନଦୁଗ୍ଧା, ପୟସ୍ୱିନୀ, ଲୂତାରି, ବ୍ରଣକେତୁଘ୍ନୀ, ଗୋକ୍ଷାପର୍ଣ୍ଣୀ ।

ଦୁଗ୍ଧବତୀ—ସ୍ତ୍ରୀ. ବିଂ. (ଦୁଗ୍ଧ + ବତ୍ ଈ) ଦୁଧିଆଳୀ, ଦୁଗ୍ଧବିଶିଷ୍ଟା, ଦୁଗ୍ଧଦାୟିନୀ ।

ଦୁଗ୍ଧବନ୍ଧକ—ପୁଂ. ବି. ଦୁଗ୍ଧ ଦୁହିଁବାପାଇଁ ଗୋବନ୍ଧ ।

ଦୁଗ୍ଧଶୀଳା—ସ୍ତ୍ରୀ.ବି. (ଦୁଗ୍ଧ+ଶୀଳ+ଆ) ବ.ଗ୍ରା; ଜୁଆରି,ବାଜରା, ଯାବନାଳାଦ୍ୟ ତଣ୍ଡୁଲ ।

ଦୁଗ୍ଧକୁଣ୍ଡ—ବି. (ଦୁଗ୍ଧ+କୁଣ୍ଡ) ମଧ୍ୟପଦଲୋପୀ; ଦୁଧରହିବା ପାତ୍ର ।

ଦୁଗ୍ଧଲବଣ—ଗ୍ରା.ବି.ଏକପ୍ରକାର ରସାୟନିକ ଲବଣ ।

ଦୁଗ୍ଧଶର୍କରା—ଗ୍ରା. ବି. ଦୁଧରୁ ବୈଜ୍ଞାନିକ ପ୍ରକ୍ରିୟା ଦ୍ୱାରା ବାହାର କରାଯାଇଥିବା ଚିନି ।

ଦୁଗ୍ଧସମୁଦ୍ର—ପୁଂ. ବି. ( ମଧ୍ୟ-କ.ଧା ) କ୍ଷୀରସାଗର, ଦୁଗ୍ଧସିନ୍ଧୁ, ଦୁଗ୍ଧସାଗର, ଦୁଗ୍ଧାବ୍ଧି ।

ଦୁଗ୍ଧସ୍ନେହ—ବି. ( ଦୁଗ୍ଧ+ସ୍ନେହ ) ଦୁଧରେ ଥିବା ଚର୍ବିଭାଗ ।

ଦୁଗ୍ଧା—ସ୍ତ୍ରୀ. ବିଂ. (ଦୁହ+ର୍ମ.ତ+ଆ) ଯାହାକୁ ଦୋହନ କରାଯାଏ ।

ଦୁଗ୍ଧା(କ୍ଷ)—ପୁଂ. ବି. ( ଦୁଗ୍ଧ + ଅକ୍ଷ ) ଉପଳବିଶେଷ ।

ଦୁଗ୍ଧାବ୍ଧି—ପୁଂ.ବି.ଦୁଗ୍ଧସମୁଦ୍ର ଦେଖ ।

ଦୁଗ୍ଧାବ୍ଧିତନୟା—ସ୍ତ୍ରୀ. ବି. ଲକ୍ଷ୍ମୀ ।

ଦୁଗ୍ଧାମ୍ବୁଧି—ପୁଂ. ବି. ଦୁଗ୍ଧସମୁଦ୍ର ।

ଦୁଗ୍ଧାଶ୍ମା—ପୁଂ. ବି. ଦୁଗ୍ଧପାଷାଣ, ଦୁଧଖଡ଼ି ।

ଦୁଗ୍ଧିକା—ସ୍ତ୍ରୀ. ବି. (ଦୁଗ୍ଧ+ଇକ+ଆ) ଦୁଧିଆମେଣ୍ଟି ଦେଖ, ବୃକ୍ଷବିଶେଷ, (ପର୍ଯ୍ୟାୟ) ସ୍ୱାଦୁପର୍ଣ୍ଣୀ,କ୍ଷୀରବୀ,କ୍ଷୀରିଣୀ. ଦୁଗ୍ଧୀ, କ୍ଷୀରୀ, କ୍ଷୀରସମ୍ପିକା, ହେଳାବୃକ୍ଷ, ଉତ୍ତମା, ଯୁଗ୍ମଫଳା, ଉତ୍ତମଫଳିନୀ ।

ଦୁଗ୍ଧିନିକା—ସ୍ତ୍ରୀ.ବି. ରକ୍ତାପାମାର୍ଗ,ଲାଲ-ଅପାଙ୍ଗ ।

ଦୁଗ୍ଧୀ—ବି. ବିଂ. ( ଦୁଗ୍ଧ+ଇନ୍ ) କ୍ଷୀର ବୃକ୍ଷ ।

ଦୁଘ—ବି.ବିଂ. (ଦୁହ୍+ଅ)ଦୋହନକର୍ତ୍ତା ।

ଦୁଚ୍ଛକ—ପୁଂ. ବି. ମୁରନାମକ ଗନ୍ଧଦ୍ରବ୍ୟ ବିଶେଷ, ବହ୍ନାଗାଦ୍ୟବକାଶକ ।

ଦୁଚ୍ଛୁନ—ବି.ବିଂ.ଦୁଷ୍ଟ ଉଚ୍ଛୁନ ।

ଦୁଚ୍ଛୁନ୍—ପୁଂ.ବି.ଦୁଷ୍ଟ କୁକୁର ।

ଦୁଜ୍‌ବର—ଗ୍ରା. ପୁଂ.ବି. (ହିନ୍ଦି ଓ ବର) ଦୋହେଜ୍ଜ ବର,(ବିଂ)ଦୁଇଥର ବିବାହିତ (ପୁରୁଷ),ଗଭର୍ଣ୍ଣମେଣ୍ଟ ଅଧୀନ ଗୋଟିଏ ଦେଶୀୟ ରାଜ୍ୟ ।

ଦୁଜା—ଗ୍ରା.ବିଂ.(ପ୍ରା.କ-ସଂ--ଦ୍ୱି)ଦ୍ୱିତୀୟ-ଦ୍ୱିଧା, ସଙ୍କୋଚ, ସଂଶୟ, ସନ୍ଦେହ, (ପ୍ରା. ବାଲେଶ୍ୱର) ,ବି. ସୌରମାସର ଦ୍ୱିତୀୟଦିନ, ନରଂଶ ଦିବସ ।

ଦୁଜାତ—ଗ୍ରା. ବି. (ପ୍ରାଚୀନବ୍ୟବହାର) ଦୁଇଜାତ ।

ଦୁଜେ—ଗ୍ରା.କ୍ରି. ବିଂ.(ସଂ-ଦ୍ୱି)ଦ୍ୱିତୀୟତଃ, ଦ୍ୱିତୀୟରେ, (ବିଂ) ଦ୍ୱିତୀୟ ।

ଦୁଡ଼୍‌ଗୁଡ଼୍—ଗ୍ରା. ବି. ସନ୍ଦଗ୍ଧଚାଉଳ,(ବିଂ) ସନ୍ଦିଗ୍ଧ ।

ଦୁଡ଼୍‌ଗୁଡ଼ିଆ—ଗ୍ରା.ବିଂ.ଦୁଡ଼୍‌ଗୁଡ଼୍ ଦେଖ ।

ଦୁଡ଼୍‌ଦୁଡ଼୍—ଗ୍ରା. ବିଂ. (ଧ୍ୱନ୍ୟନୁକାରୀ) ଭୟରେ ହୃତ୍‌କମ୍ପ,(ଗ୍ରା.ବିଂ.)ଭୟରେ କମ୍ପିତ । [ଦେଖ ।

ଦୁଡ଼ବିହେଇ—(ପ୍ରା.ସମ୍ବ)ବିଂ.ଦୋବେଇ

ଦୁଡ଼ାତାରକ—ଗ୍ରା.ବି.ବୁଢ଼ାତାରକ ଦେଖ

ଦୁଡ଼ି—ସ୍ତ୍ରୀ. ବି. କଚ୍ଛପୀ ।

ଦୁଡ଼ୁକ(କି)—ଗ୍ରା. ବି. ଧୁଡ଼ୁକି ଦେଖ ।

ଦୁଡ଼ୁକା—ଗ୍ରା. ବି. ମଧୁରତରଡ଼ା ଫଳ, ଦୀର୍ଘପଟୋଳିକା ।

ଦୁଡ଼ୁମ୍—ବନ୍ଧୁକମାରିବାର ଶବ୍ଦ, ଭାରୀ ଜିନିଷ ପଡ଼ିଯିବାର ଶବ୍ଦ, (ଯା.ବଙ୍ଗ) ଅନୁକାର ଶବ୍ଦ ।

ଦୁଡ଼ୁମଦାମ,ଦୁଡ଼ୁମଦାଡ଼ୁମ—ଯା.ଗୁଳାଦି ନିକ୍ଷେପ କରିବା କିମ୍ବା ଦ୍ୱାରେ ଆଘାତ କରିବାପରି ଶବ୍ଦ ।

ଦୁଣ୍ଡିଘର—(ପ୍ରା. ଗଞ୍ଜାମ) ବି. କାଞ୍ଜି-ହାଉସ୍, ପାଇଖାନା ।

ଦୁଣ୍ଡୁକ—ବି. ବିଂ. (ଦୁଡ଼୍+ଉକ)କୁଟିଳାନ୍ତଃକରଣ, ଦଣ୍ଡିଲ, ଖଳ, ଚଣ୍ଡୀ, ଦୁଷ୍ଟ ।

ଦୁଣ୍ଡୁଭ—ପୁଂ. ବି. (ଦୁଡ଼୍+ଉଭ.ନିପାତନ) ଡୁଂଡୁଭ, ପାଣିଧଣ୍ଡସାପ ।

ଦୁଣ୍ଡୁଭି—ପୁଂ. ବି. ଦୁନ୍ଦୁଭି ।

ଦୁତ୍—ଗ୍ରା. ଅବ୍ୟ. ଧୁତ୍, ନାଁ, ଦୂର ।

ଦୁତ—ବି. ବିଂ. (ଦୁ+କ୍ତ) ପରିତପ୍ତ, ଗତ, ପୀଡ଼ିତ ।

ଦୁତି—ଗ୍ରା. ବିଂ. (ସଂ-ଦ୍ୱିତୀୟ) ଦ୍ୱିତୀୟ, (ବି) ଦୂତୀ ଦେଖ ।

ଦୁତିଅ(ୟ)ଗ୍ରା. ବିଂ.(ସଂ-ଦ୍ୱିତୀୟ)ଦ୍ୱିତୀୟ, (ବି) ଶୂଦ୍ରା ବିଧବାର ବିବାହ, ଦ୍ୱିତୀୟ ବିବାହ ।

ଦୁତିଅ(ୟ)କରିବା—ଗ୍ରା. କ୍ରି.(ପ୍ରସ୍ତାବକୁ) ସମର୍ଥନ କରିବା, ଶୂଦ୍ରାବିଧବାକୁ ଦ୍ୱିତୀୟ ବାର ବିବାହ କରିବା । [ଦେଖ ।

ଦୁତିଅ(ୟ)ସଂସାର—ଗ୍ରା.ବି. ଦୁତିଅ ସଂସ୍ଥା

ଦୁତିଅସଂସ୍ଥା—ଗ୍ରା. ବି. ପୁରୁଷର ଦ୍ୱିତୀୟ ବାର ଦାରପରିଗ୍ରହ ।

ଦୁତିଅ(ୟ)ହେବା—ଗ୍ରା. କ୍ରି. (ବିଧବା) ଅନ୍ୟସ୍ୱାମୀ ଗ୍ରହଣ କରିବା; (ପୁରୁଷ) ବିଧବାକୁ ବିବାହ କରିବା ।

ଦୁତିଆ(ୟା)—ଗ୍ରା. ବି. (ସଂ-ଦ୍ୱିତୀୟା) ପୂର୍ଣ୍ଣିମା ଓ ଅମାବାସ୍ୟା ପରେ ହେବା ଦ୍ୱିତୀୟା ତିଥି ।

ଦୁତିୟାଅଷ୍ଟମୀ—( ପ୍ରା.ଯାଜପୁର ) ବି. ଦୁତିଆଓଷା ଦେଖ ।

ଦୁତିଆ(ୟା)ଓଷା—ଗ୍ରା. ବି.ଆଶ୍ୱିନ କୃଷ୍ଣପକ୍ଷ ଅଷ୍ଟମୀ ବା ମୂଳାଷ୍ଟମୀ ।

ଦୁତିଆ(ୟା)ଚନ୍ଦ—ଗ୍ରା.ବି. (ସଂ-ଦ୍ୱିତୀୟା+ଚନ୍ଦ୍ରମା)ଦ୍ୱିତୀୟାତିଥି ରାତିରେ ଦେଖାଯିବା ଚନ୍ଦ୍ର । [କନ୍ଦର୍ପ ।

ଦୁତିକାମ—ଗ୍ରା. ବି. ଦ୍ୱିତୀୟ କାମ ବା

ଦୁତେଇର—ଗ୍ରା.ଅବ୍ୟ.ଦୁତ୍ ଦେଖ, ଦୁତେଇରିକା, ଦୁତେଇରିକି,ଦୁତେଇରିକେ,(ଅନ୍ୟରୂପ) ।

ଦୁତେର—ବିରକ୍ତିବ୍ୟଞ୍ଜକ ଶବ୍ଦ ।

ଦୁଦ୍—ଗ୍ରା. ସମ୍ବ. ବି. (ସଂ-ଦୁଗ୍ଧ) ଯୁବତୀ ବା ସ୍ତ୍ରୀର ସ୍ତନ, ଦୁଧ(ଅନ୍ୟରୂପ) ।
ଦୁଦ,(ଦୁଧ)—ଦୁଗ୍ଧଶବ୍ଦର ଅପଭ୍ରଂଶ ।
ଦୁଦୁଇ—ଯା.ଅବ୍ୟ.(ସଂ-ଦ୍ୱି+ଦ୍ୱି)ପ୍ରତ୍ୟେକ ବ୍ୟକ୍ତିକୁ ଦୁଇ ଦୁଇ ହିସାବରେ ।
ଦୁଦୁପୁଦୁଦୁପୁ—ଗ୍ରା. ଅବ୍ୟ.(ଧ୍ୱନ୍ୟନୁକରଣ) ଡମରୁ ବାଜିବାର ଶବ୍ଦ ।
ଦୁଦୁୟା--ଜଲ୍ପାଇଗୁଡ଼ି ଜିଲ୍ଲାରେ ପ୍ରବାହିତ ଗୋଟିଏ ନଦୀ ।
ଦୁଦୁରା—ଯା. ବି. (ସଂ-ଧୁସ୍ତୁର) ଧାତୁରା ଦେଖ,ପିଷ୍ଟକ ବିଶେଷ (ଦୁଦୁରାପିଠା) ।
ଦୁଦୁରାଫୁଲିଆ—ଗ୍ରା. ବିଂ. ଧାତୁରାଫୁଲ ପରି ଯାହାର ଫାନ୍ଦ ବଙ୍କା ଓ ବିସ୍ତୃତ ହୋଇଥାଏ ।
ଦୁଦାଡ଼—(ଗ୍ରା.ବଙ୍ଗ)ଅବ୍ୟ.ବେଗବାଚକ ।
ଦୁଦ୍ରୁମ—ପୁଂ. ବି. (ଦୁର+ଦ୍ରୁମ)ହରିତ୍ ପଳାଣ୍ଡୁ, ସବୁଜ ବର୍ଣ୍ଣ ପିଆଜ ।
ଦୁଧ—ଗ୍ରା. ବି. (ସଂ-ଦୁଗ୍ଧ) କ୍ଷୀର, ଦୁଗ୍ଧ, ମାତୃସ୍ତନ୍ୟ, ପହ୍ନା, ମମା, ସ୍ତନ, ଗଛର କ୍ଷୀର ।
ଦୁଧଅଳତା—ଗ୍ରା. ବି. ଦୁଧରେ ଅଳତା ମିଶାଇଲେ ଯେଉଁ ଈଷତ୍ ରକ୍ତିମା ରଙ୍ଗ ହୁଏ, ପାଟଳବର୍ଣ୍ଣ ।
ଦୁଧଆଉଟିବା—ଗ୍ରା. କ୍ରି. ଦୁଧଟିଆଇବା ।
ଦୁଧଉଚ୍ଛାଳିବା—ଗ୍ରା. କ୍ରି. (ରୋଗ ହେତୁ ଶିଶୁ) ପିଇବା ଦୁଧ ବାନ୍ତି କରିବା ।
ଦୁଧକଟକଟହେବା—ଗ୍ରା. ବି. ଶିଶୁ ନ ପିଇବା ହେତୁ ମାତୃସ୍ତନ ବନ୍ଧିବା ।
ଦୁଧକଲମ—ଗ୍ରା.ବି. ଏକପ୍ରକାର ଧାନ ।
ଦୁଧକଲମା—ଗ୍ରା. ବି. ହୈମନ୍ତିକ ଧାନ-ବିଶେଷ ।
ଦୁଧକଲମୀ—ଗ୍ରା. ଲତାବିଶେଷ ।
ଦୁଧ(ଧୁ)କୁଣ୍ଡା—ଗ୍ରା. ବି. ଦୁଧ ଦୁହିଁବା ଓ ରଖିବା ବା ବର୍ଦ୍ଧି ନିମନ୍ତେ ବ୍ୟବହୃତ ଗ୍ରେଟ ଘଡ଼ି ।
ଦୁଧକୁଶୀ—ଗ୍ରା. ବୃକ୍ଷବିଶେଷ ।
ଦୁଧ(ଧୁ)କୁସୁମା—ଗ୍ରା. କ. ବଟାଗ୍ରଙ୍ଗ ବା ଗିଡ଼ି ସଙ୍ଗେ ଦୁଧମିଶ୍ରିତ ଯେଉଁ ପାନୀୟ ପ୍ରସ୍ତୁତ ହୁଏ, ଦୁଧକୁସମା, ଦୁଧକୁସୁମ୍ବା ।
ଦୁଧକୌରେୟା—ଗ୍ରା. ବୃକ୍ଷବିଶେଷ ।
ଦୁଧ(ଧୁ)ଖଡ଼ି—ଗ୍ରା.ବି. ଏକପ୍ରକାର ଧଳା ପଥର, ଫୁଲଖଡ଼ି,(ସଂ-ଦୁଗ୍ଧପାଷାଣ) ଗୋମେଦ, ସନ୍ନିଭ, ବଜ୍ରାଭ ।
ଦୁଧ(ଧୁ)ଖିଆପିଲା—ଗ୍ରା.ବି. ସ୍ତନପାନକାରୀ ଶିଶୁ, ସ୍ତନନ୍ଧୟ ଶିଶୁ ।
ଦୁଧଗାଁଠା—ପ୍ରା.(ସିଂହଭୂମ)ବି. ଗବଢ଼ି ।
ଦୁଧଚମ୍ପା—ଗ୍ରା. ଚମ୍ପକବିଶେଷ ।
ଦୁଧଚିପିବା—ଗ୍ରା.କ୍ରି.(ଅଶିଷ୍ଟ) ସ୍ତ୍ରୀର ସ୍ତନ ମର୍ଦ୍ଦନ କରିବା ।
ଦୁଧଚୋରଣୀ—ଗ୍ରା. ବିଂ. (ଯେଉଁ ଗାଈ) ଦୁଧ ଦୁହିଁବା ସମୟରେ ପହ୍ନା ଭିତରେ ଦୁଧ ଲୁଚାଇ ରଖେ, ଯେଉଁ ସ୍ତ୍ରୀ ଦୁଧ ଚୋରି କରେ ।
ଦୁଧଚୋରା(ରେ)ଇବା—ଗ୍ରା. ବି. ଦୁଧ ଦୁହିଁବା ସମୟରେ (ଗାଈଆଦି) ଦୁଧ ନ ଦେଇ ଲୁଚାଇବା ।
ଦୁଧଛଡ଼ା(ଡେ)ଇବା—ଗ୍ରା.କ୍ରି. ସ୍ତନପାନ କରୁଥିବା ଶିଶୁର ମାତା ମାତୃସ୍ତନ୍ୟ ପାନ ଅଭ୍ୟାସ ବନ୍ଦ କରାଇବା ।
ଦୁଧଛାଡ଼ିବା—ଗ୍ରା. କ୍ରି. (ସ୍ତନନ୍ଧୟ ଶିଶୁ) ସ୍ତନ୍ୟପାନ ଅଭ୍ୟାସ ତ୍ୟାଗ କରିବା ।
ଦୁଧଛୁଣ୍ଡା(ଣ୍ଡେ)ଇବା—ଗ୍ରା. କ୍ରି. ଗରମ ଦୁଧରେ ଖଟା ପକାଇ ତାକୁ ଛେନା କରିବା ।
ଦୁଧଛୁଣ୍ଡିଯିବା—ଗ୍ରା. ବି. ଗରମ ଦୁଧରେ ଖଟା ପଡ଼ିବାରୁ ବା ଅନ୍ୟ କୌଣସି କାରଣରୁ ତାହା ପାଣି ଫାଟି ଛେନା ହୋଇଯିବା ।
ଦୁଧ(ଧୁ)ଛେନା—ଗ୍ରା. ବି. ଗରମ ଦୁଧକୁ ଖଟା ଦେଇ ଛୁଣ୍ଡାଇଲେ ଯେଉଁ ଛେନା ହୁଏ ।
ଦୁଧଢେକିବା—ଗ୍ରା. ବି. ଧାନ କ୍ଷୀର ଢେକିବା, ଧାନକେଣ୍ଡାରୁ ବାହାରିବା ସମୟରେ ଧାନ ମଧ୍ୟରେ ପ୍ରଥମେ ଦୁଧ ପରି ରସପୂର୍ଣ୍ଣ ହେବା ଅବସ୍ଥା ।
ଦୁଧତୋଳା—ଗ୍ରା. ଶିଶୁମାନଙ୍କର ଦୁଧ-ବାନ୍ତି ହେବା ।
ଦୁଧଦାନ୍ତ—ଗ୍ରା.ବି. (ସଂ-ଦୁଗ୍ଧ+ଦନ୍ତ) ଶିଶୁମାନଙ୍କର ପ୍ରଥମେ ଉଠିଥିବା ଦାନ୍ତ ।
ଦୁଧଦୁ(ଦୋ)ହିବା—ଗ୍ରା.କ୍ରି. (ସଂ-ଦୁଗ୍ଧ+ଦୁହ୍ ଧାତୁ) ଗାଈଆଦିଙ୍କ ପହ୍ନାରୁ ଦୁଗ୍ଧ ବାହାର କରିବା ।
ଦୁଧଦେବା—ଗ୍ରା. କ୍ରି. (ସଂ-ଦୁଗ୍ଧ+ଦା ଧାତୁ) ପିଲାକୁ ସ୍ତନ୍ୟପାନ କରାଇବା, ଦୋହନ ଦ୍ୱାରା ଦୁଗ୍ଧ ପ୍ରଦାନ କରିବା
ଦୁଧବେଣ୍ଟ—ଗ୍ରା. ବି.(ସଂ-ଦୁଗ୍ଧ+ବୃନ୍ତ) ଦୁଧଭୁଣ୍ଡି ଦେଖ ।
ଦୁଧଭାତ—ଗ୍ରା. ବି. (ସଂ-ଦୁଗ୍ଧ+ଭକ୍ତ) ଦୁଧମିଶ୍ରିତ ଅନ୍ନ, ଦୁଧଗୋଳିଆ ଭାତ, ଶିଶୁମାନଙ୍କର ସୁଖାଦ୍ୟ ଅନ୍ନ, ସୁଖାଦ୍ୟ ଭୋଜନ,ବଡ଼ଲୋକଙ୍କର ଭୋଜ୍ୟ ବସ୍ତୁ ।
ଦୁଧଭୁଣ୍ଡି—ଗ୍ରା. ବି. ସ୍ତନର ଅଗ୍ରଭାଗର କ୍ଷୁଦ୍ର ଗୋଲକ, ଚୂଚୁକ, ଶାଇଚର ।
ଦୁଧରେ ଆମ୍ବେ(ମ୍ବୋ)ଇବା—ଗ୍ରା. ବି. ଲ.ଅର୍ଥ; ଅତି ବଡ଼ଲୋକ ବା ସଚଳ ଅବସ୍ଥାରେ ଦିନପାତ କରିବା ।
ଦୁଧଲଇ—(ପ୍ରା.ଗଞ୍ଜାମ) ବି.ଚେମଡ଼ଲଇ ଦେଖ ।
ଦୁଧଶୁଖିଯିବା—ଗ୍ରା. ବି. ସ୍ତନରୁ ବାହାରିବା ସ୍ତନ୍ୟର ମାତ୍ରା କମିଯିବା ।
ଦୁଧସର—ଗ୍ରା.ବି.(ସଂ-ଦୁଗ୍ଧ ଓ ସାର) ଦୁଧସିଝାଇଲେ ଯେଉଁ ବୋଲ ଉପରେ ପଡ଼େ, ଘୁମୁସର ରାଜ୍ୟର ପର୍ବତବିଶେଷ
ଦୁଧହାଣ୍ଡି—ଗ୍ରା. ବି. (ସଂ-ଦୁଗ୍ଧ+ହଣ୍ଡିକା)ଦୁଧଆଉଟା ହାଣ୍ଡି ବା ପାତ୍ର ।
ଦୁଧାଧାରୀ—ଏକ ସନ୍ନ୍ୟାସୀ ସମ୍ପ୍ରଦାୟ ।
ଦୁଧି—କ୍ରି. ବିଂ. (ଦୁଧ+ଇ)ନପୁଂସକ ।
ଦୁଧିଆ—ଗ୍ରା. ବିଂ. ଦୁଧ ସମ୍ବନ୍ଧୀୟ, ଦୁଧପରି ଧଳା, ଦୁଧପରି ସ୍ୱାଦଯୁକ୍ତ, ଦୁଧ ଆଣିଥିବା ବ୍ୟକ୍ତି, (ବି) ଦୁଧିଆ ଗୋଖର ।
ଦୁଧିଆକନ୍ଦା—ଗ୍ରା.ବି.ଖଡ଼ିକନ୍ଦା ଦେଖ ।
ଦୁଧିଆବୋଡ଼ା—(ପ୍ରା.ଗଡ଼ଜାତ)ବି. ଏକ-ପ୍ରକାର ଜଙ୍ଗଲୀ ବୋଡ଼ା ସାପ ।
ଦୁଧିଆମାଟି—ଗ୍ରା. ବି. ଦୁଧପରି ଧଳା ମାଟି, ଖଡ଼ିଆ ମାଟି ।
ଦୁଧିଆମେଣ୍ଟି(ଣ୍ଟି)—ଗ୍ରା.ବି.(ସଂ-ଦୁଗ୍ଧିକା)

ଏକପ୍ରକାର ବନ୍ୟଲତା ।
**ଦୁଧିଆର**—ଗ୍ରା. ବି. ଏକପ୍ରକାର କ୍ଷୁଦ୍ର କ୍ଷୀରି ଗୁଳ୍ମ । [ ଦେଖ ।
**ଦୁଧିଆଲତା**—ଗ୍ରା. ବି. ଦୁଧିଆମେଣ୍ଟି
**ଦୁଧିଆଳୀ**—ଗ୍ରା. ବି°. ଦୁଧପରି ବର୍ଣ୍ଣ-ବିଶିଷ୍ଟ, ଦୁଗ୍ଧବର୍ଣ୍ଣ, ଯେବେଶି ଦୁଧ ଦିଏ ।
**ଦୁଧେଉ**—ବି.ବି°. କ୍ଷୁଦ୍ରିତ, ବିରକ୍ତ ।
**ଦୁଧେଷ୍ଟ**—ପୁଂ.ବି. ଦୁଟ୍ଟେଷ୍ଟ ।
**ଦୁଧୀ**—ଗ୍ରା.ସ୍ତ୍ରୀ. ବି°, ( ଅନ୍ୟ ଶବ୍ଦସହିତ ପ୍ରଯୁକ୍ତ ) ସ୍ତନବିଶିଷ୍ଟ ।
**ଦୁନାବୁଡ଼ିଆ**—ଗ୍ରା.ବି°. (ସଂ-ଦ୍ୱି+ନାବ) **ଦୋନାବୁଡ଼ିଆ** ଦେଖ ।
**ଦୁନ**—ପ୍ରା. ସମ୍ବଲପୁର. ବି°. ଦ୍ୱିଗୁଣ, ଡବଲ, ( ବଙ୍ଗ-ଗ୍ରା. ବି. ) ଦ୍ରୋଣୀ, ଜଳସେଚନ ଯନ୍ତ୍ର ।
**ଦୁନିଆ(ଆଁ)**—ଯା. ବି. ବ୍ରହ୍ମାଣ୍ଡ, ବିଶ୍ୱ, **ସଂସାର**, ଜଗତ୍, ଧରଣୀ, ପୃଥିବୀ, **ସମସ୍ତ** ପୃଥିବୀ,ସଂସାରଲୋକେ,ସମାଜ ।
**ଦୁନିଆ(ଆଁ)ଛଡ଼ା**— ଗ୍ରା. ବି°. ଦୁନିଆ ବାହାର ଦେଖ ।
**ଦୁନିଆ(ଆଁ)ତମାମ୍**—ଗ୍ରା.ଅବ୍ୟ. ଦୁନିଆ-ସାକ ଦେଖ ।
**ଦୁନିଆ(ଆଁ)ଦୌଲତ୍**—ଯା. ବି. ସାଂସାରିକ ଧନ, ଆପଣାର ସ୍ତ୍ରୀ ଓ ସନ୍ତାନ-ଗଣ ।
**ଦୁନିଆ(ଆଁ)ଦାର**—ଯା.ବି°. ସଂସାରୀ ।
**ଦୁନିଆ(ଆଁ)ଦାରି**—ଯା. ବି. ସାଂସାରିକ ଧର୍ମ, ଗୃହସ୍ଥର ଧର୍ମ, ସଂସାରର ଗତି-ମତି ।
ଦୁନିଆ(ଆଁ)ଦୋରଙ୍ଗୀ—ଯା (ପ୍ରବଚନ) ଏ ସଂସାରରେ ସୁଖଦୁଃଖ ଉଭୟ ବିଦ୍ୟମାନ ।
ଦୁନିଆ(ଆଁ)ବାହାର—ଯା. ବି°. ଅସା-ଧାରଣ, ସୃଷ୍ଟିଛଡ଼ା, ଅମାନୁଷିକ ।
**ଦୁନିଆ(ଆଁ)ସାକ**—ଗ୍ରା.କ୍ରି.ବି°.ସଂସାର-ଯାକ, ସମଗ୍ର ଜଗତରେ ।
**ଦୁନିଆ(ଆଁ)ର ଖବର**—ଯା.ବି.ଦୁନିଆର ହାଲଚାଲ ଦେଖ ।

ଦୁନିଆ(ଆଁ)ର ରଙ୍ଗ—ଗ୍ରା. ବି. ସଂସାରର ଗତି ବା ସ୍ଥିତି ।
ଦୁନିଆ(ଆଁ)ର ହାଲଚାଲ—ଯା.ବି.ସଂସାରର ସମ୍ବାଦ ।
ଦୁନଦର—(ପ୍ରା. ସମ୍ବ.ବି.) ଡବଲ ଖଣ୍ଡ, ଦ୍ୱିଗୁଣ ଖଣ୍ଡ ।
ଦୁନ୍ଦୁରନା—(ପ୍ରା. ସିଂହଭୂମ. କ୍ରି)ସାଗିକର 'ଗାଲଦେବ', ଶୋଧିବା ।
ଦୁନ୍ଦମ—ପୁଂ.ବି. ଦେବ ବାଦ୍ୟବିଶେଷ, ଦୁନ୍ଦୁଭି, ନାଗରା ।
ଦୁନ୍ଦୁ—ପୁଂ. ବି. ( ଦୁ+ଦୁ ଃଖ+ଦମ୍ +ଉ ) ବସୁଦେବ, ଶ୍ରୀକୃଷ୍ଣଙ୍କ ପିତା, **ଦୁନ୍ଦୁଭିବାଦ୍ୟ**, ନାଗରା ବାଜିବାର ଅନୁ-କରଣ ଶବ୍ଦ ।
ଦୁନ୍ଦୁଭ—ପୁଂ.ବି. ଦୁନ୍ଦୁଭିବାଦ୍ୟ ।
ଦୁନ୍ଦୁଭି—ପୁଂ.ବି.(ଦୁନ୍ଦୁ+ଭା+କ.ଇ) ନାଗରା, ଢୋଲ, ଦୈତ୍ୟବିଶେଷ, ରାକ୍ଷସବିଶେଷ, ବରୁଣ, ବିଷ, ପଶା, ପଶାଦାନ, ପାଷ୍ଟି, କୁକୁରବଂଶୀୟ ଅନ୍ଧ-କଙ୍କ ପୁତ୍ର, କ୍ରୌଞ୍ଚଦ୍ୱୀପର ଦେଶ ବିଶେଷ, ପର୍ବତବିଶେଷ, (ସ୍ତ୍ରୀ) ଜଣେ ଗନ୍ଧର୍ବୀ, ଏକପ୍ରକାର ପ୍ରାଚୀନ ଆନନ୍ଦ ଯନ୍ତ୍ରବିଶେଷ,(ପର୍ଯ୍ୟାୟ)ଭେରି,ଆନକ ।
ଦୁନ୍ଦୁଭିକ—ପୁଂ.ବି. କୀଟବିଶେଷ ।
ଦୁନ୍ଦୁଭିନିର୍ହ୍ରାଦ—ପୁଂ. ବି. ଦାନବ-ବିଶେଷ ।
ଦୁନ୍ଦୁଭିସେଣ—ପୁଂ.ବି. ନୃପବିଶେଷ ।
ଦୁନ୍ଦୁଭିସ୍ୱନ—ପୁଂ.ବି. ସୁଶ୍ରୁତୋକ୍ତ ବିଷ ଚିକିତ୍ସାବିଶେଷ ।
ଦୁନ୍ଦୁଭିସ୍ୱର—ପୁଂ.ବି. ଦୁନ୍ଦୁଭିର ଶବ୍ଦ ।
ଦୁନ୍ଦୁଭିସ୍ୱରରାଜ—ପୁଂ. ବି. କେତେଜଣ ବୁଦ୍ଧଙ୍କର ନାମ ।
ଦୁନ୍ଦୁଭ୍ୟ—ପୁଂ.ବି. ରୁଦ୍ରବିଶେଷ,ଦୁନ୍ଦୁଭି ବାଦନସାଧନ ମନ୍ତ୍ରବିଶେଷ ।
ଦୁନ୍ଦୁମାର—ପୁଂ.ବି. ଧୁନ୍ଧୁମାର ।
ଦୁପ୍—ଗ୍ରା.ଅବ୍ୟ. (ଧ୍ୱନ୍ୟନୁକରଣ) ପଦ-ଶବ୍ଦ, ଦୁପ୍‌ଦାପ୍ ।
ଦୁପ୍‌ଦାପ୍—ଗ୍ରା.ଗୋଇଠିଦ୍ୱାରା ଭୂମିରେ ଉତ୍ପନ୍ନ ଶବ୍ଦ ।

ଦୁଫାନକୁଥୁ—କ୍ଲୀ. ବି. ନୀଳକଣ୍ଠ ତାଜକୋକ୍ତ ବର୍ଷପ୍ରବେଶ ଯୋଗବିଶେଷ ।
ଦୁବ୍‌ସା—(ପ୍ରା.ସମ୍ବଲ.ବି.)ଦୁବ ଦେଖ ।
ଦୁବ—ଗ୍ରା.ବି. (ସଂ-ଦୂର୍ବା) ଦୂର୍ବା, ଲମ୍ବ ଗଣ୍ଠି ଗଣ୍ଠିଆ ଲତା ଘାସ, ଦ୍ରବ୍ୟସିଂହର ଡାକନାମ,(ବି°)ଦୁବପରି ଅତି କ୍ଷୁଦ୍ର ।
ଦୁବଗଣ୍ଠି—ଗ୍ରା. ବି. ( ସଂ-ଦୂର୍ବାଗ୍ରନ୍ଥି ) ଦୁବଘାସରେ ବନ୍ଧାଯିବା ଗଣ୍ଠି, ଦୁବ-ଲତାର ଗ୍ରନ୍ଥିଅଂଶ ।
ଦୁବଗଣ୍ଠି ପଡ଼ିବା—ଗ୍ରା.ବି.ବିବାହହେବା ।
ଦୁବଘାସ—ଗ୍ରା.ବି. ଦୁବ ଦେଖ ।
ଦୁବଚାଉଳ ପଡ଼ିବା—ଗ୍ରା.ବି. ଦୂର୍ବାକ୍ଷତ ବା ପୁନର୍ବିବାହ ଉତ୍ସବ ।
ଦୁବଟିଅ—ଗ୍ରା.ସ୍ତ୍ରୀ. ବି. ଲୋକଙ୍କ ମୁଣ୍ଡର ଅଳଙ୍କାରବିଶେଷ ।
ଦୁବଦବାଣି—ଗ୍ରା.ବି. ପିଲାମାନେ ପଡ଼ି-ଆରେ ଦୁବଘାସ ଉପରେ ଡେଇଁ ଡେଇଁ ଖେଳିବା ଏକପ୍ରକାର ଖେଳ ।
ଦୁବବରକୋଳିପତ୍ର—ଗ୍ରା.ବି.(ସଂ-ଦୂର୍ବା ବଦରୀପତ୍ର) ମଙ୍ଗଳ କର୍ମାଦିରେ ଓ ସଙ୍କଳ୍ପ କରିବା ସମୟରେ ବ୍ୟବହୃତ ଦୂର୍ବା ଓ ବଦରୀପତ୍ର ।
ଦୁବଗ,ଦୁବଲା—ଯା. ବି°. ଦୁର୍ବଳ, କ୍ଷୀଣ, କୃଶ, କାହିଲ ।
ଦୁବର୍ଣ୍ଣ—ଗ୍ରା. ବି. (ସଂ-ଦୁର୍ବର୍ଣ୍ଣ) ତେଜୋ-ହୀନ, ରୂପା ।
ଦୁବହଂସା—ଗ୍ରା. ବି. ଚିଲିକା ହ୍ରଦରେ ଦେଖାଯିବା ପକ୍ଷୀବିଶେଷ ।
ଦୁବା—ଗ୍ରା.ବି. ଦ୍ରବ୍ୟସିଂହ ନାମକ ବ୍ୟକ୍ତିର ଅନାଦରାର୍ଥକ ଡାକ ନାମ ।
ଦୁବାଇ—ଗ୍ରା. ବି. ଦୁବେଇ ଦେଖ ।
ଦୁବିଧା—ଗ୍ରା. ବି. ( ସଂ-ଦ୍ୱିଧା ) ଦୋଗଧା ଦେଖ ।
ଦୁବୁଲ—ଗ୍ରା. ବି°. (ସଂ-ଦୁର୍ବଳ) ଦୁର୍ବଳ, କ୍ଷୀଣ, ଶୀର୍ଣ୍ଣ, (ପ୍ରା. ମେଦିନୀ. ବି) ଦୁବ-ଘାସ, ଦୂର୍ବାଦଳ ।
ଦୁବେଇ— ଗ୍ରା. ବି. ( ସଂ-ଦ୍ୱିବେଦୀ ) ବ୍ରାହ୍ମଣମାନଙ୍କର ଉପାଧିବିଶେଷ, (ବି°) ଦୋବେଇ ଦେଖ ।

ଦୁ(ଦୋ)ଭାଷୀ—ଯା. ବିଂ. (ଦୁଇଭାଷା ଯେ କହିପାରେ) ଅନୁବାଦକ ବ୍ୟକ୍ତି।

ଦୁଭାଷୀଆ—ଗ୍ରା.ବିଂ. ଯେ ଦୁଇଭାଷାରେ କଥା କହିପାରେ।

ଦୁମ୍—ଦୁମ୍‌ଦୁମ୍, ଦୁମ୍‌ଦାମ୍।

ଦୁମ୍(ମୁ)କା—ଗ୍ରା. ବି. ଦୁମୁକାଣି ଦେଖ, ଶବ୍ଦଯୁକ୍ତ ବାଧା।

ଦୁମ୍‌ଗଜା—ଗ୍ରା. ବି. ଗୃହପାଳିତ ଶାଙ୍ଖ ଓ ବଣିଚଢ଼େଇଙ୍କ ଲାଞ୍ଜଉପରେ ଉଠିବା ବ୍ରଣରୋଗବିଶେଷ।

ଦୁମ୍‌ଚି—ଯା. ବି. (ତୁର୍କୀ) ଘୋଡ଼ାର ସାଜବିଶେଷ।

ଦୁମ୍(ମୁ)ଦାମ୍—ଗ୍ରା.ବି. (ଧ୍ୱନ୍ୟନୁକରଣ) ଉପର୍ଯ୍ୟୁପରି ପିଠିରେ ବାଧାମାଡ଼ର ଶବ୍ଦ।

ଦୁମ୍(ମୁ)ଦୁମ୍(ମୁ)—ଗ୍ରା.ଅବ୍ୟ. (ଧ୍ୱନ୍ୟନୁକରଣ) ଜୋର୍‌ରେ ଦଉଡ଼ିକରି ଚାଲିବାର, ଜୋରରେ ବାଧା ମାଡ଼ିବାର, ଜୋର୍‌ରେ ବର୍ଷା ହେବାର (ଶବ୍ଦ)।

ଦୁମ୍‌ବାଲ—ଯା. ବିଂ. ପୁଚ୍ଛଯୁକ୍ତ, ବଡ଼ ପୁଚ୍ଛଯୁକ୍ତ।

ଦୁମ—ଯା. ବି. ଲାଙ୍ଗୁଡ଼, (ପ୍ରା.ଗଞ୍ଜାମ.ବି) ଉଚଜମି, ଢିପ, (ଗ୍ରା.ବି) ଗୋହିଆର ପଇ ଛାଡ଼ି ମଝିକାଠ, ଯହିଁରେ ଅଖ ଫୋଡ଼ ଥାଏ। [ ଖଙ୍କିବା।

ଦୁ(ଦୋ)ମଡ଼ାନ—ଗ୍ରା.କ୍ରି.ବିଂ.ବଙ୍କାଇବା,

ଦୁ(ଦୋ)ମନା—ଯା.ବିଂ. ଦ୍ୱିମନା, ସଂଶୟାନ୍ୱିତ, ଦ୍ୱିଧାଯୁକ୍ତ।

ଦୁମା—ଯା. ବି. ଦୁମ୍ବା ଦେଖ।

ଦୁମାଲ—ଗ୍ରା. ବି. ସୋନପୁର ରାଜ୍ୟ ନିବାସୀ ଏକ ଶୂଦ୍ରଜାତୀୟ ଲୋକ।

ଦୁମୁକା—ଗ୍ରା. ବି. ଦୁମ୍‌କା ଦେଖ, (ପ୍ରା. ସମ୍ବ. ବି) ସମତଳ, ସଡ଼କ ବା ବନ୍ଧ-ଉପରେ ଥିବା ଉଚାଭୂମି, ଢିପ।

ଦୁମୁକାଣି—ଗ୍ରା. ବି. (ଧ୍ୱନ୍ୟନୁକାରୀ) ଘୋର ବରଷା, ଘୋର ବରଷାର ଅସର; (ପ୍ରା. ଗଞ୍ଜାମ. ବି) (ଦେ-ଦୁମ୍ଫୁଟ) ଉପରକୁ ଲମ୍ଫଦେବା।

ଦୁମୁକିବା—ପ୍ରା. (ଗଞ୍ଜାମ) କ୍ରି. ଉପରକୁ ଲମ୍ଫଦେବା।

ଦୁମୁଖା—ଗ୍ରା. ଯାହାର ଦୁଇଦିଗରେ ମୁଖ, ସର୍ପବିଶେଷ।

ଦୁମୁଖୋ—ଗ୍ରା. ବିଂ. ଦୁଇମୁଖ ବିଶିଷ୍ଟ।

ଦୁମୁଣ୍ଡି—ଗ୍ରା. ବିଂ. (ସଂ-ଦ୍ୱିମୁଣ୍ଡ) ଦୁଇ ମୁଣ୍ଡ ବିଶିଷ୍ଟ, (ବି) ଦୋମୁଣ୍ଡିଆ ଦେଖ।

ଦୁମୁ(ମ୍)ଦୁମା—ଗ୍ରା. କ୍ରି. ଉଦୁମୁଦୁମା; ଗୋଟାକେତେ ଉପର୍ଯ୍ୟୁପରି ବାଧା।

ଦୁମୁ(ମ୍)ଦୁମାବସା(ସେ)ଇବା—ଗ୍ରା.କ୍ରି. ଉପର୍ଯ୍ୟୁପରି ଗୋଟାକେତେ ବାଧା-ମାରିବା।

ଦୁମୁ(ମ୍)ଦୁମାବଜା(ଜେ)ଇବା—ଗ୍ରା.କ୍ରି. ଉପର୍ଯ୍ୟୁପରି ଗୋଟାକେତେ ବାଧା-ମାରିବା।

ଦୁମୁଦୁମିଆ(ଆଁ)—(ପ୍ରା.ଯାଜପୁର.ବିଂ) ଉଦୁଉଦିଆ ଦେଖ।

ଦୁମ୍ବକ—ପୁଂ.ବି. ମେଷବିଶେଷ, ଦୁମ୍ବା।

ଦୁମ୍ବା—ଯା. ବି. (ଦୁମ୍‌ବାଲ-ପୁଚ୍ଛଯୁକ୍ତ) ପାରସ୍ୟ, ଆଫଗାନିସ୍ଥାନ, ତୁରସ୍କ ଓ କାଶ୍ମୀର ଦେଶୀୟ ଏକପ୍ରକାର ମେଣ୍ଢା।

ଦୁମ୍ବମେଣ୍ଢା—ଯା. ମେଷବିଶେଷ।

ଦୁୟା—ଗ୍ରା. (ପଦ୍ୟ) ବି. ଦ୍ୱିତୀୟ ବସ୍ତୁ।

ଦୁୟୋ—ପ୍ରା.(ବାଲେ)ବିଂ.ଦ୍ୱୟ,ଦୁହେଁ।

ଦୁର୍—(ସଂ-ଉପସର୍ଗ) ଅବ୍ୟ. (ଦୋ + ଉର୍) ଦୁଷ୍ଟ, ନିନ୍ଦା, ନିଷେଧ, ଦୁଃଖ, ନିନ୍ଦିତ, ମନ୍ଦ, କଷ୍ଟ, ଅବନତି, ଈଷଦର୍ଥ, କୁତ୍ସାର୍ଥ, କୃଶ, ଅସମ୍ମତି, ସଙ୍କଟ, (ଏସବୁର ଅର୍ଥଜ୍ଞାପକ ଉପସର୍ଗ)।

ଦୁର୍—ଗ୍ରା. ଅବ୍ୟ. ଦୂର୍ ଦେଖ।

ଦୁର୍ରର୍(ର)—ଗ୍ରା. ଅବ୍ୟ. ଦୂର ଦେଖ।

ଦୁର୍‌ଚୁକ୍—ଗ୍ରା. ଅବ୍ୟ. (ଅଶିଷ୍ଟ) ଦୂର୍ ଦେଖ।

ଦୁର୍(ରୁ)ଦୁର୍(ରୁ)ଜଳିବା—ଗ୍ରା. କ୍ରି. (ନିଆଁ) ଅତି ପ୍ରଚଣ୍ଡଭାବେ ପ୍ରଜ୍ୱଳିତ ହେବା।

ଦୁରପଲା—ଗ୍ରା. ଅବ୍ୟ. (ସଂ-ଦୂର୍+ ପଳାୟନ) ଏଠାରୁ ପଳାଇ ଯା।

ଦୁର୍‌ବିଛୁ—ପ୍ରା.(ଯାଜପୁର) ବିଂ. ବାଇ-ବିଛ, ଅତି ଅସ୍ଥିର, ତରଳ।

ଦୁର୍ମୁସ୍—ଗ୍ରା. ବି. ଧୁର୍ମୁସ।

ଦୁର—କ୍ରି. ବିଂ. (ଦୁ+ଉର) ଦାତା

ଦୁରକୁଜି—ଗ୍ରା. ବି. ବଡ଼ବଡ଼ ମୁଣ୍ଡା ବନ-ଗୁଳ୍ମ ବିଶେଷ।

ଦୁରକ୍ଷ—ପୁଂ.ବି. (ଦୁର୍+ଅକ୍ଷ)କପଟ-ପଶାଖେଳ, ଦୁଷ୍ଟଦ୍ୟୂତ, କୌଣସି ଚିହ୍ନନଥିବା ପଶାକାଠି, (ବିଂ) (ଦୁର୍+ ଅକ୍ଷି) ଦୁଷ୍ଟନେତ୍ରଯୁକ୍ତ, ବ.ବ୍ରୀ; (ସ୍ତ୍ରୀ) ଦୁରକ୍ଷୀ।

ଦୁରକ୍ଷର—କ୍ରି. ବିଂ. (ବ.ବ୍ରୀ) କଠୋର ଅକ୍ଷରଯୁକ୍ତ, ଅତ୍ୟନ୍ତରୂଢ଼, ଦୁର୍ଲେଖ୍ୟ ଦେଖ।

ଦୁରଜନ—(ପ୍ରା-କ) ଦୁର୍ଜନ।

ଦୁରତିକ୍ରମ—କ୍ରି. ବିଂ. ( ଦୁର + ଅତି + କ୍ରମ + ଅ) ଦୁର୍ଲଂଘ୍ୟ, ଅଲଙ୍ଘ୍ୟ, ଦୁର୍ଜ୍ଜୟ, ଦୁରନ୍ତ, ଅସାଧ୍ୟ, (ଭା) ଦୁରତିକ୍ରମତା, (ସ୍ତ୍ରୀ) ଦୁରତିକ୍ରମା, (ବି) ବିଷ୍ଣୁଙ୍କର ଏକ ନାମ।

ଦୁରତିକ୍ରମଣ—ବି. ( ଦୁର + ଅତିକ୍ରମଣ ) ଅତିକଷ୍ଟରେ ଉତୁରିବା ବା ପାରହେବା

ଦୁରତିକ୍ରମଣୀୟ—ବିଂ. (ଦୁର + ଅତି + କ୍ରମ + ର୍ମି.ଅନୀୟ ) ଦୁରତିକ୍ରମ ଦେଖ, (ବି) ଦୁରତିକ୍ରମଣୀୟତା, (ସ୍ତ୍ରୀ) ଦୁରତି-କ୍ରମଣୀୟା।

ଦୁରତିକ୍ରମ୍ୟ—ବିଂ. (ଦୁର୍ + ଅତି + କ୍ରମ + ର୍ମି.ଯ ) ଦୁରତିକ୍ରମ ଦେଖ, ( ବି ) ଦୁରତିକ୍ରମ୍ୟତା, (ସ୍ତ୍ରୀ) ଦୁରତିକ୍ରମ୍ୟା।

ଦୁରତ୍ୟୟ—ପୁଂ.ବିଂ. (ଦୁର୍ + ଅତ୍ୟୟ) ବ.ବ୍ରୀ; ଦୁର୍ବିନାଶ୍ୟ, ଦୁସ୍ତର, ଦୁରତି-କ୍ରମ, (ବି)ଦୁରତ୍ୟୟତା, (ସ୍ତ୍ରୀ)ଦୁରତ୍ୟୟା।

ଦୁରତେତ୍ତୁ—କ୍ରି.ବିଂ. (ଦୁର + ଅତି + ଇ, ର୍ମି.ତୁ) ଦୁରତିକ୍ରମଣୀୟ।

ଦୁରଦୃଷ୍ଟ—କ୍ଲୀ. ବି. ( ଦୁର୍ + ଅଦୃଷ୍ଟ ) କ.ଧା; ମନ୍ଦଭାଗ୍ୟ, ପାପ, (ବିଂ.ବ.ବ୍ରୀ) ହତଭାଗ୍ୟ, ( ବି ) ଦୁରଦୃଷ୍ଟତା, ( ସ୍ତ୍ରୀ ) ଦୁରଦୃଷ୍ଟା।

ଦୁରଦ୍ମା—ସ୍ତ୍ରୀ.ବି. ( ଦୁର + ଅଦ + ମନ୍ + ଈ) ଦୁର୍ଭୋଜନ।

ଦୁରଧିଗ—କ୍ରି.ବିଂ. (ଦୁର୍ + ଅଧି + ଗମ୍ ର୍ମି.ଅ) ଦୁଷ୍ପ୍ରାପ୍ୟ, ଦୁର୍ଜ୍ଞେୟ।

ଦୁରଧିଗମ—ବି. ବିଂ (ଦୁର୍ + ଅଧି + ଗମ୍ + ର୍ମି.ଅ ) ଦୁଷ୍ପ୍ରାପ୍ୟ, ଦୁର୍ଲଭ, ଦୁର୍ଗମ, ଦୁଷ୍ପ୍ରବେଶ, ଦୁର୍ଜ୍ଞେୟ ।

ଦୁରଧିଗମ୍ୟ—ବି.ବିଂ. (ଦୁର୍ + ଅଧି + ଗମ + ର୍ମି.ଯ)ଦୁରଧିଗମ ଦେଖ, ଦୁର୍ଗମ, ଦୁର୍ଜ୍ଞେୟ, ଦୁଷ୍ପ୍ରାପ୍ୟ, (ବି) ଦୁରଧିଗମ୍ୟତା, (ସ୍ତ୍ରୀ) ଦୁରଧିଗମ୍ୟା ।

ଦୁରଧିଷ୍ଠିତ—ବି. ବିଂ. (ଦୁର୍ + ଅଧି + ସ୍ଥା + ତ)ଅନ୍ୟାୟ ମନ୍ଦଭାବେ ସମ୍ପାଦିତ, (ପୁଂ) ଅନୁପଯୁକ୍ତ ଗୃହାଧିଷ୍ଠାନ ।

ଦୁରଧୀତ—କ୍ଲୀ.ବି. ଦୁଷ୍ଟାଧ୍ୟୟନ, ମନ୍ଦାଧ୍ୟୟନ ।

ଦୁରଧ୍ୟବସାୟ—ବି.(ଦୁର୍ + ଅଧ୍ୟବସାୟ) କ.ଧା; ମନ୍ଦ ଉପକ୍ରମ, ମନ୍ଦ କର୍ମରେ ଅଧ୍ୟବସାୟ, ( ପୁଂ.ବିଂ ) ମନ୍ଦଉପକ୍ରମକାରୀ, ( ବି )ଦୁରଧ୍ୟବସାୟତା,( ସ୍ତ୍ରୀ ) ଦୁରଧ୍ୟବସାୟା ।

ଦୁରଧ୍ୟୟ(ନ)—ବି.ବିଂ.(ଦୁର୍ + ଅଧ୍ୟୟ, ଅଧ୍ୟୟନ) ଦୁଷ୍ପ୍ରାପ୍ୟ, ଯାହା ପାଇବାକୁ କଷ୍ଟକର, ( ବି ) ଦୁରଧ୍ୟୟତା, ( ସ୍ତ୍ରୀ ) ଦୁରଧ୍ୟୟା ।

ଦୁରଧ୍ୱ—ପୁଂ. ବି. (ଦୁର୍ + ଅଧ୍ୱନ + ଅ) ମନ୍ଦପଥ, କୁପଥ, କୁମାର୍ଗ,(ବିଂ.ବ ବ୍ରୀ) କୁମାର୍ଗଗାମୀ, (ବି) ଦୁରଧ୍ୱତା, (ସ୍ତ୍ରୀ) ଦୁରଧ୍ୱା ।

ଦୁରନୁପାଳନ—ବି.ବିଂ. ପାଳନ କରିବା ଅତି କଠିନ ।

ଦୁରନୁବୋଧ—ବି. ବିଂ. ଯାହା ସ୍ମରଣ କରିବା କଠିନ ।

ଦୁରନୁଷ୍ଠିତ—ବି. ବିଂ.(ଦୁର୍ + ଅନୁ + ସ୍ଥା + ତ ) ଯାହା ଦୁଃଖରେ ଅନୁଷ୍ଠାନ କରାଯାଏ ।

ଦୁରନୁଷ୍ଠେୟ—ବି.ବିଂ. (ଦୁର୍ + ଅନୁ + ସ୍ଥା + ଯ) କଷ୍ଟେ ଅନୁଷ୍ଠାନଯୋଗ୍ୟ ।

ଦୁରନ୍ତ—ବି.ବିଂ. (ଦୁର୍ + ଅନ୍ତ)ବ.ବ୍ରୀ; ଦୁର୍ଦ୍ଦାନ୍ତ, ଦୁର୍ଦ୍ଦମନୀୟ, ଦୁଷ୍ଟ, ଦୁର୍ବୃତ୍ତ, ଅବାଧ, ଦୁର୍ଗମ, ଦୁର୍ଜ୍ଞେୟ, ଦୁରତିକ୍ରମଣୀୟ, ଦୁର୍ଲଂଘ୍ୟ, ଅତି ଗମ୍ଭୀର, ଅପାର, ଅସୀମ, ପ୍ରଚଣ୍ଡ, ଭୀଷଣ, ଅଶୁଭ, ଯାହାର ପରିଣାମ ମନ୍ଦ, କୁତ୍ସିତ, ଦୁଷ୍ଟାନ୍ତ, ଦୁଷ୍ଟାବସାନ, (ସ୍ତ୍ରୀ)ଦୁରନ୍ତା

ଦୁରନ୍ତକ—ପୁଂ. ବି. ( ଦୁର୍ + ଅନ୍ତ + କ)ଶିବ, ମହାଦେବ, ଅସଂଖ୍ୟମର୍ଯ୍ୟାଦ ।

ଦୁରନ୍ତପଣ—ଗ୍ରା. ବି. ଦୁଷ୍ଟପଣ,ଦୁର୍ଦ୍ଦାନ୍ତ ବ୍ୟକ୍ତି ।

ଦୁରନ୍ଧର—ଗ୍ରା. ବିଂ. ଦୁରନ୍ତ, ଉତ୍କଟ, ଧୁରନ୍ଧର, ବଳବାନ୍, କୌଣସି କାର୍ଯ୍ୟ କରିବାକୁ ପ୍ରସ୍ତୁତ ।

ଦୁରନ୍ୱୟ—ବି. ବିଂ. (ଦୁର୍ + ଅନ୍ୱୟ, କ.ଧା ) ଦୁଃଖ ଦ୍ୱାରା ଅନୁଗମନୀୟ. (ବି) ଭୁଲ ନିର୍ଦ୍ଧାରଣ, ବାକ୍ୟଦୋଷବିଶେଷ, (ବିଂ) ଦୁର୍ଗମ୍ୟ, ଦୁଷ୍ପ୍ରାପ୍ୟ, କାର୍ଯ୍ୟରେ ପରିଣତ ହେବାର କଷ୍ଟସାଧ୍ୟ ।

ଦୁରନ୍ୱେଷ୍ୟ—ବି.ବିଂ. କଷ୍ଟେ ଯାହାର ଅନୁସନ୍ଧାନ କରାଯାଏ ।

ଦୁରପନେୟ—ବି. ବିଂ. (ଦୁର୍ + ଅପ + ନୀ + ର୍ମି.ଯ)ଦୁର୍ମୋଚନୀୟ, ଯାହାର ମୋଚନ କରାଯାଇ ନ ପାରେ, ଯାହା ସହଜେ ଲିଭାଯାଇ ନ ପାରେ, ଯାହା ସହଜେ ଦୂରୀକରଣ କରାଯାଇ ନ ପାରେ, (ବି) ଦୁରପନେୟତା. (ସ୍ତ୍ରୀ) ଦୁରପନେୟା ।

ଦୁରବଗମ—ବିଂ. ( ଦୁର୍ + ଅବଗମ ) ଦୁର୍ବୋଧ, ଦୁର୍ଜ୍ଞେୟ, (ବି) ଦୁରବଗମତା, (ସ୍ତ୍ରୀ) ଦୁରବଗମା ।

ଦୁରବଗମନୀୟ—ବିଂ.ଦୁରବଗମ ଦେଖ. (ବି) ଦୁରବଗମନୀୟତା, (ସ୍ତ୍ରୀ) ଦୁରବଗମନୀୟା ।

ଦୁରବଗମ୍ୟ—ବି.ବିଂ. (ଦୁର୍ + ଅବ + ଗମ୍ + ର୍ମି.ଯ) ଦୁର୍ଜ୍ଞେୟ,(ବି) ଦୁରବଗମ୍ୟତା, (ସ୍ତ୍ରୀ) ଦୁରବଗମ୍ୟା ।

ଦୁରବଗାହ—ବି.ବିଂ(ଦୁର୍ + ଅବଗାହ) ବ.ବ୍ରୀ; ଦୁରଧିଗମ୍ୟ, ଦୁର୍ଜ୍ଞେୟ, ଦୁଷ୍ପ୍ରବେଶ୍ୟ, ଯେଉଁ ଜଳାଶୟରେ ଅତି କଷ୍ଟରେ ସ୍ନାନ କରାଯାଇପାରେ, ଜଟିଳ ।

ଦୁରବଗାହ୍ୟ—ବିଂ.ଦୁରବଗାହ ଦେଖ ।

ଦୁରବଗ୍ରହ—ବିଂ.(ଦୁର୍ + ଅବ + ଗ୍ରହ + ର୍ମି.ଅ ) ଦୁରପନେୟ ଦେଖ, (ଜ୍ଞାନେନ୍ଦ୍ର) ବି. ଦୁରବଗ୍ରହତା ।

ଦୁରବବୋଧ—ବି.ବିଂ. (ଦୁର୍ + ଅବ + ବୁଧ + ଅ) ଦୁର୍ବୋଧ, ଯାହା ଦୁଃଖେ ବୁଝାଯାଏ ।

ଦୁରବରୋହ—ବି. ବିଂ. (ଦୁର୍ + ଅବ- + ରୁହ + ଅ) ଦୁରାରୋହଣୀୟ, ଯାହା କଷ୍ଟେ ଆରୋହଣ କରାଯାଏ ।

ଦୁରବସ୍ତ—ଯା. ବି. ବିଂ. (ଫା-ଦୋରବସ୍ତ) ଦୋରବସ୍ତ ଦେଖ ।

ଦୁରବସ୍ଥ—ବି. ବିଂ. ( ଦୁର୍ + ଅବସ୍ଥା ବା ଦୁର୍ + ଅବ + ସ୍ଥା + କ.ଅ)ବ.ବ୍ରୀ; ଦୁର୍ଦ୍ଦଶାଗ୍ରସ୍ତ, ଅତିଦରିଦ୍ର, ଦୁରବସ୍ଥାପନ୍ନ,(ବି)ଦୁରବସ୍ଥତା,(ସ୍ତ୍ରୀ)ଦୁରବସ୍ଥା ।

ଦୁରବସ୍ଥା—ସ୍ତ୍ରୀ. ବି. (ଦୁର୍ + ଅବସ୍ଥା) କ.ଧା; ଦୁର୍ଭାଗ୍ୟ, ମନ୍ଦଦଶା, ଦୁର୍ଦ୍ଦଶା, ଦୈନ୍ୟ,ହୀନାବସ୍ଥା, ଶୋଚନୀୟ ଅବସ୍ଥା, (ବିଂ) ଦୁରବସ୍ଥ ଦେଖ ।

ଦୁରବସ୍ଥାନ—ବି. ( ଦୁର୍ + ଅବସ୍ଥାନ ) (କ.ଧା), କଷ୍ଟରେ ସ୍ଥିତି, କ୍ଲେଶକର ଅବସ୍ଥାନ ।

ଦୁରବସ୍ଥାପନ୍ନ—ବିଂ. ( ଦୁର୍ + ଅବସ୍ଥା + ଆପନ୍ନ ) ଦୁର୍ଦ୍ଦଶାଗ୍ରସ୍ତ, (ସ୍ତ୍ରୀ) ଦୁରବସ୍ଥାପନ୍ନା ।

ଦୁରବାପ—ବିଂ. (ଦୁର୍ + ଅବ + ଆପ୍ + ର୍ମି.ଅ) ଦୁଷ୍ପ୍ରାପ୍ୟ,(ବି) ଦୁରବାପତା, (ସ୍ତ୍ରୀ) ଦୁରବାପା ।

ଦୁରବୀନ—ଯା.ବି. ଦୂରବୀକ୍ଷଣ ଯନ୍ତ୍ର ।

ଦୁରଭିଗ୍ରହ—ପୁଂ. ବି. (ଦୁର୍ + ଅଭି + ଗ୍ରହ + ଅ) ଅପାମାର୍ଗ, (ବିଂ) ଦୁଃଖଦ୍ୱାରା ଗ୍ରାହ୍ୟ,(ସ୍ତ୍ରୀ)ଦୁରାଳଭା । [ବାଇଡ଼ଙ୍କ ।

ଦୁରଭିଗ୍ରହା—ବି. ଦୁରାଳଭା ( ଦେଖ ),

ଦୁରଭିପ୍ରାୟ—ବି. ( ଦୁର୍ + ଅଭିପ୍ରାୟ ) (କ.ଧା); ଦୁରଭିସନ୍ଧି ଦେଖ ।

ଦୁରଭିମାନ—ବି. ( ଦୁର୍ + ଅଭିମାନ ) ବେଜାୟ ଆତ୍ମଗର୍ବ, (ବିଂ) ଦୁରଭିମାନୀ (ଦେଖ), (ବି ) ଦୁରଭିମାନତା ( ସ୍ତ୍ରୀ ) ଦୁରଭିମାନା ।

ଦୁରଭିମାନୀ—ପୁଂ.ବିଂ. ( ଦୁରଭିମାନ+ଇନ୍)ଆତ୍ମଗର୍ବୀ,ଯା'ର ଆତ୍ମଗର୍ବ ବେଶି (ବି) ଦୁରଭିମାନିତା,(ସ୍ତ୍ରୀ)ଦୁରଭିମାନିନୀ ।

ଦୁରଭିଳାଷ—ବି. (ଦୁର୍+ଅଭିଳାଷ) କ.ଧା; ମନ୍ଦ ଆକାଙ୍କ୍ଷା, ଦୁରାକାଙ୍କ୍ଷା ଦେଖ, ଦୁରଭିଳଷିତ ।

ଦୁରଭିଳାଷୀ—ପୁଂ.ବିଂ. (ଦୁରଭିଳାଷ+ଇନ୍) କ. ଧା; ମନ୍ଦବାଞ୍ଛାଯୁକ୍ତ, ( ବି ) ଦୁରଭିଳାଷିତା, (ସ୍ତ୍ରୀ) ଦୁରଭିଳାଷିଣୀ ।

ଦୁରଭିସନ୍ଧି—ପୁଂ.ବି.(ଦୁର୍+ଅଭିସନ୍ଧି) କ.ଧା; ମନ୍ଦଉଦ୍ଦେଶ୍ୟ, ଦୁଷ୍ଟ ଅଭିସନ୍ଧି, ମନ୍ଦ ଅଭିପ୍ରାୟ, ( ବିଂ ବ.ବ୍ରୀ ) ମନ୍ଦ ଅଭିପ୍ରାୟବିଶିଷ୍ଟ ।

ଦୁରଭିଗାହ—ବି. ବିଂ. ଦୁଷ୍ପ୍ରବେଶ୍ୟ, ଜଟିଳ, ଦୁର୍ବୋଧ ।

ଦୁରମଠ—(ଗ୍ରା.କ)ଦୁର୍ବୁଦ୍ଧି ।

ଦୁରସ୍ୟୁ—ବି.ବିଂ.ଦୁଃଖଦେବାକୁ ଇଚ୍ଛୁକ ।

ଦୁରସ୍ତ,ଦୋରସ୍ତ—ବିଂ. ( ପ୍ରା.ଜ—ଫା-ଦୁରୁସ୍ତ) ଶୁଦ୍ଧ, ଠିକ୍, ଖାଣ୍ଟି, ଯଥାଯଥ, ଶାସିତ, ଦମିତ, ଶ୍ରେଷ୍ଠ, ଚୌରସ, ସମାନ, ସଂସ୍କୃତ, ପରିପାଟୀ, ସୁଶୃଙ୍ଖଳ, ସୁବ୍ୟବସ୍ଥା. ଦୋରସ୍ତ ଦେଖ ।

ଦୁରହ୍ନ—ପୁଂ.ବି. ଦୁର୍ଦ୍ଦିନ, ମନ୍ଦଦିନ ।

ଦୁରାକ—ପୁଂ. ବି. ମ୍ଳେଚ୍ଛବିଶେଷ, ମ୍ଳେଚ୍ଛ ଦେଶବିଶେଷ ।

ଦୁରାକାଙ୍କ୍ଷ—ପୁଂ. ବିଂ. (ଦୁର+ଆକାଙ୍କ୍ଷା), ବ.ବ୍ରୀ;) ଯାହାର ଆକାଙ୍କ୍ଷା କେବେ-ହେଲେ ପୂରଣ ହୁଏ ନାହିଁ,ଯେ ଅସ-ମ୍ଭାବିତ ବିଷୟର ଅଭିଳାଷ କରେ, ମନ୍ଦାଭିଳାଷଯୁକ୍ତ, ଦୁରାଶାଗ୍ରସ୍ତ,ଅନୁଚିତ ଇଚ୍ଛାଭିଳାଷୀ, (ସ୍ତ୍ରୀ) ଦୁରାକାଙ୍କ୍ଷା ।

ଦୁରାକାଙ୍କ୍ଷା—ସ୍ତ୍ରୀ. ବି. (ଦୁର୍+ଆକାଙ୍କ୍ଷା) କ.ଧା; ନିନ୍ଦିତବାସନା, ଯେଉଁ ବାସ-ନାର ନିବୃତ୍ତି ନାହିଁ,ଦୁର୍ଲଭ ବସ୍ତୁପାଇଁ ଇଚ୍ଛା, ଦୁରାଶା, ଅତିରିକ୍ତ ଉଚ୍ଚ ଆଶା, (ବିଂ) ଦୁରାକାଙ୍କ୍ଷାର ସ୍ତ୍ରୀଲିଙ୍ଗ ।

ଦୁରାକାଙ୍କ୍ଷୀ—ପୁଂ.ବି. ( ଦୁରାକାଙ୍କ୍ଷା+ଇନ୍) ଯାହାର ଆକାଙ୍କ୍ଷା ବା ବାସନାର ନିବୃତ୍ତି ନାହିଁ, ଦୁରାଶାଯୁକ୍ତ, ଦୁର-ଭିଳାଷୀ, ଅତିଲୋଭୀ, (ସ୍ତ୍ରୀ) ଦୁରା-କାଙ୍କ୍ଷିଣୀ ।

ଦୁରାକ୍ରମଣ—ବି. ( ଦୁର୍+ଆକ୍ରମଣ) କ.ଧା ) ଅନ୍ୟାୟପୂର୍ବକ ଆକ୍ରମଣ,ମନ୍ଦ ଅଭିପ୍ରାୟରେ ଆକ୍ରମଣ,(ବିଂ)ଦୁରାକ୍ରମ୍ୟ ଦେଖ ।

ଦୁରାକ୍ରମ୍ୟ—ବି.ବିଂ.(ଦୁର୍+ଆ+କ୍ରମ୍+ର୍ମ.ଯ ) ଯାହା ଆକ୍ରମଣ କରିବା କଷ୍ଟକର, (ବି) ଦୁରାକ୍ରମ୍ୟତା, ( ସ୍ତ୍ରୀ ) ଦୁରାକ୍ରମ୍ୟା ।

ଦୁରାକୃତି—ବି. ବିଂ. (ଦୁର୍+ଆକୃତି) ମନ୍ଦ ଆକୃତିବିଶିଷ୍ଟ, (ସ୍ତ୍ରୀ)ଦୁଷ୍ଟ ଆକୃତି, ମନ୍ଦଆକୃତି ।

ଦୁରାକ୍ରନ୍ଦ—ଅବ୍ୟ. (ଦୁର୍+ଆକ୍ରନ୍ଦ+ଅ) ଅତିଦୁଃଖେ କ୍ରନ୍ଦନ ।

ଦୁରାକ୍ରମ—ବି.ବିଂ. (ଦୁର୍+ଆ+କ୍ରମ୍+ଅ) ଦୁଃଖଦ୍ୱାରା ଆକ୍ରମଣୀୟ, ଦୁରା-କ୍ରମ୍ୟ ।

ଦୁରାକ୍ରମ୍ୟ—ବି. ବିଂ. (ଦୁର+ଆ+କ୍ରମ୍+ଯ) ଦୁଃଖଦ୍ୱାରା ଆକ୍ରମଣୀୟ, ଯାହା ଆକ୍ରମଣ କରିବା କଷ୍ଟକର ।

ଦୁରାକ୍ରାନ୍ତ—ବିଂ. (ଦୁର୍+ଆକ୍ରାନ୍ତ, କ.ଧା;)ଯାହାକୁ ଅତି କଷ୍ଟରେ ଆକ୍ରମଣ କରାଯାଇଅଛି ।

ଦୁରାକ୍ରୋଶ—ପୁଂ. ବି. (ଦୁର୍+ଆ+କ୍ରୁଶ୍+ଅ ) ଆର୍ତ୍ତନାଦ, କାତରରେ କ୍ରନ୍ଦନ ।

ଦୁରାଗତ—ପୁଂ. ବିଂ.(ଦୁର୍+ଆଗତ) ଅତି କଷ୍ଟରେ ଉପସ୍ଥିତ, ଯେ ଅତି କଷ୍ଟେ ଆସିଅଛି, (ସ୍ତ୍ରୀ) ଦୁରାଗତା ।

ଦୁରାଗ୍ରହ—ପୁଂ. ବି. ( ଦୁର୍+ଆଗ୍ରହ) କ.ଧା; ଦୁଶ୍ଚେଷ୍ଟା, ମନ୍ଦ ବିଷୟରେ ଅଭିନିବେଶ, ମନ୍ଦ ଅଭିଳାଷ, ଦୁଷ୍ଟ ଅଭିନିବେଶ, (ବିଂ. ବ.ବ୍ରୀ ) ଦୁଷ୍ଟ ଆଗ୍ରହଯୁକ୍ତ, ଦୁଶ୍ଚେଷ୍ଟା, (ସ୍ତ୍ରୀ) ଦୁରା-ଗ୍ରହା ।

ଦୁରାଚର—ବିଂ. ( ଦୁର୍+ଆ+ଚର୍+ର୍ମ.ଅ ) ଯାହା ଅତି କଷ୍ଟରେ ଅନୁ-ଷ୍ଠିତ ହୁଏ, କୃଚ୍ଛ୍ରସାଧ୍ୟ, ଦୁଷ୍କର,ଦୁଷ୍ଟା-ଚାରଯୁକ୍ତ ।

ଦୁରାଚରଣ—ବି. ଦୁରାଚାର ଦେଖ ।

ଦୁରାଚରିତ—କ୍ଲୀ. ବିଂ. ଅତି କଷ୍ଟରେ ସାଧିତ, (ବି) ଦୁରାଚାର ଦେଖ ।

ଦୁରାଚାର—ପୁଂ.ବି. ( ଦୁର୍+ଆଚାର) କ.ଧା; କୁତ୍ସିତ ଆଚରଣ,ଦୁଷ୍ଟଆଚାର, ଦୁର୍ବ୍ୟବହାର, ମନ୍ଦ ଆଚରଣ, କଦା-ଚାର, କୁବ୍ୟବହାର, ମନ୍ଦ ଅଭ୍ୟାସ, (ବିଂ. ବ.ବ୍ରୀ) ଦୁଷ୍ଟାଚାରୀ, ଦୁର୍ବ୍ୟବ-ହାରକ, କଦାଚାରୀ, (ବି)ଦୁରାଚାରତା, (ସ୍ତ୍ରୀ) ଦୁରାଚାରା ।

ଦୁରାଚାରୀ—ପୁଂ.ବିଂ.(ଦୁରାଚାର+ଇନ୍) କଦାଚାରୀ, ଦୁଃଶୀଳ, ( ସ୍ତ୍ରୀ ) ଦୁରା-ଚାରିଣୀ ।

ଦୁରାଢ୍ୟଙ୍କର—ବି. ବିଂ. ଦୁଃଖଦ୍ୱାରା ଅନାଢ୍ୟ, ଆଢ୍ୟକରଣୀୟ ।

ଦୁରାଢ୍ୟମ୍ଭବ—କ୍ଲୀ.ବି. ଦୁଃଖଦ୍ୱାରା ଅନା-ଢ୍ୟର ଆଢ୍ୟ ହେବା, ଯେ କଷ୍ଟକର ଦରିଦ୍ରାବସ୍ଥାରୁ ଭଲ ଅବସ୍ଥା ପ୍ରାପ୍ତ ହୁଏ ।

ଦୁରାତମା—ଗ୍ରା.(ପଦ୍ୟ)ବିଂ.(ସଂ-ଦୁରାତ୍ମା) ଦୁରାତ୍ମା ଦେଖ ।

ଦୁରାତ୍ମତା—ସ୍ତ୍ରୀ.ବି. (ଦୁରାତ୍ମନ୍+ତା) ଦୁରାତ୍ମାର କାର୍ଯ୍ୟ ବା ଭାବ ।

ଦୁରାତ୍ମା—ପୁଂ.ସ୍ତ୍ରୀ.ବିଂ. (ଦୁର୍+ଆତ୍ମନ୍) ବ.ବ୍ରୀ; ପାପାତ୍ମା, ନିଷ୍ଠୁର, ନିର୍ଦ୍ଦୟ,ନୀଚ-ମନା, ଦୁଷ୍ଟ, ଦୁର୍ବୃତ୍ତ, ଅତ୍ୟାଚାରୀ, ଦୁଷ୍ଟସ୍ୱଭାବ, ଦୁଷ୍ଟଚିତ୍ତ,ପାପାଶୟ,(ବି) ଦୁରାତ୍ମତା ।

ଦୁରାଦାନ—ବି.ବିଂ.କଷ୍ଟେ ଯାହା ଧରଣା କରାଯାଏ । [ ପୁତ୍ର ।

ଦୁରାଧନ—ପୁଂ. ବି. ଧୃତରାଷ୍ଟ୍ରଙ୍କର ଏକ-

ଦୁରାଧର—ପୁଂ. ବି. ଧୃତରାଷ୍ଟ୍ରଙ୍କର ଏକ ପୁତ୍ର ।

ଦୁରାଧର୍ଷ—ପୁଂ.ବିଂ. (ଦୁର୍+ଆ,ଧୃଷ+ଣିଚ୍+ର୍ମ.ଅ ) ଦୁର୍ଦ୍ଦମନୀୟ, ପ୍ରଚଣ୍ଡ, (ବି) ଧଳା ସୋରିଷ, ବିଷ୍ଣୁ, (ବି)ଦୁରା-ଧର୍ଷତା, (ସ୍ତ୍ରୀ) ଦୁରାଧର୍ଷା ।

ଦୁରାଧର୍ଷା—ସ୍ତ୍ରୀ. ବି. ( ଦୁରାଧର୍ଷ+ଆ ) କୁଟୁମ୍ବିନୀବୃକ୍ଷ ।

ଦୁରାଧାର—ପୁଂ.ବିଂ. (ଦୁର୍+ଆ+ଧୃ+ର୍ମି.ଅ) ଦୁଷ୍ଟନିଗ୍ରହୀୟ, ଯାହାକୁ ଧାରଣ କରିବା କଷ୍ଟକର, (ବି) ମହାଦେବ ।

ଦୁରାଧି—ପୁଂ.ବିଂ. (ଦୁର୍+ଆଧି)କ୍ଳେଶଜନକ, ଦୁଃଖଜନକ ।

ଦୁରାଧୀ -ବି.ବିଂ.ମନ୍ଦଧୀ,ମନ୍ଦଚେଷ୍ଟାକାରୀ

ଦୁରାନମ—ବି. ବିଂ. (ଦୁର୍+ଆ+ନମ୍ ର୍ମି.ଅ) ଯାହାକୁ ସହଜେ ନୁଆଁଯାଇ ପାରେ ନାହିଁ ।

ଦୁରାନୀ—-ଆଫ୍‌ଗାନସ୍ଥାନର ମୁସଲମାନ ଧର୍ମାବଲମ୍ବୀ ଏକଜାତି ।

ଦୁରାନ୍ତ—ଗ୍ରା. ବି. (ଫ-ଦୂରଦୂରାନ୍ତ) ଦୂରଦେଶ, ଦୂରତା ।

ଦୁରାନ୍ତର—ଗ୍ରା. ବି. (ଫ-ଦୂର)ଦୂରତା, ଦୂରତ୍ୱ,(ବିଂ)ଦୂରସ୍ଥିତ,ଦୂରରେ ଥିବା।

ଦୁରାପ—ପୁଂ. କ୍ଲୀ. ବି. (ଦୁର୍+ଆପ୍+ର୍ମି. ଅ) ଦୁଷ୍ପ୍ରାପ୍ୟ, (ଗ୍ରା. ବି) ଦୁଃଖ, (ବି) ଦୁରାପତା, (ସ୍ତ୍ରୀ) ଦୁରାପା ।

ଦୁରାପନ—ବି. ବିଂ. (ଦୁର୍+ଆପ୍+ଅନ) ଦୁଷ୍ପ୍ରାପ୍ୟ, ଦୁରାପ । .

ଦୁରାପସଦ—ବିଂ. (ଦୁର୍+ଆପ+ସଦ୍+ଅ) ଦୁରାସଦ ଦେଖ।

ଦୁରାପାଦନ—ବି. ବିଂ. (ଦୁର୍+ଆ+ପାଦ+ଅନ) ଦୁଃଖଦ୍ୱାରା ଆପାଦନୀୟ, ଦୁରୂହ ।

ଦୁରାପୂର—ବି. ବିଂ. (ଦୁର୍+ଆ+ପୂର୍+ଅ) ଦୁଷ୍ପୂର, ଯାହା ଅତିକଷ୍ଟେ ପୂର୍ଣ୍ଣ ହୁଏ, ଦୁଃଖଦ୍ୱାରା ଗୃହଦରେ ଯାହା ପୂର୍ଯ୍ୟମାଣ ।

ଦୁରାବର୍ତ୍ତି—ବି. ବିଂ. ସହଜେ ଯାହା ଫେରି ଯାଏ ନାହିଁ, ସହଜେ ଯାହା ଫେରାଇ ହୁଏ ନାହିଁ ।

ଦୁରାବସ୍ଥା(ସ୍ଥା)—ଗ୍ରା.ବି.ଦୁରବସ୍ଥା ଦେଖ

ଦୁରାବହ—ବି.ବିଂ.ଯାହା ଆଣିବା କଷ୍ଟକର ।

ଦୁରାବଧ—ବି. ବିଂ. ଦୁଃଖ ବା ପୀଡ଼ା ଦେବାର ଯୋଗ୍ୟ ନୁହେଁ,(ପୁଂ)ଶିବ ।

ଦୁରାବ୍ୟ—କ୍ଲୀ. ବି. ଦୁଷ୍ଟମତି ।

ଦୁରାମ୍ନାୟ—ବି. ବିଂ. ଦୁଃଖେ ଯାହା ଆମ୍ନାତ କରାଯାଏ ।

ଦୁରାୟ୍ୟ—ବି.ବିଂ. ଦୁରାପ୍ୟ,ଦୁଷ୍ପ୍ରାପ୍ୟ ।

ଦୁରାୟୁ—ବିଂ. ( ଦୁର୍+ଇ+ର୍ମି.ଅ ) ଦୁର୍ଲଭ, ଦୁଷ୍ପ୍ରାପ୍ୟ, (ବି) ଦୁରାୟୁତା, (ସ୍ତ୍ରୀ) ଦୁରାୟୁା ।

ଦୁରାରକ୍ଷ୍ୟ--ବି. ବିଂ. (ଦୁର୍+ଆରକ୍ଷ+ଯ) :ଦୁଃଖଦ୍ୱାରା ରକ୍ଷଣୀୟ, ଯାହା ଅତିକଷ୍ଟେ ରକ୍ଷା ହୁଏ ।

ଦୁରାରାଧ—ବି. ବିଂ. (ଦୁର୍+ଆରାଧ) ଯାହାଙ୍କୁ ଆରାଧନାକରି ସନ୍ତୁଷ୍ଟ କରିବା ସହଜ ନୁହେଁ, (ବି) ବିଷ୍ଣୁ, ଦୁରାରାଧତା, (ସ୍ତ୍ରୀ) ଦୁରାରାଧା ।

ଦୁରାରିହା—ପୁଂ.ବି.(ଦୁର+ରି+ଇନ୍+ଦୁରାରି—ହନ୍+କ୍ୱିପ) ବିଷ୍ଣୁ

ଦୁରାରୁହ—ପୁଂ. ବିଂ. (ଦୁର୍+ଆ+ରୁହ୍+ଅ ) ବି.ଶ୍ରୀ; ଯାହା ଉପରେ ସହଜେ ଚଢ଼ି ହୁଏ ନାହିଁ, (ବି)ନଡ଼ିଆ ଗଛ, ବେଲଗଛ, ଦୁରାରୁହତା, (ସ୍ତ୍ରୀ) ଦୁରାରୁହା ।

ଦୁରାରୁହା—ସ୍ତ୍ରୀ. ବି. ଖଜୁରିଗଛ ।

ଦୁରାରୋଗ୍ୟ—ବିଂ. ଦୁଶ୍ଚିକିତ୍ସ୍ୟ, ଯାହା ଆରୋଗ୍ୟ କରିବା କଷ୍ଟକର, ( ବି ) ଦୁରାରୋଗ୍ୟତା ।

ଦୁରାରୋହ—ପୁଂ.ବିଂ.(ଦୁର୍+ଆ+ରୁହ+ର୍ମି.ଅ) ବି.ଶ୍ରୀ; ଯାହା ଉପରେ ଅତି କଷ୍ଟରେ ଆରୋହଣ କରାଯାଇପାରେ, ଅତି ଉଚ୍ଚ ଓ ଢାଲୁଆ, (ବି)ତାଳଗଛ, ବି. ଦୁରାରୋହତା,(ସ୍ତ୍ରୀ)ଦୁରାରୋହା ।

ଦୁରାରୋହଣ—ବି.(ଦୁର୍+ଆରୋହଣ) କ.ଧା; ଅତିକଷ୍ଟରେ ଆରୋହଣ ।

ଦୁରାରୋହା—-ସ୍ତ୍ରୀ. ବି. ଶିମିଳୀଗଛ, ଖଜୁରିଗଛ ।

ଦୁରାଲକ୍ଷ୍ୟ—ବି. ବିଂ. (ଦୁର୍+ଆ+ଲକ୍ଷ+ଯ) ଅତିକଷ୍ଟେ ଯାହା ଲକ୍ଷ୍ୟ କରାଯାଏ ।

ଦୁରାଲଭ—ପୁଂ. ବିଂ. (ଦୁର+ଆ+ଲଭ୍ +ର୍ମି.ଅ.ଯାହା ଅତିକଷ୍ଟେ ମିଳେ, ଦୁର୍ଲଭ, (ସ୍ତ୍ରୀ) ଦୁରାଲଭା ।

ଦୁରାଲଭା—ସ୍ତ୍ରୀ.ବି. କ୍ଷୁଦ୍ରକଣ୍ଟକୀ ଔଷଧି ଗୁଳ୍ମ ବିଶେଷ, ଦୁର୍ଲଭା ।

ଦୁରାଲମ୍ବ—ବି.ବିଂ.ଦୁରାଲଭ,ଦୁଷ୍ପ୍ରାପ୍ୟ, (ସ୍ତ୍ରୀ) ଦୁରାଲମ୍ବା ।

ଦୁରାଳାପ—ପୁଂ. ବି. (ଦୁର୍+ଆଳାପ) କ.ଧା; ଦୁଷ୍ଟବାକ୍ୟ, କୁବାକ୍ୟ, ଗାଳି, (ବିଂ) ଦୁଷ୍ଟବକ୍ତା, କଟୁଭାଷୀ ।

ଦୁରାଳାପୀ—ପୁଂ.ବିଂ. (ଦୁର୍+ଆଳାପ+ଇନ୍) କଟୁଭାଷୀ, ଯାହା କଷ୍ଟରେ ଆଳାପ କରାଯାଏ, (ବି) ଦୁରାଳାପିତା, (ସ୍ତ୍ରୀ) ଦୁରାଳାପିନୀ ।

ଦୁରାଲୋକ—ବି. ବିଂ. ଅତ୍ୟୁଜ୍ଜ୍ୱଳ,(ବି) ଅତ୍ୟୁଜ୍ଜ୍ୱଳତା ।

ଦୁରାଶ—ବି. ବିଂ. ( ଦୁର୍+ଆଶା ) ବି.ଶ୍ରୀ; ଦୁଷ୍ଟ ବା ଦୁଷ୍ପ୍ରାପ୍ୟ ଆଶାଯୁକ୍ତ, ଦୁରାକାଙ୍କ୍ଷ । (ସ୍ତ୍ରୀ) ଦୁରାଶା ।

ଦୁରାଶୟ—ପୁଂ. ବି. (ଦୁର୍+ଆଶୟ) କ.ଧା; ମନ୍ଦଉଦ୍ଦେଶ୍ୟ, ଦୁରଭିସନ୍ଧି, ଦୁରାକାଙ୍କ୍ଷା, (ବିଂ) ବି.ଶ୍ରୀ; ଯାହାର ଉଦ୍ଦେଶ୍ୟ ମନ୍ଦ, ଦୁଷ୍ଟ ଅଭିଳାଷ ଯୁକ୍ତ, (ସ୍ତ୍ରୀ) ଦୁରାଶୟା, (ବି) ଦୁରାଶୟତା ।

ଦୁରାଶୟୀ—ପୁଂ. ବିଂ. (ଦୁର୍+ଆଶୟ+ଇନ୍) କୁଅଭିଳାଷୀ, ଦୁରଭିସନ୍ଧିବିଶିଷ୍ଟ, ବି. ଦୁରାଶୟିତା, (ସ୍ତ୍ରୀ)ଦୁରାଶୟିନୀ ।

ଦୁରାଶା—ସ୍ତ୍ରୀ.ବି.(ଦୁର+ଆଶା)କ.ଧା; ଦୁରାକାଙ୍କ୍ଷା, ଦୁଷ୍ଟାଭିଳାଷ, ଅପ୍ରାପ୍ୟ ବିଷୟରେ ଆଶା ।

ଦୁରାସ—ବି.ବିଂ. ଅଜେୟ, ଅବଦ୍ଧ୍ୟକରଣୀୟ, ଅନବାସନୀୟ ।

ଦୁରାସଦ—ବି. ବିଂ. (ଦୁର୍+ଆ+ସଦ୍+ର୍ମି.ଅ) ଦୁଷ୍ପ୍ରାପ୍ୟ. ଦୁର୍ଲଭ, ଦୁଃସହ, ଦୁର୍ଦ୍ଧର୍ଷ, ଦୁଷ୍ଟ,ଦୁଃସାଧ, ଦୁର୍ବିସହ ।

ଦୁରାସିତ—କ୍ଲୀ. ବି. (ଦୁର+ଆସ୍+ତ) ବସିବାର ଅନୁପଯୁକ୍ତ ।

ଦୁରାହର—ବି. ବିଂ. (ଦୁର+ଆ+ହୃ+ଅ) ଦୁଃଖରେ ଆହରଣୀୟ ।

ଦୁରାହା—ବି.ବିଂ.ଦୁରଦୃଷ୍ଟ, ଦୁର୍ଭାଗ୍ୟ ।

ଦୁରିତ—କ୍ଲୀ. ବି.(ଦୁର+ଇ+ଭା.ତ) ପାପ, ଅନିଷ୍ଟ, ଦୁର୍ଗତି, ଅମଙ୍ଗଳ,

(ବି. ବଂ-ଦୁର୍+ଇ+କ.ତ) ପାପିଷ୍ଠ, ଦୁଷ୍ଟ, ମନ୍ଦ, (ସ୍ତ୍ରୀ) ଦୁରିତା ।

ଦୁରିତକ୍ଷୟ—ପୁଂ. ବ. (ଦୁରିତ+କ୍ଷୟ) ୬ତତ୍; ପାପର ବିନାଶ, ଦୁର୍ଦ୍ଦଶାର ଅନ୍ତ ।

ଦୁରିତଦମନ—ପୁଂ. ବଂ. ଦୁରିତନାଶନ ଦେଖ, (ସ୍ତ୍ରୀ) ଦୁରିତଦମନୀ ।

ଦୁରିତଦମନୀ—ସ୍ତ୍ରୀ. ବ. (ଦୁରିତ+ଦମ୍+ଣ.ଅନ+ଈ) ଶମୀବୃକ୍ଷ ଦେଖ, (ବଂ) ପାପଦମନ ସାଧନମାତ୍ର, (ସ୍ତ୍ରୀ) ପାପନାଶିନୀ । [ଦେଖ ।

ଦୁରିତଦଳନ—ପୁଂ. ବଂ. ଦୁରିତନାଶନ

ଦୁରିତନାଶ—ବ. (ଦୁରିତ+ନାଶ) ୬ତତ୍; ଦୁରିତକ୍ଷୟ ଦେଖ । [ଦେଖ ।

ଦୁରିତନାଶକ—ପୁଂ. ବଂ. ଦୁରିତନାଶନ

ଦୁରିତନାଶନ—ପୁଂ. ବଂ. (ଦୁରିତ+ନାଶ୍+କ.ଅନ) ଯେ ବା ଯାହା ପାପ ନାଶକରେ, (ସ୍ତ୍ରୀ) ଦୁରିତନାଶିନୀ ।

ଦୁରିତହାରୀ—ପୁଂ. ବଂ. (ଦୁରିତ+ହୃ+କ.ଇନ୍) ଦୁରିତନାଶନ ଦେଖ, (ସ୍ତ୍ରୀ) ଦୁରିତହାରିଣୀ ।

ଦୁରିତାପହ—ପୁଂ. ବଂ. ଦୁରିତନାଶନ ଦେଖ, (ସ୍ତ୍ରୀ) ଦୁରିତାପହା ।

ଦୁରିତାରି—ପୁଂ. ବଂ. (ଦୁରିତ+ଅରି) ୬ତତ୍; ଦୁରିତନାଶକ, ପାପନାଶକ, (ବ) ଜୈନମାନଙ୍କର ଶାସନ ଦେବତାବିଶେଷ ।

ଦୁରିଷ୍ଟ—ବ. (ଦୁର୍+ଇଷ୍ଟ) କୁତ୍ସିତ ଯଜ୍ଞ, ଅଭିଚାରାର୍ଥ ଯାଗ, ଦୁରିତ, ପାପ ।

ଦୁରିଷ୍ଟକୃତ୍—ପୁଂ. ବଂ. (ଦୁରିଷ୍ଟ+କୃ+କ୍ୱିପ୍) ଅଭିଚାର ଯଜ୍ଞକର୍ତ୍ତା ।

ଦୁରିଷ୍ଟି—ସ୍ତ୍ରୀ. ବ. (ଦୁର୍+ଇଷ୍ଟି) ଅଶାସ୍ତ୍ରୀୟ ଯାଗ, ଦୁରିଷ୍ଟ ଦେଖ । [ମନ୍ଦ ।

ଦୁରିଷ୍ଟ—ପୁଂ. ବଂ. (ଦୁର୍+ଇଷ୍ଟ) ଅତି

ଦୁରୀ—ଗ୍ରା. ବ. ଦୋକା ଦେଖ, (ସ୍ତ୍ରୀ) ଦୁର୍ଗାନାମ୍ନୀ ସ୍ତ୍ରୀର ଡାକ ନାମ ।

ଦୁରୀଶ—ପୁଂ. ବ. (ଦୁର୍+ଈଶ) କୁତ୍ସିତ ପ୍ରଭୁ ।

ଦୁରୀଷଣା—ସ୍ତ୍ରୀ. ବ. (ଦୁର୍+ଈଷଣା) ଅଭିସମ୍ପାତ, ଅଭିଶାପ, ଶାପ, ଅହିତକାମନା ।

ଦୁରୁ—ପୁଂ. ବ. ପର୍ବତବିଶେଷ ।

ଦୁରୁକ୍ତ—କ୍ଲୀ. ବ. (ଦୁର୍+ବଚ୍+କ୍ତ.ତ) ଦୁଷ୍ଟବଚନ, ଦୁର୍ବାକ୍ୟ, ଗାଳି, କଟୁକଥା ।

ଦୁରୁକ୍ତି—ସ୍ତ୍ରୀ. ବ. (ଦୁର୍+ବଚ୍+କ୍ତି.ତି) ଦୁରୁକ୍ତ ଦେଖ ।

ଦୁରୁଗମ—ଗ୍ରା. ବଂ. (ପଦ୍ୟ) ଦୁର୍ଗମ ଦେଖ

ଦୁରୁଗା—ଗ୍ରା. ବ. ଦୁର୍ଗା, (ସ୍ତ୍ରୀ) ଦୁର୍ଗାନାମ୍ନୀ ସ୍ତ୍ରୀର ଡାକ ନାମ, (ପୁଂ) ଦୁର୍ଗାଦାସ, ଦୁର୍ଗାପଦ ବା ଦୁର୍ଗାପ୍ରସାଦ ବ୍ୟକ୍ତିର ଡାକ ନାମ ।

ଦୁରୁଗୀ—ଗ୍ରା. ସ୍ତ୍ରୀ. ବ. ଦୁର୍ଗା ନାମ୍ନୀ ସ୍ତ୍ରୀର ଡାକ ନାମ ।

ଦୁରୁଚ୍ଚାର—ବି. ବଂ. (ଦୁର୍+ଉଚ୍ଚାର) ବ.ବ୍ରୀ; ଅଶ୍ଳୀଳ, ଦୁର୍ବାକ୍ୟଯୁକ୍ତ, ଯାହା କଷ୍ଟରେ ଉଚ୍ଚାରଣ କରାଯାଏ, (ବ) ଦୁରୁଚ୍ଚାରତା ।

ଦୁରୁଚ୍ଚାର୍ଯ୍ୟ—ବି. ବଂ. (ଦୁର୍+ଉତ୍+ଚର+ଯ) ଯାହା ସହଜେ ଉଚ୍ଚାରଣ କରାଯାଇ ନ ପାରେ ।

ଦୁରୁଚ୍ଛେଦ—ବି. ବଂ. (ଦୁର୍+ଉତ୍+ଛିଦ୍+ର୍ମି.ଅ) ଦୁରୁଚ୍ଛେଦ୍ୟ ଦେଖ, ବ. (ଦୁର୍+ଉତ୍+ଛିଦ୍+ଭା, ଅ) ଦୁର୍ନିବାର ଦେଖ ।

ଦୁରୁଚ୍ଛେଦ୍ୟ—ବି. ବଂ. (ଦୁର୍+ଉଚ୍ଛେଦ୍ୟ) ଯାହାର ସହଜରେ ଉଚ୍ଛେଦ୍ୟ ସାଧନ କରାଯାଇ ନ ପାରେ, ଯାହା କଷ୍ଟରେ ଅପସାରିତ ବା ଉନ୍ମୂଳିତ କରାଯାଏ, ଦୁରପନେୟ ।

ଦୁରୁଜ—ଗ୍ରା. ବ. ଦୁର୍ଯ୍ୟୋଧନର ଡାକ ନାମ, ଦୁରୁଜା (ଅନ୍ୟରୂପ) ।

ଦୁରୁଜନ—ଗ୍ରା. (ପଦ୍ୟ) ବ. ଦୁର୍ଜନ ଦେଖ

ଦୁରୁଜୟ—ଗ୍ରା. (ପଦ୍ୟ) ବଂ. (ସଂ—ଦୁର୍ଜୟ) ଦୁର୍ଜୟ ଦେଖ ।

ଦୁରୁତ୍ତର—କ୍ଲୀ. ବ. (ଦୁର୍+ଉତ୍ତର) ଅସତ୍ୟ ଉତ୍ତର, ଅନୁପଯୁକ୍ତ ଉତ୍ତର, ମନ୍ଦ ବା ଦୁଷ୍ଟ ଉତ୍ତର, ବଂ. (ଦୁର୍+ଉତ୍+ତୃ+ଅ) ଯାହା ପାରହେବା କଠିନ, ଦୁସ୍ତର, ଯାହାର ଉତ୍ତରହେବା କଠିନ ।

ଦୁରୁତ୍ତୋଳ୍ୟ—ବି. ବଂ. ଦୁରୁତ୍ତୋଳ, ଯାହା ସହଜେ ଉତ୍ତୋଳନ କରାଯାଇ ପାରେ ନାହିଁ ।

ଦୁରୁତ୍ସହ—ବି. ବଂ. ଦୁଃସହ, ଅସହ୍ୟମାତ୍ର ।

ଦୁରୁଦଣ୍ଡ—ଗ୍ରା. ବ. (ପଦ୍ୟ) ଦୁର୍ଦ୍ଦଣ୍ଡ ଦେଖ

ଦୁରୁଦୟ—ବି. ବଂ. ଯାହା ଭଲ ଦେଖାଯାଏ ନାହିଁ, ଦୁର୍ନିରୀକ୍ଷ୍ୟ ।

ଦୁରୁଦାହର—ବି. ବଂ. (ଦୁର୍+ଆ+ହୃ+ର୍ମି.ଅ) ସହଜେ ଯା'ର ଉଦାହରଣ ଦିଆଯାଏ ନାହିଁ ।

ଦୁରୁଦୁରୁ—ବ. ଦୁର୍ଦୁର୍, ବକ୍ଷଃସ୍ପନ୍ଦନ, ଦ୍ରୁତଗମନ, ମେଘଧ୍ୱନି ପ୍ରଭୃତିର ଶବ୍ଦ ।

ଦୁରୁଦ୍ୱହ—ବି. ବଂ. (ଦୁର୍+ଉତ୍+ବହ+ର୍ମି.ଅ) ଯାହା ବହନ କରିବା କଷ୍ଟକର, ଦୁଃସହ, ଅସହ୍ୟ ।

ଦୁରୁଧ(ଧୁ)ରା—ସ୍ତ୍ରୀ. ବ. ଜ୍ୟୋତିଷୋକ୍ତ ଯୋଗବିଶେଷ ।

ଦୁରୁନ୍ନ(ନ୍ନେ)ୟ—ଗ୍ରା. ବଂ. (ପଦ୍ୟ) (ସଂ-ଦୁର୍ଣ୍ଣୟ) ବିଷମ, କଠିନ, ଜଟିଳ, ଭୟଙ୍କର ।

ଦୁରୁପକ୍ରମ—ବି. ବଂ. (ଦୁର୍+ଉପ+କ୍ରମ୍+ଅ) ଦୁର୍ଗମ, ଯେଉଁଠାକୁ ଯିବା କଠିନ ।

ଦୁରୁପଚର—ବି. ବଂ. (ଦୁର୍+ଉପ+ଚର୍+ଅ) ଅନୁପଶମ୍ୟ ।

ଦୁରୁପଲକ୍ଷ—ବି. ବଂ. (ଦୁର୍+ଉପ+ଲକ୍ଷ+ଅ) ଦୁର୍ନିରୀକ୍ଷ ।

ଦୁରୁପସଦ—ପୁଂ. ବଂ. (ଦୁର୍+ଉପ+ସଦ୍+ର୍ମି.ଅ) ଦୁର୍ଗମ, ଦୁଷ୍ପ୍ରାପ୍ୟ, ଦୁଃସହ, ଦୁରଧିଗମ, (ସ୍ତ୍ରୀ) ଦୁରୁପସଦା ।

ଦୁରୁପସର୍ପୀ—ବି. ବଂ. (ଉପ+ସୃପ୍+ଇନ୍) ଅତର୍କିତଭାବେ ଆଗତ ।

ଦୁରୁପସ୍ଥାନ—ବି. ବଂ. (ଦୁର୍+ଉପ+ସ୍ଥା+ର୍ମି.ଅ) ଦୁର୍ଜ୍ଜୟ, ଦୁରଭିଗମ୍ୟ, ଦୁଷ୍ପ୍ରାପ୍ୟ ।

ଦୁରୁପାସ୍ୟ—ପୁଂ. ବଂ. (ଦୁର୍+ଉପାସ୍ୟ) ଦୁଷ୍ଟୋପାସ୍ୟ, ମନ୍ଦଉପାସ୍ୟ ।

ଦୁରୂଭାଗ୍ୟ—ଗ୍ରା.ବି.(ପଦ୍ୟ) (ସଂ-ଦୁର୍ଭାଗ୍ୟ) ଦୁର୍ଭାଗ୍ୟ ଦେଖ ।

ଦୁରୂଭିକ୍ଷ—ଗ୍ରା. ଦୁର୍ଭିକ୍ଷ ଦେଖ ।

ଦୁରୂଷ୍ଟି—ଗ୍ରା.ବି. (ସଂ-ଦୁଷ୍ଟି) ଦୁଷ୍ଟି ଦେଖ ।

ଦୁରୂହ—ଣି. ବଂ. (ଦୁର୍+ଊହ+ମି.ଅ) ଦୁସ୍ତର୍କ୍ୟ,ଦୁର୍ଜ୍ଞେୟ,ଦୁର୍ବୋଧ, କଠିନ, ଦୁଃସାଧ୍ୟ, କଷ୍ଟସାଧ୍ୟ, ଦୁର୍ବୋଧ୍ୟ, ଦୁରଧିଗମ୍ୟ,(ବି)ଦୁରୂହତା,ଦୁରୂହତ୍ୱ ।

ଦୁରୂହରେ—ଗ୍ରା କ୍ରି.ବି.ଅତିଦୁଃଖରେ ।

ଦୁରେଇକୋଳି—ଗ୍ରା. (ନାଡ଼କାଠ) ବି. ଏକପ୍ରକାର ଗୁଳ୍ମ ଓ ତାହାର ଫଳ ।

ଦୁରେବା—ଣି. ବଂ. (ଦୁର୍+ଇ+ବ+ଆ) ଦୁଃଖଦ୍ୱାରା ଗମ୍ୟ ।

ଦୁରେକ—ଣି. ବଂ. ( ଦୁର୍+ଓକ ) ଦୁଃସେବ ।

ଦୁରୋଣ—ପୁଂ. ବି. ଗୃହ, ଯଜ୍ଞ ଗୃହ ।

ଦୁରୋଣସ୍ଥ—ପୁଂ. ବି. ଯଜମାନ ଗୃହର ମିଶ୍ରସ୍ଥିତା ।

ଦୁରୋଦର—କ୍ଲୀ. ବି. (ଦୁର୍+ଆ+ଉଦର) ବ.ବ୍ରୀ; ଦ୍ୟୂତ, ପାଶକକ୍ରୀଡ଼ା, ପଶାଖେଳ, (ପୁଂ) ଦ୍ୟୂତକ୍ରୀଡ଼କ,ପଣ, ପାଶକ, ଜୁଆଣ୍ଡ ।

ଦୁର୍କର(ର)—ଗ୍ରା. ଅବ୍ୟ. ଦୂର୍ ଦେଖ ।

ଦୁର୍ଗ—ଣି.ବଂ.(ଦୁର୍+ଗମ+ମି.ଅ ) ଅଗମ୍ୟ, ଦୁର୍ଗମ, (କ୍ଲୀ-ବି) ଗଡ଼, କିଲ୍ଲା, (ପୁଂ.ବି)ବିପଦ, ସଙ୍କଟ, ଅସୁରବିଶେଷ, ଭବବନ୍ଧ,ଦୁଃଖ,ଶୋକ,ନରକ,କୁକର୍ମ, ବିଘ୍ନ, ଅମଙ୍ଗଳ, ମହାଭୟ, ପରାଧୀନତା,ପୁନର୍ଜନ୍ମ,ଦୁର୍ଗମ ସ୍ଥାନ,ମହାବିଘ୍ନ,ଯମଦଣ୍ଡ,ଅତିରୋଗ,(ସ୍ତ୍ରୀ) ଦୁର୍ଗା ।

ଦୁର୍ଗ—ଜମ୍ବୁମାର୍ଗାଶ୍ରମନିବାସୀ ନିରୁକ୍ତ ଭାଷ୍ୟକାର । [ବିଶେଷ

ଦୁର୍ଗକର୍ମ—କ୍ଲୀ. ବି. ଦୁର୍ଗସାଧନ କର୍ମ-

ଦୁର୍ଗକାରକ—ଣି. ବଂ. (ଦୁର୍ଗ+କୃ+ଅକ) ୬ତତ୍ପୁ;ଦୁର୍ଗକର୍ତ୍ତା, ଦୁର୍ଗନିର୍ମାତା, (ପୁଂ) ବୃକ୍ଷବିଶେଷ ।

ଦୁର୍ଗଟୀକା—ସ୍ତ୍ରୀ. ବି. ଦୁର୍ଗସିଂହକୃତ କଲାପବ୍ୟାକରଣର ଟୀକାବିଶେଷ ।

ଦୁର୍ଗତ—ପୁଂ.ବଂ. (ଦୁର୍+ଗମ୍+କ୍ତ) ବିପଦଗ୍ରସ୍ତ, ଦୁରବସ୍ଥାଗ୍ରସ୍ତ, ଅତିଦରିଦ୍ର, ଦୁଃଖୀ, ଅନେକ ସଂସ୍କୃତ କବି; (ସ୍ତ୍ରୀ) ଦୁର୍ଗତା ।

ଦୁର୍ଗତତା—ସ୍ତ୍ରୀ. ବି. (ଦୁର୍ଗତ+ତ+ଆ) ଦରିଦ୍ରତା, ଦୁର୍ଦ୍ଦଶାର ଭାବ ।

ଦୁର୍ଗତରଣି—ସ୍ତ୍ରୀ.ବି. (ଦୁର୍ଗ+ତୃ+ଅନ+ଈ ) ଦେବୀବିଶେଷ, (ବଂ) ଦୁର୍ଗତରଣସାଧନ ।

ଦୁର୍ଗତି—ସ୍ତ୍ରୀ.ବି. (ଦୁର୍+ଗତି)କ.ଧା; ଦୁର୍ଦ୍ଦଶା,ଦୁରବସ୍ଥା,କଷ୍ଟ,କ୍ଲେଶ,ଦାରିଦ୍ର୍ୟ, ନରକ, ପାପ ।

ଦୁର୍ଗତିକ୍ଷୟ—ବି (ଦୁର୍ଗତି+କ୍ଷୟ)୬ତତ୍ପୁ; ଦୁର୍ଦ୍ଦଶାର ଶେଷ ।

ଦୁର୍ଗତିନାଶକ—ବଂ.ଦୁର୍ଗତିନାଶନ ଦେଖ, (ସ୍ତ୍ରୀ) ଦୁର୍ଗତିନାଶିକା ।

ଦୁର୍ଗତିନାଶନ—ବଂ. (ଦୁର୍ଗତି+ନାଶନ) ଯେ ଦୁର୍ଗତି ବା ପାପକୁ ନାଶ କରେ. (ସ୍ତ୍ରୀ) ଦୁର୍ଗତିନାଶିନୀ, (ବି) ଦୁର୍ଗତିବିନାଶକରଣ ।

ଦୁର୍ଗତିନାଶିନୀ—ସ୍ତ୍ରୀ.ବି. (ଦୁର୍ଗତି+ନାଶି+ଇନ୍+ଈ) ଦୁର୍ଗାଦେବୀ ।

ଦୁର୍ଗତିନିବାରଣ—ବଂ.ବି. ଦୁର୍ଗତିନାଶନ ଦେଖ,(ସ୍ତ୍ରୀ) ଦୁର୍ଗତିନିବାରଣୀ ।

ଦୁର୍ଗତିବାରଣ—ବଂ.(ଦୁର୍ଗତି+ବାରଣ) ଦୁର୍ଗତିନାଶନ ଦେଖ ।

ଦୁର୍ଗତିହର—ବଂ.ଦୁର୍ଗତି ନାଶନ ଦେଖ, (ସ୍ତ୍ରୀ) ଦୁର୍ଗତିହରା ।

ଦୁର୍ଗତିହରଣ—ବଂ. (ଦୁର୍ଗତି+ହରଣ) ଦୁର୍ଗତିନାଶନ ଦେଖ ।

ଦୁର୍ଗଦେବ—ଷଷ୍ଠୀସମ୍ବତ୍ସରନାମକ ସଂସ୍କୃତ ଜ୍ୟୋତିର୍ଗ୍ରନ୍ଥପ୍ରଣେତା ।

ଦୁର୍ଗନ୍ଧ—ପୁଂ.ବି. (ଦୁର୍+ଗନ୍ଧ)କ.ଧା; ବଦ୍‌ବାଇ, ମନ୍ଦଗନ୍ଧ, ପୂତିଗନ୍ଧ, ସୌବର୍ଚ୍ଚଳ ଲବଣ, କଳାଲୁଣ, ଆମ୍ବଗଛ, ପିଆଜ, (ବଂ.ବ.ବ୍ରୀ) ଦୁର୍ଗନ୍ଧମୟ, (ବି) ଦୁର୍ଗନ୍ଧତା ।

ଦୁର୍ଗନ୍ଧତା—ସ୍ତ୍ରୀ. ବି. ( ଦୁର୍ଗନ୍ଧ+ତା ) ଦୁର୍ଗନ୍ଧର ଭାବ ।

ଦୁର୍ଗନ୍ଧମୟ—ବଂ. (ଦୁର୍ଗନ୍ଧ+ମୟ)ମନ୍ଦଗନ୍ଧଯୁକ୍ତ,ଯହିଁ ଗନ୍ଧାଏ, ପୂତିଗନ୍ଧଯୁକ୍ତ ।

ଦୁର୍ଗନ୍ଧାଙ୍ଗ—ଣି. ବଂ. ପୂତିଗନ୍ଧାନ୍ୱିତ ଦେହଯୁକ୍ତ ।

ଦୁର୍ଗନ୍ଧି—ବଂ.(ଦୁର୍+ଗନ୍ଧ+ଇ)ବ.ବ୍ରୀ; ମନ୍ଦଗନ୍ଧଯୁକ୍ତ,(ଗ୍ରା.ବି) ମନ୍ଦଗନ୍ଧ, ବାତକର୍ମ, ଆପାନବାୟୁ ।

ଦୁର୍ଗନ୍ଧିଆ—ଗ୍ରା.ବଂ. ଦୁର୍ଗନ୍ଧମୟ ଦେଖ, ଯେ ବହୁତ ପାଦେ, ପାଦୁରା ।

ଦୁର୍ଗନ୍ଧିତ—ବଂ.(ଦୁର୍ଗନ୍ଧ+ଇତ)ଦୁର୍ଗନ୍ଧମୟ ଦେଖ ।

ଦୁର୍ଗନ୍ଧୀ—ପୁଂ. ବଂ. ( ଦୁର୍ଗନ୍ଧ+ଇନ୍) ପୂତିଗନ୍ଧବିଶିଷ୍ଟ, ଦୁର୍ଗନ୍ଧମୟ, (ସ୍ତ୍ରୀ) ଦୁର୍ଗନ୍ଧିନୀ । . . [ ଦେଖ ।

ଦୁର୍ଗପତି—ପୁଂ.ବି.(୬ତତ୍ପୁ)ଦୁର୍ଗରକ୍ଷକ

ଦୁର୍ଗପାଳ—ପୁଂ. ବି. ( ଦୁର୍ଗ+ପାଳ+ଅ) କୋଟପାଳକ, ଦୁର୍ଗରକ୍ଷକ ।

ଦୁର୍ଗପୁଷ୍ପୀ—ସ୍ତ୍ରୀ.ବି. (ଦୁର୍ଗ+ପୁଷ୍ପ+ଈ) ବୃକ୍ଷବିଶେଷ, କେଶପୁଷ୍ପା, ମାନସୀ, ବାଳାକ୍ଷୀ, କେଶଧାରିଣୀ ।

ଦୁର୍ଗମ—ଣି.ବଂ.(ଦୁର୍+ଗମ୍+ମି.ଅ) ଦୁର୍ଭେଦ୍ୟ, ଦୁର୍ଲଭ, ଦୁର୍ଜ୍ଞେୟ, ଦୁଷ୍ପ୍ରବେଶ୍ୟ, ଦୁର୍ବୋଧ, (ପୁଂ.ବି) ଅସୁରବିଶେଷ, ବିଷ୍ଣୁ,(କ୍ଲୀ)ଦୁର୍ଗ, ଗଡ଼, ବନ, ସଙ୍କଟମୟସ୍ଥାନ, (ଗ୍ରା.ବଂ)ଯେଉଁ ଅବସ୍ଥାରେ ଗମନାଗମନ ବା ଚଳାଚଳର ଅସୁବିଧା ଘଟେ, ଅତିରେକ, ଅତ୍ୟଧିକ, (ଗ୍ରା.ବି) ବର୍ଷା ଓ ଝଡ଼ମୟ ପାଗ, (ସ୍ତ୍ରୀ) ଦୁର୍ଗମା ।

ଦୁର୍ଗମନୀୟ—ବଂ. ଦୁର୍ଗମ ଦେଖ, (ବି) ଦୁର୍ଗମନୀୟତା ।

ଦୁର୍ଗମ୍ୟ—ବଂ. ଦୁର୍ଗମ ଦେଖ, (ବି) ଦୁର୍ଗମ୍ୟତା ।

ଦୁର୍ଗସ୍ମୁ—ଦ୍ୱାଦଶଶ୍ଳୋକୀର ଟୀକାକାର ।

ଦୁର୍ଗରକ୍ଷକ—ବି(ଦୁର୍ଗ+ରକ୍ଷକ)୬ତତ୍ପୁ; କିଲ୍ଲାଦାର, ଦୁର୍ଗର ଜଗୁଆଳ ସେନା ବା ସେନାପତି, (ବଂ) ଦୁର୍ଗ ଜଗୁଆଳ, (ଅନ୍ୟତ୍ର) ଦୁର୍ଗରକ୍ଷୀ ।

ଦୁର୍ଗଳ—ପୁଂ. ବି. ଦେଶବିଶେଷ ।

ଦୁର୍ଗଲଙ୍ଘନ—ପୁଂ.ବି. ଉଷ୍ଟ୍ର, (ସ୍ତ୍ରୀ)ଦୁର୍ଗ

ଲଙ୍ଘନ ।

ଦୁର୍ଗସଂସ୍କାର—ପୁଂ.ବି: ଦୁର୍ଗର ମରାମତି. ଦୁର୍ଗ ଭାଙ୍ଗିଗଲେ ନୂଆ ତିଆରି କରିବା ।

ଦୁର୍ଗସଞ୍ଚର—ପୁଂ. ବି. (ଦୁର୍ଗ+ସମ୍+ଚର+ଣ.ଅ) ସେତୁ, ପୋଲ, ଶଙ୍ଖ, ଗିରିସଙ୍କଟ ।

ଦୁର୍ଗସଞ୍ଚାର—ପୁଂ. ବି. ସେତୁ, ପୋଲ, ଦୁର୍ଗସଞ୍ଚର ।

ଦୁର୍ଗସିଂହ—କାତନ୍ତ୍ରବୃତ୍ତି ରଚୟିତା, ନିରୁକ୍ତ ଭାଷ୍ୟକାର, ଜଣେ ପ୍ରାଚୀନ ଜ୍ୟୋତିର୍ବିଦ୍ ।

ଦୁର୍ଗସେନ—ଜଣେ ପ୍ରାଚୀନ ସଂସ୍କୃତ କବି

ଦୁର୍ଗା—ସ୍ତ୍ରୀ. ବି. (ଦୁର୍+ଗମ୍+ମ.ଅ+ଆ) ଭଗବତୀ, ମହାଦେବଙ୍କ ସ୍ତ୍ରୀ, ପରମାପ୍ରକୃତି, ଆଦ୍ୟାଶକ୍ତି, ନୀଳୀ, ନୀଳଗୁଳ୍ମ, ଶ୍ୟାମାପକ୍ଷୀ, ଅପରାଜିତା, ନଅବର୍ଷ ବୟସ୍କା କନ୍ୟା, ରାଗିଣୀବିଶେଷ, (ଗ୍ରା.ବି) ସ୍ତ୍ରୀଲୋକଙ୍କୁ ଡାକିବା ନାମ ।

ଦୁର୍ଗାଢ଼—ବି. ବିଂ. (ଦୁର୍+ଗାହ+ମ.ତ) କଷ୍ଟେ ଅବଗାହ୍ୟ ।

ଦୁର୍ଗାଦେବୀ—ମହାରାଷ୍ଟ୍ର ଦେଶର ପ୍ରସିଦ୍ଧ ଏକ ଦୁର୍ଭିକ୍ଷ ।

ଦୁର୍ଗାଧ୍ୟକ୍ଷ—ପୁଂ. ବି. (ଦୁର୍ଗ+ଅଧ୍ୟକ୍ଷ) ୬ତତ୍; ଦୁର୍ଗରକ୍ଷକ ଦେଖ, ଶିବ ।

ଦୁର୍ଗାନବମୀ—ସ୍ତ୍ରୀ.ବି.(୬ତତ୍)କାର୍ତ୍ତିକ-ମାସର ଶୁକ୍ଳନବମୀ ।

ଦୁର୍ଗାପୁର—ରଙ୍ଗପୁର ଜିଲ୍ଲାର ବାହାର-ବନ୍ଦ ପରଗଣାସ୍ଥ ଗୋଟିଏ ପ୍ରଧାନ ଗ୍ରାମ, ମୟମନସିଂହ ଜିଲ୍ଲାର ଅନ୍ତର୍ଗତ ସୁସଙ୍ଗର ରାଜଧାନୀ ।

ଦୁର୍ଗାପୂଜା—ସ୍ତ୍ରୀ. ବି. (୬ତତ୍)ଶାରଦୀୟ ଦୁର୍ଗୋତ୍ସବ, ବାସନ୍ତିକ ଦୁର୍ଗୋତ୍ସବ, ଦୁର୍ଗାଦେବୀଙ୍କ ଆରାଧନା ।

ଦୁର୍ଗାପୂଜାଛୁଟି—ଗ୍ରା. ବି. ଦୁର୍ଗାପୂଜା ଉପଲକ୍ଷେ କାର୍ଯ୍ୟାଳୟମାନବନ୍ଦହେବା, ପୂଜାଛୁଟି ।

ଦୁର୍ଗାପ୍ରସାଦ ମୁଖୋପାଧ୍ୟାୟ—ନଦୀୟା ଜିଲ୍ଲାର ଉଲାଗାର ନଗରବାସୀ ଜଣେ ଗ୍ରନ୍ଥକାର ।

ଦୁର୍ଗାଭକ୍ତିତରଙ୍ଗିଣୀ—ସ୍ତ୍ରୀ. ବି.ଖଣ୍ଡିଏ ତନ୍ତ୍ରର ନାମ ।

ଦୁର୍ଗାଭୋଗ—ଗ୍ରା. ବି. ଧାନ୍ୟବିଶେଷ ।

ଦୁର୍ଗାମାହାତ୍ମ୍ୟ—କ୍ଲୀ. ବି. ଦେବୀମାହାତ୍ମ୍ୟ ।

ଦୁର୍ଗାରାମ—'ପାଷାଣ୍ଡଖଣ୍ଡକ' ନାମକ ସଂସ୍କୃତଗ୍ରନ୍ଥକାର ।

ଦୁର୍ଗାବତୀ—ଚନ୍ଦୋରର ରାଣାସଙ୍ଗଙ୍କ କନ୍ୟା, ଏ ଜଣେ ଶୌର୍ଯ୍ୟବତୀ ରମଣୀ, ମହୋବାର ରାଜାଙ୍କ କନ୍ୟା ।

ଦୁର୍ଗାଶଙ୍କର—ଏ ମଲ୍ଲାରିପଦ୍ଧତିନାମକ ଜ୍ୟୋତିଷର ଟୀକା ଓ ଆଗାରବିନୋଦ ନାମକ ଶିଳ୍ପଶାସ୍ତ୍ରକାର ।

ଦୁର୍ଗାଷ୍ଟମୀ—ବି. ମହାଷ୍ଟମୀ, ଆଶ୍ୱିନ ଶୁକ୍ଳ ଅଷ୍ଟମୀ ।

ଦୁର୍ଗାସହାୟ—ଜଣେ ବିଖ୍ୟାତ ସଂସ୍କୃତ ପଣ୍ଡିତ ।

ଦୁର୍ଗାସ୍ମରଣ—କ୍ଲୀ.ବି. (୬ତତ୍) ଦୁର୍ଗାନାମ ସ୍ମରଣ ।

ଦୁର୍ଗାହ୍ୟ—ବି. ବିଂ. (ଦୁର୍+ଗାହ୍+ଯ) ଯହିଁରେ ସ୍ନାନ କରିବା କଠିନ, (ବି) ଦୁର୍ଗାହ୍ୟତା, (ସ୍ତ୍ରୀ) ଦୁର୍ଗାହ୍ୟା ।

ଦୁର୍ଗାହ୍ୱ—ପୁଂ. ବି.ଭୂମିଜ ଗୁଗ୍ଗୁଲ ।

ଦୁର୍ଗୁଣ—ବି. (ଦୁର୍+ଗୁଣ) କ.ଧା; ମନ୍ଦଗୁଣ, (ଗ୍ରା. ବି) ସାମାନ୍ୟ କଥାରେ ଅଭିମାନ, ଅବଗୁଣ ।

ଦୁର୍ଗୁଣବସୁରିବା—ଗ୍ରା. କ୍ରି. ଅଭିମାନ କରିବା, ମନ୍ଦବୁଝିବା ।

ଦୁର୍ଗୁଣିଆ(ଆଁ)—ଗ୍ରା.ପୁଂ.ସ୍ତ୍ରୀ.ବିଂ. ମନ୍ଦଗୁଣଯୁକ୍ତ,ଅବଗୁଣିଆ,ଯେ ଭଲକୁ ମନ୍ଦ ବୁଝେ, ଅନିଷ୍ଟକର, ଯାହାର ଦୁଇଗୁଣ କରାଯାଇଛି, (ସ୍ତ୍ରୀ)ଦୁର୍ଗୁଣେଇ (ଈ) ।

ଦୁର୍ଗୃଭି—ବି. ବି. ଗ୍ରହଣ କରିବାରେ ଆଟକ,ଯାହା ଗ୍ରହଣ କରିବା ଅତି କଷ୍ଟକର ।

ଦୁର୍ଗେଶ—ପୁଂ. ବି. (ଦୁର୍ଗ+ଈଶ) ୬ତତ୍; ଦୁର୍ଗାଧିପତି, (ଦୁର୍ଗା+ଈଶ) ଶିବ ।

ଦୁର୍ଗେଶନନ୍ଦିନୀ—ଗ୍ରା. ବି. ବଙ୍କିମଚନ୍ଦ୍ର କୃତ ବଙ୍ଗଳା ଉପନ୍ୟାସର ନାୟିକା, (ସ୍ତ୍ରୀ. ବି.୬ତତ୍), ଦୁର୍ଗାଧିପତିତନୟା, ଦୁର୍ଗାଧ୍ୟକ୍ଷଙ୍କ ଝିଅ ।

ଦୁର୍ଗୋତ୍ସବ—ଦୁର୍ଗୋଚ୍ଛବ (ବି) ଦୁର୍ଗାପୂଜା ଦେଖ ।

ଦୁର୍ଗୋତ୍ସବଚନ୍ଦ୍ରିକା—ଗ୍ରା. ବି. ଓଡ଼ିଶାର ରାଜା ରାମଚନ୍ଦ୍ରଦେବଙ୍କ କୃତ ସ୍ମୃତିଶାସ୍ତ୍ର ବିଶେଷ ।

ଦୁର୍ଗ୍ରହ—ବି. ବିଂ. (ଦୁର୍+ଗ୍ରହ+ମ.ଅ) ଦୁଃଖେ ଗ୍ରହଣୀୟ, କଷ୍ଟେ ଜ୍ଞାତବ୍ୟ, ଯାହା ଅତି କଷ୍ଟରେ ଗ୍ରହଣ କରାଯାଇ ପାରେ, ଦୁର୍ଜ୍ଞେୟ,ଦୁର୍ବୋଧ,ଦୁରଧିଗମ୍ୟ. (ବି. କ.ଧା;—ଦୁର୍+ଗ୍ରହ) କୁଗ୍ରହ, ମନ୍ଦଗ୍ରହ, (ଦୁର୍+ଗ୍ରହ+କ. ଅ)ବି. ଅପାମାର୍ଗ, (ବି) ଦୁର୍ଗ୍ରହତା, (ସ୍ତ୍ରୀ) ଦୁର୍ଗ୍ରହା ।

ଦୁର୍ଗ୍ରହଣୀୟ—ବିଂ.(ଦୁର୍+ଗ୍ରହ+ମ. ଅନୀୟ) ଦୁର୍ଗ୍ରହ ଦେଖ,(ବି)ଦୁର୍ଗ୍ରହଣୀୟତା, (ସ୍ତ୍ରୀ) ଦୁର୍ଗ୍ରହଣୀୟା ।

ଦୁର୍ଗ୍ରାହ୍ୟ—ବି. ବିଂ. (ଦୁର୍+ଗ୍ରହ+ମ.ଯ) ଦୁର୍ଗ୍ରହ ଦେଖ, (ବି) ଦୁର୍ଗ୍ରାହ୍ୟତା, (ସ୍ତ୍ରୀ) ଦୁର୍ଗ୍ରାହ୍ୟା ।

ଦୁର୍ଘଟ—ବି.ବିଂ.(ଦୁର୍+ଘଟ+ମ.ଅ) ଯାହା ସହଜରେ ଘଟେ ନାହିଁ, ଦୁଃସାଧ୍ୟ, କଠିନ, କଷ୍ଟସାଧ୍ୟ, ଅସମ୍ଭବ, ଅସାଧ୍ୟ, (ଗ୍ରା.ବିଂ) ଦୁଷ୍ପ୍ରାପ୍ୟ, ନଅଣ୍ଟ, ଅନଟନ, (ବି) ଅଭାବ ।

ଦୁର୍ଘଟନା—ସ୍ତ୍ରୀ. ବି. (ଦୁର୍+ଘଟନା କ.ଧା)ଅଶୁଭଘଟନା, ବିପଦ, ଦୁର୍ଭାଗ୍ୟ, ବିପତ୍ପାତ, ଅକସ୍ମାତ୍ ଘଟିବା ବିପଦ, ମହାବିଘ୍ନ ।

ଦୁର୍ଘୋଷ—ପୁଂ. ବି. (ଦୁର୍+ଘୋଷ) କ.ଧା) କୁତ୍ସିତ ବା ଅତି କଟୁଶବ୍ଦ,କର୍କଶ ରବ, ଗର୍ଜନ, (ବ.ଗ୍ରା) ଭଲ୍ଲୁ, (ବିଂ. ବ.ଗ୍ରା)କର୍କଶ ରବଯୁକ୍ତ,ଉଚ୍ଚଗର୍ଜନକାରୀ

ଦୁର୍ଘୋଷଣା—ବି. (ଦୁର୍+ଘୋଷଣା) କ.ଧା; ଦୁର୍ନାମ, ଅପବାଦ ।

ଦୁର୍ଜ(ର୍ଜ୍ଜ)ନ—ପୁଂ. ବି. (ଦୁର୍+ଜନ) କ.ଧା;ଦୁଷ୍ଟଲୋକ,ଖଳ ବା ଶଠ ବ୍ୟକ୍ତି, (ବିଂ) ଖଳ, ନୃଶଂସ, କ୍ରୂର, ଅତିମନ୍ଦ, ନିଷ୍ଠୁର ।

**ଦୁର୍ଜ(ର୍ଜ୍ଜ)ନତା**—ବି.(ଦୁର୍ଜନ+ଭା.ତା) ଦୁଷ୍ଟତା, ଖଳତା, ନିଷ୍ଠୁରତା, ଦୁର୍ଜନତା।

**ଦୁର୍ଜୟ**—ବି.ବିଂ.(ଦୁର୍+ଜି+ମ.ଅ) ଯାହାକୁ ଅତି କଷ୍ଟରେ ଜୟ କରାଯାଇ ପାରେ, ଦୁର୍ଲଙ୍ଘ୍ୟ, ଅଜେୟ, ଦୁଃସାଧ୍ୟ, ଦୁର୍ଦ୍ଦମନୀୟ, (ସ୍ତ୍ରୀ) ଦୁର୍ଜୟା, (ପୁଂ) ବିଷ୍ଣୁ, ରାକ୍ଷସ ଓ ଦାନବବିଶେଷ, କାଞ୍ଚୀଖର୍ପୀୟ ବଂଶୀୟ ଅନନ୍ତରାଜାଙ୍କ ପୁତ୍ର।

**ଦୁର୍ଜୟଗିରି**—କାମରୂପସ୍ଥ ବିଖ୍ୟାତ ଶୈଳ

**ଦୁର୍ଜୟନ୍ତ**—ପୁଂ. ବି. ନୃପବିଶେଷ।

**ଦୁର୍ଜୟମାନ**—ବି. ଯେଉଁ ଅଭିମାନକୁ ସହଜରେ ଶାନ୍ତ କରାଯାଇ ନ ପାରେ।

**ଦୁର୍ଜର**—ବି. ବିଂ. (ଦୁର୍+ଜୃ+ଅ) କଷ୍ଟପରିପାଚ୍ୟ, ଯାହା ସହଜରେ ପରିପାକ ହୁଏ ନାହିଁ।

**ଦୁର୍ଜରା**—ସ୍ତ୍ରୀ.ବି.(ଦୁର୍ଜର+ଆ) ଜ୍ୟୋତିଷ୍ମତୀ ଲତା।

**ଦୁର୍ଜାତ**—ବି. ବିଂ. (ଦୁର୍+ଜନ+କ୍ତ) ଅଦୃଷ୍ଟଦୁଷ୍ଟ ଜାତ, ଅସମ୍ୟକ୍ ଜାତ, (ପୁଂ. ବିଂ) ଯାହାର ଜନ୍ମ ବୃଥା, ନୀଚବଂଶସମ୍ଭୂତ, ଅନୁଚିତ. (ପୁଂ.ବି) ଦୁରଦୃଷ୍ଟ, ଦୌର୍ଭାଗ୍ୟ, ବ୍ୟସନ, ବିପଦ, (ସ୍ତ୍ରୀ) ଦୁର୍ଜାତା।

**ଦୁର୍ଜାତି**—ବି. (ଦୁର୍+ଜାତି) କ.ଧା; ନୀଚଜାତି,(ବିଂ)ନିନ୍ଦିତବଂଶୀୟ, ଦୁର୍ଜାତ ଦେଖ।

**ଦୁର୍ଜୀ(ର୍ଜ୍ଜୀ)ବ**—ବି. ବିଂ.( ଦୁର୍+ଜୀବ,) ବ.ବ୍ରୀ; ପରଭକ୍ତାଦ୍ୟୁପଜୀବୀ, ପରାନ୍ନ ଭୋଜନାଦିଦ୍ୱାରା ଯାହାର ଜୀବିକା ନିର୍ବାହିତ ହୁଏ, (ବି) ନିନ୍ଦିତଜୀବନ, ମନ୍ଦଜୀବ।

**ଦୁର୍ଜେ(ର୍ଜ୍ଜେ)ୟ**—ବି. ବିଂ. ( ଦୁର୍+ଜି+ମ.ଯ ) ଦୁର୍ଜୟ (ଦେଖ), (ବି)ଦୁର୍ଜେୟତା, (ସ୍ତ୍ରୀ) ଦୁର୍ଜେୟା।

**ଦୁର୍ଜ୍ଞେୟ**—ବି.ବିଂ. (ଦୁର୍+ଜ୍ଞେୟ ବା ଦୁର୍+ଜ୍ଞା+ମ.ଯ) ଯାହା ଜାଣିବା କଷ୍ଟକର, ଦୁର୍ବୋଧ, (ବି) ଦୁର୍ଜ୍ଞେୟତା, (ସ୍ତ୍ରୀ) ଦୁର୍ଜ୍ଞେୟା।

**ଦୁର୍ଣ୍ଣୟ**—ପୁଂ.ବି. (ଦୁର୍+ନୟ) ଦୁଷ୍ଟନୀତି, କୁନୀତି, ମନ୍ଦ ଆଚରଣ, ଅନିଷ୍ଟ, ଗୋଳମାଳ,ଅନ୍ୟାୟ, ଦୁର୍ଦ୍ଦଶା, (ବିଂ. ବ.ବ୍ରୀ) କୁନୀତିପୂର୍ଣ୍ଣ, ମନ୍ଦାଚରଣବିଶିଷ୍ଟ, (ଗ୍ରା.ବିଂ) ଦୁର୍ଗମ,ଘୋର, ଅସାଧ୍ୟ, ଅତି-ନେକ, ମାରାତ୍ମକ, ପ୍ରାଣାନ୍ତକ, ଅସହ୍ୟ, କ୍ଷେମ; କଠିନ, ଜଟିଳ, ( ଗ୍ରା.ବି ) ଦୁର୍ଦ୍ଦିନ।

**ଦୁର୍ଣ୍ଣଶ**—ବି.ବିଂ. ( ଦୁର୍+ନଶ୍+ଅ ) କଷ୍ଟଦ୍ୱାରା ନଷ୍ଟ।

**ଦୁର୍ଣ୍ଣାମା**—ସ୍ତ୍ରୀ. ବି. ଦୀର୍ଘକୋଷିକା, ଅର୍ଶରୋଗ।

**ଦୁର୍ଣ୍ଣାମା**—ବି. (ଦୁର୍+ନାମନ୍)ଶାମୁକା।

**ଦୁର୍ଣ୍ଣୀତି**—ଦୁର୍ନୀତି ଦେଖ।

**ଦୁର୍ଦ୍ଦଣ୍ଡ**—ବିଂ. (ଦୁର୍+ଦଣ୍ଡ+କର୍ମ.ଅ) ଦୁର୍ଦ୍ଦର୍ଷ, ଅବାଧ୍ୟ।

**ଦୁର୍ଦ୍ଦଣ୍ଡ୍ୟ**—ବିଂ. (ଦୁର୍+ଦଣ୍ଡ+ମ.ଯ) ଦୁର୍ଦ୍ଦଣ୍ଡ ଦେଖ, (ବି)ଦୁର୍ଦ୍ଦଣ୍ଡ୍ୟତା,(ସ୍ତ୍ରୀ) ଦୁର୍ଦ୍ଦଣ୍ଡ୍ୟା।

**ଦୁର୍ଦ୍ଦମ**—ପୁଂ.ବିଂ. (ଦୁର୍+ଦମ୍+ମ.ଅ) ଅବାଧ୍ୟ, ଦୁରନ୍ତ, ଦୁର୍ଦ୍ଦମନୀୟ, ଦୁର୍ଜୟ, ଅଶାମ୍ୟ. ଦୁଃଶାସନ, ଅବାଧ୍ୟ,ଅସଂଯତ, (ବି—ଦୁର୍+ଦମ୍+ଭା.ଅ) କଷ୍ଟରେ ଦମନ କରିବା, ରୋହିଣୀ ଗର୍ଭଜାତ ବସୁଦେବଙ୍କର ପୁତ୍ରବିଶେଷ, ( ବି ) ଦୁର୍ଦ୍ଦମତା, (ସ୍ତ୍ରୀ) ଦୁର୍ଦ୍ଦମା।

**ଦୁର୍ଦ୍ଦମନ**—ବି.ବିଂ.(ଦୁର୍+ଦମ୍+ଅନ) ଦୁଃଖଦ୍ୱାରା ଦମନୀୟ, ( ପୁଂ.ବି ) ନୃପବିଶେଷ।

**ଦୁର୍ଦ୍ଦମନୀୟ**—ପୁଂ.ବିଂ. (ଦୁର୍+ଦମ୍+ମ.ଅନୀୟ) ଅଶାସନୀୟ,ଦୁର୍ବୃତ୍ତ,ଦୁର୍ଜୟ, ଅଶାନ୍ତ, ଦୁରନ୍ତ, (ସ୍ତ୍ରୀ) ଦୁର୍ଦ୍ଦମନୀୟା, (ବି) ଦୁର୍ଦ୍ଦମନୀୟତା।

**ଦୁର୍ଦ୍ଦମ୍ୟ**—ପୁଂ.ବିଂ. (ଦୁର୍+ଦମ୍+ମ.ଯ) ଦୁର୍ଦ୍ଦମ (ଦେଖ), ବାଛୁରୀ, ଗୋଶିଶୁ, (ବି) ଦୁର୍ଦ୍ଦମ୍ୟତା, (ସ୍ତ୍ରୀ) ଦୁର୍ଦ୍ଦମ୍ୟା।

**ଦୁର୍ଦ୍ଦର୍ଶ**—ବି. ବିଂ.(ଦୁର୍+ଦୃଶ୍+ମ.ଅ) ଯାହାକୁ ସହଜରେ ଗ୍ରହଁ ହୁଏନାହିଁ, ଭୟଙ୍କରରୂପବିଶିଷ୍ଟ, (ବି) ଦୁର୍ଦ୍ଦର୍ଶତା, (ସ୍ତ୍ରୀ) ଦୁର୍ଦ୍ଦର୍ଶା।

**ଦୁର୍ଦ୍ଦର୍ଶନ**—ବି. ବିଂ.(ଦୁର୍+ଦୃଶ୍+ଅନ) ଦୁର୍ଦ୍ଦର୍ଶ, ଦେଖିବାକୁ ଅଶକ୍ତ।

**ଦୁର୍ଦ୍ଦଶା**—ସ୍ତ୍ରୀ. ବି. (ଦୁର୍+ଦଶା) କ.ଧା; ଦୁରବସ୍ଥା, ଦୁର୍ଭାଗ୍ୟ, (ବିପ-ସୁଦଶା)।

**ଦୁର୍ଦ୍ଦାନ୍ତ**—ବି.ବିଂ. (ଦୁର୍+ଦମ୍+ମ.ତ) ଦୁର୍ଦ୍ଦମନୀୟ, ଅଶାନ୍ତ, ଦୁରନ୍ତ, (ବି) କଳହ, ଶିବ, ଧନଗର୍ବ,ଅଣ୍ଡିରବାଛୁରୀ, (ବି) ଦୁର୍ଦ୍ଦାନ୍ତତା, (ସ୍ତ୍ରୀ) ଦୁର୍ଦ୍ଦାନ୍ତା।

**ଦୁର୍ଦ୍ଦିନ**—କ୍ଲୀ.ବି.(ଦୁର୍ + ଦିନ,କ.ଧା) ମେଘାଚ୍ଛନ୍ନ ଦିବସ, ବର୍ଷାସମୟ,ଦୁଃଖସମୟ, ବିପଦସମୟ, (ବିପ-ସୁଦିନ)।

**ଦୁର୍ଦ୍ଦିବସ**—ପୁଂ.ବି. ଦୁର୍ଦ୍ଦିନ, ବୃଷ୍ଟିରଦିନ।

**ଦୁର୍ଦ୍ଦୁର୍**—ଗ୍ରା.ଅବ୍ୟ.ଦୂର୍ ଦୂର୍ ଦେଖ।

**ଦୁର୍ଦ୍ଦୁର୍ କରିବା**—ଗ୍ରା.କ୍ରି. ଘୃଣା ପ୍ରକାଶପୂର୍ବକ ପାଖରୁ ତଡ଼ିଦେବା।

**ଦୁର୍ଦ୍ଦୁର୍ ଛୁର୍ଛୁର୍**—ଗ୍ରା. ଅବ୍ୟ.ଦୂର୍ ଦୂର୍ ଦେଖ।

**ଦୁର୍ଦ୍ଦୁର୍ ମାର୍ ମାର୍**—ଗ୍ରା.ଅବ୍ୟ. ଘୃଣାପ୍ରଯୁକ୍ତ ତାଡ଼ନା।

**ଦୁର୍ଦ୍ଦୁର୍ ମାର୍ ମାର୍ କରିବା**—ଗ୍ରା. କ୍ରି. ଘୃଣାପ୍ରକାଶ ପୂର୍ବକ ପାଖରୁ ତଡ଼ିଦେବା।

**ଦୁର୍ଦ୍ଦୁରୂଟ**—ବିଂ. ନାସ୍ତିକ, (ବି) ଯେଉଁ ଶିଷ୍ୟ କେବଳ ଗୁରୁଙ୍କ ଉପଦେଶରେ ଚାଳିତ ନ ହୋଇ ତାହାଁର ଗ୍ରହଣୀୟତାକୁ ନିଜର ବିବେକଶକ୍ତିଦ୍ୱାରା ବିଚାର କରେ।

**ଦୁର୍ଦ୍ଦୁରୂଢ଼**—ବି.ବି ଓ ବିଂ. ନାସ୍ତିକ, ଦୁର୍ଦ୍ଦୁରୂଟ ଦେଖ।

**ଦୁର୍ଦ୍ଦୁହା**—ସ୍ତ୍ରୀ. ବିଂ. ସହଜେ ଯାହାକୁ ଦୋହନ କରାଯାଇ ନ ପାରେ।

**ଦୁର୍ଦ୍ଦ୍ୟୂତ**—କ୍ଲୀ.ବି.କପଟ, ଦ୍ୟୂତକ୍ରୀଡ଼ା, କପଟ ପଶାଖେଳ।

**ଦୁର୍ଦ୍ଦୃଶୀକ**—କ୍ଲୀ.ବି. ଦୁର୍ଦ୍ଦର୍ଶନୀୟ ବିଷ।

**ଦୁର୍ଦ୍ଦୃଷ୍ଟ**—ବି.ବିଂ. ( ଦୁର୍+ଦୃଷ୍ଟ ) ରାଗାଦି ଦୋଷଦୁଷ୍ଟ।

**ଦୁର୍ଦ୍ଦୈବ**--କ୍ଲୀ.ବି.(ଦୁର୍+ଦୈବ)ବ.ବ୍ରୀ; ଦୁରଦୃଷ୍ଟ, ଦୁର୍ଭାଗ୍ୟ, ଦୁର୍ଘଟନା, ପାପ।

ଦୁର୍ଦ୍ଦୈବବାନ୍—ପୁଂ.ବି°.(ଦୁର୍ଦ୍ଦୈବ+ବତ୍) ଦୁରଦୃଷ୍ଟଯୁକ୍ତ ।
ଦୁର୍ଦ୍ଧୃତା—ସ୍ତ୍ରୀ.ବି.ଶ୍ରେଣି ଲତାବିଶେଷ ।
ଦୁର୍ଦ୍ଧୁମ—ପୁଂ. ବି. ପଲାଣ୍ଡୁ, ପିଆଜ ।
ଦୁର୍ଦ୍ଧର—ବି.ବି°.(ଦୁର୍+ଧୃ+ର୍ମି.ଅ) ଯାହା ଧରି ରଖିବା କଷ୍ଟକର, ଦୁଃସହ, ଅସହ୍ୟ, ଦୁର୍ଗମ, ଦୁର୍ଦ୍ଦାନ୍ତ, ଦୁର୍ଦ୍ଦମ୍ୟ, (ବି) ନରକବିଶେଷ, ପାରଦ, ଭଲ୍ଲାତକ, ଭଲିଆ, ପକ୍ଷବିଶେଷ (ମହିଷାସୁର ସେନାପତି),ଋଷଭୌଷଧି, ଧୃତରାଷ୍ଟ୍ରଙ୍କ ପୁତ୍ରବିଶେଷ,ଶମ୍ବରାସୁରର ଏକ ମନ୍ତ୍ରୀ, ବିଷ୍ଣୁ, ରାବଣର ସେନାପତି ।
ଦୁର୍ଦ୍ଧରା—ସ୍ତ୍ରୀ. ବି. ମହାରାଜ ଚନ୍ଦ୍ରଗୁପ୍ତଙ୍କ ପ୍ରଧାନ ମହିଷୀ ।
ଦୁର୍ଦ୍ଧରୁ—ବି.. ବି°. ଦୁର୍ଦ୍ଧର, ଯାହାର ଗତି ରୋଧ କରି ହୁଏ ନାହିଁ, ଧରିହୁଏ ନାହିଁ । [ ଦୁଷ୍ଟଧର୍ମଯୁକ୍ତ ।
ଦୁର୍ଦ୍ଧର୍ମା—ବି. ବି°. (ଦୁର୍+ଧର୍ମ)
ଦୁର୍ଦ୍ଧର୍ଷ—ବି. ବି°. (ଦୁର୍+ଧୃଷ୍+ର୍ମି.ଅ)ଅଧର୍ଷଣୀୟ,ଦୁର୍ଜେୟ, ଅକ୍ଷୋଭ୍ୟ, ଅପରାଜେୟ,ପ୍ରବଳ ପରାକ୍ରାନ୍ତ,ଅସହନୀୟ, ଅସୀମ ସାହସିକ,(ବି)ଧୃତରାଷ୍ଟ୍ରଙ୍କ ପୁତ୍ରବିଶେଷ, (ସ୍ତ୍ରୀ) ଦୁର୍ଦ୍ଧର୍ଷା ।
ଦୁର୍ଦ୍ଧର୍ଷଣ—ବି. ବି°. (ଦୁର୍+ଧୃଷ୍+ଅନ) ଦୁଃଖଦ୍ୱାରା ଧର୍ଷଣୀୟ ।
ଦୁର୍ଦ୍ଧର୍ଷତା—ସ୍ତ୍ରୀ. ବି. (ଦୁର୍ଦ୍ଧର୍ଷ+ତା) ଦୁର୍ଦ୍ଧର୍ଷର ଭାବ, ଦୁର୍ଦ୍ଧର୍ଷତ୍ୱ ।
ଦୁର୍ଦ୍ଧର୍ଷା—ସ୍ତ୍ରୀ. ବି. (ଦୁର୍ଦ୍ଧର୍ଷ+ଆ) ନାଗଦମନୀ, କଣ୍ଟାରୀ ବୃକ୍ଷ ।
ଦୁର୍ଦ୍ଧା—ସ୍ତ୍ରୀ. ବି. (ଦୁର୍+ଧା+ଭା.ଅ+ଆ) ଦୁଷ୍ଟଧାନ ।
ଦୁର୍ଦ୍ଧାର୍ଯ୍ୟ—ବି.ବି°. (ଦୁର୍+ଧାର+ଯ) ଯାହା ସହଜେ ଧାରଣ କରାଯାଏ ନାହିଁ. ଦୁର୍ବୋଧ୍ୟ ।
ଦୁର୍ଦ୍ଧାବ—ବି.ବି°.(ଦୁର୍+ଧାବ+ଅ) ଦୁଃଶୋଧନୀୟ ।
ଦୁର୍ଦ୍ଧିତ—ବି. ବି°. (ଦୁର୍+ଧା+ର୍ମି.ତ) ଦୁଷ୍ଟଭାବେ ସ୍ଥାପିତ ।
ଦୁର୍ଦ୍ଧୀ—ବି.ବି°. (ଦୁର୍+ଧୀ) ବି.ଗ୍ରା; ଦୁର୍ବୁଦ୍ଧିଯୁକ୍ତ, ମନ୍ଦବୁଦ୍ଧିଯୁକ୍ତ, (ବି°) ଦୁର୍ବୁଦ୍ଧି, ମନ୍ଦବୁଦ୍ଧି ।
ଦୁର୍ଦ୍ଧୁର—ବି. ବି°. (ଦୁର୍+ଧୁର୍+ର୍ମି.କ୍ୱିପ୍) ଦୁଃଖଦ୍ୱାରା ବହନୀୟ ।
ଦୁର୍ଦ୍ଧୁରୁଟ—ବି. ବି°. (ଦୁର୍+ଧୁର୍+ଉଟ୍+ଅ) ଯୁକ୍ତିବିନା ଗୁରୁବାକ୍ୟ ଅମାନ୍ୟକାରୀ(ଶିଷ୍ୟ) ।
ଦୁର୍ନୟ—ପୁଂ. ବି. ବି°. (ଦୁର୍+ନୟ) ଦୁର୍ନୀତି ଦେଖ, ଅସଦ୍‌ନୀତି, ମନ୍ଦନୀତି, କୁନୀତି ।
ଦୁର୍ନାମ—କ୍ଲୀ. ବି. (ଦୁର୍+ନାମନ୍) ଅପଯଶ, ଅପଖ୍ୟାତି, ନିନ୍ଦା, କଳଙ୍କ, ବଦ୍‌ନାମ, ଅର୍ଶରୋଗ ।
ଦୁର୍ନାମକ—ପୁଂ. ବି. ଅର୍ଶରୋଗ ।
ଦୁର୍ନାମକରିବା—ଗ୍ରା.କ୍ରି.କୌଣସି ବ୍ୟକ୍ତିର କଳଙ୍କ ପ୍ରକାଶ କରିବା ।
ଦୁର୍ନାମରଟନା—ବି. (ଦୁର୍ନାମ+ରଟନ) ଗୁଜବ; କଳଙ୍କ ପ୍ରକଟନ ।
ଦୁର୍ନାମରଟିବା—ଗ୍ରା.ବି.କଳଙ୍କ ପ୍ରକଟନ ।
ଦୁର୍ନାମାରୁ—ପୁଂ. ବି. ଶୂରଣ, ଓଲୁଅ ।
ଦୁର୍ନାମ୍ନୀ—ସ୍ତ୍ରୀ.ବି. (ଦୁର୍+ନାମ+ଈ) ଦୁର୍ନାମା ।
ଦୁର୍ନିଗ୍ରହ—ବି. ବି°. (ଦୁର୍+ନି+ଗ୍ରହ୍+ଅ) ଦୁର୍ଦ୍ଦମ,ଯାହା ସହଜେ ଦମନ କରିହୁଏ ନାହିଁ ।
ଦୁର୍ନିବାର—ବି. ବି°. (ଦୁର୍+ନି+ବାର୍+ର୍ମି.ଅ) ଯାହା ସହଜରେ ନିବାରଣ କରାଯାଇ ନ ପାରେ, ଅନିବାର୍ଯ୍ୟ, ଅନିବାରଣୀୟ ।
ଦୁର୍ନିବାର୍ଯ୍ୟ—ବି. ବି°. (ଦୁର୍+ନି+ଣିଚ୍+ବାର୍+ର୍ମି.ଯ) ଅତି କଷ୍ଟେ ନିବାରଣୀୟ ।
ଦୁର୍ନିମିତ—ବି. ବି°. (ଦୁର୍+ନି+ମି+ତ) ଦୁଷ୍ଟଭାବେ କ୍ଷିପ୍ତ, ସମ୍ମୁଖେ ଉତ୍କ୍ଷିପ୍ତ ।
ଦୁର୍ନିମିତ୍ତ—କ୍ଲୀ. ବି. (ଦୁର୍+ନିମିତ୍ତ) କ.ଧା; ଅମଙ୍ଗଳର ଚିହ୍ନ,ଅଶୁଭ ଚିହ୍ନ ।
ଦୁର୍ନିୟନ୍ତୁ—ବି. ବି°. (ଦୁର୍+ନି+ଯମ୍+ତୃ) ଦୁଃଖଦ୍ୱାରା ନିୟନ୍ତବ୍ୟ ।
ଦୁର୍ନିରୀକ୍ଷ—ବି. ବି°. (ଦୁର୍+ନିର୍+ଈକ୍ଷ୍+ଅ) ଅତି କଷ୍ଟରେ ଯାହା ନିରୀକ୍ଷଣ କରାଯାଏ ।
ଦୁର୍ନିରୀକ୍ଷ୍ୟ—ବି. ବି°. (ଦୁର୍+ନିର୍+ଈକ୍ଷ+ର୍ମି.ଯ) ଦୁର୍ଦ୍ଦର୍ଶ, ଯାହାଙ୍କୁ ସହଜେ ଚାହିଁ ହୁଏ ନାହିଁ,ପ୍ରାୟ ଅଦୃଶ୍ୟ (ସ୍ତ୍ରୀ) ଦୁର୍ନିରୀକ୍ଷ୍ୟା ।
ଦୁର୍ନିବର୍ତ୍ତ୍ୟ—ବି.ବି°.(ଦୁର୍+ନି+ବୃତ୍+ଯ) ଦୁଃଖେ ଯାହା ନିବର୍ତ୍ତିତ ହୁଏ ।
ଦୁର୍ନିଷ୍ପତର—କ୍ଲୀ. ବି. (ଦୁର୍+ନିର୍+ପ୍ର+ପତ+ଅ) ଦୁଃଖଦ୍ୱାରା ନିଷ୍କ୍ରାନ୍ତର ।
ଦୁର୍ନୀତ—କ୍ଲୀ.ବି. (ଦୁର୍+ନୀ+ଭା.ତ) ନୀତିବିରୁଦ୍ଧ ଚରଣ, ଦୁଷ୍ଟନୀତି, (ବି°-ବି.ଗ୍ରା; (ଦୁର୍+ନୀ+ର୍ମି.ତ) ଯାହାର ରୀତିନୀତି ମନ୍ଦ, ଉଚ୍ଛୃଙ୍ଖଳ, ଅଭଦ୍ର, ଅଶିଷ୍ଟ, (ଦୁର୍+ନୀ+କ.ତ)ଦୁର୍ନୀତିଯୁକ୍ତ ।
ଦୁର୍ନୀତି—ସ୍ତ୍ରୀ.ବି. (ଦୁର୍+ନୀତି)କ.ଧା; କୁରୀତି, ଅନ୍ୟାୟ, ମନ୍ଦଆଚରଣ ।
ଦୁର୍ନୀତିପରାୟଣ—ବି. ବି°. (ବି.ଗ୍ରା) ଦୁଷ୍ଟନୀତିର ଅନୁସରଣକାରୀ,ଦୁର୍ବୃତ୍ତ, ଦୁରାଚାର, ଦୁଷ୍ଟଚରିତ୍ର, ଦୁରାତ୍ମା ।
ଦୁର୍ନୀତିଭାବ—ପୁଂ. ବି. ଦୁର୍ନୀତିର ଭାବ ।
ଦୁର୍ନୃପ—ପୁଂ. ବି. (ଦୁର୍+ନୃପ) କୁରାଜା, ମନ୍ଦ ନୃପତି ।
ଦୁର୍ପଲା—ଗ୍ରା. ଅବ୍ୟ. ଦୁରପଲା ଦେଖ ।
ଦୁର୍ବଚଃ—କ୍ଲୀ. ବି. (ଦୁର୍+ବଚସ୍) ଦୁର୍ବାକ୍ୟ, ମନ୍ଦକଥା, ନିନ୍ଦାବାକ୍ୟ ।
ଦୁର୍ବଚନ—ପୁଂ. ବି. କୁବାକ୍ୟ, କଟୁକଥା, ଦୁର୍ବାକ୍ୟ ଦେଖ ।
ଦୁର୍ବତ୍ସର—ପୁଂ. ବି. (ଦୁର୍+ବତ୍ସର) ମନ୍ଦବର୍ଷ ।
ଦୁର୍ବଦ୍ଧ—ବି. ବି°. ଦୁଷ୍ଟଭାବେ ବଦ୍ଧ ।
ଦୁର୍ବର୍ଣ୍ଣ—ବି. ବି°. (ବି.ଗ୍ରା) ମଳିନ, ଅପରିଷ୍କୃତ, (କ୍ଲୀ.ବି) ରଜତ, ରୌପ୍ୟ, (ସ୍ତ୍ରୀ) ଦୁର୍ବର୍ଣ୍ଣା ।
ଦୁର୍ବଳ—ବି. ବି°. (ଦୁର୍+ବଳ) ବି.ଗ୍ରା; ହୀନବଳ, ବଳଶୂନ୍ୟ, ନିର୍ବଳ,

ବଳହୀନ, ଅଶକ୍ତ, ଅସମର୍ଥ, କ୍ଷୀଣ, କୃଶ, ଦୋବଲା, (ଗ୍ରା.ବ) ଦୁର୍ବଳତା, (ବିଂ) ପ୍ରବଳ, ଉଗ୍ର, ପ୍ରଚଣ୍ଡ, ଅତ୍ୟଧିକ, ଦୁଷ୍ଟମୀ, ଶିଥିଳ, (ବି) ଦୌର୍ବଲ୍ୟ ବା ଦୁର୍ବଳତା, (ସ୍ତ୍ରୀ) ଦୁର୍ବଳା ।

**ଦୁର୍ବଳକର୍ମ**—ଗ୍ରା. ବି. ମୃତାହନକ୍ରିୟା, ପ୍ରେତକ୍ରିୟା ।

**ଦୁର୍ବଳତା**—ସ୍ତ୍ରୀ. ବି. (ଦୁର୍ବଳ+ଭା.ତା) ବଳହୀନତା, ଅଶକ୍ତି, କ୍ଷୀଣତା ।

**ଦୁର୍ବଳତ୍ୱ**—କ୍ଲୀ. ବି. (ଦୁର୍ବଳ+ତ୍ୱ) ଦୁର୍ବଳତା ।

**ଦୁର୍ବଳଦଶା**—ଗ୍ରା.ବି.ମନ୍ଦଦଶା, ଦୁର୍ଦ୍ଦଶା ।

**ଦୁର୍ବଳବଢ଼ି**—ଗ୍ରା.ବି.ପ୍ରବଳ ନଦୀବୃଦ୍ଧି ।

**ଦୁର୍ବଳା**—ସ୍ତ୍ରୀ.ବି. (ଦୁର୍ବଳ+ଆ)ଅମ୍ବୁଶିରୀଷିକା ।

**ଦୁର୍ବଳାଚାର୍ଯ୍ୟ**—ଜଣେ ସଂସ୍କୃତ ବ୍ୟାକରଣ ରଚୟିତା ।

**ଦୁର୍ବଳିଆ**—ଗ୍ରା. ବିଂ. ଦୁର୍ବଳ ଦେଖ ।

**ଦୁର୍ବନ୍ଧ**—ତ୍ରି, ବିଂ. (ଦୁର୍+ବନ୍ଧ+ମି.ଅ) ଯାହା ସହଜେ ବନ୍ଧନ କରାଯାଇ ନ ପାରେ, ଅତ୍ୟନ୍ତ ଭାରୀ, (ସ୍ତ୍ରୀ)ଦୁର୍ବନ୍ଧା ।

**ଦୁର୍ବାକ୍ୟ**—କ୍ଲୀ. ବି. (ଦୁର୍+ବାକ୍ୟ) କ.ଧା; କଟୁବାକ୍ୟ, ଗାଳି, ଅଶ୍ଳୀଳବାକ୍ୟ, ଅପ୍ରିୟବାକ୍ୟ, ମନ୍ଦକଥା ।

**ଦୁର୍ବାଚ୍ୟ**—କ୍ଲୀ. ବି. (ଦୁର୍+ବାଚ୍ୟ) ଅପବାଦ, ଅକୀର୍ତ୍ତି, ଅଖ୍ୟାତି, ଅପଯଶ, ଦୁର୍ବାକ୍ୟ, (ବିଂ) ଅତିକଷ୍ଟେ କଥନୀୟ, ଦୁରୁଚ୍ଚାର୍ଯ୍ୟ, ଅକଥ୍ୟ ।

**ଦୁର୍ବାଦ**—ବି. (ଦୁର୍+ବାଦ) କ.ଧା; ଦୁର୍ବାକ୍ୟ ଦେଖ, ନିନ୍ଦା, ଭର୍ତ୍ସନା (ବିଂ.ବ.ଗ୍ରା) କଟୁଭାଷୀ ।

**ଦୁର୍ବାର**—ତ୍ରି. ବିଂ. (ଦୁର୍+ବୃ+ଣିଚ୍+ମି.ଅ) ଅନିବାର୍ଯ୍ୟ, ଦୁର୍ନିବାର, ଅନିବାରଣୀୟ ।

**ଦୁର୍ବାରଣ**—ବିଂ. ଦୁର୍ବାର ଦେଖ,କଷ୍ଟେ ବାରଣୀୟ, (ପୁଂ.ବି) ଶିବ ।

**ଦୁର୍ବାଳ**—ତ୍ରି. ବିଂ. (ଦୁର୍+ବାଳ) ଦୁଷ୍ଟଚର୍ମରୋଗଯୁକ୍ତ, ଟଳିତ, କୁଟିଳକେଶ ।

**ଦୁର୍ବାସନା**—ସ୍ତ୍ରୀ.ବି. (ଦୁର୍+ବାସନା) କ.ଧ; ମନ୍ଦଅଭିଳାଷ, ଦୁଷ୍ଟଇଚ୍ଛା ।

**ଦୁର୍ବାସସ୍**—ପୁଂ.ବି.ମୁନିବିଶେଷ, ଆର୍ଯ୍ୟାଦ୍ୱିଶତୀ, ଦେବୀମହିମ୍ନ ସ୍ତୋତ୍ର, ପରଶିବ ମହିମ୍ନ ସ୍ତୋତ୍ର ।

**ଦୁର୍ବାସା**—ପୁଂ. ବି. ଅତ୍ରିମୁନିଙ୍କ ପୁତ୍ର ମହାକ୍ରୋଧୀ ଋଷିବିଶେଷ,(ବିଂ.ବ.ଗ୍ରା) (ଦୁର୍+ବାସସ୍) କୁତ୍ସିତ ବସ୍ତ୍ରଧାରୀ ।

**ଦୁର୍ବାହ୍ୟ**—କ୍ଲୀ. ବି. ଦୁର୍ବହ, ସହଜେ ଯାହା ବହନ କରାଯାଏ ନାହିଁ ।

**ଦୁର୍ବିକତ୍ଥନ**—ତ୍ରି. ବିଂ. କ୍ରୋଧରେ ବା ଦମ୍ଭରେ ଗର୍ବକାରୀ ।

**ଦୁର୍ବିଗାହ**—ତ୍ରି.ବିଂ (ଦୁର୍+ବି+ଗାହ+ମି.ଅ) ଦୁରବଗାହ ଦେଖ, ଦୁଷ୍ପ୍ରବେଶ, (ପୁଂ) ଧୃତରାଷ୍ଟ୍ରଙ୍କ ପୁତ୍ରବିଶେଷ ।

**ଦୁର୍ବିଗାହ୍ୟ**—ତ୍ରି.ବିଂ.(ଦୁର୍+ବି+ଗାହ+ଯ) ଦୁର୍ବିଗାହନୀୟ ।

**ଦୁର୍ବିଚିନ୍ତ୍ୟ**—ତ୍ରି. ବିଂ. (ଦୁର୍+ବି+ଚିନ୍ତ୍+ଯ) ସହଜେ ଯାହା ଚିନ୍ତା କରାଯାଇ ନ ପାରେ, ଚିନ୍ତାର ଅସାଧ୍ୟ ।

**ଦୁର୍ବିଚେଷ୍ଟ**—ତ୍ରି. ବିଂ.(ଦୁର୍+ବି+ଚେଷ୍ଟ+ଅ) ଦୁର୍ବ୍ୟବହାର, ଚେଷ୍ଟାର ଅସାଧ୍ୟ ।

**ଦୁର୍ବିଜ୍ଞାନ**—କ୍ଲୀ. ବି. (ଦୁର୍+ବି+ଜ୍ଞା+ଅନ) ଅଜ୍ଞେୟ, ଯାହା ଅତି କଷ୍ଟେ ଜଣାଯାଏ ।

**ଦୁର୍ବିତର୍କ**—ତ୍ରି.ବିଂ. (ଦୁର୍+ବି+ତର୍କ+ଅ) ତର୍କର ଅସାଧ୍ୟ ।

**ଦୁର୍ବିତର୍କ୍ୟ**—ତ୍ରି. ବିଂ. (ଦୁର୍+ବି+ତର୍କ+ଯ) ସହଜେ ଯାହା ତର୍କ କରି ସ୍ଥିର କରାଯାଇ ନ ପାରେ ।

**ଦୁର୍ବିଦ**—ତ୍ରି. ବିଂ. ଦୁର୍ଜ୍ଞେୟ, ସହଜେ ଯାହା ଜଣାଯାଏ ନାହିଁ ।

**ଦୁର୍ବିଦଗ୍ଧ**—ତ୍ରି.ବିଂ.ଗର୍ବିତ, ଅହଙ୍କାରୀ, ଉଦ୍ଧତ, ଅଭଦ୍ର, ଦୁଷ୍ଟ ।

**ଦୁର୍ବିଦନ**—ତ୍ରି. ବିଂ. (ଦୁର୍+ବିଦ୍+ଅନ) ଦୁର୍ଧନକ, ଦୁର୍ଜ୍ଞାନକ ।

**ଦୁର୍ବିଦ୍ୟ**—ତ୍ରି.ବିଂ. (ଦୁର୍ବିଦ+ଯ)ଅଜ୍ଞ, ଅଶିକ୍ଷିତ ।

**ଦୁର୍ବିଦ୍ୱସ୍**—ତ୍ରି. ବିଂ. କୁମନା, ଅସହ୍ୟ ।

**ଦୁର୍ବିଧ**—ପୁଂ.ବି.(ଦୁର୍+ବିଧ)ବ.ଗ୍ରା; ଦରିଦ୍ର, ଖଳ, ମୂର୍ଖ, ଦୁଷ୍ଟ, ଅସତ୍, ଅସଦାଚରଣ, (ସ୍ତ୍ରୀ) ଦୁର୍ବିଧା ।

**ଦୁର୍ବିଧି**—ପୁଂ.ବି.(ଦୁର୍+ବିଧି) କ.ଧା; ମନ୍ଦବିଧି ବା ନିୟମ, ମନ୍ଦଭାଗ୍ୟ ।

**ଦୁର୍ବିନ୍(ନ)**—ଗ୍ରା.ବି. ଦୂରଦର୍ଶନ ଯନ୍ତ୍ର ।

**ଦୁର୍ବିନୟ**—ପୁଂ. ବି. (ଦୁର୍+ବି+ନୀ+ଭା.ଅ) ବିନୟରାହିତ୍ୟ ।

**ଦୁର୍ବିନୀତ**—ପୁଂ.ବିଂ. (ଦୁର୍+ବି+ନୀ+କ.ତ) ବିନୟଶୂନ୍ୟ, ଅବିନୀତ, ଉଦ୍ଧତ, ମନ୍ଦବ୍ୟବହାରୀ,ଦୁର୍ବିଦଗ୍ଧ, (ବି) ଅଶିକ୍ଷିତ ଅଶ୍ୱ,(ସ୍ତ୍ରୀ)ଦୁର୍ବିନୀତା, ଦୁର୍ବିନୀତି ।

**ଦୁର୍ବିନୀତି**—ସ୍ତ୍ରୀ. ବି. (ଦୁର୍+ବି+ନୀ+ଭା.ତି) ବିନୟରାହିତ୍ୟ ।

**ଦୁର୍ବିନେୟ**—ତ୍ରି. ବିଂ. (ଦୁର୍+ବି+କ.ଯ) ଅବିନୟାର୍ହ, ଦୁର୍ଦ୍ଦମନୀୟ, (ସ୍ତ୍ରୀ) ଦୁର୍ବିନେୟା ।

**ଦୁର୍ବିପାକ**—ପୁଂ. ବି. (ଦୁର୍+ବିପାକ) ଦୁର୍ଘଟନା, ମନ୍ଦଫଳ, ମନ୍ଦପରିଣାମ, (ବିଂ.ବ.ଗ୍ରା) ମନ୍ଦପରିଣାମଯୁକ୍ତ, ପରିଣାମ ଦାରୁଣ, (ସ୍ତ୍ରୀ) ଦୁର୍ବିପାକା ।

**ଦୁର୍ବିଭାଗ**—ପୁଂ.ବି. ମନ୍ଦବିଭାଗ, ସହଜେ ଯାହା ବିଭାଗ କରାଯାଇ ନ ପାରେ ।

**ଦୁର୍ବିଭାବ୍ୟ**—ତ୍ରି. ବିଂ. (ଦୁର୍+ବି+ଭୂ+ଯ)ଦୁର୍ବୋଧ, ଯାହା ହୃଦୟଙ୍ଗମ ହୁଏ ନାହିଁ ।

**ଦୁର୍ବିଭାଷ**—କ୍ଲୀ. ବି. ଦୁର୍ବାଚ୍ୟ ।

**ଦୁର୍ବିମୋଚନ**—ତ୍ରି. ବିଂ. ଅତି କଷ୍ଟେ ମୋଚନୀୟ, (ପୁଂ. ବି) ଧୃତରାଷ୍ଟ୍ରଙ୍କ ପୁତ୍ରବିଶେଷ ।

**ଦୁର୍ବିଲସିତ**—କ୍ଲୀ. ବି. ଦୁଷ୍କାର୍ଯ୍ୟ ।

**ଦୁର୍ବିବକ୍ତା**—ପୁଂ. ବିଂ. ମନ୍ଦବକ୍ତା, ଯେ ମନ୍ଦଭାବେ ଉତ୍ତର ଦିଏ ।

**ଦୁର୍ବିବାହ**—ପୁଂ. ବି. (ଦୁର୍+ବିବାହ) ଆସୁର ପ୍ରଭୃତି ଗର୍ହିତପ୍ରକାର ବିବାହ ।

**ଦୁର୍ବିଷ**—ପୁଂ. ବି. ମହାଦେବ ।

**ଦୁର୍ବିଷହ**—ତ୍ରି. ବିଂ. (ଦୁର୍+ବି+ସହ+ମି.ଅ) ଅସହ୍ୟ, ଦୁଃସହ, ଦୁର୍ବହ, (ପୁଂ. ବି)ଶିବ,ଧୃତରାଷ୍ଟ୍ରଙ୍କ ପୁତ୍ରବିଶେଷ ।

ଦୁର୍ବିଷହ୍ୟ—ବି. ବିଂ.. (ଦୁର୍+ବି+ସହ+ଯ)ଅତିଶୟ ଦୁଃଖେ ସହନୀୟ ।

ଦୁର୍ବୁଦ୍ଧି—ସ୍ତ୍ରୀ.ବି.(ଦୁର୍+ବୁଦ୍ଧି)କ.ଧା; ମନ୍ଦବୁଦ୍ଧି, ଦୁଷ୍ଟତା, ମନ୍ଦ ବିଷୟରେ ଏକଜିଦ, ନିର୍ବୋଧତା, ମୂର୍ଖତା,ଦୁର୍ମତି, କୁବୁଦ୍ଧି,(ବିଂ,ବ.ଗ୍ରା)ମନ୍ଦ କର୍ମରେ ଏକଜିଦିଆ, ଖଳ, ଦୁଷ୍ଟ, ମୂର୍ଖ, ନିର୍ବୋଧ, ଅସଦ୍‌ବୁଦ୍ଧିବିଶିଷ୍ଟ, କୁବୁଦ୍ଧି, ଦୁଷ୍ଟମତି ।

ଦୁର୍ବୁଦ୍ଧିଆ—ଗ୍ରା.ବିଂ. ଦୁର୍ବୁଦ୍ଧି ଦେଖ ।

ଦୁର୍ବୃତ୍ତ—କ୍ଲୀ. ବି. ନିନ୍ଦିତ ଆଚରଣ, ଖରାପ ବ୍ୟବହାର, (ବିଂ. ବ.ଗ୍ରା) ଦୁଶ୍ଚରିତ୍ର, ଦୁର୍ଜନ, ଦୁରନ୍ତ, ଦୁର୍ଦ୍ଦାନ୍ତ, ଧୂର୍ତ୍ତ, ଅବାଧ୍ୟ, ଉଦ୍ଧତ, ଦୁରାତ୍ମା,ଅଶିଷ୍ଟ ।

ଦୁର୍ବୃତ୍ତି—ସ୍ତ୍ରୀ. ବି. (ଦୁର୍+ବୃତ୍ତି) ମନ୍ଦପ୍ରବୃତ୍ତି, ନିନ୍ଦିତ ଆଚରଣ, ଦୁର୍ଜନତା ।

ଦୁର୍ବେଦ—ବି. ବିଂ. (ଦୁର୍+ବିଦ୍+ର୍ମି.ଅ) ଦୁର୍ଜ୍ଞେୟ, ଦୁର୍ବୋଧ, ବେଦପାଠ ବିହୀନ ।

ଦୁର୍ବୋ(ର୍ବୋ)ଧ—ବି. ବିଂ. (ଦୁର୍+ବୋଧ)-ବ.ଗ୍ରା; ଜ୍ଞାନଶୂନ୍ୟ, ଅଜ୍ଞାନ, ଦୁର୍ବୋଧ,ଦୁର୍ଜ୍ଞେୟ,କଠିନ,ଦୁର୍ଜ୍ଞେୟ ।

ଦୁର୍ବୋଧ—ବିଂ.(ଦୁର୍+ବୋଧ)ଦୁର୍ଜ୍ଞେୟ, ଯାହା ସହଜେ ବୁଝାଯାଇ ପାରେ ନାହିଁ (ବି) ଦୁର୍ବୋଧତା ।

ଦୁର୍ବ୍ୟବସ୍ଥା—ବି.(ଦୁର୍+ବ୍ୟବସ୍ଥା)କ.ଧା; ମନ୍ଦବନ୍ଦୋବସ୍ତ । [ ସ୍ଥାପକ ।

ଦୁର୍ବ୍ୟବସ୍ଥାପକ—ପୁଂ. ବି. ଦୁଷ୍ଟ ବ୍ୟବ-

ଦୁର୍ବ୍ୟବହାର—ପୁଂ. ବି. (ଦୁର୍+ବ୍ୟବହାର) କ.ଧା; ମନ୍ଦବ୍ୟବହାର, ଦୁଷ୍ଟ ଆଚରଣ,ଯେଉଁ ମୋକଦ୍ଦମାର ମୀମାଂସା ଉତ୍କୋଚ ଦାନାଦି କାରଣରୁ ଅନ୍ୟାୟ ହୋଇଅଛି ।

ଦୁର୍ବ୍ୟସନ—ବି. (ଦୁର୍+ବ୍ୟସନ)କ.ଧା; ମନ୍ଦଅଭ୍ୟାସ, (ପୁଂ. ବିଂ) ଦୁର୍ବ୍ୟସନୀ ।

ଦୁର୍ବ୍ୟାହୃତ—ବି. ବିଂ. ମନ୍ଦକଥିତ ।

ଦୁର୍ବ୍ରଜିତ—କ୍ଲୀ. ବି. ନିନ୍ଦିତଗତି ।

ଦୁର୍ବ୍ରତ—ବି. ବିଂ. ଅବାଧ୍ୟ, ଦୁର୍ନୀତ, (ଗ୍ରା. ପୁଂ. ବିଂ) ଯେ ମନ୍ଦବ୍ରତ ପାଳନ କରିଅଛି, ନିର୍ଘୃଣ, ( ବି. କ.ଧା ) ମନ୍ଦମନୋରଥ, ମନ୍ଦଆଶୟ, ମନ୍ଦବ୍ରତ, (ସ୍ତ୍ରୀ) ଦୁର୍ବ୍ରତା ।

ଦୁର୍ବାରଣ—କ୍ଲୀ. ବି. ଦୁଷ୍ଟ ବାରଣ ତୃଣ ବିଶେଷ ।

ଦୁର୍ବୁଧ—ବି. ବିଂ. (ଦୁର୍+ବୁଧ+ଅ) ଦୁର୍ବଳଚିତ୍ତ, ଦୁର୍ମନା । [ ବିଶେଷ ।

ଦୁର୍ବ୍ରାହ୍ମଣ—ପୁଂ. ବି. ନିନ୍ଦିତ ବ୍ରାହ୍ମଣ

ଦୁର୍ଭକ୍ଷ—ବିଂ. ( ଦୁର୍+ଭକ୍ଷ+ର୍ମି.ଅ ) କଷ୍ଟେ ଭକ୍ଷଣୀୟ, (ବି) ଦୁର୍ଭିକ୍ଷ ।

ଦୁର୍ଭକ୍ଷ୍ୟ—ବି. ବିଂ.(ଦୁର୍+ଭକ୍ଷ+ର୍ମି.ଯ) ଯାହା ଅତିକଷ୍ଟେ ଭକ୍ଷଣ କରାଯାଏ, (ବି) ଅବ୍ୟୟୀଭାବ, ଭକ୍ଷର ଅଭାବ, ଅନ୍ନକଷ୍ଟ, ଦୁର୍ଭିକ୍ଷ ।

ଦୁର୍ଭଗ—ପୁଂ. ବିଂ.(ଦୁର୍+ଭଗ)ବ.ଗ୍ରା; ମନ୍ଦଭାଗ୍ୟ,ଭାଗ୍ୟହୀନ, ଅପ୍ରିୟ,ଦୁରଦୃଷ୍ଟ, (ବି) ଦୁର୍ଭଗତା, (ବିପ) ସୁଭଗ, (ସ୍ତ୍ରୀ) ଦୁର୍ଭଗା ।

ଦୁର୍ଭଗତ୍ୱ—କ୍ଲୀ. ବି. (ଦୁର୍ଭଗ+ତ୍ୱ)ଦୁର୍ଭଗତା, ମନ୍ଦଭାଗ୍ୟର ଭାବ ।

ଦୁର୍ଭଗା—ସ୍ତ୍ରୀ. ବିଂ. ( ଦୁର୍ଭଗ+ଆ ) ପତିସ୍ନେହହୀନା, ହତଭାଗିନୀ,ଭାଗ୍ୟହୀନା, ବିଧବା ହୋଇଥିବା, ( ବିପ ) ସୁଭଗା, ( ପର୍ଯ୍ୟାୟ ) ବିରକ୍ତା, ବିତୃପ୍ତା, ନମ୍ରା, ସୌଭାଗ୍ୟରହିତା ସ୍ତ୍ରୀ ।

ଦୁର୍ଭଗ୍ନ—ବି. ବିଂ. ସହଜେ ଯାହା ଭାଙ୍ଗି ହୁଏ ନାହିଁ ।

ଦୁର୍ଭଙ୍ଗ—ବି. ବିଂ. ସହଜେ ଯାହା ଭାଙ୍ଗି ହୁଏନାହିଁ ।

ଦୁର୍ଭର—ବି. ବିଂ. (ଦୁର୍+ଭୃ+ର୍ମି.ଅ) ଦୁଃସହ, ଭାରି, ଗରୁଆ, ଗୁରୁ, ଅସହନୀୟ, (ସ୍ତ୍ରୀ) ଦୁର୍ଭରା, (ବି) ଦୁର୍ଭରତା ।

ଦୁର୍ଭାଗା—ଗ୍ରା.ପୁଂ.ବିଂ. ଭାଗ୍ୟହୀନ, ହତଭାଗା, (ସ୍ତ୍ରୀ) ଦୁର୍ଭାଗୀ, ଦୁର୍ଭାଗିନୀ ।

ଦୁର୍ଭାଗ୍ୟ—କ୍ଲୀ. ବି.(ଦୁର୍+ଭାଗ୍ୟ)କ.ଧା; ଦୁରଦୃଷ୍ଟ,ମନ୍ଦଭାଗ୍ୟ,ବିପଦ,ଦୁର୍ଘଟନା, ପାପ, ( ପୁ. ବିଂ. ବ.ଗ୍ରା ) ହତଭାଗ୍ୟ, ସ୍ଥାନକପାଳିଆ, (ସ୍ତ୍ରୀ) ଦୁର୍ଭାଗ୍ୟା ।

ଦୁର୍ଭାବନା—ସ୍ତ୍ରୀ. ବି. (ଦୁର୍+ଭାବନା) କ.ଧା;ମନ୍ଦଭାବନା, ଦୁଶ୍ଚିନ୍ତା, ଉଦ୍‌ବେଗ, ଉତ୍କଣ୍ଠା ।

ଦୁର୍ଭାବ୍ୟ—କ୍ଲୀ. ବି. (ଦୁର୍+ଭୂ+ଯ) ଅଭାବନୀୟ ।

ଦୁର୍ଭାଷା—ବି. ( ଦୁର୍+ଭାଷା ) କ.ଧା; ଦୁର୍ବାକ୍ୟ, ତିରସ୍କାର ବା ଭର୍ତ୍ସନାଯୁକ୍ତ ଭାଷା ।

ଦୁର୍ଭାଷିତ—ବି. ବିଂ. (ଦୁର୍+ଭାଷିତ) ମନ୍ଦକଥନ, ମନ୍ଦବାକ୍ୟ କହିବା,କର୍କଶଭାଷୀ ।

ଦୁର୍ଭାଷିନ୍—ବି. ବିଂ. (ଦୁର୍+ଭାଷ୍+ଇନ୍) ଦୁଷ୍ଟଭାଷୀ, କର୍କଶଭାଷୀ ।

ଦୁର୍ଭିକ୍ଷ—କ୍ଲୀ.ବି. (ଦୁର୍+ଭିକ୍ଷା, ଅବ୍ୟୟୀଭାବ) ଦେଶରେ ଖାଦ୍ୟଦ୍ରବ୍ୟର ଅଭାବ, ଭିକ୍ଷାର ଅଭାବ ।

ଦୁର୍ଭିକ୍ଷପାଣ୍ଠି—ଗ୍ରା. ବି. (ସଂ ଦୁର୍ଭିକ୍ଷ+ଗ୍ରା. ପାଣ୍ଠି) ଦୁର୍ଭିକ୍ଷପୀଡ଼ିତବ୍ୟକ୍ତିଙ୍କ ସାହାଯ୍ୟ ଦେବାପାଇଁ ସାଧାରଣ ଚାନ୍ଦା ବା ସରକାରଙ୍କ ଦ୍ୱାରା ଖୋଲାଯିବା ପାଣ୍ଠି ।

ଦୁର୍ଭିକ୍ଷପୀଡ଼ିତ—ବିଂ. (ଦୁର୍ଭିକ୍ଷ+ପୀଡ଼ିତ) ୩ତତ୍; ଦୁର୍ଭିକ୍ଷଦ୍ୱାରା ଆକ୍ରାନ୍ତ ।

ଦୁର୍ଭିଦ—ବି.ବିଂ. (ଦୁର୍+ଭିଦ୍+ର୍ମି.ଅ) ଦୁର୍ଭେଦ୍ୟ, ଭେଦ କରିବାକୁ ଅଶକ୍ତ ।

ଦୁର୍ଭିଷଜ୍ୟ—କ୍ଲୀ. ବି. ଦୁଶ୍ଚିକିତ୍ସ୍ୟ,ସହଜେ ଯାହାର ଚିକିତ୍ସା କରି ହୁଏ ନାହିଁ ।

ଦୁର୍ଭୃତ୍ୟ—ପୁଂ.ବି.ଦୁଷ୍ଟଭୃତ୍ୟ,ମନ୍ଦଭୃତ୍ୟ

ଦୁର୍ଭେଦ—ବି.ବିଂ.(ଦୁର୍+ଭିଦ୍+ଅ) ଦୁର୍ଭେଦ୍ୟ, ଦୁଃଖେ ଭେଦନୀୟ ।

ଦୁର୍ଭେଦ୍ୟ—ବି. ବିଂ. (ଦୁର୍+ଭିଦ୍+ର୍ମି.ଯ) ଅଭେଦ୍ୟ, ଅତିକଠିନ, ଦୁର୍ଗମ, ଅଜ୍ଞେୟ, ଯାହା ଅତିକଷ୍ଟେ ଭେଦ କରାଯାଇପାରେ, ( ସ୍ତ୍ରୀ ) ଦୁର୍ଭେଦ୍ୟା, (ବି) ଦୁର୍ଭେଦ୍ୟତା ।

ଦୁର୍ଭ୍ରାତା—ପୁଂ. ବି. ଦୁଷ୍ଟଭ୍ରାତା ।

ଦୁର୍ମଖ—ବି. ବିଂ. ଅସୁଖୀ, ମନ୍ଦଯଜ୍ଞ ।

ଦୁର୍ମଙ୍ଗଳ—ବି. ବିଂ. ଅଶୁଭ ।

ଦୁର୍ମତି—ସ୍ତ୍ରୀ. ବି. ( ଦୁର୍+ମତି ) କ.ଧା; ଦୁର୍ବୁଦ୍ଧି, ମନ୍ଦକାର୍ଯ୍ୟରେ ମତି, ମନ୍ଦପ୍ରକୃତି, ଜ୍ୟୋତିଷୋକ୍ତ ବତ୍ସର ବା ବର୍ଷ ବିଶେଷ,(ବିଂ) ଦୁର୍ବୁଦ୍ଧି, ଦୁଷ୍ଟବୁଦ୍ଧି,

କୁମତଶାଳୀ, ମନ୍ଦପ୍ରକୃତିବିଶିଷ୍ଟ, ମନ୍ଦ କାର୍ଯ୍ୟରେ ଏକଜିଦିଆ ।

ଦୁର୍ମ୍ମଦ—ପୁଂ. ବିଂ.(ଦୁର୍+ମଦ+କ.ଅ) ଉନ୍ମତ୍ତ, ଦୁର୍ଦ୍ଧର୍ଷ, (ପୁଂ. ବି) ଧୃତରାଷ୍ଟ୍ରଙ୍କ ପୁତ୍ର ବିଶେଷ, ରାଧିକାଙ୍କ ଦେବର, (ସ୍ତ୍ରୀ) ଦୁର୍ମ୍ମଦା ।

ଦୁର୍ମ୍ମନସ୍—କ୍ଳୀ.ବି. ଦୁଷ୍ଟମନ,(ବିଂ) ଦୁଶ୍ଚିନ୍ତିତ-ମନସ୍କ, ଉଦ୍‌ବିଗ୍ନଚିତ୍ତ, ବିମନା, ଦୁର୍ମ୍ମନା ।

ଦୁର୍ମ୍ମନାଃ—ପୁଂ.ସ୍ତ୍ରୀ. ବିଂ.(ଦୁର୍+ମନସ୍) ବ.ବ୍ରୀ; ଦୁର୍ଭାବନାଗ୍ରସ୍ତ, ଦୁଶ୍ଚିନ୍ତାଯୁକ୍ତ, ଚଳଚିତ୍ତ, ଦୁଃଖିତ; ଉଦ୍‌ବିଗ୍ନ ।

ଦୁର୍ମ୍ମନାୟମାନ—ପୁଂ.ବିଂ.(ଦୁର୍ମ୍ମନାୟ+କ.ମାନ)ଦୁଶ୍ଚିନ୍ତାଗ୍ରସ୍ତ, ଦୁର୍ଭାବନାଗ୍ରସ୍ତ. (ସ୍ତ୍ରୀ) ଦୁର୍ମ୍ମନାୟମାନା । [ଲୋକ

ଦୁର୍ମ୍ମନୁଷ୍ୟ—ପୁଂ.ବି.ଦୁଷ୍ଟମନୁଷ୍ୟ,ଦୁଷ୍ଟ-

ଦୁର୍ମ୍ମନ୍ତୁ—ବି. ବିଂ.(ଦୁର୍+ମନ୍+ତୁ) ଦୁଷ୍ଟମନ୍ୟମାନ, ଦୁଷ୍ଟବୋଲି ଭାବିବା ।

ଦୁର୍ମ୍ମନ୍ତ୍ର—ପୁଂ. ବି. ଦୁଷ୍ଟମନ୍ତ୍ରଣା ।

ଦୁର୍ମ୍ମନ୍ତ୍ରଣା—ବି. ( ଦୁର୍+ମନ୍ତ୍ରଣା ) କ.ଧା; କୁମନ୍ତ୍ରଣା, କୁପରାମର୍ଶ ।

ଦୁର୍ମ୍ମନ୍ତ୍ରିତ—ତ୍ରି.ବିଂ.(ଦୁର୍+ମନ୍ତ୍ର+ତ) ଦୁଷ୍ଟଭାବେ ମନ୍ତ୍ରିତ ।

ଦୁର୍ମ୍ମନ୍ତ୍ରିନ୍—ପୁଂ. ବି. କୁମନ୍ତ୍ରୀ ।

ଦୁର୍ମ୍ମନ୍ତ୍ରୀ—ପୁଂ. ବି. (ଦୁର୍+ମନ୍ତ୍ରିନ୍) କୁପରାମର୍ଶ ଦାତା, (ବିଂ) ଯେଉଁ ରାଜାଙ୍କର କୁମନ୍ତ୍ରୀ ଅଛନ୍ତି, (ବିପ) ସୁମନ୍ତ୍ରୀ ।

ଦୁର୍ମ୍ମର—ପୁଂ. ବିଂ. (ଦୁର୍+ମୃ+କ.ଅ) ଯେ ସହଜରେ ମରେ ନାହିଁ, ( ସ୍ତ୍ରୀ ) ଦୁର୍ମ୍ମରା ।

ଦୁର୍ମ୍ମରଣ—ବିଂ. (ଦୁର୍+ମୃ+ଅନ) ଦୁର୍ମ୍ମର ଦେଖ ।

ଦୁର୍ମ୍ମରତ୍ୱ—କ୍ଳୀ. ବି. ( ଦୁର୍ମ୍ମର+ତ୍ୱ ) ଦୁର୍ମ୍ମରତା, ଦୁର୍ମ୍ମୃତ୍ୟୁର ଭାବ ।

ଦୁର୍ମ୍ମରା—ସ୍ତ୍ରୀ. ବିଂ, ( ଦୁର୍ମ୍ମର+ଆ ) ଦୁର୍ମ୍ମରର ସ୍ତ୍ରୀଲିଙ୍ଗ, (ବି) ଦୂବ ।

ଦୁର୍ମ୍ମର୍ଷ—ବିଂ. (ଦୁର୍+ମୃଷ୍+ର୍ମ.ଅ) ଦୁଃଖଦ୍ୱାରା ମର୍ଷଣୀୟ,ଯାହା ଅତିକଷ୍ଟେ ସହ୍ୟ କରାଯାଏ ।

ଦୁର୍ମ୍ମର୍ଷଣ—ପୁଂ. ବି. (ଦୁର୍+ମୃଷ୍+ଅନ) ଅତିକଷ୍ଟେ ସହନୀୟ, ବିଷ୍ଣୁ, ଧୃତରାଷ୍ଟ୍ରଙ୍କର ପୁତ୍ରବିଶେଷ ।

ଦୁର୍ମ୍ମର୍ଷିତ—ତ୍ରି. ବିଂ. (ଦୁର୍+ମୃଷ୍+ତ) ବୈରିତା ସାଧନେରେ ଉତ୍ତେଜିତ

ଦୁର୍ମ୍ମଲ୍ଲିକା—ସ୍ତ୍ରୀ. ବି. ଦୃଶ୍ୟକାବ୍ୟ ରୂପ ଉପରୂପକବିଶେଷ ।

ଦୁର୍ମ୍ମଲ୍ଲୀ—ଦୁର୍ମ୍ମଲ୍ଲିକା ଦେଖ ।

ଦୁର୍ମ୍ମାତ୍ସର୍ଯ୍ୟ—କ୍ଳୀ. ବି. ଦୁଷ୍ଟମାତ୍ସର୍ଯ୍ୟ ।

ଦୁର୍ମ୍ମାୟୁ—ତ୍ରି.ବିଂ. ଦୁଷ୍ଟାୟୁଧ କ୍ଷେପକ, ଦୁଷ୍ଟାସ୍ତ୍ର ନିକ୍ଷେପକାରକ ।

ଦୁର୍ମ୍ମିତ୍ର—କ୍ଳୀ.ବି. (ଦୁର୍+ମିତ୍ର) କ.ଧା; ଦୁଷ୍ଟମିତ୍ର, ଦୁଷ୍ଟସଙ୍ଗୀ, (ବିଂ.ବ.ବ୍ରୀ) ଯାହାର ଦୁଷ୍ଟମିତ୍ର ଅଛନ୍ତି ।

ଦୁର୍ମ୍ମିତ୍ରିୟ—ତ୍ରି. ବିଂ. ଅମିତ୍ରଭାବେ ଅବସ୍ଥିତ ।

ଦୁର୍ମ୍ମିଳ—ଗ୍ରା. ବିଂ. (ପ୍ରାଚୀନ) ଦୁର୍ଲ୍ଲଭ ।

ଦୁର୍ମ୍ମିଳକା—ସ୍ତ୍ରୀ. ବି. ମାତ୍ରାବୃତ୍ତବିଶେଷ ।

ଦୁର୍ମ୍ମୁଖ—ତ୍ରି.ବିଂ. (ଦୁର୍+ମୁଖ)ବ.ବ୍ରୀ; କଟୁଭାଷୀ, କର୍କଶଭାଷୀ, ଯାହାର ମୁଖ ଦେଖିବାକୁ କୁତ୍ସିତ,ଅପ୍ରିୟବାଦୀ, (ପୁଂ. ବି) ଅଶିକ୍ଷିତ ଅଶ୍ୱ, ବାନରବିଶେଷ, ନାଗବିଶେଷ, ଦୈତ୍ୟବିଶେଷ, ରାମଚନ୍ଦ୍ରଙ୍କର ଗୁପ୍ତଚରବିଶେଷ,ମହିଷାସୁର ସେନାପତିବିଶେଷ, ନୃପବିଶେଷ, ଶିବ, ଧୃତରାଷ୍ଟ୍ରଙ୍କ ପୁତ୍ରବିଶେଷ, ଉତ୍ତରଦ୍ୱାର ଗୃହ, ବର୍ଷବିଶେଷ, ଯକ୍ଷବିଶେଷ, ରାଧିକାଙ୍କ ଦେବର ଓ ଭଗିନୀ ଅନଙ୍ଗମଞ୍ଜରୀଙ୍କ ସ୍ୱାମୀ ।

ଦୁର୍ମ୍ମୁ(ଷ)ହୂର୍ତ୍ତ—ପୁଂ. କ୍ଳୀ. ବି. ଅପ୍ରଶସ୍ତ ମୁହୂର୍ତ୍ତ, ନିନ୍ଦିତମୁହୂର୍ତ୍ତ, (ଗ୍ରା) ମୁଦ୍ଗର, ପିଟଣା ।

ଦୁର୍ମ୍ମୂଲ୍ୟ—ତ୍ରି. ବିଂ. (ବ.ବ୍ରୀ) ମହାର୍ଘ, ମହାମୂଲ୍ୟ, ଅକ୍ରେୟ, (ବି-କ.ଧା) ଅଧିକ ମୂଲ୍ୟ, ଚଢ଼ାଦାମ୍, (ବି) ଦୁର୍ମ୍ମୂଲ୍ୟତା ।

ଦୁର୍ମ୍ମେଧସ୍ତ୍ୱ—କ୍ଳୀ. ବି. ଦୁର୍ମ୍ମେଧାର ଭାବ, ଦୁଷ୍ଟବୁଦ୍ଧିର କାର୍ଯ୍ୟ ।

ଦୁର୍ମ୍ମେଧାଃ—ପୁଂ.ସ୍ତ୍ରୀ.ବିଂ.(ଦୁର୍+ମେଧସ୍) ବ.ବ୍ରୀ; ବୁଦ୍ଧିହୀନ, ମେଧାହୀନ, ମାନ୍ଦାବୁଦ୍ଧିଆ,ନିର୍ବୋଧ, (ବିପ—ସୁମେଧାଃ ) ।

ଦୁର୍ମ୍ମେଧାବିନ୍—ପୁଂ.ବିଂ.ଦୁଷ୍ଟମେଧାଯୁକ୍ତ ।

ଦୁର୍ମ୍ମୈତ୍ର—ତ୍ରି.ବିଂ. ଦୁଷ୍ଟମିତ୍ର,ଦୁଷ୍ଟବନ୍ଧୁ ।

ଦୁର୍ମ୍ମୋଚ୍ୟ—ତ୍ରି. ବିଂ. (ଦୁର୍+ମୋଚ୍ୟ) ଅତିକଷ୍ଟେ ମୋଚନସାଧ୍ୟ,ଦୁରପନେୟ ।

ଦୁର୍ମ୍ମୋହ—ପୁଂ.ବି. (ଦୁର୍+ମୁହ+ଣ.ଅ) କାକତୁଣ୍ଡୀ, (ସ୍ତ୍ରୀ) କାକାଦନୀ ।

ଦୁର୍ଯ୍ୟ—ପୁଂ. ବି. ଗୃହ,ଦ୍ୱାରଭିତ୍ତ ଯୂପ ।

ଦୁର୍ଯ୍ୟଶ—କ୍ଳୀ. ବି. ଅକୀର୍ତ୍ତି, (ବିଂ) ଦୁଷ୍ଟଯଶଯୁକ୍ତ, ମନ୍ଦଯଶସ୍କ ।

ଦୁର୍ଯ୍ୟୋଗ—ପୁଂ. ବି. (ଦୁର୍+ଯୋଗ) କ.ଧା;ଦୁର୍ଭାଗ୍ୟ, ଦୁଃଖର ଯୋଗ,ଦୁଃଖଜନକ ଘଟନାବଳୀର ସମାବେଶ, ଅମଙ୍ଗଳସୂଚକ ଘଟନା, ଦୁଃଖର ସମୟ, ଦୁର୍ଦ୍ଦିନ, ଦୁଷ୍ଟକୌଶଳ,ମେଘାଚ୍ଛନ୍ନଦିନ ।

ଦୁର୍ଯ୍ୟୋଣ—କ୍ଳୀ. ବି. ସଂଗ୍ରାମ, ଯୁଦ୍ଧ ।

ଦୁର୍ଯ୍ୟୋଧ—ପୁଂ. ବିଂ. (ଦୁର୍+ଯୁଧ୍+ର୍ମ.ଅ) ଅତିକଷ୍ଟେ ଯୋଧନୀୟ,ଅଯୋଧ୍ୟ ।

ଦୁର୍ଯ୍ୟୋ(ର୍ଯ୍ୟୋ)ଧନ—ତ୍ରି. ବିଂ. (ଦୁର୍+ଯୁଧ୍+ର୍ମ.ଅନ) ଅତିଦୁଃଖେ ଯୋଧନୀୟ, ଦୁର୍ଯ୍ୟୋଧ, ଯାହାକୁ ସହଜେ ଜୟ କରାଯାଇ ନ ପାରେ, (ଦୁର୍+ଯୁଧ୍+କ.ଅନ) ଯେ ଯୁଦ୍ଧରେ ପଳାୟନ କରେ,(ବି)ଧୃତରାଷ୍ଟ୍ରଙ୍କର(ଜ୍ୟେଷ୍ଠ)ପୁତ୍ର ।

ଦୁର୍ଯ୍ୟୋନି—ବିଂ. (ଦୁର୍+ଯୋନି)ବ.ବ୍ରୀ; ନୀଚଗର୍ଭଜାତ, (ବି) ନୀଚଜାତି ।

ଦୁର୍ଲଂଘ—ବିଂ. (ଦୁର୍+ଲଂଘ୍+ର୍ମ.ଅ) ଯାହାକୁ ସହଜେ ଲଙ୍ଘନ କରାଯାଇ ନ ପାରେ, ଅଲଙ୍ଘ୍ୟ, ଯେଉଁ ଆଦେଶ ବା ନିୟମକୁ ସହଜେ ଲଙ୍ଘନ କରାଯାଇ ନ ପାରେ ।

ଦୁର୍ଲକ୍ଷଣ—କ୍ଳୀ. ବି. ( ଦୁର୍+ଲକ୍ଷଣ ) କ.ଧା; ଅଶୁଭସୂଚକ ଚିହ୍ନ, (ପୁଂ. ବିଂ. ବ.ବ୍ରୀ) ମନ୍ଦଲକ୍ଷଣଯୁକ୍ତ,ଅଲକ୍ଷଣା,(ସ୍ତ୍ରୀ) ଦୁର୍ଲକ୍ଷଣା, ( ବିପ—ସୁଲକ୍ଷଣ ) ।

ଦୁର୍ଲକ୍ଷ୍ୟ—ତ୍ରି.ବିଂ.(ଦୁର୍+ଲକ୍ଷ୍+ର୍ମ.ଯ) ବ.ବ୍ରୀ; ଅତିକଷ୍ଟେ ଦର୍ଶନୀୟ, ଅଦୃଶ୍ୟ, ଯାହା ଅତିକଷ୍ଟରେ ଦେଖାଯାଏ, (ବି-କ.ଧା) ଅନିର୍ଦ୍ଦିଷ୍ଟ ଲକ୍ଷ୍ୟ ।

ଦୁର୍ଲଙ୍ଘନ—ତ୍ରି. ବିଂ. (ଦୁର୍+ଲଙ୍ଘ୍

+ଅନ) ଅଲଙ୍ଘ୍ୟ, ଯାହା ସହଜରେ ଲଙ୍ଘିହୁଏ ନାହିଁ ।

ଦୁର୍ଲଙ୍ଘ୍ୟ—ତ୍ରି. ବି°. (ଦୁର୍+ଲଙ୍ଘ+ ର୍ମି.ଯ) ଦୁରତିକ୍ରମ୍ୟ, ଅଲଙ୍ଘ୍ୟ, (ସ୍ତ୍ରୀ) ଦୁର୍ଲଙ୍ଘ୍ୟା ।

ଦୁର୍ଲଳିକା—ସ୍ତ୍ରୀ. ବି. (ଦୁର୍ଲଳିକ+ଆ) ନିନ୍ଦିତା ଲତା, ଛନ୍ଦୋବିଶେଷ ।

ଦୁର୍ଲଭ—ତ୍ରି. ବି°. (ଦୁର୍+ଲଭ୍+ ର୍ମି.ଅ) ଦୁଷ୍ପ୍ରାପ୍ୟ, ବହୁମୂଲ୍ୟ, ବିରଳ, ଅସାଧାରଣ, ଦୁର୍ମୂଲ୍ୟ, ଅତି ପ୍ରଶସ୍ତ, ପ୍ରିୟ, (ପୁଂ.ବି) ବିଷ୍ଣୁ, (ସ୍ତ୍ରୀ) ଦୁର୍ଲଭା, ଶ୍ୱେତକଣ୍ଟକାରୀ, (ବିପ—ସୁଲଭ), (ଗ୍ରା.ବି°) ଶ୍ରେଷ୍ଠ, (ବି) ଅସାଧାରଣ ବିଷୟ ।

ଦୁର୍ଲଭା—ଟି. ଦୁରାଲଭା, ଶ୍ୱେତ କଣ୍ଟକାରୀ,(ପର୍ଯ୍ୟାୟ—ଦୁର୍ଲଭା,ଗିରିକର୍ଣ୍ଣିକା, ଯବାସ, ଦୁରାଲଭା) (ଗ୍ରା.ବି) ଦୁଲଭା ଦେଖ । [ ଦେଖ ।

ଦୁର୍ଲଭତୁଳସୀ—ଗ୍ରା.(ଗଞ୍ଜାମ)ବି. ଦୁଲଭା

ଦୁର୍ଲଭରାଜ—ସାମୁଦ୍ରତିଳକ ନାମକ ସଂସ୍କୃତ ଗ୍ରନ୍ଥ ରଚୟିତା ।

ଦୁର୍ଲଭସ୍ୱାମୀ—ପୁଂ. ବି. କାଶ୍ମୀରର ଶ୍ରୀନଗର ପ୍ରତିଷ୍ଠିତ ଦେବମୂର୍ତ୍ତିବିଶେଷ ।

ଦୁର୍ଲଭ୍ୟ—ବି°. (ଦୁର୍+ଲଭ୍+ର୍ମି.ଯ) ଦୁର୍ଲଭ ଦେଖ, (ସ୍ତ୍ରୀ) ଦୁର୍ଲଭ୍ୟା ।

ଦୁର୍ଲଲ—ବି°. (ଦୁର୍+ଲଲ୍+ର୍ମି:ଅ) ଅତ୍ୟନ୍ତ ପ୍ରଶ୍ରୟପ୍ରାପ୍ତ, ଗେହ୍ଲା, ଦୁଲଣା, (ବି) ଦୁଶ୍ଚେଷ୍ଟିତ, (ସ୍ତ୍ରୀ) ଦୁର୍ଲଲା ।

ଦୁର୍ଲଳିତ—ତ୍ରି. ବି°. (ଦୁର୍+ଲଲ୍+ ର୍ମି.ତ) ଦୁର୍ଲଲ ଦେଖ. (କ୍ଲୀ. ବି) (ଦୁର୍+ଲଲ+ଭା.ତ) ଦୁଶ୍ଚେଷ୍ଟା, ଦୁଶ୍ଚେଷ୍ଟିତ, (ଦୁର୍+ଲଲ+କ.ତ) ତଥାବିଧ ଇଚ୍ଛାଯୁକ୍ତ, ଦୁଶ୍ଚେଷ୍ଟାନ୍ୱିତ ।

ଦୁର୍ଲସିତ—କ୍ଲୀ. ବି. (ଦୁର୍+ଲସ୍+ତ) ଦୁଶ୍ଚେଷ୍ଟା ।

ଦୁର୍ଲାଭ—ପୁଂ. ବି. (ଦୁର୍+ଲଭ୍+ଅ) ଦୁଃଖ ଦ୍ୱାରା ଲାଭ, କଷ୍ଟେ ପାଇବା ।

ଦୁର୍ଲାଳନ—ବି.(ଦୁର୍+ଲାଳନ;କ.ଧା) ପିଲାମାନଙ୍କୁ ଅତ୍ୟଧିକ ଗେଲ୍‌ବସର କରି ବଢ଼ାଇବା ।

ଦୁର୍ଲେଖ୍ୟ—କ୍ଲୀ. ବି. (ଦୁର୍+ଲେଖ୍ୟ) କ.ଧା; ଗର୍ହିତଲେଖା, ମନ୍ଦହସ୍ତାକ୍ଷର, ଜାଲ୍‌ଦଲିଲ, ଦୁର୍ବୋଧ୍ୟ ଲେଖା, (ବି°. ବି.ଗ୍ରା) ଦୁରକ୍ଷର, ଯାହା ସ୍ପଷ୍ଟ ପଢ଼ିହୁଏ ନାହିଁ ।

ଦୁର୍ବଚ—ତ୍ରି. ବି°. (ଦୁର୍+ବଚ୍+ଅ) ଅତି ଦୁଃଖେ କଥନୀୟ ।

ଦୁର୍ବରାହ—ପୁଂ. ସ୍ତ୍ରୀ. ଗର୍ହିତ ବରାହ, ନିନ୍ଦିତ ବରାହ, ଗ୍ରାମ୍ୟ ଶୂକର, (ସ୍ତ୍ରୀ) ଦୁର୍ବରାହୀ ।

ଦୁର୍ବର୍ଣ୍ଣ—କ୍ଲୀ. ବି. ରଜତ, ରୌପ୍ୟ, ଏଳବାଳୁକ, (ବି°) ନିନ୍ଦ୍ୟବର୍ଣ୍ଣଯୁକ୍ତ, ଶ୍ୱେତକୁଷ୍ଠୀ, ଦୁଷ୍ଟ ଅକ୍ଷର ।

ଦୁର୍ବର୍ତ୍ତୁ—ତ୍ରି.ବି°.(ଦୁର୍+ବୃ+ର୍ମି.ତୁନ୍) ଦୁର୍ବାର ।

ଦୁର୍ବସ—ତ୍ରି.ବି°(ଦୁର୍+ବସ୍+ଅ)କଷ୍ଟେ ବାସଯୋଗ୍ୟ ।

ଦୁର୍ବସତି—ସ୍ତ୍ରୀ. ବି. ଦୁଃଖେ ଅବସ୍ଥିତି, କଷ୍ଟେ ଅବସ୍ଥାନ ।

ଦୁର୍ବହକ— ସୁଭାଷିତାବଳୀଧୃତ ଜଣେ ପ୍ରାଚୀନ ସଂସ୍କୃତ କବି ।

ଦୁର୍ବାଚ୍—ସ୍ତ୍ରୀ. ବି. ନିନ୍ଦିତବାକ୍ୟ, (ବି°) ନିନ୍ଦ୍ୟବଚନାନ୍ୱିତ, ନିନ୍ଦନୀୟବଚନଯୁକ୍ତ

ଦୁର୍ବାନ୍ତ—କ୍ଲୀ. ବି. ବିଧାନାତିକ୍ରମ ଦ୍ୱାରା ବମନ, (ବି°) ଦୁଷ୍ଟବମନଯୁକ୍ତ ।

ଦୁର୍ବାଲ—ତ୍ରି. ବି°. କମ୍ବୋଜଦେଶୀୟ ଯୋଧବିଶେଷ ।

ଦୁର୍ବାରିତ—ତ୍ରି.ବି°.ମନ୍ଦଭାବେ ନିବାରିତ ବା ଶାସିତ । [ ଖବର ।

ଦୁର୍ବାର୍ତ୍ତା—ସ୍ତ୍ରୀ. ବି. ଦୁଷ୍ଟବାର୍ତ୍ତା, ମନ୍ଦ-

ଦୁର୍ବାର୍ଯ୍ୟ—ତ୍ରି. ବି°. (ଦୁର୍+ବାର+ ଯ) ଅତି କଷ୍ଟେ ବାରଣୀୟ ।

ଦୁର୍ହଣ—ତ୍ରି. ବି°. (ଦୁର୍+ହନ୍+ ର୍ମି.ଅ) ହନନ କରିବାକୁ ଅଶକ୍ୟ, ଦୁଃଖେ ହନନୀୟ ।

ଦୁର୍ହଣାୟୁ—ତ୍ରି. ବି°. ଦୁଷ୍ଟହନନେଚ୍ଛୁ ।

ଦୁର୍ହଣୁ—ତ୍ରି.ବି°.(ଦୁର୍+ହନ୍+ଉନ୍) ଦୁଃଖେ ହନନୀୟ, ଦୁଷ୍ଟହନୁଯୁକ୍ତ ।

ଦୁର୍ହଲ(କ)—ତ୍ରି. ବି°. ମନ୍ଦହଳଯୁକ୍ତ ।

ଦୁର୍ହାର୍ଦ୍ଦ—ତ୍ରି. ବି°. ଦୁରାଚେତ ।

ଦୁର୍ହିତ—ତ୍ରି. ବି°. ଶତ୍ରୁ, ଅମିତ୍ର ।

ଦୁର୍ହୁତ—କ୍ଲୀ.ବି. ନିନ୍ଦିତ ହୋମ, ଅଫଳ ଜନକ ହୋମକାର୍ଯ୍ୟ ।

ଦୁର୍ହୃଣାୟୁ—ତ୍ରି. ବି°. ଦୁଷ୍ଟ କ୍ରୋଧନ, ଦୁଷ୍ଟଭାବେ ଲଜ୍ଜମାନ ।

ଦୁର୍ହୃଦ(ତ୍)—ତ୍ରି.ବି°.(ବି.ଗ୍ରା)ଦୁଷ୍ଟଚିତ୍ତ, ଦୁରାଶୟ,(ବି)ଶତ୍ରୁ,(ବିପ—ସୁହୃଦ୍) ।

ଦୁର୍ହୃଦୟ—ପୁଂ.ବି°.ଦୁଷ୍ଟଚିତ୍ତ, ଦୁଷ୍ଟାନ୍ତଃକରଣ, ଶତ୍ରୁଭାବାପନ୍ନ, (ସ୍ତ୍ରୀ)ଦୁର୍ହୃଦୟା

ଦୁର୍ହୃଷୀକ—ତ୍ରି. ବି°. ଦୁର୍ବଳେନ୍ଦ୍ରିୟ ।

ଦୁଲ୍—(ଧାତୁ) ଝୁଲିବା, ଉତ୍କ୍ଷେପକରିବା

ଦୁଲ୍—ଗ୍ରା.ଅବ୍ୟ. ଦୁମ୍‌ଦୁମ୍ ଦେଖ,(ଗ୍ରା. ବି—ବଣିଆରିଦ) ତଳକାନର ଅଳଙ୍କାରବିଶେଷ ।

ଦୁଲ୍(ଲୁ)କା(କେ)ଇବା—ଗ୍ରା.କ୍ରି. ଦୁଲ୍‌କିବାର ଣିଜନ୍ତ ରୂପ ।

ଦୁଲ୍(ଲ୍)କି—ଗ୍ରା.ବି.ଘୋଡ଼ାର ଧପୁଡ଼ିବା ଚାଲି, ଘୋଡ଼ାର ବେଗଗମନ ।

ଦୁଲ୍(ଲ୍)କିବା—ଗ୍ରା. କ୍ରି. ବହୁ ଲୋକର ପଦାଘାତ ବା ବାଦ୍ୟ ଦ୍ୱାରା ଦୁଲ୍‌ଦୁଲ୍ କମ୍ପିବା, (ମେଘ) ଦୁମୁକାଣି ବର୍ଷା ବର୍ଷିବା, (ଗୁଡ଼) ଭୟରେ ଥରିବା ।

ଦୁଲ୍ଠ—ଗ୍ରା.(ସମ୍ବ)ବି.ଅଳନ୍ଦ, ବରଣ୍ଡା, ପିଣ୍ଡା । [ ଦେଖ ।

ଦୁଲ୍‌ଦା(ଦେ)ଲ୍—ଗ୍ରା. ଅବ୍ୟ. ଦୁମ୍‌ଦୁମ୍

ଦୁଲ୍‌ଦୁଲ୍—ଯା.ବି. ମୋହମ୍ମଦଙ୍କ ପ୍ରିୟ ଘୋଟକର ନାମ ।

ଦୁଲଣା—ଗ୍ରା. ପୁଂ.ବି°. (ସଂ-ଦୁର୍ଲଳିତ) ଗେହ୍ଲା, (ଗ୍ରା.ପୁଂ.ସ୍ତ୍ରୀ.ବି.—ସଂ-ଦୁର୍ଲଲ) ପୁତ୍ର ବା କନ୍ୟା,ଗେହ୍ଲା ପୁଅ ବା ଝିଅ ।

ଦୁଲଭ—ଗ୍ରା. ବି°. ଦୁର୍ଲଭ ଦେଖ ।

ଦୁଲଭା—ଗ୍ରା. ସ. (ସଂ-ଦୁରାଲଭା, କନ୍ତୁ ଦୁରାଲଭା ଓ ଦୁର୍ଲଭା ଭିନ୍ନ ୨ ଗଛ) ତୁଳସୀ ଜାତୀୟ ତୀବ୍ର ସୁଗନ୍ଧଯୁକ୍ତ ଗୁଳ୍ମ ବିଶେଷ,(ସ୍ତ୍ରୀଲୋକଙ୍କ ନାମ),(ସଂ-ନାମ-ବର୍ବରୀ, କଠିଞ୍ଜର, କୁଠେରକ, କାଳମାଳ, କବାଳ, ମାଳୁକ, କୃଷ୍ଣମଲ୍ଲିକା,

ସୁମୁଖ, ସୁଗନ୍ଧ, ନବ୍ରାଙ୍କୁ, ଶ୍ୱେ ଫନାଶୀ, ଅଳକ, ଅଳଗନ୍ଧିକା, ଗମ୍ଭୀର ।

ଢୁଲଢ଼—ବଂ.ଢୁଲଭ, ଢୁଲୁଅଚ୍ଛୁ, (ପ୍ରା. କ. ପ୍ର.ବଙ୍ଗ) ।

ଢୁଲା—ପ୍ରା. (ବାଲେ)ବି. ଦୋଳା, (ଗ୍ରା. ସ୍ତ୍ରୀ. ବ) ଢୁଲାଇ ଦେଖ ।

ଢୁଲି—ପ୍ରା.(ପୁରୀ.ବାଣପୁର)ବି. କୋଠାର କଡ଼, (ପ୍ରା. ସମ୍ବ. ବଂ) ଢୁଲ୍ଲା ଦେଖ, ପ୍ରା. ଗଞ୍ଜାମ. ବ) ଆଚ୍ଛୁ କରିବା ପାଇଁ ଘରର କାଠ ଉପରେ ପକାଯିବା ଓଳି

ଢୁଲି—ସ୍ତ୍ରୀ.ବ.ଇଷ୍ଟକାବଶେଷ, ଦୋଳା, (ବଙ୍ଗ. ଗ୍ରା.କ୍ରି) ଆନ୍ଦୋଳିତ ହେବା, ଝୁଲିବା ।

ଦୁଲାଇ—ପାର୍ବତ୍ୟ ତ୍ରିପୁରା ରାଜ୍ୟରେ ପ୍ରବାହିତ ମନୁନଦୀର ଗୋଟିଏ ଉପନଦୀ ଏବଂ ତ୍ରିପୁରାଜିଲାର ଗୋଟିଏ ପରଗଣା ।

ଦୁଲ(ଲେ)ଇ—ଗ୍ରା. ବ. ପତଳା ଶେଯ, ଦୁଇ ପରସ୍ତ କନା ଭିତରେ ସାମାନ୍ୟ-ତୁଳା ଭରି ଶୀତବସ୍ତ୍ର ବିଶେଷ ।

ଦୁଲଇବା--(ପ୍ରା.ସିଂହଭୂମ୍) କ୍ରି. ଝୁଲାଇବା

ଦୁଲ(ଲେ)ଈ—ଗ୍ରା. ସ୍ତ୍ରୀ. ବ. ଗ୍ରାମଦେବତାଙ୍କ ନାମ, ସ୍ତ୍ରୀଲୋକମାନଙ୍କ ନାମ ।

ଦୁଲମ—(ପ୍ରା. ଗଞ୍ଜାମ) ବ. ଦୁଲି ଦେଖ ।

ଦୁଲରି,ଦୁଲାରୀ—(ବଙ୍ଗ.ପ୍ରା. କ)ସ୍ତ୍ରୀ. ବଂ. ଆଦରଣୀ, ସୋହାଗିନୀ, ପ୍ରିୟତମା ।

ଦୁଲାଲ—ଗ୍ରା. ପୁଂ. ବ. ( ସଂ-ଦୁର୍ଲଳିତ ) ପୁତ୍ର, ଗେହ୍ଲାପିଲା, ପାଳିତପୁତ୍ର, (ଗ୍ରା. ବଂ) ଗେହ୍ଲା,ସ୍ନେହପାଳିତ,(ବଙ୍ଗ-ଗ୍ରା) ପ୍ରେମ, ଅନୁରାଗ, ପ୍ରିୟ, ମନୋଜ୍ଞ ।

ଦୁଲାଲଚମ୍ପା—ଗ୍ରା. ଏକପ୍ରକାର ସୁନ୍ଦର ପୁଷ୍ପବୃକ୍ଷ ।

ଦୁଲାଳି—(ବଙ୍ଗ.ପ୍ରା. କ) ଆଦରଣୀ, ସୋହାଗୀ, ପ୍ରିୟତମା ।

ଦୁଲାଲିଆ—ଗ୍ର .ପୁଂ,ବଂ. ଦୁଲାଲ ଦେଖ ।

ଦୁଲଗୁ—ଗ୍ରା.ବ.ଦୁତାର ଶ୍ଳେଟ ଗାଲିଚ୍ଛ. ଆସନ ବିଶେଷ ।

ଦୁଲଦୁଦ—ପୁଂ.ବ.ଦଲ୍ଲାପରାଜଙ୍କ ପେତା ।

ଦୁଲୀ—ସ୍ତ୍ରୀ. ବ. ( ଦୁଲି+ଈ ) କମଠୀ, କଚ୍ଛପୀ ।

ଦୁଲ୍ଲଲ—କ୍ରି. ବଂ. (ଦୁ+କ୍ଲପ୍+ଲଲ+ଅ) ଗ୍ରେମଣ ।

ଦୁଲ୍ଲଲା—ଗ୍ରା. ସ୍ତ୍ରୀ.ବ. (ସଂ-ଦୁର୍ଲ୍ଲଲା) ଝିଅ ଗେହ୍ଲାଝିଅ ।

ଦୁଲ୍‌ହା—ପ୍ରା. ସମ୍ବ) ବ. ଲୁଳିତ,ଶ୍ଳଥ, ହୁଗୁଳା ।

ଦୁବସ୍ୟ—କ୍ରି. ବଂ. ପରଚର୍ଯ୍ୟାର୍ହ ।

ଦୁବସ୍ୟୁ—କ୍ରି.ବଂ. ପରଚରଣେଚ୍ଛାଯୁକ୍ତ ।

ଦୁବସ୍ୱାନ୍—କ୍ରି.ବଂ.ହବିର୍ଯୁକ୍ତ, ପରିଚରଣ ଯୁକ୍ତ ।

ଦୁବୋସ୍ୱା—ସ୍ତ୍ରୀ. ବ. ପୂଜା ।

ଦୁବୋସ୍ୟୁ—କ୍ରି. ବଂ. ପରିଚରଣେଚ୍ଛୁ ।

ଦୁଶମନ,ଦୁଶମ୍ନନ—ଗ୍ରା. ବ. ଶତ୍ରୁ,ବୈରୀ, ବିପକ୍ଷ ।

ଦୁଶଲ—ଗ୍ରା. ବଂ. ଦୁଷ୍ପ୍ରାପ୍ୟ ।

ଦୁଶା—ଗ୍ରା.ବ. ଦୁଃଶାସନର ଡାକନାମ ।

ଦୁଶାଲ--ଯା.ବ.(ଫା,ଦୋଶାଲ)ଦୋଶାଲ ଦେଖ ।

ଦୁଶାସନ—ଗ୍ରା. ବ.(ସଂ-ଦୁଃଶାସନ)ଦୁଃଶାସନ ଦେଖ ।

ଦୁଶିବା—ଗ୍ରା. କ୍ରି(ସଂ-ଦୃଶ୍)ଦେଖାଯିବା, ଦୃଷ୍ଟହେବା, ଦୃଷ୍ଟିଗୋଚର ହେବା,

ଦୁଶ୍ଚର—କ୍ରି. ବଂ.(ଦୁର୍+ଚର୍+ମି.ଅ) ଯେଉଁ ସ୍ଥାନରେ ଅତିକଷ୍ଟରେ ବିଚରଣ କରାଯାଏ, ଦୁର୍ଗମ, କୃଚ୍ଛ୍ରସାଧ୍ୟ, ଯାହା ଆଚରଣ କରିବା କଠିନ,ଦୁଷ୍କର, ଅତିକଷ୍ଟେ ଆଚରଣୀୟ, (ପୁଂ. ବ) (ଦୁର୍+ଚର୍+କ.ଅ)ଶାମୁକା, ଭଲ୍ଲୁ ।

ଦୁଶ୍ଚରତ୍ୱ--କ୍ଳୀ.ବ.ଦୁଶ୍ଚରର ଭାବ,ଦୁଶ୍ଚରତା ।

ଦୁଶ୍ଚରିତ—କ୍ଳୀ. ବ. ଦୁଷ୍କୃତ, ପାପ, ଦୁସ୍ୱଭାବ, ମନ୍ଦଚରିତ୍ର.(ବଂ) ଅତିକଷ୍ଟେ-କୃତ, ଦୁଃଖେ ଆଚରଣୀୟ, ଦୁଷ୍ଟପ୍ରକୃତି (ସ୍ତ୍ରୀ) ଦୁଶ୍ଚରିତା ।

ଦୁଶ୍ଚରିତନ୍—କ୍ରି. ବଂ. ଦୁରାଚାର ।

ଦୁଶ୍ଚରିତ୍ର—କ୍ଳୀ. ବ. ( ଦୁଃ+ଚରିତ୍ର ) କ.ଧା; କୁସ୍ୱଭାବ, ମନ୍ଦଆଚରଣ, ମନ୍ଦ-ବ୍ୟବହାର,କୁଚରିତ୍ର,ଅସଚ୍ଚରିତ୍ର,(ବଂ.) ବ.ଗ୍ରା) ନିନ୍ଦିତପ୍ରକୃତିବିଶିଷ୍ଟ,ମନ୍ଦବ୍ୟବହାରକାରୀ, (ସ୍ତ୍ରୀ) ଦୁଶ୍ଚରିତ୍ରା ।

ଦୁଶ୍ଚର୍ମା—ପୁଂ. ବଂ. (ଦୁର୍+ଚର୍ମନ୍) (ବ.ଗ୍ରା) ମନ୍ଦଚର୍ମବିଶିଷ୍ଟ, ଯେଉଁ ପୁରୁଷର ଲିଙ୍ଗାଗ୍ରର ମୁହଁ ଢାଙ୍କିବା ଚମଡ଼ା ଜନ୍ମକାଳରୁ ନଥାଏ, (ବ) ମନ୍ଦଚମଡ଼ା,(ପର୍ଯ୍ୟାୟ)ଦ୍ୱିନଗ୍ନକ, ଚଣ୍ଡ, ଶିପିବିଷ୍ଟ ।

ଦୁଶ୍ଚାରନ—କ୍ଳୀ. ବ. ଦୁଷ୍ଟଚରିତ୍ର, ପାପ, (ବଂ) ଦୁଷ୍ଟଚରିତ୍ରଯୁକ୍ତ ।

ଦୁଶ୍ଚିକିତ୍ସ—କ୍ରି. ବଂ. (ଦୁର୍+ଚିକିତ୍ସ+ଅ)ଅଚିକିତ୍ସ୍ୟ,ଯାହାର ଚିକିତ୍ସା ଦୁଃସାଧ୍ୟ ।

ଦୁଶ୍ଚିକିତ୍ସା—ସ୍ତ୍ରୀ .ବ. ( ଦୁର୍+ଚିକିତ୍ସା) କ.ଧା; ଆୟୁର୍ବେଦ ବିରୁଦ୍ଧରେ ଚିକିତ୍ସା, ନିନ୍ଦିତ ବା ମନ୍ଦ ଚିକିତ୍ସା ।

ଦୁଶ୍ଚିକିତ୍ସିତ—କ୍ରି. ବଂ.(ଦୁଶ୍ଚିକିତ୍ସ+ତ) ଅଚିକିତ୍ସନୀୟ ।

ଦୁଶ୍ଚିକିତ୍ସ୍ୟ—କ୍ରି. ବଂ. (ଦୁର୍+ଚିକିତ୍ସ+ମି.ଯ) ଦୁରାରୋଗ୍ୟ, ଦୁର୍ନିବାର, ଦୁରପନେୟ ।

ଦୁଶ୍ଚିକ୍ୟ—କ୍ଳୀ.ବ.ଲଗ୍ନଠାରୁ ତୃତୀୟରାଶି ।

ଦୁଶ୍ଚିନ୍ତ—କ୍ରି. ବଂ.(ଦୁର୍+ଚିନ୍ତ)ଦୁଶ୍ଚିନ୍ତା, ମନ୍ଦଭାବନା, ( ବ ) ଚିନ୍ତା, ଆଶଙ୍କା, କିଂକର୍ତ୍ତବ୍ୟବିମୂଢ଼ତା ।

ଦୁଶ୍ଚିନ୍ତା—ସ୍ତ୍ରୀ. ବ.(ଦୁର୍+ଚିନ୍ତା)କ.ଧା; ମନ୍ଦଚିନ୍ତା,ଅଶୁଭଭାବନା, ଅମଙ୍ଗଳଚିନ୍ତା ।

ଦୁଶ୍ଚିନ୍ତ୍ୟ—କ୍ରି. ବଂ.(ଦୁର୍+ଚିନ୍ତ୍+ମି. ଯ) ଅତିଦୁଃଖେ ଚିନ୍ତନୀୟ ।

ଦୁଶ୍ଚେଷ୍ଟା—ସ୍ତ୍ରୀ. ବ. ( ଦୁର୍+ଚେଷ୍ଟା ) କ.ଧ; କଦାଚରଣ, ମନ୍ଦଚେଷ୍ଟା, କୁକର୍ମେ ଚେଷ୍ଟା,ଅନିଷ୍ଟସାଧନେଚେଷ୍ଟା ।

ଦୁଶ୍ଚେଷ୍ଟିତ—କ୍ଳୀ. ବ. (ଦୁର୍+ଚେଷ୍ଟିତ) କ.ଧା;ଦୁଶ୍ଚେଷ୍ଟା ଦେଖ,(ବଂ) ଦୁଶ୍ଚରିତ ।

ଦୁଶ୍ଚ୍ୟବନ—ପୁଂ. ବ. (ଦୁର୍+ଚ୍ୟବନ) ବ ଗ୍ରା; ଇନ୍ଦ୍ର, ଦେବରାଜ, ବଂ. (ଦୁର୍+ଚ୍ୟୁ+କ.ଅନ ) ଯେ ସହଜରେ ବିଚଳିତ ହୁଏ ନାହିଁ ।

ଦୁଶ୍ଚ୍ୟବନ—କ୍ରି. ବଂ.(ଦୁର୍+ଚ୍ୟୁ+ଣିଚ୍+ମି.ଅ)ଅତିକଷ୍ଟେ ଚ୍ୟାବନୀୟ, ପୁଂ. ମହାଦେବ ।

ଦୁଶ୍ଛେଦ୍ୟ—କ୍ରି. ବଂ.(ଦୁର୍+ଛିଦ୍+ମି.

ଯ)ଯାହା ସହଜରେ ଛୁଆଁଯାଇ ନପାରେ, (ସ୍ତ୍ରୀ) ଦୁଶ୍ଛେଦା ।

ଦୁଶ୍ଶ୍ରବ—କ୍ଲୀ. ବ. ( ଦୁସ୍+ଶ୍ରୁ+ଅ ) କାବ୍ୟଦୋଷ ବିଶେଷ ।

ଦୁଷୀ—ପ୍ରା. (ସନ୍ଥ) ବି. ଜ୍ୟୋତଷୀ ।

ଦୁଷ୍କ(ଖ)—ବି. ଦୁଃଖ, ଦୁଃଖଶବ୍ଦର ଅପଭ୍ରଂଶ ।

ଦୁଷ୍କର—ବି.ବଂ. (ଦୁର୍+କୃ+ର୍ମ.ଅ) ଅତିକଷ୍ଟେକରଣୀୟ, ଅସାଧ୍ୟ, ଦୁଃସାଧ୍ୟ, ଦୁରନ୍ତ, କଠୋର, (କ୍ଲୀ.ବ) ଆକାଶ, ଦୁଃଖେ କରଣ, (ବିଧ—ସୁକର) ।

ଦୁଷ୍କରଚର୍ଯ୍ୟା—ସ୍ତ୍ରୀ. ବ. ଦୁଷ୍କରକାର୍ଯ୍ୟର ଅଧୀନ ।

ଦୁଷ୍କରଣ —ବି.ବଂ. ଯେଉଁ କାର୍ଯ୍ୟ ସହଜରେ କରାଯାଇ ପାରେ ନାହିଁ ।

ଦୁଷ୍କର୍ଣ୍ଣ—ପୁଂ.ବ.ଧୃତରାଷ୍ଟ୍ରଙ୍କର ଏକ ପୁତ୍ର ।

ଦୁଷ୍କର୍ମ—କ୍ଲୀ.ବ.(ଦୁର୍+କର୍ମନ୍)କ.ଧା; ଅକାର୍ଯ୍ୟ, ମନ୍ଦକାର୍ଯ୍ୟ, ଅପରାଧ; ପାପ, ଦୁର୍ଭାଗ୍ୟ, ଦୁରାଗ୍ରହ ।

ଦୁଷ୍କର୍ମା—ପୁଂ.ସ୍ତ୍ରୀ. ବଂ. (ଦୁର୍+କର୍ମନ୍) ବ.ବ୍ରୀ; କୁକର୍ମନିରତ,ହତଭାଗ୍ୟ,ପାପୀ ଦୁଷ୍କ୍ରିୟାନ୍ୱିତ ।

ଦୁଷ୍କଳେବର—ପୁଂ.କ୍ଲୀ. କୁତ୍ସିତ କଳେବର, ବ୍ୟାଧିମୟ ଦେହ ।

ଦୁଷ୍କାଳ—ପୁଂ.ବ. (ଦୁର୍+କାଳ) କ.ଧା; ଅକାଳ,ଦୁଃସମୟ,ଅସମୟ,ମହାଦେବ ।

ଦୁଷ୍କୀର୍ତ୍ତି—ବି. ବଂ. କୁକୀର୍ତ୍ତି, ମନ୍ଦକୀର୍ତ୍ତି, ଅକୀର୍ତ୍ତି ।

ଦୁଷ୍କୁଳ—କ୍ଲୀ. ବ.(ଦୁର୍+କୁଳ) କ.ଧା; ଅକୁଳ, ନୀଚବଂଶ, ଅସତ୍‌କୁଳ, (ବଂ) ନିନ୍ଦିତକୁଳଜାତ, (ସ୍ତ୍ରୀ) ଦୁଷ୍କୁଳା ।

ଦୁଷ୍କୁଳୀନ—ପୁଂ. ବଂ. (ଦୁଷ୍କୁଳ+ଈନ) ନୀଚବଂଶୋଦ୍ଭବ, ଅସତ୍‌କୁଳଜାତ, (ସ୍ତ୍ରୀ) ଦୁଷ୍କୁଳୀନା ।

ଦୁଷ୍କୃତ୍—ବି. ବଂ. ମନ୍ଦକାର୍ଯ୍ୟ ।

ଦୁଷ୍କୃତ—କ୍ଲୀ.ବ. (ଦୁର୍+କୃତ)କୁକାର୍ଯ୍ୟ, ପାପ, ଦୁର୍ଦ୍ଦୃଷ୍ଟ,ଦୁରାଗ୍ରହ, ଅସତ୍‌କାର୍ଯ୍ୟ, ବଂ (ଦୁର୍+କୃ+ର୍ମ.ତ) ଅସଦ୍‌ଭାବରେ ଅନୁଷ୍ଠିତ,ପାପିଷ୍ଠ,ପାପଜନକ, ପାପଯୁକ୍ତ, (ସ୍ତ୍ରୀ) ଦୁଷ୍କୃତା ।

ଦୁଷ୍କୃତକର୍ମା—ପୁଂ. ବଂ. ଦୁଷ୍କାର୍ଯ୍ୟ, ପାପୀ

ଦୁଷ୍କୃତାତ୍ମନ୍—ବି.ବଂ. ପାପାତ୍ମା,ଦୁରାତ୍ମା ।

ଦୁଷ୍କୃତି—ସ୍ତ୍ରୀ.ବଂ.(ଦୁର୍+କୃତି)ଦୁଷ୍କର୍ମ, ଦୁଷ୍କୃତ ଦେଖ, (ବଂ) ଦୁଷ୍କର୍ମକାରକ ।

ଦୁଷ୍କୃତୀ—ପୁଂ. ବଂ. ( ଦୁଷ୍କୃତ+ଇନ୍ ) ପାପାଗ୍ରସ୍ତ, କୁକର୍ମୀ, ପାପୀ, (ସ୍ତ୍ରୀ)ଦୁଷ୍କୃତିନୀ ।

ଦୁଷ୍କୃଷ୍ଟ—ବି. ବଂ. (ଦୁର୍+କୃଷ୍+ତ) ଦୁଃଖେ ବା କଷ୍ଟେ ଯାହା କର୍ଷିତ ହୋଇଅଛି ।

ଦୁଷ୍କ୍ରମ—ବ.(ଦୁର୍+କ୍ରମ)କ.ଧା; ମନ୍ଦକ୍ରମ, (ବଂ-ବ.ବ୍ରୀ) ଯହିଁରେ କ୍ରମଭଙ୍ଗ ଘଟିଅଛି ।

ଦୁଷ୍କ୍ରମତା—ବ. (ଦୁଷ୍କ୍ରମ+ତା) ଅର୍ଥଦୋଷବିଶେଷ ।

ଦୁଷ୍କ୍ରିୟ—ପୁଂ. ବଂ. ( ଦୁର୍+କ୍ରିୟା ) ବ.ବ୍ରୀ; ଯେ ମନ୍ଦକାର୍ଯ୍ୟ କରେ, (ସ୍ତ୍ରୀ) ଦୁଷ୍କ୍ରିୟା ।

ଦୁଷ୍କ୍ରିୟା—ସ୍ତ୍ରୀ. ବ. (ଦୁର୍+କ୍ରିୟା)କ.ଧା; ମନ୍ଦକାର୍ଯ୍ୟ, କୁକାର୍ଯ୍ୟ, ପାପ, (ବଂ) ଦୁଷ୍କ୍ରିୟର ସ୍ତ୍ରୀଲିଙ୍ଗ ।

ଦୁଷ୍କ୍ରିୟାଚରଣ—କ୍ଲୀ. ବ. ଦୁଷ୍କ୍ରିୟାର ଅନୁଷ୍ଠାନ, କୁକାର୍ଯ୍ୟକରଣ ।

ଦୁଷ୍କ୍ରିୟାନ୍ୱିତ—ବି.ବଂ.(୭ତତ୍)ଅସତ୍‌କାର୍ଯ୍ୟକାରକ, ଦୁଷ୍କୃତକାରୀ ।

ଦୁଷ୍କ୍ରିୟାରତ -ବି.ବଂ.(୭ତତ୍)କୁକାର୍ଯ୍ୟେ ଅଭିନିବିଷ୍ଟ ।

ଦୁଷ୍କ୍ରିୟାସକ୍ତ—ପୁଂ. ବଂ. ( ଦୁଷ୍କ୍ରିୟା+ଆସକ୍ତ) ୭ତତ୍; ଦୁଷ୍କର୍ମରେ ଅନୁରକ୍ତ; (ସ୍ତ୍ରୀ) ଦୁଷ୍କ୍ରିଆସକ୍ତା ।

ଦୁଷ୍କ୍ରୀତ—ବି.ବଂ. (ଦୁର୍+କ୍ରୀ+ର୍ମ.ତ) ମହାର୍ଘରେ କିଣାଯାଇଥିବା, ମହାର୍ଘ, ଦୁର୍ମୂଲ୍ୟ ।

ଦୁଷ୍କ୍ରେୟ—ବଂ. (ଦୁର୍+କ୍ରେୟ) ଯାହା ସହଜରେ କ୍ରୟ କରାଯାଇ ନ ପାରେ, ମହାର୍ଘ ।

ଦୁଷ୍ଖ—ଦୁଃଖ ଦେଖ ।

ଦୁଷ୍ଖଦିର—ବ.ଏକପ୍ରକାର ଧଳାଦିଆ ବା ଖଇର,ଧଳାକାଠ ଖଇର, (ପର୍ଯ୍ୟାୟସ୍ଥ ନାମ) କାମ୍ବୋଜୀ,କାଳସ୍କନ୍ଧ, ଗୋରଟ, ଅମରାଜ, ପଟତରୁ,ବହୁସାର,ମହାସାର, କ୍ଷୁଦ୍ରଖଦିର, ଖଦିର) ।

ଦୁଷ୍ଟ—ପୁଂ.ବଂ. (ଦୁଷ୍+କ.ତ)ଦୋଷଯୁକ୍ତ, ଦୋଷବିଶିଷ୍ଟ, ଅପବିତ୍ର, ଦୁର୍ଜନ, ଖଳ, ପିତ୍ତାଦିଦୋଷଯୁକ୍ତ,ଦୁର୍ବଳ,ଅକ୍ଷମ, ଅଧାର୍ମିକ, ଅଶାନ୍ତ, ଦୁର୍ବୃତ୍ତ, ଅଶୁଭ, ଦୁରନ୍ତ, (ବ) ମନ୍ଦ, ନୀଚ, ଅପରାଧୀ, ମନ୍ଦପ୍ରକୃତିକ,ଅନୁଚିତ, (ଗ୍ରା.ବ) ଦୁର୍ଜନ ବ୍ୟକ୍ତି,କୁଷ୍ଠରୋଗ, (ବ) ଦୁଷ୍ଟତା,ଦୁଷ୍ଟତ୍ୱ, (ସ୍ତ୍ରୀ) ଦୁଷ୍ଟା ।

ଦୁଷ୍ଟଗଜ—ପୁଂ.ବ. ଗମ୍ଭୀରବେଦୀ ହସ୍ତୀ ।

ଦୁଷ୍ଟଚାରୀ(ରିନ୍)—ପୁଂ.ବଂ. (ଦୁଷ୍ଟ+ଚର୍+କ.ଇନ୍) ଦୁଷ୍କର୍ମରେ ରତ, ପାପିଷ୍ଠ, ଖଳ, ଦୁର୍ଜ୍ଜନ, (ସ୍ତ୍ରୀ) ଦୁଷ୍ଟଚାରିଣୀ ।

ଦୁଷ୍ଟଚେତା(ତାଃ)—ବଂ.(ଦୁଷ୍ଟ+ଚେତସ୍) ବ.ବ୍ରୀ; ଦୁଷ୍ଟ ବା ମନ୍ଦଚିନ୍ତା କରିବା (ବ୍ୟକ୍ତି), ଅହିତାକାଙ୍କ୍ଷୀ, କପଟୀ ।

ଦୁଷ୍ଟତା—ସ୍ତ୍ରୀ. ବ. (ଦୁଷ୍ଟ+ତା) ଦୁର୍ଜ୍ଜନତା, ଦୋଷଯୁକ୍ତତା, ଅଧମତ୍ୱ ।

ଦୁଷ୍ଟତ୍ୱ—କ୍ଲୀ. ବ. ଦୁଷ୍ଟତା ।

ଦୁଷ୍ଟତନୁ—ବି. ବଂ. ଦୁଷ୍ଟଦେହଯୁକ୍ତ ।

ଦୁଷ୍ଟପଣ—ଗ୍ରା. ବ. ଦୁଷ୍ଟତା ।

ଦୁଷ୍ଟପ୍ରକୃତି—ବ. (ଦୁଷ୍ଟ+ପ୍ରକୃତି)କ.ଧା; ମନ୍ଦପ୍ରକୃତି, ନୀଚବୁଦ୍ଧି, (ବଂ-ବ.ବ୍ରୀ) କୁବୁଦ୍ଧିବିଶିଷ୍ଟ ।

ଦୁଷ୍ଟବୁଦ୍ଧି—ବ.ବଂ. ଦୁଷ୍ଟପ୍ରକୃତି ଦେଖ ।

ଦୁଷ୍ଟବୃଷ—ପୁଂ. ବଂ. ଯେଉଁ ବୃଷ ଭାରବହନ କରିବାକୁ ସମର୍ଥ ଥାଇ ଭାରବହନ କରେନ୍ତ ନାହିଁ,(ପର୍ଯ୍ୟାୟସ୍ଥ)ଗଳି ।

ଦୁଷ୍ଟବ୍ରଣ—ପୁଂ. କ୍ଲୀ. ବ. (ଦୁଷ୍ଟ+ବ୍ରଣ) କ.ଧା; ଯେଉଁ ସବୁ ବ୍ରଣ ଶୀଘ୍ର ଭଲ ହୁଏ ନାହିଁ ।

ଦୁଷ୍ଟମତି—ବ. ବଂ. ଦୁଷ୍ଟପ୍ରକୃତି ଦେଖ ।

ଦୁଷ୍ଟଯୋଗ—ପୁଂ. ବ. ବୈଧୃତିବ୍ୟତୀପାତାଦି ନିନ୍ଦିତ ଯୋଗ, ଅଷ୍ଟମସ୍ଥଚକ୍ର ଗୋଚର ବିଲଗ୍ନାଦି ସ୍ଥିତ ଗ୍ରହଯୋଗଭେଦ ।

ଦୁଷ୍କର—ବି. ବଂ. ଦୁସ୍ତର,ଅତିଦୁଃଖେ ତରଣୀୟ ।

ଦୁଷ୍କରକ୍ରିତୁକ୍—ବି.ବଂ. ପିତ୍ତାଦିଦୋଷଜ ରକ୍ତନେତ୍ରକ ।

ଦୁଷ୍କରୀତୁ—ପୁଂ.ବ.(ଦୁର୍+ତୃ+ତୁନ୍) ଅତିଦୁଃଖେ ତରଣୀୟ, ଅହଂସ୍ୟ ।

ଦୁଷ୍କୃସାକ୍ଷୀ—ପୁଂ. ବଂ. ଯେ ମିଥ୍ୟାସାକ୍ଷ୍ୟ ଦିଏ ବା ବ୍ୟାଧିଗ୍ରସ୍ତ ବା ମହାପାତକୀ କିମ୍ବା ଯାହାର କୌଣସି ପକ୍ଷ ସଙ୍ଗେ ଅର୍ଥସମ୍ବନ୍ଧ ମିତ୍ରତା ବା ଶତ୍ରୁତା ଅଛି ।

ଦୁଷ୍କୃସୀମା—ଗ୍ରା. ବଂ. ଅତିଦୁଷ୍ଟ ।

ଦୁଷ୍ଟସ୍ୱଭାବ—ପୁଂ.ବ. ବଂ. ଦୁଷ୍ଟ ପ୍ରକୃତି ଲୋକ, (ସ୍ତ୍ରୀ) ଦୁଷ୍ଟସ୍ୱଭାବା ।

ଦୁଷ୍ଟା—ସ୍ତ୍ରୀ. ବଂ. ( ଦୁଷ୍ଟ+ଆ ) ନଷ୍ଟା, ବ୍ୟଭିଚାରିଣୀ, କୁଳଟା, ଭ୍ରଷ୍ଟା, ମନ୍ଦ-ସ୍ୱଭାବଯୁକ୍ତା ।

ଦୁଷ୍ଟାଙ୍ଗି—ଗ୍ରା. ବ. ଦୁଷ୍ଟାମି, ଦୁଷ୍ଟପଣ ।

ଦୁଷ୍ଟାଚାର—ବ. (ଦୁଷ୍ଟ+ଆଚାର)କ.ଧା; ମନ୍ଦ ଆଚରଣ, (ବଂ.ବ.ଗ୍ରୀ)ମନ୍ଦଆଚରଣବିଶିଷ୍ଟ, (ସ୍ତ୍ରୀ) ଦୁଷ୍ଟାଚାରା ।

ଦୁଷ୍ଟାଚାରୀ—ପୁଂ.ବଂ.ଦୁଷ୍ଟାଚାର ଦେଖ, (ସ୍ତ୍ରୀ) ଦୁଷ୍ଟାଚାରିଣୀ ।

ଦୁଷ୍ଟାତ୍ମା—ବଂ. (ଦୁଷ୍ଟ+ଆତ୍ମନ୍, ବ.ଗ୍ରୀ) ଦୁରାଶୟ, ଦୁଷ୍ଟପ୍ରକୃତିକ, (ବ) ଦୁଷ୍ଟାତ୍ମତା ।

ଦୁଷ୍ଟାନ୍ନ—ବ. ( ଦୁଷ୍ଟ + ଅନ୍ନ ) କ.ଧା, ବିଗିଡ଼ିଥିବା ଅନ୍ନ,ସଢ଼ା ବା ବାସୀ ଭାତ, ପର୍ଯ୍ୟୁଷିତାନ୍ନ, କୁତ୍ସିତ ଖାଦ୍ୟ, ପାପ ଦ୍ୱାରା ଅର୍ଜିତ ପ୍ରଦତ୍ତ ଅନ୍ନ,ନୀଚ ବ୍ୟକ୍ତିର ପ୍ରଦତ୍ତ ଅନ୍ନ ।

ଦୁଷ୍ଟାଭାର୍ଯ୍ୟା—ସ୍ତ୍ରୀ. ବ. (ଦୁଷ୍ଟା+ଭାର୍ଯ୍ୟା) କ.ଧା; ନଷ୍ଟା ସ୍ତ୍ରୀ, ଅଶୌଚାରିଣୀ ସ୍ତ୍ରୀ ।

ଦୁଷ୍ଟାମି—ଗ୍ରା.ବ. (ବଙ୍ଗଳାରୁ ଅନୁକୃତ) ଦୁଷ୍ଟପଣ, ଦୁଷ୍ଟତା, ବଜ୍ଜାତି ।

ଦୁଷ୍ଟାଶୟ—ବି. ବଂ. (ବ.ଗ୍ରୀ)ଦୁରଭିପ୍ରାୟ, ମନ୍ଦ ଅଭିସନ୍ଧି ସମ୍ପନ୍ନ, (ସ୍ତ୍ରୀ) ଦୁଷ୍ଟାଶୟା ।

ଦୁଷ୍ଟି—ସ୍ତ୍ରୀ.ବ. (ଦୁଷ୍+ଭା.ତି) ଦୋଷ, ବିକାର, (ଗ୍ରା) ଦୁଷ୍ଟି ଦେଖ ।

ଦୁଷ୍ଟୀ—ଗ୍ରା. (ବାଲେ) ସ୍ତ୍ରୀ. ବଂ. ଦୁଷ୍ଟର ସ୍ତ୍ରୀଲିଙ୍ଗ ।

ଦୁଷ୍ଠୁ—ଅବ୍ୟ.(ଦୁର୍+ସ୍ଥା+ଉ) ନିନ୍ଦା, (ବି. ବଂ) ଅବିନୀତ, (ଗ୍ରା. ବଂ) ଦୁଷ୍ଟ, ମନ୍ଦ ।

ଦୁଷ୍ଠୁତ—ବି. ବଂ. ନିନ୍ଦିତଭାବେ ସ୍ଥିତ ।

ଦୁଷ୍ଠୁ—ଅବ୍ୟ. ( ଦୁର୍+ସ୍ଥା+କ.ଉ ) ମନ୍ଦ, କୁତ୍ସିତ, ଦୁଃସ୍ଥିତ ।

ଦୁଷ୍ପଚ—ବି.ବଂ. (ଦୁର୍ + ପଚ୍ + ମି.ଅ) ଯାହା ସହଜରେ ବା ଶୀଘ୍ର ଜୀର୍ଣ୍ଣ ହୁଏ ନାହିଁ, ଦୁଷ୍ପାଚ୍ୟ ।

ଦୁଷ୍ପତନ—କ୍ଲୀ. ବ. (ଦୁର୍+ପତ+ଣ. ଅନ) ଅତି ଦୁଃଖେ ପତନ ।

ଦୁଷ୍ପତ୍ର—ପୁଂ.ବ.ଚୋରନାମକ ଗନ୍ଧଦ୍ରବ୍ୟ ।

ଦୁଷ୍ପଦ—ବି. ବଂ. (ଦୁର୍+ପଦ+ମି. ଅ) ଦୁଷ୍ପ୍ରାପ୍ୟ ।

ଦୁଷ୍ପରାଜୟ—ବି. ବଂ.(ଦୁର୍+ପରାଜୟ) ବ.ଗ୍ରୀ; ଯାହା ସହଜରେ ପରାଜୟ କରାଯାଇ ନ ପାରେ, ଅଜେୟ,ଦୁର୍ଜୟ. (ବ) ଧୃତରାଷ୍ଟ୍ରଙ୍କର ଏକପୁତ୍ର ।

ଦୁଷ୍ପରିଗ୍ରହ—ବି. ବଂ. (ଦୁର୍+ପରି+ଗ୍ରହ+ମି.ଅ)ଯାହା ପରିଗ୍ରହ କରାଯାଇ ପାରେ ନାହିଁ, ନିନ୍ଦ୍ୟଭାର୍ଯ୍ୟକ, (ବ) ନିନ୍ଦ୍ୟଭାର୍ଯ୍ୟା ।

ଦୁଷ୍ପରିହନ୍ତୁ—ବି. ବଂ. (ଦୁର୍+ପରି+ହନ୍+ତୃ) ଅତିଶୟ ଦୁଃଖେ ନାଶୟିତବ୍ୟ, ଦୁଷ୍ପରିହାର୍ଯ୍ୟ ।

ଦୁଷ୍ପରିହର—ବି. ବଂ. (ଦୁର୍+ପରି+ହୃ+ମି.ଅ) ଯାହାକୁ ସହଜରେ ତ୍ୟାଗ କରାଯାଇ ନ ପାରେ, ଦୁସ୍ତ୍ୟଜ, (ସ୍ତ୍ରୀ) ଦୁଷ୍ପରିହରା ।

ଦୁଷ୍ପରିହରଣୀୟ—ବଂ.(ଦୁର୍+ପରି+ହୃ+ମି.ଅନୀୟ) ଦୁଷ୍ପରିହର ଦେଖ ।

ଦୁଷ୍ପରିହାର୍ଯ୍ୟ—ବଂ. ଦୁଷ୍ପରିହର ଦେଖ ।

ଦୁଷ୍ପରୀକ୍ଷ—ବି.ବଂ. (ଦୁର୍+ପରି+ଈକ୍ଷ+ଯ) ଅତିଶୟ ଦୁଃଖେ ପରୀକ୍ଷଣୀୟ ।

ଦୁଷ୍ପର୍ଶ—ବି.ବଂ.(ଦୁର୍+ସ୍ପୃଶ୍+ମି.ଅ) ଯାହାକୁ ଛୁଇଁବା କଷ୍ଟକର, ଦୁଷ୍ପ୍ରାପ୍ୟ, (ସ୍ତ୍ରୀ) ଦୁଷ୍ପର୍ଶା ।

ଦୁଷ୍ପର୍ଶା—ସ୍ତ୍ରୀ. ବ. ଦୁରାଲଭା ଦେଖ ।

ଦୁଷ୍ପାଚ୍ୟ—ବି. ବଂ. (ଦୁର୍+ପଚ୍+ମି. ଯ) ଦୁଷ୍ପଚ ଦେଖ ।

ଦୁଷ୍ପାନ—ବି. ବଂ. ଯାହା ଅତି କଷ୍ଟେ ପାନ କରାଯାଏ ।

ଦୁଷ୍ପାର—ବି. ବଂ(ଦୁର୍+ପାର)ସହଜେ ଯାହାଁ ପାର ହୁଏ ନାହିଁ, ଦୁଃସାଧ୍ୟ ।

ଦୁଷ୍ପୁତ୍ର—ପୁଂ.ବ. (ଦୁର୍+ପୁତ୍ର)କ.ଧା; କୁପୁତ୍ର, ନିନ୍ଦିତପୁତ୍ର, ( ବଂ ) ଯାହାର ଦୁଷ୍ଟ ପୁତ୍ର ଅଛି ।

ଦୁଷ୍ପୁରୁଷ—ପୁଂ. ବ. ( ଦୁର୍+ପୁରୁଷ ) କ.ଧା; ନିନ୍ଦନୀୟ ପୁରୁଷ, ମନ୍ଦଲୋକ ।

ଦୁଷ୍ପୂର—ବି. ବଂ. (ଦୁର୍+ପୂର୍+ମି. ଅ) ଯାହା ସହଜେ ପୂର୍ଣ୍ଣ କରାଯାଇ ନ ପାରେ, ଅନିବାର୍ଯ୍ୟ, (ସ୍ତ୍ରୀ) ଦୁଷ୍ପୂରା ।

ଦୁଷ୍ପ୍ରକମ୍ପ୍ୟ—ବି.ବଂ. (ଦୁର୍+ପ୍ର+କମ୍ପ + ଯ)ସହଜେ ଯାହା କମ୍ପେ ନାହିଁ ।

ଦୁଷ୍ପ୍ରକାଶ—ବି. ବଂ. ଅନ୍ଧକାର ।

ଦୁଷ୍ପ୍ରକୃତି—ବି. ବଂ. (ଦୁର୍+ପ୍ରକୃତି) କ.ଧ ; ମନ୍ଦ ପ୍ରକୃତିବିଶିଷ୍ଟ, ଦୁଃଶୀଳ, (ସ୍ତ୍ରୀ.ବ) ମନ୍ଦପ୍ରକୃତି ।

ଦୁଷ୍ପ୍ରଜନ୍—ବି. ବଂ. ନିନ୍ଦ୍ୟପ୍ରଜାଯୁକ୍ତ ।

ଦୁଷ୍ପ୍ରଜ୍ଞ—ବି.ବଂ. ମନ୍ଦବୁଦ୍ଧି, ନିର୍ବୋଧ ।

ଦୁଷ୍ପ୍ରଜ୍ଞାନ—ବି. ବଂ. (ଦୁର୍+ପ୍ର+ଜ୍ଞା ମି.ଅନ) ଯାହା ଅତି କଷ୍ଟେ ଜଣାଯାଏ, (କ୍ଲୀ) ନିନ୍ଦନୀୟ ଜ୍ଞାନ ।

ଦୁଷ୍ପ୍ରତିଗ୍ରହ—ବି. ବଂ. ସହଜେ ଯାହା ଗ୍ରହଣ କରି ହୁଏ ନାହିଁ ।

ଦୁଷ୍ପ୍ରତୀକ୍ଷଣୀୟ—ବି.ବଂ. (ଦୁର୍+ପ୍ରତି +ବି+ଈକ୍ଷ+ଅନୀୟ ) ଯାହା କଷ୍ଟେ ଦେଖାଯାଏ ।

ଦୁଷ୍ପ୍ରତୀକ୍ଷ୍ୟ—ବି.ବଂ.(ଦୁର୍+ପ୍ରତି+ବି+ଈକ୍ଷ+ମି.ଯ ) ଯାହା କଷ୍ଟେ ନିରୀକ୍ଷଣ କରାଯାଏ ।

ଦୁଷ୍ପ୍ରଧର୍ଷ—ବି. ବଂ. (ଦୁର୍+ପ୍ର+ଧୃଷ୍ +ମି.ଅ ) ଯାହାକୁ ସହଜେ ଆକ୍ରମଣ କରାଯାଇ ନ ପାରେ, ଅଧର୍ଷଣୀୟ, ଦୁର୍ଦ୍ଧର୍ଷ. ଅଦମ୍ୟ, ଆଶାସନୀୟ (ପୁଂ) ଧୃତରାଷ୍ଟ୍ରଙ୍କର ଏକପୁତ୍ର,(ବ) ଦୁଷ୍ପ୍ରଧର୍ଷତା

(ସ୍ତ୍ରୀ) ଦୁଷ୍ପ୍ରଧର୍ଷା ।
ଦୁଷ୍ପ୍ରବାଦ—ପୁଂ.ବ.ଦୁଷ୍ଟପ୍ରବାଦ, ନିନ୍ଦିତ ପ୍ରବାଦ, (ବିଂ) ନିନ୍ଦିତ ପ୍ରବାଦଯୁକ୍ତ ।
ଦୁଷ୍ପ୍ରବୃତ୍ତି—ସ୍ତ୍ରୀ. ବ.ଦୁଷ୍ଟା ପ୍ରବୃତ୍ତି,ବାର୍ତ୍ତା
ଦୁଷ୍ପ୍ରବେଶ—ବି. ବିଂ. ( ଦୁର୍+ପ୍ର+ ବିଶ୍+ ମି.ଅ ) ଯେଉଁଠାରେ ପ୍ରବେଶ କରିବା କଷ୍ଟକର, (ସ୍ତ୍ରୀ) ଦୁଷ୍ପ୍ରବେଶା, କନ୍ଥାରିବୃକ୍ଷ ।
ଦୁଷ୍ପ୍ରମେୟ—ବି.ବିଂ.(ଦୁର୍+ପ୍ରମେୟ) ଅପରିମେୟ, ଯାହା ପରିମାଣ କରିବା କଷ୍ଟକର ।
ଦୁଷ୍ପ୍ରଲମ୍ଭ—ବି.ବିଂ. (ଦୁର୍ + ପ୍ରଲମ୍ଭ +ଅ ) ସହଜେ ଯାହା ଠିକଣା କରି ହୁଏ ନାହିଁ ବା ମିଳେ ନାହିଁ ।
ଦୁଷ୍ପ୍ରସହ—ବି.ବିଂ.(ଦୁର୍+ପ୍ର+ସହ +ମି.ଅ) ଦୁଃସହ, ଭୀଷଣ,(ପୁଂ)ଜଣେ ପ୍ରସିଦ୍ଧ ଜୈନାଗ୍ରଣୀ, (ସ୍ତ୍ରୀ)ଦୁଷ୍ପ୍ରସହା ।
ଦୁଷ୍ପ୍ରସାଦ—ବି. ବିଂ. ସହଜେ ଯାହା ପ୍ରସନ୍ନ କରାଯାଇ ନ ପାରେ ।
ଦୁଷ୍ପ୍ରସାଦନ—ବି. ବିଂ. ଦୁଷ୍ପ୍ରସାଦ ।
ଦୁଷ୍ପ୍ରସାଧ୍ୟ—ବି. ବିଂ. (ଦୁର୍+ପ୍ରସାଧ+ ଯ)ଯାହା ଅତିକଷ୍ଟେ ପ୍ରସାଧନ କରାଯାଏ
ଦୁଷ୍ପ୍ରସାହ—ବି. ବିଂ. ଦୁଃସହ ।
ଦୁଷ୍ପ୍ରହର୍ଷ—ବି.ବିଂ.ଦୁଷ୍କର ପ୍ରହର୍ଷ ଯୁକ୍ତ, (ପୁଂ) ଧୃତରାଷ୍ଟ୍ରଙ୍କ ପୁତ୍ରବିଶେଷ।
ଦୁଷ୍ପ୍ରାପ(ପ୍ୟ)—ବି. ବିଂ. (ଦୁର୍+ପ୍ର+ ଆପ୍+ମି.ଅ.ଯ)ଯାହା ସହଜେ ମିଳେ-ନାହିଁ, ଦୁର୍ଲଭ, କଷ୍ଟଲଭ୍ୟ, (ସ୍ତ୍ରୀ) ଦୁଷ୍ପ୍ରାପା, ଦୁଷ୍ପ୍ରାପ୍ୟା ।
ଦୁଷ୍ପ୍ରାପଣୀୟ—ବି.ବିଂ.(ଦୁର୍+ପ୍ର+ଆପ୍ +ମି.ଅନୀୟ) ଦୁଃଖେ ପ୍ରାପ୍ୟ,ଦୁଷ୍ପ୍ରାପ୍ୟ, ଦୁର୍ଲଭ ।
ଦୁଷ୍ପ୍ରାପନ—ବି.ବିଂ. ଦୁଷ୍ପ୍ରାପ୍ୟ, ସହଜେ ଯାହା ମିଳେ ନାହିଁ । [ ଅଭାବ ।
ଦୁଷ୍ପ୍ରାପ୍ତି—ସ୍ତ୍ରୀ.ବ. କଷ୍ଟେପ୍ରାପ୍ତି, ଦୁର୍ଲଭତା,
ଦୁଷ୍ପ୍ରାପ୍ୟ—ବି. ବିଂ. (ଦୁର+ପ୍ର+ଆପ୍ +ମି.ଯ) ଦୁର୍ଲଭ୍ୟ, ଯାହା ସହଜେ ମିଳେ ନାହିଁ ।
ଦୁଷ୍ପ୍ରାଗ୍ରୀ—ସ୍ତ୍ରୀ.ବ. ଦୁଷ୍ପ୍ରାପ୍ୟ,ଅଶୁଭକର ।

ଦୁଷ୍ପ୍ରୀତ—ସ୍ତ୍ରୀ.ବ. ଅପ୍ରୀତି, (ବିଂ) ଦୁଷ୍ଟ-ପ୍ରୀତିଯୁକ୍ତ ।
ଦୁଷ୍ପ୍ରେକ୍ଷ—ବି. ବିଂ.(ଦୁର୍+ପ୍ର+ଈକ୍ଷ +ମି. ଅ ) ଦୁର୍ଦ୍ଦର୍ଶ, ଯାହା ଅତିକଷ୍ଟେ ଦେଖାଯାଏ, ଦୁର୍ଦ୍ଦର୍ଶନ, ଭୀଷଣ ।
ଦୁଷ୍ପ୍ରେକ୍ଷଣୀୟ—ବି. ବିଂ. (ଦୁର୍+ପ୍ର+ ଈକ୍ଷ+ଅନୀୟ) ଦୁର୍ଦ୍ଦର୍ଶନୀୟ ।
ଦୁଷ୍ପ୍ରେକ୍ଷ୍ୟ—ବି. ବିଂ.(ଦୁର୍+ପ୍ର+ଈକ୍ଷ ମି.ଯ) ଅତିକଷ୍ଟେ ଦର୍ଶନୀୟ ।
ଦୁଷ୍ମନ୍ତ—ପୁଂ. ବ. ( ଦୁଷ୍+ମନ୍+ତ ) ଶକୁନ୍ତଳାଙ୍କ ସ୍ୱାମୀ, ଅଭିଜ୍ଞାନ ଶକୁନ୍ତଳା ନାଟକର ନାୟକ ।
ଦୁସ୍ମନ୍—ଯା.ବିଂ. ଶତ୍ରୁଭାବାପନ୍ନ,ଦ୍ୱେଷୀ. (ବି) ଶତ୍ରୁ, ବିପକ୍ଷଲୋକ ।
ଦୁସ୍ମନ୍‌ବନିବା—ଗ୍ରା. କ୍ରି. ଶତ୍ରୁରୂପେ ପରିଣତ ହେବା ।
ଦୁସ୍ମନୀ—ଯା. ବ ଶତ୍ରୁତା, ଦ୍ୱେଷ ।
ଦୁସ୍ରା--(ସ୍ତ୍ରୀ)--( ପ୍ରା. ସମ୍ପ )ବିଂ. ଅନ୍ୟ, ଦ୍ୱିତୀୟ, ଯୁଗ୍ମମଧ୍ୟରୁ ଏକତର ।
ଦୁସ୍ରାନେ—(ପ୍ରା.ସମ୍ପ)ଅବ୍ୟ. ଅନ୍ୟତ୍ର ।
ଦୁସର୍—(ପ୍ରା.ବସ୍ତ୍ର)ବିଂ.ଦୋଷରୀ ଦେଖ
ଦୁସରୀ—ଯା. ବିଂ. ଦୋସରୀ ଦେଖ ।
ଦୁସୂତି,ଦୋସୁତି—ଗ୍ରା.ବ. ଡବଲ ସୂତା-ବୁଣା ମୋଟା ଲୁଗା ।
ଦୁସ୍ତର—ବି. ବିଂ. (ଦୁର୍+ତୃ+ମି.ଅ) ମନୁଷ୍ୟ ଯାହାକୁ ସହଜେ ପାରହୋଇ ନପାରେ, ଦୂରତିକ୍ରମ. ଅତିକଷ୍ଟକର, ( ଗ୍ରା. ବିଂ ) ଅତିକଷ୍ଟସାଧ୍ୟ,ଭାରି ଦୁଷ୍ଟ. ଅତିମନ୍ଦ, (ବି) ଅତିସଙ୍କଟାପନ୍ନ ଅବସ୍ଥା
ଦୁସ୍ତରଣୀୟ—ବିଂ. ( ଦୁର୍+ତୃ+ମି. ଅନୀୟ) ଦୁସ୍ତର ଦେଖ, (ସ୍ତ୍ରୀ) ଦୁସ୍ତରଣୀୟ
ଦୁସ୍ତର୍ଯ୍ୟ—ବିଂ. ( ଦୁର୍+ତୃ+ମି.ଯ ) ଦୁସ୍ତର ଦେଖ, (ସ୍ତ୍ରୀ) ଦୁସ୍ତର୍ଯ୍ୟା ।
ଦୁସ୍ତ୍ୟଜ—ବିଂ. (ଦୁର୍+ତ୍ୟଜ୍+ମି.ଅ) ଯାହାକୁ ସହଜରେ ତ୍ୟାଗ କରାଯାଇ ନପାରେ, ଦୁଷ୍ପରିହାର୍ଯ୍ୟ ।
ଦୁ(ଦୁଃ)ସ୍ଥ—ବି.ବିଂ.(ଦୁର୍+ସ୍ଥା+କ.ଅ) କ୍ଲେଶଯୁକ୍ତ, ଦୁର୍ଦ୍ଦଶାଯୁକ୍ତ, ଅତିଦରିଦ୍ର, କଷ୍ଟରେ ପଡ଼ିଥିବା, ମନ୍ଦଭାବେ ସ୍ଥିତ, ମୂର୍ଖ,(ବି) କୁକ୍କୁଟ,କୁକ୍କୁର, (ସ୍ତ୍ରୀ) ଦୁସ୍ଥା ।
ଦୁ(ଃ)ସ୍ଥତା—ବ. (ଦୁସ୍ଥ+ଭା.ତା)ଦୁଃସ୍ଥିତା-ବସ୍ଥା, ଦରିଦ୍ରତା, କ୍ଲେଶ, ଶୋଚନୀୟ ଅବସ୍ଥା ।
ଦୁ(ଃ)ସ୍ଥିତ—ଦୁସ୍ଥ ଦେଖ ।
ଦୁସ୍ସହ—ବିଂ. ଦୁଃସହ ଦେଖ ।
ଦୁସ୍ପୃଷ୍ଟ—କ୍ଲୀ. ବ.ମନ୍ଦଭାବେ ଜିଜ୍ଞାସିତ ।
ଦୁହ୍—(ଧାତୁ) ଦୁହିଁବା ।
ଦୁହଣୀ—ଗ୍ରା. ବ. ( ସଂ-ଦୋହନୀ ) ଦୁଧ ଦୋହିଁବା ଠେକି ।
ଦୁହା(ଇତ୍ୟାଦି)—ଗ୍ରା. ବ.ଡୁହାଇତ୍ୟାଦି ଦେଖ, ( ବଙ୍ଗ-ଗ୍ରା ) ଦୋହନକରିବା, (ପ୍ରା. କ) ଦୁଇ, ଉଭୟ ।
ଦୁହାଇ—ଗ୍ରା. ବ. ଡୁହା ଦେଖ, (ସଂ-ଦ୍ୱି +ଆହ୍ୱାନ) ଶପଥ, ରାଣ, ରାଜା ବା ଦେବତାଙ୍କ ନାମରେ କୌଣସି ବିଷୟର ଘୋଷଣା ।
ଦୁହାଇଦେବା--ଗ୍ରା.କ୍ରି.କୌଣସି ଦେବତା ବା ମହାପୁରୁଷଙ୍କ ନାମରେ ଶପଥ କରିବା, ନିଜର ରକ୍ଷାପାଇଁ ରାଜା ବା ଦେବତାଙ୍କ ନାମ ଧରି ଆର୍ତ୍ତସ୍ୱର କରିବା
ଦୁହାକାର—ସର୍ବ.ଦୁଇଜଣଙ୍କର,ଉଭୟଙ୍କର (ବଙ୍ଗ) ।
ଦୁହାଦ—ପୁଂ. ବ. ଧାତୁଗଣ ବିଶେଷ ।
ଦୁହାଁ—ଗ୍ରା. ବ.(ସଂ-ଦୁହ୍‌ଧାତୁ)ଦୋହନ, ଦୁହିଁବା, ଅଙ୍ଗୁଠି ଦ୍ୱୟ ଦ୍ୱାରା ଚିପିକରି କୌଣସି ପଦାର୍ଥରୁ ରସଆଦି ଚିପୁଡ଼ିବା, (ଗ୍ରା. ବିଂ) ଯେ ଦୁଧଦେଉଥାଏ, ଦୁହାଁଳ, (ପ୍ରା. ଚଞ୍ଚାମ) ବିଂ. ଦ୍ୱିତୀୟସନ୍ତାନ, ଦୁଆ,(ବିପ.ପଢୁଆଁ) ।
ଦୁହାଁ(ହେଁ)ଇବା—ଗ୍ରା. କ୍ରି. (ଦୁହିଁବାର ଣିଜନ୍ତରୂପ ) ଅନ୍ୟଦ୍ୱାରା ଦୋହନ କରାଇବା ।
ଦୁହାଁଦୁହିଁ—ଗ୍ରା. ବ. ଦୁହାଁ ଦେଖ, ବହୁବାର ଦୋହନକର୍ମ ।
ଦୁହାଁ(ହା)ଳ—ଗ୍ରା. ସ୍ତ୍ରୀ.ବିଂ.(ସଂ-ଦୋହନୀୟା ) ଦୋହନୀୟା, ଯେଉଁ ଗାଈ ଦୋହନ କରାଯାଉଥାଏ, ଯାହାଠାରୁ ଦୁଧ ଦୁହାଁଯାଉଥାଏ, ଦୁଗ୍ଧବତୀ,

ଯେଉଁ ଗାଈ ଦୁଧଦିଏ ଅର୍ଥାତ୍ ବରଡ଼ ନୁହେଁ ।

ଦୁହାଁ(ହି)ଲୀ—ଗ୍ରା. ସ୍ତ୍ରୀ. ବିଂ. ଦୁହିଁଲ ଦେଖ, (ସଂ-ଦୋଧ୍ରୁ) ଧାନକଟାଳ ।

ଦୁହିଁବା—ଗ୍ରା. କ୍ରି. ( ସଂ-ଦୁହ୍‌ଧାତୁ ) ଦୋହନ କରିବା, ( ଲ.ଅର୍ଥ ) ଦୁଧ ଦୁହିଁଲାପରି କୌଣସି ବ୍ୟକ୍ତିଠାରୁ ଧନ ଆଦି ନିଃଶେଷ କରିନେବା,ଦୁଧ ଦୁହିଁଲାପରି କୌଣସି ବସ୍ତୁକୁ ଦୁଇଆଙ୍ଗୁଠି ଦ୍ୱାରା ଚିପି ଉଞ୍ଛି ଆଣିବା ।

ଦୁହିଁହେବା—ଗ୍ରା.କ୍ରି.ଟାଣିଓଟାର ହେବା, ଦୋହନଯୋଗ୍ୟ ହେବା ।

ଦୁହିଙ୍କର—ଗ୍ରା. ସର୍ବ.(ସଂ-ଦ୍ୱୌ)ଉଭୟଙ୍କର । [ ଉଭୟଙ୍କୁ ।

ଦୁହିଙ୍କି(ଙ୍କୁ)—ଗ୍ରା ସର୍ବ.. ଦୁଇଜଣଙ୍କୁ,

ଦୁହିଙ୍କିଦୁହେଁ—ଗ୍ରା. ସର୍ବ. ଦୁଇଜଣଯାକ, ଦୁହେଁଯାକ, ଅନ୍ୟୋନ୍ୟ ।

ଦୁହିତ—ଗ୍ରା.ସ୍ତ୍ରୀ. ବି. ପଦ୍ୟ. (ସଂ-ଦୁହିତୃ) କନ୍ୟା, ଝିଅ ।

ଦୁହିତା—ସ୍ତ୍ରୀ. ବି. (ଦୁହ+କ.ତୃ) ଯେ ଦୋହନ କରେ, କନ୍ୟା, ଝିଅ, ପୁତ୍ରୀ, ତନୟା ।

ଦୁହିତ୍ରୀ—ଗ୍ରା.ସ୍ତ୍ରୀ. ବି. ପଦ୍ୟ. (ସଂ-ଦୁହିତୃ) ଦୁହିତା, କନ୍ୟା, ଝିଅ ।

ଦୁହିତୃଃପତି—ପୁଂ. ବି. କନ୍ୟାର ପତି, ଜାମାତା ।

ଦୁହିତୃ—ସ୍ତ୍ରୀ. ବି. କନ୍ୟା । [ ଭାବ ।

ଦୁହିତୃତ୍ୱ—କ୍ଲୀ.ବି.(ଦୁହିତୃ+ତ୍ୱ)କନ୍ୟାର

ଦୁହିତୃପତି—ପୁଂ. ବି. (ଦୁହିତୃ+ପତି) ୬ତତ୍; ଜାମାତା, ଜ୍ୱାଇଁ ।

ଦୁହିତୃମନ୍ତ—ବି. ବିଂ. ଦୁହିତୃଯୁକ୍ତ ।

ଦୁହିତୃ(ତ୍ରି)ସମ୍ପତ୍ତି—ଗ୍ରା. ବି. (କଟକିଆ) ( ସଂ-ଦୌହିତ୍ର+ସମ୍ପତ୍ତି ) କୌଣସି ବ୍ୟକ୍ତିର ପୁଅ ବା ପୁଅର ପୁଅ ନ ଥିଲେ ତାହାର ତ୍ୟକ୍ତସମ୍ପତ୍ତି ଯାହାକି ତାହାର କନ୍ୟାର ପୁଅ ଉତ୍ତରାଧିକାରୀ ସୂତ୍ରେ ପାଏ । [ ଝିଅ ।

ଦୁହିତେ—ଗ୍ରା. (ପ୍ରା-ପଦ୍ୟ) ବି. କନ୍ୟା,

ଦୁହିଡ଼ମୁଣ୍ଡା—ଗ୍ରା. ବି. ଦୋଓଡ଼ମୁଣ୍ଡା ଦେଖ ।

ଦୁହୁଣୀ—ଗ୍ରା.ବି. (ସଂ-ଦୋହନୀ) ଗାଈ ଦୁହାଁ କୁଣ୍ଡା ବା ଘଡ଼ି, ଛନ୍ଦଣୀ, ବେନ୍ତମାଣ ବା ପାହୁଲ ।

ଦୁହୁଗ—ପ୍ରା. (ସମ୍ବ)ବି. ଅବ୍ୟ. ଦୋଓଡ଼, ଦ୍ୱିତୀୟଥର ।

ଦୁହୁଗଦେବା—ପ୍ରା. (ସମ୍ବ) କ୍ରି. ଦଲ୍‌ଦେବା ଦେଖ ।

ଦୁହେଁ—ଗ୍ରା. ସର୍ବ. ( ସଂ-ଦ୍ୱୟ, ଦ୍ୱୌ ) ଉଭେଁ, ଉଭୟବ୍ୟକ୍ତି, ଦୁଇଜଣଯାକ, ଦୁହିଁକିଦୁହେଁ ।

ଦୁହ୍ୟ—ବି.ବିଂ.(ଦୁହ୍+ମିଂ.ଯ)ଦୋହନ ଯୋଗ୍ୟ, ଦୋହ୍ୟ, ଦୋହନୀୟ, (ସ୍ତ୍ରୀ) ଦୁହ୍ୟା ।

ଦୁହ୍ୟମାନ—ପୁଂ.ବିଂ. (ଦୁହ୍+ମିଂ.ଆନ) ଯାହାକୁ ଦୁହାଁ ଯାଉଅଛି, (ସ୍ତ୍ରୀ) ଦୁହ୍ୟମାନା ।

ଦୁହ୍ୟୁ—ପୁଂ.ବି. (ନାମ)ଶର୍ମିଷ୍ଠା ଗର୍ଭଜାତ ଯଯାତିଙ୍କ ଏକ ପୁତ୍ର.(ଦ୍ରୁହ୍ୟୁ—ଅନ୍ୟରୂପ) ।

ଦୂ—(ଧାତୁ)କ୍ଲୀ.ବି. (ଦୁ+ଭା.+କ୍ୱିପ୍) ଦୁଃଖ, ଦୁଃଖଭୋଗ କରିବା, ଦୁଃଖିତ ହେବା, ଦୁଃଖ ବା କଷ୍ଟଦେବା ।

ଦୂଢ଼ଭ—ବି. ବିଂ. (ଦୁର+ଦଭ+ଅ) ଅତିକଷ୍ଟେ ଦଣ୍ଡନୀୟ, ବ୍ୟସନପ୍ରାପ୍ତ, ବିପଦ୍‌ଯୁକ୍ତ, ଦୁର୍ଦ୍ଦମ, ନାଶ କରିବାକୁ ଅକ୍ଷମ ।

ଦୂଡ଼ାଶ—ବି. ବିଂ. (ଦୁର+ଦାଶି+ଅ) ପୀଡ଼ାଯୁକ୍ତ, ପୀଡ଼ିତ ।

ଦୂଢ଼ୀ—ବି.ବିଂ. (ଦୁର+ଧ୍ୟୈ+କ.କ୍ୱିପ୍) ଦୁଷ୍ଟଧ୍ୟାୟୀ, ଦୁଷ୍ଟବୁଦ୍ଧି ।

ଦୂଢ୍ୟ—ବି. ବିଂ. (ଦୁର+ଧ୍ୟୈ+ଅ) ଦୁଷ୍ଟଧ୍ୟାୟୀ, ଅଧମ ।

ଦୂଣାଶ—ବି. ବିଂ. (ଦୁର୍+ନାଶି+ଅ) ଅତିକଷ୍ଟେ ନଷ୍ଟ,ଯାହା ନାଶ କରିବାରେ ଅକ୍ଷମ ।

ଦୂତ୍—ଗ୍ରା. ଅବ୍ୟ. ଧୁତ୍ ଦେଖ ।

ଦୂତ—ପୁଂ. ବି. (ଦୁ+କ.ତ) ଉପ୍ତାନେଉ; ସମ୍ବାଦବାହକ, ବାର୍ତ୍ତାବହ, ଚର, ସ୍ୱର୍ଗର ଦୂତ, ସନ୍ଦେଶ, ସନ୍ଦେଷ୍ଟ-କଥକ ।

ଦୂତକ—ପୁଂ. ବି. ଦୂତ, ରାଜପ୍ରଦତ୍ତ ଶାସନାଦି ଜ୍ଞାପକ କରିବାର ପ୍ରଧାନ କର୍ମଚାରୀ ।

ଦୂତଘ୍ନୀ—ସ୍ତ୍ରୀ. ବି. (ଦୂତ+ହନ୍+ଈ) କଦମ୍ବ ପୁଷ୍ପ ।

ଦୂତତ୍ୱ—କ୍ଲୀ. ବି. (ଦୂତ+ତ୍ୱ) ଦୂତର କାର୍ଯ୍ୟ ବା ଭାବ, ଦୌତ୍ୟ ।

ଦୂତାବାସ—ବି. ( ୬ତତ୍—ଆଧୁନିକ ପ୍ରୟୋଗ) ମିତ୍ରରାଜାଙ୍କ ସଭାରେ ନିଯୁକ୍ତ ଅନ୍ୟ ରାଜାଙ୍କ ଦୂତ ଯେଉଁଠାରେ ବସାକରି ରହନ୍ତି । [ ଦେଖ ।

ଦୂତି—ସ୍ତ୍ରୀ. ବି. ( ଦୁ+କ.ତି ) ଦୂତୀ

ଦୂତିକା—ସ୍ତ୍ରୀ. ବି. (ଦୂତି+ସ୍ୱାର୍ଥେ—କ+ସ୍ତ୍ରୀ.ଆ) ଦୂତୀ ଦେଖ ।

ଦୂତିପାଦ—ଗ୍ରା. (ପ୍ରା-ପଦ୍ୟ) ଦୁଇପାଦ ।

ଦୂତୀ—ସ୍ତ୍ରୀ.ବି. (ଦୂତି+ଈ) ବାର୍ତ୍ତାବାହିକା ସ୍ତ୍ରୀ, କୁଟ୍ଟନୀ, ସ୍ତ୍ରୀ ପୁରୁଷ ଯୋଜିକା, ରାଧାକୃଷ୍ଣଙ୍କ ସମ୍ବାଦବାହିକା ସ୍ତ୍ରୀ, (ଗ୍ରା) ସ୍ତ୍ରୀଲୋକଙ୍କ ନାମ, (ପର୍ଯ୍ୟାୟ)ସାରିକା, ଦୂତିକା, ଦୂତିକା, ସଞ୍ଚାରିକା ।

ଦୂତ୍ୟ—କ୍ଲୀ. ବି. (ଦୂତ+ଭା.ଯ) ଦୂତର କାର୍ଯ୍ୟ, ଦୌତ୍ୟ ।

ଦୂନ—ବି. ବିଂ. ( ଦୁ+କ.ତ ) କ୍ଲିଷ୍ଟ, ଦୁଃଖପ୍ରାପ୍ତ,କ୍ଲାନ୍ତ,ଅନୁତପ୍ତ, ପଥଶ୍ରାନ୍ତ ।

ଦୂବ—ଗ୍ରା. ବି. ଦୁବ ଦେଖ ।

ଦୂର୍—ଗ୍ରା. ଅବ୍ୟ. ଛିଃ! ଯାଃ! ଧୁତ୍!, ଏଠାରୁ ଚାଲିଯା ! (ଘୃଣା ବିରକ୍ତିସୂଚକ) (ସଂ-ବି)ପ୍ରାଣରୂପ ଦେବତାବିଶେଷ ।

ଦୂର୍‌କର୍—ଗ୍ରା. ଅବ୍ୟ. ଦୂର୍ ଦେଖ, ଛାଡ଼୍ ସେକଥା ।

ଦୂର୍‌ଛଡ଼ା—ଗ୍ରା.ବିଂ. କେତେକ ଦୂରରେ ଅବସ୍ଥିତ,ବହୁ ବ୍ୟବଧାନରେ ଅବସ୍ଥିତ ।

ଦୂର୍‌ଦୂର୍—ଗ୍ରା.ଅବ୍ୟ. ଦୂର୍ ଦେଖ,(ବିଂ) ଦୁଲ୍‌ଦୁଲ୍ ବର୍ଷା, (କ୍ରି.ବିଂ) ଦୁଲ୍‌ଦୁଲ୍ (ବରଷିବା) ।

ଦୂର୍‌ଦୂର୍‌କରିବା—ଗ୍ରା. କ୍ରି. କୌଣସି ବ୍ୟକ୍ତିପ୍ରତି ଘୃଣାକରି ତଡ଼ିଦେବା ।

ଦୂର୍‌ପଳା—ଗ୍ରା.ଅବ୍ୟ.ଏଠାରୁ ଦୂର୍ ହୋ ! ଏଠାରୁ ପଳା ।
ଦୂର୍‌ପଳା(ଳେ)ଇବା—ଗ୍ରା. କ୍ରି. (ସଂ—ଦୂର୍+ପଳାୟନ) ତିରସ୍କାର, ଧିକ୍କାର ବା ଘୃଣିତ ବ୍ୟବହାର ଯୋଗୁଁ ବା ଏଥିର ଭୟରେ କୌଣସି ସ୍ଥାନ ତ୍ୟାଗ କରିବା, ଭୟରେ ହଠାତ୍ କୌଣସି ସ୍ଥାନ ତ୍ୟାଗ କରିବା,କୌଣସି ସ୍ଥାନରୁ ଦୂରରେ ରହିବା । [ ଦେଖ ।
ଦୂର୍‌ପୁ(ଫୁ)ଙ୍ଗା—ଗ୍ରା. ବିଂ. ଧୂ ରପୁଙ୍ଗା
ଦୂର୍‌ବାଡ଼ିଆ—ପ୍ରା. ( ଯାଜପୁର ) ବିଂ. ଦୂର୍‌ଛଡ଼ା ଦେଖ ।
ଦୂର୍‌ଦୂର୍‌ମାର୍‌ମାର୍‌କରିବା—ଗ୍ରା. କ୍ରି. ଦୂର୍‌ଦୂର୍ କରିବା ଦେଖ ।
ଦୂର୍‌ହୋ—ଗ୍ରା. ଅବ୍ୟ. ଦୂର୍ ଦେଖ ।
ଦୂର—ବି. ବିଂ. (ଦୁର୍+ଇ+କ.ର) ଅସମୀପ, ବ୍ୟବଧାନଯୁକ୍ତ, ଅନ୍ତରରେ ଅବସ୍ଥିତ, ଛଡା, ପୃଥକ୍, ଅଲଗା, ଅତ୍ୟନ୍ତ,ଗାଢ଼, ଅଗୋଚର, ଦୀର୍ଘ,(ବି) ବ୍ୟବଧାନ,ଦୂରତ୍ୱ, (ଗ୍ରା.ବିଂ)ବିତାଡ଼ିତ, ଦୂରୀଭୂତ, ଏତେଦୂରରେ ଅବସ୍ଥିତ, ଅପ୍ରାପ୍ୟ, ଅଗୋଚର, ( ବି ) ଦୂରତ୍ୱ, ଅସମୀପତା, ଦୂରଦେଶ, ଦୂରପଥ, ବହୁତ ଲମ୍ବ ବାଟ,(ପର୍ଯ୍ୟାୟ-ବିପ୍ରକୃଷ୍ଟ, ଅନାସନ୍ନ), (ବୈଦିକ ପର୍ଯ୍ୟାୟ—ଆକ, ପରାକ, ପରାଚ, ଆର, ପରାବତ) ।
ଦୂରକ—ବି. ବିଂ. (ଦୂର+କ) ଦୂର ।
ଦୂରକଥା—ଗ୍ରା.ବି. କଷ୍ଟସାଧ୍ୟ କଥା,ଗହନ କଥା, ଦୂରଭବିଷ୍ୟତରେ ଘଟିବା ବିଷୟ ପ୍ରକାଶ କରିବା ।
ଦୂରକରିବା—ଗ୍ରା.କ୍ରି.ବିଂ. ବର୍ଜ୍ଜନ କରିବା, ତ୍ୟାଗ କରିବା, ତଡ଼ିଦେବା, ପୃଥକ୍ କରିବା, ଲୋପ କରିବା ।
ଦୂରଗ—ପୁଂ. ବିଂ. (ଦୂର+ଗମ୍+କ. ଅ) ଦୂରଗାମୀ ଦେଖ, (ସ୍ତ୍ରୀ) ଦୂରଗା ।
ଦୂରଗତ—ବି.ବିଂ.(୭ତତ୍)ଯେ ଦୂରକୁ ଯାଇଅଛି ।
ଦୂରଗାମୀ—ପୁଂ. ବିଂ. (ଦୂର+ଗମ୍+ କ.ଇନ୍ ଯେ ଦୂରକୁ ଯାଇଅଛି, ବହୁ-ଦୂରକୁ ବିସ୍ତୃତ, (ସ୍ତ୍ରୀ) ଦୂରଗାମିନୀ ।
ଦୂରଗ୍ରହଣ—କ୍ଳୀ. ବି. ବହୁଦୂରରୁ ଗ୍ରହଣ ବା ଦର୍ଶନ କରିବା କ୍ଷମତା ।
ଦୂରଙ୍କରଣ—ବି. ବିଂ. ଦୂରକରଣ, ସ୍ଥାନାନ୍ତରକରଣ ।
ଦୂରଂଗତ—ବି. ବିଂ. ଦୂରରେ ଥିବା ।
ଦୂରଙ୍ଗମ—ବି.ବିଂ.(ଦୂର+ଗମ୍+ଅ) ଦୂରଗାମୀ ।
ଦୂରଚର—ବି. ବିଂ. (ଦୂର+ଚର+ଅ) ଦୂରବିଚରଣକାରୀ,(ସ୍ତ୍ରୀ)ଦୂରଚରୀ ।
ଦୂରଛଡ଼ା--ଗ୍ରା.ବିଂ.(ସଂ-ଦୂରସ୍ଥ)ଦୂରରେ ଅବସ୍ଥିତ, ଦୂରକୁ ବିତାଡ଼ିତ, ଅଲଗା ଅଲଗା ।
ଦୂରତର—ବିଂ. (ଦୁଇମଧ୍ୟରେ)ଅଧିକ-ତର ଦୂର ।
ଦୂରତମ—ବିଂ. (ବହୁମଧ୍ୟରେ) ଅଧିକ-ତମ ଦୂର ।
ଦୂରତସ୍—ଅବ୍ୟ. ଦୂରରୁ ।
ଦୂରତା—ବି.(ଦୂର+ଭାଂ.ତା)ବ୍ୟବଧାନ. ଅନ୍ତର, ଦୂରହେବାର ଅବସ୍ଥା ।
ଦୂରତେ—ଗ୍ରା. (ପ୍ରାଚୀନ) ଅବ୍ୟ. (ସଂ-ଦୂରତଃ) ଦୂରରୁ, ଦୂରରେ ।
ଦୂରତଃ—ଅବ୍ୟ. (ଦୂର+୫ମୀ ଓ ୭ମୀ ବିଭକ୍ତିରେ ତସ୍ ପ୍ରତ୍ୟୟ ) ଦୂରରୁ, ଦୂରରେ ।
ଦୂରତ୍ୱ—କ୍ଳୀ. ବି. ( ଦୂର+ଭା.ତ୍ୱ ) ଦୈଶିକ ପରତ୍ୱ, ଦେଶଗତ ପୃଥକ୍ତ୍ୱ
ଦୂରଦର୍ଶକ—ପୁଂ.ବିଂ. (ଦୂର+ଦୃଶ୍+କ.ଅକ) ଦୂରଦର୍ଶୀ ଦେଖ ।
ଦୂରଦର୍ଶକଯନ୍ତ୍ର--ବି.(ଆଧୁନିକ ବ୍ୟବହାର) ଦୂରବୀକ୍ଷଣ ଯନ୍ତ୍ର ।
ଦୂରଦର୍ଶନ—ପୁଂ. ବି. (ଦୂର+ଦୃଶ୍+କ.ଅନ)ପଣ୍ଡିତ, କ୍ଳୀ. (ଦୂର+ଦୃଶ୍+ଣ.ଅନ ) ଦୂରବୀକ୍ଷଣ ଯନ୍ତ୍ର, (ପୁଂ. ସ୍ତ୍ରୀ) ଗୃଧ୍ର (୫ମୀତତ୍) ।
ଦୂରଦର୍ଶିତା--ସ୍ତ୍ରୀ. ବି. ( ଦୂରଦର୍ଶିନ୍+ଭା.ତା)ପରିଣାମଦର୍ଶିତା,ପାଣ୍ଡିତ୍ୟ,ଜ୍ଞାନ ।
ଦୂରଦର୍ଶୀ—ପୁଂ. ବିଂ. (ଦୂର+ଦୃଶ୍+କ.ଇନ୍) ଦୂରଦୃଷ୍ଟି, ଦୀର୍ଘଦୃଷ୍ଟି, ପରି-ଣାମଦର୍ଶୀ, ବିଜ୍ଞ, ବୋଦ୍ଧା, ଜ୍ଞାନୀ, ବୁଦ୍ଧିମାନ୍, ପଣ୍ଡିତ, (ବି) ଗୃଧ୍ର, ଶାଗୁଣା, (ସ୍ତ୍ରୀ) ଦୂରଦର୍ଶିନୀ ।
ଦୂରଦୂରାନ୍ତ—ଗ୍ରା. ବିଂ. ବହୁଦୂର (ଗ୍ରା. ବି) ବହୁଦୂରସ୍ଥାନ, ବହୁଦୂରତ୍ୱ ।
ଦୂରଦୃକ୍—ପୁଂ. ବିଂ. ( ଦୂର+ଦୃଶ୍+କ. କ୍ୱିପ୍ ) ଦୂରଦର୍ଶୀ ଦେଖ, ( ସ୍ତ୍ରୀ ) ଦୂରଦୃଶା ।
ଦୂରଦୃଶ୍—ବି. ବିଂ. ( ଦୂର+ଦୃଶ୍+କ୍ୱିପ୍) ଦୂରଦର୍ଶୀ, (ପଣ୍ଡିତ, ଗୃଧ୍ର) ।
ଦୂରଦୃଷ୍ଟି—ସ୍ତ୍ରୀ. ବି. ( ଦୂର + ଦୃଷ୍ଟି ) କ.ଧା; ଦୀର୍ଘଦର୍ଶନ, ବହୁଦୂରକୁ ଦେଖିବା, ବହୁଦୂରସ୍ଥ ପଦାର୍ଥ ଦେଖିବାର ଶକ୍ତି, ଦୂରଦର୍ଶିତା,(ବ.ବ୍ରୀ) ଶାଗୁଣା, ଶକୁନ, ଦୂରବୀକ୍ଷଣ ଯନ୍ତ୍ର, ( ବିଂ.ବ.ବ୍ରୀ ) ଯେ ଦୂରକୁ ଦେଖିପାରେ, ପରିଣାମଦର୍ଶୀ, ତ୍ରିକାଳଜ୍ଞ, ବିଜ୍ଞ, ପଣ୍ଡିତ ।
ଦୂରଦେଶ—ବି. ବହୁଦୂରରେ ଅବସ୍ଥିତ ଅଞ୍ଚଳ ।
ଦୂରନିରୀକ୍ଷଣ—ବି. ଦୂରବୀକ୍ଷଣ ଯନ୍ତ୍ର ।
ଦୂରପଥ—ବି. ବହୁତବାଟ ।
ଦୂରପର୍ବତ—ଗ୍ରା. ବି. ଦୂରରେ ଅବସ୍ଥିତ ପର୍ବତ, ଦୂରରୁ ଦେଖାଯିବା ପର୍ବତ ।
ଦୂରପ୍ରାଚ୍ୟଦେଶ—ବି(ଆଧୁନିକପ୍ରୟୋଗ) ଚୀନ ଓ ଯାପାନ ପ୍ରଭୃତି ଦୂରବର୍ତ୍ତୀ ଦେଶମାନ ।
ଦୂରବନ୍ଧୁ—ବିଂ. (ଦୂର+ବନ୍ଧୁ) ବ.ବ୍ରୀ; ଯେଉଁ ବ୍ୟକ୍ତିର ବନ୍ଧୁ ବହୁ ଦୂରରେ ଅଛନ୍ତି, (ଗ୍ରା.ବି) ଯେଉଁ ବନ୍ଧୁଙ୍କ ବାସ-ସ୍ଥାନ ଆପଣା ବାସସ୍ଥାନଠାରୁ ବହୁ ଦୂରରେ ଅବସ୍ଥିତ ।
ଦୂରବର୍ତ୍ତିତା—ସ୍ତ୍ରୀ. ବି. (ଦୂରବର୍ତ୍ତିନ୍+ତା) ଦୂରସ୍ଥିତା ।
ଦୂରବର୍ତ୍ତୀ—ପୁଂ. ବିଂ. (ଦୂର+ବୃତ୍+କ.ଇନ୍) ଯାହା ଦୂରରେ ଅଛି, (ସ୍ତ୍ରୀ) ଦୂରବର୍ତ୍ତିନୀ ।
ଦୂରବସ୍ତ—ଯା.କ୍ରି.ବିଂ.ଦୋରବସ୍ତ ଦେଖ
ଦୂରବସ୍ତକ—ବି.ବିଂ.ବସ୍ତ୍ରହୀନ, ଉଲଙ୍ଗ ।
ଦୂରବାଟ—ଗ୍ରା. ବି. ଦୂରପଥ, ବହୁ-

ଦୂରତା ।

ଦୂରବାସିନ୍—ବି. ବିଂ. (ଦୂର + ବସ୍ + ଇନ୍) ଦୂରଦେଶବାସୀ ।

ଦୂରବୀକ୍ଷଣ—କ୍ଲୀ.ବି. (ଦୂର + ବି + ଈକ୍ଷ୍ + ଣ.ଅନ ) ଦୂରବୀନ, ଯେଉଁ ଯନ୍ତ୍ର ଦ୍ୱାରା ଦୂରସ୍ଥ ଜିନିଷ ପାଖରେ ଦେଖାଯାଏ ।

ଦୂରବୀନ୍—ଗ୍ରା.ବି. ଦୂରବୀକ୍ଷଣ ଦେଖ ।

ଦୂରବୀନ୍‌କଷିବା—ଗ୍ରା. କ୍ରି. ଦୂରବୀନ୍ ଯନ୍ତ୍ରରେ ଚାହିଁବା ।

ଦୂରବେଧୀ—ପୁଂ.ବି.(ଦୂର+ବ୍ୟଧ+କ.ଇନ୍) ଦୂରଭେଦୀ ଦେଖ ।

ଦୂରଭେଦୀ—ପୁଂ. ବିଂ. (ଦୂର + ଭିଦ୍ + କ.ଇନ୍ ) ଦୂରସ୍ଥିତ କୌଣସି ଲକ୍ଷ୍ୟ ବସ୍ତୁକୁ ଯେ ଶରଆଦି ଦ୍ୱାରା ବିଦ୍ଧ କରିପାରେ, ଦୂରବର୍ତ୍ତୀ ବସ୍ତୁକୁ ଭେଦ କରି ପାରୁଥିବା, (ବି) ଶର, ବାଣ, ବନ୍ଧୁକ ।

ଦୂରମୂଳ—ପୁଂ.ବି(ଦୂର + ମୂଳ)ବ.ବ୍ରୀ; ମୁଞ୍ଜ ଦେଖ ।

ଦୂରଯାୟୀ—ବି. ବିଂ. (ଦୂର+ଯା+କ.ଇନ୍) ଦୂରଗାମୀ ।

ଦୂରଶ୍ରବଣଯନ୍ତ୍ର—କ୍ଲୀ. ବି. (ମଧ୍ୟ-କ.ଧା) ଟେଲିଫୋନ, ଏକପ୍ରକାର ଯନ୍ତ୍ର ।

ଦୂରଶ୍ରୁତ—ବି. ବିଂ. (୭ତତ୍ପୁ)ଯେ ଶବ୍ଦ ବହୁ ଦୂରରେ ହୁଏ, ମାତ୍ର ଏଠାରେ ଶୁଣାଯାଏ, (ସ୍ତ୍ରୀ) ଦୂରଶ୍ରୁତା ।

ଦୂରସଂସ୍ଥ—ବି.ବିଂ.ଦୂରସ୍ଥ, ଦୂରବର୍ତ୍ତୀ, ଦୂରସ୍ଥିତ ।

ଦୂରସଂସ୍ଥାନ—କ୍ଲୀ.ବି. ଦୂରସ୍ଥିତା, ଦୂରସ୍ଥିତ, ଦୂରସ୍ଥାନବାସ ।

ଦୂରସ୍ଥ—ବି. ବିଂ.(ଦୂର+ସ୍ଥା+କ.ଅ) ଦୂରରେ ଅବସ୍ଥିତ,(ଯା.ବିଂ)ଦୋରସ୍ତ ଦେଖ ।

ଦୂରହେବା—ଗ୍ରା.କ୍ରି.(ସଂ-ଦୂର+ଭୂ ଧାତୁ ) ବିତାଡ଼ିତ ହେବା, ସ୍ଥାନାନ୍ତରିତ ହେବା,ଲୋପ ପାଇବା,କୌଣସି ସ୍ଥାନ ତ୍ୟାଗ କରି ଚାଲିଯିବା ।

ଦୂରାଗତ—ବି. ବିଂ. (୫ମୀ.ତତ୍ପୁ)ଦୂରଦେଶରୁ ଉପସ୍ଥିତ, (ସ୍ତ୍ରୀ) ଦୂରାଗତା ।

ଦୂରାନ୍ତ—ଗ୍ରା. ବି. ଦୂରତା, ବ୍ୟବଧାନ, (ବିଂ) ଦୂରସ୍ଥିତ, ଦୂରରେ ଥିବା ।

ଦୂରାନ୍ୱୟ—ବି. ( ବ୍ୟାକରଣ ) ଯେଉଁ ରଚନାରେ ବାକ୍ୟରେ ବିନ୍ୟସ୍ତ ଶବ୍ଦମାନ ଦୂରବର୍ତ୍ତୀ ଶବ୍ଦମାନଙ୍କ ସଙ୍ଗେ ଅନ୍ୱିତ ହୁଏ ।

ଦୂରାପାତ—ବିଂ.(ଦୂର + ଆପାତ;ବ.ବ୍ରୀ) ଯେଉଁଅସ୍ତ୍ରକୁ ଦୂରରୁ ଫିଙ୍ଗି ମରାଯାଏ ।

ଦୂରାପାତିନ୍—ବି.ବିଂ. (ଦୂର+ଆ+ପତ୍ + ଇନ୍) ଦୂର ନିକ୍ଷେପ୍ୟ ଅସ୍ତ୍ର ।

ଦୂରାପ୍ଲାବ—ବି.ବିଂ. ଦୂରରେ ଲମ୍ଫପ୍ରଦାନ କାରୀ, ଯେ ଦୂରରେ ଲମ୍ଫପ୍ରଦାନ କରେ ।

ଦୂରାବସ୍ଥିତ—ବି. ବିଂ. ଦୂରରେ ଅବସ୍ଥିତ, ଦୂରବର୍ତ୍ତୀ ।

ଦୂରୀକରଣ—କ୍ଲୀ. ବି. ( ଦୂର+ଚ୍ୱି +କୃ+ଣ.ଅନ)ବିତାଡ଼ନ, ବହିଷ୍କରଣ ଅପସାରଣ ।

ଦୂରୀକୃତ—ପୁଂ.ବିଂ. (ଦୂର + ଚ୍ୱି + କୃ +ମି.ତି)ବିତାଡ଼ିତ,ଦୂରକୁ ଅପସାରିତ, ଅବମାନନାପୂର୍ବକ ଯାହାକୁ ଅପସାରିତ କରାଯାଇ ଅଛି, ( ସ୍ତ୍ରୀ. ) ଦୂରୀକୃତା ।

ଦୂରୀକ୍ରିୟମାଣ—ପୁଂ.ବିଂ.( ଦୂର+ଚ୍ୱି + କ୍ରିୟମାଣ ) ଯାହାକୁ ତଡ଼ା ଯାଉଅଛି ।

ଦୂରୀଭବନ—କ୍ଲୀ.ବି. (ଦୂର+ଚ୍ୱି + ଭୂ +ଅନ) ଅପସାରଣ, ଦୂରୀଭୂତହେବା

ଦୂରୀଭୂତ—ବି. ବିଂ. ( ଦୂର+ଚ୍ୱି + ଭୂତ) ବିତାଡ଼ିତ,ଅପସାରିତ,ପୃଥକ୍ କୃତ, ଯାହା ଦୂରବର୍ତ୍ତୀ ହୋଇଅଛି, ଯେ ଦୂରକୁ ଯାଇଅଛି ।

ଦୂରୁ—ଗ୍ରା. କ୍ରି. ବିଂ. ଦୂରରୁ ।

ଦୂରୁକୁଦେଖିବା—ଗ୍ରା. କ୍ରି. ଦୂରବର୍ତ୍ତୀ ସ୍ଥାନର ବସ୍ତୁକୁ ଦେଖିବା, ( ଲ.ଅର୍ଥ ) ଗଣିତଚକ୍ର ଦ୍ୱାରା ଭବିଷ୍ୟତ୍ ବିଷୟ ଜାଣିବା ।

ଦୂରୁଛଡ଼ା(ଇତ୍ୟାଦି)—ଦୂରଛଡ଼ା ଦେଖ ।

ଦୂରୁଢ଼ା—ସ୍ତ୍ରୀ. ବି. ( ଦୁର୍+ରୁହ + ତ ) କ୍ଷୁଦ୍ର ରୋଗବିଶେଷ ।

ଦୂରୁଦୂରୁ(ଇତ୍ୟାଦି)—ଦୂର୍‌ଦୂର୍ ଦେଖ ।

ଦୂରେ ଅମିତ୍ର—ପୁଂ. ବି. ଏକୋନ ପଞ୍ଚାଶତ୍ ମରୁତ୍ ମଧ୍ୟେ ମରୁତ୍‌ବିଶେଷ ।

ଦୂରେଇ—ଗ୍ରା. କ୍ରି. ବିଂ. ( ସଂ-ଦୂର ) ଖଣ୍ଡେଦୂର ଘୁଞ୍ଚାଇକରି, କିଛି ବ୍ୟବଧାନ ବା ଅନ୍ତର ରଖିକରି ।

ଦୂରେଇବା—ଗ୍ରା.କ୍ରି. (ସଂ-ଦୂର) ଦୂରକୁ ଘୁଞ୍ଚିଯିବା ।

ଦୂରେତ୍ୟ—ବି. ବିଂ. ଦୂରଭବ, ଦୂରଗାମୀ, ଦୂରସ୍ଥ ।

ଦୂରେପାକ—ବି. ବିଂ. ଦୂରେ ପାଚକ ।

ଦୂରେପାକୁ—ବି. ବିଂ. ଦୂରେପାଚକ ।

ଦୂରେଽନ୍ତେକ୍ଷଣ—ବି.ବିଂ. ଦୂରପର୍ଯ୍ୟନ୍ତ ପ୍ରେରିତଦର୍ଶନ, ଟେରା, ବଙ୍କାକ୍ଷି ।

ଦୂରୋହ—ପୁଂ. ବି. (ଦୂର+ବହ+କ.ଅ) ଆଦିତ୍ୟଲୋକ, ବିଂ. (ଦୂର+ରୁହ+ମି.ଅ) ଦୁଃଖଦ୍ୱାରା ରୋହଣୀୟ, ରୋହଣ କରିବାକୁ ଅଶକ୍ତ,ଦୂରାରୋହମାନ ।

ଦୂରୋହଣ—ପୁଂ. ବି. (ଦୂର+ଆରୋହଣ) ସୂର୍ଯ୍ୟ, (କ୍ଲୀ) ଛନ୍ଦୋବିଶେଷ, (ବିଂ) ଦୂରାରୋହଣୀୟ, ଦୁଃସାଧ୍ୟାରୋହଣ, ଚଉଛନ୍ଦସ୍କ ମନ୍ତ୍ରସାଧ୍ୟଯଜ୍ଞବିଶେଷ ।

ଦୂର୍ଯ୍ୟ—କ୍ଲୀ. ବି. (ଦୂର+ଯ) ପୁରୀଷ, ବିଷ୍ଠା ।

ଦୂର୍ବ୍—(ଧାତୁ) ହିଂସା କରିବା, ଆଘାତ କରିବା, ହତ୍ୟାକରିବା ।

ଦୂର୍ବ—ପୁଂ. ବି. ନୃପବିଶେଷ ।

ଦୂର୍ବା—ସ୍ତ୍ରୀ. ବି. ( ଦୂର୍ବ୍ +ମି.ଅ+ଆ ) ଦୁବଘାସ, ଦୀର୍ଘାୟୁ ଲତାଳିଆ ଗଣ୍ଠିଯୁକ୍ତ ଘାସ, (ପର୍ଯ୍ୟାୟ--ଶତପର୍ବିକା, ସହସ୍ରବୀର୍ଯ୍ୟା, ଭାର୍ଗବୀ, ରୁହା, ଅନନ୍ତା,ଶତ-ପର୍ବା, ଦୁର୍ମରା, ବହୁବୀର୍ଯ୍ୟା, ହରିତା, ହରିତାଳୀ, କଚ୍ଛରୁହା; (ଶ୍ୱେତଦୂର୍ବାର ପର୍ଯ୍ୟାୟ--ଶ୍ୱେତାବୀର୍ଯ୍ୟା, ଗଣ୍ଡାଳୀ, ଶକୁଲାକ୍ଷକ,ଗୋଲୋମୀ, ଶତପର୍ବା, ସିତଦୂର୍ବା, ସିତା, ନନ୍ଦା, ମହାବରୀ) ।

ଦୂର୍ବାକ୍ଷୀ—ସ୍ତ୍ରୀ. ବି. ବସୁଦେବଙ୍କର ଭ୍ରାତା ବୃକଙ୍କ ପତ୍ନୀ । [ ଗ୍ରାମ ।

ଦୂର୍ବାଗ୍ରାମ—ପଞ୍ଚକୂଟାନ୍ତର୍ଗତ ଏକ ପ୍ରାଚୀନ

ଦୂର୍ବାଦଳ—ବି. (ଦୂର୍ବା+ଦଳ) ୬ତତ୍ପୁ; ଦୂବଗଛର ପତ୍ର ।

ଦୂର୍ବାଦ୍ୟଘୃତ—ବୈଦ୍ୟକୋକ୍ତ ରକ୍ତପିତ୍ତା-ଧିକାରର ଔଷଧବିଶେଷ ।

ଦୂର୍ବାଷ୍ଟମୀ—ସ୍ତ୍ରୀ. ବି. ଭାଦ୍ରମାସର ଶୁକ୍ଳା-ଷ୍ଟମୀ, ରାଧାଷ୍ଟମୀ ।

ଦୂର୍ବାସୋମ—ପୁଂ. ବି. ସୁଶ୍ରୁତୋକ୍ତ ରସାୟନାଙ୍ଗ ସୋମଲତାବିଶେଷ ।

ଦୂର୍ବେଷ୍ଟକା—ସ୍ତ୍ରୀ. ବି. ଯଜ୍ଞାଙ୍ଗଚତୁରୂପ ଇଷ୍ଟକାବିଶେଷ ।

ଦୂଲ୍ଲଣ—ତ୍ରି. ବିଂ. ଦୁଃଖଦ୍ୱାରା ହିଂସ୍ୟ, ଅତିକଷ୍ଟେ ହିଂସନୀୟ ।

ଦୂଳିକା—ସ୍ତ୍ରୀ. ବି. (ଦୂଳୀ+ସ୍ୱାର୍ଥେ—କ+ଆ) ଦୂଳୀ, ନୀଳୀ ।

ଦୂଳୀ—ସ୍ତ୍ରୀ. ବି. ନୀଳୀବୃକ୍ଷ, ନୀଳଗଛ ବା ନୀଳଗୁଳ୍ମ ।

ଦୂଶ୍ୟ—କ୍ଲୀ. ବି.(ଦୂ+ଶୈ+ ଅଧି.ଅ) ବସ୍ତ୍ରଗୃହ, ତମ୍ବୁ ।

ଦୂଷ୍(ଷି)—ଧାତୁ ଦୁଷ୍‌ଧାତୁର ଣିଜନ୍ତ ଆକୃତ ) ଦୋଷଦେବା,ବିକୃତହେବା ।

ଦୂଷକ—ପୁଂ. ବିଂ. (ଦୂଷ୍+କ.ଅକ) ଯେ ଅପବାଦ ଦିଏ, ନିନ୍ଦକ, ଦୋଷ-ଦର୍ଶକ, ଦୋଷଜନକ, ଯେ ଦୂଷିତ କରେ,ଯେଉଁ ପୁରୁଷ କୌଣସି ବାଳିକା ବା ଯୁବତୀଙ୍କୁ ଅବୈଧ ଉପାୟରେ ସଙ୍ଗମ କରେ,( ସ୍ତ୍ରୀ ) ଦୂଷିକା, (ପର୍ଯ୍ୟାୟ—ପାଂଶଳ )

ଦୂଷଣ—କ୍ଲୀ. ବି. ( ଦୂଷ୍+ଭା. ଅନ ) ଦୋଷ, ଅପରାଧ, ପାପ,ନିନ୍ଦା,କଳଙ୍କ, ଅପବାଦ, ଦୋଷାରୋପ; ନଷ୍ଟକରିବା, ମାରିକରିବା, ଅଶୁଚ କରିବା, ଧର୍ଷଣ, ସ୍ତ୍ରୀକୁ ଅବୈଧଭାବେ ହରଣ, ପୁଂ. (ଦୂଷ୍+କ.ଅନ)ରାବଣର ମାଉସୀ ପୁଅ ଭାଇ, ରାକ୍ଷସବିଶେଷ, ବିଂ. (ଦୂଷ୍+କ.ଅନ) ଦୋଷଜନକ, ଦୂଷକ, ଯେ ମାରିକରେ, ଦୋଷଯୁକ୍ତ ।

ଦୂଷଣଅରି—ଗ୍ରା. ବି. ( ସଂ-ଦୂଷଣାରି ) ଦୂଷଣ ରାକ୍ଷସର ବିନାଶକର୍ତ୍ତା,ରାମଚନ୍ଦ୍ର ।

ଦୂଷଣାବହ—ବିଂ. (ଦୂଷଣ+ଆ+ବହ୍+କ.ଅ) ଦୋଷାବହ, ଦୂଷ୍ୟ ।

ଦୂଷଣାରି—ବି. (ଦୂଷଣ + ଅରି)୬ତତ୍ପୁ; ରାମଚନ୍ଦ୍ର ।

ଦୂଷଣୀୟ—ପୁଂ. ବିଂ.(ଦୂଷ୍+ମିଂ.ଅନୀୟ) ଣିଜନ୍ତ ରୂପ;ଦୂଷ୍ୟ,ନିନ୍ଦନୀୟ,ଦୋଷା-ବହ, (ସ୍ତ୍ରୀ) ଦୂଷଣୀୟା ।

ଦୂଷୟିତା—ପୁଂ. ବି. (ସକଳଅର୍ଥେ—ଣିଜନ୍ତରୂପ, ଦୂଷ୍+କ.ତୃ) ଦୂଷକ, ଅଶୁଚକାରକ,ଦୋଷୋତ୍ପାଦକ,(ସ୍ତ୍ରୀ) ଦୂଷୟିତ୍ରୀ ।

ଦୂଷୟିନ୍ନୁ—ତ୍ରି. ବିଂ. (ଦୂଷ୍+ଶୀଳାର୍ଥେ ଇନ୍ନୁ ) ଦୂଷୟିତା ଦେଖ ।

ଦୂଷା—ଦୂଷା ଦେଖ ।

ଦୂଷି—ବି. (ଦୂଷ୍+କ.ଇ) ନେତ୍ରମଳ, ଆଖିଲେଞ୍ଜେରି ।

ଦୂଷିକା—ସ୍ତ୍ରୀ. ବିଂ. ( ଦୂଷକ+ଆ ) ଦୂଷଣକାରିଣୀ, ବି. (ଦୂଷି + ସ୍ୱାର୍ଥେ-କ.ଆ)ନେତ୍ରମଳ,ଦୂଳିକା,(ପର୍ଯ୍ୟାୟ—ଦୂଷି, ଦୂଷୀ, ପିଷ୍ଟୋଡ଼କ, ଦୂଷିକା, ପିଞ୍ଜୋଟ, ପିଚ୍ଚଟ)।

ଦୂଷିତ—ତ୍ରି.ବିଂ.(ଦୂଷ୍+ମିଂ.ତ)ଯାହାର ମହତ୍ତ୍ୱ ନଷ୍ଟ କରାଯାଇଅଛି, ଦୋଷ-ପ୍ରାପ୍ତ, ଦୁଷ୍ଟ, କଳୁଷିତ, କଳଙ୍କିତ, ନିନ୍ଦିତ, ଗର୍ହିତ, ପାପିଷ୍ଠ, ପାପପୂର୍ଣ୍ଣ, ଅପବିତ୍ରୀକୃତ, ଅପବାଦଗ୍ରସ୍ତ,ମୈଥୁନା-ପବାଦଯୁକ୍ତ,(ସ୍ତ୍ରୀ)ଦୂଷିତା (ପର୍ଯ୍ୟାୟ—ଅଭିଶସ୍ତ,ବାଚ୍ୟ,କ୍ଷାରିତ,ଆକ୍ଷାରିତ ) ।

ଦୂଷିତା—ସ୍ତ୍ରୀ.ବିଂ. ଯେଉଁ ସ୍ତ୍ରୀ ବା ବାଳି-କାର ସତୀତ୍ୱ ନଷ୍ଟ କରାଯାଇଅଛି, ପାପିଷ୍ଠା,(ପର୍ଯ୍ୟାୟ-ସଖେଦା,ବର୍ଷକାରିଣୀ, ପ୍ରମାର୍ଦ୍ଦିକା ।

ଦୂଷିବା—ଗ୍ରା. କ୍ରି. ଦୋଷାରୋପ କରିବା, ନିନ୍ଦା କରିବା, କଳଙ୍କିତ କରିବା ।

ଦୂଷୀ—ସ୍ତ୍ରୀ. ବିଂ. (ଦୂଷ୍+କ.ଇ)ଦୂଷି ଦେଖ ।

ଦୂଷୀବିଷ—କ୍ଲୀ. ବି. ସୁଶ୍ରୁତ ଅନୁସାରେ ଦେହର ଅଭ୍ୟନ୍ତରରେ ବ୍ୟାପିରହିବା ଏକପ୍ରକାର ବିଷ । [ଦ୍ରବ୍ୟ ।

ଦୂଷୀବିଷାରି—ପୁଂ.ବି. ଦୂଷୀବିଷନାଶକ

ଦୂଷ୍ୟ—ତ୍ରି. ବିଂ. ( ଦୂଷ୍+ମିଂ+ଯ ) ନିନ୍ଦନୀୟ, ନିନ୍ଦ୍ୟ, ଦୂଷଣୀୟ, ତ୍ୟାଜ୍ୟ, ମନ୍ଦ, ତୁଚ୍ଛ, ହେୟ, ରାଜ୍ୟର ହାନିକାରକ, (ବି) ପଟ୍ଟମଣ୍ଡପ, ବସ୍ତ୍ର-ଗୃହ, ତମ୍ବୁ, ପୂଯ, ଶାର୍ଟ୍ୟ, ବସ୍ତ୍ର, ଲୁଗା, (ସ୍ତ୍ରୀ) ଦୂଷ୍ୟା ।

ଦୂଷ୍ୟା—ସ୍ତ୍ରୀ. ବିଂ. (ଦୂଷ୍ୟ+ଆ)ଦୂଷ-ଣୀୟା, ନିନ୍ଦନୀୟା, ତ୍ୟାଗଯୋଗ୍ୟା, ଦୂଷ୍ୟଦେଖ,(ବି.) ହସ୍ତୀ ଅଶ୍ୱ ପ୍ରଭୃତିର କଟିବନ୍ଧ, ହସ୍ତୀକକ୍ଷରେ ଭିଡ଼ାଯିବା ରଜ୍ଜୁ, (ପର୍ଯ୍ୟାୟ-କକ୍ଷା, ବରତ୍ରା,ଚୂଷା ।

ଦୂଷ୍ୟୋଦର—କ୍ଲୀ. ବି. ଉଦରରୋଗ-ବିଶେଷ ।

ଦୃ—(ଧାତୁ) ଆଦର କରିବା ।

ଦୃଂହଣ—କ୍ଲୀ. ବି. (ଦୃଂହ୍+ଅନ)ଦୃଢ଼-କରଣ ।

ଦୃଂହିତ—ତ୍ରି.ବିଂ.(ଦୃଂହ୍+ତ)ବର୍ଦ୍ଧିତ ।

ଦୃକ୍—ସ୍ତ୍ରୀ. ବି.(ଦୃଶ୍+ଣ.କ୍ୱିପ୍)ଦର୍ଶନେ-ନ୍ଦ୍ରିୟ, ଚକ୍ଷୁଃ, (ଦୃଶ୍+ଭା.କ୍ୱିପ୍) ଦୃଷ୍ଟି, ଜ୍ଞାନ, ( ଦୃଶ୍+କ.କ୍ୱିପ୍ ) ସାକ୍ଷୀ, (ବିଂ) ଦର୍ଶକ, (ଦୃଶ୍+ମିଂ.କ୍ୱିପ୍)ଯାହା (ଅମୁକ) ପରି ଦିଶେ, ଯେ ଜାଣେ ।

ଦୃକ୍କ—କ୍ଲୀ. ବି. ଛିଦ୍ର ।

ଦୃକ୍‌କର୍ଣ୍ଣ—ସ. ପୁଂ. ବି. (ଦୃକ୍+କର୍ଣ୍ଣ); ଦ୍ୱନ୍ଦ୍ୱ).ଆଖି ଓ କାନ, ଦୃଷ୍ଟି ଓ ଶ୍ରୁତ, (ବ.ବ୍ରୀ)ସାପ, ଚକ୍ଷୁଶ୍ରବାଃ, (ବିଂ.ବ.ବ୍ରୀ) ଯେ ଆଖି ଦ୍ୱାରା ଶୁଣେ, ।

ଦୃକ୍କାଣ—କ୍ଲୀ. ବି. ଜ୍ୟୋତିଷୋକ୍ତ-ରାଶିର ତୃତୀୟ ଦଶାଂଶରୂପ ଅଂଶ, ଦ୍ରେକ୍କାଣ ।

ଦୃକ୍‌କର୍ମ—କ୍ଲୀ.ବି. ଗ୍ରହମାନଙ୍କର ଦର୍ଶନ ଯୋଗ୍ୟତା ଜ୍ଞାନାର୍ଥ କର୍ମବିଶେଷ ।

ଦୃକ୍‌କୋଣ—ବି.(ଦୃକ୍+କୋଣ)୬ତତ୍ପୁ; ଆଖିର କଣ ।

ଦୃକ୍‌କ୍ଷେପ—ବି. (ଦୃକ୍+କ୍ଷେପ)୬ତତ୍ପୁ; ଦୃକ୍‌ପାତ, ଦୃଷ୍ଟିପାତ, ସୂର୍ଯ୍ୟ ।

ଦୃକ୍‌ପଥ—ବି. ( ଦୃକ୍+ପଥ ) ୬ତତ୍ପୁ; ଦୃଷ୍ଟିପଥ, ଦୃଷ୍ଟି ଯୋଗ୍ୟ ସ୍ଥାନ ।

ଦୃକ୍‌ପାତ—ବି. (ଦୃକ୍+ପାତ) ୬ତତ୍ପୁ;

ଦେବରାଜା—ଗ୍ରା. ବି. (ସଂ-ଦେବରାଜ) ଦେବରାଜ୍ ଦେଖ ।

ଦେବରାତ—ପୁଂ. ବି. (ଦେବ+ରା+ର୍ମି.ତ) ପରୀକ୍ଷିତ, ଅର୍ଜୁନଙ୍କ ପୌତ୍ର, ବିଶ୍ୱାମିତ୍ରଙ୍କ ପୁତ୍ର, ଏକପ୍ରକାର ସାରସ ପକ୍ଷୀ. (ବିଂ) ଦେବଦତ୍ତ, ଦେବରକ୍ଷିତ, ଦେବତାଙ୍କ ଦ୍ୱାରା ରକ୍ଷିତ ।

ଦେବରାମା—ଗ୍ରା. ( ବସ୍ତ୍ରର ) ସ୍ତ୍ରୀ. ବି. ସ୍ନାନ କାଥା । [ ସ୍ୱିତା ।

ଦେବରାମ—ଜଣେ ସଂସ୍କୃତଗ୍ରନ୍ଥ ରଚ-

ଦେବରାସ୍ୟ—ବିଜୟ ନଗରର ପ୍ରାଚୀନ ଚନ୍ଦ୍ରବଂଶୀୟ ରାଜା ।

ଦେବର୍ଷି—ପୁଂ. ବି. ( ଦେବ + ଋଷି ) ମଧ୍ୟ-କ. ଧା; ଦେବତାପ୍ରକୃତିବିଶିଷ୍ଟ ମୁନି, ନାରଦ, ନ୍ୟାସ୍ୟାଦିକର୍ତ୍ତା କଣାଦାଦି ।

ଦେବଲ—ପୁଂ.ବିଂ. (ଦେବ+ଲ୍+କ. ଅ) ଦେଉଳିଆ, ପୂଜାହାରୀ, ନୀଚଶ୍ରେଣୀୟ ବ୍ରାହ୍ମଣ, ପଣ୍ଡା, (ବି) ମନ୍ଦିର, ଦେବାଳୟ, ଅଷ୍ଟବକ୍ର ମୁନି, ଏକସ୍ମୃତିକାର ।

ଦେବଲ—ସିନ୍ଧୁନଦର ମୁହାଣରେ ଅବସ୍ଥିତ ଗୋଟିଏ ପ୍ରାଚୀନ ବନ୍ଦର ।

ଦେବଲକ—ପୁଂ. ବି. (ଦେବଲ + କ) ଦେବଲ । [ ଦେଖ ।

ଦେବଲଘାଟ—ପୁଂ. ବି. ଦେଉଳଘାଟ

ଦେବଲତା—ସ୍ତ୍ରୀ.ବି. (ଦେବଲ+ସ୍ତ୍ରୀ.ତା) ନବମଲ୍ଲିକା, ନଆଳୀ ଦେବଲତ୍ୱ ।

ଦେବଲାଙ୍ଗୁଳିକା—ସ୍ତ୍ରୀ. ବି. ବୃଶ୍ଚିକାଳି, ବିଛୁଆତି ଲତା ।

ଦେବଲାଭ—ସ୍ତ୍ରୀ. ବି. ( ଦେବ+ଲାଭ ) ୬ତତ୍; ଦେବପ୍ରତିମା ଗ୍ରହଣ ।

ଦେବଲୋକ—ପୁଂ.ବି. (ଦେବ+ଲୋକ) ୬ତତ୍; ଅମରାଧାମ, ସ୍ୱର୍ଗ, ଭୁବଂଦ ହସ୍ତଲୋକ, (ଗ୍ରା.ବି) ଦେବତାମାନେ ।

ଦେବଶତ୍ରୁ—ପୁଂ. ବି. (ଦେବ+ଶତ୍ରୁ) ୬ତତ୍; ଅସୁର ।

ଦେବଶର୍ମା—ପୁଂ. ବି. (ଦେବ+ଶର୍ମନ୍) ବ୍ରାହ୍ମଣଙ୍କ ଉପାଧି, ଜନୈକ ଋଷି, ଜଣେ ବେଦଜ୍ଞ ବ୍ରାହ୍ମଣ ।

ଦେବଶସ୍—ଅବ୍ୟ. ଦେବତା ।

ଦେବସାୟୁଜ୍ୟ—କ୍ଲୀ ବିଂ. (ଦେବ+ସାୟୁଜ୍ୟ) ୬ତତ୍; ଦେବତ୍ୱ, ଦେବସାଦୃଶ୍ୟ, ଦେବତାଙ୍କର ସାହଚର୍ଯ୍ୟ ।

ଦେବସିଂହ—ସ୍ୱାମୀନରଙ୍କ କନିଷ୍ଠପୁତ୍ର, କମୋମଣ୍ଡଳର ଅଧୀଶ୍ୱର, ଜଣେ ବାସ୍ତୁଶାସ୍ତ୍ର ରଚୟିତା ।

ଦେବସୁଷି—ପୁଂ. ବି. ପ୍ରାଣାଦି ଦ୍ୱାରା ବକ୍ଷମାଣ ହୃଦୟର ଦ୍ୱାରବିଶେଷ ।

ଦେବସୂ—ପୁଂ.ବି. (ଦେବ+ସୂ+କ୍ୱିପ୍) ଅନୁଜ୍ଞାକର୍ତ୍ତା ଦେବବିଶେଷ ।

ଦେବସୂର—ଜଣେ ଜୈନ ଗ୍ରନ୍ଥକାର ।

ଦେବସୃଷ୍ଟ—ତ୍ରି. ବିଂ. ଦେବତାକର୍ତ୍ତୃକ ସୃଷ୍ଟ ।

ଦେବସୃଷ୍ଟା—ସ୍ତ୍ରୀ. ବି. (ଦେବ+ସୃଷ୍ଟା) ୩ତତ୍; ମଦିରା, ସୁରା ।

ଦେବସେନ—ପୌଣ୍ଡ୍ରବର୍ଦ୍ଧନର ରାଜା ।

ଦେବସେନ—ଜଣେ ପ୍ରସିଦ୍ଧ ଜୈନଗ୍ରନ୍ଥକାର ।

ଦେବସେନା—ସ୍ତ୍ରୀ.ବି.(ଦେବା+ସେନା) ୬ତତ୍; ଦେବତାମାନଙ୍କର ସୈନ୍ୟ, କାର୍ତ୍ତିକେୟ, ଦେବଙ୍କ ସ୍ତ୍ରୀ, ବ୍ରହ୍ମାଙ୍କ କନ୍ୟା ।

ଦେବସେନାପତି—ପୁଂ. ବି. (ଦେବ+ସେନାପତି)୬ତତ୍, କାର୍ତ୍ତିକେୟ ।

ଦେବସେବା—ବି. ଦେବପୂଜା ଦେଖ ।

ଦେବସ୍ଥଳି—ଆମ୍ନାୟ ତନ୍ତ୍ରରଚୟିତା ।

ଦେବସ୍ଥାନ—ପୁଂ. ବି. ଦେବାଳୟ, ଜଣେ ପ୍ରସିଦ୍ଧ ବ୍ରହ୍ମର୍ଷି, (ପ୍ରା, ଗଞ୍ଜାମ) ବି. ଦେବୋତ୍ତର ଇଲାକା ।

ଦେବସ୍ଥାନକମିଟି—ପ୍ରା. ( ଗଞ୍ଜାମ ) ବି. ଦେବୋତ୍ତର ସମ୍ପତ୍ତିର ତତ୍ତ୍ୱ ନେବାପାଇଁ ସରକାରଙ୍କ ତରଫରୁ ନିଯୁକ୍ତ ସଭା ବା କମିଟି ।

ଦେବସ୍ମିତା—ଧର୍ମଗୁପ୍ତ ବଣିକର କନ୍ୟା, ପରମସତୀ ।

ଦେବସ୍ୱ—କ୍ଲୀ.ବି. (ଦେବ+ସ୍ୱ)୬ତତ୍; ଦେବତାଙ୍କ ଧନ, ଦେବସେବାର୍ଥ ଉତ୍ସର୍ଗୀକୃତ ଧନ, ଯଜ୍ଞଶୀଳ ବ୍ୟକ୍ତିଙ୍କ ଧନ ।

ଦେବସୂକ୍ତ—ପୁଂ. ବି. ଦେବସ୍ତୁତିର ପ୍ରତିକଯୁକ୍ତ ଅଧ୍ୟାୟ ବା ଅନୁବାକ ।

ଦେବସ୍ୱାମୀ—ଜଣେ ବିଖ୍ୟାତ ଭାଷ୍ୟକାର "ଭକ୍ତି କଳ୍ପତରୁ" ସଂସ୍କୃତ ଗ୍ରନ୍ଥ ରଚୟିତା ।

ଦେବହବସ୍—କ୍ଲୀ. ବି. ଯଜ୍ଞୀୟ ପଶୁ ।

ଦେବହବ୍ୟ—ପୁଂ. ବି. ଋଷିବିଶେଷ ।

ଦେବହଟ୍ଟ—ଖୁଲନା ଜିଲ୍ଲାର ମାଇହାଟୀ ପରଗଣା ମଧ୍ୟସ୍ଥ ଗୋଟିଏ କ୍ଷୁଦ୍ର ସହର ।

ଦେବଶିଳ୍ପୀ—ପୁଂ.ବି(୬ତତ୍)ବିଶ୍ୱକର୍ମା ।

ଦେବଶୁନୀ—ସ୍ତ୍ରୀ. ବି. ଦେବରୂପ ପ୍ରଭାବଯୁକ୍ତା କୁକ୍କୁରୀ, ସରମା ।

ଦେବଶେଖର—ପୁଂ.ବି. ଦମନକ,(କ୍ଲୀ) ଦେବତାଙ୍କ ମସ୍ତକ ।

ଦେବଶେଷ—କ୍ଲୀ. ବି. ଅନନ୍ତ ।

ଦେବଶ୍ରବସ୍—ପୁଂ.ବି.ବିଶ୍ୱାମିତ୍ରଙ୍କ ପୁତ୍ରବିଶେଷ, ବାସୁଦେବ ଭ୍ରାତା ।

ଦେବଶ୍ରୀ—ପୁଂ. ବି. ( ଦେବ+ଶ୍ରୀ+କ୍ୱିପ୍) ଯଜ୍ଞ, (ସ୍ତ୍ରୀ) ଦେବତାମାନଙ୍କର ଲକ୍ଷ୍ମୀ ।

ଦେବଶ୍ରୁତ୍—ତ୍ରି. ବିଂ. ଦେବତାମାନଙ୍କ ମଧ୍ୟେ ବିଖ୍ୟାତ ।

ଦେବଶ୍ରୁତ—ପୁଂ. ବି. ଈଶ୍ୱର, ଶାସ୍ତ୍ର, ନାରଦ ମୁନି, ଜିନବିଶେଷ, ଶୁଦ୍ରାଗ୍ରର୍ଯ୍ୟଙ୍କର ଏକପୁତ୍ର ।

ଦେବଶ୍ରେଣୀ—ସ୍ତ୍ରୀ. ବି. ମୂର୍ବାଲତା, ଦେବତାମାନଙ୍କର ପଂକ୍ତି ।

ଦେବଶ୍ରେଷ୍ଠ—ପୁଂ. ବି. ଦ୍ୱାଦଶ ମନୁଙ୍କ ପୁତ୍ରବିଶେଷ, ଦେବତାମାନଙ୍କ ମଧ୍ୟରେ ପ୍ରଧାନ । [ ସଖା ।

ଦେବସଖା—ପୁଂ.ବିଂ. ଦେବତାମାନଙ୍କର

ଦେବସଙ୍ଗୀତଯୋନି—ପୁଂ.ବି.ନାରଦ ।

ଦେବସତ୍ର—କ୍ଲୀ. ବି. ଯଜ୍ଞବିଶେଷ ।

ଦେବସତ୍ତ୍ୱ—ତ୍ରି. ବିଂ. ଦେବତାଙ୍କ ପରି ସ୍ୱଭାବଯୁକ୍ତ ।

ଦେବସଦ୍—ତ୍ରି. ବିଂ. (ଦେବ+ସଦ୍+କ୍ୱିପ୍) ଦେବସ୍ଥାନ ।

ଦେବସଦନ—ତ୍ରି.ବିଂ (ଦେବ+ସଦ୍+

ଅନ ) ଦେବତାମାନଙ୍କର ଆଧାର, (ବ) ସ୍ୱର୍ଗ, ଦେବାଳୟ ।

ଦେବସଦ୍ମ—କ୍ଲୀ. ବ. ( ଦେବ+ସଦ୍ମ ) ଦେବତା ଗୃହ, ଦେବାଳୟ ।

ଦେବସଭା—ସ୍ତ୍ରୀ. ବ. ( ଦେବ+ସଭା ) ୬ତତ୍ର; ଦେବତାମାନଙ୍କର ବଇଠକା, ସୁଧର୍ମା ସଭା, ରାଜସଭା,( ପର୍ଯ୍ୟାୟ—ସୁଧର୍ମା, ସୁଧର୍ମ୍ମୀ) ।

ଦେବସଭ୍ୟ—ତ୍ରି. ବଂ. (ଦେବ+ସଭ୍ୟ) ସଭିକ, ଦ୍ୟୂତ ସଭାର ଅଧ୍ୟକ୍ଷ, ଦେବସଭାର ସଦସ୍ୟ, ( ପର୍ଯ୍ୟାୟ--ସଭିକ, ଦେବସାମାଜିକ) ।

ଦେବସର୍ଷପ—ପୁଂ. ବ. ବୃକ୍ଷବିଶେଷ, (ପର୍ଯ୍ୟାୟ-ଅଶ୍ୱାକ୍ଷ, ବଦର,ରକ୍ତମୂଳକ, ସୁରସର୍ଷପକ, ସୂକ୍ଷ୍ମଦଳ, ନିର୍ଜ୍ଜର ସର୍ଷପ, କୁରବାଙ୍ଘ୍ରି ।

ଦେବସହ—କ୍ଲୀ. ବ. (ଦେବ+ସହ+ଅ) ଭିକ୍ଷାସୂତ୍ରବିଶେଷ; (ସ୍ତ୍ରୀ) ଦନ୍ତୋତ୍ପଳୌଷଧି, (ପୁଂ)-ସୋମକର ପର୍ବତ ବିଶେଷ ।

ଦେବସାଗରଗଣି—ଜଣେ ଜୈନ ପଣ୍ଡିତ ।

ଦେବସାତ୍—ଅବ୍ୟ.(ଦେବ+ଦେୟାର୍ଥେ ସାତ୍) ଦେବତାଙ୍କୁ ଦେୟ,ଦେବାଧୀନ, ଦେବାସୃତ, ଦେବସାତ୍କୃତ ଦେଶ; ଅତି କଷ୍ଟେ ଦେବତାଙ୍କର ଅଧୀନ କରିବା ।

ଦେବସାତ୍କୃତ—ବ୍ୟଂ. ଦେବତାଙ୍କ ଉଦ୍ଦେଶ୍ୟରେ ଦତ୍ତ, ଦେବସେବାରେ ନିଃସ୍ୱୀକୃତ ।

ଦେବସାବର୍ଣ୍ଣି—ବ. ତ୍ରୟୋଦଶ ମନୁ ।

ଦେବହୁତ—ତ୍ରି.ବଂ. ଦେବତାମାନଙ୍କର ହୁତ, ଦେବତାକର୍ତ୍ତୃକ ହୁତ ।

ଦେବହୂ—ସ୍ତ୍ରୀ. ବଂ. ଦେବାହ୍ୱାନ, (ବି) ଦେବାହ୍ୱାନ କର୍ତ୍ତା, ବ୍ରୀହ୍ମପ୍ରଣ୍ଣି ଶକଟ. ବାମକର୍ଣ୍ଣ, ଋଷିବିଶେଷ ।

ଦେବହୂତି—ସ୍ତ୍ରୀ.ବ. ସ୍ୱାୟମ୍ଭୁବ ( ମନୁ ) ମୁନଙ୍କ କନ୍ୟା ।

ଦେବହୂୟ—ପୁଂ.ବ.ଦେବତା ଓ ଅସୁରମାନଙ୍କର ଯୁଦ୍ଧ ।

ଦେବହେଳନ—କ୍ଲୀ. ବ. ( ଦେବ+ହେଳନ, ୬ତତ୍ର) ଦେବତାମାନଙ୍କର ନିକଟ ଅପରାଧ, ଦେବଗଣଙ୍କର ଅବଜ୍ଞା ।

ଦେବହେତି—ସ୍ତ୍ରୀ.ବ. ଦେବାସ୍ତ୍ର ।

ଦେବହୋତ୍ର—ପୁଂ. ବ. ତ୍ରୟୋଦଶ ମନ୍ୱନ୍ତରରେ ଯୋଗେଶ୍ୱରରୂପ ହରିଙ୍କ ପିତା । [ ବିଶେଷ ।

ଦେବହ୍ରଦ—ପୁଂ. ବ. ଶ୍ରୀପର୍ବତସ୍ଥ ତୀର୍ଥ-

ଦେବା—ସ୍ତ୍ରୀ. ବ.(ଦିବ୍+ଅ+ଆ)ପଦ୍ମଚାରିଣୀଲତା, ଅଶନପର୍ଣ୍ଣୀ, ମୂର୍ବ୍ବା, (ପର୍ଯ୍ୟାୟ—ତେଜନୀ, ପିଲୁନୀ,ଦେବୀ, ଢକ୍ତବଲ୍ଲୀ, ପୃଥକ୍ତ୍ୱଚ୍, ଧନୁଃଶ୍ରେଣୀ, ମଧୁରସା,ନିର୍ଦ୍ଦହନୀ) (ପୁଂ,ବି )--ଦିବ+ସଂଜ୍ଞାର୍ଥେ ର) ଦେବର,ଦିଅର, ରଣ୍ଡାପତି,ରଣ୍ଡୀ ସ୍ତ୍ରୀର ସ୍ୱାମୀ, ଠାସୁଁ,(ଗ୍ରା.ବ-ପ୍ରା-କ ) ଦେବତା, ପୁଂ ଦେବତା, ଗ୍ରା.କ୍ରି. (ଦା ଓ ଦେଧାତୁ) ଉପହାର-ଦେବା, ପ୍ରଦାନକରିବା, ଦାନକରିବା, (ଛୁଟିଆଦି)ମଞ୍ଜୁରକରିବା,ଯୋଗାଇବା, ସ୍ଥାପନକରିବା, ପଠାଇବା, ପ୍ରେରଣ କରିବା, ଘଟାଇବା, ଅନୁଭୂତ କରାଇବା, ଭୋଗକରାଇବା, ଉତ୍ପାଦନ କରିବା, ଅମୁକକ୍ରିୟା କରିବା, ବନ୍ଦକରିବା, ଛାଡ଼ିଦେବା, ଲଗାଇବା, ବୋଳିବା, (ସ୍ତନ୍ୟାଦି)ପାନ କରାଇବା, (ପ୍ରହାରାଦି) କରିବା,(ଶିଜନନ୍ତ୍ରଦିଆଇବା, (କପ-ନେବା) ।

ଦେବାକ୍ରୀଡ଼—ପୁଂ. ବ. (ଦେବ+ଆ+କ୍ରୀଡ଼+ଅଧି.ଅ)ଦେବୋପବନ,ଇନ୍ଦ୍ରଙ୍କ ଉଦ୍ୟାନ ।

ଦେବାଗାର—ପୁଂ.ବ.(ଦେବ+ଆଗାର) ୬ତତ୍ର;ଦେବାଳୟ, ଦେବତାମାନଙ୍କର ସ୍ଥାନ ।

ଦେବାଗାରିକ—ତ୍ରି. ବଂ.(ଦେବାଗାର+ଇକ) ଦେବମନ୍ଦିରେ ନିଯୁକ୍ତ, ( ସ୍ତ୍ରୀ ) ଦେବାଗାରିକା ।

ଦେବାଙ୍ଗ—ଦକ୍ଷିଣାପଥର ଏକ ଶ୍ରେଣୀୟ ତନ୍ତୁବାୟ (ତନ୍ତି) ।

ଦେବାଙ୍ଗନା—ସ୍ତ୍ରୀ. ବ. (ଦେବ+ଅଙ୍ଗନା) ୬ତତ୍ର; ଦେବରମଣୀ, ଅପ୍ସରା ।

ଦେବାଚୀ—ସ୍ତ୍ରୀ. ବ. ଦେବତାମାନଙ୍କର ପ୍ରତିଗମନଶୀଳା, ଦେବପୂଜକା ।

ଦେବାଜୀବ—ପୁଂ. ବ. (ଦେବ+ଆଜୀବ) ବ.ବ୍ରୀ;ଦେବପୂଜକ ବ୍ରାହ୍ମଣ,ପୂଜାହାରୀ-ବ୍ରାହ୍ମଣ ।

ଦେବାଜୀବନ୍—ତ୍ରି. ବଂ. (ଦେବ+ଆ+ଜୀବ୍+ଇନ୍) ଦେବଲ ।

ଦେବାଟ—ପୁଂ. ବ. ହରିହର କ୍ଷେତ୍ର, (ବଂ)ଦେବତାମାନଙ୍କ ପ୍ରତି ଗମନଶୀଳ ।

ଦେବାତିଥି—ପୁଂ. ବ. କୁରୁବଂଶୀୟ ଅକ୍ରୋଧନଙ୍କ ପୁତ୍ର ।

ଦେବାତିଦେବ—ପୁଂ.ବ. (ଦେବ+ଅତି ଦିବ୍+ଅ) ବିଷ୍ଣୁ ।

ଦେବାତ୍ମା—ତ୍ରି. ବଂ. (ଦେବ+ଆତ୍ମନ୍) ବ.ବ୍ରୀ; ଦେବତାସ୍ୱରୂପ, ( ପୁଂ.ବି ) ଅଶ୍ୱତ୍ଥ ବୃକ୍ଷ ।

ଦେବାଦିଦେବ—ପୁଂ. ବ. (ଦେବ+ଆଦିଦେବ) ୬ତତ୍ର; ଶିବ, ବିଷ୍ଣୁ ।

ଦେବାଦେବୀ—ଗ୍ରା. ବ. (ଦେ+ଦେବୀ) ବ.ବ୍ରୀ; ଅମର ଓ ଅମରୀ, ଦେବଗଣ ଓ ଦେବୀଗଣ ।

ଦେବାଧି—ଗ୍ରା. ବ. (ସଂ-ଦେବାଧିଦେବ) ପ୍ରଧାନ ଦେବତା, ଲୋକଙ୍କ ନାମ ।

ଦେବାଧିଦେବ—ପୁଂ.ବ. (ଦେବ+ଅଧିଦେବ) ମହାଦେବ, ଇନ୍ଦ୍ର, ପ୍ରଧାନ ଦେବତା, ଜିନ୍ ।

ଦେବାଧିପ—ପୁଂ.ବ. ପରମେଶ୍ୱର,ଇନ୍ଦ୍ର, ଦ୍ୱାପରଯୁଗର ରାଜାବିଶେଷ ।

ଦେବାନ୍(ଇତ୍ୟାଦି)—ଦେଓ୍ୱାନଇତ୍ୟାଦି ଦେଖ ।

ଦେବାନ୍‌ହରବଂଶରାୟ—ଗ୍ରା. ବ. ମରହଟ୍ଟାମାନଙ୍କର ଜଣେକ ଖ୍ୟାତନାମା ଦେବାନ୍ ।

ଦେବାନାମ୍ପ୍ରିୟ—ପୁଂ. ବ. ଦେବତାମାନଙ୍କର ପ୍ରିୟ, (୬ତତ୍ର), ମୂର୍ଖବ୍ୟକ୍ତି, ଛାଗ, ଧର୍ମାଶୋକ; ( ବଂ ) ଦେବତାମାନଙ୍କର ପ୍ରିୟ, ଅଶୋକଙ୍କର ନାମ

ପୂର୍ବରେ ଅଶୋକ ଲଗାଇଥିବା ବିଶେଷଣ ।                    [ ଦେଖ ।

ଦେବାଶ୍ମ(ଇତ୍ୟାଦି)—ଦେଓ୍ୱାଶ୍ମଇତ୍ୟାଦି

ଦେବାନୀକ—ପୁଂ. ବି. ସାବର୍ଣ୍ଣି ନାମକ ତୃତୀୟ ମନୁଙ୍କ ପୁତ୍ରବିଶେଷ, ସଗର ବଂଶୀୟ ନୃପବିଶେଷ, କ୍ଲୀ; (ଦେବ+ଅନୀକ) ଦେବତାମାନଙ୍କର ସୈନ୍ୟ ।

ଦେବାନୁକ୍ରମ—ପୁଂ. ବି. ବୈଦିକମନ୍ତ୍ରର ଦେବତାଜ୍ଞାପକ ଗ୍ରନ୍ଥବିଶେଷ ।

ଦେବାନୁଚର—ତ୍ରି.ବିଂ. (ଦେବ+ଅନୁଚର) ୬ତତ୍; ଦେବାନୁଗାମୀ,(ପୁଂ.ବି) ବିଦ୍ୟାଧରାଦି ଉପଦେବ, (ସ୍ତ୍ରୀ) ଦେବାନୁଚରୀ ।

ଦେବାନୁଯାୟୀ—ପୁଂ. ବି. (ଦେବ+ଅନୁ+ଯା+ଇନ୍) ଦେବାନୁଚର ।

ଦେବାନ୍ତକ—ପୁଂ. ବି. (ଦେବ+ଅନ୍ତକ) ୬ତତ୍; ରାକ୍ଷସବିଶେଷ,ଦୈତ୍ୟବିଶେଷ ।

ଦେବାନ୍ଧସ୍—କ୍ଲୀ. ବି. ଅମୃତ, ଦେବନୈବେଦ୍ୟାର୍ଥେ କଳ୍ପିତ ଅନ୍ନ ।

ଦେବାପଦ—ଗ୍ରା. ବି. 'ଦେବା' ବେଶଇ, ଦାଉଡ଼ି ।

ଦେବାପି—ପୁଂ. ବି. ମହାଭାରତ ଅନୁସାରେ ରାଜା ଶାନ୍ତନୁଙ୍କ ଭାଇ ।

ଦେବାବତାର—ପୁଂ.ବି. (ଦେବ+ଅବତାର) ୬ତତ୍; ଦେବତାମାନଙ୍କର ଅବତାର ।

ଦେବାବାସ—ପୁଂ.ବି. (ଦେବ+ଆବାସ) ୬ତତ୍; ଦେବାଳୟ, ଅଶ୍ୱତ୍ଥ ବୃକ୍ଷ, ସ୍ୱର୍ଗ, ସୁମେରୁ ପର୍ବତ ।

ଦେବାବେଶ—ବି. (ଦେବ+ଆବେଶ) ୬ତତ୍; ମନୁଷ୍ୟଙ୍କ ଠାରେ ଦେବତାଙ୍କ ଆତ୍ମାର ଆବିର୍ଭାବ, ଠାକୁରାଣୀ ଲାଗିବା, ଠାକୁରାଣୀ ଉଭାହେବା ।

ଦେବାବୃଧ୍—ପୁଂ.ବି. (ଦେବ+ବୃଧ୍+କ୍ୱିପ୍ ପର୍ବତବିଶେଷ ।

ଦେବାଭୀଷ୍ଟ—ତ୍ରି. ବିଂ. (ଦେବ+ଅଭୀଷ୍ଟ) ଦେବତାମାନଙ୍କର ଅଭିଳଷିତ, (ସ୍ତ୍ରୀ) ଦେବାଭୀଷ୍ଟା, ତାମ୍ବୁଳୀ ।

ଦେବାୟତନ—କ୍ଲୀ. ବି. (ଦେବ+ଆୟତନ) ୬ତତ୍; ଦେବାଳୟ ।

ଦେବାୟୁଧ—କ୍ଲୀ. ବି. (ଦେବ+ଆୟୁଧ) ୬ତତ୍, ଦେବତାଙ୍କର ଅସ୍ତ୍ରଶସ୍ତ୍ର, ଇନ୍ଦ୍ରଧନୁ ।

ଦେବାୟୁଷ—କ୍ଲୀ. ବି. ଦେବତାମାନଙ୍କର ଜୀବନକାଳ ।

ଦେବାରଣ୍ୟ—କ୍ଲୀ.ବି.(ଦେବ+ଅରଣ୍ୟ) ୬ତତ୍; ଦେବତାଙ୍କ ବିଚରଣ ସ୍ଥାନ, ତୀର୍ଥବିଶେଷ,ଦେବତାମାନଙ୍କର ଉଦ୍ୟାନ ଦେବାକ୍ରୀଡ଼ ।

ଦେବାରାଧନ—ବି. (ଦେବ+ଆରାଧନ) ୬ତତ୍; ଦେବତାମାନଙ୍କର ଉପାସନା ବା ପୂଜା ।

ଦେବାରି—ପୁଂ. ବି. ( ଦେବ+ଅରି ) ୬ତତ୍; ଅସୁର, ଦାନବ ।

ଦେବାର୍ଚ୍ଚନ—ବି. ( ଦେବ+ଅର୍ଚ୍ଚନ ) ୬ତତ୍; ଦେବୋପାସନା, (ଗ୍ରା.ବି) ରାଜାମାନଙ୍କର ଦୈନିକ ସନ୍ଧ୍ୟା ବନ୍ଦନାଦି ନୀତି ।

ଦେବାର୍ପଣ—କ୍ଲୀ. ବି. ଦେବୋଦ୍ଦେଶେ ଦେୟ ଦ୍ରବ୍ୟର ଦାନ ହେତୁ ଫଳତ୍ୟାଗ, ଋଗ୍ବେଦାଦି ।

ଦେବାର୍ଯ୍ୟ—ପୁଂ. ବି. ଅର୍ହଦ୍ଗଣଭେଦ ।

ଦେବାର୍ହ—ତ୍ରି. ବିଂ. (ଦେବ+ଅର୍ହ+ଅ) ଦେବତାଙ୍କ ପାଇଁ ଦାନ ଯୋଗ୍ୟ, (କ୍ଲୀ) ସୁରପର୍ଣ୍ଣୀ ।

ଦେବାର୍ହା—ସ୍ତ୍ରୀ. ବି. (ଦେବାର୍ହ+ଅ)ସହଦେବୀ ଲତା ।                    [ ମାୟା ।

ଦେବାଳ—ଗ୍ରା. ବି. ଦେବାଳୟ, ଦେବ-

ଦେବାଳୟ—ପୁଂ.ବି. (ଦେବ+ଆଳୟ) ୬ତତ୍; ଦେଉଳ, ଦେବମନ୍ଦିର, ସ୍ୱର୍ଗ ।

ଦେବାଳା—ସ୍ତ୍ରୀ. ବି. ରାଗିଣୀବିଶେଷ ।

ଦେବାଶ୍ୱ—ପୁଂ. ବି. ( ଦେବ+ଅଶ୍ୱ ) ୬ତତ୍; ଇନ୍ଦ୍ରଙ୍କ ଅଶ୍ୱ, ଉଚ୍ଚୈଃଶ୍ରବା ।

ଦେବାହାର—ପୁଂ.ବି.(ଦେବ+ଆହାର) (୬ତତ୍; କ.ଧା) ଅମୃତ, ସୁଧା ।

ଦେବିକ—ତ୍ରି. ବିଂ. ( ଦେବ+ଇକ ) ଦେବସମ୍ବନ୍ଧୀୟ (ପୁଂ.ବି) ଅନୁକମ୍ପିତ ଦେବଦତ୍ତ ।

ଦେବିକା—ସ୍ତ୍ରୀ. ବି. (ଦୈବିକ) ଧାତୁସ୍ଥ ଦେଖ, ଘାଘରା ନଦୀ, (ପୁଂ) ଯୁଧିଷ୍ଠିରଙ୍କର ଏକପତ୍ନୀ ।

ଦେବିକାତୀର୍ଥ—ଗ୍ରା. ବି. ହିନ୍ଦୁମାନଙ୍କର ତୀର୍ଥବିଶେଷ, ସରୟୂନଦୀ ।

ଦେବିତୃ—ପୁଂ. ବି. (ଦିବ+ତୃ) ଅକ୍ଷକ୍ରୀଡ଼ାକାଙ୍କ୍ଷୀ ।

ଦେବିନ୍—ତ୍ରି.ବିଂ.(ଦିବ+ଇନ୍)କ୍ରୀଡ଼ାକାରକ ।                    [ ଦତ୍ତ ।

ଦେବିୟ—ପୁଂ.ବି. ଅନୁକମ୍ପିତ ଦେବ-

ଦେବିଲ—ପୁଂ. ବିଂ. ( ଦେବ+ଇଲ ) ଦେବପରାୟଣ, ଧାର୍ମିକ,(ବି)ଅନୁକମ୍ପିତ, ଦେବଦତ୍ତ,(ସ୍ତ୍ରୀ) ଦେବିଲା ।

ଦେବୀ—ସ୍ତ୍ରୀ.ବି.(ଦେବ+ଈ)ସ୍ତ୍ରୀ ଦେବତା ମହାଶକ୍ତି ଦୁର୍ଗା, ପାଟରାଣୀ, ବ୍ରାହ୍ମଣୀ ପୂଜ୍ୟା ବା ମାନ୍ୟା ସ୍ତ୍ରୀ,ଶାଲପର୍ଣ୍ଣୀ,ପିଡଙ୍ଗ, ମୂର୍ବା, ଅଷାଢୁଆ, ଅଣସୋରିଷିଆ, ଆଦିତ୍ୟଭକ୍ତା, ସୁଶୀଳା ଓ ସଦାଚାରିଣୀ ସ୍ତ୍ରୀ, ନାଗରମୁଥା, ହରିଦ୍ରା, ଡଣି, ଶ୍ୟାମାପକ୍ଷୀ, (ଗ୍ରା.ସ୍ତ୍ରୀ.ବି) ପାଟରାଣୀଙ୍କ ଛଡ଼ା ଅନ୍ୟ ରାଣୀଙ୍କ ଉପାଧି ଓଡ଼ିଶାରେ ପ୍ରବାହିତ ଗୋଟିଏ ନଦୀ ।

ଦେବୀକୋଟ—ପୁଂ.ବି. (ଦେବୀ+କୋଟ ୬ତତ୍; ବାଣରାଜାର ନଗର, ଶୋଣିତ ପୁର ।

ଦେବୀଗୃହ—କ୍ଲୀ.ବି. ( ଦେବୀ+ଗୃହ ) ୬ତତ୍; ଦେବୀଙ୍କ ମନ୍ଦିର ।

ଦେବୀତନ୍ତ୍ର—କ୍ଲୀ. ବି. ତନ୍ତ୍ରବିଶେଷ ।

ଦେବୀତ୍ୱ—କ୍ଲୀ. ବି. ଦେବୀଙ୍କ ଭାବ ।

ଦେବୀଦ୍ୱାର—ଗ୍ରା. ବି. କଟକଜିଲ୍ଲାର ଡମପଡ଼ା ରାଜ୍ୟର ଅନ୍ତର୍ଗତ ମହାନଦୀ ତୀରବର୍ତ୍ତୀ ସ୍ଥାନବିଶେଷ, ଡମପଡ଼ାର ସ୍ୱନାମପ୍ରସିଦ୍ଧ ପର୍ବତମାଳା ।

ଦେବୀନଦୀ—ଗ୍ରା. ବି.ମହାନଦୀରଶାଖାନଦୀବିଶେଷ ।

ଦେବୀ ପାଦହରା—ଗ୍ରା.ବି. ଭୁବନେଶ୍ୱରର ପବିତ୍ର ସରୋବରବିଶେଷ ।

ଦେବୀପୁରାଣ—କ୍ଲୀ.ବି. ଦେବୀମାହାତ୍ମ୍ୟ ବିବରଣାତ୍ମକ ଉପପୁରାଣବିଶେଷ ।

ଦେଵୀଭାଗବତ—କ୍ଲୀ.ବ. ଦେଵୀମାହାତ୍ମ୍ୟ-ସୂଚକ ଭାଗବତାଖ୍ୟ ପୁରାଣବିଶେଷ ।
ଦେଵୀମାହାତ୍ମ୍ୟ—କ୍ଲୀ. ବ. ( ଦେଵ୍ୟାଃ+ମାହାତ୍ମ୍ୟ ) ୬ତତ୍; ଦେଵୀ ଦୁର୍ଗାଙ୍କ ମାହାତ୍ମ୍ୟ, ମାର୍କଣ୍ଡେୟ ପୁରାଣାନ୍ତର୍ଗତ ପ୍ରସିଦ୍ଧ ଗ୍ରନ୍ଥ, ଦୁର୍ଗାଙ୍କ ବିଷୟ ବର୍ଣ୍ଣନ-ମୂଳକ ଗ୍ରନ୍ଥ, ଚଣ୍ଡୀଗ୍ରନ୍ଥ । [ ନାମ ।
ଦେଵୀରଥ—ଗ୍ରା. ବ. ସୁଭଦ୍ରାଙ୍କ ରଥର
ଦେଵୀସୂକ୍ତ—କ୍ଲୀ. ବ. ( ଦେଵୀ+ସୂକ୍ତ, କ. ଧା ) ଋଗ୍ବେଦୀୟ ସଂହିତାର ଅନ୍ତର୍ଗତ ଭଗବତୀଙ୍କ ସୂକ୍ତ ।
ଦେଵୃ—ପୁଂ. ବ. (ଦିଵ+ଋ) ଦେଵର, ସ୍ୱାମୀଙ୍କ କନିଷ୍ଠ ଭ୍ରାତା ।
ଦେଵେଜ୍ୟ—ପୁଂ. ବ. (ଦେଵ+ଇଜ୍ୟ), ୬ତତ୍; ଦେଵଗୁରୁ, ବୃହସ୍ପତି ।
ଦେଵେନ୍ଦ୍ର—ପୁଂ. ବ. ( ଦେଵ+ଇନ୍ଦ୍ର ) (୬ତତ୍ ୭ତତ୍. ବା କ.ଧା) ଶକ୍ର. ସୁରେନ୍ଦ୍ର ।
ଦେଵେନ୍ଦ୍ରନାଥ ଠାକୁର—ପ୍ରସିଦ୍ଧ ବ୍ରାହ୍ମ-ଧର୍ମର ପ୍ରବର୍ତ୍ତକ ।
ଦେଵେଶ—ପୁଂ. ବ. ( ଦେଵ+ଈଶ, ୬ତତ୍ ) ମହାଦେଵ, ପରମେଶ୍ୱର, ବିଷ୍ଣୁ, ଇନ୍ଦ୍ର, (ସ୍ତ୍ରୀ) ଦେଵେଶୀ,ଦୁର୍ଗା ।
ଦେଵେଶୟ—ପୁଂ.ବ. (ଦେଵେ+ଶୀ+ଅ) ପରମେଶ୍ୱର, ବିଷ୍ଣୁ ।
ଦେଵେଶୀ—ସ୍ତ୍ରୀ.ବ. ( ଦେଵେଶ+ଈ ) ଦୁର୍ଗା ।
ଦେଵେଷ୍ଟ—ବି. ବଂ. ( ଦେଵ+ଇଷ୍ଟ, ୬ତତ୍ ) ଦେଵବାଞ୍ଛିତ, ଦେଵତା-ମାନଙ୍କ ପ୍ରିୟ, (ବି) ଗୁଗ୍ଗୁଳୁ, ମହା-ମେଦା ।
ଦେଵୋଚିତ—ବି. ବଂ. ( ଦେଵ+ଉଚିତ, ୬ତତ୍ )ଦେଵଯୋଗ୍ୟ,ଦେଵା-ଭ୍ୟସ୍ତ, (ସ୍ତ୍ରୀ) ଦେଵୋଚିତା ।
ଦେଵୋତ୍ତର—ବଂ. (ଦେଵ+ଉତ୍ତର) ଦେଵ ସେବା ପାଇଁ ଉତ୍ସୃଷ୍ଟ (ସମ୍ପତ୍ତି), ଦେଵ ସେବାରେ ନିୟୋଜିତ(ସମ୍ପତ୍ତି). (ଗ୍ରା.ବ.) ଦେଵ ସେବାପାଇଁ ଉତ୍ସୃଷ୍ଟ ସମ୍ପତ୍ତି ।
ଦେଵୋତ୍ତରନିଷ୍କର—ଗ୍ରା. ବ. ଦେଵ ସେବାପାଇଁ ଉତ୍ସୃଷ୍ଟ ଯେଉଁ ଜମିରୁ ଜମିଦାର ଖଜଣା ନଅନ୍ତି ନାହିଁ ।
ଦେଵୋତ୍ତର ବାଜ୍ୟାପ୍ତି—ଗ୍ରା. ବ. ଦେଵୋତ୍ତର ନିଷ୍କର ଜମିଉପରେ ଖଜଣା ଧାର୍ଯ୍ୟ ହେବା ।
ଦେଵୋତ୍ତରବାହେଲ—ଗ୍ରା.ବ.ଦେଵୋ-ତ୍ତର ଜମିର ଖଜଣା ସରକାର ମାଫ ଦେଇଥିବା ।
ଦେଵୋତ୍ତର ଲାଖରାଜ୍—ଗ୍ରା. ବ. ଚିର-କାଲ ରାଜସ୍ୱ ମାଫ୍ ପାଇଥିବାଦେଵୋ-ତ୍ତର ଜମି ।
ଦେଵୋତ୍ଥାନ—ବି. (ଦେଵ+ଉତ୍ଥାନ, ୬ତତ୍) ଉତ୍ଥାନ ଏକାଦଶୀ ଦେଖ, ଉତ୍ଥାପନ ଚତୁର୍ଦ୍ଦଶୀ ଦେଖ ।
ଦେଵୋଦ୍ୟାନ—କ୍ଲୀ.ବ. ଦେଵତାମାନ-ଙ୍କର ଉଦ୍ୟାନ, ( ନନ୍ଦନ,ଚୈତ୍ରରଥ, ବୈଭ୍ରାଜ, ସର୍ବତୋଭଦ୍ର, ପ୍ରସିଦ୍ଧ ଦେଵୋଦ୍ୟାନ । [ ରୋଗ ।
ଦେଵୋନ୍ମାଦ—ବି. ଏକପ୍ରକାର ଉନ୍ମାଦ-
ଦେଵୋପମ—ବି.ବଂ. (ଦେଵ+ଉପମା, ବ.ବ୍ରୀ) ଦେଵତୁଲ୍ୟ ।
ଦେଵୌକା—ବି. ( ଦେଵ+ଓକସ୍ ) ସୁମେରୁପର୍ବତ ।
ଦେଵ୍ୟ—କ୍ଲୀ.ବ. ଦେଵତ୍ୱ ।
ଦେମୁଲପୂଜା—(ପ୍ରା. ସମ୍ବ. ବ.)ଦେପୂଜା ଦେଖ, ଗ୍ରାମ ଦେଵତାଙ୍କ ଆସ୍ଥାନ ।
ଦେୟ—ବଂ. (ଦା+ର୍ମ.ଯ) ଦାନ କରି-ବାର ଉପଯୁକ୍ତ, ଯାହାଦେବାକୁ ହେବ, ଯାହା ଦେବା ଉଚିତ,(ସ୍ତ୍ରୀ) ଦେୟ (ବି.) ଦେୟ ଅର୍ଥ ବା ବସ୍ତୁ ।
ଦେରାଦୁନ୍—ଗ୍ରା. ବ. ଉତ୍ତର ପଶ୍ଚିମ ପ୍ରଦେଶ ଅନ୍ତର୍ଗତ ଗୋଟିଏ ଜିଲ୍ଲା ଓ ତାହାର ରାଜଧାନୀ ।
ଦେରି—ଯା.ବ. ଡେରି, କାଳବିଲମ୍ବ ।
ଦେଓ୍ୱାନ—ଯା.ବ.ରାଜ୍ୟର ପ୍ରଧାନ ସଚିବ
ଦେଓ୍ୱାନବାହାଦୂର୍—ଯା.ବି.ଭାରତସର-କାରଙ୍କ ପ୍ରଦତ୍ତ ସମ୍ମାନସୂଚକ ଉପାଧି-ବିଶେଷ ।
ଦେଓ୍ୱାନୀ—ଯା.ବ.ଦେଵାନଙ୍କ ପଦ,(ବଂ) ସତ୍ୱାସତ୍ୱ ବିଷୟକ ବିଚାର ଅଦାଲତ ସମ୍ବନ୍ଧୀୟ ।
ଦେଓ୍ୱାନୀଅଦାଲତ--ଯା.ବ.ଯେଉଁ ବିଚା-ରାଳୟରେ ସତ୍ୱାସତ୍ୱ ଓ ବିଷୟାଧିକାର ସମ୍ବନ୍ଧେ ବିଚାର କରାଯାଏ ।
ଦେଓ୍ୱାନୀଆମ୍--ଯା.ବ.ପ୍ରକାଶ୍ୟ ରାଜସଭା, ଯେଉଁ ରାଜସଭାରେ ରାଜାଙ୍କସମ୍ମୁଖରେ ବିଚାର ପ୍ରାର୍ଥୀହୋଇ ସାଧାରଣ ଲୋକେ ଉପସ୍ଥିତ ହୋଇପାରନ୍ତି ।
ଦେଓ୍ୱାନୀଖାସ୍—ଯା. ବ. ମନ୍ତ୍ରୀମାନଙ୍କ ସହିତ ରାଜାଙ୍କର ଗୁପ୍ତ ପରାମର୍ଶ ସଭା ।
ଦେଓ୍ୱାନୀଫାଟକ--ଯା.ବ.ଯେଉଁ ଜେଲ-ଖାନାରେ ଡିଗ୍ରୀଦାରଙ୍କ ଟଙ୍କା ପରି-ଶୋଧ ନକରିବା ଖାତକମାନଙ୍କୁ ବନ୍ଦୀ କରି ରଖାଯାଏ ।
ଦେଓ୍ୱାଲ--ଯା.ବ.କାନ୍ଥ,ପ୍ରାଚୀର,ପାଚେରି
ଦେଓ୍ୱାଲଗିରି—ଯା.ବ. କାନ୍ଥରେ ମରା-ଯିବା ପ୍ରଦୀପବିଶେଷ ।
ଦେଓ୍ୱାଲି--ଗ୍ରା.ବ.(ସ-ଦୀପାବଳୀ)କାର୍ତ୍ତିକ ମାସର ଦୀପାବଳୀ ଅମାବାସ୍ୟା ।
ଦେଓ୍ୱାଲିଆ—ଗ୍ରା. ବଂ. ଋଣ ପରିଶୋଧ କରିବାକୁ ଅକ୍ଷମ ।
ଦେଶ—ପୁଂ.ବ. (ଦିଶ୍+ର୍ମ.ଅ)ପୃଥିବୀର ଅଂଶବିଶେଷ, ଅଞ୍ଚଳ, ସ୍ଥାନ, ମହା-ଦେଶର ଅଂଶ, ଜନ୍ମସ୍ଥାନ, ମାତୃଭୂମି, ଘର, ଦେହର ଅଙ୍ଗ ପ୍ରତ୍ୟଙ୍ଗ ବା ଅଂଶ,ଅବୟବ, ପଦାର୍ଥର ଅଂଶ, ରାଷ୍ଟ୍ର, ରାଜ୍ୟ, ଏକ ଶାସନାଧୀନ ଅଞ୍ଚଳ, (ଗ୍ରା. ବ) ବିଶିଷ୍ଟ ଅଞ୍ଚଳ, ଗ୍ରାମ, ଜନପଦ, ମଫସଲ, ହାଟୁଆମାନଙ୍କର ଜାତିଆଣ ସଭା, ଗ୍ରାମବାସୀ ବା ସର୍ବସାଧାରଣ, ରାଜ୍ୟର ପ୍ରଜା ସମୂହ, ହାଟୁଆମାନଙ୍କର ବିଭିନ୍ନ ଅଞ୍ଚଳବାସୀ ଜାତିଭାଇମାନେ
ଦେଶକ—ପୁଂ. ବ. (ଦିଶ୍+କ,--ଅକ) ଉପଦେଶକ, ଶିକ୍ଷକ, ଶାସନକର୍ତ୍ତା, (ସ୍ତ୍ରୀ) ଦେଶିକା ।
ଦେଶକାର—ସମ୍ପୂର୍ଣ୍ଣଜାତୀୟ ରାଗ ।
ଦେଶକାର୍ଯ୍ୟ—ସ୍ତ୍ରୀ. ବ. ରାଗିଣୀବିଶେଷ ।

ଦେଶକାଳ—ପୁଂ. ବ. (ଦ୍ୱନ୍ଦ୍ୱ) ସ୍ଥାନ ଓ ସମୟ, ପାରିପାର୍ଶ୍ୱିକ ଅବସ୍ଥା ।

ଦେଶକାଳଜ୍ଞ—ପୁଂ.ବିଂ. (ଦେଶ+କାଳ +ଜ୍ଞା+କ.ଅ) ଯେ ଦେଶାଗ୍ର ଓ ଉଚିତ ସମୟ ପ୍ରତି ଲକ୍ଷ୍ୟ ରଖି କାର୍ଯ୍ୟ କରେ, ଯେଉଁ କାର୍ଯ୍ୟ କେଉଁ କାଳରେ ଓ କେଉଁ ଦେଶରେ କଲେ ଶୋଭ-ମାନ୍ୟ ହେବ ଏଥିପ୍ରତି ଦୃଷ୍ଟି ରଖି ଯେ କାର୍ଯ୍ୟ କରେ, (ସ୍ତ୍ରୀ) ଦେଶକାଳଜ୍ଞା, (ବି) ଦେଶକାଳଜ୍ଞତା, (ଦେଶକାଳ-ବିତ୍-ଅନ୍ୟରୂପ) ।

ଦେଶକାଳପାତ୍ର—କ୍ଲୀ.ବ.(ଦେଶ+କାଳ +ପାତ୍ର;ଦ୍ୱନ୍ଦ୍ୱ) କୌଣସି କାର୍ଯ୍ୟ କରି-ବାର ଉପଯୁକ୍ତ ସ୍ଥାନ,ସମୟ ଓ ଲୋକ ।

ଦେଶକାଳବିତ୍—ପୁଂ. ବିଂ. (ଦେଶ+ କାଳ+ବିଦ୍+କ.କ୍ୱିପ୍)ଦେଶକାଳଜ୍ଞ ଦେଖ ।

ଦେଶକାଳାତୀତ—ବି. ବିଂ. (ଦେଶକାଳ +ଅତୀତ)୨ୟାତତ୍;ଦେଶ ଓ ସମୟେ ଅନବଚ୍ଛିନ୍ନ, ( ପୁଂ.ବ ) ପରମେଶ୍ୱର, (ସ୍ତ୍ରୀ) ଦେଶକାଳାତୀତା ।

ଦେଶକୋଳ—ପ୍ରା. (ପୁରୀ) ବ. ସ୍ୱଦେଶକୁ ଗଲେ ପଣ୍ଡାଙ୍କୁ ଟଙ୍କା ପୁଜିବା ପାଇଁ ଯାତ୍ରୀ ତୀର୍ଥରେ ଲେଖି ଦେଇ ଯାଇ-ଥିବା ଟଙ୍କାର ପରିମାଣ ।

ଦେଶକାଳୋଚିତ—ବି.ବିଂ. (୭ତତ୍ ବା ୭ତତ୍ ) ଯେପରି ସ୍ଥାନ ଓ ସମୟ ତଦୁପଯୁକ୍ତ ।

ଦେଶକେ--ଗ୍ରା.ଅବ୍ୟ.ଗୋଟିଏ ଦେଶରେ, ପ୍ରତ୍ୟେକ ଦେଶରେ, ଭିନ୍ନ ଭିନ୍ନ ଅଞ୍ଚଳରେ ।

ଦେଶଜ—ବି. ବିଂ. ( ଦେଶ+ଜନ୍+ କ.ଅ) ଦେଶରେ ଜାତ, ଦେଶୀୟ, ଅସଂସ୍କୃତ ।

ଦେଶତ୍ୟାଗ—ପୁଂ.ବ.(୭ତତ୍) ଜନ୍ମଭୂମି ବା ବାସସ୍ଥାନ ବର୍ଜନ ।

ଦେଶତ୍ୟାଗୀ—ପୁଂ.ବିଂ.(ଦେଶ+ତ୍ୟାଗ +କ.ଇନ୍) ଯେ ଜନ୍ମଭୂମି ଛାଡ଼ିଅଛି, (ସ୍ତ୍ରୀ) ଦେଶତ୍ୟାଗିନୀ ।

ଦେଶଦେଶକେ—ଗ୍ରା. ଅବ୍ୟ. ନାନା-ଦେଶରେ, ବହୁତ ଦେଶରେ, ଦେଶ-ଦେଶାନ୍ତରରେ ।

ଦେଶଦେଶା—ଗ୍ରା.ବ..ଦେଶବିଦେଶରେ ବା ଭିନ୍ନ ଭିନ୍ନ ଦେଶରେ କଥିତ ଭାଷା-ମାନ ।

ଦେଶଦେଶାନ୍ତର—କ୍ଲୀ. ବ. (ଦେଶ+ ଦେଶାନ୍ତର ) ଦ୍ୱନ୍ଦ୍ୱ ବା ୬ତତ୍; ଏକ ଦେଶରୁ ଅନ୍ୟ ଦେଶ, ଦେଶ ଓ ଦେଶାନ୍ତର ।

ଦେଶଧର୍ମ—ପୁଂ. ବ. ( ଦେଶ+ଧର୍ମ ) ୬ତତ୍; ଦେଶ ପ୍ରଚଳିତ ଆଚାର ବ୍ୟବ-ହାର ବା ରୀତିନୀତି ।

ଦେଶନା—ସ୍ତ୍ରୀ. ବ. ( ଦିଶ୍+ଣିଚ୍+ଅନ +ଆ) ନିୟୋଗବାଧ ପ୍ରଭୃତି ।

ଦେଶନିର୍ଣ୍ଣୟ—ପୁଂ.ବ.(ଦେଶ+ନିର୍ଣ୍ଣୟ) ଦେଶନିରୂପଣ ।

ଦେଶପରିଚ୍ଛିନ୍ନ—ବି.ବିଂ.(ଦେଶ+ପରି-ଚ୍ଛିନ୍ନ) ୭ତତ୍; ଅଧିକରି ନୈକାଟ୍ଟି. ସର୍ବବ୍ୟାପୀ ।

ଦେଶପାଳୀ—-ରାଗିଣୀବିଶେଷ, ଦେଶ-କାଶର ଅପର ନାମ ।

ଦେଶଫେରିବା—ଗ୍ରା. କ୍ରି. ଦେଶବିଦେ-ଶରେ ପର୍ଯ୍ୟଟନ କରିବା ।

ଦେଶବାସୀ—ପୁଂ.ବିଂ. (ଦେଶ+ବସ୍+ କ.ଇନ୍ ) ଦେଶରେ ବାସ କରୁଥିବା ବ୍ୟକ୍ତି, (ସ୍ତ୍ରୀ) ଦେଶବାସିନୀ ।

ଦେଶବାହାର—ଗ୍ରା. ବ. ( ସଂ-ଦେଶ+ ବହିଷ୍କାର) ଅପରାଧୀକୁ ଦେଶାନ୍ତରକୁ ତଡ଼ିଦେବା ରୂପ ଦଣ୍ଡ,ନିର୍ବାସନ, (ଗ୍ରା. ବିଂ) ଦେଶାନ୍ତରିତ, ନିର୍ବାସିତ ।

ଦେଶବିଖ୍ୟାତ—ବି. ବିଂ. ( ଦେଶ+ ବିଖ୍ୟାତ) ୭ତତ୍, ଦେଶପ୍ରସିଦ୍ଧ ।

ଦେଶବିଦେଶ—ପୁଂ. ବ.(ଦ୍ୱନ୍ଦ୍ୱ) ନାନା-ଦେଶ, ଆପଣା ଦେଶ ଓ ପରଦେଶ ।

ଦେଶବିଧାନ—କ୍ଲୀ.ବ (ଦେଶ+ବିଧାନ) ୬ତତ୍; ଦେଶଧର୍ମ ଦେଖ, ଦେଶୀୟ ନିୟମ ।

ଦେଶବ୍ୟାପୀ—ପୁଂ.ବିଂ. (ଦେଶ+ବି+ ଆପ୍+କ. ଇନ୍ ) ୭ତତ୍; ସମସ୍ତ ଦେଶେ ବ୍ୟାପ୍ତ, ଯାହା ଦେଶ ବ୍ୟାପୀ ଅଛି, (ସ୍ତ୍ରୀ) ଦେଶବ୍ୟାପିନୀ ।

ଦେଶଭାଷା—ସ୍ତ୍ରୀ. ବ. ଦେଶୀୟ ଭାଷା, ଦେଶେ ପ୍ରଚଳିତ ଭାଷା, ମାତୃଭାଷା ।

ଦେଶଭେଦ—ପୁଂ. ବ. (୬ତତ୍) ଦେଶ-ବିଶେଷ, ପୃଥକ୍ ଦେଶ, ଭିନ୍ନ ଭିନ୍ନ ସ୍ଥାନ, ସ୍ଥାନର ଭିନ୍ନତା ।

ଦେଶମଲ୍ଲାର—-ସମ୍ପୂର୍ଣ୍ଣଜାତୀୟ ରାଗ-ବିଶେଷ ।

ଦେଶମୁଖ—ଗ୍ରା.ପୁଂ.ବ. (ପ୍ରା.କ)୬ତତ୍; ଦେଶର ମୁଖ୍ୟ ବା ସର୍ବପ୍ରଧାନ ବ୍ୟକ୍ତି, ରାଜା, ପ୍ରାଚୀନ ଉତ୍କଳର ଦକ୍ଷିଣାଂଶର ପ୍ରଗନ୍ନାଧିପତି ବା ପ୍ରଗନ୍ନାର ଜମିଦାର ।

ଦେଶରଜକଚରିତ—କ୍ଲୀ. ବ. ଗଦ୍ୟ ପଦ୍ୟ-ମୟାତ୍ମକ ଚମ୍ପୂବିଶେଷ ।

ଦେଶରୂପ—ପୁଂ. ବ. ( ଦେଶ+ରୂପ ) ଉତ୍କୃଷ୍ଟ ଦେଶ, (କ୍ଲୀ. ୬ତତ୍) ନ୍ୟାଯ୍ୟ, ଔଚିତ୍ୟ, ପ୍ରଶଂସିତ ଦେଶ ।

ଦେଶସ୍ଥ—ବି,ବିଂ. (ଦେଶ+ସ୍ଥା+ଅ) ଦେଶରେ ଥିବା, ଦେଶରେ ଅବସ୍ଥିତ, (ପୁଂ.ବ.) ବୋମ୍ବାଇ ଅଞ୍ଚଳର ଏକ-ଜାତୀୟ ବ୍ରାହ୍ମଣ ।

ଦେଶହିତକର—ବି.ବିଂ. (ଦେଶହିତ+ କୃ+କ.ଅ) ଦେଶର ମଙ୍ଗଳଜନକ ।

ଦେଶହିତବ୍ରତ—କ୍ଲୀ.ବ. (ଦେଶହିତ+ ବ୍ରତ, କ.ଧା) ଦେଶର ମଙ୍ଗଳସାଧନ ନିମିତ୍ତ ନିୟମ ବା ପ୍ରତିଜ୍ଞା ।

ଦେଶହିତୈଷୀ—ପୁଂ.ବିଂ.(ଦେଶହିତ+ ଇଷ୍+କ.ଇନ୍) ଦେଶର ମଙ୍ଗଳେଚ୍ଛୁ, (ସ୍ତ୍ରୀ) ଦେଶହିତୈଷିଣୀ ।

ଦେଶା—ପୁଂ.ବ. ଜଣେ ଗନ୍ଧର୍ବ ।

ଦେଶାଉର—ବ.(ସଂ-ସନ୍ଦେଶହର)ଗୁର, ଡଗର ।

ଦେଶାକ୍ଷ—-ବ. ରାଗିଣୀ ବିଶେଷ, (ଦେଶାକ୍ଷୀ—ଅନ୍ୟରୂପ) ।

ଦେଶାକ୍ଷୀ—ସ୍ତ୍ରୀ. ବ. ରାଗିଣୀ ବିଶେଷ, ବସନ୍ତରାଗର ଭାର୍ଯ୍ୟା ।

ଦେଶାଚାର—ପୁଂ. ବ.(ଦେଶ+ଆଚାର)

୬ତତ୍ପୁ; ଦେଶଧର୍ମ ଦେଖ, ଦେଶର ରୀତିନୀତି ।

ଦେଶାଟନ—ବି.(ଦେଶ+ଅଟନ) ୬ତତ୍ପୁ, ଦେଶଭ୍ରମଣ, ଭିନ୍ନଭିନ୍ନ ଦେଶବୁଲିବା ।

ଦେଶାତ୍ମବୋଧ—ପୁଂ. ବି. ସମସ୍ତ ସ୍ୱଦେଶକୁ ବା ସ୍ୱଦେଶବାସୀଙ୍କୁ ନିଜର ପରି ଜ୍ଞାନ ।

ଦେଶାଧିପ—ବି.(ଦେଶ+ଅଧିପ)୬ତତ୍ପୁ; ରାଜା, ଦେଶର ଶାସନକର୍ତ୍ତା ।

ଦେଶାନ୍ତର—କ୍ଲୀ. ବି. (ଅନ୍ୟ + ଦେଶ) କ.ଧା; ନିତ୍ୟ; ଅନ୍ୟଦେଶ, ବିଦେଶ, ଦୂରଦେଶ, (ସଂ. ଦେଶ+ଅନ୍ତର ) ନିର୍ବାସନ ଦଣ୍ଡ, (ଭୂଗୋଳ) ଉତ୍ତରମେରୁଠାରୁ ଦକ୍ଷିଣମେରୁ ପର୍ଯ୍ୟନ୍ତ କଳ୍ପିତ ରେଖାର ସହମାନ୍ୟ ମଧ୍ୟ ରେଖାର ପୂର୍ବ ବା ପଶ୍ଚିମର ଦୂରତ୍ୱ, ଲମ୍ବାଂଶ ।

ଦେଶାନ୍ତରକରିବା—ଗ୍ରା. କ୍ରି. ନିର୍ବାସନ କରିବା ।

ଦେଶାନ୍ତରି(ରୀ)—ଗ୍ରା. ବି. ( ପ୍ରା. କ ) ଦେଶତ୍ୟାଗି, ଚିରପ୍ରବାସୀ, ନିର୍ବାସିତ ।

ଦେଶାନ୍ତରୀୟ—ବିଂ. ( ଦେଶାନ୍ତର+ ଭବାର୍ଥେ ଈୟ)ବିଦେଶୀୟ,ବିଦେଶରେ ଜାତ, ଅନ୍ୟଦେଶବାସୀ, ଅନ୍ୟଦେଶସମ୍ବନ୍ଧୀ ।

ଦେଶାବଲ—ବୋମ୍ବାଇର ଏକପ୍ରକାର ନୀଚଜାତି ।

ଦେଶିଆ—ଗ୍ରା. ବିଂ. ( ସଂ-ଦେଶୀୟ ) ଦେଶୀୟ, ମଫସଲିଆ, ଗ୍ରାମୀଣ, (ପ୍ରା. ଜୟପୁର)ବି. ନୀଚ ଶୂଦ୍ର ଜାତି ବିଶେଷ

ଦେଶିକ—ପୁଂ. ବି. (ଦେଶ+ଗତ୍ୟର୍ଥେ ଇକ) ପଥିକ,ବାଟୋଇ,(ଦିଶ+ଇକ) ଗୁରୁ, (ସ୍ତ୍ରୀ) ଦେଶିକା, ଦେଶିକୀ ।

ଦେଶିତ—ବିଂ. (ଦିଶ+ଣିଚ୍+ର୍ମ.ପ୍ର) ଉପଦେଶ ପ୍ରେରିତ ।

ଦେଶିନ୍—ବି.ବିଂ.(ଦିଶ୍+ ଇନ୍)ଦେଶକ, ଆଦେଶକାରୀ ।

ଦେଶିନୀ—ସ୍ତ୍ରୀ. ବି. ( ଦେଶିନ୍+ଈ ) ତର୍ଜନୀ, ବଣିଆଙ୍ଗୁଠି, ଦୂତୀ, ଛୁଞ୍ଚି,(ବିଂ) ଦେଶଜାତ ।

ଦେଶୀ—ପୁଂ.ବିଂ. (ଦେଶ+ସମ୍ବନ୍ଧାର୍ଥେ ଇନ୍) ଦେଶୀୟ,ସ୍ୱଦେଶୀୟ, ସ୍ୱଦେଶପ୍ରସ୍ତୁତ, ( ସ୍ତ୍ରୀ ) ଦେଶିନୀ, ଗାୟକସଙ୍ଗୀତର ସ୍ଥାୟୀ,ରାଗିଣୀବିଶେଷ, ସଙ୍ଗୀତ, ବିଶେଷ, ତାଣ୍ଡବନୃତ୍ୟ ଭେଦ, ବିଂ. ଦେଶଜାତ ।

ଦେଶୀବବୁର—ଗ୍ରା: ବି. ( ସଂ-ବବ୍ବୁଲ. ବର୍ବର) ଏ ଦେଶରେ ଜାତ ବବୁର ଜାତିବୃକ୍ଷ ।

ଦେଶୀବାଦାମ—ଗ୍ରା. ବି.ବାଦାମଜାତୀୟ ବୃକ୍ଷବିଶେଷ ।

ଦେଶୀୟ—ବି. ବିଂ. ( ଦେଶ+ଈୟ. ସମ୍ବନ୍ଧାର୍ଥେ)ଦେଶସମ୍ବନ୍ଧୀୟ, ସ୍ୱଦେଶନିର୍ମିତ, ଦେଶ୍ୟ, ଦେଶପ୍ରଚଳିତ, ମଫସଲ, ଗ୍ରାମ୍ୟ,(ଅନ୍ୟ—ପ୍ରତ୍ୟୟ,ଅନ୍ୟଶବ୍ଦ ସଙ୍ଗେ ଯୁକ୍ତ) ସ୍ଥାନୀୟ ।

ଦେଶୀୟବରାଡ଼ୀ—ପୁଂ. ସ୍ତ୍ରୀ. ବି. ରାଗିଣୀ ଭେଦ ।

ଦେଶୁଆ—ଗ୍ରା.ବିଂ.(ସଂ-ଦେଶୀୟ)ମଫସଲିଆ, ଗାଉଁଲି, (ବିପ-ସହରିଆ) ।

ଦେଶ୍ୟ—କ୍ଲୀ.ବି.(ଦିଶ୍+ର୍ମ.ଯ)ନ୍ୟାୟର ପୂର୍ବପକ୍ଷ, (ବିଂ—ଦେଶ+ଯ)ଦେଶୀୟ ଦେଖ, (ସ୍ତ୍ରୀ) ଦେଶ୍ୟା ।

ଦେଷ୍ଟୃ—ବି. ବିଂ. (ଦିଶ୍+ତୃ)ଦର୍ଶକ ।

ଦେଷ୍ଟ୍ର—ବୈଦିକ ଲକ୍ଷ୍ୟ, ଆଜ୍ଞା, ଶପଥ ।

ଦେଷ୍ଣ—ପୁଂ.ବିଂ.(ଦାତୃ+ଅତିଶୟାର୍ଥେଇଷ୍ଠ) ଅତିଶୟଦାତା, ଅତ୍ୟନ୍ତଦାନଶୀଳ, (ସ୍ତ୍ରୀ) ଦେଷ୍ଣା ।

ଦେଷ୍ଣ—ବି. ବିଂ. (ଦା+ଶୀଳାର୍ଥେ କ. ଇଷ୍ଣ) ଦାନଶୀଳ, ଦୁର୍ଦ୍ଦମ, (ପୁଂ. ବି) ଧୋବା, ଚନ୍ଦ୍ର ।

ଦେହ—ବି. (ଦିହ + ର୍ମ.ଅ)ଶରୀର,ତନୁ, (ଦିହ+ଭା.ଅ) ଲେପନ,ଅଙ୍ଗପ୍ରତ୍ୟଙ୍ଗ ଜୀବନ, ମୂର୍ତ୍ତି, ରୂପ, (ଗ୍ରା.ବି) ଜୀବନକାଳ, ସ୍ୱାସ୍ଥ୍ୟ ।

ଦେହକର୍ତ୍ତା—ପୁଂ. ବି. (ଦେହ+କର୍ତ୍ତୃ) ପୃଥିବ୍ୟାଦି ପଞ୍ଚଭୂତ, ଈଶ୍ୱର, ସୂର୍ଯ୍ୟ ।

ଦେହକୃତ୍—ବି. ବିଂ. (ଦେହ + କୃ + କ୍ୱିପ୍) ଦେହକାରକ (ପୃଥିବ୍ୟାଦି ପଞ୍ଚଭୂତ) ବି. ଈଶ୍ୱର । [ ମଧ୍ୟରେ ।

ଦେହକେ—ଗ୍ରା. କ୍ରି. ବିଂ. ଜୀବିତ କାଳ

ଦେହକୋଷ—ପୁଂ. ବି.(ଦେହ+କୋଷ) ୬ତତ୍ପୁ; ଚର୍ମ, ଚମଡ଼ା, ପକ୍ଷ ।

ଦେହକ୍ଷୟ—ପୁଂ. ବି. (ଦେହ+କ୍ଷୟ) ୬ତତ୍ପୁ; ରୋଗ, ପ୍ରାଣତ୍ୟାଗ, ମୃତ୍ୟୁ, ଶରୀରର ବିନାଶ ।

ଦେହଗ୍ରଡ଼ିବା—ଗ୍ରା. କ୍ରି. ମୃତ୍ୟୁଲଭିବା, ମରିବା ।

ଦେହଜ—ପୁଂ. ବି. (ଦେହ+ଜନ୍ +କ.ଅ) ପୁତ୍ର, ତନୁଜ, ( ବିଂ ) ଦେହରୁ ଉତ୍ପନ୍ନ, (ସ୍ତ୍ରୀ) ଦେହଜା ।

ଦେହଜଳିବା—ଗ୍ରା.ବି. ଅତିଶୟ କ୍ରୋଧର ଉଦୟହେବା, କଷ୍ଟ ଅନୁଭୂତ ହେବା, ପୋଡ଼ିବା ।

ଦେହଟାଣ—ଗ୍ରା.ବି. ଶାରୀରିକବଳ,କ୍ଷମତା ।

ଦେହତତ୍ତ୍ୱ—କ୍ଲୀ. ବି. (ଦେହ+ତତ୍ତ୍ୱ) ୬ତତ୍ପୁ; ଶାରୀରସ୍ଥାନ, ଶରୀର ସମ୍ବନ୍ଧୀୟ ପ୍ରକୃତି ବ୍ୟାପାର ।

ଦେହତ୍ୟାଗ—ପୁଂ.ବି.(ଦେହ+ତ୍ୟାଗ) ୬ତତ୍ପୁ; ମୃତ୍ୟୁ, ପ୍ରାଣପରିତ୍ୟାଗ ।

ଦେହଦ—ବି. ବିଂ. (ଦେହ+ଦା+କ. ଅ) ଶରୀରଦାତା, (ପୁଂ.ବି) ପାରଦ ।

ଦେହଦାନ—ଗ୍ରା.ବି. (ସ୍ତ୍ରୀପକ୍ଷେ ପୁରୁଷକୁ ସୁରତ ଦାନ) ୬-ବି; କୌଣସି କାର୍ଯ୍ୟ ନିମିତ୍ତ ଶରୀର ଉତ୍ସର୍ଗ ।

ଦେହଦୁଃଖହେବା—ଗ୍ରା. ବି.. ଦେହ ଖରାପହେବା ଦେଖ ।

ଦେହଦେବା—ଗ୍ରା. କ୍ରି. ( ସ୍ତ୍ରୀପକ୍ଷେ ) ପୁରୁଷର ରମଣ ସ୍ୱୀକାର କରିବା ।

ଦେହଧରିବା—ଗ୍ରା. କ୍ରି. (ସଂ-ଦେହଧାରଣ) ଧୈର୍ଯ୍ୟଧରିବା, ମନକୁ ସମ୍ଭାଳିବା, ବଞ୍ଚିବା ।

ଦେହଦୁର୍ଗନ୍ଧତା—ସ୍ତ୍ରୀ. ବି. ( ଦେହ+ ଦୁର୍ଗନ୍ଧତା) ୬ତତ୍ପୁ; ଶରୀରଦୌର୍ଗନ୍ଧ, ଶରୀରଦୁର୍ଗନ୍ଧନାଶକ ଔଷଧ ।

ଦେହଧର୍ମ—ବି. (ଦେହ + ଧର୍ମ)୬ତତ୍ପୁ; ଶରୀରର ପ୍ରକୃତି ବା ଗୁଣ ।

ଦେହଧାରକ—ବି. ବିଂ. (ଦେହ+ଧୃକ୍.

ଅକ) ୬ତତ୍; ଶରୀରଧାରୀ, ( ବ ) ଅସ୍ଥି, ହାଡ଼ (ସ୍ତ୍ରୀ) ଦେହଧରିବା ।

ଦେହଧାରଣ—କ୍ଲୀ.ବି.(ଦେହ+ଧାରଣ ୬ତତ୍; ଶରୀରରକ୍ଷା, ଜୀବନରକ୍ଷା, ବଞ୍ଚିରହିବା, ଜନ୍ମ, ଶରୀରଯୁକ୍ତ ରୂପ ଗ୍ରହଣ କରିବା ।

ଦେହଧାରୀ—ପୁଂ. ବିଂ. (ଦେହ + ଧୃ + କ. ଇନ୍)ଯାହାର ଶରୀର ଅଛି,ଶରୀରୀ, ଜୀବନଧାରୀ,ଜୀବନ୍ତ (ସ୍ତ୍ରୀ)ଦେହଧାରିଣୀ ।

ଦେହଧି—ପୁଂ. ବି. (ଦେହ+ଧା+ଇ) ଦେହାଧାର, ପକ୍ଷିମାନଙ୍କର ଦେହାବରକ ପକ୍ଷ ।

ଦେହଧୃକ୍—ପୁଂ. ବି.(ଦେହ+ଧୃଜ୍+କ୍ୱିପ୍) ବାୟୁ ।

ଦେହନସହିବା—ଗ୍ରା.କ୍ରି. ଦିହ ନସହିବା ଦେଖ ।

ଦେହନାଶ—ବି.(ଦେହ+ନାଶ ୬ତତ୍) ଦେହତ୍ୟାଗ ଦେଖ ।

ଦେହପର୍ଯ୍ୟନ୍ତି—ସ୍ତ୍ରୀ.ବି. ଦେହୋତ୍ପତ୍ତି ।

ଦେହପାତ—ପୁଂ.ବି. ( ଦେହ + ପାତ, ୬ତତ୍)ଶରୀରନାଶ,ଦେହତ୍ୟାଗ,ମୃତ୍ୟୁ ।

ଦେହପିଞ୍ଜର—ପୁଂ. ବି. ( ରୂପ.କ.ଧା ) ଶରୀରରୂପ ପିଞ୍ଜରା ।

ଦେହପୁଷ୍ଟିକର—ବିଂ. (ଦେହ+ପୁଷ୍ଟିକର,୬ତତ୍) ଯାହା ଦେହକୁ ପୁଷ୍ଟ ବା ସବଳ କରାଏ ।

ଦେହବତ୍—ତ୍ରି.ବିଂ. ଦେହାତ୍ମାଭିମାନୀ, ଜୀବ, ଦେହୀ ।

ଦେହବନ୍ତ(ନ୍ତା)—ଗ୍ରା.ବିଂ.(ସଂ-ଦେହବତ୍ ) ଶରୀରଧାରୀ, ଦେହଧାରୀ ।

ଦେହବାନ୍—ପୁଂ. ବିଂ. ଦେହଧାରୀ, ଶରୀର, (ବିଂ) ଜୀବ, (ସ୍ତ୍ରୀ) ଦେହବତୀ ।

ଦେହବାୟୁ—ପୁଂ.ବି. ଦେହସ୍ଥିତ ବାୟୁ, ପ୍ରାଣାଦି ବାୟୁପଞ୍ଚକ ।

ଦେହବାସ—ଗ୍ରା.ବି. (ସଂ-ଦେହ+ବାସ) ପିନ୍ଧିବା ଲୁଗା ।

ଦେହଭଜ୍—ତ୍ରି.ବିଂ. (ଦେହ+ଭଜ୍+ଣ୍ୱି) ଦେହୀ, ଜୀବ । [ ଗୁରୁତ୍ୱ ।

ଦେହଭର—ପୁଂ.ବିଂ. (୬ତତ୍) ଶରୀରର

ଦେହଭୁକ୍—ତ୍ରି.ବିଂ. (ଦେହ+ଭୁଜ୍+କ୍ୱିପ୍) ଦେହାଭିମାନୀ,ଜୀବ, ( ପୁଂ ବି.) ସୂର୍ଯ୍ୟ ।

ଦେହଭୃତ୍—ପୁଂ. ବି. ( ଦେହ+ଭୃ+କ.କ୍ୱିପ୍ )ଜୀବ, ଆତ୍ମା, ଶରୀରୀ, ପ୍ରାଣୀ, (ବିଂ) ଦେହଧାରୀ ଦେଖ ।

ଦେହମ୍ଭର—ତ୍ରି.ବିଂ. (ଦେହ+ଭୃ+ଅ) ଦେହପୋଷକ ।

ଦେହଯଷ୍ଟି—ପୁଂ.ବି. ( ରୂପକ ) ଶରୀର-ରୂପ ଯଷ୍ଟି ।

ଦେହଯାତ୍ରା—ସ୍ତ୍ରୀ.ବି. (ଦେହ+ଯାତ୍ରା, ୬ତତ୍) ଶରୀରଯାତ୍ରା, ଜୀବକାଳବାହ, ଭରଣପୋଷଣ, ମୃତ୍ୟୁ, ମରଣ ।

ଦେହରକ୍ଷା—ସ୍ତ୍ରୀ. ବି. (୬ତତ୍) ଦେହର ଅନିଷ୍ଟ ନିବାରଣ, ଦେହତ୍ୟାଗ, ପ୍ରାଣତ୍ୟାଗ, (ଗ୍ରା) ଦେହଯାତ୍ରା ଦେଖ ।

ଦେହରକ୍ଷୀ—ପୁଂ. ବିଂ ବା ବି. (୬ତତ୍) ଶରୀର ରକ୍ଷକ । [ ମରିବା ।

ଦେହରଖିବା—ଗ୍ରା. କ୍ରି. ( ବୈଷ୍ଣବାଦି )

ଦେହରୁ ଛଡ଼ା(ଡ଼େ)ଇଦେବା—ଗ୍ରା.କ୍ରି. ଆପଣାଉପରୁ କୌଣସି କାର୍ଯ୍ୟ,ଦୋଷ ବା ସୃଷ୍ଟି ଦୂର କରିଦେବା,ନିଜଠାରୁ ସମସ୍ତ ସମ୍ପର୍କ ତୁଟାଇଦେବା ।

ଦେହଲକ୍ଷଣ—କ୍ଲୀ.ବି. ସାମୁଦ୍ରିକ ଶାସ୍ତ୍ର, ଶରୀରଉପର ଚିହ୍ନ ।

ଦେହଲଗା—ଗ୍ରା.ବିଂ.(ସଂ-ଦେହ+ଲଗ୍ନ) ଦିହଲଗା ଦେଖ,ଦେହରେ ଲୀନ ।

ଦେହଲା—ବି. (ଦେହ+ଲା+କ.ଅ+ଅ) ମଦ୍ୟ, ମଦିରା ।

ଦେହଲି(ଳୀ)—ସ୍ତ୍ରୀ.ବି.( ଦେହ+ଲା+କ.ଅ+ଇ ) ଚଉକାଠ ତଳର କାଷ୍ଠ ଖଣ୍ଡ, ଦ୍ୱାରର ସମ୍ମୁଖସ୍ଥ ପିଣ୍ଡା ।

ଦେହଶଙ୍କୁ—ପୁଂ.ବି. ପ୍ରସ୍ତରସ୍ତମ୍ଭ,ପଥରଖୁଣ୍ଟ ।

ଦେହଶୂଳା—ଗ୍ରା.ବିଂ. ଦିହଶୂଳା ଦେଖ ।

ଦେହସଞ୍ଚାରିଣୀ—ସ୍ତ୍ରୀ.ବି. କନ୍ୟା, ଝିଅ ।

ଦେହସାମ୍ୟ—କ୍ଲୀ. ବି. ଅଙ୍ଗସମୂହର ସମତ୍ୱ, ଦେହର ସମତା ।

ଦେହସାର—ପୁଂ. ବି. (ଦେହ+ସାର, ୬ତତ୍) ମଜ୍ଜା, (ବିଂ. ବ.ବ୍ରୀ) ଯାହାର ଦେହମାତ୍ର ଅବଶିଷ୍ଟ ଅଛି ।

ଦେହସୁହାଇବା—ଗ୍ରା.କ୍ରି. (ସଂ-ଦେହ+ସହଧାତୁ) କୌଣସି ବ୍ୟକ୍ତିର ସହ୍ୟ ହେବା ।

ଦେହା—(ପ୍ରା. କ.) ବି. ଦେହ,ଶରୀର ।

ଦେହାତ୍—(ଯା.ପ୍ରା.ସମ୍ବଲପୁର ଓ ସିଂହଭୂମ) ବି. ମଫସଲ ।

ଦେହାତି—ଗ୍ରା.ବି(ସଂ-ଦେହାନ୍ତ)ଜୀବନକାଳ,( ଯା ପ୍ରା. ସିଂହଭୂମ.ବିଂ.) ମଫସଲିଆ,ଗ୍ରାମ୍ୟ,(ଗ୍ରା.ଅବ୍ୟ)ଦେହ ଦେଖ ।

ଦେହାତୀତ—ତ୍ରି.ବିଂ. (ଦେହ+ଅତୀତ, ୨ତତ୍ ) ଶରୀରାତୀତ, ଦେହାଭିମାନଶୂନ୍ୟ, ପଣ୍ଡିତ, (ସ୍ତ୍ରୀ) ଦେହାତୀତା ।

ଦେହାତ୍ମପ୍ରତ୍ୟୟ—ପୁଂ. ବି. ( ୬ତତ୍ ) ଦେହହିଁ ଆତ୍ମା ଏହି ବିଶ୍ୱାସ ।

ଦେହାତ୍ମବାଦ—ଗ୍ରା. ବି. ( ଆଧୁନିକ ପ୍ରୟୋଗ ) ଦେହହିଁ ଆତ୍ମା ଅଟେ ଏବମ୍ଭୂତ ମତ ।

ଦେହାତ୍ମବାଦୀ—ପୁଂ.ବି ବା ବିଂ.(ଦେହାତ୍ମନ୍+ବଦ୍+କ.ଇନ୍, କ.ଧା)ଯାହାଙ୍କ ମତରେ ଦେହହିଁ ଆତ୍ମା, ପୃଥକ୍ ଆତ୍ମା ନାହିଁ, ଚାର୍ବାକ୍, ବୌଦ୍ଧବିଶେଷ, (ସ୍ତ୍ରୀ) ଦେହାତ୍ମବାଦିନୀ । [ଧିକାରୀ ।

ଦେହାଧି—ଗ୍ରା.ବିଂ. ଦେହଧାରୀ, ଦେହା-

ଦେହାଧ୍ୟାସ—ପୁଂ.ବି. ଦେହଧର୍ମ ମନୁଷ୍ୟାଦିର ଆତ୍ମା ବୋଲି ବୋଧ ।

ଦେହାନ୍ତ—ପୁଂ. ବି. ( ଦେହ+ଅନ୍ତ, ୬ତତ୍ ) ପ୍ରାଣତ୍ୟାଗ, ମୃତ୍ୟୁ ।

ଦେହାନ୍ତର—ବି. ( ଦେହ + ଅନ୍ତର ) ମୃତ୍ୟୁ,(ନିତ୍ୟ କ.ଧା) (ଅନ୍ୟ+ଦେହ) ଅନ୍ୟ ଶରୀର, ଅନ୍ୟ ଜନ୍ମରେ ଜୀବର ପ୍ରାପ୍ତ ଆଉ ଗୋଟିଏ ଶରୀର ।

ଦେହାବନ୍ଦୀ—ଯା. ବି. ଏକାଧିକ ଗ୍ରାମର ହମନାମୋଲ୍ଲେଖ, ଗ୍ରାମଓସ୍ଥାରୀ ।

ଦେହାବରଣ—ପୁଂ.ବି. ଶରୀରର ଆଚ୍ଛାଦନ, ପକ୍ଷୀମାନଙ୍କର ପକ୍ଷ ।

ଦେହାବସାନ—କ୍ଲୀ. ବି.(ଦେହ + ଅବସାନ,୬ତତ୍) ଦେହତ୍ୟାଗ, ମୃତ୍ୟୁ ।

ଦେହି—କ୍ରି. ଦଅ, ( ଗ୍ରା.ବ୍ୟ. ପଦ୍ୟ ) ଦେହ, ଶରୀର (ଗ୍ରା.ଅବ୍ୟ) ଦ୍ୱାରା ।

ଦେହିକା—ସ୍ତ୍ରୀ.ବି. କୀଟବିଶେଷ ।

ଦେହୀ—ପୁଂ.ବିଂ.(ଦେହ + ଇନ୍)ଶରୀରୀ, ଯାହାର ଦେହ ଅଛି, ( ବି ) ପ୍ରାଣୀ, ଆତ୍ମା, (ଗ୍ରା.ବି. ପଦ୍ୟ) ଦେହ, ଶରୀର, (ସ୍ତ୍ରୀ) ଦେହିନୀ ।

ଦେହୁଡ଼ି—ଗ୍ରା. ବି. (ସଂ-ଦେହଲି) ସିଂହ-ଦ୍ୱାର, ସଦର ଦରଜା, ଦାଣ୍ଡଦୁଆର, ଗୃହର ପ୍ରଧାନ ମାର୍ଗ ।

ଦେହୁରି—ଗ୍ରା. ବି. ଶବର ବା ଶଅର ଜାତିଙ୍କ ବଂଶୋପାଧିବିଶେଷ,(ସଂ-ଦେବର) ବଣ ବା ଅପୂଜା ଦେବତାଙ୍କ ପୂଜକ ଶବର, ଗ୍ରାମଦେବତାଙ୍କ ପୂଜକ ବା ସେବକ, (ପ୍ରା. ସିଂହଭୂମ. ବି)ପାହାଡ଼ୀ ଠାକୁରାଣୀଙ୍କ ଭୂଇଁଆ ଜାତୀୟ ସେବକ ।

ଦେହେ ଥିବା—ପ୍ରା. (ସମ୍ବ)କ୍ରି. ଗର୍ଭବତୀ ହେବା ।

ଦେହେସାରୁଂ—ପ୍ରା. (ସମ୍ବ)ବି. ଗର୍ଭବତୀ ।

ଦେହେରି—ଗ୍ରା. ବି. ଶୂଦ୍ର ଜାତିବିଶେଷ ।

ଦେହେରି—ପ୍ରା. (ସମ୍ବ) ବି. ଦେବପୂଜକ ବ୍ୟକ୍ତି, ସେବକ, ଦେହୁରି ।

ଦେହେଶ୍ୱର—ପୁଂ. ବି. ଦେହାଧିଷ୍ଠାତା, ଆତ୍ମା ।

ଦେହୋଦ୍ଭବ—ପୁଂ. ବିଂ. ଦେହଜାତ, ଦେହରୁ ଉତ୍ପନ୍ନ ।

ଦେହୋଦ୍ଭୂତ—ପୁଂ.ବିଂ. ଦେହଜାତ ।

ଦୈକ୍ଷ—ବି. ବିଂ. ( ଦୀକ୍ଷା + ଅ ) ଦୀକ୍ଷା-ସମ୍ବନ୍ଧୀୟ ।

ଦୈତେୟ—ପୁଂ. ବି. ( ଦିତି + ଏୟ ) ଅସୁର, ରାକ୍ଷସ, ରାହୁ ।

ଦୈତ୍ୟ—ପୁଂ.ବି. (ଦିତି + ଯ) ଦୈତେୟ, ରାକ୍ଷସ.କଣ୍ଟାରଛ,(ବିଂ)ଦିତିସମ୍ବନ୍ଧୀୟ ।

ଦୈତ୍ୟକୁଳ—କ୍ଲୀ. ବି. (୬ତତ୍), ଅସୁର-ବଂଶ, ଅସୁର ସମୂହ ।

ଦୈତ୍ୟଗୁରୁ—ପୁଂ. ବି. (ଦୈତ୍ୟ+ଗୁରୁ) ୬ତତ୍; ଅସୁରମାନଙ୍କର ଦୀକ୍ଷାଗୁରୁ ଶୁକ୍ରାଚାର୍ଯ୍ୟ ।

ଦୈତ୍ୟଦାନବମର୍ଦ୍ଦନ—ପୁଂ. ବି. ଦୈତ୍ୟ ଓ ଦାନବମାନଙ୍କର ଦମନକାରୀ ଇନ୍ଦ୍ର ।

ଦୈତ୍ୟଦେବ—ପୁଂ.ବି.(ଦୈତ୍ୟ+ଦେବ) ୬ତତ୍; ବରୁଣ, ବାୟୁ ।

ଦୈତ୍ୟଦ୍ୱୀପ—ପୁଂ.ବି.ଗରୁଡ଼ାତ୍ମଜଭେଦ

ଦୈତ୍ୟଧୂମିନୀ— ସ୍ତ୍ରୀ. ବି. ମୁଦ୍ରାବିଶେଷ, (ଏହି ମୁଦ୍ରାଦ୍ୱାରା ତାରାଦେବୀଙ୍କ ଅର୍ଚ୍ଚନା କରନ୍ତୁ ଏ) ।

ଦୈତ୍ୟନିସୂଦନ—ପୁଂ. ବି. (ଦୈତ୍ୟ+ନି+ସୂଦ୍+ନ,ଅନ) ୩ତତ୍; ବିଷ୍ଣୁ ।

ଦୈତ୍ୟପତି—ପୁଂ.ବି. (୬ତତ୍) ହିରଣ୍ୟ-କଶିପୁ ।

ଦୈତ୍ୟପୂଜ୍ୟ—ବି.ବିଂ. (୬ତତ୍) ଅସୁର-ମାନଙ୍କର ଅର୍ଚ୍ଚନୀୟ, (ପୁଂ. ବି) ଶୁକ୍ରା ଚାର୍ଯ୍ୟ ।

ଦୈତ୍ୟପୁରୋଧାଃ—ପୁଂ. ବି. (ଦୈତ୍ୟ+ପୁରୋଧସ୍) ୬ତତ୍;ଦୈତ୍ୟଗୁରୁ ଦେଖ, ଶୁକ୍ରାଚାର୍ଯ୍ୟ ।

ଦୈତ୍ୟମାତା—ସ୍ତ୍ରୀ. ବି. (୬ତତ୍) ଦିତି ।

ଦୈତ୍ୟମେଦଜ—ପୁଂ.ବି. (ଦୈତ୍ୟ+ମେଦ +ଜନ୍+ଅ) ଗୁଗ୍ଗୁଲୁ,(ସ୍ତ୍ରୀ) ଦୈତ୍ୟ-ମେଦଜା—ପୃଥିବୀ ।

ଦୈତ୍ୟଯୁଗ—କ୍ଲୀ. ବି. (ଦୈତ୍ୟ+ଯୁଗ) ୬ତତ୍;ଦୈତ୍ୟମାନଙ୍କର ଯୁଗବିଶେଷ, ଦେବଯୁଗପରି ଦ୍ୱାଦଶ ସହସ୍ର ବତ୍ସର, ମନୁଷ୍ୟଙ୍କ ଗଣନାରେ ଚତୁର୍ଯୁଗ ।

ଦୈତ୍ୟସେନା—ସ୍ତ୍ରୀ. ବି. ଦୈତ୍ୟମାନଙ୍କର ସୈନ୍ୟ, ପ୍ରଜାପତିଙ୍କର କନ୍ୟା ଓ ଦେବସେନାଙ୍କ ଭଉଣୀ ।

ଦୈତ୍ୟହନ୍—ପୁଂ. ବି, ମହାଦେବ ।

ଦୈତ୍ୟା—ସ୍ତ୍ରୀ. ବି. (ଦୈତ୍ୟ+ସ୍ତ୍ରୀ. ଆ) ଅସୁରୁଣୀ,ମଦ୍ୟ, ମୁରନାମକ ଗନ୍ଧଦ୍ରବ୍ୟ, ମୁରମାଂସୀ ।

ଦୈତ୍ୟାରି—ପୁଂ. ବି. (ଦୈତ୍ୟ+ଅରି) ୬ତତ୍; ବିଷ୍ଣୁ ।

ଦୈତ୍ୟାହୋରାତ୍ର—ପୁଂ. ବି. (ଦୈତ୍ୟ +ଅହୋରାତ୍ର) ୬ତତ୍; ଦୈତ୍ୟ-ମାନଙ୍କର ଦିନ ରାତ୍ର ।

ଦୈତ୍ୟେଜ୍ୟ—ପୁଂ.ବି.(ଦୈତ୍ୟ+ଇଜ୍ୟ) ୬ତତ୍; ଦୈତ୍ୟଗୁରୁ, ଶୁକ୍ରାଚାର୍ଯ୍ୟ ।

ଦୈତ୍ୟେନ୍ଦ୍ର—ପୁଂ.ବି. (୬ତତ୍)ଦୈତ୍ୟ-ମାନଙ୍କର ପ୍ରଭୁ, ପାତାଳ କେତୁ ।

ଦୈଧିଷବ୍ୟ—ପୁଂ. ବି. (ଦଧିଷୁ+ଅପତ୍ୟାର୍ଥେ.ଯ) ସ୍ତ୍ରୀର ଦ୍ୱିତୀୟ ସ୍ୱାମୀଙ୍କ ଔରସ ସନ୍ତାନ, (ସ୍ତ୍ରୀ) ଦୈଧିଷବ୍ୟା ।

ଦୈନ—କ୍ଲୀ.ବି. (ଦୀନ + ଷ୍ଣ,ଅ) ଦୀନତା, ଦାରିଦ୍ର୍ୟ, ବିଂ. ( ଦିନ+ଷ୍ଣ. ଅ ) ଦୈନିକ,(ସ୍ତ୍ରୀ) ଦୈନୀ ।

ଦୈନନ୍ଦିନ—ବି. ବିଂ. (ଦିନ+ଦିନ+ଷ୍ଣ ଅ) ପ୍ରତିଦିନ କରାଯିବା, ପ୍ରତିଦିବସୀୟ. ପ୍ରାତ୍ୟହିକ, ପ୍ରତିଦିନ ଘଟିବା, (କ୍ରି.ବିଂ) ପ୍ରତିଦିନ, ଦିନକୁଦିନ ।

ଦୈନନ୍ଦିନପ୍ରଳୟ—ପୁଂ. ବି. (କ.ଧା) ବ୍ରହ୍ମାଙ୍କର ପ୍ରତିଦିନାବସାନେ ସକଳ ବସ୍ତୁର କ୍ଷୟରୂପ ପ୍ରଳୟ ।

ଦୈନାର—ବି. ବିଂ. ଦୀନାର ପରିମିତ ସ୍ୱର୍ଣ୍ଣଜାତ (ବସ୍ତୁ) ।

ଦୈନି—ବି. (ସଂ-ଦୈନ୍ୟ)ଦଇନିଦେଖ ।

ଦୈନିକ—ବି. ବିଂ. (ଦିନ+ଷ୍ଣ.ଇକ) ପ୍ରାତ୍ୟହିକ, ଯାହା ଦିବା ଭାଗରେ ଘଟେ, ଦିବସସମ୍ବନ୍ଧୀୟ, ଯାହା ଏକ-ଦିବସରେ ସମ୍ପନ୍ନ ହୋଇପାରେ,ଯାହା ପ୍ରତିଦିନ ପ୍ରକାଶିତ ହୁଏ,(ସ୍ତ୍ରୀ)ଦୈନିକୀ ।

ଦୈନିକା—ସ୍ତ୍ରୀ. ( ଦିନ+ଇକ+ଆ ) ଦିନମଜୁରି, ମୂଲ ।

ଦୈନ୍ୟ—କ୍ଲୀ. ବି. ( ଦୀନ+ଷ୍ଣ.ଯ ) ଦୀନତା,ଦାରିଦ୍ର୍ୟ,କାତରତା,ଅତିଶୟ ଦୁଃଖାବସ୍ଥା, ସନ୍ତାପ, ମନୋଦୁଃଖ, କାବ୍ୟର ସଂଚାରୀଭାବବିଶେଷ, (ଗ୍ରା ବି) ଦଇନି, କାତରପ୍ରାର୍ଥନା ।

ଦୈନ୍ୟଦଶା—ସ୍ତ୍ରୀ.ବି.(କ.ଧା) ଦାରିଦ୍ର୍ୟା-ବସ୍ଥା, ନିର୍ଧନତା ।

ଦୈବ—ବି.ବିଂ. (ଦେବ+ସମ୍ବନ୍ଧାର୍ଥେ. ଅ) ଦେବତା ସମ୍ବନ୍ଧୀୟ, ଐଶ୍ୱରିକ, ବିଧାତାଙ୍କ ବିହିତ, ଭାଗ୍ୟସମ୍ବନ୍ଧୀୟ, ଦେବତାଙ୍କ ପ୍ରୀତିସାଧକ, ପ୍ରାକୃତିକ, (ବି) ହିନ୍ଦୁଶାସ୍ତ୍ରୋକ୍ତ ଏକପ୍ରକାର ବିବାହ, ଅଦୃଷ୍ଟ,ଭାଗ୍ୟ,କର୍ମ,(ଦେବ+ସ୍ୱାର୍ଥେ.ଅ) ବିଧାତା, ଈଶ୍ୱର, ଆକାଶ, ଦେବତା,

ବିଧାତାଙ୍କ ବିଧାନ, ବିଧିବିଧାନ, ପୂର୍ବ-
ଜନ୍ମାର୍ଜିତ କର୍ମ, ଅଙ୍କୁରର ଦେବତାର୍ଥ।
ଦୈବକ—ପୁଂ.ବି.(ଦୈବ+ସ୍ୱାର୍ଥେ.କ)
ଦେବତା, ଦୈବ।
ଦୈବକର୍ମ—କ୍ଲୀ. ବି. (ଦୈବ+କର୍ମ)
କ.ଧା, ଦେବୋଦ୍ଦେଶେ କୃତକର୍ମ,
ଯଜ୍ଞାଦି।
ଦୈବକୀ—ସ୍ତ୍ରୀ. ବି. (ଦେବକ+ସ୍ତ୍ରୀ.ଈ)
ଦେବକୀ ଦେଖ।
ଦୈବକୀନନ୍ଦନ—ପୁଂ. ବି. (ଦୈବକୀ+
ନନ୍ଦନ) ୬ତତ୍; ଦୈବକୀର ପୁତ୍ର,
ବାସୁଦେବ, ଶ୍ରୀକୃଷ୍ଣ।
ଦୈବକୋବିଦ—ବି.ବିଂ.ଦୈବଜ୍ଞ, ଦୈବ
ପଣ୍ଡିତ, (ସ୍ତ୍ରୀ) ଦୈବକୋବିଦା।
ଦୈବକ୍ରମେ—ଗ୍ରା.ବି.ବିଂ.ଦୈବଯୋଗେ
ଦେଖ, ଅକସ୍ମାତ୍, ଦୈବାତ୍।
ଦୈବକ୍ଷତ୍ରି—ପୁଂ ବି. କ୍ରୋଷ୍ଟୁବଂଶୀୟ
ଦେବକ୍ଷତ୍ରଙ୍କ ଆତ୍ମଜ ନୃପବିଶେଷ।
ଦୈବଗତି—ବି.(ଦୈବ+ଗତି)୬ତତ୍;
ଦୈବର ବିଧାନ ଅନୁସାରେ ଘଟିବା
ଘଟଣା, ବିଧିବିଧାନ, ଆକସ୍ମିକ ଘଟଣା
ଦୈବଗତ୍ୟା—ଅବ୍ୟ. (ଦୈବଗତି ଶବ୍ଦର
ତୃତୀୟା ବିଭକ୍ତି ଏକବଚନ) ଦୈବ-
ଗତିକ୍ରମେ, ଅକସ୍ମାତ୍, ଦୈବାତ୍, ବିଧି-
ନିର୍ବନ୍ଧ ଅନୁକ୍ରମେ।
ଦୈବଘଟଣା—ସ୍ତ୍ରୀ.ବି.(ଦୈବୀ+ଘଟଣା)
କ.ଧା; ଅସମ୍ଭାବିତ ବ୍ୟାପାର, ଅତର୍କିତ
ଘଟଣା, ଭାଗ୍ୟଚକ୍ର। [ ଧୃଜକ
ଦୈବଘରିଆ—ପ୍ରା.(ସିଂହଭୂମ)ବି. ଦେବ-
ଦୈବଚିନ୍ତକ—ପୁଂ. ବିଂ. ଦୈବଜ୍ଞ।
ଦୈବଜ୍ଞ—ପୁଂ.ବି.(ଦୈବ+ଜ୍ଞା+କ.ଅ)
ଗଣକ, ଫଳିତ ଜ୍ୟୋତିଷଶାସ୍ତ୍ରଜ୍ଞ,
ଭବିଷ୍ୟଦ୍‌ବକ୍ତା, ଜ୍ୟୋତିଷ ବିଦ୍ୟା ଦ୍ୱାରା
ଜୀବିକା ନିର୍ବାହକାରୀ ଜାତିବିଶେଷ।
ଦୈବଜ୍ଞା—ସ୍ତ୍ରୀ. ବି. (ଦୈବଜ୍ଞ+ଆ)
ଦୈବଜ୍ଞପତ୍ନୀ।
ଦୈବତ—ସଂ.କ୍ଲୀ.ବି(ଦେବତା+ସ୍ୱାର୍ଥେ,
ସମୂହାର୍ଥେ.ଅ) ଦେବତା, ଦେବସମୂହ,
ବିଂ:(ଦେବତା+ସମ୍ବନ୍ଧାର୍ଥେ ଅ)ଦେବ-
ସମ୍ବନ୍ଧୀୟ।
ଦୈବତନ୍ତ୍ର—ସଂ.ବି.ବିଂ(୬ତତ୍)ଭାଗ୍ୟାଧୀନ
ଦୈବତପତି—ସଂ.ପୁଂ.ବି.(୬ତତ୍)ଇନ୍ଦ୍ର।
ଦୈବତପ୍ରତିମା—ସଂ. ସ୍ତ୍ରୀ. ବି. (୬ତତ୍)
ଦେବତାସମ୍ବନ୍ଧୀୟ ପ୍ରତିମା।
ଦୈବତରେୟ—ପୁଂ.ସ୍ତ୍ରୀ. ଶ୍ରେଷ୍ଠ ଦେବ-
ତାର ଅପତ୍ୟ, (ସ୍ତ୍ରୀ) ଦୈବତରେୟୀ।
ଦୈବତି—ପୁଂ.ସ୍ତ୍ରୀ.ଦେବତାଙ୍କ ଅପତ୍ୟ।
ଦୈବତୀର୍ଥ—କ୍ଲୀ. ବି. (କ.ଧା) କନିଷ୍ଠାଙ୍ଗୁଳି
ସମୂହର ଅଗ୍ରଭାଗ।
ଦୈବତ୍ୟ—ବି. ବିଂ: (ଦେବତା+ଯ)
ଦେବତା।
ଦୈବଦଣ୍ଡ—ବି. (ଦୈବ+ଦଣ୍ଡ)କ.ଧା;
ହଠାତ୍ ଘଟିବା ଦୁର୍ଘଟଣା।
ଦୈବଦତ୍ତ—ବି. ବିଂ. (ଦେବଦତ୍ତ+ଅ)
ଦେବଦତ୍ତଙ୍କ ପ୍ରସାଦ, ଦେବଦତ୍ତ
ଭକ୍ତିଯୁକ୍ତ।
ଦୈବଦତ୍ତି—ପୁଂ.ସ୍ତ୍ରୀ. (ଦେବଦତ୍ତ+ଇ)
ଦେବଦତ୍ତଙ୍କ ଅପତ୍ୟ।
ଦୈବଦାରବ—ବି.ବିଂ.ଦେବଦାରୁ ବୃକ୍ଷ-
ବିକାର ଯୂପାଦି।
ଦୈବଦୀପ—ପୁଂ. ବି. (ଦୈବ+ଦୀପ)
କ.ଧା; ଆଖି, ଚକ୍ଷୁଃ, ଦେବସମ୍ବନ୍ଧୀୟ,
ପ୍ରଦୀପ।
ଦୈବଦୁର୍ଘଟଣା—ଗ୍ରା. ବି. (ସଂ-ଦୈବ+
ଦୁର୍ଘଟନା) ଦୈବଦୁର୍ବିପାକ ଦେଖ।
ଦୈବଦୁର୍ବିପାକ—ପୁଂ.ବି.(ଦୈବ+ଦୁର୍ବି-
ପାକ) କ.ଧା; ଦୁର୍ଘଟନା, ଦୁର୍ଭାଗ୍ୟ,
ବିଧାତାଙ୍କର ନିଗ୍ରହ, (୬ତତ୍)
ଭାଗ୍ୟବିପର୍ଯ୍ୟୟ, ଭାଗ୍ୟର ପ୍ରତିକୂଳତା।
ଦୈବଦୁର୍ଯୋଗ—ବି. (ଦୈବ+ଦୁଃ+
ଯୋଗ)କ.ଧା; ଦୈବଦୁର୍ବିପାକ ଦେଖ।
ଦୈବଦୋଷ—ପୁଂ.ବି.(କ.ଧା ବା ୬ତତ୍)
ଅଦୃଷ୍ଟର ଦୋଷ, ଭାଗ୍ୟଦୋଷ।
ଦୈବଧନ—କ୍ଲୀ.ବି(ମପୀ--କ.ଧା) ଦୈବ-
ଲବ୍ଧଧନ, ଭାଗ୍ୟଲବ୍ଧ ଅର୍ଥ, (କ. ଧା)
ଦେବୋଦ୍ଦେଶେ ପ୍ରଦତ୍ତ ଧନ।
ଦୈବନିଷ୍ଠ—ପୁଂ.ବିଂ. (ଦୈବ+ନିଷ୍ଠା+
ଅ) ବ.ବ୍ରୀ; ଯେଉଁ ବ୍ୟକ୍ତି ଭବିଷ୍ୟତ୍
ପାଇଁ ଦୈବ ଉପରେ ନିର୍ଭର କରେ।
ଦୈବନ୍ୟାୟନ—ପୁଂ. ବି. ବ୍ୟାସବଂଶୀୟ
ଗୋତ୍ରପ୍ରବର ଋଷିବିଶେଷ।
ଦୈବପର—ବି. ବିଂ. ଦୈବନିଷ୍ଠ।
ଦୈବପ୍ରଶ୍ନ—ପୁଂ. ବି. (ଦୈବ+ପ୍ରଶ୍ନ)
କ.ଧା; ଭବିଷ୍ୟତ୍ ଶୁଭାଶୁଭ ସମ୍ବନ୍ଧେ
ଜିଜ୍ଞାସା, ଦୈବବାଣୀ।
ଦୈବବଂଶ—ପୁଂ. ବି. (ଦୈବ+ବଂଶ)
୬ତତ୍; ଦେବତାମାନଙ୍କର ବଂଶ।
ଦୈବବଶ—ବିଂ. ଦୈବାଧୀନ ଦେଖ।
ଦୈବବଶତଃ—ବି. ବିଂ. ଦୈବଗତ୍ୟା
ଦେଖ।
ଦୈବବଶାତ୍—ଗ୍ରା. ବି. ବିଂ. (ସଂ-ଦୈବ-
ବଶାତ୍) ଦୈବଯୋଗେ ଦେଖ।
ଦୈବବଶେ—ବି. ବିଂ. (୬ତତ୍) ଭାଗ୍ୟ-
କ୍ରମେ, ଦୈବାତ୍।
ଦୈବବାଣୀ—ସ୍ତ୍ରୀ. ବି. (ଦୈବୀ+ବାଣୀ)
କ.ଧା; ଆକାଶବାଣୀ, ଈଶ୍ୱରାଦେଶ,
ମନୁଷ୍ୟ ମୁଖେ ପ୍ରକାଶିତ ଦେବତାଙ୍କ
ହୁକୁମ, ସଂସ୍କୃତ ଭାଷା, ଦେବଭାଷା।
ଦୈବବିଡ଼ମ୍ବନା—ସ୍ତ୍ରୀ. ବି. (ଦେବ+
ବିଡ଼ମ୍ବନା) ୬ତତ୍ ବା କ.ଧା) ଦୈବ-
ଦୁର୍ବିପାକ, ଅଦୃଷ୍ଟକର୍ତ୍ତୃକ ପ୍ରତିକୂଳତା।
ଦୈବବିଦ୍—ପୁଂ. ବିଂ. (ଦୈବ+ବିଦ୍
+କ୍ୱିପ୍) ଦୈବଜ୍ଞ, ଗଣକ।
ଦୈବମତି—ପୁଂ.ସ୍ତ୍ରୀ. ଦେବମତ ଋଷିଙ୍କ
ଅପତ୍ୟ, (ସ୍ତ୍ରୀ) ଦୈବମତୀ।
ଦୈବମିତ୍ରି—ପୁଂ.ସ୍ତ୍ରୀ. ଦେବମିତ୍ର ଋଷିଙ୍କ
ଅପତ୍ୟ।
ଦୈବଯଜ୍ଞି—ପୁଂ. ସ୍ତ୍ରୀ. ଦେବାର୍ଥ ଯଜ୍ଞ-
କାରକଙ୍କ ଅପତ୍ୟ।
ଦୈବଯୁଗ—କ୍ଲୀ.ବି. (କ.ଧା) ଦିବ୍ୟଯୁଗ,
ମନୁଷ୍ୟମାନେ ଚାରିଯୁଗ, ଦେବ ପରି-
ମାଣେ ଦ୍ୱାଦଶ ସହସ୍ର ବତ୍ସର।
ଦୈବଯୋଗ—ପୁଂ.ବିଂ (କ.ଧା) ଦୈବ
ବା ଆକସ୍ମିକ ଘଟଣା, ଆକସ୍ମିକ
ଘଟଣାମାନଙ୍କର ସମାବେଶ।
ଦୈବଯୋଗେ—ଗ୍ରା. ବି. ବିଂ. (କ.ସ୍ତ୍ରୀ)
ଦଇବ, ଦୈବାତ୍, ହଠାତ୍

ଦୈବରଥ—ପୁଂ. ବଂ. ( ଦେବରଥ + ଅ) ଦେବରଥସମ୍ବନ୍ଧୀ ।
ଦୈବରାଜକ—ତ୍ରି.ବିଂ.ଦେବରାଜଭବ ।
ଦୈବରାତ—ପୁଂ. ସ୍ତ୍ରୀ. ( ଦେବରାଜ + ଇ)ଦେବରାତର ଅପତ୍ୟ, ଜନକରାଜ-ପିତା ।
ଦୈବଲ—ପୁଂ. ବ. ( ଦେବଲ + ଅ ) ଦେବଲ ଋଷିଙ୍କ ଅପତ୍ୟ ।
ଦୈବଲକ—ପୁଂ. ବଂ. ଭୂତସେବକ, ସ୍ତୈତ, ଦେବଲସମ୍ବନ୍ଧୀ ।
ଦୈବଲବ୍ଧ—ତ୍ରି.ବଂ. (୩ତତ୍)ଅଦୃଷ୍ଟ-ବଶତଃ ପ୍ରାପ୍ତ ।
ଦୈବଲେଖକ—ପୁଂ.ବ(୬ତତ୍)ଗଣକ, ଦୈବଜ୍ଞ । [ ଦେଖ ।
ଦୈବଲେଖନ—ବ. କପାଳ ଲେଖନ
ଦୈବଶକ୍ତି—ସ୍ତ୍ରୀ. ବ. ( କ.ଧା ) ଈଶ୍ୱର ସମ୍ବନ୍ଧୀୟ କ୍ଷମତା, ଐଶ୍ୱରିକ କ୍ଷମତା, ଐଶୀ ଶକ୍ତି ।
ଦୈବସର୍ଗ—ପୁଂ. ବ. ( ଦୈବ + ସର୍ଗ ) କ.ଧା; ଦେବାଦି ସର୍ଗଭେଦ ।
ଦୈବସୃଷ୍ଟି—ପ. ସ୍ତ୍ରୀ. ବ. ( ଦୈବ + ସୃଷ୍ଟି କ.ଧା; ସ୍ୱୟମ୍ଭୂକୃତ ଦେବତାମାନଙ୍କର ସୃଷ୍ଟି । [ ପତ୍ର ।
ଦୈବହବ—ପୁଂ.ବ.ଦେବହବ୍ୟଙ୍କ ଗୃହ
ଦୈବହୀନ—ତ୍ରି.ବଂ.(୩ତତ୍)ଦୁର୍ଭାଗ୍ୟ-ବାନ, ଯାହାର ଭାଗ୍ୟ ଭଲ ନୁହେଁ ।
ଦୈବାକରି—ପୁଂ. ବ. (ଦିବାକର + ଇ) ଶନି, ଯମ, (ସ୍ତ୍ରୀ) ଯମୁନା ।
ଦୈବାଗାରକ—ତ୍ରି. ବଂ. ଦେବାଗାରେ ନିଯୁକ୍ତ, ଯେ ଦେବାଳୟେ ନିଯୁକ୍ତ ହୋଇଅଛି ।
ଦୈବାତ୍—ଅବ୍ୟ. (ଦୈବ + ଅତ୍ + କ. କ୍ୱିପ୍ ) ସହସା, ହଠାତ୍, ଅତର୍କିତ ଭାବରେ, ଈଶ୍ୱରଙ୍କ ଇଚ୍ଛାକ୍ରମେ ।
ଦୈବାତ୍ୟୟ—ପୁଂ. ବ. (କ.ଧା)ଦେବ-କୃତ ବା ଅଦୃଷ୍ଟକୃତ ଉପଦ୍ରବ ।
ଦୈବାଦିକ—ପୁଂ. ବ. ଦିବାଦିଗଣପଠିତ ଧାତୁ ।
ଦୈବାଦେଶ—ପୁଂ. ବ. ( ଦୈବ + ଆଦେଶ କ.ଧା ବା ୬ତତ୍ ) ଦେବା-ଦେଶ, ପ୍ରତ୍ୟାଦେଶ, ଈଶ୍ୱରାଜ୍ଞା ।
ଦୈବାଧୀନ—ତ୍ରି.ବଂ.(ଦୈବ + ଅଧୀନ) ୬ତତ୍) ଅଲୌକିକ, ଐଶ୍ୱରିକ, ଈଶ୍ୱ-ରାୟତ୍ତ ।
ଦୈବାଧୂଷ—ପୁଂ.ବ.ବଭ୍ରୁଙ୍କ ଗୋତ୍ରାପତ୍ୟ
ଦୈବାୟତ୍ତ—ବଂ. ( ଦୈବ + ଆୟତ୍ତ ) ୬ତତ୍; ଦୈବାଧୀନ ଦେଖ ।
ଦୈବାରିପ—ପୁଂ. ବ. ଶଙ୍ଖ ।
ଦୈବାସିଦ୍ଧ—ପ୍ରା. ସମ୍. ବ. ( କଚେରିଆ ଭାଷା) ମକଦ୍ଦମାରେ ଡିଗ୍ରୀ ।
ଦୈବାସୁର—କ୍ଳୀ. ବ.(ଦେବାସୁର + ଅ) ଦେବତା ଓ ଅସୁରଙ୍କ ବୈରତା,ଦେବା-ସୁର ଶବ୍ଦଯୁକ୍ତ ଅନୁବାକ ବା ଅଧ୍ୟାୟ ।
ଦୈବୋଦ୍ୱୋଦନ—ପୁଂ. ବ. ଦେବତା-ମାନଙ୍କର ଏକଦିନ ।
ଦୈବିକ—ତ୍ରି. ବଂ. (ଦେବ + ସମ୍ବନ୍ଧାର୍ଥେ ଇକ ) ଦେବସମ୍ବନ୍ଧୀୟ, ଐଶ୍ୱରିକ, (ଦେବ + ଭାବାର୍ଥେ ଇକ)ଦୈବଘଟିତ. (ସ୍ତ୍ରୀ) ଦୈବିକୀ ।
ଦୈବୀ—ସ୍ତ୍ରୀ. ବଂ. (ଦେବ + ସମ୍ବନ୍ଧାର୍ଥେ .ଅ + ଈ) ଦେବତାସମ୍ବନ୍ଧୀୟ, ଭାଗ୍ୟ ସମ୍ବନ୍ଧୀୟ, ( ବ ) ଚିକିତ୍ସା ବିଶେଷ, ଦେବାରାଧନ ପୂର୍ବକ ଯେଉଁ ଚିକିତ୍ସା କରାଯାଏ, ( ଗ୍ରା.ବ ) ଦୈବଘଟନା, ଦୁର୍ଘଟନା, ଦୈବକାର୍ଯ୍ୟ, (ଗ୍ରା.ତ୍ରି.ବଂ) ଦୈବାତ୍, ଦୈବ ଘଟନାକ୍ରମେ, ଅକସ୍ମାତ୍, ( ଦୈବ ବିବାହଦ୍ୱାରା ପରିଣୀତା ପତ୍ନୀ,ଗୀତୋକ୍ତ ସମ୍ପଦ୍ଭେଦ)
ଦୈବୀଘଟନା—ବ. ( ଦୈବୀ + ଘଟନା ) କ.ଧା; ଦୈବଘଟନା ଦେଖ ।
ଦୈବୀଦଣ୍ଡ—ଗ୍ରା. ତ୍ରି. ( ସଂ-ଦୈବଦଣ୍ଡ) ଦୈବଦଣ୍ଡ ଦେଖ ।
ଦୈବୀଶକ୍ତି—ସ୍ତ୍ରୀ. ବ. ଦେବସମ୍ବନ୍ଧୀୟ କ୍ଷମତା, ଐଶୀ ଶକ୍ତି,ଅସମସ୍ତ ପଦାର୍ଥ ।
ଦୈବୋତ୍ପାତ—ବ. ( ଦୈବ + ଉତ୍ପାତ) କ.ଧା; ଦୈବଦଣ୍ଡ ଦେଖ ।
ଦୈବୋଦାସ—ପୁଂ. ବ. (ଦିବୋଦାସ + ଅ)ଦିବୋଦାସଭବ,ଦିବୋଦାସଅପତ୍ୟ, ଦିବୋଦାସ କର୍ତ୍ତୃକ ଆହୂତମାନ ବହ୍ନି ।
ଦୈବୋଦାସି—ପୁଂ. ବ. (ଦିବୋଦାସ + ଇ) ଦିବୋଦାସର ଅପତ୍ୟ ।
ଦୈବୋଦ୍ୟାନ—କ୍ଳୀ.ବ. ଦେବତାମାନଙ୍କର ଉଦ୍ୟାନ ।
ଦୈବୋପହତକ—ତ୍ରି. ବଂ.ଦୈବକର୍ତ୍ତୃକ ଉପହତ ,ହତଭାଗ୍ୟ,ଶୁଭାଦୃଷ୍ଟବର୍ଜିତ ।
ଦୈବୋପହତ—ତ୍ରି. ବଂ. ( ୩ତତ୍ ) ହତଭାଗ୍ୟ, ଦୁରଦୃଷ୍ଟ, (ସ୍ତ୍ରୀ) ଦୈବୋ-ପହତା ।
ଦୈବ୍ୟ—କ୍ଳୀ. ବ.(ଦେବ + ଯ)ଭାଗ୍ୟ, ଅଦୃଷ୍ଟ, (ବଂ) ଦେବସମ୍ବନ୍ଧୀୟ, (ସ୍ତ୍ରୀ) ଦୈବ୍ୟା ।
ଦୈର୍ଘ୍ୟ—କ୍ଳୀ. ବ. (ଦୀର୍ଘ + ଯ)ଦୀର୍ଘତା, ଲମ୍ବାର ପରିମାଣ ।
ଦୈଶିକ—ତ୍ରି. ବଂ. ( ଦେଶ + ସମ୍ବନ୍ଧାର୍ଥେ. ଇକ) ଦେଶୀ, ଏକଅଂଶ ବା ଏକଦେଶ ସମ୍ବନ୍ଧୀୟ,ଦେଶଜ ଦେଖ ।
ଦୈଶିକବିଶେଷଣତା—ସ୍ତ୍ରୀ. ବ. ଦେଶ-କୃତ ଅଭାବୀୟ ସ୍ୱରୂପ ସମ୍ବନ୍ଧ ଭେଦ ।
ଦୈଷ୍ଟିକ—ତ୍ରି. ବଂ.(ଦିଷ୍ଟ + ଇକ)ଏକ-ମାତ୍ର ଭାଗ୍ୟ ଉପରେ ନିର୍ଭରକାରୀ, ପୁରୁଷକାରହୀନ, (ସ୍ତ୍ରୀ) ଦୈଷ୍ଟିକୀ ।
ଦୈହିକ—ତ୍ରି.ବଂ.(ଦେହ + ସମ୍ବନ୍ଧାର୍ଥେ. ଇକ ) ଶାରୀରିକ, ଦେହସମ୍ବନ୍ଧୀୟ, ଦେହଭବ, (ସ୍ତ୍ରୀ) ଦୈହିକୀ ।
ଦୈହିକଉପାଦାନ—ବ. ( ଜୀବବିଜ୍ଞାନ ପରିଭାଷା) ଶରୀରର ଉପାଦାନ, ଜୀବର ଦେହ ରକ୍ତ ଯେଉଁ ମାଂସାଦି ଉପା-ଦାନରେ ଗଠିତ ।
ଦୈହ୍ୟ—ତ୍ରି. ବଂ. ( ଦେହ + ଯ ) ଦେହଭବ (ଜୀବ) । [ ଦେଖ ।
ଦୋ—ଗ୍ରା. ବି. ଦୁଇ, (ଗ୍ରା.ବ) ଦେଖ
ଦୋଃଶିଖର—କ୍ଳୀ.ବ. (୬ତତ୍)ସ୍କନ୍ଧ ।
ଦୋଃସହସ୍ରଭୃତ୍—ପୁଂ.ବ. (ଦୋଃସହସ୍ର + ଭୃ + କ୍ୱିପ୍ ) କାର୍ତ୍ତବୀର୍ଯ୍ୟାର୍ଜ୍ଜୁନ, ବାଣାସୁର ।
ଦୋଅଂଶଳ—ଗ୍ରା.ବଂ.(ସଂ-ଦ୍ୱି ଓ ଅଂଶ) ଜାରଜ, ଦୁଇ ବିଭିନ୍ନ ଜାତୀୟ ଜୀବଙ୍କ-

ସଙ୍ଗମରୁ ଉତ୍ପନ୍ନ, ବର୍ଣ୍ଣସଙ୍କର ।
**ଦୋଅଂଶ**—ଗ୍ରା. ବି. (ସଂ-ଦ୍ୱି ଓ ଅଂଶ) ଦୋରସା ( ମାଟି ), ଯେଉଁ ମାଟିରେ କାଦୁଅ ଓ ବାଲି ମିଶିଥାଏ, ଯେଉଁ କବ ଜାରେ ୨ଟି ଅଂଶ ବା ଧାର ଥାଏ ।
**ଦୋଅକ୍ଷରଗାଳି**—ଗ୍ରା. ବି.(ସଂ-ଦ୍ୱିଅକ୍ଷର +ଗାଳି) ଲଙ୍ଗ, ଯୋନି, ଆଦିବାଚକ ଅଶ୍ଳୀଳ ଶବ୍ଦମାନଙ୍କର ବ୍ୟବହାର ଯୁକ୍ତ ଗାଳି ।
**ଦୋଅଣୀ**—ଗ୍ରା. ବି. (ସଂ-ଦ୍ୱି ଓ ଆନକ) ଦୁଇଅଣା ମୂଲ୍ୟର ମୁଦ୍ରା,(ପ୍ରା.ଯାଜପୁର (ସଂ-ଦୋହନୀ) ବି, ଗାଈଦୁହାଁ ଠେକି
**ଦୋଆ**—ଯା. ବି. ପ୍ରାର୍ଥନା,ଆରାଧନା ।
**ଦୋଆତ**—ଗ୍ରା. ବି. ଦୁଆତ, ମସୀଧାର
**ଦୋଆବ**—ଗ୍ରା. ବି. ( ସଂ-ଦ୍ୱି+ଅପ୍ ) ଦୁଇନଦୀମଧ୍ୟସ୍ଥ ଭୂଖଣ୍ଡ, ଦ୍ୱୀପାଙ୍ଗପ୍ରଦେଶ ।
**ଦୋଆଁସଲା**—ଯା. ବିଂ. ଖଚର. ମିଶ୍ର-ଜାତ, ସଙ୍କର ।
**ଦୋଉ**—ଗ୍ରା. ବି. (ସଂ-ଦେବ) ରାଜା ଓ ରାଜପୁତ୍ରଙ୍କ ସମ୍ବୋଧନ, ଦେଉ ।
**ଦୋଓଡ଼**—ଗ୍ରା. ବିଂ. (ସଂ-ଦ୍ୱିବାର) ଦୁଇ-ଥର ହଳ କରାଯାଇଥିବା,ଦୁଇଥରଚାଷ କରାଯିବା,ଦୁଇପରସ୍ତ ଭଙ୍ଗାଯାଇଥିବା, ଦୁଇଥର ବା ଦ୍ୱିତୀୟଥର କରାଯିବା, (କ୍ରି.ବିଂ) ଦୁଇଥର, ଦ୍ୱିତୀୟଥର, (ବି) ଦ୍ୱିତୀୟଥର, ଦୁଇଥର ।
**ଦୋଓଡ଼ପକ୍ଷବର**—ଗ୍ରା.ବି.ବିଂ.ଦୋବେଇ କର ଦେଖ । [ ଦେଖ ।
**ଦୋଓଡ଼ପାଳି**—ଗ୍ରା. ବି. ଦୁଆରପାଳି
**ଦୋଓଡ଼ବେଉଷା**—ଗ୍ରା. ବି. ଶାରଦ ଧାନକୁ ଦ୍ୱିତୀୟଥର ବେଉଷଣ କରାଯିବ
**ଦୋଓଡ଼ମଇ**—ଗ୍ରା.ବି. ଦୋଓଡ଼ବେଉଷ ପରେ ଧାନବିଲରେ ଦିଆଯିବା ମଇ ।
**ଦୋଓଡ଼ମୁଣ୍ଡା**—ଗ୍ରା. ବି. ଏକପ୍ରକାର ଚଉଡ଼ା ଲଙ୍ଗଳର ତଳଭାଗ ।
**ଦୋଓଡ଼ା**—ଗ୍ରା. ବି. ଅପରାହ୍ଣରେ କରାଯିବା ଭୋଜନ ଦେବସର ଦ୍ୱିତୀୟ ଭୋଜନ, (ବିଂ) ଦୁଇଥର ଛାଙ୍କ କରାଯାଇଥିବା (କ୍ଷୀରି କାଗଜ) ।

**ଦୋଓଡ଼ା(ଡ଼େ)ଇବା**—ଗ୍ରା.କ୍ରି.କୌଣସି ପଦାର୍ଥକୁ ଦୁଇଭାଗଙ୍ଗିଆ କରିବା, ଦୁଇଥର ଚାଷ କରିବା, ଏକକାର୍ଯ୍ୟକୁ ଦୁଇଥର କରିବା, କୌଣସି କର୍ମକୁ ଦ୍ୱିତୀୟଥର କରିବା,ପୁନର୍ବାର କରିବା, ଦ୍ୱିରାବୃତ୍ତି କରିବା, ପୁନର୍ବାର କରିବା ।
**ଦୋଃ**—ବି. ଦୋସ୍ ଦେଖ ।
**ଦୋକଚ୍ଛ**—ଗ୍ରା. ବି. (ସଂ-ଦ୍ୱିକଚ୍ଛ) ପାଇଁ-କଚ୍ଛା, ଏକପ୍ରକାର ଲୁଗାପିନ୍ଧା ।
**ଦୋକତା**—ଗ୍ରା.ବି. ଶୁଖିଲା ତମାଖୁ ପତ୍ର, ଧୂଆଁପତ୍ର ।
**ଦୋକନା**—ଗ୍ରା. ବି. ( ସଂ-ଦ୍ୱି+କର୍ଣ୍ଣ ) ଏକପ୍ରକାର ଅସ୍ତ୍ର, ଅଗ୍ରଭାଗରେ ଦୁଇ-ଶାଖା ଥିବା ଯଷ୍ଟି, ଦୁଇଶାଖା ବିଶିଷ୍ଟ ମଶାଲ, (ବିଂ) ଦୁଇଶାଖାବିଶିଷ୍ଟ ।
**ଦୋକନାସିଙ୍ଘ**—ଗ୍ରା.ବି. ଏକପ୍ରକାର ସିଙ୍ଘ, ଦୁଇଟି ଶାଖା ବା କୁଆଁ ଥିବା ଏକ-ପ୍ରକାର ସିଙ୍ଘଗଛ । [ ଥର ।
**ଦୋକର**—ଗ୍ରା.ଅବ୍ୟ. ଦୁଇଥର,ଦ୍ୱିତୀୟ-
**ଦୋକଲି**—ଗ୍ରା.ବିଂ. ଯାହାସଙ୍ଗେ ଦ୍ୱିତୀୟ-ବ୍ୟକ୍ତି ଥାଏ ।
**ଦୋକା**—ଗ୍ରା. ବି. ( ସଂ-ଦ୍ୱି ) ତାସ୍-ଖେଳରେ ଦୁଇବିନ୍ଦୁଯୁକ୍ତ ତାସ୍ ।
**ଦୋକାଠ**—ଗ୍ରା. ବିଂ. (ଧାନ, ତମାଖୁ, ଆଖୁଆଦି ଗଛ) ଥରେ କଟାଯିବାପରେ ପୁଣି କୁଆଁ ବାହାରିଲେ ଆଉଥରେ କଟାଯିବା (ଗଛ),ଗ୍ରା.ବି. ଧାନ,ତମାଖୁ, ଆଖୁଇତ୍ୟାଦିର କାଣ୍ଡ ଦୁଇଥର କଟା-ଯିବା, କଦଳୀ ବାଡ଼ରେ ପ୍ରଥମଥର କେତେକ ଗଛରେ ପେଣ୍ଡା ପଡ଼ି-ସାରିବା ପରେ ଅନ୍ୟ ଗଛମାନଙ୍କରେ ଦ୍ୱିତୀୟଥର ପେଣ୍ଡା ପଡ଼ିବା ।
**ଦୋକାନ**—ଯା. ବି. ପଣ୍ୟଶାଳା, କାର-ଖାନା, ଦ୍ରବ୍ୟାଦିର କ୍ରୟ ବିକ୍ରୟ ସ୍ଥାନ ।
**ଦୋକାନଖୋଲିବା**—ଗ୍ରା.କ୍ରି. ଦୋକାନ ମେଲିଇବା ଦେଖ, ନୂତନ ଦୋକାନ ଆରମ୍ଭ କରିବା ।
**ଦୋକାନଦାର**—ଯା. ବି. ଦୋକାନର ସ୍ୱାମୀ, ଦୋକାନୀ ।

**ଦୋକାନଦାରି**—ଯା. ବି. ଦୋକା-ନର ବ୍ୟବସାୟ, ଦୋକାନଦାର ପରି ସ୍ୱାର୍ଥପର ଆଚରଣ, (ବିଂ) ଦୋକାନ-ଦାର ସମ୍ବନ୍ଧୀୟ, ଦୋକାନଦାରର ଯୋଗ୍ୟ ବା ଉଚିତ କର୍ମ ।
**ଦୋକାନଦାରିଆ**—ଗ୍ରା.ବିଂ. ଦୋକାନ ଦାର ସମ୍ବନ୍ଧୀୟ, ଦୋକାନଦାରର ଯୋଗ୍ୟ ।
**ଦୋକାନଦାରୀ**—ଯା. ବି. ଦୋକାନ-ଦାରର କାର୍ଯ୍ୟ ।
**ଦୋକାନପତ୍ର**—ଗ୍ରା. ବି. ଦୋକାନ, ଦୋକାନର ପଣ୍ୟଦ୍ରବ୍ୟ, କ୍ରୟବିକ୍ରୟ ।
**ଦୋକାନମେଲି(ଲେ)ଇବା**—ଗ୍ରା. କ୍ରି. ପଣ୍ୟଦ୍ରବ୍ୟମାନଙ୍କୁ ବିକ୍ରୟାର୍ଥ ସୁସଜ୍ଜିତ କରି ରଖିବା, ଦୋକାନମାନଙ୍କ ପରି ଜିନିଷ ଇତସ୍ତତଃ ବିସ୍ତାଇ ରଖିବା ।
**ଦୋକାନି(ନୀ)**—ଯା. ବି. ଦୋକାନଦାର ଦେଖ, ଯେ ଦୋକାନରେ ଖୁଚୁରା ବିକ୍ରି କରେ ।
**ଦୋଖୁଣ୍ଟିଆ**—ଗ୍ରା. ବିଂ. ଯେଉଁ ଧାନ-ଗଛର ଅଗରୁ ଧାନକେଣ୍ଡାସବୁ କଟା-ହୋଇଯିବାପରେ ମୂଳରୁ ଶୁଖିଯାଇଥିବା ତଣ୍ଡା କଟା ହୁଏ ।
**ଦୋଗଛିଆ**—ଗ୍ରା. ବିଂ. ଯେଉଁ କାଠରେ ବା ଛକରେ ଦୁଇଟି ଗଛ ପରସ୍ପର ସଂଲଗ୍ନ ଥାଏ ।
**ଦୋଗଧନ**—ଗ୍ରା. ବିଂ. (ସଂ-ସନ୍ଦିହାନ) ସନ୍ଦିହାନ, କିଂକର୍ତ୍ତବ୍ୟବିମୂଢ, (ବି) ସନ୍ଦେହ,ବିଷମସମସ୍ୟା,ଦୋଦୋପାଞ୍ଚ ।
**ଦୋଗଧା**—ଗ୍ରା.ବି. (ସଂ-ଦ୍ୱିଧା) ସନ୍ଦେହ, ଧନ୍ଦା, ବିଷମସମସ୍ୟା, ଆଶଙ୍କା, (ବିଂ) ସନ୍ଦେହଯୁକ୍ତ ।
**ଦୋଗଧିହେବା**—ଗ୍ରା.କ୍ରି. ଧନ୍ଦିକିହେବା, ସନ୍ଦେହରେ ପଡ଼ିହେବା ।
**ଦୋଗଲି**—ଯା.ବିଂ.ବର୍ଣ୍ଣସଙ୍କର,ଜାରଜ, ଦୁଇ ବିଭିନ୍ନ ଜାତୀୟ ଜୀବଙ୍କ ସଙ୍ଗମରୁ ଉତ୍ପନ୍ନ, ଯେଉଁ ବ୍ୟକ୍ତିର ମନ ଗୋଟିଏ କାର୍ଯ୍ୟରେ ଏକାଗ୍ର ହୋଇ ଲାଗେ ନାହିଁ
**ଦୋଗ୍ଧବ୍ୟ**—କ୍ରି. ବିଂ. (ଦୁହ୍+ତବ୍ୟ)

ଦୋହନମାସ୍ତ୍ର ।
ଦୋଗ୍ଧା—ପୁଂ. ବି. (ଦୁହ୍+କ.ତୃ) ଯେ ଦୁହେଁ, ଦସ୍ତା, ବାଛୁରି, ଗୋପାଳ, ଗଉଡ଼, କବି, (ସ୍ତ୍ରୀ) ଦୋଗ୍ଧ୍ରୀ, (ବିଂ) ଦୁହିଁବା ବ୍ୟକ୍ତି, ଦୁହାଁଳ, (ବି ଓ ବିଂ) ଦୋବଧା ଦେଖ ।
ଦୋଗ୍ଧ୍ରୀ—ସ୍ତ୍ରୀ. ବିଂ. (ଦୁହ୍+କ, ତୃ+ ସ୍ତ୍ରୀ.ଈ)ଦୋହନଶୀଳା, (ସ୍ତ୍ରୀ.ବି)ଦୁଗ୍ଧ- ବତୀ ଗାଈ, ଗାଈ ଦୁହାଁଳୀ ସ୍ତ୍ରୀ, ଗଉ- ଡୁଣୀ ।
ଦୋଘ—ପୁଂ.ବି. (ଦୁହ୍+ଅ)ଦୋଗ୍ଧା ।
ଦୋଘର—ଗ୍ରା.ବି.(ସଂ-ଦ୍ୱି ଓ ଗୃହ)ଦୁଇ- ସ୍ଥାନରେ ଥିବା ବାସଗୃହ ।
ଦୋଘା(ଘେ)ଇ—ଗ୍ରା.ବି. ବିଷମ ସମସ୍ୟା, ଦୋଗଧା, ଧନ୍ଦା, ଦୁଇଟି ନଈ ଧାର ପରସ୍ପରକୁ କାଟିବା, ଦୁଇପକ୍ଷ ମଧ୍ୟରେ ବିବାଦ,(ବିଂ.ସଂ-ଦ୍ୱି ଓ ବିବାହିତ)ଦ୍ୱିତୀୟ ଥର ବିବାହିତ ପୁରୁଷ, ଦୋବେଇ ।
ଦୋଗୃହି—ଗ୍ରା. ପୁଂ. ବି. (ସଂ-ଦ୍ୱିରେ, ଦ୍ୱିଗୃହୀ) ଲମ୍ପଟ, ଜାରପୁରୁଷ ।
ଦୋଘର(ରୁ)ଣୀ—ଗ୍ରା.ସ୍ତ୍ରୀ.ବି. (ସଂ-ଦ୍ୱିଗୃ- ହିଣୀ) କୁଳଟା, ଲମ୍ପଟୀ । [ ଘର ।
ଦୋଘରି(ରୀ)—ଗ୍ରା.ବି. ଦୁଇଘର ବିଶିଷ୍ଟ
ଦୋଚନ୍ଦା—ଗ୍ରା. ବି. ଚହ୍ନି ନ ଚହ୍ନିବା, ଚହ୍ନିଥିବା ବ୍ୟକ୍ତିକୁ ପରେ ଚହ୍ନି ନ ପାରିବା ।
ଦୋଚୁଙ୍ଗା(ଙ୍ଗୀ)—ଗ୍ରା. ବିଂ. ଦୁନଳିଆ (ବନ୍ଧୁକାଦି) ।
ଦୋଛକ(ଛି)—ଗ୍ରା.ବି. ଯେଉଁ ସ୍ଥାନରେ ଦୁଇଟି ବାଟ ପରସ୍ପରକୁ କାଟିଥାଏ ।
ଦୋଛୁ(ଛୋ)ଟ—ଗ୍ରା. ବି. ଦ୍ୱିତୀୟ ବସ୍ତ୍ର, ଉତ୍ତରୀୟ, ଚଦର, ଏକପଟା ।
ଦୋଜକ(ଖ)—ଯା. ବି. ମୁସଲମାନଙ୍କ ନରକ ।
ଦୋଜବର—ଗ୍ରା. (ବାଲେ) ଦୋବେଇ ଦେଖ ।
ଦୋଜରେଜେଷ୍ଟର—ପ୍ରା(ଷଡ଼େଇକଲା) ବି.(କଚେରୀଆ) ଯେଉଁ ରେଜେଷ୍ଟରରେ ସମନ ଓ ନୋଟିସ ଜାରିକରିବା ପିଆଦାମାନଙ୍କ ବିବରଣ ଲେଖାଥାଏ ।
ଦୋଡ଼ୀ—ସ୍ତ୍ରୀ. ବି. (ଦୋଲ୍+ଅ+ଈ) ଦୋଲୀ, ଫଳ ପ୍ରଧାନ ବୃକ୍ଷବିଶେଷ ।
ଦୋତନ୍ତ୍ର—ସୁବିଧାନୁସାରେ ଏକବାର ଏହାର ତତ୍ପରେ ଅପରର କ୍ରମିକ କାର୍ଯ୍ୟ ।
ଦୋତରଫା—ଯା.ବିଂ. (କଚେରୀଆ)ବାଦୀ ଓ ପ୍ରତିବାଦୀ ଉଭୟଙ୍କ ଉପସ୍ଥିତରେ ବିଚାର କରାଯାଇଥିବା ।
ଦୋତାରବନ୍ଦ—ଗ୍ରା.ବିଂ. ଚନ୍ଦରେ ପାଣି ଦେଇ କଆଁରେ ଫୁଟାଇବା ବେଳେ ଚଟୁରେ ଉକ୍ତ ପାଣିକୁ ଉଠାଇଲେ ସରୁ ତାରପରି ଦୁଇଟି ମାତ୍ର ଧାର ବୋହି ପଡ଼ିବା ଅବସ୍ଥା ବା ପାଗ ।
ଦୋତାରା—ଗ୍ରା. ବି. ଦୁଇଗୋଟି ତାର- ବିଶିଷ୍ଟ ବାଦ୍ୟଯନ୍ତ୍ର.(ବିଂ) ଦୁଇତାରଯୁକ୍ତ (କ.ପ୍ର) ।
ଦୋତାରି—ଗ୍ରା.ବିଂ.ଯେଉଁ ସପମସିଣାର ଦୁଇଟି ଲେଖାଏଁ ଜାଠି ଏକସଙ୍ଗେ ବୁଣା- ଯାଇଥାଏ, ଯେଉଁ ଲୁଗାରେ ଦୁଇଟି ଲେଖାଏଁ ସୂତା ଏକସଙ୍ଗେ ବୁଣାଯାଇ- ଥାଏ, (ଦୋତାରବନ୍ଦ) ।
ଦୋତାଲ—ଗ୍ରା.ବିଂ. (ସଂ-ଦ୍ୱି.ତଳ)ଦ୍ୱିତଳ ବିଶିଷ୍ଟ, ( ସଂ-ଦ୍ୱି + ତାଳକ ) ଯେଉଁ କୋଳପର କଳ ଏପରି ଥାଏ ଯେ ତାହା ଦୁଇଥର ଘୁରିଯାଇ ଗୃହପଟେ ଯେଉଁ ଘର ବା ସିନ୍ଦୁକରେ ଦୁଇଟି କୋଳପ ପଡ଼ିଥାଏ, (ବି) କୋଠାର ଦ୍ୱିତୀୟ ତଳ, ଉପର ମହଲା ।
ଦୋଆବ—କୁମ୍ଭଲର ଦକ୍ଷିଣ ପଶ୍ଚିମେ ଅବ- ସ୍ଥିତ ଗୋଟିଏ ବହୁ ଜନାକୀର୍ଣ୍ଣ ପ୍ରଦେଶ ବା ନଗର ।
ଦୋଅଣ୍ଟି—ଗ୍ରା.ବି.ଚିଲ୍କା ହ୍ରଦରେ ଥିବା ଏକପ୍ରକାର ମାଛ ।
ଦୋଦୁଲ(ଲି)—ଗ୍ରା. ବିଂ. (ସଂ-ଦ୍ୱି+ଆ. ଦିଲ) ଯେଉଁ ବ୍ୟକ୍ତିର ମନ ଗୋଟିଏ କାର୍ଯ୍ୟରେ ଏକାଗ୍ର ନ ଥାଇ କାର୍ଯ୍ୟା- ନ୍ତର ପ୍ରତି ଆକୃଷ୍ଟ ରହେ ।
ଦୋଦୁଲ୍ୟମାନ—ପୁଂ.ବିଂ. (ଦୋଦୁଲ୍+ କ.ଆନ) ଅନବରତ ଦୋହଲୁଥିବା, କ୍ରମାଗତ ଦୋଳାୟମାନ,(ସ୍ତ୍ରୀ)ଦୋଦୁଲ୍ୟ- ମାନା । [ ଦେଖ ।
ଦୋଦୋଚନ୍ଧା—ଗ୍ରା. ବି. ଦୋ ଚନ୍ଧା
ଦୋଦୋପାଞ୍ଚ—ଗ୍ରା.ବିଂ.କୌଣସି କାର୍ଯ୍ୟ କରିବା କି ନ କରିବା—ଏ ସମ୍ବନ୍ଧେ ଦ୍ୱନ୍ଦ୍ୱହେବା, (ବି) କୌଣସି କାର୍ଯ୍ୟ କରିବା ନ କରିବା ସମ୍ବନ୍ଧେ ସନ୍ଦେହ ବା ଅସ୍ଥିରତା ।
ଦୋଧ—ପୁଂ.ବି.(ଦୁହ୍+ଣ.ଅ)ଗୋବତ୍ସ, ବାଛୁରି ।
ଦୋଧକ—କ୍ଳୀ. ବି. ଛନ୍ଦୋଭେଦ ।
ଦୋଧୂୟମାନ—ପୁଂ. ବିଂ. ( ଧୂ+ପୁନଃ ପୁନଃଅର୍ଥରେ ଯଙ୍‌ଲୁଗନ୍ତ ଦୋଧୂୟ+ କ.ଆନ) ପୁନଃ ପୁନଃ କମ୍ପମାନ, (ସ୍ତ୍ରୀ) ଦୋଧୂୟମାନା ।
ଦୋନ୍‌ଜମି—(ପ୍ରା. ସିଂହଭୂମ.ବି.)ସିଂହ- ଭୂମର ସରକାରୀ ରାଜସ୍ୱବନ୍ଦୋବସ୍ତରେ ଜମିର ବିଭାଗବିଶେଷ, ଧୋଉରା ଜମି ।
ଦୋନରି—ଗ୍ରା. ବିଂ. (ସଂ-ଦ୍ୱି+ଲହରୀ) ଦୁଇସରିଆ (ହାର) ।
ଦୋନଳ—ଗ୍ରା.ବିଂ. ( ସଂ-ଦ୍ୱି+ନଳ ) ଯେଉଁ ବନ୍ଧୁକର ଦୁଇଟି ନଳ ଥାଏ ।
ଦୋନଶଲ୍ଲ—ଗ୍ରା.ବି.ଦୋଅଂଶଲ୍ଲ ଦେଖ ।
ଦୋନାବୁଡ଼ା—ଗ୍ରା.ବିଂ.(ସଂ-ଦ୍ୱି ଓ ନାବ) ବିପରୀତଗାମୀ ଦୁଇଡଙ୍ଗାରେ ଗୋଡ଼ ଦେଇ ଠିଆ ହୋଇଥିବା, ( ଲ.ଅର୍ଥ ) ସନ୍ଧିହାନ ପରସ୍ପର ବିପକ୍ଷ ଉଭୟ ପକ୍ଷକୁ ସମର୍ଥନ କରୁଥିବା (ବ୍ୟକ୍ତି) ।
ଦୋନାବୁଡ଼ାଗୀତ—ଗ୍ରା. ବି. (ସଂ-ଦ୍ୱି ଓ- ନାବ+ଗୀତ) ଉଭୟ ପକ୍ଷକୁ ସମର୍ଥନ କରିବା ଗୀତ, ମୃଦଙ୍ଗ ଦୁଇପିଠିରେ ହାତ ପକାଇବା ଢଙ୍ଗ ।
ଦୋପଇସା(ସି)—ଗ୍ରା. ବିଂ. ଅଧଅଣା ବା ଦୁଇପଇସା ମୂଲ୍ୟର ତାମ୍ର ମୁଦ୍ରା ।
ଦୋପଖା—ଗ୍ରା.ବିଂ. ( ସଂ-ଦ୍ୱି ଓ ପାର୍ଶ୍ୱ ) ଦୁଇପାର୍ଶ୍ୱବିଶିଷ୍ଟ ।
ଦୋପଖାଚୁଲ୍ଲୀ—ଗ୍ରା. ବି. ଯେଉଁ ଚୁଲି- ଉପରେ ଏକସମୟରେ ଦୁଇଟି ହାଣ୍ଡି

ବସିପାରେ ।

**ଦୋପଟ୍ଟ**—ଗ୍ରା.ବି°. ଦ୍ୱିବଳ୍ଲ ଦ୍ୱିଗୁଣିତ, ଦୁଇଗୁଣ ପରିମିତ, (ବି)ଡ଼ଙ୍ଗାର ଲମ୍ବ-ପଟ୍ଟବିଶେଷ ।

**ଦୋପଟା**—ଗ୍ରା.ବି°. ( ସଂ-ଦ୍ୱି ଓ ପଟ୍ଟ ) ଦୁଇଖଣ୍ଡି ଲମ୍ବ କମ୍ ଚଉଡ଼ା ଯୋଡ଼ା ହୋଇଥିବା ଉତ୍ତରୀୟ, ଦୋସଡ଼ା ।

**ଦୋପଟୀ ( ଇତ୍ୟାଦି )**—ଗ୍ରା. ଯା. ବି. ଢେଙ୍ଗପଟୀ ଇତ୍ୟାଦି ଦେଖ ।

**ଦୋପାଇସ୍ୱା**—ଯା. ବି°. ଦ୍ୱିପାଦବିଶିଷ୍ଟ, ଦ୍ୱିପାଟବିଶିଷ୍ଟ ।

**ଦୋପାଗି**—ଗ୍ରା. ବି°. ଗୁଡ଼ ବା ଚିନିରେ ଦୁଇଥର ପାଗ ହୋଇଥିବା (ଜିଲୁଡ଼ି) ।

**ଦୋପାଟ**—ଗ୍ରା.ବି°.(ପୁଂ ଓ ସ୍ତ୍ରୀ) ଦୋପୁଷ୍ଟି ଓ ଟେଙ୍ଗା ହୃଷ୍ଟପୁଷ୍ଟ ଓ ଟେଙ୍ଗା(ବ୍ୟକ୍ତି)

**ଦୋପାଟିଆ**—ଗ୍ରା.ବି. ଏକପ୍ରକାର ଆନଦ୍ଧ ବାଦ୍ୟ, ବେଙ୍ଗପାଟିଆ ବାଜା ।

**ଦୋପୁର**—ଗ୍ରା. ବି°. ଦୁଇଥର ବଟା ହୋଇଥିବା (ହଳଦୀ) ।

**ଦୋପୁଷ୍ଟ**—ଗ୍ରା. ବି°. ଯେଉଁ ମନୁଷ୍ୟର ଶରୀର ଗଠନ ମୋଟମାଟ, ହୃଷ୍ଟପୁଷ୍ଟ, ଦୋପରସ୍ତ, (ବି) ଆଟୁଣ୍ଡର ।

**ଦୋଫଲା**—ଗ୍ରା.ବି°. ଦୋଫସଲ ଦେଖ, ଯେଉଁ ଗଛରେ ବର୍ଷକେ ଦୁଇଥର ଫଳ ଧରେ ।

**ଦୋଫଳ**—ଗ୍ରା. ବି°. ଯେଉଁ ଛୁରୀର ଦୁଇଟି ଫଳକ ଥାଏ ।

**ଦୋଫଳୀ**—ଗ୍ରା. ବି°. ଯେଉଁ ସ୍ତ୍ରୀ ଦୁଇ-ଥର ମାତ୍ର ସନ୍ତାନ ପ୍ରସବ କରିଅଛି, ଯେଉଁ ଗଛ ବର୍ଷକ ମଧ୍ୟରେ ଦୁଇଥର ଫଳଧାରଣ କରେ ।

**ଦୋଫସଲ**—ଗ୍ରା. ବି°. ( ସଂ-ଦ୍ୱି+ଆ. ଫସଲ୍ )ଯେଉଁ ଜମିରେ ବର୍ଷକମଧ୍ୟରେ ଦୁଇଗୋଟି ଫସଲ ଉତ୍ପାଦିତ ହୁଏ ।

**ଦୋଫାଙ୍କ**—ଗ୍ରା.ବି°. (ସଂ-ଦ୍ୱି ଓ ଫା.— ଫାଙ୍କ) ଫାଟି ଦୁଇଭାଗ ହୋଇଥିବା, ଏକ ଗୋଷ୍ଠି ମଧ୍ୟରେ ଦୁଇଦଳହୋଇ-ଥିବା, ପରସ୍ପର ଅମେଳ ହୋଇଥିବା, (ବି) ଦୁଇଜଣଙ୍କ କଥା ବା ଆଖ୍ୟାନ ମଧ୍ୟରେ ପାର୍ଥକ୍ୟ ।

**ଦୋବଜା**—ଯା.ବି. ଦୁଇଗଜ ଲୁଗା ।

**ଦୋବନ୍ଧା**—ଗ୍ରା.ବି. ଦୁଇଟି ବନ୍ଧ ମିଳିଥିବା ସ୍ଥାନ ।

**ଦୋବାର**—ଗ୍ରା.ବି°. ( ସଂ-ଦ୍ୱି+ବାର ) ଦୁଇଥର କରାଯିବା, (ଗ୍ରା.ଅବ୍ୟ.)ଦୁଇ-ଥର ।

**ଦୋବିଆଣୀ**—ଗ୍ରା.ବି°. ଯେଉଁ ସ୍ତ୍ରୀ ଦୁଇ-ଥର ମାତ୍ର ସନ୍ତାନ ପ୍ରସବ କରିଅଛି ।

**ଦୋବାଜା**—ଗ୍ରା. ବି°. (ଗାଳିରେ ବ୍ୟବ-ହୃତ) ଦୋଅଂଶଳା, ଜାରଜ ।

**ଦୋବିଧା**—ଗ୍ରା.ବି. ଦୋଗଧା ଦେଖ ।

**ଦୋବିନ୍ଦା**—ଗ୍ରା.ବି. ବିଷମସମସ୍ୟା ।

**ଦୋବୁଲ**—ଗ୍ରା.ବି°. (ସଂ-ଦୁର୍ବଳ) ଶୀର୍ଣ୍ଣ-କାୟ ।

**ଦୋବୁହା**—ଗ୍ରା. ବି°. ଯେ ଏକ କାମକୁ ଦୁଇଥର କରେ, ଦ୍ରୁବିଜିଆ ।

**ଦୋବେ**—ବି. ପଶ୍ଚିମା ବ୍ରାହ୍ମଣଙ୍କ ଉପାଧି-ବିଶେଷ, (ଗ୍ରା.ବି.) ଦୁବେଇ ଦେଖ ।

**ଦୋବେଇ**—ଗ୍ରା.ପୁଂ. ବି°. (ସଂ-ଦ୍ୱି ଓ ବିବାହିତ) ଦ୍ୱିପତ୍ନୀକ, ୨ୟପକ୍ଷ ବର, ( ବି ) ୨ୟଥର ବିବାହିତ ମୃତଦାର ପୁରୁଷ, ଦୁବେଇ ଦେଖ ।

**ଦୋଭଜା**—ଗ୍ରା ବି°.(ସଂ-ଦ୍ୱି + ଭର୍ଜିତ) ଦୁଇଥର ଭଜା ହୋଇଥିବା ।

**ଦୋଭାଷ**—ଗ୍ରା.ବି°. ଓ ବି.ଦୋଭାଷୀ ଦେଖ

**ଦୋଭାଙ୍ଗୁଣିଆ(ଆଁ)**—ଗ୍ରା. ବି°. ଦୁଇଥର ଚଉଡ଼ା ହୋଇଥିବା ।

**ଦୋଭାଷିଆ**—ଗ୍ରା. ବି°. ଦୁଇଭାଷାରେ ଯେ କହିପାରେ ।

**ଦୋଭାଷୀ**—ଗ୍ରା. ବି°. (ସଂ-ଦ୍ୱିଭାଷୀ)ଯେ ଦୁଇଟିଭାଷାରେ କଥା କହିପାରେ, ମିଥ୍ୟାବାଦୀ, ଦୋହଲପୀ, ଦୁଇଟି ଭାଷା ସମ୍ବନ୍ଧୀୟ,ଯେଉଁ ଗ୍ରନ୍ଥରେ ଦୁଇଟି ଭାଷା ବ୍ୟବହୃତ ହୋଇଥାଏ, (ବି) ଯେଉଁ ଲୋକ ଏକ ଭାଷାରେ କଥିତ ଭାଷାକୁ ଅନ୍ୟ ଭାଷାରେ ଅନୁବାଦକରି କହେ

**ଦୋମନା**—ଗ୍ରା. ଦୁମନା ଦେଖ, ମନର ସନ୍ଦେହ ।

**ଦୋମହଲ**—ଗ୍ରା.ବି°. ଓ ବି.( ସଂ-ଦ୍ୱି ଓ ଫା.—ମହଲ୍ ) ଦ୍ୱିତଳ ଦେଖ ।

**ଦୋମାସି**—ଗ୍ରା.ବି.(ସଂ-ଦ୍ୱି ମାସ)ମଳମାସ; ଅଧିମାସ, (ବି°) ଦୋମାହିଆ ଦେଖ ।

**ଦୋମାସିଆ**—ଗ୍ରା.ବି°. ଦୁଇମାସ ବୟସ୍କ; ଯେଉଁ ବର୍ଷରେ ମଳମାସ ଥାଏ ।

**ଦୋମିଶା**—ଗ୍ରା. ବି°. (ସଂ-ଦ୍ୱି+ମିଶ୍ରିତ) ଯହିଁରେ ଦୁଇଟି ବସ୍ତୁ ବା ଉପାଦାନ ମିଶ୍ରିତ ହୋଇଥାଏ,ଦେ ଖାଜା ଦେଖ ।

**ଦୋମୁଖ**—ଗ୍ରା.ବି°.ଦ୍ୱିମୁଖଯୁକ୍ତ, ପ୍ରବଞ୍ଚକ, ଠକ ।

**ଦୋମୁଣ୍ଡିଆ**—ଗ୍ରା.ବି. (ସଂ-ଦ୍ୱି ଓ ମୁଣ୍ଡ) ଏକପ୍ରକାର ସରୁ ସାପ, (ବି—ଲ.ଅର୍ଥ) ଯେଉଁ ଲୋକ ପରସ୍ପର ବିପକ୍ଷ ଉଭୟଙ୍କ ସଙ୍ଗେ ମିଳିଥାଏ ।

**ଦୋମୁହା**—ଗ୍ରା.ପୁଂ.ବି°.(ସଂ-ଦ୍ୱି ଓ ମୁଖ) ଯାହାର ଦୁଇଟି ମୁହଁ,(ଗାଳିରେ ବ୍ୟବ-ହୃତ)ଯାହାର କଥା ଠିକ ରହେ ନାହିଁ, ଯେ ଆପଣାର ସତ୍ୟ ପାଳେ ନାହିଁ, ପ୍ରତାରକ, ଦଗାବାଜ୍, ଯେ ଉଭୟ ପକ୍ଷକୁ ସମର୍ଥନକରେ, କପଟୀ, ( ସ୍ତ୍ରୀ ) ଦୋମୁହାଁ ।

**ଦୋମୁହାଁ**—ଗ୍ରା.ବି. ( ସଂ-ଦ୍ୱି ଓ ମୁଖୀ ) ଏକପ୍ରକାର ଘର, ବାଘମୁହାଁ ।

**ଦୋୟମ୍**—ଯା. ବି°. ଉର୍ବରତା ସମ୍ବନ୍ଧେ ଦ୍ୱିତୀୟ ଶ୍ରେଣୀର (ଜମି), ଦ୍ୱିତୀୟ ।

**ଦୋୟା**—ଯା. ବି. ଆଶୀର୍ବାଦ, ଅନୁଗ୍ରହ, କୃପା ।

**ଦୋୟାତ**—ଯା. ବି. ମସୀଆଧାର, କାଳି ରଖିବାର ପାତ୍ର ।

**ଦୋୟାବ**—ଯା. (ଦୋ+ଆବ୍) ଦୁଇଟି ନଦୀର ମଧ୍ୟବର୍ତ୍ତୀ ସ୍ଥାନ ।

**ଦୋୟାବ**—ଉତ୍ତର ପଶ୍ଚିମ ପ୍ରଦେଶର ଖଣ୍ଡିଏ ଉର୍ବର ଭୂଭାଗ ।

**ଦୋୟା(ହା)ର**—( ଗ୍ରା. ବଙ୍ଗ )ବି.ଆନ-ଟିକିଆ ବା ସହକାରୀ ଗାୟକ ।

**ଦୋରଙ୍କ(କା)**—ଯଥାକ୍ରମେ ପୁଂ ଓ ସ୍ତ୍ରୀ. ବି. ପ୍ରାଣାନ୍ତକାରୀ ବନ୍ଧନରଜ୍ଜୁ ।

**ଦୋରକା(ଖା)**—ଯା.ବି°.(ଫା.ଦୋରୁଖା)

ଭୂଇପିଠିରେ ଏକରକମ ଫୁଲକାମ ଭୁଣା ହୋଇଥିବା ( ବସ୍ତ୍ର ), ଯାହାର ସଦର ମଫସଲ ନଥାଏ ।

**ଦୋରଙ୍ଗ(ଙ୍ଗା)**—ଗ୍ରା. ବି°. (ଫା-ଦ୍ବି ଓ-ରଙ୍ଗ) ଦ୍ବିବର୍ଣ୍ଣ ବିଶିଷ୍ଟ, ଦୁଇଟି ବିପରୀତ ବର୍ଣ୍ଣବିଶିଷ୍ଟ ।

**ଦୋରନ୍ଧା**—ଗ୍ରା.ବି°. (ଫା-ଦ୍ବି + ରନ୍ଧନ) ଦୁଇଥର ସିଦ୍ଧ ହୋଇଥିବା ।

**ଦୋରବସ୍ତ**—ଯା. କ୍ରି.ବି°. ଗୋଟାସୁଦ୍ଧା, ସମ୍ପୂର୍ଣ୍ଣରୂପେ,ବିବାକ୍, ଆଦୌ,ଜମାରୁ, (ଛି°) ଗୋଟାକଯାକ, ସମୁଦାୟ ।

**ଦୋରସା**—ଗ୍ରା.ବି°. ( ଫା-ଦ୍ବି ଓ ରସ ) ଦୋଅଂଶା (ମାଟି), ଯେଉଁ ମାଟିରେ ବାଲି କାଦୁଅ ସମାନଭାବେ ଥାଏ, ଅଧେ ସଢ଼ିଯାଇଥିବା ।

**ଦୋରସ୍ତ**—ଯା. ବି°. ଠିକ୍, ଠିକ୍ଠାକ୍ ସଜଡ଼ା ହୋଇଥିବା, ଚଉକସ୍, ସୁଶୋଭିତ, ସଂମଣ୍ଡଳୀକୃତ, ସୁମାର୍ଜିତ,-ଉପସ୍ଥିତ ଉଦ୍ଦେଶ୍ୟ ନିମନ୍ତେ ଯଥେଷ୍ଟ, ସଂସ୍କୃତ, ନିର୍ଦ୍ଦୋଷ, ଦୋଷହୀନ,ଯାହା ଉତ୍ତମ ଅବସ୍ଥାରେ ଅଛି, ଯଥାର୍ଥ, ପ୍ରକୃତ, ଉଚିତ, ସମୁଚିତ, ।

**ଦୋରସ୍ତକରିବା**—ଗ୍ରା.କ୍ରି.ସଜାଡ଼ିଦେବା, ମରାମତି କରିବା, ସୁଶୋଭିତ କରିବା, ଯତ୍ନ କରିବା, ସାଧିକରିବା, ଦୋଷ ଶୂନ୍ୟ କରିବା, ଦଣ୍ଡଦେବା ।

**ଦୋରସ୍ତି**—ଯା. ବି. (କଚେରୀଆ) ସୁଧାର, ସଂଶୋଧନ, ଯୋଗ୍ୟତା, ଉତ୍ତମତା ।

**ଦୋରା**—ଯା. (ତେଲିଙ୍ଗ—ପ୍ରା. ଗଞ୍ଜାମ) ବି. ଶୂଦ୍ରଜାତି ବିଶେଷର ଉପାଧି,ରାଜ-କୀୟ ଗ୍ରାମ୍ୟ କର୍ମଚାରୀ ବିଶେଷ.(ଯା.ବି) ଦରରା ଦେଖ,(ପ୍ରା—ବି) କାଣ୍ଡାଦୋରା ଦେଖ ।

**ଦୋରେହା**—ଗ୍ରା. ( ପଦ୍ୟ ) ବି ଓ ବି°. ଦୋରେହା ଦେଖ ।

**ଦୋରୁଅ**—ଗ୍ରା. ବି. ( ସଂ-ଦ୍ରବ ) ଆଖୁର ରସ, ଗଛର ଡାଳପତ୍ର ଆଦିରୁ ଚିପୁଡ଼ା ହୋଇଥିବା ରସ ।

**ଦୋରେହା**—ଗ୍ରା.ପଦ୍ୟ.ବି°.(ସଂ-ଦ୍ରୋହୀ) ବିଦ୍ରୋହୀ, କୃତଘ୍ନ, ଦୋଷୀ, ଅପରାଧୀ, (ବି) ଦ୍ରୋହ ।

**ଦୋର୍ଗଡ଼ୁ**—ପୁ°.ବି. କୁଣ୍ଠିତହସ୍ତ ।

**ଦୋର୍ଗ୍ରହ**—ପୁ°.ବି.(ଦୋଃ+ଗ୍ରହ,୬ତତ୍) ଭୁଜଗ୍ରହଣ, ହାତର ବ୍ୟଥା, (ଦୋଃ+ କ.ଅନ୍) ପୁ°.ବି°. ବଳବାନ୍ , ( ବି ) ବାହୁସ୍ତମ୍ଭ ରୋଗବିଶେଷ ।

**ଦୋର୍ଜ୍ୟା**—ସ୍ତ୍ରୀ. ବି. ସୂର୍ଯ୍ୟ ସିଦ୍ଧାନ୍ତୋକ୍ତ ଭୁଜାକାର ଜ୍ୟା ।

**ଦୋର୍ଦ୍ଦଣ୍ଡ**—ବି. (ଦୋ+ଦଣ୍ଡ, ରୂପକ-କ.ଧା, ୬ତତ୍) ଭୁଜଦଣ୍ଡ, ବାହୁର ପରାକ୍ରମ ।

**ଦୋର୍ଦ୍ଦଣ୍ଡପରାକ୍ରମ**—ବି. (ଦୋର୍ଦ୍ଦଣ୍ଡ+ ପରାକ୍ରମ, ୬ତତ୍) ଦୋର୍ଦ୍ଦଣ୍ଡପ୍ରତାପ ଦେଖ ।

**ଦୋର୍ଦ୍ଦଣ୍ଡପରାକ୍ରମୀ**—ବି°. (ଦୋର୍ଦ୍ଦଣ୍ଡ+ ପରାକ୍ରମ+ଇନ୍) ଦୋର୍ଦ୍ଦଣ୍ଡପ୍ରତାପୀ ଦେଖ ।

**ଦୋର୍ଦ୍ଦଣ୍ଡପ୍ରତାପ**—ପୁ°.ବି.(ଦୋର୍ଦ୍ଦଣ୍ଡ+ ପ୍ରତାପ, ୬ତତ୍)ବାହୁପରାକ୍ରମ,ଦେହର ଜୋର ।

**ଦୋର୍ଦ୍ଦଣ୍ଡପ୍ରତାପୀ**—ପୁ°.ବି°. (ଦୋର୍ଦ୍ଦଣ୍ଡ +ପ୍ରତାପ+ଇନ୍) ବିଶେଷ ବାହୁ-ପରାକ୍ରମଶାଳୀ ।

**ଦୋର୍ମଧ୍ୟ**—କ୍ଲୀ.ବି. ( ଦୋଷ୍ଣୋ+ମଧ୍ୟ ) ବାହୁମଧ୍ୟଭାଗ ।

**ଦୋର୍ମୂଳ**—କ୍ଲୀ. ବି. ( ଦୋଃ+ମୂଳ ୬ତତ୍)ବାହୁମୂଳ,କାଖ, ଭୁଜକୋଟର ।

**ଦୋର୍ଯୁଦ୍ଧ**—ବି. ( ଦୋ+ଯୁଦ୍ଧ, ୬ତତ୍ ) ବାହୁଯୁଦ୍ଧ, କୁସ୍ତାକୁସ୍ତି, ଧରାପରା, ହସ୍ତା-ହସ୍ତି ।

**ଦୋଳ**—ବି. ( ଦୋଳି+କ.ଅ ) ଝୁଲା, ହାନ୍ଦୋଳା, ଖଟିଆ, ଜାଲମୁଣା,ଖଣ୍ଡୁଣି, ଆମ୍ବ ତୋଳିବାପାଇଁ ଆଙ୍କୁଡ଼ୀ ଅଗରେ ଥିବା ଜାଲ, ଡୋଲି, ଧାନ ରଖିବାର କୋଡ଼ମେଇ, ( ଦୋଳି+ଭା.ଅ ) ଦୋହୋଲାଇବା,ଦୋହଲିବା, ଦୋଳ-ଉତ୍ସବ, ଠାକୁରଙ୍କ ବିମାନ, ଯହିଁରେ ବସି ବା ଯାହାକୁ ଅବଲମ୍ବନ କରି ଝୁଲନ୍ତି ।

[ ଦେଖ ।

**ଦୋଳଉତ୍ସବ**—ଗ୍ରା. ବି. ଦୋଳଯାତ୍ରା

**ଦୋଳକ**— ବି. ( ଦୋଳି+କ.ଅକ ) ଦୋଳଦଣ୍ଡ ଦେଖ ।

**ଦୋଳଗୋବିନ୍ଦ**—ଗ୍ରା. ବି. ଦୋଳଯାତ୍ରା ସମୟରେ ଦୋଳ ଖେଳିବା ଶ୍ରୀକୃଷ୍ଣ ପ୍ରତିମା ।

**ଦୋଳଘଡ଼ି**—ଗ୍ରା. ବି. (ସଂ- ଦୋଳ ଓ ଘଟି) ଦୋଳ ଉତ୍ସବର ସମୟ ।

**ଦୋଳଘଣ୍ଟ ବାଜିବା**—ଗ୍ରା. ବି. ଦୋଳ ଉତ୍ସବର ସମୟ ଉପସ୍ଥିତ ହେବା ।

**ଦୋଳଣି**--ଗ୍ରା.ବି.(ସଂ-ଦୋଳନ)ଦୋଳନ ଦେଖ ।

**ଦୋଳଦଣ୍ଡ**—ବି. (ଦୋଳ + ଦଣ୍ଡ)ଘଣ୍ଟା ଝୁଲିବା ପେଣ୍ଡୁଲମ୍ ବା ସୂକ୍ଷ୍ମ ସୂତା-ଦରେ ବନ୍ଧ ଦୋଳାୟମାନ ଭାର ବସ୍ତୁ ।

**ଦୋଳଦଣ୍ଡି**—ଗ୍ରା. ବି. ( ବଣିଆଶବ୍ଦ ) ନାକରେ ପିନ୍ଧିବା ସୁନାର ଅଳଙ୍କାର-ବିଶେଷ ।

**ଦୋଳଦଶହରା**—ଗ୍ରା.ବି. (ସହଚରଶବ୍ଦ) ବର୍ଷକ ମଧ୍ୟରେ ହିନ୍ଦୁଙ୍କ ଦୁଇଗୋଟି ପ୍ରଧାନ ପର୍ବ ।

**ଦୋଳନ**—କ୍ଲୀ.ବି. (ଦୋଳି + ଭା.ଅନ) କମ୍ପନ, ଝୁଲନ, (ଗ୍ରା.ବି.) ଦୋଳା ।

**ଦୋଳପୁନିଅଁ**—ଗ୍ରା. ବି. ଦୋଳପୂର୍ଣ୍ଣିମା ଦେଖ ।

**ଦୋଳପୂର୍ଣ୍ଣିମା**—ବି. ଫାଲ୍ଗୁନ ପୂର୍ଣ୍ଣିମୀ ।

**ଦୋଳମଞ୍ଚ**—ପୁ°. ବି. ( ମଧ୍ୟ-କ.ଧା ) ଦୋଳାର୍ଥ କୃତ ବେଦିକା, ଯେଉଁ ବେଦୀରେ ଦୋଳଯାତ୍ରା ହୁଏ ।

**ଦୋଳମଣ୍ଡପ**—ବି. (ଦୋଳ+ମଣ୍ଡପ, ମଧ୍ୟ-କ.ଧା) ଦୋଳମୁଣ୍ଡେଇ ଦେଖ ।.

**ଦୋଳମୁଣ୍ଡେଇ**—ଗ୍ରା. ବି. (ସଂ-ଦୋଳ-ମଣ୍ଡପ) ଯେଉଁ ମଣ୍ଡପରେ ରାଧାକୃଷ୍ଣ-ଙ୍କର ଦୋଳଯାତ୍ରା ହୁଏ ।

**ଦୋଳଯାତ୍ରା**—ସ୍ତ୍ରୀ.ବି. (ଦୋଳ+ଯାତ୍ରା ମଧ୍ୟ-କ.ଧା ) ଦୋଳଉତ୍ସବ, ହୋଲି-ଯାତ୍ରା ।

**ଦୋଳା**—ସ୍ତ୍ରୀ. ବି. ( ଦୋଳ + ସ୍ତ୍ରୀ.ଆ )

ଖଟିଆ, ହାଣ୍ଡୋଳା, ଶିବିକାବିଶେଷ, ଖଟୁଲୀ, ଚଉଦୋଳ, ବିମାନ, ଝୁଲିବା ଯନ୍ତ୍ର, ଝୁଲଗଛ, ( ଦୋଳ+ସ୍ତ୍ରୀ.ଆ ) ଦୋଳନ, ( ଗ୍ରା. ବଙ୍ଗ ) ଶିଶୁର ଦୋଳଶେଯ, ( ଗ୍ରା.ବି. ) ମାଟିଆଦି ବୋହିବାର ଯନ୍ତ୍ରବିଶେଷ, (କ୍ରି) ଏପାଖ ସେପାଖ ଝୁଲାଇବା ବା ଝୁଲିବା ।

ଦୋଳାଇ—ଗ୍ରା. ବି. ଛିଟର ଶୀତବସ୍ତ୍ରବିଶେଷ ।

ଦୋଳାଇବା—ଗ୍ରା.କ୍ରି. (ସଂ-ଦୋଳଧାତୁ) ଦୋଳ ପଡ଼ାଇବା, ଝୁଲାଇବା, ସଞ୍ଚାଳିତ କରାଇବା ।

ଦୋଳାୟମାନ—ପୁଂ.ବିଂ. (ଦୋଳାୟ+କ.ଆନ) ଝୁଲୁଥିବା, ଇତସ୍ତତଃ ସଞ୍ଚାଳିତ, (ଲ.ଅର୍ଥ) ସନ୍ଦିହାନ, ସଂଶୟାଭିଭୂତ, (ସ୍ତ୍ରୀ) ଦୋଳାୟମାନା ।

ଦୋଳାୟିତ—ପୁଂ. ବିଂ. (ଦୋଳାୟ+କ.ତ ) ଦୋଳାୟମାନ ( ଦେଖ ), ବି. ( ଦୋଳାୟ+ଭା.ତ ) ଦୋଳନ, (ସ୍ତ୍ରୀ) ଦୋଳାୟିତା ।

ଦୋଳାଯୁଦ୍ଧ—କ୍ଲୀ. ବି. ଯେଉଁ ଯୁଦ୍ଧରେ ଦୁଇ ପକ୍ଷଙ୍କର ସମାନ୍ୟରେ ହାର ଜିଣ ଲାଗିଥାଏ ।

ଦୋଳାଶ୍ୱ—ବି. ଚଳଣା ଦେଖ ।

ଦୋଡ—ଗ୍ରା.ବି. (ସଂ-ଦୋଳା) ଦୋଳା, ମନୁଷ୍ୟ ବାହ୍ୟ ଯାନବିଶେଷ,ଦୋଳିକ ଯନ୍ତ୍ରବିଶେଷ ।

ଦୋଳିଆ—ଗ୍ରା.ବି.ଯେଉଁମାନେ ଦୋଳି ବା ମନୁଷ୍ୟବହ୍ୟ ଯାନବିଶେଷ ବୁହନ୍ତି, (ପ୍ରା. ଯାଜପୁର.ବି.) ମଦଓରା ।

ଦୋଳିକା—ସ୍ତ୍ରୀ. ବି. (ଦୋଳ+କ+ସ୍ତ୍ରୀ.ଆ) ଶ୍ରେଷ୍ଠ ଦୋଳା, ହାଣ୍ଡୋଳା ।

ଦୋଳିଖେଳ—ଗ୍ରା. ବି. ଝୁଲିବା ପ୍ରଣାଳୀରେ ଖେଳିବା ଏକପ୍ରକାର ଖେଳ ।

ଦୋଳିଖେଳିବା—ଗ୍ରା. କ୍ରି. ଆପେ ଦୋଳାରେ ଝୁଲିବା ।

ଦୋଳିପହଞ୍ଚା—ଗ୍ରା. ବିଂ. ଦୋଳାରେ ଝୁଲିବା କ୍ରିୟା ।

ଦୋଳିପହଞ୍ଚା(ଞ୍ଚେ)ଇବା—ଗ୍ରା. କ୍ରି. ଅନ୍ୟବ୍ୟକ୍ତିକୁ ଦୋଳାରେ ଝୁଲାଇବା ।

ଦୋଳିପହଞ୍ଚିହେବା—ଗ୍ରା. କ୍ରି. ଦୋଳିଖେଳିବା ଦେଖ ।

ଦୋଳିବା—ଗ୍ରା.କ୍ରି. ଦୋଳରେ ଝୁଲିବା, ଦୋହଲିବା, ହଲିବା ।

ଦୋଳୀ—ସ୍ତ୍ରୀ. ବି. ( ଦୋଳ+ଈ ) ଦୋଳା, ଝୁଲି ।

ଦୋଶାଖା—ଗ୍ରା. ବିଂ. ( ସଂ-ଦ୍ୱିଶାଖା ) ଦୁଇଟିମାତ୍ର ଶାଖାବିଶିଷ୍ଟ ।

ଦୋଶାଲ—ଯା. ବି. (ଫା-ଦୁଶାଲ, ସଂ-ଦ୍ୱି+ଶାଟୀ) ଏକସଙ୍ଗେ ଯୋଡ଼ା ଦୁଇଖଣ୍ଡ ଶାଲ ।

ଦୋଶାଳୀ—ଗ୍ରା.ବି. ଖାଲଯାଗାରୁ ପାଣି ଉଠାଇବା ପାଇଁ ବ୍ୟବହୃତ ଶେଣା ବା ଶାଳ ।

ଦୋଷ୍—ବି. ଦୋସ୍ ଦେଖ ।

ଦୋଷ—ପୁଂ. ବି. (ଦୁଷ୍+ଭା.ଅ) ପାପ, ଅପରାଧ, ଦୁର୍ଗୁଣ, ଅନ୍ୟାୟ, ଅନିଷ୍ଟ, ଅପକାର, କୁକର୍ମ, ଅପବାଦ, ନିନ୍ଦା, କଳଙ୍କ, ତ୍ରୁଟି, ନ୍ୟୂନତା, ଅତ୍ୟାଚାର, କ୍ଷତ, ରୁଗ୍ଣଅବସ୍ଥା, ବାକ୍ୟ ବା ଲେଖାର ରଚନା ଦୋଷ, ରାଗାଦି ଅଷ୍ଟାବସ୍ଥାଙ୍କ ମଧ୍ୟରୁ ଏକତମ, ପ୍ରଦୋଷ, ଗୋବର୍ଦ୍ଧ, ବାତ ପିତ୍ତ ଓ କଫ, କାବ୍ୟାପକର୍ଷକ ଧର୍ମବିଶେଷ ।

ଦୋଷକ—ପୁଂ.ବି. (ଦୋଷ+ସ୍ୱାର୍ଥେ.କ) ଗୋବତ୍ସ, ବାଛୁରୀ ।

ଦୋଷକଟା(ଟେ)ଇବା—ଗ୍ରା.କ୍ରି. ଦୋଷ ଖଣ୍ଡାଇବା ଦେଖ । [ ଦେଖ ।

ଦୋଷକଟିବା—ଗ୍ରା. ବି. ଦୋଷଖଣ୍ଡନ

ଦୋଷକର—ପୁଂ. ବିଂ. (ଦୋଷ+କୃ+କ.ଅ)ଯେ ଅପରାଧ କରେ, ଅନିଷ୍ଟଜନକ, (ଦୋଷକାରୀ-ଅନ୍ୟରୂପ), ସ୍ତ୍ରୀ. ଦୋଷକାରିଣୀ ।

ଦୋଷକରିବା—ଗ୍ରା.କ୍ରି. ଅପରାଧ ଜନକ କାର୍ଯ୍ୟ କରିବା, ପରର ମନରେ କଷ୍ଟଦେବା ।

ଦୋଷକାଢ଼ିବା—ଗ୍ରା.କ୍ରି. କୌଣସି ବସ୍ତୁ ବା ବିଷୟରେ ଥିବା ଦୋଷକୁ ବାହାର କରିବା ।

ଦୋଷଖଣ୍ଡନ—ବି. (ଦୋଷ+ଖଣ୍ଡନ) ୬ତତ୍; କୃତଅପରାଧର ମାର୍ଜନା ଦୋଷ କ୍ଷମା କରିବା, ଦୋଷରୁ ମୁକ୍ତିଦେବା, କୃତଅପରାଧର ପ୍ରାୟଶ୍ଚିତ୍ତ, ନିଜଉପରେ ଆରୋପିତ ଦୋଷ ଆପେ ନ କରିଥିବା ବିଷୟ ପ୍ରମାଣିତ କରିବା ।

ଦୋଷଖଣ୍ଡା(ଣ୍ଡେ)ଇବା—ଗ୍ରା. କ୍ରି. ଆପଣା ଉପରେ ଆରୋପିତ ଦୋଷରୁ ଆପେ ମୁକ୍ତହେବାର ଉପାୟ କରିବା, ଅନ୍ୟର ଅପରାଧ ବା ଦୋଷ କ୍ଷମା କରିବା ।

ଦୋଷକ୍ଷାଳନ—କ୍ଲୀ.ବି.(୬ତତ୍)ଦୋଷର ଅପନୋଦନ,ଦୋଷଦୂରୀଭୂତ କରିବା ।

ଦୋଷଗିରା(ରେ)ଇବା—ଗ୍ରା.କ୍ରି. ଦୋଷଦେବା ଦେଖ ।

ଦୋଷଗୁଣ—ବି. (ଦୋଷ+ଗୁଣ) ବିପରୀତାର୍ଥକ—ଦୋଷ ଓ ଗୁଣ ।

ଦୋଷଗ୍ରାହୀ—ପୁଂ. ବିଂ. (ଦୋଷ+ଗ୍ରହ୍+କ.ଇନ୍) ଦୋଷଦର୍ଶୀ,ଦୁଷ୍ଟ, ଈର୍ଷୀ, ଛିଦ୍ରାନ୍ୱେଷୀ, (ବି) ଦୋଷଗ୍ରାହିତା,(ସ୍ତ୍ରୀ) ଦୋଷଗ୍ରାହିଣୀ ।

ଦୋଷଘୋଡ଼ା(ଡ଼େ)ଇବା—ଗ୍ରା.କ୍ରି.ଅନ୍ୟଆଗରେ ନିଜର ତ୍ରୁଟି ବା ଦୋଷକୁ ଲୁଚାଇବା, ଅନ୍ୟକୃତ ଦୋଷକୁ ସାଧାରଣଙ୍କ ଦୃଷ୍ଟିରୁ ଗୋପନ ରଖିବା ।

ଦୋଷଘ୍ନ—ତ୍ରି. ବିଂ. (ଦୋଷ+ହନ୍+କ.କ୍ୱିପ୍) ଯେଉଁ ଔଷଧ ବା ଚିକିତ୍ସାଦ୍ୱାରା ଶରୀରସ୍ଥ କୁପିତ ବାତ ପିତ୍ତ ଓ କଫର ଦୋଷ ଶାନ୍ତ ହୁଏ, ( ସ୍ତ୍ରୀ ) ଦୋଷଘ୍ନୀ ।

ଦୋଷଜନକ—ବିଂ. (ଦୋଷ+ଜନ+କ.ଅକ) ଦୋଷଯୁକ୍ତ, ପାପମୟ, ଯାହା ଅପକାର କରେ ।

ଦୋଷଜ୍ଞ—ପୁଂ. ବିଂ. (ଦୋଷ+ଜ୍ଞା+କ.ଅ) ଦୋଷସମ୍ବନ୍ଧେ ଅଭିଜ୍ଞ, ଜ୍ଞାନୀ, ପଣ୍ଡିତ, ଚିକିତ୍ସକ, (ବି) ବୈଦ୍ୟ ଚିକିତ୍ସକ, ପଣ୍ଡିତ ବ୍ୟକ୍ତି,ଜ୍ଞାନୀ ବ୍ୟକ୍ତି, (ସ୍ତ୍ରୀ) ଦୋଷଜ୍ଞା, (ବି) ଦୋଷଜ୍ଞତା ।

ଦୋଷଣ—ବି. (ଦୁଷ୍+ଭା.ଅନ) ଅନ୍ୟଠାରେ ଦୋଷାର୍ପଣ, ଅଭିଯୋଗ ।

ଦୋଷଣୀୟ—ବି. ବି°. ବାସ୍ତୁଭବ ।

ଦୋଷତକସିର୍—ଯା. ବି. (ସହଚର ଶବ୍ଦ, ସଂ-ଦୋଷ ଓ (ଫା) ତକ୍‌ସିର୍) ସମସ୍ତ ଅପରାଧ ବା ତ୍ରୁଟୀ ।

ଦୋଷତ୍ରୟ—କ୍ଲୀ. ବି. (୬ତତ୍) ବାତ ପିତ୍ତ ଓ କଫ ଏହି ତିନିଗୋଟିର ବିକୃତି

ଦୋଷତ୍ୱ—କ୍ଲୀ. ବି. ଦୋଷର ଧର୍ମ, ଦୋଷର ଭାବ ।

ଦୋଷଦର୍ଶୀ—ପୁଂ. ବି°. (ଦୋଷ+ଦୃଶ୍ କ.ଇନ୍) ଯେ ପରର ଦୋଷ ଖୋଜିବୁଲେ, ଦୋଷଗ୍ରାହୀ, ଛିଦ୍ରାନ୍ୱେଷୀ,(ବି) ଦୋଷଦର୍ଶିତା, ଦୋଷଦର୍ଶନ, ( ସ୍ତ୍ରୀ ) ଦୋଷଦର୍ଶିନୀ ।

ଦୋଷଦୁଷ୍ଟ—ବି°. ( ଦୋଷ+ଦୁଷ୍ଟ ) ୩ତତ୍; ଦୋଷାକ୍ରାନ୍ତ ଦେଖ ।

ଦୋଷଦୃଷ୍ଟି--ବି°.(ଦୋଷ+ଦୃଷ୍ଟି)ବ.ବ୍ରୀ; ଦୋଷଦର୍ଶୀ ଦେଖ ।

ଦୋଷଦେଖା(ଖେ)ଇବା—ଗ୍ରା.କ୍ରି. ପରର ଦୋଷକୁ ପ୍ରକାଶ କରିବା ।

ଦୋଷଦେବା—ଗ୍ରା. କ୍ରି. ପରଠାରେ କଳଙ୍କ ବା ନିନ୍ଦା ଅର୍ପଣ କରିବା, କୌଣସି ବ୍ୟକ୍ତିକୁ ଦୋଷୀ ସାବ୍ୟସ୍ତ କରିବା, କୌଣସି ବ୍ୟକ୍ତି ବିରୁଦ୍ଧରେ ଅଭିଯୋଗ କରିବା ।

ଦୋଷଧରିବା—ଗ୍ରା.କ୍ରି. ଅନ୍ୟର ତ୍ରୁଟିକୁ ଗ୍ରହଣ କରିବା ।

ଦୋଷନ—ଗ୍ରା. ବି. ( ସଂ-ଦୋଷଣ ) ଦୋଷଣ ଦେଖ ।

ଦୋଷଣୀୟ—ଗ୍ରା. ବି°. (ସଂ-ଦୂଷଣୀୟର ଅଶୁଦ୍ଧ ବ୍ୟବହାର) ଦୂଷଣୀୟ, ଦୋଷାରୋପ ଯୋଗ୍ୟ ।

ଦୋଷନେବା—ଗ୍ରା. କ୍ରି. ଦୋଷ ମୁଣ୍ଡାଇବା ଦେଖ ।

ଦୋଷପତ୍ର—ବି. ( ଦୋଷ ଉଲ୍ଲେଖକାରୀ ପତ୍ର) ଅପରାଧୀର ଅପରାଧର ବିବରଣ ଯେଉଁ କାଗଜରେ ଲେଖାଥାଏ ।

ଦୋଷଭାକ୍—ବି°. ( ଦୋଷ+ଭଜ୍+କ.କ୍ୱିପ୍ ) ଦୋଷଭାଜ, ଅପରାଧୀ ।

ଦୋଷଭେଦ—ପୁଂ.ବି.(ଦୋଷ+ଭେଦ) ୬ତତ୍; ସୁଶ୍ରୁତରେ ୬୨ ପ୍ରକାର ଦୋଷ ଭେଦ ବର୍ଣ୍ଣିତ ଅଛି ।

ଦୋଷମାଗିନେବା—ଗ୍ରା.କ୍ରି.ପ୍ରାର୍ଥନା ଦ୍ୱାରା ଦୋଷର କ୍ଷମା ମାଗିବା ।

ଦୋଷମୁଣ୍ଡା(ଣ୍ଡେ)ଇବା—ଗ୍ରା.କ୍ରି. କୌଣସି ଦୋଷ ନିମନ୍ତେ ଆପଣା ଉପରେ ନିନ୍ଦା ବା ଦାୟିତ୍ୱ ନେବା, ଅନ୍ୟକୃତ ଅପରାଧ ପାଇଁ ଦାୟିତ୍ୱ ଗ୍ରହଣ କରିବା ।

ଦୋଷମେଣ୍ଟଣ(ନ)—ଗ୍ରା. ବି. ଦୋଷ ଖଣ୍ଡନ ଦେଖ ।

ଦୋଷଲ—ପୁଂ. ବି°. ( ଦୋଷ+ଅସ୍ତି-ଅର୍ଥରେ ଲ) ଦୋଷଯୁକ୍ତ, ପାପୀ, (ସ୍ତ୍ରୀ) ଦୋଷଲା ।

ଦୋଷଲଗା(ଗେ)ଇବା—ଗ୍ରା.କ୍ରି.କୌଣସି ଦୋଷର ଦାୟିତ୍ୱ କୌଣସି ବ୍ୟକ୍ତିଠାରେ ଆରୋପଣ କରିବା ।

ଦୋଷଲଦିବା—ଗ୍ରା.କ୍ରି.(ବ୍ୟଙ୍ଗ)ଦୋଷଦେବା ଦେଖ ।

ଦୋଷସ୍—ସ୍ତ୍ରୀ. ବି. (ଦୁଷ୍+ଅସ୍)ରାତ୍ରି ।

ଦୋଷା—ସ୍ତ୍ରୀ. ବି. ( ଦୁଷ୍+ଅଧି.ଅ+ସ୍ତ୍ରୀ.ଆ) ରାତ୍ରି, ( ଦୁଷ୍+ଣ.ଅ+ଆ ) ବାହୁ, ଅନ୍ଧକାର, ସନ୍ଧ୍ୟା, ( ବଙ୍ଗ-ଗ୍ରା. କ୍ରି) ଦୋଷଦେବା ।

ଦୋଷାକର—ପୁଂ.ବି.(ଦୋଷ+ଆକର) ୬ତତ୍; ମହାପାପୀ, ଅପରାଧୀ,(ଦୋଷା +କୃ+କ.ଅ,କିମ୍ବା ଦୋଷାରେ କର ଦିଅନ୍ତି ଯେ-ବ.ବ୍ରୀ)ଚନ୍ଦ୍ର,(ବି°.୬ତତ୍) ଦୋଷାଶ୍ରୟ, ଦୋଷର ଆଧାର, ବହୁ ଦୋଷଯୁକ୍ତ ।

ଦୋଷାକ୍ରାନ୍ତ—ବି°.(ଦୋଷ+ଆକ୍ରାନ୍ତ) ୩ତତ୍) ଦୋଷଯୁକ୍ତ ।

ଦୋଷାକ୍ଲେଶୀ—ସ୍ତ୍ରୀ.ବି. (ଦୋଷା+କ୍ଲିଶ୍ +ଅ+ଈ) ବନ ବର୍ବୂରିକା ।

ଦୋଷାଙ୍କୁଶ—ପୁଂ. ବି. ଚନ୍ଦ୍ରାଲୋକୋକ୍ତ କାବ୍ୟଦୋଷ ନିବାରକ କାର୍ଯ୍ୟଧର୍ମଭେଦ ।

ଦୋଷାକ୍ଷର—ପୁଂ. ବି. ଅଭିଯୋଗ, ଅପବାଦ, ଅଭିଶାପ ।

ଦୋଷାତନ—ବି. ବି°. (ଦୋଷା+ଘଟିବାର୍ଥେ ତନ)ରାତ୍ରିକାଳୀନ,(ସ୍ତ୍ରୀ)ଦୋଷାତନୀ ।

ଦୋଷାତିଲକ—ପୁଂ. ବି. ( ଦୋଷା+ତିଲକ) ପ୍ରଦୀପ ।

ଦୋଷାଦୋଷ—ପୁଂ. ବି. ( ଦୋଷ+ଅଦୋଷ, ଦ୍ୱନ୍ଦ୍ୱ) ଦୋଷ ଓ ଗୁଣ, ଭଲ ଓ ମନ୍ଦ ।

ଦୋଷାବସ୍ତର—ପୁଂ. ବି. ଆଷାଢ଼ର ଆଲୋକ, ଅଗ୍ନିଙ୍କ ଉପାଧି ।

ଦୋଷାବହ—ବି.ବି°. (ଦୋଷ+ଆବହ, ଉପ—୬ତତ୍ ) ଦୋଷଜନକ, ପାପଜନକ, ଦୋଷପୂର୍ଣ୍ଣ,(ସ୍ତ୍ରୀ)ଦୋଷାବହା ।

ଦୋଷାଭୂତ—ବି.ବି°. ରାତ୍ରି ପରିଣତ ।

ଦୋଷାମନ୍ୟ—ବି. ବି°. ରାତ୍ରିଭାବ ।

ଦୋଷାରୋପ—ପୁଂ. ବି. (୭ତତ୍) ଅନ୍ୟ ବ୍ୟକ୍ତି ଉପରେ କୌଣସି ଦୋଷର ଅଭିଯୋଗ ।

ଦୋଷାଶ୍ରିତ—ବି. ବି°. ( ୨ୟାତତ୍ ) ଦୋଷାବଲମ୍ବୀ, ଦୋଷଯୁକ୍ତ, (ସ୍ତ୍ରୀ). ଦୋଷାଶ୍ରିତା ।

ଦୋଷାସ୍ୟ—ପୁଂ. ବି. (ଦୋଷା+ଆସ୍ୟ) ଦୋଷାତିଲକ ଦେଖ ।

ଦୋଷିକ—ପୁଂ.ବି. (ଦୋଷ+ଭା.ଇକ) ରୋଗ, ପୀଡ଼ା,(ବି°) ଦୋଷ ବା ତ୍ରୁଟୀଯୁକ୍ତ ।

ଦୋଷିଣୀ—ସ୍ତ୍ରୀ.ବି°.(ଦୋଷିନ୍+ସ୍ତ୍ରୀ.ଈ) ଦୋଷୀର ସ୍ତ୍ରୀଲିଙ୍ଗ ।

ଦୋଷିବା—ଗ୍ରା. (ଷଦ୍ୟ) କ୍ରି. (ସଂ-ଦୁଷ୍-ଧାତୁ) ଦୋଷାରୋପ କରିବା, ନିନ୍ଦା କରିବା ।

ଦୋଷୀ—ପୁଂ. ବି°. ( ଦୋଷ+ଇନ୍ ) ଅପରାଧୀ, ପାପୀ, କୃତଘ୍ନ, ଦୋଷଯୁକ୍ତ (ସ୍ତ୍ରୀ) ଦୋଷିଣୀ ।

ଦୋଷୈକଦର୍ଶୀ—ପୁଂ. ବି°. (ଦୋଷ+ଏକ+ଦୃଶ୍+କ.ଇନ୍ ) କ.ଧା ବା ୬ତତ୍; ଗୁଣ ନ ଦେଖି ଯେ କେବଳ ମାତ୍ର ଦୋଷ ଦେଖେ,(ସ୍ତ୍ରୀ)ଦୋଷୈକ-

ଦର୍ଶୀ, ଦୋଷୈକଦୃଷ୍ଟି ।

ଦୋଷୈକଦୃକ୍—ବି°.(ଦୋଷୈକ+ଦୃଶ୍ +କ.କ୍ୱିପ୍)କ.ଧା; ଦୋଷୈକଦର୍ଶୀ ।

ଦୋସ୍—ପୁଂ. କ୍ଲୀ. ବି. ( ଦମ୍+କରଣେ ଓସ୍ ) ତ୍ରିଭୁଜ ବା ଚତୁର୍ଭୁଜ କ୍ଷେତ୍ରର ବାହୁ, ବାହୁ, ହସ୍ତ, କର,( ଦୋଷ୍— ଅନ୍ୟରୂପ) ।

ଦୋଷ୍ମନ୍—ଯା.ବି°(ଫା)ଦୁଶ୍ମନ ଦେଖ

ଦୋସ୍ମନ୍—ଯା.(ଫା)ବି.ଦୁଶ୍ମନ ଦେଖ

ଦୋସଡ଼କ—ଗ୍ରା. ବି. ଦୁଇଟି ରାଜପଥର ମିଳନ ସ୍ଥଳ ।

ଦୋସଡ଼ା—ଗ୍ରା.ବି. ଦୋସୋଡ଼ା ଦେଖ ।

ଦୋସନ୍ଧ—ପ୍ରା. ( ଯାଜପୁର )ବି. ଘରର ଦୋକନ୍ଧ, (ଗ୍ରା.ବି) ଦୋହନ୍ଧ ଦେଖ ।

ଦୋହନ୍ଧ—ଗ୍ରା.ବି.(ସଂ-ଦ୍ୱି ଓ ସନ୍ଧି) ଦୁଇ ବସ୍ତୁ ମଧ୍ୟରେ ଥିବା ସନ୍ଧି, ଦୁଇ ସୀମା ମଧ୍ୟରେ ଥିବା ଫାଙ୍କ, (ଲ.ଅର୍ଥ)ବିଷମ-ସମସ୍ୟା ।

ଦୋସମାଲ—ଗ୍ରା. ବି. (ସଂ-ଦ୍ୱି ଓ ସୀମା) ଦୁଇଖଣ୍ଡ କ୍ଷେତ୍ର ଦୁଇ ମୌଜା ବା ଦୁଇ ରାଜ୍ୟର ମଧ୍ୟବର୍ତ୍ତୀ ସୀମା, ସୀମା-ରେଖା, (ବି°) ଦୁଇଜମିର ବା ଗ୍ରାମର ସୀମାରେ ଅବସ୍ଥିତ ।

ଦୋସମାଲପଥର—ଗ୍ରା. ବି. ସୀମାରେ ଯେଉଁ ପଥର ପୋତା ହୋଇଥାଏ ।

ଦୋସର—ଗ୍ରା. ବି. (ସଂ-ଦ୍ୱି + ସୃଧାତୁ) ସଙ୍ଗୀ,(ଅବ୍ୟ) ପୁଣି,ଦ୍ୱିତୀୟଥର,(ପ୍ର. ସଙ୍ଗ) ଦ୍ୱିତୀୟ, ଅନ୍ୟ ।

ଦୋସର—ଗ୍ରା.ବି°.(ସଂ-ଦ୍ୱି ଓ ସୃଧାତୁ) ଦ୍ୱିତୀୟ, ଅନ୍ୟ, ସ୍ୱତନ୍ତ୍ର, ପୃଥକ୍, ଭିନ୍ନ, ଯୋଡ଼ା, ଯୁଗ୍ମ, ଦୋସରିଆ ଦେଖ, (ବି)ମାସର ୨ତାରିଖ,ସହାୟକ ବ୍ୟକ୍ତି

ଦୋସରିଆ—ଗ୍ରା. ବି°. ଦୁଇସୋର ବା ସରଥିବା ।

ଦୋସରିଆଙ୍ଗୁଠି—ଗ୍ରା. ବି. ବାହାଡ଼ା ଆଙ୍ଗୁଠି ଦେଖ ।

ଦୋସରୀ—ଗ୍ରା. ବି. ବାଦ୍ୟ ବିଶେଷ, ଦୁଇଟି ସ୍ୱର ବିଶିଷ୍ଟ ଯୋଡ଼ିମହୁରୀ,(ବି°) ଦୋସରିଆ ଦେଖ ।

ଦୋସଶଙ୍ଖ—ଗ୍ରା. ବି. ଏକତ୍ର ବନା-ଯାଇ ହେବା ଦୁଇଟି ଶଙ୍ଖ ।

ଦୋସଦ(ଧ,ଧୁ)—ଗ୍ରା.ବି.(ସଂ-ଦୁଃସାଧୀ) କଟୁଆଲ,ନଗରରକ୍ଷୀ ପ୍ରଧାନ କର୍ମଚାରୀ, ଦ୍ୱାରୀ, ଦ୍ୱାରପାଳ ।

ଦୋସାଧ,ଦୋଶାଧ—ଭାରତୀୟ ଏକ ଅତି ନୀଚ ଜାତି ।

ଦୋସାଲ—ଯା. ବି°. ଦୁଇବର୍ଷ ପାଇଁ ନିର୍ଦ୍ଦିଷ୍ଟ, ଦୁଇବର୍ଷ ବୟସ୍କ, ଦୁଇବର୍ଷ ଅନ୍ତରେ ଘଟିବା,ଦୁଇଥର ପାଗହୋଇ ଥିବା,(ଯା—ବି.)ଦୋଶାଲ ଦେଖ ।

ଦୋସାସାଲବନ୍ଦୋବସ୍ତ—ଯା. ବି. ଯେଉଁ ବନ୍ଦୋବସ୍ତରେ ଧାର୍ଯ୍ୟ ଜମା ୨ବର୍ଷ ପାଇଁ ବଳବତ୍ତ ରହେ ।

ଦୋସାଲିଆ—ଯା.ବି°.ଦୋସାଲ ଦେଖ ।

ଦୋସାହାଲ—ଗ୍ରା. ବି°. ରାସ୍ତାର ଦୁଇ ପାଖରେ ଥିବା (ବସ୍ତି) ।

ଦୋସିଆଁ—ଯା. ବି°.(ସଂ-ଦ୍ୱି + ସୂତ୍ର) ଏକତ୍ର ସିଲାଇ ହୋଇଥିବା ।

ଦୋସୀମାନା—ଯା.ବି. ଦୁଇଜମିର ମଧ୍ୟ-ବର୍ତ୍ତୀ ସୀମାରେଖା ।

ଦୋସୂତି—ଯା. ବି°.( ସଂ-ଦ୍ୱି ଓ ସୂତ୍ର ) ଡବଲ ସୂତାରେ ବୁଣା ହୋଇଥିବା, ମୋଟା(ଲୁଗା)ବି. ଡବଲବୁଣା ଗୁଦର, ଯେଉଁ ଗୁଦରରେ ଟାଣି ଓ ଭର-ଣିରେ ଦ୍ୱିଗୁଣିତ ସୂତା ଥାଏ ।

ଦୋସାଡ଼ା—ଯା.ବି. ଉଭୟସ୍ଥ, ପାଛୁଡ଼ା, ଦୋପଟା ଗୁଦର । .

ଦୋସ୍ତ—ଯା. ବି. ମିତ୍ର, ବନ୍ଧୁ, ସୁହୃଦ୍, ଅନ୍ତରଙ୍ଗ ବନ୍ଧୁ, ସାଙ୍ଗସୁଖ, (ବଙ୍ଗ-ପ୍ରା. କ) ବି. ଗୃହିଣୀ, ଚନ୍ଦ୍ରିକା, ଜ୍ୟୋତ୍ସ୍ନା ।

ଦୋସ୍ତଆଲୀ—ଜଣେ ମୋଗଲ ଦେଓ୍ୱାନ୍ ।

ଦୋସ୍ତଦାର—ଯା. ସାଙ୍ଗସୁଖ, ବାନ୍ଧବ ।

ଦୋସ୍ତଦାରି—ଯା. ବି.ବନ୍ଧୁତା,ଦୟାଳୁତା

ଦୋସ୍ତମହମ୍ମଦ—ଯା. ବି. କାବୁଲର ଜଣେ ଅମୀର, ଆଉଜଣେ ଅମୀର ।

ଦୋସ୍ତି(ସ୍ତୀ)—ଯା.ବି.ବନ୍ଧୁତା, ଦୟାଳୁତା, ପ୍ରଣୟ, ଘନିଷ୍ଠତା, ପାପଦୋସ୍ତୀ, ଅବୈଧପ୍ରଣୟ ।

ଦୋସ୍ଥ—ପୁଂ. ବି. ସେବକ, କ୍ରୀଡ଼କ, (ବି°) ବାହୁସ୍ଥିତ ।

ଦୋହ—ପୁଂ. ବି. ( ଦୁହ୍ + ଭା.ଅ ) ଦୋହିବା, (ଅଧିକରଣ.ଅ) ଦୋହନ ପାତ୍ର, ସନ୍ତୋଷ, (ମି.ଅ) ଦୁଗ୍ଧ ।

ଦୋହକ—ପୁଂ.ବି°.(ଦୁହ୍+କ. ଅକ ) ଦୋହନକାରୀ, ଯେ ଦୁହେଁ, ( ସ୍ତ୍ରୀ ) ଦୋହିକା ।

ଦୋହଜ—କ୍ଲୀ. ବି. ( ଦୋହ୍ + ଜନ୍ + କ.ଅ) ଦୁଗ୍ଧ, ( ବି° ) ଦୋହନଜାତ, (ସ୍ତ୍ରୀ) ଦୋହଜା ।

ଦୋହ(ହୋ)ଡ଼—ଗ୍ରା. ଦ୍ୱିତୀୟଥର ହଳ କରିବା, ଦୋଓଡ଼, ଦୋରୁଅ ଦେଖ, (ବି°) ଦୋଓଡ଼ ।

ଦୋହଡ଼ିକା—ସ୍ତ୍ରୀ.ବି.ମାତ୍ରାବୃତ୍ତ ବିଶେଷ ।

ଦୋହଣି—ଗ୍ରା. ବି. ଦୋହୁଣି ଦେଖ ।

ଦୋହଦ—ପୁଂ. କ୍ଲୀ. ବି. (ଦୋହ+ ଦା+କ.ଅ) ସ୍ପୃହା, ଇଚ୍ଛା, ଲାଳସା, ଗର୍ଭିଣୀର ବସ୍ତୁ ବିଶେଷ ପ୍ରତି ଭୋଜନ ଲାଳସା, ଚିହ୍ନ, ଔଷଧ, (ଦ୍ୱି+ହୃଦୟ ବହୁ,ନିପାତନ)ଗର୍ଭଲକ୍ଷଣ, ଗର୍ଭାବସ୍ଥା, ଗର୍ଭ, ବୃକ୍ଷାଦିର ପୋଷକ ଔଷଧ ବା ପ୍ରୟୋଗ, ( ପର୍ଯ୍ୟାୟ—ଦୌର୍ହୃଦ, ଶ୍ରଦ୍ଧା, ଲାଳସା, ଜାତୁକ ।

ଦୋହଦଦାନ—କ୍ଲୀ. ବି. (ଦୋହଦ + ଦାନ) ୬ତତ୍) ଗର୍ଭିଣୀକୁ ସ୍ପୃହଣୀୟ ବସ୍ତୁ ଖାଇବାକୁ ଦେବା,ସାଧଖୁଆଇବା ।

ଦୋହଦବତୀ—ସ୍ତ୍ରୀ. ବି°. ( ଦୋହଦ + ବତ୍+ସ୍ତ୍ରୀ. ଈ) ଖାଦ୍ୟ ବିଶେଷ ପ୍ରତି ସ୍ପୃହାବତୀ ଗର୍ଭିଣୀ, ଗର୍ଭିଣୀ ।

ଦୋହଦଲକ୍ଷଣ—କ୍ଲୀ. ବି. (ଦୋହଦ+ ଲକ୍ଷଣ) ୬ତତ୍; ଗର୍ଭଲକ୍ଷଣ, ଭ୍ରୂଣ, ଗର୍ଭସ୍ଥ ଶିଶୁ; ବୟଃସନ୍ଧି ।

ଦୋହଦାନ୍ୱିତା—ସ୍ତ୍ରୀ. ବି°. (ଦୋହଦ+ ଅନ୍ୱିତ + ଆ) ୩ତତ୍; ଗର୍ଭବତୀ ।

ଦୋହଦିନୀ—ସ୍ତ୍ରୀ. ବି°. ( ଦୋହଦ+ ଇନ୍ + ଈ)ଦୋହଦବତୀ ଦେଖ, କାମନା-ଯୁକ୍ତା ଗର୍ଭିଣୀ ।

ଦୋହଦୀ—ପୁଂ. ବି°.(ଦୋହଦ + ଇନ୍)

କାମୀ, କାମନାଯୁକ୍ତ ।
ଦୋହନ—କ୍ଲୀ. ବ. ( ଦୁହ+ଭା. ଅନ ) ଦୁହିଁବା, ଦୁଗ୍ଧାକର୍ଷଣ, ଦୁହାଁହେଲେ ଦୁଗ୍ଧଦେଉଥିବା,ସଂଗ୍ରହ କରିବା,(ଦୁହ୍ + ଅଧି.ଅନ) ଦୋହନପାତ୍ର ।
ଦୋହନୀ—ସ୍ତ୍ରୀ. ବ.(ଦୋହନ + ସ୍ତ୍ରୀ.ଈ) ଦୋହନପାତ୍ର, ଦୋହନ କର୍ମ ।
ଦୋହନୀକୁଣ୍ଡ—କୁଣ୍ଡବିଶେଷ ।
ଦୋହନୀୟ—ବି. ବଂ. ( ଦୁହ୍ + ମ. ଅନୀୟ) ଦୋହନଯୋଗ୍ୟ ।
ଦୋହର—ଗ୍ରା. ବ. ଦୋଅଡ଼ି ଦେଖ ।
ଦୋହରଫୀ—ଗ୍ରା. ବଂ.(ସଂ-ଦ୍ୱି + ହର୍ଫ) ଦୁଇପ୍ରକାର ହସ୍ତାକ୍ଷରରେ ଲେଖା ହୋଇଥିବା, ଦୁଇପ୍ରକାର ହସ୍ତାକ୍ଷର ଲେଖି ଜାଣୁଥିବା (ବ୍ୟକ୍ତି ।
ଦୋହରମୁଣ୍ଡା—ଗ୍ରା. ବ. ଦୋଉଡ଼ମୁଣ୍ଡା ଦେଖ । [ ଦେଖ ।
ଦୋହରି(ଇତ୍ୟାଦି)—ଦୋହରିଇତ୍ୟାଦି
ଦୋହରୁ(ଇତ୍ୟାଦି)—ଦୋହୁରିଇତ୍ୟାଦି ଦେଖ ।
ଦୋହରଘାଟ—ଉତ୍ତରପଶ୍ଚିମ ପ୍ରଦେଶେ ଆଜମଗଡ଼ଜିଲ୍ଲାର ଘର୍ଘରା ନଦୀକୂଳେ ଥିବା ଗୋଟିଏ ନଗର ।
ଦୋହଲ—ପୁଂ. ବ. (ଦୋହ+ଲା+କ.ଅ) ଇଚ୍ଛା, ଅଭିଳାଷ, (ପ୍ରା. ଗଡ଼ଜାତ ଓ ସମ୍ବଲପୁର-ବ-ସଂ-ଦୋହଳ) ବାରିଣ୍ଡା, ଅଗଣା ।
ଦୋହଲ(ଲ)—ଗ୍ରା. ବ. (ସଂ ଦୁଲଧାତୁ) କମ୍ପନ, ମନର ଅନବସ୍ଥିତଅବସ୍ଥା, ଝଣାଓଟରା, ଆନ୍ଦୋଳନ, ବାଦବିବାଦ ।
ଦୋହଲଫୀ—ଗ୍ରା.ବଂ. (ସଂ-ଦ୍ୱି + ଆ+ହଲଫ) ଯେ ଏକକଥାକୁ ଦୁଇପଥର ଦୁଇ ପ୍ରକାର କହେ । (ଦେଖ ।
ଦୋହଲବତୀ—ସ୍ତ୍ରୀ. ବଂ. ଦୋହଦବତୀ
ଦୋହଲ—ଗ୍ରା. ବ. ( ସଂ-ଦୁଲଧାତୁ ) ଦୋହଲିବା, ଇତସ୍ତତଃ ଚଳନ, ଦୋହଲାଇବା ।
ଦୋହଲା(ବା)ଇବା—ଗ୍ରା. କି. (ସଂ-ଦୁଲ୍ ଧାତୁ ଣିଜନ୍ତ) ଦୋହଲିବା କ୍ରିୟାର ଣିଜନ୍ତରୂପ, ଝୁଲାଇବା, ଝୁଙ୍କାଇବା, ଇତସ୍ତତଃ ସଞ୍ଚାଳିତ କରିବା ।
ଦୋହଲଦୋହଲ—ଗ୍ରା. ବ. ବହୁବାର ଦୋହଲିବା,ବହୁବାର ଦୋହଲାଇବା ।
ଦୋହଲିବା—ଗ୍ରା.କି. ( ସଂ-ଦୁଲଧାତୁ ) ହଲିବା, ଝୁଲିବା, ଇତସ୍ତତଃ ଚାଳିତ ହେବା ।
ଦୋହଲୀ—ସ୍ତ୍ରୀ.ବ.(ଦୋହଲ+ସଂଜ୍ଞାର୍ଥେ ଈ) ଅଶୋକଗଛ ।
ଦୋହସ—ପୁଂ. ବ. ( ଦୁହ୍+ଭା.ଅସ୍ ) ଦୋହନ, ପ୍ରକ୍ଷାରଣ ।
ଦୋହସେ—ଅବ୍ୟ. ଦୋହନକରି ।
ଦୋହା—ଯା. ବ. ( ସଂ-ଦ୍ୱି ) ଡୁହା, ହିନ୍ଦୀଭାଷାର ପଦ୍ୟସଂଯୁକ୍ତ ଚରଣ, ହିନ୍ଦୀମାନ ଛନ୍ଦୋବିଶେଷ, (ବଙ୍ଗ-ଗ୍ରା-କି) ଦୋହନକରିବା. ଦୋହିଁବା ।
ଦୋହାଇ—ଗ୍ରା.ବ.(ସଂ-ଦ୍ୱି +ଆହ୍ୱାନ ) ଶପଥ, ରାଣ, ରମ୍ଭାର କୌଣସି ଦେବତା ବା ରାଜାଙ୍କ ନାମ ଧରି ପ୍ରାର୍ଥନାକରିବା, ଶୋକାଭିଭୂତ ହୋଇ ଚିତ୍କାର, ବଗୁରହେତୁ ଦୁଃଖପ୍ରକାଶ, (ପ୍ରା. କ--ବ.) ଦ୍ୱିବ୍ୟ, ଶପଥ, ରାଣ, ଅନ୍ୟଉପରେ ଦାୟିତ୍ୱ ଆରୋପ ।
ଦୋହାଦ—ବୋମ୍ବାଇ ପ୍ରେସିଡେନ୍ସୀର ପାଞ୍ଚମହଲ ଜିଲ୍ଲାର ଗୋଟିଏ ନଗର ।
ଦୋହାପନୀୟ—ପୁଂ. ବ. (ଦୋ+ଅପ୍+ନୀ+ମ.ଅ) ଦୁଗ୍ଧ ।
ଦୋହି—ଗ୍ରା.ବ. ଦୋହାଇ ଦେଖ ।
ଦୋହିତ—ବି.ବଂ. ଯ ଜାତଦୋହ ।
ଦୋହିନ୍—ବି.ବଂ. ଦୋହନଶୀଳ ।
ଦୋହିଁବା—ଗ୍ରା.କି. ଦୁହିଁବା ଦେଖ ।
ଦୋହିତା—ଗ୍ରା.ସ୍ତ୍ରୀ. ବ. ( ସଂ-ଦୁହିତା ) ଦୁହିତା ଦେଖ ।
ଦୋହିତୀ—ଗ୍ରା.ପଦ୍ୟ.ସ୍ତ୍ରୀ.ବ.(ସଂ ଦୁହିତା) ଦୁହିତା ଦେଖ ।
ଦୋହଜ(ହୀ)—ଗ୍ରା.ବଂ.(ସଂ-ଦୌହିଜିକ) ଦୌହିଜିକ ।
ଦୋହ୍ୟସୁପ୍—ବି.ବଂ.ଅତିଶୟ ଦୋଗ୍ଧା (ସ୍ତ୍ରୀ) ଦୋହ୍ୟସୁପୀ ।
ଦୋହ୍ୱାଣୀ—ଗ୍ରା. ବ. ଦୋଇରାଣୀ ଦେଖ ।
ଦୋହୁଣୀ—ଗ୍ରା.ବ. (ସଂ-ଦୋହନ)ଛନ୍ଦ, ଦୁଷ୍ଟ ନାଡୋଇ ଗାଈକୁ ଦୁହିଁବାବେଳେ ତା ପଛ ଗୋଡ଼କୁ ଯେଉଁ ଦଉଡ଼ିରେ ଛନ୍ଦନ୍ତି ।
ଦୋହେଁ—ଗ୍ରା.ହଂ, ଦୁହେଁ ଦେଖ ।
ଦୋହୋଡ଼( ଇତ୍ୟାଦି )—ଦୋହଡ଼-ଇତ୍ୟାଦି ଦେଖ ।
ଦୋହୋଡ଼ା—( ପ୍ରା. ସମ୍ବଲପୁର. ବ. ) ଦୋଓଡ଼ା ଦେଖ ।
ଦୋହୋର—ଗ୍ରା.ବ.ଏକପ୍ରକାର ଆନନ୍ଦ ବାଦ୍ୟ, (ସଂ-ଦାବ,ଦବ) ଅଗ୍ନି,ଯେଉଁ ଜମିରେ ଗ୍ରାମର ଧୂଆଧୋଇ ପାଣି ପଡ଼େ,ଧୋଓରା,ଜଳସ୍ରୋତରେ ଯେଉଁ ମାଟି ମିଶା ସଢ଼ା, ପଗୁ, ପତ୍ରଆଦି ଭାସି ଆସେ ଓ ଅନନ୍ୟ ଜମାହୁଏ, (ସଂ-ଦ୍ୱି) ଦ୍ୱିତୀୟବାର, ଦୋଓଡ଼ା(ଦେଖ),(ବଂ) ଦ୍ୱିତୀୟ, ଅତିରକ୍ତ,ଦୁଇଥରକରାଯିବା, ଦ୍ୱିଗୁଣିତ, ଦ୍ୱିତୀୟଥର କରାଯିବା, ସ୍ଥୂଳକାୟ.ଦୁଇଭାଗଙ୍କ, କରା ଯାଇଥିବା, (ଅବ୍ୟ) ଆଉଥରେ, ପୁନର୍ବାର, (ଯା.ବ.) ଦୌର ଦେଖ ।
ଦୋହୋରା(ରେ)ଇବା—ଗ୍ରା.କି.ଦୋଓଡ଼ାଇବା ଦେଖ । [ ଦେଖ ।
ଦୋହୋରାଘର—ଗ୍ରା. ବ. ଦୋଘର
ଦୋହରସମ୍ମୋଦ—ଯା.ବ.(ଆ.ଦୌର-ଘୁପୁର୍ଦ) ଦଉରସୁପର୍ଦ୍ଦ ଦେଖ ।
ଦୋହର—ଗ୍ରା. ବଂ. ( ସଂ-ଦ୍ୱିବାର ) ଦ୍ୱିଗୁଣିତ, (ଅବ୍ୟ) ଦୁଇଥର, ଆଉଥରେ, ଦ୍ୱିତୀୟଥର ।
ଦୋହରନଳିଆ—ଗ୍ରା. ବଂ. ଦୁଇଟି ନଳ ଥିବା (ବନ୍ଧୁକ) । [ ଦେଖ ।
ଦୋହରପଇସା—ଗ୍ରା. ବ. ଦୋପଇସି
ଦୋହୋଲବେଇ—ଗ୍ରା. ବ ଓ ବଂ. ଦୋବେଇ ଦେଖ ।
ଦୋହୋଲ(ଇତ୍ୟାଦି)-ଦୋହଲ ଇତ୍ୟାଦି ଦେଖ ।

ଦୋହ୍ୟ—ବି. ବଂ. ( ଦୁହ୍ +ମି.ଯ ) ଦୋହନ ଯୋଗ୍ୟ, ଯେଉଁ ଜୀବଙ୍କଠାରୁ ଦୁଧ ଦୁହାଁଯାଏ, ଯେଉଁ ବ୍ୟକ୍ତିଙ୍କଠାରୁ ଧନାଦି ଜବରଦସ୍ତି ଗ୍ରହଣ କରାଯାଏ, (ଙ-ବ) ଦୁଗ୍ଧ, (ସ୍ତ୍ରୀ)ଦୋହ୍ୟା ।

ଦୌଃସାଧିକ—ପୁଂ.ବ.ଦ୍ୱାରସ୍ଥିତ, ଦ୍ୱାରପାଳ ।

ଦୌକୂଲ—ବି. ବଂ. (ଦୁକୂଲ+ସମ୍ବନ୍ଧାର୍ଥେ ଅ) ରେସମୀ ବସ୍ତ୍ର ଦ୍ୱାରା ଆବୃତ (ରଥାଦି) ।

ଦୌଖେବାର—ଯା.(ଦୁଷଖଷା)ଦୁଷିଆର ଅଧିବାସୀ ଜାତିବିଶେଷ ।

ଦୌଗଲ୍—ପୁଂ. ବ. ଅଶ୍ୱ ।

ଦୌଜ—(ପ୍ରା.କ) ଦ୍ୱିତୀୟ ।

ଦୌଡ଼—ଗ୍ରା.ବ.ଧାବନ, ବେଗେ ପଳାଇବା, ସୀମା ବିସ୍ତାର, ପରିସର ।

ଦୌଡ଼ଝାମ୍ପ(ଧାପ)—ଦୌଡ଼ ଓ ଲମ୍ଫ, ଡ଼ିଆଁଡ଼େଇଁ, ଦୌଡ଼ାଦୌଡ଼ି ।

ଦୌଡ଼ା(ଇତ୍ୟାଦି—ଦଉଡ଼ା ଇତ୍ୟାଦି ଦେଖ ।

ଦୌଡ଼ାଦୌଡ଼ି—ଗ୍ରା.ଶୀଘ୍ର ଶୀଘ୍ର ଯାଆସ

ଦୌଡ଼(ଇତ୍ୟାଦି)—ଦଉଡ଼ ଇତ୍ୟାଦି ଦେଖ ।

ଦୌତ୍ୟ—କ୍ଲୀ.ବ.(ଦୂତ+ଷ୍ଣ.ଯ) ଦୂତର କର୍ମ ବା ଗୁଣକର୍ମ, ମଧ୍ୟସ୍ଥତା, ଘଟକତା ।

ଦୌବାରକ—ପୁଂ. ବ. (ଦ୍ୱାର+ଇକ, ନିପାତନ ) ଦ୍ୱାସ୍ଥ, ଦ୍ୱାରପାଳ, (ସ୍ତ୍ରୀ) ଦୌବାରିକା ।

ଦୌବାଲକ—ପୁଂ. ବ. ଦେଶବିଶେଷ ଓ ସେହି ଦେଶ ରାଜା ଓ ଅଧିବାସୀ ।

ଦୌର( ଇତ୍ୟାଦି)—ଦଉର ଇତ୍ୟାଦି ଦେଖ ।

ଦୌରାତ୍ମ୍ୟ—ବ. (ଦୁରାତ୍ମନ୍+ଷ୍ୟେ.ଯ) ଅତ୍ୟାଚାର, ଉପଦ୍ରବ୍ୟ, ଜୁଲମ୍,ଅନ୍ୟାୟ ବଳ ପ୍ରୟୋଗ, ନଷ୍ଟୁରତା ।

ଦୌଶତ—କ୍ଲୀ. ବ. (ଦୁଶତ+ଅ)ଛତ, ହାନ ।

ଦୌରେଶ୍ରବାଃ—ପୁଂ.ବ.ସର୍ପ ପୁରୋହିତ ପୃଥୁଶ୍ରବାଙ୍କ ଗୋତ୍ରାପତ୍ୟ ।

ଦୌରେଶ୍ରୁତ—ପୁଂ.ବ. ସର୍ପ ପୁରୋହିତ ଉଗ୍ରଘୋରଙ୍କ ଗୋତ୍ରାପତ୍ୟ ।

ଦୌର୍ଗ—ବି. ବଂ. (ଦୁର୍ଗ+ଅ)ଦୁର୍ଗସମ୍ବନ୍ଧୀୟ, ( ଦୁଗ+ଅ ) ଦୁର୍ଗାସମ୍ବନ୍ଧୀୟ, (ସ୍ତ୍ରୀ) ଦୌର୍ଗୀ ।

ଦୌର୍ଗତ୍ୟ—କ୍ଲୀ. ବ. (ଦୁର୍ଗତ+ଷ୍ଣ.ଯ) ଦାରିଦ୍ର୍ୟ, ଦୁରବସ୍ଥା, ମଳିନତା ।

ଦୌର୍ଗନ୍ଧ୍ୟ—କ୍ଲୀ.ବ. ( ଦୁର୍ଗନ୍ଧ+ଷ୍ଣ.ଯ ) ଦୁର୍ଗନ୍ଧଯୁକ୍ତତା ।

ଦୌର୍ଗହ—ପୁଂ.ବ.ଦୁର୍ଗହଋଷିଙ୍କ ଅପତ୍ୟ, ପୁରୁକୁତ୍ସଋଷି, ଅଶ୍ୱ ।

ଦୌର୍ଗହ—ପୁଂ.ବ.ଅଶ୍ୱମେଧଯଜ୍ଞ ।

ଦୌର୍ଗାୟଣ—ପୁଂ.ବ. ଦୁର୍ଗଙ୍କ ଅପତ୍ୟ ।

ଦୌର୍ଗ୍ୟ—କ୍ଲୀ.ବ.(ଦୁର୍ଗ+ଯ) ଦୁର୍ଗବୃତ୍ତି ଧର୍ମ, (ବଂ) ଦୁର୍ଗସମ୍ବନ୍ଧୀ । [ କାର୍ତ୍ତି ।

ଦୌର୍ଜନ—ବି. ବଂ. ଦୁଷ୍ଟଲୋକ ସମ୍ବ-

ଦୌର୍ଜନ୍ୟ—କ୍ଲୀ. ବ. (ଦୁର୍ଜନ+ଷ୍ଣ.ଯ) ଦୁର୍ଜନତ୍ୱ, କ୍ରୂରତା, ଦୁର୍ବ୍ୟବହାର ।

ଦୌର୍ବଲ୍ୟ—କ୍ଲୀ. ବ. (ଦୁର୍ବଳ+ଷ୍ଣ.ଯ) ଦୁର୍ବଳତା, କ୍ଷୀଣତା ।

ଦୌର୍ବାସ—କ୍ଲୀ. ବ. ଦୁର୍ବାସାପ୍ରୋକ୍ତ ଉପପୁରାଣ ବିଶେଷ ।

ଦୌର୍ବୀଶ—କ୍ଲୀ.ବ.ଦୁର୍ବାରସ, ଇଷ୍ଟପର୍ତ୍ତି

ଦୌର୍ବ୍ରତ୍ୟ—କ୍ଲୀ. ବ. ଦୁଷ୍ଟବ୍ରତତ୍ୱ ।

ଦୌର୍ବ୍ରାହ୍ମଣ୍ୟ—କ୍ଲୀ. ବ. ଦୁର୍ବ୍ରାହ୍ମଣତ୍ୱ, କୁବ୍ରାହ୍ମଣଙ୍କ କାର୍ଯ୍ୟ ।

ଦୌର୍ଭାଗିନେୟ—ପୁଂ. ବ. (ଦୁର୍ଭଗା+ଏୟ) ଭାଗ୍ୟହୀନା ବା ସ୍ୱାମିପରିତ୍ୟକ୍ତା ସ୍ତ୍ରୀର ପୁତ୍ର, (ସ୍ତ୍ରୀ) ଦୌର୍ଭାଗିନେୟୀ (ବପ) ସୌଭାଗିନେୟ ।

ଦୌର୍ଭାଗ୍ୟ—କ୍ଲୀ. ବ. (ଦୁର୍ଭଗା+ଷ୍ଣ.ଯ) ଦୁର୍ଭାଗ୍ୟ, ମନ୍ଦଭାଗ୍ୟ ।

ଦୌର୍ଭ୍ରାତ୍ର—କ୍ଲୀ. ବ. ଦୁଷ୍ଟଭ୍ରାତୃତ୍ୱ ।

ଦୌର୍ମନସ୍ୟ—କ୍ଲୀ. ବ. (ଦୁର୍ମନସ୍+ଷ୍ଣ.ଯ ) ଉଦ୍‌ବେଗ, ଦୁଶ୍ଚିନ୍ତା, ଦୁର୍ଭାବନା, ଦୁଃଖ ନିବନ୍ଧନ,ଚିତ୍ତର ଅବସାଦ,ଦୁଃଖ ।

ଦୌର୍ମିତ୍ର—କ୍ଲୀ. ବ. ( ଦୁର୍ମିତ୍ର+ଅ ) ଦୁର୍ମିତ୍ରତା ।

ଦୌର୍ମିତ୍ରି—ପୀ.ବ. ଦୁର୍ମିତ୍ରାର ଅପତ୍ୟ ।

ଦୌର୍ମୁଖି—ପୁଂ.ବ. ଦୁର୍ମୁଖର ଗୋତ୍ରାପତ୍ୟ ।

ଦୌର୍ଯ୍ୟ—ବ. (ଦୂର+ଷ୍ଣ.ଯ)ଦୂରତ୍ୱ ।

ଦୌର୍ଯୋଧନ—ବି. ବଂ. ଦୁର୍ଯୋଧନ ସମ୍ବନ୍ଧୀୟ ।

ଦୌର୍ଯୋଧନି—ପୁଂ.ବ(ଦୁର୍ଯୋଧନ+ଇ) ଦୁର୍ଯୋଧନଙ୍କ ଗୋତ୍ରାପତ୍ୟ ।

ଦୌର୍ହାର୍ଦ୍ଦ—କ୍ଲୀ. ବ. (ଦୁର୍ହୃଦ+ଷ୍ଣ.ଅ) ବୈର, ଦୁଷ୍ଟସ୍ୱଭାବ ।

ଦୌହୃଦ—କ୍ଲୀ. ବ. (ଦ୍ୱି+ହୃଦ୍+ଅ). ଇଚ୍ଛା, ଦୋହଦ, ଗର୍ଭିଣୀର ବିଶିଷ୍ଟ ବସ୍ତୁରେ ସ୍ପୃହା, ଗର୍ଭଧାରଣ, ଗର୍ଭ, ଭ୍ରୂଣ, (ଦୁହୃଦ+ଅ) ଦୁଷ୍ଟସ୍ୱଭାବ ।

ଦୌହୃଦୟ—କ୍ଲୀ. ବ. ଦୁଷ୍ଟଚିତ୍ତତ୍ୱ ।

ଦୌଲତ—ଯା.ବ.ଐଶ୍ୱର୍ଯ୍ୟ, ଧନସମ୍ପତ୍ତି, ଅଚଳାଚଳ ସମ୍ପତ୍ତି, ଆଡ଼ମ୍ବର, ଜାକ୍‌ଯମକ ।

ଦୌଲତଖାନା—ଯା.ବ. ଧନୀର ଅଟ୍ଟାଳିକା, ଧନୀର ଧନାଗାର, ବାସଗୃହ ।

ଦୌଲତଦାର—ଯା.ବଂ. ଐଶ୍ୱର୍ଯ୍ୟଶାଳୀ, (ବ) ଦୌଲତଦାରୀ ।

ଦୌଲତାବାଦ—ନିଜାମ ହାଇଦରାବାଦ ଠାରୁ ୨୮ ମାଇଲ ଦୂରରେ ଅବସ୍ଥିତ ଗୋଟିଏ ନଗର । [ ଦେଖ ।

ଦୌଲତ—ଯା. ବଂ. ଦୌଲତଦାର

ଦୌଲେୟ—ପୁଂ. ବ. (ଦୁଳୀ+ଏୟ) କଚ୍ଛପ, କଇଁଛ ।

ଦୌଲ୍ମି—ପୁଂ. ବ. (ଦୁଲ୍ମ+ଇନ୍) ଇନ୍ଦ୍ର ।

ଦୌଶ୍ଚର୍ମ୍ୟ—କ୍ଲୀ.ବ. (ଦୁଶ୍ଚର୍ମନ୍+ଷ୍ଣ.ଯ) ଦୁଶ୍ଚର୍ମାହେବାର ଅବସ୍ଥା, ପୁରୁଷର ଲିଙ୍ଗାବରକ ଚର୍ମ ନଥିବା ଅବସ୍ଥା ।

ଦୌଷ୍କ—ବି.ବଂ. ବାହୁଦ୍ୱାରା ବିଚରଣକାରୀ ।

ଦୌଷ୍କୁଲ—ବି. ବଂ. ଦୁଷ୍ଟକୁଳଯୁକ୍ତ ।

ଦୌଷ୍କୁଲେୟ—ପୁଂ. ବଂ. ( ଦୁଷ୍କୁଳ+ଏୟ ) ନୀଚକୁଳଜାତ, (ସ୍ତ୍ରୀ) ଦୌଷ୍କୁଲେୟୀ ।

ଦୌଷ୍କୁଲ୍ୟ—ବି. ବଂ. ( ଦୁଷ୍କୁଳ+ଯ ) ଦୁଷ୍କୁଳଯୁକ୍ତ ।

**ଦୌଷ୍କୃତ୍ୟ**—କ୍ଲୀ. ବ. ଦୁଷ୍କୃତ, ମନ୍ଦ ସ୍ୱଭାବ ।

**ଦୌଷ୍କୁଳ**—କ୍ଲୀ. ବ. ( ଦୁଷ୍କୁଳ+ଷ୍ଣ.ଅ ) ଅବନୀତତ୍ୱ, ଦୁଷ୍କୁଳର ବ୍ୟବହାର ।

**ଦୌଷ୍ପୁରୁଷ୍ୟ**—କ୍ଲୀ. ବ. ଦୁଷ୍ପୁରୁଷ, ଦୁଷ୍ପୁରୁଷର ଭାବ ।

**ଦୌଷ୍ମନ୍ତ(ନ୍ତି)**—ପୁଂ. ବ. ( ଦୁଷ୍ମନ୍ତ+ଅ,ଇ) ରାଜା ଦୁଷ୍ମନ୍ତଙ୍କ ପୁତ୍ର, ଦୁଷ୍ମନ୍ତକୁଳଜାତ ।

**ଦୌଷ୍ମନ୍ତ୍ୟ**—ବି. ବଂ. ( ଦୁଷ୍ମନ୍ତ+ଯ ) ଦୁଷ୍ମନ୍ତ ସମ୍ବନ୍ଧୀୟ ।

**ଦୌଷ୍ଟ**—କ୍ଲୀ. ବ. ଦୁଷ୍ଟା ସ୍ତ୍ରୀର ଭାବ, ଦୁଷ୍ଟା ସ୍ତ୍ରୀର କାର୍ଯ୍ୟ ।

**ଦୌହକ**—ବି. ବଂ. ନିତ୍ୟଦୋହାର୍ହ, ପ୍ରତ୍ୟହ ଦୋହନଯୋଗ୍ୟ ।

**ଦୌହିତ୍ର**—ବ.(ଦୁହିତୃ+ଅ) ଦୁହିତାର ଅପତ୍ୟ, ଦୁହିତାର ସନ୍ତାନ, ( ସ୍ତ୍ରୀ ) ଦୌହିତ୍ରୀ, ଖଡ୍ଗ, ତିଳ, ଗୁଆଘିଅ ।

**ଦୌହିତ୍ରିକ**—ବି.ବଂ. (ଦୌହିତ୍ର+ଇକ) ଯେଉଁ ସମ୍ପତ୍ତିକୁ ମୃତବ୍ୟକ୍ତିର ଦୌହିତ୍ର ଭୋଗ କରେ, (ଦୁହିତୃ+ଇକ) ଯେଉଁ ସମ୍ପତ୍ତିକୁ ଅପୁତ୍ରିକ ବ୍ୟକ୍ତିର କନ୍ୟା ପାଏ, ଦୌହିତ୍ର ସମ୍ବନ୍ଧୀୟ ।

**ଦୌହିତ୍ରବତ୍**—ବି. ବଂ. (ଦୌହିତ୍ର+ବତ୍) ଦୌହିତ୍ରଯୁକ୍ତ ।

**ଦୌହିତ୍ରାୟଣ**—ପୁଂ. ସ୍ତ୍ରୀ. ଦୁହିତାର ଯୁବା ଅପତ୍ୟ ।

**ଦୌହିତ୍ରୀ**—ସ୍ତ୍ରୀ.ବ.ଝିଅର ଝିଅ ନାତୁଣୀ ।

**ଦୌହୃଦ**—ପୁଂ. ବ. ଦୋହଦ, ଗର୍ଭିଣୀର ଅଭିଳାଷ ।

**ଦୌହୃଦିନୀ**—ସ୍ତ୍ରୀ.ବ. (ଦ୍ୱି+ହୃଦ୍+ଇନ୍+ଈ) ଗର୍ଭବତୀ ନାରୀ ।

**ଦ୍ୱଇତ**—ଗ୍ରା. ବଂ. ପଦ୍ୟ. ଦ୍ୱୈତଦେଖ ।

**ଦ୍ୱଇତବନ**—ଗ୍ରା. ବ. ପଦ୍ୟ. ଦ୍ୱୈତବନ ଦେଖ ।

**ଦ୍ୱଇଧ**—ଗ୍ରା. ବ. ପଦ୍ୟ. ଦ୍ୱୈଧଦେଖ ।

**ଦ୍ୱଇମାତୁର**—ଗ୍ରା. ପଦ୍ୟ. ବ ଓ ବଂ. ଦ୍ୱୈମାତୁର ଦେଖ ।

**ଦ୍ୱଇରଥଯୁଦ୍ଧ**—ଗ୍ରା.ବ. ପଦ୍ୟ. ଦ୍ୱୈରଥଯୁଦ୍ଧ ଦେଖ ।

**ଦ୍ୱନ୍ଦ**—ବ. ( ଦ୍ୱି+ଦ୍ୱି, ସହାଭିବ୍ୟକ୍ତି, ନିପାତନ) ଦ୍ୱନ୍ଦ୍ୱ ଦେଖ, ସମସ୍ତ ଜାଣିବା ପାଇଁ ବାଡ଼ଆସିବା ଘଣ୍ଟା ।

**ଦ୍ୱନ୍ଦବାଦ**—ଗ୍ରା. ବ. କଳହ, ଶତ୍ରୁତା ।

**ଦ୍ୱନ୍ଦିବା**—ଗ୍ରା. କ୍ରି. ( ସଂ-ଦ୍ୱନ୍ଦ ) ବିବାଦ କରିବା ।

**ଦ୍ୱନ୍ଦୀୟ**—ବଂ. ବିବାଦୀୟ ।

**ଦ୍ୱନ୍ଦ୍ୱ**—କ୍ଲୀ. ବ. (ଦ୍ୱି+ଦ୍ୱି, ସହାଭିବ୍ୟକ୍ତି, ଦ୍ୱୌ+ଦ୍ୱୌ-ନିପାତନ) ସ୍ତ୍ରୀ ପୁରୁଷ, ମିଥୁନ, ଯୁଗଳ, ମାଣ୍ଡଅଣ୍ଡିରା, ଯୋଡ଼ା, ଯୁଗ୍ମ, ଦ୍ୱୟ, ସୁଖଦୁଃଖ, ରାଗଦ୍ୱେଷଆଦି ପରସ୍ପର ବିରୁଦ୍ଧ ଭାବଦ୍ୱୟ, ପରସ୍ପର ବିରୁଦ୍ଧ ବସ୍ତୁ ବା ଗୁଣ ବା ଶବ୍ଦଦ୍ୱୟ, ବିବାଦ, ଯୁଦ୍ଧ, ଦ୍ୱନ୍ଦ୍ୱଯୁଦ୍ଧ, ଦୁଇଜଣଙ୍କ ମଧ୍ୟରେ ହେବା ଯୁଦ୍ଧ, କଳହ, ରହସ୍ୟ, ଦୁଇଟି ବିଶେଷ୍ୟପଦର ଏକାଠି ମିଳନରୂପ ସମାସ, ରୋଗବିଶେଷ, ସନ୍ଦେହ, ସ୍ୱର୍ଗ, ମିଥୁନ ରାଶି । [ ରୋଗ

**ଦ୍ୱନ୍ଦ୍ୱଗଦ**—ପୁଂ. ବ. ରାଗଦ୍ୱେଷାଦି ରୂପ

**ଦ୍ୱନ୍ଦ୍ୱଚର**—ପୁଂ.ବ. (ଦ୍ୱନ୍ଦ୍ୱ+ଚର+ଅ) ଚକ୍ରବାକ ମିଥୁନ, ଚକୁଆ ଚକୋଇ, (ବଂ) ଯେ ଯୋଡ଼ା ଯୋଡ଼ା ହୋଇ ବୁଲନ୍ତି । [ ଦେଖ ।

**ଦ୍ୱନ୍ଦ୍ୱଗ୍ରସ୍ତ**—ପୁଂ. ବ ଓ ବଂ. ଦ୍ୱନ୍ଦ୍ୱଚର

**ଦ୍ୱନ୍ଦ୍ୱଜ**—ବି.ବଂ. (ଦ୍ୱନ୍ଦ୍ୱ+ଜନ୍+କ.ଅ) ସ୍ତ୍ରୀ ପୁରୁଷ ଉଭୟଙ୍କର ଠାରୁ ଉତ୍ପନ୍ନ, ବିବାଦରୁ ଉତ୍ପନ୍ନ, ବାତ, ପିତ୍ତ ଓ କଫ ମଧ୍ୟରୁ ଦୁଇଟି ଧାତୁର ପ୍ରକୋପରୁ ଉତ୍ପନ୍ନ, (ବ) ଦୋଷଦ୍ୱୟୋତ୍ପନ୍ନ ରୋଗ ।

**ଦ୍ୱନ୍ଦ୍ୱଭାବ**—ବ. ଶତ୍ରୁତା, ବିରୋଧ ।

**ଦ୍ୱନ୍ଦ୍ୱଭିନ୍ନ**—ବ.ସ୍ତ୍ରୀ ପୁରୁଷ ଅଲଗା ହେବା ।

**ଦ୍ୱନ୍ଦ୍ୱଭୂତ**—ବଂ. ସ୍ତ୍ରୀ ପୁରୁଷ ଯୋଡ଼ା ହୋଇଥିବା, ସନ୍ଦେହଜନକ ।

**ଦ୍ୱନ୍ଦ୍ୱମୋହ**—ବ.(ମଧ୍ୟ-କ.ଧା) ସନ୍ଦେହରୁ ଜାତ କଷ୍ଟ ।

**ଦ୍ୱନ୍ଦ୍ୱଯୁଦ୍ଧ**—କ୍ଲୀ. ବ. (ମଧ୍ୟ-କ.ଧା) ଦୁଇଜଣଙ୍କ ମଧ୍ୟରେ ଯୁଦ୍ଧ, ମଲ୍ଲଯୁଦ୍ଧ, ପରସ୍ପର ଯୁଦ୍ଧ ।

**ଦ୍ୱନ୍ଦ୍ୱଶଃ**—ଅବ୍ୟ. (ଦ୍ୱନ୍ଦ୍ୱ+ଶସ୍)ଯୋଡ଼ା ଯୋଡ଼ାହୋଇ ।

**ଦ୍ୱନ୍ଦ୍ୱୀ**—ପୁଂ. ବଂ. ( ସଂ-ଦ୍ୱନ୍ଦ୍ୱ+ଇନ୍ ) ପରସ୍ପର ବିରୁଦ୍ଧ, କଳହକାରୀ, ବିବାଦୀ, ମାମଲାବାଜ୍, (ସ୍ତ୍ରୀ) ଦ୍ୱନ୍ଦ୍ୱିନୀ ।

**ଦ୍ୱନ୍ଦ୍ୱୀଭୂତ**—ବଂ. ( ଦ୍ୱନ୍ଦ୍ୱ+ଚ୍ୱି+ଭୂତ ) ଯେ ଦ୍ୱନ୍ଦ୍ୱ ଯୁଦ୍ଧରେ ଲାଗିଥାଏ ।

**ଦ୍ୱୟ**—କ୍ଲୀ.ବ.(ଦ୍ୱି+ଅବୟବାର୍ଥେ.ଅୟ) ଦୁଇସଂଖ୍ୟା, ଯୋଡ଼ା, ଯୁଗ୍ମ, ଉଭୟ, ଦୋନାବୁଦ୍ଧିଆ ଭାବ, ଅସତ୍ୟତା, ପୁଂଲିଙ୍ଗ ଓ ସ୍ତ୍ରୀଲିଙ୍ଗ,( ବଂ ) ଦ୍ୱିତୀୟ, ଦୁଇସଂଖ୍ୟକ, (ସ୍ତ୍ରୀ) ଦ୍ୱୟୀ ।

**ଦ୍ୱୟବାଦୀ**—ପୁଂ. ବଂ. (ଦ୍ୱୟ+ବାଦିନ୍) ଅସରଳ, ଦୋମୁହାଁ, ଦୋହଲପାଣି,(ବ) ଦ୍ୱୟବାଦିତା, (ସ୍ତ୍ରୀ) ଦ୍ୱୟବାଦିନୀ ।

**ଦ୍ୱୟସ**—ବି. ବ. ପାଣିନ୍ୟୁକ୍ତ ପ୍ରତ୍ୟୟ ବିଶେଷ ।

**ଦ୍ୱୟାଗ୍ନି**—ପୁଂ.ବ.ବୃକ୍ଷ ବିଶେଷ,ବାଂଚିତା

**ଦ୍ୱୟାତିଗ**—ପୁଂ. ବଂ, (ଦ୍ୱୟ+ଅତି+ଗମ୍+କ.ଅ) ରଜ ଓ ତମଗୁଣକୁ ଯେ ଅତିକ୍ରମ କରିଅଛି,ସାଧୁ,(ସ୍ତ୍ରୀ)ଦ୍ୱୟାତିଗା

**ଦ୍ୱୟାତ୍ମକ**—ବଂ. ( ଦ୍ୱୟ+ଆତ୍ମନ୍+କ ) ଦୁଇ ବିରୁଦ୍ଧ ଗୁଣଯୁକ୍ତ,(ସ୍ତ୍ରୀ)ଦ୍ୱୟାତ୍ମିକା ।

**ଦ୍ୱୟାଶ୍ରିତ**—ବ.(ବ୍ୟାକରଣ) କ୍ଲୀବଲିଙ୍ଗ ।

**ଦ୍ୱୟୀ**—ବ ଓ ବଂ. ଦ୍ୱୟ ଦେଖ ।

**ଦ୍ୱୟୁ**—ପୁଂ. ବ.(ଦ୍ୱି+ଯୁ+ଉ)ପ୍ରତ୍ୟକ୍ଷେ ହିତବାଦୀ ଓ ପରୋକ୍ଷେ ଅପ୍ରିୟବାଦୀ ଶତ୍ରୁ ।

**ଦ୍ୱାଃ**—ସ୍ତ୍ରୀ. ବ. ( ଦ୍ୱୃ+ଣିଚ୍+ଅଚ୍ ) ଦ୍ୱାର, ପଥ, ପ୍ରବେଶପଥ, ଉପାୟ ।

**ଦ୍ୱାଃସ୍ଥ**—ପୁଂ. ବଂ. ( ଦ୍ୱାଃ+ସ୍ଥା+ଅ ) ଦ୍ୱାରସ୍ଥ, ବ. (ଦ୍ୱାର୍+ସ୍ଥା+ଆ+କ.ତ) ଦ୍ୱାରପାଳ, ଦ୍ୱାରୀ, (ସ୍ତ୍ରୀ) ଦ୍ୱାଃସ୍ଥା, ଦ୍ୱାଃସ୍ଥିତା ।

**ଦ୍ୱାଃସ୍ଥିତ**—ବି. ବଂ. ଦ୍ୱାରପାଳ ।

**ଦ୍ୱାଃସ୍ଥିତଦର୍ଶକ**—ବି. ବଂ. ଦ୍ୱାରପାଳ ।

**ଦ୍ୱାଃସ୍ଥିତଦର୍ଶିନ୍**—ବି. ବଂ. ( ଦ୍ୱାଃସ୍ଥିତ+ଦୃଶ୍+ଇନ୍) ଦ୍ୱାରପାଳ ।

**ଦ୍ୱାଚତ୍ୱାରିଂଶ**—ବି. ବଂ.(ଦ୍ୱାଚତ୍ୱାରିଂଶତ୍+ଅ) ବୟାଳିଶ ସଂଖ୍ୟାର ପୂରକ,(ସ୍ତ୍ରୀ) ଦ୍ୱାଚତ୍ୱାରିଂଶୀ ।

ଦ୍ୱାଚତ୍ୱାରିଂଶତ୍—ବି. ବି. ବିଂ. (ଦ୍ୱି+ଚତ୍ୱାରିଂଶତ୍—(ମଧ୍ୟ-କ.ଧା) ୪୨ସଂଖ୍ୟା, ବୟାଳିଶ ସଂଖ୍ୟା ।

ଦ୍ୱାଚତ୍ୱାରିଂଶତ୍ତମ—ବି. ବିଂ. (ଦ୍ୱାଚତ୍ୱାରିଂଶତ୍+ତମ) ୪୨ ର ପୂରକ, (ସ୍ତ୍ରୀ) ଦ୍ୱାଚତ୍ୱାରିଂଶତ୍ତମୀ ।

ଦ୍ୱାଜ—ପୁଂ. ବିଂ. ଦୁଇରୁ ଜାତ ।

ଦ୍ୱାତ୍ରିଂଶ—ବି.ବିଂ ୩୨ ସଂଖ୍ୟାର ପୂରକ, ଦ୍ୱାତ୍ରିଂଶସ୍ଥାନୀୟ ।

ଦ୍ୱାତ୍ରିଂଶତ୍—ବି. (ଦ୍ୱି+ତ୍ରିଂଶତ୍) ମଧ୍ୟ-କ.ଧା) ୩୨, (ବିଂ) ବତିଶସଂଖ୍ୟକ ।

ଦ୍ୱାତ୍ରିଂଶତି—ବି.ବତିଶର ସମାହାର ।

ଦ୍ୱାତ୍ରିଂଶତ୍ତମ—ବି. ବିଂ. (ଦ୍ୱାତ୍ରିଂଶତ୍+ତମ)୩୨ର ପୂରଣ, (ସ୍ତ୍ରୀ) ଦ୍ୱାତ୍ରିଂଶତ୍ତମୀ ।

ଦ୍ୱାତ୍ରିଂଶଦପରାଧ—ପୁଂ.ବି. (ଦ୍ୱାତ୍ରିଂଶତ୍+ଅପରାଧ-କ.ଧା)୩୨ପ୍ରକାର ଅପରାଧ ବିଶେଷ ।

ଦ୍ୱାତ୍ରିଂଶଲ୍ଲକ୍ଷଣ—ବି.(ଦ୍ୱାତ୍ରିଂଶତ୍+ଲକ୍ଷଣ ଦ୍ୱିଗୁ) ମହାପୁରୁଷମାନଙ୍କର ୩୨ ଲକ୍ଷଣ, (ପୁଂ. ବିଂ.—ବ.ବ୍ରୀ) ଯେଉଁ ମହାପୁରୁଷଙ୍କ ଦେହରେ ୩୨ଟି ଶୁଭ ଚିହ୍ନଥାଏ, (ସ୍ତ୍ରୀ) ଦ୍ୱାତ୍ରିଂଶଲ୍ଲକ୍ଷଣା ।

ଦ୍ୱାତ୍ରିଂଶଲ୍ଲକ୍ଷଣିକ—ପୁଂ. ବି. ମହାପୁରୁଷ ଲକ୍ଷଣଯୁକ୍ତ, (ସ୍ତ୍ରୀ) ଦ୍ୱାତ୍ରିଂଶଲ୍ଲକ୍ଷଣିକା ।

ଦ୍ୱାଦଶ—ବି. ବିଂ, (ଦ୍ୱି+ଦଶନ୍) ବାର ସଂଖ୍ୟକ,ବାରସ୍ଥାନୀୟ,(ବି)ଦଶରୁ ଦୁଇ ବେଶୀ ସଂଖ୍ୟାର, ବା, (ସ୍ତ୍ରୀ)ଦ୍ୱାଦଶୀ ।

ଦ୍ୱାଦଶ(ଦ୍ୱାଦଶନ୍)—ବି. ବି ଓ ବିଂ. (ମଧ୍ୟ-କ.ଧା) ବାର, (ପୁଂ)ମହାଦେବ ।

ଦ୍ୱାଦଶଅକ୍ଷର—ଗ୍ରା.ଚ. (ସଂ-ଦ୍ୱାଦଶାକ୍ଷର) "ଓଁ ନମୋଭଗବତେ ବାସୁଦେବାୟ" ଏହି ମନ୍ତ୍ର ।

ଦ୍ୱାଦଶକ—ବି. ବି. ଦ୍ୱାଦଶସଂଖ୍ୟାନ୍ୱିତ ପଣରୂପ ଦଣ୍ଡାଦି, ଦ୍ୱାଦଶସଂଖ୍ୟା ।

ଦ୍ୱାଦଶକର—ପୁଂ. ବି. (ଦ୍ୱାଦଶ+କର) ବ.ବ୍ରୀ; କାର୍ତ୍ତିକେୟ, ବୃହସ୍ପତି, ଶୂଳ ଯୋଗ, ହର୍ଷଣ ଯୋଗ, କୁମାରାନୁଚର-ଗଣଭେଦ, ଦ୍ୱାଦଶାଚିହ୍ନଯୁକ୍ତ ଜୀବ,(ସ୍ତ୍ରୀ) ଭୈରବୀ ବିଶେଷ,ଦ୍ୱାଦଶାଂଶୁ ଦେଖ ।

ଦ୍ୱାଦଶଗୋପାଳ—ବି.ବାରସୁତ ଦେଖ ।

ଦ୍ୱାଦଶତେଲି—ବଙ୍ଗଳାର ନିମ୍ନଶ୍ରେଣୀୟ ତେଲିବିଶେଷ ।

ଦ୍ୱାଦଶପତ୍ରକ—କ୍ଲୀ. ବି. ଯୋଗ ବିଶେଷ, ଦ୍ୱାଦଶାକ୍ଷର ମନ୍ତ୍ର ଭେଦ ।

ଦ୍ୱାଦଶପୁତ୍ର—କ୍ଲୀ.ବି. (କ.ଧା),ଔରସାଦି ଦ୍ୱାଦଶବିଧ ପୁତ୍ର, ଔରସ, କ୍ଷେତ୍ରଜ, ଦତ୍ତ, କୃତ୍ରିମ, ଗୂଢୋତ୍ପନ୍ନ, ଅପବିଦ୍ଧ, କାନୀନ, ସହୋଢ଼, କ୍ରୀତ, ପୌନର୍ଭବ, ସ୍ୱୟଂଦତ୍ତ, ଶୌଦ୍ର ।

ଦ୍ୱାଦଶପ୍ରସୂତ—ବି. ବି. ଦ୍ୱାଦଶ ପ୍ରସୂତ-ଯୁକ୍ତ ସୁଶ୍ରୁତୋକ୍ତ ବସ୍ତିଭେଦ ।

ଦ୍ୱାଦଶବର୍ଗୀ—ସ୍ତ୍ରୀ. ବି. ନୀଳକଣ୍ଠତାଜିକୋକ୍ତ ବର୍ଷକାଳେ ଗ୍ରହମାନଙ୍କର ବଳସାଧନ ଦ୍ୱାଦଶମିତ ବର୍ଗ ।

ଦ୍ୱାଦଶବନ—ବି.ଶ୍ରୀକୃଷ୍ଣଙ୍କର ବାରଗୋଟି ପ୍ରଧାନ ଲୀଳାବନ ।

ଦ୍ୱାଦଶବାର୍ଷିକ—ବି. ବିଂ. (ଦ୍ୱାଦଶ+ବର୍ଷ+ଇକ) ବାରବର୍ଷ ବୟସ୍କ, ବାରବର୍ଷ କାଳ ବ୍ୟାପି, ଦ୍ୱାଦଶବର୍ଷ ବ୍ୟାପି ଭୃତ, ଭୃତକର୍ମକର, ବ୍ରହ୍ମହତ୍ୟାନାଶକ ବ୍ରତ ବିଶେଷ ।

ଦ୍ୱାଦଶଭବ—ପୁଂ. ବି. ଜ୍ୟୋତିଷୋକ୍ତ ତନ୍ୱାଦି ଦ୍ୱାଦଶ ଭବ ।

ଦ୍ୱାଦଶମଦ୍ୟ—ବି. ୧୨ ପ୍ରକାର ମଦ୍ୟ, ପୁଲସ୍ତ୍ୟୋକ୍ତ ଦ୍ୱାଦଶବିଧ ମଦ୍ୟ ।

ଦ୍ୱାଦଶମଳ—ପୁଂ. ବି. ଦେହର ୧୨ ପ୍ରକାର ମଇଳା, ଅତ୍ରିସଂହିତୋକ୍ତ ମନୁଷ୍ୟର ୧୨ ପ୍ରକାର ମଳ ।

ଦ୍ୱାଦଶମାସ—ପୁଂ.ବି.ଚୈତ୍ରାଦି ୧୨ମାସ ।

ଦ୍ୱାଦଶମାସକର୍ମନ୍—କ୍ଲୀ. ବି. ବିଷ୍ଣୁସଂହିତୋକ୍ତ, ଦ୍ୱାଦଶମାସର ତିଥିଭେଦେ ଦାନକର୍ମ ଭେଦ ।

ଦ୍ୱାଦଶମାସିକ—କ୍ଲୀ. ବି. (ଦ୍ୱାଦଶମାସ+ଇକ) ମୃତ୍ୟୁପର ଦ୍ୱାଦଶମାସ କର୍ତ୍ତବ୍ୟ ଶ୍ରାଦ୍ଧ ।

ଦ୍ୱାଦଶମୂର୍ତ୍ତି—ପୁଂ.ବି.ବିବସ୍ୱାନ୍,ଅର୍ଯ୍ୟମା, ପୂଷା ପ୍ରଭୃତି-ବାର ନାମଧାରୀ ସୂର୍ଯ୍ୟ ।

ଦ୍ୱାଦଶଯାତ୍ରା—ସ୍ତ୍ରୀ. ବି. ବୈଶାଖାଦି ଦ୍ୱାଦଶମାସର ବାରଯାତ୍ରା ।

ଦ୍ୱାଦଶରାଜମଣ୍ଡଳ—କ୍ଲୀ. ବି. ଦ୍ୱାଦଶବିଧ ରାଜମାନଙ୍କର ମଣ୍ଡଳ ।

ଦ୍ୱାଦଶରାତ୍ର—ପୁଂ. ବି. ଦ୍ୱାଦଶଦିନ ସାଧ୍ୟ ଦ୍ୱାଦଶାହ ନାମକ ଅହୀନ ଯାଗଭେଦ ।

ଦ୍ୱାଦଶରାଶି—ପୁଂ. ବି. ଜ୍ୟୋତିଷୋକ୍ତ ମେଷାଦି ବାରଗୋଟି ରାଶି ।

ଦ୍ୱାଦଶଲୋଚନ—ପୁଂ. ବି. (ଦ୍ୱାଦଶ+ଲୋଚନ)ବ.ବ୍ରୀ, ଷଡ଼ାନନ, କାର୍ତ୍ତିକେୟ, (କ୍ଲୀ.ବି.କ.ଧା)ବାରଟି ଚକ୍ଷୁ ।

ଦ୍ୱାଦଶଶୁଦ୍ଧି—ସ୍ତ୍ରୀ. ବି. ତନ୍ତ୍ରସାରୋକ୍ତ ବୈଷ୍ଣବମାନଙ୍କର କାୟିକାଦି ଦ୍ୱାଦଶଶୁଦ୍ଧିଭେଦ ।

ଦ୍ୱାଦଶଶୋଧିତ—କ୍ଲୀ. ବିଂ. ବ୍ୟୟସ୍ଥାନେ ଗ୍ରହରାହିତ୍ୟ ଦ୍ୱାରା ଶୁଦ୍ଧି ଯୁକ୍ତ ।

ଦ୍ୱାଦଶସଂଗ୍ରାମ—ପୁଂ.ବି.ଦେବତାମାନଙ୍କ ସହିତ ଅସୁରମାନଙ୍କର ବାରପ୍ରକାର ଯୁଦ୍ଧ ।

ଦ୍ୱାଦଶସପ୍ତମୀବ୍ରତ—କ୍ଲୀ. ବି. ମାଘାଦି ପୌଷ ପର୍ଯ୍ୟନ୍ତ କୃତ ସପ୍ତମୀବ୍ରତ ।

ଦ୍ୱାଦଶସାହସ୍ର—ବି. ବିଂ. ଦ୍ୱାଦଶସହସ୍ର ସଂଖ୍ୟାବିଶିଷ୍ଟ ।

ଦ୍ୱାଦଶାଂଶୁ—ପୁଂ. ବି. (ଦ୍ୱାଦଶ+ଅଂଶୁ, ବ.ବ୍ରୀ) ବୃହସ୍ପତି ଗ୍ରହ ।

ଦ୍ୱାଦଶାକ୍ଷ—ପୁଂ. ବି. (ଦ୍ୱାଦଶ+ଅକ୍ଷି, ବ.ବ୍ରୀ) କାର୍ତ୍ତିକେୟ, (ଦ୍ୱାଦଶ+ଅକ୍ଷ) ବୁଦ୍ଧ, କୁମାରାନୁଚର ମାତୃଭେଦ ।

ଦ୍ୱାଦଶାକ୍ଷର—ପୁଂ. ବି. (ବ.ବ୍ରୀ) 'ଓଁ ନମୋ ଭଗବତେ ବାସୁଦେବାୟ' ଏହି ମନ୍ତ୍ର, (କ୍ଲୀ) ଦ୍ୱାଦଶାକ୍ଷର ପାଦକ ଜଗତୀ ଛନ୍ଦଃ ।

ଦ୍ୱାଦଶାଖ୍ୟ—ପୁଂ. ବି. (ଦ୍ୱାଦଶ+ଆ+ଖ୍ୟା+ଅ) ବୁଦ୍ଧ ।

ଦ୍ୱାଦଶାଙ୍ଗୀ—ସ୍ତ୍ରୀ. ବି. (ଦ୍ୱାଦଶ+ଅଙ୍ଗ+ଈ) ଜୈନାଭିମତ ଆଚାରାଙ୍ଗାଦି ୧୨ ଖଣ୍ଡିଶ ସ୍ତ୍ରୀୟ ଗ୍ରନ୍ଥ,(ପୁଂ) ଧୂପବିଶେଷ ।

ଦ୍ୱାଦଶାଙ୍ଗୁଳ—ପୁଂ. ବି. ଏକବିତସ୍ତି,

ବିତସ୍ତି ପରିମାଣଭେଦ, ୧୨ଆଙ୍ଗୁଳ ପରିମାଣ ।

**ଦ୍ୱାଦଶାତ୍ମା(ତ୍ମନ୍)**—ପୁଂ. ବି. ( ବ.ବ୍ରୀ. ) ସୂର୍ଯ୍ୟ, ଆଦିତ୍ୟ, ଅର୍କବୃକ୍ଷ ।

**ଦ୍ୱାଦଶାଦିତ୍ୟ**—ପୁଂ.ବି.ସୂର୍ଯ୍ୟଙ୍କର ଶାସ୍ତ୍ରବର୍ଣ୍ଣିତ ଦ୍ୱାଦଶବିଧ ରୂପ ବା ନାମ, କାଶୀସ୍ଥ ଦ୍ୱାଦଶ ସୂର୍ଯ୍ୟଭେଦ ।

**ଦ୍ୱାଦଶାଧ୍ୟାୟୀ**—ସ୍ତ୍ରୀ.ବି. (ଦ୍ୱାଦଶ+ଅଧ୍ୟାୟ +ଇନ୍) ଜୈମିନିଙ୍କ ମୀମାଂସା. ମନ୍ୱାଦିମନୁଙ୍କର ଦ୍ୱାଦଶାଧ୍ୟାୟ ।

**ଦ୍ୱାଦଶାନ୍ତିକ**—ତ୍ରି. ବିଂ. ଯେ ଅତିଶୟ କ୍ଲୁପ୍ତ ଭାବେ ଅଧ୍ୟୟନ କରେ,ଜାତ-ଦ୍ୱାଦଶୋପଶାଠକ ।

**ଦ୍ୱାଦଶାୟତନ**—କ୍ଳୀ. ବି. (ଦ୍ୱାଦଶବିଧ-ଆୟତନ) ଜୈନମତ ସିଦ୍ଧ ଦ୍ୱାଦଶ ପୂଜାସ୍ଥାନ, ମନୋବୁଦ୍ଧ୍ୟାଦି ।

**ଦ୍ୱାଦଶାୟୁଃ**—ପୁଂ.ବି. (ଦ୍ୱାଦଶ+ଆୟୁସ୍. ବ.ବ୍ରୀ) କୁକ୍କୁର ।

**ଦ୍ୱାଦଶାର**—କ୍ଳୀ.ବି. ଦ୍ୱାଦଶକୋଣ ରଥ ଚକ୍ରାଦି, ତନ୍ତ୍ରୋକ୍ତ ସୁଷୁମ୍ନା ନାଡ଼ୀର ମଧ୍ୟେ ହୃଦୟସ୍ଥିତ ଦ୍ୱାଦଶଦଳ ପଦ୍ମ ।

**ଦ୍ୱାଦଶାର୍ଚ୍ଚିଃ**—ବି. ( ଦ୍ୱାଦଶ+ଅର୍ଚ୍ଚିସ୍ ) (ବ.ବ୍ରୀ) ଦ୍ୱାଦଶାଂଶୁ ଦେଖ ।

**ଦ୍ୱାଦଶାଶନ**—କ୍ଳୀ.ବି. ସୁଶ୍ରୁତୋକ୍ତ ଅଧିକାଶ୍ରି ଭେଦେ ଦ୍ୱାଦଶବିଧ ଅଶନ-ଭେଦ ।

**ଦ୍ୱାଦଶାସ୍ତ୍ର**—ବି. (ଦ୍ୱାଦଶ+ଅସ୍ତ୍ର,ବ.ବ୍ରୀ) ବାରଗୋଟି ଭୁଜଥିବା କ୍ଷେତ୍ର ।

**ଦ୍ୱାଦଶାହ**—ପୁଂ.ବି. (ଦ୍ୱାଦଶ+ଅହନ୍) ବାରଦିନ ବ୍ୟାପୀ ସମୟ, ବାରଦିନେ ସମାପନୀୟ ଯଜ୍ଞବିଶେଷ, ଭୂତାଦିକର୍ମ, ଦ୍ୱାଦଶ ଦିନଧରି ଯେ ଜ୍ୱରାଦି ହୁଏ, ବାରଦିନ ଧରି ଯେ କର୍ମ କରାଯାଏ ।

**ଦ୍ୱାଦଶୀ**—ସ୍ତ୍ରୀ. ବି. (ଦ୍ୱାଦଶ+ଈ)ତିଥି-ବିଶେଷ, ପକ୍ଷର ଦ୍ୱାଦଶତିଥି, (ବିଂ) ଦ୍ୱାଦଶ ଦେଖ ।

**ଦ୍ୱାଦଶୀପାରଣା**—ସ. ବିଂ. (ଦ୍ୱାଦଶୀ+ପାରଣା, ମଧ୍ୟ—କ.ଧା) ଏକାଦଶୀ ଉପବାସ ବ୍ରତ କରିଥିବା ବ୍ୟକ୍ତିଙ୍କର ଦ୍ୱାଦଶୀଦିନ ପ୍ରାତଃ କାଳର ପ୍ରଥମ ଭୋଜନ ।

**ଦ୍ୱାନବତ**—ବିଂ. (ଦ୍ୱି+ନବତ+ଅ) ଦ୍ୱିନବତ ଦେଖ ।

**ଦ୍ୱାନବତି**—ବି ଓ ବିଂ. ( ଦ୍ୱି+ନବତି ) ବୟାନବେ, ନବେରୁ ଦୁଇ ଅଧିକ ସଂଖ୍ୟା । [ ୫୨ସ୍ଥାନୀୟ ।

**ଦ୍ୱାପଞ୍ଚାଶ**—ବିଂ. (ଦ୍ୱି+ପଞ୍ଚାଶତ୍+ଅ)

**ଦ୍ୱାପଞ୍ଚାଶତ୍**—ବି ଓ ବିଂ.(ଦ୍ୱି+ପଞ୍ଚାଶତ୍) ପଚାଶ ଅପେକ୍ଷା ଦୁଇ ଅଧିକ ସଂଖ୍ୟା ।

**ଦ୍ୱାପର**—ପୁଂ. ବି. (ବ.ବ୍ରୀ) ତୃତୀୟଯୁଗ, ସନ୍ଦେହ. ପଶାକାଠିର ଯେଉଁ ପାଖରେ ଦୁଇଟି ବିନ୍ଦୁ ଚିହ୍ନିତ ହୋଇଥାଏ, ଅନିଶ୍ଚୟ, ସନ୍ଦେହ, ସଂଶୟ ।

**ଦ୍ୱାବିଂଶ**—ତ୍ରି. ବିଂ. ( ଦ୍ୱାବିଂଶତି+ଅ ) ୨୨ସଂଖ୍ୟାର ପୂରଣ. ବାଇଶି ସ୍ଥାନୀୟ ।

**ଦ୍ୱାବିଂଶତି**—ସ୍ତ୍ରୀ. ବି. ( ଦ୍ୱି+ବିଂଶତି ) କୋଡ଼ିଏ ଅପେକ୍ଷା ଦୁଇ ଅଧିକ ସଂଖ୍ୟା, (ବିଂ) ୨୨ ସଂଖ୍ୟକ ।

**ଦ୍ୱାବିଂଶତିତମ**—ତ୍ରି.ବିଂ. (ଦ୍ୱାବିଂଶତି+ତମ) ୨୨ର ପୂରଣ, (ସ୍ତ୍ରୀ) ଦ୍ୱାବିଂଶତି-ତମୀ ।

**ଦ୍ୱାବିଂଶଧା**—ଅବ୍ୟ. (ଦ୍ୱାବିଂଶତି+ବିଧାର୍ଥେ ଧା) ଦ୍ୱାବିଂଶତି ପ୍ରକାର ।

**ଦ୍ୱାମୁଷ୍ୟାୟଣ**—ପୁଂ.ବି.ଦୁଇଜଣଙ୍କର ପୁତ୍ର, ଉଦ୍ଦାଳକ, ଗୌତମ ମୁନି ।

**ଦ୍ୱାଃ**—( ଦ୍ୱାର୍+କ୍ୱିପ୍ ) ଗୃହ ନିର୍ଗମନ ସ୍ଥାନ, ଉପାୟ, ଦ୍ୱାଃ, ଦେଖ ।

**ଦ୍ୱାର**—କ୍ଳୀ. ବି. ( ଦ୍ୱୃ+ଣିଚ୍+ଣ.ଅ ) ଦୁଆର, ଦରଜା, କବାଟ, ଗମନାଗମନ ବାଟ, ଉପାୟ, ମେଳ ଅଂଶ, କର୍ମସାଧନ ଉପାୟ,ଶରୀରର ନବଛିଦ୍ର, (ଗ୍ରା.ବି.)ମୂଳକାରଣ ।

**ଦ୍ୱାରକ**—କ୍ଳୀ.ବି. ( ଦ୍ୱାର+କୈ+ଅ ) ଦ୍ୱାରକାପୁରୀ ।

**ଦ୍ୱାରକଣ୍ଟକ**—ପୁଂ.କ୍ଳୀ. (ଦ୍ୱାର+କଣ୍ଟା+ଅକ) କବାଟ, କଳମାଟି(ଣୀ) ।

**ଦ୍ୱାରକପାଟ**—ବି. ( ଦ୍ୱାର+କପାଟ ) (୬ତତ୍) କବାଟ ।

**ଦ୍ୱାରକା**—ସ୍ତ୍ରୀ,ବି. (ଦ୍ୱାର+କ+ସ୍ତ୍ରୀ.ଆ) ଶ୍ରୀକୃଷ୍ଣଙ୍କର ରାଜଧାନୀ,ଗୁଜରାଟର ଅନ୍ତର୍ଗତ କାଠିଆବାଡ଼ର ମଧ୍ୟରେ ଥିବା ଗୋଟିଏ ବନ୍ଦର ଓ ହିନ୍ଦୁତୀର୍ଥ ।

**ଦ୍ୱାରକାନାଥ**—ପୁଂ.ବି.(ଦ୍ୱାରକା+ନାଥ, ୬ତତ୍) ଶ୍ରୀକୃଷ୍ଣ ।

**ଦ୍ୱାରକାନାଥ ବିଦ୍ୟାଭୂଷଣ**—ବିଖ୍ୟାତ "ସୋମପ୍ରକାଶ" ସମ୍ବାଦପତ୍ର ସମ୍ପାଦକ ଓ ବିଧିଗ୍ରନ୍ଥ ରଚୟିତା ।

**ଦ୍ୱାରକାପତି**—ପୁଂ.ବି. (୬ତତ୍)ଶ୍ରୀକୃଷ୍ଣ ।

**ଦ୍ୱାରକେଶ**—ପୁଂ.ବି. (୬ତତ୍) ଶ୍ରୀକୃଷ୍ଣ ।

**ଦ୍ୱାରଗୋପ**—ପୁଂ. ବି. (ଦ୍ୱାର+ଗୁପ୍+କ.ଅ) ଦ୍ୱାରପାଳ ଦେଖ ।

**ଦ୍ୱାରଦାରୁ**—ପୁଂ.ବି. (ଦ୍ୱାର+ଦା+ରୁ) ଭୂମିସହ ବୃକ୍ଷ ।

**ଦ୍ୱାରଦାରୁ**—ବି. ( ବୈଦ୍ୟକ ) ଭୂମିସହ ନାମକ ଔଷଧଦ୍ରବ୍ୟବିଶେଷ, ସାଗୁଆନ୍ କାଠ ।

**ଦ୍ୱାରଦେଶ**—ପୁଂ.ବି. (କ.ଧା) ଦରଜା, ଦୁଆର, (୬ତତ୍) ଦ୍ୱାରର ନିକଟବର୍ତ୍ତୀ ସ୍ଥଳ । [ କର୍ମ ।

**ଦ୍ୱାରନିରୂପଣ**—ଗ୍ରା. ବି. ଦ୍ୱାର ରକ୍ଷକର

**ଦ୍ୱାରପ**—ପୁଂ. ବି. ( ଦ୍ୱାର+ପା+ଅ ) ଦ୍ୱାରରକ୍ଷକ, ବିଷ୍ଣୁ ।

**ଦ୍ୱାରପଟ୍ଟ**—ବି. (ଦ୍ୱାର+ପଟ୍ଟ, ୬ତତ୍) କବାଟର ପଟା ବା ଫାଳ, ଦ୍ୱାରର ପରଦା ।

**ଦ୍ୱାରପତି**—ପୁଂ.ବି. (୬ତତ୍)ଦ୍ୱାରପାଳ ।

**ଦ୍ୱାରପାଳ**—ପୁଂ. ବି. (ଦ୍ୱାର+ପାଳି+କ.ଅ) ଯେ ଦ୍ୱାର ଜଗେ, ଦ୍ୱାର-ରକ୍ଷକ, ଦ୍ୱାରୀ, ଦେବାଳୟର ଦ୍ୱାରସ୍ଥ ଦେବମୂର୍ତ୍ତି । [ ଦ୍ୱାରପାଳ ।

**ଦ୍ୱାରପାଳକ**—ପୁଂ.ବି. (ଦ୍ୱାରପାଳ+କ)

**ଦ୍ୱାରପାଳପୂଜା**—ବି. ଦେବତାମାନଙ୍କ ପୂଜାପୂର୍ବରୁ ମନ୍ଦିରର ଦ୍ୱାରଦେଶରେ ଅବସ୍ଥିତ ଦ୍ୱାରପାଳ ବିଗ୍ରହମାନଙ୍କର ପୂଜା ।

**ଦ୍ୱାରପାଳିକ**—ପୁଂ. ବି. (ଦ୍ୱାର+ପାଳି+ଅକ) ଦ୍ୱାରପାଳ ।

ଦ୍ୱାରପିଣ୍ଡୀ—ସ୍ତ୍ରୀ. ବି. ( ଦ୍ୱାର+ପିଣ୍ଡୀ, ୬ତତ୍) ଚଉକାଠର ଊର୍ଦ୍ଧ୍ୱସ୍ଥ ଫଳକ, ଏରୁଣ୍ଡିବନ୍ଧ ।

ଦ୍ୱାରପିଧାନ—ବି. ( ଦ୍ୱାର+ପିଧାନ, ୬ତତ୍) କବାଟର କଳଣୀ, ଅର୍ଗଳ ।

ଦ୍ୱାରବତୀ—ସ୍ତ୍ରୀ. ବି. ( ଦ୍ୱାର+ବତ୍+ସ୍ତ୍ରୀ.ଈ) ଦ୍ୱାରକା ଦେଖ ।

ଦ୍ୱାରବନ୍ଧ—ଗ୍ରା.ବି.ଚଉକାଠ,ଏରୁଣ୍ଡୀବନ୍ଧ

ଦ୍ୱାରବଳିଭୁକ୍—ପୁଂ.ବି. (ଦ୍ୱାର+ବଳି+ଭୁଜ୍+କ.କ୍ୱିପ୍) କୁଆ, କାକ, ଘରଚଟିଆ ଚଢ଼େଇ, ଚଟକ, ବକ ।

ଦ୍ୱାରବାନ୍—ପୁଂ. ବି. ( ଦ୍ୱାର+ବତ୍ ) ଦ୍ୱାରପାଳ ଦେଖ ।

ଦ୍ୱାରବାହୁ—ବି. (ଦ୍ୱାର+ବାହୁ,୬ତତ୍) ଚଉକାଠ ।

ଦ୍ୱାରବୃତ୍ତ—ବି. ଗୋଲମରଚ ।

ଦ୍ୱାରମୋଚନ—ବି. (ଦ୍ୱାର+ମୋଚନ) ୬ତତ୍; ଦ୍ୱାରୋଦ୍ଘାଟନ ଦେଖ ।

ଦ୍ୱାରଯନ୍ତ୍ର—କ୍ଲୀ.ବି.(ମଧ୍ୟ-କ.ଧା) କଳଣୀ, ତାଲା, ତାଲଗୃବ ।

ଦ୍ୱାରରକ୍ଷକ(ରକ୍ଷୀ)—ପୁଂ. ବି. (ଦ୍ୱାର+ରକ୍ଷକ) ୬ତତ୍; ଦ୍ୱାରପାଳ ଦେଖ ।

ଦ୍ୱାରରୋଧ—ପୁଂ. ବି. (୬ତତ୍) ଦରଜା ବନ୍ଦ କରିବା ।

ଦ୍ୱାରଶାଖା—ସ୍ତ୍ରୀ. ବି. ( ଦ୍ୱାର+ଶାଖା ) ୬ତତ୍; କବାଟର ପଟା, ଦ୍ୱାରର ଅବୟବ ।

ଦ୍ୱାରସ୍ତମ୍ଭ—ପୁଂ.ବି(୬ତତ୍)ଦ୍ୱାରଙ୍ଗସ୍ତମ୍ଭ, ଦ୍ୱାରର ଅଙ୍ଗୀଭୂତ ସ୍ତମ୍ଭ ।

ଦ୍ୱାରସ୍ଥ—ପୁଂ.ବିଂ.(ଦ୍ୱାର+ସ୍ଥା+କ.ଅ) ଯେ ଦ୍ୱାରଦେଶରେ ଅବସ୍ଥାନ କରେ, ଭିକ୍ଷା ନିମନ୍ତେ ଦ୍ୱାରରେ ଉପସ୍ଥିତ, ( ଲ.ଅର୍ଥ ) ଶରଣାଗତ, (ବି) ଦ୍ୱାରୀ, ଦ୍ୱାରପାଳ, (ସ୍ତ୍ରୀ) ଦ୍ୱାରସ୍ଥା ।

ଦ୍ୱାରା—ଅବ୍ୟ. କର୍ତ୍ତୃକ, ସାହାଯ୍ୟରେ, ଜରିଆରେ, ହେତୁରୁ, କାରଣରୁ, ସାଧନେ, କରଣେ, କାରଣେ, ମାରଫତ୍, ଆନୁକୂଲ୍ୟେ ।

ଦ୍ୱାରାଧିପ—ପୁଂ. ବି. ଦ୍ୱାରାଧ୍ୟକ୍ଷ ।

ଦ୍ୱାରାଧ୍ୟକ୍ଷ—ପୁଂ. ବି. ( ଦ୍ୱାର+ଅଧ୍ୟକ୍ଷ ) ୬ତତ୍, ଦ୍ୱାରପାଳ ଦେଖ ।

ଦ୍ୱାରାପୁରୀ—ଗ୍ରା. ବି. ଦ୍ୱାରକା ଦେଖ ।

ଦ୍ୱାରାବତୀ—ସ୍ତ୍ରୀ. ବି. ଦ୍ୱାରକା ଦେଖ ।

ଦ୍ୱାରିକ—ପୁଂ.ବି. (ଦ୍ୱାର+ଇକ) ଦ୍ୱାରପାଳ ଦେଖ ।

ଦ୍ୱାରିକା(ଇତ୍ୟାଦି)—ସ୍ତ୍ରୀ. ବି. (ଦ୍ୱାରକ+ଆ)ଦ୍ୱାରକା ଇତ୍ୟାଦି, ଦ୍ୱାରକା ନଗରୀ ।

ଦ୍ୱାରିକାଛପା—ଗ୍ରା.ବି.ଶ୍ରୀକୃଷ୍ଣଙ୍କର ନାମାଙ୍କିତ ପିତ୍ତଳ ବା ତମ୍ବାର ମୋହର ।

ଦ୍ୱାରୀ—ପୁଂ. ବି. (ଦ୍ୱାର+ଇନ୍) ଦୁଆର ଜଗୁଆଳ, ଦ୍ୱାରପାଳ, ରାଜାଙ୍କ ଅନ୍ତଃପୁରର ଜଗୁଆଳ, ( ଗ୍ରା.ବି ) ଆଧୁନିକ ରାଜାମାନଙ୍କରେ ଚପରାସି, ( ସ୍ତ୍ରୀ ) ଦ୍ୱାରିଣୀ, (ବିଂ) ଦ୍ୱାରେସ୍ଥିତ ।

ଦ୍ୱାରେ—ଗ୍ରା.ଅବ୍ୟ. ଦ୍ୱାରେ,ଦ୍ୱାରବାଟେ, ଦ୍ୱାରା,ଦ୍ୱାର ଦେଶରେ,ଦ୍ୱାର ନିକଟରେ

ଦ୍ୱାରେଦ୍ୱାରେ—ଗ୍ରା.କ୍ରି.ବିଂ. (ସ-ଦ୍ୱାର+ଦ୍ୱାର) ଅପର ଦ୍ୱାର, ପ୍ରତି ଦ୍ୱାରରେ, ଏକ ଦ୍ୱାରରୁ ଅନ୍ୟ ଦ୍ୱାରକୁ ।

ଦ୍ୱାରୋଦ୍ଘାଟନ—ବି. (ଦ୍ୱାର+ଉଦ୍ଘାଟନ) ୬ତତ୍; କବାଟ ଫିଟାଇବା ।

ଦ୍ୱାର୍ଥବୋଧକ—ଗ୍ରା.ପୁଂ. ବିଂ. (ସ-ଦ୍ୱାର୍ଥ-ବୋଧକ)ଦୁଇଟି ଭିନ୍ନ ଅର୍ଥବୋଧକ ।

ଦ୍ୱାର୍ଯ୍ୟ—ବି. ବିଂ. ଦ୍ୱାରେ ଯାହା ହୁଏ, ଦ୍ୱାରଭବ ।

ଦ୍ୱାର୍ବତୀ—ସ୍ତ୍ରୀ. ବି. ଦ୍ୱାରବତୀ ।

ଦ୍ୱାଷଷ୍ଟ—ବି. ବିଂ. (ଦ୍ୱି+ଷଷ୍ଟି+ପୂରଣାର୍ଥ.ଅ)ବାଆଷଠିର ପୂରକ.ବାଆଷଠି ସ୍ଥାନୀୟ, (ସ୍ତ୍ରୀ) ଦ୍ୱାଷଷ୍ଟୀ ।

ଦ୍ୱାଷଷ୍ଟି—ସ୍ତ୍ରୀ. ବି ଓ ବିଂ. (ମଧ୍ୟ-କ.ଧା) ଦ୍ୱିଅଧିକ ଷଷ୍ଟି, ବାଆଷଠି ସଂଖ୍ୟା ।

ଦ୍ୱାଷଷ୍ଟିତମ—ବି.ବିଂ. (ଦ୍ୱାଷଷ୍ଟି+ତମ) ୬୨ ସଂଖ୍ୟାର ପୂରଣ,(ସ୍ତ୍ରୀ)ଦ୍ୱାଷଷ୍ଟିତମୀ

ଦ୍ୱାସପ୍ତତ—ବି.ବିଂ. ଦ୍ୱିସପ୍ତତର ପୂରକ, ବାସ୍ତରି ସଂଖ୍ୟାର ପୂରକ ।

ଦ୍ୱାସପ୍ତତି—ବି ଓ ବିଂ. (ଦ୍ୱି+ସପ୍ତତି) ମଧ୍ୟ-କ.ଧା; ୭୨, ବାସ୍ତରି ।

ଦ୍ୱାସପ୍ତତିତମ—ବି. ବିଂ. ୭୨ ସଂଖ୍ୟାର ପୂରକ, (ସ୍ତ୍ରୀ) ଦ୍ୱାସପ୍ତତିତମୀ ।

ଦ୍ୱାସ୍ଥ—ପୁଂ ବି. ଓ ବିଂ. ଦ୍ୱାଃସ୍ଥ ଦେଖ ।

ଦ୍ୱାସ୍ଥିତ—ପୁଂ. ବି. ଦ୍ୱାରପାଳ ।

ଦ୍ୱାସ୍ଥିତଦର୍ଶକ—ପୁଂ. ବି. ଦୌବାରିକ, ଦ୍ୱାରପାଳ ।

ଦ୍ୱି—ବି. ବିଂ. ଦୁଇ, ଦୁଇସଂଖ୍ୟକ, ଉଭୟ, ଦୁହେଁ, ଦୁଇଥର,ଦୁଇପ୍ରକାରର

ଦ୍ୱିଃ—ଅବ୍ୟ. ଦୁଇବାର, ଦୁଇଥର ।

ଦ୍ୱିକ—ପୁଂ.ବି.(ଦ୍ୱି+କ) ବ.ବ୍ରୀ; କାକ, କୁଆ, କୋକ, ଚକ୍ରବାକ, (ବିଂ)ଦୁଇପଟିଆ, ଦୁଇସଂଖ୍ୟକ, ଦ୍ୱିତୀୟ, ଦ୍ୱିତୀୟବାର ଘଟିବା, ଶତକରା ଦୁଇ ହିସାବରେ, ଦୁଇ ସଂଖ୍ୟା ଦ୍ୱାରା ବର୍ଦ୍ଧିତ, (କ୍ଲୀ.ବି) ଦ୍ୱିସଂଖ୍ୟା, (ସ୍ତ୍ରୀ) ଦ୍ୱିକା ।

ଦ୍ୱିକକାର—ପୁଂ. ବି. ବିଂ. ଦ୍ୱିକ ଦେଖ, (ସ୍ତ୍ରୀ) ଦ୍ୱିକକାରୀ ।

ଦ୍ୱିକକୁଦ୍—ପୁଂ.ବି. (ଦ୍ୱି+କକୁଦ୍)ବ.ବ୍ରୀ, (ଦୁଇଟି ଚୂଳଯୁକ୍ତ) ଉଷ୍ଟ୍ର ।

ଦ୍ୱିକର—ପୁଂ. ବି. ( ଦ୍ୱି+କର,ଦ୍ୱିଗୁ ) କ.ଧା; ଦୁଇହାତ, କରଦ୍ୱୟ, (ବିଂ. ବ.ବ୍ରୀ) ଦୁଇ ହସ୍ତବିଶିଷ୍ଟ, ( ଗ୍ରା.ବି ) ମନୁଷ୍ୟ, (ସ୍ତ୍ରୀ) ଦ୍ୱିକରା ।

ଦ୍ୱିକରୀ—ବିଂ. ( ଦ୍ୱି+କର+ଇନ୍ ) ଦ୍ୱିହସ୍ତବିଶିଷ୍ଟ (ଜୀବ) ।

ଦ୍ୱିକର୍ମକ—ବି.ବିଂ. ଯେଉଁ କ୍ରିୟାର ଦୁଇଟି କର୍ମଥାଏ (ବ.ବ୍ରୀ) ।

ଦ୍ୱିକର୍ଷାପଣ—ବି.ବିଂ. ଯାହା ଦୁଇ କାହାଣ କଉଡ଼ି ଦେଇ କିଣା ହୋଇଅଛି ।

ଦ୍ୱିକର୍ଷାପଣିକ—ବି. ବିଂ. ଦୁଇକାହାଣ ଦ୍ୱାରା କ୍ରୀତ ।

ଦ୍ୱିକୌଡ଼ବକ—ବି.ବିଂ.ଦ୍ୱିକୁଡ଼ବ ପ୍ରୟୋଜନକ, ଦ୍ୱିକୁଡ଼ବ ଦ୍ୱାରା କ୍ରୀତ ।

ଦ୍ୱିଖଣ୍ଡିତ—ବି. ବିଂ. (୨ସ୍ୱାତତ୍) ଦୁଇଖଣ୍ଡେ ବିଭକ୍ତ, ଦୁଇ ଭାଗରେ କଟାହୋଇଥିବା ।

ଦ୍ୱିଗର୍ଭ—ବିଂ. ଯେଉଁ ଜନ୍ତୁର ଦୁଇଟି ଗର୍ଭ ଥାଏ, (ସ୍ତ୍ରୀ) ଦ୍ୱିଗର୍ଭା ।

ଦ୍ୱିଗୁ—ବି. ବିଂ. ( ଦ୍ୱି+ଗୋ, ବ.ବ୍ରୀ) ଯେଉଁ ବ୍ୟକ୍ତିର ଦୁଇଟି ଗୋରୁ ଅଛି,

ଦୁଇଟି ଗୋରୁ ବଳଦ ମଧ୍ୟରେ ଯାହାର ବଦଳା ଯାଇଅଛି, (ବ) ସମାସବିଶେଷ

ଦ୍ୱିଗୁଣ—ବି. ବି°. (ବ.ବ୍ରୀ) ଦୁଇଗୁଣ, ଡବଲ୍, (ସ୍ତ୍ରୀ) ଦ୍ୱିଗୁଣା ।

ଦ୍ୱିଗୁଣାକୃତ—ବି.ବି°. ବାରମ୍ବାର କର୍ଷିତ କ୍ଷେତ୍ର, ଦୁଇଥର ଚଷା ହୋଇଥିବା ଜମି ।

ଦ୍ୱିଗୁଣାକର୍ଣ୍ଣ—ବି. ବି°. ଦ୍ୱିଗୁଣ କର୍ଣ୍ଣରୂପ ଲକ୍ଷଣାନ୍ୱିତ ।

ଦ୍ୱିଗୁଣିତ—ବି.ବି°.ଦୁଇ ଦ୍ୱାରା ଗୁଣିତ, (ତୃତୀ.ତତ୍), (ସ୍ତ୍ରୀ) ଦ୍ୱିଗୁଣିତା ।

ଦ୍ୱିଗୁଣୀକୃତ—ବି. ବି°. (ଦ୍ୱିଗୁଣ+ଚ୍ୱି +କୃତ) ଯାହାକୁ ଦ୍ୱିଗୁଣ କରାହୋଇଅଛି, (ସ୍ତ୍ରୀ) ଦ୍ୱିଗୁଣୀକୃତା ।

ଦ୍ୱିଚରଣ—ବି. ବି°. ଦ୍ୱିପାଦ ମନୁଷ୍ୟାଦି, ରାଶିଭେଦ, (କ୍ଲୀ) ପଦଦ୍ୱୟ ।

ଦ୍ୱିଚନ୍ଦ୍ର—ପୁ°. ବି. ଦାନବବିଶେଷ, (ବି. ବି°) ଦୁଇଚନ୍ଦ୍ରଯୁକ୍ତ ।

ଦ୍ୱିଚତ୍ୱାରିଂଶ—ବି.ବି°. (ଦ୍ୱିଚତ୍ୱାରିଂଶତ୍ +ପୂରଣାର୍ଥ.ଅ) ବୟାଳିଶି ସ୍ଥାନୀୟ ।

ଦ୍ୱିଚତ୍ୱାରିଂଶତ୍—ବି ଓ ବି°. (ମଧ୍ୟ-କ.ଧା ଚାଳିଶି ଅପେକ୍ଷା ୨ ଅଧିକ, ବୟାଳିଶି, ୪୨ ସଂଖ୍ୟା ।

ଦ୍ୱିଚାରିଣୀ—ସ୍ତ୍ରୀ. ବି°. (ଦ୍ୱି+ଚର୍+କ. ଇନ୍+ସ୍ତ୍ରୀ. ଈ) ଯେଉଁ ବେଶ୍ୟାର ଦୁଇଜଣ ପ୍ରଣୟୀ ଥାନ୍ତି ।

ଦ୍ୱିଜ—ପୁ°. ବି. (ଦ୍ୱି+ଜନ୍+କ.ଅ) ଦ୍ୱିଜାତି, ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ, ହିନ୍ଦୁମାନଙ୍କର ପ୍ରଥମ ତିନି ଉଚ୍ଚବର୍ଣ୍ଣ, ବ୍ରାହ୍ମଣ, ଅଣ୍ଡଜ ଜୀବ, ଭୂମ୍ୟୁତ୍ଥ ବୃକ୍ଷ, ଦନ୍ତ, (ବି°) ଯେ ଦୁଇଥର ଜନ୍ମଗ୍ରହଣ କରେ, (ସ୍ତ୍ରୀ) ଦ୍ୱିଜା ।

ଦ୍ୱିଜକୁତ୍ସିତ—ପୁ°.ବି. ଶ୍ଳେଷ୍ମାନ୍ତକ ବୃକ୍ଷ ।

ଦ୍ୱିଜତ୍ୱ—କ୍ଲୀ.ବି.ବ୍ରାହ୍ମଣତ୍ୱ. ଦ୍ୱିଜର ଭାବ ।

ଦ୍ୱିଜଦାସ—ପୁ°. ବି. (ଦ୍ୱିଜ+ଦାସ) ୬ତତ୍; ଶୂଦ୍ର, (ବି°) ବ୍ରାହ୍ମଣାଦି ଉଚ୍ଚବର୍ଣ୍ଣଙ୍କର ସେବକ, (ସ୍ତ୍ରୀ) ଦ୍ୱିଜଦାସୀ ।

ଦ୍ୱିଜନ୍ମା—ପୁ°. ବି. (ଦ୍ୱି+ଜନ୍ମନ୍) ବ.ବ୍ରୀ; ଦ୍ୱିଜ ଦେଖ, (ବି°) ଦୁଇଟି ବିଭିନ୍ନ ପ୍ରକୃତିବିଶିଷ୍ଟ, ୨ ଥର ଜନ୍ମ ହୋଇଥିବା ।

ଦ୍ୱିଜପତି—ପୁ°.ବି. (ଦ୍ୱିଜ+ପତି)୬ତତ୍; ଶ୍ରେଷ୍ଠବ୍ରାହ୍ମଣ, ଚନ୍ଦ୍ର, ଗରୁଡ଼, କର୍ପୂର, ସର୍ପରାଜ, ଅନନ୍ତ, ବାସୁକୀ ।

ଦ୍ୱିଜପ୍ରପା—ସ୍ତ୍ରୀ. ବି. (ଦ୍ୱିଜ+ପ୍ର+ପା +କ.କ୍ୱିପ୍) ଗଛର ମଳା, ଆଳବାଳ, କୂପନିକଟସ୍ଥ କୁଣ୍ଡ ।

ଦ୍ୱିଜପ୍ରିୟା—ସ୍ତ୍ରୀ. ବି. (ବୈଦିକ) ସୋମ ଲତା, (୬ତତ୍—ବି°) ଦ୍ୱିଜଙ୍କର ପ୍ରିୟ ।

ଦ୍ୱିଜବନ୍ଧୁ—ପୁ°. ବି. ନିକୃଷ୍ଟ ବ୍ରାହ୍ମଣ, ନୈବିଜ୍ଞ, ଭଟ୍ଟଆଦି, ଦ୍ୱିଜଲିଙ୍ଗୀ ଦେଖ ।

ଦ୍ୱିଜବର—ପୁ°. ବି. (୭ତତ୍) ଦ୍ୱିଜସତ୍ତମ ଦେଖ ।

ଦ୍ୱିଜବାହନ—ପୁ°. ବି. (ଦ୍ୱିଜ+ବାହନ) ବ.ବ୍ରୀ; ବିଷ୍ଣୁ ।

ଦ୍ୱିଜବ୍ରୁବ—ପୁ°.ବି. (ଦ୍ୱି+ବ୍ରୂ+କ.ଅ) ଯେ ଆପଣାଙ୍କୁ ଦ୍ୱିଜବୋଲି ପରିଚୟ ଦିଏ, ମାତ୍ର ବ୍ରାହ୍ମଣ ନୁହେଁ, କପଟଦ୍ୱିଜ, କପଟବ୍ରାହ୍ମଣ ।

ଦ୍ୱିଜମୁଖ୍ୟ—ପୁ°. ବି. ଦ୍ୱିଜଶ୍ରେଷ୍ଠ ।

ଦ୍ୱିଜରାଜ—ପୁ°. ବି. (ଦ୍ୱିଜ+ରାଜନ୍) ୬ତତ୍; ଦ୍ୱିଜପତି ଦେଖ ।

ଦ୍ୱିଜର୍ଷଭ—ପୁ°. ବି. (କ.ଧା) ଦ୍ୱିଜଶ୍ରେଷ୍ଠ ।

ଦ୍ୱିଜଲିଙ୍ଗୀ—ପୁ°. ବି. (ଦ୍ୱିଜ+ଲିଙ୍ଗ୍+ +ଇନ୍) ୬ତତ୍; ଦ୍ୱିଜାତିର ବେଶଧାରକ, ଛଦ୍ମବ୍ରାହ୍ମଣ, ବ୍ରାହ୍ମଣ ବେଶଧାରୀ, ଅବ୍ରାହ୍ମଣ, (ବି) କ୍ଷତ୍ରିୟ ।

ଦ୍ୱିଜଶପ୍ତ—ପୁ°.ବି.(ଦ୍ୱିଜ+ଶପ୍ତ) ୩ତତ୍; ରାଜମାସ, ବରବଟୀ ଛୁଆ, ଏହା ଦ୍ୱିଜମାନଙ୍କର ଅଭୋଜ୍ୟ ।

ଦ୍ୱିଜଶ୍ରେଷ୍ଠ—ପୁ°.ବି.(୭ତତ୍) ଦ୍ୱିଜବର, ବ୍ରାହ୍ମଣ ।

ଦ୍ୱିଜସତ୍ତମ—ପୁ°. ବି. (ଦ୍ୱିଜ+ସତ୍ତମ) ଉତ୍କୃଷ୍ଟ ଶ୍ରେଣୀର ବ୍ରାହ୍ମଣ ।

ଦ୍ୱିଜସେବକ—ପୁ°.ବି. (ଦ୍ୱିଜ+ସେବକ) ୬ତତ୍; ଶୂଦ୍ର, (ବି°)ଦ୍ୱିଜସେବମାନ ।

ଦ୍ୱିଜା—ସ୍ତ୍ରୀ. ବି. (ଦ୍ୱିଜ+ଆ) ପାଳଙ୍ଗ ଶାକ, ଭାର୍ଗୀ, ରେଣୁକା ନାମକ ଗନ୍ଧଦ୍ରବ୍ୟ, ୨୭ ନକ୍ଷତ୍ର ମଧ୍ୟରୁ ୨ୟ ନକ୍ଷତ୍ର, ଭରଣୀ ନକ୍ଷତ୍ର ।

ଦ୍ୱିଜାଗ୍ର୍ୟ—ପୁ°. ବି.(୭ତତ୍) ଦ୍ୱିଜବର, ବ୍ରାହ୍ମଣ, ବିପ୍ର ।

ଦ୍ୱିଜାଙ୍ଗୀ—ସ୍ତ୍ରୀ. ବି. (ଦ୍ୱିଜ+ଅଙ୍ଗ+ଈ) କଟୁକା, ଦ୍ୱିଜାଙ୍ଗିକା ।

ଦ୍ୱିଜାତି—ପୁ°. ବି.(ଦ୍ୱି+ଜାତି)ବ.ବ୍ରୀ; ଦ୍ୱିଜ ଦେଖ ।

ଦ୍ୱିଜାତିମୁଖ୍ୟ—ପୁ°. ବି. ବ୍ରାହ୍ମଣ ଶ୍ରେଷ୍ଠ ।

ଦ୍ୱିଜାତୀୟ—ବି°. (ଦ୍ୱି+ଜାତି+ଈୟ) ଦୁଇପ୍ରକାରର, ଦ୍ୱିଜସମ୍ବନ୍ଧୀୟ, ଦୋଜସଲା, (ବି) ଖଚର, ଅଶ୍ୱତର ।

ଦ୍ୱିଜାନି—ପୁ°. ବି°. (ବ.ବ୍ରୀ) ଯାହାର ଦୁଇଟି ସ୍ତ୍ରୀ ଥାଏ, ଦ୍ୱିଭାର୍ଯ୍ୟକ ।

ଦ୍ୱିଜାଳୟ—ପୁ°. ବି. କୋଟର, ବୃକ୍ଷସ୍ଥିତ ପକ୍ଷିମାନଙ୍କର ବସା, ନୀଡ଼, ବିପ୍ରମାନଙ୍କର ଗୃହ ।

ଦ୍ୱିଜିହ୍ୱ—ପୁ°. ବି°. (ଦ୍ୱି+ଜିହ୍ୱା+ଅ) ବ.ବ୍ରୀ; ଦୁଇଗୋଟି ଜିହ୍ୱାବିଶିଷ୍ଟ, ଯାହାର କଥାର ଠିକ୍ ନ ଥାଏ, ଖଳ, ଦୁର୍ନାମକାରୀ, ଝଗଡୁଆ, (ବି) ସର୍ପ, ଚୁଗୁଲିଆ ବ୍ୟକ୍ତି, ଚୋର, ଖଳବ୍ୟକ୍ତି, ରୋଗବିଶେଷ ।

ଦ୍ୱିଜେ—ଗ୍ରା. ଅବ୍ୟ. ଦୁଜେ ଦେଖ, (ବି) ଦ୍ୱିଜମାନେ, ବ୍ରାହ୍ମଣମାନେ ।

ଦ୍ୱିଜେନ୍ଦ୍ର—ପୁ°. ବି. (ଦ୍ୱିଜ+ଇନ୍ଦ୍ର) ୬ତତ୍; ଦ୍ୱିଜରାଜ ଦେଖ ।

ଦ୍ୱିଜେଶ—ପୁ°.ବି.(ଦ୍ୱିଜ+ଈଶ)୬ତତ୍; ଚନ୍ଦ୍ର, ଗରୁଡ଼, ଦ୍ୱିଜେଶ୍ୱର, କର୍ପୂର ।

ଦ୍ୱିଜୋତ୍ତମ—ପୁ°. ବି. (ଦ୍ୱିଜ+ଉତ୍ତମ) ୭ତତ୍; ଦ୍ୱିଜବର ଦେଖ ।

ଦ୍ୱିଜୋପାସକ—ପୁ°.ବି (ଦ୍ୱିଜ+ଉପ+ ଆସ୍+ଅକ) ଦ୍ୱିଜସେବକ ଶୂଦ୍ର ।

ଦ୍ୱିଟ୍—ପୁ°.ବି°. (ଦ୍ୱିଷ୍+କ୍ୱିପ୍)ବିରୋଧୀ, ଦ୍ୱେଷଭାବ ପନ୍ନ, ଦ୍ୱେଷକାରୀ, (ବି)ଶତ୍ରୁ ।

ଦ୍ୱିଟ୍‌ସେବା—ସ୍ତ୍ରୀ. ବି.ଶତ୍ରୁର ସେବା ।

ଦ୍ୱିଟ୍‌ସେବୀ—ବି.ବି°.ରାଜଦ୍ରୋହୀ ସେବୀ ।

ଦ୍ୱିଠ—ପୁ°. ବି.(ଦ୍ୱି+ଠ) ବ.ବ୍ରୀ; ବିସର୍ଗ, ବହ୍ନିଜାୟା, ସ୍ୱାହା, (କ୍ଲୀ) ଠକାରଦ୍ୱୟ ।

ଦ୍ୱିତ—ପୁ°.ବି. ଦେବଭେଦ, ଋଷିଭେଦ ।

ଦ୍ୱିତୟ—କ୍ଲୀ. ବି. ( ଦ୍ୱି + ତୟ ) ଯୁଗ୍ମ, ଦୁଇପ୍ରକାର, (ବିଂ) ଡବଲ, ଦୁଇପ୍ରକାରର, ଦୁଇସଂଖ୍ୟକ, ଦ୍ୱିଗୁଣିତ, ଦୋପଟ୍ଟା, ଦୁଇଭାଗରେ ବିଭକ୍ତ, (ସ୍ତ୍ରୀ ଦ୍ୱିତୟୀ ।

ଦ୍ୱିତଳ—ବି.ବିଂ. (ଦ୍ୱି + ତଳ) ବ.ବ୍ରୀ; ଦୋମହଲା, (ବି) ଏକମହଲା ଉପରେ ନିର୍ମିତ ଗୃହ ।

ଦ୍ୱିତୀୟ—ପୁଂ. ବିଂ. (ଦ୍ୱି+ପୂରଣାର୍ଥେ. ତୀୟ) ଦୁଇର ପୂରକ, ଦୁଇସ୍ଥାନୀୟ, ଅନ୍ୟ, (ବି) ପୁତ୍ର ସଙ୍ଗୀ, ବନ୍ଧୁ, ଦ୍ୱିତୀୟ ପୁରୁଷ, ଅର୍ଦ୍ଧାଂଶ, (ସ୍ତ୍ରୀ) ଦ୍ୱିତୀୟା ।

ଦ୍ୱିତୀୟକ—ବିଂ. (ଦ୍ୱିତୀୟ + କ) ଦ୍ୱିତୀୟ ଦେଖ, ଦ୍ୱିତୀୟଥର ଘଟିଥିବା, ଏକୋଇପାଳି(ଜର) । [ ଜ୍ୱରବିଶେଷ ।

ଦ୍ୱିତୀୟଜଙ୍ଘା—ଗ୍ରା. ବି. ଦେଉଳର ଅଂଶ-

ଦ୍ୱିତୀୟତଃ—କ୍ରି. ବିଂ. (ଦ୍ୱିତୀୟ+ତସ୍) ପ୍ରଥମ ବିଷୟ ପରେ, ଦ୍ୱିତୀୟ ହେବା ପ୍ରକାରରେ ।

ଦ୍ୱିତୀୟବିଫଳା—ସ୍ତ୍ରୀ. ବି. ଗମ୍ଭାରୀ ।

ଦ୍ୱିତୀୟପୁରୁଷ—ବି. (ବ୍ୟାକରଣ) ମଧ୍ୟମ ପୁରୁଷ ।

ଦ୍ୱିତୀୟବରଣ୍ଡୀ—ଗ୍ରା. ବି. ଦେଉଳର ଅଂଶବିଶେଷ ।

ଦ୍ୱିତୀୟବୟଃ—ବିଂ. (ଦ୍ୱିତୀୟ+ବୟସ୍) ଦ୍ୱିତୀୟାଶ୍ରମୀ ବ୍ୟକ୍ତି ।

ଦ୍ୱିତୀୟବର୍ଣ୍ଣ—ବି.(ଦ୍ୱିତୀୟ + ବର୍ଣ୍ଣ)କ.ଧା; ହିନ୍ଦୁମାନଙ୍କର ମଧ୍ୟରେ କ୍ଷତ୍ରିୟଜାତି, ( ବ୍ୟାକରଣ ) ବର୍ଗର ପ୍ରଥମ ବର୍ଣ୍ଣର ପରବର୍ଣ୍ଣ ।

ଦ୍ୱିତୀୟବାନ୍—ପୁଂ.ବିଂ. (ଦ୍ୱିତୀୟ + ବତ୍) ସହାୟ ବା ସଙ୍ଗୀଯୁକ୍ତ ।

ଦ୍ୱିତୀୟା—ସ୍ତ୍ରୀ. ବିଂ. (ଦ୍ୱିତୀୟ+ସ୍ତ୍ରୀ. ଆ) ଦ୍ୱିତୀୟର ସ୍ତ୍ରୀଲିଙ୍ଗ, (ବି) ପତ୍ନୀ, ଭାର୍ଯ୍ୟା, ସହଚରୀ, ସଖୀ, ପକ୍ଷର ଦ୍ୱିତୀୟ ତିଥି, ପ୍ରତିପଦ୍ ବା ଅମାବାସ୍ୟାର ପରବର୍ତ୍ତୀ ତିଥି ।

ଦ୍ୱିତୀୟାକୃତ—କ୍ରି.ବିଂ.(ଦ୍ୱିତୀୟ + ଆକୃତ) ଦୋଓଡ଼ ଚାଷ ହୋଇଥିବା ।

ଦ୍ୱିତୀୟାଭା—ସ୍ତ୍ରୀ.ବି. (ଦ୍ୱିତୀୟା + ଆଭ + ଆ) ଦାରୁହରିଦ୍ରା ।

ଦ୍ୱିତୀୟାଶ୍ରମ—ପୁଂ. ବି.(ଦ୍ୱିତୀୟ+ଆଶ୍ରମ) ହିନ୍ଦୁର ଚାରିଗୋଟି ଆଶ୍ରମରୁ ଦ୍ୱିତୀୟ ଆଶ୍ରମ, ଗୃହସ୍ଥାଶ୍ରମ, ଗାର୍ହସ୍ଥ୍ୟ, ( ବିଂ ) ଦ୍ୱିତୀୟାଶ୍ରମୀ ।

ଦ୍ୱିତ୍ୱ—କ୍ଲୀ. ବି. ( ଦ୍ୱି+ଭା.ତ୍ୱ ) ଦ୍ୱିଗୁଣ ହେବାର ଅବସ୍ଥା, ଦ୍ୱିଗୁଣତ୍ୱ, ପୁନରୁକ୍ତି ଯୁଗ୍ମ, ଯୁଗଳ, ଯୋଡ଼ା, ଦୁଇସଂଖ୍ୟା ।

ଦ୍ୱିତ୍ରି—ବି. ବି.ବିଂ. ( ବ.ବ୍ରୀ )ଦୁଇ ବା ତିନି, (ସ୍ତ୍ରୀ) ଦ୍ୱିତ୍ରା ।

ଦ୍ୱିତ୍ରିଂଶ—ବିଂ. ଦ୍ୱାତ୍ରିଂଶ ଦେଖ ।

ଦ୍ୱିତ୍ରିଂଶତ୍—ବି ଓ ବିଂ. ଦ୍ୱାତ୍ରିଂଶତ୍ ଦେଖ

ଦ୍ୱିଦଣ୍ଡି—ଅବ୍ୟ. ଦଣ୍ଡଦ୍ୱୟ ଯୁକ୍ତ ପ୍ରହରଣ ।

ଦ୍ୱିଦଣ୍ଡ୍ୟାଦି—ପୁଂ. ବି. ପାଣିନ୍ୟୁକ୍ତ ଗଣ ବିଶେଷ ।

ଦ୍ୱିଦନ୍ତ—ପୁଂ. ବିଂ. (ଦ୍ୱି+ଦନ୍ତ)ବ.ବ୍ରୀ; ଦ୍ୱିରଦ, ଦୁଇଦାନ୍ତିଆ, (ସ୍ତ୍ରୀ)ଦ୍ୱିଦନ୍ତୀ ।

ଦ୍ୱିଦଳ—ପୁଂ. ବିଂ. (ଦ୍ୱି+ଦଳ) ବ.ବ୍ରୀ; ଦୁଇପାଖୁଡ଼ା ବିଶିଷ୍ଟ, ଦୁଇଫାଳ ବିଶିଷ୍ଟ, ଦୁଇପତ୍ର ବିଶିଷ୍ଟ, (ବି) ଡାଲି ।

ଦ୍ୱିଦଶ—ବି. ବିଂ. (ଦ୍ୱି+ଦଶ)--ମଧ୍ୟ-କ.ଧା) ଦ୍ୱାଦଶବାର, ଦୁଇଦଶ, ୨୦ ।

ଦ୍ୱିଦାମ୍ନୀ—ସ୍ତ୍ରୀ.ବି. ରଜ୍ଜୁଦ୍ୱୟ ଯୁକ୍ତା ଗାଭୀ, ଦୁଷ୍ଟା ଗାଈ ।

ଦ୍ୱିଦିବ—ପୁଂ. ବି. ( ଦ୍ୱି+ଦିବ,ଦ୍ୱିଗୁ ) ଦୁଇଦିନ ଦ୍ୱାରା ସାଧ୍ୟ ଯାଗଭେଦ ।

ଦ୍ୱିଦେହ—ପୁଂ.ବି.(ଦ୍ୱି + ଦେହ, ବ.ବ୍ରୀ) ଗଣେଶ ।

ଦ୍ୱିଦ୍ୱାଦଶ—ପୁଂ. ବି.(ଦ୍ୱି+ଦ୍ୱାଦଶ ଦ୍ୱନ୍ଦ୍ୱ) (ଜ୍ୟୋତିଷ) ବିବାହରେ ନିଷିଦ୍ଧ ବରକନ୍ୟାଙ୍କର ରାଶିଦ୍ୱୟର ଆପେକ୍ଷିକ ଅବସ୍ଥିତି ବିଶେଷ, ଯୋଗ ବିଶେଷ, (କ୍ଲୀ) ଦ୍ୱିତୀୟ ଓ ଦ୍ୱାଦଶ ସ୍ଥାନ ।

ଦ୍ୱିଧ—ବିଂ. ( ଦ୍ୱିଧା+ମଂ.ଅ ) ଦୁଇଖଣ୍ଡ ବା ଭାଗରେ ବିଭକ୍ତ, ଦୁଇଫାଳ ହୋଇ ଚିରା ଯାଇଥିବା ।

ଦ୍ୱିଧା—କ୍ରି. ବିଂ. (ଦ୍ୱି+ପ୍ରକାରାର୍ଥେ.ଧା) ଦୁଇଥର, ଦୁଇଗୁଣ, ଦୁଇଖଣ୍ଡରେ, ଦୁଇପ୍ରକାରରେ, ଦୁଇଦିଗରେ, ଦୁଇଭାଗରେ,(ସ୍ତ୍ରୀ.ବିଂ.—ଦ୍ୱିଧ+ଆ)ଦୁଇପ୍ରକାରର, ଡବଲ, ଦ୍ୱିଗୁଣିତ, (ଗ୍ରା)ବି. (ଦ୍ୱିଧାଭାବ) ଧୋକା, ସନ୍ଦେହ,ସଂଶୟ, ଇତସ୍ତତଃଭାବ । [ କରଣ ।

ଦ୍ୱିଧାକରଣ—ବି. ଦୁଇଭାଗରେ, ବିଭାଗ

ଦ୍ୱିଧାକରିବା—ଗ୍ରା. କ୍ରି. ସନ୍ଦେହାନ୍ୱିତ ହେବା, ଦୋଦୋପାଞ୍ଚ ହେବା. ଦୁଇଖଣ୍ଡ କରିବା

ଦ୍ୱିଧାକୃତ—ବି. ବିଂ. ( ଦ୍ୱିଧା + କୃ + ମଂ. ତ) ଦୁଇଅଂଶରେ ବିଭକ୍ତ, ଦୁଇଭାଗେ ବିଭକ୍ତ ।

ଦ୍ୱିଧାଗତି—ପୁଂ. ବି. ( ଧା+ଗତି) ବ.ବ୍ରୀ, ଉଭୟଚର ଜନ୍ତୁ, କୁମ୍ଭୀର, କଙ୍କଡ଼ା,(ବିଂ)ଦୁଇପ୍ରକାର ଗତିବିଶିଷ୍ଟ ।

ଦ୍ୱିଧାତୁ—କ୍ଲୀ.ବି. (ଦ୍ୱିଗୁ) ଦୁଇଟି ଧାତୁ, (ପୁଂବି.)ବ.ବ୍ରୀ; ଗଜାନନ, ଗଣେଶ ।

ଦ୍ୱିଧାତ୍ମକ—ପୁଂ.ବି. ଜାତିକୋଷ, ଜାତୀଫଳ ।

ଦ୍ୱିଧାଲେଖ୍ୟ—ପୁଂ. ବି. ( ଦ୍ୱିଧା + ଲିଖ୍ + ଯ) ହିନ୍ତାଳ ବୃକ୍ଷ, (ବିଂ) ଦ୍ୱିପ୍ରକାର ଲେଖନୀୟ ।

ଦ୍ୱିଧୀକରଣ—କ୍ଲୀ. ବି. (ଦ୍ୱିଧା + ଚ୍ୱି + କୃ + ଭା.ଅନ) ଦୁଇଅଂଶ ଭାଗ କରିବା ।

ଦ୍ୱିନଗ୍ନକ—ପୁଂ. ବି. (ଦ୍ୱି+ନଗ୍ନ+କ) ଯେଉଁ ବ୍ୟକ୍ତିର ସୁନ୍ନତ ହୋଇ ଅଛି, ସ୍ୱଭାବିକ ଅନାବୃତ ଛେତ୍ର, ଦୁଶ୍ଚର୍ମା ।

ଦ୍ୱିନବତ—ବିଂ. (ଦ୍ୱିନବତି+ପୂରଣାର୍ଥେ. ଅ) ୯୨ ସ୍ଥାନୀୟ, ୯୨ର ପୂରକ ।

ଦ୍ୱିନବତି—ସ୍ତ୍ରୀ. ବି ଓ ବିଂ. (ମଧ୍ୟ-କ.ଧା) ବୟାନବେ ।

ଦ୍ୱିନବତିତମ—ବି. ବିଂ. ( ଦ୍ୱିନବତି+ତମ) ୯୨ ସଂଖ୍ୟାର ପୂରଣ, (ସ୍ତ୍ରୀ). ଦ୍ୱିନବତିତମୀ ।

ଦ୍ୱିନିଷ୍କ—ବି. ବିଂ. (ଦ୍ୱିଗୁ) ଦୁଇନିଷ୍କ ଦ୍ୱାରା କ୍ରୀତ, (ବିଂ) ତତ୍ପରିମାଣ ଯୁକ୍ତ ।

ଦ୍ୱିପ—ପୁଂ. ସ୍ତ୍ରୀ. ବି. (ଦ୍ୱି+ପା+କ. ଅ—କପ) ହସ୍ତି, ଗଜ, ନାଗ, ସର୍ପ, ନାଗେଶ୍ୱର ଗଛ ।

ଦ୍ୱିପକ୍ଷ—ପୁଂ. ବି. ( କ.ଧା ) ଏକମାସ,

ପକ୍ଷିମାଂସ ।
ଦ୍ୱିପଞ୍ଚମୂଳୀ—ସ୍ତ୍ରୀ. ବ. ଦଶମୂଳ ।
ଦ୍ୱିପଞ୍ଚାଶ—ତ୍ରି. ବଂ. ( ଦ୍ୱିପଞ୍ଚାଶତ୍+ ପୂରଣାର୍ଥ.ଅ)· ୫୨ ସଂଖ୍ୟାର ପୂରକ, ୫୨ ସ୍ଥାନୀୟ, (ସ୍ତ୍ରୀ) ଦ୍ୱିପଞ୍ଚାଶୀ ।
ଦ୍ୱିପଞ୍ଚାଶତ୍—ସ୍ତ୍ରୀ. ବ. ବଂ. ( ଦ୍ୱି ଅଧିକ ପଞ୍ଚାଶତ୍; ମଧ୍ୟ-କ.ଧା) ବାଆନ, ୫୨ ।
ଦ୍ୱିପଞ୍ଚାଶତ୍ତମ—ତ୍ରି. ବଂ. (ଦ୍ୱିପଞ୍ଚାଶତ୍+ ତମ) ୫୨ ସଂଖ୍ୟାର ପୂରକ ।
ଦ୍ୱିପ[illegible]—ତ୍ରି.ବଂ.ଦୁଇପଣ ଦ୍ୱାରା କ୍ରୀତ ।
ଦ୍ୱିପଥ—କ୍ଲୀ. ବ. (ଦ୍ୱି + ପଥିନ୍; ବ.ବ୍ରୀ;) ଛକ, ଯେଉଁଠାରେ ଦୁଇଟି ରାସ୍ତା ମିଳିତ ହୋଇଅଛି, ଦୁଇପଥ, ( ବଂ ) ମାର୍ଗଦ୍ୱୟଯୁକ୍ତ (ଦେଶାଦି) ।
ଦ୍ୱିପଦ—ପୁଂ. ବଂ. (ଦ୍ୱି+ପଦ; ବ.ବ୍ରୀ) ଯାହାର ଦୁଇଟି ପାଦ ଅଛି, ଦୁଇପାଦ ଯୁକ୍ତ, ଦୁଇଚରଣ ଯୁକ୍ତ, ଦୁଇଅଙ୍କ-ଯୁକ୍ତ,(ବ) ଦୁଇଚରଣ ଯୁକ୍ତ ଛନ୍ଦ, ମନୁଷ୍ୟ ପକ୍ଷୀ, ( ବ୍ୟାକରଣ ) ସମାସ ବା ଛନ୍ଦ ଯୋଗେ ଦୁଇ ପଦର ସମାହାର, ରାଜପ୍ୟ, ଦେବତା, (ଜ୍ୟୋତିଷ) ମିଥୁନ, ତୁଳା, କୁମ୍ଭ ଓ କନ୍ୟାରାଶି, ଧନୁରାଶିର ପୂର୍ବାର୍ଦ୍ଧ, ଦୁଇଗୋଡ଼ିଆ ଜୀବ ।
ଦ୍ୱିପଦା—ସ୍ତ୍ରୀ. ବ. (ବ.ବ୍ରୀ) ଦ୍ୱିପାଦଯୁକ୍ତା ଋକ୍, (ବଂ) ପଦଦ୍ୱୟବିଶିଷ୍ଟ ।
ଦ୍ୱିପଦିକା—ସ୍ତ୍ରୀ. ବ. ପ୍ରାକୃତ ଛନ୍ଦୋ-ବିଶେଷ,ଦ୍ୱିଗୁଣ ମୂଲ୍ୟ ବା ଧନ ।
ଦ୍ୱିପଦୀ—ବ. ଦ୍ୱିପଦିକା ଦେଖ, ବ ଓ ବଂ. ଦ୍ୱିପଦ ଦେଖ ।
ଦ୍ୱିପର୍ଣ୍ଣୀ—ସ୍ତ୍ରୀ. ବ. ବନକୋଳୀ, ( ବଂ ) ପର୍ଣ୍ଣଦ୍ୱୟଯୁକ୍ତ । [ ଭେଦ ।
ଦ୍ୱିପମଦ—ପୁଂ.ବଂ. ହସ୍ତିମଦ, ଗନ୍ଧଦ୍ରବ୍ୟ
ଦ୍ୱିପାତ୍(ଦ୍)—ତ୍ରି. ବଂ.(ବ.ବ୍ରୀ)ପଦଦ୍ୱୟ-ଯୁକ୍ତ, ଦୁଇଚରଣବିଶିଷ୍ଟ ।
ଦ୍ୱିପାଦ—ବ ଓ ବଂ.(ବ.ବ୍ରୀ)ଦ୍ୱିପଦ ଦେଖ
ଦ୍ୱିପାଦ୍ୟ—କ୍ଲୀ.ବ. ଦୁଇଥର ଦଣ୍ଡ,ଦ୍ୱିଗୁଣ ଦଣ୍ଡ, ଦ୍ୱିପାଦ ପରିମାଣଯୁକ୍ତ ଦଣ୍ଡ ପ୍ରାୟଶ୍ଚିତ୍ତାଦି ।
ଦ୍ୱିପାଧିପ—ପୁଂ. ବ.(ଦ୍ୱିପ+ଅଧିପ) ୬ତତ୍;

ଐରାବତ, ଗଜଶ୍ରେଷ୍ଠ । [ ହସ୍ତୀ ।
ଦ୍ୱିପାୟୀ—ପୁଂ.ବ.(ଦ୍ୱି+ପା+କ.ଇନ୍)
ଦ୍ୱିପାସ୍ୟ—ପୁଂ. ବ. (ବ.ବ୍ରୀ) ଗଣେଶ, ଗଜାନନ । [ ବୃକ୍ଷ ।
ଦ୍ୱିପୁଟ—ପୁଂ. ବ. ସୁଗନ୍ଧ ଶ୍ୱେତପୁଷ୍ପକ
ଦ୍ୱିପୁଟକପାଟ—ବ. ଯାଉଁଳି କବାଟ ।
ଦ୍ୱିପୁରୋଦନ୍ତ୍ୟ—ବଂ.(ଜୀବ ବନ୍ଧୁଜ ପାରି-ଭାଷିକ ଶବ୍ଦ) ( ଦ୍ୱି + ପୁରୋଦନ୍ତ + ଇନ୍) ଯେଉଁ ଜୀବମାନଙ୍କର ମୁଖର ପୁରୋଭାଗରେ ପ୍ରତ୍ୟେକ ପାଟିରେ ଦୁଇଟି ଲେଖାଏ କାଟିବା ଦାନ୍ତ ଥାଏ ।
ଦ୍ୱିପୁରୁଷ—ତ୍ରି.ବଂ. (ଦ୍ୱିଗୁ) ପୁରୁଷଦ୍ୱୟ ପ୍ରମାଣଯୁକ୍ତ,(ସ୍ତ୍ରୀ)ଦ୍ୱିପୁରୁଷୀ, ଦ୍ୱିପୁରୁଷା ।
ଦ୍ୱିପୃଷ୍ଠ—ପୁଂ. ବ. ରାଜଭେଦ, ବ୍ରହ୍ମ-ସମ୍ଭବ ।
ଦ୍ୱିବକ୍ତ୍ର—ତ୍ରି. ବଂ. (ଦ୍ୱି+ବକ୍ତ୍ର) ବ.ବ୍ରୀ; ମୁଖଦ୍ୱୟବିଶିଷ୍ଟ. ( ପୁଂ.ବ ) ରାଜସର୍ପ, ଦାନବବିଶେଷ, (ସ୍ତ୍ରୀ) ଦ୍ୱିବକ୍ତ୍ରା ।
ଦ୍ୱିବଚନ—କ୍ଲୀ. ବ. (ବ୍ୟାକରଣ)ବ୍ୟାକ-ରଣରେ ଦୁଇସଂଖ୍ୟା ବୋଧକ ବିଭକ୍ତି, ଦ୍ୱିତ୍ୱବୋଧକ ବିଭକ୍ତି ।
ଦ୍ୱିବଜ୍ରକ—ପୁଂ. ବ. ଷୋଡ଼ଶକୋଣ ଗୃହଭେଦ ।
ଦ୍ୱିବନ୍ଧୁ—ପୁଂ. ବ. ଦୁଇଲୋକର ବନ୍ଧୁ, ଅଗ୍ନି ।
ଦ୍ୱିବର୍ଷ—ତ୍ରି.ବଂ.ଦ୍ୱିବର୍ଷବୟସ୍କ(ଗବାଦି), ଦୁଇବର୍ଷ ଧରି କର୍ମକର,(ସ୍ତ୍ରୀ)ଦ୍ୱିବର୍ଷିକା
ଦ୍ୱିବର୍ଷା—ସ୍ତ୍ରୀ. ବ. ଦୁଇବର୍ଷ ବୟସ୍କା ମାଈ ବାଛୁରୀ ।
ଦ୍ୱିବର୍ଷିକା—ସ୍ତ୍ରୀ.ବ. (ଦ୍ୱିବର୍ଷ+ଇକ+ ଆ) ଦୁଇବର୍ଷ ବୟସ୍କା ମାଈ ବାଛୁରୀ ।
ଦ୍ୱିବାର୍ଷିକ—ତ୍ରି.ବଂ (ଦ୍ୱି+ବର୍ଷ+ଇକ) ଦୁଇବର୍ଷବୟସ୍କ, ଦୁଇବର୍ଷରେ ଫଳଦା, ଦୁଇବର୍ଷରେ ଘଟିବା ।
ଦ୍ୱିବାହିକା—ସ୍ତ୍ରୀ.ବ. (ଦ୍ୱି+ବହ୍+ଇକ +ଆ) ଦୋଳା, ହାଦୋଳା, ଖଟିଆ ।
ଦ୍ୱିବାହୁ—ପୁଂ.ବ ଓ ବଂ.ଦ୍ୱିଭୁଜ ଦେଖ
ଦ୍ୱିବଂଶ—ବ. ଦ୍ୱାବଂଶ ଦେଖ ।
ଦ୍ୱିବଂଶତି—ବ. ବ ଓ ବଂ. ଦ୍ୱାବଂଶତି

ଦେଖ । [ ଷଷ୍ଠିମିତ ।
ଦ୍ୱିବଂଶତିତମ—ବଂ. ଉକ୍ତସଂଖ୍ୟା-
ଦ୍ୱିବିଦ—ପୁଂ.ବ. ସୁଗ୍ରୀବଙ୍କର ଦ୍ୱାରପାଳ ମର୍କଟବିଶେଷ । [ ବିଷ୍ଣୁ ।
ଦ୍ୱିବିଦାରି—ପୁଂ. ବ. (୬ତତ୍) ବଳରାମ,
ଦ୍ୱିବିଧ—ତ୍ରି. ବଂ. ( ଦ୍ୱି+ବିଧ, ଦ୍ୱିଗୁ, ବ.ବ୍ରୀ) ଦୁଇପ୍ରକାରର, ଦୁଇ ରକମର
ଦ୍ୱିବିନ୍ଦୁ—ପୁଂ.ବ. (ବ.ବ୍ରୀ) ଦୁଇଟି ବିନ୍ଦୁ ବିଶିଷ୍ଟ ବର୍ଣ୍ଣ, ବିସର୍ଗ ।
ଦ୍ୱିବିସ୍ତ—ତ୍ରି.ବଂ. ବିସ୍ତଦ୍ୱୟାର୍ହ, ବିସ୍ତଦ୍ୱୟ ପରିମିତ ।
ଦ୍ୱିବୃନ୍ତ—ବ. ମଞ୍ଜୁଆଠ ଦେଖ ।
ଦ୍ୱିବେଦ—ପୁଂ.ବ.(ଦ୍ୱି+ବେଦ)ବ.ବ୍ରୀ; ଦୁଇଟି ବେଦ ଅଧ୍ୟୟନ କରିଥିବା (ବ୍ୟକ୍ତି) ଦ୍ୱିବେଦାଧ୍ୟାୟୀ ।
ଦ୍ୱିବେଦୀ—ପୁଂ. ବଂ. (ଦ୍ୱି+ବେଦ+ ଇନ୍) ଦ୍ୱିବେଦ ଦେଖ, (ବ) ବ୍ରାହ୍ମଣ-ଙ୍କର ଉପାଧିବିଶେଷ ।
ଦ୍ୱିଭାଗ—ପୁଂ.ବ.ଦୁଇଭାଗ, ଦୁଇଅଂଶ ।
ଦ୍ୱିଭାବ—ତ୍ରି. ବଂ. (ବ.ବ୍ରୀ) ଦୁଇଭାଗ-ବିଶିଷ୍ଟ, ( ବ. ଦ୍ୱିଗୁ ) ଦୁଇଭାବ, (ସ୍ତ୍ରୀ) ଦ୍ୱିଭାବା ।
ଦ୍ୱିଭାଷୀ—ପୁଂ.ବଂ.(ଦ୍ୱି+ଭାଷା+ଇନ୍) ମଧ୍ୟ.କ.ଧା; ଯେ ଦୁଇ ଭାଷାରେ କଥା କହେ, (ସ୍ତ୍ରୀ) ଦ୍ୱିଭାଷିଣୀ ।
ଦ୍ୱିଭୁଜ—ବ. (ବ.ବ୍ରୀ) କୋଣ, (ଦ୍ୱିଗୁ) ଦୁଇହାତ, (ବଂ. କ.ଧା) ଦୁଇହାତ-ବିଶିଷ୍ଟ, (ସ୍ତ୍ରୀ) ଦ୍ୱିଭୁଜା ।
ଦ୍ୱିଭୂମ—ପୁଂ. ବ. ଭୂମିଦ୍ୱୟଯୁକ୍ତ ପ୍ରାସା-ଦାଦି, ଦୋତାଲା ।
ଦ୍ୱିମାତୃ—ପୁଂ.ବ. ଦ୍ୱିମାତୃକ, ଜରାସନ୍ଧ ।
ଦ୍ୱିମାତୃକ—ପୁଂ. ବ. (ବ.ବ୍ରୀ)ଜରାସନ୍ଧ, ଗଣେଶ ।
ଦ୍ୱିମାତୃଜ—ପୁଂ.ବ.( ଦ୍ୱିମାତୃ+ଜନ୍+ ଅ) କ.ଧା. ଜରାସନ୍ଧ, ଗଣେଶ ।
ଦ୍ୱିମାତ୍ର—ପୁଂ. ବ. ଦୀର୍ଘସ୍ୱର, 'ଆ, ଈ' ଇତ୍ୟାଦି । [ ଯୁକ୍ତ ।
ଦ୍ୱିମାଷ୍ୟ—ତ୍ରି.ବଂ. ମାଷଦ୍ୱୟ ପରିମାଣ-
ଦ୍ୱିମାସ୍ୟ—ବଂ. ଦୁଇମାସ ବ୍ୟାପୀ ଯଜ୍ଞ

ହୁଏ; ଦୁଇମାସ ବୟସ୍କ ।

ଦ୍ୱିମୀଢ଼—ପୁଂ. ବ. ହସ୍ତିନାପୁରକାରକ ହସ୍ତି ନୃପସୁତଭେଦ ।

ଦ୍ୱିମୁଖ—ପୁଂ. ବଂ. (ଦ୍ୱି + ମୁଖ, ବ.ବ୍ରୀ) ଦୁଇଗୋଟି ମୁଖବିଶିଷ୍ଟ, ଯାହାର ଦୁଇଟି ଦର୍ଶନୀୟ ପାଖଥାଏ, (ଲ.ଅର୍ଥ) ଦୋମୁହାଁ, ଯାହାର କଥା ବଦଳେ, (ବି) କୃତ୍ରିମ ସର୍ପଭେଦ, ଦୋମୁଣ୍ଡିଆ ସାପ, ରାଜ-ସର୍ପ, (ସ୍ତ୍ରୀ) ଦ୍ୱିମୁଖା, ଦ୍ୱିମୁଖୀ, ଅର୍ଦ୍ଧ-ପ୍ରସୂତା ଗାଭୀ, ଦ୍ୱିମୁଖଜଳୌକା ।

ଦ୍ୱିମୁଖା—ସ୍ତ୍ରୀ. ବଂ. (ବ.ବ୍ରୀ) ମୁଖଦ୍ୱୟ-ବିଶିଷ୍ଟା, (ବି) ଜୋକ ।

ଦ୍ୱିମୁଖାହି—ପୁଂ. ବ. ( ଦ୍ୱିମୁଖ+ଅହି ) ସର୍ପବିଶେଷ ।

ଦ୍ୱିମୁଖୀ—ସ୍ତ୍ରୀ.ବଂ. (ଦ୍ୱିମୁଖ+ଈ) ଦ୍ୱିମୁ-ଖର ସ୍ତ୍ରୀଲିଙ୍ଗ, (ବି) ପ୍ରସବ କରୁଥିବା ଗାଈ । [ ଦ୍ୱୟ ।

ଦ୍ୱିମୁଣ୍ଡ—ଅବ୍ୟ. ତୁଲ୍ୟ ବିଦ୍ୟାଯୁକ୍ତ ମୁଣ୍ଡ-

ଦ୍ୱିମୁଷଳ—ଅବ୍ୟ. ମୁଷଳ ଦ୍ୱୟଯୁକ୍ତ ପ୍ରହରଣ ।

ଦ୍ୱିମୂର୍ଦ୍ଧା—ପୁଂ. ବଂ. (ବ.ବ୍ରୀ) ଦ୍ୱିଶିରାଃ, ମସ୍ତକଦ୍ୱୟବିଶିଷ୍ଟ, (ପୁଂ.ବି) କଶ୍ୟପପୁତ୍ର

ଦ୍ୱିଯଜୁଷ—ସ୍ତ୍ରୀ.ବ. ଇଷ୍ଟକାଭେଦ, ଯଜ-ମାନ ।

ଦ୍ୱିଯମୁନ—ଅବ୍ୟ. ଦୁଇ ଯମୁନାର ସମା-ହାର, ଦୁଇ ଯମୁନା ସମ୍ମିଳିତ ।

ଦ୍ୱିର—ପୁଂ.ବି. ରେଫଦ୍ୱୟଘଟିତ ଭ୍ରମର ଶବ୍ଦବାକ୍ୟ, ମଧୁକର, ବର୍ବର ।

ଦ୍ୱିରଦ—ପୁଂ. ବ. ( ବ.ବ୍ରୀ ) ହସ୍ତୀ, ଦୁର୍ଯ୍ୟୋଧନଙ୍କର ଏକ ଭାଇ ।

ଦ୍ୱିରଦରଦ—ପୁଂ. ବ. (୬ତତ୍) ହାତୀ-ଦାନ୍ତ, ହସ୍ତିଦନ୍ତ ।

ଦ୍ୱିରଦାନ୍ତକ—ପୁଂ. ବ. (୬ତତ୍) ସିଂହ, (ସ୍ତ୍ରୀ) ଦ୍ୱିରଦାନ୍ତକା ।

ଦ୍ୱିରଦାରାତି—ପୁଂ.ବ. (୬ତତ୍) ଶରଭ, ଅଷ୍ଟାପଦ ଜନ୍ତୁଭେଦ, ସିଂହ ।

ଦ୍ୱିରଦାଶନ—ପୁଂ. ସ୍ତ୍ରୀ. ବ. (ଦ୍ୱିରଦ+ ଅଶ୍+ଅନ) ସିଂହ, ଦ୍ୱିରଦାଶନୀ ।

ଦ୍ୱିରଭ୍ୟସ୍ତ—ବି.ବଂ. ଦ୍ୱିଗୁଣିତ, ଦ୍ୱିରୁକ୍ତ ।

ଦ୍ୱିରଶନ—କ୍ଲୀ. ବ. ( ଦ୍ୱି+ଅଶନ ) ଦିନରେ ଦୁଇଥର ଭୋଜନ, (ବଂ ବ.ବ୍ରୀ) ଦିନରେ ଦୁଇଥର ଭୋଜନ-କାରୀ ।

ଦ୍ୱିରସନ—ପୁଂ.ସ୍ତ୍ରୀ.ବ. (ଦ୍ୱି+ରସନା+ ଅ,ବ.ବ୍ରୀ) ଦ୍ୱିଜିହ୍ୱ, ସର୍ପ ।

ଦ୍ୱିରାଗମନ—କ୍ଲୀ.ବ. ( ଦ୍ୱି+ଆଗମନ ) କନ୍ୟାର ପୁଅାଣିଘର, ପଦ୍ଧତିପାଳି, ଦୁଆରପାଳି ଦେଖ ।

ଦ୍ୱିରାତ୍ର—ବି.ବଂ. ରାତ୍ରିଦ୍ୱୟ ସାଧ୍ୟ (ଯାଗ-ଭେଦ), (କ୍ଲୀ) ରାତ୍ରିଦ୍ୱୟ ।

ଦ୍ୱିରାତ୍ରୀଣ—ବି. ବଂ. ରାତ୍ରିଦ୍ୱୟ ସାଧ୍ୟ ଦ୍ୱୈରାତ୍ରିକ ।

ଦ୍ୱିରାପ—ପୁଂ. ବ. (ଦ୍ୱି+ଆ+ପା+କ. ଦ୍ୱିପ, ହସ୍ତୀ ।

ଦ୍ୱିରାବୃତ୍ତି—ବ. (ଦ୍ୱି + ଆବୃତ୍ତି) କୌଣସି ବିଷୟକୁ ଦୁଇଥର ପଢ଼ିବା, ଲିଖିତ ବା ପଠିତ ବିଷୟର ଦ୍ୱିତୀୟଥର ଆବୃତ୍ତି ।

ଦ୍ୱିରାଶୀ—ପୁଂ. ବଂ. (ଦ୍ୱି+ଅଶ୍+ଇନ୍) ଯେ ଦିନରେ ଦୁଇଥର ଖାଏ, (ସ୍ତ୍ରୀ) ଦ୍ୱିରାଶିନୀ ।

ଦ୍ୱିରାଷାଢ଼—ପୁଂ. ବ. ( ଦ୍ୱି+ଆଷାଢ଼ ) ଦୋମାସୀ ଆଷାଢ଼, ଶାରୁଡ଼ୋକ୍ତ ସାମ-ଭେଦ ।

ଦ୍ୱିରୁକ୍ତ—ବି.ବଂ. (ଦ୍ୱି + ଉକ୍ତ) ପୁନରୁକ୍ତ, ଦ୍ୱିତୀୟବାର କଥିତ ।

ଦ୍ୱିରୁକ୍ତି—ସ୍ତ୍ରୀ.ବ. (ଦ୍ୱି + ଉକ୍ତି) ଦୁଇଥର କଥନ, ପୁନରୁକ୍ତି ରଚନାର ଭଙ୍ଗି ବା ଦୋଷବିଶେଷ, ଗୋଟିଏ କଥାକୁ ଦୁଇ-ଥର ଉଲ୍ଲେଖ କରଣ ।

ଦ୍ୱିରୁକ୍ତିଯମକ—ଗ୍ରା.ବ.(ଅଳଙ୍କାର) ଯମକ-ବିଶେଷ ।

ଦ୍ୱିରୂଢ଼ା—ସ୍ତ୍ରୀ.ବଂ.(ଦ୍ୱି+ଊଢ଼ା) ଦ୍ୱିତୀୟ-ଥର ବିବାହ କରିଥିବା ( ବିଧବା ) ପୁନର୍ଭୂ ।

ଦ୍ୱିରୂପ—ବ.(ଦ୍ୱି + ରୂପ, ଦ୍ୱିଗୁ,) ଦୁଇଟି-ରୂପ, (ବଂ—ବ.ବ୍ରୀ ) ଦୁଇଟି ସ୍ୱତନ୍ତ୍ର ଆକାରବିଶିଷ୍ଟ, ଯୁଗଳରୂପବିଶିଷ୍ଟ, ଯାହା ଦୁଇଆକାରରେ ଲେଖା ଯାଇପାରେ, (ପୁଂ.ବି.) ଦୁଇଆକାର ଶବ୍ଦର ଅଭି-ଧାନବିଶେଷ, (ସ୍ତ୍ରୀ) ଦ୍ୱିରୂପା ।

ଦ୍ୱିରେତାଃ—ପୁଂ. ବଂ. (ଦ୍ୱି+ରେତସ୍, ବ.ବ୍ରୀ) ଦୋଗଲା ଦେଖ, (ବି) ଅଶ୍ୱତର ।

ଦ୍ୱିରେଫ—ପୁଂ.ବ. ( ବ.ବ୍ରୀ ) ଭ୍ରମର, ବର୍ବର ଦେଖ ।

ଦ୍ୱିର୍ବଚନ—କ୍ଲୀ.ବ. ଦ୍ୱିରୁକ୍ତି, ଦ୍ୱିକଥନ ଅଭ୍ୟସ୍ତ ଧାତ୍ୱାଦି ।

ଦ୍ୱିଲକ୍ଷଣ—ବି. ବଂ. ପ୍ରକାର ଦ୍ୱୟଯୁକ୍ତ, ଦ୍ୱିଧାଭିନ୍ନ ।

ଦ୍ୱିବ୍ରଣ—ପୁଂ. ବ. ସୁଶ୍ରୁତୋକ୍ତ ଶାରୀର ଓ ଆଗନ୍ତୁକ ଦ୍ୱିବିଧ ବ୍ରଣ ।

ଦ୍ୱିଶଃ—ଅବ୍ୟ. (ଦ୍ୱି + ଶସ୍) ଦୁଇଥର, ଯୋଡ଼ାଯୋଡ଼ି ହୋଇ, ଦୁଇଦୁଇ ହୋଇ ।

ଦ୍ୱିଃଶତ—ବ ଓ ବଂ. ୨୦୦, ଦୁଇଶହ ।

ଦ୍ୱିଶତକ—ବି. ବଂ. ଦୁଇଶତ ଦ୍ୱାରା କ୍ରୀତ ।

ଦ୍ୱିଶତତମ—ବି. ବଂ. ୨୦୦ର ପୂରଣ, (ସ୍ତ୍ରୀ) ଦ୍ୱିଶତତମୀ । [ ଦାନ ।

ଦ୍ୱିଶତିକା—ସ୍ତ୍ରୀ. ବ. ଦୁଇବାର ଦ୍ୱିଶତ-

ଦ୍ୱିଶତୀ—ସ୍ତ୍ରୀ.ବ. (ଦ୍ୱିଶତ + ଈ) ଶତଦ୍ୱୟ ସମାହାର ।

ଦ୍ୱିଶତ୍ୟ—ବି.ବଂ. ଦ୍ୱିଶତଦ୍ୱାରା କ୍ରୀତ ।

ଦ୍ୱିଶଫ—ବି. ବଂ. ( ବ.ବ୍ରୀ ) ଯାହାର ଖୁରା ଦୁଇଭାଗରେ ବିଭକ୍ତ, (ସ୍ତ୍ରୀ) ଦ୍ୱିଶଫା ।

ଦ୍ୱିଶରୀର—ପୁଂ.ବ. ଚରସ୍ଥିରାତ୍ମକ, ମିଥୁନ, କନ୍ୟା, ଧନୁ ଓ ମୀନରାଶି ।

ଦ୍ୱିଶାଣ—ବି. ବଂ. ଶାଣଦ୍ୱୟ କ୍ରୀତ, ଦ୍ୱୈଶାଣ ।

ଦ୍ୱିଶାଣ୍ୟ—ବି.ବଂ. (ଦ୍ୱିଶାଣ+ଯ) ଶାଣ-ଦ୍ୱୟ କ୍ରୀତ ।

ଦ୍ୱିଶାଳ—ବି.ବଂ. ଦୁଇଶାଳାଯୁକ୍ତ ।

ଦ୍ୱିଶିରାଃ—ପୁଂ. ବ. (ବ.ବ୍ରୀ) ଅଗ୍ନି, (ବି) ଯାହାର ଦୁଇମୁଣ୍ଡ ଅଛି ।

ଦ୍ୱିଶୀର୍ଷ—ପୁଂ.ବ. (ଦ୍ୱି+ଶୀର୍ଷ, ବ.ବ୍ରୀ) ଅଗ୍ନି, (ବଂ) ଯାହାର ଦୁଇମୁଣ୍ଡ ଅଛି ।

ଦ୍ୱିଶୀର୍ଷକ—ପୁଂ. ବ. ( ବ.ବ୍ରୀ ) ଅଗ୍ନି,

(ବ୍ରି°) ଦୁଇ ମସ୍ତକବିଶିଷ୍ଟ, (ସ୍ତ୍ରୀ) ଦ୍ୱିଶୀର୍ଷିକା ।
ଦ୍ୱିଶୂର୍ପ—ବି. ବ୍ରି°. ଦ୍ୱିଶୂର୍ପଦ୍ୱାରା କ୍ରୀତ, (ସ୍ତ୍ରୀ) ଦ୍ୱିଶୂର୍ପୀ ।
ଦ୍ୱିଶୃଙ୍ଗିକା—ସ୍ତ୍ରୀ.ବ. ମେଢ୍ରବଲ୍ଲୀ ।
ଦ୍ୱିଶୃଙ୍ଗୀ—ପୁଂ. ବ୍ରି°. ( ଦ୍ୱିଶୃଙ୍ଗ+ଇନ୍ ) ଦୁଇ ଶୃଙ୍ଗଯୁକ୍ତ ।
ଦ୍ୱିଷ୍—ବି. ( ଦ୍ୱିଷ୍ + କ,କ୍ୱିପ୍ ) ଶତ୍ରୁ, (ବ୍ରି°) ଦ୍ୱେଷ୍ଟା ।
ଦ୍ୱିଷନ୍ତ—ପୁଂ. ବ. ( ଦ୍ୱିଷ୍+କ.ଅନ୍ତ ) ବୈରୀ, ଶତ୍ରୁ, (ବ୍ରି°) ଦ୍ୱେଷକାରୀ, (ସ୍ତ୍ରୀ) ଦ୍ୱିଷତୀ ।
ଦ୍ୱିଷନ୍ତପ—ବ୍ରି°.(ଦ୍ୱିଷଂ + ତପ+କ.ଅ) ଯେ ଶତ୍ରୁକୁ ପୀଡ଼ାଦିଏ, (ବ)ଚନ୍ଦ୍ର ।
ଦ୍ୱିଷଷ୍ଟ—ବ୍ରି°. (ଦ୍ୱିଷଷ୍ଟି+ ପୂରଣାର୍ଥେ.-ଅ) ଦ୍ୱାଷଷ୍ଟ ଦେଖ ।
ଦ୍ୱିଷଷ୍ଟି—ବ ଓ ବ୍ରି°. ଦ୍ୱାଷଷ୍ଟି ଦେଖ ।
ଦ୍ୱିଷଷ୍ଟିକ—ବି ବ୍ରି°. ଦ୍ୱିଷଷ୍ଟିଦିନ ବ୍ୟାପୀ ଭୃତ. ଭୃତ ଓ ଭୃତ୍ୟ ।
ଦ୍ୱିଷେଣ୍ୟ—ବି.ବ୍ରି°. (ଦ୍ୱିଷ+ ଏଣ୍ୟକ୍+ କୃତ୍) ଦ୍ୱେଷଶୀଳ, ଯାହାର ଦ୍ୱେଷକରିବା ସ୍ୱଭାବ ।
ଦ୍ୱିଷ୍ଟ—ବି. ବ୍ରି°. (ଦ୍ୱିଷ୍+ମିଂ.ତ) ଯାହା ପ୍ରତି ଶତ୍ରୁତାଚରଣ କରି ଯାଇଥାଏ, ଘୃଣିତ, (କ୍ଲୀ) ତାମ୍ର, (ସ୍ତ୍ରୀ) ଦ୍ୱିଷ୍ଟା ।
ଦ୍ୱିଷ୍ଠ—ବି. ବ୍ରି°. (ଦ୍ୱି+ସ୍ଥା+କ.ଅ) ଯେ ଦୁଇଆଡ଼େ ଥାଏ, (ସ୍ତ୍ରୀ) ଦ୍ୱିଷ୍ଠା ।
ଦ୍ୱିସପ୍ତ—ବ ଓ ବ୍ରି°. ଚଉଦ ।
ଦ୍ୱିସପ୍ତତ—ବି.ବ୍ରି°. ଦ୍ୱାସପ୍ତତ ଦେଖ ।
ଦ୍ୱିସପ୍ତତି—ବ ଓ ବ୍ରି°. ଦ୍ୱାସପ୍ତତିଦେଖ ।
ଦ୍ୱିସପ୍ତତିତମ—ବି. ବ୍ରି°. ୭୨ ସଂଖ୍ୟାର ପୂରଣ ।
ଦ୍ୱିସପ୍ତଧା—ଅବ୍ୟ. ଦ୍ୱିସପ୍ତପ୍ରକାର ।
ଦ୍ୱିସପ୍ତାହ—ବ. ଏକପକ୍ଷ, ପନ୍ଦରଦିନ କାଳ ।
ଦ୍ୱିସମ—ବି. ବ୍ରି°. ( ଦ୍ୱି+ସମ,ବ.ବ୍ରୀ ) ଦୁଇସମାନ ଭାଗବିଶିଷ୍ଟ, (ବ) ଦୁଇବର୍ଷ ପରିମାଣ ।
ଦ୍ୱିସମବିଭୁଜ—ବ.ସମଦ୍ୱିବାହୁତ୍ରିଭୁଜ ।
ଦ୍ୱିସହସ୍ର—ବ ଓ ବ୍ରି°. ୨୦୦୦. ଦୁଇହଜାର ।
ଦ୍ୱିସହସ୍ରାକ୍ଷ—ପୁଂ.ବ. ଅନନ୍ତ ।
ଦ୍ୱିସାମ୍ୱତ୍ସରିକ—ବି.ବ୍ରି°. ଦ୍ୱିବର୍ଷବ୍ୟାପୀ ଯାହା ହୋଇଅଛି ।
ଦ୍ୱିସାପ୍ତତିକ—ବି.ବ୍ରି°.ଦ୍ୱିସପ୍ତତି ବ୍ୟାପୀ ଯାହା ହୋଇଅଛି ।
ଦ୍ୱିସାହସ୍ର—ବି. ବ୍ରି°. ଦୁଇସହସ୍ରଦ୍ୱାରା କ୍ରୀତ, ଦୁଇସହସ୍ର ପରିମାଣ ।
ଦ୍ୱିସୀତ୍ୟ—ବି. ବ୍ରି°. ବାରଦ୍ୱୟ କୃଷ୍ଟକ୍ଷେତ୍ର, (ସ୍ତ୍ରୀ) ଦ୍ୱିସୀତ୍ୟା ।
ଦ୍ୱିସୁବର୍ଣ୍ଣ—ବି. ବ୍ରି°. ଦୁଇ ସୁବର୍ଣ୍ଣଦ୍ୱାରା କ୍ରୀତ, (ବ—ଦ୍ୱିଗୁ) ସୁବର୍ଣ୍ଣଦ୍ୱୟ ।
ଦ୍ୱିସ୍ତନା—ସ୍ତ୍ରୀ.ବ ଇଷ୍ଟକା ବୃତ୍ତିଭେଦ ।
ଦ୍ୱିସ୍ତାବା—ସ୍ତ୍ରୀ. ବ. ୨ଗୁଣ ପରିମାଣ, ବେଦୀ ।
ଦ୍ୱିସ୍ୱିନ୍ନାନ୍ନ—କ୍ଲୀ. ବ. (ଦ୍ୱି + ସ୍ୱିନ୍ନ+ ଅନ୍ନ) ସିଝିନା ଚାଉଳ, ଦ୍ୱିସିଦ୍ଧତଣ୍ଡୁଳ ।
ଦ୍ୱିହନ୍—ପୁଂ.ବ. ହସ୍ତୀ ।
ଦ୍ୱିହଲ୍ୟ—ବି.ବ୍ରି°. (ଦ୍ୱି + ହଲ+ମିଂ.ଯ) ଦୁଇଥର କର୍ଷିତ,ଦୋଓଡ଼ ଋଷହୋଇ ଥିବା, (ସ୍ତ୍ରୀ) ଦ୍ୱିହଲ୍ୟା ।
ଦ୍ୱିହାୟନ—ବି.ବ୍ରି°. (ଦ୍ୱି+ହାୟନ+ ଅ) ଯାହାର ବୟସ ଦ୍ୱିବର୍ଷ, ଦୁଇବର୍ଷିଆ, (ସ୍ତ୍ରୀ) ଦ୍ୱିହାୟନୀ, (କ୍ଲୀ.)ବର୍ଷଦ୍ୱୟ ।
ଦ୍ୱିହାୟନୀ—ସ୍ତ୍ରୀ. ବ. ( ବ.ବ୍ରୀ ଦ୍ୱିହାୟନ+ଈ) ଦୁଇବର୍ଷିଆ ମାଈ ବାଛୁରୀ, (ବ୍ରି°) ଦ୍ୱିହାୟନର ସ୍ତ୍ରୀଲିଙ୍ଗ ।
ଦ୍ୱିହୀନ—ବ. (ଦ୍ୱି+ହୀନ) ନପୁଂସକ ଲିଙ୍ଗ, କ୍ଲୀବଲିଙ୍ଗ ।
ଦ୍ୱିହୃଦୟା—ସ୍ତ୍ରୀ.ବ୍ରି°. (ବ.ବ୍ରୀ)ଗର୍ଭିଣୀ ।
ଦ୍ୱୀନ୍ଦ୍ରିୟଗ୍ରାହ୍ୟ—ପୁଂ. ବ. ଇନ୍ଦ୍ରିୟଦ୍ୱୟର ଗ୍ରହଣୀୟ ଗୁଣ,ତ୍ୱକ୍ ଓ ଚକ୍ଷୁର ଗ୍ରହଣଯୋଗ୍ୟ ପଦାର୍ଥ,ତୋୟୋଦ୍ଭୂତ ପୁଳିନମାତ୍ର, ଅବଲମ୍ବନ ସ୍ଥାନ ।
ଦ୍ୱୀପ—ବ (ଦ୍ୱି+ଅପ୍ ବା. ଦ୍ୱି+ଅପ୍+ ଅଂ) ଟାପୁ, ଚତୁର୍ଦ୍ଦିଗ ଜଳବେଷ୍ଟିତ ଭୂଖଣ୍ଡ, ବ୍ୟାଘ୍ରଚର୍ମ, (ଗ୍ରା.ବ) ହସ୍ତୀ ।
ଦ୍ୱୀପକର୍ପୂର—ପୁଂ. ବ. ଚୀନ୍ କର୍ପୂର ।
ଦ୍ୱୀପକର୍ପୂରଜ—ପୁଂ. ବ. ଶ୍ରୀକର୍ପୂର, ଚନାକର୍ପୂର ।
ଦ୍ୱୀପଖର୍ଜ୍ଜୁର—କ୍ଲୀ. ବ. ମହାପାରାବତ ।
ଦ୍ୱୀପଜ—କ୍ଲୀ. ବ. (ଦ୍ୱୀପ+ଜନ୍+ଅ) ମହାପାରାବତ ।
ଦ୍ୱୀପନାଥ – ବ. (ଦ୍ୱୀପ+ନାଥ) ୬ତତ୍; ରାଜା, ହସ୍ତୀଶ୍ରେଷ୍ଠ ।
ଦ୍ୱୀପବତ୍—ପୁଂ. ବ. ସମୁଦ୍ର, ନଦ ।
ଦ୍ୱୀପବତୀ—ସ୍ତ୍ରୀ.ବ. (ଦ୍ୱୀପ+ବତ୍+ ଈ) ନଦୀବିଶେଷ, ଭୂମି ।
ଦ୍ୱୀପବାନ୍—ପୁଂ. ବ୍ରି°. ( ଦ୍ୱୀପ + ବତ୍ ) ଦ୍ୱୀପବିଶିଷ୍ଟ,ଯହିଁରେ ଅନେକ ଦ୍ୱୀପ ଅଛି, (ବ) ସମୁଦ୍ର, ନଦ ।
ଦ୍ୱୀପଶତ୍ରୁ—ପୁଂ. ବ. ( ଦ୍ୱୀପ + ଶତ୍ରୁ ) ଶତାବରୀ ।
ଦ୍ୱୀପସ୍ତମ୍ଭ—ଗ୍ରା. ବ. ଆଲୋକ ସ୍ତମ୍ଭ ।
ଦ୍ୱୀପାନ୍ତର—କ୍ଲୀ. ବ. (ନିତ୍ୟ) ଆଉ ଗୋଟିଏ ଦ୍ୱୀପ, (ଗ୍ରା.ବ-ବ.ଗ୍ରା) କଳାପାଣି, ଅପରାଧୀ ବ୍ୟକ୍ତିକୁ ଗୋଟିଏ ଦ୍ୱୀପକୁ ପଠାଇବା ରୂପ ଦଣ୍ଡ ।
ଦ୍ୱୀପାନ୍ତରବର୍ତ୍ତ – ସ. ବ. ଚୋପଚିନି ଦେଖ ।
ଦ୍ୱୀପିକା—ସ୍ତ୍ରୀ. ବ. ( ଦ୍ୱୀପ+କ+ଆ ) ଶତାବରୀ ।
ଦ୍ୱୀପୀ—ପୁଂ. ବ. (ଦ୍ୱୀପ + ଇନ୍) ଚିତାବାଘ, ଚିତ୍ରକଗୁଳ୍ମ, (ସ୍ତ୍ରୀ) ଦ୍ୱୀପିନୀ ।
ଦ୍ୱୀପୀନଖ—ପୁଂ. ବ. ବ୍ୟାଘ୍ରନଖ,ବ୍ୟାଳନଖ ।
ଦ୍ୱୀପୀଶତ୍ରୁ—ପୁଂ. ବ. ଶତମୂଳୀ ।
ଦ୍ୱୀପ୍ୟ—ବ୍ରି°. (ଦ୍ୱୀପ + ଯ) ଦ୍ୱୀପଭବ, (ପୁଂ.ବ) ରୁଦ୍ର ।
ଦ୍ୱୀଶ—ବି. ବ୍ରି°. (ଦ୍ୱି+ଈଶ) ବ.ବ୍ରୀ; ଦ୍ୱିସ୍ୱାମିକ, ଯେ ଦୁଇଜଣର ବା ବସ୍ତୁର ମାଲିକ ଅଛନ୍ତି, ଦୁଇଦେବତାଙ୍କ ପାଇଁ ଉଦ୍ଦିଷ୍ଟ ଚରୁ; (ପୁଂ.ବ) ଦୁଇସ୍ତ୍ରୀର ସ୍ୱାମୀ, ବିଶାଖା ନକ୍ଷତ୍ର, (ସ୍ତ୍ରୀ) ଦ୍ୱୀଶା ।
ଦ୍ୱ୍ୟଚ(ଦ୍ୱ୍ୟ)ଚ—ପୁଂ. ବ. ଋକ୍ଦ୍ୱୟ ଯୁକ୍ତ

ସୂକ୍ତାନ୍ତ ମନ୍ତ୍ରଭେଦ ।

**ଦ୍ୱେଧା**—ଅବ୍ୟ.(ଦ୍ୱି + ଧା ଚ୍,ନିପାତନ) ଦୁଇପ୍ରକାର, ଦୁଇବାର ।

**ଦ୍ୱେଷ୍**—କ୍ଲୀ. ବି. ଦ୍ୱେଷ୍ଟା ।

**ଦ୍ୱେଷ**—ପୁଂ. ବି. (ଦ୍ୱିଷ୍ + ଘଞ୍,ଅ) ବୈର, ଶତ୍ରୁତା, ଘୃଣା, ହିଂସା, ଈର୍ଷା, କ୍ରୋଧ, ପ୍ରତିହିଂସା, ବିରକ୍ତି, ଚିଡ଼ ।

**ଦ୍ୱେଷଣ**—କ୍ଲୀ. ବି. (ଦ୍ୱିଷ୍ + ଭା,ଅନ) ବୈରାଚରଣ, ଶତ୍ରୁତାଚରଣ, ପ୍ରତିହିଂସା-ନେବା, ପୁଂ.ବି; (ଦ୍ୱିଷ୍ + କ,ଅନ) ଦ୍ୱେଷା ।

**ଦ୍ୱେଷପକ୍ଷ**—ପୁଂ. ବି. ଦ୍ୱେଷର ଅବାନ୍ତର ଶତ୍ରୁ ।

**ଦ୍ୱେଷୀ**—ପୁଂ. ବିଂ. (ଦ୍ୱେଷ + ଇନ୍) ପ୍ରତିହିଂସା ପରାୟଣ, ହିଂସକ, ଈର୍ଷା-ଯୁକ୍ତ, ଶତ୍ରୁଭାବାପନ୍ନ, (ବି) ଶତ୍ରୁ, (ସ୍ତ୍ରୀ) ଦ୍ୱେଷିଣୀ ।

**ଦ୍ୱେଷ୍ଟା**—ପୁଂ.ବିଂ. (ଦ୍ୱିଷ୍ + ତୃ) ଶତ୍ରୁତା-ଚରଣକାରୀ, ଯେ ହିଂସା କରେ, ହିଂସ୍ର, ଘୃଣାକାରୀ, (ବି) ଶତ୍ରୁ, ବିରୋଧୀ, (ସ୍ତ୍ରୀ) ଦ୍ୱେଷ୍ଟ୍ରୀ ।

**ଦ୍ୱେଷ୍ୟ**—ପୁଂ. ବିଂ. (ଦ୍ୱିଷ୍ + ର୍ଣ୍ଣ.ଯ) ବିଦ୍ୱେଷାର୍ହ, ଘୃଣ୍ୟ,(ବି)ଦ୍ୱେଷରପାତ୍ର, ବୈରୀ, ଶତ୍ରୁ, (ସ୍ତ୍ରୀ) ଦ୍ୱେଷ୍ୟା ।

**ଦ୍ୱୈଗୁଣିକ**—କ୍ଲୀ. ବି. (ଦ୍ୱିଗୁଣ + ଇକ) ସୁଦଖୋର, ଯେ ଋଣ ଦେଇ ଅଧିକ ସୁଦ ନିଏ ।

**ଦ୍ୱୈଗୁଣ୍ୟ**—କ୍ଲୀ. ବି. (ଦ୍ୱିଗୁଣ + ଷ୍ଣ.ଯ) ଦ୍ୱିଗୁଣ ପରିମାଣ ।

**ଦ୍ୱୈତ**—କ୍ଲୀ. ବି. (ଦ୍ୱି + ଇତ= ଦ୍ୱୀତ + ଅ) ବ.ସଂ; ଦୁଇପଦାର୍ଥର ଅସ୍ତିତ୍ୱ,ଦ୍ୱିବିଧତ୍ୱ,ଦ୍ୱିତ୍ୱ,ଦ୍ୱିଗୁଣକରଣ, ଦ୍ୱିତ୍ୱକରଣ, ଈଶ୍ୱର ଓ ସୃଷ୍ଟି ମଧ୍ୟରେ ସମ୍ପର୍କ, ଆତ୍ମାସଙ୍ଗେ ଶରୀରର ସମ୍ବନ୍ଧ-ସ୍ଥାପନ,ଦ୍ୱୈତବନ;ବନ,ଯୁଗ୍ମ, ଯୁଗଳ, ଭେଦଭାବ, ଅଜ୍ଞାନ, ଦ୍ୱୈତବାଦ,(ସ୍ତ୍ରୀ) ଦ୍ୱୈତା,(ବି.) ଦ୍ୱୈତବାଦୀ, ଦ୍ୱି + ତ) ଦୁଇ ସମ୍ବନ୍ଧୀୟ, ଯୁଗ୍ମ ।

**ଦ୍ୱୈତଜ୍ଞାନ**—ବି. ଦ୍ୱୈତବାଦ ଦେଖ ।

**ଦ୍ୱୈତବନ**—କ୍ଲୀ. ବି. (କ.ଧା.)ସରସ୍ୱତୀ-ନଦୀତଟସ୍ଥ ଶୋକ ମୋହରହିତ ବନ-ବିଶେଷ ।

**ଦ୍ୱୈତବାଦ**—ପୁଂ.ବି.(କ.ଧା. ବା ଷଷ୍ଠୀ-ତତ୍ପୁ) ଦ୍ୱିବିଧତ୍ୱ ସ୍ୱୀକାର, ଜୀବାତ୍ମ ଓ ପରମାତ୍ମାଙ୍କର ଭିନ୍ନତା କଥନ ।

**ଦ୍ୱୈତବାଦୀ**—ପୁଂ. ବିଂ.(ଦ୍ୱୈତ + ବଦ୍ + କ.ଇନ୍) ଦ୍ୱିବିଧତ୍ୱ ସ୍ୱୀକାରକାରୀ, (ସ୍ତ୍ରୀ) ଦ୍ୱୈତବାଦିନୀ ।

**ଦ୍ୱୈତମତ**—ବି. ଦ୍ୱୈତବାଦ ଦେଖ ।

**ଦ୍ୱୈତଶାସନ**—କ୍ଲୀ.ବି.(ଆଧୁନିକ ରାଜନୀତିକ ପରିଭାଷା) ରାଜାଙ୍କ ଓ ପ୍ରଜା ମତ ଉଭୟରେ ପରିଚାଳିତ ଶାସନ-ପ୍ରଣାଳୀ ।

**ଦ୍ୱୈତହଂସ**—(ପ୍ରା.ସିଂହଭୂମ ଓ. ସରାଇ-କଲା ରାଜଦରବାରର ଚିଠିପତ୍ର ଓ ହୁକୁମ ନାମାରେ ଅଙ୍କିତ ଦୁଇଟି ହଂସର ସଙ୍କେତ ବା ଚିହ୍ନ ।

**ଦ୍ୱୈତାଦ୍ୱୈତ**—କ୍ଲୀ. ବି. (ଦ୍ୱନ୍ଦ୍ୱ) ଦ୍ୱୈତ ଓ ଅଦ୍ୱୈତ, ଜୀବ ଓ ଈଶ୍ୱରଙ୍କର ପ୍ରଭେଦ ।

**ଦ୍ୱୈତୀ**—ପୁଂ. ବିଂ. (ଦ୍ୱୈତ + ଇନ୍ ଦ୍ୱୈତବାଦୀ, (ସ୍ତ୍ରୀ) ଦ୍ୱୈତିନୀ ।

**ଦ୍ୱୈତୀୟିକ**—ତ୍ରି. ବିଂ.(ଦ୍ୱିତୀୟ + ଇକ) ଦ୍ୱିତୀୟ, (ସ୍ତ୍ରୀ) ଦ୍ୱୈତୀୟିକୀ ।

**ଦ୍ୱୈଧମ୍**—ଅବ୍ୟ.ପ୍ରକାରଦ୍ୱୟ,ଦୁଇପ୍ରକାର

**ଦ୍ୱୈଧ**—ବି. (ଦ୍ୱିଧା + ଅ) ଦୁଇପ୍ରକାର, ଦ୍ୱିଧାହେବା ଅବସ୍ଥା, ଅମେଳ, ସଂଶୟ, ସନ୍ଦେହ, ପ୍ରଭେଦ, ପାର୍ଥକ୍ୟ, ମତ-ଭେଦ, ମତପାର୍ଥକ୍ୟ, ପରସ୍ପର ବିରୋଧ ରାଜନୀତି ଗୁଣ ବିଶେଷ, ( ବି ) ଦୁଇ ଭାଗରେ ବିଭକ୍ତ,ଦ୍ୱିଗୁଣ ।

**ଦ୍ୱୈଧୀକରଣ**—ବି. (ଦ୍ୱୈଧ + ଚ୍ୱି + କରଣ)ଦୁଇଖଣ୍ଡ ବା ଭାଗରେ ବିଭକ୍ତୀ-କରଣ, (ବିଂ) ଦ୍ୱୈଧୀକୃତ ।

**ଦ୍ୱୈଧୀଭାବ**—ପୁଂ. ବି.(ଦ୍ୱୈଧ + ଚ୍ୱି + ଭାବ) ଅନ୍ତରର ଭାବ ଗୋପନ କରି ମୁଖରେ ଅନ୍ୟଭାବ ପ୍ରକାଶ କରିବା, ସନ୍ଦେହ, କର୍ତ୍ତବ୍ୟ ବା ମତର ଅସ୍ଥିରତା, କପଟାଚାର, ଦୋକାବୁଡ଼ିଆ ଗୁଣ ।

**ଦ୍ୱୈପ**—ତ୍ରି. ବିଂ. ( ଦ୍ୱୀପ + ଅ ) ଦ୍ୱୀପସମ୍ବନ୍ଧୀୟ, ବ୍ୟାଘ୍ରଚର୍ମନିର୍ମିତ, କ୍ଲୀ.ବି— (ଦ୍ୱୀପିନ୍ + ଅ ) ବ୍ୟାଘ୍ରଚର୍ମ, (ପୁଂ.ବି.) ବ୍ୟାଘ୍ରଚର୍ମାବୃତ ରଥ, (ସ୍ତ୍ରୀ) ଦ୍ୱୈପୀ ।

**ଦ୍ୱୈପସାଗର**—ପୁଂ. ବି.(କ.ଧା)ଯେଉଁ ସମୁଦ୍ରରେ ବହୁଦ୍ୱୀପପୁଞ୍ଜ ଏକତ୍ରିତ ହୋଇଥାଏ ।

**ଦ୍ୱୈପକ**—ପୁଂ. ବି. ଦ୍ୱୀପଭବ, ଯାହା ଦ୍ୱୀପାନ୍ତରେ ଜନ୍ମେ ।

**ଦ୍ୱୈପଦିକ**—ପୁଂ.ବି.ଦ୍ୱୀପଦାଧ୍ୟାୟୀ, ଯେ ଦ୍ୱିପଦା ଋକ୍ ଜାଣିଅଛି ।

**ଦ୍ୱୈପାୟନ**—ପୁଂ. ବି.(ଦ୍ୱୀପ + ଅୟନ) ମହାଭାରତ ପ୍ରଣେତା ବ୍ୟାସଦେବ, ଦ୍ୱୀପବାସୀ ବ୍ୟକ୍ତି,ହ୍ରଦ ବିଶେଷ, (ପୁଂ. ବି) ଦ୍ୱୀପବାସୀ, ଦ୍ୱୀପରେ ଜାତ, (ସ୍ତ୍ରୀ) ଦ୍ୱୈପାୟନୀ ।

**ଦ୍ୱୈପାରାୟଣିକ**—ପୁଂ.ବି. ଯେଉଁମାନେ ଦୁଇଟି ପାରାୟଣ ବ୍ରତାନୁଷ୍ଠାନ କରି-ଅଛନ୍ତି ।

**ଦ୍ୱୈପେୟ**—ବିଂ. (ଦ୍ୱୀପ + ଏୟ) ଦ୍ୱୀପ-ଜାତ, (ବି—ବୈଦିକ) କ ଜୁପଟି ତେଲ ।

**ଦ୍ୱୈପ୍ୟ**—ତ୍ରି. ବିଂ. (ଦ୍ୱୀପ + ଯ) ଦ୍ୱୀପ-ସମ୍ବନ୍ଧୀୟ ।

**ଦ୍ୱୈବାର୍ଷିକ**—ତ୍ରି.ବିଂ. ଦ୍ୱିବାର୍ଷିକ ଦେଖ ।

**ଦ୍ୱୈବିଧ୍ୟ**—କ୍ଲୀ. ବି. ( ଦ୍ୱିବିଧ + ଷ୍ଣ.ଯ ) ଦ୍ୱିରୂପତ୍ୱ, ଦ୍ୱିବିଧତ୍ୱ, ଦୋଦୋପାଞ୍ଚ, ଦ୍ୱିପ୍ରକାରତା ।

**ଦ୍ୱୈଭାବ୍ୟ**—ବିଂ. ଦ୍ୱିଭାବଯୁକ୍ତ,ଦ୍ୱିସ୍ୱଭାବ-ଯୁକ୍ତ, ଦୁଇଭାଗେ ବିଭକ୍ତ ।

**ଦ୍ୱୈମାତୁର**—ପୁଂ. ବିଂ.(ଦ୍ୱି + ମାତୃ + ଅପତ୍ୟାର୍ଥେ. ଅ) ଯେଉଁ ସନ୍ତାନର ଦୁଇଟି ମାତା,ଯେଉଁ ସନ୍ତାନ ଦୁଇଟି-ଙ୍କର ପିତା ଏକ କିନ୍ତୁ ମାତା ପୃଥକ୍, (ବି)ଗଣେଶ,ଜରାସନ୍ଧ,(ସ୍ତ୍ରୀ)ଦ୍ୱୈମାତୁରୀ

**ଦ୍ୱୈମାତୃକ**—ତ୍ରି. ବିଂ. (ଦ୍ୱି + ମାତୃ + କ,ବ.ବ୍ରୀ ) ବର୍ଷା ଓ ନଦୀଜଳ ଦ୍ୱାରା ଯେଉଁ ଦେଶରେ ଶସ୍ୟାଦି ଉତ୍ପାଦିତ

ହୁଏ,(ସ୍ତ୍ରୀ) ଦ୍ୱୈମାତୃକା । [ପୁତ୍ର ।
**ଦ୍ୱୈମିତ୍ରି**—ପୁଂ,ବ. ଦୁଇମିତ୍ର ବା ବନ୍ଧୁଙ୍କ
**ଦ୍ୱୈମୁଷ୍ୟାୟୁଣ**—ପୁଂ. ବ. ଅନ୍ନଦାତା ପିତା ଓ ପାଳକ ପିତାଙ୍କର ଏକମାତ୍ର ଉତ୍ତରାଧିକାରୀ ।
**ଦ୍ୱୈସୃଦକାଳୀ**—ବ. ଦ୍ୟୁହ୍ନକାଳ ଜାତର ଭାବ,ଯାହା ଦୁଇଦିନରେ ହୁଏ ତ ହାର ଭାବ ।
**ଦ୍ୱୈସୃହ୍ନିକ**—ନି.ବଂ.ଯାହା ଦୁଇଦିନେ ହୁଏ,ଯାହାର ବୟସ ଦୁଇଦିନ ମାତ୍ର ।
**ଦ୍ୱୈସ୍ୱାହାବକ**—ନି. ବଂ. ଦୁଇ ଆହା-ବରୁ ଯାହା ହୁଏ ।
**ଦ୍ୱୈଯୋଗ୍ୟ**—ବଂ. ଦ୍ୱନ୍ଦ୍ୱଯୁକ୍ତ ।
**ଦ୍ୱୈରଥ**—କ୍ଲୀ. ବ.(କ.ଧା) ଦୁଇରଥୀଙ୍କ ଯୁଦ୍ଧ, ଦୁଇବ୍ୟକ୍ତି ରଥଚଢ଼ି ଯେଉଁ ଯୁଦ୍ଧ କରନ୍ତି ।
**ଦ୍ୱୈରଥଯୁଦ୍ଧ**—ବ.(ଦ୍ୱି+ରଥ+ଯୁଦ୍ଧ) ଦୁଇଟି ରଥୀଙ୍କ ମଧ୍ୟରେ ଦ୍ୱନ୍ଦ୍ୱଯୁଦ୍ଧ ।
**ଦ୍ୱୈରାଜ୍ୟ**—କ୍ଲୀ. ବ. ଦୁଇଟି ରାଜାଙ୍କ ମଧ୍ୟେ ବିଭକ୍ତ ରାଜ୍ୟ ।
**ଦ୍ୱୈରାତ୍ରିକ**--ନି. ବଂ.(ଦ୍ୱି + ରାତ୍ରି + କ) ଦ୍ୱିରାତ୍ରି ସମ୍ବନ୍ଧୀୟ,ଦୁଇରାତ୍ରିରେ କୃତ ।
**ଦ୍ୱୈରାଶ୍ୟ**—କ୍ଲୀ.ବ.ଦ୍ୱିବିଧ ରାଶିଯୁକ୍ତତ୍ୱ ।
**ଦ୍ୱୈଶାଣ**--ନି.ବଂ.ଦୁଇଶାଣ ଦ୍ୱାରା କ୍ରୀତ ।
**ଦ୍ୱୈଷଣୀୟା**—ସ୍ତ୍ରୀ.ବ.ନାଗବଲ୍ଲୀ ଭେଦ ।
**ଦ୍ୱୈସମିକ**—ନି. ବଂ. ବର୍ଷଦ୍ୱୟଭବ, ଯାହା ଦୁଇବର୍ଷରେ ହୁଏ ।
**ଦ୍ୱୈହାୟନ**—କ୍ଲୀ. ବ. (ଦ୍ୱିହାୟନ+ଅ) ଦୁଇବର୍ଷ ବୟସପ୍ରାପ୍ତି ବା ତାହାର ଭାବ । [ ଦେଖ ।
**ଦ୍ୱୈହ୍ନିକ**—ଗ୍ରା.ବଂ.(ସ-ଦ୍ୱାହ୍ନିକ)ଦ୍ୟାହ୍ନିକ
**ଦ୍ୱ୍ୟଂଶ**—କ୍ଲୀ. ବ. ଭାଗଦ୍ୱୟ, ଦୁଇଭାଗ ।
**ଦ୍ୱ୍ୟକ୍ଷ**—ନି.ବଂ. (ବ.ବ୍ରୀ) ଲୋଚନଦ୍ୱୟ-ବିଶିଷ୍ଟ, (ସ୍ତ୍ରୀ) ଦ୍ୱ୍ୟକ୍ଷୀ ।
**ଦ୍ୱ୍ୟକ୍ଷର**—ବ.(ଦ୍ୱି + ଅକ୍ଷର;ବ.ବ୍ରୀ)ଦୁଇ ଅକ୍ଷରଯୁକ୍ତ ଶବ୍ଦ ବା ବର୍ଣ୍ଣ.ଦୁଇଅକ୍ଷର-ବିଶିଷ୍ଟ ପଦ ବା ଶବ୍ଦ, ଅକ୍ଷର ଦ୍ୱୟାତ୍ମକ ମନ୍ତ୍ରାଦି ।
**ଦ୍ୱ୍ୟକ୍ଷରୀ**--ଗ୍ରା.ବ.ବାକ୍ୟାଲଙ୍କାର ବିଶେଷ ।

**ଦ୍ୱ୍ୟଙ୍ଗୁଳ**—ନି.ବଂ.(ଦ୍ୱି+ଆଙ୍ଗୁଳ;ବ.ବ୍ରୀ) ଦୁଇଆଙ୍ଗୁଳ ପରିମିତ, (କ୍ଲୀ,ବ—ଦ୍ୱିଗୁ) ଦୁଇଆଙ୍ଗୁଳ ଦୈର୍ଘ୍ୟ ।
**ଦ୍ୱ୍ୟଞ୍ଜଳ**—ନି. ବଂ.(ଦ୍ୱି+ଅଞ୍ଜଳ;ବ.ବ୍ରୀ) ଦୁଇଆଞ୍ଜୁଳ ପରିମିତ ।
**ଦ୍ୱ୍ୟଣୁକ**—ବଂ. (ଦ୍ୱି+ଅଣୁ+କ) ଦୁଇ ପରମାଣୁର ସମଷ୍ଟିରେ ଗଠିତ, (ବି) ଦୁଇଅଣୁର ସମାହାର ।
**ଦ୍ୱ୍ୟର୍ଥ**—ନି. ବଂ. ( ଦ୍ୱି + ଅର୍ଥ;ବ.ବ୍ରୀ ) ଦୁଇପ୍ରକାର ଅର୍ଥବିଶିଷ୍ଟ,(ବି)ଦ୍ୱିବିଧଅର୍ଥ
**ଦ୍ୱ୍ୟର୍ଥବୋଧକ**—ବଂ. ଯହିଁରୁ ଦୁଇଟି ଅର୍ଥ ବୁଝାଯାଏ, ଦୁଇଟି ଅର୍ଥବିଶିଷ୍ଟ ।
**ଦ୍ୱ୍ୟଶୀତ**—ବଂ. ଦ୍ୱ୍ୟଶୀତିତମ ଦେଖ ।
**ଦ୍ୱ୍ୟଶୀତି**—ସ୍ତ୍ରୀ. ବି ଓ ବଂ. (ମଧ୍ୟ-କ.ଧା) ବୟାଅଶୀ ।
**ଦ୍ୱ୍ୟଶୀତିତମ**—ନି.ବଂ.୮୨ ସ୍ଥାନୀୟ,(ସ୍ତ୍ରୀ) ଦ୍ୱ୍ୟଶୀତିତମୀ । [ ତାମ୍ର ।
**ଦ୍ୱ୍ୟଷ୍ଟ**—କ୍ଲୀ.ବ.(ଦ୍ୱି+ଅଶ+ତ)ତାମ୍ର,
**ଦ୍ୱ୍ୟହ**—ପୁଂ.ବ. ଦିନଦ୍ୱୟ,(ଦ୍ୱି+ଅହନ୍) ଦୁଇଦିନକାଳ ।
**ଦ୍ୱ୍ୟହ୍ନିକ**—ବଂ. (ଦ୍ୱ୍ୟହ + ଇକ)ଦିନଦ୍ୱୟ ଭବ, ଦୁଇଦିନ ଛଡ଼ା ଘଟୁଥିବା ।
**ଦ୍ୱ୍ୟହୀନ**—ନି. ବଂ. ଦିନଦ୍ୱୟ ସାଧ୍ୟ, (ପୁଂ ବ. ) ଋତୁଭେଦ ।
**ଦ୍ୱ୍ୟାକ୍ଷ୍ୟାୟଣ**—ପୁଂ. ବ. ଋଷିଭେଦ ।
**ଦ୍ୱ୍ୟାଚିତ**—ନି. ବଂ.ଅବହାରକ, ପାଚକ, ଆହାରକ ।
**ଦ୍ୱ୍ୟାଢ଼କ**—ନି ବଂ. ଆଢ଼କଦ୍ୱୟ ଅବ-ହାରକ, ଆଢ଼କଦ୍ୱୟ ପାଚକ ।
**ଦ୍ୱ୍ୟାତ୍ମକ**—ପୁଂ.ବଂ.(ଦ୍ୱି+ଆତ୍ମନ୍+ଅକ) ଦୁଇଆତ୍ମା ବା ସ୍ୱରୂପବିଶିଷ୍ଟ, ( ବି ) ( ଜ୍ୟୋତିଷ ) ମିଥୁନ, କନ୍ୟା, ଧନୁ ଓ ମୀନରାଶି, (ସ୍ତ୍ରୀ) ଦ୍ୱ୍ୟାତ୍ମିକା ।
**ଦ୍ୱ୍ୟାତ୍ମବାଦ**—ବ. (ଦ୍ୱି+ଆତ୍ମନ୍+ବାଦ) ଦ୍ୱୈତବାଦ ଦେଖ ।
**ଦ୍ୱ୍ୟାତ୍ମବାଦୀ**—ପୁଂ.ବଂ. (କ.ଧା—ଦ୍ୱ୍ୟାତ୍ମନ୍ +ବଦ୍+କ.ଇନ୍ ) ଦ୍ୱୈତବାଦୀ ଦେଖ, (ସ୍ତ୍ରୀ) ଦ୍ୱ୍ୟାତ୍ମବାଦିନୀ ।
**ଦ୍ୱ୍ୟାମୁଷ୍ୟାୟଣ**—ପୁଂ. ବ. ( ତଦ୍ଧିତ )

ଦ୍ୱୈମୁଷ୍ୟାୟଣ ଦେଖ, ଦତ୍ତକ ପୁତ୍ର-ବିଶେଷ ।
**ଦ୍ୱ୍ୟାୟୁଷ**—କ୍ଲୀ.ବ.ଦ୍ୱିଗୁଣିତ ଆୟୁଃକାଳ ।
**ଦ୍ୱ୍ୟାହ୍ନିକ**—ନି. ବଂ. ( ଦ୍ୱ୍ୟହ+ଇକ ) ଦ୍ୱ୍ୟାହ୍ନିକ ଦେଖ ।
**ଦ୍ୱ୍ୟେକ**—ନି.ବଂ. ଦୁଇ ବା ଏକ ଏପରି ଖ୍ୟାତ (ପଦାର୍ଥ) ।
**ଦ୍ୱ୍ୟୋଗ**—ପୁଂ. ଯୋଗଦ୍ୱୟ ।
**ଦ୍ୱ୍ୟୋପଶ**—ପୁଂ. ବ. ପଶୁ ।
**ଦ୍ୟନ୍ତୁ**—ଗ୍ରା. (ପ୍ରାଚୀନପଦ୍ୟ) କ୍ରି. ପ୍ରଦାନ କରନ୍ତୁ ।
**ଦ୍ୟନ୍ତୁ**—ଗ୍ରା. (ପ୍ରାଚୀନ ପଦ୍ୟ) କ୍ରି. (ସେ ବା ସେମାନେ) ଦିଅନ୍ତୁ ।
**ଦ୍ୟାଇବା**—ଗ୍ରା. (ପଦ୍ୟ) କ୍ରି. ଦିଆଇବା, ଦାନକରାଇବାକୁ ପ୍ରବର୍ତ୍ତାଇବା ।
**ଦ୍ୟାନ୍(ଇତ୍ୟାଦି)**—ଦେଓ୍ୱାନ୍ ଇତ୍ୟାଦି ଦେଖ ।
**ଦ୍ୟାବାକ୍ଷମା**—ସ୍ତ୍ରୀ.ଦ୍ୟାବାପୃଥିବୀ ଦେଖ ।
**ଦ୍ୟାବାପୃଥିବୀ**—ସ୍ତ୍ରୀ. ବ. (ଦ୍ୱନ୍ଦ୍ୱ) ପୃଥିବୀ ଓ ଆକାଶର ମଧ୍ୟବର୍ତ୍ତୀ ସ୍ଥାନ, ଶୂନ୍ୟ, ଅନ୍ତରୀକ୍ଷ, ସ୍ୱର୍ଗ ଓ ମର୍ତ୍ତ୍ୟ ।
**ଦ୍ୟାବାଭୂମି**—ସ୍ତ୍ରୀ. ବ. ସ୍ୱର୍ଗ ଓ ପୃଥିବୀ ।
**ଦ୍ୟାବଦ୍ୟବ**—ସ୍ତ୍ରୀ. ବ. ଦିବସ ।
**ଦ୍ୟାମାକ୍ଷମା**—ସ୍ତ୍ରୀ. ବ. ସ୍ୱର୍ଗ ଓ ପୃଥିବୀ, ଏହିଶବ୍ଦ ଦ୍ୱିବଚନାନ୍ତ ।
**ଦ୍ୟୁ**—କ୍ଲୀ. ବ. ( ଦ୍ୟୁ+ଅ. ଦିବ୍+କ. କ୍ୱିପ୍ ) ଆକାଶ, ସ୍ୱର୍ଗ, ଦିନ, ଅଗ୍ନି, ସୂର୍ଯ୍ୟଲୋକ, (ପୁଂ) ସୂର୍ଯ୍ୟ, ଅଗ୍ନି ।
**ଦ୍ୟୁଗ**—ପୁଂ. ବଂ. (ଦ୍ୟୁ+ଗମ୍+କ.ଅ) ଆକାଶରେ ବିଚରଣକାରୀ, (ବି)ଗ୍ରହ, ପକ୍ଷୀ, (ସ୍ତ୍ରୀ) ଦ୍ୟୁଗା ।
**ଦ୍ୟୁଗଣ**—ପୁଂ.ବି. ଗ୍ରହମାନଙ୍କର ମଧ୍ୟଗତି ସାଧନାର୍ଥ ଦିନବୃନ୍ଦ ।
**ଦ୍ୟୁଚର**—ପୁଂ.ବଂ.( ଦ୍ୟୁ+ଚର୍+ଅ ) ଆକାଶଚର, ଖେଚର,(ବି) ଗ୍ରହ,ପକ୍ଷୀ, (ସ୍ତ୍ରୀ) ଦ୍ୟୁଚରୀ ।
**ଦ୍ୟୁଜ୍ୟା**—ସ୍ତ୍ରୀ. ବ. ଅହୋରାତ୍ର ବୃତ୍ତର ଦଳରୂପ ଜ୍ୟା ।
**ଦ୍ୟୁତି**—ପୁଂ.ବ.(ଦ୍ୟୁ+କ.କ୍ୱିପ୍)କିରଣ,

(ବି°) ଦ୍ୟୋତମାନ ।
ଦ୍ୟୁତ—ବି.ବି°. (ଦ୍ୟୁ+କ.ତ) ପ୍ରକାଶବାନ୍, ଦ୍ୟୋତବାନ୍,(ସ୍ତ୍ରୀ) ଦ୍ୟୁତା ।
ଦ୍ୟୁତାନ—ବି. ବି°. ( ଦ୍ୟୁତ + ଆନ ) ଦ୍ୟୋତନଶୀଳ ।
ଦ୍ୟୁତି—ସ୍ତ୍ରୀ.ବି. ( ଦ୍ୟୁ+ଭା.ତି+ଭା.ଇ ) ଦୀପ୍ତି, ତେଜଃ, ଆଲୋକ, କାନ୍ତି, ଶୋଭା, କିରଣ, (ପୁ°) ଋଷିବିଶେଷ, ରାମସମନ୍ତୁ ପୁତ୍ରବିଶେଷ ।
ଦ୍ୟୁତିକର—ପୁ°.ବି°.(ଦ୍ୟୁତି+କୃ+କ.ଅ) ଶୋଭାଜନକ, ଦୀପ୍ତିକାରକ, ଉଜ୍ଜ୍ୱଳ, (ବି)ଧ୍ରୁବଓ ଶୁକ୍ରତାରା.(ସ୍ତ୍ରୀ)ଦ୍ୟୁତିକରୀ ।
ଦ୍ୟୁତିତ—ବି°. ( ଦ୍ୟୁତି+ମି.ତ ) ଦୀପ୍ତିବିଶିଷ୍ଟ ।
ଦ୍ୟୁତିଧର—ପୁ°.ବି. (ଦ୍ୟୁତି+ଧୃ+କ.ଅ ୬ତତ୍)ବିଷ୍ଣୁ, ବି° ଦୀପ୍ତିବିଶିଷ୍ଟ,ଉଜ୍ଜ୍ୱଳ ।
ଦ୍ୟୁତିମାନ୍—ପୁ°.ବି°.(ଦ୍ୟୁତି+ମତୁ)ଦୀପ୍ତିଶୀଳ, (ପୁ°.ବି.) ସ୍ୱାୟମ୍ଭୁବ ମନୁଙ୍କର ପୁତ୍ର, ମହାଭାରତୋକ୍ତ ଶାଲ୍ୱଦେଶର ରାଜା, ପ୍ରିୟବ୍ରତ ରାଜାଙ୍କର ପୁତ୍ର, (ସ୍ତ୍ରୀ) ଦ୍ୟୁତିମତୀ।
ଦ୍ୟୁତିଲା—ସ୍ତ୍ରୀ.ବି.(ଦ୍ୟୁତି + ଲା+ଅ+ଆ) ଔଷଧିଭେଦ ।
ଦ୍ୟୁଧୁନୀ—ସ୍ତ୍ରୀ.ବି. ସ୍ୱର୍ଗନଦୀ, ଗଙ୍ଗା ।
ଦ୍ୟୁନ—କ୍ଳୀ.ବି. ( ଜ୍ୟୋତିଷ ) ଲଗ୍ନର ସପ୍ତମରାଶି ।
ଦ୍ୟୁନିବାସ—ପୁ°.ବି. ଦେବତା ।
ଦ୍ୟୁନିବାସୀ—ପୁ°.ବି°. (ଦ୍ୟୁ+ନି+ବସ+କ.ଇନ୍) ସ୍ୱର୍ଗବାସୀ,(ବି) ଦେବତା, (ସ୍ତ୍ରୀ) ଦ୍ୟୁନିବାସିନୀ । [ ଗ୍ରହ ।
ଦ୍ୟୁନିଶ—କ୍ଳୀ.ବି. (ଦ୍ୟୁ+ନିଶା) ଅହୋ·
ଦ୍ୟୁପତି—ପୁ°.ବି. (୬ତତ୍) ଇନ୍ଦ୍ର,ସୂର୍ଯ୍ୟ ।
ଦ୍ୟୁପଥ—ପୁ°.ବି.(ଦ୍ୟୁ+ପଥିନ୍, ୬ତତ୍) ଆକାଶପଥ ।
ଦ୍ୟୁମଣି—ପୁ°.ବି.( ୬ତତ୍ ) ଦିନମଣି, ସୂର୍ଯ୍ୟ,ମନ୍ଦାର,ଶୋଧିତତାମ୍ର,ଅର୍କବୃକ୍ଷ ।
ଦ୍ୟୁମତ୍—ବି. ବି°. କାନ୍ତିଯୁକ୍ତ ।
ଦ୍ୟୁମତ୍ସେନ—ପୁ°. ବି. ଶାଲ୍ୱଦେଶର ରାଜା, ସାବିତ୍ରୀଙ୍କ ଶ୍ୱଶୁର,ସତ୍ୟବାନଙ୍କ ପିତା ।
ଦ୍ୟୁମାନ୍—ପୁ°.ବି°. ( ଦ୍ୟୁ+ମତୁ ) ଆଭାଯୁକ୍ତ, (ସ୍ତ୍ରୀ) ଦ୍ୟୁମତୀ ।
ଦ୍ୟୁମଦ୍ଗାନ—କ୍ଳୀ.ବି. ସାମଗାନ ଭେଦ ।
ଦ୍ୟୁମସ୍ତ୍ରୀ—ସ୍ତ୍ରୀ. ବି. ବିଶ୍ୱକର୍ମାଙ୍କ କନ୍ୟା ସୂର୍ଯ୍ୟପତ୍ନୀ ।
ଦ୍ୟୁମ୍ନ—କ୍ଳୀ. ବି.(ଦ୍ୟୁ+ମ୍ନା+ମି.ଅ) ଧନ, ସାମର୍ଥ୍ୟ, ବଳ, ଅନ୍ନ, ଧାନ ।
ଦ୍ୟୁଲୋକ—ପୁ°. ବି. ( ମଧ୍ୟ+କ.ଧା ) ସ୍ୱର୍ଗଲୋକ ।
ଦ୍ୟୁବନ୍—ପୁ°.ବି. ସୂର୍ଯ୍ୟ, ସ୍ୱର୍ଗ ।
ଦ୍ୟୁଷତ୍—ପୁ°.ବି. (ଦ୍ୟୁ+ସିଦ୍+କ.ଅ) ଦେବତା, ନକ୍ଷତ୍ର, ଗ୍ରହ ।
ଦ୍ୟୁଷଦ—ପୁ°. ବି. (ଦ୍ୟୁ+ସିଦ୍+କ.କ୍ୱିପ୍) ଦେବ, ଦେବତା, ଗ୍ରହ ।
ଦ୍ୟୁସଦ୍ମନ୍—ପୁ°.ବି. ସ୍ୱର୍ଗ ।
ଦ୍ୟୁସରସ୍—କ୍ଳୀ.ବି.ସ୍ୱର୍ଗୀୟ ହ୍ରଦବିଶେଷ ।
ଦ୍ୟୁସରତ୍—ସ୍ତ୍ରୀ.ବି. ସ୍ୱର୍ଗନଦୀ,ମନ୍ଦାକିନୀ ।
ଦ୍ୟୁସିନ୍ଧୁ—ସ୍ତ୍ରୀ.ବି. ମନ୍ଦାକିନୀ ।
ଦ୍ୟୂ—ବି.ବି°. (ଦିବ୍+କ.କ୍ୱିପ୍) ଜୁଆଡ଼ି, ଦେବକ, କ୍ରୀଡ଼କ, ଅକ୍ଷଦ୍ୟୂ ।
ଦ୍ୟୂତ—କ୍ଳୀ. ବି. (ଦିବ୍+କ.ତ) ଜୁଆଖେଳ, ପଶାଖେଳ ।
ଦ୍ୟୂତକର—ପୁ°. ବି°. (ଦ୍ୟୂତ+କୃ+କ.ଅ—୬ତତ୍) ଜୁଆଡ଼ି, ଅକ୍ଷକ୍ରୀଡ଼କ ।
ଦ୍ୟୂତକାର—ବି.ବି°. ଦ୍ୟୂତକାରୟିତା, ଦ୍ୟୂତକର୍ତ୍ତା, ଯେ ଦ୍ୟୂତକ୍ରୀଡ଼ା କରେ ।
ଦ୍ୟୂତକାରକ—ପୁ°-ବି°. (ଦ୍ୟୂତ+କୃ+ଣିଚ୍,ଅକ) ଦ୍ୟୂତକାରୟିତା, ଯେ ଦ୍ୟୂତକ୍ରୀଡ଼ା କରେ ।
ଦ୍ୟୂତକୃତ୍—ପୁ°. ବି°.( ଦ୍ୟୂତ+କୃ+କ୍ୱିପ୍ ) ଦ୍ୟୂତକର, ଅକ୍ଷକ୍ରୀଡ଼କ ।
ଦ୍ୟୂତକ୍ରୀଡ଼ା—ବି. ଦ୍ୟୂତ ଦେଖ ।
ଦ୍ୟୂତଦାସ—ବି. ( ଦ୍ୟୂତ + ଦାସ ମପି—କ.ଧ ) ଜୁଆଖେଳରେ ଜିତାଳି ପକ୍ଷକୁ ମିଳିଥିବା ଦାସ ।
ଦ୍ୟୂତପୂର୍ଣ୍ଣିମା—ସ୍ତ୍ରୀ. ବି. କାର୍ତ୍ତିକପୂର୍ଣ୍ଣିମା, କୋଜାଗରୀ ପୂର୍ଣ୍ଣିମା, କୁମାରପୂର୍ଣ୍ଣିମା ।
ଦ୍ୟୂତପୌର୍ଣ୍ଣମାସୀ—ସ୍ତ୍ରୀ.ବି. କୋଜାଗର ପୂର୍ଣ୍ଣିମା ।
ଦ୍ୟୂତପ୍ରତିପଦ(ଦ୍.ଦା)—ସ୍ତ୍ରୀ. ବି. କାର୍ତ୍ତିକ ଶୁକ୍ଳ ପ୍ରତିପଦା ।
ଦ୍ୟୂତଫଳକ—ବି. ଯେଉଁ ପଟାଉପରେ ଜୁଆ ଖେଳାଯାଏ ।
ଦ୍ୟୂତବୀଜ—କ୍ଳୀ. ବି. (୬ତତ୍) କଉଡ଼ି, ଦ୍ୟୂତର କାରଣ ।
ଦ୍ୟୂତବୃତ୍ତି—ପୁ°.ବି°. (ବ.ବ୍ରୀ) ଜୁଆଡ଼ି, ଯେ ଜୁଆଖେଳ ପେଟ ପୋଷେ, (ସ୍ତ୍ରୀ. ବି.) ଜୁଆଖେଳିବା ଜୀବିକା, ଜୁଆ ବ୍ୟବସାୟୀ ।
ଦ୍ୟୂତବେଦୀ—ପୁ°.ବି. (ଦ୍ୟୂତ+ବିଦ୍+କ.ଇନ୍) ପାଶକ୍ରୀଡ଼ାଭିଜ୍ଞ,(ସ୍ତ୍ରୀ)ଦ୍ୟୂତବେଦିନୀ ।
ଦ୍ୟୂତବୈତଂସିକ—ପୁ°.ବି, ଯେ ପ୍ରାଣୀମାନଙ୍କର ଯୁଦ୍ଧ ଦେଖି ଜୀବନ କଟାଏ ।
ଦ୍ୟୂତସମାଜ—ପୁ°. ବି. ଅକ୍ଷକ୍ରୀଡ଼ାର ସ୍ଥାନ,ଯେଉଁଠାରେ ଜୁଆ ଖେଳାହୁଏ ।
ଦ୍ୟୂନ—ପୁ°.ବି°.(ଦିବ୍+କ.ତ)କ୍ରୀଡ଼କ, ( କ୍ଳୀ. ବି. ) ଲଗ୍ନର ସପ୍ତମରାଶି, କ୍ଷୀଣ, ( ସ୍ତ୍ରୀ ) ଦ୍ୟୂନା ।
ଦ୍ୟୋ—ସ୍ତ୍ରୀ. ବି. ( ଦିବ୍+ଅଧି,ଓ ) ସ୍ୱର୍ଗ, ଆକାଶ, ଅଷ୍ଟାବସୁବିଶେଷ ।
ଦ୍ୟୋକାର—ବି. ବି°. ପ୍ରାସାଦାଦିକର ଶିଳ୍ପୀଭେଦ, (ବି) ରାଜମିସ୍ତ୍ରୀ ।
ଦ୍ୟୋତ—ପୁ°. ବି. ( ଦ୍ୟୁତ + ଭା.ଅ ) ଆଲୋକ, ଦୀପ୍ତି, ଦ୍ୟୁତି, ସୂର୍ଯ୍ୟକିରଣ, ଝଟ୍ ।
ଦ୍ୟୋତକ—ପୁ°.ବି°. (ଦ୍ୟୁତ୍+କ.ଅକ) ଦୀପ୍ତିକ, ସୂଚକ,ପ୍ରକାଶକ, ଦୀପ୍ତିଶୀଳ, ଉଦ୍ବୋଧକ, (ସ୍ତ୍ରୀ) ଦ୍ୟୋତକା ।
ଦ୍ୟୋତନ—କ୍ଳୀ. ବି. (ଦ୍ୟୁତ+ଭା.ଅନ) ପ୍ରକାଶ, ଦୀପନ, ଉଦ୍ବୋଧନ, ଭାବର ପ୍ରକାଶ, ଦୀପ, ଦର୍ଶନ, ( ଦ—ଦ୍ୟୁତ.+କ.ଅନ ) ଦ୍ୟୋତକ, ପ୍ରକାଶକ, (ସ୍ତ୍ରୀ) ଦ୍ୟୋତନା ।
ଦ୍ୟୋତନ—ବି.ବି°. (ଦ୍ୟୁତ+କ.ଅନ) ଦ୍ୟୋତକ, ପ୍ରକାଶକ, ଦୀପ୍ତିକାରକ ।
ଦ୍ୟୋତମାନ—ବି.ବି°. (ଦ୍ୟୁତ+କ.-

ଆନ) ଶୋଭମାନ, ଦୀପ୍ୟମାନ, (ସ୍ତ୍ରୀ) ଦ୍ୟୋତମାନା ।

ଦ୍ୟୋତ—ବି. (ଦ୍ୟୁତ୍ + ଭା.ଇ) ଦୀପ୍ତି, ଜ୍ୟୋତି, କାନ୍ତି, ସୌନ୍ଦର୍ଯ୍ୟ, ପ୍ରକାଶ ।

ଦ୍ୟୋତିତ—ବି.ଣ. (ଦ୍ୟୋତି + ମଂ.ତ) ପ୍ରକାଶିତ, ଦୀପିତ, ଶୋଭିତ, ( ସ୍ତ୍ରୀ ) ଦ୍ୟୋତିତା ।

ଦ୍ୟୋତିରିଙ୍ଗଣ—ପୁଂ. ବି. ଖଦ୍ୟୋତ, ଜ୍ୟୋତିରିଙ୍ଗଣ, ଜୁଳୁଜୁଳିଆ ପୋକ ।

ଦ୍ୟୋଭୂମି—ସ୍ତ୍ରୀ. ବି. ( ଦ୍ୱନ୍ଦ୍ୱ ) ସ୍ୱର୍ଗ ଓ ପୃଥିବୀ, (ପୁଂ.ବି.—ବ.ବ୍ରୀ) ପକ୍ଷୀ ।

ଦ୍ୟୋଷଦ୍—ପୁଂ.ବି.ଦେବତା,ସ୍ୱର୍ଗବାସୀ ।

ଦ୍ୟୌ—ବି. ଦ୍ୟୋ ଦେଖ ।

ଦ୍ୟୌନ—କ୍ଲୀ.ବି. ଜ୍ୟୋତିଃପଦାର୍ଥ ।

ଦ୍ୟୌର୍ଲୋକ—ପୁଂ.ବି.ଦ୍ୟୁଲୋକ, ସ୍ୱର୍ଗ ।

ଦ୍ରଉପଦୀ—ଗ୍ରା.ପଦ୍ୟ. ବି. (ସଂ-ଦ୍ରୌପଦୀ) ଦ୍ରୌପଦୀ ଦେଖ ।

ଦ୍ରକ୍ଷଣ—ବି. ତୌଲିବାର ପରିମାଣ-ବିଶେଷ । [ ଭୂର୍ଯ୍ୟ ।

ଦ୍ରଗଡ଼—ପୁଂ.ବି. ବାଦ୍ୟବିଶେଷ, ପ୍ରତିପ-

ଦ୍ରଗଣ—ବି. ଏକପ୍ରକାର ବାଜା ।

ଦ୍ରଙ୍ଗ୍ୱଣ—କ୍ଲୀ. ବି. ତୋଲକ, ତୋଲ, କୋଲ, ବଟକ, କର୍ଷାର୍ଦ୍ଧ ।

ଦ୍ରଙ୍ଗ—ପୁଂ.ବି. ପୁରଭେଦ ।

ଦ୍ରଢ଼ିମା—ପୁଂ.ବି. ( ଦୃଢ଼+ଭା.ଇମନ୍ ) ଦୃଢ଼ତା, କାଠିନ୍ୟ, ସ୍ଥିରତା ।

ଦ୍ରଢ଼ିଷ୍ଠ—ବି.ଣ. ( ଦୃଢ଼+ଇଷ୍ଠ ) ଅତି ଦୃଢ଼, ଅତି କଠିନ, (ସ୍ତ୍ରୀ) ଦ୍ରଢ଼ିଷ୍ଠା ।

ଦ୍ରଢ଼ୀୟାନ୍—ପୁଂ. ବିଂ. (ଦୃଢ଼+ଇୟସ୍) ଦ୍ରଢ଼ିଷ୍ଠ ଦେଖ, (ସ୍ତ୍ରୀ) ଦ୍ରଢ଼ୀୟସୀ ।

ଦ୍ରଧସ—ଯା. କ୍ଲୀ.ବି.ପରିଚ୍ଛଦ,ପୋଷାକ ।

ଦ୍ରପିଷ୍ଟ—ଗ୍ରା. ବିଂ. ( ସଂ-ଦର୍ପିଷ୍ଟ ) ଦୃପ୍ତ, ଦର୍ପଶାଳୀ ।

ଦ୍ରପ୍ସ—କ୍ଲୀ. ବି. ଘୋଳଦହି, ଶୁକ୍ର, ରସ, (ବିଂ) ଦ୍ରୁତଗତିବିଶିଷ୍ଟ,ତରଳ ।

ଦ୍ରପ୍ସ୍ୟ—କ୍ଲୀ.ବି. ଦ୍ରପ୍ସ ଦେଖ ।

ଦ୍ରବ—ପୁଂ.ବି.(ଦ୍ରୁ+ଭା.ଅ)ବେଗ,ଗତି, ପରିହାସ, ପ୍ରସ୍ଥାନ ପଳାୟନ, କ୍ଷରଣ, ଗଳନ, (ଦ୍ରୁ+କ.ଅ) ରସ, ତରଳ ପଦାର୍ଥ, ଗଳିତ ପଦାର୍ଥ, ତାରଲ୍ୟ, ଆସବ, (ବିଂ) ତରଳିତ,ଗଳିତ,ସରସ, ଜଳୀୟ, ଜଳପରି ତରଳ, ପାଣିରେ ମିଳାଇ ଯାଉଥିବା, ଆର୍ଦ୍ର, ଓଦା ।

ଦ୍ରବକ—ବି.ବିଂ. (ଦ୍ରୁ+ଅକ)ପଳାୟନ-ଶୀଳ, କ୍ଷରଣଶୀଳ ।

ଦ୍ରବଜ—ପୁଂ. ବି. ( ଦ୍ରବ+ଜନ୍+ଅ ) ଗୁଡ଼, ଦ୍ରବଜାତ ବସ୍ତୁମାତ୍ର ।

ଦ୍ରବଣ—କ୍ଲୀ.ବି. ( ଦ୍ରୁ+ଭା.ଅନ ) ଗତି, ଗମନ, କ୍ଷରଣ, ଗମନ, ଅନୁତାପ, ତରଳିଯିବା,ହୃଦୟ କରୁଣାରେ ଆର୍ଦ୍ର-ହେବା, ପଳାଇଯିବା ।

ଦ୍ରବତ୍—ବି.ବିଂ. କ୍ଷରଣଯୁକ୍ତ,କ୍ଲୀ. ଶୀଘ୍ର ।

ଦ୍ରବତ୍ପତ୍ରୀ—ସ୍ତ୍ରୀ. ବି. (ଦ୍ରବତ୍+ପତ୍ର+ଈ) ଶିମୂଳିବୃକ୍ଷ ।

ଦ୍ରବତ୍ୱ—କ୍ଲୀ.ବି.(ଦ୍ରବ+ଭା.ତ୍ୱ)ତାରଲ୍ୟ, ତରଳଭାବ, ତରଳଭାବ, କୋମଳତା, ଜଳରେ ମିଳାଇଯିବା ଅବସ୍ଥା ।

ଦ୍ରବଦ୍ରବ୍ୟ—କ୍ଲୀ.ବି.(କର୍ମଧା) ଦୁଗ୍ଧ,ଦଧି, ଆଜ୍ୟ, ତକ୍ର, ଆସବ, ଜଳ,ତୈଳାଦି, ଦୈହିକ ମୂତ୍ରାଦି ।

ଦ୍ରବନ୍ତୀ—ସ୍ତ୍ରୀ. ବି. ( ଦ୍ରୁ+ଅତ୍+ଈ ) ନଦୀ, ମୂଷାକାନ୍ଦୀ ।

ଦ୍ରବଭାବ—ବି. ଦ୍ରବତ୍ୱ ଦେଖ ।

ଦ୍ରବରସ—ବି. ବିଂ. ସାଦ୍ର ରସ ।

ଦ୍ରବରସା—ସ୍ତ୍ରୀ.ବି. ଲାକ୍ଷା ।

ଦ୍ରବା(ବେ)ଇବା—ଗ୍ରା.କ୍ରି. ( ସଂ-ଦ୍ରୁଧାତୁ ଣିଜନ୍ତ ଦ୍ରବିଧାତୁ) ଦ୍ରବିବା କ୍ରିୟାର, ଣିଜନ୍ତରୂପ, ତରଳାଇବା, ନରମ-କରିବା ।

ଦ୍ରବାଧାର—ପୁଂ. ବି. (୬ତତ୍) କୋଇ, ଯେଉଁ ପାତ୍ରରେ ଧାତୁ ଆଉଟା ହୁଏ ।

ଦ୍ରବାଷ୍ୟ—ବି.ବିଂ. (ଦ୍ରୁ+ଯ୍ୟ) ଦ୍ୟୂତ-ଶୀଳ ।

ଦ୍ରବାର୍ହ—ବିଂ. (ଦ୍ରବ+ଅର୍ହ+କ.ଅ) ତରଳାଇବାର ଯୋଗ୍ୟ । [ କାର ।

ଦ୍ରବି—ବି.ବିଂ. ସ୍ୱର୍ଣ୍ଣାଦି ଦ୍ରାବକ, ସ୍ୱର୍ଣ୍ଣ-

ଦ୍ରବିଡ଼—ପୁଂ.ବି.( ଦ୍ରୁ+କ.ଇଡ଼ )ମ୍ଳେଚ୍ଛ-ବିଶେଷ,ଦେଶବିଶେଷ,ବ୍ରାହ୍ମଣ ବିଶେଷ, ଆଧୁନିକ ମାନ୍ଦ୍ରାଜ ପ୍ରେସିଡ଼େନ୍‌ସି ।

ଦ୍ରବିଡ଼ୀ—ସ୍ତ୍ରୀ.ବି. ରାଗିଣୀବିଶେଷ ।

ଦ୍ରବିଣ—କ୍ଲୀ.ବି. (ଦ୍ରୁ+ଇନ) ପରାକ୍ରମ, ଧନ, କାଞ୍ଚନ, ସୁବର୍ଣ୍ଣ, ତରଳିବା, ପୃଥୁରାଜ ପୁତ୍ର,କୁଶ ଦ୍ୱୀପର ଏକ ସୀମା-ପର୍ବତ ।

ଦ୍ରବିଣକ—ବି.ବସୁ ପୁତ୍ର ଅଗ୍ନିଙ୍କ ପତ୍ନୀ-ବିଶେଷ, (କ୍ଲୀ--ଦ୍ରବିଣ+କ)ଦ୍ରବିଣ ।

ଦ୍ରବିଣନାଶନ—କ୍ଲୀ. ବି. ( ଦ୍ରବିଣ+ନାଶି+ଅନ)ଶୋଭାଞ୍ଜନ, ଶଜନାଗଛ ।

ଦ୍ରବିଣପ୍ରଦ—ପୁଂ.ବିଂ. (ଦ୍ରବିଣ+ପ୍ରଦା+ଅ) ଧନଦାୟକ, (ପୁଂ) ବିଷ୍ଣୁ ।

ଦ୍ରବିଣସ୍ୟୁ—ପୁଂ. ବିଂ. ଲାଲସାପୂର୍ବକ ଧନକାମୀ ।

ଦ୍ରବିଣୋଦସ୍—ବି.ବିଂ.ଧନଦାତା, ଅଗ୍ନି ।

ଦ୍ରବିଣୋଦ୍ଦ୍—ପୁଂ. ବିଂ. ଧନ ଓ ବଳ ଦାନକାରୀ । [ ଶୀଳ ।

ଦ୍ରବିତ୍ନୁ—ବି. ବିଂ. (ଦ୍ରୁ+ଇତ୍ନୁ) ଗତି-

ଦ୍ରବିବା—ଗ୍ରା.କ୍ରି. (ସଂ-ଦ୍ରୁଧାତୁ) ଗଳିତ-ହେବା, ତରଳିଯିବା, ମିଳାଇଯିବା, ନରମହେବା,(ଲ.ଅର୍ଥ)ଦୟାର୍ଦ୍ର ହେବା ।

ଦ୍ରବୀକରଣ—କ୍ଲୀ. ବି. (ଦ୍ରବ+ଚ୍ୱି+କୃ+ଭା.ଅନ) କଠିନ ବସ୍ତୁକୁ ତର-ଳାଇବା, (ବିଂ) ଦ୍ରବୀକୃତ ।

ଦ୍ରବୀକୃତ—ବି.ବିଂ.(ଦ୍ରବ+ଚ୍ୱି+କୃତ) ତରଳା ଯାଇଥିବା ।

ଦ୍ରବୀଭବନ—ପୁଂ. ବି. (ଦ୍ରବ+ଚ୍ୱି+ଭୂ+ଭା.ଅନ) ଦ୍ରବଣ, ଗଳନ ।

ଦ୍ରବୀଭାବ—ପୁଂ.ବି. (ଦ୍ରବ+ଚ୍ୱି+ଭାବ) ଦ୍ରବତ୍ୱ ।

ଦ୍ରବୀଭୂତ—ବି.ବିଂ.(ଦ୍ରବ+ଚ୍ୱି+ଭୂତ) ତରଳିତ, ନରମ କରାଯାଇଥିବା, ଅନୁତପ୍ତ, ମିଳାଇଯାଇଥିବା, ପାଣିରେ ପରିଣତ ହୋଇଥିବା ।

ଦ୍ରବ୍ୟ—କ୍ଲୀ. ବି. (ଦ୍ରୁ+ମଂ.ଯ) ବୃକ୍ଷସମ୍ବ-ନ୍ଧୀୟ( ବି.)ଜରୁ, ବନସ୍ଥ,(ଦ୍ରୁ+କ.ଯ ) ବସ୍ତୁ, ପଦାର୍ଥ, ଧନ,ଔଷଧ,ଚିତ୍ତ.ମଦ୍ୟ, ସାମଗ୍ରୀ,ଉପକରଣ, ପିତ୍ତଳ, କ୍ଷିତିଆଦି ନବପଦାର୍ଥ, ଲେପ, ଗୋଳ, ।

ଦ୍ରବ୍ୟକ—ବିଂ. ( ଦ୍ରବ୍ୟ+କ ). ଦ୍ରବ୍ୟ-ହାରକ, ଦ୍ରବ୍ୟବାହକ ।

ଦ୍ରବ୍ୟଗୁଣ—ପୁଂ.ବି.(୬ତତ୍)ବସ୍ତୁର ରୂପ, ରସାଦି ୨୭ଟି ଧର୍ମ ବା ଗୁଣ, କୌଣସି ପଦାର୍ଥର ମନୁଷ୍ୟ ଶରୀର ଉପରେ ପ୍ରକ୍ରିୟା, ଭିନ୍ନ ଭିନ୍ନ ଔଷଧର ଦ୍ରବ-

ହାରର ଭିନ୍ନ ଭିନ୍ନ ଫଳ, ଦ୍ରବ୍ୟର ଗୁଣ ନିର୍ଣ୍ଣାୟକ ଗ୍ରନ୍ଥବିଶେଷ ।
ଦ୍ରବ୍ୟଜାତ—ବି.ବଂ. (୬ତତ୍ପୁ) ଦ୍ରବ୍ୟୋତ୍ପନ୍ନ, (କ୍ଲୀ.ବ. ୬ତତ୍ପୁ) ଦ୍ରବ୍ୟସମୂହ ।
ଦ୍ରବ୍ୟବନ୍ତ—ଗ୍ରା. ବଂ. ( ଦ୍ରବ୍ୟ+ବନ୍ତ ) ଧନବାନ୍, ଧନୀ ।
ଦ୍ରବ୍ୟବିଶେଷ—ପୁଂ.ବ. ସୁଶ୍ରୁତୋକ୍ତ ଧର୍ମବିଶେଷ ଦ୍ୱାରା ପାର୍ଥିବାଦିବିଶେଷ ।
ଦ୍ରବ୍ୟମୟ—ବଂ. (ଦ୍ରବ୍ୟ+ମୟ) ପ୍ରଚୁର ସାମଗ୍ରୀବିଶିଷ୍ଟ, ପଦାର୍ଥବହୁଳ ।
ଦ୍ରବ୍ୟଶୁଦ୍ଧି—ସ୍ତ୍ରୀ.ବ.(୬ତତ୍ପୁ) ମନ୍ତ୍ରାଦି ବା ପ୍ରକ୍ଷାଳନାଦି ଦ୍ୱାରା ଦ୍ରବ୍ୟର ଶୋଧନ ।
ଦ୍ରବ୍ୟସ୍ୱେଦ—ବ. (ଦ୍ରବ୍ୟ+ସ୍ୱେଦ)୩ସ୍ୱା ତତ୍ପୁ; (ବୈଦ୍ୟକ) ଦେହରେ ବାମ୍ଫ ଆଣି ଘେନିବା ।
ଦ୍ରବ୍ୟାତ୍ମକ—ବଂ.ସାରବାନ୍, ଧନବାନ୍ ।
ଦ୍ରବ୍ୟାନ୍ତର—ବ.( ଅନ୍ୟ+ଦ୍ରବ୍ୟ ) ଅନ୍ୟଦ୍ରବ୍ୟ ।
ଦ୍ରଷ୍ଟବ୍ୟ—ବି. ବଂ. (ଦୃଶ୍+ମିଁ.ତବ୍ୟ) ଦେଖିବାର ଯୋଗ୍ୟ, ଦର୍ଶନୀୟ, ଯାହା ଦେଖିବା ଆବଶ୍ୟକ ବା ଉଚିତ, (ସ୍ତ୍ରୀ) ଦ୍ରଷ୍ଟବ୍ୟା ।
ଦ୍ରଷ୍ଟା—ପୁଂ. ବଂ. ( ଦୃଶ୍+ତୃ ) ଦର୍ଶକ, ଦର୍ଶନକର୍ତ୍ତା, ବିଚାରକ, ସାକ୍ଷୀ, (ସ୍ତ୍ରୀ) ଦ୍ରଷ୍ଟ୍ରୀ, ( ସାଂଖ୍ୟଦର୍ଶନ ) ପୁରୁଷ, (ଯୋଗଦର୍ଶନ) ଆତ୍ମ, ଆତ୍ମା ।
ଦ୍ରଷ୍ଟୃତ୍ୱ—କ୍ଲୀ. ବ. ଦ୍ରଷ୍ଟାର ଭାବ ।
ଦ୍ରହ—ପୁଂ.ବ. ଅଗାଧଜଳ ହ୍ରଦ, ଗଭୀର ଜଳାଶୟ ।
ଦ୍ରଢ୍ୟନ୍ତ—ବି. ବଂ. ଦୃଢ଼ୀକରଣ ।
ଦ୍ରାକ୍—ଅବ୍ୟ. (ଦ୍ରା+କ.ଅକ) ସତ୍ୱର, ଝଟକି, ଶୀଘ୍ର ।
ଦ୍ରାକ୍ଷା—ସ୍ତ୍ରୀ. ବ. ( ଦ୍ରାକ୍ଷ+ମିଁ.ଅ+ଆ ) ଅଙ୍ଗୁର, କିସ୍‌ମିସ୍, ମନକ୍କା ।
ଦ୍ରାଘିମା—ପୁଂ. ବ. (ଦୀର୍ଘ+ଭା.ଇମନ୍) ଦୀର୍ଘତା, ଦୈର୍ଘ୍ୟ, ଯାମ୍ୟୋତ୍ତର ବୃତ୍ତ, ଯେ କଳ୍ପିତ ରେଖା ମଧ୍ୟରେଖାର ଉଭୟ ପାର୍ଶ୍ୱେ ପୂର୍ବ ପଶ୍ଚିମେ ବ୍ୟାପ୍ତ ଅଛି ।
ଦ୍ରାଘିମାନ୍ତର—କ୍ଲୀ.ବ. (୬ତତ୍ପୁ)ପ୍ରାଥମିକ ଦ୍ରାଘିମାରେଖାଠାରୁ କୌଣସି ସ୍ଥାନର ପୂର୍ବ ବା ପଶ୍ଚିମ ଦିଗକୁ ଦୂରତ୍ୱ ।
ଦ୍ରାଘିଷ୍ଠ—ବି.ବଂ. (ଦୀର୍ଘ+ଇଷ୍ଠ ଅତିଶାୟ) ଦୀର୍ଘ, ଅତିଦୀର୍ଘ, (ସ୍ତ୍ରୀ) ଦ୍ରାଘିଷ୍ଠା ।
ଦ୍ରାଘୀୟାନ୍—ପୁଂ. ବଂ. (ଦୀର୍ଘ+ଈୟସ୍) ଦ୍ରାଘିଷ୍ଠ ଦେଖ, (ସ୍ତ୍ରୀ) ଦ୍ରାଘୀୟସୀ ।
ଦ୍ରାଢ୍ୟ—ବ(ଦୃଢ଼+ଭା.ଯ)ଦୃଢ଼ତର ବସ୍ତୁ ।
ଦ୍ରାଣ—ପୁଂ. ବଂ. (ଦ୍ରା+କ.ଆନ)ସୁପ୍ତ, ନିଦ୍ରିତ, ପଳାୟିତ, ବ.(ଦ୍ରା+ଭା.ଅନ) ସ୍ୱପ୍ନ, ପଳାୟନ ।
ଦ୍ରାପ—ପୁଂ.ବ.(ଦ୍ରା+ଣିଚ୍+ଅ)ଆକାଶ, କୌଡ଼ି, ପଙ୍କ, (ବଂ) ସୁପ୍ତ, ମୂର୍ଖ ।
ଦ୍ରାବ—ପୁଂ.ବ.(ଦ୍ରୁ+ଭା.ଅନ)ପଳାୟନ, ଗମନ, ଗତି, ତରଳିବା, ପାଣିରେ ମିଳାଇଯିବା, ଅନୁତାପ, କ୍ଷରଣ,ତରଳ ପଦାର୍ଥ ।
ଦ୍ରାବକ—ବି.ବଂ.(ଦ୍ରୁ+ଣିଚ୍+କ.ଅକ) ଯାହା ତରଳାଏ, ଦ୍ରବକାରକ, (ପୁଂ) ହୃଦୟଗ୍ରାହୀ, ପଳାୟମାନ, ଚତୁର, ଚଳନ୍ତ, (ବ) ପ୍ରସ୍ରାବବର୍ଦ୍ଧକ ଔଷଧ, ଲମ୍ପଟ ବ୍ୟକ୍ତି, ଚୋର, ଚନ୍ଦ୍ରକାନ୍ତମଣି, ମଦନ, ମହଣ, ରସବିଶେଷ, ସୁହାଗା, ଶିହ୍ଲ, ବିଦଗ୍ଧ, ମ୍ଲିହ୍ଲା ଔଷଧଭେଦ, ଅମ୍ଳରସବିଶେଷ, ଏସିଡ୍ ।
ଦ୍ରାବକକନ୍ଦ—ପୁଂ. ବ. ତୈଳ କନ୍ଦ ।
ଦ୍ରାବକର—ବ. ( ଦ୍ରାବ+କୃ+କ.ଅ ) ସୋହାଗା ।
ଦ୍ରାବଣ—କ୍ଲୀ.ବ.(ଦ୍ରୁ+ଣିଚ୍+ଭା ଅନ) ତରଳାଇବା, ଦ୍ରବୀକରଣ, ତଡ଼ିଦେବା, ପାଣିରେ ଲୁଣାଦି ମିଳାଇଦେବା,( ବି.ବଂ.କ.ଅନ ) ତାଡ଼କ, ପ୍ରପୀଡ଼କ, (ସ୍ତ୍ରୀ) ଦ୍ରାବଣା ।
ଦ୍ରାବିକା—ସ୍ତ୍ରୀ. ବଂ. (ଦ୍ରାବକ+ସ୍ତ୍ରୀ.ଆ) ଦ୍ରାବକର ସ୍ତ୍ରୀଲିଙ୍ଗ,(ବ)ମହଣ, ପାଟିର ଲାଳ ।
ଦ୍ରାବିଡ଼—ପୁଂ. ବ. (ଦ୍ରବିଡ଼+ଅ) ଦକ୍ଷିଣ ଭାରତର ଦ୍ରବିଡ଼ ଦେଶ, ସଂଖ୍ୟାଭେଦ, ବୈଦ୍ୟମୁଖ୍ୟ, କର୍ଚ୍ଚୁର, (ବଂ) ପିତାଦିକ୍ରମେ ଦ୍ରାବିଡ଼ ଦେଶବାସୀ,ତଦ୍ଦେଶୋତ୍ପନ୍ନ ।
ଦ୍ରାବିଡ଼କ—ପୁଂ.ବ. ବୈଦ୍ୟମୁଖ୍ୟ, ଚଳିତ ଭାଷାରେ ଜୟଚଷଷ୍ଠୀ,(କ୍ଲୀ)ବିଡ଼ଲବଣ ।
ଦ୍ରାବିଡ଼ଭୂତକ—ବ.ଦ୍ରାବିଡ଼କ, ବିଡ଼ଲବଣ
ଦ୍ରାବିଡ଼ୀ—ସ୍ତ୍ରୀ. ବ. (ଦ୍ରାବିଡ଼+ଅ+ଈ) କ୍ଷୁଦ୍ରଏଳାଇଚ, ଗୁଜରାଟ, (ଗ୍ରା.ବଂ) ଦ୍ରାବିଡ଼ ଦେଶୀୟ ।
ଦ୍ରାବିଡ଼ୀୟ—ପୁଂ.ବଂ. (ଦ୍ରାବିଡ଼+ଈୟ) ଦ୍ରାବିଡ଼ ଦେଶୀୟ, ଦ୍ରାବିଡ଼ ଜାତୀୟ, (ବ) କ୍ଷୁଦ୍ର ଅଳେଇଚ ।
ଦ୍ରାବିତ—ବି. ବଂ.(ଦ୍ରୁ+ଣିଚ+ମିଁ.ତ) ଦ୍ରବୀକୃତ, ପାଣିରେ ଗୋଳାଆ ଯାଇଥିବା, ବିତାଡ଼ିତ, (ସ୍ତ୍ରୀ) ଦ୍ରାବିତା ।
ଦ୍ରାବ୍ୟ—ବି. ବଂ. ( ଦ୍ରାବ+ମିଁ. ଯ ) ଯାହା ତରଳା ଯାଇପାରେ, ଦ୍ରବଣାର୍ହ, ଅବଶ୍ୟ ଦୂରଗମନୀୟ, ଅବଶ୍ୟ ଗମନୀୟ, (ସ୍ତ୍ରୀ) ଦ୍ରାବ୍ୟା ।
ଦ୍ରୁ—ପୁଂ. ବ. ( ଦ୍ରୁ+କ.ଉ ) ବୃକ୍ଷ, ଶାଖାଦି, ବୃକ୍ଷର ଅବୟବ. (ସ୍ତ୍ରୀ)ଗତି ।
ଦ୍ରୁକିଳିମ—କ୍ଲୀ. ବ. ଦେବଦାରୁ ବୃକ୍ଷ ।
ଦ୍ରୁଘଣ—ପୁଂ.ବ. (ଦ୍ରୁ+ହନ୍+କ.ଅ) ବ୍ରହ୍ମା, ଭୂମିଚମ୍ପକବିଶେଷ, (ଦ୍ରୁ+ହନ୍+ଣ.ଅ) ଲୌହମୁଦ୍ଗର, କୁରାଢ଼ୀ, ଲୌହାସ୍ତ୍ରବିଶେଷ ।
ଦ୍ରୁଚ୍ଛନା—ଗ୍ରା. ବ. (ପ୍ରାଚୀନପ୍ରୟୋଗ) ବ. (ସଂ-ଦନେ) ଦାନ୍ତ ।
ଦ୍ରୁଣ—କ୍ଲୀ. ବ. ( ଦ୍ରୁଣ୍+ସଙ୍ଜ୍ଞା,ଅ ) ଧନୁ, ଖଡ୍ଗ, (ପୁଂ) ବିଛା, ଭୃଙ୍ଗ, (ବି) ପିଶୁନ ।
ଦ୍ରୁଣସ—ପୁଂ.ବଂ. (ବ.ବ୍ରୀ) ଲମ୍ବନାକା, ନାକୁଆ, (ସ୍ତ୍ରୀ) ଦ୍ରୁଣସା ।
ଦ୍ରୁଣହ—ପୁଂ. ବ. ଖଡ୍ଗ, ପିଧାନ, ଖଡ୍ଗର ଖାପ ।
ଦ୍ରୁଣା—ସ୍ତ୍ରୀ. ବ. (ଦ୍ରୁଣ+ଆ) ଧନୁର ଗୁଣ, ଜ୍ୟା ।
ଦ୍ରୁଣୀ—ସ୍ତ୍ରୀ. ବ. (ଦ୍ରୁଣ + କ.ଈ)କଚ୍ଛପୀ, କାନବିଛା ।
ଦ୍ରୂଣୀ—ସ୍ତ୍ରୀ.ବ. (ଦ୍ରୂଣ+କ.ଈ) କଚ୍ଛପ, କାନବିଛା, କାନଖଜୁରା ।
ଦ୍ରୁତ—କ୍ଲୀ.ବ. (ଦ୍ରୁ+ଭା.ତ) ଶୀଘ୍ରତା, ଦ୍ରବୀଭୂତ ଘୃତ, ଶୀଘ୍ରଗମନ, ତାଳର ଏକମାତ୍ରାର ଅର୍ଦ୍ଧେ,ବୃକ୍ଷ, ବିଛା,ବିଡ଼ାଳ, ବି.ବଂ. (ଦ୍ରୁ+କ.ତ) ଧାବିତ, ପଳାୟିତ, ଗଳିତ,ଦ୍ରବୀଭୂତ,ଆର୍ଦ୍ର, ତରଳ,

କଲୀସ୍ତ୍ର, ତ୍ରୁଟନ୍ତ୍ରୁତ, ( ଗ୍ରା.ବଂ ) ଦୀର୍ଘ (ଉଚ୍ଚାରଣ) ।
ଦ୍ରୁତଗତ—ସ୍ତ୍ରୀ. ବି. (ଦ୍ରୁତ+ଗତ) କ.ଧା; ଦ୍ରୁତପଦ ଦେଖ, (ବଂ.ବ.ଗ୍ରୀ) ଦ୍ରୁତଗାମୀ ।
ଦ୍ରୁତଗାମୀ—ପୁଂ. ବଂ.(ଦ୍ରୁତ+ଗମ୍ କ.ଇନ୍) ବେଗଗାମୀ, ଶୀଘ୍ରଗାମୀ,(ସ୍ତ୍ରୀ) ଦ୍ରୁତଗାମିନୀ ।
ଦ୍ରୁତଚାରୀ—ପୁଂ. ବଂ. (ଦ୍ରୁତ+ଚର କ.ଇନ୍) ଦ୍ରୁତଗାମୀ ଦେଖ, ( ବି ) ଦ୍ରୁତଗାମୀ ଜୀବ, (ସ୍ତ୍ରୀ) ଦ୍ରୁତଚାରିଣୀ ।
ଦ୍ରୁତପଦ—ପୁଂ. ବଂ, (ଦ୍ରୁତ+ପଦ) ଶୀଘ୍ରଗାମୀ, ( ବି-କ.ଧା ) କ୍ଷିପ୍ରଗତି, ବେଗଗମନ, ( କ୍ଲୀ.ବି ) ଦ୍ୱାଦଶାକ୍ଷର ଛନ୍ଦବିଶେଷ, (ସ୍ତ୍ରୀ) ଦ୍ରୁତପଦା ।
ଦ୍ରୁତବିଲମ୍ବ—ବି. ( ଦ୍ରୁତ+ବିଲମ୍ବ ) ୪ର୍ଥ, ୭ମ, ୧୦ମ ଓ ୧୨ଶ ବର୍ଣ୍ଣ ଗୁରୁଥିବା ଦ୍ୱାଦଶାକ୍ଷର ସଂସ୍କୃତ ଛନ୍ଦୋବିଶେଷ ।
ଦ୍ରୁତବିଲମ୍ବିତ—ବି. ଦ୍ରୁତବିଲମ୍ବ ଦେଖ (ବଂ-କ.ଧା) ଶୀଘ୍ର ଅଥଚ ବିଳମ୍ବଯୁକ୍ତ ।
ଦ୍ରୁତବେଗେ—କ୍ରି.ବିଂ, (ବ.ଗ୍ରୀ)ତ୍ୱରିତଗତିରେ ।
ଦ୍ରୁତମଧ୍ୟା—ସ୍ତ୍ରୀ. ବି. (ବ.ଗ୍ରୀ) ସଂସ୍କୃତ ଛନ୍ଦୋବିଶେଷ ।
ଦ୍ରୁତି—ସ୍ତ୍ରୀ. ବି. ( ଦ୍ରୁ+ଭା. ତି ) ଦ୍ରବୀଭବ, ପଲାୟନ, ଗତି, ଦ୍ରବ, ପ୍ରସ୍ଥାନ ।
ଦ୍ରୁନଖ—ପୁଂ. ବି. (୬ତତ୍)ଗଛକଣ୍ଟା ।
ଦ୍ରୁପଦ—ପୁଂ. ବି. ପଞ୍ଚାଳଦେଶ ରାଜା, ଦ୍ରୌପଦୀଙ୍କ ପିତା, ପଞ୍ଚାଳଦେଶ,ଖୁଣ୍ଟ, ଗୋଡ଼ା ବା କଇଠି, କଠାଉ ।
ଦ୍ରୁପଦରାଜକନ୍ୟା—ସ୍ତ୍ରୀ. ବି. (୬ତତ୍) ଦ୍ରୌପଦୀ ଦେଖ ।
ଦ୍ରୁପଦରାଜପୁତ୍ର—ବି. (୬ତତ୍) ଧୃଷ୍ଟଦ୍ୟୁମ୍ନ ଓ ଶିଖଣ୍ଡୀ ।
ଦ୍ରୁପଦାତ୍ମଜ—ପୁଂ.ବି. ଦ୍ରୁପଦଙ୍କ ପୁତ୍ର, (ସ୍ତ୍ରୀ) ଦ୍ରୁପଦାତ୍ମଜା, ଦ୍ରୌପଦୀ ।
ଦ୍ରୁପଦାଦିତ୍ୟ—ପୁଂ. ବି. ଦ୍ରୌପଦୀଙ୍କ ପ୍ରତିଷ୍ଠିତ କାଶୀସ୍ଥ ଆଦିତ୍ୟଙ୍କବିଶେଷ ।
ଦ୍ରୁପଦୀ—ଗ୍ରା.ବି. (ସଂ-ଦ୍ରୌପଦୀ)ଦ୍ରୌପଦୀ ଦେଖ ।
ଦ୍ରୁବୟ—ପୁଂ. ବି. କାଠର ମାପ,ପରମାଣ ।
ଦ୍ରୁବୁଦ୍ଧ—ଗ୍ରା.ବି, (ସଂ-ଦୁର୍ବୁଦ୍ଧି) ବୁଦ୍ଧିହୀନ, ମୂର୍ଖ ।
ଦ୍ରୁମ—ପୁଂ. ବି. (ଦ୍ରୁ+କ.ମ) ବଡ଼ଗଛ, କୁବେର, ପାରିଜାତ, ଶ୍ରୀକୃଷ୍ଣ ପୁତ୍ରବିଶେଷ ।
ଦ୍ରୁମକଣ୍ଟିକା—ବି. (ଦ୍ରୁମ+କଣ୍ଟ+କ+ଆ) ଶିମିଳି ଗଛ ।
ଦ୍ରୁମକନ୍ନରପ୍ରଭ—ପୁଂ. ବି. ଗନ୍ଧର୍ବବିଶେଷ ।
ଦ୍ରୁମକନ୍ନରରାଜ—ପୁଂ. ବି. ଜଣେ କିନ୍ନର ରାଜ ।
ଦ୍ରୁମନଖ—ପୁଂ. ବି. ଗଛର କଣ୍ଟା ।
ଦ୍ରୁମବତ୍—ବି. ବଂ. ଦ୍ରୁମବିଶିଷ୍ଟ ।
ଦ୍ରୁମବଲ୍ଲୀ—ବି. ବୃକ୍ଷଗୁଳ୍ମ ।
ଦ୍ରୁମବ୍ୟାଧି—ପୁଂ. ବି. (୬ତତ୍) ଲାକ୍ଷା, ଲାଖ, ଗଛର ରୋଗ ।
ଦ୍ରୁମମତ୍—ବି. ବଂ. କାଷ୍ଠନିର୍ମିତ ।
ଦ୍ରୁମମୟ—ବି. ବଂ. କାଷ୍ଠନିର୍ମିତ, (ସ୍ତ୍ରୀ) ଦ୍ରୁମମୟୀ ।
ଦ୍ରୁମମର—ପୁଂ. ବି. (ଦ୍ରୁମ+ମୃ+ଅ) କଣ୍ଟକ ।
ଦ୍ରୁମର—ପୁଂ.ବି. (ଦ୍ରୁମ+ର) ଗଛର କଣ୍ଟା ।
ଦ୍ରୁମରକ୍ତଶାଖାପ୍ରଦ—ପୁଂ. ବି. କିନ୍ନରବିଶେଷ ।
ଦ୍ରୁମରାଜ—ବି. (୬ତତ୍) ଖୁବ୍ ବଡ଼ଗଛ, ତାଳଗଛ ।
ଦ୍ରୁମଶୀର୍ଷ—କ୍ଲୀ. ବି. କୁଟ୍ଟିମଭେଦ, (୬ତତ୍) ବୃକ୍ଷାଗ୍ର ।
ଦ୍ରୁମଶ୍ରେଷ୍ଠ—ପୁଂ. ବି. (୭ତତ୍) ତାଳଗଛ, ଶ୍ରେଷ୍ଠଗଛ ।
ଦ୍ରୁମଷଣ୍ଡ—କ୍ଲୀ. ବି. ବୃକ୍ଷ ସମୂହ ।
ଦ୍ରୁମସାର—ବି. ( ଦ୍ରୁମ+ସାର,୬ତତ୍ ) ଡାଳିମ୍ବ ।
ଦ୍ରୁମସେନ—ପୁଂ. ବି. ରାଜା ବିଶେଷ, କୌରବ ପକ୍ଷୀୟ ବୀର ବିଶେଷ ।
ଦ୍ରୁମାମୟ—ପୁଂ. ବି. ( ୬ତତ୍ ) ଲାକ୍ଷା, ବୃକ୍ଷର ରୋଗ ।
ଦ୍ରୁମାରି—ପୁଂ. ବି.(୬ତତ୍)ହସ୍ତୀ,ହାତୀ ।
ଦ୍ରୁମାଳୟ—ବି.(ଦ୍ରୁମ+ଆଳୟ,୬ତତ୍) ବଣ, ଜଙ୍ଗଲ ।
ଦ୍ରୁମାଶ୍ରୟ—ପୁଂ. ବି. (ବ.ଗ୍ରୀ) କୃକଳାସ, ଏଣ୍ଡୁଅ, (ସ୍ତ୍ରୀ.ବଂ) ଦ୍ରୁମାଶ୍ରୟୀ,ବୃକ୍ଷାଶ୍ରିତମାତ୍ର ।
ଦ୍ରୁମିଣୀ—ସ୍ତ୍ରୀ. ବି. ବନ, ଜଙ୍ଗଲ, ବୃକ୍ଷ ଲତାଦିପୂର୍ଣ୍ଣ ।
ଦ୍ରୁମିଳ—ପୁଂ. ବି.ସୌଭଦେଶର ରାଜା, ଦାନବ ବିଶେଷ ।
ଦ୍ରୁମେଶ୍ୱର—ପୁଂ. ବି.(ଦ୍ରୁମ+ଈଶ୍ୱର) ଚନ୍ଦ୍ର, ଔଷଧୀଶ, ତାଳଗଛ, ପାରିଜାତ ଦେଖ, ଖୁବ୍ ବଡ଼ଗଛ ।
ଦ୍ରୁମୋତ୍ପଳ—ପୁଂ. ବି. କର୍ଣ୍ଣିକାର ବୃକ୍ଷ, କନିଅର ଗଛ ।
ଦ୍ରୁଷଦ୍—ବି. ବଂ. ବୃକ୍ଷ ବା କାଷ୍ଠଖଣ୍ଡ ଉପରେ ଉପବେଶନକାରୀ ।
ଦ୍ରୁସଲ୍ଲକ—ପୁଂ. ବି. ପିଆଳ ବୃକ୍ଷ ।
ଦ୍ରୁହ—ପୁଂ.ବଂ,(ଦ୍ରୁହ୍+କ୍ୱିପ୍)ବିଦ୍ରୋହୀ, (ବି) ପୁତ୍ର, ବୃକ୍ଷ, (ସ୍ତ୍ରୀ) ଦ୍ରୁହୀ, କନ୍ୟା ।
ଦ୍ରୁହଣ—ପୁଂ. ବି. ( ଦ୍ରୁହ୍+କ.ଅନ ) ବ୍ରହ୍ମା, ବିଷ୍ଣୁ ।
ଦ୍ରୁହିଣ—ପୁଂ. ବି. ( ଦ୍ରୁହ୍+କ.ଇନ୍ ) ବ୍ରହ୍ମା ।
ଦ୍ରୁହୀ—ସ୍ତ୍ରୀ.ବି.(ଦ୍ରୁହ୍+ଅ+ଈ)କନ୍ୟା ।
ଦ୍ରୁହ୍ୟ—ବି. ବଂ. ( ଦ୍ରୁହ୍+କ.ଯ ) ଦ୍ରୋହକାରୀ, ଅନିଷ୍ଟସାଧକ ।
ଦ୍ରୁହ୍ୟୁ—ପୁଂ. ବି. ଶର୍ମିଷ୍ଠାଙ୍କ ଗର୍ଭଜାତ ଯଯାତିଙ୍କ ଏକପୁତ୍ର, ତ୍ରିପୁରା ରାଜବଂଶର ବଂଶାବଳୀ ମତରେ(ରାଜବଂଶର) ୧ମ ରାଜା ।
ଦ୍ରୂ—ପୁଂ. ବି.(ଦ୍ରୁ+ଊ)ସୁନା ।
ଦ୍ରୂଘଣ—ପୁଂ. ବି. ମୁଦ୍ଗର ।
ଦ୍ରୂଣ—ପୁଂ. ବି. (ଦ୍ରୁ+କ.ନ) ବିଛା ।
ଦ୍ରେକ୍କ—ପୁଂ. ବି. ଦ୍ରେକ୍କାଣ, ଲଗ୍ନର ତୃତୀୟ ଭାଗର ଏକଭାଗ ।
ଦ୍ରେକ୍କାଣ—ପୁଂ. ବି. ଲଗ୍ନତୃତୀୟ ଭାଗରୁ ଏକଭାଗ, ରାଶିର ତୃତୀୟ ଅଂଶର ଅଧିପତି ଗ୍ରହ ।
ଦ୍ରୈଣ୍ୟ—ବି.ବଂ,(ଦ୍ରୁଣ+ ଷ୍ଣି.ଯ)ଦ୍ରୁଣ୍ୟ ।
ଦ୍ରୋଗ୍ଧବ୍ୟ—ବି. ବଂ. ( ଦ୍ରୁହ୍+ତବ୍ୟ ) ବ୍ୟଥିତ, ହିଂସାକାରକ ।
ଦ୍ରୋଗ୍ଧୃ—ବି. ବଂ. ( ଦ୍ରୁହ୍+ତୃଚ୍ ) ଦ୍ରୋହୀ,ପରର ମନ୍ଦଚେଷ୍ଟକ ।
ଦ୍ରୋଣ—ପୁଂ. କ୍ଲୀ.ବି.(ଦ୍ରୁ+ଣ) ଆଢକ,

ପରିମାଣ ମାନ ବିଶେଷ, ୩୨ ସେର ଶସ୍ୟାଦିର ପରିମାଣ ପାତ୍ର, ଦ୍ରୋଣାଗ୍ରୂର୍ଯ୍ୟ, ଡାମରାକୁଆ, ବିଚ୍ଛା, ଡଙ୍ଗା ଆକୃତିର ଜଳାଧାର, ଗନ୍ଧସଗୁଳ୍ମ ଓ ଫୁଲ, ପାଣି, ପସୁରି, ପାଞ୍ଚସେର, ପାଞ୍ଚସେରିଆ ଗୌଣୀ, ମେଘ ବିଶେଷ, ଡଙ୍ଗା, ଡଙ୍ଗାକୃତି ପତ୍ରନିର୍ମିତ ଦନା, ବୃକ୍ଷ, ନୀଳଗୁଳ୍ମ, କଦଳୀ, କାଷ୍ଠନିର୍ମିତ କଳସ,କାଠରଥ,ଚତୁଃଶତଧନୁପରିମିତ ଜଳାଶୟ, ବର୍ଷ ପର୍ବତ ଭେଦ, ବସୁ ପୁତ୍ର ବିଶେଷ ।

ଦ୍ରୋଣକଳଶ—ପୁଂ. ବି. ( ମଧ୍ୟ-କ.ଧା ) ଦ୍ରୁମମୟ ଯଜ୍ଞପାତ୍ରବିଶେଷ ।

ଦ୍ରୋଣକାକ—ପୁ. ବି.ଡାମରାକୁଆ, ବନକାକ ।

ଦ୍ରୋଣକ୍ଷୀରା—ସ୍ତ୍ରୀ. ବି. (ବି.ବ୍ରୀ) ଦ୍ରୋଣ ପରିମିତ ଦୁଗ୍ଧବତୀ ଗୋ ।

ଦ୍ରୋଣଗନ୍ଧିକା—ସ୍ତ୍ରୀ. ବି. ରାସ୍ନା ।

ଦ୍ରୋଣଗୁରୁ—ବି.ଦ୍ରୋଣାଗ୍ରୂର୍ଯ୍ୟ କୌରବ ଓ ପାଣ୍ଡବ ରାଜକୁମାରମାନଙ୍କର ଅସ୍ତ୍ର ବିଦ୍ୟାଗୁରୁ ।

ଦ୍ରୋଣଘା—ସ୍ତ୍ରୀ. ବି. ଦ୍ରୋଣଦୁଘା, ଯେଉଁ ଗାଈ ଦ୍ରୋଣ ପରିମିତ ଦୁଗ୍ଧଦିଏ ।

ଦ୍ରୋଣଦୁଗ୍ଧା—ସ୍ତ୍ରୀ.ବି.ଦ୍ରୋଣଦୁଘା, ଯେ ଗାଈ ଦ୍ରୋଣ ପରିମିତ ଦୁଗ୍ଧ ଦିଏ ।

ଦ୍ରୋଣଦୁଘା—ସ୍ତ୍ରୀ. ବି. (ଦ୍ରୋଣ+ଦୁହ୍) +ମଂ. କ୍ୱିପ୍+ଆ ) ଯେଉଁ ଗାଈ ଦିନକେ୩୨ସେର ପରିମିତ ଦୁଗ୍ଧ ଦିଏ

ଦ୍ରୋଣପଦୀ—ସ୍ତ୍ରୀ.ବି. ଦ୍ରୋଣତୁଲ୍ୟ ପାଦଯୁକ୍ତା ସ୍ତ୍ରୀ ।

ଦ୍ରୋଣପର୍ଣ୍ଣୀ—ସ୍ତ୍ରୀ. ବି. ଭୂମିକଦଳୀ ।

ଦ୍ରୋଣପୁଷ୍ପୀ—ସ୍ତ୍ରୀ. ବି.(ଦ୍ରୋଣ+ପୁଷ୍ପ+ +ଈ) ଗନ୍ଧସଗଛ, ଗୋଶୀର୍ଷକ ବୃକ୍ଷ, (ସ୍ତ୍ରୀ) ଦ୍ରୋଣପୁଷ୍ପା । [ ଦେଖ ।

ଦ୍ରୋଣମାନା—ସ୍ତ୍ରୀ. ବି. ଦ୍ରୋଣକୁଆ

ଦ୍ରୋଣମୁଖ—କ୍ଲୀ. ବି. ଚତୁଃଶତ ଗ୍ରାମ ମଧ୍ୟେ ମନୋହର ଗ୍ରାମ ।

ଦ୍ରୋଣମେଘ—ପୁଂ. ବି. ମେଘମାନଙ୍କର ଅଧିପତି ଭେଦ ।

ଦ୍ରୋଣମ୍ପଚ—ବିଂ(ଦ୍ରୋଣଂ+ପଚ୍+ଅ) ଯେଉଁ ପାଚକ ଦ୍ରୋଣପରିମିତ ପଦାର୍ଥ ଏକଥର ରାନ୍ଧିପାରେ ।

ଦ୍ରୋଣଶର୍ମ୍ମପଦ—କ୍ଲୀ. ବି. ତୀର୍ଥଭେଦ ।

ଦ୍ରୋଣସ୍ତୂପ—ପୁଂ. ବି. ସ୍ତୂପବିଶେଷ ।

ଦ୍ରୋଣା—ସ୍ତ୍ରୀ. ବି. (ଦ୍ରୋଣ+ଆ)ଗନ୍ଧସ ଫୁଲ । [ ଦେଖ ।

ଦ୍ରୋଣାଗ୍ରୂର୍ଯ୍ୟ—ପୁଂ. ବି. ଦ୍ରୋଣଗୁରୁ ।

ଦ୍ରୋଣାତ୍ମଜ(ଜା)—ପୁଂ. ବି. (ଦ୍ରୋଣ+ ଆତ୍ମଜ) ଦ୍ରୋଣଙ୍କ ପୁତ୍ର ଅଶ୍ୱତ୍ଥାମା ।

ଦ୍ରୋଣାସ—ପୁଂ.ବିଂ. ଦ୍ରୋଣପରି ମୁଖବିଶିଷ୍ଟ, (ବି) ଦାନବବିଶେଷ ।

ଦ୍ରୋଣାହାବ—ବି. ଦ୍ରୁମମୟ ଜଳାଧାର ଭେଦ ।

ଦ୍ରୋଣି—ସ୍ତ୍ରୀ. ବି. (ଦ୍ରୁ+କ.ନି) ଡଙ୍ଗି, ଶ୍ରେଷ୍ଠଡଙ୍ଗା,ଗୋରୁକୁଣ୍ଡ, ଜଳସେଚନୀ, ସେଁଉଥ, ଗିରିସଙ୍କଟ, ଡଙ୍ଗା ଆକାରର ପାତ୍ର, ଲମ୍ବୁଡ଼ା କୁଣ୍ଡ, କାଠରପାତ୍ର, କାଠୁଆ, ପତ୍ରଦନା, ଦଉଲୀ, ନୀଳଗୁଳ୍ମ, ୧୨୮ ବା ମତାନ୍ତରରେ ୩୮ ସେର ପରିମାଣବିଶେଷ, ଏକପ୍ରକାର ଲୁଣ, ଶୀଘ୍ରତା, (ପୁଂ. ଦ୍ରୋଣ +ଇ) ଅଶ୍ୱତ୍ଥାମା, ( ଦ୍ରୋଣ+ଈ ) ଦ୍ରୋଣଗୁରୁଙ୍କ ସ୍ତ୍ରୀ, କୃପୀ, ପର୍ବତ ମଧ୍ୟସ୍ଥ ଦେଶଭେଦ, ଇନ୍ଦ୍ରବଲ୍ଲିଟି ।

ଦ୍ରୋଣିକ—ସ୍ତ୍ରୀ. ବି. ( ଦ୍ରୋଣ+କ+ ଅ) ନୀଳୀଗୁଳ୍ମ ।

ଦ୍ରୋଣିକା—ସ୍ତ୍ରୀ. ବି. (ଦ୍ରୋଣ+କ+ ଆ) ନୀଳୀଗୁଳ୍ମ ।

ଦ୍ରୋଣୀ—ସ୍ତ୍ରୀ.ବି. (ଦ୍ରୋଣ+ଈ)ଦ୍ରୋଣି-ଦେଖ ।

ଦ୍ରୋଣୀଜ—କ୍ଲୀ. ବି. ଦ୍ରୋଣୀଲବଣ ।

ଦ୍ରୋଣୀଦଳ—ପୁଂ.ବି. (ଦ୍ରୋଣୀ+ଦଳ) ବି.ବ୍ରୀ; କେତକୀ ଗଛ ଓ ଫୁଲ ।

ଦ୍ରୋଣୀମୁଖ—କ୍ଲୀ. ବି. ଦ୍ରୋଣମୁଖ ।

ଦ୍ରୋଣୀଲବଣ—କ୍ଲୀ. ବି. ଉପକଣ୍ଠୀଠ ଦେଶଜାତ ଲବଣବିଶେଷ ।

ଦ୍ରୋଣୋଦନ—ପୁଂ. ବି. ସିଂହହନୁଙ୍କ ପୁତ୍ର ଓ ଶାକ୍ୟମୁନିଙ୍କ ପିତୃବ୍ୟ ।

ଦ୍ରୋଣ୍ୟାମୟ—ପୁଂ.ବି. ଶରୀରର ଆଭ୍ୟନ୍ତରିକ ରୋଗଭେଦ ।

ଦ୍ରୋପଦୀ—ଗ୍ରା. ବି. ଦ୍ରୌପଦୀ ଦେଖ ।

ଦ୍ରୋମିଳ—ପୁଂ. ବି. ଗୃଣକ୍ୟ ମୁନି ।

ଦ୍ରୋହ—ପୁଂ.ବି.(ଦ୍ରୁହ୍+ଭା.ଅ) ଅନିଷ୍ଟାଚରଣ, ଅପକାର, ପରାଭବ, ବିଶ୍ୱାସ ଘାତକତା, ବିଦ୍ରୋହାଚରଣ, ଘୃଣା, ପ୍ରତିହିଂସାବୃତ୍ତି, ଜିଘାଂସା, ଅଭିଭବ ।

ଦ୍ରୋହଚିନ୍ତନ—କ୍ଲୀ.ବି.(୬ତତ୍) ପରାନିଷ୍ଟ ଚିନ୍ତା, ବ୍ୟାପାଦ ।

ଦ୍ରୋହାଟ—ପୁଂ. ବି. (ଦ୍ରୋହ+ଅଟ୍+ କ.ଅ) ବୈଡ଼ାଳବ୍ରତିକ ବ୍ୟକ୍ତି, ବିରାଡ଼ି ବୈଷ୍ଣବ, ମୃଗଲୁବ୍ଧକ, ବେଦର ଶାଖାବିଶେଷ ।

ଦ୍ରୋହିତା—ସ୍ତ୍ରୀ. ବି. (ଦ୍ରୋହିନ୍+ତା) ଅନିଷ୍ଟାଚରଣ, ଦ୍ରୋହ ଦେଖ ।

ଦ୍ରୋହୀ—ପୁଂ. ବିଂ. ( ଦ୍ରୁହ+କ.ଇନ୍ ) ପରର ଅନିଷ୍ଟ ଚିନ୍ତକ, ଈର୍ଷାନ୍ୱିତ, ପରାଭବକାଙ୍କ୍ଷୀ, ବିଦ୍ରୋହୀ, ପାପୀ, ବିଶ୍ୱାସଘାତକ, କୃତଘ୍ନ, (ବି) ଶତ୍ରୁ, (ସ୍ତ୍ରୀ) ଦ୍ରୋହିଣୀ ।

ଦ୍ରୌଣି—ପୁଂ. ବି. ଦ୍ରୋଣାତ୍ମଜ ଦେଖ, (ସ୍ତ୍ରୀ) ଦ୍ରୌଣୀ ।

ଦ୍ରୌଣାୟନ—ପୁଂ. ବି. ଅଶ୍ୱତ୍ଥାମା ।

ଦ୍ରୌଣାୟନି—ପୁଂ. ବି. ଅଶ୍ୱତ୍ଥାମା ।

ଦ୍ରୌଣି—ପୁଂ. ବି. ( ଦ୍ରୋଣ+ଇ ) ଅଶ୍ୱତ୍ଥାମା, ଏକୋନବିଂଶତି ଦ୍ୱାପର ଯୁଗର ବ୍ୟାସ ।

ଦ୍ରୌଣିକ—ବି. (ଦ୍ରୋଣ+ଇକ) ଦ୍ରୋଣ ପରିମିତ ବୀଜବପନ ଯୋଗ୍ୟ କ୍ଷେତ୍ର, (ବିଂ) ଦ୍ରୋଣକ୍ରୀତ, ଦ୍ରୋଣପାଚକ ।

ଦ୍ରୌପଦ—ପୁଂ. ବି. (ଦ୍ରୁପଦ+ଅ)ଧୃଷ୍ଟଦ୍ୟୁମ୍ନ ।

ଦ୍ରୌପଦୀ—ସ୍ତ୍ରୀ.ବି.(ଦ୍ରୁପଦ+ଈ)ପାଣ୍ଡବ ପତ୍ନୀ, ଦ୍ରୁପଦ ରାଜକନ୍ୟା ।

ଦ୍ରୌପଦେୟ—ପୁଂ.ବି.(ଦ୍ରୌପଦୀ+ଏୟ) ଦ୍ରୌପଦୀଙ୍କ ପଞ୍ଚପୁତ୍ର ।

ଦ୍ରୌହିକ—ତ୍ରି. ବିଂ. (ଦ୍ରୋହ+ଇକ) ଦ୍ରୋହାର୍ହ, ଅପକାରାର୍ହ,ଦ୍ରୋହଯୋଗ୍ୟ, (ସ୍ତ୍ରୀ) ଦ୍ରୌହିକୀ । [ ଅପତ୍ୟ ।

ଦ୍ରୌହ୍ୟ—ପୁଂ.ବି.(ଦ୍ରୁହ୍ୟୁ+ଯ)ଦ୍ରୁହ୍ୟୁଙ୍କ

# ଧ

ଧ—ଊନବିଂଶ ବ୍ୟଞ୍ଜନ ବର୍ଣ୍ଣ, ତ ବର୍ଗର ୪ର୍ଥ ବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ଦନ୍ତ, ବି. (ଧା+କ.କ୍ୱିପ୍) ବ୍ରହ୍ମା, (କ.ଅ) କୁବେର, ଧର୍ମ, (ମି,ଅ) ଧନ, ଧକାର ବର୍ଣ୍ଣ, ସଙ୍ଗୀତର ସପ୍ତସ୍ୱର (ସା, ରି, ଗା, ମା, ପା, ଧା, ନି) ମଧ୍ୟରୁ ଷଷ୍ଠସ୍ୱର, (ଗ୍ରା.କ୍ରି) ରୁ ଧର, (ଅବ୍ୟ) କୌଣସି ଶିକାରକୁ ଧରିବା ନିମନ୍ତେ କୁକୁର ପ୍ରତି ପ୍ରଯୁକ୍ତ ସଙ୍କେତ ଶବ୍ଦ ।

ଧଅ—ଗ୍ରା. ବି. (ସଂ-ଧବ) ଧବବୃକ୍ଷ, ଏକପ୍ରକାର ଜଙ୍ଗଲି କାଠଗଛ ।

ଧଅକ—ଗ୍ରା. ବି. (ସଂ-ଦହ୍‌ଧାତୁ) ଦହକ, (ବିଂ) ଦହକୁଥିବା ।

ଧଅଁକସକ—ଗ୍ରା. ବି. ଧକସକ ଦେଖ ।

ଧଅଧଅରୁ—ଗ୍ରା. (ବାକ୍ୟ) ଶିଶୁରଞ୍ଜକ ଗୀତର ଅଂଶବିଶେଷ ।

ଧଅପଚକଣ—ପ୍ରା. (ଯାଜପୁର) ବିଂ. ଯେ ଭିତରେ ଅସାର କିନ୍ତୁ ବାହାରେ ଚକଚକିଆ ଦେଖାଯାଏ ।

ଧଅବୋଇଲେକାମୁଣ୍ଡପକ(କା)ଉଚ୍ଛି—ଗ୍ରା. (ବ୍ୟଙ୍ଗ-ବାକ୍ୟ) ଦନ୍ତୁରା ହଡଆର ବା ଅକର୍ମଣ୍ୟ କୁକୁରର କାର୍ଯ୍ୟକାରିତାର ଅଭାବ ଦେଖିଲେ ବ୍ୟଙ୍ଗଭାବରେ ସାଧାରଣତଃ ଏହି ବାକ୍ୟ ପ୍ରଯୁକ୍ତ ହୁଏ ।

ଧଅଲା(ଲେ)ଇବା—ଗ୍ରା. କ୍ରି. ଧବଳିତ କରିବା, ଘରର କାନ୍ଥଆଦିକୁ ପାଣିଆଁ ଚୂନରେ ସଫେଦ କରିବା ।

ଧଅଳିବା—ଗ୍ରା.କ୍ରି. ଧଉଳାଇବା ଦେଖ ।

ଧଅସ—ଗ୍ରା. କ୍ରି. ବିଂ. (ସଂ-ଝଟିତ)ଝଟ୍, ଅତିଶୀଘ୍ର, (ଗ୍ରା.ବି) ଜୋର୍, ବଳ, ଦ୍ରୁତଗତି ।

ଧଇଁ—ଗ୍ରା. ବି. ଶ୍ୱାସରୋଗ, ଖରଶ୍ୱାସ ।

ଧଇଁଆ—ଗ୍ରା. ବିଂ. ଧଇଁରୋଗଗ୍ରସ୍ତ ।

ଧଇଁଉଠିବା—ଗ୍ରା. କ୍ରି. ଶ୍ୱାସରୋଗର ହପ୍ସା ଉଠିବା, ଖରଶ୍ୱାସ ବଢ଼ିବା ।

ଧଇଁଗ୍ରୁ—ଗ୍ରା. ବି. ଧଣିଗ୍ରୁ ଦେଖ ।

ଧଇଁସଇଁ—ଗ୍ରା. ବି. ଅତି ପରିଶ୍ରମ ହେତୁରୁ ଯାହାର ଖରଶ୍ୱାସ ବହୁଥାଏ ।

ଧଇଁସଇଁହେବା—ଗ୍ରା. କ୍ରି. (ଧ୍ୱନ୍ୟନୁକରଣ) ଅତ୍ୟନ୍ତ କ୍ଲାନ୍ତହେତୁ ବେଗରେ ନିଶ୍ୱାସ ପ୍ରଶ୍ୱାସ ନେବା ଓ ଛାଡ଼ିବା ।

ଧଇରି—ଗ୍ରା.ବି. କାଠିଲଗା ପେଟରେ ଦରିନିର୍ମିତ ମାଛ ଧରିବାର ଯନ୍ତ୍ରବିଶେଷ ।

ଧଇର୍ଯ୍ୟ—ଗ୍ରା. ବି. (ସଂ-ଧୈର୍ଯ୍ୟ) ଦମ୍ଭ, ଧୈର୍ଯ୍ୟ, ଦୃଢ଼ତା, ଶାନ୍ତଭାବ ।

ଧଇର୍ଯ୍ୟଭଙ୍ଗା—ଗ୍ରା.ବିଂ. ଧୈର୍ଯ୍ୟ ବା ଧୃତି ନାଶକାରୀ ।

ଧଉଡ଼(ରି)—ଗ୍ରା. ବି. ଧାନଗଛକୁ ନଷ୍ଟ କରିବା ଏକପ୍ରକାର ପୋକ, (ପ୍ରା. ପାରିକୁଦ) ଧଇରି ଦେଖ । [ଧୌତ ।

ଧଉତ—ଗ୍ରା. (ପଦ୍ୟ) ବିଂ. (ସଂ-ଧୌତ)

ଧଉରା(ଡ଼ା)—ଗ୍ରା.ବି. ଏକପ୍ରକାର ଚେମଡ଼ ଓ ଚାଣ ଜଙ୍ଗଲି ଗଛ (ଏହା ଶଗଡ଼ର ଅଖରୁ ଉପଯୁକ୍ତ), ଧଅ ଦେଖ ।

ଧଉଳ(ଳା)—ଗ୍ରା. ବିଂ. (ସଂ-ଧବଳ) ଧଳା, ଶ୍ୱେତ ।

ଧଉଳା(ଲେ)ଇବା—ଗ୍ରା. କ୍ରି. ଧୋବ କରିବା, କାନ୍ଥକୁ ଚୂନଆଦି ଲେପି ଧଳା କରିବା ।

ଧଉଳ—ଗ୍ରା. ବି. (ସଂ-ଧବଳ) ଧାନଗଛରେ ଲାଗିବା ଏକପ୍ରକାର ଶ୍ଲେଟ ଶ୍ଲେଟ ଧଳା ପୋକ, ବାଉଁଶ କାଠିରେ ବୁଣାହୋଇଥିବା ମାଛଧରିବା ଯନ୍ତ୍ରବିଶେଷ, ଧଉଳଗିରି ଦେଖ, (ସ୍ତ୍ରୀ. ସଂ-ଧବଳା; ଧଳା ଗାଈ, (ଗ୍ରା.ସ୍ତ୍ରୀ.ବିଂ) ଧବଳବର୍ଣ୍ଣ ବିଶିଷ୍ଟା, ଧଳା ।

ଧଉଳଗିରି—ଗ୍ରା. ବି. (ସଂ-ଧବଳଗିରି) ଉତ୍କଳର ପୁରୀକୂଳର କ୍ଷୁଦ୍ର ପର୍ବତବିଶେଷ ।

ଧଉଳିବା—ଗ୍ରା. କ୍ରି, (ସଂ-ଧବଳ) ଧଅଳାଇବା ଦେଖ ।

ଧଉଳମାରିବା—ଗ୍ରା.ବି. ଗଛର ଡାଳରେ ବା ଧାନଗଛରେ ଧଉଳ ପୋକ-ଲାଗିବା ।

ଧଏନ୍—ପ୍ରା. (ସମ୍ବ) ବିଂ. ଧନ୍ୟଦେଖ ।

ଧଏନ୍‌ଧଏନ୍‌କରିବା—ପ୍ରା. (ସମ୍ବ) କ୍ରି. ଧନ୍ୟ ଧନ୍ୟ କରିବା ଦେଖ ।

ଧଏର୍—ପ୍ରା. (ସମ୍ବ) ବି. ଧଇର୍ଯ୍ୟ ଦେଖ ।

ଧଂକଆ—ପ୍ରା, (ଗଞ୍ଜାମ) ବି. ଧକ୍କା, ଧକ୍କାଦ୍ୱାରା ଆଘାତ ।

ଧଂଶା—ଗ୍ରା.ବି. (ସଂ-ଧ୍ୱଜ) ବଡପତାକା, (ସଂ-ଦମାମ) ଶୋଭାଯାତ୍ରାରେ ରାଜାଙ୍କ ଆଗରେ ହାତୀ ଓ ଓଟଉପରେ ବଜାଯିବା ବଡ଼ ନାଗରା ।

ଧଂଶିବା—ଗ୍ରା. କ୍ରି. (ସଂ-ଦନ୍ଶ୍‌ଧାତୁ) ଦଂଶନ କରିବା,କାମୁଡ଼ିବା, (ସଂ-ଧ୍ୱଂସ) ଧ୍ୱଂସକରିବା; (ସଂ-ଧର୍ଷଣ) ବଳାତ୍କାର କରିବା, ଧର୍ଷଣ କରିବା, ଲହସିଯିବା, ଚପିଯିବା, ଦବିଯିବା ।

ଧକା—ଗ୍ରା. ବି. ଧକ୍କା ଦେଖ ।

ଧକ୍‌ଧକ୍—ଅବ୍ୟ. ଅଗ୍ନି ଶିଖାର ଜ୍ୟୋତି, ଅନଳର ଉଜ୍ଜ୍ୱଳଜ୍ୟୋତି, ବଥଆଦି ବାନ୍ଧିବା ବା ଯନ୍ତ୍ରଣା ଦେବା, ବେଦନା, ହୃଦ ଥରିବା, ଧକ ଧକ, (ଗ୍ରା.ବିଂ) ଧୁ ଧୁ ହୋଇ ଜଳୁଥିବା, (ଗ୍ରା.କ୍ରି.ବିଂ) ହୁ ହୁ ହୋଇ ।

ଧକ୍‌ସକ୍—ଗ୍ରା. ବି. କଇଁ କଇଁ କାନ୍ଦିବା, (ଗ୍ରା.ବିଂ) କଇଁ କଇଁ ହୋଇ କାନ୍ଦୁଥିବା, (କ୍ରି.ବିଂ) କଇଁ କଇଁ ହୋଇ ।

ଧକ—ଗ୍ରା. ବି. ଶ୍ରମଜନିତ ଖରନିଶ୍ୱାସ, ଗୁରୁ ଦମ୍ ଦମ୍ ହେବା, କ୍ଲାନ୍ତ, ଜଳୁଥିବା ନିଆଁର ତେଜ, (ପ୍ରା. ବାଲେ. ବି) ଯଫା ଗୁଉଲ, (ଗ୍ରା.ବିଂ) ଉତ୍ତମ ।

ଧକଉଁଧକା—ଗ୍ରା. ବି. ପରସ୍ପର ଧକା ମରାମରି, ଧକାଧକି, ଅତ୍ୟଧିକ ଜନତା ମଧ୍ୟରେ ଠେଲାଠେଲି ।

ଧକଚକ—ଗ୍ରା, ବି ଓ ବିଂ. (ଧ୍ୱନ୍ୟନୁକାରୀ) ବକବକାରି, ବକର ବକର, ବହୁତ ଗୁଡ଼ାଏ କଥାରେ ଗପିବା, ଦ୍ରବ୍ୟର ମୂଲ୍ୟ ସ୍ଥିର କଲାବେଳେ କ୍ରେତା ଓ ବିକ୍ରେତା ମଧ୍ୟରେ ଜିଦ୍ ଧରାଧରି ହୋଇ ଦାମ୍ କରିବା, ହଲଚଲ,ଦୋହଲ ଦୋହଲି ।

ଧକଚକଲଗା(ଗୋ)ଇବା—ଗ୍ରା. କ୍ରି. କୌଣସି ବ୍ୟକ୍ତିସଙ୍ଗେ ବୃଥା ବାକ୍‌ବିତଣ୍ଡା କରିବା ।

ଧକଚକହେବା—ଗ୍ରା.କ୍ରି. ବୃଥା ବିଶେଷ ବାକ୍ୟ ବ୍ୟୟକରିବା, ଶଗଡ଼ଆଦିରେ ବସି ଅସମତଳ ଭୂମିରେ ଦ୍ରୁତଗତିରେ ଶଗଡ଼ ଚଳାଇବାଯୋଗୁଁ ହଲଚଲହେବା ।

ଧକଚକିଆ—ଗ୍ରା.ପୁଂ. ବିଂ, ଯେ ବୃଥାରେ ଗୁଡ଼ାଏ ବାକ୍ୟ ବ୍ୟୟକରେ, ଗପଡ଼ି, (ସ୍ତ୍ରୀ) ଧକଚକେଇ ।

ଧକଣ—ଗ୍ରା. ବି. ( ସଂ-ଢକ୍କା ) ପ୍ରାଚୀନ କାଳରେ ବ୍ୟବହୃତ ଯୁଦ୍ଧାସ୍ତ୍ର ବିଶେଷ ।

ଧକଧକହେବା—ଗ୍ରା.କ୍ରି.(ସଂ-ଧଗଦ୍ଧଗତ୍) ଅଳୁଅ ଉଜ୍ଜ୍ୱଳରୂପେ ଜଳିବା, ଖାତ୍ର-ଜ୍ୱରରେ ବିନ୍ଧିବା, ବେଦନା କରିବା ।

ଧକଧକ—ଗ୍ରା. ବି. (ଧ୍ୱନ୍ୟନୁକରଣ) ଦ୍ରୁତ ଧଡ଼କା, ହୃତପିଣ୍ଡ, ଧୁକ୍‌ଧୁକି ।

ଧକଦିଗିଡ଼ିଯିବା—ପ୍ରା. (ଯାଜପୁର) ବି. ପରିଶ୍ରମାଦି ଜନିତ ଅତ୍ୟନ୍ତ କ୍ଲାନ୍ତି ।

ଧକପକ—ଗ୍ରା. ଅବ୍ୟ. (ଧ୍ୱନ୍ୟନୁକରଣ) ଛଟପଟ, ଦ୍ରୁତଧଡ଼କା,ଭୟରେ ଚିତ୍ତର ଅସ୍ଥିରତା ।

ଧକମଧକା—ଗ୍ରା.ବି.ଧକଉଁଧକା ଦେଖ ।

ଧକମାରିବା—ଗ୍ରା. କ୍ରି. ଧକେଇବା, (ଦଉଡ଼ି ୨ ଯାଇଥିବା ଲୋକ) କିଛିକ୍ଷଣ ଠାଇଁ ବିଶ୍ରାମ ନେବା, ଦମ୍ ମାରିବା ।

ଧକଲ—ଗ୍ରା. ବି. (ସଂ-ଧକ୍କଧାତୁ) ଧକ୍କା, ଅତ୍ୟାଚାର, ଧକ୍କାମାର ତଡ଼ିବା ।

ଧକଲ(ଲେ)ଇବା—ଗ୍ରା. କ୍ରି. ଧକ୍କାମାରି ଏଣିକି ସେଣିକୁ ନେବା, ସଙ୍କୀର୍ଣ୍ଣ ସ୍ଥାନରେ ବହୁଲୋକ ପୂରାଇବା,ଜୁଲମ୍ କରିବା, ଅତ୍ୟାଚାର କରିବା ।

ଧକଲଧକଲ—ଗ୍ରା. ବି ଓ ବିଂ. ପରସ୍ପର ଧକ୍କାମରାମରି, ଧକ୍କାଧକ୍କି ।

ଧକା—ଗ୍ରା. ବି. ( ସଂ-ଧକ୍କଧାତୁ ) ବାହୁ ଦ୍ୱାରା ଠେଲା, ବାହାଠେଲା, ଠେଲାପେଲା, ଦୁଇପଦାର୍ଥ ପରସ୍ପର ସହିତ ଜୋର୍‌ରେ ବାଜିବା,(ଲ.ଅର୍ଥ)ପ୍ରତିରୋଧ,କୌଣସି ବସ୍ତୁ ବା ଘଟଣା ଉପରେ ଅନ୍ୟ ବସ୍ତୁ ବା ଘଟଣାର ପ୍ରଭାବ ।

ଧକା(କେ)ଇବା—ଗ୍ରା. କ୍ରି. ( ସଂ-ଧକ୍କ-ଧାତୁ ) ଧକାମାରିବା, ପରିଶ୍ରମପରେ ଘନଘନଶ୍ୱାସ ମାରିବା, ଧକଧକ ହେବା, ସ୍ପନ୍ଦିତ ହେବା ।

ଧକାଖାଇବା—ଗ୍ରା. କ୍ରି. ଅନ୍ୟଠାରୁ ଧକା ମାଡ଼ ସହିବା, ( ଲ.ଅର୍ଥ ) ପ୍ରତିରୋଧ ପାଇବା ।

ଧକାଦେବା—ଗ୍ରା. କ୍ରି. ଅନ୍ୟକୁ ଧକ୍କା ଦ୍ୱାରା ଆଘାତ କରିବା ।

ଧକାବାଜିବା—ଗ୍ରା.ବି. ଏକ ବସ୍ତୁ ସଙ୍ଗେ ଅନ୍ୟବସ୍ତୁର ଝୁକ୍ ଜୋରରେ ଆଘାତ ।

ଧକାସହିବା—ଗ୍ରା. କ୍ରି କୌଣସି ଆଘାତ ବା ବିପଦାଦିର ବେଗକୁ ସମ୍ଭାଳିବା ।

ଧକେଇସକେଇହେବା—ଗ୍ରା. କ୍ରି. କଇଁ କଇଁ ହୋଇ କାନ୍ଦିବା, କାନ୍ଦକାନ୍ଦ ଫେସଦ ହେବା ।

ଧକ୍କ(ଧାତୁ)—ପ୍ରହାର କରିବା, ନଷ୍ଟ କରିବା, ବିନାଶ ଘଟାଇବା ।

ଧକ୍କା(ଇତ୍ୟାଦି)—ଧକାଇତ୍ୟାଦି ଦେଖ ।

ଧଙ୍କ—ଗ୍ରା. ବି. ରାମାୟଣ ବର୍ଣ୍ଣିତ ରାକ୍ଷସ ବିଶେଷ ।

ଧଙ୍କସଗଡ଼—ଗ୍ରା. ବି. ପ୍ରାଚୀନ ଉତ୍କଳର ଅନାର୍ଯ୍ୟରାଜାଙ୍କର ଗୋଟିଏ ଦୁର୍ଗ ।

ଧଙ୍କିଆ—ପ୍ରା. (ଗଞ୍ଜାମ) ବି. ଧକ୍କା ।

ଧଙ୍ଗଡ଼(ର)—ପ୍ରା. (ସମ୍ବ) ପୁଂ. ବି. ଅବିବାହିତ ଯୁବକ,(ସ୍ତ୍ରୀ)ଧଙ୍ଗସି,ଧଙ୍ଗଡ଼ୀ ।

ଧଜା—ଗ୍ରା. ବି. (ସଂ-ଧ୍ୱଜ) ପତାକା ।

ଧଟ—ପୁଂ. ବି. ( ଧଣ୍+କ.ଅ ) ଧଡ଼ା, ତୁଳାଯନ୍ତ୍ର, ନିକିତି, ତୁଳା ପରୀକ୍ଷା, ନିକିତଦ୍ୱାରା ଅପରାଧୀର ପରୀକ୍ଷା,ତୁଳା-ରାଶି,୪୨ରତି ଓଜନ, ଧର୍ମ୍ମ,ଧବଳକ୍ଷ ।

ଧଟକ—ପୁଂ. ବି. ( ଧଟ+ସ୍ୱାର୍ଥେ.କ ) ୪୨ରତି ଓଜନ, ନନ୍ଦୀବୃକ୍ଷ ।

ଧଟକର୍କଟ—ପୁଂ. ବି. (ଜ୍ୟୋତି) ତୁଳାର କ୍ଷିତ୍ୟାଧାରେ ଈଷଦ୍‌ବକ୍ର କର୍କଟର ଶୃଙ୍ଗ ସଦୃଶ ଆୟୁସଞ୍ଚାଳକ ଭେଦ ।

ଧଟପରୀକ୍ଷା--ସ୍ତ୍ରୀ.ବି.(ଜ୍ୟୋତି)ତୁଳାପରୀକ୍ଷା ।

ଧଟିକା—ସ୍ତ୍ରୀ. ବି. ( ଧଟ+କ+ଆ ) ପୁରାତନ ବସ୍ତ୍ର,ଅଣ୍ଟାରେ ଭିଡ଼ି ପିନ୍ଧିବା ଲମ୍ବ ବସ୍ତ୍ର,ଚୀର,ଚୀରାଲୁଗା,କୌପୀନ, ଲୁଗାଧଡ଼ି, ପଘୁରି,ପାଞ୍ଚସେର ଓଜନ ।

ଧଟୀ—ପୁଂ. ବି. ( ଧଟ+ଇନ୍ ) ତୁଳାରାଶି, ଶିବ ମହାଦେବ, ବଣିକ, ଦଣ୍ଡୀଧାର, (ସ୍ତ୍ରୀ)ବି. (ଧଟ+ଈ)ଚୀର, ଚୀରାକନା, ପୁରୁଣା ଲୁଗା, କୌପୀନ, କଟିବସ୍ତ୍ର, ଗର୍ଭାଧାନ ପରେ ସ୍ତ୍ରୀମାନେ ପିନ୍ଧିବା ବସ୍ତ୍ରଖଣ୍ଡ, (ସ୍ତ୍ରୀ) ଧଟିନୀ ।

ଧଟୀଦାନ—କ୍ଲୀ. ବି. ଗର୍ଭାଧାନାନ୍ତର ସ୍ତ୍ରୀ ସମ୍ପ୍ରଦାନକ ଚୀରବସ୍ତ୍ର ଦାନ ।

ଧଡ଼—ଗ୍ରା. ଅବ୍ୟ. (ଧ୍ୱନ୍ୟନୁକାରୀ) ଅତି-ଶୀଘ୍ର, ହଠାତ୍, ଦୁଇ କଠିନ ବସ୍ତୁ ପରସ୍ପର ବାଜିଗଲେ ଯେଉଁ ଶବ୍ଦ ହୁଏ ।

ଧଡ଼କ(କେ)ଇବା—ଗ୍ରା. କ୍ରି. ( ସଂ-ଧ ଧାତୁ ) ଉତ୍ତରିବା,ଧମକାଇବା,ଗାଳି ଅନ୍ଧ ଦ୍ୱାରା [illegible] ଉପସ୍ଥିତ କରାଇବା

ଧଡ଼କାଧଡ଼କି—ଗ୍ରା.ବି.ଉତ୍ତରଣ,ଧମକାଣ ।

ଧଡ଼ଧଡ଼—ଗ୍ରା. ଅବ୍ୟ. (ଧ୍ୱନ୍ୟନୁକରଣ) ଦ୍ରୁତଧାରିବା ଶବ୍ଦ, ଟିଣିଲଚମଡ଼ା ବା ଦ୍ରବ୍ୟ ଟାଣ ଜିନିଷରେ ପିଟିଲେ ବା ବାଜିଲେ ଯେଉଁ ଶବ୍ଦ ଉତ୍ପନ୍ନ ହୁଏ, ବୃଦ୍ଧାବସ୍ଥା ବା ରୋଗରୁ ଶରୀରର ଚମଡ଼ା ଶିଥିଳ ହେବା ।

ଧଡ଼—ଗ୍ରା. ବି. ( ସଂ-ଧୃ ଧାତୁ ) କବନ୍ଧ ମସ୍ତକ ଓ ହସ୍ତପଦହୀନ ଦେହ, ସ୍କନ୍ଧ-ଠାରୁ କଟିଦେଶ ପର୍ଯ୍ୟନ୍ତ ଦେହ, ଶରୀରର ସ୍ଥୂଳ ମଧ୍ୟ ଭାଗ, ସାରଶୂନ୍ୟ ବହିରାବରଣ, ଶରୀର, ଦେହ, ଅସ୍ଥି-କଙ୍କାଳ ମାତ୍ରାବଶିଷ୍ଟ ଶରୀର, ଗଛର ଗଣ୍ଡି ।

ଧଡ଼କ—ଗ୍ରା. ବି. (ଧ୍ୱନ୍ୟନୁକରଣ) ଭୟ, ଦ୍ରୁତଧମ୍‌ଧମ୍, ହୃଦ୍‌କମ୍ପ, ( ଗ୍ରା. ବିଂ ) ଅଦ୍ଭୁତ, ଶିଥିଳ ।

ଧଡ଼କଧଡ଼କ—ଗ୍ରା.ଅବ୍ୟ.ଠକର ଠକର, ଦୁଇ କଠିନ ବସ୍ତୁର ଏକାଧିକ ଥର ବାଜିବା ଦ୍ୱାରା ଉଦ୍ଭୂତ ଶବ୍ଦ ।

ଧଡ଼କା—ଗ୍ରା. ବି. ଭୟରେ ଧମକାଇବା, ହୃଦ୍‌କମ୍ପ, (ଗ୍ରା, ବିଂ) ସାହା ହୃଦ୍‌କମ୍ପ

ଉତ୍ପାଦନ କରେ ।
ଧଡ଼କିବା—ଗ୍ରା. କ୍ରି. ( ଧ୍ୱନ୍ୟନୁକରଣ ) ଚମକିପଡ଼ିବା. ଡରିବା. ଭୀତଗ୍ରସ୍ତ ହେବା (ଗ୍ରୀଡ) ଧଡ଼୍ ଧଡ଼୍ ହେବା ।
ଧଡ଼ଧଡ଼ିଆ—ଗ୍ରା. ବି. ଶିଥିଳ, ଶିଥିଳୀକୃତ. ଲ୍ଳନତ, ଧଡ଼ଧଡ଼ ଶବ୍ଦ କରୁଥିବା ।
ଧଡ଼ପ(ଫ)ଡ଼—ଗ୍ରା. କ୍ରି. ବି. (ଧ୍ୱନ୍ୟନୁକରଣ) ଅତଶୀଘ୍ର, ସ୍ପନ୍ଦନସହକାରେ. ଛଟପଟ, ଉଚ୍ଛନ୍ନ, ଅସ୍ଥିର, ଫଡ଼ଫଡ଼ ଶବ୍ଦ, ପକ୍ଷୀ ଡେଣାକୁ ଭୂଇଁରେ ବାଡ଼େଇବାର ଶବ୍ଦ ।
ଧଡ଼ପଡ଼ିବା—ଗ୍ରା. ବି. ରୋଗ ବା ଅନାହାରଯୋଗୁ ଅସ୍ଥି ଚର୍ମସାର ହେବା ।
ଧଡ଼ମଡ଼—ଗ୍ରା. ବି. ଭିଡ଼ଭାଡ଼, ଅତ୍ୟାଗ୍ରହ ।
ଧଡ଼ର—ପ୍ରା. (ସିଂହଭୂମ) ବି. ବୃକ୍ଷ କୋଟର. କୋରଡ଼ ।
ଧଡ଼ରଧଡ଼ର—ଗ୍ରା. ଅବ୍ୟ. (ଧ୍ୱନ୍ୟନୁକରଣ) ଧଡ଼ପଡ଼ ଦେଖ ।
ଧଡ଼ଧ—ଗ୍ରା. ବି. ଶ୍ଳଥ, ସେମିତା, ଦୁର୍ବଳ, (ଗ୍ରା. ପୁଂ. ବି.) ଶ୍ଳଥକର୍ମୀ, (ସ୍ତ୍ରୀ) ଧଡ଼ସୀ ।
ଧଡ଼୍—ଗ୍ରା. ବି. ବଡ଼ କେନାଲରେ ସ୍ଥାନେ ସ୍ଥାନେ ଶବ୍ଦ ଭେଦ ଯିବାପାଇଁ କରାଯାଇଥିବା ଗଡ଼ନ୍ତ, ଗଡ଼ା ।
ଧଡ଼ସ—ଗ୍ରା. ବି. (ସଂ-ଧୃଷ୍ ଧାତୁ) ଧମକ, ଶୀଘ୍ର ଚାଲିବାର ବେଗ, ସାହସ, ହିମତ, ଚାଲିବାର ଅର, ଧମକ, (ଗ୍ରା) କ୍ରି. ବି. (ସଂ-ଝଟିତି) ଅତଶୀଘ୍ର ।
ଧଡ଼ସା—ଗ୍ରା. ବି. ଅତି ବେଗଯୁକ୍ତ ।
ଧଡ଼ସା(ସେ)ଇବା—ଗ୍ରା. କ୍ରି. (ଧୃଷ୍ ଧାତୁ) ଧମକାଇବା, ତ୍ୱରାନ୍ୱିତ କରାଇବା ।
ଧଡ଼ସାଧଡ଼ସି—ଗ୍ରା. ବି. ଧମକାଧମକି ।
ଧଡ଼ସି—ଗ୍ରା. କ୍ରି. ବି. (ସଂ-ଝଟିତି) ଝଟ, ଧଅସି, ଶୀଘ୍ର ।
ଧଡ଼ସିବା—ଗ୍ରା. କ୍ରି. (ଧୃଷ୍ ଧାତୁ) ଶଙ୍କିଯିବା, ଭୀତହେବା, ଶଙ୍କିତ ହୋଇ କୌଣସି କାର୍ଯ୍ୟରୁ ପଶ୍ଚାତ୍ପଦ ହେବା ।
ଧଡ଼ା—ଗ୍ରା. ବି. ( ସଂ-ଧଟ ) ତୁଳାଦଣ୍ଡ, ତୁଳାଯନ୍ତ୍ର, ବଟକରା, ପାସଙ୍ଗ, ଧଡ଼ା ଧରିବାପାଇଁ ତରାଜୁର ଏକ ପଲ୍ଲାରେ ଯେଉଁ ମାଟି, ଗୋଡ଼ ପ୍ରଭୃତି ରଖାଯାଏ, ଅର୍ଗଳ, କାଷ୍ଠଦଣ୍ଡ, ଠେଙ୍ଗା, ଦଣ୍ଡ, କବାଟ ବା ତାଟିକବାଟ ପ୍ରଭୃତି ବନ୍ଦ କରିଯିବା ପାଇଁ ବ୍ୟବହୃତ ବାଉଁଶ. (ସଂ-ଧଟି; ଧଟିକା) ପିନ୍ଧାଲୁଗା ଉପରେ ଅଣ୍ଟାରେ ଭିଡ଼ାଯିବା ଚଦର, କୌପୁନି, ନିରିକନି, ପୃଷ୍ଠବସ୍ତ୍ର, (ଗ୍ରା. ବି.) ଧଡ଼ିଆ. ଅତି କୃଶ ।
ଧଡ଼ାଜ(ଠ)ଇବା—ଗ୍ରା. କ୍ରି. ଭୁଲିବା, ଓଜନକରିବା ।
ଧଡ଼ାଏପକା(କେ)ଇବା—ଗ୍ରା. କ୍ରି. ଠେଙ୍ଗା ଦ୍ୱାରା ଏକପ୍ରହାର ଦେବା ।
ଧଡ଼ାଙ୍—ଗ୍ରା. ଅବ୍ୟ. ( ଧ୍ୱନ୍ୟନୁକରଣ ) ଦେଙ୍ଗା ଓ ସ୍ଥୂଳ ପଦାର୍ଥ ହଠାତ୍ ଶବ୍ଦପୂର୍ବକ ଭୂମିରେ ପଡ଼ିବା; ସଟାଙ୍, ହଠାତ୍ ।
ଧଡ଼ା ଦେବା—ଗ୍ରା. ବି. ( ସମ୍ବଲପୁର ) ସାଲଙ୍କ, ଚେଷ୍ଟା. ସାଲମଙ୍କର ଉପକରଣ, ଅଣ୍ଟାବନ୍ଧା ଓ ମୁଣ୍ଡବନ୍ଧା ଲୁଗା, ପଗଡ଼ି ।
ଧଡ଼ାଧଡ଼୍—ଗ୍ରା. ଅବ୍ୟ. (ଧ୍ୱନ୍ୟନୁକରଣ) ହୃତପିଣ୍ଡ ବନ୍ଧୁକ ଫୁଟିବାର ଶବ୍ଦ, ହଠିନ ଦ୍ରବ୍ୟ ନଙ୍କର ପରସ୍ପର ଆଘାତ ଜନିତ ଶବ୍ଦ, (ଗ୍ରା. ଅବ୍ୟ.) ଅତଶୀଘ୍ର ।
ଧଡ଼ାଧଡ଼ିବା—ଗ୍ରା. କ୍ରି. କୌଣସି ବସ୍ତୁକୁ ଓଜନକରିବା ପୂର୍ବରୁ ତରାଜୁର ଦଣ୍ଡକୁ ଭୂପୃଷ୍ଠ ସଙ୍ଗେ ସମତଳକରିବା, ପାସଙ୍ଗ ଧରିବା ।
ଧଡ଼ାପଡ଼(ଟ୍ରା)—ଗ୍ରା. ବି. (ସଂ-ଧୃ ଓ ପତ୍-ଧାତୁ) ଧରାପଡ଼ ଦେଖ ।
ଧଡ଼ାସ୍—ଗ୍ରା. ଅବ୍ୟ. ଦ୍ରୁତ୍ପିଣ୍ଡର ଦ୍ରୁତ ବା ପ୍ରବଳ ସ୍ପନ୍ଦନର କାଳ୍ପନିକ ଶବ୍ଦ ।
ଧଡ଼ି—ଗ୍ରା. ବି. (ସଂ-ଧାରା) ଲୁଗାର ଧାର, ଲୁଗାର ଧାରରେ ବୁଣା ଯାଇଥିବା ରଙ୍ଗିନ୍ ଦଡ଼ା, (ସଂ-ଧଟୀ) ଛୁଣ୍ଡାକନା, ଅପୌଗଣ୍ଡ ବାଳକବାଳିକାଙ୍କର ନାମ ।
ଧଡ଼ିଆ—ଗ୍ରା. ବି. (ସଂ-ଧଟୀ—ଡୋରକ) ମସ୍ତକର କେଶରେ ବାନ୍ଧିବା ଡୋର ବା ପାଟଫୁଲି, (ଗ୍ରା. ବି.) ଧଡ଼ିବିଶିଷ୍ଟ, ( ସଂ-ଦୁର୍ବଳ ) କୃଶ, ଦୁର୍ବଳ, ପତଳା, ଜୀର୍ଣ୍ଣ (ବସ୍ତ୍ର) ।
ଧଡ଼ିଗୁଡ଼ିଯିବା—ଗ୍ରା. କ୍ରି. ବସ୍ତ୍ରର ଧଡ଼ିର ରଙ୍ଗ ଫିକା ପଡ଼ିଯିବା, (ଲ. ଅର୍ଥ) ଅଭିଭୂତ ହୋଇପଡ଼ିବା, କ୍ଲାନ୍ତ ହୋଇଯିବା ।
ଧଡ଼ିଛିଣ୍ଡା(ଣ୍ଡେ)ଇବା—ଗ୍ରା. କ୍ରି. (ଇତରଜନ ବ୍ୟବହୃତ) କୌଣସି ବ୍ୟକ୍ତିକୁ ପରିଶ୍ରମ କରାଇ ଏକାନ୍ତ ଅବସନ୍ନ କରି ପକାଇବା, ନାକାନ୍ତକରିବା ।
ଧଡ଼ିଛିଣ୍ଡି(ଣ୍ଡେ)ବା—ଗ୍ରା. କ୍ରି. ଜୀର୍ଣ୍ଣହେବା, (ଲ. ଅର୍ଥ) କ୍ଳାନ୍ତହେବା ।
ଧଡ଼ିଦାର୍—ଗ୍ରା. ବି. ଧଡ଼ିଥିବା (ବସ୍ତ୍ର) ।
ଧଡ଼ିବାଜ୍—ଗ୍ରା. ପୁଂ. ଓ ସ୍ତ୍ରୀ. ବି. (ସଂ-ଧୂର୍ତ୍ତ) ମାମଲବାଜ୍, ବଗୁଲିଆ, ଦୁଷ୍ଟ, ଖେଚେଡ଼ା, ଶଠ, ପ୍ରତାରକ, ଧୂର୍ତ୍ତ, ( ମନ୍ଦାର୍ଥ ) ଚଲକ୍, ଦ୍ୟାଭିରୁଷା, ଯେ ଅନ୍ୟକୁ ବିପଦରେ ପକାଏ ।
ଧଡ଼ିବାଜି—ଗ୍ରା. ବି. ଖେଚେଡ଼ାମି, ଦୁଷ୍ଟାମି, ବଗୁଲିଆପଣ, ଧୂର୍ତ୍ତତା, ଶଠତା ।
ଧଡ଼ୀ—ଗ୍ରା. ସ୍ତ୍ରୀ. ବି. ଅତଶୀର୍ଣ୍ଣା. ଅତିବୃଦ୍ଧ, ଧଡ଼ଡ଼ୀ, ଅଧିକକାଳମାନାବସ୍ଥା ।
ଧଣ୍—(ଧ ଧାତୁ) ଶବ୍ଦକରିବା ।
ଧଣତା—ଗ୍ରା. ବି. ପାଣିଚଆ ( ଖାଦ୍ୟ ), ପାଣି ମିଶିବାରୁ ବିସ୍ୱାଦ (ଖାଦ୍ୟ) ।
ଧଣିଆଁ (ଆ)—ଗ୍ରା. ବି. ( ସଂ-ଧନ୍ୟା, ଧନ୍ୟାକ ) ଧନିଆ, କୋଥମେରୁ ।
ଧଣିଆଗୁଣ୍ଡୁଳ—ଗ୍ରା. ବି. ( ସଂ-ଧନ୍ୟା + ତଣ୍ଡୁଳ) ଧନିଆ ମଞ୍ଜିକୁ ରଗଡ଼ି ତହିଁରୁ ତୁଷ ପାଛୁଡ଼ିବା ପରେ ରହିବା ମଞ୍ଜିର ଚାଳ ।
ଧଣିକ୍ସ—ଗ୍ରା. ବି. ( ସଂ-ଜଗ୍ନ୍ତୀ ) ଶିମ୍ବାଦ ବର୍ଗର ପାପଶୀର୍ଣ୍ଣ ବର୍ଷାୟୁକ୍ଷୁପବିଶେଷ
ଧଣୁଆ(ଆଁ)—ଗ୍ରା. ବି. (ସଂ-ଦୋହନୀୟା) ଯେଉଁ ଗାଈ ଦୁଗ୍ଧ ଦେଉଥାଏ, ଯେଉଁ ଗାଈଠାରୁ ଦୁଗ୍ଧ ଦୁହାଁ ହେଉଥାଏ, (ଗ୍ରା. ବି.) ଦୁହାଁଲିଗାଈ ।
ଧଣ୍ଡ—ଗ୍ରା. ବି. (ସଂ-ତୁଣ୍ଡୁଭ) ଏକପ୍ରକାର ନିର୍ବିଷ ଜଳଚର ସର୍ପ, ପାଣିଧଣ୍ଡ ।

ଧଣ୍ଡୁଆଁ—ଗ୍ରା. ବିଂ. ( ସଂ-ଡୁଣ୍ଡୁଭ ) ଯାହାକୁ ଧଣ୍ଡସାପକାମୁଡ଼ିଥାଏ,(ଲା.ଅର୍ଥ) ଯାହାକୁ ଜଣେ ଆକ୍ରମଣ କରିବାସରେ ଅନ୍ୟବ୍ୟକ୍ତି ଆକ୍ରମଣ କରିପାରିବ ନାହିଁ ।

ଧଣ୍ଡଷଣ୍ଡ( ଣ୍ଡ )—ଗ୍ରା. ବି. ଅକଥ୍ୟ ବା ଅଶ୍ଳୀଳ ଭାଷା ।

ଧଣ୍ଡିଶିକଳା—ଗ୍ରା. ବି. ( ସଂ-ଡୁଣ୍ଡୁଭ + ଶୃଙ୍ଖଳ ) ଗୋଡ଼ରେ ଅଳଙ୍କାର ରୂପେ ବ୍ୟବହୃତ ଶିକୁଳି ।

ଧଣ୍ଡା—ଗ୍ରା.ବି. (ସଂ-ଦଣ୍ଡ) ବେକରୁ ପାଦ ପର୍ଯ୍ୟନ୍ତ ଲମ୍ବିଥିବା ଫୁଲମାଳ, ଆଖୁର ଗୋଟିଏ ଗଛ ବା ଦଣ୍ଡ, ପ୍ରସାଦମାଳା, ଦେବତାଙ୍କ ଛଡ଼ାମାଳ, (ସଂ-ଜମ୍ବୁକ) ପତାକା, ଝଣ୍ଡା, ବଡ଼ପତାକା, (ସଂ-ଡୁଣ୍ଡୁଭ) ଧଣ୍ଡ ( ଦେଖ ), ଦେବତାଙ୍କ ପ୍ରସାଦମାଳାକୁ ପରସ୍ପର ଦିଆଦେଇ ହୋଇ ଦୁଇଜଣ ମଧ୍ୟରେ ସ୍ଥାପନକରିବ ବନ୍ଧୁତା ।

ଧଣ୍ଡାଳିବା—ଗ୍ରା.କ୍ରି. ଧନ୍ଦାଳିବା ଦେଖ ।

ଧଣ୍ଡାଳହେବା—ଗ୍ରା. କ୍ରି. ଧନ୍ଦାଳହେବା ଦେଖ ।

ଧଣ୍ଡି—ଗ୍ରା.ବି. (ସଂ-ଦଣ୍ଡ) ଝଣ୍ଡା, ଲମ୍ବ-ବାଉଁଶ ଉପରେ ଲଗାଯିବା ପତାକା, କ୍ଷେତମାପରେ ଦିଆଯିବା ଚିହ୍ନ ବା ଗାର, ଦୁଇଖଣ୍ଡ ଭୂମିର ସୀମା ଚିହ୍ନିତ ରେଖା, (ପ୍ରା. ଗଡ଼ଜାତ)ଭଣ୍ଡି ଦେଖ ।

ଧଣ୍ଡିସ୍—ଗ୍ରା.ବି. ଧଣିସ୍ ଦେଖ ।

ଧତ୍—ଗ୍ରା.ଅବ୍ୟ. (ସଂ-ଦୂର) ଦୂର୍,ଦୂର୍ କର୍, ହାତୀକୁ ଠିଆକରିବା ନିମିତ୍ତ ମାହୁନ୍ତର ଆଦେଶ ।

ଧତ୍କାର—ଗ୍ରା.ବି.(ସଂ-ଧିକ୍କାର)ଧିକ୍କାର ।

ଧତ୍କାରିବା—ଗ୍ରା. କ୍ରି. ( ସଂ-ଧିକ୍କାର ) ଧିକ୍କାର କରିବା, ଧୂତ୍କାରିବା ।

ଧତଡ଼ା(ଡ଼ି)—ଗ୍ରା.ପୁଂ.ବିଂ.(ସଂ-ଧ୍ୱସ୍ତ)ଅତି ଜୀର୍ଣ୍ଣ, ଜରାଜୀର୍ଣ୍ଣ, ଛିଣ୍ଡା କନ୍ଥାଯୁକ୍ତ ।

ଧତଡ଼ୀ(ଡ଼ି)—ଗ୍ରା. ସ୍ତ୍ରୀ. ବିଂ. ଅତିବୃଦ୍ଧା, ଦୁର୍ବଳା ଓ ଜରାଜୀର୍ଣ୍ଣା,(ସ୍ତ୍ରୀ),ଧଡ଼ୀ,ଶୁଷ୍କ-ଚର୍ମବିଶିଷ୍ଟା ।

ଧତୁ—ଗ୍ରା. ବି. ( ସଂ-ଧାତୁ ) ମନୁଷ୍ୟର ମାନସିକ ପ୍ରକୃତି, ଦୈହିକ ପ୍ରକୃତି, ଶରୀରସ୍ଥ ବାତ, ପିତ୍ତ, କଫ ଆଦି, ଶୁକ୍ର, ବୀର୍ଯ୍ୟ, ରେତଃ, ପ୍ରକୃତି, ମନ୍ଦଅଭ୍ୟାସ, ଖୋଇ, ଧାତୁ ଦେଖ ।

ଧତୁପଡ଼ିବା—ଗ୍ରା. କ୍ରି. ଧାତୁ ପଡ଼ିବା, ମେହରୋଗ ।

ଧତୁରା—ଗ୍ରା. ବି. (ସଂ-ଧତ୍ତୂର) ଧାତୁରା ଗୁଳ୍ମ ଓ ଫଳ), ଦୁଦୁରା ।

ଧତୁରିଆ—ଗ୍ରା. ବିଂ. (ସଂ-ଧୂସ୍ତୁର) ବିଂ. ଧତଡ଼ା ଦେଖ ।

ଧତ୍ତୂର—ପୁଂ. ବି. (ଧେ+ଉର୍) ଧତୁରା ଗଛ ଓ ଫଳ ।

ଧଥ୍—ଗ୍ରା. ଅବ୍ୟ. ଧତ୍ ଦେଖ ।

ଧନ୍—(ଧାତୁ) ଶବ୍ଦ କରିବା, (ଶସ୍ୟାଦି) ଉତ୍ପନ୍ନ ହେବା, ନିକ୍ଷେପକରିବା ।

ଧନ୍—ପ୍ରା. (ସମ୍ବଲ)ବି. ଧନ ଦେଖ ।

ଧନ୍କିବା—ପ୍ରା.(ସମ୍ବଲ)କ୍ରି.(ସଂ-ଧୂନନ୍) କମ୍ପାଇବା ।

ଧନ୍ତର—ଗ୍ରା.ବିଂ. (ସଂ-ଧନ୍ୱନ୍ତରୀ)ଧୂର-ନ୍ଧର, ପ୍ରବୀଣ, (ବି) ଧନ୍ୱନ୍ତର ଦେଖ ।

ଧନ୍ଦୁଗାନ—ପ୍ରା.(ସମ୍ବଲ)ବି. (ସହଚର) ଧନ ଦଉଲତ ।

ଧନ—କ୍ଳୀ. ବି. (ଧନ+କ.ଅ) ସମ୍ପତ୍ତି, ବିତ୍ତ, ଗୋଧାନ୍ୟାଦି ସ୍ଥାବରାସ୍ଥାବର ସମ୍ପତ୍ତି, ନଗଦ ଟଙ୍କାଟୋକର, ପୁଞ୍ଜି, ପାଣି, ସୁବର୍ଣ୍ଣ,ମୂଲ୍ୟବାନ୍ ପଦାର୍ଥ, ଧନ-ପରି ପ୍ରିୟତମ ବ୍ୟକ୍ତି, ସ୍ନେହପାତ୍ର, (ଜ୍ୟୋତିଷ)ଧନିଷ୍ଠା ନକ୍ଷତ୍ର, ଧନସ୍ଥାନ, (ଗଣିତ)ଯୋଗଚିହ୍ନ,(ଋଣଚିହ୍ନ—ବ୍ୟପ-ରୀତ),କମ୍ପନୀୟ ବସ୍ତୁ,ଝଣିରୁ ବାହାରିବା ଅନୁଦ୍ଧ ଧାତୁଖଣ୍ଡ, ( ଗ୍ରା.ଅବ୍ୟ— ଶିଶୁ, ସ୍ୱାମୀ,ସ୍ତ୍ରୀ, ସହଚରୀଆଦିଙ୍କ ପ୍ରତି ଆଦର ଓ ସ୍ନେହସୂଚକ ସମ୍ବୋଧନ)ହେ ପ୍ରିୟ, ( ବି. ଆଦରାର୍ଥେ ) ଶିଶୁମାନଙ୍କ ଶିଶ୍ନ, ଗୁଡ଼, ମୂଳଧନ ।

ଧନକ—ପୁଂ.ବି. (ଧନ+କ)ଧନପ୍ରାପ୍ତିର ଇଚ୍ଛା, ରାଜା କୃତବୀର୍ଯ୍ୟଙ୍କ ପିତା ।

ଧନକଷ୍ଟ—ବି. ( ଷଷ୍ଠୀତତ୍ପୁ ) ଦାରିଦ୍ର୍ୟ, ଦାରିଦ୍ର୍ୟ ଦୁଃଖ, ଧନାଭାବ ।

ଧନକାମ(ମ୍ୟ)—ତ୍ରି.ବିଂ. ଅର୍ଥଗୃଧ୍ନୁ,ଧନ-ଲୋଲୁପ ।

ଧନକୁବେର—ବିଂ. (ଷଷ୍ଠୀତତ୍ପୁ)କୁବେରଙ୍କ ପରି ଅତ୍ୟନ୍ତ ଧନୀ ବ୍ୟକ୍ତି, ଲକ୍ଷପତି, କ୍ରୋଡ଼ପତି ।

ଧନକେଳି—ପୁଂ.ବି. (ବ.ବ୍ରୀ )କୁବେର ।

ଧନକୋଷ—କ୍ଳୀ.ବି.(ଷତତ୍ପୁ)ଧନାଗାର ।

ଧନକ୍ଷୟ—ପୁଂ. ବି. (ଷତତ୍ପୁ) ଧନନାଶ, ଲକ୍ଷ୍ମୀଛାଡ଼ିବା, ଅପବ୍ୟୟ, ଧନର କ୍ଷତି, ଧନ ସଂକ୍ଷିପ ।

ଧନକ୍ଷୟକର(କାରୀ)—ପୁଂ. ବିଂ. (ଧନ +କ୍ଷୟ+କୃ+କ.ଅ.ଇନ୍)ଉପପଦ୍ତତ୍ପୁ; ଅପବ୍ୟୟୀ, ଯେଉଁ କାର୍ଯ୍ୟ ଦ୍ୱାରା ଧନ କ୍ଷୟହୁଏ, ( ସ୍ତ୍ରୀ.) ଧନକ୍ଷୟକରୀ— ଧନକ୍ଷୟକାରିଣୀ ।

ଧନଗରବ—ଗ୍ରା. ବି. ( ସଂ-ଧନଗର୍ବ ) ଧନାହଙ୍କାର ।

ଧନଗର୍ବ—ପୁଂ.ବି. (ମଧ୍ୟ-କ.ଧା) ଅଧିକ ଧନଥିବା ହେତୁରୁ ଅହଙ୍କାର,(ଷତତ୍ପୁ) ଧନର ଗର୍ବ ।

ଧନଗର୍ବିତ—ପୁଂ.ବିଂ. ଧନଥିବା ଯୋଗୁଁ ଅହଙ୍କାରୀ, (ପୁଂ.ବି) ଧନଗର୍ବୀ, (ସ୍ତ୍ରୀ) ଧନଗର୍ବିଣୀ ।

ଧନଗଁଓ—ମଧ୍ୟ ଭାରତର ଏକ ସାମନ୍ତ ରାଜ୍ୟ ।

ଧନଗାଏନ୍—ବଙ୍ଗଳା ହଜାରିବାଗ ଜିଲ୍ଲାର ଗୋଟିଏ ଗିରିବର୍ତ୍ମ ।

ଧନଗୁପ୍ତ—ପୁଂ.ବି.ଯେ ରତ୍ନ ସହକାରେ ଧନ ରକ୍ଷା କରେ, ଜଣେ ବଣିକର ନାମ ।

ଧନଗୌରବ—ବି. (ଷଷ୍ଠୀତତ୍ପୁ ବା ମଧ୍ୟ-କ.ଧା ) ଧନ ଯୋଗୁଁ ଧନୀ ବ୍ୟକ୍ତିର ସମାଜରେ ସମ୍ମାନ, ଧନଗର୍ବ, ଧନର ମାହାତ୍ମ୍ୟ ।

ଧନଚନ୍ଦ୍ର—‘ଶବ୍ଦାନୁଶାସନ ଲଘୁବୃତ୍ତ୍ୟ-ବଚୂରିକା’ ନାମକ ସଂସ୍କୃତ ଗ୍ରନ୍ଥକାର ।

ଧନଛୁ—ସ୍ତ୍ରୀ. ବି. କରେଟୁ ପକ୍ଷୀ ।

ଧନଜଗିଆ—ଗ୍ରା.ବିଂ. ଯେ ଧନକୁ ଜଗି-

ଆଏ ମାଝ, ଅର୍ଥାତ୍ ବ୍ୟସ୍ତ କରେ-
ନାହିଁ, ଧନ ଜଗୁଆଳ(ଳି) ।
ଧନଜନ—ଗ୍ରା. ବ. ( ଦ୍ୱନ୍ଦ୍ୱ ) ସମ୍ପତ୍ତି ଓ
ପରିବାର ।
ଧନ,ଜନ,ମରଣ—ଗ୍ରା. ଅବ୍ୟ. ଭବିଷ୍ୟତ୍
ବିଷୟରେ ପ୍ରଶ୍ନ ଉପଲକ୍ଷରେ କୌଣସି
ପଦାର୍ଥକୁ ଗଣିବାର କ୍ରମ ।
ଧନଞ୍ଜୟ—ଗ୍ରା. ବ. (ସଂ-ଧନଞ୍ଜୟ) ଧନ-
ଞ୍ଜୟ ଦେଖ ।
ଧନଞ୍ଜୟ—ପୁଂ.ବ. (ଧନଂ+ଜି+କ.ଅ)
ଅର୍ଜୁନ, ଅଗ୍ନି, ସର୍ପବିଶେଷ, ପ୍ରାଣ-
ବାୟୁ ମଧ୍ୟରୁ ଏକତମ, ଧଳାଚିତାଗଛ,
କକୁଭବୃକ୍ଷ,ଅର୍ଜ୍ଜୁନଗଛ,(ଗ୍ରା. ପୁଂ. ବ.
ବ୍ୟଙ୍ଗ)ମସ୍ତକ ପ୍ରହାର,ଚଇତନ, ଜ୍ଞାନ-
ଦାସ,(ସଂ-ପୁଂ.ବୌଦ୍ଧସ୍ତ୍ରୁ)ଗୋତ୍ରବିଶେଷ,
ଷୋଡ଼ଶ ଦ୍ୱାପରର ବ୍ୟାସ, (ବିଂ)
ଧନଞ୍ଜୟ ଗୋତ୍ରଜାତ ।
ଧନଞ୍ଜୟ—ଜଣେ ଜୈନ କବି, କୁସ୍ଥଳ-
ପୁରର ଅଧିପତି,ଜଣେ ପ୍ରାଚୀନ କବି ।
ଧନଞ୍ଜୟଭଞ୍ଜ—ଗ୍ରା. ବ. ଉପେନ୍ଦ୍ରଭଞ୍ଜଙ୍କ
ପିତାମହ ।
ଧନଞ୍ଜୟସିଦ୍ଧ—ଜଣେ ପ୍ରସିଦ୍ଧ ଯୋଗୀ ।
ଧନତୃଷା—ସ୍ତ୍ରୀ. ବ. (୪ତତ୍ ବା ମଧ୍ୟ-
କ.ଧା ବା ୬ତତ୍) ଧନ ବା ଅର୍ଥଲାଳସା,
ଅର୍ଥଲାଭର ପ୍ରବଳ ଆକାଙ୍କ୍ଷା ।
ଧନତୃଷ୍ଣ—ପୁଂ.ବିଂ. (ବ.ବ୍ରୀ) ଧନଲୋଭୀ,
(ସ୍ତ୍ରୀ) ଧନତୃଷ୍ଣା ।
ଧନତୃଷ୍ଣା—ସ୍ତ୍ରୀ.ବ.(୪ତତ୍ ବା ମଧ୍ୟ-କ.ଧା-
ବା ୬ତତ୍ ) ଧନଲାଳସା, ଅର୍ଥଲାଭର
ଆକାଙ୍କ୍ଷା ।
ଧନଦ—ପୁଂ. ବିଂ. (ଧନ+ଦା+କ.ଅ)
ଧନଦାନକାରୀ, ମୁକ୍ତହସ୍ତ, ଦାତା,
ଯଦ୍ଦ୍ୱାରା ଧନଲାଭ ହୁଏ, (ବ.—ଧନ+
ଦୈ+କ.ଅ) କୁବେର, ହିଞ୍ଜଳ ବୃକ୍ଷ,
(ସ୍ତ୍ରୀ) ଧନଦା ।
ଧନଦଉଲତ—ଗ୍ରା.ବ. (ସଂ-ଧନ+ଆ+
ଦୌଲତ୍, ସହଚର) ଧନ ସମ୍ପତ୍ତି,
ବିଭବ ।
ଧନଦଣ୍ଡ—ପୁଂ.ବ. ୩ୟାତତ୍,(ଧନଦ୍ୱାରା
ଦଣ୍ଡ) ଅର୍ଥଦଣ୍ଡ, ଜୋରିମାନା ।
ଧନଦତ୍ତ—ପୁଂ. ବିଂ. ଯେ ଧନ ଦାନ
କରେ, (ବ) ନାମଭେଦ ।
ଧନଦସ୍ତୋତ୍ର--କ୍ଲୀ.ବ.କୁବେରଙ୍କ ସ୍ତୋତ୍ର ।
ଧନଦା—(ବୈଦିକ)ବିଂ. ବିଂ. ଧନ ଦାନ
କରିବା,(ବ) ଦେବୀଙ୍କର ନାମାନ୍ତର ।
ଧନଦାକ୍ଷୀ—ସ୍ତ୍ରୀ. ବ. କୁବେରାକ୍ଷୀ ଲତା,
ଲତାକରଞ୍ଜ ।
ଧନଦାତା—ପୁଂ. ବିଂ. ( ଧନ+ଦାତୃ)
ଧନଦ, ଯେ ଧନ ଦିଏ,(ସ୍ତ୍ରୀ)ଧନଦାତ୍ରୀ
ଧନଦାନୁଚର—ପୁଂ.ବ.(୬ତତ୍) କୁବେ-
ରଙ୍କ ଅନୁଚର, ଯକ୍ଷ ।
ଧନଦାନୁଜ—ପୁଂ. ବ. (୬ତତ୍) କୁବେ-
ରଙ୍କ କନିଷ୍ଠଭ୍ରାତା ରାବଣାଦି ।
ଧନଦାୟିକା—ସ୍ତ୍ରୀ. ବ. (ଧନ+ଦା+
ଇକ+ଆ) ଧନଦାତ୍ରୀ,ଦେବୀବିଶେଷ ।
ଧନଦାୟୀ—ପୁଂ. ବ. (ଧନ+ଦା+
କ.ଇନ୍) ଅଗ୍ନି,(ବିଂ)ଧନଦାତା ଦେଖ ।
ଧନଦାସ—ପୁଂ. ବ. ( ୬ତତ୍ ) ଯେ
ଧନପାଇଁ ଆତୁର ହୋଇ ଦାସତ୍ୱ
ସ୍ୱୀକାର କରେ, (ବିଂ) ଅତିଲୋଭୀ,(ସ୍ତ୍ରୀ
ଧନଦାସୀ ।
ଧନଦେବ—ପୁଂ.ବ. (୬ତତ୍) କୁବେର,
ଧନରୂପ ଉପାସ୍ୟ ଦେବତା ।
ଧନଦେଶ୍ୱର—ପୁଂ. ବ. କାଶୀସ୍ଥିତ
ଶିବଲିଙ୍ଗବିଶେଷ ।
ଧନଧାନ୍ୟ—ବ. (ସମାନାର୍ଥ ବୋଧକ
ସହଚର; ଧନ+ଧାନ୍ୟ) ଧନ ଓ ଅନ୍ନ,
ଧନସମ୍ପତ୍ତି ।
ଧନଧାମ—ବ. ( ସମାନାର୍ଥକ ସହଚର )
ଧନ ଓ ଗୃହ, ଧନସମ୍ପତ୍ତି ।
ଧନନନ୍ଦ—ମହାବଂଶମତେ ନନ୍ଦବଂଶର
ଶେଷରାଜା । [ ଅପବ୍ୟୟ ।
ଧନନାଶ—ବ. ( ୬ତତ୍ ), ଧନକ୍ଷୟ,
ଧନନିୟୋଗ—ପୁଂ. ବ. (୭ତତ୍) ଲାଭ-
ନିମନ୍ତେ ବ୍ୟବସାୟ, ଓ ଋଣାଦିରେ
ଟଙ୍କାଲଗାଇବା ।
ଧନନ୍ତର—ଗ୍ରା. ବ. ଧନ୍ୱନ୍ତରି ଦେଖ ।
ଧନନ୍ଦଦା—ସ୍ତ୍ରୀ. ବ. ବୃନ୍ଦଶକ୍ତି ଭେଦ ।
ଧନପତି—ପୁଂ. ବ. (୬ତତ୍) କୁବେର,
ବାୟୁ, ଜଣେ ବଣିକ, (ବିଂ) ଧନୀ ।
ଧନପତି—ଜଣେ ପ୍ରାଚୀନ କବି, ଜ୍ଞାନ-
ମୁକ୍ତାବଳୀ ନାମକ ଜ୍ୟୋତିଷଗ୍ରନ୍ଥ-
ପ୍ରଣେତା ।
ଧନପତିମିଶ୍ର—ବିଦ୍ୟାରତ୍ନାକର ଓ ଶଙ୍କର
ଦିଗ୍ୱିଜୟଡିଣ୍ଡିମ ନାମକ ଗ୍ରନ୍ଥଦ୍ୱୟ
ରଚୟିତା ।
ଧନପତ୍ର—ବ. (ମଧ୍ୟ-କ.ଧା)ଧନର ହିସାବ
ଲେଖାହେବା ଖାତା ।
ଧନପାତ୍ର—ବ.ଧନୀ ବ୍ୟକ୍ତି ।
ଧନପାଳ—ତ୍ରି.ବିଂ. (ଧନ+ପାଳ+ଅ)
ଧନରକ୍ଷକ, ( ପୁଂ ) କୁବେର, ଜଣେ
ପ୍ରାଚୀନ କବି ।
ଧନପିପାସା—ସ୍ତ୍ରୀ.ବ. (୬ତତ୍ ବା ୪ର୍ଥୀ-
ତତ୍) ଧନତୃଷା ଦେଖ; (ବିଂ) ଧନ-
ପିପାସୁ ।
ଧନପିଶାଚ—ପୁଂ.ବ. ( ରୂପକ ) ଲୋଭ-
ବାସନା, ଧନରୂପ ରାକ୍ଷସ, ଲୋଭ,
ଧନତୃଷ୍ଣା,(ବିଂ—୬ମୀତତ୍)ଧନଲୋଭୀ,
କୃପଣ (ସ୍ତ୍ରୀ) ଧନପିଶାଚୀ ।
ଧନପିଶାଚିକା (ପିଶାଚୀ)--ସ୍ତ୍ରୀ.ବ. (ମଧ୍ୟ-
କ.ଧା) ଧନ ଶା, ତୃଷ୍ଣା, ଅତିଶୟ ଧନ-
ଲୋଭ, (ସ୍ତ୍ରୀ) ଧନପିଶାଚିକା ।
ଧନପିଶାଚୀ—ସ୍ତ୍ରୀ.ବ. ତୃଷ୍ଣା, ଧନଲୋଭ,
ଅତିଶୟ ଧନଆଶା ।
ଧନପ୍ରୟୋଗ—ପୁଂ.ବ.ଟଙ୍କାପଇସା ଧାର
କରଜ ଦେବା, ଋଣ ଦେବା ଇତ୍ୟାଦି ।
ଧନପ୍ରିୟ—ପୁଂ. ବିଂ. ( ବ.ବ୍ରୀ ) ଲୋଭୀ,
ଧନାନୁରାଗୀ, ଅର୍ଥାନୁରାଗୀ, (ବ) ଧନ-
ପ୍ରିୟତା, (ସ୍ତ୍ରୀ) ଧନପ୍ରିୟା ।
ଧନପ୍ରିୟା—ସ୍ତ୍ରୀ.ବିଂ. ( ବ.ବ୍ରୀ ) ଅର୍ଥାନୁ-
ରାଗିଣୀ, (ବ--ମଧ୍ୟ-କ.ଧା)କାକଜମ୍ବୁ ।
ଧନଫଳ—କ୍ଲୀ.ବ. ଦାନଭୋଗାଦି ।
ଧନବନ୍ତ—ତ୍ରି. ବିଂ. ଧନବିଶିଷ୍ଟ, ଧନ-
ଶାଳୀ, ଧନୀ ।
ଧନବତୀ—ସ୍ତ୍ରୀ.ବିଂ.(ଧନବତ୍+ଈ)ଧନ-
ଶାଳିନୀ, ସୌଭାଗ୍ୟଶାଳିନୀ,(ବ)ଧନିଷ୍ଠା
ନକ୍ଷତ୍ର, (ପୁଂ) ଧନବାନ୍ ।

ଧନବତ୍ତା—ସ୍ତ୍ରୀ. ବି. (ଧନବତ୍+ତା) ବିଭବଶାଳିତା, ଧନବାନର ଅବସ୍ଥା ।

ଧନବନ୍ତ—ଗ୍ରା.ପୁଂ ଓ ସ୍ତ୍ରୀ.ବିଂ.(ସଂ-ଧନବତ୍) ବିଭବଶାଳୀ, ଧନୀ ।

ଧନବାନ୍—ପୁଂ. ବିଂ. ( ଧନ+ବତ୍ ) ଐଶ୍ୱର୍ଯ୍ୟଶାଳୀ, ଧନୀ, ମହାଜନ, (ସ୍ତ୍ରୀ) ଧନବତୀ ।

ଧନବିଜୟବାଚକ—ଲୋକନାଳିକସୂତ୍ର ନାମକ ଗ୍ରନ୍ଥର ଭାଷାବୃତ୍ତିକାର ।

ଧନବିଜ୍ଞାନ—ଗ୍ରା.କ୍ଳୀ. ବି. (୬ତତ୍) ଅର୍ଥବିଜ୍ଞାନ, ଅର୍ଥଶାସ୍ତ୍ର, ଅର୍ଥନୀତି ।

ଧନବିଦ୍ୟୁତ୍—ଗ୍ରା.ବି ଯୁକ୍ତତଡ଼ିତ୍(ବିପରୀଣବିଦ୍ୟୁତ୍) ।

ଧନବିଭାଗ—ବି.( ୬ତତ୍ ) ଅଂଶୀଦାରମାନଙ୍କ ମଧ୍ୟରେ ସମ୍ପତ୍ତିର ବଣ୍ଟନ, ବଣ୍ଟା ।

ଧନବୃଦ୍ଧି—ବି. (୬ତତ୍) ସମ୍ପତ୍ତି ବଢ଼ିବା, ଧନୋନ୍ନତି ।

ଧନଭକ୍ଷ—ପୁଂ.ବି. ଧନଭୋଗ ।

ଧନଭଣ୍ଡାର—ଗ୍ରା.ବି. (ଧନ+ଭାଣ୍ଡାଗାର) ଧନାଗାର ଦେଖ, ଧନଶାଳା ।

ଧନଭୂତ—ଜନୈକ ରାଜାଙ୍କର କୀର୍ତ୍ତିସ୍ତମ୍ଭ ।

ଧନମଦ—ପୁଂ. ବି. ଧନହେତୁ ମତ୍ତତା, ଅର୍ଥର ଅହଙ୍କାର ।

ଧନମିତ୍ର—ଜଣେ ବଣିକ ।

ଧନମୂଳ—ତ୍ରି.ବିଂ. ଅର୍ଥ ଯାହାର ମୂଳ, ଅର୍ଥ ଯାହାର କାରଣ,(କ୍ଳୀ)ମୂଳଧନ ।

ଧନମୋହନ—ପୁଂ. ବି. ଜଣେ ବଣିକ ପୁତ୍ରଙ୍କ ନାମ ।

ଧନରାଜ—ମହାଦେବୀଦୀପିକା ନାମକ ଜଣେ ଗ୍ରନ୍ଥକାର ।

ଧନର୍ଚ୍ଚ—ପୁଂ.ବି.ଧନାର୍ଥ ଅର୍ଚ୍ଚ୍ୟଯୁକ୍ତ-ଅଗ୍ନି ।

ଧନର୍ଜ୍ଜଇ—ଗ୍ରା. ବି. (ପ୍ରାଚୀନ ପ୍ରୟୋଗ; ସଂ-ଧନଞ୍ଜୟ) ଧନଞ୍ଜୟ, ଅର୍ଜ୍ଜୁନ ।

ଧନଲକ୍ଷ୍ମୀ—ସ୍ତ୍ରୀ. ବି. ( ଦ୍ୱନ୍ଦ୍ୱ ବା ମଧ୍ୟ-କ.ଧା ) ଧନ ଓ ଲକ୍ଷ୍ମୀ ।

ଧନଲାଭ—ବି. ( ୬ତତ୍ ) ସମ୍ପତ୍ତିପ୍ରାପ୍ତି, ଅର୍ଥଲାଭ, ଆୟ ।

ଧନଲାଳସା—ସ୍ତ୍ରୀ.(୬ତତ୍ ବା ମଧ୍ୟ-କ.ଧା) ଅର୍ଥସଂକ୍ରାନ୍ତ ଲୋଭ ।

ଧନଲିପ୍ସା—ସ୍ତ୍ରୀ. ବି.୬ତତ୍,ଅର୍ଥଲାଭେଚ୍ଛା ।

ଧନଲୁବ୍ଧ—ତ୍ରି.ବିଂ. ଅର୍ଥପର,ଅର୍ଥଲୋଭୀ ।

ଧନଲୋଭ—ପୁଂ.ବି. (୭ମୀବା୪ର୍ଥୀତତ୍) ଧନତୃଷ୍ଣା, ( ପୁଂ.ବିଂ ) ଧନଲୁବ୍ଧ ବା ଧନଲୋଭୀ, (ସ୍ତ୍ରୀ) ଧନଲୁବ୍ଧା ବା ଧନଲୋଭିନୀ ।

ଧନଶାଳୀ—ପୁଂ. ବିଂ. (ଧନ+ଶାଳିନ୍) ଧନୀ, (ସ୍ତ୍ରୀ) ଧନଶାଳିନୀ ।

ଧନସଞ୍ଚୟ—ପୁଂ.ବି. (୬ତତ୍)ଅର୍ଥସଞ୍ଚୟ, ଅର୍ଥାତ୍ ସଂଗ୍ରହକରି ରଖିବା ।

ଧନସନ—ତ୍ରି.ବିଂ. ଧନଲାଭଯୁକ୍ତ ।

ଧନସମ୍ପତ୍ତି—ସ୍ତ୍ରୀ.ବି. ଧନାଢ୍ୟତା ।

ଧନସମ୍ପଦ୍—ସ୍ତ୍ରୀ.ବି. (ରୂପକ-କ.ଧା)ଅର୍ଥରୂପ ସମ୍ପତ୍ତି । [ ବିଭବ ।

ଧନସମ୍ପଦ—ବି..(ଦ୍ୱନ୍ଦ୍ୱ) ଅତୁଳ ଐଶ୍ୱର୍ଯ୍ୟ,

ଧନସା—ତ୍ରି.ବିଂ.ଧନଦାନ ସ୍ୱୀକାରକରିବା

ଧନସାତି—ସ୍ତ୍ରୀ.ବି.ଧନ ବା ଅର୍ଥ ଉପାର୍ଜ୍ଜନ

ଧନସିଂହ—ଭବିଷ୍ୟ ବ୍ରହ୍ମଖଣ୍ଡୋକ୍ତ ଚମ୍ପାଦେଶାଧିପତି । [ ଉତ୍ପାଦନ ।

ଧନସୂ—ବି. କୋଇଲାଖାଇ ପକ୍ଷୀ, ଧନ

ଧନସ୍ଥ—ତ୍ରି.ବିଂ. (ଧନ + ସ୍ଥା + ଅ)ଧନବାନ୍, ଧନୀ ।

ଧନସ୍ଥାନ—କ୍ଳୀ.ବି. (୬ତତ୍) ଜାତକରେ ଲଗ୍ନର ୨ୟ ସ୍ଥାନ ।

ଧନସ୍ୱାମୀ—ବିଂ. ( ସଂ-ଧନ + ସ୍ୱାମିନ୍ ) ଧନପତି, ଧନର ମାଲିକ, (ସ୍ତ୍ରୀ) ଧନସ୍ୱାମିନୀ, (ବି) କୁବେର ।

ଧନସ୍ପୃତ—ତ୍ରି. ବିଂ.ଲୁଣ୍ଠିତ ଦ୍ରବ୍ୟ ବହନ ବା ଜୟ ।

ଧନସ୍ପୃହା—ସ୍ତ୍ରୀ.ବି.ଅର୍ଥକାମ, ଧନଲିପ୍ସା ।

ଧନସ୍ୟକ—ତ୍ରି.ବିଂ.ଲାଳସା ଦ୍ୱାରା ଧନେଚ୍ଛୁ, ଲୋଭୀ, (ବି) ଗୋକ୍ଷୁରକ, ଗୋଖର ଦେଖ ।

ଧନହର—ପୁଂ.ବିଂ. (ଧନ+ହୃ+କ.ଅ) ଯେ ପରର ଧନ ହରଣ କରେ, (ବି) ତସ୍କର, ଲୁଟିଆର, ଚୋର ନାମକ ଗନ୍ଧଦ୍ରବ୍ୟ,(ସ୍ତ୍ରୀ) ଧନହରୀ ।

ଧନହରୀ—ସ୍ତ୍ରୀ. ବି. ( ଧନହର+ଈ ) ଚୋରନାମକ ଗନ୍ଧଦ୍ରବ୍ୟ ।

ଧନହାରୀ—ତ୍ରି.ବିଂ. ଦାୟଭାଗୀ, ଧନାପହାରକ,(ସ୍ତ୍ରୀ)ଚୋରନାମକ ଗନ୍ଧଦ୍ରବ୍ୟ ।

ଧନହୀନ—ପୁଂ. ବିଂ. (୩ତତ୍) ନିର୍ଦ୍ଧନ, ଦରିଦ୍ର, ଗରିବ, (ବି)ଧନହୀନତା, (ସ୍ତ୍ରୀ) ଧନହୀନା ।

ଧନହୃତ୍—ତ୍ରି.ବିଂ. (ଧନ+ହୃ+କ୍ୱିପ୍) ଧନହାରୀ, (ପୁଂ.ବି) ଚଣ୍ଡାଳ କନ୍ଦ ।

ଧନା—ସ୍ତ୍ରୀ.ବି. ରାଗିଣୀବିଶେଷ, (ଗ୍ରା.ବିଂ) ( ସଂ-ଧନାଢ୍ୟ ) ମହାଧନୀ, (ଗ୍ରା. ବି. ବ୍ୟଙ୍ଗ)ଶିଶ୍ନ,ଧନେଶ୍ୱରର ଡ଼ାକ ନାମ ।

ଧନାକାଙ୍କ୍ଷା—ସ୍ତ୍ରୀ.ବି.(୬ତତ୍,୪ର୍ଥୀତତ୍) ଧନ ପାଇବାର ଇଚ୍ଛା, ଧନକାମନା, (ବିଂ)ଧନାକାଙ୍କ୍ଷୀ (ସ୍ତ୍ରୀ) ଧନାକାଙ୍କ୍ଷିଣୀ ।

ଧନାଗମ—ପୁଂ.ବି. (୬ତତ୍) ଧନ ଉପାର୍ଜ୍ଜନ, ଧନାର୍ଜ୍ଜନ, ଆୟ ।

ଧନାଗମତୃଷା—ବି. (୬ତତ୍) ଉପାର୍ଜ୍ଜନ କରିବାର ବଳବତୀ ଇଚ୍ଛା ।

ଧନାଗାର—ପୁଂ..ବି. (୬ତତ୍) ଖଜଣାଖାନା, ଭଣ୍ଡାର, ମାଲଖାନା ।

ଧନାଢ୍ୟ—ପୁଂ.ବିଂ. (୩ତତ୍) ମହାଧନୀ, ବିଭବଶାଳୀ,ବଡ଼ଲୋକ,(ସ୍ତ୍ରୀ)ଧନାଢ୍ୟା, (ବି) ଧନାଢ୍ୟତା ।

ଧନାତ୍ମକ—ଗ୍ରା.ବିଂ.(ବି.ଗ୍ରା)ଯୋଗ ଚିହ୍ନ ସୂଚକ, ସତ୍ତାତ୍ମକ ।

ଧନାଧାର—ବି. (୬ତତ୍) ଧନ ରଖିବାର ସିନ୍ଦୁକ ବା ବାକ୍ସ ।

ଧନାଧିକାର—ବି. ( ୬ତତ୍ ) ଧନରେ ସ୍ୱତ୍ୱ ବା କ୍ଷମତା, ଉତ୍ତରାଧିକାରୀରୂପେ ଧନପ୍ରାପ୍ତି, ଧନପ୍ରାପ୍ତି, ଧନଭୋଗ, (ବିଂ) ଧନାଧିକାରୀ,(ସ୍ତ୍ରୀ.ବିଂ) ଧନାଧିକାରିଣୀ ।

ଧନାଧିକାରୀ—ତ୍ରି.ବିଂ.(ଧନ+ଅଧି+କୃ+ଇନ୍) ଧନରକ୍ଷାକାରୀ, ଧନାଧ୍ୟକ୍ଷ, କୋଷାଧ୍ୟକ୍ଷ ।

ଧନାଧିକୃତ—ତ୍ରି.ବିଂ. (ଧନ+ଅଧିକୃତ) ଧନରକ୍ଷାର ଭାରପ୍ରାପ୍ତ, (ବି) ଧନାଧ୍ୟକ୍ଷ, ଖଜାଞ୍ଚି ।

ଧନାଧିଗୋପା—ପୁଂ.ବି°.(ଧନ+ଅଧି+ଗୁପ୍+ତୃ) ଧନପାଳକ, କୋଷରକ୍ଷକ, (ପୁଂ.ବି) କୁବେର ।

ଧନାଧିପ—ପୁଂ. ବି°. (୬ତତ୍ପୁ)ମହାଧନୀ, (ବି) କୁବେର, ଲଗ୍ନର ୨ୟ ସ୍ଥାନରେ ଥିବା ଗ୍ରହ, (ସ୍ତ୍ରୀ) ଧନାଧିପା ।

ଧନାଧିପତି—ପୁଂ. ବି. କୁବେର, ଧନରକ୍ଷକ ।

ଧନାଧିପତ୍ୟ—କ୍ଲୀ.ବି. ଧନର ଅଧିପତିତ୍ୱ ।

ଧନାଧ୍ୟକ୍ଷ—ପୁଂ. ବି. (୬ତତ୍ପୁ) କୁବେର, ଖାଜାଞ୍ଚି, କୋଷାଧ୍ୟକ୍ଷ, ଧନାଗାରର ଭାରପ୍ରାପ୍ତ ବ୍ୟକ୍ତି ।

ଧନାପହରଣ—ବି. (୬ତତ୍ପୁ) ଚୋରି ।

ଧନାପହାରକ—ପୁଂ.ବି ଓ ବି°. (ଧନ+ଅପହାରକ) ଧନହର ଦେଖ, (ସ୍ତ୍ରୀ) ଧନାପହାରିକା ।

ଧନାପହାରୀ—ପୁଂ.ବି°. (ଧନ+ଅପ+ହୃ+କ.ଇନ୍-ଉପ) ଅର୍ଥ ଅପହରଣକାରୀ, ଚୋର ।

ଧନାଭିଲାଷ—ବି. ( ଧନ+ଅଭିଲାଷ ) ଧନାକାଙ୍କ୍ଷା ଦେଖ,(ପୁଂ-ବି°)ଧନାଭିଲାଷୀ, (ସ୍ତ୍ରୀ) ଧନାଭିଲାଷିଣୀ ।

ଧନାୟୁ—ପୁଂ. ବି. ନୃପବିଶେଷ ।

ଧନାର୍ଜିତ—ତ୍ରି.ବି°.(୩ତତ୍ପୁ) ଧନୀ, (ବି) ଧନଥିବା ବ୍ୟକ୍ତି ।

ଧନାର୍ଜକ—ପୁଂ.ବି°. (୬ତତ୍ପୁ) ଯେ ଧନ ଅର୍ଜ୍ଜନ କରେ, (ସ୍ତ୍ରୀ) ଧନାର୍ଜିକା ।

ଧନାର୍ଜନ—କ୍ଲୀ. ବି. (୬ତତ୍ପୁ) ଧନ ଲାଭ କରିବା, ଅର୍ଥୋପାର୍ଜନ, ଟଙ୍କା ପଇସା ରୋଜଗାର ।

ଧନାର୍ଥ—ବି. ଧନ ପ୍ରୟୋଜନ ।

ଧନାର୍ଥୀ—ପୁଂ.ବି°.(୬ତତ୍ପୁ) ଧନପ୍ରାର୍ଥୀ, ଧନାଭିଲାଷୀ, ଯେ ଧନ ପ୍ରାର୍ଥନା କରେ, (ସ୍ତ୍ରୀ) ଧନାର୍ଥିନୀ ।

ଧନାଶା—ସ୍ତ୍ରୀ. ବି. (୬ତତ୍ପୁ) ଧନଲୋଭ, ଧନତୃଷ୍ଣା, ଧନ ମିଳିବାର ଆଶା ।

ଧନାଶେଠ—ଗ୍ରା. ବି. ( ସଂ-ଧନାଢ୍ୟ+ଶ୍ରେଷ୍ଠୀ) ମହାଧନୀ, ବଣିକ, (ବ୍ୟଙ୍ଗ୍ୟ) ଅସାଧାରଣରୂପେ ଧନୀ ବ୍ୟକ୍ତି ।

ଧନାଶେଠଙ୍କନାତି—ଗ୍ରା. ବି. (ବ୍ୟଙ୍ଗ୍ୟ) ବହୁ ଧନାଢ୍ୟ ଓ କ୍ଷମତାଶାଳୀ ବ୍ୟକ୍ତିଙ୍କ ବଂଶଧର ।

ଧନାଶ୍ରୀ—ସ୍ତ୍ରୀ. ବି. ରାଗିଣୀବିଶେଷ ।

ଧନି--ଗ୍ରା,ବି°.(ସଂ-ଧନ୍ୟ)ଧନ୍ୟ,ଗ୍ରା.ବି, ସଂ ଧନ୍ୟ,ପୁଂ. ରସିକ ପୁରୁଷ, (ସଂ—ଧନିକା)ନାଗରୀ, ରସିକା ସ୍ତ୍ରୀ,ଚତୁରା ସ୍ତ୍ରୀ, ଯୁବତୀ, ସୁନ୍ଦରୀ,(ପ୍ରା.କ.--ପୁଂ. ଓ ସ୍ତ୍ରୀ) ଧନେଶ୍ୱର ଓ ଧନେଶ୍ୱରୀର ଡାକ ନାମ, (ଗ୍ରା. ଅବ୍ୟ--ପୁରୁଷ ଓ ସ୍ତ୍ରୀପ୍ରତି ସମ୍ବୋଧନ) ହେ ଧନ !

ଧନିଅ(ଅଁ)—ଗ୍ରା.ବି°ଓ ଅବ୍ୟ.(ସଂ-ଧନ୍ୟର ଅଶୁଦ୍ଧ ଉଚ୍ଚାରଣ) ଧନ୍ୟ ଦେଖ ।

ଧନିଆ(ଆଁ)—ଗ୍ରା.ବି.(ସଂ-ଧନିକା)ଧଣିଆ ଦେଖ, (ସଂ-ଧନିକା) ଧନି ଦେଖ ।

ଧନିଆଁ ଗୁଣ୍ଡ—ଗ୍ରା. ବି. ଧଣିଆ ଗୁଣ୍ଡ ଦେଖ ।

ଧନିଆଁ ଫାଙ୍କ—ଗ୍ରା.ବି. (ମୁସଲମାନୀଭାଷା) ଧନିଆଁ ଫାଲ ଦେଖ ।

ଧନିଆଁ ଫାଲ—ଗ୍ରା. ବି. ( ବଣିଆ ଶବ୍ଦ ) ଫାଲେ ଧନିଆ ଗୋଟା ଆକାରର ସୁନାରେ ତିଆରି ଗହଣାବିଶେଷ ।

ଧନିକ—ପୁଂ. ବି. (ଧନନ୍+ଠନ୍+କ. ଅ) ଧନୀ ବ୍ୟକ୍ତି, ଧନିଆ ଶସ୍ୟ, ସ୍ୱାମୀ, ସାଧୁ, ବଣିକ, ମହାଜନ, ଶେଠ, ଋଣଦାତା, ଦଶରୂପକ ଗ୍ରନ୍ଥ ବ୍ୟାଖ୍ୟାକର୍ତ୍ତା, (ସଂ-ପୁଂ.ବି° —ଧନ+ଇକ ) ଧନୀ, ସାଧୁ, ଧାର୍ମିକ, (ସ୍ତ୍ରୀ) ଧନିକା, ଧନିକା ।

ଧନିକା—ସ୍ତ୍ରୀ.ବି. (ଧନିକ+ଆ) ଧନିକ, ବଣିକ ସ୍ତ୍ରୀ, ସାଧ୍ୱୀ ସ୍ତ୍ରୀ, ମାନନୀୟା ସ୍ତ୍ରୀ, ସୁନ୍ଦରୀ ସ୍ତ୍ରୀ, ରସିକା ସ୍ତ୍ରୀ, ଯୁବତୀ, ବଧୂ, ପ୍ରିୟଙ୍ଗୁ, ଧନବତୀ ସ୍ତ୍ରୀ, ପ୍ରିୟଙ୍ଗୁ, (ବି°) ଧାର୍ମିକା, ସାଧ୍ୱୀ, ଧନବତୀ,(ବି)ଦ୍ୱାରକା ନିକଟ ଗ୍ରାମବିଶେଷ ।

ଧନିଗ୍ର—ଗ୍ରା.ବି. ଧଣିଗ୍ର ଦେଖ । [ପଣ ।

ଧନିତା—ସ୍ତ୍ରୀ.ବି. (ଧନିନ୍ + ଭ.ତା)ଧନୀ-

ଧନିତି—ଗ୍ରା.ବି. କଉଣ୍ଡ ଦେଖ ।

ଧନିୟା—ଗ୍ରା.ବି. ମସଲାବିଶେଷ, ଧନିକ, ଧନ୍ୟାକ ।

ଧନିରାମ—ଜଣେ ସଂସ୍କୃତ ଗ୍ରନ୍ଥକାର ।

ଧନିଷ୍ଠ—ପୁଂ.ବି°. (ଧନିନ୍+ଇଷ୍ଠ) ଖୁବ୍ ଧନୀ, ଧନାଢ୍ୟ, (ସ୍ତ୍ରୀ) ଧନିଷ୍ଠା ।

ଧନିଷ୍ଠା—ସ୍ତ୍ରୀ,ବି°. (ଧନିଷ୍ଠ+ଆ) ଅତିଶୟ ଧନବତୀ, (ବି) ତ୍ରୟୋବିଂଶ ନକ୍ଷତ୍ର ।

ଧନୀ—ପୁଂ.ବି°. (ଧନ+ଇନ୍)ଧନାଢ୍ୟ, ଧନବାନ୍, ଧନବନ୍ତ,(ସ୍ତ୍ରୀ.ବି°—ଧନ+ଈ) ଧନବତୀ (ସ୍ତ୍ରୀ), ଯୁବତୀ, ସୁନ୍ଦରୀ, (ଗ୍ରା.ପୁଂ.ବି.)ଶେଠ, ସାଧୁତ,ଧନାଧ୍ୟକ୍ଷ, (ଗ୍ରା.ସ୍ତ୍ରୀ.ବି.) ପ୍ରିୟତମା ସ୍ତ୍ରୀ, ପ୍ରଣୟିନୀ, ସ୍ତ୍ରୀଲୋକଙ୍କ ଡାକନାମ,(ସ୍ତ୍ରୀ)-ଧନିନୀ ।

ଧନୀୟକ—କ୍ଲୀ.ବି. ( ଧନ+ଈୟ+କ ) ଧଣିଆ ଦେଖ ।

ଧନୁ—ପୁଂ. ବି. ( ଧନ+କ,ଉ.ଉସ୍ ) କୋଦଣ୍ଡ, କାର୍ମୁକ, ଶରାସନ,ବାଟୁଳିଖଡ଼ା, ଲଗ୍ନର ନବମ ରାଶି, ଗୃହହସ୍ତ ପରିମାଣ, ଦୁଇତାଳ, ତୁଳା ଭିଣିବାର ନାଠି,ସୌରମାନ ପୌଷମାସ,ପିଆଳଗଛ,ଗୋଲକ୍ଷେତ୍ରର ଅର୍ଦ୍ଧ ଅପେକ୍ଷା କମ କ୍ଷେତ୍ର, ବୃତ୍ତାର୍ଦ୍ଧ ଅପେକ୍ଷା କମ ବୃତ୍ତାଂଶର ପରିଧି,ହଠଯୋଗର ଆସନବିଶେଷ, ଧନୁ ମାରିବାର ଶବ୍ଦ ବା ଟଙ୍କାର,(ଗ୍ରା.ବି) ଗୃହକୋଣ ଦୂରତ୍ୱ ।

ଧନୁଆ(ଆଁ)—ଗ୍ରା.ବି°- (ସଂ-ଧନୁ) ଧନୁକାକାର,(ଗ୍ରା.ବି)ତୁଳା ଭିଣିବାର ଧନୁ ।

ଧନୁଃକାଣ୍ଡ—କ୍ଲୀ.ବି. ଶରାସନ ଓ ଶର ।

ଧନୁଃଖଣ୍ଡ—କ୍ଲୀ.ବି. ଧନୁ, ଚାପ ।

ଧନୁଃପଟ—ପୁଂ.ବି. ପିୟାଳବୃକ୍ଷ ।

ଧନୁଃଶର—ବି. (ମଧ୍ୟପ.କ.ଧା)ଧନୁରୁ କ୍ଷିପ୍ତ ବାଣ, (ଦ୍ୱନ୍ଦ୍ୱ) ଧନୁ ଓ ଶର ।

ଧନୁଃଶାଖା—ସ୍ତ୍ରୀ.ବି.ମୂର୍ବା,ମହେନ୍ଦ୍ରବାରୁଣୀ ।

ଧନୁଃଶ୍ରେଣୀ—ସ୍ତ୍ରୀ. ବି. ମୂର୍ବା, ମହେନ୍ଦ୍ରବାରୁଣୀ ।

ଧନୁକ—ବି. ( ଧନୁ+ସ୍ୱାର୍ଥେ କ ) ଧନୁ; (ଧନୁ + କ)ଧନୁର୍ଦ୍ଧର-ବ୍ୟକ୍ତି,ଗୃହକୋଣ ଦୂରତ୍ୱ,ବେହେଲା ଛଡ଼ି ।

ଧନୁକଭଙ୍ଗ ପଣ—ଧନୁର୍ଭଙ୍ଗପଣ, ସୀତା ବିବାହର ପଣ, ଅତି କଠୋରପଣ ।

ଧନୁକଧାରୀ—ଗ୍ରା.ବି°. ( ସଂ-ଧନୁର୍ଦ୍ଧର )

ଧନୁର୍ଦ୍ଧର, ଧୁରନ୍ଧର ଦେଖ; (ଗ୍ରା.ବି.) ଗ୍ରାମାବନାର, ( ପ୍ରା. ଯାଜପୁର. ବି. ) ହନୁସ୍ଥାମା ବାବାଜୀ ।
ଧନୁକବାତ—ଗ୍ରା.ବି.(ସଂ-ଧନୁକ+ବାତ) ଧନୁଷ୍ଟଙ୍କାର ବାତରୋଗ ।
ଧନୁକାକାର—ବିଂ. ( ବ.ବ୍ରୀ ) ଧନୁପରି ଆକୃତିବିଶିଷ୍ଟ, (ବି—୬ତତ୍) ଧନୁର ଆକୃତି । [ ବ୍ୟକ୍ତି ।
ଧନୁକି—ଗ୍ରା.ବି. (ସଂ-ଧାନୁଷ୍କ) ଧନୁର୍ଦ୍ଧର
ଧନୁକେତକୀ—ସ୍ତ୍ରୀ. ବି. ପୁଷ୍ପବିଶେଷ ।
ଧନୁଗୁଣ—ବି. ( ଧନୁ + ଗୁଣ ) ୬ତତ୍; ଧନୁର ଜ୍ୟା ବା ଦଉଡ଼ି ।
ଧନୁଗୁପ୍ତ—ପୁଂ. ବି. ବୃକ୍ଷବିଶେଷ ।
ଧନୁନ୍ତର—ଗ୍ରା ବି. (ସଂ-ଧନ୍ୱନ୍ତରି) ସ୍ୱର୍ଗ-ବୈଦ୍ୟ, କଉଡ଼ୁଣ ଦେଖ ।
ଧନୁଧରି(ରେ)ଇବା—ଗ୍ରା. କ୍ରି. କୌଣସି ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟରେ ଅନ୍ୟକୁ ପୂରାଇ ନିଶ୍ଚିନ୍ତ ହେବା ।
ଧନୁଧରିବା—ଗ୍ରା. କ୍ରି. କୌଣସି ଖାରୋ-ଚିତ ବା ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟକୁ ପ୍ରସ୍ତୁତ ହେବା ।
ଧନୁଫଳା—ଗ୍ରା. ବି. (ସଂ-ଧନୁ+ଫଳକ) ଯୁଦ୍ଧାସ୍ତ୍ରବିଶେଷ ।
ଧନୁବୁଲାଉତ୍ସବ—ଗ୍ରା. ବି. ଆଶ୍ୱିନ ଶୁକ୍ଳ-ପକ୍ଷ ଦୁର୍ଗାପୂଜାର ଉତ୍ସବବିଶେଷ ।
ଧନୁଭଙ୍ଗକରିବା—ଗ୍ରା.କ୍ରି. କୌଣସି ଅସାଧ୍ୟ କାର୍ଯ୍ୟ ସମ୍ପନ୍ନ କରିବା ।
ଧନୁମାରିବା—ଗ୍ରା. କ୍ରି. କାଣ୍ଡ ମାରିବା, ଧନୁଦ୍ୱାରା ଶର ପ୍ରୟୋଗ କରିବା ।
ଧନୁମୁଆଁ(ହାଁ)—ଗ୍ରା. ବି.ଧନୁସଂକ୍ରାନ୍ତିରେ ଠାକୁରଙ୍କୁ ପୂଜା କରାଯିବା ମୁଆଁ ।
ଧନୁରାଜ—ପୁଂ. ବି. ଶାକ୍ୟମୁନିଙ୍କର ପୂର୍ବପୁରୁଷଙ୍କ ନାମବିଶେଷ ।
ଧନୁର୍ଗୁଣ—ପୁଂ. ବି. ( ୬ତତ୍ ) ଧନୁର ଦଉଡ଼ି, ଜ୍ୟା, ବୃତ୍ତଖଣ୍ଡର ଅଗ୍ରଭାଗ ସଂଯୋଜକ ରେଖା,(ଦ୍ୱନ୍ଦ୍ୱ)ଧନୁ ଓ ଗୁଣ ।
ଧନୁର୍ଗୁଣା—ସ୍ତ୍ରୀ.ବି.(ଧନୁସ୍+ଗୁଣ+ଆ) ମୂର୍ବା ।
ଧନୁର୍ଗ୍ରହ—ପୁଂ. ବି. ଧୃତରାଷ୍ଟ୍ରଙ୍କର ପୁତ୍ରବିଶେଷ, ଧନୁର୍ଦ୍ଧର, ଧନୁର୍ବିଦ୍ୟା ।
ଧନୁର୍ଗ୍ରାହ—ପୁଂ. ବି. ଧନୁର୍ଗ୍ରହ ।
ଧନୁର୍ଜୟନାରାୟଣ—କେନ୍ଦୁଝର ରାଜ୍ୟର ଜଣେ ରାଜା ।
ଧନୁର୍ଦ୍ରୁମ—ପୁଂ. ବି. ( ମଧ୍ୟ—କ.ଧା ) ବାଉଁଶ ଗଛ ।
ଧନୁର୍ଦ୍ଧର—ପୁଂ.ବିଂ. ୬ତତ୍ ; (ଧନୁସ୍+ଧୃ+କ.ଅ) ଧନୁକଧାରୀ, ତୀରନ୍ଦାଜ, କୌଣସି କାର୍ଯ୍ୟରେ ଦକ୍ଷ ବା ନିପୁଣ, ଧୁରନ୍ଧର, ବିଚକ୍ଷଣ, (ଗ୍ରା.ବି) ତୀର-ନ୍ଦାଜ ସେନା, (ସ୍ତ୍ରୀ) ଧନୁର୍ଦ୍ଧରୀ ।
ଧନୁର୍ଦ୍ଧାରୀ—ପୁଂ. ବିଂ. (ଧନୁସ୍+ଧୃ+କ.ଇନ) ଧନୁର୍ଦ୍ଧର, ତୀରନ୍ଦାଜ, (ସ୍ତ୍ରୀ) ଧନୁର୍ଦ୍ଧାରିଣୀ ।
ଧନୁର୍ବକ୍ତ୍ର—ପୁଂ.ବି. କୁମାରାନୁଚର ଭେଦ
ଧନୁର୍ବାଣ—କ୍ଳୀ. ବି. (ଦ୍ୱନ୍ଦ୍ୱ) ଧନୁ ଓ ବାଣ ବା ଶର ।
ଧନୁର୍ବାତ—ପୁଂ. ବି. ( ଧନୁସ୍ + ବାତ ) ଧନୁଷ୍ଟଙ୍କାର ରୋଗ ।
ଧନୁର୍ବାହା—ଗ୍ରା. ବିଂ. ( ସଂ-ଧନୁର୍ବାହୁ ) ଧନୁର୍ବାହୁ ।
ଧନୁର୍ବାହୁ—ବିଂ. (ଧନୁସ୍+ବାହୁ)ବ.ବ୍ରୀ; ଧନୁର୍ଦ୍ଧର ଦେଖ ।
ଧନୁର୍ବିଦ୍ୟା—ସ୍ତ୍ରୀ. ବି. (ଧନୁସ୍ + ବିଦ୍ୟା) ୬ତତ୍; ଧନୁମାରିବା କୌଶଳ, ସମର ବିଦ୍ୟା, ଶସ୍ତ୍ର ଶାସ୍ତ୍ର ।
ଧନୁର୍ବୃକ୍ଷ—ପୁଂ. ବି. ( ଧନୁସ୍ + ବୃକ୍ଷ. ମଧ୍ୟ-କ.ଧା ) ଧାମଣଗଛ, ବାଉଁଶ, ଅଶ୍ୱତ୍ଥଗଛ, ଭାଲିଆଗଛ ।
ଧନୁର୍ବେଦ—ପୁଂ. ବି. (ଧନୁସ୍ + ବେଦ) ୬ତତ୍; ଧନୁର୍ବିଦ୍ୟା, ବିଶ୍ୱାମିତ୍ର ପ୍ରଣିତ ଶସ୍ତ୍ରବିଦ୍ୟାବୋଧକ ଶାସ୍ତ୍ର, ବିଷ୍ଣୁ, ଅଷ୍ଟା-ଦଶ ବିଦ୍ୟା ମଧ୍ୟେ ବିଦ୍ୟାବିଶେଷ. (ବିଂ) ଧାନୁଷ୍କ ।
ଧନୁର୍ଭଙ୍ଗ—ବି. (୬ତତ୍) ଧନୁକୁ ଭାଙ୍ଗି ଦେବା ।
ଧନୁର୍ଭୃତ୍—ପୁଂ. ବିଂ. (ଧନୁସ୍+ଭୃ+କ.କ୍ୱିପ୍)ଧନୁର୍ଦ୍ଧର, ଧାନୁଷ୍କ,ତୀରନ୍ଦାଜ ।
ଧନୁର୍ମଖ—ପୁଂ. ବି. ଯଜ୍ଞବିଶେଷ ।
ଧନୁର୍ମହ—ପୁଂ.ବି. ଧନୁଯଜ୍ଞ, ଧନୁର୍ମଖ ।
ଧନୁର୍ମାର୍ଗ—ପୁଂ. ବି. (୬ତତ୍) ଧନୁପରି ବକ୍ର ପଥ, ବକ୍ରରେଖା ।
ଧନୁର୍ମାଳା—ସ୍ତ୍ରୀ. ବି. ମୂର୍ବାଲତା ।
ଧନୁର୍ଯାସ—ପୁଂ. ବି. ଦୁରାଲଭା, ( ସ୍ତ୍ରୀ ) ସୋମବଲ୍ଲୀ ।
ଧନୁଷ—ପୁଂ. ବି. ଋଷି ବିଶେଷ ।
ଧନୁଷାକ୍ଷ—ପୁଂ. ବି. ଋଷିବିଶେଷ ।
ଧନୁଷ୍କପାଳ—ପୁଂ. ବି. ଧନୁର୍ବେଦସ୍ତବ ।
ଧନୁଷ୍କର—ପୁଂ. ବିଂ. (ବ.ବ୍ରୀ) ଧନୁର୍ଦ୍ଧର, ଧାନୁଷ୍କ,(ବି)ଗୃପକାରକ ଶିଳ୍ପିବିଶେଷ ।
ଧନୁଷ୍କୋଟି—ସ୍ତ୍ରୀ. ବି. ( ୬ତତ୍ ) ଧନୁର ଅଗ୍ରଭାଗ, ରାମେଶ୍ୱର ଦକ୍ଷିଣ ପୂର୍ବସ୍ଥ ତୀର୍ଥବିଶେଷ ।
ଧନୁଷ୍ଟଙ୍କାର—ପୁଂ. ବି. ( ୬ତତ୍ )ଧନୁ-ଜ୍ୟାର ଆକର୍ଷଣ ଶବ୍ଦ, ବାତରୋଗ ବିଶେଷ ।
ଧନୁଷ୍ପାଣି—ପୁଂ. ବିଂ. (ଧନୁସ୍ + ପାଣି) ଧନୁଷ୍କର ଦେଖ ।
ଧନୁଷ୍ମାନ୍—ପୁଂ. ବିଂ. ( ଧନୁସ୍ + ମତ୍ ) ଧନୁର୍ଦ୍ଧର, ଧନୁର୍ହସ୍ତ, (ସ୍ତ୍ରୀ) ଧନୁଷ୍ମତୀ ।
ଧନୁସ୍—କ୍ଳୀ. ବି. (ଧନ୍+କ.ଉସ୍) ଧନୁ ଦେଖ ।
ଧନୁଷ୍କୋଟୀତୀର୍ଥ—ରାମେଶ୍ୱର ନିକଟ ସମୁ-ଦ୍ରର ସ୍ନାନତୀର୍ଥ ।
ଧନୁସ୍ତମ୍ଭ—ପୁଂ.ବି. ଧନୁଷ୍ଟଙ୍କାର ରୋଗ ।
ଧନୁହୁଲ—ଗ୍ରା. ବି. ଧନୁଷ୍କୋଟି, ଧନୁର ଅଗ୍ରଭାଗ । [ ଧନୁ ।
ଧନୂ—ସ୍ତ୍ରୀ. ବି. (ଧନ୍ + ଊ) ଧାନ୍ୟସଞ୍ଚୟ,
ଧନେୟକ—କ୍ଳୀ. ବି. ଧନିଆ,ଧନ୍ୟାକ ।
ଧନେଶ—ପୁଂ. ବି. (୬ତତ୍) କୁବେର, ମହାଧନୀ ବ୍ୟକ୍ତି, ବିଷ୍ଣୁ, ଲଗ୍ନର ଦ୍ୱିତୀୟାଧିପ, (ସ୍ତ୍ରୀ) ଧନେଶୀ ।
ଧନେଶ୍ୱର—ପୁଂ. ବି. (୬ତତ୍)କୁବେର, ବିଷ୍ଣୁ, ମୁଗ୍ଧବୋଧପ୍ରଣେତା ବୋପ-ଦେବଙ୍କ ଗୁରୁ ।
ଧନେଶ୍ୱରୀ—ଆସାମର ଗୋଟିଏ ନଦୀ ।
ଧନୈଶ୍ୱର୍ଯ୍ୟ—କ୍ଳୀ. ବି. ଧନରୂପ ସମ୍ପଦ, ଅର୍ଥସମ୍ପଦ ।

**ଧନୈଷୀ**—ପୁଂ. ବଂ. ଧନେଚ୍ଛୁ ।

**ଧନୈଷ୍ଣ**—ପୁଂ. ବ. ଧନଲୋଭ ।

**ଧନୌତି**—ବିହାର ଚମ୍ପାରଣ ଜିଲ୍ଲାର ଗୋଟିଏ ନଦୀ ।

**ଧନୌଦା**—ଗୋୟାଲିୟର ରାଜ୍ୟର ଅନ୍ତର୍ଗତ ଗୁଣାଉପବିଭାଗର ଗୋଟିଏ ସାମନ୍ତ ରାଜ୍ୟ,ଅପରନାମ ଧରନାଓଦା

**ଧନୌରା**—ଉତ୍ତର ପଶ୍ଚିମ ପ୍ରଦେଶ ମୋରାଦାବାଦ ଜିଲ୍ଲାଅନ୍ତର୍ଗତ ଗୋଟିଏ ନଗର ।

**ଧନ୍ଦ**—ଗ୍ରା. ବ. ଧନ୍ଦା ଦେଖ ।

**ଧନ୍ଦକା**—ଗ୍ରା. ବ. ( ସଂ-ଦ୍ୱନ୍ଦ୍ୱ ) ଘୁନ୍ଦିଆ, କାର୍ଯ୍ୟବ୍ୟସ୍ତତା,ଜଞ୍ଜାଳ,ଗୋଲକଧନ୍ଦା, ଦୃଷ୍ଟିଭ୍ରମ, ସନ୍ଦେହ ।

**ଧନ୍ଦକାଲଗିବା**—ଗ୍ରା. ବ. ଧନ୍ଦାଳହେବା, କିଂକର୍ତ୍ତବ୍ୟବିମୂଢ଼ତା, ସନ୍ଦେହାନ୍ୱିତ ଅବସ୍ଥା ।

**ଧନ୍ଦକହେବା**—ଗ୍ରା. କ୍ରି. କିଂକର୍ତ୍ତବ୍ୟବିମୂଢ଼ ହେବା, ସନ୍ଦେହାନ ହେବା, ଦୋଦୋପାଞ୍ଚ ହେବା, କାର୍ଯ୍ୟରେ ବ୍ୟସ୍ତହେବା ।

**ଧନ୍ଦପୁଆ**—ଗ୍ରା. ବ. ଡାବଲପୁଆ ଦେଖ ।

**ଧନ୍ଦରା**—ଗ୍ରା. ବଂ. (ସଂ-ଜୀର୍ଣ୍ଣ,ଜର୍ଜରିତ) ଛିଣ୍ଡା, ଚିରା, ଜୀର୍ଣ୍ଣ ।

**ଧନ୍ଦଲା**—ଗ୍ରା. ବଂ. ଧନ୍ଦାଳ ଦେଖ ।

**ଧନ୍ଦା**—ଗ୍ରା. ବ. ( ସଂ-ଧନଦା, ଦ୍ୱନ୍ଦ୍ୱ ) ଧନୋପାର୍ଜନୋପାୟ,ବ୍ୟବସାୟ, କାମ ଧନ୍ଦା,ଜୀବିକା, କାଉଳି,କାର୍ଯ୍ୟବ୍ୟସ୍ତତା, ମାନସିକ ଆନ୍ଦୋଳନ, ବିଷମସମସ୍ୟା, ହସାଇହଗ୍ରାମ, ପେଟ ବା ସାସାରିକ ଚିନ୍ତା, ସନ୍ଦେହ,ପ୍ରହେଳିକା,ଗୋଲକଧନ୍ଦା,(ଗ୍ରା.ବଂ)କାର୍ଯ୍ୟବ୍ୟସ୍ତ,କିଂକର୍ତ୍ତବ୍ୟବିମୂଢ଼, ଆନ୍ଦୋଳିତ, ମୁଗ୍ଧ ।

**ଧନ୍ଦାଳି(ଆ)**—ଗ୍ରା. ବଂ. (ସଂ-ଦ୍ୱନ୍ଦ୍ୱ) ଦୃଷ୍ଟିଭ୍ରମଯୁକ୍ତ, ଅସ୍ପଷ୍ଟ ଦୃଷ୍ଟି ଯୁକ୍ତ,ସନ୍ଦହାନ ।

**ଧନ୍ଦାଳିବା**—ଗ୍ରା.କ୍ରି.ବ୍ୟସ୍ତହୋଇ କୌଣସି ବସ୍ତୁକୁ ଏଣେ ତେଣେ ଖୋଜିବା, ଉଣ୍ଡାଳିବା ।

**ଧନ୍ଦାଳହେବା**—ଗ୍ରା. କ୍ରି. ( ସଂ-ଦ୍ୱନ୍ଦ୍ୱ ) ଉତ୍ତାଳହେବା, ଏଣେ ତେଣେ ଖୋଜି ବୁଲି ବୁଲି ବ୍ୟସ୍ତହେବା, କିଂକର୍ତ୍ତବ୍ୟବିମୂଢ଼ ବା ବ୍ୟସ୍ତହେବା, କାର୍ଯ୍ୟରେ ବ୍ୟସ୍ତହେବା, କାଉଳିହେବା, କାଳୁକାଳୁଆ ଦେଖାଯିବାରୁ ବା ଅନ୍ଧାର ଯୋଗୁଁ ଦରଣ୍ଡିହେବା,ସନ୍ଦହାନହେବା, ଗୋଲକଧନ୍ଦାରେ ପଡ଼ିବା ।

ଧନ୍ଧମରିବା—ଗ୍ରା.କ୍ରି. ବ୍ୟତିବ୍ୟସ୍ତହେବା

ଧନ୍ଧୁକ—ବୋମ୍ବାଇ ଆହ୍ମେଦାବାଦ ଜିଲ୍ଲାର ଏକ ଉପବିଭାଗ ।

ଧନ୍ଧୋଳ—ବ.(ସଂ-ଦ୍ୱନ୍ଦ୍ୱ)କଳହ, ଗୋଳମାଲ, ( ଗ୍ରା.ବଂ ) କାଉଳି, ବ୍ୟସ୍ତ, କିଂକର୍ତ୍ତବ୍ୟବିମୂଢ଼, ସନ୍ଦହାନ ।

ଧନ୍ନାସିକା—ସ୍ତ୍ରୀ. ବ. ରାଗିଣୀବିଶେଷ ।

ଧନ୍ୱ୍—(ଧାତୁ) ଗତିକରିବା ।

ଧନ୍ୱ—କ୍ଲୀ. ବ. ( ଧନ୍ୱ୍+ଣ.ଅ ) ଧନୁ, ( ପୁଂ—ଧନ୍ୱ୍+ଅଧି.ଅ ) ମରୁଭୂମି, ନିର୍ଜଳ ପ୍ରଦେଶ, କାଶୀର ଜଣେ ରାଜା, ଧନ୍ୱନ୍ତରିଙ୍କ ପିତା,କ୍ଲୀ(ଧନ୍ୱ୍+କ.କ୍ୱନପ୍ ସ୍ଥଳ ।

ଧନ୍ୱଙ୍ଗ—ପୁଂ. ବ. ପିଆଳବୃକ୍ଷ, ଟାମଣା, ବୃକ୍ଷ, ଧନ୍ୱନ୍ବୃକ୍ଷ, ପିଚ୍ଛିଳରସାତ୍ମକ ରକ୍ତପୁଷ୍ପ, ରୋଜୋବାନ ଫଳବୃକ୍ଷ ।

ଧନ୍ୱଚର—ପୁଂ. ବଂ. (ଧନୁ+ଚର୍+ଅ) ଧାନୁଷ୍କ ।

ଧନ୍ୱଜ—ତ୍ରି. ବଂ. ( ଧନୁ+ଜନ୍+ଅ ) [ ମରୁଭବ ।

ଧନ୍ୱଦୁର୍ଗ—କ୍ଲୀ. ବ. ମରୁଭୂମି, ନିର୍ଜଳ ପ୍ରଦେଶ, ୫ ଯୋଜନ ପର୍ଯ୍ୟନ୍ତ ନିର୍ଜଳ ମରୁଭୂମି ବେଷ୍ଟିତ ଦୁର୍ଗ,ଆକ୍ରମଣୋଦ୍ୟତ ଶତ୍ରୁକୁ ବାଧା ଦେବାପାଇଁ ଆକ୍ରାନ୍ତ ସ୍ଥାନର ଓ ଆକ୍ରମଣାର୍ଥ ଅଗ୍ରସର ଶତ୍ରୁପକ୍ଷର ମଧ୍ୟସ୍ଥ ଅଞ୍ଚଳକୁ ମରୁଭୂମି ଓ ନିର୍ଜଳ ପ୍ରଦେଶ କରିବା ରୂପ ଉପାୟ ।

ଧନ୍ୱନ—ପୁଂ. ବ. (ଧନ+ଅନ୍) ବୃକ୍ଷବିଶେଷ, ଟାମଣା, ଧାମଣି ।

ଧନ୍ୱନ୍ତର—କ୍ଲୀ. ବ. ( ଧନୁ+ଅନ୍ତର ) ଚାରିହାତ ଦୈର୍ଘ୍ୟର ଏକ ମାପ ।

ଧନ୍ୱନ୍ତରି—ପୁଂ. ବ. (ଧନ୍ୱ+ଅନ୍ତ+ଋ+କ.ଇ) ଦେବଚିକିତ୍ସକ, ବିକ୍ରମାଦିତ୍ୟଙ୍କ ରାଜସଭାର ନବରତ୍ନଙ୍କ ମଧ୍ୟରୁ ଜଣେ ପଣ୍ଡିତ, କାଶୀରାଜ ଦିବୋଦାସଙ୍କ ନାମାନ୍ତର,ଧନ୍ୱନ୍ତର ଦେଖ,ମହାଦେବ ।

ଧନ୍ୱନ୍ତରିଗ୍ରସ୍ତା—ସ୍ତ୍ରୀ. ବ. କଟୁକୀ ।

ଧନ୍ୱନ୍ୟ—ତ୍ରି. ବଂ. ମରୁଦେଶଭବ ।

ଧନ୍ୱପତି—ପୁଂ.ବ. (୬ତତ୍) ମରୁଦେଶାଧିପତି ।

ଧନ୍ୱୟ(ଯ)ବାସ—ପୁଂ. ବ. ଦୁରାଳଭା ।

ଧନ୍ୱସହ—ପୁଂ. ବ. ଧନୁର୍ଦ୍ଧର ।

ଧନ୍ୱା—ପୁଂ. ବ. (ଧନ୍+ଣ,ବନ) ଧନୁ, ମରୁଭୂମି, ଆକାଶ, ଅନ୍ତରୀକ୍ଷ, ସ୍ଥଳ, ଶୁଖିଲା ଭୂମି, ବଂ. ( ଧନୁ+ବତ୍ ) ଅମୁକ ଧନୁ ଧାରଣକାରୀ ।

ଧନ୍ୱାୟନ—ତ୍ରି. ବଂ. ମରୁଦେଶ ଗମନ ସାଧନ, ଯାହା ଦ୍ୱାରା ମରୁଦେଶ ଗମନ କରାଯାଏ ।

ଧନ୍ୱାୟୀ—ପୁଂ.ବଂ.(ଧନ୍+ଆ+ଯା+ଇନ୍).ଧନୁର୍ଦ୍ଧର, (ସ୍ତ୍ରୀ) ଧନ୍ୱାୟିନୀ ।

ଧନ୍ୱିନ—ବ.(ଧନ୍ୱ+ଇନ)ଶୂକର, ଘୁଷୁରି

ଧନ୍ୱିସ୍ଥାନ—କ୍ଲୀ. ବ. ଧାନୁଷ୍କମାନଙ୍କର ସ୍ଥିତିଭେଦ ।

ଧନ୍ୱୀ—ପୁଂ. ବଂ. (ଧନ୍ୱିନ୍; ଧନ୍ୱ+ଇନ୍) ଧନୁର୍ଦ୍ଧାରୀ, ବିଦଗ୍ଧ, ଚତୁର, ନିପୁଣ, ପଣ୍ଡିତ, ବିଶାରଦ, ( ବି ) ଅର୍ଜ୍ଜୁନ, ଧନୁର୍ଦ୍ଧାରୀ,ଯୋଦ୍ଧା,ଅର୍ଜ୍ଜୁନ ବୃକ୍ଷ,ବକୁଳ, ଦୁରାଳଭା, ବିଷ୍ଣୁ, ଶିବ, ତାମସମନୁପୁତ୍ରବିଶେଷ, (ସ୍ତ୍ରୀ) ଧନ୍ୱିନୀ ।

ଧନ୍ୟ—ପୁଂ. ବଂ. (ଧନ + ଯୋଗ୍ୟାର୍ଥେ.ଯ) ମଙ୍ଗଳମୟ,ଶୁଭସୂଚକ,ଭାଗ୍ୟବାନ୍, ସୌଭାଗ୍ୟଶାଳୀ, ସୁଖୀ, କୃତାର୍ଥ, ପ୍ରଶଂସନୀୟ, ଶ୍ଳାଘ୍ୟ, ଧାର୍ମିକ, ସାଧୁ, ପୁଣ୍ୟବାନ୍, ପୁଣ୍ୟୋକ୍ଷ, ଧନଦେବାବାଲା, (ସ୍ତ୍ରୀ) ଧନ୍ୟା, (ବି) ଅଶ୍ୱକର୍ଣ୍ଣ ବୃକ୍ଷ,ବିଷ୍ଣୁ, ଧନିଆଁ, ନାସ୍ତିକ, (ଗ୍ରା. ଅବ୍ୟ) ସାଧୁ ସାଧୁ, ବାହା ବାଃ,ସାବାସ୍,(ବ୍ୟଙ୍ଗ୍ୟାର୍ଥ) ଧିକ୍, ଛି, ( ଗ୍ରା.ବ; ସଂ-ଧନ୍ୟବାଦ ) ସାଧୁବାଦ, ପ୍ରଶଂସାବାଦ, କୃତଜ୍ଞତାଜ୍ଞାପନ ।

ଧନ୍ୟକରିବା—ଗ୍ରା.କ୍ରି.କୃତଜ୍ଞତା ଜ୍ଞାପନ

କରିବା, ଧନ୍ୟବାଦ ଦେବା, ପ୍ରଶଂସା କରିବା ।

ଧନ୍ୟଧନ୍ୟକରିବା—ଗ୍ରା. କ୍ରି. ଅତିଶୟ ପ୍ରଶଂସା କରିବା ।

ଧନ୍ୟପଦ—ଗ୍ରା. ବି. ( ସଂ-ଧନ୍ୟବାଦ ) ଧନ୍ୟବାଦ ଦେଖ ।

ଧନ୍ୟବାଦ—ପୁଂ. ବି. ତ.ଧା; (ଧନ୍ୟ+ବଦ୍+ଘ.ଅ) ସାଧୁବାଦ,ପ୍ରଶସାବାଦ, ସାବାସୀ, କୃତଜ୍ଞତା ଜ୍ଞାପକ,(ଗ୍ରା.ଅବ୍ୟ) ମୁଁ ଆପଣଙ୍କୁ ଧନ୍ୟବାଦ ଦେଉଅଛି ।

ଧନ୍ୟବାଦକରିବା—ଗ୍ରା. କ୍ରି. ସାଧୁବାଦ କରିବା ।

ଧନ୍ୟବାଦାର୍ହ—ପୁଂ. ବିଂ. (ଧନ୍ୟବାଦ+ଅର୍ହ+କ.ଅ) ଧନ୍ୟବାଦ ପାଇବାର ଯୋଗ୍ୟ, (ସ୍ତ୍ରୀ) ଧନ୍ୟବାଦାର୍ହା ।

ଧନ୍ୟା—ବିଂ. ( ଧନ୍ୟ+ଆ ) ଧନ୍ୟର ସ୍ତ୍ରୀଲିଙ୍ଗ,ଶ୍ଳାଘ୍ୟା, ଭାଗ୍ୟବତୀ, କୃତାର୍ଥା, ବି. ( ଧନ+କ.ଯ+ଆ ) ଆମଲକୀ, ଉପମାତା, ପିଣ୍ଡାରକ ବନଦେବତା-ବିଶେଷ, ଧନ୍ୟାକ, ମନୁଙ୍କ କନ୍ୟା-ବିଶେଷ ।

ଧନ୍ୟାକ—କ୍ଳୀ. ବି. ( ଧନ୍+କ.ଆକ ) ଧଣିଆ ଦେଖ ।

ଧନ୍ୟାକକ୍ୱାଥ—କ୍ୱାଥବିଶେଷ ।

ଧପ୍—ଗ୍ରା. ଅବ୍ୟ. ଆଲୁଅ ହଠାତ୍ ଲିଭି-ଯିବା ପ୍ରକାରେ, ଆଲୁଅ ହଠାତ୍ ଜଳି-ଉଠିବା ପ୍ରକାରେ; କୌଣସି ପଦାର୍ଥ ହଠାତ୍ ପଡ଼ିବାର ଅନୁକରଣ ଶବ୍ଦ ।

ଧପ୍‌ଧପ୍—ଗ୍ରା. ଅବ୍ୟ. ଆଲୁଅ ଅସ୍ଥିର-ଭାବେ ଜଳିବା ଓ ଲିଭିଯିବା ପ୍ରକାରେ, ଧପ୍‌ଧାପ୍ ଦେଖ, ଚକ୍‌ଚକ୍, କଠିନ ଭୂମିରେ ଜୋର୍‌ରେ ଚାଲିବା ସମୟରେ ପାଦର ଶବ୍ଦ ।

ଧପ୍‌ଧାପ୍—ଗ୍ରା. ଅବ୍ୟ. ଶୀଘ୍ର ଶୀଘ୍ର,ଦ୍ରୁତ-ବେଗରେ ଭୂମିରେ ଚାଲିବାର ଶବ୍ଦ ।

ଧପଚକଣ(ଣା)—ଗ୍ରା. ବିଂ. ଧଅପଚକଣ ଦେଖ ।

ଧଅପଚକଣିଆ(ଆଁ)—ଗ୍ରା.ବିଂ. ବାହାରେ ଭ୍ରମ ଦେଖାଇବା ( ଲୋକ ), ବାହ୍ୟ-ଚାକଚକ୍ୟ ବିଶିଷ୍ଟ ।

ଧପଟ—ଗ୍ରା. ବି. (ସଂ-ଧାବ୍,ଧାତୁ) ଦଉଡ଼ିବା, ଝପଟ ।

ଧପଟିବା—ପ୍ରା. (ସିଂହଭୂମ) କ୍ରି. ଧମକାଇବା ଦେଖ ।

ଧପଡ଼ଧପଡ଼—ଗ୍ରା.ଅବ୍ୟ. (ଧ୍ୱନ୍ୟନୁକରଣ) ଦଉଡ଼ିବାର ଶବ୍ଦ ।

ଧପଡ଼ା(ଡ଼େ)ଇବା—ଗ୍ରା. କ୍ରି. ଧପଡ଼ିବାର ଣିଜନ୍ତରୂପ ।

ଧପଡ଼ାଧପଡ଼ି—ଗ୍ରା. ବି. ଦଉଡ଼ା ଦଉଡ଼ି, ଧାଁଆଁ ଧପଡ଼ ।

ଧପଡ଼—ଗ୍ରା. ବିଂ. (ସଂ-ଧବ୍) ଧପାବାଜ ।

ଧପଡ଼ିବା—ଗ୍ରା. କ୍ରି. ( ସଂ-ଧାବ୍‌ଧାତୁ ) ଦଉଡ଼ିବା ।

ଧପଧାପ(ପେ)—ଗ୍ରା. କ୍ରି. ବିଂ. ଅତିଶୀଘ୍ର ।

ଧପା(ପ୍ପା)—ଗ୍ରା. ବି. (ସଂ-ଧବ୍) ଠକାମି, ପ୍ରତାରଣା ।

ଧପାଇବା—ଗ୍ରା. କ୍ରି. ଠକାଇବା,ଭଣ୍ଡିବା, ଆଖିରେ ଧୂଳି ପକାଇବା ।

ଧପାଡ଼ି—ଗ୍ରା. ବିଂ. ଭଣ୍ଡ, ପ୍ରତାରକ, ଠକ ।

ଧପାବାଜ୍—ଗ୍ରା. ବିଂ. ପ୍ରତାରକ ।

ଧପାବାଜି—ଗ୍ରା. ବି. ପ୍ରତାରଣା,ଠକାମି ।

ଧପାଳିବା—ଗ୍ରା. କ୍ରି. ( ସଂ-ଧାବ୍‌ଧାତୁ ) ଦଉଡ଼ିବା ।

ଧବ—ପୁଂ ବି. (ଧୂ+କ.ଅ) ପତି,ସ୍ୱାମୀ ପ୍ରଭୁ, ମନୁଷ୍ୟ, ଧୂର୍ତ୍ତବ୍ୟକ୍ତି, ଧଅଟଛ ଦେଖ, (ଧୂ+ଘ.ଅ) କମ୍ପ ।

ଧବନ—ସ୍ତ୍ରୀ. ବି. ( ଧୂ+ଣ.ଅନ ଅନଳ ।

ଧବର—କ୍ଳୀ. ବି. ସଂଖ୍ୟାବିଶେଷ ।

ଧବଳ—ବି. (ଧବ+ଲା+କ.ଅ)ଶ୍ୱେତ-ବର୍ଣ୍ଣ, ଧଳାରଙ୍ଗ, ଶ୍ୱିତ୍ର, ଶ୍ୱେତକୁଷ୍ଠ, ଏକପ୍ରକାର କର୍ପୂର, ଚନାକର୍ପୂର, ଶ୍ୱେତମରିଚ, ଧଳା ଷଣ୍ଢ, ଶ୍ରେଷ୍ଠ ବୃଷ, ଧଅ(ଟେଛ) ଦେଖ, ଧଳାପାରା, ଅର୍ଜ୍ଜୁନ ଗଛ, ରାଗିଣୀବିଶେଷ, (ବିଂ) ଧଳା, ଶୁଭ୍ର, ଶ୍ୱେତ, ଶୁକ୍ଳ, ଗୌର; ମନୋରମ, ସୁନ୍ଦର, ଚକଚକିଆ ଧଳା, (ବି) ଧବଳତା, ଧବଳତ୍ୱ, ( ଗ୍ରା.ବି ) ପ୍ରାଚୀନ ଉତ୍କଳର ଏକ ଜାତୀୟ ଲୋକଙ୍କର ସଂଜ୍ଞା, (ସ୍ତ୍ରୀ) ଧବଳା, ଧବଳୀ ।

ଧବଳକର—ବି. (ବ.ବ୍ରୀ) ଚନ୍ଦ୍ର, ଇନ୍ଦୁ, ସିତାଂଶୁ ।

ଧବଳକୁଷ୍ଠ—ବି. (ଧବଳ+କୁଷ୍ଠ)ଶ୍ୱେତ-କୁଷ୍ଠ, ଧଳାକୁଷ୍ଠ ।

ଧବଳଗିରି—ପୁଂ. ବି. (କ.ଧା) ସ୍ୱନାମ-ଖ୍ୟାତ ପ୍ରସିଦ୍ଧ ପର୍ବତ; ହିମାଳୟର ଅଂଶବିଶେଷ, ଶ୍ୱେତପର୍ବତ, (ଗ୍ରା.ବି) ଧଉଳିଗିରି ଦେଖ ।

ଧବଳତ୍ୱ—କ୍ଳୀ. ବି. ଧାବଲ୍ୟ, ଧବଳତା ।

ଧବଳପକ୍ଷ—ପୁଂ.ବି.(କ.ଧା) ଚାନ୍ଦ୍ରମାସର ଶୁକ୍ଳପକ୍ଷ, ଧଳାପକ୍ଷ, (ବ.ବ୍ରୀ) ହଂସ ।

ଧବଳପଟ୍ଟିକା—ସ୍ତ୍ରୀ.ବି. ଶ୍ୱେତ ପାଟଳିକା, ହଂସ ବର୍ଷରେ ଶ୍ୱେତ ପାପଡ଼ୀ ।

ଧବଳପାଟଳୀ—ସ୍ତ୍ରୀ.ବି. ଶ୍ୱେତପାଟଳିକା ।

ଧବଳଭୂମ—ଧଳଭୂମ ।

ଧବଳମୟ(ୟେ)—ଗ୍ରା. (ପ୍ରାଚୀନ) ବିଂ. ଧବଳ ଦେଖ ।

ଧବଳମୟପୁର(ରୀ)—ଗ୍ରା.ବି.(ସଂ-ଧବଳ+ପୁର,ପୁରୀ) ଅଟ୍ଟାଳିକାମୟ ସ୍ଥାନ ।

ଧବଳମୃତ୍ତିକା—ସ୍ତ୍ରୀ.ବି.(କ.ଧା)ଚକ୍‌ଖଡ଼ି, ଖଡ଼ିଆ ମାଟି ।

ଧବଳଯାବନାଳ—ପୁଂ. ବି. ଯାବନାଳ ବିଶେଷ, ଶ୍ୱେତ ଯାବନାଳ ।

ଧବଳଶ୍ରୀ—ରାଗିଣୀବିଶେଷ ।

ଧବଳା—ଭବିଷ୍ୟ ବ୍ରହ୍ମଖଣ୍ଡୋକ୍ତ ପୁଣ୍ଡ୍ର-ଦେଶାନ୍ତର୍ଗତ ବରୀ ଦେଶର ମଧ୍ୟବର୍ତ୍ତୀ ପ୍ରଧାନ ଆଠଟି ନଗର ମଧ୍ୟେ ଗୋଟିଏ ନଗର, ସୁସଙ୍ଗ ଦୁର୍ଗାପୁରର ପୂର୍ବ-ବାହିନୀ ଗୋଟିଏ ନଦୀ ।

ଧବଳା—ସ୍ତ୍ରୀ. ବି. (ଧବଳ+ଆ) ଧଳା-ଗାଈ, (ବିଂ) ଧବଳର ସ୍ତ୍ରୀଲିଙ୍ଗ ।

ଧବଳାଙ୍କ—କ୍ଳୀ. ବି. ଅତିଧୃତି ଛନ୍ଦୋ-ଭେଦ, ଧବଳସଂଖ୍ୟକ ଅଙ୍କ ।

ଧବଳାଙ୍ଗ—ପୁଂ. ବିଂ. (ବ.ବ୍ରୀ) ଯାହାର ଦେହ ଧଳା,(ବି)ହଂସ,(ସ୍ତ୍ରୀ)ଧବଳାଙ୍ଗୀ ।

ଧବଳିତ—ତ୍ରି. ବିଂ. ( ଧବଳ+ଇତ )

ଶୁକ୍ଳୀକୃତ, ଶୁଭ୍ରୀକୃତ, (ସ୍ତ୍ରୀ)ଧବଳିତା ।

ଧବଳିବା—ଗ୍ରା. କ୍ରି. ଧଉଳିବା ଦେଖ ।

ଧବଳିମା—ପୁଂ.ବି. (ଧବଳ+ଷ୍ଣ.ଇମନ୍) ଶୁକ୍ଳତା, ଉଜ୍ଜ୍ୱଳତା ଯୋଗୁଁ ଶରୀରର ପାଣ୍ଡୁରତା ।

ଧବଳୀ—ସ୍ତ୍ରୀ. ବି. (ଧବଳ+ଈ) ଧଳାଗାଈ, ବାଳ ଧଳା ହେବା ରୋଗବିଶେଷ. ଧଳା ମରିଚ, (ବିଂ)ଶ୍ୱେତବର୍ଣ୍ଣା ।

ଧବଳୀକୃତ—ବି.ଣ. (ଧବଳ+ଚ୍ୱି+କୃ+ର୍ମ.କ୍ତ)ଅଧଳାକୁ ଧଳା କରାଯାଇଥିବା, (ବି) ଧବଳୀକରଣ,(ସ୍ତ୍ରୀ)ଧବଳୀକୃତା ।

ଧବଳୀଭୂତ—ବି. ଣ. ( ଧବଳ+ଚ୍ୱି+ଭୂ+କ.କ୍ତ) ଅଧଳା ଧଳା ହୋଇଥିବା, (ବି) ଧବଳୀଭାବ, (ସ୍ତ୍ରୀ)ଧବଳୀଭୂତା ।

ଧବଳୀଶ୍ୟାମଳୀ—ସ୍ତ୍ରୀ.ବି. (ଦ୍ୱନ୍ଦ୍ୱ)ଶ୍ରୀକୃଷ୍ଣ ଚରାଉଥିବା ଧଳା ଓ କଳା ଗାଈ ।

ଧବଳେଶ୍ୱର—ଗୋଦାବରୀ ଜିଲ୍ଲାର ରାଜମହେନ୍ଦ୍ର ତାଲୁକର ଗୋଟିଏ ସହର, ଏକାମ୍ରକାନନର ଏକ ସୀମା ।

ଧବଳେଶ୍ୱର—ଗ୍ରା. ବି. ( ସଂ-ଧବଳ+ଈଶ୍ୱର) କଟକ ନିକଟସ୍ଥ ମହାନଦୀଗର୍ଭସ୍ଥ ଆଠଗଡ଼ ରାଜ୍ୟର ଗୋଟିଏ ପାହାଡ଼ ଉପରେ ଥିବା ଶିବଲିଙ୍ଗ ।

ଧବଳୋତ୍ପଳ—ବି. ( ଧବଳ+ଉତ୍ପଳ ) କ.ଧା; ଧଳାକଇଁ ।

ଧବାଣିକ—ପୁଂ.ବି.(ଧୂ+ଣ.ଆନ+କ) ପବନ, ବାୟୁ ।

ଧବିତବ୍ୟ—ବି.ଣ. (ଧୂ+ତବ୍ୟ)ବ୍ୟଜନୋପଯୁକ୍ତ ।

ଧବିତ୍ର—କ୍ଲୀ. ବି. (ଧୂ+ଣ.ଇତ୍ର) ମୃଗଚର୍ମର ପଙ୍ଖା, ତାଳପତ୍ର ପଙ୍ଖା, ବିଂ. (ଧୂ+କ.ଇତ୍ର) ଅପନୟନକାରକ ।

ଧବୁଡ଼ା—ଗ୍ରା.ବି. (ସଂ-ଧାବ୍‌ଧାତୁ)ଧଉଡ଼, ଦଉଡ଼ ।

ଧବୁଡ଼ା(ଡ଼େ)ଇବା—ଗ୍ରା. କ୍ରି (ସଂ-ଧାବ୍‌ଧାତୁ) ଧବୁଡ଼ିବାର ଣିଜନ୍ତରୂପ ।

ଧବୁଡ଼ିବା—ଗ୍ରା. କ୍ରି. ( ସଂ-ଧାବ୍‌ଧାତୁ ) ଦଉଡ଼ିବା ।

ଧବୋଇଲେ ମାଡ଼ିବସୁଛୁ—ଗ୍ରା.(ବ୍ୟଙ୍ଗ୍ୟବାକ୍ୟ)ଧଅ ବୋଇଲେ କାମୁଡ଼ି ପକାଉଛୁ ଦେଖ ।

ଧମ୍‌ନା—ପ୍ରା. (ସମ୍ବଲ) ଚମଣା ଦେଖ ।

ଧମ—ବି.(ଧ୍ମା+କ.ଅ) କମାରଶାଳରେ ଯେ ଭାଠି ତାଏ, ଯେ ଅଗ୍ନି ସଂଯୋଗ କରେ, ଯେ ନିଆଁ ଲଗାଏ, ଶବ୍ଦ ଉତ୍ପାଦନକାରୀ ବ୍ୟକ୍ତି, (ଗ୍ରା.ବିଂ. ସଂ-ଅଧମର ବିପରୀତ) ଉତ୍ତମ ବ୍ୟକ୍ତି, ଗୁରୁ ଶବ୍ଦ ପତନର ଅନୁକରଣ ଶବ୍ଦ ।

ଧମକ୍—ଗ୍ରା.ବି.ଧମକ ଦେଖ,(ପ୍ରା. ସମ୍ବଲ ବି) ଗାଳି ।

ଧମକ୍‌ଦେବା—ପ୍ରା. (ସମ୍ବଲ) କ୍ରି. ଧମକାଇବା ଦେଖ ।

ଧମକ—ବି. ( ଧ୍ମା+କ.ଅକ ) କମାର, (ଗ୍ରା.ବି. ସଂ ଧାଧାତୁ ) ତର୍ଜ୍ଜନ, ଭୟପ୍ରଦର୍ଶନ, ଦମଦମ ହେବା, ଧକଧକ ହେବା, ଗୁରୁ ଦମଦମ, ହୃତ୍‌କମ୍ପ, ଅଧିକାରପତ୍ର, ହୁକୁମନାମା, ଖୁବ୍ ଜୋର, (ଗ୍ରା.ଅବ୍ୟ. ସବାରି ବେହେରାଙ୍କ ଡାକ) ବାଟରେ ଆଗରେ ଗଣ୍ଡି ଅଛି ।

ଧମକଚମକ—ଗ୍ରା. ବି. ତର୍ଜ୍ଜନ ଗର୍ଜ୍ଜନ, ବହୁ ଭର୍ତ୍ସନା ।

ଧମକଧମା—ଗ୍ରା.ବି. ଧମକାଣ, ଆଡ଼ମ୍ବର ଦେଖାଇବା, (ସବାରି ଗଉଡ଼ଙ୍କ ଡାକ) ଅସମତଳ ବା ଗଣ୍ଡିମୟ ମାର୍ଗ ଲକ୍ଷରେ ଡାକ ।

ଧମକଧମା(ମେ)ଇବା—ଗ୍ରା. କ୍ରି. ଚମକାଇବା, ଚମକ ବା ଚାକଚକ୍ୟ ଦେଖାଇବା, ଅଙ୍ଗପ୍ରତ୍ୟଙ୍ଗ ସଞ୍ଚାଳନ କରିବା, ଆଡ଼ମ୍ବର ଦେଖାଇବା,(ଧ୍ୱନ୍ୟନୁକରଣ) ଅଳଙ୍କାରାଦିର ଝମ୍‌ଝମ୍ ଶବ୍ଦ କରିବା, ଚାକଚକ୍ୟ ଦେଖାଇ ଚାଲିବା ।

ଧମକରେ ହେବା—ଗ୍ରା. କ୍ରି. ଭୟତ୍ରସ୍ତ ହେବା, ଭୀତହୋଇ ଅଧୀନତା ସ୍ୱୀକାର କରିବା ।

ଧମକା—ଗ୍ରା. ବି. (ସଂ-ଧ୍ମାଧାତୁ) ଧମକ ଦେଖ ।

ଧମକାଇବା—ଗ୍ରା.କ୍ରି. (ସଂ-ଧ୍ମାଧାତୁ) ଭୟ ଦେଖାଇବା, ଡରାଇବା, ଗାଳିଦେବା, (ଲ.ଅର୍ଥ) ଲେପ କରାଇବା ।

ଧମକାଣ—ଗ୍ରା.ବି.(ସଂ-ଧ୍ମା ଧାତୁ)ତର୍ଜ୍ଜନ, ତାଡ଼ଣ, ତିରସ୍କାର ।

ଧମକାଧମକି—ଗ୍ରା.ବି.ଧମକଚମକ(ଦେଖ), ପରସ୍ପର ପ୍ରତି ଧମକାଣ ।

ଧମକିବା—ଗ୍ରା.କ୍ରି. (ଧ୍ୱନ୍ୟନୁକରଣ) ଧଡ଼କିବା, ଦମଦମ ହେବା, ବ୍ୟଥାକରିବା, ବଥାଇବା, ଭୟତ୍ରସ୍ତ ହେବା ।

ଧମ୍‌ଧମ୍—ଗ୍ରା. ଅବ୍ୟ. ( ଧ୍ୱନ୍ୟନୁକରଣ ) ଧମ୍‌ଧମ୍ ଶବ୍ଦ କରି, ଦମଦମ ।

ଧମଧମ—ପୁଂ. ବି. ପାର୍ବତୀଙ୍କ କୋପସମ୍ଭୂତ କୁମାରାନୁଚର ଗଣଭେଦ, (ସ୍ତ୍ରୀ) ଧମଧମା ।

ଧମନ—ପୁଂ.ବି. ( ଧ୍ମା+ଣ.ଅନ ) ନଳ, ଭାଠି, (ଧ୍ମା+ଭା.ଅନ) ପବନ ଫୁଙ୍କିବା କର୍ମ, (ଧ୍ମା+କ.ଅନ)ନଳ, କାଣ୍ଡଶର, ଯେ କମାରଶାଳରେ ଭାଠି ତାଏ,(ବିଂ) କ୍ରୂର ।

ଧମନି(ନୀ)—ସ୍ତ୍ରୀ.ବି. (ଧ୍ମା+କ.ଅନ.ଈ) ଶିରା, ନଳ, ନାଡ଼ି, ପୃଶ୍ନିପର୍ଣ୍ଣୀ ଗଛ, ଢେମଣୀ, ବେଶ୍ୟା, ହରିଦ୍ରା, ପ୍ରହ୍ଲାଦ ଭ୍ରାତାର ସ୍ତ୍ରୀ, (ପୁଂ.ବି)ଗତିକାରୀ ପ୍ରାଣୀ, ବାକ୍, ଶବ୍ଦ ।

ଧମନୀ—ସ୍ତ୍ରୀ. ବି. ନାଡ଼ୀ, ହରିଦ୍ରା, ଗ୍ରୀବା, ପୃଶ୍ନିପର୍ଣ୍ଣୀ, ନଳିକା ।

ଧମାଧମ୍—ଗ୍ରା.ଅବ୍ୟ. ( ଧ୍ୱନ୍ୟନୁକରଣ ) ଧମ୍‌ଧମ୍ ଶବ୍ଦ କରି, ଉପର୍ଯ୍ୟୁପରି ଧମଧମ ଶବ୍ଦପୂର୍ବକ, ଅତିଶୀଘ୍ର, ଖୁବ୍‌କାର୍ଯ୍ୟବ୍ୟସ୍ତତା ସହକାରେ, ତ୍ୱରିତ, ଖୁବ୍ ଗୋଳମାଳ ସହିତ ।

ଧମ୍ମିଲ—ପୁଂ.ବି. (ଧମ୍+ମିଲ+ଲ)ଜୁଡ଼ା, ଖୋପା, ଖୋସା, ସଂଯତ କେଶକଳାପ, ଫାଶ, ଗଣ୍ଠି ।

ଧମ୍ମିଲବନ୍ତ—ଗ୍ରା.ବିଂ. ( ଧମ୍ମିଲ୍ଲ+ବନ୍ତ ) ପୁଷ୍ପାଦିମଣ୍ଡିତ କେଶପାଶ ଥିବା(ବ୍ୟକ୍ତି) ।

ଧୟ—ପୁଂ.ବିଂ. ପାନକର୍ତ୍ତା ।

ଧରବା—(ପ୍ରା. ଗଡ଼ଜାତ, ସମ୍ବଲପୁର. କ୍ରି.) ଆଣିବା ।

ଧର୍‌ମାର୍—ଗ୍ରା.ବି. ମାର୍‌ଧର୍,ପ୍ରହାର ।
ଧର୍‌ଣା—(ପ୍ରା..ସମ୍ବଲପୁର-ବି. ) ରାସ୍ତା, ପଥ, ଗ୍ରାମର ସର୍ବସାଧାରଣ ରାସ୍ତା ।
ଧର୍‌ଣାଖୁଲ—( ପ୍ରା. ସମ୍ବଲପୁର. ବି. ) ରାସ୍ତାକୁ ଲାଗିଥିବା କ୍ଷେତ ।
ଧର୍‌ଣ(ଣା)ରଣା—ଗ୍ରା. ବି. ଅମରବର୍ତ୍ତି-ନୀୟ ବା କଠୋର ନିୟମ, ଧରାବନ୍ଧା ନିୟମ ।
ଧର—ବି. (ଧୃ+କ.ଅ) ପର୍ବତ, କପା, ତର୍ଭ, ଜରାୟୁ, ଧଡ଼, ଶରୀରକବନ୍ଧ, ବାହୁ ମସ୍ତକ ଓ ପାଦହୀନ ଶରୀରାଂଶ, କୂର୍ମରାଜ, ବିଷ୍ଣୁଙ୍କର କଚ୍ଛପାବତାର, ଅଷ୍ଟାବସୁ, ବ୍ରାହ୍ମଣଙ୍କର ଗୋତ୍ରୋପାଧି-ବିଶେଷ, ବ୍ୟଭିଚାରୀ ପୁରୁଷ,ବିଟ,(ବିଂ) ଧାରଣକର୍ତ୍ତା, ( ଗ୍ରା. ବି. ପ୍ରାଚୀନ ) ଅଧର, ଯେ ଗିରଫ କରେ, ଧରିବା ବ୍ୟକ୍ତି, (ସ୍ତ୍ରୀ) ଧରା ।
ଧରଣ—ବି. ( ଧୃ+ଭା.ଅନ ) ଧାରଣ, ( ଧୃ+ଣ.ଅନ ) ଢଙ୍ଗ, ରୀତି, ପଦ୍ଧତି, ପ୍ରଥା, ଆକାର, ପ୍ରକୃତି, ଓଜନ ପରି-ମାଣବିଶେଷ, ( ଧୃ+କ.ଅନ ) ସୂର୍ଯ୍ୟ, ହିମାଳୟପର୍ବତ,ସ୍ତନ,ଅବଲମ୍ବନ,ସେତୁ, ପୋଲ, ଧାନ୍ୟ,ଲୋକ, ସଂସାର,ନାଗ-ବିଶେଷ, ଅର୍କବୃକ୍ଷ, (ଗ୍ରା.ବି.) ଧାରଣା, ଠିକ ବା ଠେକ, ଜିଦ୍‌ଧରି କୌଣସି ବ୍ୟକ୍ତିର ଦୁଆରେ ବସିରହିବା, ଠାକୁ-ରଙ୍କ ପାଖେ ଅଧିା ପଡ଼ିବା ।
ଧରଣପ୍ରିୟା—ସ୍ତ୍ରୀ.ବି.ଜିନ୍‌ମାନଙ୍କର ଶାସନ ଦେବତାବିଶେଷ ।
ଧରଣାପଡ଼ିବା—ଗ୍ରା.କ୍ରି. ଧାରଣାଦେବା. ଅଧିାପଡ଼ିବା, କୌଣସି ବ୍ୟକ୍ତିଙ୍କୁ ଅନୁ-ସରଣ କରିବା
ଧରଣି(ଣୀ)—ସ୍ତ୍ରୀ.ବି. (ଧୃ+କ.ଅନି.ଈ) ପୃଥିବୀ, ଭୂମି, ଶିମିଳିଗଛ,ନାଡ଼ୀ, ଶିରା, କନ୍ଦଆଳୁ, ପ୍ରାଚୀନ ଭାରତର ଅର୍ଣ୍ଣବ-ପୋତବିଶେଷ,(ପୁଂ) ଜଣେ ବୋଧିକ ।
ଧରଣିଜ—ପୁଂ. ବି. (ଧରଣି+ଜନ୍+ ଅ) ମଙ୍ଗଳ,ନରକାସୁର (ବିଂ)ଧରଣି-ଜାତ ମାତ୍ର ।
ଧରଣିଜା—ସ୍ତ୍ରୀ. ବି. (୬ତତ୍)ସୀତା ।
ଧରଣିତଳ—କ୍ଳୀ. ବି. (୬ତତ୍) ଭୂତଳ, ଧରାତଳ, ଭୂଇଁତଳ,ଅନାବୃତ ଭୂମି ।
ଧରଣିଦେବ—ବି. (୬ତତ୍) ବ୍ରାହ୍ମଣ ।
ଧରଣିଧର—ପୁଂ. ବି. (ଧରଣି+ଧୃ+ କ.ଅ ) ୬ତତ୍; ପର୍ବତ, ଅନନ୍ତ, ବାସୁକି, କୂର୍ମରାଜ, ବିଷ୍ଣୁଙ୍କ ୨ୟ ଅବ-ତାର, ମହାବରାହ, ବିଷ୍ଣୁଙ୍କ ୩ୟ ଅବ-ତାର, ଶିବ, ମହାଦେବ, ବିଷ୍ଣୁ, ରାଜା, ଭୂପତି ।
ଧରଣିରୁହ—ପୁଂ. ବି. (ଧରଣୀ+ରୁହ- +ଅ) ବୃକ୍ଷ ।
ଧରଣୀ—ସ୍ତ୍ରୀ.ବି. ( ଧରଣି+ଈ ) ଧରଣି ଦେଖ ।
ଧରଣୀକନ୍ଦ—ପୁଂ. ବି. ଧରଣୀ ନାମକ ମୂଳବିଶେଷ ।
ଧରଣୀକୀଲକ—ପୁଂ. ବି. ( ଧରଣୀ+ କୀଳକ ) ପର୍ବତ ।
ଧରଣୀଧର—ପୁଂ.ବି.ଧରଣିଧର ଦେଖ ।
ଧରଣୀଧରମିଶ୍ର—ଗ୍ରା.ବି.ଉତ୍କଳର ଜଣେ ପ୍ରାଚୀନ କବି ।
ଧରଣୀଧୃତ୍—ପୁଂ.ବି. (ଧରଣୀ+ଧୃ+ କ୍ୱିପ୍) ପର୍ବତ, ଅନନ୍ତଦେବ
ଧରଣୀନିର୍ଜର—ବି. ବ୍ରାହ୍ମଣ ।
ଧରଣୀପତି—ପୁଂ.ବି. ( ୬ତତ୍ ) ରାଜା. ମହାଦେବ, ବିଷ୍ଣୁ, ସମ୍ରାଟ୍ ।
ଧରଣୀପୁର—ପୁଂ.ବି. ଧରାକାର ଚତୁ-ରସ୍ର ମଣ୍ଡଳ ।
ଧରଣୀପୂର—ପୁଂ.ବି. (ଧରଣୀ+ପୂର୍+ ଅ) ସମୁଦ୍ର ।
ଧରଣୀପ୍ଲବ—ପୁଂ.ବି. ସମୁଦ୍ର ।
ଧରଣୀଭୃତ୍—ପୁଂ.ବି. (ଧରଣୀ+ଭୃ+ କ.କ୍ୱିପ୍) ଧରଣୀଧର ଦେଖ ।
ଧରଣୀମଣ୍ଡନ—ବି. ( ଧରଣୀ + ମଣ୍ଡନ ) ପୃଥିବୀର ଅଳଙ୍କାର ସ୍ୱରୂପ ସୁନ୍ଦର ବ୍ୟକ୍ତି, (ସ୍ତ୍ରୀ) ଧରଣୀମଣ୍ଡନା ।
ଧରଣୀଶ୍ୱର—ପୁଂ.ବି. ( ୬ତତ୍ ) ରାଜା, ଶିବ, ବିଷ୍ଣୁ ।
ଧରଣୀସୁତ—ପୁଂ.ବି. (୬ତତ୍) ମଙ୍ଗଳ-ଗ୍ରହ, ନରକାସୁର ।
ଧରଣୀସୁତା—ସ୍ତ୍ରୀ.ବି. (୬ତତ୍) ସୀତା ।
ଧରତି—ଗ୍ରା.ବି. ( ପଦ୍ୟ ) ( ସଂ-ଧୃତି ) ଧରଣୀ, ଠେକ, (ସଂ-ଧରିତ୍ରୀ)ପୃଥିବୀ ।
ଧରପକଡ଼—ଗ୍ରା. ବି. (ସଂ-ଧୃ ଧାତୁ+ସଂ- ପକଡ଼ନା)ମାର୍‌ଧର୍.ଧର୍‌ପକଡ଼ା, ଅତ୍ୟା-ଚାର, ଖୋଜ୍ ତଲାସ,ଅପରାଧୀକୁ ଧରିବା ନିମନ୍ତେ ବିଶେଷ ଅନୁସନ୍ଧାନ, ଗିରଫ୍-ଦାର କରିବା ।
ଧରପଞ୍ଚ—ବଲଖୀରାଜ ବଂଶର ସ୍ଥାପନ-କର୍ତ୍ତା ସେନାପତି ଭଟାର୍କଙ୍କ ସାନପୁଅ ।
ଧର୍‌ଫାର୍—ଚଙ୍ଗା ଗଣ୍ଡଜାତ ମଧ୍ୟ-ଦେଶର ପୌରାଣିକ ଗ୍ରାମବିଶେଷ ।
ଧରମ—ଗ୍ରା.ପଦ୍ୟ.ବି. ଧର୍ମ ଦେଖ ।
ଧରମକଣ୍ଟା—ଗ୍ରା. ବି. ଜୁଆଳି ମଝିରେ ମରାଯିବା ଖିଲ, ଧର୍ମ ବା ନ୍ୟାୟ ବିଗ୍ରହ-ସୂଚକ ତୁଳାଯନ୍ତ୍ର ।
ଧରମକରମ—ଗ୍ରା. ବି. (ସଂ-ଧର୍ମ ଓ କର୍ମ) ଧର୍ମକର୍ମ ଦେଖ । [ ଦେଖ ।
ଧରମକରିବା—ଗ୍ରା. କ୍ରି. ଧର୍ମ କରିବା
ଧରମକୋଠି—ପ. (ସଜାପୁର) ବିଂ. କର୍ମକୋଠି ଦେଖ ।
ଧରମଢଙ୍କା—ଗ୍ରା. ବି. ଧର୍ମଢଙ୍କା ଦେଖ ।
ଧରମଡାକ—ଗ୍ରା. ବି. ଧର୍ମଡାକ ଦେଖ ।
ଧରମଦାଣ୍ଡ—ଗ୍ରା. ବି. ଧର୍ମମାର୍ଗ ଦେଖ ।
ଧରମଦେବତା—ଗ୍ରା. ବି. ଧର୍ମଦେବତା ଦେଖ ।
ଧରମଧାଡ଼ି—ଗ୍ରା. ବି. ଧର୍ମାନୁମୋଦିତ ମାର୍ଗ, ଧର୍ମାନୁମୋଦିତ କର୍ମମାନ ।
ଧରମପୁଅ—ଗ୍ରା. ବି. ( ସଂ-ଧର୍ମପୁତ୍ର ) ମହାପ୍ରସାଦ ଦ୍ୱାରା ଯେଉଁ ବ୍ୟକ୍ତିଠାରେ ପୁତ୍ରତ୍ୱ ଆରୋପ କରାଯାଇଅଛି ।
ଧରମବନ୍ତ—ଗ୍ରା. ବିଂ. (ସଂ-ଧର୍ମ+ବତ୍) ଧାର୍ମିକ ।
ଧରମବଳ—ଗ୍ରା. ବି. ( ସଂ-ଧର୍ମବଳ ) ଭାଗ୍ୟବଳ, ଭାଗ୍ୟର ଜୋର୍ ।
ଧରମବୁଦ୍ଧି—ଗ୍ରା. ବି. ( ସଂ-ଧର୍ମବୁଦ୍ଧି ) ଧର୍ମବୁଦ୍ଧି ଦେଖ ।
ଧରମସନ୍ଧ୍ୟା—ଗ୍ରା.ବି. ଧର୍ମସନ୍ଧ୍ୟା ଦେଖ ।

ଧରଟଣା—ଗ୍ରା. (କଟକ) ବି. ଭେଦ-ବିଚାର, ଦୃଢ଼ ନିୟମ ପାଳନ, ଭେଦ-ବିଚାର ପୂର୍ବକ ବ୍ୟବହାର ।

ଧରଣଭ—ଗ୍ରା. ବି.(ସଂ-ଧରାଧର+ଶର) ପର୍ବତାସ୍ତ, ହନ୍ତସନ୍ତ, ଅସ୍ଥିର ।

ଧରଣା—ଗ୍ରା. (ସମ୍ବ) ବି. ଶଗଡ଼ଗୁଳା, ଶଗଡ଼ ଚକଦ୍ୱାରା ମଡ଼ା ହୋଇଥିବା ମାର୍ଗଚିହ୍ନ, ରାସ୍ତା ।

ଧରଷକ—ଗ୍ରା. ବିଂ. ପଦ୍ୟ, (ସଂ-ଧର୍ଷକ) ଧର୍ଷକ ଦେଖ ।

ଧରଷଣ—ଗ୍ରା. (ପଦ୍ୟ) ବି. (ସଂ-ଧର୍ଷଣ) ଉପଦ୍ରବ, ଅତ୍ୟାଚାର ।

ଧରଷିବା—ଗ୍ରା. (ପଦ୍ୟ) କ୍ରି. ଧର୍ଷିବା ଦେଖ, ଅପମାନ ଦେବା,ଅବଜ୍ଞାକରିବା, ସାହସ କରିବା ।

ଧରସୁଧା—ଗ୍ରା. ବି. (ପ୍ରାଚୀନପଦ୍ୟ) ବି. (ସଂ-ଅଧରସୁଧା) ଅଧରାମୃତ ଦେଖ ।

ଧରା—ସ୍ତ୍ରୀ. ବି. (ଧୃ+କ.ଅ+ଆ) ପୃଥିବୀ,ସଂସାର, ଗର୍ଭ, ଜରାୟୁ,ଗର୍ଭସ୍ଥ ଫୁଲ, ନାଡ଼ୀ, ଚର୍ବି, ମେଦ, ବନ୍ଟକରା, ଧଡ଼ା ଧରିବା ପାଇଁ ତରାଜୁର ଏକ-ପଲରେ ଯେଉଁ ଗୋଡ଼ମାନ ରଖାଯାଏ, ପାସଙ୍ଗ, (ଗ୍ରା.ବି) ଧୃତହେବା କର୍ମ, ବନ୍ଧନ କରିବା କର୍ମ, ଧରିବା କର୍ମ, ଅଣ୍ଡିରା ବାଛୁରୀର ପୁଂସ୍ତ୍ୱ ଲୋପ କରିବା କର୍ମ, ବାଛୁରୀ ଜନ୍ମ କରିଥିବା ଗାଈକୁ ଦୁଗ୍ଧ କରିବା ପାଇଁ ତାର ଜନନେନ୍ଦ୍ରିୟ ବାଟେ ପାଟିରେ ପବନ ଫୁଙ୍କିବା କର୍ମ, (ଗ୍ରା.ବିଂ) ଧୃତ, ନିର୍ଦ୍ଧାରିତ, ଧରାବନ୍ଧା, ମୁଷ୍କ ଛେଦନ କରାଯାଇଥିବା(ବାଛୁରୀ), ଉପସ୍ଥାପିତ, ଯେ ଧରେ, ଧରଣକାରୀ. ଯେଉଁ ନବପ୍ରସୂତା ଗାଈର ଜନନେନ୍ଦ୍ରିୟ ବାଟେ ମନୁଷ୍ୟ ପବନ ଫୁଙ୍କିଅଛି ।

ଧରାଇଦେବା—ଗ୍ରା. କ୍ରି. ଆସାମୀ ବା ଅପରାଧୀ ଅନ୍ୟ ବ୍ୟକ୍ତିଦ୍ୱାରା ଧୃତହେବା ବିଷୟରେ ଅନ୍ୟ ବ୍ୟକ୍ତିକୁ ସାହାଯ୍ୟ କରିବା, କୌଣସି କାର୍ଯ୍ୟ କରିଥିବା ବ୍ୟକ୍ତିକୁ ଚିହ୍ନା ପକାଇଦେବା ।

ଧରା(ରେ)ଇନେବା—ଗ୍ରା. କ୍ରି.କୌଣସି ବ୍ୟକ୍ତିକୁ ଅନ୍ୟ ବ୍ୟକ୍ତିଦ୍ୱାରା ଧୃତକରାଇ ନିଜ ନିକଟକୁ ନେବା ।

ଧରା(ରେ)ଇବା—ଗ୍ରା. କ୍ରି. ଧରିବା କ୍ରିୟାର ଣିଜନ୍ତରୂପ, (ଅଗ୍ନି) ସଂଯାପନ କରିବା, କୌଣସି ବ୍ୟକ୍ତିକୁ କୌଣସି ବସ୍ତୁ ବ୍ୟବହାର କରିବାକୁ ଅଭ୍ୟସ୍ତ କରାଇବା, ଗଣକ ଦ୍ୱାରା ଗଣନା କରାଇ ବିବାହାଦି ପାଇଁ ଗୋଟିଏ ଶୁଭଦିନ ନିର୍ଣ୍ଣୀତ କରିବା ।

ଧରାକ—ଗ୍ରା.ବି. ପରୀକ୍ଷକ,ତତ୍ତ୍ୱାବଧାରକ ।

ଧରାକଦମ୍ବ—ବି. ଧାରାକଦମ୍ବ ଦେଖ ।

ଧରାକୁ ଶରାଜ୍ଞାନକରିବା—ଗ୍ରା.କ୍ରି.ଗର୍ବରେ କାହାକୁ ଖାତିର ନ କରିବା ।

ଧରାକୋଟ—ଗ୍ରା. ବି. ଗଞ୍ଜାମଜିଲ୍ଲାନ୍ତର୍ଗତ ଗୋଟିଏ ରାଜ୍ୟ ବା ଜମିଦାରୀ ।

ଧରାଙ୍କୁର—ବି. ବାମ୍ପୁ,ଫଲ, ଶୀକର ।

ଧରାଛୁଆ—ଗ୍ରା.ବି.ଦେଖାଦର୍ଶନ,ଦେଖା-ସାକ୍ଷାତ୍, କୌଣସି କାର୍ଯ୍ୟରେ ସମ୍ପର୍କ ଥିବା ବିଷୟର ପ୍ରମାଣ ବା ସୂଚନା, ଇସାରା, ସୂଚନା ।

ଧରାଛୁଆଁ ନ ଦେବା—ଗ୍ରା.କ୍ରି. କୌଣସି ବ୍ୟକ୍ତି ନିକଟରେ ଆଦୌ ଉପସ୍ଥିତ ନ ହେବା, କୌଣସି ବିଷୟରେ ଆପଣାକୁ ଚିହ୍ନା ନ ପକାଇବା,ଇସାରାମାତ୍ର ନ ବତାଇବା ।

ଧରାତନୟା—ଗ୍ରା. ସ୍ତ୍ରୀ. ବି. (ଷ-ଧରା+ତନୟା) ଧରଣୀସମ୍ଭୂତା, ସୀତା ।

ଧରାତଳ—ବି. (୬ତତ୍ପୁ) ଭୂପୃଷ୍ଠ, ଧରା-ଧାମ, ସମଗ୍ର ପୃଥିବୀ,ଭୂମିତଳ,(ଜ୍ୟାମିତି) କେବଳ ଦୈର୍ଘ୍ୟ ଓ ପ୍ରସ୍ଥ ଥିବା କ୍ଷେତ୍ର, ରକବା, କ୍ଷେତ୍ରଫଳ ।

ଧରାତଳୀ—ଗ୍ରା. ସ୍ତ୍ରୀ. ବି. (ଷ-ଧରାତଳ) ପୃଥିବୀ, ଭୂପୃଷ୍ଠ ।

ଧରାତ୍ମଜ—ପୁଂ. ବି. (୬ତତ୍ପୁ) ଧରଣୀସୁତ ଦେଖ, (ସ୍ତ୍ରୀ) ଧରାତ୍ମଜା ।

ଧରାଦେବା—ଗ୍ରା. କ୍ରି. ଅନ୍ୟଦ୍ୱାରା ନିଜେ ଧରା ହେବାପାଇଁ ସୁବିଧା କରିଦେବା, ଧରିବା ବ୍ୟକ୍ତି ନିକଟରେ ସ୍ୱୟଂ ଆସି ଉପସ୍ଥିତ ହେବା, ଆତ୍ମ ସମର୍ପଣ କରିବା ।

ଧରାଧରି—ଗ୍ରା. ବି. ବଳାବଳ, ଷୋଳ-ବିଶ୍ୱା, ଅତି ଆପନ୍ନ ଅବସ୍ଥା,ଅସମ୍ଭାଳ, ଅସହ୍ୟ ଅବସ୍ଥା, (ଗ୍ରା.ବିଂ) ଅତ୍ୟନ୍ତ ଆପନ୍ନ (ଅବସ୍ଥା), ଅସମ୍ଭାଳ ।

ଧରାଧର—ବି. (ଧରା+ଧୃ+କ.ଅ)ପର୍ବତ, ବିଷ୍ଣୁ, କୂର୍ମରାଜ, ବିଷ୍ଣୁଙ୍କ ଦ୍ୱିତୀୟ ଅବ-ତାର,ଶେଷ ନାଗ, ବାସୁକି ।

ଧରାଧରି—ଗ୍ରା. ବି. କୁଣ୍ଡିଆ କୁଣ୍ଡେଇ, ଅନ୍ୟୋନ୍ୟରେ ଧରିବା, ଧରାପରା, ଭୂମିରୁ ଟେକା ଟେକି କରିବା, ସମ୍ବନ୍ଧ ଅନୁରୋଧ କରିବା, ଘାଆ ବ୍ରଣଆଦି ମନ୍ତ୍ର ପ୍ରୟୋଗ ଦ୍ୱାରା ଦୁରାରୋଗ୍ୟ କରିବା, କୌଣସି ବସ୍ତୁକୁ ବହୁବାର ଧରିବା, (ବିଂ) କଳିକରି ପରସ୍ପର ବଳ କଷା-କଷି ହେଉଥିବା (ଦୁଇଜଣ), ଗ୍ରା. ବି, କ୍ରି. କୌଣସି କାର୍ଯ୍ୟ କରିବାକୁ ଅନିଚ୍ଛା ବା ଅଶକ୍ତି ସତ୍ତ୍ୱେ କୌଣସି ବ୍ୟକ୍ତି-ପ୍ରତି ଜବରଦସ୍ତି ବା ବଳପ୍ରୟୋଗପୂର୍ବକ ବା ଭୂମିରୁ ଉଠାଇ ( କୌଣସି କାର୍ଯ୍ୟ-କରାଇବା ) ।

ଧରାଧାମ—ବି. (ଧରା+ଧାମନ୍) ପୃଥିବୀ ।

ଧରାଧିପ(ତି)—ବି. (୬ତତ୍ପୁ) ରାଜା ।

ଧରାଧୀଶ—ବି. (୬ତତ୍ପୁ) ରାଜା ।

ଧରାଧୀଶ୍ୱର—ବି. (୬ତତ୍ପୁ) ରାଜା ।

ଧରାନ୍ତରଚର—ବିଂ. ପୁଂ. ପୃଥିବୀ ମଧ୍ୟେ ବିଚରଣକାରୀ ।

ଧରାପଗଡ଼ା—ଗ୍ରା.ବି. ଧରପଗଡ଼ ଦେଖ ।

ଧରାପଡ଼ା(ରା)—ଗ୍ରା. ବି. ଅନ୍ୟୋନ୍ୟରେ ଧରାଧରି ହୋଇ କଳି କରିବା ବା ବଳ କଷାକଷି ହେବା,କୁସ୍ତାକୁସ୍ତି ହେଉଥିବା (ଦୁଇବ୍ୟକ୍ତି) ।

ଧରାପଡ଼ିବା—ଗ୍ରା.କ୍ରି.ନିଜେ ଧୃତ ହେବା, ଗିରଫଦାରହେବା, ଅପରାଧ କରିବା ସମୟରେ ଧୃତହେବା,ପ୍ରକାଶିତହେବା, ଜଣାଯିବା, ସ୍ୱୀକୃତହେବା, ଅନ୍ୟର ଆୟତ୍ତାଧୀନ ହେବା,ହାବୁଡ଼େ ପଡ଼ିବା ।

ଧରାପତି—ପୁଂ. ବି. ( ୬ତତ୍ପୁ ) ପୃଥିବୀର ଈଶ୍ୱର, ରାଜା ।

**ଧରାବନ୍ଧ**—ପୁଂ. ବି. (ଦେ.ଗ୍ରା) ପୁଷ୍କରିଣୀ, ତଡ଼ାଗ ।

**ଧରାବନ୍ଧା**—ଗ୍ରା.ବିଂ.ସୁନିଶ୍ଚିତ, ନିର୍ଦ୍ଧାରିତ, ଅଲଙ୍ଘ୍ୟ, କଡ଼ା(ନିୟମ), (ବି) ଅଲଙ୍ଘ୍ୟ ନିୟମ ।

**ଧରାଭୃତ୍**—ପୁଂ.ବି. (ଧରା+ଭୃ+କ୍ୱିପ୍) ପୃଥିବୀଶ୍ୱର । [ ବଇନା ।

**ଧରାମତ**—ପ୍ରା. ( ଗଞ୍ଜାମ–ତେଲଗୁ )ବି.

**ଧରାମର**—ପୁଂ. ବି. (୭ତତ୍) ବ୍ରାହ୍ମଣ ।

**ଧରାଯିବା**—ଗ୍ରା. କ୍ରି. ( ଧରିବାର କର୍ମବାଚ୍ୟରୂପ)ଗିରଫ୍‌ଦାର୍‌ହେବା, (କ୍ରୁଦ୍ଧ) ସମ୍ମୁଖରେ ରକ୍ଷିତହେବା, ନିଶ୍ଚିତହେବା, ନିର୍ଦ୍ଧାରିତହେବା, ସ୍ୱୀକୃତ ହେବା, ଧୃତହେବା । [ ଶେଯ ।

**ଧରାଶଯ୍ୟା**—ସ୍ତ୍ରୀ. ବି. (ରୂପକ) ଭୂମିରୂପ

**ଧରାଶାୟୀ**—ପୁଂ. ବିଂ. ( ଧରା+ଶୀ+କ.ଇନ୍ ) ମୃତ, ଭୂତଳେ ପତିତ, (ସ୍ତ୍ରୀ) ଧରାଶାୟିନୀ ।

**ଧରି**—ଗ୍ରା.(ଏତେ ଅଞ୍ଚଳ)ବ୍ୟାପି, (ଏତେ ସମୟ)ବିସ୍ତୃତ ହୋଇ,(ଏତେ ଲୋକଙ୍କୁ) ସଙ୍ଗରେ ନେଇ, ( ଏତେ ଲୋକଙ୍କ ସହିତ) ଏକଦଳ ବାନ୍ଧି ।

**ଧରିତ୍ରୀ**—ସ୍ତ୍ରୀ. ବି. (ଧୃ+କ+ଇତ୍ର+ଈ) ପୃଥିବୀ, ଧରଣୀ, ଭୂମି ।

**ଧରିତ୍ରୀଶୋଭିନୀ**—ଗ୍ରା. ସ୍ତ୍ରୀ. ବିଂ,(ପ୍ରାଚୀନ) (ସଂ-ଧରିତ୍ରୀ+ଶୋଭିନୀ)ଧରଣୀମଣ୍ଡନା, ଖୁବ୍‌ସୁନ୍ଦରୀ ।

**ଧରିଦେବା**—ଗ୍ରା.କ୍ରି. କୌଣସି ପଦାର୍ଥକୁ ଧରି ଅନ୍ୟକୁ ଦେବା, ( ସଂ-ଧାରି ) ପକାଇବା, ଶାଣଦେବା, ସମ୍ମୁଖରେ ଉପସ୍ଥାପିତ କରିବା, କ୍ଷମା କରିବା ।

**ଧରିଧରମକରା(ରେ)ଇବା**—ଗ୍ରା. କ୍ରି. କୌଣସି ଲୋକକୁ ତା'ର ଅନିଚ୍ଛା ସତ୍ତ୍ୱେ ବାଧ୍ୟକରି ଧର୍ମକାର୍ଯ୍ୟ କରାଇବା ।

**ଧରିନେବା**—ଗ୍ରା.କ୍ରି.ବିବେଚନା କରିବା, ସ୍ଥିରକରିବା, କଳ୍ପନାକରିବା,କୌଣସି ପ୍ରାଣୀକୁ ଆୟତ୍ତ କରି କୌଣସି ସ୍ଥାନକୁ ଜବରଦସ୍ତି ନେବା, ଅନୁସରଣ କରିବା

**ଧରିପକା(କେ)ଇବା**—ଗ୍ରା. କ୍ରି. ହଠାତ୍ ଧରିବା, ଛୁଇଁବା, ସ୍ପର୍ଶକରିବା ।

**ଧରିବସିବା**—ଗ୍ରା. କ୍ରି. କୌଣସି ବିଷୟ ପାଇଁ ଏକ ଜିଗର କରିବା, କୌଣସି ଗୋଟିଏ କାର୍ଯ୍ୟରେ ବ୍ୟାପୃତ ହେବା ଓ ଅନ୍ୟ ବିଷୟ ପ୍ରତି ଦୃଷ୍ଟି ନ ଦେବା, କୌଣସି ବସ୍ତୁକୁ ବହୁକାଳ ପାଇଁ ଧରିବା ।

**ଧରିବା**—ଗ୍ରା.କ୍ରି.(ସଂ-ଧୃଧାତୁ—ସକର୍ମକ) କୌଣସି ବସ୍ତୁକୁ ହସ୍ତରେ ଧାରଣ କରିବା ବା ଗ୍ରହଣ କରିବା, ଉପରକୁ ଟେକିବା, ଟେକି ରଖିବା, ବହନ କରିବା, ବାଛୁରି ମୁଷ୍କ ଛେଦନକରିବା, ଚୃଷକରିବା, ହଳକରିବା, (ଅକର୍ମକ) ପୀଡ଼ାଯୁକ୍ତହେବା, ବଥାଇବା, (ସକର୍ମକ) ମନ୍ତ୍ରାଦି ପ୍ରୟୋଗ ଦ୍ୱାରା ଘାଆ ପ୍ରଭୃତିକୁ ପ୍ରକୁପିତ କରାଇବା, ନବପ୍ରସୂତା ଗାଈର ଜନନେନ୍ଦ୍ରିୟ ଫୁଙ୍କିବା, ଉଚ୍ଚାରଣ କରିବା, (ଅକ ଓ ସକର୍ମକ) ଫଳବତ୍ ହେବା, କାଫିବା, କାବୁକରିବା, ଅବଲମ୍ବନ କରିବା, ଆଶ୍ରାନେବା, ଆୟତ୍ତକରିବା, ନିକଟରେ ପହଞ୍ଚିବା,(ସକର୍ମକ)ଛୁଇଁବା, କୌଣସି ବିଷୟରେ ଜିଦ୍ କରିବା, ଶିକ୍ଷା ଦିଆଯିବା ପଦକୁ ବୋଲି ପାରିବା ବା ଉଚ୍ଚାରଣ କରିପାରିବା, ( ଅକର୍ମକ ) ଫଳିବା, ଜନ୍ମିବା,(ସକର୍ମକ)ବିବେଚନା କରିବା, ଗଣନା ବା ହିସାବ କରିବା. (ଅକର୍ମକ) ଅବଶହେବା, (ସକର୍ମକ) ଗିରଫ୍‌ଦାର କରିବା, ତଥ୍ୟ ପାଇବା, ଠାବ୍‌ରାଇବା,(ଅକର୍ମକ)ଯଥେଷ୍ଟହେବା, ସମ୍ଭେଇବା, ( ସକର୍ମକ ) ରଖିଦେବା, ପହଞ୍ଚିବା, ସମାଲୋଚନା କରିବା, ଅବଲମ୍ବନ କରିବା, କୌଣସି କାର୍ଯ୍ୟ ପାଇଁ ବାଧ କରିବା,ସାହାଯ୍ୟନେବା,ବ୍ୟାପିବା, ବିସ୍ତୃତ ହେବା, ଘୋଟିବା, ଆକ୍ରାନ୍ତ କରିବା, ଆକ୍ରମଣ କରିବା, ନିମନ୍ତ୍ରଣ କରି ସଙ୍ଗରେ ନେବା, (ଅକର୍ମକ) (ନିଆଁ) ଲାଗିବା, (ସକର୍ମକ) ବନ୍ଦକରି ରଖିବା, ଅଟକାଇବା, ସମ୍ଭାଳିବା, ଆକାର ଧାରଣ କରିବା, ସଂଗ୍ରହ କରିବା, ସଞ୍ଚୟକରିବା, ଗୁଣ୍ଠିବା, ଗ୍ରହଣ କରିବା, ଆଲିଙ୍ଗନ କରିବା, (ଅକର୍ମକ) ପରିଣତ ହେବା, (ସକର୍ମକ) ତାରିଖ) ସ୍ଥିର କରିବା, ହୃଦୟରେ ବହିବା, ଅନୁଭବକରିବା,(ଆଜ୍ଞା)ପାଳନକରିବା, ( ମନକୁ ) ଏକାଗ୍ରକରିବା, ସଂଲଗ୍ନ କରିବା, ମଣ୍ଡାଇବା, ଲଗାଇବା, ଉଦ୍ଘାଟନକରିବା, ନୂତନ ଖାଦ୍ୟାଦିରେ ଅଭ୍ୟସ୍ତ ହେବା, ଅସ୍ତ୍ର ଶସ୍ତ୍ରାଦିକୁ ପକାଇବା.ନିଲାମରେ ଡାକ ସମ୍ପତ୍ତି କିଣିବା, (କର୍ମକର୍ତ୍ତୃବାଚ୍ୟ ପ୍ରୟୋଗ) (ରୋଗାଦି) ଆକ୍ରମଣକରିବା, ( ସକର୍ମକ ) କଥାର ବା ଲେଖାର ଦୋଷ ବାଛିବା.ସଙ୍ଗରେ ନେବା, ଯଥାକାଳରେ ରେଲ୍‌ବା ଆରୋହଣ କରିବା, କୌଣସି ବିଷୟକୁ ନ ଛାଡ଼ିବା, ଆରମ୍ଭ କରିବା, (ସକ ଓ ଅକର୍ମକ) (କଳଙ୍କି) ଲାଗିବା, (ମୁରୁଗୁ) ମାରିବା,ନଷ୍ଟ କରିବାକୁ ଆରମ୍ଭକରିବା, ଅନୁସରଣକରିବା, ଅନୁସାରେ ଚଳିବା, (ଧରାଇବା-ଣିଜନ୍ତରୂପ) ।

**ଧରିବାନ୍ଧି**—ଗ୍ରା. କ୍ରି. ବିଂ. ବାଧ୍ୟକରି, ଜବରଦସ୍ତି କରି ।

**ଧରିମା**—ପୁଂ.ବି.(ଧୃ+ର୍ମ.ଇମନ୍) ତରାଜୁ, ତୁଲାଯନ୍ତ୍ର, ରୂପ, ଆକାର ।

**ଧରିମାରିବା**—ଗ୍ରା.କ୍ରି. (ସଂ-ଧୃ ଓ ମୃ ଧାତୁ ଣିଚ୍) ଲୋକକୁ ବା ପ୍ରାଣୀକୁ ଧରି ପରେ ମାରିବା ।

**ଧରିରଖିବା**—ଗ୍ରା.କ୍ରି. ନିଜର ଆୟତ୍ତରେ ରଖିବା, ଆୟତ୍ତ କରିବା ।

**ଧରୁଆ**—ଗ୍ରା.ବି. (ସଂ-ଧୃଧାତୁ)ମଟିଶେଣୀ, ଧାରଣା, ଟେକ ।

**ଧରୁଣ**—ପୁଂ. ବି. (ଧୃ+ଉନ) ଧାରକ, ଉଦକ, ଅଗ୍ନି, ଧାରା, ଏକବିଂଶତି, ଆଦିତ୍ୟ, ବ୍ରହ୍ମା, ସ୍ୱର୍ଗ, ମତ, (ବିଂ) ସମ୍ମତ, (ସ୍ତ୍ରୀ) ଧରୁଣା, ଧରୁଣୀ ।

**ଧରୋଟ**—ଗ୍ରା.ବିଂ. (ସଂ-ଧର୍ତ୍ତବ୍ୟ)ବିବେଚିତ ହେବାର ଯୋଗ୍ୟ,(ବି)ବିବେଚିତ ହେବାର ଯୋଗ୍ୟତା ।

ଧରେଶ୍ୱରମ—ପୁ. ବ. ଶିବ ।

ଧର୍ତ୍ତୃସି—ପୁଂ. ବ. ( ଧୃ+ନସି ) ବଳ, ଧର୍ତ୍ତବ୍ୟ ବଳ୍ଚାଦ, ଧାରକ ।

ଧର୍ତ୍ତବ୍ୟ—ବି. ବଂ. ( ଧୃ+ମ.ତବ୍ୟ ) ଧାରଣୀୟ, ବିବେଚ୍ୟ, ଗ୍ରାହ୍ୟ, ଗଣନୀୟ,ରଖିବାର ଯୋଗ୍ୟ,(ସ୍ତ୍ରୀ)ଧର୍ତ୍ତବ୍ୟା ।

ଧର୍ତ୍ତା—ପୁଂ. ବଂ. (ଧୃ+କ.ତୃ)ଧାରଣକର୍ତ୍ତା, ରକ୍ଷଣକାରୀ, ବନ୍ଧନକର୍ତ୍ତା,(ସ୍ତ୍ରୀ) ଧର୍ତ୍ତ୍ରୀ ।

ଧର୍ତ୍ତ୍ରି—ଗ୍ରା. ବ. ( ସଂ-ଧରଣୀ ) ଧରଣୀ ଦେଖ, (ସଂ-ଧୃତି) ଧୈର୍ଯ୍ୟ ।

ଧର୍ତ୍ତୁର—ପୁଂ. ବ. ଧୁସ୍ତୁର ।

ଧର୍ତ୍ତ୍ର—କ୍ଲୀ. ବ. ( ଧୃ+ତ୍ର ) ଗୃହ, ଯଜ୍ଞ, ଧର୍ମ, ସହଜଗୁଣ ।

ଧର୍ତ୍ର—କ୍ଲୀ.ବ.(ଧୃ+କ.ତ୍ର)ଗୃହ, ଋତୁ, ଯଜ୍ଞ, ଧର୍ମ ।

ଧର୍ମ(ର୍ମ୍ମ)—ବ. ( ଧୃ+କ.ମ ) କର୍ତ୍ତବ୍ୟ କର୍ମ, ସଦନୁଷ୍ଠାନ, ସତ୍କର୍ମ, ଭାଗ୍ୟ, ଅଦୃଷ୍ଟ, ପୁଣ୍ୟ, ଶ୍ରେୟଃ, ମଙ୍ଗଳ, ସୁକୃତ, ମହାଦେବଙ୍କ ବୃଷ, ନ୍ୟାୟ, ସ୍ୱାଭାବିକ ଅବସ୍ଥା, ସ୍ୱଭାବ,ପ୍ରକୃତି,ଗୁଣ, ଆଚରଣ, ଆଚାର, ବ୍ୟବହାର, ଶାସ୍ତ୍ରବିହିତ ଆଚାର, ଯଥାଯୋଗ୍ୟ ବ୍ୟବହାର, ଯଜ୍ଞ, ବେଦବିହିତ କର୍ମ,ସମ୍ପ୍ରଦାୟିକ ଈଶ୍ୱର ବିଶ୍ୱାସ, ଉପାସନା ପଦ୍ଧତି, ଦେଶାଚାର, ଆଇନ୍, ଧନୁ, ଯମ,ସୋମପାୟୀ ଯାଜ୍ଞିକ,ନ୍ୟାୟାନୁଗତ ବିଚାର, ସତ୍ସଙ୍ଗ, ସ୍ଥିର ସଙ୍ଗତି, ଯୋଗ୍ୟତା, ( ଜ୍ୟୋତିଷ ) ଲଗ୍ନର ନବମସ୍ଥାନ, ବିଷ୍ଣୁଙ୍କ ନାମ, ସାଦୃଶ୍ୟ, ଆତ୍ମା ବା ଜୀବ, ଭାବ, ଯୁଧିଷ୍ଠିର,ସୂର୍ଯ୍ୟ, ଉପନିଷଦ୍, ପାପ ପୁଣ୍ୟର ବିଚାରକ ଈଶ୍ୱର, ଅହିଂସା, (ଅଳଙ୍କାର ଶାସ୍ତ୍ର) ଉପମାନ ଓ ଉପମେୟରେ ଥିବା ସାଧାରଣ ଗୁଣ, ସମାଜର ସ୍ଥିତି ଓ ମଙ୍ଗଳ ପାଇଁ ଅନୁଷ୍ଠିତ କର୍ମମାନ, ନ୍ୟାୟବୁଦ୍ଧି,ବିବେକ,ବୌଦ୍ଧମାନଙ୍କର ଉପାସ୍ୟ ଦ୍ରବ୍ୟତ୍ରୟରୁ ଏକ, ଧନୁକ, ନିରଞ୍ଜନ, ( ଗ୍ରା—ବ. ସଂ ଧର୍ମ ) ଧର୍ମଦେବତା, ପରଂବ୍ରହ୍ମ, ସୂର୍ଯ୍ୟଦେବତା, ନ୍ୟାୟ, (ଗ୍ରା) ବି ଓ ବିଂ. ଧର୍ମ ବା ଈଶ୍ୱର ବା ଦେବତା ବା ମହାପ୍ରସାଦକୁ ସାକ୍ଷୀରଖି ଦୁଇ ଜଣଙ୍କ ମଧ୍ୟରେ ଯେଉଁ ପିତା ମାତାଦି ସମ୍ବନ୍ଧ ସ୍ଥାପନ କରଯାଏ ।

ଧର୍ମ—କୁମାଉନ୍ ପ୍ରଦେଶାନ୍ତର୍ଗତ ହିମାଳୟର ଦକ୍ଷିଣସ୍ଥ ଜନପଦ ବିଶେଷ ।

ଧର୍ମଅବତାର—ଗ୍ରା. ବ. ଅବ୍ୟ. (ସଂ-ଧର୍ମାବତାର) ଧର୍ମାବତାର ଦେଖ ।

ଧର୍ମଅର୍ଜିବା—ଗ୍ରା.କ୍ରି. (ସଂ-ଧର୍ମ+ଅର୍ଜନ) ପୁଣ୍ୟକାର୍ଯ୍ୟ ଦ୍ୱାରା ପୁଣ୍ୟ ସଞ୍ଚୟକରିବା

ଧର୍ମକଥକ—ପୁଂ. ବିଂ. ଧର୍ମବକ୍ତା ।

ଧର୍ମକଥାଦରିଦ୍ର—ପୁଂ. ବ. କଳିକାଳଜାତ ମାନବ ।

ଧର୍ମକରଉପାଧ୍ୟାୟ—ଜଣେ ସ୍ମୃତିଗ୍ରନ୍ଥ ପ୍ରଣେତା ( ତଡ଼ାଗାଦି ପ୍ରତିଷ୍ଠାପଦ୍ଧତି, ମୃତି ) ।

ଧର୍ମକରିବା—ଗ୍ରା. କ୍ରି. ପୁଣ୍ୟ କାର୍ଯ୍ୟ [ କରିବା ।

ଧର୍ମକର୍ମ—ବ. ( କ.ଧା ) ଧର୍ମାନୁଷ୍ଠାନ, ସଦନୁଷ୍ଠାନ, ଲୋକହିତକର କର୍ମ ।

ଧର୍ମକାମ—ପୁଂ.ବିଂ.(ବ.ବ୍ରୀ )ଫଳପ୍ରାପ୍ତି କାମନାରେ ଯେ ଧର୍ମକରେ, ଧାର୍ମିକ ।

ଧର୍ମକାୟ—ପୁଂ. ବ. ( ଧର୍ମ+କାୟ ) ବୁଦ୍ଧଦେବ ।

ଧର୍ମକାର—ପୁଂ. ବ. (ଧର୍ମ+କୃ+ଅ ) ଧର୍ମଶାସ୍ତ୍ରକର୍ତ୍ତା ।

ଧର୍ମକାର୍ଯ୍ୟ—କ୍ଲୀ. ବ. ଧର୍ମକର୍ମ ।

ଧର୍ମକାଳ—ପୁଂ. ବ. (କ.ଧା) ଧର୍ମଲାଭାର୍ଥ ସମୟ, ବ୍ରହ୍ମଚର୍ଯ୍ୟାଶ୍ରମ ।

ଧର୍ମକୀର୍ତ୍ତି—ପୁଂ. ବ. ପୁରାଣୋକ୍ତ ଜଣେ ରାଜା, ବିଖ୍ୟାତ ବୌଦ୍ଧନୈୟାୟିକ ଓ ପ୍ରାଚୀନ କବି ବିଶେଷ ।

ଧର୍ମକୀଳ—ପୁଂ. ବ. ( ବ.ବ୍ରୀ ) ଶାସନ ରାଜ୍ୟଶାସନ ।

ଧର୍ମକୀଳକ—ପୁଂ.ବ.(୬ତତ୍)ବ୍ରହ୍ମଶାସନ

ଧର୍ମକୁଆଖିଠାରମାରିବା—ଗ୍ରା. କ୍ରି. ଲୋକଜାଣିବାକୁ ବାହାରେ ଧର୍ମକରି ଭିତରେ ପାପକରିବା, ଧର୍ମଶାସ୍ତ୍ର ଦ୍ୱାହି ଦେଇ ଇଚ୍ଛାନୁସାରେ କାର୍ଯ୍ୟକରିବା ।

ଧର୍ମକୁଆସିବା—ଗ୍ରା.କ୍ରି.(କୌଣସିକାର୍ଯ୍ୟ) ଉଚିତ ବା କର୍ତ୍ତବ୍ୟ ବୋଲି ଅନ୍ତଃକରଣରେ ବିବେଚିତ ହେବା ।

ଧର୍ମକୁ ଡାକିବା—ଗ୍ରା. କ୍ରି. ବଳଶାଳୀ ଅତ୍ୟାଚାରୀର ଅମଙ୍ଗଳ କାମନାକରି ପ୍ରଭୁଙ୍କୁ ଡାକିବା ।

ଧର୍ମକୁଣ୍ଡ—କ୍ଲୀ.ବ. (କ.ଧା) କାମ୍ୟବନସ୍ଥ କୁଣ୍ଡ ବିଶେଷ ।

ଧର୍ମକୁମାରସାଧୁ—ଜଣେ ଜୈନଗ୍ରନ୍ଥକାର ।

ଧର୍ମକୂପ—ପୁଂ.ବ.ଗୋଟିଏ ପ୍ରାଚୀନ ତୀର୍ଥ ।

ଧର୍ମକୃତ୍—ପୁଂ. ବିଂ. ( ଧର୍ମ+କୃ+କ. କ୍ୱିପ୍) ଧର୍ମାନୁଷ୍ଠାତା, (ପୁଂ. ବ) ବିଷ୍ଣୁ, ବିଷ୍ଣୁଙ୍କ ନାମ ବିଶେଷ ।

ଧର୍ମକୃତ୍ୟ—କ୍ଲୀ. ବ. (କ.ଧା)ଧର୍ମକାର୍ଯ୍ୟ, ଧର୍ମକାର୍ଯ୍ୟର ଅନୁଷ୍ଠାନ ।

ଧର୍ମକେତୁ—ପୁଂ. ବ.(ବ.ବ୍ରୀ)ବୁଦ୍ଧଦେବ, କାଶ୍ୟପ ବଂଶୀୟ ସୁକେତୁନୃପଙ୍କ ପୁତ୍ର ବିଶେଷ, ଜଣେ ବ୍ୟାଧ ।

ଧର୍ମକୋଟ—ପଞ୍ଜାବ ଫିରୋଜପୁର ଜିଲ୍ଲାର ତହସିଲର ଗୋଟିଏ ନଗର ।

ଧର୍ମକୋଷ—ପୁଂ.ବ. ଧର୍ମରୂପ ସ୍ମରଣୀୟ ବସ୍ତୁ, ଧର୍ମସମୂହ ।

ଧର୍ମକ୍ଷେତ୍ର—କ୍ଲୀ.ବ.(୬ତତ୍)ପୁଣ୍ୟକ୍ଷେତ୍ର, ତୀର୍ଥ, କୁରୁକ୍ଷେତ୍ର, ମହାଭାରତ ଯୁଦ୍ଧର ସ୍ଥାନ ।

ଧର୍ମଗହନାଭ୍ୟୁଦ୍ଗତରାଜ—ପୁଂ.ବ. ବୁଦ୍ଧଙ୍କର ନାମାନ୍ତର ।

ଧର୍ମଗୁପ୍—ପୁଂ. ବିଂ. ( ଧର୍ମ+ଗୁପ୍+କ. କ୍ୱିପ୍) ଧର୍ମରକ୍ଷକ, (ପୁଂ.ବ) ବିଷ୍ଣୁ ।

ଧର୍ମଗୁପ୍ତ—ପୁଂ. ବ. ଜଣେ ବଣିକ, ରାମଦାସଙ୍କ ପୁତ୍ର ।

ଧର୍ମଗୋଲା—ଗ୍ରା. ବ. ଗ୍ରାମବାସୀମାନଙ୍କ ଦ୍ୱାରା ସମବାୟ ସମିତିର ନିୟମାନୁସାରେ ପ୍ରତିଷ୍ଠିତ ଧାନ୍ୟଭଣ୍ଡାର ।

ଧର୍ମଗ୍ରନ୍ଥ—ବ. ( ୬ତତ୍ ) ସାମ୍ପ୍ରଦାୟିକ ଧର୍ମମତ ପ୍ରତିପାଦକ ଶାସ୍ତ୍ର, ସ୍ମୃତିଶାସ୍ତ୍ର, ଆଇନବହି ।

ଧର୍ମଘଟ—ପୁଂ.ବ.(କ.ଧା)ବୈଶାଖ ମାସର ପ୍ରତ୍ୟହ ଦାତବ୍ୟ ଜଳପୂର୍ଣ୍ଣ କଳସ,

ପଣାସଂକ୍ରାନ୍ତିଠାରୁ ଏକମାସ ପର୍ଯ୍ୟନ୍ତ ତୁଳସୀ ଗଛ ଉପରେ ଜଳଧାର ଦେବା ନିମନ୍ତେ ଯେଉଁ ସଚ୍ଛିଦ୍ରକଳସ ଟଙ୍ଗାଯାଏ,(ଗ୍ରା.ବି)ଏକସମ୍ପ୍ରଦାୟ ଭୁକ୍ତ ସମସ୍ତ ବ୍ୟକ୍ତି ସମବେତ ହୋଇ କୌଣସି କାର୍ଯ୍ୟ କରିବା ସମ୍ବନ୍ଧେ ଯେଉଁ ପ୍ରତିଜ୍ଞା କରନ୍ତି, ହରତାଳ ।

ଧର୍ମଘଟକରିବା--ଗ୍ରା. କ୍ରି. (ଶ୍ରମିକମାନେ) କାର୍ଯ୍ୟ ସମ୍ବନ୍ଧେ ଏକମେକ ବାନ୍ଧିବା ।

ଧର୍ମଘଟବ୍ରତ—କ୍ଲୀ. ବି. (କ.ଧା ) ବର୍ଷ-ଚତୁଷ୍ଟୟ ଦମାଦ୍ୟ ବ୍ରତବିଶେଷ, (ଏହି ବ୍ରତରେ ଧର୍ମଘଟ ଦାନକରିବାକୁ ହୁଏ) ।

ଧର୍ମଘଟୀ—ଗ୍ରା. ବି. ଯେଉଁମାନେ ମେଳି ବାନ୍ଧି ଧର୍ମଘଟ କରନ୍ତି ।

ଧର୍ମଘଣ୍ଟି—ଗ୍ରା. ବି. ( ଧର୍ମ + ଘଣ୍ଟିକା ) ଯେଉଁ ଘଣ୍ଟି ବା ଘଣ୍ଟା ମନକୁ ବାଜେ, ସର୍ବସାଧାରଣ ଦେଖିବାଭଳି ଖୁବ୍ ଉଚ୍ଚ ସ୍ଥାନରେ ସ୍ଥାପିତ ଘଣ୍ଟି ।

ଧର୍ମଚକ୍ର—କ୍ଲୀ. ବି. ( ୬ତତ୍ପୁ ) ବୁଦ୍ଧଙ୍କ ପ୍ରବର୍ତ୍ତିତ ସତ୍ୟଚତୁଷ୍ଟୟ, ଚକ୍ରରୂପେ କଳ୍ପିତ ଆଇନ୍, ଚକ୍ରରୂପେ କଳ୍ପିତ ଧର୍ମ, ବୁଦ୍ଧଦେବ, ଧର୍ମସମୂହ, ଅସ୍ତ୍ରବିଶେଷ ।

ଧର୍ମଚକ୍ରଭୃତ୍—ପୁଂ. ବି. (ଧର୍ମ + ଚକ୍ର ଭୃ + କ୍ୱିପ୍) ଜିନ । [ ଶୀଳନ ।

ଧର୍ମଚର୍ଚ୍ଚା—କ୍ଲୀ. ବି. ( ୬ତତ୍ପୁ ) ଧର୍ମାନୁ-

ଧର୍ମଚନ୍ଦ୍ରଗଣି—ଜଣେ ଜୈନ ଗ୍ରନ୍ଥକାର ।

ଧର୍ମଚରଣ—ପୁଂ. ବି. ଧର୍ମାଚରଣ ।

ଧର୍ମଚର୍ଯ୍ୟା—ସ୍ତ୍ରୀ.ବି.(୬ତତ୍ପୁ)ଧର୍ମାଚରଣ, ଧର୍ମାନୁଷ୍ଠାନ ।

ଧର୍ମଚାରିଣୀ—ସ୍ତ୍ରୀ. ବିଂ. (ଧର୍ମ+ଚର+ କ.ଇନ୍+ସ୍ତ୍ରୀ.ଈ) ଧାର୍ମିକା, ଧର୍ମଶୀଳା, (ବି) ଧର୍ମପତ୍ନୀ ।

ଧର୍ମଚାରୀ—ପୁଂ. ବିଂ. ( ଧର୍ମ + ଚର୍ + କ.ଇନ୍ ) ଯେ ଧର୍ମପଥରେ ଚଳେ, ଧାର୍ମିକ, (ସ୍ତ୍ରୀ) ଧର୍ମଚାରିଣୀ ।

ଧର୍ମଚିନ୍ତକ—ପୁଂ. ବିଂ. ଧର୍ମଚିନ୍ତାକାରୀ ।

ଧର୍ମଚିନ୍ତନ—କ୍ଲୀ.ବି. (୬ତତ୍ପୁ) ଧର୍ମଚିନ୍ତା, ଧର୍ମବିଷୟକ ଭାବନା ।

ଧର୍ମଚିନ୍ତା—ସ୍ତ୍ରୀ.ବି. (୬ତତ୍ପୁ)ଧର୍ମବିଷୟକ ଭାବନା, ଅଧ୍ୟାତ୍ମଚିନ୍ତା, ସାଧୁଚିନ୍ତା, ଉପାଧି । [ ନ୍ତର ।

ଧର୍ମଚିହ୍ନ—ପୁଂ.ବି.ଶାକ୍ୟମୁନିଙ୍କର ନାମା-

ଧର୍ମଚୋର—ଗ୍ରା.ବି. ମିଥ୍ୟାଗ୍ରହୀ ଲୋକ ।

ଧର୍ମଚ୍ୟୁତ—ବିଂ. ( ୫ମୀ ତତ୍ ) ଯାହାର ଧର୍ମ ଲୋପ ହୋଇଥାଏ, ଧର୍ମ ସମ୍ପ୍ରଦାୟରୁ ବହିଷ୍କୃତ, ଧର୍ମତ୍ୟାଗୀ, (ବି.) ଧର୍ମଚ୍ୟୁତି,ଧର୍ମବିଚ୍ୟୁତି,(ସ୍ତ୍ରୀ)ଧର୍ମଚ୍ୟୁତା ।

ଧର୍ମଛଡ଼ା—ଗ୍ରା.ବିଂ.ଧର୍ମବିରୁଦ୍ଧ,ସୃଷ୍ଟିଛଡ଼ା, ଅଧାର୍ମିକ, (ସ୍ତ୍ରୀ) ଧର୍ମଛଡ଼ୀ ।

ଧର୍ମଛୁଟିବା—ଗ୍ରା.ବି. ପାପକାର୍ଯ୍ୟ ଯୋଗୁଁ ଈଶ୍ୱରଙ୍କ ଅନୁଗ୍ରହରୁ ବଞ୍ଚିତ ହେବା, ଈଶ୍ୱରଙ୍କ ଦୃଷ୍ଟିରେ ଦୋଷୀ ହେବା, (ଗ୍ରା.କ୍ରି) ଧର୍ମବିରୁଦ୍ଧ ଆଚରଣ କରିବା ।

ଧର୍ମଜ—କ୍ରି. ବିଂ. (ଧର୍ମ + ଜନ୍ + କ.ଅ) ଧର୍ମାନୁଷ୍ଠାନରୁ ଉତ୍ପନ୍ନ ଔରସ ( ପୁତ୍ର), (ପୁଂ.ବି.)ଧର୍ମପତ୍ନୀ ଗର୍ଭଜାତ ସନ୍ତାନ, ନରନାରାୟଣ, ବୁଦ୍ଧବିଶେଷ, (କ୍ଲୀ) ଦ୍ରବ୍ୟଭେଦ, (ସ୍ତ୍ରୀ) ଧର୍ମଜା ।

ଧର୍ମଜନ୍ମା—ପୁଂ.ବି. ( ବ.ବ୍ରୀ ) ଧର୍ମପୁତ୍ର ଯୁଧିଷ୍ଠିର ।

ଧର୍ମଜନ୍ୟ—କ୍ରି. ବିଂ. (୩ତତ୍) ଧର୍ମଦ୍ୱାରା ଜାତ (ସୁଖ) ।

ଧର୍ମଜାୟା—ସ୍ତ୍ରୀ.ବି. (ଧର୍ମ+ଜାୟା; ୪ର୍ଥୀ ତତ୍) ସହଧର୍ମିଣୀ, ବିବାହିତା ସ୍ତ୍ରୀ ।

ଧର୍ମଜିଜ୍ଞାସା—ସ୍ତ୍ରୀ. ବି. ଧର୍ମସମ୍ବନ୍ଧେ ଅନୁସନ୍ଧାନ ବା ପ୍ରଶ୍ନ, (ବିଂ) ଧର୍ମଜିଜ୍ଞାସୁ ।

ଧର୍ମଜୀବନ—ପୁଂ. ବି. ( କ.ଧା ) ଧର୍ମାନୁଷ୍ଠାନନିରତ ଜୀବନ, ଆଧ୍ୟାତ୍ମିକଚିନ୍ତାରେ ବ୍ୟାପୃତ ଜୀବନ ।

ଧର୍ମଜ୍ଞ—ପୁଂ. ବିଂ. (ଧର୍ମ+ଜ୍ଞା+କ.ଅ) ଯେ ଧର୍ମତତ୍ତ୍ୱ ଉତ୍ତମରୂପେ ଜାଣନ୍ତି, ଧର୍ମୋପଦେଶକ,ଧାର୍ମିକ, ନ୍ୟାୟପର, ଯେ ଆଇନ୍ ଜାଣେ, ( ବି) ଧର୍ମଜ୍ଞତା, (ସ୍ତ୍ରୀ) ଧର୍ମଜ୍ଞା ।

ଧର୍ମଜ୍ଞାନ—କ୍ଲୀ.ବି. ( ୬ତତ୍ପୁ ) ଧର୍ମତତ୍ତ୍ୱ ବିଷୟକ ବୋଧ, ଧର୍ମାଧର୍ମ ବିଷୟକ ଜ୍ଞାନ ।

ଧର୍ମଠାକୁର—ପଶ୍ଚିମ ଓ ଦକ୍ଷିଣ ବଙ୍ଗଳାରେ ନୀଚ ହିନ୍ଦୁଜାତିର ଉପାସ୍ୟଦେବତା ।

ଧର୍ମଡଙ୍ଗା—ଗ୍ରା. ବି. ଧର୍ମପାଳନ ରୂପ କାର୍ଯ୍ୟ, ଧର୍ମପନ୍ଥାନୁସରଣ ନୌକା ।

ଧର୍ମଡାକ—ଗ୍ରା. ବି. ଧର୍ମକୁ ସାକ୍ଷୀ ରଖି ଆହ୍ୱାନ କରିବା ।

ଧର୍ମଣ—ପୁଂ. ବି. (ଧୃ+ମନ୍) ଚେମଣା ବା ଚାମଣା ସାପ,ଧାମଣ ବା ଚାମଣାଗଛ ।

ଧର୍ମତଃ—ଅବ୍ୟ. (ଧର୍ମ+ତସ୍) ଧର୍ମାନୁସାରେ,ଧର୍ମପ୍ରମାଣେ,ନ୍ୟାୟତଃ,ନ୍ୟାୟାନୁସାରେ, ଆଇନ୍ ଅନୁସାରେ, ସାମାଜିକ ଦୃଷ୍ଟିରେ ଦେଖିବାକୁ ଗଲେ, ଧର୍ମଦ୍ୱାରରେ, ଈଶ୍ୱରଙ୍କ ନାମ ଗ୍ରହଣ କରି ।

ଧର୍ମତଣ୍ଡ—ଗ୍ରା. ବି. ଧର୍ମଦଣ୍ଡ (ଦେଖ), ବୃଥା ଅର୍ଥଦଣ୍ଡ,ଦୋଷପାଇଁ ଦଣ୍ଡ ଦିବା ଜୋରିମାନା ।

ଧର୍ମତତ୍ତ୍ୱ—କ୍ଲୀ. ବି. (୬ତତ୍ପୁ) ଧର୍ମର ଗୂଢ଼ ମର୍ମ, ଧର୍ମବିଜ୍ଞାନ, ଧର୍ମରହସ୍ୟ ।

ଧର୍ମତୀର୍ଥ—କ୍ଲୀ.ବି. ତୀର୍ଥବିଶେଷ ।

ଧର୍ମତ୍ୱ—କ୍ଲୀ.ବି. ବୃତ୍ତିମତ୍ତ୍ୱ, ଆଧେୟତ୍ୱ ।

ଧର୍ମତ୍ୟାଗ—ବି. (୬ତତ୍ପୁ)ଆପଣାର ଧର୍ମ ସମ୍ପ୍ରଦାୟର ପରିତ୍ୟାଗ, ନିଜ କର୍ତ୍ତବ୍ୟକୁ ଛାଡ଼ିବା ।

ଧର୍ମତ୍ୟାଗୀ—ପୁଂ. ବିଂ. (ଧର୍ମ+ତ୍ୟଜ୍+ କ.ଇନ୍) ଯେ ସ୍ୱଧର୍ମକୁ ଛାଡ଼ିଥାଏ, ସ୍ୱଧର୍ମକୁ ଛାଡ଼ି ଅନ୍ୟ ଧର୍ମ ଗ୍ରହଣ କରେ, (ସ୍ତ୍ରୀ) ଧର୍ମତ୍ୟାଗିନୀ ।

ଧର୍ମତ୍ରାତା—ଜଣେ ବୌଦ୍ଧ ଧର୍ମ ପୁସ୍ତକ-ପ୍ରଣେତା ।

ଧର୍ମଦ—ପୁଂ.ବି.(ଧର୍ମ+ଦା+ଅ) ଅନ୍ୟର ସ୍ୱଧର୍ମଫଳର ଫଳଦାୟକ, ଧର୍ମୋତ୍ପାଦକ, କୁମାରାନୁଚର ମାତୃଭେଦ ।

ଧର୍ମଦଣ୍ଡ—ବି. ନିଜର ଧର୍ମରକ୍ଷା ପାଇଁ ସୁହାଇବା କଷ୍ଟ, ବୃଥାକଷ୍ଟ, ବ୍ୟର୍ଥଦଣ୍ଡ, ଅନ୍ୟପାଇଁ ଭୋଗିବା ଦଣ୍ଡ ।

ଧର୍ମଦାନ—ବି. ( ମଧ୍ୟ.କ.ଧା ) କେବଳ ଧର୍ମପାଇଁ ଦାନ, ସାତ୍ତ୍ୱିକଦାନ, ଧର୍ମ କର୍ମପାଇଁ ଦାନ ।

ଧର୍ମଦାର(ରା)—ବି. ଧର୍ମପତ୍ନୀ ଦେଖ ।

ଧର୍ମଦାସପୁର—ବଙ୍ଗୀୟ ନାଟ୍ୟମଞ୍ଚର ସୁବିଖ୍ୟାତ ଶିଳ୍ପୀ ।

ଧର୍ମଦୀପିକା—ସ୍ତ୍ରୀ. ବି. ଗୌଡ଼ ପ୍ରସିଦ୍ଧ ମୀମାଂସା ଗ୍ରନ୍ଥବିଶେଷ । [ ଦେବୀ ।

ଧର୍ମଦୁଘା—ସ୍ତ୍ରୀ.ବି.ଧର୍ମଦାନ ସ୍ଥାନ, ବହ୍ନି-

ଧର୍ମଦେବ—ନେପାଳ ଲିଚ୍ଛବିବଂଶୀୟ ଜଣେ ରାଜା ।

ଧର୍ମଦେବତା—ବି.ଈଶ୍ୱର, ଯମ, ସୂର୍ଯ୍ୟ, ଠୁଲଶ୍ଚନ୍ୟ ଅଣାକାର ପୁରୁଷ ।

ଧର୍ମଦେଶ—ପୁଂ.ବି. (ଧର୍ମ + ଦେଶ) ଧର୍ମ ସାଧନର ସ୍ଥାନ, ସ୍ୱବର୍ଗୋକ୍ତ ଯଜ୍ଞୀୟ ଦେଶ ।

ଧର୍ମଦୋଷ—ଗୁପ୍ତସମ୍ରାଟ୍ ।

ଧର୍ମଦ୍ୱେଷୀ—ପୁଂ.ବିଂ. (ଧର୍ମ + ଦ୍ୱିଷ + କ.ଇନ) ଧର୍ମପ୍ରତି ବିଦ୍ୱେଷକାରୀ, (ସ୍ତ୍ରୀ) ଧର୍ମଦ୍ୱେଷିଣୀ ।

ଧର୍ମଦ୍ରବୀ—ସ୍ତ୍ରୀ. ବି. (ଧର୍ମ + ଦ୍ରୁ + କ.ଅ + ସ୍ତ୍ରୀ.ଈ) ଗଙ୍ଗା

ଧର୍ମଦ୍ରୋହ—ବି. (୬ତତ୍) ଅଧର୍ମାଚରଣ, ଧର୍ମବିଦ୍ୱେଷ ।

ଧର୍ମଦ୍ରୋହୀ—ପୁଂ. ବିଂ. (ଧର୍ମ + ଦ୍ରୁହ + କ.ଇନ୍) ଦୁଷ୍ଟାଚାରୀ,ଅଧର୍ମାଚାରୀ,ପାପୀ, (ବି) ରାକ୍ଷସ, (ସ୍ତ୍ରୀ) ଧର୍ମଦ୍ରୋହିଣୀ,ପାପୀ ବ୍ୟକ୍ତି ।

ଧର୍ମଧାଡ଼ିଆ—ଗ୍ରା.ବି. ଦୂତ ।

ଧର୍ମଧାତୁ—ପୁଂ.ବି. ବୁଦ୍ଧ ।

ଧର୍ମଧ୍ୱଜ—ପୁଂ.ବି.(୬ତତ୍)ଧର୍ମର ବାହ୍ୟ ଚିହ୍ନ, ଜନକବଂଶୀ ମିଥିଳାର ନୃପବିଶେଷ, ( ବିଂ. ବ.ଗ୍ରୀ )କପଟଧାର୍ମିକ, ବିଡ଼ାଳବୈଷ୍ଣବ ।

ଧର୍ମଧ୍ୱଜା—ସ୍ତ୍ରୀ. ବିଂ. ( ବ.ଗ୍ରୀ ) ଧର୍ମର ବାହ୍ୟଚିହ୍ନଧାରଣୀ ( ବି ) ଧର୍ମର ବାହ୍ୟ ଚିହ୍ନ ।

ଧର୍ମଧ୍ୱଜୀ—ପୁଂ. ବିଂ. ( ଧର୍ମଧ୍ୱଜ + ଇନ୍) କପଟ ଧାର୍ମିକ, (ସ୍ତ୍ରୀ) ଧର୍ମଧ୍ୱଜିନୀ ।

ଧର୍ମନଦ—କ୍ଲୀ.ବି. ତୀର୍ଥବିଶେଷ ।

ଧର୍ମନନ୍ଦନ—ପୁଂ.ବି. (୬ତତ୍)ଯୁଧିଷ୍ଠିର ।

ଧର୍ମନାଥ—ପୁଂ.ବି. ( ୬ତତ୍ ) ବର୍ଦ୍ଧିସିଦ୍ଧ ଅଭିଭାବକ, ଜୈନମାନଙ୍କର ୧୫ଶ ତୀର୍ଥଙ୍କର ।

ଧର୍ମନାଭ—ପୁଂ.ବି. (ବ.ଗ୍ରୀ) ବିଷ୍ଣୁ, (ସ୍ତ୍ରୀ) ନଦୀବିଶେଷ ।

ଧର୍ମନାଶ—ବି. (୬ତତ୍) ଧର୍ମର ଲୋପ, ଧର୍ମହାନି, ସ୍ୱୀୟ ସତ୍ତ୍ୱନାଶ ।

ଧର୍ମନିନ୍ଦକ—ପୁଂ. ବିଂ. (ଉପପଦ ତତ୍) ଯେ ଧର୍ମକୁ ନିନ୍ଦାକରେ ।

ଧର୍ମନିନ୍ଦା—ବି. (୬ତତ୍) ଧର୍ମପ୍ରତି ଉପହାସ କରିବା,ଧର୍ମପ୍ରତି କଳଙ୍କାରୋପଣ କରିବା ।

ଧର୍ମନିରତ—ପୁଂ. ବିଂ. (୭ତତ୍) ଧର୍ମକାର୍ଯ୍ୟରେ ସର୍ବଦା ବ୍ୟାପୃତ,(ସ୍ତ୍ରୀ)ଧର୍ମନିରତା ।

ଧର୍ମନିଷ୍ଠ—ପୁଂ.ବିଂ. (ବ.ଗ୍ରୀ) ଧର୍ମପରାୟଣ, ଧାର୍ମିକ. (ସ୍ତ୍ରୀ) ଧର୍ମନିଷ୍ଠା ।

ଧର୍ମନିଷ୍ଠା—ସ୍ତ୍ରୀ. ବି. (୭ତତ୍) ଧର୍ମରେ ଆସ୍ଥା ବା ଏକାଗ୍ରତା, ଧର୍ମ ବିଷୟରେ ଆନ୍ତରିକ ଶ୍ରଦ୍ଧା,ଧର୍ମପରାୟଣତା,(ବିଂ. ବ.ଗ୍ରୀ) ଧର୍ମପରାୟଣା ।

ଧର୍ମନୀତି—ସ୍ତ୍ରୀ.ବି. (ଧର୍ମ + ନୀତି)୬ତତ୍; ଧର୍ମସମ୍ବନ୍ଧୀୟ ବିଧାନ, ଧର୍ମବିଜ୍ଞାନ, ଆଇନର ବିଧାନ ।

ଧର୍ମପଟ୍ଟ—ପୁଂ.ବି.(ମଧ୍ୟ-କ.ଧା) ରାଜା ବା ଧର୍ମାଧିକାରୀଙ୍କଠାରୁ ପ୍ରାପ୍ତ ଆଇନ୍ ସମ୍ବନ୍ଧୀୟ ବ୍ୟବସ୍ଥାପତ୍ର ।

ଧର୍ମପତି—ପୁଂ. ବି. (୬ତତ୍) ରାଜବିଧିର ଅଧିକାରୀ ବା ଶାନ୍ତିରକ୍ଷକ, ଯମ, ବରୁଣ, ( ମଧ୍ୟ-କ.ଧା ) ଧର୍ମାନୁସାରେ ବିବାହିତ ସ୍ୱାମୀ ।

ଧର୍ମପତ୍ତନ—କ୍ଲୀ.ବି. ବୃହତ୍ ସଂହିତୋକ୍ତ ଦେଶଭେଦ, ଶ୍ରାବସ୍ତୀ, ଧର୍ମପୁରୀ, ମରିଚ ।

ଧର୍ମପତ୍ତନ(ଧର୍ମାପଟ୍ଟମ୍)—ମାନ୍ଦ୍ରାଜ ଅନ୍ତର୍ଗତ ମଲବାର ଜିଲ୍ଲାର କୋଟାୟମ୍ ତାଲୁକର ଗୋଟିଏ ନଦୀ ଓ ନଗର ।

ଧର୍ମପତ୍ନୀ—ସ୍ତ୍ରୀ.ବି. (୪ତତ୍, ମଧ୍ୟ-କ.ଧା) ପ୍ରଥମ ବିବାହିତା ସ୍ତ୍ରୀ, ସହଧର୍ମିଣୀ ।

ଧର୍ମପତ୍ର—କ୍ଲୀ. ବି. (ବ.ଗ୍ରୀ) ଡ଼ିମ୍ବିରିଗଛ, ଯଜ୍ଞଡିମ୍ବିରି ।

ଧର୍ମପଥ—ପୁଂ.ବି.(ରୂପ-କ.ଧା)ଧର୍ମାନୁମୋଦିତ ପଥ, ଧର୍ମାନୁଷ୍ଠାନ ।

ଧର୍ମପଥିନ୍—ପୁଂ.ବିଂ. କର୍ତ୍ତବ୍ୟନିଷ୍ଠ,ଧର୍ମପଥାନୁସାରୀ ।

ଧର୍ମପଦ—ଗ୍ରା. ବି. କୋଣାର୍କ ମନ୍ଦିରର ମୁଦଶୀଲା (ମୁଣ୍ଡିମାରିବା) କାର୍ଯ୍ୟ ସମାଧାନ କରିଥିବା ଗୋଟିଏ ବଢ଼େଇ ପିଲାର ନାମ ।

ଧର୍ମପର—ପୁଂ.ବିଂ.(ଧର୍ମ + ପର)୬ତତ୍, ବ.ଗ୍ରୀ) ଧାର୍ମିକ, ଧର୍ମଶୀଳ, ଧର୍ମନିଷ୍ଠ, ଧର୍ମାତ୍ମା, (ସ୍ତ୍ରୀ) ଧର୍ମପରା ।

ଧର୍ମପରାୟଣ—ବି. ବିଂ. (ବ.ଗ୍ରୀ) ଧର୍ମନିଷ୍ଠ, ଧର୍ମାତ୍ମା, ଅତିଧାର୍ମିକ ।

ଧର୍ମପରିଣାମ—ପାତଞ୍ଜଳୋକ୍ତ ଚିତ୍ତଧର୍ମୀର ବ୍ୟୁତ୍ଥାନ ଓ ନିରୋଧ ଧର୍ମର ଅଭିଭବ ଓ ପ୍ରାଦୁର୍ଭାବ ରୂପ ପରିଣାମଭେଦ ।

ଧର୍ମପାଠକ—ପୁଂ. ବି. ( ଉପପଦତତ୍ ) ଧର୍ମଶାସ୍ତ୍ର ବା ଆଇନର ଅଧ୍ୟାପକ, ମନ୍ୱାଦି ପ୍ରଣୀତ ଧର୍ମଶାସ୍ତ୍ରପାଠକାରୀ, ରାଜବିଧି ଅଧିକାରୀ ବା ଶାନ୍ତିରକ୍ଷକ ମନ୍ତ୍ରୀଭେଦ,ଜଣେ ପ୍ରସିଦ୍ଧ ବୌଦ୍ଧ ପଣ୍ଡିତ ।

ଧର୍ମପାଳ—ପୁଂ.ବି. (୬ତତ୍) ଯେ ଧର୍ମରକ୍ଷା କରନ୍ତି, ବୌଦ୍ଧ ସନ୍ନ୍ୟାସୀଙ୍କ ଉପାଧିବିଶେଷ, (ବ.ଗ୍ରୀ) ଦଣ୍ଡ, ରାଜା ଦଶରଥଙ୍କର ଏକ ମନ୍ତ୍ରୀ, (ସ୍ତ୍ରୀ) ଧର୍ମପାଳିକା ।

ଧର୍ମପାଳନ—ବି. (୬ତତ୍) ଧର୍ମସମ୍ବନ୍ଧୀୟ କର୍ତ୍ତବ୍ୟମାନ ପାଳିବା, ଧର୍ମକର୍ମ ।

ଧର୍ମପାଶ—ପୁଂ. ବି. ନ୍ୟାୟବିଚାର, ଧର୍ମବନ୍ଧନ, ଧର୍ମଙ୍କ ହସ୍ତସ୍ଥ ପାଶାସ୍ତ୍ର ।

ଧର୍ମପିଅର—ଗ୍ରା. ବି. ଧର୍ମପିତା ଦେଖ ।

ଧର୍ମପିତା—ପୁଂ.ବି. (ମଧ୍ୟ.କ.ଧା)ଧର୍ମଶାସ୍ତ୍ର ଅନୁସାରେ ଆପଣାର ପିତୃସ୍ଥାନୀୟ ବ୍ୟକ୍ତି, ଯାହାଙ୍କ ସଙ୍ଗେ ମହାପ୍ରସାଦାଦି ଦ୍ୱାରା ପିତୃସମ୍ପର୍କ ସ୍ଥାପିତ ହୋଇଥାଏ ।

ଧର୍ମପିପାସୁ—ବି.ବି°(୬ତତ୍) ଧର୍ମଲାଭେଚ୍ଛୁ।

ଧର୍ମପୀଠ—କ୍ଲୀ.ବି.(୬ତତ୍) ଧର୍ମସାଧନର ପ୍ରଧାନ ସ୍ଥାନ,ତୀର୍ଥ, ବାରାଣସୀର ନାମାନ୍ତର, ଯେଉଁ ସ୍ଥାନରେ ଧର୍ମସମ୍ବନ୍ଧେ ବ୍ୟବସ୍ଥା ମିଳେ।

ଧର୍ମପୀଡ଼ା—ସ୍ତ୍ରୀ. ବି. (୬ତତ୍) ଧର୍ମର ବା ନ୍ୟାୟର ବିରୁଦ୍ଧ ଆଚରଣ, ଅପରାଧ।

ଧର୍ମପୁଅ—ଗ୍ରା.ବି. ଧର୍ମସମ୍ବନ୍ଧ ଦ୍ୱାରା ପ୍ରତିଷ୍ଠିତ ପୁତ୍ର।

ଧର୍ମପୁତ୍ର—ପୁଂ. ବି. (୬ତତ୍) ଯୁଧିଷ୍ଠିର, ଔରସ ପୁତ୍ର, ଧାର୍ମିକପୁତ୍ର, ପୋଷ୍ୟପୁତ୍ର, (ଗ୍ରା.ବି) ଧରମ ପୁଅ।

ଧର୍ମପୁରାଣ—କ୍ଲୀ.ବି. ତନ୍ନାମଖ୍ୟାତ ପୁରାଣ ବିଶେଷ।

ଧର୍ମପୁରୀ—ବି. ଯମପୁରୀ, ଧର୍ମାଧିକରଣ, କଚେରୀ, ମାନ୍ଦ୍ରାଜ ସାଲେମ ଜିଲ୍ଲାର ଗୋଟିଏ ତାଲୁକ।

ଧର୍ମପୁସ୍ତକ—ବି. ଧର୍ମଗ୍ରନ୍ଥ ଦେଖ।

ଧର୍ମପ୍ରଚାର—ପୁଂ.ବି. (୬ତତ୍) କୌଣସି ଦେଶରେ ସର୍ବସାଧାରଣ ଲୋକଙ୍କ ସମ୍ମୁଖରେ ଧର୍ମର ବ୍ୟାଖ୍ୟାକରିବା।

ଧର୍ମପ୍ରଚାରକ—ପୁଂ. ବି°. (୬ତତ୍) ଧର୍ମପ୍ରଚାର କରିବା ବ୍ୟକ୍ତି।

ଧର୍ମପ୍ରତିରୂପକ—ପୁଂ.ବି. ମନୂକ୍ତ ଲକ୍ଷଣଯୁକ୍ତ ଧର୍ମାଭାସ।

ଧର୍ମପ୍ରଦୀପ—ପୁଂ. ବି. ଧର୍ମାଲୋକ, (ବି°) ଧର୍ମଜ୍ଞ, ଧର୍ମନିଷ୍ଠ, (ବି) ତନ୍ନାମକ ଶାସ୍ତ୍ରଗ୍ରନ୍ଥ।

ଧର୍ମପ୍ରବକ୍ତା—ପୁଂ. ବି. ( ଧର୍ମ+ପ୍ରବକ୍ତୃ ) ୬ତତ୍; ରାଜନିଯୁକ୍ତ ସଭ୍ୟବିଶେଷ, ଆଇନ୍ ବିଷୟରେ ଉପଦେଶକ, ଧର୍ମପ୍ରଚାରକ।

ଧର୍ମପ୍ରବଚନ—ପୁଂ.ବି. (ଧର୍ମ+ ପ୍ର+ ବଚ୍ + ଅନ) ଶାକ୍ୟମୁନି।

ଧର୍ମପ୍ରବଣ—ବି. ବି°. ( ୬ତତ୍ ) ପରମଧାର୍ମିକ, (ସ୍ତ୍ରୀ) ଧର୍ମପ୍ରବଣା।

ଧର୍ମପ୍ରବୃତ୍ତି—ସ୍ତ୍ରୀ.ବି.ଧର୍ମବିଷୟକ ପ୍ରବୃତ୍ତି।

ଧର୍ମପ୍ରଭସୂରି—ଏକ ଜୈନ ଆଚାର୍ଯ୍ୟ।

ଧର୍ମପ୍ରଭାସ—ପୁଂ.ବି.ବୁଦ୍ଧଙ୍କର ନାମାନ୍ତର

ଧର୍ମପ୍ରମାଣ—ବି.ବି°. ଧର୍ମ ଯାହାର ସାକ୍ଷୀ, (ଅବ୍ୟ) ଧର୍ମାନୁସାରେ, ଧର୍ମତଃ, (କ୍ରି. ବି°. ବି.ଗ୍ରା) ଧର୍ମସାକ୍ଷୀ କରି।

ଧର୍ମପ୍ରମାଣେ—ଗ୍ରା. କ୍ରି. ବି°. ଧର୍ମପ୍ରମାଣ ଦେଖ।

ଧର୍ମପ୍ରସ୍ଥ—ପୁଂ. ବି. ତୀର୍ଥବିଶେଷ।

ଧର୍ମପ୍ରାଣ—ପୁଂ. ବି°. (ବି.ଗ୍ରା) ଅତ୍ୟନ୍ତ ଧାର୍ମିକ, (ବି) ଧର୍ମପ୍ରାଣତା, (ସ୍ତ୍ରୀ)ଧର୍ମପ୍ରାଣା।

ଧର୍ମପ୍ରିୟ—ପୁଂ.ବି.ଜଣେ ବୌଦ୍ଧାଚାର୍ଯ୍ୟ।

ଧର୍ମବକ—ବି. (ଧର୍ମ+ବକ) ବକରୂପଧାରୀ ଧର୍ମ ବା ଈଶ୍ୱର, କପଟଧାର୍ମିକ।

ଧର୍ମବକା—ଗ୍ରା. ବି. (ସଂ-ଧର୍ମବକ)ଧର୍ମବୋକା ଦେଖ।

ଧର୍ମବତୀ—ସ୍ତ୍ରୀ. ବି. ସ୍ୱର୍ଗର ନଦୀ।

ଧର୍ମବନ୍ତ—ଗ୍ରା. ବି°. (ସଂ-ଧର୍ମ + ବତ୍) ଧାର୍ମିକ, ନ୍ୟାୟବାନ୍।

ଧର୍ମବନ୍ଧନ—କ୍ଲୀ. ବି. (ମଧ୍ୟ-କ.ଧା)ଧର୍ମହେତୁ ବନ୍ଧନ।

ଧର୍ମବନ୍ଧୁ—ବି. ବି°. ( ୬ତତ୍ ) ଏକ ଧର୍ମାବଲମ୍ବନ ହେତୁ ପରସ୍ପର ମିତ୍ରତାଭାବାପନ୍ନ।

ଧର୍ମବର୍ଦ୍ଧନ—ପୁଂ.ବି.ଜଣେ ରାଜା, ଧର୍ମପୋଷକ, ମହାଦେବ, ଶିବ।

ଧର୍ମବତ୍ସଳ—ବି. ବି°. ଧର୍ମପ୍ରିୟ,କର୍ତ୍ତବ୍ୟନିଷ୍ଠ।

ଧର୍ମବଳ—ପୁଂ. ବି. ଧରମବଳ ଦେଖ।

ଧର୍ମବଳା—ଗ୍ରା.ବି (ଧର୍ମ+ବାଳ)ଧର୍ମପୁତ୍ର, ଯୁଧିଷ୍ଠିର।

ଧର୍ମବହିର୍ଭୂତ—ବି°. ( ୬ତତ୍ ) ପାପଜନକ, ଯେଉଁ କାର୍ଯ୍ୟ ଧର୍ମର ବିପରୀତ ଅଟେ।

ଧର୍ମବାଟ—ଗ୍ରା. ବି. ଧର୍ମପଥ।

ଧର୍ମବାଣିଜ୍ୟକ—ବି. ( ଧର୍ମ + ବାଣିଜ୍ୟ + ଇକ ) ଯେଉଁ ବ୍ୟକ୍ତି ଆପଣାର ଧର୍ମସାଧନକୁ ଲାଭର ଉପାୟରେ ପରିଣତ କରେ, ପୁରସ୍କାର ଆଶାରେ ଯେ ଧର୍ମକାର୍ଯ୍ୟ କରେ।

ଧର୍ମବାଦ—ପୁଂ.ବି. ଧର୍ମସମ୍ବନ୍ଧୀୟ ତର୍କ।

ଧର୍ମବାଦୀ—ପୁଂ.ବି°.(ଧର୍ମ + ବଦ୍+ଇନ୍) ବିଧର୍ମିକ୍ତା ଯେ ଧର୍ମୋପଦେଶ ଦିଏ, (ସ୍ତ୍ରୀ) ଧର୍ମବାଦିନୀ।

ଧର୍ମବାନ୍—ପୁଂ. ବି°. ( ଧର୍ମ+ବତ୍ ) ଧାର୍ମିକ, (ସ୍ତ୍ରୀ) ଧର୍ମବତୀ।

ଧର୍ମବାସର—ପୁଂ. ବି. ( ମଧ୍ୟ-କ.ଧା ) ବି.ଗ୍ରା; ପୂର୍ଣ୍ଣିମାତିଥି, ଯେଉଁଦିନ ଧର୍ମକାର୍ଯ୍ୟ ଓ ଧର୍ମଚିନ୍ତା ପାଇଁ ନିର୍ଦ୍ଦିଷ୍ଟ।

ଧର୍ମବାହନ—ପୁଂ. ବି. (ବି.ଗ୍ରା) ଶିବ, ମହାଦେବ, (ଧର୍ମ+ବହ+ଣିଚ୍+ଭା.ଅନ) ଧର୍ମପ୍ରାପଣ,ଧର୍ମପ୍ରାପ୍ତି,ଧର୍ମଲାଭ, (ବି-୬ତତ୍) ମହିଷ।

ଧର୍ମବାହ୍ୟ—ବି. ବି°. ବିଧିବହିର୍ଭୂତ, ଧର୍ମବହିର୍ଭୂତ।

ଧର୍ମବିଚାର—ବି. (ଧର୍ମ + ବିଚାର) ନ୍ୟାୟବିଚାର, ନ୍ୟାୟ, ଧର୍ମସମ୍ବନ୍ଧେ ଚିନ୍ତନ, ଦୋଷୀର ଦୋଷ ବିଚାର।

ଧର୍ମବିଜ୍ଞାନ—ବି.(ଧର୍ମ+ବିଜ୍ଞାନ) ଅଧ୍ୟାତ୍ମବିଦ୍ୟା, ନୀତିଜ୍ଞାନ ଉପଦେଶକ ଶାସ୍ତ୍ର, ସ୍ମୃତିଶାସ୍ତ୍ର, ଆଇନ୍।

ଧର୍ମବିତ୍—ବି. ବି°. (ଧର୍ମ+ବିଦ୍+କ. କ୍ୱିପ୍) ଧର୍ମଜ୍ଞ, ଧାର୍ମିକ।

ଧର୍ମବିତ୍ତମ—ପୁଂ.ବି. ବିଷ୍ଣୁ, (ବି°) ଧାର୍ମିକମାନଙ୍କ ମଧ୍ୟେ ଶ୍ରେଷ୍ଠ।

ଧର୍ମବିଦ୍—ବି. ବି°. (ଧର୍ମ+ବିଦ୍+କ୍ୱିପ୍) ଧର୍ମଜ୍ଞ।

ଧର୍ମବିଦୁତ୍ତମ—ପୁଂ. ବି. ବିଷ୍ଣୁ।

ଧର୍ମବିଦ୍ୟା—ସ୍ତ୍ରୀ.ବି. (ମଧ୍ୟ-କ.ଧା) ମୀମାଂସାଦି ବିଦ୍ୟା, ତତ୍ତ୍ୱବିଦ୍ୟା, (ପୁଂ) ଧର୍ମବିଦ୍ୟକ, ଧର୍ମଶାସ୍ତ୍ରବେତ୍ତା।

ଧର୍ମବିଧି—ବି. ( ଧର୍ମ + ବିଧି ) ଧର୍ମ ବା ଆଇନ୍ ସମ୍ବନ୍ଧୀୟ ନିୟମ ବା ବିଧାନ।

ଧର୍ମବିପ୍ଳବ—ପୁଂ.ବି. (୬ତତ୍) ଧର୍ମଲୋପ, ଅନୀତି, ଧର୍ମସମ୍ବନ୍ଧୀୟ ସମାଜରେ ଆନ୍ଦୋଳନ।

ଧର୍ମବିବର୍ଦ୍ଧନ—ପୁଂ. ବି. ଧର୍ମାଚରଣ।

ଧର୍ମବିବେକ—ପୁଂ. ବି. ହଲାୟୁଧ କୃତ ନିବନ୍ଧ ଗ୍ରନ୍ଥଭେଦ।

ଧର୍ମବିବେଚନ—କ୍ଲୀ. ବି. (୬ତତ୍) ଧର୍ମ-

ନିର୍ଣ୍ଣୟ, ଧର୍ମାଧର୍ମ ବିଷୟକ ବିଚାର ।

ଧର୍ମଭାର—ପୁଂ. ବି. (୬ତତ୍) ଧର୍ମରକ୍ଷାର୍ଥ ସାହସୀ, ଫାରରପୋକ୍ତ ଭାରବିଶେଷ ।

ଧର୍ମବୁଦ୍ଧି—ସ୍ତ୍ରୀ. ବି. (୬ତତ୍) ଧର୍ମଜ୍ଞାନ, ହିତାହିତ ଜ୍ଞାନ, (୭ତତ୍) ଧର୍ମରେ ମତି ବା ପ୍ରବୃତ୍ତି, (ବିଂ-ବ.ବ୍ରୀ) ଧାର୍ମିକ, ଧର୍ମମତି, ଧର୍ମପ୍ରବଣ ।

ଧର୍ମବୃଦ୍ଧ—ପୁଂ. ବିଂ. (୭ତତ୍) ଧର୍ମାନୁଷ୍ଠାନରେ ପ୍ରବୀଣ, ସାଧୁଶୟ ଧର୍ମପରାୟଣ, (ସ୍ତ୍ରୀ) ଧର୍ମବୃଦ୍ଧା, (ପୁଂ. ବି) ଯାଦବ ଅକ୍ରୂରଙ୍କ ଭାଇ ।

ଧର୍ମବୈତଂସିକ—ପୁଂ.ବିଂ. ଯେ ଅନ୍ୟାୟ ରୂପେ ଧନ ଅର୍ଜନ କରି ନିଜକୁ ଧାର୍ମିକ ବୋଲି ସଂସାରରେ ଜଣାଇବା ପାଇଁ ଦାନଆଦି କରେ, (ସ୍ତ୍ରୀ) ଧର୍ମବୈତଂସିକା

ଧର୍ମବୋକା—ଗ୍ରା. ବି. ଧର୍ମର ଗୂଢ଼ମର୍ମ ନ ବୁଝି ଯେ ଅନ୍ଧବିଶ୍ୱାସରେ ଧର୍ମକର୍ମ କରେ ।

ଧର୍ମବ୍ୟାଧ—ପୁଂ. ବି. (ମଧ୍ୟ-କ.ଧା) ଜଣେ ଧାର୍ମିକ ବ୍ୟାଧ ।

ଧର୍ମବ୍ରତ—ପୁଂ. ବିଂ. (ବ.ବ୍ରୀ) ଧର୍ମାନୁଷ୍ଠାନରେ ରତ, (ବି-୬ତତ୍) ଧର୍ମର ଅନୁଷ୍ଠାନ, (ସ୍ତ୍ରୀ) ଧର୍ମବ୍ରତା ।

ଧର୍ମବ୍ରତା—ସ୍ତ୍ରୀ. ବିଂ. (ଧର୍ମବ୍ରତ + ଆ) ଧର୍ମବ୍ରତର ସ୍ତ୍ରୀଲିଙ୍ଗ, (ବି) ଧର୍ମ ନାମକ ଏକ ରାଜାଙ୍କ ଔରସେ ବିଶ୍ୱରୂପାଙ୍କ ଗର୍ଭରୁ ଉତ୍ପନ୍ନା ମରୀଚିଙ୍କ ପତ୍ନୀ ।

ଧର୍ମଭଉଣୀ—ଗ୍ରା. ସ୍ତ୍ରୀ. ବି. ମହାପ୍ରସାଦ ସମ୍ପର୍କରେ ଭଉଣୀ ।

ଧର୍ମଭଗିନୀ—ସ୍ତ୍ରୀ.ବି.ଗୁରୁକନ୍ୟା, (ଗ୍ରା.ବି) ଧର୍ମଭଉଣୀ ।

ଧର୍ମଭଙ୍ଗ—ବି. (୬ତତ୍) ଧର୍ମକାର୍ଯ୍ୟ ବନ୍ଦହେବା, ଧର୍ମଲୋପ ।

ଧର୍ମଭୟ—କ୍ଲୀ.ବି. (୬ତତ୍) ଈଶ୍ୱରଭୟ, ଧର୍ମହାନିର ଭୟ ।

ଧର୍ମଭାଇ—ଗ୍ରା. ବି. ସମଧର୍ମୀ, ମହାପ୍ରସାଦ ସମ୍ପର୍କରେ ଭାଇ, ସହାଧ୍ୟାୟୀ ।

ଧର୍ମଭାଣକ—ପୁଂ. ବି. (ଧର୍ମ+ଭଣ୍+କ. ଅକ) ଧର୍ମଧ୍ୱଜୀ ବ୍ୟକ୍ତି, ପାଷଣ୍ଡ, ପୁରାଣ ପାଠକରି ଅର୍ଥ ଉପାର୍ଜନକାରୀ ।

ଧର୍ମଭିକ୍ଷା—ସ୍ତ୍ରୀ.ବି.(୬ତତ୍) ଧର୍ମରକ୍ଷାର୍ଥ ଯାଚ୍ଞା ବା ପ୍ରାର୍ଥନା ।

ଧର୍ମଭିକ୍ଷୁକ—ପୁଂ. ବି. (୪ତତ୍) ମନୂକ୍ତ ନବବିଧ ଧର୍ମାର୍ଥ ଭିକ୍ଷାଶୀଳ ।

ଧର୍ମଭୀତ—ପୁଂ. ବିଂ. (ଧର୍ମ+ଭୀତ) ବିବେକବାନ୍, ପରମଧାର୍ମିକ, ଧର୍ମଭୀରୁ. (ସ୍ତ୍ରୀ) ଧର୍ମଭୀତା ।

ଧର୍ମଭୀରୁ—ପୁଂ. ବିଂ. (୬ତତ୍) ଧର୍ମଭୟଯୁକ୍ତ, ଧର୍ମଭୀତ ।

ଧର୍ମଭୃତ୍—ବିଂ. (ଧର୍ମ+ଭୃ+କ.କ୍ୱିପ୍) ଧର୍ମଗୃହୀ, ଧାର୍ମିକ, ଧର୍ମଶୀଳ, ଧର୍ମଧାରକ ।

ଧର୍ମଭୃତ—ତ୍ରି. ବିଂ. ରକ୍ଷିତଧର୍ମକ, ଯେ ଧର୍ମକୁ ରକ୍ଷାକରେ, (ପୁଂ) ତ୍ରୟୋଦଶ ମନୁପୁତ୍ରବିଶେଷ ।

ଧର୍ମଭ୍ରଷ୍ଟ—ତ୍ରି.ବିଂ. (୫ତତ୍) ଧର୍ମଚ୍ୟୁତ, (ସ୍ତ୍ରୀ) ଧର୍ମଭ୍ରଷ୍ଟା ।

ଧର୍ମଭ୍ରାତା—ପୁଂ. ବି. (ମଧ୍ୟ-କ.ଧା) ଏକ ଧର୍ମାବଲମ୍ବନ ହେତୁ ପରସ୍ପର ଭ୍ରାତୃଭାବାପନ୍ନ, ଧର୍ମଭାଇ, ଗୁରୁପୁତ୍ରାଦି ।

ଧର୍ମମତି—ପୁଂ. ବି. ଧର୍ମମନା, ଧାର୍ମିକ, ଦେବବିଶେଷ, ବୋଧିବୃକ୍ଷବିଶେଷ ।

ଧର୍ମମନ୍ଦିର—କ୍ଲୀ. ବି. (କ.ଧା) ଧର୍ମାନୁଷ୍ଠାନାର୍ଥ ଗୃହ, ଦେବାଳୟ ପ୍ରଭୃତି ।

ଧର୍ମମୟ—ତ୍ରି.ବିଂ. (ଧର୍ମ+ପ୍ରାଚୁର୍ଯ୍ୟାର୍ଥେ-ମୟ) ଧାର୍ମିକ, ନୈଷ୍ଠିକ, ଧର୍ମସମ୍ମତ କର୍ମରେ ପୂର୍ଣ୍ଣଜୀବନ, (ସ୍ତ୍ରୀ) ଧର୍ମମୟୀ ।

ଧର୍ମମହାପାତ୍ର—ପୁଂ. ବି. ଧର୍ମବିଷୟକ ମନ୍ତ୍ରୀ ।

ଧର୍ମମା—ବି. ଧର୍ମସାକ୍ଷୀକରି ସ୍ୱୀକୃତା ମାତା, ମହାପ୍ରସାଦ ସମ୍ବନ୍ଧରେ ମାତା ।

ଧର୍ମମିଆ—ଗ୍ରା ବି. (ସଂ-ଧର୍ମମାତା) ଧର୍ମମାତା ଦେଖ, ପୋଷିଆଁମା ।

ଧର୍ମମାଣ୍ଡୁ—ଗ୍ରା.ବି. ବିନାପ୍ରମାଣରେ ହଲପ ଦ୍ୱାରା କୌଣସି ବ୍ୟକ୍ତିର ବିଚାରପଦ୍ଧତି, ସାକ୍ଷ୍ୟପ୍ରମାଣ ଗ୍ରହଣ ନ କରି (ଫୁଟିଲା ତେଲାଦି ଦ୍ୱାରା) ସନ୍ଦେହୀ ବ୍ୟକ୍ତିର ପରୀକ୍ଷା ।

ଧର୍ମମାତା—ସ୍ତ୍ରୀ. ବି. (ଧର୍ମ+ମାତୃ) ଧର୍ମତଃ ଆପଣାର ମାତୃସ୍ଥାନୀୟା ସ୍ତ୍ରୀ ।

ଧର୍ମମାର୍ଗ—ବି. (୬ତତ୍) ସନ୍ମାର୍ଗ, ଧର୍ମପଥ ।

ଧର୍ମମିତ୍ର—ପୁଂ. ବି. ଏକବୌଦ୍ଧାଚାର୍ଯ୍ୟ ।

ଧର୍ମମୂଳ—କ୍ଲୀ. ବି. (୬ତତ୍) ଧର୍ମରହେତୁ, ଧର୍ମର ପ୍ରମାଣ, (ବିଂ-ବ.ବ୍ରୀ) ଯେଉଁ କାର୍ଯ୍ୟର ମୂଳରେ ଧର୍ମ ନିହିତ ଅଛି ।

ଧର୍ମମେଘ—ବି. ଯୋଗରେ ଅସଂପ୍ରଜ୍ଞାତ ସମାଧିର ଅନ୍ତର୍ଗତ ଏକ ସମାଧି ।

ଧର୍ମଯାଜକ—ବି. ପୁରୋହିତ, ପାଦ୍ରୀ ।

ଧର୍ମଯୁ—ତ୍ରି.ବିଂ.ଧାର୍ମିକ, ଧର୍ମବିଶିଷ୍ଟ ।

ଧର୍ମଯୁଗ—କ୍ଲୀ. ବି. (ମଧ୍ୟ-କ.ଧା) ସତ୍ୟଯୁଗ, ଧର୍ମପ୍ରଧାନ ଯୁଗ ।

ଧର୍ମଯୁଜ୍—ତ୍ରି. ବିଂ. (ଧର୍ମ+ଯୁଜ୍+କ୍ୱିପ୍) ଧର୍ମଯୁକ୍ତ, (କ୍ଲୀ) ନ୍ୟାୟାର୍ଜିତ ଦ୍ରବ୍ୟ ।

ଧର୍ମଯୁଦ୍ଧ--କ୍ଲୀ.ବି.(୪ତତ୍-ମଧ୍ୟ ବା କ.ଧା) ନ୍ୟାୟାନୁସାରେ ସମ୍ପାଦିତ ଯୁଦ୍ଧ ।

ଧର୍ମରକ୍ଷକ—ବି. (୬ତତ୍) ଯେ ସ୍ୱଧର୍ମକୁ ରକ୍ଷାକରେ, ରାଜା, ଜିନ, ଜୈନ ସାଧୁ ।

ଧର୍ମରକ୍ଷା—ସ୍ତ୍ରୀ.ବି. (୬ତତ୍) ସ୍ତ୍ରୀର ସତୀତ୍ୱରକ୍ଷା, ସ୍ୱଧର୍ମର ପ୍ରତିଷ୍ଠାକୁ ରକ୍ଷାକରିବା ।

ଧର୍ମରକ୍ଷିତ—ବି.ଯୋଗ(ଯବନ)ଦେଶୀୟ ଏକ ବୌଦ୍ଧଧର୍ମୋପଦେଶକ, ଯୋନଦେଶୀୟ ଜଣେ ସ୍ଥବିର ।

ଧର୍ମରତ୍ନ—କ୍ଲୀ. ବି. ଜୀମୂତବାହନ କୃତ ସ୍ମୃତିନିବନ୍ଧ ଭେଦ ।

ଧର୍ମରଥ—ପୁଂ. ବି. ସଗରନୃପଙ୍କ ପୁତ୍ର ବିଶେଷ, ଅନୁବଂଶୀୟ ଦିବିରଥଙ୍କ ପୁତ୍ର ଭେଦ ।

ଧର୍ମରାଜ—ପୁଂ. ବି. (୬ତତ୍) ସମ୍ରାଟ୍, ରାଜା, ଯମ, ଯୁଧିଷ୍ଠିର, ଜିନ୍, ବୁଦ୍ଧ, (ବିଂ) ଧର୍ମପ୍ରଧାନ ।

ଧର୍ମରାଜନ—ଗ୍ରା. ବି. (ସଂ-ଧର୍ମରାଜ) ଧର୍ମରାଜ ଦେଖ । [ପରୀକ୍ଷା ।

ଧର୍ମରାଜପରୀକ୍ଷା—ସ୍ତ୍ରୀ. ବି. ଧର୍ମ ଓ ଅଧର୍ମ

ଧର୍ମରାଜା—ଗ୍ରା. ବି. ( ସଂ-ଧର୍ମରାଜ ) ଧର୍ମରାଜ ଦେଖ ।

ଧର୍ମରାଜାଧ୍ୱରୀନ୍ଦ୍ର—ଏହାଙ୍କ ଉପାଧିଦୀକ୍ଷିତ ଜଣେ ଭାଷ୍ୟକାର ।

ଧର୍ମରାଜିକା—ସ୍ତ୍ରୀ. ବି. ରାଜବିଧିର ଉପର ରାଜପ୍ରଶସ୍ତି ।

ଧର୍ମରାତୃ—ତ୍ରି. ବିଂ. ଧର୍ମଦାତା, ( ସ୍ତ୍ରୀ ) ଅପ୍, ଜଳ ।

ଧର୍ମରୁଚି—ବୋଧିବୃକ୍ଷାଧିଷ୍ଠାତା ଦେବତା ବିଶେଷ ।

ଧର୍ମଲକ୍ଷଣ—କ୍ଲୀ.ବି. (୬ତତ୍) ହିନ୍ଦୁଶାସ୍ତ୍ର-ବର୍ଣ୍ଣିତ ଧର୍ମର ଦଶବିଧ ଚିହ୍ନ, ଯଥା:—ଧୃତି, କ୍ଷମା, ଦମ, ଶୌଚ, ଅସ୍ତେୟ, ଇନ୍ଦ୍ରିୟନିଗ୍ରହ, ଧୀ, ବିଦ୍ୟା, ସତ୍ୟ, ଅକ୍ରୋଧ ।

ଧର୍ମଲୋପ—ବି. (୬ତତ୍) ଧର୍ମର ଅସ୍ତିତ୍ୱ ବିନାଶ, ଧର୍ମ ବୁଡ଼ିଯିବା, ଧର୍ମନାଶ ।

ଧର୍ମଶଙ୍କା—ଗ୍ରା. ବିଂ. ଧର୍ମବିଷୟରେ ସଂଶୟାତ୍ମା ।

ଧର୍ମଶରୀର—କ୍ଲୀ. ବି. ଧର୍ମଚିହ୍ନ, କ୍ଷୁଦ୍ରକ୍ଷୁଦ୍ର ବୌଦ୍ଧସ୍ତୂପ ।

ଧର୍ମଶାଳା—ସ୍ତ୍ରୀ. ବି. (ମଧ୍ୟ-କ.ଧା) ୬ତତ୍; ଅତିଥିଶାଳା, ପାନ୍ଥଶାଳା, ଧର୍ମାଧିକରଣ, ବିଚାରାଳୟ, ଦାତବ୍ୟ ଚିକିତ୍ସାଳୟ, ଛତ୍ର, ଚତ୍ତର ।

ଧର୍ମଶାଳା—କଟକଠାରୁ ୧୫ କୋଶ ଦୂରରେ ଏହି ଗ୍ରାମ ଅବସ୍ଥିତ ।

ଧର୍ମଶାସନ—କ୍ଲୀ. ବି. (ଧର୍ମ+ଶାସନ) ମଧ୍ୟ-କ.ଧା; ଧର୍ମଶାସ୍ତ୍ର, (୬ତତ୍) ଧର୍ମର ଅନୁଶାସନ ବିଧି ।

ଧର୍ମଶାସ୍ତ୍ର—କ୍ଲୀ. ବି. ( ୬ତତ୍—ମଧ୍ୟ-କ.ଧା) ଧର୍ମବିଷୟକଶାସ୍ତ୍ର, ସ୍ମୃତିଶାସ୍ତ୍ର, ପୁରାଣଶାସ୍ତ୍ର, ବେଦାନ୍ତଦର୍ଶନାଦି ।

ଧର୍ମଶାସ୍ତ୍ରକାର—ପୁଂ. ବିଂ. ବି. (ଧର୍ମଶାସ୍ତ୍ର +କୃ+କ.ଅ) ଧର୍ମଶାସ୍ତ୍ରପ୍ରଣେତା ଋଷିଗଣ ।

ଧର୍ମଶାସ୍ତ୍ରବ୍ୟବସାୟୀ—ପୁଂ. ବିଂ.(୬ତତ୍) ଧର୍ମଶାସ୍ତ୍ର ଅନୁଗତ ବ୍ୟବସ୍ଥାଦାତା, ସ୍ମାର୍ତ୍ତ ।

ଧର୍ମଶାସ୍ତ୍ରୀ—ପୁଂ. ( ଧର୍ମଶାସ୍ତ୍ର+ଇନ୍ ) ଧର୍ମଶାସ୍ତ୍ର ବିଷୟରେ ବିଜ୍ଞ ଓ ବ୍ୟବସ୍ଥାଦାତା ।

ଧର୍ମଶିକ୍ଷା—ବି. ଧର୍ମବିଷୟକ ଶିକ୍ଷା ।

ଧର୍ମଶୀଳ—ପୁଂ. ବିଂ. (ବ.ବ୍ରୀ) ଧାର୍ମିକ, ନ୍ୟାୟପର, ବି. ଧର୍ମଶୀଳତା, (ସ୍ତ୍ରୀ.) ଧର୍ମଶୀଳା ।

ଧର୍ମଶ୍ରେଷ୍ଠିନ୍—ପୁଂ.ବି. ଜନୈକ ବୌଦ୍ଧ ଅର୍ହତ ।

ଧର୍ମସଂଶ୍ରିତ—ପୁଂ.ବିଂ.ଧର୍ମତତ୍ତ୍ୱପିପାସୁ ।

ଧର୍ମସଂହିତା—ସ୍ତ୍ରୀ. ବି. (ମଧ୍ୟ-କ.ଧା) ଧର୍ମପୁସ୍ତକ, ସ୍ମୃତିଶାସ୍ତ୍ର, ଧର୍ମସମ୍ବନ୍ଧୀୟ ଗ୍ରନ୍ଥ ।

ଧର୍ମସଂସ୍କାର—ପୁଂ. ବି. (୬ତତ୍) ଦେଶ ବିଦେଶ ପ୍ରଚଳିତ ଧର୍ମର ଦୋଷାଦି ସଂଶୋଧନ ଓ ଧର୍ମ ପ୍ରଣାଳୀର ଉନ୍ନତ ବିଧାନ ।

ଧର୍ମସଂସ୍କାରକ—ପୁଂ. ବିଂ. ( ୬ତତ୍ ) ଦେଶ ପ୍ରଚଳିତ ଧର୍ମର ସଂଶୋଧକ ଓ ଉନ୍ନତ ବିଧାୟକ ।

ଧର୍ମସଙ୍କର—ପୁଂ. ବି. (୬ତତ୍) ପରସ୍ପର ବିରୁଦ୍ଧ ଧର୍ମର ଏକତ୍ର ମିଳନ ।

ଧର୍ମସଙ୍ଗତ—ତ୍ରି. ବିଂ. (୩ତତ୍) ଧର୍ମାନୁମୋଦିତ, ନ୍ୟାୟାନୁମୋଦିତ, ଆଇନସଙ୍ଗତ, (ସ୍ତ୍ରୀ) ଧର୍ମସଙ୍ଗତା ।

ଧର୍ମସଭା—ସ୍ତ୍ରୀ. ବି. (ମଧ୍ୟ-କ.ଧା) ଧର୍ମାଧିକରଣ, ଧର୍ମସମାଜ, ବିଚାରାଳୟ ।

ଧର୍ମସମ୍ମତ—ତ୍ରି. ବିଂ. (୩ତତ୍) ଧର୍ମାନୁମୋଦିତ. ଧର୍ମସଙ୍ଗତ ।

ଧର୍ମସହାୟ—ପୁଂ. ବି. ଧର୍ମକାର୍ଯ୍ୟର ସାହାଯ୍ୟକାରୀ ଋତ୍ୱିକାଦି ।

ଧର୍ମସହିବା—ଗ୍ରା. ବି. କୌଣସି ବ୍ୟକ୍ତିର କ୍ରିୟାକଳାପର ଧର୍ମଦେବତା ବା ଈଶ୍ୱରଙ୍କ ଦ୍ୱାରା ଅନୁମୋଦନ ।

ଧର୍ମସାକ୍ଷୀ—ପୁଂ. ବି. ଧର୍ମସଙ୍ଗତ ଅନୁଷ୍ଠାନ ପୂର୍ବକ ପ୍ରତିଜ୍ଞା ଗ୍ରହଣ ।

ଧର୍ମସାଧନ—ବି.(୬ତତ୍) ଧର୍ମାଚରଣ ।

ଧର୍ମସାର—ପୁଂ. ବି. ଶ୍ରେଷ୍ଠ ପୁଣ୍ୟକର୍ମ, ଉତ୍ତମ ଧନ ।

ଧର୍ମସାରଥି—ପୁଂ.ବି.ଧର୍ମସଙ୍ଘ, ସହାୟକ

ଧର୍ମସାବର୍ଣ୍ଣି—ପୁଂ. ବି. ଏକାଦଶମନୁ ।

ଧର୍ମସିଂହ—ପୁଂ. ବି. ରୈହାନରାଜ ହାମ୍ମିରଙ୍କ ପ୍ରଧାନ ସେନାପତି ।

ଧର୍ମସୁତ—ପୁଂ. ବି. (୬ତତ୍) ଧର୍ମପୁତ୍ର, ଦେଖ ।

ଧର୍ମସୂ—ସ୍ତ୍ରୀ. ବି. ( ଧର୍ମ+ସୂ+କ୍ୱିପ୍ ) ଧୂମ୍ୟାଟପକ୍ଷୀ, (ବିଂ) ଧର୍ମପ୍ରେରକ ।

ଧର୍ମସୂତ୍ର—କ୍ଲୀ. ବି. ଜୈମିନି ପ୍ରଣୀତ ଧର୍ମନିର୍ଣ୍ଣାୟକ ଗ୍ରନ୍ଥବିଶେଷ ।

ଧର୍ମସୂରି—ଜଣେ ଅଳଙ୍କାର ଶାସ୍ତ୍ରକାର ।

ଧର୍ମସେତୁ—ପୁଂ.ବି. ଧର୍ମରକ୍ଷକ, ଏକାଦଶ ମନ୍ୱନ୍ତରରେ ଆର୍ଯ୍ୟକଙ୍କ ପୁତ୍ର ।

ଧର୍ମସେନ—ଜଣେ ମହାସ୍ଥବିର, ଜୈନଯୁଗ ପ୍ରଧାନମାନଙ୍କର ଏକତମ, ଜୈନମାନଙ୍କର ଦ୍ୱାଦଶାଙ୍ଗବିଦର ଏକତମ ।

ଧର୍ମସେନଗଣିମହତ୍ତର—ଜଣେ ଜୈନ ଗ୍ରନ୍ଥକାର ।

ଧର୍ମସ୍କନ୍ଧ—ପୁଂ. ବି. ଅର୍ହତ ମତସିଦ୍ଧ ଧର୍ମାସ୍ତିକାୟ ପଦାର୍ଥ ।

ଧର୍ମସ୍ଥ—ପୁଂ. ବି. ( ଧର୍ମ+ସ୍ଥା+ଅ ) ପ୍ରାଡ୍‌ବିବାକ, ବିଚାରକ, (ବିଂ) ଧର୍ମେ ଅବସ୍ଥିତ ମାତ୍ର ।

ଧର୍ମସ୍ଥଳ—କ୍ଲୀ. ବି. ଧର୍ମସ୍ଥାନ ।

ଧର୍ମସ୍ଥବିର—ପୁଂ. ବି. ଧର୍ମେ ଦୃଢ଼ଚିତ୍ତ, ଧର୍ମବୃଦ୍ଧ ।

ଧର୍ମସ୍ୱାମୀ—ପୁଂ.ବି.ବୁଦ୍ଧଙ୍କର ନାମାନ୍ତର, କାଶ୍ମୀରରାଜ ଧର୍ମକର୍ତ୍ତୃକ ପ୍ରତିଷ୍ଠିତ ଦେବତା ।

ଧର୍ମହାଟ—ଗ୍ରା. ବି. ଧର୍ମଘଟ ଦେଖ ।

ଧର୍ମହନ୍ତା—ପୁଂ. ବିଂ. ଧର୍ମକର୍ମର ବିରୋଧକ ।

ଧର୍ମହା—ନଦୀ ବିଶେଷ ।

ଧର୍ମହାନି—ସ୍ତ୍ରୀ. ବି. (୬ତତ୍) ଧର୍ମଲୋପ, ଧର୍ମକ୍ଷୟ ।

ଧର୍ମହୀନ—ପୁଂ. ବିଂ. (୩ତତ୍) ଅଧାର୍ମିକ, ପୁଣ୍ୟରହିତ, (ସ୍ତ୍ରୀ) ଧର୍ମହୀନା ।

ଧର୍ମାକର—ପୁଂ. ବି. ବୁଦ୍ଧଲୋକେଶ୍ୱର ରାଜାଙ୍କର ଜନୈକ ଶିଷ୍ୟ ।

ଧର୍ମାଗମ—ପୁଂ. ବି. ଧର୍ମଶାସ୍ତ୍ର ।

ଧର୍ମାଙ୍ଗ—ବି.ସ୍ତ୍ରୀ.ପୁଂ.(ବ.ବ୍ରୀ) ବକ, ବକପକ୍ଷୀ ।

ଧର୍ମାଙ୍ଗଜ—ପୁଂ. ବ. ଡ୍ରିପୂଙ୍କର ନାମକ ରାଜପୁତ୍ର ।

ଧର୍ମାଚରଣ—କ୍ଲୀ.ବ. (୬ତତ୍) ଧର୍ମାନୁଷ୍ଠାନ, ଧର୍ମଚର୍ଯ୍ୟା,(ମଧ୍ୟ+କ.ଧା)ଧର୍ମସଙ୍ଗତ ବ୍ୟବହାର ।

ଧର୍ମାଚାର୍ଯ୍ୟ—ପୁଂ.ବ. (୭ମୀତତ୍) ଧର୍ମୋପଦେଶକ, ଧର୍ମଗୁରୁ, ଋଗ୍‌ବେଦୀୟ ତର୍ପଣୀୟ ପୁରୁଷ(ଋଷି)ବିଶେଷ କୌଣସି ଧର୍ମମତର ପ୍ରବର୍ତ୍ତକ, କୌଣସି ଧର୍ମମତର ପ୍ରଚାରକ ।

ଧର୍ମାତ୍ମା--ପୁଂ.ବିଂ.(ବ.ବ୍ରୀ)ଧାର୍ମିକ,ପୁଣ୍ୟାତ୍ମା. ଧର୍ମପ୍ରାଣ ।

ଧର୍ମାଦିତ୍ୟ—କଳିଙ୍ଗରାଜ ପ୍ରଥମ ଶୀଳାଦିତ୍ୟଙ୍କର ନାମାନ୍ତର, ବଙ୍ଗର ଜଣେ ରାଜା ।

ଧର୍ମାଧର୍ମ—ପୁଂ. ବ. ( ଦ୍ୱନ୍ଦ୍ୱ ) ପୁଣ୍ୟ ଓ ପାପ, ନ୍ୟାୟ ଓ ଅନ୍ୟାୟ, ସତ୍‌କର୍ମ ଓ ଅସତ୍‌କର୍ମ ।

ଧର୍ମାଧର୍ମପରୀକ୍ଷଣ—କ୍ଲୀ. ବ. ରାଜାମାନଙ୍କର ବିଚାରସ୍ଥାନ ।

ଧର୍ମାଧିକରଣ—କ୍ଲୀ. ବ. (୬ତତ୍) ଅଦାଲତ, ବିଚାରାଳୟ, (ଧର୍ମ+ଅଧି+କୃ+ର୍ମ.ଅନ) ବିଚାରକ, ଜଜ୍, (ବିଂ—ବ.ବ୍ରୀ) ଧର୍ମଶାସ୍ତ୍ରଜ୍ଞ ।

ଧର୍ମାଧିକରଣିକ—ପୁଂ.ବ. (ଧର୍ମାଧିକରଣ+ଇକ) ବିଚାରକ, ବିଚାରପତି ।

ଧର୍ମାଧିକାର—ପୁଂ.ବ.(୬ତତ୍)ଧର୍ମ,ଧର୍ମ ବିଚାର କରିବାର କ୍ଷମତା, ଆଇନ ସମ୍ବନ୍ଧେ ବିଚାରଣା,ବିଚାରପତିଙ୍କ ପଦ ।

ଧର୍ମାଧିକାରୀ —ପୁଂ. ବ. ବିଂ. ( ୬ତତ୍ ) ବିଚାରପତି, ଦାନାଧ୍ୟକ୍ଷ,(ସ୍ତ୍ରୀ) ଧର୍ମାଧିକାରିଣୀ ।

ଧର୍ମାଧିପତି—ପୁଂ.ବ.ପ୍ରଧାନ ବିଚାରପତି, ପ୍ରଧାନ ବ୍ୟବସ୍ଥାପକ ।

ଧର୍ମାଧିଷ୍ଠାନ—କ୍ଲୀ. ବ. ଧର୍ମାଧିକରଣ, ବିଚାରାଳୟ ।

ଧର୍ମାଧ୍ୟକ୍ଷ—ପୁଂ.ବ. (୬ତତ୍) ବିଚାରପତି, ଦୀକ୍ଷାଗୁରୁ, ପ୍ରଧାନ ବିଚାରପତି. ପ୍ରାଡ୍‌ବିବେକ, ବିଷ୍ଣୁ, ଶିବ ।

ଧର୍ମାଧ୍ୱ —ପୁଂ. ବ. ଧର୍ମପଥ, ନ୍ୟାୟପଥ, ବିଚାରପ୍ରଣାଳୀ ।

ଧର୍ମାନୁଗତ—ବିଂ.(୬ତତ୍)ଧର୍ମସଙ୍ଗତ, (ପୁଂ)ଧର୍ମାବଲମ୍ବୀ(ସ୍ତ୍ରୀ)ଧର୍ମାନୁଗତା ।

ଧର୍ମାନୁମୋଦିତ—ବି. ବିଂ. ( ୩ତତ୍ ) ଧର୍ମସମ୍ମତ, ଧର୍ମସଙ୍ଗତ ।

ଧର୍ମାନୁଯାୟୀ—ବି. ବିଂ. ଧର୍ମପଥାବଲମ୍ବୀ, ଯେ ଧର୍ମପଥ ଅନୁସାରେ ଚଳେ ।

ଧର୍ମାନୁଷ୍ଠାନ—ବ.(୬ତତ୍) ଧର୍ମକାର୍ଯ୍ୟ, ଧର୍ମାଚରଣ,ଯେଉଁ ସ୍ଥାନରେ ଧର୍ମକାର୍ଯ୍ୟ କରାଯାଏ ।

ଧର୍ମାନ୍ତର—କ୍ଲୀ.ବ. (ନିତ୍ୟ—କ.ଧା ) ଅନ୍ୟଧର୍ମ ।

ଧର୍ମାନ୍ଧ—ପୁଂ. ବିଂ. (୩ତତ୍) ଯେ ନିଜ ଧର୍ମରେ ଦୃଢ଼ତର ବା ଅନ୍ଧବିଶ୍ୱାସ ରଖି ଧର୍ମାନ୍ତରର ଉତ୍କୃଷ୍ଟ ବିଷୟକୁ ନିକୃଷ୍ଟ ବୋଲି ଜ୍ଞାନକରେ ।

ଧର୍ମାବତାର—ପୁଂ. ବ. (୬ତତ୍) ମୂର୍ତ୍ତିମାନ୍ ଧର୍ମଦେବତା, ସାକ୍ଷାତ ଈଶ୍ୱର, ମୂର୍ତ୍ତିଧାରୀ ନ୍ୟାୟ, ନ୍ୟାୟବିଚାରକ, ନ୍ୟାୟାଧୀଶ, ଧର୍ମାଧିକାରୀ, ଯୁଧିଷ୍ଠିର, (ଗ୍ରା.ଅବ୍ୟ) ହେ ମୂର୍ତ୍ତିମାନ୍ ଧର୍ମ,ହଜୁର

ଧର୍ମାବଲମ୍ବୀ—ପୁଂ.ବିଂ. (ଧର୍ମ+ଅବ+ଲନ୍ବ+କ. ଇନ୍) ଧର୍ମାଶ୍ରିତ,ଧର୍ମଗ୍ରହଣକାରୀ,(ସ୍ତ୍ରୀ)ଧର୍ମାବଲମ୍ବିନୀ ।

ଧର୍ମାଭାସ—ପୁଂ.ବ.(୬ତତ୍)ଅପ୍ରଶସ୍ତଧର୍ମ, ଅପ୍ରକୃତ ଧର୍ମ,ଶ୍ରୁତି ସ୍ମୃତି ଭିନ୍ନ ଧର୍ମଶାସ୍ତ୍ର ।

ଧର୍ମାଭିଷେକ—ସ୍ତ୍ରୀ. ବ. ଶାସ୍ତ୍ରଗତ ଅଭିଷେକାଦି ।

ଧର୍ମାୟତନ—କ୍ଲୀ.ବ.ଧର୍ମର ମାନସଜ୍ଞାନ ।

ଧର୍ମାରଣ୍ୟ—କ୍ଲୀ. ବ. ( ମଧ୍ୟ+କ.ଧା ) ତପୋବନ,ତୀର୍ଥରୂପେ ଗଣିତ ଅରଣ୍ୟ, ଗୟାସ୍ଥ ତୀର୍ଥବିଶେଷ,କାମରୂପସ୍ଥନଗରବିଶେଷ, କୂର୍ମବିଭାଗୋକ୍ତ ମଧ୍ୟଭାଗର ଦେଶଭେଦ ।

ଧର୍ମାର୍ଥ—ପୁଂ.ବ. (ଦ୍ୱନ୍ଦ୍ୱ) ଧର୍ମ ଓ ଅର୍ଥ, ଚତୁର୍ବର୍ଗ ମଧ୍ୟରୁ ଦୁଇଟି,(ବିଂ—ବ.ବ୍ରୀ) ଧର୍ମପାଇଁ ପ୍ରୟୋଜନୀୟ, ଧର୍ମମୟ, ଧର୍ମସାଧନ ଯହିଁର ଉଦ୍ଦେଶ୍ୟ ଅଟେ, ପରୋପକାରାର୍ଥ କୃତ, ( ଗ୍ରା.କ୍ରି.ବିଂ ) ଧର୍ମନିମନ୍ତେ, ପୁଣ୍ୟ ଉଦ୍ଦେଶ୍ୟରେ, (ଗ୍ରା.ବ. ଧର୍ମକାର୍ଯ୍ୟ, ଖଇରାତ୍, ଦୟାଯୁକ୍ତ କର୍ମ ।

ଧର୍ମାର୍ଥକାମମୋକ୍ଷ—ବ. (ଦ୍ୱନ୍ଦ୍ୱ) ମନୁଷ୍ୟ ଜୀବନର ଚତୁର୍ବର୍ଗ ବା ସାଧନଚତୁଷ୍ଟୟ ।

ଧର୍ମାର୍ଥେ—ଅବ୍ୟ. (୬ତତ୍) ଧର୍ମପାଇଁ, ଧର୍ମର ନିମିତ୍ତ ।

ଧର୍ମାର୍ଥୀୟ—ବି.ବିଂ. ଧର୍ମସମ୍ପର୍କୀୟ ।

ଧର୍ମାଲୀକ—ପୁଂ.ବ.ଛଦ୍ମବେଶୀ, କପଟାଚାରୀ ।

ଧର୍ମାଲୋକମୁଖ—କ୍ଲୀ. ବ. ବୌଦ୍ଧମତ ଜ୍ଞାନର ଉପକ୍ରମଣ ।

ଧର୍ମାଶୋକ—ପୁଂ.ବ. ରାଜା ଅଶୋକଙ୍କ ନାମାନ୍ତର ।

ଧର୍ମାଶ୍ରିତ—ପୁଂ.ବିଂ.ଧାର୍ମିକ, ଧର୍ମଶୀଳ ।

ଧର୍ମାସନ—କ୍ଲୀ.ବ. (୬ତତ୍) ବିଚାରାସନ, ଇଜଲାସ୍, ବିଚାରକଙ୍କ ପଦ ।

ଧର୍ମାସ୍ତିକାୟ—ପୁଂ.ବ. ଅର୍ହତ ମତସିଦ୍ଧ ଜୀବ ଓ ଅଜୀବ, ଧର୍ମ ଓ ଅଧର୍ମ ଏବଂ ମୁଦ୍‌ଗଲାସ୍ତିକାୟର ମଧ୍ୟେ ପଦାର୍ଥଭେଦ ।

ଧର୍ମିକ—ପୁଂ. ବିଂ. ଧର୍ମଯୁକ୍ତ, ଧାର୍ମିକ, (କ୍ଲୀ) ଧାର୍ମିକ୍ୟ, ତଦ୍ଭାବ ବା କର୍ମ ।

ଧର୍ମିଣୀ—ସ୍ତ୍ରୀ.ବିଂ. (ଧର୍ମନ୍+ଈ)ଧର୍ମୀର ସ୍ତ୍ରୀଲିଙ୍ଗ, (ବ) ପତ୍ନୀ, ଭାର୍ଯ୍ୟା, ରେଣୁକା ଗନ୍ଧଦ୍ରବ୍ୟ ।

ଧର୍ମିଷ୍ଠ—( ଗ୍ରା. ପୁଂ. ସ୍ତ୍ରୀ. ବିଂ. ) ଧର୍ମିଷ୍ଠ ଦେଖ (ସ୍ତ୍ରୀ) ଧର୍ମିଷ୍ଠା ।

ଧର୍ମିଷ୍ଠ—ପୁଂ. ବିଂ. (ଧର୍ମ+ଇଷ୍ଠ) ଅତି ଧାର୍ମିକ, ଧର୍ମନିରତ, (ବ) ଧର୍ମିଷ୍ଠତା, (ବ) ବିଷ୍ଣୁଙ୍କ ନାମ (ସ୍ତ୍ରୀ) ଧର୍ମିଷ୍ଠା ।

ଧର୍ମୀ—ପୁଂ.ବିଂ. (ଧର୍ମ+ଇନ୍)ଧାର୍ମିକ, ପୁଣ୍ୟାତ୍ମା, ଧର୍ମଯୁକ୍ତ, ଅମୁକଗୁଣବିଶିଷ୍ଟ, ଅମୁକ ଧର୍ମମତକୁ ମାନିବା ବାଲା.(ସ୍ତ୍ରୀ) ଧର୍ମିଣୀ,(ବ) ବିଷ୍ଣୁଙ୍କର ନାମ, ଧାର୍ମିକ ବ୍ୟକ୍ତି ।

ଧର୍ମୀପୁତ୍ର—ବି. ନଟ, ନାଟକର ଅଭିନୟ କର୍ତ୍ତା ।
ଧର୍ମୀୟାନ୍—ପୁଂ. ବିଂ. ଅତିଶୟ ଧାର୍ମିକ (ପୁଂ) ବ୍ୟକ୍ତି ।
ଧର୍ମେନ୍ଦ୍ର—ପୁଂ. ବି. (୬ଷ୍ଠୀତତ୍) ଯମ, ଧାର୍ମିକଶ୍ରେଷ୍ଠ, ଧର୍ମରାଜ ।
ଧର୍ମେପ୍ସୁ—ପୁଂ.ବିଂ.ଧର୍ମଲାଭ କରିବାକୁ ଅଭିଳାଷୀ, ଅଭ୍ୟୁଦୟକାମୀ ।
ଧର୍ମେୟୁ—ପୁଂ. ବି. ପୌରବବଂଶୀୟ ରୌଦ୍ରାଶ୍ୱଙ୍କ ପୁତ୍ରବିଶେଷ ।
ଧର୍ମେଶ—ପୁଂ.ବି. (୬ତତ୍) ଯମ ।
ଧର୍ମେଶ୍ୱର—ପୁଂ. ବି. (୬ତତ୍) ଯମ, ଧର୍ମରାଜ,(କ୍ଲୀ)ତୀର୍ଥବିଶେଷ ।
ଧର୍ମୋତ୍ତର—ପୁଂ. ବିଂ. (୭ମୀତତ୍ ବା ବ.ବ୍ରୀ) ଧାର୍ମିକପ୍ରବର, ଧାର୍ମିକଶ୍ରେଷ୍ଠ, (ସ୍ତ୍ରୀ) ଧର୍ମୋତ୍ତରା ।
ଧର୍ମୋତ୍ତରାଚାର୍ଯ୍ୟ—ଏକ ବୌଦ୍ଧ ଆଚାର୍ଯ୍ୟ ଓ ଗ୍ରନ୍ଥକାର ।
ଧର୍ମୋପଦେଶ—ପୁଂ.ବି. (ମଧ୍ୟ+କ.ଧା-ବା ୬ତତ୍) ଧର୍ମସମ୍ବନ୍ଧୀୟ ଶିକ୍ଷା ।
ଧର୍ମୋପଦେଶକ—ପୁଂ.ବିଂ. (୬ତତ୍) ଧର୍ମ ସମ୍ବନ୍ଧେ ଉପଦେଶ ଦାତା, ଗୁରୁ, ଆଇନ୍ ଶିକ୍ଷକ,(ସ୍ତ୍ରୀ)ଧର୍ମୋପଦେଶିକା ।
ଧର୍ମୋପଦେଷ୍ଟା—ପୁଂ. ବିଂ. (୬ତତ୍) ଧର୍ମବିଷୟରେ ଉପଦେଶ ଦାତା, ଗୁରୁ, (ସ୍ତ୍ରୀ) ଧର୍ମୋପଦେଷ୍ଟ୍ରୀ ।
ଧର୍ମୋପାସକ—ପୁଂ.ବିଂ.(୬ତତ୍)ଧର୍ମର ଉପାସନାକାରୀ, ଧର୍ମାବଲମ୍ବୀ ।
ଧର୍ମୋପେତ—ତ୍ରି.ବିଂ.(୭ମୀତତ୍) ଧର୍ମସଙ୍ଗତ, ନ୍ୟାୟସଙ୍ଗତ, (ସ୍ତ୍ରୀ) ଧର୍ମୋପେତା ।
ଧର୍ମୋପଦେଶନା—ସ୍ତ୍ରୀ. ବି. ବ୍ୟବହାରଶାସ୍ତ୍ରୋପଦେଶ ।
ଧର୍ମ୍ୟ—ତ୍ରି. ବିଂ. (ଧର୍ମ+ଯ) ଧର୍ମର ଅନୁଯାୟୀ, ଧର୍ମଯୁକ୍ତ, ଧର୍ମାବିରୁଦ୍ଧ, ନ୍ୟାଯ୍ୟ, ଆଇନ୍‌ସଙ୍ଗତ, ସାଧାରଣ, ଧର୍ମସମ୍ବନ୍ଧୀୟ,(ସ୍ତ୍ରୀ) ଧର୍ମ୍ୟା ।
ଧର୍ମ୍ୟବିବାହ—ପୁଂ.ବି. (କ.ଧା) ଆଇନ୍‌ସଙ୍ଗତ ଧର୍ମାନୁମୋଦିତ ବିବାହ ।
ଧର୍ଷ—ପୁଂ,କ୍ଲୀ.ବି. (ଧୃଷ୍+ଭା.ଅ)ମାରପିଟ, ଦଳନ, ପୀଡ଼ନ, ଅତ୍ୟାଚାର, ଜୁଲମ୍, ପରାଭବକରଣ, ଚଢ଼ାଉ, ଆକ୍ରମଣ, ବଳପୂର୍ବକ ଗ୍ରହଣ, ଅହଙ୍କାକରଣ,ଅପମାନ,ପ୍ରଗଲ୍ଭତା,ଔଦ୍ଧତ୍ୟ, ବଳାତ୍କାର, ବଳପୂର୍ବକ ରତ, ଗର୍ବ, ଅଧୈର୍ଯ୍ୟ,ଅଟକ,ନପୁଂସକ ବ୍ୟକ୍ତି,ଶିବ
ଧର୍ଷକ—ପୁଂ, ବିଂ. (ଧୃଷ୍+କ.ଅକ) ଉତ୍ପୀଡ଼କ, ଉଦ୍ଧତ, ପରାଭବକାରୀ, ଆକ୍ରମଣକାରୀ, ଅଧୀର, ସ୍ତ୍ରୀପ୍ରତି ଅତ୍ୟାଚାର ବା ବଳପ୍ରୟୋଗକାରୀ, (ବି) ନର୍ତ୍ତକ, ନଟ, ଯାହା ସୁଆଙ୍ଗଦାର, ସ୍ତ୍ରୀର ସତୀତ୍ୱ ନାଶକାରୀ ବ୍ୟକ୍ତି, ସ୍ତ୍ରୀପ୍ରତି ପାଶବ ବଳ ପ୍ରୟୋଗକାରୀ ବ୍ୟକ୍ତି ।
ଧର୍ଷକାରଣୀ—ସ୍ତ୍ରୀ.ବି.(ଧର୍ଷ+କୃ+କ.ଇନ୍+ଈ) ଦୂଷିତା କନ୍ୟା, ପୁଂଶ୍ଚଳୀ ।
ଧର୍ଷକାରୀ—ପୁଂ.ବିଂ.(ଧର୍ଷ+କୃ+ଇନ୍) ପରାଭବକର୍ତ୍ତା, ପ୍ରାଗଲ୍ଭ୍ୟକାରକ ।
ଧର୍ଷଣ(ଣା)—ସ୍ତ୍ରୀ, ବି. (ଧୃଷ୍+ଭା.ଅନ+ଆ) ଧର୍ଷ ଦେଖ, ଗାଳିମନ୍ଦ, ତିରସ୍କାର, ଅପରାଧ, ସ୍ତ୍ରୀସଙ୍ଗମ, (ବିଂ)ଧର୍ଷଣୀୟ, ଧର୍ଷିତ ।
ଧର୍ଷଣକାରଣୀ—ସ୍ତ୍ରୀ.ବି. (ଧର୍ଷଣ+କୃ+କ.ଇନ୍+ଈ) ଧର୍ଷକାରଣୀ ଦେଖ ।
ଧର୍ଷଣାତ୍ମା—ପୁଂ. ବି. ମହାଦେବ ।
ଧର୍ଷଣି(ଣୀ)—ସ୍ତ୍ରୀ. ବି. (ଧୃଷ୍+ର୍ମ.ଅନ+ଇ,ଈ) ଅସତୀ ସ୍ତ୍ରୀ, ବେଶ୍ୟା ।
ଧର୍ଷଣୀ—ସ୍ତ୍ରୀ. ବି. (ଧର୍ଷିନ୍+ଈ)ଧର୍ଷିତା ଦେଖ ।
ଧର୍ଷଣୀୟ—ତ୍ରି. ବିଂ. (ଧୃଷ୍+ର୍ମ.ଅନୀୟ) ଧୃଷ୍ୟ, ଦଳନଯୋଗ୍ୟ ।
ଧର୍ଷିତ—ପୁଂ. ବିଂ. (ଧୃଷ୍+ଣିଚ୍+ର୍ମ.ତ) ପରାଭୂତ, ପରାଜିତ, ଉତ୍ପୀଡ଼ିତ, ଅବମାନିତ, ଆକ୍ରାନ୍ତ, ତିରସ୍କୃତ, ବି. (ଧୃଷ୍+ଭା.ତ) ବଳାତ୍କାର ରତ, ମୈଥୁନ, ଗର୍ବ, ଔଦ୍ଧତ୍ୟ, ଅସହନ, ଅଧୈର୍ଯ୍ୟ, (ସ୍ତ୍ରୀ) ଧର୍ଷିତା ।
ଧର୍ଷିତା—ସ୍ତ୍ରୀ, ବିଂ. (ଧର୍ଷିତ+ଆ)ଯେଉଁ ସ୍ତ୍ରୀସଙ୍ଗେ ବଳାତ୍କାରପୂର୍ବକ ମୈଥୁନ କରାଯାଏ, ବଳାତ୍କୃତା, କୁଳଟା, ବଟପୀ,(ସ୍ତ୍ରୀ.ବି) ଅସତୀ ସ୍ତ୍ରୀ, ବଟପୀ ସ୍ତ୍ରୀ, ବେଶ୍ୟା ।
ଧର୍ଷିବା—ଗ୍ରା. ବି. (ସଂ-ଧୃଷ୍ଧାତୁ)ଧର୍ଷଣ କରିବା, ସ୍ତ୍ରୀକୁ ବଳାତ୍କାର କରିବା, ଆକ୍ରମଣ କରିବା ।
ଧର୍ଷୀ—ପୁଂ. ବିଂ. (ଧୃଷ୍+ଇନ୍) ଗର୍ବୀ, ଆକ୍ରମଣକାରୀ, ଅତ୍ୟାଚାରକାରୀ, ଅପମାନକାରୀ, ଉଦ୍ଧତ, ବଳାତ୍କାରରେ ସ୍ତ୍ରୀସଙ୍ଗମକାରୀ, ରମଣକାରୀ ।
ଧଳ—ଗ୍ରା.ବି.ଛତିଶ୍, ଶୂଦ୍ର, ଓ ଖଣ୍ଡାଏତ ଜାତିର ଉପାଧିବିଶେଷ, (ବଙ୍ଗ-ଗ୍ରା) ଧବଳ, କୁଷ୍ଠଭେଦ ।
ଧଳଭୂମ(ମି)—ଗ୍ରା. ବି. ଓଡ଼ିଶା ଗଡ଼ଜାତର ଉତ୍ତର ସୀମାରେ ଅବସ୍ଥିତ ଓଡ଼ିଆଭାଷୀ ଅଞ୍ଚଳବିଶେଷ ।
ଧଳକଶୋର—ପଶ୍ଚିମ ବଙ୍ଗଳାର ନଦବିଶେଷ ।
ଧଳଣ୍ଡ—ପୁଂ. ବି. ଦୃଢ଼କଣ୍ଟକବୃକ୍ଷ ।
ଧଳନଧ୍ରୁର—୨୪ ପରଗଣାର ଏକ ଗ୍ରାମ ।
ଧଳମଡ଼(ଲ)—ଗ୍ରା.ବି. ଧଡ଼ମଡ଼ ଦେଖ ।
ଧଳ—ଗ୍ରା. ବିଂ. (ସଂ-ଧବଳ) ଶ୍ୱେତ, ଶୁକ୍ଳ, ଗୋରା, (ଗ୍ରା.ବି) ଧବଳବସ୍ତ୍ର, (ବିପ-କଳା) ।
ଧଳା—ପ୍ରା. (ସମ୍ବଲ)ବିଂ. ଧଳା ।
ଧଳାଅଙ୍କୁ—ଗ୍ରା.ବି(ସଂ-ଅଙ୍କୋଟ,ଅଙ୍କୋଲ) ଅଙ୍କୋଟ ଦେଖ ।
ଧଳାଆଣିଆ—ଗ୍ରା. ବିଂ. (ସଂ-ଧବଳ ଓ ଆଂଶିକ) ଆଂଶିକ ଧଳା ।
ଧଳାକଇଁ—ଗ୍ରା. ବି. (ସଂ-କୁମୁଦ) ଶୁକ୍ଳବର୍ଣ୍ଣବିଶିଷ୍ଟ କଇଁ ଫୁଲ ।
ଧଳାକୁ କଳାକରିବା—ଗ୍ରା.(ବିଶିଷ୍ଟବାକ୍ୟ) (ଲ.ଅର୍ଥ) ସତ୍ୟକଥାକୁ ମିଛ ଓ ମିଛକୁ ସତପରି କହିବା ।
ଧଳାଖୁରଣ୍ଟି—ଗ୍ରା. ବି. ଚିଲିକା ହ୍ରଦସ୍ଥ ଏକପ୍ରକାର ମାଛ ।
ଧଳାଚମ୍ପା—ଗ୍ରା.ବି. ଚମ୍ପକ ବୃକ୍ଷବିଶେଷ, ଶୁକ୍ଳ ପୁଷ୍ପଯୁକ୍ତ ଚମ୍ପକ ।
ଧଳାଗୁଣ୍ଡିକିଆ—ଗ୍ରା. ବି. ଶୁକ୍ଳ ପିଜୁଳି ।

ଧଳାଚଟା—ଗ୍ରା.ବି.(ସଂ-ଧବଳ+ଚଟକ) ଧୋବଚଟା, ଏକପ୍ରକାର ଚଟକ ଗୁଳ୍ମ

ଧଳାଚଢ଼—ଗ୍ରା.ବି. (ସଂ-ଧବଳ+ଚଟା) ଏକପ୍ରକାର ଚଢ଼ସାପ, ପାଚଲ ଗାମୁଛା ଦେହରେ ଗୁପାଗୁପା ଧଳାଚିହ୍ନ ।

ଧଳାଛଉ—ଗ୍ରା. ବି. ( ସଂ-ଧବଳଶ୍ୱିତ ) ଧବଳକୁଷ୍ଠ, ଶ୍ୱେତକୁଷ୍ଠ ।

ଧଳାଜାମ୍ବୁ—ଗ୍ରା. ବି. (ସଂ-ଧବଳ+ଜମ୍ବୁ) ଜାମୁଜାତୀୟ ଶୁକ୍ଳାଭ ଫଳବିଶିଷ୍ଟ ବୃକ୍ଷ

ଧଳାଜୀବକଣା—ଗ୍ରା. ବି. ( ବିଜ୍ଞାନପରିଭାଷା)ରକ୍ତରେ ଥିବା ଧଳା ଜୀବାଣୁ ।

ଧଳାତୁଳସୀ—ଗ୍ରା. ବି. ( ସଂ-ଧବଳ+ତୁଳସୀ) ଏକଜାତୀୟ ତୁଳସୀ ଗଛ ଓ ତାହାଁର ଦଳ ।

ଧଳାଧାତୁରା—ଗ୍ରା. ବି. (ସଂ ଧବଳ+ଧୁସ୍ତୁର) ଫିକା ସବୁଜ ବର୍ଣ୍ଣର ଧାତୁରା ଗୁଳ୍ମ, ଧଳାଦୁଦୁରା ।

ଧଳାପୋଇ—ଗ୍ରା. ବି. ( ସଂ-ଧବଳ+ପୋତକୀ, ଉପୋଦକୀ ) ପୂତିକା, ପୋଇଶାଗ ।

ଧଳାମୁଗୁନି—ଗ୍ରା.ବି. ଧଳା ବା ପାଣ୍ଡୁର-ବର୍ଣ୍ଣର ମୁଗୁନି ପଥର ।

ଧଳାଶିମିଳୀ—ଗ୍ରା.ବି.(ସଂ-ଶ୍ୱେତଶାଲ୍ମଳୀ) ବୃକ୍ଷବିଶେଷ, ।

ଧଳାମଳା—ଗ୍ରା.ବି. ଧଡ଼ମଡ଼, ଅତ୍ୟାଚାର. କଠୋର ବ୍ୟବହାର ।

ଧଳୀ—ଗ୍ରା.ସ୍ତ୍ରୀ.ବିଂ. (ସଂ-ଧବଳା) ଧବଳ-ବର୍ଣ୍ଣବିଶିଷ୍ଟା, (ବି) ଧଳାଗାଈ ।

ଧଳେଟ—ବ୍ରହ୍ମଦେଶାନ୍ତର୍ଗତ କେୟୁ-କପେୟୁଜିଲ୍ଲାସ୍ଥ ଗୋଟିଏ ନଦୀ ।

ଧଳେଶ୍ୱର—ତ୍ରିପୁରାନ୍ତର୍ଗତ ଅଗରତଳାର ୫ କୋଶ ଦୂରସ୍ଥ ଏକ ପର୍ବତ ।

ଧଳେଶ୍ୱରୀ—ବଙ୍ଗଳା ଓ ଆସାମରେ ଏହି ନାମେ ଅନେକ ଗୁଡ଼ିଏ ନଦୀ ଅଛି ।

ଧସ୍—ଗ୍ରା. କ୍ରି. ବିଂ. (ସଂ ଝଟିତି) ଝଟ, ଅତିଶୀଘ୍ର, (ଗ୍ରା. ଅବ୍ୟ) ପ୍ରକାରେ, କରି, କରି, କରି, ( ବଙ୍ଗ-ଗ୍ରା ) ମୃତ୍ତିକାଦି ଧସକି ଯିବାର ଶବ୍ଦ । ମୃତ୍ତିକାଦି ଭାଙ୍ଗି-ଯିବା ଶବ୍ଦ ।

ଧସ୍ଧସ୍—ଗ୍ରା.ଅ.(ଧ୍ୱନ୍ୟନୁକରଣ) ଭୁଷ୍-ଭାସ୍, ପାଦୁକାସ୍ଥିତ ଗୋଡ଼ରେ ଶୀଘ୍ର ଚାଲିବାଦ୍ୱାରା ଉତ୍ପନ୍ନ ଶବ୍ଦ ।

ଧସ୍ଧାସ୍—ଗ୍ରା.କ୍ରି.ବିଂ. ଶୀଘ୍ରତା ସହ-କାରେ ।

ଧସକା—ଗ୍ରା. କ୍ରି. ଶ୍ଳଥହେବା, ଭାଙ୍ଗି-ପଡ଼ିବା, (ବିଂ) ମଟକା, ଯାହା ସହଜେ ଭାଙ୍ଗିଯାଏ ।

ଧସନଶନ—ଗ୍ରା.ବି.କୁଦାଡ଼ି କଟି ଅସ୍ତବ୍ୟସ୍ତ କରିବା, ଧ୍ୱଂସକରିବା, ସର୍ବନାଶ, (ଗ୍ରା.ବିଂ) ବିଧ୍ୱସ୍ତ, ଅସ୍ତବ୍ୟସ୍ତ ।

ଧସା—ଗ୍ରା. ବିଂ. ( ସଂ-ଧ୍ୱଂସ ) ଯେଉଁ ସ୍ଥାନରୁ ମାଟିର ଅଡ଼ଡ଼ା ଖସିପଡ଼ୁଥାଏ, ପିଣ୍ଡା ବା ଗଦା ମାଟି ଭୁଷହେବାରୁ ଦବି-ଯିବା, (ଗ୍ରା.ବି)ବଡ଼କାଠ,ବଡ଼ନାଗରା ।

ଧସାହୋଇବା—ଗ୍ରା. କ୍ରି. (ସଂ ଧର୍ଷଣ ବା ଧ୍ୱଂସନ) ମାଟିକୁ ପଦାଘାତରେ ଦବାଇବା, ଲଦପାଇବା ।

ଧସିବା—ଗ୍ରା. କ୍ରି. (ସଂ-ଧର୍ଷିତ)ଚପେଯିବା, ଦବିଯିବା, ଲହସିଯିବା, ( ସଂ-ଧ୍ୱଂସ ) ଶିଥିଳ ହେବା, ଖଣ୍ଡ ଖଣ୍ଡ ହୋଇ ଖସି ପଡ଼ିବା ।

ଧସ୍ତାଧସ୍ତି—ଗ୍ରା. ବି ଓ ବିଂ. ( ସଂ-ଧ୍ୱସ୍ତ ) ପରସ୍ପର ଠେଲାଠେଲି, ପେଲାପେଲି, ଝିଙ୍କାଝିଙ୍କି ଓ ମାଡ଼ ମରାମରି,କୁସ୍ତାକୁସ୍ତି, ଧ୍ୱସ୍ତାଧ୍ୱସ୍ତି ।

ଧା—ପୁଂ. ବି. (ଧା+କ. କ୍ୱିପ୍) ଧାରଣ କର୍ତ୍ତା, ଧାତାବିଧାତା, ବ୍ରହ୍ମା, ବୃହସ୍ପତି, (ସଂ-ପ୍ରତ୍ୟୟ)(ଏତେ)ପ୍ରକାରେ,ଖଣ୍ଡେ ( ଗ୍ରା. ବି; ସଂ-ଧୈବତ ) ସଙ୍ଗୀତର ଷଷ୍ଠସ୍ୱର, ତବଲା ଉକ୍ତିବିଶେଷ ।

ଧାଆଁ—ଗ୍ରା. ବି. ଧାଁ ଦେଖ ।

ଧାଇଁଆସିବା—ଗ୍ରା. କ୍ରି. ଦୌଡ଼ିକରି କୌଣସି ସ୍ଥାନକୁ ଆସିବା ।

ଧାଇଁଗୁଡ଼ୁଗୁଡ଼ୁ—ଗ୍ରା. ଅବ୍ୟ. (ଶିଶୁବଚନ) ଶିଶୁମାନଙ୍କର ସୁମଧୁର ବେଗଗମନ ।

ଧାଇଁଧାଇଁ—ଗ୍ରା.କ୍ରି. ବିଂ.ଦଉଡ଼ି ଦଉଡ଼ି, ଶୀଘ୍ରଗତିରେ ଚାଲି, ଅବିଶ୍ରାନ୍ତ କର୍ମ-କରି, ବାରମ୍ବାର ଯାଇ, ବାରଂବାର, ଜଲଦି, ତ୍ୱରିତ, ଅତିଶୀଘ୍ର ।

ଧାଇଁଧୂପିବା—ପ୍ରା.(ସମ୍ଭ) କ୍ରି. ଧାଇଁବା ଧୂପିବା ଦେଖ ।

ଧାଇଁପଡ଼ିବା—ଗ୍ରା. କ୍ରି. ବହୁଲୋକ ଦୌଡ଼ିକରି ଏକସ୍ଥାନରେ ଉପସ୍ଥିତ ହେବା ।

ଧାଇଁପଳା(ଳେ)ଇବା—ଗ୍ରା.କ୍ରି.ଦୌଡ଼ି-କରି କୌଣସି ସ୍ଥାନ ତ୍ୟାଗ କରିବା ।

ଧାଇଁବା—ଗ୍ରା. କ୍ରି. ( ସଂ-ଧାବ୍ ) ଦଉଡ଼ିବା, ଅନବରତ ବା ଅବିଶ୍ରାନ୍ତ ପରିଶ୍ରମ କରିବା, ତ୍ୱରାଗତି କରିବା, ଦ୍ରୁତଗତି କରିବା, କୌଣସି ବ୍ୟକ୍ତିର ଉପକାରାର୍ଥ ବା ମଙ୍ଗଳାର୍ଥ ଚେଷ୍ଟା କରିବା, ଉଚ୍ଚସ୍ଥାନରୁ ନୀଚସ୍ଥାନକୁ ଅବି-ରତ ସ୍ରୋତ ସହକାରେ ବହିବା ।

ଧାଇଁବା ଦଉଡ଼ିବା—ଗ୍ରା.କ୍ରି. ବାରମ୍ବାର ବା ବହୁବାର ଦଉଡ଼ିବା, ଏଣିକି-ତେଣିକି ଦଉଡ଼ିବା, ତ୍ୱରାଯୁକ୍ତ ହୋଇ କାର୍ଯ୍ୟ କରିବା,ବିଶେଷ ଯତ୍ନ କରିବା ।

ଧାଇଁବା ଧୂପିବା—ଗ୍ରା. (ସମ୍ଭ) କ୍ରି. ଧାଁ ଧପଟ କରିବା, ବହୁବାର ଦଉଡ଼ିବା ।

ଧାଇଁଯିବା—ଗ୍ରା.କ୍ରି. ଦୌଡ଼ି କୌଣସି ସ୍ଥାନ ତ୍ୟାଗ କରିବା, ଅନ୍ୟ ସ୍ଥାନକୁ ଦଉଡ଼ିଯିବା, ତ୍ୱରିତ ବା ତତ୍କ୍ଷଣାତ୍ ଯିବା, କ୍ଷଣ ବିଳମ୍ବ ନକରି ଯିବା ।

ଧାଈ—ଗ୍ରା. ବି.ସ୍ତ୍ରୀ.(ସଂ—ଧାତ୍ରୀ) ଉପ-ମାତା, ଯେଉଁ ସ୍ତ୍ରୀ ଅନ୍ୟର ଶିଶୁକୁ ପାଳନ କରେ, ଯେଉଁ ସ୍ତ୍ରୀ ଅନ୍ୟସ୍ତ୍ରୀର ଶିଶୁକୁ ସ୍ତନ୍ୟ ଦିଏ, ଧାତ୍ରୀ, ଧାଈ, ପୋଇଲୀ, ପରିଚାରିକା, ରୋଗୀର ବା ଶିଶୁର ସେବା କରିବାପାଇଁ ନିଯୁକ୍ତା ଦାସୀ, ଧାତୁକୀ ଫୁଲ ଓ ଗୁଳ୍ମ, ତାମ୍ର-ବର୍ଣ୍ଣ ପୁଷ୍ପଯୁକ୍ତବିଶେଷ, ଅଁଳା ଗଛ ।

ଧାଇବେହେରା—ଗ୍ରା. ବି. ସ୍ତ୍ରୀ. ରାଜାଙ୍କ ଅନ୍ତଃପୁରର ବୟସ୍କା ଦାସୀ ।

ଧାଇମା—ଗ୍ରା.ବି.ସ୍ତ୍ରୀ.(ସଂ + ଧାତ୍ରୀ+ମାତା) ଶିଶୁର ଉପମାତା, ଅଧିକ ବୟସ୍କା ସ୍ତ୍ରୀ ପରିଚାରିକା ।

ଧାଉଡ଼(ଢ଼)—ଗ୍ରା. ବି. (ସଂ—ଧାବନ)

ଦଉଡ଼, ଧଡ଼, ଆକ୍ରମଣ,(ସଂ—ଧାର) ଧାଡ଼ି, ଶ୍ରେଣୀ, ପଂକ୍ତି ।
ଧାଉଡ଼ିଆ—ଗ୍ରା. ବି. (ସଂ—ଧାବନ) ଯେ ଦଉଡ଼େ, ଦଉଡ଼ିବାଲୋକ,ଦ୍ରୁତ-ଗାମୀ ଦୂତ, ବାର୍ତ୍ତାବାହକ, ଡାକ ପିଆଦା, ପିଅନ,(ବିଂ)—ଧାଡ଼ିନେକାଗ୍ର, ଧାଡ଼ିଯୁକ୍ତ, ଶ୍ରେଣୀବଦ୍ଧ ଗୃହ, ଗୃହ ଘରର ପିଣ୍ଡା ଧାଡ଼ିରେ ଥିବା ଖୁଣ୍ଟ ।
ଧାଉଡ଼ିଆଟପା—ପ୍ରା. ( ଗଞ୍ଜାମ ) ଦଉଡ଼ିବା ଲୋକଦ୍ୱାରା ବୁହାହେବା ଡାକ
ଧାଉଡ଼ିଆପାଇକ—ଗ୍ରା. ବି. ଦଉଡ଼ି ଖବର ନଅଆଣ କରିବାପାଇଁ ନିଯୁକ୍ତ ପାଇକ ।
ଧାଉଡ଼ିଦେବା—ଗ୍ରା.କ୍ରି.କୌଣସି ସ୍ଥାନକୁ ଉପର୍ଯ୍ୟୁପରି ଆସିବା, ଆକ୍ରମଣକରିବା
ଧାଁ—ଗ୍ରା. ବି. (ସଂ—ଧାବନ) ଧାଇଁବା, ସହର ଗମନାଗମନ, ଦଉଡ଼ା ଦଉଡ଼ି, ତ୍ୱରା, କାର୍ଯ୍ୟବ୍ୟସ୍ତତା ।
ଧାଁଚ—ଗ୍ରା.ବି. ଡାଞ୍ଚା, ଆକୃତି, ଗଠନ, ଗ୍ରନ୍ଥ,ଫେସନ,ଗଢ଼,ଥାଟ,ଅଙ୍ଗଭଙ୍ଗୀ ।
ଧାଁଢେଇ—ଗ୍ରା.ବିଂ.ସ୍ତ୍ରୀ.ଦାଣ୍ଢେଇଦେଖ ।
ଧାଁଦଉଡ଼(ଡ଼ା)—ଗ୍ରା. ବି. ବହୁବାର ଦଉଡ଼ିବା କର୍ମ, ଇତସ୍ତତଃ ଦଉଡ଼ିବା, ତ୍ୱରାଯୁକ୍ତ କର୍ମ ।
ଧାଁସା—ପ୍ରା.(ଗଞ୍ଜାମ) ଡାଞ୍ଚା,ଷ୍ଟାଇଲ୍, ପ୍ରଥା, ଅଭ୍ୟାସ, ରୀତି । [ଆଧାର ।
ଧାକ—ବି. ବୃଷ, ଆହାର, ଅନ୍ନ, ସ୍ତମ୍ଭ,
ଧାକଡ଼—ପ୍ରା.(ଗଡ଼ଜାତ) ବିଂ. ଅଯୋଗ୍ୟ, (ବସ୍ତର) ବର୍ଣ୍ଣସଙ୍କର ଜାତିବିଶେଷ ।
ଧାକଲେଇ--ପ୍ରା. (ସମ୍ବ.) ବିଂ. ସ୍ଥୂଳୋ-ଦର, ପେଟା ।
ଧାଗଣା—ଗ୍ରା. ବି. ଢାମଣା(ଢେଳ)ଦେଖ ।
ଧାଗା(ଇତ୍ୟାଦି)—ଗ୍ରା.ବି. ଢାଗାଇତ୍ୟାଦି ଦେଖ ।
ଧାଙ୍ଗଡ଼—ପ୍ରା.(ସମ୍ବ.)ପୁଂ.ବି.ଅବିବାହିତ ଯୁବକ, ପ୍ରା. (ଜଶପୁର) ବି. ଶୂକର, (ପ୍ରା.ସିଂହଭୂମ) ବି. ଗୋରୁଚରାଉଆଳ ଟୋକା, ( ଗ୍ରା.ବି ) ଧାଙ୍ଗଡ଼, ଗ୍ରେଟ ନାଗପୁର ଓ ସାନ୍ତାଳପରଗଣା ଅଞ୍ଚଳର

ଏକ ଜଙ୍ଗଲୀ ଜାତି, ଦାକ୍ଷିଣାତ୍ୟରେ ମହିଆକେଲା ଧେଡ଼, ଓଡ଼ଣା ଗଡ଼-ଜାତିସ୍ଥ ବନ୍ୟବ୍ୟକ୍ତିଙ୍କ ନୃତ୍ୟ ବିଶେଷ, ବିନ୍ଧ୍ୟାଦିପର୍ବତ ବାସୀ ଅନାର୍ଯ୍ୟ ଜାତି-ବିଶେଷ, (ବିଂ)ଅସଭ୍ୟ,ବର୍ବର,ବଣୁଆ, ଜଙ୍ଗଲୀ, ।
ଧାଙ୍ଗଡ଼ା—ପ୍ରା. (ସମ୍ବ.) ପୁଂ. ବି. କନ୍ଧ, କୋହ୍ଲ, ସାନ୍ତାଳାଦି ଅନାର୍ଯ୍ୟଜାତିର ଅବିବାହିତ ଯୁବକ ବା ଟୋକା, ପ୍ରା. (ସମ୍ବ.)ବିଂ. ଢେଙ୍ଗିଆ ଓ ଅବିବାହିତ ।
ଧାଙ୍ଗଡ଼ୀ—ପ୍ରା.(ସମ୍ବ.)ସ୍ତ୍ରୀ.ବି.ଅବିବାହିତା ଯୁବତୀ, ଟୋକୀ, ଟୋକୀ, ଅବିଆଡ଼ି ଟୋକୀ, (ପ୍ରା. ବସ୍ତର) ସ୍ତ୍ରୀ. ବିଂ.ଯୁବତୀ ଓ ଅବିବାହିତା ।
ଧାଙ୍ଗର—ପ୍ରା. (ସମ୍ବ.) ପୁଂ. ବି. ଯୁବକ, ଟୋକା, (ସ୍ତ୍ରୀ) ଧାଙ୍ଗରୀ ।
ଧାଟି—ଗ୍ରା. ବି. ( ସଂ-ଧାବନ ) ଶତ୍ରୁକୁ ଆକ୍ରମଣ, (ସଂ-ଧାରା) ସମୂହ, ଶତ୍ରୁର ବା ଅସ୍ତ୍ରଶସ୍ତ୍ରାଦିର ସମ୍ମୁଖୀନ ହେବା, ଶ୍ରେଣୀ, ଧାଡ଼ି ।
ଧାଡ଼ଙ୍ଗା—ଗ୍ରା. ବିଂ. ଶୀର୍ଣ୍ଣ, ଧେଡ଼େଙ୍ଗା ।
ଧାଡ଼ି—ଗ୍ରା. ବି.(ସଂ-ଧାରା)ସମୂହ,ଶ୍ରେଣୀ, ରେଖା, ଲକ୍ଷ୍ମାଦିର ବିଷୟ, ଅନୁକ୍ରମ, ରୀତି, କ୍ରମ, ସମୟ, ପାଟ, ପାର୍ଶ୍ୱ, ଯୁଦ୍ଧାର୍ଥ ଆକ୍ରମଣ,ଯୁଦ୍ଧସଜ୍ଜା, ସଦାଚାର-ଧର୍ମ ବା ନ୍ୟାୟାନୁମୋଦିତ ମାର୍ଗ,ଧାଡ଼ିପାଠ ଦେଖ, ( ପ୍ରା ) ପୁଂ ଓ ସ୍ତ୍ରୀ. ବି. ( ବାଲେଶ୍ୱର ଓ ମେଦିନୀପୁର ) ଜୀବ-ଜନ୍ତୁଙ୍କ ମଧ୍ୟରେ ଯେଉଁ ମାଈଜୀବ ଅନେକ ଛୁଆ ଜନ୍ମକରିସାରିଅଛି,(ପୁଂ) ଜୀବଦଳର ନେତା, ସନ୍ତାନୋତ୍ପାଦନ-କ୍ଷମ ପୁରୁଷ, ପ୍ରା.(ବାଲେଶ୍ୱର,ମେଦିନୀ-ପୁର) ବିଂ. ସନ୍ତାନୋତ୍ପାଦନକ୍ଷମ ଓ ଯୁବକ (ବ୍ୟକ୍ତି) ।
ଧାଡ଼ିଆ—ପ୍ରା.(ପୁରୀ) ବିଂ. କଇଆ,ଦର-ସିଝା,(ଗ୍ରା.ବିଂ)ଏକ ପଂକ୍ତି ବିଶିଷ୍ଟ ।
ଧାଡ଼ିକରି—ଗ୍ରା. ଅବ୍ୟ. ( ସମସ୍ତ ଗ୍ରନ୍ଥ ) ଏକଧାଡ଼ିରେ ଲଗାଲଗି ହୋଇ ଠିଆ ହୁଅ ।

ଧାଡ଼ିକିଆ—ଗ୍ରା. ବିଂ. କେବଳ ଧାଡ଼ିରେ ସମ୍ପୂର୍ଣ୍ଣ, ଯାହାର ଏକଧାଡ଼ି ବା ପଂକ୍ତି ମାତ୍ର ଅଛି ।
ଧାଡ଼ିକିଧାଡ଼ି—ଗ୍ରା. କ୍ରି. ବିଂ. ପ୍ରତ୍ୟେକ ପଂକ୍ତିରେ, ଏକପଂକ୍ତିରେ,ଅନ୍ୟପଂକ୍ତି ।
ଧାଡ଼ିଗୁଞ୍ଜିବା—ଗ୍ରା. କ୍ରି. ଅଗ୍ରଗୁଞ୍ଜିବା, ନିର୍ଦ୍ଦିଷ୍ଟସୀମାକୁ ଲଙ୍ଘିବା ।
ଧାଡ଼ିଦେବା—ଗ୍ରା. କ୍ରି. ଯୁଦ୍ଧାର୍ଥ ଅଗ୍ରସର ହେବା, ଆକ୍ରମଣ କରିବା ।
ଧାଡ଼ିଧାଡ଼ିକ—ଗ୍ରା. ବିଂ. ଧାଡ଼ି ଧାଡ଼ି ହୋଇ ସୁସଜ୍ଜିତ ।
ଧାଡ଼ିଧୋଡ଼କ—ପ୍ରା. (ଗଞ୍ଜାମ) ବି. ଦୁଡୁ ଖେଳ, (ପ୍ରା. ଗଡ଼ଜାତ ) ବି. ବାଘ-ବକରୀପରି ଏକପ୍ରକାର ଖେଳ ।
ଧାଡ଼ିନଗୁଞ୍ଜିବା—ଗ୍ରା. କ୍ରି. ନିର୍ଦ୍ଦିଷ୍ଟପଥ ବା ସୀମାକୁ ଅତିକ୍ରମ ନ କରିବା ।
ଧାଡ଼ିପହଣ୍ଡି—ଗ୍ରା. ବି. ପହଣ୍ଡି ବିଜୟ ଦେଖ ।
ଧାଡ଼ିପାଠ—ଗ୍ରା.ବି. ଚାଟଶାଳୀରେ ଶିଶୁ-ମାନେ ପଢ଼ିବା ଖଡ଼ିପାଠ ।
ଧାଡ଼ିମରଦ—ପ୍ରା. (ବାଲେଶ୍ୱର, ମେଦିନୀପୁର) ପୁଂ. ବି. ସନ୍ତାନୋତ୍ପାଦନକ୍ଷମ ହୃଷ୍ଟପୁଷ୍ଟ ଯୁବକ ।
ଧାଡ଼ିମୂଳିଆ—ଗ୍ରା. ବିଂ. ଶ୍ରେଣୀବଦ୍ଧ, ଧାରାବାହିକ, (ଗ୍ରା. କ୍ରି. ବିଂ) ଧାଡ଼ିର ପ୍ରଥମରୁ ଆରମ୍ଭକରି ଧାଡ଼ିର ଶେଷ ପର୍ଯ୍ୟନ୍ତ,ଧାଡ଼ିଧାଡ଼ିକରି,ବହୁ ପଂକ୍ତିରେ ।
ଧାଡ଼ୁଆ—ପ୍ରା. (ବାଲେଶ୍ୱର)ବି. ଗୋଧ, ଦଳର ବୁଢ଼ାମାନଙ୍କଡ଼,ଦଳର ସର୍ଦ୍ଦାର ।
ଧାଣକ—ପୁଂ. ବି. (ଧା+ଆଣକ୍) ଦଶର ଭାଗ, ପରିମାଣ ବିଶେଷ ।
ଧାତକ—ପୁଂ. ବି. ପୁଷ୍କରଦ୍ୱୀପାଧିପତି ବୀତିହୋତ୍ରଙ୍କ ଜନୈକ ପୁତ୍ର ।
ଧାତକମ—ସ୍ତ୍ରୀ. ବି. ( ଧା+କ.ଅକ+ଇ) ଧାଇ (ଫୁଲ ଓ ଗଛ), ତାମ୍ରବର୍ଣ୍ଣ ପୁଷ୍ପ ବୃକ୍ଷ ବିଶେଷ ।
ଧାତକୀଦଳେହ—ପୁଂ.ବି. ଚରକୋକ୍ତ ଲେହ ଭେଦ ।
ଧାତବ—ତ୍ରି. ବିଂ.(ଧାତୁ+ଅ)ଧାତୁମୟ,

ଧାତୁସମ୍ବନ୍ଧୀୟ, (ସ୍ତ୍ରୀ) ଧାତଗୀ ।
ଧାତସ୍ଥ—ଗ୍ରା. ବିଂ ପ୍ରକୃତିସ୍ଥ, ସୁସ୍ଥ ।
ଧାତା—ପୁଂ. ବି. (ଧା+କ.ତୃ)ଈଶ୍ୱର, ବ୍ରହ୍ମା, ବିଧାତା, ବିଷ୍ଣୁ, ପିତା, ଆତ୍ମା, ଅଶଞ୍ଚାଶ ବାୟୁମଧ୍ୟରୁ ଏକତମ, ଦ୍ୱାଦଶ ଆଦିତ୍ୟମଧ୍ୟରୁ ଏକତମ, ଶିବ, ଶେଷନାଗ, ଜାର, ଉପପତି,( ବିଂ )ଧାରଣକର୍ତ୍ତା, ପାଳନକର୍ତ୍ତା,ସୃଷ୍ଟିକର୍ତ୍ତା,ନିୟନ୍ତା, ନିୟାମକ, (ଗ୍ରା.ବି)ବଳ,ଅଧିକାର,(ସ୍ତ୍ରୀ) ଧାତ୍ରୀ ।
ଧାତି—ଗ୍ରା. କ୍ରି. ବିଂ. (ସଂ-ଝଟିତି) ଅତିଶୀଘ୍ର, ତତ୍କ୍ଷଣାତ୍ ।
ଧାତିଙ୍ଗି—ଗ୍ରା. ଅବ୍ୟ. (ଧ୍ୱନ୍ୟର୍ଥକ)ବାଦ୍ୟ ଓ ନୃତ୍ୟର ଉକ୍ତ ବିଶେଷ ।
ଧାତୁ—ପୁଂ.ବି.(ଧା+କ.ତୁ)ପରମେଶ୍ୱର, ଈଶ୍ୱର, ଧାତା, ସ୍ୱଭାବ,ପ୍ରକୃତି,ଦେହଧାରକ ଧର୍ମ ବା ପ୍ରକୃତି, ଶୁକ୍ର, ନାଡ଼ୀ, ରସ, ରକ୍ତାଦି ସପ୍ତଧାତୁ, ବାତ ପିତ୍ତାଦି ତ୍ରିଧାତୁ, ଚେତନା, ଜୀବନୀଶକ୍ତି, ପଞ୍ଚଭୂତ,କ୍ଷିତି,ଅପ୍,ତେଜ,ମରୁତ୍ ଓ ବ୍ୟୋମ ମୂଳ, ମୌଳିକ ବସ୍ତୁ,ଉପାଦାନ,ତୈଜସ ଖଣିଜ ପଦାର୍ଥ, (ବ୍ୟାକରଣ) ଭୂ, କୃ, ଗମ୍, ସ୍ଥା ପ୍ରଭୃତି କ୍ରିୟାବାଚକ ପ୍ରକୃତି, ଶବ୍ଦର ମୂଳ ଉପାଦାନ, ଗନ୍ଧକାଦି ଖନିଜବସ୍ତୁ, (ସଙ୍ଗୀତ) ସପ୍ତସ୍ୱର, ବୁଦ୍ଧ ବା ଅନ୍ୟ କୌଣସି ମହାତ୍ମାଙ୍କ ଅସ୍ଥି, ନଖ, ଦନ୍ତାଦି,(ଗ୍ରା.ବି) ଶରୀର ମଧ୍ୟସ୍ଥ-ସ୍ନାୟୁ, ବ୍ୟକ୍ତିଗତ ଶାରୀରିକ ପ୍ରକୃତି, ମେହରୋଗ, ସୁନା, ରୂପା, କାଂସାଦି ପଦାର୍ଥ । [ ତୈଳ ।
ଧାତୁକ—ପୁଂ.ବି. ଶୈଳଜ, ଏକପ୍ରକାର
ଧାତୁକାର—ପୁଂ. ବି. ଧାତୁମୟ ଦେହ, ପୂର୍ଣ୍ଣରଚିତ ବୌଦ୍ଧଶାସ୍ତ୍ରର ନାମ ।
ଧାତୁକାସୀସ—କ୍ଳୀ. ବି. ହୀରାକସ ।
ଧାତୁକା—ଗ୍ରା. ବି. (ସଂ-ଧାତକୀ) ଧାତକୀ ଦେଖ ।
ଧାତୁକୁଶଳ—ପୁଂ. ବିଂ. ( ୬ତତ୍ ) ବ୍ୟାକରଣର ଧାତୁବିଦ୍ୟାରେ କୁଶଳ, ସ୍ୱର୍ଣ୍ଣାଦି ଧାତୁ ସମ୍ବନ୍ଧେ ସମ୍ୟକ୍ ଜ୍ଞାନବିଶିଷ୍ଟ, (ସ୍ତ୍ରୀ) ଧାତୁକୁଶଳା ।
ଧାତୁକ୍ଷୟ—ପୁଂ.ବି. (୬ତତ୍) ଶୁକ୍ରକ୍ଷରଣ ରୋଗ, ପ୍ରମେହ, ପ୍ରଦର, (ବି.ଗ୍ରା) କାଶ ରୋଗବିଶେଷ ।
ଧାତୁଗତ—ତ୍ରି. ବିଂ. ( ୨ତତ୍ ) ଦେହସମ୍ବନ୍ଧୀୟ, ପ୍ରକୃତିଗତ ।
ଧାତୁଗରମ—ଗ୍ରା.ବି.ଦେହ ଗରମହେବା ।
ଧାତୁଗର୍ଭ—ପୁଂ. ବିଂ. (ବି.ଗ୍ରା) ଯେଉଁ ମୃତ୍ତିକା ମଧ୍ୟେ ଧାତୁଥାଏ, (ବି) ଯେଉଁ ସ୍ତୂପରେ ବୌଦ୍ଧମାନେ ବୁଦ୍ଧଦେବଙ୍କର ଦନ୍ତ, ନଖାଦି ରଖି ପୂଜା କରନ୍ତି
ଧାତୁଗୋପ—ପୁଂ.ବି.ଧାତୁଗର୍ଭ,(ଦାଗୋପ)
ଧାତୁଗ୍ରାହୀ—ପୁଂ. ବି. (ଧାତୁ+ଗ୍ରହ+ଇନ୍)ଯେଉଁ ମୃତ୍ତିକା ତମ୍ବାସହ ମିଶିଲେ ପିତ୍ତଳ ହୁଏ ।
ଧାତୁଘଟଣ—ଗ୍ରା.ବିଂ(ସଂ-ଧାତୁ+ଘଟିତ) ଧାତୁନିର୍ମିତ ।
ଧାତୁଘଟିତ—ବିଂ.ଧାତୁସମ୍ପର୍କୀୟ, ଧାତୁସହଯୋଗେ ପ୍ରସ୍ତୁତ, ଧାତୁମିଶ୍ରିତ ।
ଧାତୁଘ୍ନ—ତ୍ରି. ବିଂ. (ଧାତୁ+ହନ୍+କ.ଅ) ଶରୀରସ୍ଥ ଧାତୁର ନାଶକ, (କ୍ଳୀ.ବି) କାଞ୍ଜି, (ସ୍ତ୍ରୀ) ଧାତୁଘ୍ନୀ ।
ଧାତୁଚଳ—ଗ୍ରା.ବି. ମେହରୋଗ, ଧାତୁକ୍ଷୟ ରୋଗ ।
ଧାତୁତତ୍ତ୍ୱ—ବି. (ଧାତୁ+ତତ୍ତ୍ୱ) ଯେଉଁ ବିଦ୍ୟା ଦ୍ୱାରା ଖନିଜ ପଦାର୍ଥମାନଙ୍କର ସ୍ୱରୂପ ଓ ଗୁଣାଗୁଣ ନିର୍ଣ୍ଣିତ ହୁଏ ।
ଧାତୁଦୁର୍ବଳତା—ବି. (୬ତତ୍) ଶାରୀରିକ ବା ସ୍ନାୟବିକ ଦୁର୍ବଳତା ।
ଧାତୁଦ୍ରାବକ—ପୁଂ. ବି. (ଧାତୁ+ଦ୍ରୁ+କ.ଅକ) ସୋହାଗା, (ବିଂ) ଧାତୁଦ୍ରବକାରକ,ଯେ ଧାତୁ ଗଳାଏ,(ସ୍ତ୍ରୀ) ଦ୍ରାବକା ଧାତୁ, ଧାତୁଦ୍ରବକାରକ ।
ଧାତୁନରମ—ଗ୍ରା.ବି.ଶରୀରରେ ଶ୍ଳେଷ୍ମାଧିକ୍ୟ ।
ଧାତୁନାଶନ—ଧାତୁଘ୍ନ (ଟକଳ ଅର୍ଥେ) ।
ଧାତୁପ—ପୁଂ. ବି. (ଧାତୁ+ପା+କ.ଅ) ଅନ୍ନରସ, ରସରୂପ ପ୍ରଥମ ଧାତୁରସ ।
ଧାତୁପାଠ—ପୁଂ.ବି.(ନ.ଗ୍ରା) ପାଣିନ୍ୟାଦି ପ୍ରଣୀତ ଧାତୁଅର୍ଥବୋଧକ ଗ୍ରନ୍ଥ ।
ଧାତୁପାତ୍ର—ବି. (ମଧ୍ୟ-କ.ଧା) ଧାତୁନିର୍ମିତ ପାତ୍ର ।
ଧାତୁପାରାୟଣ—ପୁଂ.ବି. ଧାତୁପ୍ରତିପାଦକ ଗ୍ରନ୍ଥବିଶେଷ ।
ଧାତୁପୁଷ୍ଟି—ବି. ( ୬ତତ୍ ) ଶରୀରରେ ବଳାଧାନ ।
ଧାତୁପୁଷ୍ପିକା—ସ୍ତ୍ରୀ.ବି.(ବି.ଗ୍ରା) ଧାଇଫୁଲ, ଧାତକୀପୁଷ୍ପ ।
ଧାତୁପୁଷ୍ପୀ—ସ୍ତ୍ରୀ ବି. ଧାଇ, ଧାତକୀ ।
ଧାତୁପୋଷକ—ତ୍ରି.ବିଂ.(୬ତତ୍)ଶରୀରର ପୁଷ୍ଟିକର, ବି. ଧାତୁପୋଷଣ, (ସ୍ତ୍ରୀ) ଧାତୁପୋଷିକା ।
ଧାତୁପ୍ରତ୍ୟୟ—ବି.(ଦ୍ୱନ୍ଦ୍ୱ,—ବ୍ୟାକରଣ) ଧାତୁ ଓ ପ୍ରତ୍ୟୟ, ଶବ୍ଦର ବ୍ୟୁତ୍ପତ୍ତି ।
ଧାତୁବର୍ଦ୍ଧକ—ବିଂ. (୬ତତ୍)ଶୁକ୍ରବର୍ଦ୍ଧକ ।
ଧାତୁବଲ୍ଲଭ—କ୍ଳୀ.ବି.(୬ତତ୍) ସୋହାଗା, ଟଙ୍କଣ, ଟାଙ୍କଣ ।
ଧାତୁବାଦ—ବି. ତନ୍ତ୍ରଶାସ୍ତ୍ରୋକ୍ତ ୬୪କଳା ବା ବିଦ୍ୟାରୁ ଏକତମ,ରସ ସୃଜନବିଦ୍ୟା ।
ଧାତୁବାଦୀ—ପୁଂ. ବି. (ଧାତୁ+ବଦ୍+ଣ.ଇନ୍) କାଂସାରୀ, ଧାତୁ ବିଦ୍ୟାରେ ପାରଦର୍ଶୀ ବ୍ୟକ୍ତି ।
ଧାତୁବିଦ୍ୟା—ସ୍ତ୍ରୀ.ବି. (ମଧ୍ୟ-କ.ଧା) ଯେଉଁ ବିଦ୍ୟାରୁ ଧାତୁ ବିଷୟରେ ତଥ୍ୟ ଶିକ୍ଷା ହୁଏ ।
ଧାତୁବିଷ—ସ୍ତ୍ରୀ. ବି. ଧାତୁଜାତ, ସୀସା ।
ଧାତୁବୈରି—ପୁଂ. ବି. (୬ତତ୍)ଗନ୍ଧକ ।
ଧାତୁଭୃତ୍—ପୁଂ. ବି. (ଧାତୁ+ଭୃ+କ.କ୍ୱିପ୍) ପର୍ବତ, (ବିଂ) ଶରୀରସ୍ଥ ଧାତୁର ପୋଷକ ।
ଧାତୁମୟ—ତ୍ରି.ବିଂ. (ଧାତୁ+ବିକାରାର୍ଥେ ମୟ) ଧାତୁପୂର୍ଣ୍ଣ, ଧାତୁ ଦ୍ୱାରା ଗଠିତ, ଧାତୁବହୁଳ (ସ୍ତ୍ରୀ) ଧାତୁମୟୀ ।
ଧାତୁମର୍ମ—ବି. ଧାତୁବାଦ ଦେଖ ।
ଧାତୁମଳ—ପୁଂ.କ୍ଳୀ. ବି. (ଧାତୁ+ମଳ) ୬ତତ୍, ଧାତୁ ଉପରେ ପଡ଼ୁଥିବା କଳଙ୍କି, ଲୁହାଗୁହ, ମଣ୍ଡୁର, କଫ, ଲେବନିରଣ ଶରୀରର ମଳ ।

ଧାତୁମାକ୍ଷିକ—କ୍ଲୀ.ବି. ଧାତୁପରି ଆଭାଯୁକ୍ତ ପଦାର୍ଥବିଶେଷ, ସ୍ୱର୍ଣ୍ଣରୌପ୍ୟାଦି ଧାତୁ ସଙ୍ଗେ ଗନ୍ଧକ ମିଶ୍ରଣରେ ଉତ୍ପନ୍ନ ଦ୍ରବ୍ୟ।

ଧାତୁମାରଣୀ—ସ୍ତ୍ରୀ.ବି. (ଧାତୁ+ମୃ+ଣିଚ୍ +ଇନ୍+ଈ) ସୋହାଗା।

ଧାତୁରା—ଗ୍ରା. ବି. ଧତୁରା ଦେଖ।

ଧାତୁରାଗ—ବି. ( ମଧ୍ୟ-କ.ଧା ) ହିଙ୍ଗୁଳ ଗେରୁଆଦି ରଙ୍ଗ।

ଧାତୁରଜକ—କ୍ଲୀ. ବି. ୬ତତ୍, (ଧାତୁ+ରଜନ୍+କ) ଶୁକ୍ର, ବୀର୍ଯ୍ୟ।

ଧାତୁରାଫୁଲିଆ—ଗ୍ରା. ବି॰. ଦୁଦୁରାଫୁଲର ପାଖୁଡ଼ା ଅଗପରି ଫାନ୍ଦଥିବା (କଂସା ବାସନ)।

ଧାତୁଶେଖର—କ୍ଲୀ.ବି.କାସୀସ, ହୀରାକସ, ସୀସାଧାତୁ।

ଧାତୁସଂଜ୍ଞ—ବି. (ବ.ଗ୍ରା)ସୀସାଧାତୁ।

ଧାତୁସେନ—ମହାବଂଶ ଧୃତ ଜନୈକ ମୌର୍ଯ୍ୟବଂଶୀୟ ବୌଦ୍ଧରାଜା।

ଧାତୁସେନ—ସିଂହଳର ପ୍ରାଚୀନ ରାଜଧାନୀ ଅନୁରାଧାପୁରର ନିକଟ ଗୋଟିଏ ପର୍ବତ।

ଧାତୁସ୍ତମ୍ଭକ—ବି॰.(୬ତତ୍)ବୀର୍ଯ୍ୟସ୍ତମ୍ଭନକାରୀ (ଦ୍ରବ୍ୟ)। [ ଗନ୍ଧକ।

ଧାତୁହନ—ପୁଂ.ବି. (ଧାତୁ+ହନ୍+ଅ)

ଧାତୂପଲ—ପୁଂ. ବି. ( ଧାତୁ+ଉପଲ, ମଧ୍ୟ-କ.ଧା) ଚକ୍ଡ଼, କଠିନ।

ଧାତୃପୁତ୍ର—ପୁଂ. ବି. ( ୬ତତ୍ ) ବ୍ରହ୍ମାଙ୍କ ପୁତ୍ର ସନତ୍‌କୁମାର। [ ଫୁଲ।

ଧାତୃପୁଷ୍ପିକା—ସ୍ତ୍ରୀ.ବି.ଧାଇଫୁଲ, ଧାତକୀ

ଧାତ୍ୱର୍ଥ—ବି. ୬ତତ୍ (ବ୍ୟାକରଣ)ଧାତୁର ଅର୍ଥ, ମୌଳିକ ବା ପ୍ରଥମାର୍ଥ।

ଧାତ୍ର—କ୍ଲୀ. ବି. (ଧା+କ+ତ୍ର)ପାତ୍ର।

ଧାତ୍ରିକା—ସ୍ତ୍ରୀ.ବି. (ଧାତ୍ରୀ+କ+ସ୍ତ୍ରୀ.ଆ) ଆମଲକୀ, ଅଁଳା।

ଧାତ୍ରୀ—ସ୍ତ୍ରୀ.ବି. (ଧା+କ. ତୃ.ଈ),ମାତା, ଦୁର୍ଗା, ଧାଈ, ଉପମାତା, ପୃଥିବୀ, ସ୍ତ୍ରୀବୈଦ୍ୟ, ଆମଳକୀ, ଅଁଳା, ଗଙ୍ଗାନଦୀ, ଭୂମି, ସେନା, ଫଳିଜ, ଗାଈ, ଆର୍ଯ୍ୟା, ଛନ୍ଦୋବିଶେଷ, ଗାୟତ୍ରୀ ସ୍ୱରୂପିଣୀ ଭଗବତୀ,(ବି॰)ଧାରଣକର୍ତ୍ତ୍ରୀ।

ଧାତ୍ରୀଚିକିତ୍ସା—ଗ୍ରା. ବି. ପ୍ରସୂତି ଓ ନବଜାତ ସନ୍ତାନର ଚିକିତ୍ସା।

ଧାତ୍ରୀପତ୍ର—କ୍ଲୀ. ବି. (୬ତତ୍) ଅଁଳାଗଛର ପତ୍ର, (ବ.ଗ୍ରା) ତାଲୀଶପତ୍ର।

ଧାତ୍ରୀପୁତ୍ର—ପୁଂ.ବି. (୬ତତ୍)ଉପମାତାର ପୁତ୍ର, ନଟ।

ଧାତ୍ରୀଫଳ—ବି. ଅଁଳାକୋଳି।

ଧାତ୍ରୀବିଦ୍ୟା—ଗ୍ରା. ସ୍ତ୍ରୀ. ବି. ଧାତ୍ରୀଚିକିତ୍ସା ଦେଖ।

ଧାତ୍ରେୟିକା—ସ୍ତ୍ରୀ.ବି. (ଧାତ୍ରେୟି+କ+ଆ) ଧାତ୍ରେୟୀ ଦେଖ।

ଧାତ୍ରେୟୀ—ସ୍ତ୍ରୀ.ବି.(ଧାତ୍ରୀ+ଏୟ+ଈ) ଧାଈ, ଉପମାତାର କନ୍ୟା।

ଧାତ୍ରାଦି—ପୁଂ.ବି. ମୂତ୍ରକୃଚ୍ଛ୍ରୋକ୍ତଔଷଧବିଶେଷ।

ଧାଦର—ପଶ୍ଚିମ ଭାରତର ଗୋଟିଏ ନଦୀ।

ଧାନ—କ୍ଲୀ. ବି. (ଧା+ଅଧି.ଅନ) ସ୍ଥାନ, ଆଧାର, (ଗ୍ରା.ବି—ସଂ-ଧାନ୍ୟ ) ଶସ୍ୟବିଶେଷ.ତୁଷାବୃତ ତଣ୍ଡୁଳ, ଏକରତିର ଚତୁର୍ଥାଂଶ, ଏକଧାନ ଓଜନ, ଅତି ଅଳ୍ପ ପରିମାଣ, ଧାରଣ, ପୋଷଣ, ବାଉଁଶ ଗଛରେ ଜନ୍ମିବା ଧାନପରି ଶସ୍ୟ।

ଧାନଅଗାଡ଼—ଗ୍ରା. ବି. ଯେଉଁ ଧାନର ଚୋପାଭିତରେ ଶସ ବା ଚାଉଳ ନ ଥାଏ।

ଧାନଅମଳକରିବା—ଗ୍ରା.ବି.ଧାନମଳିବା।

ଧାନଉଡ଼ାଇବା—ଗ୍ରା.କ୍ରି.ଧାନ ଅମଳପରେ କୁଟା ଅଗାଡ଼ ପ୍ରଭୃତି କୁଲାରେ ଉଡ଼ାଇ ସଫାକରିବା।

ଧାନଉଷୁଆଁ—ଗ୍ରା.ବି.(ସଂ-ଧାନ୍ୟ ଓ ଉଷ୍ମ) ଉଷୁନା ଚାଉଳ ବାହାର କରିବାପାଇଁ ଧାନକୁ ନିଆଁରେ ବସାଇ ଅର୍ଦ୍ଧସିଦ୍ଧ କରିବା ପ୍ରକ୍ରିୟା।

ଧାନଉଷେଇଁବା—ଗ୍ରା.କ୍ରି.(ସଂ-ଧାନ୍ୟ+ଉଷ୍ମ) ଉଷୁନାଚାଉଳ ପ୍ରସ୍ତୁତ କରିବା ପାଇଁ ଧାନକୁ ଅଗ୍ନି ଓ ଜଳ ସାହାଯ୍ୟରେ ଅଦ୍ଧ ସିଦ୍ଧ କରିବା।

ଧାନଓଳିଆ—ଗ୍ରା. ବି. ଧାନ ଜମେଇ ରଖିବା ନିମନ୍ତେ କୁଟାର ପିଣ୍ଡାକାର ଆଧାର।

ଧାନକ—କ୍ଲୀ.ବି.(ଧା+ଅନ+କ)ଧନିଆ, ଏକରତିର ଚତୁର୍ଥାଂଶ ଓଜନ।

ଧାନକଜଳ—( ପ୍ରା.ଗଡ଼ଜାତ.ବି. )ଧାନସାହାର ଦେଖ।

ଧାନକଟା—ଗ୍ରା.ବି. (ସଂ-ଧାନ୍ୟ+କର୍ତ୍ତନ) ପାଚିଲା ଧାନଗଛକୁ କାଟିବା କର୍ମ।

ଧାନକଣ୍ଟାଝୁଡ଼ା—ଗ୍ରା. ବି. ଧାନଦଳା ଓ ଗୋରୁମାନ ଖଳାରେ ଆସି ପଡ଼ିବା ବେଳେ ଓ ଗଦା ମରାହେବା ସମୟରେ ଖଳାରେ ଯେଉଁ ଧାନ ଦଳାରୁ ମଳକୁ ଝଡ଼ି ପଡ଼ିଥାଏ।

ଧାନକାଟିବା—ଗ୍ରା.କ୍ରି.ପାଚିଲା ଧାନଗଛକୁ କାଟିବା।

ଧାନକଢ଼ିଆ—ଗ୍ରା.ବି. ଧାନରିଣ, ଧାନକରଜ।

ଧାନକୁଟ—ଗ୍ରା. ବି. ଚାଉଳ ବାହାର କରିବାପାଇଁ ଧାନ କୁଟିବା କର୍ମ।

ଧାନକୁଟାଳ(ଳୀ)—ଗ୍ରା. ପୁଂ ଓ ସ୍ତ୍ରୀ.ବି. ଧାନକୁଟିବା ବ୍ୟକ୍ତି।

ଧାନକୁଟିବା—ଗ୍ରା. କ୍ରି. ଧାନକୁଟି ଚାଉଳ କରିବା।

ଧାନକେଣ୍ଡା—ଗ୍ରା. ବି. ଶସ୍ୟଯୁକ୍ତ ଧାନର ଶାଖା।

ଧାନକେରା—ଗ୍ରା. ବି. ଏକାଧିକ ଧାନକେଣ୍ଡାମାନଙ୍କର ଗୁଚ୍ଛ।

ଧାନକୋଠୀ—ଗ୍ରା. ବି. ଯେଉଁ ଘରେ ଧାନ ସଞ୍ଚିତ ହୁଏ।

ଧାନକ୍ଷେତ—ଗ୍ରା.ବି. (ସଂ-ଧାନ୍ୟ+କ୍ଷେତ୍ର) ଯେଉଁ କ୍ଷେତ୍ରରେ ଧାନଗଛ କୃଷିଦ୍ୱାରା ଉତ୍ପାଦିତ ହୋଇଅଛି।

ଧାନଖଣି—ଗ୍ରା. ବି. (ସଂ-ଧାନ୍ୟ+ଖନି) ଭୂଗର୍ଭରେ ଯେଉଁ ଗର୍ତ୍ତ ଖୋଳାଯାଇ ତହିଁରେ ଧାନ୍ୟ ସଞ୍ଚିତ ହୁଏ।

ଧାନଜମି—ଗ୍ରା. ବି. (ସଂ-ଧାନ୍ୟ ଓ ଫା.-ଜମିନ୍) ଯେଉଁ ଜମିରେ ଧାନ ଫସଲ ଉତ୍ପାଦିତ କରା ଯାଇପାରେ।

ଧାନଖଳା—ଗ୍ରା. ବି. ଯେଉଁ ସ୍ଥାନରେ

ଧାନ ଅମଳ କରାଯାଏ ।

ଧାନଖାତା—ଗ୍ରା. ବି. ଧାନ ଋଣବାବଦ ଯେଉଁ ଖାତାରେ ଲେଖାଯାଏ ।

ଧାନଗଡ଼—(ଧାଙ୍ଗଡ଼) ଛୋଟ ନାଗପୁରର ଏକଜାତୀୟ କୃଷକ ।

ଧାନଗାଏନ୍—ବଙ୍ଗଳା ହଜାରିବାଗ ଜିଲ୍ଲାର ଗୋଟିଏ ଗିରିପଥ ।

ଧାନଗାଁଓ—୨୪ପରଗଣାର ଅନ୍ତର୍ଗତ ଗୋଟିଏ ଖାଲ (ହାଙ୍ଗରରୁ ଯମୁନା-ନଦୀ ପର୍ଯ୍ୟନ୍ତ ବିସ୍ତୃତ) । [ ଦେଚା ।

ଧାନଦାଦନ ଦେବା—ଗ୍ରା.କ୍ରି. ଧାନ ଋଣ

ଧାନଦେଢ଼ି—ଗ୍ରା.ବି. ଧାନକରଜ, ମୂଳ-ଧାନ ସହ ବର୍ଷକେ ଅର୍ଦ୍ଧେକ ସୁଧ ।

ଧାନଧର୍ମ—ଗ୍ରା.ବି.(ଧାନ+ନିରର୍ଥକ ଯୁଗ୍ମ ସହଚର) ଧାନ, ଧାନ୍ୟରୂପ ସମ୍ପତ୍ତି, ଧାନ୍ୟାଦିଶସ୍ୟ, ସଞ୍ଚିତ ଧାନ୍ୟ ।

ଧାନବଛା—ଗ୍ରା. ବି. ଧାନବିଲରେ ଉଠି-ଥିବା ଘାସ ଓ ଅନାବନାଗଛକୁ ଉପାଡ଼ି ଦୂରକରିବା କର୍ମ ।

ଧାନବାଛିବା—ଗ୍ରା. ବି. ଧାନଖେତରୁ ଘାସ ଓ ଅନାବନାଗଛମାନ ଉପାଡ଼ିବା

ଧାନବାଡ଼େଇବା—ଗ୍ରା.କ୍ରି. ଧାନକେଣ୍ଡାକୁ ପିଟି ଧାନ ଆଦାୟ କରିବା, ଧାନ-ଝାଡ଼ିବା ।

ଧାନବିଲ—ଗ୍ରା.ବି. ଧାନ ହେବା ଜମି, ଧାନ ହୋଇଥିବା କ୍ଷେତ ।

ଧାନବୁଣିବା—ଗ୍ରା. ବି. ଧାନର ବିହନ ବିଲରେ ଫିଙ୍ଗିବା ବା ବପନ କରିବା

ଧାନବେଉ (ହୁ) ଡିବା—ଗ୍ରା. କ୍ରି. ଧାନ ବେଉଷଣ କରିବା, ଧାନ ବିହୁଡ଼ିବା ।

ଧାନବେଙ୍ଗଲା—ଗ୍ରା. ବି. ଧାନ ବିଡ଼ାମାନ ଏକତ୍ର ରଖି ତା ଉପରେ ବଳଦ-ମାନଙ୍କ ଦ୍ୱାରା ମଡ଼ାଇ ଅମଳକରିବା ।

ଧାନବେଙ୍ଗୁଳିବା—ଗ୍ରା.କ୍ରି.ଧାନକେଣ୍ଡାରୁ ଧାନ ଅମଳ କରିବାପାଇଁ ବଳଦଙ୍କ ଦ୍ୱାରା ମଳିବା ।

ଧାନଭିଙ୍ଗିବା—ଗ୍ରା. କ୍ରି. ଧାନରେ ଲଠୀ-ଦେବା ।

ଧାନମଡ଼ା—(ପ୍ର, ସମ୍ପ୍ର. ବି.) ବଳଦଦ୍ୱାରା ଧାନକୁ ବେଙ୍ଗଲା ପକାଇବା ।

ଧାନମରେଇ—ଗ୍ରା.ବି.ଧାନ ରଖିବାପାଇଁ ପ୍ରସ୍ତୁତ ଆଧାରବିଶେଷ । [ ଚବା ।

ଧାନମଳିବା—ଗ୍ରା.କ୍ରି. ଧାନବିଡ଼ାକୁ ମକ-

ଧାନମହାଜନ—ଗ୍ରା.ବି. ଧାନ ଋଣଦେଇ ସୁଦସହ ଆଦାୟକରିବା ଖତ ।

ଧାନମାଣିକାଗୁରୁବାର—ଗ୍ରା.ବି. ମାର୍ଗଶିର ମାସର ଗୁରୁବାରମାନ ।

ଧାନମାପୁଣି—ଗ୍ରା. ବି. ଧାନ ମପାମପି କରିବା ଲୋକ, ଏବଂ ତାହାର ପାରି-ଶ୍ରମିକ ମୂଲ୍ୟ ।

ଧାନମୁକୁଲ—ଗ୍ରା. ବି. କଟାଳି ବିଲରୁ କାଟି ଖଳାକୁ ବୋହି ଆଣିଥିବା ଧାନ ହୋଲା ମାନଙ୍କର ଯେଉଁ ନିର୍ଦ୍ଦିଷ୍ଟ ଅଂଶ ମୂଲସ୍ୱରୂପ ପାଏ ।

ଧାନମୁକୁଳ(ଲେ)ଇବା—ଗ୍ରା.କ୍ରି. କଟାଳି ମାନଙ୍କ ମୂଲ ବାଦ୍ ଅବଶିଷ୍ଟ ଅଂଶ ମାଲିକ ଦେଖିବା ।

ଧାନମେଣ୍ଟା—ଗ୍ରା. ବି. ଗୁଡ଼ିଏ ଧାନର କେଣ୍ଡାରେ ତିଆରି ସୁଦୃଶ୍ୟ ଝୋପା, ବେଣ୍ଟି ।

ଧାନରୋଇବା—ଗ୍ରା.କ୍ରି.ଧାନଗଛବିଲରେ ପୋତିବା ।

ଧାନଶିଷା—ଗ୍ରା. ବି. ଧାନକେଣ୍ଡା, ଧାନ ଉଡ଼ାହେବା ପରେ ଜମାହୋଇଥିବା ଧାନର ସ୍ତୂପ ।

ଧାନଶୀ—ସ୍ତ୍ରୀ. ବି. ରାଗିଣୀବିଶେଷ ।

ଧାନହୁଲା—ଗ୍ରା.ବି. ଧାନକଳେଇ,ଧାନ-ବିଡ଼ା ।

ଧାନସର—୨୪ ପରଗଣାନ୍ତର୍ଗତ ଗୋଟିଏ ଖାଲ, (ହାଙ୍ଗର ଠାରୁ ଯମୁନା ନଦୀ ପର୍ଯ୍ୟନ୍ତ ବିସ୍ତୃତ) ।

ଧାନା—ସ୍ତ୍ରୀ. ବି. (ଧା+କ.ନ+ସ୍ତ୍ରୀ.ଆ) (ନିତ୍ୟ ବହୁବଚନ);ଭୃଷ୍ଟଯବ,ଯଅଭଜା, ଚୂର୍ଣ୍ଣଯବ, ଧନିଆ, (ଏକବଚନ) ଅଙ୍କୁର, ଗଜା, ଚୂଡ଼ା, ଖଇ, ଛତୁ, ସକ୍ତୁ, ଅନ୍ନ-କଣ, ଖୁଦ, ଅନ୍ନମାଦ, ଧାନ ।

ଧାନାଚୂର୍ଣ୍ଣ—କ୍ଲୀ. ବି. (୬ତତ୍) ଛତୁଆ ।

ଧାନାନ୍ଧବ—ପୁଂ. ବି. କଣେ ଗନ୍ଧର୍ବ ।

ଧାନାବନ୍ତ—କ୍ରି. ବିଂ. ଧାନର ସହିତ ବିଦ୍ୟମାନ ।

ଧାନିକା—ସ୍ତ୍ରୀ. ବି. ( ଧାନୀ+କ+ଆ ) (ଅନ୍ୟ ଶବ୍ଦସଙ୍ଗେସମାସରେ ଯୁକ୍ତହୋଇ ବ୍ୟବହୃତ); ସ୍ଥାନ, ଭଣ୍ଡାର, ଆଧାର, ଧାନୀ ।

ଧାନିକୀ—ସ୍ତ୍ରୀ. ବି. ଧାନିକା ।

ଧାନିଖୋଲ—ବଙ୍ଗଳା ମୟମନସିଂହ ଜିଲ୍ଲାସ୍ଥ ଗୋଟିଏ ପ୍ରଧାନ ନଗର ।

ଧାନୀ—ସ୍ତ୍ରୀ. ବି. (ଧା+ଅଧି.ଅନ+ଈ) ଧାନିକା ଦେଖ, ପୀଲୁଗଛ, ଧନିଆ, ବ୍ୟବସାୟୀ, ଧନୀ, ମହାଜନ ।

ଧାନୁଆ(ଆଁ)—ଗ୍ରା. ବିଂ. ଧାନ ଆକୃତି-ବିଶିଷ୍ଟ, ଧାନପ୍ରିୟ ଲାଳାୟିତ (ପଶୁ), ଧାନମିଶ୍ରିତ, (ପ୍ରା. ବାଲେ. ବିଂ) ଯେ ବହୁତ ଧାନ ସଞ୍ଚୟ କରିଥାଏ ।

ଧାନୁଆକଣ୍ଠି—ଗ୍ରା. ବି. ଧାନ ଆକାରର ସୁନା ବା ରୁପା କଣ୍ଠିଥିବା ଗଳାର ମାଳା ।

ଧାନୁଆମଦ—ଗ୍ରା. ବି. (ସଂ-ଧାନ୍ୟ+ମଦ) ଏକପ୍ରକାର ମଦ ।

ଧାନୁଆଲଙ୍କାମରିଚ—ଗ୍ରା. ବି. ଧାନପରି ଛୋଟ ଅଥଚ ଅତି ଉଗ୍ର ରାଗଥିବା ଲଙ୍କାବିଶେଷ ।

ଧାନୁକ—ପୁଂ.ବିଂ. (ଧାନୁସ୍+କ) ଧନୁ-ର୍ଦ୍ଧର, (ବି) ଧନୁର୍ଦ୍ଧର ଯୋଦ୍ଧା, (ସ୍ତ୍ରୀ) ଧାନୁକୀ ।

ଧାନୁକୀ—ଗ୍ରା. ବିଂ. ଧନୁର୍ଦ୍ଧାରୀ ।

ଧାନୁର୍ଦ୍ଦଣ୍ଡିକ—ପୁଂ. ବି. ଧାନୁଷ୍କ ।

ଧାନୁଷ୍କ—ପୁଂ. ବିଂ. (ଧନୁଷ୍କ+ଅ ବା ଧନୁସ୍+କ) ଧନୁର୍ଦ୍ଧାରୀ, ( ବି ) ଧନୁ-ର୍ଦ୍ଧାରୀ ଯୋଦ୍ଧା, (ସ୍ତ୍ରୀ) ଧାନୁଷ୍କୀ ।

ଧାନୁଷ୍କା—ସ୍ତ୍ରୀ. ବି. (ଧାନୁଷ୍କ+ଆ) ଅପା-ମାର୍ଗ ଗଛ ।

ଧାନୁଷ୍କାର—ଲତାବିଶେଷ । [ ବଂଶ ।

ଧାନୁଷ୍ୟ—ପୁଂ. ବି. (ଧନୁସ୍+ଯ)ବାଉଁଶ,

ଧାନେ—ଗ୍ରା. କ୍ରି. ବିଂ. ଅତ୍ୟଳ୍ପରେ, ସାମାନ୍ୟରେ ।

ଧାନେୟ—କ୍ଲୀ. ବି. ଧନ୍ୟାକ, ଧନିଆ ।

ଧାନେୟକ—କ୍ଲୀ. ବି. ଧନ୍ୟାକ ।

ଧାନ୍ୟ—କ୍ଲୀ. ବ. (ଧନ+ଯ) ୪ ରତି ପରିମିତ ଓଜନ, ଧାନଗଛ, ଧାନ, ଧନିଆ, ଧାନଜାତୀୟ ଶସ୍ୟ ।

ଧାନ୍ୟକ—କ୍ଲୀ. ବ. (ଧାନ୍ୟ+କ) ଧାନ୍ୟ, ଧନ, ଧନିଆ ।

ଧାନ୍ୟକୋଷ୍ଠ—ବ. ( ଧାନ୍ୟ+କୋଷ୍ଠ ) ଧାନକୋଠି, ଅମାର ।

ଧାନ୍ୟକୋଷ୍ଠକ—କ୍ଲୀ. ବ. ଧାନକୋଠି, ଅମାର ।

ଧାନ୍ୟକ୍ଷେତ୍ର—ବ. (୬ତତ୍) ଧାନବିଲ ।

ଧାନ୍ୟଗୋକ୍ଷୁରକଘୃତ—କ୍ଲୀ. ବ. ଭାବପ୍ରକାଶୋକ୍ତ ଘୃତୌଷଧବିଶେଷ ।

ଧାନ୍ୟଚମସ—ବ. (ମଧ୍ୟ-କ.ଧା) ଚୁଡ଼ା, ଚିପିଟକ ।

ଧାନ୍ୟଚ୍ଛେଦନ—କ୍ଲୀ. ବ. ( ୬ତତ୍ ) ଧାନକଟା ।

ଧାନ୍ୟତ୍ୟଲ୍ଲିଲ—ବି.ବି°. ଧାନ୍ୟବହୁଳ ।

ଧାନ୍ୟତୁଷୋଦ—ବ. (ଧାନ୍ୟ+ତୁଷ+ଉଦ) କାଞ୍ଜି ।

ଧାନ୍ୟତ୍ୱକ୍—ସ୍ତ୍ରୀ. ବ. (୬ତତ୍) ଚଷୁ ।

ଧାନ୍ୟଧେନୁ—ସ୍ତ୍ରୀ. ବ. ( ମଧ୍ୟ-କ.ଧା ) ଦାନାର୍ଥ ଧାନ୍ୟନିର୍ମିତ ଧେନୁ ।

ଧାନ୍ୟପଞ୍ଚକ—କ୍ଲୀ. ବ. (୬ତତ୍) କ୍ଷୁଦ୍ର ବା କଙ୍ଗୁ, ଶାଳୀ, ଷଷ୍ଟିକ, ବ୍ରୀହି, ଶକ ବା ଶିମ୍ବୀ ଏହି ପଞ୍ଚବିଧ ଶସ୍ୟ, ପାଚନୌଷଧବିଶେଷ ।

ଧାନ୍ୟପଟୋଳ—କ୍ଲୀ.ବ.ବୈଦ୍ୟଶାସ୍ତ୍ରୋକ୍ତ ଔଷଧବିଶେଷ ।

ଧାନ୍ୟପତି—ପୁଂ.ବ.(୬ତତ୍)ବ୍ରୀହି,ଯବ

ଧାନ୍ୟପାନକ—କ୍ଲୀ. ବ. ( ମଧ୍ୟ-କ.ଧା ) ଏକପ୍ରକାର ସ୍ୱାଦୁବିଶିଷ୍ଟ ଓ ହିତକର ପଣା ।

ଧାନ୍ୟବୀଜ—ପୁଂ. ବ. ଧାନ୍ୟରାଶି ।

ଧାନ୍ୟବର୍ଗ—ପୁଂ. ବ. (୬ତତ୍) ଧାନ୍ୟପଞ୍ଚକ ଦେଖ ।

ଧାନ୍ୟବର୍ଦ୍ଧନ—କ୍ଲୀ. ବ. (୬ତତ୍) ଧାନ କରଜ ଦେଇ ବଢ଼ାଇବା ।

ଧାନ୍ୟବାହନ—ଚମ୍ପାରଣ୍ୟ ପ୍ରଦେଶର ଜଣେ ରାଜା ।

ଧାନ୍ୟବୀଜ—କ୍ଲୀ. ବ. (୬ତତ୍) ଧାନର ବିହନ, ଧନିଆ ।

ଧାନ୍ୟବୀର—ପୁଂ. ବ. ( ୬ତତ୍ ) ମୁଗଜାତୀୟ କୃଷ୍ଣବର୍ଣ୍ଣ ଶସ୍ୟ, ବିରି ।

ଧାନ୍ୟଭକ୍ଷକ—ପୁଂ.ବ. ଗୃହକର୍ତ୍ତା,ପକ୍ଷୀ ।

ଧାନ୍ୟମଞ୍ଜରୀ—ସ୍ତ୍ରୀ. ବ. (୬ତତ୍) ଧାନର ଶୀଷା ।

ଧାନ୍ୟମାତା—ପୁଂ. ବି°. ଧାନ୍ୟମାପକ, ଯେ ଧାନ ମାପ କରେ ।

ଧାନ୍ୟମାୟୁ—ପୁଂ. ବ. (ଧାନ୍ୟ+ମା+କ.ଯ) ଧାନ୍ୟବିକ୍ରୟୀ, ଧାନ ମହାଜନ, ଧାନ ବେପାରୀ, ଧାନ ମାପିବା ଲୋକ, ଧାନମାପୁଣି । [ ପତ୍ନୀ ।

ଧାନ୍ୟମାଳିନୀ—ସ୍ତ୍ରୀ. ବ. ରାବଣର ଏକ

ଧାନ୍ୟମାଷ—ପୁଂ. ବ. ଦୁଇଧାନ ପରିମାଣ ।

ଧାନ୍ୟମୁଖ—ପୁଂ.ବ.ବ୍ରୀହି ମୁଖାସ୍ତ୍ରବିଶେଷ ।

ଧାନ୍ୟମୂଳ—କ୍ଲୀ. ବ. କାଞ୍ଜିକ, କାଞ୍ଜି ।

ଧାନ୍ୟଯୂଷ—ପୁଂ. ବ. ଧାନର କ୍ୱାଥ ।

ଧାନ୍ୟଯୋନି—ପୁଂ.ବ. କାଞ୍ଜିକ,କାଞ୍ଜି ।

ଧାନ୍ୟରାଜ—ପୁଂ. ବ. (୬ତତ୍) ଯବ ।

ଧାନ୍ୟଶର୍କରା—ସ୍ତ୍ରୀ. ବ. ଔଷଧ ଭେଦ ।

ଧାନ୍ୟଶୀର୍ଷକ—କ୍ଲୀ. ବ. (୬ତତ୍)ଧାନର ଶିଂଷା ବା କେଣ୍ଡା ।

ଧାନ୍ୟଶୁଣ୍ଠି—ସ୍ତ୍ରୀ.ବ.(ମଧ୍ୟ-କ.ଧା)ଔଷଧଭେଦ । [ ଶିଙ୍ଗ ।

ଧାନ୍ୟଶୂକ—ବ.(୬ତତ୍)ବାଳୁଙ୍ଗା ଧାନର

ଧାନ୍ୟଶୈଳ—ପୁଂ.ବ. ଦାନାର୍ଥ ଧାନ୍ୟନିର୍ମିତ ପର୍ବତ ।

ଧାନ୍ୟସାର—ପୁଂ. ବ. (୬ତତ୍) ତଣ୍ଡୁଳ, ଚାଉଳ, ଅମଳ ହୋଇ ପରିଷ୍କୃତହୋଇଥିବା ଧାନ ।

ଧାନ୍ୟା—ସ୍ତ୍ରୀ. ବ. ଧନିଆ ।

ଧାନ୍ୟାକ—କ୍ଲୀ. ବ. ( ଧନ୍ୟାକ+ଅ ) ଧନିଆ, ଧନିଆଗଛଳ ।

ଧାନ୍ୟାକୃତ୍—ପୁଂ. ବ. (ଧାନ୍ୟ+ଆ+କୃ+ମ.ତ) କୃଷକ ।

ଧାନ୍ୟାକୃତ—ବ. (ଧାନ୍ୟ+ଆ+କୃ+ମ.ତ) କୃଷକ ।

ଧାନ୍ୟାଚଳ—ପୁ . ବ. ( ମଧ୍ୟ-କ.ଧା ) ଦାନାର୍ଥ ଧାନକୃତ ପର୍ବତ, ଦାନାର୍ଥ ପର୍ବତାକାର ଧାନ୍ୟରାଶି ।

ଧାନ୍ୟାଦ—ପୁଂ. ବି°. ଧାନ୍ୟଭୋଜୀ ।

ଧାନ୍ୟାଦିପାନକ—ପୁଂ. ବ. ଭାବପ୍ରକାଶୋକ୍ତ ଔଷଧ ବିଶେଷ ।

ଧାନ୍ୟାଦିହିମ—ପୁଂ. ବ. ଭାବପ୍ରକାଶୋକ୍ତ ଔଷଧ ବିଶେଷ ।

ଧାନ୍ୟାଭ୍ର—କ୍ଲୀ. ବ. ଭାବପ୍ରକାଶୋକ୍ତ ଅଭ୍ରମାରଣୋପଯୋଗୀ ବସ୍ତୁ ଭେଦ ।

ଧାନ୍ୟାଭ୍ରକ—ବ. ଆୟୁର୍ବେଦୋକ୍ତମତେ ଭସ୍ମ ପ୍ରସ୍ତୁତ କରିବାପାଇଁ ଧାନ ବତୁରି ଯାଇ ଶୋଧିତ ହୋଇଥିବା ଅଭ୍ର ।

ଧାନ୍ୟାମ୍ଳ—କ୍ଲୀ. ବ. (ମଧ୍ୟ-କ.ଧା)କାଞ୍ଜି,

ଧାନ୍ୟାମ୍ଳକ—କ୍ଲୀ. ବ. କାଞ୍ଜି ।

ଧାନ୍ୟାୟନ—ପୁଂ.ସ୍ତ୍ରୀ.ବ.ଧନ୍ୟଙ୍କ ଗୋତ୍ରାପତ୍ୟ ।

ଧାନ୍ୟାରି—ପୁଂ. ସ୍ତ୍ରୀ. (୬ତତ୍)ଧାନ୍ୟଶତ୍ରୁ, ମୂଷିକ, ଇନ୍ଦୁର । [ ବିଶିଷ୍ଟ ।

ଧାନ୍ୟାର୍ଥୀ—ବି. ବି°. ଧାନ୍ୟରୂପ ଅର୍ଥ-

ଧାନ୍ୟାସ୍ଥି—କ୍ଲୀ. (୬ତତ୍)ଚଷୁ ।

ଧାନ୍ୟୋତ୍ତମ—ପୁଂ. ବ. (୬ତତ୍)ଶାଳିଧାନ, ଶାରଦଧାନ, ଯବ ।

ଧାପ୍ସା—ଗ୍ରା.ବି ଓ ବି°.ଝାପ୍ସା ଦେଖ ।

ଧାପ—ଗ୍ରା. ବ. ( ସଂ-ଦର୍ପ ) ପୀଡ଼ନ, (ଧାବ୍‌ଧାତୁ) ସିଡ଼ିର ଗୋଟିଏ ପାହାଚ, ବେଗଗତି, କ୍ଷଣମାତ୍ର, ଦଉଡ଼ିବା, ଅତି ଅଳ୍ପମାତ୍ରା, ଅତିଅଳ୍ପ ପଥ ବା ଦୂରତ୍ୱ, ଧାବନ, ଦୌଡ଼, ଆକ୍ରମଣ, (ଗ୍ରା ବି. ବି°.) ଧାପେ ଦେଖ ।

ଧାପଟ—ଗ୍ରା. ବ.(ସଂ-ଦର୍ପ)ପ୍ରତାପ,ଦମ୍ଭ, ବଳ, ବେଟ, ଦ୍ରୁତଗତି, (ସଂ-ଧାବ୍‌ଧାତୁ) ଝପଟ, ଦଉଡ଼ ।

ଧାପଡ଼—ପ୍ରା.(ସମ୍ବ) ବ. ଗୁପୁଡ଼ା ।

ଧାପଡ଼ିବା—ଗ୍ରା. କ୍ରି. ( ସଂ-ଧାବ୍‌ଧାତୁ ) ଧମୁଡ଼ିବା, ଦଉଡ଼ିବା, ଝପଟିବା, (ଣିଜନ୍ତରୂପ-ଧାପଡ଼େଇବା) ।

ଧାପଡ଼ଧାପଡ଼—ଗ୍ରା. ଅବ୍ୟ. ଶବ୍ଦପୂର୍ବକ ଦୌଡ଼ିବା ।

ଧାପଦେବା—ଗ୍ରା. କ୍ରି. ( ସଂ-ଧାବଧାତୁ ) ସାହସ ସହିତ ପଶିବା, ଛିଡ଼ ବଢ଼ାଇ ବନ୍ଧୁ ସନ୍ଧିକାରେ କାର୍ଯ୍ୟକରିବା,ଆକ୍ରମଣ କରିବା, ଦଉଡ଼ିବା ।

ଧାପଦଉଡ଼—ଗ୍ରା. ବି. ବିଉଡ଼ାବିଉଡ଼ ଖେଳ, ଧାଁଦଉଡ଼ ।

ଧାପେ—ଗ୍ରା. ବିଂ. ସାମାନ୍ୟ ପରିମିତ, ( ଗ୍ରା—କ୍ରି. ବିଂ. ) ଧସ୍‌କିନା, ଝଟ୍, ତତ୍‌କ୍ଷଣାତ୍, କ୍ଷଣମାତ୍ରକେ,ଅତିଅଳ୍ପ ।

ଧାପେବାଟ—ଗ୍ରା. ବି. ଅତିଅଳ୍ପ ପଥ ବା ଦୂରତ୍ୱ ।

ଧାପେବାରି—ମଧ୍ୟପ୍ରଦେଶ ନାଗପୁର ଜିଲ୍ଲାର ଗୋଟିଏ ସ୍ୱାସ୍ଥ୍ୟକର ଓ ପରି-ଚ୍ଛନ୍ନ ସହର ।

ଧାବ(ଧାତୁ)—ଦଉଡ଼ିବା, ଧୋଇବା, ଗତିକରିବା, ଆକ୍ରମଣ କରିବା,ବଢ଼ିବା, ପଳେଇଯିବା, ଧୁଧଦେବା, ଘଷିବା, ସଫା କରିବା ।

ଧାବଇ—(ପ୍ରା.ଜ)କ୍ରି. ଧାଇଁଛି ।

ଧାବକ—ତ୍ରି. ବିଂ ( ଧାବ+କ.ଅକ ) ଯେ ଦଉଡ଼େ. ଦ୍ରୁତଗାମୀ,ବେଗଗତି-ବିଶିଷ୍ଟ ଯେ ଧୁଏ, ସମାର୍ଜ୍ଜନକାରୀ, (ବି) ଧୋବା,ରଜକ,ହରକରା, ପତ୍ରବାହକ, ଦ୍ରୁତଗାମୀ ବାର୍ତ୍ତାବହ, ( ନାମ ) ରତ୍ନାବଳୀରଚୟିତା କବି ।

ଧାବନ—କ୍ଲୀ. ବି. ( ଧାବ୍+ଭା.ଅନ ) ଦଉଡ଼ିବା, ବେଗଗତି, ଧୋଇବା, ଧୋଇକରି ସଫାକରିବା, ଘୋଡ଼ାରେ ଦଉଡ଼ିବା,ବହିଯିବା,( ଧାବ+କ.ଅନ) ହରକରା, ଶୀଘ୍ରଗାମୀଦୂତ, ଘଷିବା, ଆକ୍ରମଣକରିବା ।

ଧାବନକୁର୍ଦ୍ଦନ—କ୍ଲୀ. ବି. (ମଧ୍ୟ-କ.ଧା) (ଦ୍ୱନ୍ଦ୍ୱ) ଦୌଡ଼ିବା ଓ ଖେଳିବା ।

ଧାବମାନ—ପୁଂ. ବିଂ. ( ଧାବ୍+କ. ଆନ) ଯେ ଦଉଡ଼ୁଅଛି, ଖୁବ୍ ଶୀଘ୍ର ଗତିକାରୀ, (ସ୍ତ୍ରୀ) ଧାବମାନା ।

ଧାବନି—ସ୍ତ୍ରୀ.ବି.ପୃଶ୍ନିପର୍ଣ୍ଣୀ (ପର୍ଯ୍ୟାୟ—ପୃଥକ୍‌ପର୍ଣ୍ଣୀ, ଚିତ୍ରପର୍ଣ୍ଣୀ, ସିଂହପୁଚ୍ଛୀ, କଲସୀ, ଗୁହା, କଣ୍ଟକାରୀ ।

ଧାବନିକା—ସ୍ତ୍ରୀ. ବି. କଣ୍ଟକାରିକା ।

ଧାବନୀ—ସ୍ତ୍ରୀ.ବି.(ଧାବନ୍+ଈ)ପୃଶ୍ନିପର୍ଣ୍ଣୀ, କଣ୍ଟକାରୀ, ଧାତକୀ ।

ଧାବଲ୍ୟ—ବି.(ଧବଲ+ଭା.ଯ)ଧବଳତା ।

ଧାବା—ଗ୍ରା. ବି. ( ଧାବ୍‌ଧାତୁ ) ଶତ୍ରୁଙ୍କ ଧାବନ, ଚଢ଼ଉ, ଶତ୍ରୁପ୍ରତି ଆକ୍ରମଣ ।

ଧାବାକରିବା—ଗ୍ରା.କ୍ରି. ପଛରେ ଗୋଡ଼ା-ଇବା ।

ଧାବିତ—ପୁଂ. ବିଂ. ( ଧାବ୍+କ. ତ ) ଦଉଡ଼ିଥିବା, (ଧାବ୍+ର୍ମ.ତ) ଧୌତ, ପରିଷ୍କୃତ, (ସ୍ତ୍ରୀ) ଧାବିତା ।

ଧାବିବା—ଗ୍ରା. ପଦ୍ୟ. ( ସଂ-ଧାବ୍‌ଧାତୁ ) ଦଉଡ଼ିବା ।

ଧାମ—ପୁଂ. ବି. (ଧା+କ.ମନ୍) ଗଣ-ଦେବତାବିଶେଷ, ବିଷ୍ଣୁ, ବ୍ରହ୍ମା, କୁମା-ରିକାଖଣ୍ଡ ମୈକିଗୋତ୍ରୀୟ ଜଣେ ରାଜା, (କ୍ଲୀ) ଗୃହ, ସ୍ଥାନ, ଆଧାର, ଠିକଣା, ଅଷ୍ଟପଦ, ଦେହ, ସ୍ୱର୍ଗ, ପଦ, ଟେଜବ, ମହତ୍ତ୍ୱ. ପ୍ରତାପ, ଜ୍ୟୋତିଃ, ଦୀପ୍ତି, ରଶ୍ମି, ଆଲୋକ, ମର୍ଯ୍ୟାଦା, ଅହଂକାର, ବୀରତ୍ୱ, ପଲ୍ଲୀଗ୍ରାମ, ପରି-ଚୟ, ଏକପ୍ରକାର ବାଉଁଶ, ସୈନ୍ୟ, ଦଳ, ଗୀତ, ପରିବାରର ବ୍ୟକ୍ତି, ପାରି-ବାରିକ ବିଷୟ, ଅବସ୍ଥା, ଗତି, ବିଧି, ନିୟମ, ଲଗାମ, ଶୋଭା, ଦେବସ୍ଥାନ, ପୀଠ, ତୀର୍ଥସ୍ଥାନ,ଛଡ଼ଦେବାଲି, ପାଚରି, ପରଲୋକ, ବେଢ଼ି, ଶୃଙ୍ଖଳ, ଜନ୍ମ ।

ଧାମକ—ପୁଂ. ବି. ( ଧାମନ୍+କ ) ୧୫ ଗ୍ରେନ୍, ୧ ତୋଳାର ୧୬ ଭାଗରୁ ଏକ-ଭାଗ, ୧ ମଷା ପରିମାଣ ।

ଧାମକେଶୀ—ପୁଂ. ବି. ( ରୂପକ-କ.ଧା ) ସୂର୍ଯ୍ୟ ।

ଧାମଚ୍ଛଦ—ପୁଂ. ବି. ନୂତନତାର ପୂରକ ।

ଧାମଣ—ଗ୍ରା. ବି. ବୃହତ୍ ଅରଣ୍ୟ ତରୁ-ବିଶେଷ,ଧନୁବୃକ୍ଷ,ଢାମଣ,(ପର୍ଯ୍ୟାୟ—ଧାମନ,ରୈକୁସୁମ,ଧନୁର୍ବୃକ୍ଷ) ଢେମଣା. ଢାମଣାସାପ ।

ଧାମତାରି—ମଧ୍ୟପ୍ରଦେଶ ରାୟପୁର ଜିଲ୍ଲାର ପ୍ରଧାନ ସହର ।

ଧାମଧା—ଗ୍ରା. ପୁଂ. ବି. ପାଳକ, ସୃଷ୍ଟି-କର୍ତ୍ତା, ରକ୍ଷକ ।

ଧାମନଗର—ବାଲେଶ୍ୱର ଜିଲ୍ଲାର ଗୋଟିଏ ପରଗଣା ଓ ଗ୍ରାମ,୨୪ ପରଗଣାନ୍ତର୍ଗତ ରାୟପୁର ଜିଲ୍ଲାର ବା ଉପବିଭାଗର ଗୋଟିଏ ଗ୍ରାମ ।

ଧାମନାର—ରାଜପୁତାନାନ୍ତର୍ଗତ ନିମଚ ନଗରର ୨୦ କ୍ରୋଶ ଦକ୍ଷିଣ ପୂର୍ବେ ଅବସ୍ଥିତ ପର୍ବତ ।

ଧାମନିକ—ତ୍ରି. ବିଂ. ( ଧାମନୀ+ଇକ ) ଧମନୀ ସମ୍ବନ୍ଧୀୟ, (ସ୍ତ୍ରୀ) ଧାମନିକୀ ।

ଧାମନିକା—ସ୍ତ୍ରୀ. ବି. ଧାମନୀ ।

ଧାମନିଧି—ପୁଂ. ବି. (୬ତତ୍) ସୂର୍ଯ୍ୟ ।

ଧାମନୀ—ସ୍ତ୍ରୀ. ବି. (ଧମନୀ+ଈ) ଧମନୀ, ନାଡ଼ୀ ।

ଧାମରା—ଗ୍ରା. ବି. ଓଡ଼ିଶା ଉପକୂଳର ପ୍ରାଚୀନ ବନ୍ଦରବିଶେଷ ଓ ନଦୀବିଶେଷ ।

ଧାମରାଇ—ଗ୍ରା. ବି. ଧାମରା ମୁହାଣ ନିକ-ଟରେ ପ୍ରତିଷ୍ଠିତା ଦେବୀବିଶେଷ ।

ଧାମଭାକ୍—ପୁଂ. ବି. ଯଜ୍ଞସ୍ଥାନ ଭାଗୀ ଦେବତା ।

ଧାମଶଃ—ଅବ୍ୟ. ସ୍ଥାନେ ସ୍ଥାନେ ।

ଧାମା—ଗ୍ରା. ବି. ଗୋରୁ କୁଣ୍ଡାପାଣି ଖାଇ-ବାର ବାଉଁଶ ନିର୍ମିତ ପାତ୍ର, ଡ଼ମା, ଟୋକେଇ, ବେତ ବା ବାଉଁଶ ନିର୍ମିତ ପାତ୍ରବିଶେଷ ।

ଧାମାର୍ଗବ—ପୁଂ. ବି. ଅପାମାର୍ଗ, ଅପ-ମାରଙ୍ଗ, ମହାକାଳ, ଘୋଷାଲତା (ବନ୍ୟଲତାବିଶେଷ),ନ.କ୍ଲୀ ଅପାମାର୍ଗ) ।

ଧାମି—ପଞ୍ଜାବ ଗଭର୍ଣ୍ଣମେଣ୍ଟ ଅଧୀନସ୍ଥ ଗୋଟିଏ ପାର୍ବତୀୟ ରାଜ୍ୟ ।

ଧାମିବା—ଗ୍ରା.ପଦ୍ୟ. କ୍ରି.(ସଂ-ଧାବ୍‌ଧାତୁ) ଧାଇଁବା । [ ସ୍ଥାନ ।

ଧାମେକ—କାଶୀର ନିକଟବର୍ତ୍ତୀ ବନ-

ଧାମୋନ—ମଧ୍ୟପ୍ରଦେଶ ସାଗର ଜିଲ୍ଲାର ଗୋଟିଏ ନଗର । [ କର୍ତ୍ତ୍ରୀ ।

ଧାୟ—ତ୍ରି. ବିଂ. (ଧା+କ.ଅ) ଧାରଣ-

ଧାୟୁଃ—ପୁଂ. ବିଂ. ( ଧା+କ.ଅସ୍ ) ଧାରଣକର୍ତ୍ତା, (ସ୍ତ୍ରୀ) ଧାୟୁସୀ ।

ଧାସ୍ତୁଁ—ଗ୍ରା. ବି. ପଖୋଳ ମୃଦଙ୍ଗଆଦିର ବାଆଁ ପାଖର ମୁହଁରେ ମଡ଼ାଯାଇଥିବା ଚମଡ଼ା ଓ ତହିଁରୁ ନିଃସୃତ ଶବ୍ଦ ।

ଧାସ୍ନୁ—ତ୍ରି. ବିଂ. ଧାରକ । [ ଋଦ୍ଧିକ୍ ।

ଧାଯ୍ୟ—ପୁଂ. ବି. (ଧା+କ. ଯ) ପୁରୋହିତ,

ଧାଯ୍ୟା—ସ୍ତ୍ରୀ. ବି. (ଧାଯ୍ୟ+ଆ) ଅଗ୍ନି ଜଳାଇବାର ମନ୍ତ୍ର ।

ଧାର—ତ୍ରି. ବିଂ. ( ଧା+କ. ଅ ) ଯେ ଧରେ, ଧାରଣକାରୀ, ଯେ ବୋହିନିଏ, ପ୍ରବାହିତ, ଗମ୍ଭୀର, ଟାଙ୍ଗିଆ, ବି; (ଧା+ର୍ମି.ଅ) ଋଣ, ଶେଷସୀମା, ଅସ୍ତ୍ରାଦିର ତୀକ୍ଷ୍ଣାଂଶ, ଦାଢ଼, ଧାର, ତୀକ୍ଷ୍ଣତା, ପ୍ରାଖର୍ଯ୍ୟ ଦ୍ରବ୍ୟବସ୍ତୁର ଅବିରଳ ଜଳାଦି ଧାର, ବୃଷ୍ଟିଜଳ, ଏକପ୍ରକାର ପଥର, ଗମ୍ଭୀରତା ନଦୀ ବା ଖାଲର ଉଚ୍ଚ ତଟ, ଅଡ଼ଡ଼ା, ତରଙ୍ଗ, ବିଷ୍ଣୁଙ୍କର ଏକ ନାମ, ଗମ୍ଭୀର-ସ୍ଥାନ, ଜୋରରେ ପାଣି ବରଷିବା, ମୂଷଳ ଧାରରେ ବର୍ଷା, ଜଳାଶୟାଦିରେ ଏକତ୍ର ହୋଇଥିବା ବର୍ଷାଜଳ, ପ୍ରାନ୍ତ, ପ୍ରଦେଶ, (ଗ୍ରା. ବିଂ ସଂ-ଧାରା) ନଦୀସ୍ରୋତ ଖରାଦିନେ ନଦୀଜଳର ପ୍ରବାହିତ ସ୍ରୋତ, ଉଧାର, ବିନା ସୁଧରେ ଟଙ୍କାଦି କରଜ, ପିମ୍ପୁଡ଼ି ପ୍ରଭୃତିଙ୍କ ଏକତ୍ର ଧାଡ଼ିହୋଇ ଯାଉଥିବା ରେଖା, (ପ୍ରା. ଯାଜପୁର, ବି) ତାଳବାହୁଙ୍ଗାର ଭିତର ଅଂଶରୁ କାଢ଼ିହିବା ଲଇ ।

ଧାରଉଧାର—ଗ୍ରା. ବି. (ସହଚର) କରଜ-ଦାସ, ଦେଣା, ଋଣଧନ ବା ଦ୍ରବ୍ୟାଦିର ଋଣ ।

ଧାରକ—କ୍ଲୀ. ବି. (ଧୃ+କ. ଅକ) କଳସ, ପାତ୍ର, ଆଧାର, (ପୁଂ) ଅଧମର୍ଣ୍ଣ, ଖାତକ, ଝାଡ଼ା ବାନ୍ଧିବା ଔଷଧ, ( ପୁଂ. ବିଂ ) ଧାରଣକର୍ତ୍ତା, ବହନକାରୀ, ଋଣଗ୍ରସ୍ତ, ଧାରୁଆ, ଯେ ପୁରାଣ ପାଠକର ଭ୍ରମ ଦେଖାଏ, ଯେ ବା ଯାହା ଅଟକାଏ, (ସ୍ତ୍ରୀ) ଧାରିକା ।

ଧାରକତା—ସ୍ତ୍ରୀ. ବି. ( ଧାରକ+ଭାବାର୍ଥେ. ତା) ଧାରକର କାର୍ଯ୍ୟ, ପୁରାଣାଦି ପାଠ କାଳେ ପାଠକର ଭ୍ରମ-ଦୂରୀକରଣାର୍ଥ ଧାରକର କାର୍ଯ୍ୟ କରିବା. ଭେଦ ନିବାରକତା ।

ଧାରକରଜ—ଗ୍ରା. ବି. (ସମାର୍ଥକସହଚର) ଧାରଉଧାର ଦେଖ ।

ଧାରକରିବା—ଗ୍ରା. କ୍ରି. ଅନ୍ୟାଦିଙ୍କ ଠାରୁ କରିବା, ପଇଜାଇବା, ଋଣକରିବା ।

ଧାରକର୍ଜ୍ଜ—ଋଣଆଦି ।

ଧାରକା—ସ୍ତ୍ରୀ. ବି. (ଧାରକ+ଆ) ଯୋନି ।

ଧାରଙ୍ଗ—ଗ୍ରା. ବି. (ବୈଦ୍ୟକ) ବୃକ୍ଷବିଶେଷ

ଧାରଣ—କ୍ଲୀ. ବି. ( ଧୃ+ଣିଚ୍+ଭା. ଅନ) ଧରିବା, ଗ୍ରହଣ, ଅବଲମ୍ବନ, ପରିଧାନ, ସେବନ, ନିବାରଣ, ବହନ, ସ୍ଥାପନ, ପରିଗ୍ରହ, ରକ୍ଷଣ, ପାଳନ, ସଂଯମନ, ସହନ, ଋଣଗ୍ରହଣ, ଧାରଣା ଦେଖ, (ପୁଂ) କଶ୍ୟପ ପୁତ୍ର ନାଗବିଶେଷ ।

ଧାରଣକ—ପୁଂ. ବି. ଋଣୀ, ଅଧମର୍ଣ୍ଣ, ଯେ ଧାରଣ କରେ ।

ଧାରଣକରିବା—ଗ୍ରା. କ୍ରି. ଅଙ୍ଗରେ ଧରିବା, ପିନ୍ଧିବା, ବହନ କରିବା, ସମ୍ଭାଳିବା, ସଂଯମ କରିବା, ଅବଲମ୍ବନ କରିବା ।

ଧାରଣାଯନ୍ତ୍ର—କ୍ଲୀ. ବି. ତନ୍ତ୍ରୋକ୍ତପୂଜାଙ୍ଗ ଯନ୍ତ୍ରବିଶେଷ ।

ଧାରଣା—ସ୍ତ୍ରୀ. ବି. (ଣିଜନ୍ତ ଧୃ+ଭା. ଅନ+ଆ) ନିର୍ଦ୍ଧାରଣ, ସ୍ଥିରତା, ନିଶ୍ଚୟ, ଲମ୍ବକ, ସିଦ୍ଧାନ୍ତ, ସ୍ମରଣ ରଖିବା, ସ୍ଥୈର୍ଯ୍ୟ, ବୁଦ୍ଧି, ନ୍ୟାଯ୍ୟ ପଥରେ ସ୍ଥିତ, ବିଶ୍ୱାସ, ବିଶଦ ଜ୍ଞାନ, ମେଧା, ସଂସ୍କାର, ଅବରୋଧ, ଅଧ୍ୟବସାୟ, ଅଦ୍ୱିତୀୟ ବ୍ରହ୍ମରେ ଅଭିନିବେଶ, ଯୋଗାଙ୍ଗବିଶେଷ, (ଗ୍ରା. ବି) ଠେକ, ସହାୟ, ରେଖା, ଗାର, ବନ୍ଧନୀବିଶେଷ, ଆଡ଼ଧାରଣା, (ପ୍ରା. ପୁରୀ) ପୋଲରେ ଥିବା ବାଉଁଶବାଡ଼, ଦେବତାଙ୍କ ନିକଟରେ ଅଧାପଡ଼ିବା ।

ଧାରଣାକରିବା—ଗ୍ରା. କ୍ରି. ନିର୍ଦ୍ଧାରଣ କରିବା, ସ୍ଥିରକରିବା, ମନରେ ଚିତ୍ର ଅଙ୍କନ କରିବା, ଚିତ୍ତର ଏକାଗ୍ରତା ସମ୍ପାଦନ କରିବା, କଳ୍ପନାକରିବା ।

ଧାରଣାଦେବା—ଗ୍ରା. କ୍ରି. ଦେବତାଙ୍କ ନିକଟରେ ଅଧା ପଡ଼ିବା, କୌଣସି ବ୍ୟକ୍ତି ପାଖରେ ଅଳିକରି ପଡ଼ି ରହିବା ।

ଧାରଣାବାନ୍—ପୁଂ. ବିଂ. (ଧାରଣା+ବତ୍) ମେଧାବୀ, ସ୍ମରଣଶକ୍ତିବିଶିଷ୍ଟ, ( ସ୍ତ୍ରୀ ) ଧାରଣାବତୀ ।

ଧାରଣାଶକ୍ତି—ବି. (ତତ୍ପୁ ବା ରୂପକ) ମେଧା, ସ୍ମରଣ ଶକ୍ତି, ସଙ୍କଟ କାଳେ ଧୈର୍ଯ୍ୟ ସମ୍ଭାଳିବା ଶକ୍ତି ।

ଧାରଣୀ—ସ୍ତ୍ରୀ. ବି. ( ଧୃ+ଣିଚ୍+ଅନ୍+ଈ) ନାଡ଼ୀ, ଶ୍ରେଣୀ, ଯନ୍ତ୍ର, କବଚ, ମନ୍ତ୍ରବିଶେଷ, (ଗ୍ରା. ବିଂ) ଧାରଣକର୍ତ୍ତ୍ରୀ ।

ଧାରଣୀୟ—ତ୍ରି. ବିଂ. ( ଧୃ+ର୍ମି. ଅନୀୟ ) ଧାରଣଯୋଗ୍ୟ, ରକ୍ଷଣୀୟ, ( ସ୍ତ୍ରୀ ) ଧାରଣୀୟା । [ ଦ୍ରବ୍ୟାଦି ।

ଧାରଣୀୟଯନ୍ତ୍ର—କ୍ଲୀ. ବି. ଯନ୍ତ୍ର ଲେଖନ

ଧାରତା—ଗ୍ରା. ବି. ଖାତକ, ଦେଣଦାର, ଅଧମର୍ଣ୍ଣ, ଋଣ, ଯାମିନ ପ୍ରଭୃତି, ବନ୍ଧକ, (ବିଂ) ଧାରୁଆ, ଋଣୀ ।

ଧାରତାବନ୍ଧା—ଗ୍ରା. ବି. ସମ୍ପତ୍ତି ବନ୍ଧକ, (ଗ୍ରା, ବିଂ) ଋଣରେ ଆବଦ୍ଧ ।

ଧାରଦେବା—ଗ୍ରା. କ୍ରି. ବିନା ସୁଧରେ ଟଙ୍କାଦି ଋଣ ଦେବା ।

ଧାରଧାର—ଗ୍ରା. ବିଂ. ଏକାଧିକ ଧାର ବା ସ୍ରୋତବିଶିଷ୍ଟ, (ଗ୍ରା. କ୍ରି. ବିଂ) ଏକାଧିକ ଧାରରେ ।

ଧାରଧାରିବା—ଗ୍ରା. କ୍ରି. ଋଣଗ୍ରସ୍ତହେବା, ଋଣ ପାଇଁ ଆବଦ୍ଧ ରହିବା, (ଲ. ଅର୍ଥ) କୌଣସି ବ୍ୟକ୍ତି ସହିତ ସମ୍ପର୍କ ରଖିବା

ଧାରନେବା—ଗ୍ରା. କ୍ରି. ଅନ୍ୟଠାରୁ ଋଣ କରିବା ।

ଧାରମିକ—ଗ୍ରା. (ପଦ୍ୟ) ବିଂ. ଧାର୍ମିକ ଦେଖ

ଧାରଯ—ଗ୍ରା. ବିଂ. (ସଂ-ଧାର୍ଯ୍ୟ) ଧାର୍ଯ୍ୟ ଦେଖ ।

ଧାରଣ—ପୁଂ. ବିଂ. ଧାରକ ।

ଧାରୟିତ୍ରକବି—ତ୍ରି. ବିଂ. କବିମାନଙ୍କର ଧାରଣକାରୀ, ଜୟଶାଳୀ ।

ଧାରୟିଜନ୍ତ—ବିଂ. ଆଦିତ୍ୟଙ୍କର ନାମାନ୍ତର

ଧାରୟିତା—ପୁଂ. ବିଂ. (ଧୃ+ଣିଚ୍+କ. ତୃ) ଧାରକ, ଧାରଣକର୍ତ୍ତା, (ସ୍ତ୍ରୀ) ଧାରୟିତ୍ରୀ ।

ଧାରୟିତବ୍ୟ—ବି. ବି°. ଧାରଣଯୋଗ୍ୟ,
ସହମାସ୍ୟ । [କର୍ତ୍ତ୍ରୀ ।
ଧାରୟିତ୍ରୀ—ସ୍ତ୍ରୀ.ବ.ପୃଥିବୀ,(ବି°)ଧାରଣ-
ଧାରୟିଷ୍ଣୁ—ପୁଂ.ବି°.(ଧୃ+ଣିଚ୍+ଇଷ୍ଣୁ)
ଯେ ଧାରଣ କରଅଛି, ଧାରଣଶୀଳ,
ଯେ ଧାରଣ କରିପାରେ । [କାଦ ।
ଧାରବାଡ଼—ବି.ବି°. ସ୍ରୋତଧାରକ ଛିଦ୍ର-
ଧାରା—ସ୍ତ୍ରୀ. ବ. (ଧୃ+ଣିଚ୍+ଭା.ଅ
+ଆ) ଦ୍ରବ ବସ୍ତୁର ଅନବରତ କ୍ଷରଣ
ବା ସ୍ରାବ, ପ୍ରବାହ, ବର୍ଷାର ଅସର,
ବୃଷ୍ଟି, ରଥଚକ୍ର, ରଥଚକ୍ରର ଚକ୍ର ବା
ଦାଗ, ଝରଣା, ପ୍ରସ୍ରବଣ, ସମୂହ,
ଘୋଡ଼ାଙ୍କର ଗତି, ଯଶଃ, ଅସ୍ତ୍ରର ଦାନ୍ତ,
ପ୍ରାଧାନ୍ୟ, ଶୃଙ୍ଖଳା, କ୍ରମ, ଉତ୍କର୍ଷ,
ଶ୍ରେଣୀ, ଢଙ୍ଗ, ଧାରଣ, ପ୍ରକାର,
ସାଦୃଶ୍ୟ, ପଦ୍ଧତି, ନିୟମ, ପ୍ରକୃତି, ରୀତି,
ପ୍ରଥା, ଆଇନ୍‌ର ପରିଚ୍ଛେଦ, ବିଧି,
ଅଭ୍ୟାସ, ଗଣିତର ପ୍ରଣାଳୀ, ଅଧ୍ୟାୟ,
ପ୍ରକରଣ, ସେନାଦଳର ଅଗ୍ରଭାଗ, ଘଟ-
ତଳସ୍ଥ ଛିଦ୍ର, ଦାକ୍ଷିଣାତ୍ୟର ପ୍ରାଚୀନ
ନଗରବିଶେଷ, (ଅଧି. ଅ.) ଭୋଜ-
ରାଜାଙ୍କ ରାଜଧାନୀ, (ଶ.ଅ) କୌଣସି
ପଦାର୍ଥର ଧାର ବା ସୀମା, ଗଣ୍ଠି,
ହଳଦୀ, ବାକ୍ୟ, ଜନପ୍ରବାଦ, କାନ-
ଅଗ, ପରଛିଦ୍ର, ଛନ୍ଦେଇବାଲା, ଦାଗ,
ରେଖା, ପଂକ୍ତି, ଗିରିଶୃଙ୍ଗ, ।
ଧାରାକଦମ୍ବ—ପୁଂ. ବ. (ଧାରା+କଦମ୍ବ)
ସ୍ୱନାମ ପ୍ରସିଦ୍ଧ କଦମ୍ବବୃକ୍ଷବିଶେଷ ।
ଧାରାକୋଟ—ମାନ୍ଦ୍ରାଜ ଗଞ୍ଜାମଜିଲ୍ଲା ଋଷି-
କୂଲ୍ୟା ନଦୀ ତୀରସ୍ଥ ଆସ୍କାର ୮ କୋଶ
ଦୂରେ ଅବସ୍ଥିତ ରାଜ୍ୟବିଶେଷ ।
ଧାରାକ୍ରମେ—ଗ୍ରା.କ୍ରି.ବି°. ପୂର୍ବ ପ୍ରଚଳିତ
ରୀତି ବା ପ୍ରଥାନୁସାରେ ।
ଧାରାଗୃହ—କ୍ଲୀ.ବ. (ମଧ୍ୟ-କ.ଧା) ଯେଉଁ
ଘରେ ସ୍ନାନ କରିବାପାଇଁ ଜଳଧାରା
ପଡ଼ିବାର ବ୍ୟବସ୍ଥା ହୋଇଅଛି ।
ଧାରାଙ୍କୁର—ପୁଂ. ବ. (୬ତତ୍) ଶୀକର,
ଘନୋପଳ, ନୀହାର, ରଣକ୍ଷେତ୍ରରେ
ଅଗ୍ରବର୍ତ୍ତୀ ସୈନ୍ୟ, ବର୍ଷାଟୋପା, କରକା,
ସରଳ ଗଛର ଅଠା, ଜଳକଣା ।
ଧାରାଙ୍ଗ—ପୁଂ.ବ. (ବ.ବ୍ରୀ) ଖଡ୍ଗ, ଖଣ୍ଡା,
ପ୍ରାଚୀନ ତୀର୍ଥବିଶେଷ ।
ଧାରାଟ—ପୁଂ.ବ.(ଧାରା+ଅଟ+କ.ଅ)
ଚାତକପକ୍ଷୀ, ମେଘ, ଘୋଡ଼ା, ମତ୍ତହସ୍ତୀ ।
ଧାରାଦତ୍ତକରିବା—ଗ୍ରା.(ଗଞ୍ଜାମ) କ୍ରି.
ଦାନକରିବା ।
ଧାରାଧର—ପୁଂ.ବି°. (ଧାରା+ଧୃ+କ.
ଅ) ମେଘ, ଦାଢ଼ୁଆ ଅସ୍ତ୍ର, ଖଡ୍ଗ ।
ଧାରାଧିରୂଢ଼—ବି. ବ. ଶେଷସୀମାରେ
ଅଧିଷ୍ଠିତ ।
ଧାରାନଗରୀ—ବି.ପ୍ରାଚୀନ ମାଳବରାଜ୍ୟର
ରାଜଧାନୀ ।
ଧାରାନିପାତ—ବ.(୬ତତ୍)ମୁଷଳଧାରାରେ
ବର୍ଷା, ଦୁମୁକାଣି, ଅବିରଳ ଜଳଧାରା
ବର୍ଷାହେବା ।
ଧାରାନୁଯାୟୀ—ଗ୍ରା. ବି°. (ଧାରା+ଅନୁ-
ଯାୟୀ) ଧାରା ବା ନିର୍ଦ୍ଦିଷ୍ଟ ରୀତି ଅନୁ-
ସାରେ କରାଯିବା (କର୍ମ) ।
ଧାରାନ୍ତରଚର—ପୁଂ. ବ. ଧାରାର ମଧ୍ୟେ
ଭ୍ରମଣକାରୀ ।
ଧାରାପାତ—ପୁଂ.ବ.(୬ତତ୍)ଜଳଧାରାର
ପତନ, ଗଣିତ ସମସ୍ୟା ସାଧନପାଇଁ
ସହଜ ପ୍ରଣାଳୀବିଶେଷ ।
ଧାରାପୁରମ୍—ମାନ୍ଦ୍ରାଜ କୋୟମ୍ବାଟୋର
ଜିଲ୍ଲାର ଅନ୍ତର୍ଗତ ଗୋଟିଏ ତାଲୁକା
ଓ ନଗର ।
ଧାରାପୁଷ୍ପ—କ୍ଲୀ.ବ. ଅପୂପଭେଦ ।
ଧାରାଫଳ—ପୁଂ.ବ. (ବ.ବ୍ରୀ) ମଦନବୃକ୍ଷ
ଧାରାବତ୍—ବି°. (ଧାରା+ବତ୍) ଧାରା-
ବିଶିଷ୍ଟ, ଜଳବତ୍, ଧାରାଳ ଦେଖ ।
ଧାରାବନ—ପୁଂ.ବ. (ଧାରା+ବନ୍+କ.
ଇ) ପବନ । [ମେଘ ।
ଧାରାବର—ପୁଂ. ବ. (ଧାରା+ବୃ+ଅ)
ଧାରାବର୍ଷ—ପୁଂ. ବ. ଅବିଚ୍ଛେଦ ରୂପେ
ବର୍ଷଣ ।
ଧାରାବର୍ଷଣ—କ୍ଲୀ.ବ. (ମଧ୍ୟ-କ.ଧା)କ୍ରମା-
ଗତ ବୃଷ୍ଟି, ଅବିଚ୍ଛେଦ ବର୍ଷଣ ।
ଧାରାବାହକ—ପୁଂ.ବି°. (ଧାରା+ବହ୍+
ଣକ)ଅବିଚ୍ଛିନ୍ନ, କ୍ରମାଗତ,ସ୍ୱତସଙ୍ଗତ,
ଅବିରଳ ଧାରାରେ ବହୁଥିବା,ନିୟମିତ-
ରୂପେ ସମ୍ପାଦିତ, (ବି)ଧାରାବାହିକତା,
(ସ୍ତ୍ରୀ) ଧାରାବାହିକା ।
ଧାରାବାହୀ—ପୁଂ. ବ. (ଧାରା+ବହ୍+
କ.ଇନ୍)ଧାରାବାହକ,(ସ୍ତ୍ରୀ)ଧାରାବାହିନୀ ।
ଧାରାବିଷ—ପୁଂ. ବ. (ବ.ବ୍ରୀ) ତୀକ୍ଷ୍ଣଖଡ୍ଗ,
ବିଷାକ୍ତ ଶ୍ରେଣୀ, ବକ୍ର ଖଡ୍ଗ ।
ଧାରାଯନ୍ତ୍ର—କ୍ଲୀ.ବ. (୬ତତ୍) ଜଳଯନ୍ତ୍ର,
ପିଚ୍‌କାରୀ ।
ଧାରାଳ—ବି.ବି°. (ଧାରା+ଅସ୍ତି ଅର୍ଥରେ,
ଲ) ତୀକ୍ଷ୍ଣ, ଦାଢ଼ୁଆ, ପ୍ରଖର, ଧାରା-
ବାହିକ, ସ୍ୱତସଙ୍ଗତ । ମାଘ ।
ଧାରାଶ୍ରାବଣ—ବ. (ମଧ୍ୟ-କ.ଧା) ଶ୍ରାବଣ-
ଧାରାଶ୍ରୁ—କ୍ଲୀ.ବ.ଧାରଧାର ହୋଇ ଗଡ଼ୁ-
ଥିବା ଲୋତକଧାର
ଧାରାସମ୍ପାତ—ପୁଂ.ବ. (୬ତତ୍) ଧାରା-
ନିପାତ ଦେଖ ।
ଧାରାସାର—ବ.(ଧାରା+ଆସାର) ଧାରା-
ନିପାତ ଦେଖ ।
ଧାରାସ୍ନୁହୀ—ସ୍ତ୍ରୀ.ବ.ତ୍ରିଧାରାସ୍ନୁହୀ, ତ୍ରିକଣ୍ଟା-
ସିଜୁ, ଲଙ୍କାସିଜୁ ।
ଧାରାସ୍ରାବ—ବ. (୬ତତ୍) ଅବିରତ,
ଧାରାରେ ବହିବା, ଅବିରତ ଧାରାରେ
ବର୍ଷା ।
ଧାରି—ଗ୍ରା.ବ. (ଫ-ଧାରୀ) ଧାଡ଼ି ଦେଖ ।
ଧାରିଣୀ—ସ୍ତ୍ରୀ. ବ. (ଧୃ+ଇନ୍+ଈ)
ଧରଣୀ, ପୃଥିବୀ, ଶିମିଳିଗଛ, ମାଳ-
ବିକାଗ୍ନିମିତ୍ର ନାଟକର ରାଜା ଅଗ୍ନି-
ମିତ୍ରଙ୍କ ରାଣୀ, (ବି°) ଧାରଣକର୍ତ୍ତ୍ରୀ,
(ପୁଂ) ଧାରୀ ।
ଧାରିତ—ବି.ବି°. (ଧୃ+ଣିଚ୍+କ୍ତ)
ଧରା ଯାଇଥିବା, ଧୃତ, ଗୃହୀତ, ସ୍ଥାପିତ,
ଗ୍ରାହିତ, (ସ୍ତ୍ରୀ) ଧାରିତା
ଧାରିବା—ଗ୍ରା.କ୍ରି. (ଫ-ଧୃ ଧାରୁ) ଧାର-
କରିବା, କାଳିକରି ସଉଦା ନେବା,
ଋଣଗ୍ରସ୍ତ ହେବା ।
ଧାରୀ—ପୁଂ.ବି°. (ଧୃ+କ.ଇନ୍) ଯେ
ଧାରଣ କରେ, ଧାରଣକାରୀ, ଋଣୀ,

ଦାଢ଼ୁଆ, (ସ୍ତ୍ରୀ) ଧାରଣୀ, (ବ)ପୀଲୁବୃକ୍ଷ, ଦେଣଦାର୍, ଅଧମର୍ଣ୍ଣ ।
ଧାରୁ—ପୁଂ. ବିଂ. (ଧେ+କ.ରୁ) ପାନ-କାରୀ, ଯେ ପାନକରେ ।
ଧାରୁଆ—ଗ୍ରା.ପୁଂ. ବିଂ. ( ସଂ-ଧୃ ଧାତୁ ) ଋଣୀ, କରଜଦାର୍, ଯେ କାଳରେ ସଉଦା ନିଏ, ଦାଢ଼ୁଆ,(ସ୍ତ୍ରୀ)ଧାରେଈ ।
ଧାରୁପୁର—ଅଯୋଧ୍ୟାର ପ୍ରତାପପୁର ଜିଲ୍ଲାନ୍ତର୍ଗତ ଗୋଟିଏ ପ୍ରଧାନ ଗ୍ରାମ ।
ଧାରେଧାରେ—ଗ୍ରା.ଅବ୍ୟ. କୌଣସି ବସ୍ତୁ ବା ସ୍ଥାନର ପ୍ରାନ୍ତବାଟେ ।
ଧାରୱାର—ବୋମ୍ବାଇ ପ୍ରଦେଶର ଦକ୍ଷିଣେ ମହାରାଷ୍ଟ୍ରର ଅନ୍ତର୍ଗତ ଗୋଟିଏ ଜିଲ୍ଲା ।
ଧାରୋଷ୍ଣ—କ୍ଲୀ.ବି. ( ୭ତତ୍ ) ଦୋହନ ସମୟେ ଧାରାପତିତ ଉଷ୍ଣ ଦୁଗ୍ଧ, (ବିଂ) ଈଷଦୁଷ୍ଣ, ନାତିଉଷ୍ମ ।
ଧାର୍ତ୍ତରାଜ୍ଞ—ପୁଂ.ସ୍ତ୍ରୀ.ଧୃତରାଜ୍ଞଙ୍କ ଅପତ୍ୟ ।
ଧାର୍ତ୍ତରାଷ୍ଟ୍ର—ପୁଂ. ବି. (ଧୃତରାଷ୍ଟ୍ର + ଅପ-ତ୍ୟାର୍ଥେ. ଅ) ଧୃତରାଷ୍ଟ୍ର ରାଜାଙ୍କ ପୁତ୍ର, କଦ୍ରୁପୁତ୍ର, ନାଗପୁତ୍ର, ଗେଡ଼ୀହଂସ, କୃଷ୍ଣବର୍ଣ୍ଣ ଚଞ୍ଚୁ ଓ ଚରଣଯୁକ୍ତ ହଂସ ।
ଧାର୍ତ୍ତରାଷ୍ଟ୍ରପଦୀ—ସ୍ତ୍ରୀ.ବି. ହଂସପାଦୀ ଲତା ।
ଧାର୍ତ୍ତରାଷ୍ଟ୍ରି—ପୁଂ.ବି. ଧୃତରାଷ୍ଟ୍ରଙ୍କ ଅପତ୍ୟ
ଧାର୍ତ୍ତେୟ—ପୁଂ ଓ ସ୍ତ୍ରୀ. ଧୃତାର ଅପତ୍ୟ ।
ଧାର୍ମ—ବିଂ. (ଧର୍ମ + ସମ୍ବନ୍ଧାର୍ଥେ ଅ) ଧର୍ମ ସମ୍ବନ୍ଧୀୟ, ଧର୍ମମୟ ।
ଧାର୍ମପତ—ବିଂ. ଧର୍ମପତ ସମ୍ବନ୍ଧୀୟ ।
ଧାର୍ମପତନ—ବି. ବିଂ. ଧର୍ମପତନଭବ, ଲାଳକ । [ ପତ୍ୟ ।
ଧାର୍ମାୟଣ—ପୁଂ. ସ୍ତ୍ରୀ. ଧର୍ମଙ୍କ ଗୋତ୍ରା-
ଧାର୍ମିକ—ପୁଂ. ବିଂ. (ଧର୍ମ + ଇକ) ଧର୍ମ-ଶୀଳ, ଧର୍ମିଷ୍ଠ, ଧର୍ମର ସତ୍ୟବ୍ରତ,ଧର୍ମର ଅନୁକୂଳ, (ବି. ଧାର୍ମିକତା, ଧାର୍ମିକତ୍ୱ, ଧାର୍ମିକ୍ୟ) (ସ୍ତ୍ରୀ) ଧାର୍ମିକା ।
ଧାର୍ମିକତା—ସ୍ତ୍ରୀ.ବି. (ଧାର୍ମିକ+ତ+ଆ) ଧାର୍ମିକର ଭାବ ।
ଧାର୍ମିକପ୍ରବର—ପୁଂ.ବିଂ.(୭ତତ୍) ଅତ୍ୟନ୍ତ ଧର୍ମଶୀଳ, ଧାର୍ମିକଶ୍ରେଷ୍ଠ ।
ଧାର୍ମିକ୍ୟ—କ୍ଲୀ. ବି. ଧର୍ମାନୁଶୀଳନ ।
ଧାର୍ମିଣ—କ୍ଲୀ. ବି.(ଧାର୍ମିଣ + ଅ) ଧାର୍ମିକ-ସମୂହ, ଧାର୍ମିକଙ୍କର ମିଳନ ।
ଧାର୍ମିଣେୟ—ପୁଂ.ସ୍ତ୍ରୀ. ଧାର୍ମିଣୀଙ୍କ ଅପତ୍ୟ ।
ଧାର୍ଯ୍ୟ—ବି.ବିଂ. (ଧୃ + ର୍ମ.ଯ) ଧାରଣୀୟ, ବହନୀୟ, ସ୍ଥିରୀକାର୍ଯ୍ୟ, ଅବଧାରଣୀୟ, ପିନ୍ଧିବାଯୋଗ୍ୟ, ସ୍ମରଣୀୟ, ସହିବା ଯୋଗ୍ୟ,ପୁଂ.ବି; (ଧା + ଯ) ପୁରୋହିତ-ବସ୍ତ୍ର, (ଗ୍ରା. ବିଂ) ସ୍ଥିରୀକୃତ, ନିର୍ଦ୍ଧାରିତ, ଚିରସ୍ଥାୟୀ ।
ଧାର୍ଯ୍ୟକରିବା—ଗ୍ରା.କ୍ରି.ନିର୍ଦ୍ଧାରଣ କରିବା, ସ୍ଥିରକରିବା, ନିର୍ଦ୍ଧାରିତ କରିବା ।
ଧାର୍ଯ୍ୟଜମା—ଗ୍ରା. ବି. (କଚିରିଆ) ଜମି ଉପରେ ଯେଉଁ ଖଜଣା ନିର୍ଦ୍ଧାରିତ ହୋଇଥାଏ । [ ଭାବ ।
ଧାର୍ଯ୍ୟତ୍ୱ—କ୍ଲୀ.ବି.(ଧାର୍ଯ୍ୟ+ତ୍ୱ) ଧାର୍ଯ୍ୟର
ଧାର୍ଯ୍ୟମାଣ—ବି. ବିଂ. (ଧୃ+ଣିଚ୍+ର୍ମ. ଆନ) ଯାହା ଧୃତ ବା ଗୃହୀତ ହୋଇ-ଅଛି, ଗୃହ୍ୟମାଣ ।
ଧାର୍ଷ୍ଟ(ର୍ଷ୍ଟ୍ୟ)—ବି. (ଧୃଷ୍ଟ + ଭା.ଅ + ଯ) ଧୃଷ୍ଟତା, ପ୍ରଗଲ୍ଭତା, ଔଦ୍ଧତ୍ୟ, ଅବା-ଧ୍ୟତା, ନିର୍ଲଜ୍ଜତା, (ବିଂ) ଧୃଷ୍ଟ ।
ଧାର୍ଷ୍ଟଦ୍ୟୁମ୍ନ—ପୁଂ. ବି. ଧୃଷ୍ଟଦ୍ୟୁମ୍ନର ଅପତ୍ୟ ।
ଧାର୍ଷ୍ଟ୍ୟ—କ୍ଲୀ.ବି.(ଧୃଷ୍ଟ+ଭା.ଯ ) ଧୃଷ୍ଟତା, ପ୍ରଗଲ୍ଭତା, ନିର୍ଲଜ୍ଜତା ।
ଧାର୍ଷ୍ଟିକ—କ୍ଲୀ. ବି. ଧୃଷ୍ଟ ନୃପତିର ପୁତ୍ର-ବିଶେଷ ।
ଧାସ—ଗ୍ରା. ବି. ( ସଂ-ଧ୍ମା ଧାତୁ ) ଉତ୍ତାପ, ନିଆଁ ବା ଖରାର ତେଜ, ( ଲ.ଅର୍ଥ ) ପ୍ରଭାବ । [ ପର୍ବତ ।
ଧାସଃ—ପୁଂ. ବି. ( ଧା+କ. ଅସ୍ )
ଧାସୁଆରୁପା—ଗ୍ରା. ବି. ନିକୃଷ୍ଟ ଧାତୁ-ମିଶ୍ରିତ ରୁପା ।
ଧାସି—ପୁଂ. ବି. ( ଧା+ଅସି ) ଅନ୍ନ, ଧାରଣକାରୀ, ଗୃହ, ବାସ ।
ଧି(ଧାତୁ)—ଧାରଣକରିବା,ଖୁସି କରିବା, ସନ୍ତୁଷ୍ଟ କରିବା, ନିନ୍ଦା କରିବା ।
ଧିଆଇବା—ଗ୍ରା. (ପଦ୍ୟ) କ୍ରି. ( ସଂ-ଧ୍ୟୈ ଧାତୁ ) ଧ୍ୟାଇବା, ଧ୍ୟାନକରିବା, ସର୍ବଦା ଚିନ୍ତାକରିବା, ସ୍ମରଣକରିବା ।
ଧିଆନ—ଗ୍ରା. (ପଦ୍ୟ) ବି. ( ସଂ-ଧ୍ୟାନ ) ଧ୍ୟାନ, ମନନ, ସର୍ବଦା ଚିନ୍ତା କରିବା, ସ୍ମରଣ, ଏକାଗ୍ର ମନୋନିବେଶ ସହକାରେ ଏକାଗ୍ରତା,(ସଂ-ଧି—ବୁଦ୍ଧି+ଓ ଆନ—ଅନ୍ୟ)ଅନ୍ୟ ବିଷୟରେ ବୁଦ୍ଧି ବା ମନ ।
ଧିଆନୀ—ଗ୍ରା. (ପଦ୍ୟ) ବିଂ. (ସଂ-ଧ୍ୟାନୀ) ଧ୍ୟାନୀ, ଧ୍ୟାନମଗ୍ନ ।
ଧିକ୍—ଅବ୍ୟ. (ସଂ-ଧି + ଇକ) ଛି ! ହା ! ଧିକ୍ ! ନିନ୍ଦା, ଭର୍ତ୍ସନା ।
ଧିକ୍ତାନ୍—ଗ୍ରା. ଅବ୍ୟ. (ଧ୍ୱନ୍ୟନୁକରଣ) ମୃଦଙ୍ଗାଦି ବାଦ୍ୟ ଓ ନୃତ୍ୟର ଶବ୍ଦ, ଧେଇତା ତାଧେଇ ।
ଧିକ୍ପାରୁଷ୍ୟ—ବି. ( ଧିକ୍+ପାରୁଷ୍ୟ ) ଭର୍ତ୍ସନା, ଗାଳିମନ୍ଦ ।
ଧିକ—ଗ୍ରା. ଅବ୍ୟ. (ସଂ-ଧିକ୍)ଧିକ୍ ଦେଖ, ନିନ୍ଦିତ, ଘୃଣିତ, ନ୍ୟୂନ, ଊଣା, ଅଳ୍ପ ।
ଧିକଜୀବନ—ଗ୍ରା.ବି.ଘୃଣିତ ବା କଳଙ୍କିତ ଜୀବନ ।
ଧିକବଚନ—ଗ୍ରା. ବି. ଧିକାର ଦେଖ, ଭର୍ତ୍ସନା, ଗାଳିମନ୍ଦ ।
ଧିକାର—ଗ୍ରା. ବି. (ସଂ-ଧିକ୍କାର)ଧିକ୍କାର, ନିନ୍ଦା, ଭର୍ତ୍ସନା, ଘୃଣାଯୁକ୍ତ ବାକ୍ୟ ।
ଧିକଧିକ—ଗ୍ରା.ବି. (ସଂ-ଧିକ୍କାର) ଧିକାର ଦେଖ, (ଗ୍ରା କ୍ରି. ବିଂ.) ଢିକଢିକ, ମୃଦୁଭାବରେ ।
ଧିକମାଜି—ଗ୍ରା. ବିଂ. କହି କହି ବିରକ୍ତ, ବିକବିକାର ।
ଧିକ୍କାର—ପୁଂ. ବି. (ଧିକ୍+କୃ + ଭା.ଅ) ଧିକ୍ଶବ୍ଦ ଉଚ୍ଚାରଣ ପୂର୍ବକ ତିରସ୍କାର, ଭର୍ତ୍ସନାବାକ୍ୟ,ଅବଜ୍ଞା,ଅବଜ୍ଞାପ୍ରଦର୍ଶନ ।
ଧିକ୍କାରିବା—ଗ୍ରା. କ୍ରି. (ସଂ-ଧିକ୍କୃ ଧାତୁ) ଧିକ୍କାର ବଚନ କହିବା, ତୁଚ୍ଛକରିବା, ନିନ୍ଦାକରିବା, (ଲ.ଅର୍ଥ)ଲଜ୍ଜାପାଇବା ।
ଧିକ୍କୃ(ଧାତୁ)—ଧିକ୍କାର କରିବା, ଘୃଣା-କରିବା ।
ଧିକ୍କୃତ—ପୁଂ. ବିଂ. (ଧିକ୍+କୃ+ର୍ମ.କ୍ତ) ଭର୍ତ୍ସିତ, ଅବଜ୍ଞାତ, (ବି—ଧିକ୍+କୃ

+ କ୍ତ.ତ)ଧିକ୍କାର ଦେଖ,(ସ୍ତ୍ରୀ)ଧିକ୍କୃତା ।
ଧିକ୍କୃତ—ବି. ( ଧିକ୍ + କୃତ ) ଧିକ୍କାର ଦେଖ ।
ଧିକ୍କ୍ରିୟା—ସ୍ତ୍ରୀ. ବି.(ମଧ୍ୟ.କ.ଧା)ନିନ୍ଦା, ଧିକ୍କାର ଦେଖ ।
ଧିକ୍ଷ(ଧାତୁ)—ଜଳାଇବା, ଜାଳିବା, ନିଆଁଲଗାଇବା,ବଞ୍ଚିବା, ଅତ୍ୟାଗ୍ରହନ୍ତ ହେବା, କ୍ଳାନ୍ତ ହେବା ।
ଧିଗ୍ବଣ—ବି. ମନୁ ସ୍ମୃତି ଅନୁସାରେ ଉଗ୍ର ବ୍ରାହ୍ମଣପିତା ଓ ଅଯୋଗବୀ ମାତାଠାରୁ ଉତ୍ପନ୍ନ ଚର୍ମକାର ଜାତି ବିଶେଷ ।
ଧିଗ୍ଦଣ୍ଡ—ପୁଂ. ବି. ( କ.ଧା )ଭର୍ତ୍ସନ ରୂପ ଦଣ୍ଡ,ତିରସ୍କାର ରୂପ ଦଣ୍ଡ ।
ଧିଙ୍ଗାସ—ଗ୍ରା. ବି. (ସଂ-ଧିକ୍ ଓ ଭାଷଣ) ଭର୍ତ୍ସନା, ଧିକ୍କାର, ଅପ୍ରୀତି ।
ଧିଙ୍ଗାସକରିବା—ଗ୍ରା.କ୍ରି. (ସଂ-ଧିକାର) ଗାଳିଦେବା, ବକିବା ।
ଧିଙ୍ଗାସିବା—ଗ୍ରା. କ୍ରି. ( ସଂ-ଧିକ୍କାର ) ଗାଳିଦେବା,ଭର୍ତ୍ସନା ବା ଧିକାରକରିବା
ଧିଙ୍ମୂର୍ଖ—ଅବ୍ୟ.(ଧିକ୍+ମୂର୍ଖ)ହେ ମୂର୍ଖ, ତୋତେ ଧିକ୍ ।
ଧିଟ—ଗ୍ରା.ବିଂ.(ସଂ-ଧୃଷ୍ଟ)ଧୃଷ୍ଟ,ଥୋବରା, ନିର୍ଲ୍ଲଜ, କନ୍ଦଖୋର, ଜଗିରିଆ, ଯେ ବାରଂବାର ପ୍ରାର୍ଥନା କରି ବିରକ୍ତିକରେ ।
ଧିଟପଣ—ଗ୍ରା. ବି. ଧୃଷ୍ଟତା, ଯେ ବାରଂବାର ପ୍ରାର୍ଥନାକରି ବିରକ୍ତି କରେ ।
ଧିଟୁଆ—ଗ୍ରା. ବିଂ. ଧିଟ ଦେଖ (ସ୍ତ୍ରୀ) ଧିଟେଇ ।
ଧିଟେଇଲଗିବା—ଗ୍ରା. କ୍ରି. ବାରଂବାର କହି କୌଣସି ବ୍ୟକ୍ତି କୁ ବିରକ୍ତ କରିବା
ଧିଣ୍ଡା—ପ୍ରା. (ଆଠମଲ୍ଲିକ)ପୁଂ.ବିଂ.ଯୁବକ (ସ୍ତ୍ରୀ) ଧିଣ୍ଡୀ ।
ଧିତ୍କାର—ଗ୍ରା. ବି. ( ସଂ-ଧିକ୍କାର ) ଧିକ୍କାର ଦେଖ ।
ଧିତ୍କାରିବା—ଗ୍ରା.କ୍ରି.ଧିକ୍କାରିବା ଦେଖ ।
ଧିତ—କ୍ରି. ବିଂ. ହିତ, ନିହିତ, ବର୍ଦ୍ଧିତ ।
ଧିତି—ସ୍ତ୍ରୀ. ବି. ଧାରଣ । [ ବିଶେଷ ।
ଧିନଧିନ୍—ଗ୍ରା. ବି. ମୃଦଙ୍ଗର ଧ୍ୱନି-
ଧିନତା—ଗ୍ରା. ଅବ୍ୟ. ( ଧ୍ୱନ୍ୟନୁକରଣ ) ନୃତ୍ୟ ଓ ବାଦ୍ୟର ଅନୁକରଣ ଓ ବୋଲ୍ ।
ଧିପ୍ସୁ—ପୁଂ.ବିଂ.ଦମ୍ଭ କରିବାକୁ ଇଚ୍ଛୁକ, ବଞ୍ଚନା କରିବାକୁ ଅଭିଳାଷୀ ।
ଧିମା—ଗ୍ରା. ବିଂ. ଅତିଧୀର, କାର୍ଯ୍ୟରେ ହେଳାଯୁକ୍ତ, ବାଢ଼ିଲା, ସୁସ୍ତୀ, ମନ୍ଦଗତି-ବିଶିଷ୍ଟ, କ୍ଷୀଣ, ନୀଚ (ସ୍ୱର) ।
ଧିମାଚାଳି—ଗ୍ରା. ବି. ଅତି ଧୀରଗତି ।
ଧିମା(ମେ)ଇବା—ଗ୍ରା. କ୍ରି. କୌଣସି କାର୍ଯ୍ୟ ଅତି ବିଳମ୍ବରେ କରିବା, କାର୍ଯ୍ୟରେ ହେଳା କରିବା ।
ଧିୟା—ଗ୍ରା.ବି.ବାଜଣାର ବୋଲି, ନୃତ୍ୟକାଳୀନ ପଦଧ୍ୱନି । [ ଦେବତା ।
ଧିୟାବସୁ—ସ୍ତ୍ରୀ. ବି. ବୁଦ୍ଧିର ଅଧିଷ୍ଠାତ୍ରୀ
ଧିୟାସ୍ପତି—ପୁଂ. ବି. ମଞ୍ଜୁଘୋଷନାମକ ପୂର୍ବ ଜିନ୍‌ବିଶେଷ, ଆତ୍ମା, ବୃହସ୍ପତି ।
ଧିୟାୟୁ—ପୁଂ. ବିଂ. ଆପଣାର ପ୍ରଜ୍ଞାକାମଶୀଳ ।
ଧିରତି—ଗ୍ରା.ପଦ୍ୟ,(ସଂ-ଧୃତି) ଧୈର୍ଯ୍ୟ ।
ଧିରଆଇବା—ପ୍ରା.(ସମ୍ବଲ)କ୍ରି. କୌଣସି ବ୍ୟକ୍ତିକୁ ଠିକ୍‌କରିଦେବି କହି ଧମକାଇବା । [ କରିବା ।
ଧିଷ୍—( ଧାତୁ ) ଶବ୍ଦକରିବା, ପ୍ରଗଲ୍ଭ
ଧିଷଣ—ପୁଂ. ବି. (ଧିଷ୍+କ.ଅନ)ବୃହସ୍ପତି, ବାସସ୍ଥାନ, ଆବାସ,ବ୍ରହ୍ମା, ବିଷ୍ଣୁ
ଧିଷଣା—ସ୍ତ୍ରୀ.ବି. (ଧିଷ୍+କ.ଅନ+ଆ) ବୁଦ୍ଧି, ପୃଥିବୀ, ଜ୍ଞାନ, କଂସା, ପାତ୍ର, ସ୍ତବ, ପ୍ରଶଂସା, ବାକ୍ୟ, ବକ୍ତୃତା, ବାକ୍‌ଶକ୍ତି, ସ୍ଥାନ, ହବିର୍ଦ୍ଧାନଙ୍କ ପତ୍ନୀ ।
ଧିଷଣାଧିପ—ପୁଂ.ବି.(୬ତତ୍) ବୃହସ୍ପତି ।
ଧିଷଣାଧୀଶ—ପୁଂ.ବି.(୬ତତ୍) ବୃହସ୍ପତି ।
ଧିଷଣ୍ୟ—ବିଂ. ଆପଣାର ସ୍ତୁତି ଇଚ୍ଛୁକ ।
ଧିଷ୍ଣ(ଷ୍ଣ୍ୟ)—ବି. (ଧିଷ୍+ର୍ମ.ତ ଥ)ସ୍ଥାନ, ଯଜ୍ଞଶାଳା, ବାସସ୍ଥାନ, ଗୃହ, ବଳ, ନକ୍ଷତ୍ର, ଶୁକ୍ରାଗ୍ନିଧ୍ୟ, ଶୁକ୍ରଗ୍ରହ, ଅଗ୍ନି, ଉଲ୍କା,ଶକ୍ତି,(ବିଂ)ପ୍ରଶଂସାର୍ହ,ପ୍ରଶଂସାର-ପାତ୍ର ।
ଧିଷ୍ଣ୍ୟ—ବି.ଯଜ୍ଞଶାଳା, ଶୁକ୍ରଗ୍ରହ, ଉଲ୍କା, ସ୍ଥାନ, ଗୃହ, ଆସନ, ନକ୍ଷତ୍ର, ଅଗ୍ନି, ଶକ୍ତି, ଶୁକ୍ରାଗ୍ନିଧ୍ୟ ।
ଧିଷ୍ଟ୍ୟ—ବି, ସ୍ଥାନ, ଗୃହ, ଧିଷ୍ଣ୍ୟ ଦେଖ ।
ଧୀ—(ଧାତୁ)ନିଷ୍ପନ୍ନକରିବା, ଶାନ୍ତକରିବା, ଅବଜ୍ଞାକରିବା, ଧାରଣାକରିବା,ଧରିବା ।
ଧୀ—ସ୍ତ୍ରୀ.ବି. ( ଧ୍ୟୈ+ଣ.କ୍ୱିପ୍ ) ବୁଦ୍ଧି, ବୋଧଶକ୍ତି, ଜ୍ଞାନ, ମନ, ଚିନ୍ତା, ମାନସିକ ପ୍ରବେଶ,ଧାରଣା, ଭକ୍ତି,ଯଜ୍ଞ, ଉଦ୍ଦେଶ୍ୟ, ବିଜ୍ଞାନ, ପ୍ରାର୍ଥନା, ସ୍ତବ ।
ଧୀଗୁଣ—ପୁଂ. ବି. ( ୬ତତ୍ ) ଧୀଶକ୍ତି, ବୁଦ୍ଧିଶକ୍ତି, ( ଶୁଶ୍ରୂଷା, ଶ୍ରବଣ, ଗ୍ରହଣ, ଧାରଣ, ଉହ ବା ତର୍କ, ଉପୋହ, ଅର୍ଥବିଜ୍ଞାନ ଓ ତତ୍ତ୍ୱଜ୍ଞାନ ଏହି ଅଷ୍ଟଗୁଣ) ।
ଧୀତ—କ୍ରି. ବିଂ. (ଧେ+ର୍ମ.ତ) ପୀତ, ଧ୍ୟାତ,ଉପଶାନ୍ତ,ଆରାଧିତ,ଅନାଦୃତ ।
ଧୀତି—ସ୍ତ୍ରୀ. ବି. (ଧେ+ଭା.ତି) ପିପାସା, ଶୋଷ, ପାନ, ପିଇବା, ଭାବ, ଧାରଣା, ଭକ୍ତି, ଅପମାନ, ଅବଜ୍ଞା, ଆରାଧନା ।
ଧୀଦା—ସ୍ତ୍ରୀ. ବି. (ଧୀ+ଦା+ଅ+ଆ) କୁମାରୀ, କନ୍ୟା, ଝିଅ, ବୁଦ୍ଧି, ଜ୍ଞାନ ।
ଧୀଦା—ସ୍ତ୍ରୀ. ବି. (ଧୀ+ଦା+କ.ଅ+ଆ) କନ୍ୟା, ମନୀଷା । [ ଜ୍ଞାନ ।
ଧୀନ୍ଦ୍ରିୟ—କ୍ଲୀ.ବି. (୬ତତ୍)ଜ୍ଞାନେନ୍ଦ୍ରିୟ ।
ଧୀପତି—ବି.(୬ତତ୍)ସୁରଗୁରୁ ବୃହସ୍ପତି ।
ଧୀବର—ପୁଂ. ବି. ( ଧୀ+କ.ବର ) କୈବର୍ତ୍ତ, ଜାଲିଆ, କେଉଟ, ଲୌହ, ଦାସ, ସେବକ, କୃଷ୍ଣକାୟ ବ୍ୟକ୍ତି, (ସ୍ତ୍ରୀ) ଧୀବରୀ ।
ଧୀବରକ—ପୁଂ. ବି. ଧୀବର, ଜାଲିଆ, ଧୀବର ଦେଖ ।
ଧୀବରୀ—ସ୍ତ୍ରୀ.ବି. (ଧୀବର+ଈ) କେଉଟୁଣୀ, ମାଛଧରିବା ତେଣ୍ଟା, ଖାଲେଇ ।
ଧୀବା—ପୁଂ.ବିଂ.(ଧୃ+କ.ବନ୍)ଧୀବର, କେଉଟ, (ସ୍ତ୍ରୀ) ଧୀବରୀ ।
ଧୀମତି(ତୀ)—ସ୍ତ୍ରୀ.ବିଂ. (ଧୀ+ମତ୍+ଈ) ବୁଦ୍ଧିମତୀ । [ ମନ୍ତ୍ରୀ ।
ଧୀମନ୍ତ୍ରୀ—ବି.(ଧୀ+ମନ୍ତ୍ରୀ)ପରାମର୍ଶଦାତା,
ଧୀମାନ୍—ପୁଂ.ବିଂ.(ଧୀ+ମତ୍)ବୁଦ୍ଧିମାନ୍, ଜ୍ଞାନୀ, ବିଦ୍ୱାନ୍, (ବି) ବୃହସ୍ପତି, (ସ୍ତ୍ରୀ) ଧୀମତୀ ।

ଧୀମାଲ—ଦାର୍ଜିଲିଂ ଓ ନେପାଳର ତରାଇବାସୀ ଏକ ଜାତି ।

ଧୀର୍—ଗ୍ରା.କ୍ରି. ବିଂ. (ସଂ-ଧୀରଂ) ଧୀରେ ଦେଖ ।

ଧୀର୍‌ଧୀର୍—ଗ୍ରା.କ୍ରି.ବିଂ.(ସଂ-ଧୀରଂଧୀରଂ) ଧୀରେ ଧୀରେ (ଦେଖ), (ବିଂ) ମନ୍ଦଗତିବିଶିଷ୍ଟ, ଅନୁଚ୍ଚ ସ୍ୱରଯୁକ୍ତ ।

ଧୀର—ପୁଂ. ବି. ( ଧୀ+ରା+କ.ଅ ) କାବ୍ୟାଦିର ନାୟକ ମାନଙ୍କର ଶ୍ରେଣୀବିଶେଷ, ଜଫ୍ରାନ୍, କୁଙ୍କୁମ, ସମୁଦ୍ର, ଋଷଭ ନାମକ ଔଷଧି ଗୁଳ୍ମ, ଚିଦାତ୍ମା, ବଳିରାଜା, ବୁଦ୍ଧଦେବ, (ବିଂ) ଧୈର୍ଯ୍ୟଶାଳୀ, ସହିଷ୍ଣୁ, ପଣ୍ଡିତ,ବିଦ୍ୱାନ୍,ସାହସୀ, ସମର୍ଥ, ବୁଦ୍ଧିମାନ୍,ଅଧ୍ୟବସାୟୀ,ଗମ୍ଭୀର, ଅନୁଦ୍ଧତ, ଶାନ୍ତ,ସ୍ଥିର,ଅଟଳ,ବିଳମ୍ବିତ, ଅଦ୍ରୁତ, ମନୋହର, ଅଳସୁଆ, ସୁସ୍ଥି, ସାରବାନ୍, ଅନୁଚ୍ଚ ସ୍ୱରଯୁକ୍ତ, ଦୂର ଦୃଷ୍ଟିଯୁକ୍ତ, କ୍ଷମୀ, ପ୍ରଶାନ୍ତଚେତାଃ, ତେଜସ୍ୱୀ, ଶକ୍ତିଶାଳୀ,ଚତୁର, ଗମ୍ଭୀର, ସୁପରିଚ୍ଛିନ୍ନ, ଏକଜିଦିଆ, ଅଟଳପ୍ରତିଜ୍ଞ, ସ୍ଥାୟୀ, ବହୁକାଳ ସ୍ଥାୟୀ,ଅପର ବର୍ତ୍ତିନାସ୍ଥ,(ସ୍ତ୍ରୀ) ଧୀରା, (ଗ୍ରା.ବି.)କ୍ଷତ୍ରିୟମାନଙ୍କ ଉପାଧିବିଶେଷ ।

ଧୀରଗତି—ବି. ( କ.ଧା ) ଅଦ୍ରୁତଗତି, (ବିଂ—ବ.ବ୍ରୀ) ଧୀରଗମନଶୀଳ ।

ଧୀରଗାମୀ—ପୁଂ. ବିଂ. (ଧୀର+ଗମ୍+କ.ଇନ୍) ଧୀରଗତି,(ସ୍ତ୍ରୀ)ଧୀରଗାମିନୀ ।

ଧୀରଗୋବିନ୍ଦଶର୍ମା — ଆଥର୍ବଣରହସ୍ୟ ନାମକ ସଂସ୍କୃତ ଗ୍ରନ୍ଥ ରଚୟିତା ।

ଧୀରଚେତାଃ—ପୁଂ.ବିଂ. (ବ.ବ୍ରୀ) ଦୃଢ଼ପ୍ରତିଜ୍ଞ, ସାହସୀ, ପ୍ରଶାନ୍ତ ।

ଧୀରତା—ବି. (ଧୀର+ଭା.ତା) ଧୈର୍ଯ୍ୟ, ସାହସ. ଚିତ୍ତର ସ୍ଥିରତା ବା ଦୃଢ଼ତା, ସହିଷ୍ଣୁତା, ଗାମ୍ଭୀର୍ଯ୍ୟ, ପାଣ୍ଡିତ୍ୟ, ଅଚାଞ୍ଚଲ୍ୟ, ସନ୍ତୋଷ ।

ଧୀରତି—ଗ୍ରା.ପଦ୍ୟ.ବି.(ସଂ-ଧୃତି)ଧୈର୍ଯ୍ୟ ।

ଧୀରତ୍ୱ—କ୍ଲୀ.ବି. ଧୀରତା ଦେଖ ।

ଧୀରଦେବ—ଉତ୍ତର ପଶ୍ଚିମ ପ୍ରଦେଶ ବଲିଆ ଜିଲ୍ଲାର ଜଣେ ପ୍ରଧାନ ରାଜା ।

ଧୀରନାୟକ—ବି. କାବ୍ୟାଦିରେ ବର୍ଣ୍ଣିତ ସାହସୀ ନାୟକବିଶେଷ ।

ଧୀରପତ୍ରୀ—ସ୍ତ୍ରୀ.ବି. ଧରଣୀକନ୍ଦ, (ବିଂ) ମନୋହର ପତ୍ରଯୁକ୍ତ ।

ଧୀରପ୍ରଶାନ୍ତ—ପୁଂ.ବି. (କ.ଧା) ବହୁବିଧ ସାମାନ୍ୟ ସୁଗୁଣବିଶିଷ୍ଟ ନାୟକ,ସାହସୀ ଓ ପ୍ରଶାନ୍ତ ନାୟକ ।

ଧୀରବନ୍ତ— ଗ୍ରା. ପ୍ରାଚୀନପଦ୍ୟ. ବିଂ. ଧୀର ଦେଖ ।

ଧୀରଲଳିତ—ପୁଂ.ବି. (ଧୀର+ଲଳିତ) (କ.ଧା)ନାୟକବିଶେଷ,ଯେଉଁ ନାୟକ ଚିନ୍ତାଶୂନ୍ୟ, ନମ୍ର ଓ ନୃତ୍ୟଗୀତାଦିରେ ଅନୁରକ୍ତ ।

ଧୀରଲଳିତା—ସ୍ତ୍ରୀ.ବି.(କ.ଧା) ଷୋଡ଼ଶାକ୍ଷର ଛନ୍ଦୋବିଶେଷ, ଚିନ୍ତାଶୂନ୍ୟ, ନମ୍ର ଓ ନୃତ୍ୟଗୀତାଦିରେ ଅନୁରକ୍ତ ।

ଧୀରସିଂହ--ଭବିଷ୍ୟବ୍ରହ୍ମଖଣ୍ଡନାମକ ସଂସ୍କୃତ ଗ୍ରନ୍ଥ ବର୍ଣ୍ଣିତ ଜଣେ ରାଜା ।

ଧୀରସ୍କନ୍ଧ—ପୁଂ.ବି.(ବ.ବ୍ରୀ)ମହିଷ,ମନ୍ତ୍ରିଶ୍ରେଷ୍ଠ ।

ଧୀରହାମ୍ବିର—ବିଷ୍ଣୁପୁରର ରାଜା ପ୍ରସିଦ୍ଧ ବୀର ହାମ୍ବିରଙ୍କ ପୁତ୍ର ।

ଧୀରା—ସ୍ତ୍ରୀ.ବିଂ. ( ଧୀର+ଆ ) ଧୀରର ସ୍ତ୍ରୀଲିଙ୍ଗ, ଧୀରା, ସ୍ଥିରା, ଧୈର୍ଯ୍ୟଶାଳିନୀ, ବୁଦ୍ଧିମତୀ, ମନୋହାରିଣୀ,(ବି)ନାୟିକାବିଶେଷ, ଯେଉଁ ନାୟିକାର କୋପ ପ୍ରକାଶ ଜଣାଯାଏ ନାହିଁ, ଗୁଳୁଚ, କାକୋଲି, ମହାଜ୍ୟୋତିଷ୍ମତୀ ଲତା, (ଗ୍ରା.କ୍ରି.ବିଂ.)ଧୀରେ,ଆସ୍ତେ,(ଗ୍ରା.ବିଂ.) ଧୀର, ସ୍ଥିର ।

ଧୀରାଜ—ପ୍ରଧାନ ରାଜା, ଅଧିରାଜ ।

ଧୀରାଧୀରା—ସ୍ତ୍ରୀ. ବି. ( କ.ଧା ) ବ୍ୟଙ୍ଗ୍ୟାବ୍ୟଙ୍ଗ୍ୟ କୋପପ୍ରକାଶିକା ନାୟିକାବିଶେଷ, ଯେଉଁ ନାୟିକାର ଅଭିମାନ ସମୟ ସମୟରେ ପ୍ରକାଶ ପାଏ ଏବଂ ସମୟ ସମୟରେ ଅବ୍ୟକ୍ତ ହୁଏ । (ଗ୍ରା.କ୍ରି.ବିଂ)ଧୀରେ ଦେଖ (ସଂ-ଧୀରଂ ଧୀରଂ) । [ ଧୀର, ନିଶ୍ଚଳ ।

ଧୀରନ୍ତ—(ଗ୍ରା.ପ୍ରାଚୀନପଦ୍ୟ. ବିଂ.) ଅତି ଧୀର, ସ୍ଥିର ।

ଧୀରଶା—ସ୍ତ୍ରୀ.ବି. ଶଶପାବୃକ୍ଷ ।

ଧୀରେ—ଗ୍ରା. କ୍ରି.ବିଂ. (ସଂ-ଧୀରଂ) ଧିରେଧିରେ, ଆସ୍ତେ, ଧୀରଭାବରେ, କ୍ରମଶଃ, ଅନୁଚ୍ଚ ସ୍ୱରରେ,କୋମଳତା ସହକାରେ

ଧୀରେନ୍ଦ୍ରପଞ୍ଚାଭିଭୂଷଣ — କୃତ୍ୟକର୍ମଲତା ନାମକ ସଂସ୍କୃତ ଗ୍ରନ୍ଥପ୍ରଣେତା ।

ଧୀରେସୁସ୍ଥେ—ଗ୍ରା.କ୍ରି.ବିଂ.ଧୀରେଧୀରେ, ଆସ୍ତେ ଆସ୍ତେ, କ୍ରମଶଃ, କ୍ରମେ କ୍ରମେ, ଅବସରକ୍ରମେ ।

ଧୀରୋଦାତ୍ତ—ପୁଂ.ବି. ( କ.ଧା ) ଅତ୍ମଶ୍ଲାଘା ବର୍ଜିତ ହର୍ଷ ବା ଶୋକଦ୍ୱାରା ଅନଭିଭୂତ ବିନୟୀ ଓ ଅଙ୍ଗୀକାର ପାଳନରତ ନାୟକ ।

ଧୀରୋଦ୍ଧତ—ପୁଂ.ବି.( କ.ଧା )ମାୟାବୀ, ଉଦ୍ଧତ, ଚଞ୍ଚଳ ଓ ଆତ୍ମଶ୍ଲାଘାବିଶିଷ୍ଟ ନାୟକ ।

ଧୀରୋର—କାଶୀ ଓ ଗୋରଖପୁର ଅଞ୍ଚଳର ଏକଜାତୀୟ ଆହିର ।

ଧୀଶ୍ରେଷ୍ଠୀ—ପୁଂ.ବି. ବିଶ୍ୱଦେବ ଭେଦ ।

ଧୀଲଟି—ସ୍ତ୍ରୀ.ବି.( ଧୀ+ଲଟ୍+କ.ଇ ) ଦୁହିତା, ଝିଅ ।

ଧୀଶକ୍ତି—ସ୍ତ୍ରୀ.ବି. (୬ତତ୍ପୁ,ରୂପକ) ବୁଦ୍ଧି, ବୁଦ୍ଧିଶକ୍ତି, ବୁଦ୍ଧିର ପ୍ରଭାବ ।

ଧୀସଖ—ପୁଂ. ବି. (ଧୀ+ସଖା)(୬ତତ୍ପୁ) ମନ୍ତ୍ରୀ,ଅମାତ୍ୟ,ପରାମର୍ଶଦାତା ।

ଧୀସଚିବ—ପୁଂ. ବି. ( ୬ତତ୍ପୁ ) ମନ୍ତ୍ରଣାନିପୁଣ ମନ୍ତ୍ରୀ, ଅମାତ୍ୟ ।

ଧୀହରା—ସ୍ତ୍ରୀ.ବି.ଏକଜାତୀୟ ମିଷ୍ଟ ପଣସ ।

ଧୂ—ସ୍ତ୍ରୀ.ବି. ( ଧୂ+ଭା.କ୍ୱିପ୍ ) କମ୍ପନ, ଥରିବା ।

ଧୂ(ଧାତୁ)—କମ୍ପିବା, ଥରିବା, ତ୍ୟାଗ କରିବା, ଭର୍ତ୍ସନା କରିବା ।

ଧୂଆ—ଗ୍ରା.ବି.(ସଂ-ଧାବ୍‌ଧାତୁରୁ ଧୌତ) ଧୌତିକରଣ, ଯେଉଁ ପାତ୍ରଆରେ ଧୂଆଧୋଇ କାର୍ଯ୍ୟ ହୁଏ, ଗୀତର ଘୋଷା, ଧ୍ରୁବକ, (ଗ୍ରା.ବିଂ.)ଧୌତ ।

ଧୂଆଇବା--ଗ୍ରା.କ୍ରି.(ଧୋଇବାର ଣିଜନ୍ତରୂପ) ଅନ୍ୟଦ୍ୱାରା ଧୋଇବା କ୍ରିୟା କରାଇବା ।

ଧୂଆଇଁବା—ଗ୍ରା. କ୍ରି. ( ଧୂଆଁବାର-

ଣିକଳ୍ପରୂପ) ଦଉଡ଼ାଇବା, ଧାବମାନ କରାଇବା ।

ଧୂଆଁ—ଗ୍ରା. ବି. (ଧାବ-ଧାତୁ) ଧାଇଁବା, ଦ୍ରୁତଗତି, ଧୂଆଁଇତ୍ୟାଦି ଦେଖ ।

ଧୂଆଁଧୂଇଁ—ଗ୍ରା.ବଂ. ଦୌଡ଼ାଦୌଡ଼ି, ଇତସ୍ତତଃ ଧାଇଁବା,(ଗ୍ରା.ବି) ଦୌଡ଼ିବା ।

ଧୂଆ ଖସାତେଲ—ଗ୍ରା. ବି. ଧୂଆଗିଣି ଓ ଖସାରୁ ଯେଉଁ ତେଲ ବାହାରେ ।

ଧୂଆଚଙ୍ଗୁଡ଼ି—ପ୍ରା. (ସମ୍ବ) ବି. ଶ୍ଳେଷ୍ଟ ଚିଙ୍ଗୁଡ଼ିମାଛ ।

ଧୂଆଧରିବା—ଗ୍ରା. କି. ପାକଆ ଧରି ବାରମ୍ବାର ଗାଇବା,(ଲ.ଅର୍ଥ) କୌଣସି ବିଷୟ ବାରଂବାର କହିବା, କଥିତ ବିଷୟକୁ ସମର୍ଥନ କରିବା ।

ଧୂଆଧୋଇ—ଗ୍ରା. ବି. (ସଂ-ଧାବଧାତୁ) ଦେହାଦିକୁ ଉତ୍ତମରୂପେ ଧୋଇବା କିମ୍ବା, ଗାଧୋଇବା, ସ୍ନାନ, ବସ୍ତ୍ରବାର ଧୋଇବା କର୍ମ ।

ଧୂଆପଖାଳ—ଗ୍ରା.ବି. ଗରମ ଭାତ ଥରେ ଧୋଇ ପୁଣି ପାଣି ପୂରାଇଲେ ଯେଉଁ ପଖାଳ ହୁଏ ।

ଧୂଆପୋଛା—ଗ୍ରା. ବି. ଧୋଇବା ଓ ପୋଛିବା କର୍ମ, ଧୋପଖାଳ ।

ଧୂଆମୁଗ—ଗ୍ରା.ବି. ବତୁରା ମୁଗକୁ ଚୋପା ଛଡ଼ାଇଲେ ଧୂଆମୁଗ ହୁଏ ।

ଧୂଆମୁହଁ—ଗ୍ରା.ବି. ସକାଳୁ ଉଠି ଧୋଇଥିବା ମୁହଁ ।

ଧୂଆମୂଳାଅଧୂଆମୂଳାସମାନ—ଗ୍ରା.(ନ୍ୟାୟ) ଭଲ ଓ ମନ୍ଦ ମଧ୍ୟରେ ପ୍ରଭେଦ ନରଖିବା ।

ଧୂଆଯିବା—ଗ୍ରା.କି. ଧୌତହେବା, (ଗ୍ରା. ବଂ) ଯାହା ଧୂଆ ଯାଇଅଛି ।

ଧୂଆଲୁଗା—ଗ୍ରା. ବି. ଯେଉଁ ଲୁଗା ପାଣିରେ ଧୂଆ ହୋଇଥାଏ ।

ଧୂଇବା—ପ୍ରା.(ବାଲେ)କି. ଧୋଇବା ।

ଧୂକ୍ଧୂକ୍—ଗ୍ରା. ଅବ୍ୟ. (ଧ୍ୱନ୍ୟନୁକରଣ) ହୃତ୍ପିଣ୍ଡର ଧୀର ସ୍ପନ୍ଦନ, କ୍ଷୀଣସ୍ପନ୍ଦନ, କ୍ଷୀଣ ଭାବରେ ନିଶ୍ୱାସ ପ୍ରଶ୍ୱାସ ନେବା ।

ଧୂକ୍ଧୂକ୍ହେବା—ଗ୍ରା. କି. ( ଧ୍ୱନ୍ୟନୁକରଣ ) କ୍ଷୀଣ ଭାବରେ ସ୍ପନ୍ଦିତହେବା, ଥିର ଥିର ନିଶ୍ୱାସନେବା ।

ଧୂକ୍ଧୂକି—ଗ୍ରା. ବି. ( ଧ୍ୱନ୍ୟନୁକରଣ ) ହୃତ୍ପିଣ୍ଡ, କଲିଜା, କଣ୍ଠହାରର ମଝି ଝୋଲ ।

ଧୂକ୍ପୁର୍—ଗ୍ରା. ବଂ. ଉଦ୍ବିଗ୍ନ, ଅସ୍ଥିର, (ମନ) ସନ୍ଦେହାନ୍ଦୋଳିତ,(ବି)ଉଦ୍ବେଗ, ମନର ସନ୍ଦେହ ।

ଧୂକା—ଗ୍ରା. ବି. ଧୋକା ଦେଖ, (ପ୍ରା. ସମ୍ବଲ. ବି) ପବନର ଝାପ୍ଟା, ଝଙ୍କ, ଝଡ଼ ।

ଧୂକିବା—ପ୍ରା. ( ସମ୍ବଲ ) କି. ପବନ ବୋହିବା, ( ପ୍ରା. କି. କଳାହାଣ୍ଡି ) ବହିବା ।

ଧୂକା(କେ)ଇବା—ଗ୍ରା. କି.(ଧ୍ୱନ୍ୟନୁକରଣ) ଧୂକ୍ଧୂକ୍ ହେବା, ଧକାଇବା ଦେଖ ।

ଧୂକୁଲ୍ପଡ଼ିବା—( ପ୍ରା. ଯାଜପୁର. ବି. ) ଖେଳାଯାଉଥିବା ଖେଳ ବନ୍ଦହେବା ।

ଧୂଗାଡ଼ି—ଗ୍ରା.ବି. ଅଙ୍ଗାର୍ଣ୍ଣ ବିକାର,ଅଙ୍ଗାର୍ଣ୍ଣ ହାକୁଟି, ଧୂଆଁ ହାକୁଟି ।

ଧୂଙ୍ଗିଆ—(ପ୍ରା.ସମ୍ବ. ବି.) ଧୂଆଁ, ଧୂମ, ପ୍ରା.(କଳାହାଣ୍ଡି) ବି. ଧୂଆଁପନ ।

ଧୂଙ୍ଗିଆଢ଼ଙ୍କାର—(ପ୍ରା.ସମ୍ବ.ବି.) ଖଇର ହାକୁଟି, ଆମ୍ଳିକ ହାକୁଟି ।

ଧୂଡ଼ୁକା—ଗ୍ରା ବଂ. ଢ଼ୁଗୁଲା, ଶ୍ଳଥ ।

ଧୂଡ଼ୁକାକହି(ଖି)—( ପ୍ରା.ଗଞ୍ଜାମ. ବି. ) ଢରଡ଼ା ଦେଖ ।

ଧୂଡୁକି—ଗ୍ରା.ବି.(ଧ୍ୱନ୍ୟନୁକରଣ) ବାଦ୍ୟଯନ୍ତ୍ରବିଶେଷ,(ଗ୍ରା.ବଂ) ଭଙ୍ଗା, ଧୂଡ଼ୁକା, ଢ଼ୁଗୁଲା, ନଡ଼ନଡ଼ିଆ ।

ଧୂଡୁକିଆ—ଗ୍ରା. ବି. ଯେଉଁ ଲୋକ ଧୂଡୁକି ବଜାଏ ।

ଧୂଡୁକିକହିଡ଼ି—ଗ୍ରା.ବି. ଧୂଡୁକି ବଜାଇବା ଲୋକକୁ ଦେବା ପାରିତୋଷିକ ।

ଧୂଡ଼ୁଧୂଡ଼ୁ—ଗ୍ରା. ଅବ୍ୟ. ଧଡ଼ଧଡ଼ଠାରୁ କ୍ଷୀଣତର ଶବ୍ଦ, ଚଞ୍ଚଳ ଓ ନିସ୍ତବ୍ଧ ଭାବରେ ଲୋକତ ।

ଧୂଣ—ପ୍ରା. (ସିଂହଭୂମ)ବି. ଧନୁ ।

ଧୂଣେଇବା—ପ୍ରା.(ସିଂହଭୂମ) ବି. ପ୍ରସବ କରିବା, ଜନ୍ମକରିବା ।

ଧୁଣ୍ଡା—ଗ୍ରା.ପୁଂ. ବଂ. ସ୍ଥୂଳକାୟ, (ବ୍ୟକ୍ତି) ଢ଼ୁଣ୍ଡା, ଦେଖ, (ସ୍ତ୍ରୀ) ଧୁଣ୍ଡୀ ।

ଧୁଣ୍ଡା(ଣ୍ଡେ)ଇବା—ଗ୍ରା. କି. ଧୁଣ୍ଡିବାର ଣିକଳ୍ପରୂପ ।

ଧୁଣ୍ଡାଧୁଣ୍ଡି—ଗ୍ରା. ବି. ଖୋଜାଖୋଜି, ବାରମ୍ବାର ଖୋଜିବା ।

ଧୁଣ୍ଡିବା—ଗ୍ରା.କି. ଖୋଜିବା, ଅଣ୍ଡାଳିବା, ଉଦ୍ଦେଶ୍ୟବିହୀନ ହୋଇ ବା କୌଣସି ଜିନିଷ ପାଇଁ ନାନାଆଡ଼େ ବୁଲିବା ।

ଧୁତ୍—ଗ୍ରା. ଅବ୍ୟ. ଦୂର୍, ଧିକ୍ ।

ଧୁତ୍କାର—ଗ୍ରା. ବି. ଧିକ୍କାର ଦେଖ ।

ଧୁତ୍କାରିବା—ଗ୍ରା.କି. ଧିକ୍କାରିବା, ଅବମାନନା କରିବା ।

ଧୁତ—ବଂ. (ଧୁ+ର୍ମ,ତ) କମ୍ପିତ, ପରିତ୍ୟକ୍ତ, ଭର୍ତ୍ସିତ, ବର୍ଜିତ, (ସ୍ତ୍ରୀ) ଧୁତା ।

ଧୁତି—ପ୍ରା. ( ବାଲେଶ୍ୱରାଦି ) ବି. ଧୋତି ଦେଖ,(ଧୁ+ଭା.ତି) କମ୍ପ, ପରିତ୍ୟାଗ ।

ଧୁତୁଡ଼ା—ଗ୍ରା.(ସଂ-ଧୂସ୍ତୂର)ଧତଡ଼ା, ଭଙ୍ଗୁରିଷ୍ଟ, ଜୀର୍ଣ୍ଣଶୀର୍ଣ୍ଣ ।

ଧୁତୁରି—ଗ୍ରା. ବି. ଧତୁରି ଦେଖ ।

ଧୁତୁରିଫୁଲିଆ—ଗ୍ରା. ବି. ଦୁଦୁରିଫୁଲିଆ ଦେଖ ।

ଧୁଧୁଲ—ପ୍ରା. ( ସମ୍ବଲପୁର ) ପୁଂ. ବଂ. ଧୁଣ୍ଡା, ମୋଟା,ସ୍ଥୂଳକାୟ,(ସ୍ତ୍ରୀ)ଧୁଧୁଲୀ ।

ଧୁଧୁ—ଗ୍ରା. ଅବ୍ୟ. ଧୂଧୂ ଦେଖ, ଅଗ୍ନିଜ୍ୱଳନ, ଶୂନ୍ୟତା ପ୍ରସାର ଉତ୍ତାପ ପ୍ରଭୃତିର ଲକ୍ଷଣ ପ୍ରକାଶ ।

ଧୁନ୍—ପ୍ରା. ( ସମ୍ବଲ ) ବି. ଧନୁ, (ବଂ) କମ୍ପନ ।

ଧୁନ୍କି—ପ୍ରା.(ସମ୍ବଲ)ବି.ତୁଳା ଭଣିବାର ଧନୁ ।

ଧୁନଖର—ଗ୍ରା. ତୁଳାପରିଷ୍କାରକ ଯନ୍ତ୍ରବିଶେଷ ।

ଧୁନନ—କ୍ଳୀ.ବି. (ଧୁ+ଣିଚ୍+ଭା.ଅନ) ଆନ୍ଦୋଳନ, କମ୍ପନ, ଚାଳନ, ଶବ୍ଦକରଣ ।

ଧୁନା—ପ୍ରା.( ସମ୍ବ)ବି. ଭଣିବା କର୍ମ ।

ଧୁନାଇବା—ଗ୍ରା. (ସମ୍ବଲ) କ୍ରି. ତୁଳା-ଭଣାଇବା ।

ଧୁନି—ସ୍ତ୍ରୀ.ବି (ଧୂ+କ.ନି)ନଦୀ, (ଗ୍ରା. ବି—ସଂ-ଧ୍ୱନି)ଶବ୍ଦ,ବୈଷ୍ଣବ ପଙ୍ଗତରେ ଦେବତାଙ୍କୁ କରିବା ଜେଜେକାର, ବୈଷ୍ଣବଙ୍କ ଆଗରେ ଥିବା ଅଗ୍ନି କୁଣ୍ଡ ।

ଧୁନିଆଁ—ଗ୍ରା. ( ସମ୍ବଲ )ବି. ଯେ ତୁଳା ଭଣେ ।

ଧୁନିଜାଳିବା—ଗ୍ରା. କ୍ରି. (ବୈଷ୍ଣବ)ନିଆଁ ଜାଳିବା । [ ସମୁଦ୍ର ।

ଧୁନିନାଥ—ବି. ( ୬ତତ୍ ) ସରିତ୍‌ପତି,

ଧୁନିବା—ଗ୍ରା.(ସମ୍ବଲ)କ୍ରି.ତୁଳାଭଣିବା ।

ଧୁନିଲଗାଇବା—ଗ୍ରା. କ୍ରି. ( ବୈରାଗୀ ) ନିଜ ଆସନ ପାଖରେ ନିଆଁ ଲଗା-ଇବା ।

ଧୁନୀ—ଧୁନି ଦେଖ ।

ଧୁନୀନାଥ—ପୁଂ. ବି. (୬ତତ୍) ସମୁଦ୍ର ।

ଧୁନ୍ଧୁଳା—ଗ୍ରା.ବି.(ସଂ-ଢୁଂଢନ)କୌଣସି ପଦାର୍ଥକୁ ବହୁବାର ଏଣେ ତେଣେ ଖୋଜିବା, ଗୋଲମାଲ, ଧୂଆଁ ଘୋଟି-ବାରୁ ଅନୁଭୂତ ଅନ୍ଧାର, ଧୂମ୍ରବର୍ଣ୍ଣ, (ବିଂ) ଧନ୍ଦଲା ଦେଖ, ଧୂମ୍ରମୟ ।

ଧୁନ୍ଧାଧୁନ୍ଧ—ଗ୍ରା. ବି. ଧୁଣ୍ଡାଧୁଣ୍ଡି ଦେଖ ।

ଧୁନ୍ଧାଳିବା—ଗ୍ରା. କ୍ରି. ଧନ୍ଦାଳିବା ଦେଖ ।

ଧୁନ୍ଧିଆ—ଗ୍ରା. ପୁଂ. ବି. ପୁରୁଷଙ୍କ ନାମ, ନାମ ବିଶେଷ, (ଗ୍ରା.ବିଂ) ଧୁଣ୍ଡା ଦେଖ, (ସ୍ତ୍ରୀ) ଧୁଣ୍ଡେଇ ।

ଧୁନ୍ଧିବା—ଗ୍ରା. କ୍ରି. ଧୁଣ୍ଡିବା ଦେଖ ।

ଧୁନ୍ଧୁଳ (ଳେ)ଇବା—ଗ୍ରା.କ୍ରି. ଧୁଙ୍ଗାଳିବା ଦେଖ ।

ଧୁନ୍ଧୁ—ପୁଂ. ବି. ମଧୁକୈଟଭର ପୁତ୍ର, ଏକ ରାକ୍ଷସର ନାମ ।

ଧୁନ୍ଧୁମାର—ପୁଂ. ବି. (ଧୂମ+ଦ୍ରୁହ—ର୍ +ଅ. ନିପାତନ ) ବୃହଦଶ୍ୱ ମହା-ରାଜାଙ୍କ ପୁତ୍ର ରାଜା କୁବଳୟାଶ୍ୱ,ଇନ୍ଦ୍ର-ଗୋପ, ସାଧବାଣୀପୋକ, ଧୂମ, ଧୂଆଁ, ଧୁମ୍‌ଧାମ୍, କୋଳାହଳ, ଗୋଳମାଳ, ବିଦ୍ରୋହ, ଅଳନ୍ଧୁ, ଝୁଲ,ରାଜାତ୍ରିଶଙ୍କୁଙ୍କ ପୁତ୍ର ।

ଧୁପ୍—ଗ୍ରା. ଅବ୍ୟ. ( ଧ୍ୱନ୍ୟନୁକରଣ ) କୋମଳବସ୍ତୁ ପତନର ଅନୁକରଣଶବ୍ଦ ।

ଧୁପଗୁପ୍ପା—ଗ୍ରା. ବି. ଏକପ୍ରକାରରଙ୍ଗିନ୍ ଲୁଗା, ରୌଦ୍ର ଓ ଛାୟାର ମିଶ୍ରଣ ।

ଧୁପ୍‌ସାଧୁପ୍‌ସି—ଗ୍ରା. ବି. କ୍ରୋଧବଶତଃ ପରସ୍ପର ମଲ୍ଲମଲ୍ଲହେବା, ଠେଲାଠେଲି ହେବା ।

ଧୁପା—ଗ୍ରା. ବି ଆକ୍ରମଣ, ମାରିବାକୁ ଉଦ୍ଧୁଙ୍କିବା, ଡ଼ିଆଁ, ଲମ୍ଫ ।

ଧୁପା(ପେ)ଇବା—ଗ୍ରା. କ୍ରି. ଧାବମାନ କରାଇବା, ଦଉଡ଼ାଇବା ।

ଧୁଡ଼ିବା—ଗ୍ରା. କ୍ରି. ଧଇଁବା, ଆକ୍ରମଣ କରିବା, ମାରିବାକୁ ଧାଇଁବା, (ପ୍ର. ଗଞ୍ଜାମ ବି.) ମାରିବା, କୌଣସି ସମୁଚ୍ଚ ସ୍ଥାନକୁ ହସ୍ତାଦି ପ୍ରସାରିତ କରିବା ।

ଧୁବଲ—ପ୍ରା. ( ସମ୍ବ ) ବିଂ. ଧୋବଲ, ଧୋବ ।

ଧୁବା—ଗ୍ରା. ବିଂ. ଧୋବ. ଧଳା ।

ଧୁବକ—ତ୍ରି. ବିଂ. ଗର୍ଭମୋଚକ ।

ଧୁବକା—ସ୍ତ୍ରୀ. ବି. ଗୀତଭେଦ ।

ଧୁବକୀ—ସ୍ତ୍ରୀ. ବି. ( ଧ୍ରୁ+ଅକ+ଈ ) ଧ୍ରୁପଦ, ଗୀତର ଘୋଷା, ( କ୍ଳୀ ବି. ) ଧ୍ରୁବକସନ୍ନିବିଷ୍ଟଦେଶାଦି ।

ଧୁବକୀୟ—ତ୍ରି. ବିଂ. ଧ୍ରୁବକ ଯୁକ୍ତ ।

ଧୁବଡ଼ୀ—ଆସାମ ଗୋୟାଲପଡ଼ାଜିଲ୍ଲାର ପ୍ରଧାନ ନଗର ।

ଧୁବ୍ରକ—ପୁଂ. ବି. (ଧୂ+ଷ୍ଣ.ଅକ)କମ୍ପନ, ଆକ୍ରମଣାର୍ଥ ଅସ୍ତ୍ରାଦିସଂଚାଳନ, ଅଗ୍ନି, (ବିଂ—ଧୂ+କ.ଆନ) ପରିଚାଳକ ।

ଧୁବିତ୍ର—କ୍ଳୀ. ବି. ( ଧୂ+ଣେ.ଇତ୍ର ) ବ୍ୟଜନ ବିଶେଷ, ତାଳପତ୍ର ବିଞ୍ଚଣାଦି

ଧୁମ୍(ଇତ୍ୟାଦି)—ଗ୍ରା. ବି. ଧୂମ୍‌ଇତ୍ୟାଦି ଦେଖ ।

ଧୁମ୍‌କେଇବା—ଗ୍ରା. ( ଯାଜପୁର ) କ୍ରି. ଧୁମକୁଟ୍ କରିବା, କମ୍ପାଇବା ।

ଧୁମ୍‌ସା—ଗ୍ରା. ପୁଂ. ବିଂ. ଧୂମସା ଦେଖ, (ସ୍ତ୍ରୀ) ଧୁମ୍‌ସୀ ।

ଧୁମଡ଼ୀ—ପ୍ରା. ସ୍ତ୍ରୀ. ବି. ଚିରସ୍ଥାୟୀ ବସ୍ତ୍ରଖଣ୍ଡ ।

ଧୁମ୍ବ—ପୁଂ. କଳା ଓ ମୋଟା, କୃଷ୍ଣ ଓ ମୋଟା, (ସ୍ତ୍ରୀ) ଧୁମ୍ବୀ ।

ଧୁର୍—ସ୍ତ୍ରୀ. ବି. (ଧୁର୍ବ+ଣ.କ୍ୱିପ୍)ଯୁଗ-ମୁଣ୍ଡି, ରଥାଗ୍ରଭାଗ, ଭାର, ବୋଝ, ଚିନ୍ତା, ଭାବନା, ଉଦ୍‌ବେଗ, ସମ୍ମୁଖଭାଗ, ଅଂଶ, ଅକ୍ଷଦଣ୍ଡ,ଅଖ,ଶଗଡ଼ର ଯୁଆଳି, ଧନ, ସମ୍ପତ୍ତି, (ଶଗଡ଼) ଅଣକୀଳି, କର୍ତ୍ତବ୍ୟ, ଦାୟିତ୍ୱ,କମ୍ପନ, ଅଗ୍ନିସ୍ଫୁଲିଙ୍ଗ, ଦୁଃଖ, ଗଙ୍ଗାନଦୀର ଏକ ନାମ, ଖଣ୍ଡି, ଶୀର୍ଷସ୍ଥାନ, ଅଙ୍ଗୁଳି ।

ଧୁର୍‌ପଙ୍ଗା—ଗ୍ରା .ବି. ଅତିରିକ୍ତ ପରିଶ୍ରମାଦି ଜନିତ ଖରଶ୍ୱାସ ।

ଧୁର୍‌ପଙ୍ଗାଉଡ଼ିବା—ଗ୍ରା. ବି. ଅତିରିକ୍ତ ପରିଶ୍ରମ ହେତୁ ଖରଶ୍ୱାସ ବହିବା ବା ବେଦମ୍ ହେବା ।

ଧୁର୍‌ମୁସ୍—ଗ୍ରା. ବି. ( ଧ୍ୱନ୍ୟନୁକରଣ ) ତଳେ ଓଜନଦାର କାଠ ବା ଲୁହା-ପିଣ୍ଡ ଲାଗିଥିବା ମୁଷଳ ।

ଧୁର—ସ୍ତ୍ରୀ. ବି. (ଧୁର୍ବ+ଅ) ଧୁର୍ ଦେଖ. (ଗ୍ରା.ବିଂ) ଦୂରବର୍ତ୍ତୀ, (ପ୍ରା.ସିଂହଭୂମ.ବି) ୧/୧୦ କାଠା ( ଜମି ପରିମାଣ ) ଗ୍ରା. ବି. ଦୂରତା ।

ଧୁରନ୍ଧର—ପୁଂ. ବିଂ. (ଧୁରଂ+ଧୃ+କ.ଅ) ଭାରବାହୀ,ଅତ୍ୟନ୍ତ କ୍ଷମତାଶୀଳ ବା ବଳିଷ୍ଠ, ଆଗୁଆ, ଅଗ୍ରଣୀ, ସମର୍ଥ, ଯୋଗ୍ୟ, କାର୍ଯ୍ୟକ୍ଷମ, ଶ୍ରେଷ୍ଠ, ପ୍ରଧାନ, କାର୍ଯ୍ୟଦକ୍ଷ, ନିପୁଣ, ( ବି ) ମୁଖିଆ, ଦଳର ନେତା, କାର୍ଯ୍ୟଦକ୍ଷ ବ୍ୟକ୍ତି, ଧଅଗଛ, ଭାରବାହୀ ପଶୁ,ଶିବ, ବାହନ, ପ୍ରହସ୍ତ ରାକ୍ଷସର ମନ୍ତ୍ରୀରାକ୍ଷସ, ( ସ୍ତ୍ରୀ ) ଧୁରନ୍ଧରା ।

ଧୁରା—ସ୍ତ୍ରୀ. ବି. (ଧୁର୍ବ+ଅ+ଆ) ଭାର, ବୋଝ । [ ଆଗରେ ।

ଧୁରେ—ଗ୍ରା. ବି. ତୁରି ଦେଖ, ( ଅବ୍ୟ )

ଧୁରୀଣ—ପୁଂ. ବିଂ. ( ଧୁର+ଈନ ) ଧୁରନ୍ଧର ଦେଖ, (ସ୍ତ୍ରୀ) ଧୁରୀଣା ।

ଧୁରୀୟ—ପୁଂ.ବିଂ. (ଧୁର୍+ଈୟ) ଧୁର-ନ୍ଧର ଦେଖ, (ବି) ଅନଡ଼ୁହ, ବାମୁଡ଼ି,

ଷଣ୍ଢ, ଦଳର ନେତା, କାର୍ଯ୍ୟଦକ୍ଷ ବ୍ୟକ୍ତି, ଭାରବାହୀ ପଶୁ, (ସ୍ତ୍ରୀ) ଧୂରୀଣା ।

ଧୂରୁବ—ଗ୍ରା. (ପଦ୍ୟ) ବ. ( ସଂ-ଧ୍ରୁବ ) ଧ୍ରୁବ ଦେଖ ।

ଧୂର୍ବହ—ପୁଂ. ବିଂ. ( ଧୁର୍ + ବହ୍ + କ. ଅ) ଧୁରନ୍ଧର ଦେଖ, (ସ୍ତ୍ରୀ) ଧୂର୍ବହା ।

ଧୂର୍ମ—ଗ୍ରା. ବ. ଧୂର୍ମ ଦେଖ ।

ଧୂର୍ଯ୍ୟ—ପୁଂ.ବିଂ.(ଧୁର୍ + ଯ)ଭାରବହନ କ୍ଷମ, ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟଭାର ଗ୍ରହଣ କରିବାକୁ ଉପଯୁକ୍ତ, ଅଗ୍ରଗାମୀ, ମୁଖିଆ, (ବି) ଭାରବାହୀ ପଶୁ, ନେତା, ବଳିଷ୍ଠ, ଝୁଣ୍ଟମୁଣ୍ଡି, ପ୍ରଧାନକାର୍ଯ୍ୟ ଭାର ବହନ କରିଥିବା ମନ୍ତ୍ରୀ, (ସ୍ତ୍ରୀ) ଧୂର୍ଯ୍ୟା ।

ଧୂଲଣ୍ଡୀ—ଗ୍ରା. ବ. ହୋରିଖେଳ ଉତ୍ସବ-ବିଶେଷ ।

ଧୂଲ୍(ଲୋ)ଇ—ଗ୍ରା. ବ. ( ସଂ-ଧାବନ ) ପ୍ରକ୍ଷାଳନ କ୍ରିୟା, ଧୋଇବା, (ଗ୍ରା.ବିଂ) ଧୌତହୋଇଥିବା, ଧୋବକରା ଯାଇ-ଥିବା ।

ଧୂଷ୍( ଧାତୁ )—ସଂ. ଅଳଙ୍କୃତକରିବା, ଭୂଷିତ କରିବା ।

ଧୂସ—ଗ୍ରା. ବ. ଧୂସ ଦେଖ ।

ଧୂସା—ଗ୍ରା. ବ. (ସଂ-ଦ୍ୱିଶାଟ) ପଶମରେ ବୁଣା ମୋଟା ଶୀତବସ୍ତ୍ର,ଲେପ,(ଗ୍ରା.ବି) ଦୁଃଶାସନର ଡାକ ନାମ ।

ଧୂସୀ—ଗ୍ରା.ବି. କଳିଙ୍ଗରାଜ ଖାରବେଳଙ୍କ ରାଣୀଙ୍କ ନାମ ।

ଧୂସ୍କା—ପ୍ରା. (ସିଂହଭୂମ) ବ. ମାଲପୁଆ-ପରି ପିଷ୍ଟକବିଶେଷ ।

ଧୂସ୍ତୁର—ପୁଂ. ବ.(ଧୂସ୍ + କ୍ୱିପ୍ + ତୁର୍ + କ.ଅ) ଧୂତୁରା ଦେଖ ।

ଧୂସ୍ତୂର—ପୁଂ. ବ. ଧୂତୁରାଗଛ ।

ଧୂ—(ଧାତୁ) କମ୍ପିବା ।

ଧୂଃ—ସ୍ତ୍ରୀ. ବ.(ଧୂର୍ + କ. କ୍ୱିପ୍)ଧୁରା ।

ଧୂଁ—ଗ୍ରା. ଅବ୍ୟ. (ଧ୍ୱନ୍ୟନୁକରଣ)ଧୋ, ଧୋଧୋ, ମାଙ୍କଡ଼ାଦିଙ୍କି ଘଉଡ଼ାଇବା ଶବ୍ଦ ।

ଧୂଆଁ—ଗ୍ରା. ବ. (ସଂ-ଧୂମ) ଧୂମ, ବାଷ୍ପ, କୁହୁଡ଼ି, ବାମ୍ଫ, (ପ୍ରା. ଗଞ୍ଜାମ) ଧୂଆଁ-ପତ୍ର ।

ଧୂଆଁକଳ—ଗ୍ରା. ବ. ଯେଉଁ କଳ ବାଷ୍ପ ଦ୍ୱାରା ଚାଳିତ ହୁଏ, ବାଷ୍ପୀୟ ପୋତ, (ବିଂ) ବାଷ୍ପର ବେଗଦ୍ୱାରା ଚାଳିତ ।

ଧୂଆଁକସ—ଗ୍ରା. ବ. ଧୂଆଁ ବାହାରିବାର ବାଟ ବା ନଳ, ଧୂଆଁକଳ ଦେଖ ।

ଧୂଆଁକାଳି—ଗ୍ରା. ବ. ଅଳନ୍ଧୁ ।

ଧୂଆଁଖାଇବା—ଗ୍ରା. କ୍ରି. ଧୂମ୍ରପାନ କରିବା, ପିକାଆଦି ଖାଇବା ।

ଧୂଆଁଖିଆ—ଗ୍ରା. ବ. ପିକାଆଦି ଦ୍ୱାରା ଧୂମ୍ରପାନ, ପିକାଖିଆ, ଇତର ଭୃତ୍ୟଙ୍କୁ ପିକାଖାଇବାକୁ ଦିଆଯିବା ପ୍ରଭୁଙ୍କ ସାମାନ୍ୟ ଧନ ।

ଧୂଆଁଗଦା—ଗ୍ରା. ବ. ମଶାଦି ତଡ଼ିବା-ପାଇଁ ଯେଉଁ ନିଆଁଗଦା ଜଳା ହୁଏ ।

ଧୂଆଁଗୃଷ—ପ୍ରା. (ଗଞ୍ଜାମ) ଧୂଆଁପତ୍ରର ଗୃଷ ।

ଧୂଆଁଟିଆ—ଗ୍ରା.ବିଂ. ଧୂମ୍ରମିଶ୍ରିତ ବିକୃତ ଗନ୍ଧବିଶିଷ୍ଟ, ଧୂମ୍ରବର୍ଣ୍ଣ, ଧୂଆଁପୂର୍ଣ୍ଣ, ଧୂଆଁ ଲାଗିବାରୁ ମଳିନତା ପ୍ରାପ୍ତ ।

ଧୂଆଁଦେବା—ଗ୍ରା. କ୍ରି. ଘରୁ ମଶାଙ୍କୁ ତଡ଼ିବା ପାଇଁ ଘରେ ନିଆଁ କରିବା ।

ଧୂଆଁଧାର—ଗ୍ରା. ବ.ନର୍ମଦା ନଦୀସ୍ଥ ଜଳ ପ୍ରପାତ ବିଶେଷ ।

ଧୂଆଁପଚୁ—ଗ୍ରା. ବ. ପାକଳ କଦଳୀକୁ ଧୂଆଁଦ୍ୱାରା ପଚାଇବା,(ବିଂ)ଧୂଆଁଦ୍ୱାରା ପଚୁ ହୋଇଥିବା କଦଳୀ ।

ଧୂଆଁପତ୍ର—ଗ୍ରା.ବ.ତମାଖୁ, ଧୂଆଁପତର, ଦୋକତା ।

ଧୂଆଁବାଣ—ଗ୍ରା. ବ. ଭୟଦେଖାଇବା-ପାଇଁ ଗୁଳି ବା ଛରରା ନ ଦେଇ ବନ୍ଧୁକ ଫାଏରକରିବା, (ଲ.ଅର୍ଥ) ଭୟ ପ୍ରଦର୍ଶନ ପାଇଁ ମିଥ୍ୟା ଧମକାଣ ।

ଧୂଆଁରଡଆ—ଗ୍ରା.ବିଂ.ଧୂଆଁଟିଆ ଦେଖ ।

ଧୂଆଁହାକୁଟି—ଗ୍ରା.ବ.(ସଂ-ଧୂମ + ଉଦ୍ଗାର) ଅମ୍ଳଉଦ୍ଗାର, ଅଜୀର୍ଣ୍ଣ ହାକୁଟି ।

ଧୂଉଧୂଉ—ଗ୍ରା. ଅବ୍ୟ. ଧୂଧୂ ଦେଖ ।

ଧୂକ—ବ. (ଧୂ + କ.କ)ବାୟୁ, ସମୟ, (ବିଂ) ଧୂର୍ତ୍ତ, ଠକ ।

ଧୂକନା—(ପ୍ରା.କଳାହାଣ୍ଡି) କମାରଭାଟି ।

ଧୂଃପତ୍ର—ସଂ.ପୁଂ.ବ.ଶରପତ୍ର,ଶରସହ ।

ଧୂତ—କ୍ରି. ବିଂ. (ଧୂ + ସଂ.ତ)ସାବ୍ୟସ୍ତ, ଅବହେଳିତ, ତ୍ୟକ୍ତ, ତର୍କିତ, ଭର୍ତ୍ସିତ, କମ୍ପିତ, (ସ୍ତ୍ରୀ) ଧୂତା, (ପ୍ରା.କ)ଧୂର୍ତ୍ତ ।

ଧୂତପାପ—ପୁଂ. ବ .(ବ.ବ୍ରୀ)ପାପବର୍ଜିତ, ନିର୍ଦ୍ଧୂତକଳୁଷ, ନିଷ୍ପାପ,(ସ୍ତ୍ରୀ)ଧୂତପାପା ।

ଧୂତପାପା—ସ୍ତ୍ରୀ. ବ. ( ଧୂତପାପ + ଆ ) ବେଦଶିରବ୍ରାହ୍ମଣ ଔରସରେ ଶୁଚନାମକ ଏକ ଅପ୍ସରା ଗର୍ଭଜାତା କନ୍ୟା ।

ଧୂତପାପେଶ୍ୱରତୀର୍ଥ—କ୍ଳୀ.ବ.ତୀର୍ଥବିଶେଷ

ଧୂତହସ୍ତ—ପୁଂ. ବିଂ. ( ବ.ବ୍ରୀ ) ଯେ ହାତକୁ ହଲାଉ ଅଛି,(ସ୍ତ୍ରୀ) ଧୂତହସ୍ତା ।

ଧୂତା—ସ୍ତ୍ରୀ. ବ. ଭାର୍ଯ୍ୟା ।

ଧୂତି—ସ୍ତ୍ରୀ. ବ. ବିଧୂନନ, ହଠଯୋଗାଙ୍ଗ-ବିଶେଷ ।

ଧୂଧୂ—ଗ୍ରା. ଅବ୍ୟ. ହୁ ହୁ, ଅଗ୍ନିଶିଖା ଜଳିବା ପ୍ରକାର, ଉଦୁଉଦିଆ (ଖରା), ନିରୁଛିଆ ସ୍ଥାନରେ ଜନ୍ମିବା ଭୟ ।

ଧୂନ—ବିଂ. କମ୍ପିତ ।

ଧୂନକ—କ୍ରି. ବିଂ. (ଧୂ + ଣିଚ୍ + କ. ଅକ) ଯେ ଦୋହଲାଏ, ଚାଳକ, (ବି) ଝୁଣା ।

ଧୂନନ—କ୍ଳୀ. ବ. (ଧୂ + ଣିଚ୍ + ଅନ) ପବନ, କମ୍ପନ ।

ଧୂନା—ଗ୍ରା. ବ. ଝୁଣା, ଶାଳରସ ।

ଧୂନି—ସ୍ତ୍ରୀ. ବ. କମ୍ପନ ।

ଧୂନିବା—ଗ୍ରା.(ପଦ୍ୟ)କ୍ରି. ଶବ୍ଦକରିବା ।

ଧୂନ୍ୟ—ଗ୍ରା .(ପଦ୍ୟ)ବିଂ.କ୍ରୁଦ୍ଧ,କ୍ରୋଧରେ ଥରୁଥିବା ।

ଧୂପ୍(ଧାତୁ)—ସଂ.-ସନ୍ତପ୍ତ କରିବା,ଧୂପ-ଦେବା, କିରଣଦେବା, କହିବା, ଧୂଆଁରେ ମଳିନ କରିବା, ଧୂଆଁ ଦେବା ।

ଧୂପ—ପୁଂ. ବ. (ଧୂପ + କ.ଅ) ସୁଗନ୍ଧ ଦ୍ରବ୍ୟବିଶେଷ, ତାପନ, ଝୁଣାଦି ନିଆଁରେ ପକାଇଲେ ତହିଁରୁ ଯେ ସୁଗନ୍ଧ ଧୂଆଁ, ଖର,(ଗ୍ରା ବିଂ)ତେଜସ୍ୱାନ୍, ଦୀପ୍ତ,(ପ୍ରା. କଳାହାଣ୍ଡି ବ.) ଝୁଣା ।

ଧୂପଉଠିବା—(ଗ୍ରା. ପୁରୀ) ପୁରୀର ଦକ୍ଷ

ଦେଉଳ ଭିତରେ ପୂଜାସାମଗ୍ରୀ ନେଇ ପୂଜାରମ୍ଭ କରିବା ।

ଧୂପକ—ତ୍ରି. ବିଂ. ( ଧୂପ+କ.ଅକ ) ସନ୍ତାପକ, ଯେ ଧୂପଦିଏ, ଯେ ସୁବାସିତ କରେ, (ସ୍ତ୍ରୀ) ଧୂପିକା ।

ଧୂପକାଠି—ଗ୍ରା.ବି. ସୁଗନ୍ଧି ଦ୍ରବ୍ୟମିଶ୍ରିତ ବର୍ତ୍ତିକା, ଉଦ୍‌ବତୀ ।

ଧୂପକାଡ଼ୀ( ଢ଼ୀ )—ଗ୍ରା. ବି. ଧୂପକାଠି ଦେଖ ।

ଧୂପକାଳ—ଗ୍ରା.ବି. ଗ୍ରୀଷ୍ମକାଳ ।

ଧୂପଖଣ୍ଡା—ଗ୍ରା. ବି. ଏକପ୍ରକାର ଦନ୍ତଧାରବିଶିଷ୍ଟ ଉତ୍କୃଷ୍ଟ ତରବାରି ।

ଧୂପଗୁଣ୍ଡା—ଗ୍ରା.ବି.ରଙ୍ଗିନ୍ ବସ୍ତ୍ରବିଶେଷ ।

ଧୂପଦାନି—ଗ୍ରା.ବି.ଯେଉଁ ପାତ୍ରରେ ଧୂପ ଦିଆଯାଏ ।

ଧୂପଦୀପ—ବି. (ଦ୍ୱନ୍ଦ୍ୱ) ଦେବତାଙ୍କୁ ନୈବେଦ୍ୟ ଦେବା ସମୟରେ ଅର୍ପିତ ଧୂପ ଓ ଦୀପ ।

ଧୂପଦେବା—ଗ୍ରା. କ୍ରି. ଝୁଣା ଗୁଗ୍ଗୁଳାଦି ନିଆଁରେ ପକାଇ ଧୂଆଁ ଦ୍ୱାରା ସୁବାସିତ କରିବା ।

ଧୂପନ—କ୍ଲୀ.ବି. (ଧୂପ+ଭା.ଅନ) ଧୂପଦେବା, ଧୂଆଁ ଦେବା, (ଧୂପ+ଣ.ଅନ) ଝୁଣା ।

ଧୂପପାତ୍ର—କ୍ଲୀ.ବି. (ଧୂପ+ପାତ୍ର)ଧୂପଦାନି ଦେଖ ।

ଧୂପବାସ—ବି. ( ଧୂପ+ବାସ ) ସ୍ନାନ ପରେ ସୁଗନ୍ଧିତ ଧୂଆଁ ଦ୍ୱାରା ଶରୀରକୁ ସୁବାସିତ କରିବା କର୍ମ ।

ଧୂପବୃକ୍ଷ—ପୁଂ.ବି. (ମଧ୍ୟ-କ.ଧା) ଦେବଦାରୁ ବୃକ୍ଷ, ସରଳବୃକ୍ଷ ।

ଧୂପମୁଦ୍ରା—ବି. ପୂଜା ସମୟରେ ହସ୍ତଦ୍ୱାରା ଦେଖାଇବା ମୁଦ୍ରା ବିଶେଷ ।

ଧୂପସରା—ଗ୍ରା.ବି.ଧୂପ ଦେବାର ଆଧାରବିଶେଷ ।

ଧୂପାଗୁରୁ—କ୍ଲୀ. ବି. (ମଧ୍ୟ-କ.ଧା) ଏକପ୍ରକାର ଦାହ୍ୟ ଅଗୁରୁ, ଧୂପାର୍ଥ ବ୍ୟବହୃତ ଏକପ୍ରକାର ସୁଗନ୍ଧି କାଷ୍ଠ ।

ଧୂପାଙ୍ଗ—ପୁଂ.ବି. (୬ତତ୍ପୁ) ( ବ.ବ୍ରୀ ) ତାର୍ପିନ୍ ତେଲ, ସରଳଗଛ ।

ଧୂପାୟିତ—ତ୍ରି.ବିଂ. (ଧୂପ+ଯ+ର୍ମ.ତ) ଧୂପର ଧୂମରେ ସୁଗନ୍ଧୀକୃତ,ଧୂପିତ, ଯହିଁରେ ଧୂପର ଧୂଆଁ ବାଜିଥାଏ, ତାପିତ, ପଥଶ୍ରାନ୍ତ ।

ଧୂପାର୍ହ—କ୍ଲୀ.ବି. କୃଷ୍ଣାଗୁରୁ, (ବିଂ)ଧୂପଦାନଯୋଗ୍ୟ ।

ଧୂପିକା—ତ୍ରି.ବିଂ. ( ଧୂପ+କ+ଆ ) କୁହୁଡ଼ି,(ବିଂ) ସନ୍ତାପିକା ।

ଧୂପିତ—ତ୍ରି.ବିଂ. (ଧୂପ୍+ର୍ମ.ତ)ସନ୍ତାପିତ, ଧୂପାୟିତ, ପଥଶ୍ରାନ୍ତ ।

ଧୂପିଦେବା—ଗ୍ରା. କ୍ରି. ଧୂପିବା, ବଢ଼ାଇ ଦେବା ।

ଧୂବକ—ନେପାଳ ରାଜ୍ୟରେ ଉତ୍ପନ୍ନ ବୃକ୍ଷବିଶେଷ ।

ଧୂମ୍—ଗ୍ରା.ବି. କୋଲାହଳ, ସମାରୋହ, ଘଟା, ବାହ୍ୟାଡ଼ମ୍ବର, ଜଗର, ଜିଦ ।

ଧୂମକରିବା—ଗ୍ରା.କ୍ରି. ଜଗର କରିବା ।

ଧୂମ୍‌କୁଟ୍—ଗ୍ରା.ବି. ସମାରୋହ, ଘଟା, ଆଡ଼ମ୍ବର, ଗୋଳମାଳ ମାଡ଼ଗୋଳ ।

ଧୂମ୍‌ଧଡ଼କା—ଗ୍ରା.ବି. ମହା ସମାରୋହ, ଜୁଲମ, ମାରଧର, ଧରପଗଡ଼,ଉତ୍ପାତ, କଠୋର ବ୍ୟବହାର ।

ଧୂମ୍‌ଧାମ୍—ଗ୍ରା.ବି. ଧୂମ୍‌କୁଟ୍ ଦେଖ ।

ଧୂମ୍‌ସା—ଗ୍ରା.ପୁଂ.ବିଂ. କୃଷ୍ଣବର୍ଣ୍ଣ କଦାକାର ଓ ସ୍ଥୂଳକାୟ ( ବ୍ୟକ୍ତି ) ,(ସ୍ତ୍ରୀ) ଧୂମ୍‌ସୀ ।

ଧୂମ—ପୁଂ.ବି. ( ଧୂ+କ.ମ ) ଧୂଆଁ, ବାମ୍ଫ, ବାଷ୍ପ. କୁହୁଡ଼ି, ଉଲା, ଉଲ୍କାପାତ, ମେଘ, ଅଜୀର୍ଣ୍ଣ ହାକୁଟି, ଘରତଳ ଜମି, ଧୂମକେତୁ,(ଗ୍ରା.ବି) ପ୍ରବଳ ବତାସ, ଝଡ଼, ଧୂମ, ଗୋଳମାଳ, (ପର୍ଯ୍ୟାୟ-ମରୁଦ୍‌ବାହ, ଜୀମୂତମାଳ, ଶିଖିଧ୍ୱଜ, ଅଗ୍ନିବାହ, ତରୀ) ଋଷିଭେଦ, ଦେଶଭେଦ ।

ଧୂମଉଠାଇବା—ଗ୍ରା.ବି. ପ୍ରବଳ ବାତ୍ୟା ବହିବାକୁ ଆରମ୍ଭ କରିବା ।

ଧୂମକୁଣ୍ଡଳୀ—ବି. ( ୬ତତ୍ପୁ ) କୁଣ୍ଡଳାକାରରେ ଉଠୁଥିବା ଧୂଆଁ ।

ଧୂମକେତନ—ପୁଂ. ବି. (ବ.ବ୍ରୀ) ଅଗ୍ନି, ନକ୍ଷତ୍ର ଲଞ୍ଜା, ପୁଚ୍ଛଯୁକ୍ତ ତାରା, କେତୁଗ୍ରହ, କୃଶାଶ୍ୱଙ୍କ ପୁତ୍ର ।

ଧୂମକେତୁ—ପୁଂ. ବି. (ବ.ବ୍ରୀ) ନକ୍ଷତ୍ରଲଞ୍ଜା, ଲଞ୍ଜାତାରା, ପୁଚ୍ଛଯୁକ୍ତ ତାରା, କେତୁଗ୍ରହ,ଶିବ, ପୁଚ୍ଛରେ ଭଉଁରିଥିବା ଘୋଡ଼ା,ରାବଣ ସେନାର ଏକ ରାକ୍ଷସ, କୁଗ୍ରହ, ଅମଙ୍ଗଳ ସୂଚକ ଲକ୍ଷଣ, (ଲ.ଅର୍ଥ) କୁଳାଙ୍ଗାର.ଅଗ୍ନି, (ସଂ-ବିଂ) ବିନାଶ ସୂଚକ,ଧୂମକେତୁପରି ରଙ୍ଗ ।

ଧୂମଗନ୍ଧ—ବି. ରୋହିଷତୃଣ, ଧୂମଦ୍ୱାରା ଅନୁମେୟ ବହ୍ନି ।

ଧୂମଗନ୍ଧିକ—କ୍ଲୀ.ବି. ରୋହିଷତୃଣ ।

ଧୂମଗର୍ଭ—ବିଂ. (ବ.ବ୍ରୀ) ଯାହା ମଧ୍ୟରେ ଧୂଆଁ ଥାଏ ।

ଧୂମଗ୍ରହ—ବି. (ମଧ୍ୟ-କ.ଧା) ରାହୁ ।

ଧୂମଜ—ପୁଂ.ବି. (ଧୂମ+ଜନ୍+କ.ଅ) ମେଘ, ମୁଥା, (ବିଂ)ଧୂମରୁ ଜାତ,(ସ୍ତ୍ରୀ) ଧୂମଜା ।

ଧୂମଜାଙ୍ଗବ—କ୍ଲୀ.ବି. ଜବକ୍ଷାର, ନିଯାଦଲ, ବଜ୍ରକ୍ଷାର ।

ଧୂମଦର୍ଶୀ—ବିଂ. (ଧୂମ+ଦୃଶ୍+ଇନ୍) ଯାହାର ଆଖିକୁ ଝାପ୍‌ସା ଝପ୍‌ସା ଦେଖାଯାଏ, (ସ୍ତ୍ରୀ) ଧୂମଦର୍ଶିନୀ ।

ଧୂମଧଡ଼କା—ଗ୍ରା.ବି. କୋଲାହଳ ଶବ୍ଦ, ଧରଧର ଶବ୍ଦ ।

ଧୂମତରଙ୍ଗ—ପୁଂ.ବି. ( ୬ତତ୍ପୁ ) ବାୟୁବେଗେ ତରଙ୍ଗବତ୍ ଚାଳିତ ଧୂମ ।

ଧୂମଧର—ବି. ( ଧୂମ+ଧୃ+କ.ଅ ) ଅଗ୍ନି ।

ଧୂମଧ୍ୱଜ—ପୁଂ.ବି.(ବ.ବ୍ରୀ) ଅଗ୍ନି,ଧୂମକେତନ ଦେଖ ।

ଧୂମପ—ପୁଂ.ବିଂ. (ଧୂମ+ପା+କ.ଅ) ଧୂମପାୟୀ ଦେଖ, (ସ୍ତ୍ରୀ) ଧୂମପା ।

ଧୂମପଥ—ପୁଂ.ବି.(ମଧ୍ୟ-କ.ଧା)ପିତୃଯାନ, (୬ତତ୍ପୁ)ଧୂମ ନିର୍ଗମନ ପଥ, ଯଜ୍ଞ ।

ଧୂମପଟଳ—ବି. ଧୂମାବଳି ଦେଖ ।

ଧୂମପତ୍ର—ବି. (ମଧ୍ୟ-କ.ଧା) ଧୂଆଁପତ୍ର, ତମାଖୁଗଛ, ଦୋକତା ।

ଧୂମପାନ—କ୍ଲୀ. ବି. ( ୬ତତ୍ପୁ ) ତମାଖୁ

ପ୍ରଭୃତିର ଧୂଆଁ ଖାଇବା ।

ଧୂମପାୟୀ—ପୁଂ. ବି°. ( ଧୂମ+ପା+କ.ଇନ୍ ) ଯେ ଧୂମ ପାନକରେ, (ସ୍ତ୍ରୀ) ଧୂମପାୟିନୀ ।

ଧୂମପୋତ—ବି. ଧୂଆଁକଳ ଜାହାଜ, ବାଷ୍ପୀୟ ପୋତ,ଯେ ଧୂଆଁପଞ୍ଝଆଦିର ଧୂଆଁ ଖାଏ ।

ଧୂମପ୍ରଭା—ସ୍ତ୍ରୀ. ବି. ସବଦା ଧୂଆଁରେ ପୂର୍ଣ୍ଣ ନରକବିଶେଷ ।

ଧୂମପ୍ରାଣ—ପୁଂ. ବି°. (ଧୂମ+ପ୍ର+ଅଣ୍+ଅ) ଧୂମପାୟୀ (ତପସ୍ୱୀ) ।

ଧୂମବର୍ଚ୍ଚସ୍—ପୁଂ. ବି. ଧୂମପ୍ରଭା ।

ଧୂମବର୍ଣ୍ଣ—ପୁଂ. ବି. ଧୂଳି, ଏକ ନାଗରାଜ ।

ଧୂମବର୍ତ୍ମ—କ୍ଲୀ. ବି. ଧୂମପଥ, ଧୂମମାର୍ଗ ।

ଧୂମବାନ୍—ପୁଂ. ବି°. ଧୂଆଁରେ ପୂର୍ଣ୍ଣ, ଯହିଁ ନ ଜଳି କୁହୁଳୁ ଅଛି, ଯହିଁରୁ ଧୂଆଁ ଉଠୁଛି ।

ଧୂମମହିଷୀ—ସ୍ତ୍ରୀ.ବି. (୬ତତ୍ପୁ ବା ୭ତତ୍ପୁ) କୁଜ୍‌ଝଟିକା ବା କୁହୁଡ଼ି ।

ଧୂମମାର୍ଗ—ପୁଂ. ବି. ଧୂମପଥ ।

ଧୂମଯୋନି—ବି°. ( ବ.ବ୍ରୀ ) ଧୂମଗର୍ଭ, ଯାହା ମଧ୍ୟରେ ଧୂଆଁ ଥାଏ, (ବି) ମେଘ, ଅଗ୍ନି, ଆଗ୍ନେୟାସ୍ତ୍ର, ମୁଥା ।

ଧୂମରଜଃ—ବି. (ଧୂମ+ରଜସ୍) ଘରୁ ଉଠୁଥିବା ଧୂଆଁ, ଅଳନ୍ଧୁ ।

ଧୂମଳ—ପୁଂ. ବି. ( ଧୂମ+ଲା+କ.ଅ ) ଧୂମ୍ରବର୍ଣ୍ଣ, ଧୂଆଁର ରଙ୍ଗ, କୃଷ୍ଣଲୋହିତ ବର୍ଣ୍ଣ, ବାଇଗଣିଆ ରଙ୍ଗ, ଶିବ, ମହାଦେବ, (ବି°) ଧୂମ୍ରବର୍ଣ୍ଣ ବିଶିଷ୍ଟ,ଧୂଆଁଟିଆ, କୃଷ୍ଣଲୋହିତ ବର୍ଣ୍ଣବିଶିଷ୍ଟ, (ବି) ଧୂମଳତା, (ସ୍ତ୍ରୀ) ଧୂମଳା ।

ଧୂମଶିଖ—ଦୈତ୍ୟବିଶେଷ ।

ଧୂମ(ମ୍ର)ସା—ଗ୍ରା.ପୁଂ.ବି°. ଧୂମ୍ରହା ଦେଖ, (ସ୍ତ୍ରୀ) ଧୂମ୍ରସୀ ।

ଧୂମସୀ—ସ୍ତ୍ରୀ. ବି. ପେଟିକାବିଶେଷ ।

ଧୂମସଂହିତ—ସ୍ତ୍ରୀ. ବି. ଧୂମସମୂହ ।

ଧୂମସାର—ବି. (୬ତତ୍ପୁ) ଘରୁ ଉଠୁଥିବା ଧୂଆଁ ।

ଧୂମା—ବି°. ( ଧୂମ+ଆ ) ଧୂମବିଶିଷ୍ଟ, ଧୂମ୍ରବର୍ଣ୍ଣ ବିଶିଷ୍ଟ,(ଗ୍ରା) ଧୂମ୍ରସା ଦେଖ, (ସ୍ତ୍ରୀ) ଧୂମୀ ।

ଧୂମାକାର—ବି°. ( ବ.ବ୍ରୀ ) ଯାହାର ଆକାର ଧୂଆଁପରି, ଧୂମପରିପୂର୍ଣ୍ଣ ।

ଧୂମାକୁଣ୍ଡି—ଗ୍ରା. (ଯାଜପୁର) ବି. ଦଉଡ଼ା ଦଉଡ଼ି, ଦଉଡ଼ ଧାପଡ଼ । [ ବିଶିଷ୍ଟ ।

ଧୂମାକ୍ଷ—ବି°.(ବ.ବ୍ରୀ) ଧୂମାକାର ନେତ୍ର-

ଧୂମାଗ୍ନି—ପୁଂ.ବି. (ମଧ୍ୟ-କ.ଧା) କୁହୁଳୁଥିବା ନିଆଁ,ପକ୍ଷିନିଆଁ, ଅଗ୍ନିବିଶେଷ ।

ଧୂମାଙ୍କ—ପୁଂ.ବି. (ବ.ବ୍ରୀ) ଶିଂଶପାବୃକ୍ଷ, ଶିଶୁଗଛ,(ବି)ଧୂମ୍ରଯୁକ୍ତ(ଅଙ୍କ), ଯାହାର ଦେହ ଧୂମ୍ରବର୍ଣ୍ଣ ।

ଧୂମାଙ୍ଗଜ—ପୁଂ. ବି. ନଶାଦଳ ।

ଧୂମାଳି—ଗ୍ରା. ବି. ଧୂମ ଦେଖ, ଛିନ୍ନ-ଖିଚପଡ଼ିବା ଅବସ୍ଥା, ପ୍ରଜାମେଳ ଓ ଡକେଇ ଅରାଜକତା, (ଗ୍ରା.ବି°) ଛିଙ୍କିଛୁଟି ଅସ୍ତ୍ୟବ୍ୟସ୍ତ ହୋଇଥିବା ( ଦେଶ ବା ବସ୍ତୁ ),ଅରାଜକ ଅବସ୍ଥା ଘୋଟିଥିବା (ଦେଶ) ।

ଧୂମାଳିକରିବା—ଗ୍ରା. କ୍ରି. ଛିନ୍ନଖିଚପ କରିବା, ଧୂଳିସାତ୍ କରିବା ।

ଧୂମାଦି—ପୁଂ. ବି. ପାଣିନିଗଣସୂତ୍ରୋକ୍ତ ଦେଶବାଚକ ଶବ୍ଦଗଣ ।

ଧୂମାଧୂମ—ଗ୍ରା. ବି. ( ଧ୍ୱନ୍ୟନୁକରଣ ) ଗୋଳମାଳ, ଗଣ୍ଡଗୋଳ, ଘୋଘା ଇତ୍ୟାଦି ।

ଧୂମାଧୂମି—ଗ୍ରା. ବି°. ପରସ୍ପର ମଧ୍ୟରେ ଅତି ବ୍ୟସ୍ତତା ଓ କ୍ଷିପ୍ରତା, ମାଡ଼ପିଟ୍ ଲଗାଇବା, (ଗ୍ରା.ବି)ପରସ୍ପର ମାଡ଼ପିଟ୍ ।

ଧୂମାନ୍ତ—ବି°. ( ସ-ଧୂମିତ ) ଧୂମାଳି ଦେଖ, ଧୂମମୟ, ( ଗ୍ରା.ବି ) ଧୂମାଳି ଦେଖ ।

ଧୂମାବତୀ—ସ୍ତ୍ରୀ. ବି. (ଧୂମ+ଆ+ବତ+ଈ) ଦଶମହାବିଦ୍ୟାରୁ ଗୋଟିଏ, ଦୁର୍ଗାଙ୍କର ତନ୍ତ୍ରୋକ୍ତ ୧୦ ଆକାରରୁ ଏକତମ । [ ଧୂଆଁସବୁ ।

ଧୂମାବଳ(ଳୀ)—ବି. (ଧୂମ+ଆବଳି)

ଧୂମାଭ—ପୁଂ. ବି°. (ବ.ବ୍ରୀ) ଧୂମ୍ରବର୍ଣ୍ଣ, ଧୂଆଁପରି ବର୍ଣ୍ଣବିଶିଷ୍ଟ,(ବି) ଧୂମ୍ରବର୍ଣ୍ଣ ।

ଧୂମାୟନ—ବି. (ଧୂମ+ଭା.ଅନ) ଗରମି, ଉଷ୍ଣତା, ଧୂଆଁଦେବା, ବାମ୍ଫ ଆଣି ଦେବା ।

ଧୂମାୟମାନ—ପୁଂ. ବି°. (ଧୂମାୟ+କ.ଆନ) ଯହିଁରୁ ଧୂଆଁ ବାହାରୁଅଛି, କୁହୁଳୁଥିବା, ଯେ ଧୂଆଁ ଦେଉଅଛି, ଅନ୍ଧକାରମୟ କରୁଥିବା, ଧୂମଦ୍ୱାରା ଆବୃତ, (ସ୍ତ୍ରୀ) ଧୂମାୟମାନା ।

ଧୂମାୟିତ—କ୍ରି. ବି°. ( ଧୂମ+କ.ତ ) ଧୂମବ୍ୟାପ୍ତ ।

ଧୂମାଳ—ଗ୍ରା. ବି. (ସ-ଧୂମଳ) ବହୁତ ଧୂଳି ଉଡ଼ି ଆକାଶକୁ ଧୂଆଁପରି ଆଚ୍ଛନ୍ନ କରିଥିବା, ତୋଫାନ, (ଗ୍ରା.ବି°) ଧୂମାଳିଆ ଦେଖ, ଧୂମାଳି ଦେଖ ।

ଧୂମାଳଉଠାଇବା—ଗ୍ରା. ବି. ଝଡ଼-ତୋଫାନସହ ମେଘ ଉଠାଇବା ।

ଧୂମାଳିଆ—ଗ୍ରା. ବି°. ଝଡ଼ତୋଫାନଯୁକ୍ତ, ଧୂମାଳି ଦେଖ ।

ଧୂମିକା—ସ୍ତ୍ରୀ.ବି.(ଧୂମ+କ+ଆ)କୁଜ୍‌ଝଟିକା, କୁହୁଡ଼ି, ଧୂଆଁ, ବାମ୍ଫ, ବାମ୍ଫ, ପକ୍ଷିବିଶେଷ ।

ଧୂମିତ—କ୍ରି. ବି°. ( ଧୂମ+ଇତ ) ଧୂମବିଶିଷ୍ଟ, ଧୂମାବୃତ, ଅନ୍ଧକାରାବୃତ, କୁହୁଳୁଥିବା, ଅନ୍ତରରେ କ୍ରୋଧପୂର୍ଣ୍ଣ, (ବି) ଦୂଷିତ ମନ୍ତ୍ରବିଶେଷ, ସୂର୍ଯ୍ୟଙ୍କ ଆଗମ୍ୟ ଦିଗବିଶେଷ, ଯେଉଁ ଦିଗକୁ ସୂର୍ଯ୍ୟ ପ୍ରଥମେ ଯାଆନ୍ତି ।

ଧୂମିନୀ—ସ୍ତ୍ରୀ.ବି°. (ଧୂମିନ୍+ଈ) ଧୂମୀର ସ୍ତ୍ରୀଲିଙ୍ଗ,(ବି)ଅଗ୍ନିଙ୍କର ଜିହ୍ୱାବିଶେଷ ।

ଧୂମୀ—ପୁଂ. ବି°. (ଧୂମ+ଇନ୍)ଧୂମପୂର୍ଣ୍ଣ, ଧୂମବହୁଳ, କୁହୁଳୁଥିବା, (ସ୍ତ୍ରୀ)ଧୂମିନୀ, (ଗ୍ରା.ସ୍ତ୍ରୀ.ବି°) ଧୂମର ସ୍ତ୍ରୀଲିଙ୍ଗ, ଅଜମିଢ଼ଙ୍କ ପତ୍ନୀବିଶେଷ ।

ଧୂମୋତ୍ଥ—ବି°.(୫ତତ୍ପୁ) ଧୂଆଁରୁ ଉତ୍ପନ୍ନ (ବି) ନିସାଦଳ, ବଜ୍ରକ୍ଷାର ।

ଧୂମୋଦ୍ଗମ—ବି. ( ୬ତତ୍ପୁ ) କୌଣସି ପଦାର୍ଥରୁ ଧୂଆଁ ଉଠିବା ।

ଧୂମୋଦ୍ଗାର—ପୁଂ. ବି. (୬ତତ୍ପୁ) ଧୂମ-

ନିର୍ଗମ, ଜଠରାଗ୍ନିର ଶୈଥିଲ୍ୟ ହେତୁ ଜାତ ଆକୃତି, ମନ୍ଦତାସୂଚକ ପଦାର୍ଥର ଉଦ୍ଗାର ।

ଧୂମୋଦ୍ଗାରୀ—ପୁଂ.ବି°. (ଧୂମ+ଉତ୍+ଗୃ+କ.ଇନ୍) ଯହିଁର ମୁହଁରୁ ଧୂଆଁ ବାହାରୁଥାଏ, (ସ୍ତ୍ରୀ) ଧୂମୋଦ୍ଗାରିଣୀ ।

ଧୂମୋପହତ—ପୁଂ. ବି. (୩ତତ୍ତ୍ୱ)ସୁଶ୍ରୁତୋକ୍ତ ଧୂମକୃତ ଉପଦ୍ରବକୃତ ରୋଗଭେଦ ।

ଧୂମୋର୍ଣ୍ଣା—ସ୍ତ୍ରୀ. ବି. (ବ.ବ୍ରୀ) ଯମପତ୍ନୀ, ମାର୍କଣ୍ଡେୟଙ୍କପତ୍ନୀ ।

ଧୂମୋର୍ଣ୍ଣାଁ—ପୁଂ. ବି. (୬ତତ୍) ଯମ ।

ଧୂମ୍ୟା—ସ୍ତ୍ରୀ.ବି (ଧୂମ+ଯ+ଆ)ଧୂମସମୂହ ।

ଧୂମ୍ୟାଟ—ପୁଂ.ବି.(ଧୂମ୍ୟା+ଅଟ୍+କ.ଅ) କଜଳପାଖିଆ ଚଢ଼େଇ, ଭୃଙ୍ଗପକ୍ଷୀ ।

ଧୂମ୍ର—ପୁଂ. ବି°. (ଧୂମ+ରା+କ.ଅ) ଶ୍ୟାମରକ୍ତ ମିଶ୍ରିତବର୍ଣ୍ଣ, ପାଣ୍ଡୁର, ବାଇଗଣୀରଙ୍ଗର, ଅନ୍ଧକାରମୟ, (ବି) ଧୂଆଁର ବର୍ଣ୍ଣ, ବାଇଗଣୀବର୍ଣ୍ଣ, କୃଷ୍ଣଲୋହିତବର୍ଣ୍ଣ, ଶିବ, ପାପ, ଦୁଷ୍କୃତ, ଝଲତା, ଅସୁରବିଶେଷ, ମେଷ,କୁମାରାନୁଚରଭେଦ, (ସ୍ତ୍ରୀ) ଧୂମ୍ରା ।

ଧୂମ୍ରକ—ପୁଂ.ବି.(ଧୂମ୍ର+କୈ+କ.କ) ଉଷ୍ଟ୍ର, ଓଟ ।

ଧୂମ୍ରକେତୁ—ପୁଂ. ବି. ଭରତ ରାଜାଙ୍କ ପୁତ୍ରବିଶେଷ, ତୃଣବିନ୍ଦୁଙ୍କ ପୁତ୍ରବିଶେଷ, (ବି°) ଧୂମ୍ରବର୍ଣ୍ଣ ଧ୍ୱଜଯୁକ୍ତ ।

ଧୂମ୍ରକେଶ—ପୁଂ. ବି. (ମଧ୍ୟ-କ.ଧା) ଧୂମଳବର୍ଣ୍ଣ ଚୂଳ, ପୃଥୁରାଜାଙ୍କର ପୁତ୍ରବିଶେଷ, (ବି°) ଧୂମଳବର୍ଣ୍ଣ ଚୂଳବିଶିଷ୍ଟ, ଧୂମ୍ରବର୍ଣ୍ଣ କେଶଯୁକ୍ତ, (ସ୍ତ୍ରୀ) ଧୂମ୍ରକେଶା ।

ଧୂମ୍ରପତ୍ରା—ସ୍ତ୍ରୀ. ବି. କ୍ଷୁପବିଶେଷ ।

ଧୂମ୍ରବର୍ଣ୍ଣ—ବି. (୬ତତ୍) ଧୂଆଁର ବର୍ଣ୍ଣ, କୃଷ୍ଣଲୋହିତବର୍ଣ୍ଣ, ଧୂପ, (ପୁଂ.ବି°. ବ.ବ୍ରୀ)କୃଷ୍ଣଲୋହିତ, (ସ୍ତ୍ରୀ) ଧୂମ୍ରବର୍ଣ୍ଣା ।

ଧୂମ୍ରବର୍ଣ୍ଣକ—ବି. (ଧୂମ୍ର+ବର୍ଣ୍ଣ+କ) ଗୁମ୍ଫାରେ ବାସ କରୁଥିବା ଏକପ୍ରକାର ଜନ୍ତୁ, କୋକଶିଆଳ ।

ଧୂମ୍ରବର୍ଣ୍ଣା—ସ୍ତ୍ରୀ. ବି°. (ବ.ବ୍ରୀ) ଧୂମଳବର୍ଣ୍ଣବିଶିଷ୍ଟା,(ବି)ଅଗ୍ନିଙ୍କ ଜିହ୍ୱାବିଶେଷ ।

ଧୂମ୍ରମୂଳିକା—ସ୍ତ୍ରୀ. ବି. ଶୂଳୀତୃଣ ।

ଧୂମ୍ରରୋହିତ—ପୁଂ.ବି.ଧୂମ୍ରବର୍ଣ୍ଣ ମିଶ୍ରିତ ରକ୍ତବର୍ଣ୍ଣ, (ବି°) ତଦ୍‌ଯୁକ୍ତ ।

ଧୂମ୍ରଲୋଚନ—ପୁଂ. ବି°. (ବ.ବ୍ରୀ) ଯାହାର ଆଖି ଧୂମ୍ରବର୍ଣ୍ଣବିଶିଷ୍ଟ, (ବି) ପାରା, କପୋତ,ଶୁମ୍ଭାସୁର ସେନାପତି, (ସ୍ତ୍ରୀ)ଧୂମ୍ରଲୋଚନା ।

ଧୂମ୍ରଲୋହିତ—ବି°. (ମଧ୍ୟ.କ.ଧା) କୃଷ୍ଣଲୋହିତ,କଳମିଶା ନାଲି, ଗାଢ଼ନାଲି, (ବି) ଶିବ, ମହାଦେବ ।

ଧୂମ୍ରା—ସ୍ତ୍ରୀ.ବି°. ଧୂମ୍ରର ସ୍ତ୍ରୀଲିଙ୍ଗ, (ବି) ଏକପ୍ରକାର କାକୁଡ଼ି ।

ଧୂମ୍ରାକ୍ଷ—ତ୍ରି. ବି°. (ବ.ବ୍ରୀ) ଯାହାର ଚକ୍ଷୁ ଧୂମ୍ରବର୍ଣ୍ଣବିଶିଷ୍ଟ, ଧୂମ୍ରଲୋଚନ, (ବି) ତୃଣବିନ୍ଦୁବଂଶୀୟ ହେମଚନ୍ଦ୍ର ନୃପଙ୍କ ପୁତ୍ର, ରାବଣର ଜଣେ ସେନାପତି,(ସ୍ତ୍ରୀ) ଧୂମ୍ରାକ୍ଷୀ ।

ଧୂମ୍ରାଟ—ପୁଂ. ବି. ପକ୍ଷିବିଶେଷ ।

ଧୂମ୍ରାନୀକ—ପୁଂ. ବି. ଶାକଦ୍ୱୀପାଧିପତି ମେଧାତିଥିଙ୍କ ପୁତ୍ରବିଶେଷ, ତନ୍ନାମକ ବର୍ଷଭେଦ ।

ଧୂମ୍ରାଭ—ପୁଂ.ବି°.ଧୂମ୍ରବର୍ଣ୍ଣ ଆଭାଯୁକ୍ତ ।

ଧୂମ୍ରାୟଣ—ପୁଂ.ବି. ଗୋତ୍ରପ୍ରବର ଋଷିବିଶେଷ ।

ଧୂମ୍ରାର୍ଚ୍ଚିସ୍—ସ୍ତ୍ରୀ. ବି. ଶାରଦାତିଲକୋକ୍ତ ଅଗ୍ନିଙ୍କ ଦଶବିଧ କଳାନ୍ତର୍ଗତ କଳାଭେଦ । [ ପୁତ୍ର ।

ଧୂମ୍ରାଶ୍ୱ—ପୁଂ.ବି. ବିଶାଳରାଜ ସୁଚନ୍ଦ୍ରଙ୍କ

ଧୂମ୍ରାହ୍ୱା—ସ୍ତ୍ରୀ.ବି.ଧୂମ୍ରପତ୍ରା, ସ୍ୱଯମ୍ଭୂବା, କ୍ଷୁପଭେଦ । [ ଶିଂଶପାଗଛ ।

ଧୂମ୍ରିକା—ବି.(ଧୂମ୍ର+କ+ଆ)ଶିଶୁଗଛ,

ଧୂୟମାନ—ପୁଂ.ବି°.(ଧୂ+କ.ଆନ)କମ୍ପିମାନ, ଯାହାକୁ କେହି କମ୍ପିତ କରୁଅଛି, (ସ୍ତ୍ରୀ) ଧୂୟମାନା ।

ଧୂର୍—ଙ୍ଗ-(ଧାତୁ) ବଧକରିବା, ହିଂସାକରିବା, ଚଳିକରିବା, ଯିବା ।

ଧୂର୍—ବି. ଧୂର୍ ଦେଖ, (ଗ୍ରା.ଅବ୍ୟ) ଦୂର୍ ଦେଖ, (ବି) ଦୂରତ୍ୱ, (ବି°) ଦୂରସ୍ଥ ।

ଧୂର୍‌ମୁଣ୍ଡ—ଗ୍ରା.ବି.ଗୋଡ଼ି ପ୍ରଭୃତି ପିଟିବା ପାଇଁ ବ୍ୟବହୃତ ଦଣ୍ଡ ବା ମୁଷଳାକାର ବିଶିଷ୍ଟ ଭାର ଲୌହ ବା କାଷ୍ଠ ପିଣ୍ଡ ।

ଧୂର—ବି. ଧୂର୍ ଦେଖ, (ଗ୍ରା.ବି. ବି°.) ଧୂର ଦେଖ ।

ଧୂରତ—ଗ୍ରା. (ପଦ୍ୟ)ବି. ଧୂର୍ତ୍ତ ଦେଖ ।

ଧୂଲି—ବି. ଧୂର୍ ଦେଖ, (ଗ୍ରା.ବି, ସଂ: ଧୂଳି) ଧୂଳି ଇତ୍ୟାଦି ଦେଖ ।

ଧୂଳି—ଗ୍ରା(ଇତରଭାଷା)ବି. ଧୂଳି ଦେଖ

ଧୂରୁତ—ଗ୍ରା. ବି°. ଧୂର୍ତ୍ତ ଦେଖ ।

ଧୂରେ—ଗ୍ରା. କ୍ରି. ବି°. ଦୂରରେ ।

ଧୂରେଇହେବା—ଗ୍ରା. କ୍ରି. କେତେକ ଦୂରରେ ବା ଦୂରଛଡ଼ା ହୋଇ ରହିବା ।

ଧୂର୍ଗତ—ବି°.ଅଗ୍ରଗାମୀ, ପ୍ରଧାନ, ରଥର ଦଣ୍ଡା ଉପରେ ଠିଆ ହୋଇଥିବା ।

ଧୂର୍ଜଟି—ପୁଂ. ବି°.ବ.ବ୍ରୀ; (ଧୂର୍+ଜଟ+କ.ଇ) ଶିବ, ମହାଦେବ ।

ଧୂର୍ତ୍ତ—ପୁଂ. ବି°. (ଧୂର୍ବ+କ.ତ) ଶଠ, ପ୍ରତାରକ, ବଞ୍ଚକ, ଦଗାବାଜ, ଚତୁର, କପଟାଶ୍ରୟ.(ମି.ତ) ଆହତ, ଆଘାତପ୍ରାପ୍ତ, ଅନିଷ୍ଟକାରୀ, ଲମ୍ପଟ, ମାୟାବୀ, (ବି) ଧୁତୁରା, ପିଢ଼ଙ୍ଗଶାଗ, ଦ୍ୟୁତକର, ଜୁଆରୀ, ବଲୁଆ, ଦୁଦୁରାଗଛ, ଲୁହାକଳଙ୍କି, ଲୁହାଗୁଣ୍ଡ, ବିଡ଼ଲବଣ, କଳାଲୁଣ, ପ୍ରେମିକ, ନାଗର,(ବି) ଧୂର୍ତ୍ତତା, (ସ୍ତ୍ରୀ) ଧୂର୍ତ୍ତା ।

ଧୂର୍ତ୍ତକ—ପୁଂ.ବି. (ଧୂର୍ତ୍ତ+କ) ଶୃଗାଳ, ବିଲୁଆ, ଜୁଆରୀ, କୌରବ କୁଳର ନାଗବିଶେଷ, (ବି°) ଅତି ଧୂର୍ତ୍ତ ।

ଧୂର୍ତ୍ତକିତବ—ବି. ଜୁଆଖେଳାଳି ।

ଧୂର୍ତ୍ତକୃତ୍—ପୁଂ. ବି°. (ଧୂର୍ତ୍ତ+କୃ+କ.କ୍ୱିପ୍) ଧୂର୍ତ୍ତକାରକ, (ବି) ଧୂତୁରାଗଛ ।

ଧୂର୍ତ୍ତଚରିତ—କ୍ଲୀ.ବି(୬ତତ୍)ସଙ୍କୀର୍ଣ୍ଣାଖ୍ୟ ନାଟକ ଗ୍ରନ୍ଥବିଶେଷ, ଧୂର୍ତ୍ତମାନଙ୍କର ଚରିତ୍ର ।

ଧୂର୍ତ୍ତଜନ୍ତୁ—ପୁଂ. ବି. (କ.ଧା) ମନୁଷ୍ୟ ।

ଧୂର୍ତ୍ତତା—ସ୍ତ୍ରୀ. ବି. (ଧୂର୍ତ୍ତ+ତା) ପ୍ରତାରଣା, ଶଠତା, ଧୂର୍ତ୍ତପଣ, ଚତୁରତା, ଚଲାଖି । [ ଠକପଣ ।

ଧୂର୍ତ୍ତପଣ—ଗ୍ରା.ବି.ଧୂର୍ତ୍ତତା, ଶଠପଣିଆ,

ଧୂର୍ତ୍ତମାନୁଷା—ସ୍ତ୍ରୀ, ବି. ସମ୍ମା ଦେଖ ।

ଧୂର୍ତ୍ତର—ପୁଂ,ବିଂ. (ଧୂର୍+ଧୃ+କ.ଅ) ଧୂତନ୍ଧର ଦେଖ ।

ଧୂର୍ବ—(ଧାତୁ) ହିଂସା କରିବା, ବଧ କରିବା ।

ଧୂର୍ବହ—ବିଂ. ( ଧୂର୍+ବହ+କ.ଅ ) ଧୂର୍ତ୍ତର ଦେଖ, (ସ୍ତ୍ରୀ) ଧୂର୍ବହା ।

ଧୂର୍ବୀ—ସ୍ତ୍ରୀ. ବି. ( ଧୂର୍ବ+ଅ+ଈ ) ଶଗଡ଼ର ଧୁରମୁଣ୍ଡି, ରଥାଗ୍ରଭାଗ,ଯାନମୁଖ ।

ଧୂର୍ମି—ଗ୍ରା. ବି. ଶରୀରଭେଦ ସାଧକମାନଙ୍କର ଶରୀରର ଓ ପ୍ରକୃତିର କଳାବିଶେଷ ।

ଧୂର୍ଯ୍ୟ—ପୁଂ. ବି. ବିଷ୍ଣୁ ।

ଧୂଳ—ଗ୍ରା. ବି. (ଗଣିତ) କଡ଼ାର ପରିମାଣବିଶେଷ, କ୍ଷେତ୍ରର ପରିମାଣବିଶେଷ ।

ଧୂଳକ—କ୍ଲୀ. ବି.(ଧୂ+କ.ଳକ) ବିଷ ।

ଧୂଳା—ଗ୍ରା. ବି. ଧୂଳି ଦେଖ ।

ଧୂଳାଉଡ଼ିବା—ଗ୍ରା. ବି. କୌଣସି କାର୍ଯ୍ୟ ଅତିରିକ୍ତ ମାତ୍ରାରେ ସମ୍ପାଦିତ ହେବା, ବିଧ୍ୱଂସନ, ଧୂଳିସାତ୍ ହେବା ।

ଧୂଳାଉଡାଇବା—ଗ୍ରା. କ୍ରି. କୌଣସି କାର୍ଯ୍ୟକୁ ଅତିରିକ୍ତ ମାତ୍ରାରେ କରିବା, ଛିନ୍ନଛତ୍ରପ କରିବା, ବିଧ୍ୱସ୍ତ କରିବା, କୌଣସି ସ୍ଥାନକୁ ଭାଙ୍ଗିଚୂରି ଧୂଳିସାତ୍ କରିବା ।

ଧୂଳିପା(ବଙ୍ଗ)--ଗ୍ରା. ଦ୍ୱିରାଗମନସଂସ୍କାରର ପରବର୍ତ୍ତି ବିବାହର ଆଠଦିନର ମଧ୍ୟେ ସ୍ୱାମୀର ସହିତ ଦ୍ୱିତୀୟବାର ପତିଗୃହକୁ ଗମନ ।

ଧୂଳି(ଳୀ)—ସ୍ତ୍ରୀ ବା ପୁଂ.ବି.(ଧ+ସଂଜ୍ଞାର୍ଥ, ଳୀ)ପରାଗ,ଫୁଲ ଆଦିର ରେଣୁ,ମାଟି ବା ଧୂଳିପରି ଅକିଞ୍ଚିତ୍କର ପଦାର୍ଥ,ମାଟିର ଚୂର୍ଣ୍ଣ, ଗୁଣ୍ଡା, ଚୂନା, ଧୂଳିପରି ମୂଲ୍ୟହୀନବସ୍ତୁ, ଚରଣରେଣୁ,(ଗ୍ରା.ବିଂ) ଧୂଳିଧୂସରିତ, ମଇଳା ।

ଧୂଳିଆ—ଗ୍ରା.ବିଂ.ଚୂର୍ଣ୍ଣିତ,ଧୂଳିଧୂସରିତ, ଯେ ଧୂଳିରେ ବିଚରଣ କରେ,ମାଟିଆ ରଙ୍ଗର,ଧୂଳିମୟ,(ଗ୍ରା.ବି)ଧୂଳିଆ ଘର ଦେଖ, (ପ୍ରା.ପୁରୀ ବି.) ଧୂଳିଆ ଗୁମାସ୍ତା ଦେଖ ।

ଧୂଳିଆକଣ୍ଟା—ଗ୍ରା. ବି. ଲୌହ ନିର୍ମିତ କ୍ଷୁଦ୍ର କ୍ଷୁଦ୍ର କଣ୍ଟା ।

ଧୂଳିଆକରିବା—ଗ୍ରା.କ୍ରି.ଯାହା ଆପଣାର ପ୍ରାପ୍ୟ ନୁହେ ତାହା ଆଦାୟ କରିବା ।

ଧୂଳିଆଗୁଣ୍ଡିରୁ—ଗ୍ରା. ବି. ଯେଉଁ ଗୁଣ୍ଡିରୁ ଯାତ୍ରା ସମୟରେ ଧୂଳି ଉଡୁଥାଏ, ଅର୍ଥାତ୍ ବର୍ଷା ନ ଥାଏ ।

ଧୂଳିଆଗୁମାସ୍ତା—ପ୍ରା. ( ପୁରୀ ) ବି. ଏକ ପଣ୍ଡାଙ୍କ ତରଫର ଗୁମାସ୍ତା ଅନ୍ୟ ପଣ୍ଡାଙ୍କ ଯାତ୍ରୀଙ୍କୁ ଦେବ ଦର୍ଶନାଦି କରାଇ ପଣ୍ଡାଙ୍କୁ ଦିଆଯାଇଥିବା ଅର୍ଥରୁ ଭାଗ ନିଏ ।

ଧୂଳିଆଘର—ଗ୍ରା.ବି. ଯେଉଁ ଗୃହଘରର ଛାତ ବା ଲିପନରେ ବାଉଁଶର ରୁଅ ବା ପାରେଣୀ ବତା ପରିବର୍ତ୍ତେରେ କାଠର ରୁଅ ବା ବତା ଲାଗିଥାଏ ।

ଧୂଳିଆଜନ୍ଦା—ଗ୍ରା.ବି.ଏକପ୍ରକାର ଚକଚକିଆ କଳା ବା ପାଉଁଶିଆ ଜନ୍ଦା ।

ଧୂଳିଆଧୂସର—ଗ୍ରା. ବିଂ. ଧୂଳିଧୂସର ଦେଖ । [ ସାପ ।

ଧୂଳିଆନାଗ—ଗ୍ରା.ବି.ଏକଜାତୀୟ ନାଗ ।

ଧୂଳିଆପୂଜା—ଗ୍ରା. ବି. ଖରାଦିନେ ଗ୍ରାମଦେବତା( ଅଧିଷ୍ଠାତ୍ରୀ ଦେବତା )ଙ୍କୁ ବଳି ଭୋଗାଦି ଅର୍ପଣ କରାଯିବା ପୂଜା ।

ଧୂଳିଆବାଡ଼େଇବା—ଗ୍ରା.କ୍ରି ଧୂଳିଆଘର ଛାତର କାଠର ରୁଅ ଉପରେ କାଠର ବତାକୁ ଲୁହା କଣ୍ଟା ଦ୍ୱାରା ସଂଲଗ୍ନ କରିବା, (ଲ.ଅର୍ଥ) ଧନୀ ହୋଇ ବ୍ୟୟସାପେକ୍ଷ ଧୂଳିଆଘର କରିବା ।

ଧୂଳିଆବତା—ଗ୍ରା. ବି. ଆଟୁଘରର ବସ୍ତୁ ପଟାର ଯୋଡ଼ମାନଙ୍କରେ ମାଟିଆଦି ଗଳି ନ ପଡ଼ିବା ପାଇଁ ଉପରେ ଦିଆଯିବା ସାରୁଆ ପଟା ।

ଧୂଳିଆବାବାଜୀ—ଗ୍ରା.ବି. ଯେଉଁ ବାବାଜୀ ଦେହରେ ଭସ୍ମ ବା ଧୂଳି ବୋଳି ହୋଇଥାନ୍ତି ।

ଧୂଳିଆଯାତ୍ରୀ—ପ୍ରା. (ପୁରୀ.) ବି. ଯେଉଁ ଯାତ୍ରୀ ନିଜ ପଣ୍ଡା ଛଡ଼ା ଅନ୍ୟପଣ୍ଡା ବା ଗୁମାସ୍ତାଙ୍କ ସଙ୍ଗେ ଦେବ ଦର୍ଶନାଦି କରନ୍ତି ।

ଧୂଳିଉଡ଼ା(ଡ଼େ)ଇବା—ଗ୍ରା.କ୍ରି. ଭୂପୃଷ୍ଠସ୍ଥ ଧୂଳିକୁ ଶୂନ୍ୟକୁ ସଞ୍ଚାଳିତ କରିବା ।

ଧୂଳିଉଡ଼ିବା—ଗ୍ରା.ବି. ଧୂଳାଉଡ଼ିବାଦେଖ, ଧୂଳି ଶୂନ୍ୟକୁ ସଞ୍ଚାଳିତ ହେବା ।

ଧୂଳି(ଳୀ)କଦମ୍ବ—କ୍ଲୀ.ବି. (୬ତତ୍)ଧୂଳିସମୂହ, ( ପୁଂ ) ନୀପକଦମ୍ବ ବୃକ୍ଷ, ତିନସବୃକ୍ଷ ,ବରୁଣବୃକ୍ଷ, କେଳିକଦମ୍ବ ।

ଧୂଳିକଦମ୍ବକ—ପୁଂ.ବି. ନୀପକଦମ୍ବବୃକ୍ଷ ।

ଧୂଳିକା—ସ୍ତ୍ରୀ.ବି.(ଧୂଳି+କ+ଆ) କୁଜ୍ଝଟିକା, କୁହୁଡ଼ି, ।

ଧୂଳିକୁଟ୍ଟିମ--କ୍ଲୀ.ବି.କର୍ଷିତକ୍ଷେତ୍ର,ମାଟିର ସ୍ତୂପ ବା ଢିପ ।

ଧୂଳିକେଦାର—ପୁଂ.ବି.(ମଧ୍ୟ-କ.ଧା)ବପ୍ର, କ୍ଷେତ୍ର, କୃଷ୍ଟକ୍ଷେତ୍ର ।

ଧୂଳିଖେଳ—ଗ୍ରା. ବି. ଧୂଳିରେ ଖେଳିବା ଖେଳ, ( ଲ.ଅର୍ଥ ) ଅବାସ୍ତବ କଥା, ଅସ୍ଥାୟୀ ବିଷୟ ।

ଧୂଳିଗୁଚ୍ଛକ—ପୁଂ.ବି. ଅବିର, ଫଗୁ ।

ଧୂଳିଗୁଞ୍ଜା(ଞ୍ଜେ)ଇ—ଗ୍ରା.ବି.ପିଲାମାନଙ୍କର ଧୂଳିରେ ଖେଳିବା ଏକପ୍ରକାର ଖେଳ ।

ଧୂଳିଗୁଣ୍ଡୁରି—ଗ୍ରା.ବି.ଏକଜାତୀୟ ପୋକ, ଗୁଣ୍ଡୁରିପୋକ ।

ଧୂଳିଗୋଡ଼—ଗ୍ରା, ବି. ଅନାବୃତ ପାଦ ଯୋଗୁଁ ଧୂଳି ଲାଗିଥିବା ଗୋଡ଼ ।

ଧୂଳିଘର—ଗ୍ରା.ବି. ପିଲାମାନଙ୍କର ଧୂଳିରେ କରିବା ଖେଳଘର, (ଲ.ଅର୍ଥ)ଅବାସ୍ତବ ଓ ଅସ୍ଥାୟୀ ବିଷୟ, ସଂସାରର ଗାର୍ହସ୍ଥ୍ୟ କ୍ରିୟା ।

ଧୂଳିଝାଡ଼ିବା—ଗ୍ରା. କ୍ରି. ପଦରଜ ଛୁଆଁଇ ଦେବା, ପିଲା ପ୍ରଭୃତିଙ୍କଠାରେ ଲାଗି-

ଥିବା ଧୂଳି କନା ସାହାଯ୍ୟରେ ଝାଡ଼ି-
ଦେବା ।
ଧୂଳିଦେବା—ଗ୍ରା.କ୍ରି. ଚରଣଧୂଳି ପ୍ରଦାନ
କରିବା, ( ଲ.ଅର୍ଥ ) ଅନ୍ୟ ବ୍ୟକ୍ତିକୁ
ଆଖିଆଗରେ ଠକାଦେବା, ଦାନାରେ
ଧୂଳି ଦେବା ।
ଧୂଳିଧୂସର—ପୁଂ.ବଂ. (୩ତତ୍ପୁ) ମାଟିଆ,
ଧୂଳି ବୋଲି ହୋଇଥିବାରୁ ବିବର୍ଣ୍ଣ,(ସ୍ତ୍ରୀ)
ଧୂଳିଧୂସରା ।
ଧୂଳିଧୂସରିତ—ପୁଂ.ବ.(୩ତତ୍ପୁ)ଧୂଳିରେ
ଆବୃତ ହେବାଯୋଗୁଁ ପାଂଶୁବର୍ଣ୍ଣ,(ସ୍ତ୍ରୀ)
ଧୂଳିଧୂସରିତା ।
ଧୂଳିଧ୍ୱଜ—ପୁଂ. ବ. ( ବ.ବ୍ରୀ ) ପବନ,
ଘୂର୍ଣ୍ଣିବାୟୁ, ଝଞ୍ଜାଆଭୂତ ।
ଧୂଳିପଟଳ—ପୁଂ.ବ. (୬ତତ୍ପୁ)ଧୂଳିଉଡ଼ି
ମେଘପରି ଦେଖାଯିବା ଘନଧୂଳିଶ୍ରେଣି ।
ଧୂଳିପୁଷ୍ପିକା—ସ୍ତ୍ରୀ.ବ. (ବ.ବ୍ରୀ) କିଆ ଓ
କେତକୀ ଗଛ ।
ଧୂଳିବତା—ଗ୍ରା.ବ.ଝିଙ୍କର ଛୁଆଣି ଘରେ
ଓ ଧୂଳିଆଘରେ ଲୁଅଉପରେ ଲଗାଯିବା
ଦୁଇଆଙ୍ଗୁଳ ଓସାର ଓ ଅଧଆଙ୍ଗୁଳ
ବହଳ କାଠର ସରୁଆ ବତା ।
ଧୂଳିମୟ—ବଂ.(ଧୂଳି+ମୟ)ଧୂଳିଦ୍ୱାରା
ଆଚ୍ଛନ୍ନ, ଧୂଳିଆ, ଧୂଳିପୂର୍ଣ୍ଣ ।
ଧୂଳିମରିବା—ଗ୍ରା.କ୍ରି.ସାମାନ୍ୟ ବର୍ଷାଦ୍ୱାରା
ବା ପାଣି ଛିଞ୍ଚା ହେବାଦ୍ୱାରା ଭୂପୃଷ୍ଠରେ
ଉଡ଼ୁଥିବା ଧୂଳି ଆଉ ଉଡ଼ନପାରି ବସି
ଯିବା ।
ଧୂଳିମଳି—ଗ୍ରା. ବ. (ସହଚର) ଧୂଳି ଓ
ମଳି, (ଲ.ଅର୍ଥ)ସାମାନ୍ୟମାତ୍ର ସନ୍ଦେହ,
ସାମାନ୍ୟମାତ୍ର ଗୋଲମାଲ, କଳଙ୍କ,
ମଇଳା ।
ଧୂଳିମାଟି—ଗ୍ରା. ବ. ଧୂଳି ଓ ମାଟି,ଧୂଳି
ଓ ମାଟିପରି ମୂଲ୍ୟହୀନ ବସ୍ତୁ ।
ଧୂଳିର—ଗ୍ରା.ବଂ.ଧୂଳିରେ ନିର୍ମିତ, ଧୂଳି-
ପରି ଅକିଞ୍ଚିତ୍କର, ଯାହା ଦିନେ ଧୂଳି-
ସାତ୍ ହେବ ।
ଧୂଳିରେମିଶିବା—ଗ୍ରା. କ୍ରି. ଧୂଳିସାତ୍
ହେବା, ବିନଷ୍ଟ ହେବା, ମରିବା ।

ଧୂଳିଲୁଣ୍ଠିତ—ବଂ. ( ୭ତତ୍ପୁ ) ଧୂଳିରେ
ଗଡ଼ାଗଡ଼ି ହୋଇଥିବା ।
ଧୂଳିଶଯ୍ୟା—ସ୍ତ୍ରୀ. ବ.(ରୂପକ) ଧୂଳିରୂପକ
ଶେଯ ବା ବିଛଣା ।
ଧୂଳିଶାୟୀ—ବଂ. (ଧୂଳି+ଶୀ+କ.ଇନ୍)
ଧୂଳିରେ ଶୋଇଥିବା,(ସ୍ତ୍ରୀ)ଧୂଳିଶାୟିନୀ ।
ଧୂଳିସରସର—ଗ୍ରା.ବଂ.ଧୂଳିଧୂସର ଦେଖ ।
ଧୂଳିସାତ୍—ବଂ. (ଧୂଳି+ସାତ୍)ଧୂଳିରେ
ପରିଣତ, ଭାଙ୍ଗି ଧୂଳିସଙ୍ଗେ ମିଶିବା ।
ଧୂଳିସାତ(ଥ)—ଗ୍ରା.(ପଦ୍ୟ)ବଂ.ଧୂଳିରେ
ପରିଣତ ।
ଧୂଳୀ—ସ୍ତ୍ରୀ. ବ. ( ଧୂ+କ.ଲ+ଈ )
ରେଣୁ, ଧୂଳି, ବାଲି ।
ଧୂଳୀପଟଳ—ପୁଂ. ବ. ଉଡ଼ନ୍ତୀୟମାନ
ଧୂଳିସମୂହ, (କ୍ଲୀ.୬ତତ୍ପୁ) ଧୂଳିସମୂହ ।
ଧୂଳୀମୟ—କ୍ରି. ବଂ. ଧୂଳିଦ୍ୱାରା ଆବୃତ ।
ଧୂଳୀମୁଷ୍ଟି—ସ୍ତ୍ରୀ. ବ. (୬ତତ୍ପୁ) ଏକମୁଷ୍ଟି
ଧୂଳି ।
ଧୂଳୀବଗୁଣ୍ଠନ—କ୍ଲୀ. ବ. (୩ତତ୍ପୁ)ଧୂଳି-
ରୋଧକ ମୁଖାଚ୍ଛାଦନ ।
ଧୂଶ୍(ଧାତୁ)—ସଂ. ଶୋଭିତ କରିବା ।
ଧୂସ୍—ଗ୍ରା. ଅବ୍ୟ. ( ଧ୍ୱନ୍ୟନୁକରଣ )
ଭୁଷ୍, କୋମଳବସ୍ତୁର ହଠାତ୍ ପତନ
ଶବ୍ଦ ।
ଧୂସ—ସ୍ତ୍ରୀ. ବ. ଧାନ ଆଦି ଶସ୍ୟରୁ ବା
କୁଟାଦିରୁ ଉଡ଼ିବା ଧୂଳିପରି ସୂକ୍ଷ୍ମଅଂଶ ।
ଧୂସର—ବି. ବଂ.(ଧୂ+କ.ସର)ଈଷତ୍
ପାଣ୍ଡୁର, ପାଉଁଶିଆରଙ୍ଗ, ଧୂଳିଆ,
ମାଟିଆ, ଧୂଳି ବୋଳା ହୋଇଥିବା,
ମଳିନ, ମଳିଆ, (ଗ୍ରା ବଂ. ଲ.ଅର୍ଥ)
ଅଭିମାନ ବା ଦୁଃଖଯୁକ୍ତ, ଚକିତ, (ବ)
ପାଣ୍ଡୁର ବର୍ଣ୍ଣ,ଉଷ୍ଟ୍ର,ଓଟ,ଗଧ,କପୋତ,
ବଣିଆଁ, ତେଲ ।
ଧୂସରଚ୍ଛଦା—ସ୍ତ୍ରୀ. ବ. ଶ୍ୱେତବୁହ୍ମା ।
ଧୂସରଧୂମା—ଗ୍ରା.ପୁଂ. ବଂ. ଧୂସୁରଧୂମା
ଦେଖ, (ସ୍ତ୍ରୀ) ଧୂସରଧୂମୀ ।
ଧୂସରଧୂସା—ଗ୍ରା.ପୁଂ.ବଂ. ଧୂସୁରଧୂସା
ଦେଖ, (ସ୍ତ୍ରୀ) ଧୂସରଧୂସୀ ।
ଧୂସରପତ୍ରିକା—ସ୍ତ୍ରୀ. ବ. ହସ୍ତିଶୁଣ୍ଡୀକ୍ଷୁପ,

ହାତିଶୁଣ୍ଢ଼ୀ ଗଛ ।
ଧୂସରା—ଗ୍ରା.ପୁଂ.ବଂ.ପାଂଶୁବର୍ଣ୍ଣ, ଧୂସର-
ବର୍ଣ୍ଣ, ଧୂଳିଆ, ମଳିଆ, ( ବ ) କଳସରା
ରଙ୍ଗର ଏକପ୍ରକାର ଧାନ,(ସ୍ତ୍ରୀ)ଧୂସରୀ,
ଧୂସୁରୀ । [ ଦେଖ ।
ଧୂସରା(ରେ)ଇବା—ଗ୍ରା. କ୍ରି. ଧୂସାରିବା
ଧୂସରାକେନ୍ଦୁ—ଗ୍ରା. ବ. ମ.କଡ଼କେନ୍ଦୁ
ଦେଖ ।
ଧୂସରାଧୂସର—ଗ୍ରା. ବ ଓ ବଂ. ପରସ୍ପର
ଉପରକୁ ଧୂଳି ଫୋପଡ଼ାଫୋପଡ଼ି
ହୋଇ ଧୂଳିଧୂସରିତ ହେବା ।
ଧୂସରୀ—ପ୍ରା. (ଫ ହିଭୂମ)ବ.ଏକପ୍ରକାର
ଧାନ, (ଫ. ବଂ) ଧୂସରାର ସ୍ତ୍ରୀଲିଙ୍ଗ,
(ସ୍ତ୍ରୀ) କନ୍ଦୁରବିଶେଷ ।
ଧୂସରିତ—ପୁଂ. ବଂ. (ଧୂସର+ଇତ)
ଧୂସରବର୍ଣ୍ଣ ରଞ୍ଜିତ,ପାଣ୍ଡୁର,ଧୂଳିରେ
ଆବୃତ, (ସ୍ତ୍ରୀ) ଧୂସରିତା ।
ଧୂସରିମା—ପୁଂ. ବ. (ଧୂସର+ଇମନ୍)
ପାଣ୍ଡୁରତା ।
ଧୂସା—ପୁଂ. ବ. ଭୁଷା,ଅତି ସ୍ଥୂଳକାୟ,
(ବ) ଲୋଦ୍ଧ, ମୋଟା ଶୀତବସ୍ତ୍ର, ଊର୍ଣ୍ଣା
ବସ୍ତ୍ର, ଦୁଃଶାସନର ଡାକ ନାମ, (ପ୍ରା.
ଗଡ଼ଜାତ ଓ ଜୟପୁର.ବ.) ବଡମୂଷା ।
ଧୂସାଧୂସି—ଗ୍ରା.ବ ଓ ବଂ. ଧୂପ୍ସାଧୂପ୍ସି
ଦେଖ ।
ଧୂସାରିବା—ଗ୍ରା. କ୍ରି. କୌଣସିପଦାର୍ଥକୁ
ଧୂଳିରେ ଘୋସାରିବା, ପଦାର୍ଥକୁ ଧୂଳି
ଧୂସର କରିବା ।
ଧୂସୀ—ଅବ୍ୟ. (ଧୂସ୍+ଈ) ବିସ୍ତାର ।
ଧୂସୁମା—ଗ୍ରା.ପୁଂ. ବଂ. ଧୂମ୍ସା ଦେଖ
(ସ୍ତ୍ରୀ) ଧୂସୁମୀ ।
ଧୂସୁରଧୂମା—ଗ୍ରା. ବଂ. ସ୍ଥୂଳକାୟ,
ମୋଟା, ଗେଧ, ଧୂଳିଧୂସରିତ ଓ
ମୋଟା, (ସ୍ତ୍ରୀ)ଧୂସୁରଧୂମୀ ।
ଧୂସୁରଧୂସା—ଗ୍ରା.ପୁଂ.ବଂ. ଧୂଳିଧୂସରିତ,
ଦେହସାକ ଧୂଳିବୋଳା ହୋଇଥିବା,
(ସ୍ତ୍ରୀ) ଧୂସୁରଧୂସୀ ।
ଧୂସୁରିବା—ଗ୍ରା. କ୍ରି. ତଳେ ଘୁଷୁରି
ଧୂଳିଧୂସରିତ ହେବା, ଧୂଳିରେ

ଘୂସୁରବା ।

ଧୂସ୍ତର—ବି. ଧୁସ୍ତୁର ଦେଖ ।

ଧୂସ୍ତୂର—ସଂ.ବି. ଏକଶ୍ରେଣୀୟ କ୍ଷୁଦ୍ର ଗଛ. ଧୁସ୍ତୁର ଦେଖ ।

ଧୂସ୍ତୂର—ବି.ଏକଶ୍ରେଣୀୟ କ୍ଷୁଦ୍ର ଗଛ ।

ଧୂସ୍ତୂରତୈଳ—କ୍ଲୀ. ବି. ତୈଳୌଷଧ ବିଶେଷ ।

ଧୃ—ସଂ.(ଧାତୁ) ଧରିବା ।

ଧୃକ୍—ବିଂ. (ଧୃ + କ୍ୱିପ୍) ଯେ ଧରିଥାଏ, ଧାରଣକାରୀ ।

ଧୃକ—ଗ୍ରା. ବିଂ. ଧାରକ, ଧାରଣକାରୀ ।

ଧୃତ୍—ବିଂ. (ଧୃ+ଶତୃ) ଧୃକ୍ ଦେଖ ।

ଧୃତ—ନି. ବିଂ. ( ଧୃ+ର୍ମ.ତ ) ଧରା-ହୋଇଥିବା, ଗୃହୀତ, ସ୍ଥାପିତ, ପରି-ହିତ, ଆଲୋଚିତ, ଗିରଫ୍‌କୃତ, ବାହିତ, ପାଳିତ, ଅବରୁଦ୍ଧ, ରକ୍ଷିତ, ଅଭ୍ୟସ୍ତ, ଓଜନ କରାଯାଇଥିବା, ଅଧିକୃତ, ଅବ-ଲମ୍ବିତ, (ଧୃ+କ.ତ) ସ୍ଥିତ, ପତିତ, ନିକ୍ଷିପ୍ତ, ବି. ( ଧୃ +ଭା.ତ ) ଧାରଣ, ଗ୍ରହଣ, ତ୍ରୟୋଦଶମନୁଙ୍କ ପୁତ୍ରବିଶେଷ, ଦ୍ରୁହ୍ୟୁବଂଶୀୟ ଧର୍ମଙ୍କ ପୁତ୍ର, ଏକପ୍ରକାର ଯୁଦ୍ଧ, (ଗ୍ରା.ପଦ୍ୟ. ବିଂ.) ଧାରଣକାରୀ ।

ଧୃତକରିବା—ଗ୍ରା. କ୍ରି. ଧରିବା, ଗିରଫ୍-ଦାର କରିବା ।

ଧୃତଦଣ୍ଡ—ପୁଂ. ବିଂ. (ବ.ବ୍ରୀ)(ଧୃତ+ ଦଣ୍ଡ) ରାଜଦଣ୍ଡଧାରୀ, ଯଷ୍ଟିଧାରୀ, ଦଣ୍ଡ-ଦାତା, ଦଣ୍ଡିତ ।

ଧୃତଦୀଧିତି—ବି. (ବ.ବ୍ରୀ) ଅଗ୍ନି ।

ଧୃତଦେବା—ସ୍ତ୍ରୀ. ବି. ଦେବକଙ୍କର ଏକ କନ୍ୟା ।

ଧୃତପଦା—ସ୍ତ୍ରୀ. ବି. ଗାୟତ୍ରୀଭେଦ ।

ଧୃତବତ୍—ବିଂ.ଧାରଣକାରୀ,ଧାରଣଶୀଳ ।

ଧୃତବର୍ମା—ପୁଂ. ବିଂ. ( ବ.ବ୍ରୀ ) କବଚ ଦ୍ୱାରା ରକ୍ଷିତ ଦେହ, ବର୍ମଧାରୀ, (ବି) ତ୍ରିଗର୍ତ୍ତ ଦେଶର ରାଜକୁମାର ।

ଧୃତବ୍ରତ—ପୁଂ.ବିଂ.(ବ.ବ୍ରୀ)ବ୍ରତଧାରଣ-କାରୀ, ଗୃହୀତ ବ୍ରତ (ପୁରୁଷ), ଅନୁଗତ. ନିର୍ଦ୍ଦିଷ୍ଟ ନିୟମର ଅନ୍ତର୍ଗତ, (ବି) ଇନ୍ଦ୍ର, ବରୁଣ, ଅଗ୍ନି, ପୁରୁବଂଶୀୟ ଜୟଦ୍ରଥଙ୍କ ପୁତ୍ର, ବିଜୟଙ୍କ ପୌତ୍ର ।

ଧୃତମୟ—ବିଂ.(ଧୃତ + ମୟ) ସ୍ଥିତିମାନ୍, ସ୍ଥିର, (ସ୍ତ୍ରୀ) ଧୃତମୟୀ ।

ଧୃତରାଜା—ବି. ସୌରାଜ ଦେଶ, ଯେଉଁ ଦେଶରେ ରାଜା ଉତ୍ତମରୂପେ ପ୍ରଜା ପାଳନ୍ତି ।

ଧୃତରାଷ୍ଟ୍ର—ପୁଂ. ବି. ବ.ବ୍ରୀ, (ଧୃତ+ ରାଷ୍ଟ୍ର)କୁରୁବଂଶୀୟ ଜନ୍ମାନ୍ଧରାଜା,ବିଚିତ୍ର-ବୀର୍ଯ୍ୟ ରାଜାଙ୍କବିଧବା ସ୍ତ୍ରୀ ଅମ୍ବିକାଙ୍କ ଗର୍ଭରୁ ବ୍ୟାସଦେବଙ୍କ ଔରସ ସନ୍ତାନ, ଦୁର୍ଯ୍ୟୋଧନଙ୍କ ପିତା, ନାଗବିଶେଷ, କୃଷ୍ଣବର୍ଣ୍ଣ ଚଞ୍ଚୁ ଓ ପଦବିଶିଷ୍ଟ ହଂସ-ବିଶେଷ, ଗେଡ଼ୀ ହଂସ, ଜନମେଜୟ ରାଜାଙ୍କର ଏକ ପୁତ୍ର, ଉତ୍ତମ ରାଜା, ଉତ୍ତମ ରାଜାଙ୍କ ଦ୍ୱାରା ସୁଶାସିତ ରାଜ୍ୟ ।

ଧୃତରାଷ୍ଟ୍ରୀ—ସ୍ତ୍ରୀ. ବି. ( ଧୃତରାଷ୍ଟ୍ର+ଈ ) ହଂସୀ, କଶ୍ୟପ ଋଷିଙ୍କର ଏକ ପତ୍ନୀ (ଯେ ହଂସଆଦିଙ୍କୁ ଜାତ କରିଥିଲେ ), ଧୃତରାଷ୍ଟ୍ରଙ୍କ ସ୍ତ୍ରୀ ।

ଧୃତଶଙ୍ଖଚକ୍ର—ପୁଂ.ବିଂ(ଦ୍ୱନ୍ଦ୍ୱ ଓ ବ.ବ୍ରୀ) ଶଙ୍ଖଚକ୍ରଧାରୀ ବିଷ୍ଣୁ ।

ଧୃତାତ୍ମା—ପୁଂ. ବିଂ. ବ.ବ୍ରୀ; (ଧୃତ+ ଆତ୍ମନ) ଆତ୍ମଜ୍ଞାନୀ, ସଂଯତଚିତ୍ତ, ଧୀର, ଧୈର୍ଯ୍ୟଶାଳୀ, (ବି) ବିଷ୍ଣୁ, ଧୀରବ୍ୟକ୍ତି, ଧୈର୍ଯ୍ୟଶାଳୀ ବ୍ୟକ୍ତି ।

ଧୃତି—ସ୍ତ୍ରୀ. ବି. ( ଧୃ+ଭା.ତି ) ଧାରଣ-କରିବା, ଗ୍ରହଣ, ପରିଧାନ, ଟେକି ଧରିବା, ପୋଷଣ, ବହନ, ଅଧିକାର କରିବା, ଅଟକାଇ ରଖିବା, ଦୃଢ଼ ସଂକଳ୍ପ, ସାହସ, ଆତ୍ମବଳ, ଧାରଣା, ଧୈର୍ଯ୍ୟ, ସ୍ଥୈର୍ଯ୍ୟ, ସ୍ଥିରତା, ଅଟଳତା, ଦୃଢ଼ତା, ଇଚ୍ଛା, ସନ୍ତୋଷ, ଆନନ୍ଦ, ସୁଖ, ଉତ୍ସାହ, ସବଂତ୍ର ପ୍ରୀତି, ଯାଗ, ଯଜ୍ଞ, (ଶ.ତି) ଷୋଡ଼ଶ ମାତୃକା ମଧ୍ୟରୁ ତ୍ରୟୋଦଶ ମାତୃକା, ଜ୍ୟୋତିଷୋକ୍ତ ୨୦ ଯୋଗ ମଧ୍ୟରୁ ଏକତମ, ଅଷ୍ଟାଦଶ ଅକ୍ଷରଯୁକ୍ତ ସଂସ୍କୃତ ଛନ୍ଦୋବିଶେଷ, ଚନ୍ଦ୍ରଙ୍କ ଷୋଳକଳା ମଧ୍ୟରୁ ଏକ, ଦକ୍ଷ-ଙ୍କର ଏକକନ୍ୟା ଓ ଧର୍ମଙ୍କ ପତ୍ନୀ, ଅଶ୍ୱମେଧର ଏକ ଆହୁତିର ନାମ, (ପୁଂ) ଜୟଦ୍ରଥରାଜାଙ୍କ ପୌତ୍ର, ଏକ ବିଶ୍ୱଦେବଙ୍କ ନାମ, ଚନ୍ଦ୍ରବଂଶୀୟ ବଭ୍ରୁ ରାଜାଙ୍କ ପୁତ୍ର ।

ଧୃତିମାନ୍—ପୁଂ. ବିଂ. ( ଧୃତି+ମତ୍ ) ଧୈର୍ଯ୍ୟଶାଳୀ, ଧୀର, ଅଟଳ, ଦୃଢ଼, ଦୃଢ଼ପ୍ରତିଜ୍ଞ, ସନ୍ତୁଷ୍ଟ, ଆନନ୍ଦିତ, ସୁଖୀ, (ବି) ନୃପବିଶେଷ, ଅଗ୍ନିବିଶେଷ, ପୁରା-ଣୋକ୍ତ କୁଶଦ୍ୱୀପସ୍ଥ ବର୍ଷ ବା ଦେଶ-ବିଶେଷ ।

ଧୃତିହୋମ—ବି.୬ତତ୍; (ଧୃତି+ହୋମ) ବିବାହର ଅଙ୍ଗୀଭୂତ ହୋମବିଶେଷ ।

ଧୃତ୍ୱରୀ—ସ୍ତ୍ରୀ.ବି.(ଧୃ+ବର+ଈ)ଧରଣୀ, ଧରିତ୍ରୀ, ଭୂମି ।

ଧୃତ୍ୱା—ପୁଂ. ବି. (ଧୃ+କ.ତ୍ୱ+ଆ)ଧର୍ମ, ବିପ୍ର, ସମୁଦ୍ର, ଅନ୍ତରୀକ୍ଷ,ମେଧାବୀ ବ୍ୟକ୍ତି, ବିଷ୍ଣୁ ।

ଧୃପଦ—ଗ୍ରା. ବି. (ସଂ-ଧ୍ରୁବପଦ)ଧ୍ରୁପଦ [ଦେଖ ।

ଧୃଷ—(ଧାତୁ) ପ୍ରଗଲ୍‌ଭ ହେବା, ଦଳନ କରିବା, ଆକ୍ରମଣକରିବା ।

ଧୃଷକ୍—ବିଂ. ଧର୍ଷକ, ଅଭିଭବ ।

ଧୃଷୁ—ପୁଂ. ବି. ( ଧୃଷ + କ.ଉ) ପ୍ରଗଲ୍‌ଭ ଜନ, ଦକ୍ଷ ବ୍ୟକ୍ତି, (ଭା.ଉ) ସଂଘାତ ।

ଧୃଷ୍ଟ—ପୁଂ.ବିଂ. (ଧୃଷ୍+କ.ତ) ନିର୍ଲଜ୍ଜ, ଧୀଟ, ଅବାଧ, ଉଦ୍ଧତ, ପ୍ରଗଲ୍‌ଭ, ଲମ୍ପଟ, (ବି) ନାୟକବିଶେଷ, ଯେଉଁ ନାୟକ ଅନ୍ୟ ନାୟିକା ପ୍ରତି ଆସକ୍ତିଜନିତ ଅପରାଧ କରି ସୁଦ୍ଧା ଶଙ୍କାହୀନ ହୁଏ ଓ ତିରସ୍କୃତ ହୋଇ ମଧ୍ୟ ନିର୍ଲ୍ଲଜ ହୁଏ ଏବଂ ମିଥ୍ୟା କହି ନିଜ ଦୋଷ ଗୋପନ କରେ, ଚେଦିବଂଶୀୟ କୁନ୍ତୀ ରାଜାଙ୍କ ପୁତ୍ର, ସପ୍ତମ ମନୁଙ୍କର ଏକପୁତ୍ର, ଅସ୍ତ୍ରର ସଂହାର ।

ଧୃଷ୍ଟକେତୁ—ପୁଂ.ବି. ସନ୍ନତି ରାଜବଂଶୀୟ ସୁକୁମାରଙ୍କ ପୁତ୍ରଭେଦ, ନବମ ମନୁ ରୋହିତଙ୍କ ପୁତ୍ରଭେଦ, ଜନକବଂଶୀୟ ସୁଧୃତିଙ୍କ ପୁତ୍ର, ସତ୍ୟକେତୁଙ୍କ ଏକ ପୁତ୍ର, ଚେଦିରାଜ ଶିଶୁପାଳଙ୍କ ପୁତ୍ର ।

ଧୃଷ୍ଟତା—ବି. (ଧୃଷ୍ଟ+ଭା.ତା) ନିର୍ଲଜ୍ଜତା,

ଔଦ୍ଧତ୍ୟ, ଅବାଧ୍ୟତା, ପ୍ରଗଲ୍‌ଭତା ।

ଧୃଷ୍ଟଦ୍ୟୁମ୍ନ—ବି. (ବ.ସ୍ତ୍ରୀ) ଦ୍ରୁପଦ ରାଜାଙ୍କ ପୁତ୍ର, ଦ୍ରୌପଦୀଙ୍କ ଭାଇ ।

ଧୃଷ୍ଟଧୀ—ସ୍ତ୍ରୀ.ବି.ଧୃଷ୍ଟବୁଦ୍ଧି,ଦୃଢ଼ଚେତାଃ ।

ଧୃଷ୍ଟନାୟକ—ବି. ଧୃଷ୍ଟ ଦେଖ ।

ଧୃଷ୍ଟମାନୀ—ପୁଂ.ବିଂ.ଆତ୍ମପକ୍ଷରେ ଉଚ୍ଚାଭିମାନୀ ।

ଧୃଷ୍ଟରଥ—ପୁଂ. ବି. ନୃପବିଶେଷ ।

ଧୃଷ୍ଟଶର୍ମା—ପୁଂ. ବି. (ବ.ସ୍ତ୍ରୀ) ସ୍ୱଫଳ୍କଙ୍କ ପୁତ୍ର ଓ ଅକ୍ରୂରଙ୍କ ଭ୍ରାତା ।

ଧୃଷ୍ଟା—ସ୍ତ୍ରୀ. ବିଂ. ( ଧୃଷ୍ଟ+ଆ ) ଧୃଷ୍ଟର ସ୍ତ୍ରୀଲିଙ୍ଗ, ଅସତୀ, (ସ୍ତ୍ରୀ) ଧର୍ଷିତା, ଯେଉଁ ସ୍ତ୍ରୀର ସତୀତ୍ୱ ନଷ୍ଟ କରାଯାଇଅଛି ।

ଧୃଷ୍ଟି—ବି. ( ଧୃଷ୍‌+ତି ) ହିରଣ୍ୟାକ୍ଷ ଦୈତ୍ୟର ଏକ ପୁତ୍ର, ଦଶରଥ ରାଜାଙ୍କର ଏକ ମନ୍ତ୍ରୀ, ଯଜ୍ଞପାତ୍ରବିଶେଷ ।

ଧୃଷ୍ଟୋକ୍ତ—ପୁଂ.ବି.କାର୍ତ୍ତିବୀର୍ଯ୍ୟ ଅର୍ଜ୍ଜୁନଙ୍କ ପୁତ୍ର ।

ଧୃଷ୍ଣକ୍—ପୁଂ.ବିଂ.ପ୍ରଗଲ୍ଭ,ନିର୍ଲଜ,ସହିଷ୍ଣୁ ।

ଧୃଷ୍ଣି—ବି. ( ଧୃଷ୍‌+ଣି.ନ ) କିରଣ, ଆଲୋକ ।

ଧୃଷ୍ଣୁ—ପୁଂ. ବିଂ. ( ଧୃଷ୍‌+ନୁ ) ଧୃଷ୍ଟ, ନିର୍ଲଜ୍ଜ, ସହିଷ୍ଣୁ, (ବି) ବୈବସ୍ୱତମନୁଙ୍କର ଏକ ପୁତ୍ର,ସାବର୍ଣ୍ଣିମନୁଙ୍କର ଏକପୁତ୍ର, ଏକ ରୁଦ୍ରଙ୍କ ନାମ ।

ଧୃଷ୍ଣୁକ—ପୁଂ.ବି.ବୈବସ୍ୱତ ମନୁବଂଶୀୟ ନୃପବିଶେଷ ।

ଧୃଷ୍ଣୁବେଶ—ବିଂ. ପରଭି ଭବନଶୀଳ ସେନୋପେତ ।

ଧୃଷ୍ୟ—ପୁଂ. ବିଂ. (ଧୃଷ+ର୍ମି.ଯ)ଧର୍ଷଣୀୟ, ଦଳନୀୟ, (ସ୍ତ୍ରୀ) ଧୃଷ୍ୟା ।

ଧେ—(ଧାତୁ) ପାନକରିବା ।

ଧେଇ—ଗ୍ରା. ଅବ୍ୟ. ( ଧ୍ୱନ୍ୟନୁକରଣ ) ଆନକ ବାଦ୍ୟର ଧ୍ୱନିବିଶେଷ, ମୃଦଙ୍ଗଆଦିର ଶ୍ଳୋକଟ ବା ଉକୁଟ, (ଲ.ଅର୍ଥ) ତା ଧେଇ, ଚଞ୍ଚଳ ପଦକ୍ଷେପ ପୂର୍ବକ ନୃତ୍ୟ, ଧାବନ, ସହିନୃତ୍ୟ, ଆହ୍ଲାଦ ।

ଧେଇଆ—ଗ୍ରା. ଅବ୍ୟ. ଧେଇ ଦେଖ ।

ଧେଇକି—ଗ୍ରା. ଅବ୍ୟ. ଧେଇ ଦେଖ ।

ଧେଇତା—ଗ୍ରା. ଅବ୍ୟ. ଧେଇ ଦେଖ ।

ଧେଇତାରଗଡ଼ ଥୋ—ଗ୍ରା.ଅବ୍ୟ. ଧେଇ ଦେଖ । [ ଦେଖ ।

ଧେଇଛନ କଟିଥୋ—ଗ୍ରା. ଅବ୍ୟ. ଧେଇ

ଧେଇଧେଇ—ଗ୍ରା. ଅବ୍ୟ. ଧେଇ ଦେଖ, (ଲ.ଅର୍ଥ) ଥେଇ ଥେଇ, ତାଣ୍ଡବ, ପଦକ୍ଷେପ ସହ କଳହ ।

ଧେଇଧେଇକା—ଗ୍ରା.ଅବ୍ୟ.ଧେଇ ଦେଖ, ଧେଇ ଧେଇ ଦେଖ ।

ଧେଇଧେଇତା—ଗ୍ରା.ଅବ୍ୟ.ଧେଇ ଦେଖ ।

ଧେଇ ଧେଇ ଧେଇକି ନାଚ—ଗ୍ରା.ବି.ଗୃହିନ ଥିବା ପିଲାଙ୍କୁ ଧରି ନଚାଇବା ବେଳେ ବୋଲାଯିବା ପଦବିଶେଷ ।

ଧେଁକ୍ ଧେଁକ୍ ଥେଇ ଥେଇ—ଗ୍ରା.ଅବ୍ୟ. (ଧ୍ୱନ୍ୟନୁକରଣ)ବାଦ୍ୟ ଧ୍ୱନିବିଶେଷ ।

ଧେଡ଼୍—ଗ୍ରା.ପୁଂ.ବି.ନୀଚ ଅସ୍ପୃଶ୍ୟଅନାର୍ଯ୍ୟ ଜାତିବିଶେଷ, ଦକ୍ଷିଣିଆ ହାଡ଼ି ଜାତି, (ସ୍ତ୍ରୀ) ଧେଡ଼ୀ (ଗ୍ରା.ବିଂ.)ଓଲୁ,ନିର୍ବୋଧ, ପିଣ୍ଡା, ଅସ୍ଥିକଙ୍କାଳ ମାତ୍ରାବଶିଷ୍ଟ ଓ ଅପରିଷ୍କୃତ ।

ଧେଣ୍ଡ—ଗ୍ରା.ବି. (ସଂ-ତ୍ରିଣ୍ଡି) ନୋଳପଣ କର୍ଣ୍ଣାଳଙ୍କାରବିଶେଷ, (ପ୍ରା.ସିଂହଭୂମ.ବି) କାପ,କର୍ଣ୍ଣାଳଙ୍କାରବିଶେଷ, (ପ୍ରା.ସମ୍ବ. ବି) କନାଧଡ଼ି । [ କାପ ।

ଧେଣ୍ଡଆ—ଗ୍ରା.ବିଂ. ଧଡ଼ିଆ, ଅତି ଶୀର୍ଣ୍ଣ-

ଧେଣ୍ଡ—ପ୍ରା. (କଳାହାଣ୍ଡି) ବି. ବେଣ୍ଡ ।

ଧେଣ୍ଡୁଅ—ପ୍ରା. (ଯାଜ) ବି. ଧଣ୍ଡସାପ ।

ଧେଣ୍ଡୁରା—ଗ୍ରା. ବି. (ସଂ-ଡିଣ୍ଡିମ) ଢକ୍କା, ଢାଉଁ, ଡିଣ୍ଡିମ, ନାଗରା, ଡିଣ୍ଡିମ ବଜାଯାଇ ସର୍ବସାଧାରଣରେ କରାଯିବା ଘୋଷଣା ।

ଧେଣ୍ଡୁରଦେବା—ଗ୍ରା. କ୍ରି. ଡିଣ୍ଡିମ ବଜାଇବା, ନାଗରା ପିଟିବା, ନାଗରା ପିଟି କୌଣସି ବିଷୟ ଘୋଷଣା କରିବା, ସର୍ବସାଧାରଣରେ କୌଣସି ବିଷୟ ପ୍ରକଟ କରିବା ।

ଧେଣ୍ଡୁରପିଟା—ଗ୍ରା. ବି. ଡିଣ୍ଡିମବାଦନ, ଡିଣ୍ଡିମ ବାଦନ ଦ୍ୱାରା କୌଣସି ବିଷୟର ଘୋଷଣା, ସର୍ବସାଧାରଣରେ କୌଣସି ବିଷୟର ପ୍ରକଟନ ।

ଧେଣ୍ଡୁଆ—ଗ୍ରା. ବି. ଯେ ଡିଣ୍ଡିମ ବଜାଏ, ନାଗରାଚୀ ।

ଧେନ—ବି. (ଧେ+ନ) ସମୁଦ୍ର, ନଦୀ, ବଡ଼ ଅଗଣ୍ଟିର ନଈ ।

ଧେନା—ସ୍ତ୍ରୀ. ବି.(ଧେ+ନ+ଆ)ନଦୀ, ଭାରତୀ, ବଚନ, ଆପ୍ରାଣ୍ଡି ।

ଧେନିକା—ସ୍ତ୍ରୀ.ବି. (ଧେ+ନ+କ+ଆ) ଧନିଆଁ, ଧନିଆ ।

ଧେନୁ—ସ୍ତ୍ରୀ. ବି. (ଧେ+କ.ନୁ) ସବତ୍ସା ଗୋ, ନବପ୍ରସୂତିକା ଗାଭୀ, ସବତ୍ସା ଦୁଗ୍ଧବତୀ ଗାଭୀ, ଗାଈ, ପୃଥିବୀ ।

ଧେନୁକ—ପୁଂ.ବି. (ଧେନୁ+କ) ଅସୁରବିଶେଷ, ରତିମଞ୍ଜରୀ ବର୍ଣ୍ଣିତ ଷୋଡ଼ଶ ରତିବନ୍ଧ ମଧ୍ୟରୁ ଦ୍ୱାଦଶ ବନ୍ଧ,(ଯହିଁରେ ବୃଷ ଗାଭୀକୁ ସହବାସ କରିବା ପ୍ରକ୍ରିୟାର ଅନୁକରଣ କରାଯାଏ), ତୀର୍ଥବିଶେଷ । [ ବଡ଼ ଭାଇ ।

ଧେନୁକପାଳ—ଗ୍ରା.ବି. ବଳରାମ,ଶ୍ରୀକୃଷ୍ଣଙ୍କ

ଧେନୁକସୂଦନ—ବି. (ବ.ସ୍ତ୍ରୀ) ଶ୍ରୀକୃଷ୍ଣ, ବଳରାମ ।

ଧେନୁକହା—ପୁଂ. ବି. (ଧେନୁକ+ହନ୍ +କ.କ୍ୱିପ୍) ଶ୍ରୀକୃଷ୍ଣ, ବଳରାମ ।

ଧେନୁକା—ସ୍ତ୍ରୀ. ବି. (ଧେନୁ+କ+ଆ) ହସ୍ତିନୀ, ଧେନୁ, ଗାଭୀ, ପଶ୍ୱନାୟିକା ।

ଧେନୁକାରି—ବି. (ଷତତ୍ପୁ) ଧେନୁକସୂଦନ ଦେଖ ।

ଧେନୁଦୁଗ୍ଧ—ବି. ( ଷତତ୍ପୁ ) ଗାଈଦୁଗ୍ଧ, (ଧେନୁଦୁଗ୍ଧପରି ସ୍ୱାଦୁ ବୋଲି) ଚିର୍ଭଟୀ, ଫୁଟିକାକୁଡ଼ି ।

ଧେନୁଦୁଗ୍ଧକର—ବିଂ. ଯାହା ଖାଇଲେ ଗାଈଙ୍କ ଠାରୁ ବେଶୀ ଦୁଧ ଜନ୍ମେ, (ବି) ଗାଜର, ଗର୍ଜର । [ ଡାଉଁଣ ।

ଧେନୁମକ୍ଷିକା—ସ୍ତ୍ରୀ. ବି. (କ.ଧା) ଦଂଶ,

ଧେନୁମତୀ—ବି. ଗୋମତୀ ନଦୀ, ଭରତବଂଶୀୟ ରାଜା ଦେବଦ୍ୟୁମ୍ନଙ୍କ ପତ୍ନୀ ।

ଧେନୁମୁଖ—ବି. (ବ.ସ୍ତ୍ରୀ) ଗୋମୁଖ ନାମକ ବାଦ୍ୟ, ଏକପ୍ରକାର ଭୂରୀ ।

ଧେନୁମୂଲ୍ୟ—ବି.(ଷତତ୍ପୁ) ପ୍ରାୟଶ୍ଚିତ୍ତସ୍ଥଳରେ

ଶାସ୍ତ୍ରବିହିତ ଧେନୁଦାନ ପରବର୍ତ୍ତିରେ ଧେନୁର ଉପକଳ୍ପିତ ମୂଲ୍ୟ ।

ଧେନୁମୂଲ୍ୟୋପକଳ୍ପିତ—ବିଂ. (୩ତତ୍) ଶାସ୍ତ୍ରଅନୁସାରେ ଦେୟ ଗାଈ ପରିବର୍ତ୍ତିରେ ତାହାର ମୂଲ୍ୟରୂପେ ସ୍ଥିରୀକୃତ (ଧନ) ।

ଧେନୁମ୍ଭବ୍ୟା—ସ୍ତ୍ରୀ.ବି. ଭବିଷ୍ୟତ ଧେନୁ, ଅର୍ଥାତ୍ ଯେଉଁ ଧେନୁ ପରେ ହେବ ।

ଧେନୁଷ୍ଟରୀ—ସ୍ତ୍ରୀ. ବି. ପ୍ରଶସ୍ତା ଧେନୁ ।

ଧେନୁଷ୍ୟ—ପୁଂ. ବିଂ. ( ଧେନୁ+ଯ ) ଯେଉଁ ବ୍ୟକ୍ତି ଦୁହାଁଳ ଗାଈକୁ ବନ୍ଧକ ଦେଇ ମହାଜନଠାରୁ କରଜ କରେ, (ସ୍ତ୍ରୀ) ଧେନୁଷ୍ୟା ।

ଧେନୁଷ୍ୟା—ସ୍ତ୍ରୀ. ବି. (ଧେନୁଷ୍ୟ+ଆ) ମହାଜନ ନିକଟରେ ବନ୍ଧକ ସ୍ୱରୂପ ରଖାଯିବା ଗାଈ ।

ଧେନୁଷ୍ଟିତ—ବିଂ. ଯେ ନିଜ ଗୋଦୁଗ୍ଧ ଅପରକୁ ଦେବାକୁ ପ୍ରତିଶ୍ରୁତ ହୋଇ ନିଜେ ବ୍ୟବହାର କରେ ନାହିଁ ।

ଧେମାନ୍—ନିର୍ଦ୍ଦିଷ୍ଟ ଉଚ୍ଚ ସଂଖ୍ୟା ।

ଧେୟ—ବିଂ.(ଧା+ର୍ମ.ଯ)ଗ୍ରାହ୍ୟ, ଯାହା ଧାରଣ କରିବା ଯୋଗ୍ୟ,ଧାର୍ଯ୍ୟ,ଜ୍ଞେୟ, ଜ୍ଞାନଗମ୍ୟ,ଜଣାଯିବାର ଯୋଗ୍ୟ, ଡ଼ାକିବାର ଯୋଗ୍ୟ, ପୋଷ୍ୟ, ପୋଷଣୀୟ, (ଧେ+ର୍ମ.ଯ)ପେୟ,ପିଇବାରଯୋଗ୍ୟ (ସ୍ତ୍ରୀ) ଧେୟା,(ଅବ୍ୟ) ସ୍ୱାର୍ଥରେ ପ୍ରତ୍ୟୟବିଶେଷ ।

ଧେୟା—ଗ୍ରା. ଅବ୍ୟ. ଧେଇ ଦେଖ ।

ଧେୟାତା—ଗ୍ରା. ଅବ୍ୟ. ଧେଇ ଦେଖ ।

ଧେୟାତାଧେୟା—ଗ୍ରା. ଅବ୍ୟ. ଧେଇ ଦେଖ ।

ଧୈନବ—ବିଂ.(ଧେନୁ+ଅ) ଗାଈଠାରୁ ଉତ୍ପନ୍ନ,(ସ୍ତ୍ରୀ) ଧୈନବୀ,(ବି) ବାଛୁରୀ ।

ଧୈନୁକ—ବି. (ଧେନୁକ+ଅ) ଧେନୁସମୂହ, ଗାଈପଲ ।

ଧୈବତ—ବି.(ଧୀମତ୍+ଅ) ସା ରି ଗା ମା ପା ଧା ନି ବା ସପ୍ତସ୍ୱରରର ଅନ୍ତର୍ଗତ ଷଷ୍ଠସ୍ୱର, ହିନ୍ଦୁ ସଙ୍ଗୀତର ସ୍ୱରଗ୍ରାମର ଷଷ୍ଠ ସ୍ୱର, ଧା ।

ଧୈବତ୍ୟ—ବି. ଧୀବତର ଭାବ ।

ଧୈବର—ବି. ଧୀବରର ଅପତ୍ୟ ।

ଧୈରଜ—ଗ୍ରା.ବି.(ସଂ-ଧୈର୍ଯ୍ୟ) ଧୈର୍ଯ୍ୟ ।

ଧୈରଜମାନ—ଗ୍ରା.ବି. (ସଂ-ଧୈର୍ଯ୍ୟବାନ୍) ଧୈର୍ଯ୍ୟଶୀଳ ।

ଧୈର୍ଯ୍ୟ—ବି. (ଧୀର+ଷ୍ଣ.ଯ) ଧୀରତା, ମନର ସ୍ଥିରତା, ସହିଷ୍ଣୁତା, ଦୃଢ଼ତା, ସ୍ଥିରତା,(ଗ୍ରା.ବି--ସଂ-ସ୍ଥବିର) ପ୍ରୌଢ଼ାବସ୍ଥା । [ ଅଟଳ ।

ଧୈର୍ଯ୍ୟକଳିତ—ବିଂ. ( ୩ତତ୍ ) ସ୍ଥିର,

ଧୈର୍ଯ୍ୟଚ୍ୟୁତ—ପୁଂ. ବିଂ. ( ୫ତତ୍ ) ଅଧୀର,ଅସମ୍ଭାଳ, (ସ୍ତ୍ରୀ) ଧୈର୍ଯ୍ୟଚ୍ୟୁତା ।

ଧୈର୍ଯ୍ୟଚ୍ୟୁତି—ବି. (୬ତତ୍) ମାନସିକ ଅସ୍ଥିରତା, ଅଧୈର୍ଯ୍ୟ, ଅଧୀରତା ।

ଧୈର୍ଯ୍ୟଧରିବା—ଗ୍ରା. କ୍ରି. ମନ ସମ୍ଭାଳି ରହିବା, ମନକୁ ସ୍ଥିର ବା ଦୃଢ଼ ରଖିବା, ଅଥୟ ନ ହେବା ।

ଧୈର୍ଯ୍ୟଧାରଣ—ବି. (୬ତତ୍) ସହିଷ୍ଣୁତା ଅବଲମ୍ବନ, ଧୈର୍ଯ୍ୟ ଧରିବା, ସହିଷ୍ଣୁତା । [ ଦେଖ ।

ଧୈର୍ଯ୍ୟବନ୍ତ—ଗ୍ରା. ବିଂ. ଧୈର୍ଯ୍ୟବାନ୍

ଧୈର୍ଯ୍ୟବାନ୍—ପୁଂ. ବିଂ. (ଧୈର୍ଯ୍ୟ+ବତ୍) ସହିଷ୍ଣୁ, ଧୀର, ଅବିଚଳିତ,(ସ୍ତ୍ରୀ) ଧୈର୍ଯ୍ୟବତୀ ।

ଧୈର୍ଯ୍ୟଶାଳୀ—ପୁଂ. ବିଂ. (ଧୈର୍ଯ୍ୟ+ଶାଳିନ୍) ଧୈର୍ଯ୍ୟବାନ୍, ସହିଷ୍ଣୁ, (ସ୍ତ୍ରୀ) ଧୈର୍ଯ୍ୟଶାଳିନୀ ।

ଧୈର୍ଯ୍ୟଶୀଳ—ପୁଂ. ବିଂ. ( ବ.ବ୍ରୀ ) ସ୍ୱଭାବତଃ ଧୀର ବା ସହିଷ୍ଣୁ, ( ସ୍ତ୍ରୀ ) ଧୈର୍ଯ୍ୟଶୀଳା ।

ଧୋ—ଗ୍ରା. ଅବ୍ୟ. ( ଧ୍ୱନ୍ୟନୁକରଣ ) ଧୁଅ ଦେଖ, ମୃଦଙ୍ଗ ଆଦି ବାଦ୍ୟର ରେକଟକୁ ସମାପ୍ତି କରିବାର ଶବ୍ଦ, (ଗ୍ରା.କ୍ରି) ଧୁଅ ।

ଧୋଇ—ଗ୍ରା.ବି. ପ୍ରବଳ ନଈବଢ଼ି, ଜଳବହୁଳତା ଯୋଗୁଁ ଶସ୍ୟ ଆଦିର ନଷ୍ଟି, ଅତି ବୃଷ୍ଟିଜନିତ ଜଳବହୁଳତା, ଜଳପ୍ଲାବନ, ( ଗ୍ରା. ବିଂ ) କୌଣସି ସ୍ଥାନ ବର୍ଷାଜଳ ଆଦିରେ ଧୁଆହେବା ପରେ ସେଠାରୁ ଗଡ଼ିଆସୁଥିବା (ଜଳ) ।

ଧୋଇଆ—ଗ୍ରା. ବିଂ ( ସଂ-ଧାବଧାତୁ ) ପ୍ରଚୁର ଜଳଦ୍ୱାରା ଶସ୍ୟାଦି ନଷ୍ଟ ହେବା (ଭୂଭାଗ), ଯେଉଁ ଭୂଖଣ୍ଡ ବା ଅଞ୍ଚଳର ଶସ୍ୟାଦି ପ୍ରବଳ ବୃଷ୍ଟି ବା ବନ୍ୟାଜଳରେ ନଷ୍ଟ ହୋଇଅଛି, ଯେଉଁ ସ୍ଥାନରେ ପ୍ରତିବର୍ଷ ନଈବଢ଼ି ପାଣି ମାଡ଼େ ।

ଧୋଇଖୁସ୍କ—ଗ୍ରା. ବି. (ସଂ-ଧୌତ ଓ ଶୁଷ୍କ) ଧୋଇମରୁଡ଼ି ଦେଖ ।

ଧୋଇଧାଇଦେବା—ଗ୍ରା.କ୍ରି. ଧୁଆଧୋଇ କରିବା, ଉତ୍ତମରୂପେ ଧୌତକରିବା ।

ଧୋଇଧାଇହେବା—ଗ୍ରା. କ୍ରି. ଧୁଆଧୋଇ ହେବା,ଦେହକୁ ଜଳଦ୍ୱାରା ଉତ୍ତମରୂପେ ପରିଷ୍କାର କରିବା ।

ଧୋଇପାଣି—ଗ୍ରା. ବି. (ସଂ-ଧୌତ ଓ ପାନୀୟ) କୌଣସି ସ୍ଥାନ ବୃଷ୍ଟିଜଳ ଆଦିରେ ଧୁଆହେବା ପରେ ସେଠାରୁ ଯେଉଁ ପାଣି ଅନ୍ୟ ସ୍ଥାନକୁ ଗଡ଼ିଯାଏ ।

ଧୋଇପାଣିଦେବା—ଗ୍ରା.କ୍ରି.( ଲା.ଅର୍ଥ ) କୌଣସି ବସ୍ତୁକୁ ଦେବା ତ ଦୂରର କଥା ( ସେହି ପଦାର୍ଥକୁ ) ଜଳରେ ଧୋଇ ସେହି ଜଳକୁ ଦେବ ,ଅର୍ଥାତ୍ ଆଦୌ କିଛି ନ ଦେବା ।

ଧୋଇବା—ଗ୍ରା. କ୍ରି. ( ସଂ-ଧାବଧାତୁ ) ଜଳଦ୍ୱାରା ଧୌତ କରିବା ।

ଧୋଇମରୁଡ଼ି—ଗ୍ରା. ବି. ଅତିବୃଷ୍ଟି ଓ ଅନାବୃଷ୍ଟି, ଧୋଇ ଓ ମରୁଡ଼ି, ଅତିବୃଷ୍ଟି ଜନିତ ଫସଲରେ ହାନି ବା ଅନାବୃଷ୍ଟି ଜନିତ ଶସ୍ୟହାନି ।

ଧୋଇଯିବା—ଗ୍ରା. କ୍ରି. ନଦୀବୃଦ୍ଧି ବା ବନ୍ୟାରେ ଭାସିଯିବା, ନଦୀବୃଦ୍ଧି ବା ବନ୍ୟାରେ (ଶସ୍ୟ) ନଷ୍ଟହେବା ।

ଧୋଇଟୁଖାଇଖାଇବା—ଗ୍ରା.କ୍ରି.କୌଣସି ବିଷୟ ବା ପଦାର୍ଥକୁ କୌଣସି ପ୍ରକାର ନ ବଢ଼ାଇ ବା ନ କମାଇ ତାହାର ବ୍ୟବହାର କରିବା, କୌଣସି ଦ୍ରବ୍ୟର ଆୟମାନ ଭୋଗ କରିବା ।

ଧୋଉରା—ଗ୍ରା. ବି. ଯେଉଁ ବାଟ ବା ଭୂମିଉପରେ କୌଣସି ଗ୍ରାମର ବର୍ଷା-

ପାଣି ବନ୍ଧ ଯାଏ, ବର୍ଷାପାଣିରେ ମାଟି-ଆଦି ଯାହା ଧୋଇ ହୋଇଯାଏ, (ଗ୍ରା. ବିଂ) ଗ୍ରାମର ଧୋଇ (ପାଣି) ।

ଧୋଁଓରେ—ଗ୍ରା.ଅବ୍ୟ. (ଧ୍ୱନ୍ୟନୁକରଣ) ବାଘୁଆଚଢ଼େଇ ଓ ମାକଡ଼ଆଦିଙ୍କୁ ଘୁଉରୁ-ଡ଼ାଇବା ଧ୍ୱନି ।

ଧୋଁଓରେ ବାଘୁ ଧୋ—ଗ୍ରା.ଅବ୍ୟ ଶିଶୁ-ମାନଙ୍କୁ ନିଦ୍ରିତ କରଇବାପାଇଁମାତା-ଆଦିଙ୍କର ଆବୃତ୍ତ ବଚନ ।

ଧୋକଡ଼—ଗ୍ରା.ପୁଂ.ବିଂ. (ସଂ-ଦୁଷ୍କର)ଜରା-ଗ୍ରସ୍ତ, ଜୀର୍ଣ୍ଣ, ମୋଟା ( ଲୁଗା ), ଚୀର, ଲେଙ୍କୁଡ଼ା, ଶୀର୍ଣ୍ଣ. ଢ଼ୁଗୁଲା. ଶ୍ଳଥଚର୍ମା, ଫଳିତ, ବଳିବଳିକା, ବଳିତ, ଅନ୍ତଃ-ସାର ଶୂନ୍ୟ, ନିଷ୍କର୍ମା, ବାରବୁଲା, ଅତି ବୃଦ୍ଧ, ବିଲମ୍ବିତ ( ସ୍ତନ ), ହୃଷ୍ଟପୁଷ୍ଟ, ବଳିଷ୍ଠ, ନିର୍ଦ୍ଦୋଷ, ନିଷ୍ପାପ, ( ଗ୍ରା. ବି. ସଂ-ଧୌତକଟ) ଲୁଗାର ଥଳି, ମୁଣି ।

ଧୋକଡ଼ା—ଗ୍ରା.ପୁଂ.ବିଂ.ଧୋକଡ଼ ଦେଖ ।

ଧୋକଡ଼ିଆ—ଗ୍ରା. ପୁଂ. ବିଂ. ଧୋକଡ଼ ଦେଖ ।

ଧୋକଡ଼ୀ—ଗ୍ରା. ସ୍ତ୍ରୀ. ବି. ଶ୍ଳଥସ୍ତନା ବା ଲମ୍ବିତସ୍ତନା (ସ୍ତ୍ରୀ), ଲୁଗାର ଥଳି, ବା ମୁଣି, (ଗ୍ରା.ସ୍ତ୍ରୀ. ବିଂ.) ଧୋକଡ଼ର ସ୍ତ୍ରୀ-ଲିଙ୍ଗ, ବିଲମ୍ବିତ ପୟୋଧରା (ସ୍ତ୍ରୀ) ।

ଧୋକା—ଗ୍ରା.ବି. ( ସଂ-ଦୁଃଖ ) ସନ୍ଦେହ, ବିଷମ ସମସ୍ୟା, ଗୁଡ଼ ଦକ୍ ଦକ୍ ହେବା, ବିପଦର ଆଶଙ୍କା, ଭବିଷ୍ୟତ ଭୟ-ଜନିତ ଚିନ୍ତା, ମୋହ, ଭ୍ରାନ୍ତି, ଭ୍ରମ, ଦନ୍ଦସନ୍ଦ, ଭୟ, ଭୁଲ କୁଟିବା, ଦୁଃଖ, କ୍ଷତି, ବିପଦ. ( ପ୍ରା. ଯାଜପୁର. ବି ) ପିଷ୍ଟକବିଶେଷ ।

ଧୋକାକରେ—ଗ୍ରା.କ୍ରି.ସନ୍ଦେହ କରିବା, ଭୟକରିବା, ପରବାୟୁ କରିବା, ଚିନ୍ତା କରିବା ।

ଧୋକାଖାଇବା—ଗ୍ରା.କ୍ରି. ଧୋକାକରିବା (ଦେଖ),ଅନ୍ୟର କୌଶଳଦ୍ୱାରା ବିପଦ-ଗ୍ରସ୍ତ ହେବା, ଭ୍ରାନ୍ତ ହେବା ।

ଧୋକାଦେବା—ଗ୍ରା. କ୍ରି. ସନ୍ଦେହାନ୍ୱିତ କରିବା, ଭୀତ ଉତ୍ପାଦନ କରିବା, ଅନ୍ୟକୁ ବିପଦରେ ପକାଇବା, ଚିନ୍ତା-ଗ୍ରସ୍ତ କରାଇବା, ଦୁଃଖରେ ପକାଇବା, ଅନିଷ୍ଟ କରିବା, ଭ୍ରମରେ ପକାଇବା ।

ଧୋକାବାଜ୍—ଯା ବିଂ. ଯେ ଅନ୍ୟକୁ ଧୋକା ଦିଏ, ପ୍ରବଞ୍ଚକ, ଧପ୍ପାବାଜ୍ ।

ଧୋକାବାଜି—ଯା.ବି. ପ୍ରତାରଣା ।

ଧୋକାରଖିବା—ଗ୍ରା.କ୍ରି. ଧୋକାକରିବା ଦେଖ ।

ଧୋକେଇବା—ଗ୍ରା.କ୍ରି. ଧୋକା ଦେବା, ଧୋକା କରିବା, ଧକେଇବା,ଧଇଁସଇଁ ହେବା । [ପତାଦା ।

ଧୋଜା—ଗ୍ରା.ବି. ( ସଂ-ଧ୍ୱଜା ) ଧ୍ୱଜା,

ଧୋଜାମଣୋହି—ଗ୍ରା.ବି. ପୂଜକ ଯେଉଁ ଭୋଗକୁ ମନ୍ଦିରାଭ୍ୟନ୍ତରରେ ଠାକୁରଙ୍କ ସମ୍ମୁଖରେ ଭୋଗ ନ ଲଗାଇ ମନ୍ଦିର ଶୃଙ୍ଗସ୍ଥ ଧ୍ୱଜାକୁ ଦେଖାଇ ଦେଉଳର ବାହାରେ ଭୋଗ ଲଗାଏ ।

ଧୋଡ଼—ବି. ( ଧୂ+କ.ଡ଼ ) ଧନ୍ୱସାପ, ଡୁଣ୍ଡୁଭ ।

ଧୋଡ଼କା—ଗ୍ରା. ବିଂ. ଢୁଗୁଲା, ଶିଥିଳ, ଶ୍ଳଥ, ଫମ୍ପା, ଧଡ଼ଧଡ଼ିଆ ।

ଧୋଡ଼କା(କେ)ଇବା—ଗ୍ରା. କ୍ରି. ଢୁଗୁଲା କରିବା । [ ଲଡ଼କିବା ।

ଧୋଡ଼କିବା—ଗ୍ରା. କ୍ରି. ଶିଥିଳହେବା,

ଧୋଡ଼ା—ଗ୍ରା. ବି. ତିପକମି, ଉଚ୍ଚଭୂମି, ଟାଲି, ଟମଣ ।

ଧୋତଡ଼—ଗ୍ରା.ବିଂ. ଜୀର୍ଣ୍ଣ ଶୀର୍ଣ୍ଣ,ଧୋକଡ଼ (ବସ୍ତ୍ର), ଧୋକଡ଼ ଦେଖ ।

ଧୋତରାକୁଡ଼ିଯିବା—ଗ୍ରା. ବି. କୌଣସି ବ୍ୟକ୍ତିର ସର୍ବସ୍ୱାନ୍ତ ହୋଇଯିବା ଅବସ୍ଥା, ଅତି କ୍ଳାନ୍ତ, ଅସ୍ତବ୍ୟସ୍ତ ହେବା,ଅକର୍ମଣ୍ୟ ହେବା ଅବସ୍ଥା ।

ଧୋତି—ଗ୍ରା.ବି.(ସଂ-ଧୌତ) ପିନ୍ଧା,ପରି-ଧେୟ ବସ୍ତ୍ର, ଅଧୋବାସ ।

ଧୋତିଚ(ଚ୍ଚ)ଦର—ଗ୍ରା. ବି. ଅଧୋବାସ ଓ ଉତ୍ତରୀୟ, ପିନ୍ଧା ଓ ଘୋଡ଼ା ।

ଧୋପଖାଳ—ଗ୍ରା.ବି.(ସଂ-ଧୌତ ଓ ପ୍ରକ୍ଷା-ଳନ) ପ୍ରତ୍ୟହ ସକାଳେ ଓ ଭୋର୍ ଉଠିଲାପରେ ଦେବ ମନ୍ଦିରର ତଳ ପାଣି ଢାଳ ସଫାକରିବା କର୍ମ ।

ଧୋପଖାଳିଆ—ଗ୍ରା. ବି. ଦେବତାଙ୍କ ନିଯୋଗବିଶେଷ ।

ଧୋବ୍ଗ୍ରସ୍ତ—ଗ୍ରା.ବି. ଧୂପ୍ଗ୍ରସ୍ତ ଦେଖ ।

ଧୋବ—ଗ୍ରା.ବିଂ.(ସଂ-ଧବଳ)ଶୁକ୍ଳ,ଧବଳ, ଧଳା, କଚାହୋଇ ପରିଷ୍କୃତ ଓ ଧଳା ହୋଇଥିବା (ବସ୍ତ୍ରାଦି), (ବି) ଶୁକ୍ଳବର୍ଣ୍ଣ, ଅରେ ଧୋବାଘରେ ପଡ଼ି ପରିଷ୍କୃତ ହେବା ଅବସ୍ଥା ।

ଧୋବକରିବା—ଗ୍ରା.କ୍ରି.ଧଳାରଙ୍ଗକରିବା, ଲୁଗା କାଚ ସଫା କରିବା । [ ସ୍ତ୍ରୀ ।

ଧୋବଣୀ—ଗ୍ରା.ସ୍ତ୍ରୀ. ବି. ଧୋବାଜାତୀୟା

ଧୋବଧାଉଳିଆ—ଗ୍ରା. ବିଂ. ଯାହାର ଦେହଚମମ ଧଳା, ଯେ ଧୋବଲୁଗା ପିନ୍ଧିଥାଏ, ଶୁକ୍ଳବସ୍ତ୍ର ପରିହିତ, (ଗ୍ରା.ବି.) ଭଦ୍ରଲୋକ । [ ଶୁକ୍ଳହେବା ।

ଧୋବପଡ଼ିବା—ଗ୍ରା.ବି.ଧବଳୀକୃତ ହେବା,

ଧୋବଫରଫର—ଗ୍ରା.ବିଂ.ଅତିଶୟ ଶୁକ୍ଳ, ସୁଉଜ୍ଜ୍ୱଳ ।

ଧୋବଫିଟିବା—ଗ୍ରା. କ୍ରି. ଉତ୍ତମରୂପେ ଧବଳବର୍ଣ୍ଣବିଶିଷ୍ଟ ହେବା ।

ଧୋବଲ—ଗ୍ରା.ବିଂ. ( ସଂ-ଧବଳ ) ଧଳା, ଧୋବ ।

ଧୋବଲାଉ—ଗ୍ରା.ବି. ଧଳା ଲାଉ ଫଳ ।

ଧୋବଲଚଢ଼େଇ—ଗ୍ରା. ବି. କ୍ଷୁଦ୍ର ପକ୍ଷି-ବିଶେଷ ।

ଧୋବଲଠକ—ଗ୍ରା.ବି.ଯେଉଁ ଶୁକ୍ଳ ପରି-ଚ୍ଛଦଧାରୀ ବାହାରେ ଦେଖିବାକୁ ଭଦ୍ର-ଲୋକପରି ମାତ୍ର ପ୍ରକୃତରେ ପ୍ରତାରକ ବା ଶଠ ।

ଧୋବଲଗୁଖିଆ—ଗ୍ରା.ବି.ଖରାରେ ଶୁଖା-ଯାଇ ରଖାଯାଇଥିବା ଗ୍ରେଟ ଗ୍ରେଟ ମାଛ ।

ଧୋବସରସର—(ପ୍ରା. ଯ ଜ. ବିଂ) ଧୋବ ଫରଫର ।

ଧୋବା—ଗ୍ରା.ବି.(ସଂ-ଧାବକ)ଲୁଗା ସଫା କରିବା ସେବକ, ନୀଚ ଶୂଦ୍ରଜ ଜାତିବିଶେଷ ରଜକ ।

ଧୋବାଖଟିବା—ଗ୍ରା.ବି.(ଧୋବା) କୌଣସି

ପରିବାରର ଲୁଗା କାଚିବା ରୂପ ସେବା କରିବା ।

ଧୋବାଗଣ୍ଡି—ଗ୍ରା. ବି. ଧୋବା ଯେଉଁ କାଠ ପଟା ଉପରେ ଲୁଗା କାଚେ ।

ଧୋବାଗୁଲି—ଗ୍ରା. ବି. ବାଳକମାନଙ୍କ ମଧ୍ୟରେ ଏକପ୍ରକାର ଖେଳ ।

ଧୋବା ଗୁ(ତୋ)ଠ—ଗ୍ରା ବି.ଜଳାଶୟର ଯେଉଁସ୍ଥାନରେ ଧୋବା ଲୁଗା କାଚେ ।

ଧୋବାଭଣ୍ଡାରି—ଗ୍ରା.ବି. ଗ୍ରାମବାସୀମାନଙ୍କର ଦୁଇଜଣ ଅବଶ୍ୟ ପ୍ରୟୋଜନୀୟ ଗ୍ରାମସେବକ ।

ଧୋବାଭଣ୍ଡାରି ଅଟକ—ଗ୍ରା.ବି. କୌଣସି ବ୍ୟକ୍ତି ସାମାଜିକ ଅପରାଧରେ ଅପରାଧୀ ହେଲେ ତାହାର ସେବା ନ କରିବା ସକାଶେ ସମାଜଦ୍ୱାରା ଧୋବା ଭଣ୍ଡାରିଙ୍କୁ ଆଦେଶ ଦେବା,ଏକଘରକରିବା, ବାସନ୍ଦ ।

ଧୋବାଭଣ୍ଡାରି ଛଟିବା—ଗ୍ରା.ବି.କୌଣସି ବ୍ୟକ୍ତିର ସମାଜରେ ବା ଜାତିରେ ଚଳିବା ।

ଧୋବାଖଟି—ଗ୍ରା.ବି.ଧୋବା ଯେଉଁ ବଡ ହାଣ୍ଡିରେ ଲୁଗା ରଖି ସଚ୍ଛିଦ୍ର ହାଣ୍ଡି ଯୋଡ଼ିଇ ଲୁଗା ସିଝାଏ ।

ଧୋବ—ଗ୍ରା. ବି. (ସଂ-ଧବ) ଧଅ (ଗଛ), (ପ୍ରା. ବନ୍ତୁର.) ଧୋବା ।

ଧୋୟୀ—ବି.(ନାମ) ଜୟଦେବଙ୍କ ଗୀତଗୋବିନ୍ଦରେ ଉଲ୍ଲିଖିତ ଜଣେ କବିଙ୍କ ନାମ

ଧୋରଇ—ପ୍ରା.(ଭିତରଗଡ଼ଜାତ).ବି. ମେଷପାଳକ, ମେଣ୍ଢା ଜଗୁଆଳ ।

ଧୋରଣ—ବି. (ଧୋର+ଣ.ଅନ) ହାତୀ ଘୋଡ଼ାଆଦିଙ୍କ ଦ୍ୱାରା ଚାଳିତ ରଥାଦି ବାହନ, ଦୋଳୀ, ପାଲିଙ୍କି, (ଭା.ଅନ) ଅଶ୍ୱର ଗତି, ଘୋଡ଼ାର ଦୁଲ୍କି ଚାଲି, ଦୌଡ଼ା, ଦ୍ରୁତଗତି ।

ଧୋରଣା—ଗ୍ରା. ବି. (ସଂ-ଦୀର୍ଘ) ଝିକିଝିକି, ଜୀର୍ଣ୍ଣଶୀର୍ଣ୍ଣ, କଙ୍କାଳ ପରିଣତ, ଛିଡ଼ା ।

ଧୋରଣୀ(ଣୀ)—ବି. (ଧୋର୍+ଭା.ଅନ. ଈ) ଜନଶ୍ରୁତି, ଶ୍ରେଣୀ, ପରମ୍ପରା, ପରମ୍ପରାଗତ କଥା ।

ଧୋରିତ—କ୍ଲୀ. (ଧୋର୍+ଭା.କ୍ତ) ଅଶ୍ୱର ଗତିବିଶେଷ, ଦୁଲ୍କି, ବଧ, ଗତି, ଆଘାତ । [ଦେଖ ।

ଧୋଲ(ଲେ)ଇ—ଗ୍ରା. ବି. ବିଂ. ଧୂଳିଇ

ଧୋସା—ଗ୍ରା. ବି. ପଶମୀ ମୋଟା ଶୀତବସ୍ତ୍ରବିଶେଷ ।

ଧୌଡ଼ା(ଢ଼ା)—ଗ୍ରା.ବି. ବସାଘର, କାରଖାନାର କୁଲିଆଦି ରହିବାର ଘର ।

ଧୌତ—ବିଂ. (ଧାବ + ମ୍ପ.କ୍ତ) ପ୍ରକ୍ଷାଳିତ, ଧୁଆ ହୋଇଥିବା, ମାର୍ଜିତ, ପରିଷ୍କୃତ, ଶୁକ୍ଳୀକୃତ, ଶୁଭ୍ର, ନିଷ୍ପାପ, ଶୋଧିତ, କ୍ଷାଳିତ, (କ.କ୍ତ) ସ୍ନାତ, ପାଳଣ କରାଯାଇଥିବା, ଉଜ୍ଜ୍ୱଳ, ଧଳା, (ବି)ରଜତ, ରୂପା. ( ଭା.କ୍ତ ) ଧାବନ, ଧୋଇବା, ସ୍ନାନକରିବା ।

ଧୌତକଟ—ବି (ଧୌତ+କଟ)ମୋଟା କନାର ଥଳି, ଧୋକଡ଼ା ।

ଧୌତକୌଷେୟ—ବି. (କ.ଧା) ପଟ୍ଟବସ୍ତ୍ର, ପଟ୍ଟୋର୍ଣ୍ଣ, ସରୁପଟମ ।

ଧୌତଶ୍ରେଣୀ—ବି. ମିଶ୍ରି।

ଧୌତଶିଳା—ବି.(ଧୌତ+ଶିଳା)ସ୍ଫଟିକ. ସ୍ଫଟିକମଣି ।

ଧୌତାତ୍ମା—ବିଂ. ( ଧୌତ+ଆତ୍ମନ୍ ) ବି.ଗ୍ରା; ପବିତ୍ରାତ୍ମା, ବିଶୁଦ୍ଧାତ୍ମା ।

ଧୌତି—ବି. ( ଧାବ୍+ମ୍ପ.କ୍ତି ) ଧୋତି, ଯୋଗ ସାଧନାର ଅଙ୍ଗବିଶେଷ, ଅଙ୍ଗୁଳି ଦ୍ୱାରା ମଳଦ୍ୱାରର ଅଭ୍ୟନ୍ତର ଶୋଧନ କରିବା ପ୍ରକ୍ରିୟା, ଶରୀରର ବାହାର ଓ ଭିତର ଶୁଦ୍ଧ କରିବାର ହଠଯୋଗର କ୍ରିୟାବିଶେଷ, ଯୋଗସାଧନର ଏକ ପ୍ରକ୍ରିୟା, ଯହିଁରେ ଦୁଇ ଆଙ୍ଗୁଳ ଚୌଡ଼ା ଓ ଦଶ ହାତର ଲମ୍ବ କନାକୁ ପାଟିବାଟେ ଗିଳି ପେଟକୁ ନେଇ ତହିଁ ଉପରେ ପାଣି ପିଇ ଉକ୍ତ କନାକୁ ଧୀରେ ଧୀରେ ପାଟିବାଟେ କଢାଯାଏ, ଯୋଗକ୍ରିୟାରେ ଅନ୍ତଃଶୋଧନାର୍ଥ ବ୍ୟବହୃତ ଲମ୍ବ ଓ ସରୁଆ କନା ।

ଧୌତ୍ର—ବି.(ଧୂ+କ.ତ୍ର)ଚାଳନ,କମ୍ପନ।

ଧୌନ୍ଧୁମାର—ବି.ମହାଭାରତ ବନପର୍ବାନ୍ତର୍ଗତ ଉପାଖ୍ୟାନବିଶେଷ ।

ଧୌମ—ବି. (ଧୂମ+ଅ) ପାଣ୍ଡବମାନଙ୍କ ପୁରୋହିତ,ଦେବଳଙ୍କ ଜ୍ୟେଷ୍ଠ ଭ୍ରାତା।

ଧୌମ୍ୟ—ବି. (ନାମ) ଧୌମ ଦେଖ, ବ୍ୟାଘ୍ରପଦ ନାମକ ଋଷିଙ୍କ ପୁତ୍ର,ଦିବ୍ୟଜ୍ଞାନ ସମ୍ପନ୍ନ ଅଜର ଓ ଅମର ସତ୍ୟଯୁଗର ଏକଋଷି, ଆୟୋଦ ଋଷି, ପଶ୍ଚିମ ଦିଗରେ ତାରାରୂପେ ଦେଖାଯାଉଥିବା ଏକ ଋଷି ।

ଧୌର—ବି. ଧଅଗଛ ।

ଧୌମ୍ର—ବି. ଋଷିବିଶେଷ, ଧୂମ୍ରବର୍ଣ୍ଣ, (ବିଂ) ଧୂମ୍ରବର୍ଣ୍ଣଯୁକ୍ତ, (ବି) ବାସ୍ତୁସ୍ଥାନଭେଦ ।

ଧୌରିତକ—ବି. ଧୋରିତ ଦେଖ ।

ଧୌରେୟ—ବିଂ. (ଧୁର୍+ଏୟ) ଭାରବାହୀ, ଅଗ୍ରବର୍ତ୍ତୀ, ରଥଆଦି ଟାଣିବାବାଲା, (ବି) ଭାରବାହୀ ପଶୁ ।

ଧୌର୍ତ୍ତ୍ୟ—ବି. (ଧୂର୍ତ୍ତ+ଭା.ଯ) ଧୂର୍ତ୍ତତା. ଧୂର୍ତ୍ତର କର୍ମ । [ଦେଖ ।

ଧୌର୍ଯ୍ୟ—ବି. (ଧୁର+ଭା.ଯ) ଧୋରିତ

ଧୌଲାସ୍ତର—ବି.ପଞ୍ଜାବ କାଙ୍ଗଡ଼ାଜିଲାସ୍ଥ ଏକ ଗିରିମାଳା ।

ଧ୍ୱଂସ—ବି.(ଧ୍ୱଂସ୍+ଭା.ଅ) ବିନାଶ, ବଧ, ହାନି, ସର୍ବନାଶ, ଅଧଃପତନ, କ୍ଷୟ, ଗମନ ।

ଧ୍ୱଂସକ—ପୁଂ. ବିଂ. ( ଧ୍ୱଂସ୍+କ.ଅକ ) ଯେ ଧ୍ୱଂସ କରେ, ଧ୍ୱଂସକାରୀ, (ସ୍ତ୍ରୀ) ଧ୍ୱଂସିକା ।

ଧ୍ୱଂସକର—ଗ୍ରା.ପୁଂ. ବିଂ. (ଧ୍ୱଂସ୍+କୃ+ଅ)ଧ୍ୱଂସକ, ଧ୍ୱଂସକାରୀ,(ସ୍ତ୍ରୀ)ଧ୍ୱଂସକରୀ ।

ଧ୍ୱଂସକରିବା—ଗ୍ରା. କ୍ରି. ବିନାଶ କରିବା, ବଧ କରିବା । [ଦେଖ ।

ଧ୍ୱଂସନ—ବି. ( ଧ୍ୱଂସ+ଭା.ଅନ ) ଧ୍ୱଂସ

ଧ୍ୱଂସମାୟୁ—ବିଂ. ( ଧ୍ୱଂସ୍+ମ୍ପ.ଅମାୟୁ ) ଧ୍ୱଂସଯୋଗ୍ୟ, (ସ୍ତ୍ରୀ) ଧ୍ୱଂସମାୟା ।

ଧ୍ୱଂସପଥ—ବି(୬ତତ୍ପୁ)ବିନାଶର ଉପାୟ, ସର୍ବନାଶର ପନ୍ଥା ।

ଧ୍ୱଂସମୁଖ—ବି.(୬ତତ୍ପୁ) ବିନାଶର ସୂଚ

ପାତ ।

ଧ୍ୱଂସଲୀଳା—ସ୍ତ୍ରୀ. ବି. (ଷତତ୍) ବିନାଶର ଖେଳ, ପ୍ରଳୟର କେଳି ।

ଧ୍ୱଂସସାଧନ—ପୁଂ.ବି. (ଷତତ୍) ଧ୍ୱଂସନ, ବିନାଶ ସମ୍ପାଦନ, ନାଶନ ।

ଧ୍ୱଂସାବଶେଷ—ବି.(ଷତତ୍)ଭଗ୍ନାବଶେଷ, ଭଗ୍ନାବଶେଷ, ବିନଷ୍ଟ ପଦାର୍ଥର ଯେଉଁ ଅଂଶ ନଷ୍ଟ ନ ହୋଇ ରହି ଯାଇଥାଏ।

ଧ୍ୱଂସିତ—ବିଂ. (ଧ୍ୱଂସ୍+ର୍ମ.ତ) ଧ୍ୱଂସପ୍ରାପ୍ତ, ବିନାଶିତ ।

ଧ୍ୱଂସିବା—ଗ୍ରା.(ପଦ୍ୟ)କ୍ରି.ବିନାଶକରିବା।

ଧ୍ୱଂସୀ—ପୁଂ. ବିଂ. ( ଧ୍ୱଂସ+କ.ଇନ୍ ) ଧ୍ୱଂସ ପ୍ରବଣ, ଯାହାର ଧ୍ୱଂସ ଅନିବାର୍ଯ୍ୟ, ନଶ୍ୱର, ଅଚିରସ୍ଥାୟୀ, ଧ୍ୱଂସକ, ବିନାଶକ, (ସ୍ତ୍ରୀ) ଧ୍ୱଂସିନୀ, (ବି) ପାର୍ବତ୍ୟ ପାଲଗଛ ।

ଧ୍ୱଜ୍—(ଧାତୁ) ଗମନ କରିବା, ଘୁଞ୍ଚିବା, ଗତି କରିବା ।

ଧ୍ୱଜ—ବି. ( ଧ୍ୱଜ୍+କ.ଅ ) ନିଶାଣ, ବୈଜୟନ୍ତୀ, ପତାକା, ( ପର୍ବତର ) ଶିଖର,ମେଢ୍ର, ଲିଙ୍ଗ, ଯୋନି,ଜନନେନ୍ଦ୍ରିୟ, ଲକ୍ଷଣ, ବାହ୍ୟଚିହ୍ନ, ଗର୍ବ, ପତାକାର ଦଣ୍ଡ, ଖଟ୍ୱାଙ୍ଗ, ଶୁଣ୍ଡୀ, ପୂର୍ବଦିଗର ଗୃହ, ସେନା ଚିହ୍ନବିଶେଷ, ସେନାଦଳର ପତାକା, ( ସମାସରେ ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ (ଯଥା—କୁଳଧ୍ୱଜ), ଶ୍ରେଷ୍ଠ ବା ବିଖ୍ୟାତ ବ୍ୟକ୍ତି, ଦେବତାଙ୍କର ଗୁଣ, ଟ୍ରେଡ୍‌ମାର୍କ, ପଣ୍ୟଦ୍ରବ୍ୟ ନିର୍ମାତାଙ୍କର ବିଶିଷ୍ଟ ଚିହ୍ନ, ଶୌଣ୍ଡିକାଳୟର ବାହାରେ ଥିବା ବିଶିଷ୍ଟଚିହ୍ନ, କପଟାଚାର, ମହାପୁରୁଷଙ୍କ ପାଦତଳ ବା କରତଳରେ ଥିବା ଧ୍ୱଜାକାର ରେଖା, ତ୍ରୈରସ୍ତୋଣାକାର ବଂଶଦଣ୍ଡୋପରିସ୍ଥିତ ବସ୍ତ୍ର, ଝଣ୍ଡାଭେଦ ।

ଧ୍ୱଜଗୃହ—ବି. ଧ୍ୱଜରୂପଯୁକ୍ତ ଗୃହ ।

ଧ୍ୱଜଗ୍ରୀବ—ପୁଂ. ବି. ରାକ୍ଷସବିଶେଷ ।

ଧ୍ୱଜଚିହ୍ନ--ବି.(ଷତତ୍) ପତାକା ଭେଦରେ ଅଙ୍କିତ ଜାତି ସମ୍ପ୍ରଦାୟ ବା ରାଜଶକ୍ତିଜ୍ଞାପକ ଲକ୍ଷଣ, ପତାକାଚିହ୍ନ ।

ଧ୍ୱଜଦଣ୍ଡ—ବି. (ଷତତ୍) ପତାକା,ବାଉଁଶ, ନିଶାଣିଦଣ୍ଡା ।

ଧ୍ୱଜଦ୍ରୁମ—ବି. (କ.ଧା) ତାଳଗଛ ।

ଧ୍ୱଜପଟ—ବି. ( ଷତତ୍ ) ଧ୍ୱଜଦଣ୍ଡର ମସ୍ତକରେ ସଂଲଗ୍ନ ବସ୍ତ୍ର ଖଣ୍ଡ ।

ଧ୍ୱଜପ୍ରହରଣ—ପୁଂ.ବି. (ଷତତ୍) ବାୟୁ।

ଧ୍ୱଜବଜ୍ରାଙ୍କୁଶ—ବି.(ଧ୍ୱଜ+ବଜ୍ର+ଅଙ୍କୁଶ ଦ୍ୱନ୍ଦ୍ୱ ) ଧ୍ୱଜ ବଜ୍ର ଓ ଅଙ୍କୁଶ ଚିହ୍ନବିଶେଷ, ବିଷ୍ଣୁଙ୍କର ବା ବିଷ୍ଣୁ ଅଂଶୀ ବ୍ୟକ୍ତିଙ୍କ ପାଦତଳରେ ଥିବା ଚିହ୍ନବିଶେଷ ।

ଧ୍ୱଜବାନ୍—ପୁଂ. ବିଂ. ( ଧ୍ୱଜ+ବତ୍ ) ପତାକାଦ୍ୱାରା ସୁଶୋଭିତ, ଚିହ୍ନଯୁକ୍ତ, ଦାଗୀ ବା ରାଜଦଣ୍ଡପ୍ରାପ୍ତ, (ବି) ଶୁଣ୍ଡୀ, ଦାଗୀ, ପତାକାବାହକ,ଯେଉଁ ବ୍ରାହ୍ମଣ ନିଜଦ୍ୱାରା ହତ ହୋଇଥିବା ବ୍ୟକ୍ତିର କପାଳକୁ ଘେନ ପ୍ରାୟଶ୍ଚିତ୍ତାର୍ଥ ତୀର୍ଥକୁ ଯାଏ ।

ଧ୍ୱଜଭଙ୍ଗ—ବି. (ଷତତ୍) ପୁରୁଷର ଜନନେନ୍ଦ୍ରିୟ ଶିଥିଳତା ଓ ଶକ୍ତିହୀନତା, ପୁରୁଷତ୍ୱହୀନତା ରୋଗ, କ୍ଲୀବତା ।

ଧ୍ୱଜଯନ୍ତ୍ର—ବି. ଯେଉଁ ଯନ୍ତ୍ରରେ ଧ୍ୱଜଯଷ୍ଟି ଆରୋପିତ ଥାଏ ।

ଧ୍ୱଜଯଷ୍ଟି—ବି. (ଷତତ୍) ଧ୍ୱଜଦଣ୍ଡ ଦେଖ।

ଧ୍ୱଜସ୍ତମ୍ଭ—ବି. (ଷତତ୍) ଧ୍ୱଜଦଣ୍ଡ ଦେଖ।

ଧ୍ୱଜାଂଶୁକ—ବି.(ଷତତ୍)ନିଶାଣର କନା।

ଧ୍ୱଜା—ଗ୍ରା.ବି. (ସଂ-ଧ୍ୱଜ) ପତାକା,ଝଣ୍ଡା, ଗର୍ବ, ମସ୍ତକର ଶିଖା, ଚୁଟି ।

ଧ୍ୱଜାଧାରୀ—ଗ୍ରା.ପୁଂ.ବିଂ. ପତାକାବାହକ, ଶିଖାଧାରୀ, ଯାହାର ଚୁଟି ଥାଏ।

ଧ୍ୱଜାରୋପଣ—ବି. (ଷତତ୍) ଦେବାଳୟ ଓ ତୀର୍ଥାଦିରେ ମନ୍ତ୍ରପୂତ ପତାକା ପୋତିବା ।

ଧ୍ୱଜାହୃତ—ବିଂ. ଯୁଦ୍ଧଭୂମିରେ ଗୃହୀତ, (ସ୍ତ୍ରୀ) ଧ୍ୱଜାହୃତା ।

ଧ୍ୱଜିକ—ପୁଂ. ବି. କପଟଧାର୍ମିକ ।

ଧ୍ୱଜିନୀ—ସ୍ତ୍ରୀ. ବି. (ଧ୍ୱଜ+ଇନ୍+ଈ) ସେନା, ବାହିନୀ, ( ସ୍ତ୍ରୀ. ବିଂ ) ଧ୍ୱଜୀର ସ୍ତ୍ରୀଲିଙ୍ଗ ।

ଧ୍ୱଜୀ—ପୁଂ. ବିଂ.(ଧ୍ୱଜ+ଇନ୍) ପତାକାବାହକ, କପଟୀ, ଭଣ୍ଡ, ସୁରାଭାଜନ ଚିହ୍ନଧାରୀ, ( ସମାସରେ ) ଅମୁକଙ୍କୁ ଚିହ୍ନରୂପେ ଧାରଣ କରିଥିବା, (ପୁଂ.ବି) ରାଜା, ପର୍ବତ, ରଥ, ଶିଖୀ, ମୟୂର, ସର୍ପ, ବ୍ରାହ୍ମଣ, ଅଗ୍ନି, ଅଶ୍ୱ, ଶୁଣ୍ଡୀ ।

ଧ୍ୱଜୀକରଣ—ବି. (ଧ୍ୱଜ+ଚ୍ୱି+କରଣ) ପତାକା ଉତ୍ତୋଳନ କରିବା, ପତାକା ଉଡ଼ାଇବା,କୌଣସି ବିଷୟକୁ ବାହାନା କରିବା ।

ଧ୍ୱଜୋଚ୍ଛ୍ରୟ—ପୁଂ.ବି. ( ଷତତ୍ ) ଧ୍ୱଜ ଠିଆ କରିବା, ଲିଙ୍ଗୋଚ୍ଚକରଣ ।

ଧ୍ୱଜୋତ୍ଥାନ—ବି. ଇନ୍ଦ୍ରଙ୍କ ପୂଜା ଉତ୍ସବ।

ଧ୍ୱନ୍(ଧାତୁ)—ଶବ୍ଦକରିବା,ଗର୍ଜନକରିବା।

ଧ୍ୱନ—ବି. (ଧ୍ୱନ୍+ଭା.ଅ) ଧ୍ୱନି ଦେଖ।

ଧ୍ୱନନ—ବି. (ଧ୍ୱନ୍+ଅନ) ଶବ୍ଦକରିବା, (ଅଳଙ୍କାର) ଶବ୍ଦନିଷ୍ଠ ବ୍ୟାପାରବିଶେଷ, ବ୍ୟଞ୍ଜନା, ଗୁଣୁ ଗୁଣୁ ହେ କରିବା, ଅର୍ଥାଦିର ସୂଚନ, ଅବ୍ୟକ୍ତ ଉଚ୍ଚାରଣ।

ଧ୍ୱନମୋଦୀ—ପୁଂ. ବି. (ଧ୍ୱନ୍+ମୁଦ୍+କ.ଇନ୍) ଭ୍ରମର ।

ଧ୍ୱନି—ବି. (ଧ୍ୱନ୍+ଭା.ଇ) ହେ, ରବ, ସ୍ୱର, କଣ୍ଠସ୍ୱର, ବାଦ୍ୟଯନ୍ତ୍ରର ସ୍ୱର, (ଅଳଙ୍କାର) ଲକ୍ଷ୍ୟାର୍ଥ,ଗୂଢ଼ାର୍ଥ, ବାଚ୍ୟାର୍ଥ ଛଡ଼ା ବ୍ୟଙ୍ଗ୍ୟାର୍ଥ, ପ୍ରତିଧ୍ୱନି, ଘଡ଼ଘଡ଼, ରଡ଼ି, ବଜ୍ରଧ୍ୱନି, ଉତ୍କୃଷ୍ଟ କାବ୍ୟ, ଫମ୍ପା ଶବ୍ଦମାତ୍ର ।

ଧ୍ୱନିକରିବା—ଗ୍ରା. କ୍ରି. ଶବ୍ଦ କରିବା ।

ଧ୍ୱନିକାବ୍ୟ—ବି. (କ.ଧା) ଉତ୍କୃଷ୍ଟ କାବ୍ୟବିଶେଷ, ଯେଉଁ କାବ୍ୟରେ ବାଚ୍ୟାର୍ଥ ଠାରୁ ବ୍ୟଙ୍ଗ୍ୟାର୍ଥ ବା ଲକ୍ଷଣାର୍ଥ ଅଧିକତର ଚମତ୍କାର ଜନକ।

ଧ୍ୱନିଗ୍ରହ—ବି. ( ଧ୍ୱନି+ଗ୍ରହ+କ.ଅ ) କାନ, (ଭା.ଅ) ଶବ୍ଦଜ୍ଞାନ, ଶୁଣିବା, ତୂରୀ, ଭେରୀ, ବଂଶୀ ।

ଧ୍ୱନିତ—ବିଂ. ( ଧ୍ୱନ୍+ର୍ମ.ତ ) ଶବ୍ଦିତ, ଧ୍ୱନିଦ୍ୱାରା ପ୍ରତିପନ୍ନ(ଅର୍ଥ), (ବି. ଭା.ତ) ଶବ୍ଦ, ମେଘଗର୍ଜନ ।

ଧ୍ୱନିନାଳା—ବି. (ଧ୍ୱନି+ନାଳା) ବୀଣା, [ ବଂଶୀ ।

ଧ୍ୱନନା—ଗ୍ରା.(ପଦ୍ୟ)କ୍ରି. ଧ୍ୱନି କରିବା ।

ଧ୍ୱନିବିକାର—ବି. (୬ତତ୍) ଶୋକ,ରାଗ, ଭୟ ବା ଅତିଶକ୍ତ କଥନାଦି ଯୋଗୁଁ କଣ୍ଠସ୍ୱରର ବିକୃତି ।

ଧ୍ୱନିମନ୍ତ—ଗ୍ରା. ବିଂ. ( ସଂ-ଧ୍ୱନିମତ୍ ) ଶବ୍ଦାୟମାନ, ଶବ୍ଦ କରୁଥିବା ।

ଧ୍ୱନିଯମକ—ବି. ( ଅଳଙ୍କାର ) ଯମକ-ବିଶେଷ ।

ଧ୍ୱନ୍ୟନୁକରଣ—ବି. (୬ତତ୍) କୌଣସି ଧ୍ୱନି ବା ଶବ୍ଦର ଅନୁକରଣ, ଧ୍ୱନି ଅନୁସାରେ ଶବ୍ଦର ଗଠନ ।

ଧ୍ୱନ୍ୟନୁକାରୀ—ପୁଂ. ବିଂ. (ଧ୍ୱନି+ଅନୁ-କାରିନ୍) ଯେ କୌଣସି ଧ୍ୱନି ବା ଶବ୍ଦର ଅନୁକରଣ କରେ,ଯେଉଁ ଶବ୍ଦ କୌଣସି ଧ୍ୱନିର ଅନୁକରଣରେ ଗଠିତ, ( ସ୍ତ୍ରୀ ) ଧ୍ୱନ୍ୟନୁକାରିଣୀ ।

ଧ୍ୱନ୍ୟର୍ଥ—ବି. (ଅଳଙ୍କାର ଶାସ୍ତ୍ର) ପାଦର ପୂରଣାର୍ଥ, ବାକ୍ୟାର୍ଥ ଛଡ଼ା ବ୍ୟଙ୍ଗ୍ୟାର୍ଥ ।

ଧ୍ୱନ୍ୟର୍ଥକ—ବିଂ. (ବ.ବ୍ରୀ) ଯେଉଁ ଶବ୍ଦ ବା ବାକ୍ୟର ଧ୍ୱନିରୁ ତାହାର ଅର୍ଥ ଜଣାପଡ଼େ । [ ଦେଖ ।

ଧ୍ୱନ୍ୟାତ୍ମକ—ବିଂ. ( ବ.ବ୍ରୀ ) ଧ୍ୱନ୍ୟର୍ଥକ

ଧ୍ୱସ୍ତ—ବିଂ. (ଧ୍ୱଂସ+ର୍ମ.ତ) ଧ୍ୱଂସପ୍ରାପ୍ତ, ବିନଷ୍ଟ, ଅଧଃପତିତ, (ସ୍ତ୍ରୀ) ଧ୍ୱସ୍ତା ।

ଧ୍ୱସ୍ତବିଧ୍ୱସ୍ତ—ବିଂ. ସମ୍ପୂର୍ଣ୍ଣରୂପେ ବିନଷ୍ଟ ।

ଧ୍ୱସ୍ତାଧ୍ୱସ୍ତି—ଗ୍ରା. ବି. (ସଂ-ଧ୍ୱସ୍ତ) ମଡ଼ାମଡ଼ି, ପରସ୍ପର ପରସ୍ପର ପ୍ରତି ବଳପ୍ରୟୋଗ, (ଗ୍ରା.ବିଂ) ମଡ଼ାମଡ଼ି କରୁଥିବା, ପରସ୍ପର ପରସ୍ପରକୁ ଆକ୍ରମଣ କରୁଥିବା ।

ଧ୍ୱସ୍ତି—ସ୍ତ୍ରୀ. ବି. (ଧ୍ୱଂସ+ଭା.ତି) ଧ୍ୱଂସ, ନାଶ, (ର୍ମ.ତି) କର୍ମକ୍ଷୟର ଆଧାର, ବିଦ୍ୟାବିଶେଷ ।

ଧ୍ୱସ୍ର—ବିଂ. (ଧ୍ୱଂସ୍+ର) ନଷ୍ଟ ।

ଧ୍ୱାଙ୍କ୍ଷ—ବି. ଧ୍ମାଙ୍କ୍ଷ ଦେଖ ।

ଧ୍ୱାଙ୍କ୍ଷପୁଷ୍ଟ—ବି. ଧ୍ମାଙ୍କ୍ଷପୁଷ୍ଟ ଦେଖ ।

ଧ୍ୱାଙ୍କ୍ଷମାଚୀ—ବି. କାକଚଞ୍ଚା ଦେଖ ।

ଧ୍ୱାଙ୍କ୍ଷବଲ୍ଲୀ—ବି. କାକନାସା ଲତା ।

ଧ୍ୱାଙ୍କ୍ଷାଦନୀ—ବି. (୬ତତ୍) କାକତୁଣ୍ଡୀ ।

ଧ୍ୱାଙ୍କ୍ଷାରାତି—ପୁଂ.ବି.ପେଚକ, କାକଶତ୍ରୁ ।

ଧ୍ୱାଙ୍କ୍ଷୀ—ବି. କଙ୍କୋଳିକା ।

ଧ୍ୱାନ—ବି.(ଧ୍ୱନ୍+ଭା.ଅ)ଧ୍ୱନିଦେଖ ।

ଧ୍ୱାନ୍ତ—ବି. (ଧ୍ୱନ୍+ଅଧି.ତ) ଅନ୍ଧକାର, ପାପ ବା ଅଜ୍ଞାନରୂପ ଅନ୍ଧକାର ।

ଧ୍ୱାନ୍ତନାଶକ—ବିଂ. ( ଧ୍ୱାନ୍ତ+ନାଶକ ) ଯେ ଅନ୍ଧକାର ନାଶ କରେ, (ସ୍ତ୍ରୀ) ଧ୍ୱାନ୍ତନାଶିକା, (ବି) ସୂର୍ଯ୍ୟ ।

ଧ୍ୱାନ୍ତବିତ୍ତ—ବି. ( ବ.ବ୍ରୀ ) ଖଦ୍ୟୋତ, କୁଳୁକୁଳିଆ ପୋକ ।

ଧ୍ୱାନ୍ତଶାତ୍ରବ—ବି. ସୂର୍ଯ୍ୟ, ଅଗ୍ନି, ଚନ୍ଦ୍ର, ଶ୍ୟୋନାକବୃକ୍ଷ, ଶ୍ୱେତବର୍ଣ୍ଣ, ଆଲୋକ ।

ଧ୍ୱାନ୍ତହର—ବି ଓ ବିଂ. ( ଧ୍ୱାନ୍ତ+ହୃ+କ.ଅ) ଧ୍ୱାନ୍ତନାଶକ ଦେଖ, (ସ୍ତ୍ରୀ)ହରା ।

ଧ୍ୱାନ୍ତାରାତି—ବି. (୬ତତ୍) ଧ୍ୱାନ୍ତଶାତ୍ରବ ଦେଖ । [ ଦେଖ ।

ଧ୍ୱାନ୍ତୋନ୍ମେଷ—ବି.(ବ.ବ୍ରୀ) ଧ୍ୱାନ୍ତବିତ୍ତ ।

ଧ୍ମାକାର—ବି. (ଧ୍ମା+କାର) କମାର ।

ଧ୍ମାଙ୍କ୍ଷ—ବି. (ଧ୍ମାଙ୍କ୍ଷ୍+କ.ଷ) କାକ, କୁଆ, ମାଛରଙ୍କା ଚଢ଼େଇ, ଭିକ୍ଷୁ, ତକ୍ଷକ, ନାଗବିଶେଷ ।

ଧ୍ମାଙ୍କ୍ଷଜଙ୍ଘା—ବି. କାକଜଙ୍ଘା ।

ଧ୍ମାଙ୍କ୍ଷଜମ୍ବୁ—ବି. କାକଜମ୍ବୁ ।

ଧ୍ମାଙ୍କ୍ଷତୁଣ୍ଡୀ—ବି. କାକନାସା ଲତା ।

ଧ୍ମାଙ୍କ୍ଷଦନ୍ତୀ—ବି. କାକନାସା ଲତା ।

ଧ୍ମାଙ୍କ୍ଷନଖୀ—ବି. କାକତୁଣ୍ଡୀ ।

ଧ୍ମାଙ୍କ୍ଷପୁଷ୍ଟ—ବି. ( ୩ତତ୍ ) କାକପୁଷ୍ଟ, କୋକିଳ ।

ଧ୍ମାତ—ବିଂ. (ଧ୍ମା+ର୍ମ.ତ) ନିଆଁ ଲଗା ଯାଇଥିବା, ଅଗ୍ନିସଂଯୁକ୍ତ, ଉଦ୍ଦୀପିତ, ସନ୍ଦୀପିତ, ସନ୍ଧୁକ୍ଷିତ, ଫୁଙ୍କା ହେବା ଦ୍ୱାରା ଶବ୍ଦିତ, ନିନାଦିତ, ଦଗ୍ଧ, ଫୁଙ୍କା-ଯାଇଥିବା, ଫୁଙ୍କାଯାଇ ଫୁଲିଯାଇଥିବା ।

ଧ୍ମାନ—ବି. (ଧ୍ମା+ଭା.ନ) ଫୁଙ୍କିବା କର୍ମ, ଫୁଙ୍କିକରି ନିଆଁ ଲଗାଇବା ।

ଧ୍ମାପନ—ବି. ବୃଂହଣ ।

ଧ୍ମାପିତ—ବିଂ. (ଧ୍ମା+ଣିଚ୍+ର୍ମ.ତ)ଯାହା ଫୁଙ୍କାଯାଇଅଛି, ଯାହାକୁ ଫୁଙ୍କିକରି ଫୁଲାଇ ଦିଆଯାଇଅଛି, ଦଗ୍ଧ,ଭସ୍ମୀଭୂତ

ଧ୍ୟା—ବି.(ଧ୍ୟୈ+ଭା.କ୍ୱିପ୍)ଧ୍ୟାନ ଦେଖ ।

ଧ୍ୟାଇବା—ଗ୍ରା. କ୍ରି. ଧ୍ୟାନକରିବା ଦେଖ ।

ଧ୍ୟାତ—ବିଂ. (ଧ୍ୟୈ+ର୍ମ.ତ ) ଯାହାକୁ ଧ୍ୟାନ କରାଯାଇଅଛି, ଧ୍ୟାନର ବିଷୟୀଭୂତ, ଭାବିତ, ଚିନ୍ତିତ, ସ୍ମୃତ, (ସ୍ତ୍ରୀ) ଧ୍ୟାତା ।

ଧ୍ୟାତବ୍ୟ—ବିଂ. (ଧ୍ୟୈ+ର୍ମ.ତବ୍ୟ)ଚିନ୍ତ-ତବ୍ୟ, ଚିନ୍ତନୀୟ, ସ୍ମରଣୀୟ, ଆଲୋଚ-ନୀୟ, କଳ୍ପନୀୟ, (ସ୍ତ୍ରୀ) ଧ୍ୟାତବ୍ୟା ।

ଧ୍ୟାତା—ପୁଂ. ବିଂ. (ଧ୍ୟୈ+କ.ତୃ) ଧ୍ୟାନ-କାରୀ (ସ୍ତ୍ରୀ), ଧ୍ୟାତ୍ରୀ, (ସ୍ତ୍ରୀ.ବିଂ. ଧ୍ୟାତ+ଆ) ଧ୍ୟାତର ସ୍ତ୍ରୀଲିଙ୍ଗ ।

ଧ୍ୟାନ—ବି. ( ଧ୍ୟୈ+ଭା.ଅନ ) ଯୋଗ ସାଧନାର ଅଙ୍ଗବିଶେଷ, ମନନ, ମନେ ମନେ କଳ୍ପନା, ଭାବନା, ଚିନ୍ତନ, ଏକ ବିଷୟକ ଜ୍ଞାନଧାରା, ସ୍ମରଣ, ଖିଆଲ, ସ୍ମୃତି, ଏକ ବିଷୟରେ ଏକାଗ୍ର ଚିନ୍ତା, କୌଣସି ଦେବତାଙ୍କର ରୂପଚିନ୍ତା, ଅଭିନିବେଶ, ଧାରଣା ବିଷୟରେ ଏକାଗ୍ରତା, ଅଦ୍ୱିତୀୟ ବ୍ରହ୍ମ ବସ୍ତୁରେ ଅନ୍ତଃକରଣର ବୃତ୍ତିପ୍ରବାହ, ଶାସ୍ତ୍ରା-ଦିରେ ବର୍ଣ୍ଣିତ ଦେବତାଙ୍କର ଭିନ୍ନ ଭିନ୍ନ ଅଙ୍ଗର ଓ ଧୃତ ଅସ୍ତ୍ରଶସ୍ତ୍ରାଦିର ଓ ରୂପର ବର୍ଣ୍ଣନା, କୌଣସି ଦେବତା-ଙ୍କର ବିଶିଷ୍ଟ ଗୁଣସମ୍ବନ୍ଧୀୟ କଳ୍ପନା ।

ଧ୍ୟାନକ—ଗ୍ରା.ବି.(ସଂ-ଧ୍ୟାନ)ଧ୍ୟାନ ଦେଖ ।

ଧ୍ୟାନକରିବା—ଗ୍ରା. କ୍ରି. କୌଣସି ବିଷୟ ସମ୍ବନ୍ଧେ ଏକାଗ୍ର ଚିନ୍ତା କରିବା, ଖିଆଲ କରିବା, ହେଜିବା, ସ୍ମରଣକରିବା ।

ଧ୍ୟାନଗମ୍ୟ—ପୁଂ.ବିଂ.(୩ତତ୍)ଧ୍ୟାନ ଦ୍ୱାରା ପାଇବା ଯୋଗ୍ୟ, ଯାହା ଧ୍ୟାନ ଦ୍ୱାରା ଲାଭ କରାଯାଇପାରେ, (ସ୍ତ୍ରୀ) ଧ୍ୟାନ-ଗମ୍ୟା ।

ଧ୍ୟାନଗୋଚର—ବି(୬ତତ୍)ଧ୍ୟାନପ୍ରତ୍ୟକ୍ଷ, ଯାହା ଧ୍ୟାନକରି ଜଣାଯାଏ, ବୌଦ୍ଧ ଶାସ୍ତ୍ରୋକ୍ତ ଦେବତା ବିଶେଷ ।

ଧ୍ୟାନଜପ୍ୟ—ପୁଂ. ବି. ବିଶ୍ୱାମିତ୍ରବଂଶୀୟ ଜଣେ ଋଷି ।

ଧ୍ୟାନଧାରଣା—ବି. ( ଧ୍ୟାନ+ଧାରଣା ) ଏକାଗ୍ର ଚିନ୍ତା, (କ.ଧା) କଳ୍ପନା ଦ୍ୱାରା ହୃଦ୍‌ଦର୍ପଣରେ ପ୍ରତିଫଳିତ ଭାବରାଜି ।

ଧ୍ୟାନନିଷ୍ଠ—ପୁଂ. ବିଂ. (ବ.ବ୍ରୀ) ଧ୍ୟାନରେ ଏକାଗ୍ରଚିତ୍ତ, ଧ୍ୟାନରେ ଯେ ଏକାନ୍ତ ଭାବେ ବୁଡ଼ିଯାଇଅଛି, (ସ୍ତ୍ରୀ) ଧ୍ୟାନନିଷ୍ଠା ।

ଧ୍ୟାନଭଗ୍ନ—ପୁଂ. ବିଂ. (ବ.ବ୍ରୀ) ଯାହାର ଧ୍ୟାନରେ ବ୍ୟାଘାତ ପଡ଼ିଅଛି, (ସ୍ତ୍ରୀ) ଧ୍ୟାନଭଗ୍ନା ।

ଧ୍ୟାନଭଙ୍ଗ—ବି(୬ତତ୍)ଧ୍ୟାନରେ ବ୍ୟାଘାତ

ଧ୍ୟାନମଗ୍ନ—ପୁଂ. ବିଂ. (୭ତତ୍) ଧ୍ୟାନରେ ଏକାନ୍ତ ରତ, ଯେଉଁ ବ୍ୟକ୍ତିର ଚିତ୍ତ-ବୃତ୍ତି କୌଣସି ବିଷୟରେ ଏକାଗ୍ର ଭାବରେ ମଜ୍ଜି ଯାଇଅଛି, (ସ୍ତ୍ରୀ) ଧ୍ୟାନ-ମଗ୍ନା ।

ଧ୍ୟାନଯୋଗ—ବି. (କ.ଧା) ଧ୍ୟାନ ଦ୍ୱାରା ଯୋଗ ସାଧନ ପ୍ରକ୍ରିୟା, ଯେଉଁ ଯୋଗରେ ଧ୍ୟାନହିଁ ପ୍ରଧାନ ଅଙ୍ଗ ଅଟେ, ତାନ୍ତ୍ରିକକ୍ରିୟାବିଶେଷ, ଯହିଁରେ ମନରେ କୌଣସି ଆକୃତି କଳ୍ପନା କରି ଶତ୍ରୁର ନାଶ କରାଯାଏ ।

ଧ୍ୟାନରତ—ବିଂ. ( ୭ତତ୍ ) ଧ୍ୟାନମଗ୍ନ, ଧ୍ୟାନସ୍ଥ ।

ଧ୍ୟାନସ୍ଥ—ପୁଂ.ବିଂ. (ଧ୍ୟାନ+ସ୍ଥା+କ.ଅ) ଧ୍ୟାନରେ ବୁଡ଼ିଯାଇଥିବା, ଧ୍ୟାନମଗ୍ନ, (ସ୍ତ୍ରୀ) ଧ୍ୟାନସ୍ଥା ।

ଧ୍ୟାନାଭ୍ୟାସ—ପୁଂ.ବି. ( ୬ତତ୍ )ସମାଧି, ଧ୍ୟାନର ଅଭ୍ୟାସ ।

ଧ୍ୟାନିକ—ବିଂ. (ଧ୍ୟାନ+ଇକ) ଧ୍ୟାନଗମ୍ୟ ଦେଖ, ଧ୍ୟାନ ଦ୍ୱାରା ପ୍ରାପ୍ତ ।

ଧ୍ୟାନିବୁଦ୍ଧ—ବି. (କ.ଧା) ଧ୍ୟାନମଗ୍ନ ବୁଦ୍ଧ-ଦେବଙ୍କ ମୂର୍ତ୍ତି ।

ଧ୍ୟାନୀ—ବିଂ. ( ଧ୍ୟାନ + ଇନ୍ ) ଧ୍ୟାନମଗ୍ନ, ସମାଧିସ୍ଥ, (ସ୍ତ୍ରୀ) ଧ୍ୟାନିନୀ ।

ଧ୍ୟାମ—ବି. ( ଧ୍ୟୈ+ମି.ମ ) ଗନ୍ଧତୃଣ, ଧନିଆଁ, ରୋହିସତୃଣ, ଦଅଣାଟୁଲ୍ଲି ଦେଖ, (ବିଂ) କୃଷ୍ଣବର୍ଣ୍ଣ, ଅପରିଷ୍କୃତ, ମଳିଆ, କଳଙ୍କିତ, (ସ୍ତ୍ରୀ) ଧ୍ୟାମା ।

ଧ୍ୟାମକ—ବି. ରୋହିଷ ତୃଣ ।

ଧ୍ୟାମା—ବି. (ଧ୍ୟୈ+ମି.ମନ୍)ମାପ, ପରି-ମାଣ, ଆଲୋକ, (ଭା.ମନ) ଧ୍ୟାନ ।

ଧ୍ୟାୟୁ—ଗ୍ରା.ବି.(ସଂ-ଧ୍ୟାନ) ଧ୍ୟାନ, ଲକ୍ଷ୍ୟ ।

ଧ୍ୟାୟିବା—ଗ୍ରା. କ୍ରି, ଧ୍ୟାନକରିବା ।

ଧ୍ୟେୟ—ବିଂ. ( ଧ୍ୟୈ+ମି.ଯ ) ଧ୍ୟାନର ଯୋଗ୍ୟ, ଚିନ୍ତନୀୟ, ସ୍ମରଣୀୟ, (ସ୍ତ୍ରୀ) ଧ୍ୟେୟା ।

ଧ୍ୟୈ—(ଧାତୁ) ଧ୍ୟାନ କରିବା, ଚିନ୍ତା କରିବା, ସ୍ମରଣ କରିବା, କଳ୍ପନା କରିବା ।

ଧ୍ରା—(ଧାତୁ) ଗତିକରିବା, ଯିବା ।

ଧ୍ରାଂକ୍ଷ—(ଧାତୁ) କାଆ କାଆ ରବିବା, ଇଚ୍ଛା କରିବା ।

ଧ୍ରାକ୍ଷା—ବି. ଦ୍ରାକ୍ଷା ଦେଖ ।

ଧ୍ରାଜି—ସ୍ତ୍ରୀ. ବି. ଗତି ।

ଧ୍ରାଡ଼—(ଧାତୁ) ବିଭକ୍ତକରିବା, ଚିରିବା ।

ଧ୍ରାଡ଼ି—ବି. ପୁଷ୍ପଚୟନ ।

ଧ୍ରିୟମାଣ—ବିଂ. ( ଧୃ+ମି.ଆନ ) ଯାହା ଧରା ଯାଉଅଛି, (ସ୍ତ୍ରୀ) ଧ୍ରିୟମାଣା ।

ଧ୍ରୁ—(ଧାତୁ) ସ୍ଥିରହେବା, ଗତିକରିବା, ଯିବା, ସ୍ଥିରକରିବା, ହତ୍ୟାକରିବା ।

ଧ୍ରୁପଦ—ଗ୍ରା.ବି.(ସଂ-ଧ୍ରୁବପଦ)ସଙ୍ଗୀତର ଗୀତବିଶେଷ ।

ଧ୍ରୁବ—ବି.(ଧ୍ରୁ+କ.ଅ)ନିଶ୍ଚଳ ତାରକା-ବିଶେଷ, ପୃଥିବୀର ଉତ୍ତର କେନ୍ଦ୍ରର ଠିକ୍ ଊର୍ଦ୍ଧ୍ୱରେ ଅବସ୍ଥିତ ସ୍ଥିର ତାରକା, ନିଶ୍ଚୟ,(ଭୂଗୋଳ) ପୃଥିବୀର ଅକ୍ଷଦଣ୍ଡର ପ୍ରାନ୍ତଦ୍ୱୟ, ପୃଥିବୀର ଉତ୍ତର କେନ୍ଦ୍ର, ସୁମେରୁ, ସ୍ଥାୟିତ୍ୱ, ବ୍ରହ୍ମା, ବସୁବିଶେଷ. ଅଷ୍ଟାବସୁ ମଧ୍ୟରୁ ଏକତମ, ବିଷ୍ଣୁ, ଶିବ, ଖୁଣ୍ଟି, ଖୁଣ୍ଟା, ସ୍ଥାଣୁ ବା ଲଣ୍ଡାଗଛ, ଲଣ୍ଡାଗଛର ଗଣ୍ଡି, ଉତ୍ତାନପାଦ ରାଜା-ଙ୍କର ପୁତ୍ର, ପରମ ବୈଷ୍ଣବଭକ୍ତ ବାଳକ ବିଶେଷ, ଲଲାଟସ୍ଥ ଆବର୍ତ୍ତିକବିଶେଷ, ନାସାଗ୍ରଭାଗ,ଗୀତର ଘୋଷା,(ଜ୍ୟୋତିଷ) ଗ୍ରହମାନଙ୍କ ଶୁଭଯୋଗବିଶେଷ, ଉତ୍-ପ୍ରେକ୍ଷା, ଧ୍ରୁବଯଷ୍ଟି, ପୃଥିବୀର ଦୁଇ-ମେରୁ ଉପରେ ଥିବା ଖ ଗୋଳର ବିନ୍ଦୁଦ୍ୱୟ, ସୌମ୍ୟଧ୍ରୁବ ଓ ଯାମ୍ୟଧ୍ରୁବ, (ଗଣିତ ଜ୍ୟୋତିଷ) ମୈରବ ଦ୍ରାଘିମା, ନାକ୍ଷତ୍ରିକ ମଣ୍ଡଳର ଆରମ୍ଭଠାରୁ କୌଣସି ଗ୍ରହର ଦୂରତ୍ୱ, ଡିମ୍ବିରିଗଛ, ସମୟ, ଯୁଗ, ଯଜ୍ଞ ପାତ୍ରବିଶେଷ, ବଟବୃକ୍ଷ, ଶରାରିପକ୍ଷୀ, ଶରୀରର ଭଉଁରୀ, (ଫଳିତ ଜ୍ୟୋତିଷ)ଉତ୍ତରା ଫାଲଗୁନୀ, ଉତ୍ତରା-ଷାଢ଼ା, ଉତ୍ତର ଭାଦ୍ରପଦ ଓ ରୋହିଣୀ ସମ୍ବଳିତ ନକ୍ଷତ୍ରଗଣ, ତାଳୁ ନାଳ ପଡ଼ିଯିବା ଓ ଫୁଲିବା ରୋଗବିଶେଷ, କୌଣସି ଦେବତାଙ୍କୁ ଅର୍ପିତ ନ ହୋଇ ସୋମରସର ଯେଉଁ ଭାଗ ସକାଳଠାରୁ ସନ୍ଧ୍ୟା ପର୍ଯ୍ୟନ୍ତ ରଖା ଯାଇଥାଏ, ଆକାଶ, ପର୍ବତ, (ବିଂ) ନିଶ୍ଚିତ. ସ୍ଥିର, ଅଟଳ, ଦୃଢ଼, ନିତ୍ୟ, ଶାଶ୍ୱତ, ଅକ୍ଷୟ, (ସ୍ତ୍ରୀ) ଧ୍ରୁବା ।

ଧ୍ରୁବକ—ବି. ( ଧ୍ରୁବ+କ ) ଗୀତର ଘୋଷା, ସ୍ଥାଣୁ, ଲଣ୍ଡାଗଛ,(ଜ୍ୟୋତିଷ ପରିଭାଷା) ତାରା ଓ ଗ୍ରହାଦିଙ୍କର ଅବ-ସ୍ଥିତି ସୂଚକ ଦୂରତ୍ୱପରିମାଣ, ନକ୍ଷତ୍ରର ଦୂରତ୍ୱ ।

ଧ୍ରୁବକା—ବି. ଧ୍ରୁବପଦ,ଗୀତର ଘୋଷା ।

ଧ୍ରୁବଗଣ—ବି. ଉତ୍ତରଫାଲ୍‌ଗୁନୀ, ଉତ୍ତରା-ଷାଢ଼ା, ଉତ୍ତରଭାଦ୍ରପଦ ଓ ରୋହିଣୀ ନକ୍ଷତ୍ର ଚତୁଷ୍ଟୟ ।

ଧ୍ରୁବତା—ବି. (ଧ୍ରୁବ+ଭା.ତା)ସ୍ଥିରତା, ନିଶ୍ଚୟ, ନିତ୍ୟତା, ଅକ୍ଷୟତା,ଦୃଢ଼ତା ।

ଧ୍ରୁବତାରା—ବି. ଉତ୍ତରକେନ୍ଦ୍ରସ୍ଥ ଅବି-ଚଳିତ ତାରା ।

ଧ୍ରୁବଦର୍ଶକ—ବି. ସପ୍ତର୍ଷିମଣ୍ଡଳ, (ଜାହା-ଜିଆମାନଙ୍କ) ଦିଗ୍‌ବାରଣ ଯନ୍ତ୍ର ।

ଧ୍ରୁବଦର୍ଶନ—ବି. (୬ତତ୍) ହିନ୍ଦୁମାନଙ୍କ ବିବାହର କର୍ମକାଣ୍ଡ ଅନ୍ତର୍ଗତ ଏକ କର୍ମ; ଯେଉଁ କର୍ମରେ ବରକନ୍ୟା ଦୁହେଁ ଧ୍ରୁବତାରାକୁ ଦର୍ଶନ କରନ୍ତି ।

ଧ୍ରୁବଧେନୁ—ବି. ସୁଧାର ଗାଈ ।

ଧ୍ରୁବପଦ—ବି.ଧ୍ରୁପଦ ଦେଖ,ଧ୍ରୁବଲୋକ, ସ୍ୱର୍ଗଧାମ, ଆକାଶ ।

ଧ୍ରୁବପ୍ରତିଜ୍ଞା—ବି.(କ.ଧା)ଅଟଳ ପ୍ରତିଜ୍ଞା ।

ଧ୍ରୁବବିଶ୍ୱାସ—ବି.(କ.ଧା)ଅଟଳ ବିଶ୍ୱାସ ।

ଧ୍ରୁବମଣ୍ଡଳ—ବି. ଉତ୍ତରଦିଗରେ ଧ୍ରୁବ-ତାରାକୁ ଲାଗିରହିଥିବା ସାତଗୋଟି ତାରାଯୁକ୍ତ ଶିଶୁମାର ମଣ୍ଡଳ ।

ଧ୍ରୁବମଧ୍ୟ—ବି. ଧ୍ରୁବମଣ୍ଡଳ ଦେଖ, ଧ୍ରୁବମଣ୍ଡଳର ଲମ୍ବାତାରା ଓ ସପ୍ତର୍ଷିମଣ୍ଡଳ ମଧ୍ୟରେ ଥିବା ଗୋଟିଏ ତାରା, ଏପରି ୮ଗୋଟି ତାରାଯୁକ୍ତ ମତ୍ସ୍ୟାକୃତି ତାରକା ପୁଞ୍ଜ, ଦିଗବାରଣଯନ୍ତ୍ର ।

ଧ୍ରୁବଯଷ୍ଟି—ଗ୍ରା.ବି.ପୃଥିବୀର ମେରୁଦଣ୍ଡ ।

ଧ୍ରୁବରେଖା—ବି. ବିଷୁବ ରେଖା ।

ଧ୍ରୁବଲୋକ—ବି.ବିଷ୍ଣୁଭକ୍ତ ଧ୍ରୁବଙ୍କ ପାଇଁ ନିର୍ମାଣ କରଥିବା ବିଷ୍ଣୁଲୋକର ଉପ-ରିସ୍ଥ ସତ୍ୟଲୋକାନ୍ତର୍ଗତ ସ୍ୱର୍ଗଧାମ, ସ୍ୱର୍ଗଧାମ, ବୈକୁଣ୍ଠ, ଉଚ୍ଚପଦସ୍ଥ ବ୍ୟକ୍ତି-ମାନେ, କର୍ତ୍ତିପକ୍ଷ ।

ଧ୍ରୁବସତ୍ୟ—ବି. ( କ.ଧା ) ଚିରସତ୍ୟ, ଅଟଳପ୍ରତିଜ୍ଞା,(ବିଂ)ଯାହା ସବୁବେଳେ ସତ୍ୟ

ଧ୍ରୁବା--ବି.(ଧ୍ରୁବ+ଅ+ଆ)ବଟପତ୍ରାକୃତି ହୋମପାତ୍ର, ସ୍ରୁଚ, ଜୁହୁ, ଘୋଷା, ଶାଡ, ସାଧ୍ୱୀ ସ୍ତ୍ରୀ, ମୂର୍ବା, ଧ୍ରୁବଧେନୁ, ସୁଧୀର ଭାଇ,(ବିଂ) ଧ୍ରୁବର ସ୍ତ୍ରୀଲିଙ୍ଗ ।

ଧ୍ରୁବାବର୍ତ୍ତ—ବି.(କ.ଧା) ଅଶ୍ୱର ରୋମ-ସଂସ୍ଥାନବିଶେଷ, କପାଳର ଯେଉଁ ବିନ୍ଦୁରୁ ମୁଣ୍ଡର କେଶ ବାମ ଓ ଦକ୍ଷିଣ ପାଖକୁ ବାଗେଇ ଥାଏ ।

ଧ୍ରୌବ୍ୟ—ବି. (ଧ୍ରୁବ+ଷ୍ୟ.ଯ) ସ୍ଥିରତା, ଅଟଳତା, ନିଶ୍ଚୟ, ବ୍ୟାପିବାକାଳ ।

# ନ

ନ—ବ୍ୟଞ୍ଜନବର୍ଣ୍ଣର ବିଂଶବର୍ଣ୍ଣ ଓ ତବର୍ଗର ପଞ୍ଚମ ବର୍ଣ୍ଣ, ଏହା ଅନୁନାସିକ ଓ ଦନ୍ତ୍ୟବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ଦନ୍ତ. (ସଂ-ବି) ବୌଦ୍ଧ,ଗଣେଶ,ବନ୍ଧନ. ଦାନ, ରଣ, (ଅବ୍ୟ. ନୀ+କ.ଅ ) ନୁହେଁ, ନାହିଁ, (ଗ୍ରା. ବି ଓ ବିଂ) ନଅ ଦେଖ, (ଯା.ବି. ନଅରୁଆ ସଙ୍କେତକ) ନବସିନ୍ଧାର ସଂକ୍ଷିପ୍ତ ଆକାର,ଇଂରେଜୀ ନମ୍ବରର ସଂକ୍ଷିପ୍ତ ଆକାର ।

ନ—ଅବ୍ୟ. ନିଷେଧ, ଉପମା, ନଞର୍ଥ, ନକାର ସ୍ୱରୂପ ବର୍ଣ୍ଣ, ବନ୍ଧ, ସୁଗତ, ହିରଣ୍ୟ, ସ୍ତୁତ, ରତ୍ନ ।

ନଂ—ଗ୍ରା. ବି. ( ବଙ୍ଗଳାରୁ ଅନୁକୃତ ) ନମ୍ବରର ସାଙ୍କେତିକ ଚିହ୍ନ ।

ନଂକମାରତ—ଗ୍ରା. ବି. ଲଙ୍କାମରିଚ ଦେଖ ।

ନଂଗଳ(ଇତ୍ୟାଦି)—ଗ୍ରା. ବି. ଲଙ୍ଗଳ ଇତ୍ୟାଦି ଦେଖ ।

ନଂଗଳା(ଇତ୍ୟାଦି)—ଗ୍ରା. ବିଂ. ନଙ୍ଗଳା ଇତ୍ୟାଦି ଦେଖ ।

ନଂଗା(ଘା)—ଗ୍ରା.ବିଂ. ନଙ୍ଗା ଦେଖ,(ବି) ନଘା ଦେଖ ।

ନଂଘିବା—ଗ୍ରା. ବିଂ. ଲଂଘିବା ଦେଖ ।

ନଂଶ—ନାଶନ ।

ନଂଶନ—କ୍ଲୀ. ବି. ( ନଂଶ+ଅନ ) ନାଶନ ।

ନଂଶୁକ—ତ୍ରି. ବିଂ. ( ନଶ+କ.ଉକ ) ନାଶନ, ଅଶୁ, (ସ୍ତ୍ରୀ) ନଂଶୁକା ।

ନଂଷ୍ଟବ୍ୟ—କ୍ଲୀ. ବି. ( ନଶ୍+ତବ୍ୟ ) ନାଶର ଯୋଗ୍ୟ, ନାଶପ୍ରତିଯୋଗୀ ।

ନଂଷ୍ଟୃ—ପୁଂ.ବି.(ନଶ୍+କ.ତୃନ୍) ନାଶକ, (ସ୍ତ୍ରୀ)ନଂଷ୍ଟ୍ରୀ । [ ନାକ ।

ନଃ—ପୁଂ.ବି.(ନସ୍+କ.କ୍ୱିପ୍) ନାସିକା,

ନଃକ୍ଷୁଦ୍—ତ୍ରି.ବିଂ.(ବ.ବ୍ରୀ) ଝଙ୍କନାସିକ, [ (ସ୍ତ୍ରୀ) ନଃକ୍ଷୁଦ୍ରା ।

ନଅ—ଗ୍ରା. ବି. (ସଂଖ୍ୟାବାଚକ) ତିନର ତ୍ରିଗୁଣିତ ସଂଖ୍ୟା, ନବ, (ସଂ--ଲତା) ଶୁଭବାଚକ-ଲମ୍ବକନ୍ତୁ, ସାପ, (ବିଂ) ନବସଂଖ୍ୟକ ।

ନଅଉଣରଣହେ—-ଗ୍ରା. ବି ଓ ବିଂ. (ସଂଖ୍ୟାବାଚକ) ଏକୋଣଷୀ ନଅ ।

ନଅକ—ଗ୍ରା. ବିଂ. '୯' ସଂଖ୍ୟାସମ୍ବନ୍ଧୀୟ, (ପଣକିଆ) ।

ନଅକା—ଗ୍ରା. ବିଂ. (ସଂ-ନମ୍ର) ଲହକା ଦେଖ ।

ନଅକିବା—ଗ୍ରା. କ୍ରି. ( ସଂ-ନମଧାତୁ ) ଲହକିବା ଦେଖ, (ଣିଜନ୍ତ—ନଅକା-ଇବା) ।

ନଅକେ—ଗ୍ରା. କ୍ରି. ବିଂ. ନଅ ଏକଦ୍ୱାରା ଗୁଣିତ ହେଲେ ।

ନଅଖଇପଣା—ପ୍ରା. ( ଯାଜପୁର ) ବିଂ. ନବମ ଶୀତଳ, ମୃତଠାରୁ ନବମ ଦିନ ଖାଇବାକୁ ଡିଆଯିବା ( ବ୍ରାହ୍ମଣଙ୍କୁ ) ଭୋଜନ ।

ନଅଙ୍କ—ଗ୍ରା. ବି. (ସଂ-ନବାଙ୍କ) ପୁରୀର ରାଜା ଦିବ୍ୟସିଂହ ଦେବଙ୍କର ରାଜତ୍ୱର ୯ମ ଅଙ୍କ, ଖ୍ରୀଷ୍ଟାବ୍ଦ ୧୮୬୬-୬୭ ରେ ଓଡ଼ିଶାରେ ଘଟିଥିବା ଦୁର୍ଭିକ୍ଷ,ଦୁର୍ଭିକ୍ଷ ।

ନଅଙ୍କିଆ—ଗ୍ରା. ପୁଂ ଓ ସ୍ତ୍ରୀ. ବିଂ. ଦୁର୍ଭିକ୍ଷ ପର୍ଯ୍ୟନ୍ତ, ଖାଦ୍ୟାଭାବରୁ କଙ୍କାଳମାତ୍ରା-ବଶିଷ୍ଟ, ଜୀର୍ଣ୍ଣଶୀର୍ଣ୍ଣ, ଅତି ରଙ୍କାଳିଆ (ବ୍ୟକ୍ତି), (ଗ୍ରା.ବି.) ଛତରଖିଆ ।

ନଅଛଅ—ଗ୍ରା.ବିଂ. ବହୁସଂଖ୍ୟକ,ଅନେକ, ଅନିଶ୍ଚିତ, ଅଥୟ, ଅପବ୍ୟୟିତ,(ଗ୍ରା.ବି) (ସଂ-ନସ୍ତ ବା ଲୟ+କ୍ଷୟ) ଅପଚୟ, ଅପବ୍ୟୟ ।

ନଅଛଅକହିବା—ଗ୍ରା. ବି. ମିଥ୍ୟାକଥା କହିବା, ପରନାମରେ ଚୁଗୁଲି କହିବା, ଅପବାଦ ଦେବା, ଟାଳଟୁଲ କରିବା ।

ନଅଛୁଇଁବା—ଗ୍ରା. ବି. ( ଶୁଭବାଚକ ) ସାପଚାମୁଡ଼ିବା, ଲଅଛୁଇଁବା ।

ନଅଟାଛଅଟା—ଗ୍ରା. ବିଂ. ଅନେକ, ବହୁସଂଖ୍ୟକ, ପ୍ରୟୋଜନାଧିକ ।

ନଅଣ୍ଟ—ଗ୍ରା. ବି. (ସଂ-ଅନଟନ) ଅଭାବ, ଅନଟନ, ଅପ୍ରାଚୁର୍ଯ୍ୟ, ଅପ୍ରତୁଳତା, କମତି, ଅସମ୍ପୂର୍ଣ୍ଣତା, (ବିଂ) ନଅଣ୍ଟିଆ ଦେଖ ।

ନଅଣ୍ଟଅଣ୍ଟ—ଗ୍ରା.ବି. ଅନଟନ ଓ ପ୍ରାଚୁର୍ଯ୍ୟ, ନଅଣ୍ଟହେବା ଅବସ୍ଥା ।

ନଅଣ୍ଟିଆ—ଗ୍ରା.ବିଂ.ଅଭାବଗ୍ରସ୍ତ, ନଅଣ୍ଟିଆ, ଅତୃପ୍ତ, ଅପ୍ରତୁଳ, ଯାହା କମ୍ ଥାଏ, ଅସମ୍ପୂର୍ଣ୍ଣ ।

ନଅଣ୍ଟିବା—ଗ୍ରା. କ୍ରି. ନଅଣ୍ଟ ହେବା, କମ୍ହେବା ।

ନଅନୁଆଣ—ଗ୍ରା.ବି. ଲଅଲୁଆଣ ଦେଖ, (ବିଂ) ଲହୁଲୁହାଣ ଦେଖ ।

ନଅମା—ଗ୍ରା. ବି. ନବମା ଦେଖ ।

ନଅମୀ—ଗ୍ରା. ବି. ନବମୀ ଦେଖ ।

ଧ୍ରୁବମଧ୍ୟ—ବି. ଧ୍ରୁବମଣ୍ଡଳ ଦେଖ, ଧ୍ରୁବମଣ୍ଡଳର ଲଗ୍ନାତାରା ଓ ସପ୍ତର୍ଷିମଣ୍ଡଳ ମଧ୍ୟରେ ଥିବା କୋହିଏ ତାରା, ଏପରି ୮ଗୋଟି ତାରାଯୁକ୍ତ ମତ୍ସ୍ୟାକୃତି ତାରକା ପୁଞ୍ଜ, ଭଗବାରଣଯନ୍ତ୍ର ।

ଧ୍ରୁବଯଷ୍ଟି—ଗ୍ରା.ବି.ପୃଥିବୀର ମେରୁଦଣ୍ଡ ।

ଧ୍ରୁବରେଖା—ବି. ବିଷୁବ ରେଖା ।

ଧ୍ରୁବଲୋକ—ବି.ବିଷ୍ଣୁଭକ୍ତ ଧ୍ରୁବଙ୍କ ପାଇଁ ନିର୍ମାଣ କରଥିବା ବିଷ୍ଣୁଲୋକର ଉପରିସ୍ଥ ସତ୍ୟଲୋକାନ୍ତର୍ଗତ ସ୍ୱର୍ଗଧାମ, ସ୍ୱର୍ଗଧାମ, ବୈକୁଣ୍ଠ, ଉଚ୍ଚପଦସ୍ଥ ବ୍ୟକ୍ତିମାନେ, କର୍ତ୍ତିପକ୍ଷ ।

ଧ୍ରୁବସତ୍ୟ—ବି. ( କ.ଧା ) ଚିରସତ୍ୟ, ଅଟଳପ୍ରତିଜ୍ଞା,(ବିଂ)ଯାହା ସର୍ବଦା ସତ୍ୟ

ଧ୍ରୁବା--ବି.(ଧ୍ରୁବ+ଅ+ଆ)ବଟପତ୍ରାକୃତି ହୋମପାତ୍ର, ସ୍ରୁଚ, ଜୁହୁ, ଘୋଷା, ଗୀତ, ସାଧ୍ୱୀ ସ୍ତ୍ରୀ, ମୂର୍ବା, ଧ୍ରୁବଧେନୁ, ସୁଧାର ଭାଇ,(ବିଂ) ଧ୍ରୁବର ସ୍ତ୍ରୀଲିଙ୍ଗ ।

ଧ୍ରୁବାବର୍ତ୍ତ—ବି.(କ.ଧା) ଅଶ୍ୱର ରୋମସଂସ୍ଥାନବିଶେଷ, କପାଳର ଯେଉଁ ବିନ୍ଦୁରୁ ମୁଣ୍ଡର କେଶ ବାମ ଓ ଦକ୍ଷିଣ ପାଖକୁ ବାଗେଇ ଥାଏ ।

ଧ୍ରୌବ୍ୟ—ବି. (ଧ୍ରୁବ+ଷ୍ଣ.ଯ) ସ୍ଥିରତା, ଅଟଳତା, ନିଶ୍ଚୟ, ବ୍ୟାପିବାକାଳ ।

# ନ

ନ—ବ୍ୟଞ୍ଜନବର୍ଣ୍ଣର ବିଂଶବର୍ଣ୍ଣ ଓ ତବର୍ଗର ପଞ୍ଚମ ବର୍ଣ୍ଣ, ଏହା ଅନୁନାସିକ ଓ ଦନ୍ତ୍ୟବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ଦନ୍ତ. (ସଂ-ବି) ବୌଦ୍ଧ,ଗଣେଶ,ବନ୍ଧନ. ଦାନ, ରଣ, (ଅବ୍ୟ. ନା+କ.ଅ ) ନୁହେଁ, ନାହିଁ, (ଗ୍ରା. ବି ଓ ବିଂ) ନଅ ଦେଖ, (ଯା.ବି. କଟରିଆ ସଙ୍କେତକ) ନବସିନ୍ଧାର ସଂକ୍ଷିପ୍ତ ଆକାର,ଇଂରେଜି ନମ୍ବରର ସଂକ୍ଷିପ୍ତ ଆକାର ।

ନ—ଅବ୍ୟ. ନିଷେଧ, ଉପମା, ନଞର୍ଥ, ନକାର ସ୍ୱରୂପ ବର୍ଣ୍ଣ, ବନ୍ଧ, ସୁଗତ, ହିରଣ୍ୟ, ସ୍ତୁତ, ରତ୍ନ ।

ନଂ—ଗ୍ରା. ବି. ( ବଙ୍ଗଳାରୁ ଅନୁକୃତ ) ନମ୍ବରର ସାଙ୍କେତିକ ଚିହ୍ନ ।

ନଂକମାରଚ—ଗ୍ରା. ବି. ଲଙ୍କାମରଚ ଦେଖ ।

ନଂଗଳ(ଇତ୍ୟାଦି)—ଗ୍ରା. ବି. ଲଙ୍ଗଳ ଇତ୍ୟାଦି ଦେଖ ।

ନଂଗଳା(ଇତ୍ୟାଦି)—ଗ୍ରା. ବିଂ. ନଙ୍ଗଳା ଇତ୍ୟାଦି ଦେଖ ।

ନଂଗା(ଘା)—ଗ୍ରା.ବିଂ. ନଙ୍ଗା ଦେଖ,(ବି) ନଙ୍ଘା ଦେଖ ।

ନଂଘିବା—ଗ୍ରା. ବିଂ. ଲଂଘିବା ଦେଖ ।

ନଂଶ—ନାଶନ ।

ନଂଶନ—କ୍ଲୀ. ବି. ( ନଂଶ+ଅନ ) ନାଶନ ।

ନଂଶୁକ—ତ୍ରି. ବିଂ. ( ନଶ+କ.ଉକ ) ନାଶକ, ଅଶ୍ରୁ, (ସ୍ତ୍ରୀ) ନଂଶୁକା ।

ନଂଷ୍ଟବ୍ୟ—କ୍ଲୀ. ବି. ( ନଶ୍+ତବ୍ୟ ) ନାଶର ଯୋଗ୍ୟ, ନାଶପ୍ରତିଯୋଗୀ ।

ନଂଷ୍ଟା—ପୁଂ.ବି.(ନଶ୍+କ.ତୃନ୍) ନାଶକ, (ସ୍ତ୍ରୀ)ନଂଷ୍ଟ୍ରୀ । [ ନାକ ।

ନଃ—ପୁଂ.ବି.(ନସ୍+କ.କ୍ୱିପ୍) ନାସିକା,

ନଃକ୍ଷୁଦ୍ର—ତ୍ରି.ବିଂ.(ବ.ବ୍ରୀ) କ୍ଷୁଦ୍ରନାସିକ, (ସ୍ତ୍ରୀ) ନଃକ୍ଷୁଦ୍ରା

ନଅ—ଗ୍ରା. ବି. (ସଂଖ୍ୟାବାଚକ) ତିନର ତ୍ରିଗୁଣିତ ସଂଖ୍ୟା, ନବ, (ସଂ--ଲତା) ଶୁଭବାଚକ-ଲମ୍ବଜନ୍ତୁ, ସାପ, (ବିଂ) ନବସଂଖ୍ୟକ ।

ନଅଉଣଶହେ—ଗ୍ରା. ବି ଓ ବିଂ. (ସଂଖ୍ୟାବାଚକ) ଏକୋଣଶହ ନଅ ।

ନଅକ—ଗ୍ରା. ବିଂ. '୯' ସଂଖ୍ୟାସମ୍ବନ୍ଧୀୟ, (ପଣକିଆ) ।

ନଅକା—ଗ୍ରା. ବିଂ. (ସଂ-ନମ୍ର) ଲହକା ଦେଖ ।

ନଅକିବା—ଗ୍ରା. କ୍ରି. ( ସଂ-ନମଧାତୁ ) ଲହକିବା ଦେଖ, (ଣିଜନ୍ତ—ନଅକାଇବା) ।

ନଅକେ—ଗ୍ରା. କ୍ରି. ବିଂ. ନଅ ଏକଦ୍ୱାରା ଗୁଣିତ ହେଲେ ।

ନଅଖଇପଣା—ପ୍ରା. ( ଯାଜପୁର ) ବିଂ. ନବମ ଶୀତଳ, ମୃତଠାରୁ ନବମ ଦିନ ଖାଇବାକୁ ଡିଆସିବା ( ବ୍ରାହ୍ମଣଙ୍କୁ ) ଭୋଜନ ।

ନଅଙ୍କ—ଗ୍ରା. ବି. (ସଂ-ନବାଙ୍କ) ପୁରୀର ରାଜା ଦିବ୍ୟସିଂହ ଦେବଙ୍କର ରାଜତ୍ୱର ୯ମ ଅଙ୍କ, ଖ୍ରୀଷ୍ଟାବ୍ଦ ୧୮୬୬-୬୭ ରେ ଓଡ଼ିଶାରେ ଘଟିଥିବା ଦୁର୍ଭିକ୍ଷ,ଦୁର୍ଭିକ୍ଷ ।

ନଅଙ୍କିଆ—ଗ୍ରା. ପୁଂ ଓ ସ୍ତ୍ରୀ. ବିଂ. ଦୁର୍ଭିକ୍ଷ ପର୍ପୀଡ଼ିତ, ଖାଦ୍ୟାଭାବରୁ କଙ୍କାଳମାତ୍ରାବଶିଷ୍ଟ, ଜୀର୍ଣ୍ଣଶୀର୍ଣ୍ଣ. ଅତି ରଙ୍କାଳିଆ (ବ୍ୟକ୍ତି), (ଗ୍ରା.ବି.) ଛତରଖିଆ ।

ନଅଛଅ—ଗ୍ରା.ବିଂ. ବହୁସଂଖ୍ୟକ,ଅନେକ, ଅନିର୍ଣ୍ଣିତ, ଅଥୟ, ଅପବ୍ୟୟିତ,(ଗ୍ରା.ବି) (ସଂ-ନଶ୍ୱ ବା ଲୟ+କ୍ଷୟ) ଅପଚୟ, ଅପବ୍ୟୟ ।

ନଅଛଅକହିବା—ଗ୍ରା. ବି. ମିଥ୍ୟାକଥା କହିବା, ପରନାମରେ ଚୁଗୁଲି କହିବା, ଅପବାଦ ଦେବା, ଟାଳଟୁଲ କରିବା ।

ନଅଛୁଇଁବା—ଗ୍ରା. ବି. ( ଶୁଭବାଚକ ) ସାପଚାମୁଡ଼ିବା, ଲଅଛୁଇଁବା ।

ନଅଟାଛଅଟା—ଗ୍ରା. ବିଂ. ଅନେକ, ବହୁସଂଖ୍ୟକ, ପ୍ରୟୋଜନାଧିକ ।

ନଅଣ୍ଟ—ଗ୍ରା. ବି. (ସଂ-ଅନଟନ) ଅଭାବ, ଅନଟନ, ଅପ୍ରାଚୁର୍ଯ୍ୟ, ଅପ୍ରତୁଳତା, କମତି, ଅଷ୍ଟମୂର୍ତ୍ତିତା, (ବିଂ) ନଣ୍ଟିଆ ଦେଖ ।

ନଅଣ୍ଟଅଣ୍ଟ—ଗ୍ରା.ବି. ଅନଟନ ଓ ପ୍ରାଚୁର୍ଯ୍ୟ, ନଅଣ୍ଟହେବା ଅବସ୍ଥା ।

ନଅଣ୍ଟିଆ—ଗ୍ରା.ବିଂ.ଅଭାବଗ୍ରସ୍ତ, ନଅଣ୍ଟିଆ, ଅଟ୍ରଚୁର, ଅପ୍ରତୁଳ, ଯାହା କମ୍ ଥାଏ, ଅସମ୍ପୂର୍ଣ୍ଣ ।

ନଅଣ୍ଟିବା—ଗ୍ରା. କ୍ରି. ନଅଣ୍ଟ ହେବା, କମ୍ହେବା ।

ନଅନୁଆଣ—ଗ୍ରା.ବି ଲଅଲୁଆଣ ଦେଖ, (ବିଂ) ଲହୁଲୁହାଣ ଦେଖ ।

ନଅମା—ଗ୍ରା. ବି. ନବମା ଦେଖ ।

ନଅମୀ—ଗ୍ରା. ବି. ନବମୀ ଦେଖ ।

ନଅର—ଗ୍ରା.ବି. (ସଂ ନଗର, ପ୍ର. ଣଅର) ରାଜଭବନ,ରାଜାଙ୍କ ଅନ୍ତଃପୁର,ଉଆସ, (ଗ୍ରା.ବି) ଏକପ୍ରକାର ବଡ଼ ଜହ୍ନି ।

ନଅରକୋଳି—ଗ୍ରା.ବି. ନଗରକୋଳି ଦେଖ ।

ନଅରଜହ୍ନି—ଗ୍ରା.ବି. ଏକପ୍ରକାର ଜହ୍ନି ।

ନଅରଦାସୀ—ଗ୍ରା. ସ୍ତ୍ରୀ. ବି. ରାଜାଙ୍କ ରକ୍ଷିତା ବେଶ୍ୟା ବା ନର୍ତ୍ତକୀ ।

ନଅରବଲତା—ଗ୍ରା. ବି. ବାଉ ଦେଖ, (ବଉ) ।

ନଅରବେଷୟୀ—ଗ୍ରା. ବି. (ସଂ-ନଗର ଓ ବେଷୟୀ) ରାଜଭବନର ତତ୍ତ୍ୱାବଧାରକ କର୍ମଚାରୀ ।

ନଅରମୁଥା—ଗ୍ରା.ବି. (ସଂ-ନାଗରମୁସ୍ତକ) ନାଗରମୁଥା, ଏକପ୍ରକାର ବଡ଼ ମୁଥା ।

ନଅରି—ଗ୍ରା. ବିଂ. ନଅରିଆ ଦେଖ ।

ନଅରିଆ—ଗ୍ରା. ବିଂ. ରାଜଭବନ ସମ୍ବନ୍ଧୀୟ, ରାଜାଙ୍କ ଅନ୍ତଃପୁର ସମ୍ବନ୍ଧୀୟ, ଏତେସରିଆ ।

ନଅଲ—ଗ୍ରା. ବି. ନହଲ ଦେଖ ।

ନଅସରି—ଗ୍ରା. ବିଂ. ନଅସେରି ବା ସୂକ୍ଷ୍ମଯୁକ୍ତ (ହାର) । [ ନଦୀ ।

ନଇ—ଗ୍ରା. ବି. (ସଂ-ଲତା) ନଈଦେଖ,

ନଇଁବା—ଗ୍ରା.କି. (ସଂ-ନମଧାତୁ) ତଳଆଡ଼କୁ ବଙ୍କ ହେବା, ନତହେବା, ନତ କରିବା, ନରମ ହେବା, ଭୂମି ଆଡ଼କୁ ନତହେବା ।

ନଇଖଣ—ଗ୍ରା. ବି. (ସଂ-ଲକ୍ଷଣ) ଲକ୍ଷଣ ଦେଖ, (ସଂ-ଲକ୍ଷ୍ମଣ) ଲକ୍ଷ୍ମଣ ଦେଖ, (ନାମ-ଆଦରାର୍ଥକ) ଲକ୍ଷ୍ମଣ ବା ଲକ୍ଷ୍ମନ୍ ନାମକ ବ୍ୟକ୍ତିର ଡାକନାମ ।

ନଇଚ୍ଛ—ଯା. ବି. (ଫା-ନୈଚ୍ଛ) ନଳଚ୍ଛ, ହୁକାର ନଳ ।

ନଇଜ—ଗ୍ରା.ବି. ସ୍ୱଭାବ, ପ୍ରକୃତି,ଅଭ୍ୟାସ, ଖୋଇ, ଆଚରଣ ।

ନଇନ୍‌ସିଂ—ପଣ୍ଡିତ ନଇନ୍‌ସିଂ ନାମେ ଖ୍ୟାତ ଜଣେ ପ୍ରସିଦ୍ଧ ଅନୁସନ୍ଧାନୀ ଓ ଭୂତତ୍ତ୍ୱବିତ୍ । [ ଭୋଗ ।

ନଇବେଦ୍—ପ୍ର.(ସମ୍ବ.)ବି. ନୈବେଦ୍ୟ,

ନଇବେଦ୍ୟ—ଗ୍ରା. ବି. (ସଂ-ନୈବେଦ୍ୟ) ନୈବେଦ୍ୟ,ଦେବତାଙ୍କୁଦିଆଯିବାଭୋଗ

ନଇମିଷ—ଗ୍ରା.(ପଦ୍ୟ)ବି. ନୈମିଷାରଣ୍ୟ ଦେଖ ।

ନଇରୁତ—ଗ୍ରା. ବି. ( ସଂ-ନୈର୍‌ଋତ ) ନୈର୍‌ଋତ କୋଣାଧିପତି ରାକ୍ଷସ ।

ନଇଲା—ଗ୍ରା. କି.(ସେ ବା ତାହା କର୍ତ୍ତା ସଙ୍ଗେ ଯୁକ୍ତ, ଅନାଦରାର୍ଥକ) ପଇଚିନ ନାହିଁ, ଆସିଲନାହିଁ, ନ ଆସିଲା, ନହେଲା, ନୋହିଲା,ଆସିନାହିଁ,(ଗ୍ରା.ବି.) ନହଲ ଦେଖ, (ଗ୍ରା. ବିଂ.) ନ ଘଟିଚା (କଥା), ଯାହା ପଇଚି ନ ଥାଏ ।

ନଇଲେ—ଗ୍ରା. ଅବ୍ୟ. (ସଂ-ନୋଚେତ୍) ନୋଚେତ୍,ଅନ୍ୟଥା, ଅଥବା, (ଗ୍ରା.କି. ଅତୀତକାଳ) ଆସିଲେ ନାହିଁ, ଆସିନାହାନ୍ତି, ଯେତେବେ ସେ ନ ଆସିଲେ ।

ନଇଲେନାହିଁ—ଗ୍ରା. ଅବ୍ୟ. ନଚେତ୍, ନାହିଁ,ଅନ୍ୟଥାନୁହେ,ନହେଲେନାହିଁ ।

ନଇଷଧୀ—ଗ୍ରା. (ପଦ୍ୟ)ବି. (ସଂ-ନୈଷଧୀ) ନୈଷଧୀ ଦେଖ ।

ନଈ—ଗ୍ରା.ବି. (ସଂ-ନଦୀ) ନଦୀ ।

ନଈକୂଳ—ଗ୍ରା.ବି.(ସଂ-ନଦୀକୂଳ) ନଦୀର କୂଳ ।

ନଈକୂଳିଆ—ଗ୍ରା. ବିଂ. ନଦୀକୂଳ ସମ୍ବନ୍ଧୀୟ,ନଦୀକୂଳରେ ଅବସ୍ଥିତ ବା ଜାତ ।

ନଈଝୁଣ୍ଟି—ପ୍ରା. (ସମ୍ବ.)ବି. ନଦୀକୂଳ ।

ନଈତଳ—ଗ୍ରା.ବି. ( ସଂ-ନଦୀ ଓ ତଳ ) ନଈକୂଳ, ନଦୀଶଯ୍ୟା, ନଦୀର ନିମ୍ନତମ ଦେଶ ।

ନଈତଳିଆ—ଗ୍ରା. ବିଂ. ନଦୀର ଅତି ନିକଟରେ ଅବସ୍ଥିତ, ନଦୀକୂଳରେ ଅବସ୍ଥିତ ।

ନଈଟେଙ୍ଗି—ପ୍ରା.(ସମ୍ବଲପୁର)ବି.ଗେଟେଇ ଅଟକାଳି, ଗଇଣ୍ଠା ଓ ଖିର, (ଗ୍ରା.ବି.) ନଈରେ ପହଁରିବା ।

ନଈବଢ଼ି—ଗ୍ରା. ବି. ( ସଂ-ନଦୀବୃଦ୍ଧି ) ନଦୀର ଜଳ ବୃଦ୍ଧି ।

ନଈବଙ୍କ—ଗ୍ରା.ବି. (ସଂ-ନଦୀ+ବାଙ୍କ) ନଦୀର ଯେଉଁଠାରେ ବଙ୍କ ହୋଇ ବହି ଯାଇଥାଏ ।

ନଈବାଲି—ଗ୍ରା.ବି.(ସଂ-ନଦୀ ଓ ବାଲୁକା) ନଦୀର ବାଲୁକା ।

ନଈଭଲିଆ—ଗ୍ରା.ବି.(ସଂ-ନଦୀଭଲ୍ଲାତକ) ଲଙ୍କାଆମ୍ବର ମଞ୍ଜି, ବାଦାମମଞ୍ଜି ।

ନଈଶୁଆ—ଗ୍ରା. ପୁଂ. ଅବ୍ୟ. ( ଗାଳି ) ତୁ ଶୀଘ୍ର ମର ଯେ ଶବକୁ ନଈରେ ପକାହେବ, (ସ୍ତ୍ରୀ) ନଈଶୋଇ ।

ନଉ—ଗ୍ରା. ବି ଓ ବିଂ. (ସଂଖ୍ୟାବାଚକ) (ସଂ-ନବତି)ନବତି, ନବେ, (ଗ୍ରା.ଯା.-ବି.) ଚକ୍ର, (ପ୍ରା. ଉତ୍ତରାଞ୍ଚଳ. ବି ଓ ବିଂ.) ନଅ, ୯ ।

ନଉଆଣହେ—ଗ୍ରା. ବି ଓ ବିଂ. (ସଂ-ନବାଧିକଶତ) ଏକଶହ ନଅ ।

ନଉକର—ଯା. ପୁଂ. ବି. ନୌକର ଇତ୍ୟାଦି ଦେଖ, ( ସ୍ତ୍ରୀ ) ନଉକରାଣୀ, ନଉକରଆଣୀ ।

ନଉକରାନ୍—ଯା. ବି. ଗୃକରମାନେ, (ଯା. ବିଂ.) ଗୃକରସମ୍ବନ୍ଧୀୟ, ଗୃକର୍ମସମ୍ବନ୍ଧୀୟ ।

ନଉକରି—ଯା. ବି. ନୌକରି ଦେଖ ।

ନଉକା—ଗ୍ରା. ବି. (ସଂ-ନୌକା) ନାବ, ନାଆ, ଡଙ୍ଗା ।

ନଉଟ—ଗ୍ରା.ବି. ଲେଉଟ ଦେଖ ।

ନଉଟା—ଗ୍ରା.ବି. ଲେଉଟା ଦେଖ ।

ନଉଟା(ଟେ)ଇବା—ଗ୍ରା. କି. ଲେଉଟେଇବା ଦେଖ ।

ନଉଟିଆ—ଗ୍ରା. ବି. ନେଉଟିଆ ଦେଖ ।

ନଉଟିବା—ଗ୍ରା.କି. ଲେଉଟିବା ଦେଖ ।

ନଉଡ଼ା—ଗ୍ରା. ବି. ଲଉଡ଼ା ଦେଖ ।

ନଉଡ଼ି—ଗ୍ରା. ବି. ( ସଂ-ଲଗୁଡ଼ ) ଯଷ୍ଟି, ଲଉଡ଼ି, ବାଡ଼ି ।

ନଉଡ଼ିଖେଳ—ଗ୍ରା.ବି.ଗଉଡ଼ବାଡ଼ିଖେଳ ।

ନଉଡ଼ିଖେଳିବା—ଗ୍ରା.କି. ନାନାପ୍ରକାର ବାଡ଼ି ଦ୍ୱାରା ଖେଳିବା ।

ନଉଡ଼ିସନ୍ତକ—ଗ୍ରା. ବି. ମୂର୍ଖ ଗଉଡ଼ମାନଙ୍କର ନାମସ୍ୱାକ୍ଷର କରିବାର ଏ ସନ୍ତକ ବା ଚିହ୍ନ ।

ନଉଣିଆ(ଆଁ)—ଗ୍ରା.ବି ଓ ବିଂ. ନହୁଣିଆ ଦେଖ ।

ନଉଣୀ(ଇତ୍ୟାଦି)—ଗ୍ରା.ବି.(ସଂ-ନବନୀ) ନହୁଣୀ ଇତ୍ୟାଦି ଦେଖ ।

**ନଉତନ**—ଗ୍ରା.ବିଂ. (ସଂ-ନୂତନ)ନୂଆ ।

**ନଉତି**—ଗ୍ରା.ବି. ବଡ଼ ମାଟିହାଣ୍ଡି,ଶସ୍ୟମପିବା ପାତ୍ରବିଶେଷ, ଗଉଣି(1).(ପ୍ରା. ଗଞ୍ଜାମ. ବି.) ଘିଅ ଗଉଣୀର ମାପ ।

**ନଉଲୁଆଣ**—ଗ୍ରା.ବି. ଲଅଲୁଆଣ ଦେଖ, (ଗ୍ରା. ବିଂ) ଲହୁଲୁହାଣ, ରକ୍ତାକ୍ତ ।

**ନଉବତ୍**—ଯା. ବି. ନହବତ୍, ଢେମ୍ପନାଗରା, ଯୋଡ଼ନାଗରା ।

**ନଉବତ୍ଖାନା**—ଯା.ବି. ନହବତ୍ଖାନା, ନଉବତ୍ ବାଜା ବାଜିବା ପାଇଁ ଖୁଣ୍ଟ ଉପରେ ନିର୍ମିତ ପ୍ରକୋଷ୍ଠବିଶେଷ ।

**ନଉବତୀ**—ଯା. ବି. ନଉବତ୍ ବାଦ୍ୟ ଯେ ବଜାନ୍ତି । [ ନବରଙ୍ଗ ଦେଖ ।

**ନଉରଙ୍ଗ**—ଗ୍ରା. ବି. ( ସଂ-ନବରଙ୍ଗ )

**ନଉରୁଣୀ**—ଗ୍ରା. ବି. ( ସଂ-ନଖରଞ୍ଜନୀ ) ନହୁରୁଣୀ, ନଖ କାଟିବା ଶସ୍ତ୍ରବିଶେଷ ।

**ନଉରୋଜ୍**—ଯା. ବି ଆକବର ବାଦସାହଙ୍କ ଦ୍ୱାରା ଅନୁଷ୍ଠିତଉତ୍ସବବିଶେଷ, ମୁସଲମାନମାନଙ୍କର ନବବର୍ଷର ପ୍ରଥମ ଦିବସ ।

**ନଉଳ**—ଗ୍ରା. (ଇତର)ବି. (ସଂ-ନକୁଲ, ପ୍ରା. ନଉଲ) ନେଉଳ, ନକୁଳ ।

**ନଉଲ୍**—ଗ୍ରା. ବିଂ. ପୁଂ. ( ସଂ-ନବ, ନଚଲ) ନବଲା,(ସ୍ତ୍ରୀ )ନବୀନ,ଲଉକି, ଯୁବା, (ସ୍ତ୍ରୀ) ଯୁବତୀ, (ବି) ଯୁବତୀ ସ୍ତ୍ରୀ ।

**ନଉସନ୍ଦା**—ଗ୍ରା. ବିଂ. ନିପୁଣ, ଚତୁର, (ଗ୍ରା.ଯା.ବି) ଦଲିଲର ଲେଖକ ।

**ନଉସନ୍ଦ ଧିକ**—ଗ୍ରା. ବିଂ. ଖୁବ୍ ନିପୁଣ, ଚତୁର, ପଟୁ ।

**ନଏଦ୍**—ପ୍ରା. (ସମ୍ବଲ)ବି. ନଦୀ ।

**ନଏଦ୍ତୀର**—ପ୍ରା.(ସମ୍ବଲ)ବି. ନଦୀତୀର ।

**ନଓଆଇତ**—ନବାଗତ, ଦାକ୍ଷିଣାତ୍ୟବାସୀ ଏକଶ୍ରେଣୀର ମୁସଲମାନ୍ ।

**ନକ୍**—ଅବ୍ୟ. (ନଶ୍+କ୍ୱିପ୍) ସନ୍ଧି ।

**ନକଟ**—ଗ୍ରା.ବି.(ସଂ-ନକ୍ତକ)ଟିକିଏ,ଅତିଅଳ୍ପ ମାତ୍ରା, କନ୍ଥା, ଚିରାକନା, (ବିଂ) ନକଟେ, ଅତିଶ୍ରେଷ୍ଠ, ଚିରା,ଲେଙ୍ଗଡ଼ା ।

ନକଟକ—ଗ୍ରା.ବି ଓ ବିଂ. ଅତି ସାମାନ୍ୟମାତ୍ର, ଅତିକ୍ଷୁଦ୍ର, ଟିକିଏମାତ୍ର ।

ନକଟେ—ଗ୍ରା.ବି ଓ ବିଂ.ଟିକିଏ,ସାମାନ୍ୟ ପରିମାଣ, ଅଳ୍ପମାତ୍ର, ଅତିକ୍ଷୁଦ୍ର ।

ନକଠକ—ଗ୍ରା. ଅବ୍ୟ. ( ଆ.ନକଦ୍ ) ଖୋକ୍ଠୋକ୍,କୌଣସି ବିଷୟର ଶେଷ ମୀମାଂସା, ନଗଦ କାରବାର, ଠିକ୍, ଯଥାର୍ଥ, ଅବିକଳ, ଉପଯୁକ୍ତ, ଯୋଗ୍ୟ, ବାଦବିବାଦ ।

ନକଠକବାହ୍ପିଆ—ଗ୍ରା. ବିଂ. ଘୋର ମିଥ୍ୟାବାଦୀ, ନିଆଁଗିଳା ।

ନକଡ଼ଛକଡ଼—ଗ୍ରା. ବି. ଗୋଳମାଳ, ଅଡୁଆ, ଗ୍ରା.ବିଂ.ନକଡ଼ା ଛକଡ଼ା ଦେଖ

ନକଡ଼ା—ଗ୍ରା.ବି. ନଅକଡ଼ା ମାତ୍ର କଉଡ଼ି, ( ଗ୍ରା. ବିଂ ) ନଅକଡ଼ା କଉଡ଼ିମୂଲ୍ୟର, ଯାହାର ମୂଲ୍ୟଅତିଅଳ୍ପ,ଅତିତୁଚ୍ଛ,ହେୟ ।

ନକଡ଼ାଛକଡ଼ା—ଗ୍ରା. ବିଂ. ଅତି ହେୟ, ନଗଣ୍ୟ, ମୂଲ୍ୟହୀନ, ଗୋଳମାଳିଆ, ଅଡୁଆଡ଼ୁଆ, ( ଗ୍ରା. ବି. ) ନଅକଡ଼ା କଉଡ଼ି ଓ ଛକଡ଼ା କଉଡ଼ି ।

ନକଡ଼ଛକଡ଼ାକରିବା—ଗ୍ରା ବି. ତୃଣବତ୍ ଗଣନା କରିବା, ତୁଚ୍ଛ ମନେକରିବା, ମୂଲ୍ୟହୀନ ବସ୍ତୁପରି ବ୍ୟବହାର କରିବା, ଅପମାନିତ କରିବା ।

ନକଡ଼ି—ଗ୍ରା. ପୁଂ.ସ୍ତ୍ରୀ. ବି. ଅପର୍ତ୍ତିଆଣୀ ପିଲାଙ୍କ ନାମ, ନକଡ଼ା ଦେଖ, ( ଗ୍ରା. ବିଂ. ) ନକଡ଼ା ଦେଖ ।

ନକନକ—ଗ୍ରା.ଅବ୍ୟ. ଲକଲକ ଦେଖ ।

ନକନକା(କେ)ଇବା—ଗ୍ରା.କ୍ରି.ଲକଲକାଇବା ଦେଖ ।

ନକନକିଆ—ଗ୍ରା.ବିଂ.ଲକଲକିଆ ଦେଖ

ନକନୋର୍—ଗ୍ରା.ବି.ମୁନିଆ ପକ୍ଷୀ ଦେଖ

ନକମାରଚ—ଗ୍ରା.ବି.ଲଙ୍କାମରିଚ ଦେଖ ।

ନକର—ଯା.ବି. ଚାକର ।

ନକରି—ଯା.ବି. ଚାକରି ।

ନକଲ—ଯ. ବି. ଅନୁକରଣ, ପ୍ରତିଲିପି, ଥଟ୍ଟା, କୌତୁକ, ପରିହାସ,(ବିଂ) ଜାଲ, କୃତ୍ରିମ, ଅପ୍ରକୃତ, କମସଲ, (ବିପ-ଅସଲ) ।

ନକଲଆଣିବା—ଗ୍ରା. କ୍ରି. କୌଣସି ଲେଖାର ପ୍ରତିଲିପି ସଂଗ୍ରହ କରିବା ।

ନକଲଉତ୍ତାରିବା—ଗ୍ରା. କ୍ରି. ପ୍ରତିଲିପି କରିବା, ଅନୁକରଣ କରିବା ।

ନକଲଉମ୍ଶୟୁତାନ୍—ଆଫ୍ରିକାର ଦେଶଜାତ ଏକଜାତୀୟ ଖର୍ବାକାର ଖର୍ଜୁର ବୃକ୍ଷ ।

ନକଲକରିବା—ଗ୍ରା. କ୍ରି. ଥଟ୍ଟା କରିବା, ଛଇ ବାହାର କରିବା, ପ୍ରତିଲିପି କରିବା, ଅନୁକରଣ କରିବା ।

ନକଲନବିସ୍—ଯା. ପ୍ରତିଲିପିକାରକ, ଯେ ଦଲିଲ ଉତାରେ ।

ନକଲନବିଶୀ—ଯା. ବି. ନକଲନବିସ୍ର କର୍ମ । [ ଦେଖ ।

ନକଲନୋର୍—ଗ୍ରା. ବି. ନକନୋର୍

ନକଲବୟେନ୍—ଯା.ହସ୍ତଲିପି ପାଠକରିବା

ନକଲବରଦାର—ଯା.ପ୍ରତିଲିପିଲେଖକ, ଯେଉଁମାନେ ନକଲ କରନ୍ତି ।

ନକଲବରଦାରୀ—ଯା.ପ୍ରତିଲିପିର ବ୍ୟୟ ।

ନକଲବହି—ଯା.ବି.କୌଣସି ସିରସ୍ତା ବା ଅନ୍ୟତ୍ର ପ୍ରେରିତ ପତ୍ରାଦିର ପ୍ରତିଲିପି ଯେଉଁ ବହିରେ ଲେଖାଥାଏ, ଏକପ୍ରକାର ବାଲିକ୍ କାଗଜର ବହି,ଯହିଁର ପୃଷ୍ଠାତଳେ କପିଂ କାଳିରେ ଲେଖା ଚିଠିଆଦି ଚାପିଦେଲେ ତହିଁର ନକଲ ଉଠିଯାଏ ।

ନକଲି—ଗ୍ରା.ବି.ଥଟ୍ଟା,ପରିହାସ, କୌତୁକ, (ଗ୍ରା.ବିଂ.) ନକଲ ଦେଖ ।

ନକଲିଆ—ଗ୍ରା.ପୁଂ ଓ ସ୍ତ୍ରୀ.ବିଂ. ଥଟ୍ଟାବାଜ୍, କୌତୁକପ୍ରିୟ, ଅନୁକରଣପ୍ରିୟ, ନଅଗୋଟି କଳା ଲାଗିଥିବା ( କୁକୁର ), ଯେ ଅନ୍ୟକୁ ହସାଇବାଭଳି କଥା କହେ ।

ନକସ—ଯ. ବି. ( ଆ-ନକ୍ସ ) ଗଞ୍ଜପା ଖେଳର ଏକ ଅବସ୍ଥା,ହାତରେ ପିନ୍ଧିବା ଚିତ୍ରିତ କାଚ ବଳୟ, (ବିଂ) ନକସୀ ଦେଖ ।

ନକସା—ଯା. ବି. (ଆ.ନକ୍ସା) ଅଙ୍କିତଚିତ୍ର, ପ୍ରତିମୂର୍ତ୍ତି, ଛବି, ଭୂମି ବା ଦେଶ ଆଦିର ଚିତ୍ର, ସୂକ୍ଷ୍ମ କାରୁକାର୍ଯ୍ୟ,ଆଦର୍ଶ

ଛଇ, କୌତୁକ, ତାମସା, ( ବ୍ଂ ) ନକସୀ ଦେଖ ।

ନକସାକାଢ଼ିବା—ଗ୍ରା. କ୍ରି. ଚିତ୍ରଅଙ୍କନ କରିବା, (ଅଳଙ୍କାରାଦିରେ)ଲତା ପତ୍ର ଖୋଦନ କରିବା ।

ନକସାକାଢ଼ିବ—ଗ୍ରା.କ୍ରି. ବାହାର ଢଙ୍ଗଢାଙ୍ଗକୁ ଅନୁକରଣ କରି ଉପହାସ କରିବା, ଛଇ ବାହାର କରିବା ।

ନକସୀ—ଯା.ବ୍ଂ. ( ଆ.ନକ୍ସୀ ) ସୁନାରୁପାଦିର କାରୁକାର୍ଯ୍ୟ ଓ ଖୋଦିତ କାର୍ଯ୍ୟବିଶିଷ୍ଟ (ଅଳଙ୍କାରାଦି), ବିଚିତ୍ର କଟା ଓ ଫୁଲ ଲତାଆଦି କାରୁକାର୍ଯ୍ୟବିଶିଷ୍ଟ,(ଗ୍ରା.ବି.)ଖୋଦାଇ କାମ,କାରୁକାର୍ଯ୍ୟ, କାମ, ଚିତ୍ରକାର, ନକସାକଲଢାଲ୍ ।

ନକାଟ—ଏକପ୍ରକାର ଅମ୍ଳମଧୁର ଫଳ ।

ନକାଡ଼ସ୍ତୃ—(ସିଂହଳୀ—ସଂ-ନକ୍ଷତ୍ରିକ) ସିଂହଳର ଦେବିଙ୍କ ।

ନକାବ୍—ଯା. ବି. ମୁସଲମାନ ବ ଘରାଣିବ ଜାତୀୟ ସ୍ତ୍ରୀମାନଙ୍କର ନାକ ଓଢ଼ଣାବିଶେଷ ।

ନକାସୀକାମ—ଗ୍ରା.ବି. ଚାରୁ ଓ ସୁନାଆଦି ଉପରେ ଖୋଦିତ କର୍ମ

ନକାସିଦାର—ଯା. ବ୍ଂ. ଖୋଦନ କର୍ମ କରାଯାଇଥିବ (ଅଳଙ୍କାରାଦି)

ନକାର—ପୁଂ. ବି. ନ ସ୍ୱରୂପ ବର୍ଣ୍ଣ ।

ନକାର୍ଚ୍ଚି—ବୋମ୍ବାଇ ନିକଟବର୍ତ୍ତୀ ଏକଦଳ ମୁସଲମାନ ନାଗରାବାଦକ

ନକ୍କ—ଗ୍ରା. ବି. ପତଳା ପିତ୍ତଳର ପାତ. ପିତ୍ତଳରେ ତିଆରି ବାସନ, ତଳିଆ, (ପ୍ରା. ଗ୍ରାମ. ବ୍ୟ.) ତିଆରିତ କଉଡ଼ି ଜେଲାରେ ୧୬.୯ ଓ ୧୯ ସଂଖ୍ୟାନାଦନ. (ବାଲେଶ୍ୱର. ବ.) ପିତଳ ପଲମ

ନ-କ—ସଂହୃତ୍ପାନ ଭ୍ରମଣ ବୃତ୍ତାନ୍ତରେ ଭାରତର ଉତ୍ତରବର୍ତ୍ତୀ ଏକଦେଶର ବିବରଣ ।

ନକଞ୍ଚନ—ପୁଂ, ବ୍ଂ. (ଦେ.ଜ) ଅକଞ୍ଚନ, ଦରିଦ୍ର, ଅତି ଦରିଦ୍ର,ସ୍ତ୍ରୀ, ନକଞ୍ଚନ

ନକୀବ,ନକୀବ—ଯା.ବି.ଯୁଦ୍ଧର ଉତ୍ତେଜକ-ଦାୟକ କର୍ମଚାରୀ, ଘୋଷଣାକାରୀ, ହର୍କରା ସମ୍ବାଦପ୍ରାପକ, ବାର୍ତ୍ତାବାହକ, ପିଆଦା, ପେଶ୍କାର ।

ନକବର୍ତ୍ତି—ମୋଗଲ ସମ୍ରାଟ ଆକବରଙ୍କ ସମୟର ଜଣେ ନସ୍ୟଣତ ମନସବଦାର ।

ନକମ—ଅବ୍ୟ. ନିବାରଣ, ବର୍ଜ୍ଜନ ।

ନକହଂସ—ଗ୍ରା, ବି. ହଂସଜାତୀୟ ବୃହତ୍ ପକ୍ଷିବିଶେଷ ।

ନକୁଚ—ପୁଂ. ବି. ମନ୍ଦାର, ଡହୁବୃକ୍ଷ ।

ନକୁଛି—ଗ୍ରା ବି.ଶାଖାଶ୍ରୟୀ ବର୍ଗର ପକ୍ଷିବିଶେଷ ।

ନକୁଟ—କ୍ଳୀ. ବି. ନାସିକା ।

ନକୁଳ—ପୁଂ. ବି. ( ନ+କୁଳ,ବ.ବ୍ରୀ ) ମହାଦେବ, ନେଉଳ, ଚତୁର୍ଥ ପାଣ୍ଡବ. ପୁତ୍ର, ପ୍ରାଚୀନ କାଳର ବାଦ୍ୟବିଶେଷ, (ପୁଂ.ବ୍ଂ) କୁଳହୀନ, (ଯା.ବି) ମାଦକ ଦ୍ରବ୍ୟ ସେବନ ପରେ ଖିଆଯିବା ପଦାର୍ଥ. (ଗ୍ରା.ବି) ଲୋକଙ୍କ ନାମ, (ସ୍ତ୍ରୀ)ନକୁଲା

ନକୁଲକ—ବି. ପ୍ରାଚୀନ କାଳର ଏକ ପ୍ରକାର ଗହଣା, ଟଙ୍କା ରଖିବାର ଏକପ୍ରକାର ଥଳି ।

ନକୁଲକନ୍ଦ—ବି. ଗନ୍ଧନାକୁଲୀ ଦେଖ ।

ନକୁଲତୈଳ—କ୍ଳୀ.ବି.ବାତବ୍ୟାଧି ରୋଗାଧିକାରୋକ୍ତ ତୈଳୌଷଧବିଶେଷ ।

ନକୁଳା—ସ୍ତ୍ରୀ. ବି. ନକୁଳର ସ୍ତ୍ରୀଲିଙ୍ଗ, (ସ୍ତ୍ରୀ.ବି) ପାର୍ବତୀ ।

ନକୁଲାଢ୍ୟ—ସ୍ତ୍ରୀ.ବି.ଗନ୍ଧନାକୁଲୀନାମକ କନ୍ଦବିଶେଷ ।

ନକୁଲାଦ୍ୟଘୃତ—କ୍ଳୀ. ବି. ବାତବ୍ୟାଧିରୋଗାଧିକାରୋକ୍ତ ଘୃତୌଷଧଭେଦ ।

ନକୁଲାନ୍ଧତା—ସ୍ତ୍ରୀ. ବି. (ବୈଦ୍ୟ) ସୁଶ୍ରୁତୋକ୍ତ ଏକପ୍ରକାର ନେତ୍ରରୋଗ ।

ନକୁଲାନ୍ଧରୋଗ—ବି.ସୁଶ୍ରୁତ ଅନୁସାରେ ଚକ୍ଷୁର ରୋଗବିଶେଷ, ଯହିଁରେ ମନୁଷ୍ୟର ଆଖି ନେଉଳ ଆଖିଭଳି ନାଲ ହୁଏ ଓ ଦିନେମାନ ରଙ୍ଗ ବେରଙ୍ଗ ଦେଖାଯାଏ ।

ନକୁଳୀ—ସ୍ତ୍ରୀ. ବି. (ନକୁଳ+ଈ) ମାଇ-ନେଉଳ, କୁକୁଟୀ,କୁଙ୍କୁମ, ଜଟାମାଂସୀ, ଶଙ୍ଖିନୀ ନାମକ ବନୌଷଧି ।

ନକୁଳୀଶ—ପୁଂ.ବି. (ତନ୍ତ୍ର) ଭୈରବବିଶେଷ, ନକୁଲେଶ୍ୱର, ହକାର ।

ନକୁଳୀଶପାଶୁପତଦର୍ଶନ—ଆର୍ଯ୍ୟମାନଙ୍କର ଷଡ଼୍‌ବିଧ ଦର୍ଶନଶାସ୍ତ୍ର ।

ନକୁଲେଶ—ପୁଂ. ବି. (କ.ଧା) କାଳୀପୀଠସ୍ଥିତ ଭୈରବଭେଦ,ନକୁଲେଶ୍ୱର, କାଳୀଘାଟ ଓ କାଶୀଧାମସ୍ଥ ଶିବଲିଙ୍ଗ ବିଶେଷ ।

ନକୁଲେଷ୍ଟା—ସ୍ତ୍ରୀ. ବି. (ତନ୍ତ୍ର)ଚମ୍ପା ।

ନକ୍ଳୁଂ—ସୁନ୍ଦରବନ ଜଳର ସୀମାବର୍ତ୍ତୀ ଗୋଟିଏ ପାହାଡ଼ର ଏକକୁମ୍ଭଗବେନ୍ଦ୍ର ଅନୁଚଶିଖର ।

ନକେଇ—ଗ୍ରା. ବ୍ଂ. ଲକେଇ, ଯାଉଆ (ଅନ୍ଧ), (ବ୍ୟ-ଗୁଣ୍ଡିକଆ) ।

ନକେଇବା—ଗ୍ରା.କ୍ରି.(ଭ୍ରାତ)ଲକେଇବା, ଯାଉଆହେବା ।

ନକୋଦର—ପଞ୍ଜାବ ଜଳନ୍ଧର ଜିଲ୍ଲାର ଗୋଟିଏ ତହସୀଲ ଓ ପ୍ରଧାନ ନଗର ।

ନକ୍କ—ନାଶନ ।

ନକ୍ତ—ବି. ( ନକ୍+ଅଧି.ତ ) ଯେଉଁ ସମୟରେ ମୁହୂର୍ତ୍ତମାନ ଦିନ ବାକିଥାଏ, ସନ୍ଧ୍ୟାଗମ ସମୟ, ରାତି, ଶିବ, ରାଜା ପୃଥୁଙ୍କର ଏକପୁତ୍ର,(ସଂ-ପୁଂ.ବ୍ଂ) ( ନକ୍+କ.ତ ) ଲଜ୍ଜିତ, ନକ୍ତବ୍ରତ ଦେଖ, (ସ୍ତ୍ରୀ) ନକ୍ତା ।

ନକ୍ତକ—ପୁଂ. ବି. (ନକ୍+ଣ.ତ+କ) ଛିନ୍ନବସ୍ତ୍ର, ନେଙ୍କେଡ଼ା କନା, କନ୍ଥା, ଛିଣ୍ଡାକନା ।

ନକ୍ତଚର—ପୁଂ.ବି.(ନକ୍ତ+ଚର+କ.ଅ) ଶିବ, ରାକ୍ଷସ, ପେଚକ, ବିରାଡ଼ି, ଚୋର, ଗୁଗ୍ଗୁଳୁ, (ବ୍ଂ) ଯେ ରାତିରେ ବିଚରଣ କରେ, (ସ୍ତ୍ରୀ) ନକ୍ତଚରୀ ।

ନକ୍ତଚାରୀ—ପୁଂ.ବି ଓ ବ୍ଂ. (ନକ୍ତ+ଚର+କ.ଇନ୍) ନକ୍ତଚର ଦେଖ, (ସ୍ତ୍ରୀ) ନକ୍ତଚାରିଣୀ ।

ନକ୍ତଞ୍ଚର—ପୁଂ.ବି ଓ ବ୍ଂ. (ନକ୍ତଂ+ଚର+କ.ଅ) ନକ୍ତଚର ଦେଖ, (ସ୍ତ୍ରୀ) ନକ୍ତଞ୍ଚରୀ ।

**ନକ୍ତଞ୍ଚର୍ଯ୍ୟା**—ସ୍ତ୍ରୀ. ବ.( ନକ୍ତଂ+ଚର୍ଯ୍ୟା ) ରାତ୍ରିଯୋଗେ ଭ୍ରମଣ ।

**ନକ୍ତଞ୍ଚାରିନ୍**—ପୁଂ. ବଂ. (ନକ୍ତଂ+ଚର୍+ଇନ୍) ରାତ୍ରିଚରମାତ୍ର ।

**ନକ୍ତଞ୍ଜାତ**—ବି. ବଂ. ରାତ୍ରିଜାତ, (ବୈ) ଔଷଧିବିଶେଷ ।

**ନକ୍ତନ୍ତନ**—ବି. ବଂ. ରାତ୍ରିଭବ, ଯାହା ରାତ୍ରିରେ ହୁଏ ।

**ନକ୍ତନ୍ଦିବ**—ଅବ୍ୟ(ଦ୍ୱନ୍ଦ୍ୱ)ଦିବାରାତ୍ର, ରାତ୍ରି-ଦିନ, ଦିନରେ ଓ ରାତ୍ରିରେ, ଅହର୍ନିଶ ।

**ନକ୍ତବ୍ରତ**—କ୍ଲୀ.ବ. ଦିବସରେ ଉପବାସ ରହି ରାତ୍ରିରେ ବା ଠିକ୍ ସନ୍ଧ୍ୟା ପୂର୍ବରୁ ଭୋଜନ କରିବା ବ୍ରତ, ଗୋଳା ।

**ନକ୍ତଭୋଜୀ**—ପୁଂ. ବଂ. (ନକ୍ତ+ଭୁଜ୍+କ.ଇନ୍ ) ନକ୍ତବ୍ରତଧାରୀ, (ବ) ପେଚା, ବାଦୁଡ଼ି, (ସ୍ତ୍ରୀ) ନକ୍ତଭୋଜିନୀ ।

**ନକ୍ରମ୍**—ଅବ୍ୟ. ( ନକ୍+କ. ଅମ୍ ) ରାତ୍ରିରେ ।

**ନକ୍ରମାଳ**—ପୁଂ. ବ. (ନକ୍ରମ୍+ଅଲ+କ.ଅ) କରଞ୍ଜବୃକ୍ଷ ।

**ନକ୍ତମୁଖା**—ସ୍ତ୍ରୀ. ବ. ( ନକ୍ତଂ+ଉଖ୍+କ.ଅ+ଆ) ରାତ୍ରି ।

**ନକ୍ତଂପ୍ରଭବ**—ବି. ବଂ.(ନକ୍ତଂ+ପ୍ର+ଭୂ+ଅ) ରାତ୍ରିପ୍ରଭବ ।

**ନକ୍ତା**—ସ୍ତ୍ରୀ.ବ. ଇଶଲାଙ୍ଗଲୀଗଛ, କନି-ଅର ଗଛ, ହଳଦୀ, ରାତ୍ରି, (ସଂ-ସ୍ତ୍ରୀ.ବଂ) ନକ୍ତର ସ୍ତ୍ରୀଲିଙ୍ଗ ।

**ନକ୍ତାନ୍ଧ**—ପୁଂ. ବଂ. ଅନ୍ଧାରକଣା, ରାତି-କଣା,(ସ୍ତ୍ରୀ) ନକ୍ତାନ୍ଧା, (ବ) ନକ୍ତାନ୍ଧତା, ନକ୍ତାନ୍ଧ୍ୟ ।

**ନକ୍ତାନ୍ଧତା**—ବ. ( ନକ୍ତାନ୍ଧ+ଭା.ତା ) ଅନ୍ଧାରକଣା ରୋଗ ।

**ନକ୍ତାନ୍ଧ୍ୟ**—କ୍ଲୀ. ବ. ନେତ୍ରରୋଗଭେଦ ।

**ନକ୍ତି**—ସ୍ତ୍ରୀ. ବ. (ନକ୍+ଅଧି.ଇ)ରାତ୍ରି ।

**ନକ୍ର**—ପୁଂ. ବ. ( ନ+କ୍ରମ୍+କ.ଅ ) କୁମ୍ଭୀର, ଜଳଜନ୍ତୁ, ଦ୍ୱାରବନ୍ଧର ଉପର କାଠ, ନାସିକା ।

**ନକ୍ରରାଜ**—ପୁଂ. ବ. (୬ତତ୍ ) ଗ୍ରାହ, ହାଙ୍ଗର ।

**ନକ୍ରଧାରକ**—ପୁଂ. ବ. ହାଙ୍ଗର ।

**ନକ୍ରା**—ସ୍ତ୍ରୀ. ବ. (ନକ୍ର+ଆ) ନାସିକା, ନାକ, (ନ+କ୍ରମ+କ.ଅ+ଆ) ।

**ନକ୍ଷ**--(ଧାତୁ)ଗମନକରିବା,ଗତି କରିବା ।

**ନକ୍ଷତ୍ର**—ପୁଂ. ବ. (ନ+କ୍ଷି+କ. ଅତ୍ର ବା ନକ୍ଷ+କ.ଅତ୍ର) ତାରକା, ତାରା, ତାରାପୁଞ୍ଜ, ଉଲ୍କା, ମୁକ୍ତା, ଅଶ୍ୱିନ୍ୟାଦି ସପ୍ତବିଂଶତି ନକ୍ଷତ୍ର, (କ୍ଲୀ.ବ) ହାର-ବିଶେଷ, ୧୩ ଡିଗ୍ରୀ ୨୦ ମିନିଟ୍‌ର ଅବସ୍ଥିତ ଆକାରେ ଅଂଶ, ( ଗ୍ରା.ବ ) ବାଣାଦିର ଗ୍ରେଣ୍ଟ ଗ୍ରେଣ୍ଟ ବାରୁଦର ବଟିକା ବା ଗୁଳା ।

**ନକ୍ଷତ୍ରଇଣ୍ଡୁରା**—ଗ୍ରା. ବ. କବିଇଣ୍ଡୁରା, ଗ୍ରେଣ୍ଟ ଗ୍ରେଣ୍ଟ ଇଣ୍ଡୁରା ପିଠା ।

**ନକ୍ଷତ୍ରକଲ୍ପ**—ପୁଂ. ବ. ଅଥର୍ବ ବେଦର ପରିଶିଷ୍ଟବିଶେଷ । [ଜାହିରା ।

**ନକ୍ଷତ୍ରକୁସୁମାକର**—ପୁଂ. ବ. ଧଳା-

**ନକ୍ଷତ୍ରକୂର୍ମବିଭାଗ**—ପୁଂ. ବ. ନକ୍ଷତ୍ରକୂର୍ମ ବିଭାଗ ଅର୍ଥାତ୍ ବର୍ଣ୍ଣର ପ୍ରଧାନ୍ୟାନୁସାରେ ଦେଶର ଅବସ୍ଥାନ ଭେଦ ।

**ନକ୍ଷତ୍ରଗତିବେଗ**—ପୁଂ ଓ ସ୍ତ୍ରୀ. ବ. (୬ତତ୍) ଉଲ୍କାସଦୃଶ ବେଗ ।

**ନକ୍ଷତ୍ରଗଣ**—ପୁଂ. ବ. ନକ୍ଷତ୍ରବିଶେଷର ସମୂହାତ୍ମକ ଗଣଭେଦ ।

**ନକ୍ଷତ୍ରଚକ୍ର**—କ୍ଲୀ.ବ. (୬ତତ) ରାଶିଚକ୍ର, ତନ୍ତ୍ରୋକ୍ତ ମନ୍ତ୍ରଗ୍ରହଣୋପଯୋଗୀ ଚକ୍ର-ବିଶେଷ ।

**ନକ୍ଷତ୍ରଚିନ୍ତାମଣି**—ପୁଂ.ବ. ରତ୍ନବିଶେଷ ।

**ନକ୍ଷତ୍ରଜ**—ବି.ବଂ.ଯାହା ନକ୍ଷତ୍ରରୁ ଜାତ ।

**ନକ୍ଷତ୍ରତାରକାଦିତ୍ୟ**—ପୁଂ. ବ. ଚନ୍ଦ୍ର, ନକ୍ଷତ୍ର ଓ ତାରାମାନଙ୍କର ଅଧିପତି ସୂର୍ଯ୍ୟ ।

**ନକ୍ଷତ୍ରଦର୍ଶୀ**—ବି. ବଂ. (ନକ୍ଷତ୍ର+ଦୃଶ୍+ଅ) ନକ୍ଷତ୍ରସୂଚକ, ଗଣକ,ଜ୍ୟୋତିଷ ।

**ନକ୍ଷତ୍ରଦାନ**—କ୍ଲୀ. ବ. (୭ତତ୍) ନକ୍ଷତ୍ର ବିଶେଷେ ଦ୍ରବ୍ୟବିଶେଷର ଦାନ ।

**ନକ୍ଷତ୍ରନାଥ**—ପୁଂ. ବ. (୬ତତ୍) ଚନ୍ଦ୍ର, ତାରାପତି ।

**ନକ୍ଷତ୍ରନେମି**—ପୁଂ. ବ. (୬ତତ୍) ଚନ୍ଦ୍ର, ବିଷ୍ଣୁଙ୍କର ନାମ, ଧ୍ରୁବତାରା, ରେବତୀ ନକ୍ଷତ୍ର । [ ଚନ୍ଦ୍ର ।

**ନକ୍ଷତ୍ରପ**—ପୁଂ.ବ.(ନକ୍ଷତ୍ର+ପା+କ.ଅ)

**ନକ୍ଷତ୍ରପତି**—ପୁଂ. ବ. (୬ତତ୍) ତାରା-ପତି, ଚନ୍ଦ୍ର ।

**ନକ୍ଷତ୍ରପଥ**—ପୁଂ. ବ. ନକ୍ଷତ୍ର ଚକ୍ରର ଭ୍ରମଣମାର୍ଗ, ଯେଉଁ ପଥରେ ନକ୍ଷତ୍ର-ମାନେ ଭ୍ରମଣ କରନ୍ତି ।

**ନକ୍ଷତ୍ରପଦଯୋଗ**--ପୁଂ.ବ. ରାଜାମାନଙ୍କର ଯୁଦ୍ଧଯାତ୍ରାଙ୍କ ଯୋଗଭେଦ ।

**ନକ୍ଷତ୍ରପୁରୁଷ**—ପୁଂ. ବ. ବ୍ରତବିଶେଷ, ନକ୍ଷତ୍ରମାନଙ୍କୁ ପୁରୁଷ କଳ୍ପନାକରି ଏହି ବ୍ରତ ଆଚରଣ କରିବାକୁ ହୁଏ ବୋଲି ଏହାର ନାମ ନକ୍ଷତ୍ରପୁରୁଷବ୍ରତ ।

**ନକ୍ଷତ୍ରଫଳ**—କ୍ଲୀ. ବ. (୬ତତ୍) ନକ୍ଷତ୍ର ସମୂହର ଫଳ ।

**ନକ୍ଷତ୍ରପାତ**—ପୁଂ.ବ. ତାରକାର ଭୂତଳ-ପତନ, ଉଲ୍କା ପଡ଼ିବା, ବଜ୍ରଲୋକର ତନୁତ୍ୟାଗ ବା ସହସା ଅବନତି ।

**ନକ୍ଷତ୍ରବର୍ତ୍ମ**—କ୍ଲୀ. ବ. ନକ୍ଷତ୍ରମାର୍ଗ ।

**ନକ୍ଷତ୍ରବିଦ୍ୟା**—ସ୍ତ୍ରୀ. ବ. ( ମଧ୍ୟ-କ.ଧା ) ଜ୍ୟୋତିଷଶାସ୍ତ୍ର (ଗଣିତ ଓ ଫଳିତ) ।

**ନକ୍ଷତ୍ରବୀଥି**—ସ୍ତ୍ରୀ.ବ.ଆକାଶ ତଳେ ନକ୍ଷତ୍ର କଳ୍ପିତ କୃତ୍ତା ବୀଥି, ନକ୍ଷତ୍ରମାନଙ୍କ ଗତି-ଅନୁସାରେ ପଥମାନଙ୍କର ନାମ ବୀଥି ।

**ନକ୍ଷତ୍ରବୃଷ୍ଟି**—ପୁଂ. ବ. ତାରାପତନ,ତାରା ଖସିବା, ବହୁ ଉଲ୍କାର ଏକସମୟରେ ପତନ ।

**ନକ୍ଷତ୍ରବେଗ**—ବ. (୬ତତ୍) ଉଲ୍କାଗତି ପରି ଦ୍ରୁତଗତି ।

**ନକ୍ଷତ୍ରବେଗ**—ବି. ବଂ. (ବ.ବ୍ରୀ) ଅତି ଦ୍ରୁତବେଗୀ ।

**ନକ୍ଷତ୍ରବ୍ୟୂହ**—ପୁଂ. ବ. ପୁରୁଷ ଓ ଦ୍ରବ୍ୟ ବିଶେଷର ଶୁଭାଶୁଭ ସୂଚକ ନକ୍ଷତ୍ର ସମୂହ ।

**ନକ୍ଷତ୍ରବ୍ରତ**—କ୍ଲୀ. ବ. ନକ୍ଷତ୍ର ନିମିତ୍ତକ ବ୍ରତବିଶେଷ ।

**ନକ୍ଷତ୍ରଭୋଗ**—ପୁଂ. ବ. ନକ୍ଷତ୍ରମାନଙ୍କର ଭୋଗ ୨୧୬୦୦ କଳାମୂକ କାଳରେ

ସମପରିମାଣରେ ୨୭ ଭାଗର ଏକଭାଗ, ୮୦୦ ଶତ କଳାରୂପ ଭୋଗ ।

ନକ୍ଷତ୍ରମାନ—କ୍ଲୀ. ବି. ସୂର୍ଯ୍ୟସିଦ୍ଧାନ୍ତୋକ୍ତ ଦିନାଦିମାନ ଭେଦ ।

ନକ୍ଷତ୍ରମାର୍ଗ—ପୁଂ. ବି. ନକ୍ଷତ୍ରମାନଙ୍କର ବିଚରଣ ପଥ, ନକ୍ଷତ୍ରପଥ ।

ନକ୍ଷତ୍ରମାଳା—ସ୍ତ୍ରୀ. ବି. (୬ତତ୍) ୨୭ଟି ମୁଦ୍ରା ବା ମୁକ୍ତା ଗୁନ୍ଥାହୋଇଥିବା ହାର, ନକ୍ଷତ୍ରସମୂହ, ନୃତ୍ୟର ପ୍ରକାରଭେଦ ।

ନକ୍ଷତ୍ରଯାଜକ—ପୁଂ.ବି. (ନକ୍ଷତ୍ର+ଯାଜି +କ.ଅକ) ନିକୃଷ୍ଟ ବ୍ରାହ୍ମଣବିଶେଷ, ଯେଉଁ ବ୍ରାହ୍ମଣ ନକ୍ଷତ୍ରଦୋଷ ଶାନ୍ତିପାଇଁ ଅନୁଷ୍ଠିତ ଯାଗାଦିରେ ପୌରୋହିତ୍ୟ କରନ୍ତି, ଗ୍ରହବିପ୍ର ।

ନକ୍ଷତ୍ରଯୋଗ—ପୁଂ.ବି. (୬ତତ୍) ନକ୍ଷତ୍ର-ମାନଙ୍କ ସଙ୍ଗେ ଗ୍ରହମାନଙ୍କର ଯୋଗ ।

ନକ୍ଷତ୍ରଯୋଗିନୀ—ସ୍ତ୍ରୀ. ବି. ଦାକ୍ଷାୟଣୀ, ଅଶ୍ୱିନାଦି ନକ୍ଷତ୍ର ।

ନକ୍ଷତ୍ରଯୋନି—ସ୍ତ୍ରୀ. ବି. ବିବାହ ପ୍ରଭୃ-ତିରେ ଯୋନିକୂଟ, ବିବାହାର୍ଥ ନିଷିଦ୍ଧ ନକ୍ଷତ୍ର ।

ନକ୍ଷତ୍ରରାଜ—ପୁଂ. ବି. (୬ତତ୍) ଚନ୍ଦ୍ର, ତାରାପତି । [ କେତୁ ।

ନକ୍ଷତ୍ରଲକ୍ଷ୍ମୀ—ଗ୍ରା. ବି. ଲକ୍ଷ୍ମୀତାରା, ଧୂମ-

ନକ୍ଷତ୍ରଲୋକ—ପୁଂ.ବି. (୬ତତ୍) ନକ୍ଷତ୍ରା-ଧିଷ୍ଠିତ କଳ୍ପିତ ଭୁବନବିଶେଷ ।

ନକ୍ଷତ୍ରଶୂଳ—ପୁଂ. ବି. ( ମଧ୍ୟ-କ.ଧା ) ଯାତ୍ରାଦି ଶୁଭକାର୍ଯ୍ୟରେ ନିଷିଦ୍ଧ ନକ୍ଷତ୍ର

ନକ୍ଷତ୍ରସତ୍ର—କ୍ଲୀ. ବି. ନକ୍ଷତ୍ର ନିମିତ୍ତକ ଯଜ୍ଞଭେଦ ।

ନକ୍ଷତ୍ରସନ୍ଧି—ପୁଂ. ବି. (୬ତତ୍) ପୂର୍ବ-ନକ୍ଷତ୍ରରୁ ପର ନକ୍ଷତ୍ରକୁ ଚନ୍ଦ୍ରାଦି ଗ୍ରହ-ଙ୍କର ସଂକ୍ରମଣ ।

ନକ୍ଷତ୍ରସାଧକ—ପୁଂ. ବି. ମହାଦେବ ।

ନକ୍ଷତ୍ରସାଧନ—କ୍ଲୀ. ବି. ଗ୍ରହମାନଙ୍କର ନକ୍ଷତ୍ରମାନସାଧନ ଗଣନାଭେଦ ।

ନକ୍ଷତ୍ରସୂଚକ—ପୁଂ. ବି. ସିଦ୍ଧାନ୍ତାଭିଜ୍ଞ ଜ୍ୟୋତିର୍ବିଦ୍ ।

ନକ୍ଷତ୍ରାଧିପ—ପୁଂ. ବି. (୬ତତ) ଚନ୍ଦ୍ର ।

ନକ୍ଷତ୍ରାମୃତଯୋଗ—କ୍ଲୀ.ବି. ବାରବିଶେଷ ସଙ୍ଗେ ନକ୍ଷତ୍ରବିଶେଷ ଯୁକ୍ତ ହେବାରୂପ ଶୁଭଯୋଗ ।

ନକ୍ଷତ୍ରୀ—ପୁଂ. ବି. ଚନ୍ଦ୍ର, ବିଷ୍ଣୁ ।

ନକ୍ଷତ୍ରେଶ—ପୁଂ. ବି. (୬ତତ୍) ଚନ୍ଦ୍ର, କର୍ପୂର ।

ନକ୍ଷତ୍ରେଶ୍ୱର—ପୁଂ. ବି. ଚନ୍ଦ୍ର, କର୍ପୂର, ନକ୍ଷତ୍ରଗଣ, (କଳ୍ପିତ) କାଶୀରେ ସ୍ଥାପିତ ଶିବଲିଙ୍ଗ ଭେଦ ।

ନକ୍ଷତ୍ରେଷ୍ଟି—ସ୍ତ୍ରୀ.ବି. (ମଧ୍ୟ-କ.ଧା) ନକ୍ଷତ୍ର ନିମିତ୍ତକ ଯଜ୍ଞଭେଦ ।

ନକ୍ଷତ୍ରେଷ୍ଟକା—ସ୍ତ୍ରୀ. ବି. ଇଷ୍ଟକାଭେଦ, ଏକପ୍ରକାର ଯଜ୍ଞ ।

ନକ୍ଷୀ—ଗ୍ରା. ବି. ହିଂ. ଲକ୍ଷ୍ମୀ ଦେଖ ।

ନକ୍ଷ୍ୟ—ତ୍ରି. ବିଂ. ଉପଗମନୀୟ, ଉପ-ଗନ୍ତବ୍ୟ ।

ନଖ୍—( ଧାତୁ ), ବୃଦ୍ଧିପାଇବା, ଗମନ କରିବା, ଗତି କରିବା ।

ନଖ୍‌ନଉ—ଗ୍ରା. ବି. ଏକପ୍ରକାର ଛୋଟ ଚଢ଼େଇ, ନାଲି ଚଢ଼େଇ, ନକନୋର ଦେଖ, ଅଯୋଧ୍ୟାର ନଗର ଓ ଜିଲ୍ଲା-ବିଶେଷ, ଲକ୍ଷ୍ନୌ ।

ନଖ—ପୁଂ ବା କ୍ଲୀ, ବି. (ନଖ୍+କ.ଅ) ଅଙ୍ଗୁଳିର ଅଗ୍ରଭାଗସ୍ଥ ଉପାଙ୍ଗ, ପଶୁପକ୍ଷୀଙ୍କ ନଖର ବା ତୀକ୍ଷ୍ଣନଖ, ପତଳା ଅଂଶ, ପତଳି ଲମ୍ବଖଣ୍ଡ, ସିଂହ, ( ଯା. ବି. ) ଘୁଡ଼ି ଉଡ଼ାଇବାର ଡୋରି, ନଖୀନ ମଳ ଗନ୍ଧଦ୍ରବ୍ୟବିଶେଷ, ଖଣ୍ଡ ।

ନଖଆମ୍ପୁଡ଼ା—ଗ୍ରା.ବି ଓ ବିଂ. ନଖରାମ୍ପୁଡ଼ା ଦେଖ ।

ନଖଇ—( ପ୍ରା. ଗଞ୍ଜାମ. ଇତରଭାଷା ) (ସ୍ତ୍ରୀ.ବି.) ଲକ୍ଷ୍ମୀ ।

ନଖଉଷୁମ—ଗ୍ରା.ବି.ସାମାନ୍ୟ ତାପ,(ଗ୍ରା.-ବି.) କବୋଷ୍ଣ, ସାମାନ୍ୟ ଉଷ୍ମ ।

ନଖକଟା(ଟେ)ଇବା—ଗ୍ରା.କ୍ରି. ଆପଣାର ବର୍ଦ୍ଧିତ ନଖକୁ ବାରିକଦ୍ୱାରା କଟାଇବା

ନଖକର୍ତ୍ତିନୀ—ବି. (ନଖ+କର୍ତ୍ତିନ+ଈ) ନହୁରୁଣୀ ।

ନଖକାଟିବା—ଗ୍ରା.କ୍ରି.(ସଂ-ନଖ+କର୍ତ୍ତନ) ଅଙ୍ଗୁଳି ଅଗ୍ରରୁ ନଖର ବର୍ଦ୍ଧିତ ଅଂଶ ଛେଦନ କରିବା । [ ଭଣ୍ଡାରି ।

ନଖକୁଟ୍ଟ—ପୁଂ.ବି.(ନଖ+କୁଟ୍+କ.ଅ)

ନଖକୃନ୍ତନ—କ୍ଲୀ. ବି. (ନଖ+କୃତ୍+ଅନ)ନହୁରୁଣୀ,(୬ତତ୍) ନଖକାଟିବା ।

ନଖକୃନ୍ତନୀ—ସ୍ତ୍ରୀ.ବିଂ. ନହୁରୁଣୀ ।

ନଖକୋଣ—ବି. ( ୬ତତ୍ ) ହାତ ଓ ଗୋଡ଼ର ନଖର ଅଗ୍ରଭାଗର ଦୁଇପ୍ରାନ୍ତ

ନଖକୋଣୀ—ବି. (ନଖ+କୋଣ+ଈ) କଣନଖା, ନଖଶୂଳ, ନଖକୋଣର ବୃଦ୍ଧି ରୋଗ ।

ନଖକ୍ଷତ—ବି. ( ମଧ୍ୟ-କ.ଧା ) ନଖଦ୍ୱାରା ବସାଯିବା ଚିହ୍ନ, ନଖ ଘାତର ଦାଗ ।

ନଖଖାଦୀ—ପୁଂ. ବିଂ. (ନଖ+ଖାଦ୍+କ.ଇନ୍) ଯେଉଁ ବ୍ୟକ୍ତି ଆପଣା ନଖର ଅଗକୁ ଦାନ୍ତରେ କାମୁଡ଼ି ଛିଣ୍ଡାଏ, ଯେଉଁ ଜୀବମାନେ ନଖ ସାହାଯ୍ୟରେ ଖାଆନ୍ତି, (ସ୍ତ୍ରୀ)ନଖଖାଦିନୀ ।

ନଖଗଳା(ଳେ)ଇବା—ଗ୍ରା.କ୍ରି. କୌଣସି ପଦାର୍ଥରେ ନଖକୁ ଫୋଡ଼ିବା, ରାମ୍ପୁ-ଡ଼ିବା, (ବି) ନଖଗଳିବା ।

ନଖଗୁଚ୍ଛଫଳ—ବି. (ବ.ବ୍ରୀ) ଏକପ୍ରକାର ଶିମ୍ବ । [ ଦେଖ ।

ନଖଘାତ—ବି. (୩ୟ ତତ୍) ନଖରାମ୍ପୁଡ଼ା

ନଖଚିହ୍ନ—ବି. ନଖକ୍ଷତ ଦେଖ ।

ନଖଚ୍ଛେଦ—ବି. ( ୬ତତ୍ ) ନଖକୃନ୍ତନ ଦେଖ ।

ନଖଜଦୁ—ଗ୍ରା.ବି. ନଖମରିବା ଦେଖ ।

ନଖଜହ—କ୍ଲୀ. ବି. ନଖମୂଳ, ନଖର ଅଗ୍ରଭାଗ ।

ନଖଦର୍ପଣ—ବି. (ରୂପକ) ଯେଉଁ ସୁମା-ଜିତ ତେଲକୁ ମର୍ଦ୍ଦନ ନଖରେ ଆପ-ଣାର ମୁହଁ ପ୍ରତିଫଳିତ ହୁଏ, କୌଣସି ବିଷୟରେ ପୁଙ୍ଖାନୁପୁଙ୍ଖ ଜ୍ଞାନ, ବିଦ୍ୟା-ବିଶେଷ (ଏହି ବିଦ୍ୟା ପ୍ରଭାବରେ ନଖ-ରୂପ ଦର୍ପଣରେ ଜ୍ଞାତବ୍ୟ ବିଷୟ ଜଣା-ପଡ଼େ) ।

ନଖଦଳ—(ପ୍ରା. ଗଡ଼ଜାତ. ବି.) ପଇକ, ପଦାତିକ ।

**ନଖଦାଗ**—ଗ୍ରା.ବି. ନଖକ୍ଷତ ଦେଖ ।

**ନଖଦାରଣ**—କ୍ଲୀ.ବି. ନହୁରୁଣୀ ।

**ନଖନିକୃନ୍ତନ**—କ୍ଲୀ. ବି. ନଖକୃନ୍ତନ ଦେଖ।

**ନଖନିଷ୍ପାବ**—ପୁଂ. ବି. ଏକପ୍ରକାର ଶିମ୍ବ, ଅଙ୍ଗୁଳିଫଳା, ଗ୍ରାମ୍ୟା, ନଖଫଳିନୀ ।

**ନଖପଚା(ଚେ)ଇବା**—ଗ୍ରା.କ୍ରି.ମେହେନ୍ଦୀ ବା ମଞ୍ଜୁଆତି ବା ହରଚଉରୀଆଦି ଦ୍ୱାରା ନଖକୁ ରଞ୍ଜିତ କରିବା ।

**ନଖପଦ**—କ୍ଲୀ.ବି. ନଖକ୍ଷତ ( ଦେଖ ), ନଖଚିହ୍ନ, ଛଡ଼ ।

**ନଖପର୍ଣ୍ଣୀ**—ସ୍ତ୍ରୀ.ବି. ବୃଶ୍ଚିକା କ୍ଷୁପ ।

**ନଖପାତଳ**—ଗ୍ରା.ବିଂ.ନଖପର ପତଳା ।

**ନଖପୁଷ୍ଟୀ(ଙ୍ଖୀ)**—ସ୍ତ୍ରୀ.ବି. ପୃକ୍କା, ପିଡ଼ଙ୍ଗଶାଗ ।

**ନଖପୁଞ୍ଜଫଳା**—ସ୍ତ୍ରୀ.ବି. ସାଦା ଶିମ୍ବ ।

**ନଖପୁଷ୍ପୀ**—ସ୍ତ୍ରୀ.ବି. ପୃକ୍କା, ପିଡ଼ଙ୍ଗଶାଗ ।

**ନଖପୂର୍ବିକା**—ସ୍ତ୍ରୀ.ବି. ସବୁଜ ଶିମ୍ବ ।

**ନଖଫଳିନୀ**—ସ୍ତ୍ରୀ.ବି. ନଖନିଷ୍ପାବ ।

**ନଖବଢ଼ା(ଢେ)ଇବା**—ଗ୍ରା.କ୍ରି.ନଖଗୁଣ୍ଡିବା ଦେଖ।

**ନଖବନା(ନେ)ଇବା**—ଗ୍ରା.(ଇତର)କ୍ରି. ନଖକାଟିବା ଦେଖ, ନଖ କଟାଇବା ଦେଖ ।

**ନଖବସା(ସେ)ଇବା**—ଗ୍ରା.କ୍ରି. ନଖଗଲାଇବା ଦେଖ ।

**ନଖବାଳ**—ବି. ( ସହଚର ) ଆଙ୍ଗୁଠିର ନଖ ଓ ମୁଣ୍ଡର କେଶ ।

**ନଖବାଳ ଗୁଣ୍ଡିବା**—ଗ୍ରା. କ୍ରି. ମାନସିକ ହୋଇଥିବା ହେତୁ ନଖ ଓ ବାଳ ନ କାଟିବା, ତପସ୍ୟାର ପ୍ରକାରଭେଦ ।

**ନଖବିନ୍ଦୁ**—ବି. ନଖ ଉପରେ ସ୍ତ୍ରୀମାନେ ମେହେନ୍ଦୀ ବା ହରଚୌରୀରେ ରଞ୍ଜିତ କରିବା, ଗୋଲ ବା ଚନ୍ଦ୍ରାକାର-ଚିହ୍ନ ।

**ନଖବିଷ**—ପୁଂ.ସ୍ତ୍ରୀ.ବିଂ. (ବ.ବ୍ରୀ) ଯେଉଁ ଜୀବମାନଙ୍କର ନଖରେ ବିଷଅଛି ଓ ଯେଉଁମାନଙ୍କ ନଖକ୍ଷତ ବିଷଯୁକ୍ତ, (ବି. ମଧ୍ୟ-କ.ଧା ) ନଖଘାତ ଦ୍ୱାରା ଜାତ ବିଷ ।

**ନଖବିଷ୍କିର**—ପୁଂ. ସ୍ତ୍ରୀ. ବି. ଶ୍ୟେନାଦି, ଯେଉଁ ଜୀବମାନେ ଶିକାର ବା ଖାଦ୍ୟକୁ ନଖ ଦ୍ୱାରା ଚିରି ବା ଛିଣ୍ଡାଇ ଖାଆନ୍ତି ।

**ନଖବୃକ୍ଷ**—ପୁଂ.ବି. ନୀଳବୃକ୍ଷ, ନୀଳଗଛ ।

**ନଖବ୍ରଣ**—ବି. ( ମଧ୍ୟ-କ.ଧା ) ନଖକ୍ଷତ ଦେଖ ।

**ନଖମରିବା**—ଗ୍ରା.ବି. ଏକପ୍ରକାର ରୋଗ, ଏହି ରୋଗରେ ନଖ ମେଲାଇ ନଷ୍ଟ ହୋଇଯାଏ ।

**ନଖମଳ**—ଗ୍ରା. ବି. ନଖ ଓ ଆଙ୍ଗୁଠି ଅଗରେ ସନ୍ଧିରେ ଥିବା ମଳ ।

**ନଖମାରିବା**—ଗ୍ରା.କ୍ରି.ନଖରେ ରାମ୍ପୁଡ଼ିବା, ନଖରେ ଫଳଆଦିର ଚୋପା ଛଡ଼ାଇବା, ନଖ ଦ୍ୱାରା ଚିହ୍ନ କରିବା ।

**ନଖମୁଚ**—କ୍ଲୀ. ବି.(ନଖ+ମୁଚ୍+ମି.ଅ) ଧନୁ, ଧନୁକ, (ବିଂ) ନଖମୋଚକ ।

**ନଖମୂଳ**—ପ୍ରା. (ଗଡ଼ଜାତ)ବି. ପାଇକ ।

**ନଖମ୍ପଚ**—କ୍ରି. ବିଂ. ନଖତାପକ, (ସ୍ତ୍ରୀ) ନଖମ୍ପଚା, ଯବାଗୁ ।

**ନଖର**—ପୁଂ. କ୍ଲୀ.ବି. (ନଖ+ର+କ. ଅ) ନଖ, ଅସ୍ତ୍ରବିଶେଷ ।

**ନଖରଖିବା**—ଗ୍ରା.କ୍ରି. ନଖଗୁଣ୍ଡିବା ଦେଖ

**ନଖରଞ୍ଜକ**—ବି. ମଞ୍ଜୁଆତି ଦେଖ ।

**ନଖରଞ୍ଜନ**—ବି. (୬ତତ୍) ନଖ କୃନ୍ତନ, ନଖ କାଟିବା, ନଖ ପଚାଇବା ।

**ନଖରଞ୍ଜନୀ**—ସ୍ତ୍ରୀ. ବି. ( ନଖ+ରଞ୍ଜ+ ଣି.ଅନ+ଈ) ନହୁରୁଣୀ, ମେହେନ୍ଦୀଗଛ ଦେଖ, ହରଚଉରୀ ଗଛ ଦେଖ, ଦ୍ୱିବୃନ୍ତବୃକ୍ଷ (ନଖରଜନୀ) ।

**ନଖରଞ୍ଜିନୀ**—ସ୍ତ୍ରୀ. ବି. ନହୁରୁଣୀ ।

**ନଖ୍ରା**—ଯ. ଛଳ, କୌତୁକ ।

**ନଖରା(ରେ)ଇବା**—ଗ୍ରା.କ୍ରି. ନଖମାରିବା ଦେଖ, ପୁରୁଷ ପ୍ରତି କାମ ଚେଷ୍ଟା ପ୍ରକାଶକ ହାବଭାବ ଦେଖାଇବା ।

**ନଖରାଘାତ**—ବି. ନଖାଘାତ ଦେଖ ।

**ନଖରାଙ୍କ**—ବି.(୬ତତ୍) ନଖଚିହ୍ନ, ନଖ ରାମ୍ପୁଡ଼ା ଦାଗ ।

**ନଖରାମ୍ପୁଡ଼ା**—ଗ୍ରା.ବି.ନଖ ଦ୍ୱାରା ଚିରିବା ବା ବିଦାରିବା, ନଖଚିହ୍ନ, (ଗ୍ରା. ବିଂ) ନଖରେ ରାମ୍ପିବାରୁ ଉତ୍ପନ୍ନ, ନଖରେ ରାମ୍ପୁଡ଼ିବା ଯୋଗୁଁ ହୋଇଥିବା ।

**ନଖରାୟୁଧ**—ପୁଂ. ବି. ( ବ.ବ୍ରୀ ) ସିଂହ, ବ୍ୟାଘ୍ର,କୁକୁଡ଼ା, (ରୂପକ-କ.ଧା)ନଖର ବା ତୀକ୍ଷ୍ଣ ନଖରୂପ ଅସ୍ତ୍ର, (ପୁ .ବିଂ) ଯାହାର ନଖ ଅସ୍ତ୍ର ସ୍ୱରୂପ, (ସ୍ତ୍ରୀ)ନଖରାୟୁଧା ।

**ନଖରାହ୍ୱ**—ବି. (ନଖର+ହ୍ୱେ+କ.ଅ) କରବୀର ବୃକ୍ଷ ।

**ନଖରୀ**—ପୁଂ. ବିଂ. ( ନଖର+ଇନ୍ ଯାହାର ନଖଅଛି, ନଖଧାରୀ(ଜନ୍ତୁ), (ଗ୍ରା.ସ୍ତ୍ରୀ.ବିଂ)ଯେ ସ୍ତ୍ରୀ ପୁରୁଷ ପ୍ରତି ହାବଭାବ ଦେଖାଏ, ନଷ୍ଟଚରିତ୍ରା, (ସ୍ତ୍ରୀ.ବି) ନଖୀ, କ୍ଷୁଦ୍ର ନଖୀ.ଗନ୍ଧଦ୍ରବ୍ୟ ବିଶେଷ, (ସ୍ତ୍ରୀ) ନଖରିଣୀ, (ବି.) ନଖରୀବାଳା ।

**ନଖରେଖା**—ବି. (ମଧ୍ୟ-କ.ଧା)ନଖଦାଗ, ନଖକ୍ଷତ ।

**ନଖରେ ଚିରିବା**—ଗ୍ରା. କ୍ରି. କୌଣସି ପଦାର୍ଥକୁ ନଖ ଦ୍ୱାରା ରାମ୍ପୁଡ଼ି କ୍ଷତ କରିବା ।

**ନଖଶଙ୍ଖ**—ପୁଂ. ବି. (ମଧ୍ୟ-କ.ଧା) କ୍ଷୁଦ୍ର ଶଙ୍ଖ ।

**ନଖଶସ୍ତ୍ର**—ପୁଂ.କ୍ଲୀ.ବି.(୬ତତ୍)ନହୁରୁଣୀ, (ବି ଓ ବିଂ) ନଖରାୟୁଧ ଦେଖ ।

**ନଖଶିଖ**—କ୍ରି.ବିଂ.(ଅବ୍ୟୟୀଭାବ)ଆପାଦ-ମସ୍ତକ, (ବି) ପାଦର ନଖଠାରୁ ଶିଖା ପର୍ଯ୍ୟନ୍ତ ସମସ୍ତ ଅଙ୍ଗ ।

**ନଖଶୂଳ**—ବି. ( ୬ତତ୍ ) ନଖକୋଣୀ ଦେଖ ।

**ନଖସନ୍ଧି**—ବି.(୬ତତ୍)ନଖ ଓ ଆଙ୍ଗୁଠିର ମାଂସଳ ଅଗ୍ର ମଧ୍ୟରେ ଥିବା ସ୍ଥାନ ।

**ନଖସରୁ**—ଗ୍ରା. ବିଂ. ନଖପରି ପାତଳ ।

**ନଖହରଣୀ**—ବି. ନହୁରୁଣୀ ।

**ନଖାଇବା**—ଗ୍ରା.କ୍ରି.ନଖରେ ରାମ୍ପୁଡ଼ିବା, ନଖରାଇବା, ( ସଂ-ନ+ଖାଦ୍‌ଧାତୁ ) ନ ଖାଇବା,ଭୋଜନ କ୍ରିୟା ନ କରିବା, (ଗ୍ରା.କ୍ରି) ଲଗାଇବା, ଅଟକାଇବା ।

**ନଖାଘାତ**—ପୁଂ. ବି. (୩ତତ୍)ନଖ ଦ୍ୱାରା

ଘମ୍ପି ହେବା, ନଖମାରିବା ।
ନଖାଙ୍କ—ପୁଂ. ବ. ନଖରାଙ୍କ ଦେଖ, ନଖୀ ଦେଖ, ନଖାଘାତ ଚିହ୍ନ, (କ୍ଲୀ)ବ୍ୟାଘ୍ର-ନଖୀ ।
ନଖାଙ୍ଗ—କ୍ଲୀ. ବ. ନଖୀ ।
ନଖାନଖି—ଗ୍ରା. ବ ଓ ବଂ. ନଖ ଦ୍ୱାରା ପରସ୍ପରକୁ ଆକ୍ରମଣ, ଘମ୍ପାଘମ୍ପି ।
ନଖାୟୁଧ—ପୁଂ. ବ ଓ ବଂ. ନଖରାୟୁଧ ଦେଖ ।
ନଖାର—ପୁଂ.ବ. ଶିବାନୁଚର ବିଶେଷ ।
ନଖାଳ—ପୁଂ.ବ. (୬ତତ୍.ବ.ଗ୍ରା) କ୍ଷୁଦ୍ର ଶଙ୍ଖ, (ସ୍ତ୍ରୀ.ବ) ନଖଶ୍ରେଣୀ ।
ନଖାଳୁ—ପୁଂ. ବ. ନୀଳବୃକ୍ଷ ।
ନଖାଶୀ—ପୁଂ. ବଂ. (ନଖ+ଅଶ୍+କ. ଇନ୍) ନଖଭୋଜୀ, ନଖଖାଦକ, (ବ) ପେଚକ, (ସ୍ତ୍ରୀ) ନଖାଶିନୀ ।
ନଖି—ପୁଂ. ବ. ଘୋଡ଼ା ଟାପୁର କ୍ଷୁଦ୍ର କ୍ଷୁଦ୍ର ପତଳା ଛୁଲକାମାନ, ଘୋଡ଼ା ଖୁରାର ବଢ଼ିଥିବା ନଖ, ମିଜ୍‌ରାବ, ସୀତାର ବଜାଇବା ପାଇଁ ଆଙ୍ଗୁଳିରେ ବ୍ୟବହୃତ ଆଙ୍ଗୁଠା, (ଗ୍ରା.ପୁଂ.ବ)ଲକ୍ଷ୍ମୀ-ଧର ପ୍ରଭୃତିଙ୍କର ଡାକନାମ, (ଗ୍ରା. ଅବ୍ୟ.) ଦୁଇଟି ଅଙ୍ଗୁଳିର ନଖକୁ ପରସ୍ପର ସହିତ ଘଷିବା ବେଳେ ଉଚ୍ଚାରିତ ଶବ୍ଦ ।
ନଖିଚହିଁଶ—ପ୍ରା. (ବାଲେ) ବ. ସରୁ-ଧଡ଼ିଆ ଲୁଗା ।
ନଖିମାରିବା—ପ୍ରା. (ପୁରୀ) କ୍ରି. ପଇଡ଼ ମୁଣ୍ଡରୁ ଚକଟି ଛଡ଼ାଇବା ।
ନଖୀ—ପୁଂ. ବ. (ନଖ+ଇନ୍) ନଖଧାରୀ ଜୀବ,ସିଂହ, ବ୍ୟାଘ୍ରାଦି, ଗନ୍ଧ-ଦ୍ରବ୍ୟବିଶେଷ, (ସ-ଅନ୍ୟ ନାମ) ଶୁକ୍ତି ଶଙ୍ଖ, ନଖ, ଚକ୍ରକାରକ, ବ୍ୟାଘ୍ରନଖ, ବ୍ୟାଘ୍ର ଯୁଧ, ଶଙ୍ଖନଖୀ, (ତେ) ନଖମୁ. (ମ) ନଖଲ, ବାଘନଖ, (ଗୁ) ନଖଲ, (ଫା) ନାଖୁନ୍ ପରୀ,(ଆ) ଆଜ୍‌ଫାରୁ ଢବ୍, (ବଂ) ନଖଚି, ନଖଧାରୀ (ଜନ୍ତୁ) (ସ୍ତ୍ରୀ) ନଖିନୀ ।
ନଖେ—ଗ୍ରା. ବ ଓ ବଂ. ଅତି ଅଳ୍ପମାତ୍ର, ଚକଚେ, ନକଚେ ।
ନଖେଇବା—ଗ୍ରା.କ୍ରି. ନଖାଇବା ଦେଖ ।
ନଖୋଂବଙ୍ଗ—କାମ୍ବୋଡ଼ିଆ ଦେଶରେ ବୌଦ୍ଧମାନଙ୍କର ଗୋଟିଏ ପ୍ରସିଦ୍ଧ ମଠ ।
ନଗ—ପୁଂ. ବ. (ନ+ଗମ୍+କ.ଅ) ପର୍ବତ, ବୃକ୍ଷ, ସାତସଂଖ୍ୟା, ସର୍ପ,ସାପ, ସୂର୍ଯ୍ୟ,ବୃକ୍ଷଲତାଦି, (ବଂ) ସ୍ଥିର,ଅଚଳ, (ଗ୍ରା) ନଗେନ୍ଦ୍ରର ଡାକନାମ ।
ନଗଜ—ତ୍ରି. ବଂ. (ନଗ+ଜନ୍+କ.ଅ) ପର୍ବତଜାତ, (ପୁଂ.ବ) ହସ୍ତୀ, (ସ୍ତ୍ରୀ) ନଗଜା ।
ନଗଜା—ସ୍ତ୍ରୀ.ବ. (ନଗଜ+ଆ) ପାର୍ବତୀ, ନଦୀ, କ୍ଷୁଦ୍ର ପାଷାଣଭେଦୀ ଲତା ।
ନଗଣ—ବ. ପିଙ୍ଗଳ ଶାସ୍ତ୍ରୋକ୍ତ ତିନ ଲଘୁବର୍ଣ୍ଣବିଶିଷ୍ଟ ଶବ୍ଦମାନଙ୍କର ଗଣ ବିଶେଷ, (ଯଥା—କମଳ, ମଦନ, ଚରଣ ଇତ୍ୟାଦି) ।
ନଗଣା—ସ୍ତ୍ରୀ.ବ.ଲତାବିଶେଷ,(ପର୍ଯ୍ୟାୟ—ପାରାବତପଦୀ, ପିଣ୍ୟା, ସ୍ଥୁଟବନ୍ଧନୀ ଜ୍ୟୋତିଷ୍ମତୀ.ପୂତତୈଳା,ଲବଣୀ) ।
ନଗଣ୍ୟ—ପୁଂ.ବଂ.(ନ+ଗଣ୍ୟ)ଅଗଣ୍ୟ, ଅଗଣନୀୟ, ଗଣନାର ଅଯୋଗ୍ୟ, ସାମାନ୍ୟ, ତୁଚ୍ଛ,ହେୟ,(ସ୍ତ୍ରୀ)ନଗଣ୍ୟା ।
ନଗଦ—ଯା. ବ. ଗଚ୍ଛିତ ଟଙ୍କା,ରୋକଡ଼, ମୁଦ୍ରାରୂପୀ ଧନ, ସଙ୍ଗେ ସଙ୍ଗେ ଟଙ୍କା ଆଦାନପ୍ରଦାନ, (ବଂ) ଗଚ୍ଛିତ, ଉପସ୍ଥିତ, ସଙ୍ଗେ ସଙ୍ଗେ ମୂଲ୍ୟ ଦେୟ, ଅତି ଅଳ୍ପ କାଳହେଲା ଘଟିଥିବା, (କ୍ରି. ବଂ) ସଙ୍ଗେ ସଙ୍ଗେ, ଅତିଶୀଘ୍ର, ଅତି ଅଳ୍ପକାଳ ହେଲା, (ପ୍ର. ଉତ୍ତରଖଣ୍ଡା. ବଂ) ଉତ୍ତମ ।
ନଗଦକାରବାର—ଯା. ବ. ନଗଦଟଙ୍କା ଦିଆଯାଇ କରାଯିବା କ୍ରୟବିକ୍ରୟ ।
ନଗଦକଳନସ—କ୍ରୟକାଳେ ଯାହା ନଗଦ ମିଳେ । [ ବିକ୍ରୟ କରିବା ।
ନଗଦବିକ୍ରି—ଯା. ନଗଦ ମୂଲ୍ୟ ନେଇ
ନଗଦବିଦାୟ—ଯା. ବ ଓ ବଂ. ତତ୍କ୍ଷଣାତ୍ ମୂଲ୍ୟ ଦେଇ ବିଦାୟ କରିବା ।
ନଗଦା—ଗ୍ରା. ବଂ. ଯେଉଁ ମୂଲିଆ ପ୍ରତିଦିନ ମଜୁରି ନେଇ ମୂଲ ଲାଗେ ।
ନଗଦାତ୍—ଯା. ବଂ. ସଙ୍ଗେ ସଙ୍ଗେ ମୂଲ୍ୟ ଦିଆଯିବା, ନଗଦାନଗଦ ।
ନଗଦାନଗଦ—ଯା. ବଂ. ସଙ୍ଗେ ସଙ୍ଗେ ଦିଆଯିବା, ଅଳ୍ପକାଳପୂର୍ବେ ଘଟିଥିବା, ସମସାମୟିକ, (ଗ୍ରା. କ୍ରି. ବଂ) ନଗଦ ଦେଖ ।
ନଗଦାନ—ନଗଦମୂଲ୍ୟ ନେଇ ଯେ ଜମି ବନ୍ଦୋବସ୍ତ କରାଯାଏ ।
ନଗଦ(ଗ୍ରୀ)—ଯା.ବ.ଖଜଣା ଆଦାୟ ପାଇଁ ନିଯୁକ୍ତ ପିଆଦା,ଯେଉଁ ଜମିର ଖାଜଣା ଉତ୍ପନ୍ନ ଫସଲ ଆକାରରେ ଦିଆ ନ ଯାଇ ନଗଦ ଟଙ୍କା ଦିଆଯାଏ, ଏକ-ପ୍ରକାର କାଚବଳୟ, (ବଂ) ନଗଦ ମୂଲ୍ୟରେ କ୍ରୀତ, ଅଳ୍ପକାଳ ପୂର୍ବେ ଘଟିଥିବା, ସମସାମୟିକ, (କ୍ରି. ବଂ) ଏଇକ୍ଷଣେ, ଏବେକ୍ଷଣି ।
ନଗନ—ଗ୍ରା. ବ. ଲଗ୍ନ, ଶୁଭମୁହୂର୍ତ୍ତ, ଭଲଲଗ୍ନ, ଗ୍ରହମାନଙ୍କର ଉଦୟକାଳ ।
ନଗନଧରିବା—ଗ୍ରା. କ୍ରି. ବିବାହାଦି ଶୁଭକାର୍ଯ୍ୟପାଇଁ ଲଗ୍ନ ସ୍ଥିର କରିବା ।
ନଗନଦୀ—ସ୍ତ୍ରୀ. ବ. (ମଧ୍ୟ-କ.ଧା) ପର୍ବତରୁ ଉତ୍ପନ୍ନ ନଦୀ, (ଦ୍ୱନ୍ଦ୍ୱ) ପର୍ବତ ଓ ନଦୀ ।
ନଗନନ୍ଦିନୀ—ସ୍ତ୍ରୀ. ବ. (୬ତତ୍) ପାର୍ବତୀ, ଗିରିଜା । [ ଦେଖ ।
ନଗନକ—ଗ୍ରା.ବଂ. (ସ-ଲଗ୍ନିକ) ଲଗ୍ନିକ
ନଗପତି—ପୁଂ. ବ. (୬ତତ୍) ଅଖିଳ ପର୍ବତ, ବଡ଼ ପର୍ବତ,ହିମାଳୟ ପର୍ବତ, ଚନ୍ଦ୍ର, ଶିବ, ସୁମେରୁ ପର୍ବତ ।
ନଗଭିଦ୍—ପୁଂ. ବ. (ନଗ+ଭିଦ୍+କ.କ୍ୱିପ୍) ଇନ୍ଦ୍ର, ବଜ୍ର, କୁଠାର,ପାଷାଣ-ଭେଦୀ ନାମକ ଗୁଳ୍ମବିଶେଷ, ପାଷାଣ-ଭେଦନାୟ.(ବଂ) ପର୍ବତଭେଦନକାରୀ ।
ନଗଭୂ—ପୁଂ. ବ. (ନଗଭୂ+କ.କ୍ୱିପ୍) କ୍ଷୁଦ୍ର (ପର୍ବତ), ପ୍ରସ୍ତରବିଶେଷ, କ୍ଷୁଦ୍ର ପାଷାଣଭେଦୀ ଲତା, (ତ୍ରି.ବଂ) ପର୍ବତ-ଜାତ ମାତ୍ର, (ସ୍ତ୍ରୀ) ପର୍ବତଭୂମି ।

ନଗମୂର୍ଦ୍ଧା—ପୁଂ. ବ. ପର୍ବତର ଚୂଡ଼ା, ଶୈଳଶିଖର ।
ନଗର—ପୁଂ. ବ. (ନଗ+ଅସ୍ତି ଅର୍ଥରେ 'ର') ସହର, ଶିଳ୍ପବାଣିଜ୍ୟ ପ୍ରଧାନ ଜନାକୀର୍ଣ୍ଣ ସ୍ଥାନ ।
ନଗରକାକ—ପୁଂ. ବ. ( ମଧ୍ୟ-କ.ଧା ) ତୁଚ୍ଛ ବା ହୀନବ୍ୟକ୍ତି ।
ନଗରକୀର୍ତ୍ତନ—କ୍ଲୀ. ବ. ( ମଧ୍ୟ-କ.ଧା ) ନଗରରେ ହରିନାମ ଗାଇ ଶୋଭାଯାତ୍ରା ପୂର୍ବକ ବୁଲିବା ।
ନଗରକୋଟି—ପୁଂ. ବ. ହିମାଳୟ ପାଦ-ଦେଶସ୍ଥ ନଗରବିଶେଷ ।
ନଗରଘାତ—ପୁଂ. ବ. (ନଗର+ହନ୍ +କ.ଅ) ହସ୍ତୀ, ହାତୀ, ନଗରସ୍ଥ ଲୋକଙ୍କ ହନନ । [ ହାତୀ ।
ନଗରଚତ୍ୱର—କ୍ଲୀ.ବ. (୬ତତ୍ପୁ) ବଜାର,
ନଗରଜନ—ପୁଂ.ବ. ପୁରବାସୀ,ନଗର-ବାସୀ ବ୍ୟକ୍ତି ।
ନଗରତୀର୍ଥ—ଗୁଜରାଟ ପ୍ରଦେଶର ନଗର ନାମେ ଗୋଟିଏ ତୀର୍ଥ ।
ନଗରଦ୍ୱାର—କ୍ଲୀ.ବ. (୬ତତ୍ପୁ) ସହରକୁ ପ୍ରବେଶ କରିବାର ଫାଟକ ।
ନଗରଧନବିହାର—ପୁଂ. ବ. ବୌଦ୍ଧ-ମାନଙ୍କର ଗୋଟିଏ ମଠ ।
ନଗରନାୟିକା—ସ୍ତ୍ରୀ. ବ. ବେଶ୍ୟା ।
ନଗରନିବାସ—ବ. (ମଧ୍ୟ-କ.ଧା) ସହ-ରରେ ଥିବା ମୋଫସଲବାସୀ ବଡ଼-ଲୋକଙ୍କର କୋଠାବାଡ଼ି, ନଗରରେ ବାସ କରିବା ।
ନଗରନିବାସୀ—ପୁଂ. ବଂ. (ଉପ, ବହୁ) ସହରିଆ, ନାଗରିକ, ( ବ ) ସହରିଆ ବା ବଜାରିଆ ଲୋକ ।
ନଗରନ୍ଧ୍ରକର—ପୁଂ. ବ. (ନଗରନ୍ଧ୍ର+କୃ +କ.ଅ) କାର୍ତ୍ତିକେୟ । [ଧ୍ୱଷ ।
ନଗରପତି—ପୁଂ. ବ. (୬ତତ୍ପୁ) ନଗର-
ନଗରପାଳ—ପୁଂ.ବ. (୬ତତ୍ପୁ) ନଗର-ରକ୍ଷକ, କଟୁଆଳ, ନଗର ଜଗିବା ପ୍ରଧାନ କର୍ମଚାରୀ, ସହରର ମନ୍ତ୍ରୀ ବା ପ୍ରହରୀ, ଚୌକିଦାର, ପୁଲିସଫୌଜ ।
ନଗରପାଳକାସଭା—ବ.ମିଉନିସିପାଲିଟି ।
ନଗରପୁର—କ୍ଲୀ. ବ. (୬ତତ୍ପୁ)ଗୋଟିଏ ନଗରର ନାମ ।
ନଗରପ୍ରାନ୍ତ—ପୁଂ. ବ.(୬ତତ୍ପୁ) ସହରର ଶେଷ ଭାଗ, ସହର ତଳି ।
ନଗରବସ୍ତି—ଦ୍ୱାରଭଙ୍ଗା ଜିଲ୍ଲାର ଗୋଟିଏ ନଗର । [ ଦେଖ ।
ନଗରବାୟସ—ପୁଂ. ବ. ନଗର କାକ
ନଗରବାସୀ—ପୁଂ. ବଂ. ନଗରନିବାସୀ ଦେଖ, (ସ୍ତ୍ରୀ) ନଗରବାସିନୀ ।
ନଗରମର୍ଦ୍ଦୀ—ତ୍ରି.ବଂ. ( ନଗର+ମୃଦ୍ +ଇନ୍) ନଗରବିମର୍ଦ୍ଦକ, (ପୁଂ) ମତ୍ତ-ଗଜ ।
ନଗରମାର୍ଗ—ପୁଂ. ବ. ରାଜମାର୍ଗ ।
ନଗରମୁସ୍ତକ—ବ. ନାଗର ମୁଥା ।
ନଗରମୁସ୍ତା—ସ୍ତ୍ରୀ. ବ. ନାଗରମୁଥା ।
ନଗରରକ୍ଷକ—ପୁଂ. ବ. (୬ତତ୍ପୁ, ଉପ-ତତ୍ପୁ) ନଗରପାଳ ଦେଖ ।
ନଗରରକ୍ଷା—ସ୍ତ୍ରୀ. ବ. (୬ତତ୍ପୁ) ନଗରର ରକ୍ଷଣାବେକ୍ଷଣ ବା ତତ୍ତ୍ୱାବଧାରଣ ।
ନଗରରକ୍ଷିଣୀସଭା—ବ.ମିଉନିସିପାଲିଟି ।
ନଗରରକ୍ଷିଣୀସେନା—ବ. ସହରର ପୁଲିସ ।
ନଗରରକ୍ଷୀ—ପୁଂ.ବ.ବଂ. ନଗର ରକ୍ଷା-କାରୀ, ନଗରପାଳ ଦେଖ ।
ନଗରସନ୍ନିବେଶ—ବ. (୬ତତ୍ପୁ) ନୂତନ ନଗରର ସ୍ଥାପନ ଓ ନିର୍ମାଣ ।
ନଗରସ୍ଥ—ତ୍ରି.ବଂ. (ନଗର+ସ୍ଥା+କ. ଅ) ନଗର ଅନ୍ତର୍ଗତ, ନଗରରେ ଅବ-ସ୍ଥିତ ।
ନଗରହାର—କ୍ଲୀ. ବ. ନଗରାକ୍ରମଣ, ରାଜ୍ୟବିଶେଷ ।
ନଗରାଜ—ପୁଂ. ବ. ( ନଗ+ରାଜନ୍ ) ନଗପତି ଦେଖ ।
ନଗରାଜକନ୍ୟା—ସ୍ତ୍ରୀ. ବ. ( ୬ତତ୍ପୁ ) ପାର୍ବତୀ, ଗିରିଜା । [ କର୍ତ୍ତା ।
ନଗରାଧିକୃତ—ପୁଂ.ବ.ନଗରର ଶାସନ-
ନଗରାଧିପ—ପୁଂ. ବ. ନଗରପାଳକ ।
ନଗରାଧିପତି—ପୁଂ. ବ. ନଗରାଧ୍ୟକ୍ଷ, ନଗରପତି ।
ନଗରାଧ୍ୟକ୍ଷ—ପୁଂ. ବ. (୬ତତ୍ପୁ) ନଗର-ପାଳ ଦେଖ ।
ନଗରାବସନ୍ନିବେଶ—ପୁଂ. ବ. (୬ତତ୍ପୁ) ନଗରବନ୍ଧ ସ୍ଥାପନ । [ ଲୋକ ।
ନଗରିଆ—ଗ୍ରା. ବ. ନାଗରିକ, ସହରିଆ
ନଗରୀ—ବ.(ନଗର+ଈ)ବଡ଼ ସହର ।
ନଗରୀକାକ—ପୁଂ. ବ. (୬ତତ୍ପୁ) ବକ, ବଗ ।
ନଗରୀବକ—ପୁଂ. ବ. କାକ, କୁଆ ।
ନଗରୀୟ—ବଂ. (ନଗର+ଈୟ)ନଗର-ସମ୍ବନ୍ଧୀୟ, ନଗରସ୍ଥ, ନଗରୋତ୍ପନ୍ନ, (ସ୍ତ୍ରୀ) ନଗରୀୟା ।
ନଗରୀରକ୍ଷୀ—ପୁଂ. ବ. ନଗର ରକ୍ଷକ, ନଗରର ରକ୍ଷାବିଧାନକର୍ତ୍ତା ।
ନଗରୋତ୍ଥ—ତ୍ରି.ବଂ. (ନଗର+ଉଦ୍+ସ୍ଥା+ଅ) ନଗରୋତ୍ପନ୍ନ ।
ନଗରୋତ୍ଥା—ସ୍ତ୍ରୀ. ବ. ନାଗରମୁଥା ।
ନଗରୋପକଣ୍ଠ—ବ. (୬ତତ୍ପୁ) ନଗର-ପ୍ରାନ୍ତ, ସହରତଳି ।
ନଗରୋପାନ୍ତ—ବ.(୬ତତ୍ପୁ) ନଗରୋପ-କଣ୍ଠ, ନଗରପ୍ରାନ୍ତ ।
ନଗରୌକଃ—ପୁଂ. ବ. ନଗରବାସୀ ।
ନଗରୌଷଧି—ସ୍ତ୍ରୀ. ବ. କଦଳୀ ।
ନଗବାହନ—ବ.ମହାଦେବଙ୍କର ଗୋଟିଏ ନାମ ।
ନଗସ୍ୱରୂପିଣୀ—ସ୍ତ୍ରୀ. ବ. ଛନ୍ଦୋବିଶେଷ ।
ନଗା—ଗ୍ରା.ବ ଓ ବଂ. ଲଗା ଦେଖ ।
ନଗାଇବା—ଗ୍ରା.କ୍ରି. ଲଗାଇବା ଦେଖ ।
ନଗାଟନ—ପୁଂ. ବ. (ନଗ+ଅଟ୍+କ. ଅନ) ବ.ଗ୍ରୀ; ବାନର, ମାଙ୍କଡ଼, (ବଂ) ପର୍ବତଭ୍ରମୀ ।
ନଗାଧିପ—ପୁଂ. ବ. (୬ତତ୍ପୁ) ସବୁଠାରୁ ବଡ଼ ପର୍ବତ ହିମାଳୟ, ସୁମେରୁ ପର୍ବତ ।
ନଗାନଗି—ଗ୍ରା.ବ.ବଂ.ଲଗାଲଗି ଦେଖ ।
ନଗାନିକା—ସ୍ତ୍ରୀ. ବ. ଛନ୍ଦୋଭେଦ ।
ନଗାବାସ—ପୁଂ. ବ. (ବ.ଗ୍ରୀ) ମୟୂର, ବୃକ୍ଷୋପରି ଅବସ୍ଥାନ ।

ନଗାରି—ପୁଂ. ବ. (ନଗ + ଅରି)୬ତତ୍; ଇନ୍ଦ୍ର ।

ନଗାଶ୍ରୟ—ପୁଂ. ବ. ହସ୍ତୀକନ୍ଦ, (ବିଂ) ପର୍ବତ ଓ ବୃକ୍ଷରେ ବାସକାରୀ ।

ନଗି—ଗ୍ରା. ବ. ଲଗି ଦେଖ ।

ନଗିଚ—ଯା.ବ. ବିଂ ଓ କ୍ରି.ବିଂ. ନଜଦିକ୍ ଦେଖ । [ ଶାଖା ।

ନଗୁରସ୍ଥା - ସାନ୍ତାଳମାନଙ୍କର ଗୋଟିଏ

ନଗେନ୍ଦ୍ର—ପୁଂ. ବ. (୬ତତ୍) ହିମାଳୟ ପର୍ବତ, କୈଳାସ ପର୍ବତ, ସୁମେରୁ- ପର୍ବତ, (ଗ୍ରା.ବ) ଲୋକଙ୍କ ଡାକନାମ ।

ନଗେନ୍ଦ୍ରନନ୍ଦିନୀ—ସ୍ତ୍ରୀ. ବ. (୬ତତ୍) ପାର୍ବତୀ ।

ନଗେନ୍ଦ୍ରନାଥ—ବ.(୬ତତ୍) ଶିବ, ମହା- ଦେବ,(ଗ୍ରା)ଲୋକଙ୍କୁ ଡାକିବା ନାମ ।

ନଗେନ୍ଦ୍ରନାଥଘୋଷ--'ଇଣ୍ଡିଆନନେସନ' ନାମକ ସାପ୍ତାହିକ ପତ୍ରିକାର ସମ୍ପାଦକ ।

ନଗେନ୍ଦ୍ରନାଥବସୁ—'ସାହିତ୍ୟ ପରିଷତ୍' ପତ୍ରିକାର ସମ୍ପାଦକ ଓ ବିଶ୍ୱକୋଷ ପ୍ରକାଶର ସାହାଯ୍ୟକାରୀ ।

ନଗେନ୍ଦ୍ରନାଥସୋମ—ଜଣେ କବି ଓ ସୁଲେଖକ । [ ଦେଖ ।

ନଗେନ୍ଦ୍ରବାଳା—ଗ୍ରା. ବ. ନଗେନ୍ଦ୍ରନନ୍ଦିନୀ

ନଗେଶ—ପୁଂ. ବ. ( ନଗ + ଈଶ ) ନଗେନ୍ଦ୍ର ଦେଖ ।

ନଗୌକା—ଗ୍ରା. ବ ଓ ବିଂ. ନଗୌକାଃ ଦେଖ ।

ନଗୌକାଃ—ପୁଂ ବା ସ୍ତ୍ରୀ. ବିଂ. (ବ.ଗ୍ରୀ) ପର୍ବତବାସୀ, (ବ) ପକ୍ଷୀ, ସିଂହ,ବନ୍ୟ- ଜନ୍ତୁ, କାକ, ବାନର, ସରଭ ।

ନଗୋଚ୍ଛାୟ—ବ. (୬ତତ୍) ପର୍ବତର ଉଚ୍ଚତା ।

ନଗୌଷଧି—ବ. କଦଳୀ ।

ନଗ୍ନ—ପୁଂ. ବିଂ. (ନଜ୍ + କ.ତ) ଦିଗ- ମ୍ବର, ବିବସ୍ତ୍ର,ଉଲଙ୍ଗ,ଲଙ୍ଗଳ ,କକ୍ଷାସ୍ପୃ- ବସ୍ତ୍ରଧାରୀ ଲୋକ, ଜନପରିତ୍ୟକ୍ତ (ଦେଶ), ଅଚଷା ଭୂମି,ଅନାବୃତ, (ପୁଂ. ବ) ନାଗା, ନଙ୍ଗୁଳୀ ବାବାଜୀ, ଦାସା- ବର ସ୍ତୁତିପାଠକ, କପଟୀ ବ୍ୟକ୍ତି, ଶିବ, ଜୈନ ସନ୍ନ୍ୟାସୀ,ଯେଉଁ ବ୍ରାହ୍ମଣର ଶାସ୍ତ୍ର- ଜ୍ଞାନ ନାହିଁ, ଯେଉଁ ବ୍ରାହ୍ମଣ ବାନପ୍ରସ୍ଥ ଅବଲମ୍ବନ ନ କରି ସନ୍ନ୍ୟାସ ଗ୍ରହଣ କରିଅଛନ୍ତି, (ଗ୍ରା. ବ) ଲଗ୍ନ ଦେଖ, ବନ୍ଦୀ,ଜଣେ ସଂସ୍କୃତ କବି,(ସ୍ତ୍ରୀ)ନଗ୍ନା ।

ନଗ୍ନକ—ପୁଂ.ବ ଓ ବିଂ. (ନଗ୍ନ+ସ୍ୱାର୍ଥେ. କ) ନଗ୍ନ ଦେଖ,ବିବସ୍ତ୍ର,(ସ୍ତ୍ରୀ) ନଗ୍ନିକା ।

ନଗ୍ନକ୍ଷପଣକ—ପୁଂ.ବ. (କ.ଧା) ଲଙ୍ଗଳୀ ବୌଦ୍ଧ ଯତି ବା ଜୈନସନ୍ନ୍ୟାସୀ ।

ନଗ୍ନଙ୍କରଣ—କ୍ଲୀ. ବ. ଅନଗ୍ନର ନଗ୍ନତା- କରଣ ।

ନଗ୍ନଜିତ୍—ପୁଂ. ବ. ଗାନ୍ଧାରର ରଜା, କୋଶଳ ଦେଶର ରଜା, ବାସ୍ତୁଶାସ୍ତ୍ର ରଚୟିତା, ଜଣେ ସଂସ୍କୃତ କବି ।

ନଗ୍ନତା—ସ୍ତ୍ରୀ. ବ. (ନଗ୍ନ+ଭା.ତା) ଦିଗ- ମ୍ବରତ୍ୱ, ବସ୍ତ୍ରହୀନତା ।

ନଗ୍ନଧର--ରଘୁବଂଶର ଜଣେ ଟୀକାକାର ।

ନଗ୍ନମୁଷିତ—କ୍ରି.ବିଂ. ଧନାଦି ଅପହରଣ ହେତୁ ନଗ୍ନତାପନ୍ନ. ସବୁ ଜିନିଷ ଅପ- ହରଣ ହେତୁ ଲୁଚ୍ଚା ଅର୍ଥାତ୍ ଲଙ୍ଗଳା ।

ନଗ୍ନମ୍ଭବିଷ୍ଣୁ—ପୁଂ. ବ. ଅନଗ୍ନର ନଗ୍ନ- ହେବା । [ ହେବା ।

ନଗ୍ନମ୍ଭାବୁକ—ପୁଂ. ବ. ଅନଗ୍ନର ନଗ୍ନ-

ନଗ୍ନଯୋଷିତ୍—ସ୍ତ୍ରୀ.ବ. (ନଗ୍ନ +ଯୋଷିତ୍) ଉଲଙ୍ଗା ସ୍ତ୍ରୀ । [ ବୃତ୍ତି ।

ନଗ୍ନବୃତ୍ତି—ସ୍ତ୍ରୀ.ବ. ଉଣାଦି ସୂତ୍ରର ଗୋଟିଏ

ନଗ୍ନବ୍ରତଧର—ପୁଂ. ବ. ନଗ୍ନବ୍ରତାବଲମ୍ବୀ, ମହାଦେବ ।

ନଗ୍ନହର--ପ୍ରାଚୀନ ଗୁଜରାଟର ଏକଅଂଶ ।

ନଗ୍ନହୂ—ପୁଂ.ବ. ଷଡ଼୍ବିଂଶତି ଦ୍ରବ୍ୟକୃତ ସୁରାବୀଜ ।

ନଗ୍ନା—ସ୍ତ୍ରୀ.ବ. (ନଗ୍ନ+ଆ)ବିବସ୍ତ୍ରା ନାରୀ, ଅନୁଦ୍ଗତକୁଚ ସ୍ତ୍ରୀ, ଯେଉଁ ସ୍ତ୍ରୀର ସ୍ତନ ଉଠିନାହିଁ ।

ନଗ୍ନାଟ—ପୁଂ ବିଂ. (ନଗ୍ନ+ଅଟ୍+କ.ଅ) ଦିଗମ୍ବର, ବିବସ୍ତ୍ର, ( ବ ) ଜୈନ ବା ବୌଦ୍ଧ ଯତି,(ସ୍ତ୍ରୀ) ନଗ୍ନାଟା ।

ନଗ୍ନାଟକ—ପୁଂ. ବ. ଦିଗମ୍ବର ଯୋଗୀ ।

ନଗ୍ନିକ—ଗ୍ରା.ବିଂ. (ସଂ-ଲଗ୍ନିକ) ନିକଟ ସମ୍ପର୍କରେ ସମ୍ପର୍କିତ ( ବ୍ୟକ୍ତି ) ।

ନଗ୍ନିକା—ସ୍ତ୍ରୀ.ବ. (ନଗ୍ନକ+ଆ) ନିର୍ଲଜ୍ଜା ବିବସ୍ତ୍ରା ସ୍ତ୍ରୀ, ଲଙ୍ଗୁଳୀ ସ୍ତ୍ରୀ, ଗୌରୀ, ଅପ୍ରାପ୍ତ ରଜସ୍ୱଳା ସ୍ତ୍ରୀ, ଶିଶୁକନ୍ୟା,(ବିଂ) ବିବସ୍ତ୍ରା, ଲଙ୍ଗୁଳୀ (ସ୍ତ୍ରୀ), କୁଚହୀନା ଯୁବତୀ ।

ନଗ୍ନୀକରଣ—କ୍ଲୀ. ବ. ( ନଗ୍ନ + ଚ୍ୱି.+ କୃ+ଭା.ଅନ ) ବିବସ୍ତ୍ରକରଣ, ଲଙ୍ଗଳା କରିବା ।

ନଗ୍ନୀକୃତ—ପୁଂ. ବିଂ. ( ନଗ୍ନ+ଚ୍ୱି+ କୃତ) ବିବସ୍ତ୍ରୀକୃତ, (ସ୍ତ୍ରୀ) ନଗ୍ନୀକୃତା ।

ନଗ୍ର—ଗ୍ରା. (ପଦ୍ୟ) ବ. ( ସଂ-ନଗର ) ନଗର ।

ନଘମାର—ପୁଂ. ବ. (ନଘ+ମୃ+ଣିଚ୍ +ଅ) କୁଷ୍ଠରୋଗ ।

ନଘାରିଷ—ପୁଂ. ବ. କୁଷ୍ଠରୋଗ ।

ନଘୁଷ—ପୁଂ.ବ. ନହୁଷ ନୃପ ।

ନଙ୍କା—ଗ୍ରା. ବ. ଲଙ୍କା ଦେଖ, ଲଙ୍କା- ମରିଚ ।

ନଙ୍କାଅମ୍ବ—ଗ୍ରା. ବ. ଲଙ୍କାଅମ୍ବ ଦେଖ ।

ନଙ୍କାମରିଚ—ଗ୍ରା.ବ. ଲଙ୍କାମରିଚ ଦେଖ ।

ନଙ୍ଗ—ପୁଂ. ବ. (ନ +ଚମ୍+କ.ଅ) ଉପପତି, ଜାର,(ଗ୍ରା.ପଦ୍ୟ.ବ) ଅନଙ୍ଗ, କାମ, ଏକ ଅସଭ୍ୟ ଜାତି ।

ନଙ୍ଗପଙ୍ଗ—ଗ୍ରା.ଅବ୍ୟ. ଲଙ୍ଗପଙ୍ଗ ଦେଖ, ବିନାଉଦ୍ଦେଶ୍ୟରେ ବୁଲୁଥିବା ।

ନଙ୍ଗପର୍ବତ—କାଶ୍ମୀରର ହିମାଳୟ ପର୍ବ- ତର ଏକ ଶୃଙ୍ଗ ।

ନଙ୍ଗର(ଇତ୍ୟାଦି)—ଯା. ବ. ଲଙ୍ଗର ଇତ୍ୟାଦି ଦେଖ, ନୌକାଦି ଅଟକାଇ- ବାର ଲୌହଦଣ୍ଡାଦି ।

ନଙ୍ଗରବାଡ଼ୀ—ଗ୍ରା. ଯେଉଁଠାରେ ନୌକାସବୁ ଲଙ୍ଗର ପଡ଼ିଥାଏ ।

ନଙ୍ଗଲ୍—ପ୍ରା. (ସମ୍ବ) ବ. ଲଙ୍ଗଲ ଦେଖ

ନଙ୍ଗଲଜୁଡ଼ା—ପ୍ରା.(ସମ୍ବ) ବ. ତାରାପୁଞ୍ଜ- ବିଶେଷ, ଇଲ୍ୱଳା ନକ୍ଷତ୍ର ।

ନଙ୍ଗଲ(ଇତ୍ୟାଦି)—ଗ୍ରା. ବ. ଲଙ୍ଗଲ ଇତ୍ୟାଦି ଦେଖ ।

ନଙ୍ଗଳା—ଗ୍ରା.ପୁଂ.ବିଂ (ସଂ-ନଗ୍ନ)ଲଙ୍ଗଳା,

ବେଶ, ଉଲଙ୍ଗ, ଅଳଙ୍କାରଶୂନ୍ୟ, ଆଭରଣହୀନ,(ଲ.ଅର୍ଥ)ସଂସାର ବନ୍ଧନଶୂନ୍ୟ, ଗୃହଦଉଡ଼ିକଟା, ନିର୍ଭୀକ,(ସ୍ତ୍ରୀ) ନଙ୍ଗୁଳୀ ।

ନଙ୍ଗଲାମୁକୁଳା—ଗ୍ରା. ବିଂ. (ନଗ୍ନ+ମୁକ୍ତ) ଲଙ୍ଗଳାମୁକୁଳା ଦେଖ ।

ନଙ୍ଗା(ଘା)—ଗ୍ରା. ବିଂ. ଲଂଘା, ଉନ୍ମୁକ୍ତ, ଲମ୍ବା, ଉପବାସ କରିଥିବା ।

ନଙ୍ଗୁ(ଙ୍ଗୋ)ଟି(ଇତ୍ୟାଦି)—ଗ୍ରା. ବି. ଲଙ୍ଗୋଟା ଇତ୍ୟାଦି ଦେଖ ।

ନଙ୍ଗୁଳ—ଗ୍ରା.ପୁଂ ଓ ସ୍ତ୍ରୀ. ବିଂ. ନଙ୍ଗଳା ଦେଖ । [ କ୍ଷପଣକ ।

ନଙ୍ଗୁଳବାବାଜୀ—ଗ୍ରା. ବି. ନାଗା, ନଗ୍ନ-

ନଙ୍ଘା—ଗ୍ରା. ବି. ଲୋଧା, ଦୁଇଗୋଡ଼ର ସନ୍ଧିସ୍ଥଳ, (ବିଂ) ନଙ୍ଗା ଦେଖ ।

ନଙ୍ଘା(ଘେ)ଇବା—ଗ୍ରା. କ୍ରି. (ସଂ-ଲଙ୍ଘଧାତୁଣିଚ୍) ଲଙ୍ଘାଇବା ଦେଖ ।

ନଙ୍ଘାଘୋଡ଼ାପାଇଚ୍ଛ—ଗ୍ରା. ବିଂ. ଉନ୍ମୁକ୍ତ ଖଡ୍ଗଧାରୀ ଅଶ୍ୱାରୋହୀ (ଖାର), ଗୃହ ଦଉଡ଼ିକଟା (ବ୍ୟକ୍ତି) ।

ନଙ୍ଘାମାରିବା—ଗ୍ରା. କ୍ରି. ଦୁଇଗୋଡ଼ର ସନ୍ଧିସ୍ଥଳକୁ ନଚିକ୍ ଭାବେ ଗ୍ରୁଆଣିକରିବା

ନଙ୍ଘିବା—ଗ୍ରା. କ୍ରି. ଲଙ୍ଘିବା ଦେଖ ।

ନଚକା—ଗ୍ରା. ବିଂ. (ସଂ-ନୃତ୍ୟ, କମ୍ପ୍ର ନଚନଚ—ଧ୍ୱନ୍ୟନୁକରଣ) ଲହକା, ବାରମ୍ବାର କମ୍ପିତ, ସହଜନମ୍ୟ, (ଗ୍ରା. ବି) ଧକଚକ, ଲମ୍ବ ଓ ଖୁବ୍ ପତଳା ବସ୍ତ୍ରର କମ୍ପନ ।

ନଚକା(କେ)ଇବା—ଗ୍ରା.କ୍ରି. (ସଂ-ନୃତ୍ଧାତୁ) ଲହଲହ କରିବା, ଝୁଙ୍କେଇ ଝୁଙ୍କେଇ ବଳପୂର୍ବକ ଟାଣିବା ।

ନଚକିବା—ଗ୍ରା. କ୍ରି. (ସଂ-ନୃତ୍ୟ) ଲକ୍ ଲକ୍ ହେବା,ଲହକିବା, ନମନୀୟ ହେବା, ବାରଂବାର ଦୋହଲିବା ।

ନଚନଚ—ଗ୍ରା. ଅବ୍ୟ. (ସଂ-ନୃତ୍ଧାତୁ) ନଚନଚ,ଲହକା,ସହଜ ନମ୍ୟ,ନମନୀୟ

ନଚ୍ଚ—ଗ୍ରା. ବି. (ସଂ-ନର୍ତ୍ତନ,ନୃତ୍ୟ, ପ୍ରା. ଣଚ୍ଚ) ନଚ୍ଚଇବା, ନାଚିବା, ନର୍ତ୍ତନ ।

ନଚ୍ଚ(ଚେ)ଇବା—ଗ୍ରା. କ୍ରି. ( ସଂ-ନୃତ୍ଧାତୁ ଣିଚ୍. ନାଚିବାର ଶିକ୍ଷାନ୍ତୁଆକାର) ନୃତ୍ୟ କରାଇବା, କମ୍ପାଇବା, ସ୍ପନ୍ଦିତ କରାଇବା, ଦୋହଲାଇବା, ନର୍ତ୍ତକୀଙ୍କୁ ନାଟରେ ସାହାଯ୍ୟ କରିବା, ନୃତ୍ୟରେ ପ୍ରବୃତ୍ତ କରାଇବା, (ଲ.ଅର୍ଥ) କୌଣସି ବ୍ୟକ୍ତିଙ୍କୁ ବାରମ୍ବାର ଉଠିବା ବସିବାଦ୍ୱାରେ ହଇରାଣ କରିବା, ଅସ୍ଥିର କରିବା ।

ନଚ୍ଚକୁଦା—ଗ୍ରା.ବି. (ସଂ-ନୃତ୍ୟ+ସ୍କନ୍ଦନ) ଲମ୍ଫଝମ୍ପ, ଡ଼ିଆଁଡେ଼ଇଁ ।

ନଚ୍ଚନଚ—ଗ୍ରା. ବି. ଲମ୍ଫଝମ୍ପ, ଲମ୍ଫନ, ବନ୍ଧୁ ଲୋକଙ୍କର ନୃତ୍ୟ ।

ନଚିକେତାଃ—ପୁଂ.ବି. ଅଗ୍ନି,ବେଦୋକ୍ତ ଋଷିବିଶେଷ ।

ନଚିର—କ୍ଳୀ. ବି. ( ନ+ଚିର ) ଶୀଘ୍ର, ଅବିଳମ୍ବ, (ଅବ୍ୟ) ଅବିଳମ୍ବେ ।

ନଚିରାତ୍—(ଅବ୍ୟ) ଶୀଘ୍ର ।

ନଚେତ୍—(ଅବ୍ୟ)ନହେଲେ, ନଚେତ୍ ।

ନଚ୍ୟୁତ—କ୍ରି. ବିଂ. ଚ୍ୟୁତଭିନ୍ନ ।

ନଛମନଇତ୍ୟାଦି—ଗ୍ରା. ବି. ଲଛମନ ଇତ୍ୟାଦି ଦେଖ ।

ନଛୁ—ଗ୍ରା. ବି. ଲଛୁ ଦେଖ ।

ନଛୁର—ଗ୍ରା. ବିଂ. ଅସାର, ଅପଦାର୍ଥ, ଦୁଷ୍ଟ, ପାଜି, ନିର୍ଲଜ, ବେହିଆ, ଅଧମ, ନୀଚ, ଲମ୍ପଟ ।

ନଚ୍ଛି(ଛୁ)—ଗ୍ରା.ବି. (ଆଦରାର୍ଥ)ଲକ୍ଷ୍ମୀଧର, ଲକ୍ଷ୍ମଣ,ନରସିଂହ ପ୍ରଭୃତିଙ୍କର ଡାକନାମ

ନଛୁବା—ଗ୍ରା. କ୍ରି. ଲଛୁବା ଦେଖ ।

ନଛୁ(ସିରୀ)ବ—ଯା. ବି. ଭାଗ୍ୟ, ଅଦୃଷ୍ଟ ।

ନଗ୍ଲେଉଡ଼ବନ୍ଦା—ଗ୍ରା. ବି. ନାଗ୍ଲେଉଡ଼ବନ୍ଦା ଦେଖ ।

ନଜ୍—(ଧାତୁ)ଲଜ୍ଜିତ ହେବା ।

ନଜଦିକ୍(ଗ୍)—ଯା.ବି.ସାମୀପ୍ୟ,ନୈକଟ୍ୟ, (ବିଂ) ନିକଟବର୍ତ୍ତୀ, ନିକଟସ୍ଥ,(କ୍ରି. ବିଂ) ନିକଟରେ ।

ନଜର—ଯା. ବି. ଦୃଷ୍ଟି, ନଘା, ତୀକ୍ଷଣଦୃଷ୍ଟି, ଦର୍ଶନ, ତଦାରଖ, ଖିଆଲ, ମନୋଯୋଗ, ଧ୍ୟାନ, ଜ୍ଞାନ, ଦର୍ଶନୀ, ଉପଢୌକନ, ଭେଟି, ଲୋଲୁପ ଦୃଷ୍ଟି, କ୍ରୋପ ଦୃଷ୍ଟି ।

ନଜରଆନା—ସମ୍ରାଟଙ୍କୁ ଅଧୀନସ୍ଥ ରାଜାମାନଙ୍କର ଦେୟ ଉପଢୌକନ,ଉପାଧି ।

ନଜରକରିବା—ଗ୍ରା. କ୍ରି. ଦେଖିବା, ଦୃଷ୍ଟି ରଖିବା, ଜଗିବା, ତଦ୍ବାରନେବା, ଖାତିର କରିବା ।

ନଜରକୁ ଆଣିବା—ଗ୍ରା. କ୍ରି. ଖାତିର କରିବା, ଗୁଣୀ ମଧ୍ୟରେ ଗଣନା କରିବା, ଖିଆଲ କରିବା ।

ନଜରଖାନା—ଯା. ବି. ବଇଠକଖାନା ।

ନଜରଦେବା—ଗ୍ରା. କ୍ରି. ନଜରକରିବା ଦେଖ, ବଡ଼ଲୋକଙ୍କୁ ଦର୍ଶନ କରିବା ବେଳେ ଭେଟି ଦେବା । [ ଯନ୍ତ୍ର ।

ନଜରନଳ(ଳି)—ଗ୍ରା. ବି. ଦୂରବୀକ୍ଷଣ

ନଜରପକା(କୋ)ଇବା—ଗ୍ରା. କ୍ରି.ନଜର କରିବା ଦେଖ, ପାପଦୃଷ୍ଟି ବା ଲୋଭ ଦୃଷ୍ଟି ପକାଇବା, (ବି) ନଜରପଡ଼ିବା ।

ନଜରବନ୍ଦ—ଯା. ବିଂ. ( କଚିରିଆ ) ପ୍ରହରିରକ୍ଷିତ,ଅଟକ ରଖାଯିବା, କାରାବଦ୍ଧ ।

ନଜରବନ୍ଦୀ—ଯା.ବି.(କଚିରିଆ) ଅଟକରଖିବା, କଇଦକରି ରଖିବା ।

ନଜରବାଗ୍—ଯା.ବି. ବଡ଼ଲୋକଙ୍କ ଗୃହ ସଂଲଗ୍ନ ବହିଃଉଦ୍ୟାନ ।

ନଜରବାଜ୍—ଯା. ବି. କୁହୁକୀ, ଐନ୍ଦ୍ରଜାଲିକ, ପ୍ରତାରକ, ଠକ, ଯେଉଁ ଡାହାଣୀ ଶିଶୁମାନଙ୍କ ଉପରେ ପାପଦୃଷ୍ଟି ପକାଏ, (ବିଂ) ଚାଟୁଦୃଷ୍ଟି ବିଶିଷ୍ଟ (ବ୍ୟକ୍ତି) ।

ନଜରବାଜି—ଯା. ବି. ଅପାଙ୍ଗ ଦର୍ଶନ, ଭୋଜବାଜି, କୁହୁକ, ଭେଲ୍କି, ପ୍ରଣୟୀଙ୍କର ପରସ୍ପର ପ୍ରେମ କଟାକ୍ଷପାତ ।

ନଜରରଖିବା—ଗ୍ରା. କ୍ରି. ନଜରକରିବା ଦେଖ, କୌଣସି ବ୍ୟକ୍ତି ବା ବିଷୟର ତତ୍ତ୍ୱନେବା, କୌଣସି ବ୍ୟକ୍ତିର କାର୍ଯ୍ୟପ୍ରତି ଦୃଷ୍ଟି ବା ଅନୁଗ୍ରହ ଦୃଷ୍ଟି ରଖିବା ।

ନଜରି—ଯ. ବଦଦୃଷ୍ଟିରେ ଗୃହାଣୀ

ନଜରାଣା—ଯା. ବି. ନଜର, ଭେଟି,

ଉପଢ଼ୌକନ, ଭେଟୀ, ଦଲମୀ, ଦର୍ଶନୀ ।
ନଜକ୍—ଘା.ବି. ବଂ. ନଜଦକ୍ ଦେଖ ।
ନଜବଉନ୍ନିସାବେଗମ—ଆକବର ବାଦଶାହଙ୍କ ଭଗ୍ନୀ ।
ନଜର—ଘା. ବି. ନମୁନା, ଦୃଷ୍ଟାନ୍ତ, ଉଦାହରଣ, ପ୍ରାମାଣିକ ବାକ୍ୟ, ନିଦର୍ଶନ, ପ୍ରମାଣ, ଆଇନ୍, କୌଣସି ମୋକଦ୍ଦମାରେ ପ୍ରଦର୍ଶିତ ଦୃଷ୍ଟାନ୍ତ ।
ନଞ୍—(ସଂ-ଅବ୍ୟ)ନା, ନୁହେଁ, ନ ।
ନଞ୍ତତ୍ପୁରୁଷ—ବି. ( ବ୍ୟାକରଣ ) ନିଷେଧାର୍ଥକ ନଞ୍ ଶବ୍ଦ ସଙ୍ଗେ ଅନ୍ୟ ଶବ୍ଦ ଯୁକ୍ତ ହୋଇ ଯେଉଁ ସମାସ ହୁଏ ।
ନଞ୍ର୍ଥ—ବି.( ନଞ୍ + ଅର୍ଥ)ନ ବା ନାହିଁ ଏହି ଅର୍ଥ, (ବଂ) ନଞ୍ର୍ଥକ ଦେଖ ।
ନଞ୍ର୍ଥକ—ବଂ. (ନଞ୍ + ଅର୍ଥ + କ)ନ, ନାହିଁ, ନୁହେଁ ଆଦି ଅର୍ଥ ଯହିଁରୁ ପ୍ରତିପନ୍ନ ।
ନଟ୍—(ଧାତୁ) ନୃତ୍ୟକରିବା, ଦୀପ୍ତିପାଇବା,ବଧକରିବା, ଅଭିନୟକରିବା, ଅଧଃପତିତହେବା ।
ନଟ—ଭ୍ରଂଶ ।
ନଟ—ପୁଂ. ବି. (ନଟ + କ.ଅ) ନର୍ତ୍ତକ, ନାଟୁଆ,ନାଟକର ଅଭିନେତା,ଅଶୋକ ବୃକ୍ଷ, (ନଶ୍ + ଅଚ୍) ବର୍ଣ୍ଣସଙ୍କର ଜାତିବିଶେଷ, ଲମ୍ପଟ ବ୍ୟକ୍ତି, ଖଣ୍ଡ,ରାଗିଣୀବିଶେଷ, ଶ୍ୟୋନାକ, ଫଣଫଣା ଗଛ, (ପର୍ଯ୍ୟାୟ-ଶୈଲାଲୀ, ଶୈଳୂଷ,ଜାୟାଜୀବ, କୃଶାଶ୍ୱୀ, ଭରତ, ସର୍ବବେଶୀ, ଭରତପୁତ୍ରକ, ଧାଣିପୁତ୍ର, ରଙ୍ଗଜୀବ, ରଙ୍ଗାବତାରକ), କ୍ଷତ୍ରିୟ ଜାତିବିଶେଷ, (ଗ୍ରା.ବି) ଲଟ ଦେଖ, ନଟବରଙ୍କର ଡାକନାମ, (ବଂ) ଦୁଷ୍ଟ, ନଷ୍ଟ, ( ସ୍ତ୍ରୀ ) ନଟୀ ।
ନଟକଣ—ଗ୍ରା. ବି. ଲଟକଣ ଦେଖ ।
ନଟକଣି—ଗ୍ରା. ବି. ଲଟକଣି, ପାଗ ବା ଟୋପିରୁ ଲମ୍ବିଥିବା ଝୁଣ୍ଟି ବା ଫୁଲ ।
ନଟକମେଳକ—କ୍ଲୀ. ବି. ହାସ୍ୟରସ ପ୍ରଧାନ ଦୃଶ୍ୟ କାବ୍ୟବିଶେଷ
ନଟକା(କେ)ଇବା—ଗ୍ରା.କ୍ରି. ଲଟକାଇବା ଦେଖ ।
ନଟକାର—ଗ୍ରା.ବି. ନଟ, ନର୍ତ୍ତକ,ଐନ୍ଦ୍ରଜାଲିକ, କୁହୁକୀ ।
ନଟକାଣୀ—ଗ୍ରା.ବି.ସ୍ତ୍ରୀ. ନଟକାର ଦେଖ, (ଗ୍ରା.ବଂ) ଯେ ନାଚେ ବା ନୃତ୍ୟକରେ
ନଟକିବା—ଗ୍ରା. କ୍ରି. ଲଟକିବା ଦେଖ ।
ନଟକୂଟ—ଗ୍ରା. ବି. ନୁଟୁକୁଟୁ, ଗୋଳମାଳିଆ ବିଷୟ,ଝଞ୍ଜଟ, ଅଡୁଆ, ବିଘ୍ନ, ବିରକ୍ତିକର ଘଟନା, ଅନର୍ଥ, ଉତ୍ପାତ, ଦୁଷ୍ଟିନ୍ତା, ଦୁଷ୍ଟପଣ ।
ନଟକୂଟିଆ—ଗ୍ରା. ପୁଂ. ବଂ. ଗୋଳମାଳିଆ, ଅଡୁଆ,ଯେ ଅଡୁଆ ଲଗାଏ, ବିରକ୍ତିକର, ଉତ୍ପାତକାରୀ, ଦୁଷ୍କର, କଷ୍ଟସାଧ୍ୟ, ଦୁଷ୍ଟ, (ସ୍ତ୍ରୀ) ନଟକୂଟେଇ ।
ନଟଖଟ—ଗ୍ରା. ବି. ନଟକୂଟ ଦେଖ ।
ନଟଖଟିଆ—ଗ୍ରା.ବଂ. ନଟକୂଟିଆ ଦେଖ, (ସ୍ତ୍ରୀ) ନଟଖଟେଇ ।
ନଟଗଡ଼—ସ୍ତ୍ରୀ. ବି. ଛନ୍ଦୋବିଶେଷ ।
ନଟପଟ(ଇତ୍ୟାଦି)—ଗ୍ରା. ବି. ଲଟପଟ ଇତ୍ୟାଦି ଦେଖ ।
ନଟଘଟିଆ—ଗ୍ରା.ବଂ.ଲଟଘଟିଆ ଦେଖ, (ସ୍ତ୍ରୀ) ନଟଘଟେଇ ।
ନଟଚର୍ଯ୍ୟା—ସ୍ତ୍ରୀ. ବି. (୬ତତ୍) ନଟର ବାକ୍ୟାଭିନୟ, ନାଟକାଭିନୟ ।
ନଟତା—ସ୍ତ୍ରୀ. ବି. ନଟର ଭାବ, ନଟର କାର୍ଯ୍ୟ ।
ନଟଢ—(ସଂସ୍କୃତ କ୍ରିୟାପଦ)ନାଚୁଅଛୁ
ନଟନ—ବି. ( ନଟ + ଅନ ) ନୃତ୍ୟ, ନର୍ତ୍ତନ ।
ନଟନାଗର—ଗ୍ରା. ବି. ଶ୍ରୀକୃଷ୍ଣ ।
ନଟନାରାୟଣ—ପୁଂ.ବି. ସଙ୍କର ରାଗିଣୀବିଶେଷ ।
ନଟନାରୀ—ସ୍ତ୍ରୀ. ବି. ନଟୀ ଦେଖ ।
ନଟପଟ(ଇତ୍ୟାଦି)—ଗ୍ରା. ଅବ୍ୟ. ଲଟପଟ ଇତ୍ୟାଦି ଦେଖ ।
ନଟପଟିଆ—ଗ୍ରା.ବଂ.ଲଟପଟିଆ ଦେଖ ।
ନଟପର୍ଣ୍ଣ—କ୍ଲୀ. ବି. ତ୍ୱଚ୍, ଗୁଡ଼ତ୍ୱକ୍ ।
ନଟପତ୍ରିକା—ସ୍ତ୍ରୀ.ବି. ବାର୍ତ୍ତାକୀ,ବାଇଗଣ ।
ନଟବର—ପୁଂ. ବି. (୬ତତ୍) ଶ୍ରୀକୃଷ୍ଣ, ପ୍ରଧାନ ନଟ, ଅଭିନୟର ସୂତ୍ରଧର, (ବଂ) ନୃତ୍ୟପଟୁ, ନାଚିବା ବିଷୟରେ ଦକ୍ଷ, (ଗ୍ରା. ପୁଂ. ବି) ଲୋକଙ୍କ ନାମ ।
ନଟବଟୁ—ପୁଂ. ବି. ଅଭିନେତାର ପୁତ୍ର, ଯୁବକ ଅଭିନେତା ।
ନଟବରବେଶ—ଗ୍ରା. ବି. ଶ୍ରୀକୃଷ୍ଣଙ୍କର ବେଶବିଶେଷ,ପୁରୀଜିଲ୍ଲା ସତ୍ୟବାଦୀରେ ପ୍ରତିଷ୍ଠିତ ସାକ୍ଷିଗୋପାଳଙ୍କର କାର୍ତ୍ତିକ ମାସରେ ହେବା ବେଶ ।
ନଟବେହାଗ—ବି. ରାଗିଣୀବିଶେଷ ।
ନଟଭଟିକବିହାର—ପୁଂ. ବି. ଉଦ୍‌ମୁଣ୍ଡସ୍ଥିତ ବୌଦ୍ଧବିହାର ।
ନଟଭୂଷଣ—କ୍ଲୀ.ବି.(୬ତତ୍) ହରିତାଳ ।
ନଟମଣ୍ଡନ—କ୍ଲୀ. ବି. ହରିତାଳ ।
ନଟମଲ୍ଲାର—ବି. ରାଗିଣୀବିଶେଷ ।
ନଟମଲ୍ଲାର—ରାଗିଣୀବିଶେଷ ।
ନଟମୁକୁଟ—ଗ୍ରା. ବି ଓ ବଂ. ନଟବର ଦେଖ । [ ନଟୀ ଦେଖ ।
ନଟଯୋଷା—ସ୍ତ୍ରୀ.ବି. (ନଟ + ଯୋଷିତ୍)
ନଟଯୋଷିତା—ଗ୍ରା. ସ୍ତ୍ରୀ. ବି. ନଟନାରୀ, ନଟୀ, ବେଶ୍ୟା ।
ନଟରଙ୍ଗ—ବି. ରଙ୍ଗମଞ୍ଚ, ନଟପର ରଙ୍ଗ ବା ଅଭିନୟ କାର୍ଯ୍ୟ ।
ନଟରା—ଗ୍ରା. ବି. ଲଟରା ଦେଖ ।
ନଟସଂଜ୍ଞକ—ପୁଂ. ବି. ଗୋଦନ୍ତୀ ହରିତାଳ, ନଟ ।
ନଟସୂତ୍ର—କ୍ଲୀ. ବି. ଅଭିନେତୃବର୍ଗଙ୍କ ପାଳନୀୟ ନିୟମ ବା ଉପଦେଶଚୟ ।
ନଟା(ଇତ୍ୟାଦି)—ଗ୍ରା.ବି.ଲଟା ଇତ୍ୟାଦି ଦେଖ ।
ନଟାଇ—ଗ୍ରା. (ସମ୍ବ)ବି.ନଟେଇ ଦେଖ ।
ନଟାମ୍ଳିକା—ସ୍ତ୍ରୀ. ବି. (୬ତତ୍) (ନଟ + ଅମ୍ଳ + କ + ଆ) ଲଜ୍ଜା ।
ନଟି—ଗ୍ରା. ବି. (ଚିଲିକାରେ) ନୌକାପାଲ ଅଟକାଇବାର ଲମ୍ବା ଦଉଡ଼ି, ନଟବରର ଡାକନାମ, (ଗ୍ରା. ବି) ଲଟି, ଲଟା, ଛୋଟ ଛୋଟ ଲତା,(ପ୍ରା.ସିଂହଭୂମ. ବି) ଲତାବହୁଳ ବନ ।

ନଟିତ—ବି. (ନଟ୍+ଘ.ତ) ନାଟକାଭିନୟ ।

ନଟିମା— (ପ୍ରା-କ) ନଟୀ, ବେଶ୍ୟା ।

ନଟୀ—ସ୍ତ୍ରୀ.ବି. (ନଟ+ଈ) ଅଭିନେତ୍ରୀ, ନର୍ତ୍ତକୀ,ବେଶ୍ୟା,ନଷ୍ଟା ସ୍ତ୍ରୀ,ମୁଖ୍ୟା ନଟୀ, ଗୋଦନ୍ତୀ ହରତାଳ, ନଖୀ ନାମକ ଗନ୍ଧଦ୍ରବ୍ୟ, (ଗ୍ରା.ବି) ନଟୀକାଳ ଦେଖ ।

ନଟୀକାଳ—ଗ୍ରା.(ପ୍ରାଚୀନ)ବି.(ସଂ-ନାରିକେଳ) ନଡ଼ିଆ ।

ନଟୁ( ଇତ୍ୟାଦି )—ଗ୍ରା.ବି. ଲଟୁଇତ୍ୟାଦି ଦେଖ ।

ନଟେଇ—ଗ୍ରା.ବି. (ସଂ-ନର୍ତ୍ତକୀ) ତନ୍ତୀର ଯନ୍ତ୍ରବିଶେଷ, ତାକୁଡ଼ିର ନିମ୍ନାଂଶ ।

ନଟେଇପଟେଇ—ଗ୍ରା, ଅବ୍ୟ. ଲଟପଟ ଦେଖ ।

ନଟେଶ୍ୱର—ପୁଂ.ବି. (୬ତତ୍ପୁରୁଷ) ମହାଦେବ, ଶିବ, ନୃତ୍ୟଶୀଳ ଶିବମୂର୍ତ୍ତି ।

ନଟ୍ୟା—ସ୍ତ୍ରୀ.ବି. (ନଟ+ଯ+ଆ)ନଟସମୂହ, ଅଭିନେତୃ ଦଳ, ନର୍ତ୍ତକଦଳ ।

ନଠ—ଗ୍ରା.ବି. ଲଠା ଦେଖ ।

ନଡ଼୍(ଧାତୁ)—ବନ୍ଧନ କରିବା ।

ନଡ଼—ପୁ .ବି. ( ନଡ଼୍+ଣ,ଅ ) ତୃଣବିଶେଷ, ନଳ, ହାତରେ ପିନ୍ଧାଯିବା କାଚ ବଳୟକୁ ଉଆଁର ଓ ବନ୍ଦ କରିବା କାଠବିଶେଷ, ଗୋତ୍ର ପ୍ରବର୍ତ୍ତକ ଋଷିବିଶେଷ ।

ନଡ଼କ—କ୍ଲୀ. ବି. ଦୁଇ କାନ୍ଧ ମଧ୍ୟରେ ଥିବା ଅସ୍ଥି ।

ନଡ଼କା—ଗ୍ରା.ବି ଓ ବିଂ. ଲଡ଼କା ଦେଖ, (ସ୍ତ୍ରୀ) ନଡ଼କୀ ।

ନଡ଼କୀୟ—ବି.ବିଂ.(ନଡ଼+ଅଛୁଅର୍ଥରେ ଈୟ)ନଳତୃଣ ବହୁଳ (ସ୍ଥାନ) ।

ନଡ଼ଚଡ଼—ପ୍ରା. ଅବ୍ୟ. (ସଂ-ଲଡ଼୍ ଧାତୁ) ହଲଚଲ, ବିଚଳନ, ଅନ୍ୟଥା ।

ନଡ଼ଦଳ—ଗ୍ରା. ବି. ଏକପ୍ରକାର ଘାସ, ନଳ ଘାସ ।

ନଡ଼ନଡ଼—ଗ୍ରା.ଅବ୍ୟ. ( ସଂ-ଲଡ଼ଧାତୁ ) ଲଡ଼ଲଡ଼, ଦୋଦୁଲ୍ୟମାନ, ହୁଗୁଳା, ଲଡ଼କା, ଶ୍ଳଥ, ଟଳଟଳ ।

ନଡ଼ନଡ଼ ହେବା—ଗ୍ରା. କ୍ରି. ଶ୍ଳଥ ବା ହୁଗୁଳା ହେବା ।

ନଡ଼ନଡ଼ିଆ—ଗ୍ରା.ବିଂ.ନଡ଼ନଡ଼ ଦେଖ ।

ନଡ଼ପ—ପ୍ରା. (ଗଡ଼ଜାତ.) ବି. ତେଲି, ତେଲ । [ ଶାଳ ।

ନଡ଼ପଶାଳ—ପ୍ରା.(ଗଡ଼ଜାତ.)ବି.ତେଲିଶାଳ ।

ନଡ଼ପ୍ରାୟ—ବି. ବିଂ. ନଳତୃଣବହୁଳ (ଦେଶ) ।

ନଡ଼ବଡ଼—ଗ୍ରା.ଅବ୍ୟ. ( ସଂ-ଲଡ଼୍ ଧାତୁ ) ହୁଗୁଳା, ଶ୍ଳଥ, ନଡ଼ନଡ଼, ଦୋଦୁଲ୍ୟମାନ, ଖଜବଜ, ଅସ୍ଥିର, ଚପଳ, ଲମ୍ପଟ, ଟଳଟଳ, ଚଞ୍ଚଳଚିତ୍ତ,ସ୍ୱୈର, ପରଧନାପହାରୀ, ଲହରପହର ।

ନଡ଼ବଡ଼—ଗ୍ରା. ବି. ଲମ୍ପଟ୍ୟ, ଲମ୍ପଟ ସ୍ୱଭାବ,ଖାଦ୍ୟଲାଲସା,ଜିଭ ନଡ଼ବଡ଼ିଆ ସ୍ୱଭାବ, ଚୌର୍ଯ୍ୟପ୍ରକୃତି, ଅବ୍ୟବସ୍ଥିତ ପ୍ରକୃତି ।

ନଡ଼ବଡ଼ିଆ—ଗ୍ରା.ବିଂ.ନଡ଼ବଡ଼ ଦେଖ ।

ନଡ଼ବଡ଼ିଆଖୋଇ—ଗ୍ରା. ବି, ନଡ଼ବଡ଼ ଦେଖ ।

ନଡ଼ଭକ୍ତ—କ୍ଲୀ.ବି. ନଡ଼ବିଷୟ ।

ନଡ଼ମୟ—ବି.ବିଂ. (ନଡ଼+ମୟ)ନଳସମ୍ବନ୍ଧଯୁକ୍ତ ।

ନଡ଼ମୀନ—ପୁଂ. ବି. ମତ୍ସ୍ୟବିଶେଷ, ଚିଙ୍ଗୁଡ଼ିମାଛ ।

ନଡ଼ଟ—ବି.ବିଂ. ନଡ଼ଯୁକ୍ତ ।

ନଡ଼ସଂହତି—ସ୍ତ୍ରୀ.ବି. ନଡ଼ସମୂହ ।

ନଡ଼ହ—ବି.ବିଂ. ( ନଡ଼+ହନ୍+ଅ ) ଲଳିତ, କାନ୍ତ ।

ନଡ଼ା—ଗ୍ରା.ବି. ( ସଂ-ନଡ଼,ନଳ ) ତୃଣ, ଧାନଗଛର କେଣ୍ଡା ବାହାରିବା ଫମ୍ପା ଅଂଶ, ଯାରୁଗଛର ପତ୍ର ବାହାରିବା ଅଂଶ, (ଯା.ବି.)ମଲ୍ଲମାନଙ୍କ ଲଢ଼ାଇ ।

ନଡ଼ା (ଡ଼େ)ଇ ( ଇତ୍ୟାଦି )—ଯା, ବି. ଲଢ଼ାଇ ଇତ୍ୟାଦି ଦେଖ ।

ନଡ଼ାଗିରି—ପୁଂ. ବି. ନଡ଼ପ୍ରଧାନ ଗିରିବିଶେଷ । [ ସମୂହ ।

ନଡ଼ାଦି—ପୁଂ.ବି. ପାଣିନ୍ୟୁକ୍ତ ଗଣଶବ୍ଦସମୂହ ।

ନଡ଼ାଲ—-ଯଶୋର ଜିଲ୍ଲାର ଗୋଟିଏ ଉପବିଭାଗ ।

ନଡ଼ିନୀ—ସ୍ତ୍ରୀ.ବି. ନଡ଼ଯୁକ୍ତ ନଦୀ ।

ନଡ଼ିଆ—ଗ୍ରା.ବି. (ସଂ-ନାରିକେଳ)ନାରିକେଳ ଗଛ ଓ ଫଳ ।

ନଡ଼ିଆଆଁଶୁ—ଗ୍ରା.ବି. ନଡ଼ିଆବାହୁଙ୍ଗାର ମୂଳରେ ଥିବା କ୍ଷୁଦ୍ର ଧଳା ଅଂଶବିଶେଷ ।

ନଡ଼ିଆଆଖି—ଗ୍ରା. ବି. ନଡ଼ିଆ ମୁଣ୍ଡରେ ଥିବା ଆଖିପରି ଚିହ୍ନତ୍ରୟ ।

ନଡ଼ିଆକଠା—ଗ୍ରା.ବି. ଡେଙ୍ଗା ନଡ଼ିଆଗଛରୁ ମନକୁ ଝଡ଼ିବା ଶୁଖିଲା ନଡ଼ିଆ ।

ନଡ଼ିଆକତା—ଗ୍ରା. ବି. ନଡ଼ିଆ ଫଳର ଉପରସ୍ଥ ଆଂଶୁମୟ ଚୋପା ।

ନଡ଼ିଆକନ୍ଦା—ଗ୍ରା. ବି. ନଡ଼ିଆଗଛର କୋମଳ ସ୍କନ୍ଧଦେଶ ।

ନଡ଼ିଆକଲି—ଗ୍ରା.ବି. ଅତି ସରୁ ନଡ଼ିଆ ।

ନଡ଼ିଆକୁମ୍ଭା—ଗ୍ରା. ବି. ବୋତଲରୂପେ ବ୍ୟବହୃତ ଫମ୍ପା ନଡ଼ିଆ ।

ନଡ଼ିଆକୋରା—ଗ୍ରା.ବି. ନଡ଼ିଆ ଫାଳରୁ କୋରଣା ସାହାଯ୍ୟରେ କୋରାଯାଇଥିବା ଶସ, କୋରା ନଡ଼ିଆ ଗୁଡ଼ଆଦିରେ ପାଗହୋଇ ପ୍ରସ୍ତୁତ ହେବା ମିଠେଇ ବା ମୋଦକବିଶେଷ ।

ନଡ଼ିଆକୋରୁଅ—ଗ୍ରା. ବି. ନଡ଼ିଆ ରସ ସିଝା ହେଲାବେଳେ ପାତ୍ରରେ ଲାଗିରହିବା ଅଂଶ ।

ନଡ଼ିଆଖଡ଼ିକା—ଗ୍ରା. ବି. ନଡ଼ିଆ ପତ୍ରର ଟାଣୁଆ ସରୁ ମେରୁଦଣ୍ଡ ।

ନଡ଼ିଆଖୁଙ୍କୁ—ଗ୍ରା. ବି. ଗଜା ହୋଇଥିବା ନଡ଼ିଆ ମଧ୍ୟରେ ଥିବା ଧଳା କୋମଳ ଓ ସୁମିଷ୍ଟ ଖାଦ୍ୟବିଶେଷ ।

ନଡ଼ିଆଖୋଲପା—(ପ୍ରା. ସିଂହଭୂମ. ବି.) ନଡ଼ିଆ ଶଢ଼େଇ ।

ନଡ଼ିଆଖୋସା—ଗ୍ରା. ବି. ଯେଉଁ ଝୁଲ୍ଲାକାର ପୁଷ୍ପକୋଷ ମଧ୍ୟରୁ ନଡ଼ିଆଫୁଲର ଚଅଁର ବାହାରେ ।

ନଡ଼ିଆଗଜା—ଗ୍ରା. ବି. ଗଜୁରିଥିବା ନଡ଼ିଆ ।

ନଡ଼ିଆଗଡ଼—ଗ୍ରା.ବି.ନଡ଼ିଆଗଛର ମୂଳଠାରୁ ସ୍କନ୍ଧ ପର୍ଯ୍ୟନ୍ତ ଅଂଶ ।

ନଡ଼ିଆଗୁଡ଼—( ଗ୍ରା. ଯାଜପୁର. ବ. ) ନଡ଼ିଆଗୋଟମା ଦେଖ ।
ନଡ଼ିଆଗୋଟମା—ଗ୍ରା. ବ. ନଡ଼ିଆର ଅତି ଶ୍ରେଷ୍ଠ ଅପରିପକ୍ୱ ଫଳ ।
ନଡ଼ିଆଚିଅ—ଗ୍ରା. ବ. ନଡ଼ିଆ ରସକୁ ସିଦ୍ଧ କଲେ ଯେଉଁ ଅଂଶ ତଳ ଭାଗରେ
ନଡ଼ିଆଚିଅମରିବା—ଗ୍ରା. କ୍ରି. ନଡ଼ିଆ ରସରୁ ଅଗ୍ନି ସହଯୋଗରେ ଚିଅ ପ୍ରସ୍ତୁତ କରିବା ।
ନଡ଼ିଆଚଅଁର—ଗ୍ରା. ବ. ନଡ଼ିଆ ଫୁଲ ଓ ଫଳ ଲଗିଥିବା ଗ୍ରନ୍ଥିଯୁକ୍ତ ବୃନ୍ତ, ଏକ-ପ୍ରକାର ସରୁ ଧାନ
ନଡ଼ିଆଚୁଞ୍ଚ—ଗ୍ରା. ବ. ନଡ଼ିଆପତ୍ରପ୍ରସ୍ତୁତ ଆସନ ।
ନଡ଼ିଆଚୁଞ୍ଚିପି—ଗ୍ରା. ବ. ନଡ଼ିଆ ଚଞ୍ଚରେ ଗୁଡ଼ାଇ ହୋଇଥିବା ଜାଲ ।
ନଡ଼ିଆଛପ—ଗ୍ରା. ବ. ନଡ଼ିଆଚୁଞ୍ଚ ଦେଖ ।
ନଡ଼ିଆଛୁଙ୍କି—ଗ୍ରା. ବ. ଶ୍ରେଷ୍ଠ ଶ୍ରେଷ୍ଠ ଗେଜ ବାନ୍ଧି ରଖିଥିବା ନଡ଼ିଆ ।
ନଡ଼ିଆତାଡ଼—ଗ୍ରା. ବ. ତଳ ହୋଇ ପଡ଼ି ମେଲିଥିବା ନଡ଼ିଆଗଛ ।
ନଡ଼ିଆତେଲ—ଗ୍ରା. ବ. ନଡ଼ିଆ ମଞ୍ଜକୁ ପେଡ଼ାଇଲେ ଯେଉଁ ତେଲ ବାହାରେ
ନଡ଼ିଆଦୋର—ଗ୍ରା. ବ. ନଡ଼ିଆରସ
ନଡ଼ିଆନଡ଼ି—ଗ୍ରା. ବ. ଡେମ୍ଫଲଗ. ନଡ଼ିଆର ବୃନ୍ତାଂଶଯୁକ୍ତ ଡେମ୍ଫ ।
ନଡ଼ିଆପନ—ଗ୍ରା. ବ. ନଡ଼ିଆ ବୃକ୍ଷାଗ୍ର
ନଡ଼ିଆପାଣି(ଣ୍ଟି)—ଗ୍ରା. ବ. ନଡ଼ିଆର ଭିତରେ ରସ ।
ନଡ଼ିଆଫୁଲିଆପଟେଶ୍ୱରି(ରୀ)—ଗ୍ରା. ବ. (ବୋଣିଆ ଶବ୍ଦ) ସୁନାରୁପାର ଗହଣା ବ ... ।
ନଡ଼ିଆବଗାଡ଼ି—ଗ୍ରା. ବ. ଯେଉଁ ସ୍ଥାନରେ ବୃକ୍ଷରେ ନଡ଼ିଆଗଛ ଲଗାଯାଇଥାଏ
ନଡ଼ିଆବରଡ଼ା—ଗ୍ରା. ବ. ନଡ଼ିଆ ବୃନ୍ତାଂଶର ଦୁଇପାଖରେ ଲଗିଥିବା ପତ୍ର, ନଡ଼ିଆ ବାହୁଙ୍ଗୀ । [ ତୁଳନା
ନଡ଼ିଆବାହୁଙ୍ଗୀ—ଗ୍ରା. ବ. ନଡ଼ିଆ ଗଛର
ନଡ଼ିଆଭଙ୍ଗୁଣିଆ—ପ୍ର. (ପୁରୀ) ବ. ନଡ଼ିଆର ପ୍ରତ୍ୟେକ ଅଂଶ ଲକ୍ଷିତ ପଦ ।

ନଡ଼ିଆମଳି—ଗ୍ରା. ବ. ନଡ଼ିଆ ବଗାଏଚ ।
ନଡ଼ିଆମଲପ—ଗ୍ରା. ବ. ନଡ଼ିଆତେଲ ।
ନଡ଼ିଆରସ—ଗ୍ରା. ବ. ନଡ଼ିଆଦୋର ।
ନଡ଼ିଆଲଡ଼ିଇ—ଗ୍ରା. ବ. ଦୁଇଟି ନଡ଼ିଆର କ୍ରୀଡ଼ାବିଶେଷ ।
ନଡ଼ିଆଲଢ଼େଇବା—ଗ୍ରା. କ୍ରି. ନଡ଼ିଆ ଦ୍ୱାରା କ୍ରୀଡ଼ା କରାଇବା ।
ନଡ଼ିଆଶୁଖା—ଗ୍ରା. ବ. ନଡ଼ିଆ ଗଣ୍ଡିର ଫମ୍ପା ଫଳ ।
ନଡ଼ିଆଶଢ଼େଇ—ଗ୍ରା. ବ. ନଡ଼ିଆ ଫଳର ଛେଲୁଆ ଆବରଣ ।
ନଡ଼ିଆଶ୍ରେଣୀ—ଗ୍ରା. ବ. ନଡ଼ିଆ ଗଛର ଚଣ୍ଡିକୁ ଛଉ ଦଉଡ଼ିରୁ କରାଯିବା ଘରର ଶ୍ରେଣୀ ।
ନଡ଼ିଆହିପ—ଗ୍ରା. ବ. ନଡ଼ିଆଶୋଢ଼ା ଦେଖ ।
ନଡ଼ିବା—ଗ୍ରା. କ୍ରି. ହଲିବା, ଗଡ଼ିକରିବା, ଲଡ଼ିବା ଦେଖ ।
ନଡ଼ୁଲ—ହି. ବି. ନଡ଼ ଦମୀପତ୍ର ପ୍ରସ୍ତୁତ ।
ନଡ଼ୁ (ଇତ୍ୟାଦି)—ଗ୍ରା. ବ. ଲଡ଼ୁ ଇତ୍ୟାଦି ଦେଖ ।
ନଡ଼ୁଆ (ଇତ୍ୟାଦି)—ଗ୍ରା. ବ. ଲଡ଼ୁଆ ଇତ୍ୟାଦି ଦେଖ ।
ନଡ୍ୟା—ସ୍ତ୍ରୀ. ବ. ନଡ଼ସମୂହ ।
ନଡ୍ୱଲ—ହି. ବି. ନଳତୃଣବହୁଳ (ଦେଶ)
ନଡ୍ୱଳ—ହି. ବି. ନଳବହୁଳ ( ଦେଶ ), (ସ୍ତ୍ରୀ) ବୈବସ୍ୱତମନୁଙ୍କ ପତ୍ନୀ, ତଦଭିମାନୀ ଦେବତାଭେଦ ।
ନଡ୍ଭୂ—ସ୍ତ୍ରୀ. ବ. କୃତ୍ରିମ । [ ଦେଖ
ନଢ଼ଇ—ଯ. ବ. 'ଫା-ଲଢ଼ଇ', ଲଢ଼ଇ
ନଢ଼ିବା—ଗ୍ରା. କ୍ରି. ଲଢ଼ିବା ଦେଖ ।
ନଢ଼େଇ—ପ୍ରା. (ବସ୍ତର) ବ. ନଡ଼ିଆ ।
ନଣନ୍ଦ(ନ୍ଦା)—ଗ୍ରା. ସ୍ତ୍ରୀ. ବ. ସ୍ୱାମୀଙ୍କ ଭଉଣୀ
ନଣନ୍ଦପଣିଆ(ଆଁ)—ପ୍ର. (ଯାଜପୁର) ବ. ଭାଉଜ ପଦଲ୍ପକ ଅଧିଲ୍ଲାତେଲେ ନଣନ୍ଦ ଦୁଆରମୁହଁ ମାଡ଼ିବସି ଭାଉଜଙ୍କୁ ବାଟ ଓଗାଳିବା ରୂପ ଅଧିକାର ।
ନଣନ୍ଦପୋଇଲ ( କ )—ଗ୍ରା. ବ. ଭାଉଜ ନଣନ୍ଦପାଇଁ ଆଣିଥିବା ଉପଢୌକନ ।
ନଣନ୍ଦେଇ—ଗ୍ରା. ପୁଂ. ବ. (ସଂ-ନନନ୍ଦୃପତି) ସ୍ୱାମୀଙ୍କ ଭଉଣୀପତି ।

ନଣ୍ଡ(ଇତ୍ୟାଦି)—ଗ୍ରା. ବ. ଲଣ୍ଡ ଇତ୍ୟାଦି [ ଦେଖ ।
ନଣ୍ଡା (ଇତ୍ୟାଦି)—ଗ୍ରା. ବ ଓ ବି. ଲଣ୍ଡା-ଇତ୍ୟାଦି ଦେଖ । [ ଦେଖ ।
ନଣ୍ଡାଇ(ଣ୍ଡେ)ଇବା—ଗ୍ରା. କ୍ରି. ଲଣ୍ଡାଇବା
ନଣ୍ଡି—ଗ୍ରା. ବ. ଲଣ୍ଡି ଦେଖ ।
ନତ—ହି. ବି. ( ନମ୍ + କ୍ତ ) ପ୍ରଣତ, ପ୍ରଣାମକାରୀ, ଲମ୍ବିହୋଇ ଶୋଇଥିବା, ନିମ୍ନମୁଖ, ଲଇଁପଡ଼ିଥିବା, ଅବନତ, କୁଟିଳ, ଶଙ୍କିତ, ନମ୍ର, ବମନୀୟ, ବକ୍ର, (ବି) ଯାମ୍ୟୋତ୍ତର ବୃତ୍ତଠାରୁ କୌଣସି ଗ୍ରହର ଦୂରତ୍ୱ ଓ ଆକାଶର ମଧ୍ୟବିନ୍ଦୁର ଦୂରତ୍ୱ, (ସ୍ତ୍ରୀ) ନତା,(କ୍ଲୀ)ତଗରପାଦୀ ।
ନତକେଟିସ୍ୱର—ଦକ୍ଷିଣାତ୍ୟର ଏକ ରାଗର ନାମ ।
ନତଗ୍ରୀବ—ପୁଂ. ବି. ( ବ. ବ୍ରୀ ) ଯାହାର ବେକ ନଇ ପଡ଼ିଛି, (ସ୍ତ୍ରୀ) ନତଗ୍ରୀବା ।
ନତଜାନୁ—ହି. ବି. (ବ. ବ୍ରୀ) ଆଣ୍ଠୁମାଡ଼ି ବସିଥିବା ।
ନତଡ଼୍—ସ. ବ. ଲତାପରି କରୁକାର୍ଯ୍ୟ ।
ନତଦ୍ରୁମ—ପୁଂ. ବ. ଏକପ୍ରକାର ଲତାଣିଆ ଶାଳବୃକ୍ଷ, ଲତାଶାଳ ।
ନତନତ—ଗ୍ରା. ବ ଓ ବି. ଲତପତ ଦେଖ
ନତନତ ହେବା—ଗ୍ରା. କ୍ରି. ଲତପତାଇବା ଦେଖ ।
ନତନଢ଼ଆ—ଗ୍ରା. ବି. ଲତପଢ଼ଆ ।
ନତନାଡ଼ିକା—ବ. ନତନାଡ଼ୀ ଦେଖ ।
ନତନାଡ଼ୀ—ବ. ଦିନ ଦ୍ୱିପ୍ରହର ପରେ ବା ରାତ୍ରି ଦ୍ୱିପ୍ରହର ପରେ କୌଣସି ଗ୍ରହ ନ ଭୂମିସ୍ଥ ହେବା ପର୍ଯ୍ୟନ୍ତ ସମୟ ।
ନତନାସିକ—ପୁଂ. ବି. (ବ. ବ୍ରୀ) ଚେପ୍ଟା ନାକ, ଅଳ୍ପ ନାସିକାଯୁକ୍ତ, (ସ୍ତ୍ରୀ) ନତନାସିକା ।
ନତନିନ୍—ପ୍ରା. (ବସ୍ତର) ବ. ନାଉଣୀ ।
ନତନୁ—ବ. (ନ + ତନୁ) ଅତନୁ, କନ୍ଦର୍ପ ।
ନତପଞ୍ଚମୀ—ବ. ଆଶ୍ୱିନ ମାସର ଶୁକ୍ଳ-ପଞ୍ଚମୀ ।
ନତପତ—ଗ୍ରା. ବ. ବି. ଲତପତ ଦେଖ ।
ନତପଢ଼ଆ—ଗ୍ରା. ବି. ଲତପଢ଼ଆ

ଦେଖ ।

ନତପର୍ବା – ବି°. (ନତ+ପର୍ବନ୍) ଯାହାର ଗଣ୍ଠି ଚେପଟା ।

ନତବଦନ—ପୁଂ. ବି°. (ବ.ବ୍ରୀ) ଯେ ଲଜ୍ଜା ବା ଆଜ୍ଞା ପାଳନଜନିତ ନମ୍ରତା ଯୋଗୁଁ ମୁଣ୍ଡ ନୁଆଁଇଁଥାଏ, ଅଧୋମୁଖ, (ସ୍ତ୍ରୀ) ନତବଦନା, (ବି. କ.ଧା) ତଳକୁ ହୋଇଥିବା ମୁହଁ, ନତମୁଖ ।

ନତବ୍ରତ—ବି. ବ୍ରତବିଶେଷ, ( ଗୋପୀମାନେ ଶ୍ରୀକୃଷ୍ଣଙ୍କୁ ସ୍ୱାମୀରୂପେ ପାଇବା ପାଇଁ ଏ ବ୍ରତ କରିଥିଲେ ।

ନତଭାଗ—ବି. ( ଜ୍ୟୋତିଷ ) କୌଣସି ତାରା ବା ଗ୍ରହର ଆକାଶର ମଧ୍ୟ ବିନ୍ଦୁଠାରୁ ଦୂରତ୍ୱ ।

ନତଭ୍ରୂ—ସ୍ତ୍ରୀ.ବି. (ବ.ବ୍ରୀ)ବକ୍ରଭ୍ରୂଲତାଯୁକ୍ତା ସ୍ତ୍ରୀ,(ବି°.ବ.ବ୍ରୀ) ଭ୍ରୂକୁଟୀଯୁକ୍ତ ।

ନତମସ୍ତକ—ପୁଂ.ବି ଓ ବି°. ନତବଦନ ଦେଖ, (ସ୍ତ୍ରୀ) ନତମସ୍ତକା ।

ନତମୁଖ— ପୁଂ.ବି ଓ ବି°. ନତବଦନ ଦେଖ, (ସ୍ତ୍ରୀ) ନତମୁଖା(ଖୀ) ।

ନତରୁ—ଗ୍ରା. ବି°. ଲତରା ଦେଖ ।

ନତଶାଖ—ବି°. (ବ.ବ୍ରୀ) ଯେଉଁ ଗଛର ଶାଖା ନଇଁପଡ଼ିଅଛି ।

ନତା – ସ୍ତ୍ରୀ. ବି°. ( ନତ + ଆ ) ପ୍ରଣତା, ଆନତା, (ଗ୍ରା.ବି) ଲତା, (ପ୍ରା.ମେଦିନୀପୁର.ବି) ମୁରୁଜ ।

ନତାଂଶ--ବି.ନତଭାଗ ଦେଖ,(ଜ୍ୟୋତିଷ) ଏକବୃତ୍ତ,ଯାହାର କେନ୍ଦ୍ର ଭୂ କେନ୍ଦ୍ରରେ କଳ୍ପିତ ଓ ଯାହା ବିଷୁବବୃତ୍ତ ରେଖା ଉପରେ ଲମ୍ବ ଭାବରେ ରହେ ।

ନତାଙ୍ଗ—ପୁଂ. ବି°. (ବ.ବ୍ରୀ) ଯାହାର ଶରୀର ନଇଁ ପଡ଼ିଅଛି ।

ନତାଙ୍ଗୀ—ସ୍ତ୍ରୀ.ବି°.(ବ.ବ୍ରୀ)ଅବନତାଙ୍ଗୀ· ସ୍ତନ ଭାରରେ ଆନତା (ଯୁବତୀ), (ସ୍ତ୍ରୀ.ବି) ନାରୀ, ସ୍ତ୍ରୀମାତ୍ର ।

ନତି—ବି.(ନମ୍+ଭା.ତି)ନମନ, ନଇଁବା, ନମ୍ରତା, ନମସ୍କାର, ବକ୍ରତା, ଆକର୍ଷଣ, ବ୍ୟାକରଣର ନିୟମାନୁସାରେ ଦନ୍ତ୍ୟ ବର୍ଣ୍ଣର କାହିଁ କାହିଁରେ ବର୍ଣ୍ଣରୂପେ ପରିବର୍ତ୍ତନ, ଜ୍ୟୋତିଷର ଏକପ୍ରକାର ଗଣନା ।

ନତୁ— ଅବ୍ୟ. (ନ+ତୁ) କିନ୍ତୁ ନୁହେ, ନୋଚେତ୍, ଅନ୍ୟଥା । [ ଅଥବା ।

ନତୁବା--ଅବ୍ୟ. ନଚେତ୍, ନହେଲେ,

ନତୋନ୍ନତ—ବି. ( ଦ୍ୱନ୍ଦ୍ୱ ) ଉଚ୍ଚାବଚ, ଉଚ୍ଚାନୀଚା, ନିମ୍ନୋନ୍ନତ । [ ଦେଖ ।

ନଥିକନା(ନି)—ଗ୍ରା. କ୍ରି. ବି°. ଲଥିକନା

ନଥ – ଗ୍ରା.ବି.ନାସିକାଭରଣବିଶେଷ, ଲଥ

ନଥନଥ—ଗ୍ରା.ଅବ୍ୟ. ଲଥ ଲଥ ଦେଖ ।

ନଥା—ଗ୍ରା. ବି. ଲଥା ଦେଖ ।

ନଥି—ଗ୍ରା.ବି. କୌଣସି ବିଷୟ ସମ୍ପର୍କୀୟ ସମସ୍ତ କାଗଜମାନ, ଯାହାକୁ ସୂତାରେ ଗୁନ୍ଥାଯାଇ ତାଡ଼ା କରାଯାଇଥାଏ, କୌଣସି ମକଦ୍ଦମା ସମ୍ପର୍କୀୟ କାଗଜପତ୍ର ।

ନଥିତଦନ୍ତ—ଗ୍ରା.ବି କଚେରିରେ ଥିବା କୌଣସି ସରକାରୀ ନଥିର ପରିଦର୍ଶନ ।

ନଥିତଲବ(ବି)—ଗ୍ରା.ବି. ମକଦ୍ଦମା ପ୍ରମାଣ ନିମିତ୍ତ ନଥି ଉପସ୍ଥାପିତ ହେବା ନିମନ୍ତେ ଆଦେଶ ।

ନଥିବା—ଗ୍ରା. ବି°. ଅନୁପସ୍ଥିତ, ଗରିବ, ଅଭାବଗ୍ରସ୍ତ ।

ନଥିଭୁକ୍ତ—ଗ୍ରା.ବି°. ସମ୍ପର୍କୀୟ ନଥିସଙ୍ଗେ ସଂଯୁକ୍ତ ହେବା (କାଗଜ) ।

ନଦ—ପୁଂ. ବି. (ନଦ୍+କ.ଅ) ସ୍ରୋତ ବିଶିଷ୍ଟ ଜଳପ୍ରବାହ, (ସ୍ତ୍ରୀ) ନଦୀ ।

ନଦ—ଅର୍ଚ୍ଚା, ପୂଜା, ସ୍ତୁତି, ସନ୍ତୋଷ ।

ନଦଉ(ଇତ୍ୟାଦି)—ଗ୍ରା. ବି. ଲଦଉଇତ୍ୟାଦି ଦେଖ ।

ନଦକା—ଗ୍ରା. ବି°. ଲଦକା ଦେଖ ।

ନଦଥୂ—ପୁଂ. ବି. ବୃଷଭକୁକୁଦ ।

ନଦନ—ଗ୍ରା. ବି. ଲଦନ ଦେଖ, (ବି) (ନଦ୍+ଭା.ଅନ) ଶବ୍ଦ କରିବା ।

ନଦନଦୀପତି—ପୁଂ.ବି.(ଷତତ୍) ସମୁଦ୍ର ।

ନଦନୁ—ପୁଂ.ବି.(ନଦ୍+କ.ଅନୁ)ମେଘ, ସିଂହ, (ନଦ+ଭା.ଅନୁ) ଶବ୍ଦ ।

ନଦନୁମତ୍—ତ୍ରି. ବି°. ଶବ୍ଦଯୁକ୍ତ, ଶବ୍ଦବାନ୍ ।

ନଦର—ବି.(ନଦ+ର)ନଦ ବା ନଦୀର ପାର୍ଶ୍ୱବର୍ତ୍ତୀ ପ୍ରଦେଶ, (ବି°–ନ+ଦର) ନିର୍ଭୟ, ନିଡ଼ର । [ ଦେଖ ।

ନଦର(ଇତ୍ୟାଦି)—ଯା.ନଜର ଇତ୍ୟାଦି

ନଦରାଜ—ପୁଂ. ବି. ସମୁଦ୍ର ।

ନଦା—ଗ୍ରା. ବି. ଲଦବା ।

ନଦା(ଦେ)ଇବା—ଗ୍ରା. କ୍ରି. ଲଦାଇବା ଦେଖ ।

ନଦାଣ—ଗ୍ରା. ବି. ବି°. ଲଦାଣ ଦେଖ ।

ନଦାନ୍‌ଚିବସ୍ଥା—ଗ୍ରା.ବି.ଅତି ଶୋଚନୀୟ ଓ ଅକଥନୀୟ ଅବସ୍ଥା, ଅତି ଗରିବ-ଅବସ୍ଥା, (ବି°) ଅତିଗରିବ ।

ନଦାନଦ—ଗ୍ରା.ବି. ବୋଝଆଦି ଲଦିବା ।

ନଦାମୁ—ଗ୍ରା. ବି. ଲଦାମୁ ଦେଖ ।

ନଦାରଦ୍(ଦ୍)—ଯା. ଅବ୍ୟ. ନାସ୍ତି, ନାହିଁ, ଅନୁପସ୍ଥିତ, ଅସ୍ଥିତ ।

ନଦି—ପୁଂ. ବି. (ନଦ୍+ଭା.ଇ)ସ୍ତୁତି ।

ନଦିଆ—ଗ୍ରା. ବି. (ସଂ-ନବଦ୍ୱୀପ) ବଙ୍ଗ ଦେଶର ଗୋଟିଏ ଜିଲ୍ଲା ବା ସହର, ଏକପ୍ରକାର ଧାନ ।

ନଦିଆକୀର୍ତ୍ତନ—ଗ୍ରା. ବି. ବଙ୍ଗଳା ଭାଷା ଓ ବଙ୍ଗଳା ସ୍ୱରମିଶା ସଂକୀର୍ତ୍ତନ ।

ନଦିଆଚାନ୍ଦ—ଗ୍ରା. ବି. ଶ୍ରୀ ଗୌରଚନ୍ଦ୍ର, ଶ୍ରୀ ଚୈତନ୍ୟଦେବ ।

ନଦିକା—ବି. ( ନଦ + ସ୍ୱାର୍ଥେ, କ+ସ୍ତ୍ରୀ କ୍ଷୁଦ୍ରାର୍ଥେ,ଆ) କ୍ଷୁଦ୍ର ନଦୀ ।

ନଦିନକରିବା—ଗ୍ରା. (ପୁରୀ) କ୍ରି. ଗୁଣ୍ଡିରୁ ଯାହାଠାରୁ ବାହୁଡ଼ା ପର୍ଯ୍ୟନ୍ତ ବ୍ୟବସ୍ଥା କରିବା ।

ନଦିବା—ଗ୍ରା. କ୍ରି. ଲଦିବା ଦେଖ ।

ନଦୀ—ସ୍ତ୍ରୀ. ବି. (ନଦ+ସ୍ତ୍ରୀ.ଈ) ନଦର ସ୍ତ୍ରୀଲିଙ୍ଗ, ନଦ ଦେଖ ।

ନଦୀକଦମ୍ବ—ପୁଂ. ବି. ମହାଶ୍ରାବଣିକା, (କ୍ଲୀ. ଷତତ୍) ନଦୀସମୂହ ।

ନଦୀକାନ୍ତ—ପୁଂ. ବି. (ଷତତ୍) ସମୁଦ୍ର, (ବ.ବ୍ରୀ) ହିଜ୍ଜଳବୃକ୍ଷ, କାକଜଙ୍ଘା ଲତା, ଜମ୍ବୁକବୃକ୍ଷ, ସିନ୍ଧୁବାରକ ବୃକ୍ଷ ।

ନଦୀକାନ୍ତା—ବି. ଜାମୁଗଛ, କାକଜଙ୍ଘା ଦେଖ ।

ନଦୀକାଶ୍ୟପ—ପୁଂ. ବି. ଶାକ୍ୟମୁନିଙ୍କ ସମୟର ଜଣେ ଲୋକ ।

ନଦୀକୂଳ—କ୍ଲୀ.ବି.(୬ତତ୍) ତୀର, ତଟ, ନଈକିନାର ।

ନଦୀକୂଳପ୍ରିୟ—ବି. (୬ତତ୍ ଓ ବ.ବ୍ରୀ) ଜଳବେତସ ।

ନଦୀକୂଳବନ୍ଧୁ—ବି.(୬ତତ୍) ନଈକୂଳରେ ବାସ କରୁଥିବା ପକ୍ଷିବିଶେଷ ।

ନଦୀକୂଳସ୍ଥ—ତ୍ରି.ବିଂ. (ନଦୀକୂଳ+ସ୍ଥା+ଅ) ତଟସ୍ଥ, ନଦୀ ତୀରସ୍ଥିତ ।

ନଦୀକୁକଣ୍ଠ—ନେପାଳୀ ବୌଦ୍ଧମାନଙ୍କର ଗୋଟିଏ ତୀର୍ଥସ୍ଥାନ ।

ନଦୀଗର୍ଭ—ପୁଂ. ବି. ( ୬ତତ୍ ) ନଦୀର ଉଭୟ କୂଳର ମଧ୍ୟବର୍ତ୍ତୀ ସ୍ଥାନ ।

ନଦୀଗାୟନ--ମଧ୍ୟଭାରତ ଅନ୍ତର୍ଗତ ଦତିୟା ରାଜ୍ୟର ଗୋଟିଏ ନଗର ।

ନଦୀଜ—ତ୍ରି ବିଂ. ( ନଦୀ+ଜନ୍+କ. ଅ) ନଦୀରୁ ଉତ୍ପନ୍ନ, ( ପୁଂ.ବି ) ଭୀଷ୍ମ. ହିଜ୍ଜଳଗଛ, ଅର୍ଜ୍ଜୁନଗଛ, କଳାସୁର୍ମା, ସମୁଦ୍ରଫଳ, (ସ୍ତ୍ରୀ) ନଦୀଜା ।

ନଦୀଜା—ସ୍ତ୍ରୀ. ବିଂ. (ନଦୀଜ+ଆ) ନଦୀଜର ସ୍ତ୍ରୀଲିଙ୍ଗ, (ବି) ଅଗ୍ନିମନ୍ଥବୃକ୍ଷ ।

ନଦୀଜାତ—ବିଂ. (୫ତତ୍)ନଦୀଜ ଦେଖ ।

ନଦୀଜ୍ଞ—ବି. ( ନଦୀ+ଜ୍ଞା+କ.ଅ ) ନଦୀରେ ବାଟ କଢୁଆଳ, (ବିଂ) ନଦୀର ଗଭୀରତାଦିରେ ଅଭିଜ୍ଞ ।

ନଦୀତଟ—ବି. (୬ତତ୍) ନଦୀକୂଳ ।

ନଦୀତର—ତ୍ରି. ବିଂ. ( ନଦୀ+ତୃ+ଅ ) ନଦୀର ପରପାରେ ଗମନ ।

ନଦୀତରସ୍ଥାନ—କ୍ଲୀ. ବି. (ନଦୀ+ତୃ+ଅ+ସ୍ଥାନ) ନଈପାରି ହେବା ଘାଟ ।

ନଦୀତୀର—ବି. (୬ତତ୍) ନଈକୂଳ ।

ନଦୀଦତ୍ତ—ପୁଂ.ବି. ବୁଦ୍ଧଦେବଙ୍କର ଏକ ନାମ । [ ମାସୁଲ ।

ନଦୀଦୋହ—ପୁଂ. ବି. ( କ.ଧା ) ନଈ

ନଦୀଧର—ପୁଂ.ବି. (ନଦୀ+ଧୃ+କ.ଅ) ଶିବ, ମହାଦେବ ।

ନଦୀନ—ପୁଂ.ବି.(୬ତତ୍)ସମୁଦ୍ର, ବରୁଣ, ବରୁଣଗଛ, (ବିଂ. ନ+ଦୀନ) ଦୀନଭିନ୍ନ, ଯେ ଦରିଦ୍ର ନୁହେଁ,(ସ୍ତ୍ରୀ)ନଦୀନା ।

ନଦୀନଷ୍ଟାବ—ପୁଂ. ବି. ଦାନ୍ତୁଅଧାନ ।

ନଦୀପଙ୍କ—ପୁଂ. କ୍ଲୀ. ନଦୀର ପଙ୍କ ବା କାଦୁଅ ।

ନଦୀପତି—ପୁଂ. ବି. (୬ତତ୍) ସମୁଦ୍ର, ବରୁଣ ।

ନଦୀପୁର—ପୁଂ. ବି.ଯେଉଁ ନଦୀ ବନ୍ୟା ଜଳରେ ତଟସ୍ଥିତ ଗ୍ରାମାଦି ପ୍ଲାବିତ କରେ ।

ନଦୀପ୍ରଦେଶ—ପୁଂ. ବି. (ମଧ୍ୟ-କ.ଧା)ନଦୀ ଯେଉଁ ପ୍ରଦେଶ ଦେଇ ପ୍ରବାହିତ ହୁଏ, ଯେଉଁ ପ୍ରଦେଶର ସମସ୍ତ ଜଳ ଗୋଟିଏ ନଦୀକୁ ବୋହିଯାଏ ।

ନଦୀପ୍ରବାହ—ବି. (୬ତତ୍) ନଈର ସୁଅ, ନଦୀସ୍ରୋତଃ ।

ନଦୀବକ୍ଷଃ—ବି. (୬ତତ୍) ନଦୀର ଜଳମଧ୍ୟ ଅଂଶର ଉପରିଭାଗ ।

ନଦୀବଙ୍କ—ବି. (୬ତତ୍) ନଦୀର ବାଙ୍କ ।

ନଦୀବଟ—ବି. ବଟବୃକ୍ଷ ।

ନଦୀବନ୍ୟା—ବି. ( ୬ତତ୍ ) ନଈବଢ଼ି, ନଦୀର ଜଳବୃଦ୍ଧି,ବର୍ଷାଦିଯୋଗୁଁ ନଦୀର ଜଳ ସ୍ଫୀତି । [ ଦେଖ ।

ନଦୀବୃଦ୍ଧି—ବି. ( ୬ତତ୍ ) ନଦୀବନ୍ୟା

ନଦୀଉଦ୍ଭବ—ବିଂ. (୭ତତ୍) ନଦୀଜାତ, (ସ୍ତ୍ରୀ) ନଦୀଭବା, (ବି) ସୈନ୍ଧବ ଲବଣ

ନଦୀଭବ—ବିଂ. ( ନଦୀ+ଭୂ+କ.ଅ ) ନଦୀରୁ ଉତ୍ପନ୍ନ, (ବି) ସୈନ୍ଧବ ଲୁଣ ।

ନଦୀଭଷକ—ବି. ମାଣସାରୁ ଦେଖ ।

ନଦୀମାତୃକ—ପୁଂ.ବିଂ. (ବ.ବ୍ରୀ) ଯେଉଁ ଦେଶରେ ନଦୀଜଳ ସାହାଯ୍ୟରେ ଶସ୍ୟାଦି ଉତ୍ପନ୍ନ ହୁଏ,(ସ୍ତ୍ରୀ)ନଦୀମାତୃକା, (ଦେବମାତୃକ—ବିପରୀତ) ।

ନଦୀମାଷକ—ବି. ମାଣସାରୁ ।

ନଦୀମୁଖ—ବି. (୬ତତ୍) ନଈର ମୁହାଣ, ନଦୀ ଓ ସମୁଦ୍ରର ସଙ୍ଗମ ସ୍ଥାନ, (ରୂପକ-କ.ଧା) ସମୁଦ୍ରର ନଦୀରୂପ ଜଳ ନିଃସରଣ ପଥ । [ ଦେଖ ।

ନଦୀରୟ—ବି. ( ୬ତତ୍ ) ନଦୀପ୍ରବାହ

ନଦୀଶ—ବି. (୬ତତ୍) ସମୁଦ୍ର ।

ନଦୀଷ୍ଣ—ପୁଂ. ବିଂ. (ନଦୀ+ସ୍ନା+କ.ଅ) ଯେ ନଦୀରେ ସ୍ନାନ କରେ, ନଦୀଜ୍ଞ ଦେଖ, (ସ୍ତ୍ରୀ) ନଦୀଷ୍ଣା ।

ନଦୀସର୍ଜ୍ଜ—ବି. ଅର୍ଜ୍ଜୁନ ବୃକ୍ଷ ।

ନଦୀସେକପୁଷ୍ଟ—ଯା. ନଦୀ ଧୌତ ।

ନଦୀସ୍ନାୟୀ—ପୁଂ. ବିଂ. (ନଦୀ+ସ୍ନା+କ.ଇନ୍) ଯେ ନଦୀରେ ସ୍ନାନ କରେ, (ସ୍ତ୍ରୀ) ନଦୀସ୍ନାୟିନୀ ।

ନଦୀସ୍ରୋତଃ—ବି. ( ୬ତତ୍ ) ନଈର ସୁଅ, ନଦୀପ୍ରବାହ ।

ନଦେୟୀ—ବି. ( ନଦ+ଢେୟ୍+ଆ ) ଭୂଇଁଜାମୁ ।

ନଦ୍ୟାମ୍ର—ବି. ସମଷ୍ଠିଲା ବୃକ୍ଷ ।

ନଦ୍ୟାବର୍ତ୍ତିକ—ବି. ଜ୍ୟୋତିଷୋକ୍ତ ଯୋଗବିଶେଷ । [ ସ୍ଥାନ ।

ନଦ୍ୟୁତ୍ସୃଷ୍ଟ—ବିଂ. ନଦୀ କର୍ତ୍ତୃକ ତ୍ୟକ୍ତ

ନଧ୍ୟମ୍ବା—ଉତ୍ତର ପଶ୍ଚିମ ପ୍ରଦେଶରେ ଗୋୟାଲାମାନଙ୍କର ଗୋଟିଏ ଶ୍ରେଣୀ ।

ନଦ୍ଧ—ବିଂ.(ନହ୍+ର୍ମ.ତ) ବନ୍ଧା ହୋଇଥିବା, ବଦ୍ଧ, ପିନଦ୍ଧ, ପରିହିତ, ପିନ୍ଧା ଯାଇଥିବା, ବ୍ୟାପ୍ତ ।

ନଦ୍ଧ୍ରୀ—ସ୍ତ୍ରୀ. ବି. ( ନହ୍+ଣି.ଚ+ଈ ) ଚର୍ମମୟ ରଜ୍ଜୁ, ଚମଡାଡ଼ୋର ।

ନନନ୍ଦା—ସ୍ତ୍ରୀ. ବି. (ନ+ନନ୍ଦ୍+ଅ+ଆ) ନଣନ୍ଦ, ଭର୍ତ୍ତୃଭଗିନୀ ।

ନନାନ୍ଦା—ସ୍ତ୍ରୀ.ବି. ନଣନ୍ଦ, ଭର୍ତ୍ତୃଭଗିନୀ ।

ନନା—ସ୍ତ୍ରୀ. ବି. ମାତା, କନ୍ୟା, ବାକ୍ୟ, (ଗ୍ରା.ବି) ଜ୍ୟେଷ୍ଠଭ୍ରାତା, ବଡ଼ଭାଇ, ବ୍ରାହ୍ମଣଙ୍କୁ ଇତର ଜାତିର ସମ୍ବୋଧନ, (ପ୍ରା. ପୁରୀଜିଲ୍ଲାର ବ୍ରାହ୍ମଣଙ୍କ ବ୍ୟବହୃତ ଶବ୍ଦ) ପିତା, ବାପ, ଗୃହକର୍ତ୍ତା, (ପ୍ରା. ସମ୍ବ. ଯା.ବି) ପିଉସୀ ।

ନନାଗୋସା(ସେ)ଇଁ—ଗ୍ରା.ବି ଓ ସମ୍ବୋଧନ. ସାଧାରଣ ବ୍ରାହ୍ମଣଙ୍କ ପ୍ରତି ସମ୍ବୋଧନ ।

ନନୀ—ପ୍ରା.(ଗଡ଼ଜାତ) ବି. (ସଂ-ନବନୀତ) ନହୁଣୀ, ରଜାଝିଅ, ଜେମା,ଦେହୁଲାଝିଅ, (ପ୍ରା. ସମ୍ବ. ବି) ବ୍ରାହ୍ମଣ କନ୍ୟା ।

ନନୁ—ଅବ୍ୟ. (ନ+ନୁଦ୍+କ.ଉ) ପ୍ରଶ୍ନ,

ସ୍ୱୀକାର, ସନ୍ଦେହ, ନିଶ୍ଚୟ, ଅନୁନୟ, ନିରୋଧ ଓ ଆମନ୍ତ୍ରଣ ଅର୍ଥବୋଧକତା।
ନନୁଚ—ଅବ୍ୟ. ନିଗେଧୋକ୍ତି।
ନନ୍ଦ(ଧାତୁ)—ଆନନ୍ଦିତ ହେବା।
ନନ୍ଦ—ବି. ( ନନ୍ଦ୍+ଭା.ଅ ) ଆନନ୍ଦ, (ନନ୍ଦି+କ.ଅ) ଶ୍ରୀକୃଷ୍ଣଙ୍କର ପାଳକ ପିତା, ବିଷ୍ଣୁ, ପାଟଳିପୁତ୍ର (ମଗଧର) ଚନ୍ଦ୍ରବଂଶୀୟ ରାଜବଂଶ, ନନ୍ଦବଂଶର ପ୍ରଥମ ରାଜା, କୁବେରଙ୍କ ନଅ ନିଧି ମଧ୍ୟରୁ ଏକତମ ନିଧି, ୧୧ ଇଞ୍ଚ ଲମ୍ବ ବେଣୁ ବା ବଂଶୀବିଶେଷ, ମୃଦଙ୍ଗବିଶେଷ, ପରମେଶ୍ୱର, ମଦିରା ଗର୍ଭଜାତ ବସୁଦେବଙ୍କ ପୁତ୍ର, ବୁଦ୍ଧଦେବଙ୍କ ବୈମାତୃକ ଭାଇ, ବେଙ୍ଗ, କୁମାରାନୁଚର ଭେଦ, (ସ୍ଥା.ବି) ବୈଦିକ ବ୍ରାହ୍ମଣଙ୍କ ଉପାଧିବିଶେଷ,(ସଂ-ନାନ୍ଦୀପଟ)କୂଅରେ ବେଢ଼ାଯିବା ମାଟି ବା ପଥରର ବଳୟାକାର ବେଷ୍ଟନୀ, ଧାନ ରଖିବା ନିମିତ୍ତ ବ୍ୟବହୃତ ମାଟି ବା ପଥରର ବଳୟାକାର ବେଷ୍ଟନୀ,ଯାହାକୁ ଘରର ଚଟାଣ ଉପରେ ରଖନ୍ତି, (ପ୍ରା.ସମ୍.ବି)ଗଉଡ଼ମାନଙ୍କ ଶ୍ରେଣୀବିଶେଷ।
ନନ୍ଦକ—ପୁଂ. ବିଂ. ( ନନ୍ଦ+କ.ଅକ ) ଆନନ୍ଦପ୍ରଦ,ଆନନ୍ଦକାରକ,କୁଳପାଳକ (ବି. ନନ୍ଦ+ଣ. ଅକ) ଶ୍ରୀକୃଷ୍ଣଙ୍କ ଖଡ୍ଗ, (ନନ୍ଦ+ସ୍ୱାର୍ଥେ.କ)କୃଷ୍ଣଙ୍କ ପିତା ନନ୍ଦ, ଆନନ୍ଦ, ଭେକ, ବେଙ୍ଗ, ଧୃତରାଷ୍ଟ୍ରଙ୍କର ଜଣେ ପୁତ୍ର,ସ୍କନ୍ଦଙ୍କ ଅନୁଚର ବିଶେଷ, ନାଗ ବିଶେଷ।
ନନ୍ଦକି—ପୁଂ. ବି. ପିପ୍ପଳୀ।
ନନ୍ଦକିଶୋର—ପୁଂ. ବି. ( ୬ତତ୍ପୁ ) ଶ୍ରୀକୃଷ୍ଣଙ୍କ ନାମ, ଗ୍ରା. ବି. ଶ୍ରୀବୃନ୍ଦାବନଲୀଳାମୃତରଚୟିତା।
ନନ୍ଦକିଶୋରଦାସ(ରାୟବାହାଦୁର)—ଗ୍ରା. ବି. ଗଭର୍ଣ୍ଣମେଣ୍ଟଙ୍କ ଦ୍ୱାରା ସମ୍ମାନିତ ଓ ଉଚ୍ଚଅଧିକାର ପ୍ରାପ୍ତ ଉତ୍କଳର ଜଣେ ବ୍ୟକ୍ତି।
ନନ୍ଦକିଶୋରବଳ (ରାୟସାହେବ)—ଗ୍ରା. ବି. ଉତ୍କଳର ଆଧୁନିକ କବିବିଶେଷ।
ନନ୍ଦକିଶୋରପଠା—ଗ୍ରା.ବି. ନନ୍ଦକେଶ୍ୱର ଦେଖ।
ନନ୍ଦକୀ—ପୁଂ. ବି. ବିଷ୍ଣୁ।
ନନ୍ଦକୁମାର—ପୁଂ. ବି. (୬ତତ୍ପୁ) ଶ୍ରୀକୃଷ୍ଣ, ବଙ୍ଗଳାର ରାଜା।
ନନ୍ଦକୁମାରବସୁ—୨୪ ପରଗଣାନ୍ତର୍ଗତ ବହଡ଼୍ଗ୍ରାମର ଜମିଦାରବଂଶର ପ୍ରତିଷ୍ଠାତା।
ନନ୍ଦକୁମାରରାୟ—ଏ ୱାରେନ୍‌ହେଷ୍ଟିଂସଙ୍କ ବିରୁଦ୍ଧେ କାର୍ଯ୍ୟକରିଥିବା ହେତୁ ଫାସି ପାଇଥିଲେ।
ନନ୍ଦକୁମାରବିଦ୍ୟାଭୂଷଣ—ଜଣେସଂସ୍କୃତ କାବ୍ୟରଚୟିତା।
ନନ୍ଦକୂଜା—ରାଜସାହୀଜିଲ୍ଲା ବଡ଼ାଳନଦୀର ଗୋଟିଏ ଶାଖା।
ନନ୍ଦଗୋପ—ବି.ଶ୍ରୀକୃଷ୍ଣଙ୍କ ପାଳକ ପିତା
ନନ୍ଦଗୋପିତା—ସ୍ତ୍ରୀ. ବି. ରାସ୍ନା।
ନନ୍ଦଘୋଷ—ବି. ନନ୍ଦଗୋପ ଦେଖ।
ନନ୍ଦଥୁ—ପୁଂ. ବି. ( ନନ୍ଦ୍+ଭା.ଅଥୁ ) ଆନନ୍ଦ।
ନନ୍ଦଦ—ପୁଂ. ବିଂ.(ନନ୍ଦ+ଦା+କ.ଅ) ଆନନ୍ଦଦାୟକ,(ବି)ପୁତ୍ର,(ସ୍ତ୍ରୀ)ନନ୍ଦଦା।
ନନ୍ଦଦାସ—ଜଣେ ଖ୍ୟାତନାମା ସଂସ୍କୃତବିତ୍, ଜଣେ ଓଡ଼ିଆ କବି।
ନନ୍ଦଦାସସାଧୁ—ଜଣେ ବୈଷ୍ଣବ ସାଧୁ।
ନନ୍ଦଦୁଲାଲ—ଗ୍ରା.ବି. (୬ତତ୍ପୁ) ଶ୍ରୀକୃଷ୍ଣ।
ନନ୍ଦଦେବ—ନେପାଳର ଠାକୁରବଂଶୀୟ ଚତୁର୍ଥ ରାଜା।
ନନ୍ଦନ—ପୁଂ. ବି. (ନନ୍ଦ୍+ଣିଚ୍+କ. ଅନ ) ପୁଅ, ନନ୍ଦନକାନନ, ଆସାମ କାମାଖ୍ୟା ଦେଶର ପର୍ବତ ବିଶେଷ, ଭେକ, ବିଷ୍ଣୁ, ଶିବ, କାର୍ତ୍ତିକେୟଙ୍କ ଅନୁଚର ବିଶେଷ, ବିଷବିଶେଷ, ବାସ୍ତୁଶାସ୍ତ୍ରର ଷଟ୍‌କୋଣ ଗୃହ, କେଶର, ଚନ୍ଦନ,ମେଘ,ଜ୍ୟୋତିଷୋକ୍ତ ସଂବତ୍ସର ବିଶେଷ, ବର୍ଣ୍ଣବୃତ୍ତ ବିଶେଷ, ( ତ୍ରିଂ ) ଆନନ୍ଦଦାୟକ, (ସ୍ତ୍ରୀ) ନନ୍ଦନା।
ନନ୍ଦନକାନନ—କ୍ଲୀ. ବି. ( ମଧ୍ୟ-କ.ଧା ) ସ୍ୱର୍ଗସ୍ଥ ଇନ୍ଦ୍ରୋଦ୍ୟାନ।
ନନ୍ଦଚକ୍ରବର୍ତ୍ତୀ—ଦକ୍ଷିଣାତ୍ୟ ବିଜୟନଗର ଅଞ୍ଚଳର ଜଣେ ରାଜା।
ନନ୍ଦନଜ—କ୍ଲୀ. ବି. (ନନ୍ଦନ+ଜନ୍+କ.ଅ ) ହରିଚନ୍ଦନ, ଉତ୍କୃଷ୍ଟ ଚନ୍ଦନ, ଶ୍ରୀକୃଷ୍ଣ, (ତ୍ରିଂ) ଆନନ୍ଦଜାତ ମାତ୍ର।
ନନ୍ଦନତରୁ—ବି. (୬ତତ୍ପୁ) ନନ୍ଦନକାନନରେ ଥିବା ବୃକ୍ଷ।
ନନ୍ଦନନ୍ଦନ—ପୁଂ. ବି. (୬ତତ୍ପୁ) ଶ୍ରୀକୃଷ୍ଣ, (ସ୍ତ୍ରୀ) ନନ୍ଦନନ୍ଦନା।
ନନ୍ଦନନ୍ଦିନୀ—ସ୍ତ୍ରୀ. ବି. (୬ତତ୍ପୁ) ଦୁର୍ଗା।
ନନ୍ଦନବନ—ବି. ନନ୍ଦନକାନନ ଦେଖ, କପା।
ନନ୍ଦନମାଳା—ସ୍ତ୍ରୀ. ବି. ମାଳାଭେଦ।
ନନ୍ଦନସର—କାଶ୍ମୀରର ଗୋଟିଏ କ୍ଷୁଦ୍ର ହ୍ରଦ। [ ସ୍ଥିତ।
ନନ୍ଦନା—ସ୍ତ୍ରୀ. ବି.(ନନ୍ଦନ+ଆ) କନ୍ୟା,
ନନ୍ଦନାଥ—ଭାସ୍କର କୃତ ନବରତ୍ନମାଳାର ଜଣେ ଟୀକାକାର। [ଗାଁ।
ନନ୍ଦନାବାସୀ—ବଙ୍ଗବ୍ରାହ୍ମଣ ବିଶେଷଙ୍କର
ନନ୍ଦନ୍ତ—ପୁଂ. ବି. ପୁତ୍ର, ରାଜା, ମିତ୍ର।
ନନ୍ଦପାଳ—ପୁଂ. ବି. ( ନନ୍ଦ+ପାଲ୍+କ.ଅ) କୁବେର, ବରୁଣ।
ନନ୍ଦପୁତ୍ରୀ—ସ୍ତ୍ରୀ. ବି. (୬ତତ୍ପୁ) ଦୁର୍ଗା।
ନନ୍ଦପ୍ରୟାଗ—ଗ୍ରା. ବି. ଭାରତର ତୀର୍ଥ ବିଶେଷ। [ରାଜା।
ନନ୍ଦପ୍ରଭଞ୍ଜନବର୍ମ୍ମ—କଳିଙ୍ଗର ଜଣେ
ନନ୍ଦବଂଶ—ବି. ମଗଧର ଏକ ପ୍ରସିଦ୍ଧ ରାଜବଂଶ।
ନନ୍ଦବଂଶ—ବୈଶ ରାଜପୁତ୍‌ମାନଙ୍କର ଶାଖା ବିଶେଷ।
ନନ୍ଦବନ—ନନ୍ଦନ କାନନ।
ନନ୍ଦବନା—ଅଜମୀରର ଗୋଟିଏ ବଣିକ ଜାତି।
ନନ୍ଦବନୋର—ରାଜପୁତାନାର ଏକ ଶ୍ରେଣୀର ବ୍ରାହ୍ମଣ।
ନନ୍ଦବରକ—ତେଲିଙ୍ଗ ନିୟୋଗି ବ୍ରାହ୍ମଣମାନଙ୍କର ଗୋଟିଏ ଥାକ।
ନନ୍ଦବର୍ଦ୍ଧନ—ମଗଧର ଜଣେ ରାଜା।
ନନ୍ଦୟନ୍ତ—ତ୍ରି. ବିଂ. ଆନନ୍ଦଜନକ।

ନନ୍ଦରବାର—ବୋମ୍ବାଇ ଖାନ୍ଦେଶ ଜିଲ୍ଲାର ଗୋଟିଏ ଉପବିଭାଗ ।
ନନ୍ଦରାଣୀ-ଗ୍ରା.ସ୍ତ୍ରୀ.ବି.ନନ୍ଦପତ୍ନୀ,ଯଶୋଦା ।
ନନ୍ଦରାମ—ଗ୍ରା.ପୁଂ. ବି. ଲୋକଙ୍କ ନାମ ।
ନନ୍ଦରାମ—ଜଣେ ବିଖ୍ୟାତ ଜ୍ୟୋତିର୍ବିଦ୍
ନନ୍ଦରାମଦାସ—ମହାଭାରତକାର କାଶୀରାମଙ୍କ ପୁତ୍ର ।
ନନ୍ଦଲାଲ—ପୁଂ.ବି.(ନନ୍ଦ୍+ଲାଲ+ମ.ଅ) ଶ୍ରୀକୃଷ୍ଣ, ଲୋକଙ୍କ ନାମ ।
ନନ୍ଦସାଆନ୍ତ—ଗ୍ରା. ବି. ନନ୍ଦଉପାଧିଧାରୀ କୁଳୀନ ବ୍ରାହ୍ମଣ ।
ନନ୍ଦସୁତ—ପୁଂ. ବି. (୬ତତ୍) ନନ୍ଦଙ୍କ ପୁତ୍ର ଶ୍ରୀକୃଷ୍ଣ, (ସ୍ତ୍ରୀ) ନନ୍ଦସୁତା ।
ନନ୍ଦସୁତା—ସ୍ତ୍ରୀ.ବି. ନନ୍ଦନନ୍ଦିନୀ ଦେଖ ।
ନନ୍ଦସୁନ୍ଦର—ନନ୍ଦା ଏବଂ ତାହାର ଭଗିନୀ ନନ୍ଦବାଳା ।
ନନ୍ଦା—ସ୍ତ୍ରୀ. ବି. (ନନ୍ଦ+ଣିର୍+କ.ଅ +ଆ) ନନ୍ଦିଆ, ବୃହତ୍ ଜଳପାତ୍ର, ଗୌରୀ, ଦୁର୍ଗା, ଶୁଭତିଥିବିଶେଷ,ନଣନ୍ଦ, ଧନସମ୍ପତ୍ତି, ନନ୍ଦ ଗୋପଙ୍କର ଗାଭୀବିଶେଷ, ଆନନ୍ଦ, ଅପ୍ସରାବିଶେଷ, ବିଭୀଷଣଙ୍କ କନ୍ୟା । [ଚିଙ୍ଗୁଡ଼ି ।
ନନ୍ଦାଚିଙ୍ଗୁଡ଼ି—ପ୍ରା. (ସିଂହଭୂମ) ବି. ବଡ଼
ନନ୍ଦାତୀର୍ଥ—ପୁଂ. ବି. ତୀର୍ଥରୂପ ନଦୀବିଶେଷ ।
ନନ୍ଦାତ୍ମଜ—ପୁଂ. ବି. (୬ତତ୍) ଶ୍ରୀକୃଷ୍ଣ, (ସ୍ତ୍ରୀ) ନନ୍ଦାତ୍ମଜା, ଯୋଗମାୟା ।
ନନ୍ଦାଦେବୀ—ଗ୍ରା. ବି. ହିମାଳୟର ଉଚ୍ଚ ଶୃଙ୍ଗବିଶେଷ ।
ନନ୍ଦାପୁରାଣ—ଖଣ୍ଡିଏ ଉପପୁରାଣ ।
ନନ୍ଦାବର୍ତ୍ତ—ଗ୍ରା. ବି. ବର୍ତ୍ତୁଳ ପକାଘର, ଏକପାଖୁଡ଼ିଆ ଟଗର ଫୁଲ ଓ ଗଛ, ତୁମ୍ବବାଣର 'ପେନ୍ଦ' ଖେଳିବା ପୂର୍ବରୁ ମାପ ଅନୁସାରେ ଟାଣିବା ଚକ୍ର ।
ନନ୍ଦାମାଛ—ପ୍ରା. ( ସିଂହଭୂମ ) ବୁଢ଼ା ଚିଙ୍ଗୁଡ଼ିମାଛ । [ବିଶେଷ ।
ନନ୍ଦାର୍କ—ବିହାର ବ୍ରାହ୍ମଣ ସମ୍ପ୍ରଦାୟ-
ନନ୍ଦାଶ୍ରମ—ପୁଂ.ବି. (୬ତତ୍) ତୀର୍ଥଭେଦ ।
ନନ୍ଦାହ୍ରଦତୀର୍ଥ—କ୍ଲୀ. ବି. ତୀର୍ଥଭେଦ ।

ନନ୍ଦି—ପୁଂ ବା କ୍ଲୀ. ( ନନ୍ଦ+ଭା.ଇ ) ଆନନ୍ଦ, (ନନ୍ଦି+ଣ.ଇ) ଦ୍ୟୂତାଙ୍ଗବିଶେଷ, ପୁଂ. (ନନ୍ଦି+କ.ଇ) ଶିବଙ୍କ ଅନୁଚରବିଶେଷ, ବିଷ୍ଣୁ, ଶିବ, ଧବଗଛ, ନାଟକର ମଙ୍ଗଳାଚରଣପାଠକାରୀ, ଜାମାତାଙ୍କ ମିତ୍ର, (ବି) ଆନନ୍ଦଜନକ, (ଗ୍ରା. ବି) ଶୂଦ୍ରମାନଙ୍କର ବଂଶୋପାଧିବିଶେଷ ।
ନନ୍ଦିଆ—ଗ୍ରା.ବି. ବଡ଼ ଜଳାଧାର, କୁଣ୍ଡ, ଜାହାଲ, ଅଳିଞ୍ଜର ।
ନନ୍ଦିକ—ବି. (ନନ୍ଦି+ସ୍ୱାର୍ଥେ.କ) ଧବ ବୃକ୍ଷ, ବୃକ୍ଷବିଶେଷ,ଆନନ୍ଦ, ଖୁବ୍‌ମୋଟା ବାର୍ଷିକ ଉଦ୍ଭିଦବିଶେଷ ।
ନନ୍ଦିକର—ପୁଂ. ବି. ଶିବ ।
ନନ୍ଦିକା—ସ୍ତ୍ରୀ. ବି. (ନନ୍ଦି+କ+ସ୍ତ୍ରୀ.ଆ) ନନ୍ଦନକାନନ, ଇନ୍ଦ୍ରଙ୍କ କ୍ରୀଡ଼ାସ୍ଥାନ, (ନନ୍ଦା + ସ୍ୱାର୍ଥେ.କା + ସ୍ତ୍ରୀ.ଆ) ନନ୍ଦିଆ, ନନ୍ଦାତିଥି, ନଣନ୍ଦ, ଦୁର୍ଗା, ଶ୍ରେଷ୍ଠ ଜଳପାତ୍ର, ହର୍ଷମୁଖୀ ସ୍ତ୍ରୀ ।
ନନ୍ଦିକାଗ୍ରୀୟତନ୍ତ୍ର—ଖଣ୍ଡିଏ ସଂସ୍କୃତ ବୈଦିକ ତନ୍ତ୍ର ।
ନନ୍ଦିକାବର୍ତ୍ତ—ପୁଂ.ବି. ଏକପ୍ରକାର ମଣି ।
ନନ୍ଦିକୁଣ୍ଡ—କ୍ଲୀ. ବି. ତୀର୍ଥଭେଦ ।
ନନ୍ଦିକେଶ—ପୁଂ. ବି. ନନ୍ଦିକେଶ୍ୱର ।
ନନ୍ଦିକେଶ୍ୱର—ପୁଂ. ବି. (୬ତତ୍) ଶିବଙ୍କ ଦ୍ୱାରପାଳ, ପୁରାଣବିଶେଷ ।
ନନ୍ଦିକେଶ୍ୱର—ଏକ ସଂସ୍କୃତ ଜ୍ୟୋତଷୀ, ଦାକ୍ଷିଣାତ୍ୟ ବିଜାପୁରର ଖଣ୍ଡିଏ ଗ୍ରାମ ।
ନନ୍ଦିକେଶ୍ୱରକାରିକା—ପାଣିନିର ଅଷ୍ଟାଧ୍ୟାୟୀର ପ୍ରଥମେ ବର୍ଣ୍ଣିତ ଶିବସୂତ୍ରର ଗୂଢ଼ ବ୍ୟାଖ୍ୟା ।
ନନ୍ଦିକେଶ୍ୱରପୁରାଣ—ନନ୍ଦୀଶ୍ୱର ଓ ନନ୍ଦୀ ପୁରାଣ ନାମେ ଖ୍ୟାତ ।
ନନ୍ଦିକେଶ୍ୱରୀ—ଗ୍ରା. ସ୍ତ୍ରୀ. ବି. ସୁବର୍ଣ୍ଣକେଶରୀଙ୍କ କନ୍ୟା, ଓଡ଼ିଆ କାବ୍ୟବିଶେଷ ।
ନନ୍ଦିକେଶ୍ୱରୀପଠା—ଗ୍ରା. ବି. ମହାନଦୀ ମଧ୍ୟସ୍ଥ ପଠାବିଶେଷ ।
ନନ୍ଦିଗ୍ରାମ—ବି. ଅଯୋଧ୍ୟା ନିକଟବର୍ତ୍ତୀ ଗ୍ରାମବିଶେଷ ।

ନନ୍ଦିଗ୍ରାମୀ—ବଙ୍ଗବାରେନ୍ଦ୍ର ବ୍ରାହ୍ମଣମାନଙ୍କର ଉପାଧି ।
ନନ୍ଦିଘୋଷ—ତ୍ରି. ବି°. (ବ.ବ୍ରୀ) ଆନନ୍ଦଜନକ ଶବ୍ଦଯୁକ୍ତ, ( ପୁଂ.ବି-କ.ଧା ) ଅର୍ଜ୍ଜୁନ ରଥ, ଆନନ୍ଦଜନକ ଧ୍ୱନି,ଆନନ୍ଦଜନକ ଘୋଷଣା, ଜଗନ୍ନାଥଙ୍କ ରଥ ।
ନନ୍ଦିତ—ପୁଂ. ବି°. ( ନନ୍ଦ୍+କ. ତ ) ଆନନ୍ଦିତ, (ନନ୍ଦି+ମ.ତ) ତୋଷିତ ।
ନନ୍ଦିତରୁ—ପୁଂ.ବି. ଧବବୃକ୍ଷ, ଧଅଗଛ ।
ନନ୍ଦିତୂର୍ଯ୍ୟ—କ୍ଲୀ. ବି. ବାଦ୍ୟବିଶେଷ ।
ନନ୍ଦିଦୁର୍ଗ—ମହୀସୁର ଅନ୍ତର୍ଗତ କୋଲାର ଗିରିଦୁର୍ଗ ।
ନନ୍ଦିଧ୍ୱଜ—କାନାଡ଼ୀଭାଷାରେ ଲିଖିତ ଉପାଖ୍ୟାନବିଶେଷ ।
ନନ୍ଦିନୀ—ସ୍ତ୍ରୀ. ବି. ( ନନ୍ଦ+ଣିଚ୍+ଇନ୍ ଈ ) ଆନନ୍ଦଦାୟିନୀ, (ବି) କନ୍ୟା, ଦୁହିତା, ନଣନ୍ଦ, ଦୁର୍ଗା, ଗଙ୍ଗାନଦୀ, ପରଶୁରାମଙ୍କ ମାତା ରେଣୁକା, ବଶିଷ୍ଠଙ୍କ ହୋମ ଧେନୁ, ଅଯୋଧ୍ୟା, ବ୍ୟାଡ଼ିମୁନିଙ୍କ ମାତା, ହାଲିମ ଦେଙ୍କ, ତୁଳସୀଗଛ, ଜଟାମାଂସୀ, ରେଣୁକା ନାମକ ଗନ୍ଧଦ୍ରବ୍ୟ, ପତ୍ନୀ, ଏକବୃତ୍ତ ।
ନନ୍ଦିନୀତୀର୍ଥ—କ୍ଲୀ. ବି. ତୀର୍ଥବିଶେଷ
ନନ୍ଦିପୁରାଣ—କ୍ଲୀ.ବି.ଖଣ୍ଡିଏ ଉପପୁରାଣ ।
ନନ୍ଦିବର୍ଦ୍ଧନ—ପୁଂ. ବି°. ( ନନ୍ଦି+ବର୍ଦ୍ଧନ, ୬ତତ୍ ବା ଉପ ) ଆନନ୍ଦ ବୃଦ୍ଧିକାରୀ, ବି.ପୁତ୍ର, ମହାଦେବ,ବନ୍ଧୁ,ମିତ୍ର, ଆନନ୍ଦ, ନିମିବଂଶୀୟ ରାଜାବିଶେଷ, ମୌର୍ଯ୍ୟବଂଶୀୟ ରାଜାବିଶେଷ ।
ନନ୍ଦିବାରଲକ—ପୁଂ.କ୍ଲୀ.ବି.ମତ୍ସ୍ୟଭେଦ ।
ନନ୍ଦିବୃକ୍ଷ—ନନ୍ଦୀବୃକ୍ଷ ଦେଖ ।
ନନ୍ଦିବେଗ—ପୁଂ. ବି. କଳିଯୁଗୀୟ ଅପକୃଷ୍ଟ ନୃପତିଭେଦ ।
ନନ୍ଦିଷେଣ—ଅଜିତଶାନ୍ତିସ୍ତବ ଗ୍ରନ୍ଥପ୍ରଣେତା ।
ନନ୍ଦିସ୍ୱାମୀ—ଜଣେ ବୈୟାକରଣ ।
ନନ୍ଦୀ—ପୁଂ. ବି. (ନନ୍ଦ+ଇନ୍)ଶିବଙ୍କର ପ୍ରଧାନ ଅନୁଚର, ଶିବଙ୍କ ଦ୍ୱାରପାଳ

ମଧ୍ୟରୁ ଏକତର, ବଟବୃକ୍ଷ, ତୁନ୍ତ୍ରଗଛ, ଗୁନ୍ଦ, ଧବଗଛ, ଗର୍ଦ୍ଦଭାଣ୍ଡବୃକ୍ଷ, ତ୍ରିଶୂଳାଙ୍କିତ ବୃକ୍ଷ, ବିଷ୍ଣୁ, ଯେଉଁ ବଳଦ ଦେହରେ ଅଧିକା ଗୋଟିଏ ଚର୍ମପିଣ୍ଡ ବାହାରିଥାଏ, ନନ୍ଦନକାନନ, (ପୁଂ.ବିଂ) ଆନନ୍ଦିତ, (ସ୍ତ୍ରୀ) ନନ୍ଦନୀ, ଦୁର୍ଗା ।

ନନ୍ଦୀଟ—ପୁଂ.ବିଂ. (ନନ୍ଦୀ + ଟ) ଲଣ୍ଡାମୁଣ୍ଡା, ଟାଙ୍ଗରା, (ସ୍ତ୍ରୀ) ନନ୍ଦୀଟା ।

ନନ୍ଦୀବୃକ୍ଷ—ପୁଂ. ବି. ଗନ୍ଧଟୁଣ୍ଡି, ମେଣ୍ଢାଶିଙ୍ଗା, ତୁନ୍ତ୍ରଗଛ, ସୁଗନ୍ଧ ବୃକ୍ଷବିଶେଷ ।

ନନ୍ଦୀଭୃଙ୍ଗୀ—ବି. (ଦ୍ୱନ୍ଦ୍ୱ) ମହାଦେବଙ୍କ ପ୍ରଧାନ ଦ୍ୱାରପାଳଦ୍ୱୟ ।

ନନ୍ଦୀଭୃକୁଟୀ—ଗ୍ରା.ବି. ନନ୍ଦୀଭୃଙ୍ଗୀ ଦେଖ, କୌଣସି ଲୋକର ଅନୁଚରଦ୍ୱୟ ।

ନନ୍ଦୀମୁଖ—ନନ୍ଦମୁଖ ଦେଖ । [ତନ୍ଦ୍ରା ।

ନନ୍ଦୀମୁଖୀ—ବି. ନିଦ୍ରାଳୁତା, ଅବସନ୍ନତା,

ନନ୍ଦୀଶ—ପୁଂ. ବି. (୬ତତ୍) ମହାଦେବ, ଶିବ, ଶିବଙ୍କ ଦ୍ୱାରପାଳ ନନ୍ଦୀ, ତାଳଭେଦ ।

ନନ୍ଦୀଶ୍ୱର—ପୁଂ.ବି. ଶିବ, ତାଳବିଶେଷ, ଶିବଙ୍କ ଦ୍ୱାରପାଳ ନନ୍ଦୀ, ବୃନ୍ଦାବନସ୍ଥ ଲୀଳା ସ୍ଥାନ ।

ନନ୍ଦୀଶ୍ୱର ଆଚାର୍ଯ୍ୟ ଗୋପାଳାଶ୍ରମରୂପ—ଅଦ୍ୱୈତ ବ୍ରହ୍ମବିଦ୍ୟାପଦ୍ଧତି ନାମକ ଦାର୍ଶନିକ ଗ୍ରନ୍ଥକାର ।

ନନ୍ଦୀସରଃ—କ୍ଲୀ. ବି. ଇନ୍ଦ୍ରଙ୍କ ଉଦ୍ୟାନ ମଧ୍ୟସ୍ଥ ସରୋବର ।

ନନ୍ଦେର—ଦାକ୍ଷିଣାତ୍ୟ ହାଇଦ୍ରାବାଦର ଗୋଟିଏ ନଗର ।

ନନ୍ଦୋତ୍ସବ—ବି. (ନନ୍ଦ + ଉତ୍ସବ) ଶ୍ରୀକୃଷ୍ଣଙ୍କର ଜନ୍ମାଷ୍ଟମୀ ଜନ୍ମୋତ୍ସବ, ଜନ୍ମାଷ୍ଟମୀବାସୀ ଉତ୍ସବ ।

ନନ୍ଦୋଦ୍ଭବ—ବି. ପ୍ରାଚୀନ ଉତ୍କଳର ରାଜବଂଶବିଶେଷ ।

ନନ୍ଦୋଡ଼—ବୋମ୍ବାଇ ରାଜପିପ୍ଲାଇ ରାଜ୍ୟର ରାଜଧାନୀ ।

ନନ୍ଦୋତ୍ର—ଗୁଜରାଟ ବ୍ରାହ୍ମଣମାନଙ୍କର ଏକ ଶ୍ରେଣୀ ।

ନନ୍ଦୋର—ଅଯୋଧ୍ୟାର ପ୍ରତାପଗଡ଼ ଜିଲ୍ଲାର ଗୋଟିଏ ନଗର ।

ନନ୍ଦ୍ୟ—ବି. ବିଂ. (ନନ୍ଦ + ର୍ମ.ଯ) ଆହ୍ଲାଦାର୍ହ, ଆନନ୍ଦଯୋଗ୍ୟ, (ସ୍ତ୍ରୀ) ନନ୍ଦ୍ୟା ।

ନନ୍ଦ୍ୟାଦ—ପୁଂ.ବି. ପାଣିନ୍ୟୁକ୍ତ ଶବ୍ଦଗଣବିଶେଷ ।

ନନ୍ଦ୍ୟାବର୍ତ୍ତ—ପୁଂ ବି. ଏକପ୍ରକାର ଗୋଲ ପକ୍କାଘର, ଯହିଁର ପଶ୍ଚିମରେ ଦ୍ୱାର ନ ଥାଏ, ତଗରଗଛ ।

ନନ୍ଧା—ଗ୍ରା. ବି. ଘରଚାଳର କାଷ୍ଠ ଉପକରଣବିଶେଷ, ଲୋଧା, ଝୁରି ବାନ୍ଧିବା କର୍ମ ।

ନନ୍ଧାଯୋତ—ଗ୍ରା.ବି. ଶଗଡ଼ ଯୁଆଳିରେ ବନ୍ଧା ରଜ୍ଜୁବିଶେଷ ।

ନନ୍ଧିବା—ଗ୍ରା. କ୍ରି. ଶଗଡ଼ ଝୁରିକୁ ଦଉଡ଼ିରେ ଭିଡ଼ି ବାନ୍ଧିବା ।

ନନ୍ନୟ—ଏ ତେଲୁଗୁ ଭାଷାର ବ୍ୟାକରଣ ପ୍ରଣେତା ।

ନନ୍ନସୂର—ସର୍ବଦେବଙ୍କ ଗୁରୁ ।

ନନ୍ନିଲମ୍—ମାନ୍ଦ୍ରାଜ ତାଞ୍ଜୋର ଜିଲ୍ଲାର ଗୋଟିଏ ଉପବିଭାଗ ।

ନପତ୍ରକତ୍—ପୁଂ.ବି. (ନ + ପତ୍ର + କ + ର୍ମ.କ୍ୱିପ୍) ମହାଦେବ ।

ନପାତ୍—ବି. ବିଂ. ଅରକ୍ଷକ, ଅପାତକ ।

ନପାତ—ପୁଂ. ବି. ଦେବଯାନ ପଥ ।

ନପାହେବା—ଗ୍ରା. (ପ୍ରାଚୀନ) କ୍ରି. କାଠର ଖାପରେ ଭୁକ୍ତାହେବା ।

ନପୁଂସ—ଗ୍ରା. ବି ଓ ବିଂ. ନପୁଂସକ ଦେଖ, (ସ୍ତ୍ରୀ) ନପୁଂସୀ ।

ନପୁଂସକ—କ୍ଲୀ. ବିଂ. ( ନ + ପୁମାନ୍, ନିପାତନ) ପୁରୁଷତ୍ୱହୀନ, ହେଜ୍ରେଡ଼ା, ଅଣପୁରୁଷା, ଯାହାଠାରେ ପୁରୁଷ ଓ ସ୍ତ୍ରୀ ଉଭୟ ଚିହ୍ନ ଅଛି, କ୍ଳୀବ, ଛିନ୍ନମୁଷ୍କ, (ବ୍ୟାକରଣ) ନପୁଂସକ ଲିଙ୍ଗ ବାଚକ (ଶବ୍ଦ), ଭୀରୁ, (ବି) ପୁରୁଷତ୍ୱହୀନ ବ୍ୟକ୍ତି, ତୃତୀୟ ପ୍ରକୃତି, କ୍ଳୀବଲିଙ୍ଗ, କ୍ଳୀବଲିଙ୍ଗ ବାଚକ ଶବ୍ଦ । [ହୀନ ।

ନପୁଂସକି—ଗ୍ରା. ବିଂ. ନପୁଂସକ, ପୁରୁଷତ୍ୱ

ନପୁଣ—ଗ୍ରା. ଅବ୍ୟ. କେଜାଣି ଅବା, କାଳେ, ଆଶଙ୍କା ହେଉଅଛି ଯେ ।

ନପୁମସ୍—ପୁଂ. କ୍ଲୀ. ବି. କ୍ଳୀବ ।

ନପୁର—ଗ୍ରା. ପାଦାଳଙ୍କାର, ନୂପୁର ।

ନପ୍ତା—ପୁଂ. ବି. ( ନ + ପତ୍ + ଣି.ତୃ ) (ଯାହାଦ୍ୱାରା ବଂଶପତିତ ହୁଏ ନାହିଁ) ପୌତ୍ର ବା ଦୌହିତ୍ର, ନାତି, (ସ୍ତ୍ରୀ) ନପ୍ତ୍ରୀ ।

ନପ୍ତ୍ରୀ—ସ୍ତ୍ରୀ. ବି. ନାତୁଣୀ । [ବିଶେଷ ।

ନପ୍ତ୍ରୃକା—ସ୍ତ୍ରୀ. ବି. ବିଷ୍କିରଶ୍ରେଣୀ ପକ୍ଷି-

ନଫ—ଯା. ବି. ନାଭି ।

ନଫର—ଯା. ବି. ଭୃତ୍ୟ, ଚାକର, ଅନୁଚର ।

ନଫରଚାକର—ଯା. ବି. ଚାକରଆଦି ।

ନଫରାଲି—ଯା. ବି. ଭୃତ୍ୟର କାର୍ଯ୍ୟ, ଚାକିରି ।

ନଫା—ଯା. ଲାଭ, ସୁବିଧା, ଆନୁଷଙ୍ଗିକ ଖର୍ଚ୍ଚ ବାଦ୍ ଆୟ ।

ନଫିରି—ଯ ବି. ଭେରୀ ବାଦ୍ୟ ଭେଦ ।

ନଫୁର—ଯା. ବି. ତୁରୀ ।

ନବ—ପୁଂ. ବି. ( ନୁ + ଭା.ଅ ) ସ୍ତବ, ସ୍ତୋତ୍ର, ପ୍ରଶଂସା, କାକ, କୁଆ ନାଡ଼, ପୁରୁଣୀଶାଗ, ଡନର ଡନଗୁଣ ସଂଖ୍ୟା, ବିଂ. (ନୁ + ର୍ମ.ଅ) ନୂତନ, ଅଳ୍ପଦିନ ହେଲା ଘଟିଥିବା, ଡଟକା, ଯୁବକ, ନଅ, (ଗ୍ରା.ବି) ଲବ ଦେଖ, ନବକିଶୋରଙ୍କ ଡାକନାମ ।

ନବକ—ବିଂ. (ନବ + କ) ନଅସଂଖ୍ୟକ, (ବି) ନଅ ସଂଖ୍ୟାର ସମାହାର ।

ନବକଳିକା—ସ୍ତ୍ରୀ. ବି. (କ.ଧା) ନବକୋରକ, ନୂତନ କଢ଼ି, (ସ୍ତ୍ରୀ.ବି) ନବୋଢ଼ା ସ୍ତ୍ରୀ, ସ୍ତ୍ରୀସଙ୍ଗକାରିକା, ସଙ୍ଗକାରିଣୀ ସ୍ତ୍ରୀ, ନବରଜୋବତୀ ନାରୀ ।

ନବକାରିକା—ସ୍ତ୍ରୀ.ବିଂ. (କ.ଧା) ନବୀନକର୍ତ୍ତ୍ରୀ, ନବୋଢ଼ା, (ବି) ସଂକ୍ଷିପ୍ତ ବିବରଣ ଶ୍ଳୋକ ।

ନବକାଳିକା—ସ୍ତ୍ରୀ. ବିଂ. (ନବକାଳ + ଇକ + ଆ) ନବୀନ, ନୂତନ, (ବି-କ.ଧା) ନୂତନ ମେଘ, ନବୋଢ଼ା ସ୍ତ୍ରୀ, ନବ ରଜୋବତୀ ନାରୀ ।

ନବକିଶୋର—ବି. ଯୁବକ ଶ୍ରୀକୃଷ୍ଣଙ୍କ ନାମ, (ଗ୍ରା.ବି) ପୁରୁଷଙ୍କୁ ଦିଆଯିବା ନାମ ।

ନବକୁମାର—ପୁଂ.ବି. (କ.ଧା) ନୂଆପୁଅ, ଶିଶୁପୁତ୍ର, (ସ୍ତ୍ରୀ) ନବକୁମାରୀ ।

ନବକୁମାରୀ—ବି.ଦୁର୍ଗାପୂଜାର ନବରାତ୍ରରେ ପୂଜନୀୟା ନଅଟି କୁମାରୀ,ଯାହାଙ୍କଠାରେ ଯଥାକ୍ରମେ ଦୁର୍ଗାଙ୍କର ନଅଟି ମୂର୍ତ୍ତିଙ୍କର କଳ୍ପନା କରାଯାଏ ।

ନବଖଣ୍ଡ—ବି. ପୌରାଣିକ ଭୂଗୋଳ ଅନୁସାରେ ପୃଥିବୀର ନବଖଣ୍ଡ, (ଯଥା- ଭରତଖଣ୍ଡ, ଇଳାବୃତ୍ତ, କିଂପୁରୁଷ, ଭଦ୍ର, କେତୁମାଳ, ହରି, ହିରଣ୍ୟ ରମ୍ୟ ଓ କୁଶ) ।

ନବଗଙ୍ଗା—ନଦୀୟା ଜିଲ୍ଲାରେ ପ୍ରବାହିତ ମାଥାଭଙ୍ଗା ନଦୀର ଗୋଟିଏ ଶାଖା ।

ନବଗୁଞ୍ଜର—ଗ୍ରା. ବି. କାଳ୍ପନିକ ପଶୁବିଶେଷ, (ଗ୍ରା.ସମ୍ବ.ବି) ମହାବଳବାଘ ।

ନବଗୁଣ—ବି. ନଅଗୁଣ, ନଅଖିଅ ସୂତା-ପିଡ଼ିକ ବ୍ରାହ୍ମଣର ପଇତା ।

ନବଗ୍ରହ—ପୁଂ. ବି. (କ.ଧା) ନଅଗୋଟି ପ୍ରସିଦ୍ଧ ଜ୍ୟୋତିଷ୍କ (ଯଥା:—ସୂର୍ଯ୍ୟ, ଚନ୍ଦ୍ର, ମଙ୍ଗଳ, ବୁଧ, ବୃହସ୍ପତି, ଶୁକ୍ର, ଶନି, ରାହୁ ଓ କେତୁ) ।

ନବଘନ—ବି.(କ.ଧା)ନବୋଦିତ ମେଘ ନୂଆମେଘ ।

ନବଘନବର୍ଣ୍ଣ—ବି. (କ.ଧା ଓ ୬ତତ୍ର) ନବୋଦିତ ମେଘର ବର୍ଣ୍ଣପରି କୃଷ୍ଣବର୍ଣ୍ଣ, (ବିଂ.ବ.ବ୍ରୀ) ନବୋଦିତ ମେଘପରି କଳା ।

ନବଘନଶ୍ୟାମ—ବିଂ. (କ.ଧା) ନୂଆ ମେଘପରି ଶ୍ୟାମଳବର୍ଣ୍ଣ, (ବି) କୃଷ୍ଣଙ୍କ ନାମ ।

ନବଙ୍ଗ—ଗ୍ରା. ବି. ଲବଙ୍ଗ ଦେଖ ।

ନବଚନ୍ଦ୍ରାଙ୍ଗ—ପୁଂ. ବି. ଶିବ ।

ନବଚତ୍ୱାରିଂଶ—ତ୍ରି. ବିଂ. ଅଣଚାଶର ପୂରକ ।

ନବଚତ୍ୱାରିଂଶତ୍—ବି ଓ ବିଂ.(ମଧ୍ୟ କ.ଧା) ଅଣଚାଶ, ଊନପଞ୍ଚାଶତ୍, ୪୯ ।

ନବଛାତ୍ର—ବିଂ.(କ.ଧା) ନବୀନବିଦ୍ୟାର୍ଥୀ, ଶିକ୍ଷ୍ୟାକାର ।

ନବଛିଦ୍ର—କ୍ଲୀ. ବି. (ବ.ବ୍ରୀ) ଶରୀର, ନବଦ୍ୱାର ଦେଖ ।

ନବଜ—ଗ୍ରା. ବି. ନାଡ଼ୀ, ଲବଜ ଦେଖ, (ବିଂ) ନବଜାତ ।

ନବଜାତ—ତ୍ରି.ବିଂ. (କ.ଧା) ଉତ୍ପନ୍ନ, କଅଁଳା, ଅଳ୍ପକାଳ ହେଲା ଜାତ (ସନ୍ତାନ), (ସ୍ତ୍ରୀ) ନବଜାତା ।

ନବଜୀବନ—କ୍ଲୀ. ବି. (କ.ଧା) ନୂତନ ଜୀବନଲାଭ, ଅପକୃଷ୍ଟ ଅବସ୍ଥାପରେ ଉତ୍କୃଷ୍ଟ ଅବସ୍ଥା, ସାଂଘାତିକ ରୋଗରୁ ଆରୋଗ୍ୟ ବା ସ୍ୱାସ୍ଥ୍ୟ ।

ନବଜ୍ୱର—ପୁଂ.ବି. (କ.ଧା) ତରୁଣଜ୍ୱର, ଅଳ୍ପଦିନ ହେଲା ଆକ୍ରମଣ କରିଥିବା ଜ୍ୱର ।

ନବଜ୍ୱରରସ—ନବଜ୍ୱରରେ ପ୍ରୟୋଗ ଔଷଧବିଶେଷ ।

ନବଜ୍ୱରବଟୀ—ରସଘଟିତ ଔଷଧବିଶେଷ ।

ନବଜ୍ୱରେଭସିଂହ—ଔଷଧବିଶେଷ ।

ନବତତ୍ତ୍ୱ—ସ.ବି. ନବତତ୍ତ୍ୱ ଦେଖ ।

ନବତ—ପୁଂ.ବି. (ନବ+ତନ୍+କ.ଅ) ହସ୍ତୀପୃଷ୍ଠରେ ପଡ଼ିବା ଆସ୍ତରଣ,କମଳ, ଉର୍ଣ୍ଣାବସ୍ତ୍ର, ଘୋଡ଼ାହେବା ଚଦର, ଗୋଡ଼ଣୀ, (ବିଂ) ନବତିତମ ଦେଖ. (ସ୍ତ୍ରୀ) ନବତି ।  [ନୂଆ ।

ନବତନ—ଗ୍ରା.ବି. ଯୁବତୀ ସ୍ତ୍ରୀ,(ଗ୍ରା. ବିଂ)

ନବତନୁ—ପୁଂ.ବି.(କ.ଧା) ନୂତନ ତନୁ. ନୂତନ ତନୁଯୁକ୍ତ ପଶୁ, ବଣ୍ଟିମିଅପୂଜା-ବିଶେଷ ।

ନବତରୁଣ—ପୁଂ.ବି. (କ.ଧା) ନବଯୁବା, (ସ୍ତ୍ରୀ) ନବତରୁଣୀ ।

ନବତା(ତ୍ୱ)—ବି. (ନବ+ଭା.ତା) ନୂତନତ୍ୱ ।

ନବତାରାବଳୀ—ସ୍ତ୍ରୀ.ବି. ନୂତନ ତାରକା-ଶ୍ରେଣୀ, ନଅଟି ନକ୍ଷତ୍ର ।

ନବତି—ସ୍ତ୍ରୀ.ବି ଓ ବିଂ. (ନବ+ସଙ୍ଖ୍ୟାର୍ଥେ ତି) ଦଶସଂଖ୍ୟାର ନଅଗୁଣ, ୯୦ ।

ନବତିକା—ସ୍ତ୍ରୀ.ବି. (ନବ+ତିକ୍+କ. ଅ+ଆ) ତୂଳିକା, ତୂଳୀ, (ନବତି+କ+ଆ) ନବତି ଦେଖ ।

ନବତିତମ—ବିଂ. (ନବତି+ପୂରଣାର୍ଥେ, ତମ) ୯୦ର ପୂରକ, ନବତିସ୍ଥାନସ୍ଥ ।

ନବଧା—କ୍ରି.ବିଂ. (ନବନ୍+ଧା) ନବ ପ୍ରକାର, ନବଗୁଣ ।

ନବତଶଃ—ଅବ୍ୟ. ବହୁନବତ ।

ନବତୀ—ସ୍ତ୍ରୀ.ବି. ନବତ ।

ନବତ୍ୱ—କ୍ଲୀ ବି, (ନବ+ତ୍ୱ) ନବୀନତା, ନୂତନତ୍ୱ ।

ନବଦଣ୍ଡ—କ୍ଲୀ.ବି. (ବ.ବ୍ରୀ) ରାଜଛତ୍ର-ବିଶେଷ ।

ନବଦମ୍ପତି—ପୁଂ.ବି. (ଦ୍ୱନ୍ଦ୍ୱ ଓ କ.ଧା) ନବବିବାହିତ ବରକନ୍ୟା ।

ନବଦଳ—କ୍ଲୀ.ବି. (କ.ଧା) ନୂତନପତ୍ର, କଅଁଳପତ୍ର, ନୂଆ ପଦ୍ମପତ୍ର,ପଦ୍ମକେଶର ସମୀପସ୍ଥ ପାଖୁଡ଼ା ।

ନବଦଶ—ତ୍ରି. ବିଂ. (ମଧ୍ୟ-କ.ଧା) ଊନବିଂଶତି ।  [ଗ୍ରହ ।

ନବଦୀଧିତି—ପୁଂ. ବି. (ବ.ବ୍ରୀ) ମଙ୍ଗଳ-

ନବଦୁରୁନା—ଗ୍ରା.ସ୍ତ୍ରୀ.ବି. (ସଂ-ନବଦୁର୍ଗା) ଛଇଳୀ ସ୍ତ୍ରୀ ।

ନବଦୁର୍ଗା—ସ୍ତ୍ରୀ. ବି. (କ.ଧା) ଦୁର୍ଗାଙ୍କର ପୁରାଣୋକ୍ତ ନଅଟିରୂପ ।

ନବଦେବକୁଳ—ପୂର୍ବକାଳରେ ଗଙ୍ଗା-ତୀରରେ କନୌଜର ପରପାରେ ଥିବା ଗୋଟିଏ ନଗର ।

ନବଦୋଳା—ସ୍ତ୍ରୀ. ବି. ନୂତନ ଦୋଳା, ନବୀନ ଦୋଳା ।

ନବଦ୍ୱାର—କ୍ଲୀ.ବି.(ଦ୍ୱିଗୁ)ଶରୀରର ନଅ-ଗୋଟି ଦ୍ୱାର ବା ବାଟ, (ବିଂ.ବ.ବ୍ରୀ) ନଅଟି ଫୋଡ଼ ବା ଛିଦ୍ର ଥିବା,ଯଥା—ଦୁଇ ଚକ୍ଷୁ, ଦୁଇ କର୍ଣ୍ଣ, ଦୁଇ ନାସା, ଏକ ମୁଖ, ଏକ ପାୟୁ, ଓ ଏକ ଉପସ୍ଥ, ନଅଗୋଟି ଦ୍ୱାରବିଶିଷ୍ଟ ।  [ଦେହ ।

ନବଦ୍ୱାରପୁର—ଗ୍ରା. ବି. (କ.ଧା)ଶରୀର,

ନବଦ୍ୱୀପ—ଗ୍ରା. ବି. ବଙ୍ଗର ପ୍ରାଚୀନ ରାଜଧାନୀ, ନଦିଆ, ଭୂମଧ୍ୟବର୍ତ୍ତୀ ସ୍ଥାନ ପର୍ଯ୍ୟନ୍ତ ବିସ୍ତୃତ ନବଦ୍ୱୀପଯୁକ୍ତ ଶସ୍ୟର୍ଦ୍ଧ ସ୍ଥାନ, (ବି) ନବଖଣ୍ଡ ଦେଖ ।

ନବଦ୍ୱୀପମସ୍ଥ—ଗ୍ରା.ସ୍ତ୍ରୀ.ବି. ଶରୀର,ଦେହ (ବି) ନବଖଣ୍ଡବିଶିଷ୍ଟ ପୃଥିବୀ ।

ନବଦ୍ୟ—ବି°. ( ନ+ବଦ୍+ମି.ଯ ) ଅକଥନୀୟ, ଅବାଚ୍ୟ ।

ନବଧା—ବି° ଓ କ୍ରି.ବି°. (ନବ+ପ୍ରକାରାର୍ଥେ ଧା) ନଅପ୍ରକାରରେ, ନଅଥର, ନଅଦଫାରେ, ନଅଗୁଣ ।

ନବଧାଅଙ୍ଗ—ବି. ଦେହର ନଅଗୋଟି ଅଙ୍ଗ, ଯଥା—ଦୁଇ ଆଖି, ଦୁଇ କାନ, ଦୁଇ ହାତ, ଦୁଇ ଗୋଡ଼ ଓ ଏକ ନାକ ।

ନବଧାତୁ—ପୁଂ.ବି. (କ.ଧା) ନଅଗୋଟି ଧାତୁଦ୍ରବ୍ୟ, ସ୍ୱର୍ଣ୍ଣ, ରୌପ୍ୟ, ପିତ୍ତଳ, ସୀସକ, ତାମ୍ର, ଟଙ୍କ, ଲୌହ, କାଂସ୍ୟ ଓ କାନ୍ତଲୌହ ।

ନବଧାଭକ୍ତି—ବି.ପ୍ରେମ ବା ଭକ୍ତିର ନଅଗୋଟି ଅଙ୍ଗ, (ଯଥା—ଶ୍ରବଣ, କୀର୍ତ୍ତନ, ସ୍ମରଣ, ପାଦସେବନ, ଅର୍ଚ୍ଚନା, ସ୍ତବ, ପରିଚର୍ଯ୍ୟା, ସଖା ଭାବରେ ସମ୍ଭାଷଣ ଓ ଦାସ୍ୟ ରୂପେ ଆତ୍ମସମର୍ପଣ ।

ନବନନ୍ଦ—ବି. ( କ.ଧା ) ନୂଆ କାହ୍ନୁଆ, ଶ୍ରୀକୃଷ୍ଣ ।

ନବନବତି—ସ୍ତ୍ରୀ.ବି ଓ ବି°.(ମଧ୍ୟ.କ.ଧା) ଏକଶତରୁ ଏକସଂଖ୍ୟା ଊଣା,ଅନେଶତ

ନବନବତିତମ—ବି. ବି°. ଅନେଶତ ସଂଖ୍ୟାର ପୂରଣ,(ସ୍ତ୍ରୀ)ନବନବତିତମୀ ।

ନବନବକ—କ୍ଲୀ. ବି. ଦକ୍ଷସଂହିତୋକ୍ତ ଜ୍ଞାତବ୍ୟ ଏକାଶୀତି ପଦାର୍ଥ ।

ନବନଳୀଚକ୍ର—କ୍ଲୀ. ବି. ଚକ୍ରଭେଦ ।

ନବନିଧି—ବି.ନଅପ୍ରକାର ରତ୍ନ, (ଯଥା—ମୁକ୍ତା, ମାଣିକ୍ୟ, ବୈଦୂର୍ଯ୍ୟ,ଗୋମେଦ, ହୀରା, ପ୍ରବାଳ, ପଦ୍ମରାଗ, ମରକତ, ନୀଳକାନ୍ତ ।

ନବନିଶି—ଗ୍ରା. ବି°. ନୂଆ ହୋଇ ଶାଣ ଦିଆଯାଇଥିବା, ସୁତୀକ୍ଷ୍ଣ ।

ନବନିଶିତ—ବି°. (ନବ + ନି + ଶୋ + ମି.ତ)ନୂଆହୋଇ ଶାଣ ଦିଆଯାଇଥିବା ।

ନବନୀ—କ୍ଲୀ. ବି. (ନବ+ନୀ+ମି.କ୍ୱିପ୍ ନବନୀତ, ଲହୁଣୀ ।

ନବନୀତ—କ୍ଲୀ.ବି. (ନବ+ନୀ+ମି.ତ) ଲହୁଣୀ, ମାଖନ ।

ନବନୀତକ—କ୍ଲୀ.ବି.(ନବନୀତ+ସଂଜ୍ଞାର୍ଥେ.କ) ଘୃତ, ଘିଅ, ( ସ୍ୱାର୍ଥେ,କ ) ଲହୁଣୀ ।

ନବନୀତଧେନୁ—ସ୍ତ୍ରୀ. ବି. ( ମଧ୍ୟ-କ.ଧା ) ଦାନାର୍ଥ ନବନୀତ ନିର୍ମିତା ଧେନୁ ।

ନବପଞ୍ଚମ—ପୁଂ. ବି. ବିବାହାଙ୍ଗ ଗଣିକୂଟ ଭେଦ । [ ୧୫ ସଂଖ୍ୟା ।

ନବପଞ୍ଚଶତ—ସ୍ତ୍ରୀ. ବି. ସଂଖ୍ୟାବିଶେଷ.

ନବପତ୍ରିକା—ସ୍ତ୍ରୀ.ବି. (ନବ+ପତ୍ର+କ+ଆ.ବି.ସ୍ତ୍ରୀ;ନଅଟି ପତ୍ରନିର୍ମିତ ଦୁର୍ଗାମୂର୍ତ୍ତି. ଆଶ୍ୱିନ ଓ ଚୈତ୍ର ମାସର ନବରାତ୍ର ଦୁର୍ଗାପୂଜା ।

ନବପଦ—ପୁଂ. ବି. ଜୈନମାନଙ୍କର ଉପାସ୍ୟ ନବମୂର୍ତ୍ତିବିଶେଷ ।

ନବପଦ—କ୍ଲୀ.ବି.ମାତ୍ରାବୃତ୍ତ ବୃତ୍ତଭେଦ ।

ନବପଲ୍ଲବ—ବି. ( କ.ଧା ) କିଶଳୟ, ଗଛରେ ଜନ୍ମିବା ନୂଆ କୋମଳ ପତ୍ର, ଗଜା, ଅଙ୍କୁର ।

ନବପାଠକ—ପୁଂ. ବି. (କ.ଧା) ନୂତନ ଅଧ୍ୟାପକ, ନବୀନ ଗ୍ରନ୍ଥ, ।

ନବପ୍ରସୂତ—ପୁଂ.ବି°. ନବଜାତ ଦେଖ, (ସ୍ତ୍ରୀ) ନବପ୍ରସୂତା ।

ନବପ୍ରସୂତା(ଗ୍ରା)—ସ୍ତ୍ରୀ ବି°. ନବପ୍ରସୂତାର ସ୍ତ୍ରୀଲିଙ୍ଗ, (ସଂ-ସ୍ତ୍ରୀ.ବି) ଯେ ଗୋଟିଏ ମାତ୍ର ସନ୍ତାନ ପ୍ରସବ କରିଅଛି,ପୋଏଣ୍ଡୀ ସ୍ତ୍ରୀ, ଯେଉଁ ସ୍ତ୍ରୀ ଅଳ୍ପଦିନ ହେଲା ସନ୍ତାନ ଜନ୍ମ କରିଅଛି ।

ନବପ୍ରାଶନ—କ୍ଲୀ. ବି. (ବ୍ୟାକର) (ନବ+ପ୍ର+ଅଶ୍+ଭା.ଅନ) ନବାନ୍ନ ଭୋଜନ, ନୂଆଖିଆ, ଶିଶୁର ପ୍ରଥମ ଅନ୍ନଭୋଜନ ।

ନବଫଳିକା—ସ୍ତ୍ରୀ. ବି. (ନବ+ଫଳ୍+କ+ଆ) ନବୋଢ଼ା, ନବବିବାହିତା କନ୍ୟା, ପ୍ରଥମେ ରଜସ୍ୱଳା ହୋଇଥିବା ବାଳିକା ।

ନବଫୁଲ୍ଲ—କ୍ରି.ବି°.ନୂତନ ପ୍ରସ୍ଫୁଟିତ, (ସ୍ତ୍ରୀ) ନବଫୁଲ୍ଲା ।

ନବବଧୂ—ସ୍ତ୍ରୀ.ବି. ( କ.ଧା )ନବୋଢ଼ା । ବାଳିକା, ନବବିବାହିତା କନ୍ୟା,ନୂଆବୋହୂ, ଭୁଆଷୁଣୀ ।

ନବବଧୂଯାତ୍ରା—ବି.(ବ୍ୟାକର)ନୂଆବୋହୂର ପ୍ରଥମେ ଶାଶୁଘରକୁ(ପତିଙ୍କପାଖ)ଯିବା ।

ନବବଧ୍ୱାଗମନ—କ୍ଲୀ. ବି. ନୂତନ ପରିଣୀତା ସ୍ତ୍ରୀର ସ୍ୱାମୀଗୃହକୁ ପ୍ରଥମାଗମନ ।

ନବବୟସୀ—ଗ୍ରା. ବି ଓ ବି°. (ସ୍ତ୍ରୀ)ନବବାଳା, ନବୀନଯୁବତୀ ।

ନବବରିକା—ସ୍ତ୍ରୀ. ବି°.(ନବ+ବର+କ+ଆ) ନବୋଢ଼ା ଦେଖ ।

ନବବର୍ଷ—ବି. (କ ଧା)ଅଳ୍ପକାଳହେଲା ଆରମ୍ଭ ହୋଇଥିବା ବର୍ଷ,ନୂତନବତ୍ସର, ଚଳିତସନ, ନବଶସ୍ୟ, ନୂତନବୃଷ୍ଟି ।

ନବବର୍ଷାରମ୍ଭ—ବି. (ବ୍ୟାକର) ନୂଆସନର ଆଦ୍ୟ, ସୂଚନା ।

ନବବଲ୍ଲଭ—ପୁଂ. ବି. ( କ.ଧା )ନବୀନ ପ୍ରଣୟୀ, ଦାହାଗୁରୁ, (ସ୍ତ୍ରୀ)ନବବଲ୍ଲଭା ।

ନବବସ୍ତ୍ର—କ୍ଲୀ. ବି. (କ.ଧା) ନୂତନବସ୍ତ୍ର, ନୂଆଲୁଗା ।

ନବବାସ୍ତୁ—ପୁଂ. ବି. ରାଜର୍ଷିଭେଦ ।

ନବବଂଶ—କ୍ରି. ବି°. ଅଣତିରିଶସଂଖ୍ୟକ ।

ନବବଂଶତି—ସ୍ତ୍ରୀ.ବି ଓ ବି°.(ମଧ୍ୟ-କ.ଧା) ଅଣତିରିଶ ।

ନବବିଧ—କ୍ରି. ବି°. ନବପ୍ରକାର ।

ନବବିବାହିତ—ପୁଂ.ବି°.ଅଳ୍ପକାଳହେଲା ବିବାହିତ ହୋଇଥିବା (ପୁରୁଷ) ।

ନବବିଷ—ବି. ଆୟୁର୍ବେଦ ଅନୁସାରେ ନଅପ୍ରକାର ବିଷ, ଯଥା—ବତ୍ସନାଭ, ହାରିଦ୍ରିକ, ଶକ୍ତୁକ, ପ୍ରଦୀପନ, ସୌରାଷ୍ଟ୍ରିକ, ଶୃଙ୍ଗକ, କାଳକୂଟ, ହଳାହଳ, ଓ ବ୍ରହ୍ମପୁତ୍ର ।

ନବଭାଗ—ପୁଂ. ବି. ରାଶିର ନବମଭାଗ ।

ନବମ—ବି°.(ନବନ୍+ମ) ୯ ସଂଖ୍ୟାର ପୂରଣ, ନଅସ୍ଥାନୀୟ, (ଗ୍ରା. ବି) ନବମ ଦିନ ଶୀତଳ,ମୃତାହର ନବମ ଦିନ ।

ନବମଦଶା—ବି. ( କ.ଧା ) ପ୍ରାଣରୋଧ ଅବସ୍ଥା, ମରଣାନ୍ତକ ଅବସ୍ଥା ।

ନବମଲ୍ଲିକା—ସ୍ତ୍ରୀ.ବି.ନଆଳୀଫୁଲ,ଗୁଡ଼ାଳି ମଲ୍ଲିଫୁଲ ।

ନବମଶୀତଳ—ଗ୍ରା. ବି.ମୃତାହର ନବମ ଦିନ ଦିଆଯିବା ଶୀତଳ (ଭୋଜ) ।

ନବମାଂଶ—ବି. ନବାଂଶ ଦେଖ ।
ନବମାଳକା—ସ୍ତ୍ରୀ.ବ ନବମଲ୍ଲିକା ଦେଖ ।
ନବମାଳିକା—ସ୍ତ୍ରୀ. ବି. ଛନ୍ଦୋବିଶେଷ ।
ନବମୀ—ସ୍ତ୍ରୀ. ବ. (ନବମ+ଈ)ଚନ୍ଦ୍ରଙ୍କର ନବମକଳାର ହ୍ରାସବୃଦ୍ଧି ଘଟିତ ତିଥି, ନବମୀ ତିଥି ।
ନବମୀଦଶା—(ଗ୍ରା. କ) ମୂର୍ଚ୍ଛା ।
ନବଯଉବନ—ଗ୍ରା. ବ. ନବଯୌବନ ଦେଖ । [ ନବଯୁବତୀ ।
ନବଯଉବନା(ନୀ)—ଗ୍ରା. ବ ଓ ବଂ.
ନବଯଜ୍ଞ—ପୁଂ. ବ, (ମଧ୍ୟ-ବ,ଧା)ନବାନ୍ନ-ରୂପ ଯଜ୍ଞ ।
ନବଯୁବକ—ପୁଂ.ବଂ.ଯାହାର ଯୌବନ-ରମ୍ଭ ହୋଇଅଛି, ଭେଣ୍ଡ, (ସ୍ତ୍ରୀ) ନବ-ଯୁବତୀ ।
ନବଯୁବତୀ—ସ୍ତ୍ରୀ. ବଂ. (କ.ଧା) ନୂତନ ଯୌବନ ବିଶିଷ୍ଟା (ସ୍ତ୍ରୀ) ।
ନବଯୁବା—ପୁଂ.ବଂ. ନବଯୁବକ ଦେଖ, (ଗ୍ରା. ବଂ. ପୁଂ ଓ ସ୍ତ୍ରୀ) ନବଯୁବକ ବା ଯୁବତୀ ।
ନବଯୋନନ୍ୟାସ—ପୁଂ.ବ.ଦେହାଙ୍ଗେର ନ୍ୟାସଭେଦ ।
ନବଯୌବନ—କ୍ଲୀ. ବ. (କ.ଧା) ପ୍ରଥମ ଯୌବନ, (ପୁଂ. ବଂ) ନବଯୁବା,(ସ୍ତ୍ରୀ) ନବଯୌବନା ।
ନବଯୌବନବେଶ—ଗ୍ରା.ବ.ଶ୍ରୀଜଗନ୍ନାଥଙ୍କର ନେତ୍ରୋତ୍ସବରେ ହେବା ରୂପ ବା ବେଶ ।
ନବଯୌବନା—ସ୍ତ୍ରୀ. ବଂ.(ବ.ବ୍ରୀ)ନୂତନ ଯୁବତୀ, ଷୋଡ଼ଶୀକାମିନୀ, ଯୁବତୀ, ଅଭିନବ ଯୌବନବତୀ ସ୍ତ୍ରୀ,(ପର୍ଯ୍ୟାୟ-ବାଚକଶ, ତାଲୁଣୀ, କୁହେଳୀ) ।
ନବଯୌବନୀ—ଗ୍ରା. ବ ଓ ବଂ. ସ୍ତ୍ରୀ. ନବଯୁବତୀ ।
ନବର—ଗ୍ରା. ବ. ନଗର, ସହର, ରାଜ-ଧାନୀ, ରଜାଙ୍କ ଉଆସ, ଅନ୍ତଃପୁର ।
ନବରଙ୍ଗ—ଗ୍ରା. ବ.(ସ୍ତ୍ରୀ)ନ ରଙ୍ଗରେମ୍ଭ, କାଯ୍ୟକୁଳର ବୋଧ୍ୟସ୍ୱତ,କଥାର ଢଙ୍ଗ, ଛଇ, ଫିନ୍ଦ, ନୂଆହିତ, ରହସ୍ୟ,କୃତୁକ, କୌତୁକ,ଫିସାଦ, ଆମୋଦପ୍ରମୋଦ ।
ନବରଙ୍ଗକରିବା—ଗ୍ରା. କି. ଛଇଦେଖା-ଇବା, ଥଟ୍ଟାକରିବା ।
ନବରଙ୍ଗିଆ—ଗ୍ରା. ପୁଂ. ବଂ. ଛଇଲା, ଅଛିଲ, ଚତୁର, କୌତୁକିଆ, (ସ୍ତ୍ରୀ) ନବରଙ୍ଗୀ ।
ନବରଜାଃ—ସ୍ତ୍ରୀ. ବ. (ବ.ବ୍ରୀ) ଅଳ୍ପଦିନ ହେଲା ଯେଉଁ ବାଳିକାର ପ୍ରଥମ ରଜୋଦର୍ଶନ ହୋଇଅଛି ।
ନବରତ୍ନ—କ୍ଲୀ. ବ. ( କ.ଧା ) ନବନିଧି ଦେଖ, ନବରତ୍ନ ଘଟିତ ଅଳଙ୍କାର, ବିକ୍ରମାଦିତ୍ୟଙ୍କ ସଭାସଦ ନଅଜଣ ପଣ୍ଡିତ (କାଳିଦାସାଦି) ।
ନବରସ—ପୁଂ. ବ. (କ.ଧା) ଅଲଙ୍କାର-ଶାସ୍ତ୍ରବର୍ଣ୍ଣିତ ନଅପ୍ରକାର ରସ, ଅଭିନବ-ଭାବ ।
ନବରସିକ—ପୁଂ. ବଂ. ନବଯୁବା ଓ ରସିକ (ବ୍ୟକ୍ତି),(ସ୍ତ୍ରୀ) ନବରସିକା ।
ନବରାତ୍ର—କ୍ଲୀ. ବ. ନବରାତ୍ରବ୍ୟାପୀ ଦୁର୍ଗାପୂଜା, ନବଦିବସବ୍ୟାପୀ ଯଜ୍ଞ-ବିଶେଷ ।
ନବରାତ୍ରି—ଗ୍ରା.ବ. ପୋଷ୍ୟ ସ୍ତ୍ରୀର ପ୍ରସ-ବର ନବମ ଦିନ ରାତ୍ରିରେ କରାଯିବା ଉତ୍ସବ, ସ୍ତ୍ରୀ ଆଚାରବିଶେଷ, ନଅଦିନ ଓ ନଅରାତ୍ର ଅବିଶ୍ରାନ୍ତ ଭାବରେ ନାମ-ସଙ୍କୀର୍ତ୍ତନ କରିବା ଉତ୍ସବ ।
ନବରାଶିକ—ବି. ଗଣିତ ଶାସ୍ତ୍ରରେ ନଅ-ଗୋଟି ରାଶିର ସମାନୁପାତ ପ୍ରକ୍ରିୟା-ବିଶେଷ ।
ନବରାଷ୍ଟ୍ର—କ୍ଲୀ.ବ.ନୂତନ ରାଜ୍ୟ, ଦକ୍ଷୀ-ଣରଙ୍କ ରାଜ୍ୟ ।
ନବରୁ—ପ୍ରା.(ଯାଜପୁର)ବ.ଛଇ, ନବରଙ୍ଗ
ନବର୍ଚ—କ୍ଲୀ. ବ. ନବଋକ୍‌ଭେଦ ।
ନବଲ—ପୁଂ. ବଂ. (ନବ+ଲା+କ.ଅ) ନବୀନ, ନୂତନ, ଯୁବକ, ନବଯୁବକ, ସ୍ୱଚ୍ଛ, ତାଜା, ଚଟକା, (ସ୍ତ୍ରୀ)ନବଲା ।
ନବଲକିଶୋର—ପୁଂ.ବ. ନବକିଶୋର ଦେଖ ।
ନବଲକ୍ଷଣ—କ୍ଲୀ. ବ. ବ୍ରାହ୍ମଣର ନଅ-ଗୋଟି ଲକ୍ଷଣ ବା ଚିହ୍ନ, ନବଧାଭକ୍ତି ଦେଖ, ଅନୁରାଗ ବା ପ୍ରଣୟର ନଅ-ଗୋଟି ଲକ୍ଷଣ, ଯୋଗ ସାଧନର ନଅ-ଗୋଟି ସୋପାନ, ସୃଷ୍ଟି, ସ୍ଥିତି, ପ୍ରଳୟ-ସମ୍ବନ୍ଧୀୟ ନଅପ୍ରକାର ଈଶ୍ୱରଙ୍କ ଲକ୍ଷଣ, (ସ୍ତ୍ରୀ) ନବଲକ୍ଷଣା ।
ନବଶଃ—ଅବ୍ୟ. (ନବନ୍+ଶସ୍) ନଅ-ନଅକରି, ଥରକେ ନଅଟା ଲେଖାଏଁ, (ଗଣିତ) ଏକାଅଶି,୯×୯, ୯ର ବର୍ଗ ।
ନବଶକ୍ତି—ସ୍ତ୍ରୀ.ବ.ନୂତନ ଶକ୍ତି ବା ବଳ, ନଗୋଟି ଶକ୍ତିରୂପିଣୀ ଦେବତା ।
ନବଶଶୀ—ବି. ଦ୍ୱିତୀୟାର ଚନ୍ଦ୍ର । [ଶସ୍ୟ ।
ନବଶସ୍ୟ--ବି.ବର୍ଷର ପ୍ରଥମ ଫସଲରୁ ଲବ୍ଧ
ନବଶସ୍ୟେଷ୍ଟି—ସ୍ତ୍ରୀ.ବ.ଅଗ୍ନିକ କର୍ତ୍ତବ୍ୟ ନବଶସ୍ୟ ନିମିତ୍ତକ ଇଷ୍ଟି(ଯାଗ)ଭେଦ ।
ନବଶାକ—-ନବଶାୟକ ଦେଖ, ଶାକ-ଜାତୀୟ ନଅଗୋଟି ଶିଳ୍ପ ବ୍ୟବସାୟୀ ଜାତି ।
ନବଶାକର—ଗ୍ରା.ବ.ନଶାଦଲ ଦେଖ ।
ନବଶାଖ—ଗ୍ରା.ବ. ନବଶାୟକ ଦେଖ ।
ନବଶାୟକ—ପୁଂ. ବ. ହେଁସକାନିଆ ଜାତି, ନଅଗୋଟି ହାଟୁଆ ଜାତି ।
ନବଶିକ୍ଷିତ—ପୁଂ. ବଂ. (କ.ଧା) ନୂଆ-ଶିଖାକ, ଆଧୁନିକ ଭାବରେ ଶିକ୍ଷା ପ୍ରାପ୍ତ, (ସ୍ତ୍ରୀ) ନବଶିକ୍ଷିତା ।
ନବଶିବ—ବୋମ୍ବାଇ ଦ୍ୱୀପପୁଞ୍ଜର ଅନ୍ତ-ର୍ଗତ ଗୋଟିଏ ଦ୍ୱୀପ ।
ନବଶୋଭ—ପୁଂ.ବଂ. (ବ.ବ୍ରୀ) ତରୁଣ, ଯୁବକ, (ସ୍ତ୍ରୀ) ନବଶୋଭା ।
ନବଶ୍ରାଦ୍ଧ—କ୍ଲୀ. ବ. ପ୍ରେତୋଦ୍ଦେଶକ ଶ୍ରାଦ୍ଧବିଶେଷ ।
ନବଷଟ୍କ—କ୍ଲୀ. ବ. ଛଗୁଣିତ ନବ-ସଂଖ୍ୟା, ୬×୯, ୫୪ସଂଖ୍ୟା ।
ନବଷଷ୍ଟି—ସ୍ତ୍ରୀ. ବ. ଊନସତୁରି ସଂଖ୍ୟା, ୬୯ସଂଖ୍ୟା । [ ଭେଦ ।
ନବସଂଘାରାମ—ପୁଂ. ବ. ବୌଦ୍ଧବିହାର
ନବସଙ୍ଗମ—ବି. (କ.ଧା) ନୂତନ ସମା-ଗମ, ଦମ୍ପତିଙ୍କର ପ୍ରଥମ ମିଳନ ।
ନବସ(ହି)ନ୍ଦ(ଦ୍ଧା)—ଗ୍ରା.ବି. (ଫା-ନକ୍ସା-

ସିଦ୍ଧାହ୍) ଦଲିଲ ଲେଖିବା ବ୍ୟକ୍ତି, ଦଲିଲ ଲେଖକ,ଦରଖାସ୍ତର ଲେଖକ, ଲେଖକ ।

**ନବସପ୍ତତ**—ସ୍ତ୍ରୀ.ବି. ଊନାଶୀତ ସଂଖ୍ୟା, ୭୯ ସଂଖ୍ୟା । [ ଭେଦ ।

**ନବସପ୍ତଦଶ**—ପୁଂ.ବି. ଅଚସ୍ତନ ଯାଗ-

**ନବସର(ଶ)**—ଗ୍ରା.ବି°.ନବସରଆ ଦେଖ

**ନବସରଆ**—ଗ୍ରା.ବି°.ନବସରଯୁକ୍ତ (ହାର)

**ନବସହର**—ପଞ୍ଜାବ ଜଲନ୍ଧର ଜିଲ୍ଲାର ଦକ୍ଷିଣ ପୂର୍ବ ତହସୀଲ ।

**ନବସାଗର**—ଗ୍ରା.ବି.ସାଗରପେଶା ଦେଖ, ( ପ୍ରା. ବାଲେଶ୍ୱର. ବି ) ଓଡ଼ିଆରେ କଥାବାର୍ତ୍ତା କରୁଥିବା ବଙ୍ଗାଳୀ ।

**ନବସୂ**—ସ୍ତ୍ରୀ. ବି. ( ନବ+ସୂ+କ୍ୱିପ୍ ) ଅଭିନବ ପ୍ରସବା ସ୍ତ୍ରୀ ଓ ଗୋ ପ୍ରଭୃତି ।

**ନବସୂତ**—ପୁଂ. ବି°. ନବଜାତ ଦେଖ, (ସ୍ତ୍ରୀ) ନବସୂତା ।

**ନବସୂତା**—ସ୍ତ୍ରୀ.ବି°.(ନବସୂତ+ଆ)ନବ-ପ୍ରସୂତା ଦେଖ ।

**ନବସୂତିକା**—ସ୍ତ୍ରୀ.ବି. (କ.ଧା)ନବପ୍ରସୂତା ନାରୀ, ଧେନୁ ପ୍ରଭୃତି ।

**ନବା**—ସ୍ତ୍ରୀ. ବି°. ( ନବ+ଆ ) ନବର ସ୍ତ୍ରୀଲିଙ୍ଗ, ( ଗ୍ରା.ବି) ନଅବନ୍ଧଯୁକ୍ତ ତାସ, ନହଲ, ( ସଂ-ନବା ) ନଗ୍ନା, ନବ-ଯୁବତୀ, ( ଗ୍ରା.ବି. ସଂ-ନାଧାତୁ ) ଗ୍ରହଣ କରିବା, ନେବା, ବନ୍ଧନକରିବା, (ଗ୍ରା. କ୍ରି. ସଂ-ନାଧାତୁ) ନେବା ଦେଖ, (ପୁଂ) ନବ ।

**ନବାଂଶ**—ପୁଂ. ବି. ମେଷାଦି ଦ୍ୱାଦଶ ଲଗ୍ନର ନବଭାଗ ।

**ନବା(ବୋ)ଇ**—ଗ୍ରା. ବି. ନବକଶୋର, ନବଘନଆଦିଙ୍କ ଡାକ ନାମ ।

**ନବାକ୍ଳି**—ଗ୍ରା.ବି°.ଫାଜଲମି, ମୁହଁବାଙ୍କିଗି

**ନବାଗଡ଼**—ପଞ୍ଜାବ ବଶାହର ରାଜ୍ୟର ଗୋଟିଏ ଦୁର୍ଗ ।

**ନବାଗତ**—ପୁଂ.ବି°(କ.ଧା)ନୂଆ ହୋଇ ଉପସ୍ଥିତ ହୋଇଥିବା ବ୍ୟକ୍ତି, (ସ୍ତ୍ରୀ) ନବାଗତା ।

**ନବାଗାୟନ**—ଆଙ୍ଗୋ ଏବଂ ରାୟପୁର ମଧ୍ୟସ୍ଥଳସ୍ଥ ଗ୍ରାମବିଶେଷ ।

**ନବାଙ୍କ**—ବି.(କ.ଧା) ନୂତନ ସନ, ନବ-ବର୍ଷ, (ଗ୍ରା.ବି) ନଅବାଙ୍କ ବା ମୋଡ଼ ।

**ନବାଙ୍କପାଞ୍ଜି**—ଗ୍ରା. ବି. ନୂତନବର୍ଷର ପାଞ୍ଜି, ନୂଆପାଞ୍ଜି ।

**ନବାଙ୍କବେଢ଼ା**—ଗ୍ରା. ବି. ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ଯାତ୍ରାବିଶେଷ ।

**ନବାଙ୍ଗ**—ବି. ବି°. ନବବିଧ ଅଙ୍ଗଯୁକ୍ତ, (କ୍ଳୀ) ପାଚନବିଶେଷ ।

**ନବାଙ୍ଗପାଚନ**—ବି. ନଅଗୋଟି ଔଷଧ ଦ୍ରବ୍ୟ, ଶୁଣ୍ଠି, ପିପ୍ପଳ, ମରିଚ, ହରିଡ଼ା, ବାହାଡ଼ା, ଅଁଳା, ଚବ୍ୟ, ଚିତା ଓ ବାଇବିଡ଼ଙ୍ଗ ସିଦ୍ଧହୋଇ ପ୍ରସ୍ତୁତ ହେବା ପାଚନ । [ ଶୃଙ୍ଗୀ ।

**ନବାଙ୍ଗା**—ସ୍ତ୍ରୀ.ବି. କର୍କଟଶୃଙ୍ଗୀ,କକଡ଼ା-

**ନବାଙ୍ଗୀ**—ସ୍ତ୍ରୀ. ବି. (ନବ + ଅଙ୍ଗ + ଈ) ସ୍ତ୍ରୀ ନବଯୁବତୀ ।

**ନବାତ**—ଯା.ବି.କନ୍ଦ, ସଫା କରାଯାଇ-ଥିବା ଗୁଡ଼ ।

**ନବାଥବା**—ପ୍ରା. (ଗଡ଼ଜାତ)ବି. ପେଯ୍ୟ-ଜାତୀୟ ଏକପ୍ରକାର ଚଡ଼େଇ ।

**ନବାଦା**—ଗୟାଜିଲ୍ଲାର ଗୋଟିଏ ଉପ-ବିଭାଗ ।

**ନବାନଗର**—କଚ୍ଛଉପସାଗର ତୀରବର୍ତ୍ତୀ ଗୋଟିଏ ଦେଶୀୟ ରାଜ୍ୟ ।

**ନବାନ୍ନ**—କ୍ଳୀ.ବି. (କ.ଧା) ନୂତନ ଅନ୍ନ, ଡଙ୍କା ଭାତ, ( ବ.ଗ୍ରା ) ଦୁଗ୍ଧ, ଗୁଡ଼, ନାରିକେଳ ପ୍ରଭୃତିର ସହିତ ନୂତନ ଅ.ତପ ଚାଉଳ ଗୃହସ୍ଥର ଭକ୍ଷଣ ରୂପ ସଂସ୍କାରବିଶେଷ, ନୂଆଖିଆ ।

**ନବାବ୍**—ଯା.ବି.ପ୍ରଦେଶର ଶାସନକର୍ତ୍ତା, ମୁସଲମାନ ସାମନ୍ତରାଜା, ବଡଲୋକ ଭାବେ ଚଳିବା ଧନୀ ଓ ସମ୍ଭ୍ରାନ୍ତ ବ୍ୟକ୍ତି ।

**ନବାବ୍‌ଗିରି**—ଗ୍ରା.ବି. ନବାବିଢଙ୍ଗଦେଖ ।

**ନବାବ୍‌ଜାଦା**—ପୁଂ.ବି. ନବାବଙ୍କ ପୁତ୍ର (ସ୍ତ୍ରୀ) ନବାବଜାଦୀ ।

**ନବାବଜାଦୀ**—ସ୍ତ୍ରୀ. ବି.ନବାବଙ୍କ ଝିଅ ।

**ନବାବ୍‌ନାଜିମ୍**—ଯା.ବି. କୌଣସି ପ୍ରଦେଶର ଶାସନକର୍ତ୍ତା ଓ ବିଚାରପତି ।

**ନବାବ୍‌ବାହାଦୁର୍**—ଯା. ବି. ଭାରତୀୟ ସମ୍ଭ୍ରାନ୍ତ ମୁସଲମାନଙ୍କୁ ଇଂରେଜସର-କାରଙ୍କ ଦେବା ଉପାଧିବିଶେଷ ।

**ନବାବ୍‌ସାହେବ**—ଯା. ନବାବଙ୍କର ସମ୍ମାନ ସୂଚକ ସମ୍ବୋଧନ ।

**ନବାବି**—ଯା.ବି°. ନବାବଯୋଗ୍ୟ,ବଡ଼-ଲୋକିଆ, ଧନସୁଲଭ (କର୍ମ), ( ବି ) ଧନମଦ, ଧନଗାରିମା, ନବାବ ବା ପ୍ରାଦେଶିକ ଶାସନକର୍ତ୍ତାପଦ,ଧନସମ୍ପଦ, ନବାବଙ୍କ ରାଜତ୍ୱକାଳ ।

**ନବାବିକାଇଦା**—ଯା. ବି. ନବାବ ବା ବଡ଼ଲୋକଙ୍କ ଉପଯୁକ୍ତ ନିୟମ ବା ରୀତି ।

**ନବାବିକାରଖାନା**—ଯା. ବି. ଆଡ଼ମ୍ବର ପୂର୍ଣ୍ଣ ବା ବହୁ ବ୍ୟୟସାଧ୍ୟ କାର୍ଯ୍ୟ ।

**ନବାବିଢଙ୍ଗ**—ଗ୍ରା. ବି. ନବାବଯୋଗ୍ୟ ଆଚରଣ, ବଡ଼ଲୋକଙ୍କ ଚଳିବାରୀତି ।

**ନବାମ୍ବର**—ବି. ( କ.ଧା ) ନୂଆଲୁଗା, ନବବସ୍ତ୍ର ।

**ନବାମ୍ବିକା**—ସ୍ତ୍ରୀ.ବି. (କ.ଧା) ନବଦୁର୍ଗା (ଦେଖ), ନଅପ୍ରକାର ଶକ୍ତି ମୂର୍ତ୍ତି ।

**ନବାୟସ**—କ୍ଳୀ.ବି. ଔଷଧଭେଦ ।

**ନବାର୍ଚ୍ଚିଃ**—ପୁଂ.ବି.(ବ.ଗ୍ରା) ମଙ୍ଗଳଗ୍ରହ, (କ୍ଳୀ) ନବଶିଖା ।

**ନବାଶୀତ**—ସ୍ତ୍ରୀ. ବି. ନବଅଧିକ ଅଶୀତ ସଂଖ୍ୟା, ୮୯ ।

**ନବାସିକା**—ସ୍ତ୍ରୀ.ବି. ମାତ୍ରାବୃତ୍ତ ଭେଦ ।

**ନବାହ**—ପୁଂ. ବି. ( କ.ଧା ) ନଅଦିନ, ନବମଦିନ,ବର୍ଷର ପ୍ରଥମଦିନ,ପୁନିଆଁ, ପକ୍ଷର ୧ମ ତିଥି,ପ୍ରତିପଦ୍, ନବଦିନ-ସାଧ୍ୟ ଯାଗାଦି ।

**ନବ**—ବି. ଭଗବତ୍ପ୍ରେରିତ ଦୂତ ।

**ନବ୍‌କା**—ସ୍ତ୍ରୀ.ବି°. ନବଶବ୍ଦଯୁକ୍ତା ।

**ନବ୍‌ନାଘୋଡ଼**—ପ୍ରା. (ଗଞ୍ଜାମ)ବି.କାଞ୍ଚି-ଗାତରେ ପକାଇ ଖେଳାଯିବା ବାଟି ବା କଉଡ଼ି ଖେଳର ନବମ ଆଘାତ ।

**ନବ୍‌ସ୍**—ବି. ଲେଖକ, ଯେଉଁ ବ୍ୟକ୍ତି କୌଣସି ଲେଖାକାର୍ଯ୍ୟ କରେ ।

ନବସ(ସି)ନ୍ଧା—ଯା.ବି.ନବସନ୍ଧାଦେଖ ।

ନବିସୀ—ଯା. ଲେଖକ ବା କିରାଣିର ଚାକିରି, ଲେଖିବା କର୍ମ ।

ନବୀ—ଗ୍ରା. ସ୍ତ୍ରୀ. ବି. ସ୍ତ୍ରୀଲୋକଙ୍କ ନାମ, (ବି) ମୁସଲମାନଙ୍କ ମତରେ ପୃଥିବୀକୁ ଈଶ୍ୱରଙ୍କ ପ୍ରେରିତ ଦୂତ, ପୟଗମ୍ବର, ଭବିଷ୍ୟଦ୍‌ବକ୍ତା, ଧର୍ମସଂସ୍କାରକ ।

ନବୀକରଣ—କ୍ଲୀ. ବି. ( ନବ+ଚ୍ୱି+କରଣ ) ଜୀର୍ଣ୍ଣସଂସ୍କାର, ପୁନର୍ଗଠନ ।

ନବୀକୃତ—ବିଂ. ( ନବ+ଚ୍ୱି+କୃତ ) ମରାମତ କରା ଯାଇଥିବା, ଜୀର୍ଣ୍ଣସଂସ୍କୃତ, ବିଶ୍ରାମାଦି ଦ୍ୱାରା ନବବଳ ପ୍ରାପ୍ତ, ପୁନର୍ଗଠିତ, (ସ୍ତ୍ରୀ) ନବୀକୃତା, (ବି) ନବୀକରଣ ।

ନବୀନ—ପୁଂ. ବିଂ. ( ନବ+ସ୍ୱାର୍ଥେ. ଈନ୍ ) ନୂତନ, ଅଳ୍ପବୟସ୍କ, ଯୁବକ, ତରୁଣ, ସଜ, ତଟକା, (ସ୍ତ୍ରୀ) ନବୀନା, (ବିପ-ପ୍ରାଚୀନ) ।

ନବୀନଗର—ଅଯୋଧ୍ୟା ସୀତାପୁରଜିଲ୍ଲାର ଗୋଟିଏ ସହର ।

ନବୀନା—ସ୍ତ୍ରୀ. ବି. ନବତରୁଣୀ, ଏକପ୍ରକାର ଫୁଲ ଓ ଗଛ ।

ନବୀବନ୍ଦର—ବୋମ୍ବାଇ କାଠିୟାବାଡ଼ ଜିଲ୍ଲାର ଗୋଟିଏ ବନ୍ଦର ।

ନବୀଭବ—ବି. ( ନବ+ଚ୍ୱି+ଭବ ) ସଂସ୍କାର, ସଂଶୋଧନ ।

ନବୀଭୂତ—ବିଂ. ( ନବ+ଚ୍ୱି+ଭୂତ ) ପୁନର୍ଗଠିତ, (ସ୍ତ୍ରୀ) ନବୀଭୂତା ।

ନବୀୟାନ୍—ବି. ବିଂ. ନବତନ, ଅତିଶୟ ସ୍ତୁତ୍ୟ ।

ନବୀସର—ସିନ୍ଧୁପ୍ରଦେଶ ଥରେଜିଲ୍ଲାର ଅମରକୋଟ ତାଲୁକର ଗୋଟିଏ ସହର ।

ନବେ—ଗ୍ରା. ବି ଓ ବିଂ. ( ସଂ-ନବତି ) ନଉ, ୯୦ ସଂଖ୍ୟା ବା ସଂଖ୍ୟକ ।

ନବେତର—ବି. ବିଂ. ନୂତନରୁ ଭିନ୍ନ ।

ନବେଦାଃ—ପୁଂ. ବିଂ. ବିପରୀତ ଜ୍ଞାନଶୂନ୍ୟ, ମେଧାବୀ ।

ନବେ(ଭେ)ମ୍ବର—ଯା. ବି. ଇଂରେଜୀ ଗଣନାରେ ବର୍ଷର ଏକାଦଶ ମାସ, (କାର୍ତ୍ତିକ ଓ ମାର୍ଗଶିର) ।

ନବୈଦ୍ୟବ୍ୟାଧି—ଗ୍ରା. ବି. ଅଚିକିତ୍ସ୍ୟ ରୋଗ ।

ନବୋଢ଼ା—ସ୍ତ୍ରୀ. ବିଂ. ( ନବ+ଊଢ଼ା ) ନବବିବାହିତା (ବାଳିକା), (ବି) ନବବିବାହିତା କନ୍ୟା, ନବବଧୂ, ମୁଗ୍ଧା ନାୟିକା ଶ୍ରେଣୀର ଅନ୍ତର୍ଗତ ଜ୍ଞାତଯୌବନା ନାୟିକାବିଶେଷ ।

ନବୋଦକ—କ୍ଲୀ. ବି. ( କ.ଧା ) ନୂଆ ବର୍ଷାଜଳ, ନବୋଦକ ନିମିତ୍ତ ପାର୍ବଣ ଶ୍ରାଦ୍ଧ ।

ନବୋଦିତ—ବି.ବିଂ. (କ.ଧା) ନୂଆହୋଇ ଉଦିତ ବା ଜାତହୋଇଥିବା ।

ନବୋଦିତଭାନୁ—ବି. ବାଳରବି ।

ନବୋଦ୍ଧୃତ—ବିଂ. (କ.ଧା) ନୂଆହୋଇ ବାହାରିଥିବା ।

ନବୋଦ୍ଧୃତ—ବିଂ. (କ.ଧା) ନୂଆହୋଇ ଉଦ୍ଧାର କରାଯାଇଥିବା, (ବି) ନବନୀତ, ଲହୁଣୀ ।

ନବୋଦ୍ଭାସିତ—ବି. ବିଂ. ନୂତନ,ସଦ୍ୟ, ନବଶୋଭିତ ।

ନବୋଦ୍ୟମ—ବି. (କ.ଧା) ପ୍ରଥମଚେଷ୍ଟା, ନୂତନଚେଷ୍ଟା ।

ନବୋଦ୍ୟମୀ—ପୁଂ. ବିଂ. ଯେ କୌଣସି କାର୍ଯ୍ୟ କରିବାକୁ ପ୍ରଥମେ ଚେଷ୍ଟା କରିଥାଏ ।

ନବୋନ୍ମେଷିତ—ବି. ବିଂ. ନବପ୍ରସ୍ଫୁଟିତ, ନୂତନ ଉନ୍ମୀଳିତ ।

ନବ୍ଗୁ—ଯା. ବି. ଲବଙ୍ଗ ଦେଖ ।

ନବ୍ଧା—ଗ୍ରା. (ପଦ୍ୟ) ବିଂ. ନବଧାଦେଖ ।

ନବ୍ୟ—ବି. ବିଂ. ( ନବ+ସ୍ୱାର୍ଥେ. ଯ ) ନବୀନ, ନୂତନ,ଇଦାନୀନ୍ତନ,ଅପ୍ରବୀଣ, ଯୁବକ,ସଜ,ତଟକା,ଆଧୁନିକ ଶିକ୍ଷାରେ ଦୀକ୍ଷିତ, ଅଳ୍ପଦିନହେଲା ଚଳିଥିବା, (ନୁ+ର୍ମ.ଯ) ସ୍ତୁତହେବାର ଯୋଗ୍ୟ, ବି. (ନୁ+ଭା.ଯ) ସ୍ତବ, ରକ୍ତପୁନର୍ନବା, (ସ୍ତ୍ରୀ) ନବ୍ୟା ।

ନବ୍ୟଭାରତ—ବି. (କ.ଧ ) ନବ୍ୟଯୁଗର ଶିକ୍ଷାଦୀକ୍ଷାରେ ଶିକ୍ଷିତ ଭାରତବର୍ଷ ।

ନବ୍ୟଯୁଗ—ବି. ନବଯୁଗ,ଆଧୁନିକ କାଳ ।

ନବ୍ୟଶିକ୍ଷା—ବି. ଅଧୁନା ପ୍ରଚଳିତ ଶିକ୍ଷା ।

ନବ୍ୟଶିକ୍ଷିତ—ପୁଂ.ବିଂ.ଆଧୁନିକ ଶିକ୍ଷାରେ ଦୀକ୍ଷିତ ।

ନବ୍ୟସଭ୍ୟ—ପୁଂ. ବିଂ. ଆଧୁନିକ ସଭ୍ୟତାରେ ଶିକ୍ଷିତ ଓ ଦୀକ୍ଷିତ ହୋଇଥିବା, (ସ୍ତ୍ରୀ) ନବ୍ୟସଭ୍ୟା ।

ନବ୍ୟସଭ୍ୟତା—ବି. ଆଧୁନିକ ସଭ୍ୟତା, ପାଶ୍ଚାତ୍ୟ ସଭ୍ୟତା ।

ନଭ୍(ଧାତୁ)—ନଷ୍ଟହେବା ।

ନଭ—ବି. ବିଂ. (ନଭ୍+କ.ଅ) ନାଶକ, ଧ୍ୱଂସକ, (ବି) ଆକାଶ, ସ୍ୱର୍ଗ, ଶୂନ୍ୟ, ଭୂପୃଷ୍ଠରେ ବହୁବା ବାୟୁ, ଆବହବାୟୁ, ଶ୍ରାବଣମାସ,ଋଷିବିଶେଷ, ମେଘ,ପକ୍ଷୀ, ଘ୍ରାଣ, ଲଗ୍ନର ଦଶମସ୍ଥାନ, ଭାଦ୍ରମାସ, ଆଧାର, ଆଶ୍ରୟ, ରାଜା ନନ୍ଦଙ୍କ ପୁତ୍ର, ଅଭ୍ରକ, ବର୍ଷା, ମୃଣାଳସୂତ୍ର,ମହାଦେବ, (ସ୍ତ୍ରୀ) ନଭା ।

ନଭଃ—ବି. (ନଭ+କ.ଅସ୍) ନଭନେଖ ।

ନଭଃକେତନ—କ୍ଲୀ.ବି. (ବ.ବ୍ରୀ) ସୂର୍ଯ୍ୟ ।

ନଭଃକାନ୍ତୀ—ପୁଂ. ବି. (୭ତତ୍-ବ.ବ୍ରୀ) ସିଂହ ।

ନଭଃପାନ୍ଥ—ପୁଂ. ବି. ସୂର୍ଯ୍ୟ ।

ନଭଃପ୍ରାଣ—ପୁଂ. ବି. (ବ.ବ୍ରୀ) ବାୟୁ ।

ନଭଃସତ୍(ଦ୍)—ପୁଂ. ବି. (ନଭଃ+ସଦ୍+କ.କ୍ୱିପ୍) ଦେବତା, ଆକାଶବିହାରୀ ପକ୍ଷୀ ।

ନଭଃସରିତ୍—ସ୍ତ୍ରୀ. ବି. ( ମଧ୍ୟ-କ.ଧା ) ସ୍ୱର୍ଗଙ୍ଗା, ଛାୟାପଥ ।

ନଭଃସ୍ଥ—ବି. ବିଂ. (ନଭ+ସ୍ଥା+କ.ଅ) ଆକାଶସ୍ଥିତ, (ସ୍ତ୍ରୀ) ନଭଃସ୍ଥା ।

ନଭଃସ୍ଥଳ—ପୁଂ. ବି. ( ବ.ବ୍ରୀ ) ଶିବ, (କ୍ଲୀ-କ.ଧା) ଆକାଶ ।

ନଭଃସ୍ଥିତ—ବି.ବିଂ. (୭ତତ୍) ଆକାଶସ୍ଥ, (ବି) ନରକବିଶେଷ, (ସ୍ତ୍ରୀ) ନଭଃସ୍ଥିତା ।

ନଭଃସ୍ପୃକ୍—ପୁଂ. ବିଂ. (ନଭସ୍+ସ୍ପୃଶ୍+କ.କ୍ୱିପ୍) ଗଗନସ୍ପର୍ଶୀ, ଅତି ଉଚ୍ଚ ।

ନଭଃସ୍ପୃଶ—ବି.ବିଂ. ଗଗନସ୍ପର୍ଶୀ,(ବିକଳ୍ପେ

ବିସର୍ଗ ଲୋପ କଲେ ଏହିପରି ହୁଏ) ।

ନଭଗ—ପୁଂ.ବି°. (ନଭ+ଗମ୍+କ.ଅ) ଆକାଶଗାମୀ, ନଭଶ୍ଚର, ଶୂନ୍ୟବିମାନସ୍ଥିତ, (ବ.ସ୍ତ୍ରୀ) ହତଭାଗା, (ପୁଂ. ବି) ବୈବସ୍ୱତମନୁପୁତ୍ର, ପକ୍ଷୀ, ପବନ, ବାୟୁ, ମେଘ ।

ନଭଗନାଥ—ବି. (୬ତତ୍) ଗରୁଡ ।

ନଭନ୍ନୁ—ତ୍ରି. ବି°. ହିଂସକ, ବେଦକାରକ (ଛେଦକ) ।

ନଭନ୍ୟ—ତ୍ରି.ବି°. ଆକାଶଭବ, ହିଂସକ ।

ନଭଶ୍ଚକ୍ଷୁ—କ୍ଲୀ.ବି. (୬ତତ୍) ସୂର୍ଯ୍ୟ ।

ନଭଶ୍ଚମସ—ପୁଂ. ବି. ଚନ୍ଦ୍ର, (୬ତତ୍) ଇନ୍ଦ୍ରଜାଲ, ଚିତଉ ପିଠା, ନାନାବର୍ଣ୍ଣବିଶିଷ୍ଟ ପିଷ୍ଟକ ।

ନଭଶ୍ଚର—ପୁଂ.ବି°. (ନଭସ୍+ଚର୍+କ.ଅ) ଶୂନ୍ୟଗାମୀ, ଶୂନ୍ୟବିହାରୀ, ଆକାଶଚର, (ବି) ପକ୍ଷୀ, ଦେବ, ଗନ୍ଧର୍ବ, ବିଦ୍ୟାଧର ପ୍ରଭୃତି, ଗ୍ରହନକ୍ଷତ୍ରାଦି, ରାକ୍ଷସ ଓ ଭୂତପ୍ରେତାଦି, ପବନ, ବାୟୁ, ମେଘ ସୂର୍ଯ୍ୟ, ଶୂନ୍ୟବିମାନ ।

ନଭଶ୍ଚାରୀ—ବି ଓ ବି°. (ନଭସ୍+ଚର୍+କ.ଇନ) ନଭଶ୍ଚର (ଦେଖ), ସ୍ତ୍ରୀ ନଭଶ୍ଚାରିଣୀ ।

ନଭଶ୍ଚୁମ୍ବୀ—ପୁଂ. ବି°. (ନଭସ୍+ଚୁମ୍ବ+କ.ଇନ୍) ନଭଃସ୍ପୃକ୍ ଦେଖ, (ସ୍ତ୍ରୀ) ନଭଶ୍ଚୁମ୍ବିନୀ ।

ନଭସ୍—କ୍ଲୀ.ବି. ଆକାଶ, (ପୁଂ)ଶ୍ରାବଣମାସ, ମେଘ, ଛେଦକ, ଘ୍ରାଣ, ବର୍ଷା, ପତନଶୀଳ ଗ୍ରହ, ପଳିତଶୀର୍ଷ, ଲଗ୍ନର ଦଶମ ସ୍ଥାନ, ବିଷତନ୍ତୁ, ମୃଣାଳସୂତ୍ର ।

ନଭସ—ପୁଂ.କ୍ଲୀ. ବି. (ନଭ+କ.ଅସ୍) ଆକାଶ, ସ୍ୱର୍ଗ, ଶବ୍ଦାଶ୍ରୟଗଗନ, ଦଶମ ମନ୍ୱନ୍ତରସ୍ଥ ସପ୍ତର୍ଷିଭେଦ ।

ନଭସଙ୍ଗମ—ପୁଂ ଓ ସ୍ତ୍ରୀ.ବି. (ନଭ-ସମ୍+ଗମ୍+କ.ଅ) ନଭଶ୍ଚର ଦେଖ ।

ନଭସ୍ମୟ—ପୁଂ.ବି. ଆଦିତ୍ୟ ।

ନଭସ୍ୟ—ପୁଂ.ବି. ଭାଦ୍ରମାସ, ସ୍ୱାରୋଚିଷ ମନୁଙ୍କ ପୁତ୍ରଭେଦ, (ବି°)ଆକାଶଜାତ, ସ୍ୱର୍ଗୀୟ ।

ନଭସ୍ଥଳ—ବି.(୬ତତ୍)ଆକାଶର ଦେହ, ନଭଃସ୍ଥଳ, ଗଗନତଳ, ଆକାଶମଣ୍ଡଳ ।

ନଭସ୍ଥଳ—କ୍ଲୀ.ବି. (୬ତତ୍) ନଭସ୍ଥଳ ଦେଖ, ଶିବ । [ ସ୍ୱୁବା ।

ନଭସ୍ୱାନ୍—ବି. (ନଭସ୍+ବତ୍)ପବନ,

ନଭାଃ—ପୁଂ.ବି. (ନଭ+କ.ଅସ୍)ଶ୍ରାବଣମାସ, ବର୍ଷାକାଳ, ମେଘ, ପକ୍ଷୀ ।

ନଭାକ—କ୍ଲୀ. ବି. (ନ+ଭା+ସଙ୍କାର୍ଥେ, ଅକ) ଅନ୍ଧକାର, ରାହୁ, ଋଷିବିଶେଷ ।

ନଭି—ବି. ଚକ, ପହିଆ ।

ନଭିବା—ଗ୍ରା. କ୍ରି. ଲଭିବା ଦେଖ ।

ନଭୀତ—ତ୍ରି.ବି°. ଯେ ଭୀତ ନୁହେଁ, ଭୟ ନ କରୁଥିବା ।

ନଭୂତ—ଗ୍ରା. ବି°. ଅଦୃଷ୍ଟ ପୂର୍ବ, ଯାହା ଘଟି ନଥିଲା, ଅଭୂତ, ଅସାଧାରଣ, ଅସମ୍ଭବ ।

ନଭୂତୋନଭବିଷ୍ୟତି—(ପ୍ରବଚନ)ଯେଉଁ କଥା ହୋଇ ନ ଥିଲା କି ହେବ ନାହିଁ, ଅଶ୍ରୁତପୂର୍ବ ଓ ଅସମ୍ଭବ କଥା ।

ନଭେମ୍ବର—ଇଂରାଜୀ ବର୍ଷର ଏକାଦଶ ମାସ ।

ନଭେଲ—ଯା. ବି. ଉପନ୍ୟାସ ।

ନଭୋଗ—ପୁଂ. ବି°. (ନଭସ୍+ଗମ୍+କ.ଅ) ଆକାଶବିହାରୀ, ନଭଶ୍ଚର, (ବି) ନଭଗ ଦେଖ ।

ନଭୋଗଜ—ପୁଂ. ବି. (ନଭଃ+ଗଜ) ମେଘ, ଐରାବତ ହସ୍ତୀ ।

ନଭୋଗତି—ସ୍ତ୍ରୀ. ବି. (୬ତତ୍) ବିମାନାଦିରେ ଆକାଶ ପଥରେ ବିଚରଣ, ଉଡ଼ିବା, (ବି°) ନଭଶ୍ଚର ।

ନଭୋଜ—ପୁଂ. ବି°. ଆକାଶଜାତ ।

ନଭୋଜୂ—ତ୍ରି.ବି°. (ନଭସ୍+ଜୂ+କ୍ୱିପ୍) ଆକାଶେ ବ୍ୟାପ୍ତ ।

ନଭୋଦ—ପୁଂ. ବି. ବିଶ୍ୱଦେବଭେଦ ।

ନଭୋଦୁହ—ପୁଂ.ବି. (ନଭସ୍+ଦୁହ+ମି.ଅ) ମେଘ ।

ନଭୋଦ୍ୱୀପ—ପୁଂ. ବି. ମେଘ ।

ନଭୋଧୂମ—ପୁଂ. ବି. ମେଘ ।

ନଭୋଧ୍ୱଜ—ପୁଂ. ବି. ମେଘ ।

ନଭୋନଦୀ—ସ୍ତ୍ରୀ.ବି.ସ୍ୱର୍ଗଙ୍ଗା, ମନ୍ଦାକିନୀ ।

ନଭୋମଣି—ପୁଂ. ବି. (ନଭସ୍+ମଣି; ୬ତତ୍) ସୂର୍ଯ୍ୟ ।

ନଭୋମଣ୍ଡଳ—କ୍ଲୀ.ବି. (୬ତତ୍) ଗଗନମଣ୍ଡଳ, ବାୟୁମଣ୍ଡଳ, ଦୃଶ୍ୟମାନ ଆକାଶ ।

ନଭୋମଣ୍ଡଳଦ୍ୱୀପ—ପୁଂ. ବି. ଚନ୍ଦ୍ର ।

ନଭୋଽମ୍ବୁପ—ପୁଂ. ବି. ଚାତକପକ୍ଷୀ ।

ନଭୋଯୋନି—ପୁଂ. ବି°. ଆକାଶରେ ଯାହାଙ୍କ ଜନ୍ମ. (ପୁଂ.ବି) ଶିବ ।

ନଭୋରଜଃ—ପୁଂ. ସ୍ତ୍ରୀ. ବି. କୁଜ୍ଝଟିକା, ଅନ୍ଧକାର, ବାଷ୍ପ ।

ନଭୋରୂପ—ବି. ନୀଳବର୍ଣ୍ଣଯୁକ୍ତ ପକ୍ଷୀ ପ୍ରଭୃତି, ନୀଳବର୍ଣ୍ଣ ।

ନଭୋରେଣୁ—ସ୍ତ୍ରୀ. ବି. (୬ତତ୍) କୁହୁଡ଼ି, ବାଷ୍ପ ।

ନଭୋଲୟ—ପୁଂ. ବି. (ନଭଃ+ଆଲୟ) ଧୂଆଁ, (ବି°) ଗଗନଲୀନମାତ୍ର ।

ନଭୋଲିହ—ପୁଂ. କ୍ଲୀ. ବି°. (ନଭସ୍+ଲିହ+କ.ଅ) ଗଗନସ୍ପର୍ଶୀ, ଅତ୍ୟୁଚ୍ଚ, (ସ୍ତ୍ରୀ) ନଭୋଲିହା ।

ନଭୋବଟ—ପୁଂ. ବି. ଆକାଶମଣ୍ଡଳ ।

ନଭୋବୀଥୀ—ସ୍ତ୍ରୀ.ବି. ଆକାଶସ୍ଥିତ ବୀଥୀରୂପ ପଥ ।

ନଭୌକାଃ—ପୁଂ.ସ୍ତ୍ରୀ. ବି°. (ବ.ବ୍ରୀ)ସ୍ୱର୍ଗବାସୀ, ଖେଚର, (ବି) ଦେବତା ।

ନଭ୍ରାଟ୍—ପୁଂ. ବି. (ନ+ଭ୍ରାଜ୍+କ. କ୍ୱିପ୍) ମେଘ ।

ନଭ୍ୟ—ତ୍ରି. ବି°. (ନଭ+ଯ) ଆକାଶସମ୍ବନ୍ଧୀୟ, (ବି) ଦୁଇ ଚକର ମଧ୍ୟବର୍ତ୍ତୀ ଅଂଶ, ଅଖ, ଅଖତେଲ, (ଗ୍ରା. ବି°) ଲଭ୍ୟ ।

ନମ୍(ଧାତୁ)—ନମସ୍କାର କରିବା, ନତ ହେବା, ଲଇଁବା, ଶବ୍ଦକରିବା, ତଳକୁ ଖସିବା ।

ନମ—ବି.(ନମ୍+ଭା.ଅ) ମାନ୍ୟ ବ୍ୟକ୍ତିଙ୍କୁ ଅଭିବାଦନ, ପ୍ରଣାମ, ନମସ୍କାର, ନତି, ଲଇଁବା, ତ୍ୟାଗ, ବିଳାପ, ଦାନ, (ଗ୍ରା. ଅବ୍ୟ) ହେ ମହାଶୟ ଆପଣଙ୍କୁ ଦଣ୍ଡବତ୍ କରୁଛି ।

ନମଃ—ଅବ୍ୟ. (ନମ+କ.ଅ) ନମସ୍କାର, ତ୍ୟାଗ, ବଜ୍ର, ଯଜ୍ଞ, ସ୍ତୋତ୍ର, ଅନ୍ନ ।
ନମତ—ପୁଂ. ବି. (ନମ+ମିଂ.ଅତ) ପ୍ରଭୁ, ମେଘ, (ନମ୍+କ. ଅତ) ଧୂଆଁ, ନଟ. ଉର୍ଣ୍ଣାବସ୍ତ୍ର, (ବିଂ) ନତ, ବଙ୍କା ।
ନମତା—ଗ୍ରା. ବି. (ସଂ-ନମସ୍କର୍ତ୍ତା) ଭୃତ୍ୟ, ସେବକ, ପରିଜନ, ଅନୁଚର ।
ନମଣ୍ଡ—ଗ୍ରା. (ଗଞ୍ଜାମ) ବି. (ସଂ-ନାପିତ) ଭଣ୍ଡାରି ଜାତିବିଶେଷ । [ ଲୁଗା ।
ନମଦା—ଯା. ବି. ପଶମଚୁଞ୍ଚା କମଳ ବା
ନମଦେବ—ମହୀସୁର ବଙ୍କି ମାନଙ୍କର ଗୋଟିଏ ବିଭାଗ ।
ନମନ—କ୍ଲୀ.ବି.(ନମ୍+ଭା.ଅନ) ଲଇଁବା, ନମସ୍କାର କରିବା, ପ୍ରଣାମ, ବଶହେବା, ନମ୍ର ହେବା । [ ପର୍ବତ ।
ନମନକୁଲ—ସିଂହଳଦ୍ୱୀପସ୍ଥ ଗୋଟିଏ
ନମନୀୟ—କ୍ଲୀ. ବିଂ. (ନମ୍+ମିଂ.ଅନୀୟ) ନତହେବାର ଯୋଗ୍ୟ, ପୂଜନୀୟ, ଯାହାକୁ ନୁଆଇଁବା ଆବଶ୍ୟକ, (ସ୍ତ୍ରୀ) ନମନୀୟା ।
ନମନ୍ତ୍ରା—ଗ୍ରା. ବି. ନମତ ଦେଖ ।
ନମୟିଷ୍ଣୁ—ତି. ବିଂ. ନମନଶୀଳ ।
ନମ(ମା)ଶୂଦ୍ର—ଗ୍ରା. ବି. ବଙ୍ଗଦେଶର ନୀଚ ଶୂଦ୍ରଜାତିବିଶେଷ ।
ନମସ—ବି. (ନମ୍+କା.ଅସ) ଆପଣାର ସପକ୍ଷ ବ୍ୟକ୍ତି, ସ୍ୱପ୍ନ ସୂଚକ ବ୍ୟକ୍ତି, ସହାୟ, (ନମ୍+ଭା.ଅସ) ଆନନ୍ଦ, ପ୍ରୀତି, ସମ୍ମତି, (ବିଂ) ଅନୁକୂଳ, (ସ୍ତ୍ରୀ) ନମସା ।
ନମସି(ସ୍ୟି)ତ—ପୁଂ. ବିଂ. (ନମସ୍+ଇ.ତ) ପୂଜିତ, ଅଭିବାଦିତ, (ସ୍ତ୍ରୀ) ନମସିତା
ନମସ୍କରଣୀୟ—ବିଂ. (ନମସ୍+କୃ+ମିଂ. ଅନୀୟ) ନମସ୍ୟ ଦେଖ, (ସ୍ତ୍ରୀ) ନମସ୍କରଣୀୟା ।
ନମସ୍କରିବା—ଗ୍ର. (ପଦ୍ୟ) କ୍ରି. ନମସ୍କାର କରିବା ।
ନମସ୍କର୍ତ୍ତା—ପୁଂ. ବିଂ. (ନମସ୍+କୃ+କ. ତୃ) ଯେ ନମସ୍କାର କରେ, ପୁଂ. ବି. ମହାଦେବ, (ସ୍ତ୍ରୀ) ନମସ୍କର୍ତ୍ତ୍ରୀ
ନମସ୍କାର—ପୁଂ. ବି. (ନମସ୍+କୃ+ଭା. ଅ) ପ୍ରଣାମ, ମୁଣ୍ଡିଆମାରିବା, (ଗ୍ର. ଅବ୍ୟ.) ନମ ଦେଖ ।
ନମସ୍କାରକରିବା—ଗ୍ରା. କ୍ରି. ପ୍ରଣାମକରିବା
ନମସ୍କାରୀ—ପୁଂ. ବିଂ. (ନମସ୍+କୃ+କ ଇନ୍) ନମସ୍କର୍ତ୍ତା, (ବି) ଲଜକୁଳୀଲତା, ବରାହକ୍ରାନ୍ତା, (ଗ୍ରା. ବି) ସଲମୀ, ଦର୍ଶନୀ, ପ୍ରଣାମୀ, (ସ୍ତ୍ରୀ) ନମସ୍କାରିଣୀ ।
ନମସ୍କାର୍ଯ୍ୟ—ପୁଂ. ବିଂ. (ନମସ୍+କୃ+ମିଂ. ଯ) ନମସ୍ୟ, ନମସ୍କରଣୀୟ, ପୂଜନୀୟ, (ସ୍ତ୍ରୀ) ନମସ୍କାର୍ଯ୍ୟା ।
ନମସ୍କୃତ—ପୁଂ. ବିଂ. (ନମସ୍+କୃ+ମିଂ.ତ) ଯାହାଙ୍କୁ ନମସ୍କାର କରାଯାଇଅଛି, (ସ୍ତ୍ରୀ) ନମସ୍କୃତା ।
ନମସ୍କ୍ରିୟା—ସ୍ତ୍ରୀ. ବି. (ନମସ୍+କ୍ରିୟା), ନମସ୍କାର ଦେଖ ।
ନମସ୍ତେ—ଅବ୍ୟ. ତୁମ୍ଭଙ୍କୁ ନମସ୍କାର ।
ନମସ୍ତେନମସ୍ତେକରିବା—ଗ୍ର. କ୍ରି. ନମସ୍କାର କରିବା, କୌଣସି ବ୍ୟକ୍ତିଙ୍କ ପାଖରେ ଅତି ପ୍ରଣତ ହେବା ।
ନମସ୍ୟ—ତି. ବିଂ. ( ନମସ୍+ମିଂ.ଯ ) ବନ୍ଦନୀୟ, ନମସ୍କରଣୀୟ. (ସ୍ତ୍ରୀ) ନମସ୍ୟା ।
ନମସ୍ୟା—ସ୍ତ୍ରୀ. ବିଂ. ନମସ୍ୟର ସ୍ତ୍ରୀଲିଙ୍ଗ, ସ୍ତ୍ରୀ. ବି. (ନମସ୍+ଭା.ଯ+ଆ) ପୂଜା, ବନ୍ଦନ, ଅର୍ଚ୍ଚନ, ନମସ୍କାର ।
ନମସ୍ୟିତ—ପୁଂ. ବିଂ. (ନମସ୍ୟ+ଇତ) ନମସ୍କୃତ. ଯାହାଙ୍କୁ ନମସ୍କାର କରାଯାଇଅଛି. (ସ୍ତ୍ରୀ) ନମସ୍ୟିତା ।
ନମସ୍ୟୁ—ପୁଂ.ବିଂ. ନମସ୍କରଣଶୀଳ, (ପୁଂ. ବି) ପୁରୁବଂଶୀୟ ନୃପବିଶେଷ ।
ନମାଜ୍—ଯା. ବି. ମୁସଲମାନମାନଙ୍କର ଈଶ୍ୱରୋପାସନା ।
ନମାଜ୍କରିବା—ଗ୍ର. କ୍ରି. ଆଲ୍ଲାଙ୍କୁ ଉପାସନ କରିବା ।
ନମାଜ୍ଗା—ଯା. ବି. ମସଜିଦର ଯେଉଁ ଅଂଶରେ ମୁସଲମାନମାନେ ନମାଜ ପଢ଼ନ୍ତି ।
ନମାଜିଆ—ଗ୍ର. ବିଂ. ନମାଜୀ ଦେଖ ।
ନମାଜୀ—ଯ. ବି. ଯେଉଁ ମୁସଲମାନମାନେ ନମାଜ ପଢ଼ନ୍ତି ।
ନମାମି—କ୍ରି. (ମୁଁ) ନମସ୍କାର କରେ ବା କରୁଅଛି ।
ନମିତ—ତି.ବିଂ. (ନମ୍+ଣିଚ୍+ମିଂ.ତ) ନମସ୍କୃତ, ତଳକୁ ଝୁଆଇ ଦିଆଯାଇଥିବା, ପତିତ, ବଶୀକୃତ, ବିନୀତ ।
ନମିବା—ଗ୍ରା. (ପଦ୍ୟ) କ୍ରି. ନମସ୍କାର କରିବା ।
ନମୀ—ପୁଂ. ବି. ଋଷିଭେଦ ।
ନମୁଚି(ଚୀ)—ପୁଂ.ବି.(ନ+ମୁଚ୍+କ.ଇ) କାମ, କନ୍ଦର୍ପ, ଏକ ଦୈତ୍ୟର ପୁତ୍ର, ଶୁମ୍ଭ, ନିଶୁମ୍ଭଙ୍କ ସାନଭାଇ, ଏକଋଷି ।
ନମୁଚିଦ୍ୱିଟ୍—ବି. (ନମୁଚି+ଦ୍ୱିଷ୍+କ. କ୍ୱିପ୍) ମହାଦେବ, ଇନ୍ଦ୍ର ।
ନମୁଚିଦ୍ୱିଷ୍—ପୁଂ. ବି. ଇନ୍ଦ୍ର, ନମୁଚିସୂଦନ । [ ଶିବ ।
ନମୁଚିସୂଦନ—ପୁଂ. ବି. (ତତ୍ପୁ) ଇନ୍ଦ୍ର,
ନମୁଦ୍—ଗ୍ର. ବି. କାର୍ଯ୍ୟରେ ନିଯୁକ୍ତି, (ଗ୍ର.ବି ) କାର୍ଯ୍ୟରେ ନିଯୁକ୍ତ ।
ନମୁଦ୍କରିବା—ଗ୍ରା.କ୍ରି.କୌଣସି ବ୍ୟକ୍ତିଙ୍କୁ କୌଣସି କାର୍ଯ୍ୟରେ ନିଯୁକ୍ତକରିବା ।
ନମୁନା—ଯା. ବି. ଦୃଷ୍ଟାନ୍ତ, ସାଦୃଶ୍ୟ, ବସ୍ତୁର ଅନୁରୂପ ଅଂଶ ବା ଆଦର୍ଶ, ନିଦର୍ଶନ ।
ନମୁର—ପୁଂ. ବି. ନମୁଚି ଅସୁର ।
ନମେରୁ—ପୁଂ.ବି.(ନମ୍+କ. ଏରୁ) ରୁଦ୍ରାକ୍ଷ, ସୁରପୁନ୍ନାଗ ବୃକ୍ଷ, ନାରେଙ୍ଗ ବୃକ୍ଷ ।
ନମୋ—ଗ୍ର. ଅବ୍ୟ. ଆପଣଙ୍କୁ ନମସ୍କାର, ନମସ୍ତେ ।
ନମୋଗୁରୁ—ପୁଂ. ବି. ବ୍ରାହ୍ମଣ, ଆଚାର୍ଯ୍ୟ, ଗୁରୁଦେବ ।
ନମୋଦ୍—ଗ୍ର. ବି ଓ ବିଂ. ନମୁଦ୍ ଦେଖ. (ପ୍ରା. ଗଞ୍ଜାମ. ବା ଉଚ୍ଛେଦ ।
ନମୋନମ(ମେ)—ଗ୍ରା.ଅବ୍ୟ. ନମ ଦେଖ ।
ନମୋନମଃ—ଅବ୍ୟ. ନମ ଦେଖ ।
ନମୋନମସ୍ତେ—ଅବ୍ୟ. ନମ ଦେଖ ।
ନମୋବାକ—ବି.(ନମଃ+ବାକ୍) ନମସ୍କାର ବଚନ, ନମସ୍କାର କରିବା ବ୍ୟକ୍ତିଙ୍କର ମୁହଁରେ ଉଚ୍ଚାରିତ ବଚନ ।
ନମୋବୃଧ୍—ପୁଂ. ବି. ଯଜ୍ଞ ।
ନମ୍(ମ୍ବ)—ଗ୍ରା. (ମେଦିନୀ) ଯ. ବି.

କିରସିନ ଜାଳିବା ଡିବି ।
ନମ୍ବ(ଧାତୁ)--ଯିବା,ଗମନକରିବା,ଚଳିବା, ଘୁଞ୍ଚିବା, ଗତିଶୀଳ ହେବା । [ ଦେଖ ।
ନମ୍ବ(ଇତ୍ୟାଦି)—ଗ୍ରା. ବି. ଲମ୍ବଇତ୍ୟାଦି
ନମ୍ବଡ଼ା—ଗ୍ରା. ବିଂ. ଲମ୍ବଡ଼ା ଦେଖ ।
ନମ୍ବଡ଼ା—ଗ୍ରା. ବିଂ. ଲମ୍ବଡ଼ା ।
ନମ୍ବର—ଯା. ବି. ଅଙ୍କ, ସଂଖ୍ୟା, କ୍ରମିକ ସଂଖ୍ୟା, ପଣ୍ୟଦ୍ରବ୍ୟାଦିରେ ଦିଆଯିବା ମାର୍କା ବା ସଂଖ୍ୟା, ମକଦ୍ଦମା, ( ବିଂ ) ନମ୍ବରଯୁକ୍ତ, (୬ତତ୍) ସଂଖ୍ୟକ,(ଅମୁକ) ଶ୍ରେଣୀୟ, ରକମର ।
ନମ୍ବରଦାର—ପ୍ରା.(ସମ୍ବ) ଯା.ବି. ରାଜସ୍ୱ-ଦାତା ପ୍ରଜା, ଲମ୍ବରଦାର, ଗ୍ରାମାଧ୍ୟକ୍ଷ, ଗଉନ୍ତିଆ ।
ନମ୍ବରଦେବା—ଗ୍ରା.କ୍ରି. ପରୀକ୍ଷାର୍ଥୀ ଗୁଡ଼ିକଙ୍କ ଖାତାରେ ନମ୍ବର ଦେବା, ନମ୍ବର ମାରିବା ଦେଖ ।
ନମ୍ବରମାରିବା—ଗ୍ରା. କ୍ରି. ସଂଖ୍ୟାଦ୍ୱାରା ଚିହ୍ନିତ କରିବା, ମାର୍କା ମାରିବା,ନମ୍ବର ଦେବା ।
ନମ୍ବରିଆ—ଗ୍ରା. ବିଂ. ନମ୍ବରୀ ଦେଖ ।
ନମ୍ବରିଙ୍ଗ୍‌ମେସିନ୍—ଯା. ବି. ଯେଉଁ ଯନ୍ତ୍ର ଦ୍ୱାରା ପାଉଣ୍ଡଆଦିର ନମ୍ବର ଛପାଯାଏ ।
ନମ୍ବରୀ—ଯା. ବିଂ. ଲମ୍ବରୀ, ନମ୍ବର ମରା-ଯାଇଥିବା, ପ୍ରସିଦ୍ଧ, ମାର୍କାମରା, ନାମ-ଜାଦା ।
ନମ୍ବରୀମୋକଦ୍ଦମା—ଯା.ବି. କ୍ରମାନୁସାରେ ବିଚାର କରାଯିବା ସନ୍ଦାସନ୍ଦ ସମ୍ବନ୍ଧୀୟ ମୋକଦ୍ଦମା ।
ନମ୍ବରୀସେର—-ଯା. ବି. ବାଲେଶ୍ୱରୀ ସେର, ୮୦ ଟଙ୍କା ଓଜନର ସେର ।
ନମ୍ବା—ଗ୍ରା. ବିଂ. ଲମ୍ବା ଦେଖ, (ସ୍ତ୍ରୀ) ନମ୍ବୀ । [ ଦେଖ ।
ନମ୍ବା(ମ୍ବେ)ଇବା—ଗ୍ରା. କ୍ରି. ଲମ୍ବାଇବା
ନମ୍ବିବା—ଗ୍ରା. କ୍ରି. ଲମ୍ବିବା ଦେଖ ।
ନମ୍ବୀ—ଗ୍ରା. ବିଂ ଓ କ୍ରି.ବିଂ.ଲମ୍ବୀଦେଖ ।
ନମ୍ବୁରି(ଦ୍ରୀ) – ଗ୍ରା. ବି. ଭାରତର ଦକ୍ଷିଣ ପଶ୍ଚିମସ୍ଥ ମାଲବାର ଉପକୂଳ ଅଞ୍ଚଳର ବ୍ରାହ୍ମଣଙ୍କ ଶ୍ରେଣୀବିଶେଷ ।

ନମ୍ବେନମ୍ବେ—ଗ୍ରା.କ୍ରି.ବିଂ. ଲମ୍ବେଲମ୍ବେ, ଦିଧାଦିଧା ।
ନମ୍ୟ—କ୍ରି.ବିଂ. ନମନୀୟ, (ନମ୍+ର୍ମ.ଯ) ନମସ୍କାରଯୋଗ୍ୟ, (ସ୍ତ୍ରୀ) ନମ୍ୟା ।
ନମ୍ର—କ୍ରି.ବିଂ. (ନମ୍+କ.ର) ବିନୀତ, ବିନୟସମ୍ପନ୍ନ,ଶିଷ୍ଟ, ଭଦ୍ର, (ବି) ନମ୍ରତା. ବନ୍ଧୀକୃତ, ମୃଦୁ, କୋମଳ, ନରମ, ଯାହା ନଇଁଅଛି ।
ନମ୍ରକ—କ୍ରି. ବିଂ. ( ନମ୍ର+ସ୍ୱାର୍ଥେ.କ ) ନମ୍ର. ନତ, ବି. (ନମ୍ର+କ.କ) ବେତ-ଗଛ ।
ନମ୍ରତା—ସ୍ତ୍ରୀ. ବି. (ନମ୍ର+ତା) ନମ-ନୀୟତା, କୋମଳତା, ନତି, ବିନୟ ।
ନମ୍ରତ୍ୱ—କ୍ଲୀ. ବି. ନମ୍ରତା ଦେଖ ।
ନମ୍ରପ୍ରକୃତି—ପୁଂ. ବି. ( କ.ଧା ) ଶିଷ୍ଟ-ସ୍ୱଭାବ, ଭଦ୍ରତା,କୋମଳସ୍ୱଭାବ,ବିନୟ, (ବିଂ-ବ.ବ୍ରୀ) ନମ୍ରପ୍ରକୃତିକ ଦେଖ ।
ନମ୍ରପ୍ରକୃତିକ—ପୁଂ. ବିଂ. (ବ.ବ୍ରୀ) ନମ୍ର-ପ୍ରକୃତିବିଶିଷ୍ଟ,ଶିଷ୍ଟ, ଭଦ୍ର,ଶାନ୍ତପ୍ରକୃତି-ବିଶିଷ୍ଟ, (ସ୍ତ୍ରୀ) ନମ୍ରପ୍ରକୃତିକା ।
ନମ୍ରମୁଖ—ପୁଂ. ବି. (କ.ଧା) ଅବନତ-ମସ୍ତକ, ନତମୁଖ, ( ପୁଂ.ବିଂ-ବ.ବ୍ରୀ ) ନତମୁଖ. ହେଂଟବଦନ, ତଳକୁ ମୁହଁ କରିଥିବା, ଲଜ୍ଜକୁଳା । [ ବିନୀତ ।
ନମ୍ରମୂର୍ତ୍ତି—କ୍ରି. ବିଂ. ( ବ.ବ୍ରୀ ) ନତ,
ନମ୍ରଶୀଳ—ପୁଂ. ବିଂ. ( ବ.ବ୍ରୀ ) ନମ୍ର-ପ୍ରକୃତିକ, (ବି) ନମ୍ରଶୀଳତା. ( ସ୍ତ୍ରୀ ) ନମ୍ରଶୀଳା । [ ଦେଖ ।
ନମ୍ରସ୍ୱଭାବ—କ୍ରି. ବି ଓ ବିଂ. ନମ୍ରପ୍ରକୃତି
ନମ୍ରାଙ୍ଗ—ବି.(କ.ଧା) ସୁକୋମଳ ଶରୀର, (ପୁଂ.ବିଂ) ସୁକୋମଳ ଶରୀରବିଶିଷ୍ଟ. (ସ୍ତ୍ରୀ) ନମ୍ରାଙ୍ଗୀ (ଙ୍ଗୀ) ।
ନମ୍ରିବା—ଗ୍ରା. (ପଦ୍ୟ) କ୍ରି. ନମ୍ରହେବା, ବିନୟସମ୍ପନ୍ନ ହେବା ।
ନୟ(ଧାତୁ)—ଗମନକରିବା, ଯିବା, ଚଳିବା, ଗତିକରିବା ।
ନୟ—ବି. (ନୀ+ଭା.ଅ) ଆଚରଣ, ବିଧି, ନୀତି, ନୟନ, ରାଜନୀତି, (ନୀ+ଣ.ଅ) ନୀତିଶାସ୍ତ୍ର, ଗୁରୁଙ୍କ ଉପଦେଶବଚନ,

ଦ୍ୟୂତକ୍ରୀଡ଼ାବିଶେଷ, ସତରଞ୍ଚ ଖେଳ, ( ନୀ+କ.ଅ ) ପଥପ୍ରଦର୍ଶକ, ନେତା, ଚଳିବାର ରୀତି, ଦୂରଦୃଷ୍ଟି ,ରାଜନୀତି-କୁଶଳତା, ନ୍ୟାୟାନୁମୋଦିତ ମାର୍ଗ, କାର୍ଯ୍ୟ ସାଧନାର୍ଥ ପରିକଳ୍ପିତ ଉପାୟ, ବିଧିବଦ୍ଧପନ୍ଥା, ରୀତି, କୌଣସି ମତ-ବାଦ, ବିଷ୍ଣୁଙ୍କ ନାମ, ପରିଚାଳନ,(ବିଂ) ନ୍ୟାଯ୍ୟ, ଅଗ୍ରଗାମୀ, ଉପଯୁକ୍ତ, ଯଥା-ଯୋଗ୍ୟ, (ଗ୍ରା.ବି) ଧ୍ୟାନ, ଏକାଗ୍ରଦୃଷ୍ଟି ।
ନୟକ—ପୁଂ.ବି. (ନୀ+କ.ଅକ)କାର୍ଯ୍ୟ-ପରିଚାଳକ ଚତୁର ବ୍ୟକ୍ତି,(ସ୍ତ୍ରୀ)ନୟିକା, (ବିଂ) ନେତା, ପରିଚାଳନକାରୀ, ରାଜ-ନୀତିଜ୍ଞ ।
ନୟକତା—-ବୋମ୍ବାଇ ଓ ମହାରାଷ୍ଟ୍ର-ଦେଶର ଆଦିମ ଅସଭ୍ୟ ଜାତିବିଶେଷ ।
ନୟଚକ୍ଷୁଃ – ବିଂ.(ବ.ବ୍ରୀ) ଯାହାର ରାଜ-ନୀତିରେ ଦୂରଦୃଷ୍ଟି ଅଛି ।
ନୟଜ୍ଞ—ପୁଂ.ବିଂ. (ନୟ+ଜ୍ଞା+କ.ଅ) ନୀତିବିଶାରଦ, ( ପୁ.ବି ) ରାଜନୀତି-ବିଶାରଦ ବ୍ୟକ୍ତି, ଦୂରଦୃଷ୍ଟିବିଶିଷ୍ଟ ବ୍ୟକ୍ତି, (ବି.) ନୟଜ୍ଞତା,(ସ୍ତ୍ରୀ)ନୟଜ୍ଞା ।
ନୟନ୍(ଇତ୍ୟାଦି)--ଯା.ବି.ଲାଇନ୍ ଦେଖ ।
ନୟନ୍‌କ୍ଲାଥ୍—ଯା. ବି. (ଇଂ-ଲଙ୍ଗ୍‌କ୍ଲଥ୍) କଲକୁଣା ଧଳାସୂତାର ଲୁଗା ।
ନୟନ୍‌ସୁକ୍(ଖ୍)— ଗ୍ରା.ବି (ଫ-ନୟନସୁଖ) ସୂକ୍ଷ୍ମ ଚିକଣ କଲକୁଣା ସୂତା ଲୁଗା ।
ନୟନ—କ୍ଲୀ. ବି. (ନୀ+ଣ.ଅନ) ଚକ୍ଷୁଃ, ଆଖି, ( ନୀ+ଭା.ଅନ ) ପ୍ରାପଣ, ପ୍ରାପ୍ତି-କରାଇବା, (ନୀ+କ.ଅନ)ପଥପ୍ରଦର୍ଶନ, ଯାପନ, କଟାଇବା, ଅତିବାହନ, ରାଜ୍ୟାଦିର ଶାସନ ।
ନୟନଗୋଚର—କ୍ରି.ବିଂ(୬ତତ୍,୩ତତ୍) ଚକ୍ଷୁଗୋଚର, ଦେଖାଯିବା, ଦୃଷ୍ଟିର-ବିଷୟୀଭୂତ, ସମକ୍ଷ ।
ନୟନଗୋଚରକରିବା--ଗ୍ରା.କ୍ରି.ଦେଖିବା
ନୟନଜଳ—ବି. ( ୬ତତ୍ ) ଲୋତକ, ଲୁହ, ଅଶ୍ରୁ ।
ନୟନଜୁ(ଜୋ)ର-—ଗ୍ରା. ବି. ନର୍ଦ୍ଦମା, ସଡ଼କର ଉଭୟ ପାଖରେ ଥିବା ଜଳ-

ନିର୍ଗମ ମାର୍ଗ । [ ଅଖିଠାର ।

ନୟନଠାର—ଗ୍ରା. ବି. ନୟନଭଙ୍ଗୀ,

ନୟନତର—ଗ୍ରା.ବି.ନୟନତାରା ଦେଖ ।

ନୟନତାରା—ବି. (୬ତତ୍) କନୀନିକା, ଆଖିର ମଣି,(ଲ.ଅର୍ଥ) ପୃଥିବୀର ପ୍ରିୟତମ ବସ୍ତୁ ।

ନୟନତୃପ୍ତିକର—ବିଂ. (୬ତତ୍) ଯାହା ଦେଖିଲେ ମନରେ ଆନନ୍ଦ ହୁଏ, ପ୍ରିୟଦର୍ଶନ । [ ଅଖିପତା ।

ନୟନପଟ—ବି.(୬ତତ୍)ଆଖିର ପଲକ,

ନୟନପଥ—ପୁଂ. ବି. ( ୬ତତ୍ ) ଦୃଷ୍ଟି ଯେତେଦୂର ଯାଇପାରେ, ଦୃଷ୍ଟିପଥ ।

ନୟନପାଲ—କାନ୍ୟକୁବ୍ଜର ପ୍ରଥମରାଠୋର ରାଜା ।

ନୟନପିତୁଲା—ଗ୍ରା. ବି. ନୟନତାରା ଦେଖ, ନୟନସମ୍ପତ୍ତି ଦେଖ ।

ନୟନପୁଟ—ବି.(୬ତତ୍)ଆଖିର ଚହ୍ଲର

ନୟନନନ୍ଦନ—ବି.ବିଂ.(୬ତତ୍)ନେତ୍ରର ଆନନ୍ଦଦାୟକ ।

ନୟନପେଡ଼ି—ଗ୍ରା. ବି. ଯାହା ଆଖି ଆଗରେ ନଥାଇ ସର୍ବଦା କଳ୍ପନାରୂପ ଅଖି ଆଗରେ ନାଚୁଥାଏ ।

ନୟନପ୍ରତିମା—ବି.(ଲ.ଅର୍ଥ) ଅତି ପ୍ରିୟତମ ବ୍ୟକ୍ତି, ନୟନସମ୍ପତ୍ତି ।

ନୟନପ୍ରିୟ—ବିଂ. ନୟନତୃପ୍ତିକର ।

ନୟନବାଣ—ପୁଂ. ବି.( ରୂପକ-କ.ଧା ) ବାଣତୁଲ୍ୟ ହୃଦୟବିଦାରଣୀ ଦୃଷ୍ଟି ।

ନୟନବାରି—କ୍ଲୀ.ବି.ନେତ୍ରଜଳ, ଲୁହ ।

ନୟନବିଷୟ—ପୁଂ.ବି. (୬ତତ୍)ଦେଖାଯାଉଥିବା ବସ୍ତୁ, ଦିଗ୍‌ବଳୟ, ଦୃଷ୍ଟିପଥ, (ବିଂ) ନୟନଗୋଚର ।

ନୟନମଣି—ପୁଂ. ବି. (୬ତତ୍) ଚକ୍ଷୁର ତାରା, (ବିଂ) ଅତ୍ୟନ୍ତ ସ୍ନେହାସ୍ପଦ ।

ନୟନସମ୍ପତ୍ତି—ବି. (୬ତତ୍) ନୟନପ୍ରତିମା ଦେଖ, ଆଖି ଆଗରେ ନାଚୁଥିବା ଅନୁପସ୍ଥିତ ବା ଅତୀତ ବିଷୟ

ନୟନସଲିଳ—କ୍ଲୀ.ବି. ଚକ୍ଷୁଜଳ, ଅଶ୍ରୁ ।

ନୟନସୁକ—ବି.ସୂକ୍ଷ୍ମ ବିଲାତି ବସ୍ତ୍ରବିଶେଷ ।

ନୟନସୁଖକର—ବିଂ. ନୟନତୃପ୍ତିକର ଦେଖ । [ ଦୃଷ୍ଟି ।

ନୟନା—ବି. ଆଖିର ପିତୁଲା, ଅପାଙ୍ଗ-

ନୟନାଞ୍ଜନ-କ୍ଲୀ.ବି.କଜ୍ଜଳବିଶେଷ,ସୁର୍ମା ।

ନୟନାନନ୍ଦ—କ୍ଲୀ.ବି. ( ୬ତତ୍ ) ଚକ୍ଷୁର ପ୍ରୀତି, (ପୁଂ.ବିଂ—ବ.ବ୍ରୀ) ସୁନ୍ଦର, ନୟନ ତୃପ୍ତିକର, (ସ୍ତ୍ରୀ) ନୟନାନନ୍ଦା ।

ନୟନାନନ୍ଦକର—ପୁଂ.ବିଂ. ନୟନାନନ୍ଦ ଦେଖ, (ସ୍ତ୍ରୀ) ନୟନାନନ୍ଦକରୀ ।

ନୟନାଭିଘାତ—ରୋଗବିଶେଷ ।

ନୟନାଭିରାମ—ପୁଂ.ବିଂ. (ବ.ବ୍ରୀ)ଚକ୍ଷୁର ପ୍ରୀତିକର, ସୁନ୍ଦର, (ବି) ଚନ୍ଦ୍ର, (ସ୍ତ୍ରୀ) ନୟନାଭିରାମା ।

ନୟନାମୋଷୀ—ବିଂ. (ନୟନ+ଆ+ମୁଷ୍+କ.ଇନ୍) ଯାହା ଆଖିକୁ ଦୃଷ୍ଟିଶକ୍ତିହୀନ କରିଦିଏ ।

ନୟନାଶ୍ରୁ—ବି.(୬ତତ୍) ଲୁହ,ଲୋତକ

ନୟନୀ—ସ୍ତ୍ରୀ.ବି.(ନୟନ+ଈ) ନୟନତାରା, ଆଖିର ପୁଅ, ପୁଂ.ବିଂ. (ନୟନ+ଇନ୍) ଚକ୍ଷୁବିଶିଷ୍ଟ, (ସ୍ତ୍ରୀ) ନୟନିନୀ ।

ନୟନେତା—ପୁଂ.ବି. (ନୟ+ନେତୃନ୍) ରାଜନୀତି ବିଷୟରେ ଅତି ବିଚକ୍ଷଣ ବ୍ୟକ୍ତି, (ସ୍ତ୍ରୀ) ନୟନେତ୍ରୀ ।

ନୟନୋତ୍ସବ—ପୁଂ.ବି. (ବ.ବ୍ରୀ) ପ୍ରଦୀପ, ନେତ୍ର ତୃପ୍ତିକର ବସ୍ତୁ, (ବିଂ-ବ.ବ୍ରୀ) ନେତ୍ରପ୍ରିୟ ।

ନୟନୋପାନ୍ତ—ପୁଂ.ବି.(୬ତତ୍)ଅପାଙ୍ଗ, ଚକ୍ଷୁର କୋଣ, ନେତ୍ରପ୍ରାନ୍ତ ।

ନୟନୌଷଧ—ବି. (୬ତତ୍) ପୁଷ୍ପକାସୀସ, ହୀରାକସ ।

ନୟପାଲ—ପୁଂ. ବି. ଗୌଡ଼ର ପାଲବଂଶର ଜଣେ ପ୍ରସିଦ୍ଧ ରାଜା ।

ନୟପୀଠୀ—ସ୍ତ୍ରୀ. ବି. (୬ତତ୍) ସତରଞ୍ଜି ବା ପଶାଖେଳର ପାଲି ବା ଛକ ।

ନୟପ୍ରୟୋଗ—ବି. (୬ତତ୍) ରାଜନୀତିର ବ୍ୟବହାର, ରାଜନୀତିଜ୍ଞ ଦୂରଦର୍ଶନ ।

ନୟବର୍ତ୍ମ—କ୍ଲୀ. ବି. (୬ତତ୍) ରାଜନୀତିମାର୍ଗ ।

ନୟବାଦୀ—ପୁଂ. ବି ଓ ବିଂ. (ନୟ+ବଦ୍+କ.ଇନ୍) ନୟଜ୍ଞ ଦେଖ ।

ନୟବିଦ୍—ପୁଂ. ବିଂ. (ନୟ+ବିଦ୍+କ.କ୍ୱିପ୍) ନୟଜ୍ଞ ଦେଖ ।

ନୟବିଶାରଦ—ପୁଂ.ବିଂ. (୭ତତ୍)ନୟଜ୍ଞ ଦେଖ, (ସ୍ତ୍ରୀ) ନୟବିଶାରଦା ।

ନୟଶାଳୀ—ପୁଂ. ବିଂ. ନ୍ୟାୟପର, (ସ୍ତ୍ରୀ) ନୟଶାଳିନୀ ।

ନୟଶାସ୍ତ୍ର—କ୍ଲୀ. ବି. (୬ତତ୍) ନୀତିଶାସ୍ତ୍ର ।

ନୟଶୀଳ—ପୁଂ. ବିଂ. (ବ,ବ୍ରୀ) ନୀତିଜ୍ଞ, (ବି) ନୟଶୀଳତା, (ସ୍ତ୍ରୀ) ନୟଶୀଳା ।

ନୟସ୍—ଗ୍ରା. ବି. ଲୟସ ଦେଖ ।

ନୟସାର—ପୁଂ. ବି. ନୀତିସୂତ୍ର ।

ନୟା—ଯା.ବିଂ.ନୂତନ,ନୂତନ ପ୍ରତିଷ୍ଠିତ ।

ନୟାଗଡ଼—ଗ୍ରା. ବି. ନୂଆଗଡ଼ ଦେଖ, ଓଡ଼ିଶାର ଗୋଟିଏ କ୍ଷୁଦ୍ର ରାଜ୍ୟ ।

ନୟାଦୁମକା—ସାନ୍ତାଳପ୍ରଗଣା ନୟାଦୁମକା ଉପବିଭାଗର ପ୍ରଧାନ ସ୍ଥାନ ।

ନୟାନ୍ତ—ଗ୍ରା. ବିଂ. ଅତିଶୟ କ୍ଳାନ୍ତ ।

ନୟାବାଦ(ଦୀ)—ଗ୍ରା.ବି.ନୂଆଚାଷ ହୋଇଥିବା ଜମି, ( ଗ୍ରା.ବିଂ ) ନୂଆ ଆବାଦ ହୋଇଥିବା (ଜମି) ।

ନୟାମ୍—ଯା. ବି. ତରବାରି ଖୋଳ ।

ନୟାଲୀ—(ହିନ୍ଦୀମୂଳକ) ନୂତନ ।

ନୟ୍ୟଗ୍ରୋଧ—ପୁଂ. ବି. ନ୍ୟଗ୍ରୋଧ ।

ନର—ପୁଂ. ବି. (ନୃ+କ.ଅ) ମାନବ, ମନୁଷ୍ୟ, ବିଷ୍ଣୁ, ଅର୍ଜୁନ, ସୀମା ନିର୍ଦ୍ଦେଶକ ଖୁଣ୍ଟି,ପରମାତ୍ମା,ସତରଞ୍ଜି ଖେଳର ଗୋଟି, ସୂର୍ଯ୍ୟଘଡ଼ିର ଛାୟାନିର୍ଦ୍ଦେଶକ ଶଙ୍କୁ, ମନୁଷ୍ୟର ଉଚ୍ଚତା,ପୁରୁଷ, ଋଷିବିଶେଷ, ଘୋଡ଼ା,ବ୍ୟକ୍ତି ବାଚକ ଅନ୍ତ୍ୟ ପଦ, ରୋହିଷ, ସେବକ, ( ଗ୍ରା. ବି ) ଅଣ୍ଡିରାଜୀବ, (ଫ-ଲହରୀ) ପଂକ୍ତି,ସୂତା, ସରି. (ବିଂ) ଅଣ୍ଡିରା, ମର୍ଦ୍ଦ, (ସ୍ତ୍ରୀ)ନାରୀ ।

ନରୱେ—ୟୁରୋପର ଗୋଟିଏ ଦେଶ ।

ନରକ—ବି. (ନର+ସ୍ୱାର୍ଥେ.କ) ନର, (ନୃ+ଅଧି.ଅକ) ପରଲୋକରେ ପାପୀମାନଙ୍କର ଯନ୍ତ୍ରଣା ସ୍ଥାନ, ଯାତନା, ଦୁର୍ଗତି, ଯନ୍ତ୍ରଣା, ଦୁଃଖରୋଗର ସ୍ଥାନ, ନରକାସୁର, ଅସୁରବିଶେଷ, (ଗ୍ରା.ବି) ବିଷ୍ଟା, ମଇଳା, ବିଷ୍ଟାମୟ ସ୍ଥାନ, ଅପ

ମଇଳା ସ୍ଥାନ, କଳାର ପୈଠ ।

ନରକକୁଣ୍ଡ—କ୍ଲୀ.ବି. (କ.ଧା ବା ୬ତତ୍ପୁ) ଯମପୁରସ୍ଥ ଦୁଃଖମୟ ସ୍ଥାନବିଶେଷ, ନରକସ୍ଥ ବିଷ୍ଠାକୁଣ୍ଡ, (ଲ.ଅର୍ଥ) ଅପରିଷ୍କୃତ ଓ ଜଘନ୍ୟ ସ୍ଥାନ, ବିଷ୍ଠାକୁଣ୍ଡ ।

ନରକଗଢ଼—ବି. (୭ତତ୍ପୁ) ପାପକାର୍ଯ୍ୟ କରିଥିବା ହେତୁ ମୃତ୍ୟୁପରେ ନରକଆଡ଼କୁ ଯିବା ବା ନରକରେ ପଡ଼ିବା ।

ନରକଗାମୀ—ପୁଂ. ବି. (ନରକ+ଗମ୍+କ.ଇନ୍)ଯେ ପାପହେତୁ ମୃତ୍ୟୁପରେ ନରକକୁ ଯାଏ, (ସ୍ତ୍ରୀ) ନରକଗାମିନୀ ।

ନରକଙ୍କାଳ—ପୁଂ. ବି. (୬ତତ୍ପୁ) ମନୁଷ୍ୟର ଅସ୍ଥି ।

ନରକଚତୁର୍ଦ୍ଦଶୀ—ବି. କାର୍ତ୍ତିକ କୃଷ୍ଣଚତୁର୍ଦ୍ଦଶୀ, ଭୂତଚତୁର୍ଦ୍ଦଶୀ ।

ନରକଜିତ୍—ପୁଂ. ବି. (ନରକ+ଜି+କ.କ୍ୱିପ୍) ବିଷ୍ଣୁ, କୃଷ୍ଣ ।

ନରକଦେବତା—ବି. ( ନରକ+ଦେବତା ୬ତତ୍; ନରକର ଅଧିଷ୍ଠାତ୍ରୀ ଦେବୀ, ଅଲକ୍ଷ୍ମୀ ।

ନରକପାଳ—ପୁଂ. କ୍ଲୀ. ବି. ( ୬ତତ୍ପୁ ) ମୃତମନୁଷ୍ୟ ଖପୁରି ।

ନରକବାସ—ବି. (୭ତତ୍ପୁ)ପାପର ଦଣ୍ଡସ୍ୱରୂପ ନରକରେ ଅବସ୍ଥିତି ।

ନରକଭୂମି—ସ୍ତ୍ରୀ.ବି. ଯମାଳୟସ୍ଥ ପାପୀମାନଙ୍କର ଦୁଃଖଭୋଗ ଭୂମି ।

ନରକମୁକ୍ତ—ପୁଂ.ବି. ନରକରୁ ମୁକ୍ତ ।

ନରକଯନ୍ତ୍ରଣା—ବି. (୭ତତ୍ପୁ ବା କ.ଧା) ନରକରେ ଦଣ୍ଡିତ ପାପୀର ଅନୁଭୂତ ଦୁଃଖ ।

ନରକବାସ—ବି.(୭ତତ୍ପୁ) ପାପର ଦଣ୍ଡସ୍ୱରୂପ ନରକରେ ଅବସ୍ଥିତି ।

ନରକସ୍ଥ—ବି.ବିଂ. (ନରକ+ସ୍ଥା+କ.ଅ) ଯେବା ଯାହା ନରକରେ ଅଛି, (ସ୍ତ୍ରୀ) ନରକସ୍ଥା ।

ନରକସ୍ଥା—ସ୍ତ୍ରୀ.ବିଂ.ଯେ ବା ଯାହା ନରକରେ ଅଛି, (ବି) ବୈତରଣୀ ନଦୀ ।

ନରକାଗଢ଼—ଗ୍ରା.ବି.ନରକଗଢ଼ ଦେଖ ।

ନରକାନ୍ତକ—ପୁଂ.ବିଂ.(୬ତତ୍ପୁ)ନରକାସୁରର ବିନାଶକାରୀ, (ବି) ବିଷ୍ଣୁ, କୃଷ୍ଣ, ଯେ ପାପୀକୁ ନରକରୁ ଉଦ୍ଧାର କରନ୍ତି ।

ନରକାମୟ—ପୁଂ. ବି. (କ.ଧା) ନରଯୁବ୍ୟାଧି, ପ୍ରେତ ।

ନରକାସୁର—ପୁଂ. ବି. ( ମଧ୍ୟ.କ.ଧା ) ନରକ ନାମକ ଅସୁର ବା ଦୈତ୍ୟ ।

ନରକୀ—ପୁଂ,ବିଂ. (ନରକ+ଇନ୍)ମହାପାପୀ, ନାରକୀ, କ୍ଲେଶସଙ୍କୁଳ, ( ସ୍ତ୍ରୀ ) ନରକିଣୀ ।

ନରକୀଲକ—ପୁଂ.ବି. (୭ତତ୍ପୁ) ଗୁରୁଘ୍ନ, ଗୁରୁହତ୍ୟାକାରୀ ବ୍ୟକ୍ତି, ଗୁରୁହା ।

ନରକୁନ୍ଦନବିଦ୍ୟା—ଗ୍ରା, ବି. ବ୍ୟାୟାମ, ଅଙ୍ଗଚାଳନା ।

ନରକୁନ୍ଦଦେବ—ବି. (୬ତତ୍ପୁ) ରାଜା ।

ନରକେଶରୀ—ପୁଂ.ବି.(କ.ଧା)ନରଶ୍ରେଷ୍ଠ, ନରପୁଙ୍ଗବ, ନୃସିଂହ ଅବତାର ।

ନରକୋଲ—ଗ୍ରା.ବି. ନଅରକୋଲ ।

ନରକୌକାଃ—ପୁଂ, ବିଂ. ନରକବାସୀ, ନରକଗାମୀ ।

ନରଗଣ—ପୁଂ,ବି. ( ଜ୍ୟୋତିଷ ) ଗଣବିଶେଷ, ଉତ୍ତର ଫାଲ୍ଗୁନୀ, ରୋହିଣୀ ଆଦି ନକ୍ଷତ୍ରରେ ଜନ୍ମହେଲେ ନରଗଣ ହୋଇଥାଏ,ମନୁଷ୍ୟସମୂହ ।

ନରଗିସ୍—ଯା. ବି. ଏକପ୍ରକାର ଧଳା ସୁଗନ୍ଧ ଫୁଲ । [ ବିଶେଷ ।

ନରଘଣ୍ଟା—ପ୍ରା. (ଗଡ଼ଜାତ)ବି. ଦେବୀ-

ନରଘଣ୍ଟାବେଣ୍ଟ—ପ୍ରା. ( ଗଡ଼ଜାତ )ବି. ଏହି ଦେବତାଙ୍କୁ ପୂଜାକରି ଶିକାରୀ ଶିକାରର ଅନୁକୂଳ କରେ ।

ନରଘାତକ—ପୁଂ,ବିଂ, (ନର+ହନ୍+କ.ଅକ) ମନୁଷ୍ୟ ହତ୍ୟାକାରୀ, (ବି) ମନୁଷ୍ୟ ହତ୍ୟାକାରୀ ବ୍ୟକ୍ତି, ( ସ୍ତ୍ରୀ ) ନରଘାତକା, ନରଘାତୁକା, ନରଘାତିନୀ ।

ନରଙ୍ଗ—ପୁଂ,ବିଂ.(ନୃ+ମି.ଅଙ୍ଗ)ବରୁଣ୍ଡ, କାଠବରୁଣ୍ଡ,ପୁରୁଷମାନଙ୍କର ଜନନେନ୍ଦ୍ରିୟ, ନାରଙ୍ଗଗଛ ।

ନରଜୋ—ଯା.ବି ସ୍କୁଲ ଗହଣାରେ ବ୍ୟବହୃତ ତାରୁ ।

ନରଡ଼ଙ୍କ—ଗ୍ରା, ବି. ଅମ୍ଳରସବିଶିଷ୍ଟ ଲତାବିଶେଷ ।

ନରତନ—ଗ୍ରା.(ପଦ୍ୟ)ବି. ନର୍ତ୍ତନ ଦେଖ ।

ନରତମ—ଗ୍ରା. ବି, ନରଶ୍ରେଷ୍ଠମଙ୍କ ଡାକନାମ ।

ନରତା—ସ୍ତ୍ରୀ.ବି. ନରତ୍ୱ, ମନୁଷ୍ୟତ୍ୱ ।

ନରତ୍ୱ—କ୍ଲୀ,ବି. ମନୁଷ୍ୟତ୍ୱ ।

ନରଦ—କ୍ଲୀ,ବି, ନଳଦ ଦେଖ ।

ନରଦମା—ଗ୍ରା.ବି. ନର୍ଦ୍ଦମା ଦେଖ ।

ନରଦେକ—ପୁଂ,ବିଂ. ନଳଦବିକ୍ରେତା ।

ନରଦେବ—ପୁଂ, ବି. (୬ତତ୍ପୁ) ବ୍ରାହ୍ମଣ, ରାଜା, ଦେବପ୍ରକୃତିକ ମନୁଷ୍ୟ ।

ନରଦେବଦେବ—ପୁଂ.ବି. ରାଜା ।

ନରଦ୍ୱିଷ୍—ପୁଂ. ବି. (ନର+ଦ୍ୱିଷ୍+କ.କ୍ୱିପ୍) ରାକ୍ଷସ, ଅସୁର ।

ନରଧି—ବି. ( ନର+ଧା+କ.ଇ ) ପୃଥିବୀ ।

ନରନଗର—କ୍ଲୀ.ବି. ନଗରଭେଦ ।

ନରନାଥ—ପୁଂ,ବି. ନରଶ୍ରେଷ୍ଠ, ରାଜା ।

ନରନାରାୟଣ—ପୁଂ. ବି. (କ.ଧା)ଅର୍ଜ୍ଜୁନ ଓ ଶ୍ରୀକୃଷ୍ଣ, ବଦରିକାଶ୍ରମସ୍ଥ ଋଷିଦ୍ୱୟ ।

ନରନାରୀ—ବି. (ଦ୍ୱନ୍ଦ୍ୱ) ପୁରୁଷ ଓ ସ୍ତ୍ରୀ, (୬ତତ୍ପୁ)ଦ୍ରୌପଦୀ ।

ନରନାହା—ଗ୍ରା,ବି. ନରନାଥ, ନୃପତି ।

ନରନ୍ଧ—ପୁଂ.ବି. ସଂସାର ।

ନରନ୍ଧିସ୍—ପୁଂ.ବି. ଜଗତ୍ପାଳକ ବିଷ୍ଣୁ ।

ନରପତି—ପୁଂ. ବି, ( ୬ତତ୍ପୁ )ରାଜା, ନୃପତି ।

ନରପତି—କର୍ଣ୍ଣାଟର ଏକ ରାଜବଂଶ ।

ନରପତିଜୟଚର୍ଯ୍ୟା—ସ୍ତ୍ରୀ.ବି.ସ୍ୱରୋଦୟମୂଳକ ଗ୍ରନ୍ଥବିଶେଷ ।

ନରପଦ—ବି. (୬ତତ୍ପୁ) ନଗର,ଦେଶ ।

ନରପଶୁ—ପୁଂ. ବି. (କ.ଧା ବା ୬ତତ୍ପୁ) ନରାଧମ, ପଶୁବୃତ୍ତି ଅବଲମ୍ବୀ ବ୍ୟକ୍ତି ।

ନରପାଳ—ବି, ଉପ-ତତ୍ପୁ; (ନର+ପାଳ+କ.ଅ) ନରପତି, ରାଜା ।

ନରପାଲି—ବି, ଗ୍ରେଟଶଙ୍ଖ ।

ନରପିଶାଚ—ପୁଂ. ବି. (୭ତତ୍ପୁ) ପିଶାଚ ପରି କ୍ରୂର ମନୁଷ୍ୟ,(ସ୍ତ୍ରୀ)ନରପିଶାଚୀ ।

ନରପିଶୁନ—ପୁଂ. ବି. (୬ତତ୍) ଖଳ, ଶଠ, କ୍ରୂର । [ଶ୍ରେଷ୍ଠ

ନରପୁଙ୍ଗବ—ପୁଂ. ବି. (କ.ଧା) ମନୁଷ୍ୟ-

ନରପୁର—ବି. (୬ତତ୍) ଭୂଲୋକ, ମନୁଷ୍ୟଲୋକ, ବୈତରଣୀ ନଦୀତୀରବର୍ତ୍ତୀ ନଗରବିଶେଷ ।

ନରପ୍ରିୟ—ପୁଂ. ବି. (୬ତତ୍) ନୀଳବୃକ୍ଷ, (ବି°)ମନୁଷ୍ୟ ହୃଦ୍ୟ ବସ୍ତୁମାତ୍ର, ମନୁଷ୍ୟମାନଙ୍କର ଅଭିଳଷିତ (ଦ୍ରବ୍ୟ) ।

ନରବର—ପୁଂ. ବି.(୬ତତ୍) ନରପୁଙ୍ଗବ, ମନୁଷ୍ୟଶ୍ରେଷ୍ଠ, (ବି.ଗ୍ରା) ପ୍ରାଚୀନ ଦେଶବିଶେଷ ।

ନରବଳି—ପୁଂ. ବି. (ରୂପକ.କ.ଧା) ଦେବତାଙ୍କ ଉଦ୍ଦେଶ୍ୟରେ ମନୁଷ୍ୟ ବଳି ଦେବା, (ଗ୍ରା. ବି)ମେରିଆ ଦେଇ ।

ନରବାଦ—ଗଞ୍ଜାମ ଜିଲ୍ଲାର ଗୋଟିଏ ଉପବିଭାଗ ।

ନରବାର—ମଧ୍ୟଭାରତ ଗୋଆଲିଅର ଜିଲ୍ଲାର ଗୋଟିଏ ନଗର ।

ନରବାହନ—ପୁଂ. ବି.(ବି.ଗ୍ରା)ଧନାଧିପ, କୁବେର, ନୃପତିବିଶେଷ, (କ୍ଲୀ) (ମପି-କ.ଧା) ଶିବିକା, ପାଲିଙ୍କି ଆଦି ମନୁଷ୍ୟବହିବା ଯାନ, (ବି°)ପୁରୁଷଯାନବିଶିଷ୍ଟ

ନରବାହୀ—ତ୍ରି. ବି°. (ନର+ବହ+ଇନ୍) ନରବାହକ, ଯହିଁ ମନୁଷ୍ୟ ବହନକରେ ।

ନରବାହ୍ୟ—ବି°.(୩ତତ୍)ମନୁଷ୍ୟବହନ କରି ନେବା (ଯାନ) ।

ନରବିଷ୍ୱଣ—ପୁଂ. ବି. (ନର+ବି+ସ୍ୱନ+ଅ) ନରହିଂସକ, ରାକ୍ଷସ ।

ନରବୀର—ବି. (୬ତତ୍) ସାହସୀବ୍ୟକ୍ତି, ବୀର ।

ନରବ୍ୟାଘ୍ର—ପୁଂ.ବି.ନରପୁଙ୍ଗବ ଦେଖ ।

ନରଭୁକ୍—ପୁଂ. ବି. (ନର+ଭୁଜ୍+କ.କ୍ୱିପ୍)ନରମାଂସଭୋଜୀ,ରାକ୍ଷସ,ପିଶାଚ

ନରଭୂ—ସ୍ତ୍ରୀ. ବି.(ନର+ଭୂ+କ.କ୍ୱିପ୍) ଭାରତବର୍ଷ, ମନୁଷ୍ୟମାନଙ୍କର ଉତ୍ପତ୍ତି

ନରଭୂମି—ପୁଂ. ବି. ଭାରତବର୍ଷ ।

ନରମ(ମା)—ଯ. ବି°. କୋମଳ, କଅଁଳିଆ, ନମ୍ର, ମୃଦୁ, ଧୀର, ସୁକୁମାର, ଯହିଁକି ଚିପିଦେଲେ ବସିଯାଏ ବା ଲଇଯାଏ, ଅନୁଦ୍ଧତ, ଶାନ୍ତ, ଆର୍ଦ୍ର, ଓଦା, ଦୟାର୍ଦ୍ର, ଅଶକ୍ତ, ସହଜ, (ବି) ଦର ବା ମୂଲ୍ୟର ହ୍ରାସ ।

ନରମଗରମ—ଯା. ବି°. ଥଣ୍ଡା, ଉଷ୍ମ. (ତ୍ରି.ବି) କଡ଼ା ଓ ଥଣ୍ଡା କଥା, କଡ ଓ ନମ୍ର କଥାର ମିଶ୍ରଣ ।

ନରମଣି—ବି.(୬ତତ୍)ରାଜା,ପୁରୁଷଶ୍ରେଷ୍ଠ

ନରମପନ୍ଥୀ—ତ୍ରି. ବି.ଯେଉଁମାନେ ରାଜନୀତିକ ସଂସ୍କାରମାନ ମୃଦୁଉପାୟରେ କରିବାକୁ ପ୍ରୟାସ କରନ୍ତି ।

ନରମସୀ—ଗ୍ରା. ବି°. ଅଣ୍ଡିରା ଓ ମାଈ (ଜୀବ), (ଗ୍ରା.ବି) ଯୋଡ଼ା, ଦମ୍ପତି ।

ନରମାନିକା—ସ୍ତ୍ରୀ. ବି. (ନର+ମାନ+କ+ଆ) ନରଚିହ୍ନଧାରିଣୀ ସ୍ତ୍ରୀ, ଯେଉଁ ସ୍ତ୍ରୀଠାରେ ଶ୍ମଶ୍ରୁଆଦି ପୁରୁଷଚିହ୍ନ ଲକ୍ଷିତ ହୁଏ ।

ନରମାଂସ—କ୍ଲୀ.ବି.(୬ତତ୍)ମନୁଷ୍ୟମାଂସ

ନରମାଂସାଶୀ—ପୁଂ. ବି. (ନରମାଂସ+ଅଶ୍+କ. ଇନ୍) ମନୁଷ୍ୟମାଂସଭୋଜୀ. (ସ୍ତ୍ରୀ) ନରମାଂସାଶିନୀ ।

ନରମାନିନୀ—ସ୍ତ୍ରୀ. ବି. ଶ୍ମଶ୍ରୁଯୁକ୍ତା ନାରୀ ।

ନରମାର୍ଗ—ବି. (୬ତତ୍) ରାଜପଥ ।

ନରମାଳା—ସ୍ତ୍ରୀ. ବି. (ମଧ୍ୟ-କ.ଧା) ମନୁଷ୍ୟର ମସ୍ତକ ନିର୍ମିତ ମାଳ,ନୃମୁଣ୍ଡମାଳ ।

ନରମାଳିନୀ—ସ୍ତ୍ରୀ. ବି. ଶ୍ମଶ୍ରୁଯୁକ୍ତା ନାରୀ, ନରମୁଣ୍ଡମାଳାଯୁକ୍ତା ସ୍ତ୍ରୀ ।

ନରମେଧ—ପୁଂ. ବି. (ମଧ୍ୟ-କ.ଧା)ନରବଳି ଓ ନରମାଂସ ଦ୍ୱାରା କୃତ ଯଜ୍ଞବିଶେଷ, (ଗ୍ରା. ବି) ମେରିଆ ଦେଇ ।

ନରମ୍ମନ୍ୟ—ପୁଂ. ବି.ନୃପାଭିମାନୀ,ନିଜକୁ ରଜାବୋଲି ମନେକରିବା ।

ନରଯନ୍ତ୍ର—କ୍ଲୀ. ବି. (ମପି-କ.ଧା)ସୂର୍ଯ୍ୟଘଣ୍ଟା, ଛାୟା ଘଡ଼ୀ, ଛାୟା ଦ୍ୱାରା ସମୟ ନିରୂପକ କାଳଯନ୍ତ୍ର ।

ନରଯାନ—ପୁଂ.ବି.(ମଧ୍ୟ-କ.ଧା)ମନୁଷ୍ୟଙ୍କ ଦ୍ୱାରା ବାହିତ ଯାନ

ନରରାଜ(ଟ୍)—ପୁଂ. ବି. (୬ତତ୍) ନରଶ୍ରେଷ୍ଠ, ନରପତି, ରାଜା ।

ନରରାଜ୍ୟ—କ୍ଲୀ.ବି.(୬ତତ୍)ମନୁଷ୍ୟରାଜ୍ୟ ।

ନରରାଣ—ଗ୍ରା. ବି. ନରପତି, ରାଜା ।

ନରରୂପ—ପୁ. ବି°. ନରପରି ଆକୃତିବିଶିଷ୍ଟ, ନରାକାର ।

ନରରୂପୀ—ପୁଂ. ବି°. (୬ତତ୍) ମନୁଷ୍ୟପରି ଆକୃତିବିଶିଷ୍ଟ, ମାନବରୂପଧାରୀ, (ସ୍ତ୍ରୀ) ନରରୂପିଣୀ ।

ନରର୍ଷଭ—ବି. (୬ତତ୍) ପୁରୁଷଶ୍ରେଷ୍ଠ, ରାଜା, ମହାଦେବ ।

ନରଲୀଳା—ସ୍ତ୍ରୀ.ବି.(ମପି-କ.ଧା)ମନୁଷ୍ୟକୃତ କ୍ରୀଡ଼ା, ପାର୍ଥିବ କାର୍ଯ୍ୟ ।

ନରଲୋକ—ପୁଂ. ବି. (ମଧ୍ୟ-କ.ଧା) ମନୁଷ୍ୟଲୋକ, ମର୍ତ୍ତ୍ୟଭୂମି, ପୃଥିବୀ, ମାନବଜାତି ।

ନରଶାର୍ଦ୍ଦୂଳ—ବି. ନରପୁଙ୍ଗବ ଦେଖ ।

ନରଶୃଙ୍ଗ—ବି. (୬ତତ୍)ମନୁଷ୍ୟର ଶୃଙ୍ଗ ଭଳି ଅପ୍ରାକୃତ ପଦାର୍ଥ ।

ନରଶ୍ରେଷ୍ଠ—ବି. ନରପୁଙ୍ଗବ ଦେଖ ।

ନରସଂସର୍ଗ—ବି. (୬ତତ୍) ମନୁଷ୍ୟଙ୍କ ସଙ୍ଗେ ଚଳପ୍ରଚଳ ହେବା, ମନୁଷ୍ୟ ସମାଜ । [ନୃପତି ।

ନରସାଇଁ—ଗ୍ରା. ବି. ରାଜା, ନରପତି,

ନରସାର—ପୁଂ.ବି. ନଶାଦଳ, ମୃତ୍ତିକାଜ ଲବଣ ଜାତୀୟ ବର୍ଣ୍ଣିକ ଦ୍ରବ୍ୟବିଶେଷ, ଗନ୍ଧରସ ।

ନରସିଂହ—ପୁଂ.ବି. (କ.ଧା) ନରଶ୍ରେଷ୍ଠ, ନରକେଶରୀ,ବିଷ୍ଣୁଙ୍କ ଚତୁର୍ଥ ଅବତାର ।

ନରସିଂହକଣ୍ଡ—ଗ୍ରା.ବି.କ୍ଷୁଦ୍ର ତରୁବିଶେଷ

ନରସିଂହପୁର—ମଧ୍ୟପ୍ରଦେଶର ଚିଫ୍କମିଶନରଙ୍କ ଅଧୀନ ଜିଲ୍ଲାବିଶେଷ ।

ନରସିଂହପୁର—ଗ୍ରା.ବି. ଓଡ଼ିଶାର ଗଡ଼ଜାତବିଶେଷ, ପୁରୀର ଶାସନବିଶେଷ ।

ନରସିଂହପୁରାଣ—କ୍ଲୀ. ବି. ଉପପୁରାଣବିଶେଷ । [ସରୁ ଧାନ ।

ନରସିଂହଭୋଗ—ଗ୍ରା. ବି. ଏକପ୍ରକାର

ନରସିଂହମୂର୍ତ୍ତିଦାନ—କ୍ଲୀ. ବି. କାଳିକା ପୁରାଣୋକ୍ତ ଦାନଭେଦ ।

ନରସୁନ୍ଦର—ପୁଂ. ବି. (ବି.ଗ୍ରା) ନାପିତ,

ଭଣ୍ଡାର ।

ନରସ୍କନ୍ଧ—ବି. (ନର+ସମୂହାର୍ଥେ,ସ୍କନ୍ଧ) ମନୁଷ୍ୟମାନଙ୍କ ସମଷ୍ଟି ।

ନରହତ୍ୟା—ସ୍ତ୍ରୀ. ବି. (୬ତତ୍) ମଣିଷ-ମାରୁ, ଝୁଣୀ ।

ନରହନ୍ତା—ପୁଂ.ବି. (୬ତତ୍) ଯେ ମନୁ-ଷ୍ୟକୁ ହତ୍ୟା କରେ, (ସ୍ତ୍ରୀ)ନରହନ୍ତ୍ରୀ ।

ନରହୟ—ବି. ମନୁଷ୍ୟ ଓ ଅଶ୍ୱ ମଧ୍ୟରେ ଯୁଦ୍ଧ ବା ସଂଘର୍ଷ ।

ନରହର—ଅଯୋଧ୍ୟାନ୍ତର୍ଗତ ପାପମୋଚନ ତୀର୍ଥବିଶେଷ ।

ନରହରି—ପୁଂ. ବି. (୭ତତ୍)ନରସିଂହ, ଶ୍ରେଷ୍ଠବ୍ୟକ୍ତି, ବିଷ୍ଣୁ ।

ନରା—ଗ୍ରା. (ଇତର) ନଡ଼ା ।

ନରାଙ୍ଗ—ବି. ପୁରୁଷର ଜନନେନ୍ଦ୍ରିୟ, କାଠବରୁଣ୍ଡ ।

ନରାଚ—ଗ୍ରା. ବି. ତୀର, ଶର ।

ନରାଚୀ—ସ୍ତ୍ରୀ.ବି.ଶୌରିର ଭାର୍ଯ୍ୟାଭେଦ, ଫଣିମନସା, କଣ୍ଟିହିଙ୍ଗୁଚିଛ ।

ନରାଜୁ—ଗ୍ରା.ବି. ତରାଜୁ, ନିକିତି, ତୁଲା-ଯନ୍ତ୍ରର ଦଣ୍ଡ, ବିଶାକାଠି, ତନ୍ତ୍ରକାଠ ।

ନରାଧମ—ପୁଂ. ବି. (୭ତତ୍) ଅତିଶୟ କୁଚରିତ୍ର ବ୍ୟକ୍ତି, ମହାପାପୀ ।

ନରାଧାର—ବି. (୬ତତ୍) ଶିବ ।

ନରାଧାରା—ବି. (ନର+ଆଧାର+ଆ) ପୃଥିବୀ ।

ନରାଧିପ—ବି(୬ତତ୍)ରାଜା,ବୃକ୍ଷବିଶେଷ

ନରାନ୍ତ—ପୁଂ. ବି. ହୃଦୀକଙ୍କ ପୁତ୍ର ।

ନରାନ୍ତକ—ପୁଂ. ବି. (୬ତତ୍) ରାବଣର ପୁତ୍ରବିଶେଷ, ଯମ, ମୃତ୍ୟୁ, ନରଘାତକ ବ୍ୟକ୍ତି, (ବିଂ) ନରନାଶକ ମାନ୍ଦ, ନର-ଘାତୀ । [ବିଷ୍ଣୁ ।

ନରାୟଣ—ପୁଂ. ବି. (ବ.ବ୍ରୀ) ନାରାୟଣ,

ନରାଶ—ପୁଂ. ବି. ( ନର+ଅଶ୍+କ. ଅ) ରାକ୍ଷସ, ନରମାଂସଭକ୍ଷୀ ବ୍ୟକ୍ତି ।

ନରାଶଂସ—ପୁଂ. ବି. ଯଜ୍ଞ, ଅଗ୍ନି ।

ନରାସନ—କ୍ଲୀ. ବି. ନରାକାର ଆସନ-ବିଶେଷ ।

ନରି—ଗ୍ରା. ବିଂ. (ସଂ-ଲହରୀ) ନର ବା ସରିଯୁକ୍ତ, (ଗ୍ରା. ବି) ନରସିଂହର ଡାକ ନାମ ।

ନରିଆ—ଗ୍ରା.ବିଂ.ନର ଦେଖ, (ପ୍ରା.ସମ୍ବ. ବି) ନରହା,(ବି)ନରସିଂହାଦିଙ୍କ ନାମ ।

ନରିଆଣୀ—ପ୍ରା.(ସମ୍ବ)ବି. ଯେ ସ୍ତ୍ରୀ ପାଣି ଯୋଗାଏ, ପାଣିଚି ।

ନରିହା—ପ୍ରା. (ସମ୍ବ)ବି. ଗଉଡ଼ ଶ୍ରେଣୀର ଗ୍ରାମସେବକବିଶେଷ ।

ନରୀ—ସ୍ତ୍ରୀ. ବି. ମାନବ ପତ୍ନୀ, ନାରୀ, ବୃନ୍ଦାବନସ୍ଥ ଗ୍ରାମବିଶେଷ ।

ନରୁଣ—ଗ୍ରା. (ବଙ୍ଗ) ବି. ନହରୁଣୀ ।

ନରେ—ଗ୍ରା.ବି.ମନୁଷ୍ୟମାନେ, ଲୋକେ, (ଗ୍ରା.ଅବ୍ୟ) ହେ ନରମାନେ ।

ନରେତର—ବି. ( ୫ତତ୍ ) ମନୁଷ୍ୟ ଅପେକ୍ଷା ଇତର ଜୀବ, ପ୍ରାଣୀ ।

ନରେ ବା କୁଞ୍ଜରେ ବା ଅଶ୍ୱତ୍ଥାମା ହତ—ଗ୍ରା. ପ୍ରବଚନ. ଦ୍ୱ୍ୟର୍ଥବୋଧକ ବାକ୍ୟ-ବିଶେଷ ।

ନରେନ୍—ପ୍ରା.(ସମ୍ବ)ବି.ନରିଆଣୀ ଦେଖ ।

ନରେନ୍ଦ୍ର—ପୁଂ.ବି.(୬ତତ୍)ରାଜା, ବିଷ-ବୈଦ୍ୟ, ସାପୁଆ, ଗୁଣିଆଁ, ବୈଦ୍ୟ, ଶ୍ୟୋନାକବୃକ୍ଷ, ଫଣଫଣା, ଶ୍ରେଷ୍ଠ-ବ୍ୟକ୍ତି, ୨୮ ମାତ୍ରାଯୁକ୍ତ ଛନ୍ଦୋବିଶେଷ, (ଗ୍ରା.ବି) କ୍ଷତ୍ରିୟଙ୍କ ବଂଶୋପାଧିବିଶେଷ, ପୁରୀ ସହରରେ ଥିବା ବୃହତ୍ ପୁଷ୍କରଣୀ

ନରେନ୍ଦ୍ରମାର୍ଗ—ବି ( ୬ତତ୍, ୭ତତ୍ ) ରାଜମାର୍ଗ, ରାଜଦାଣ୍ଡ, ପ୍ରକାଶ୍ୟପଥ ।

ନରେନ୍ଦ୍ରାହ୍ୱ—ପୁଂ. ବି. କାଷ୍ଠାଗୁରୁ ।

ନରେଶ—ପୁଂ. ବି. ( ୬ତତ୍ ) ରାଜା, ନରେଶ୍ୱର ।

ନରୋତ୍ତମ—ପୁଂ. ବି. (୭ତତ୍) ରାଜା, ନାରାୟଣ, ବୁଦ୍ଧଦେବ ଅତି ଉତ୍ତମ ବ୍ୟକ୍ତି, ହରିଭକ୍ତ ସାଧକବିଶେଷ ।

ନରୋତ୍ତମଠାକୁର—ଜଣେ ପ୍ରଧାନ ବୈଷ୍ଣବ । [ କର୍ତ୍ତା ।

ନରୋତ୍ତମଦାସ—ବିଖ୍ୟାତ ବୈଷ୍ଣବ ପଦ-

ନର୍କ—ଗ୍ରା. ବି. ନରକ ଦେଖ ।

ନର୍କପାଣି—ଗ୍ରା. ବି. ବିଷ୍ଠାମିଶ୍ରିତ ଜଳ ।

ନର୍କୁଟକ—କ୍ଲୀ. ବି. ନାସିକା ।

ନର୍ତ୍ତି—ତ୍ରି ବିଂ.ନୃତ୍ୟକର୍ତ୍ତା,ନୃତ୍ୟକାରକ ।

ନର୍ତ୍ତକ—ପୁଂ. ବି. ( ନୃତ୍+କ. ଅକ ) ନୃତ୍ୟକାରୀ, ନାଚୁଆ, ନଟ,ଅଭିନେତା, ମୟୂର, ହସ୍ତୀ,ଚାରଣ, ଭାଟ, କେଳକ, କେଳା, ଏକପ୍ରକାର କାଣ୍ଡଶର, ମହା-ଦେବ, ରଜା,ଧୋବା ପିତା ଓ ବେଶ୍ୟା ମାତାଠାରୁ ଉତ୍ପନ୍ନ ସଙ୍କର ଜାତିବିଶେଷ, ମାଣ୍ଡିଆ, ମହୁଆ, (ସ୍ତ୍ରୀ) ନର୍ତ୍ତକୀ ।

ନର୍ତ୍ତକଯତିପଦୀ—ଛନ୍ଦଃ ଦେଖ ।

ନର୍ତ୍ତକୀ—ସ୍ତ୍ରୀ. ବି. (ନର୍ତ୍ତକ+ଈ) ନୃତ୍ୟ-କାରିଣୀ ସ୍ତ୍ରୀ, ହସ୍ତିନୀ, ନଟୀ, ନାଳିକା ନାମକ ସୁଗନ୍ଧଦ୍ରବ୍ୟବିଶେଷ ।

ନର୍ତ୍ତନ—କ୍ଲୀ. ବି. ( ନୃତ୍+ଭା:ଅନ ) ନୃତ୍ୟ, ନାଚ, ନାଟ, ନାଟକ ଅଭିନୟ କରିବା ।

ନର୍ତ୍ତନପ୍ରିୟ—ପୁଂ. ବିଂ. (ବ.ବ୍ରୀ) ଯେ ନୃତ୍ୟ କରିବାକୁ ବା ଦେଖିବାକୁ ସୁଖ ପାଏ, (ପୁଂ.ବି) ଶିବ, ମୟୂର ।

ନର୍ତ୍ତନଭର—ଗ୍ରା. ବିଂ. ନୃତ୍ୟକରୁଥିବା, ନାଚୁଥିବା । [ ନାଚଖାନା ।

ନର୍ତ୍ତନଶାଳା—ସ୍ତ୍ରୀ. ବି. ନୃତ୍ୟଶାଳା,

ନର୍ତ୍ତନାଗାର—ପୁଂ. ବି. ନର୍ତ୍ତନଗୃହ ।

ନର୍ତ୍ତମ—ଗ୍ରା. ପୁଂ. ବି. ନରୋତ୍ତମର ଡାକନାମ ।

ନର୍ତ୍ତୟିତା—ପୁଂ.ବି.(ନୃତ୍+ଣିଚ୍+ତୃ) ନୃତ୍ୟଗୁରୁ, ନାଟର ଗୁରୁ, (ସ୍ତ୍ରୀ) ନର୍ତ୍ତ-ୟିତ୍ରୀ ।

ନର୍ତ୍ତିତ—ବିଂ. ( ନୃତ୍+ଣିଚ୍+ମ୍ଂ.ତ ) ଆନ୍ଦୋଳିତ, କମ୍ପିତ, ନର୍ତ୍ତନଶୀଳ,(ବି) (ଭାବ.ତ) ନର୍ତ୍ତନ, (ସ୍ତ୍ରୀ) ନର୍ତ୍ତିତା ।

ନର୍ଥବ୍ରୁକ୍—ଭାରତର ଜଣେ ଗଭର୍ଣ୍ଣର ଜେନେରାଲ ।

ନର୍ଦ୍ଦ—ଯା. ବି. ପଶାଖେଳର ଗୋଟି ।

ନର୍ଦ୍ଦଟକ—କ୍ଲୀ. ବି. ଛନ୍ଦୋବିଶେଷ ।

ନର୍ଦ୍ଦନ—ବି. (ନର୍ଦ୍ଦ+ଭା.ଅନ) ନାଦ, ଗର୍ଜନ ।

ନର୍ଦ୍ଦମା—ଗ୍ରା. ବି. ପାଣିନାଳ, ମଇଳା ପାଣିବେ ବହିବା ନାଳୀ,ନୟନଜୋଡ଼ି ।

ନର୍ଦ୍ଦିତ—ତ୍ରି. ବିଂ. ( ନର୍ଦ୍ଦ+ମ୍ଂ. ତ )

ଶର୍ଦ୍ଦିତ, କନାଦିତ, ପ୍ରସିଦ୍ଧ, ( ସ୍ତ୍ରୀ ) ନର୍ଦ୍ଦିତା ।

ନର୍ଦ୍ଦିବା—ଗ୍ରା. (ଗଡ଼ଜାତ ଓ ସମ୍ବଲ) ବଉଡ଼ିବା, ହେଇଁବା, କୁଦିବା ।

ନର୍ମ୍ମ—କ୍ଲୀ. ବ. (ନୃ+ମ୍ପି.ମନ୍) କ୍ରୀଡ଼ା, କୌତୁକ, ପରିହାସ, ବିହାର, ଲୀଳା, କେଳି, ରସିକତା, ରଙ୍ଗରସ, କ୍ରୀଡ଼ାସ୍ପର୍ଦ୍ଧୀ, ପୁରୁଷମେଧ ଯଜ୍ଞର ଦେବବିଶେଷ ।

ନର୍ମ୍ମକୀଳ—ପୁଂ.ବ. (ଚରକ) ସ୍ୱାମୀ.ପତି ।

ନର୍ମ୍ମଗର୍ଭ—ବି°. (ବ.ଗ୍ରୀ) ପରିହାସ ବା ରସିକତାପୂର୍ଣ୍ଣ (କାବ୍ୟ) ।

ନର୍ମ୍ମଟ—ପୁଂ. ବ. (ନର୍ମ୍ମ+ଅଟ୍+କ. ଅନ) ଖର୍ପର, ସୂର୍ଯ୍ୟ, ଖପର ।

ନର୍ମ୍ମଠ—ପୁଂ.ବି°.(ନର୍ମ୍ମନ୍+ଠ,ଅ, ବା ନର୍ମ୍ମନ୍+ସ୍ଥା+କ.ଅ ) କେଳିରତ, କ୍ରୀଡ଼ାଶୀଳ, କୌତୁକପ୍ରିୟ, ବିଳାସପ୍ରିୟ, ଲମ୍ପଟ, ସଉକୀ, ଅଶ୍ଳୀଳ, (ବ) ସ୍ତନାଗ୍ର, ଚୂଚୁକ, ବୁଧଭୁକ୍ତି, ପରିହାସ, ଷିଡ୍ଗ, ନାଗର, ଉପପତି, କୌତୁକ, ଆମୋଦ, ମୈଥୁନ, ରତି, ସହବାସ, ଚିବୁକ, ସ୍ତନ, ଲମ୍ପଟ ବ୍ୟକ୍ତି, (ସ୍ତ୍ରୀ) ନର୍ମଠା (ବ) ନର୍ମଠତା ।

ନର୍ମ୍ମଦ—ପୁଂ.ବ. (ନର୍ମ୍ମନ୍+ଦା+କ.ଅ) ନର୍ମ୍ମସଚିବ, କ୍ରୀଡ଼ାସହଚର, ଲୀଳାସହଚର, ବିଦୂଷକ, ଭଣ୍ଡ, ( ବି° ) କୌତୁକପ୍ରଦ, ଆନନ୍ଦପ୍ରଦ, ( ସ୍ତ୍ରୀ ) ନର୍ମ୍ମଦା ।

ନର୍ମ୍ମଦା—ସ୍ତ୍ରୀ. ବ. (ନର୍ମ୍ମଦ+ଆ) ବିନ୍ଧ୍ୟପର୍ବତରୁ ଉତ୍ପନ୍ନ ନଦୀବିଶେଷ,ରେବା ନଦୀ, ପୃକ୍କା, ପିଡ଼ଙ୍ଗଶାଗ, କୃଟ୍ଟନୀ, ଦୂତୀ, ଏକ ଗନ୍ଧର୍ବ ସ୍ତ୍ରୀ, (ବି°) କ୍ରୀଡ଼ାଦାୟିନୀ ।

ନର୍ମ୍ମଦାଦେବୀ—ଗ୍ରା.ସ୍ତ୍ରୀ. ବ. ଉଚ୍ଚଶିକ୍ଷିତା ଆଧୁନିକ ଓଡ଼ିଆ ଲେଖିକା ।

ନର୍ମ୍ମଦେଶ—କ୍ଲୀ. ବ. କାଶୀସ୍ଥିତ ଶିବଲିଙ୍ଗବିଶେଷ ।

ନର୍ମ୍ମଦେଶ୍ୱର—ନର୍ମଦାନଦୀ ଗର୍ଭରୁ ମିଳିବା ଏକପ୍ରକାର ଅଣ୍ଡାକାର ଶିବଲିଙ୍ଗ ।

ନର୍ମ୍ମଦ୍ୟୁତି—ପୁଂ.ବି°. (ବ.ଗ୍ରୀ) ବିଳାସୀ, କୌତୁକୀ, ପରିହାସକ ।

ନର୍ମ୍ମସଖୀ—ସ୍ତ୍ରୀ. ବ. (ଚରକ) କ୍ରୀଡ଼ାସଙ୍ଗିନୀ, ଅନ୍ତରଙ୍ଗ ସହଚରୀ ।

ନର୍ମ୍ମରୀ—ସ୍ତ୍ରୀ. ବ. ଦରି, ଖଣ୍ଡ, ମୁରଳା, ନର୍ତ୍ତଲା ।

ନର୍ମ୍ମବାନ୍—ତ୍ରି. ବି°. ନର୍ମଯୁକ୍ତ, ( ସ୍ତ୍ରୀ ) ନର୍ମବତୀ, ନାୟିକାବିଶେଷ ।

ନର୍ମ୍ମସଚିବ—ପୁଂ. ବି. (ନର୍ମନ୍+ସଚିବ) ଚରିତ୍ର, କ୍ରୀଡ଼ାସହଚର,ବିଦୂଷକ,ସାଙ୍ଗ, କୁଟ୍ଟଣୀ, ଭଡୁଆ, ଭଣ୍ଡ, ପ୍ରଣୟୀ, (ସ୍ତ୍ରୀ) ନର୍ମ୍ମସଚିବା ।

ନର୍ମ୍ମସାଚିବ୍ୟ—ବି. (ନର୍ମ୍ମସଚିବ+ଷ୍ଣ.ଯ) ନର୍ମ୍ମସଚିବର କାର୍ଯ୍ୟ ।

ନର୍ମ୍ମସୁହୃଦ୍—ପୁଂ. ବ. ନର୍ମ୍ମସଚିବ ।

ନର୍ମ୍ମସ୍ଫୂର୍ତ୍ତି—ପୁଂ. ବ. ଭୟାନ୍ତ ସୁଖ ବା ଆମୋଦ ।

ନର୍ମ୍ମସ୍ଫୋଟ—କ୍ଲୀ.ବ. ସାମାନ୍ୟ ଆମୋଦ, ସାମାନ୍ୟ କୌତୁକ ।

ନର୍ମ୍ମା—ବି°. ନରମ୍ ।

ନର୍ମ୍ମାଣ—ୟୁରୋପୀୟ ଜାତିବିଶେଷ ।

ନର୍ମ୍ମାଦୀ—ଗ୍ରା.ବି°. ନର ଓ ମାଈ, ଅଣ୍ଡିରା ଓ ମାଈ,କବାଟକୁ ଝୁଲାଇ ରଖିବାରେ ବ୍ୟବହୃତ ଏକପ୍ରକାର କବଜା, ( ଗ୍ରା. ବ) ଜାତିମିଥୁନ, ଦ୍ୱନ୍ଦ୍ୱ ।

ନର୍ମ୍ମାଲ୍‌ଟ୍ରେଣ୍ଡ୍—ଯା.ବି°. ନର୍ମ୍ମାଲ୍‌ସ୍କୁଲରେ ଶିକ୍ଷାପ୍ରାପ୍ତ (ଶିକ୍ଷକ) ।

ନର୍ମ୍ମାଲ୍‌ଟ୍ରେନିଙ୍ଗ୍—ଯା. ବ. ନର୍ମ୍ମାଲ୍ ସ୍କୁଲରେ ଶିକ୍ଷା ଦିଆଯିବା, ( ବି° ) ନର୍ମ୍ମାଲ୍ ସ୍କୁଲରେ ଶିକ୍ଷାପ୍ରାପ୍ତ ।

ନର୍ମ୍ମାଲ୍‌ସ୍କୁଲ—ଯା. ବ. ମଧ୍ୟମ ଶ୍ରେଣୀୟ ବିଦ୍ୟାଳୟମାନଙ୍କରେ ଶିକ୍ଷକତା କରିବାକୁ ଉପଯୁକ୍ତ ପଣ୍ଡିତ ଯେଉଁଠାରେ ଶିକ୍ଷିତ ହୁଅନ୍ତି ।

ନର୍ଯ୍ୟ—ତ୍ରି.ବି°. ମନୁଷ୍ୟ କୃତ ।

ନଲ୍—ପ୍ରା.(ସିଂହଭୂମ)ବି. ଓଠ ।

ନଲ୍‌ତା—ପ୍ରା. (ସମ୍ବଲପୁର)ବି. ନଲତା ଦେଖ । [ ଖୋଟ ।

ନଲ୍‌ତାପଟ୍—ପ୍ରା. ( ସମ୍ବଲପୁର ) ବି.

ନଳ—କ୍ଲୀ. ବ. ପଦ୍ମ, ମୃଣାଳ, ପୁଂ. (ନଲ୍+କ.ଅ) ଇଙ୍କଡ଼ି, ବାଘନଳ, କାଣ୍ଡଶର, ଏକପ୍ରକାର ପୋଟଖଳ ଘାସ, ଚୁଙ୍ଗା, ଶାଗ, ସୁଗନ୍ଧ, ନିଷଧରାଜ, ଦମୟନ୍ତୀଙ୍କ ସ୍ୱାମୀ, ନଦବିଶେଷ, ବାନର ସେନାପତିବିଶେଷ, ପିତୃଲୋକ ବିଶେଷ, ଗ୍ରେଟ ଗଛର ପୋଲଡ଼ାଙ୍ଗ, ରଙ୍ଗ, ଦାନବବିଶେଷ, ରାଜା ଯଦୁଙ୍କର ଏକପୁତ୍ର,ପ୍ରାଚୀନକାଳର ବାଦ୍ୟବିଶେଷ, (ଗ୍ରା,ବ) ହାତ ଓ ଗୋଡ଼ର ନଳିହାଡ଼, ପଦିକା, ଲଠା, ୪୦୦ ହାତ ଭୂମିର ଲମ୍ବ,ନଳା ଓ ଜଳ ନିଃସରଣ ପ୍ରଣାଳୀ, ହୁକାର ନଳୀ, ବନ୍ଧୁକର ନଳୀ, କଣ୍ଠନାଳୀ, କ୍ଷେତ୍ରଫଳ ସ୍ଥିରୀକରଣ ରୂପ ଗାଣିତିକ ପ୍ରକ୍ରିୟା ବିଶେଷ ।

ନଳ—ଦାକ୍ଷିଣାତ୍ୟର ଏକ ପରାକ୍ରାନ୍ତ ରାଜବଂଶ ।

ନଳ—ବୋମ୍ବାଇ ଆହ୍ମଦାବାଦ ଜିଲ୍ଲାର ଗୋଟିଏ ହ୍ରଦ ।

ନଳକ—କ୍ଲୀ. ବ. (ନଳ+କୈ+କ.ଅ) ପବ, ନଳାକାର ଅସ୍ଥି, ଗ୍ରେଟ ଗଛର ଶୂନ୍ୟ ଗଭ ବ ଡାଙ୍ଗ, ଦଣ୍ଡ ।

ନଳକନ୍ଦ—ବି. ଉଶୀର, ବେଣା ଚେର, ପୁଷ୍ପମଧୁ ।

ନଳକଯନ୍ତ୍ର—ବି. ଦୂରବୀକ୍ଷଣ ଯନ୍ତ୍ର ।

ନଳକରିବା—ଗ୍ରା. କ୍ରି. ନଳିବା, ଜମିକୁ ପଦିକ ଦ୍ୱାରା ମାପିବା ।

ନଳକାଠି—ଗ୍ରା. ବ. କେଳାଙ୍କ ନଳ ।

ନଳକାଣ୍ଡି—ଗ୍ରା. ବ. ନଳକାଠି ଦେଖ ।

ନଳକାନନ—ପୁଂ. ବ. ଦେଶଭେଦ, ନଳବନ ।

ନଳକିନୀ—ବି. (ନଳକ+ଇନ୍+ଈ) ଜଙ୍ଘ, ଆଣ୍ଠୁର ତଳହାଡ଼, ଗୋଡ଼ ।

ନଳକୀଳ—ପୁଂ. ବ. (ଚରକ) ଆଣ୍ଠୁ, ଜାନୁ । [ ଏକ ପୁତ୍ର ।

ନଳକୂବର—ବି. (ବ.ଗ୍ରୀ) କୁବେରଙ୍କର

ନଳକେଲି(ରି)—କୋଡ଼ଗ ରାଜ୍ୟର ଗୋଟିଏ ଅରଣ୍ୟ ।

ନଳଗଙ୍ଗା—ବେରାର ବୁଲ୍‌ଦାନା ଜିଲ୍ଲାର

ଗୋଟିଏ ନଦୀ ।

**ନଳଗୁଣ୍ଠିବା**—ଗ୍ରା.କ୍ରି. ପକ୍ଷୀ ଧରିବାପାଇଁ ଏକାଧିକ ନଳକୁ ପରସ୍ପର ଯୁକ୍ତକରିବା, (ଲ ଅର୍ଥ) ଉପାୟ ଉଦ୍ଭାବନ କରିବା ।

**ନଳଡାକିବା**—ଗ୍ରା.କ୍ରି.ମାପପରେ ଯେତେ ନଳ ତାହା ଉଚ୍ଚସ୍ୱରରେ କହିବା ।

**ନଳତିଗିରି**—ଗ୍ରା. ବି. କଟକ ଯାଜପୁର ସବ୍‌ଡିଭିଜନର ଏକ ପାହାଡ଼ର ନାମ ।

**ନଳଦ**—କ୍ଲୀ. ବି. (ନଳ+ଦା+କ.ଅ) ଜଟାମାଂସୀ, ବେଣାଚେର, ପୁଷ୍ପକରଅ, ମକରନ୍ଦ,ଲାମଜ୍ଜକ, ଗନ୍ଧବେଣା ନାମକ ତୃଣ, (ବି°) ନଳଦାତା, ଯହିଁରୁ ସୁଗନ୍ଧ ବାହାରୁଅଛି ।

**ନଳଦମ୍ବୁ**—ପୁଂ. ବି. କ୍ଷମଗଛ ।

**ନଳଦା**—ସ୍ତ୍ରୀ. ବି. ଜଟାମାଂସୀ, ରୁଦ୍ରାଶ୍ୱ ନୃପଙ୍କ କନ୍ୟା । [ଆଦରଗଛ ।

**ନଳଦସ୍ୱର**—ତାମିଲ ଭାଷାର ଖଣ୍ଡିଏ

**ନଳମୀରୁହ**—ବି. ମୃଣାଳ, ପଦ୍ମନାଡ଼ ।

**ନଳପକାଇବା**—ଗ୍ରା. କ୍ରି. ନଳିବା, ନଳ ଦ୍ୱାରା ଭୂମି ମାପିବା ।

**ନଳପଟ୍ଟିକା**—ବି. (ନଳ+ପଟ୍ଟ+କ+ଆ) ୩୮ ବେରୁଆଁ ହେଁସ, ମସିଣା, ନଳର ଗୁଞ୍ଚ ।

**ନଳବଣ**—ଗ୍ରା. ବି. ନଳଗଛରେ ପୂର୍ଣ୍ଣ ଜଙ୍ଗଲ, ଚିଲିକା ହ୍ରଦରେ ଥିବା ଏକ ଦ୍ୱୀପ ।

**ନଳବନ**—ବି. (୬ତତ୍ତ୍ୱ) ନଳଗଛର ଜଙ୍ଗଲ, (ଗ୍ରା.ବି) ନଳବଣ ଦେଖ ।

**ନଳଭାଙ୍ଗିବା**—ଗ୍ରା.କ୍ରି ଜମିର କ୍ଷେତ୍ରଫଳ ସ୍ଥିରକରିବା, ପଦିକା ମାପରେ ଜମିର ଦୈର୍ଘ୍ୟପ୍ରସ୍ଥକୁ ନେଇ କ୍ଷେତ୍ରଫଳ ସ୍ଥିର କରିବା ।

**ନଳମାପ**—ଗ୍ରା. ବି. ନଳ ବା ପଦିକା ଦ୍ୱାରା ଭୂମିର ମାପ ବା ଜରିପ ।

**ନଳମୀନ**—ପୁଂ.ବି. ମତ୍ସ୍ୟଭେଦ, ଚିଙ୍ଗୁଡ଼ି ମାଛ ।

**ନଳସେତୁ**—ପୁଂ. ବି. (ମଧ୍ୟ-କ.ଧା) ନଳବାନରକୃତ ସମୁଦ୍ର ଉପରିସ୍ଥ ସେତୁ ।

**ନଳା**—ଗ୍ରା. ବି. ପାଣି ବହିଯିବା ନାଳ, ବାଉଁଶଆଦିର ପୋଲ ନଳ, ନୋଳା, (ପ୍ରା. ଗଞ୍ଜାମ) ପୋଲଆଦିର ଫୁଙ୍କାର, ନିଆଁକୁ ଫୁଙ୍କି ଉଦ୍ଦୀପ୍ତ କରିବାରେ ବ୍ୟବହୃତ ବାଉଁଶଆଦିର ନଳା, ଧାନଗଛର ରୋଗବିଶେଷ,କାହାଣିଆ ରୋଗ, ନଳାପୋକ । [ମପାଇବା ।

**ନଳାଇବା**—ଗ୍ରା. କ୍ରି. ଲୋକ ଦ୍ୱାରା ଜମି

**ନଳାଦଣ୍ଡି**—ପ୍ରା. (ଗଞ୍ଜାମ)ବି. ପାପଦଣ୍ଡି ।

**ନଳା ପାଣି**—ଗ୍ରା.ବି. ନଳାରେ ବହିଯାଉଥିବା ପାଣି, (ପ୍ରା. ଗଡ଼ଜାତ) ଦୁଗ୍ଧ ।

**ନଳାପାଣି**--ଉତ୍ତର ପଶ୍ଚିମ ପ୍ରଦେଶାନ୍ତର୍ଗତ ଦେହେରାଦୁନ ଜିଲ୍ଲାର ଗୋଟିଏ ଗିରିଦୁର୍ଗ ।

**ନଳାପୋକ**—ଗ୍ରା. (ଗଞ୍ଜାମ)ବି. ଚେଲୁଣି ପୋକ । [ନଳା ।

**ନଳାବାଟ**—ଗ୍ରା. ବି. ପାଣି ବୋହିଯିବାର

**ନଳି**—ଗ୍ରା. ବି. ସରୁନଳ, ବନ୍ଧୁକ, ବନ୍ଧୁକର ନଳ, ନଳ, କେଳାନଳକାଠି, ଗୋଡ଼ର ବଲାଗଣ୍ଠିଠାରୁ ଆଣ୍ଠୁପର୍ଯ୍ୟନ୍ତ ଅସ୍ଥି, (ବି°) ନଳପରି ସରୁ, (ଫ-ବ) ନଳୀ ।

**ନଳିଆ**—ଗ୍ରା. ବି°. ନଳପରି ସରୁ, (ବି) ନଳୀବାଲା, ବନ୍ଧୁକମାରିବା ଲୋକ ।

**ନଳିକା**—ସ୍ତ୍ରୀ.ବି. (ନଳି+କ+ଆ)ନଳ, ନାଡ଼ୀ, ତୃଣ, ଶରମୁଣା, ନଳିତାଶାଗ, ଉତ୍ତର ପଶ୍ଚିମ ପ୍ରଦେଶଜାତ ଗନ୍ଧଦ୍ରବ୍ୟବିଶେଷ, ନଳପରି ସରୁ, ପ୍ରାଚୀନ ଅସ୍ତ୍ରବିଶେଷ, ପୋଦାନାଶାଗ, କଲମଶାଗ, ଜଳୋଦରୀ ରୋଗରେ ପେଟରୁ ପାଣି ବାହାର କରାଯିବାର ଏକପ୍ରକାର ପ୍ରାଚୀନ ଯନ୍ତ୍ର ।

**ନଳିକାଯନ୍ତ୍ର**--କ୍ଲୀ.ବି.ଜଳୋଦରୀ ରୋଗର ଏକପ୍ରକାର ପ୍ରସିଦ୍ଧ ଯନ୍ତ୍ର ।

**ନଳିଗୋଡ଼**—ଗ୍ରା.ବି.ସରୁଆଗୋଡ଼, ବଲାଗଣ୍ଠିରୁ ଆଣ୍ଠୁ ପର୍ଯ୍ୟନ୍ତ ଅଂଶ ।

**ନଳିଗୋଡ଼ଘା**—ଗ୍ରା.ବି. ନଳି ଗୋଡ଼ରେ ହୋଇଥିବା କ୍ଷତ । [ସରୁଆ ।

**ନଳିଗୋଡ଼ା**—ଗ୍ରା.ପୁଂ.ବି°.ଯାହାର ଗୋଡ଼

**ନଳିଘା**—ଗ୍ରା.ବି. ଘୁ[illegible]ବ୍ରଣ ।

**ନଳିଘୃ**—ଗ୍ରା. ବି. ଛୋଟକାର ନଳ, ଝୋଟଗଛ, (ବି°) ନଳପରି ସରୁ ।

**ନଳିତ**—ପୁଂ. ବି. (ନଳ+କ.ତ)ଝୋଟ ଦା କାଉଁରିଆ ଗଛ, ଶାକବିଶେଷ ।

**ନଳିତା**—ସ୍ତ୍ରୀ. ବି. (ନଳ+କ.ତ+ଆ) ଶାକବିଶେଷ, ଝୋଟ ବା କାଉଁରିଆ ଗଛ, ରଧାଙ୍କ ସଖୀ ।

**ନଳିତାପିତା**—ଗ୍ରା.ବି.ନଳିତା ବା ଝୋଟ ଗଛର ପିତାପତ୍ର ।

**ନଳିନ**—କ୍ଲୀ.ବି. (ନଳ+କ.ଇନ୍)ପଦ୍ମ, କଇଁ, ଜଳ, ନୀଳଗଛ, ଶୈବାଳ, ଶିଉଳୀ, ସାରସପକ୍ଷୀ, ପାଣିଅଁଳା ଫଳ ଓ ଗଛ, ସ୍ୱର୍ଗଗଙ୍ଗା, ମନ୍ଦାକିନୀ, କରନ୍ଦା ।

**ନଳିନନୟନ**—ପୁଂ. ବି°. (ବ.ବ୍ରୀ)ପଦ୍ମଲୋଚନ, (ସ୍ତ୍ରୀ) ନଳିନନୟନା ।

**ନଳିନଳି**—ଗ୍ରା. ବି°. ନଳପରି ସରୁ ।

**ନଳିନଶୟ**—ବି. (ନଳିନ+ଶୀ+କ.ଅ) ବିଷ୍ଣୁ, ନାରାୟଣ ।

**ନଳିନୀ**—ସ୍ତ୍ରୀ. ବି. (ନଳିନ+ଈ) ପଦ୍ମ, ପଦ୍ମସମୂହ, ପଦ୍ମିନୀ ସ୍ତ୍ରୀ, ପଦ୍ମପୋଖରୀ, ମୃଣାଳ, ପଦ୍ମଲତା, ଛନ୍ଦୋବିଶେଷ, ସ୍ୱର୍ଗଗଙ୍ଗା, ନଡ଼ିଆ ସୁରା, ନଳିକା, ନଦୀ, ନାକର ବାଁ ପୁଡ଼ା, ଏକ ସଂସ୍କୃତ ବୃତ୍ତ ।

**ନଳିନୀଖଣ୍ଡ**—କ୍ଲୀ. ବି. ପଦ୍ମସମୂହ ।

**ନଳିନୀଗୌଡ଼ା**—ଗ୍ରା. ବି. ଓଡ଼ିଆ ବୃତ୍ତବିଶେଷ ।

**ନଳିନୀଦଳ**—ବି. (୬ତତ୍ତ୍ୱ) ପଦ୍ମପତ୍ର, ପଦ୍ମର ପାଖୁଡ଼ା ।

**ନଳିନୀନନ୍ଦନ**—କ୍ଲୀ. ବି. (୬ତତ୍ତ୍ୱ) ବ୍ରହ୍ମା, କୁବେରଙ୍କ ଉପବନ ।

**ନଳିନୀରୁହ**—ପୁଂ.କ୍ଲୀ.ବି.(ନଳିନୀ+ରୁହ+କ.ଅ)ମୃଣାଳ, ପଦ୍ମର ନାଡ଼, ବ୍ରହ୍ମା, ପଦ୍ମନାଡ଼ର ତନ୍ତୁ ।

**ନଳିନୀପଦ୍ମକୋଷ**—ପୁଂ. ବି. ନୃତ୍ୟରେ ହସ୍ତମୁଷ୍ଟିର ଆକୃତିଭେଦ ।

**ନଳିନେଶୟ**—ପୁଂ. ବି. (ନଳିନେ+ଶୀ+କ.ଅ) ନଳିନଶୟ ଦେଖ ।

ନଳବା—ଗ୍ରା.କ୍ରି.ଭୂମି ନଳ ଦ୍ୱାରା ମାପିବା, ବଡ଼ ପାହୁଣ୍ଡରେ ଚାଲିବା, ନ ହଲିବା, ଗପିବା ।

ନଳହାଡ଼—ଗ୍ରା. ବି. ଆଣ୍ଠୁଠାରୁ ବଲାଗଣ୍ଠି ପର୍ଯ୍ୟନ୍ତ ଥିବା ଅସ୍ଥି ।

ନଳୀ—ବି. (ନଳ+ଇନ୍) ମନଃଶୀଳା, ସୁଗନ୍ଧ ଦ୍ରବ୍ୟବିଶେଷ, ନଳିକା, ଗହର ଡାଙ୍ଗ, ନଳ, ଚୋଙ୍ଗା, ନଳତୃଣ, କଣ୍ଠା, ବନ୍ଧୁକ ନଳ, ଶ୍ୱାସନାଳୀ, କଣ୍ଠନାଳୀ, ତୃଣ, ଶରମୁଣ୍ଡା, ନଳ ଦେଖ ।

ନଳୀକୋଷ—ଗ୍ରା.ବି.ପିଚକାରୀର ନଳ ।

ନଳୀଦ୍ୱାର—ବି. (୬ତତ୍) କଣ୍ଠନାଳୀର ମୁଖ ।

ନଳୀଭଉଁରି—ଗ୍ରା. ବି. ଅଳଙ୍କାର ପୋଲା ଅଂଶରେ ଦିଆଯିବା ନାଡ଼ ।

ନଳୁଆ—ଗ୍ରା.ବିଂ. ଯେ ପକ୍ଷୀଧରିବା ନଳ ବ୍ୟବହାର କରେ ।

ନଳୁଆକେଳା—ଗ୍ରା.ବି. କେଳାମାନଙ୍କର ଶ୍ରେଣୀବିଶେଷ ।

ନଳୋତ୍ତମ—ପୁଂ. ବି. ଏକପ୍ରକାର ବଡ଼ ନଳତୃଣ, ଇଙ୍କଡ଼ ।

ନଳୋଦୟ—ଖଣ୍ଡିଏ ସଂସ୍କୃତ କାବ୍ୟ ।

ନଳୋପାଖ୍ୟାନ—କ୍ଲୀ. ବି. (୬ତତ୍) ନିଷଧରାଜ ନଳଙ୍କ ଚରିତ ବିଷୟକ କଥା ।

ନଲ୍ୱ—ପୁଂ. ବି. (ନଳ+କ.ଅ) ୪୦୦ ହାତ ଲମ୍ବ ଭୂମି, କ୍ରୋଶର ୨୦ଭାଗରୁ ଏକଭାଗ ।

ନଲ୍ୱବର୍ତ୍ମଗା—ସ୍ତ୍ରୀ. ବି. କାକାଙ୍ଗୀ, (ବିଂ) ନଲ୍ୱପରିମିତ ପଥ ଯେ ଗମନ କରେ ।

ନଲ୍ୟ—ତ୍ରି.ବିଂ.ନଳର ଅଦୂର ଦେଶାଦି

ନଲ୍ୟଗ୍ର—ବି. (୬ତତ୍) ପଣ୍ଡିକା ।

ନଲ୍ଲମଲୟ—ମାନ୍ଦ୍ରାଜ କର୍ଣ୍ଣୁଲଜିଲ୍ଲାସ୍ଥ ଗିରିମାଳା ।

ନଶ୍(ଧାତୁ)—ବିନଷ୍ଟ ହେବା,ଧ୍ୱଂସହେବା

ନଶ୍କର—ଗ୍ରା. ବି. ଲଶ୍କର ଦେଖ ।

ନଶ୍ପଣ୍—ଗ୍ରା. ବି. ଲଶ୍ପଣ୍ ଦେଖ ।

ନଶନ—କ୍ଲୀ. ବି. ନାଶଶୀଳ ।

ନଶମ—ଗ୍ରା.ବି.ଶର୍ଦ୍ଦି,ଅଣ୍ଟାହେଲା ରୋଗ ।

ନଶମା—ଗ୍ରା. ବିଂ. ଶ୍ଳେଷ୍ମା ବା ଶର୍ଦ୍ଦି ଗ୍ରସ୍ତ, ମାନ୍ଦା ।

ନଶା—ଗ୍ରା.ବି. ଗଛ ବା ଫଳରୁ ବୋହିବା ରସ, ଲସା,ଘା ଆଦିର ଜଳୀୟ ରସ ।

ନଶାଇବା—ଗ୍ରା. କ୍ରି. ଲସାଇବା, ଲସାବୋହିବା, (ପ୍ରା.ସମ୍ଭ.କ୍ରି) ନାଶକରିବା ।

ନଶାକା—ପୁଂ. ବି. କାକଭେଦ ।

ନଶାଦେବା—ଗ୍ରା.କ୍ରି.ନଶାଇବା ଦେଖ ।

ନଶି—ଗ୍ରା. ବି. ଲଶି ଦେଖ ।

ନଶିଆ—ଗ୍ରା. ବିଂ. ଲଶିଆ ଦେଖ ।

ନଶିତା—ପୁଂ. ବିଂ. (ନଶ୍+କ.ତୃ) ନାଶଶୀଳ, ନଶ୍ୱର, (ସ୍ତ୍ରୀ) ନଶିତ୍ରୀ ।

ନଶିଫିଟିବା—ଗ୍ରା.ବି. ଲଶିଫିଟିବା ଦେଖ ।

ନଶିବା—ଗ୍ରା. କ୍ରି. ବିନାଶପ୍ରାପ୍ତ ହେବା, ନାଶଯିବା ।

ନଶ୍ୱର—ତ୍ରି. ବିଂ. (ନଶ୍+କ. ବର) ଅନିତ୍ୟ, କ୍ଷଣଭଙ୍ଗୁର, ମରଣଶୀଳ, କ୍ଷୟଶୀଳ, ଅସ୍ଥାୟୀ, (ସ୍ତ୍ରୀ) ନଶ୍ୱରୀ ।

ନଶ୍ୟତ୍ପ୍ରସୂତିକା—ସ୍ତ୍ରୀ.ବି. ମୃତବତ୍ସା ସ୍ତ୍ରୀ. (ପର୍ଯ୍ୟାୟ—ନନ୍ଦୂ, ମୃତପୁତ୍ରିକା) ।

ନଷ୍ଟ—ପୁଂ. ବିଂ. (ନଶ୍+କ.ତ) କ୍ଷୟପ୍ରାପ୍ତ, ନାଶପ୍ରାପ୍ତ, ଦୂଷିତ, ବିକୃତ, ଅପଚିତ, ହଜିଥିବା, ତିରୋହିତ,ଗତ, ଅପବିତ୍ରୀକୃତ, ପଳାୟିତ, ଖଳ,ଭ୍ରଷ୍ଟ, ଅକର୍ମଣ୍ୟ, ଅଭଦ୍ର, ଲମ୍ପଟ, ଧ୍ୱଂସ, ମୃତ,ପରସ୍ତ୍ରୀରତ,(ବି.ନଶ୍+ଭା.ତ) ନାଶ, ଅପଚୟ, କ୍ଷୟ. (ସ୍ତ୍ରୀ)ନଷ୍ଟା ।

ନଷ୍ଟକରିବା—ଗ୍ରା. କ୍ରି. ବିନାଶ କରିବା, ବିଗାଡ଼ିବା, ଅପଚୟ କରିବା,ଅପବ୍ୟୟ କରିବା, କ୍ଷତ କରିବା, ସ୍ତ୍ରୀର ସତୀତ୍ୱ ନାଶକରିବା, କଳଙ୍କିତ କରିବା ।

ନଷ୍ଟକୋଷ୍ଠୀ—ବି. (କ.ଧା) ହଜିଯାଇଥିବା ଜାତକ ।

ନଷ୍ଟକୋଷ୍ଠୀଉଦ୍ଧାରକରିବା—ଗ୍ରା. କ୍ରି. ହଜିଯାଇଥିବା କୋଷ୍ଠୀର ଉପାଦାନମାନ କୋଷ୍ଠୀର ବିନା ସାହାଯ୍ୟରେ ସଂଗ୍ରହ କରିବା ।

ନଷ୍ଟଙ୍କଗୁରୁଦୁଷ୍ଟଙ୍କଗୋସାଇଁ—ଅତ୍ୟନ୍ତ ଦୁଷ୍ଟ ଓ ଦୁଷ୍ଟଚେଷ୍ଟ ବ୍ୟକ୍ତି ।

ନଷ୍ଟଚନ୍ଦ୍ର—ପୁଂ. ବି. (କ.ଧା) ଭାଦ୍ର ଶୁକ୍ଳ ଓ କୃଷ୍ଣଚତୁର୍ଥୀର ଚନ୍ଦ୍ର ।

ନଷ୍ଟଚରିତ୍ର—ପୁଂ.ବିଂ. (ବ.ବ୍ରୀ) ଯାହାର ଚରିତ୍ର ମନ୍ଦ, (ବି କ.ଧା) ମନ୍ଦଚରିତ୍ର, (ସ୍ତ୍ରୀ) ନଷ୍ଟଚରିତ୍ରା ।

ନଷ୍ଟଚିତ୍ତ—ପୁଂ. ବିଂ. (ବ.ବ୍ରୀ) ମୂଢ଼, ନିର୍ବୋଧ, (ସ୍ତ୍ରୀ) ନଷ୍ଟଚିତ୍ତା ।

ନଷ୍ଟଚେତନ—ପୁଂ.ବିଂ. (ବ.ବ୍ରୀ) ହତଚେତନ, ହତଜ୍ଞାନ,ମୂର୍ଚ୍ଛିତ, (ସ୍ତ୍ରୀ)ନଷ୍ଟଚେତନା ।

ନଷ୍ଟଚେତାଃ—ପୁଂ. ବିଂ. (ବ.ବ୍ରୀ)ଅଜ୍ଞ, ମୂଢ଼, ନିର୍ବୋଧ, ଲମ୍ପଟ, ସ୍ମୃତିହୀନ ।

ନଷ୍ଟଚେଷ୍ଟ—ପୁଂ. ବିଂ. (ବ.ବ୍ରୀ) ଜଡ଼, ନିଷ୍ପନ୍ଦ,ଗତିହୀନ,ମୂର୍ଚ୍ଛିତ,ଉଦ୍ୟମହୀନ, (ସ୍ତ୍ରୀ) ନଷ୍ଟଚେଷ୍ଟା ।

ନଷ୍ଟଚେଷ୍ଟତା—ସ୍ତ୍ରୀ. ବି. (ନଷ୍ଟଚେଷ୍ଟ+ଭା.ତା) ପ୍ରଳୟ, ଅଚୈତନ୍ୟ, ମୂର୍ଚ୍ଛା ।

ନଷ୍ଟତା—ବି. (ନଷ୍ଟ+ଭା.ତା) ଧୂର୍ତ୍ତତା, ଶଠତା, ଲମ୍ପଟ୍ୟ, ଦୁଷ୍ଟତା ।

ନଷ୍ଟଜନ୍ମା—ବି. ଜାରଜ ।

ନଷ୍ଟଜାତକ—କ୍ଲୀ. ବି. ଜନ୍ମ ଓ ଜନ୍ମାଧାନ କାଳର ଅପରିଜ୍ଞାନ, ଜନ୍ମର ବିବରଣ ନ ଜାଣିବା, ପ୍ରଶ୍ନ ଲଗ୍ନାଦି ଦ୍ୱାରା ଜନ୍ମକାଳ ଜ୍ଞାନାର୍ଥ ଉପାୟଭେଦ ।

ନଷ୍ଟଦୂତୀ—ବି. ଅସଦାଚରଣୀ ଦୂତୀ ।

ନଷ୍ଟଦୃଷ୍ଟି—ବିଂ. (ବ.ବ୍ରୀ) ଅନ୍ଧ ।

ନଷ୍ଟଧନ—ବିଂ. ଦରିଦ୍ର ଦଶା ପ୍ରାପ୍ତ ।

ନଷ୍ଟପୁରୁଷ—ବି.(କ.ଧା)ଅକର୍ମଣ୍ୟବ୍ୟକ୍ତି, ନପୁଂସକ ବ୍ୟକ୍ତି ।

ନଷ୍ଟପ୍ରଭ—ପୁଂ. ବିଂ. (ବ.ବ୍ରୀ) ଯାହାର ତେଜ ମଉଳିଛି, (ସ୍ତ୍ରୀ) ନଷ୍ଟପ୍ରଭା ।

ନଷ୍ଟବିଷ—ବିଂ. ବିଷହୀନ ସର୍ପାଦି ।

ନଷ୍ଟବୀଜ—ବିଂ. (ବ.ବ୍ରୀ) ଯାହାର ମଞ୍ଜି ନଷ୍ଟ ହୋଇଅଛି, ନିଷ୍ଫଳ ।

ନଷ୍ଟବେଦନ—ତ୍ରି. ବିଂ. ହୃତବସ୍ତୁର ଅନ୍ୱେଷଣ ।

ନଷ୍ଟମତ—ବିଂ. (ବ.ବ୍ରୀ) ଜ୍ଞାନଭ୍ରଷ୍ଟ, ଦୁର୍ବୁଦ୍ଧି, ନିର୍ବୁଦ୍ଧିଆ, ମୂଢ଼, (ସ୍ତ୍ରୀ.ବି.

କ.ଧା) ଦୁଷ୍ଟାବୁଦ୍ଧି ।
**ନଷ୍ଟଭ୍ରଷ୍ଟ**—ବିଂ. ସମ୍ପୂର୍ଣ୍ଣ ରୂପେ ବିନାଶ-
ପ୍ରାପ୍ତ, ବିନଷ୍ଟ ।
**ନଷ୍ଟମାର୍ଗଣ**—କ୍ଲୀ. ବି. (୬ତତ୍) ଅଦର୍ଶନ-
ଗତ ବସ୍ତୁର ଅନ୍ୱେଷଣ ।
**ନଷ୍ଟରାଜ୍ୟ**—କ୍ଲୀ.ବି.ବିଧ୍ୱସ୍ତ ବା ହୃତରାଜ୍ୟ,
ମଧ୍ୟଦେଶର ଉତ୍ତରପୂର୍ବସ୍ଥିତ ଜନ-
ପଦବିଶେଷ ।
**ନଷ୍ଟରୂପ**—ତ୍ରି. ବିଂ. ମୃତ, ବିକୃତଭାବ,
ମନୁଷ୍ୟ ଚକ୍ଷୁର ଅଗୋଚର ରୂପ ।
**ନଷ୍ଟରୂପା**—ସ୍ତ୍ରୀ. ବି. ଅନୁଷ୍ଟୁଭ୍ ଛନ୍ଦୋ-
ଭେଦ ।
**ନଷ୍ଟସଂସ୍କୃତ**—ବିଂ.(ବ.ଗ୍ରା)ବିସ୍ମରଣଶୀଳ,
ଯେ ପୂର୍ବକଥା ଭୁଲିଯାଇଅଛି ।
**ନଷ୍ଟା**—ସ୍ତ୍ରୀ. ବିଂ. ଭ୍ରଷ୍ଟା, ବିନାଶପ୍ରାପ୍ତା,
ଦୁଷ୍ଟା, ଅସତୀ, କୁଳଟା, ବ୍ୟଭିଚାରିଣୀ,
(ବି, ଅସତୀ ସ୍ତ୍ରୀ ।
**ନଷ୍ଟାଗ୍ନି**—ପୁଂ.ବି.(ବ.ଗ୍ରା)ଯେଉଁ ଅଗ୍ନି-
ହୋତ୍ରୀଙ୍କର ଯଜ୍ଞାଗ୍ନି ନଷ୍ଟ ହୋଇଅଛି ।
**ନଷ୍ଟାତଙ୍କ**—ତ୍ରି.ବିଂ. ଆତଙ୍କ ବା ଚିନ୍ତାର
ଅଭାବ ।
**ନଷ୍ଟାର୍ଥ**—ତ୍ରି. ବିଂ. ନଷ୍ଟଧନ, ଯଦ୍ୱାରା-
ଅବସ୍ଥା ହୀନ ହୋଇଅଛି ।
**ନଷ୍ଟାପ୍ତି**—ବି.(୬ତତ୍) ନଷ୍ଟବସ୍ତୁର ପ୍ରାପ୍ତି ।
**ନଷ୍ଟାପ୍ତିସୂତ୍ର**—କ୍ଲୀ. ବି. (୬ତତ୍) ନଷ୍ଟ-
ଦ୍ରବ୍ୟର କିଛି ଅଂଶପ୍ରାପ୍ତି ।
**ନଷ୍ଟାମି**—ବି.ଦୁଷ୍ଟତା, ଦୁଷ୍ଟାମି, ଖଣ୍ଡପଣ ।
**ନଷ୍ଟାଶଙ୍କ**—ତ୍ରି.ବିଂ.ନିର୍ଭୟ,ଆଶଙ୍କାଶୂନ୍ୟ
**ନଷ୍ଟାଶ୍ୱରଥନ୍ୟାୟ**—( ଦୃଷ୍ଟାନ୍ତବିଶେଷ )
ଦୁଇଜଣ ଦୁଇଟି ପୃଥକ୍ ରଥରେ ଚଢ଼ି
ପାରିଧି କରିବାକୁ ଯାଇଥିବା ଅବସ୍ଥାରେ
ଦାବାଗ୍ନି ଦ୍ୱାରା ଜଣକର ଘୋଡ଼ା ଓ
ଅନ୍ୟର ରଥ ନଷ୍ଟ ହୋଇଯିବାରୁ ଦୁହେଁ
ଯାକ ଜଣକର ରଥରେ ଅନ୍ୟର
ଘୋଡ଼ାକୁ ଯୋଚି ବଣରୁ ପଳାଇ ଆସି-
ବାକୁ ସମର୍ଥ ହୋଇଥିଲେ, ଏହିପରି
ଦୁଇଜଣଙ୍କର ଉପାୟକୁ ସଂଯୋଗ
କରି କୌଣସି ବିପଦରୁ ଉଦ୍ଧାର
ପାଇବା ସ୍ଥାନରେ ଏହି ଦୃଷ୍ଟାନ୍ତ ଦିଆ-
ଯାଏ । [ ଯାଇଅଛି ।
**ନଷ୍ଟାସୁ**—ବିଂ. ଯାହାର ପ୍ରାଣବାୟୁ ଚାଲି
**ନଷ୍ଟି**—ସ୍ତ୍ରୀ. ବି. (ନଶ୍ + ଭା.ତି) ବିନାଶ,
(ଗ୍ରା.ବି)ବାଣିଜ୍ୟରେ କ୍ଷତି,ଲୋକସାନ୍ ।
**ନଷ୍ଟେନ୍ଦୁକଳା**—ସ୍ତ୍ରୀ.ବି(ବ.ଗ୍ରା)ଅମାବାସ୍ୟା ।
**ନଷ୍ଟୋଦ୍ଧାର**—ପୁଂ. ବି. (୬ତତ୍) ହଜି-
ଥିବା ଦ୍ରବ୍ୟ ପାଇବା, ଜୀର୍ଣ୍ଣୋଦ୍ଧାର ।
**ନସ୍(ଧାତୁ)**—କୁଟିଳ ହେବା, ଆଡ଼କୁ
ଗତି କରିବା, ରମଣ କରିବା, ଶବ୍ଦ-
କରିବା । [ ନାକ ।
**ନସ**—ବି. ( ନସ୍ + କ.ଅ ) ନାସିକା,
**ନସର**—ଯା.ବି. ଇଗଲପକ୍ଷୀ । [ଦେଖ ।
**ନସରପସର**—ଗ୍ରା. ଅବ୍ୟ. ଲସରପସର
**ନସର୍**—ଗ୍ରା.ବିଂ.ନବସର୍,ନଅଖିଅବିଶିଷ୍ଟ
(ହାରବିଦ) ।
**ନସା**—ସ୍ତ୍ରୀ.ବି.(ନସ୍ + ଆ)ନାସା, ନାକ,
(ଗ୍ରା.ବି) ଲସା ଦେଖ । [ କରିବା ।
**ନସାଇବା**—ପ୍ରା. (ସମ୍ବଲପୁର)କ୍ରି.ନଷ୍ଟ-
**ନସି**—ଗ୍ରା. ବି. ଲସି ଦେଖ, ଆମ୍ବାଦି
ଫଳର ଢେମ୍ପ ।
**ନସିଫୁଟିବା**—ଗ୍ରା. ବି. ସ୍ତନରୁ ପ୍ରଥମ
ସ୍ତନ୍ୟୋଦ୍ଗମ ହେବା ।
**ନସିବ୍**—ଯା.ବି. ଲସିବ୍, କର୍ମ, ଅଦୃଷ୍ଟ,
ଭାଗ୍ୟ, କପାଳ ।
**ନସିବ୍ଦାର**—ଯା.ବିଂ. ଭାଗ୍ୟବାନ୍ ।
**ନସିବା**—ଗ୍ରା. କ୍ରି. ଲସିବା, ଭସ୍ମସାତ୍
ହେବା, ତଳକୁ ଲଇଁଯିବା, (ପ୍ରା.ସମ୍ବ)
ନଷ୍ଟହେବା ।
**ନସିବୀ**—ଯା.ବିଂ.କପାଳିଆ,ଭାଗ୍ୟବାନ୍ ।
**ନସିର**—ଏକଜାତୀୟ ଭ୍ରମଣକାରୀ ଆଫ-
ଗାନ୍ ।
**ନସିରୁଦ୍ଦୀନ୍‌ମାମୁଦ୍**—ଦାସବଂଶର ଜଣେ
ଭାରତ ସମ୍ରାଟ୍ ।
**ନସୀବ**—ଯା.ବି. ଅଦୃଷ୍ଟ, ଭାଗ୍ୟ ।
**ନସୀହତ୍**—ଯା.ବି.ଉପଦେଶ,ଶିକ୍ଷାଦାନ,
ପରାମର୍ଶଦାନ ।
**ନସେଇବା**—ଗ୍ରା. କ୍ରି. ନସିବା କ୍ରିୟାର
ଣିଜନ୍ତରୂପ, (ଘା.ଆ)ରେସହ୍ରାଶୀ ହେବା ।
**ନସ୍ତ**—ପୁଂ.ବି. ( ନସ୍ + ସଂଜ୍ଞାର୍ଥେ.ତ )
ନାକ, ନାସିକା, ନସ୍ୟ ।
**ନସ୍ତକରଣ**—ବି.ନାକରେ ତରଳ ଜିନିଷ
ଧକାଇବା ପାଇଁ ବ୍ୟବହୃତ ଯନ୍ତ୍ର ।
**ନସ୍ତା**—ସ୍ତ୍ରୀ.ବି. (ନସ୍ + ତ + ଆ) ନାକ-
ଦଣ୍ଡିରେ କରାଯିବା ଫୋଡ଼ ।
**ନସ୍ତସ୍**—ଅବ୍ୟ. ନାସିକାରେ ।
**ନସ୍ତିତ**—ପୁଂ. ବି. ନାକଫୋଡ଼ା ବଳି-
ବାଦ୍ଧ,(ବିଂ)ନାକଫୋଡ଼ା(ବଳଦାଦ୍ଧ) ।
**ନସ୍ତୋତ**—ପୁଂ.ବି.ନାକଫୋଡ଼ା ବଳଦ ।
**ନସ୍ୟ**—କ୍ଲୀ. ବି. (ନସ୍ + ଯ)ନାସ,ନାକ
ଭିତରସ୍ଥ କେଶ, (ବିଂ)ନାସାସମ୍ବନ୍ଧୀୟ,
ନାସିକାର ହିତଜନକ,(ପର୍ଯ୍ୟାୟ--ନସ୍ତ,
ଲବଣ୍ୟ) ।
**ନସ୍ୟଦାନୀ**—ଗ୍ରା. ବି. ନାସଦାନୀ, ନାସ
ରଖିବାର ଆଧାର ।
**ନସ୍ୟଧାନୀ**—ସ୍ତ୍ରୀ.ବି. ନାସଦାନୀ ବା ନାସ
ରଖିବା ଆଧାର ।
**ନସ୍ୟା**—ସ୍ତ୍ରୀ. ବି. (ନସ + ଯ + ଆ)ନାକ,
ନାକର ଫୋଡ଼, ପଶୁମାନଙ୍କ ନାକ-
ଫୋଡ଼ରେ ଗଳାଥିବା ଦଉଡ଼ି ।
**ନସ୍ୟାଧାର**—ପୁଂ.ବି.ନାସରଖିବାର ପାତ୍ର ।
**ନସ୍ୟାତ୍**—ଗ୍ରା. (ଯଦି ନଥାଏ),ଅପଳାପ,
ଲୋପ, ଅନ୍ତର୍ଦ୍ଧାନ ।
**ନସ୍ୟୋତ**—ବି. ନସ୍ତିତ ଦେଖ ।
**ନହ**—ଗ୍ରା.ବି. ନଖ, ଲହ, ଲତା,ଲମ୍ବ-
ଯନ୍ତ୍ର, ସାପାଦ ।
**ନହକା**—ଗ୍ରା. ବିଂ. ଲହକା, ପତଳା ଓ
ଲମ୍ବ, ଦୋହଲୁଥିବା, ଡେଙ୍ଗା ଓ
ପତଳା (ବ୍ୟକ୍ତି) ।
**ନହକାଇବା**—ଗ୍ରା. କ୍ରି. ଲହକାଇବା
ଦେଖ । [ ଲିବା ।
**ନହକିବା**—ଗ୍ରା.କ୍ରି. ଲହକିବା, ଦୋହ-
**ନହଙ୍ଗା**—ଗ୍ରା.ବି ଓ ବିଂ.ଲହଙ୍ଗା ଦେଖ ।
**ନହଡ଼(ରେ)** ଗ୍ରା.ଅବ୍ୟ. (ସଂ-ଲହରୀ)ଧାଡ଼ି,
ପରମ୍ପରା, ସ୍ରୋତ, ଜିଦ୍, ଜିଗର ।
**ନହଡ଼ା(ଡ଼ି)**—ଗ୍ରା. ବି. ଟେଇଁ,ଲହରୀ ।
**ନହଡ଼ାଇବା**—ଗ୍ରା. କ୍ରି. ଅନର୍ଗଳ କଥା
କହିବା, ନହଡ଼ା ମାରିବା ।
**ନହଡ଼ାମାରିବା**—ଗ୍ରା. ବି ଓ କ୍ରି. ତେଜ

ଉଠିବା, ତରଙ୍ଗାୟିତ ହେବା ।
ନହଡ଼ିଭଙ୍ଗା—ଗ୍ରା. ବି. ଲହଡ଼ିଭଙ୍ଗା, ଦେଖ ।
ନହଡ଼ିଖଙ୍ଗିବା—ଗ୍ରା. କ୍ରି. କଳଆଡ଼କୁ ଆସୁଥିବା ସମୁଦ୍ରର ଲହରୀକୁ ଗୁଡ଼ପତାଇ ସମ୍ଭାଳିବା ।
ନହଣ—ଗ୍ରା. ବି. ଲହଣ ଦେଖ ।
ନହନ—ବି. (ନହ+ଭା.ଅନ) ବନ୍ଧନ, (ଣ.ଅନ) ବନ୍ଧନରଜ୍ଜୁ ।
ନହନହ(ଇତ୍ୟାଦି)—ଗ୍ରା. ଅବ୍ୟ. ଲହଲହ ଇତ୍ୟାଦି ଦେଖ ।
ନହନା—(ପ୍ରା-ସମ୍ବ)ବି. ଉମଡ଼ାଉଲଙ୍ଗଳ ଦଉଡ଼ି, ଆନ୍ଧିଦଉଡ଼ି ।
ନହନାଙ୍ଗୁଡ଼ିଆ—ଗ୍ରା.ବି.ଲହଲଙ୍ଗଳୀ ବିଷ
ନହବତ୍—ଯା. ବି. ନଉବତ୍ ଦେଖ ।
ନହମ୍ବର(ଇତ୍ୟାଦି)—ଯା.ଗ୍ରା.ବି. ନମ୍ବର ଇତ୍ୟାଦି ଦେଖ ।
ନହମ୍ବର(ଇତ୍ୟାଦି)—ଗ୍ରା. ବିଂ. ନମ୍ବର (ଇତ୍ୟାଦି) ଦେଖ ।
ନହର—ଗ୍ରା. ବି. ନଅର, ରାଜପ୍ରାସାଦ, ରାଜାଙ୍କ ଅନ୍ତଃପୁର, ହାରଦ୍ୱାର ଘର ।
ନହରକୋଳି—ଗ୍ରା.ବି.ନରକୋଳିଦେଖ
ନହରପହର-ଗ୍ରା.ବି.ନଅରପଅର ଦେଖ
ନହରପହରିଆ—ଗ୍ରା.ବିଂ. ନଅରପଅରିଆ ଦେଖ ।
ନହରି—ଗ୍ରା. ବିଂ. ଲହରୀପରି ଭଙ୍ଗି ବା ସ୍ତରବିଶିଷ୍ଟ, ଲହରି, ପିନ୍ଧିବା ନିମନ୍ତେ ଆବଶ୍ୟକ ପରିମାଣରୁ ବଳିପଡ଼ିଥିବା (ଲୁଗା),(ପ୍ରା-ବାଲେଶ୍ୱର. ବି) ଉଅଁର, ଜଳଭଉଁରି । [ ଦେଖ ।
ନହରିଇବା—ଗ୍ରା. କ୍ରି. ନହଡ଼ାଇବା
ନହରି—ଯା. ସୁଜଳା ଦେଖ ।
ନହଲ—ଗ୍ରା. ବି. ନଅଲ, ନବନ୍ଦୁଯୁକ୍ତ ତାସ, ରାଜମିସ୍ତ୍ରୀଙ୍କ ଶ୍ରେଷ୍ଠ କରଣୀ ।
ନହଳିବା—ଗ୍ରା.ବି.ଅନର୍ଗଳ କଥାକହିବା
ନହି—(ଅବ୍ୟ) ନା, ନୁହେଁ, ନାହିଁନାହିଁ
ନହିଲେ--ଗ୍ରା.ଅବ୍ୟ.ନଇଲେ,ନୋଚେତ୍, ଅଥବା,ଅଥବା ନାହିଁ, ନଘଟିଲେ ।
ନହୁକ—ଆରବର ପ୍ରାଚୀନ ପୌତ୍ତଳିକ ଧର୍ମର ଅନ୍ତର୍ଗତ ଦେବତା ବିଶେଷ ।
ନହୁ—ଯା.ଗ୍ରା.ବି. ଲହୁ, ରୁଧିର, ରକ୍ତ ।
ନହୁଏ—ଗ୍ରା.ଅବ୍ୟ.ନୋଚେତ୍, ନଇଲେ, କିମ୍ବା, ଅଥବା ନାହିଁ ।
ନହୁଡ଼ା—ଗ୍ରା. ବି. ଲହୁଡ଼ା ଦେଖ ।
ନହୁଡ଼ି—ଗ୍ରା. ବି. ଲହୁଡ଼ି ଦେଖ ।
ନହୁଣିଆ(ଆଁ)—ଗ୍ରା. ବିଂ. ନବନୀତପରି କୋମଳ, ଲହୁଣୀ ମିଶ୍ରିତ, ( ଗ୍ରା.ବି ) ଲହୁଣୀ ବିକେତା, ଏକପ୍ରକାର ଦେଶୀ ବ୍ୟାୟାମ ।
ନହୁଣୀ—ଗ୍ରା. ବି. ଲହୁଣୀ, ନବନୀତ ।
ନହୁଣୀକାଢ଼ିବା—ଗ୍ରା. କ୍ରି. ଦହିମୁହାଁଇ ସେଥିରୁ ନବନୀତ ବାହାର କରିବା ।
ନହୁଣୀମାରିବା—ଗ୍ରା.କ୍ରି. ଲହୁଣୀ ତରଲାଇ ଘିଅ ବାହାର କରିବା । [ଦେଖ ।
ନହୁନୁଆଣ—ଗ୍ରା.ବି ଓ ବିଂ. ଲହୁଲୁଆଣ
ନହୁରୁଣୀ—ଗ୍ରା. ବି. ନଉରୁଣୀ ଦେଖ ।
ନହୁଲି—ଗ୍ରା. ସ୍ତ୍ରୀ. ବିଂ. ନବୀନା (ସ୍ତ୍ରୀ), କୋମଳ, ସୁକୁମାରୀ ।
ନହୁଷ—ପୁଂ. ବି. ( ନହ+କ.ଉଷ୍ ) ଯଯାତିଙ୍କ ପିତା, ସର୍ପ ବିଶେଷ ।
ନହୁଷାଖ୍ୟ—କ୍ଲୀ.ବି. ତଗରପୁଷ୍ପ ।
ନହୁଷାତ୍ମଜ—ପୁଂ. ବି. ନହୁଷ ରାଜାଙ୍କ ପୁତ୍ର, ଯଯାତି ।
ନହୁଷ୍ୟ—ତ୍ରି.ବିଂ. ନହୁଷସମ୍ବନ୍ଧୀୟ ।
ନହେ—ଗ୍ରା.(ପଦ୍ୟ)ଅବ୍ୟ, ନୁହେଁ ।
ନହେଲାବାଗିର—ପ୍ରା. (ସମ୍ବଲପୁର) କ୍ରି. ବିଂ. ଅନାୟାସରେ, ଅବହେଳାକ୍ରମେ, ଅକାତରେ, ଅକୁଣ୍ଠିତ ଭାବରେ,ଅସଙ୍କୋଚରୂପେ ।
ନା—ଅବ୍ୟ, ନାହିଁ, ନୁହେଁ, ( ଗ୍ରା.ବି. ) ନାଆ ଦେଖ,(ଗ୍ରା.ଅବ୍ୟ)କି, କିଆ,କି ? ନଚେତ୍, ନାହିଁ, ନୁହେଁ, ନା ।
ନାଆ—ଗ୍ରା.ବି. ନାବ, ନୌକା, ଡଙ୍ଗା ।
ନାଆଁ—ଗ୍ରା. ବି. ନାମ ଇତ୍ୟାଦି ଦେଖ, ଉଲ୍ଲେଖ, ସୂଚନା, କଳଙ୍କ, ଖ୍ୟାତି, କୌତୁକ ପ୍ରଶ୍ନ ।
ନାଆଁକୁ—ଗ୍ରା. ଅବ୍ୟ. ନାମମାତ୍ର, ଅତି ସାମାନ୍ୟ ମାତ୍ର ।
ନାଆଁକେ—ପ୍ରା. (ସମ୍ବଲପୁର)ନାଆଁକୁ, ଅଳ୍ପଟିକିଏ ।
ନାଆଁଡରା—ପ୍ରା. (ଗଞ୍ଜାମ) ଲଣ୍ଠନ୍ ।
ନାଆକା( ଇତ୍ୟାଦି )—ଗ୍ରା. ବି ଓ ବିଂ. ନାହାକାଇତ୍ୟାଦି ଦେଖ । [ ଦେଖ ।
ନାଆଗୁଳିଆ—ଗ୍ରା. ବିଂ. ନାହାଗୁଳିଆ
ନାଆପସନ୍ଦ— ଯା.ବିଂ. ନାପସନ୍ଦ ଦେଖ ।
ନାଇ—ଗ୍ରା. ବି. ନାହି, ଲାହି, ନାଭି, ଚକର ହାଣ୍ଡି, (ଗ୍ରା.ଅବ୍ୟ.)ନାହିଁ,ନା, ନୁହେଁ, ଗ୍ରା. (ନଞ୍‌ର୍ଥକ) କ୍ରି. ନଅଟେ, ନଥାଏ, ନଅଛି, ନାହିଁ ।
ନାଇଆ—ଗ୍ରା.ବି. ନାହିଆ ଦେଖ ।
ନାଇଆମାରିବା—ଗ୍ରା. ବି. ଗଣ୍ଡମାଳି, ପ୍ରକୃତିକୁ ଲହିଆ ରୋଗ ଧରିବା ।
ନାଇଁବା—ଗ୍ରା.ଅବ୍ୟ, ନାହିଁବା,କିକଲେବି ନୁହେଁ ।
ନାଇକ—ପ୍ରା.( ଗଡ଼ଜାତ ) ବି. ପାଇକ ସରଦାର, ପ୍ରା. (ଗଞ୍ଜାମ)ବି. ସରବରାକାର, ( ଗା.ବି ) ତେଲଙ୍ଗାମାନଙ୍କର ଉପାଧିବିଶେଷ ।
ନାଇକା—ଗ୍ରା.ବିଂ.ପ୍ରଧାନ,(ସ୍ତ୍ରୀ.ବି.—ଗ୍ରା. ବି.) ନାୟିକା ଦେଖ, ଗାଣାର ପ୍ରଧାନ ଗନ୍ଧି ।
ନାଇକାଚେର—ଗ୍ରା.ବି. ନାହାକାଚେର, ଚଟ୍ଟର ପ୍ରଧାନ ବା ବଡ଼ ଚେର ।
ନାଇକାରିବାଇଗଣ—ଗ୍ରା.ବି. ନାରିକେରି ବାଇଗଣ ଦେଖ ।
ନାଇଡୁ—ଗ୍ରା. ବି. ତେଲଙ୍ଗା ଶୂଦ୍ର ବା କାୟସ୍ଥମାନଙ୍କର ଉପାଧିବିଶେଷ ।
ନାଇତଫାକ୍(କ୍ଷୀ)—ଯା. ବି. ପରସ୍ପର ବିରୋଧ, ମେଳର ଅଭାବ ।
ନାଇଦେବା—ଗ୍ରା.କ୍ରି.ଅନ୍ୟକୁ ପିନ୍ଧାଇବା, ଅନ୍ୟରେ ଶରୀରରେ ଅଳଙ୍କାରାଦି ଲଗେଇ ଦେବା, ବେଶ କରିବା, (ପ୍ରା. ଭଦ୍ରଖ. କ୍ରି) ରଖିବା ।
ନାଇନ୍‌ତାଲ୍—ଗ୍ରା.ବି. ହିମାଳୟର ପାଦଦେଶସ୍ଥ ସ୍ଥାନବିଶେଷ । [ ଦେଶୀୟ ।
ନାଇନ୍‌ତାଲି—ଗ୍ରା. ବିଂ. ନାଇନ୍‌ତାଲ୍-
ନାଇନ୍‌ତାଲିଆଳୁ—ଗ୍ରା. ବି. ଏକପ୍ରକାର

କୋମଳଶସଯୁକ୍ତ ବଳାତଆକୃ ।

ନାଇନ—ପ୍ରା. (ସମ୍ବଲ) କ୍ରି. ନାହିଁନା, ନୁହେ ହିଁ ।

ନାଇବା—ଗ୍ରା. କ୍ରି. ଲଗାଇବା, ପିନ୍ଧିବା, ଯୋଜିବା, ଭୂଷିତହେବା । [ଭଣ୍ଡାରି ।

ନାଉ—ଗ୍ରା. ବି. ଲାଉ, (ପ୍ରା. ବସ୍ତର. ବି)

ନାଉଆରସ—ଗ୍ରା. ବିଂ. ଯେଉଁ ସମ୍ପତ୍ତିର କେହି ଦାବିଦାର ନାହିଁ, ଅସ୍ୱାମିକ (ସମ୍ପତ୍ତି), ଯେଉଁ ଲୋକର କେହି ଉତ୍ତରାଧିକାରୀ ନାହାନ୍ତି ।

ନାଉକେଶ୍ୱର—ଗ୍ରା. ବି. ପୁରୁଷୋତ୍ତମ ଓ ଭୁବନେଶ୍ୱର କ୍ଷେତ୍ରର ଶିବଲିଙ୍ଗ-ବିଶେଷ ।

ନାଉଡ଼—ଗ୍ରା. ବି. ( ସଂ-ଅନଲ ) ବିଛା ମହୁମାଛି ଆଦିଙ୍କ ଲାଞ୍ଜରେ ଥିବା ବିଷ-କଣ୍ଟକ, ନାହୁଡ଼ ।

ନଉମ୍ମେଦୀ—ଯ. ବି. ନିରାଶା,ନୈରାଶ୍ୟ ।

ନାଉରି—ଗ୍ରା. ବି. (ସଂ-ନାବିକ) ନାବିକ, ନୌକାଚାଳକ, ମାଝି ।

ନାଉଳି—ଗ୍ରା. ବି. କ୍ଷତ୍ରିୟ ଓ ଖଣ୍ଡାୟତ-ମାନଙ୍କର ଉପବୀତ ଗ୍ରହଣବିଧି, ବ୍ରତ, କେଉଟମାନଙ୍କର ବଂଶୋପାଧିବିଶେଷ ।

ନାଏକ—ଗ୍ରା. ବି ଓ ବିଂ. ନାୟକଦେଖ ।

ନାଏବ—ଯା. ବି. ପ୍ରତିନିଧି, ଜମିଦାର ତରଫ ଗୋମସ୍ତାମାନଙ୍କର ଉପରିସ୍ଥ କର୍ମଚାରୀ, ପ୍ରଧାନ କର୍ମଚାରୀ ।

ନାଏବୀ—ଯା. ବି. ନାଏବଙ୍କର ପଦ ବି କର୍ମ, (ବିଂ) ନାଏବଙ୍କର ଉପଯୁକ୍ତ ।

ନଓଁ—ପ୍ରା. (ଉତ୍ତରଖଣ୍ଡ) ବି. ନମ ।

ନଓସା—ପ୍ରା. (ଉତ୍ତରଖଣ୍ଡ) ବି. ଝିଅର ପୁଅ (ନାତି) ।

ନାଃ—ଗ୍ରା. ଅବ୍ୟ. ( ସଂ-ନ, ନା, ନହି ) କଦାପି ନୁହେ ।

ନାଁ—ଗ୍ରା. ଅବ୍ୟ. (ସଂ-ନ,ନା) ପ୍ରଶ୍ନାର୍ଥକ, ଅନୁଜ୍ଞାର୍ଥକ, ଯଥା, ଯେହେତୁ, ପ୍ରଶ୍ନ ଓ ଉତ୍ତର ବାକ୍ୟ ଦ୍ୱୟର ସଂଯୋଜ-କାର୍ଥ, କ୍ରିୟାପରେ ବ୍ୟବହୃତ, ନିଷେ-ଧାର୍ଥକ, ଧମକାଟ,ନାସ୍ତ୍ୟର୍ଥ,ଅସ୍ୱୀକାରାର୍ଥ, ସଂଶୟାତ୍ମକ, ପରି, ପାଦପୂରଣାର୍ଥକ, ନାହିଁ, କି, (ଗ୍ରା.ବି) ନାମ, ନାଆଁଦିଆ-ଦେଖ । [ ପଦ୍ଧତି ।

ନାଁଆଁ ଦିଆ—ଗ୍ରା. ବି. ପ୍ରହେଳିକା, ଢଗ,

ନାଁଆଁଦେବା—ଗ୍ରା. କ୍ରି. ନାମକରଣ କରିବା, ପ୍ରହେଳିକ,ପ୍ରଶ୍ନ କରିବା, ଢଗ ମାରିବା ।

ନାଁଉଠାଇବା—ଗ୍ରା. କ୍ରି. ଖବରକାଗଜ ଆଦିରେ କୌଣସି ବ୍ୟକ୍ତିର ନାମଛାପିବା, ଶୁରତ ଆଦିରେ କୌଣସି ବ୍ୟକ୍ତିର ନାମର ଟିକଟ ବାହାରକରି ଆଣିବା ।

ନାଁଉଠିବା—ଗ୍ରା. ବି. ଖବରକାଗଜ ଆଦିରେ କୌଣସି ବ୍ୟକ୍ତିର ନାମ ମୁଦ୍ରିତ ହେବା, ନାଁପଡ଼ିବା ଦେଖ ।

ନାଁଏ—ଗ୍ରା. ଅବ୍ୟ. ନାମରେ ।

ନାଁକରିବା—ଗ୍ରା.କ୍ରି. ଆପଣାର ସୁଯଶର ବିସ୍ତାର ହେବା ଭଳି ଭଲ କାର୍ଯ୍ୟ କରିବା, ଦେଶରେ ବିଖ୍ୟାତ ହେବା, କୌଣସି ବ୍ୟକ୍ତି ବା ସ୍ଥାନଆଦିର ନାମ ଉଚ୍ଚାରଣ କରିବା ।

ନାଁକାଟିଦେବା—ଗ୍ରା. କ୍ରି. କୌଣସି ବିଦ୍ୟାଳୟର ରେଜିଷ୍ଟରରୁ କୌଣସି ଛାତ୍ରର ନାମ କର୍ତ୍ତନ କରିବା,କୌଣସି ତାଲିକାରୁ କୌଣସି ବ୍ୟକ୍ତିର ନାମ କାଟିଦେବା ।

ନାଁକୁ—ଗ୍ରା. ଅବ୍ୟ. ନାମମାତ୍ର, ଅତି ସାମାନ୍ୟରେ, ବୃଥାରେ, କାର୍ଯ୍ୟତଃ ନୁହେ କେବଳ ବାକ୍ୟରେ ।

ନାଁଗନ୍ଧ—ଗ୍ରା. ବି. ( ସଂ-ନାମ ଓ ଗନ୍ଧ ) ସାମାନ୍ୟ ମାତ୍ର ସମ୍ପର୍କ,ନାମମାତ୍ର ଉଲ୍ଲେଖ କରିବା ସୂଚନା ।

ନାଁଗର—ପ୍ରା. (ବସ୍ତର) ବି. ଲଙ୍ଗଳ ।

ନାଁଗାଁ—ଗ୍ରା. ବି. ( ସଂ-ନାମ ଓ ଗ୍ରାମ ) ସୁନାମ, ଦୁର୍ନାମ,ନାମୋଲ୍ଲେଖ,କୌଣସି ବ୍ୟକ୍ତିର ନାମ ଓ ବାସସ୍ଥାନ ।

ନାଁଡ଼କ୍—ଗ୍ରା.ବି. ପ୍ରସିଦ୍ଧି, ଖ୍ୟାତି,ସମ୍ମାନ. ସୁନାମ, ଖାତିର, ପଚାଆରି ।

ନାଁଡ଼ୁବା(ବେ)ଇବା—ଗ୍ରା. କ୍ରି. ନାଁପକା-ଇବା ଦେଖ ।

ନାଁଦିଆ—ଗ୍ରା.ବି. ନାମକରଣ,ବାଳକର ନାମକରଣ ଉତ୍ସବ, ପ୍ରହେଳିକା ।

ନାଁଦେବା—ଗ୍ରା. କ୍ରି. ଶିଶୁର ନାମକରଣ କରିବା, ପ୍ରହେଳିକା ପ୍ରଶ୍ନ କରିବା ।

ନାଁଧରିବା—ଗ୍ରା.କ୍ରି.କୌଣସି ଅନୁଚ୍ଚାର୍ଯ୍ୟ ନାମ ଉଚ୍ଚାରଣ କରିବା, ତତ୍ତ୍ୱବୁଝିବା, ଉଲ୍ଲେଖ କରିବା, କୌଣସି ବ୍ୟକ୍ତିର ସମ୍ପର୍କୀୟ ବ୍ୟକ୍ତିଙ୍କ ନାମଧରି ଗାଳି-ଦେବା ।

ନାଁପକା(କେ)ଇବା—ଗ୍ରା. କ୍ରି. ସୁଯଶ ଲୋପହେବା ଭଳି କାର୍ଯ୍ୟ କରିବା, କୁକର୍ମ ଦ୍ୱାରା ଆପଣାର ବା ପିତୃପିତା-ମାନଙ୍କର ସୁଯଶରେ କଳଙ୍କ ଲଗା-ଇବା ।

ନାଁପଡ଼ିବା—ଗ୍ରା. ବି. କୌଣସି ବ୍ୟକ୍ତିର ପୂର୍ବ୍ୟାତ ରଟନା ହେବା,କଳଙ୍କ ରଟନା ହେବା ।

ନାଁରଖିବା—ଗ୍ରା. କ୍ରି. ନିଜର ସୁକାର୍ଯ୍ୟ-ଦ୍ୱାରା ପୂର୍ବପୁରୁଷଙ୍କ ଯଶକୁ ବଜାଏ ରଖିବା, ଦୂରଭବିଷ୍ୟତ ପର୍ଯ୍ୟନ୍ତ ନିଜର ଖ୍ୟାତିରହିବା ଭଳି କାମ କରିବା ।

ନାଁରହିବା—ଗ୍ରା. ବି. ବହୁକାଳ ବା ଭବିଷ୍ୟତକୁ ଖ୍ୟାତି ଅକ୍ଷୁଣ୍ଣ ରହିବା ।

ନାଁରେ—ଗ୍ରା. ଅବ୍ୟ. ଅମୁକ ଲୋକର ବିପକ୍ଷରେ, ଅମୁକ ନାମୋଲ୍ଲେଖକରି, ଅମୁକ ସମ୍ବନ୍ଧରେ, ଦେବତା ଓ ରାଜା ଆଦିଙ୍କ ନାମର ଦୋହି ଦେଇ ।

ନାଁଲେଖା(ଖେ)ଇବା—ଗ୍ରା.କ୍ରି. କୌଣସି ବିଦ୍ୟାଳୟରେ ଛାତ୍ରରୂପେ ବା ସଙ୍ଘରେ ବା ଦଳରେ ସଭ୍ୟରୂପେ ଭରତିହେବା ।

ନାଁଲେଖିବା—ଗ୍ରା.କ୍ରି. କୌଣସି ବ୍ୟକ୍ତିର ନାମକୁ ତାଲିକାଭୁକ୍ତ କରିବା,କୌଣସି ଛାତ୍ରର ନାମକୁ ବିଦ୍ୟାଳୟର ରେଜି-ଷ୍ଟରଭୁକ୍ତ କରିବା, ନିଜର ନାମ ସ୍ୱୟଂ ଦସ୍ତଖତ କରିବା ।

ନାକ୍—ପ୍ରା. (ସମ୍ବ) ବି. ନାକ ।

ନାକ—ପୁଂ. ବି. ( ନ+ଅକ ) ସ୍ୱର୍ଗ, ଯେଉଁଠାରେ ଦୁଃଖ ନାହିଁ,ଦୁଃଖରହିତତ୍ୱ ହେତୁ ସୁଖକର ସ୍ଥାନ, ଆକାଶ, ନୃପ-ବିଶେଷ, (କ୍ଲୀ.ବି) ଅସ୍ତ୍ରଘାତବିଶେଷ,

(ଗ୍ରା.ବି) ନାସିକା, ଝୁମ୍ପର ଛିଦ୍ରାଂଶ ।
ନାକଅଗ—ଗ୍ରା. ବି. ନାସିକାର ଅଗ୍ରଭାଗ, ନାସାଗ୍ର ।
ନାକକଟା—ଗ୍ରା. ବିଂ. ଯାହାର ନାସିକା କର୍ତ୍ତିତ ହୋଇଅଛି, ନିର୍ଲଜ, ପ୍ରକାଶ୍ୟରେ ଅତ୍ୟନ୍ତ ଅପମାନିତ, (ଗ୍ରା.ବି) ପ୍ରକାଶ୍ୟରେ ଦିଆଯିବା ଅପମାନ ।
ନାକକାଟିବା—ଗ୍ରା.କ୍ରି, (ଲ.ଅର୍ଥ) ପ୍ରକାଶ୍ୟରେ ଅପମାନିତ କରିବା ।
ନାକକାନ—ଗ୍ରା. ବି. ନାସିକା ଓ କର୍ଣ୍ଣ ।
ନାକକାନମୋଡ଼ିହେବା—ଗ୍ରା. କ୍ରି. ବଡ଼ ହଇରାଣ ହେବା, ଆପଣାର ଦୋଷ ବା ତ୍ରୁଟି ସ୍ୱୀକାର କରିବା, ଭବିଷ୍ୟତରେ କୌଣସି ନିର୍ଦ୍ଦିଷ୍ଟ କାମ ନ କରିବାକୁ କବୁଲକରିବା, ଅନୁତାପ ପ୍ରକାଶ କରିବ
ନାକକାନ୍ଦଣା—ଗ୍ରା.ବି. ସାମାନ୍ୟ କଥାରେ କାନ୍ଦିପକାଇବା, ସକାଇବା, (ଲ.ଅର୍ଥ) ଅତି ହୀନତା ଓ ବିନୟ ପୂର୍ବକ ପ୍ରାର୍ଥନା
ନାକକାନ୍ଦୁରା—ଗ୍ରା. ପୁଂ. ବିଂ. ଯେଉଁ ଲୋକ ସାମାନ୍ୟ କଥାରେ ସକାଇହୋଇ କାନ୍ଦେ, ସକେଇ, (ସ୍ତ୍ରୀ) ନାକକାନ୍ଦୁରୀ
ନାକଘଷା—ଗ୍ରା. ବି. ଭୂଇଁରେ ନାକ ଘଷିବାରୂପ ଦଣ୍ଡ, ହଲପଟା ଅବସ୍ଥା, (ଗ୍ରା.ବିଂ) ଅସ୍ତବ୍ୟସ୍ତ, ହଲପଟା ।
ନାକଘଷିବା—ଗ୍ରା. କ୍ରି. ଦଣ୍ଡସ୍ୱରୂପ ଦୋଷ ସ୍ୱୀକାର ପୂର୍ବକ ନିଜର ନାକକୁ ଭୂଇଁରେ ଘଷିବା ।
ନାକଚ୍—ଯା. ବିଂ. ରଦ୍, ନାମଞ୍ଜୁର ।
ନାକଚଣା—ଗ୍ରା. ବି. ନାସିକାଭରଣବିଶେଷ, ନାକର ଅଳଙ୍କାର, ଏକପ୍ରକାର ଫୁଲ ଗଛ ।
ନାକଚର—ପୁଂ. ବି. (ନାକ+ଚର+କ.ଅ) ଗଗନଚର ଦେବତା ଓ ଗନ୍ଧର୍ବାଦି ପିତୃଦେବବିଶେଷ ।
ନାକଜର—ଗ୍ରା.ବି. ଏକପ୍ରକାର ପୈତ୍ତିକ କମ୍ପଜ୍ୱର, ଉଦ୍ଭାଜର ।
ନାକଟାଉଁଟାଉଁ—ଗ୍ରା. ବି. ନାସିକାକୁଞ୍ଚନ, କ୍ରୋଧରେ ନାକ ଫୁଲାଇବା ।
ନାକଢ଼ିଆଁ—ଗ୍ରା.ପୁଂ. ବି ଓ ବିଂ. ନାକଛିଞ୍ଚଡ଼ା, ଘୃଣାରେ ନାକଦ୍ୱାରା ଉପଯୁକ୍ତ ପରି ଶବ୍ଦ କରିବା ।
ନାକତୀର୍ଥ—ଗ୍ରା. ବି. ଧାରାପତନ ତୀର୍ଥର ନିକଟବର୍ତ୍ତୀ ତୀର୍ଥବିଶେଷ ।
ନାକଦଣ୍ଡି—ଗ୍ରା. ବି. ଦୁଇନାକ ପୁଡ଼ାର ମଧ୍ୟସ୍ଥ ଅଂଶ, ଦଣ୍ଡିନାକ, ନାସିକାଗ୍ର ।
ନାକଦଣ୍ଡିରେ ରାଗ—ଗ୍ରା. ବି. ସାମାନ୍ୟ କଥାରେ ରାଗିଯିବା ପ୍ରକୃତି ।
ନାକଦମ୍—ଗ୍ରା. ବି. ଯୁଗରୁଦ୍ଧ ଅବସ୍ଥା, ଅତି ଆକ୍ରାନ୍ତ ଅବସ୍ଥା, ବେଦମ୍ ଅବସ୍ଥା, (ଗ୍ରା.ବିଂ ଓ କ୍ରି.ବିଂ) ଅତ୍ୟନ୍ତ ଆକ୍ରାନ୍ତ, ବେଦମ୍, ଅତ୍ୟନ୍ତ କ୍ଳାନ୍ତ, ହଇରାଣ ।
ନାକନଟୀ—ସ୍ତ୍ରୀ.ବି. ସ୍ୱର୍ଗବେଶ୍ୟା, ଅପ୍ସରା ।
ନାକନାଥ—ପୁଂ. ବି. (୬ତତ୍) ଇନ୍ଦ୍ର ।
ନାକନାୟକ—ପୁଂ.ବି. (ନାକ+ନାୟକ) ଇନ୍ଦ୍ର । [ବୃହସ୍ପତି ।
ନାକନାୟକପୁରୋହିତ—ପୁଂ.ବି(୬ତତ୍)
ନାକପାଳ—ପୁଂ. ବି. (ନାକ+ପାଳ+ଅ) ଦେବତା ।
ନାକପୁଟୁକି—ଗ୍ରା.ବି.ନାକଫୁଲ, ନାକରେ ପିନ୍ଧିବା ଅଳଂକାରବିଶେଷ । [ରନ୍ଧ୍ର ।
ନାକପୁଡ଼ା—ଗ୍ରା.ବି. ନାସାରନ୍ଧ୍ର, ନାସିକା
ନାକପୁର—ଗ୍ରା.ବି.ଅଯୋଧ୍ୟାର ଅନ୍ତର୍ଗତ ଫୟଜାବାଦ ଜିଲାର ଗୋଟିଏ ସହର ।
ନାକ ପୋଛିବାକୁ ସମୟ ନ ଥିବା—ଗ୍ରା. ବି. କାର୍ଯ୍ୟର ଜଞ୍ଜାଳରେ ଅତ୍ୟନ୍ତ ବ୍ୟତିବ୍ୟସ୍ତ ଥିବା ଯୋଗୁଁ ଅନ୍ୟ ବିଷୟମାନଙ୍କ ପ୍ରତି ମନ ଦେବାକୁ ସମୟ ନ ମିଳିବା, କାର୍ଯ୍ୟର ଭିଡ଼ ଯୋଗୁଁ ଅବସରର ଅଭାବ ।
ନାକପୃଷ୍ଠ—କ୍ଳୀ. ବି. ସ୍ୱର୍ଗଲୋକ ।
ନାକଫାଟିଯିବା—ଗ୍ରା. ବି. କୌଣସି ସ୍ଥାନର ବା ବସ୍ତୁର ଦୁର୍ଗନ୍ଧ ନାସିକାରେ ଅସହ୍ୟ ହେବା ।
ନାକଫାସିଆ—ଗ୍ରା.ବି. ନାକ ଫୋଡ଼ରେ ପିନ୍ଧି ଦିବା ଫାସିଆ ବା ସାଧାରେଙ୍ଗ୍ ।
ନାକଫୁଲ—ଗ୍ରା.ବି.ନାକପୁଡ଼ାର ରନ୍ଧ୍ରରେ ପିନ୍ଧାଯିବା ନାଡ଼ଯୁକ୍ତ ହୀନଗୁଣା ।
ନାକଫୁଲ୍—ଗ୍ରା. ବି. କ୍ରୋଧରେ ନାକପୁଡ଼ା ସ୍ଫୀତ ହେବା ।
ନାକଫୁଲା(ଲେ)ଇବା—ଗ୍ରା.ବି. କ୍ରୋଧରେ ଫଁ ଫଁ ହେବା, ଘୃଣାରେ ନାକପୁଡ଼ାକୁ ବନ୍ଦ କରିବା ।
ନାକଫୋଡ଼—ଗ୍ରା. ବି. ଅଳଙ୍କାରଆଦି ପିନ୍ଧିବାପାଇଁ ନାକରେ କରାଯିବା ରନ୍ଧ୍ର ।
ନାକଫୋଡ଼ା—ଗ୍ରା. ପୁଂ. ବିଂ. ଯାହାର ନାକ ଦଣ୍ଡିରେ ବା ନାକ ପୁଡ଼ାରେ ଛିଦ୍ର କରାଯାଇଥାଏ, ନାସାବିଦ୍ଧା, (ଗ୍ରା. ବି) ନାକ ଦଣ୍ଡିରେ ଛିଦ୍ରକରଣ ।
ନାକଫୋଡ଼ିବା—ଗ୍ରା. କ୍ରି. ନାସିକା ବିଦ୍ଧ କରିବା, ଏତଦ୍ଦେଶୀୟ ସ୍ତ୍ରୀଲୋକମାନେ ଅଳଙ୍କାର ପିନ୍ଧିବା ନିମିତ୍ତ ନାସିକାରେ ଫୋଡ଼ କରନ୍ତି, ବଳଦ ମହିଷଆଦିଙ୍କ ନାକରେ ଦଉଡ଼ି ଗଳାଇବା ପାଇଁ ଛିଦ୍ର କରିବା ।
ନାକବାଳ—ଗ୍ରା. ବି. ନାସିକା ପୁଡ଼ା ମଧ୍ୟରେ ଉଠିଥିବା ଗ୍ଲେଟ ଗ୍ଲେଟ ଲୋମ ।
ନାକବୁଲ୍—ଯା.ବି. ନାମଞ୍ଜୁର, ଅସମ୍ମତ ।
ନାକମାଛି—ଗ୍ରା. ବି. ମାଛିପରି ଆକୃତିବିଶିଷ୍ଟ ନାଡ଼ଯୁକ୍ତ ଅଳଂକାରବିଶେଷ ।
ନାକମୋଡ଼ା—ଗ୍ରା. ବି. ଦଣ୍ଡ ସ୍ୱରୂପ ବା ଅପରାଧ ସ୍ୱୀକାର ପୂର୍ବକ ନାକ ମୋଡ଼ି ହେବା ।
ନାକରା—ଗ୍ରା. ବିଂ. ଅକାମିକା, ଅବ୍ୟବହାର୍ଯ୍ୟ, ଖରାପ, ମନ୍ଦ, ନିକୃଷ୍ଟ, ଦୁଷ୍ଟ, ନଷ୍ଟ ।
ନାକରେ କାଠି ପୂରାଇ ଛିଙ୍କିବା—ଗ୍ରା. କ୍ରି. ସର୍ଦ୍ଦି ପ୍ରଭୃତି ହେଲେ ମସ୍ତକର ଗୁରୁତା କମାଇବା ପାଇଁ ନାକରେ କାଠି ପ୍ରଭୃତି ଗୁଞ୍ଜି ଛିଙ୍କିବା, (ଲ.ଅର୍ଥ) କୌଣସି ଆପଦକୁ ବରଣ କରି ଆଣିବା ।
ନାକରେ ଦଉଡ଼ିଲଗା(ଗୋ)ଇଟାଣିବା—ଗ୍ରା. କ୍ରି. (ଲ.ଅର୍ଥ) କୌଣସି ବ୍ୟକ୍ତିକୁ ଅନ୍ୟର ଇଚ୍ଛା ମତେ ବାଧ କରାଇ କାମ କରାଇବା, ହଟହଟା କରିବା ।
ନାକରେ ଲଙ୍କାମରିଚ ଗୁଣ୍ଡାଭରିଦେବା—ଗ୍ରା. କ୍ରି. (ଲ.ଅର୍ଥ) ହଟହଟା କରିବା, ଅତ୍ୟନ୍ତ ପୀଡ଼ା ଦେଇ ବ୍ୟତିବ୍ୟସ୍ତ କରିବା ।

ନାକରେ ହାତଦେବା—ଗ୍ରା. କ୍ରି. ନାକ ପୁଡ଼ାକୁ ଆଙ୍ଗୁଠିରେ ବନ୍ଦକରି କୌଣସି ସ୍ଥାନରୁ ବାହାରୁଥିବା ଦୁର୍ଗନ୍ଧକୁ ନାକ ମଧ୍ୟରେ ପ୍ରବେଶ କରାଇ ନ ଦେବା. ଘୃଣା କରିବା ।

ନାକଲମ୍—ଗ୍ରା. କ୍ରି. ବିଂ. ବୃଥାରେ. ଅକାରଣରେ । [ ଲୋକ ।

ନାକଲୋକ—ପୁଂ.ବି.ସ୍ୱର୍ଗଲୋକ,ଆକାଶ·

ନାକବନିତା—ସ୍ତ୍ରୀ. ବି. (୬ତତ୍ପୁ) ସ୍ୱର୍ଗୀୟ ସ୍ତ୍ରୀ, ଅପ୍ସରା ।

ନାକଷେଧକ—ପୁଂ. ବି. ଇନ୍ଦ୍ର ।

ନାକଦ୍—ଗ୍ରା, ବିଂ. ଦୁର୍ବଳ, ଅନୁପଯୁକ୍ତ. ତୁଚ୍ଛ, ହେୟ, ଉତ୍ତମରୂପେ ପାର ହୋଇ ନଥିବା ।

ନାକସଦ୍—ପୁଂ. ବି. ( ନାକ+ସଦ+ କ୍ୱିପ୍) ସ୍ୱର୍ଗବାସୀ ଦେବତା ।

ନାକା—ଗ୍ରା.ପୁଂ.ବିଂ. ଉଚ୍ଚ ନାକବିଶିଷ୍ଟ. ନାକୁଆ, (ଗ୍ରା.ବି) ଛୁଞ୍ଚିର ଛିଦ୍ରଥିବା ଅଂଶ, ପାହାଆଦିର ବଙ୍କା ହାତର, ନଗର ଆଦିର ପ୍ରବେଶ ଦ୍ୱାର, ନଗର ଆଦିରେ ପଣ୍ୟଦ୍ରବ୍ୟମାନଙ୍କଠାରୁ ଶୁଳ୍କ ଆଦାୟ କରିବା ପାଇଁ ସିପାହୀ ଯେଉଁ ସ୍ଥାନରେ ଥାଆନ୍ତି ।

ନାକାଘର—ପ୍ରା. (ସମ୍ବଲ) ବି. ସହରର ଫାଟକ ନିକଟରେ ସିପାହୀ ରହିବା ନିମନ୍ତେ କରିବା ଘର ।

ନାକାନ୍ତ—ଗ୍ରା.ବିଂ.ନାକେଦମ୍, ଆନ୍ତାନ୍ତ. ଅତିକ୍ଲାନ୍ତ, ଅତିବ୍ୟସ୍ତ, ହଇରାଣ ।

ନାକାପଗା—ସ୍ତ୍ରୀ. ବି. (ନାକ+ଆପଗା) ସ୍ୱର୍ଗନଦୀ, ମନ୍ଦାକିନୀ, ଗଙ୍ଗା ।

ନାକାବନ୍ଦି—ପ୍ରା. ( ସମ୍ବ ) ବି. ସହରର ପ୍ରବେଶ ଦ୍ୱାରମାନଙ୍କର ଅବରୋଧ, ନଗରର ଫାଟକଆଦିର ପ୍ରହରୀମାନଙ୍କ ଦ୍ୱାରା ପହରା, ନଗରର ଫାଟକ ଜଗିବା ସିପାହୀ ।

ନାକାବିଲ୍—ଯା. ବିଂ. ଅଯୋଗ୍ୟ ।

ନାକାରା—ଗ୍ରା.ବିଂ. ନିର୍ବୁଦ୍ଧିଆ, ବୋକା, ମନ୍ଦ, ଅଳ୍ପ ମୂଲ୍ୟର, ଦୁର୍ବଳ, ଅପଟୁ ।

ନାକି—ଗ୍ରା. ବିଂ. ନାକ ସାହାଯ୍ୟରେ ଉଚ୍ଚାରିତ, ଅନୁନାସିକ, (ବି) ଛୁଞ୍ଚିର ଛିଦ୍ର, ନକାଗ୍ର, ମୁଣ୍ଡି କାଠର ମୁଣ୍ଡରେ ହୋଇଥିବା ଫୋଡ଼ ।

ନାକୀ—ପୁଂ.ବି(ନାକ+ଇନ୍)ଦେବତା ।

ନାକୁ—ପୁଂ. ବି. ( ନ+ଅକ+କ.ଉ ) ମୁନିବିଶେଷ. ପର୍ବତ, ବଲ୍ମୀକ, ଉଇହୁଙ୍କା, ମହିଚିପ ।

ନାକୁଆ—ଗ୍ରା.ପୁଂ.ବିଂ.(ସ-ନାସିକ) ବଡ଼ ନାକଯୁକ୍ତ, ଉନ୍ନତନାସିକ,ଲମ୍ବ ନାକବିଶିଷ୍ଟ ।

ନାକୁଆସୀ—ଗ୍ରା.ବି.ନାକରୁ ବାଳ ଉପାଡ଼ିବା ପାଇଁ ଭଣ୍ଡାରୀମାନେ ଯେଉଁ ଦଣ୍ଡୁଆସି ପରି ଯନ୍ତ୍ର ବ୍ୟବହାର କରନ୍ତି. ପଶୁମାନଙ୍କ ନାକରେ ଲଗାଇ ଟାଣିବା ଦଉଡ଼ି ।

ନାକୁଳ—ପୁଂ. ବି.(ନକୁଳ+ଅ)ନକୁଳପୁତ୍ର, ନେଉଳ ଛୁଆ. (କ୍ଲୀ.ବି) ଶୈବଶାସ୍ତ୍ରବିଶେଷ, ରାସ୍ନା, ଚିମିଳି ମୂଷଲୀ, ଚବକା,ଗୃଇଁକାଠ,ଯବତିକ୍ତା ଦେଖ ।

ନାକୁଳି—ପୁଂ.ବିଂ.(ନାକୁଳ+ଇ)ନକୁଳସମ୍ବନ୍ଧୀ, (ବି) ନକୁଳାପତ୍ୟ, ନେଉଳଛୁଆ ।

ନାକୁଳୀ—ସ୍ତ୍ରୀ. ବି. (ନାକୁଳ+ଈ)ଗନ୍ଧନାକୁଳୀ, ଏକପ୍ରକାର ରାସ୍ନା, ପିପ୍ପଳୀଲତା, କୁକୁଡ଼ୀ କନ୍ଦ, ଚବକା, ଗୃଇଁକାଠ,ଯବତିକ୍ତା ଲତା,ଶ୍ୱେତକଣ୍ଟକାରୀ ।

ନାକୁସଦ୍—ପୁଂ. ବି. ସର୍ପ ।

ନାକେଇବା—ଗ୍ରା.କ୍ରି.କୌଣସି ଆଶାରେ କୌଣସି ସ୍ଥାନରେ ପାର୍ଶ୍ୱଦେଶରେ ଅପେକ୍ଷା କରିବା, ନାକାନ୍ତକରିବା ।

ନାକେଇ—ଗ୍ରା. ସ୍ତ୍ରୀ. ବିଂ. ଯେଉଁ ସ୍ତ୍ରୀର ନାକ ବଡ଼ ବା ଉନ୍ନତ, ଯେଉଁ ଆମ୍ବର ଅଗପାଖରେ ନାକପରି ଗୋଟିଏ ମୁନ ବାହାରିଥାଏ । [ ଦେଖ

ନାକେଦମ୍—ଯା.ବି. ଓ ବିଂ. ନାକେଦମ୍

ନାକେଶ୍ୱର—ପୁଂ.ବି. (ନାକ+ଈଶ୍ୱର) ଇନ୍ଦ୍ର ।

ନାକେଶୃଙ୍ଗ—ଗ୍ରା. ବି. ବ୍ୟାଘ୍ରଭେଦ ।

ନାକୋଅନ୍ତୁ—ଯା. ବିଂ. କ୍ଷୀଣ, ଦୁର୍ବଳ ।

ନାକୌକା—ପୁଂ.ବି. (ବ.ବ୍ରୀ)ଦେବତା, ସ୍ୱର୍ଗବାସୀ ।

ନାକ୍କା—ଗ୍ରା.(ଟେଙ୍କା)ବି. ଠେକୁଆ, ଶଶ ।

ନାକ୍ଷତ୍ର—ବିଂ. (ନକ୍ଷତ୍ର+ଅ) ନାକ୍ଷତ୍ରିକ ଦେଖ ।

ନାକ୍ଷତ୍ରିକ—ବିଂ. (ନକ୍ଷତ୍ର+ଇକ)ନକ୍ଷତ୍ରସମ୍ବନ୍ଧୀୟ, ନକ୍ଷତ୍ର ଗତି ଦ୍ୱାରା ପରିମିତ, (ବି) ନାକ୍ଷତ୍ରିକ ମାସ, ନକ୍ଷତ୍ର ଘଟିତ, ଚନ୍ଦ୍ରର ପରିବର୍ତ୍ତନାତ୍ମକ କାଳରୂପ ଦିନବିଶେଷ ।

ନାକ୍ଷତ୍ରିକଦିନ—ବି. ଗୋଟିଏ ନକ୍ଷତ୍ରକୁ ଦେଇ ଯିବାକୁ ଚନ୍ଦ୍ରଙ୍କୁ ଯେତିକି ସମୟ ଲାଗେ ।

ନାକ୍ଷତ୍ରିକବର୍ଷ—ବି. ବାରଟି ନାକ୍ଷତ୍ରିକ ମାସଯୁକ୍ତ ବର୍ଷ ।

ନାକ୍ଷତ୍ରିକମାସ—ବି. ସତାଇଶ ନକ୍ଷତ୍ରଯୁକ୍ତ ମାସ, ପ୍ରାୟ ୨୭ଦିନ ।

ନାକ୍ଷତ୍ରିକାଦଶା—ବି. ନାକ୍ଷତ୍ରିକ ଗଣନାନୁସାରେ ମନୁଷ୍ୟର ଘଟିବା ଅବସ୍ଥା ।

ନାଖ—ଗ୍ରା.ବି. (ସଂ-ଲକ୍ଷ୍ୟ)ଲକ୍ଷ (ସଂଖ୍ୟା), ଲକ୍ଷ, ଲକ୍ଷବନ୍ଧ, ନାଲିକଜ. ବନ୍ଧୁକ ଓ ଶରଆଦି ମାରିବାର ଶରବ୍ୟ, ଲକ୍ଷ୍ୟ, ଚିହ୍ନ, ତୁଳନା ।

ନାଖନବଟ—ଗ୍ରା. ବି. କମ୍ବୋଡ଼ିଆର ପ୍ରାଚୀନ ରାଜଧାନୀ ନିକଟରେ ଥିବା ଏକ ହ୍ରଦ ।

ନାଖରା—ଯା. ବି. କୌତୁକ, ଛଳନା, କୌଶଳରେ ଭୁଲାଇବା ।

ନାଖରେଇ—ଯା.ବି.ଛଳନା କରି ଲୁଚିବା, ଅହଙ୍କାରବା ।

ନାଖାନ୍ଦା—ଯା. ବିଂ. ଅଶିକ୍ଷିତ, ଯେ ପଢ଼ି ଜାଣେ ନାହିଁ ।

ନାଖୁସ୍—ଯା.ବିଂ. ଅସନ୍ତୁଷ୍ଟ,କ୍ଷୁବ୍ଧ, ଅନାନନ୍ଦିତ, ବିରକ୍ତ ।

ନାଖୁଶୀ—ଯା.ବି. ହତାଶ, ନିରାନନ୍ଦତା, ଅସନ୍ତୁଷ୍ଟତା ।

ନାଖୋଦା—ଯା.ବି. ଜାହାଜର ମାଲିକ, ମୁସଲମାନ ବଣିକ ସମ୍ପ୍ରଦାୟ, ବ୍ୟବସାୟୀ ବ୍ୟକ୍ତି ।

ନାଗ—ପୁଂ.ବି. (ନଗ+ଅ) ସର୍ପ, କଶ୍ୟପଙ୍କ ଔରସରେ କଦ୍ରୁଙ୍କ ଗର୍ଭରୁ ଉତ୍ପନ୍ନ ପୌରାଣିକ ଜୀବଗଣ, ହସ୍ତୀ, ତାମ୍ବୁଳ, ପାନ, ମେଘ, ମେରୁର ଉତ୍ତରସ୍ଥ ପର୍ବତବିଶେଷ, ନାଗେଶ୍ୱର ବୃକ୍ଷ, ପୁନ୍ନାଗବୃକ୍ଷ, ସିନ୍ଦୂର, ଦେହସ୍ଥ ବାୟୁବିଶେଷ, ଯେଉଁ ବାୟୁ ଦେହରୁ ହିକ୍କୁଡ଼ିଦ୍ୱାରା ବାହାରେ, ମୁଥା, (ଜ୍ୟୋତିଷ)କରଣବିଶେଷ,ଅଶ୍ଳେଷା ନକ୍ଷତ୍ର,ଦେଶବିଶେଷ ଓ ତଦ୍ଦେଶବାସୀ ଜାତି, ସୀସକ,ସିସା, ରଙ୍ଗଧାତୁ, ଟିଣ, ନାଗପୁରର ଦକ୍ଷିଣରେ ବୋହିଯାଉଥିବା ନଦୀବିଶେଷ, ଆଠସଂଖ୍ୟା, ଖଳଲୋକ, ଏକପ୍ରକାର ଅଭ୍ର, ବୃକ୍ଷ, ପର୍ବତ, ହାଙ୍ଗର, ନାଗଦନ୍ତ, (ଗ୍ରା.ବି) ଗୋଖର ସାପ,ଏକପ୍ରକାର ବାଣ, ବଙ୍ଗାଳି କାୟସ୍ଥମାନଙ୍କର ଉପାଧିବିଶେଷ, ନାଗଲୋକ, ପାତାଳ ।

ନାଗଅଇଚ—ଗ୍ରା.ବି. ଏକପ୍ରକାରକଣ୍ଟକୀ ବନ୍ୟକ୍ଷୁପ । [ ରଜା ।

ନାଗକ—ପୁଂ. ବି. କାଶ୍ମୀରର ଜଣେ

ନାଗକନ୍ଦ—ପୁଂ.ବି. ହସ୍ତୀକନ୍ଦ, (ଗ୍ରା.ବି) ପଞ୍ଜାବ ମଧ୍ୟରେ କୁମାରସେନ ରାଜ୍ୟର ଅନ୍ତର୍ଗତ ଗୋଟିଏ ଗିରିପଥ ।

ନାଗକନ୍ୟକା—ସ୍ତ୍ରୀ.ବି. (୬ତତ୍ପୁ) ସର୍ପମାନଙ୍କର ଭଗିନୀ, ପୁରାଣୋକ୍ତ ପାତାଳପୁରବାସୀ ନାଗଜାତିର କନ୍ୟା ।

ନାଗକର୍ଣ୍ଣ—ପୁଂ. ବି. (୬ତତ୍ପୁ) ରକ୍ତ ଏରଣ୍ଡବୃକ୍ଷ, ହାତୀର କାନ, ହାତୀକାନ ପଳାଶଗଛ ।

ନାଗକେଞ୍ଜଳ୍କ—କ୍ଳୀ.ବି. ନାଗକେଶର ପୁଷ୍ପ, ନାଗେଶ୍ୱର ଫୁଲ ।

ନାଗକୁମାରିକା—ସ୍ତ୍ରୀ.ବି. (ନାଗକୁମାରୀ+କ+ଆ)ଗୁଡ଼ୁଚୀ,ଗୁଳୁଚ, ମଞ୍ଜିଷ୍ଠା ।

ନାଗକୂପ—ବି. (ନାଗ+କୂପ) ଉଷ୍ଣପ୍ରସ୍ରବଣ, ଆଗ୍ନେୟଗିରି, ଜ୍ୱାଳାମୁଖୀ ।

ନାଗକେଶର—ପୁଂ.ବି. (ବ.ବ୍ରୀ) ନାଗେଶ୍ୱର ଗଛ ଓ ଫୁଲ ।

ନାଗଷେଣ୍ଡ—ବି. ନାଗାହ୍ୱୟ ଦେଖ ।

ନାଗଗନ୍ଧା—ସ୍ତ୍ରୀ.ବି.(ନାଗ+ଗନ୍ଧ)ବ.ବ୍ରୀ; ନାକୁଲୀକନ୍ଦ, ଗନ୍ଧନାକୁଲୀ ।

ନାଗଗର୍ଭ—କ୍ଳୀ. ବି. (ବ.ବ୍ରୀ) ମାଟିଆ ସିନ୍ଦୂର ।

ନାଗଚତୁର୍ଥୀ—ବି.କାର୍ତ୍ତିକ ଶୁକ୍ଳ ଚତୁର୍ଥୀ, ନାଗଲଚଉଠି ।

ନାଗଚନ୍ଦ୍ର—ଗ୍ରା.ପୁଂ. ବି. ଜଣେ କାନାଡ଼ୀ ଗ୍ରନ୍ଥକାର । [ଶ୍ୱର ।

ନାଗଚମ୍ପକ—ବି.ନାଗକେଶର, ନାଗେ-

ନାଗଚୁଚୁନ୍ଦ୍ର ଧରିବାନ୍ୟାୟ—ଗ୍ରା. (ପ୍ରବଚନ)ବିଷମ ସମସ୍ୟାରେ ପଡ଼ିବା ଅବସ୍ଥା ।

ନାଗଚୂଡ଼—ପୁଂ. ବି. (ବ.ବ୍ରୀ) ଶିବ, ମହାଦେବ ।

ନାଗଛତ୍ରା—ସ୍ତ୍ରୀ.ବି.ନାଗଦନ୍ତୀ, ବଛୁଆତି ଗଛ, ସୂର୍ଯ୍ୟମୁଖୀଫୁଲ ।

ନାଗଜ—କ୍ଳୀ. ବି. (ନାଗ+ଜନ+ଅ) ସିନ୍ଦୂର, ରଙ୍ଗ, ଟିଣ,(ବିଂ) ନାଗଜାତମାତ୍ର, ସର୍ପଜମାତ୍ର ।

ନାଗଜମ୍ବୁ—ସ୍ତ୍ରୀ.ବି.ଭୂମିଜମ୍ବୁ,ଭୂଇଁଜାମ୍ବୁ

ନାଗଜିହ୍ୱା—ସ୍ତ୍ରୀ.ବି.ଅନନ୍ତମୂଳ, ଚେରମାରୁ, ଚେମେଡ଼ିଲଇ, ସ୍ୱର୍ଣ୍ଣସୀସ ।

ନାଗଜିହ୍ୱିକା—ସ୍ତ୍ରୀ. ବି. ମନଃଶିଳା ।

ନାଗଜୀବନ—କ୍ଳୀ. ବି. (ବ.ବ୍ରୀ) ରଙ୍ଗଧାତୁ, ଟିଣ ।

ନାଗଝର୍ଣ୍ଣ—ଗ୍ରା. ବି. ଉତ୍କଳପ୍ରାନ୍ତର ପଞ୍ଚନ୍ଦେଶ ମଧ୍ୟରେ ପ୍ରବାହିତ ଗୋଟିଏ କ୍ଷୁଦ୍ର ନଦୀ ।

ନାଗତୀର୍ଥ—କ୍ଳୀ. ବି. ତୀର୍ଥବିଶେଷ ।

ନାଗଦଅଣା—ଗ୍ରା.ବି (ସଂ-ନାଗଦମନକ) ପାନଅଇଡ଼ା, ସୁଗନ୍ଧପତ୍ରଯୁକ୍ତ ଲତାବିଶେଷ ।

ନାଗଦଣ୍ଡକ—ବି. (୬ତତ୍ପୁ) ହାତୀଦାନ୍ତ, ଘର କାନ୍ଥରେ ମରାଯିବା କାଠି ।

ନାଗଦଣ୍ଡୀ—ସ୍ତ୍ରୀ. ବି. (ନାଗ+ଦଣ୍ଡ+ଈ) ବେଶ୍ୟା,ହସ୍ତିନୀ, ସୂର୍ଯ୍ୟମୁଖୀଫୁଲ ।

ନାଗଦତ୍ତ—ପୁଂ. ବି. ଧୃତରାଷ୍ଟ୍ରଙ୍କ ପୁତ୍ରବିଶେଷ, ଜନୈକ ରାଜା, ପ୍ରସିଦ୍ଧ ବୌଦ୍ଧ ଧର୍ମ ସଂସ୍କାରକ ପଣ୍ଡିତ ।

ନାଗଦନ୍ତ—ପୁଂ.ବି. (୬ତତ୍ପୁ) ହସ୍ତିଦନ୍ତ, ଗୃହାନ୍ତର୍ଗତ ଦାରୁ, ନାଗବନ୍ଧ, ଖିଲ, କୀଳା । [ ନାଗବନ୍ଧ ।

ନାଗଦନ୍ତକ—ପୁଂ.ବି.ହସ୍ତିଦନ୍ତ,ନିର୍ଯ୍ୟୂହ,

ନାଗଦନ୍ତିକା—ସ୍ତ୍ରୀ. ବି. ବୃଶ୍ଚିକାଳିଲତା, ବିଛୁଆତିଲତା ।

ନାଗଦନ୍ତୀ—ସ୍ତ୍ରୀ. ବି. (ନାଗ+ଦନ୍ତ+ଈ) ଶ୍ରୀହସ୍ତିନୀ, ହାତୀଶୁଣ୍ଢ଼ୀଗଛ, କର୍ଣ୍ଣୀନାମକ ଗନ୍ଧଦ୍ରବ୍ୟ, ବେଶ୍ୟା ।

ନାଗଦମନ—ବି(ନାଗ+ଦମନ)ସାପୁଆ, ସର୍ପବଶକାରୀ ବ୍ୟକ୍ତି, କାଳୀୟଦମନ, ଶ୍ରୀକୃଷ୍ଣ, ନାଗଦଅଣା ଦେଖ ।

ନାଗଦମନକ—ବି. (ନାଗ+ଦମନ+କ) ନାଗଦଅଣା ଦେଖ, ବଜ୍ରମୂଳୀ ।

ନାଗଦଲ—ଗ୍ରା.(ଯୋ.କ)ବି. ବଲ୍ଲିଦଳ ।

ନାଗଦଳା—ବି. ବ୍ରହ୍ମ ବଙ୍ଗ ସିଂହଳ ଓ ମଲବାର ଦେଶୀୟ ବୃକ୍ଷବିଶେଷ ।

ନାଗଦଳୋପମ—କ୍ଳୀ. ବି. ପରୁଷ ଫଳ, ଫାଲସାଫଳ ।

ନାଗଦାନା—ଗ୍ରା. ବି. ବୃକ୍ଷବିଶେଷ ।

ନାଗଦ୍ୱୀପ—ବି.ବିଷ୍ଣୁ ପୁରାଣ ଅନୁସାରେ ଭାରତବର୍ଷର ନଅଖଣ୍ଡରୁ ଏକ ।

ନାଗଦ୍ରୁ(ମ)—ପୁଂ. ବି. ମନସାଗଛ, ନାଗଫେଣିଆଗଛ, ଏକପ୍ରକାର ପତ୍ରହୀନ ସିଜୁ ଗଛ ।

ନାଗଧ୍ୱନି—ପୁଂ.ବି. ମିଶ୍ରରାଗିଣୀବିଶେଷ ।

ନାଗନକ୍ଷତ୍ର—କ୍ଳୀ. ବି. ଅଶ୍ଳେଷାନକ୍ଷତ୍ର, ଏହି ନକ୍ଷତ୍ରର ଅଧିପତି ନାଗ, (ଗ୍ରା.ବି) ହାଉଇଆଦି ଆକାଶକୁ ଉଠିଯିବା ପରେ ତହିଁରୁ ବାହାରିବା ନାଗସାପ ଓ ନକ୍ଷତ୍ର ଆକାରର ଅଗ୍ନି କଣାମାନ ।

ନାଗନଳି—ଗ୍ରା.ବି.ହାଉଇଆଦି ବାଣରେ ଦିଆଯିବା ବାରୁଦପୂର୍ଣ୍ଣ ଶ୍ରେଷ୍ଠ ଶ୍ରେଷ୍ଠ କାଗଜର ନଳି ।

ନାଗନାଗୁଣୀ—ଗ୍ରା.ବି. ଅଣ୍ଡିରା ନାଗସାପ ଓ ମାଈ ନାଗସାପ ।

ନାଗନାଥ—ପୁଂ. ବି. (୬ତତ୍ପୁ) ନାଗମାନଙ୍କର ଅଧିପତି ।

ନାଗନାମା—ପୁଂ. ବି. ତୁଳସୀ ।

ନାଗନାୟକ—ପୁଂ.ବି. (୬ତତ୍ପୁ) ନାଗ-

ମାନଙ୍କର ନାୟକ, ପ୍ରଧାନ ନାଗ ।
ନାଗନାସା—ସ୍ତ୍ରୀ. ବି. ହାତିଶୁଣ୍ଢା ଗୁଳ୍ମ ।
ନାଗନିର୍ଯ୍ୟୂହ—ପୁଂ. ବି. ନାଗଦନ୍ତ ।
ନାଗନୂର—ଗ୍ରା. ବି. ବୋମ୍ବାଇ ପ୍ରଦେଶର ଧାରବାର ଜିଲାର ବଙ୍କାପୁର ନିକଟବର୍ତ୍ତୀ ଗୋଟିଏ ହ୍ରଦ ।
ନାଗପଞ୍ଚମୀ—ସ୍ତ୍ରୀ. ବି. ଆଷାଢ଼ ମାସର କୃଷ୍ଣପଞ୍ଚମୀ, ମନସା ।
ନାଗପତି—ପୁଂ. ବି. (୬ତତ୍) ସର୍ପମାନଙ୍କର ଅଧିପତି, ବାସୁକି, ଅନନ୍ତାଦି ଅଷ୍ଟନାଗ,ଗଜପତି, ଐରାବତ ।
ନାଗପତ୍ରା—ସ୍ତ୍ରୀ.ବି. ( ନାଗପତ୍ର + ଆ ) ନାଗଦମନୀ, ନାଗଦଅଣା ଦେଖ ।
ନାଗପଦୀ—ସ୍ତ୍ରୀ.ବି. ଲକ୍ଷଣମୂଳ ।
ନାଗପଦ—ପୁଂ.ବି. ( ବି.ଗ୍ରା )ଷୋଡ଼ଶ ପ୍ରକାର ରତିବନ୍ଧ ମଧ୍ୟରୁ ଦ୍ୱିତୀୟ ରତିବନ୍ଧ,(କ୍ଳୀ.ବି.—୬ତତ୍) ହସ୍ତିପଦ ।
ନାଗପର୍ଣ୍ଣୀ—ବି.ପାନ,ତାମ୍ବୂଳ । [ ରାଜା ।
ନାଗପାଳ—ଗ୍ରା.ପୁଂ.ବି.କାଶ୍ମୀରର ଜଣେ
ନାଗପାଶ—ପୁଂ. ବି. ବରୁଣଙ୍କର ଅସ୍ତ୍ରବିଶେଷ, ଯୁଦ୍ଧରେ ବ୍ୟବହୃତ ଏକପ୍ରକାର ଫାଶ, ଗ୍ରନ୍ଥିବିଶେଷ, ନାଗମାତାଙ୍କଦ୍ୱାରା ରଚିତ ଏକପ୍ରକାର ଫାଶ
ନାଗପାଶକ—ପୁଂ.ବି. ରତିବନ୍ଧବିଶେଷ ।
ନାଗପୁତ—ପୁଂ.ବି.ଆରେଖା ବୃକ୍ଷଭେଦ, ନାଗବେଲ ।
ନାଗପୁର—କ୍ଳୀ. ବି. ( ନାଗ + ପୁର—୬ତତ୍) ପାତାଳ,ହସ୍ତିନାପୁରର ନାମାନ୍ତର, ଦେଶବିଶେଷ, ମଧ୍ୟପ୍ରଦେଶର ଗୋଟିଏ ବିଭାଗ, ଜିଲା ଓ ତାହାର ପ୍ରଧାନ ନଗରର ନାମ ।
ନାଗପୁରୀ—ବି.ନେପାଳସ୍ଥ ସ୍ୱୟମ୍ଭୂକ୍ଷେତ୍ରର ଅନ୍ତର୍ବର୍ତ୍ତୀ ଗୋଟିଏ ଅତି ପ୍ରାଚୀନ ବୌଦ୍ଧ ମନ୍ଦିର,(ଗ୍ରା.ବିଂ) ନାଗପୁରରେ ଉତ୍ପନ୍ନ ବା ପ୍ରସ୍ତୁତ, ନାଗପୁରବାସୀ ।
ନାଗପୁଷ୍ପ—ପୁଂ.ବି. (ବି.ଗ୍ରା)ପୁନ୍ନାଗବୃକ୍ଷ, ନାଗକେଶର, ଚମ୍ପକ, ଚମ୍ପାଗଛ ।
ନାଗପୁଷ୍ପଫଳା—ସ୍ତ୍ରୀ.ବି. କୁଷ୍ମାଣ୍ଡ ଦେଖ ।
ନାଗପୁଷ୍ପିକା—ସ୍ତ୍ରୀ. ବି. (ନାଗ + ପୁଷ୍ପ + କ + ଆ) ସ୍ୱର୍ଣ୍ଣଯୂଥୀପୁଷ୍ପ, ହଳଦିଆ ଯୁଈ, ନାଗଦଅଣା ଦେଖ ।
ନାଗପୁଷ୍ପୀ—ସ୍ତ୍ରୀ. ବି. ( ନାଗପୁଷ୍ପ + ଈ ) ନାଗଦଅଣା ଦେଖ,ମେଣ୍ଢାଶିଙ୍ଗୀ, ଏକପ୍ରକାର ଔଷଧଗୁଳ୍ମ । [ ପୂଜା ।
ନାଗପୂଜା—ସ୍ତ୍ରୀ.ବି. ନାଗମାନଙ୍କୁ କରିବା
ନାଗଫ(ଣ)ଣା—ବି.(୬ତତ୍) ନାଗସାପର ବିସ୍ତାରିତ ମସ୍ତକ ।
ନାଗଫଣୀ—ଗ୍ରା.ବି. ତୁରୀପରି ଏକପ୍ରକାର ଶୁଷିର ଯନ୍ତ୍ର ।
ନାଗଫଳ—ପୁଂ. ବି. ପଟୋଳ, ସଲର, ଗସ୍ତାକଲରା ।
ନାଗଫେନ—ବି. ଅହିଫେନ, ଅଫିମ ।
ନାଗବଂଶ—ବି. ନାଗମାନଙ୍କର କୁଳ, ଶକଜାତିର ଏକଶାଖା,ଗ୍ରା.ବି. କେତେକ ରାଜବଂଶ ।
ନାଗବଂଶୀ—ବିଂ. ( ନାଗବଂଶ + ଇନ୍ ) ନାଗବଂଶରୁ ଉତ୍ପନ୍ନ (ଗ୍ରା.ବି) କେତେକ ରାଜବଂଶ ।
ନାଗବଧୂ—ସ୍ତ୍ରୀ.ବି. ନାଗମାନଙ୍କର ପତ୍ନୀ ।
ନାଗବନ୍ଧ—ଗ୍ରା.ବି. ଚୌକାଠର ଉପର କାଠରେ ମଡ଼ାଯାଇଥିବା ଲମ୍ବ କାଠଖଣ୍ଡ, ସର୍ପର କୁଣ୍ଡଳାକୃତି ଏକପ୍ରକାର ଚିତ୍ର, ନାଗପାଶନ, କବିତା ରଚନାର ନାଗାକୃତି ବନ୍ଧବିଶେଷ, ଚିତ୍ରକାବ୍ୟ ।
ନାଗବନ୍ଧକ—ପୁଂ. ବିଂ. ଯେଉଁମାନେ ବନହସ୍ତୀ ଧରନ୍ତି ।
ନାଗବନ୍ଧୁ—ପୁଂ.ବି. ଅଶ୍ୱତ୍ଥ ବୃକ୍ଷ(୬ତତ୍) ନାଗମାନଙ୍କର ମିତ୍ର ।
ନାଗବଳ—ପୁଂ. ବି. ଭୀମସେନ, (ବିଂ-ବି.ଗ୍ରା) ହସ୍ତୀତୁଲ୍ୟ ବଳଯୁକ୍ତ ।
ନାଗବଳା—ସ୍ତ୍ରୀ. ବି. ବୈଦ୍ୟଶାସ୍ତ୍ରୋକ୍ତ ବଳାଚତୁଷ୍ଟୟ ମଧ୍ୟରୁ ଏକତମ,ଗରଗଡ଼
ନାଗବୁଦ୍ଧ—ପୁଂ. ବି. ଜଣେ ବୌଦ୍ଧଧର୍ମ୍ମପ୍ରଚାରକ ।
ନାଗବୁଦ୍ଧି—ପୁଂ. ବି. ଜନୈକ ବୈଦ୍ୟଶାସ୍ତ୍ର ପ୍ରଣେତା ।
ନାଗଭଗିନୀ—ସ୍ତ୍ରୀ. ବି. (୬ତତ୍) ବାସୁକିଭଗିନୀ,ଜରତ୍କାରୁ, ମନସାଦେବୀ ।
ନାଗଭିତ୍—ପୁଂ. ବି. ହସ୍ତିଧ୍ୱଂସକାରୀ ସର୍ପ ବିଶେଷ ।
ନାଗଭୂଷଣ—ପୁଂ.ବି.(ବି.ଗ୍ରା)ମହାଦେବ, ଶିବ, (ବିଂ) ନାଗଦ୍ୱାରା ଭୂଷିତ ।
ନାଗଭୁତ୍—ପୁଂ. ବି. (ନାଗ + ଭୁ + କ୍ୱିପ୍) ଡୁଣ୍ଡୁଭସର୍ପ, ଧଣ୍ଡାସାପ ।
ନାଗଭୋଗ—ପୁଂ. ବି. ସର୍ପ ବିଶେଷ ।
ନାଗମଣ୍ଡଳିକ—ପୁଂ. ବି. (ନାଗମଣ୍ଡଳ + ଇକ) ସାପୁଆକେଳା, ଅହିତୁଣ୍ଡିକ ।
ନାଗମତୀ—ସ୍ତ୍ରୀ. ବି. ( ନାଗମତ୍ + ଈ ) ଏକପ୍ରକାର ଲତା । [ସଂବୃତ ।
ନାଗମସ୍ତୁ—ବିଂ.( ନାଗ + ମସ୍ତୁ ) ହସ୍ତି-
ନାଗମଲ୍ଲ—ପୁଂ. ବି. ଐରାବତ ହସ୍ତୀ ।
ନାଗମଲ୍ଲୀ—ଗ୍ରା. ବି. ପୁଷ୍ପଗୁଳ୍ମ ବିଶେଷ ।
ନାଗମହାସେନ—ପୁଂ. ବି. ସିଂହଳର ଏକ ବିଖ୍ୟାତ ରାଜା ।
ନାଗମାତା—ସ୍ତ୍ରୀ. ବି. (୬ତତ୍)ମନଃଶିଳା, ମନସାଦେବୀ,, ସୁରସା, କଦ୍ରୁ ।
ନାଗମାର—ପୁଂ. ବି. (ନାଗ + ମୃ + ଣିଚ୍ + ଅ) କେଶଦୁଦୁରା,କେଶରାଜ, (ବିଂ) ହସ୍ତୀମାରକ, ସର୍ପମାରକ ।
ନାଗମୁଖ—ବି. (ବି.ଗ୍ରା)ଗଣେଶ(୬ତତ୍) ହସ୍ତୀମୁଖ ।
ନାଗମୂଲିଆ—ଗ୍ରା. ବି. ପ୍ରତିଦିନ ମଜୁରୀ ନେଇ କାମ କରିବାପାଇଁ ନିଯୁକ୍ତମୂଲିଆ
ନାଗଯଷ୍ଟି—ସ୍ତ୍ରୀ. ବି. ( ନାଗ + ଯଷ୍ଟି ) ପୁଷ୍କରିଣୀ ପ୍ରଭୃତିରେ ସ୍ଥିତ କାଷ୍ଠ ବିଶେଷ, ଗୀପିଦଣ୍ଡି ।
ନାଗର—ବିଂ. ( ନଗର + ଅ ) ନଗର ସମ୍ବନ୍ଧୀୟ, ନଗରଜାତ, ନଗରବାସୀ, ରସିକ, ସୌଖୀନ, ବିଦଗ୍ଧ, ନୀଚ,ଖଳ, ବଜାରି, ଚତୁର, ଭଦ୍ର, ଅନାମିକ, (ବି) ଦେବର, ଦିଅର, ଦେବନାଗର ଅକ୍ଷର, ଲମ୍ପଟ ବ୍ୟକ୍ତି,ନାରଙ୍ଗଲେମ୍ବୁ, ଅଧ୍ୟାପକ, ଶୁଣ୍ଠି,ମୁଥା, ନାଗେଶ୍ୱରଫୁଲ, ରତିବନ୍ଧ ବିଶେଷ, ପୌରଜନ, କ୍ଳାନ୍ତି, ମୋକ୍ଷର ବାସନା, ଅନ୍ୟାନ୍ୟଗ୍ରହମାନଙ୍କ ବିରୋଧରେ ଥିବା ଗ୍ରହ,ଅଜ୍ଞାତପ୍ରକାଶ, ଗୁଜରାଟ ବାସୀ ଏକଶ୍ରେଣୀର ବ୍ରାହ୍ମଣ,

(ପ୍ରା-ବସ୍ତ୍ରର-ବ) ଲଙ୍ଗଳ ।

ନାଗରକ—ବି. (ନଗର + କ) ନଗରରକ୍ଷକ, ଚତୁର, ଭଦ୍ରବ୍ୟକ୍ତି, ପୌରଜନ, ଚୋର, ଶିଳ୍ପୀ, ରତିବନ୍ଧବିଶେଷ, ଅନ୍ୟନାରୀ ପ୍ରତି ଆସକ୍ତ ଥିବା ଅବସ୍ଥାରେ ପ୍ରଥମ ନାରୀପ୍ରତି ବିଶେଷ ଅନୁରାଗ ପ୍ରକାଶକାରୀ ନାଗର, ରସିକବ୍ୟକ୍ତି, ସୌଖୀନ ବ୍ୟକ୍ତି, (ବି°) ନାଗର ଦେଖ ।

ନାଗରକ୍ତ—କ୍ଲୀ. ବି. (ନାଗ + ରକ୍ତ) ସିନ୍ଦୂର, ନାଗମାନଙ୍କର ଶୋଣିତ ।

ନାଗରଖଣ୍ଡ—କ୍ଲୀ. ବି. (ନାଗର + ଖଣ୍ଡ) ସ୍କନ୍ଦପୁରାଣାନ୍ତର୍ଗତ ସ୍ୱନାମଖ୍ୟାତ ଖଣ୍ଡ ଭେଦ ।

ନାଗରଘନ—ପୁଂ. ବି. ନାଗରମୁଥା ।

ନାଗରଙ୍ଗ—ପୁଂ. ବି. (ନଗ + ରଙ୍ଗ) ବୃକ୍ଷବିଶେଷ, ନାରଙ୍ଗୀ ଲେମ୍ବୁଗଛ, ସିନ୍ଦୂର ।

ନାଗରଦୋଳା—ଗ୍ରା. ବି. ଦୋଳାଯନ୍ତ୍ରବିଶେଷ, ବୃହତ୍ ଦୋଳାବିଶେଷ ।

ନାଗରବର୍ତ୍ତିକ—ବି. ଗାଜର ।

ନାଗରମର୍ଦ୍ଦୀ—ପୁଂ.ବି°. (ନାଗର + ମୃଦ୍ + ଇନ୍) ନାଗରମର୍ଦ୍ଦକ । [ ମୁଥା ।

ନାଗରମୁସ୍ତା—ସ୍ତ୍ରୀ.ବି. ବଡ଼ମୁଥା, ନାଗର-

ନାଗରବସ୍ତି—ହିନ୍ଦୁତ ଜିଲ୍ଲାର ଶ୍ରେଷ୍ଠ ଚଣ୍ଡକ ନଦୀର ତୀରରେ ଅବସ୍ଥିତ ଗୋଟିଏ ଶ୍ରେଷ୍ଠ ନଗର ।

ନାଗରସ୍ତ୍ରୀ—ବି. (ଷତତ୍) ନାଗରମାନଙ୍କର ପତ୍ନୀ, ନାଗରୀ ।

ନାଗରା—ଗ୍ରା. ବି. ବାଦ୍ୟବିଶେଷ, ଢ଼ିମ୍ବିମ, ଏକପ୍ରକାର ଅଳଙ୍କାର, ଏକପ୍ରକାର ପନ୍ହିମା ଜୋତା ।

ନାଗରାଜ—ପୁଂ. ବି. (ନାଗ + ରାଜନ୍ ଷତତ୍; ଶେଷନାଗ, ବାସୁକି, ଅନନ୍ତ, ଐରାବତ ହସ୍ତୀ ।

ନାଗରାଜକେଶବ—ପୁଂ. ବି. କାବ୍ୟପ୍ରକାଶର ପଦବୃତ୍ତିନ ମତରେ ଟୀକାକାର

ନାଗରାଜୋତା—ଗ୍ରା. ବି. ହିନ୍ଦୁସ୍ଥାନର ବ୍ୟବହୃତ ଏକପ୍ରକାର ଦେଶୀ ଜୋତା ।

ନାଗରୀଦେବା—ଗ୍ରା. କ୍ରି. କୌଣସି ବିଷୟ ଢ଼ିଣ୍ଡିମଦ୍ୱାରା ଘୋଷଣା କରିବା, (ଲ.ଅର୍ଥ) କୌଣସି ବିଷୟ ସର୍ବତ୍ର ପ୍ରଚାରକରିବା ।

ନାଗରୀବାଜିବା—ଗ୍ରା. ବି. (ଲ.ଅର୍ଥ) ସର୍ବତ୍ର ପ୍ରଚ୍ଚାରିତ ହେବା । [ ବିଶେଷ

ନାଗରାମ୍—ପ୍ରା. (ଗ୍ରାମ୍ୟ) ବି. ଅଳଙ୍କାର

ନାଗରାହ୍ୱ—କ୍ଲୀ. ବି. ଶୁଣ୍ଠି ।

ନାଗରିକ—ପୁଂ. ବି°. (ନାଗର + ଇକ) ନଗରବାସୀ, ନଗର ସମ୍ବନ୍ଧୀୟ. ନଗରରକ୍ଷୀ, (ସ୍ତ୍ରୀ) ନାଗରିକା, (ବି) ସହରଆ ବ୍ୟକ୍ତି, ସହରରୁ ଆଦାୟ କରାଯିବା ଶୁଳ୍କ, ନଗରରକ୍ଷୀ ସେନା ।

ନାଗରୀ—ସ୍ତ୍ରୀ.ବି. (ନାଗର + ଈ) ବିଦଗ୍ଧା ନାରୀ, ରସିକା ସ୍ତ୍ରୀ, ବିଦୁଷୀ ସ୍ତ୍ରୀ, ସିଝୁଗଛ, ଭାଷାବିଶେଷ, ଦେବନାଗରାକ୍ଷର. ଖଜୁରିଗୁଡ଼, (ସ୍ତ୍ରୀ. ବି°) ନଗରଭବ, ରସିକା, ନଗର ସମ୍ବନ୍ଧୀୟ, ବିଦଗ୍ଧା, ପ୍ରଣୟିନୀ ।

ନାଗରୀଟ—ପୁଂ.ବି. (ନାଗରୀ + ଅଟ୍ + ଅ) ଷିଡ୍ଗ, ଲମ୍ପଟ, ଜାର, ନାଗରୀକୃତ ମଙ୍ଗଳ ଧ୍ୱନି, ନାଗର, ଉପପତି. ମଧ୍ୟସ୍ଥ, ବରକନ୍ୟାଙ୍କର ବିବାହ ସମ୍ବନ୍ଧକାରକ ଭଲଲୋକ, (ବି°) ନଗରଜାତ ।

ନାଗରୁକ—ପୁଂ.ବି. ନାଗରଙ୍ଗ, ନାରଙ୍ଗୀ ଲେମ୍ବୁ, ସିନ୍ଦୂର । [ ସିନ୍ଦୂର ।

ନାଗରେଣୁ—ପୁଂ.- ବି. ସୀସକସମ୍ଭବ,

ନାଗରେୟକ—ବି°. (ନଗର + ଏୟ + କ) ନଗର ସମ୍ବନ୍ଧୀୟ, ନାଗରିକ, ନଗରବାସୀ ।

ନଗରୋତ୍ଥ—ସ୍ତ୍ରୀ. ବି. (ନଗର + ଉଦ୍ + ସ୍ଥା + ଅ) ନାଗରମୁଥା ।

ନାଗର୍ଯ୍ୟ—କ୍ଲୀ.ବି. (ନଗର + ଯ) ନଗରଭବ, ବିଦଗ୍ଧତ୍ୱ, ପାଣ୍ଡିତ୍ୟ, ଚତୁରତା ।

ନାଗଲକ୍ଷଣ—କ୍ଲୀ. ବି. ସର୍ପମାନଙ୍କର ଭେଦାଦ ଜ୍ଞାପକ ଚିହ୍ନଭେଦ । [ ଦେଖ ।

ନାଗଲଚଉଥୀ—ଚ. ବି. ନାଗଚଉଥୀ

ନାଗଲତା—ସ୍ତ୍ରୀ. ବି. (ନାଗ + ଲତା) ଲିଙ୍ଗ, ଉପସ୍ଥ, ତାମ୍ବୁଳୀ, ପାନଲତା, ନାଗଫର୍ଯା ଲତା ।

ନାଗଲୋକ—ପୁଂ. ବି. (ନାଗ + ଲୋକ) ଷତତ୍; ନାଗାଧିଷ୍ଠିତ ଲୋକ, ପାତାଳ, ରସାତଳ ।

ନାଗବଟ—ପୁଂ.ବି. କାଶ୍ମୀରରାଜ କର୍ମନାପତିଙ୍କ ଜଣେ ଅମାତ୍ୟ ।

ନାଗବର୍ମ୍ମ—ପୁଂ. ବି. ତୀର୍ଥଭେଦ ।

ନାଗବଲ୍ଲରୀ—ସ୍ତ୍ରୀ.ବି. ନାଗବଲ୍ଲୀ, ତାମ୍ବୁଲୀ, ପାନଗଛ ।

ନାଗବଲ୍ଲିକା—ସ୍ତ୍ରୀ. ବି. ନାଗବଲ୍ଲୀ, ପାନଗଛ । [ ବଲ୍ଲୀ ।

ନାଗବଲ୍ଲୀ—ସ୍ତ୍ରୀ, ବି. ପାନଗଛ, ତାମ୍ବୁଲୀ-

ନାଗବଂଶ—ପାଶ୍ଚାତ୍ୟ ପଣ୍ଡିତମାନଙ୍କ ମତରେ ଆର୍ଯ୍ୟଜାତି ଭାରତବର୍ଷ ଅଧିକାର କରିବା ପୂର୍ବରୁ ଏ ଦେଶରେ ଆଧିପତ୍ୟ ସ୍ଥାପନ ପୂର୍ବକ ରାଜ୍ୟଶାସନ କରୁଥିବା ରାଜବଂଶ । [ ବନ୍ଦର ।

ନାଗବନ୍ଦନ—ଗ୍ରା.ବି. ସିଂହଳର ଗୋଟିଏ

ନାଗବଲି—ଗ୍ରା. ବି. ମାନ୍ଦ୍ରାଜ ପ୍ରେସିଡେନ୍ସିର ମଧ୍ୟବର୍ତ୍ତୀ ଗୋଟିଏ ନଦୀ ।

ନାଗବାରକ—ପୁଂ. ବି. (ନାଗ + ବୃ + କ. ଅକ) ହସ୍ତୀପାଳକ, ହସ୍ତୀପକ, ମାହୁନ୍ତ, ଗରୁଡ଼, ମୟୂର, ରାଜକୁଞ୍ଜର, ପାଟହାତୀ, ଗଜରାଜ, ଯୂଥପତି ।

ନାଗବାସ—ପୁଂ. ବି. (ନାଗ + ବାସ) ନାଗମାନଙ୍କର ବସତି, ନେପାଳର ଉପତ୍ୟକାସ୍ଥ ହ୍ରଦ ବିଶେଷ ।

ନାଗବଳ—କ୍ଲୀ. ବି. ତୀର୍ଥଭେଦ ।

ନାଗବୀଟ—ପୁଂ. ବି°. (ନାଗ + ବି + ଇଟ + ଅ) ଟାଙ୍ଗର, ଲମ୍ପଟ ।

ନାଗବୀଥୀ—ସ୍ତ୍ରୀ. (ନାଗ + ବୀଥୀ) ଆକାଶମଣ୍ଡଳରେ ଅଶ୍ୱିନ୍ୟାଦି ନକ୍ଷତ୍ରତ୍ରୟ ସହିତ ଋକ୍ଷସ୍ଥାନତ୍ରୟର ଅନ୍ତର୍ଗତ ଉତ୍ତର ଦିଗସ୍ଥିତ ମାର୍ଗ ବିଶେଷ, କାଶ୍ୟପପୁତ୍ରୀବିଶେଷ, ଧର୍ମଙ୍କ ଯାମିପତ୍ନୀଙ୍କ ଗର୍ଭଜାତ କନ୍ୟା ।

ନାଗବୃକ୍ଷ—ପୁଂ. ବି. ନାଗକେଶର ବୃକ୍ଷ, ନାଗେଶ୍ୱର ଫୁଲ ଓ ଗଛ ।

ନାଗଶତ—ପୁଂ. ବି. ପର୍ବତ ବିଶେଷ ।

ନାଗଶୁଣ୍ଡୀ—ସ୍ତ୍ରୀ. ବି. (ନାଗଶୁଣ୍ଡ + ଈ)

ହାତୀଶୁଣ୍ଢା ଗଛ ।
ନାଗଶୁଦ୍ଧି—ସ୍ତ୍ରୀ. ବି. (୬ତତ୍) ନୂତନ ଗୃହାରମ୍ଭରେ ନାଗମାନଙ୍କର ଶୁଦ୍ଧି ।
ନାଗସମ୍ଭବ—କ୍ଲୀ. ବି. (ବ.ବ୍ରୀ) ସିନ୍ଦୂର, ସୀସକଜାତ ସିନ୍ଦୂର ।
ନାଗସମ୍ଭୂତ—କ୍ଲୀ. ବି. ସୀସକସମ୍ଭବ, ସିନ୍ଦୂର, ମୁକ୍ତାଫଳ ବିଶେଷ ।
ନାଗସରଃ—କ୍ଲୀ. ବି. ତୀର୍ଥବିଶେଷ ।
ନାଗସାପ—ଗ୍ରା. ବି. ଗୋଖୁରସାପ ।
ନାଗସାହ୍ୱୟ--କ୍ଲୀ.ବି.(ବ.ବ୍ରୀ)ହସ୍ତିନାପୁର
ନାଗସୁଗନ୍ଧା—ସ୍ତ୍ରୀ. ବି.ଭୁଜଙ୍ଗାକ୍ଷୀଲତା, ସର୍ପାବିଶେଷ, ନାକୁଲୀ ଦେଖ ।
ନାଗସେନ—ପୁଂ. ବି. ଜନୈକ ବୌଦ୍ଧ ସ୍ଥବିର ।
ନାଗସ୍ତୋକ—ପୁଂ.ବି. ବତ୍ସନାଭ ମଧୁର ।
ନାଗସ୍ଫୋତା—ସ୍ତ୍ରୀ. ବି. ନାଗଦନ୍ତୀ ବୃକ୍ଷ, ହାତୀଶୁଣ୍ଢା ଗଛ, ଦନ୍ତୀବୃକ୍ଷ ।
ନାଗହଂସ—ଗ୍ରା.ବି. ଶିକୁଳି ଅଟକାଇବା ନିମନ୍ତେ ଚୌକାଠରେ ଲଗାଯାଇଥିବା ଅର୍ଦ୍ଧବୃତ୍ତାକାର ଲୌହବଳୟ, ସୋରକ୍ଷିଆ କୁହୁଣ୍ଡା ।
ନାଗହନୁ—ପୁଂ. ବି.ନଖୀ ନାମକ ଗନ୍ଧଦ୍ରବ୍ୟ, ନଖୀ ।
ନାଗହନ୍ତ୍ରୀ—ସ୍ତ୍ରୀ. ବି.(ନାଗ+ହନ୍+ତୃ +ଈ) ବନ୍ଧ୍ୟାକର୍କୋଟକୀ,ଅଷାଢ଼ୁଆ ।
ନାଗହ୍ରଦ—-ମେବାଡ଼ର ରାଜଧାନୀ, ବର୍ତ୍ତମାନ ନାମ ନାଗୋର ।
ନାଗା—ପୁଂ. ବି. (ନଗ୍ନଶବ୍ଦଜ)ଆସାମର ପର୍ବତ ବିଶେଷ, ନାଗାପର୍ବତବାସୀ ଜାତିବିଶେଷ, ଏକପ୍ରକାର ସନ୍ୟାସୀ, ପୁରୀରେ ଦଶହରା ସମୟରେ ଗୋସାଣୀ ସାଥିରେ ବାହାରିବା ସର୍ପ ଓ ବିବିଧ ଅସ୍ତ୍ରଭୂଷିତ ବୀର ଓ ସନ୍ୟାସୀ ବେଶଧାରୀ ବ୍ୟକ୍ତି, (ସ୍ତ୍ରୀ—ବି.ନାଗ+ଆ) ସର୍ପୀ, ହସ୍ତିନୀ, (ଗ୍ରା.ବି) ହସ୍ତୀମାନଙ୍କର ରୋଗ ବିଶେଷ ।
ନାଗାଖ୍ୟ—ପୁଂ. ବି. (ନାଗ+ଆଖ୍ୟା) ବ.ବ୍ରୀ—ନାଗକେଶର, ନାଗେଶ୍ୱର ।
ନାଗାଙ୍ଗ—ବି. ହସ୍ତିନାପୁର ।
ନାଗାଙ୍ଗନା—ସ୍ତ୍ରୀ. ବି. (୬ତତ୍) ହାତୀଶୁଣ୍ଢ, ହସ୍ତିନୀ, ନାଗମାନଙ୍କର ସ୍ତ୍ରୀ, ନାଗଜାତୀୟା ସ୍ତ୍ରୀ ।
ନାଗାଞ୍ଚଲା—ସ୍ତ୍ରୀ.ବି.ନାଗଯଷ୍ଟି, ଗୃହକାଠ, ଗାପିଦଣ୍ଡୀ, ପୁଷ୍କରିଣୀ ମଧ୍ୟରେ ପୋତାଥିବା କାଠ । [ ଦେଖ ।
ନାଗାଞ୍ଜନା—ସ୍ତ୍ରୀ.ବି. ହସ୍ତିନୀ, ନାଗଯଷ୍ଟି
ନାଗାଧିପ—ପୁଂ. ବି. (ନାଗ+ଅଧିପ ୬ତତ୍;ନାଗମାନଙ୍କର ଅଧିପତି,ଅନନ୍ତ, ଗଜ ଓ ସର୍ପର ଅଧିପତି ମାତ୍ର,ଐରାବତ, ବାସୁକି । [ ଦେଖ ।
ନାଗାଧିପତି—ପୁଂ. ବି.(୬ତତ୍)ନାଗାଧିପ
ନାଗାଧିପା—ସ୍ତ୍ରୀ.ବି.ମନସାଦେବୀ, ନାଗମାତା ।
ନାଗାନନ୍ଦ—-ବି. ଶ୍ରୀହର୍ଷଙ୍କ ରଚିତ ସଂସ୍କୃତ ନାଟକ ବିଶେଷ ।
ନାଗାନ୍ତକ—ପୁଂ. ବି. (ନାଗ+ଅନ୍ତକ) ଗରୁଡ଼,ମୟୂର,ସିଂହ,ବନ୍ଧ୍ୟ କର୍କୋଟକୀ, ଅଷାଢ଼ୁଆ ।
ନାଗାନ୍ତକବିଦ୍ୟା—ଗ୍ରା.ବି. ଗୁଣିଗାରେଡ଼ି, ମନ୍ତ୍ରଯନ୍ତ୍ର,ଧାତୁର ମାରଣ ଜାରଣବିଦ୍ୟା, ହିନ୍ଦୁରସାୟନ ତନ୍ତ୍ର, ସର୍ପବଶୀକରଣ ବିଦ୍ୟା ।
ନାଗାପାହାଡ଼—ଗ୍ରା. ବି. ଆସାମପ୍ରଦେଶର ଦକ୍ଷିଣ ପୂର୍ବ କୋଣରେ ଅବସ୍ଥିତ ଜିଲ୍ଲା, ପର୍ବତ ବିଶେଷ । [ ନାମ ।
ନାଗାବଳୀ—ପ୍ରା.(ଗଞ୍ଜାମ).ବି.ଏକନଦୀର
ନାଗାଭିଭୂ—ପୁ .ବି.ବୁଦ୍ଧଙ୍କର ନାମାନ୍ତର ।
ନାଗାରାତି—ପୁଂ. ବି. (ନାଗ+ଅରାତି) ୬ତତ୍;ସିଂହ,ଗରୁଡ଼,ମୟୂର,ଅଷାଢ଼ୁଆ
ନାଗାରି—ଗ୍ରା. ବି. ବନ୍ୟତୃଣ ବିଶେଷ, ନାଗାନ୍ତକ ଦେଖ ।
ନାଗାର୍ଜୁନ—ପୁଂ. ବି. କାଶ୍ମୀରର ଜଣେ ବୋଧିସତ୍ତ୍ୱ, ବିଦର୍ଭନଗରବାସୀ ଜଣେ ବ୍ରାହ୍ମଣ, ବୌଦ୍ଧମହାଯାନ ସମ୍ପ୍ରଦାୟର ପ୍ରବର୍ତ୍ତକ ମହାପୁରୁଷ ବିଶେଷ ।
ନାଗାର୍ଜୁନାଞ୍ଜନ—କ୍ଲୀ.ବି. ଅଞ୍ଜନୌଷଧି ବିଶେଷ ।
ନାଗାର୍ଜୁନୀୟ—ପୁଂ. ବି. ନାଗ ଏବଂ ଅର୍ଜୁନଙ୍କ ଅଧିକାର କରି କୃତ କାବ୍ୟଗ୍ରନ୍ଥ ବିଶେଷ, ଚିକିତ୍ସା ଓ ଧର୍ମ ଗ୍ରନ୍ଥବିଶେଷ ।
ନାଗାଲବୁ—ପୁଂ.ବି. କୁମ୍ଭଡ଼ୁମ୍ବୀ, ଗୋଲ ଲାଉ, ବଡ଼ଲାଉ ।
ନାଗାଶନ—ପୁଂ. ବି. ( ନାଗ + ଅଶନ ) ଗରୁଡ଼, ମୟୂର, ସିଂହ ।
ନାଗାହ୍ୱ—କ୍ଲୀ. ବି.(ବ.ବ୍ରୀ) ହସ୍ତିନାପୁର, ନାଗକେଶର ।
ନାଗାହ୍ୱା—ସ୍ତ୍ରୀ. ବି. (ନାଗ+ହ୍ୱେ+ଅ+ଆ)ଲକ୍ଷଣା ମୂଳ ।
ନାଗିନୀ—ସ୍ତ୍ରୀ. ବି. (ନାଗିନ୍+ଈ)ନାଗଦନ୍ତୀ ଦେଖ, ତାମ୍ବୁଲ, ପାନ, ଦୁର୍ଗା ।
ନାଗୀ—ପୁଂ.ବି.(ନାଗ+ଇନ୍)ସର୍ପଭୂଷଣ ଶିବ, (ସ୍ତ୍ରୀ—ନାଗ+ଈ) ନାଗପତ୍ନୀ, ନାଗୁଣୀ, ହସ୍ତିନୀ ।
ନାଗୁଣୀ—ଗ୍ରା.ସ୍ତ୍ରୀ.ବି.ନାଗପତ୍ନୀ.ନାଗସ୍ତ୍ରୀ ।
ନାଗୁଲି—ଗ୍ରା. ବି. କର୍ଣ୍ଣର ନାଗାକୃତି ଅଳଙ୍କାର ବିଶେଷ । [ ଦେଖ ।
ନାଗେନ୍ଦ୍ର—ପୁଂ. ବି. (୬ତତ୍)ନାଗରାଜ
ନାଗେନ୍ଦ୍ରମଲ୍ଲ—ଗ୍ରା.ବି.ନେପାଳର ଜଣେ ବିଖ୍ୟାତ ରାଜା ।
ନାଗେଶ—ପୁଂ. ବି.(ନାଗ+ଈଶ)୬ତତ୍; ଅନନ୍ତ, ଶେଷନାଗ, ପାଣିନିବ୍ୟାକରଣର ଟୀକାକାର, (କ୍ଲୀ. ବି)ଶିବଲିଙ୍ଗ ବିଶେଷ, ପଣ୍ଡିତ ବିଶେଷ ।
ନାଗେଶଭଟ୍ଟ—ଗ୍ରା. ପୁଂ. ବି. ଜନୈକ ଅଦ୍ୱିତୀୟ ବୈୟାକରଣ ।
ନାଗେଶ୍ୱର—ପୁଂ. ବି. ବୃକ୍ଷ ବିଶେଷ, ନାଗକେଶର, ନାଗେଶଶବ୍ଦାର୍ଥ,(ଗ୍ରା.ବି) ସାପୁଆକେଳାମାନେ ଯେଉଁ ସୁସ୍ୱର ବଂଶୀ ବାଦ୍ୟ ବଜାଇ ସାପକୁ ଖେଳାନ୍ତି ।
ନାଗେଶ୍ୱରରସ--ପୁ.ବି.ଔଷଧବିଶେଷ ।
ନାଗୋଜୀ—ପୁଂ. ବି.ଦାରୁକବନସ୍ଥ ଶିବଲିଙ୍ଗ ବିଶେଷ ।
ନାଗୋଦର—କ୍ଲୀ. ବି. ଗୁପ୍ତ ଆବରଣ କରିବା ସାଞ୍ଜୁ, ଉଦରତ୍ରାଣ, ଗର୍ଭିଣୀର ଗର୍ଭୋପଦ୍ରବ ଭେଦ ।
ନାଗୋଦା—ସ୍ତ୍ରୀ. ବି.ଉଦରତ୍ରାଣ, ଗୁପ୍ତ-

ଆବରକ ସଂଜ୍ଞା ।
ନାଗୋଭେଦ—କ୍ଲୀ.ବି. ତୀର୍ଥ ବିଶେଷ ।
ନାଗୋର—ମନ୍ଦ୍ରାଜପ୍ରେସିଡେନ୍ସିର ଅନ୍ତର୍ଗତ ତାଞ୍ଜୋର ଜିଲାର ଗୋଟିଏ ବନ୍ଦର
ନଙ୍କରା—ଗ୍ରା. ବିଂ. ନାକରା ଦେଖ ।
ନାଚ—ଗ୍ରା. ବି.(ସଂ-ନୃତ୍ୟ) ନୃତ୍ୟ, ନର୍ତ୍ତନ, ନାଟ ।
ନାଚଣି—ଗ୍ରା. ବି. (ସଂ-ନର୍ତ୍ତନ) ନର୍ତ୍ତନ, ନୃତ୍ୟ, (ସ୍ତ୍ରୀ) ନର୍ତ୍ତକୀ ।
ନାଚଣିପକ୍ଷୀ—ଗ୍ରା. ବି. ତନ୍ତୀର ଯନ୍ତ୍ରବିଶେଷ, ନକଚଦଣ୍ଡ ଆକାରର କାଠି. ଯାହାର ଦୁଇ ପ୍ରାନ୍ତରେ ବଅସୂତା ଓହଳା ଯାଇଥାଏ ।
ନାଚଣୀ—ଗ୍ରା. ସ୍ତ୍ରୀ. ବି. ( ସଂ-ନର୍ତ୍ତକୀ ) ନର୍ତ୍ତକୀ, ନାଚଣିପକ୍ଷୀ ଦେଖ, ଆଖିଡୋଳାର ପୁଅ ।
ନାଚତାମସା—ଗ୍ରା. ବି. ନୃତ୍ୟଗୀତାଦି, ନାଟତାମସା, ଆମୋଦପ୍ରମୋଦ ।
ନାଚବାଲ୍—ଗ୍ରା. ବି. ନର୍ତ୍ତକ, ନାଟୁଆ ।
ନାଚଶାଳା—ଗ୍ରା. ବି. ନାଟଘର, ଆଖଡ଼ାଘର, ନାଟମନ୍ଦିର ।   [ ନିର୍ଗୁଣ ।
ନାଗ୍ରର—ଗ୍ରା.ବିଂ. ନିରୁପାୟ, ଅସହାୟ,
ନାଗ୍ରଷ୍ଟ—ଗ୍ରା.ବି. ନିରୁପାୟାବସ୍ଥା, ଅସହାୟତା ।   [ ବିଶେଷ ।
ନାଚକେ—ପୁଂ. ବି. ବିଶ୍ୱାମିତ୍ରଙ୍କର ପୁତ୍ର-
ନାଚକୁଦହେବା—ଗ୍ରା. କ୍ରି. ଲମ୍ଫ, ଝମ୍ପ କରିବା ।
ନାଚକେତ—ପୁଂ. ବି. ଅଗ୍ନି, ନାଚକେତୋପାଖ୍ୟାନ, ନାଚକେତା, ଉଦ୍ଦାଳକ ଋଷିଙ୍କ ପୁତ୍ର ।
ନାଚବା—ଗ୍ରା. କ୍ରି. ନୃତ୍ୟକରିବା, ତାଳମାନ ଓ ବାଦ୍ୟଅନୁସାରେ ପଦବିକ୍ଷେପ କରିବା, ରାଗରେ କମ୍ପିବା, ସ୍ପନ୍ଦିତ ହେବା, ( ଲ.ଅର୍ଥ ) ସର୍ବଦା କଳ୍ପନା ଚକ୍ଷୁ ଆଗରେ ଉପସ୍ଥିତ ହେବା ।
ନାଚିଲ୍ଲୋକକୁଲାଜନାହିଁ ଦେଖିଲାଲୋକକୁ ଲାଜ—ଗ୍ରା. ବି. ( ଢଗନ୍ୟାୟ ) ଯେଉଁ ସ୍ଥଳରେ କୌଣସି ଲଜ୍ଜାଜନକ କାର୍ଯ୍ୟ କରିବା ବ୍ୟକ୍ତି ଉକ୍ତ ଲଜ୍ଜାଜନକ କାର୍ଯ୍ୟ କରିବାକୁ ଲଜ୍ଜା ବୋଧ ନ କରେ, କିନ୍ତୁ ଦେଖଣାହାରୀ ତାହା ଦେଖି ଲଜ୍ଜିତ ହୁଏ, ( ସେ ସ୍ଥାନରେ ଏ ଢଗ କୁହାଯାଏ) ।
ନାଚୀନ—ପୁଂ.ବି.ଦକ୍ଷିଣସ୍ଥ ଦେଶବିଶେଷ ।
ନାଚୁଆ—ଗ୍ରା. ବି. ନର୍ତ୍ତନକାରୀ, ନାଟ କରିବା ବ୍ୟକ୍ତି ।
ନାଛ—ଗ୍ରା. ବି. (ସଂ-ଲକ୍ଷ୍ୟ) ଲକ୍ଷ୍ୟଭେଦ କରିବା ପାଇଁ ବନ୍ଧୁକଆଦି ଦାଗିବା, ତାତଲ ଲୁହାଦ୍ୱାରା କୌଣସି ଜୀବର ଚମଡ଼ାରେ ଦାଗ ଦେବା, ଚିହ୍ନ, ନାସ, ନସ୍ୟ ।
ନାଛିବା—ଗ୍ରା. କ୍ରି. (ସଂ-ଲକ୍ଷ୍ୟ) ବନ୍ଧୁକମାରିବା, ବନ୍ଧୁକ ଦ୍ୱାରା ଲକ୍ଷ୍ୟ ଭେଦ କରିବା, ଲକ୍ଷ୍ୟ କରିବା, ଲାଖ କରିବା, ଦେହରେ ଦାଗ ଦେବା, ପ୍ରଦୀପକୁ ଜଳାଇବା ।
ନାଛେନା—ପ୍ରା.(ଆଲ)ବିଂ. ଅପରିଷ୍କୃତ, ଅବଜିଆ ।
ନାଛୋଡ଼—ଗ୍ରା.ବିଂ.ଏକଜିଦିଆ, ନିର୍ବନ୍ଧଶୀଳ, ଯେ କୌଣସି ବିଷୟକୁ ଛାଡ଼େ ନାହିଁ ।
ନାଜକ୍—ଯା. ବିଂ. କୋମଳ, ସୁକୁମାର, ପତଳା, ଯେ ସହିଷ୍ଣୁ ନୁହେ ।
ନାଜକବୁର—ଗ୍ରା. ପୁଂ. ବିଂ. ସ୍ୱଭାବତଃ ଲଜ୍ଜାଶୀଳ ।
ନାଜର—ଯା. ବି. କୌଣସି କାର୍ଯ୍ୟ ବା ତତ୍ତ୍ୱାବଧାନ କରିବା ପାଇଁ ନିଯୁକ୍ତ ବ୍ୟକ୍ତି, ଆଦାଲତରେ ହୁକୁମମାନଙ୍କ ହୁକୁମ ତାମିଲ କରିବା ନିମନ୍ତେ ନିଯୁକ୍ତ ପିଆଦାମାନଙ୍କ ସର୍ଦ୍ଦାର, କର୍ମଗୃହ, ମୁସଲମାନଙ୍କ ନାମବିଶେଷ ।
ନାଜରଖାନା—ଯ.ବି.ନାଜର ରହି, ନାଜରଙ୍କ କାର୍ଯ୍ୟାଳୟ ।
ନାଜରତ—ଯା. ବି. ନାଜରଖାନା, ନାଜରଙ୍କ କାର୍ଯ୍ୟାଳୟ, ନାଜରଙ୍କକର୍ମ ।
ନାଜିମ୍—ଯା. ବି. ମାନେଜର, ତତ୍ତ୍ୱାବଧାରକ, ଭାରତରେ ମୁସଲମାନ ଶାସନ କାଳରେ କୌଣସି ରାଜ୍ୟ ବା ପ୍ରଦେଶର ରାଜସ୍ୱ ଶାସନକର୍ତ୍ତା ।
ନାଜିରଉଦ୍ଦିନ୍—ଗ୍ରା. ବି. ଅଯୋଧ୍ୟାର ଜଣେ ରାଜା ।
ନାଜେହାଲ—ଗ୍ରା. ବିଂ. ଆକ୍ରାନ୍ତ, ବିପନ୍ନ, ଅନ୍ତିମଦଶାପ୍ରାପ୍ତ, ବିଂ ଅତି ବିପନ୍ନ-ଅବସ୍ଥା ।
ନାଜୁକ—ଯା. ବି. ଏକପ୍ରକାର ଲତା, (ଗ୍ରା.ବିଂ) ଲଜ୍ଜାଶୀଳ ।
ନାଟ—ପୁଂ. ବି. (ନଟ + ସ୍ୱା.ଅ) ନାଚ, ନଟକାଭିନୟ, ସଙ୍ଗୀତର ରାଗବିଶେଷ, କର୍ଣ୍ଣାଟଦେଶ ଓ ତଦ୍ଦେଶବାସୀ ବ୍ୟକ୍ତି, (ଗ୍ରା.ବି) ନୃତ୍ୟ, କଳି, ଦ୍ୱନ୍ଦ୍ୱ, ଗୋଳମାଳ, କୋଳାହଳ, କାଣ୍ଡକାରଖାନା, ବିଷ୍ଣୁ, କାଣ୍ଡଶର, ନୃତ୍ୟଯୁକ୍ତ ତାମସା, ସୁଆଙ୍ଗ, ଯାତ୍ରା, (ଯା.ବି) ଲାଟ୍, ଗୁଚ୍ଛ, ଗଭର୍ଣ୍ଣର, ରାଜସ୍ୱ ବାକିପାଇଁ ଜମିଦାରର ନିଲାମ ।
ନାଟକ—ବିଂ. ( ନଟ + ଅକ ) ନର୍ତ୍ତକ, (ବି) ଦୃଶ୍ୟ କାବ୍ୟବିଶେଷ, ରୂପକ, ନଟର କାର୍ଯ୍ୟ. କାମାଖ୍ୟା ପର୍ବତର ନିକଟସ୍ଥିତ ପର୍ବତଭେଦ ।
ନାଟକଲକ୍ଷଣ—କ୍ଲୀ. ବି. (୬ତତ୍) ନାଟକର ଲକ୍ଷଣ ।
ନାଟକମନ୍ଦିର—ଗ୍ରା. ବି. ଦେବଗୃହସମୀପସ୍ଥ ନାଟ୍ୟ ସ୍ଥାନ ।
ନାଟକ ବତାର—ପୁଂ. ବି. ( ୬ତତ୍ ) କୌଣସି ନାଟକ ମଧ୍ୟରେ ଅପର ନାଟକର ଅଭିନୟ ।   [ ନାଟୁଆ ।
ନାଟକୀୟ—ଗ୍ରା. ପୁଂ. ସ୍ତ୍ରୀ.ବି. ନର୍ତ୍ତକ,
ନାଟକୀ—ସ୍ତ୍ରୀ.ବି. (ନାଟକ+ଈ) ନର୍ତ୍ତକୀ, ଇନ୍ଦ୍ରସଭା, ( ପୁଂ.ବି. ନାଟକ+ଇନ ) ନାଟକରଚକ, ନର୍ତ୍ତକ ।
ନାଟକୀୟ—ବିଂ.(ନାଟକ + ଈୟ)ନାଟକରେ ବର୍ଣ୍ଣିତ, ନାଟକସମ୍ବନ୍ଧୀୟ ।
ନାଟଗୁରୁ—ଗ୍ରା.ବି(୬ତତ୍)ନାଟ୍ୟାଚାର୍ଯ୍ୟ, ଓସ୍ତାଦ, ସୂତ୍ରଧର ।
ନାଟବନ୍ଦ—ଗ୍ରା.ବି. ସରକାର ନିର୍ଦ୍ଧାରିତ ଖଜଣାକିସ୍ତି ।
ନାଟମନ୍ଦିର—ବି.ନାଟକ ମନ୍ଦିର ଦେଖ ।

ନାଟମୟୂର—ବି.(ନାଟ + ମୟୂର) ନୃତ୍ୟ-କାରୀ ମୟୂର, ଅଣ୍ଡିରା ମୟୂର ।

ନାଟର ଗୁରୁ—ଗ୍ରା. ବି.ନାଟଗୁରୁ ଦେଖ, (ଲ.ଅର୍ଥ) କୌଣସି ବିଷୟ ବା ଘଟ-ଣାର ମୌଳିକ ପ୍ରବର୍ତ୍ତକ, କୌଣସି ଦଳର ନେତା ।

ନାଟାମ୍ର—ପୁଂ.ବି. ତରମୂଜ, ତରଭୁଜ ।

ନାଟାର—ପୁଂ.ବି.(ନାଟ+ଆର)ନଟୀର ସନ୍ତାନ ।

ନାଟିଆ—ଗ୍ରା.ବି.ଶୂଦ୍ରମାନଙ୍କର ବଂଶୋ-ପାଧିବିଶେଷ ।

ନାଟିକା—ସ୍ତ୍ରୀ.ବି. (ନଟ+କ.ଅକ+ଆ) ହାସ୍ୟରସ ପ୍ରଧାନ ଛୋଟ ନାଟକ, ନଟୀ, ନର୍ତ୍ତକୀ, ( ଗ୍ରା.ବି ) ହାତ ବା ଗୋଡ଼ର ନାଡ଼ୀ,ଦେହର ରକ୍ତବାହିକା ଶିରା ।

ନାଟିକାଚପିବା—ଗ୍ରା. କି. ସ୍ୱାସ୍ଥ୍ୟ ପରୀକ୍ଷା କରିବା ପାଇଁ କୌଣସି ବ୍ୟକ୍ତିର ମଣି-ବନ୍ଧନିକଟସ୍ଥ ନାଡ଼ିର ସ୍ଥାନକୁ ଆଙ୍ଗୁଠି ଦ୍ୱାରା ଅନୁଭବ କରିବା ।

ନାଟିକାଗୁଡ଼ିଯିବା—ଗ୍ରା. କି. ରୋଗୀ ବା ମୁମୂର୍ଷୁ ବ୍ୟକ୍ତିର ହାତ ବା ଗୋଡ଼ ନାଡ଼ିର କ୍ଷୀଣ ସ୍ପନ୍ଦନ ଅନ୍ୟ ବ୍ୟକ୍ତିକୁ ବୋଧ ନହେବା,( ଲ.ଅର୍ଥ ) କୌଣସି ବ୍ୟକ୍ତିର ଶ୍ରୀ ଅନ୍ୟକୁ ସହ୍ୟ ନ ହେବା ।

ନାଟିତ—ବିଂ.(ନାଟ+ଣିଚ୍.ତ) ଅଭି-ନୀତ, (ଭୂ.ତ—ବି) ଅଭିନୟ,ନର୍ତ୍ତନ, ନଚାଇବା । [ କୃତ୍ୟ ।

ନାଟିତକ—କ୍ଲୀ. ବି. (ନାଟିତ+କ)ନଟ-

ନାଟୁ—ଗ୍ରା. ବି. ( ସଂ-ଲଟ୍ଟୁ ) ଲଟୁ, ନଟୁ, ଖେଳିବାର ପେଣ୍ଡୁ, (ଲ.ଅର୍ଥ ) କ୍ରୀଡ଼-ନକ ।

ନାଟୁଆ—ଗ୍ରା. ବି. (ସଂ-ନର୍ତ୍ତକ) ନର୍ତ୍ତକ, ଅଭିନେତା, ନଟ, ମଲ୍ଲକ୍ରୀଡ଼ା ଦେଖା-ଇବା ବ୍ୟକ୍ତି । [ ପୁତ୍ର ।

ନାଟେୟ—ପୁଂ.ବି.(ନଟୀ+ଏୟ)ନଟୀର

ନାଟେର—ପୁଂ. ବି. ନଟୀର ପୁତ୍ର ।

ନାଟୋର—ରାଜସାହୀ ଜିଲ୍ଲାର ଗୋଟିଏ ମହକୁମା ।

ନାଟ୍ୟ—ବି. (ନଟ+ମିଂ.ଯ) ନୃତ୍ୟକ୍ରିୟା, ତୌର୍ଯ୍ୟତ୍ରିକ, ନୃତ୍ୟ, ଗୀତ, ବାଦ୍ୟ ଏ ତିନୋଟିର ସମବାୟ, ଅଭିନୟ ଦ୍ୱାରା ଚରିତ୍ର ପ୍ରଦର୍ଶନ, ନାଟକ ଆରମ୍ଭର ଶୁଭ ନକ୍ଷତ୍ର ।

ନାଟ୍ୟକାର—ବି. (ନାଟ୍ୟ+କୃ+କ.ଅ) ନର୍ତ୍ତକ, ନଟ,(ଗ୍ରା.ବି)ନାଟକର ଚକ ।

ନାଟ୍ୟଧର୍ମିକା--ସ୍ତ୍ରୀ.ବି. ଦର୍ଶନାର୍ଥ ଶାସ୍ତ୍ରୋକ୍ତ ତୌର୍ଯ୍ୟତ୍ରିକ ରୂପ ନଟକୃତ୍ୟ ।

ନାଟ୍ୟପ୍ରିୟ—ପୁଂ. ବି. (ନାଟ୍ୟ+ପ୍ରିୟ) ବ.ବ୍ରୀ; ମହାଦେବ, ଶିବ, (ବିଂ) ନୃତ୍ୟ ଗୀତ ବାଦ୍ୟ ପ୍ରିୟ ଯାହାର ।

ନାଟ୍ୟବେଦ—ବି. ବ୍ରହ୍ମାଙ୍କ ଦ୍ୱାରା ରଚିତ ନୃତ୍ୟ ବାଦ୍ୟ ଗୀତାଦିବିଷୟକ ଉପ-ବେଦ ।

ନାଟ୍ୟଶାଳା—ସ୍ତ୍ରୀ. ବି. ପ୍ରାସାଦ ଦ୍ୱାର ସମୀପ ଗୃହ,ନାଟମନ୍ଦିର, ନାଟ୍ୟରଙ୍ଗ ।

ନାଟ୍ୟଶାସ୍ତ୍ର—ବି. ନୃତ୍ୟଗୀତ ଓ ବାଦ୍ୟ ଅଭିନୟ ବିଷୟକ ଶାସ୍ତ୍ର, ଭରତମୁନି କୃତ ନାଟ୍ୟବିଷୟକ ଗ୍ରନ୍ଥ ।

ନାଟ୍ୟସମିତି—ସ୍ତ୍ରୀ.ବି. (କ.ଧା) ଅଭିନୟ ସମ୍ପାଦିକା ସଭା ।

ନାଟ୍ୟସୂତ୍ର—କ୍ଲୀ. ବି. (୬ତତ୍) ଭରତ-ମୁନିପ୍ରଣୀତ ନାଟ୍ୟଶାସ୍ତ୍ରର ପ୍ରଧାନ ଗ୍ରନ୍ଥ, ଅଳଙ୍କାର ଗ୍ରନ୍ଥବିଶେଷ ।

ନାଟ୍ୟାଚାର୍ଯ୍ୟ—ପୁଂ.ବି. (୬ତତ୍) ନାଟ୍ୟ-ବିଷୟକ ଉପଦେଷ୍ଟା,ରଙ୍ଗଭୂମିର ଅଧ୍ୟକ୍ଷ, ନାଟଗୁରୁ ।

ନାଟ୍ୟାଭିନୟ—ବି. (୬ତତ୍) ନାଟକରେ ବର୍ଣ୍ଣିତ ବିଷୟର ଅଭିନୟ ।

ନାଟ୍ୟାଳଙ୍କାର—ପୁଂ. ବି. (ନାଟ୍ୟ+ଅଳଙ୍କାର) ନାଟକଭୂଷଣ ହେତୁ ନାଟ-କର ସୌନ୍ଦର୍ଯ୍ୟ ବୃଦ୍ଧିକର ଅଳଙ୍କାର-ବିଶେଷ ।

ନାଟ୍ୟାଳୟ—ପୁଂ. ବି. (କ.ଧା) ନାଟ୍ୟ-ଶାଳା, ନାଟମନ୍ଦିର ।

ନାଟ୍ୟୋକ୍ତି—ସ୍ତ୍ରୀ. ବି. (ନାଟ୍ୟ+ଉକ୍ତି) ନାଟକରେ ବ୍ୟବହୃତ ଭିନ୍ନ ଭିନ୍ନ ବ୍ୟକ୍ତିଙ୍କୁ ସମ୍ବୋଧନ କରିବାରେ ବ୍ୟବ-ହୃତ ଭିନ୍ନ ଭିନ୍ନ ବିଶିଷ୍ଟ ଶବ୍ଦମାନ ।

ନାଠା—ଗ୍ରା. ପୁଂ. ବିଂ. ( ସଂ-ନଷ୍ଟ ) ଗେଡ଼ା, ଯେଉଁ ବ୍ୟକ୍ତିର ପିତୃପିତାମହ ବା ପୁତ୍ର ପୌତ୍ରାଦି କେହି ନଥାନ୍ତି ।

ନାଠି—ଗ୍ରା. ବି ଓ ବିଂ. (ସଂ-ଯଷ୍ଟି) ଲଠି ଦେଖ, ( ଗ୍ରା. ବି ) ନଟେଇ, ଯେଉଁ କାଠିରେ ସୂତା ଗୁଡ଼ାଥାଏ ।

ନାଡ଼—ପୁଂ. ବି. (ନାଳ) ନାଳଶବ୍ଦାର୍ଥ, ମୃଣାଳ, ପଦ୍ମଆଦି ଫୁଲର ଡେମ୍ଫ,ପେଣି, ଦେହମଧ୍ୟସ୍ଥ ଅନ୍ତ୍ର, ରକ୍ତବାହିନୀ ଶିରା, ନାଡ଼ି, ନାଭିନାଳ, ଲଙ୍ଗଳର ବେକ, ଗୁଣା ବସୁଣି ଆଦିର ଯେଉଁ ବନ୍ଧାଂଶ ନାକରନ୍ଧ୍ରରେ ଗଳାଯାଇଥାଏ ।

ନାଡ଼ଛତୁ—ଗ୍ରା. ବି. ଏକପ୍ରକାର ଲମ୍ବ ନାଡ଼ଥିବା ଛତୁ ।

ନାଡ଼ପିଢ଼—କ୍ଲୀ. ବି. କଣ୍ୱମୁନିଙ୍କ ଆଶ୍ରମ ।

ନାଡ଼ା—ଗ୍ରା. ବି. ( ସଂ-ନାଡ଼ୀ ) ଗର୍ଭସ୍ଥ ଅନ୍ତ୍ର, ଅନ୍ତ୍ରବୁଜୁଲା ।

ନାଡ଼ି—ସ୍ତ୍ରୀ. ବି, (ନଡ଼+ଣିଚ୍+କ.ଇ) ନାଡ଼ୀ, ନଳ, ଦେହସ୍ଥ ରକ୍ତବାହିନୀ ଶିରା,ଗଛ ବା ଫୁଲଆଦିର ସରୁ ଡେମ୍ଫ, ଅନ୍ତ୍ରବୁଜୁଲା, ନାଭିନାଳ, ଏକଦଣ୍ଡ ସମୟ, ନଳଘା, ଜଳବାହୀ ସୂର୍ଯ୍ୟରଶ୍ମି, ବାଉଁଶର ନଳି, ବନ୍ଧୁକର ନଳି,ଗଣ୍ଡ-ଦୂର୍ବା, କୌଣସି ତୃଣର ପୋଲ ଡାଙ୍ଗ, ଛିଦ୍ର, କପଟ, ନାଡ଼ିନକ୍ଷତ୍ର ଦେଖ, (ଗ୍ରା. ବି) ନାଡ଼ିର ଆକୃତିବିଶିଷ୍ଟ ଘୃତପକ୍ୱ ମିଷ୍ଟାନ୍ନବିଶେଷ, ( ଲ.ଅର୍ଥ ) ଜ୍ଞାନ, ଚେତନା, (ପ୍ରା. ବାଲେ. ବି) ସଜନା-ଛୁଇଁ, (ପ୍ରା. ସିଂହ. ବି) ଖଡ଼ା ।

ନାଡ଼ିକ—କ୍ଲୀ.ବି, (ନାଡ଼ି+କ) ନଳିତା-ଶାଗ, ନାଡ଼ି ଦେଖ ।

ନାଡ଼ିକଳାପକ—ବି. ସର୍ପାକ୍ଷୀ ଦେଖ ।

ନାଡ଼ିକା—ସ୍ତ୍ରୀ. ବି. (ନାଡ଼ି+କ+ଆ) ଷଟ୍‌କ୍ଷଣ, ଘଡ଼ି, ଏକଦଣ୍ଡ ସମୟ,ଶ୍ୱାସ-ବାହୀ ନଳ, ଗଳା, ନ ଡ଼ିବ୍ରଣ,ସୂର୍ଯ୍ୟଙ୍କ କିରଣ ରେଖା, ପିଟାଘଣ୍ଟା ।

ନାଡ଼ିକେଳ—ବି. ନାରକେଳ, ନଡ଼ିଆ ।

ନାଡ଼ିଚରଣ—ବି, (ବ.ବ୍ରୀ) ପକ୍ଷୀ ।

ନାଡ଼ିଚପା—ଗ୍ରା.ବି. ନାଡ଼ିପରୀକ୍ଷା,ନାଡ଼ିର ସ୍ପନ୍ଦନକୁ ହାତଦ୍ୱାରା ବୋଧ କରିବା ।

ନାଡ଼ିଚିପିବା—ଗ୍ରା. କ୍ରି. ନାଡ଼ିପରୀକ୍ଷା କରିବା, ରୋଗୀର ଅବସ୍ଥା ଜାଣିବା ନିମନ୍ତେ ହାତଗୋଡ଼ର ନାଡ଼ିର ସ୍ପନ୍ଦନକୁ ଆଙ୍ଗୁଠି ଦ୍ୱାରା ଅନୁଭବ କରିବା, (ଲ.ଅର୍ଥ) କୌଣସି ବ୍ୟକ୍ତିର ମତ ବା ପ୍ରକୃତ ଠଉରେଇବା ।

ନାଡ଼ିଚୀର—କ୍ଲୀ. ବି. ନଳବେଷ୍ଟନ, ନଳ, ଶ୍ରେଷ୍ଠ ନଳଜାତୀୟ ଗୁଳ୍ମ, ତନ୍ତୁବାୟର କଣ୍ଡା ।

ନାଡ଼ିଜଙ୍ଘ—ବି. (ବି.ସ୍ତ୍ରୀ) କାକ, କୁଆ, ବକ, ବଗ, ଏକ ମୁନିଙ୍କ ନାମ ।

ନାଡ଼ିଛୁଡ଼ିବା—ଗ୍ରା. ବି. ନାଡ଼ିର ସ୍ପନ୍ଦନ ବନ୍ଦ ହେବା,ପ୍ରାଣବାୟୁ ଶରୀରରୁ ନିର୍ଗତ ହେବା ଅବସ୍ଥା ।

ନାଡ଼ିତରଙ୍ଗ—ବି. (ବି.ସ୍ତ୍ରୀ) ଦୈଣ୍ଡିକ, ଫଳିତ ଜ୍ୟୋତିଷୀ, କାକୋଳ, ସ୍ତ୍ରୀର ଧର୍ଷକ ବ୍ୟକ୍ତି ।

ନାଡ଼ିନକ୍ଷତ୍ର—ବି. ( ନାଡ଼ି+ନକ୍ଷତ୍ର ) ବରବଧୂଙ୍କ ଜାତକ ଗଣନାର୍ଥେ କଳ୍ପିତ ଚକ୍ରରେ ସ୍ଥିତ ନକ୍ଷତ୍ରବିଶେଷ, ଜନ୍ମ ନକ୍ଷତ୍ର(ଗ୍ରା.ବି.ଲ.ଅର୍ଥ) କୌଣସି ମନୁଷ୍ୟ ସମ୍ବନ୍ଧେ ଯାବତୀୟ ଜ୍ଞାତବ୍ୟବିଷୟ, ମନୁଷ୍ୟର ପ୍ରକୃତିଗତ ଅଭ୍ୟାସ ଓ ଗତିବିଧି,କୌଣସି ବ୍ୟକ୍ତିର ଗୁପ୍ତରହସ୍ୟମାନ ।

ନାଡ଼ିନ୍ଧମ—ପୁଂ. ବି. (ନାଡ଼ି+ଧମ୍+କ.ଅ) ସ୍ୱର୍ଣ୍ଣକାର, ସୁନାରଦଣିଆ, (ବିଂ) ଶ୍ୱାସକାରକ, ଭୟଜନକ, ଭୟପ୍ରଦର୍ଶନକାରୀ, ଭୀଷଣ, ନାଡ଼ୀଶୂନ୍ୟକାରୀ ।

ନାଡ଼ିନ୍ଧୟ—ପୁଂ. ବି. (ନାଡ଼ି+ଧେ+କ.ଅ) ନାଡ଼ିପାନକର୍ତ୍ତା, ଯେ ନଳଦ୍ୱାରା ପାନ କରେ ।

ନାଡ଼ିପତ୍ର—କ୍ଲୀ. ବି. (ବି.ସ୍ତ୍ରୀ) ନାଡ଼ୀରଶାକ, ନଳିତାଶାଗ ।

ନାଡ଼ିବଳୟ—ବି. ସିଦ୍ଧାନ୍ତ ଶିରୋମଣି ଲିଖିତ ସମୟଜ୍ଞାପକ ଯନ୍ତ୍ରବିଶେଷ ।

ନାଡ଼ିବା—ଗ୍ରା. କ୍ରି. ଦୋହଲିବା, ନଡ଼ନଡ଼ ହୋଇ ହଲିବା, (ପୁଚ୍ଛଆଦିକୁ) ଇତସ୍ତତଃ ସଞ୍ଚାଳିତ କରିବା ।

ନାଡ଼ୀବ୍ରଣ—ବି. ନାଳିଘାଆ ।

ନାଡ଼(ଡ଼ୀ)ମଣ୍ଡଳ—ବି. ବିଷୁବଦ୍‌ରେଖା, ଖ ଗୋଳରେ କଳ୍ପିତ ବିଷୁବରେଖା ।

ନାଡ଼(ଡ଼ୀ)ଲଗିବା—ଗ୍ରା. ବି. ରୋଗୀର ନାଡ଼ିସ୍ପନ୍ଦନ ପରୀକ୍ଷକହାତକୁ ଜଣାଯିବା ।

ନାଡ଼(ଡ଼ୀ)ଶାକ—ବି. ନଳିତା ଶାଗ ।

ନାଡ଼(ଡ଼ୀ)ଶୋଧନ—ବି. ଯୋଗୀମାନଙ୍କର ଜଳ ଓ ବାୟୁଦ୍ୱାରା ଶରୀରସ୍ଥ ନାଡ଼ି ଓ ଅନ୍ତ୍ର ପରିଷ୍କାର କରିବା ପ୍ରକ୍ରିୟା ।

ନାଡ଼(ଡ଼ୀ)ହିଙ୍ଗୁ— ବି. ଏକପ୍ରକାର ବୃକ୍ଷ ଓ ତହିଁରୁ ନିର୍ଗତ ନିର୍ଯ୍ୟାସ ।

ନାଡ଼ୀ—ସ୍ତ୍ରୀ. ବି. ( ନାଡ଼ି+ଈ ) ନାଡ଼ି ଦେଖ, ଗଣ୍ଡଦୂର୍ବା, ନଳିତା ଶାଗ, ହିଙ୍ଗୁପର୍ଣ୍ଣୀ ।

ନାଡ଼ୀକ—ପୁଂ. ବି. (ନାଡ଼ି+କୈ+ଅ) ନଳିତାଶାଗ,କଳାରୁକୁଣ୍ଡା ଶାଗ, କଳାକାସୁନ୍ଦା ଗୁଳ୍ମ ।

ନାଡ଼ୀକଟା—ଗ୍ରା.ବି.ନାଭିଚ୍ଛେଦନ,ସନ୍ତାନ ପ୍ରସୂତ ହେବାପରେ କରାଯିବା ନାଭିଚ୍ଛେଦନ ।

ନାଡ଼ୀକୂଟ—କ୍ଲୀ. ବି. ବିବାହାଙ୍ଗ ନାଡ଼ିଚକ୍ର ସୂଚିତ ନକ୍ଷତ୍ର ସମୂହ ।

ନାଡ଼ୀକେଳ—ପୁଂ. ବି. ନାରିକେଳ, ନଡ଼ିଆ ।

ନାଡ଼ୀଗତି—ସ୍ତ୍ରୀ. ବି. ( ନାଡ଼ୀ+ଗତି ) ୬ତତ୍ପୁ; ନାଡ଼ୀର ଗତି,ଯେଉଁ ଗତିଦ୍ୱାରା ଦେହର ଭଲ ମନ୍ଦ ଜଣାପଡ଼େ ।

ନାଡ଼ୀଚ—ପୁଂ. ବି. ( ନାଡ଼ୀ+ଚ+ଅ ) ଶାକବିଶେଷ, ନଳିତାଶାଗ ।

ନାଡ଼ୀଚକ୍ର—କ୍ଲୀ. ବି. ନାଭିସ୍ଥଳସ୍ଥିତ ଚକ୍ରଭେଦ, ନାଭିସ୍ଥିତ ନାଡ଼ୀମୂଳ, ହଠଯୋଗ ଶାସ୍ତ୍ରଲିଖିତ ଇଡ଼ା, ପିଙ୍ଗଳା, ସୁଷୁମ୍ନା, ପରମା, ଗାନ୍ଧାରୀ, ହସ୍ତିଜିହ୍ୱା, ପୂଷା, ସୁଯଶା, ଅଲମ୍ବୁଷା, କୁହୁ,ଶଙ୍ଖିନୀ, ଲୋଳଜିହ୍ୱା, ବିଜୟା, କାମଦା,ଅମୃତା, ବହୁଳା,ଶରୀରସ୍ଥ ଏହି ଗୋ୧୬ଟି ନାଡ଼ି ।

ନାଡ଼ୀଜ୍ଞ—ପୁଂ.ବିଂ.(ନାଡ଼ୀ+ଜ୍ଞା+କ.ଅ) ନାଡ଼ିସମ୍ବନ୍ଧରେ ଅଭିଜ୍ଞ,(ବି) ବୈଦ୍ୟ ।

ନାଡ଼ୀତିକ୍ତ—ପୁଂ. ବି. ନେପାଳୀ ନିମ୍ବ, ନେପାଳ ଦେଶୀୟ ନିମ୍ବ ଗଛ ।

ନାଡ଼ୀଦେହ—ପୁଂ. ବି. (ବି.ସ୍ତ୍ରୀ) ଅତି କୃଶଦେହ ଭୃଙ୍ଗୀ,ଶିବଙ୍କ ଦ୍ୱାରପାଳ ।

ନାଡ଼ୀପରୀକ୍ଷା—ସ୍ତ୍ରୀ. ବି. ମଣିବନ୍ଧସ୍ଥିତ ନାଡ଼ୀର ଗତି ପ୍ରତିଘାତ ଦ୍ୱାରା ଶରୀରର ଅବସ୍ଥା ନିର୍ଣ୍ଣୟ, ଖଣ୍ଡିଏ ବୈଦ୍ୟକ ଗ୍ରନ୍ଥ ।

ନାଡ଼ୀପ୍ରକାଶ—ପୁଂ.ବି. ଖଣ୍ଡିଏ ଭୈଷଜ୍ୟ ଗ୍ରନ୍ଥ ।

ନାଡ଼ୀମଗ୍ନ—ଗ୍ରା.ବି. ଅକ୍ଷୁଧା ରୋଗ,(ବିଂ) ଅତି ଦୁର୍ବଳ,ଯାହାର କ୍ଷୁଧା ହୁଏ ନାହିଁ, ଅଳ୍ପାହାରୀ ।

ନାଡ଼ୀଯନ୍ତ୍ର—କ୍ଲୀ.ବି. ସୁଶ୍ରୁତୋକ୍ତ ଶଲ୍ୟୋଦ୍ଧାରଣାର୍ଥ ଏକପ୍ରକାର ଯନ୍ତ୍ର, ନଳଯୁକ୍ତ ଯନ୍ତ୍ର ।

ନାଡ଼ୀବିଗ୍ରହ—ପୁଂ. ବି. (ବି.ସ୍ତ୍ରୀ) ଅତି କୃଶ ଶିବ ଅନୁଚର ଭୃଙ୍ଗୀ ।

ନାଡ଼ୀବ୍ରଣ—ପୁଂ. ବି. ( ମଧ୍ୟ-କ.ଧା ) ସର୍ବଦା ଗଳନ୍ତ ବ୍ରଣ, ନାଳଘା ।

ନାଡ଼ୀଶାକ—ପୁଂ. ବି. ନଳିତା ଶାଗ ।

ନାଡ଼ୀଶୁଦ୍ଧି—ବି. (୬ତତ୍ପୁ) ନାଡ଼ିଶୋଧନ ଦେଖ ।

ନାଡ଼ୀସ୍ନେହ—ପୁଂ.ବିଂ. (ବି.ସ୍ତ୍ରୀ) ନାଡ଼ୀମାତ୍ରସାର, ଅତିକୃଶ, (ବି) ଶିବଙ୍କର ଦ୍ୱାରପାଳ, ଭୃଙ୍ଗୀ ।

ନାଣକ—କ୍ଲୀ. ବି. (ନ+ଆଣକ) ମୁଦ୍ରାଙ୍କିତ ନିଷ୍କାଦି, ମୁଦ୍ରା,ମୋହର, ଧାତୁ, (ବିଂ) ପ୍ରଶସ୍ତ ।

ନାଣକପରୀକ୍ଷା—ସ୍ତ୍ରୀ. ବି. ଧାତୁ ପରୀକ୍ଷା ।

ନାଣକପରୀକ୍ଷୀ—ପୁଂ.ବିଂ. ଧାତୁପରୀକ୍ଷକ ।

ନାତ—ଗ୍ରା. ବି. (ଫ-ଲଗ୍ରା) ପଦାଘାତ, ଗୋଇଠା, ପଶୁମାନଙ୍କର ପଛଗୋଡ଼ ଦ୍ୱାରା ଆଘାତ ।

ନାତକ୍—ସ. ବିଂ. ଅକାଟ୍ୟ, ଯେଉଁ ହୁକୁମକୁ କେହି ଖଣ୍ଡନକରି ନ ପାରେ, (ବି) ଅକାଟ୍ୟହୁକୁମ ।

ନାତଟୀର—ଯା. ବିଂ. ଅପରବର୍ତ୍ତିମାସ୍ତ ।
ନାତଦ୍ୱାର—ଯ. ବିଂ. ଚଞ୍ଚଳଚିତ୍ତ ।
ନାତମାମ୍—ଯା.ବିଂ. ଅସମ୍ପୂର୍ଣ୍ଣ,ଆଂଶିକ ।
ନାତମାରନା—ଗ୍ରା.କ୍ରି.ଗୋଇଠାମାରିବା. (ପଶୁ) ପଛଗୋଡ଼ଦ୍ୱାରା ଆଘାତକରିବା. (ଲ.ଅର୍ଥ) ଦଣ୍ଡଦେବା. (ଗୁରୁ ଶିଷ୍ୟକୁ) ଶିକ୍ଷାଦେବା, ଦୀକ୍ଷାଦେବା ।
ନାତରବିଅତ୍ତ—ଯା. ବିଂ. ଅଶିକ୍ଷିତ ।
ନାତି—ଗ୍ରା. ପୁଂ.ବି. (ସଂ-ନପ୍ତୃ—ନପ୍ତା) ପୌତ୍ର, ଦୌହିତ୍ର, ପୁତ୍ର ବା କନ୍ୟାର ପୁଅ ।
ନାତିଦୀର୍ଘ—ବିଂ. ଯାହା ଅତି ଦୀର୍ଘ ବା ତେଙ୍ଗା ବା ଲମ୍ବାଳୁହେ ।
ନାତିନୀ—ଗ୍ରା.ସ୍ତ୍ରୀ. ବି. (ସଂ-ନପ୍ତ୍ରୀ)ପୁତ୍ରର ବା କନ୍ୟାର ଝିଅ ।
ନାତିଶୀତୋଷ୍ଣ—ବିଂ. ଯାହା ଅଧିକ ଶୀତଳ ନୁହେ ବା ଅଧିକ ଉଷ୍ଣ ନୁହେ ।
ନାତୁଆ—ଗ୍ରା. ବିଂ. ଯେ ନାତ ମାରେ, ଯାହାର ନାତ ମାରିବାରେ ଅଭ୍ୟାସ ଅଛି ।
ନାତୁଣୀ—ଗ୍ରା. ସ୍ତ୍ରୀ. ବି. ପୌତ୍ରୀ ବା ଦୌହିତ୍ରୀ, ପୁଅର ବା ଝିଅର କନ୍ୟା ।
ନାତୁଣୀଜୁଆଇଁ—ଗ୍ରା. ପୁଂ. ବି. ଆପଣା ନାତୁଣୀର ସ୍ୱାମୀ । [ନାତିର ସ୍ତ୍ରୀ ।
ନାତୁଣୀବୋହୂ—ଗ୍ରା. ସ୍ତ୍ରୀ. ବି. ଆପଣା
ନାଥ—କ୍ଳୀ.ବି. (ନମ+ଷ୍ଟ) ବିରାଜ,ପ୍ରଜ୍ଞ. ଶିବ, ଋଷି, ମୁନି ।
ନାଥ—ପୁଂ.ବି. ( ନାଥ+କ.ଅ ) ପ୍ରଭୁ. ସ୍ୱାମୀ, ଅର୍ଥୀ, ଭର୍ତ୍ତା, ଈଶ୍ୱର, ବନ୍ଧୁ, ଅଧିପ, ଈଶ, ନେତା, ଇନ୍ଦ୍ର, ସହାୟ. ନାୟକ, ନାସାପ୍ରୋତ ରଜ୍ଜୁ, ନାକ-ଫୋଡ଼ା ଦଉଡ଼ି, ( ଗ୍ରା.ବି ) ଯୋଗୀ ଜାତିର ଉପାଧି, (ଋଜ୍ୟର)ରାଜା,ବନ୍ଧୁ
ନାଥକାମ—ପୁଂ.ବି. ଆଶ୍ରୟ ଅନୁସନ୍ଧାନ କରିବା ।
ନାଥକୁମାର—ପୁଂ.ବି. ଜଣେ କବି ।
ନାଥତ୍ୱ—କ୍ଳୀ.ବି.(ନାଥ+ଭା.ତ୍ୱ)ପ୍ରଭୁତ୍ୱ ।
ନାଥନ—କ୍ଳୀ.ବି.(ନାଥ+ଭା.ଅନ)ପ୍ରାର୍ଥନା, ପ୍ରାର୍ଥନ ।
ନାଥବତୀ—ସ୍ତ୍ରୀ.ବିଂ. ସଧବା,ଅଧିନ (ସ୍ତ୍ରୀ) ।
ନାଥବନ—ଗ୍ରା.ପୁଂ.ବିଂ.ନାଥବାନ୍ ଦେଖ
ନାଥବାନ୍—ପୁଂ. ବିଂ. ( ନାଥ+ବତ୍ତୁ ) ନାଥଯୁକ୍ତ, ପ୍ରଭୁବିଶିଷ୍ଟ, ପରାଧୀନ, (ସ୍ତ୍ରୀ) ନାଥବତୀ ।
ନାଥବଦ୍—ପୁଂ.ବିଂ. ଆଶ୍ରୟଦାତା ।
ନାଥବନ୍ଧୁ—ପୁଂ. ବିଂ. ଯେଉଁ ଲୋକ ଆଶ୍ରୟ ଦିଏ ବା ଯାହାର ଆଶ୍ରୟ ଦେବାର କ୍ଷମତା ଅଛି ।
ନାଥହରି—ପୁଂ.ବି. (ନାଥ+ହୃ+ଇନ୍) ପଶୁ, ନାକଫୋଡ଼ା ପଶୁ, ।
ନାଥିଆ—ଗ୍ରା. ବି. ସପ୍ତଦଶ ଶତାବ୍ଦୀର ଜନୈକ ଓଡ଼ିଆ କବି, (ଜ୍ଞାନୋଦୟ-କୋଇଲି ଏହାଙ୍କଦ୍ୱାରା ରଚିତ) ।
ନାଥୀ—ପୁଂ. ବିଂ. ପ୍ରଭୁଯୁକ୍ତ, ଯାହାକୁ ଆଶ୍ରୟ ଦେବାର ଲୋକ ଅଛନ୍ତି ।
ନାଦ—ପୁଂ. ବି. ( ନଦ+ଭା.ଅ ) ଶବ୍ଦ, ଅନୁସ୍ୱାର ପର ଉଚ୍ଚାର୍ଯ୍ୟ ଅର୍ଦ୍ଧଚନ୍ଦ୍ରାକୃତି ବର୍ଣ୍ଣବିଶେଷ, ଚନ୍ଦ୍ରବିନ୍ଦୁ,ଡ଼ାକ, ଗର୍ଜନ, ଗବାଦି ପଶୁର ମଳ, ଲଣ୍ଡି, ବର୍ଣ୍ଣ ଉଚ୍ଚାରଣ ବିଷୟରେ ଏକପ୍ରଯତ୍ନ, ସଙ୍ଗୀତ, ବର୍ଣ୍ଣର ଅବ୍ୟକ୍ତ ମୂଳରୂପ, ବ୍ରହ୍ମସ୍ୱରୂପ ଘୋଷବିଶେଷ, ମୂତ୍ରବିଶେଷ, ( ବିଂ ) ପ୍ରଶଂସାକାରୀ ।
ନାଦଜ—ବିଂ. ( ନାଦ+ଜନ+ଅ ) ନାଦରୁ ଯାହା ଜାତହୁଏ ।
ନାଦତା—ସ୍ତ୍ରୀ.ବି. ( ନାଦ+ତ+ଆ ) ଶବ୍ଦତ୍ୱ, ଶବ୍ଦର ଗୁଣ ।
ନାଦନାଲି—ପ୍ରା. (କଟକ) ବି.କଣ୍ଠନାଳି, ଯେଉଁବାଟେ ସ୍ୱର ବାହାରେ ।
ନାଦପୁରାଣ—କ୍ଳୀ.ବି. ଉପପୁରାଣବିଶେଷ
ନାଦମୁଦ୍ରା—ସ୍ତ୍ରୀ. ବି. ତନ୍ତ୍ରୋକ୍ତ କର-ମୁଦ୍ରାବିଶେଷ ।
ନାଦବାନ୍—ପୁଂ. ବିଂ. (ନାଦ+ବତ୍ତୁ ) ଶବ୍ଦ ଉତ୍ପାଦନକାରୀ ।
ନାଦବିନ୍ଦୂପନିଷତ୍—ସ୍ତ୍ରୀ. ବି. ଆଥର୍ବଣ ଉପନିଷଦ୍‌ଭେଦ ।
ନାଦାନ୍—ଗ୍ରା.ବିଂ. ଅତ୍ୟନ୍ତ ଗରିବ,ଅତି ନିର୍ଦ୍ଧନ, ଖଜଣା ବା ଦେୟ ଦେବାକୁ ଅସମର୍ଥ ।
ନାଦାନି—ଯା.ବି. ଦାରିଦ୍ର୍ୟ, ନିଃସ୍ୱତା ।
ନାଦାବି—ଗ୍ରା ବିଂ. ଯେଉଁ ସମ୍ପତ୍ତିକୁ କେହି ଦାବି କରନ୍ତି ନାହିଁ,ଅସ୍ୱାମିକ ।
ନାଦି—ଗ୍ରା. ବି. ଭୂମିରେ ଗାତ କରିବା ନିମନ୍ତେ ବଂଶନିର୍ମିତ ଯଷ୍ଟି ବା ସାବଳ ।
ନାଦିତ—ବିଂ. ( ନଦ୍+ଣିଚ୍+ର୍ମି.ତ ) ଶବ୍ଦିତ, ଧ୍ୱନିତ, (ନାଦ+କ.ତ) ଶବ୍ଦ କରୁଥିବା । [କରିବା ।
ନାଦିବା—ଗ୍ରା.କ୍ରି. ନାଦକରିବା, ଗର୍ଜନ
ନାଦିନ୍—ଯା.ବିଂ. ଲଜ୍ଜିତ ।
ନାଦିରଶାହ—ପୁଂ.ବି. ଭାରତ ଆକ୍ରମଣ-କାରୀ ପାରସ୍ୟର ଜଣେ ରାଜା ।
ନାଦୀ—ପୁଂ.ବି.(ନଦ+ଇନ୍) ନାଦଯୁକ୍ତ, ଶବ୍ଦକାରୀ, ନାଦକାରୀ, (ବି) କାଳୀଞ୍ଜର ପର୍ବତରେ ଉତ୍ପନ୍ନ ଜାତିସ୍ମର ସପ୍ତମୃଗ ମଧ୍ୟରେ ସପ୍ତମ ମୃଗ ।
ନାଦେୟ—କ୍ଳୀ. ବି. ସୈନ୍ଧବ ଲବଣ, ସୌବୀରାଞ୍ଜନ, ସୁରମା, ( ବିଂ ) ନଦୀ-କୂଳସ୍ଥ, ନଦୀଜାତ, ନଦୀସମ୍ବନ୍ଧୀୟ, (ପୁଂ.ବି) କାଶତୃଣ, କାଉଁଶ, ବାଆର-ବୃକ୍ଷ, ଜଳବେତସ ବୃକ୍ଷ ।
ନାଦେୟୀ—ସ୍ତ୍ରୀ.ବି. ( ନାଦେୟ+ଈ ) ଅମ୍ବୁବେତସ, ଭୂମିଜମ୍ବୁ, କାକଜମ୍ବୁ, ବୈଜୟନ୍ତିକା, ନାଗରଙ୍ଗ, ଜବା, ମନ୍ଦାର, ବ୍ୟଙ୍ଗୁଷ୍ଠ, ଅଗ୍ନିମନ୍ଥ ବୃକ୍ଷ, (ସ୍ତ୍ରୀ.ବିଂ.) ନଦୀଜାତା ।
ନାଦେଶ୍ୱର—କ୍ଳୀ. ବି. କାଶୀସ୍ଥିତ ଶିବ-ଲିଙ୍ଗବିଶେଷ ।
ନାଦୋମ୍ପୁର—ଗ୍ରା.ବି.ଚଟ୍ଟଗ୍ରାମର ଗୋଟିଏ ପ୍ରଧାନ ବନ୍ଦର ।
ନାଦ୍ୟ—ବିଂ. ( ନଦ+ଯ ) ନଦୀଭବ, ନାଦେୟ ଦେଖ ।
ନାନ୍‌କର—ଯା. ବି. ଜମିଦାରଙ୍କ ନିଜ ଦଖଲ ଜମି, ନିଜ ଯୋତ ବା ଖମାର ଜମି । [ ପୁତ୍ର ।
ନାନ—ଗ୍ରା. (ପ୍ରାଚୀନ) ବି. (ସଂ-ନନ୍ଦନ)
ନାନକ(ଗୁରୁ)—ଗ୍ରା.ବି.ଶିଖମାନଙ୍କ ଆଦି-ଗୁରୁ, ଶିଖଧର୍ମର ପ୍ରତିଷ୍ଠାତା ।

ନାନକଲ—ବି. ପିଣ୍ଡଆଳୁ, ଝମ୍ପଆଳୁ ।

ନାନକଶାହୀ—ଗ୍ରା. ବି. ନାନକ ପନ୍ଥୀମାନଙ୍କର ଅନ୍ତର୍ଗତ ଏକପ୍ରକାର ସନ୍ନ୍ୟାସୀ ବା ଯୋଗୀ ସମ୍ପ୍ରଦାୟ ।

ନାନମାନ—ଗ୍ରା.ବି.ପୂରପୂର୍ଣ୍ଣ ଘୃତପାଚିତ ପିଷ୍ଟକବିଶେଷ ।

ନାନା—ଅବ୍ୟ. ଅନେକାର୍ଥ, ବହୁବିଧ, ଅନେକପ୍ରକାର, ଉଭୟାର୍ଥ, ବିନାର୍ଥ, (ଗ୍ରା.ଅବ୍ୟ) କେଭେ ନୁହେ, ଗୀତ ଓ କାହାରେ ଉଚ୍ଚାରିତ ଧ୍ୱନିବିଶେଷ, (ହିନ୍ଦୁସ୍ଥାନୀ)ମାତାମହ,ଅଜା,ଗ୍ରା.(ସଂହି.) ପୁଂ.ବି. ବଡ଼ଭାଇ, ନନା, (ଯା.ବି) ପୁଦନ,(ସ୍ତ୍ରୀ) ଆଈ, ମାତାମହୀ ।

ନାନାଜାତି—ଗ୍ରା. ବିଂ. ନାନାଜାତୀୟ ଦେଖ ।

ନାନାଜାତୀୟ—ବିଂ. (ନାନା+ଜାତୀୟ) ବହୁଜାତୀୟ, ନାନାପ୍ରକାର, ବହୁଜାତିସମ୍ବନ୍ଧୀ ।

ନାନାତ୍ମବାଦ—ବି. ପ୍ରତ୍ୟେକ ଜୀବର ଆତ୍ମା ପରମାତ୍ମା ଠାରୁ ବିଭିନ୍ନ ଥିବା ବିଷୟକ ସାଂଖ୍ୟଶାସ୍ତ୍ରମତ ।

ନାନାତ୍ମବାଦୀ—ପୁଂ.ବିଂ. (ନାନାତ୍ମ+ବଦ+ଇନ୍)ବହୁ ଆତ୍ମବାଦୀ, ଯେଉଁମାନେ ଅନେକ ଆତ୍ମା ସ୍ୱୀକାର କରନ୍ତି ।

ନାନାଦରବାଙ୍କ—ଗ୍ରା. ବି. ଜଣେ ରାଜବିଦ୍ରୋହୀ ବ୍ରାହ୍ମଣ ।

ନାନାଦି—ଗ୍ରା.ବିଂ. (ସଂ-ନାନାବିଧ)ନାନାବିଧ, ନାନାପ୍ରକାରର, ଅନେକ ।

ନାନାଦିଗ୍ଦେଶ—ପୁଂ. ବି. ଅନେକ ଦିଗ ଓ ଅନେକ ଦେଶ ।

ନାନାପଣ୍ଡିତ—ପୁଂ.ବି. କାଶୀସ୍ଥିତ ଜଣେ ମହାରାଷ୍ଟ୍ରୀୟ ପଣ୍ଡିତ ।

ନାନାଧ୍ୱନି—ପୁଂ.ବି. (ବ.ବ୍ରୀ) ଯେଉଁ ବାଦ୍ୟରୁ ଏକାଧିକ ପ୍ରକାରର ଧ୍ୱନି ବାହାରେ ।

ନାନାନ୍—ଯା. ବିଂ. ନାନାଦି ଦେଖ ।

ନାନାନ୍ଦ୍ର—ପୁଂ. ବି. (ନନାନ୍ଦୃ+ଅ) ନନାନ୍ଦାର ଅପତ୍ୟ, ନଣନ୍ଦର ପୁଅ, ସ୍ୱାମୀର ଭଣଜା ।

ନାନାନ୍ଦ୍ରାୟଣ—ପୁଂ.ବି. ନାନାନ୍ଦ୍ର ଦେଖ ।

ନାନାପ୍ରକାର—ବିଂ. (ବ.ବ୍ରୀ) ବହୁପ୍ରକାର, ବହୁବିଧ, ନାନାବିଧ, (ବି) ଅନେକପ୍ରକାର, (ଗ୍ରା.କ୍ରି.ବିଂ) ନାନାପ୍ରକାରେ, ନାନାରୂପରେ ।

ନାନାଫଡ଼ନବିଶ—ଗ୍ରା. ବି. ଭୁଣ୍ଡ୍ରପନ୍ଥ ନାନା, ନାନାସାହେବ, ମହାରାଷ୍ଟ୍ରର ଜଣେ ପ୍ରସିଦ୍ଧ ରାଜମନ୍ତ୍ରୀଙ୍କ ।

ନାନାମତ—ଗ୍ରା. ବି. ଭିନ୍ନଭିନ୍ନ ମତ, ବିଭିନ୍ନ ମତମାନ, (କ୍ରି.ବିଂ)ନାନାମତେ ଦେଖ । [ ଦେଖ ।

ନାନାମତ—ଗ୍ରା. କ୍ରି. ବିଂ. ନାନାମତେ

ନାନାମତେ—ଗ୍ରା. କ୍ରି. ବିଂ. ଅନେକପ୍ରକାରେ, ନାନାପ୍ରକାରେ ।

ନାନାମାର୍ଗ—ବି.ବହୁତମାର୍ଗ, ବିଂ ବହୁତ ମାର୍ଗବିଶିଷ୍ଟ ।

ନାନାମାର୍ଗରେ—ଗ୍ରା.କ୍ରି. ବିଂ. ଅନେକ ବାଟରେ, ନାନାପ୍ରକାରେ ।

ନାନାରୂପ—କ୍ଲୀ. ବି. (କ.ଧା) ବହୁବିଧ ରୂପ, ଅନେକପ୍ରକାର ରୂପ. (ବିଂ) ବ.ବ୍ରୀ; ଅନେକପ୍ରକାରର, ବହୁବିଧ. ପୃଥକ୍‌ବିଧ । [ ଦେଖ

ନାନାରୂପେ—ଗ୍ରା. କ୍ରି. ବିଂ. ନାନାମତେ

ନାନାର୍ଥ—ବିଂ. (ବ.ବ୍ରୀ) ଅନେକାର୍ଥବିଶିଷ୍ଟ, ନାନାପ୍ରୟୋଜନଯୁକ୍ତ, (ପୁଂ.ବି) ଭିନ୍ନଭିନ୍ନ ଅର୍ଥମାନ, ବହୁ ପ୍ରୟୋଜନ

ନାନାର୍ଥସଂଗ୍ରହ—ବି. ନାନାଶବ୍ଦ ସଂଗ୍ରହ ଦେଖ ।

ନାନାବର୍ଣ୍ଣ—ବିଂ. (ବ.ବ୍ରୀ) ଶୁକ୍ଲାଦି ବହୁବିଧବର୍ଣ୍ଣ, ବ୍ରାହ୍ମଣ କ୍ଷତ୍ରିୟ ଦି ବର୍ଣ୍ଣଯୁକ୍ତ ।

ନାନାବିଧ—ବିଂ. (ବ.ବ୍ରୀ)ବହୁପ୍ରକାରର, ଅନେକପ୍ରକାରର, (କ୍ରି.ବିଂ) ଅନେକପ୍ରକାରେ ।

ନାନାଶବ୍ଦସଂଗ୍ରହ—ପୁଂ.ବି.ଅନେକଶବ୍ଦର, ସଂଗ୍ରହ, ଅଭିଧାନ, ଶବ୍ଦକୋଷ ।

ନାନାଶସ୍ତ୍ର—ବି. ବହୁପ୍ରକାର ଶସ୍ତ୍ର ।

ନାନାଶାସ୍ତ୍ର—କ୍ଲୀ.ବି.ବିବିଧ ପ୍ରକାରବିଦ୍ୟା

ନାନାଶାସ୍ତ୍ରଜ୍ଞ—ବିଂ. (ନାନାଶାସ୍ତ୍ର+ଜ୍ଞା+କ.ଅ) ବିବିଧବିଦ୍ୟାବିଶାରଦ, ଅନେକ ଶାସ୍ତ୍ର ପାରଦର୍ଶୀ । [ ଦେଖ ।

ନାନାସାହେବ—ଗ୍ରା.ବି.ନାନାଫଡ଼ନବିଶ

ନାନାସ୍ଥାନୀ—ଗ୍ରା.ବିଂ. ଭିନ୍ନଭିନ୍ନ,ଅସ୍ଥିର ।

ନାନି—ଗ୍ରା. ବି. ଦକ୍ଷିଣାତ୍ୟର ଗୋଟିଏ ଶାଖାନଦୀ ।

ନାନିଫ—ବୁନ୍ଦେଲ ଖଣ୍ଡର ଚନ୍ଦେଲ ଜାତିର ଏକଶାଖା ।

ନାନୀ—ଯା. ସ୍ତ୍ରୀ. ବି. ମାତାମହୀ, ଆଈ, (ଗ୍ରା. ସ୍ତ୍ରୀ. ବି.) ବଡ଼ଭଉଣୀ, ପିଉସୀ, ଆଈ, ବ୍ରାହ୍ମଣକନ୍ୟା,ରାଜାନ୍ତଃପୁରରେ ପାଚକାରୂପେ ନିଯୁକ୍ତା ବିଧବା ବ୍ରାହ୍ମଣୀ

ନାନୋର—ଶାହାବାଦ ଜିଲ୍ଲାର ଗୋଟିଏ ପରଗଣା ।

ନାନୌରଦାଣ୍ଡ—ଗ୍ରା.ବି.ତ୍ରିପୁରାର ଗୋମତୀ ନଦୀତୀରସ୍ଥ ଗୋଟିଏ ନଗର ।

ନାନ୍ତ—ବିଂ. (ନ+ଅନ୍ତ)ଅନନ୍ତ ।

ନାନ୍ତରୀୟକ—କ୍ଲୀ.ବିଂ. (ନ+ଅନ୍ତର+ଈୟ+କ) ଅବିଚ୍ଛେଦ୍ୟରୂପେ ସଂପୃକ୍ତ, ଅବିଚ୍ଛେଦ୍ୟ. ଅବଶ୍ୟମ୍ଭାବୀ.ଅନ୍ତଭୁକ୍ତ ।

ନାନ୍ଥ—କ୍ଲୀ.ବି. ପ୍ରୋଥ, ଘୋଡ଼ା ନାସା, ସ୍ତୁତି ।

ନାନ୍ଦନ—ବି. ଅମରାବତୀସ୍ଥ ଉଦ୍ୟାନ, ନନ୍ଦନକାନନ ।

ନାନ୍ଦିକ—ପୁଂ. ବି. ତୋରଣ ଦ୍ୱାରରେ ମଙ୍ଗଳଚିହ୍ନ ସ୍ୱରୂପ ସ୍ଥାପିତ ସ୍ତମ୍ଭ ।

ନାନ୍ଦିକର—ପୁଂ. ବି. (ନାନ୍ଦି+କୃ+ଅ) ନାଟକାଭିନୟର ଆରମ୍ଭରେ ନାନ୍ଦି ବୋଲିବା ବ୍ୟକ୍ତି ।

ନାନ୍ଦୀ—ସ୍ତ୍ରୀ. ବି.(ନନ୍ଦ+ଣିଚ୍+ଣ.ଈ) ମଙ୍ଗଳାଚରଣ, ଚନ୍ଦ୍ରାଦିପୂଜା, ସମୃଦ୍ଧି, ଅଭ୍ୟୁଦୟ, ସ୍ୱସ୍ତି, ଗୋନ୍ଦ, ସ୍ତୁତି, ସୌଭାଗ୍ୟ,ନାଟକରେ ପ୍ରଥମେ ମଙ୍ଗଳ ଉଦ୍ଦେଶ୍ୟରେ ପଠିତ ଶ୍ଲୋକଗୀତାଦି, ନାନ୍ଦିକର ଦେଖ ।

ନାନ୍ଦୀକ—ପୁଂ. ବି. ମଙ୍ଗଳାର୍ଥତୋରଣସ୍ତମ୍ଭ, ନାନ୍ଦୀମୁଖୀ ଶ୍ରାଦ୍ଧ ।

ନାନ୍ଦୀକର—ପୁଂ. ବିଂ. (ନାନ୍ଦୀ+କୃ+ଅ)ଯେ ଅଭିନୟ ପୂର୍ବରୁ ମଙ୍ଗଳାଚରଣ ପାଠକରେ, ବାଦ୍ୟକାର । [ ଶବ୍ଦ ।

ନାନ୍ଦୀଘୋଷ—ପୁଂ. ବି. ଭେରୀଆଦିର

ନାନ୍ଦୀପଟ୍ଟ—ପୁଂ.ବି. କୂଅର ମୁହଁଉପରେ ଢାଙ୍କିବା ଆବରଣ ।
ନାନ୍ଦୀପାଠକ—ବିଂ.(ନାନ୍ଦୀକର)ଦେଖ ।
ନାନ୍ଦୀପୁର—କ୍ଲୀ. ବି. (ନାନ୍ଦୀ+ପୂଃ+ଅ) ଅପ୍ରାକୃତ ପୁର ବିଶେଷ ।
ନାନ୍ଦୀପୁରୀ—ଗ୍ରା. ବି. ଗୁର୍ଜ୍ଜରରାଜଧାନୀ ଭରୋଚନଗରର ବହିର୍ଦ୍ଦେଶରେ ଅବସ୍ଥିତ ଗୋଟିଏ ନଗର ।
ନାନ୍ଦୀମୁଖ—ବି. (ବି.ଗ୍ରା) କୂପର ମୁଖବନ୍ଧନ, କୂଅର ନନ୍ଦ, ବୃଦ୍ଧିଶ୍ରାଦ୍ଧଭୋଜୀ ପିତୃଗଣ, ଆଭ୍ୟୁଦୟିକ ଶ୍ରାଦ୍ଧ, ବିବାହାଦି ଅନୁଷ୍ଠାନରେ ପ୍ରଥମେ ପିତୃଲୋକଙ୍କ ଉଦ୍ଦେଶ୍ୟରେ ଯେଉଁ ପାର୍ବଣ ଶ୍ରାଦ୍ଧ କରାଯାଏ ।
ନାନ୍ଦୀମୁଖୀ—ସ୍ତ୍ରୀ. ବି. (ନାନ୍ଦୀମୁଖ+ଈ) ସାମବେଦର ବୃଦ୍ଧିଶ୍ରାଦ୍ଧଭୋଜୀ ମାତୃଗଣ, କୁଧାନ୍ୟ ବିଶେଷ, ଅବନ୍ତୀନଗରବାସିନୀ ମୁନିକନ୍ୟା ବିଶେଷ, ଛନ୍ଦୋବିଶେଷ, (ଗ୍ରା. ବି) ନାନ୍ଦୀମୁଖ ଶ୍ରାଦ୍ଧ ।
ନାନ୍ଦୀବାଦୀ—ପୁଂ. ବିଂ. (ନାନ୍ଦୀ+ବଦ+ଇନ୍)ନାନ୍ଦୀଶ୍ଳୋକପାଠକାରୀ,ବାଦ୍ୟକାର, ନାନ୍ଦୀବାଦନଶୀଳ ।
ନାନ୍ଦୀଶ୍ରାଦ୍ଧ—କ୍ଲୀ. ବି. ନାନ୍ଦୀମୁଖଶ୍ରାଦ୍ଧ, ବୃଦ୍ଧିଶ୍ରାଦ୍ଧ ।
ନାନ୍ୟଦେବ—ଗ୍ରା.ବି. ନେପାଳର କର୍ଣ୍ଣାଟବଂଶୀୟ ପ୍ରଥମରାଜା ।
ନାପ୍—ପ୍ରା. ସମ୍ବ. ବି. ମାପ ।
ନାପସନ୍ଦ—ଯା. ବିଂ. ଅମନୋନୀତ, ଅପସନ୍ଦ, ଅନଭିମତ, ଅଗ୍ରାହ୍ୟ,ଅପ୍ରିୟ. ଅରୁଚିକର, (ଯା. ବି)ଅନିଚ୍ଛା,ଅନୁକୂଳ ମତ ପ୍ରକାଶ ନ କରିବା, ଔଦାସିନ୍ୟ, ଅନାସ୍ଥା, ବିଶ୍ୱାସର ଅଭାବ ।
ନାପାକ—ଯା. ବିଂ. ଅଶୁଦ୍ଧ, ଅଶୁଚି, ଅପବିତ୍ର, ମଇଳା ।
ନାପିତ—ପୁଂ. ବି. ( ନ+ଆପ+ତ ) ଭଣ୍ଡାରି, କ୍ଷୌରକାରକ, ସଙ୍କରଜାତି ବିଶେଷ ।
ନାପିତଶାଳା--ସ୍ତ୍ରୀ.ବି.(୬ତତ୍)କ୍ଷୌରଗୃହ
ନାପିତାୟନ—ପୁଂ.ବି.(ନାପିତ+ଆୟନ) ନାପିତ ସନ୍ତାନ ।    [ ରୁଣୀ ।
ନାପିତୀ—ସ୍ତ୍ରୀ. ବି. (ନାପିତ+ଈ)ଭଣ୍ଡାନାପିତାଣୀ—ସ୍ତ୍ରୀ. ବି. ଭଣ୍ଡାରୁଣୀ ।
ନାପିତ୍ୟ—ବି. (ନାପିତ+ଷ୍ଣ.ଯ) ଭଣ୍ଡାରିର କାର୍ଯ୍ୟ, ନାପିତସନ୍ତାନ ।
ନାଭ—ପୁଂ.ବି.ସୂର୍ଯ୍ୟବଂଶୀୟ ନୃପଭେଦ, ଭଗୀରଥଙ୍କ ପୁତ୍ର ।
ନାଭକ—କ୍ଲୀ. ବି.(ନଭ+ଅକ)ଅଁଳା, ହରିଡ଼ା, ହରିତକୀ, ବନଜାତ ବୃକ୍ଷ ।
ନାଭସ—ପୁଂ. ବି. (ନଭସ୍+ଅ) ଲଗ୍ନ ଓ ତଦବସ୍ଥାନଭେଦସ୍ଥିତ ଗ୍ରହଭେଦ ଦ୍ୱାରା ଯୋଗ ବିଶେଷ.ଉତ୍ପାତ ବିଶେଷ. (ବିଂ) ସ୍ୱର୍ଗୀୟ, ଆକାଶସ୍ଥ ।
ନାଭା ଗ୍ରା. ବି. ହିନ୍ଦିଭକ୍ତମାଳାଗ୍ରନ୍ଥରେ ଉଲ୍ଲିଖିତ ଜଣେ ବୈଷ୍ଣବ ଭକ୍ତ,ପଞ୍ଜାବର ଗୋଟିଏ ଶିଖରାଜ ଶାସିତ ରାଜ୍ୟ ।
ନାଭାକ—ପୁଂ. ବି. ଋଷି ବିଶେଷ ।
ନାଭାଗ—ପୁଂ. ବି. ଭଗୀରଥଙ୍କ ନନ୍ଦନ ଶ୍ରୁତଙ୍କ ପୁତ୍ର, ସୂର୍ଯ୍ୟବଂଶୀୟ ଯଜାତି ରାଜାଙ୍କ ପୁତ୍ର, ବୈବସ୍ୱତମନୁଙ୍କ ପୁତ୍ର. କାରୂଷ ବଂଶର ଦିଷ୍ଟରାଜାଙ୍କ ପୁତ୍ର ।
ନାଭାଗାରିଷ୍ଟ—ପୁଂ. ବି. ବୈବସ୍ୱତମନୁଙ୍କ ପୁତ୍ର ।
ନାଭାଦାସ—ପୁଂ. ବି. "ଭକ୍ତମାଳ"ରଚୟିତା ପ୍ରସିଦ୍ଧ ବୈଷ୍ଣବ କବି ।
ନାଭାନେଦିଷ୍ଟ—ପୁଂ.ବି. ବୈବସ୍ୱତମନୁଙ୍କ ପୁତ୍ର ଋକ୍‌ମନ୍ତ୍ରଦ୍ରଷ୍ଟା ଏକଋଷି ।
ନାଭି—ପୁଂ. ବି. (ନହ+ଇ) ସମ୍ରାଟ, ଚକ୍ରବର୍ତ୍ତୀ, ଚକର ପିଣ୍ଡି. ଚକ୍ରମଧ୍ୟ, କ୍ଷତ୍ରିୟ, ବୃତ୍ତର କେନ୍ଦ୍ର. କସ୍ତୁରୀ, ମଧ୍ୟ. ଗୃହ, ଯଜ୍ଞଶାଳା, ଦଳପତି, ଗୋତ୍ର, ପ୍ରଧାନ, ମହାଦେବ, ପ୍ରାଙ୍ଗଣ, ଶିଶୁର ନାଭିସଙ୍ଗେ ଫୁଲଲାଗିଥିବା ନାଡ଼ି, ଲକ୍ଷି, ଉଦରର ମଧ୍ୟଭାଗରେ ଥିବା ଗର୍ତ୍ତାକାର ଆବର୍ତ୍ତ, ପ୍ରିୟବ୍ରତରାଜାଙ୍କ ପୌତ୍ର, ଅଗ୍ନିଧ୍ରରାଜାଙ୍କ ନଅପୁତ୍ରମଧ୍ୟୁଁ ଏକତମ ଓ ଋଷଭଙ୍କ ପିତା.ମହି ।
ନାଭିକଣ୍ଟକ—ପୁଂ.ବି.ଉଚ୍ଚନାଭି, ଗାଣ୍ଡୁ, ଫୁଲଲକ୍ଷି ।
ନାଭିକପୁର—କ୍ଳୀ.ବି. ଉତ୍ତର କୁରୁସ୍ଥିତ ଗୋଟିଏ ନଗର ।
ନାଭିକମଳ—ବି. ନାଭିପଦ୍ମ, ନାଭିର ନିମ୍ନଦେଶସ୍ଥ ଶରୀରମଧ୍ୟସ୍ଥ ପ୍ରଦେଶ ।
ନାଭିକା—ସ୍ତ୍ରୀ.ବି (ନାଭି+କୈ+ଅ+ଆ) କଟଭୀ ବୃକ୍ଷ, ନାଭିପରି ଗର୍ତ୍ତ ।
ନାଭିକୁଣ୍ଡ—ବି.(୬ତତ୍)ନାଭିର ଆବର୍ତ୍ତ, ଲକ୍ଷିମୁଣ୍ଡା ।
ନାଭିଖଣ୍ଡ—ବି. ଅଗ୍ନୀଧ୍ର ରାଜାଙ୍କ ପୁତ୍ରକୁ ଜମ୍ବୁଦ୍ୱୀପର ଯେଉଁ ଖଣ୍ଡ ବାଣ୍ଟିଦେଇଥିଲେ, ଭାରତବର୍ଷ ।
ନାଭିଗୟା—ବି. ବୈତରଣୀ ତୀରସ୍ଥିତ ଯାଜପୁର ନଗରର ପୌରାଣିକ ନାମ ।
ନାଭିଗୁଡ଼ୁକ—ପୁଂ. ବି. ନାଭି ଆବର୍ତ୍ତ ବିଶେଷ, ଲକ୍ଷିଗାତ ।
ନାଭିଗୁପ୍ତ—ପୁଂ. ବି. ପ୍ରିୟବ୍ରତ ରାଜାଙ୍କ ପୁତ୍ର ।
ନାଭିଗୋଲକ—ପୁଂ.ବି.ନାଭିର ଆବର୍ତ୍ତବିଶେଷ, ଲକ୍ଷିମୁଣ୍ଡା, ଲକ୍ଷିଗାତ ।
ନାଭିଜ—ପୁଂ. ବି. (ନାଭି+ଜନ+ଡ. ଅ ) ଚତୁର୍ମୁଖ ବ୍ରହ୍ମା, (ବିଂ) ନାଭିରୁ ଉତ୍ପନ୍ନ ।
ନାଭିଦେଶ—ବି.(୬ତତ୍) ନାଭିର ନିକଟସ୍ଥ ପ୍ରଦେଶ, ନାଭିମୁଣ୍ଡା ।
ନାଭିନାଡ଼ୀ—ସ୍ତ୍ରୀ.ବି.(୬ତତ୍)ଅନ୍ତକୋଷ ରୋଗ, ନାଭିନାଡ଼, ଗର୍ଭନାଡ଼, ଶିଶୁର ନାଭି ସଙ୍ଗେ ଫୁଲକୁ ସଂଯୁକ୍ତ କରିଥିବା ନାଡ଼ ।
ନାଭିନାଳ—କ୍ଳୀ. ବି. ନାଭିସ୍ଥିତ ନାଳ, ନାଭିନାଡ଼ୀ ଦେଖ ।
ନାଭିପଦ୍ମ—କ୍ଳୀ. ବି. ପଦ୍ମତୁଲ୍ୟ ସୁନ୍ଦର ନାଭି, ମଣିପୁର ଚକ୍ର ।
ନାଭିପାକ—ପୁଂ.ବି (୬ତତ୍)ବାଳରୋଗବିଶେଷ, ନାଭିର ଘାଆ ହୋଇ ପାଚିଯିବା ରୋଗ ।
ନାଭିଭୂ—ପୁଂ. ବି. ( ନାଭି+ଭୂ+କ୍ୱିପ୍ ) ବ୍ରହ୍ମା,ଚତୁର୍ମୁଖ ବ୍ରହ୍ମା । [ଦେଖ ।
ନାଭିମଣ୍ଡଳ—ବି. ( ୬ତତ୍ ) ନାଭିଦେଶ
ନାଭିଲ—ବିଂ.(ନାଭି+ଲ) ଦୀର୍ଘ ନାଭି-

ଯୁକ୍ତ, ଗାଣ୍ଠୁଳିଥିଆ, (ବ) କୋଡ଼ଗତ. ସ୍ତ୍ରୀମାନଙ୍କ ଉରୁସନ୍ଧି, ଗଣ୍ଠି, ନାଭିକୂପ, ନାଭିର ଗଣ୍ଠି,ଶାରୀରିକ କଷ୍ଟ, କୁଞ୍ଚି ।

ନାଭିବର୍ଦ୍ଧନ—କ୍ଲୀ. ବ. ଉଦରସ୍ଥ ରୋଗବିଶେଷ, ଅନ୍ତ୍ରକୋଷ ରୋଗ. ସ୍ଥୂଳକାୟତ୍ୱ, ଦେହର ମେଦୋବୃଦ୍ଧି ।

ନାଭିବର୍ଷ—ପୁଂ. ବ. ନାଭିଖଣ୍ଡ ଦେଖ ।

ନାଭିଶଙ୍ଖ—ବ. ଶଙ୍ଖ ଦେଖ ।

ନାଭିଶୋଥ—ପୁଂ.ବ.ନାଭିପାକ ଦେଖ ।

ନାଭିସମ୍ବନ୍ଧ—ପୁଂ. ବ. ଗୋତ୍ରସମ୍ବନ୍ଧ ।

ନାଭିସରୋବର—ବ.ନାଭିକୁଣ୍ଡ ଦେଖ ।

ନାଭିସ୍ଥଳ—ବ. ( ୬ତତ୍ପୁ ) ନାଭିଦେଶ, ମଧ୍ୟସ୍ଥଳ, ହୃଦ୍‌ସ୍ଥାନ ।

ନାଭିହ୍ରଦ—ବ. (ନାଭି+ହ୍ରଦ) ନାଭିକୁଣ୍ଡ ଦେଖ ।

ନାଭୀ—ସ୍ତ୍ରୀ.ବ.(ନାଭି+ଈ)ନାଭି ଦେଖ ।

ନାଭୀଳ—କ୍ଲୀ. ବ. ( ନାଭି + ଲା + ଅ ) ନାଭିଳ ଦେଖ ।

ନାଭ୍ୟ—ବିଂ.(ନାଭି+ଯ) ନାଭିସମ୍ବନ୍ଧୀ, ନାଭିହିତ, (ପୁଂ.ବ) ମହାଦେବ ।

ନାଭ୍ୟାବର୍ତ୍ତ—ବ. ନାଭିକୁଣ୍ଡ ଦେଖ ।

ନାମ—ଅବ୍ୟ. (ନମ+ଣିଚ୍‌.ଅ) ପ୍ରକାଶ୍ୟ, କୋପ, ସ୍ୱୀକାର, ସମ୍ଭାବନା, କ୍ରୋଧ, ଉପଗମ, ନିନ୍ଦା, ବିସ୍ମୟ, ସ୍ମରଣ, ବିଭକ୍ତିହୀନ ସଂଜ୍ଞକ ଶବ୍ଦ, ବିକଳ୍ପ, (କ୍ଲୀ. ବ. ମ୍ନା+ମ.ମନ୍) ନାଁ, ଆଖ୍ୟା, ସଂଜ୍ଞାବାଚକ ଶବ୍ଦ, ସଂଜ୍ଞା, ସୁଖ୍ୟାତି, ପ୍ରସିଦ୍ଧି, ଯଶଃ, ସୁନାମ, ଉଲ୍ଲେଖ, ବିଭକ୍ତିହୀନ ଶବ୍ଦ, ଜଳ, ଶବ୍ଦ, ଧ୍ୱନି, ଭଗବାନଙ୍କ ନାମ, ଇଷ୍ଟଦେବତାଙ୍କ ନାମ, ଚିହ୍ନମାତ୍ର, ସମର୍ଥ୍ୟବାଚକ ଶବ୍ଦ, ରୂପ, ପ୍ରକାର, ଖ୍ୟାତ ।

ନାମକ—ପୁଂ. ବିଂ. ଆଖ୍ୟାତ, ଅଭିହିତ, ଉଦାହୃତ, ଅମୁକ ନାମରେ ଡକାଯାଉଥିବା, (ନମ+ଣିଚ୍‌-ମ.କ) ଅବନମିତ, ( କ ଅକ ) ଅବନମନକାରୀ, (ମ.ଅକ) ନମ୍ୟ ।

ନାମକରଣ—କ୍ଲୀ.ବ. ବୈଧାନାଦି ଦଶବିଧ ସଂସ୍କାର ମଧ୍ୟରୁ ଏକପ୍ରକାର, କୌଣସି ବ୍ୟକ୍ତି ବା ବସ୍ତୁ ବା ଅନୁଷ୍ଠାନର ପରିଚୟାର୍ଥ ତାକୁ ଗୋଟିଏ ନାମ ଦେବା ।

ନାମକରିବା—ଗ୍ରା. କ୍ରି. କୌଣସି ଜୀବର ବା ସ୍ଥାନର ନାମ ଉଲ୍ଲେଖ କରିବା, ହରିନାମ ଭଜନ କରିବା, ସୁଖ୍ୟାତି ପାଇବା, ପ୍ରସିଦ୍ଧି ଲାଭକରିବା, ପ୍ରଶଂସା କରିବା ।

ନାମକର୍ତ୍ତନ—ବ. କୌଣସି ତାଲିକାରୁ କୌଣସି ବ୍ୟକ୍ତିର ନାମ ଉଠିଯିବା, (ବିଂ) ଯେଉଁ ବ୍ୟକ୍ତିର ନାମ କାଗଜ ପତ୍ରରୁ ଉଠାଯାଇଥାଏ ।

ନାମକା—ପ୍ରା.(ସମ୍ପ)ବିଂ. ପ୍ରସିଦ୍ଧ, ନାମୀ, ମର୍ଯ୍ୟାଦାଯୁକ୍ତ ।

ନାମକୀର୍ତ୍ତନ—ବ. (୬ତତ୍ପୁ) ଭଗବାନଙ୍କ ନାମକୁ ଘୋଷିବା, କୀର୍ତ୍ତନ, ନାମସଂକୀର୍ତ୍ତନ ।

ନାମକୁ—ଗ୍ରା.କ୍ରି.ବିଂ. ନାମମାତ୍ର ଦେଖ ।

ନାମଖ୍ୟାତି—ବ. (୬ତତ୍ପୁ) ସୁଯଶଃ ।

ନାମଗନ୍ଧ—ଗ୍ରା. ବ. ଚିହ୍ନମାତ୍ର, ସାମାନ୍ୟ ମାତ୍ର ନିଦର୍ଶନ, ସୂଚନା । [ ଦେଖ

ନାମଗ୍ରହ—ବ. ( ୬ତତ୍ପୁ ) ନାମଗ୍ରହଣ

ନାମଗ୍ରହଣ—ବ. ( ୬ତତ୍ପୁ ) ନାମଧରି ଡାକିବା, ନାମଉଚ୍ଚାରଣ ।

ନାମଗ୍ରାମ—ବ.ନାମଧାମ ଦେଖ ।

ନାମଗ୍ରାହ—ବିଂ. ( ନାମ+ଗ୍ରହ+ଅ ) ନାମଗ୍ରାହକ, (ପୁଂ. ବ) ନାମଗ୍ରହଣ ।

ନାମଗ୍ରାହଂ—ଅବ୍ୟ. (ନାମ+ଗ୍ରହ+ଣମୁଲ୍) ନାମଗ୍ରହଣକରି ।

ନାମଘେନିବା—ଗ୍ରା. କ୍ରି. ଗୁରୁଙ୍କଠାରୁ ଇଷ୍ଟମନ୍ତ୍ର ଗ୍ରହଣ କରିବା ।

ନାମଘୋଷିବା—ଗ୍ରା.କ୍ରି. ଇଷ୍ଟଦେବତାଙ୍କ ନାମ ଆବୃତ୍ତି କରିବା, କୌଣସି ପ୍ରିୟ ବ୍ୟକ୍ତିଙ୍କ ବିରହରେ ତାଙ୍କ ନାମସବୁ ଆବୃତ୍ତି କରିବା, ଝୁରିବା ।

ନାମଙ୍ଗ—ଗ୍ରା. ବିଂ. ଅନିଚ୍ଛୁକ,ଅସମ୍ମତ ।

ନାମଚିହ୍ନ—ଗ୍ରା. ବ. ନାମଗନ୍ଧ ଦେଖ ।

ନାମଜପିବା—ଗ୍ରା. କ୍ରି. ଇଷ୍ଟଦେବଙ୍କ ନାମ ମନେ ମନେ ବାରମ୍ବାର ସ୍ମରଣ କରିବା, ମାଳାଦ୍ୱାରା ଇଷ୍ଟମନ୍ତ୍ର ଜପ କରିବା,କୌଣସି ପ୍ରିୟ ବ୍ୟକ୍ତିର ବିରହରେ ତାଙ୍କ ନାମକୁ ସର୍ବଦା ମନେ ପକାଇବା, ଝୁରିବା ।

ନାମଜାଦ୍—ଗ୍ରା. ବିଂ. ଯଶସ୍ୱୀ, ବିଖ୍ୟାତ, ଖ୍ୟାତିସମ୍ପନ୍ନ, (ବ୍ୟଙ୍ଗାର୍ଥ) ଦୁର୍ନାମଯୁକ୍ତ ।

ନାମଞ୍ଜୁର—ଯା.ବିଂ. ଅଗୃହୀତ,ଅସ୍ୱୀକୃତ, (ବ) ଅଗ୍ରାହ୍ୟକରିବା, ଅସମ୍ମତ ।

ନାମଞ୍ଜୁରକରିବା—ଗ୍ରା. କ୍ରି. ଅଗ୍ରାହ୍ୟ କରିବା, ଅସମ୍ମତ ହେବା ।

ନାମଡୁବା(ଡୋ)ଇବା—ଗ୍ରା.କ୍ରି.ଆପଣାର ବା ବଂଶର ସୁଖ୍ୟାତିରେ କଳଙ୍କ ଆନୟନ କରିବା ।

ନାମତଃ—ଅବ୍ୟ.ନାମକୁ,ନାମମାତ୍ର ଦେଖ

ନାମଦେବ—ଗ୍ରା. ବ. ଜଣେ ଦେବଭକ୍ତ, ମହାରାଷ୍ଟ୍ରୀୟ ଜଣେ ଭକ୍ତ କବି ।

ନାମଦେବନିମୀ—ଗ୍ରା.ବ. ମହାରାଷ୍ଟ୍ରବାସୀ ଏକଶ୍ରେଣୀର ଦରଜୀ ।

ନାମଦେବା—ଗ୍ରା. କ୍ରି. ନାଆଁଦେବା, ନାମକରଣ କରିବା ।

ନାମଦ୍ୱାଦଶୀ—ବ. ମାର୍ଗଶିର ଶୁକ୍ଳଦ୍ୱାଦଶୀଦିନ, ଗୌରୀ,କାଳୀ,ଉମା,ଦୁର୍ଗା, ଭଦ୍ରା, କାନ୍ତି, ସରସ୍ୱତୀ, ମଙ୍ଗଳା, ବୈଷ୍ଣବୀ, ଲକ୍ଷ୍ମୀ,ଶିବା ଓ ନାରାୟଣୀ ଏହି ବାରଟି ଦେବୀଙ୍କର ପୂଜାସମ୍ବଳିତ ଦେବୀପୁରାଣୋକ୍ତ ବ୍ରତବିଶେଷ ।

ନାମଧରିବା—ଗ୍ରା.କ୍ରି.ନାଁଧରିବା ଦେଖ ।

ନାମଧାତୁ—ପୁଂ. ବ. ଶବ୍ଦର ବିଶେଷ ବିଶେଷ ଅର୍ଥରେ ପ୍ରତ୍ୟୟ କରି ଯେଉଁ ଧାତୁ ନିଷ୍ପନ୍ନ ହୁଏ ।

ନାମଧାମ—ଗ୍ରା. ବ. କୌଣସି ବ୍ୟକ୍ତିର ନାମ, ବାସସ୍ଥାନ ଓ ଠିକଣା ।

ନାମଧାରକ—ପୁଂ. ବିଂ. ( ନାମ+ଧୃ+ଣକ.ଅକ ) ଯେ କୌଣସି ନାମମାତ୍ର ଧାରଣ କରିଥାଏ କିନ୍ତୁ ନାମାନୁରୂପ କୌଣସି କ୍ରିୟା କରେ ନାହିଁ ।

ନାମଧାରୀ—ପୁଂ.ବ . ନାମଧାରକ ଦେଖ (ସ୍ତ୍ରୀ) ନାମଧାରିଣୀ ।

ନାମଧେୟ—କ୍ଲୀ. ବ. ନାମବାଚକ ଶବ୍ଦ,

ଯେଉଁ ଶବ୍ଦଦ୍ୱାରା କୌଣସି ବ୍ୟକ୍ତି ବା ବସ୍ତୁକୁ ଡକାଯାଏ, ଶିଶୁର ନାମକରଣ ଉତ୍ସବ ।

**ନାମନାମିକ**—ପୁଂ. ବି. (ନାମ+ନାମ+ଇକ) ପରମେଶ୍ୱର, ବିଷ୍ଣୁ ।

**ନାମନିଶାଣ**—ଯା. ବି. ନାମଗନ୍ଧ, ସୂଚନାମାତ୍ର, କୌଣସି ବ୍ୟକ୍ତିର ନାମ ଧାମ ଓ ପରିଚୟସୂଚକ ଚିହ୍ନ ।

**ନାମନେବା**—ଗ୍ରା. କ୍ରି. ହରିନାମ ଭଜିବା, ସୁଖ୍ୟାତି ପାଇବା, ଗୁରୁଙ୍କଠାରୁ ମନ୍ତ୍ର ଗ୍ରହଣ କରିବା ।

**ନାମବର୍ଜିତ**—ବିଂ. (୩ତତ୍) ଅନାମକ, ଯାହାର ନାମ ନାହିଁ, ଅପ୍ରସିଦ୍ଧ, ନିର୍ବୋଧ

**ନାମବାଚକ**—ବିଂ. ଯେଉଁ ବିଶେଷ୍ୟ ପଦ ନାମକୁ ବୁଝାଏ ।

**ନାମବାଚକବିଶେଷ୍ୟ**—ବି. କୌଣସି ବ୍ୟକ୍ତିର ବା ପ୍ରାଣୀର ବା ସ୍ଥାନର ନାମ

**ନାମବୁଡ଼ାଇବା**—ଗ୍ରା. କ୍ରି. ନାମବୁଡ଼ାଇବା ଦେଖ । [ ଦେଖ ।

**ନାମଭଜିବା**—ଗ୍ରା. କ୍ରି. ନାମଘୋଷିବା

**ନାମମାତ୍ର**—ବିଂ. (ବ. ବ୍ରୀ) ସ୍ୱଗାର୍ଥୀୟସ୍ଥାନ, ସଂଜ୍ଞାମାତ୍ରଧାରୀ, (ଅବ୍ୟ) କୌଣସି ବ୍ୟକ୍ତିର ବା ବସ୍ତୁର ନାମ ଉଲ୍ଲେଖମାତ୍ର, ଫଳତଃ ନୁହେ, କେବଳ ନାଁରେ, ନାଁକୁ

**ନାମମାଳା**—ସ୍ତ୍ରୀ. ବି. (୬ତତ୍) ଅଭିଧାନ ବିଶେଷ ।

**ନାମମୁଦ୍ରା**—ସ୍ତ୍ରୀ. ବି. (କ. ଧା) ଅଙ୍ଗୁରୀୟକ ଭେଦ, ଛାପାମୁଦି ।

**ନାମଯଜ୍ଞ**—ପୁଂ. ବି. ବହୁକାଳ ପର୍ଯ୍ୟନ୍ତ ନାମକୀର୍ତ୍ତନ ସ୍ୱରୂପ ଯଜ୍ଞ ।

**ନାମଯଶଃ**—ବି. (୬ତତ୍) ସୁଖ୍ୟାତି ।

**ନାମରଖିବା**—ଗ୍ରା. କ୍ରି. ସୁନାମ ବା ଦୁର୍ନାମକୁ ବଜାଏ ରଖିବା, ନାମକରଣ କରିବା, ସ୍ଥାୟୀ କୀର୍ତ୍ତି କରିବା ଦ୍ୱାରା ଭବିଷ୍ୟତରେ ଆପଣାର ଖ୍ୟାତି ବଜାଏ ରଖିବାର ଉପାୟ କରିବା । [ ଦେଖ ।

**ନାମରଟିବା**—ଗ୍ରା. କ୍ରି. ନାମଘୋଷିବା

**ନାମରଦ**—ଗ୍ରା. ପୁଂ. ବିଂ. ଅଗାର, ଖୁରୁ, ଅମନୁଷ୍ୟ, ମାଇଚିଆ, ପୁରୁଷତ୍ୱହୀନ ।

**ନାମରିଡ଼ି**—ପ୍ରା. (ଗଞ୍ଜାମ) ବି. ବିଶ୍ୱାସ ।

**ନାମଲିଙ୍ଗ**—କ୍ଲୀ. ବି. (୬ତତ୍) ଶବ୍ଦ ଓ ଲିଙ୍ଗ, ବିଶେଷ୍ୟ ପଦମାନଙ୍କର ଲିଙ୍ଗ ।

**ନାମଲୋପହେବା**—ଗ୍ରା. ବି. ମୃତହେବା, ଅପଖ୍ୟାତି ।

**ନାମଶିକ**—ଯା. ବି. ଅଖ୍ୟାତି, ବଦନାମୀ, ନିନ୍ଦା, ଲଜ୍ଜା, ଅପମାନ, ବେଇଜ୍ଜତି, (ଯା. ବିଂ) ନିନ୍ଦାକର, ବେଇଜ୍ଜତିଆ, ଅଖ୍ୟାତିଜନକ, ଲଜ୍ଜିତ ।

**ନାମଶେଷ**—ବିଂ. (ବ. ବ୍ରୀ) ମୃତ, ନଷ୍ଟ, ବିଧ୍ୱସ୍ତ, ଯାହାର ଅସ୍ତିତ୍ୱ ଲୋପହୋଇ ଅଛି ଓ କେବଳ କଥାମାତ୍ର ଶେଷ, ଦେହଶୂନ୍ୟ, (ବି) ମୃତ୍ୟୁ ।

**ନାମସଂକୀର୍ତ୍ତନ**—ବି. (୬ତତ୍) ଦେବତାଙ୍କ ନାମକୁ ପାଟିକରି ବାରମ୍ବାର ଆବୃତ୍ତି କରିବା, ଖୋଲ କରତାଳ ସାହାଯ୍ୟରେ ଦେବତାଙ୍କ ନାମର ସ୍ତବ ଗାନକରିବା ।

**ନାମସଂଗ୍ରହ**—ପୁଂ. ବି. ଶବ୍ଦସକଳର ଏକତ୍ର ସଂଗ୍ରହ, ଅଭିଧାନ, ବିଶେଷ୍ୟ ପଦମାନଙ୍କର ସଂଗ୍ରହ ।

**ନାମସାର**—ଗ୍ରା. ବି. ନାମମାତ୍ର ।

**ନାମସୁଧା**—ବି. ଅମୃତପରି ମଧୁର ନାମ, ସୁଧାମୟ ନାମ ।

**ନାମସ୍ମରଣ**—କ୍ଲୀ. ବି. (୬ତତ୍) ପ୍ରାତଃ କାଳେ ଏବଂ ବିପଦରେ ଈଶ୍ୱରଙ୍କ ନାମ ଚିନ୍ତା ଓ ଉଚ୍ଚାରଣ ।

**ନାମହୀନ**—ବିଂ. (୩ତତ୍) ଅଖ୍ୟାତି, ଅନାମକ, ଯାହାର ନାମ ନାହିଁ ।

**ନାମା**—ବିଂ. ନାମକ, (ଯା ପ୍ରତ୍ୟୟ) ନିଦର୍ଶନପତ୍ର, ଦଲିଲ, ନାମଧାରୀ, ନାମଖ୍ୟାତ, ନାମଯୁକ୍ତ ।

**ନାମଖ୍ୟାତିକ**—ପୁଂ. ବି. (ନାମଖ୍ୟାତ+ଇକ) ନାମଖ୍ୟାତ ପ୍ରତିପାଦକ ଗ୍ରନ୍ଥର ବ୍ୟାଖ୍ୟାନ ଗ୍ରନ୍ଥ ।

**ନାମାଙ୍କ**—ବିଂ. (୩ତତ୍) ନାମାକ୍ଷରଦ୍ୱାରା ଅଙ୍କିତ, (୬ତତ୍) ନାମର ଚିହ୍ନ ବା ଅକ୍ଷର, (ସ୍ତ୍ରୀ) ନାମାଙ୍କା ।

**ନାମାଙ୍କିତ**—ବିଂ. (୩ତତ୍) ଯହିଁରେ କୌଣସି ବ୍ୟକ୍ତିଙ୍କ ନାମ ଅଙ୍କିତ ବା ଲିଖିତ ହୋଇଅଛି, ନାମଯୁକ୍ତ, ସ୍ୱାକ୍ଷରିତ, ନାମ ଚିହ୍ନଯୁକ୍ତ, ନାମର ମୋହରଯୁକ୍ତ ।

**ନାମାତ୍ର**—ଗ୍ରା. ଅବ୍ୟ. ନାମମାତ୍ର ଦେଖ ।

**ନାମାଦେଶଂ**—ଅବ୍ୟ. (ନାମ+ଆ+ଦିଶ+ଣମୁଲ୍) ନାମ ଆଦେଶକରି ।

**ନାମାନୁଶାସନ**—କ୍ଲୀ. ବି. (ନାମ+ଅନୁ+ଶାସ୍+ଣ. ଅନ) ବିଶେଷ୍ୟ ଶବ୍ଦମାନଙ୍କର ଲିଙ୍ଗବିଷୟକ ନିୟମ, ଶବ୍ଦସମୂହର ଅର୍ଥବିଶେଷ ଜ୍ଞାପକ ଗ୍ରନ୍ଥ, ଅଭିଧାନ, କୋଷ ।

**ନାମାନ୍ତର**—ବି. (କ. ଧା) ଅନ୍ୟନାମ ।

**ନାମାପରାଧ**—ପୁଂ. ବି. (କ. ଧା) ସାଧୁମାନଙ୍କର ନିନ୍ଦା, ସାଧୁନିନ୍ଦାରୂପ ପାପ ।

**ନାମାପରାଧୀ**—ପୁଂ. ବିଂ. ଯେ ସାଧୁନିନ୍ଦାରୂପ ପାପ କରେ ।

**ନାମାବଲମ୍ବନ**—ବି. (୬ତତ୍) ଦେବତାଙ୍କ ନାମ ଉଚ୍ଚାରଣ କରି ବିପଦରୁ ଉଦ୍ଧାରହେବା ରୂପ ଉପାୟ ।

**ନାମାବଳୀ**—ସ୍ତ୍ରୀ. ବି. (୬ତତ୍) ନାମସମୂହ, ନାମର ତାଲିକା, ଦେବତାମାନଙ୍କର ନାମାଙ୍କିତ ଛିଟା କପଡ଼ା । [ ନ୍ତର ।

**ନାମାଭିହାର**—ପୁଂ. ବି. (୬ତତ୍) ନାମା-

**ନାମାମୃତ**—ବି. (ନାମ+ଅମୃତ) ଅମୃତତୁଲ୍ୟ ହରିନାମ, ଆପଣାର ଅତିପ୍ରିୟ ବ୍ୟକ୍ତିର ନାମ ।

**ନାମାଶ୍ରୟ**—ବି. ନାମାବଲମ୍ବନ ଦେଖ ।

**ନାମି**—ପୁଂ. ବି. ବିଷ୍ଣୁ ।

**ନାମିକ**—ବିଂ. (ନାମନ୍+ଇକ) ନାମସମ୍ବନ୍ଧୀୟ, ବିଶେଷ୍ୟ ପଦବାଚ୍ୟ, (ବିଂ) ନାମଧାରୀ, ନାମମାତ୍ର ।

**ନାମିତ**—ବିଂ. (ନମ+ଣିଚ୍+ର୍ମ. ତ) ନତ, ସ୍ଥାପିତ, ଯାହାକୁ ନତ କରାଯାଇଅଛି, (ଗ୍ରା. ବିଂ) ନାମକ, ନାମଯୁକ୍ତ, ନାମମାତ୍ର ।

**ନାମୀ**—ପୁଂ. ବିଂ. (ନାମନ୍+ଇନ୍) ନାମଧାରୀ, (ଗ୍ରା. ବିଂ) ପ୍ରସିଦ୍ଧ ।

**ନାମୁନାସିବ୍**—ଯା. ବିଂ. ଅନୁଚିତ, ଅନ୍ୟାୟ ।

**ନାମୁମ୍କିନ୍**—ଯା. ବିଂ. ଅସମ୍ଭବ ।

**ନାମେ**—ଗ୍ରା. ଅବ୍ୟ. ବିରୋଧରେ, ନାମୋ-

ଉଲ୍ଲେଖ ପୂର୍ବକ ।

ନାମେଣ—ଗ୍ରା. ପଦ୍ୟ, ଅବ୍ୟ.(ସଂ-ନାମ୍ନା) ନାମଧାରୀ, ନାମରେ ।

ନାମୋଚ୍ଚାରଣ—କ୍ଲୀ.ବ (୬ତତ୍) ନାମକଥନ,ଅନ୍ତିମସମୟେ ବା ଶଙ୍କାସାପେକାଳେ ନାରାୟଣଙ୍କର ନାମକଥନ ।

ନାମୋତ୍ସବ—ପୁଂ, ବ, (କ.ଧା) ନାମଗାନରୂପ ଆନନ୍ଦଜନକ ବ୍ୟାପାରବିଶେଷ, ଉତ୍ସବ ସହକାରେ ନାମ ସଂକୀର୍ତ୍ତନ ।

ନାମ୍ନା—ପୁଂ. ବିଂ. ନାମଧାରୀ ।

ନାମ୍ବ—ପୁଂ. ବ, ଅକୃଷ୍ଟପକ୍ୱ ଶସ୍ୟ, ସ୍ୱୟଂଜାତ ଶସ୍ୟ ।

ନାମ୍ୟ—ବିଂ. ( ନମ+ଣିଚ୍+ମଁ,ଯ ) ନୁଆଁ ହେବାର ଉପଯୁକ୍ତ, ନମନୀୟ ।

ନାୟ—ପୁଂ. ବ, (ନୀ + ଘ.ଅ) ନୟ. ନୀତି, ପ୍ରାପଣ, ନେବା, ଉପାୟ, ଯୁକ୍ତି, (ବିଂ-କ.ତ) ନେତା ।

ନାୟକ—ପୁଂ, ବ. (ନୀ+ଅକ) କାବ୍ୟନାଟକାଦିରେ ବର୍ଣ୍ଣିତ ପ୍ରଧାନ ପୁରୁଷ, ହାରମଧ୍ୟ ମଣି, ପରିଚାଳକ, ଶୃଙ୍ଗାରସାଧକ, ଅଧ୍ୟକ୍ଷ, ଗୁରୁ. ଉପଦେଷ୍ଟା, ଗୃହସ୍ୱାମୀ, ଅଗ୍ରେସରକ, ସେନାପତି, ସ୍ୱାମୀ, ଉପପତି, ଉଦାହରଣ, ଆଦର୍ଶ, ଶାକ୍ୟମୁନି, ଯାପକ ରାଜର ପୁତ୍ର ରାଗବିଶେଷ, ବର୍ଣ୍ଣବୃତ୍ତବିଶେଷ, ଶ୍ରେଷ୍ଠ ବା ପ୍ରଧାନ ବ୍ୟକ୍ତି, (ବିଂ) ନେତା, ଦଳଚାଳନକାରୀ, ଶ୍ରେଷ୍ଠ, (ଗ୍ରା.ବି) ରାଜା, ନାହାକ, ଜ୍ୟୋତିଃଶାସ୍ତ୍ର ଚର୍ଚ୍ଚାକାରୀ ଜାତି, ଶୂଦ୍ରମାନଙ୍କର ବଂଶୋପାଧିବିଶେଷ, ପାଣ ସବର ଆଦିଙ୍କ ବଂଶୋପାଧି, ସିପାହିମାନଙ୍କ ସର୍ଦ୍ଦାର ।

ନାୟକବଂଶ—ଗ୍ରା. ବି. ଦାକ୍ଷିଣାତ୍ୟ ମଧ୍ୟବର୍ତ୍ତୀ ମଦୁରାର ଏକ ପରାକ୍ରାନ୍ତ ରାଜବଂଶ ।

ନାୟକାଧିପ—ପୁଂ. ବି. (୬ତତ୍) ନୃପ, ରାଜା, ନରେନ୍ଦ୍ର ।

ନାୟକୀ—ସ୍ତ୍ରୀ. ବି. (ନାୟକ+ଈ) ବୀଣା ବା ସୀତାରର ପ୍ରଧାନ ତାର ।

ନାୟକୋଟ—ଗ୍ରା.ବି. ନେପାଳର ଅନ୍ତର୍ଗତ ଗୋଟିଏ ଜିଲ୍ଲା ଓ ନଗର ।

ନାୟଡୁ—କୋଚନର ଉତ୍ତରାଂଶ ନିବାସୀ ଏକଜାତି ।

ନାୟର—ଦାକ୍ଷିଣାତ୍ୟର ପ୍ରସିଦ୍ଧ ଯୋଦ୍ଧୃଜାତି, ବଡ଼ନୌକା ।

ନାୟିକା—ସ୍ତ୍ରୀ.ବି. (ନାୟକ+ଅ) ଦୁର୍ଗାଶକ୍ତି, ଶୃଙ୍ଗାରରସାବଲମ୍ବନ ବିଷ୍ଣବରୂପା ପ୍ରଧାନ ନାରୀ, ପ୍ରେମିକା ସ୍ତ୍ରୀ, ଅନ୍ତଃପୁରଚାରିଣୀ କଞ୍ଚୁକୀବିଶେଷ. କସ୍ତୂରୀବିଶେଷ, କୁଳୀନା ସ୍ତ୍ରୀ, ଭାର୍ଯ୍ୟା ।

ନାର—କ୍ଲୀ.ବି. (ନର+ଅ) ନରସମୂହ, ଜ୍ଞାନ, ସାରୂପ୍ୟମୁକ୍ତି, ବୃକ୍ଷତ୍ୱକ୍, ଶୁଣ୍ଠି, (ପୁଂ,ବି.) ସଦ୍ୟୋଜାତ ଗୋବତ୍ସ, କଅଁଳା ବାଛୁରୀ, ଜଳ, ବାଳକ.(ବିଂ) ନରସମ୍ବନ୍ଧୀୟ, ପରମାତ୍ମା ସମ୍ବନ୍ଧୀୟ, ଅଧ୍ୟାତ୍ମ, (ସ୍ତ୍ରୀ) ନାରୀ ।

ନାରକ—ପୁଂ.ବି. (ନରକ+ଅ) ନରକ, ନରକବାସୀ ବ୍ୟକ୍ତି, ନରକ ଯନ୍ତ୍ରଣା ଭୋଗର ସ୍ଥାନ, (ବିଂ)ନରକସ୍ଥ,ନରକଘଟିତ, ନରକସମ୍ବନ୍ଧୀୟ, ନରକଭୋଗୀ ।

ନାରକା—ପୁଂ. ବି. ଭୂମିପୁତ୍ର, ଅସୁରବିଶେଷ, ନାରକାସୁର ।

ନାରକୀ—ପୁଂ. ବି. ( ନାରକ+ଇନ୍ ) ନରକଭୋଗୀ, ନରକସ୍ଥ,ପାପୀ,ଅସୁରପ୍ରକୃତିକ,(ଗ୍ରା.ବି) ପାପୀ ବ୍ୟକ୍ତି ।

ନାରକୀଟ—ପୁଂ.ବିଂ ଅଗ୍ନିକୀଟ,ସ୍ୱଦତ୍ତାଶାବିହନ୍ତା, ଯେ ଆଶା ଦେଇ ପରେ ଭଙ୍ଗେ ।

ନାରକୀୟ—ବିଂ. (ନରକ+ଈୟ)ନାରକୀ ଦେଖ, (ସ୍ତ୍ରୀ) ନାରକୀୟା ।

ନାରଖାର—ଗ୍ରା.ବି. ( ସଂ-କ୍ଷାର ) ଧ୍ୱଂସ, ଛାରଖାର, ଦୁର୍ଦ୍ଦଶା, ନଷ୍ଟି, ( ବିଂ ) ବିଧ୍ୱସ୍ତ, ବିନଷ୍ଟ ।

ନାରଗୁଣି—ଗ୍ରା.ବି. (ସଂ-ନଟବୃକ୍ଷ) ନଦୀମଧ୍ୟରେ ବାହାରିବା କଣ୍ଟକର ବୃକ୍ଷବିଶେଷ, ଏକପ୍ରକାର ବନ୍ୟବୃକ୍ଷ ।

ନାରଙ୍ଗ—କ୍ଲୀ.ବି. (ନୃ+ଅଙ୍ଗ) ଗାଜର, (ପୁଂ.ବି)ଶୁକପକ୍ଷୀ, ପିପ୍ପଳୀରସ,ଯମଜପ୍ରାଣୀ, ବିଟ, ଜାର,ଫଳ ବୃକ୍ଷବିଶେଷ, ଏକପ୍ରକାର ମିଠାଲେମ୍ବୁ । [ ଦେଖ ।

ନାରଙ୍ଗକ—ବି. (ନାରଙ୍ଗ+କ)ନାରଙ୍ଗ

ନରଙ୍ଗକ୍ଷୀରିଣୀ—ସ୍ତ୍ରୀ.ବି. କ୍ଷୀରିକାବିଶେଷ

ନାରଙ୍ଗୀ—ଗ୍ରା. ବିଂ. ପାଚିଲା ନାରଙ୍ଗ ଲେମ୍ବୁପରି ବର୍ଣ୍ଣବିଶିଷ୍ଟ,ନାଲିମିଶା ହଳଦିଆ, (ବି)ନାଲିମିଶା ହଳଦିଆ ବର୍ଣ୍ଣ ।

ନାରଜୀବନ—ବି. ସ୍ୱର୍ଣ୍ଣ ।

ନାରଦ—ପୁଂ.ବି. ( ନାର+ଦା + ଅ ) ବ୍ରହ୍ମାଙ୍କ ପୁତ୍ର ଋଷିବିଶେଷ, ଅଷ୍ଟାଦଶ ପୁରାଣ ମଧ୍ୟରୁ ଗୋଟିଏ ପୁରାଣ, ଶାକଦ୍ୱୀପସ୍ଥ ପର୍ବତବିଶେଷ, ବିଶ୍ୱାମିତ୍ରଙ୍କର ଏକପୁତ୍ର ପ୍ରଜାପତିବିଶେଷ, ଗନ୍ଧର୍ବବିଶେଷ,(ଗ୍ରା.ବି)ଯେ ପରସ୍ପରେ କଳିମଞ୍ଜି ବୁଣେ, (ବିଂ)ଦାନ୍ତସ୍ଥାନ,ପାକୁଆ ।

ନାରଦକୁଣ୍ଡ—ବୃନ୍ଦାବନସ୍ଥିତ ଲୀଳାସ୍ଥାନବିଶେଷ ।

ନାରଦପଞ୍ଚରାତ୍ର—କ୍ଲୀ. ବି. ନାରଦକୃତ ପଞ୍ଚରାତ୍ର ତନ୍ତ୍ରବିଶେଷ ।

ନାରଦପୁରାଣ—କ୍ଲୀ. ବି. ବୃହନ୍ନାରଦୀୟ ନାମକ ଉପପୁରାଣବିଶେଷ ।

ନାରଦଶିକ୍ଷା—ସ୍ତ୍ରୀ. ବି. ନାରଦକୃତ ବର୍ଣ୍ଣୋଚ୍ଚାରଣ ଶିକ୍ଷାବିଶେଷ । [ ଶାସ୍ତ୍ର ।

ନାରଦସଂହିତା—ବି. ଏକପ୍ରକାର ଧର୍ମ-

ନାରଦସ୍ମୃତି—ବି. ନାରଦକୃତ ହିନ୍ଦୁ ବ୍ୟବସ୍ଥା ଶାସ୍ତ୍ର ।

ନାରଦି—ପୁଂ.ବି. ବିଶ୍ୱାମିତ୍ରଙ୍କର ପୁତ୍ର ।

ନାରଦୀୟ—କ୍ଲୀ. ବି. ବେଦବ୍ୟାସ କୃତ ନାରଦଙ୍କ ପ୍ରତି ସନକାଦିଙ୍କ ଉପଦେଶାତ୍ମକ ଏକପ୍ରକାର ମହାପୁରାଣ, ( ବିଂ ) ନାରଦସମ୍ବନ୍ଧୀୟ ।

ନାରଦେଶ୍ୱରତୀର୍ଥ—କ୍ଲୀ.ବି.ତୀର୍ଥବିଶେଷ ।

ନାରସିଂହ—କ୍ଲୀ.ବି. ( ନରସିଂହ+ଅ ) ନରସିଂହ ଚରିତାଖ୍ୟାନ ଉପପୁରାଣବିଶେଷ, ନରସିଂହ ରୂପଧାରୀ ବିଷ୍ଣୁ, ତନ୍ତ୍ରବିଶେଷ, (ବିଂ) ନରସିଂହ ଅବତାର ସମ୍ବନ୍ଧୀୟ, ନୃସିଂହ ରୂପବିଶିଷ୍ଟ ।

**ନାରସିଂହବପୁଃ**—ପୁଂ.ବି. ନରସିଂହରୂପୀ ବିଷ୍ଣୁ ।

**ନାରସିଂହୀ**—ସ୍ତ୍ରୀ. ବି. ନରସିଂହ ମୂର୍ତ୍ତି-ଧାରିଣୀ ଦୁର୍ଗାଙ୍କ ମୂର୍ତ୍ତି ।

**ନାରା**—ସ୍ତ୍ରୀ.ବି. (ନର+ଅ+ଆ) ଜଳ, ନାର ଦେଖ ।

**ନାରାଚ**—ପୁଂ.ବି. ସମସ୍ତପ୍ରକାର ଲୌହ-ମୟ ବାଣ,ଦୁର୍ଦ୍ଦିନ, ମେଘାଚ୍ଛନ୍ନ ଦିବସ, ଛନ୍ଦୋବିଶେଷ ।

**ନାରାଚଘୃତ**—କ୍ଲୀ.ବି. ଘୃତୌଷଧବିଶେଷ

**ନାରାଚଚୂର୍ଣ୍ଣ**—କ୍ଲୀ.ବି.ଚୂର୍ଣ୍ଣୌଷଧବିଶେଷ ।

**ନାରାଚରସ**—ପୁଂ. ବି. ଭେଦୀ ଔଷଧ-ବିଶେଷ ।

**ନାରାଚିକା**—ସ୍ତ୍ରୀ.ବି. (ନାରାଚ+ଇକ+ଆ) ନାରାଚୀ ଛନ୍ଦୋବିଶେଷ ।

**ନାରାଚୀ**—ସ୍ତ୍ରୀ.ବି. (ନାରାଚ+ଅ+ଈ) ନକ୍ତି),ତରାଜୁ, ବିଷାକାଠି, ବଣିଆଙ୍କ ନକ୍ତି ।

**ନାରାଜ**—ଗ୍ରା.ବି. ବିଣ, (ଯା.ବଂ) ଅସ-ନ୍ତୁଷ୍ଟ, ଅପ୍ରସନ୍ନ, ଅନିଚ୍ଛୁକ, ରୁଷ୍ଟ ।

**ନାରାଜି**—ଗ୍ରା.ବି.ଅସନ୍ତୋଷ, ଅପ୍ରସନ୍ନତା, ଅନିଚ୍ଛା, ଅଟମ୍ପିତ୍, କ୍ରୋଧ, ରୋଷ ।

**ନାରାୟଣ**—ପୁଂ.ବି. ( ନାର+ଅୟନ ) (ବି.ଗ୍ରା)ବିଷ୍ଣୁ, ପରମାତ୍ମା, ଦୁର୍ଯ୍ୟୋଧନଙ୍କ ସୈନ୍ୟବିଶେଷ, ଧର୍ମପୁତ୍ର ଋଷିବିଶେଷ, କୃଷ୍ଣଯଜୁର୍ବେଦାନ୍ତର୍ଗତ ଉପନିଷଦ୍ ବିଶେଷ, ଅଜାମିଳନାମକ ମହାପାପୀର ପୁତ୍ର, ପୌଷମାସ, ‘ଅ’ ଅକ୍ଷର,ଅସ୍ତ୍ର-ବିଶେଷ ।

**ନାରାୟଣଆଚାର୍ଯ୍ୟ**—ଗ୍ରା. ବି. ସୁଲକ୍ଷଣା ନାମକ ଆଦିରସାତ୍ମକ ଖଣ୍ଡିଏ କାବ୍ୟର ରଚୟିତା ।

**ନାରାୟଣକ୍ଷେତ୍ର**—କ୍ଲୀ. ବି. ବିଷ୍ଣୁକ୍ଷେତ୍ର, ଗଙ୍ଗା ପ୍ରବାହରୁ, ଚାରିହାତ ପରିମିତ ଦୂର ପର୍ଯ୍ୟନ୍ତ ସ୍ଥାନ ।

**ନାରାୟଣଗାୟତ୍ରୀ**—ବି. ତୈତ୍ତିରୀୟ ଆର-ଣ୍ୟକରେ ଲିଖିତ ନାରାୟଣଦେବଙ୍କ-ନାମ ସମ୍ବଳିତ ଗାୟତ୍ରୀ ।

**ନାରାୟଣଚୂର୍ଣ୍ଣ**—କ୍ଲୀ.ବି. ସର୍ବ ରୋଗହର ଚୂର୍ଣ୍ଣୌଷଧିବିଶେଷ ।

**ନାରାୟଣଘୃତ**—କ୍ଲୀ.ବି.ଘୃତୌଷଧି ବିଶେଷ

**ନାରାୟଣତୀର୍ଥସ୍ୱାମୀ**—ପୁଂ.ବି.ଗଙ୍ଗାଲହରି ଓ ତାହାର ଟୀକାକାର ।

**ନାରାୟଣତୈଳ**—କ୍ଲୀ.ବି. ତୈଳୌଷଧ-ବିଶେଷ ।

**ନାରାୟଣପଇବା**—ଗ୍ରା.କ୍ରି. ମରିଯିବା ।

**ନାରାୟଣପୁରୋହିତ**—ଗ୍ରା. ବି. ଜଣେ ଓଡ଼ିଆ କବି ।

**ନାରାୟଣପ୍ରିୟ**—ପୁଂ. ବି. (ବି.ଗ୍ରା) ଶିବ, ପୀତଚନ୍ଦନ ।

**ନାରାୟଣବର୍ମ**—ବିଂ. ନାରାୟଣମୟ, (ବି) ଶ୍ରେଷ୍ଠ ନାରାୟଣକବଚ ।

**ନାରାୟଣବଳି**—ପୁଂ. ବି. ଆତ୍ମଘାତଦ୍ୱାରା ମୃତବ୍ୟକ୍ତିର ପତିତ ଆତ୍ମାର ପ୍ରାୟଶ୍ଚିତ୍ତ ପାଇଁ ନାରାୟଣ ଆଦି ପଞ୍ଚ ଦେବତାଙ୍କ ଉଦ୍ଦେଶ୍ୟରେ ଦିଆଯିବା ବଳି ।

**ନାରାୟଣସ୍ମୃତି**—ହେମାଦ୍ରି ଓ ମାଧବା-ଚାର୍ଯ୍ୟ ଧୃତ ଖଣ୍ଡିଏ ପ୍ରାଚୀନ ଧର୍ମଶାସ୍ତ୍ର ।

**ନାରାୟଣସ୍ୱାମୀ**—ଦାକ୍ଷିଣାତ୍ୟର ପଶ୍ଚିମାଂ-ଶରେ ବହୁବ୍ୟାପୀଏକ ଧର୍ମସମ୍ପ୍ରଦାୟ ।

**ନାରାୟଣାସ୍ତ୍ର**—କ୍ଲୀ. ବି. ବିଷ୍ଣୁଙ୍କର ଅସ୍ତ୍ରଭେଦ ।

**ନାରାୟଣି**—ପୁଂ. ବି. ବିଶ୍ୱାମିତ୍ରଙ୍କ ପୁତ୍ର, (ସ୍ତ୍ରୀ.ବି—ନାରାୟଣ+ଅ+ଈ) ଦୁର୍ଗା, ଲକ୍ଷ୍ମୀ, ଗଙ୍ଗା, ମୁଦ୍ଗଲ ମୁନିଙ୍କ ପତ୍ନୀ, ଶ୍ରୀକୃଷ୍ଣଙ୍କର ସେନାଭେଦ, ଶତାବରୀ ।

**ନାରାୟଣୀୟ**—ବିଂ. (ନାରାୟଣ+ଈୟ) ନାରାୟଣ ସମ୍ବନ୍ଧୀୟ, ତଦୁପାଖ୍ୟାନ ।

**ନାରାୟଣୀସେନା**—ବିଂ. ନାରାୟଣଙ୍କ ଦେହରୁ ଉଦ୍ଭୂତ ସେନା । [ଭେଦ

**ନାରାୟଣୋପନିଷତ୍**—ସ୍ତ୍ରୀ. ବି. ଉପନିଷ-

**ନାରାଶଂସ**—ପୁଂ.ବି.ପିତୃମାନଙ୍କର ସୋମ-ପାନ ସାଧନ ଚମସ, ତଦ୍ଦେବତା ପିତୃ-ଗଣ, ପିତ୍ର୍ୟ ଚମସସ୍ଥିତ ସୋମ, ମନ୍ତ୍ର-ବିଶେଷ, ( ବିଂ ) ମନୁଷ୍ୟର ପ୍ରଶଂସା ବିଷୟକ,ସ୍ତୁତି ସମ୍ବନ୍ଧୀୟ ।

**ନାରାଶଂସୀ**—ବି. ମନୁଷ୍ୟର ପ୍ରଶଂସା, ରଜା ଆଦିଙ୍କ ଦାନର ପ୍ରଶସ୍ତି ଥିବା ବେଦର ମନ୍ତ୍ରାଂଶ ।

**ନାରିକ**—ବିଂ. ( ନର+ଇକ ) ଜଳୀୟ (ଦ୍ରବ୍ୟ),ଆଧ୍ୟାତ୍ମିକ, ଜଳସମ୍ବନ୍ଧୀୟ,(ବି) ଜଳୀୟ ସ୍ଥାନ ।

**ନାରିକଲ**—ମାନ୍ଦ୍ରାଜପ୍ରଦେଶରେ କୋଚିନ ରାଜ୍ୟର ଅନ୍ତର୍ଗତ ଗୋଟିଏ ନଗର ଓ ବନ୍ଦର ।

**ନାରିକେର**—ପୁଂ.ବି. (ନାରିକ+ଇ+ଅ) ନାରିକେଳ, ନଡ଼ିଆ ।

**ନାରିକେଳ**—ପୁଂ.ବି. (ନାରିକ+ଇ+ଅ) ସ୍ୱନାମଖ୍ୟାତ ବୃକ୍ଷବିଶେଷ ଓ ତାହାର ଫଳ, ନଡ଼ିଆ ।

**ନାରିକେଳଖଣ୍ଡ**—ବି.ଚୂର୍ଣ୍ଣୌଷଧିବିଶେଷ ।

**ନାରିକେଳତୈଳ**—କ୍ଲୀ. ବି. ନାରିକେଳ ଫଳସମ୍ଭବ ତୈଳ, ନଡ଼ିଆତେଲ ।

**ନାରିକେଳାମୃତ**—କ୍ଲୀ.ବି.ଔଷଧବିଶେଷ ।

**ନାରିକେଳାସବ**—ବି. ନଡ଼ିଆ ଗଛରୁ ଉତ୍ପନ୍ନ ମଦ୍ୟ ବା ତାଡ଼ି ।

**ନାରିକେଳୀ**—ବି. ନଡ଼ିଆ,ନଡ଼ିଆ ପାଣି ବାସି ହୋଇ ତହିଁରୁ ଉତ୍ପନ୍ନ ମଦରସ ।

**ନାରିବା**—ପ୍ରା.ସମ୍ଭ.କ୍ରି.ଉଚ୍ଚାରଣ କରିବା ।

**ନାରୀ**—ଆଧୁନିକ ତିବ୍ବତର ଉ:ପଃ ଅଂଶବର୍ତ୍ତୀ ଗୋଟିଏ ଜନପଦ,(ସ୍ତ୍ରୀ.ବି) (ନର+ଅ+ଈ) ସ୍ତ୍ରୀଜାତି, ଭାର୍ଯ୍ୟା, ପତ୍ନୀ, ଧର୍ମାନୁରକ୍ତା ସ୍ତ୍ରୀ, ୨୩ ଅକ୍ଷର-ଯୁକ୍ତ ଛନ୍ଦୋବିଶେଷ ।

**ନାରୀକେଳ**—ପୁଂ.ବି.ନାରିକେଳ ଦେଖ ।

**ନାରୀକବଚ**—ପୁଂ. ବି. ସୂର୍ଯ୍ୟବଂଶୀୟ ରାଜା, ମୂଳକ ରାଜା । [ ଶାଗ ।

**ନାରୀଚ**—କ୍ଲୀ.ବି. ଶାକବିଶେଷ, ନଳିତା

**ନାରୀତରଙ୍ଗକ**—ପୁଂ. ବିଂ. ନାରୀଚିତ୍ତର-ଚଞ୍ଚଳକାରକ, ବିଟ, ଜାର, କାମୁକ, ଲମ୍ପଟ ।

**ନାରୀତୀର୍ଥ**—କ୍ଲୀ. ବି. ତୀର୍ଥବିଶେଷ, ଏହି ତୀର୍ଥ ଅତି ପବିତ୍ର ।

**ନାରୀଦୂଷଣ**—କ୍ଲୀ.ବି.(୬ତତ୍)ନାରୀମାନ-ଙ୍କର ଦୋଷବିଶେଷ ।

**ନାରୀଧର୍ମ**—ବି. ( ୬ତତ୍ ) ନାରୀଗଣର ପ୍ରାତିପାଲ୍ୟ ଧର୍ମ, ପାତିବ୍ରତ୍ୟ ଧର୍ମ,

ସ୍ତ୍ରୀମାନଙ୍କର ଗୃହ ।
ନାରୀଧର୍ଷଣ—କ୍ଲୀ.ବ.(ଷତତ୍ପୁ) ସ୍ତ୍ରୀଲୋକମାନଙ୍କ ପ୍ରତି ଅବୈଧ ବଳପ୍ରୟୋଗ, ବଳାତ୍କାର ।
ନାରୀନିର୍ଯାତନ—ବ. (ଷତତ୍ପୁ) ରମଣୀର ଅପମାନନା, ସ୍ତ୍ରୀମାନଙ୍କ ଉପରେ ଅତ୍ୟାଚାର ।
ନାରୀପରାୟଣ—ପୁଂ.ବଂ(ବ.ଗ୍ରା)ସ୍ତ୍ରୀଭକ୍ତ, ସ୍ତ୍ରୈଣ, ମାଇପ ଦ୍ୱାରା ଶାସିତ,ମାଇପବୋଲିଆ । [ ଦେଖ ।
ନାରୀହେଙ୍ଗ—ପୁଂ. ବଂ. ନାରୀଭଙ୍ଗଙ୍କ
ନାରୀପ୍ରିୟ—ପୁଂ. ବଂ. (ବ.ଗ୍ରା) ସ୍ତ୍ରୈଣ, ସ୍ତ୍ରୀଭକ୍ତ ।
ନାରୀମୟ—ବଂ. ନାରୀସ୍ୱରୂପ ।
ନାରୀମୁଖ--ପୁଂ.ବ.କୂର୍ମବିଭାଗର ନୈଋତ ଦିଗରେ ଅବସ୍ଥିତ ଦେଶବିଶେଷ ।
ନାରୀଯାନ—କ୍ଲୀ.ବ.(ଷତତ୍ପୁ) ନାରୀମାନଙ୍କର ଯାନ, ଅଶ୍ୱପ୍ରଭୃତି ।
ନାରୀରତ୍ନ—ବ.(ଷତତ୍ପୁ)ସଦ୍‌ଗୁଣଭୂଷିତା ସ୍ତ୍ରୀ
ନାରୀଷ୍ଟ—ବଂ. ( ନାରୀ + ଇଷ୍ଟ ) ନାରୀମାନଙ୍କର ପ୍ରିୟ, ଅଭିଳଷିତ ।
ନାରୀଷ୍ଟା—ସ୍ତ୍ରୀ. ବ. ମଲ୍ଲିକା ।
ନାରୀଷ୍ଠ—ବ. (ନାରୀ+ସ୍ଥା + ଅ) ଏକପ୍ରକାର ଗର୍ଦ୍ଦଭ, ଗଧ ।
ନାରୁନ୍ତୁଦ—ବଂ.(ନ+ଅରୁନ୍ତୁଦ) ଅନାହତ, ଯାହା ଦେହରେ କୌଣସି ପ୍ରକାର ଆଘାତ ଲାଗିନାହିଁ ।
ନାରେୟ—ପୁଂ. ବ. ସହାଜିତଙ୍କ ପୁତ୍ର, ଭଙ୍ଗକାରଙ୍କପୁତ୍ରବିଶେଷ ।
ନାର୍ତ୍ତିକ—ବଂ. ( ନର୍ତ୍ତି + ଇକ ) ଅଭିଷ୍ଟ ନର୍ତ୍ତିନାର୍ହ, ଅତଏବ ନର୍ତ୍ତନ ଯୋଗ୍ୟ ।
ନାର୍ପତ୍ୟ—ବଂ.(ନୃପତି+ଯ) ରାଜସମ୍ବନ୍ଧୀୟ ।
ନାର୍ମଦ—ପୁଂ. ବ. ପିତୃସମ୍ବନ୍ଧୀୟ, ପୂର୍ବପୁରୁଷ ନାମରୁ ଉତ୍ପନ୍ନ ।
ନାର୍ମଦ—ପୁଂ. ବ.(ନର୍ମଦା+ଅ)ନର୍ମଦାସମ୍ଭୂତ ବାଣ ଲିଙ୍ଗ,(ବଂ)ନର୍ମଦା ସମ୍ଭବମାତ୍ର, ନର୍ମଦା ପ୍ରବାହିତ ଜନପଦର ରାଜା, ନର୍ମଦାସମ୍ବନ୍ଧୀୟ ।

ନାର୍ମର—ପୁଂ. ବ. ଅସୁରବିଶେଷ ।
ନାର୍ମୀ—ପୁଂ. ବଂ. (ନର୍ମ+ଇନ୍) ନର୍ମଯୁକ୍ତ, (ସ୍ତ୍ରୀ) ନାର୍ମିଣୀ ।
ନାର୍ଯ୍ୟ—ପୁଂ.ବ. ନରନ୍ଧିତକାଙ୍କର ପୁତ୍ର, ନରନ୍ଧିତସମ୍ବନ୍ଧୀୟ ଯଜ୍ଞ ।
ନାର୍ଙ୍ଗ—ପୁଂ.ବ.ନାଗରଙ୍ଗ, ନାରଙ୍ଗଲେମ୍ବୁ. (କ୍ଲୀ.ବ.ଷତତ୍ପୁ)ନାରୀର ଅଙ୍ଗ ।
ନାର୍ଯ୍ୟଙ୍ଗକ—ପୁଂ. ବ. କସିତଦନ୍ତ, ଚରେଇତା ।
ନାର୍ଷଦ—ପୁଂ. ବ. ନୃଷଦ+ଅ) ନୃଷଦ ଋଷିଙ୍କ ପୁତ୍ର ।
ନାର୍ଷ୍ୟକ—ଗ୍ରା. ବ. ମଳବାର ଓ ତରୁବାଙ୍କୋଡ଼ ଦେଶବାସୀ ପ୍ରଧାନ ଜାତି ।
ନାଳ—ପୁଂ.ବ. (ନଳ + କ.ଅ)ମୃଣାଳ, ପଦ୍ମାଦିର ନାଡ଼, ଜଳ ନିର୍ଗମ, ଜଳାଦିର ପ୍ରବାହ.(କ୍ଲୀ.ବ)ହରିତାଳ, ଲିଙ୍ଗ, ଡମ୍ବୀଙ୍କ କଣ୍ଠ, ଫୁଙ୍କନଳ, ( ଗ୍ରା.ବ ) ଲାଳ, ପାଟିରୁ ବୋହିବା ଲାଳ, ଅଠାଳିଆ ରସ, ଆମ, ପେଟ ମଧ୍ୟରେ ଥିବା ଆମ, କୃତ୍ରିମ ନଦୀ, କେନାଲ, ଜଳନିର୍ଗମ ମାର୍ଗ, ଜଳପ୍ରଣାଳୀ ।
ନାଲ—ଯା. ବ. ରକ୍ତବର୍ଣ୍ଣ, ଘୋଡ଼ା ଓ ଗୋରୁଙ୍କ ଖୁରାରେ ମରାଯିବା ଅର୍ଦ୍ଧଚନ୍ଦ୍ରାକୃତି ଲୌହପତ୍ର ।
ନାଲକି—ଗ୍ରା. ବ. ମରହଟ୍ଟୀ ପାଲିଙ୍କି ।
ନାଲଗଡ଼ିବା—ଗ୍ରା.କ୍ରି. କୌଣସି ବ୍ୟକ୍ତିର ପାଟିରୁ ଲାଳ ସ୍ରବିବା, ଲାଳସ୍ରାବ ।
ନାଲଗୁଲାଲ—ଗ୍ରା. ବଂ. ଲାଲଗୁଲାଲ ଦେଖ, ସର୍ବାଙ୍ଗ ଲାଲ ହୋଇଥିବା ।
ନାଲଗୃ—ଗ୍ରା.ବ.ସ୍ପୃହା, ଲାଳସା,ଆକାଙ୍କ୍ଷା. (ଗ୍ରା.ବଂ) ଲାଳସାଯୁକ୍ତ, ଲାଳାୟିତ ।
ନାଲନାଳୁଆ—ଗ୍ରା. ବଂ. ଲାଳମୟ ।
ନାଲନ୍ଦା—ଗ୍ରା. ବ. ପ୍ରାଚୀନ ଭାରତର ଏକ ବିଶ୍ୱବିଦ୍ୟାଳୟ, ମଗଧର ଅନ୍ତର୍ଗତ ପ୍ରାଚୀନ ବୌଦ୍ଧ କ୍ଷେତ୍ର ।
ନାଲପଚପଚ—ଗ୍ରା. ବଂ. ଲାଳମୟ ।
ନାଲପଟା(ଛା)—ଗ୍ରା.ବ.ଅପରାଧୀକୁ ଦଣ୍ଡ ରୂପେ ଦିଆଯିବା ବେତାଘାତ, ଏକପ୍ରକାର ଗୁଳ୍ମ ।

ନାଲବନ୍ଦ—ଯା. ବ. ଯେଉଁ ବ୍ୟକ୍ତି ଘୋଡ଼ା ଓ ଗୋରୁଙ୍କ ଖୁରାରେ ନାଲ ଚଢ଼ାନ୍ତି, ଜାତିବିଶେଷ ।
ନାଲବନ୍ଦୀ—ଯା ବ.ଘୋଡ଼ା ଓ ଗୋରୁଙ୍କ ଖୁରାରେ ଲୁହାର ନାଲ ମାରିବା କର୍ମ ।
ନାଲବହିବା--ଗ୍ରା.କ୍ରି.ନାଲଗଡ଼ିବା ଦେଖ ।
ନାଲବଂଶ—ପୁଂ. ବ. ନଲ, ଏକପ୍ରକାର ତୃଣ, କାଣ୍ଡଶର, ବେଳିଙ୍ଗ ବାଉଁଶ ।
ନାଲବେଗ—ଗ୍ରା. ବ. ଭାର୍ଦ୍ଧ୍ୟତାଭକ୍ତିରେ ବର୍ଣ୍ଣିତ ଜଣେ ମୁସଲମାନ ବୈଷ୍ଣବର ନାମ. ମୁସଲମାନମାନଙ୍କ ମେହେନ୍ଦ୍ରମାନଙ୍କ କଳ୍ପିତ ପୀରବିଶେଷ ।
ନାଲମ୍ବୀ—ବ. ମହାଦେବଙ୍କ ବୀଣା ।
ନାଲରକ୍ତଝାଡ଼ା—ଗ୍ରା.ବ.ଆମଶୂଳାଝାଡ଼ା, ମଳ ସଙ୍ଗେ ଆମ ଓ ରକ୍ତ ବାହାରିବା ରୋଗ । [ ଦେଖ ।
ନାଲା—ସ୍ତ୍ରୀ. ବ. (ନଲ + ଅ + ଆ)ନାଲ
ନାଲି—ଗ୍ରା.ବଂ. ରକ୍ତବର୍ଣ୍ଣ ଜୀବ,ନାଲିଆ, ରଙ୍ଗିଆ । [ କିଳୁଷ ।
ନାଲିଏକ--ଯା.ବଂ.ଅନୁପଯୁକ୍ତ,ଅଯୋଗ୍ୟ ।
ନାଳି—ସ୍ତ୍ରୀ. ବ. ( ନଲ+ଣିଚ୍+ଇ ) ନାଡ଼ୀ, ଶିରା, ପଦ୍ମାଦିର ନାଡ଼, ନଳିତା ଶାଗ, ଗଣ୍ଡପୂଯା ଘା, ନାଡ଼ୀବ୍ରଣ,ଏକଦଣ୍ଡ କାଳ, ଜଳ ବହିଯିବାର ମାର୍ଗ, ପୟଣୀ, (ଗ୍ରା.ବ) ଶ୍ରେଷ୍ଠ କେନାଲ, (ନଡ଼ିଆ)ପଇଡ଼ ଭିତରେ ଥିବା ଲହୁଣୀ ପରି କୋମଳ ଶସ,ପତଳା ଓ କୋମଳ ଶସ, ପତଳା ଓ କୋମଳ ପଦାର୍ଥ, ଶ୍ଳେଷ୍ମିଆ ଗଭୀର ଶ୍ୟେଷ୍ମେନ ।
ନାଲି—ଯା. ବ. ରକ୍ତବର୍ଣ୍ଣ, ଏକପ୍ରକାର ଯୋଦ୍ଧେଷ,(ବଂ)ରକ୍ତବର୍ଣ୍ଣବିଶିଷ୍ଟ,ଆରକ୍ତ ।
ନାଳିଆ--ଗ୍ରା.ବ.ବଡ଼ଝୋଲେଇ, ବେତା, ଶ୍ରେଷ୍ଠ ଜଳ ନିର୍ଗମ ପଥ, ପୟଣୀ, ତୃଣବିଶେଷ ।
ନାଲ୍‌ଆଖି—ଗ୍ରା. ବ. (ରୋଗ ବା କ୍ରୋଧ ଯୋଗୁଁ) ରକ୍ତବର୍ଣ୍ଣ ଚକ୍ଷୁ ।
ନାଲ୍‌ଆଖିଦେଖାଇବା— ଗ୍ରା.କ୍ରି (ଲ.ଅର୍ଥ) କୌଣସି ବ୍ୟକ୍ତି ପ୍ରତି କ୍ରୋଧ ପ୍ରକାଶ କରିବା ।

ନାଲଆଣିଆ—ଗ୍ରା.ବିଂ. ଈଷତ୍‌ରକ୍ତ ।
ନାଲିକ—ପୁଂ. ବ. (ନଳ+ଇକ)ମହିଷ, ଶର, ବାଣ,( କ୍ଲୀ.ବ) ପଦ୍ମ, ନଳବିଶିଷ୍ଟ ଆଗ୍ନେୟାସ୍ତ୍ର ।
ନାଳିକା—ସ୍ତ୍ରୀ. ବ. ନାଳ, ଲାଲଡାଣାଗ, ଚର୍ମକଷା, କାଉଁରିଆ ଗଛ, ନାଡ଼ି, ଶିରା, ହସ୍ତୀକର୍ଣ୍ଣ ବେଧନକା, ହାତୀ-କାନ ଫୋଡ଼ିବା ନିମନ୍ତେ ବ୍ୟବହୃତ ଲୌହ ଦଣ୍ଡ ।
ନାଲକାକ—ଗ୍ରା. ବ. ରକ୍ତବର୍ଣ୍ଣ ସିଆଇ ।
ନାଲକେର--ପୁଂ.ବ.ନାରିକେଳ,ନଡ଼ିଆ, କୂର୍ମ ଦେହର ଅଗ୍ନିକୋଣସ୍ଥିତ ଦେଶ ।
ନାଲଘର—ଗ୍ରା.ବ . ଛନଖଣିଆ ଗୃହ-ଘର ।
ନାଲଘା—ବ, ନାଡ଼ୀବ୍ରଣ,ଗଣ୍ଡପୂଯା ଘା ।
ନାଲଚନ୍ଦନ—ଗ୍ରା. ବ. ରକ୍ତଚନ୍ଦନ ।
ନାଲଚଟା—ଗ୍ରା. ବ. ରକ୍ତଚଞ୍ଚକ ଟୁଲୁ ।
ନାଲଜଙ୍ଘ—ପୁଂ.ବ.(ବ.ଗ୍ରା)ଦ୍ରୋଣକାକ, ଡାମରାକୁଆ ।
ନାଲଜମି—ଗ୍ରା. ବ. ଅଳ୍ପ ଗଭୀର ଓ ଗହୀର ଧାନଗୃଷଜମି ।
ନାଲପାଣି—ଗ୍ରା.ବ.ସରାପ, ବିଲାତମଦ ।
ନାଲପିଆଜ—ଗ୍ରା.ବ.ରକ୍ତବର୍ଣ୍ଣ ପଲାଣ୍ଡୁ ।
ନାଲପିମ୍ପୁଡ଼ି—ଗ୍ରା.ବ.ରକ୍ତବର୍ଣ୍ଣ ପିମ୍ପୁଡ଼ି, କାଇ ।
ନାଲପୋଇ—ଗ୍ରା.ବ.ରକ୍ତବର୍ଣ୍ଣ ପୂଇକା, (ପୋଇ) ଲତା ।
ନାଲମରିଚ—ଗ୍ରା. ବ. ଲଙ୍କାମରିଚ ।
ନାଲମୂଲା—ଗ୍ରା.ବ.ସାଲଗମ, ବିଟ,ମୂଳା
ନାଲିଶ—ଯା.ବ. ଅଭିଯୋଗ, ଅପରାଧର ଅଭିଯୋଗ, ମକଦ୍ଦମା, ଦରଖାସ୍ତ ।
ନାଲିଶକରିବା—ଗ୍ରା. କ୍ରି. ମକଦ୍ଦମା ଦାଏର କରିବା ।
ନାଲିଶକର୍ତ୍ତା—ଯା. ବିଂ. ଅଭିଯୋକ୍ତା, ଯେ ନାଲିଶ କରିଅଛି ।
ନାଲିଶଦାଏର—ଯା. ବ. ମକଦ୍ଦମାର ପ୍ରଥମ ଉତ୍ଥାପନ ।
ନାଲିଶବନ୍ଦ—ଯା.ବିଂ. ଫରିୟାଦୀ,ବାଦୀ, ଆବେଦନକାରୀ,ଦରଖାସ୍ତକାରୀ, ଅଭି-ଯୋକ୍ତା ।
ନାଲିଶୀ—ଯା. ବିଂ. ଯାହାର ବା ଯେଉଁ ବିଷୟରେ ନାଲିଶ ହୋଇଅଛି, ଦର-ଖାସ୍ତର ବିଷୟୀଭୂତ ।
ନାଲସୂର୍ଯ୍ୟମୁଖୀ—ଗ୍ରା. ବ. ନାଲକାଳ ।
ନାଳୀ—ସ୍ତ୍ରୀ. ବ. ( ନାଳ+ଈ ) ନାଳ ଦେଙ୍ଗ, ନାଳ ଦେଙ୍ଗ, ଲାଲଡାଣାଗ ।
ନାଳୀକ—ପୁଂ. ବ. ( ନାଳୀ+କୈ+ ଅ) ଶର,ବନ୍ଧୁକ,ନଳୀ,ନାରିକେଳରେ ନିର୍ମିତ କମଣ୍ଡଳୁ, ଶଲ୍ୟାସ୍ତ୍ର,ବର୍ଚ୍ଛା,ଭେଣ୍ଟା, ବଲ୍ଲମ, ପଦ୍ମ,ପଦ୍ମର ଡେମ୍ଫ, ପଦ୍ମସମୂହ, ସତ୍ୟ ।
ନାଳୀକିନୀ—ସ୍ତ୍ରୀ. ବ. ( ନାଳୀକ+ଇନ୍ +ଈ)ପଦ୍ମସମୂହ, ପଦ୍ମିନୀ, ନଳିନୀ ।
ନାଳିକେର—ବ.ନାରିକେଳ, ନଡ଼ିଆ ।
ନାଳୀଘଣ୍ଟୀ—ସ୍ତ୍ରୀ. ବ. ଦଣ୍ଡାଦିବିଜ୍ଞାପକ ଘଣ୍ଟୀଭେଦ ।
ନାଳୀପ—ପୁଂ. ବ. କଦମ୍ବବୃକ୍ଷ ।
ନାଳୀବ୍ରଣ—ପୁଂ.ବ.ନାଡ଼ିବ୍ରଣ,ନାଲଘା ।
ନାଲୁ—ଗ୍ରା.ବ.(ଆଦରାର୍ଥକ)ଲାଲମୋହନ ଆଦିଙ୍କ ଡାକନାମ, ଲାଲସାହେବ, ରାଜା ଓ ଯୁବରାଜଙ୍କ କନିଷ୍ଠ ଭାଇ-ମାନଙ୍କ ଡାକନାମ ।
ନାଲୁଆ—ଗ୍ରା. ବିଂ. ଲାଳାମୟ, ଯାହା ମୁହଁରୁ ସର୍ବଦା ଲାଳବହେ, (ଗ୍ରା. ବ) ନର୍ଦ୍ଦମା, ପଇଣୀ, ନାଳ, ଭଣ୍ଡାରମାନେ ଯେଉଁ ସରୁମୁହାଁ ତୈଳଭାଣ୍ଡରୁ ମସା-ଲରେ ତେଲ ଢାଳନ୍ତି ।
ନାଲୁକ—ବିଂ.ଯାହା ମୁହଁରୁ ନାଳବହେ, କୃଶ, ଦୁର୍ବଳ, ( ବ ) ଗନ୍ଧନାଳୁକା, ଏଳବାଳୁକ, ଗନ୍ଧଦ୍ରବ୍ୟ ବିଶେଷ ।
ନାଲେଇବା—ଗ୍ରା. କ୍ରି. (ମୁହଁ) ଲାଳରେ ପୂର୍ଣ୍ଣ ହେବା,(ମୁହଁରୁ)ବହୁପରିମାଣରେ ଲାଳସ୍ରବିବା,(ବାଘୀ ପିଠା ଓ ଦହି ଆଦି ବହୁଦିନ ରହିବାଯୋଗୁଁ ) ଲାଳମୟ ହେବା ।
ନାଓ୍ୱାକିଫ୍—ଯା.ବିଂ. ଯାହାକୁ ଅବଗତ କରା ହୋଇ ନାହିଁ ।
ନାବ—ଗ୍ରା. ବ, ନାହା,ନୌକା, ଡଙ୍ଗା, ବୋଇତ ।
ନାବକେଳି—ଗ୍ରା. ବ. ନୌବିହାର,ନଦୀ ଓ ଜଳାଶୟାଦିରେ ନୌଚାଳନପୂର୍ବକ କ୍ରୀଡ଼ା ।
ନାବଡ଼ା—ଗ୍ରା. ପୁଂ. ବିଂ.( ସଂ-ଲମ୍ପଟ ) ଲମ୍ପଟ, ଖଳ, ଦୁଷ୍ଟ, ମୂର୍ଖ । [ମୃଦୁ ।
ନାବନୀତ—ବିଂ.(ନବନୀତ+ଅ)କୋମଳ,
ନାବମିକ—ବିଂ. (ନବମ+ଇକ) ନବମ ସଂଖ୍ୟାଯୁକ୍ତ ।
ନାବୟଜ୍ଞିକ—ପୁଂ. ବ. ନବଯଜ୍ଞ ପ୍ରତି-ପାଦକ ଗ୍ରନ୍ଥବ୍ୟାଖ୍ୟାନ ଗ୍ରନ୍ଥବିଶେଷ ।
ନାବାଲକ—ଗ୍ରା. ବିଂ. ଅପ୍ରାପ୍ତବୟସ୍କ, ଅଳ୍ପବୟସ୍କ ।
ନାବାଲକି—ଯା.ବ.ଅପ୍ରାପ୍ତବୟସ୍କ ଅବସ୍ଥା, (ଗ୍ରା. ବିଂ) ନାବାଳକସମ୍ବନ୍ଧୀୟ ।
ନାବାଲିକା—ଯା. ବିଂ. ଅପ୍ରାପ୍ତବୟସ୍କା (ବାଳିକା ।
ନାବିକ—ପୁଂ. •. ( ନୌ+ଇକ ) ନୌସଞ୍ଚାଳକ,କର୍ଣ୍ଣଧାର,ନୌଚାଳକ, ମାଝି, କେଉଟ ।
ନାବିକବିଦ୍ୟା—ସ୍ତ୍ରୀ.ବ.(୬ତତ୍)ନୌକା ଜାହାଜ ପ୍ରଭୃତି ପରିଚାଳନା ବିଦ୍ୟା ।
ନାବୀ—ପୁଂ. ବ. (ନୌ+ଇନ୍)ପୋତା-ଧ୍ୟକ୍ଷ, ନାବିକ, କର୍ଣ୍ଣଧାର, ( ସ୍ତ୍ରୀ. ବ ) (ନୌ+ଈ) ଶ୍ରେଣୀବଦ୍ଧ ଜାହାଜ ବା ବା ନୌକାସମୂହ ।
ନାବୁକେଶ୍ୱର—ଗ୍ରା. ବ. ଭୁବନେଶ୍ୱର ଓ ପୁରୀରେ ପ୍ରତିଷ୍ଠିତ ଅଲାବୁକେଶ୍ୱର ନାମକ ଶିବବିଗ୍ରହ ।
ନାବୋପଜୀବୀ—ପୁଂ. ବ. (ନବ+ଉପ +ଜୀବ+ଇନ୍) ନୌଚାଳନୋପଜୀବୀ ଜାତି ବିଶେଷ, ସଙ୍କର ଜାତି ।
ନାବ୍ୟ—ବିଂ. (ନୌ+ଯ) ନୌବାହନ ଯୋଗ୍ୟ, ଯେଉଁ ନଦୀ ଅାଦିରେ ଡଙ୍ଗା ଚଳିପାରେ,ପ୍ରଶଂସନୀୟ, (ବ—ନବ+ ଯ) ନୂତନତ୍ୱ, ତରୁଣାବସ୍ଥା,ଯୁବାବସ୍ଥା, ନବଯୌବନ ।
ନାବ୍ୟୁଦକ—ସ୍ତ୍ରୀ.ବ. ନୌକାସ୍ଥିତ ଜଳ, ଅଗ୍ନିହୋତ୍ରାର୍ଥ ଅଗ୍ନିସ୍ଥାପନାର୍ଥ ସ୍ଥାପିତ

ଜଳ, ପ୍ରଣିତାସ୍ଥିତଜଳ ।

ନାଶ—ପୁଂ. ବି. (ନଶ+ଭା.ଅ) ଧ୍ୱଂସ, ଅପଚୟ, କ୍ଷୟ, ମୃତ୍ୟୁ, ଲୋପ, ଅଦର୍ଶନ, ପଳାୟନ, ଅନୁପଲମ୍ଭ ।

ନାଶକ—ପୁଂ. ବିଂ. (ନଶ୍+ଣିଚ୍+ଅକ) ଧ୍ୱଂସକ, କ୍ଷୟକର୍ତ୍ତା, ଯେ ନାଶକରେ, ଘାତକ, (ସ୍ତ୍ରୀ. ବିଂ) ନାଶିକା ।

ନାଶକର—ପୁଂ. ବିଂ. (ନାଶ+କୃ+ଅ) ନାଶକ ଦେଖ, (ଗ୍ରା. ବି) ଯମ ।

ନାଶକରିବା—ଗ୍ରା. କ୍ରି. ଧ୍ୱଂସକରିବା, କଳୁଷିତ କରିବା, (ଲ.ଅର୍ଥ) ସମାପ୍ତ କରିବା, ବଢେଇବା ।

ନାଶକାରୀ—ପୁଂ. ବିଂ. (ନାଶ+କୃ+କ. ଇନ୍) ନାଶକଦେଖ, (ସ୍ତ୍ରୀ) ନାଶକାରିଣୀ

ନାଶନ—ପୁଂ. ବିଂ. ( ନାଶି+କ.ଅନ ) ନାଶକ ଦେଖ, ( କ୍ଳୀ. ବି—ଭା.ଅନ ) ଉଚ୍ଛେଦନ, ବିଲୋପନ, ବିଲୋପସାଧନ

ନାଶନୀୟ—ବିଂ. (ନଶି+ମ. ଅନୀୟ ) ବିନାଶଯୋଗ୍ୟ, (ସ୍ତ୍ରୀ) ନାଶନୀୟା ।

ନାଶବାନ୍—ପୁଂ. ବିଂ. (ନାଶ+ବତ୍) ନଶ୍ୱର, (ସ୍ତ୍ରୀ) ନାଶବତୀ ।

ନାଶୟିତ୍ରୀ—ସ୍ତ୍ରୀ. ବିଂ. ନାଶକର୍ତ୍ତ୍ରୀ ।

ନାଶଶୀଳ—ବିଂ. (ନାଶ+ଶୀଳ)ବ.ବ୍ରୀ; ନାଶଯୋଗ୍ୟ, ନଶ୍ୱର ।

ନାଶହେବା—ଗ୍ରା.କ୍ରି. ଧ୍ୱଂସପ୍ରାପ୍ତହେବା, ଉଚ୍ଛନ୍ନହେବା, ନଷ୍ଟହେବା ।

ନାଶିତ—ବିଂ.(ନାଶ+ମ.ତ)ବିନାଶିତ, ନିହତ,ଅନ୍ୟଦ୍ୱାରା ବିନାଶପ୍ରାପ୍ତ,ବିନଷ୍ଟ ।

ନାଶୀ—ପୁଂ.ବିଂ.(ନାଶ+କ.ଇନ୍) ନାଶ-ବିଶିଷ୍ଟ,ଯାହା ଚିରସ୍ଥାୟୀ ନୁହେ,ନଶ୍ୱର (ନାଶି+କ.ଇନ୍)ନାଶକ,ବିନାଶକାରୀ, (ସ୍ତ୍ରୀ) ନାଶିନୀ । [ ନଶ୍ୱର ।

ନାଶୁକ—ବିଂ.(ନାଶ+ଉକ) ଧ୍ୱଂସଶୀଳ,

ନାଶ୍ୟ—ବିଂ. ( ନଶ+ଯ ) ଧ୍ୱଂସନୀୟ, ନାଶଯୋଗ୍ୟ ।

ନାଷ୍ଟିକ—ବିଂ. ( ନଷ୍ଟ+ଇକ ) ନଷ୍ଟ-ଦ୍ରବ୍ୟାର୍ହ, ନଷ୍ଟଦ୍ରବ୍ୟର ଅଧିକାରୀ ।

ନାଷ୍ଟ୍ରୀ—ବିଂ.(ନାଶ+ଣିଚ୍+ତୃ)ନାଶକ (ସ୍ତ୍ରୀ) ନଷ୍ଟ୍ରୀ, ନାଶକର୍ତ୍ତ୍ରୀ ।

ନାସ—ଗ୍ରା.ବି.ତମାଖୁଚୂର୍ଣ୍ଣ,ନସ୍ୟ, ଧୂଆଁ-ପତ୍ର ଗୁଣ୍ଡା, ନାକଦ୍ୱାରା ଟେଣ୍ଡାଯିବା-ଚୂନା ଔଷଧ ।

ନାସତ୍ୟ—ପୁଂ. ବି. ( ନ+ଅସତ୍ୟ ) ବ.ବ୍ରୀ; ଅଶ୍ୱିନୀକୁମାରଦ୍ୱୟ ।

ନାସତ୍ୟା—ସ୍ତ୍ରୀ. ବି. ଅଶ୍ୱିନୀନକ୍ଷତ୍ର ।

ନାସପତ୍ର—ଗ୍ରା. ବି. ତାମ୍ରକୂଟ, ତମାଖୁ, ଧୂଆଁପତ୍ର ।

ନାସପାତି—ଗ୍ରା. ବି. ଉଃ ପଃ ଭାରତ ଓ ଅଫଗାନସ୍ଥାନ ନିକଟବର୍ତ୍ତୀ ପ୍ରଦେଶରେ ଉତ୍ପନ୍ନ ଏକପ୍ରକାର ଫଳ ।

ନାସମଜ—ଯା. ବିଂ. ମୂର୍ଖ, ନିର୍ବୋଧ ।

ନାସମୌକାଃ—ପୁଂ.ବି. ଭଜମାନବଂଶୀୟ କମ୍ବଳବର୍ହିଙ୍କ ପୁତ୍ର ।

ନାସୁଙ୍ଘିବା—ଗ୍ରା. କ୍ରି. ନାସିକାଦ୍ୱାରା ନାସ୍ୟଗ୍ରହଣ କରିବା, ନସ୍ୟ ଆଘ୍ରାଣ କରିବା ।

ନାସା—ସ୍ତ୍ରୀ. ବି. (ନାସ+କ.ଅ+ଆ) ନାସିକା,ନାକ,ଗନ୍ଧଗ୍ରାହ ଇନ୍ଦ୍ରିୟ,ନାକ ଉପରେ ହେବା ବ୍ରଣ, ଉହାରୋଗ, ବାସଙ୍ଗ ଗଛ,ହାତୀଶୁଣ୍ଢ, ଶିଙ୍ଘ ।

ନାସାଗ୍ର—କ୍ଳୀ. ବି. (୬ତତ୍) ନାକଅଗ, ନାସିକାର ଅଗ୍ରଭାଗ ।

ନାସାଛିନ୍ନୀ—ବି. ( ନାସା+ଛିଦ୍+ତ +ଈ) ପୃଷ୍ଟିକା ପକ୍ଷୀ ।

ନାସାଜ୍ୱର—ପୁଂ. ବି. (କ.ଧା)ଉହାଜ୍ୱର

ନାସାଦାରୁ—କ୍ଳୀ.ବି.ଦ୍ୱାରଦେଶ ସ୍ଥିତ କାଷ୍ଠ, ଚଉକାଠର ଉପରେ ଦିଆଯାଇଥିବା ପଟା, କପାଳ ।

ନାସାନାହ—ପୁଂ. ବି.(ନାସା+ଆନାହ) ନାସିକାରୋଗ ବିଶେଷ, ବାୟୁ ଓ କଫ ମିଶ୍ରିତ ହୋଇ ନାକର ଛିଦ୍ର ବନ୍ଦହୋଇ ଯିବା ରୋଗ ।

ନାସାନ୍ତିକ—ବିଂ. ନାସିକା ପର୍ଯ୍ୟନ୍ତ ।

ନାସାପରିଶୋଷ—ପୁଂ. ବି. ସୁଶ୍ରୁତୋକ୍ତ ନାସାରୋଗ ବିଶେଷ, ନାକମଧ୍ୟରେ କଫ ଶୁଖିଯାଇ ବିକୃତି ବାନ୍ଧିବା ରୋଗ ।

ନାସାପରିସ୍ରାବ—ବି. ନାସାସ୍ରାବ ଦେଖ ।

ନାସାପାକ—ପୁଂ.ବି.ନାସାରୋଗ ବିଶେଷ, ନାକରେ ଘା ହୋଇ ପଚିବା ରୋଗ ।

ନାସାପୁଟ—ପୁଂ. ବି. (୬ତତ୍) ନାସିକା ମଧ୍ୟଗତ ରୋଗ, ନାକପୁଡ଼ା ।

ନାସାମଣି—ବି.(୬ତତ୍)ନାକରେ ପିନ୍ଧା-ଯିବା ଢଙ୍ଗିରେ ଥିବା ରତ୍ନ ।

ନାସାମଳ—ବି. (୬ତତ୍) ସିଙ୍ଘାଣି ।

ନାସାଯୋନି—ବି. ସୌଗନ୍ଧିକ ନପୁଂସକ, ଯେଉଁ ନପୁଂସକ ବ୍ୟକ୍ତି ଯୋନି ଆଘ୍ରାଣ କରିବା ପରେ କାମୋଦ୍ଦୀପନା ଅନୁଭବ କରେ ।

ନାସାରନ୍ଧ୍ର—ବି. (୬ତତ୍) ନାକପୁଡ଼ା, ନାସିକା ମଧ୍ୟସ୍ଥ ଶ୍ୱାସପ୍ରଶ୍ୱାସର ପଥ, ଅଳଙ୍କାର ଧାରଣ ପାଇଁ ନାକରେ କରଯିବା ଫୋଡ଼ ।

ନାସାର୍ଶଃ—କ୍ଳୀ.ବି. ନାକମଧ୍ୟରେ ଜନ୍ମିବା ଅର୍ବୁଦ, ଉହାଜର ।

ନାସାଳୁ—ପୁଂ.ବି.କଟ୍‌ଫଳ ବୃକ୍ଷ.କ ଫଡ଼ା

ନାସାବଂଶ—ପୁଂ. ବି. (୬ତତ୍) ନାକ-ଉପରର ଦଣ୍ଡବତ୍ ଅସ୍ଥି ।

ନାସାବିବର—କ୍ଳୀ.ବି. (୬ତତ୍) ନାସିକା ଛିଦ୍ର, ନାସାରନ୍ଧ୍ର ।

ନାସାସଂବେଦନ—ପୁଂ.ବି. କଲରା ଗଛ, କଲରା ।

ନାସାସ୍ରାବ—ପୁଂ. ବି. (୬ତତ୍) ନାସା-ରୋଗବିଶେଷ, ଶରଦିରୋଗରୁ ନାକରୁ ପାଣି ବା ସିଙ୍ଘାଣି ବାହାରିବା ଅବସ୍ଥା ।

ନାସି—ଗ୍ରା. ବି. ଫୁଲ ବା ଫଳର ନାଡ଼, ବେତ ବା କଅଁଳ ଆଦିର ବଙ୍କା କଣ୍ଟା, ପର୍ବତାଦିର ଭୂପୃଷ୍ଠଫଲଗ୍ନ କ୍ରମସୂକ୍ଷ୍ମ ଅଂଶ, ଅନ୍ତରୀପ, ଜଳାଶୟର କ୍ରମସୂକ୍ଷ୍ମ କୋଣ, ହାତଆର ଆଦିର କ୍ରମସୂକ୍ଷ୍ମ ଶେଷଭାଗ ।

ନାସିକ—ଗ୍ରା. ବି ପୌରାଣିକ ପଞ୍ଚବଟିର ଆଧୁନିକ ନାମ,(ପୁଂ. ବିଂ)ନାସିକାବିଶିଷ୍ଟ ।

ନାସିକନ୍ଧମ-ବିଂ. (ନାସିକା+ଧ୍ମା+କ.ଅ) ଯେ ଶୋଇଲାବେଳେ ନାକବାଟେ ଘୁଙ୍ଗୁଡ଼ି ମାରେ, ଯେ ନାକରେ କଥା-କହେ ।

ନାସିକନ୍ଧୟ—ପୁଂ.ବିଂ. (ନାସିକା+ଧେ

+କ.ଅ ) ଯେ ନାକଦ୍ୱାରା ଜଳପାନ କରେ ।

**ନାସିକା**—ସ୍ତ୍ରୀ. ବ. ( ନାସ+କ. ଆ ) ଘ୍ରାଣେନ୍ଦ୍ରିୟ, ନାକ, ନାସା ଦେଖ ।

**ନାସିକାନ୍ଧୟ**—ପୁଂ.ବଂ.ନାସିକନ୍ଧୟ ଦେଖ ।

**ନାସିକୀୟ**—ବଂ.(ନାସିକା+ଈୟ) ନାକ ସମ୍ବନ୍ଧୀୟ ।

**ନାସିକ୍ୟ**—ବଂ. (ନାସିକା+ଯ)ନାସିକାରୁ ଉତ୍ପନ୍ନ, ନାସିକା ସମ୍ବନ୍ଧୀୟ, (ବ ନ କ, ଅଶ୍ୱିନୀକୁମାର ଦ୍ୱୟ,ଅନୁନାସିକ ସ୍ୱର ।

**ନାସିକ୍ୟକ**—ବ. ନାକ, ନାସିକା ।

**ନାସୀର**—ବ. (ନାସ+ଈର) ସେନାମୁଖ, ଅଗ୍ରବର୍ତ୍ତୀ ସେନା,(ବଂ) ସେନାଦଳର ଅଗ୍ରଗାମୀ ।

**ନାସ୍ତା**—ଯା. ବ. ଜଳଖିଆ ।

**ନାସ୍ତି**—କ୍ରି. (ନ+ଅସ୍ତି,(ସେ)ନ—ଅଛି) ନାହିଁ, (ଗ୍ରା.ବ) ନିଷେଧ, ଅଭାବ,ଅନସ୍ତିତ୍ୱ, (ଅବ୍ୟ) ନାହିଁ, ଶୂନ୍ୟ, ନୁହେଁ, (ଗଣିତ) ଅଙ୍କାଭ ।

**ନାସ୍ତିକ**—ପୁଂ.ବଂ.(ନାସ୍ତି+କ)ଈଶ୍ୱରଙ୍କ ଅସ୍ତିତ୍ୱ ଅସ୍ୱୀକାରକାରୀ,ବେଦ,ପରକାଳ ଓ ଦେବତାଆଦି ନମାନିବା (ବ୍ୟକ୍ତି) ।

**ନାସ୍ତିକତା**—ସ୍ତ୍ରୀ. ବ. (ନାସ୍ତିକ+ଭା.ତ +ଆ) ନାସ୍ତିକର ଧର୍ମ.ନାସ୍ତିକର ଭାବ, ବେଦକୁ ମିଥ୍ୟାଜ୍ଞାନ; ପରଲୋକ; ଓ ଈଶ୍ୱରଙ୍କର ଅସ୍ତିତ୍ୱ ସ୍ୱୀକାର ନ କରିବା

**ନାସ୍ତିକରିବା**—ଗ୍ରା. କ୍ରି. ନାହିଁ କରିବା, ମନାକରିବା ।

**ନାସ୍ତିକେ**—ଗ୍ରା. କ୍ରି. ବଂ. ଅଭାବରେ ।

**ନାସ୍ତିକ୍ୟ**—କ୍ଲୀ. ବ. (ନାସ୍ତିକ+ଭା.ଯ) ନାସ୍ତିକତା ଦେଖ ।

**ନାସ୍ତିଡ**—ପୁଂ. ବ. ସହକାର ତରୁ, ଆମ୍ରବୃକ୍ଷ ।

**ନାସ୍ତିତା**—ସ୍ତ୍ରୀ. ବ. ( ନାସ୍ତି+ତ+ଆ ) ନାସ୍ତିତ୍ୱ.ଅବିଦ୍ୟମାନତା,ନଥିବା ଅବସ୍ଥା

**ନାସ୍ତିଦ**—ପୁଂ. ବ. ଆମ୍ରବୃକ୍ଷ, ଆମ୍ବଗଛ ।

**ନାସ୍ତିବାଦ**—ପୁଂ. ବ. ନାସ୍ତିକମାନଙ୍କର ବିତର୍କ, ଯେଉଁ ମତବାଦ ଅନୁସାରେ ଈଶ୍ୱର,ପରକାଳ ଓ ବେଦର ମୌଳିକତ୍ୱ ସ୍ୱୀକାର କରାଯାଏ ନାହିଁ ।

**ନାସ୍ୟ**—ବଂ. (ନାସା+ଯ) ନାସାଭବ, ନାସିକାରୁ ଉତ୍ପନ୍ନ, ନାସାସନ୍ନିକୃଷ୍ଟ ।

**ନାହ**—ପୁଂ.ବ. (ନହ+ଭା.ଅ) ବନ୍ଧନ, କୂପ, (ଣ.ଅ) ଚକ୍ଷୁ, ଫାଶ, ଜାଲ, ମଳରୋଧ ।

**ନାହକ୍**—ଯା. ବଂ. ଅଯଥା, ଅନ୍ୟାୟ, ବ୍ୟର୍ଥ, ଅନର୍ଥକ, ଅନୁଚିତ, ନିଷ୍ପ୍ରୟୋଜନ, (କ୍ରି.ବଂ) ଅକାରଣ, ଅନର୍ଥକ, ଅନ୍ୟାୟକ୍ରମେ, ପ୍ରୟୋଜନ ନ ଥାଇ ।

**ନାହଲ**—ପୁଂ. ବ. (ନାହ+ଲା+ଅ) ମ୍ଲେଚ୍ଛଜାତିବିଶେଷ ।

**ନାହା**—ଗ୍ରା. ତ. (ଫ-ନାଥ) ପ୍ରଭୁ,ରଜା, ସ୍ୱାମୀ,ଡଙ୍ଗା,ବଡ଼ନୌକା, (ବଂ)ଶ୍ରେଷ୍ଠ ।

**ନାହାକ**—ଗ୍ରା. ପୁଂ. ବ. (ଫ-ନାୟକ) ନାୟକ, ଉତ୍କଳର ଜ୍ୟୋତିଷ ବ୍ୟବସାୟୀ ଜାତି ।

**ନାହାକା**—ଗ୍ରା. ବ. ଏକପ୍ରକାର ବଡ଼ ଶୁଆ, ତୋତା, କାକାତୁଆ, ଗଛର ପ୍ରଧାନ ଚେର ।

**ନାହାପେଲିବା**—ଗ୍ରା. କ୍ରି. ( ଲ,ଅର୍ଥ ) ସଂସାରଯାତ୍ରା ନିର୍ବାହ କରିବା,ଜୀବନର ଅବଶିଷ୍ଟ ଅଂଶ କଷ୍ଟେସୃଷ୍ଟେ ଅତିବାହିତ କରିବା ।

**ନାହାବୁଡ଼ିବା**—ଗ୍ରା. ବ. ଡଙ୍ଗା ଜଳମଗ୍ନ ହେବା, (ଲ.ଅର୍ଥ) ଆଶାଭରସା ତୁଟିଯିବା, ଆଶ୍ରୟହୀନ ବା ଅରକ୍ଷ ହେବା ।

**ନାହାଭସା(ସୋ)ଇବା**—ଗ୍ରା. କ୍ରି. ନୂତନ ଡଙ୍ଗାକୁ ପ୍ରଥମେ ଜଳରେ ଗୁଞ୍ଜିବା ।

**ନାହାମେଲିବା**—ଗ୍ରା.କ୍ରି.ଡଙ୍ଗାକୁ ପାଣିରେ ଚଳାଇବାକୁ ଆରମ୍ଭ କରିବା ।

**ନାହାରି**—ଗ୍ରା. (ବାଲେ) ବ. ଶଙ୍ଖାରୀ. ଲାଖଚୁଡ଼ି ବା ଶଙ୍ଖାବ୍ୟବସାୟୀ ନୀଚ ଶୂଦ୍ର ଜାତିବିଶେଷ ।

**ନାହାଳିବା**—ଗ୍ରା. ବ. ତରଳ ପଦାର୍ଥ ବହୁପରିମାଣରେ ଢାଳିଦେବା, ବହୁପରିମାଣରେ ପତଳା ଝାଡ଼ାଫେରିବା, ଅନର୍ଗଳ ଗପିବା, ବହୁପରିମାଣରେ ବାନ୍ତିକରିବା, (ବାଘ) ଗଲଗାଜିବା ବା ଗର୍ଜିଉଠିବା ।

**ନାହିଁ**—ଗ୍ରା. କ୍ରି. (ଫ-ନାସ୍ତି) ନଥିଅଛି, ଅବସ୍ଥିତ ନୁହେଁ,ଉପସ୍ଥିତ ନୁହେଁ,(ବଂ) ନଥିବା, ବ. ମନା, ବାରଣ, ଅସମ୍ମତି, (ଅବ୍ୟ) ନା ।

**ନାହିଁକରିବା**—ଗ୍ରା. କ୍ରି. ଅସ୍ୱୀକାର କରିବା, ଅସମ୍ମତ ହେବା, ନାମଞ୍ଜୁର କରିବା,ଅଗ୍ରାହ୍ୟ କରିବା,ମନାକରିବା ।

**ନାହିଁତ**—ଗ୍ରା.ଅବ୍ୟ.(ଫ-ନଚେତ୍)ନୋଚେତ୍, ପକ୍ଷାନ୍ତରରେ ।

**ନାହିଁନ**—ଗ୍ରା. (ସମ୍ବ) କ୍ରି. ନାହିଁ ଦେଖ, (ଅବ୍ୟ-ପ୍ରଶ୍ନାର୍ଥକ) ଅବଶ୍ୟ, ନିଶ୍ଚୟ ।

**ନାହିଁନା**—ଗ୍ରା. ଅବ୍ୟ. ଆଉନାହିଁ, ନୁହେଁ, (ପ୍ରଶ୍ନାର୍ଥରୂପ) ଅବଶ୍ୟ ।

**ନାହିଁହୋଇ**—ଗ୍ରା. ଅବ୍ୟ. ନା ଓ ହିଁ, ଅସ୍ୱୀକାର ବା ସ୍ୱୀକାର ।

**ନାହୁଡ଼**—ଗ୍ରା. (ସିଂହ)ବ. ନାଭି,(ଗ୍ରା.ବ) ନାଉରି, ନାବିକ ।

**ନାହୁଷ**—ପୁଂ. ବ. (ନହୁଷ+ଅ) ନହୁଷ ନୃପଙ୍କ ପୁତ୍ର ଯଯାତି ।

**ନି**—ଅବ୍ୟ. (ନୀ+ଇ) ଉପସର୍ଗବିଶେଷ, ସଙ୍ଘ, ଅଧୋଭାବ, ନ୍ୟଗ୍ଭାବ, ଭୃଶ, ଆଦେଶ, ନିତ୍ୟ, କୌଶଳ, ବନ୍ଧନ, ଅନ୍ତର୍ଭାବ, ସମୀପ, ଦର୍ଶନ, ଉପରମ, ଆଶ୍ରୟ, ଏହି ସମସ୍ତର ଉଦାହରଣ, ଯଥା—ମଣିକଙ୍କର-ଏଠାରେ 'ନି'ର ଅର୍ଥ ସଙ୍ଘ ଇତ୍ୟାଦି ।

**ନିଃ**—ଅବ୍ୟ. (ନୃ+କ.କ୍ୱିପ୍) ନିଶ୍ଚୟ, ନିଷେଧ.ନିଃଶେଷ,ନିତାନ୍ତ,ବହିଷ୍କରଣ, ନିର୍ଗମ ।

**ନିଅଁ**—ଗ୍ରା. ବ. (ଫ-ନେମି) ମୂଳଦୁଆ, ଘରର ମୂଳଦୁଆ,ମୂଳଦୁଆର ଗଭୀରତା, ମୂଳଭିତ୍ତି ।

**ନିଅଁଖୋଳିବା**—ଗ୍ରା. କ୍ରି. ଘରର କାନ୍ଥ ଉଠାଇବାପାଇଁ ଭୂଇଁତଳେ ମୂଳଦୁଆ ଖୋଳିବା, (ଲ.ଅର୍ଥ) କୌଣସି କାର୍ଯ୍ୟ ଆରମ୍ଭ କରିବା ।

**ନିଆ**—ଗ୍ରା. ବ. (ଫ-ନୀ) ନେବା, ଖରିଦ କରିବା, (ଫ-ଲୁଞ୍ଚା) ଲିଆ, ଖଇ ।

ନିଆଅଣା—ଗ୍ରା. ବି. ନେବା ଆଣିବା, ନେ ଆଣ ।

ନିଆଁ—ଗ୍ରା. ବି. ଅଗ୍ନି, କ୍ରୋଧାଗ୍ନି, ଦାବାଗ୍ନି, ଅତ୍ୟାଚାରିତ ବ୍ୟକ୍ତିର ହୃଦୟରୁ ଉଠିବା ଅଭିଶାପ, ଅଶାନ୍ତି, ଦୁର୍ଦ୍ଦଶା, ଚିତାଗ୍ନି, (ବିଂ) ଅଗ୍ନିପରି ପ୍ରଚଣ୍ଡ, ଅଗ୍ନିଦଗ୍ଧ, ଉତ୍ତପ୍ତ, ସମ୍ପୂର୍ଣ୍ଣରୂପେ ନଷ୍ଟ ।

ନିଆଁଅଟା—ଗ୍ରା. ବି. (ସଂ ଅଗ୍ନି କୁକୁଟ) ନିଆଁବଢ଼ିଆ ।

ନିଆଁଉଠିବା—ଗ୍ରା. କି. ଅଗ୍ନିର ଶିଖା ଉଚ୍ଚକୁ ଉଠିବା, କ୍ରୋଧାଗ୍ନି ପ୍ରଜ୍ୱଳିତ ହେବା, କ୍ଷୁଧାଗ୍ନି ପ୍ରଜ୍ୱଳିତ ହେବା ।

ନିଆଁଉମ୍ପେଇ—ଗ୍ରା. ବି. ନିଆଁ ରଖିବାର ଚଉଡ଼ା ମୁହାଁ ମାଟିର ପାତ୍ର ।

ନିଆଁକରିବା—ଗ୍ରା. କି. ନିଆଁ ଜଳାଇବା ।

ନିଆଁକାଠି(ଡ଼ି)—ଗ୍ରା. ବି. ଦିଆସିଲିଇ କାଠି, ଅରଣିକାଠି ।

ନିଆଁଖଡ଼ିକା—ଗ୍ରା. ବି. ନିଆଁକାଠି ଦେଖ. ଉତ୍ତପ୍ତ ଧାତୁର କାଠି, (ବିଂ) ରାଗରେ ପ୍ରଚଣ୍ଡ, ଅତିକ୍ରୁଦ୍ଧ ।

ନିଆଁଖାଇଅଙ୍ଗାରହଗିବା—ଗ୍ରା. କି. (ନ୍ୟାୟ) ଯେଉଁପରି କାମ କରିବ ସେହିପରି ଫଳ ପାଇବ ।

ନିଆଁଖୁଣ୍ଟା—ଗ୍ରା. ବି. ପ୍ରଜ୍ୱଳିତ କାଷ୍ଠଖଣ୍ଡ

ନିଆଁଗିଳା—ଗ୍ରା. ପୁଂ. ବିଂ. ଘୋର ମିଥ୍ୟାବାଦୀ, ବହିପିଆ, ଦୁଃସାହସିକ ।

ନିଆଁଗିଳିବା—ଗ୍ରା. କି. (ଲ. ଅର୍ଥ) ଘୋର ମିଥ୍ୟା କହିବା ।

ନିଆଁଜଳିବା—ଗ୍ରା. କି. ଶିଖା ସହ ଅଗ୍ନି ଉଠିବା, (ଲ. ଅର୍ଥ) ଅତ୍ୟନ୍ତ କ୍ରୋଧ ବା ଅସନ୍ତୋଷ ଉତ୍ପନ୍ନ ହେବା ।

ନିଆଁଧୂଆଁଉଠିଯିବା—ଗ୍ରା. କି. ସମ୍ପୂର୍ଣ୍ଣଭାବରେ ବିନଷ୍ଟ ହେବା, ଜିନିଷର ଦର ଅତି ବେଶି ହେବା ।

ନିଆଁନଥାଇଧୂଆଁ—ଗ୍ରା. (ନ୍ୟାୟ) କାରଣ ନ ଥାଇ କାର୍ଯ୍ୟ ଘଟିବା ଘଟଣା ।

ନିଆଁପାଣି—ଗ୍ରା. ବି. ଖାଦ୍ୟ ରନ୍ଧିବା ପାଇଁ ଦୁଇଟି ଅତ୍ୟାବଶ୍ୟକ ବସ୍ତୁ, ଅଗ୍ନି ଓ ଜଳ ।

ନିଆଁପାଣିଅଟକ—ଗ୍ରା. ବି. ଜାତିରୁ ବା ସମାଜରୁ ଏକଘରିକିଆ ହେବା ବ୍ୟକ୍ତିକୁ ପ୍ରତିବେଶୀମାନଙ୍କ ବ୍ୟବହୃତ କୂଅ ବା ପୋଖରୀରୁ ପାଣି ନେବା ଓ ତାକୁ କେହି ରନ୍ଧିବାପାଇଁ ନିଆଁ ଦେବ ବନ୍ଦ କରିବା ।

ନିଆଁପୁଆଁ—ଗ୍ରା. ବି. ଅଗ୍ନି ନିକଟରେ ବସି ଅଗ୍ନିଉତ୍ତାପ ଗ୍ରହଣ ।

ନିଆଁପେଡ଼ି—ପ୍ରା. (ଗଞ୍ଜାମ) ବି. ଦିଆସିଲିଇ ଡିବା ବା ବାକ୍ସ ।

ନିଆଁପୋଇଁବା—ଗ୍ରା. କି. (ସଂ-ପ୍ରାପଣ) ନିଆଁ ପାଖରେ ବସି ଅଗ୍ନିର ଉତ୍ତାପ ଗ୍ରହଣ କରିବା ।

ନିଆଁବଢ଼ିଆ—ଗ୍ରା. ବି. ନିଆଁଅଟା ।

ନିଆଁବରଷିବା—ଗ୍ରା. କି. ଅସହ୍ୟ ଗ୍ରୀଷ୍ମ ଅନୁଭୂତ ହେବା, ଅସହ୍ୟ ଗ୍ରୀଷ୍ମପାତ ହେବା ।

ନିଆଁବାଣ—ଗ୍ରା. ବିଂ. ଅଗ୍ନିକର୍ମ, କ୍ରୋଧରେ ଜଳୁଥିବା, କ୍ରୋଧନସ୍ୱଭାବ ।

ନିଆଁବାଣହେବା—ଗ୍ରା. କି. ଅତ୍ୟନ୍ତ କ୍ରୋଧ ହେତୁରୁ ଦେହରେ ନିଆଁ ଲାଗିଲା ପରି ଜ୍ଞାନଶୂନ୍ୟ ହେବା ।

ନିଆଁରଡ଼—ଗ୍ରା. ବି. ଜ୍ୱଳନ୍ତ ଅଗ୍ନିଖଣ୍ଡ ପରି ଉତ୍ତେଜିତ ବ୍ୟକ୍ତି, ଜ୍ୱଳନ୍ତ ଅଗ୍ନିଖଣ୍ଡ ପରି ଅସହ୍ୟ ବସ୍ତୁ ।

ନିଆଁରେମୁତିବା—ଗ୍ରା. କି. କୌଣସି ବିଷୟରେ ଅନ୍ୟ ବ୍ୟକ୍ତି ସହିତ ସମାନ ଅଧିକାର ବା ଅନୁଗ୍ରହ ନ ପାଇବା ଭଳି କିଛି କାର୍ଯ୍ୟ କରିବା ।

ନିଆଁଲିଆ—ଗ୍ରା. ବି. ପୋଡ଼ା, ଦଗ୍ଧ, (ଗାଳିବିଶେଷ) ଅଗ୍ନିଦଗ୍ଧ, ଦୁର୍ଦ୍ଦଶାଗ୍ରସ୍ତ, ମନ୍ଦ, ଗୃହଦାହକ, (ଗ୍ରା. ବି) ଗୃହାଦିରେ ଅଗ୍ନି ସଂଯୋଗ କରିବା ଅପରାଧ ।

ନିଆଁଲଗା(ଗେ)ଇବା—ଗ୍ରା. କି. କୁଟାକାଠିଆଦିକୁ ଜଳାଇବା, ଗୃହଆଦିରେ ଅଗ୍ନିସଂଯୋଗ କରିବା, ପୋଡ଼ିବା, (ଲ. ଅର୍ଥ) ଅନ୍ୟ ବ୍ୟକ୍ତିର ପରିବାରରେ ବିବାଦବହ୍ନି ଉପୁଜାଇବା, ସର୍ବନାଶ ଘଟାଇବା ।

ନିଆଁଲାଗିବା—ଗ୍ରା. ବି. ଅଗ୍ନିସାତ୍ ହେବା, ଦଗ୍ଧ ହେବା, ଜଳିବା, (ଲ. ଅର୍ଥ) ଅଶାନ୍ତି ବା ବିବାଦ ଉପସ୍ଥିତ ହେବା, ବିଶେଷ ଉଦ୍‌ବେଗ ଜାତ ହେବା ।

ନିଆଁଲିଭା(ଭୋ)ଇବା—ଗ୍ରା. କି. ଅଗ୍ନିନିର୍ବାପଣ କରିବା ।

ନିଆଁଲିଭିବା—ଗ୍ରା. ବି. ଅଗ୍ନିର ନିର୍ବାପଣ ।

ନିଆଁଲୁଣ୍ଡା—ଗ୍ରା. ବି. ଚୁଲ୍ଲୀରେ ନିଆଁ ଲଗାଇବା ପାଇଁ ବା ସ୍ଥାନାନ୍ତର ନିଆଁ ଆଣିବା ପାଇଁ ବ୍ୟବହୃତ କୁଟାର ପୁଳା ।

ନିଆଁହୁଳା—ଗ୍ରା. ବି. କୁଟା ନଡ଼ିଆପତ୍ର ପ୍ରଭୃତି ଜଳୁଥିବା ଦାହ୍ୟ ପଦାର୍ଥର ଲମ୍ବ ଗୁଚ୍ଛ, ଉଲ୍କା ।

ନିଆଁହେବା—ଗ୍ରା. କି. ନିଆଁବାଣ ହେବା ଦେଖ, ଅତି ଉତ୍ତପ୍ତ ହେବା ।

ନିଆଜ—ଯ. ବି. ଲିଆଜ, ଅନୁରାଗ, ଅନୁଗ୍ରହ, ଦରଶ, ହେଜ, ଖିଆଲ, ମନୋଯୋଗ, ଯୁକ୍ତି, ବିବେଚନା ।

ନିଅଜ୍ଞ—ଯ. ବି. ଆଫଗାନମାନଙ୍କର ଏକ ସମ୍ପ୍ରଦାୟ ।

ନିଆଦିଆ—ଗ୍ରା. ବି. ନେବା ଓ ଦେବା କର୍ମ, ନେଣଦେଣ, ଆଦାନପ୍ରଦାନ ।

ନିଆମତ୍—ଯା. ବି. ଉତ୍ତମ ଅମୂଲ୍ୟ ଓ ଅଲଭ୍ୟ ବସ୍ତୁ ।

ନିଆରା—ଗ୍ରା. ବିଂ. (ସଂ-ନିର୍ନିକଟ) ପୃଥକ୍, ସ୍ୱତନ୍ତ୍ର, ଭିନ୍ନଭିନ୍ନ, ପୃଥଗନ୍ନ ଓ ପୃଥକ୍ ବାସହେବା (ବ୍ୟକ୍ତି) ।

ନିଆରି—ପ୍ର. (ଯାଜପୁର ଓ ବାଲେଶ୍ୱରର ମାଛଧରା କେଉଟ ଜାତିବିଶେଷ ।

ନିଆଳି—ଗ୍ରା. ବି. ବଣମଲ୍ଲୀ, ନବମଲ୍ଲିକା ।

ନିଆଶା—ଗ୍ରା. ବିଂ. ନିରାଶ, ଆଶାହୀନ, (ବି) ନୈରାଶ୍ୟ ।

ନିଆଶ୍ରିକ—ଗ୍ରା. ବିଂ. ନିରାଶ୍ରୟ ।

ନିଉଗିନି—ପ୍ରଶାନ୍ତ ମହାସାଗରସ୍ଥ ପୂର୍ବଦ୍ୱୀପପୁଞ୍ଜର ଅନ୍ତର୍ଗତ ଗୋଟିଏ ଦ୍ୱୀପ ।

ନିଉଛଣା—ଗ୍ରା. ପୁଂ. ବିଂ. (ସଂ-ନୀଚ) ତୁଚ୍ଛ, ହୀନ, ଘୃଣ୍ୟ, ନଷ୍ଟପ୍ରୟୋଜନ, ମନ୍ଦପ୍ରକୃତିବିଶିଷ୍ଟ, ହୀନପ୍ରକୃତିକ, (ସ୍ତ୍ରୀ) ନିଉଛଣୀ ।

**ନିଉଚ୍ଛା(ଛୋ)ଇବା**—ଗ୍ରା. କ୍ରି (ସଂ-ନିର୍ମଞ୍ଛନ) ବନ୍ଦାଇବା, ବନ୍ଦାପନା କରିବା, ନବାଗତ ବ୍ୟକ୍ତି ବା ବରକନ୍ୟାଙ୍କ ଆଗରେ ଥାଳିରେ ଗଣ୍ଡିଏ ଅନ୍ନ ଓ ସାତମେଞ୍ଚି ଗୋବର ଧରି ବନ୍ଦାପନା କରିବା, ପ୍ରଣାମକରିବା, ଦେବତାଙ୍କୁ ଉତ୍ସର୍ଗ କରିବା, କୌଣସି ବ୍ୟକ୍ତିର ବା ରୋଗୀର ମଙ୍ଗଳ ଉଦ୍ଦେଶ୍ୟରେ ଉକ୍ତ ବ୍ୟକ୍ତି ମୁଣ୍ଡରେ ଧନ ବା ଅଳଙ୍କାର ଛୁଆଇଁ ଉକ୍ତ ବ୍ୟକ୍ତିର ମଙ୍ଗଳ ହେଲେ ବା ରୋଗ ଉପଶମ ହେଲେ ଉକ୍ତ ଧନରତ୍ନାଦି ବା ତତ୍କଳ୍ପିତ ମୂଲ୍ୟର ସ୍ୱର୍ଣ୍ଣ-ଆଦି କୌଣସି ଦେବତାଙ୍କୁ ଦେବାପାଇଁ ଉତ୍ସର୍ଗ କରିବା, ପାଣି ଛଡ଼ାଇବା।

**ନିଉଁଛୁଣି(ଳି)**—ଗ୍ରା. ବି. (ସଂ-ନିର୍ମଞ୍ଛନ) ବନ୍ଦନା, ପ୍ରଣାମ, ପୂଜା, ଆରତି, ଆଶୀର୍ବାଦ, ସାଦର ସମ୍ଭାଷଣ, ଉପହାର, ଭେଟି, ରୋଗୀଆଦିଙ୍କ ମୁଣ୍ଡ ବା ଦେହରେ ଛୁଆଇଁ କୌଣସି ଧନ ବା ଅଳଙ୍କାରକୁ କୌଣସି ଦେବତାଙ୍କ ନାମରେ ଉତ୍ସର୍ଗ ବା ମାନସିକ କରିବା।

**ନିଉଛୁଳି**—ଗ୍ରା. ବି. ନିଉଛୁଣି ଦେଖ।

**ନିଉଁଛୁଡ଼ିବା**—ଗ୍ରା. କ୍ରି. (ସଂ-ନିର୍ମଞ୍ଛନ) ମୁଗ୍ଧହେବା, କୌଣସି ବ୍ୟକ୍ତିକୁ କଲ୍ୟାଣ କରିବା, ନୁଛୁଡ଼ିବା, ଶିଶୁମାନଙ୍କ ଖାଣି ଅମଙ୍ଗଳ କଥନର ଉପରେ ପଡୁ ବୋଲି ଆଶୀର୍ବାଦ କରିବା।

**ନିଉଁତା**—ଗ୍ରା. ବି. (ସଂ-ନିମନ୍ତ୍ରଣ) ବିବାହାଦି ଉତ୍ସବ ଉପଲକ୍ଷରେ ଭୋଜି, ଖିଆପିଆ, ପାରିବାରିକ ଉତ୍ସବ, ଗ୍ରହଣ ଉପରାଗ ଓ ତର୍ପଣ ସଂକ୍ରାନ୍ତିଆଦିରେ କୌଣସି ବୃକ୍ଷ ଓ ଗଛଆଦିକୁ ଔଷଧାର୍ଥ ନିମନ୍ତ୍ରଣ କରି ଆଣିବା କର୍ମ।

**ନିଉଟନ**—(ସର୍-ଆଇଜାକ) ଇଂଲଣ୍ଡର ଜଣେ ବିଖ୍ୟାତ ଦାର୍ଶନିକ ଜ୍ୟୋତିଃଶାସ୍ତ୍ରଜ୍ଞ ପଣ୍ଡିତ।

**ନିଉଡ଼ିବା**—ଗ୍ରା. କ୍ରି. (ସଂ-ନିଃସାରଣ) ଲଉଡ଼ିବା, ଡ଼ାକିବା, ଚପୁଡ଼ିବା, ଛୁଞ୍ଚିବା।

**ନିଉତା**—ପ୍ରା. (ସଂ ହି) ବି. ଜାତିଆଣ ଭୋଜି।

**ନିଉ(ଊ)ନ**—ଗ୍ରା. (ପଦ୍ୟ) ବିଂ. (ସଂ-ନ୍ୟୂନ) ନ୍ୟୂନ, ଊଣା, ଅଳ୍ପ, କମି, ବିମିତ, ହେୟ, ଅଳ୍ପତମ, (ଗ୍ରା. ବିଂ) ଚେତକୋସ୍ଥାନ।

**ନିଃ**—ଅବ୍ୟ. ଉପସର୍ଗବିଶେଷ, ନିଷେଧ, ନିଶ୍ଚୟ, ସାଫଲ୍ୟ। [ ଅନମିତ୍ତ।

**ନିଃକାରଣ**—ବିଂ. (ବ. ବ୍ରୀ) କାରଣଶୂନ୍ୟ,

**ନିଃକାସନ**—କ୍ଲୀ. ବି. ନିଃସାରଣ, ବହିଷ୍କରଣ, ଅପସାରଣ। [ ନିଃସାରିତ।

**ନିଃକାସିତ**—ବିଂ. ନିଷ୍କାସିତ, ବହିଷ୍କୃତ,

**ନିଃକାମିତ**—ବିଂ. ନିଷ୍କାମିତ, ବହିଷ୍କୃତ।

**ନିଃକ୍ଷତ୍ର**—ବିଂ. (ବ. ବ୍ରୀ) କ୍ଷତ୍ରିୟରହିତ (ସ୍ଥାନ), କ୍ଷତ୍ରିୟବିହୀନ।

**ନିଃକ୍ଷତ୍ରିୟ**—ବିଂ. (ବ. ବ୍ରୀ) କ୍ଷତ୍ରିୟଶୂନ୍ୟ (ଦେଶାଦି), ବୀରଶୂନ୍ୟ (ପୃଥିବୀ), (ସ୍ତ୍ରୀ) ନିଃକ୍ଷତ୍ରିୟା। [ ନିକ୍ଷିପ୍ତ ଦେଖ।

**ନିଃକ୍ଷିପ୍ତ**—ବିଂ. ( ନିର୍ + କ୍ଷିପ୍ + ର୍ମ. ତ )

**ନିଃକ୍ଷେପ**—ବି. (ନିର୍ + କ୍ଷିପ୍ + ଭା. ଅ) ନିକ୍ଷେପ ଦେଖ।

**ନିଃକ୍ଷୋଭ**—ବି. (ନିର୍ + କ୍ଷୋଭ) କ୍ଷୋଭରହିତ ଅବସ୍ଥା, (ପୁଂ. ବିଂ) କ୍ଷୋଭହୀନ, ଅକ୍ଷୁବ୍ଧ, ପ୍ରଶାନ୍ତ।

**ନିଃପ୍ରଭ**—ବିଂ. (ବ. ବ୍ରୀ) ପ୍ରଭାଶୂନ୍ୟ।

**ନିଃଶଙ୍କ**—ପୁଂ. ବିଂ. ( ନିଃ + ଶଙ୍କା ) ବ. ବ୍ରୀ; ଶଙ୍କାରହିତ, ନିର୍ଭୟ, ଭୟଶୂନ୍ୟ, ନିଶ୍ଚିନ୍ତ, ଦ୍ୱିଧାହୀନ, (ବି) ଏକପ୍ରକାର ନୃତ୍ୟ ବା ତାଳ।

**ନିଃଶଙ୍କସୁପ୍ତ**—ପୁଂ. ବିଂ. ନିଶ୍ଚିନ୍ତରୂପେ ଶୋଇଥିବା।

**ନିଃଶଙ୍କା**—ଗ୍ରା. ବିଂ. ନିର୍ଭୟ, ନିର୍ଭୀକ।

**ନିଃଶଙ୍କାରେ**—ଗ୍ରା. କ୍ରି. ବିଂ. ଭୟଶୂନ୍ୟ ହୋଇ।

**ନିଃଶଙ୍କେ**—ଗ୍ରା. କ୍ରି. ବିଂ. ଶଙ୍କା ରହିତ ହୋଇ, ନିର୍ଭୟହୋଇ।

**ନିଃଶବ୍ଦ**—ପୁଂ. ବିଂ. (ବ. ବ୍ରୀ) ଶବ୍ଦରହିତ, ଯାହାର ବା ଯେଉଁଠାରେ କୌଣସି ଶବ୍ଦ ନାହିଁ।

**ନିଃଶବ୍ଦ**—ବିଂ. ( ବ. ବ୍ରୀ ) ଶବ୍ଦରହିତ, ନୀରବ, ଯେଉଁସ୍ଥାନରେ କୌଣସି ଶବ୍ଦ ନଥାଏ, ଯେକୌଣସି ଶବ୍ଦ କରେ ନାହିଁ, (କ୍ରି. ବିଂ) ନୀରବରେ।

**ନିଃଶବ୍ଦପଦବିକ୍ଷେପ**— ବି. ( ବ. ବ୍ରୀ ) (୭ତତ୍-କ. ଧା) ଚୁଲିଲାବେଳେ ଆଦୌ ପଦଶବ୍ଦ ନ ହେବାପାଇଁ ଥିରଥିର ପାଦ ପକାଇବା, (ପୁଂ. ବି ) ଯେଉଁ ଲୋକର ଚୁଲିଲାବେଳେ ଆଦୌ ପାଦଶବ୍ଦ ଶୁଣାଯାଏ ନାହିଁ, (ସ୍ତ୍ରୀ) ପାଦବିକ୍ଷେପା।

**ନିଃଶମ**—ପୁଂ. ବି. (ନିର୍ + ଶମ) କ୍ରୋଧ, ଉଦ୍‌ବେଗ, ମାନସିକ ଉଦ୍‌ବେଗ।

**ନିଃଶର**—ପୁଂ. ବିଂ. (ବ. ବ୍ରୀ) ଶରଶୂନ୍ୟ, ବାଣହୀନ। [ ନିରାଶ୍ରୟ।

**ନିଃଶରଣ**—ପୁଂ. ବିଂ. (ବ. ବ୍ରୀ) ଆଶ୍ରୟହୀନ,

**ନିଃଶଲାକ**—ବିଂ. (ନିଃଶଲାକା) ଯେଉଁ ପକ୍ଷୀ ବା ମାଛମାନଙ୍କର ଡେଣାରେ ଅସ୍ଥି ଶଲାକାମାନ ନ ଥାଏ, ନିର୍ଜନ, ବିଜନ, ପ୍ରତିବନ୍ଧରହିତ, ଅସ୍ଥିରହିତ।

**ନିଃଶଲ୍କ**—ବିଂ. (ନିର୍ + ଶଲ୍କ) ଅକାତିଆ (ମଛ), ଯେଉଁ ମାଛର କାତି ନାହିଁ।

**ନିଃଶଲ୍ୟ**—ବିଂ. ( ବ. ବ୍ରୀ ) ଶଲ୍ୟରହିତ, ନିଷ୍କଣ୍ଟକ, ଯନ୍ତ୍ରଣାଶୂନ୍ୟ, ପ୍ରତିବନ୍ଧକରହିତ, (କ୍ରି. ବିଂ) ବିନାଯନ୍ତ୍ରଣାରେ।

**ନିଃଶଲ୍ୟା**—ସ୍ତ୍ରୀ. ବି. ଦନ୍ତୀବୃକ୍ଷ, (ସ୍ତ୍ରୀ. ବିଂ) ଶଲ୍ୟବତ୍ ପ୍ରତିବନ୍ଧ ରହିତ।

**ନିଃଶସ୍ତ୍ର**—ବିଂ. (ବ. ବ୍ରୀ) ଶସ୍ତ୍ରହୀନ, ନିରସ୍ତ୍ର, ଅସ୍ତ୍ରଚାଳନାବିହୀନ, ଯୁଦ୍ଧଶୂନ୍ୟ, (ସ୍ତ୍ରୀ). ନିଃଶସ୍ତ୍ରା।

**ନିଃଶସ୍ତ୍ରପ୍ରତିରୋଧ**—ପୁଂ. ବି. ( କ. ଧା ) ଶସ୍ତ୍ରାଦିର ବିନା ପ୍ରୟୋଗରେ ଶତ୍ରୁକୁ ବା ରାଜାଦେଶକୁ ବାଧା ପ୍ରଦାନକରିବା।

**ନିଃଶାଖ**—ବିଂ. (ବ. ବ୍ରୀ) ଶାଖାହୀନ।

**ନିଃଶୂକ**—ବି. ଧାନ୍ୟ ବିଶେଷ, ଶୂକ ନଥିବା ଧାନ, (ବିଂ) ଶୂକରହିତ, ନିର୍ଦ୍ଦୟ, ନିଷ୍ଠୁର।

**ନିଃଶୂନ୍ୟ**—ବି. (ନିର୍ + ଶୂନ୍ୟ) ସମ୍ପୂର୍ଣ୍ଣରୂପେ ଶୂନ୍ୟ, ସମ୍ପୂର୍ଣ୍ଣରୂପେ ଖାଲି।

**ନିଃଶୃଙ୍ଗ**—ପୁଂ. ବିଂ. ଯାହାର ଶୃଙ୍ଗ ନାହିଁ, ଶୃଙ୍ଗହୀନ, (ସ୍ତ୍ରୀ) ନିଃଶୃଙ୍ଗା।

**ନିଃଶେଷ**—ବି. (ବ. ବ୍ରୀ) ସମସ୍ତ, ବିନଷ୍ଟ,

ସମ୍ପୂର୍ଣ୍ଣ କ୍ଷୟିତ, ଶେଷରହିତ, ଯହିଁର କୌଣସି ଅଂଶ ବାକି ରହିଯାଇ ନାହିଁ, (କ୍ରି. ବିଂ) ସମ୍ପୂର୍ଣ୍ଣରୂପେ, କିଛିବାକି ନରଖି ।

ନିଃଶେଷକୃତ—ପୁଂ. ବିଂ. (ନିଃଶେଷ+କୃ+କ.ତ) ଯେ କିଛି ବାକି ନରଖି ସବୁଯାକ ଖାଦ୍ୟ ଖାଇଦିଏ, ଯେ ଖାଇଲା ପତ୍ରରେ କିଛି ମାତ୍ର ଖାଦ୍ୟବସ୍ତୁ ଛାଡ଼ି ନ ଥାଏ, (ମ୍ରୀ.ତ) ଯେଉଁ ବସ୍ତୁକୁ ବା ପାତ୍ରକୁ ବା ଭାଣ୍ଡକୁ ନିଃଶେଷିତ କରି ଯାଇଅଛି ।

ନିଃଶେଷତଃ—କ୍ରି. ବିଂ. ସମ୍ପୂର୍ଣ୍ଣରୂପେ, କୌଣସି ଅଂଶ ବାକି ନରଖି ।

ନିଃଶେଷମୁଷିତ—ବିଂ.ଯହିଁରୁ ବା ଯାହାଠାରୁ ସମସ୍ତ ବସ୍ତୁ ଚୋରି ହୋଇ ଯାଇ ଅଛି ।

ନିଃଶେଷିତ—ବିଂ.(ନିଃ+ଶେଷ+ଇତ) ଯାହା ସରି ଯାଇଅଛି, ସମାପ୍ତ, ବିଧ୍ୱସ୍ତ, ସମ୍ପୂର୍ଣ୍ଣରୂପେ ବ୍ୟୟିତ ।

ନିଃଶୋକ—ବିଂ. (ବ.ବ୍ରୀ) ଶୋକହୀନ, (ସ୍ତ୍ରୀ) ନିଃଶୋକା ।

ନିଃଶୋଧ—ବିଂ. (ନିର୍+ଶୋଧ) ଶୋଧିତ, ମୃଷ୍ଟ, ନିର୍ମଳ, ମାର୍ଜିତ ।

ନିଃଶ୍ମଶ୍ରୁ—ପୁଂ. ବିଂ.(ବ.ବ୍ରୀ)ଯାହାର ମୁଛ ଦାଢ଼ି ନାହିଁ ।

ନିଃଶ୍ରମ—ବିଂ. ନିଶ୍ରମ ଦେଖ, (କ୍ରି. ବିଂ) ବିନାପରିଶ୍ରମରେ ।

ନିଃଶ୍ରୟଣୀ—ସ୍ତ୍ରୀ. ବି. (ନିଃ+ଶ୍ରୀ+ଣ. ଅନ+ଈ)ସିଢ଼ି, ନିଶୁଣୀ,ଅଧିରୋହଣୀ, ଖଜୁରିଗଛ, ଏକପ୍ରକାର ଘାସ ।

ନିଃଶ୍ରୟିଣୀ—ସ୍ତ୍ରୀ.ବି. ନିଃଶ୍ରୟଣୀ ଦେଖ ।

ନିଃଶ୍ରୀ—ପୁଂ ଓ ସ୍ତ୍ରୀ. ବିଂ (ବ.ବ୍ରୀ) ଶ୍ରୀହୀନ, ଯାହାକୁ ଶ୍ରୀହୀନ କରିଯାଇ ଅଛି, ଦୁଃଖୀ, ଗୌରବହୀନ । [ ଦେଖ ।

ନିଃଶ୍ରେଣି,ଣିକା,(ଣୀ)—ବି. ନିଃଶ୍ରୟଣୀ-

ନିଃଶ୍ରେୟସ—କ୍ଲୀ. ବି. (ନିର୍+ଶ୍ରେୟସ) ମୋକ୍ଷ, ମଙ୍ଗଳ, ବିଜ୍ଞାନ, ଭକ୍ତି, ଅନୁଭବ, ସୁଖ, ଜ୍ଞାନ, ପ୍ରତ୍ୟୟ, ବିଶ୍ୱାସ, (ପୁଂ. ବି.—ବ.ବ୍ରୀ) ଶିବ,(ବିଂ-ବ.ବ୍ରୀ) ସର୍ବୋତ୍କୃଷ୍ଟ ।

ନିଃଶ୍ୱସନ—ବି. (ନିଃ+ଶ୍ୱସ୍+ଭା.ଅନ) ନିଃଶ୍ୱାସମାରିବା ।

ନିଃଶ୍ୱାସ—ପୁଂ. ବି. (ନିଃ+ଶ୍ୱସ୍+ଭା.ଅ) ପ୍ରାଣବାୟୁ ନାକବାଟେ ବାହାରକୁ ଯିବା ନାକରୁ ଯେଉଁ ପବନ ବାହାରେ,ଶ୍ୱାସ, ଦମ୍ ।

ନିଃଶ୍ୱାସପ୍ରଶ୍ୱାସ—ବି. (ଦ୍ୱନ୍ଦ୍ୱ) ପ୍ରାଣବାୟୁ ଗ୍ରହଣ ଓ ତ୍ୟାଗ, ପୂରକ ଓ ରେଚକ ।

ନିଃଷମ—ଅବ୍ୟ. ନିନ୍ଦା, ଗର୍ହା, ଦୁଃଷମ, ଶୋକ ।

ନିଃଷନ୍ଧି—ବିଂ. ସନ୍ଧିଶୂନ୍ୟ, ଦୃଢ଼ ।

ନିଃସଂକଷ—ବିଂ. (ନିର୍+ସଂକଷା) ଅବ୍ୟାକୁଳ ।

ନିଃସଂକଳ୍ପ—ବିଂ. (ନିର୍+ସଂକଳ୍ପ) ସଂକଳ୍ପରହିତ ।

ନିଃସଂକ୍ଷୋଭ—ବିଂ. (ନିର୍+ସଂକ୍ଷୋଭ) ଅବିଚଳିତ ।

ନିଃସଂଖ୍ୟା--ବିଂ.(ନିର୍+ସଂଖ୍ୟା)ଅସଂଖ୍ୟ ।

ନିଃସଂଜ୍ଞ—ବିଂ.(ବ.ବ୍ରୀ) ଚେତନାରହିତ, ଅଚେତନ ।

ନିଃସଂଶୟ—ବିଂ. (ବ.ବ୍ରୀ) ନିଃସନ୍ଦେହ ।

ନିଃସଂସ୍କାର—ବିଂ.(ବ.ବ୍ରୀ)ସଂସ୍କାରରହିତ, ଅଶିକ୍ଷିତ, ଅଭଦ୍ର ।

ନିଃସଖ—ପୁଂ. ବିଂ. (ବ.ବ୍ରୀ) ସଖାହୀନ; ବନ୍ଧୁହୀନ, ନିରାଶ୍ରୟ ।

ନିଃସଙ୍ଗ—ବିଂ. (ନିର୍+ସଙ୍ଗ) ବ.ବ୍ରୀ; ସମ୍ପର୍କଶୂନ୍ୟ, ନିର୍ଲିପ୍ତ,ନିଃସ୍ୱାର୍ଥ,ଅପ୍ରତିବନ୍ଧ,ମେଳରହିତ,ଫଳର ଅଭିନିବେଶ-ଯୁକ୍ତ, ଅନୁରାଗ ଶୂନ୍ୟ, ଏକାକୀ, (ବି) ସଙ୍ଗ ବା ଅନୁରାଗ ରାହିତ୍ୟ, ଏକାଗ୍ରତା,

ନିଃସଙ୍ଗତା—-ବି. ବିଷୟବୈରାଗ୍ୟ, ସଙ୍ଗରହିତ ଅବସ୍ଥା ।

ନିଃସଞ୍ଚାର—ପୁଂ. ବି. ଗତିହୀନ, ଯେ ଗୃହଛାଡ଼ି ଅନ୍ୟତ୍ର ଯାଏ ନାହିଁ, ଭ୍ରମଣରହିତ ।

ନିଃସତ୍ତ୍ୱ(ତ୍ତ୍ୱ)—ବିଂ. (ବ.ବ୍ରୀ) ସାରହୀନ, ସାହସହୀନ, ଦୁର୍ବଳ, ଅସମର୍ଥ, ପ୍ରାଣୀଶୂନ୍ୟ, ନୀଚ, ହେୟ, (ବି) ତେଜୋହୀନତା,ଶକ୍ତିହୀନତା,ହେୟତା,ଅନସ୍ତିତ୍ୱ ।

ନିଃସନ୍ତାନ—ପୁଂ. ବିଂ. (ବ.ବ୍ରୀ)ଅପୁତ୍ରିକ, ଅନପତ୍ୟ, ଆଣ୍ଟୁକୁଡ଼ା, ନିର୍ବଂଶ ।

ନିଃସନ୍ଦିଗ୍ଧ—ପୁଂ. ବିଂ. (ନିର+ସମ୍+ଦିହ+କ.ତ) ସନ୍ଦେହରହିତ, ଯାହା ମନରେ ସନ୍ଦେହ ନାହିଁ ।

ନିଃସନ୍ଦେହ—ବିଂ. (ବ.ବ୍ରୀ) ନିଶ୍ଚିତ, ସୁସ୍ପଷ୍ଟ, ସନ୍ଦେହରହିତ, (ପୁଂ, ବିଂ) ଯାହା ମନରୁ ସନ୍ଦେହ ଦୂରହୋଇଅଛି ।

ନିଃସନ୍ଧି—ବିଂ. (ନିର୍+ସନ୍ଧି) ବ.ବ୍ରୀ; ଦୃଢ଼, ଘନ, ଅଭେଦ୍ୟ, ଯାହାର, ସନ୍ଧି ବା ଗଣ୍ଠି ନଥାଏ, ଛିଦ୍ରରହିତ ।

ନିଃସପତ୍ନ—ପୁଂ. ବିଂ,(ବ.ବ୍ରୀ)ଶତ୍ରୁରହିତ, ଯେଉଁ ବ୍ୟକ୍ତିର କୌଣସି ବସ୍ତୁରେ ଅନ୍ୟବ୍ୟକ୍ତି ସହିତ ଭାଗମାଲ ସ୍ୱାମିତ୍ୱ ନଥାଏ, ପ୍ରତିଦ୍ୱନ୍ଦ୍ୱୀରହିତ ।

ନିଃସମ୍ପର୍କ—ପୁଂ. ବିଂ. (ବ.ବ୍ରୀ) ଯାହାର କିଛିମାତ୍ର ସମ୍ପର୍କ ବା ସମ୍ବନ୍ଧ ନାହିଁ, ବନ୍ଧୁବାନ୍ଧବହୀନ,ଯେ ଆପଣାର ନୁହେ, ପର ।

ନିଃସମ୍ପର୍କୀୟ—ଗ୍ରା.ପୁଂ.ବିଂ.ଯାହାସଙ୍ଗେ କିଛିମାତ୍ର ରକ୍ତ ବା ଯୌନ ସମ୍ବନ୍ଧନାହିଁ, ସମ୍ପର୍କରହିତ ।

ନିଃସମ୍ପାତ—ପୁଂ. ବି. (ବ.ବ୍ରୀ) ନିଶୀଥ, ଅର୍ଦ୍ଧରାତ୍ର, ଘୋରଅନ୍ଧାର,(ବିଂ)ଗମନାଗମନପଥଶୂନ୍ୟ, ଅବରୁଦ୍ଧ,ଅଗମ୍ୟ ।

ନିଃସମ୍ବନ୍ଧ—ପୁଂ. ବିଂ. (ବ.ବ୍ରୀ) ନିଃସମ୍ପର୍କ ଦେଖ ।

ନିଃସମ୍ବଳ—ପୁଂ. ବିଂ. (ବ.ବ୍ରୀ) ଦରିଦ୍ର, ସଙ୍ଗତିହୀନ ।

ନିଃସମ୍ବାଧ—ବିଂ.(ନିର୍+ସମ୍ବାଧା)ବିନିଗହଳଶୂନ୍ୟ, ନିର୍ଜନ ।

ନିଃସମ୍ଭ୍ରମ--ବିଂ.(ନିର୍+ସମ୍ଭ୍ରମ)ଅବିଚଳିତ

ନିଃସରଣ—କ୍ଲୀ. ବି. (ନି+ସୃ+ଅନ) ମରଣ, ଉପାୟ, ଗୃହର ଦ୍ୱାରମୁହଁ, ପ୍ରତିକାର, ନିର୍ବାଣ ମୋକ୍ଷ, ନିର୍ଗମନ ।

ନିଃସରଣି—ବିଂ. (ବ.ବ୍ରୀ) ପଥଶୂନ୍ୟ, ଯାହା କାର୍ଯ୍ୟରେ ପରିଣତ କରିହୁଏ ନାହିଁ ।

ନିଃସର୍ପ—ବି°. (ବ.ବ୍ରୀ) ସର୍ପଶୂନ୍ୟଦେଶ, ଯେଉଁଠାରେ ସର୍ପ ନାହିଁ ।

ନିଃସଲିଳ--ବି°.(ବ.ବ୍ରୀ)ଜଳହୀନ,ନିର୍ଜଳ ।

ନିଃସହ—ବି°. (ନିର୍+ସହ+ର୍ମ.ଅ) ଅସହ୍ୟ, ଦୁଃସହ, ଅସହନୀୟ,(କ.ଅ) ଅଧୀର, ଯେ ସହି ନପାରେ, ଅଦମ୍ୟ. ଶକ୍ତିହୀନ, ଦୁର୍ବଳ, ଯାହା ବାଧାଦେଇ ନପାରେ,ଯାହା ଭାର ସହି ନପାରେ ।

ନିଃସହାୟ—ବି°. (ବ.ବ୍ରୀ) ଅସହାୟ, ସହାୟହୀନ, ନିରବଲମ୍ବନ ।

ନିଃସାଧ୍ୱସ—ବି°.(ନିର୍ + ସାଧ୍ୱସ)ସାହସୀ· ନିର୍ଭୀକ । [ ଅସମର୍ଥ ।

ନିଃସାମର୍ଥ୍ୟ—ବି°. (ବ.ବ୍ରୀ) ଅଯୋଗ୍ୟ,

ନିଃସାମାନ୍ୟ—ବି°. (ନିର୍+ସାମାନ୍ୟ) ଅସାମାନ୍ୟ, ଅସାଧାରଣ ।

ନିଃସାର—ପୁ°.ବି°.(ନିର୍ + ସାର)ବ.ବ୍ରୀ; ସାରରହିତ, ସାରଶୂନ୍ୟ, ନିସ୍ତେଜ, ଅସାର, ମଜ୍ଜାହୀନ, (ବି) ଶାଖୋଟ ବୃକ୍ଷ, ଶାହାଡ଼ା ଗଛ, ଫଣଫଣା ଗଛ, (ନିର୍+ସୃ+ଣ.ଅ)ନିର୍ଗମପଥ,ସଙ୍ଗୀତର କାଳ, ବାହାରଯିବା, ବହିର୍ଗମନ ।

ନିଃସାରକ—ବି .(ନିଃ+ସୃ+ଣିଚ୍+କ. ଅକ) ଯାହା କୌଣସିପଦାର୍ଥକୁ ନିଃସରଣ କରାଏ ବା ଯାହା ବାହାର କରାଏ, ଯାହା ନିଗାଡ଼ିଦିଏ, (ବି) ଏକପ୍ରକାର ଅତିସାର ।

ନିଃସାରଣ—କ୍ଲୀ. ବି.(ନିର୍+ସୃ+ଣିଚ୍ +ଭା.ଅନ) ନିଷ୍କାସନ, (ଣ.ଅନ) ଗୃହର ପ୍ରବେଶଦ୍ୱାର, ବହିର୍ଦ୍ୱାର, କାର୍ଯ୍ୟରୁ ବାହାର କରିବା,ନିଗାଡ଼ିବା. ଗୃହର ପ୍ରବେଶ ନିର୍ଗମର ପଥ

ନିଃସାରା—ସ୍ତ୍ରୀ. ବି.(ବ.ବ୍ରୀ)କଦଳୀବୃକ୍ଷ ।

ନିଃସାରିତ—ବି°. (ନିର୍+ସୃ+ଣିଚ୍+ର୍ମ. ତ) ବହିଷ୍କୃତ, ଅବକୃଷ୍ଟ. ନିଷ୍କାସିତ. ନିଗାଡ଼ାହୋଇଥିବା,ବାହାର କରାଯାଇ ଥିବା, ନିଙ୍ଗାଡ଼ିତ

ନିଃସାହସ—ପୁ°. ବି . (ବ.ବ୍ରୀ) ଭୀରୁ ।

ନିଃସାହ—ପ୍ର. ବି°. ନିରାଶ୍ରୟ,ସାହାଯ୍ୟ ଶୂନ୍ୟ ।

ନିଃସୀମ—ବି°. (ନିଃ+ସୀମା) ବ.ବ୍ରୀ; ସୀମାରହିତ, ଅବଧିଶୂନ୍ୟ,ଅପରିମେୟ, ଅନନ୍ତ ।

ନିଃସୁଖ—ବି°. (ବ.ବ୍ରୀ)ଦୁଃଖିତ,ଦୁଃଖୀ, ନିରାନନ୍ଦ, ଅପ୍ରୀତିକର, କଷ୍ଟପ୍ରଦ ।

ନିଃସ୍ପୃହ–ବି°.ବାଞ୍ଛାରହିତ,(ସ୍ତ୍ରୀ) ନିଃସ୍ପୃହା ।

ନିଃସୃତ—ବି°. (ନିର୍+ସୃ+କ.ତ) ବହିର୍ଗତ, ନିର୍ଗତ, ବାହାରିଯିବା ।

ନିଃସୋମକ—ବି°. (ବ.ବ୍ରୀ) ଚନ୍ଦ୍ରହୀନ ।

ନିଃସ୍ତମ୍ଭ—ବି°. (ବ.ବ୍ରୀ) ଯହିଁରେ ସ୍ତମ୍ଭ ନାହିଁ ।

ନିଃସ୍ନେହ—ବି°.(ନିଃସ୍ନେହ)ବ.ବ୍ରୀ; ସ୍ନେହଶୂନ୍ୟ, ପ୍ରୀତିଶୂନ୍ୟ, ରସହୀନ, ଶୁଷ୍କ, ତୈଳବର୍ଜ୍ଜିତ ।

ନିଃସ୍ନେହଫଳା—ସ୍ତ୍ରୀ.ବି.ଶ୍ୱେତ କଣ୍ଟକାରି, ଭେଜିବାଇଗଣ ।

ନିଃସ୍ନେହା—ସ୍ତ୍ରୀ.ବି.ଅତସୀ, ପେଶବୃକ୍ଷ ।

ନିଃସ୍ପନ୍ଦ—ବି°. (ବ.ବ୍ରୀ) ସ୍ପନ୍ଦ ବା କମ୍ପ ରହିତ, ନିଶ୍ଚଳ ।

ନିଃସ୍ପୃହ—ବି°. (ନିଃ + ସ୍ପୃହା) ବ.ବ୍ରୀ; ବାଞ୍ଛାଶୂନ୍ୟ, ସ୍ପୃହାରହିତ, ଅନାକାଙ୍କ୍ଷ ।

ନିଃସ୍ରବ—ପୁ°.ବି. (ନିର୍+ସ୍ରୁ+ଭା.ଅ) ନିଃସ୍ରବଣ ଦେଖ ।

ନିଃସ୍ରବଣ—ବି. (ନିଃ+ସ୍ରୁ+ଭା.ଅନ) ବ୍ୟୟ, ଖରଚ, କ୍ଷରଣ, ଦ୍ରବ ବସ୍ତୁର ପତନ, ଦ୍ରବବସ୍ତୁ, ପ୍ରସ୍ରାବ, ପ୍ରସ୍ରା, ପେଜ, ଭାତମଣ୍ଡ. ଅବଶେଷ, ନିର୍ଗମନ. ଫେନ ।

ନିଃସ୍ରାବ—ପୁ°. ବି. (ନିର୍+ସ୍ରୁ+ଅ) ନିଃସ୍ରବଣ ଦେଖ ।

ନିଃସ୍ୱ—ବି°. (ବ.ବ୍ରୀ) ଧନହୀନ, ଦରିଦ୍ର. ଗରିବ, ଦୁଃଖୀ, ଅନାଥ, ଗତିରହିତ ।

ନିଃସ୍ୱତ୍ୱ—ବି.(ନିଃସ୍ୱ+ଭା.ତ୍ୱ) ଦାରିଦ୍ର୍ୟ, (ବି°.ବ.ବ୍ରୀ) ସମ୍ପତ୍ତିରେ ଅଧିକାର ବା ସ୍ୱାମିତ୍ୱରହିତ ।

ନିଃସ୍ୱନ—ବି°. (ନିର୍+ସ୍ୱନ) ସ୍ୱର ବା ଧ୍ୱନିହୀନ, (ବି.-ନିର୍+ସ୍ୱନ+ଭା.ଅ) ରବ, ଧ୍ୱନି ।

ନିଃସ୍ୱତ୍ୱ—ବି°. (ବ.ବ୍ରୀ) ସ୍ୱତ୍ୱଶୂନ୍ୟ, ଚରିତ୍ରହୀନ,(ଭାବ) ଦାରିଦ୍ର୍ୟ, ନିର୍ଦ୍ଧନତା ।

ନିଃସ୍ୱାଦୁ—ବି°. (ନିର୍+ସ୍ୱାଦ+କ.ଉ) ସ୍ୱାଦରହିତ, ସାରଶୂନ୍ୟ, ନୀରସ ।

ନିଃସ୍ୟନ୍ଦ—ବି°. (ନିର୍+ସ୍ୟନ୍ଦ+କ.ଅ) ନିର୍ଗତ, କ୍ଷରିତ, ଟୋପା ଟୋପା ହୋଇ ବହୁଥିବା, (ବି) ନିଃସ୍ୟନ୍ଦନ ଦେଖ ।

ନିଃସ୍ୟନ୍ଦନ—ବି. (ନିର୍+ସ୍ୟନ୍ଦନ) ଟୋପା ଟୋପା ହୋଇ ଝରିବା ଫଳ ।

ନିଃସ୍ୟନ୍ଦିତ—ବି°. (ନିର୍+ସ୍ୟନ୍ଦ+କ. ତ) ନିଃସ୍ୟନ୍ଦ ଦେଖ ।

ନିକ୍‌ଟଇବା—ପ୍ରା.(ସମ୍ପ) କ୍ରି. ନିକାଳିବା, ତଡ଼ିଦେବା ।

ନିକ୍‌ରିବା—ପ୍ରା. (ସମ୍ପ) କ୍ରି. ନିକାଳିବା, ବାହାରିଯିବା ।

ନିକ—ଗ୍ରା.ବି°.(ଫ-ନିକ୍) ସରୁ ଓ ସଫା (ଗୃହାଦି), ଭଲ, ଉତ୍ତମ,ସୁନ୍ଦର ।

ନିକଉଡ଼ିଆ—ଗ୍ରା. ବି°.ନିର୍ଦ୍ଧନ, କପର୍ଦ୍ଦକ-ବିହୀନ, ମୂଲ୍ୟହୀନ, ମାଗଣା, (ବି) ଧନହୀନ ବ୍ୟକ୍ତି ।

ନିକକାମ—ଗ୍ରା.ବି.ଦୋଷଶୂନ୍ୟ କାର୍ଯ୍ୟ ।

ନିକଷ—ବି.(ନି+ କଷ)କାଠର ଖୋଲ ।

ନିକଟ—ବି°. (ନି + କଟ +ଅ) ନିକଟବର୍ତ୍ତୀ, ଅଦୂର, ସମୀପ, ଆସନ୍ନ, (ବି) ନୈକଟ୍ୟ, ସାମୀପ୍ୟ, (ଗ୍ରା.ଅବ୍ୟ)ସମୀପକୁ, ପାଖକୁ, ପ୍ରତି, ସମୀପରେ, ପାଖରୁ, ଅଦୂର ଭବିଷ୍ୟତରେ, ଶୀଘ୍ର ।

ନିକଟଗ—ବି°. (ନିକଟ + ଗମ୍+କ.ଅ) ଅଦୂର, ସମୀପବର୍ତ୍ତୀ ।

ନିକଟତା—ସ୍ତ୍ରୀ. ବି. (ନିକଟ+ତ+ଆ) ସାମୀପ୍ୟ, ନୈକଟ୍ୟ, ପାଖ ।

ନିକଟବର୍ତ୍ତୀ—ପୁ°. ବି°. (ନିକଟ + ବୃତ କ. ଇନ୍) ସମୀପସ୍ଥ, ନିକଟସ୍ଥ, ଯେ ନିକଟରେ ଥାଏ ।

ନିକଟବର୍ତ୍ତିତ୍ୱ--କ୍ଲୀ.ବି.ନିକଟବର୍ତ୍ତୀର ଭାବ ।

ନିକଟଭବିଷ୍ୟତ—ବି.ଅଳ୍ପ ସମୟ ପରବର୍ତ୍ତୀକାଳ ।

ନିକଟରେ—ଗ୍ରା.ଅବ୍ୟ ନିକଟେ ଦେଖ ।

ନିକଟସମ୍ପର୍କ—ବି. ଅନ୍ତରଙ୍ଗ ବନ୍ଧୁତା,

ଘନିଷ୍ଠ ସମ୍ବନ୍ଧ, (ପୁଂ.ବିଂ)ଯାହା ସଙ୍ଗେ ନିକଟ ସମ୍ପର୍କ ଅଛି ।

**ନିକଟସମ୍ବନ୍ଧୀୟ**—ବିଂ. ନିକଟସମ୍ପର୍କୀୟ. ନିକଟ ସମ୍ବନ୍ଧବିଶିଷ୍ଟ, ସ୍ୱଜନ ।

**ନିକଟସ୍ଥ**—ବିଂ. (ନିକଟ+ସ୍ଥା+କ.ଅ) ନିକଟବର୍ତ୍ତୀ ଦେଖ ।

**ନିକ(କି)କୁ)ଟା**—ଗ୍ରା.ବି. ନେହୁରହେବା, ଦାନ୍ତ ନିକୁଟିବା,(ପୁଂ.ବିଂ)ଯେ ସବୁବେଳେ ଅନ୍ୟକୁ ନେହୁର ହୁଏ, ଦରିଦ୍ର, ନିର୍ଲଜ୍ଜ,ନୀଚ, କୃପଣ, ଅଳସୁଆ ।

**ନିକଟାଗତ**—ବିଂ. ଉପସ୍ଥିତ.ଅଭ୍ୟାଗତ. ସମାଗତ, ସମୀପରେ ଉପସ୍ଥିତ ।

**ନିକଟାଗମନ**—କ୍ଲୀ.ବି.ଉପସନ୍ନତା, ନିକଟକୁ ଆସିବା, ଉପସ୍ଥିତି ।

**ନିକଟାନିକଟି**—ଗ୍ରା.କ୍ରି.ବିଂ. ଆଖପାଖ, ସମୀପତଃ.ପ୍ରାୟ ପରସ୍ପରକୁ ଲଗାଲଗି ।

**ନିକ(କୁ)ଟିମହୁ**—ଗ୍ରା. ବି. ଏକପ୍ରକାର ଶ୍ରେଷ୍ଠ ମହୁମାଛି, ନିକୁଟୀ ମହୁମାଛିମାନଙ୍କ ଦ୍ୱାରା ସଞ୍ଚିତ ମଧୁ ।

**ନିକଟେ**—ଗ୍ରା. ଅବ୍ୟ. ଶୀଘ୍ର, ତୁରନ୍ତ, ଅବିଳମ୍ବେ,(ଅମୁକର)ପାଖରେ,ଠାରେ. ଅଳ୍ପସମୟେ ।

**ନିକମା**—ଗ୍ରା.ବିଂ. ଅଳସୁଆ, ଅଯୋଗ୍ୟ, ଅକାମିକା, ବ୍ୟର୍ଥ, ଲାଭହୀନ, ଅନୁର୍ବର (ଜମି) ।

**ନିକର**—ପୁଂ. ବି. ( ନି+କୃ+ଅଲ୍.ଅ ) ସମୂହ, ରାଶି, ପଙ୍କ୍ତି, ଦଳ. ଗୋଷ୍ଠୀ. ବକ୍‌ସିସ, ନ୍ୟାୟ ଦେୟ ଧନ, କଥା, ନିଦ୍ଧି,(ଗ୍ରା.କ୍ରି.ବିଂ)କେବେହେଁ,ଆଦୌ, ମୂକର, ନିଶ୍ଚେ ।

**ନିକର୍ତ୍ତନ**—କ୍ଲୀ.ବି. (ନି+କୃତ+ଅନ) ଛେଦନ, (ବିଂ) ଛେଦନକାରୀ ।

**ନିକର୍ତ୍ତିବ୍ୟ**—କ୍ଲୀ. ବିଂ. ( ନି+କୃତ+ତବ୍ୟ) ଛେଦନୀୟ ।

**ନିକର୍ଷଣ**—କ୍ଲୀ.ବି. (ନି+କୃଷ+ଅଧି+ଅନ) ସନ୍ନିବେଶ, ନଗରାଦିର ବହିଃସ୍ଥିତ କ୍ରୀଡ଼ାଭୂମି, ଗୃହ ପ୍ରବେଶର ଦ୍ୱାରସ୍ଥିତ ପଡ଼ିଆ, ସମୀପସ୍ଥିତା, ପ୍ରାଙ୍ଗଣାଦିର ସନ୍ନିବେଶ, (ବିଂ) କର୍ଷଣରହିତ ।

**ନିକଷ**—ପୁଂ.ବି.(ନି+କଷ୍+ଅଧି+ଅ) କଷଟି ପଥର ଉପରେ ପଡ଼ିଥିବା ସୁନାର ଗାର, କଷ୍ଟିପଥର, ପରୀକ୍ଷା. ସୁବର୍ଣ୍ଣାଦିର ପରୀକ୍ଷାର୍ଥ ଘର୍ଷଣ କର୍ମ. ଅସ୍ତ୍ରାଦିର ତୀକ୍ଷ୍ଣସାଧନ ଦ୍ରବ୍ୟ, ଶାଣ ।

**ନିକଷଣ**—କ୍ଲୀ.ବି. (ନି+କଷ୍+ଭା.ଅନ) ଘର୍ଷଣ, ଖନନ, ଉଲ୍ଲେଖନ, କଷ୍ଟି ପଥରରେ ସୁନା ଘଷିବା ।

**ନିକଷା**—ସ୍ତ୍ରୀ. ବି. (ନିକଷ+ଆ) ରାକ୍ଷସ ମାତା, ରାବଣର ମାତା, (ଅବ୍ୟ) ନିକଟରେ, ମଧ୍ୟରେ ।

**ନିକଷାତ୍ମଜ**—ପୁଂ.ବି. (୬ତତ୍)ନିକଷାର ପୁତ୍ର, ରାକ୍ଷସ, ରାବଣ, କୁମ୍ଭକର୍ଣ୍ଣ, ବିଭୀଷଣ ।

**ନିକଷୋପଲ**—ପୁଂ. ବି. ପ୍ରସ୍ତରବିଶେଷ, କଷଟିପଥର,ଶାଣପଥର । [ ଦେଖ ।

**ନିକସ**—ପୁଂ.ବି.(ନି+କସ+ଅ)ନିକଷ

**ନିକା**—ପା. ବି. ମୁସଲମାନମାନଙ୍କ ମଧ୍ୟରେ ପ୍ରଚଳିତ ବିଧବାବିବାହ.(ଗ୍ରା. ବି)ଘର ଓଳାଇବା କର୍ମ. ଘରକାମିକା, (ଗ୍ରା.ଅବ୍ୟ) ଆଦୌ, ମୁଣ୍ଡହୁଁ,ଜମାରୁ ।

**ନିକା(କୋ)ଇବ**—ଗ୍ରା. କ୍ରି. ଗୃହମାର୍ଜ୍ଜନ କରିବା. ଓଳାଇବା, ପରିଷ୍କୃତ କରିବା

**ନିକାଞ୍ଚନ**—ଗ୍ରା. ବିଂ. ( ଫା-ନିସ୍ବାଞ୍ଚନ ) ଧନହୀନ, ନିର୍ଜନ, ନିଦ୍ରୋଳିଆ ।

**ନିକାଞ୍ଚନେ**—ଗ୍ରା. କ୍ରି. ବିଂ. ନିର୍ଜନରେ, ନିରୋଳାରେ ।

**ନିକାମ**—ବିଂ. (ନି+କମ+ଅ) ଇଷ୍ଟ, ଅଭିଳଷିତ, ପର୍ଯ୍ୟାପ୍ତ, ଅତ୍ୟନ୍ତ, (କ୍ରି. ବିଂ) ସ୍ୱେଚ୍ଛାପୂର୍ବକ, ଆପଣାର ଇଚ୍ଛାନୁରୂପ, ଅତ୍ୟନ୍ତ ।

**ନିକାମନ**—ବି. ( ନି+କମ୍+ଭା.ଅନ ) ଇଚ୍ଛା, ଅଭିଳାଷ, ଲାଳସା ।

**ନିକାଯ୍ୟ**—ପୁଂ. ବି. (ନି+ଚି+ଅଧି.ଅ) ସମୂହ, ସମାନଧର୍ମୀ ବ୍ୟକ୍ତି ସମୂହ, ସଧର୍ମୀ ପ୍ରାଣିସମୂହ, ଲକ୍ଷ୍ୟ, ନିଳୟ, ବାସସ୍ଥାନ,ଗୃହ,ପରମାତ୍ମା,ଗଦା, ରାଶି

**ନିକାଯ୍ୟ**—ପୁଂ. ବି. (ନି+ଚି +ଅଧି.ଅ) ଗୃହ, ଆଳୟ, ବାସସ୍ଥାନ ।

**ନିକାର**—ପୁଂ. ବି. ( ନି+କୃ+ଭା.ଅ ) ପରାଭବ, ଅପକାର, ହତ୍ୟା, ଅପମାନ, ଦୁଃଶୀଳତା, ମାନହାନି, ଅନାଦର, ତିରସ୍କାର, ଲାଞ୍ଛନା, ଧିକ୍କାର, ଦ୍ୱେଷ, ଅସୂୟା, ଅଶ୍ଳୀଳଭାଷା, ଶସ୍ୟାଦିରୁ ଧୂଷ ବା ଶସ୍ୟ ପରିଷ୍କାର କରିବା ନିମନ୍ତେ କୁଲା ଦ୍ୱାରା ଉଡ଼ାଇବା ବା ପାଛୁଡ଼ିବା ।

**ନିକାରଣ**—କ୍ଲୀ. ବି. ( ନି+କୃ+ଅନ ) ବଧ, ହତ୍ୟା ।

**ନିକାରୀ**—ପୁଂ. ବିଂ. ଯଜ୍ଞକରଣଶୀଳ, ଯାହାର ସ୍ୱଭାବ କେବଳ ଯଜ୍ଞ କରିବା ।

**ନିକାଲ**—ଗ୍ରା.ଅବ୍ୟ.ନିକଲ୍.ଦୂରହେବା ।

**ନିକାଲିବା**—ଗ୍ରା. କ୍ରି. ବହିଷ୍କୃତ କରିବା, ତଡ଼ିଦେବା. (ଟପୁଡ଼ି କରି ରସଆଦି) ବାହାର କରିବା, ଓଟାରି ଆଣିବା ।

**ନିକାଲ୍ୟ**—ବିଂ. (ନି+କଲ୍+ଯ)ଗୃହଳୟ ।

**ନିକାଶ**—ପୁଂ. ବି. (ନି+କାଶ+ଭା.ଅ) ପ୍ରକାଶ, ବଧ. ସାମୀପ୍ୟ. ଚେହେରା, ଚକ୍ରବାଳ. ସାଦୃଶ୍ୟ, ଦୃଷ୍ଟି, (ବିଂ)ମୃତ, ନିଷ୍ପତ୍ତି କରାଯାଇଥିବା, ପରିଶେଷ ଧ୍ୱନ୍ତ, ସମାପ୍ତ, (ଗ୍ରା.ବି) ହିସାବ ସ୍ଥିରକରିବା, ଜଳନିର୍ଗମନ,ଶେଷ, ସମାଧାନ,ସମାପ୍ତି, ବିନାଶ, ମୁଖ, ସ୍ଥିରୀକରଣ ।

**ନିକାଶକରିବା**—ଗ୍ରା. କ୍ରି. (ହିସାବ) ମୀମାଂସା କରିବା,(ଧନ)ବିନାଶକରିବା, (ମନୁଷ୍ୟ ଜୀବ) ମାରିପକାଇବା,(ପାଣି) ଖାଲସଫାକରିବା,(କାର୍ଯ୍ୟ) ଶେଷ କରିବା ।

**ନିକାଶପାଇବା**—ଗ୍ରା. କ୍ରି. ବିନଷ୍ଟହେବା, ମୃତହେବା,ସମାପ୍ତହେବା,ବୋହିଯିବା ।

**ନିକାଶହେବା**—ଗ୍ରା. କ୍ରି. ନିକାଶପାଇବା ଦେଖ ।

**ନିକଷ**—ପୁଂ. ବି. (ନି+କଷ୍+ଭା.ଅ) ସମ୍ମିଳନ, କରଣ, ଘର୍ଷଣ, କର୍ଷଣ ।

**ନିକାଶ**—ବିଂ. (ନି+କାଶ୍+ଅ) ତୁଲ୍ୟ, (ବି) ନିକାଶ ଦେଖ ।

**ନିକାଶନ**—ବିଂ. (ନି+କାଶ+ଣ.ଅନ) ତୁଲ୍ୟ, ସଦୃଶ ।

**ନିକି**—ଗ୍ରା. ଅବ୍ୟ. (ପ୍ରଶ୍ନାର୍ଥକ) କି ?

କିଅଣ ? (ସମ୍ଭାବନାର୍ଥକ) ପରା,(ସନ୍ଦେହାର୍ଥକ) ସତେ ? (ନିଷ୍ଟୟାର୍ଥକ) ନିଶ୍ଚୟ, କାହିଁକି, (ପ୍ରଶ୍ନରୂପରେ ପ୍ରୟୋଗ) ନାହିଁ ? କି ? ସମ୍ଭବତଃ ।

ନିକଥ—ଗ୍ରା, ବି. (ସଂ-ନିକଷ) ବଣିଆର ତରାଜୁ, ସୁନାରୁପା ଓଜନ କରିବାର ସୂକ୍ଷ୍ମ ତୁଳାଦଣ୍ଡ ।

ନିକଳିବା—ଗ୍ରା, କ୍ରି. ବହିର୍ଗତ ହେବା, ବାହାରିଯିବା, ନିର୍ଗତହେବା, ସ୍ରବିବା, ଭିତର ଭେଦକରି ଫୁଟିଯିବା,ଖସିଯିବା ।

ନିକୁଚ(ଛ)—ଗ୍ରା.ବିଂ. (ସଂ-ନିକୃଷ୍ଟ)ତୁଚ୍ଛ, ହେୟ, ନଗଣ୍ୟ, କୃପଣ, ଅନୁଚିତ, ଅତି ଊଣା ।

ନିକୁଛ(ଚ୍ଛ)ପକ୍ଷରେ—ଗ୍ରା.ଅବ୍ୟ. ଅତିହୀନ ଦୃଷ୍ଟିରେ, ଅତି ସାମାନ୍ୟ ଦୃଷ୍ଟିରେ ମଧ୍ୟ ।

ନିକୁଞ୍ଚ—ବି. (ନି + କୁଞ୍ଚ + ଣ.ଅ) ଗୃହକାଠି ।

ନିକୁଞ୍ଚକ—ପୁଂ. ବି. (ନି+କୁଞ୍ଚ+କ. ଅକ) ଜଳବେତସ, ପରିମାଣବିଶେଷ, ଏକକୁଡ଼ବର ୧/୪ ଅଂଶ ।

ନିକୁଞ୍ଚିତ—କ୍ଳୀ. ବି. (ନି + କୁଞ୍ଚ + ଭା.ତ) ଅଙ୍ଗହାରାନ୍ତର୍ଗତ ଶିରୋବିଶେଷ, (ବିଂ-ର୍ମ.ତ) ସଙ୍କୁଚିତ, କୁଞ୍ଚକୁଞ୍ଚିଆ ।

ନିକୁଞ୍ଜ—ପୁଂ.କ୍ଳୀ.ବି.ଲତାଦି ଆଚ୍ଛାଦିତ କୁଞ୍ଜ, ଘିଲଣଥିବା ଲତା ମଣ୍ଡପ ।

ନିକୁଞ୍ଜବନ—କ୍ଳୀ. ବି. ତୀର୍ଥବିଶେଷ ।

ନିକୁଞ୍ଜିକାମ୍ଳା—ସ୍ତ୍ରୀ.ବି. କୁଞ୍ଚିକାବୃକ୍ଷବିଶେଷ ।

ନିକୁମ୍ଭ—ପୁଂ. ବି. ( ନି+କୁମ୍ଭ+ଅ ) ଦନ୍ତୀବୃକ୍ଷ,ଜୟପାଳ, କନକା,କୁମ୍ଭକର୍ଣ୍ଣ ରାକ୍ଷସରପୁତ୍ର,ଦାନବବିଶେଷ,ପ୍ରହ୍ଲାଦଙ୍କ ପୁତ୍ର,ହର୍ଯ୍ୟଶ୍ୱନୃପତିଙ୍କ ପୁତ୍ର, ବିଶ୍ୱଦେବବିଶେଷ,କୁରୁସେନାଧିପତିଙ୍କ ଅନ୍ତର୍ଗତ ନୃପବିଶେଷ,କୁମାରାନୁଚର ମାତୃଭେଦ ରାକ୍ଷସେଶ ନାମକ ଶିବାନୁଚରବିଶେଷ ।

ନିକୁମ୍ଭାଖ୍ୟବୀଜ—କ୍ଳୀ. ବି. ଜୟପାଳ, କନକା ।

ନିକୁମ୍ଭିତ—କ୍ଳୀ.ବି. ନୃତ୍ୟବିଷୟକ ଅଷ୍ଟୋତ୍ତରଶତ କରଣାନ୍ତର୍ଗତ ନୃତ୍ୟବିଶେଷ ।

ନିକୁମ୍ଭିଲା—ସ୍ତ୍ରୀ. ବି. ଲଙ୍କାର ପଶ୍ଚିମଭାଗସ୍ଥିତ ଗୋଟିଏ ଗୁହା,ଏହି ଗୁହାରେ ଥିବା ଦେବୀ ।

ନିକୁମ୍ଭିଲବଟ—ବି. ନିକୁମ୍ଭିଲା ଉପବନସ୍ଥ ବରଗଛ, (ଏହା ମୂଳରେ ଇନ୍ଦ୍ରଜିତ ଯଜ୍ଞ କରିଥିଲା) ।

ନିକୁମ୍ଭୀ—ସ୍ତ୍ରୀ. ବି. (ନିକୁମ୍ଭ+ଈ) ଦନ୍ତୀବୃକ୍ଷ, କୁମ୍ଭକର୍ଣ୍ଣର କନ୍ୟା ।

ନିକୁରମ୍ବ—କ୍ଳୀ.ବି.(ନି+କୁର୍+ର୍ମ.ଅମ୍ବ) ସମୂହ, ପଙ୍କ୍ତି, ପଲ, ଗଦା, ରାଶି ।

ନିକୁଳୀନିକା—ସ୍ତ୍ରୀ. ବି. ନିପାତ ।

ନିକୂଜିତ—ବିଂ. ( ନି+କୂଜ୍+ର୍ମ.ତ ) ପକ୍ଷୀମାନଙ୍କ ଦ୍ୱାରା ଗୀତ ।

ନିକୂଳ—ପୁଂ. ବି. ନରମେଧଯଜ୍ଞର ଅନ୍ତର୍ଗତ ଷଷ୍ଠୟୂପରେ ପଶୁମାନଙ୍କର ବଧୋଦ୍ଦେଶ୍ୟ ଦେବତାବିଶେଷ, ଅଶ୍ୱମେଧଯଜ୍ଞରେ ଯେଉଁ ଦେବତା ଉଦ୍ଦେଶ୍ୟରେ ଷଷ୍ଠୟୂପରେ ପଶୁହନନ ହୁଏ, ପର୍ବତର ନିମ୍ନଆଡ଼କୁ ବହିଯାଉଥିବା ।

ନିକୃତ—ବିଂ. (ନି+କୃ + ର୍ମ.ତ) ବହିଷ୍କୃତ, ପ୍ରତ୍ୟାଖ୍ୟାତ, ବଞ୍ଚିତ, ଅପକୃତ, ଲାଞ୍ଛିତ, ତିରସ୍କୃତ,(ନି+କୃତ+କ.ଅ) ଶଠ, ବଞ୍ଚକ, ନୀଚ, ଦୁଷ୍ଟ, (ବି-ଭା.ତ) ନିକୃତି ଦେଖ ।

ନିକୃତି—ସ୍ତ୍ରୀ.ବି. (ନି + କୃ + ତି)ଭର୍ତ୍ସନ, ତିରସ୍କାର, ଅପକାର, କ୍ଷେପ, ଶଠତା, ନୀଚତା, ଦୈନ୍ୟ,ଅବମାନନା,ଲାଞ୍ଛନା, ବହିଷ୍କରଣ, ଅସ୍ୱୀକରଣ,ଦୈନ୍ୟ, ପୃଥିବୀ, ସାଧ୍ୟାଙ୍କଠାରୁ ଜାତ ବସୁବିଶେଷ ।

ନିକୃତୀ—ପୁଂ. ବିଂ. ( ନିକୃତ+ଇନ୍ ) ଶଠ, ନୀଚ, ଦୁଷ୍ଟ ।

ନିକୃତ୍ତ—ବିଂ. ( ନି+କୃତ+ର୍ମ.ତ ) ସମୂଳେ ଛିନ୍ନ, ମୂଳୋତ୍ପାଟିତ,ଖଣ୍ଡିତ ।

ନିକୃତ୍ତମୂଳ—ପୁଂ. ବି. (ନିକୃତ୍ତ + ମୂଳ) ବ.ବ୍ରୀ; ମୂଳରୁଛେଦିତ,ଯେଉଁ ବୃକ୍ଷର ମୂଳ ଛିନ୍ନହୋଇଅଛି ।

ନିକୃତ୍ୟା—ସ୍ତ୍ରୀ. ବି. ନିଷ୍ଠୁରତା,ଶଠତା ।

ନିକୃନ୍ତନ୍—ବିଂ. ପରଜୟରେ ନିକର୍ତ୍ତନଶୀଳ, ଛେଦକ ।

ନିକୃନ୍ତନ—ପୁଂ. ବିଂ. (ନି+କୃତ୍+କ. ଅନ) ଛେଦନକାରୀ, ( ବି-ଭା.ଅନ ) ଚିରିବା, ଛେଦନ, ବିନାଶନ, ଛେଦନଯନ୍ତ୍ର, ନରକବିଶେଷ ।

ନିକୃନ୍ତୀ—ପୁଂ. ବିଂ. (ନି + କୃତ୍ + କ. ଇନ୍) ଛେଦନକାରୀ, ବିନାଶକ ।

ନିକୃଷ୍ଟ—ବିଂ. ( ନି+କୃଷ୍+ର୍ମ.ତ ) ଅଧମ, ଯାହାର ଜାତି ଓ ଆଚରଣ ନିନ୍ଦିତ,ମନ୍ଦ,ଜଘନ୍ୟ,ଅପକୃଷ୍ଟ, ସମାଜରୁ ତାଡ଼ିତ, ଘୃଣିତ,ଇତର, ନିକଟବର୍ତ୍ତୀ, (ବି) ନୈକଟ୍ୟ ।

ନିକୃଷ୍ଟତା—ସ୍ତ୍ରୀ. ବି. (ନିକୃଷ୍ଟ+ଭା.ତା) ନିକୃଷ୍ଟତ୍ୱ, ନୀଚତା, ମନ୍ଦତା, ଅପକୃଷ୍ଟତା ।

ନିକୃଷ୍ଟପ୍ରବୃତ୍ତି—ସ୍ତ୍ରୀ. ବି. ପାଶବବୃତ୍ତି, (ବିଂ-ବ.ବ୍ରୀ) ଯାହାର ପ୍ରବୃତ୍ତି ନୀଚ ।

ନିକୃଷ୍ଟାଶୟ—ପୁଂ.ବି. (ବ.ବ୍ରୀ) ନୀଚାଶୟ, ମନ୍ଦାଶୟ, ନିକୃଷ୍ଟଚିତ୍ତ ।

ନିକେଚୟ—ପୁଂ. ବି. ଗୋମୟାଦିର ପୁନଃ ପୁନଃ ରାଶୀକରଣ ।

ନିକେତ—ପୁଂ. ବି. (ନି+କିତ+ଅ) ଗୃହ, ଆଳୟ, ନିକେତନ ।

ନିକେତନ—କ୍ଳୀ. ବି. (ନି+କିତ+ ଅଧି.ଅନ) ଆବାସ, ଗୃହ, ( ପୁଂ.ବି ) ପଲାଣ୍ଡୁ, ପିଆଜ ।

ନିକେଲ୍—ଯା ବି.ଏକପ୍ରକାର ମିଶ୍ରଧାତୁ

ନିକେଶ—ବିଂ. (ବ.ବ୍ରୀ) କେଶହୀନ ।

ନିକୋଚକ—ପୁଂ.ବି. (ନି+କୁଚ+ଅକ) ଅଙ୍କୋଟ ବୃକ୍ଷ ।

ନିକୋଚନ—କ୍ଳୀ. ବି. (ନି + କୁଚ + ଭା. ଅନ) ସଙ୍କୋଚନ ।

ନିକୋଠକ—ପୁଂ. ବି.ନିକୋଚକ ଦେଖ ।

ନିକୋଥକ—ପୁଂ.ବି. (ନି+କୁଥ+ଅକ) ଜଣେ ବୈଦିକ ଆଚାର୍ଯ୍ୟ ।

ନିକୋବର—ଗ୍ରା.ବି. ଭାରତମହାସାଗରର ଗୋଟିଏ ଦ୍ୱୀପ ।

ନିକୋହିଆର—ପୁଂ. ବି. ଯୁବରାଜଆକବରଙ୍କର ପୁତ୍ର ।

ନିକୋଷ୍ୟ—ପୁଂ. ବି. ଯଜ୍ଞୀୟ ପଶୁର

ଉଦରସ୍ଥିତ ନାଡ଼ୀର ଅଂଶବିଶେଷ ।

**ନିକ୍ତ**—ବିଂ. (ନିଜ୍+ମୀ.ତ) ଧୌତ, କ୍ଷାଳିତ, ପରିଷ୍କୃତ ।

**ନିକ୍ତି**—ଗ୍ରା. ବି. ବଣିଆମାନଙ୍କର ସୁନା ରୁପା ଓଜନ କରିବାର ସୂକ୍ଷ୍ମ ତୁଳାଦଣ୍ଡ ।

**ନିକ୍ରମଣ**—କ୍ଳୀ. ବି. (ନି+କ୍ରମ+ଅଧି. ଅନ) ସ୍ଥାନ, ଦେଶ ।

**ନିକ୍ରୀଡ଼**—ପୁଂ. ବି. କୌତୁକ, କ୍ରୀଡ଼ା, (କ୍ଳୀ.ବି) ସାମଭେଦ ।

**ନିକ୍ୱଣ**—ପୁଂ. ବି. (ନି+କ୍ୱଣ+ଭା.ଅ) ବୀଣାଧ୍ୱନି, କିନ୍ନର ପ୍ରଭୃତିଙ୍କ ବୀଣାବାଦନ ଶବ୍ଦ ।

**ନିକ୍ୱଣନ**—ବି. (ନି+କ୍ୱଣ+ଭା.ଅନ) ନିକ୍ୱଣ ଦେଖ ।

**ନିକ୍ୱାଣ**—ପୁଂ. ବି. (ନି+କ୍ୱଣ+ଅ) ନିକ୍ୱଣ, ବୀଣାଧ୍ୱନି ।

**ନିକ୍ଷଣ**—ବି. (ନିକ୍ଷ+ଭା.ଅନ) ଚୁମ୍ବନ ।

**ନିକ୍ଷତ୍ର**—ବିଂ. (ନି+କ୍ଷତ୍ର) ନିଃକ୍ଷତ୍ରିୟ ଦେଖ ।

**ନିକ୍ଷା**—ସ୍ତ୍ରୀ. ବି. (ନିକ୍ଷ+କ.ଅ+ଆ) ନିଖ, ଉକୁଣୀ ।

**ନିକ୍ଷିପ୍ତ**—ବିଂ. (ନି+କ୍ଷିପ୍+ମୀ.ତ) ଅର୍ପିତ, ଗଚ୍ଛିତ, ତ୍ୟକ୍ତ, ଯାହା ଫିଙ୍ଗିଦିଆହୋଇଅଛି, ବର୍ଜିତ, ଅତିବାହିତ (ସମୟ) ।

**ନିକ୍ଷୁଭା**—ସ୍ତ୍ରୀ. ବି. (ନି+କ୍ଷୁଭ୍+ଅ+ଆ) ବ୍ରାହ୍ମଣୀ, ସୂର୍ଯ୍ୟପତ୍ନୀ ।

**ନିକ୍ଷେପ**—ବି. (ନି+କ୍ଷିପ+ଭା.ଅ) କ୍ଷେପଣ, ଫିଙ୍ଗିବା, ବୁଣାଯିବା, ନ୍ୟାସ, ସମର୍ପଣ, ଗଚ୍ଛିତକରଣ, ତ୍ୟାଗ, ବନ୍ଧକ, ସମସ୍ତ କ୍ଷେପଣ, (ଲୁପ୍ତ) ପୋଛିବା, ସଂସ୍କାର ନିମିତ୍ତ ଶିଳ୍ପୀ ନିକଟରେ ଦ୍ରବ୍ୟର ଅର୍ପଣ, (ମୀ.ତ) ଗଚ୍ଛିତ ବସ୍ତୁ, ବନ୍ଧକ ପଦାର୍ଥ ।

**ନିକ୍ଷେପକ**—ପୁଂ. ବିଂ. (ନି+କ୍ଷିପ୍+କ.ଅକ) ଯେ ନିକ୍ଷେପ କରେ, ନିକ୍ଷେପକାରୀ, ମେ ଚନକ ଶ ।

**ନିକ୍ଷେପଣ**—କ୍ଳୀ.ବି. (ନି+କ୍ଷିପ୍+ଭା.ଅନ) ନିକ୍ଷେପକରଣ, ନିକ୍ଷେପ ଦେଖ ।

**ନିକ୍ଷେପଣୀୟ**—ବିଂ. (ନି+କ୍ଷିପ୍+ମୀ.ଅନୀୟ) ନିକ୍ଷେପଣଯୋଗ୍ୟ ।

**ନିକ୍ଷେପ୍ତା**—ପୁଂ.ବିଂ. (ନି+କ୍ଷିପ୍+କ.ତୃ) ନିକ୍ଷେପକାରୀ, ଯେ ନିକ୍ଷେପ କରେ, ଯେ ଗଚ୍ଛିତ ରଖେ ।

**ନିକ୍ଷେପ୍ୟ**—ବିଂ. (ନି+କ୍ଷିପ୍+ମୀ.ଯ) ନିକ୍ଷେପଣୀୟ, ନିକ୍ଷେପର ଯୋଗ୍ୟ ।

**ନିଖ**—ଗ୍ରା.ବି. (ସଂ-ନିକ୍ଷା) ଉକୁଣୀଙ୍କ ଡିମ୍ବ, ଲିକ୍ଷ, (ବିଂ) ଅତିକ୍ଷୁଦ୍ର ।

**ନିଖଟୁ**—ଗ୍ରା.ବିଂ. ଅସମର୍ଥ, ସୁସ୍ତୀ, ଆଳସ୍ୟପରାୟଣ, ନିକର୍ମା, ଅପରିଶ୍ରମୀ, ନିକର୍ମା, ଅଯୋଗ୍ୟ, କର୍ମକୋଢ଼ି, ଶକ୍ତିହୀନ ।

**ନିଖଡ଼ା**—ଗ୍ରା.ବି. କଳକାତ ଫଳବିଶେଷ

**ନିଖତର**—ଗ୍ରା.ବିଂ. ନିଃସହାୟ, ଅସହାୟ (ବ୍ୟକ୍ତି), ନିରାଶ୍ରୟ, ଅତିଦୀନ, ନିଖଟୁ ଦେଖ ।

**ନିଖନନ**—କ୍ଳୀ.ବି. (ନି+ଖନ୍+ଭା.ଅନ) ଖୋଳିବା, କବର ଦେବା, ମୃଦାର ପୋତିବା, (ମୀ.ଅନ) ମାଟି, ମୃତ୍ତିକା ।

**ନିଖରଚୁ**—ଗ୍ରା.ବିଂ. ଖରଚଶୂନ୍ୟ, ମାଗଣା, ବିନାବ୍ୟୟରେ ସମ୍ପାଦିତ, (କ୍ରି.ବିଂ) ବିନାବ୍ୟୟରେ, ମାଗଣାରେ ।

**ନିଖର୍ବ**—ପୁଂ. ବି. ସଂଖ୍ୟାବିଶେଷ, ଦଶହଜାର କୋଟିସଂଖ୍ୟା, (ବିଂ) ଅତିଶୟ ଖର୍ବ, ବାମନ, ବୁଟା, ଗେଡ଼ା, (ସ୍ତ୍ରୀ) ନିଖର୍ବା ।

**ନିଖର୍ବକ**—ପୁଂ.ବି. ଦଶକୋଟି ସଂଖ୍ୟା ।

**ନିଖର୍ବଟ**—ପୁଂ. ବି. ରାବଣ ସୈନ୍ୟଗତ ରାକ୍ଷସବିଶେଷ ।

**ନିଖାତ**—ବିଂ. (ନି+ଖନ୍+ମୀ.ତ) ପୋତା ଯାଇଥିବା, ଖୋଳାହୋଇ ବାହାର କରାଯାଇଥିବା, ଖୋଳିପୋତିଥିବା, ସ୍ଥାପିତ, କ୍ଷୁପ୍ତ, (ବି)ଜମିର ସୀମା ନିରୂପକ ପହଣୀ, ଘାଇ, ନାଳି ।

**ନିଖାଦ**—ଗ୍ରା.ବିଂ. ସଙ୍ଗୀତର ସପ୍ତମସ୍ୱର, 'ନି' ନାମକ ସ୍ୱର, ବେହେଲାର ୪ର୍ଥ ତାରର ଘର୍ଷଣର ଶବ୍ଦ, ହସ୍ତୀର ନାଦ ।

**ନିଖାରିବା**—ଗ୍ରା. କ୍ରି. କୌଣସି ବସ୍ତୁକୁ କାଠିଆଦିଦ୍ୱାରା ରେଖାଙ୍କିତ କରି ଟଣିବା ବା ପରୀକ୍ଷାକରିବା ।

**ନିଖିଏ**—ଗ୍ରା.ବି. (ସଂ-ନିକ୍ଷା) ଅତିସାମାନ୍ୟ ପରିମାଣ, (ବିଂ) ଅତି ସାମାନ୍ୟ, (କ୍ରି.ବିଂ) ଅତି ସାମାନ୍ୟ ପରିମାଣରେ ।

**ନିଖିଟି**—ଗ୍ରା.ସ୍ତ୍ରୀ.ବିଂ. ଅତିକ୍ଷୁଦ୍ର ।

**ନିଖିଳ**—ବିଂ. (ନି+ଖିଳ—ବ.ବ୍ରୀ) ସକଳ, ସମଗ୍ର, ସମ୍ପୂର୍ଣ୍ଣ, ସାର ।

**ନିଖୀ**—ଗ୍ରା.ବି. ନିଖ, ଉକୁଣୀଙ୍କ ଡିମ୍ବ ।

**ନିଖୁଣ**—ଗ୍ରା. ବିଂ. ନିର୍ଦୋଷ, ନୀରୋଗ, ନିଷ୍କଳଙ୍କ, ଅକ୍ଷୁଣ୍ଣ, ସମଗ୍ର, ପୂର୍ଣ୍ଣାଙ୍ଗ, ଅନିନ୍ଦ୍ୟ ।

**ନିଗଡ଼**—ବି. (ନି+ଗଳ+ଅ) ଲୌହମୟ ପାଦବନ୍ଧନୀ, ହରିକାଠ, ବେଡ଼ୀ, ଶିଙ୍କୁଳି, (ବିଂ) ଦୃଢ଼ବଦ୍ଧ, ଶୃଙ୍ଖଳାଦ୍ୱାରା ବଦ୍ଧ ।

**ନିଗଡ଼ନ**—କ୍ଳୀ.ବି. (ନି+ଗଡ଼+ଭା.ଅନ) ଶୃଙ୍ଖଳାବଦ୍ଧ କରିବା, ଶୃଙ୍ଖଳାଦ୍ୱାରା ବନ୍ଧନ ।

**ନିଗଡ଼ବଦ୍ଧ**—ବିଂ. (ଷତତ୍ପୁ) ଲୌହଶୃଙ୍ଖଳାବଦ୍ଧ, ଗୋଡ଼ରେ ଶିଙ୍କୁଳି ପଡ଼ିଥିବା (ବ୍ୟକ୍ତି) ।

**ନିଗଡ଼ବନ୍ଧନ**—ବି. ଦୃଢ଼ଶିଙ୍କୁଳି ବା ଦଉଡ଼ି, ଦୃଢ଼ବନ୍ଧନ, ଯେଉଁ ଗଣ୍ଠି ସହଜେ ଫିଟାଯାଇ ନପାରେ, ଲୌହଶୃଙ୍ଖଳଦ୍ୱାରା ବନ୍ଧନ ।

**ନିଗଡ଼ା**—ଗ୍ରା.ବି. (ସଂ-ନିର୍ଗଳନ) ଚିପୁଡ଼ାଯାଇ ରସ ବାହାର କରାଯିବା, ଚିପୁଡ଼ିବା କର୍ମ, ରସକ୍ଷରଣ, ଯେଉଁ ରସ କୌଣସି ପଦାର୍ଥରୁ ନିଗିଡ଼ିଥାଏ, ବଳ୍କୀକୃତ ପଦାର୍ଥରେ ରହିଯିବା ସାରଶେଷ, (ଲ.ଅର୍ଥ) ସାରବସ୍ତୁ, ସାରମର୍ମ, ତାତ୍ପର୍ଯ୍ୟ, (ବିଂ) ଚିପୁଡ଼ା ଯାଇଥିବା (ରସ), ଢାଲୁ (ଜମି), ଜଳାଦି ନିଃଶେଷିତ ହୋଇଥିବା (ପାତ୍ରାଦି) ।

**ନିଗଡ଼ା(ଡ଼େ)ଇବା**—ଗ୍ରା.କ୍ରି. ନିଗାଡ଼ିବା ଦେଖ, ନିଗାଡ଼ିବାର ଣିଜନ୍ତରୂପ ।

**ନିଗଡ଼ାନିଗିଡ଼ି**—ଗ୍ରା. ବି. ପାନୀୟ ପଦାର୍ଥର ପାନାବଶେଷ, କୌଣସି ପାତ୍ରରୁ ଜଳାଦି ନିଗାଡ଼ିବା ପରେ ଯାହା ଅବଶିଷ୍ଟ ରହିଯାଏ ।

ନିଗଡ଼ିତ—ବି°. (ନିଗଡ଼+ଇତ) ଦୃଢ଼-ବଦ୍ଧ, ହସ୍ତକାଠରେ ଆବଦ୍ଧ, ଶୃଙ୍ଖଳା-ବଦ୍ଧ, ଯାହାର ଗୋଡ଼କୁ ଶିଙ୍କୁଳିରେ ବନ୍ଧା ଯାଇଅଛି ।

ନିଗଣ—ପୁ°.ବି. (ନି+ଗଣ+ଅ)ହୋମ-ଧୂମ, ଯଜ୍ଞଧୂମ ।

ନିଗଦ—ପୁ°.ବି. ( ନି+ଗଦ+ର୍ମ.ଅ ) କଥିତଭାଷା, ଭାଷଣ, କଥନ, ଶବ୍ଦମାତ୍ର. ଆଗମୋକ୍ତ ଜପ,ଉଚ୍ଚୈଃସ୍ୱରରେ ଜପ ।

ନିଗଦିତ—ବି°. ( ନି+ଗଦ+ର୍ମ.ତ ) କଥିତ, ଭାଷିତ, ଉକ୍ତ, ବର୍ଣ୍ଣିତ, ଉଲ୍ଲି-ଖିତ, (ଭା,ତ), କଥନ, ଉଚ୍ଚାରଣ ।

ନିଗମ—ପୁ°. ବି. (ନି+ଗମ+ଅଧି.ଅ) ବାଣିଜ୍ୟ, ନଗର, ବଜାର, ହାଟ,ରାଜ-ମାର୍ଗ, ଚଉଛକି, ନିର୍ଗମନ, ବହିର୍ଗମନ, ବେଦାର୍ଥବୋଧକ ଗ୍ରନ୍ଥଭେଦ, ତନ୍ତ୍ର-ବିଶେଷ, ନ୍ୟାୟ ଦର୍ଶନ ମତରେ ପଞ୍ଚ ଅବୟବ ମଧ୍ୟରେ ଚରମାବୟବ,ନ୍ୟାୟ ଶାସ୍ତ୍ର, (ବ୍ୟାକରଣ) ଧାତୁ, ଯାଯାବର ବଣିକଦଳ, ମେଳା, କାୟସ୍ଥମାନଙ୍କର ଏକଶ୍ରେଣୀ, ନିଶ୍ଚୟ, ଗଭୀର, ନିଚୋଳା, ଗୂଢ଼, (ବି) ନିର୍ଜନସ୍ଥାନ ।

ନିଗମନ—ବି. ( ନି+ଗମନ ) ଚଳନ, ବାଟଚ୍ଛଲିବା, ନ୍ୟାୟଶାସ୍ତ୍ରାନୁଗତ ନିର୍ଦ୍ଧା-ରଣ, ଉପସଂହାର, ଛଳ ।

ନିଗମାଗମ—ବି. ( ନିଗମ+ଆଗମ ) ବେଦ ଓ ତନ୍ତ୍ର,ପ୍ରବେଶ ଓ ବହିର୍ଗମନ ।

ନିଗମୀ—ପୁ°.ବି°.( ନି+ଗମ+ଇନ୍ ) ବେଦବିତ୍, ଯେଉଁମାନେ ନିଗମ ଜାଣନ୍ତି ।

ନିଗର—ପୁ°. ବି. ( ନି+ଗୃ+ଭା.ଅ ) ଭୋଜନ, ଗିଳିବା, ଗଳାଧଃକରଣ, (ଣ.ଅ) ତୋଟି,ଗଳଦେଶ,ହୋମଧୂମ, ଏକସମାନ ଓଜନର ୨୫ ଟୋଟି ମୋତିର ସମୂହ, (ଗ୍ରା.ବି°) ନିଶ୍ଚିତ ।

ନିଗରଣ—କ୍ଲୀ.ବି. (ନି+ଗୃ+ଭା.ଅନ) ଭକ୍ଷଣ,ଗିଳିବା,(ପୁ°.ବି)ଗଳ,ହୋମଧୂମ

ନିଗହଦାର୍—ଯା.ବି. ପ୍ରହରୀ ।

ନିଗହଦାରି—ଯା.ବି. ପ୍ରହରୀର କାର୍ଯ୍ୟ ।

ନିଗହବାନ୍—ଯା. ବି. ପ୍ରହରୀ ।

ନିଗା(ଘା)—ଯା.ବି. ଦୃଷ୍ଟି, ନଜର ତତ୍ତ୍ୱ-ନେବା, ତନଖି, ମନୋଯୋଗପୂର୍ବକ ଦୃଷ୍ଟି. ଖିଆଲ, ଧ୍ୟାନ, ମନୋଯୋଗ, ଅନୁଗ୍ରହ, ସ୍ନେହମୟ ଦୃଷ୍ଟି ।

ନିଗାଡ଼ିବା—ଗ୍ରା.କ୍ରି. ନିଗିଡ଼ିବା କ୍ରିୟାର ଣିଜନ୍ତରୂପ, କୌଣସି ରସଯୁକ୍ତ ବସ୍ତୁରୁ ରସଚିପୁଡ଼ିବା,ରସ ବା ଜଳକୁ ଗାଳିବା

ନିଗାଦ—ପୁ°. ବି. ( ନି+ଗଦ+ଅ ) ନିଗଦ ଦେଖ ।

ନିଗାଦୀ—ପୁ°.ବି°. (ନି+ଗଦ+କ.ଇନ୍) ବକ୍ତା, କଥକ, (ସ୍ତ୍ରୀ) ନିଗାଦିନୀ ।

ନିଗାର—ପୁ°.ବି. (ନି+ଗୃ+ଅ) ନିଗର ଦେଖ ।

ନିଗାରୀ—ପୁ°.ବି°. (ନି+ଗୃ+କ.ଇନ୍) ଗଳାଧଃକରଣକାରୀ, ଯେ ଗିଳେ ।

ନିଗାଲ—ପୁ°. ବି. (ନି+ଗଲ+ଣ.ଅ) ଅଶ୍ୱର ଗଳଦେଶ, (ଭା.ଅ) ଗିଳିବା, ଭୋଜନ ।

ନିଗାଲବାନ୍—ପୁ°.ବି. (ନିଗାଲ+ବତ୍) ଅଶ୍ୱ, (ସ୍ତ୍ରୀ) ନିଗାଲବତୀ ।

ନିଗିଡ଼ା—ଗ୍ରା.ବି ଓ ବି°. ନିଗଡ଼ା ଦେଖ ।

ନିଗିଡ଼ି—ପ୍ରା.(ଗଞ୍ଜାମ)ବି. ଶୀତକାଳରେ ନିଆଁ ଲଗାଇବା ପାଇଁ ବ୍ୟବହୃତ କାଷ୍ଠଖଣ୍ଡ ।

ନିଗିଡ଼ିବା—ଗ୍ରା.କ୍ରି. (ଚିପୁଡ଼ାହୋଇରସ) ଗଳିତହେବା, ଚପଟିଣିବା, କୌଣସି ବସ୍ତୁରୁ ବା ଚପର୍ଯ୍ୟସ୍ତ ପାତ୍ରରୁ ଜଳୀୟ ପଦାର୍ଥ ବିବାକ ନିଃଶେଷିତ ହୋଇ ବୋହିଯିବା, ଅଳ୍ପମାତ୍ରାରେ ତଳକୁ ବୋହିଯିବା ।

ନିଗିଧା—ଗ୍ରା. ବି°. କୃପଣ ।

ନିଗୀତ—ବି°. ( ନି+ଗୈ+ର୍ମ.ତ ) ପରିଗୀତ, ଗାନ କରାଯାଇଥିବା ।

ନିଗୀର୍ଣ୍ଣ—ବି°. (ନି+ଗୃ+ର୍ମ.ତ) ଭକ୍ଷିତ, ଗିଳାଯାଇଥିବା, ଅନ୍ତର୍ଭୁକ୍ତ କରାଯାଇ-ଥିବା ।

ନିଗୁ—ପୁ°. ବି. ( ନି+ଗମ୍+କ.ଉ ) ମନଃ, ଚିତ୍ତ, ଅନ୍ତଃକରଣ,ବିଗ୍ରହଶକ୍ତି, ବୋଧଶକ୍ତି, ମଳ,ମୂଳ, ଚେର,ମନୋ-ଜ୍ଞତା, ଚିତ୍ରକର୍ମ, ( ବି° ) ମନୋଜ୍ଞ, ସୁନ୍ଦର, (ପ୍ରା.ଗଞ୍ଜାମ,ବି°) ନିକ,ଅଭଲ, ଉତ୍କୃଷ୍ଟ ।

ନିଗୁଡ଼—ବି°.(ନି+ଗୁ+କ୍ୱିପ୍)ଭୟାଦି-ହେତୁ ଅବ୍ୟକ୍ତ ଶବ୍ଦକାରକ ।

ନିଗୁନ୍ଦ—ପ୍ରା. (ପୁରୀ) ବି. ପତ୍ର ବା ଗଞ୍ଜାଇ ସଙ୍ଗେ ମରିଚ ମସଲା ମିଶି ବଟାହୋଇ-ଥିବା ଭାଙ୍ଗର ଗୁଳା । [ ଗୁଚ୍ଛ ।

ନିଗୁମ୍ଫ—ବି. (ନି+ଗୁମ୍ଫ+ର୍ମ.ଅ) ସମୂହ,

ନିଗୂଢ଼—ବି°.(ନି+ଗୁହ+ର୍ମ.ତ) ଗୁପ୍ତ, ଲୁକ୍କାୟିତ, ସମ୍ବୃତ, ଆଚ୍ଛାଦିତ, ପ୍ରଚ୍ଛନ୍ନ, ଅପ୍ରକାଶିତ, ରହସ୍ୟମୟ, ଦୁର୍ଜ୍ଞେୟ, ଦୁର୍ବୋଧ୍ୟ,ଘୋର, ଗଭୀର, ଆଲିଙ୍ଗିତ, ଦୃଢ଼, (ପୁ°.ବି) ବଣମୁଗ, ବନମୁଦ୍ଗ, (ଗ୍ରା.ବି) ତାତ୍ପର୍ଯ୍ୟ,ସାର,ମର୍ମ,ନିଗଡ଼ ।

ନିଗୂଢ଼କଥା—ବି. ରହସ୍ୟ ବିଷୟ, ନିଗୂ-ଢ଼ାର୍ଥ ।

ନିଗୂଢ଼ଚର—ପୁ°. ବି°. (ନିଗୂଢ଼+ଚର +କ.ଇନ୍) ଗୋପନରେ ବିଚରଣ-କାରୀ, ଛଦ୍ମବେଶ ଧାରଣକରି ଯେ ବୁଲେ ।

ନିଗୂଢ଼ନିଶ୍ଚୟ—ପୁ°. ବି°. ( ବ.ବ୍ରୀ ) ଯାହାର ଉଦ୍ଦେଶ୍ୟ ଗୁପ୍ତ ।

ନିଗୂଢ଼ସତ୍ତ୍ୱ—ଗ୍ରା. ବି. ସମ୍ପୂର୍ଣ୍ଣସ୍ୱତ୍ତ୍ୱ ।

ନିଗୂଢ଼ାର୍ଥ—ବି°. (ବ.ବ୍ରୀ) ଗୁପ୍ତଅର୍ଥବିଶିଷ୍ଟ, ଯାହାର ଅର୍ଥ ବା ଭାବ ଦୁର୍ବୋଧ, (ବି-କ.ଧା) ଗୁପ୍ତଉଦ୍ଦେଶ୍ୟ, ଅବୋଧ ଅର୍ଥ ।

ନିଗୂଢ଼ାର୍ଥକ—ବି°.(ବ.ବ୍ରୀ)ଯହିଁରେ ଗୁପ୍ତ ଅର୍ଥ ଥାଏ, ଅବୋଧ, ରହସ୍ୟମୟ ।

ନିଗୂହକ—ବି°. (ନି+ଗୂହ+କ.ଅକ) ଗୋପନକାରୀ ।

ନିଗୂହନ—କ୍ଲୀ. ବି. ( ନି+ଗୁହ+ଭା. ଅନ) ଗୋପନ ।

ନିଗୂହନୀୟ—ବି°.(ନି+ଗୁହ+ର୍ମ.ଅନୀୟ) ଗୋପନୀୟ, ଗୋପ୍ୟ ।

ନିଗୃହୀତ—ବି°. ( ନି+ଗ୍ରହ+ର୍ମ.ତ ) ଆକ୍ରମିତ, ଆକ୍ରାନ୍ତ, ଉତ୍ପୀଡ଼ିତ, ଧୃତ, ପରାଜିତ, ରୁଦ୍ଧ, ଦମିତ, ଶାସିତ,ବଶୀ-

କୃତ,ଦଣ୍ଡିତ,ନିବର୍ତ୍ତିତ, କ୍ଲିଷ୍ଟ, ଗୃହୀତ

ନିଗୃହୀତି—ବି. (ନି+ଗ୍ରହ+ତି) ଦମନ, ଶାସନ ।

ନିଗୃହ୍ୟ—ବିଂ. (ନି+ଗ୍ରହ+ଯ) ଦଣ୍ଡନୀୟ ।

ନିଗ୍ରନ୍ଥନ—କ୍ଲୀ. ବି. (ନି+ଗ୍ରନ୍ଥ+ଅନ) ମାରଣ ।

ନିଗ୍ରହ—ପୁଂ. ବି. (ନି+ଗ୍ରହ+ଭା.ଅ) ଅନୁଗ୍ରହାଭାବ,ବେଅନୁଗ୍ରହ,ଅତ୍ୟାଚାର, ପୀଡ଼ନ, ବନ୍ଧନ, ଭର୍ତ୍ସନା, ପ୍ରହାର, ବଳାତ୍କାର,ଯାତନା,ନିନ୍ଦା,ଅସନ୍ତୋଷ. ଘୃଣା, ଅଟକ, ରୋକ, ସୀମା, ଦଣ୍ଡ, ଟକଣା, ବିଷ୍ଣୁ, ମହାଦେବ, ନିରୋଧ-ରୂପ ଯୋଗଦ୍ୱାରା ଅଭ୍ୟାସ, ବୈରାଗ୍ୟ-ବଳରେ ମନର ନିରୋଧ, ମାରଣ, ନିରାକରଣ, ଶାସନ, ବନ୍ଧନ, କଏଦ, ବିଡ଼ମ୍ବନା, ନିରୁତ୍ସାହ, ନୈରାଶ୍ୟ, ଅସଙ୍ଗତ, ବାଙ୍କୁଣୀ, ସଂଯମ,ଅନ୍ୟାୟ.ନିବାରଣ, ପରାଜୟ, ବିନାଶ, (ଣ.ଅ) ବେଣ୍ଟ, ହାତସା, ଯୁକ୍ତିରେ ଦୋଷ ।

ନିଗ୍ରହଣ—ବି. (ନି+ଗ୍ରହ+ଭା.ଅନ) ନିଗ୍ରହ ଦେଖ, ଯୁଦ୍ଧ ।

ନିଗ୍ରହଣୀୟ—ବିଂ. (ନିଗ୍ରହ+ମିଁ.ଅନୀୟ) ନିଗ୍ରାହ୍ୟ, ଦଣ୍ଡନୀୟ ।

ନିଗ୍ରହସ୍ଥାନ—କ୍ଲୀ. ବି.ଯୁକ୍ତିରେ ହାରିବା. ଯୁକ୍ତିଦ୍ୱାରା ଅପ୍ରତିଭହେବା ଅବସ୍ଥା, ଯୁକ୍ତିତର୍କର ଅବସ୍ଥାବିଶେଷ, ନ୍ୟାୟ ଦର୍ଶନର ଷୋଡ଼ଶ ପଦାର୍ଥର ଅନ୍ତର୍ଗତ ପଦାର୍ଥବିଶେଷ ।

ନିଗ୍ରହାନୁଗ୍ରହ—ବି. (ନିଗ୍ରହ+ଅନୁଗ୍ରହ) ଦଣ୍ଡ ଓ ଅନୁଗ୍ରହ, ନିଷ୍ଠୁରତା ଓ ଦୟା

ନିଗ୍ରହୀତବ୍ୟ—ବି. (ନି+ଗ୍ରହ+ତବ୍ୟ) ନିଗ୍ରହଣୀୟ, ପୀଡ଼ନୀୟ, ଦଣ୍ଡନୀୟ ।

ନିଗ୍ରାଭ—ପୁଂ. ବି. ନିଗ୍ରହ, ଅନୁଗ୍ରହାଭାବରୁ ଭକ୍ଷ ଗ୍ରହଣ.ଶତ୍ରୁ ବିଷୟରେ ଅପକର୍ଷ ।

ନିଗ୍ରାଭ୍ୟ—ବିଂ. ନିଗ୍ରାହ୍ୟ, ଗ୍ରହୀତବ୍ୟ ।

ନିଗ୍ରାହ—ପୁଂ. ବି. (ନି+ଗ୍ରହ+ଭା.ଅ) ନିଗ୍ରହ, ଦଣ୍ଡ, ଆକ୍ରୋଶ, ଶାପ ।

ନିଗ୍ରାହକ—ବିଂ. (ନି+ଗ୍ରହ+କ.ଅକ) ଯେ ନିଗ୍ରହ କରେ, ନିଗ୍ରହକାରୀ ।

ନିଗ୍ରାହ୍ୟ—ବିଂ. (ନି+ଗ୍ରହ+ମିଁ.ଯ) ନିଗ୍ରହଣୀୟ,ନିଗୃହୀତହେବାର ଯୋଗ୍ୟ

ନିଗ୍ରୋ—ପ.ବି. ଦକ୍ଷିଣ ଆଫ୍ରିକାର ଗ୍ରୀଷ୍ମପ୍ରଧାନ ଦେଶର ଆଦିମ ଅଧିବାସୀ କୃଷ୍ଣକାୟ ଜାତି, ଅସଭ୍ୟ ଜାତିବିଶେଷ

ନିଘଣ୍ଟ—ପୁଂ. ବି. ନିଘଣ୍ଟୁ, ସୂଚୀପତ୍ର ।

ନିଘଣ୍ଟିକା—ସ୍ତ୍ରୀ. ବି. (ନିଘଣ୍ଟ+ଇକ+ଆ) ଗୁଳୁଚଲତାର ମୂଳ ।

ନିଘଣ୍ଟୁ—ପୁଂ. ବି. (ନି+ଘଣ୍ଟ+କ.ଉ) ସୂଚୀପତ୍ର, ଶବ୍ଦକୋଷ, ନିର୍ଘଣ୍ଟ, ନାମସଂଗ୍ରହ, ଅଭିଧାନ । [ ଘଷିବା ।

ନିଘର୍ଷ—ପୁଂ.ବି (ନି+ଘୃଷ୍+ଅ)ଘର୍ଷଣ,

ନିଘର୍ଷଣ—କ୍ଲୀ. ବି. (ନି+ଘୃଷ+ଅନ) ଘର୍ଷଣ, ଘଷିବା ।

ନିଘସ—ପୁଂ.ବି(ନି+ଅଦ୍+ଅ)ଆହାର, ଭକ୍ଷଣ, ଭୋଜନ ।

ନିଘା—ଗ୍ରା.ବି. ନିଗା ଦେଖ, (ପ୍ରା.ସିଂହ.ବି) ଶଗଡ଼ର ଅକ୍ଷ ।

ନିଘାତ—ପୁଂ.ବି. (ନି+ହନ୍+ଭା.ତ) ପ୍ରହାର, ଆହନନ, ଅନ୍ୟ ସ୍ୱର ଦ୍ୱାରା ଅନ୍ୟ ସ୍ୱରର ହନନ,(ମିଁ.ଅ)ଅନୁଦାତ୍ତସ୍ୱର ।

ନିଘାତି—ସ୍ତ୍ରୀ. ବି. (ନି+ହନ୍+ଣ.ତି) ଲୌହଘାତନୀ, ଲୌହମୟ ଦଣ୍ଡ, (ଅଧି.ତି) କମାରଙ୍କ ନିହାଇ, ନିହ. (ଭା.ତି) ହତ୍ୟାକରଣ, ବିନାଶକରଣ, ମାରିପକାଇବା । [ କାଙ୍କ୍ଷୀ ।

ନିଘାତୀ—ପୁଂ.ବିଂ.ଆଘାତକାରୀ, ହତ୍ୟା-

ନିଘିନିଘିଆ—ଗ୍ରା.ବିଂ.ଢଳୁଢଳୁଆ ଦେଖ

ନିଘୁଷ୍ଟ—କ୍ଲୀ. ବିଂ. (ନି+ଘୁଷ+ମିଁ.ତ) ଶବ୍ଦିତ, ଉଚ୍ଚାରିତ, (ବି.ଭା.ତ)ନିନାଦ, ଘୋଷଣ, ଧ୍ୱନି, ନିର୍ଘୋଷ ।

ନିଘୃଷ୍ଟ—ପୁଂ.ବି. (ନି+ଘୃଷ୍+ଣ.ଚନ୍) ... ଖୁରା,(କ.ବନ) ବାୟୁ. ଅଶ୍ୱତର, ଘୋଡ଼ା, ଖର, ଗଧ, ମୃଗ, ବରାହ, ... ଘୋର ହୋଇ ଛିଣ୍ଡି ଯାଇଥିବା, ...ତ, ଉତ୍ପୀଡ଼ିତ, ହ୍ରସ୍ୱ, କ୍ଷୁଦ୍ର ।

...—ଗ୍ରା. ବିଂ. ଅନାଚ୍ଛାଦିତ, ଅଚ-... ନିଦନ, ପୂର୍ଣ୍ଣ (ଗାଢ଼ନିଦ୍ରା), କ୍ରି. ବିଂ) ଗମ୍ଭୀରରୂପେ, ଅତ୍ୟନ୍ତ ।

ନିଘ୍ନ—ବିଂ. (ନି+ହନ୍+ମିଁ.ଅ)ଅଧୀନ, ଆୟତ୍ତ, ବଶୀଭୂତ, ଆହତ, ଗୃହପାଳିତ,ପୋଷା, ଅନୁଗତ, ଆଜ୍ଞାବର୍ତ୍ତୀ, ପୂରିତ, (ଗଣିତ) ଗୁଣିତ, ଅଙ୍କପୂରଣ, (କ.ଅ) ଖତକ, (ପୁଂ.ବି) ସୂର୍ଯ୍ୟବଂଶୀୟ ଅନରଣ୍ୟ ପୁତ୍ର ନୃପଭେଦ, ଅନମିତ୍ର ପୁତ୍ର ନୃପବିଶେଷ । [ହତ୍ୟାକାଙ୍କ୍ଷୀ ।

ନିଘ୍ନତ—ବିଂ. (ନି+ହନ+କ.ତ)

ନିଚକ୍ର—ପୁଂ.ବି.ଅସୀମକୃଷ୍ଣଙ୍କର ପୁତ୍ର ।

ନିଚନ୍ଦ୍ର—ପୁଂ. ବି. ଦାନବଭେଦ ।

ନିଚମନ—କ୍ଲୀ.ବି.(ନି+ଚମ+ଭା.ଅନ) ଅଳ୍ପଅଳ୍ପ କରି ପାଣି ପିଇବା,ଆଚମନ ।

ନିଚୟ—ପୁଂ. ବି. (ନି+ଚି+ମିଁ.ଅ) ସମୂହ, ଗଦା, ରାଶି, (ଭା.ଅ) ବୃଦ୍ଧି; ସଞ୍ଚୟ, ନିଶ୍ଚୟ, ଅବଶ୍ୟବାଦର ସମୁଚ୍ଚୟ

ନିଚୟକ—ବିଂ. ନିଚୟ, କୁଶଳ, ସଂଗ୍ରାହକ ।

ନିଚାୟ—ପୁଂ. ବି. (ନି+ଚି+ମିଁ.ଅ) ରାଶିକୃତ ଧାନ୍ୟାଦ, ଧାନଗଦା ।

ନିଚି—ପୁଂ,ବି. (ନି+ଚି+ଇ)ଗୋକର୍ଣ୍ଣ ଶିରୋଦେଶ, ଗାଈର କାନ ଓ ମୁଣ୍ଡ ।

ନିଚିକୀ—ସ୍ତ୍ରୀ. ବି. (ନି+ଚି+କୈ+ଅ+ଈ) ନେଚକା, ଉତ୍ତମଗାଭୀ ।

ନିଚିତ—ବିଂ. (ନି+ଚି+ମିଁ.ତ)ଗଦାକରାଯାଇଥିବା, ଆକୀର୍ଣ୍ଣ, ପୂରିତ,ବ୍ୟାପ୍ତ, ରଚିତ, ସଞ୍ଚିତ, ଉତ୍ତୋଳିତ, ସମ୍ୟକ୍ ଉପାର୍ଜିତ, ସଂକୀର୍ଣ୍ଣ, ନମିତ, (ସ୍ତ୍ରୀ.ବି) ନିଚିତା, ନଦୀବିଶେଷ ।

ନିଚିର—କ୍ଲୀ.ବି.ଅତ୍ୟନ୍ତ ଚିରକାଳ (ବିଂ) ଚିରକାଳବର୍ତ୍ତୀ ।

ନିଚୁଲ—ପୁଂ. ବି. (ନି+ଚୁଲ+କ.ଅ) ନିର୍ଗୁଣ୍ଡି ଦେଖ, ହିଜ୍ଜଳଗଛ, ବେତସ ବୃକ୍ଷ, ଜଳେନିକ କବି ।

ନିଚୋଳକ—କ୍ଲୀ. ବି. ଯୁଦ୍ଧରେ ବ୍ୟବହୃତ ଏକପ୍ରକାର ବର୍ମ ବା ସାଞ୍ଜୁ, କଞ୍ଚୁକ ।

ନିଚୃତ୍—ସ୍ତ୍ରୀ. ବି. ମଧ୍ୟରେ ସନ୍ନିବେଶ ।

ନିଚେକାୟ--ପୁଂ.ବି.ସ୍ତରେ ସ୍ତରେ ସଜ୍ଜା ।

ନିଚେତା—ପୁଂ. ବିଂ. (ନି+ଚି+ତୃ)

ଲବ୍ଧ ବସ୍ତୁର ସଞ୍ଚୟକର୍ତ୍ତା ।
ନିଚେୟ—ବିଂ. (ନି + ଚି + ଯ)ଅଚୀୟ-
ମାନ, (ସ୍ତ୍ରୀ) ନିଚେୟା ।
ନିଚେରୁ—ପୁଂ. ବି. (ନି + ଚର + ଉ)
ଅତ୍ୟନ୍ତ ବିଚରଣଶୀଳ ।
ନିଚୋଳ—ପୁଂ. ବି. (ନି+ଚୁଲ+ଣ.
ଅ) ଆଚ୍ଛାଦନବସ୍ତ୍ର, ଘାଗରା, ଶାଢ଼ୀ,
ପ୍ରଚ୍ଛଦପଟ, ପାଛୁଡ଼ା, ଦୋସଡ଼ା,ସାଞ୍ଜୁ,
ଦୋଳିକାବରଣ,ସବାର ଆଦର ପଟା-
ଟପ, କାମ୍ବଲ, ଓଢ଼ଣା, ବାକସ ।
ନିଚୋଳକ—ପୁଂ. ବି. (ନିଚୋଳ+କୈ
+ଅ) ନିଚୋଳ ଦେଖ ।
ନିଛକ—ଗ୍ରା. ବିଂ. ନିଃସନ୍ଦେହ, ଖାଣ୍ଟି,
ଅବିମିଶ୍ର, ନିରୋଳା, ମିଥ୍ୟା, ସ୍ୱାର୍ଥଶୂନ୍ୟ ।
ନିଛବି—ପୁଂ. ବି. ବ୍ରାତ୍ୟକ୍ଷତ୍ରିୟ ଔର-
ସରେ ସବର୍ଣ୍ଣା ସ୍ତ୍ରୀଠାରୁ ଜାତ ଜାତି-
ବିଶେଷ, ବର୍ଣ୍ଣସଙ୍କର ଜାତିବିଶେଷ
ଜିହ୍ମିତ ଦେଖ ।
ନିଛିଦ୍ର—ବିଂ.(ବ.ବ୍ରୀ)ଛିଦ୍ରଶୂନ୍ୟ, ଦୋଷ-
ଶୂନ୍ୟ, ନିର୍ଦ୍ଦୋଷ, (ସ୍ତ୍ରୀ) ନିଛିଦ୍ରା ।
ନିଛେଦ—ପୁଂ. ବି.(ନି+ଛିଦ୍+ଭା.ଅ)
ଛେଦନ, କର୍ତ୍ତନ ।
ନିଚ୍ଛେଦ୍ୟ—ବିଂ. (ନି + ଛିଦ୍+ର୍ମ.ଯ)
ଅଚ୍ଛେଦ୍ୟ, ଅଭେଦ୍ୟ, ଅବିଭାଜ୍ୟ ।
ନିଛଳ—ଗ୍ରା. ବି. (ସଂ-ଛଳ) କପଟତା
(ଗ୍ରା ବିଂ.) ଛଳନାଶୂନ୍ୟ, ସରଳ ।
ନିଛଳିଆ—ଗ୍ରା. ପୁଂ. ବିଂ. ଯେଉଁ ବ୍ୟକ୍ତି
ସାମାନ୍ୟ କଥାରେ ବା ଗାଳିରେ
ଅଯଥା ଛଳ ବା ଅଭିମାନ କରେ ନାହିଁ ।
ନିଛୁଟ—ଗ୍ରା. ବି.ନିର୍ଜନତା (ଗ୍ରା. ବିଂ)
ନିର୍ଜନ, ଏକାକୀ, ଏକୁଟିଆ ।
ନିଛୁଟିଆ—ଗ୍ରା.ବି.ଓ ବିଂ.ନିଛୁଟ ଦେଖ ।
ନିଜ୍—ଗ୍ରା. କ୍ରି. ବିଂ. ସ୍ୱୟଂ, ଆପ୍. (ବିଂ)
ସେହି, ଏକମାତ୍ର ।
ନିଜ—ବିଂ.(ନିଜ + ଜନ୍ + କ.ଅ) ସ୍ୱୀୟ,
ଆପଣାର, ସ୍ଥାୟୀ, ନିତ୍ୟ, ସ୍ୱାଭାବିକ,
ଅନନ୍ତ, ଅକ୍ଷୟ, ଅସୀମ, ସନାତନ,
ସନ୍ତତ, ଚିର, (ଗ୍ରା.ବି) ସ୍ୱୟଂ ।
ନିଜକର୍ମ—କ୍ଲୀ. ବି. ସ୍ୱକୀୟକାର୍ଯ୍ୟ, ଆପ-
ଣାର କାର୍ଯ୍ୟ ।
ନିଜଖରଚ—ଗ୍ରା. ବି. ଆପଣାର ବ୍ୟକ୍ତି-
ଗତ ଆବଶ୍ୟକ ବ୍ୟୟ ।
ନିଜଦାସ—ପୁଂ. ବି. ପାଣ୍ଡବଙ୍କ କ୍ରୋଧ-
ସମ୍ଭୂତ ଗଣବିଶେଷ ।
ନିଜଘ୍ନି—ବିଂ.(ନି+ହନ୍+ଇ) ନିତାନ୍ତ
ହନନଶୀଳ ।
ନିଜଞ୍ଜାଳ—ଗ୍ରା.ବିଂ.ଜଞ୍ଜାଳଶୂନ୍ୟ,କଣ୍ଟକ-
ରହିତ, ଯହିଁରେ କୌଣସି ଗୋଳମାଳ
ବା କଷ୍ଟ ନାହିଁ ।
ନିଜଞ୍ଜାଳି—ଗ୍ରା. ପୁଂ.ବିଂ.ନିଶ୍ଚିନ୍ତ,ଶାନ୍ତ,
ଯେ ସାଂସାରିକ ଜଞ୍ଜାଳରୁ ମୁକ୍ତ ।
ନିଜତନ୍ତ୍ରୀ—ପୁଂ.ବିଂ. (ନିଜତନ୍ତ୍ର+ଇନ୍)
ସ୍ୱାଧୀନ, ସ୍ୱତନ୍ତ୍ର ।
ନିଜ(ର୍ଜ)ଦେବା—ଗ୍ରା, କ୍ରି. ବି. କୃଷକ-
ମାନଙ୍କର ଧାନକାଟି ଆଣିବା ଉପ-
ଲକ୍ଷରେ ବର୍ଷର ଅନୁଷ୍ଠିତ ଉତ୍ସବ-
ବିଶେଷ ।
ନିଜନିଜ—ଗ୍ରା. ବିଂ. ଆପଣା ଆପଣାର,
ଯେ ଯାହାର ।
ନିଜମତ—ବି. (କ.ଧା) ଆପଣାର ମତ ।
ନିଜମତାବଲମ୍ବୀ—ପୁଂ. ବିଂ. ଆତ୍ମମତ-
ବାଦୀ, ଏକବାଗିଆ, ଏକବୁଝା ।
ନିଜମୁକ୍ତ—ବିଂ. ସ୍ୱଭାବମୁକ୍ତ, ନିତ୍ୟମୁକ୍ତ ।
ନିଜଯୋତ—ଗ୍ରା. ବି. ନିଜଗୃହ ।
ନିଜରୂପଦେଖା(ଖୋ)ଇବା—ଗ୍ରା, କ୍ରି.
ଛଦ୍ମରୂପ ଛାଡ଼ି ଆପଣାର ପ୍ରକୃତ
ଚେହେରା ଦେଖାଇବା, (ଲ.ଅର୍ଥ)
ଅତ୍ୟନ୍ତ ରାଗାନ୍ୱିତ ହେବା, ନିଜର
ଆନ୍ତରିକ ମତ ଗୋପନ ନ କରି ପ୍ରକାଶ
କରିବା ।
ନିଜସ୍ୱ—କ୍ଲୀ. ବି. (୬ତତ୍ପୁ) ନିଜଧନ,
ଆପଣାର ଧନ,(ବିଂ)ସ୍ୱକୀୟ,ଆପଣାର ।
ନିଜା—ସ୍ତ୍ରୀ. ବି. (ନିଜ + ଆ) ସ୍ୱୀୟା ସ୍ତ୍ରୀ,
ପତିବ୍ରତା ସ୍ତ୍ରୀ ।
ନିଜାମ—ଯା. ବି. ରାଜପ୍ରତିନିଧି,ଶାସନ-
କର୍ତ୍ତା,ହାଇଦରାବାଦ ରାଜ୍ୟର ମୁସଲ-
ମାନ ରାଜାଙ୍କ ଉପାଧି ।
ନିଜାମତ୍—ଯା. ବି. ରାଜ୍ୟଶାସନ ।
ନିଜାରତ୍—ଯା. ବି. ନାଜରଙ୍କ କର୍ମ ।
ନିଜି—ବିଂ. (ନିଜ+ଇ) ଶୁଦ୍ଧିଯୁକ୍ତ,
ପବିତ୍ର ।
ନିଜିମାନ୍—ପୁଂ. ବିଂ. (ନିଜି+ମତ୍)
ଶୁଦ୍ଧିମାନ୍, ଶୁଦ୍ଧିଯୁକ୍ତ ।
ନିଜୁର୍—ସ୍ତ୍ରୀ. ବି. ହତ୍ୟା, ବିନାଶ ।
ନିଜିଘୃକ୍ଷୁ—ବିଂ. (ନି + ଗ୍ରହ+ସନ୍+ଉ)
ନିଗ୍ରହ କରିବାକୁ ଇଚ୍ଛୁକ, ପୀଡ଼ନ
କରିବାକୁ ଅଭିଳାଷୀ ।
ନିଜେ—ଗ୍ରା. ଅବ୍ୟ. ସ୍ୱୟଂ, ଖୋଦ୍,
ସ୍ୱେଚ୍ଛାରେ ।
ନିଜେନିଜେ—ଗ୍ରା. ଅବ୍ୟ. ଆପଣାଛାଏଁ,
ସ୍ୱେଚ୍ଛାରେ, ସେମାନେ କିମ୍ବା ଆମ୍ଭେ-
ମାନେ ବା ତୁମ୍ଭେମାନେ ସ୍ୱୟଂ ।
ନିଜୋର୍—ଗ୍ରା. ବିଂ. ଦୁର୍ବଳ, ବଳଶୂନ୍ୟ,
ଅସମର୍ଥ । [ ଶୂନ୍ୟତା ।
ନିଜୋରି—ଗ୍ରା. ବି. ଦୁର୍ବଳତା, ବଳ-
ନିଜ୍ୟମାନ—ବିଂ.(ନିଜ୍+ର୍ମ.ଆନ)କ୍ଷାଳିତ,
ଶୋଧିତ ।
ନିଝାମ—ପ୍ରା. (ପୁସ୍ତ) ବି. ଜାଗାଘରେ
କୁସ୍ତି କରିବାର ଯନ୍ତ୍ରବିଶେଷ ।
ନିଟ୍—ଯା.ବିଂ. ପରିଷ୍କୃତ, ଖାଣ୍ଟି,ଯଥାର୍ଥ,
ସତ୍ୟ, ଠିକ୍, ହାରାହାରି, ଖର୍ଚ୍ଚ ଆଦି
ବାଦ ବଳି ପଡ଼ିଥିବା ।
ନିଟଲ—ପୁଂ.ବି. (ନି + ଟଲ + କ.ଅ)
କପାଳ, ଭାଲ ଦେଶ ।
ନିଟଲାକ୍ଷ—ପୁଂ.ବି. (ବ.ବ୍ରୀ) ଶିବ,ମହା-
ଦେବ, (ବିଂ) ଯାହାର ଗୋଟିଏ ଆଖି
ଭାଲଦେଶରେ ଥାଏ ।
ନିଟୋଳ—ଗ୍ରା. ବିଂ. ଉଚ୍ଚନୀଚତାଶୂନ୍ୟ,
ଚୌରସ, ଯାହା ଭିତରେ ଫାଙ୍କ
ନାହିଁ, ପ୍ରଶସ୍ତ, ସୁଗୋଳ, (ବି) ଭାଲ,
କପାଳ ।
ନିଠା—ଗ୍ରା. ବିଂ. ଯେ ଦାନ୍ତ ଚିପିକରି
କଥା କହେ, ଯେ, ସବୁକଥା ତନ୍ନତନ୍ନ
କରି ଦେଖେ, ମଠୁଆ, ଦୀର୍ଘସୂତ୍ରୀ,ଅଳ-
ସୁଆ, (ପ୍ରା.ସମ୍ବ. ବିଂ ର ବିଂ) ଅତି,
ଅତ୍ୟନ୍ତ, ଅତ୍ୟଧିକ ।
ନିଠାଇ—ଗ୍ରା.କ୍ରି.ବିଂ. ଅଳସୁଆ ଭାବରେ,

ଧୀରେ ଧୀରେ ଓ ଉତ୍ତମରୂପେ, ଦାନ୍ତ ଚପିକରି (କଥା କହିବା), ଜୋରକରି, ବାରମ୍ବାର, ଦୃଢ଼ଭାବରେ, ଧୀରେ ସୁସ୍ଥେ, ବଳମୂରେ, ଭଲକରି, ନିଷ୍ଠ ସହକାରେ, ନିଷ୍ଠୁରଭାବରେ ।

**ନିଠୁର**—ଗ୍ରା. ବିଂ. ନିଷ୍ଠୁର, କଠିନ, ନିର୍ଦ୍ଦୟ, କୃପାହୀନ ।

**ନିଡ଼ର**—ଗ୍ରା. ବିଂ. ଭୟହୀନ, ନିର୍ଭୟ, ନିର୍ଭୀକ, ଧୃଷ୍ଟ, ନିର୍ଲ୍ଲଜ ।

**ନିଡ଼ୀନ**—କ୍ଲୀ.ବି. ( ନି+ଡୀ+ଭା.ତ ) ପକ୍ଷୀମାନଙ୍କର ତଳଆଡ଼କୁ ମୁହଁକରି ଉଡ଼ିବା ।

**ନିଣ୍ଡିକା**—ସ୍ତ୍ରୀ.ବି. ମୁଗ, ବରି, କେସରି, ଚଣା ଇତ୍ୟାଦି ।

**ନିଣ୍ୟ**—ବିଂ. ଅନ୍ତର୍ହିତ ।

**ନିତମ୍ବ**—ପୁଂ.ବି. ( ନି+ତମ୍+ମି.ଅ ) ସ୍ତ୍ରୀକଟି, ସ୍ତ୍ରୀମାନଙ୍କର କଟି ପଶ୍ଚ ଭାଗ, ପିଚ୍ଛ, ଗାଣ୍ଡି, ସ୍କନ୍ଧ, କୂଳ, ତଟ, ତୀର, ପର୍ବତର କଟକ, ପର୍ବତରେ ବସତିସ୍ଥାନ, ଚୂଳ, ଖାଣାର ଯେଉଁ ପଟାଡ଼ିପରେ ତାରମାନ ଖଞ୍ଜା ହୋଇଥାଏ, ଅତଡ଼ା ।

**ନିତମ୍ବଗୁର୍ବୀ**—ସ୍ତ୍ରୀ.ବିଂ. (ବ.ଗ୍ରୀ) ଗୁରୁ ବା ପୃଥୁଳ ନିତମ୍ବଯୁକ୍ତା (ସ୍ତ୍ରୀ) ।

**ନିତମ୍ବଦେଶ**—ପୁଂ. ବି. ( ୬ତତ୍ ) କଟି ପଶ୍ଚାଦ୍ଭାଗ, ପଛଭାଗ ।

**ନିତମ୍ବବିମ୍ବ**—ବି. (ନିତମ୍ବ+ବିମ୍ବ।ଗୋଲ-କୃତିବିଶିଷ୍ଟ ସ୍ତ୍ରୀମାନଙ୍କର ପିଚ୍ଛ, ( ପୁଂ. ବିଂ—ବ.ଗ୍ରୀ ) ବର୍ତ୍ତୁଳ ନିତମ୍ବବିଶିଷ୍ଟ (ବ୍ୟକ୍ତି) ।

**ନିତମ୍ବିନୀ**—ସ୍ତ୍ରୀ.ବିଂ. (ନିତମ୍ବ+ଇନ୍+ଈ) ପ୍ରଶସ୍ତ ନିତମ୍ବଯୁକ୍ତା (ସ୍ତ୍ରୀ), (ବି) ସୁନ୍ଦର ନିତମ୍ବବତୀ ସ୍ତ୍ରୀ ।

**ନିତମ୍ବୀ**—ପୁଂ. ବିଂ. ( ନିତମ୍ବ+ଇନ୍ ) ନିତମ୍ବଯୁକ୍ତ, (ସ୍ତ୍ରୀ) ନିତମ୍ବିନୀ ।

**ନିତରାଂ**—ଅବ୍ୟ. ସର୍ବଦା, ସର୍ବଥା, ସର୍ବତୋଭାବରେ, ଅନବରତ, ଅଧିକନ୍ତୁ, ବିଶେଷରୂପେ, ଅବଶ୍ୟ ।

**ନିତଳ**—କ୍ଲୀ. ବି. ( ନି+ତଳ ) ସପ୍ତ ପାତାଳର ଅନ୍ତର୍ଗତ ପାତାଳବିଶେଷ, ଚତୁର୍ଥ ପାତାଳ ।

**ନିତାଇ**—ଗ୍ରା.ପୁଂ.ବି. ଚୈତନ୍ୟଙ୍କ ସହଚର, ନବଦ୍ୱୀପର ମହାପୁରୁଷ ନିତ୍ୟାନନ୍ଦଙ୍କ ଡାକନାମ ।

**ନିତାଇଗଉର**—ଗ୍ରା. ବି. ନବଦ୍ୱୀପର ମହାପୁରୁଷଦ୍ୱୟ, ନିତ୍ୟାନନ୍ଦ ଓ ଗୌରାଙ୍ଗ ।

**ନିତାଇଗୌରରାଧେଶ୍ୟାମ**—ଗ୍ରା. (ପଦ୍ୟ) ସ୍ୱର୍ଗୀୟ ରାଧାରମଣ ଚରଣ ଦାସ ବାବାଜୀଙ୍କ ପ୍ରବର୍ତ୍ତିତ ସଙ୍କୀର୍ତ୍ତନ ପଦର ଶେଷ ଚରଣ ।

**ନିତାନ୍ତ**—କ୍ଲୀ.ବିଂ. (ନି+ତମ୍+କ.ତ) ଅତିଶୟ, ଅତ୍ୟନ୍ତ, ଏକାନ୍ତ, ନିହାତି, ନିଶ୍ଚିତ, ଅସାଧାରଣ, (ଅବ୍ୟ) ଅତିଶୟ, ଆଦୌ, ସୁତରାଂ, ଫଳତଃ, ନିଶ୍ଚେ, ଅତ୍ୟଧିକରୂପେ, ( ଗ୍ରା.ଅବ୍ୟ ) ଯେ କୌଣସି ପ୍ରକାରେ, ଯାହା ଘଟୁ ନ କାହିଁକି ।

**ନିତାନ୍ତପକ୍ଷରେ**—ଗ୍ରା.ଅବ୍ୟ. ଅତି ସାମାନ୍ୟରେ, ନିକୃଷ୍ଟରେ, ଖୁବ୍ ଅଧିକ ହେଲେ ।

**ନିତି**—ଗ୍ରା. ଅବ୍ୟ. ପ୍ରତିଦିନ, ଅହରହଃ, ପ୍ରତ୍ୟହ, ସର୍ବଦା, ନିତ୍ୟ, ( ଗ୍ରା.ବିଂ ) ଦୈନିକ ( ମୂଲିଆ ), (ବି) ଘରରୁ ଢେଙ୍କିକୁ ଯିବା ଆସିବାର ପଥ, ସମ୍ବଲପୁରର ଗୋଟିଏ ଗିରିସଙ୍କଟ ।

**ନିତିନିତି**—ଗ୍ରା. ଅବ୍ୟ. ପ୍ରତିଦିନ, ଦିନକୁଦିନ, ସର୍ବଦା, ନିତ୍ୟ, ବାରମ୍ବାର, ପ୍ରତ୍ୟହ ।

**ନିତିମୂଲିଆ**—ଗ୍ରା.ବିଂ. ପ୍ରତିଦିନ ମୂଲଲାଗି ମଜୁରି ଆଣି ଯେ ପେଟ ପୋଷେ ।

**ନିତ୍ୟ**—ଅବ୍ୟ. ( ନି+ତ୍ୟ ) ସତତ, ଅହରହଃ, ଅନନ୍ତକାଳ, ସର୍ବଦା, ନିରନ୍ତର, ପ୍ରତିଦିନ, ( ବିଂ ) ଚିରସ୍ଥାୟୀ, କାଳତ୍ରୟବ୍ୟାପୀ, ଚିରନ୍ତନ, ଅବିରତ, ଧାରାବାହିକ, ପ୍ରାତ୍ୟହିକ, ଦୈନନ୍ଦିନ, ଅକ୍ଷୟ, ଅବିନଶ୍ୱର, ଯାହା ନିୟମିତରୂପେ ଘଟେ ବା କରାଯାଏ, ଯାହା ପ୍ରତିଦିନ କରିବାର ବିଧାନ ଅଛି, ଅତ୍ୟାବଶ୍ୟକ, (ବି) ସମୁଦ୍ର, ବୈକୁଣ୍ଠ ।

**ନିତ୍ୟକର୍ମ**—କ୍ଲୀ. ବି. ମନୁଷ୍ୟ ଜୀବନର ଦୈନନ୍ଦିନ କର୍ତ୍ତବ୍ୟ କର୍ମ, ଦନ୍ତଧାବନ, ବହିର୍ଦ୍ଦେଶଗମନ, ସ୍ନାନ, ଦେବାର୍ଚ୍ଚନ, ଭୋଜନାଦି ଦୈନିକ କାର୍ଯ୍ୟମାନ ।

**ନିତ୍ୟକ୍ଷୌର**—କ୍ଲୀ. ବି. ବୈଧେତର-କ୍ଷୌର, ଅବୈଧ କେଶାଦି ଛେଦନ ।

**ନିତ୍ୟଗତି**—ପୁଂ.ବି. (ବ.ଗ୍ରୀ) ସଦାଗତି, ବାୟୁ (ବିଂ.ବ.ଗ୍ରୀ) ଅନବରତ ଗମନଶୀଳ ।

**ନିତ୍ୟଜ୍ୱର**—ବି. ଅବିରାମ ଜ୍ୱର, ଯେଉଁ ଜ୍ୱରରେ ତାତି ଓହ୍ଲାଏ ନାହିଁ ।

**ନିତ୍ୟତା**—ବି. (ନିତ୍ୟ+ତ+ଆ) ନିତ୍ୟତ୍ୱ, ନିତ୍ୟର ଭାବ ବା ଧର୍ମ ।

**ନିତ୍ୟଦା**—ଅବ୍ୟ. (ନିତ୍ୟ+ଦା) ସର୍ବଦା, ସଦା ।

**ନିତ୍ୟଦାନ**—କ୍ଲୀ.ବି. ପ୍ରତିଦିନ କର୍ତ୍ତବ୍ୟ ଦାନ, ପ୍ରତ୍ୟହ ଯେଉଁ ସମସ୍ତ ଦାନ କରାଯାଏ ।

**ନିତ୍ୟଧାମ**—ବି. ନିତ୍ୟ ବୈକୁଣ୍ଠ, ଭଗବାନଙ୍କର ନିତ୍ୟ ଲୀଳାସ୍ଥାନ ।

**ନିତ୍ୟନର୍ତ୍ତ**—ପୁଂ. ବି. (ନିତ୍ୟ+ନୃତ୍+କ.ଅ) ମହାଦେବ, ଶିବ ।

**ନିତ୍ୟନାରୀ**—ଗ୍ରା. ବି. ନିତ୍ୟ ସ୍ଥଳରେ ବନ୍ଧୁଙ୍କ ସହିତ ଲୀଳା କରୁଥିବା ନାୟିକାଗଣ ।

**ନିତ୍ୟନିତ୍ୟ**—ଗ୍ରା. କ୍ରି. ବିଂ. ପ୍ରତିଦିନ ।

**ନିତ୍ୟନୈମିତ୍ତିକ**—କ୍ଲୀ. ବି. ପ୍ରାତ୍ୟହିକ କରଣୀୟ ଓ ବିଶେଷ ଉଦ୍ଦେଶ୍ୟକରଣୀୟ ।

**ନିତ୍ୟପ୍ରତି**—ଅବ୍ୟ. (ନିତ୍ୟ+ପ୍ରତି) ପ୍ରତିଦିନ ।

**ନିତ୍ୟପ୍ରତ୍ୟକ୍ଷ**—ବିଂ. ପ୍ରତିଦିନ ଆଖିଆଗରେ ଘଟୁଥିବା ।

**ନିତ୍ୟପ୍ରଳୟ**—ପୁଂ. ବି. (କ.ଧା) ନିଦ୍ରା, ସୁଷୁପ୍ତି, ପ୍ରତିଦିନ ଘଟୁଥିବା ଜୀବମାନଙ୍କର ମୃତ୍ୟୁ ।

**ନିତ୍ୟପ୍ରବୃତ୍ତବର୍ତ୍ତମାନ**—( ବ୍ୟାକରଣ ) ଯେଉଁ ବର୍ତ୍ତମାନ କାଳବାଚକ କ୍ରିୟା ଦ୍ୱାରା ସର୍ବଦା ଘଟିବା କ୍ରିୟା ବୁଝା-

ଯାଏ, (ଯଥା—ଆଷାଢ଼ ମାସରେ ବର୍ଷା ହୁଏ) ।

**ନିତ୍ୟଭାବ**—ପୁଂ. ବି. (ନିତ୍ୟତ୍ୱ) ଅନନ୍ତ, ନିତ୍ୟର ଭାବ ।

**ନିତ୍ୟମୟ**—ବିଂ. (ନିତ୍ୟ + ମୟ)ନିତ୍ୟ-ସ୍ୱରୂପ, ଅନନ୍ତ ।

**ନିତ୍ୟମୁକ୍ତ**—ପୁଂ. ବି. ସବୁ କାଳରେ ବନ୍ଧନଶୂନ୍ୟ ପରମାତ୍ମା, (ବିଂ)ନିସ୍ପୃହ-ନିର୍ଲିପ୍ତ, କାଳାତୀତ ଭାବରେ ବନ୍ଧନ-ମୁକ୍ତ ।

**ନିତ୍ୟଯଜ୍ଞ**—ପୁଂ. ବି. (କ.ଧା) ପ୍ରତିଦିନ ଅନୁଷ୍ଠୀୟମାନ ଅଗ୍ନିହୋତ୍ରାଦି ଯଜ୍ଞ କର୍ମ

**ନିତ୍ୟଯୁକ୍ତ**—ବିଂ. ସର୍ବଦା କାର୍ଯ୍ୟରେ ଲାଗିଥିବା ।

**ନିତ୍ୟଯୌବନ**—ବି.ଚିରକାଳ ବାର୍ଦ୍ଧକ୍ୟ-ରହିତ ଅବସ୍ଥା, ସ୍ଥିରଯୌବନ, (ବିଂ) ଚିରଯୁବା, ଯେ ସର୍ବଦା ଯୁବା ଥାଏ, ଯାହାର ବାର୍ଦ୍ଧକ୍ୟ ହୁଏନାହିଁ ।

**ନିତ୍ୟରାସ**—ବି.ଗୋଲକଧାମ ବା ବୈକୁଣ୍ଠରେ ଶ୍ରୀକୃଷ୍ଣ ଓ ଗୋପୀମାନଙ୍କ ଦ୍ୱାରା ପ୍ରତିଦିନ ସମ୍ପାଦିତ ରାସକ୍ରୀଡ଼ା ।

**ନିତ୍ୟରେ**—ଗ୍ରା.କ୍ରି.ବିଂ. ସର୍ବଦା, ନିରନ୍ତର ।

**ନିତ୍ୟର୍ତ୍ତୁ**—ବିଂ (ନିତ୍ୟ + ଋତୁ)ପ୍ରତିବର୍ଷ ନିର୍ଦ୍ଦିଷ୍ଟ ଋତୁରେ ଘଟୁଥିବା ।

**ନିତ୍ୟଲୀଳା**—ସ୍ତ୍ରୀ.ବି. (କ.ଧା) ଚିରସ୍ଥାୟୀ ଲୀଳା, ଧାରାବାହିକ କ୍ରୀଡ଼ା । [ ଧୃରଣ

**ନିତ୍ୟବସ୍ତୁ**—ପୁଂ. ବିଂ. ଚିତ୍‌ଶକ୍ତି, (ବି)

**ନିତ୍ୟବୈକୁଣ୍ଠ**—ପୁଂ.ବି.ବିଷ୍ଣୁଙ୍କର ବାସ ସ୍ଥାନ, ଗୋଲକଧାମ ।

**ନିତ୍ୟବ୍ୟୟ**—ପୁଂ. ବିଂ. (ବ.ବ୍ରୀ) ଯେ ସର୍ବଦା ବ୍ୟୟ କରୁଥାଏ ।

**ନିତ୍ୟବ୍ରତ**—ବି.ଆମରଣ ଅନୁଷ୍ଠିତ ବ୍ରତ ।

**ନିତ୍ୟଶଃ**—ଅବ୍ୟ. (ନିତ୍ୟ+ଶସ୍) ପ୍ରତି-ନିୟତ, ସର୍ବଦା, ଅନବରତ ।

**ନିତ୍ୟଶ୍ରାଦ୍ଧ**—ବି.ପ୍ରତିଦିନ କରାଯିବା ଶ୍ରାଦ୍ଧ

**ନିତ୍ୟଶ୍ରୀ**—ପୁ . ସ୍ତ୍ରୀ. ବିଂ. ଚିରସୁନ୍ଦର, ଯାହାର ସୌନ୍ଦର୍ଯ୍ୟ ମଉଳେନାହିଁ ।

**ନିତ୍ୟସଙ୍ଗୀ**—ପୁଂ. ବିଂ. ଯେ ସର୍ବଦା ସଙ୍ଗରେ ଥାଏ ।

**ନିତ୍ୟସତ୍ତ୍ୱସ୍ଥ**—ବିଂ (ନିତ୍ୟ+ସତ୍ତ୍ୱ+ସ୍ଥା +ଅ) ନିତ୍ୟ ଧୈର୍ଯ୍ୟାବଲମ୍ବୀ ।

**ନିତ୍ୟସମ**—ପୁଂ. ବି. ଗୌତମ ସୂତ୍ରୋକ୍ତ ଜାତ୍ୟୁତ୍ତରବିଶେଷ ।

**ନିତ୍ୟସମାସ**—ପୁଂ. ବି. ସମାସବିଶେଷ, ଯେଉଁ ସମାସରେ ସମସ୍ତ ପଦର ଅନ୍ତ-ର୍ଭୁକ୍ତିଭୂତ ପଦମାନଙ୍କୁ ସ୍ୱତନ୍ତ୍ର ବ୍ୟବ-ହାର କଲେ ଅର୍ଥବୋଧ ହୁଏନାହିଁ ।

**ନିତ୍ୟସିଦ୍ଧ**—ପୁଂ.ବିଂ.ଯେ ସର୍ବଦା ସିଦ୍ଧି-ଯୁକ୍ତ । [ ସେବାକାରୀ ବ୍ୟକ୍ତି ।

**ନିତ୍ୟସେବକ**—ପୁଂ. ବି.(କ.ଧ.)ଅହରହ

**ନିତ୍ୟସେବା**—ସ୍ତ୍ରୀ. ବି. (କ.ଧା) ଅହରହ ପରିଚର୍ଯ୍ୟା, ଗୃହ ପ୍ରତିଷ୍ଠିତ ଦେବତାର ପ୍ରାତ୍ୟହିକ ପୂଜା ।

**ନିତ୍ୟସ୍ତୋତ୍ର**—ବିଂ. ସର୍ବଦା ପ୍ରଶଂସିତ, ସର୍ବଦା ପଠନୀୟ ସ୍ତୋତ୍ର ।

**ନିତ୍ୟସ୍ନାୟୀ**—ପୁଂ.ବିଂ. (ନିତ୍ୟ+ସ୍ନା+ କ.ଇନ୍) ଯେ ପ୍ରତିଦିନ ସ୍ନାନକରନ୍ତି ।

**ନିତ୍ୟହୋମ**—ପୁଂ. ବି. (କ.ଧ) ଦ୍ୱିଜ-ମାନଙ୍କର ପ୍ରତିଦିନ କର୍ତ୍ତବ୍ୟ ହୋମ ।

**ନିତ୍ୟା**—ସ୍ତ୍ରୀ.ବି. ଦେବୀଙ୍କର ଶକ୍ତିବିଶେଷ, ପାର୍ବତୀ, ମନସାଦେବୀ, ଲକ୍ଷଣାଲବ୍ଧ ନିତ୍ୟ ଅବଶ୍ୟ କର୍ତ୍ତବ୍ୟ କର୍ମ,(ସ୍ତ୍ରୀ.ବିଂ) ନିତ୍ୟର ସ୍ତ୍ରୀଲିଙ୍ଗ ।

**ନିତ୍ୟାନଧ୍ୟାୟ**—ପୁଂ.ବି. (କ.ଧା)ବେଦା-ଧ୍ୟୟନ ଓ ବେଦାଧ୍ୟାପନର ନିତ୍ୟ-ଗୃହୀତ୍ୟ, ଅନଧ୍ୟାୟ କାଳ, ଯେଉଁ ଅବସ୍ଥାରେ ବା ସ୍ଥାନରେ ନିତ୍ୟ ବେଦା-ଧ୍ୟୟନ ଓ ବେଦାଧ୍ୟାପନ ନିଷିଦ୍ଧ ।

**ନିତ୍ୟାନନ୍ଦ**—ପୁଂ.ବି. (ବ.ବ୍ରୀ)ସଦାନନ୍ଦ, ଯାହାର ଚିତ୍ତ ସର୍ବଦା ସନ୍ତୁଷ୍ଟ, ଚିର-ସ୍ଥାୟୀ ସୁଖ, (ଗ୍ରା.ବି) ଶ୍ରୀ ଚୈତନ୍ୟ-ଦେବଙ୍କର ପ୍ରଧାନ ଭକ୍ତ ଓ ସଙ୍ଗୀ, ସିଦ୍ଧାନ୍ତସଂଗ୍ରହର ପ୍ରଣେତା ।

**ନିତ୍ୟାନିତ୍ୟ**—ବିଂ. (ନିତ୍ୟ+ଅନିତ୍ୟ) ସ୍ଥାୟୀ ଓ ଅସ୍ଥାୟୀ, ଚର ଓ ଅଚର ।

**ନିତ୍ୟାନିତ୍ୟବସ୍ତୁ ବିବେକ**—ପୁଂ. ବି. ବ୍ରହ୍ମୈକ ମାତ୍ର ସତ୍ୟ ଓ ତଦ୍‌ଭିନ୍ନ ସମସ୍ତ ଅନିତ୍ୟ ଏହିପରି ବିଚାର ।

**ନିତ୍ୟାନିତ୍ୟସଂଯୋଗବିରୋଧ**—ପୁଂ. ବି. ନିତ୍ୟ ଓ ଅନିତ୍ୟ ବସ୍ତୁର ଏକାଧାରାବସ୍ଥାନ ରୂପ ବିରୋଧ ।

**ନିତ୍ୟାନୁବନ୍ଧ**--ବିଂ.ରକ୍ଷାକାରୀ,ପ୍ରତିପାଳକ

**ନିତ୍ୟାଭିଯୁକ୍ତ**—ପୁଂ.ବିଂ.(ନିତ୍ୟ+ଅଭି-ଯୁକ୍ତ) ଯେଉଁ ଯୋଗୀ ଯେତିକି ପରି-ମିତ ଖାଦ୍ୟରେ ଦେହ ରକ୍ଷା ହେବ ସେତିକି ମାତ୍ର ଭୋଜନ କରି ଓ ତହୁଁ ଅଧିକ ପରିତ୍ୟାଗ କରି ଯୋଗ ସାଧନ କରନ୍ତି, (ସ୍ତ୍ରୀ) ନିତ୍ୟାଭିଯୁକ୍ତା ।

**ନିତ୍ୟାରସ**—ବିଂ ଯେଉଁ ବୋଇତ ବା ନାବ ତରଙ୍ଗଲଗ୍ନ ଆନୁକୂଲ୍ୟ ଦ୍ୱାରା ଚଳେ ।

**ନିତ୍ୟୋଦକ**—ବିଂ. ( ବ.ବ୍ରୀ ) ଯେଉଁ ଜଳାଶୟରେ ସବୁଦିନେ ପାଣିଥାଏ ।

**ନିତ୍ୟୋଦୟରସ**—ପୁଂ.ବି. ଅର୍ଶରୋଗର ପ୍ରଧାନ ଔଷଧ । [ ଶୀଳ ।

**ନିତ୍ୟୋଦ୍ୟୁକ୍ତ**—ପୁଂ.ବିଂ.ସର୍ବଦା ଉଦ୍ୟମ-

**ନିଥର**—ଗ୍ରା.ବିଂ.ସ୍ଥିର, ଧୀର, ନିଃଶବ୍ଦ ।

**ନିଦ**—ଗ୍ରା. ବି. ନିଦ୍ରା, ଶୟନ, (କ୍ଲୀ.ଷ୍ଠ ନି+ଦୋ+କ.ଅ)ବିଷ,(ବିଂ) ନିନ୍ଦର୍କ ।

**ନିଦକା**—ଗ୍ରା.ବିଂ.ନିର୍ଭୟ, ନିଶ୍ଚିନ୍ତ, (ବି) ଭୟଶୂନ୍ୟତା । [ ଢୁଳା ଇବା ।

**ନିଦଘାରିବା**—ଗ୍ରା.ବି. ନିଦ୍ରାସକ୍ତ ହୋଇ

**ନିଦନ୍ତ୍ରୁ**—ବିଂ. (ନିଦ+ଦ୍ରା+ଉ)ମନୁଷ୍ୟ, ( ବିଂ. ନି+ଦନ୍ତ୍ରୁ ) ଦନ୍ତ୍ରୁରୋଗରହିତ, ଦନ୍ତ୍ରୁଶୂନ୍ୟ ।

**ନିଦବାଉଲା**—ଗ୍ରା. ବି. ଗାଢ଼ ନିଦ୍ରାରେ ଶୋଇଥିବା ବ୍ୟକ୍ତି କୌଣସି ଶବ୍ଦ ବା ଡାକଆଦି ଶୁଣି ହଠାତ୍ ନିଦରୁ ଉଠିଲେ ତାହାର ଯେଉଁ ଭ୍ରମାବସ୍ଥା ଘଟେ ।

**ନିଦଭାଙ୍ଗିବା**—ଗ୍ରା. କ୍ରି. ସୁପ୍ତ ବ୍ୟକ୍ତିକୁ ନିଦରୁ ଉଠାଇବା, ନିଜ ଚେଷ୍ଟା-ପୂର୍ବକ ନିଦ୍ରାର ଆଳସ୍ୟକୁ ତ୍ୟାଗକରିବା, (ଗ୍ରା.ବି) ଜାଗରଣ, (ଲ.ଅର୍ଥ) ପ୍ରକୃତ ଅବସ୍ଥାର ଉପଲବ୍ଧି ।

**ନିଦମାଟି**—ଗ୍ରା. ବି. ମୋହଚୂର୍ଣ୍ଣ, ମନ୍ତ୍ରପୂତ ହୋଇଥିବା ଯେଉଁ ଧୂଳିକୁ ଚୋରମାନେ ଶୋଇଥିବା ବ୍ୟକ୍ତିମାନଙ୍କ ଉପରେ ପକାଇ ଚୋରି କରନ୍ତି, ପୂର୍ବଦିଗରେ

ପଡ଼ିଥିବା ଇନ୍ଦ୍ରଧନୁର ଅଗ୍ରଭାଗ ଯେଉଁ-
ଠାରେ ଭୂମିରେ ଛୁଇଁଥିବାପରି ଦିଶେ,
ଚୋରମାନେ ସେହିଠାରୁ ଆଣିଥିବା
ମାଟି ।
**ନିଦମାଡ଼ିବା**—ଗ୍ରା. କ୍ରି. ନିଦ୍ରାକର୍ଷଣ ।
**ନିଦୟ**—ବି°. (ନି+ଦୟା)ନିର୍ଦ୍ଦୟ ।
**ନିଦର୍ଶକ**—ପୁଂ.ବି°. (ନି+ଦୃଶ୍+ଣିଚ୍
+ଅକ) ନିଦର୍ଶନକାରୀ ।
**ନିଦର୍ଶନ**—କ୍ଲୀ. ବି. ( ନି+ଦୃଶ୍+ଅଧି.
ଅନ) ଉଦାହରଣ, ଦୃଷ୍ଟାନ୍ତ, ପ୍ରମାଣ.
ଚିହ୍ନ, ପ୍ରତିରୂପ, ନମୁନା, ଆଦର୍ଶ.
ଅଭିଜ୍ଞାନ, ଆଜ୍ଞାବିଧାନ, ସ୍ମରଣ.
ଦେଖାଇଦେବା, ପ୍ରକଟନ, ପଦ୍ଧତି.
ଯୋଜନା,ପ୍ରାମାଣିକ ଶାସ୍ତ୍ରବଚନ,ଦୃଷ୍ଟି:
ଦୃଶ୍ୟବସ୍ତୁଚୟ, କଥିତ ପ୍ରତିଜ୍ଞା ବା
ଯୁକ୍ତିର ପ୍ରତିବାଦ, ଆର୍ଯ୍ୟନ୍ୟାୟଶାସ୍ତ୍ରରେ
ଅନୁମାନର ପାଞ୍ଚଟି ଅବୟବ ମଧ୍ୟରୁ ତୃତୀୟ
ଅବୟବ, ପୂର୍ବଲକ୍ଷଣ, ଶକୁନ, (ବି°)
ପ୍ରଦର୍ଶନକାରୀ, ଯେ ଦେଖାଇଦିଏ,
ପ୍ରକଟନକାରୀ,ସନ୍ତୋଷବିଧାୟକ, ପ୍ରିୟ ।
**ନିଦର୍ଶନପତ୍ର**—ବି.କୌଣସି ବିଷୟ ପ୍ରମା-
ଣିତ କରିବା ନିମନ୍ତେ ବ୍ୟବହୃତ
ଦଲିଲ ବା ଲେଖା ।
**ନିଦର୍ଶନା**—ସ୍ତ୍ରୀ, ବି, ( ନି+ଦୃଶ୍+ଣିଚ୍
+ଅନ+ଆ) କାବ୍ୟାଲଙ୍କାରବିଶେଷ ।
**ନିଦା**—ଗ୍ରା.ବି. (ସ-ନିର୍ଦ୍ଦିଷ୍ଟ) ଘନ, ଯାହା
ଫମ୍ପା ନୁହେ, ନିବିଡ଼, ଦୃଢ଼, ସ୍ଥିର.
(କ୍ରି.ବି°)ନିରେଟ, ଅତ୍ୟନ୍ତ,ଘନଭାବରେ,
ଦୃଢ଼ରୂପେ ।
**ନିଦାଗୁଆ**—ଗ୍ରା.ବି.ଯେଉଁ ଗୁଆ ଭିତରେ
ପୋଲ ନାହିଁ, (ଲ.ଅର୍ଥ) ଟଙ୍କା ।
**ନିଦାଘ**—ପୁଂ. ବି. ( ନି+ଦୁହ୍+ଅ )
ଖରାଦିନ, ଗ୍ରୀଷ୍ମକାଳ, ଝାଳ, ଉତ୍ତାପ,
ଚୈତ୍ରପତ୍ନୀ ଜାତ ପୁଲସ୍ତ୍ୟ ଋଷିଙ୍କ ପୁତ୍ର,
(ବି°) ଉଷ୍ଣ, ତପ୍ତ ।
**ନିଦାଘକର**—ବି. (ନିଦାଘ+କୃ+ଅ)
ତପନ,ସୂର୍ଯ୍ୟ,ଅର୍କବୃକ୍ଷ । [ ଦିନ ।
**ନିଦାଘକାଳ**—ପୁଂ.ବି, ଗ୍ରୀଷ୍ମକାଳ, ଖରା-
**ନିଦାଘରୁଚି**—ବି°, ( ବ.ବ୍ରୀ ) ଯାହାର
କିରଣ ଗରମ, (ବି) ସୂର୍ଯ୍ୟ ।
**ନିଦାଘସିନ୍ଧୁ**—ବି. ଗ୍ରୀଷ୍ମକାଳରେ ଯେଉଁ-
ନଦୀରେ( ବରଫ ତରଳିବା ଯୋଗୁଁ )
ଜଳ ବଢ଼େ, ଖରାଦିନେ ଶୁଷ୍କ ନଦୀ ।
**ନିଦାଘାର୍ତ୍ତ**—ବି°. ତତ୍ପୁ; ଗ୍ରୀଷ୍ମରେ
କାତର ।
**ନିଦାତା**—ପୁଂ. ବି°. (ନି+ଦୋ+ତୃ)
ନିରୋଧକ ।
**ନିଦାନ୍**—ପ୍ରା. (ଦେଶ୍ୟ) ଅବ୍ୟ. ନିଶ୍ଚୟ,
ଅବଶ୍ୟ,ନିଃସନ୍ଦେହରେ, ପରିଶେଷରେ
ଆଖେର, (ବି°) ନିଶ୍ଚିତ, (ବି° ର ବି°)
ଅତ୍ୟନ୍ତ, ନିତାନ୍ତ ।
**ନିଦାନ**—କ୍ଲୀ. ବି. (ନି+ଦା+ଣ.ଅନ)
ଆଦିକାରଣ, କାରଣ, (ନି+ଦୋ+
ଣ.ଅନ) ବତ୍ସଦାମ, ବାଛୁରି ବାନ୍ଧିବା
ଦଉଡ଼ି, ଅନ୍ତିମ ଅବସ୍ଥା, ( ଭା.ଅନ )
ଅବସାନ,ଅନ୍ତ, ସନ୍ତୁଷ୍ଟତା,ବିରାମ,ନିବୃତ୍ତି,
(ନି+ଦୈ+ଭା.ଅନ) ପବିତ୍ରତା,ବିଶୁ-
ଦ୍ଧତା, ରୋଗନିର୍ଣ୍ଣୟ. ରୋଗନିର୍ଣ୍ଣାୟକ
ଶାସ୍ତ୍ର,ମାଧବକର କୃତ ରୋଗନିର୍ଣ୍ଣାୟକ
ଗ୍ରନ୍ଥ,ତନ୍ତୁବିଚ୍ଛେଦ, ପବିତ୍ରୀକରଣ.
ଯଥାର୍ଥତା, ତପଃଫଳ କାମନା, ସାର
ବା ମୌଳିକ ଆକାର.(ଗ୍ରା.ବି) ଶେଷ-
ଫଳ, ମାରିବାର ପୂର୍ବଲକ୍ଷଣ, ( ବି° )
ନିଶ୍ଚୟ, ନିଃସନ୍ଦେହ । [ କାଳ ।
**ନିଦାନକାଳ**—ଗ୍ରା.ବି. ମୃତ୍ୟୁସମୟ,ଅନ୍ତିମ-
**ନିଦାନସଙ୍କଟ**—ବି. ରୋଗର ମାରାତ୍ମକ
ଅବସ୍ଥା ।
**ନିଦାନସ୍ଥାନ**—ବି. ଆର୍ଯ୍ୟଚିକିତ୍ସା ଶାସ୍ତ୍ର-
ବର୍ଣ୍ଣିତ ଆଠଟି ଶାଖା ମଧ୍ୟରୁ ଏକତମ
ରୋଗର କାରଣ ସମ୍ବନ୍ଧୀୟ ବିଷୟ ।
**ନିଦାନୁଆ**—ଗ୍ରା.ବି°. ଅକାମିକା,ଅବ୍ୟବ-
ହାର୍ଯ୍ୟ ।
**ନିଦାବିଷ୍ଣୁ**—ଗ୍ରା. ବି. (ଓଡ଼ିଆ ନୃସିଂହ
ପୁରାଣ ବର୍ଣ୍ଣିତ) ପ୍ରକୃତରେ ବିଷ୍ଣୁ ନ
ହୋଇ ଆପଣାକୁ ବିଷ୍ଣୁଙ୍କ ଅବତାର
ବୋଲି ପରିଚୟ ଦେଉଥିବା ଜଣେ
ବ୍ୟକ୍ତି, ଧର୍ମବଞ୍ଚକ, ବିରାଡ଼ିବେଇଷମ,ଅଳ-
ଧୁଆ ବ୍ୟକ୍ତି ।
**ନିଦମୂର୍ଖ**—ଗ୍ରା. ବି°. ଗଜମୂର୍ଖ, ନିରଟ-
ମୂର୍ଖ, ଯେ ଅକ୍ଷର ବିବର୍ଜିତ (ବ୍ୟକ୍ତି) ।
**ନିଦାରୁଣ**—ବି°. ( ନି+ଦାରୁଣ ) ଅତି
ଦାରୁଣ, ଭୟାନକ, କଠିନ, ନିର୍ଦ୍ଦୟ,
ଦୁଃସହ, ଅସହ୍ୟ ।
**ନିଦିଗ୍ଧ**—ବି°. ( ନି+ଦିହ+ମି.ତ )
ଲେପାଦି ଦ୍ୱାରା ବର୍ଦ୍ଧିତ, ଲେପିତ,
ବୋଳାହୋଇଥିବା, ଉପଚିତ, ଗଦା-
କରାଯାଇଥିବା, ସ୍ତୂପୀକୃତ ।
**ନିଦିଗ୍ଧା**—ସ୍ତ୍ରୀ. ବି. ( ନି+ଦିଗ୍ଧ+ଆ )
ଏଲା,ଅଲେଇଚ, (ସ୍ତ୍ରୀ.ବି°) ଲେପିତା,
ଉପଚିତା ।
**ନିଦିଗ୍ଧିକା**—ସ୍ତ୍ରୀ. ବି. (ନିଦିଗ୍ଧା+କ.ଆ)
ଅଲେଇଚ, କଣ୍ଟକାରୀ, ଅଙ୍କରାନ୍ତୀ ।
**ନିଦିଦ୍ରାସୁ**—ବି°.(ନି+ଦ୍ରା+ସନ୍. ଉ)
ଶୋଇବାକୁ ଇଚ୍ଛୁକ ।
**ନିଦିଧ୍ୟାସ(ନ)**—କ୍ଲୀ. ବି. (ନି+ଧ୍ୟୈ+
ସନ୍+ଭା.ଅ.ଅନ) ପୁନଃପୁନଃ ସ୍ମରଣ,
ପ୍ରଗାଢ଼ ଭାବରେ ଧାରାବାହିକ ଚିନ୍ତା,
ଏକାଗ୍ର ଗଭୀର ଧ୍ୟାନ, ନିରନ୍ତର ବିଚାର,
ସତତଚିନ୍ତନ ।
**ନିଦିଧ୍ୟାସୁ**—ବି°. (ନି+ଧ୍ୟୈ+ସନ୍.କ.
ଉ) ପୁନଃପୁନଃ ସ୍ମରଣେଚ୍ଛୁ,ଗାଢ଼ଚିନ୍ତା
କରିବାକୁ ଇଚ୍ଛୁକ ।
**ନିଦିଷ୍ଟ**—ବି°.(ନି+ଦିଶ୍+ମି.ତ)ଆଦିଷ୍ଟ,
ନିର୍ଦ୍ଦେଶିତ, କଥିତ, ନିରୂପିତ,ଉପଦିଷ୍ଟ,
ପ୍ରଦର୍ଶିତ, ନିଦର୍ଶିତ ।
**ନିଦେଶ**—ପୁଂ. ବି. (ନି+ଦିଶ୍+ଭା.ଅ)
ଶାସନ,ଆଦେଶ,ଆଜ୍ଞା,କଥନ,ନୈକଟ୍ୟ,
ଭାଜନ, ପାତ୍ର, ଅନୁମତି, ଉପଦେଶ,
ଅନୁରୋଧ, ବର୍ଣ୍ଣନ ।
**ନିଦେଶକାରକ**—ପୁଂ. ବି°. (ନିଦେଶ
+କୃ+କ.ଅକ)ଯେ ଆଜ୍ଞାଦିଏ,ନିର୍ଦ୍ଦେ-
ଶକ ।
**ନିଦେଶକାରୀ**—ପୁଂ. ବି°. ଆଜ୍ଞାନୁବର୍ତ୍ତୀ,
ଆଜ୍ଞାବହ ।
**ନିଦେଶବର୍ତ୍ତୀ**—ପୁଂ. ବି°. (ନିଦେଶ+
ବୃତ+କ.ଇନ୍) ଆଦେଶାନୁବର୍ତ୍ତୀ,
ଆଜ୍ଞାକାରୀ(ଭୃତ୍ୟ), (ସ୍ତ୍ରୀ)—ବର୍ତ୍ତିନୀ ।

ନିଦେଶିନୀ—ସ୍ତ୍ରୀ. ବ. (ନିଦେଶ+ଇନ୍ ଈ) ଦିକ୍, ଦିଗ, ଦେଶାଂଶ, ଅଞ୍ଚଳ ।
ନିଦେଶୀ—ପୁଂ.ବିଂ. (ନି+ଦିଶି+ଇନ୍) ଆଜ୍ଞାକାରକ, (ସ୍ତ୍ରୀ) ନିଦେଶିନୀ, କାଷ୍ଠା, ଦିଗ ।
ନିଦେଶ୍ୟ—ବିଂ. ( ନି+ଦିଶ୍+ର୍ମ.ଯ ) ଆଦେଶଯୋଗ୍ୟ(ବସ୍ତୁ ବା ବ୍ୟକ୍ତି) ।
ନିଦେଷ୍ଟା—ପୁଂ. ବିଂ. (ନି+ଦିଶ୍+କ.ତୃ) ନିଦେଶକର୍ତ୍ତା, ଆଦେଶକର୍ତ୍ତା, ଯେ ଆଜ୍ଞାଦିଏ, ଯେ ଦେଖାଇଦିଏ ।
ନିଦ୍ରା—ସ୍ତ୍ରୀ. ବ. (ନିଦ୍ରା+ଭା.ଅ) ସ୍ୱପ୍ନ. ନିଦ, ଶୟନ, ସୁପ୍ତି, ଆଳସ୍ୟ ।
ନିଦ୍ରାକର—ବିଂ. (ନି+କୃ+ଅ) ନିଦ୍ରାକାରକ, ନିଦ୍ରାଜନକ, ଯେଉଁ ପଦାର୍ଥ ବା କାର୍ଯ୍ୟଦ୍ୱାରା ନିଦମାଡ଼େ ।
ନିଦ୍ରାକର୍ଷଣ—କ୍ଳୀ. ବ. (୬ତତ୍) ନିଦ୍ରାର ଆକର୍ଷଣ, ନିଦ୍ରାଳୁତା, ନିଦମାଡିବା ।
ନିଦ୍ରାକାରକ—ବିଂ. ନିଦ୍ରାକର, ଯେଉଁ ପଦାର୍ଥ ବା କାର୍ଯ୍ୟଦ୍ୱାରା ନିଦମାଡ଼େ ।
ନିଦ୍ରାକାରୀ—ପୁଂ. ବିଂ. (ନିଦ୍ରାକର+ଇନ୍) ନିଦ୍ରାକାରକ ଦେଖ ।
ନିଦ୍ରାକାଳ—ପୁଂ.ବ. (୬ତତ୍) ଶୋଇବା ସମୟ, ଶୟନକାଳ ।
ନିଦ୍ରାକୁଳ—ପୁଂ. ବିଂ. (୩ତତ୍) ନିଦ୍ରାତୁର,ନିଦ୍ରାପୀଡ଼ିତ,ନିଦ୍ରାଯୋଗୁଁ ବ୍ୟସ୍ତ ।
ନିଦ୍ରାକୃଷ୍ଟ—ପୁଂ. ବିଂ. (୩ତତ୍) ଯାହାକୁ ନିଦ ବ୍ୟସ୍ତକରଅଛି, ଆଗତନିଦ୍ରା ।
ନିଦ୍ରାକ୍ରାନ୍ତ—ପୁଂ. ବିଂ. ନିଦ୍ରାକୁଳ,ନିଦ୍ରାତୁର ।
ନିଦ୍ରାଗତ—ବିଂ. (୨ତତ୍) ନିଦ୍ରିତ.ସୁପ୍ତ, ଯେ ଶୋଇଅଛି, (ସ୍ତ୍ରୀ) ନିଦ୍ରାଗତା ।
ନିଦ୍ରାଗମ—ବ. (୬ତତ୍) ନିଦମାଡ଼ିବା ଅବସ୍ଥା, ଶୋଇବାବେଳ ।
ନିଦ୍ରାଗାର—ପୁଂ.ବ. (କ.ଧା) ନିଦ୍ରା ଗୃହ, ଶୋଇବାଘର, ଶୟନକକ୍ଷ ।
ନିଦ୍ରାଗ୍ରସ୍ତ—ପୁଂ.ବିଂ. (୩ତତ୍) ନିଦ୍ରାକୁଳ ଦେଖ, ନିଦ୍ରାଗତ ଦେଖ ।
ନିଦ୍ରାଜନକ—ବିଂ. ନିଦ୍ରାକର, ସୁପ୍ତିଜନକ ।
ନିଦ୍ରାଣ—ବିଂ. (ନି+ଦ୍ରା+କ.ତ)ନିଦ୍ରିତ. ସୁପ୍ତ, ଅଳସ,ନିମୀଳିତ,ଘୁମାଉଥିବା ।
ନିଦ୍ରାତୁର—ପୁଂ. ବିଂ. (୩ତତ୍) ନିଦ୍ରାକୁଳ ଦେଖ ।
ନିଦ୍ରାଦରିଦ୍ର—ପୁଂ. ବ. (୬ତତ୍) ନିଦ୍ରାର ଅଭାବ, ନିଦ୍ରା ନ ହେବା, (ବିଂ) ଯେ ଶୋଇ ନ ପାରିବାରୁ କ୍ଲିଷ୍ଟହୋଇଥାଏ ।
ନିଦ୍ରାନ୍ୱିତ—ପୁଂ. ବିଂ. (୩ତତ୍) ନିଦ୍ରିତ, ନିଦ୍ରାଗତ ଦେଖ ।
ନିଦ୍ରାପଦ—ବ. (୬ତତ୍) ନିଦ୍ରାବସ୍ଥା ।
ନିଦ୍ରାପ୍ରିୟ—ପୁଂ. ବିଂ. ( ବ ବ୍ରୀ ) ଯେ ଶୋଇବାକୁ ସୁଖପାଏ ।
ନିଦ୍ରାଭଙ୍ଗ—କ୍ଳୀ. ବ. ( ୬ତତ୍ ) ନିଦଭାଙ୍ଗିବା, ଜାଗରଣ, ନିଦ୍ରାରେ ବାଧା, (ବିଂ-ବ.ବ୍ରୀ)ଜାଗରିତ, ଅସୁପ୍ତ,ପ୍ରବୋଧିତ ।
ନିଦ୍ରାଭଞ୍ଜନ—ବ. କୌଣସି ବ୍ୟକ୍ତିକୁ ନିଦ୍ରାରୁ ଉଠାଇବା ।
ନିଦ୍ରାଭାବ—ପୁଂ. ବ. (୬ତତ୍) ନିଦ୍ରାର ଅଭାବ. ଜାଗରଣ,ଯୋଗନିଦ୍ରା.ଅନିଦ୍ରା ।
ନିଦ୍ରାଭିଭୂତ—ପୁଂ.ବିଂ. (୩ତତ୍) ନିଦ୍ରାଗତ ଦେଖ ।
ନିଦ୍ରାମଗ୍ନ—ପୁଂ.ବିଂ. (୭ତତ୍) ନିଦ୍ରାରେ ଅଭିଭୂତ । [ତନ୍ଦ୍ରା ।
ନିଦ୍ରାଯୋଗ—ପୁଂ.ବ.ନିଦ୍ରା ଏବଂ ଯୋଗର-
ନିଦ୍ରାଳସ—ପୁଂ.ବିଂ ନିଦମାଡ଼ିବା ଯୋଗୁଁ ଅଳସ, ଘୋରନିଦ୍ରାଭିଭୂତ ।
ନିଦ୍ରାଳୁ—ସ୍ତ୍ରୀ. ବ. ( ନିଦ୍ରା+ଆଳୁ ) ବାର୍ତ୍ତାକୀ, ବନବର୍ବରିକା, ନଳୀନାମକ ଗନ୍ଧଦ୍ରବ୍ୟ, ଏକପ୍ରକାର ବନ ତୁଳସୀ ଗଛ, (ପୁଂ.ବିଂ)ନିଦ୍ରାବିଷ୍ଟ,ଯେ ଶୋଇଅଛି, ନିଦ୍ରାଶୀଳ, ନିଦ୍ରାଯୁକ୍ତ, ଘୁମା, ଅଳସୁଆ । [ଦେଖ ।
ନିଦ୍ରାବତୀ—ସ୍ତ୍ରୀ. ବ. ନିଦ୍ରାର ଅଧିଷ୍ଠାତ୍ରୀ
ନିଦ୍ରାବସ୍ଥା—ସ୍ତ୍ରୀ. ବ. (୬ତତ୍) ନିଦ୍ରିତ ଅବସ୍ଥା, ଶୋଇବା ଅବସ୍ଥା ।
ନିଦ୍ରାବିମୁଖ—ପୁଂ.ବିଂ. (୭ତତ୍) ଉନ୍ନିଦ୍ର. ଜାଗରୁକ, ଅନିଦ୍ର ।
ନିଦ୍ରାବିରହିତ—ବିଂ. (୩ତତ୍)ନିଦ୍ରାଶୂନ୍ୟ
ନିଦ୍ରାବିଷ୍ଟ—ପୁଂ. ବିଂ. (୩ତତ୍) ନିଦ୍ରାଗତ ଦେଖ ।
ନିଦ୍ରାବୃକ୍ଷ—ପୁଂ.ବ. (୬ତତ୍) ଅନ୍ଧକାର ।
ନିଦ୍ରାବେଶ—ପୁଂ. ବ. (୬ତତ୍) ନିଦ୍ରାର ଉପକ୍ରମ ବା ଇଚ୍ଛା,ନିଦମାଡ଼ିବା,ଶୋଇପଡ଼ିବା । [ଘର ।
ନିଦ୍ରାଶାଳା—ସ୍ତ୍ରୀ.ବ. ନିଦ୍ରାଗୃହ,ଶୋଇବା-
ନିଦ୍ରାଶୀଳ—ପୁଂ. ବିଂ. (ବ.ବ୍ରୀ) ନିଦ୍ରାଳୁ, ଯେ ଅଧିକାଂଶ ସମୟ ଶୁଏ ।
ନିଦ୍ରାସଂଜନ—କ୍ଳୀ. ବ. (ନିଦ୍ରା+ସମ୍+ଜନ+ଣିଚ୍+କ.ଅ) ଶ୍ଳେଷ୍ମା, କଫ ।
ନିଦ୍ରିତ—ପୁଂ.ବିଂ. (ନିଦ୍ରା+ଇତ) ନିଦ୍ରାଗତ, ସୁପ୍ତ, ଶୋଇଥିବା,ଘୁମାଉଥିବା ।
ନିଦ୍ରୋତ୍ଥିତ—ବିଂ. (୫ତତ୍) ଯେ ନିଦ୍ରାରୁ ଉଠିଅଛି, ଜାଗରିତ ।
ନିଧଡ଼କ—ଗ୍ରା. ବିଂ.ବେଧଡ଼କ, ନିର୍ଭୟ, ନିଃଶଙ୍କ, ନିଶ୍ଚିନ୍ତ, ବେପରୁଆ, ନିଃସନ୍ଦେହ, ଆଶଙ୍କାହୀନ, ଅପ୍ରତିବନ୍ଧ, (ବ) ଭୟହୀନତା, (କ୍ରି. ବିଂ) ନିର୍ଭୟ ଭାବରେ ।
ନିଧନ—ପୁଂ.କ୍ଳୀ.ବ.(ନି+ଧନ+ଭା.ଅ) ମୃତ୍ୟୁ, ମରଣ, ଶେଷ, ବିନାଶ, ଲଗ୍ନର ଅଷ୍ଟମସ୍ଥାନ, କୁଳର ପ୍ରଧାନବ୍ୟକ୍ତି, ବିଷ୍ଣୁ, ସ୍ୱୀୟଜନ୍ମ ନକ୍ଷତ୍ରଠାରୁ ସପ୍ତମ, ଷୋଡ଼ଶ, ତ୍ରୟୋବିଂଶତି ନକ୍ଷତ୍ର,କୁଳ, ପାଞ୍ଚ ବା ସାତ ଅବୟବ ଯୁକ୍ତ ସାମର ଅନ୍ତିମ ଅବୟବ(ବିଂ.(ନି+ଧନ)ବ.ବ୍ରୀ; ଦରିଦ୍ର,(ପ୍ରା—ଯ କପୁର-ବିଂ) ନିଦା, ଯାହା ଫମ୍ପା ନୁହେ ।
ନିଧନକାମ—କ୍ଳୀ. ବ. ସାମଭେଦ ।
ନିଧନକ୍ରିୟା—ସ୍ତ୍ରୀ. ବ. (୬ତତ୍) ମୃତ ବ୍ୟକ୍ତିର ସତ୍କାର, ଅନ୍ତ୍ୟେଷ୍ଟି କ୍ରିୟା ।
ନିଧନତା—ସ୍ତ୍ରୀ. ବ. ( ନି+ଧନ+ତ+ଆ) ଧନରହିତତ୍ୱ, ଦାରିଦ୍ର୍ୟ ।
ନିଧନତାରା—ବ. ଜନ୍ମଲଗ୍ନଠାରୁ ସପ୍ତମ ସ୍ଥାନରେ ଥିବା ତାରା, ବଧତାରା ।
ନିଧନାଧିପତି—ବ.ମନୁଷ୍ୟର ଜନ୍ମଲଗ୍ନଠାରୁ ଅଷ୍ଟମସ୍ଥାନରେ ଥିବା ଗ୍ରହ ଓ ଅଷ୍ଟମସ୍ଥାନର ଅଧିପତି ।

ନିଧନପତି—ପୁଂ. ବି. ଶିବ, ମହାଦେବ
ନିଧନବାନ୍—ପୁଂ. ବିଂ. (ନିଧନ+ବତ୍) ମରଣଯୁକ୍ତ, ମୃତ୍ୟୁଗ୍ରସ୍ତ।
ନିଧା—ସ୍ତ୍ରୀ. ବି. (ନି+ଧା+ଅ) ପାଶସମୂହ ନିଧାନ, ଅର୍ପଣ। [ ସ୍ଥାପନୀୟ
ନିଧାତବ୍ୟ - ବିଂ. (ନି+ଧା+ତବ୍ୟ)
ନିଧାନ—କ୍ଲୀ. ବି. (ନି+ଧା+ର୍ମି.ଅନ) ନିଧି, ଭୂଗର୍ଭସ୍ଥ ଅସ୍ୱାମିକ ଧନରତ୍ନାଦି, କୁବେରଙ୍କ ସମ୍ପତ୍ତିବିଶେଷ, (ଅଧି. ଅନ) ଆଧାର, ଆଶ୍ରୟ, ଲୟସ୍ଥାନ, ଅବକାଶ, ପାତ୍ର; (ଭା.ଅନ) ସ୍ଥାପନ, ଅର୍ପଣ, ତିରୋଧାନ, ରକ୍ଷଣ।
ନିଧାନୀ—ବିଂ. (ନିଧାନ+ଇନ୍) ଯହିଁ ମଧ୍ୟରେ କୌଣସି ବସ୍ତୁ ଥାଏ. (ଗ୍ରା. ସ୍ତ୍ରୀ. ବିଂ.) ବହନ ବା ଧାରଣ କରୁଥିବା ସ୍ତ୍ରୀ।
ନିଧାନ୍ୟ—ବିଂ. (ନିଧାନ+ର୍ମି.ଯ) ରଖାଯିବାର ଯୋଗ୍ୟ।
ନିଧାର୍ଯ୍ୟ—ଗ୍ରା. ବିଂ. ନିର୍ଦ୍ଧାର୍ଯ୍ୟ ଦେଖ।
ନିଧି—ପୁଂ. ବି. (ନି+ଧା+ର୍ମି.ଇ) ନଳୀନାମକ ଗନ୍ଧଦ୍ରବ୍ୟ, ଧନ, ସମ୍ପତ୍ତି, ବହୁମୂଲ୍ୟ ଦ୍ରବ୍ୟ, ସମୁଦ୍ର, ଜୀବନୌଷଧି, ମହାଦେବ, ମାଡ଼, ପକ୍ଷୀର ବସା, ଗଚ୍ଛିତ ବସ୍ତୁ, ବଣିକ, କୁବେରଙ୍କର ନଅପ୍ରକାର ରତ୍ନ, (ଯଥା:—ପଦ୍ମ, ମହାପଦ୍ମ, ଶଙ୍ଖ, ମକର, କଚ୍ଛପ, ମୁକୁନ୍ଦ, କୁନ୍ଦ, ନୀଳ, ଓ ବର୍ଚ୍ଚ), (ଅଧି.ଇ) ଆଧାର, ଭଣ୍ଡାର, (ଗ୍ରା.ବି) ନିଧି ପରିପ୍ରିୟତମ ବ୍ୟକ୍ତି।
ନିଧିଗୋପ—ବି. (ନିଧି+ଗୁପ୍+କ.ଅ) ଧନରକ୍ଷକ, କୁବେର।
ନିଧିନାଥ—ପୁଂ. ବି. (୬ତତ୍) କୁବେର
ନିଧିନିଖାତ—ଗ୍ରା. ବି. କୌଣସି ଜମିର ଗର୍ଭରେ ଥିବା ଧନ, ଗୁପ୍ତଧନ, ପ୍ରୋଥିତ ଧନ ରତ୍ନାଦି।
ନିଧିପ—ପୁଂ. ବି. (ନିଧି+ପା+ଅ) ଧନେଶ୍ୱର, କୁବେର। [ କୁବେର
ନିଧିପତି—ପୁଂ. ବି.(ନିଧି+ପତି)୬ତତ୍;
ନିଧିପା—ପୁଂ. ବି, (ନିଧି+ପା) ଯକ୍ଷାଧିପତି, କୁବେର।
ନିଧିପାଳ—ପୁଂ.ବି. ଯକ୍ଷେଶ୍ୱର, କୁବେର

ନିଧିମାନ୍—ପୁଂ. ବିଂ. (ନିଧି+ମତ୍) ଧନେଶ୍ୱର, ଧନୀ।
ନିଧିରଥ—ଗ୍ରା. ପୁଂ. ବି. ଜଣେକ ଉତ୍କଳୀୟ ପ୍ରାଚୀନ କବି।
ନିଧୀୟମାନ—ବି. (ନି+ଧା+ର୍ମି.ମାନ) ସ୍ଥାପ୍ୟମାନ, ଯାହା ଗଚ୍ଛିତରଖାଯାଇ ଅଛି
ନିଧୀଶ—ବି. (୬ତତ୍) କୁବେର।
ନିଧୀଶ୍ୱର—ପୁଂ. ବି. (୬ତତ୍) କୁବେର।
ନିଧୁବନ—କ୍ଲୀ. ବି. (ନି+ଧୁବନ) ରତିକ୍ରୀଡ଼ା, ମୈଥୁନ, ବିଳାସ, ଆଲିଙ୍ଗନ, ନର୍ମ, କେଳି, କୌତୁକ, ହସ, କମ୍ପନ, ବୃନ୍ଦାବନଧାମରେ ସ୍ଥିତ ଉଦ୍ୟାନବିଶେଷ।
ନିଧୃତ—ପୁଂ. ବି. ବୃଷ୍ଣିପୁତ୍ରବିଶେଷ।
ନିଧେୟ—ବିଂ. (ନି+ଧା+ର୍ମି.ଯ) ଗଚ୍ଛିତ ରଖିବାର ଯୋଗ୍ୟ, ସ୍ଥାପ୍ୟ, ସ୍ଥାପନୀୟ, (ସ୍ତ୍ରୀ) ନିଧେୟା।
ନିଧ୍ୟାତ—ବିଂ. (ନି+ଧ୍ୟୈ+ର୍ମି.ତ) ଅବଲୋକିତ, ଧ୍ୟାତ।
ନିଧ୍ୟାନ—କ୍ଲୀ. ବି. (ନି+ଧ୍ୟୈ+ଭା.ଅନ) ନିବର୍ଣ୍ଣନ, ଦର୍ଶନ, ଅବଲୋକନ, ଈଶ୍ୱରଧ୍ୟାନ। [ ଋଷିବିଶେଷ
ନିଧ୍ରୁବ—ପୁଂ. ବି. ଗୋତ୍ରପ୍ରବର୍ତ୍ତକ
ନିଧ୍ରୁବ—ବିଂ. ସ୍ଥିରତାଯୁକ୍ତ ସ୍ଥୈର୍ଯ୍ୟାନ୍ୱିତ।
ନିଧ୍ୱନ—ପୁଂ.ବି. (ନି+ଧ୍ୱନ୍+ଭା.ଅ) ଶବ୍ଦମାତ୍ର, ଧ୍ୱନି।
ନିନଙ୍କ୍ଷୁ—ବିଂ. (ନଶ୍+ସନ୍+ଉ) ନଷ୍ଟ କରିବାକୁ ଇଚ୍ଛୁକ, ଅଦର୍ଶନ କରିବାକୁ ଇଚ୍ଛୁକ।
ନିନଦ—ପୁଂ.ବି. (ନି+ନଦ୍+ଭା.ଅ) ଶବ୍ଦ, ଗୁଣୁଗୁଣୁ ଶବ୍ଦ, ଗର୍ଜନ, ଗୋଳମାଳ। [ ଯାଇଥିବା
ନିନଦ୍ଧ—ବିଂ.(ନି+ନହ+ର୍ମି.ତ) ବନ୍ଧା-
ନିନୟ—ବି. (ନି+ନୀ+ଭା.ଅ) ନମ୍ରତା।
ନିନୟନ—କ୍ଲୀ. ବି. (ନି+ନୀ+ଭା.ଅନ) ନିଷ୍ପାଦନ, ପରିଷେଚନ, ଅନାହୂତା, ପ୍ରଣୀତାର ଜଳକୁ କୁଶଦ୍ୱାରା ଯଜ୍ଞବେଦୀ ଉପରେ ଛାଞ୍ଚିବା କର୍ମ।

ନିନତ୍ତିଶତ୍ରୁ— ପୁଂ. ବି. ଦେବଶ୍ରବା ଉଦ୍ଧବଙ୍କର ପୁତ୍ରବିଶେଷ
ନିନର୍ଦ୍ଦ—ପୁଂ.ବି. (ନି+ନର୍ଦ୍ଦ+ଭା.ଅ) ବେଦପାଠର ଉଚ୍ଚାରଣବିଶେଷ।
ନିନାଦ—ପୁଂ. ବି. (ନି+ନଦ୍+ଭା.ଅ) ନିନଦ ଦେଖ।
ନିନାଦିତ—ତ୍ରି.ବିଂ. (ନି+ନଦ୍+ଣିଚ୍+ର୍ମି.ତ) ଶବ୍ଦିତ, ଧ୍ୱନିତ, ମୁଖରିତ, ଶବ୍ଦପୂର୍ଣ୍ଣ, ବାଦିତ।
ନିନାଦୀ—ପୁଂ.ବିଂ. (ନି+ନଦ୍+କ.ଇନ୍) ନିନାଦକାରୀ, ବାଦ୍ୟ ବଜାଉଥିବା, ଶବ୍ଦକାରୀ, କାନ୍ଦୁଥିବା।
ନିନାହ୍ୟ—ପୁଂ.ବି. (ନି+ନହ୍+ଯ) ଭୂମିରେ ଖନନୀୟ ମଣିକ, ମହାଘଟ।
ନିନିତ୍ସୁ—ପୁଂ.ବି. (ନିନ୍ଦ+ସନ୍.ଉ) ନିନ୍ଦା କରିବାକୁ ଇଚ୍ଛୁକ।
ନିନୀଷା—ସ୍ତ୍ରୀ. ବି. (ନୀ+ସନ୍+ଭା.ଅ+ଆ) ଗ୍ରହଣେଚ୍ଛା, ଏକସ୍ଥାନରୁ ଅନ୍ୟ ସ୍ଥାନକୁ ନେବାର ଇଚ୍ଛା।
ନିନୀଷୁ—ବିଂ. (ନୀ+ସନ୍+କ.ଉ) ଗ୍ରହଣେଚ୍ଛୁ, ନେବାକୁ ଅଭିଳାଷୀ।
ନିନ୍ଦକ—ପୁଂ. ବିଂ. (ନିନ୍ଦ+କ.ଅକ) ନିନ୍ଦାକାରୀ, ଅପବାଦକ, ଭର୍ତ୍ସନାକାରୀ।
ନିନ୍ଦତଳ—ବିଂ. (ବ.ବ୍ରୀ) ନିନ୍ଦିତହସ୍ତ।
ନିନ୍ଦନ—କ୍ଲୀ.ବି. (ନିନ୍ଦ+ଭା.ଅନ) ନିନ୍ଦା, ଅପବାଦ, କୁତ୍ସାକରିବା, ଭର୍ତ୍ସନା।
ନିନ୍ଦନୀୟ- ବିଂ. (ନିନ୍ଦ+ର୍ମି.ଅନୀୟ) ଅପବାଦଜନକ, ଘୃଣ୍ୟ, ଅପ୍ରଶଂସ୍ୟ, ଗର୍ହ୍ୟ, ପରିଭାଷଣୀୟ, ନିନ୍ଦ୍ୟ।
ନିନ୍ଦା—ବି. (ନିନ୍ଦ+ଭା.ଅ+ଆ) ଅପବାଦ, କୁତ୍ସିତ ଦୁର୍ନାମ, ଗାଳି, ଭର୍ତ୍ସନା, ଦୋଷଦେବା।
ନିନ୍ଦାକର—ପୁଂ.ବିଂ. (ନିନ୍ଦା+କୃ+ର୍ମି.ଅ) ଅପବାଦକ, ପରିବାଦକ, ଯେ ନିନ୍ଦାକରେ, ଘୃଣାକର।
ନିନ୍ଦାନ୍ୱିତ—ବିଂ. (ନିନ୍ଦା+ଅନ୍ୱିତ) ୩ତତ୍; ନିନ୍ଦାଯୁକ୍ତ, ନିନ୍ଦିତ।
ନିନ୍ଦାବାଦ—ବି. (ନିନ୍ଦା+ବଦ୍+ଭା.ଅ) ନିନ୍ଦନ, କୁତ୍ସା, ନିନ୍ଦାକରିବା।

ନିନ୍ଦାବାଦାର୍ଥ—ବି. ମୀମାଂସକମାନଙ୍କର ମତରେ ଅର୍ଥବାଦବିଶେଷ ।

ନିନ୍ଦାର୍ହ—ବିଂ. (ନିନ୍ଦା+ଅର୍ହ) ୭ତତ୍; ନିନ୍ଦନୀୟ, ନିନ୍ଦାର ଯୋଗ୍ୟ, ନିନ୍ଦ୍ୟ ।

ନିନ୍ଦାସୂଚକ—ବିଂ. (୬ତତ୍)କୁତ୍ସାଜ୍ଞାପକ, ନିନ୍ଦାମୂଳକ ।

ନିନ୍ଦାସ୍ତୁତି—ସ୍ତ୍ରୀ.ବି. ବ୍ୟାଜସ୍ତୁତି, କାବ୍ୟାଲଙ୍କାରବିଶେଷ ।

ନିନ୍ଦିତ—ବିଂ. (ନିନ୍ଦ+ର୍ମ.କ୍ତ)ନିନ୍ଦାଯୁକ୍ତ, ଅନୁଚିତ, ଗର୍ହିତ, ତିରସ୍କୃତ, ନୀଚ, ମନ୍ଦ, ଘୃଣିତ, ନିଷିଦ୍ଧ, ଯାହାକୁ ନିନ୍ଦା କରାଯାଏ ।

ନିନ୍ଦିତବ୍ୟ—କ୍ଲୀ.ବିଂ. (ନିନ୍ଦ+ର୍ମ.ତବ୍ୟ) ନିନ୍ଦନୀୟ, (ସ୍ତ୍ରୀ) ନିନ୍ଦିତବ୍ୟା ।

ନିନ୍ଦିତା—ପୁଂ.ବିଂ.(ନିନ୍ଦ+କ.ତୃ) ନିନ୍ଦାକାରକ, ଦୂଷକ ।

ନିନ୍ଦୁ—ସ୍ତ୍ରୀ.ବି. (ନିନ୍ଦ+ର୍ମ.ଉ)ମୃତବତ୍ସା ସ୍ତ୍ରୀ. (ବିଂ) (ନିନ୍ଦ+କ.ଉ) ନିନ୍ଦକ ବା ନିନ୍ଦୁକ ।

ନିନ୍ଦୁକ—ପୁଂ. ବିଂ. ( ନିନ୍ଦ+କ.ଉକ ) ନିନ୍ଦାକାରୀ,ନିନ୍ଦା କରିବା ଯାହାର ସ୍ୱଭାବ

ନିନ୍ଦ୍ୟ—ବିଂ. (ନିନ୍ଦ+ର୍ମ.ଯ) ନିନ୍ଦନୀୟ, ଦୂଷିତ, ଗର୍ହିତ, ଅନୁଚିତ ।

ନିପ—ବି. (ନି+ପା+କ.ଅ) କଲସ, ଘଟ, ମାଠିଆ, କଦମ୍ବଗଛ ।

ନିପଟ—ଗ୍ରା. ଅବ୍ୟ. (ସଂ-ନିତାନ୍ତ) ନିତାନ୍ତ, ଅତ୍ୟନ୍ତ,ଅତିଶୟ, ସମ୍ପୂର୍ଣ୍ଣରୂପେ, ସମ୍ୟକ୍‌ରୂପେ, ସ୍ପଷ୍ଟରୂପେ ନି.ଷ୍ଟ. କେବଳମାତ୍ର.ଶୁଦ୍ଧା,କେବେହେଁ ଆଦୌ, ପ୍ରକୃତରେ. ସତ ।

ନିପଟୁ—ଗ୍ରା.ବିଂ. ଅକର୍ମଣ୍ୟ, ଅଯୋଗ୍ୟ, ଅଳସୁଆ ।

ନିପଠ—ବି. (ନି+ପଠ୍+ଭା.ଅ) ଅଧ୍ୟୟନ, ପାଠ, ଆବୃତ୍ତି ।

ନିପଠିତ—ବିଂ. (ନି+ପଠିତ) ପଠିତ. ଅଧୀତ, ଆବୃତ୍ତ, ବି. (ଭା.କ୍ତ)ଅଧ୍ୟୟନ, ପଢ଼ିବା ।

ନିପତ—ବି. (ନି+ପତ୍+ଭା.ଅ) ମୃତ୍ୟୁ, ବିନାଶ, ଧ୍ୱଂସ ।

ନିପତନ—ବି. (ନି+ପତ୍+ଭା. ଅନ) ତଳକୁ ପଡ଼ିବା, ଅଧଃପତନ, କ୍ଷୟ ।

ନିପତିତ—ବିଂ. (ନି+ପତିତ) ବିଧ୍ୱସ୍ତ, ତଳକୁ ଯେଉଁପଡ଼ିଥିବା, ଅଧଃପତିତ, ସ୍ଥାନଚ୍ୟୁତ, ଭ୍ରଷ୍ଟ ।

ନିପତ୍ୟା—ସ୍ତ୍ରୀ. ବି. ( ନି+ପତ୍+ଅଧି. ଯ+ଆ)ଯୁଦ୍ଧଭୂମି, କର୍ଦ୍ଦମ, ପିଚ୍ଛିଳଭୂମି, ଖସଡ଼ାଭୂମି ।

ନିପଦ—ଗ୍ରା. ବିଂ. ପଦହୀନ, ନିଷ୍ପଦ ।

ନିପାକ—ବି. ( ନି+ପଚ୍+ଭା.ଅ ) ଅନ୍ନାଦି ପାକକରିବା, ପରିପକ୍ୱତା ।

ନିପାଣିଆଁ—ଗ୍ରା.ବିଂ. ନୀରସ, ନିସ୍ତେଜ, ନିର୍ଜଳ, ଜଳହୀନ, ରସହୀନ, ଯହିଁରୁ ଜଳୋଦ୍ଗମ ନ ହୁଏ ।

ନିପାତ—ବି. ( ନି+ପତ୍+ଭା.ଅ ) ମୃତ୍ୟୁ, ବିନାଶ,ଅଧଃପତନ,ଅବତରଣ, (ବ୍ୟାକରଣ) ନିପାତନ, ସାଧାରଣ ନିୟମର ବ୍ୟତିକ୍ରମ. ସମୂଳେ ବିନାଶ. ନିର୍ମୂଳ,ଲୋପ.ଆକ୍ରମଣ.ପତନ,ନିପାତନ

ନିପାତନ—କ୍ଲୀ. ବି. (ନି+ପତ୍+ଣିଚ୍ +ଭା.ଅନ) ନିର୍ମୂଳନ, ମୂଳୋଚ୍ଛେଦନ, କୌଣସି ବସ୍ତୁକୁ ତଳେ ପକାଇବା, ବିନାଶ ବା ଧ୍ୱଂସ କରଣ, ବଧ,ସଂହାର, (ବ୍ୟାକରଣ) ସାଧାରଣ ନିୟମର ବ୍ୟତିକ୍ରମ ।

ନିପାତନସିଦ୍ଧ—ବିଂ.(୩ତତ୍)ବ୍ୟାକରଣର ସାଧାରଣ ନିୟମଦ୍ୱାରା ଯାହା ନିଷ୍ପନ୍ନ ହୁଏ ନାହିଁ ।

ନିପାତନୀୟ—ବିଂ. ( ନିପାତ+ର୍ମ. ଅନୀୟ) ଧ୍ୱଂସନୀୟ ।

ନିପାତିତ—ବିଂ. ( ନିପାତ+ର୍ମ.କ୍ତ ) ଅଧୋନୀତ, ପାତିତ, ହତ, ବିନାଶିତ, ବ୍ୟତିକ୍ରାନ୍ତ ।

ନିପାତୀ—ପୁଂ. ବିଂ. ( ନି+ପତ୍+ଣିଚ୍+କ.ଣିନ୍ ) ଯେ ପକାଇଦିଏ, ମୂଳେ ଉତ୍ପାଟନକାରୀ.(ବି) ଶିବ ।

ନିପାନ—ବି. ( ନି+ପା+ଅଧି.ଅନ ) କୂପସମୀପରେ ପଶୁମାନଙ୍କ ଜଳପାନାର୍ଥ ନିର୍ମିତ କୁଣ୍ଡ, ପୋଖରୀ, କୂପ, କ୍ଷୁଦ୍ରଜଳାଧାର, ଭଉଁରିଛା, ଗ୍ରେଟଗଡ଼ିଆ, (ଅପା-ଅନ) ଗୋଦୋହନପାତ୍ର, ଦୁଧଦୁହାଁ ଠେକି, (ଭା.ଅନ) ପାନ ।

ନିପୀଡ଼କ—ପୁଂ. ବିଂ. (ନି+ପୀଡ଼+କ.ଅକ) ପୀଡ଼ାଦାୟକ,ଅତ୍ୟନ୍ତ କଷ୍ଟଦାୟକ, ଉତ୍ପୀଡ଼ନକାରୀ,ଯେ କୌଣସି ବସ୍ତୁକୁ ଚିପି ଜଳ ବା ରସ ବାହାର କରିଦିଏ ।

ନିପୀଡ଼ନ—ବି. (ନି+ପୀଡ+ଭା.ଅନ) ଦଳନ, ମର୍ଦ୍ଦନ, ଚିପିବା, ମଳିବା, ପେଲିବା, ଚିପୁଡ଼ିବା, ଅତ୍ୟାଚାର, ଅଭିବାଦନ, କଷ୍ଟଦେବା, ଆଲିଙ୍ଗନ ।

ନିପୀଡ଼ିତ—ବିଂ. ( ନି+ପୀଡ଼+ର୍ମ.କ୍ତ) ଦଳିତ, ମର୍ଦ୍ଦିତ,ଉତ୍ପୀଡ଼ିତ, ପୀଡ଼ାପ୍ରାପ୍ତ, ଆଲିଙ୍ଗିତ ।

ନିପୀତ—ବିଂ. ( ନି+ପା+ର୍ମ.କ୍ତ ) ନିଃଶେଷରୂପେ ପାନ କରାଯାଇଥିବା, ଉପଲବ୍ଧ, ଗ୍ରସ୍ତ ।

ନିପୁଣ—ପୁଂ. ବିଂ.(ନି+ପୁଣ+କ.ଅ) କୁଶଳ, ପଟୁ, ଦକ୍ଷ, କାର୍ଯ୍ୟକ୍ଷମ ।

ନିପୁଣତା—ବି. ( ନିପୁଣ+ତ+ଆ) ବିଚକ୍ଷଣତା, ନୈପୁଣ୍ୟ, ପଟୁତା ।

ନିପୁଣଦୃକ୍—ବିଂ. ( ନିପୁଣ+ଦୃଶ୍+କ. କ୍ୱିପ୍) କୃତଘ୍ନ ।

ନିପୁର—ପୁଂ. ବି. (ନି+ପୁର)(ଦର୍ଶନ) ଲିଙ୍ଗଶରୀର, ସୂକ୍ଷ୍ମଦେହ ।

ନି:ପ୍ରା:—ଗ୍ରା. ବିଂ. (ସାଙ୍କେତିକ) ନିମ୍ନପ୍ରାଥମିକ (ସ୍କୁଲ)ର ସାଙ୍କେତିକ ରୂପ ।

ନିଫଲା—ସ୍ତ୍ରୀ. ବି. (ବ.ଗ୍ରା) ଜ୍ୟୋତିଷ୍ମତୀ ଲତା, ଫୁଟିଫୁଟିକା ଲତା ।

ନିଫାଳନ—ବି. (ନି+ଫଲ+ଭା.ଅନ) ଦେଖିବା, ଦୃଷ୍ଟି, ଦେଖାଇବା ।

ନିଫେନ—କ୍ଲୀ. ବି. (ଦ.ଗ୍ରା) ଅଫେନ, ଅହିଫେନ, ଅଫିମ ।

ନିଭ—ପୁଂ. ବିଂ. ( ନି+ଭା. କ. ଅ) ତୁଲ୍ୟ, ସଦୃଶ, ସମାନ,ପର, (ବି.ଣ.ଅ) ପ୍ରକାଶ, ଚେହେରା, ଆଲୋକ, ତେଜ, କପଟ, ବ୍ୟାଜ, ଦୀପ୍ତି, ପ୍ରଭା ।

ନିଭା—ବିଂ. ତୁଲ୍ୟ ।

ନିଭ(ଭେ)ଇବା—ଗ୍ରା.କ୍ରି. (ସଂ-ନିର୍ବାପଣ) ନିଭିବା କ୍ରିୟାର ଣିଜନ୍ତରୂପ, (ପ୍ରଦୀପ ଅଗ୍ନି ଆଦି)ଲିଭାଇବା, ନିର୍ବାପଣ କରିବା, ପୋଛି ଅଦୃଶ୍ୟ କରିବା,(କାର୍ଯ୍ୟ)ନିର୍ବାହ କରିବା,ଅନୁଭବ କରିବା, ପାନ କରିବା, (ଲ.ଅର୍ଥ) ସୁନାମ ଲୋପ କରିବା ।

ନିଭାଳନ—ବି. (ନି+ଭାଳ+ଭା.ଅନ) ଦର୍ଶନ, ଅବଲୋକନ ।

ନିଭିବା—ଗ୍ରା. କ୍ରି. (ସଂ-ନିର୍ବାପଣ) ଲିଭିବା, ନିର୍ବାପିତ ହେବା, ପୋଛି ହେବା, ଅନ୍ତର୍ହିତ ହେବା, ଅଦୃଶ୍ୟ ହେବା, ଲୁଚିଯିବା, ନିର୍ବାହ ହେବା ।

ନିଭୂତ—ବିଂ. (ନି+ଭୂ+କ.ତ) ଅତୀତ, ଗତ, ପରୋକ୍ଷ, ଅନୁପସ୍ଥିତ, ବିନୀତ, ନିର୍ଜନ,ଗୁପ୍ତ,ପ୍ରଚ୍ଛନ୍ନ,ଅସ୍ତମିତ, ନିଶ୍ଚଳ ।

ନିଭୃତ—ବିଂ. (ନି+ଭୃ+ମିଂ.ତ) ଲୁକ୍କାୟିତ, ଗୁପ୍ତ, ବିରଳ, ନିର୍ଜନ, ବିନୀତ, ନମ୍ର, ଅପ୍ରକାଶିତ, ନିଶ୍ଚଳ, ଧୃତ, ସ୍ଥାପିତ, ବନ୍ଦ କରାଯାଇଥିବା, ନିଶ୍ଚିତ, ଅସ୍ତୋନ୍ମୁଖ, (ଗ୍ରା. କ୍ରି. ବିଂ) ନିର୍ଜନରେ,ଗୁପ୍ତଭାବରେ,ଗୋପନରେ

ନିମ୍‌ଆସ୍ତିନ୍—ଯା.ବି.କୁର୍ତ୍ତାର ଅଧାହାତ, ଫତେଇ, ଜାକେଟ ।

ନିମ—ଗ୍ର. ବି. ତିକ୍ତରସବିଶିଷ୍ଟ ବୃକ୍ଷବିଶେଷ, (ପୁଂ. ବି) ଶୋଳା, ଶଙ୍କୁ ।

ନିମକ—ଯା. ବି. ଲବଣ, ଲୁଣ(ଲ.ଅର୍ଥ) ଦାନାପାଣି, ଜୀବିକା, ଚାକିରି ।

ନିମକଦାନ୍—ଯା. ବି. ଲବଣପାତ୍ର ।

ନିମକମହଲ—ଯା. ବି. ଲବଣପ୍ରସ୍ତୁତର ପ୍ରଧାନ କାର୍ଯ୍ୟସ୍ଥାନ । [ଭୃତ୍ୟ) ।

ନିମକହଡ଼ା—ଯା.ବିଂ.କୃତଜ୍ଞ ବା ବିଶ୍ୱାସୀ

ନିମକହରାମ—ଯା.ବିଂ.(କୃତଘ୍ନ—ଭୃତ୍ୟ) ଅକୃତଜ୍ଞ, ଯେଉଁମାନେ କୃତଜ୍ଞତା ସ୍ୱୀକାର କରନ୍ତି ନାହିଁ ।

ନିମକହରାମୀ—ଯା.ବି.ବିଶ୍ୱାସଘାତକତା ରାଜବିଦ୍ରୋହ, ପ୍ରଭୁନିକଟରେ ଭୃତ୍ୟର କୃତଘ୍ନତା ।

ନିମକହଲାଲ୍—ଯା. ବିଂ. ରାଜଭକ୍ତ, ବିଶ୍ୱସ୍ତ, ବିନୟୀ, କୃତଜ୍ଞ ବା ବିଶ୍ୱାସୀ (ଭୃତ୍ୟ) ।

ନିମକହଲାଲୀ—ଯା.ବି. ରାଜଭକ୍ତି, କୃତଜ୍ଞତା, ବିଶ୍ୱସ୍ତତା ।

ନିମକାର୍ଣ୍ଣ—ଯ. ବି ନିମ୍ନକର୍ମଗୃହ, ଅଧସ୍ତନ କର୍ମଗୃହ ।

ନିମକି—ଯା.ବି.ମଇଦା ଘିଅ ଲୁଣ କଳାଜିରାଦ୍ୱାରା ପ୍ରସ୍ତୁତ ଏକପ୍ରକାର ଲୁଣିଆ ଗଜା ।

ନିମଖାସା—ଯା.ବିଂ. ମଧ୍ୟମ ରକମ ।

ନିମଗ୍ନ—ବିଂ. (ନି+ମସ୍ଜ+କ.ତ) ଜଳାଦିରେ ମଗ୍ନ, ତନ୍ମୟ, ଜଳାଦିରେ ବୁଡ଼ିଯାଇଥିବା, ଏକାଗ୍ରଭାବେ ନିବିଷ୍ଟ ।

ନିମଗ୍ନେ—ଗ୍ରା. କ୍ରି. ବିଂ. ଏକାଗ୍ରଚିତ୍ତରେ ମନଯୋଗ ସହକାରେ ।

ନିମଗୃ—ଯା.ବି. ଶ୍ରେଷ୍ଠ ତରବାରି ।

ନିମଜ୍ଜକ—ପୁଂ. ବି. (ନି+ମସ୍ଜ+କ. ଅକ) ଡୁବୁରି, ଯେ ସମୁଦ୍ରର ଜଳରେ ବୁଡ଼ି କୌଣସି ବସ୍ତୁ ଖୋଜେ ବା ଆଣେ ।

ନିମଜ୍ଜଥୁ—ପୁଂ. ବି. (ନି+ମସ୍ଜ+ଭା. ଅଥୁ) ଶୟନ, ସ୍ନାନ, ନିମଜ୍ଜନ, ଅବଗାହନ ।

ନିମଜ୍ଜନ—କ୍ଲୀ. ବି. (ନି+ମସ୍ଜ+ଭା. ଅନ) ସ୍ନାନ, ଅବଗାହନ, ବୁଡ଼ିଯିବା, (ନି+ମସ୍ଜ+ଣିଚ୍+ଅନ) ବଳପୂର୍ବକ ପାଣିରେ ବୁଡ଼ାଇବା ।

ନିମଜ୍ଜିତ—ବିଂ. (ନି+ମସ୍ଜ+କ.ତ) ନିମଗ୍ନ, ପାଣିରେ ବୁଡ଼ାଇଦିଆଯାଇଥିବା, ସ୍ନାତ । [ଉଚ୍ଚାରଣ ।

ନିମଦ—ପୁଂ.ବି.ସ୍ପଷ୍ଟରୂପେ ଓ ମନ୍ଦଭାବେ

ନିମନ୍ତେ—ଗ୍ରା. ଅବ୍ୟ. (ସଂ-ନିମିତ୍ତ) (ଅମୁକ) ସକାଶେ, ପାଇଁ, ଲାଗି, ଉଦ୍ଦେଶ୍ୟରେ । [ଦେଖ ।

ନିମନ୍ତ—ବି.(ନି+ମନ୍ତ୍ର+ଭା.ଅ) ନିମନ୍ତ୍ରଣ

ନିମନ୍ତ୍ରକ—ପୁଂ. ବିଂ. (ନି+ମନ୍ତ୍ର+କ. ଅକ) ନିମନ୍ତ୍ରଣକାରୀ ।

ନିମନ୍ତ୍ରଣ—କ୍ଲୀ. ବି. (ନି+ମନ୍ତ୍ର+ଭା. ଅନ) ଭୋଜନ ବା ଉତ୍ସବରେ ଯୋଗ ଦେବାପାଇଁ ସବିଧି ଆହ୍ୱାନ, ଡାକ ଡାକରା ।

ନିମନ୍ତ୍ରଣପତ୍ର—କ୍ଲୀ.ବି. (ଷତତ୍) ଉତ୍ସବାଦିରେ ଯୋଗଦେବା ନିମନ୍ତେ ବନ୍ଧୁଆଦିଙ୍କଠାକୁ ପ୍ରେରିତ ଅନୁରୋଧ ପତ୍ର ।

ନିମନ୍ତ୍ରିତ—ବିଂ. (ନି+ମନ୍ତ୍ର+ମିଂ.ତ) ଆହୂତ, ଯାହାକୁ ନିମନ୍ତ୍ରଣ କରାଯାଇଅଛି ।

ନିମନ୍ତ୍ର୍ୟ—ପୁଂ.ବିଂ.(ନି+ମନ୍ତ୍ର+ମିଂ.ଯ) ଯାହାକୁ ନିମନ୍ତ୍ରଣ କରାଯିବ ।

ନିମନ୍ୟୁ—ପୁଂ.ବି. କ୍ରୋଧରହିତ୍ୟ ।

ନିମୟ—ପୁଂ.ବି. (ନି+ମି+ଭା.ଅ) ବିନିମୟ, ପରିବର୍ତ୍ତନ, ବଦଳ ।

ନିମା—ଯା.ବି.ପୋଷାକ, କୁରୁତା ତଳେ ପିନ୍ଧାଯିବା ଏକପ୍ରକାର କୁରୁତା ।

ନିମାଇ—ଗ୍ର.ପୁଂ.ବି. ଚୈତନ୍ୟଦେବଙ୍କର ନାମାନ୍ତର ।

ନିମାଜ—ଯା. ବି. ନମାଜ ଦେଖ ।

ନିମାତ୍ର—ବୈଷ୍ଣବମାନଙ୍କର ଚତୁର୍ଥ ସମ୍ପ୍ରଦାୟ ।

ନିମାତବ୍ୟ—ବିଂ. (ନି+ମା+ତବ୍ୟ) ନିମୟଯୋଗ୍ୟ,ବଦଳ ହେବାର ଯୋଗ୍ୟ

ନିମାନ—କ୍ଲୀ. ବି. (ନି+ମା+ଣ.ଅନ) ମୂଲ୍ୟ, ଦାମ୍, ପରିମାଣ, ମାପ ।

ନିମାନୁ—ପ୍ରା. (ଗଞ୍ଜାମ) ଅବ୍ୟ. ମୋଟ, ଆଦୌ, କମାରୁ ।

ନିମାତ୍ରିନ୍—ଯା.ବି.ହାତଉଥାର କୁରୁତା ।

ନିମି—ପୁଂ. ବି. ମିଥିଳା ବଂଶସ୍ଥାପୟିତା ଇକ୍ଷ୍ୱାକୁବଂଶୀୟ ନୃପବିଶେଷ, ଅତ୍ରିବଂଶେ ଭୂତ ଦତ୍ତାତ୍ରେୟଙ୍କ ପୁତ୍ର,କୌରବ ବଂଶର ଭାବି ରାଜ .ଆଖିପିଛୁଡ଼ା ।

ନିମିଟେ—ଗ୍ରା.ବି.ଏକପ୍ରକାର ଶ୍ରେଷ୍ଠ ଡାଉଁଶ ।

ନିମିବେଦ—ଗ୍ର. ବି. ଏକପ୍ରକାର ଶ୍ରେଷ୍ଠ ବାଘ, ନେପାଳୀ ବାଘ ।

ନିମିତ—ବିଂ. (ନି+ମି+ତ) ସମଦୀର୍ଘ ବିସ୍ତାର ପରିମାଣଯୁକ୍ତ, ଯାହାର ଦୀର୍ଘ-ପ୍ରସ୍ଥ ସମାନ ।

ନିମିତ୍ତ—କ୍ଲୀ. ବି. (ନି+ମିଦ୍+ଣ.ତ)

ହେତୁ, କାରଣ, ଚିହ୍ନ, ଶକୁନ, ଫଳ, ଉଦ୍ଦେଶ୍ୟ, ଅଭିପ୍ରାୟ, ଉତ୍ପତ୍ତି, ଦାଗ, ଲକ୍ଷ୍ୟ, ଶରବ୍ୟ, (ଦର୍ଶନଶାସ୍ତ୍ର) କୌଣସି ଘଟଣାର ମୁଖ୍ୟ ବା କାର୍ଯ୍ୟକାରୀ କାରଣ, (ଗ୍ରା.ଅବ୍ୟ) ନିମନ୍ତେ, ଲାଗି, ପାଇଁ, ହେତୁରୁ, କାରଣରୁ ।

ନିମିତ୍ତକ—କ୍ଲୀ. ବି. (ନିମିତ୍ତ+କ) ନିମିତ୍ତ-କାରଣ, ଚୁମ୍ବନ, ନିମିତ୍ତ, (ବି°) ଜନିତ, ଉତ୍ପନ୍ନ ।

ନିମିତ୍ତକାରଣ—କ୍ଲୀ. ବି. ସମବାୟୀ ଓ ଅସମବାୟୀ ଭିନ୍ନ ତୃତୀୟ କାରଣ, ଉପ-କରଣ ।

ନିମିତ୍ତକାଳ—ପୁଂ. ବି. ବିଶେଷକାଳ, ନିର୍ଦ୍ଧାରିତ ସମୟ ।

ନିମିତ୍ତକୃତ୍—ବି. (ନିମିତ୍ତ+କୃ+କ୍ୱିପ୍) କାକ, କୁଆ ।

ନିମିତ୍ତଜ୍ଞ—ପୁଂ. ବି. ନିମିତ୍ତ+ଜ୍ଞା+କ. ଅ) ଦୈବଜ୍ଞ, ଗଣକ, (ବି°) ଯେ ଶକୁନ ବିଷୟ ଜାଣେ, ଯେ କାରଣ ଜାଣେ ।

ନିମିତ୍ତତଃ—ଅବ୍ୟ (ନିମିତ୍ତ+ତସ୍) କାରଣ, ବ୍ୟତୀତ, କାରଣ ଭିନ୍ନ ।

ନିମିତ୍ତତା(ତ୍ୱ)—ସ୍ତ୍ରୀ. କ୍ଲୀ ବି. କାରଣତ୍ୱ, ପ୍ରୟୋଜନ କର୍ତ୍ତୃତ୍ୱ, କାରଣସମ୍ବନ୍ଧ ।

ନିମିତ୍ତଧର୍ମ—ପୁଂ. ବି. (୬ତତ୍) ନିଷ୍କୃତି, ପାପମାର୍ଜନା, ପ୍ରାୟଶ୍ଚିତ୍ତ ।

ନିମିତ୍ତମାତ୍ର—କ୍ଲୀ. ବି. (ନିମିତ୍ତ+ମାତ୍ର) ହେତୁମାତ୍ର, କାରଣମାତ୍ର, କାରଣ ରୂପେ ପ୍ରତୀୟମାନ ।

ନିମିତ୍ତବଧ—ବି. (୩ତତ୍) ଯେଉଁ ନିମିତ୍ତ ଗବାଦିର ବଧ (ଏପରି ଗୋରୁର ମୃତ୍ୟୁ ହେଲେ ପ୍ରାୟଶ୍ଚିତ୍ତ କରିବାକୁ ହୁଏ) ।

ନିମିତ୍ତବିଦ୍—ବି°. ( ନିମିତ୍ତ+ବିଦ୍+କ. କ୍ୱିପ୍) ନିମିତ୍ତଜ୍ଞ ଦେଖ ।

ନିମିତ୍ତୀ—ପୁଂ. ବି (ନିମିତ୍ତ+ଇନ୍) ନିମିତ୍ତ-ଯୁକ୍ତ କାର୍ଯ୍ୟ, ବଧକର୍ତ୍ତୃବିଶେଷ ।

ନିମିଶ୍ର—ବି°. ନିୟମ ଦ୍ୱାରା ମିଶ୍ରିତ ।

ନିମିଷ—ପୁଂ. ବି. (ନି+ମିଷ+ଭା.ଅ) ଚକ୍ଷୁ ନିମୀଳନରୂପ ବ୍ୟାପାର, ପଲକ ପକାଇବାକୁ ଯେତିକି ସମୟ ଲାଗେ, ଆଖିପିଛଡ଼ା, ପଲକ, ଅତି ସୂକ୍ଷ୍ମକାଳ, ବିଷ୍ଣୁ ।

ନିମିଷକ୍ଷେତ୍ର—କ୍ଲୀ. ବି. ନୈମିଷାରଣ୍ୟ ।

ନିମିଷିତ—କ୍ଲୀ. ବି. (ନି+ମିଷ+ଭା.ତ) ନେତ୍ର ବ୍ୟାପାରବିଶେଷ, ପକ୍ଷ୍ମାକୁଞ୍ଚନ, ପଲକ ପକାଇବା ।

ନିମିଷେ—ଗ୍ରା.କ୍ରି. ବି°. ଆଖିପିଛୁଡ଼ିବା ମାତ୍ରକେ, ଏକମୁହୂର୍ତ୍ତି ମାତ୍ର ।

ନିମୀଳ—ବି. ( ନି+ମୀଲ+ଭା.ଅ ) ନିମୀଳନ ଦେଖ ।

ନିମୀଳକ—ବି°. (ନି+ମୀଲ+କ.ଅକ) ଯାହା ମୁଦ୍ରିତ କରେ, (ବି) ସଙ୍କୋଚକ ପେଶୀ, ଯେଉଁ ପେଶୀ ଚକ୍ଷୁକଟସ୍ଥ ଶରୀରର ଛିଦ୍ରକୁ ମୁଦ୍ରିତ କରେ ।

ନିମୀଳନ—କ୍ଲୀ. ବି. ( ନି+ମୀଲ+ଭା. ଅନ) ମରଣ, ନିମେଷ, କାଳବିଶେଷ, ଅବକାଶ, ସମୟ, କ୍ଷଣ, ସଙ୍କୋଚନ, ମୋହ, (ଣିଚ୍-ଭା.ଅନ) ବନ୍ଦକରିବା, ମୁଦ୍ରିତ କରିବା ।

ନିମୀଳା—ସ୍ତ୍ରୀ.ବି. (ନି+ମୀଲ+ଅ+ଆ) ନେତ୍ରମୁଦ୍ରଣ, ନିଦ୍ରା ।

ନିମୀଳିକା—ସ୍ତ୍ରୀ. ବି. (ନି+ମୀଲ+ଣିଚ୍+ଅକ+ଆ) ବ୍ୟାଜ, ଛଳ, ନିମୀଳନ, ନିମୀଳକର ସ୍ତ୍ରୀଲିଙ୍ଗ ।

ନିମୀଳିତ—ବି°. (ନି+ମୀଲ୍+ମି.ତ) ମୁଦ୍ରିତ, ମୃତ, ସଙ୍କୁଚିତ, ଆଚ୍ଛାଦିତ, ବିମୋହିତ, ନିଷ୍ପନ୍ଦ, ଅବନତ, ମୂର୍ଚ୍ଛିତ, (ଣିଚ୍-ମି.ତ) ଯାହା ମୁଦ୍ରିତ କରାଯାଇ-ଅଛି, (ବି. ଭା.ତ) ନିମୀଳନ ।

ନିମୁଣ୍ଡିଆ—ଗ୍ରା.ପୁଂ.ବି°.ଅନାଥ, ବନ୍ଧୁହୀନ, ନିରାଶ୍ରୟ, ପରିତ୍ୟକ୍ତ, ଅଭିଭାବକହୀନ ।

ନିମୂତ୍ର—ବି°. ନିତରାଂ ଶୋଧନୀୟ ।

ନିମୂଳ—ବି°.(କ.ସ) (ନି+ମୂଳ+ଅ) ମୂଳରହିତ, ମୂଳହୀନ, ପ୍ରକାଶନ ।

ନିମେୟ—ପୁଂ. ବି. ( ନି+ମା+ଯ ) ନୈମେୟ, ପରିବର୍ତ୍ତି, (ବି°) ପରିବର୍ତ୍ତନୀୟ

ନିମେଷ—ପୁଂ. ବି. ( ନି+ମିଷ+ଅ ) ନିମିଷ ଦେଖ, ସ୍ୱନାମପ୍ରସିଦ୍ଧ ଯକ୍ଷବିଶେଷ

ନିମେଷକ—ପୁଂ. ବି. ( ନିମେଷ+କ ) ନିମିଷ ଦେଖ, (ନି+ମିଷ+କ.ଅକ) ଖଦ୍ୟୋତ ।

ନିମେଷକୃତ୍—ସ୍ତ୍ରୀ.ବି. (ନିମେଷ+କୃ+କ.କ୍ୱିପ୍) ବିଦ୍ୟୁତ୍, ବିଜୁଳି ।

ନିମେଷଣ—କ୍ଲୀ.ବି (ନି+ମିଷ+ଭା.ଅନ) ଚକ୍ଷୁରୁନ୍ମୀଳନ, ଆଖି ଫିଟାଇବା, ଆଖି ବୁଜିବା ।

ନିମେଷଣୀ—ସ୍ତ୍ରୀ. ବି. (ନିମେଷଣ+ଈ) ନେତ୍ରବର୍ତ୍ମାଶ୍ରିତ ନିମେଷ ସାଧନ ଶିରା-ଭେଦ ।

ନିମେଷରୁଚ୍—ପୁଂ.ବି. (ନିମେଷ+ରୁଚ୍+କ.କ୍ୱିପ୍) ଖଦ୍ୟୋତ, ଜୁଳୁଜୁଳିଆ ପୋକ ।

ନିମେଷଶୂନ୍ୟ—ବି°. ( ୩ତତ୍ ) ପଲକ-ରହିତ, ଅନିମେଷ, ନିର୍ନିମେଷ ।

ନିମ୍ନ—ବି°. ( ନି+ମ୍ନା+କ.ଅ ) ନୀଚ, ଗଭୀର, ତଳ, ଅଗାଧ, ନତ, ଖାଲୁଆ, ସ୍ଥାନ, ତଳେ ଅବସ୍ଥିତ, (ବି) ଉତ୍ସଙ୍ଗ, କୋଳ, ପ୍ରବଣଭୂମି, ଅତଡ଼ା ।

ନିମ୍ନଗ—ବି°. ( ନିମ୍ନ+ଗମ୍+କ.ଅ ) ଅଧୋଗାମୀ, ନିମ୍ନଗତ, ଯାହା ତଳ ଆଡ଼କୁ ବୋହି ଯାଉଅଛି, ଗଭୀର ।

ନିମ୍ନଗତ—ବି°.(ନିମ୍ନ+ଗତ) ଯାହା ନୀଚ ଆଡ଼କୁ ଯାଇଅଛି ।

ନିମ୍ନଗା—ସ୍ତ୍ରୀ. ବି. (ନିମ୍ନ+ଗମ୍+ଅ+ଆ) ନଦୀ, (ସ୍ତ୍ରୀ.ବି°) ନୀଚଗାମିନୀ, ଯାହା ତଳଆଡ଼କୁ ଗତି କରେ ବା ବୋହିଯାଏ

ନିମ୍ନତା—ବି. (ନିମ୍ନ+ଭା.ତା) ନୀଚତା, ଗଭୀରତା, ଖାଲ ।

ନିମ୍ନଦେଶ—ପୁଂ.ବି.ନିମ୍ନସ୍ଥାନ, ତଳଆଡ଼ ।

ନିମ୍ନପ୍ରବଣ—ବି°. ନିମ୍ନଗ, ନିମ୍ନାଭିମୁଖ, ତଳଆଡ଼କୁ ଗତି କରୁଥିବା ।

ନିମ୍ନପ୍ରାଇମେରୀ—ଗ୍ରା. ବି°. ଲୋରପ୍ରାଇ-ମେରୀ (ବିଦ୍ୟାଳୟ) ।

ନିମ୍ନରେ—ଗ୍ରା.କ୍ରି.ବି°.ତଳେ, ଏଥିପରେ ।

ନିମ୍ନଶ୍ରେଣୀ—ଗ୍ରା.ବି. ନୀଚଜାତି, ବିଦ୍ୟା-ଳୟର ପ୍ରାଥମିକ ଶ୍ରେଣୀ, ନୀଚତମ ଶ୍ରେଣୀ ।

ନିମ୍ନାଙ୍କିତ—ବି°.ପରେ ଲେଖା ଯାଉଥିବା ।

ନିମ୍ନାଭିମୁଖ—ବିଂ, ନିମ୍ନପ୍ରବଣ ଦେଖ ।

ନିମ୍ନେ—ଗ୍ରା.କ୍ରି.ବିଂ. ନିମ୍ନରେ ଦେଖ ।

ନିମ୍ନୋକ୍ତ—ବିଂ. (୭ତତ୍ପୁ) ନିମ୍ନକଥିତ, ପରେ ଯାହା ଲେଖା ଯାଇଅଛି ।

ନିମ୍ନୋଦ୍ଭିନ୍ନ—ବିଂ. (୭ତତ୍ପୁ) ନିମ୍ନେ ଉକ୍ତ, ତଳୁ ଯାହା ଗୁଟିଆ ହୋଇଅଛି ।

ନିମ୍ନୋନ୍ନତ—ବିଂ, (କ.ଧା) ଉଚ୍ଚନୀଚ, ବିଷମ, ବନ୍ଧୁର, (ସ୍ତ୍ରୀ) ନିମ୍ନୋନ୍ନତା ।

ନିମ୍ବ—ପୁଂ.ବି. (ନିନବ୍+କ.ଅ) ସ୍ୱନାମ-ପ୍ରସିଦ୍ଧ ବୃକ୍ଷବିଶେଷ, ନିମ, ଲିମ୍ବ ।

ନିମ୍ବକ—ପୁଂ. ବି. (ନିମ୍ବ+କ) ନିମ୍ବ, ମହାନିମ୍ବ ।

ନିମ୍ବତରୁ—ପୁଂ.ବି.ମନ୍ଦାରବୃକ୍ଷ । [ପତ୍ର ।

ନିମ୍ବପତ୍ର—କ୍ଳୀ.ବି. ନିମପତ୍ର, ନିମ୍ବଗଛର

ନିମ୍ବରଜସ୍—ପୁଂ. ବି. ମହାନିମ୍ବ ।

ନିମ୍ବବୀଜ—ପୁଂ. ବି. ରାଜାଦନୀ ବୃକ୍ଷ, କ୍ଷୀରଣୀ, ନିମଞ୍ଜି ।

ନିମ୍ବାକ—ପୁଂ. ବି. କାଗଜୀଲେମ୍ବୁ ।

ନିମ୍ବାଦିତ୍ୟ—ବି. ବୈଷ୍ଣବ ସମ୍ପ୍ରଦାୟର ନିମାତ୍ ଶାଖାର ପ୍ରବର୍ତ୍ତକ ।

ନିମ୍ବାର୍କ—ବି. ନିମ୍ବାଦିତ୍ୟ ଦେଖ ।

ନିମ୍ବୁ—ସ୍ତ୍ରୀ. ବି. (ନିନବ୍+ଉ) ଜମ୍ବୀର, କାଗଜୀଲେମ୍ବୁ, ଟଭାଲେମ୍ବୁ, କମଳା ।

ନିମ୍ବୁକ—ବି. (ନିମ୍ବୁ+କ) ନିମ୍ବୁ ଦେଖ ।

ନିମ୍ବୁପାନକ—ବି. (ବୈଦ୍ୟକ) ଛଅ ଭାଗ ଚିନି ସଙ୍ଗେ ଏକଭାଗ ଲେମ୍ବୁରସ ମିଶା-ଯାଇ ମରିଚ ଲବଙ୍ଗ ଗୁଣ୍ଡା ପଡ଼ି ପ୍ରସ୍ତୁତ ହୋଇଥିବା ପଣା, ସରବତ୍ ।

ନିମ୍ରୁଚ୍—ସ୍ତ୍ରୀ. ବି. (ନି+ମ୍ରୁଚ୍+କ୍ୱିପ୍) ନିତରାଂ ଗମନ, ସୁତରାଂ ଗମନ ।

ନିମ୍ଳୁକ୍ତି—ସ୍ତ୍ରୀ. ବି. ନିମ୍ରୁକ୍ତି, ଅସ୍ତଗମନ ।

ନିମ୍ଳୋଚ—ପୁଂ. ବି. (ନି+ମ୍ଳୁଚ୍+ଭା.ଅ) ସୂର୍ଯ୍ୟଙ୍କର ଅସ୍ତହେବା ।

ନିମ୍ଳୋଚନୀ—ସ୍ତ୍ରୀ. ବି. ସୁମେରୁର ପଶ୍ଚିମ ଦିଗରେ ଥିବା ଏକ ନଗରୀ, ବରୁଣଙ୍କ ନଗରୀ ବା ରାଜଧାନୀ ।

ନିୟତ—ବିଂ. (ନି+ଯମ୍+ର୍ମ.ତ) ସଂଯତ, କୃତସଂଯମ, ଅବଶ୍ୟମ୍ଭାବୀ, ଅବିଶ୍ରାନ୍ତ, ସର୍ବଦା ଘଟୁଥିବା, ନିତ୍ୟ, ସେବାପର, ବଦ୍ଧ, ସଂଯୁକ୍ତ, ଆସକ୍ତ, ଜିତେନ୍ଦ୍ରିୟ, ମନୋଯୋଗୀ, ସସୀମ, ନିର୍ଦ୍ଦିଷ୍ଟ, ସ୍ଥାପିତ, ପ୍ରତିଷ୍ଠିତ, (ବି) ମହାଦେବ, ନିତ୍ୟକର୍ମ, (ଗ୍ରା.ବି) ଶେଷ, ଅନ୍ତିମ, (ଗ୍ରା.ବି) ମୃତ୍ୟୁ, ଅଦୃଷ୍ଟ, ଭାଗ୍ୟ, (କ୍ରି.ବିଂ) ସତତ, ସର୍ବଦା, ଚିରକାଳପାଇଁ, ନିତ୍ୟ, ଅବିଶ୍ରାନ୍ତଭାବରେ, ଅବଶ୍ୟ, ଅନିବାର୍ଯ୍ୟରୂପେ, ବଳପୂର୍ବକ, (ଯା.ବି) ସଙ୍କଳ୍ପପାଳନ, କର୍ତ୍ତବ୍ୟପାଳନ ବ୍ରତପାଳନ, ସତ୍ୟପାଳନ, ଉଦ୍ଦେଶ୍ୟ, (ବିଂ) କର୍ତ୍ତବ୍ୟପରାୟଣ, ଧର୍ମପରାୟଣ ।

ନିୟତମାନସ—ପୁଂ. ବିଂ. (ବ.ବ୍ରୀ) ସଂଯତେନ୍ଦ୍ରିୟ, ଜିତମାନସ, ଦାନ୍ତ ।

ନିୟତାପ୍ତି—ବିଂ. ନାଟକରେ ପ୍ରାରବ୍ଧ କାର୍ଯ୍ୟର ଅବସ୍ଥାବିଶେଷ ।

ନିୟତାତ୍ମା—ପୁଂ.ବିଂ. (ନିୟତ+ଆତ୍ମନ୍ ବ.ବ୍ରୀ) ପରିମିତାହାରୀ, ସ୍ୱଳ୍ପାହାରୀ ।

ନିୟତାଶନ—କ୍ଳୀ.ବି. (କ.ଧା) ନିୟମିତ ଭାବେ ଭୋଜନ, (ବିଂ) ନିୟମିତ ଭାବେ ଭୋଜନକାରୀ, (ସ୍ତ୍ରୀ) ଶନା ।

ନିୟତାହାର—ପୁଂ. ବିଂ. (ବ.ବ୍ରୀ) ପରିମିତାହାରୀ, ସ୍ୱଳ୍ପାହାରୀ, (ବି-କ.ଧା) ପରିମିତଆହାର ।

ନିୟତାହାରୀ—ପୁଂ. ବିଂ. (ନିୟତ+ଆହାର+କ.ଇନ୍) ପରିମିତାହାରୀ, ଯେ ପରିମାଣ ଅନୁସାରେ ଭୋଜନ କରେ ।

ନିୟତି—ସ୍ତ୍ରୀ. ବି. (ନି+ଯମ୍+ଭା.ତି) ଭାଗ୍ୟ, ଦୈବ, ଅଦୃଷ୍ଟ, ଐଶିକନିୟମ, ପୂର୍ବଜନ୍ମରେ ଅନୁଷ୍ଠିତ ଶୁଭାଶୁଭ କର୍ମାନୁସାରେ ତତ୍ତତ୍ କର୍ମର ଈଶ୍ୱର ନିର୍ଦ୍ଧାରିତ ଫଳଭୋଗାବସ୍ଥା, ନିର୍ଦ୍ଧାରିତ ଶୃଙ୍ଖଳା, ମୃତ୍ୟୁ, ଅନିବାର୍ଯ୍ୟ ଘଟନା, ଆକସ୍ମିକ ଘଟନା, (ଭା.ତି) ସଂଯମ, ଦମନ, ଜିତେନ୍ଦ୍ରିୟତା, ଧର୍ମଦୃଷ୍ଟିରେ କର୍ତ୍ତବ୍ୟକର୍ମ ସ୍ଥିରତା, ଚତୁର୍ଦ୍ଦଶ ଧରଣୀ ଦେବଯୋଷିଦ୍ଗଣର ଅନ୍ୟତମା ସ୍ତ୍ରୀ ।

ନିୟନ୍ତ୍ରୀ—ସ୍ତ୍ରୀ. ବି. (ନି+ଯମ୍+ତୃ+ଈ) ଦୁର୍ଗା, ଭଗବତୀ ।

ନିୟତେନ୍ଦ୍ରିୟ—ପୁଂ. ବିଂ. (ବ.ବ୍ରୀ) ସଂଯତେନ୍ଦ୍ରିୟ, ଇନ୍ଦ୍ରିୟଦମନଶୀଳ ।

ନିୟନ୍ତବ୍ୟ—କ୍ଳୀ. ବି. (ନି+ଯମ୍+ର୍ମ. ତବ୍ୟ) ନିୟମନୀୟ, ନିୟନ୍ତ୍ରିତ ହେବାର ଯୋଗ୍ୟ, ଦମନଯୋଗ୍ୟ ।

ନିୟନ୍ତା—ପୁଂ.ବିଂ. (ନି+ଯମ+କ.ତୃ) ବ୍ୟବସ୍ଥାପକ, ନିୟମକାରୀ, ଶାସକ, ଶିକ୍ଷକ, ନେତା, ପରିଚାଳକ, ନିୟାମକ, (ପୁଂ.ବି) ସାରଥି, ବିଷ୍ଣୁ, ପରମାତ୍ମା ।

ନିୟନ୍ତ୍ରଣ—କ୍ଳୀ.ବି, (ନି+ଯନ୍ତ୍ର+ଭା.ଅନ) ପ୍ରତିବନ୍ଧ ଦୂରୀକରଣ, ସଂଯମନ, ଶାସନ, ସଂଜ୍ଞାନିରୂପଣ, ନିବାରଣ, ପରିଚାଳନ, ଅନେକାର୍ଥ ଶବ୍ଦର ଏକାର୍ଥ ନିରୂପଣ ।

ନିୟନ୍ତ୍ରିତ—ବିଂ. (ନି+ଯନ୍ତ୍ର+ର୍ମ.ତ) ଅବାଧ, ଅନର୍ଗଳ, ପ୍ରତିବନ୍ଧାଦି ଦ୍ୱାରା ଏକତ୍ର ସ୍ଥାପିତ, କୃତନିୟମନ ।

ନିୟମ—ପୁଂ. ବି. (ନି+ଯମ+ଭା.ଅ) ପ୍ରତିଜ୍ଞା, ଅଙ୍ଗୀକାର, ନିଶ୍ଚୟ, ନିର୍ଦ୍ଦିଷ୍ଟବିଧି, ଆଇନ, ବ୍ରତଉପବାସାଦି, ଅନୁଷ୍ଠାନ, ପ୍ରକୃତି, ସ୍ୱଭାବ, ଅବଧାରଣ, ଅଭ୍ୟାସ, ରୀତି, ପ୍ରଥା, ଆଜ୍ଞା, ଅନୁଶାସନ, ଦମନ, ଇନ୍ଦ୍ରିୟନିରୋଧ, ଶୃଙ୍ଖଳା, ଧାରା, ପଦ୍ଧତି, ପ୍ରଣାଳୀ, ସୂତ୍ର, ଲକ୍ଷଣ, ବଶୀଭୂତ କରିବା, ସ୍ଥିରତା, ସୀମାନିର୍ଦ୍ଦେଶ, ନିତ୍ୟ, ନିୟନ୍ତ୍ରଣ, ଚୁକ୍ତି, କରାର, ସର୍ତ୍ତ, ବିଷ୍ଣୁ, ମହାଦେବ, ଯୋଗାଙ୍ଗବିଶେଷ, ଧର୍ମରାଜାଙ୍କ ପୁତ୍ର, କବିପ୍ରସିଦ୍ଧି, ମନୋ-ବରୋଧ, ସଂଜ୍ଞାନିର୍ଦ୍ଦେଶ, (ଗ୍ରା.ବି) ରଣ, ଶପଥ, ହଲପ ।

ନିୟମତନ୍ତ୍ର—ବିଂ. ଯାହା ନିୟମର ଅଧୀନ, କଡ଼ା, ନିର୍ଦ୍ଦିଷ୍ଟ ନିୟମର ବଶୀଭୂତ, ନିର୍ଦ୍ଦିଷ୍ଟ ନିୟମ ଅନୁସାରେ ପରିଚାଳିତ ରାଜ୍ୟଶାସନ ପ୍ରଣାଳୀ ।

ନିୟମତନ୍ତ୍ରବାଦ—ପୁଂ. ବିଂ. (୬ତତ୍ପୁ) ନିର୍ଦ୍ଦିଷ୍ଟ ନିୟମାନୁସାରେ ରାଜ୍ୟଶାସନ କରିବା ଉଚିତ ଏହିରୂପ ମତ ।

ନିୟମତାନ୍ତ୍ରିକ—ବିଂ. ନିୟମତନ୍ତ୍ରର ଅନୁଯାୟୀ, ନିର୍ଦ୍ଦିଷ୍ଟ ନିୟମରେ ଶାସନ-ପ୍ରଣାଳୀର ଅନୁଗାମୀ ।

ନିୟମନ—କ୍ଳୀ. ବି. (ନି+ଯମ୍+ଭା. ଅନ) ନିୟମ ଦେଖ, ନିଗ୍ରହ, (ବିଂ. କ.ଅନ); ବନ୍ଧ ।

ନିୟମନିଷ୍ଠ—ପୁଂ. ବିଂ. (ବ.ବ୍ରୀ)ନିୟମତନ୍ତ୍ର, ବ୍ରତପାଳନକାରୀ ।

ନିୟମନିଷ୍ଠା—ବି. ନିୟମପାଳନରେ ଦୃଢ଼ତା, (ସ୍ତ୍ରୀ. ବି) ବ୍ରତଉପବାସାଦି ।

ନିୟମପତ୍ର—କ୍ଳୀ. ବି. ପ୍ରତିଜ୍ଞାପତ୍ର, ସନ୍ଧିପତ୍ର, ଚୁକ୍ତିପତ୍ର, ଅଙ୍ଗୀକାର ପତ୍ର ।

ନିୟମପର—ପୁଂ ବିଂ.(ବ.ବ୍ରୀ)ନିୟମାନୁବର୍ତ୍ତୀ, ନିୟମାଧୀନ,ବ୍ରତପାଳନକାରୀ ।

ନିୟମପରାୟଣ—ପୁଂ. ବିଂ. ( ବ.ବ୍ରୀ ) ନିୟମନିଷ୍ଠ ଦେଖ ।

ନିୟମପାଳ—ପୁଂ. ବି. (ନିୟମ+ପାଳ +କ.ଅ ) ବ୍ରତପାଳନକାରୀ ବ୍ୟକ୍ତି, ଏକ ଋଷିଙ୍କ ନାମ ।

ନିୟମପାଳନ—ବି. ନିୟମ ଅନୁସାରେ କାର୍ଯ୍ୟକରଣ ।

ନିୟମବତୀ—ସ୍ତ୍ରୀ. ବି.(ନିୟମ+ବତ୍+ ଈ)ଯେଉଁ ସ୍ତ୍ରୀର ମାସିକ ଋତୁସ୍ରାବ ଘଟୁଅଛି,(ବିଂ)ବ୍ରତପାଳନକାରିଣୀ (ସ୍ତ୍ରୀ) ।

ନିୟମବଦ୍ଧ—ବିଂ. ବିଧିବଦ୍ଧ, ନିୟମିତ, ନିୟମଦ୍ୱାରା ପରିଚାଳିତ ।

ନିୟମବାନ୍—ପୁଂ. ବିଂ.(ନିୟମ+ବତ୍) ନିୟମବିଶିଷ୍ଟ ।

ନିୟମବିଧାନ—ବି. ( ଷତତ୍ ) ବ୍ୟବସ୍ଥା ପ୍ରଣୟନ, ବିଧିନିର୍ଦ୍ଧାରଣ ।

ନିୟମବିଧି—ବି.ଦୈନିକ ଧର୍ମାନୁଷ୍ଠାନ ।

ନିୟମବିରୁଦ୍ଧ—ବିଂ. (ଷତତ୍) ଅବୈଧ. ଅନୁଚିତ ।

ନିୟମଭଙ୍ଗ—ପୁଂ. ବି. (ଷତତ୍)ପ୍ରତିଜ୍ଞାଭଙ୍ଗ,ସମୟୋଲ୍ଲଙ୍ଘନ, ବ୍ରତପାଳନରେ ବ୍ୟାଘାତ, ଚୁକ୍ତିଭଙ୍ଗ ।

ନିୟମଲଙ୍ଘନ—ବି. ବିଧିକୁ ଅତିକ୍ରମ କରିବା, ପ୍ରତିଜ୍ଞାର ଅନ୍ୟଥାକରଣ, ଅନିୟମ, ଚୁକ୍ତିଭଙ୍ଗ ।

ନିୟମସେବା—ସ୍ତ୍ରୀ. ବି. କାର୍ତ୍ତିକମାସରେ ନିୟମ ପୂର୍ବକ ଭଗବଦାରାଧନା, ନିୟମ ପୂର୍ବକ ଈଶ୍ୱରୋପାସନା ।

ନିୟମସ୍ଥିତି—ସ୍ତ୍ରୀ. ବି. (ଷତତ୍)ତପସ୍ୟା, ତପଶ୍ଚରଣ ।

ନିୟମହେତୁ—ବି. (ନ୍ୟାୟଶାସ୍ତ୍ର) ନିୟାମକ, କାରଣ । [ ଲଙ୍ଘନ ।

ନିୟମାତିକ୍ରମ—ବି. ( ଷତତ୍ ) ନିୟମ-

ନିୟମାଧୀନ—ବିଂ. (ଷତତ୍) ନିୟମର ବଶବର୍ତ୍ତୀ, ବିଧାନାନୁବର୍ତ୍ତୀ,(ସ୍ତ୍ରୀ ଧୀନା

ନିୟମାନନ୍ଦ—ବି.ନିମ୍ବାର୍କଙ୍କର ନାମାନ୍ତର

ନିୟମାନୁଯାୟୀ—ପୁଂ. ବିଂ. ( ଷତତ୍ ) ନିୟମର ଅନୁସରଣକାରୀ,ନିୟମାନୁସାରେ କାର୍ଯ୍ୟକାରୀ, ନିୟମାନୁସାରେ କୃତ ବା ଅନୁଷ୍ଠିତ,(କ୍ରି.ବିଂ)ନିୟମାନୁସାରେ ।

ନିୟମାନୁବର୍ତ୍ତିତା—ବି.ନିୟମାନୁବର୍ତ୍ତୀର ଭାବ ବା କାର୍ଯ୍ୟ, ନିର୍ଦ୍ଦିଷ୍ଟନିୟମର ଅନୁଗମନ, ନିୟମାନୁସାରେ କାର୍ଯ୍ୟକରଣ, ନିୟମପାଳନ ।

ନିୟମାନୁବର୍ତ୍ତୀ—ପୁଂ. ବିଂ. ( ଷତତ୍ ) ନିୟମର ଅନୁସରଣକାରୀ, ନିୟମାନୁଯାୟୀ, (ସ୍ତ୍ରୀ) ନିୟମାନୁବର୍ତ୍ତିନୀ ।

ନିୟମାନୁସାରୀ—ପୁଂ. ବିଂ. ( ଷତତ୍ ) ନିୟମାନୁଯାୟୀ ଦେଖ,(ସ୍ତ୍ରୀ)ସାରିଣୀ ।

ନିୟମିତ—ବିଂ. ( ନି+ଯମ+ର୍ମ.ତ ) ବ୍ୟବସ୍ଥାପିତ, ଧରାବନ୍ଧା,ବଦ୍ଧ, ସଂଯତ, ଦମିତ, ଅପସାରିତ, ନିଷିଦ୍ଧ, ଆକୃଷ୍ଟ, ବିହିତ, ନିୟମବଦ୍ଧ, ଅବଧାରିତ, ଭାଗ୍ୟକ୍ରମେ ଅଭିପ୍ରେତ, ଅଙ୍ଗୀକାର ଦ୍ୱାରା ଚଳିତ ।

ନିୟମିତରୂପ— ବିଂ. ( ବ.ବ୍ରୀ ) ବିହିତ ପ୍ରକାର, ଯେପରି ନିୟମ ଅଛି ସେହିପରି, (ସ୍ତ୍ରୀ) ନିୟମିତରୂପା ।

ନିୟମିତରୂପେ—କ୍ରି.ବିଂ.ନିୟମିତଭାବେ. ନିୟମମତ, ଯଥାବିଧାନେ ।

ନିୟମିତସମୟ—ବି. ନିର୍ଦ୍ଧାରିତସମୟ ।

ନିୟମୀ—ପୁଂ. ବିଂ. (ନିୟମ+ଇନ୍) ସଂଯମୀ.ନିୟମପାଳକ,ନିୟମପ୍ରବର୍ତ୍ତକ, କଡ଼ା । [ ଙ୍କାର ବିଶେଷ ।

ନିୟମୋପମା—ବି. କାବ୍ୟର ଉପମାଳ-

ନିୟମ୍ୟ—ବିଂ. ( ନି+ଯମ+ର୍ମ.ଯ ) ନିରୋଧବ୍ୟ, ନିଗ୍ରାହ୍ୟ,ନିୟମଯୋଗ୍ୟ, ଶାସନୀୟ, ଶିକ୍ଷଣୀୟ ।

ନିୟବ—ପୁଂ.ବି.(ନି+ଯୁ+ଅ)ମିଶ୍ରୀଭାବ

ନିୟାତନ—କ୍ଳୀ. ବି. ( ନି+ଯତ୍.ଣିଚ୍ +ଭା.ଅନ) ନିପାତନ, ବିନାଶକରଣ, (ବିଂ. କ.ଅନ) ଭକ୍ତିଯୁକ୍ତ ।

ନିୟାନ—ପୁଂ. ବି.(ନି+ଯା+ଅଧି.ଅନ) ଗୋଷ୍ଠ, ଗୋଚାରଣସ୍ଥାନ, ନିୟମ ।

ନିୟାମ—ପୁଂ. ବି. (ନି+ଯମ+ଭା.ଅ) ନିୟମ ଦେଖ, (କ.ଅ) ନାବିକ, (ଗ୍ରା. ବି.)ଶପଥ, ବନ୍ଧାନିୟମ, ଆଗ୍ରହନିଷ୍ଠା, ମାନସିକ ।

ନିୟାମକ—ବିଂ. (ନି+ଯମ+ଣିଚ୍+ ଅକ) ନିୟନ୍ତା, ପୋତବାହ, ପଥ ପ୍ରଦର୍ଶକ, ବ୍ୟବସ୍ଥାପକ, ନିରାସକ, ପରିଚାଳନକାରୀ, ଦାନକାରୀ, ସାରଥି, ନିଷ୍ଠାଯୁକ, ନିରୂପକ ।

ନିୟାର—ଗ୍ରା.ବିଂ ଓ କ୍ରି.ବିଂ.ନିଆର ଦେଖ

ନିଯୁକ୍ତ—ବିଂ. (ନି+ଯୁଜ+ତ) ଅଧିକୃତ, ନିୟୋଜିତ, ପ୍ରେରିତ, ଅବଧାରିତ, ପ୍ରବୃତ୍ତ, ବ୍ୟାପୃତ, ବିଶିଷ୍ଟ କର୍ମପାଇଁ ଅଧିକାର ବା କ୍ଷମତାପ୍ରାପ୍ତ, ଆଦିଷ୍ଟ, ଆଜ୍ଞପ୍ତ, ଅଧିକୃତ, ପ୍ରବର୍ତ୍ତିତ, ସଂଯୁକ୍ତ, ନିର୍ଦ୍ଦିଷ୍ଟ, ଉତ୍ତେଜିତ, ଆବଦ୍ଧ, ସଂଲଗ୍ନ, ସ୍ଥାପିତ,(ହିନ୍ଦୁସ୍ମୃତି) ନିୟୋଗ ବିଧି ଅନୁସାରେ ଅନ୍ୟର ସ୍ତ୍ରୀ ଗର୍ଭରେ ସନ୍ତାନ ଉତ୍ପାଦନ କରିବାପାଇଁ ଅନୁମତିପ୍ରାପ୍ତ, କାର୍ଯ୍ୟରେ ବ୍ୟବହୃତ ।

ନିଯୁକ୍ତି—ବି.(ନି+ଯୁଜ+ଭା.ତି)କୌଣସି ଚାକିରି ପାଇବା, ଅଧିକାରପ୍ରାପ୍ତି, ପ୍ରବର୍ତ୍ତନ, ଗଠନ, କୌଣସି ବିଶିଷ୍ଟ କର୍ମପାଇଁ ପ୍ରେରିତ ହେବା, ବିଶିଷ୍ଟ ଆଦେଶ ।

ନିଯୁକ୍ତିପତ୍ର—ବି. କାର୍ଯ୍ୟରେ ନିଯୁକ୍ତ ହେବା ବ୍ୟକ୍ତିକୁ କର୍ତ୍ତୃପକ୍ଷଠାରୁ ମିଳିବା ଲେଖା, ପରୁଆନା ।

ନିଯୁଜ୍ୟ—ବିଂ. ( ନି+ଯୁଜ୍+ର୍ମ.ଯ ) ନିଯୁକ୍ତ ହେବାର ଯୋଗ୍ୟ ।

ନିଯୁତ୍ଥାନ—ପୁଂ. ବିଂ. (ନି+ଯୁଜ୍+କ.

ଅନ) ନିୟୋଜକ, ଆଦେଶକ ।

ନିଯୁତ—କ୍ଲୀ. ବି. (ନି+ଯୁ+ତ) ଦଶଲକ୍ଷ ସଂଖ୍ୟା ।

ନିଯୁଦ୍ଧ—କ୍ଲୀ. ବି. (ନି+ଯୁଧ୍+ତ) ବାହୁଯୁଦ୍ଧ, ମଲ୍ଲଯୁଦ୍ଧ, ନିରସ୍ତ୍ର ଯୁଦ୍ଧ ।

ନିଯୁଦ୍ଧଭୂ—ବି. (ଷତତ୍) ମଲ୍ଲଯୁଦ୍ଧ ଭୂମି ।

ନିଯୁଦ୍ରଥ—ବିଂ. ଗମନ ନିମନ୍ତେ ନିଯୋଜିତ ରଥ ।

ନିଯୋକ୍ତବ୍ୟ—କ୍ଲୀ. ବିଂ. (ନି+ଯୁଜ୍+ର୍ମ.ତବ୍ୟ) ଯାହାକୁ ଅତ୍ୟାଗୃହୀତ କରାଯିବା, ନିଯୋଗାର୍ହ ।

ନିଯୋକ୍ତା—ପୁଂ.ବିଂ. (ନି+ଯୁଜ୍+କ. ତୃ) ନିୟୋଗକର୍ତ୍ତା, ସଂଯୋଗକାରୀ, ଯେ ଉପଦେଶ କରେ, ପ୍ରବର୍ତ୍ତକ, ଆଦେଷ୍ଟା, (ବି) ଶାସନକର୍ତ୍ତା, ପ୍ରଭୁ, ଚାକିରିରେ ନିଯୁକ୍ତ କରିବା ବ୍ୟକ୍ତି, ଆଦେଶ ଦେବା ବ୍ୟକ୍ତି ।

ନିୟୋଗ—ପୁଂ.ବି. (ନି+ଯୁଜ+ଭା.ଅ) ପ୍ରେରଣ, ପ୍ରେଷଣ, ଉପଦେଶ, ଅନୁମତି, କୌଣସି, ଭାରାର୍ପଣ, ମନୋଯୋଗ, ଅବଧାରଣ, ଆଜ୍ଞା, ନିଶ୍ଚୟ, ଚାକିରି, ପ୍ରବୃତ୍ତି, ଅଧିକାର, ବିଧାନ, ବ୍ୟବସ୍ଥା, ବ୍ୟବହାର, ଅଧ୍ୟକ୍ଷତା, ଚେଷ୍ଟା, (ବ୍ୟାକରଣ) ଅନୁଜ୍ଞା, ଅଦୃଷ୍ଟ, ନିର୍ଦ୍ଦିଷ୍ଟକର୍ତ୍ତବ୍ୟ କର୍ମ, ଆବଶ୍ୟକତା, (ଗ୍ରା.ବି.) କୌଣସି ଦେବତା ବା ରାଜାଙ୍କ ନିକଟରେ ସେବା କରୁଥିବା ଏକଶ୍ରେଣୀର ସେବକମାନଙ୍କର ଦଳ, (ବିଂ) ଫଟଣୀ, ଉତ୍ସର୍ଗୀକୃତ ।

ନିୟୋଗକର୍ତ୍ତା—ପୁଂ. ବିଂ. କର୍ମରେ ନିଯୁକ୍ତକାରୀ, ଆଦେଶକାରୀ ।

ନିୟୋଗପତ୍ର—କ୍ଲୀ. ବି. ନିଯୁକ୍ତିପତ୍ର, ଆଦେଶପତ୍ର, ପରୁଆନା, ସନନ୍ଦ ।

ନିୟୋଗବିଧି—ପୁଂ. ବି. କୌଣସି କାର୍ଯ୍ୟରେ ନିଯୁକ୍ତ କରିବାର ପ୍ରଥା ।

ନିୟୋଗାର୍ଥ—ପୁଂ. ବି. ନିଯୁକ୍ତ କରଣର ଉଦ୍ଦେଶ୍ୟ ।

ନିୟୋଗୀ—ପୁଂ. ବିଂ. କର୍ମରେ ନିଯୁକ୍ତକାରୀ, ଆଦେଶକାରୀ ।

ନିଯୋଗ୍ୟ—ବିଂ. (ନି+ଯୁଜ୍+ର୍ମ.ଯ) ନିୟୋଗାର୍ହ, ଯାହାକୁ ନିଯୋଗ କରିବାର ଯୋଗ୍ୟ, (କ.ଯ) ପ୍ରଭୁ, ନିୟୋଗକର୍ତ୍ତା ।

ନିୟୋଜକ—ପୁଂ. ବିଂ. (ନି+ଯୁଜ+କ.ଅକ) ନିଯୋକ୍ତା, (ବି) ପ୍ରଭୁ, ଆଦେଶକର୍ତ୍ତା ।

ନିୟୋଜନ—କ୍ଲୀ.ବି. (ନି+ଯୁଜ୍+ଭା.ଅନ) ନିୟୋଗ, ପ୍ରେରଣ, ପ୍ରବର୍ତ୍ତନ. ମୁକରର, ଆଦେଶକରଣ ।

ନିଯୋଜନୀ—ବି. (ନି+ଯୁଜ୍+ଣ.ଅନଈ) ପଘା ।

ନିଯୋଜନୀୟ—ବିଂ. (ନି+ଯୁଜ୍+ର୍ମ. ଅନୀୟ) ନିଯୋଜ୍ୟ ଦେଖ ।

ନିଯୋଜୟିତା—ପୁଂ.ବିଂ. (ନି+ଯୁଜ୍+ଣିଚ୍+କ.ତୃ) ନିଯୋଜକ, ନିଯୋଗକର୍ତ୍ତା, ପ୍ରବର୍ତ୍ତକ, ପ୍ରେରକ, (ସ୍ତ୍ରୀ) ଯୋଜୟିତ୍ରୀ ।

ନିଯୋଜିତ—ବିଂ. (ନି+ଯୁଜ୍.ଣିଚ୍+ର୍ମ.ତ) ଯାହାକୁ ନିଯୁକ୍ତ କରାଯାଇଅଛି, ବ୍ୟାପାରିତ, ପ୍ରବର୍ତ୍ତିତ, ଆଜ୍ଞପ୍ତ, ଆଦିଷ୍ଟ, ପ୍ରେରିତ, ଅଧିକାରିତ, (ସ୍ତ୍ରୀ) ନିଯୋଜିତା ।

ନିଯୋଜ୍ୟ—ବି. (ନି+ଯୁଜ୍+ର୍ମ.ଯ) ପ୍ରେଷ୍ୟ, ଭୃତ୍ୟ, କିଙ୍କର, ଦାସ, କର୍ମଚାରୀ, (ବିଂ) ନିୟୋଜନୀୟ, ଉପଦେଶାର୍ହ, ନିୟୋଗାର୍ହ ।

ନିଯୋଦ୍ଧା—ପୁଂ. ବି. (ନି+ଯୁଧ୍+କ. ତୃ) କୁକ୍କୁଟ, ବାହୁଯୁଦ୍ଧକାରୀ, ମଲ୍ଲଯୋଦ୍ଧା ।

ନିର୍—ଅବ୍ୟ. ବିୟୋଗ, ଅତ୍ୟୟ, ଆଦେଶ, ଅତିକ୍ରମ, ଭୋଗ, ନିଶ୍ଚିତ, ନିଷେଧ, ଅଭାବ, ନିଃଶେଷ, ପଦାକୁ ବାହାରିବା ଇତ୍ୟାଦି ଅର୍ଥମାନଙ୍କରେ ବ୍ୟବହୃତ ହୁଏ ।

ନିରଂଶ—ବି. ରାଶିର ଭୋଗକାଳର ପ୍ରଥମ ଓ ଶେଷଦିନ, ସୂର୍ଯ୍ୟଙ୍କର ଏକ ରାଶିରୁ ଅନ୍ୟରାଶିକୁ ଗମନ, ସଂକ୍ରାନ୍ତି, (ବିଂ—ବ.ବ୍ରୀ) ଅଂଶରହିତ, ଭାଗହୀନ, ଶାସ୍ତ୍ରାନୁସାରେ ଯେଉଁ ଉତ୍ତରାଧିକାରୀ ପୈତୃକ ସମ୍ପତ୍ତିରୁ ହିସ୍ସା ପାଏନାହିଁ, ସମୁଦାୟ । [ ହୀନ, କିରଣହୀନ ।

ନିରଂଶୁ—ବିଂ.(ବ.ବ୍ରୀ) ନିଷ୍ପ୍ରଭ, ଜ୍ୟୋତି-

ନିରକ୍ତ—ଗ୍ରା.ପୁଂ.ବିଂ. ରକ୍ତହୀନ, ଦୁର୍ବଳ, ସାହସହୀନ, ଭୀରୁ ।

ନିରକ୍ଷ—ବିଂ.ଅକ୍ଷଶୂନ୍ୟ, ଯେଉଁ ସ୍ଥାନର ଅକ୍ଷାଂଶ ନାହିଁ, (ବି) ନିରକ୍ଷବୃତ୍ତ, (ଗ୍ରା.ବିଂ) ରକ୍ଷକବିହୀନ, ଅସହାୟ ।

ନିରକ୍ଷଦେଶ—ଗ୍ରା. ବି. ବିଷୁବରେଖାର ସନ୍ନିହିତ ସ୍ଥାନ, ଯେଉଁଠାରେ ଦିବା ଓ ରାତ୍ରି ସମାନ, ଯେଉଁଠାରେ ଜ୍ୟୋତିଷ ମତରେ ପ୍ରଥମ ଦ୍ରାଘିମା ଗଣନା କରାଯାଏ ।

ନିରକ୍ଷବୃତ୍ତ—ବି. ଭୂମଧ୍ୟସ୍ଥ ରେଖା, ବିଷୁବରେଖା, ନାଡ଼ୀମଣ୍ଡଳ, ଅକ୍ଷାଂଶ ।

ନିରକ୍ଷମଣ୍ଡଳ—ଗ୍ରା. ବି. ନିରକ୍ଷବୃତ୍ତ, ନିରକ୍ଷ ଦେଶ ।

ନିରକ୍ଷର—ପୁଂ. ବିଂ. (ବ.ବ୍ରୀ) ମୂର୍ଖ, ଅକ୍ଷର ଜାଣିନଥିବା, ଆଦୌ ବିଦ୍ୟାଭ୍ୟାସ କରି ନଥିବା (ବ୍ୟକ୍ତି) ।

ନିରକ୍ଷରେଖା—ସ୍ତ୍ରୀ.ବି. (କ.ଧା) ବିଷୁବରେଖା, ନାଡ଼ୀମଣ୍ଡଳ, ପୃଥିବୀର କୌଣସି ଏକ ସ୍ଥାନର ଦୂରତ୍ୱ ।

ନିରଖ—ଯା. ବି. କୌଣସି ପଦାର୍ଥର ସ୍ଥିରୀକୃତ ଦର, ଭାଉ, ବଜାର ଦର, ନିଶ୍ଚୟତା, (ବିଂ)ଅସହାୟ, ଅରକ୍ଷକ ।

ନିରଗ୍ନି—ପୁଂ.ବିଂ. (ବ.ବ୍ରୀ) ଅଗ୍ନିଶୂନ୍ୟ, ଅନଗ୍ନି, ନିସ୍ତେଜ, ଶ୍ରୌତସ୍ମାର୍ତ୍ତ ଅଗ୍ନି ସାଧ୍ୟ କର୍ମରହିତ (ବ୍ରାହ୍ମଣ) ।

ନିରଙ୍କୁଶ—ବିଂ. (ବ.ବ୍ରୀ) ପ୍ରତିବନ୍ଧଶୂନ୍ୟ, ଅପବ୍ୟୟୀ, ବାଧାଶୂନ୍ୟ, ଅନିବାର୍ଯ୍ୟ, ସ୍ୱେଚ୍ଛାଚାରୀ, ସ୍ୱାଧୀନ ।

ନିରଙ୍କୁଶତା(ତ୍ୱ)—ବି. ସ୍ୱାତନ୍ତ୍ର୍ୟ, ବାଧାଶୂନ୍ୟତା, ସ୍ୱେଚ୍ଛାଚାରିତା ।

ନିରଙ୍ଗ—ବିଂ. (ବ.ବ୍ରୀ) ଅଙ୍ଗହୀନ, ନିରାକାର, ଅସମ୍ପୂର୍ଣ୍ଣ, ଅଶରୀରୀ, ନିରୁପାୟ, (ବି) ରୂପକାଲଙ୍କାରବିଶେଷ ।

ନିରଙ୍କୁଳ—ବିଂ. (ବ.ବ୍ରୀ) ଅଙ୍ଗୁଳିରୁ

ନିର୍ଗତ, ଅଙ୍ଗୁଳିହୀନ ।
ନିରଙ୍ଗୁଳ—କ୍ଲୀ.ବି°. ( ବ.ବ୍ରୀ ) ଅଙ୍ଗୁଳିରୁ ନିର୍ଗତ. ଯାହା ଚମଡ଼ାରୁ ବାହାରିଅଛି. ଯାହାର ଚମଡ଼ା ନାହିଁ ।
ନିରଞ୍ଜନ—ପୁଂ.ବି°. ( ବ.ବ୍ରୀ ) କଜ୍ଜଳରହିତ (ନେତ୍ର), ଅଞ୍ଜନଶୂନ୍ୟ,ଅଜ୍ଞାନଶୂନ୍ୟ, ତେଜୋହୀନ, ବର୍ଣ୍ଣହୀନ, ପବିତ୍ର, ଅନ୍ଧକାରହୀନ, ନିଷ୍ପାପ, ରାଗାଦି ଦୋଷରହିତ, (ପୁଂ.ବି)ଯୋଗୀବିଶେଷ, ମହାଦେବ, ପରଂବ୍ରହ୍ମ ବିଷ୍ଣୁ ।
ନିରଞ୍ଜନା—ସ୍ତ୍ରୀ.ବି. (ନିର୍+ଅଞ୍ଜନ+ +ଆ) ପୂର୍ଣ୍ଣିମାତିଥି, ଦୁର୍ଗା ।
ନିରଞ୍ଜନୀ—ଗ୍ରା.ବି. (ନିରଞ୍ଜନଙ୍କ) ଉପାସକ ସମ୍ପ୍ରଦାୟବିଶେଷ ।
ନିରତ—ବି°. ( ନି+ରମ୍+କ୍ତ ) ନିଯୁକ୍ତ, ବ୍ୟାପୃତ, ପ୍ରବୃତ୍ତ, ଆସକ୍ତ, ସନ୍ତୁଷ୍ଟ, ଅତି ଆନନ୍ଦିତ, ( ଗ୍ରା.କ୍ରି.ବି° ) ସର୍ବଦା, ଦିବାନିଶି ।
ନିରତି—ସ୍ତ୍ରୀ. ବି. (ନି+ରମ୍+କ୍ତି) ଅତିଶୟ, ଅତ୍ୟାସକ୍ତି, ଆନୁରକ୍ତି ।
ନିରତିକ୍ରମ—ବି°. ( ବ.ବ୍ରୀ ) ଯାହାକୁ ଅତିକ୍ରମ କରାଯାଇ ନ ପାରେ ।
ନିରତିଶୟ—ପୁଂ. ବି°. (ବ.ବ୍ରୀ) ସାତିଶୟ,ଉତ୍କୃଷ୍ଟ,ଅତ୍ୟୁତ୍କୃଷ୍ଟ,(ବି) ସ୍ୱାପେକ୍ଷା ଦ୍ୱାରା ଅତିଶୟ ଶୂନ୍ୟ ପରମେଶ୍ୱର ।
ନିରତେ—ଗ୍ରା.କ୍ରି. ବି°. ନିରତ,ସର୍ବଦା, ଦିବାନିଶି ।
ନିରତ୍ୟୟ—ବି°.(ବ.ବ୍ରୀ) ଅତ୍ୟୟଶୂନ୍ୟ, ବାଧାଶୂନ୍ୟ, ଅନିବାର୍ଯ୍ୟ, ବିପଦଶୂନ୍ୟ, ଯାହା କିଛି ଦିଏନାହିଁ, ନିର୍ଦ୍ଦୋଷ,ନିଷ୍ପାପ. ଅବିନଶ୍ୱର ।
ନିରଧ୍ୱ—ପୁଂ. ବି°. ( ବ.ବ୍ରୀ ) ମାର୍ଗରୁ ନିଷ୍କ୍ରାନ୍ତ, ଯେ ବାଟ ଭୁଲିଛି, ପଥଭ୍ରଷ୍ଟ ।
ନିରନୁକ୍ରୋଶ—ପୁଂ. ବି°. ( ବ.ବ୍ରୀ ) ନିଷ୍କରୁଣ, ନିଷ୍ଠୁର, ନିର୍ଦ୍ଦୟ, କଠୋର, ନିଃସ୍ନେହ, (ବି) ନିଷ୍ଠୁରତା ।
ନିରନୁଗ—ପୁଂ. ବି°. (ବ.ବ୍ରୀ) ଯାହାର କେହି ଅନୁଚର ବା ସଙ୍ଗୀ ଭୃତ୍ୟ ନାହିଁ
ନିରନୁଗ୍ରହ—ବି°. (ବ.ବ୍ରୀ) ଅନୁଗ୍ରହଶୂନ୍ୟ, ପ୍ରତିକୂଳ, ନିର୍ଦ୍ଦୟ ।
ନିରନୁନାସିକ—ବି°.(ବ.ବ୍ରୀ) ଅନୁନାସିକ ଭିନ୍ନ ବର୍ଣ୍ଣ,ଯେଉଁ ବର୍ଣ୍ଣରେ ଅନୁନାସିକ ବର୍ଣ୍ଣ ନାହିଁ ।
ନିରନୁବନ୍ଧ—ବି°. (ବ.ବ୍ରୀ) ଅନନୁବନ୍ଧ, ବେମୋହବନ୍ଧଥା ।
ନିରନୁଯୋଜ୍ୟ—ବି. ନିର୍ଦ୍ଦୋଷ,ଅନିନ୍ଦ୍ୟ ।
ନିରନୁଯୋଜ୍ୟାନୁଯୋଗ--ପୁଂ.ବି.(ଷତତ୍) ନିର୍ଦ୍ଦୋଷ ବସ୍ତୁର ନିନ୍ଦା,ନ୍ୟାୟସୂତ୍ରୋକ୍ତ ନିଗ୍ରହ ସ୍ଥାନ ।
ନିରନୁରୋଧ—ବି°. (ବ.ବ୍ରୀ) ଯେ ଅନୁରୋଧ ମାନେ ନାହିଁ, ଅପ୍ରୀତିକର, ନିରପେକ୍ଷ, ପ୍ରତିକୂଳ, ନିର୍ଦ୍ଦୟ ।
ନିରନ୍ତର—ବି°.(ନିର୍+ଅନ୍ତର)ବ.ବ୍ରୀ; ସାନ୍ଦ୍ର, ନିବିଡ଼, ସନ୍ତତ, ଅବିଚ୍ଛିନ୍ନ. ସନ୍ତତିଯୁକ୍ତ, ଅପୃଥକ୍, ମୋଟା,ସରଳ, ନଗ୍ନ, ଲଙ୍ଗଳା, ନିଷ୍କପଟ, ଅନ୍ତର୍ଦ୍ଧାନଶୂନ୍ୟ, ଅଭେଦ,ତାଦର୍ଥ୍ୟରହିତ,ଅନ୍ତର ବା ଛିଦ୍ରହୀନ, ଅନ୍ତରସମ୍ବାଶୂନ୍ୟ, ଅମଧ୍ୟ, ନିଶ୍ୱାସୀ, (ଅମୁକରେ) ପୂର୍ଣ୍ଣ,ପ୍ରକାଶିତ, ଆଭ୍ୟନ୍ତରିକ,ଅବିରତ,(କ୍ରି.ବି°)ସତତ, ନିରତ, ସର୍ବଦା, ନିରବଚ୍ଛିନ୍ନରୂପେ, ଦୃଢ଼ରୂପେ, ତତ୍‌କ୍ଷଣାତ୍ ।
ନିରନ୍ତରଗୃହବାସୀ—ପୁଂ. ବି°. ପ୍ରତିବେଶୀ,ସନ୍ନିକଟବର୍ତ୍ତୀ ଘରେ ରହୁଥିବା
ନିରନ୍ତରାଭ୍ୟାସ--ପୁଂ.ବି(କ.ଧା)ସ୍ୱାଧ୍ୟାୟର ସତତ ଆବୃତ୍ତି ।
ନିରନ୍ତରାଳ—ବି°. (ବ.ବ୍ରୀ) ଅଭେଦ୍ୟ, ବ୍ୟବଧାନରହିତ, ଅନ୍ତରାଳଶୂନ୍ୟ, ଗାଢ଼, ଘନ, ସାନ୍ଦ୍ର. ସଙ୍କୀର୍ଣ୍ଣ ।
ନିରନ୍ଧସ୍—ବି°. ନିରନ୍ନ ।
ନିରନ୍ନ—ବି°.(ବ.ବ୍ରୀ)ଅନ୍ନହୀନ, ଖାଦ୍ୟାଭାବଗ୍ରସ୍ତ, ଉପବାସୀ, ଅନ୍ନ ସଂସ୍ଥାନହୀନ
ନିରନ୍ୱୟ—ବି°.(ବ.ବ୍ରୀ) ଅନ୍ୱୟରହିତ, ସମ୍ବନ୍ଧରହିତ, ନିଃସନ୍ତାନ, ଅଯୌକ୍ତିକ, ସ୍ୱାମିସମ୍ବନ୍ଧଶୂନ୍ୟ, ନିର୍ବଂଶ, ଅନୁଚରହୀନ, ଅଦୃଶ୍ୟ, ଅପ୍ରତ୍ୟାଶିତ ।
ନିରପ—ବି°.(ବ.ବ୍ରୀ)ଜଳହୀନ, ନିର୍ଜଳ ।
ନିରପତ୍ୟ—ବି°.(ବ.ବ୍ରୀ)ଅପତ୍ୟରହିତ, ନିଃସନ୍ତାନ, ପୁତ୍ର କନ୍ୟାହୀନ, (ସ୍ତ୍ରୀ) ନିରପତ୍ୟା ।
ନିରପତ୍ରପ—ବି°. ( ନିର୍+ଅପତ୍ରପ ) ବ.ବ୍ରୀ; ଧୃଷ୍ଟ, ନିର୍ଲଜ୍ଜ, ବେହୁଆ ।
ନିରପରାଧ—ବି. ନିର୍ଦ୍ଦୋଷିତା, ଅପରାଧହୀନତା, (ବି°) ନିର୍ଦ୍ଦୋଷ, ନିଷ୍ପାପ, ବେକସୁର, ନିରୀହ, (କ୍ରି.ବି°)ବିନାପରାଧରେ, ବିନାଦୋଷରେ ।
ନିରପରାଧୀ—ପୁଂ.ବି°. ନିର୍ଦ୍ଦୋଷ, ଅପରାଧ କରି ନ ଥିବା (ବ୍ୟକ୍ତି) ।
ନିରପବର୍ତ୍ତି—ବି°. (ବ.ବ୍ରୀ) ଯେ ଅପବର୍ତ୍ତନ କରେ ନାହିଁ, ଯେ ଫେରେ ନାହିଁ, ଭାଜକ ଦ୍ୱାରା ଯାହା ଭାଗ କରାଯାଏ, ଯେଉଁ ସଂଖ୍ୟାର ଲ: ସା: ଭାଜକ ନାହିଁ । [ ନିର୍ଦ୍ଦୋଷ ।
ନିରପବାଦ—ବି°. ଅପବାଦଶୂନ୍ୟ,
ନିରପାୟ—ବି°. (ବ.ବ୍ରୀ) ଅପାୟଶୂନ୍ୟ, ଯାହାର ବିନାଶ ନାହିଁ, ଅକ୍ଷୟ, ନିରାପଦ ।
ନିରପେକ୍ଷ—ବି°. ( ନିର୍+ଅପେକ୍ଷା ) ବ.ବ୍ରୀ; ଅପେକ୍ଷାରହିତ, ସ୍ୱାର୍ଥଶୂନ୍ୟ, ତଟସ୍ଥ, ଉଦାସୀନ, ସ୍ୱାଧୀନ, ସ୍ୱତନ୍ତ୍ର, ଅପକ୍ଷପାତ, ଅନବହିତ, ଆଶାଶୂନ୍ୟ, ଅଶକ୍ତ ବିଷୟକ, (କ୍ଲୀ.ବି) ଅନାଦର, ଅବହେଳା,(ବି°) ସଂସାର ବନ୍ଧନ ପ୍ରତି ବିରାଗଯୁକ୍ତ ।
ନିରପେକ୍ଷଗତି—ବି. ଅନ୍ୟ ବସ୍ତୁର ଗତି ସଙ୍ଗେ ଯେଉଁ ଗତିର କୌଣସି ସମ୍ବନ୍ଧ ନଥାଏ, ସ୍ୱତନ୍ତ୍ରଗତି, (ବି°) ସ୍ୱାଧୀନଗତିବିଶିଷ୍ଟ ।
ନିରପେକ୍ଷତା(ତ୍ୱ)—କ୍ଲୀ.ସ୍ତ୍ରୀ.ବି.ସ୍ୱାଧୀନତା, ଉଦାସୀନତା, ଅପକ୍ଷପାତିତା ।
ନିରପେକ୍ଷବିଚାର—ବି.ଅପକ୍ଷପାତବିଚାର ।
ନିରପେକ୍ଷା—ସ୍ତ୍ରୀ. ବି. ଅବଜ୍ଞା, ନିରାଶା, ସ୍ୱାଧୀନତା, ଉଦାସୀନତା, ଅପକ୍ଷପାତିତା ।
ନିରପେକ୍ଷିତ—ବି°. ଅନାଦୃତ ।
ନିରପେକ୍ଷୀ—ପୁଂ. ବି°. କୌଣସି ବିଷୟରେ ଯାହାର ଅପେକ୍ଷା ନାହିଁ, ଉଦା-

ହୀନ, ସମସ୍ତ ବିଷୟରେ ଅନାଦରକାରୀ
ନିରଭିପ୍ରାୟ—ବିଂ. (ବ.ବ୍ରୀ) ଉଦ୍ଦେଶ୍ୟହୀନ, ଅଭିପ୍ରାୟହୀନ ।
ନିରଭିଭବ—ବି (ବ.ବ୍ରୀ)ଅଭିଭବଶୂନ୍ୟ, ଅପମାନିତ ବା ନିମ୍ନ ହେବାର ନୁହେ ।
ନିରଭିମାନ—ବିଂ. (ବ.ବ୍ରୀ) ଅଭିମାନଶୂନ୍ୟ, ନିରହଂକାର । [ଦେଖ ।
ନିରଭିମାନୀ—ପୁଂ. ବିଂ. ନିରହଂକାର
ନିରଭିଳପ୍ୟ—ବିଂ. (ନିର୍ + ଅଭିଳପ୍ୟ) ଅକଥ୍ୟ, ଯାହା କଥନଯୋଗ୍ୟ ନୁହେ ।
ନିରଭିଳାଷ—ବିଂ. (ବ.ବ୍ରୀ) ଅଭିଳାଷରହିତ ।
ନିରଭିସନ୍ଧାନ—ବି.(ବ.ବ୍ରୀ)ଅଭିସନ୍ଧି ବା ସ୍ୱାର୍ଥପୂର୍ଣ୍ଣ ଉଦ୍ଦେଶ୍ୟର ଅଭାବ, ପୁଂ.ବିଂ ଅଭିସନ୍ଧିରହିତ.ସ୍ୱାର୍ଥପର,ଉଦ୍ଦେଶ୍ୟହୀନ
ନିରଭ୍ର—ବିଂ. ( ନିର୍ + ଅଭ୍ର ) ବ.ବ୍ରୀ; ମେଘଶୂନ୍ୟ ।
ନିରମଣ—କ୍ଲୀ.ବି. (ନି + ରମ୍ + ଭା.ଅନ) ନିବୃତ୍ତରତି, ଅତ୍ୟନ୍ତ ଅନୁରାଗ ।
ନିରମର୍ଷ—ବିଂ.ଅମର୍ଷଶୂନ୍ୟ,ଧୀର,ତେଜୋହୀନ ।
ନିରମିତ୍ର—ବିଂ. (ବ.ବ୍ରୀ) ଶତ୍ରୁରହିତ, (ପୁଂ.ବି)ଚତୁର୍ଥ ପାଣ୍ଡବ ନକୁଲଙ୍କ ପୁତ୍ର, ତ୍ରିଗର୍ତ୍ତ ରାଜାର ଏକ ପୁତ୍ର ।
ନିରମ୍ବର—ବିଂ.(ବ.ବ୍ରୀ) ଅମ୍ବର ବା ବସ୍ତ୍ରଶୂନ୍ୟ, ଦିଗମ୍ବର, ନଗ୍ନ, ଲଙ୍ଗଳା ।
ନିରମ୍ବୁ—ବିଂ. (ବ.ବ୍ରୀ) ଜଳହୀନ, ଶୁଷ୍କ, ନିଷଜଳ, ତ୍ୟକ୍ତୋଦକ, ଯେ ଜଳପାନ କରେନାହିଁ ।
ନିରୟ—ପୁଂ. ବି. ( ନିର୍ + ଇ + ଅ ) ନରକ, ଦୁର୍ଗତି, ପରଲୋକରେ ପାପର ଦଣ୍ଡଭୋଗ ସ୍ଥାନ ।
ନିରୟଗାମୀ—ପୁଂ. ବିଂ. (ନିରୟ + ଗମ୍ + କା.ଇନ୍) ପାପୀ, ନରକଗାମୀ ।
ନିରୟଣ—କ୍ଲୀ. ବି. (ନିର୍ + ଅୟ୍ + ଭା. ଅନ) ନିର୍ଗମନ, ନିର୍ଗମାପାୟ ।
ନିରର୍ଗଳ—ବିଂ(ବ.ବ୍ରୀ)ଅନର୍ଗଳ,ଅବାଧ, ପ୍ରତିବନ୍ଧକଶୂନ୍ୟ, ନିର୍ବିଘ୍ନ, ମୁକ୍ତ, (କ୍ରି. ବି ) ଅବାଧରେ, ସ୍ୱାଧୀନ ଭାବରେ ।

ନିରର୍ଥ—ପୁଂ. ବିଂ. (ବ.ବ୍ରୀ) ଅର୍ଥଶୂନ୍ୟ, ନିଷ୍ଫଳ, ଅଭିଧେୟଶୂନ୍ୟ ।
ନିରର୍ଥକ—ବି .(ବ.ବ୍ରୀ) ନିଷ୍ଫଳ, ଅଭିଧେୟଶୂନ୍ୟ,(ସ୍ତ୍ରୀ) କାବ୍ୟଦୋଷବିଶେଷ ନ୍ୟାୟସୂତ୍ରୋକ୍ତ ନିଗ୍ରହ ସ୍ଥାନବିଶେଷ, (ବିଂ) ଯାହାର ଅର୍ଥନାହିଁ, ନିଷ୍ପ୍ରୟୋଜନ, ପଦ୍ମ, ଉଦ୍ଦେଶ୍ୟହୀନ, ପାଦପୂରଣାର୍ଥ ବ୍ୟବହୃତ ଅର୍ଥହୀନ(ବାକ୍ୟ), (କ୍ରି.ବିଂ) ବୃଥା, ଅକାରଣେ ।
ନିରର୍ଥକତା—ସ୍ତ୍ରୀ.ବି.ରଚନାର ଦୋଷବିଶେଷ ।
ନିରର୍ଥତା—ବି. ଅର୍ଥଶୂନ୍ୟତା ।
ନିରର୍ବୁଦ—କ୍ଲୀ. ବି. ନରକବିଶେଷ ।
ନିରଳଙ୍କାର—ବିଂ. (ବ.ବ୍ରୀ) ଆଭରଣବିହୀନ, ଶବ୍ଦାଳଙ୍କାର ବା ଅର୍ଥାଳଙ୍କାର ଯେଉଁ ରଚନାରେ ନଥାଏ ।
ନିରଳସ—ବିଂ. ଆଳସ୍ୟବିହୀନ,ଉଦ୍ଯୋଗୀ
ନିରବ—ପୁଂ. ବି. ( ନି + ରୁ + ଭା.ଅ ) ରବର ଅଭାବ,(ବିଂ) ନିଃଶବ୍ଦ, ଗୋଳମାଳଶୂନ୍ୟ, ନିସ୍ପନ୍ଦ, ମୌନୀ ।
ନିରବକାଶ—ପୁଂ. ବିଂ. (ବ.ବ୍ରୀ) ସାନ୍ଦ୍ର ନିରନ୍ତର, ଗହଳିଆ, ଅସୁବିଧାଜନକ, ଅବକାଶଶୂନ୍ୟ, ଯାହାର ଅବକାଶ ନାହିଁ, ଅସମୟ ବା ଅସ୍ଥାନରେ ଘଟିବା, (ବି) ଅବକାଶର ଅଭାବ ।
ନିରବଗ୍ରହ—ପୁଂ. ବିଂ. (ବ.ବ୍ରୀ) ସ୍ୱତନ୍ତ୍ର, ସ୍ୱଚ୍ଛନ୍ଦ, ଅପ୍ରତିହତ, ବାଧାହୀନ, ବନ୍ଧରହିତ, ସ୍ୱାଧୀନ, ବୃଷ୍ଟିପ୍ରତିବନ୍ଧଶୂନ୍ୟ ।
ନିରବଚ୍ଛିନ୍ନ—ବିଂ.( ନିର୍ + ଅବଚ୍ଛିନ୍ନ ) ଧାରାବାହିକ. ଅବ୍ୟାହତ, ନିରନ୍ତର, ବିଶୁଦ୍ଧ, ନିର୍ମଳ. ଶୁଦ୍ଧକେବଳ,ତନ୍ମାତ୍ର, ଅନବଚ୍ଛିନ୍ନ, (କ୍ରି.ବିଂ)ନିରତେ, ନିରନ୍ତର ।
ନିରବଦ୍ୟ—ବିଂ. (ବ.ବ୍ରୀ) ନିର୍ଦୋଷ, ବିଶୁଦ୍ଧ, ଉତ୍କୃଷ୍ଟ. ସମ୍ପୂର୍ଣ୍ଣ, ଅନିନ୍ଦ୍ୟ, ଅଜ୍ଞାନଶୂନ୍ୟ, (ବି) ପରମାତ୍ମା, (ସ୍ତ୍ରୀ) ନିରବଦ୍ୟା ।
ନିରବଧି—ବିଂ(ବ.ବ୍ରୀ)ନିରନ୍ତର,ଅନନ୍ତ, ସତତ, ଯାହାର ଅବଧି ନାହିଁ, ଅସୀମ,

(କ୍ରି.ବିଂ) ସର୍ବଦା, ନିରନ୍ତର ।
ନିରବୟବ—ବିଂ.(ବ.ବ୍ରୀ) ଅବୟବହୀନ, ନିରାକାର, ସରଳ, ସହଜ, ଅବିଭାଜ୍ୟ, (ବି) ପରମାଣୁ, ବ୍ରହ୍ମ ।
ନିରବବୋଧ—ବିଂ.(ବ.ବ୍ରୀ) ଅବବୋଧରହିତ, ପ୍ରତିବନ୍ଧରହିତ, ଅପ୍ରତିହତ ।
ନିରବଲମ୍ବ—ବିଂ. (ବ.ବ୍ରୀ) ଅବଲମ୍ବନଶୂନ୍ୟ.ନିଃସହାୟ, ନିରାଶ୍ରୟ, ନିରୁପାୟ, ସ୍ୱାଧୀନ ।
ନିରବଲମ୍ବନ—ବିଂ.(ବ.ବ୍ରୀ) ନିରବଲମ୍ବ ଦେଖ, (ବି) ଅବଲମ୍ବନ ବା ଆଶ୍ରୟର ଅଭାବ, ଆଧାରର ଅଭାବ ।
ନିରବଶେଷ—ବିଂ. (ବ.ବ୍ରୀ) ଅବଶେଷଶୂନ୍ୟ, ଯହିଁରୁ କିଛି ବଳିନାହିଁ, ସମଗ୍ର, ସମ୍ପୂର୍ଣ୍ଣ, ନିଃଶେଷ ।
ନିରବଶେଷିତ—ବିଂ.ନିଃଶେଷିତ,ଯାହାର କିଛି ଅବଶିଷ୍ଟ ନାହିଁ ।
ନିରବସନ୍ନ—ବିଂ. (ନିର୍ + ଅବ + ସଦ୍ + କ.ତ)ଅକ୍ଳାନ୍ତ, କ୍ଳାନ୍ତିହୀନ, ଅନବସନ୍ନ, ପ୍ରଫୁଲ୍ଲ, ଉଦ୍ଦିଗ୍ନ ।
ନିରବସର—ବିଂ. (ବ.ବ୍ରୀ) ଅନବକାଶ, ଅବସରହୀନ, ବ୍ୟସ୍ତ, ବ୍ୟାପୃତ ।
ନିରବସାଦ—ବିଂ. (ବ.ବ୍ରୀ) ନିରବସନ୍ନ ଦେଖ ।
ନିରବସିତ—ପୁଂ. ବିଂ. (ନିର୍ + ଅବ + ସୋ + କ.ତ) ବହିଷ୍କୃତ, ଯେଉଁମାନେ ଭୋଜନ କଲେ ଓ ପାତ୍ରସଂସ୍କାର କଲେ ସୁଦ୍ଧା ବିଶୁଦ୍ଧ ହୁଏନାହିଁ, ଚଣ୍ଡାଳାଦି ।
ନିରବସ୍କୃତ—ବିଂ. ଧୌତ, ପରିଷ୍କୃତ ।
ନିରବସ୍ତାର—ବିଂ. (ନିର୍ + ଅବସ୍ତାର) ଆସ୍ତରଣହୀନ, ଯାହା ବୁଣା ଯାଇନାହିଁ, ଜାତିଭ୍ରଷ୍ଟ, ଅତି ନୀଚଜାତୀୟ ।
ନିରବହାଳିକା—ସ୍ତ୍ରୀ. ବି. (ନିର୍ + ଅବ + ହଲ୍ + ଅକ + ଆ) ପ୍ରାଚୀର, ବାଡ଼, ପ୍ରାକାର, ଘେରବନ୍ଧ ।
ନିରବା—ପ୍ରା. (ବସ୍ତ୍ର)ବିଂ. ଅକୁଞ୍ଚିମ ।
ନିରବାଂ—ପ୍ରା. (ବସ୍ତ୍ର)ବିଂ. ଅଖଣ୍ଡ ।
ନିରବ୍ୟୟ—ବିଂ. (ବ.ବ୍ରୀ) ଅଜାତକ୍ଷୟ, ଅଶୀର୍ଣ୍ଣ, ଅକ୍ଷୟ,ଅବିନାଶୀ, ଚିରସ୍ଥାୟୀ ।

ନିରଶନ—କ୍ଲୀ.ବି. (ନିର୍+ଅଶ୍+ଅନ) ଅନଶନ, ଭକ୍ଷଣାଭାବ, (ବି°)ଭୋଜନରହିତ, ନିରାହାର, ଯେ ଭୋଜନ କରିନାହିଁ ।

ନିରଶନୀ—ପୁଂ. ବି°.(ନିରଶନ+ଇନ୍) ଅନାହାରୀ, ଉପବାସୀ ।

ନିରଷ୍ଟ—ବି°.ନିରାକୃତ, (ପୁଂ.ବି)ଚତୁର୍ବିଂଶତିବର୍ଷୀୟ ଅଶ୍ୱ ।

ନିରସ—ବି°. ( ବ.ବ୍ରୀ ) ନୀରସ, ଶୁଷ୍କ, ଅରସିକ, ଅପ୍ରୀତିକର, କଠୋର, ବିସ୍ୱାଦ, (ପୁଂ.ବି)ରସାଭାବ ।

ନିରସନ—କ୍ଲୀ.ବି. (ନିର୍+ଅସ+ଅନ) ବହିଷ୍କରଣ, ପ୍ରତ୍ୟାଖ୍ୟାନ,ନିରାକରଣ, ବଧ, ନିଷ୍ଠୀବନ, ଛେପ ପକାଇବା, ନିକ୍ଷେପ, ପ୍ରତ୍ୟାଦେଶ, ଖଣ୍ଡନ, ନିବାରଣ, ପ୍ରତିକ୍ଷେପ, ବମନ, ବିକ୍ଷେପ, ବିନାଶନ,(ବି°)ଯେ ବହିଷ୍କରଣ କରେ ।

ନିରସନୀୟ—ବି°. ( ନିର୍+ଅସ୍+ର୍ମ.ଅନୀୟ) ଖଣ୍ଡନକରିହେବା ଯୋଗ୍ୟ, ନିବାରଣୀୟ,ବହିଷ୍କରଣୀୟ, ନିବର୍ତ୍ତନୀୟ ।

ନିରସା— ସ୍ତ୍ରୀ. ବି. ନିଃଶ୍ରେଣିକାତୃଣ, (ଗ୍ରା. ବି°) ରସହୀନ, ମନ୍ଦ, ଅନୁତ୍ତମ, ଦୁଃଖିତ,ବିରସ,ନିକୃଷ୍ଟ,ଊଣା, ସାମାନ୍ୟ. ଅଳ୍ପମୂଲ୍ୟର, ଅପ୍ରଫୁଲ୍ଲ ।

ନିରସ୍ତ—ବି°. (ନିର୍+ଅସ୍+ର୍ମ.ତ) ପ୍ରହିତବାଣ, ତ୍ୟକ୍ତଶର, ତ୍ୱରସ୍ତୋଦିତ. ଶୀଘ୍ରୋଚ୍ଚାରିତ, ନିରାକରଣ ବିଶିଷ୍ଟ, ନିଷ୍ଠ୍ୟୂତ, ପ୍ରେଷିତ,ପରିହୃତ,ସନ୍ତ୍ୟକ୍ତ, ବର୍ଜିତ, ଭର୍ତ୍ସିତ, ନିବର୍ତ୍ତିତ, କ୍ଷାନ୍ତ, ନିବୃତ୍ତ, ଦୂରୀକୃତ, ନିବାରିତ, ନିଷ୍କାଷିତ, ହତ, ଅଜିତ, ନଷ୍ଟ, (ବି)ନିଷ୍ଠୀବନ, ବିଗିରଣ, କ୍ଷେପଣ ।

ନିରସ୍ତକ—ବି°. (ନିରସ୍ତ+କ)ବନସ୍ଥୀ, ଶାନ୍ତକାରୀ, ନିବର୍ତ୍ତିକ ।

ନିରସ୍ତପାଦପ—ବି°. (ବ.ବ୍ରୀ)ବୃକ୍ଷହୀନ ।

ନିରସ୍ତ୍ର—ବି°.(ବ.ବ୍ରୀ)ଅସ୍ତ୍ରଶୂନ୍ୟ,ଯାହାର ଅସ୍ତ୍ର ନାହିଁ, ଅସ୍ତ୍ରହୀନ ।

ନିରସ୍ତ୍ରୀକରଣ—ବି.କୌଣସି ବ୍ୟକ୍ତିଠାରୁ ଅସ୍ତ୍ରଶସ୍ତ୍ର କାଢ଼ିନେବା ।

ନିରସ୍ଥି—କ୍ଲୀ. ବି°. (ବ.ବ୍ରୀ) ଅସ୍ଥିହୀନ (ମାଂସ),ଯାହାର ଦେହରେ ହାଡ ନାହିଁ ।

ନିରସ୍ୟ—ବି°. (ନିର୍+ଅସ୍+କ.ଯ) ଯେ ଫିଙ୍ଗିଦେଇଅଛି,(ର୍ମ.ଯ)ନିରସନୀୟ, ପରିହରଣୀୟ, ଖଣ୍ଡନୀୟ ।

ନିରସ୍ୟମାନ—ବି°. ( ନିର+ଅସ୍+ର୍ମ.ଆନ) ଖଣ୍ଡ୍ୟମାନ, ଦୂରୀକ୍ରିୟମାଣ, ନିବାର୍ଯ୍ୟମାଣ ।

ନିରହଂ—ବି°.(ବ.ବ୍ରୀ) ଅହଙ୍କାରଶୂନ୍ୟ, ଅହଂଭାବଶୂନ୍ୟ ।

ନିରହଂକାର—ବି°. (ବ.ବ୍ରୀ) ଅଭିମାନଶୂନ୍ୟ, ଗର୍ବହୀନ, ନିରଭିମାନ, (ବି) ଗର୍ବଶୂନ୍ୟତା । [ ଗର୍ବୀନୁହେ ।

ନିରହଂକାର—ପୁଂ.ବି°. ଗର୍ବଶୂନ୍ୟ,ଯେ

ନିରହଂକୃତ—ପୁଂ. ବି°.ଅଭିମାନଶୂନ୍ୟ, ଅହଂକାରହୀନ ।

ନିରହଂକୃତି—ସ୍ତ୍ରୀ. ବି. ନିରହଂକାର ।

ନିରାକ—ପୁଂ. ବି. ( ନିର୍+ଅକ+ଅ ) ପାକ, ସ୍ୱେଦ, ଅସତ୍କର୍ମ ଫଳ ।

ନିରାକରଣ—କ୍ଲୀ. ବି. (ନିର୍+ଆ+କୃ+ଭା.ଅନ ) ନିବାରଣ, ଖଣ୍ଡନ, ପ୍ରତ୍ୟାଖ୍ୟାନ, ଦୂରୀକରଣ, ବିନାଶନ, ବହିଷ୍କରଣ,ପୃଥକ୍କରଣ, ରଦ୍‌କରିବା, ମୀମାଂସା, ଅବଧାରଣ, ନିର୍ଣ୍ଣୟ ।

ନିରାକରିଷ୍ଣୁ—ବି°. (ନିର୍+ଆ+କୃ+ଇଷ୍ଣୁ) ପ୍ରତ୍ୟାଖ୍ୟାନକାରୀ, ବ୍ୟାଘାତଜନକ, ଦୂରୀକରଣ ସମର୍ଥ ।

ନିରାକରିଷ୍ଣୁତା—ସ୍ତ୍ରୀ. ବି.(ନିର୍+କୃ+ଇଷ୍ଣୁ+ତ+ଆ ) ନିରାକରଣଶୀଳର କର୍ମ ବା ଭାବ ।

ନିରାକାଙ୍କ୍ଷ—ପୁଂ. ବି°.(ବ.ବ୍ରୀ)ଆକାଙ୍କ୍ଷାଶୂନ୍ୟ, ସନ୍ତୁଷ୍ଟ,ନିର୍ଲୋଭ, ଆଶାରହିତ, ସ୍ପୃହାହୀନ, ନିଷ୍କାମ, (ବ୍ୟାକରଣ)ଯେଉଁ ବାକ୍ୟର ପୂରଣାର୍ଥ ଆଉକିଛି ଲୋଡ଼ା ନ ଥାଏ ।

ନିରାକାଙ୍କ୍ଷା—ସ୍ତ୍ରୀ. ବି. ଆକାଙ୍କ୍ଷାଶୂନ୍ୟତା, ନିଃସ୍ପୃହତା, ସନ୍ତୋଷ ।

ନିରାକାଙ୍କ୍ଷୀ—ପୁଂ. ବି°. ( ନିରାକାଙ୍କ୍ଷ+ଇନ୍) ଆକାଙ୍କ୍ଷାରହିତ, ସନ୍ତୁଷ୍ଟ ।

ନିରାକାର—ପୁଂ. ବି.ପରମେଶ୍ୱର, ବ୍ରହ୍ମ, ଆକାଶ, ବିଷ୍ଣୁ , ସ୍ୱର୍ଗ,ଶିବ,(ବି°.ବ.ବ୍ରୀ) ଆକାରହୀନ.ମୂର୍ତ୍ତିହୀନ,(ନିର୍+ଆକାର) ନିର୍ଗତାହ୍ୱାନ, ଯାହାକୁ ଆହ୍ୱାନକରା ନ ଯାଏ । [ କବି ବିଶେଷ ।

ନିରାକାରଦାସ—ଗ୍ରା. ବି. ପ୍ରାଚୀନଓଡ଼ିଆ·

ନିରାକାରବାଦ—ବି. ଈଶ୍ୱରନିରାକାର ଅଟନ୍ତି ବୋଲି ଯେଉଁ ଧର୍ମମତ ସଂସାରରେ ଚଳେ ।

ନିରାକାରବାଦୀ—ପୁଂ.ବି°.ଈଶ୍ୱର ନିରାକାର ଥିବାର ମତ ଯେଉଁମାନେ ଗ୍ରହଣକରନ୍ତି ବା ପ୍ରଚାର କରନ୍ତି ।

ନିରାକାଶ—ବି°. ଆକାଶଶୂନ୍ୟ, ପୂର୍ତ୍ତି, ଶୂନ୍ୟନୁହେ ।

ନିରାକୁଳ—ପୁଂ. ବି°. ( ନିର୍+ଆକୁଳ ) ପ୍ରଶାନ୍ତ,ନିର୍ମଳ, ସ୍ଥିର,ଅତ୍ୟନ୍ତ,ଆକୁଳ ଅବ୍ୟାକୁଳ,ଯେ ଶୋକାଦିରେ ଅତ୍ୟନ୍ତ ଆକୁଳ ନୁହେ,(ବି)ସ୍ଥିରତା,ପ୍ରଶାନ୍ତତା ।

ନିରାକୃତ—ବି°. ( ନିର୍+ଆ+କୃ+ର୍ମ.ତ) ପ୍ରତ୍ୟାଖ୍ୟାତ, ଦୂରୀକୃତ,ନିରସ୍ତ, ଖଣ୍ଡିତ, ନିବାରିତ, ନିର୍ଣ୍ଣୀତ, ଅବଧାରିତ, ମୀମାଂସିତ, ସିଦ୍ଧାନ୍ତ ।

ନିରାକୃତି—ସ୍ତ୍ରୀ.ବି.(ନିର୍+ଆ+କୃ+ଭା.ତି) ପ୍ରତ୍ୟାଦେଶ,ନିରାକରଣ,ନିବାରଣ, (ବି°.ବ.ବ୍ରୀ)ନିରାକାର,ଅସ୍ୱାଧ୍ୟାୟୀ,ଉତ୍‌ଖାତ, ଧ୍ୱସ୍ତ, ବେଦପାଠରହିତ, (ପୁଂ.ବି° ) ପଞ୍ଚ ମହାଯଜ୍ଞାନୁଷ୍ଠାନ ରହିତ, (ପୁଂ.ବି) ରୋହିତମନୁଙ୍କ ପୁତ୍ର ।

ନିରାକ୍ରନ୍ଦ—ବି°.ଅଭିଯୋଗ ଶୂନ୍ୟ,ଯେଉଁ ସ୍ଥାନରେ କୌଣସି ଶବ୍ଦ ଶୁଣାଯାଏ ନାହିଁ ।

ନିରାକ୍ରିୟା—ସ୍ତ୍ରୀ.ବି.ବହିଷ୍କରଣ,ଅସ୍ୱୀକାର, ପ୍ରତିବନ୍ଧତା ।

ନିରାକ୍ରୋଶ—ବି°. (ବ.ବ୍ରୀ )ପ୍ରହୃଷ୍ଟ,ଆନନ୍ଦିତ, ଆକ୍ରୋଶହୀନ, ଅନଭିଯୁକ୍ତ ।

ନିରାଗ—ବି°. (ବ.ବ୍ରୀ ) ରାଗଶୂନ୍ୟ, କ୍ରୋଧହୀନ ।

ନିରାଗଃ—ବି°. (ନିର୍+ଆଗସ୍) ବ.ବ୍ରୀ;

ନିଷ୍ପାପ, ପାପଶୂନ୍ୟ ।

**ନିରାଗ୍ରହ**—ବି°. (ବ.ବ୍ରୀ) ଆଗ୍ରହହୀନ ।

**ନିରାଚାର**—ପୁ°. ବି°. (ବ.ବ୍ରୀ)ଅନାଚାର, ଆଚାରଭ୍ରଷ୍ଟ, ସଦାଚାରହୀନ, ବ୍ୟବସ୍ଥାହୀନ ।

**ନିରାଚ୍ଛନ୍ନ**—ବି°.(ବ.ବ୍ରୀ)ଅନାଚ୍ଛାଦିତ,ନଗ୍ନ ।

**ନିରାଜୀବ୍ୟ**—ବି°.(ନିର୍ + ଆଜୀବ୍ୟ)ଯାହାର ଜୀବିକୋପାୟ ନାହିଁ ।

**ନିରାଟ**—ଗ୍ରା. ବି°. ଅଚ୍ଛିଦ୍ର, ଟାଣ, ଦୃଢ଼, ନିଦା, ଯାହା ଫମ୍ପା ବା ଦଦରା ନୁହେ, ନିର୍ଦ୍ଦୟ, ତୀକ୍ଷ୍ଣ, ପ୍ରଖର, ଶୁଷ୍କ, ନିରସ, ନିର୍ଜଳ, ( କ୍ରି. ବି° ) ଅତ୍ୟନ୍ତ,ନିପଟ, ରୁକ୍ଷ, ସମ୍ପୂର୍ଣ୍ଣରୂପେ ।

**ନିରାଡ଼ମ୍ବର**—ବି°. ( ବ.ବ୍ରୀ ) ଆଡ଼ମ୍ବର ଶୂନ୍ୟ, ଆଡ଼ମ୍ବର ହୀନ ।

**ନିରାଣ**—ଗ୍ରା. ବି°. ନିରାଶ୍ରୟ ।

**ନିରାତଙ୍କ**—ବି°. ( ବ.ବ୍ରୀ ) ଭୟଶୂନ୍ୟ, ରୋଗରହିତ, ନିଃଶଙ୍କ,ଯେ କଷ୍ଟବୋଧ ନ କରେ, (ବି) ଶିବ ।

**ନିରାତପ**—ବି°. (ବ.ବ୍ରୀ ) ଆତପଶୂନ୍ୟ, ରୌଦ୍ରହୀନ, ଖରା ନଥିବା, ଛାୟାଯୁକ୍ତ, (ସ୍ତ୍ରୀ) ନିରାତପା, ରାତ୍ରି ।

**ନିରାତପଦ**—ପୁ°. ବି°. ଛାୟାସ୍ଥାନ ।

**ନିରାତପା**—ସ୍ତ୍ରୀ. ବି. ରାତ୍ରି ।

**ନିରାତ୍ମକ**—ବି°. ଆତ୍ମାଶୂନ୍ୟ, ପୃଥକ୍‌ଆତ୍ମା ବ୍ୟତୀତ । [ଅପମାନିତ ।

**ନିରାଦର**—ବି°. (ବ.ବ୍ରୀ) ଆଦରଶୂନ୍ୟ,

**ନିରାଦାନ**—ବି. ଗ୍ରହଣାଭାବ, ( ପୁ°.ବି ) ବୁଦ୍ଧବିଶେଷ ।

**ନିରାଦେଶ**—ପୁ°. ବି. ସମ୍ପୂର୍ଣ୍ଣଶୋଧ, ଋଣପରିଶୋଧ, ପ୍ରତିଦାନ, ପ୍ରତ୍ୟର୍ପଣ, (ବି°) ଆଦେଶ ଶୂନ୍ୟ ।

**ନିରାଧାନ**—ବି°. ଆଧାନରହିତ ।

**ନିରାଧାର**—ବି°. (ବ.ବ୍ରୀ ) ଆଧାର ବା ଆଶ୍ରୟସ୍ଥାନ,(ଗ୍ରା.ବି°)ନିର୍ବାରିତ,ନିରାହାର. ଯେ ସବୁଠାରେ ଅଛି ।

**ନିରାଧି**—ବି°. ( ନିର୍ + ଆଧି ) ବ.ବ୍ରୀ; ରୋଗଶୂନ୍ୟ, ଚିନ୍ତାଶୂନ୍ୟ, ନିଶ୍ଚିନ୍ତ, ମାନସିକ ପୀଡ଼ାରହିତ ।

**ନିରାନନ୍ଦ**—ବି°.(ବ.ବ୍ରୀ)ଯାହାର ଆନନ୍ଦ ନାହିଁ, ଶୋକାକୁଳ, ଦୁଃଖିତ,(ଗ୍ରା.ବି) ଅସନ୍ତୋଷ, ବିଷାଦ, ଶୋକ ।

**ନିରାପଦ୍**—ସ୍ତ୍ରୀ.ବି.ଦୁଃଖାଦି ପରିଶୂନ୍ୟତା, ନିର୍ବିଘ୍ନ ଅବସ୍ଥା,(ବି°.ବ.ବ୍ରୀ) ବିପନ୍ମୁକ୍ତ, ଯେଉଁଠାରେ ବିପତ୍ତିର ଆଶଙ୍କା ନାହିଁ, ନିର୍ବିଘ୍ନ, ନିଷ୍କଣ୍ଟକ ।

**ନିରାପଦରେ**—ଗ୍ରା. କ୍ରି. ବି°. ନିର୍ବିଘ୍ନରେ

**ନିରାବରଣ**—ବି°. ( ବ.ବ୍ରୀ ) ଯାହାର ଘୋଡ଼ଣି ବା ଓଢ଼ଣା ନାହିଁ ।

**ନିରାବାଧ**—ପୁ°.ବି. ପକ୍ଷାଭ୍ୟାସବିଶେଷ । ( ବି° ) ଆଧାରଶୂନ୍ୟ, ବ୍ୟଥାଶୂନ୍ୟ, ପ୍ରତିବନ୍ଧକ ଶୂନ୍ୟ, ଛଳଶୂନ୍ୟ, ଯାହା ଅନିଷ୍ଟକର ନୁହେ ।

**ନିରାବାଧକର**—ବି°. ଅନିଷ୍ଟ ବା ବ୍ୟଥାକର ନୁହେ । [ ଶୂନ୍ୟ ।

**ନିରାଭରଣ**—ପୁ°.ବି°.(ବ.ବ୍ରୀ )ଅଳଙ୍କାର-

**ନିରାମୟ**—ବି°. ( ବ.ବ୍ରୀ ) ରୋଗଶୂନ୍ୟ, ଆମୟରହିତ, ସ୍ୱାସ୍ଥ୍ୟକର, ଉପଦ୍ରବଶୂନ୍ୟ, ଅକଳୁଷିତ, ପବିତ୍ର, (ବି)ବନଶୃଗାଳ, ଶୂକର, ସ୍ୱାସ୍ଥ୍ୟ,ମଙ୍ଗଳ,କୁଶଳ, ମହାଦେବ, ନୃପବିଶେଷ ।

**ନିରାମାଳୁ**—ପୁ°. ବି. କପିତ୍ଥ, କଇଥ ।

**ନିରାମିଷ**—ବି°.(ବ.ବ୍ରୀ)ମାଂସାଦି ଆମିଷଶୂନ୍ୟ, ଯହିଁରେ ମାଛମାଂସାଦି ପଡ଼ି ନାହିଁ, ନିର୍ଲୋଭ, ଯେ ବେତନ ନିଏ ନାହିଁ, ମାଗଣା ।

**ନିରାମିଷାଶୀ**—ପୁ°. ବି°. ନିରାମିଷଭୋଜୀ, ଜିତେନ୍ଦ୍ରିୟ, ନିୟତାହାରୀ ।

**ନିରାମୋଦ**—ବି°.(ବ.ବ୍ରୀ)ଆମୋଦଶୂନ୍ୟ, ଆନନ୍ଦ ରହିତ ।

**ନିରାମୀ**—ପୁ°. ବି°.ଅତ୍ୟନ୍ତ ରମଣଶୀଳ ।

**ନିରାୟୁ**—ବି°. ( ବ.ବ୍ରୀ ) ଆୟୁରହିତ, କରଶୂନ୍ୟ, ଯହିଁରୁ ସୁଧ ମିଳେ ନାହିଁ ।

**ନିରାୟତ**—ବି°.ବିସ୍ତୃତ,ବଦ୍ଧ, ଅନାୟତ, ସଙ୍କୁଚିତ, ଅବିସ୍ତୃତ ।

**ନିରାୟତ**—ବି°. (ବ.ବ୍ରୀ) ଯାହାର ଅନ୍ତ ବା ବିନାଶ ଅତି ନିକଟ ।

**ନିରାୟବ୍ୟୟବାନ୍**—ପୁ°. ବି°. ଅଳସୁଆ, ଯାହାର ଆୟ ବ୍ୟୟର କିଛିମାତ୍ର ଚେଷ୍ଟା ନାହିଁ ।

**ନିରାୟାସ**—ବି°. ( ବ.ବ୍ରୀ ) ଆୟାସ ବା ଚେଷ୍ଟାରହିତ,ସହଜ, ସୁପ୍ରସ୍ତୁତ,ସଦ୍ୟସ୍କ

**ନିରାୟୁଧ**—ବି°.(ବ.ବ୍ରୀ)ନିରସ୍ତ୍ର, ଅସ୍ତ୍ରହୀନ, ଆୟୁଧହୀନ ।

**ନିରାରମ୍ଭ**—ପୁ°. ବି°. (ବ.ବ୍ରୀ) ଆରମ୍ଭ ବା କାର୍ଯ୍ୟଶୂନ୍ୟ, ଅଖଟୁ, କର୍ମକୁଣ୍ଠ ।

**ନିରାଳକ**—ପୁ°.ବି. ସମୁଦ୍ର ମତ୍ସ୍ୟବିଶେଷ ।

**ନିରାଲମ୍ବ**—ପୁ°.ବି°.(ବ.ବ୍ରୀ) ଅବଲମ୍ବନଶୂନ୍ୟ, ନିରାଶ୍ରୟ, ଏକାକୀ, ସମସ୍ତଙ୍କଠାରୁ ପୃଥକ୍, ବାସଶୂନ୍ୟ, ବନ୍ଧୁହୀନ, (ବି) ଯଜୁର୍ବେଦୀୟ ଉପନିଷଦ୍‌ବିଶେଷ ।

**ନିରାଲମ୍ବନ**—କ୍ଳୀ. ବି. ନିରାଶ୍ରୟ ।

**ନିରାଲମ୍ବା**—ସ୍ତ୍ରୀ. ବି. (ନିର୍ + ଆଲମ୍ବା) ଆକାଶମାଂସୀ, କ୍ଷୁଦ୍ର ଜଟାମାଂସୀ ।

**ନିରାଲୟ**—ବି°. ( ବ.ବ୍ରୀ ) ବାସଶୂନ୍ୟ, ଗୃହଶୂନ୍ୟ, ମରୁମୟ, ଉଦାସୀନ ।

**ନିରାଲସ୍ୟ**—ବି°. ଶ୍ରମଶୀଳ, ଉଦ୍ୟମୀ, ଆଲସ୍ୟରହିତ, ତତ୍ପର,(ବି) ଆଲସ୍ୟହୀନତା, ତତ୍ପରତା, ଶ୍ରମଶୀଳତା ।

**ନିରାଲାପ**—ପୁ°. ବି°. ( ବ.ବ୍ରୀ ) ଯେ କଥା କହୁନାହିଁ ।

**ନିରାଲୋକ**—ବି .(ବ.ବ୍ରୀ)ଆଲୋକରହିତ, ଅନ୍ଧାରୁଆ, ଅନ୍ଧ ।

**ନିରାବର୍ଷ**—ବି°. (ବ.ବ୍ରୀ) ବୃଷ୍ଟିରୁ ନିବାରିତ, ଯାହାଯୋଗୁଁ ବର୍ଷାଜଳ ପଡ଼େନାହିଁ, ବୃଷ୍ଟିହେତୁରୁ ରମଣୀୟ ।

**ନିରାଶ**—ବି°. ( ନିର୍ + ଆଶା ) ବ.ବ୍ରୀ; ଆଶାରହିତ, ନିଃସ୍ପୃହ, ବଞ୍ଚିତ, ହତାଶ, ନିର୍ମମ, ନିଷ୍କାମ, (ଗ୍ରା.କ୍ରି.ବି°) ନିଷ୍ଠୁରଭାବରେ, ନିର୍ଦ୍ଦୟରୂପରେ । [ କାରୀ ।

**ନିରାଶକ**—ବି°. (ନିରାଶ + କ) ନୈରାଶ-

**ନିରାଶକରିବା**—ଗ୍ରା.କ୍ରି.ଆଶାନ୍ୱିତ ବ୍ୟକ୍ତିର ଆଶାକୁ ପୂର୍ଣ୍ଣ ନ କରିବା । [ନିଃଶଙ୍କ ।

**ନିରାଶଙ୍କ**—ବି°.(ବ.ବ୍ରୀ) ଆଶଙ୍କାରହିତ,

**ନିରାଶତା**—ସ୍ତ୍ରୀ. ବି. ନିରାଶତ୍ୱ, ନିରାଶର ଭାବ ବା ଧର୍ମ ।

**ନିରାଶ୍ରୟ**—ବି°. (ବ.ବ୍ରୀ) ଉଦ୍ଦେଶ୍ୟହୀନ,

ଅଗଣ୍ଡର (କ୍ଷତ), ବି. ୯, ଭୈଶ୍ୟସ୍ଥାନତା ।
ନିରାଶା—ବି. (ନିର୍+ଆଶା) ନୈରାଶ୍ୟ, ବିଷାଦ, ଚିତ୍ତବୈକ୍ଲବ୍ୟ ।
ନିରାଶିତ୍ୱ—କ୍ଳୀ. ବି. ଆଶାରାହିତ୍ୟ,ନିରାଶ ହେବାର ଅବସ୍ଥା ।
ନିରାଶୀ—ପୁଂ.ବି. (ନିର୍+ଆଶା+ଇନ୍) ହତାଶ, ନିରାଶ, ନିଷ୍କାମ,ନିର୍ମମତା-ହୀନ ।
ନିରାଶୀଃ—ବିଂ. (ନିର୍+ଆଶିଷ୍)ଆଶଂସନଶୂନ୍ୟ, ଆଶୀର୍ବଚନଶୂନ୍ୟ, ଦୃଢ଼-ବୈରାଗ୍ୟବଶତଃ ବିଗତତୃଷ୍ଣ ।
ନିରାଶ୍ରମ—ବିଂ. (ବ.ବ୍ରୀ) ଆଶ୍ରମରହିତ, ଆଶ୍ରମଶୂନ୍ୟ, ଆଶ୍ରୟରହିତ ।
ନିରାଶ୍ରୟ—ବିଂ.ଆଶ୍ରୟରହିତ, ଅବଲମ୍ବନ-ରହିତ,ଅସହାୟ, ଅଶରଣ, ଅଦ୍ୱୈତ-ଦର୍ଶନଦ୍ୱାରା ଦେହେନ୍ଦ୍ରିୟାଦି ଅଭିମାନ-ଶୂନ୍ୟ । [ ଭଙ୍ଗ, ନୈରାଶ୍ୟ ।
ନିରାଶ୍ୱାସ—ବି. (ନିର୍+ଆଶ୍ୱାସ)ଆଶା-
ନିରାସ—ପୁଂ. ବି. (ନିର୍+ଅସ୍+ଅ) ବିନାଶନ, ଦୂରୀକରଣ, ପ୍ରତ୍ୟାଖ୍ୟାନ, ନିରାକରଣ, ନିକ୍ଷେପ,ତ୍ୟାଗ, ଖଣ୍ଡନ, (ବିଂ) ନିରାସକ,ନିରାଶ୍ରୟ,ଅସନସ୍ଥାନ ।
ନିରାସକ—ପୁଂ. ବିଂ. (ନିର୍+ଅସ୍+କ.ଅକ) ବହିଷ୍କର୍ତ୍ତା ।
ନିରାସଙ୍ଗ—ପୁଂ. ବିଂ. (ବ.ବ୍ରୀ) ନିଜ ଶକ୍ତିର ବ୍ୟବହାର କରିବା ବିଷୟରେ ବାଧା ପାଇ ନ ଥିବା ବ୍ୟକ୍ତି ।
ନିରାସନ—କ୍ଳୀ.ବି. (ନିର୍+ଆସ+ଅନ) ନିରାସ ଦେଖ, (ବିଂ) ଆସନରହିତ, ଉପବେଶନ ସ୍ଥାନଶୂନ୍ୟ ।
ନିରାସ୍ଥ—ପୁଂ. ବିଂ. (ବ.ବ୍ରୀ) କୌଣସି ବିଷୟରେ ଯାହାର ଆସ୍ଥା ନାହିଁ, ଯେ ଦତ୍ତଚିତ୍ତ ନୁହେଁ ।
ନିରାସ୍ପଦ—ପୁଂ. ବିଂ. ( ବ.ବ୍ରୀ ) ସତତ ଗତିବିଶିଷ୍ଟ, ଚଞ୍ଚଳ,ଅଶାନ୍ତ, ବାସହୀନ, ଆଗହୀନ, ନିରଂଶ, ଉଦ୍ଦେଶ୍ୟବିହୀନ ।
ନିରାସ୍ୱାଦ—ବିଂ. (ବ.ବ୍ରୀ) ଆସ୍ୱାଦହୀନ, ଅରୁଚିକର । [ ରହିତ ।
ନିରାସ୍ୱାଦ୍ୟ—ବିଂ.ଆସ୍ୱାଦରହିତ,ସମ୍ଭୋଗ-
ନିରାହ୍ୱାବାନ୍—ପୁଂ.ବିଂ. ଆହ୍ୱାନରହିତ, ପ୍ରାର୍ଥନାରହିତ ।
ନିରାହାର—ବିଂ. ( ନିର୍+ଆହାର ) ବ.ବ୍ରୀ; ଆହାରରହିତ, ଉପବାସୀ, (ବି) ଆହାରାଭାବ, ଉପବାସ, ଲଙ୍ଘନ ।
ନିରାହ୍ୱାସ୍ୱ—ପୁଂ. ବିଂ. ଅନାହ୍ୱାସ୍ୱ ।
ନିରାହ୍ଲାଦ—ବିଂ. (ବ.ବ୍ରୀ) ନିରାନନ୍ଦ ।
ନିରେଖିବା—ଗ୍ରା. କ୍ରି. ନିରୀକ୍ଷଣ କରିବା, ଦେଖିବା,ମନୋଯୋଗ ପୂର୍ବକ ଦେଖିବା, ଏକଦୃଷ୍ଟିରେ ଚାହିଁବା ।
ନିରିଙ୍ଗ—ବିଂ. ନିଶ୍ଚଳ, ଅଚଳ, ନିଷ୍କମ୍ପ ।
ନିରିଙ୍ଗିଣୀ—ବି. (ନିର+ଇଙ୍ଗ+ଇନ୍+ଈ) ତିରସ୍କରିଣୀ,ଯବନିକା,ପରଦା, ଚିକ୍, ଝିଲିମିଲି ।
ନିରିଚ୍ଛ—ବିଂ. ( ନିର୍+ଇଚ୍ଛା ) ବ.ବ୍ରୀ; ଇଚ୍ଛାଶୂନ୍ୟ, ନିଷ୍କାମ, ଉଦାସୀନ ।
ନିରିନ୍ଦ୍ରିୟ—ପୁଂ.ବିଂ.(ବ.ବ୍ରୀ)ଇନ୍ଦ୍ରିୟଶୂନ୍ୟ, ଚକ୍ଷୁକର୍ଣ୍ଣାଦି ଇନ୍ଦ୍ରିୟରହିତ, ଦୁର୍ବଳ, ନପୁଂସକ,ବନ୍ଧ୍ୟା,ପ୍ରମାଣରହିତ,ବ୍ୟକ୍ତିତ୍ୱ-ହୀନ ।
ନିରୀକ୍ଷକ—ପୁଂ. ବିଂ. (ନିର+ଈକ୍ଷ+କ.ଅକ) ଯେ ନିରୀକ୍ଷଣ କରେ,ଦର୍ଶକ, ପର୍ଯ୍ୟବେକ୍ଷଣକାରୀ, ତତ୍ତ୍ୱାବଧାରକ, ପରିଦର୍ଶକ ।
ନିରୀକ୍ଷଣ—କ୍ଳୀ. ବି. (ନିର+ଈକ୍ଷ୍+ଭା. ଅନ) ଦର୍ଶନ, ଦେଖିବା,ଅବଲୋକନ, (ବିଂ) ଦର୍ଶକ ।
ନିରୀକ୍ଷା—ସ୍ତ୍ରୀ.ବି. (ନିର୍+ଈକ୍ଷ୍+ଅ+ଆ) ଦର୍ଶନ, ଦେଖିବା, ଆଶା, ନୟନ-ଦ୍ୱାରା ଅନୁଭବ କରିବା ।
ନିରୀକ୍ଷିତ—ବିଂ. (ନିର୍+ଈକ୍ଷ୍+ର୍ମ.ତ) ଅବଲୋକିତ, ଦୃଷ୍ଟ ।
ନିରୀକ୍ଷ୍ୟ—ବିଂ. (ନିର୍+ଈକ୍ଷ୍+ର୍ମ.ଯ) ଦର୍ଶନଯୋଗ୍ୟ, ବିବେଚ୍ୟ, ଯାହାକୁ ନିରୀକ୍ଷଣ କରାଯିବ ।
ନିରୀକ୍ଷମାଣ—ବିଂ. (ନିର୍+ଈକ୍ଷ+ର୍ମ. ଆନ) ଦୃଶ୍ୟମାନ, ଯାହାକୁ ନିରୀକ୍ଷଣ କରାଯାଉଅଛି ।
ନିରୀଖ—ଯା.ବି. ମୂଲ୍ୟତାଲିକା, ନିରୂପିତ ମୂଲ୍ୟ, ଟଙ୍କାର ହାର ।
ନିରୀତି—ବିଂ.(ବ.ବ୍ରୀ) ଅତିବୃଷ୍ଟ୍ୟାଦିଶୂନ୍ୟ, କୃଷି ପ୍ରତିବନ୍ଧକ ବୃଷ୍ଟି ପ୍ରଭୃତି ରହିତ ।
ନିରୀତିକ—ବିଂ. (ନିର୍+ଈତି+କ) ଶୁଭସୂଚକ, ଶୁଭଶକୁନବିଶିଷ୍ଟ ।
ନିରୀଶ—କ୍ଳୀ.ବି. (ବ.ବ୍ରୀ) ଲଙ୍ଗଳମୁଣ୍ଡା, (ବିଂ) ଈଶଶୂନ୍ୟ, ନାସ୍ତିକ, ନିରୀଶ୍ୱର ।
ନିରୀଶ୍ୱର—ବିଂ. (ବ.ବ୍ରୀ)ଈଶ୍ୱରରହିତ-ବାଦ, ତଦ୍ବାଦଯୁକ୍ତ, ନାସ୍ତିକ, (ବି) ନିରୀଶ୍ୱରବାଦ ।
ନିରୀଶ୍ୱରବାଦ—ପୁଂ.ବି. ଈଶ୍ୱର ନାହାନ୍ତି ଏହି ମତବାଦ ବା ସିଦ୍ଧାନ୍ତ ।
ନିରୀଶ୍ୱରବାଦୀ—ପୁଂ.ବିଂ. (ନିରୀଶ୍ୱର+ବଦ+ଇନ୍) ନାସ୍ତିକ୍ୟବାଦୀ, ନାସ୍ତିକ ।
ନିରୀଷ—କ୍ଳୀ.ବି. ନିରୀଶ ଦେଖ ।
ନିରୀହ—ପୁଂ. ବିଂ. ( ନିର୍+ଈହା ) ବ.ବ୍ରୀ; ଚେଷ୍ଟାଶୂନ୍ୟ, ନିଶ୍ଚେଷ୍ଟ, ଉଦାସୀନ, ଶାନ୍ତପ୍ରକୃତି,ଗତିହୀନ,ଯେ ଅନ୍ୟ ବିଷୟରେ ହସ୍ତକ୍ଷେପ କରେ ନାହିଁ, ସ୍ଥିର, ନିଃସ୍ପୃହ, ନିର୍ମଳ, ତଟସ୍ଥ ।
ନିରୀହା—ସ୍ତ୍ରୀ ବି. (ନିର୍+ଈହ+ଆ) ଚେଷ୍ଟାବିରୋଧି ବ୍ୟାପାର,ନିଶ୍ଚେଷ୍ଟା ।
ନିରୁଆଁ—ପ୍ରା.(ସମ୍ବ)ବିଂ. ଖାଣ୍ଟି,ଅମିଶ୍ରିତ; ନିରୋଳା, ନିରୈତା ।
ନିରୁକ୍ତ—କ୍ଳୀ. ବି. ( ନିର୍+ବଚ୍+ତ ) ନିର୍ବଚନ, ବେଦର ବ୍ୟାଖ୍ୟାନ ଗ୍ରନ୍ଥ, (ବିଂ)ସମ୍ୟକ୍ କଥିତ,ବ୍ୟାଖ୍ୟାତ, ବର୍ଣ୍ଣିତ, ଚତୁର, ନିଷ୍ପ୍ରରୂପେ କଥିତ, ଅବ୍ୟବ-ହାର୍ଯ୍ୟ, ପୁରାତନ, ଉଚ୍ଚାରିତ,ପ୍ରକାଶିତ, (ନିର୍+ଉକ୍ତ) ଅକଥିତ, ଦୁର୍ବୋଧ, ମୀମାଂସିତ ।
ନିରୁକ୍ତକାର—ପୁଂ. ବି. (ନିରୁକ୍ତ+କୃ+କ.ଅ) ଯାସ୍କ,ଶାକପୂଣି, ସ୍ଥୌଲଷ୍ଠିବୀ, ସ୍କନ୍ଦସ୍ୱାମୀ ପ୍ରଭୃତି, ମେଘଦୂତର ଜଣେ ଟୀକାକାର ।
ନିରୁକ୍ତକୃତ୍—ପୁଂ. ବି. (ନିରୁକ୍ତ+କୃ+କ୍ୱିପ୍) ନିରୁକ୍ତକାର ଦେଖ ।
ନିରୁକ୍ତି—ସ୍ତ୍ରୀ. ବି. (ନିର୍+ବଚ୍+ତି) ବେଦାଙ୍ଗ ଗ୍ରନ୍ଥବିଶେଷ, ନିର୍ବଚନ,

ନିଃଶେଷରେ କଥନ, ପ୍ରକୃତ ଓ ପ୍ରତ୍ୟ-
ୟାଦି ଅବୟବାର୍ଥ କଥନଦ୍ୱାରା ସମୁଦ-
ତାର୍ଥ ବୋଧନ ।
ନିରୁକ୍ତିସମ୍ମିତ୍ର—ସ୍ତ୍ରୀ.ବ. ଧର୍ମଶିକ୍ଷା ନିମନ୍ତେ
ଐକାନ୍ତିକ ଇଚ୍ଛା ।
ନିରୁଚ୍ଛ୍ୱାସ—ବି°. ସଙ୍କୀର୍ଣ୍ଣ, ଯେଉଁଠାରେ
ବହୁତ ଲୋକର ସମାଗମ ହୋଇଅଛି,
ଅପ୍ରଶସ୍ତ, ଆନନ୍ଦବର୍ଜିତ,କ୍ଷୁବ୍ଧ, ଲହରୀ-
ରହିତ, ଶ୍ୱାସରହିତ, ଅଚେତନ ।
ନିରୁଜ—ତ୍ରି. ବି°. ରୋଗରହିତ, ସୁସ୍ଥ ।
ନିରୁଢ଼ା—ତ୍ରି. ବି°. ଖାଣ୍ଟି, ଅମିଶ୍ରିତ,
ବିଶୁଦ୍ଧ, ନିରୋଳା, ଅସଲ, ଅକୃତ୍ରିମ ।
ନିରୁତ୍ତର—ବି°.(ବ.ବ୍ରୀ) ନିର୍ବାକ୍,ଯାହାକୁ
ଚୁପ୍ କରି ଦିଆଯାଏ,ଉତ୍ତରରହିତ,ମୂକ,
ମୌନୀ, ଯାହା ଅପେକ୍ଷା ବଡ଼ କେହି
ନାହିଁ, ରୋଗାଦିହେତୁରୁ ବା ଅପ୍ରସ୍ତୁତ
ହେତୁରୁ ଯେ ଉତ୍ତର ଦେଇ ନ ପାରେ ।
ନିରୁତ୍ତାପ—ବି°. (ବ.ବ୍ରୀ) ଉତ୍ତାପଶୂନ୍ୟ,
ଶୀତଳ, ରାଗଦ୍ୱେଷାଦି ଶୂନ୍ୟ ।
ନିରୁତ୍ପାତ—ବି°. (ବ.ବ୍ରୀ) ଉତ୍ପାତହୀନ,
ଉପଦ୍ରବଶୂନ୍ୟ, ଦୁଃଖଶୂନ୍ୟ ।
ନିରୁତ୍ସବ—ବି°,ଉତ୍ସବହୀନ,ଉତ୍ସବରହିତ ।
ନିରୁତ୍ସାହ—ପୁଂ.ବି°. (ବ.ବ୍ରୀ) ଉତ୍ସାହ-
ହୀନ, ଉଦ୍ୟମଶୂନ୍ୟ, ଅଳସ, ( ବି° )
ଉତ୍ସାହର ଅଭାବ ।
ନିରୁତ୍ସୁକ—ପୁଂ.ବି°.ଔତ୍ସୁକ୍ୟହୀନ,ନିରତି-
ଶୟ ବା ଅତ୍ୟନ୍ତ ଆଗ୍ରହଯୁକ୍ତ, ଆଗ୍ରହ-
ହୀନ, (ବି) ରୈବତଙ୍କ ମନୁଙ୍କର ପୁତ୍ର-
ବିଶେଷ ।
ନିରୁଦକ—ବି°.(ବ.ବ୍ରୀ)ଜଳହୀନ,ଜଳା-
ଭାବ ।
ନିରୁଦ୍ଦିଷ୍ଟ—ବି°(ନିର୍+ଉତ୍+ଦିଶ୍+
ର୍ମ.ତ)ଉଦ୍ଦେଶରହିତ,ଯାହାର ଖୋଜ-
ଖବର ମିଳୁନାହିଁ, (ସ୍ତ୍ରୀ) ଦିଷ୍ଟା ।
ନିରୁଦ୍ଦେଶ—ବି°. ( ବ.ବ୍ରୀ ) ଅଜ୍ଞାତ,
ଯାହାର କୌଣସି ସନ୍ଧାନ ମିଳୁନାହିଁ ।
ନିରୁଦ୍ଧ—ପୁଂ.ବି°. (ନି+ରୁଧ୍+ର୍ମ.ତ)
ବାଧାପ୍ରାପ୍ତ,ସଂରୁଦ୍ଧ, ନିବାରିତ,ବେଷ୍ଟିତ,
ପ୍ରତିବନ୍ଧ,ସ୍ଥଗିତ, ରୋଷବିଶିଷ୍ଟ, ଆବଦ୍ଧ,
ଅବରୁଦ୍ଧ ।
ନିରୁଦ୍ଧଗୁଦ—ପୁଂ.ବି.କ୍ଷୁଦ୍ର ରୋଗବିଶେଷ
ନିରୁଦ୍ଧପ୍ରକାଶ—ପୁଂ.ବି.ମେଢ୍ରଜାତ କ୍ଷୁଦ୍ର
ରୋଗବିଶେଷ ।
ନିରୁଦ୍ୟତ—ପୁଂ.ବି°. (ନିର୍+ଉଦ୍ୟତ)
ଅନୁଦ୍ୟତ, ଅପ୍ରସ୍ତୁତ, ଅପ୍ରବୃତ୍ତ ।
ନିରୁଦ୍ୟତ—ବି°. ନିରୁଦ୍ୟୋଗ, ନିରୁ-
ଦ୍ୟତ, ଅପ୍ରସ୍ତୁତ, (ବି) ନିରୁଦ୍ୟମ ।
ନିରୁଦ୍ୟମ—ପୁଂ. ବି°. (ବ.ବ୍ରୀ) ଉଦ୍ୟମ-
ଶୂନ୍ୟ, ଉଦ୍ୟମରହିତ, ନିଶ୍ଚେଷ୍ଟ,ଅଳସ,
(ବି) ଆଳସ୍ୟ, ନିଶ୍ଚେଷ୍ଟତା ।
ନିରୁଦ୍ୟମୀ—ପୁଂ. ବି°. (ନିର୍+ଉଦ୍ୟ-
ମିନ୍) ନିରୁଦ୍ୟମ ଦେଖ ।
ନିରୁଦ୍ୟୋଗ—ପୁଂ.ବି°.(ବ.ବ୍ରୀ) ନିରୁଦ୍ୟମ
ଦେଖ,(ବି) ଉଦ୍ୟମର ଅଭାବ,ଆଳସ୍ୟ ।
ନିରୁଦ୍ୱିଗ୍ନ—ପୁଂ.ବି°. (ବ.ବ୍ରୀ) ଉଦ୍ବେଗ-
ରହିତ, ଅଶଙ୍କିତ, ନିଶ୍ଚିନ୍ତ ନିର୍ଭାବନ,
ନିରାକୁଳ, ସ୍ଥିର, ଶାନ୍ତ, ଅକାତର ।
ନିରୁଦ୍ବେଗ—ପୁଂ.ବି°.(ବ.ବ୍ରୀ)ନିରୁଦ୍ୱିଗ୍ନ
ଦେଖ, (ବି) ନିରୁଦ୍ୱିଗ୍ନତା ।
ନିରୁପକାରୀ—ପୁଂ. ବି°. ଅନୁପକାରୀ ।
ନିରୁପକ୍ରମ—ତ୍ରି.ବି°. (ବ.ବ୍ରୀ) ଉପକ୍ରମ-
ଶୂନ୍ୟ ।
ନିରୁପଚାର—ପୁଂ. ବି° ଚିକିତ୍ସାହୀନ,
ସେବାଶୂନ୍ୟ, ସଜ୍ଜାହୀନ, ଅପ୍ରଚଳିତ,
ଉପାୟହୀନ, (ବି) ଅନଭ୍ୟାସ, ସେବା-
ଶୂନ୍ୟତା ।
ନିରୁପଦ୍ରବ—ବି°. (ବ.ବ୍ରୀ) ଉପଦ୍ରବ-
ରହିତ, ଉତ୍ପାତହୀନ, ଦୌରାତ୍ମ୍ୟହୀନ,
ଆପଦ୍‌ହୀନ, ଶାନ୍ତ, (ବି) ବିଷ୍ଣୁ, ଶାନ୍ତ,
ଉପଦ୍ରବର ଅଭାବ ।
ନିରୁପଦ୍ରବତା—ସ୍ତ୍ରୀ. ବି. ଉତ୍ପାତରାହିତ୍ୟ,
ଉପଦ୍ରବଶୂନ୍ୟତା ।
ନିରୁପଦ୍ରବୀ—ପୁଂ. ବି°. (ନିରୁପଦ୍ରବ+
ଇନ୍) ଯେ ଉପଦ୍ରବ କରେନାହିଁ ।
ନିରୁପଦ୍ରୁତ—ବି°. (ନିର୍+ଉପ+ଦ୍ରୁ
+କ୍ତ.ତ) ଉପଦ୍ରବରହିତ, (ବି) ଉପ-
ଦ୍ରବର ଅଭାବ, ଶାନ୍ତ ।
ନିରୁପଧି—ବି°. ଦୃଢ଼, ଶଠତାବର୍ଜିତ ।
ନିରୁପପତ୍ତି—ବି°.ଉପପତ୍ତିଶୂନ୍ୟ,ଯାହାର
ଉପପତ୍ତି ନାହିଁ ।
ନିରୁପପଦ—ତ୍ରି. ବି°. (ବ.ବ୍ରୀ)ଉପପଦ-
ଶୂନ୍ୟ, ଉପପଦହୀନ ।
ନିରୁପପ୍ଳବ—ବି°.ଉପପ୍ଳବରହିତ, ଉତ୍ପାତ-
ରହିତ ।
[ ଉପଭୋଗହୀନ ।
ନିରୁପଭୋଗ—ବି°. ଉପଭୋଗରହିତ,
ନିରୁପମ—ବି°. (ନିର୍+ଉପମା)ବ.ବ୍ରୀ;
ଅନୁପମ, ଅପ୍ରତିମ, ଉପମାରହିତ,
ତୁଳନାରହିତ ।
ନିରୁପମା—ସ୍ତ୍ରୀ. ବି. ଗାୟତ୍ରୀ ।
ନିରୁପରୋଧ—ବି°. (ବ.ବ୍ରୀ) ଉପରୋଧ-
ରହିତ, ଅପକ୍ଷପାତୀ, ମଧ୍ୟସ୍ଥ, (ବି)ଉପ-
ରୋଧହୀନତା ।
ନିରୁପଲ—ବି°. (ବ.ବ୍ରୀ) ପ୍ରସ୍ତରରହିତ,
ପଥର ନ ଥିବା ।
ନିରୁପଲେପ—ବି°. ଉପଲେପରହିତ,
ପ୍ରଲେପଶୂନ୍ୟ ।
ନିରୁପସର୍ଗ—ବି°. ଉତ୍ପାତରହିତ, ଅମ-
ଙ୍ଗଳରହିତ, ଉପସର୍ଗହୀନ ।
ନିରୁପସ୍କୃତ—ବି°. ପବିତ୍ର, ସ୍ୱାଭାବିକ,
ଅକୃତ୍ରିମ, ନୈସର୍ଗିକ । [ ଅକ୍ଷତ ।
ନିରୁପହତ—ବି°.ଅନାହତ, ଶୁଭସୂଚକ,
ନିରୁପାଖ୍ୟ—ବି°. (ବ.ବ୍ରୀ) ଅସତ୍,ଅବା-
ସ୍ତବ, (ବି) ଅବାସ୍ତବ ପଦାର୍ଥ, ବନ୍ଧ୍ୟା-
ପୁତ୍ରାଦି, ବ୍ରହ୍ମ ।
ନିରୁପାଧି—ବି°. (ବ.ବ୍ରୀ) ଉପାଧିଶୂନ୍ୟ,
ଅହେତୁକ, ସତ୍ତ୍ୱ ପ୍ରକୃତିକ, ଅକପଟ,
ଅମାୟିକ, ପରଶୁଦ୍ଧ, ନିଃସ୍ୱରୂପ, ଅକି-
ଞ୍ଚନମାୟ, ନିର୍ଦ୍ଦୋଷ,ଅକାରଣ,ନିର୍ଗୁଣ,
ଉଦ୍ଦେଶ୍ୟହୀନ, (ବି) ବିଷ୍ଣୁ, ପରବ୍ରହ୍ମ ।
ନିରୁପାୟ—ପୁଂ.ବି°. (ବ.ବ୍ରୀ) ଉପାୟ-
ରହିତ, ଉପାୟହୀନ, ନିରାଶ୍ରୟ,ନିରବ-
ଲମ୍ବନ, (ବି) ଉପାୟାଭାବ ।
ନିରୁପେକ୍ଷ—ବି°. ( ବ.ବ୍ରୀ ) ଅନପେକ୍ଷ,
ଉପେକ୍ଷାଶୂନ୍ୟ, ଔଦାସୀନ୍ୟଶୂନ୍ୟ, ସାଧୁ ।
ନିରୁପେକ୍ଷା—ବି(ନିର୍+ଉପେକ୍ଷ)ଆଦର,
ସମ୍ଭ୍ରମ, ମନୋଯୋଗ ।
ନିରୁପ୍ତ—ବି°. (ନିର୍+ବପ୍+ତ)ସଙ୍କଳ୍ପ-

ଦ୍ୱାରେ ପୃଥକ୍ ପୃଥକ୍ ଭାବେ ଭାଗ କରେ ଦଉ ।

ନିରୁଷ୍ଣୀଷ—ବିଂ. (ବ.ବ୍ରୀ) ଉଷ୍ଣୀଷଶୂନ୍ୟ, ଶୂନ୍ୟମସ୍ତକ ।

ନିରୁଷ୍ମା—ପୁଂ. ବିଂ. ଉଷ୍ମାରହିତ, ଶୀତଳ ।

ନିରୂଢ଼—ପୁଂ. ବିଂ. ( ନି+ରୁହ୍+ତ ) ପ୍ରସିଦ୍ଧ, ସର୍ବସାଧାରଣ, ସମବେତ, ସ୍ୱତଃସିଦ୍ଧ, ଉତ୍ପନ୍ନ, ( ନିର୍+ଊଢ଼ ) ଅବିବାହିତ, (ବି) ରୂଢ଼ି ଲକ୍ଷଣାର୍ଥ ପ୍ରତିପାଦକ ଶବ୍ଦ, ଶବ୍ଦର ଲୋକ ପ୍ରଚଳିତ ଅର୍ଥ, ପଶୁଯାଗବିଶେଷ ।

ନିରୂଢ଼ମୂଳ—ବିଂ. ଯାହାର ମୂଳ ଦୃଢ଼ଭାବରେ ଥାଏ ।

ନିରୂଢ଼ଲକ୍ଷଣା—ସ୍ତ୍ରୀ. ବି. (ବ୍ୟାକରଣ) ଲକ୍ଷଣାଭେଦ, ଶକ୍ତିତୁଲ୍ୟ ଲକ୍ଷଣା, ପ୍ରକୃତି ପ୍ରତ୍ୟୟ ସଙ୍ଗେ ସମ୍ପର୍କରହିତ ଲକ୍ଷଣା ।

ନିରୂଢ଼ା—ସ୍ତ୍ରୀ. ବି. (ନିରୂଢ଼+ଆ) ରୂଢ଼ି ହେତୁକ ଲକ୍ଷଣା, (ନିର୍+ଊଢ଼ା; ସ୍ତ୍ରୀ. ବି) ଅବିବାହିତା ।

ନିରୂଢ଼ି—ସ୍ତ୍ରୀ. ବି. (ନି+ରୁହ୍+କ୍ତି) ପ୍ରସିଦ୍ଧି, ନିରୂଢ଼ ଲକ୍ଷଣା, ଲୋକପ୍ରସିଦ୍ଧି, ଯୋଗ୍ୟତା ।

ନିରୂପ—ବିଂ.(ବ.ବ୍ରୀ)ରୂପହୀନ, (ପୁଂ.ବି) ବାୟୁ, ଦେବତା, (କ୍ଲୀ.ବି)ଆକାଶ ।

ନିରୂପକ—ବିଂ. (ନି+ରୂପ+କ.ଅକ) ନିରୂପଣକାରୀ, ନିର୍ଣ୍ଣାୟକ, ନିଶ୍ଚାୟକ

ନିରୂପକତା—ସ୍ତ୍ରୀ.ବି.ସ୍ୱରୂପସମ୍ବନ୍ଧବିଶେଷ

ନିରୂପଣ—କ୍ଲୀ.ବି.(ନି+ରୂପ୍+ଣିଚ୍+ଅ.ଅନ) ନିର୍ଣ୍ଣୟ, ନିର୍ଦ୍ଧାରଣ, ସ୍ଥିରୀକରଣ, ଆଲୋକ, ବିଚାର, ଦର୍ଶନ, ନିଯୋଗ, ବିବରଣ, ଅବଲୋକ, ବିତର୍କ, ଅନୁସନ୍ଧାନ, ରୂପ, ଆକାର ।

ନିରୂପଣୀୟ—ବିଂ. ( ନି+ରୂପି+ମିଁ. ଅନୀୟ) ନିରୂପଣଯୋଗ୍ୟ, ଅବଧାରଣଯୋଗ୍ୟ, ଅବଲୋକନୀୟ, ଚିନ୍ତନୀୟ, ବିଚାର୍ଯ୍ୟ, ବିତର୍କନୀୟ, ବର୍ଣ୍ଣନୀୟ, ନିଯୋଗ୍ୟ ।

ନିରୂପିତ—ବିଂ.(ନି+ରୂପ-ଣିଚ୍+ମିଁ.ତ) କୃତନିରୂପଣ, ନିଯୁକ୍ତ, ନିର୍ଣ୍ଣୀତ, ସ୍ଥିରୀକୃତ, ନିଶ୍ଚିତ, ବିଚାରିତ, ଦୃଷ୍ଟ, ଅବଧାରିତ, ଆଲୋଚିତ, ଆରୋପିତ ।

ନିରୂପିତ—ସ୍ତ୍ରୀ.ବି. ନିଷ୍ଟସୂତ୍ର, ସ୍ଥିରଭାବବସ୍ତ, ଶବ୍ଦର ବ୍ୟାଖ୍ୟାନ ।

ନିରୂପ୍ୟ—ବିଂ.ଦୃଷ୍ଟ, ସ୍ଥିରୀକୃତ, ବ୍ୟାଖ୍ୟାତ

ନିରୂଷ୍ମ—ବିଂ. ଗରମ ନ ଥିବା, ଶୀତଳ ।

ନିରୂଦ—ପୁଂ. ବି. ( ନିର୍+ଉହ୍+ଅ) ବସ୍ତିଭେଦ ।

ନିରୂଦଣ—କ୍ଲୀ. ବି. ସ୍ଥିରତ୍ୱ, ନିଷ୍ଠତ୍ୱ ।

ନିରେନ—ପୁଂ. ବି. ଚିରକାଳବ୍ୟାପୀ, ଚିରକାଳସମ୍ବନ୍ଧୀୟ, ଶାଙ୍କନୁହେ, ପରିପୂର୍ଣ୍ଣ ।

ନିରେଖିବା—ଗ୍ରା. କ୍ରି. ନିରୀକ୍ଷଣ କରିବା, ଚାହିଁବା, ଅତ୍ୟନ୍ତ ମନୋଯୋଗପୂର୍ବକ ଚାହିଁବା ।

ନିରେ—ଗ୍ରା.ବି.ରେମର ଜଟିଳ ନିଷ୍ଠୁର ଗଜା ।

ନିରୋଦ୍ଧବ୍ୟ—ବିଂ(ନି+ରୁଦ୍ଧ+ମିଁ.ତବ୍ୟ) ଆବରଣୀୟ, ପ୍ରତିରୋଧନୀୟ ।

ନିରୋଧ—ପୁଂ. ବି. ( ନି+ରୁଧ୍+ଅ ) କ୍ଷତ, ଧ୍ୱଂସ, ନାଶ, ବାରଣ, ପ୍ରତିକୂଳତା, ଘୃଣା, ଗତିରୋଧ, ନିଗ୍ରହ, ବାଧା, ବନ୍ଧ, ଅଟକ, ଘେର, କାରାବନ୍ଧନ, ପ୍ରଳୟ, ଯୋଗାଙ୍ଗବିଶେଷ ।

ନିରୋଧକ—ବିଂ. ( ନି+ରୁଧ୍+ଅକ ) ନିରୋଧକାରକ, ବାଧାଦେଉଥିବା ।

ନିରୋଧନ—କ୍ଲୀ. ବି. ( ନି+ରୁଧ୍+ଅ. ଅନ)ଗତିରୋଧ, ବସ୍ତୁ ପ୍ରକୃତିରହିତକରଣ, ରୋକିବା ।

ନିରୋଧିବା—ଗ୍ରା. କ୍ରି. ଅଟକାଇବା, ବାଧା ଦେବା, ବନ୍ଦୀକରିବା, ଅବରୋଧ କରିବା, ବାଧକରିବା, ମନାକରିବା ।

ନିରୋଧୀ—ପୁଂ.ବିଂ. (ନି+ରୁଧ୍+ଇନ୍) ପ୍ରତିବନ୍ଧକ, ନିରୋଧକାରୀ ।

ନିରୋଳା—ଗ୍ରା. ବିଂ. ବିଜନ, ନିର୍ଜନ, ଦୁଷ୍ପ୍ରସ୍ତ, ଅବିମିଶ୍ରିତ, ନିଭୃତ ।

ନିରୋଳିବା—ଗ୍ରା.କ୍ରି. ଉନ୍ମୀଳନ କରିବା, ପ୍ରକାଶକରିବା, ଏକ ଦୃଷ୍ଟିରେ ଚାହିଁ ରହିବା, ନିରେଖିବା ।

ନିରୋଳେ—ଗ୍ରା.କ୍ରି. ବିଂ. ନୀରବହୋଇ, ନିଃଶବ୍ଦରେ, ଏକୁଟିଆ ହୋଇ, ଉଦାସୀନଭାବରେ, ଏକାଗ୍ରଚିତ୍ତରେ ।

ନିରୋଷ୍ଠକ—ଗ୍ରା.ବି. ଶବ୍ଦାଳଙ୍କାରବିଶେଷ, ଯେଉଁ ପଦ୍ୟରେ ବ୍ୟବହୃତ ଶବ୍ଦମାନଙ୍କରେ ଓଷ୍ଠ୍ୟବର୍ଣ୍ଣର ଅକ୍ଷର, (ଅର୍ଥାତ୍- ଉ,ଊ.ପ.ଫ,ବ,ଭ,ମ, ଏସବୁ) ନଥାଏ, ଓଷ୍ଠ୍ୟବର୍ଣ୍ଣରହିତ ବାକ୍ୟ ।

ନିର୍ଋତି—ସ୍ତ୍ରୀ.ବି. (ନିର୍+ଋତି)ଅଲକ୍ଷ୍ମୀ, ଉଦ୍ଦାଳକ ଋଷିଙ୍କ ପତ୍ନୀ, ଅସୌଭାଗ୍ୟ, ଦୁଃଖ, ଉପଦ୍ରବ, ଅଧର୍ମଙ୍କ କନ୍ୟା, ମୃତ୍ୟୁ ଭାର୍ଯ୍ୟା, ମୂଳାନକ୍ଷତ୍ର, ( ପୁଂ.ବିଂ ) ଦକ୍ଷିଣ ଦିଗ୍‌ପତି, ରୁଦ୍ରବିଶେଷ, (ବିଂ) ଉପଦ୍ରବପୂର୍ଣ୍ଣ । [ ବେଦ ।

ନିର୍ଋଥ—ବି. (ନିର୍+ଋ+ଥ) ସାମ-

ନିର୍ଗ—ପୁଂ.ବି. ( ନିର୍+ଗମ୍+ଅ ) ଦେଶ ।

ନିର୍ଗତ—ବିଂ. (ନିର୍+ଗମ୍+ତ)ବହିଃପ୍ରାପ୍ତ, ବହିର୍ଗତ, ନିଷ୍କ୍ରାନ୍ତ, ଏକଆଡ଼େ ଭିତରେ ପଶି ଅନ୍ୟଆଡ଼େ ବାହାରିଯିବା ।

ନିର୍ଗତି—ବି. (ନିର୍+ଗତି) ନିର୍ଗମ, ବହିର୍ଗମନ ସ୍ଥାନ ।

ନିର୍ଗନ୍ଧ—ବିଂ. (ବ.ବ୍ରୀ) ଗନ୍ଧଶୂନ୍ୟ, (ସ୍ତ୍ରୀ) ନିର୍ଗନ୍ଧା, (ବି) ନିର୍ଗନ୍ଧତା ।

ନିର୍ଗନ୍ଧନ—କ୍ଲୀ.ବି. (ନିର୍+ଗନ୍ଧ+ଅ. ଅନ) ନିଗ୍ରହନ, ମାରଣ ।

ନିର୍ଗନ୍ଧପୁଷ୍ପୀ—ସ୍ତ୍ରୀ.ବି. (ବ.ବ୍ରୀ) ଶାଳ୍ମଳୀବୃକ୍ଷ, ଶିମୂଳିଗଛ ।

ନିର୍ଗମ—ପୁଂ. ବି. (ନିର୍+ଗମ୍+ଅ) ନିଃସରଣ, ବାହାରକୁ ଯିବା, ବହିର୍ଗମନଦ୍ୱାର, ନିଷ୍କ୍ରମଣ, ନାଶ ।

ନିର୍ଗମନ—କ୍ଲୀ.ବି. (ନିର୍+ଗମ୍+ଅନ) ନିଃସରଣ, ଦ୍ୱାର, ପ୍ରତିହାସ୍ଥ, ପଡିଆସ୍ଥ

ନିର୍ଗର୍ବ—ବିଂ. ( ବ.ବ୍ରୀ ) ଗର୍ବରହିତ, ଅହଙ୍କାରଶୂନ୍ୟ, ନିରହଙ୍କାର ।

ନିର୍ଗବାକ୍ଷ—ବିଂ. ଗବାକ୍ଷରହିତ ।

ନିର୍ଗଳନ—ବି. (ନିର୍+ଗଳନ) ଦ୍ରବ-

କରଣ, ତରଳାଇବା, ବିଗଳନ,ନିଗା-ଡ଼ିବା ।
ନିର୍ଗୁଣ—ବିଂ. (ବ.ବ୍ରୀ) ବିଦ୍ୟାଦି ଶୂନ୍ୟ, ମୂର୍ଖ, ଗୁଣହୀନ, ଅଯୋଗ୍ୟ, ଜ୍ୟା ହୀନ, (ପୁଂ.ବି) ସତ୍ତ୍ୱରଜ ସ୍ତମୋଗୁଣବର୍ଜିତ, ପରମାତ୍ମା, (ସ୍ତ୍ରୀ) ନିର୍ଗୁଣା ।
ନିର୍ଗୁଣତା—ସ୍ତ୍ରୀ. ବି. (ନିର୍ଗୁଣ+ତ+ଆ) ଗୁଣହୀନତା, ବୈଗୁଣ୍ୟ ।
ନିର୍ଗୁଣାତ୍ମକ—ବିଂ.(ବ.ବ୍ରୀ)ନିର୍ଗୁଣସ୍ୱରୂପ, (ବି) ବ୍ରହ୍ମ । [ଉପାସନା ।
ନିର୍ଗୁଣୋପାସନା—ସ୍ତ୍ରୀ.ବି.ନିର୍ଗୁଣ ବ୍ରହ୍ମର
ନିର୍ଗୁଣ୍ଡୀ—ସ୍ତ୍ରୀ.ବି. ନିର୍ଗୁଣ୍ଡୀ ଦେଖ ।
ନିର୍ଗୁଣ୍ଡୀ—ସ୍ତ୍ରୀ. ବି. (ନିର୍+ଗୁଣ୍ଡ+ଅ+ଈ) ଖଣ୍ଡୀଗୁଡ଼ବର୍ଗର କ୍ଷୁପବିଶେଷ, ବେଗୁନିଆ, ନିସିନ୍ଦା ।
ନିର୍ଗୂଢ଼—ବିଂ. (ନିର୍+ଗୁହ+ମି.ତ) ସମାଚ୍ଛାଦିତ, ସଂବୃତ,(ବି)ବୃକ୍ଷକୋଟର ।
ନିର୍ଗୌରବ—ବିଂ,ଗୌରବହୀନ,ସୁଶୀଳ, ନମ୍ର, ଅହଙ୍କାରଶୂନ୍ୟ ।
ନିର୍ଗ୍ରନ୍ଥ—ପୁଂ,ବି.କ୍ଷପଣକ,ବୌଦ୍ଧସନ୍ନ୍ୟାସୀ, ଦ୍ୟୂତକାର, ଜୁଆଡ଼ି, ଦରିଦ୍ରଲୋକ, ମୁନିବିଶେଷ, (ବିଂ) ଗ୍ରନ୍ଥିଶୂନ୍ୟ,ସଂସାର ବନ୍ଧନହୀନ, ଉଦାସୀନ, ଦିଗମ୍ବର, ନିଃସହାୟ, ନିର୍ବେଦଗ୍ରସ୍ତ,ଉଦାସୀନ, ଦରିଦ୍ର, ମୂର୍ଖ ।
ନିର୍ଗ୍ରନ୍ଥକ—ପୁଂ.ବି ଓ ବିଂ. (ବ.ବ୍ରୀ) ନିର୍ଗ୍ରନ୍ଥିକ ଦେଖ ।
ନିର୍ଗ୍ରନ୍ଥନ—କ୍ଲୀ.ବି. (ନିର୍+ଗ୍ରନ୍ଥ+ଭା. ଅନ) ମାରଣ, ବଧ ।
ନିର୍ଗ୍ରନ୍ଥି—ବିଂ. ଗ୍ରନ୍ଥିଶୂନ୍ୟ, ନିର୍ଦୋଷ ।
ନିର୍ଗ୍ରନ୍ଥିକ—ପୁଂ. ବି. (ବ.ବ୍ରୀ) କ୍ଷପଣକ, ନଗ୍ନବ୍ୟକ୍ତି, (ବିଂ) ହୀନ, ଅଧମ, ହୀନ, ନିପୁଣ, (ସ୍ତ୍ରୀ) ନିର୍ଗ୍ରନ୍ଥିକା, ଜୈନ ସନ୍ନ୍ୟାସିନୀ ।
ନିର୍ଗ୍ରାହ୍ୟ—ବିଂ. (ନିର୍+ଗ୍ରହ+ମି.ଯ) ଯାହାକୁ ନିଶ୍ଚୟରୂପେ ଗ୍ରହଣ କରି-ବାକୁ ହୁଏ ।
ନିର୍ଘଟ—କ୍ଲୀ.ବି. ଘଟଶୂନ୍ୟ ଦେଶ,ଜନ-ଜର ଶୂନ୍ୟ ହାଟ, ବଜାର,ବହୁ ଜନା-କୀର୍ଣ୍ଣ ହାଟ, ପଣ୍ୟାଗାର, ଯେଉଁଠାରେ ଘାଟ ବା ପାହାଚ ନାହିଁ ।
ନିର୍ଘଣ୍ଟ—ପୁଂ, ବି. (ନିର୍+ଘଣ୍ଟ+ଣ. ଅ) ନିଘଣ୍ଟୁ, ନିର୍ଣ୍ଣୟ, ସିଦ୍ଧାନ୍ତ. ମୀମାଂସା, ଶବ୍ଦସଂଗ୍ରହ, ଗ୍ରନ୍ଥର ସୂଚୀ, ଅନୁକ୍ରମଣିକା, ସୂଚୀପତ୍ର, ତାଲିକା ।
ନିର୍ଘର୍ଷଣ—କ୍ଲୀ.ବି. ମର୍ଦ୍ଦନ, ସଂଘର୍ଷ ।
ନିର୍ଘାତ—ବି. (ନିର୍+ହନ୍+ଭା.ଅ) ବାୟୁର ପରସ୍ପର ସଂଘାତ ଜନିତ ଭୟାନକ ଶବ୍ଦ. ଦୃଢ଼, ଆଘାତ,ଗମ୍ଭୀର ଶବ୍ଦ, (ଣ.ଅ) ବଜ୍ର, ବଜ୍ରାଘାତ, ପ୍ରଭ-ଞ୍ଜନ; ପ୍ରଚଣ୍ଡ ବାୟୁ, ଶୂନ୍ୟଗର୍ଜନ, ଘଡ଼ଘଡ଼ି, ଅକାଶ.ଭୂମିକମ୍ପ, ଘୂର୍ଣ୍ଣିବାୟୁ (ବିଂ) ବିଷମ, ପ୍ରବଳ, ପ୍ରଚଣ୍ଡ, ଭୀଷଣ, ନିଷ୍ଠୁର, କଠୋର, ଅମୋଘ ।
ନିର୍ଘାତନ—କ୍ଲୀ. ବି. (ନିର୍+ହନ୍+ଣିଚ୍+ଅନ) ସୁଶ୍ରୁତୋକ୍ତ ଶଲ୍ୟ-ନିଷ୍କାଷ୍ୟ କ୍ରିୟାଭେଦ, ଜୋରରେ ବାହାର କରିବା ।
ନିର୍ଘାତେ—ଗ୍ରା.କ୍ରି. ବିଂ. ଭୀଷଣଭାବରେ, ଭୟଙ୍କରରୂପେ, ଜୋରରେ ।
ନିର୍ଘାତ୍ୟ—ବିଂ. (ନିର୍+ହନ୍+ଯ) ଛେଦନୀୟ ।
ନିର୍ଘରଣୀ—ସ୍ତ୍ରୀ. ବି. ନଦୀ, ନିର୍ଝରଣୀ,
ନିର୍ଘୃଣ—ପୁଂ. ବିଂ. (ବ.ବ୍ରୀ) ନିର୍ଦ୍ଦୟ, ନିଷ୍ଠୁର, ଘୃଣାଶୂନ୍ୟ, ନିର୍ଲଜ୍ଜ, (ସ୍ତ୍ରୀ) ନିର୍ଘୃଣା ।
ନିର୍ଘୋଷ—ପୁଂ.ବି. (ନିର୍+ଘୁଷ୍+ଅ) ନିନାଦ, ଘୋରଶବ୍ଦ, ଭୀଷଣ ଶବ୍ଦ, (ବିଂ. ବ.ବ୍ରୀ) ଶବ୍ଦଶୂନ୍ୟ ।
ନିର୍ଜନ—ବିଂ. ଜନଶୂନ୍ୟ ସ୍ଥାନାଦି, ବିଜନ, ପ୍ରାଣିହୀନ, ନିଭୃତ, (ସ୍ତ୍ରୀ) ନିର୍ଜନା, (ବି) ନିର୍ଜନତା ।
ନିର୍ଜନକାରାବାସ—ଗ୍ରା. ବି. ଗୁରୁତର ଅପରାଧୀପ୍ରତି ପ୍ରଯୁଜ୍ୟ ଅନ୍ୟ ବନ୍ଦୀ-ମାନଙ୍କଠାରୁ ପୃଥକ୍ ବାସରୂପ କାରା-ବାସ ।
ନିର୍ଜନପ୍ରିୟ—ବିଂ. (ବ.ବ୍ରୀ) ଯେ ନିର୍ଜ-ନରେ ରହିବାକୁ ଭଲପାଏ,ଗୁହାବାସୀ, ବିଜନବାସୀ ।
ନିର୍ଜର—ପୁ.ବି.ଦେବତା, (ବିଂ.ବ,ବ୍ରୀ) ଜରାରହିତ, ବାର୍ଦ୍ଧକ୍ୟରହିତ, (କ୍ଲୀ.ବି) ସୁଧା ।
ନିର୍ଜରସର୍ଷପ—ପୁ.ବି. ଦେବସର୍ଷପବୃକ୍ଷ ।
ନିର୍ଜରା—ସ୍ତ୍ରୀ.ବି.(ନିର୍ଜର+ଆ)ଗୁଡ଼ୁଚି, ତାଳପର୍ଣ୍ଣୀ, ଗୁଳୁଚିଲତା ।
ନିର୍ଜରାୟୁ—ପୁଂ. ବି. ଜରାୟୁରୁ ନିର୍ଗତ, ଜରାୟୁହୀନ ।
ନିର୍ଜଳ—ବିଂ. (ନିର୍+ଜଳ)ଜଳଶୂନ୍ୟ ଦେଶାଦି, ନିରମ୍ବୁ, ଜଳପାନରହିତ, ଶୁଷ୍କ, ଜଳଦ୍ୱାରା ଅବିମିଶ୍ରିତ ।
ନିର୍ଜଳୈକାଦଶୀ—ସ୍ତ୍ରୀ.ବି. ଜ୍ୟେଷ୍ଠମାସର ଶୁକ୍ଳୈକାଦଶୀ ।
ନିର୍ଜାତୃକ—ପୁଂ.ବିଂ. ନିର୍ଜର, ଅତ୍ୟନ୍ତ ଜୀର୍ଣ୍ଣ ।
ନିର୍ଜିତ—ବିଂ. (ନିର୍+ଜି+ମି.ତ) ପରାଜିତ, ପରାଭୂତ, ବଶୀକୃତ,ଅର୍ଜିତ, ଦମିତ, ବାଗ୍ମୀ କରାଯିବା ।
ନିର୍ଜିତେନ୍ଦ୍ରିୟଗ୍ରାମ—ପୁଂ.ବି. (ନିର୍ଜିତ+ଇନ୍ଦ୍ରିୟଗ୍ରାମ)ବ.ବ୍ରୀ; ଜିତେନ୍ଦ୍ରିୟ,ଯତି ।
ନିର୍ଜିତି—ସ୍ତ୍ରୀ.ବି. (ନିର୍+ଜି+ତି)ଜୟ ବା ବଶୀଭୂତକରଣ ।
ନିର୍ଜିହ୍ୱ—ବିଂ. (ବ.ବ୍ରୀ) ମୁଖରୁ ବହିର୍ଗତ କରାଯାଇଥିବା, (ବି) ଜିହ୍ୱାଶୂନ୍ୟ ଭେକ, ବେଙ୍ଗ ।
ନିର୍ଜୀବ—ବିଂ.(ନିର୍+ଜୀବ)ଜୀବାତ୍ମା-ରହିତ, ପ୍ରାଣଶୂନ୍ୟ, ନିସ୍ତେଜ, ଅତି ଦୁର୍ବଳ, ଅଚେତନ ।
ନିର୍ଝର—ପୁଂ. ବି. (ନିର୍+ଝୃ+ଅ) ପର୍ବତନିଃସୃତ ଜଳପ୍ରବାହ,ଝରଣା ।
ନିର୍ଝରଣୀ—ସ୍ତ୍ରୀ. ବି. (ନିର୍ଝର+ଇନ୍+ଈ) ନଦୀ, ଝରଣା ।
ନିର୍ଝରୀ—ସ୍ତ୍ରୀ.ବି.(ନିର୍+ଝୃ+ଅ+ଈ) ନଦୀ, ନିର୍ଝର, ପର୍ବତ ।
ନିର୍ଣ୍ଣୟ—ପୁଂ. ବି. (ନିର୍+ନୀ+ଭା.ଅ) ନିରୂପଣ, ଅବଧାରଣ,ନିଶ୍ଚୟ, ପ୍ରମାଣ, ସିଦ୍ଧାନ୍ତ, ବିଚାର, ରାଏ, ଫଇସଲା, ନ୍ୟାୟଦର୍ଶନୋକ୍ତ ଷୋଡ଼ଶ ପଦାର୍ଥ

ମଧ୍ୟରୁ ଏକ,ମୀମାଂସୋକ୍ତ ଅଧିକରଣର ଅବୟବବିଶେଷ, ବିରୋଧ ପରିହାର, ଘଟନାର ବର୍ଣ୍ଣନ ।

**ନିର୍ଣ୍ଣୟନ**—କ୍ଲୀ. ବି. (ନିର୍+ନୀ+ଭା. ଅନ) ନିର୍ଣ୍ଣୟ ଦେଖ ।

**ନିର୍ଣ୍ଣୟପାଦ**—ପୁଂ. ବି. ସମବେତ ସଭ୍ୟସଦମାନଙ୍କର ନିଷ୍ପତ୍ତି, ବିଚାରପତିଙ୍କ ଶେଷ ହୁକୁମ ।

**ନିର୍ଣ୍ଣାମ**—ପୁଂ. ବି. ଅତ୍ୟନ୍ତ ନମନ ।

**ନିର୍ଣ୍ଣାୟକ**—ପୁଂ. ବିଂ. (ନିର୍+ନୀ+କ.ଅକ) ନିରୂପକ, ନିର୍ଦ୍ଧାରକ, ନିଷ୍ପାଦକ,ମୀମାଂସକ,ଯହିଁରୁ କୌଣସି ବିଷୟ ନିର୍ଣ୍ଣୟ କରାଯାଏ ।

**ନିର୍ଣ୍ଣାୟନ**—କ୍ଲୀ. ବି. (ନିର୍+ନୀ+ଣିଚ୍+ଅନ)ନିର୍ଣ୍ଣୟକାରଣ, ନିର୍ଯାଣ,ଗଜର ଅପାଙ୍ଗ ଦେଶ ।

**ନିର୍ଣ୍ଣିକ୍ତ**—ବିଂ. (ନିର୍+ନିଜ୍+ମି.ତ) ଶୋଧିତ, ବିଗତପାପ,କ୍ଷାଳିତ,ଧୌତ, ମୁକ୍ତ ।

**ନିର୍ଣ୍ଣିଜ୍**—ପୁଂ. ବି. (ନିର୍+ନିଜ୍+କ୍ୱିପ୍) ରୂପ, (ବିଂ) ଶୋଷକ ।

**ନିର୍ଣ୍ଣିଜ**—ବିଂ. (ନିର୍+ନିଜ୍+ଅ) ନିର୍ଜିତ ।

**ନିର୍ଣ୍ଣିମେଷ**—ପୁଂ,ବିଂ. (ବି.ବ୍ରୀ) ନିମେଷଶୂନ୍ୟ, ଯାହାର ଆଖିରେ ପଲକ ପଡ଼େ ନାହିଁ, (ବି) ବିଷ୍ଣୁ, ଦେବତା ।

**ନିର୍ଣ୍ଣୀତ**—କ୍ଲୀ. ବି. (ନିର୍+ନୀ+ମି.ତ) ପ୍ରକାଶିତ,କୃତନିର୍ଣ୍ଣୟ,ସ୍ପଷ୍ଟ ସିତ, ଅନୁସନ୍ଧାନଦ୍ୱାରା ଯାହାର ପତ୍ତା ମିଳିଅଛି, ନିଷ୍ପତ୍ତିକୃତ, ଅବଧାରିତ, ନିରୂପିତ ।

**ନିର୍ଣ୍ଣେଜ**—ପୁଂ. ବିଂ.(ନିର୍+ନିଜ୍+ଅ) ଅତିଶୟ ଶୁଦ୍ଧ ।

**ନିର୍ଣ୍ଣେଜକ**—ପୁଂ. ବି. (ନିର+ନିଜ+କ.ଅକ) ରଜକ, ଧୋବା,(ବିଂ)ପରିଷ୍କାରକ ।

**ନିର୍ଣ୍ଣେଜନ**—କ୍ଲୀ. ବି. (ନିର୍+ନିଜ୍+ଭା. ଅନ) ପ୍ରକ୍ଷାଳନ, ପରିଷ୍କାରକରଣ, (ଣ.ଅନ) ଶୁଦ୍ଧିହେତୁ ପ୍ରାୟଶ୍ଚିତ୍ତ,ଶୁଦ୍ଧି ।

**ନିର୍ଣ୍ଣେତବ୍ୟ**—ବିଂ, (ନିର+ମି.ତବ୍ୟ) ନିର୍ଦ୍ଧାରଣୀୟ ।

**ନିର୍ଣ୍ଣେତା**—ପୁଂ. ବିଂ. (ନିର୍+ନୀ+ତୃ) ନିଷ୍ପତ୍ତିକର୍ତ୍ତା, ନିର୍ଣ୍ଣୟକାରୀ, ନାୟକ, ବିଚାରକ, (ବି--ଣ.ତୃ)ପ୍ରସିଦ୍ଧ,ଦଲିଲ, ପ୍ରମାଣକ ।

**ନିର୍ଣ୍ଣେୟ**—ବିଂ. (ନିର୍+ନୀ+ଣ.ଯ) ନିର୍ଣ୍ଣେୟଯୋଗ୍ୟ,ନିର୍ଦ୍ଧାରଣଯୋଗ୍ୟ ।

**ନିର୍ଣ୍ଣୋଦ**—ପୁଂ. ବି. ସ୍ଥାନାନ୍ତର କରଣ, ନିର୍ବାସନ ।

**ନିର୍ଦ୍ଦଗ୍ଧ**—ବିଂ. ନିଃଶେଷରୂପେ ଦଗ୍ଧ, ଯାହା ଦଗ୍ଧ ହୁଏ ନାହିଁ ।

**ନିର୍ଦ୍ଦଗ୍ଧିକା**—ସ୍ତ୍ରୀ.ବି.ନିଦଗ୍ଧିକା ଦେଖ ।

**ନିର୍ଦ୍ଦଟ**—ବିଂ. ନିର୍ଦ୍ଦୟ, ଦୟାଶୂନ୍ୟ, ପରାପବାଦ ଆସକ୍ତ, ପରନିନ୍ଦକାରୀ, ନିଷ୍ପ୍ରୟୋଜନ, ତୀବ୍ର, ମତ୍ତ ।

**ନିର୍ଦ୍ଦର**—ବିଂ. ନିର୍ଦ୍ଦର, ନିର୍ଦ୍ଦୟ ।

**ନିର୍ଦ୍ଦଣ୍ଡ**—ବିଂ. ଦଣ୍ଡହୀନ, ସର୍ବପ୍ରକାର ଦଣ୍ଡାର୍ହ, (ବି) ଶୂଦ୍ର ।

**ନିର୍ଦ୍ଦୟ**—ବିଂ. (ବି.ବ୍ରୀ)ଦୟାଶୂନ୍ୟ,ଦୟାହୀନ, ନିଷ୍ଠୁର ।

**ନିର୍ଦ୍ଦର**—ବିଂ. (ନିର୍+ଦୃ+ମି.ଅ) ନିର୍ଭୟ, ସାର, କଠିନ,ନିର୍ଲଜ୍ଜ, ଅପଲପ, (ବି) ନିର୍ଝର, ଝରଣା ।

**ନିର୍ଦ୍ଦଳ**—ବିଂ. (ବି.ବ୍ରୀ) ଦଳ ବା ପତ୍ର ରହିତ । [ ବିଦାରଣ ।

**ନିର୍ଦ୍ଦଳନ**—କ୍ଲୀ. ବି. ଦଳନରହିତ,

**ନିର୍ଦ୍ଦଶ**—ବି.ଅଶୌଚ ଅତିକ୍ରାନ୍ତଦଶାହ, ଯାହାର ଦଶଦିନ ଅତିକ୍ରାନ୍ତ ହୋଇଅଛି

**ନିର୍ଦ୍ଦଶନ**—ବିଂ. (ନିର୍+ଦଶନ)ବି.ବ୍ରୀ; ଦନ୍ତହୀନ.ଯାହାର ଦନ୍ତ ବାହାରି ନାହିଁ ବା ପଡ଼ିଯାଇଅଛି ।

**ନିର୍ଦ୍ଦହନ**—ପୁଂ. ବି. (ନିର୍+ଦହ+କ. ଅନ)ଭଲ୍ଲାତକ,ଭଲିଆ,(ବିଂ)ଅଗ୍ନିଶୂନ୍ୟ ।

**ନିର୍ଦ୍ଦହନୀ**—ସ୍ତ୍ରୀ. ବି. (ନିର୍ଦ୍ଦହନ+ଈ) ମୂର୍ବାଲତା ।

**ନିର୍ଦ୍ଦାତା**—ପୁଂ. ବି. (ନିର୍+ଦା+ତୃ) ଛେଦକ, ଦାତା, ଶୋଧକ ।

**ନିର୍ଦ୍ଦାହ**—ବିଂ, ଅଗ୍ନିଦଗ୍ଧ ।

**ନିର୍ଦ୍ଦିଶ୍ୟମାନ**—ବିଂ. (ନିର୍+ଦିଶ୍+ମି. ଆନ) ଯାହା ଉଲ୍ଲେଖ କରାଯାଉଅଛି, ଆଦିଶ୍ୟମାନ ।

**ନିର୍ଦ୍ଦିଷ୍ଟ**—ବିଂ.(ନିର୍+ଦିଶ୍+ମି.ତ) ନିଶ୍ଚିତ, ଆଦିଷ୍ଟ, ଅବଧାରିତ, କଥିତ, ଉଲ୍ଲିଖିତ, ବର୍ଣ୍ଣିତ, ପ୍ରଦର୍ଶିତ ।

**ନିର୍ଦ୍ଦେଶ**—ପୁଂ. ବି. (ନିର୍+ଦିଶ୍+ଅ) ଆଜ୍ଞା, କଥନ, ଉପାନ୍ତ, ଅବଧାରଣ, ଫର୍ଦ୍ଦ, ଆଦେଶ,ପଦ୍ଧତି,ସାକ୍ଷ୍ୟ,ବେତନ, ଉଲ୍ଲେଖ, ବର୍ଣ୍ଣନ, ପ୍ରତିପାଦକ ଶବ୍ଦଭେଦ, ନାମ, ଚେତନ ।

**ନିର୍ଦ୍ଦେଶକ**—ପୁଂ. ବିଂ. (ନିର୍+ଦିଶ୍+କ.ଅକ) ଆଜ୍ଞାପକ, ବର୍ଣ୍ଣନାକାରୀ,ପରିଚାଳକ, ପ୍ରଦର୍ଶକ, ଉପଦେଶକ, ଅବଧାରକ, ନିର୍ଣ୍ଣାୟକ ।

**ନିର୍ଦ୍ଦେଶକାରୀ**—ପୁଂ. ବିଂ. ଆଜ୍ଞାକାରୀ ।

**ନିର୍ଦ୍ଦେଶନ**—ବି. (ନିର୍+ଦିଶ୍+ଭା.ଅନ) ନିର୍ଣ୍ଣୟକରଣ,ନିୟୋଗକରଣ,ବର୍ଣ୍ଣନ, ଆଦେଶ ।

**ନିର୍ଦ୍ଦେଶନୀୟ**—ବିଂ. (ନିର୍+ଦିଶ୍+ମି.ଅନୀୟ) ବର୍ଣ୍ଣନୀୟ, ପ୍ରମାଣସାଧ୍ୟ, ବ୍ୟାଖ୍ୟେୟ । [ ପ୍ରଦର୍ଶକ ।

**ନିର୍ଦ୍ଦେଶୀ**—ପୁଂ. ବିଂ.(ନିର୍ଦ୍ଦେଶ+ଇନ୍)

**ନିର୍ଦ୍ଦେଶ୍ୟ**—ବିଂ. (ନିର୍+ଦିଶ୍+ମି.ଯ) ବର୍ଣ୍ଣନୀୟ, ନିର୍ଣ୍ଣେୟ ।

**ନିର୍ଦ୍ଦେଷ୍ଟା**—ପୁଂ. ବିଂ.(ନିର୍+ଦିଶ୍+କ. ତୃ)ନିର୍ଦ୍ଦେଶକର୍ତ୍ତା,ନିର୍ଦ୍ଦେଶକ ଦେଖ, (ସ୍ତ୍ରୀ) ନିର୍ଦ୍ଦେଷ୍ଟ୍ରୀ ।

**ନିର୍ଦ୍ଦୈନ୍ୟ**—ବିଂ, ଦୀନତାରହିତ ।

**ନିର୍ଦ୍ଦୋଷ**—ବିଂ. (ବି.ବ୍ରୀ) ଦୋଷରହିତ, ନିରପରାଧ, ବିଶୁଦ୍ଧ, ଅନିନ୍ଦ୍ୟ, ଠିକ୍, ନିପୁଣ,ନିଷ୍ପାପ, ସମ୍ପୂର୍ଣ୍ଣ, ରୋଗଶୂନ୍ୟ ।

**ନିର୍ଦ୍ଦୋଷୀ**—ଗ୍ରା. ପୁଂ. ବିଂ. ଦୋଷହୀନ, ନିରପରାଧ ।

**ନିର୍ଦ୍ଧାର(ଣ)**—ବି. (ନିର୍+ଧୃ+ଭା.ଅନ) ଅନେକ ମଧ୍ୟରେ ଏକର ଉତ୍କର୍ଷ ବା ଅପକର୍ଷ ଦ୍ୱାରା ଅବଧାରଣ, ନିର୍ଣ୍ଣୟ ।

**ନିର୍ଦ୍ଧାରକ**—ବିଂ. (ନିର୍+ଧୃ+କ.ଅକ) ନିର୍ଣ୍ଣାୟକ, ନିର୍ଦ୍ଧାରଣକର୍ତ୍ତା,(ସ୍ତ୍ରୀ)ନିର୍ଦ୍ଧାରିକା ।

ନିର୍ଦ୍ଧାରଣୀୟ—ବିଂ. ( ନିର୍ + ଧୃ + ଣି. ଅନୀୟ), ନିରୂପଣୀୟ, ଅନିର୍ବାର୍ଯ୍ୟ ।

ନିର୍ଦ୍ଧାରିତ—ବିଂ. ( ନିର୍ + ଧୃ + ଣି.ତ ) ସ୍ଥିରୀକୃତ, ମୀମାଂସିତ, ନିଶ୍ଚିତ, ନିର୍ଣ୍ଣୀତ, (ସ୍ତ୍ରୀ) ନିର୍ଦ୍ଧାରିତା ।

ନିର୍ଦ୍ଧାର୍ଯ୍ୟ—ବିଂ. ( ନିର୍ + ଧୃ + ଣି.ଯ ) ନିର୍ଣ୍ଣେୟ, ନିଶ୍ଚିତ, ନିଷ୍ପତ୍ତିଯୋଗ୍ୟ, ଅନଳସ, ପରିଶ୍ରମୀ, ଉଦ୍ଯୋଗୀ, ଅଟଳ, ସାହସୀ, ନିର୍ଭୟ, ( ନିର୍ + ଧାରି + ଣି. ଯ) ନିର୍ଦ୍ଦେଶ୍ୟ, ଯାହା ନିରୂପିତ ହେବ ।

ନିର୍ଦ୍ଧୁ(ର୍ଦ୍ଧୂ)ତ—ବିଂ.(ନିର୍ + ଧୁ + (ଧୂ) + ଣି.ତ) ଦୂରୀକୃତ, ନିରାକୃତ, ତ୍ୟକ୍ତ, ଖଣ୍ଡିତ, ଅନୁଭୂତ, ବର୍ଜିତ, ବିକମ୍ପିତ ।

ନିର୍ଦ୍ଧୂମ—ବିଂ. ( ନିର୍ + ଧୂମ ) ବ.ବ୍ରୀ; ଧୂମରହିତ, ନିର୍ମଳ, ନିଃଶେଷ, ଶାନ୍ତ, (ଗ୍ରା. ବିଂ) ଅତ୍ୟନ୍ତ, ବେଦମ୍, (କ୍ରି. ବିଂ) ଅତ୍ୟନ୍ତରୂପେ ।

ନିର୍ଦ୍ଧୌତ—ବିଂ. (ନିର୍ + ଧାବ + ଣି.ତ) ପ୍ରକ୍ଷାଳିତ, ମାର୍ଜିତ, ପରିଷ୍କୃତ ।

ନିର୍ଦ୍ଦ୍ରବ୍ୟ--ବିଂ.(ବ.ବ୍ରୀ)ଦ୍ରବ୍ୟହୀନ, ଦରିଦ୍ର

ନିର୍ଦ୍ଦ୍ରୋହ—ବିଂ. ଦ୍ରୋହରହିତ, ମିତ୍ର, ନିରୀହ ।

ନିର୍ଦ୍ୱନ୍ଦ୍ୱ—ବିଂ.(ବ.ବ୍ରୀ)ଦ୍ୱନ୍ଦ୍ୱ ବା ବିବାଦହୀନ, ଦ୍ୱିତ୍ୱରହିତ, ଉଦାସୀନ, ମମତାହୀନ, ଶୀତୋଷ୍ଣ, ( ବି ) ଦ୍ୱନ୍ଦ୍ୱରହିତ, ଈର୍ଷାରହିତ, ବାଧାରହିତ ।

ନିର୍ଧନ—ପୁଂ. ବିଂ. (ବ.ବ୍ରୀ) ଧନହୀନ, ଦରିଦ୍ର, (ପୁଂ.ବି) ଜରଦ୍ଗବ, ବୃଦ୍ଧବୃଷ, ବୁଢ଼ାବଳଦ ।

ନିର୍ଧନତା—ବି. ( ନିର୍ଧନ + ତ + ଆ ) ଧନରାହିତ୍ୟ, ନିର୍ଧନତ୍ୱ, ଦାରିଦ୍ର୍ୟ ।

ନିର୍ଧାପନ—କ୍ଲୀ. ବି. (ନିର୍ + ଧ୍ମା + ଣିଚ୍. ଅନ) ସୁଶ୍ରୁତୋକ୍ତ ଶଲ୍ୟୋଦ୍ଧାରଣାର୍ଥ ବ୍ୟାପାର ବିଶେଷ ।

ନିର୍ନମସ୍କାର—ପୁଂ.ବିଂ.(ବ.ବ୍ରୀ) ନମସ୍କାର ରହିତ, ଯେ ଦେବତା ଗୁରୁଆଦିଙ୍କୁ ନମସ୍କାର କରେ ନାହିଁ, ଅଭଦ୍ର, ଦୃଣିତ, ଅସମ୍ମାନିତ ।

ନିର୍ନର—ବିଂ. (ବ.ବ୍ରୀ) ମନୁଷ୍ୟରହିତ, ମନୁଷ୍ୟମାନଙ୍କ ଦ୍ୱାରା ପରିତ୍ୟକ୍ତ ।

ନିର୍ନାଥ—ବିଂ.(ବ.ବ୍ରୀ) ପ୍ରଭୁହୀନ, ଅନାଥ

ନିର୍ନାଥତା—ବି. ବୈଧବ୍ୟଦଶା, ଅସ୍ୱାମିକ ଅବସ୍ଥା, ପିତୃ ମାତୃ ହୀନତା ।

ନିର୍ନାଭି—ବିଂ. (ବ.ବ୍ରୀ) ନାଭିଶୂନ୍ୟ, ଯେଉଁ ପିନ୍ଧାଲୁଗା ନାଭିପର୍ଯ୍ୟନ୍ତ ପିନ୍ଧାଯାଇ ନାହିଁ ।

ନିର୍ନାମ—ବିଂ. (ବ.ବ୍ରୀ) ନାମହୀନ, ସମ୍ମାନହୀନ, ଅପ୍ରସିଦ୍ଧ, ସାମାନ୍ୟ, କ୍ଷୁଦ୍ର ।

ନିର୍ନାୟକ—ପୁଂ.ବିଂ.ବ.ବ୍ରୀ; ନେତାହୀନ ।

ନିର୍ନାଶନ—କ୍ଲୀ.ବି. ସ୍ଥାନାନ୍ତରିତ କରଣ, ବହିଷ୍କରଣ, ନିର୍ବାସନ ।

ନିର୍ନିଦ୍ର—ପୁଂ. ବିଂ. (ବ.ବ୍ରୀ) ଉନ୍ନିଦ୍ର ।

ନିର୍ନିମିତ୍ତ—ବିଂ. (ବ.ବ୍ରୀ) କାରଣ ବା ଉଦ୍ଦେଶ୍ୟ ବିହୀନ, ନିରର୍ଥକ, ଅପ୍ରତ୍ୟାଶିତ, ଆକସ୍ମିକ, ଅକାରଣ ।

ନିର୍ନିମେଷ—ବିଂ. (ବ.ବ୍ରୀ) ନିମେଷ ବା ପଲକ ଶୂନ୍ୟ, ଯେ ଆଖି ବୁଜେନାହିଁ ।

ନିର୍ନିମେଷଲୋଚନ—ପୁଂ. ବିଂ. (ବ.ବ୍ରୀ) ଯାହାର ପଲକ ପଡ଼େ ନାହିଁ,(ବି-କ.ଧା) ଅନିମେଷ ଦୃଷ୍ଟି, (ବ.ବ୍ରୀ) ଦେବତା ।

ନିର୍ନିରୋଧ—ବିଂ. (ବ.ବ୍ରୀ) ଅନିବାର୍ଯ୍ୟ, ଅପ୍ରତିହତ ।

ନିର୍ନୀଡ଼—ବିଂ. ( ବ.ବ୍ରୀ ) ନୀଡ଼ରହିତ, ଆଶ୍ରୟଶୂନ୍ୟ, ଆଳୟହୀନ ।

ନିର୍ଭଟ—ବିଂ. (ନିର୍ + ଭଟ + ଅ) ଦୃଢ଼ ।

ନିର୍ଭୟ--ବିଂ. (ବ.ବ୍ରୀ) ନିର୍ଭୀକ, ନିଃଶଙ୍କ, ସାହସୀ, ଅକୁତଭୟ, (ପୁଂ.ବି) ରୌଚ୍ୟମନୁଙ୍କର ପୁତ୍ରବିଶେଷ, ଶ୍ରେଷ୍ଠଅଶ୍ୱ, ଭୟଶୂନ୍ୟତା ।

ନିର୍ଭୟରେ—ଗ୍ରା. କ୍ରି. ବିଂ. ଭୟଶୂନ୍ୟଭାବରେ, ନିଃଶଙ୍କଭାବେ ।

ନିର୍ଭର—ବିଂ. ( ନିର୍ + ଭୃ + ଣି.ଅ ) ସ୍ଥାୟୀ, ଅବଲମ୍ବିତ, ପରିପୂର୍ଣ୍ଣ, ଅତିଶୟ, ଅତିମାତ୍ର, ଅଧିକ, ବହୁଳ, ଯୁକ୍ତ, (ବି) ସାରଭାଗ, ଅତିରେକ, ଭାରକେନ୍ଦ୍ର, ଅବଲମ୍ବନ, ଆସ୍ଥା, ବିଶ୍ୱାସ, ଦାୟିତ୍ୱ, ବେଠିଆ, ବେଗାର, (ଗ୍ରା,ବିଂ) ସ୍ଥିର, ନିର୍ଭୟ, (ଗ୍ରା.ବି) ଆଶା, ଭରସା, ଆଶ୍ରୟ, ଅବଲମ୍ବନ ।

ନିର୍ଭରମା—ଗ୍ରା. ବିଂ. ନିରାଶ, ଆଶାରହିତ, ହତାଶ୍ୱାସ, (ବି) ନୈରାଶ୍ୟ ।

ନିର୍ଭରସାକ୍ଷୀ—ଗ୍ରା. ବି. ଏକପକ୍ଷର ଯେଉଁ ସାକ୍ଷୀ ଯାହା କହିବ ସେଥିରେ ଅପରପକ୍ଷ ବାଧ୍ୟହେବା ପାଇଁ ରାଜୀହେବାରୁ ଯେଉଁ ସାକ୍ଷୀ ଜବାନବନ୍ଦି ଦିଏ ।

ନିର୍ଭର୍ତ୍ସନ—କ୍ଲୀ. ବି. (ନିର୍ + ଭର୍ତ୍ସ + ଅନ) ନିନ୍ଦା, ତିରସ୍କାର, ଅଲକ୍ତକ, ଅଳତା ।

ନିର୍ଭର୍ତ୍ସିତ—ବିଂ. ( ନିର୍ + ଭର୍ତ୍ସ + ତ ) କୃତଭର୍ତ୍ସନ, ଧିକ୍କୃତ, ତିରସ୍କୃତ, ଅପଧ୍ୱସ୍ତ, ନିନ୍ଦିତ ।

ନିର୍ଭାଁ—ଗ୍ରା. ବି. (ଫ୍ର-ନିର୍ବାହ) ନିଷ୍ପତ୍ତି, ମୀମାଂସା, ସମ୍ପାଦନ, (ଗ୍ରା.ବିଂ) ସମ୍ପାଦିତ, ନିଷ୍ପନ୍ନ, ପରିଗୃହୀତ, ନିର୍ମିତ ।

ନିର୍ଭାଗ୍ୟ—ବିଂ. (ବ.ବ୍ରୀ) ମନ୍ଦଭାଗ୍ୟ, ମୂଢ଼, ଦୁର୍ଭାଗ୍ୟ ।

ନିର୍ଭାଜନ—ବିଂ. ( ବ.ବ୍ରୀ ) ପାତ୍ରହୀନ, ପଦଚ୍ୟୁତ ।

ନିର୍ଭାଜ୍ୟ—ବିଂ.(ବ.ବ୍ରୀ) ଅବିଭାଜ୍ୟ, ଯାହା ଭାଗଯୋଗ୍ୟ ନୁହେ ।

ନିର୍ଭିନ୍ନ—ବିଂ. ( ନିର୍ + ଭିଦ୍ + ତ ) ବିଦଳିତ, ଖଣ୍ଡିତ, ଅଭିନ୍ନ, ବିକଶିତ, ଯୁକ୍ତ, ବିଦ୍ଧ ।

ନିର୍ଭୀକ—ବିଂ. (ନିର୍ + ଭୀ + କ) ବ.ବ୍ରୀ; ଭୟରହିତ, ନିଃଶଙ୍କ, ସାହସୀ, (ସ୍ତ୍ରୀ) ନିର୍ଭୀକା ।

ନିର୍ଭୀକତା—ବି. (ନିର୍ଭୀକ + ତା) ଭୟରାହିତ୍ୟ, ସାହସିକତା ।

ନିର୍ଭୀତ—ବିଂ. (ନିର୍ + ଭୀ + ତ) ଭୟରହିତ, ଭୟଶୂନ୍ୟ, ନିଃଶଙ୍କ । [ଶୁଦ୍ଧ ।

ନିର୍ଭୁଲ—ଗ୍ରା. ବିଂ. ଭ୍ରମଶୂନ୍ୟ, ଅଭ୍ରାନ୍ତ,

ନିର୍ଭୂତି—ସ୍ତ୍ରୀ.ବି. ତିରୋଧାନ, ଅନ୍ତର୍ଦ୍ଧାନ ।

ନିର୍ଭୃତି—ସ୍ତ୍ରୀ.ବି.ତିରୋଧାନ, ଅନ୍ତର୍ଦ୍ଧାନ ।

ନିର୍ଭେଦ—ପୁଂ. ବି. ( ନିର୍ + ଭେଦ ) ବିଦାରଣ, ବିଭାଜନ, ଫାଟିଯିବା ।

ନିର୍ଭେଦ୍ୟ—ବିଂ. ବିଭେଦଯୋଗ୍ୟ ।

ନିର୍ଭୋଗ—ବି. (ବ.ବ୍ରୀ) ସମ୍ଭୋଗରହିତ, ସୁଖହୀନ ।

ନିର୍ମକ୍ଷିକ—ଅବ୍ୟ. ମକ୍ଷିକାର ଅଭାବ,(ବି.-ବ.ବ୍ରୀ) ମାଛି ନ ଥିବା ସ୍ଥାନ, ନିଭୃତ ସ୍ଥାନ, (ବି.) ମକ୍ଷିକାଶୂନ୍ୟ, ନିର୍ଜନ, ନିଭୃତ ।

ନିର୍ମଞ୍ଜନ—କ୍ଲୀ. ବ. (ନିର୍+ମନ୍ଥ+ଭା.ଅନ) ମାର୍ଜନ, ଆରତି, ସେବା, ପୂଜନ, ପୋଛିବା ।

ନିର୍ମଜ୍—ବି. (ନିର୍+ମୃଜ୍+କ୍ୱିପ୍) ନିତାନ୍ତ ଶୁଦ୍ଧ ।

ନିର୍ମଜ୍ଜ—ବି. (ବ.ବ୍ରୀ) ମଜ୍ଜାହୀନ ।

ନିର୍ମଣ୍ଡୂକ—ବି. (ବ.ବ୍ରୀ) ଭେକଶୂନ୍ୟ, ବେଙ୍ଗ ନ ଥିବା (ସ୍ଥାନ) ।

ନିର୍ମତ୍ସର—ପୁଂ. ବି. (ନିର୍+ମତ୍ସର) ବ.ବ୍ରୀ; ଅହଂକାରହୀନ, ହିଂସା ବା କ୍ରୋଧବର୍ଜିତ, ଗର୍ବଶୂନ୍ୟ,ଦ୍ୱେଷଶୂନ୍ୟ ।

ନିର୍ମଥ—ପୁଂ. ବ. ଅଗ୍ନିମନ୍ଥନ ଦାରୁ, ଅରଣି ।

ନିର୍ମଥନ—କ୍ଲୀ. ବ. ମନ୍ଥନ କରିବା,(ପୁଂ ବ) ଅଗ୍ନିମନ୍ଥନ ଦାରୁ, ଅରଣି ।

ନିର୍ମଥ୍ୟା—ସ୍ତ୍ରୀ.ବ. ନଳନାମକ ଗନ୍ଧଦ୍ରବ୍ୟ, (ବି.) ମନ୍ଥନର ଅଯୋଗ୍ୟ ।

ନିର୍ମଦ—ପୁଂ. ବି. (ନିର୍+ମଦ)ବ.ବ୍ରୀ; ଗର୍ବହୀନ, ନିରଭିମାନ, ହର୍ଷଶୂନ୍ୟ, (ପୁଂ.ବ) ମତ୍ତତାରହିତ ହସ୍ତୀ ।

ନିର୍ମନସ୍କ—ବି. (ବ.ବ୍ରୀ) ଅନ୍ୟମନସ୍କ, ଅମନୋଯୋଗ ।

ନିର୍ମନୁଜ—ବି. (ବ.ବ୍ରୀ) ମନୁଷ୍ୟଶୂନ୍ୟ, ନିର୍ଜନ, (ବ) ଅରଣ୍ୟ,ଜନଶୂନ୍ୟସ୍ଥାନ ।

ନିର୍ମନୁଷ୍ୟ—ବି. (ବ.ବ୍ରୀ) ଜନଶୂନ୍ୟ, ନିର୍ଜନ, ଜନବସତିହୀନ ।

ନିର୍ମନ୍ତ୍ର—ବି.(ବ.ବ୍ରୀ) ମନ୍ତ୍ରଶୂନ୍ୟ,ମନ୍ତ୍ରହୀନ ।

ନିର୍ମନ୍ଥ—ପୁଂ. ବ. (ନିର୍+ମନ୍ଥ+ଅ) ନିର୍ମନ୍ଥନ ଦେଖ ।

ନିର୍ମନ୍ଥନ—କ୍ଲୀ. ବ. (ନିର୍+ମନ୍ଥ+ଭା. ଅନ) ସମ୍ୟକ୍‌ମନ୍ଥନ, ମୋହିଁବା,ମର୍ଦ୍ଦନ, ଘର୍ଷଣ, ନିଗାଡ଼ିବା, ଚପୁଡ଼ିବା ।

ନିର୍ମମ—ବି. (ବ.ବ୍ରୀ) ବାସନାରହିତ, ମମତାଶୂନ୍ୟ, ନିଃସ୍ୱାର୍ଥ, ନିର୍ଦ୍ଦୟ, କୃପାହୀନ ।

ନିର୍ମମତା(ତ୍ୱ)—ବ. ମମତାରାହିତ୍ୟ,ସ୍ନେହହୀନତା, ନିଃସ୍ୱାର୍ଥତା ।

ନିର୍ମର୍ଯ୍ୟାଦ—ବି. (ନିର୍+ମର୍ଯ୍ୟାଦା) ବ.ବ୍ରୀ; ମର୍ଯ୍ୟାଦାଲଙ୍ଘିତ,ଅବମାନିତ,ମର୍ଯ୍ୟାଦା ବା ସମ୍ଭ୍ରମଶୂନ୍ୟ ।

ନିର୍ମର୍ଯ୍ୟାଦା—ଗ୍ରା. ବ. (ସଂ-ଅମର୍ଯ୍ୟାଦା) ମର୍ଯ୍ୟାଦାର ଅଭାବ, ଅମର୍ଯ୍ୟାଦା ।

ନିର୍ମଳ—ବି. (ନିର୍+ମଳ) ବ.ବ୍ରୀ; ମଳହୀନ,ବିଶୁଦ୍ଧ, ନିର୍ଦ୍ଦୋଷ, ପରିଷ୍କୃତ, ପବିତ୍ର, ଉଜ୍ଜ୍ୱଳ, ସୁନ୍ଦର, ପାପହୀନ, (କ୍ଲୀ.ବ) ନିର୍ମାଲ୍ୟ, ଅଭ୍ର, ନିରମଳା ।

ନିର୍ମଳଝର—ଗ୍ରା. ବ. ଖଲିକୋଟ ରାଜଧାନୀର ନିକଟବର୍ତ୍ତୀ ପାର୍ବତ୍ୟ ଝରଣାବିଶେଷ ।

ନିର୍ମଳତା—ବି. ବିଶୁଦ୍ଧତା,ସ୍ୱଚ୍ଛତା, ପବିତ୍ରତା, ନିର୍ମଳତ୍ୱ ।

ନିର୍ମଳା—ଗ୍ରା. ବ. କତକଫଳ, ଜଳ ପରିଷ୍କାରକ ଫଳବିଶେଷ ।

ନିର୍ମଳୋପଳ—ପୁଂ. ବ. ସ୍ଫଟିକ ।

ନିର୍ମଶକ—ବି. (ବ.ବ୍ରୀ) ମଶକରହିତ, ମଶା ନ ଥିବା ସ୍ଥାନ ।

ନିର୍ମାଂସ—ବି. (ବ.ବ୍ରୀ) ମାଂସବିହୀନ, କୃଶକାୟ, ଅସ୍ଥିସାର ।

ନିର୍ମାଣ—କ୍ଲୀ. ବ. (ନିର୍+ମା+ଭା.ଅନ) ପରିଚ୍ଛେଦ, ସୃଜନ, ସଂଗଠନ, ସ୍ଥାପନ, ପ୍ରସ୍ତୁତକରଣ, ଘରତିଆରି ।

ନିର୍ମାଣବିଦ୍ୟା—ବ. ବାସ୍ତୁବିଦ୍ୟା ।

ନିର୍ମାତା—ପୁଂ. ବି. (ନିର୍+ମା+କ.ତୃ) ନିର୍ମାଣକାରୀ, ରଚୟିତା, (ବ) ସ୍ରଷ୍ଟା, କାରିଗର, ଗ୍ରନ୍ଥକାର ।

ନିର୍ମାନ୍ତ୍ରିକ—ବି. ଯହିଁରେ ମାତ୍ରା ନଥାଏ

ନିର୍ମାୟ—ପୁଂ. ବି. (ବ.ବ୍ରୀ) ଅମାୟିକ, ମାୟାରହିତ, ଛଳହୀନ, ସରଳ ।

ନିର୍ମାଳ(ଲ)—ଗ୍ରା. ବି. ନାନକପନ୍ଥୀ ଶିଖ ସମ୍ପ୍ରଦାୟବିଶେଷ ।

ନିର୍ମାଲ୍ୟ—କ୍ଲୀ. ବ. (ନିର୍+ମଳ+ଯ) ଦେବୋଚ୍ଛିଷ୍ଟ ବସ୍ତୁ,ଦେବତାଙ୍କ ପ୍ରସାଦ, (ଭା.ଯ) ନିର୍ମଳତା, (ଗ୍ରା.ବ) ପୁରୀ ଜଗନ୍ନାଥ ବା ଭୁବନେଶ୍ୱରର ଲିଙ୍ଗରାଜ ମହାପ୍ରଭୁଙ୍କ ମହାପ୍ରସାଦ ଅନ୍ନକୁ ଶୁଖାଇ ରଖାଯିବା ପ୍ରସାଦ ।

ନିର୍ମାଲ୍ୟା—ସ୍ତ୍ରୀ. ବ. (ନିର୍+ମାଲ+ଯ +ଆ) ପୃକ୍କା, ନିର୍ମଳାଫଳ, କତକଫଳ ।

ନିର୍ମିତ୍ସା—ବ. (ନିର୍+ମା.ସନ୍+ଭା.ଅ +ଆ) ନିର୍ମାଣେଚ୍ଛା ।

ନିର୍ମିତ—ବି. (ନିର୍+ମା+ମ.ତ) କୃତନିର୍ମାଣ; ଗଠିତ,ରଚିତ,କୃତ,ତିଆରି ।

ନିର୍ମିତି—ସ୍ତ୍ରୀ. ବ. (ନିର୍+ମା+ଭା.ତି) ନିର୍ମାଣକରଣ, ରଚନା, ଔଚିତ୍ୟ ।

ନିର୍ମୁକ୍ତ—ପୁଂ. ବ. (ନିର୍+ମୁଚ୍+କ. ତ) କାତି ଛଡ଼ାଇଥିବା ସାପ, (ବି.-ମ.ତ) ତ୍ୟକ୍ତସଂଯୋଗ, ବିଯୁକ୍ତ, ସଙ୍ଗବର୍ଜିତ; ବନ୍ଧନମୁକ୍ତ; ମୁକ୍ତିପ୍ରାପ୍ତ, ବହିର୍ଗତ ।

ନିର୍ମୁକ୍ତି—ସ୍ତ୍ରୀ.ବ. (ନିର୍+ମୁଚ୍+ତି) ସମ୍ପୂର୍ଣ୍ଣ ସ୍ୱାଧୀନତା ପ୍ରାପ୍ତି; ମୋକ୍ଷ ।

ନିର୍ମୁଣ୍ଡ—କ୍ଲୀ ବ. (ନିର୍+ମୁଣ୍ଡ୍+କ.ଅ) କରଣଶୂନ୍ୟଷାଣ୍ଢ; ବନସ୍ଥଳ; ଅପୁଷ୍ପବୃକ୍ଷ; ଷେଣ୍ଢର, ଠକବ୍ୟକ୍ତି, ସୂର୍ଯ୍ୟ, ଖର୍ପର ।

ନିର୍ମୂଳ—ବି. (ବ.ବ୍ରୀ) ସମୂଳେବିନଷ୍ଟ, ମୂଳୋତ୍ପାଟିତ, (ଗ୍ରା.ବି.) ନିର୍ବଂଶ ।

ନିର୍ମୂଳନ—ବ. ସମୂଳେଉତ୍ପାଟନ,ବିନାଶନ ।

ନିର୍ମୃଷ୍ଟ—ବି. (ନିର୍+ମୃଜ୍+ମ.ତ) ପ୍ରୋଞ୍ଛିତ, ପାଲିସ୍ କରାଯାଇଥିବା, ମାର୍ଜିତ, ପୋଛିହୋଇଥିବା ।

ନିର୍ମେଘ—ବି. (ବ.ବ୍ରୀ) ମେଘଶୂନ୍ୟ ।

ନିର୍ମେଦ—ବି. (ବ.ବ୍ରୀ) ଚର୍ବିହୀନ ।

ନିର୍ମେଧା—ବି. ବ.ବ୍ରୀ;(ନିର୍+ମେଧସ୍) ମେଧାଶୂନ୍ୟ, ଅଳସ, ବୋକା, ମୂଢ଼ ।

ନିର୍ମୋକ—ପୁଂ. ବ. (ନିର୍+ମୁଚ୍+ମ.ଅ) ସାଞ୍ଜୁ, ସନ୍ନାହ, ଆକାଶ, ସର୍ପତ୍ୱକ୍,ସାପକାତି, (କ.ଅ) ସାବର୍ଣ୍ଣିମନୁଙ୍କ ପୁତ୍ର, (ଭା.ଅ) ମୁକ୍ତି, ମୋକ୍ଷ,ମୋଚନ ।

ନିର୍ମୋକ୍ତା—ପୁଂ. ବି. (ନିର୍+ମୁଚ୍+

କ.ତ) ନିର୍ମୋଚନକାରୀ, ସଂଶୟ-ଚ୍ଛେଦକ ।
ନିର୍ମୋକ୍ଷ—ପୁଂ. ବ. ତ୍ୟାଗ, ନିଃଶେଷ-ରୂପେ ତ୍ୟାଗ, ପୂର୍ଣ୍ଣମୋକ୍ଷ ।
ନିର୍ମୋଚନ—କ୍ଲୀ. ବ. (ନିର+ମୁଚ୍+ଣିଚ୍+ଅନ) ମୁକ୍ତି, ମୋକ୍ଷ ।
ନିର୍ମୋଚ୍ୟ—ତ୍ରି.ବିଂ. (ନିର୍+ମୁଚ୍+ମି.ଯ) ମୁକ୍ତି ପାଇବାର ଯୋଗ୍ୟ ।
ନିର୍ମୋହ—ତ୍ରି. ବିଂ. ( ନିର୍+ମୋହ ) ମୋହଶୂନ୍ୟ,(ପୁଂ.ବ) କାଶ୍ୟପ ସପ୍ତର୍ଷି-ଭେଦ, ରୈବତ ମନୁଙ୍କ ପୁତ୍ରଭେଦ, ସାବର୍ଣ୍ଣି ମନୁଙ୍କ ପୁତ୍ର । [ ଭେଦ ।
ନିର୍ମ୍ଳାନ ତୁକା—ସ୍ତ୍ରୀ.ବ. ମ୍ଳାନିଶୂନ୍ୟ ଔଷଧି-
ନିର୍ମୁକ୍ତି—ସ୍ତ୍ରୀ. ବ. ନିର୍ମୁକ୍ତି ଦେଖ ।
ନିର୍ଯତ୍ନ—ତ୍ରି. ବିଂ. ( ବ.ବ୍ରୀ ) ଯତ୍ନଶୂନ୍ୟ, ଅଳସ ।
ନିର୍ଯନ୍ତ୍ରଣ—କ୍ଲୀ. ବ. (ନିର୍+ଯନ୍ତ୍ର+ଖ. ଅନ) ସ୍ୱାତନ୍ତ୍ର୍ୟ, ନିଷ୍ପୀଡନ,(ବିଂ.ବ.ବ୍ରୀ) ଯନ୍ତ୍ରଣାଶୂନ୍ୟ, ବାଧାଶୂନ୍ୟ, ନିରର୍ଗଳ, ଉଚ୍ଛୃଙ୍ଖଳ ।
ନିର୍ଯନ୍ତ୍ରିତ—ବିଂ(ନିର୍+ଯନ୍ତ୍ରିତ)ଉଚ୍ଛୃଙ୍ଖଳ, ବାଧାରହିତ, ଅନିବାରିତ ।
ନିର୍ଯାଣ—କ୍ଲୀ. ବ. ( ନିର୍+ଯା+ଣ. ଅନ) ହସ୍ତୀର ଚକ୍ଷୁକୋଣର ପ୍ରାନ୍ତ, ଗଜାପାଙ୍ଗଦେଶ, (ଖ.ଅନ) ମୋଚନ, ଅଧ୍ୱନିର୍ଗମ, ନିଃସରଣ, ପ୍ରାଣବାୟୁର ଦେହ ନିସରଣରୂପ ମରଣ, ପଶୁ-ମାନଙ୍କର ପଦବନ୍ଧନ ରଜ୍ଜୁ, ଲୋପ-ହେବା, ନିର୍ବାସ, ମୁକ୍ତି ।
ନିର୍ଯାତ—ତ୍ରି.ବିଂ. (ନିର୍+ଯା+କ.ତ) ନିର୍ଗତ, ନିସୃତ, ବହିର୍ଗତ, ଅପସାରିତ. ମୃତ, ଲୁପ୍ତ ।
ନିର୍ଯାତକ—ତ୍ରି. ବିଂ. (ନିର୍ଯାତ+ଣିଚ୍+ଅକ) ନିର୍ଦ୍ଧାରକ, ଯେ ଅନିଷ୍ଟକରେ ।
ନିର୍ଯାତନ—କ୍ଲୀ.ବ. (ନିର୍+ଯତ+ଣିଚ୍ ଖ.ଅନ) ବୈରଶୁଦ୍ଧି, ଶତ୍ରୁ ପ୍ରତିକାର, ପ୍ରତିଶୋଧ, ପ୍ରତିକାର, ପ୍ରତିଦାନ, ନ୍ୟାସ୍ତସମର୍ପଣ,ଗଚ୍ଛିତ ଦ୍ରବ୍ୟ ପ୍ରତ୍ୟର୍ପଣ, ମାରଣ, ଋଣାଦିର ପରିଶୋଧ, ବହି-ଷ୍କରଣ, ତ୍ୟାଗ, ପୁନଃସ୍ଥାପନ ।
ନିର୍ଯାତା—ପୁଂ.ବିଂ.କ୍ଷେତ୍ରକର୍ଷକ(କୃଷକ) ।
ନିର୍ଯାତି—ସ୍ତ୍ରୀ. ବ. ନିର୍ଗମନ, ପ୍ରସ୍ଥାନ, ମୁମୂର୍ଷୁ ।
ନିର୍ଯାତ୍ୟ—ତ୍ରି.ବିଂ. (ନିର୍+ଯାତ+ମି. ଯ) ଶୋଧନୀୟ, ପ୍ରତିଦେୟ ।
ନିର୍ଯାଦବ—ତ୍ରି. ବିଂ. (ବ.ବ୍ରୀ) ଯାଦବ-ଶୂନ୍ୟ (ସ୍ଥାନ), ଯାଦବରହିତ ।
ନିର୍ଯାମ—ପୁଂ.ବ. (ନିର୍+ଯମ+କ.ଅ) ପୋତବାହ, ନାବିକ ।
ନିର୍ଯାସ—ପୁଂ. କ୍ଲୀ. ବ. (ନିର+ଯସ+ମି.ଅ) କଷାୟ, କ୍ୱାଥ, ବୃକ୍ଷାଦିର କ୍ଷୀର, ନିଷ୍ୟନ୍ଦ,କ୍ଷରଣ,ଅଠା, ଗୂଢ଼ାର୍ଥ, ସାର-ମର୍ମ, ନିଷ୍କର୍ଷ, ସିଦ୍ଧାନ୍ତ । [ଦେଶାଦି ।
ନିର୍ଯାସିକ—ତ୍ରି. ବିଂ. ନିର୍ଯାସ ଦାନକୃଷ୍ଟ-
ନିର୍ଯୁକ୍ତି—ବ.ଅସଂଯୋଗ, ଅନୁପଯୁକ୍ତତା, ଯୁକ୍ତିହୀନତା । [ ହୀନ ।
ନିର୍ଯୁକ୍ତିକ—ତ୍ରି. ବିଂ. ଯୁକ୍ତିରହିତ, ଯୁକ୍ତି-
ନିର୍ଯୂଥ—ତ୍ରି.ବିଂ. ଯୂଥଭ୍ରଷ୍ଟ,ଦଳରୁ ପୃଥକ୍-କୃତ ।
ନିର୍ଯୂଷ—ପୁଂ. ବ. ନିର୍ଯାସ ।
ନିର୍ଯା(ର୍ଯୂ)ହ—ପୁଂ. ବ.(ନିର୍+ଉହ+ଅ) ମତ୍ତ ବାରଣ,ନାଗଦନ୍ତ, ହସ୍ତୀଦନ୍ତ ସଦୃଶ ନିର୍ମିତ ଦ୍ୱାର, ବେଦକାର କାଷ୍ଠଭେଦ, ଶେଖର, ଆପୀଡ, ଦ୍ୱାର. କ୍ୱାଥ,ଗବାକ୍ଷ, ମୁକୁଟ, ପାଗ ।
ନିର୍ଯୋଗ—ପୁଂ. ବ. ଅଳଙ୍କାର, ସାଜ ।
ନିର୍ଯୋଗକ୍ଷେମ—ତ୍ରି. ବିଂ. ବିଷୟବିରତ, ବୈଷୟିକ ଚିନ୍ତାବିହୀନ ।
ନିର୍ଲକ୍ଷଣ-ତ୍ରି.ବିଂ.(ବ.ବ୍ରୀ)ଶୁଭଲକ୍ଷଣଶୂନ୍ୟ, ଅଲକ୍ଷଣ, ଅଲକ୍ଷିତ, ପାଣ୍ଡୁରପୃଷ୍ଠ ।
ନିର୍ଲକ୍ଷ୍ୟ—ତ୍ରି. ବିଂ. ଲକ୍ଷ୍ୟହୀନ ।
ନିର୍ଲଜ୍ଜ—ପୁଂ. ବିଂ. (ବ.ବ୍ରୀ) ଲଜ୍ଜାହୀନ, ମାନନାହିଁ, ଅମାନିଆ, ଅଶ୍ଳୀଳ, (ସ୍ତ୍ରୀ) ନିର୍ଲଜ୍ଜା ।
ନିର୍ଲଜ୍ଜତା—ବ. (ନିର୍ଲଜ୍ଜ+ତା) ଲଜ୍ଜା-ହୀନତା, ଅଶ୍ଳୀଳତା ।
ନିର୍ଲିଙ୍ଗ—ତ୍ରି. ବିଂ. (ବ.ବ୍ରୀ) ଯାହାର କୌଣସି ଲିଙ୍ଗ ବା ଚିହ୍ନନାହିଁ, ଯାହାର ଲିଙ୍ଗ ସାଧନ ହୁଏନାହିଁ ।
ନିର୍ଲିପ୍ତ—ତ୍ରି. ବିଂ. (ନିର୍+ଲିପ୍+ମି. ତ) ସ୍ୱାଧୀନ, ମୁକ୍ତ, ନିର୍ମଳ, ସ୍ୱତନ୍ତ୍ର, ଲେପରହିତ, ସମ୍ବନ୍ଧଶୂନ୍ୟ, ନିଃସଙ୍ଗ, ଅନାସକ୍ତ ।
ନିର୍ଲିପ୍ସ—ବିଂ. ( ବ.ବ୍ରୀ ) ସ୍ପୃହାଶୂନ୍ୟ, ନିସ୍ପୃହ, (ସ୍ତ୍ରୀ) ନିର୍ଲିପ୍ସା ।
ନିର୍ଲୁବ୍ଧ—ବିଂ(ନିର୍+ଲୁବ୍ଧ)ଲୋଭଶୂନ୍ୟ, ଅନିଚ୍ଛୁକ, ସନ୍ତୁଷ୍ଟ ।
ନିର୍ଲୁଞ୍ଚନ—କ୍ଲୀ. ବ.(ନିର୍+ଲୁଞ୍ଚ୍+ଅନ)ବିରୁଷୀକରଣାଦି,ଶୃଙ୍ଗପାଛଡ଼ାଇବା
ନିର୍ଲୁଣ୍ଠନ—କ୍ଲୀ.ବ.(ନିର୍+ଲୁଠି+ଖ. ଅନ) ଅପହରଣ, ଲୁଟି,ଚୋରି ।
ନିର୍ଲୁବ୍ଧ—ପୁଂ. ବିଂ. ( ନିର+ଲୁବ୍ଧ ) ନିର୍ଲୋଭ, (ସ୍ତ୍ରୀ) ନିର୍ଲୁବ୍ଧା ।
ନିର୍ଲେଖନ—କ୍ଲୀ. ବ. (ନିର୍+ଲିଖ+ଖ.ଅନ)ମଳାଦିର ଅପସାରଣ,କୌଣସି ବସ୍ତୁ ଉପରୁ ମଳ ଘର୍ଷିବା,ଉଖାଲୁସନ୍ଧ ।
ନିର୍ଲେପ—ତ୍ରି ବିଂ. ( ବ.ବ୍ରୀ ) ସ୍ୱତନ୍ତ୍ର, କଳଙ୍କହୀନ, ତୈଳ ବା ଚର୍ମରୁ ମୁକ୍ତ, ଲେପଶୂନ୍ୟ, ଅସଙ୍ଗରହିତ, ପରିଣାମ ହେତୁ ସଂଯୋଗାଦି ଶୂନ୍ୟ,ପାପଶୂନ୍ୟ, (ବି) ସମ୍ବନ୍ଧଶୂନ୍ୟତା, ମୁନି, ସାଧୁ ।
ନିର୍ଲୋଡ଼ିତ—ବିଂ. (ନିର୍+ଲୋଡ଼ିତ) ସମାଲୋଚିତ, ସମ୍ୟକ୍ ବିବେଚିତ, ତଦନ୍ତକରା ଯାଇଥିବା ।
ନିର୍ଲୋଭ—ପୁଂ.ବିଂ.(ବ.ବ୍ରୀ)ଲୋଭଶୂନ୍ୟ, ସନ୍ତୁଷ୍ଟ, (ବି) ସନ୍ତୋଷ, ତୁଷ୍ଟି ।
ନିର୍ଲୋଭୀ—ଗ୍ରା.ପୁଂ. ବିଂ. ଲୋଭଶୂନ୍ୟ ।
ନିର୍ଲୋମ—ପୁଂ. ବିଂ. (ବ.ବ୍ରୀ ) ଲୋମ-ଶୂନ୍ୟ, ମାଖୁନା, କେଶଶୂନ୍ୟ ।
ନିର୍ଲୋମା—ପୁଂ.ବି.(ବ.ବ୍ରୀ)ଲୋମରହିତ, ଠାଙ୍ଗସ ।
ନିର୍ଲ୍ୱୟନୀ—ସ୍ତ୍ରୀ. ବ. (ନିର+ଲୀ+ଅନ+ଈ) କଞ୍ଚୁକ, ସାପକାତି ।
ନିର୍ବଂଶ—ପୁଂ. ବିଂ. (ବ.ବ୍ରୀ) ବଂଶହୀନ, ନିଃସନ୍ତାନ, ଯାହାର କେହି ବଂଶଧର ନଥାଏ ।
ନିର୍ବଂଶିଆ—ଗ୍ରା.ପୁଂ.ବିଂ.ନିର୍ବଂଶ ଦେଖ ।

ନିର୍ବକ୍ତବ୍ୟ—ତ୍ରି. ବି°. (ନିର୍+ବଚ+ତବ୍ୟ)ନିର୍ବାଚ୍ୟ,ଯାହା ବ୍ୟାଖ୍ୟାତହେବ, ଅବସ୍ତବାର୍ଥ କଥନ ଦ୍ୱାରା ପ୍ରତିପାଦ୍ୟ, ବକ୍ତବ୍ୟତାଶୂନ୍ୟ, ମୌନ, ଅନିନ୍ଦ୍ୟ, ବାକ୍ୟାତୀତ, ନିର୍ବାକ୍, ବଚନଶୂନ୍ୟ ।

ନିର୍ବଚନ—କ୍ଲୀ. ବି. (ନିର୍+ବଚ+ଭା. ଅନ) ନିରୁକ୍ତି, କଥନ, ନିଷ୍ପତ୍ତିବାକ୍ୟ, ମୀମାଂସା ନିରୂପଣ, ବ୍ୟାଖ୍ୟା ,ପ୍ରବଚନ, ବର୍ଣ୍ଣନ, ମୌନାବଲମ୍ବନ ।

ନିର୍ବଚନୀୟ—ବି°. ( ନିର୍+ବଚ+ମି. ଅନୀୟ)ଯାହା ବାକ୍ୟରେ ପ୍ରକାଶ କରାଯାଇ ନପାରେ, ଯାହା ବ୍ୟାଖ୍ୟାତ ହେବ ।

ନିର୍ବଣ—ତ୍ରି. ବି°. ବନରୁ ନିଷ୍କ୍ରାନ୍ତ ।

ନିର୍ବନ୍ଧ—ବି. ( ନିର୍+ବନ୍ଧ+ଭା.ଅ ) ଆଗ୍ରହ, ଔତ୍ସୁକ୍ୟ, ବ୍ୟଗ୍ରତା, ଅତିଶୟ ଅନୁରୋଧ, ବ୍ୟବସ୍ଥା, ବିଧାନ, ଅଭିନିବେଶ, ଜିଦ୍, ଜୀଗର, ଖାମ୍ଖିଆଲ, ଚିତ୍ତୋଦ୍ଭବ ବାସନା,ଦାସତ୍ୱ,କାରାବନ୍ଧନ, ନିଷ୍ପତ୍ତି, ସଂଯୋଗ, ଘଟନା, ଅଟକ, (ଗ୍ରା.ବ୍ର) ବରକନ୍ୟା ବିବାହସମ୍ବନ୍ଧରେ ଉଭୟ ପକ୍ଷର କର୍ତ୍ତାମାନଙ୍କ ମଧ୍ୟରେ ବାକ୍ଦାନ, ବନ୍ଧନ ।

ନିର୍ବନ୍ଧନ—ବି.(ନିର୍+ବନ୍ଧ+ଭା.ଅନ) ପ୍ରତିବନ୍ଧକ ଦ୍ୱାରା ବନ୍ଧକରଣ, ଅଟକାଇବା, ଅଭିପ୍ରାୟ, ନିୟମ, ଦାସ୍ୟ, ଦାସତ୍ୱ ।

ନିର୍ବନ୍ଧାତିଶଯ୍ୟ—ବି. (ଷତତ୍ପୁ) ଅତ୍ୟନ୍ତ ଜୀଗର, ପ୍ରାର୍ଥନାତିଶଯ୍ୟ ।

ନିର୍ବନ୍ଧିତ—ବି°. (ନିର୍ବନ୍ଧ+ଇତ)ସନ୍ନିବନ୍ଧ, ନିଶ୍ଚିତ, ନିୟମିତ ।

ନିର୍ବପଣ—କ୍ଲୀ. ବି. (ନିର୍+ବପ+ଭା. ଅନ) ଶ୍ରାଦ୍ଧରେ ପିଣ୍ଡାଦି ଦାନ,ଅନ୍ନାଦି ପରିବେଷଣ ।

ନିର୍ବସୂଣୀ—ସ୍ତ୍ରୀ. ବି. ସାପକାତି ।

ନିର୍ବର—ପୁଂ.ବି°.(ନିର୍+ବର) ନିର୍ଲ୍ଲଜ, ନିର୍ଭୟ, ସାର, କଠିନ ।

ନିର୍ବରୁଣତା—ସ୍ତ୍ରୀ. ବି. ବରୁଣଙ୍କର ଅଧିକାରରୁ ବିମୋଚନ ।

ନିର୍ବର୍ଣ୍ଣନ—କ୍ଲୀ. ବି. (ନିର୍+ବର୍ଣ୍ଣ+ଭା. ଅନ) ଦର୍ଶନ ।

ନିର୍ବର୍ତ୍ତକ—ବି°.(ନିର୍+ବୃତ+କ.ଅକ) ନିର୍ବାହକ, ସମ୍ପାଦନକର୍ତ୍ତା ।

ନିର୍ବର୍ତ୍ତନ—କ୍ଲୀ. ବି. (ନିର+ବୃତ+ଭା. ଅନ) ସମ୍ପାଦନ, ନିଷ୍ପାଦନ ।

ନିର୍ବର୍ତ୍ତିତ—ତ୍ରି. ବି°. (ନିର୍+ବୃତ+ଣିଚ୍+ମି.ତ) ନିଷ୍ପାଦିତ, ସମ୍ପାଦିତ ।

ନିର୍ବର୍ତ୍ତ୍ୟ—ତ୍ରି.ବି°.(ନିର୍+ବୃତ+ଣିଚ୍ ମି.ଯ) ନିଷ୍ପାଦ୍ୟ,ବ୍ୟାକରଣ ପରିଭାଷିତ କର୍ମଭେଦ ।

ନିର୍ବର୍ଷ—ବି°. (ବି.ଗ୍ରା) ବୃଷ୍ଟିହୀନ ।

ନିର୍ବର୍ହଣ—ବି. ( ନିର୍+ବର୍ହ+ଭା. ଅନ) ମାରଣ, ସମାପ୍ତି ।

ନିର୍ବଳ—ବି°. (ବି.ଗ୍ରା)ବଳହୀନ,ଦୁର୍ବଳ, ନିସ୍ତେଜ, ଅସହାୟ ।

ନିର୍ବହଣ—କ୍ଲୀ. ବି. (ନିର+ବହ+ଭା. ଅନ) ହିଂସା,ମାରଣ, ନାଟ୍ୟୋକ୍ତି ର, ପ୍ରସ୍ତୁତ କଥା ସମାପ୍ତି, ନିର୍ବାହ,ନିଷ୍ଠା ।

ନିର୍ବହଣା—ସ୍ତ୍ରୀ. ବି. (ନିର୍+ବହ+ଅନ+ଆ) ନିଷ୍ଠା ।

ନିର୍ବହୃତା—ବି°. ବିଭକ୍ତା, ପୃଥକ୍କାରୀ ।

ନିର୍ବାକ୍—ପୁଂ.ବି° ଓ ସ୍ତ୍ରୀ.ବାକ୍ୟହୀନ,ତୁନି ।

ନିର୍ବାକ୍ୟ—ପୁଂ. ବି°. (ବି.ଗ୍ରା)ବାକ୍ୟହୀନ, ମୂକ, ବଧିର, ଗୁଙ୍ଗା । [ ନିର୍ଗତ ।

ନିର୍ବାଚ—ତ୍ରି. ବି°. ନିହର୍ତ୍ତାଗ. ବାହ୍ୟ,

ନିର୍ବାଚକ—ବି°. ( ନିର୍+ବଚ+ଣିଚ୍ କ.ଅକ) ନିର୍ବାଚନକାରୀ, ନିର୍ଦ୍ଧାରଣକର୍ତ୍ତା ।

ନିର୍ବାଚନ—ବି. (ନିର୍+ବଚ.ଣିଚ୍+ଭା.ଅନ)ନିର୍ଦ୍ଧାରଣ, ସ୍ଥିରୀକରଣ, ବାଛି ବାହାର କରିବା ।

ନିର୍ବାଚିତ—ବି°. (ନିର୍+ବାଚ+ମି. ତ) ସ୍ଥିରୀକୃତ, ବଛା ଯାଇଥିବା ।

ନିର୍ବାଚ୍ୟ—ତ୍ରି. ବି°. (ନିର୍+ବାଚ+ମି.ଯ) ନିର୍ବାଚିତ ହେବା ଯୋଗ୍ୟ, ନିର୍ବଚନୀୟ, ନିରୂପଣୀୟ, ଅନିନ୍ଦନୀୟ, ବ୍ୟାଖ୍ୟେୟ ଅନନ୍ୟ ।

ନିର୍ବାଞ୍ଚ—ତ୍ରି. ବି°.(ନିର୍+ଅବ+ଅଞ୍ଚ + କ୍ୱିପ୍) ନିର୍ଗତ ।

ନିର୍ବାଣ—କ୍ଲୀ. ବି. (ନିର୍+ବା+ଭା.ତ) ଭବସନ୍ତାପରୁ ଲାଭ, ମୁକ୍ତି, ଗଜମଜ୍ଜନ, ବିନାଶ, ନିବୃତ୍ତି,ଶାନ୍ତି, ସମାପ୍ତି, ନାଭିଦେଶରେ ଜପ୍ୟ ପ୍ରଣବ ପୁଟିତ ମୂଳମନ୍ତ୍ର, ଦୀପ୍ତ, ବାଣଶୂନ୍ୟ, ଅସ୍ତଗମନ, ସଙ୍ଗମ, ବିଶ୍ରାନ୍ତି, ବିଦ୍ୟୋପବେଶନ, ମୃତ୍ୟୁ, ମିଳନ, ମିଶ୍ରଣ, ପ୍ରସ୍ଥାନ, ନିଭିଯିବା,ନିରସ୍ତ ହେବା, ଶୂନ୍ୟତା,(ବି°. କ.ତ ) ମୁକ୍ତ, ମୋକ୍ଷପ୍ରାପ୍ତ, ନିଶ୍ଚଳ, ନିଭିଯାଇଥିବା, ବିଶ୍ରାନ୍ତ,ସନ୍ତୁଷ୍ଟ,(ନିର୍+ବାଣ)ଯାହାର ବାଣ ସରିଯାଇଅଛି, ପ୍ରସ୍ଥିତ, ମୃତ, ବିଲୁପ୍ତ, ଅବସନ୍ନ, ନିବୃତ୍ତ, ଅସ୍ତଗତ, ନିମଗ୍ନ,ନଷ୍ଟ ।

ନିର୍ବାଣପୁରାଣ—କ୍ଲୀ. ବି. ମୃତବ୍ୟକ୍ତିର ଉଦ୍ଦେଶ୍ୟରେ ଜଳଦାନ ।

ନିର୍ବାଣପ୍ରକରଣ—ଯୋଗବଶିଷ୍ଠ ରାମାୟଣର ଚତୁର୍ଥଖଣ୍ଡର ନାମ ।

ନିର୍ବାଣଭୂୟିଷ୍ଠ—ତ୍ରି.ବି°. ନିର୍ବାଣପ୍ରାପ୍ତ, ନିର୍ବାଣୋନ୍ମୁଖ ।

ନିର୍ବାଣମଣ୍ଡପ—ପୁଂ.ବି. କାଶୀସ୍ଥିତମୁକ୍ତିମଣ୍ଡପାଖ୍ୟ ତୀର୍ଥଭେଦ ।

ନିର୍ବାଣମସ୍ତକ—ପୁଂ. ବି. ମୋକ୍ଷ ।

ନିର୍ବାଣରୁଚି—ତ୍ରି. ବି°. (ବି.ଗ୍ରା)ମୋକ୍ଷସାଧନାସକ୍ତ, (ବି) ଦେବବିଶେଷ ।

ନିର୍ବାଣସୂତ୍ର—କ୍ଲୀ. ବି. ଖଣ୍ଡିଏ ବୌଦ୍ଧ ସୂତ୍ରର ନାମ, ଜଣେ ବୌଦ୍ଧଙ୍କ ନାମ ।

ନିର୍ବାଣୀ—ପୁଂ. ବି. ( ନିର୍+ବାଣୀ ) ଉତ୍ସର୍ପିଣୀଙ୍କ ଅର୍ହତ୍ଭେଦ ।

ନିର୍ବାଣୀ--ସ୍ତ୍ରୀ.ବି.ଜୈନମାନଙ୍କର ଶାସନଦେବତା ବିଶେଷ,(ବି°)ବାକ୍ୟରହିତ, ତୁଷ୍ଣୀଭୂତ, ମୌନ ।

ନିର୍ବାଣୋନ୍ମୁଖ—ବି°. (ଷତତ୍ପୁ)ନିର୍ବାଣପ୍ରାପ୍ତ,ଯାହା ନିଭିବାପଣ ହୋଇଅଛି ।

ନିର୍ବାତ—ତ୍ରି. ବି°.(ବି.ଗ୍ରା)ବାୟୁରହିତ, ବାୟୁଶୂନ୍ୟ (ଦେଶ), ସ୍ଥିର, ଅଚଞ୍ଚଳ, ନିସ୍ତବ୍ଧ, ନିଭିଯାଇଥିବା ।

ନିର୍ବାଦ--ପୁଂ.ବି°(ନିର୍+ବଦ+ଭା.ଅ) ପରୀବାଦ,ଜନବାଦ, ଅପବାଦ,ଅବଜ୍ଞା,

ତିରସ୍କାର, ନିଶ୍ଚିତବାଦ, ବାଦାଭାବ, ନିନ୍ଦା,ଲୋକାପବାଦ, ବିବାଦ,କଳହ, ବିଂ. (ବ.ଗ୍ରା) ବିବାଦଶୂନ୍ୟ ।

ନିର୍ବାଧ—ବିଂ. (ବ.ଗ୍ରା) ଅବାଧ, ବାଧାହୀନ, ସ୍ୱାଧୀନ ।

ନିର୍ବାନର—ବି.ବିଂ. (ବ.ଗ୍ରା) ବାନରହୀନ, ବାନରଶୂନ୍ୟ ।

ନିର୍ବାନ୍ତ—ବି.ବିଂ. ବହିର୍ଗତ, ପ୍ରେରିତ ।

ନିର୍ବାପ—ପୁଂ.ବି. (ନିର୍+ବପ+ଭା.ଅ) ନିବାପ, ପ୍ରେତଭିନ୍ନ ମୃତ ପିତୃଲୋକୋଦ୍ଦେଶ୍ୟକ ଦାନ, ଭିକ୍ଷାର୍ଥ ଦାନ,ଭକ୍ଷଣ, ନିଭାଇଦେବା, ବିନାଶ, ବଧ, ଶାନ୍ତ କରାଇବା, ସୁଖାଇକରିବା ।

ନିର୍ବାପକ—ପୁଂ.ବିଂ. (ନିର୍+ବପ+କ.ଅକ)ବିନାଶକ,ହନ୍ତା,ଯେ ନିଭାଇଦିଏ ।

ନିର୍ବାପଣ—କ୍ଲୀ.ବି. (ନିର୍+ବପ+ଣିଚ୍+ଭା.ଅନ)ନିର୍ବାପ ଦେଖ;ବଧ,ମାରଣ, ଦାନ, ନିର୍ବାଣତା ସମ୍ପାଦନ, ବପନ ।

ନିର୍ବାପୟିତା—ପୁଂ.ବିଂ. (ନିର୍+ବପ+ଣିଚ୍+ତୃ) ନିର୍ବାପଣକାରୀ, ନିର୍ବାପକ, ଯେ ଲିଭାଏ ।

ନିର୍ବାପିତ—ବି.ବିଂ. (ନିର୍+ବପ+ଣିଚ୍+ମି.ତ) ନିର୍ବାଣପ୍ରାପ୍ତ, ନାଶିତ, ଦତ୍ତ, ନିହତ, ଲିଭାଇ ଦିଆଯାଇଥିବା, ପ୍ରଶମିତ ।

ନିର୍ବାପ୍ୟ—ବି.ବିଂ. (ନିର୍+ବପ+ଣିଚ୍+ତ) ନିର୍ବାଣଯୋଗ୍ୟ,ଆନନ୍ଦିତ,ଶାନ୍ତିବର୍ଦ୍ଧିତ ।

ନିର୍ବାର୍ଯ୍ୟ—ବି.ବିଂ. (ନିର୍+ବୃ+ମି.ଯ) ଦୁଃସାହସୀ, ନିଃଶଙ୍କ କର୍ମକର୍ତ୍ତା, ସତ୍ତ୍ୱସମ୍ପାଦ ଉଦ୍ୟମଦ୍ୱାରା କାର୍ଯ୍ୟକାରୀ ।

ନିର୍ବାଲ—ବିଂ.(ବ.ଗ୍ରା)ବାଳ ବା ଲୋମହୀନ ।

ନିର୍ବାସ—ପୁଂ. ବି. (ନିର୍+ବସ+ଅ) ବିଦେଶବାସ, ଦୂରୀକରଣ, ନିର୍ବାସନ, (ବିଂ) ବାସହୀନ, ପ୍ରବାସ ।

ନିର୍ବାସକ—ପୁଂ.ବିଂ. (ନିର୍+ବାସି+କ.ଅକ) ନିର୍ବାସନକାରୀ, ଯେ ନିର୍ବାସନ କରେ, (ସ୍ତ୍ରୀ) ନିର୍ବାସିକା ।

ନିର୍ବାସନ—କ୍ଲୀ.ବି. (ନିର୍+ବସ+ଣିଚ୍+ଭା.ଅନ) ବଧ, ମାରଣ, ନିଃସାରଣ, ବିସର୍ଜନ,ଦେଶାନ୍ତରୀକରଣ,ତଡ଼ିଦେବା

ନିର୍ବାସନୀୟ—ବି.ବିଂ. (ନିର୍+ବାସି+ଅନୀୟ) ନିର୍ବାସନଯୋଗ୍ୟ, ତଡ଼ିଦେବାର ଉପଯୁକ୍ତ ।

ନିର୍ବାସିତ—ବିଂ. (ନିର୍+ବାସି++ମି.ତ) ଦେଶାନ୍ତର ଦଣ୍ଡରେ ଦଣ୍ଡିତ, ଦେଶରୁ ବିତାଡ଼ିତ, ରାଜ୍ୟ ବାହାର. ବହିଷ୍କୃତ, ବନାଶ୍ରିତ ।

ନିର୍ବାସ୍ୟ—ବି.ବିଂ. (ନିର୍+ବସ+ଣିଚ୍+ମି.ଯ) ଯାହାକୁ ନିର୍ବାସିତ କରାଯିବ, ନଗରାଦିରୁ ବହିଷ୍କାର୍ଯ୍ୟ ।

ନିର୍ବାହ—ପୁଂ. ବି. (ନିର୍+ବହ+ଭା.ଅ) କାର୍ଯ୍ୟ ସାଧନର ଉପକରଣ.କାର୍ଯ୍ୟସମ୍ପାଦନ, ନିଷ୍ପାଦନ, ସମାପ୍ତି, ଜୀବିକା, ପ୍ରାଚୁର୍ଯ୍ୟ ।

ନିର୍ବାହକ—ବି.ବିଂ. (ନିର୍+ବହ+ଣିଚ୍+କ.ଅକ)ନିଷ୍ପାଦକ, ଯେ ନିର୍ବାହ କରେ, (ସ୍ତ୍ରୀ) ନିର୍ବାହିକା ।

ନିର୍ବାହକରିବା—ଗ୍ରା.କ୍ରି. ସମ୍ପାଦନକରିବା କୌଣସି କାର୍ଯ୍ୟ ସମାଧାନ କରିବା, ନିର୍ଖିକରିବା ।

ନିର୍ବାହଣ—କ୍ଲୀ.ବି. (ନିର+ବହ+ଣିଚ୍+ଅନ) ନିର୍ବହଣ, ନାଟ୍ୟୋକ୍ତିରେ ପ୍ରସ୍ତୁତ କଥା ସମାପ୍ତି ।

ନିର୍ବାହିତ—ବି.ବିଂ. (ନିର+ବହ+ଣିଚ୍+ମି.ତ) ସମ୍ପାଦିତ, ନିଷ୍ପାଦିତ ।

ନିର୍ବାହୀ—ବିଂ.(ନିର୍ବାହ+ଇନ୍)କ୍ଷରଣଶୀଳ

ନିର୍ବିକଳ୍ପ—ବିଂ. (ବ.ଗ୍ରା) ପରିବର୍ତ୍ତନରହିତ, ନିତ୍ୟ, ଅପରିବର୍ତ୍ତନୀୟ,ଅଭ୍ରାନ୍ତ. ସନ୍ଦେହରହିତ, ଜ୍ଞାତୃଜ୍ଞେୟଜ୍ଞାନଭେଦରହିତ,ବିଶେଷ୍ୟ ବିଶେଷଣତା ସମ୍ବନ୍ଧରହିତ,ସ୍ଥିର,ନିଶ୍ଚିତ,ବି. ଅଖଣ୍ଡଜ୍ଞାନ ।

ନିର୍ବିକଳ୍ପକ—ବି. (ନିର+ବିକଳ୍ପ+କ) ବେଦାନ୍ତୋକ୍ତ ଜ୍ଞାତୃଜ୍ଞେୟଜ୍ଞାନାଦି ବିଭାଗଶୂନ୍ୟ ସମାଧିଭେଦ, ( ନ୍ୟାୟମତେ ) ଅଲୌକିକ ଅଲୋଚନାତ୍ମକଜ୍ଞାନଭେଦ, (ବିଂ) ନିର୍ବିକଳ୍ପ ଦେଖ ।

ନିର୍ବିକଳ୍ପକସମାଧି—ପୁଂ.ବି.ଜୀବାତ୍ମା ପରମାତ୍ମାରେ ପୂର୍ଣ୍ଣଭାବରେ ଲୀନହେବାର ଅବସ୍ଥା,ଯୋଗସାଧନର ଅବସ୍ଥାବିଶେଷ ।

ନିର୍ବିକାର—ପୁଂ. ବିଂ. (ବ.ଗ୍ରା) ଅପରିବର୍ତ୍ତନୀୟ, ଅବିକୃତ, ଘୃଣାହୀନ,ଜନ୍ମାଦି ଷଡ଼ଭାବ ବିକାରହୀନ, (ବି)ପରଂବ୍ରହ୍ମ ।

ନିର୍ବିକାରବାନ୍—ପୁଂ.ବିଂ. (ନିର୍ବିକାର+ବତୁ) ଅପରିବର୍ତ୍ତନୀୟ, ଅବିକୃତ,ଘୃଣାହୀନ ।

ନିର୍ବିକାଶ—ବି. ବିଂ, (ବ.ଗ୍ରା) ଅସ୍ଫୁଟ, ବିକାଶରହିତ ।

ନିର୍ବିଘ୍ନ—ବି.ବିଂ. (ବ.ଗ୍ରା) ବିଘ୍ନରହିତ, ଅପ୍ରତିହତ, ଆପଦରହିତ, ନିରୁପଦ୍ରବ, ବାଧାରହିତ, (ବି) ବିଘ୍ନର ଅଭାବ ।

ନିର୍ବିଘ୍ନେ—ବି. ବିଂ, (ବ.ଗ୍ରା) ଅବାଧେ, ନିରାପଦେ ।

ନିର୍ବିଚାର—ବି, ବିଂ. (ବ.ଗ୍ରା) ବିଚାରରହିତ, ବିବେଚନାଶୂନ୍ୟ, (ବି) ପାତଞ୍ଜଳ ଦର୍ଶନୋକ୍ତ ସୂକ୍ଷ୍ମ ବିଷୟକ ସମାପ୍ତିରୂପ ସମାଧିଭେଦ ।

ନିର୍ବିଚିକିତ୍ସ—ବି.ବିଂ. (ବ.ଗ୍ରା)ନିସନ୍ଦେହ

ନିର୍ବିଚେଷ୍ଟ—ବି.ବିଂ. ଅଜ୍ଞାନ, ଜଡ଼ ।

ନିର୍ବିଣ୍ଣ—ବି.ବିଂ. (ନିର୍+ବିଦ+କ.ତ) ଦୁର୍ଦ୍ଦଶାଗ୍ରସ୍ତ, ନିର୍ବେଦଯୁକ୍ତ,ଖିନ୍ନ, ପ୍ରାପ୍ତବୈରାଗ୍ୟ, ବିରକ୍ତ, ଚେତନାଶୂନ୍ୟ, ଭୟ ଶୋକାଦିଦ୍ୱାରା ଅତି କାତର, ଅନୁତପ୍ତ ।

ନିର୍ବିତର୍କ—ବି.ବିଂ. ବିତର୍କଶୂନ୍ୟ, ପାତଞ୍ଜଳ ଦର୍ଶନୋକ୍ତ ସମାଧିଭେଦ ।

ନିର୍ବିଦ୍ୟ—ପୁଂ.ବିଂ. (ବ.ଗ୍ରା) ବିଦ୍ୟାହୀନ, ମୂର୍ଖ, ହିତାହିତ ଜ୍ଞାନଶୂନ୍ୟ ।

ନିର୍ବିଧିତ୍ସ—ବି.ବିଂ.କାର୍ଯ୍ୟ କରିବାରେ ଅନିଚ୍ଛୁକ, ଆସକ୍ତିବିହୀନ ।

ନିର୍ବିନ୍ଧ୍ୟ—ବି.ବିଂ. ବିନ୍ଧ୍ୟପର୍ବତ ନିଃସୃତ ।

ନିର୍ବିବର—ବି.ବିଂ. ଛିଦ୍ରଶୂନ୍ୟ, ଅବିରାମ, ନିଯୁକ୍ତ, ସମୀପ, ସନ୍ନିକଟ,ମାଚେନ୍ତ୍ର ।

ନିର୍ବିବାଦ—ବି. ବିଂ. (ବ.ଗ୍ରା) କଳହଶୂନ୍ୟ, ଆପତ୍ତିରହିତ, ବିବାଦଶୂନ୍ୟ, ନିର୍ଦ୍ୱନ୍ଦ୍ୱ ।

ନିର୍ବିବାଦୀ—ପୁଂ.ବିଂ. (ନିର୍+ବି+ବଦ+କ.ଇନ୍) ଯେ ବିବାଦ ନ କରେ, ଭଲଲୋକ, ନିଃସନ୍ଦେହ, ଶତ୍ରୁଶୂନ୍ୟ, ନିରୀହ ।

ନିର୍ବିବେକ୍ତୃ—ତ୍ରି.ବିଂ. ବିବେଚନାରହିତ, ଅବିବେକୀ ।

ନିର୍ବିବେକ—ପୁଂ.ବିଂ. (ବ.ବ୍ରୀ) ବିବେକ ବା ହିତାହିତ ଜ୍ଞାନଶୂନ୍ୟ, ଅବିବେକ, ନିର୍ବୋଧ ।

ନିର୍ବିଭେଦ—ତ୍ରି. ବିଂ. (ବ.ବ୍ରୀ) ଅଭିନ୍ନ, ଭେଦରହିତ ।

ନିର୍ବିମର୍ଶ—ତ୍ରି.ବିଂ. (ବ.ବ୍ରୀ) ଚିନ୍ତାହୀନ, ବିମର୍ଷଶୂନ୍ୟ ।

ନିର୍ବିରୋଧ—ତ୍ରି.ବିଂ. (ବ.ବ୍ରୀ) ବିରୋଧହୀନ, ଅବିବାଦୀ, ନିରୀହ, ଶାନ୍ତ ।

ନିର୍ବିରୋଧୀ—ପୁଂ. ବିଂ. (ନିର୍ବିରୋଧ+ଇନ୍) ନିରୀହ, ଶାନ୍ତ, ନିର୍ବିବାଦୀ ।

ନିର୍ବିଶଙ୍କ—ତ୍ରି.ବିଂ.(ବ.ବ୍ରୀ) ଶଙ୍କାରହିତ, ନିଃଶଙ୍କ, ନିର୍ଭୟ, ।

ନିର୍ବିଶଙ୍କିତ—ତ୍ରି.ବିଂ. ଶଙ୍କାହୀନ, ଭୟରହିତ ।

ନିର୍ବିଶେଷ—କ୍ଳୀ. ବି. ସର୍ବଦୈକରୂପ ବିଶେଷରହିତ ପରଂବ୍ରହ୍ମ,(ବିଂ. ବ.ବ୍ରୀ) ଅଭିନ୍ନ, ସଦୃଶ, ବିଶେଷରହିତ, ତୁଲ୍ୟରୂପ ।

ନିର୍ବିଶେଷତ୍ୱ—କ୍ଳୀ.ବି. ବିଶେଷଣରହିତ, ପରଂବ୍ରହ୍ମ, (ବିଂ) ବିଶେଷଣରହିତ ।

ନିର୍ବିଶେଷଣ—କ୍ଳୀ. ବି. ପାର୍ଥକ୍ୟହୀନତା, ଅଭେଦତ୍ୱ । [ ତୁଲ୍ୟ ।

ନିର୍ବିଶେଷବାନ୍—ପୁଂ. ବିଂ. ନିର୍ବିଶେଷ,

ନିର୍ବିଷ—ତ୍ରି.ବିଂ. ( ବ.ବ୍ରୀ ) ବିଷରହିତ, ବିଷହୀନ । [ ଆସକ୍ତିରହିତ ।

ନିର୍ବିଷଙ୍ଗ—ତ୍ରି.ବିଂ. କର୍ମରେ ଅନାସକ୍ତ

ନିର୍ବିଷୟ—ପୁଂ. ବିଂ. (ବ.ବ୍ରୀ) ଅଗୋଚର, ଯାହା ଇନ୍ଦ୍ରିୟଗ୍ରାହ୍ୟ ନୁହେ, ବିଷୟଶୂନ୍ୟ, ବ୍ୟାପାରଶୂନ୍ୟ ।

ନିର୍ବିଷା—ସ୍ତ୍ରୀ.ବି. (ନିର୍ବିଷ+ଆ)ଅବିଷ ତୃଣବିଶେଷ, ମୁଥାସଦୃଶ ତୃଣ ।

ନିର୍ବିଷାଣ—ତ୍ରି.ବିଂ. (ବ.ବ୍ରୀ) ଶୃଙ୍ଗହୀନ ।

ନିର୍ବିଷ୍ଟ—ତ୍ରି.ବିଂ. (ନିର୍+ବିଶ+କ.ତ) କୃତନିର୍ବେଶ, କୃତଭୋଗ, ପ୍ରାପ୍ତବେତନ, କୃତବିବାହ, ବିବାହିତ, କୃତାଗ୍ନିହୋତ୍ର, ଭୋଗୀ, ମୁକ୍ତ, ଲବ୍ଧ, ପୁଷ୍ଟ, ପ୍ରାପ୍ତ ।

ନିର୍ବୀଜ—ତ୍ରି. ବିଂ. (ବ.ବ୍ରୀ) ବୀଜଶୂନ୍ୟ, କାରଣରହିତ, ପୁରୁଷତ୍ୱହୀନ, (ବି) ପାତଞ୍ଜଳୋକ୍ତ ସମାଧିଭେଦ ।

ନିର୍ବୀଜା—ସ୍ତ୍ରୀ.ବି.(ନିର୍ବୀଜ+ଆ)କାନ୍ଦାହାରୀ-ଦ୍ରାକ୍ଷା. କିସ୍‌ମିସ୍ । [ ଖାଲୁ ।

ନିର୍ବୀର—ପୁଂ.ବିଂ. ( ବ.ବ୍ରୀ ) ବୀରଶୂନ୍ୟ,

ନିର୍ବୀରା—ସ୍ତ୍ରୀ.ବିଂ.ଅବୀରା,ପତିପୁତ୍ରବିହୀନା

ନିର୍ବୀରୁଧ୍—ତ୍ରି.ବିଂ. (ବ.ବ୍ରୀ) ବୀରୁଧଶୂନ୍ୟ, ଲତାଶୂନ୍ୟ ।

ନିର୍ବୀର୍ଯ୍ୟ—ତ୍ରି.ବିଂ. (ବ.ବ୍ରୀ) ବୀର୍ଯ୍ୟହୀନ, ନିସ୍ତେଜ, ଦୁର୍ବଳ । [ ଓଲୁ ।

ନିର୍ବୁଦ୍ଧି—ବିଂ.(ବ.ବ୍ରୀ)ବୁଦ୍ଧିହୀନ,ବୋକା,

ନିର୍ବୁଦ୍ଧିଆ—ଗ୍ରା.ବିଂ. ନିର୍ବୁଦ୍ଧି ଦେଖ ।

ନିର୍ବୁଦ୍ଧିତା—ବି. (ନିର୍ବୁଦ୍ଧି+ଭା.ତା) ବୁଦ୍ଧିହୀନତା । [ ବୃକ୍ଷହୀନ ।

ନିର୍ବୃକ୍ଷ—ତ୍ରି.ବିଂ. ( ବ.ବ୍ରୀ ) ବୃକ୍ଷଶୂନ୍ୟ,

ନିର୍ବୃତ—ତ୍ରି.ବିଂ.(ନିର୍+ବୃ+ମିଂ.ତ) ସୁସ୍ଥ,ସନ୍ତୁଷ୍ଟ,କୁଶଳ,ଅବସନ୍ନ,(ବି) ଗୃହ ।

ନିର୍ବୃତି—ସ୍ତ୍ରୀ.ବି. (ନିର୍+ବୃ+ଭା.ତି) ସୁସ୍ଥିତି, ସ୍ୱଚ୍ଛନ୍ଦ, ସୁଖ, ମୋକ୍ଷ, ମୃତ୍ୟୁ, ଶାନ୍ତି, ସନ୍ତୋଷ, ଉପରମ, ନିରାପଦ, ସିଦ୍ଧି, ବୈଶ୍ୟ, ( ପୁଂ.ବି ) ବିଦର୍ଭବଂଶୀୟ ବୃଷ୍ଣିଙ୍କ ପୁତ୍ର ।

ନିର୍ବୃତ୍ତ—ତ୍ରି.ବିଂ. (ନିର୍+ବୃତ+ମିଂ. ତ) ନିଷ୍ପନ୍ନ, ସୁସିଦ୍ଧ, (କ.ତ) ଜାତ, ଉତ୍ପନ୍ନ, ସମାପ୍ତ, ବିରତ ।

ନିର୍ବୃତ୍ତଶତ୍ରୁ—ପୁଂ.ବି. ବିଷ୍ଣୁ ।

ନିର୍ବୃତିଶତ୍ରୁ—ପୁଂ. ବି. ଦ୍ୱାପରଯୁଗୀୟ ଯଦୁବଂଶୀୟ ନୃପଭେଦ ।

ନିର୍ବୃତ୍ତି—ସ୍ତ୍ରୀ.ବି. (ନିର୍+ବୃତ+ଭା. ତି) ସମାପ୍ତି, ଶେଷ, ସିଦ୍ଧି, ତୃପ୍ତି, ନିଷ୍ପତ୍ତି, ମୋକ୍ଷ, (ବିଂ—ବ.ବ୍ରୀ)ଜୀବିକାରହିତ, ଜୀବିକାହୀନ ।

ନିର୍ବୃଷ୍ଟି—ସ୍ତ୍ରୀ.ବି. (ବ.ବ୍ରୀ) ବର୍ଷଣରହିତ, ଅନାବୃଷ୍ଟି । [ ସ୍ଥିର ।

ନିର୍ବେଗ—ତ୍ରି. ବିଂ. (ବ.ବ୍ରୀ) ଗତିହୀନ,

ନିର୍ବେତନ—ତ୍ରି. ବିଂ. (ବ.ବ୍ରୀ) ବେତନହୀନ,ଯେ ବେତନ ଗ୍ରହଣ କରେ ନାହିଁ

ନିର୍ବେଦ—ପୁଂ. ବି ( ନିର୍+ବିଦ୍+ଭା.ଅ)ଔଦାସ୍ୟ,ନିରହଂକାର,ଅନୁତାପ, ସ୍ୱାବମାନନା, ନିଜର ଅପମାନ, ଶାନ୍ତରସର ସ୍ଥାୟୀଭାବ, ପରମ ବୈରାଗ୍ୟ, ଖେଦ,ବହୁ କାଳ ଦ୍ୱାରା ଅସିଦ୍ଧ ପଦାର୍ଥର ନିଷ୍ପ୍ରୟୋଜନତ୍ୱ, (ବିଂ—ବ.ବ୍ରୀ) ବେଦରହିତ, ବେଦବହିର୍ଭୂତ, (ଗ୍ରା. ବି ) କିଂକର୍ତ୍ତବ୍ୟବିମୂଢ଼ତା ।

ନିର୍ବେଦନ—ପୁଂ.ବିଂ.(ବ.ବ୍ରୀ)ବେଦନାରହିତ, ଅଚେତନ, ନଷ୍ଟେନ୍ଦ୍ରିୟ, (ବି) ବିବାହ, ଭୋଗ, ମୂର୍ଚ୍ଛା, ଲାଭ ।

ନିର୍ବେଦବାନ୍—ପୁଂ. ବିଂ. (ନିର୍ବେଦ+ବତ୍) ବେଦଦ୍ୱେଷୀ ।

ନିର୍ବେଧିମ—ପୁଂ. ବି. ସୁଶ୍ରୁତୋକ୍ତ କର୍ଣ୍ଣବେଧନ ଯନ୍ତ୍ର ବିଶେଷ ।

ନିର୍ବେପନ—ତ୍ରି. ବିଂ. କମ୍ପନହୀନ ।

ନିର୍ବେଶ—ପୁଂ. ବି. (ନିର+ବିଶ୍+ଭା. ଅ) ପାଳନ, ଲାଭ, ଭୋଗ, ବେତନ, ମୂର୍ଚ୍ଛା, ବିବାହ, ଭୋଜନ, ସୁଖ ।

ନିର୍ବେଶନୀୟ—ତ୍ରି.ବିଂ.ଭୋଗ୍ୟ, ଲଭ୍ୟ ।

ନିର୍ବେଷ୍ଟନ—କ୍ଳୀ.ବି.ତନ୍ତ୍ରୀମାନଙ୍କ ବ୍ୟବହୃତ ସୂତ୍ରଯନ୍ତ୍ର,ନାଡ଼ୀଚୀର(ବିଂ)ବେଷ୍ଟନରହିତ ।

ନିର୍ବେଷ୍ଟବ୍ୟ—ତ୍ରି. ବିଂ. ପ୍ରବେଶନୀୟ, ପରିଶୋଭିତ, ପୁରସ୍କାରଯୋଗ୍ୟ ।

ନିର୍ବେଷ୍ଟୁକାମ—ପୁଂ. ବିଂ. ବିବାହ କରିବାକୁ ଇଚ୍ଛୁକ ।

ନିର୍ବୈର—ପୁଂ. ବିଂ. (ବ.ବ୍ରୀ)ଶତ୍ରୁଭାବବର୍ଜିତ, ମିତ୍ର,ବୈରତାରହିତ, ଦ୍ୱେଷରହିତ ।

ନିର୍ବୈରଣ—କ୍ଳୀ. ବି. ଶତ୍ରୁତାହୀନ ।

ନିର୍ବୋଢ଼ା—ପୁଂ. ବିଂ. ବହନକାରୀ, ବିଘଟକାରୀ ।

ନିର୍ବୋଧ—ତ୍ରି. ବିଂ. (ବ.ବ୍ରୀ) ଜ୍ଞାନହୀନ, ମୂର୍ଖ, ବୋଧରହିତ, ମେଧାହୀନ ।

ନିର୍ବ୍ୟଞ୍ଜନ—ବି. ସଂ. ବ୍ୟଞ୍ଜନହୀନ ।
ନିର୍ବ୍ୟଥ—ବି. ସଂ. (ବ.ବ୍ରୀ) ବ୍ୟଥାହୀନ, ଦୁଃଖଶୂନ୍ୟ ।
ନିର୍ବ୍ୟଥନ—କ୍ଲୀ. ବ. (ନିର୍+ବ୍ୟଥ+ଭା.ଅନ) ନିଗ୍ରହ, ବ୍ୟଥାର ଅଭାବ, ନିଶ୍ଚୟରୂପେ ପୀଡ଼ନ, (ଅଧି.ଅ) ଛିଦ୍ର, ଖୋଲ, ଗାଡ଼, (ସଂ) ବ୍ୟଥାଶୂନ୍ୟ ।
ନିର୍ବ୍ୟଥା—ବ. (ନିର୍+ବ୍ୟଥା) ସୁଖ, ସ୍ୱାଚ୍ଛନ୍ଦ୍ୟ, ବେଦନାଶୂନ୍ୟତା ।
ନିର୍ବ୍ୟଳୀକ—ସଂ.(ବ.ବ୍ରୀ)ଅକପଟ,ସତ୍ୟ, ଛଳହୀନ, ନିଷ୍କପଟ ।
ନିର୍ବ୍ୟାକୁଳ— ସଂ. ବ୍ୟାକୁଳତାଶୂନ୍ୟ, ସ୍ଥିରଚିତ୍ତ ।
ନିର୍ବ୍ୟାଘ୍ର—ସଂ.ବ୍ୟାଘ୍ର ପଶୁଶୂନ୍ୟ,ବ୍ୟାଘ୍ରାଦିର ଉପଦ୍ରବ ରହିତ (ସ୍ଥାନ) ।
ନିର୍ବ୍ୟାଜ—ବି. ସଂ. (ବ.ବ୍ରୀ) ଅକପଟ, ସରଳ, ବାଧାହୀନ ।
ନିର୍ବ୍ୟାଧି—ବି.ସଂ.(ବ.ବ୍ରୀ) ବ୍ୟାଧିଶୂନ୍ୟ, ନୀରୋଗ, ସୁସ୍ଥ ।
ନିର୍ବ୍ୟାପାର—ବି.ସଂ.(ବ.ବ୍ରୀ)ବ୍ୟାପାରଶୂନ୍ୟ, ବ୍ୟାପାରରହିତ ।
ନିର୍ବ୍ୟୂଢ଼—ବି. ସଂ. (ନିର୍+ବି+ବହ+ର୍ମ.ତ) ନିଶ୍ଚିତ, ପରିତ୍ୟକ୍ତ, ପର୍ଯ୍ୟାପ୍ତ, ସମ୍ୟକ୍ ନିଷ୍ପନ୍ନ, ସମାପ୍ତ, ସୁସମ୍ପନ୍ନ, ସ୍ଥିର, ଅପ୍ରତିବନ୍ଧ ।
ନିର୍ବ୍ୟୂହ—ପୁଂ. ବ. ନିର୍ଯ୍ୟୂହ, ନାଗଦନ୍ତାକାର କାଷ୍ଠ,ସଂ.ବ୍ୟୂହରହିତ ସୈନ୍ୟାଦି
ନିର୍ବ୍ରଣ—ବି. ସଂ. (ବ.ବ୍ରୀ) ବ୍ରଣରହିତ, ଅକ୍ଷତ, ଅନାହତ ।
ନିର୍ବ୍ରତ—ବି. ସଂ. ଯାଗଯଜ୍ଞହୀନ,ବ୍ରତାଚରଣଶୂନ୍ୟ, ବ୍ରତାଦିରେ ଶ୍ରଦ୍ଧାଶୂନ୍ୟ ।
ନିର୍ବ୍ରୟସ୍କ—ବି.ସଂ.ଉଦ୍ଧୃତ, ଧ୍ୱଂସପ୍ରାପ୍ତ ।
ନିର୍ହ୍ଲୟନୀ—ସ୍ତ୍ରୀ. ବ. ସର୍ପତ୍ୱକ୍,ସାପକାତି, ନିର୍ମୋକ ।
ନିର୍ହରଣ—କ୍ଲୀ. ବ. (ନିର୍+ହୃ+ଅନ) ଶବଦାହ, ଦହନ, ନାଶନ,ନିଷ୍କାସନ ।
ନିର୍ହରଣୀୟ—ବି.ସଂ.ନିଃସାରଣ ଯୋଗ୍ୟ, ବାହାରକୁ ବାହାର କରିବାର ଯୋଗ୍ୟ,
ନିର୍ହର୍ତ୍ତବ୍ୟ—ବି. ସଂ. ଅପସାରିତ କରିବା-
ଯୋଗ୍ୟ ।
ନିର୍ହସ୍ତ—ବି. ସଂ. (ବ.ବ୍ରୀ) ହସ୍ତଶୂନ୍ୟ, ହସ୍ତରହିତ, କର୍ମାଦିରେ ଅପାରଗ, ଲୋକବଳହୀନ ।
ନିର୍ହ୍ରାଦ—ପୁଂ. ବ. (ନିର୍+ହ୍ରଦ+ଅ) ଶବ୍ଦଭେଦ, ପକ୍ଷିପ୍ରଭୃତିର ରବ ।
ନିର୍ହାର—ପୁଂ. ବ. (ନିର୍+ହୃ+ଭା.ଅ) ନିଖାତ ଲୋଷ୍ଟାଦିର ଉଦ୍ଧାରଣ, ଅଭିକର୍ଷଣ, ମଳମୂତ୍ରାଦି ତ୍ୟାଗ, ପ୍ରେତଦେହର ଦାହାର୍ଥ ବହିର୍ନୟନ,ଯଥାଅଷ୍ଟ ବହିଯୋଗ, ଶବଦାହ,ବହୁଦୂର ପ୍ରସାରିତ ସୁଗନ୍ଧ, ସମ୍ପତ୍ତି ।
ନିର୍ହାରକ—ବି. (ନି+ହୃ+ଅକ) ଗୃହରୁ ଶବାଦିର ବହିଷ୍କରଣ, (ସଂ-ନିର୍+ହୃ+କ.ଅକ) ଦହିଦୂରବ୍ୟାପକ ଗନ୍ଧବିଶିଷ୍ଟ,ଯେ ବାହାର କରେ, ନିର୍ହରଣକର୍ତ୍ତା, ମଡ଼ାସାଙ୍ଗିଆ,ଶବଦାହକ,ଧର୍ମ, ଅପହାରକ ।
ନିର୍ହାରି—ପୁଂ.ବ. (ନିର୍+ହୃ+କ.ଇନ୍) ନିର୍ହାରକ ଦେଖ ।
ନିର୍ହିମ—ଅବ୍ୟ.ହିମାଭାବ,ସଂ. ହିମଶୂନ୍ୟ ।
ନିର୍ହୃତ—ବି. ସଂ. (ନିର୍+ହୃତ) ଅପସୃତ,ସ୍ଥାନାନ୍ତରିତ,ବହିଷ୍କୃତ,ଉଦ୍ଧୃତ
ନିର୍ହୃତ—ସ୍ତ୍ରୀ. ବ. ସ୍ୱପଙ୍କ୍ତିଚ୍ୟୁତ, ସ୍ଥାନାନ୍ତରକୁ ଆନୀତ ।
ନିର୍ହୃତ୍ୟ—ବି. ସଂ. ଭୁଲକ୍ରମେ ନୀତ ।
ନିର୍ହେତୁ—ବି.ସଂ. (ବ.ବ୍ରୀ) କାରଣହୀନ, ତର୍କ ବହିର୍ଭୂତ, ବୃଥା ।
ନିର୍ହେତୁକ—ସଂ. (ବ.ବ୍ରୀ) ଅହେତୁକ, ଅକାରଣ, ବୃଥା ।
ନିର୍ହ୍ରାଦ—ପୁଂ. ବ. (ନିର୍+ହ୍ରଦ+ଅ) ଶବ୍ଦଭେଦ, ପକ୍ଷିମାନଙ୍କର ଶବ୍ଦ, ଧ୍ୱନି ।
ନିର୍ହ୍ରାଦୀ—ପୁଂ. ସଂ. ଦେୟଯୁକ୍ତ,ଧ୍ୱନିତ ।
ନିର୍ହ୍ରାହ—ପୁଂ.ସଂ. (ବ.ବ୍ରୀ)କ୍ଷୟପ୍ରାପ୍ତ ।
ନିର୍ହ୍ରୀକ—ବି. ସଂ. (ବ.ବ୍ରୀ) ନିର୍ଲଜ୍ଜ, ସାହସୀ, ଲଜ୍ଜାଶୂନ୍ୟ ।
ନଳ—ବ.ବିଭୀଷଣର ମନ୍ତ୍ରୀ ରାକ୍ଷସବିଶେଷ ।
ନଳଠା—ଗ୍ରା. ସଂ. ଅଲ୍ପଜ୍ଞ,ଲଜ୍ଜାହୀନ ।
ନଳଠାପଣିଆ—ଗ୍ରା. ବ. ଲଜ୍ଜାହୀନତା ।
ନଳୟ—ପୁଂ. ବ. (ନି+ଲୀ+ଅଧି.ଅ) ଗୃହ,ଆବାସ, (ନି+ଲୟ) ନିଃଶେଷ ଲୟ, ପଶୁପକ୍ଷୀଙ୍କ ବସା, ଲୁଚିବାର ସ୍ଥାନ,ଅଦର୍ଶନ,ବିଶ୍ରାମନେବାର ସ୍ଥାନ ।
ନଳୟନ—କ୍ଲୀ. ବ. (ନି+ଲୀ+ଅନ) ନୀଡ଼, ବାହାଶ୍ରୟ, ଶ୍ଳେଷ୍ମଣ, ସମ୍ବନ୍ଧ, ମୋକ୍ଷ, ଊର୍ଦ୍ଧ୍ୱରୁ ତଳକୁ ଓହ୍ଲାଇବା, (ପକ୍ଷୀ) ତଳେ ବସିବା ।
ନଲମ—ଯା.ବ. ପୂର୍ବରୁ ସର୍ବସାଧାରଣଙ୍କୁ ଜଣାଇବାପରେ ନିର୍ଦ୍ଦିଷ୍ଟ ଦିବସରେ ବା ସ୍ଥାନରେ କୌଣସି ବସ୍ତୁ ବା ସମ୍ପତ୍ତିକୁ ପ୍ରକାଶ୍ୟରେ ସର୍ବୋଚ୍ଚ ମୂଲ୍ୟରେ ବିକ୍ରୟ କରିବାର ରୀତି ।
ନଲମଇସ୍ତାହାର୍—ଯା.ବ. କୌଣସି ସମ୍ପତ୍ତି ନିଲମ ହେବା ସମ୍ବନ୍ଧେ ପୂର୍ବରୁ ସର୍ବସାଧାରଣଙ୍କୁ ନିଲମର ତାରିଖଆଦି ଜଣାଇବାର ବିଜ୍ଞାପନ ।
ନଲମଡ଼ାକ—ଗ୍ରା. ବ. ନିଲମ ସମୟରେ ପ୍ରତ୍ୟେକ ଗ୍ରହୀତାଙ୍କୁ ଯେତେ ଟଙ୍କାରେ ଉକ୍ତ ସମ୍ପତ୍ତିକୁ ନେବାକୁ ଇଚ୍ଛାକରନ୍ତି ତାହା ଉଚ୍ଚୈଃସ୍ୱରରେ ପ୍ରକାଶକରିବା ।
ନଲମହେବା—ଗ୍ରା.ବି. (କୌଣସି ସମ୍ପତ୍ତି) ନିଲମଦ୍ୱାରା ବିକିହେବା ।
ନଲମି—ଯା. ସଂ. ନିଲମହେବାର ଯୋଗ୍ୟ,ନିଲମରେ କ୍ରୀତ ବା ବିକ୍ରୀତ, (ବା) ନିଲମ ଦେଖ । [ ସ୍ଥାନ ।
ନଲାୟ—ବ.(ନି+ଲୀ+ର୍ମ.ଅ) ଆଶ୍ରୟ-
ନଲାୟନ—ବ. (ନି+ଲୀ+ଭା.ଅନ) ନିଜେ ଲୁଚିବା, ଲୁଚୁକାଳିଖେଳ ।
ନଲଛ—ପ୍ରା. (ଗଞ୍ଜାମ) ବ. ଖାସୀ,ପୁଂସ୍ତ୍ୱ ନଷ୍ଟକରାଯାଇଥିବା ଛେଳି ବା ମେଣ୍ଢା ।
ନଲମ୍ପ—ପୁଂ. ବ. (ନି+ଲିମ୍ପ+କ.ଅ) ଦେବ, ଦେବତା, ମରୁତଦେବତାଗଣ ।
ନଲମ୍ପନିର୍ଝରୀ—ସ୍ତ୍ରୀ. ବ. ଗଙ୍ଗାନଦୀ, ଭାଗୀରଥୀ, ଦେବନଦୀ ।
ନଲମ୍ପା—ସ୍ତ୍ରୀ. ବ. (ନି+ଲିପ+ଅ+ଆ) ସ୍ୱୀଗବୀ, ଗାଈ, ଦୁଗ୍ଧଖଣ୍ଡ ।
ନଲମ୍ପିକା—ସ୍ତ୍ରୀ. ବ. (ନି+ଲିମ୍ପା+କ+

ଆ) ସୌରଭେସ୍ୱୀ ଗାଈ ।
ନଲୀନ—ବି. ବ°. (ନି+ଲୀ+କ.ତ) ନିଃଶେଷରୂପେ ଲୀନ,ସଲଗ୍ନ,ଅତ୍ୟନ୍ତ ସମ୍ବନ୍ଧ ବେଷ୍ଟିତ,ଜଡ଼ିତ, ସମ୍ପୂର୍ଣ୍ଣରୂପେ ମିଶିଯିବା ବା ଅଦୃଶ୍ୟ ହୋଇଯାଇଥିବା । ନିମଗ୍ନ, ବିନଷ୍ଟ, ଲୁପ୍ତ, ଅବସ୍ଥିତ ।
ନଲୀନକ—ବି. ବ°. ନଲୀନ ସନ୍ନିକୃଷ୍ଟ ଦେଶାଦି ।
ନଲ୍ଲୀୟମାନ—ପୁଂ. ବ°. (ନି+ଲୀ+କ. ଆନ) ଲୁଚିରହିଥିବା ।
ନବ୍—ଦା. ବି. ଦେଶୀବାଲି କଲମରେ ଲଗାଯିବା ପତଳା ମୁନିଆ ଧାତୁଫଳକ, ଧାତୁମୟ ଲେଖନୀମୁଖ ।
ନବଷଃ—ପୁଂ.ବ.ଯଜ୍ଞରେ ଉତ୍ସୃଷ୍ଟପଶୁ ।
ନିବଚନ—କ୍ଲୀ. ବ. ନିରନ୍ତର ବଚନ, ନିରନ୍ତର ବାକ୍ୟ, ବଚନର ଅଭାବ ।
ନିବଚନେ—ଅବ୍ୟ. ବଚନ ନିୟମ, ବାକ୍ୟନିୟମ ।
ନିବତ୍—ବି. ବ°. ନିମ୍ନଗତାଦି ।
ନିବତା—ସ୍ତ୍ରୀ. ବ. ନିମ୍ନଗାମୀ, ପର୍ବତ ନିମ୍ନ ଭିମୁଖେ ଅବତରଣ ।
ନିବଦୁଙ୍ଗବଠୋବା--ପ୍ରସିଦ୍ଧ ମନ୍ଦିର,ପୁଣା-ଜିଲ୍ଲାର ନାନ ନାମକ ବିଭାଗରେ ଅବ-ସ୍ଥିତ ।
ନିବଦ୍ଧ—ବ°.(ନି+ବନ୍ଧ+ମଁ.ତ)ବଦ୍ଧ, ସଂହିତ, ଗ୍ରଥିତ, ରଚିତ, ନିବେଶିତ, ସ୍ଥିରୀକୃତ, ଆନଦ୍ଧ, ଆବୃତ, ଆଶ୍ରିତ, ଅଲଙ୍କୃତ, ବାଧପ୍ରାପ୍ତ, ନିର୍ମିତ, ବ୍ୟବହୃତ, କୋଷ୍ଠବଦ୍ଧ, ନ୍ୟସ୍ତ, ଜମାକରାଯାଇଥିବା ।
ନିବନ୍ଧ—ପୁଂ. ବ. ( ନି+ବନ୍ଧ+ଅ ) ଏକାଗ୍ରତା, ବନ୍ଧନ, ଗୀତ, ଗାନ, ସ୍ଥିରୀକରଣ, ଗ୍ରନ୍ଥ ପ୍ରସ୍ତାବ,କାଳବିଶେଷରେ ଦେୟ ବସ୍ତୁ, ସାମୟିକବୃତ୍ତି, ନିୟମ, ବ୍ୟବସ୍ଥା, ଗ୍ରନ୍ଥ, ବୃତ୍ତି, ଟୀକା, ଝଙ୍କା, ପେନ୍‌ସନ୍, ଦାନ, କୌଶଳ, ମୂତ୍ରକୃଚ୍ଛ୍ର, ରୋଗ, ନିମ୍ବଗଛ, ବ୍ରତ, ସଙ୍କଳ୍ପ, କର୍ତ୍ତବ୍ୟ କର୍ମ, ଉପନାହ, ଶୃଙ୍ଖଳ,ଆସକ୍ତି,ମୂଳ,ଧନାଦିର ବନ୍ଧକ, ନିର୍ଦ୍ଦିଷ୍ଟସମ୍ପତ୍ତି, ପ୍ରତିବନ୍ଧକ, କାରଣ, ସନ୍ଦର୍ଭ ।
ନିବନ୍ଧକାର—ବ°.(ନିବନ୍ଧ+କୃ+କ.ଅ) ଗ୍ରନ୍ଥକାର, ରଚୟିତା, ଟୀକାକାର, ସଙ୍ଗ୍ରାହକ ।
ନିବନ୍ଧନ—କ୍ଲୀ. ବ. (ନିବନ୍ଧ+ଭା.ଅନ) ବନ୍ଧନ, ସ୍ଥିରୀକରଣ, ଶୃଙ୍ଖଳ, ଅଟକାଇବା, (କ.ଅନ) ହେତୁ, କାରଣ, ଉପଲକ୍ଷ୍ୟ, ଉଦ୍ଦେଶ୍ୟ,ବ୍ୟବସ୍ଥା, (ମଁ.ଅ) ଗ୍ରନ୍ଥ,ପ୍ରସ୍ତାବ,ନିୟମିତ କାଳରେ ଦେୟ ବସ୍ତୁ, ପାରିତୋଷିକ ଦାନ, ନିର୍ମାଣ, ଅବଲମ୍ବନ, ମୂଳ, ଆଧାନ, ବୃତ୍ତି, ଝଙ୍କା. ପେନସନ୍.ଟୀକା,ସମ୍ପର୍କ, (ବ°) ବନ୍ଧନକାରୀ. ଅମୁକ ଉପରେ ନିର୍ଭର କରୁଥିବା,ଅମୁକସଙ୍ଗେ ସଂଯୁକ୍ତ,(ଗ୍ରା.ଅ) କାରଣରୁ । [ ବେଡ଼ୀ ।
ନିବନ୍ଧନୀ—ବ. (ନିବନ୍ଧନ+ଈ) ଶୃଙ୍ଖଳ,
ନିବନ୍ଧା—ପୁଂ.ବ°. (ନି+ବନ୍ଧ+କ.ତୃ) ନିବନ୍ଧକାର ଦେଖ । [ଅବନ୍ଧ ।
ନିବନ୍ଧିତ—ବ°. (ନିବନ୍ଧ+ମଁ.ଇ) ବଦ୍ଧ,
ନିବନ୍ଧୀ—ପୁଂ. ବ°. (ନି+ବନ୍ଧ+କ. ଇନ୍) ଯେ ବାନ୍ଧେ, ବନ୍ଧନକାରୀ, ଯେ ଆବଦ୍ଧ ରହେ, ସଂପୃକ୍ତ, ସମ୍ବଦ୍ଧ,ଯାହା ଘଟାଏ ।
ନିବପନ—କ୍ଲୀ.ବ.(ନି+ବପ+ଭା.ଅନ) ପିତୃାଦିଙ୍କ ଉଦ୍ଦେଶ୍ୟେ ଦାନ, ଶ୍ରାଦ୍ଧ, ବୁଣିବା, ଢାଳିବା, ଅଜାଡ଼ିବା ।
ନିବର—ପୁଂ. ବ°. ( ନି+ବୃ+ଅ ) ନିବାରକ,ଯେ ବାଧା ଦିଏ,(ବ)ରକ୍ଷଣ, ଆବରଣ ।
ନିବରା—ସ୍ତ୍ରୀ. ବ. (ନି+ବୃ+ଅ+ଆ) କୁମାରୀ, ଅବିବାହିତା କନ୍ୟା ।
ନିବର୍ତ୍ତୀ—ବି. ବ°. ପ୍ରତ୍ୟାବୃତ୍ତ, ଫେରି ଆସିଥିବା ।
ନିବର୍ତ୍ତକ—ପୁଂ.ବ°.(ନି+ବୃତ+କ.ଅକ) ନିବାରକ, ନିବୃତ୍ତିକାରକ, ପ୍ରତିବନ୍ଧକ, ପଳାୟନରତ, ପ୍ରତ୍ୟାଖ୍ୟାତ ।
ନିବର୍ତ୍ତନ—କ୍ଲୀ.ବ. (ନି+ବୃତ+ଣିଚ୍+ଭା.ଅନ) ନିବାରଣ, ନିବୃତ୍ତି, ଷାନ୍ତ, ଅଭିସୃତା, ପ୍ରତ୍ୟାବର୍ତ୍ତନ, ପ୍ରତ୍ୟର୍ପଣ, ପଛକୁ ହଟାଇବା, ପଳାୟନ, (ଅଧି-ଅନ) ୨୦ ପଦକା ଲମ୍ବ ଓ ଚଉଡ଼ା ଜମି, ଯେଉଁ ଜମିର ଦୈର୍ଘ୍ୟ ୨୦୦ ଓ ପ୍ରସ୍ଥ ୨୦୦ ହାତ ।
ନିବର୍ତ୍ତିଷ୍ଣୁ—ବି. ବ°. (ନି+ବୃତ+ଣିଚ୍+ଅଷ୍ଣୁ) ଭ୍ରମଣଶୀଳ, ପ୍ରତ୍ୟାଖ୍ୟାନ କରଣଯୋଗ୍ୟ ।
ନିବର୍ତ୍ତମାନ—ବି. ବ°. ଯେ ଫେରୁଅଛି ।
ନିବର୍ତ୍ତୟିତବ୍ୟ—ବି.ବ°.(ନି+ବୃତ+ଣିଚ୍+ତବ୍ୟ) ନିବାରଣ ଯୋଗ୍ୟ ।
ନିବର୍ତ୍ତ(ର୍ତ୍ତେ)ଇବା—ଗ୍ରା. କି. ନିବୃତ୍ତ କରାଇବା, ବାରଣ କରିବା, ଷାନ୍ତ କରାଇବା, ଶାନ୍ତ କରାଇବା ।
ନିବର୍ତ୍ତିତ—ବି.ବ°. (ନି+ବୃତ+ଣିଚ୍+ମଁ.ତ) ପ୍ରତ୍ୟାକୃଷ୍ଟ, ନିବାରିତ, ପ୍ରତ୍ୟାବର୍ତ୍ତିତ, (ସ୍ତ୍ରୀ) ନିବର୍ତ୍ତିତା ।
ନିବର୍ତ୍ତିତବ୍ୟ—ବି. ବ°. (ନି+ବୃତ+ଣିଚ୍+ତବ୍ୟ) ଯାହାକୁ ଫେରାଇ ଆଣିବା ଉଚିତ ।
ନିବର୍ତ୍ତିତପୂର୍ବ—ବି. ବ°. (ନି+ବୃତ+ଣିଚ+ତବ୍ୟ) ଯେ ପୂର୍ବରୁ ଫେରି ଯାଇଅଛି ।
ନିବର୍ତ୍ତିବା—ଗ୍ରା. କି. ନିବୃତ୍ତ ହେବା, ଷାନ୍ତ ହେବା,ପଶ୍ଚାତ୍‌ପଦ ହେବା,ଶାନ୍ତ ହେବା ।
ନିବର୍ତ୍ତୀ—ପୁଂ. ବ°. ସଙ୍ଗ୍ରାମାଦିରୁ ପ୍ରତ୍ୟାବୃତ୍ତ, ପଳାୟିତ, ନିର୍ଲିପ୍ତ ।
ନିବର୍ତ୍ତ୍ୟ—ବି.ବ°.ପ୍ରତ୍ୟାବୃତ୍ତ,ପ୍ରତ୍ୟାକୃଷ୍ଟ, ନିବାରିତ, ଅନୁତପ୍ତ, ପୁନଃପ୍ରାପ୍ତ ।
ନିବର୍ହଣ—ବି. ବ°. (ନି+ବର୍ହ+ମଁ. ଅନ) ଉଚ୍ଛିନ୍ନ, ଧ୍ୱଂସ, ହତ, ଅପସୃତ, (ବ-ଭା.ଅନ) ବଧ, ଉଚ୍ଛେଦ, ବିନାଶ-ସାଧନ ।
ନିବର୍ହିତ—ବ°. (ନି+ବର୍ହ+ମଁ.ତ) ନିହତ, ଉଚ୍ଛିନ୍ନ, ଅପହୃତ । [ ହିନ ।
ନିବଲ—ଗ୍ରା. ବ°. (ସ-ନିର୍ବଲ) ବଳ-
ନିବସଥ—ସ୍ତ୍ରୀ. ବ. (ନି+ବସ+ଅଥ, ଅଧି) ଗୃହ, ବାସସ୍ଥାନ ।

**ନିବସଥ**—ପୁଂ. ବି. (ନି+ବସ+ଅଧି. ଅଥ) ଗ୍ରାମ, ସୀମ, ସରହଦ, ବସ୍ତି ।

**ନିବସନ**—କ୍ଲୀ. ବି. (ନି+ବସ+ଅଧି. ଅନ) ଗୃହ, (ଭା.ଅନ) ବିଦେଶବାସ, ପ୍ରବାସ, ବସ୍ତ୍ର ପରିଧାନ, (ବସ+ଣି. ଅନ) ବସ୍ତ୍ର, ପୋଷାକ ।

**ନିବସ୍ତବ୍ୟ**—ବି. ବିଂ. (ନି+ବସ+ତବ୍ୟ) ଜୀବନଯାତ୍ରା ନିର୍ବାହଯୋଗ୍ୟ, ଅତିବାହନ ଯୋଗ୍ୟ ।

**ନିବହ**—ପୁଂ. ବି. (ନି+ବହ+ର୍ମ.ଅ) ରାଶି, ସମୂହ, (କ.ଅ) ସପ୍ତ ବାୟୁର ଅନ୍ତର୍ଗତ ବାୟୁବିଶେଷ ।

**ନିବହନ**—ଗ୍ରା.ବି.ପଦ୍ୟ.ନିଧନ,ମାରଣ ।

**ନିବାକୁ**—ବି. ବିଂ. (ନି+ବଚ+ଉ) ନିବଚନଶୀଳ ।

**ନିବାଡ଼**—ଗ୍ରା. ବିଂ. (ସଂ-ନିବଡ଼) ମଜ-ବୁତ, ଦୃଢ଼, ଘନ, ଅତ୍ୟଧିକ, ନିଶ୍ଚିତ, ରଚିତ, ସୁସମ୍ପନ୍ନ, ସୁନ୍ଦର, (ବି) ସମାପନ, ସମାପ୍ତି, ରଚନା, ପୂରପୂର୍ଣ୍ଣ ବୃହତ୍ ଘୃତପକ୍ୱ ପିଷ୍ଟକବିଶେଷ ।

**ନିବାଡ଼ିବା**—ଗ୍ରା. କ୍ରି. ଭିଡ଼ିବା, ଦୃଢ଼-କରିବା, ଟାଣ କରିବା, ସିଦ୍ଧକରିବ, ନିର୍ମାଣ କରିବା, ନିର୍ବାହ କରିବା ।

**ନିବାତ**—ବି. ବିଂ. (ନି+ବା+ତ) ଅବାତ, ବାତଶୂନ୍ୟ, କବଚ ଦ୍ୱାରା ସୁରକ୍ଷିତ, (ବ.ଗ୍ରା) ଦୃଢ଼, ସନ୍ନଦ୍ଧ, ଅନାହତ, ଅପ୍ରତିବନ୍ଧ, ନିରାପଦ,(ବି) ଯେଉଁ ବର୍ମ ଶସ୍ତ୍ରଦ୍ୱାରା ଭେଦ କରାଯାଏ ନାହିଁ, ଅଭେଦ୍ୟ କବଚ, ବାସସ୍ଥାନ, ନିରାପଦ ସ୍ଥାନ, ବାୟୁନିଶ୍ଚଳ ଥିବା ଅବସ୍ଥା ।

**ନିବାତକବଚ**—ବିଂ. (ବ.ଗ୍ରା) ଦୈତ୍ୟ ବିଶେଷ, ହିରଣ୍ୟକଶିପୁର ପୌତ୍ର, ହ୍ଲାଦର ପୁତ୍ର ।

**ନିବାନ୍ୟା**—ସ୍ତ୍ରୀ. ବି. ମୃତବତ୍ସା ଗାଭୀ, ମଡ଼ବଛି ଗାଈ ।

**ନିବାନ୍ୟାବତ୍ସା**—ସ୍ତ୍ରୀ. ବି. ଯେଉଁ ଗାଈର ବାଛୁରୀ ମରିଅଛି ଓ ଅନ୍ୟ ବାଛୁରୀ ଲଗାଇ ଦୁଧ ଦୁହାଁ ଯାଉଅଛି ।

**ନିବାପ**—ପୁଂ. ବି. (ନି+ବପ+ର୍ମ.ଅ) ମୃତୋଦ୍ଦେଶ୍ୟକ ଦାନ, ଦାନମାତ୍ର, ପିତୃ ତର୍ପଣ ।

**ନିବାପକ**—ପୁଂ. ବିଂ. ବୀଜବପନକାରୀ, ବପ୍ତା, ବପକ, ଯେ ମଞ୍ଜି ବୁଣେ ।

**ନିବାପୀ**—ପୁଂ. ବିଂ. (ନି+ବପ+ଇନ୍) ନିର୍ବାପକାରୀ, ଦାତା, ବପନକର୍ତ୍ତା, ଦାନକର୍ତ୍ତା ।

**ନିବାର**—ପୁଂ. ବି. (ନି+ବୃ+ଭା.ଅ) ନିବାରଣ, ବାଧା, ନିଷେଧ, ପ୍ରତିବନ୍ଧକ, ନିରାକରଣ, ବନ୍ଦକରିବା, ଦମନ ।

**ନିବାରକ**—ପୁଂ. ବିଂ. (ନି+ବାର+କ. ଅକ) ନିବାରଣକାରୀ, ବିରୋଧୀ, ପ୍ରତିବନ୍ଧକ ।

**ନିବାରଣ**—କ୍ଲୀ. ବି. (ନି+ବୃ+ଣିଚ୍+ଭା.ଅନ) ନିବାର ଦେଖ ।

**ନିବାରଣୀୟ**—ବି. ବିଂ. (ନି+ବାର+ର୍ମ.ଅନୀୟ) ନିବାରଣଯୋଗ୍ୟ, ନିବାର୍ଯ୍ୟ ।

**ନିବାରିତ**—ବି. ବିଂ. (ନି+ବାର+ର୍ମ. ତ) କୃତନିବାରଣ, ନିଷିଦ୍ଧ, ବିରୁଦ୍ଧ ।

**ନିବାରିବା**—ଗ୍ରା. କ୍ରି. ନିବାରଣ କରିବା, ଦମନକରିବା ।

**ନିବାରୀ**—ପୁଂ.ବିଂ. (ନି+ବୃ+କ.ଇନ୍) ଯେ ନିବାରଣ କରେ, ନିବାରଣକାରୀ, (ସ୍ତ୍ରୀ) ନିବାରଣୀ ।

**ନିବାର୍ଯ୍ୟ**—ବିଂ. (ନି+ବୃ+ର୍ମ.ଯ) ନିବାରଣୀୟ ଦେଖ ।

**ନିବାର୍ଯ୍ୟମାଣ**—ବିଂ. (ନି+ବୃ+ଣିଚ୍+ର୍ମ.ଆନ) ଯାହାକୁ ବାରଣ କରାଯାଏ ।

**ନିବାଶ**—ବି.ଯନ୍ତ୍ର ବା ଗୀତାଦିର ଉତ୍ଥିତ ଶବ୍ଦ ।

**ନିବାସ**—ପୁଂ. ବି. (ନି+ବସ+ଅଧି+ଅ) ଗୃହବାସ, (ଭା.ଅ) ପ୍ରବାସ, ଆଶ୍ରୟ, (ର୍ମ.ଅ)ବସ୍ତ୍ର, ପରିଚ୍ଛଦ, ରାତ୍ରିରେ ରହିବା ସ୍ଥାନ । [ ଦେଶାଦି ।

**ନିବାସକ**—ବି. ବିଂ. ନିବାସସମ୍ବନ୍ଧୀୟ ...

**ନିବାସନ**—କ୍ଲୀ.ବି.ବୌଦ୍ଧମାନଙ୍କର ବସ୍ତ୍ର ବିଶେଷ ।

**ନିବାସୀ**—ପୁଂ.ବିଂ. (ନି+ବସ+ଇନ୍) ନିବାସବିଶିଷ୍ଟ, ନିବାସକର୍ତ୍ତା, ଯେ ବାସକରେ, ବାସିନ୍ଦା, ପରିଧାନକାରୀ, (ବି) ବାସିନ୍ଦା ବ୍ୟକ୍ତି । [ ଛାଦିତ ।

**ନିବାସ୍ୟ**—ବି. ବିଂ. ବାସଯୋଗ୍ୟ, ବସ୍ତ୍ରା-

**ନିବିଡ଼**—ବି.ବିଂ(ନି+ବିଡ଼+ଅ)ନିରନ୍ଧ୍ର, ସାନ୍ଦ୍ର,ଘନ,ନତନାସିକ, ଚେପ୍ଟାନାକ ।

**ନିବିଡ଼ଅନ୍ଧକାର**—ବି.କଟିକଟିଆ ଅନ୍ଧାର, ଘନ ଅନ୍ଧାର ।

**ନିବିଡ଼କାନନ**—ବି. ଗହନବନ ।

**ନିବିଦ**—ସ୍ତ୍ରୀ. ବି. (ନି+ବିଦ୍+ଣି.କ୍ୱିପ୍) ବାକ୍ୟ, ବୈଶ୍ୱଦେବର ଶସ୍ତ୍ର ବିଷୟରେ ଶଂସନୀୟ ମନ୍ତ୍ରପଦଭେଦ ।

**ନିବିଦ୍ଧାନ**—କ୍ଲୀ.ବି(ନିବିଦ୍+ଧା+ଅନ) ଶୌନାହ୍ୱକ ଯଜ୍ଞାଦ, ଏକାଦଶ ସାଧ୍ୟ ଯଜ୍ଞ ।

**ନିବିଦାମ୍ନୟ**—ବି. ବିଂ. ନିବିଦ୍‌ସମ୍ବନ୍ଧୀୟ, ବୈଦିକ ମନ୍ତ୍ରସଂଯୁକ୍ତ ।

**ନିବିରୀସ**—ବି. ବିଂ. ଅବର୍ଣ୍ଣୀତ, ନିବିଡ଼, ଚେପ୍ଟାନାକ, ସାନ୍ଦ୍ର, ଘନ, (ସ୍ତ୍ରୀ)ନତ-ନାସିକା ।

**ନିବିବୃତ୍ସୁ**—ବିଂ. ନିବାରଣେଚ୍ଛୁ, ପ୍ରତ୍ୟା-ବର୍ତ୍ତନ କରିବାକୁ ଇଚ୍ଛୁକ ।

**ନିବିଷ୍ଟ**—ବି. ବିଂ. (ନି+ବିଶ+କ.ତ) ଆବଦ୍ଧ,ସ୍ଥିତ, ବିନ୍ୟସ୍ତ, ଚିତ୍ତାଭିନିବେଶ-ଯୁକ୍ତ, ଏକାଗ୍ର, ଆବିଷ୍ଟ, ପ୍ରବିଷ୍ଟ ।

**ନିବିଷ୍ଟଚିତ୍ତ**—ବିଂ.(ବ.ଗ୍ରା) ଅାବିଷ୍ଟମନାଃ, ଏକାନ୍ତ ଆସକ୍ତହୃଦୟ, (କ୍ଲୀ.ନ-କ. ଧା) ଅଭିନିବେଶଯୁକ୍ତ ମନଃ ।

**ନିବିଷ୍ଟତା**—ଏକାଗ୍ରତା, ମନୋଯୋଗ ।

**ନିବିଷ୍ଟି**—ସ୍ତ୍ରୀ. ବି. (ନି+ବିଶ+ତି) ସ୍ତ୍ରୀ ସଂସର୍ଗ, କାମଶକ୍ତି ।

**ନିବୀତ**—କ୍ଲୀ. ବି. (ନି+ବି+ଇ+ତ) ପଇତାକୁ ବେକରେ ମାଳାକରି ଲମ୍ୱାଇବା, ଆଚ୍ଛାଦନ ବସ୍ତ୍ର, ଓଢ଼ଣା, ଚାଦର, ନିବୃତ, କଣ୍ଠଲମ୍ୱିତ ଯଜ୍ଞସୂତ୍ର, (ବିଂ. ର୍ମ.ତ) ଆଚ୍ଛାଦିତ, ମାଳାକାରରେ ଯଜ୍ଞୋପବୀତ କଣ୍ଠରେ ଲମ୍ୱିତ ।

**ନିବୀତୀ**—ପୁଂ.ବିଂ(ନିବୀତ+ଇନ୍)ନିବୀତ-ଯୁକ୍ତ, କଣ୍ଠଲମ୍ୱିତ ଯଜ୍ଞସୂତ୍ରବିଶିଷ୍ଟ ।

ନିର୍ବୀର୍ଯ୍ୟ—ବି.ବି. ବୀର୍ଯ୍ୟହୀନ, ପୁରୁଷତ୍ୱହୀନ ।

ନିବୁଜ୍—ଗ୍ରା. ବି. ନିବିଡ଼, ଯହିଁରେ ଫାଙ୍କ ନ ଥାଏ । [ ଭେଦ ।

ନିବୃତା—ସ୍ତ୍ରୀ.ବି.କାତ୍ୟାୟନୋକ୍ତଛନ୍ଦୋ-

ନିବୃତ—ବି. ବି. ( ନି+ବୃ+ର୍ମ.ତ ) ନିଗଡ଼ ଦେଖ, ପରିବେଷ୍ଟିତ, ଆଚ୍ଛାଦିତ, (ବି. ଣ.ତ) ଓଢ଼ଣା, ଘୋଡ଼ଣିବର, ଉତ୍ତରୀୟ ବସ୍ତ୍ର ।

ନିବୃତ୍ତ—କ୍ଲୀ. ବି. (ନି+ବୃତ୍+ଭା.ତ) ପ୍ରତ୍ୟାବର୍ତ୍ତନ, ଶତ୍ରୁଗଣର ପରାକ୍ରମରୁ ମୁକ୍ତମନ, ନିବୃତ୍ତି, ଯନ୍ତ୍ରଭେଦ, ଅଶ୍ୱିବ, (ବି.+କ.ତ) ନିବୃତ୍ତିଯୁକ୍ତ, ବିରତ, ନିବୃତ୍ତିପୂର୍ବକ କର୍ମ, ଅନୁତପ୍ତ, ଅନ୍ତର୍ହିତ, କ୍ଷାନ୍ତ, ଶମିତ, ସଂଶୋଧିତ, ଦମିତ,ବାଧାପ୍ରାପ୍ତ, ପ୍ରତ୍ୟାବୃତ୍ତ,ସମାପ୍ତ, ଗତ, ଉଦାସୀନ ।

ନିବୃତ୍ତକରା(ରେ)ଇବା—ଗ୍ରା. କ୍ରି. କ୍ଷାନ୍ତକରାଇବା, ନିବର୍ତ୍ତାଇବା, ବନ୍ଦକରିବା, ଫେରାଇବା ।

ନିବୃତ୍ତକାରଣ—ବି. (ବ.ବ୍ରୀ) ନିଷ୍ପ୍ରୟୋଜନ, ନୀଚ ପ୍ରବୃତ୍ତିବିହୀନ, ( ପୁଂ.ବି ) ଧର୍ମପ୍ରାଣ ବ୍ୟକ୍ତି, ସଂସାର କାମନା ବିରହିତ ବ୍ୟକ୍ତି ।

ନିବୃତ୍ତକୋପ—ପୁଂ.ବି.(ବ.ବ୍ରୀ) ସଦୟ, ପ୍ରସନ୍ନ, ଯାହାର ରାଗ ଥଣ୍ଡା ପଡ଼ିଅଛି. ଅନୁକୂଳ । [ ଶୁଦ୍ଧିକୃତ ।

ନିବୃତ୍ତପାପ—ପୁଂ.ବି.(ବ.ବ୍ରୀ)ଗତପାପ,

ନିବୃତ୍ତବୃତ୍ତି—ପୁଂ.ସ୍ତ୍ରୀ.ବି. (ବ.ବ୍ରୀ) ଯେ ଆପଣାର ବ୍ୟବସାୟ ଛାଡ଼ିଅଛି,ବେକାର

ନିବୃତ୍ତମାଂସ—ପୁଂ. ବି. (ବ.ବ୍ରୀ) ଯେ ମାଂସାହାର ତ୍ୟାଗ କରିଅଛି, ନିରାମିଷାଶୀ । [ (ସ୍ତ୍ରୀ) ନିବୃତ୍ତରାଗା ।

ନିବୃତ୍ତରାଗ—ପୁଂ.ବି. (ବ.ବ୍ରୀ)ଗତରାଗ,

ନିବୃତ୍ତସନ୍ତାପନ—ବି.(ବ.ବ୍ରୀ) ସନ୍ତାପବିହୀନ । [ ଭେଦ ।

ନିବୃତ୍ତସନ୍ତାପନୀୟ—କ୍ଲୀ. ବି. ରସାୟନ-

ନିବୃତ୍ତହେବା—ଗ୍ରା. କ୍ରି. କ୍ଷାନ୍ତହେବା ।

ନିବୃତ୍ତାତ୍ମା—ପୁଂ. ବି. (ବ.ବ୍ରୀ)ପରବ୍ରହ୍ମ, ବିଷୟବିରତ, ବିଷୟ ରାଗଶୂନ୍ୟଚେତଷ୍କ. ବି. ବିଷ୍ଣୁ ।

ନିବୃତ୍ତି—ସ୍ତ୍ରୀ.ବି. (ନି+ବୃ+ଭା.ତି)ଶାନ୍ତଭାବଧାରଣ, ବନ୍ଦହେବା, ସମାପନ, ଅସ୍ୱୀକାର,ବିଷୟ ବୈରାଗ୍ୟ, ଅପ୍ରବୃତ୍ତି, ଉପରତି, ବିରତି, ମହାଦେବ, ଫେରି ଆସିବା, ଅନ୍ତର୍ଦ୍ଧାନ, ମୋକ୍ଷ, ଯନ୍ତ୍ରବିଶେଷ. ମତ୍ସ୍ୟଦେଶ ।

ନିବୃତ୍ତ୍ୟାତ୍ମା—ପୁଂ ବି.(ବ.ବ୍ରୀ)ନିଷେଧ ।

ନିବେଦ—ବି(ନି+ବିଦ୍+ଣିଚ୍+ଭା.ଅ) ନିବେଦନ ଦେଖ ।

ନିବେଦକ—ପୁଂ. ବି. ( ନି+ବିଦ୍+ଣିଚ୍+ଅକ) ଦରଖାସ୍ତକାରୀ, ଜ୍ଞାପକ, ନିବେଦନକାରୀ, ଦେବତାଙ୍କୁ ଭୋଗ ଅର୍ପଣକାରୀ ।

ନିବେଦନ—କ୍ଲୀ.ବି. (ନି+ବେଦି+ଭା. ଅନ) ଦରଖାସ୍ତ, ଉତ୍ସର୍ଗକରିବା,ଆବେଦନ, ବିଜ୍ଞାପନ, ସମର୍ପଣ, ଭୋଗ ବା ପଜାକରିବା, କଥନ. ବର୍ଣ୍ଣନ, ପ୍ରାର୍ଥନା, ଜଣାଣ ।

ନିବେଦନକରିବା—ଗ୍ରା.କ୍ରି. (ଭୋଗାଦି-ଦେବତାଙ୍କୁ)ସମର୍ପଣକରିବା, ଦରଖାସ୍ତ କରିବା, ପ୍ରାର୍ଥନା କରିବା. ଜଣାଇବା ।

ନିବେଦନପତ୍ର—ବି.ପ୍ରାର୍ଥନାପତ୍ର,ଦରଖାସ୍ତ

ନିବେଦନୀୟ—ବି. ବି. (ନି+ବେଦି+ର୍ମ.ଅନୀୟ)ନିବେଦନାର୍ହ, ନିବେଦନର ଯୋଗ୍ୟ, ସମର୍ପଣୀୟ, ଯାହା ଜଣାଇବାକୁ ହେବ ।

ନିବେଦୟିଷୁ—ପୁଂ. ବି. (ନି+ବେଦ+ସନ୍-ଉ)ନିବେଦନ କରିବାକୁ ଇଚ୍ଛୁକ, ଜଣାଇବାକୁ ଅଭିଳାଷୀ ।

ନିବେଦିତ—ବି.ବି.(ନି+ବେଦ+ର୍ମ.ତ) କୃତନିବେଦନ, ସମର୍ପିତ,ଦତ୍ତ. ଉତ୍ସର୍ଗୀକୃତ, ଜ୍ଞାପିତ, ପ୍ରାର୍ଥିତ, ଅନୁରୁଦ୍ଧ ।

ନିବେଦୀ—ପୁଂ. ବି. ( ନି+ବେଦ+ଇନ୍ ) ନିବେଦନକାରୀ, ପ୍ରକାଶକ, ପ୍ରାର୍ଥନାକାରୀ, ସମର୍ପକ ।

ନିବେଦ୍ୟ—ବି. ବି. (ନି+ବେଦ+ର୍ମ. ଯ) ନିବେଦନ ଯୋଗ୍ୟ, ସମର୍ପଣ ଯୋଗ୍ୟ, ଜ୍ଞାପନୀୟ, (ବି) ଦେବତାଙ୍କୁ ଭୋଗ ଅର୍ପଣ, ନୈବେଦ୍ୟ ।

ନିବେଶ—ପୁଂ. ବି. ( ନି+ବିଶ୍+ଅ ) ବିନ୍ୟାସ, ଶିବିର, ମନୋଯୋଗ, ଏକାଗ୍ରତା, ସମର୍ପଣ, ନକଲ, ପ୍ରତିଲିପି, ବିବାହ, ନିବେଶନ, ପରସର, ଅଳଙ୍କାର, ଗୃହ, ପ୍ରବେଶ, ତମ୍ବୁ, ଯୁଦ୍ଧ, ପ୍ରବେଶଦ୍ୱାର, ଲିଖନ ।

ନିବେଶନ—କ୍ଲୀ.ବି. (ନି+ବିଶି+ଅନ) ଗୃହ, ନଗର, ପ୍ରବେଶ, ସ୍ଥାପନ, ବସା, ନୀଡ଼, ଡେରା, ସ୍ଥିତି, ବିନ୍ୟାସ, (ବି°) ପ୍ରବେଶକ,(ସ୍ତ୍ରୀ)ନିବେଶାଧାର ପୃଥିବୀ ।

ନିବେଶନାର୍ହ—ବି. ( ନିବେଶନ+ଅର୍ହ+କ.ଅ) ନିବେଶ କରିବାର ଯୋଗ୍ୟ, ମନୋଯୋଗ କରିବାର ଯୋଗ୍ୟ ।

ନିବେଶନୀ—ବି. ( ନି+ବେଶି+ଅଧି-ଅନ୍+ଈ) ପୃଥିବୀ ।

ନିବେଶନୀୟ—ବି° (ନି+ବିଶ୍+ଅନୀୟ) ପ୍ରବେଶାର୍ହ, ପ୍ରବେଶଯୋଗ୍ୟ ।

ନିବେଶୟ—କ୍ରି. ସ୍ଥାପିତକର ।

ନିବେଶବାନ୍—ପୁଂ. ବି. ( ନିବେଶ+ମତ୍) ବିନ୍ୟାସଯୁକ୍ତ, ପ୍ରକ୍ଷେପବିଶିଷ୍ଟ ।

ନିବେଶିତ—ବି. ବି. (ନି+ବିଶ୍+ଣିଚ୍+ର୍ମ.ତ) ବିଜ୍ଞାପିତ, ଏକାଗ୍ର ଭାବରେ ଲାଗିଥିବା, ଲେଖା ଯାଇଥିବା, ସ୍ଥାପିତ, ବିନ୍ୟସ୍ତ, ପ୍ରବେଶିତ, ପ୍ରେରିତ, ସଂସ୍ଥାମିତ । [ ଅବସ୍ଥିତ ।

ନିବେଶୀ—ପୁଂ.ବି. ଆଶ୍ରୟପ୍ରାପ୍ତ.ପ୍ରବିଷ୍ଟ,

ନିବେଶ୍ୟ—ବି, ବି. ( ନି+ବିଶ+ଯ ) ନିବେଶନୀୟ, ନିବେଶାର୍ହ, ଶୋଧନୀୟ, ସ୍ଥାପିତ, ବିବାହାର୍ଥ ।

ନିବେଷ୍ଟ—ପୁଂ.ବି. ଆଚ୍ଛାଦନ, ଆବରଣ ବସ୍ତ୍ର, ସାମଭେଦ, ଯେଉଁ ଲୁଗାରେ କୌଣସି ବସ୍ତୁ ଘୋଡ଼ାଯାଏ ।

ନିବେଷ୍ଟନ—କ୍ଲୀ.ବି.ବସ୍ତ୍ରାଦି ଦ୍ୱାରା ଆଚ୍ଛାଦନ, ଆବୃତ୍ତକରଣ ।

ନିବେଷ୍ଟବ୍ୟ—ବି.ବି°(ନି+ବିଶ୍+ତବ୍ୟ) ନିବେଶନୀୟ, ଆଚ୍ଛାଦନ ଯୋଗ୍ୟ ।

ନିବେଷ୍ଟ୍ର—କ୍ଲୀ.ବି. (ନି+ବିଶ+ଭା.ଯ)

ବ୍ୟାପ୍ତି, (ବିଂ. ମି.ଯ) ବ୍ୟାପ୍ତି, (ବି) ବ୍ୟାପକ, ଦେବଭେଦ, ଆବର୍ତ୍ତି, ମାହାର ଜଳ, ଜଳସ୍ତମ୍ଭ, ପର୍ବତର ସମ୍ମୁଖର ଉପରଭାଗ, ରୁଦ୍ର, ବରଫରୁ ଉତ୍ପନ୍ନ ଜଳ ।

**ନିବ୍ୟାଧୀ**—ପୁଂ.ବି.(ନି+ବ୍ୟାଧ+ଇନ୍) ରୁଦ୍ରଭେଦ, (ବିଂ) ନିତାନ୍ତ ବ୍ୟାଧକ ।

**ନିବ୍ୟୂଢ଼**—କ୍ଲୀ.ବି. ଅଭିନିବେଶ, ନିରନ୍ତର ଚେଷ୍ଟା ।

**ନିଶ୍**—ସ୍ତ୍ରୀ.ବି.(ନିଶ୍+କ୍ୱିପ୍)ରାତ୍ରି, ହରିଦ୍ରା, ହଳଦୀ, ମେଷାଦି ରାଶି ।

**ନିଶ**—ଗ୍ରା. ବି. (ଫା-ଶ୍ମଶ୍ରୁ) ମୁଛ, ଉପର ଓଠର ଉପର ଭାଗରେ ବଢ଼ିବା ବିରଳ ସୂକ୍ଷ୍ମ ଲୋମ, (ଲ.ଅର୍ଥ) ଷଣ୍ଡିସ୍ତୁ ।

**ନିଶଆଉଁଶିବା**—ଗ୍ରା. କ୍ରି. ନିଶରେ ହାତ ପକାଇବା, ନିଶକୁ ହାତରେ ସଉଁଳିବା

**ନିଶଙ୍କ**—ଗ୍ରା.ବିଂ. ନିଃଶଙ୍କ, ଆଶଙ୍କାହୀନ, ଅସୀମସାହସିକ ।

**ନିଶଙ୍କମଲ୍ଲ**—ଗ୍ରା. ବିଂ. ଅସମସାହସିକ ।

**ନିଶଙ୍କପ୍ରହରାଜ**—ଗ୍ରା. ବି. ଯାଜପୁରର କୁଳୀନ ବ୍ରାହ୍ମଣ ବଂଶବିଶେଷ ।

**ନିଶଙ୍କରାୟରାଣୀ**—ଗ୍ରା. ବି. ପୁରାତନ ଓଡ଼ିଆ ନାରୀ କବିବିଶେଷ ।

**ନିଶଙ୍କା**—ଗ୍ରା.କ୍ରି.ଶଙ୍କା ବା ଭୟଶୂନ୍ୟତା, ଆଶଙ୍କାର କାରଣର ଅନୁପସ୍ଥିତି ।

**ନିଶଗୁଡ଼ିବା**—ଗ୍ରା.କ୍ରି.ନିଶରଖିବା ଦେଖ ।

**ନିଶଠ**—ପୁଂ. ବି. ରେବତୀଙ୍କ ଗର୍ଭଜାତ ବଳଦେବଙ୍କ ପୁତ୍ରବିଶେଷ,(ବିଂ)ଅକପଟ,

**ନିଶଦାଢ଼ି**—ଗ୍ରା. ବି. ମୁଛ ଓ ଦାଢ଼ି ।

**ନିଶଫୁଲା(ଲେ)ଇବା**— ଗ୍ରା.କ୍ରି. (ଲ.ଅର୍ଥ) ଗର୍ବସ୍ଫୀତ ହେବା, ଫୁଲ୍ଲହେବା ।

**ନିଶବଦ**—ଗ୍ରା. (ପଦ୍ୟ) ବିଂ. ନିଃଶବ୍ଦ, ନିସ୍ତବ୍ଧ, ନୀରବ, ଶବ୍ଦଶୂନ୍ୟ । [ କରେ ।

**ନିଶବଦେ**—ଗ୍ରା. (ପଦ୍ୟ)କ୍ରି.ବିଂ. ନୀର-

**ନିଶମନ**—କ୍ଲୀ. ବି. (ନି+ଶମ+ଣିଚ୍+ଭା.ଅନ) ଦର୍ଶନ, ଶ୍ରବଣ ।

**ନିଶମୋଡ଼ିବା**—ଗ୍ରା.କ୍ରି. ନିଜର ବୀରତ୍ୱ ପ୍ରକାଶପୂର୍ବକ ମୁଛକୁ ଆଉଁସିବା ।

**ନିଶରଖିବା**—ଗ୍ରା. କ୍ରି. ନାସିକା ନିମ୍ନରେ ଉତ୍ଥିତ ଲୋମକୁ ବଢ଼ାଇବା ।

**ନିଶରମ**—ଗ୍ରା. (ପଦ୍ୟ) ବିଂ. ନିର୍ଲଜ୍ଜ ।

**ନିଶରେହାତ(ପକା(କେ)ଇବା**—ଗ୍ରା. କ୍ରି. ନିଶ ମୋଡ଼ିବା ଦେଖ ।

**ନିଶା**—ସ୍ତ୍ରୀ. ବି. (ନି+ଶୋ+କ.ଅ+ଆ) ରାତ୍ରି, ଅବସାନ, ଶେଷ, ସ୍ୱପ୍ନ, ହଳଦୀ, ମେଷାଦି ରାଶି, ଦାରୁହରିଦ୍ରା, (ଯା.ବି) ଉନ୍ମାଦକାରକ ଗଞ୍ଜେଇ ମଦ, ଅଫିମଆଦିର ସେବନଜନିତ ଉନ୍ମାଦନା, ମାଦକ, ମାଦକଦ୍ରବ୍ୟ, (ଗ୍ରା.ବି) ଅର୍ଦ୍ଧରାତ୍ରି, ବଡ଼ ଦେଉଳର ଧ୍ୱଜର ଦୁଆରଛଡ଼ା ଅନ୍ୟ ତିନିପାଖେ ଦେଉଳର ଗାତକୁ ଲଗାଇ ନିର୍ମାଣ କରାଯିବା ଗ୍ରେଷ୍ଟ ଦେଉଳ, ଖଣ୍ଡା ପ୍ରଭୃତିକୁ ଶାଣଦେବା,(ପ୍ରା.ଘୁମୁସର.ବି)ରେଜାଇ

**ନିଶାକର**—ପୁଂ.ବି. (ନି+କୃ+ଅ)ଋଷିବିଶେଷ, ଚନ୍ଦ୍ର, କୁକ୍କୁଟ, କର୍ପୂର, ମହାଦେବ । [ ଶିବ ।

**ନିଶାକରକଳାମୌଳି**—ପୁଂ.ବି. (ବ.ବ୍ରୀ)

**ନିଶାକାନ୍ତ**—ବି. (୬ତତ୍) ଚନ୍ଦ୍ର ।

**ନିଶାକେତୁ**—ବି (ନିଶା+କେତୁ+କ.ଉ) ଚନ୍ଦ୍ର ।

**ନିଶାକ୍ଷୟ**—ବି.(୬ତତ୍) ରାତ୍ରିର ଶେଷ ।

**ନିଶାଖା**—ଗ୍ରା. ବିଂ. (ଫା-ନିଶାଖ)ଶାଖାହୀନ, ଆଶ୍ରୟହୀନ, ଉପାୟହୀନ, ବନ୍ଧୁହୀନ ।

**ନିଶାଖୋର୍**—ଯା. ବିଂ. ମାଦକଦ୍ରବ୍ୟ ସେବନରତ, ମଉଅଲ । [ ହଳଦୀ ।

**ନିଶାଖ୍ୟା**—ସ୍ତ୍ରୀ.ବି.(ବ.ବ୍ରୀ)ନିଶାହ୍ୱା,ହରିଦ୍ରା.

**ନିଶାଗମ**—ବି. (୬ତତ୍)ସନ୍ଧ୍ୟା, ରାତ୍ରିର ପ୍ରାକ୍କାଳ ।

**ନିଶାଗର୍ଜନ**—ଗ୍ରା. ବି. ଅର୍ଦ୍ଧରାତ୍ରରେ ଅନୁମିତ ହେବା ଗମ୍ଭୀର ଅବ୍ୟକ୍ତ ସାଇଁ ସାଇଁ ଶବ୍ଦ ।

**ନିଶାଗୃହ**—ବି. ଶୟନାଗାର ।

**ନିଶାଚର**—ପୁଂ. ବି. (ନିଶା+ଚର+କ.ଅ)ରାକ୍ଷସ, ଲମ୍ପଟ ବ୍ୟକ୍ତି, ଶୃଗାଳ, ପେଚକ, ସର୍ପ,ଚୌର, ଭୂତ,ଚୋରକ ନାମକ ଗନ୍ଧଦ୍ରବ୍ୟ, ଚକ୍ରବାକ ପକ୍ଷୀ, ବିଡ଼ାଲ, ବାଦୁଡ଼ି, ମହାଦେବ, (ବିଂ) ରାତ୍ରିଚର ମାତ୍ର, କୁଳଟା, ପିଶାଗୂଢ଼ ।

**ନିଶାଚରପତି**—ପୁଂ. ବି. (୬ତତ୍)ପ୍ରମଥପତି, ଶିବ, ରାକ୍ଷସେଶ୍ୱର ରାବଣ ।

**ନିଶାଚରୀ**—ସ୍ତ୍ରୀ. ବି. (ନିଶାଚର+ଈ) କୁଳଟା, କେଶିନୀ ନାମକ ଗନ୍ଧଦ୍ରବ୍ୟ ବିଶେଷ, ରାକ୍ଷସୀ, ପିଶାଚୀ, ବେଶ୍ୟା, ଅଭିସାରିକା ।

**ନିଶାଚର୍ମ**—ପୁଂ. ବି. ଅନ୍ଧକାର ।

**ନିଶାଚାରୀ**—ପୁଂ. ବି ଓ ବିଂ. ନିଶାଚର ଦେଖ ।

**ନିଶାଛଦ**—ପୁଂ. ବି. ବୃକ୍ଷ ଭେଦ ।

**ନିଶାଜଳ**—କ୍ଲୀ. ବି. (କ.ଧା)ହିମଜଳ, ଶିଶିର, କାକର ।

**ନିଶାଝୁଙ୍କ**—ଗ୍ରା. ବି. ନିଶାରେ ଘାରି ହେବା,ମାଦକଦ୍ରବ୍ୟ ଜନିତ ଉନ୍ମାଦନା

**ନିଶାଟ**—ପୁଂ.ବି ଓ ବିଂ. (ନିଶା+ଅଟ+ଅ) ନିଶାଚର ଦେଖ ।

**ନିଶାଟକ**—ପୁଂ. ବି. ଗୁଗ୍ଗୁଳ,(ବିଂ) ନିଶାଚର ଦେଖ ।

**ନିଶାଟନ**—ପୁଂ. ବି. (ନିଶା+ଅଟ୍+ଅନ)ରାତ୍ରିରେ ଭ୍ରମଣ, ପେଚକ,(ବିଂ) ଯେ ରାତ୍ରିରେ ଭ୍ରମଣ କରେ ।

**ନିଶାଣ(ଣି)**—ଯା.ବି.ଧ୍ୱଜ,ପତାକା,ବନ୍ଧୁକ ଓ ତୀର ଆଦିର ଲକ୍ଷ୍ୟ ବସ୍ତୁ ବା ଚିହ୍ନ, ନିଦର୍ଶନ, ଶଙ୍କୁ, ଦସ୍ତଖତ କରି ନଜାଣି ବା ବ୍ୟକ୍ତିର ସନ୍ତକ, ଆନଦ୍ଧ ବାଦ୍ୟ ବିଶେଷ, ଗୋଟିଏ ଲୁହାର ବେଢ଼ ହାଣ୍ଡି ଉପରେ ଚମଡ଼ା ଛାଉଣି କରାଯାଇଥିବା ଏକପ୍ରକାର ଢୋଲ, ସାଙ୍କେତ, ସୂଚନା, ବାଦ୍ୟ, ବାଜା ।

**ନିଶାତ**—ବି.ବିଂ.(ନି+ଶୋ+ମି.ତ) ଶାଣିତ, ତେଜିତ, ତୀକ୍ଷ୍ଣୀକୃତ, ଧାରୁଆ, ଉଜ୍ଜ୍ୱଳ ।

**ନିଶାତିକ୍ରମ**—ପୁଂ. ବି.(୬ତତ୍)ରାତ୍ରିର, ଅବସାନ । [ ବିଶେଷ ।

**ନିଶାତୈଳ**—ଆୟୁର୍ବେଦୋକ୍ତ ତୈଳ

**ନିଶାତ୍ୟୟ**—ପୁଂ. ବି. (୬ତତ୍) ନିଶାବସାନ, ପ୍ରଭାତ, ଶେଷରାତ୍ରି, ଉଷା ।

ନିଶାଦ—ପୁଂ. ବ. ( ନିଶା + ଅଦ + କ.ଅ) ଜୀବହିଂସକ ଜାତି, ନିଷାଦ, ବ୍ୟାଧ, ଚଣ୍ଡାଳ, ଶୂଦ୍ର ଔରସଜାତ ବ୍ରାହ୍ମଣୀ ସନ୍ତାନ, (ପୁଂ. ବି°)ରାତ୍ରିଭୁକ୍, ଯେ ରାତ୍ରିରେ ଆହାର କରେ (ସ୍ତ୍ରୀ) ନିଶାଦୀ ।

ନିଶାଦର୍ଶୀ—ପୁଂ. ବ.(ନିଶା+ଦୃଶ୍+ଇନ୍) ପେଚକ ।

ନିଶାଦଲ—ଯା. ବ. ମୃତ୍ତିକାଜାତ ଲବଣ ଜାତୀୟ ଦ୍ରବ୍ୟବିଶେଷ ।

ନିଶାଦି—ସ୍ତ୍ରୀ. ବ. (୬ତତ୍ପୁ)ସାୟଂ,ସନ୍ଧ୍ୟା, ମୁହଁ ସଞ୍ଜ ।

ନିଶାଦୀ—ସ୍ତ୍ରୀ.ବ.(ନିଶାଦ+ଈ)ଚଣ୍ଡାଳୀ

ନିଶାଧରିବା—ଗ୍ରା. ବ. ମାଦକତା ଦ୍ୱାରା (ସେବନ କାରୀ) ଅଭିଭୂତ ହେବା ।

ନିଶାଧୀଶ—ପୁଂ. ବ.(୬ତତ୍ପୁ)ନିଶାପତି ।

ନିଶାନ୍—ଯା. ବ. ନିଶାଣ ଦେଖ ।

ନିଶାନ—କ୍ଳୀ. ବ. ( ନି+ଶୋ+ଭା.ଅନ)ତୀକ୍ଷ୍ଣକରଣ,ତେଜନ,ଶାଣଦେବା ।

ନିଶାନାଥ—ପୁଂ. ବ. ( ୬ତତ୍ପୁ ) ଚନ୍ଦ୍ର, ନିଶାପତି, କର୍ପୂର । [କବି

ନିଶାନାରାୟଣ—ପୁଂ.ବ. ଜଣେ ସଂସ୍କୃତ

ନିଶାନୀ—ଯା.ବ.ଚିହ୍ନ,ପତାକା,ଅଭିଜ୍ଞାନ ।

ନିଶାନ୍ତ—କ୍ଳୀ.ବ. (ନି+ଶମ୍+ଅଧି.କ୍ତ) ଗୃହ,(୬ତତ୍ପୁ)ଊଷା, ନିଶାବସାନ(ବି°) ଅତି ଶାନ୍ତ ।

ନିଶାନ୍ତନାରୀ—ସ୍ତ୍ରୀ. ବ. (କ.ଧା) ଗୃହମେଧିନୀ, ଗୃହିଣୀ । [ ଦେଶାଦି ।

ନିଶାନ୍ତୀୟ—ବି. ବି°. ନିଶାନ୍ତ ସନ୍ନିକୃଷ୍ଟ

ନିଶାନ୍ଧ—ପୁଂ.ବ.(୬ତତ୍ପୁ)ରାତ୍ର୍ୟନ୍ଧ,(ବି°) ଯେଉଁମାନେ ରାତ୍ରିରେ ଦେଖି ପାରନ୍ତି ନାହିଁ, ଅନ୍ଧାରକଣା,(ବି)ରାତ୍ର୍ୟନ୍ଧସୂଚକ ଯୋଗଭେଦ ।

ନିଶାନ୍ଧତା—ବି. (ନିଶାନ୍ଧ+ତା)ରାତିରେ ଦେଖା ନଯିବା,ଅନ୍ଧାରକଣା ରୋଗ ।

ନିଶାନ୍ଧା—ସ୍ତ୍ରୀ. ବ. ( ନିଶା+ଅନ୍ଧ+ଅ+ଆ) ଜତୁକା ଲତା, ରାଜକନ୍ୟା ।

ନିଶାପ—ଯା.ବ.ପଞ୍ଚାଏତ୍ ବିଚାର,ନ୍ୟାୟ

ନିଶପକରିବା—ଗ୍ରା. କ୍ରି. ପଞ୍ଚାଏତରେ କୌଣସି ବିଷୟ ବିଚାର କରିବା,ଅଦାଲତଙ୍କ ବିନା ସାହାଯ୍ୟରେ ଆପୋସିରେ ବିଚାର କରିବା ।

ନିଶାପତି—ପୁଂ.ବ.(୬ତତ୍ପୁ)ଚନ୍ଦ୍ର,କର୍ପୂର ।

ନିଶାପାଣି—ଗ୍ରା.ବ.ପାନୀୟ ମାଦକଦ୍ରବ୍ୟ, ମଦ ।

ନିଶାପାଳ—ପୁଂ. ବ.(ନିଶା+ପାଳ+କ.ଅ) ଚଉକିଆ, କଟୁଆଳ ।

ନିଶାପିଆ—ଗ୍ରା.ବି°. ଯେଉଁ ବ୍ୟକ୍ତି ନିଶାପାଣି ବା ମଦ ତାଡ଼ି ଆଦି ଖାଇବାରେ ଅଭ୍ୟସ୍ତ,ଯେ ପଞ୍ଚାଏତରେ ବସି ନିଶାପ କରେ ।

ନିଶାପ୍ରଚର—ପୁଂ. ବ. (୬ତତ୍ପୁ) ଖେଚର, ନକ୍ଷତ୍ର ପ୍ରଭୃତି ।

ନିଶାପୁଷ୍ପ—କ୍ଳୀ.ବ.(କ.ଧା)କୁମୁଦ, ଉତ୍ପଳ, ମନ୍ଦାର, କାକର,ରଜନୀଗନ୍ଧା ଫୁଲ ।

ନିଶାପ୍ରାଣେଶ୍ୱର—ପୁଂ. ବ. ନିଶାପତି ।

ନିଶାବଳ—ପୁଂ. ବ. ମେଷ, ବୃଷ, ଧନୁ, କର୍କଟ,ମିଥୁନ ଓ ମକର ଲଗ୍ନ ଏମାନେ ନିଶାବଳ ।

ନିଶାଭଙ୍ଗା—ସ୍ତ୍ରୀ. ବ. ଦୁଗ୍ଧମୁଷ୍ଟୀ ।

ନିଶାଭାଗ—ପୁଂ.ବ. (୬ତତ୍ପୁ)ରାତ୍ରିସମୟ ।

ନିଶାମଣି—ପୁଂ. ବ. ଚନ୍ଦ୍ର, କର୍ପୂର ।

ନିଶାମନ—କ୍ଳୀ. ବ. ( ନି+ଶମ୍+ଣିଚ୍+ଭା.ଅନ)ଦର୍ଶନ,ଆଲୋଚନା, ଶ୍ରବଣ, ଗୁପ୍ତ', ଅତୀତ ବିଷୟର ସ୍ମରଣ ।

ନିଶାମୟ—ପୁଂ. ବ. ଶିବ । [ କାଳ ।

ନିଶାମୁଖ—କ୍ଳୀ. ବ. (୬ତତ୍ପୁ) ପ୍ରଦୋଷ

ନିଶାମୃଗ—ପୁଂ.ବ.(କ.ଧା)ଶୃଗାଳ,ବିଲୁଆ ।

ନିଶାସ୍ଥୀ—ପୁଂ.ବି°. ଜାଗ୍ରିତ, ଜାଗ୍ରତ ।

ନିଶାଯୋଗେ—ଗ୍ରା. କ୍ରି. ବି°. ରାତ୍ରିକାଳରେ, ରାତ୍ରିରେ ।

ନିଶାରଣ—କ୍ଳୀ. ବ. (ନି+ଶୃ+ଣିଚ୍+ଭା.ଅନ) ମାରଣ,ବଧ, ରାତ୍ରିଯୁଦ୍ଧ,ରାତ୍ରିଶବ୍ଦ ।

ନିଶାରତ୍ନ—କ୍ଳୀ.ବ.(୬ତତ୍ପୁ)ଚନ୍ଦ୍ର,କର୍ପୂର ।

ନିଶାରୁକ—ପୁଂ. ବ.ତାଳ ବିଶେଷ,(ବି°) ନିତାନ୍ତ ହିଂସକ ।

ନିଶାର୍ଦ୍ଧ—କ୍ଳୀ. ବ. ( ୬ତତ୍ପୁ ) ରାତ୍ରିର ଅର୍ଦ୍ଧଭାଗ, ମଧ୍ୟରାତ୍ର ।

ନିଶାର୍ଦ୍ଧକାଳ—ପୁଂ. ବ. ରାତ୍ରିର ପ୍ରଥମ ଦୁଇପ୍ରହର ।

ନିଶାବନ—ପୁଂ. ବ. ଶଣ ବୃକ୍ଷ ।

ନିଶାବସାନ—କ୍ଳୀ. ବ. (୬ତତ୍ପୁ) ରାତ୍ରିର ଅବସାନ, ପ୍ରଭାତ, ସକାଳ, ଭୋର ।

ନିଶାବାଦ--ଗ୍ରା.(ବାଲେଶ୍ୱର)ବ.ଅର୍ଧରାତ୍ରି ।

ନିଶାବାଜ--ଗ୍ରା.ବି° ମାଦକଦ୍ରବ୍ୟ ସେବନରତ, ନିଶାଖାଇବାରେ ଅଭ୍ୟସ୍ତ ।

ନିଶାବାଜି—ଯା. ବ. ମାଦକ ସେବନ ଅଭ୍ୟାସ ।

ନିଶାବିହାର—ପୁଂ. ବି. (୬ତତ୍ପୁ) ରାତ୍ରିଭ୍ରମଣ, ରାତ୍ରିରେ ବିଚରଣ, (ବ.ବ୍ରୀ) ରାକ୍ଷସ । [ ବିଦ୍ଧନିଶା ।

ନିଶାବୃନ୍ଦ—କ୍ଳୀ.ବ.ରାତ୍ରିଗଣ,ରାତ୍ରିସମୂହ,

ନିଶାବେଦୀ—ପୁଂ. ବ. (ନିଶା+ବିଦ୍+ଇନ୍) କୁକ୍କୁଟ ।

ନିଶାହସ—ପୁଂ. ବ. ( ନିଶା+ହସ+କ.ଅ) କୁମୁଦ, ଧଳାକଇଁ ।

ନିଶାହାସା—ସ୍ତ୍ରୀ.ବ.ଶେଫାଳିକା, ଗଙ୍ଗଶିଉଳି ଫୁଲଗଛ ।

ନିଶାହ୍ୱା—ସ୍ତ୍ରୀ.ବ.(ବ.ବ୍ରୀ) ହଳଦୀ,ମାଳବଦେଶ ପ୍ରସିଦ୍ଧ ଜତୁକା ନାମକ ଲତା ।

ନିଶି—ସ୍ତ୍ରୀ.ବ.(ନିଶ୍+ଇ)ରାତ୍ରି,ହରିଦ୍ରା, (ଅବ୍ୟ) ରାତ୍ରିରେ, ରାତ୍ରିକାଳପାଇଁ ।

ନିଶିକର—ପୁଂ. ବ. ଚନ୍ଦ୍ର ।

ନିଶିଜଳ—ବ. ବାସିପାଣି, ହଳଦୀ ।

ନିଶିଡା—ଗ୍ରା.ବି°.ପୁଂ ଓ ସ୍ତ୍ରୀ. ଦାନ୍ତହସା, ଯେ ସବୁବେଳେ ସାମାନ୍ୟ କଥାରେ ଦାନ୍ତକୁ ଦେଖାଇ ହସେ ।

ନିଶିଡ଼ିବା—ଗ୍ରା. କ୍ରି. (ଦାନ୍ତ) ନେଫେଡ଼ିବା, ଦାନ୍ତପାଟି ଦେଖାଯିବା ଭଳି ହସିବା ।

ନିଶିଣି—ଗ୍ରା. ବ.(ଫ-ନିଃଶ୍ରେଣୀ)ନିଶୁଣି ।

ନିଶିତ—ବି. ବି°. (ନି+ଶୋ+ମ.କ୍ତ) ଶାଣିତ, ତେଜିତ, ପଜା ହୋଇଥିବା, (କ୍ଳୀ. ବ) ଲୁହା, ଲୋହ ।

ନିଶିତା—ସ୍ତ୍ରୀ.ବ. (ନି+ଶୋ+କ୍ତ+ଆ) ନିଶୀଥ, ଅର୍ଦ୍ଧରାତ୍ରି, ରାତ୍ରି ।

ନିଶିତ—ତ୍ରି. ବି. (ନି+ଶୋ+ତ)ତନୂକୃତ, କ୍ଷୁଦ୍ରକରିବା ।

ନିଶିପାଳକ—କ୍ଲୀ. ବି. ଛନ୍ଦୋଭେଦ-(ପୁଂ. ବି) ନିଶିପାଳକ ପ୍ରହର୍ଷ ଭେଦ ।

ନିଶିପୁଷ୍ପା—ସ୍ତ୍ରୀ. ବି. (ନିଶି+ପୁଷ୍ପ+ଆ) ଶେଫାଳିକା, ଗଙ୍ଗଶିଉଳୀ, ନିର୍ଗୁଣ୍ଡୀ ।

ନିଶୀଥ--ପୁଂ. ବି. (ନି+ଶୀ+ଅଧି.ଥ) ଅର୍ଦ୍ଧରାତ୍ରି, ରାତ୍ରି, ରାତ୍ରିର ପୂର୍ବଭେଦ ।

ନିଶୀଥିନୀ—ସ୍ତ୍ରୀ. ବି. (ନିଶୀଥ+ଇନ୍+ଈ) ରାତ୍ରି ।

ନିଶୀଥିନୀନାଥ—ପୁଂ. ବି. (୬ତତ୍ପୁ)ଚନ୍ଦ୍ର, କର୍ପୂର । [ ରାତ୍ରି ।

ନିଶୀଥ୍ୟା—ସ୍ତ୍ରୀ.ବି. (ନିଶୀଥ+ଯ+ଆ)

ନିଶୁଆ--ଗ୍ରା.ପୁଂ.ବିଂ.ଯାହାର ମୁଛ ଥାଏ ।

ନିଶୁଣୀ—ଗ୍ରା. ବି. ନୀଚ ସ୍ଥାନରୁ ଉଚ୍ଚ ସ୍ଥାନକୁ ଉଠିବାପାଇଁ ବ୍ୟବହୃତ କାଠ ବା ବାଉଁଶର ନିର୍ମିତ ସିଢ଼ି ।

ନିଶୁମ୍ଭ—ପୁଂ. ବି. (ନି+ଶୁନ୍ଭ+ଭା.ଅ) ବଧ, ଦମନ, ଧ୍ୱଂସନ, ମର୍ଦ୍ଦନ, (କ.ଅ) ଶୁମ୍ଭ ଦୈତ୍ୟର କନିଷ୍ଠଭ୍ରାତା ।

ନିଶୁମ୍ଭନ—କ୍ଲୀ. ବି. ( ନି+ଶୁମ୍ଭ+ଭା. ଅନ) ମାରଣ, ହନନ, ବଧ ।

ନିଶୁମ୍ଭଶୁମ୍ଭମଥନୀ—ସ୍ତ୍ରୀ.ବି.(ନିଶୁମ୍ଭଶୁମ୍ଭ+ମନ୍ଥ+ଅନ+ଈ) ଦୁର୍ଗା ।

ନିଶୁମ୍ଭମର୍ଦ୍ଦିନୀ—ସ୍ତ୍ରୀ. ବି. ( ନିଶୁମ୍ଭ+ମୃଦ୍+ଇନ୍+ଈ) ଦୁର୍ଗା ।

ନିଶୁମ୍ଭୀ—ପୁଂ. ବି. ( ନିଶୁମ୍ଭ+ଇନ୍ ) ବୁଦ୍ଧ ବିଶେଷ ।

ନିଶୂଡ଼—ଗ୍ରା. ବି. ଗାଢ଼ ନିଦ୍ରା ।

ନିଶୃତ୍ୟ—ତ୍ରି. ବିଂ. ଗତ, ଉପନୀତ ।

ନିଶୃମ୍ଭ—ତ୍ରି. ବିଂ. ନିଶ୍ଚିଥ୍ୟ, ସାଜବନ୍ଧ ।

ନିଶେଶ—ପୁଂ. ବି. (୬ତତ୍ପୁ) ଚନ୍ଦ୍ର ।

ନିଶୈତ—ପୁଂ. ବିଂ. ବକ, ବଗ ।

ନିଶୋତ୍ସର୍ଗ—ପୁଂ.ବି.ନିଶାର ଅପନୟନ, ପ୍ରାତଃକାଳ, ଉଷା ।

ନିଶୋନ୍ମା—ସ୍ତ୍ରୀ.ବି. ସଫେଦ ତହର୍ଡ଼ୀ ।

ନିଶୋଧନ—ବି. (ନି+ଶୁଧ୍+ଭା.ଅନ) ସମୂଳେ ବିନାଶ ।

ନିଶୋପଶାୟ୍ୟ—ପୁଂ.ବି. (ନିଶା+ଉପଶାୟ୍ୟ) ରାତ୍ରିରେ ବିଶ୍ରାମ କରିବା,ନିଦ୍ରାବସ୍ଥା ।

ନିଶ୍ଚକ୍ଷୁ—ବିଂ. (ବ.ବ୍ରୀ) ଚକ୍ଷୁଶୂନ, ଅନ୍ଧ ।

ନିଶ୍ଚଞ୍ଚଳ—ପୁଂ. ବିଂ. (ନିର୍+ଚଞ୍ଚଳ) ଅଚଞ୍ଚଳ, ସ୍ଥିର ।

ନିଶ୍ଚତ୍ୱାରିଂଶ—ତ୍ରି. ବିଂ. ଚତ୍ୱାରିଂଶତ୍ ସଂଖ୍ୟାରୁ ନିର୍ଗତ ।

ନିଶ୍ଚନ୍ଦ୍ର—ବିଂ. (ନିର୍+ଚନ୍ଦ୍ର) ଚନ୍ଦ୍ରମାହୀନ, ଚାକଚକ୍ୟ ହୀନ ।

ନିଶ୍ଚନ୍ଦ୍ରଅଭ୍ର—ପୁଂ.ବି. ଔଷଧଭେଦ ।

ନିଶ୍ଚପ୍ରଚ୍—ତ୍ରି. ବିଂ. ନିଶ୍ଚିତ ଅଥଚ ପଚରା ବସ୍ତୁ ।

ନିଶ୍ଚୟ—ପୁଂ.ବି. (ନିର୍+ଚି+ଭା.ଅ) ନିଃସଂଶୟଜ୍ଞାନ, ବିଷୟ ପରିଚ୍ଛେଦ, ବୁଦ୍ଧିର ଅସାଧାରଣ ବୃତ୍ତିଭେଦ.ଅର୍ଥାଲଙ୍କାରଭେଦ, ନିର୍ଣ୍ଣୟ, ନିର୍ଦ୍ଧାରଣ, ମନରେ ଦୃଢ଼ ଧାରଣା, ସିଦ୍ଧାନ୍ତ ଅଧ୍ୟବସାୟ, (ଗ୍ରା.ବିଂ)ନିଃସନ୍ଦେହ,ସଂଶୟରହିତ, ସ୍ଥିର, (ଗ୍ରା.କ୍ରି.ବିଂ) ନିଶ୍ଚେ, ନିଃସନ୍ଦେହରେ ।

ନିଶ୍ଚୟକଥା—ଗ୍ରା. ବି. ସ୍ଥିର ସିଦ୍ଧାନ୍ତ. ଦୃଢ଼ୋକ୍ତି, ଅଟଳ ଜବାବ ।

ନିଶ୍ଚୟକରିବା—ଗ୍ରା. କ୍ରି. ସ୍ଥିରକରିବା. କୃତସଂକଳ୍ପହେବା, ମନରେ ସଂକଳ୍ପ କରିବା. ମୀମାଂସାକରିବା ।

ନିଶ୍ଚୟଜାଣିବା—ଗ୍ରା. କ୍ରି. ନିଃସନ୍ଦେହରୂପେ ଜାଣିବା ।

ନିଶ୍ଚୟଜ୍ଞାନ—ବି. (ନିଶ୍ଚୟ+ଜ୍ଞାନ)ଦୃଢ଼ବିଶ୍ୱାସ, ଆସ୍ଥା, ଶ୍ରଦ୍ଧା ।

ନିଶ୍ଚୟତା—ଗ୍ରା.ବି. ଯଥାର୍ଥତା, ସ୍ଥିରତା ।

ନିଶ୍ଚୟାତ୍ମକ—ବିଂ. (ବ.ବ୍ରୀ)ଯାହା ନିଃସନ୍ଦେହ ଅଟେ, ଦୃଢ଼ ।

ନିଶ୍ଚୟାତ୍ମକଜ୍ଞାନ—ବି.ଦୃଢ଼ବିଶ୍ୱାସ,ଯେଉଁ ଜ୍ଞାନରେ ଆଦୌ ସଂଶୟ ନ ଥାଏ ।

ନିଶ୍ଚୟସ୍ୱରୂପ—ତ୍ରି. ବିଂ. ନିଶ୍ଚିତର ଭାବ ବା ଆକୃତିଯୁକ୍ତ ।

ନିଶ୍ଚୟୀ—ତ୍ରି.ବିଂ.ସ୍ଥିରୀକୃତ, ଯଥାଯୁକ୍ତ, ବିବେଚିତ ବା ବିମୃଶିତ ।

ନିଶ୍ଚର—ପୁଂ. ବି. ଏକାଦଶ ମନ୍ୱନ୍ତରୀୟ ସପ୍ତର୍ଷିଭେଦ ।

ନିଶ୍ଚଳ--ପୁଂ. ବିଂ. (ନିର୍+ଚଲ+କ. ଅ) ସ୍ଥିର, ଅଚଳ,ଅଟଳ.ଅସମ୍ଭାବନା, ବିପର୍ଯ୍ୟୟ ଭାବନାରହିତ ।

ନିଶ୍ଚଳଦାସସ୍ୱାମୀ—ପୁଂ.ବି. ଜଣେ ପ୍ରସିଦ୍ଧ ଦାର୍ଶନିକ ପଣ୍ଡିତ ।

ନିଶ୍ଚଳା—ସ୍ତ୍ରୀ.ବି. (ନିଶ୍ଚଳ+ଆ) ଶାଳପର୍ଣ୍ଣୀ, ପୃଥିବୀ, ନଦୀବିଶେଷ ।

ନିଶ୍ଚଳାଙ୍ଗ—ପୁଂ.ବି. ବକ,ପର୍ବତଭେଦ, (ବିଂ) ସ୍ଥାୟୀ, ଦୃଢ଼ଦେହତ, (ସ୍ତ୍ରୀ) ନିଶ୍ଚଳାଙ୍ଗୀ ।

ନିଶ୍ଚାୟକ—ତ୍ରି.ବିଂ. (ନିର୍+ଚି+କ. ଅକ) ନିଶ୍ଚୟକର୍ତ୍ତା, ନିର୍ଣ୍ଣାୟକ, ନିର୍ଣ୍ଣେତା ।

ନିଶ୍ଚାରକ—ପୁଂ. ବି. (ନିର୍+ଚର+ଅକ)ଝାଡ଼ାଫେରିବା,ପ୍ରବର୍ତ୍ତକ,ବାୟୁ, ସ୍ୱାଚ୍ଛନ୍ଦ୍ୟ, ସ୍ୱାସ୍ଥ୍ୟ, (ବିଂ) ଗୃହରହିତ ।

ନିଶ୍ଚିତ—ତ୍ରି.ବିଂ. (ନିର୍+ଚି+କ୍ତ.ତ) ନିଶ୍ଚୟଜ୍ଞାନ ବିଷୟ, ସ୍ଥିରୀକୃତ,ମୀମାଂସିତ, ଅବଧାରିତ,(କ.ତ) ନିଶ୍ଚୟବାନ୍ (ସ୍ତ୍ରୀ) ନିଶ୍ଚିତା, ନଦୀଭେଦ, (କ୍ରି.ବିଂ) ନିଃସନ୍ଦେହରୂପେ, ନିଶ୍ଚେ ।

ନିଶ୍ଚିତକର୍ମୀ—ବିଂ. (ବ.ବ୍ରୀ) ସ୍ଥିରଧୀ, ସ୍ଥିରବିବେକୀ, ଯେ ସ୍ଥିରବୁଦ୍ଧି ଅନୁସାରେ କର୍ମ କରେ ।

ନିଶ୍ଚିତି—ସ୍ତ୍ରୀ.ବି. (ନିର୍+ଚି+ତି)ଅବଧାରଣ, ସ୍ଥିରୀକରଣ, ସ୍ଥିରକରିବା ।

ନିଶ୍ଚିତ୍ତ—ପୁଂ.ବି. ସମାଧିଭେଦ ।

ନିଶ୍ଚିନ୍ତ—ପୁଂ.ବିଂ. (ବ.ବ୍ରୀ)ଚିନ୍ତାରହିତ, ଚିନ୍ତାଶୂନ୍ୟ,ଭାବନାଶୂନ୍ୟ,(ଗ୍ରା.ବି)ସନ୍ତୁଷ୍ଟ

ନିଶ୍ଚିନ୍ତହେବା—ଗ୍ରା. ବି. ଚିନ୍ତାରୁ ମୁକ୍ତହେବା, ସନ୍ତୁଷ୍ଟହେବା ।

ନିଶ୍ଚିରା—ସ୍ତ୍ରୀ.ବି. ନଦୀଭେଦ ।

ନିଶ୍ଚୀୟମାନ—ତ୍ରି. ବିଂ. (ନିର୍+ଚି+ମାନ) ନିଶ୍ଚୟ ବିଷୟ, ଯାହାକୁ ନିଶ୍ଚିତ କରାଯାଉଅଛି, ବିଚାରାଧୀନ ।

ନିଶ୍ଚୁକ୍ଳଣ—କ୍ଲୀ. ବି. ଦନ୍ତଶାଣ, ଦନ୍ତଶୋଧକ ଚୂର୍ଣ୍ଣବିଶେଷ, ମିସି ।

ନିଶ୍ଚେ—ଗ୍ରା. କ୍ରି. ବିଂ. (ସଂ-ନିଶ୍ଚୟେନ)

ନିଶ୍ଚୟରେ, ଅବଶ୍ୟ, ମୁକର ।
ନିଶ୍ଚେତନ—ତ୍ରି.ବି. (ବ.ବ୍ରୀ) ଚେତନାହୀନ, ଚୈତନ୍ୟରହିତ, ଅଚୈତନ୍ୟିକ. ଅଜ୍ଞାନ, କ୍ରୋଧାଦିହୀନ ।
ନିଶ୍ଚେତସ୍ ତ୍ରି ବିଂ.ଚେତନାହୀନ,ଯାହାର ମନ ବା ଅନ୍ତଃକରଣ ଯଥାଜ୍ଞାନର ବହିର୍ଭୂତ ।
ନିଶ୍ଚେଷ୍ଟ—ପୁଂ. ବିଂ. (ବ.ବ୍ରୀ) ଚେଷ୍ଟାରହିତ, ଚେଷ୍ଟାହୀନ, ଅକ୍ଷମ, ଅସହାୟ, ଅଳସ, ନିରୁଦ୍ୟମ ।
ନିଶ୍ଚେଷ୍ଟତା—ବି. (ନିଶ୍ଚେଷ୍ଟ+ତା)ଗତ ରାହିତ୍ୟ, ଆଳସ୍ୟ ।
ନିଶ୍ଚେଷ୍ଟା—ସ୍ତ୍ରୀ.ବି. ଚେଷ୍ଟାରାହିତ୍ୟ,ନିରୁଦ୍ୟମ, ନିଷ୍ପନ୍ଦତା ।
ନିଶ୍ଚେଷ୍ଟାକରଣ—କ୍ଲୀ.ବି.କାମବାଣଭେଦ, ମନଃଶିଳାଘଟିତ ଔଷଧଭେଦ ।
ନିଶ୍ଚୌର—ତ୍ରି. ବିଂ. ଦସ୍ୟୁ ବା ଚୋର ବହିର୍ଭୂତ (ସ୍ଥାନ) ।
ନିଶ୍ଚ୍ୟବନ—ପୁଂ.ବି. ବୈବସ୍ୱତମନ୍ୱନ୍ତରର ସପ୍ତର୍ଷିମଧ୍ୟରୁ ଏକତମ, ଅଗ୍ନିବିଶେଷ, (ବିଂ) ଚ୍ୟୁତସ୍ଥାନ ।
ନିଶ୍ଛନ୍ଦସ୍—ତ୍ରି.ବିଂ. ବେଦାଧ୍ୟୟନହୀନ ।
ନିଶ୍ଛଳ—ପୁଂ.ବିଂ. (ବ.ବ୍ରୀ)ଛଳରହିତ ।
ନିଶ୍ଛିଦ୍ର—ପୁଂ.ବିଂ. (ବ.ବ୍ରୀ) ଛିଦ୍ରରହିତ, ଛିଦ୍ରହୀନ, ନିଷ୍କଳଙ୍କ,ଦୋଷଶୂନ୍ୟ ।
ନିଶ୍ଛେଦ୍ୟ—ତ୍ରି. ବିଂ. ଅବିଭାଜ୍ୟ, ଯେଉଁ ରାଶି ଅନ୍ୟ ରାଶିଦ୍ୱାରା ବିଭକ୍ତ ହୋଇ ନ ପାରେ ।
ନିଶ୍ନ—ତ୍ରି.ବିଂ. ସମାହିତ ।
ନିଶ୍ରଥ୍ୟ—ତ୍ରି.ବିଂ.ଦୃଢ଼ବନ୍ଧ,(ଅବ୍ୟ)ଅଶ୍ୱାଦିଙ୍କୁ ସାଜବନ୍ଧ କରି ।
ନିଶ୍ରମ—ପୁଂ.ବି.କାର୍ଯ୍ୟାଦିରେ ସହିଷ୍ଣୁତା, ଦୃଢ଼ତା, ଅଧ୍ୟବସାୟ ।
ନିଶ୍ରୟଣୀ—ସ୍ତ୍ରୀ. ବି. ( ନି+ଶ୍ରୟଣୀ ) ସୋପାନ, ସିଢ଼ି, ନିଶୁଣି, ମଇ ।
ନିଃଶ୍ରାବୀ—ପୁଂ.ବିଂ. ଅଧଃପତନଶୀଳ ।
ନିଶ୍ରୀକ—ପୁଂ.ବି. ସୋପାନ, ସିଢ଼ି,ନିଶୁଣି,
ନିଶ୍ରେଣୀ—ସ୍ତ୍ରୀ.ବି. ସିଢ଼ି, ମଇ,ନିଶୁଣୀ ।
ନିଶ୍ରେୟ—ଗ୍ରା. ବି.ଅନୁପକାର,ଅପକାର, ମୁକ୍ତି, ମୋକ୍ଷ ।
ନିଶ୍ୱସନ—କ୍ଲୀ. ବି. (ନି+ଶ୍ୱସ+ଭା. ଅନ) ନିଃଶ୍ୱାସ, ନାସାନିର୍ଗତ ବାୟୁ ।
ନିଶ୍ୱସିତ—ବିଂ. (ନି+ଶ୍ୱସ+କ.ତ) ଯେ ନିଶ୍ୱାସ ମାରୁଅଛି, ନିଶ୍ୱାସ ମାରୁଥିବା, (ବି-ଭା.ତ) ନିଶ୍ୱାସ, ନିଶ୍ୱାସ ପ୍ରଶ୍ୱାସ ।
ନିଶ୍ୱସ୍ୟ—ତ୍ରି. ବିଂ. ନିଶ୍ୱାସଯୁକ୍ତ,ନିଶ୍ୱାସ ଗ୍ରହଣ କରି, ଦୀର୍ଘନିଶ୍ୱାସ ପକାଇ ।
ନିଶ୍ୱାସ—ପୁଂ.ବି. (ନି+ଶ୍ୱସ୍+ଭା.ଅ) ବହିର୍ମୁଖ ଶ୍ୱାସ. ନାକବାଟେ ବାୟୁ ଛାଡ଼ିବା,ନାସାନିର୍ଗତ ବାୟୁ, (ଗ୍ରା.ବି) ବଳବାନ୍ ଅତ୍ୟାଚାରୀ ବ୍ୟକ୍ତି ପ୍ରତି ଦୁର୍ବଳ ଅତ୍ୟାଚାରିତ ବ୍ୟକ୍ତିର ଦୀର୍ଘନିଶ୍ୱାସଯୁକ୍ତ ଅଭିଶାପ, ଶେଷଭରସା, ଆଶ୍ରୟ ।
ନିଶ୍ୱାସପକା(କେ)ଇବା—ଗ୍ରା.କ୍ରି.ନିଶ୍ୱାସ ମାରିବା,ଦୁଃଖରେ ଘରନିଶ୍ୱାସ ଛାଡ଼ିବା, (ସବଳ ଅତ୍ୟାଚାରୀ ବ୍ୟକ୍ତି ପ୍ରତି ଦୁର୍ବଳ ଅତ୍ୟାଚାରିତ ବ୍ୟକ୍ତି ) ଦୀର୍ଘନିଶ୍ୱାସ ଛାଡ଼ିବାବେଳେ ଅଭିଶାପ ଦେବା ।
ନିଶ୍ୱାସପଡ଼ିବା—ଗ୍ରା.ବି. କୌଣସି ଅତ୍ୟାଚାରୀ ବ୍ୟକ୍ତି ଉପରେ ପ୍ରପୀଡ଼ିତ ବ୍ୟକ୍ତିର ଅସନ୍ତୋଷ ଜନିତ ଅଭିଶାପ ସଫଳ ହେବା ।
ନିଶ୍ୱାସପ୍ରଶ୍ୱାସ—ବି. ନାଶଦ୍ୱାରା ଶରୀରାଭ୍ୟନ୍ତରକୁ ଟାଣିବା ଓ ବାହାରକୁ ଛାଡ଼ିବା ପ୍ରାଣବାୟୁ, ରେଚକ ଓ ପୂରକ ।
ନିଶ୍ୱାସବନ୍ଦ—ଗ୍ରା.ବି.ନିଶ୍ୱାସରୋଧ ହେବା, ପ୍ରାଣହୀନ ବ୍ୟକ୍ତିର ନିଶ୍ୱାସର ଗତି ରୁଦ୍ଧ ହେବା ।
ନିଶ୍ୱାସମାରିବା—ଗ୍ରା.କ୍ରି.ନାସାଦ୍ୱାରା ବାୟୁ ପେଟଭିତରକୁ ନେବା ଓ ବାହାରକୁ ଛାଡ଼ିବା, ତୃପ୍ତି ଓ ସୁଖବୋଧ କରିବା ।
ନିଶ୍ୱାସରୁଦ୍ଧ—ପୁଂ. ବିଂ. (ବ.ବ୍ରୀ) ରୁଦ୍ଧଶ୍ୱାସ, ଅଣନିଶ୍ୱାସୀ ।
ନିଶ୍ୱାସରୋଧ—ବି. ( ୬ତତ୍ ) କୁମ୍ଭକ, ପ୍ରାଣାୟାମଦ୍ୱାରା ଶ୍ୱାସର ଅବରୋଧ, ନିଶ୍ୱାସର ଗତି ବନ୍ଦହେବା ।
ନିଶ୍ୱାସସଂହିତା—ସ୍ତ୍ରୀ.ବି.ଶିବପ୍ରଣୀତ ଶାସ୍ତ୍ରବିଶେଷ ।
ନିଶ୍ଶଙ୍କ—ବିଂ. ନିଃଶଙ୍କ ଦେଖ ।
ନିଶ୍ଶକ୍ତ—ବିଂ.(ନିର୍+ଶକ୍ତ)ନିର୍ବଳ ।
ନିଶ୍ଶୀଳ—ପୁଂ.ବିଂ. (ବ.ବ୍ରୀ)ମନ୍ଦସ୍ୱଭାବବିଶିଷ୍ଟ ।
ନିଶ୍ଶେଷ—ବିଂ. ନିଃଶେଷ ଦେଖ ।
ନିଷକ୍ତ—ବିଂ. (ନି+ସନ୍ଜ+କ.ତ) ସଂଲଗ୍ନ, ସଂସକ୍ତ, ନିକଟବର୍ତ୍ତୀ ।
ନିଷକ୍ତୁ—ପୁଂ.ବି. ପିତା, ବାପ ।
ନିଷଙ୍ଗ—ପୁଂ. ବି. (ନି+ସନ୍ଜ+ଅ) ଶରପୂର୍ଣ୍ଣ, ତୂଣୀର, ସଙ୍ଗ, ସଂସର୍ଗ, ନିତାନ୍ତ ସଙ୍ଗ, ଖଡ୍ଗ, ମୁହଁରେ ଫୁଙ୍କାଯାଇ ବଜାଯାଉଥିବା ଏକରକମ ବାଜା ।
ନିଷଙ୍ଗଥି—ପୁଂ. ବି. (ନି+ସନ୍ଜ+ଅଥି) ସଙ୍ଗମ, ସମାଲିଙ୍ଗ, ଆଲିଙ୍ଗନ, ଧନ୍ୱୀ, ରଥ, ସ୍କନ୍ଧ,ତୃଣ, ସାରଥି,(ବିଂ) ଆଲିଙ୍ଗନ ।
ନିଷଙ୍ଗଧି—ପୁଂ.ବି. (ନିଷଙ୍ଗ+ଧା+ଅଧି.ଇ) ଖଡ୍ଗପିଧାନ, ଖଡ୍ଗଖାପ; ଖଡ୍ଗକୋଷ ।
ନିଷଙ୍ଗୀ—ପୁଂ.ବିଂ. ( ନିଷଙ୍ଗ+ଇନ୍ ତୂଣୀରଧାରୀ, ଧନୁର୍ଦ୍ଧାରୀ, ଖଡ୍ଗଧାରୀ, ନିତାନ୍ତ ସଙ୍ଗଯୁକ୍ତ, ତୂଣୀରଯୁକ୍ତ, (ବି) ଧୃତରାଷ୍ଟ୍ରଙ୍କର ଏକପୁତ୍ର,ତୂଣୀର ।
ନିଷଙ୍ଗୀନ—ପୁଂ.ବିଂ. ଧନୁର୍ଦ୍ଧାରୀ ।
ନିଷଣ୍ଣ—ତ୍ରି.ବିଂ. (ନି+ସଦ୍+କ.ତ) ଉପବିଷ୍ଟ, ଶାୟିତ, ସ୍ଥିତ, ଅବଲମ୍ବନକାରୀ, ତଳପଡ଼ିଥିବା, ବିଶ୍ରାନ୍ତ, ସ୍ଥିତ, ଆସୀନ ।
ନିଷଣ୍ଣକ—କ୍ଲୀ.ବି. ସୁନିସୁନିଆ ଶାଗ ।
ନିଷତ—ଗ୍ରା. ବିଂ. ଶକ୍ତିହୀନ, ଅତ୍ୟନ୍ତ କ୍ଳାନ୍ତ, ନିର୍ବଳ ।
ନିଷତ୍ତି—ସ୍ତ୍ରୀ. ବି. ( ନି+ସଦ୍+ତି ) ନିଷଦନ,ସ୍ଥିତି । [ ନିଷଣ୍ଣ, ସ୍ଥିତ ।
ନିଷତ୍ତ୍ୱର—ତ୍ରି.ବିଂ. (ନି+ସଦ୍+ଷ୍ୱର )
ନିଷଦ୍—ସ୍ତ୍ରୀ. ବି. ( ନି+ସଦ+କ୍ୱିପ୍ ) ଯଜ୍ଞବେଦୀ, ବେଦବାକ୍ୟବିଶେଷ, ଉପ-

ସଦନ, (ବି°) ଉପଦେଷ୍ଟା ।

ନିଷଦ—ପୁଂ. ବ. ( ନି+ସଦ୍+ଅ ) ନିଷାଦସ୍ୱର, ଆସନ, ସ୍ୱନାମଖ୍ୟାତ ନୃପବିଶେଷ ।

ନିଷଦନ—କ୍ଲୀ. ବ. (ନି+ସଦ୍+ଅନ) ଗୃହ, ଉପବେଶନ ସ୍ଥାନ, ସ୍ଥିତି,(ପୁଂ. ବ) ନିଷାଦ ।

ନିଷଦ୍ୟ—ବ. ( ନି+ସଦ୍+ଅଧି.ଯ ) ଆଧାର, ପାତ୍ର ।

ନିଷଦ୍ୟା—ସ୍ତ୍ରୀ.ବ. (ନି+ସଦ୍+ଯ+ଆ) ପଣ୍ୟ ବିକ୍ରୟଶାଳା, ହାଟ, ବଜାର, କ୍ଷୁଦ୍ର ଖଟିଆ ।

ନିଷଦ୍ୱର—ପୁଂ.ବ(ନି+ସଦ୍+କ.ବର) କର୍ଦ୍ଦମ, କମ୍ବଳ, କାଦୁଅ, (ବି°)ପ୍ରଧାନ ଉପଦେଷ୍ଟା ।

ନିଷଦ୍ୱରୀ—ସ୍ତ୍ରୀ.ବ (ନି+ସଦ୍+କ.ବର+ଈ) ରାତ୍ରି, ନିଶା, ରଜନୀ ।

ନିଷଧ--ବ(ନି+ସଦ୍+ଅଧି.ଅ) ସୌରାଷ୍ଟ୍ର ରାଜ୍ୟର ଉତ୍ତରସ୍ଥ ପ୍ରାଚୀନ ଦେଶବିଶେଷ, (କ.ଅ) ଇଲାବୃତ୍ତର ଦକ୍ଷିଣରେ ହରିବର୍ଷ ଦେଶର ସୀମା ପର୍ବତ, ସୂର୍ଯ୍ୟବଂଶୀୟ କୁଶଙ୍କର ପୌତ୍ର, ନିଷାଦ ସ୍ୱର, ନିଷଧ ଦେଶୀୟ ଲୋକ,କୁରୁଙ୍କର ଏକପୁତ୍ର,(ବି°-ମି.ଅ)କଠିନ,ଅଧର୍ଷଣୀୟ, ଘନ ।

ନିଷଧବଂଶ—ପୁଂ.ବ. ନିଷଧ ଦେଶବାସୀ ଜାତିବିଶେଷ ।

ନିଷଧାଧିପ--ପୁଂ.ବ.ନିଷଧ ଦେଶର ରାଜା ।

ନିଷଧାଧିପତି—ପୁଂ. ବ. ନଳରାଜା ।

ନିଷଧାବତୀ—ସ୍ତ୍ରୀ. ବ. ବିନ୍ଧ୍ୟପର୍ବତର ଋକ୍ଷପାଦ ଗିରି ବିନିର୍ଗତା ନଦୀ ।

ନିଷଧାଶ୍ୱ—ପୁଂ.ବ.କୁରୁଙ୍କର ପୁତ୍ରଭେଦ ।

ନିଷାଣ—ଗ୍ରା. ବ. ନିଶାଣ ଦେଖ ।

ନିଷାଦ—ପୁଂ. ବ. (ନି+ସଦ୍+ମି.ଅ) ବେଣରାଜାଙ୍କ ଶରୀରରୁ ଜାତ ନୀଚଜାତିବିଶେଷ, ଅନାର୍ଯ୍ୟ ଜାତିବିଶେଷ, ସ୍ଥାନବିଶେଷର ନାମ, ସ୍ୱରବିଶେଷ, ଶୂଦ୍ର ଔରସରେ ବ୍ରାହ୍ମଣୀ ଗର୍ଭଜାତ ଜାତିବିଶେଷ, ଚଣ୍ଡାଳ, କିରାତ, ବ୍ୟାଧ, ଧୀବର ଜାତିବିଶେଷ ।

ନିଷାଦିତ—କ୍ଲୀ.ବ. (ନି+ସଦ୍+ଣିଚ୍.ତ) ନିଷଦନ, ଉପବେଶନକରଣ, (ବି°) ଉପବେଶିତ ।

ନିଷାଦୀ—ପୁଂ.ବ,(ନି+ଷଦ୍+କ.ଇନ୍) ହସ୍ତୀପକ, ମାହୁତ, ଗଜାରୋହୀ, (ପୁଂ. ବି°) ଉପବିଷ୍ଟ, ନିଷଣ୍ଣ,(ସ୍ତ୍ରୀ. ନିଷାଦ+ଈ) ନିଷାଦୀ, ଚଣ୍ଡାଳୀ ।

ନିଷିକ୍ତ—ତ୍ରି. ବି°. (ନି+ସିଚ୍+ମି.ତ) ନିତାନ୍ତସିକ୍ତ, ଆହୃତ ଶୁକ୍ରାଦି, ତଦ୍ଗର୍ଭ, ଶୁକ୍ରଜାତ ଗର୍ଭ, ପାଣି ସେଞ୍ଚା ହୋଇଥିବା ।

ନିଷିକ୍ତପା—ପୁଂ. ବି°. ଗର୍ଭରକ୍ଷା କର୍ତ୍ତା, ସୋମପାନକର୍ତ୍ତା ।

ନିଷିଦ୍ଧ—ତ୍ରି. ବି°. (ନି+ସିଧ୍+ମି.ତ) ନିଷେଧ ବିଷୟ, ପ୍ରତିଷିଦ୍ଧ, ପରିହାର୍ଯ୍ୟ, ବାଧାପ୍ରାପ୍ତ, ତିରସ୍କୃତ, ମନ୍ଦ ।

ନିଷିଦ୍ଧଧାତ୍ରୀ—ସ୍ତ୍ରୀ.ବ. ଆୟୁର୍ବେଦ ସମ୍ମତ ଗୁଣବର୍ଜିତ ଧାତ୍ରୀ । [ ନିଷେଧ

ନିଷିଦ୍ଧି—ସ୍ତ୍ରୀ. ବ. ( ନି+ସିଧ୍+ତି )

ନିଷୁପ୍ତ—ପୁଂ. ବି°. (ନି+ସ୍ୱପ୍+କ.ତ) ନିଦ୍ରିତ, (ସ୍ତ୍ରୀ) ନିଷୁପ୍ତା ।

ନିଷୁପ୍ତି—ବ.(ନି+ସ୍ୱପ୍+ଭା.ତି)ନିଦ୍ରା ।

ନିଷୂଦନ—କ୍ଲୀ.ବ. (ନି+ସୂଦ୍+ଭା. ଅନ) ହତ୍ୟା, ବଧ, ମରଣ, ନିବାରଣ, ନିଷେଧ, (ବି°. କ.ଅନ) ବିନାଶକ, ବଧକାରକ, ନିବାରକ ।

ନିଷେକ—ପୁଂ. ବ. (ନି+ସିଚ୍+ଭା.ଅ) ଜଳାଦିର ନିତାନ୍ତ ସେଚନ, ଗର୍ଭାଧାନ, ରେତ, ଶୁକ୍ର, ବର୍ଷଣ,କ୍ଷରଣ, ସେଚନ, ଆଧାନ ।

ନିଷେକାଦିକୃତ—ପୁଂ. ବି°. (ନିଷେକ+କୃ+କ୍ୱିପ୍) ଗର୍ଭାଧାନାଦି କର୍ତ୍ତା ।

ନିଷେକ୍ତବ୍ୟ—ତ୍ରି. ବି°. ( ନି+ସିଚ୍+ତବ୍ୟ) ସେଚନୀୟ ।

ନିଷେଚନ—କ୍ଲୀ. ବ. ( ନି+ସିଚ୍+ଅନ)ସେଚନ, ଜଳସେକ, ଓଦାକରିବା

ନିଷେକ୍ତା—ପୁଂ. ବି°. (ନି+ସିଚ୍+ତୃ) ସେଚନକର୍ତ୍ତା, ନିଷେକକାରୀ ।

ନିଷେଦିବନ୍—ପୁଂ. ବି°. (ନି+ସଦ୍+ବସ୍) ନିଷଣ୍ଣ, ଉପବିଷ୍ଟ, ସ୍ଥିତ, (ସ୍ତ୍ରୀ) ନିଷେଦୁଷୀ ।

ନିଷେଧବ୍ୟ—ତ୍ରି. ବି°. ନିଷେଧନୀୟ, ନିଷେଧଯୋଗ୍ୟ ।

ନିଷେଦ୍ଧା—ପୁଂ. ବି°. (ନି+ସିଧ୍+କ.ତୃ)ନିଷେଧକ,ନିଷେଧକାରୀ,ନିବାରକ ।

ନିଷେଦ୍ଧୃ—ତ୍ରି. ବି°. ପ୍ରତିବନ୍ଧକଶୂନ୍ୟ, ଯାହାର ଦମନକ ବା ଦମନକର୍ତ୍ତା ନାହିଁ ।

ନିଷେଧ—ପୁଂ. ବ. (ନି+ସିଧ୍+ଭା.ଅ) ଅନିଷ୍ଟ ସାଧନାଦି ବୋଧକ, ବେଦାଦି ବାକ୍ୟଭେଦ, ବାଧା, ତିରସ୍କାର, ପ୍ରତିଷେଧ, ନିବୃତ୍ତି, ବିଧି ବିପରୀତ, ବାରଣ, ନିବର୍ତ୍ତନ ।

ନିଷେଧକ—ପୁଂ ବି°. (ନି+ସିଧ୍+କ. ଅକ)ନିବାରକ, ନିଷେଧକାରକ, ପ୍ରତିରୋଧକ ।

ନିଷେଧନ—କ୍ଲୀ. ବ. ( ନି+ଷିଧ୍+ଭା. ଅନ ନିଷେଧ, ନିବାରଣ, ମନାକରିବା ।

ନିଷେଧପତ୍ର—କ୍ଲୀ. ବ. ବାରଣଲିପି, ଯେଉଁ ପତ୍ର ଦ୍ୱାରା କୌଣସି କାର୍ଯ୍ୟ କରିବାକୁ ନିଷେଧ କରାଯାଏ ।

ନିଷେଧବିଧି—ପୁଂ.ବ. ଅଭାବ ବିଷୟରେ ଇଷ୍ଟ ସାଧନତାବୋଧକ ବାକ୍ୟଭେଦ, କୌଣସି ନିଷେଧଥିବା ବିଧି (ସ୍ମୃତି) ।

ନିଷେଧିତ—ତ୍ରି.ବି°. (ନି+ସିଧ୍+ଣିଚ୍.ତ) ପ୍ରତିବନ୍ଧ, ନିବାରିତ, ବାଧିତ ।

ନିଷେଧିନୀ—ସ୍ତ୍ରୀ.ବ.(ନି+ସିଧ୍+କ.ଇନ୍.ଈ) ନିବାରଣକର୍ତ୍ତ୍ରୀ, ଯେ କୌଣସି ବସ୍ତୁକୁ ନଦେଇ ଅଟକାଏ, ଯେ ବାଧା ଦିଏ ।

ନିଷେଧୀ—ପୁଂ. ବି°. (ନି+ସିଧ୍+ଇନ୍) ନିଷେଧକ, ନିଷେଧକାରୀ ।

ନିଷେଧୋକ୍ତି—ସ୍ତ୍ରୀ. ବ. ନିଷେଧବାକ୍ୟ ।

ନିଷେଧ୍ୟ—ବି°. ( ନି+ସିଧ୍+ମି.ଯ ) ନିଷେଧଯୋଗ୍ୟ, ନିବାରଣୀୟ, ବାଧ୍ୟ ।

ନିଷେବ—ପୁଂ. ବି°. କ୍ରିୟାରତ, ଅନୁରକ୍ତ,ପୂଜାଦିରେ ନିବିଷ୍ଟମନା,ଅଭ୍ୟାସ-

ଶୀଳ, ଅବଲୋକନ, ବାସ, ପୂଜା, ଅନୁସରଣ ।

ନୈଷେବକ—ତ୍ରି. ବିଂ. ଅନୁରକ୍ତ, ପୁନଃ-ପୁନଃ ଏକ ସ୍ଥାନକୁ ଆଗମନ ବା ଏକ ବିଷୟରେ ଅଭିନିବେଶ ।

ନୈଷେବଣ—କ୍ଲୀ.ବି. (ନି+ସେବ+ଭା. ଅନ) ସେବା, ଆରାଧନା, ଅନୁକରଣ ।

ନୈଷେବଣୀୟ—ତ୍ରି. ବିଂ. (ନି+ସେବ+ର୍ମ.ଅନୀୟ) ସେବାଯୋଗ୍ୟ, ସେବନୀୟ, ଆଚରଣୀୟ ।

ନୈଷେବିତ—ବିଂ. (ନି+ସେବ+ର୍ମ.ତ) ସେବିତ, ଆରାଧିତ, ଅନୁସୃତ, ଅନୁଯାତ, ବ୍ୟବହୃତ, ଭୁକ୍ତ ।

ନୈଷେବିତା—ପୁଂ. ବିଂ. (ନି+ସେବ+ତୃ) ନିସେବକ, ନିସେବନକାରୀ ।

ନୈଷେବିତବ୍ୟ—ବିଂ. ( ନି+ସେବ+ତବ୍ୟ) ସେବନୀୟ, ସେବାର ଯୋଗ୍ୟ ।

ନୈଷେବୀ—ପୁଂ. ବିଂ. (ନି+ସେବ+କ. ଇନ୍ ) ସେବାକାରୀ, ଅବଲୋକିତ, ଅନୁରତ, ସୁଖଭୋଗୀ ।

ନୈଷେବ୍ୟ—ତ୍ରି.ବିଂ.(ନି+ସେବ+ର୍ମ.ଯ) ସେବନୀୟ, ସେବାର ଯୋଗ୍ୟ ।

ନିଷ୍କ—ପୁଂ.କ୍ଲୀ.ବି. (ନିସ୍+କୈ+କ. ଅ ) ସୁବର୍ଣ୍ଣ, ସ୍ୱର୍ଣ୍ଣମୁଦ୍ରା, ମୋହର, ଏକଶହଆଠ ମଷା ସୁବର୍ଣ୍ଣର ପରିମାଣ, ହେମ, ଉରୁଭୂଷଣ, ପଳ, ଦୀନାର, ପଣ, ଷୋଳ କାହାଣ ପରିମାଣ, ସ୍ୱର୍ଣ୍ଣ-ପଳ, ସ୍ୱର୍ଣ୍ଣର କଣ୍ଠ ଭୂଷଣ, ଗୁଞ୍ଜମଷା ଓଜନ, ସ୍ୱର୍ଣ୍ଣପାତ୍ର, ସ୍ୱାସ୍ଥ ।

ନିଷ୍କକଣ୍ଠ—ତ୍ରି. ବିଂ. (ବ.ବ୍ରୀ) ସୁବର୍ଣ୍ଣା-ଲଂକାରବିଶିଷ୍ଟ (କଣ୍ଠ) ।

ନିଷ୍କଗ୍ରୀବ—ତ୍ରି. ବିଂ. ( ବ.ବ୍ରୀ ) ଯାହାର ବେକରେ ସ୍ୱର୍ଣ୍ଣାଲଙ୍କାର ବିଲମ୍ବିତ ।

ନିଷ୍କଣ୍ଟକ—ତ୍ରି. ବିଂ. (ବ.ବ୍ରୀ) ଉପସର୍ଗ-ହୀନ, ବାଧାରହିତ, କଣ୍ଟକହୀନ, ଶତ୍ରୁ-ପରିଶୂନ୍ୟ, ଉପଦ୍ରବରହିତ ।

ନିଷ୍କଣ୍ଟକରାଜତ୍ୱ—ବି. ଯେଉଁ ରାଜାଙ୍କ ରାଜତ୍ୱ କରିବାରେ କେହି ପ୍ରତିଦ୍ୱନ୍ଦ୍ୱୀ ନଥାଏ ।

ନିଷ୍କଣ୍ଠ—ପୁଂ.ବି.(ବ.ବ୍ରୀ) ବରୁଣ ବୃକ୍ଷ ।

ନିଷ୍କନିଷ୍ଠ—ତ୍ରି.ବିଂ. (ବ.ବ୍ରୀ) କନିଷ୍ଠାଙ୍ଗୁଳି-ଶୂନ୍ୟ, ଯାହାର କାଣି ଆଙ୍ଗୁଳି କଟା ହୋଇଅଛି ।

ନିଷ୍କନ୍ଦ—ତ୍ରି.ବିଂ. (ବ.ବ୍ରୀ) ଯାହାର ମୂଳ ଖାଦ୍ୟଯୋଗ୍ୟ ନୁହେ ।

ନିଷ୍କପଟ—ପୁଂ.ବିଂ.(ବ.ବ୍ରୀ) ଅକପଟ ।

ନିଷ୍କପଟୀ—ଗ୍ରା.ପୁଂ.ବିଂ. ନିଷ୍କପଟ ।

ନିଷ୍କମ୍ପ—ତ୍ରି.ବିଂ.(ବ.ବ୍ରୀ)କମ୍ପହୀନ, ସ୍ଥିର, ନିଶ୍ଚଳ ।

ନିଷ୍କମ୍ପ—ପୁଂ. ବି. ଗରୁଡ଼ଙ୍କ ପୁତ୍ର ।

ନିଷ୍କମ୍ପୁ—ପୁଂ.ବି.ଦେବସେନାଧିପଭେଦ

ନିଷ୍କର—ତ୍ରି. ବିଂ. (ବ.ବ୍ରୀ) କରଶୂନ୍ୟ, ଲାଖରାଜଜମି, ଯେଉଁ ଭୂମିର ରାଜସ୍ୱ ଦିଆଯାଏନାହିଁ, ମିହ୍ଲା ।

ନିଷ୍କରୁଣ—ତ୍ରି.ବିଂ.(ବ.ବ୍ରୀ) କରୁଣାହୀନ, ନିର୍ଦ୍ଦୟ, ନିର୍ମମ, ନିଷ୍ଠୁର ।

ନିଷ୍କଲୁଷ—ତ୍ରି. ବିଂ. ମଇଳା ନ ଥିବା, ପରିଚ୍ଛନ୍ନ, ପରିଷ୍କୃତ ।

ନିଷ୍କର୍ମକ—ପୁଂ. ବିଂ. (ବ.ବ୍ରୀ) ଅକର୍ମା, କର୍ମରହିତ ।

ନିଷ୍କର୍ମା—ପୁଂ. ବିଂ. (ବ.ବ୍ରୀ) ନିରୁତ୍ସାହ, କାର୍ଯ୍ୟବିରତ, ଅଳସ, ଅକର୍ମଣ୍ୟ, ନିଶ୍ଚେଷ୍ଟ

ନିଷ୍କର୍ଷ—ପୁଂ.ବି. (ନିସ୍+କୃଷ+ଭା.ଅ) ନିଶ୍ଚୟ, ନିଗାଡ଼ିବା, ସାର, ନିର୍ଯ୍ୟାସ, ନିଃସାରଣ, ଇୟତ୍ତାଦ ଦ୍ୱାରା ସ୍ୱରୂପ ପରିଚ୍ଛେଦ, ସାରମର୍ମ, ଯଥାର୍ଥ ପ୍ରକା- [ ଅନ୍ତିମ ଉତ୍ତର ।
ପୀଡ଼ନ ।

ନିଷ୍କର୍ଷଜବାବ—ଗ୍ରା. ବି. ସ୍ଥିର ଉତ୍ତର,

ନିଷ୍କର୍ଷଣ—କ୍ଲୀ. ବି. (ନିସ୍+କୃଷ+ଭା. ଅନ) ବହିଃପ୍ରକାଶ କରିବା, ନିଷ୍କାସନ, ନିଷ୍ପତ୍ତି-କରଣ, ନିଃସାରଣ, ମେଣ୍ଟାଇବା, ଅପ-ନୋଦନ, ଉଦ୍ଧାରଣ, ନିଯୋଜନ ।

ନିଷ୍କର୍ଷୀ—ପୁଂ. ବି. ମରୁଦ୍ଗଣଭେଦ ।

ନିଷ୍କଳ—ପୁଂ.ବିଂ. (ବ.ବ୍ରୀ) କଳାଶୂନ୍ୟ, ନିରବୟବ, ସମ୍ପୂର୍ଣ୍ଣ, ନଷ୍ଟବୀର୍ଯ୍ୟ, ନିରଂଶ, ବନ୍ଧ୍ୟ, ବୃଦ୍ଧ, ନିଷ୍କଳ, (ବି) ଈଶ୍ୱର, ଅବଧାର, ବ୍ରହ୍ମ, ବ୍ରହ୍ମା ।

ନିଷ୍କଳଙ୍କ—ବିଂ. (ବ.ବ୍ରୀ) କଳଙ୍କଶୂନ୍ୟ, ନିର୍ଦ୍ଦୋଷ, ଶୁଦ୍ଧ ।

ନିଷ୍କଳଙ୍କୀ—ଗ୍ରା. ବିଂ. କଳଙ୍କଶୂନ୍ୟ ।

ନିଷ୍କଳତ୍ୱ—ବିଂ. ଅବିଭାଜ୍ୟ, ଅତିସୂକ୍ଷ୍ମ, ଯାହା ଭାଗ କରାଯାଇ ନ ପାରେ ।

ନିଷ୍କଳା—ସ୍ତ୍ରୀ.ବିଂ. (ବ.ବ୍ରୀ) ବୃଦ୍ଧା, ବିଗ-ତାର୍ତ୍ତବା, ରଜୋହୀନା ସ୍ତ୍ରୀ ।

ନିଷ୍କଳୀ—ସ୍ତ୍ରୀ. ବିଂ. (ନିଷ୍କଳ+ଈ)ରଜୋ-ହୀନା, ନିବୃତ୍ତ ରଜସ୍କା, ବୃଦ୍ଧା ସ୍ତ୍ରୀ ।

ନିଷ୍କଲ୍ମଷ—ତ୍ରି.ବିଂ.(ବ.ବ୍ରୀ) ପାପବିହୀନ, ପାପଶୂନ୍ୟ, କଳଙ୍କହୀନ ।

ନିଷ୍କଷାୟ—ତ୍ରି. ବିଂ. ଚିତ୍ତଦୋଷଶୂନ୍ୟ, ନିର୍ମଳଚିତ୍ତ, ମୁମୁକ୍ଷୁ,(ପୁଂ.ବି)ଜିନଭେଦ

ନିଷ୍କାଦ—ପୁଂ.ବି.ପାଣିନ୍ୟୁକ୍ତ ଗୋଟିଏ ଗଣ

ନିଷ୍କାମ୍—ପ୍ରା. ( ସମ୍ବଲ ) ଅ. ଆଦୌ, ବିଲ୍‌କୁଲ୍, ଜମାରୁ, ମୋଟେ ।

ନିଷ୍କାମ—ତ୍ରି. ବିଂ. (ବ.ବ୍ରୀ) ବିଷୟ ଭୋଗେଚ୍ଛାଶୂନ୍ୟ, ଅନିଚ୍ଛୁକ, କାମନା-ଶୂନ୍ୟ, ଆସକ୍ତିରହିତ, କାମନାରହିତ (କର୍ମ) । [ କାର୍ଯ୍ୟ ।

ନିଷ୍କାମକର୍ମ—ବି. (କ.ଧା) କାମନାରହିତ

ନିଷ୍କାମଧର୍ମ—ବି. କୌଣସି କାମନା ପ୍ରତି ଲକ୍ଷ୍ୟ ନ ରଖି ଯେଉଁ ଧର୍ମ ସାଧନା କରା-ଯାଏ ।

ନିଷ୍କାମୀ—ପୁଂ.ବିଂ(ନିଷ୍କାମ+ଇନ୍)କାମନା-ଶୂନ୍ୟ, ନିଃସ୍ପୃହ, ନିସ୍ୱାର୍ଥ ।

ନିଷ୍କାରଣ—ତ୍ରି.ବିଂ(ବ.ବ୍ରୀ)କାରଣଶୂନ୍ୟ, ହେତୁଶୂନ୍ୟ, ବୃଥା, ଅହେତୁକ ।

ନିଷ୍କାଳକ—ପୁଂ. ବି. ବ.ବ୍ରୀ; (ନିର୍+କାଳ+ଅକ) ମୁଣ୍ଡିତକେଶ ଲୋମାଦି ପ୍ରାୟଶ୍ଚିତ୍ତ ଯୋଗ୍ୟ (ବ୍ୟକ୍ତି) ।

ନିଷ୍କାଳନ—କ୍ଲୀ.ବି (ନିର୍+କାଳ+ଭା. ଅନ) ଚାଳନ, ମାରଣ ।

ନିଷ୍କାଳିକ—ଅବ୍ୟ. କଳିକର ଅଭାବ, ଜେତୃଶୂନ୍ୟ, ଅଜେୟ ।

ନିଷ୍କାଶ—ପୁଂ.ବି. (ନିର୍+କଶ୍+ଅଧି. ଅ) ପ୍ରାସାଦାଦିର ଉପସ୍ଥାନ, ପିଣ୍ଡା, ବାରଣ୍ଡା, (ଭା.ଅ) ବହିଷ୍କରଣ, ନିଃସା-ରଣ, ନିଷ୍କାସନ ।

ନିଷ୍କାଶ(ସ)ନ—କ୍ଲୀ. ବି. (ନିର୍+କଶ୍+

ଣ୍ଚ୍.ଅନ) ପଦାକୁ ବାହାରିବା, ଫୁଟିବା, ବହିଷ୍କରଣ, ଦୂରୀକରଣ, ନିଃସାରଣ, ନିର୍ବାସନ ।

ନିଷ୍କାଶି(ସି)ତ—ବି.ବିଂ.(ନିର୍+କାଶ+ଣିଚ୍+ର୍ମ.ତ) ନିଷ୍କାସିତ, ନିଃସାରିତ, ବହିଷ୍କୃତ, ଦୂରୀକୃତ, ନିନ୍ଦିତ, ଅହିତ, ଧିକ୍କୃତ ।

ନିଷ୍କାଶିଣିମା—ସ୍ତ୍ରୀ.ବି. (ନିର୍+କଣ୍+କ.ଇନ୍+ଈ)ଅବାଟୋ ଦାସୀ, ଯେଉଁ ଗୃହଦାସୀ ଅନ୍ତଃପୁରରୁ ବାହାରକୁ ଯିବା ବିଷୟରେ ସ୍ୱାଧୀନା ।

ନିଷ୍କାଶୀ(ସୀ)—ପୁଂ. ବିଂ. (ନିର୍+କଣ୍ ଣିଚ୍+କ.ଇନ୍) ନିଃସାରକ, ବହିଷ୍କାରକ ।

ନିଷ୍କିଞ୍ଚନ—ପୁଂ.ବିଂ.(ବ.ବ୍ରୀ)କିଞ୍ଚନଶୂନ୍ୟ. ବିଷୟାନ୍ତରଶୂନ୍ୟ, ଦରିଦ୍ର, ଅକିଞ୍ଚନ, (ବି) ଏକ ବୈଷ୍ଣବ ।

ନିଷ୍କିପ୍ୟ—କ୍ଲୀ. ବି. ଜାତିବିଶେଷ ।

ନିଷ୍କିଲ୍ୱିଷ—ତ୍ରି. ବିଂ. (ବ.ବ୍ରୀ) କିଲ୍ୱିଷଶୂନ୍ୟ, ପାପରହିତ ।

ନିଷ୍କୁଟ—ପୁଂ. ବି. (ନିସ୍+କୁଟ୍+ଅ) ଗୃହସମୀପସ୍ଥ ଉପବନ, ଜଳ, କ୍ଷେତ୍ରବିଶେଷ, କପାଟ, ଅବରୋଧ, ଅନ୍ତଃପୁର, ଦେବତାବିଶେଷ ।

ନିଷ୍କୁଟି—ସ୍ତ୍ରୀ. ବି. (ନିସ୍+କୁଟ୍+ଇ) ଏଲା, ଅଳେଇଚ ।

ନିଷ୍କୁଟୀ—ସ୍ତ୍ରୀ. ବି. (ନିଷ୍କୁଟି+ଈ) ଏଲା, ଅଳେଇଚ ।

ନିଷ୍କୁଟିକା—ସ୍ତ୍ରୀ.ବି. କୁମାରାନୁଚର ମାତୃଭେଦ । [ଶୂନ୍ୟ

ନିଷ୍କୁତୂହଳ—ବି.ବିଂ(ବ.ବ୍ରୀ)କୁତୂହଳ-

ନିଷ୍କୁମ୍ଭ—ପୁଂ.ବି. (ନିସ୍+କୁମ୍ଭ୍+ଅ) ଦନ୍ତୀବୃକ୍ଷ, (ବିଂ.ବ.ବ୍ରୀ) କୁମ୍ଭଶୂନ୍ୟ ।

ନିଷ୍କୁଳ—ବି. ବିଂ. (ବ.ବ୍ରୀ) ଅବିଦ୍ୟମାନ-ସମ୍ବନ୍ଧୀ, ସପିଣ୍ଡାଦି କୁଳରହିତ, ନିର୍ବଂଶ, ଜ୍ଞାତିହୀନ ।

ନିଷ୍କୁଳୀନ—ବି.ବିଂ.କୌଳୀନ୍ୟଶୂନ୍ୟ ।

ନିଷ୍କୁଷିତ—ବି. ବିଂ. (ନିସ୍+କୁଷ୍+ର୍ମ.ତ) ନିଷ୍କାଷିତ, ଅକୃଷ୍ଟ, ନିଃସାରିତ, ନିଷ୍ପୀଡ଼ିତ, ବହିଷ୍କୃତ, କ୍ଷତବିକ୍ଷତ, ଛେଦିତ, (ପୁଂ.ବି) ମରୁଦ୍‌ଗଣଭେଦ ।

ନିଷ୍କୁହ—ପୁଂ.ବି. (ନିର୍+କୁହ+କ.ଅ) ବୃକ୍ଷକୋଟର, ବୃକ୍ଷଦଣ୍ଡିତ ସ୍ୱୟଂଜାତ ଛିଦ୍ର ।

ନିଷ୍କୂଳ—ବିଂ. (ବ.ବ୍ରୀ) କୂଳହୀନ, ତଟହୀନ, ଅକୂଳ ।

ନିଷ୍କୃତ—ତ୍ରି.ବିଂ. (ନିର୍+କୃ+ତ)ମୁକ୍ତ, ସ୍ଥାନାନ୍ତରିତ, ଅପସାରିତ, ପାପନିର୍ମୁକ୍ତ, ପରିତ୍ୟକ୍ତ, ମୁକ୍ତ ।

ନିଷ୍କୃତି—ସ୍ତ୍ରୀ. ବି. (ନିର୍+କୃ+ତି) ଅକୃତ, ଉପେକ୍ଷା, କ୍ଷତିପୂରଣ, ଋଣପରିଶୋଧ, ନିସ୍ତାର, ନିର୍ମୁକ୍ତି, ପାପାଦିରୁ ଉଦ୍ଧାର, ମାର୍ଜନା, ପରିତ୍ରାଣ, କ୍ଷମା, (ପୁଂ.ବି) ଅଗ୍ନିବିଶେଷ ।

ନିଷ୍କୃତିଲାଭକରିବା—ଗ୍ରା. କ୍ରି. ପରିତ୍ରାଣ ପାଇବା, ମୁକ୍ତିଲାଭ କରିବା ।

ନିଷ୍କୃତ୍ରିମ—ବିଂ. (ନିର୍+କୃତ୍ରିମ) ଅକୃତ୍ରିମ, ପ୍ରକୃତ ।

ନିଷ୍କୃଷ୍ଟ—ତ୍ରି.ବିଂ. (ନିର୍+କୃଷ+ତ) ସାରାଂଶ, ନିଶ୍ଚିତ, ମର୍ଦ୍ଦିତ, ନିଷ୍ପୀଡ଼ିତ, ଛେଦିତ, ନିଃସନ୍ଦେହ, ପରିସ୍ଫୁଟ, ମୋଚିତ ।

ନିଷ୍କୃଷ୍ଟାର୍ଥ—ବି. (କ.ଧା) ସ୍ପଷ୍ଟାର୍ଥ, ପରିସ୍ଫୁଟାର୍ଥ ।

ନିଷ୍କେବଲ୍ୟ—ପୁଂ. ବି. ଶସ୍ତ୍ରଦ୍ୱାରା ଗ୍ରହଣୀୟ ଯଜ୍ଞପାତ୍ରରୂପ ଗ୍ରହଭେଦ, ଯଜ୍ଞୀୟ ସ୍ତୋମକାରିତ ଶଂସନାତ୍ମକ ଶସ୍ତ୍ରଭେଦ ।

ନିଷ୍କେଶ—ବିଂ. (ବ.ବ୍ରୀ) କେଶହୀନ ।

ନିଷ୍କୈବଲ୍ୟ—ବି. ବିଂ. ନିଶ୍ଚିତ, କେବଳନିତ୍ୟ, ଅନ୍ୟାସକ୍ତିରହିତ, ନିରପେକ୍ଷ, ମୋକ୍ଷହୀନ, ଅନ୍ୟର ଅସମ୍ବନ୍ଧକାରୀ ।

ନିଷ୍କୋଷ—ପୁଂ. ବି. (ନିସ୍+କୁଷ୍+ଅ) ନିଷ୍କୋଷଣ, ବହିର୍ନିଃସାରଣ, (ବିଂ) ବହିଷ୍କୃତ, ନିଷ୍କାଷିତ ।

ନିଷ୍କୋଷଣ—କ୍ଲୀ. ବି. (ନିର୍+କୁଷ୍+ଣ୍ଚ୍.ଅନ) ଅନ୍ତର ବସ୍ତୁର ବହିର୍ନିଃସରଣ, ତୁଷ ବାହାର କରିବା, ଖୋଳ ଛଡ଼ାଇବା ।

ନିଷ୍କୋଷଣକ—ବି. ବିଂ. ନିଃସାରକ, ଉତ୍ପାଟନ ଯୋଗ୍ୟ, ଉତ୍ପାଟନଶୀଳ, ଅନ୍ତଃସ୍ଥବସ୍ତୁବାହ୍ୟରୁ ବହିଷ୍କୃତ ।

ନିଷ୍କୋଷିତ—ବିଂ.(ନିଷ୍+କୁଶ୍+ର୍ମ.ତ) ନିଷ୍କୋଷ ଦେଖ ।

ନିଷ୍କୋଷିତବ୍ୟ—ବି. ବିଂ. (ନିର୍+କୁଶ୍+ତବ୍ୟ) ନିଷ୍କୋଷଣ ଯୋଗ୍ୟ ।

ନିଷ୍କୌରବ—ବି.ବିଂ.(ବ.ବ୍ରୀ)କୌରବଶୂନ୍ୟ. କୌରବହୀନ ।

ନିଷ୍କୌଶାମ୍ବି—ବି. ବିଂ. କୌଶାମ୍ବି ନଗରୀରୁ ନିର୍ଗତ ।

ନିଷ୍କ୍ରମ—ପୁଂ.ବି.(ନିର୍+କ୍ରମ+ଘ.ଅ) ଗୃହାଦିରୁ ବହିର୍ଗମନ, ନିର୍ଗମ, ଶିଶୁର ଗୃହନିଷ୍କ୍ରମଣ, ବୁଦ୍ଧି ଶକ୍ତି, ଧୀଶକ୍ତି, ଦୁଷ୍କୁଳ ।

ନିଷ୍କ୍ରମଣ—କ୍ଲୀ. ବି. (ନିର୍+କ୍ରମ+ଣ୍ଚ୍.ଅନ) ଗୃହାଦିରୁ ବହିର୍ଗମନ, ଦଶବିଧ ସଂସ୍କାର ମଧ୍ୟରୁ ଏକତମ, ପ୍ରସ୍ଥାନ, ଶିଶୁମାନଙ୍କର ଚତୁର୍ଥ ମାସରେ ଗୃହନିର୍ଗମନ ରୂପ ସଂସ୍କାର ।

ନିଷ୍କ୍ରମଣିକା—ସ୍ତ୍ରୀ. ବି. ପୁତ୍ରର ଚତୁର୍ଥ ମାସରେ ସୂର୍ଯ୍ୟଦର୍ଶନାର୍ଥ ଗୃହରୁ ବହିର୍ଗମନ ।

ନିଷ୍କ୍ରମଣିତ—ବି.ବିଂ. ସଞ୍ଜାତ ନିଷ୍କ୍ରମଣ, ଯାହାର ନିଷ୍କ୍ରମଣ ହୋଇଅଛି ।

ନିଷ୍କ୍ରୟ—ପୁଂ. ବି. (ନିର୍+କ୍ରୀ+ଣ.ଅ) ମୂଲ୍ୟ, ଦାମ୍, ଭଡ଼ା, ଭୃତି, ବେତନ, ବିନିମୟ ଦ୍ରବ୍ୟ, ତୁଲ୍ୟ ମୂଲ୍ୟଦ୍ୱାରା ବଦଳ ଦ୍ରବ୍ୟ, (ଘ.ଅ) କ୍ରୟ, ବୁଦ୍ଧିଯୋଗ, ସାମର୍ଥ୍ୟ, ନିର୍ଗମନ, ପ୍ରତ୍ୟୁପକାର, ବିନିମୟ, ବିକ୍ରୟ, ମନୋଯୋଗ, ପ୍ରସ୍ଥାନ ।

ନିଷ୍କ୍ରାନ୍ତ—ବିଂ. (ନିର୍+କ୍ରମ+କ.ତ) ନିର୍ଗତ, ପ୍ରସ୍ଥିତ, (କ୍ରମ+ଣିଚ୍+ର୍ମ.ତ) ବହିଷ୍କୃତ, ବିତାଡ଼ିତ, ନିଃସାରିତ ।

ନିଷ୍କ୍ରାମକ—ପୁଂ. ବିଂ. (ନିର୍+କ୍ରମ+କ.ଅକ) ନିଃସାରକ, ବିତାଡ଼କ ।

ନିଷ୍କ୍ରାମଣ—କ୍ଲୀ. ବି. (ନିର୍+କ୍ରମ+ଣିଚ୍+ଅନ) ନିଷ୍କ୍ରମଣ ଦେଖ ।

ନିଷ୍କ୍ରିୟ—ପୁଂ. ବିଂ. (ନିର୍+କ୍ରିୟା) ବ.ବ୍ରୀ; କ୍ରିୟାଦି ବ୍ୟାପାର ଶୂନ୍ୟ, କର୍ମ-

ରହିତ. ନିକମା, ଅଳସୁଆ, ଜଡ଼, ନିରର୍ଥକ, (ବ) ପରଂବ୍ରହ୍ମ, ଈଶ୍ୱର ।
ନିଷ୍କ୍ରିୟତା—ସ୍ତ୍ରୀ. ବ. ନିଷ୍କ୍ରିୟର ଭାବ, ଆଳସ୍ୟ; ଅମନୋଯୋଗିତା ।
ନିଷ୍କ୍ରିୟପ୍ରତିରୋଧ—ବ. କୌଣସି କାର୍ଯ୍ୟ ନ କରିବା ଦ୍ୱାରା ଆଦେଶ ପାଳନ ହେବାରେ କାର୍ଯ୍ୟତଃ ବାଧାଦେବା ।
ନିଷ୍କ୍ରିୟାତ୍ମତା—ସ୍ତ୍ରୀ. ବ. ନିଷ୍କ୍ରିୟ ସ୍ୱରୂପତା, ନିର୍ଣ୍ଣିପ୍ତତ୍ୱ, ଅନବଧାନତା, ଜଡ଼ତା
ନିଷ୍କ୍ରୀତି—ସ୍ତ୍ରୀ. ବ. ମୁକ୍ତି ।
ନିଷ୍କ୍ରୋଧ—ତ୍ରି. ବଂ. (ବ.ବ୍ରୀ) କ୍ରୋଧହୀନ, କ୍ରୋଧଶୂନ୍ୟ ।
ନିଷ୍କ୍ଲେଶ—ତ୍ରି. ବଂ. କ୍ଲେଶହୀନ, ବୌଦ୍ଧମତେ ଦଶବିଧ କ୍ଲେଶରୁ ମୁକ୍ତ ।
ନିଷ୍କ୍ଲେଶଲେଶ—ତ୍ରି. ବଂ. ( ବ.ବ୍ରୀ ) କ୍ଲେଶଲେଶଶୂନ୍ୟ, ନିଷ୍କ୍ଲେଶ ।
ନିଷ୍କ୍ୱାଥ—ପୁଂ.ବ.(ନିର୍+କ୍ୱଥ+ମ.ଅ) ମାଂସାଦିର ଝୋଳ, ସୋରୁଆ ।
ନିଷ୍ଟନୂନ—ତ୍ରି. ବଂ. (ନିର୍+ତନ+କ୍ୱନପ୍)ନିତରାଂସହନଶୀଳ । [ଶୀଳ ।
ନିଷ୍ଟନ୍ୱା—ସ୍ତ୍ରୀ. ବଂ. ନିତାନ୍ତ ସହନ-
ନିଷ୍ଟପନ—କ୍ଲୀ. ବ. ପୋଡ଼ିବା ।
ନିଷ୍ଟପ୍ତ—ତ୍ରି. ବଂ. ଉଜ୍ଜ୍ୱଳୀକୃତ, ବାର୍ଣ୍ଣିସ୍ ଦ୍ୱାରା ଚକ୍ ଚକ୍ କରାଯାଇଥିବା, ଉତ୍କୃଷ୍ଟ, ବନ୍ଧନମୁକ୍ତ ।
ନିଷ୍ଟାନକ—ପୁଂ. ବ. ସବାଥ ଶବ୍ଦ ।
ନିଷ୍ଟି—ସ୍ତ୍ରୀ. ବ. ( ନିଶ+ତି ) ଅଦିତି-ସପତ୍ନୀ; ଦିତି ।
ନିଷ୍ଟିକଣ୍ଟା—ଗ୍ରା. ବ. ( ସଂ-ମେଦିକା ) କଣ୍ଟା ମେହେନ୍ଦି ।
ନିଷ୍ଟିକରିବା—ଗ୍ରା. କ୍ରି. ଦୃଢ଼ ନିୟମ କରିବା, ତାଲିକା ପ୍ରସ୍ତୁତ କରିବା ।
ନିଷ୍ଟିତୀ—ସ୍ତ୍ରୀ. ବ. ଅଦିତି ।
ନିଷ୍ଟିମୃତାବକ—ଯା. କ୍ରି. ବଂ. ଧାରା-ଅନୁସାରେ, ଠିକ ସମୟ ଅନୁସାରେ, ନିୟମ ଅନୁସାରେ, ତାଲିକା ଅନୁସାରେ ।
ନିଷ୍ଟ ର—ବଂ. ( ନିସ୍+ତୃ+କ୍ୱପ୍ ) ଶତ୍ରୁମାନଙ୍କର ଅଭିଭବକ; ଶତ୍ରୁ-ବଜେତା ।
ନିଷ୍ଟ୍ୟ—ପୁଂ. ବ. (ନିସ୍+ତ୍ୟ) ଚଣ୍ଡାଳାଦି ମ୍ଲେଚ୍ଛଜାତିବିଶେଷ, ପୁକାଦି ।
ନିଷ୍ଠ—ପୁଂ. ବଂ. ( ନି+ସ୍ଥା+ଅ ) ନିଷ୍ଠାବାନ୍, ଧାର୍ମିକ, ମଗ୍ନ, ନ୍ୟାସ୍ତପରାୟଣ, ନିତରାଂ ସ୍ଥିତିଶୀଳ, ତତ୍ପର; ସ୍ଥିତ, ବଶୀଭୂତ, ଆସକ୍ତପରାୟଣ, (ସ୍ତ୍ରୀ) ନିଷ୍ଠା ।
ନିଷ୍ଠା—ସ୍ତ୍ରୀ. ବ. (ନି+ସ୍ଥା+ଭା.ଅ+ଆ) ନିଷ୍ପତ୍ତି, ନାଶ; ଶେଷ, ସମାପ୍ତି, ଦୃଢ଼ତା, ଅନ୍ତଃସୀମା ନିର୍ବାହ, ଯାଚ୍ଞା, ଧର୍ମାଦିରେ ଶ୍ରଦ୍ଧା, ନିଶ୍ଚୟ, ଅବଧାରଣ, ଉତ୍କର୍ଷ, ବ୍ୟବସ୍ଥା, ପତ୍ୟୟ, ଉଦର୍, (ନି+ସ୍ଥା+କ୍ୱପ୍) ସ୍ଥିତ, ଯଥାଭୂତସ୍ଥିତି. ପ୍ରଳୟ କାଳରେ ସର୍ବଭୂତ ସ୍ଥିତିର ଆଧାର ବସ୍ତୁ, (ସ୍ତ୍ରୀ.ବଂ) ସ୍ଥିର, ସ୍ଥିତିଶୀଳା, (ଗ୍ରା.ବଂ) ଦୃଢ଼, ଅଟଳ, ନିଶ୍ଚିତ, (ଗ୍ରା.ବ) ଧର୍ମାଦିବିଧିମାନ ପାଳନ କରିବାରେ ଦୃଢ଼ତା ।
ନିଷ୍ଠାଚାନ—ତ୍ରି. ବଂ. ନିଷ୍ଠାପ୍ରାପ୍ତ ।
ନିଷ୍ଠାନ—କ୍ଲୀ. ବ. (ନି+ସ୍ଥ+ଅଧି+ଅନ) ଚଟ୍ଣି, ବ୍ୟଞ୍ଜନ, ତିଅଣ, ଉକ୍ତାଦ୍ୟୁପ ସେଚନ, ତିଅଣର ମସଲା, (ଭା.ଅନ) ମୃତ୍ୟୁ । [ ଦେଖ ।
ନିଷ୍ଠାନକ—ପୁଂ.ବ. ନାଗବିଶେଷ, ନିଷ୍ଠାନ
ନିଷ୍ଠାନ୍ତ—ତ୍ରି. ବଂ. ( ବ.ବ୍ରୀ ) ନାଶାନ୍ତ ବସ୍ତୁ, ଯେଉଁ ବସ୍ତୁର ଶେଷରେ ନାଶ ଅଛି, ଅତଏବ ସ୍ଥିତ୍ୟନ୍ତ ।
ନିଷ୍ଠାପର—ପୁଂ. ବଂ. (ବ.ବ୍ରୀ) ଐକାନ୍ତିକ, ଝଣିଧାର୍ମିକ, ଯେ ସମସ୍ତ ଧର୍ମବିଧି ପାଳନ କରେ ।
ନିଷ୍ଠାବ—ତ୍ରି. ବଂ. ନିଷ୍ଠାଯୁକ୍ତ ।
ନିଷ୍ଠାବାନ୍—ପୁଂ. ବଂ. (ନିଷ୍ଠା+ବତ୍) ନିଷ୍ଠାଯୁକ୍ତ, ନିଷ୍ଠାପର ଦେଖ ।
ନିଷ୍ଠିତ—ତ୍ରି. ବଂ. (ନି+ସ୍ଥା+ମ.ତ) ନିଶ୍ଚିତ, ଦୃଢ଼ଭକ୍ତିଯୁକ୍ତ. ନିବଷ୍ଟ, ଅନୁରକ୍ତ, ନିତରା ସ୍ଥିତ ଚସ୍ତ୍ର, ସ୍ଥାପିତ, ପ୍ରତିଷ୍ଠିତ, ନିଷ୍ଠାପର ।
ନିଷ୍ଠୀବ—ପୁଂ. ବ. (ନି+ଷ୍ଠିବ୍+ମ
ଷ୍ଠୀବନ, ଶ୍ଳେଷ୍ମାଦି ମୁଖରୁ ବାହାରିବା, ଛେପ, ଥୁକ, ଖଙ୍କାର ଆଦି, (ଭା.ଅ) ଛେପ ପକାଇବା, ବମନ, ଉଦ୍ଗୀରଣ ।
ନିଷ୍ଠୀବନ—କ୍ଲୀ. ବ. (ନି+ଷ୍ଠୀବ+ଭା. ଅନ) ଶ୍ଳେଷ୍ମାଦିର ବମନ, ଛେପ,ଥୁକ, ଥୁ ଥୁ, ଭୈଷଜ୍ୟ ରତ୍ନାବଳୀ ବର୍ଣ୍ଣିତ ଔଷଧବିଶେଷ ।
ନିଷ୍ଠୀବନତ୍ୟାଗ—ବ. (୭ତତ୍ପୁ) ଛେପ ପକାଇବା, ଥୁକିବା ।
ନିଷ୍ଠୀବନପାତ୍ର—ବ. ପିକଦାନୀ ।
ନିଷ୍ଠୀବିତ—କ୍ଲୀ. ବ. (ନି+ଷ୍ଠୀବ+ଣିଚ୍ +ଭା.ତ) ନିଷ୍ଠୀବନ କରଣ, ଛେପ ପକାଇବା, ଥୁକିବା ।
ନିଷ୍ଠୁର—ବଂ. ( ନି+ସ୍ଥା+କ.ଉର ) ପରୁଷ, କଠିନ, ହୃଦୟବିଦାରକ, ବର୍ବର, ଦାରୁଣ ଚରିତ୍ରବିଶିଷ୍ଟ, (ଭା.ଉର)କଠୋର ବଚନ, ଅଶ୍ଳୀଳବାକ୍ୟ ।
ନିଷ୍ଠୁରତା—ସ୍ତ୍ରୀ. ବ. (ନିଷ୍ଠୁର+ତ+ଆ) ନିଷ୍ଠୁରର କାର୍ଯ୍ୟ, ନିଷ୍ଠୁରର ଭାବ, କଠୋରତା, ନିଦାରୁଣତା, ବର୍ବରତା ।
ନିଷ୍ଠୁରକ—ପୁଂ. ବ. ନାଗଭେଦ ।
ନିଷ୍ଠେବ—ପୁଂ.ବ. (ନି+ଷ୍ଠୀବ+ଭା.ଅ) ନିଷ୍ଠୀବ ଦେଖ ।
ନିଷ୍ଠ୍ୟତ—ତ୍ରି. ବଂ. (ନି+ଷ୍ଠୀବ+ମ.ତ) ପ୍ରେରିତ, କ୍ଷିପ୍ତ, ଉଦ୍ଗୀର୍ଣ୍ଣ, ଛେପ ପକାଯାଇଥିବା, ମୁଖଦ୍ୱାରା ନିରସ୍ତ ଶ୍ଳେଷ୍ମାଦି, (ବ.ଭା.ତ)ଛେପ ପକାଇବା ।
ନିଷ୍ଠ୍ୟୂତ—ବ. (ନି+ଷ୍ଠୀବ+ଭା.ତ)ନିଷ୍ଠୀବନ, ଛେପ, ଛେପ ପକାଇବା ।
ନିଷ୍ଣ—ତ୍ରି.ବଂ.(ନି+ସ୍ନା+କ.ଅ)ପ୍ରଧାନ, କୁଶଳ, ନିପୁଣ, ପଟୁ, ବିଜ୍ଞ, ବିଚକ୍ଷଣ, ପାରଙ୍ଗମ, ପ୍ରବୀଣ ।
ନିଷ୍ଣାତ—ପୁଂ. ବଂ. (ନି+ସ୍ନା+କ.ତ) ନିଷ୍ଣ ଦେଖ ।
ନିଷ୍ପକ୍ୱ—ତ୍ରି. ବଂ. (ନିର୍+ପକ୍ୱ) କ୍ୱଥିତ, କଳସିଦ୍ଧ, ଉତ୍ତମରୂପେ ପାକହୋଇଥିବା, ସୁସିଦ୍ଧ, ସୁପକ୍ୱ, କ୍ୱଥିତ(ଦଶମୂଳାଦି) ।
ନିଷ୍ପକ୍ଷ—ପୁଂ. ବଂ. ପକ୍ଷପାତ ରହିତ, ଅପକ୍ଷପାତୀ ।

ନିଷ୍ପକ୍ଷପାତ—ବି.(ନିର୍+ପକ୍ଷପାତ)ଅପକ୍ଷପାତ, (ବିଂ) ନିଷ୍ପକ୍ଷ ଦେଖ ।

ନିଷ୍ପକ୍ଷପାତିତା—ବି.(ବ.ଗ୍ରୀ)ଅପକ୍ଷପାତ ।

ନିଷ୍ପକ୍ଷପାତୀ—ତ୍ରି. ପୁଂ. ବିଂ. ଅପକ୍ଷପାତୀ, ଯେ ପକ୍ଷପାତୀ ନୁହେ ।

ନିଷ୍ପଙ୍କ—ତ୍ରି. ବିଂ. (ବ.ଗ୍ରୀ) ପଙ୍କଶୂନ୍ୟ, ନିର୍ମଳ, ବିମଳ, ପବିତ୍ର ।

ନିଷ୍ପଟ—ପ୍ରା. (ସମ୍ଭାବିଂ. ନପଟ,ଅତ୍ୟନ୍ତ, ଗାଢ଼ତମ ।

ନିଷ୍ପତନ—କ୍ଲୀ. ବି. (ନିର୍ + ପତ + ଭା. ଅନ) ନିର୍ଗମନ, ନିଷ୍କ୍ରମଣ,ନିଃସରଣ ।

ନିଷ୍ପତାକଧ୍ୱଜ--ବି.ପୁଂ.ସ୍ତ୍ରୀ.ରାଜାମାନଙ୍କର ପତାକାଶୂନ୍ୟ ଦଣ୍ଡବିଶେଷ ।

ନିଷ୍ପତିଷ୍ଣୁ—ତ୍ରି. ବିଂ. (ନିସ୍+ପତ+କ. ଇଷ୍ଣୁ) ନିତାନ୍ତ ପତନଶୀଳ, ଯାହା ନିପତିତ ହେଉଅଛି ।

ନିଷ୍ପତିସୁତା—ସ୍ତ୍ରୀ.ବି. ଅବୀର (ସ୍ତ୍ରୀ), ପତି-ପୁତ୍ରହୀନା ନାରୀ ।

ନିଷ୍ପତ୍ତି—ସ୍ତ୍ରୀ.ବି. (ନିର୍ + ପଦ + ଭା.ତି) ସମାପ୍ତି, ସିଦ୍ଧି, ନାଦର ଅବସ୍ଥାବିଶେଷ, ଆଦେଶ,ଅବଧାରଣ,ନିଶ୍ଚୟ,ପରିପାକ। ଉକ୍ତି, ମୀମାଂସା, ନିର୍ବାହ, ଅନୁପାତ, ପୁରସ୍କାର, ପୂରଣ, ନିର୍ଗମନ ।

ନିଷ୍ପତ୍ର—ତ୍ରି.ବିଂ. ଏକପାର୍ଶ୍ୱ ନିକ୍ଷିପ୍ତ ସପୁଙ୍ଖ ଶରର ଅପର ପାର୍ଶ୍ୱରେ ନିର୍ଗମଯୁକ୍ତ ମୁଖାଦି ।

ନିଷ୍ପତ୍ରକ—ତ୍ରି. ବିଂ. (ବ.ଗ୍ରୀ) ପତ୍ରଶୂନ୍ୟ, (ସ୍ତ୍ରୀ) ନିଷ୍ପତ୍ରିକା ।

ନିଷ୍ପତ୍ରିକା—ସ୍ତ୍ରୀ. ବି. ( ନିଷ୍ପତ୍ରକ+ଆ ) କରୀର ବୃକ୍ଷ, ବାଉଁଶ ଗଛ ।

ନିଷ୍ପତ୍ରାକୃତ—ସ୍ତ୍ରୀ. ବି. ଅତି ବ୍ୟଥନ ।

ନିଷ୍ପଦ୍—ସ୍ତ୍ରୀ. ବି. (ନିର୍ + ପଦ + କ୍ୱିପ୍) ନିର୍ଗତ ।

ନିଷ୍ପଦ—ତ୍ରି. ବିଂ. (ବ.ଗ୍ରୀ) ପାଦହୀନ, (କ୍ଲୀ. ବି) ପାଦହୀନ ଯାନ,ନୌକାଦି ।

ନିଷ୍ପଦୀ—ସ୍ତ୍ରୀ.ବି.(ବ.ଗ୍ରୀ) ପାଦହୀନା ସ୍ତ୍ରୀ ।

ନିଷ୍ପନ୍ଦ—ତ୍ରି.ବିଂ.(ବ.ଗ୍ରୀ) ସ୍ପନ୍ଦନ ରହିତ, କମ୍ପରହିତ, ସ୍ଥିର, ସ୍ତବ୍ଧ । [ ରହିତ ।

ନିଷ୍ପନ୍ଦନ—ତ୍ରି.ବିଂ. ସ୍ପନ୍ଦନ ଶୂନ୍ୟ.କମ୍ପନ-

ନିଷ୍ପନ୍ନ—ତ୍ରି. ବିଂ. (ନିର୍+ପଦ + ମିଂ.ତ) ନିଷ୍ପତ୍ତିବିଶିଷ୍ଟ, ସମ୍ପନ୍ନ, ସିଦ୍ଧ, ନିବୃତ୍ତ, ସମାପ୍ତ,ସମ୍ପାଦିତ,କୃତନିଷ୍ପାଦନ,ସମ୍ପୂର୍ଣ୍ଣ ପୁରସ୍କୃତ,ଅବଧାରିତ,ମୀମାଂସିତ,ଆଦିଷ୍ଟ, ଉତ୍ପନ୍ନ, ଅଚଳ, ଅଟଳ, ରଚିତ ।

ନିଷ୍ପରାକ୍ରମ—ପୁଂ. ବିଂ.(ବ.ଗ୍ରୀ) ପରାକ୍ରମ-ହୀନ, ଦୁର୍ବଳ, ଅକ୍ଷମ, କୃଶ ।

ନିଷ୍ପରିକର—ତ୍ରି. ବିଂ. ଯାହା ଯୁକ୍ତହସ୍ତ ନୁହେ, ପ୍ରସ୍ତୁତ ହୋଇ ନ ଥିବା, ଦୃଢ଼-ସଂକଳ୍ପହୀନ ।

ନିଷ୍ପରିଗ୍ରହ—ତ୍ରି. ବିଂ. (ବ.ଗ୍ରୀ) ବିଷୟାଦି ସାଙ୍ଗିରହିତ, ପତ୍ନୀରହିତ,ଅବିବାହିତ, (ପୁଂ.ବି) ବାନପ୍ରସ୍ଥ ପରିବ୍ରାଜକ ପରମ-ହଂସ, ମୁନି, ସନ୍ନ୍ୟାସୀ ।

ନିଷ୍ପରିଚ୍ଛଦ—ତ୍ରି. ବିଂ. (ବ.ଗ୍ରୀ) ପରିଚ୍ଛଦ ଶୂନ୍ୟ, ଅନୁଚର ଶୂନ୍ୟ ।

ନିଷ୍ପରିଦାହ—ତ୍ରି. ବିଂ. ଯାହା ଦଗ୍ଧ ହୁଏ ନାହିଁ, ଯାହା ସହଜେ ପୋଡ଼େ ନାହିଁ ।

ନିଷ୍ପରୀକ୍ଷ—ତ୍ରି. ବିଂ.ଯାହାର ପରୀକ୍ଷା ହୁଏ ନାହିଁ ।

ନିଷ୍ପରିହାର—ତ୍ରି. ବିଂ. ଯାହା ପରିହାର କରାଯାଏ ନାହିଁ ।

ନିଷ୍ପରୁଷ—ତ୍ରି. ବିଂ. କୋମଳ, ଗୀତ ବାଦ୍ୟାଦିର ମୃଦୁସ୍ୱର, ଯାହା କର୍କଶ ନୁହେ ।

ନିଷ୍ପଲକ—ବି.(ନିର୍+ପଲକ) ଏକଦୃଷ୍ଟି, (ବିଂ-ବ.ଗ୍ରୀ) ନିର୍ନିମେଷ, ପଲକଶୂନ୍ୟ (ଦୃଷ୍ଟି), ଅବିରତ ।

ନିଷ୍ପବନ—କ୍ଲୀ. ବି. (ନିସ୍+ପୂ+ଭା.ଅନ) ଧାନ୍ୟାଦିର ନିଷ୍ପୂଷୀ କରଣ, ଧାନ୍ୟାଦି ପାଛୁଡ଼ିବା ।

ନିଷ୍ପାଣ୍ଡବ—ତ୍ରି. ବିଂ. ପାଣ୍ଡବଶୂନ୍ୟ ।

ନିଷ୍ପାଦ୍—ପୁଂ.ବିଂ.(ବ.ଗ୍ରୀ)ନିର୍ଗତପାଦକ

ନିଷ୍ପାଦକ—ତ୍ରି. ବିଂ. (ନିର୍+ପଦ+ ଣିଚ୍+କ.ଅକ) ନିଷ୍ପତ୍ତିକାରକ, ନିର୍ବା-ହକ, ଆଦେଶକାରୀ ।

ନିଷ୍ପାଦନ—କ୍ଲୀ.ବି. (ନିର୍ + ପଦ + ଣିଚ୍ ଭା.ଅନ) ନିଷ୍ପତ୍ତି କରଣ,ଶେଷକରିବା, ସମାପନ, ନିର୍ବାହ, ପ୍ରତିଜ୍ଞାପୂରଣ ।

ନିଷ୍ପାଦନୀୟ—ବିଂ. (ନିର୍+ପାଦ+ମିଂ. ଅନୀୟ) ନିଷ୍ପନ୍ନ ହେବାର ଯୋଗ୍ୟ,ସାଧନ-ଯୋଗ୍ୟ ।

ନିଷ୍ପାଦିତ—ତ୍ରି. ବିଂ.(ନିର୍+ପଦ+ଣିଚ୍, ମିଂ.ତ) ସମ୍ପାଦିତ, ଉତ୍ପାଦିତ,ଚେଷ୍ଟିତ, ନିର୍ବାହିତ, ସମାପ୍ତ ।

ନିଷ୍ପାଦ୍ୟ—ତ୍ରି. ବିଂ.(ନିସ୍+ପଦ+ଣିଚ୍ ମିଂ.ଯ) ସମ୍ପାଦ୍ୟ, ସାଧ୍ୟ, ନିର୍ବାହ କରି-ବାର ଯୋଗ୍ୟ, ନିର୍ବାହିତ,ଉତ୍ପାଦିତ ।

ନିଷ୍ପାଦ୍ୟମାନ—ବିଂ. (ନିର୍+ପଦ+ ଣିଚ୍+ମିଂ.ମାନ)ଯାହା ସମ୍ପାଦିତ ହେଉ-ଅଛି ।

ନିଷ୍ପାନ—କ୍ଲୀ.ବି.(ନିର୍+ପାନ)ନିଃଶେଷ-ରୂପେ ପାନ,ପାତ୍ରରେ ଅବଶେଷ,ନ ରଖି ପିଇବା ।

ନିଷ୍ପାପ—ବି. (ବ.ଗ୍ରୀ)ପାପଶୂନ୍ୟ, ପବିତ୍ର ।

ନିଷ୍ପାପୀ--ତ୍ରି. ପୁଂ. ବିଂ.ପାପଶୂନ୍ୟ,ପବିତ୍ର

ନିଷ୍ପାବ—ପୁଂ. ବି. (ନିର୍+ପୂ+ଭା.ଅ) ଧାନ୍ୟାଦିର ନିଷ୍ପୂଷୀ କରଣ,ଶସ୍ୟାଦିରୁ ଧୂଷ ବାହାର କରିବା, ପାଛୁଡ଼ିବା, ଦ୍ୱିଗୁଞ୍ଜା ପରିମାଣ,ଶ୍ୱେତ ଶିମ୍ବ, ଧଳା-ଶିମ୍ବ, ବରଗଡ଼ା,(ଣ.ଅ) ସମୀରଣ, ଧୂଷ ବା ଭୂଷି, କଡ଼ଙ୍ଗର, ଅଗାଡ଼ି, ନଡ଼ା, (ଣ.ଅ) ହର୍ପ ବାୟୁ, କୁଲା ବାଆ,(ବିଂ) ନିର୍ବିକଳ୍ପ, ନିଶ୍ଚିତ, ପବ ବା ଗଣ୍ଡିହୀନ ।

ନିଷ୍ପାବକ—ପୁଂ. ବି. ଶ୍ୱେତଶିମ୍ବୀ ।

ନିଷ୍ପାବୀ—ସ୍ତ୍ରୀ.ବି. (ନିଷ୍ପାବ+ଈ) ଶିମ୍ବୀ-ବିଶେଷ, ବରଗଡ଼ା ।

ନିଷ୍ପି—ଯା. ବି.ଅର୍ଦ୍ଧେକ,ଯେଉଁ ଜମିରେ ପୂର୍ବ ଖଜଣାର ଅର୍ଦ୍ଧେକ ପରିମାଣରେ ଜମା ଧାର୍ଯ୍ୟ ହୋଇଅଛି ।

ନିଷ୍ପିଷ୍ଟ—ତ୍ରି. ବିଂ. (ନିସ୍+ପିଷ୍+ମିଂ.ତ) ଚୂର୍ଣ୍ଣୀକୃତ, ମର୍ଦ୍ଦିତ, ଘୃଷ୍ଟ, ଦଳିତ ।

ନିଷ୍ପୀଡ଼—ତ୍ରି. ବିଂ. (ନିସ୍+ପୀଡ଼+ଅ) ନିଷ୍ପୀଡ଼ନ ଦେଖ ।

ନିଷ୍ପୀଡ଼ନ—କ୍ଲୀ. ବି. (ନିସ୍ + ପୀଡ଼+ଭା. ଅନ) ନିପୀଡ଼ନ, ଚିପୁଡ଼ିବା, ମର୍ଦ୍ଦନ, ଚୂରିବା, ଅତ୍ୟାଚାର, କଠୋରତା ।

ନିଷ୍ପୀଡ଼ିତ—ବି. ବିଂ.(ନିର୍+ପୀଡ଼+ଣି. ତ)ଚପୁଡ଼ା ହୋଇଥିବା,ଅତ୍ୟାଚାରିତ, ଚୂର୍ଣ୍ଣ ଯାଇଥିବା ।

ନିଷ୍ପୁତଗନ୍ଧକ-–ବି.ବିଂ.ସ୍ୱର୍ଗୀୟ ବା ଦେବଭୋଗ୍ୟ ସଦ୍‌ଗନ୍ଧବିଶିଷ୍ଟ (ଗୁଗୁଳ) ।

ନିଷ୍ପୁତ୍ର—ବି. ବିଂ. ( ବ.ଗ୍ରା ) ଅପୁତ୍ରକ, ପୁତ୍ରହୀନ ।

ନିଷ୍ପୁରାଣ—ବି. ବିଂ. ପୁରାଣଶୂନ୍ୟ, ପୁରାତନଶୂନ୍ୟ, ପୁରୁଣା ହୋଇନଥିବା ।

ନିଷ୍ପୁରୁଷ—ବି. ବିଂ.(ବ.ଗ୍ରା)ପୁରୁଷଶୂନ୍ୟ, ପୁରୁଷହୀନ, ନପୁଂସକ, କାପୁରୁଷ ।

ନିଷ୍ପୁଲାକ—ବି. ବିଂ. ପୁଲାକରହିତ, ଧାନ୍ୟାଦିର ତୁଷ ରହିତ(ଧାନ୍ୟ), ଧୁଷ ଅଗାଡ଼ ନଥିବା(ଧାନ),ପୁଂ.ବି. ଜୈନଭେଦ ।

ନିଷ୍ପେଷ—ପୁଂ. ବି. (ନିର୍ + ପିଷ୍ + ଭା. ଅ) ନିଷ୍ପୀଡ଼ନ, ନିଘର୍ଷଣ, ଚୂର୍ଣ୍ଣନ, ପେଷଣାଭାବ, ବାଟିବା ।

ନିଷ୍ପେଷକ—ପୁଂ. ବିଂ. ( ନିର୍+ପିଷ୍+ କ.ଅକ)ଅତ୍ୟାଚାରୀ,ଚୂର୍ଣ୍ଣକାରୀ,ବାଟୁଥିବା

ନିଷ୍ପେଷଣ—କ୍ଲୀ.ବି.(ନିର୍+ପିଷ+ଅନ) ଘର୍ଷଣ, ପେଷଣ, ଚୂର୍ଣ୍ଣନ, ମର୍ଦ୍ଦନ ।

ନିଷ୍ପୌରୁଷ—ବି. ବିଂ. ପୌରୁଷହୀନ ।

ନିଷ୍ପ୍ରକମ୍ପ—ବି. ବିଂ. ( ବ.ଗ୍ରା ) ପ୍ରକୃଷ୍ଟ କମ୍ପ ଶୂନ୍ୟ, (ପୁଂ. ବ) ତ୍ରୟୋଦଶ ମନ୍ୱନ୍ତରୀୟ ସପ୍ତର୍ଷିଭେଦ ।

ନିଷ୍ପ୍ରକାରକ—ବି. ବିଂ. (ବ.ଗ୍ରା)ପ୍ରକାରଶୂନ୍ୟ, ନିର୍ବିକଳ୍ପକ ।

ନିଷ୍ପ୍ରକାଶ—ବି. ବିଂ. (ବ.ଗ୍ରା) ପ୍ରକାଶହୀନ, ଯାହାର ପ୍ରକାଶ ନାହିଁ ।

ନିଷ୍ପ୍ରଚର—ବି. ବିଂ. (ବ.ଗ୍ରା) ପ୍ରଚରଶୂନ୍ୟ, ଏକସ୍ଥାନରେ ଅବସ୍ଥିତିକର, ଗତିରହିତ, ଗତିଶୂନ୍ୟ ।

ନିଷ୍ପ୍ରତାପ—ବି. ବିଂ. ପ୍ରତାପ ହୀନ, ହେୟ, ନୀଚ ।

ନିଷ୍ପ୍ରତିକ୍ରିୟ—ବି. ବିଂ. ପ୍ରତିକ୍ରିୟାରହିତ, ପ୍ରତିକାର ହୀନ, ଯହିଁର ପ୍ରତିକାର କରିଯାଏନାହିଁ ।

ନିଷ୍ପ୍ରତିଗ୍ରହ—ତ୍ରି. ବିଂ. ପ୍ରତିଗ୍ରହ ହୀନ ।

ନିଷ୍ପ୍ରତିଘ—ତ୍ରି. ବିଂ. ପ୍ରତିବନ୍ଧକ ଶୂନ୍ୟ ।

ନିଷ୍ପ୍ରତିଦ୍ୱନ୍ଦ୍ୱ—ତ୍ରି.ବିଂ. ପ୍ରତିଦ୍ୱନ୍ଦ୍ୱ ରହିତ ।

ନିଷ୍ପ୍ରତିପକ୍ଷ—ତ୍ରି. ବିଂ. ପ୍ରତିପକ୍ଷ ଶୂନ୍ୟ, ଶତ୍ରୁହୀନ ।

ନିଷ୍ପ୍ରତିଭ—ବି. ବିଂ.(ବ.ଗ୍ରା) ଅଜ୍ଞ,ଜଡ଼, ଦୀପ୍ତିଶୂନ୍ୟ, ନିର୍ବୁଦ୍ଧି, ଅସ୍ୱଚ୍ଛ, ନିସ୍ତେଜ, ପ୍ରତିଭାଶୂନ୍ୟ ।

ନିଷ୍ପ୍ରତିଭାନ—ବିଂ. ଭୀରୁ, କାପୁରୁଷ ।

ନିଷ୍ପ୍ରତୀକାର—ତ୍ରି.ବିଂ. ପ୍ରତିକାରରହିତ. ବାଧାଶୂନ୍ୟ । [ ବ୍ୟାଘାତ ଦୃଷ୍ଟି ।

ନିଷ୍ପ୍ରତୀପ—ତ୍ରି.ବିଂ. ସମ୍ମୁଖଦୃଷ୍ଟି, ଉଦ୍ଦେଶ୍ୟ-

ନିଷ୍ପ୍ରତ୍ୟୂହ—ବି. ବିଂ. ( ବ.ଗ୍ରା )ପ୍ରତ୍ୟୂହ ରହିତ, ନିର୍ବିଘ୍ନ, ବାଧାଶୂନ୍ୟ, ( ସ୍ତ୍ରୀ ) ନିଷ୍ପ୍ରତ୍ୟୂହା ।

ନିଷ୍ପ୍ରଦୀପ—ବିଂ. ( ବ.ଗ୍ରା ) ପ୍ରଦୀପହୀନ, ଆଲୋକବିହୀନ, ଅନ୍ଧକାର ।

ନିଷ୍ପ୍ରଧାନ—ତ୍ରି.ବିଂ.(ବ.ଗ୍ରା)ପ୍ରଧାନଶୂନ୍ୟ, ନେତୃହୀନ । [ ସ୍ୱରୂପ ।

ନିଷ୍ପ୍ରପଞ୍ଚ—ତ୍ରି. ବିଂ. ପ୍ରପଞ୍ଚଶୂନ୍ୟ, ସତ୍ୟ-

ନିଷ୍ପ୍ରପଞ୍ଚାତ୍ମା—ପୁଂ.ବି. ଶିବ, ମହାଦେବ ।

ନିଷ୍ପ୍ରଭ—ବି. ବିଂ. (ବ.ଗ୍ରା) ପ୍ରଭାଶୂନ୍ୟ, ଦୀପ୍ତିରହିତ,ତେଜୋହୀନ, ନିଷ୍ପ୍ରଭ ।

ନିଷ୍ପ୍ରଭବ—ତ୍ରି.ବିଂ.(ବ.ଗ୍ରା)ପ୍ରଭବରହିତ ।

ନିଷ୍ପ୍ରମାଣକ—ତ୍ରି. ବିଂ. ପ୍ରମାଣଶୂନ୍ୟ ।

ନିଷ୍ପ୍ରଯତ୍ନ—ତ୍ରି.ବିଂ.ଯତ୍ନହୀନ,ଯତ୍ନଶୂନ୍ୟ ।

ନିଷ୍ପ୍ରୟୋଜନ—ତ୍ରି. ବିଂ. ( ବ.ଗ୍ରା ) ପ୍ରୟୋଜନ ରହିତ, ଅକାରଣ, ବ୍ୟର୍ଥ, ଅନର୍ଥକ, ଉଦ୍ଦେଶ୍ୟହୀନ ।

ନିଷ୍ପ୍ରବାଣ—ବି. ( ନିର୍ + ପ୍ର + ବେ + ଣ + ଅନ) ତନ୍ତ୍ରବିମୁକ୍ତ ବାସ, ନୂତନ ବସ୍ତ୍ର, ଯେଉଁ ଲୁଗା ବର୍ତ୍ତମାନ ତନ୍ତ୍ରରୁ ବାହାରିଅଛି ।

ନିଷ୍ପ୍ରବାଣି—ବି. ବିଂ. ତନ୍ତ୍ର ନିର୍ମୁକ୍ତ (ବସ୍ତ୍ର),ନୂତନ (ବସ୍ତ୍ର) ।

ନିଷ୍ପ୍ରାଣ—ତ୍ରି. ବିଂ. (ବ.ଗ୍ରା) ଶ୍ୱାସପ୍ରଶ୍ୱାସାଦି ଶୂନ୍ୟ, ପ୍ରାଣଶୂନ୍ୟ, ନିର୍ଜୀବ ।

ନିଷ୍ପ୍ରୀତି—ତ୍ରି. ବିଂ. (ବ.ଗ୍ରା)ପ୍ରୀତିଶୂନ୍ୟ ।

ନିଷ୍ଫଳ—ତ୍ରି. ବିଂ. (ବ.ଗ୍ରା)ଫଳନଥିବା, ବୃଥା, ବନ୍ଧ୍ୟ,ଅଣ୍ଡକୋଷ ରହିତ,ନିରର୍ଥକ, (ବି) ଫଳଶୂନ୍ୟ ଧାନ୍ୟକଣ୍ଡ୍ୟ, ପଲ୍ଲଲ, ପାଲ, ନଡ଼ା ।

ନିଷ୍ଫଳତା(ତ୍ୱ)—ବି. (ନିଷ୍ଫଳ+ତା+ତ୍ୱ) ଫଳହୀନତା,ବନ୍ଧ୍ୟତ୍ୱ,ନିଷ୍ପ୍ରୟୋଜନତା ।

ନିଷ୍ଫଳହେବା—ଗ୍ରା.କ୍ରି. ବିଫଳ ହେବା, ଫଳ ନ ଫଳିବା, କୌଣସି ଫଳ ନ ପାଇ ବ୍ୟର୍ଥମନୋରଥ ହେବା ।

ନିଷ୍ଫଳା—ସ୍ତ୍ରୀ. ବି.(ନିଷ୍ଫଳ+ଆ)ବିଗତରଜସ୍କା ସ୍ତ୍ରୀ, ବ ୫ବର୍ଷରୁ ଊର୍ଦ୍ଧ୍ୱବୟସ୍କା ସ୍ତ୍ରୀ, ବନ୍ଧ୍ୟାନାରୀ, (ସ୍ତ୍ରୀ ବିଂ) ନିଷ୍ଫଳର ସ୍ତ୍ରୀଲିଙ୍ଗ । [ ଅସ୍ଥ ।

ନିଷ୍ଫଳି—ବି. ଅସ୍ତମାନଙ୍କୁ ନିଷ୍ଫଳ କରିବା

ନିଷ୍ଫେନ—ତ୍ରି. ବିଂ. ( ବ.ଗ୍ରା ) ଫେନ ରହିତ, ଫେଣଲ ନ ଥିବା ।

ନିଷ୍ୟନ୍ଦ—ପୁଂ. ବି.(ନିଷ୍ୟନ୍ଦ+ଅ)କ୍ଷରଣ, ଜଳାଦିର ସ୍ୱୟଂ ସ୍ରବଣ,(ବିଂ)ନିଷ୍ୟନ୍ଦଯୁକ୍ତ ।

ନିଷ୍ୟୂତ—ତ୍ରି. ବିଂ. (ନି+ସିବ+ତ) ନିତାନ୍ତ ଗ୍ରଥିତ । [ ଗତ ।

ନିଷ୍ଷମ—ଅବ୍ୟ.(ନିର୍+ସମା)ବତ୍ସରାଗତ ।

ନିଷ୍ଷାମନ୍—ତ୍ରି. ବିଂ.(ବ.ଗ୍ରା)ସାମଶୂନ୍ୟ

ନିଷ୍ଷେଧ—ପୁଂ. ବି. (ନି ଷ+ସିଧ+ ଭା.ଅ) ନିତାନ୍ତ ସେଧ ।

ନସ୍—ଅବ୍ୟ. (ନସ୍+କ୍ୱିପ୍) ଉପସର୍ଗ ଭେଦ, ନିଷେଧ, ନିଶ୍ଚୟ, ସାକଲ୍ୟ, ଅତିକ୍ରମ ।

ନସ୍‌ବନ୍ଧ—ଯା.ବି.ସମ୍ବନ୍ଧ,ସମ୍ପର୍କ,ତୁଳନା ।

ନସ୍ସୀମ—ବିଂ. (ବ.ଗ୍ରା) ଅସୀମ ।

ନସଂକଳ୍ପ—ତ୍ରି. ବିଂ. ସଂକଳ୍ପହୀନ ।

ନସଙ୍କ—ବି. ବିଂ. ଶଙ୍କାହୀନ ।

ନସଙ୍ଗ—ଗ୍ରା. ବିଂ ନିରାଶ୍ରୟ, ବନ୍ଧୁହୀନ ।

ନିସଙ୍କୁଡ଼ି—ଗ୍ରା. ବିଂ. ଯାହା ସଙ୍କୁଡ଼ି ନୁହେ, ଯାହା ଜଳ ଓ ଲବଣ ଦ୍ୱାରା ପକ୍ୱ କରାଯାଇ ନାହିଁ, ଯାହା ଅଇଣ୍ଠା ନୁହେ, (ଗ୍ରା. ବି) ଘୃତପକ୍ୱ ମିଷ୍ଟାନ୍ନାଦି ।

ନିସତ—ଗ୍ରା. ବିଂ.(ସଂ ନିଃସତ୍ତ୍ୱ)ନିର୍ବଳ, ବଳହୀନ, ଅସମର୍ଥ,ଆଶ୍ରୟ ହୀନ,ନିରୁପାୟ, ବିପନ୍ନ, ବିଶ୍ୱାସଘାତକ, ମିଥ୍ୟାବାଦୀ, କ୍ଳାନ୍ତ, ( ଗ୍ରା. ବି ) ନିରୁପାୟ ଅବସ୍ଥା , ନାସ୍ତିର ଅବସ୍ଥା, ଅସତ୍ୟ,

ପ୍ରତିଜ୍ଞା ଲଙ୍ଘନ ।

ନିସନ୍ତାନ—ଗ୍ରା. ବି°. ଅପୁତ୍ରକ,ସନ୍ତାନ ସନ୍ତତି ହୀନ । [ ଦେଖ ।

ନିସନ୍ଦେହ—ଗ୍ରା. ବି°. ନିଃସନ୍ଦେହ

ନିସମ୍ପାତ—ପୁଂ. ବ. (ନି+ସମ୍+ପତ+ଅଧି.ଅ) ନିଶୀଥ, ଅର୍ଦ୍ଧରାତ୍ର ।

ନିସର—ତ୍ରି. ବି°. ( ନି+ସୃ+କ.ଅ ) ନିତାନ୍ତ ଗାମୁକ, ଗମନଶୀଳ, ଯେ ଖୁବ୍ ଚଲେ ।

ନିସର୍ଗ—ପୁଂ. ବ. (ନି+ସୃଜ୍+ଭା.ଅ) ସ୍ୱଭାବ, ସ୍ୱରୂପ, ସୃଷ୍ଟି, ରୂପ, ଦାନ, ସର୍ଗ, ବଦଳ, ସ୍ୱାଭାବିକ ଗୁଣ ।

ନିସର୍ଗଜ—ତ୍ରି. ବି°.(ନିସର୍ଗ+ଜନ+କ.ଅ) 'ସ୍ୱଭାବଜାତ, ନୈସର୍ଗଜାତ, ନୈସର୍ଗିକ । [ ଗଣନାଭେଦ ।

ନିସର୍ଗାୟୁଃ—କ୍ଲୀ. ବ. ଆୟୁବଷସୂକ

ନିସାଙ୍ଗ—ଗ୍ରା.ବି°. ନିସହାୟ, ଅସହାୟ, ବନ୍ଧୁହୀନ,ନିରାଶ୍ରୟ,ଶାଖାହୀନ,ଉପାୟାନ୍ତର ହୀନ ।

ନିସାର—ପୁଂ.ବ.(ନି+ସୃ+ଅ)ସମୂହ ।

ନିସିନ୍ଧୁ—ପୁଂ. ବ. (ନି+ସ୍ୟନ୍ଦ+ଉ) ବୃକ୍ଷବିଶେଷ,ନିଷିନ୍ଦାଗଛ,ବେଗୁନିଆ ।

ନିସୁନ୍ଦ—ପୁଂ.ବ.ଅସୁର ଭେଦ,ପ୍ରହ୍ଲାଦଙ୍କର ଭାଇ ହ୍ଲାଦଙ୍କ ପୁତ୍ର ।

ନିସୂଦକ—ପୁଂ.ବି°.(ନି+ସୁଦ+ଅକ) ହିଂସକ, ହିଂସାକାରୀ, ବଧକାରୀ ।

ନିସୂଦନ—କ୍ଲୀ ବ.(ନି+ସୁଦ+ଭା.ଅନ) ନିହିଂସନ,ମାରଣ,ବଧ, ( ବି°.—କ. ଅନ) ବିନାଶକ, ନିସୂଦକ, ହିଂସକ ।

ନିସୃତା—ସ୍ତ୍ରୀ. ବ. (ନି+ସୃ+ତ+ଆ) ତ୍ରିବୃତା, ତେଉଡ଼ୀ ।

ନିସୃଷ୍ଟ—ତ୍ରି. ବି°.(ନି+ସୃଜ୍+ର୍ମ.ତ) ନ୍ୟସ୍ତ, ଅର୍ପିତ, ପ୍ରେରିତ,ଦତ୍ତ, ମଧ୍ୟସ୍ଥ, ତ୍ୟକ୍ତ ।

ନିସୃଷ୍ଟାର୍ଥ—ପୁଂ.ବ.(ବ.ବ୍ରୀ)ଦୂତବିଶେଷ, ଧନର ଅପବ୍ୟୟ ଓ ପାଳନାଦିରେ ନିଯୁକ୍ତ ପୁରୁଷବିଶେଷ, ଯେଉଁ ବ୍ୟକ୍ତି ଉଭୟଙ୍କର ଅଭିପ୍ରାୟ ଜାଣେ ଏବଂ ସ୍ୱୟଂ ଉତ୍ତର ଦେବାରେ ସମର୍ଥ ।

ନିସୋଢ—ତ୍ରି. ବି°.(ନି+ସହ+ତ) ନିତାନ୍ତ ସହ୍ୟ । [ ତତ୍ତ୍ୱହୀନ ।

ନିସ୍ତତ୍ତ୍ୱ—ତ୍ରି. ବି°.(ବ.ବ୍ରୀ)ଅସତ୍ପଦାର୍ଥ,

ନିସ୍ତନୀ—ସ୍ତ୍ରୀ. ବ. ବଟିକା,ବଡ଼ି, (ସ୍ତ୍ରୀ.ବି°. (ବ.ବ୍ରୀ)ସ୍ତନହୀନା ।

ନିସ୍ତନ୍ତୁ—ତ୍ରି. ବି°.( ବ.ବ୍ରୀ ) ପୁତ୍ରହୀନ, ବଂଶରହିତ, ନିସନ୍ତାନ ।

ନିସ୍ତନ୍ଦ୍ର—ପୁଂ.ବି°. (ବ.ବ୍ରୀ)ତନ୍ଦ୍ରାରହିତ, ଆଲସ୍ୟଶୂନ୍ୟ, ଚଞ୍ଚଳ, ସୁସ୍ଥ, ସବଳ ।

ନିସ୍ତନ୍ଦ୍ରି—ତ୍ରି.ବି°.(ବ.ବ୍ରୀ)ଆଲସ୍ୟରହିତ, ଅନଳସ, ସୁସ୍ଥ, ସବଳ, ଚଞ୍ଚଳ ।

ନିସ୍ତମସ୍କ—ତ୍ରି. ବି°. ତମୋହୀନ,ଅନ୍ଧକାରଶୂନ୍ୟ, ଆଲୋକ ବିଶିଷ୍ଟ । [ ନଥିବା ।

ନିସ୍ତମ୍ଭ—ତ୍ରି. ବି°. ସ୍ତମ୍ଭହୀନ, ଖୁମ୍ବ-

ନିସ୍ତରଣ—କ୍ଲୀ.ବ. (ନିର୍+ତୃ+ଣ.ଅନ) ଉପାୟ, ନିସ୍ତାର, ତରଣ,ନିର୍ଗମ,ପାରଗମନ, (ଭା.ଅନ) ପାରହେବା,ଉଦ୍ଧାର, ମୁକ୍ତି, ସିଦ୍ଧିରକ୍ଷା ।

ନିସ୍ତରିବା—ଗ୍ରା. କ୍ରି. ପାରହେବା,ଉଦ୍ଧାର ପାଇବା, ମୁକ୍ତି ପାଇବା, ମୋକ୍ଷପ୍ରାପ୍ତ ହେବା ।

ନିସ୍ତରୀକ—ଅବ୍ୟ.ତରଣାର୍ଥ ଦେୟ କରର ଅଭାବ, (ବି°) ତରୀକରଶୂନ୍ୟ ।

ନିସ୍ତରୀପ—ତ୍ରି. ବି°. ନୌକାପାଳକଶୂନ୍ୟ, ତରୀପାରାଭାବ ।

ନିସ୍ତର୍କ୍ୟ—ତ୍ରି. ବି°. ତର୍କ୍ୟହୀନ, କଳ୍ପନାତୀତ, ଧାରଣାର ବହିର୍ଭୂତ ।

ନିସ୍ତ୍ରୈବ୍ୟ—ତ୍ରି. ବି°. ଦମିତ, ଜଟ, ଜଳଶୂନ୍ୟ ।

ନିସ୍ତର୍ହଣ—କ୍ଲୀ. ବ. (ନିର୍+ତୃହ+ଭା. ଅନ) ମାରଣ, ହନନ, ବଧ ।

ନିସ୍ତଳ—ତ୍ରି. ବି°. (ବ.ବ୍ରୀ) ବର୍ତ୍ତୁଳ, ଗୋଲାକାର, କମ୍ପମାନ, ତଳଶୂନ୍ୟ, ଅତଳ, ଚଳ, ତଳ, ନିମ୍ନ, (କ୍ଲୀ.ବ) ବଟିକା ।

ନିସ୍ତବ୍ଧ—ତ୍ରି.ବି°.(ନି+ସ୍ତନଭ+କ.ତ) ନୀରବ, ସ୍ପନ୍ଦରହିତ, ସ୍ତମ୍ଭିତ,ସ୍ପନ୍ଦଶୂନ୍ୟ, ଚଳତ୍ଶକ୍ତି ରହିତ ।

ନିସ୍ତାର—ପୁଂ. ବ. ( ନିର୍+ତୃ+ଅ ) ନିସ୍ତରଣ, ଉଦ୍ଧାର,ପାରଗମନ,ଅଭୀଷ୍ଟପ୍ରାପ୍ତି, ଅବ୍ୟାହତି, କାର୍ଯ୍ୟସିଦ୍ଧି, ମୋକ୍ଷ, ଦେଣାପରିଶୋଧ, (ଗ୍ରା.ବି°) ମୁକ୍ତ ।

ନିସ୍ତାରକ—ପୁଂ.ବି°. (ନିର୍+ତୃ+କ. ଅକ) ନିସ୍ତାରକର୍ତ୍ତା, ପରିତ୍ରାତା,ମୋକ୍ଷଦାତା, ରକ୍ଷାକର୍ତ୍ତା ।

ନିସ୍ତାରକରିବା—ଗ୍ରା. କ୍ରି. ମୁକ୍ତକରିବା, ଉଦ୍ଧାରକରିବା ।

ନିସ୍ତାରଣ—କ୍ଲୀ.ବ. (ନିର୍+ତୃ+ଣି. ଅନ) ନିସ୍ତାରକରଣ, ପାରଗମନ, ଜୟକରଣ, ମୁକ୍ତକରଣ, ରକ୍ଷାକରଣ, ଖଲାସକରିବା । [ ପର୍ବବିଶେଷ ।

ନିସ୍ତାରପର୍ବ—ଗ୍ରା. ବ. ଇହୁଦୀମାନଙ୍କର

ନିସ୍ତାରପାଇବା—ଗ୍ରା.କ୍ରି ଉଦ୍ଧରିବା,ନିସ୍ତାରିବା, ଅବ୍ୟାହତି ଲାଭକରିବା ।

ନିସ୍ତାରବୀଜ—କ୍ଲୀ. ବ. (୬ତତ୍ର) ସଂସାର ତରଣ କାରଣ, ମୋକ୍ଷଲାଭର ମୂଳଉପାୟ ।

ନିସ୍ତାରିବା—ଗ୍ରା. କ୍ରି. ନିସ୍ତାରକରିବା, ଉଦ୍ଧାରକରିବା, ରକ୍ଷାକରିବା, ମୁକ୍ତିକରିବା ।

ନିସ୍ତାରୀ—ପୁଂ.ବି°. (ନିର୍+ତୃ+ଣିର୍+କ.ଇନ୍) ଉଦ୍ଧାରକାରୀ ।

ନିସ୍ତିତୀର୍ଷତ୍—ତ୍ରି. ବି°. (ନିର୍+ତୃ+ସନ୍+ଅତ) ନିସ୍ତାରାଭିଳାଷୀ ।

ନିସ୍ତିମିର—ତ୍ରି.ବି°. (ବ.ବ୍ରୀ) ତିମିରଶୂନ୍ୟ, ତିମିରହୀନ, ଅନ୍ଧକାରଶୂନ୍ୟ ।

ନିସ୍ତୀର୍ଣ୍ଣ—ତ୍ରି.ବି°. (ନିର୍+ତୃ+କ.ତ) ପରିତ୍ରାତ, ମୁକ୍ତ,ପାରହୋଇଯାଇଥିବା, ରକ୍ଷାପାଇଥିବା ।

ନିସ୍ତୁକ—ଗ୍ରା.ବି°. ନିର୍ଦ୍ଦୟ,ଅତ୍ୟଧିକ ।

ନିସ୍ତୁକମାଡ଼—ଗ୍ରା. ବ.ଗୋରଛ ବାଡ଼ିଆ, ଖୁବ୍ ପ୍ରହାର ।

ନିସ୍ତୁତ—ତ୍ରି.ବି°. ( ବ.ବ୍ରୀ ) ସ୍ତୁତିଶୂନ୍ୟ, ପ୍ରଶଂସାହୀନ ।

ନିସ୍ତୁଷ—ତ୍ରି. ବି°. ତୁଷଶୂନ୍ୟକୃତ, ଚୋପା ବାହାର କରିହୋଇଥିବା, ନିର୍ମଳ ।

ନିସ୍ତୁଷକ୍ଷୀର—ପୁଂ.ବ. (ବ.ବ୍ରୀ) ଗୋଧୂମ, ଗହମ ।

ନିସ୍ତୁଷରତ୍ନ—କ୍ଲୀ.ବ. ସ୍ଫଟିକ ।
ନିସ୍ତୁଷିତ—ତ୍ରି.ବଂ. (ନିସ୍ତୁଷ+ଣିଚ୍+କ୍ତ) ଖୋସା ନଥିବା,ଯେଉଁ ସମସ୍ତ ପଦାର୍ଥରୁ ଚଷୁ ବାହାର କରାହୋଇଅଛି, ଲଘୂକୃତ, ତ୍ୟକ୍ତ ।
ନିସ୍ତୃଣକଣ୍ଟକ—ତ୍ରି.ବଂ. ତୃଣ ଓ କଣ୍ଟକଶୂନ୍ୟ ।
ନିସ୍ତେଜ—ଗ୍ରା. ବଂ. (ସଂ-ନିସ୍ତେଜାଃ) ତେଜୋହୀନ, ଅପ୍ରଭ; ଦୁର୍ବଳ, ସ୍ଫୂର୍ତ୍ତିହୀନ, ନିର୍ବୀର୍ଯ୍ୟ, ପ୍ରଭାବଶୂନ୍ୟ, ଅଖାଣ୍ଟ, ଅନୁତ୍ସୁକ ।
ନିସ୍ତେଜଃ—ବଂ. (ବ.ଗ୍ରୀ) ତେଜୋରହିତ, ପ୍ରଭାବଶୂନ୍ୟ, ଦୀପ୍ତିଶୂନ୍ୟ,ଭୀରୁ, ଅବସନ୍ନ, ଦୁର୍ବଳ ।
ନିସ୍ତୋଦ—ପୁଂ.ବ.(ନିସ୍+ତୁଦ+ଭା.ଅ) ନିତାନ୍ତ ବ୍ୟଥନ ।
ନିସ୍ତୋଦନ—କ୍ଲୀ. ବ. (ନିସ୍+ତୁଦ୍+ଭା.ଅନ) ନିତାନ୍ତ ବ୍ୟଥନ ।
ନିସ୍ତୋୟ—ତ୍ରି. ବଂ. (ବ.ଗ୍ରୀ) ତୋୟହୀନ, ଜଳଶୂନ୍ୟ ।
ନିସ୍ତ୍ରଂଶ—ତ୍ରି.ବଂ. ଭୟହୀନ, ଭୀତଶୂନ୍ୟ ।
ନିସ୍ତ୍ରପ—ତ୍ରି.ବଂ. (ବ.ଗ୍ରୀ) ଲଜ୍ଜାହୀନ, ଅଲଜ୍ଜୁକ ।
ନିସ୍ତ୍ରିଂଶ—ପୁଂ.ବ. (ନିର୍+ତ୍ରିଂଶତ୍+ଅ) ଖଡ୍ଗ, (ବଂ) ନିର୍ଦ୍ଦୟ,ତ୍ରିଂଶତ୍ଶୂନ୍ୟ ମନ୍ତ୍ରଭେଦ ।
ନିସ୍ତ୍ରିଂଶତ—ବ. ନିର୍ଦ୍ଦୟ, ନିଷ୍ଠୁର ।
ନିସ୍ତ୍ରିଂଶଧାରୀ—ପୁଂ. ବଂ. (ନିସ୍ତ୍ରିଂଶ+ଧୃ+ଇନ୍) ଖଡ୍ଗଧାରୀ ।
ନିସ୍ତ୍ରିଂଶପତ୍ରିକା—ବ.ପତ୍ରସିଜ୍, ସ୍ନୁହୀବୃକ୍ଷ ।
ନିସ୍ତ୍ରିଂଶୀ—ପୁଂ.ବଂ. (ନିସ୍ତ୍ରିଂଶ+ଇନ୍) ଖଡ୍ଗଧାରୀ । [ ଇଚ ।
ନିସ୍ତ୍ରୁଟି—ସ୍ତ୍ରୀ.ବ. ନିଷ୍କୁଟୀ, ବଡ଼ ଏଲା-
ନିସ୍ତ୍ରୈଗୁଣ୍ୟ—ତ୍ରି.ବଂ. (ବ.ଗ୍ରୀ)କାମାଦିଶୂନ୍ୟ, ସଂସାରାତୀତ ସତ୍ତ୍ୱ ରଜଃ ଓ ତମଃ ଏହି ଗୁଣ ତ୍ରୟରୁ ଅତୀତ ।
ନିସ୍ତ୍ରୈପୁଷ୍ପିକ—ପୁଂ. ବଂ. ରାଜଧୂତୂରବୃକ୍ଷ, ବଡ଼ ଧୂତୁରାଗଛ ।
ନିସ୍ନାବ—ପୁଂ.ବ. ହାଣ୍ଡିବାଢ଼ୁଡ଼ା ଜଳନିସ ।

ନିସ୍ନେହ—ତ୍ରି. ବଂ. (ବ.ଗ୍ରୀ) ଯାହା ତେଲଆ ବା ଚକ୍କଣ ନୁହେ,ପ୍ରେମଶୂନ୍ୟ, ତୈଳଶୂନ୍ୟ, (ପୁଂ.ବ) ମନ୍ତ୍ରବିଶେଷ ।
ନିସ୍ନେହଫଳା—ସ୍ତ୍ରୀ.ବ.ଶ୍ୱେତ,କଣ୍ଟକାରୀ ।
ନିସ୍ପନ୍ଦ—ତ୍ରି. ବଂ. (ବ.ଗ୍ରୀ) ସ୍ପନ୍ଦନରହିତ, ନିଷ୍କମ୍ପ, ସ୍ଥିର, ବ.(ନି+ସ୍ପନ୍ଦ+ଅ) ସ୍ପନ୍ଦନ ।
ନିସ୍ପନ୍ଦତର—ତ୍ରି.ବଂ. (ନିସ୍ପନ୍ଦ+ତର) ଏକାନ୍ତ ସ୍ପନ୍ଦନରହିତ ।
ନିସ୍ପନ୍ଦତ୍ୱ—ବ. ନିସ୍ପନ୍ଦର ଭାବ ।
ନିସ୍ପନ୍ଦୀ—ପୁଂ. ବଂ. (ନିସ୍ପନ୍ଦ+ଇନ୍) ନିସ୍ପନ୍ଦଯୁକ୍ତ ।
ନିସ୍ପୃଶ୍—ତ୍ରି.ବଂ.ବିଶ୍ୱାସ୍ୟ, ଆଦରଣୀୟ ।
ନିସ୍ପୃହ—ପୁଂ. ବଂ. (ବ.ଗ୍ରୀ) ସ୍ପୃହାଶୂନ୍ୟ, ନିଷ୍କାମ, ନିର୍ଲୋଭ ।
ନିସ୍ପୃହା—ସ୍ତ୍ରୀ.ବ. (ନିର୍+ସ୍ପୃହା) ଅଗ୍ନିଶିଖା, ବୃକ୍ଷ, ଋଷି, ପେଷ୍ଟ ।
ନିସ୍ୟନ୍ଦ—ପୁଂ.ବ.(ନି+ସ୍ୟନ୍ଦ+ଭା.ଅ) ସ୍ୟନ୍ଦନ, କ୍ଷରଣ, ଝରିବା, ବର୍ଷଣ, ନିର୍ଝର, ଧାରବୋହିବା ।
ନିସ୍ୟନ୍ଦିତ—ବଂ. (ନି+ସ୍ୟନ୍ଦ+କ.ତ) କ୍ଷରିତ, ବର୍ଷିତ, ନିସ୍ୟନ୍ଦଯୁକ୍ତ, ଧାରରେ ବୋହିଯାଉଥିବା ।
ନିସ୍ୟୂତ—ବଂ. (ନି+ସିବ୍+କ୍ତ) ସୂତ୍ରଗ୍ରଥିତ, ଉତ୍ତମରୂପେ ବୁଣାଯାଇଥିବା ।
ନିସ୍ରବ—ପୁଂ. ବ. (ନି+ସ୍ରୁ+ମ.ଅ) ଭକ୍ତମଣ୍ଡ, ଭାତର ପେଜ, (ଭା.ଅ) ଅପକ୍ଷରଣ, ତଳକୁ ବହିଯିବା,କ୍ଷରଣ,ସ୍ରାବ
ନିସ୍ରାବ—ପୁଂ.ବ. (ନିସ୍ରୁ+ଣିଚ୍+ଅ) ଭକ୍ତ ସମ୍ଭବ ମଣ୍ଡ, ଫେଣ୍ଟଲ, ପେଜ, ତୋରାଣି, (ନି+ସ୍ରୁ+ଅ) ଦ୍ରବ ।
ନିସ୍ରାବୀ—ପୁଂ. ବଂ. ଯାହା କ୍ଷରଣଶୀଳ ନୁହେ, ସ୍ରୋତଶୂନ୍ୟ, ବେଗଶୂନ୍ୟ ।
ନିସ୍ୱ—ପୁଂ.ବଂ. (ବ.ଗ୍ରୀ) ଦରିଦ୍ର, ଦୀନ, ଧନହୀନ ।
ନିସ୍ୱନ—ପୁଂ. ବ. (ନି+ସ୍ୱନ+ଭା.ଅ) ଶବ୍ଦ, ଧ୍ୱନି, ନାଦ, ଗର୍ଜନ ।
ନିସ୍ୱନିତ—ବଂ. (ନି+ସ୍ୱନିତ) ଶବ୍ଦିତ, ଧ୍ୱନିତ ।

ନିସ୍ୱାନ—ପୁଂ.ବ.(ନି+ସ୍ୱନ+ଅ)ଶବ୍ଦ ।
ନିସଙ୍କୋଚ—ବଂ. ନିଃସଙ୍କୋଚ ଦେଖ ।
ନିହନ୍ତ—ତ୍ରି.ବଂ. (ନି+ହନ+ଅ)ନିହନ୍ତା, ହନନକାରୀ ।
ନିହଙ୍ଗ—ଗ୍ରା. ବ. ଶିଖମାନଙ୍କ ମଧ୍ୟରେ ବୈଷ୍ଣବ ସମ୍ପ୍ରଦାୟ, (ଗ୍ରା.ବଂ) ଯାବଜ୍ଜୀବନ ଅବିବାହିତ (ବୈଷ୍ଣବ), ଚିରକୁମାର ।
ନିହଣ—ଗ୍ରା. ବ. ଲୁହାର ବଟାଳି ।
ନିହତ—ବଂ. (ନି+ହନ୍+କ୍ତ) ବିନାଶିତ,ହତ,ଆହତ,ଆଘାତପ୍ରାପ୍ତ, ନଷ୍ଟ ।
ନିହନନ—କ୍ଲୀ. ବ. (ନି+ହନ+ଭା.ଅନ) ମାରଣ, ବଧ, ନିଘାତ ।
ନିହନ୍ତବ୍ୟ—ତ୍ରି.ବଂ.(ନି+ହନ+ତବ୍ୟ) ହନନଯୋଗ୍ୟ, ବଧଯୋଗ୍ୟ ।
ନିହନ୍ତା—ପୁଂ. ବଂ. (ନି+ହନ+କ.ତୃ) ହନନକର୍ତ୍ତା, ଘାତକ, ବିନାଶକ, (ପୁଂ.ବ) ମହାଦେବ ।
ନିହନ୍ୟମାନ—ପୁଂ. ବଂ. (ନି+ହନ+କ.ଆନ) ଯାହାକୁ ବଧ କରାଯାଉଅଛି ।
ନିହବ—ପୁଂ. ବ. (ନି+ହ୍ୱେ+ଅ) ଆହ୍ୱାନ ।
ନିହାକା—ସ୍ତ୍ରୀ. ବ. (ନି+ହା+କ.ଅକ+ଆ) ଗୋଧିକା, ଗୋଧିସାପ,ଉଭୟଚର ଜନ୍ତୁବିଶେଷ ।
ନିହାତ—ଯା.ବ.(ଅବ୍ୟ)ଅତ୍ୟନ୍ତ, ଅତ୍ୟଧିକ, ଅତି ନିତାନ୍ତ, ପଶେଷରେ, ନିତାନ୍ତ ପକ୍ଷରେ, (ଗ୍ରା.ବଂ) ନଗଣ୍ୟ, ଅଯୋଗ୍ୟ, ଯତ୍ପରୋନାସ୍ତି ।
ନିହାନୀ—ବ. କର୍ଣ୍ଣାଭ୍ୟନ୍ତରସ୍ଥ ଅସ୍ଥିବିଶେଷ, ନିହାଇ ।
ନିହାର—ପୁଂ. ବ. (ନି+ହୃ+କ.ଅ) କାକର, ବରଫ, ହିମ, କୁଜ୍ଝଟିକା, କୁହୁଡ଼ି ।
ନିହାରକର—ପୁଂ. ବ. (ବ.ଗ୍ରୀ)ଚନ୍ଦ୍ର ।
ନିହାରିକା—ବ. (ନିହାର+କ.ଆ) ଆକାଶସ୍ଥ ଏକପ୍ରକାର କ୍ଷୀଣାଲୋକବିଶିଷ୍ଟ ପଦାର୍ଥ ।
ନିହାଲ୍—ଯା. ବଂ. ଐଶ୍ୱର୍ଯ୍ୟଶାଳୀ, ଧନ-

ବାନ, ସୁଖୀ, ସୌଭାଗ୍ୟବାନ୍,କୃତାର୍ଥ, ଯାହାଙ୍କୁ ଯଥେଷ୍ଟ ବସ୍ତୁ ମିଳିଅଛି ।

**ନିହାଲି**—ଗ୍ରା. ବ ଜେଜ, ରେଜେଇ ।

**ନିହଂସନ**—କ୍ଲୀ. ବ. (ନି+ହନସ୍+ଣ. ଅନ) ମାରଣ, ବଧ ।

**ନିହିତ**—ବି. ବଂ. ( ନି+ଧା+ର୍ମ.ତ ) ଆହୃତ, ସ୍ଥାପିତ, ନିକ୍ଷିପ୍ତ, ଗୁପ୍ତ, କୃତ, ସମାପ୍ତ, ପ୍ରଦତ୍ତ ।

**ନିହୀନ**—ବି.ବଂ.ନୀଚ, ପାମର, ଇତର, ବର୍ଜିତ । [ ନାହିଁ, ନୁହେ ।

**ନିହେ**—ପ୍ରା. (ଗଡ଼ଜାତ) ଅବ୍ୟ. ନା,

**ନିହେତାଲ୍**—ପ୍ରା.(ସମ୍ବଲ) ଏତେବେଳ ପର୍ଯ୍ୟନ୍ତ ନୁହେ,ଏତାବତ୍ କାଳ ପର୍ଯ୍ୟନ୍ତ ନୁହେ ।

**ନିହ୍ନବ**—ପୁଂ. ବ. (ନି+ହ୍ନୁ+ଅ)ଅପଲାପ, କ୍ରୂରତା, ଅପହ୍ନବ, ନିକୃତ, ଅବିଶ୍ୱାସ, ଶୁଦ୍ଧି, ବଞ୍ଚବାଦ, ପବଞ୍ଚତା

**ନିହ୍ନବବାଦୀ**—ପୁଂ. ବଂ. (ନିହ୍ନବ+ବଦ +କ.ଇନ୍)ସତ୍ୟ ଗୋପନକାରୀ,ବଞ୍ଚବାଦୀ ।

**ନିହ୍ନବାପହାର**—ବ. (କ.ଧା) ଉହବଲ, ତୋସରଫ୍ ।

**ନିହ୍ନବୋତ୍ତର**—ବ. (କ.ଧା) ଛଦ୍ମବାଦ, ଛଳପୂର୍ଣ୍ଣ ଉତ୍ତର ।

**ନିହ୍ନାନ**—କ୍ଲୀ. ବ. ( ନି+ହ୍ନୁ+ଅନ ) ନିହ୍ନବ (ଦେଖ) ।

**ନିହ୍ନିତ**—ସ୍ତ୍ରୀ.ବ.(ନି+ହ୍ନୁ+ତି)ନିହ୍ନବ ।

**ନିହ୍ନୁତ**—ବଂ. (ନି+ହ୍ନୁ+ର୍ମ.ତ)ଅସ୍ୱୀକୃତ, ଗୋପିତ, ଅପ୍ରକାଶିତ,ଲୁକ୍କାୟିତ

**ନିହ୍ନୁତି**—ବ. (ନି+ହ୍ନୁ+ଭା.ତି)ନିହ୍ନବ, ଗୋପନକରଣ, ଅସ୍ୱୀକାର,ଅବିଶ୍ୱାସ ।

**ନିହ୍ନୁବାନ୍**—ପୁଂ. ବଂ. (ନି+ହ୍ନୁ+କ. ଆନ) ଅପହ୍ନବକାରୀ, ବକ୍ରୋକ୍ତିକାରୀ ।

**ନିହ୍ରାଦ**—ପୁଂ. ବ. (ନି+ହ୍ରାଦ+ଅ) ଶବ୍ଦ, ନିନାଦ ।

**ନୀ**—ବି. ବଂ. (ନୀ+କ୍ୱିପ୍)ପ୍ରାପକ ।

**ନୀକ**—ପୁଂ. ବ. (ନୀ+କ)ବୃକ୍ଷବିଶେଷ ।

**ନୀକର୍ଷୀ**—ପୁଂ. ବଂ. ପ୍ରହାରଣଯୁକ୍ତ ।

**ନୀକାର**—ପୁଂ. ବ. (ନି+କୃ+ଭା.ଅ) ଅପକାର, ତିରସ୍କାର, ଘୃଣା, ଅବଜ୍ଞା, ଅବମାନନା, ବମନେଚ୍ଛା ।

**ନୀକାଶ**—ବି. ବଂ. (ନି+କାଶ+ଭା.ଅ) ତୁଲ୍ୟ, ସଦୃଶ, ଉପମା, (ପୁଂ.ବ)ନିଶ୍ଚୟ, ସାଦୃଶ୍ୟ, ତୁଲ୍ୟତା ।

**ନୀକୁଲକ**—ପୁଂ. ବ. ପ୍ରବରଭେଦ ।

**ନୀକୋ**—ପ୍ରା. (ଭଦ୍ରି) ସରୁ, ନିକ ।

**ନୀକ୍ଷଣ**—କ୍ଲୀ.ବ. (ନି+ଈକ୍ଷ+ଣ.ଅନ) ପାକାଦି ପରୀକ୍ଷାସାଧନ କାଷ୍ଠଭେଦ ।

**ନୀଚ**—ବି. ବଂ. (ନି+ଈ+ଚ+କ. ଅ) ଜାତି ଗୁଣ ଓ କାର୍ଯ୍ୟାଦି ଦ୍ୱାରା ନିକୃଷ୍ଟ, ହୀନ, ବର୍ବର, ଅନୁଚ୍ଚ, ନିମ୍ନ, ଇତର, ଅଶ୍ଳୀଳ, ଘୃଣ୍ୟ, ଖର୍ବ, (ପୁଂ. ବ) ଚୋରକ ନାମକ ଗନ୍ଧଦ୍ରବ୍ୟ,ଗ୍ରହାଦିର ସ୍ଥାନଭେଦ ।

**ନୀଚକ**—ବି. ବଂ. (ନୀଚ+କ) ବାମନ, ଖର୍ବ, ହୀନ, ନ୍ୟୂନ, ଗମ୍ଭୀର ।

**ନୀଚକଥା**—ବ. ଇତର ଜନ ବ୍ୟବହୃତ କଥା, ଅଶ୍ଳୀଳଭାଷା ।

**ନୀଚକଦମ୍ବ**—ପୁଂ. ବ. ମଣ୍ଡୀର ।

**ନୀଚକା**—ସ୍ତ୍ରୀ.ବ(ନୀଚକ+ଆ)ଉତ୍ତମା ଗୋ, ଉତ୍କୃଷ୍ଟ ଗାଭୀ ।

**ନୀଚକୀ**—ପୁଂ. ବଂ. ( ନୀଚକା+ଇନ୍ ) ଉଚ୍ଚ, ଶ୍ରେଷ୍ଠ, ଯାହାର ଭଲ ଗାଈଅଛି, (ବ) ଉପରଭାଗ ।

**ନୀଚକୁଳ**—ବ.(ନୀଚ+କୁଳ)ନିମ୍ନଶ୍ରେଣୀ, ନିକୃଷ୍ଟ ଜାତି ।

**ନୀଚୈଃ**—ଅବ୍ୟ.ନିଚୈସ, କ୍ଷୁଦ୍ର, ଅଳ୍ପ, ଅଧମ, ନୀଚ, ନମ୍ର, ଅଧଃ, ଖର୍ବ ।

**ନୀଚଗ**—ପୁଂ. ବଂ. (ନୀଚ+ଗମ୍+କ. ଅ)ନିମ୍ନଗାମୀ, ଅଧମ, ପାମର,(ବ)ଜଳ

**ନୀଚଗା**—ସ୍ତ୍ରୀ.ବ. (ନୀଚଗ+ଆ)ନିମ୍ନଗା, ନଦୀ, (ସ୍ତ୍ରୀ.ବଂ) ଅଧୋଗାମିନୀ ।

**ନୀଚଗାମିନୀ**—ସ୍ତ୍ରୀ. ବଂ. (ନୀଚଗାମିନ୍+ଈ) ନିମ୍ନଆଡ଼କୁ ଗତି କରୁଥିବା, ନୀଚ ପୁରୁଷଠାରେ ଅନୁରକ୍ତା (ସ୍ତ୍ରୀ) ।

**ନୀଚଗାମୀ**—ପୁଂ.ବଂ.(ନୀଚ+ଗମ+କ. ଇନ୍) ନିମ୍ନଗାମୀ, ଯେଉଁ ପୁରୁଷ ନିମ୍ନଜାତୀୟା ସ୍ତ୍ରୀସଙ୍ଗେ ସହବାସ କରେ ।

**ନୀଚଗୃହ**—କ୍ଲୀ. ବ. ରବି ପ୍ରଭୃତି ଗ୍ରହର ସ୍ୱସ୍ୱ ଉଚ୍ଚ ରାଶିର ସପ୍ତମ ରାଶି ।

**ନୀଚଗ୍ରହ**—ପୁଂ.ବ.ଗ୍ରହର ଉଚ୍ଚ ସ୍ଥାନଠାରୁ ସପ୍ତମରାଶିସ୍ଥ ରବିଗ୍ରହ ପ୍ରଭୃତି ।

**ନୀଚକାନ୍ତ**—ପୁଂ. ବଂ. ନୀଚ କୁଳୋଦ୍ଭବ, ନିମ୍ନତର ଜାତୀୟ । [ ଦେଖ ।

**ନୀଚଜାତି**—ବ.(ନୀଚ+ଜାତି) ନୀଚକୁଳ

**ନୀଚତର**—ବଂ. ଦୁଇଙ୍କ ମଧ୍ୟରେ ନିମ୍ନ ।

**ନୀଚତମ**—ବଂ.ଅନେକଙ୍କ ମଧ୍ୟରେ ସର୍ବନିମ୍ନ ।

**ନୀଚତା(ତ୍ୱ)**—ସ୍ତ୍ରୀ. ବ. (ନୀଚ+ତ+ଆ) ନୀଚତ୍ୱ, ଅଧମତ୍ୱ, କ୍ଷୁଦ୍ରତ୍ୱ, ସଂକୀର୍ଣ୍ଣତା, ଅପକୃଷ୍ଟତ୍ୱ, ହୀନତା ।

**ନୀଚପଦ**—ବ. (କ.ଧା) ଅଧମ ପଦ ।

**ନୀଚପ୍ରକୃତି**—ସ୍ତ୍ରୀ.ବ.(କ.ଧା) ହୀନସ୍ୱଭାବ, (ବଂ-ବ.ବ୍ରୀ) ହୀନ ସ୍ୱଭାବବିଶିଷ୍ଟ ।

**ନୀଚପ୍ରଦେଶ**—ବ. (କ.ଧା) ନିମ୍ନଭୂମି ।

**ନୀଚପ୍ରବୃତ୍ତି**—ବଂ.(ବ.ବ୍ରୀ)ଅଧମ ବିଷୟରେ ଆସକ୍ତିବିଶିଷ୍ଟ, (ସ୍ତ୍ରୀ.ବ-କ.ଧା) ନିକୃଷ୍ଟ ବିଷୟରେ ଆସକ୍ତି ।

**ନୀଚବୁଦ୍ଧି**—ବ. ହୀନବୁଦ୍ଧି, (ବଂ) ହୀନବୁଦ୍ଧି (ବ୍ୟକ୍ତି) ।

**ନୀଚଭାବ**—ବ.(କ.ଧା)ହୀନଚିନ୍ତା,ନୀଚତା ।

**ନୀଚଭାଷା**—ବ. (ନୀଚ+ଭାଷା) ଇତରଜନ ବ୍ୟବହୃତ ଭାଷା, ଅଶ୍ଳୀଳଭାଷା ।

**ନୀଚଭୋଜ୍ୟ**—ପୁଂ. ବ. ପଳାଣ୍ଡୁ, ପିଆଜ, (ବଂ) ନୀଚଭୋଜ୍ୟମାତ୍ର, ହୀନ(ଖାଦ୍ୟ) ।

**ନୀଚମନା(ନାଃ)**—ବଂ. (ବ.ବ୍ରୀ) ହୀନବୁଦ୍ଧିବିଶିଷ୍ଟ ।

**ନୀଚଯୋନି**—ବ. (କ.ଧା) ନିକୃଷ୍ଟଜୀବର ବା ଜାତିର ବା ମନୁଷ୍ୟର ଗର୍ଭ,ତିର୍ଯ୍ୟକ୍ ଯୋନି ।

**ନୀଚଯୋନିଜ**—ବଂ. (ନୀଚ+ଯୋନି+ ଜନ୍+କ.ଅ)ନୀଚକୁଳ ସମ୍ଭୂତ,ପଶ୍ୱାଦି ନିମ୍ନପ୍ରାଣୀ ଜମ୍ଭୂତ ।

**ନୀଚଯୋଗୀ**—ବଂ. (ନୀଚ+ଯୋଗ+ଇନ୍) ନୀଚଯୋନିଜ ଦେଖ ।

**ନୀଚଲୋକ**—ବ. (ନୀଚ+ଲୋକ)ଇତର ଲୋକ, ନିମ୍ନବଂଶରେ ଜାତ ବ୍ୟକ୍ତି,ମନ୍ଦ

ବୃଦ୍ଧି ବା ନୀଚପ୍ରକୃତିକ ଲୋକ ।
ନୀଚବକ୍ର—ପୁଂ. ବି. ବୈକ୍ରାନ୍ତମଣି ।
ନୀଚା—ଗ୍ରା. ବିଂ. ନିମ୍ନ, ନିକୃଷ୍ଟ, ( ବିଂ ) ନୀଚର ସ୍ତ୍ରୀଲିଙ୍ଗ ।
ନୀଚାଚାର—ବି.(କ.ଧା) ହୀନ ବ୍ୟବହାର, ଇତରଜନୋଚିତ ବ୍ୟବହାର ।
ନୀଚାତ୍—ଅବ୍ୟ. ନୀଚ, ନୀଚୈସ ।
ନୀଚାନ୍ତଃକରଣ—କ୍ଲୀ. ବି. (କ.ଧା) ହୀନଚିତ୍ତ, ଅନୁଦାର ମନଃ, (ବିଂ-ବ.ବ୍ରୀ) ହୀନଚେତାଃ, ସଙ୍କୀର୍ଣ୍ଣମନାଃ ।
ନୀଚାମେଢ୍ର—ତ୍ରି. ବିଂ. ଅଧୋମୁଖ ଲିଙ୍ଗ ।
ନୀଚାୟକ—ତ୍ରି. ବିଂ. (ନି+ଚି+ଅ.କ) ନିତାନ୍ତ ଚାୟକ ।
ନୀଚାବୟସ—ତ୍ରି. ବିଂ. ନ୍ୟଗ୍‌ଭାଗପ୍ରାପ୍ତ ।
ନୀଚାଶୟ—ପୁଂ.ବିଂ. ( ନୀଚ+ଆଶୟ ) ଦାସଭାବାପନ୍ନ, କ୍ଷୁଦ୍ରଚେତା, ନୀଚବୃତ୍ତି, ସଙ୍କୀର୍ଣ୍ଣମନାଃ ।
ନୀଚକୀ—ସ୍ତ୍ରୀ. ବି. ନୈଚକୀ ।
ନୀଚନ—ତ୍ରି. ବିଂ. ଅଧୋମୁଖ ।
ନୀଚେ—ଗ୍ରା. ଅବ୍ୟ. ନିମ୍ନରେ, ଅଧୋଭାଗରେ ।
ନୀଚୈଃ—ଅବ୍ୟ. ନୀଚ, ସ୍ୱୈର, ଅଳ୍ପ-ଅଳ୍ପ, ଅନୁଚ୍ଚ ।
ନୀଚୈର୍ଗତି—ସ୍ତ୍ରୀ. ବି. (କ.ଧା) ମନ୍ଦ-ଗମନ, ନିମ୍ନଗତି ।
ନୀଚୋଚ୍ଚବୃତ୍ତ—କ୍ଲୀ. ବି. ବୃତ୍ତଭେଦ ।
ନୀଚୋପଗତ—ତ୍ରି. ବିଂ. ଖଗୋଳର ନିମ୍ନଭାଗରେ ଅବସ୍ଥିତ ।
ନୀଚ୍ୟ—ତ୍ରି.ବିଂ.ନିମ୍ନଭବ,ନୀଚାଭୂତ,ଭବ ।
ନୀଡ଼—ପୁଂ.କ୍ଲୀ. ବି. (ନି+ଇଡ଼+ଅଧି. ଅ) ରଥମଧ୍ୟରେ ଆରୋହୀଙ୍କ ବସିବା ସ୍ଥାନ,ପକ୍ଷୀବସା,ସ୍ଥାନ,ଅଧିଷ୍ଠାନ ସ୍ଥାନ ।
ନୀଡ଼କ—ପୁଂ. ସ୍ତ୍ରୀ. ବି. (ନୀଡ଼+କୈ+କ.ଅ) ଖଗ, ପକ୍ଷୀ ।
ନୀଡ଼ଜ—ପୁଂ. ସ୍ତ୍ରୀ. ବି. (ନୀଡ଼+ଜନ+କ.ଅ) ପକ୍ଷୀ, (ସ୍ତ୍ରୀ) ନୀଡ଼ଜା ।
ନୀଡେନ୍ଦ୍ର—ପୁଂ. ବି. (୬ତତ୍)ଗରୁଡ଼ ।
ନୀଡ଼ି—ପୁଂ. ବି. ନିବାସ,ଆବାସ ସ୍ଥାନ ।
ନୀଡ଼ୋଦ୍ଭବ—ବି. (୫ତତ୍) ପକ୍ଷୀ ।

ନୀତ—ତ୍ରି. ବିଂ. (ନୀ+ର୍ମ.ତ) ପ୍ରାପ୍ତ, ପ୍ରାପିତ, ସ୍ଥାପିତ, ଗୃହୀତ, ଅତିବାହିତ, ଉତ୍ତମାଚରଣ ବିଶିଷ୍ଟ, (ସ୍ତ୍ରୀ)ନୀତା,(ବି) ଅର୍ଥ, ଧନ, ଶସ୍ୟ, ଆଚରଣ, ନୀତି, ନିୟମ, ରୀତି ।
ନୀତି—ସ୍ତ୍ରୀ. ବି. ( ନୀ+ଭା.ତି ) ନୟ, ଶୁକ୍ରାଚାର୍ଯ୍ୟାଦି ପ୍ରଣୀତ ହିତାହିତ ବିଚାର ବିଷୟକ ଶାସ୍ତ୍ର, ପ୍ରାପଣ, ଓଦଧିଷ୍ଠାତ୍ରୀ ଦେବୀଭେଦ, ରୀତିଚଳନ, ନ୍ୟାୟ, ନ୍ୟାୟାନୁଗତ ଆଚରଣ, ସାଧୁତା, ଧାର୍ମିକତା, ରୀତି, ପ୍ରଥା, ପ୍ରାପ୍ତି, ଲୋକ ମର୍ଯ୍ୟାଦାନୁଗତ ବ୍ୟବହାର, ଯାପନ, ସଦାଚରଣ, ବିଷୟ ଜ୍ଞାନ, ନିୟମ, (ଗ୍ରା.ବି) ରାଜା ଓ ଦେବତାଙ୍କର ଦୈନିକ କାର୍ଯ୍ୟାବଳି, ଭଲକାର୍ଯ୍ୟ ।
ନୀତିକଥା—ବି. (କ.ଧା) ହିତୋପଦେଶ. ନ୍ୟାୟବାକ୍ୟ, ଢଗ, ପ୍ରବଚନ, ନୀତି ଉପଦେଶକ କାହାଣୀ । [ ଶାସ୍ତ୍ରଜ୍ଞ ।
ନୀତିକୁଶଳ—ପୁଂ. ବିଂ. (୭ତତ୍) ନୀତି-
ନୀତିଘୋଷ—ପୁଂ.ବି. (ବ.ବ୍ରୀ) ବୃହସ୍ପତି-ରଥ, (୭ତତ୍) ନୟଧ୍ୱନି ।
ନୀତିଜ୍ଞ—ପୁଂ.ବିଂ. (ନୀତି+ଜ୍ଞା+କ.ଅ) ନୀତିବେଦୀ, ନୀତିଶାସ୍ତ୍ରଜ୍ଞ, ନୀତିବିଶାରଦ ।
ନୀତିତନ୍ତ୍ର—ବି. (ନୀତି+ତନ୍ତ୍ର) ନୟଶାସ୍ତ୍ର,ହିତୋପଦେଶକ ଶାସ୍ତ୍ର,ରାଜନୀତି ଶାସ୍ତ୍ର ।
ନୀତିପ୍ରଦୀପ—ପୁଂ. ବି. ନୀତିରୂପ ପ୍ରଦୀପ, ଜ୍ଞାନାଲୋକ, ବେତାଳଭଟ୍ଟକୃତ ଖଣ୍ଡିଏ ନୀତିଗ୍ରନ୍ଥ ।
ନୀତିପ୍ରୟୋଗ—ବି. (୭ତତ୍) ଦୈନନ୍ଦିନ କାର୍ଯ୍ୟରେ ନୀତିଶାସ୍ତ୍ରର ନିର୍ଦ୍ଦିଷ୍ଟନିୟମମାନ ଖଟାଇବା ।
ନୀତିମାନ୍—ପୁଂ. ବିଂ. ( ନୀତି+ମତ୍ ) ପ୍ରଶସ୍ତ ନୀତିଯୁକ୍ତ, ନୀତିକୁଶଳ ।
ନୀତିମାର୍ଗ—ପୁଂ.ବି.( କ.ଧା ) ସୁନୀତି-ସମ୍ମତ ରାସ୍ତା ବା ପଦ୍ଧତି । [ ସୂଚକ ।
ନୀତିମୂଳକ—ବିଂ. (ବ.ବ୍ରୀ) ନୀତିକଥା-
ନୀତିରତ୍ନ—କ୍ଲୀ. ବି. ବରରୁଚି କୃତ ନୀତିଗ୍ରନ୍ଥବିଶେଷ ।

ନୀତିବଢ଼ିବା—ଗ୍ରା.ବି. ରାଜା ଓ ଦେବତାଙ୍କର ଦୈନନ୍ଦିନ ନିର୍ଦ୍ଧାରିତ କାର୍ଯ୍ୟବିଶେଷର ସମାଧା ହେବା ।
ନୀତିବହିର୍ଭୂତ—ବିଂ. (୫ତତ୍) ଅନୈତିକ, ନୈତିକବୋଧ ବିରୁଦ୍ଧ ।
ନୀତିବାକ୍ୟାମୃତ—କ୍ଲୀ.ବି. ସଦ୍‌ବିବେଚନା ପୂର୍ଣ୍ଣ ଓ ଜ୍ଞାନଗର୍ଭକ ଅମୃତମୟ ପ୍ରସଙ୍ଗ, ସ୍ୱନାମଖ୍ୟାତ ଗ୍ରନ୍ଥ ।
ନୀତିବିତ୍—ପୁଂ. ବିଂ. (ନୀତି+ବିଦ୍+କ.କ୍ୱିପ୍) ନୀତିଶାସ୍ତ୍ରଜ୍ଞ । [ବିଦ୍ୟା ।
ନୀତିବିଦ୍ୟା—ସ୍ତ୍ରୀ. ବି. ନୀତିବିଷୟକ
ନୀତିବେତ୍ତା—ପୁଂ. ବିଂ. (ନୀତି+ବିଦ୍+କ.ତୃ) ନୀତିଶାସ୍ତ୍ରଜ୍ଞ ।
ନୀତିବେଦୀ—ପୁଂ. ବିଂ. (ନୀତି+ବିଦ୍+କ.ଇନ୍) ନୀତିବେତ୍ତା ଦେଖ ।
ନୀତିଶାସ୍ତ୍ର—କ୍ଲୀ. ବି. ନୀତିଜ୍ଞାପକ ଶାସ୍ତ୍ରବିଶେଷ ।
ନୀତିସଂକଳନ—କ୍ଲୀ. ବି. ଜ୍ଞାନଗର୍ଭ ଓ ନୀତିବିଷୟକ ପ୍ରସଙ୍ଗମାଳା ସନ୍ନିବିଷ୍ଟ ଗ୍ରନ୍ଥ ।
ନୀତିସଙ୍ଗତ—ବିଂ. ( ନୀତି+ସଙ୍ଗତ ) ନୀତିର ଅନୁକୂଳ ।
ନୀତିସାର—ପୁଂ.ବି. ଇନ୍ଦ୍ରଙ୍କ ପ୍ରତି ବୃହସ୍ପତି କଥିତ ଉକ୍ତ ନୀତିଶାସ୍ତ୍ରଭେଦ ।
ନୀତ୍ତ—ବିଂ. (ନି+ଦା+ର୍ମ.ତ) ଦତ୍ତ ।
ନୀଥ—ପୁଂ. ବିଂ. (ନୀ+ଥ)ନୟନ୍ତା, ପ୍ରାପୟିତା, ନୟନ, ସ୍ତୋତ୍ର, (ପୁଂ.ବି) ପ୍ରାପଣ ହେତୁ ନୟନହେତୁଭୂତ,(କ୍ଲୀ. ବି) ଜଳ ।
ନୀଧ୍ର—କ୍ଲୀ. ବି. ( ନି+ଧୃ+ଅ ) ଘର ଚାଳର ଓଳ, ଚକ୍ରଧାରା, ପହିଆ, ନେମି, ବଲୀକ, ବନ, ଚନ୍ଦ୍ର, ରେବତୀନକ୍ଷତ୍ର ।
ନୀନାହ—ପୁଂ.ବି. (ନି+ନହ+ଭା.ଅ) ନିବନ୍ଧ, ନିତରାଂ ବନ୍ଧନ ।
ନୀପ—ପୁଂ. ବି. (ନୀ+ପ) କଦମ୍ବବୃକ୍ଷ, ଧାରାକଦମ୍ବ,ବନ୍ଧୁକ ବୃକ୍ଷ, ନୀଳାଶୋକ ବୃକ୍ଷ ବା ଫଳ, ଦେଶଭେଦ, ଗିରିର

ଅଧୋଭାଗ, ପାରରାଜାଙ୍କ ପୁତ୍ର, ନୀପ-
ବଂଶ । [ ଜଣେ ଋଷି ।
ନୀପାତିଥି—ପୁଂ. ବ. କଣ୍ୱବଂଶୋଦ୍ଭବ
ନୀପ୍ୟ—ବି.ବଂ. (ନୀପ + ଯ) ତଟଭବ,
ଯାହା ଗିରିର ଅଧୋଭାଗରେ ହୁଏ,
(ପୁଂ.ବ) ରୁଦ୍ରଭେଦ ।
ନୀର—କ୍ଳୀ.ବ. (ନୀ + ର) ଦ୍ରବପଦାର୍ଥ,
ଜଳ, ରସ, (ପୁଂ.ବ) ରାଜପୁତ୍ରଭେଦ ।
ନୀରକ୍ତ—ବି. ବଂ. (ବ.ବ୍ରୀ) ରକ୍ତଶୂନ୍ୟ,
ବର୍ଣ୍ଣହୀନ, ପାଣ୍ଡୁରବର୍ଣ୍ଣ, (ସ୍ତ୍ରୀ) ନୀରକ୍ତା ।
ନୀରକ୍ତିଆ—ଗ୍ରା.ବଂ. ପୁଂ ଓ ସ୍ତ୍ରୀ. ନୀରକ୍ତ
ଦେଖ ।
ନୀରକ୍ଷ—ଗ୍ରା. ବଂ. ଅରକ୍ଷିତ, ଆଶ୍ରୟ-
ଶୂନ୍ୟ, ନିରାଶ୍ରୟ । [ ଶୂନ୍ୟ ।
ନୀରଙ୍ଗ—ବି. ବଂ. ରଙ୍ଗଶୂନ୍ୟ, କୌତୁକ-
ନୀରଜ—କ୍ଳୀ. ବ. (ନୀର + ଜନ + ଅ)
ପଦ୍ମ, କୁଷ୍ଠୌଷଧି, ମୁକ୍ତାଫଳ, ଉଦ୍ରାକ୍ଷ
ଜନ୍ତୁ, କୁଡ଼, ଓଧ, ଉଶୀର, (ବଂ)
ଜଳଜାତମାତ୍ର, (ପୁଂ.ବ) ରଜୋଗୁଣ
କାର୍ଯ୍ୟ ରାଗାଦିଶୂନ୍ୟ, ମହାଦେବ ।
ନୀରଜସ୍—ବି.ବଂ. ନିର୍ଧୂଳଦେଶ, ପରାଗ-
ଶୂନ୍ୟ ପୁଷ୍ପ, ରଜୋଗୁଣ କାର୍ଯ୍ୟରାଗାଦି
ଶୂନ୍ୟ, (ସ୍ତ୍ରୀ.ବ) ଗର୍ଭାର୍ତ୍ତିବା ସ୍ତ୍ରୀ, ଅରଜସ୍କା
ସ୍ତ୍ରୀ, କୁମାରୀ, ଦୁର୍ଗା ।
ନୀରଜା—ପୁଂ. ବଂ. (ବ.ବ୍ରୀ) ରଜୋ-
ହୀନ, ଧୂଳିଶୂନ୍ୟ, ପରାଗହୀନ (ଫୁଲ),
ରଜୋଗୁଣ ବର୍ଜିତ, (ପୁଂ.ବ) ମହା-
ଦେବ, (ସ୍ତ୍ରୀ) ଯେଉଁ ସ୍ତ୍ରୀ ଋତୁମତୀ
ହୋଇ ନାହିଁ, ଯେଉଁ ସ୍ତ୍ରୀର ରଜୋଦ୍ଗମ
ସ୍ଥଗିତ ହୋଇଅଛି ।
ନୀରଜସ୍କ—ବି.ବଂ. ରଜୋଶୂନ୍ୟ, ପରାଗ
ଶୂନ୍ୟ ପୁଷ୍ପାଦି, ରଜୋଗୁଣ କାର୍ଯ୍ୟ-
ରାଗାଦି ଶୂନ୍ୟ ।
ନୀରଜାତ—ବି.ବଂ. (ନୀର + ଜନ + ତ)
ଜଳଜାତ ମାତ୍ର, ଅମ୍ବାଦି, (କ୍ଳୀ.ବ)
କମଳାଦି । [ ଯୁକ୍ତ, ନିବୃତ୍ତ ।
ନୀରତ—ବି. ବଂ. ବିରତ, ରମଣାଭାବ-
ନୀରଦ—ପୁଂ. ବ. (ନୀର + ଦା + ଅ)
ମେଘ, ମୁଥା, (ବଂ) ରଦଶୂନ୍ୟ, ଦନ୍ତ-
ଶୂନ୍ୟ, ଜଳଦାତା ।
ନୀରଧର—ବ. (ନୀର + ଧୃ + କ.ଅ)
ଜଳଧର, ମେଘ । [ ସମୁଦ୍ର ।
ନୀରଧି—ପୁଂ. ବ. (ନୀର + ଧା + ଇ)
ନୀରନିଧି—ପୁଂ. ବ. ସମୁଦ୍ର ।
ନୀରନ୍ଧ୍ର—ବି. ବଂ. (ବ.ବ୍ରୀ) ଛିଦ୍ରରହିତ,
ଘନ, ସାନ୍ଦ୍ର, ନିବିଡ଼ ।
ନୀରପତି—ବ. (୬ତତ୍ପୁ) ବରୁଣଦେବ ।
ନୀରପ୍ରିୟ—ପୁଂ. ବ. (ବ.ବ୍ରୀ) ଜଳ-
ବେତସ, ପାଣିବେଗୁନିଆ, (ବଂ) ଜଳ-
ପ୍ରିୟ ମାତ୍ର ।
ନୀରରୁହ—କ୍ଳୀ. ବ. ପଦ୍ମ ।
ନୀରବ—ବି. ବଂ. (ବ.ବ୍ରୀ) ରବଶୂନ୍ୟ,
ସ୍ତବ୍ଧ, (ସ୍ତ୍ରୀ) ନୀରବା ।
ନୀରସ—ପୁଂ.ବ. ଡାଳିମ୍ବ, (ବଂ) ଶୃଙ୍ଗା-
ରାଦି ରସଶୂନ୍ୟ, ଶୁଷ୍କ, କାମନାଶୂନ୍ୟ,
ନିରସ, ସ୍ୱାଦହୀନ ।
ନୀରସନ—ବି.ବଂ. (ବ.ବ୍ରୀ) କାଞ୍ଚୀରହିତ,
ରସନାଶୂନ୍ୟ । [ ଓଧ ।
ନୀରାଖୁ—ପୁଂ. ବ. (୬ତତ୍ପୁ) ଉଦ୍‌ବିଡ଼ାଳ,
ନୀରାଜନ—ବ. (ବ.ବ୍ରୀ) ଆରାତ୍ରିକ,
ଆରତି, ଦେବତାଙ୍କୁ ଓ ନବବିବାହିତ
ବରକନ୍ୟାଙ୍କୁ ଦୀପ ଦେଖାଇବା ପ୍ରକାର
ଆରାଧନା, ବନ୍ଦାପନା, (ନିର୍ + ରାଜ
+ ଣି.ଅନ) ଅସ୍ତ୍ରଶସ୍ତ୍ରାଦି ପରିଷ୍କାର କରଣ,
ପ୍ରତିମା ବିସର୍ଜନ, ଶାନ୍ତିଜଳ ସେବନ-
କର୍ମ ।
ନୀରାଜନା—ସ୍ତ୍ରୀ.ବ. ଦେବତାଙ୍କ ଆଳତି
ନୀରାଜିତ—ବଂ. (ନୀର + ଅଜ + ଣି.ତ)
ବନ୍ଦାପନା କରାଯାଇଥିବା (ଦେବତା),
ମନ୍ତ୍ରାଦିଦ୍ୱାରା ପବିତ୍ରୀକୃତ ଓ ପରିଷ୍କୃତ
ଅସ୍ତ୍ରଶସ୍ତ୍ରାଦି ।
ନୀରିନ୍ଦୁ—ପୁଂ. ବ. (ନୀର + ଇନ୍ଦ + ଉ)
ଅଶ୍ୱଶାଖୋଟ ବୃକ୍ଷ, ଏକପ୍ରକାର ସିଜୁ ।
ନୀରୁଚ—ତ୍ରି. ବଂ. (ନି + ରୁଚ + କ୍ୱିପ୍)
ଅତି ନମ୍ର ଦୀପ୍ତିଶୀଳ ।
ନୀରୁଜ୍—ସ୍ତ୍ରୀ.ପୁଂ. ବ. (ନିର୍ + ରୁଜ୍ +
କ୍ୱିପ୍) ରୋଗାଭାବ, (ବଂ) ପଟୁ, ଯାହାର
ରୋଗନାହିଁ ।
ନୀରୁଜ—ତ୍ରି.ବଂ.(ବ.ବ୍ରୀ) ରୋଗରହିତ,
ରୋଗାଭାବବିଶିଷ୍ଟ, (ସ୍ତ୍ରୀ) ନୀରୁଜା, (କ୍ଳୀ.
ବ) କୁଡ଼, କୁଷ୍ଠୌଷଧ, (ପୁଂ.ବ) ଉଶୀର,
ବେଣା, (ସ୍ତ୍ରୀ.ବ) ରୋଗଭେଦ, ଅଜ-
ଗଲ୍ଲିକାରୋଗ ।
ନୀରୂପ—ତ୍ରି.ବଂ. ରୂପାଭାବବିଶିଷ୍ଟ, ରୂପ-
ହୀନ, (ବ) ବାୟୁ, ଆକାଶ, ଶୂନ୍ୟ ।
ନୀରେଣୁକ—ତ୍ରି.ବଂ. ଧୂଳିଶୂନ୍ୟ(ସ୍ଥାନ) ।
ନୀରୋ—ଯା.ବ. ପ୍ରାଚୀନ ରୋମ୍‌ର ନିଷ୍ଠୁର
ସମ୍ରାଟବିଶେଷ ।
ନୀରୋଗ—ତ୍ରି.ବଂ. ( ନୀ + ରୁଜ + ଅ )
ରୋଗହୀନ, (ବ) ସ୍ୱାସ୍ଥ୍ୟ ।
ନୀରୋମ—ବଂ. (ବ.ବ୍ରୀ) ରୋମଶୂନ୍ୟ ।
ନୀରୋହ—ପୁଂ.ବ. ଅଙ୍କୁରିତହେବା, ଜନ୍ମ-
ହେବା ।
ନୀର୍ବନ୍ଧ—ଗ୍ରା.ବଂ. ନିବୁଜ ।
ନୀଲ—ବ. ( ନୀଲ + ଅ ) ନେଳିରଙ୍ଗ,
ନୀଳଗୁଳ୍ମ, ନୀଳାଚଳ, ଇନ୍ଦ୍ରନୀଳମଣି,
କୁବେରଙ୍କ ନୀଳନାମକ ନିଧି, ରାମାୟଣ
ବର୍ଣ୍ଣିତ ବାନର ସେନାପତି, ବେଗୁନିଆ
ଗଛ, ଚିହ୍ନ, ବଟବୃକ୍ଷ, କାଚଲବଣ,
ବିଷ, ଭୂଇଁ ଅଇଁଲା, ସୌବୀରାଞ୍ଜନ,
ଗୁଡ଼ିଆ, ରାଜା ଯଦୁଙ୍କର ଏକପୁତ୍ର,
ଅଜାମିଳର ଏକପୁତ୍ର, ଇଳାବୃତ ଦେଶର
ଉତ୍ତରକୁ ଲାଗିଥିବା ପୌରାଣିକ ପର୍ବତ-
ବିଶେଷ, ମାହିଷ୍ମତୀର ଏକରାଜା, ଦଶ-
ହଜାର, ଅର୍ବୁଦସଂଖ୍ୟା, (ବଂ) ନୀଲବର୍ଣ୍ଣ-
ବିଶିଷ୍ଟ, କାଳିଆ, ନୀଳରଙ୍ଗରେ ରଞ୍ଜିତ ।
ନୀଲକ—ବ. (ନୀଲ + କ) କାଚଲବଣ,
କାଳାଲୁଣ, ଶେଫାଳିକା, ନୀଳଗୁଳ୍ମ,
ବର୍ତ୍ତିଲୌହ, ଅସନବୃକ୍ଷ, ପିଆଶାଳ,
ମଟର ମଞ୍ଜି ବା ଜାଇ ବା ଡ଼ାଲି,
ଭ୍ରମର, ବୀଜ ଗଣିତୋକ୍ତ ଅବ୍ୟକ୍ତ
ରାଶିର ସଂଖ୍ୟାଭେଦ, କୃଷ୍ଣସାର ମୃଗ,
(ବଂ) ନୀଲବର୍ଣ୍ଣବିଶିଷ୍ଟ ।
ନୀଲକଇଁ—ଗ୍ରା.ବ. ନୀଲୋତ୍ପଳ, ନୀଳ-
ବର୍ଣ୍ଣ କଇଁଫୁଲ ।
ନୀଲକଣା—ସ୍ତ୍ରୀ.ବ. କୃଷ୍ଣଜୀରା, କଳାଜୀରା ।
ନୀଲକଣ୍ଠ—ପୁଂ.ବ. (ବ.ବ୍ରୀ) ଶିବ, ମୟୂର,

ପୀତସାର, ଦାରୁ୍ୟହ, ଡାହୁକ,ଘରଚଟିଆ ଚଢ଼େଇ, ଖଞ୍ଜନ, ଚନ୍ଦନବିଶେଷ, ଏକପ୍ରକାର ଗନ୍ଧ, ମୂଳା, ପୀତଶାଳବୃକ୍ଷ, ଭଦଭଦଳିଆ ପକ୍ଷୀ, ଏକପ୍ରକାର ବଗ,ମହାଭାରତର ପ୍ରସିଦ୍ଧ ଟୀକାକାର, (ବିଂ) ନୀଳକଣ୍ଠଯୁକ୍ତ ।
ନୀଳକଣ୍ଠନାଥ—ଗ୍ରା.ବି. ପ୍ରତିଷ୍ଠିତ ଶିବଲିଙ୍ଗଙ୍କ ନାମବିଶେଷ ।
ନୀଳକଣ୍ଠବଂଶ—ଗ୍ରା.ବି. ଷୋଡ଼ଶ ଶତାବ୍ଦୀର ବଦର୍ଭ ଦେଶବାସୀ ଜ୍ୟୋତିଷଙ୍କ ବ୍ରାହ୍ମଣ ବଂଶ ।
ନୀଳକଣ୍ଠିକା—ସ୍ତ୍ରୀ.ବି. ମୟୂରଶିକା ।
ନୀଳକଣ୍ଠୀ—ସ୍ତ୍ରୀ.ବି. ମୟୂରୀ ।
ନୀଳକନ୍ଦ—ବି. ଏକପ୍ରକାର ଆଳୁ ।
ନୀଳକନ୍ଦର—ନୀଳଗିରି ପର୍ବତର କନ୍ଦର ବା ଗୁମ୍ଫା । [ ମହାପ୍ରଭୁ ।
ନୀଳକନ୍ଦରବିହାରୀ—ବି.ପୁରୀର ଜଗନ୍ନାଥ
ନୀଳକନ୍ୟା—ଗ୍ରା.ବି. ଲକ୍ଷ୍ମୀ । [ ପଦ୍ମ ।
ନୀଳକମଳ—କ୍ଲୀ.ବି. ନୀଳକଇଁ ନୀଳ-
ନୀଳକାକ୍ଷକ--ପୁଂ.ବି.ମହାରାଜ ଚୂତଫଳ ଭଲଆମ୍ବ ।
ନୀଳକାନ୍ତ—ପୁଂ.ବି ସ୍ୱନାମଖ୍ୟାତ ପକ୍ଷୀବିଶେଷ, ଇନ୍ଦ୍ରନୀଳମଣି ।
ନୀଳକାୟିକ—ତ୍ରି.ବିଂ. ନୀଳଶରୀରବିଶିଷ୍ଟ, (ପୁଂ.ବି) ବୌଦ୍ଧ ଦେବତାବିଶେଷ ।
ନୀଳକୁନ୍ତଳା—ସ୍ତ୍ରୀ. ବି. ପାର୍ବତୀଙ୍କ ସଖୀ, (ସ୍ତ୍ରୀ.ବିଂ—କ.ଗ୍ରା)ଯେଉଁ ସ୍ତ୍ରୀର କେଶ ଗାଢ଼ ନୀଳବର୍ଣ୍ଣ ।
ନୀଳକୁରୁଣ୍ଟକ—ପୁଂ. ବି. ନୀଳ ଦାସକେରେଣ୍ଟା । [ କେରେଣ୍ଟା ।
ନୀଳକୁସୁମା— ସ୍ତ୍ରୀ. ବି. ନୀଳ ଦାସ-
ନୀଳକେଶୀ—ସ୍ତ୍ରୀ.ବି. ନୀଳିକାବୃକ୍ଷ,ନୀଳଗଛ । [ ଅପରାଜିତା ।
ନୀଳକ୍ରାନ୍ତା—ସ୍ତ୍ରୀ.ବି. ବିଷ୍ଣୁକ୍ରାନ୍ତା, କୃଷ୍ଣ-
ନୀଳକ୍ରୌଞ୍ଚ—ପୁଂ.ବି. କଳାବଗ, ନୀଳବର୍ଣ୍ଣ ବଗ, କାଣ୍ଡିବଗ । [ ଗଣେଶ ।
ନୀଳଗଣେଶ—ପୁଂ. ବି. ନୀଳବର୍ଣ୍ଣ
ନୀଳଗର୍ଭ—ତ୍ରି.ବିଂ. (ବ.ଗ୍ରା) ନୀଳମଧ୍ୟ, ଯାହାର ମଧ୍ୟଭାଗ ନୀଳବର୍ଣ୍ଣ ।

ନୀଳଗାଇ—ବି. ମୃଗଜାତୀୟ ଜନ୍ତୁବିଶେଷ ।
ନୀଳଗିରି—ବି. ମାନ୍ଦ୍ରାଜ ପ୍ରେସିଡ଼େନ୍ସୀର ଅନ୍ତର୍ଗତ ଗୋଟିଏ ଗିରିଶ୍ରେଣୀ ଓ ଜିଲ୍ଲା, ଓଡ଼ିଶାର ଅନ୍ତର୍ଗତ ଗୋଟିଏ ଦେଶୀୟ ରାଜ୍ୟ, ପୁରାଣାଦିରେ ବର୍ଣ୍ଣିତ ପୁରୀର ଜଗନ୍ନାଥ ଯେଉଁ ଗିରିରେ ବିରାଜିତ ।
ନୀଳଗିରିକର୍ଣ୍ଣିକା—ସ୍ତ୍ରୀ. ବି. ନୀଳପୁଷ୍ପ, ନୀଳାପରାଜିତା ।
ନୀଳଗ୍ରୀବ—ପୁଂ.ବି. ବ.ଗ୍ରା, ମହାଦେବ, (ବିଂ) ନୀଳବର୍ଣ୍ଣ ଗ୍ରୀବାବିଶିଷ୍ଟ ।
ନୀଳଙ୍ଗୁ—ପୁଂ.ବିଂ. ( ନ + ଲଗି + ଉ ) ଅତି କ୍ଷୁଦ୍ର ଜନ୍ତୁମାତ୍ର, କୃମିବିଶେଷ, ଶୃଗାଳ, ଭ୍ରମରାଜ, ପ୍ରସୂନ ।
ନୀଳଚକ୍ର—ବି. ପୁରୀର ଜଗନ୍ନାଥ ମନ୍ଦିର ଓ ବିଷ୍ଣୁମନ୍ଦିରମାନଙ୍କର ଶିଖରରେ ଥିବା ଧାତୁମୟ ଚକ୍ର, ୩୦ ଅକ୍ଷରର ଦଣ୍ଡକବୃତ୍ତ ।
ନୀଳଚର୍ମ—କ୍ଲୀ.ବି. ( ବ.ଗ୍ରା ) ପରୂଷକ ଫଳଗଛ, (କ.ଧା) କୃଷ୍ଣାଜିନ,(ବିଂ) ନୀଳଚର୍ମବିଶିଷ୍ଟ ।
ନୀଳଚ୍ଛଦ—ପୁଂ.ବି. ଗରୁଡ଼ଙ୍କ ନାମାନ୍ତର, ଖଜୁରୀଗଛ, କୋକିଳପକ୍ଷୀ, ( ବିଂ ) (ବ.ଗ୍ରା) ନେଳିଆ ପତ୍ରବିଶିଷ୍ଟ, ନେଳିଆ ପକ୍ଷବିଶିଷ୍ଟ ।
ନୀଳଜ—କ୍ଲୀ. ବି. (ନୀଳ + ଜନ + ଅ) ବର୍ତ୍ତିଲୌହ, (ବିଂ) ନୀଳଜାତ, (ସ୍ତ୍ରୀ) ନୀଳଜା, ବିତସ୍ତାନଦୀ, ଏହି ନଦୀ ନୀଳ ପର୍ବତରୁ ଜାତ ।
ନୀଳଝିଣ୍ଟୀ—ସ୍ତ୍ରୀ. ବି. ନେଳିଫୁଲବିଶିଷ୍ଟ, କୁରଣ୍ଟ ଗୁଳ୍ମ, ବାଣା ।
ନୀଳତନ୍ତ୍ର— କ୍ଲୀ.ବି. ଚୀନା ଗୃହାଦି ପ୍ରକାଶକ ତନ୍ତ୍ରବିଶେଷ ।
ନୀଳତର—ଗାନ୍ଧାର ପ୍ରଦେଶସ୍ଥ ଉରୁବେଲାରଣ୍ୟ ପ୍ରବାହିତ ଗୋଟିଏ ନଦୀ ।
ନୀଳତରୁ—ପୁଂ.ବି. ନାରିକେଳ, ନୀଳବର୍ଣ୍ଣ ବୃକ୍ଷ ।
ନୀଳତା—ସ୍ତ୍ରୀ.ବି. ( ନୀଳ+ତ+ଆ ) ନୀଳତ୍ୱ, ନୀଳର ଧର୍ମ ।

ନୀଳତାଳ—ପୁଂ.ବି.ହିନ୍ତାଳଗଛ, ତମାଳ ଗଛ ।
ନୀଳତୁତ୍ଥ—ବି. ତୁତିଆ ।
ନୀଳଦୂର୍ବା—ସ୍ତ୍ରୀ. ବି. ( ନୀଳ+ଦୂର୍ବା ) ହରିଦ୍ୱର୍ଣ୍ଣ ଦୂର୍ବା, ଆନୀଳ ଦୁବଘାସ ।
ନୀଳଦ୍ରୁମ—ପୁଂ. ବି. ନୀଳବର୍ଣ୍ଣ ଅସନଗଛ ।
ନୀଳଧ୍ୱଜ—ପୁଂ. ବି. (କ.ଧା) ନୀଳବର୍ଣ୍ଣ ପତାକା, ତମାଳବୃକ୍ଷ, ନୃପଭେଦ,(ବିଂ) ନୀଳଧ୍ୱଜବିଶିଷ୍ଟ ।
ନୀଳନିର୍ଗୁଣ୍ଡୀ—ସ୍ତ୍ରୀ. ବି. ନୀଳବର୍ଣ୍ଣ ସିନ୍ଧୁବାର ବୃକ୍ଷ, ନୀଳ ବେଗୁନିଆ ।
ନୀଳନିର୍ଯ୍ୟାସକ—ପୁଂ.ବି.ପିଆଶାଳଗଛ ।
ନୀଳନୀରଜ—କ୍ଲୀ.ବି. ନୀଳକମଳ, ନୀଳକଇଁ । [ କର୍ଦ୍ଦମ ।
ନୀଳପଙ୍କ—ସ୍ତ୍ରୀ.ବି. ଅନ୍ଧକାର, କୃଷ୍ଣବର୍ଣ୍ଣ,
ନୀଳପଟଳ—କ୍ଲୀ.ବି. (କ.ଧା) ଅନ୍ଧମାନଙ୍କର ଦୃଷ୍ଟିର ଅବରୋଧକ ତ୍ୱକ୍‌ଭେଦ, ନୀଳବସ୍ତ୍ର ।
ନୀଳପତ୍ର—କ୍ଲୀ. ବି. ନୀଳପଦ୍ମ, ଗୁଣ୍ଡତୃଣ, ଅଶ୍ମନ୍ତକ ବୃକ୍ଷ,ନୀଳାସନ ବୃକ୍ଷ, ଦାଡ଼ିମ, (କ.ଧା) ନୀଳବର୍ଣ୍ଣ ପତ୍ର, (ବିଂ. ବ.ଗ୍ରା) ନୀଳବର୍ଣ୍ଣ ପତ୍ରଯୁକ୍ତ ।
ନୀଳପତ୍ରିକା(ପତ୍ରୀ)—ସ୍ତ୍ରୀ. ବି. ନୀଳବୃକ୍ଷ, ନୀଳଗଛ, ଶରପୁଙ୍ଖ, ବନନୀଳ ।
ନୀଳପଦ୍ମ— କ୍ଲୀ.ବି.ନୀଳବର୍ଣ୍ଣ ପଦ୍ମ, ନୀଳୋତ୍ପଳ । [ ବୃନ୍ଦାରବୃକ୍ଷ ।
ନୀଳପର୍ଣ୍ଣ—ପୁଂ. ବି. ବୃକ୍ଷବିଶେଷ, (ସ୍ତ୍ରୀ)
ନୀଳପିଙ୍ଗଳ-ତ୍ରି.ବିଂ.ନୀଳ ଅଥଚ ପିଙ୍ଗଳବର୍ଣ୍ଣଯୁକ୍ତ ।
ନୀଳପିଙ୍ଗଳା—ସ୍ତ୍ରୀ. ବି. ଗୋଜାତିଭେଦ, ଯେଉଁ ଗାଈମାନଙ୍କର ବର୍ଣ୍ଣନୀଳ ଅଥଚ ପିଙ୍ଗଳ ।
ନୀଳପିଚ୍ଛ—ପୁଂ.ବି.(ବ.ଗ୍ରୀ) ଶ୍ୟେନପକ୍ଷୀ, ବାଜପକ୍ଷୀ ।
ନୀଳପିଟ—ପୁଂ. ବି. ବୌଦ୍ଧମାନଙ୍କର ରାଜକୀୟ ଅନୁଶାସନ ଓ ଇତିବୃତ୍ତ ସଂଗ୍ରହ ।
ନୀଳପିଷ୍ଟୋଡ଼ୀ—ସ୍ତ୍ରୀ.ବି.ନୀଳାନାମ୍ନୀବୃକ୍ଷ ।

ନୀଳପୁନର୍ନବା—ସ୍ତ୍ରୀ.ବ. କୃଷ୍ଣବର୍ଣ୍ଣ ପୁନର୍ନବା ଶାଗ, ପୁରୁଣୀଶାଗ । [ ପୁର ।
ନୀଳପୁର—କ୍ଳୀ.ବ. କାଶ୍ମୀରର ଗୋଟିଏ
ନୀଳପୁରାଣ—କ୍ଳୀ. ବ. ପୁରାଣଭେଦ ।
ନୀଳପୁଷ୍ପ—ପୁଂ. ବ. ନୀଳ ଭୃଙ୍ଗରାଜ, ନୀଳାମ୍ଳାନ, ଗ୍ରନ୍ଥିପର୍ଣ୍ଣ, (କ୍ଳୀ.ବ) ନୀଳବର୍ଣ୍ଣ କୁସୁମ ।
ନୀଳପୁଷ୍ପା—ସ୍ତ୍ରୀ.ବ. ବିଷ୍ଣୁକ୍ରାନ୍ତା, ଅପରାଜିତା, ନେଳ ଅପରାଜିତା ।
ନୀଳପୁଷ୍ପିକା—ସ୍ତ୍ରୀ. ବ. ଅତସୀଗୁଳ୍ମ, ନୀଳଚଛ ।
ନୀଳପୃଷ୍ଣୀ—ସ୍ତ୍ରୀ. ବି. (ବ.ଗ୍ରା)ବେଗୁନିଆ, ଶେଫାଳିକା, ଅତସୀ ।
ନୀଳପୃଷ୍ଠ—ପୁଂ. ବ. ଅଗ୍ନି ।
ନୀଳପୋର—ପୁଂ. ବ. ଇକ୍ଷୁବିଶେଷ ।
ନୀଳପ୍ରଭ—ବିଂ. (ବ.ଗ୍ରା) ନୀଳଦୀପ୍ତିବିଶିଷ୍ଟ, (ସ୍ତ୍ରୀ) ନୀଳପ୍ରଭା ।
ନୀଳଫଳା—ସ୍ତ୍ରୀ. ବ. ଜମ୍ବୁବୃକ୍ଷ ।
ନୀଳଭ—ପୁଂ.ବ.(ନୀଳ+ଭା+ଅ)ଚନ୍ଦ୍ର, ମେଘ, ମକ୍ଷିକା, (ବିଂ) ନୀଳାଭ, ନୀଳବର୍ଣ୍ଣ କାନ୍ତିବିଶିଷ୍ଟ ।
ନୀଳଭଣ୍ଡା—ସ୍ତ୍ରୀ. ବ. ପୀତଶାଲ ବୃକ୍ଷ, ପିଆଶାଳ ଗଛ ।
ନୀଳଭୂ—ସ୍ତ୍ରୀ. ବ. (ବ.ଗ୍ରା) ନୀଳପର୍ବତୋତ୍ପନ୍ନ ନଦୀଭେଦ ।
ନୀଳଭୃଙ୍ଗରାଜ—ପୁଂ. ବ. ନୀଳବର୍ଣ୍ଣ ଭୃଙ୍ଗରାଜ । [ ନେଳିଆ ମାଛି ।
ନୀଳମକ୍ଷିକା—ସ୍ତ୍ରୀ.ବ. ନୀଳବର୍ଣ୍ଣ ମକ୍ଷିକା,
ନୀଳମଣି—ପୁଂ. ବ. ନୀଳକାନ୍ତମଣି, ଇନ୍ଦ୍ରନୀଳମଣି ।
ନୀଳମଣିବିଦ୍ୟାରତ୍ନ—ଗ୍ରା. ବ. ଉତ୍କଳର ଜନୈକ ସୁପରିଚିତ ସ୍ୱର୍ଗୀୟ ସାହିତ୍ୟସେବକ ।
ନୀଳମଣ୍ଡଳ—କ୍ଳୀ. ବ. ପରୁଷ ଫଳ, ଫାରସୀ କୋଳି ।
ନୀଳମଲ୍ଲିକା—ସ୍ତ୍ରୀ.ବ. କଇଥ, କପିତ୍ଥ ।
ନୀଳମାଧବ—ପୁଂ. ବ. ବିଷ୍ଣୁ, ଜଗନ୍ନାଥ, ଶ୍ରୀକୃଷ୍ଣ, ପ୍ରୟାଗରେ ଥିବା ବିଷ୍ଣୁପ୍ରତିମା ।
ନୀଳମାଷ—ପୁଂ. ବ. ରାଜମାଷ ।
ନୀଳମୀଳିକ—ପୁଂ. ବ. (ନୀଳ+ମିଳ+ଅକ) ଖଦ୍ୟୋତ, ଜ୍ୟୋତ୍ସ୍ନାକୀଟ, ଜୁଲୁଜୁଲିଆ ।
ନୀଳମୃତ୍ତିକା—ସ୍ତ୍ରୀ.ବ.ନୀଳବର୍ଣ୍ଣ ମୃତ୍ତିକା, କଳାମାଟି,(ବିଂ)ନୀଳବର୍ଣ୍ଣ ମୃତ୍ତିକାଯୁକ୍ତ ଦେଶାଦି ।
ନୀଳମେଘୀ—ଗ୍ରା. ବିଂ. ନୀଳ ମେଘର ବର୍ଣ୍ଣବିଶିଷ୍ଟ (ଶାଢ଼ୀ) ।
ନୀଳମେହ—ପୁଂ.ବ. ମହରୋଗବିଶେଷ
ନୀଳମେହୀ—ପୁଂ. ବିଂ. (ନୀଳ+ମିହ+ଇନ୍) ନୀଳବର୍ଣ୍ଣ ମେହଯୁକ୍ତ ।
ନୀଳଯଷ୍ଟିକା—ସ୍ତ୍ରୀ. ବ. କୃଷ୍ଣବର୍ଣ୍ଣ ଇକ୍ଷୁଭେଦ, କଜଳୀ ଆଖୁ ।
ନୀଳରତ୍ନ—କ୍ଳୀ. ବ. ଇନ୍ଦ୍ରନୀଳମଣି ।
ନୀଳରାଜି—ପୁଂ. ବ. (୬ତତ୍) ତମସ୍ତତି, ଅନ୍ଧକାର ରାଶି, ଘନାନ୍ଧକାର ।
ନୀଳରୁଦ୍ରୋପନିଷଦ୍—ସ୍ତ୍ରୀ.ବ. ଏକପ୍ରକାର ଉପନିଷଦ୍ ।
ନୀଳଲୋଚନ—ତ୍ରି. ବିଂ. (ବ.ଗ୍ରା)ନୀଳବର୍ଣ୍ଣ ନେତ୍ରଯୁକ୍ତ ।
ନୀଳଲୋହ—କ୍ଳୀ. ବ. ବର୍ତ୍ତିଲୋହ ।
ନୀଳଲୋହିତ—ପୁଂ.ବ.ଶିବ, ମହାଦେବ, (କ.ଧା) ବାଇଗଣିରଙ୍ଗ । [ପାର୍ବତୀ ।
ନୀଳଲୋହିତା—ସ୍ତ୍ରୀ.ବ. ଭୂମିଜମ୍ବୁ,ଶିବା,
ନୀଳଲୌହ—କ୍ଳୀ. ବ. ବର୍ତ୍ତିଲୌହ ।
ନୀଳବର୍ଣ୍ଣ—ବ. (କ.ଧା) ନୀଳରଙ୍ଗ, (ବିଂ—ବ.ଗ୍ରା) ନେଳିଆ ।
ନୀଳବର୍ଷାଭୂ—ସ୍ତ୍ରୀ. ବ. ନୀଳ ପୁନର୍ନବା, ନୀଳପୁରୁଣୀ (ବିଂ) କୃଷ୍ଣବର୍ଣ୍ଣ ବେଙ୍ଗ ।
ନୀଳବଲ୍ଲୀ—ସ୍ତ୍ରୀ. ବ. ବନ୍ଦାକ, ନିର୍ମୂଳୀ, ମଲ୍ଲଙ୍ଗ ।
ନୀଳବସନ—ପୁଂ. ବିଂ. ନୀଳବସ୍ତ୍ରଯୁକ୍ତ, (ପୁଂ. ବ—ବ.ଗ୍ରା) ଶନି, ବଳରାମ, ନୀଳବର୍ଣ୍ଣ ବସ୍ତ୍ର ।
ନୀଳବସ୍ତ୍ର—ପୁଂ. ବ. (ବ.ଗ୍ରା) ବଳରାମ, (କ୍ଳୀ. ବ) ନୀଳବର୍ଣ୍ଣ ବସ୍ତ୍ର ।
ନୀଳବାନ୍—ପୁଂ. ବ. ( ନୀଳ+ବତୁ ) ନୀଳବାସଯୁକ୍ତ, ନୀଳବର୍ଣ୍ଣ ଯୁକ୍ତ ।
ନୀଳବାସା—ବ ଓ ବିଂ. (ବ.ଗ୍ରା) ନୀଳବସନ ଦେଖ ।
ନୀଳଶାଳ—ପୁଂ. ବ. ନୀଳାସନ ବୃକ୍ଷ, ପିଆଶାଳ ।
ନୀଳବୃନ୍ତା—ସ୍ତ୍ରୀ.ବ.ନୀଳପୃଷ୍ଣୀ, ନେଳିଆ ଫୁଲ ବିଶିଷ୍ଟ କେରେଣ୍ଡା ।
ନୀଳବୃକ୍ଷ—ପୁଂ. ବ. ବୃକ୍ଷ ପ୍ରଭେଦ ।
ନୀଳବୃନ୍ତ—କ୍ଳୀ. ବ. (ବ.ଗ୍ରା) ତୁଳା ।
ନୀଳବୃନ୍ତକ—କ୍ଳୀ. ବ. ତୁଳା ।
ନୀଳବୃଷ—ପୁଂ.ବ.ବୃଷବିଶେଷ,ଶ୍ରାଦ୍ଧରେ ଉତ୍ସର୍ଗ କରାଯିବା ଏକପ୍ରକାର ବୃଷ, ଯାହାର ବର୍ଣ୍ଣ ନୀଳ; ପୁଚ୍ଛ ଓ ଖୁରା ଶଙ୍ଖ ବର୍ଣ୍ଣ ।
ନୀଳବୃଷା—ସ୍ତ୍ରୀ.ବ.ବାର୍ତ୍ତାକୀ,ବାଇଗଣ ।
ନୀଳଶିଖଣ୍ଡ—ତ୍ରି. ବିଂ. (ବ.ଗ୍ରା)ନୀଳବର୍ଣ୍ଣ ଶିଖାଗ୍ରଯୁକ୍ତ, (ପୁଂ.ବ)ରୁଦ୍ରଭେଦ ।
ନୀଳଶିଗ୍ରୁ—ପୁଂ. ବ. ଶୋଭାଞ୍ଜନ ବୃକ୍ଷ, ସଜନାଗଛ ।
ନୀଳସନ୍ଧ୍ୟା—ସ୍ତ୍ରୀ. ବ. କୃଷ୍ଣାପରାଜିତା, ନେଳ ଅପରାଜିତା ।
ନୀଳସରସ୍ୱତୀ—ସ୍ତ୍ରୀ. ବ. ଦ୍ୱିତୀୟ ବିଦ୍ୟା, ତାରାଦେବୀ ।
ନୀଳସହଚର—ପୁଂ. ବ. ନୀଳପୁଷ୍ପା, ନୀଳ ଦାସକେରେଣ୍ଡା ।
ନୀଳସାର—ପୁଂ.ବ.ତିନ୍ଦୁବୃକ୍ଷ,କେନ୍ଦୁଗଛ ।
ନୀଳସିନ୍ଧୁବାର—ପୁଂ. ବ. କୃଷ୍ଣବର୍ଣ୍ଣ ସିନ୍ଧୁବାର ବୃକ୍ଷ, ନୀଳ ବେଗୁନିଆ ।
ନୀଳସ୍କନ୍ଧା—ସ୍ତ୍ରୀ. ବ. ଗୋକର୍ଣ୍ଣଲତା ।
ନୀଳା—ସ୍ତ୍ରୀ. ବ.(ନୀଳ+ଅ+ଆ)ନୀଳବର୍ଣ୍ଣ ମାଛି, ନୀଳପୁରୁଣୀ, ନୀଳୀ ବୃକ୍ଷ, ନଦୀ ବିଶେଷ, ନୀଳବର୍ଣ୍ଣ,ଦୁର୍ବା,ପୁଷ୍ପପ୍ରଧାନ ବହୁଳ ଲତାବିଶେଷ, ମଲ୍ଲାର ରାଗର ସ୍ତ୍ରୀ, ଇନ୍ଦ୍ରନୀଳମଣି ।
ନୀଳାକ୍ଷ—ପୁଂ. ବିଂ. (ବ.ଗ୍ରା) ନୀଳବର୍ଣ୍ଣ ଚକ୍ଷୁବିଶିଷ୍ଟ, (ବ) ରାଜହଂସ ।
ନୀଳାଙ୍କିତଦଳ—ପୁଂ. ବିଂ ( ବ.ଗ୍ରା ) ତୈଳକନ୍ଦ ।
ନୀଳାଙ୍ଗ—ପୁଂ. ବ.(ବ.ଗ୍ରା)ସାରସପକ୍ଷୀ, ନୀଳବର୍ଣ୍ଣ ଅଙ୍ଗଯୁକ୍ତମାତ୍ର । [ କୁମ୍ଭୀର ।
ନୀଳାଙ୍ଗୁ—ପୁ. ବ. କୃମି, ଭ୍ରମରାଳି,

ନୀଳାଚଳ—ବି. ( କ.ଧା ) ଆସାମର ନୀଳଗିରି ପର୍ବତ, ପୁରୀ ଜଗନ୍ନାଥ ଯେଉଁ ପୌରାଣିକ ପର୍ବତରେ ଅବସ୍ଥିତ,ପୁରୀ ଶ୍ରୀକ୍ଷେତ୍ର, ଦକ୍ଷିଣ ଭାରତର ପୂର୍ବଘାଟ ପର୍ବତ ।

ନୀଳାଚଳଚନ୍ଦ୍ର—ବି. ପୁରୀରେ ବିରାଜିତ ଜଗନ୍ନାଥ ମହାପ୍ରଭୁ ।

ନୀଳାଞ୍ଜନ—କ୍ଲୀ. ବି. (କ.ଧା)ସୌବୀରାଞ୍ଜନ, କଜଳସୁରମା, ତୁତ୍ଥ, ତୁତିଆ ।

ନୀଳାଞ୍ଜନା—ସ୍ତ୍ରୀ. ବି. (ନୀଳ+ଅଞ୍ଜ+ଣିଚ୍,ଅନ+ଆ) ବିଦ୍ୟୁତ୍ ।

ନୀଳାଞ୍ଜନୀ—ସ୍ତ୍ରୀ. ବି. କାଳାଞ୍ଜନୀ କ୍ଷୁପ, କଳା କାର୍ପାସିକମ ।

ନୀଳାଞ୍ଜସା—ସ୍ତ୍ରୀ. ବି. ଅପ୍ସରା ଭେଦ, ନଦୀ ବିଶେଷ, ବିଦ୍ୟୁତ୍ । [ ଦେଖ ।

ନୀଳାଦ୍ରି—ପୁଂ. ବି. (କ.ଧା) ନୀଳାଚଳ

ନୀଳାଦ୍ରିକର୍ଣ୍ଣିକା—ସ୍ତ୍ରୀ.ବି.କୃଷ୍ଣାପରାଜିତା ।

ନୀଳାଦ୍ରିନାଥ—ବି. ନୀଳାଚଳନାଥ, ଶ୍ରୀଜଗନ୍ନାଥ ।

ନୀଳାଦ୍ରିମହୋଦୟ—ବି. ପୁରୀ ଶ୍ରୀଜଗନ୍ନାଥ କ୍ଷେତ୍ରର ମାହାତ୍ମ୍ୟ ଓ ଜଗନ୍ନାଥଙ୍କ ପୂଜା ଓ ଉତ୍ସବ ବିଧି ଆଦି ବର୍ଣ୍ଣିତ ହୋଇଥିବା ସଂସ୍କୃତ ଗ୍ରନ୍ଥ ବିଶେଷ ।

ନୀଳାପରାଜିତା—ସ୍ତ୍ରୀ. ବି. ନୀଳବର୍ଣ୍ଣ ଅପରାଜିତା ଲତା । [ ତ୍ପଳ ।

ନୀଳାବ୍ଜ—କ୍ଲୀ. ବି. ନୀଳପଦ୍ମ, ନୀଳୋ-

ନୀଳାଭ—ବିଂ.(ବ.ବ୍ରୀ) ନୀଳବର୍ଣ୍ଣବିଶିଷ୍ଟ ।

ନୀଳାମ୍ବର—ପୁଂ. ବି. ( ବ.ବ୍ରୀ ) ବଳଦେବ, ଶନୈଶ୍ଚର, ରାକ୍ଷସ, (କ୍ଲୀ.ବି) (କ.ଧା) ନୀଳବସ୍ତ୍ର, ତାଳୀଶ ପତ୍ର,ନୀଳ ଆକାଶ, (ପୁଂ.ବିଂ—ବ.ବ୍ରୀ)ନୀଳବସ୍ତ୍ରଧାରୀ । [ କବି ।

ନୀଳାମ୍ବରଦାସ—ଗ୍ରା.ବି.ଜଣେକ ଓଡ଼ିଆ

ନୀଳାମ୍ବରଭଞ୍ଜ—ଗ୍ରା. ବି. ଜଣେକ ଓଡ଼ିଆ କବି । [ ପଣ୍ଡିତ ।

ନୀଳାମ୍ବର ଶର୍ମ୍ମା—ବି. ଜଣେ ବିଖ୍ୟାତ

ନୀଳାମ୍ବରୀ—ଗ୍ରା. ବି. ନୀଳଶାଢ଼ୀ ।

ନୀଳାମ୍ବୁ—ବି. (ବ.ବ୍ରୀ) ସମୁଦ୍ର, (ବିଂ) ଯାହାର ପାଣି ନୀଳବର୍ଣ୍ଣ । [ ନୀଳକଇଁ

ନୀଳାମ୍ବୁଜ—କ୍ଲୀ. ବି. (କ.ଧା)ନୀଳପଦ୍ମ,

ନୀଳାମ୍ବୁଜନ୍ମ—କ୍ଲୀ. ବି. ନୀଳୋତ୍ପଳ, ନୀଳପଦ୍ମ ।

ନୀଳାମ୍ଳାନ—ପୁଂ.ବି.(ନୀଳ+ଆ+ମ୍ଳା+ଅନ) ପୁଷ୍ପଭେଦ, ଏକପ୍ରକାର ଫୁଲ ।

ନୀଳାମ୍ଳୀ—ସ୍ତ୍ରୀ. ବି. ଏକପ୍ରକାର କ୍ଷୁପ ।

ନୀଳରତ୍ନ--ଗ୍ରା.ବି.ନୀଳମଣି,ଇନ୍ଦ୍ରନୀଳମଣି

ନୀଳାରୁଣ--ପୁଂ.ବି. ସୂର୍ଯ୍ୟୋଦୟକାଳରେ ଅରୁଣବର୍ଣ୍ଣ ମିଶ୍ରିତ ନୀଳାକାଶ, (ବିଂ) ନୀଳ ଓ ଅରୁଣ ବର୍ଣ୍ଣବିଶିଷ୍ଟ ।

ନୀଳାଳୁ—ପୁଂ. ବି.(କ.ଧା)କନ୍ଦଭେଦ ।

ନୀଳାଣୀ—ସ୍ତ୍ରୀ. ବି. ( ନୀଳ+ଅଣ+ଅ+ଈ) ନୀଳନିର୍ଗୁଣ୍ଡୀ, ନୀଳସିନ୍ଧୁବାର ।

ନୀଳାଶୋକ—ପୁଂ.ବି.ନୀଳବର୍ଣ୍ଣଅଶୋକ

ନୀଳାଶ୍ମା—ପୁଂ. ବି. ନୀଳବର୍ଣ୍ଣ ପଥର ଭେଦ, ନୀଳକାନ୍ତମଣି, ନୀଳମଣି ।

ନୀଳାଶ୍ୱ—ପୁଂ. ବି. ଦେଶ ଭେଦ ।

ନୀଳାସନ—ପୁଂ. ବି.ଅସନ ବୃକ୍ଷ, ରକ୍ତବନ୍ଧ ବିଶେଷ ।

ନୀଳି—ପୁଂ. ବି. (ନଲ+ଇ) ଜଳଜନ୍ତୁ ଭେଦ, (ଗ୍ରା.ବି) ପାଣି ଉପରେ ମାଡ଼ିବା ଅତି କ୍ଷୁଦ୍ର ନେଳି ଶିଉଳୀ ।

ନୀଳିଆ—ଗ୍ରା. ବିଂ. ନୀଳବର୍ଣ୍ଣ ବିଶିଷ୍ଟ ।

ନୀଳିକା—ସ୍ତ୍ରୀ. ବି. (ନୀଳ+କ+ଆ) ନୀଳସିନ୍ଧୁବାର, ବେଗୁନିଆ,ଜଳକ୍ୱର, ଶେଫାଳିକା, କ୍ଷୁଦ୍ର ରୋଗ ଭେଦ, ନେତ୍ରରୋଗ ବିଶେଷ । [ ବିଶେଷ ।

ନୀଳିକାକାଚ—ପୁଂ. ବି. ନେତ୍ରରୋଗ

ନୀଳିନୀ—ସ୍ତ୍ରୀ. ବି. (ନୀଳିନ୍+ଈ)ନୀଳୀବୃକ୍ଷ, ନେଳିଆ ଦାସକେରେଣ୍ଡା,ଶ୍ୟାମାଦିପୁଷ୍ପ, ଅଜମୀଢ଼ଙ୍କ ପତ୍ନୀ । [ନୀଳତ୍ୱ ।

ନୀଳିମା—ବି. (ନୀଳ+ଇମନ୍)ନୀଳବର୍ଣ୍ଣ,

ନୀଳୀ—ପୁଂ.ବିଂ. (ନୀଳ+ଇନ୍) ପ୍ରଶସ୍ତ ନୀଳବର୍ଣ୍ଣଯୁକ୍ତ,ବି.ନୀଳଗୁଳ୍ମ,ନୀଳରଙ୍ଗ ।

ନୀଳୀରାଗ—ପୁଂ.ବି.(କ.ଧା)ପ୍ରେମଭେଦ, ସ୍ଥିରପ୍ରେମ, ନାୟକ ନାୟିକାଙ୍କ ପୂର୍ବରାଗବିଶେଷ ।

ନୀଳୀରୋଗ--ପୁଂ.ବି.ଚକ୍ଷୁରୋଗବିଶେଷ ।

ନୀଳୋତ୍ପଳ—କ୍ଲୀ. ବି. (ନୀଳ+ଉତ୍ପଳ) ନୀଳକଇଁ ।

ନୀଳୋତ୍ପଳମୟ—ତ୍ରି. ବିଂ. ନୀଳପଦ୍ମ ସମାଚ୍ଛନ୍ନ, ନୀଳକୁମୁଦଯୁକ୍ତ ।

ନୀଳୋତ୍ପଳୀ—ପୁଂ. ବି. (ନୀଳୋତ୍ପଳ+ଇନ୍) ମଞ୍ଜୁଘୋଷ, ଶିବାଂଶଭେଦ, ଜୈନ ଗୁରୁ ବା ଶିକ୍ଷକ ।

ନୀଳୋଦ—ବି(ବ.ବ୍ରୀ)ନୀଳ ଜଳବିଶିଷ୍ଟ ସାଗର ବା ନଦୀ ।

ନୀଳୋପଳ—ବି. (କ.ଧା) ନୀଳମଣି ।

ନୀବର-ପୁଂ.ବି.ଭିକ୍ଷୁ,ପରିବ୍ରାଜକ,ବାଣିଜ୍ୟ, ବସତି ସ୍ଥାନ, ପଙ୍କ,(କ୍ଲୀ.ବି) ଜଳ ।

ନୀବାକ—ପୁଂ. ବି. ( ନି+ବଚ+ଅ ) ମୂଲ୍ୟାଧିକ୍ୟହେତୁ ଧାନ୍ୟାଦିରେ ଲୋକ ସମୂହର ଆଦରାତିଶୟ୍ୟ, ତୁଳାଧରଣାଧିକ୍ୟ, ନିମନ୍ତ୍ରଣାଦର, (ଅବ୍ୟ) ବଚନନିବୃତ୍ତି ।

ନୀବାର—ପୁଂ. ବି. (ନି+ବୃ+ର୍ମି.ଅ) ତୃଣ ଧାନ୍ୟଭେଦ, ଝରା,ବାଳୁଙ୍ଗାଧାନ ।

ନୀବାରକ—ପୁଂ. ବି. ନୀବାର ଦେଖ ।

ନୀବି—ସ୍ତ୍ରୀ.ବି.(ନି+ବେ+ଣ.ଇ)ପଣ, ବାଜି, ବଣିକମାନଙ୍କର ମୂଳଧନ, ରାଜପୁତ୍ରମାନଙ୍କର ବନ୍ଧକ, ସ୍ତ୍ରୀକଟି ବସ୍ତ୍ର, ବସ୍ତ୍ରମାତ୍ର, ପରିହିତ ବସ୍ତ୍ରର ବାମାଙ୍ଗ ଗ୍ରନ୍ଥି, କଚ୍ଛା, କଟି ବସ୍ତ୍ରଗ୍ରନ୍ଥି,ଖୋସଣୀ ।

ନୀବିବନ୍ଧ—ବି.(ନୀବି+ବନ୍ଧ) ଅଣ୍ଟାରେ ଥିବା ପିନ୍ଧା ଲୁଗାର ଗଣ୍ଠି, କଚ୍ଛମୁଠି ।

ନୀବିଭାର୍ଯ୍ୟ—ତ୍ରି. ବିଂ. ବସ୍ତ୍ରର ମାଳିନ୍ୟ ନିବାରଣ ନିମନ୍ତେ ଉପରସ୍ଥ ଆଚ୍ଛାଦନ ।

ନୀବିମୋକ୍ଷଣ—ବି. (୬ତତ୍) କଚ୍ଛ ମୁଠି ଫିଟାଇବା ।

ନୀବୃତ୍—ପୁଂ. ବି. (ନୀ+ବୃ+କ୍ୱିପ୍) ଜନପଦ, ଦେଶ ।

ନୀବ୍ର—କ୍ଲୀ.ବି. (ନି+ବୃ+କ.ଅ)ଗୃହର ପ୍ରାନ୍ତଭାଗ, ଚକ୍ରଧାରା, ନେମି, ଚନ୍ଦ୍ର, ରେବତୀ ନକ୍ଷତ୍ର, ବନ ।

ନୀଶାର—ପୁଂ. ବି. ( ନି+ଶୃ+ର୍ମି.ଅ ) କମ୍ବଳ, ମଶାରି, ହିମ ଓ ବାୟୁ ନିବାରକ ଆବରଣ ବସ୍ତ୍ର, ପର୍ଦ୍ଦା, କାଣ୍ଡପଟ ।

ନୀଷଦ୍ୱ—ବି. ଅତଚ୍ଚମ, ଜସ୍ତ ।

ନୀହାର—ପୁଂ. ବି. ( ନି+ହୃ+ ର୍ମ.ଅ ) ଘନୀଭୂତ ଶିଶିର,ହିମ, ତୁଷାର,ବରଫ, କୁହୁଡ଼ି ।

ନୀହାରଖଣ୍ଡ—ବି. (୬ତତ୍) ବରଫର ବିଶାଳ ଖଣ୍ଡ ବା ଚକଡ଼ା ।

ନୀହାରିକା—ବି. (ନୀହାର+କ+ଆ) ଯେଉଁ ନକ୍ଷତ୍ରମାନେ ଚକ୍ଷୁର ଗୋଚର ନୁହନ୍ତି, କିନ୍ତୁ ଦୂରବୀକ୍ଷଣ ଯନ୍ତ୍ରରେ ଦେଖିଲେ କୁଜ୍ଝଟିକାବତ୍ ପ୍ରତୀୟମାନ ହୁଅନ୍ତି ।

ନୁ—ଅବ୍ୟ. ବିତର୍କ, ଅପମାନ, ବିକଳ୍ପ, ଅନୁନୟ, ଅତୀତ, ପ୍ରଶ୍ନ, ହେତୁ, ଅପଦେଶ, ଆଦେଶ, ଅନୁତାପ, ସଂଶୟ, ସମ୍ମାନ, ସମ୍ବୋଧନ,(ପୁଂ.ବି)ଅନୁସ୍ୱାର ।

ନୁଆଁଇବା—ଗ୍ରା.କ୍ରି. ନମ୍ରକରିବା, ନତକରିବା, ବଙ୍କାଇବା, ତଳକୁ କରିବା ।

ନୁଆଁଣିଆଁ—ଗ୍ରା.ବିଂ. (ସଂ-ନତ)ଈଷତ୍ ନତ, ଘରର ଛାତର ନିମ୍ନତାଯୋଗୁଁ ମୁଣ୍ଡକୁ ନୁଆଁଇ ଯେ ଘରେ ପଶିବାକୁ ହୁଏ ।

ନୁକ୍‌ସାନ—ଯା.ବି. କ୍ଷତି, ହାନି, ତ୍ରୁଟି ।

ନୁଖୁରା—ଗ୍ରା.ବିଂ. (ସଂ-ରୁକ୍ଷ) ତୈଳହୀନ, ଯହିଁରେ ତେଲ ମିଶି ନଥାଏ ।

ନୁଙ୍ଗୁରା—ଗ୍ରା. ବିଂ. ଅପରିଷ୍କୃତ, ନିନ୍ଦ୍ୟ, ମନ୍ଦ, ଘୃଣ୍ୟ, ଅଳ୍ପଆପୂର୍ଣ୍ଣ ।

ନୁତ—ବି.ବିଂ. (ନୁ+ ର୍ମ.ତ)ସ୍ତୁତ,ପୂଜିତ, ପ୍ରଶଂସିତ, ପ୍ରଣତ ।

ନୁତି—ସ୍ତ୍ରୀ.ବି. (ନୁ+ଭା.ତି)ସ୍ତୁତି,ପ୍ରଶଂସା, ପୂଜା, ପ୍ରଣାମ ।

ନୁନ୍ନ—ବି.ବିଂ. ( ନୁଦ+ ର୍ମ.ତ ) କ୍ଷିପ୍ତ, ପ୍ରେରିତ, ପରିତ୍ୟକ୍ତ, ନିରସ୍ତ,ଛିନ୍ନ ।

ନୁନ୍‌ଚୂନ୍—ପ୍ରା. (ସମ୍ବଲ)ବି. ଗୁଣ୍ଡ,ଗୁଣ୍ଡା ।

ନୁନି—ପ୍ରା. (ସମ୍ବଲ) ସ୍ତ୍ରୀ.ବି. ପରିବାରର ବଡ଼ଝିଅ, ଅବ୍ରାହ୍ମଣ ପରିବାରର ଶ୍ରେଷ୍ଠ କନ୍ୟା, (ଗ୍ରା.ବି) ସ୍ତ୍ରୀମାନଙ୍କ ସ୍ତନ, ଶିଶୁ ବାଳକଙ୍କର ଲିଙ୍ଗ ।

ନୁନୁ—ପ୍ରା. (ସିଂହଭୂମ) ବି. ପୁଅ ।

ନୁର୍—ଯା. ବି. ଜ୍ୟୋତିଃ, ଆଲୋକ, ଦୀପ୍ତି, ଈଶ୍ୱର, ଶ୍ରୀ, ସୌନ୍ଦର୍ଯ୍ୟ ।

ନୁର୍‌ଅଲ୍ଲା—ଯା.ବି.ଐଶ୍ୱରିକ ଜ୍ୟୋତିଃ ।

ନୁହଲେ—ଗ୍ରା.ଅବ୍ୟ.ନୋହିଲେ,ନଚେତ୍ ।

ନୂଆ—ଗ୍ରା. ବିଂ. ( ସଂ-ନବ ) ନୂତନ, ନବଜାତ,ଅଳ୍ପଦିନ ହେଲା ଘଟିଥିବା, ଅଳ୍ପ ବୟସ୍କ, ଟଟକା, (ଗ୍ରା.ବି) ଚଳିତ ବର୍ଷର ପ୍ରଥମ ଉତ୍ପନ୍ନ ଧାନ୍ୟ ।

ନୂଆକଳେବର—ଗ୍ରା. ବି. ବାରବର୍ଷରେ ଥରେ ଦୋଆଷାଢ଼ି ପଡ଼ିଲେ ଶ୍ରୀଜଗନ୍ନାଥାଦି ଠାକୁରଙ୍କ କାଷ୍ଠପ୍ରତିମାର ଘଟ ପରିବର୍ତ୍ତନରୂପ ଉତ୍ସବ ।

ନୂଆଖାଇବା—ଗ୍ରା. କ୍ରି. ବର୍ଷର ପ୍ରଥମ ଆମଦାନୀ ନୂତନ ଧାନର ଗୃହଜାତ ଅନ୍ନ ବା ଚୂଡ଼ା ଆଦି ଦେବତାଙ୍କୁ ପୂଜା କରି ପ୍ରଥମେ ଭୋଜନ କରିବା ।

ନୂଆଖିଆ—ଗ୍ରା. ବି. ନବାନ୍ନ ଭକ୍ଷଣ, ବର୍ଷର ପ୍ରଥମଲବ୍ଧ ଧାନ୍ୟର ଅନ୍ନଭୋଜନ ରୂପ ଗୃହସ୍ଥର ଉତ୍ସବ ବିଶେଷ ।

ନୂଆଗଡ଼—ଗ୍ରା. ବି.ଓଡ଼ିଶାର ଗଡ଼ଜାତ ବିଶେଷ ।

ନୂଆପାକ—ଗ୍ରା. ବି. କୌଣସି ଅଶୌଚ ପରେ ପୂର୍ବପାକ ପରିତ୍ୟାଗ ପୂର୍ବକ କରାଯିବା ନୂତନ ପାକ ।

ନୂଆପାଞ୍ଜି—ଗ୍ରା. ବି.ନବବର୍ଷର ପଞ୍ଜିକା ।

ନୂଆପାଣି—ଗ୍ରା.ବି. ନୂତନ ବର୍ଷା ଜଳ ।

ନୂଆବୋହୂ—ଗ୍ରା.ସ୍ତ୍ରୀ.ବି.ନବବଧୂ,ପହିଲିପାଳି ଆସିଥିବା ବୋହୂ ।

ନୂଆଭୁଆ—ଗ୍ରା.ବିଂ. ନୂତନ ଓ ଅନଭିଜ୍ଞ

ନୂତ—ବି. ବିଂ.(ନୂ+ ର୍ମ.ତ)ସ୍ତୁତ,ପୂଜିତ, (ସ୍ତ୍ରୀ) ନୂତା ।

ନୂତନ—ବି. ବିଂ. (ନବ+ତନ)ନୂଆ, ଅଧୁନାତନ, ଅପୂର୍ବ, ଅଦ୍ଭୁତ, ଟଟକା, ସଜ ।

ନୂତନବ୍ରତୀ—ପୁଂ.ବିଂ. ନୂତନ ବ୍ରତଧାରୀ

ନୂତ୍ନ—ବି. ବିଂ.(ନବ+ତ୍ନ)ନୂତନ ଦେଖ

ନୂଦ—ପୁଂ. ବି.(ନୁଦ + ଅ)ଅଶ୍ୱତ୍ଥାକାର ବୃହଦାରୁ ବୃକ୍ଷ ।

ନୂନମ୍—ଅବ୍ୟ. ତର୍କ,ନିଶ୍ଚୟ, ଅର୍ଥନିଶ୍ଚୟ, ଅବଧାରଣ,ସ୍ମରଣ,ବାକ୍ୟପୂରଣ,ଉପେକ୍ଷା

ନୂପୁର—ପୁଂ. ବି. (ନୂ+ପୁ+କ.ଅ) ସ୍ୱନାମଖ୍ୟାତ ପାଦଭୂଷଣ, ନେପୁର, ଘୁଙ୍ଗୁର ଲଗା ପାହୁଡ଼ ।

ନୂପୁରନିକ୍ୱଣ—କ୍ଲୀ. ବି. (୬ତତ୍)ନୂପୁର ଧ୍ୱନି, ନେପୁରର ଶବ୍ଦ ।

ନୂପୁରବାନ୍—ପୁଂ. ବି. (ନୂପୁର+ବତ୍) ନୂପୁରଯୁକ୍ତ (ଚରଣ), ନୂପୁରଯୁକ୍ତମାତ୍ର ।

ନୂର୍—ଯା. ବି. ଆଲୋକ, ଜ୍ୟୋତିଃ ।

ନୂରଜାହାନ—ଯା. ବି. ଭାରତବର୍ଷର ମୋଗଲ ସମ୍ରାଟ ଜାହାଙ୍ଗିରଙ୍କ ପ୍ରିୟତମା ମହିଷୀ, ପାଟରାଣୀ ।

ନୃ—ପୁଂ. ବି. (ନୀ+ଋ) ନର, ମନୁଷ୍ୟ, ପୁରୁଷ, (ବିଂ) ନେତା, (ପୁଂ.ବି)ଶଙ୍କୁ ।

ନୃକପାଲ—କ୍ଲୀ.ବି.(୬ତତ୍)ନରକପାଳ, ଶୀର୍ଷାସ୍ଥି, ନରମୁଣ୍ଡର ଖପୁରି ।

ନୃକୁକୁର—ପୁଂ.ବି.କୁକୁର ସଦୃଶ ବ୍ୟବହାରବିଶିଷ୍ଟ ମନୁଷ୍ୟ ।

ନୃକେଶରୀ—ପୁଂ. ବି. (ନୃ+କେଶର+ଇନ୍) ନରସିଂହାବତାର, ନୃସିଂହରୂପ ବିଷ୍ଣୁ ।

ନୃଗ—ପୁଂ. ବି. ( ନୃ+ଗମ୍+କ.ଅ ) ସୂର୍ଯ୍ୟ ବଂଶୀୟ ନରପତି ବିଶେଷ ।

ନୃଗଧୂମ—ପୁଂ. ବି. ଗୋଟିଏ ତୀର୍ଥ ।

ନୃଗା—ସ୍ତ୍ରୀ. ବି. ଉଶୀନରଙ୍କର ପତ୍ନୀ ଓ ନୃଗରାଜାଙ୍କର ମାତା । [ଘାତକ ।

ନୃଘ୍ନ—ବି. ବିଂ. (ନୃ+ହନ୍+ଅ)ନର-

ନୃଚକ୍ଷାଃ—ପୁଂ.ବି. (ନୃ+ଚକ୍ଷ+କ.ଅସ୍) ରାକ୍ଷସ, ଦେବ, ମନୁଷ୍ୟଦର୍ଶକ ।

ନୃଚକ୍ଷୁସ୍—ପୁଂ. ବି. ସୁନୀଥ ରାଜପୁତ୍ର ।

ନୃଚନ୍ଦ୍ର—ପୁ. ବି. କ୍ଷେତ୍ରନାର ରାଜାଙ୍କର ପୁତ୍ର ।

ନୃଜଗ୍ଧ—ବି. ବିଂ. (ନୃ+ଅଦ୍+କ.ତ) ନରଭକ୍ଷକ, ମନୁଷ୍ୟ ଖାଦକ ।

ନୃଜଳ—କ୍ଲୀ. ବି.(୬ତତ୍)ମନୁଷ୍ୟ ନେତ୍ରଜଳ, ମ.ନର ମୂତ୍ର ।

ନୃଜାତି—ସ୍ତ୍ରୀ.ବି.ନରଜାତି, ମନୁଷ୍ୟଜାତି ।

ନୃଜିତ୍—ବି. ବିଂ. ନାୟକ, ଜେତା, ଏକାହଭେଦ ।

ନୃଢ—ସ୍ତ୍ରୀ. ବି. (ନୃତ+ଭା.ଇ) ନର୍ତ୍ତନ,

ନାଚ, ନାଟ ।
ନୃରୁ—ପୁଂ. ବ. (ନୃତ+କ.ଉ)ନର୍ତ୍ତକ, (ଅଧି.ଉ) ଭୂମି, କୃମି, ଧୈର୍ଯ୍ୟ ।
ନୃରୂ—ତ୍ରି. ବଂ. (ନୃତ+କ.ଉ) ନର୍ତ୍ତକ, ନପୁଂସକ (ବ୍ୟକ୍ତି) ।
ନୃତ୍ତ—କ୍ଲୀ. ବ. (ନୃତ+ଭା.ତ) ନୃତ୍ୟ, ଅଭିନୟ,ନାଟ,(ବଂ-କ.ତ)ନର୍ତ୍ତିନକାରୀ
ନୃତ୍ୟ—କ୍ଲୀ. ବ. (ନୃତ+ଭା.ଯ)ତାମସୀ, ଅଚେତନ ପଦାର୍ଥର କମ୍ପନ,ତାଳମାନ ରସାଶ୍ରୟ ସବିଳାସ ଅଙ୍ଗ ବିକ୍ଷେପ,ନାଚ, ନାଟ, (ଗ୍ରା. ବ) ଲୀଳା, କ୍ରୀଡ଼ା,ଅଙ୍ଗ-ବିକ୍ଷେପ ସହ କଳହ ।
ନୃତ୍ୟକାରକ—ପୁଂ. ବ. ( ନୃତ୍ୟ+କୃ +କ.ଅକ) ନାଟୁଆ, (ବଂ) ନାଚୁଥିବା
ନୃତ୍ୟକାଳୀ—ସ୍ତ୍ରୀ. ବ. ଶକ୍ତିରୂପଭେଦ ।
ନୃତ୍ୟକୀ—ସ୍ତ୍ରୀ. ବ. ( ନୃତ୍ୟ+କ+ଈ ) ନର୍ତ୍ତକୀ ।
ନୃତ୍ୟପର—ବଂ. (୬ତତ୍ର) ନର୍ତ୍ତନଶୀଳ, ନାଚୁଥିବା, (ସ୍ତ୍ରୀ) ନୃତ୍ୟପରା ।
ନୃତ୍ୟପ୍ରିୟ—ତ୍ରି.ବଂ. (ବ.ବ୍ରୀ)ନର୍ତ୍ତନାନୁରାଗୀ, ଯେ ନାଚିବାକୁ ଭଲପାଏ, (ପୁଂ. ବ) ତାଣ୍ଡବପ୍ରିୟ ମହାଦେବ ।
ନୃତ୍ୟବିଦ୍ୟା—ବି. ( ନୃତ୍ୟ+ବିଦ୍ୟା ) ନାଚିବା ବିଦ୍ୟା ।
ନୃତ୍ୟଶାଳା—ସ୍ତ୍ରୀ. ବ. (୬ତତ୍ର) ନାଟ୍ୟ-ଗୃହ. ନାଟଘର, ରଙ୍ଗମଞ୍ଚ ।
ନୃତ୍ୟସ୍ଥାନ—କ୍ଲୀ. ବ. (୬ତତ୍ର) ନୃତ୍ୟର ସ୍ଥାନ, ରଙ୍ଗଭୂମି, ନୃତ୍ୟାଧିକରଣ, ନାଟଘର । [ ଦେଖ ।
ନୃତ୍ୟାଗାର—ବ. (୬ତତ୍ର) ନୃତ୍ୟଶାଳା
ନୃତ୍ୟେଶ୍ୱର-ପୁଂ.ବ.ମହାଭୈରବଭେଦ ।
ନୃଦୁର୍ଗ—ବ.(କ.ଧା)ସେନାରଗୃହପାଖେ ଘେରଥିବା ମନୁଷ୍ୟରୂପ ଦୁର୍ଗ ।
ନୃଦେବ—ପୁଂ. ବ. ( ୬ତତ୍ର ) ରାଜା, ନରଦେବ, ବ୍ରାହ୍ମଣ ।
ନୃଧର୍ମ—ପୁଂ. ବ. (ବ.ବ୍ରୀ) କୁବେର, (ବଂ) ନରଧର୍ମଯୁକ୍ତ । [ ଶୋଧିତ ।
ନୃଧୃତ—ତ୍ରି. ବଂ. ମନୁଷ୍ୟ କର୍ତ୍ତୃକ
ନୃନମନ—କ୍ଲୀ. ବ. ମନୁଷ୍ୟ ନମନୀୟ ଦେବାଦି ।
ନୃପ—ପୁଂ. ବ.(ନୃପ+ପା+କ.ଅ)ନର-ପତି, ରାଜା, କୁବେର ।
ନୃପକନ୍ଦ—ପୁଂ.ବ. ରାଜପଲାଣ୍ଡୁ,ପିଆଜ ।
ନୃପଗୃହ—କ୍ଲୀ. ବ. ରାଜମନ୍ଦିର ।
ନୃପଞ୍ଜୟ—ପୁଂ.ବ.ପୌରବ ନୃପଭେଦ ।
ନୃପତି—ପୁଂ. ବ. ( ନୃ+ପା+ଅତି ) ରାଜା, ନରପତି, କୁବେର ।
ନୃପତିବଲ୍ଲଭ—ପୁଂ. ବ. ବଟିକାତ୍ମକ ଚକ୍ରଦତ୍ତୋକ୍ତ ଔଷଧ ଭେଦ ।
ନୃପତ୍ନୀ—ସ୍ତ୍ରୀ.ବ.ମନୁଷ୍ୟମାନଙ୍କର ପାଳୟିତ୍ରୀ ସ୍ତ୍ରୀ, ଯେଉଁ ସ୍ତ୍ରୀମାନେ ମନୁଷ୍ୟମାନଙ୍କୁ ପାଳନ କରନ୍ତି ।
ନୃପତ୍ୱ—କ୍ଲୀ.ବ.ରାଜତ୍ୱ, ରାଜାଙ୍କ କାର୍ଯ୍ୟ ।
ନୃପଦ୍ରୁମ—ପୁଂ.ବ. ଆରଗ୍ୱଧ, ସୁନାରି ଗଛ, ରାଜାଦନୀ ବୃକ୍ଷ ।
ନୃପପ୍ରିୟ—ପୁଂ. ବ. (୬ତତ୍ର) ରାଜାଙ୍କ ପ୍ରିୟ, ରାଜପଲାଣ୍ଡୁ, ଲାଲପିଆଜ, ରାମଶର ବୃକ୍ଷ, ସରୁଧାନ, ଆମ୍ରବୃକ୍ଷ, ରାଜଶୁକପକ୍ଷୀ,ନାହାକା ଶୁଆ, ବଂ. ରାଜବଲ୍ଲଭ, ରାଜାଙ୍କର ପ୍ରିୟମାତ୍ର ।
ନୃପପ୍ରିୟଫଳା—ସ୍ତ୍ରୀ.ବ. ବାର୍ତ୍ତାକୀ,ବାଇଗଣ । [ ନରକୋଳି ।
ନୃପବଦର—ପୁଂ.ବ.ନାରିକେଳକୋଳି,
ନୃପପ୍ରିୟା—ସ୍ତ୍ରୀ. ବ. କେତକୀ,କିଆଫୁଲ, ରାଜଖର୍ଜୁରୀ । [ପ୍ରାସାଦ ।
ନୃପମନ୍ଦିର—କ୍ଲୀ. ବ. ରାଜଗୃହ, ସୌଧ,
ନୃପମାଙ୍ଗଲ୍ୟକ—ଆହୁଲ ବୃକ୍ଷ, କାଶ୍ମୀର ଦେଶରେ ତରବଟ ବୋଲି କହନ୍ତି ।
ନୃପମାନ—କ୍ଲୀ.ବ.ରାଜାମାନଙ୍କରଭୋଜନ ସମୟରେ ବଜାଯାଉଥିବା ଏକପ୍ରକାର ବାଜା ।
ନୃପଲକ୍ଷ୍ମ—କ୍ଲୀ. ବ. (୬ତତ୍ର) ରାଜଚିହ୍ନ, ଛତ୍ର ଚାମରାଦି ନୃପଲିଙ୍ଗ ।
ନୃପଲିଙ୍ଗଧର—ପୁଂ.ବଂ.ନୃପବେଶଧାରୀ ।
ନୃପବଲ୍ଲଭ—କ୍ଲୀ.ବ.ଚକ୍ରଦତ୍ତୋକ୍ତପକ୍ୱଘୃତ ଓ ତୈଳ ବିଶେଷ, (ପୁଂ.ବ) ରାଜାମ୍ର-ବୃକ୍ଷ, (ବଂ) ରାଜପ୍ରିୟ ମାତ୍ର ।
ନୃପବୃକ୍ଷ--ପୁଂ.ବ. ରାଜବୃକ୍ଷ,ସୁନାରିଗଛ ।
ନୃପଶୁ—ପୁଂ. ବ. ନରପଶୁ,ମୂର୍ଖ ।
ନୃପଶାର୍ଦ୍ଦୂଳ—ପୁଂ. ବ. ରାଜଶାର୍ଦ୍ଦୂଳ, ରାଜଶ୍ରେଷ୍ଠ ।
ନୃପଶାସନ--କ୍ଲୀ.ବ.(୬ତତ୍ର)ରାଜ୍ୟଶାସନ, ରାଜାଙ୍କ ଶାସନ ।
ନୃପସଭ—କ୍ଲୀ.ବ. ନୃପମାନଙ୍କର ସଭା ।
ନୃପସୁତା—ସ୍ତ୍ରୀ. ବ. (୬ତତ୍ର)ରାଜକନ୍ୟା; ଛୁଚୁନ୍ଦରୀ, ଚୁଚୁନ୍ଦରୀ ।
ନୃପାଂଶ—ପୁଂ. ବ.(କ.ଧା)ରାଜାଙ୍କୁ ଦେୟ ଷଷ୍ଠାଂଶ ରୂପ ଭାଗ,ରାଜପୁତ୍ର ।
ନୃପାକୃଷ୍ଟ—ପୁଂ. ବ. ଚତୁରଙ୍ଗ ପ୍ରଭୃତି ଖେଳିବା ପାଇଁ ଆକୃଷ୍ଟ ରାଜା, କ୍ରୀଡ଼ା ନିମିତ୍ତ ରାଜ କର୍ତ୍ତୃକ ଆକୃଷ୍ଟ ରାଜା ।
ନୃପାଙ୍ଗଣ—କ୍ଲୀ. ବ.(୬ତତ୍ର)ରାଜବାଟୀର ପ୍ରାଙ୍ଗଣ ।
ନୃପାଣ—-ବଂ. କର୍ମ ନେତାର ପାନ-ଯୋଗ୍ୟ, (ପୁଂ. ବ) ଦେବମାନଙ୍କର ପାନ ସାଧନ ।
ନୃପାତା—ପୁଂ. ବ. ମନୁଷ୍ୟମାନଙ୍କର ସର୍ବଦା ରକ୍ଷକ ।
ନୃପାତ୍ମଜ—ପୁଂ. ବ. ( ନୃପ+ଆତ୍ମଜ ) ରାଜପୁତ୍ର ।
ନୃପାତ୍ମଜା—ସ୍ତ୍ରୀ. ବ. ( ନୃପାତ୍ମଜ+ଆ ) ରାଜକନ୍ୟା, କଟୁତୁମ୍ବୀ ।
ନୃପାଧ୍ୱର—ପୁଂ. ବ. ରାଜସୂୟ ଯଜ୍ଞ ।
ନୃପାନୁଚର—ପୁଂ. ବ. ରାଜଭୃତ୍ୟ ।
ନୃପାନ୍ନ—କ୍ଲୀ.ବ.ରାଜାନ୍ନ ନାମକ ଧାନ୍ୟ-ଭେଦ, (୬ତତ୍ର)ନୃପଙ୍କ ଅନ୍ନ ।
ନୃପାନ୍ୟତ୍ୱ—କ୍ଲୀ. ବ. ରାଜ ପରିବର୍ତ୍ତନ ।
ନୃପାଭୀର—କ୍ଲୀ.ବ. (ନୃପ+ଆଭ+ଈର +ଅ)ରାଜାମାନଙ୍କର ଭୋଜନ କାଳୀନ ବାଦ୍ୟ ।
ନୃପାମୟ—ପୁଂ.ବ.ରାଜଯକ୍ଷ୍ମା, କ୍ଷୟରୋଗ, (୬ତତ୍ର) ନୃପଙ୍କର ପୀଡ଼ା ।
ନୃପାଯ୍ୟ—ବ. ଦେବତାମାନଙ୍କର ପାନ-ଯୋଗ୍ୟ ସୋମ ।
ନୃପାଳ—ପୁଂ. ବ. (ନୃ+ପାଳ+ଅ) ନୃପତି, ରାଜା ।
ନୃପାଳୟ—ପୁଂ. ବ. ରାଜପ୍ରାସାଦ ।

ନୃପାବର୍ତ୍ତ—କ୍ଳୀ. ବି. (ନୃପ+ଆ+ବୃତ +ଅ) ରାଜାବର୍ତ୍ତ ରତ୍ନ,ମଣିବିଶେଷ ।

ନୃପାସନ—କ୍ଳୀ. ବି. (୬ତତ୍) ରାଜାସନ, ସିଂହାସନ । [ ରାଜପ୍ରତିଷ୍ଠା ।

ନୃପାସ୍ପଦ—କ୍ଳୀ.ବି. (୬ତତ୍) ରାଜସ୍ଥାନ,

ନୃପାହ୍ୱୟ—ପୁଂ. ବି. (ନୃପ+ଆ+ହ୍ୱେ +ଅ) ରାଜପଲାଣ୍ଡୁ, ଲାଲ ପିଆଜ, ନୃପସଙ୍କ୍ଷକ ।

ନୃପୀଟ—କ୍ଳୀ. ବି. ଉଦକ, ଜଳ ।

ନୃପୀତି—ସ୍ତ୍ରୀ.ବି. (ନୃ+ପା+ତି) ମନୁଷ୍ୟରକ୍ଷଣ, (ବିଂ) ମନୁଷ୍ୟରକ୍ଷକ ।

ନୃପେନ୍ଦ୍ର—ପୁଂ.ବି. (୭ତତ୍) ରାଜଶ୍ରେଷ୍ଠ, ମହାରାଜ, ସମ୍ରାଟ୍ ।

ନୃପୋଚିତ—ପୁଂ. ବି. ରାଜମାଷ, (ବିଂ) ରାଜଯୋଗ୍ୟ ।

ନୃବାହୁ—ପୁଂ. ବି.କର୍ମନେତା, ଋତ୍ୱିକ୍‌ମାନଙ୍କର ବାହୁ, ନରବାହୁ ମାତ୍ର ।

ନୃଭର୍ତ୍ତ୍ର—ପୁଂ.ବି. (୬ତତ୍) ମନୁଷ୍ୟମାନଙ୍କର ରକ୍ଷକ ।

ନୃମ୍ଳୋଜସ୍—ତ୍ରି.ବିଂ. ଆକାଶଜାତ ।

ନୃମଣସ୍—ତ୍ରି ବିଂ. ରକ୍ଷିତବ୍ୟ ଯଜମାନ ପ୍ରତି ଅନୁଗ୍ରହ ବୁଦ୍ଧିଯୁକ୍ତ ଇନ୍ଦ୍ରାଦିଦେବ ।

ନୃମଣା—ସ୍ତ୍ରୀ. ବି. ପ୍ଲକ୍ଷ ଦ୍ୱୀପସ୍ଥିତ ମହାନଦୀଭେଦ ।

ନୃମଣି—ପୁଂ.ବି. ପିଶାଚବିଶେଷ, ନରଶ୍ରେଷ୍ଠ, ନୃପତି, ରାଜା ।

ନୃମାନ୍—ପୁଂ.ବିଂ. ମନୁଷ୍ୟବିଶିଷ୍ଟ,ମାନବ ସମନ୍ୱିତ ।

ନୃମାର—ପୁଂ. ବିଂ. ମନୁଷ୍ୟର ହନ୍ତା (ରାକ୍ଷସ), ଯେଉଁମାନେ ମନୁଷ୍ୟ ମାରନ୍ତି

ନୃମାଂସ—କ୍ଳୀ.ବି. (୬ତତ୍) ମନୁଷ୍ୟମାନଙ୍କର ମାଂସ ।

ନୃମାଦନ—ବି. ( ୬ତତ୍ ) ଋତ୍ୱିକ୍ ଓ ଯଜମାନର ହର୍ଷୋତ୍ପାଦକ ସୋମ ।

ନୃମିଥୁନ—କ୍ଳୀ. ବି. ମନୁଷ୍ୟର ସ୍ତ୍ରୀପୁରୁଷ ଯୁଗ୍ମ, ସ୍ତ୍ରୀ ଓ ପୁରୁଷ । [କପାଳି ।

ନୃମୁଣ୍ଡ—ବି. (୬ତତ୍) ନରମୁଣ୍ଡ, ନର-

ନୃମୁଣ୍ଡମାଳିନୀ—ସ୍ତ୍ରୀ.ବି. କାଳୀ ।

ନୃମେଧ—ପୁଂ. ବି. ( ନୃ+ମିଧ+ଅ ) ନରମେଧ ଯଜ୍ଞ, ଋଷିବି ଶେଷ ।

ନୃଯଜ୍ଞ—ପୁଂ.ବି.(କ.ଧା)ପ୍ରତିଦିନ ଗୃହସ୍ଥମାନଙ୍କର ଅବଶ୍ୟକର୍ତ୍ତବ୍ୟ ପଞ୍ଚଯଜ୍ଞାନ୍ତର୍ଗତ ଅତିଥି ପୂଜନରୂପ ଯଜ୍ଞ ।

ନୃଯୁଗ୍ମ—କ୍ଳୀ. ବି. ନୃମିଥୁନ, ସ୍ତ୍ରୀ ପୁରୁଷ ମିଥୁନ । [ ଲୋକ ।

ନୃଲୋକ—ପୁଂ. ବି. ନରଲୋକ, ମନୁଷ୍ୟ

ନୃବରାହ—ପୁଂ. ବି. ବରାହରୂପଧାରୀ ଭଗବାନ୍ ।

ନୃବାନ୍—ପୁଂ.ବିଂ. ( ନୃ+ବତ୍ ) ପରିଚାରରେ ନିଯୁକ୍ତ ।

ନୃବାହନ—ପୁଂ.ବି. କୁବେର ।

ନୃବେଷ୍ଟନ—ବିଂ. ( ଉ.ସ୍ରା ) ମନୁଷ୍ୟବେଷ୍ଟିତ, (ପୁଂ.ବି) ମହାଦେବ ।

ନୃଶଂସ—ତ୍ରି.ବିଂ. ( ନୃ+ଶନ୍‌ସ+ଅ ) କ୍ରୂର, ପରଦ୍ରୋହୀ, ନିଷ୍ଠୁର ।

ନୃଶଂସତା—ସ୍ତ୍ରୀ.ବି. (ନୃଶଂସ+ତ+ଆ) କ୍ରୂରତା, ନିର୍ଦ୍ଦୟତା ।

ନୃଶଂସବାନ୍—ପୁଂ.ବିଂ.(ନୃଶଂସ+ବତ୍) ପାପକର୍ମୀ, କ୍ରୂରକର୍ମୀ ।

ନୃଶୃଙ୍ଗ—କ୍ଳୀ.ବି. ଅଳୀକପଦାର୍ଥ, ମନୁଷ୍ୟ ଶୃଙ୍ଗପରି ଅସମ୍ଭବ ବସ୍ତୁ ।

ନୃଷଦ୍—ପୁଂ. ବି. ( ନୃ+ସଦ+କ୍ୱିପ୍ ) ପରମାତ୍ମା କଣ୍ୱ ଋଷିଙ୍କର ପିତୃ ଋଷିଭେଦ, ମନୁଷ୍ୟ ସ୍ଥାୟୀ ।

ନୃଷଦନ—କ୍ଳୀ. ବି.ଯଜ୍ଞଗୃହ,ଯଜ୍ଞଶାଳା ।

ନୃଷଦ୍ମନ—ତ୍ରି.ବିଂ. ମନୁଷ୍ୟେ ଅବସ୍ଥାନକାରୀ ।

ନୃଷା—ତ୍ରି.ବିଂ. ପୁତ୍ରଦାତା ।

ନୃଷାଚ—ତ୍ରି.ବିଂ. ପ୍ରାଣରୂପରେ ମନୁଷ୍ୟମାନଙ୍କୁ ସେବ୍ୟମାନ । [ ସଂଭକ୍ତା ।

ନୃଷାତା—ସ୍ତ୍ରୀ. ବି. ମନୁଷ୍ୟମାନଙ୍କର

ନୃଷାହ—ତ୍ରି.ବିଂ,ଶତ୍ରୁ ମନୁଷ୍ୟମାନଙ୍କର ଅଭିଭବିତା । [ ଭାବୁକ ।

ନୃଷାହ୍ୟ—ତ୍ରି.ବିଂ. ଶତ୍ରୁମାନଙ୍କର ଅଭି-

ନୃଷୂତ—ତ୍ରି.ବିଂ. (ନୃ+ଷୂ+ତ)ସ୍ତୋତୃଗଣକ କର୍ତ୍ତୃକ ପ୍ରେରିତ ।

ନୃସିଂହ—ପୁଂ. ବି. ( ୭ତତ୍ ) ବିଷ୍ଣୁଙ୍କର ଚତୁର୍ଥ ଅବତାର, ଷୋଡ଼ଶ ଋତିଦଣ୍ଡାନ୍ତର୍ଗତ ନବମ ଦଣ୍ଡ, ବିଷ୍ଣୁ,ନରଶ୍ରେଷ୍ଠ ।

ନୃସିଂହଚତୁର୍ଦ୍ଦଶୀ—ସ୍ତ୍ରୀ. ବି. ବୈଶାଖ ମାସର ଶୁକ୍ଳଚତୁର୍ଦ୍ଦଶୀ ।

ନୃସିଂହଜନ୍ମ—ବି. ନୃସିଂହ ଅବତାରରେ ବିଷ୍ଣୁଙ୍କର ପୃଥିବୀରେ ଜନ୍ମ ଗ୍ରହଣ, ନୃସିଂହଚତୁର୍ଦ୍ଦଶୀ । [ ବିଶେଷ ।

ନୃସିଂହତାପନୀୟ—ପୁଂ. ବି. ଉପନିଷଦ୍-

ନୃସିଂହପୁରାଣ—କ୍ଳୀ.ବି.ବିଷ୍ଣୁଙ୍କର ନୃସିଂହ ଅବତାରର ଲୀଳା ବର୍ଣ୍ଣନାତ୍ମକ ଉପପୁରାଣବିଶେଷ ।

ନୃସିଂହପୁର--ଓଡ଼ିଶାନ୍ତର୍ଗତ କଟକ ଜିଲ୍ଲାର ଅଧୀନ ଗୋଟିଏ ସାମନ୍ତରାଜ୍ୟ, ଦାକ୍ଷିଣାତ୍ୟର ବିଜାପୁର ଜିଲ୍ଲାରେ ଗୋଟିଏ ନଗର ।

ନୃସୋମ—ପୁଂ.ବି. "(୭ତତ୍)ନରଶ୍ରେଷ୍ଠ ।

ନୃହରି—ପୁଂ.ବି.(କ.ଧା)ନୃସିଂହାବତାର, ନୃସିଂହରୂପୀ ବିଷ୍ଣୁ ।

ନୃହା—ପୁଂ. ବିଂ. ( ନୃ+ହନ୍+କ୍ୱିପ୍ ) ଶତ୍ରୁହନ୍ତା, ନରଘାତକ ।

ନେ—ପ୍ରା. (କଳାହାଣ୍ଡି)ଅବ୍ୟ. ରେ ।

ନେଆଣ—ଗ୍ରା.ବି. ନିଆଅଣା ଦେଖ ।

ନେଇ—ଗ୍ରା.ଅବ୍ୟ. ବିଷୟରେ,ସମ୍ବନ୍ଧରେ, ସମ୍ପର୍କରେ ।

ନେଇଆଣିଥୋଇବା—ଗ୍ରା. କ୍ରି. କୌଣସି ପଦାର୍ଥକୁ ଯତ୍ନପୂର୍ବକ ନେବାଆଣିବା ଓ ରଖିବା,ସାବଧାନତାସହ କାର୍ଯ୍ୟକରିବା ।

ନେଇଗୁଡିବା—ଗ୍ରା.କ୍ରି. କୌଣସି ସ୍ଥାନକୁ ଚାଲିଯାଉଥିବା ବ୍ୟକ୍ତିଙ୍କୁ ବାଟେଇଦେବା, ବାଟ ବଳେଇଦେବା ।

ନେଉଆର୍—ଯା.ବି. ଲେବାର, ସୂତାର ମୋଟ ଓ ଚୌଡ଼ା ଫିତା, ନେପାଳର ଆଦିମ ଅଧିବାସୀଗଣ ।

ନେଉଳ—ଗ୍ରା.ବି. (ସଂ-ନକୁଳ)ସର୍ପନାଶକ, ବଳେଶୟ ଚତୁଷ୍ପଦ ଜନ୍ତୁବିଶେଷ, ନେଉଳ ।

ନେଉଳମୁହାଁ—ଗ୍ରା. ବିଂ. ଯେଉଁ ବଳଦ ଶଗଡ଼ ବା ହଳରେ ମୁଣ୍ଡ ତଳକୁ ପୋତି ଚାଲେ ।

ନେଉଳୀ—ସ୍ତ୍ରୀ.ବି. ହଠଯୋଗବିଶେଷ ।

ନେକ୍—ଯା.ବିଂ. ଶୁଭ, ସଦାଚରଣବିଶିଷ୍ଟ, ଦୋଷଶୂନ୍ୟ, ପବିତ୍ର ।
ନେକ୍‌ଟାଇ—ଯା. ବି. ସାହେବଙ୍କ କମିଜ ଉପରେ ବେକ ଗୁହପାଶେ ବନ୍ଧାହେବା ଲମ୍ବ ସରୁଆ କନା.ଗଳାବନ୍ଧ ।
ନେକ୍‌ନଜର୍—ଯା.ବି. ସଦୟଦୃଷ୍ଟି, ଶୁଭଦୃଷ୍ଟି ।
ନେକ୍‌ନାମ୍—ଯା. ବିଂ. ଗୌରବାନ୍ୱିତ, ସୁଖ୍ୟାତିଯୁକ୍ତ, ଯଶସ୍ୱୀ, ବିଖ୍ୟାତ ।
ନେକ୍‌ନାମୀ—ଯା.ବି. ସୁଖ୍ୟାତି, ସୁଯଶଃ, ସୁନାମ, ବାହାଦୁର, ପ୍ରଶଂସା ।
ନେକଡ଼ାବାଘ—ଗ୍ରା. ବି. ଏକପ୍ରକାର କ୍ଷୁଦ୍ର ଜାତୀୟ ବ୍ୟାଘ୍ର ।
ନେକି—ଯା.ବି. ଭଲପଣ, ସୁନାମ ।
ନେକିବଦି—ଯା. ବି. ପ୍ରଶଂସା ଓ ନିନ୍ଦା, ଦାୟିତ୍ୱ, ହିତ ଓ ଅହିତ ।
ନେଖରା—ଯା. ବି. ଚାଲାକି, ଅଟା, ରସିକତା, ଛଳ, କପଟ ।
ନେଗି—ପ୍ରା. (ସମ୍ବଲ)ବି. କରମା ।
ନେଙ୍ଗଡ଼ା—ଗ୍ରା. ବିଂ. ଲେଙ୍ଗଟା, ଖଞ୍ଜ, ଲେଙ୍ଗଡ଼ା ।
ନେଜକ--ପୁଂ.ବି.(ନିଜ+କ.ଅକ) ରଜକ. ଧୋବା,(ପୁଂ.ବିଂ)ଶୋଧକ,ପରିଷ୍କାରକ ।
ନେଜନ—କ୍ଲୀ.ବି. ( ନିଜ+ଅଧି.ଅନ ) ରଜକାଳୟ, ଧୋବାଘର,ଧୋବାତୁଠ, (ଭା.ଅନ) ଧୋଇବା, ଚୁପୁଡ଼ିବା, ପରିଷ୍କରଣ, ଶୋଧନ । [ ବରଗୁ ।
ନେଜା—ଯା. ବି. ଅସ୍ତ୍ରବିଶେଷ, ଭଲ୍ଲ,
ନେଜାମତ୍—ଯା. ବି. ନବାବ ନାଜିମଙ୍କ ସମ୍ପତ୍ତି ।
ନେଣ୍‌ଦେଣ—ଗ୍ରା.ବି. ନେବା ଓ ଦେବା. ନିଆଦିଆ, ବ୍ୟବସାୟ ଗତ ଅଦଳ ବଦଳ; ବାଣିଜ୍ୟ ବ୍ୟବସାୟ କାରବାର, ବିକିଖରିଦ, ପାଉଣା ଦେଣା ।
ନେତ୍(ଦ୍)—ଅବ୍ୟ. (ନ+ଚିତ୍) ଶଙ୍କା, ପ୍ରତିଷେଧ, ସମୁଚ୍ଚୟ ।
ନେତ--ଗ୍ରା.ବି. (ସଂ-ନେତ୍ର) ଏକପ୍ରକାର ସୂକ୍ଷ୍ମ ପଟ୍ଟବସ୍ତ୍ର,ଅଂଶୁକ, ପତାକା, ଗୁଣ୍ଡିଚା ଯାତ୍ରାର ପୂର୍ବଦିନ ହେବା ଉତ୍ସବ ବିଶେଷ, ନେତୋତ୍ସବ ।
ନେତବ୍ୟ—ବି.ବିଂ. (ନୀ+ତବ୍ୟ)ଗ୍ରହଣୀୟ, ପ୍ରାପଣୀୟ ।
ନେତା—ପୁଂ.ବି.(ନୀ+କ.ତୃ) ନାୟକ, ପଶୁଚାଳକ ବ୍ୟକ୍ତି, ସ୍ୱାମୀ, ପ୍ରଭୁ,ସର୍ଦ୍ଦାର. ନିମଗଛ, ବିଷ୍ଣୁଙ୍କର ଏକ ନାମ, (ବିଂ) ଯେ ନିଏ, ପଥ ପ୍ରଦର୍ଶକ, ପ୍ରେରକ, ପ୍ରାପକ, କାର୍ଯ୍ୟନିର୍ବାହକ ।
ନେତି—ପୁଂ.ବିଂହଠଯୋଗଭେଦ,ଈଶ୍ୱର, ପରଂବ୍ରହ୍ମ ।
ନେତିଯୋଗ—ପୁଂ.ବି.ହଠଯୋଗଭେଦ ।
ନେତି(ତ୍ତି)ଧୋ(ଧୌ) ତି (ତ୍ତି)—ଗ୍ରା. ବି. ହଠ ଯୋଗସାଧନର ପ୍ରକ୍ରିୟାବିଶେଷ, ଖଣ୍ଡିଏ ସରୁ ଲମ୍ବାକନା ପେଟରେ ଭରତିକରି ଅନ୍ତ ସଫା କରିବାର ଯୌଗିକ ପ୍ରଣାଳୀ ।
ନେତୃତ୍ୱ—କ୍ଲୀ.ବି. ନାୟକତା, ଅଧକ୍ଷତା, ତତ୍ତ୍ୱାବଧାରଣ ।
ନେତୃମାନ୍—ପୁଂ. ବିଂ. ନେତୃଯୁକ୍ତ,ଅଗ୍ନି ଆନୟନକାରୀ ।
ନେତ୍ର—କ୍ଲୀ. ବି. ( ନୀ+ଣ.ତ୍ର ) ଚକ୍ଷୁ, ନୟନ, ମନ୍ଥନଦାମ, ବସ୍ତ୍ରଭେଦ, ବୃକ୍ଷମୂଳ, ରଥ, ଜଟା, ନାଡ଼ୀ, ପ୍ରାପୟିତା, ନୟନ ସାଧନ, ବସ୍ତିଶଲାକା, ପଥ, ଚକ୍ଷୁର ଗୋଲକ , ବହ୍ନିଦେବତାଙ୍କ ତୈଜସ ଇନ୍ଦ୍ରିୟଭେଦ, ( ପୁଂ. ବି ) ହୈହୟନୃପ ପୁତ୍ରଭେଦ, ଦ୍ୱିସଂଖ୍ୟା, (ବିଂ) ପ୍ରବର୍ତ୍ତକ, ପଥ ପ୍ରଦର୍ଶକ,ଚାଳକ, ପ୍ରେରକ, ପ୍ରାପକ, ରକ୍ଷକ । [ ତାରା ।
ନେତ୍ରକନୀନିକା—ସ୍ତ୍ରୀ.ବି. (୬ତତ୍)ଚକ୍ଷୁର
ନେତ୍ରକୋଣ—ବି. ( ୬ତତ୍ ) ନାକକୁ ଲାଗିଥିବା ଆଖିର ଶେଷଭାଗ ।
ନେତ୍ରକୋଷ—ପୁଂ.ବି. (୬ତତ୍)ନେତ୍ରପଟଳ ।
ନେତ୍ରଗତ—ବିଂ. ନେତ୍ରଗୋଚର ଦେଖ, ଆଖିରେ ପଡିଥିବା ।
ନେତ୍ରଗୋଚର—ବିଂ. (୭ତତ୍) ଦୃଷ୍ଟିଗୋଚର, ଦେଖାଯାଉଥିବା ।
ନେତ୍ରଗୋଳକ—ବି. (୬ତତ୍) ଆଖିର ତୋଳା, (ବି.ଗ୍ରା) ବରଡ଼ା ।
ନେତ୍ରଚ୍ଛଦ—ପୁଂ. ବି. ନେତ୍ରପିଧାୟକ ଚର୍ମପୁଟ, ଚକ୍ଷୁପକ୍ଷ୍ମ, ଆଖିପତା ।
ନେତ୍ରଜ—ବି.ବିଂ. (ନେତ୍ର+ଜନ+ଅ) ନେତ୍ରଜାତ, (ବି) ଚକ୍ଷୁର ଜଳ,ଲୋତକ, ଅଶ୍ରୁ । [ ଲୁହ ।
ନେତ୍ରଜଳ—କ୍ଲୀ. ବି. ଅଶ୍ରୁ, ଲୋତକ,
ନେତ୍ରତା—ସ୍ତ୍ରୀ. ବି. (ନେତ୍ର+ତ+ଆ) ନେତ୍ରର ଭାବ ଓ ଧର୍ମ ।
ନେତ୍ରତାରା—ବି. (୬ତତ୍) ନୟନତାରା ଦେଖ ।
ନେତ୍ରନାଡ଼ୀ—ବି. ଚକ୍ଷୁରୋଗବିଶେଷ ।
ନେତ୍ରପଥ—ବି. (୬ତତ୍) ନୟନପଥ ଦେଖ ।
ନେତ୍ରପର୍ଯ୍ୟନ୍ତ—ପୁଂ.ବି. ଅପାଙ୍ଗ,ଚକ୍ଷୁର କୋଣ, (ବିଂ) ନେତ୍ରାବଧିକ ।
ନେତ୍ରପାକ—ପୁଂ.ବି. ନେତ୍ରରୋଗଭେଦ ।
ନେତ୍ରପାତ—ବି. (୬ତତ୍) ଦୃଷ୍ଟିପାତ ।
ନେତ୍ରପିଣ୍ଡ—ପୁଂ. ବି. ବିଡ଼ାଲ, ( ସ୍ତ୍ରୀ ) ନେତ୍ରପିଣ୍ଡୀ, (କ୍ଲୀ.ବି) ନେତ୍ରଗୋଲକ ।
ନେତ୍ରପୁଷ୍କରା—ସ୍ତ୍ରୀ.ବି. ରୁଦ୍ରଜଟା ଲତା ।
ନେତ୍ରପ୍ରବନ୍ଧନ—ପୁଂ.ବି. (ନେତ୍ର+ପ୍ର+ବନ୍ଧ+ଣ.ଅନ) ନେତ୍ରପୁଟ ।
ନେତ୍ରପ୍ରସାଧନକର୍ମ—କ୍ଲୀ. ବି. ଚକ୍ଷୁର ପ୍ରସାଧନ କାର୍ଯ୍ୟବିଶେଷ (କଜ୍ଜଳାଦି) ।
ନେତ୍ରପ୍ରାନ୍ତ—ବି. (୬ତତ୍) ନୟନୋପ୍ରାନ୍ତ, ଆଖିଲଞ୍ଜି । [ବୁଜି ଖେଳ ।
ନେତ୍ରବନ୍ଧ—ପୁଂ.ବି.(୬ତତ୍)ଆଖି ବୁଜା-
ନେତ୍ରମଣି—ବି. (୬ତତ୍) ଚକ୍ଷୁର ତାରା ।
ନେତ୍ରମଳ—କ୍ଲୀ. ବି. (୬ତତ୍) ଚକ୍ଷୁମଳ, ଲେନ୍ଧେର ।
ନେତ୍ରମାର୍ଗ—ବି. ନେତ୍ର ଗୋଲକକୁ ମସ୍ତିଷ୍କ ସଙ୍ଗେ ସଂଯୁକ୍ତ କରିଥିବା ସୂତ୍ର, ନୟନପଥ ଦେଖ ।
ନେତ୍ରମୀନା—ସ୍ତ୍ରୀ.ବି. ଯବତିକ୍ତା ଲତା ।
ନେତ୍ରମୁଷ—ବି. ବିଂ. (ନେତ୍ର+ମୁଷ+କ୍ୱିପ୍) ଦୃଷ୍ଟିର ଉପଘାତକ, ଦୃଷ୍ଟିପ୍ରଚାର ନାଶକ ।
ନେତ୍ରଯୋନି—ପୁଂ.ବି.(ବେ.ଗ୍ରା)ଇନ୍ଦ୍ର,ଚନ୍ଦ୍ର,

ନେତ୍ରରଞ୍ଜନ—କ୍ଲୀ. ବି. (ନେତ୍ର+ରଞ୍ଜି ଣି.ଅନ)କଜ୍ଜ୍ୱଳ,ଅଞ୍ଜନ, (ବି°) ନୟନ-ପ୍ରୀତିକର ।

ନେତ୍ରରୁଜ୍—ସ୍ତ୍ରୀ. ବି. (ନେତ୍ର+ରୁଜ୍+କ୍ୱିପ୍) ନେତ୍ରପୀଡ଼ା, ନେତ୍ରରୋଗ ।

ନେତ୍ରରୋଗ—ପୁଂ. ବି. (୬ତତ୍) ଚକ୍ଷୁଃ ପୀଡ଼ା, ଚକ୍ଷୁରୋଗ ।

ନେତ୍ରରୋଗହା—ପୁଂ.ବି(ନେତ୍ର+ରୋଗ +ହନ୍+କ୍ୱିପ୍) ବନ୍ଧୁଆତିଲତା ।

ନେତ୍ରରୋମ—କ୍ଲୀ. ବି. ନେତ୍ରପକ୍ଷ୍ମ ।

ନେତ୍ରବସ୍ତ୍ର—କ୍ଲୀ.ବି.(୬ତତ୍) ନେତ୍ରଚ୍ଛଦ, ଆଖିପତା । [ ବିଶେଷ ।

ନେତ୍ରବସ୍ତି—ବି. ପିଚକାରୀ ପରି ଯନ୍ତ୍ର-

ନେତ୍ରବାରି—କ୍ଲୀ.ବି.(୬ତତ୍) ଅଶ୍ରୁଜଳ, ଲୋତକ, ଲୁହ ।

ନେତ୍ରବିଟ୍—ସ୍ତ୍ରୀ.ବି.ଚକ୍ଷୁମଳ,ଲେନ୍ଧେରା ।

ନେତ୍ରବିମୋହନ—ବି°.(୬ତତ୍)ନୟନ-ମୁଗ୍ଧକାରୀ, ଚକ୍ଷୁର ପ୍ରୀତିପ୍ରଦ ।

ନେତ୍ରବିଷ—ପୁଂ.ବି.ଦିବ୍ୟ ସର୍ପବିଶେଷ ।

ନେତ୍ରସ୍ତମ୍ଭ—ପୁଂ.ବି(୬ତତ୍) ଚକ୍ଷୁଦ୍ୱୟର ଉନ୍ମୀଳନାଦି ବ୍ୟାପାରରାହିତ୍ୟ, ଆଖିର ପଲକ ପଡ଼ିବା ବନ୍ଦହେବା ।

ନେତ୍ରସ୍ରାବ—ବି. (୬ତତ୍) ଆଖିରୁ ପାଣି ବୋହିବା ।

ନେତ୍ରାଞ୍ଚଳ—ବି. (୬ତତ୍) ନେତ୍ର ପ୍ରାନ୍ତ ଓ କାନର ମଧ୍ୟବର୍ତ୍ତୀ ଅଂଶ ।

ନେତ୍ରାଞ୍ଜନ—କ୍ଲୀ. ବି. କଜ୍ଜଳ, ଶୁର୍ମା, ନେତ୍ରଲେପ ମାତ୍ର । [ କର ।

ନେତ୍ରାନନ୍ଦ—ବି° (ବି.ଗ୍ରା) ନେତ୍ର ପ୍ରୀତି-

ନେତ୍ରାନ୍ତ—ପୁଂ ବି. (୬ତତ୍) ଅପାଙ୍ଗ-ଦେଶ ।

ନେତ୍ରାଭିଷ୍ୟନ୍ଦ—ପୁଂ.ବି(୬ତତ୍) ନେତ୍ର-ରୋଗଭେଦ, ଆଖିଧରା ରୋଗ ।

ନେତ୍ରାମୟ—ପୁଂ.ବି.(୬ତତ୍)ଚକ୍ଷୁରୋଗ

ନେତ୍ରାମ୍ବୁ—କ୍ଲୀ.ବି.(୬ତତ୍) ଅଶ୍ରୁ, ଚକ୍ଷୁ-ଜଳ,ଲୋତକ । [ ଲୋତକ ।

ନେତ୍ରାମ୍ଭଃ—କ୍ଲୀ. ବି. ( ୬ତତ୍ ) ଅଶ୍ରୁ,

ନେତ୍ରାରି—ପୁଂ.ବି.(ନେତ୍ର+ଅରି)ହିଜ୍ଜୁ-ଗଛ ।

ନେତ୍ରାବତୀ—ସ୍ତ୍ରୀ. ବି. ମାନ୍ଦ୍ରାଜ ପ୍ରେସି-ଡେନ୍ସୀର ଦକ୍ଷିଣ କାନଡ଼ା ଜିଲ୍ଲାରେ ପ୍ରବାହିତ ଗୋଟିଏ ନଦୀ ।

ନେତ୍ରିକ—କ୍ଲୀ. ବି. ଏକପ୍ରକାର ଶ୍ରେଷ୍ଠ ପିଚକାରୀ ।

ନେତ୍ରୀ—ସ୍ତ୍ରୀ. ବି. (ନୀ+ତ୍ର+ଈ)ଲକ୍ଷ୍ମୀ, ନାଡ଼ୀ, ନଦୀ,ଶିକ୍ଷୟିତ୍ରୀ, ନାରୀ,(ସ୍ତ୍ରୀ.ବି°) ନାୟିକାପରିଚାଳିକା, ପ୍ରାପିକା,ପ୍ରେରିକା

ନେତ୍ରୋତ୍ସବ—ବି.(୬ତତ୍)ଚକ୍ଷୁର ଆନନ୍ଦ ଦାୟକ ବସ୍ତୁ, (ଗ୍ରା.ବି) ରଥଯାତ୍ରାର ପୂର୍ବଦିନ ଜଗନ୍ନାଥ ମହାପ୍ରଭୁଙ୍କର ହେବା ଉତ୍ସବ ।

ନେତ୍ରୋପମଫଳ—ପୁଂ. ବି. ବାଦାମ ।

ନେତ୍ରୌଷଧ—କ୍ଲୀ.ବି.(ନେତ୍ର+ଔଷଧ) ପୁଷ୍ପକାସୀସ, ଚକ୍ଷୁ ରୋଗୌଷଧ ମାତ୍ର ।

ନେତ୍ରୌଷଧୀ—ସ୍ତ୍ରୀ.ବି.(ନେତ୍ର+ଔଷଧୀ) ଅଜଶୃଙ୍ଗୀ ।

ନେତ୍ର୍ୟ—ବି°. (ନେତ୍ର+ଯ) ନେତ୍ରର ହିତକର, ନେତ୍ର ରୋଗର ହିତକର ।

ନେଦିଷ୍ଠ—ତ୍ରି. ବି°. ( ଅନ୍ତିକ+ଇଷ୍ଠ ) ଅନ୍ତିକତମ, ଅତି ନିକଟ, ନିପୁଣ, (ପୁଂ. ବି) ଅଙ୍କୋଲଗଛ ।

ନେଦିଷ୍ଠତମ—ତ୍ରି.ବି°.(ନେଦିଷ୍ଠ+ତମ) ଅତିଶୟ ନିକଟ ।

ନେଦିଷ୍ଠୀ—ପୁଂ. ବି. (ନେଦିଷ୍ଠ+ଇନ୍) ସୋଦର, ଭ୍ରାତା, (ବି°) ନିକଟସ୍ଥ ।

ନେଦୀୟାନ୍—ପୁଂ.ବି°.(ଅନ୍ତିକ+ଇୟସ୍) ଅତି ନିକଟସ୍ଥ, ଅତି ନିକଟ, (ସ୍ତ୍ରୀ) ନେଦୀୟସୀ ।

ନେଦୀୟସ୍ତା—ସ୍ତ୍ରୀ. ବି. (ନେଦୀୟସ୍+ଭା. ତା) ଅତି ସମୀପତା । [ ଉଦକ ।

ନେପ—ପୁଂ. ବି (ନୀ+ପ) ପୁରୋହିତ,

ନେପଚୁନ୍—ଯା. ବି. ନବାବିଷ୍କୃତ ଗ୍ରହ-ବିଶେଷ ।

ନେପଥ୍ୟ—କ୍ଲୀ. ବି. (ନୀ+ପଥ୍ୟ)ବେଶ, ଭୂଷଣ, ବେଶସ୍ଥାନ, ଅଳଂକାର, ରଙ୍ଗ-ଭୂମି ।

ନେପଥ୍ୟବିଧାନ—ବି. ସଭା ଗୃହରେ ଅଭିନେତା ଓ ଅଭିନେତ୍ରୀମାନଙ୍କର ବେଶପରିଧାନ ।

ନେପଥ୍ୟେ—ଅବ୍ୟ. ରଙ୍ଗମଞ୍ଚର ଅନ୍ତ-ରାଳରେ ଅର୍ଥାତ୍ ବେଶ ଗୃହ ମଧ୍ୟରେ ।

ନେପାଳ—ବି. ହିମାଳୟର ପାଦ ପ୍ରଦେ-ଶରେ ଭାରତବର୍ଷାନ୍ତର୍ଗତ ଏକ ସ୍ୱାଧୀନ ରାଜ୍ୟବିଶେଷ ।

ନେପାଳକ—କ୍ଲୀ. ବି. (ନେପାଳ+କ) ନେପାଳ ଦେଶ ।

ନେପାଳଜା—ସ୍ତ୍ରୀ. ବି. (ନେପାଳ+ଜନ +ଅ+ଆ) ନେପାଳ ଜାତା,ମନଃଶିଳା ।

ନେପାଳକମ୍ବଳ—ପୁଂ. ବି. କୁଥାଖ୍ୟ, ଚିତ୍ରକମ୍ବଳ ।

ନେପାଳନିମ୍ବ—ପୁଂ.ବି.ନେପାଳ ଦେଶୋ-ଦ୍ଭବ ନିମ୍ବ, ତିକ୍ତ ତରୁବିଶେଷ ।

ନେପାଳମୂଳକ—କ୍ଲୀ. ବି. ହସ୍ତୀକନ୍ଦ ସଦୃଶ ମୂଳବିଶେଷ ।

ନେପାଳି—ଗ୍ରା. ବି°. ନେପାଳ ଦେଶ-ବାସୀ, ନେପାଳ ଦେଶୀୟ ।

ନେପାଳିକା—ବି. (ନେପାଳ+କ+ଆ) ମନଃଶିଳା । [ ଫୁଲ, ମନଃଶିଳା ।

ନେପାଳୀ—ବି. ନବମାଳିକା, ନଆଳି-

ନେପିଆର୍—( ସାର୍-ଚାର୍ଲସ ଜେମସ୍ ) ଜଣେ ଇଂରାଜ ସେନାଧ୍ୟକ୍ଷ ।

ନେପୁର—ପ୍ରା.(ଗଞ୍ଜାମ)ବି.ଗୁଣ୍ଡୁଚିମୂଷା ।

ନେପୋଲିୟନ(ବୋନାପାର୍ଟ)—ଯା. ବି. ଜଗଦ୍ୱିଖ୍ୟାତ ବୀର; ଖ୍ୟାତନାମା ଫ୍ରାନ୍ସର ସମ୍ରାଟ୍ ।

ନେଫଡ଼ା—ଗ୍ରା.ବି.ବି°.ଲେଫଡ଼ା ଦେଖ ।

ନେବା—ଗ୍ରା.କ୍ରି. ଗ୍ରହଣ କରିବା, ସ୍ଥାନା-ନ୍ତର କରିବା, (ଦିନ ବା କାଳ) କଟା-ଇବା, ସାରିବା, ବଳପୂର୍ବକ ହରଣ କରିବା ।

ନେମ—ପୁଂ. ବି. (ନୀ+ମି.ଅନ) କାଳ, ଅବଧି, ସୀମା, ଖଣ୍ଡ, କାଣ୍ଡ, ପ୍ରାକାର, ଛଳ, କୈତବ, ଅର୍ଦ୍ଧ, ଗର୍ତ୍ତ,ନାଟ୍ୟାଦ୍ଧ, ଅନ୍ୟ, ସାୟଂକାଳ, ମୂଳ,ଅନ୍ନ, ଦିଗର ଉତ୍ତରବର୍ତ୍ତୀ ।

ନେମାଧିତ—ତ୍ରି. ବି°. (ନେମ+ଧା+ କ୍ତ) ଅର୍ଦ୍ଧଆରାଧିତ ଇନ୍ଦ୍ର ।

ନେମାଧିତ—ସ୍ତ୍ରୀ. ବ. ( ନେମ+ଧା+ତ) ଅନ୍ତର୍ଦ୍ଧାନ, ସଂଗ୍ରାମ ।

ନେମାନ୍ତ୍ଷ—ପୁଂ. ବଂ. ନମସ୍କାରପୂର୍ବକ ଗମନକାରୀ ।

ନେମୀ—ସ୍ତ୍ରୀ. ବ.( ନୀ+ଣ.ମି ) ଚକ୍ର-ପରିଧି, ପଟ୍ଟ, ରଥଚକ୍ରର ଭୂମି ସ୍ପର୍ଶୀ-ଭାଗ, କୂପୋପରିସ୍ଥିତ ପଞ୍ଚ ପ୍ରାନ୍ତଭାଗ, ପ୍ରାନ୍ତଭାଗ, ଭୂମିସ୍ଥିତ କୂପପଞ୍ଚ, କୂପ ସମୀପରେ ରଜ୍ଜୁ ଧାରଣାର୍ଥ ତ୍ରିଦାରୁ ଯନ୍ତ୍ର, ତିନିଶ ବୃକ୍ଷ, ବାନ୍ଧଣଗଛ, (ପୁଂ. ବ.) ଜିନବିଶେଷ, ଦୈତ୍ୟବିଶେଷ, (ଅଧି-ମି) ବଜ୍ର, ତୀର୍ଥସ୍ଥାନ ।

ନେମିଚନ୍ଦ୍ର—ପୁଂ. ବ. ପରୀକ୍ଷିତ ବଂଶଜ ଅସୀମ କୃଷ୍ଣଙ୍କ ପୁତ୍ର ।

ନେମୀ—ପୁଂ.ବ. (ନେମ+ଇନ୍)ତିନିଶ ବୃକ୍ଷ, ବାନ୍ଧଣଗଛ ।

ନେୟ—ବି. ବଂ. ନେବାର ଯୋଗ୍ୟ, ଅତିବାହନ । [ ବିଶେଷ ।

ନେୟାର୍ଥତା—ସ୍ତ୍ରୀ. ବ. କାବ୍ୟଦୋଷ-

ନେଳ—ଗ୍ରା. ବ. ନୀଳବର୍ଣ୍ଣ, ନିଳବନ୍ତି, ପାଣିଉପରେ ମାଡ଼ିଥିବା ଏକପ୍ରକାର କ୍ଷୁଦ୍ର ଦଳ ବା ଶିଉଳୀ ।

ନେଳିଆ—ଗ୍ରା. ବଂ. ନୀଳବର୍ଣ୍ଣବିଶିଷ୍ଟ, ଈଷତ୍ ନୀଳ । [ ଲାଷ ।

ନେଶା—ଯା. ବ. ଇଚ୍ଛା,ଆକାଙ୍କ୍ଷା, ଅଭି-

ନେଷ୍ଟ—ବି ବଂ. (ନ+ଇଷ୍ଟ)ଅନିଷ୍ଟ ।

ନେଷ୍ଟୁ—ପୁଂ. ବ. (ନେଶ+ତୁ)ଲୋଷ୍ଟ୍ର. ମାଟି ଢେଲା ।

ନେଷ୍ଟ୍ର—ବି. ବଂ. ନେଷ୍ଟୁ ସମ୍ବନ୍ଧୀ ।

ନେହାଇ—ଯା.ବ. କମାରମାନେ ଯେଉଁ ଲୌହ ଖଣ୍ଡରେ ତପ୍ତ ଲୌହକୁ ପିଟନ୍ତି, ନେହି, ନିହି ।

ନେହୁଡ଼ା(ଡ଼ି)—ଗ୍ରା.ବ.ଆଣ୍ଠୁମାଡ଼ି ବସିବା ।

ନେହୁରା—ଗ୍ରା. ବ. ( ସଂ-ମନୋହରଣ ) ସବିନୟ ପ୍ରାର୍ଥନା, ଗୁହାରି, ଖୋସାମତି, (ଗ୍ରା.ବ)ସବିନୟ ପ୍ରାର୍ଥନାକାରୀ,ସ୍ତାବକ ।

ନୈଃସ୍ୱ—କ୍ଲୀ.ବ.(ନିଃସ୍ୱ+ଅ)ନିର୍ଦ୍ଧନତା ।

ନୈକ—ବି. ବଂ. (ନ+ଏକ) ଅନେକ, ବହୁ, (ପୁଂ.ବ) ବିଷ୍ଣୁ ।

ନୈକଚର—ବି. ବଂ. (ନୈକ+ଚର+ଅ) ଯେ ଦଳବଦ୍ଧ ହୋଇ ରହିବାକୁ ସୁଖପାଏ, ସଂଘୀଭୂତ୍ୱଗୁଣ ।

ନୈକଜ—ପୁଂ.ବ. (ନୈକ+ଜନ+ଅ) ଧର୍ମରକ୍ଷା ନିମନ୍ତେ ଅନେକବାର ଜାୟମାନ, ପରମେଶ୍ୱର ।

ନୈକଟିକ—ବି. ବଂ. (ନିକଟ+ଇକ) ନିକଟବର୍ତ୍ତୀ, ନିକଟସ୍ଥ, ସନ୍ନିହିତ, (ବ) ଗ୍ରାମ ନିକଟସ୍ଥ ଆଶ୍ରମବାସୀ ଋଷି ।

ନୈକଟ୍ୟ—କ୍ଲୀ. ବ. (ନିକଟ+ଯ)ନିକ-ଟତ୍ୱ, ସାମୀପ୍ୟ, ସାନ୍ନିଧ୍ୟ ।

ନୈକଣ୍ଠୀ—ସ୍ତ୍ରୀ.ବ.ଗୋଷ୍ଠୀ, (ବଂ)ଗୋଷ୍ଠୀ-ଭବ । [ ଭେଦ ।

ନୈକଦୃଶ—ପୁଂ.ବ.ବିଶ୍ୱାମିତ୍ରଙ୍କର ପୁତ୍ର-

ନୈକଧା—ଅବ୍ୟ.(ନୈକ+ଧା)ଅନେକ ପ୍ରକାର, ନାନାପ୍ରକାର ।

ନୈକପୃଷ୍ଠ—ପୁଂ.ବ. ରାଜପୁତ୍ରବିଶେଷ ।

ନୈକଭେଦ—ବି.ବଂ.ଉଚ୍ଚାବଚ,ଅନେକ ପ୍ରକାର, ନାନାବିଧ, ଉଚ୍ଚନୀଚ ।

ନୈକମାୟ—ବି. ବଂ. (ବ.ବ୍ରୀ)ଅନେକ କପଟ, ବହୁପ୍ରକାର ମାୟାଯୁକ୍ତ(ପୁଂ.ବ) ପରମେଶ୍ୱର ।

ନୈକରୂପ—ବି.ବଂ.(ବ.ବ୍ରୀ)ନାନାରୂପ, (ପୁଂ.ବ) ପରମେଶ୍ୱର ।

ନୈକବର୍ଣ୍ଣ—ବି.ବଂ.ବହୁବର୍ଣ୍ଣ ସମନ୍ୱିତ ।

ନୈକଶଃ—ବି.ବଂ.ବହୁବାର, ଅନେକ-ବାର । [ ଯୁକ୍ତ ।

ନୈକଶସ୍ତ୍ରମୟ—ବି.ବଂ.ନାନାବିଧ ଅସ୍ତ୍ର-

ନୈକଶୃଙ୍ଗ—ପୁଂ.ବ(ବ.ବ୍ରୀ)ପରମେଶ୍ୱର

ନୈକଷେୟ—ପୁଂ.ବ. (ନିକଷା+ଏୟ) ରାବଣ, ବିଭୀଷଣ, କୁମ୍ଭକର୍ଣ୍ଣ ।

ନୈକଷେୟୀ—ସ୍ତ୍ରୀ. ବ. (ନୈକଷେୟ+ଈ) ରାବଣର ଭଉଣୀ ସୂର୍ପଣଖା ରାକ୍ଷସୀ ।

ନୈକସାନୁ—ପୁଂ. ବ. ପର୍ବତଭେଦ ।

ନୈକସାନୁଚର—ପୁଂ.ବ.(ନୈକସାନୁ+ଚର+ଅ)ଶିବ । [ ଶ୍ୱର ।

ନୈକାତ୍ମା—ପୁଂ.ବ.ପରଂବ୍ରହ୍ମ, ପରମେ-

ନୈକୃତିକ—ପୁଂ.ବଂ. (ନିକୃତି+ଇକ) ସ୍ୱାର୍ଥପର, ଶଠ, ନିଷ୍ଠୁର, କଟୁଭାଷୀ, ଅଧାର୍ମିକ, ପାପୀ, ନୀଚ ।

ନୈକ୍ଷାଣ୍ୟ—ବି. ବଂ. ନିକ୍ଷେପଯୋଗ୍ୟ, ପ୍ରୋଥିତବ୍ୟ ।

ନୈଗମ—ବ. (ନିଗମ+ଅ) ଦୂରଦୃଷ୍ଟି-ଯୁକ୍ତ, ଆଚରଣ, ନିନ୍ଦା, ବଣିକ ଜନ, ସୁଖ, ସମୃଦ୍ଧି, ବ୍ରହ୍ମ ପ୍ରତିପାଦକ ଉପ-ନିଷଦ୍, ବେଦଭାଗ, ନୟ, ନୀତି, ପଥ, ଗତି, ଦୁର୍ଭାଗ୍ୟ, ଈର୍ଷା,ନାଗର, ନିର୍ଘଣ୍ଟ, ଗ୍ରନ୍ଥାଂଶଭେଦ, ନାୟକ, ନଗରବାସୀ ଲୋକ, (ବଂ) ନିଗମସମ୍ବନ୍ଧୀ, ନିଗମ ଶାସ୍ତ୍ରବେତ୍ତା, ପଣ, ବାଣିଜ୍ୟକାରୀ, ନାଗରିକ ।

ନୈଗମିକ—ବି. ବଂ. ନିଗମଭବ, ତଦ୍ବ୍ୟାଖ୍ୟାନ ଗ୍ରନ୍ଥ, ତାହାର ଅଧ୍ୟାୟ ।

ନୈଗମେୟ—ପୁଂ. ବ. କୁମାରାନୁଚର ଭେଦ । [ ଗ୍ରହ ଭେଦ ।

ନୈଗମେଷ—ପୁଂ.ବ. ସୁଶ୍ରୁତୋକ୍ତ ବାଳ-

ନୈଗେୟ—ପୁଂ.ବ. ସାମବେଦର ଶାଖା ଭେଦ ।

ନୈଘଣ୍ଟୁକ—କ୍ଲୀ. ବ. (ନିଘଣ୍ଟୁ+ଅକ) ନିଘଣ୍ଟୁ ଗ୍ରନ୍ଥର ପ୍ରଥମ କାଣ୍ଡ ।

ନୈଋଣାଖ—କ୍ଲୀ.ବ. ଶୂଦ୍ର ସମ୍ବନ୍ଧୀ ଧନ ।

ନୈଚକ—କ୍ଲୀ. ବ. ( ନୀଚୁ+ଇକ ) ଗୋଶିରୋଭାଗ, ଗାଈର ମୁଣ୍ଡ ।

ନୈଚକୀ—ସ୍ତ୍ରୀ. ବ. ( ନୈଚକ+ଈ ) ଉତ୍ତମଗାଭୀ, ସୁଧାରଗାଈ ।

ନୈଚତ୍ୟ—ବି.ବଂ.ନିଚୟ ଦେଶଭେଦ ।

ନୈଚୁଳ—କ୍ଲୀ.ବ. ନିଚୁଳସମ୍ବନ୍ଧୀ ହିଜ୍ଜୁଳ ଫଳାଦି, ହିଜ୍ଜୁଳମଞ୍ଜି ।

ନୈଜ—ବି. ବଂ. ( ନିଜ+ଅ ) ନିଜ-ସମ୍ବନ୍ଧୀ, ସ୍ୱୀୟ, ନିଜର ।

ନୈତନ୍ଧବ—ପୁଂ. ବ. ସରସ୍ୱତୀ ନଦୀ ତୀରବର୍ତ୍ତୀ ସ୍ଥାନଭେଦ ।

ନୈତିକ—ବଂ. (ନୀତି+ଇକ) ନୀତି-ସମ୍ବନ୍ଧୀୟ, ନୀତିମୂଳକ ।

ନୈତିକଜୀବନ—ବ. ଯେଉଁ ଜୀବନ ସୁନୀତି ଅନୁସରଣ କରି ଅତିବାହିତ ହୁଏ ।

ନୈତିକବଳ—ବ. ସୁନୀତି ଅନୁସାରେ

କର୍ମକର ମନୁଷ୍ୟର ଯେଉଁ ବଲ ଜାତ ହୁଏ, ମାନସିକବଲ ।

ନୈତକସାହସ—ବି. ସୁନୀତି ଅବଲମ୍ବନ କରିବା ଯୋଗୁଁ ମନୁଷ୍ୟର ମନରେ ଯେଉଁ ସାହସ ଜାତ ହୁଏ, ଉତ୍ତମ ବା ସୁନୀତି ଅନୁମୋଦିତ କର୍ମ କରିବା ପାଇଁ ମନୁଷ୍ୟ ମନରେ ଯେଉଁ ନିର୍ଭୀକତା ଜନ୍ମେ ।

ନୈରୁଣ୍ଡି—ପୁଂ. ବି. ( ନିରୁଣ୍ଡ+ଇ ) ନିରୁଣ୍ଡର ପୁତ୍ର । [ ଅପତ୍ୟ ।

ନୈତୋଷ—ପୁଂ. ବି. ହିମାଳୟର

ନୈତ୍ୟ—ତ୍ରି. ବିଂ. ନିତ୍ୟଯୁକ୍ତମାନ, ନିତ୍ୟ-ବିହିତ କର୍ମ, ନିତ୍ୟକର୍ମ, ଦୈନନ୍ଦିନ କର୍ମ ।

ନୈତ୍ୟକ—ତ୍ରି. ବିଂ. (ନୈତ୍ୟ+କ) ନୈତ୍ୟ, ନିତ୍ୟକର୍ମ ।

ନୈତ୍ୟଶବ୍ଦିକ—ତ୍ରି. ବିଂ. (ନିତ୍ୟଶବ୍ଦ +ଇକ) ନିତ୍ୟଶବ୍ଦବାଦୀ, ଯେଉଁମାନେ ଶବ୍ଦର ନିତ୍ୟତା ସ୍ୱୀକାର କରନ୍ତି ।

ନୈତ୍ୟକ—ତ୍ରି. ବିଂ. ନିତ୍ୟବିହିତ, ଯେଉଁ ସକଳ କାର୍ଯ୍ୟ ପ୍ରତିଦିନ କରିବାକୁ ହୁଏ ।

ନୈଦାଘ—ତ୍ରି. ବିଂ. ( ନିଦାଘ+ଅ ) ନିଦାଘ ସମ୍ବନ୍ଧୀ ।

ନୈଦାଘିକ—ତ୍ରି. ବିଂ. (ନିଦାଘ+ଇକ) ନିଦାଘଋତୁ ସମ୍ବନ୍ଧୀ, ଗ୍ରୀଷ୍ମଋତୁ ସମ୍ବନ୍ଧୀୟ ।

ନୈଦାଘୀୟ—ତ୍ରି. ବିଂ. ନିଦାଘସମ୍ବନ୍ଧୀ ।

ନୈଦାନ—ପୁଂ. ବି. କାରଣ, ଉତ୍ପତ୍ତି, (ବିଂ-ନିଦାନ+ଅ) ନିଦାନ ସମ୍ବନ୍ଧୀୟ. ନିଦାନଭିଜ୍ଞ ।

ନୈଦାନିକ—ତ୍ରି. ବିଂ. ରୋଗନିଦାନାଭିଜ୍ଞ, ତତ୍ତ୍ୱପ୍ରତିପାଦକ ଗ୍ରନ୍ଥ ଅଧ୍ୟେତା ।

ନୈଦେଶିକ—ତ୍ରି. ବିଂ. (ନିଦେଶ+ଇକ) କିଙ୍କର, ଦାସ, ଯେଉଁମାନେ ଆଦେଶ ପ୍ରତିପାଳନ କରନ୍ତି ।

ନୈଦ୍ର—ତ୍ରି. ବିଂ. (ନିଦ୍ରା+ଅ) ନିଦ୍ରା-ଭବ, ନିଦ୍ରାସମ୍ବନ୍ଧୀୟ, ନିଦ୍ରାଳୁ ।

ନୈଧନ—କ୍ଲୀ. ବି. (ନିଧନ+ଅ) ନିଧନ, ମରଣ, ଲଗ୍ନଠାରୁ ଅଷ୍ଟମ ସ୍ଥାନ ।

ନୈଧାନ—ତ୍ରି. ବିଂ. ନିଧନସାଧ୍ୟ, ନିଧାନ ସମ୍ବନ୍ଧୀୟ ।

ନୈଧାନୀ—ବି. (ନିଧାନ+ଈ) ଯେଉଁ ସୀମାର ଚିହ୍ନ ଭୂମିରେ ପୋତାଯିବା କୋଇଲା ବା ତୁଷଦ୍ୱାରା ଚିହ୍ନିତ ହୁଏ ।

ନୈଧେୟ—ପୁଂ. ବି. ନିଧିସମ୍ବନ୍ଧୀୟ ।

ନୈଧ୍ରୁବ—ପୁଂ. ବି. ନିଧ୍ରୁବ ଗୋତ୍ରପ୍ରବର ଋଷିଭେଦ ।

ନୈଧ୍ରୁବି—ପୁଂ. ବି. ଯଜୁର୍ବେଦାଧ୍ୟାପକ କାଶ୍ୟପ ଋଷିଭେଦ ।

ନୈନିତାଲ—ଭାରତବର୍ଷର ଉ: ପ: ପ୍ରଦେଶର ଅନ୍ତର୍ଗତ କୁମାଓନ ଜିଲ୍ଲାରେ ଅବସ୍ଥିତ ଗୋଟିଏ ପାର୍ବତ୍ୟ ନଗର ।

ନୈପ—ତ୍ରି. ବିଂ. (ନୀପ+ଅ) ନୀପ-ବିକାର । [ ପ୍ରୟୋଗ ଯୁକ୍ତ ।

ନୈପାତିକ—ତ୍ରି. ବିଂ. ନିପାତନ ହେତୁ

ନୈପାଥ—କ୍ଲୀ. ବି. ସାମଭେଦ ।

ନୈପାତ୍ୟ—କ୍ଲୀ. ବି. ନିପାତର ଭାବ ।

ନୈପାଲ—ପୁଂ. ବି. ( ନେପାଲ+ଅ ) ନେପାଲଜାତ, ଭୂନିମ୍ବବିଶେଷ, ଇକ୍ଷ୍ୱାକୁଭେଦ, (ବିଂ) ନେପାଲ ଦେଶ ସମ୍ବନ୍ଧୀ ।

ନୈପାଳିକ—କ୍ଲୀ. ବି. (ନେପାଲ+ଇକ) ତାମ୍ର, (ବିଂ) ନେପାଲ ଦେଶୀୟ ।

ନୈପାଲୀ—ସ୍ତ୍ରୀ. ବି. (ନେପାଲ+ଈ) ନବମଲ୍ଲିକା, ନିଆଳୀ, ଶେଫାଳିକା, ନୀଳଗୁଲ୍ମ, ମନଃଶିଳା, ନୀଳୀ ।

ନୈପାଲୀୟ—ତ୍ରି. ବିଂ. ନେପାଲ ଦେଶ-ଭବ, ନେପାଲ ଦେଶସ୍ଥିତ ।

ନୈପୁଣ—କ୍ଲୀ. ବି. (ନିପୁଣ+ଅ) ନୈପୁଣ୍ୟ, ନିପୁଣତା, ଯୋଗ୍ୟତା ।

ନୈପୁଣ୍ୟ—କ୍ଲୀ. ବି. ( ନିପୁଣ+ଯ ) ନିପୁଣତା, ନିପୁଣ କର୍ମ ।

ନୈବିଡିକ—ତ୍ରି. ବିଂ. ନିବିଡ ସମୀପ ଦେଶାଦି ।

ନୈଭୃତ୍ୟ—କ୍ଲୀ. ବି. ( ନିଭୃତ+ଅ ) ନିଭୃତତ୍ତ୍ୱ, ଅଗ୍ରାହ୍ୟଲ୍ୟ ।

ନୈମଗ୍ନକ—ତ୍ରି. ବିଂ. (ନିମଗ୍ନ+ଅକ) ନିମଗ୍ନର ଅଦୂର ଦେଶାଦି ।

ନୈମନ୍ତ୍ରଣକ—କ୍ଲୀ. ବି. ଭୋଜ, ନିମନ୍ତ୍ରିତ ବ୍ୟକ୍ତିଗଣର ଭୋଜନ ।

ନୈମେୟ—ପୁଂ. ବି. ବଣିକ ବ୍ୟବସାୟୀ ।

ନୈମିତ୍ତ—ତ୍ରି. ବିଂ. (ନିମିତ୍ତ+ଅ) ନିମିତ୍ତ ବଧ, ଶକୁନରୂପ ନିମିତ୍ତ ସୂଚକ ଗ୍ରନ୍ଥ ବାଖ୍ୟାନ ।

ନୈମିତ୍ତିକ—ତ୍ରି. ବିଂ. ନିମିତ୍ତଭିଜ୍ଞ, ନିମିତ୍ତ ରୂପ ଶକୁନଶାସ୍ତ୍ରାଧ୍ୟେତା, ନିମିତ୍ତାଧୀନ, ପ୍ରୟୋଜନାର୍ଥକ, ସାମୟିକ ।

ନୈମିତ୍ତିକଅନୁଷ୍ଠାନ—ବି. (କ.ଧା) ଶାସ୍ତ୍ର ନିର୍ଦ୍ଦିଷ୍ଟ ବିଶିଷ୍ଟ ଘଟନା ଉପଲକ୍ଷେ ଆଚରିତ କ୍ରିୟା ।

ନୈମିତ୍ତିକପ୍ରଳୟ—ବି. ବ୍ରହ୍ମାଙ୍କ ଦିନର ଅବସାନରେ ଯେଉଁ ପ୍ରଳୟ ହୁଏ, କଳ୍ପାନ୍ତପ୍ରଳୟ ।

ନୈମିତ୍ତିକଲୟ—ପୁଂ. ବି. ପ୍ରଳୟବିଶେଷ ।

ନୈମିଷ—କ୍ଲୀ. ବି. (ନିମେଷ+ଅ) ନୈମି-ଷାରଣ୍ୟ ।

ନୈମିଶ୍ରି—ପୁଂ. ବି. ( ନିମିଶ୍ର+ଇ ) ନିମି-ଶ୍ରଙ୍କ ଅପତ୍ୟ ।

ନୈମିଷ—କ୍ଲୀ. ବି. ଅରଣ୍ୟରୂପ ତୀର୍ଥ-ଭେଦ, ନୈମିଷାରଣ୍ୟ, (ବିଂ-ନିମିଷ+ଅ) କ୍ଷଣିକ, ନିମିଷମାତ୍ର ସ୍ଥାୟୀ ।

ନୈମିଷ—ଯମୁନା ନଦୀର ଦକ୍ଷିଣ ତଟ-ବାସୀ ଜାତିବିଶେଷ ।

ନୈମିଷକୁଞ୍ଜ—କ୍ଲୀ. ବି. ନୈମିଷାରଣ୍ୟସ୍ଥ ତୀର୍ଥଭେଦ ।

ନୈମିଷାରଣ୍ୟ—କ୍ଲୀ. ବି. ଅରଣ୍ୟବିଶେଷ, ନୈମିଷକ୍ଷେତ୍ର । [ ଅପତ୍ୟ ।

ନୈମିଷାୟଣ—ବି. ନିମେଷ ଯୁକ୍ତର

ନୈମିଷି—ପୁଂ. ବିଂ. ( ନିମିଷ+ଇ ) ନୈମିଷାରଣ୍ୟବାସୀ ।

ନୈମିଷିକ—ବିଂ. (ନିମିଷ+ଇକ) ନିମିଷ ସମ୍ବନ୍ଧୀୟ ।

ନୈମିଷୀୟ—ପୁଂ. ବିଂ. ନିମିଷ ସମ୍ବନ୍ଧୀ ।

ନୈମିଷେୟ—ତ୍ରି. ବିଂ. ନିମିଷାରଣ୍ୟସ୍ଥ, ନୈମିଷ ସମ୍ବନ୍ଧୀ ।

ନୈମିଷ୍ୟ—ପୁଂ. ବିଂ. ନିମିଷ ସମ୍ବନ୍ଧୀୟ, ନୈମିଷୀୟ ।

ନୈମେୟ—ପୁଂ. ବି. ( ନି+ମି+ଯ ) ପରିବର୍ତ୍ତି, ବିନିମୟ, ବଦଳ, ବାଣିଜ୍ୟ ।

ନୈମ୍ବ—ତ୍ରି. ବି°. ନିମ୍ବସମ୍ବନ୍ଧୀୟ ।
ନୈୟଗ୍ରୋଧ—କ୍ଲୀ. ବି. ନ୍ୟଗ୍ରୋଧଫଳ, ବଟଫଳ, ନ୍ୟଗ୍ରୋଧଜାତ ଚମସାଦି ।
ନୈୟଙ୍କବ—ତ୍ରି.ବି°.ନ୍ୟଙ୍କୁମୃଗର ଚର୍ମାଦି, ମୃଗଚର୍ମ ନିର୍ମିତ ।
ନୈୟତ୍ୟ—କ୍ଲୀ. ବି. ( ନିୟତ+ଯ ) ନିୟତତ୍ତ୍ୱ, ଆତ୍ମସଂଯମ ।
ନୈୟମିକ—ତ୍ରି. ବି°. (ନିୟମ+ଇକ) ନିୟମବଦ୍ଧପ୍ରାପ୍ତ, କର୍ମ,ବୃତ୍ତିଭାର୍ଯ୍ୟା ସମଜାଦି, ବିଧିନିର୍ଦ୍ଦିଷ୍ଟ, ବୈଧ ।
ନୈୟାୟ—ବି. ନ୍ୟାୟବାଖ୍ୟାନ ଗ୍ରନ୍ଥ ।
ନୈୟାୟିକ—ପୁ°. ବି. ନ୍ୟାୟବେତ୍ତା, ନ୍ୟାୟାଧ୍ୟେତା ।
ନୈୟାସିକ—ତ୍ରି. ବି°. ନ୍ୟାସବଦ୍ ।
ନୈରଞ୍ଜନା—ସ୍ତ୍ରୀ. ବି. ନଦୀଭେଦ ।
ନୈରନ୍ତର୍ଯ୍ୟ—କ୍ଲୀ. ବି. (ନିରନ୍ତର + ଯ) ନିରନ୍ତରତ୍ୱ, ଅବିଚ୍ଛେଦ; ସର୍ବଦା ।
ନୈରପେକ୍ଷ—କ୍ଲୀ.ବି. (ନିରପେକ୍ଷ+ଅ) ଅପେକ୍ଷାଶୂନ୍ୟତ୍ୱ, ନିରପେକ୍ଷତା ।
ନୈରୟିକ—ତ୍ରି.ବି°.ନରକବାସୀ, ପାପୀ ।
ନୈରର୍ଥ୍ୟ—କ୍ଲୀ.ବି. (ନିରର୍ଥ+ଯ) ନିରର୍ଥକତା ।
ନୈରାକାର—ବି.(ନିରାକାର+ଅ)ନିରାକାର ଅବସ୍ଥା ।
ନୈରାମ୍ୟ—କ୍ଲୀ. ବି. ନିରାମ୍ୟତା ।
ନୈରାଶ୍ୟ—କ୍ଲୀ. ବି. ( ନିରାଶ+ଯ ) ଆଶାଶୂନ୍ୟତ୍ୱ ।
ନୈରାସ୍ୟ—ପୁ°. ବି. ଶରତ୍ୟାଗ ମନ୍ତ୍ରବିଶେଷ ।
ନୈରୁକ୍ତ—ତ୍ରି.ବି°. (ନିରୁକ୍ତ+ଅ)ନିରୁକ୍ତ ସମ୍ବନ୍ଧୀ,ନିରୁକ୍ତବ୍ୟାଖ୍ୟାନ ଗ୍ରନ୍ଥ,ନିରୁକ୍ତବ୍ୟାଖ୍ୟାନଗ୍ରନ୍ଥରେ ଆସକ୍ତ,ନିରୁକ୍ତବେତ୍ତା ।
ନୈରୂହିକ—ପୁ°. ବି. ସୁଶ୍ରୁତୋକ୍ତ ବସ୍ତିଭେଦ ।
ନୈର୍ଋତ—ବି. ରାକ୍ଷସ,ନୈର୍ଋତର ପୁତ୍ର, ପଶ୍ଚିମ ଦକ୍ଷିଣ କୋଣାଧିପତି, ଅସଭ୍ୟ ଜାତିବିଶେଷ,ମୂଳା ନକ୍ଷତ୍ର,(ବି°-ନୈର୍ଋତି +ଅ) ନୈର୍ଋତ ସମ୍ବନ୍ଧୀ ।
ନୈର୍ଋତୀ—ସ୍ତ୍ରୀ. ବି. (ନୈର୍ଋତ+ଅ+ଈ) ନୈର୍ଋତକୋଣ ।
ନୈର୍ଋତେୟ—ବି. ନିରୃତିର ଅପତ୍ୟ ।
ନୈର୍ଋତ୍ୟ—ତ୍ରି. ବି°. ଯେଉଁ ସମସ୍ତ ପଶୁର ଦେବତା ନୈର୍ଋତ ।
ନୈର୍ଗନ୍ଧ୍ୟ—କ୍ଲୀ. ବି. ( ନିର୍ଗନ୍ଧ+ଯ ) ନିର୍ଗନ୍ଧତା, ଗନ୍ଧହୀନତା ।
ନୈର୍ଗୁଣ୍ୟ—କ୍ଲୀ. ବି. ( ନିର୍ଗୁଣ+ଯ ) ଗୁଣହୀନତ୍ୱ, ତତ୍ତ୍ୱଜ୍ଞାନ ଯୋଗ ।
ନୈର୍ଘୃଣ୍ୟ—କ୍ଲୀ. ବି. ( ନିର୍ଘୃଣ+ଯ ) ନିର୍ଘୃଣତା, ଘୃଣାଶୂନ୍ୟତା ।
ନୈର୍ଦ୍ଦଶ୍ୟ—କ୍ଲୀ.ବି. ପୁତ୍ରାଦି ଜନ୍ମର ପ୍ରଥମ ଦଶଦିନ ଅତୀତ ହେଲେ, କୌଣସି ବିପଦଜନକ ଗ୍ରହର ପ୍ରକୋପଯୁକ୍ତ ସମୟରେ ଅତିକ୍ରମଣ ପ୍ରଣାଳୀ ।
ନୈର୍ଦ୍ଦୋଣକ—ବି.ଭୃତ୍ୟ,କିଙ୍କର,ଅଧୀନ ।
ନୈର୍ବାଧ—ତ୍ରି. ବି°. ହନନଯୋଗ୍ୟ, ଶତ୍ରୁନିମିତ୍ତ ପ୍ରଯୁଜ୍ୟମାନ ହବିଃ ।
ନୈର୍ବାହିକ—ବି°. ( ନିର୍ବାହ+ଇକ ) ନିର୍ବାହଯୋଗ୍ୟ ।
ନୈର୍ଭୃତ୍ୟ—କ୍ଲୀ. ବି. ନିର୍ଭୃତତ୍ତ୍ୱ ।
ନୈର୍ମଲ୍ୟ—କ୍ଲୀ. ବି. (ନିର୍ମଳ+ଯ) ନିର୍ମଳତା, ସ୍ୱଚ୍ଛତା, ବିଷୟବୈରାଗ୍ୟ ।
ନୈର୍ମାଣିକ—ତ୍ରି.ବି°.ଅଲୌକିକ, ଅନୈସର୍ଗିକ ।
ନୈର୍ଯ୍ୟାଣିକ—ତ୍ରି.ବି°.ନିର୍ଯ୍ୟାଣସମ୍ବନ୍ଧୀୟ ।
ନୈର୍ଲଜ୍ଜ—କ୍ଲୀ.ବି(ନିର୍ଲଜ+ଅ)ନିର୍ଲଜ୍ଜତା ।
ନୈର୍ହସ୍ତ—ତ୍ରି. ବି°. ନିର୍ଗୀର୍ଯ୍ୟହସ୍ତ ।
ନୈଲାୟନ—ପୁ°. ବି. ନୀଲବାନରର ଅପତ୍ୟ । [ ନିର୍ବହଣଶୀଳ ।
ନୈବାହିକ—ତ୍ରି.ବି°. ନିର୍ବାହ ଯୋଗ୍ୟ,
ନୈଲୀନକ—ତ୍ରି. ବି°. ନିଲୀନକ ଦେଶ ସମ୍ବନ୍ଧୀ । [ ନୀଳକଣ୍ଠ ।
ନୈଲ୍ୟ—କ୍ଲୀ.ବି. (ନୀଳ+ଯ) ନୀଳିମା,
ନୈବକି—ପୁ°.ବି. (ନିବକ+ଇ)ନିବକ ଋଷିଙ୍କର ଅପତ୍ୟ ।
ନୈବାକବ—ତ୍ରି. ବି°. (ନିବାକୁ+ଅ) ନିବକନେଶୀଳ,ତାହାର ଅଦୂରଦେଶାଦି ।
ନୈବାତାୟନ—ତ୍ରି. ବି°. ବାତଶୂନ୍ୟ ଦେଶ ସମୀପାଦି ।
ନୈବାର—ତ୍ରି. ବି°. ( ନୀବାର+ଅ ) ନିବାରସମ୍ବନ୍ଧୀ ।
ନୈବାସୀ—ତ୍ରି. ବି°. ନିବାସ ସାଧୁ ।
ନୈବଡ଼୍ୟ—କ୍ଲୀ.ବି (ନିବଡ଼+ଯ)ଘନତ୍ୱ, ନିବଡ଼ତା,ଅବିଚ୍ଛେଦ ରୂପେ ସଂଯୋଗ ।
ନୈବଦ—ତ୍ରି. ବି°. ନିବଦସମ୍ବନ୍ଧୀୟ ।
ନୈବେଦ୍ୟ—କ୍ଲୀ. ବି. (ନିବେଦ+ଯ) ଦେବୋଦ୍ଦେଶେ ଯେଉଁ ଦ୍ରବ୍ୟ ନିବେଦନ କରାଯାଏ, ଦେବତାଙ୍କୁ ନିବେଦନୀୟ ଦ୍ରବ୍ୟ ।
ନୈବେଶ—ତ୍ରି. ବି°. ନିବେଶ ନିର୍ବୃତ୍ତି, ବିବାହ ନିର୍ବୃତ୍ତି ।
ନୈବେଶିକ—କ୍ଲୀ.ବି. (ନିବେଶ+ଇକ) ବିବାହାର୍ଥ ଦୀୟମାନଦ୍ରବ୍ୟ, ନିବେଶନ ପାଇଁ ଯେଉଁ କନ୍ୟା ପ୍ରଦାନର ଯୋଗ୍ୟ ହୁଏ,(ବି°)ବିବାହସମ୍ବନ୍ଧୀୟ,ବୈବାହିକ ।
ନୈଶ—ତ୍ରି. ବି°. ନିଶାସମ୍ବନ୍ଧୀ, ନିଶାଭବ, ରାତ୍ରିକାଳୀନ ।
ନୈଶିକ—ତ୍ରି.ବି°. (ନିଶା+ଇକ)ନିଶାଭବ, ନିଶାବ୍ୟାପକ ।
ନୈଶୀଥ--ବି°(ନିଶୀଥ+ଅ)ନିଶାକାଳୀନ ।
ନୈଷ୍ଠିତ୍ୟ—ତ୍ରି.ବି°.ନିଷ୍ଠୟ, ସ୍ଥିରତା ।
ନୈଶ୍ରେୟସିକ—ତ୍ରି. ବି°. ନିଃଶ୍ରେୟ ସମାଧନ ।
ନୈଷଦିକ—ତ୍ରି.ବି°.(ନି+ସଦ+କ. ଇକ) ନିଷଦଭବ, ଉପବିଷ୍ଟ, ଉପବେଶନକାରୀ ।
ନୈଷଧ—ପୁ° ବି. (ନିଷଧ+ଅ) ନିଷଧ ଦେଶାଧିପତି, ନଳରାଜା, ବର୍ଷବିଶେଷ, (ବି°)ପରାଦି କ୍ରମେ ନିଷଧ ଦେଶବାସୀ, ନିଷଧସମ୍ବନ୍ଧୀ ।
ନୈଷଧକାର—ବି.ନୈଷଧକାବ୍ୟପ୍ରଣେତା ଶ୍ରୀହର୍ଷ କବି । [ ନଳସମ୍ବନ୍ଧୀ ।
ନୈଷଧୀୟ—ତ୍ରି. ବି°. ( ନିଷଧ+ଈୟ)
ନୈଷଧ୍ୟ—ପୁ°. ବି. ନିଷଧ ନୃପଙ୍କର ଅପତ୍ୟ, (ସ୍ତ୍ରୀ) ନୈଷଧ୍ୟା ।
ନୈଷାଦ—ପୁ°.ବି. ନିଷାଦର ଅପତ୍ୟ ।
ନୈଷାଦକ—ତ୍ରି. ବି°. ନିଷାଦ କୃତ ପଦାର୍ଥଭେଦ ।

ନୈଷାଦକ—ପୁଂ. ସ୍ତ୍ରୀ. ବ. ନିଷାଦର ଅପତ୍ୟ ।

ନୈଷାଦ—ପୁଂ.ବ.ନିଷାଦର ଅପତ୍ୟ ।

ନୈଷିଧ—ପୁଂ.ବ.(ନିଷଧ+ଅ) ନୈଷିଧ ନାମକ ନଳରୂପ ଦକ୍ଷିଣାଗ୍ନି ।

ନୈଷ୍କର୍ମ୍ୟ—କ୍ଲୀ. ବ. (ନିଷ୍କର୍ମ+ଯ)ବିଧିପୂର୍ବକ ସର୍ବକର୍ମ ତ୍ୟାଗ,ମୁକ୍ତି,ନିଷ୍କର୍ମତା

ନୈଷ୍କଶତିକ—ବି.ବଂ(ନିଷ୍କଶତ+ଇକ) ନିଷ୍କଶତମାନଯୁକ୍ତ ।

ନୈଷ୍କସହସ୍ରିକ—ବି. ବଂ. ନିଷ୍କସହସ୍ର ପରିମାଣଯୁକ୍ତ ।

ନୈଷ୍କିକ—ପୁଂ. ବଂ. କୋଷାଧ୍ୟକ୍ଷ, ଟଙ୍କାଶାଳାର ଅଧ୍ୟକ୍ଷ,ନିଷ୍କନୀତ,ନିଷ୍କବିକାର

ନୈଷ୍କିଞ୍ଚନ୍ୟ—କ୍ଲୀ. ବ. (ନିଷ୍କିଞ୍ଚନ+ଯ) ନିଷ୍କିଞ୍ଚନତ୍ୱ, ଦରିଦ୍ରତା ।

ନୈଷ୍କ୍ରମଣ—ବି.ବଂ. ନିଷ୍କ୍ରାମଣ କାଳରେ ଦାତବ୍ୟମାନ (ବସ୍ତୁ) ।

ନୈଷ୍କୃତିକ—ପୁଂ. ବଂ. (ନିଷ୍କୃତି+ଇକ) ନୈକୃତିକ, ଅଧାର୍ମିକ, ପାପୀ ।

ନୈଷ୍ଠିକ—ବି. ବଂ. (ନିଷ୍ଠା+ଇକ) ବ୍ରହ୍ମଚାରୀଭେଦ, ନିଷ୍ଠାପର, ଦୃଢ଼ ଭାବରେ ପ୍ରତିଷ୍ଠିତ, ଆଜୀବନ ବ୍ରହ୍ମଚାରୀ, ସ୍ତ୍ରୀ. ଅନ୍ତିମ,ମରଣ କାଳରେ କର୍ତ୍ତବ୍ୟ(କର୍ମ)

ନୈଷ୍ଠୁର୍ଯ୍ୟ—କ୍ଲୀ.ବ. (ନିଷ୍ଠୁର+ଯ)ନିଷ୍ଠୁରତା, ନିଷ୍ଠୁରର କାର୍ଯ୍ୟ ।

ନୈଷ୍ଠ୍ୟ—ବଂ. (ନିଷ୍ଠା+ଯ) ନିଷ୍ଠ ଯୁକ୍ତ. ବ୍ରତ ନିୟମାଦି ଆଚରଣଶୀଳ, (ବ) ସ୍ଥାୟିତ୍ୱ, ସ୍ଥିତି । [ ରାଗାଭାବ

ନୈସ୍ନିହ୍ୟ—କ୍ଲୀ. ବ. (ନି+ସ୍ନିହ+ଯ)

ନୈଷ୍ପ୍ରରୂଷ୍ୟ—କ୍ଲୀ. ବ. (ନିଷ୍ପ୍ରରୂଷ+ଯ) ନିଷ୍ପ୍ରରୂଷର ଭାବ । [ କାର୍ଯ୍ୟ ।

ନୈଷ୍ପେଶିକତ୍ୱ—କ୍ଲୀ. ବ. ପେଷଣକାରୀର

ନୈଷ୍ପେଷିକ—ବି. ବଂ. ନିଷ୍ପେଷଣକାରୀ ।

ନୈଷ୍ଫଲ—କ୍ଲୀ.ବ.(ନିଷ୍ଫଲ+ଯ)ନିଷ୍ଫଲତା ।

ନୈସର୍ଗିକ—ବି. ବଂ. (ନିସର୍ଗ+ଇକ) ସ୍ୱାଭାବିକ, ସ୍ୱଭାବଜ ।

ନୈସର୍ଗିକପ୍ରବୃତ୍ତି—ବ(କ.ଧା)ଜୀବ ଜନ୍ମରୁ ଯେଉଁ ପ୍ରବୃତ୍ତି ପାଇଥାଏ ।

ନୈସର୍ଗିକବିଧାନ—କ୍ଲୀ. ବ. ମାନବଜାତିର ଐଶିକ ନିୟମାନୁସାରୀ ପରସ୍ପର ବ୍ୟବହାର ବ୍ୟବସ୍ଥାପକ ଶାସ୍ତ୍ର ।

ନୈସର୍ଗିକୀଦଶା—ଜ୍ୟୋତି ଶାସ୍ତ୍ରୋକ୍ତ ଦଶାଭେଦ ।

ନୈସ୍ନେହ୍ୟ—ବ(ନିସ୍ନେହ+ଭା.ଅ)ଶୁଷ୍କତା, ବିରସତା, ସ୍ନେହହୀନତା ।

ନୈସ୍ତ୍ରିଂଶିକ—ପୁଂ. ବ. (ନିସ୍ତ୍ରିଂଶ+ଇକ) ଖଡ୍ଗଧାରୀ, ଅସିହେତିକ ।

ନୈହାରିକନକ୍ଷତ୍ର—କ୍ଲୀ.ବ.ଯେଉଁ ସମସ୍ତ ନକ୍ଷତ୍ର ନୀହାରିକା ନକ୍ଷତ୍ରର ଲକ୍ଷଣାକ୍ରାନ୍ତ ବୋଧହୁଏ । [ ନିଷେଧ ।

ନୋ—ଅବ୍ୟ. (ନହ+ଓ) ଅଭାବ, ନା,

ନୋଙ୍ଗର—ଯା.ବ. ନୌକା ବା ଜାହାଜାଦି ବାନ୍ଧିବାର ଲୌହଯନ୍ତ୍ରଭେଦ ।

ନୋଙ୍ଗରା—ଗ୍ରା.ବି. ଅପରିଷ୍କୃତ, ମଇଳାଯୁକ୍ତ, କଦର୍ଯ୍ୟ ।

ନୋଚେତ୍—ଅବ୍ୟ.ନ ହୁଏଯଦି,ନୋହିଲେ, ନତୁବା, ଅନ୍ୟଥା ନୁହେ ।

ନୋଟ୍—ଯା. ବି. ସ୍ମାରକ ଲିପି, ଟିପ୍ପଣୀ, ମୁଦ୍ରା ପରିବର୍ତ୍ତିରେ ପ୍ରଚଳିତ ସରକାରୀ କାଗଜ ।

ନୋଟ୍‌କରିବା—ଗ୍ରା. କ୍ରି. ଟିପି ରଖିବା, ଟିପିନେବା, ଟିପାଟିପି କରିବା ।

ନୋଟ—ବି. ବଂ. ( ନଟ+ଅ ) ନଟ, (ସ୍ତ୍ରୀ) ନୋଟୀ ।

ନୋଟା—ଗ୍ରା. ବ. ଲୋଟା, ଢାଲ ।

ନୋଟି—ଗ୍ରା.ବ.ଗ୍ରେଟ ଲୁଟା, ଅବଖୁରା ।

ନୋଟିସ୍—ଯା.ବ.ବିଜ୍ଞାପନ, ଇସ୍ତିହାର ।

ନୋତା—ଗ୍ରା. ବଂ. (ଫ-ଲୋତ) ଚୋରା (ମାଲ), ଗୁପ୍ତ(ଧନ),ପ୍ରୋଥିତ (ଧନ) ।

ନୋଥ—ଗ୍ରା.ବ.(ଫ-ନଥ) ନୁଥ,ସ୍ତ୍ରୀଲୋକମାନଙ୍କର ବାଆଁ ନାକରେ ପିନ୍ଧାଯିବା ଗୋଲକାର ଅଳଂକାର ।

ନୋଦ—ବ. (ନୁଦ୍+ମ.ଅ)ଆଜ୍ଞା, ଅନୁମତି, (ଭା.ଅ) ପ୍ରେରଣା ।

ନୋଦନ—କ୍ଲୀ. ବ. ( ନୁଦ+ଭା.ଅନ ) ଛେଦନ, ଅପସାରଣ,ଖଣ୍ଡନ,ପ୍ରେରଣ, (ମ.ଅନ) ଆଦେଶ, ଚାଳନ, ଯାନାଦିରେ ଯୋଜିତ ପଶୁମାନଙ୍କୁ ଚଲାଇବା କର୍ମ, ଅଡ଼ାଇବା, ମଡାଇବା,(ଣ.ଅନ) ପାଞ୍ଚଣ, ପ୍ରତୋଦ ।

ନୋଦିତ—ବି. ବଂ. (ନୁଦ୍+ଣିଚ୍+ମ.ତ) ଆଜ୍ଞାପିତ, ପ୍ରେରିତ, ଅପସାରିତ, ଉତ୍ତେଜିତ ।

ନୋଦ୍ୟ—ବି. ବଂ. ଅପସାରଣଯୋଗ୍ୟ ।

ନୋଧସ୍—ପୁଂ. ବ. ( ନୁ+ଅସି+ଧ ) ଋଷିଭେଦ ।

ନୋଧା—ଅବ୍ୟ. (ନବ+ଧା)ନବଧା ।

ନୋନା—କ୍ଲୀ.ବ. ଆତପରି ଏକପ୍ରକାର ବୃକ୍ଷ ଓ ଫଳ ।

ନୋପସ୍ଥାତା—ପୁଂ. ବଂ. (ନ+ଉପ+ସ୍ଥା+କ.ତୃ) ଦୂରସ୍ଥ, ସ୍ଥାନାର୍ଥୀବିଶେଷ ।

ନୋଲା—ଗ୍ରା. ବ. ( ଫ-ଲୋଲ ) ମାଛ ପେଟରେ ଥିବା ମଞ୍ଜିର ଏକ ଚରୁଡ଼ା, ବେତ ପ୍ରହାର ଦ୍ୱାରା ଦେହରେ ବସିଯିବା ଦାଗ ।

ନୋଳି—ଗ୍ରା. ବ. (ଫ-ଲୋଲ) କାନରେ ପିନ୍ଧାଯିବା ବଳୟାକାର ଅଳଂକାରବିଶେଷ ।

ନୋଳିଆ—ଗ୍ରା. ବ. ତେଲଙ୍ଗା ଅନାର୍ଯ୍ୟ ଧୀବରଜାତିବିଶେଷ ।

ନୋହିବା—ଗ୍ରା.କ୍ରି.ନହେବା, ନ ଘଟିବା, (ଗ୍ରା.ବଂ) ହୋଇ ନ ଥିବା ।

ନୋହିଲେ—ଗ୍ରା.ଅବ୍ୟ. (ଫ-ନୋଚେତ୍) ନ ହେଲେ, ନତୁବା ।

ନୋହିଲେନାହିଁ—ଗ୍ରା.ଅବ୍ୟ. ନ ହେଲେ ନାହିଁ ।

ନୋହୁ—ଗ୍ରା.କ୍ରି.(ସେ ବା ତାହା)ନହେଉ, (ଆମ୍ଭେ)ନଥିଁ,(ଆମ୍ଭେମାନେ)ନଥିଁ ।

ନୋହୁଣୁ—ଗ୍ରା.ଅବ୍ୟ. ନ ହେବା ପୂର୍ବେ, ନ ହେଉଣୁ ।

ନୌ—ସ୍ତ୍ରୀ.ବ. (ନୁଦ୍+ମ.ଔ) ନୌକା, ଡଙ୍ଗା, ଯନ୍ତ୍ର ଚାଳନାଯୁ ନୌଭେଦ, (ଗ୍ରା.ବି.ବଂ) ନଅ,ନବେ, ୯୦ ସଂଖ୍ୟା ।

ନୌକର—ଯା.ବ. ଚାକର, ଗୃହ କର୍ମଚାରୀ ଭୃତ୍ୟ । [ ଚାକରବୃତ୍ତି ।

ନୌକରି—ଯା. ବ. ଦାସତ୍ୱ, ଚାକିରି,

ନୌକର୍ଣ୍ଣଧାର—ପୁଂ.ବ. (ନୌ+କର୍ଣ୍ଣ

+ଧାର+ଅ) ନାବିକ ।
ନୌକର୍ଣ୍ଣୀ—ସ୍ତ୍ରୀ. ବି. (ନୌକର୍ଣ୍ଣ+ଈ) କୁମାରାନୁଚର ମାତୃଭେଦ ।
ନୌକର୍ମ—କ୍ଳୀ. ବି. ନୌକା ବହନାଦି କାର୍ଯ୍ୟ ।
ନୌକା—ସ୍ତ୍ରୀ. ବି.( ନୌ+କ+ଆ ) ତରଣୀ,ନାବ,ଡଙ୍ଗା, ନଦୀ ପ୍ରଭୃତିରେ ଚଳିବା ନିମିତ୍ତ କାଷ୍ଠ ଦି ନିର୍ମିତ ଯାନ-ବିଶେଷ । [ ଭେଦ ।
ନୌକାକୁଟ୍ଟ—କ୍ଳୀ.ବି.ଚତୁରଙ୍ଗ କ୍ରୀଡ଼ା-
ନୌକାଜୀବୀ—ପୁଂ. ବି. ନୌକା ଚଳାଇ ଯେଉଁମାନେ ଜୀବିକା ନିର୍ବାହ କରନ୍ତି. ମାଝି, କେଉଟ, ଗିରଗିରିଆ ।
ନୌକାଦଣ୍ଡ--ପୁଂ.ବିଂ(ତତ୍ପୁ) କ୍ଷେପଣୀ, କାତ, ଆହୁଲି ।
ନୌକାପଥ—ବି.(କ.ଧା) ନୌକା ଦ୍ୱାରା ଗମନୀୟ ପଥ ।
ନୌକାବାହକ—ବି. ଓ ବିଂ. (ତତ୍ପୁ) ନୌଚାଳକ, ନାବିକ, ମାଝି ।
ନୌକ୍ରମ--ନୌକା ଶ୍ରେଣୀ ସଂଯୁକ୍ତ ସେତୁ
ନୌଚର—ତ୍ରି.ବିଂ. (ନୌ+ଚର+କ. ଅ) ନୌକାଚରଣଶୀଳ, ନାବିକ, ଯେଉଁମାନେ ନୌକାରେ ବିଚରଣ କରନ୍ତି ।
ନୌଚାଳନ—ବି. (ତତ୍ପୁ)ଡଙ୍ଗା ଚଳାଇବା କର୍ମ ବା କୌଶଳ ।
ନୌଜୀବିକ—ପୁଂ. ବିଂ. (ବ.ବ୍ରୀ)ଯେଉଁ-ମାନେ ନୌକା ଚାଳନ କରି ଜୀବିକା ନିର୍ବାହ କରନ୍ତି ।
ନୌତାର୍ଯ୍ୟ—ତ୍ରି.ବିଂ.(ତତ୍ପୁ)ନୌକା-ଗମ୍ୟ ଦେଶାଦି, ନାବ୍ୟ, ନୌକା ଦ୍ୱାରା ପାର ହେବା ଯୋଗ୍ୟ ।
ନୌଦଣ୍ଡ—ପୁଂ. ବି. ନୌକାଦିର ମଧ୍ୟ-ସ୍ଥିତ କାଷ୍ଠଦଣ୍ଡ ।
ନୌଯାୟୀ—ବି. ( ନୌ+ଯାୟିନ୍ ) ନୌକାରେ ଯେଉଁମାନେ ଯାତ୍ରା କରନ୍ତି, (ବିଂ)ନୌକାରେ ଗମନକାରୀ ।
ନୌଯାନ—କ୍ଳୀ.ବି.(ତତ୍ପୁ)ନୌକାରେ ଚଢ଼ି ଦେଶାନ୍ତର ଗମନ, (କ.ଧା) ଜଳରେ ଯିବା ଆସିବା ପାଇଁ ବ୍ୟବ-ହୃତ ଜାହାଜାଦି ।
ନୌଯାୟୀ—ବି. ବିଂ. ( ନୌ+ଯା+ କ.ଇନ୍) ନୌକା ଦ୍ୱାରା ନଦ୍ୟାଦିର ପାରଗମନକାରୀ,ନୌଯାତ୍ରୀ ଦେଖ ।
ନୌରୋଜ୍—ଯା. ବି ଓ ବିଂ.ମୁସଲମାନ-ମାନଙ୍କର ନବବର୍ଷାରମ୍ଭ ଓ ସେଦିନ କରାଯିବା ଉତ୍ସବ ।
ନୌବଳ—ବି.( ତତ୍ପୁ ) ନୌକାରୋହୀ ସୈନ୍ୟ, ଯୁଦ୍ଧାର୍ଥ ପ୍ରସ୍ତୁତ ନୌକାଦସ୍ଥ, ସତରଞ୍ଜ ଖେଳ ।
ନୌବାହ—ତ୍ରି. ବିଂ. (ନୌ+ବାହ+ କ.ଅ) ନୌକାବାହକ, ଯେ ଡଙ୍ଗା ଚଳାଏ, ଆହୁଲା ।
ନୌବାହିନୀ—ସ୍ତ୍ରୀ.ବି.( କ.ଧା) ଜଳଯୁଦ୍ଧ ନିମିତ୍ତ ସୈନ୍ୟଦଳ, ନୌବଳ ।
ନୌବିଦ୍ୟା—ସ୍ତ୍ରୀ.ବି. (କ.ଧା) ଜାହାଜାଦି ପରିଚାଳନ ବିଦ୍ୟା, ନାବିକବିଦ୍ୟା ।
ନୌବ୍ୟସନ—କ୍ଳୀ.ବି. (ତତ୍ପୁ) ପୋତ-ଧ୍ୱଂସ,ଜାହାଜଭଙ୍ଗ,ନୌକାର କୌଣସି ପ୍ରକାର ବିପଦ ।
ନୌଶେରବାଣୀ— ବେଲୁଚିସ୍ଥାନବାସୀ ଜାତିବିଶେଷ ।
ନୌସେଚନ—କ୍ଳୀ.ବି. ନୌକାସେଚନ ।
ନୌସହର—ପଞ୍ଜାବ ରାଜ୍ୟର ପେଶବାର ଜିଲ୍ଲାନ୍ତର୍ଗତ ଗୋଟିଏ ତହସୀଲ ।
ନୌସେନା—ବି. (କ.ଧା) ଜଳଯୁଦ୍ଧକାରୀ ସୈନ୍ୟ, ନୌବଳ । [ ଦେଖ ।
ନୌସୈନିକ—ପୁଂ.ବି.କ.ଧା;ନୌସେନା
ନ୍ୟକ—ଅବ୍ୟ. (ନି+ଅନ୍ଚ+କ.କ୍ୱିପ୍) ନୀଚ, ନମ୍ର, ଘୃଣ୍ୟ ।
ନ୍ୟକା—ସ୍ତ୍ରୀ.ବି.(ନି+ଅକ)ବିଷ୍ଠାର କୀଟ ।
ନ୍ୟକାରୁକା—ସ୍ତ୍ରୀ.ବି. ବିଷ୍ଠାକୃମି ।
ନ୍ୟକ୍କାର—ପୁଂ.ବି. (ନ୍ୟକ୍+କୃ+ଭା.ଅ) ଘୃଣା, ଅବଜ୍ଞା, ପରିହାସ, ପରିହାର, ପରାଭବ, ଅପମାନ, ତିରସ୍କାର ।
ନ୍ୟକ୍କାରଜନକ—ବିଂ. (ତତ୍ପୁ) ଅବଜ୍ଞା-ଜନକ, ଅଶ୍ରଦ୍ଧେୟ,ଘୃଣାକର, ଦମନ-କାରୀ ।
ନ୍ୟକ୍କୃତ—ବିଂ. (ନ୍ୟକ୍+କୃତ)ଧିକ୍କୃତ, ଅବଜ୍ଞାତ ।
ନ୍ୟକ୍ତ—ତ୍ରି.ବିଂ. ( ନି+ଅନ୍ଜ+ତ ) ନିତାନ୍ତ ଅଞ୍ଜନଯୁକ୍ତ କୃତ ।
ନ୍ୟକ୍ନ—ତ୍ରି.ବିଂ.ନତ, ନିମ୍ନଭାଗେ ନ୍ୟସ୍ତ, ତଳେ ରଖାହୋଇଥିବା ।
ନ୍ୟକ୍ନାଙ୍ଗୁଳୀ—ତ୍ରି.ବିଂ. ନିମ୍ନଦିଗକୁ ନ୍ୟସ୍ତ ଅଙ୍ଗୁଳି ।
ନ୍ୟକ୍ଷ—ପୁଂ. ବି. ( ନି+ଅକ୍ଷ ) ମହିଷ, ଜାମଦଗ୍ନ୍ୟ, ପରଶୁରାମ, କାର୍ତ୍ସ୍ନ୍ୟ, (କ୍ଳୀ. ବି) ମହିଷତୃଣ, (ବିଂ) ନୀଚ, ସମଗ୍ର, ନିକୃଷ୍ଟ ।
ନ୍ୟଗ୍ଜାତ—କ୍ଳୀ. ବି. ନୀଚଜାତ, ଯାହା ନୀଚଅଂଶରେ ଜନ୍ମେ ।
ନ୍ୟଗ୍ଭାବ—ପୁଂ.ବି. ନମ୍ରତା ।
ନ୍ୟଗ୍ଭାବନ—କ୍ଳୀ.ବି.ନତକରଣ,ନୀଚତ୍ୱ-ପ୍ରାପଣ, ଘୃଣାସହିତ ବ୍ୟବହାରକରଣ ।
ନ୍ୟଗ୍ଭାବୟିତା--ପୁଂ.ବିଂ. ଯେ ନତକରେ, ନମ୍ରକାରୀ ।
ନ୍ୟଗ୍ରୋଧ—ପୁଂ. ବି (ନ୍ୟକ+ରୁଧ୍+ କ.ଅ) ବଟବୃକ୍ଷ, ଶମୀବୃକ୍ଷ, ଦୃଢ଼ବାହୁ ପରିମାଣ, ବିଷ୍ଣୁ, ବନୌଷଧି,ଉଗ୍ରସେନ ରାଜାଙ୍କ ପୁତ୍ର,ମହାଦେବ, ବାହୁ,ବାରା-ଣସୀର ଅନ୍ତର୍ଗତ ଗୋଟିଏ ଗ୍ରାମ,ମୂଷିକ-ପର୍ଣ୍ଣୀ, ମୂଷାକାନୀ ।
ନ୍ୟଗ୍ରୋଧକ—ତ୍ରି.ବିଂ.ନ୍ୟଗ୍ରୋଧ,ତାହାର ଅଦୂର ଦେଶାଦି ।
ନ୍ୟଗ୍ରୋଧନ—ବି. (ନ୍ୟକ୍+ରୁଧ୍+ଭା. ଅନ) ଅବଜ୍ଞାନ ।
ନ୍ୟଗ୍ରୋଧପରିମଣ୍ଡଳ—ପୁଂ. ବି. (ବ.ବ୍ରୀ) ଦୃଢ଼ବାହୁ ଦିଜ ପରମ ସୁନ୍ଦର ପୁରୁଷ, ଅତିଶୟ ଉନ୍ନତ ପୁରୁଷ ।
ନ୍ୟଗ୍ରୋଧପରିମଣ୍ଡଳା—ସ୍ତ୍ରୀ. ବି. ବିଶାଳ-ନିତମ୍ବା କ୍ଷୀଣମଧ୍ୟା କଠିନକୁଚ ସୁନ୍ଦରୀ ସ୍ତ୍ରୀ ।
ନ୍ୟଗ୍ରୋଧପୁଟପାକ—ପୁଂ.ବି. ବଟକଳ୍କାଦି ପୁଟପାକଭେଦ । [ ମୂଳ ।
ନ୍ୟଗ୍ରୋଧମୂଳ—ତ୍ରି.ବିଂ.ବଟବୃକ୍ଷର ଚେର,
ନ୍ୟଗ୍ରୋଧା—ସ୍ତ୍ରୀ.ବି. (ନ୍ୟକ୍+ରୁଧ୍+ଅ

+ଆ) ନ୍ୟଗ୍ରୋଧୀ, ଦନ୍ତୀ, ଉଦୁମ୍ବର-ପର୍ଣ୍ଣୀ, ମୂଷାକାଣ୍ଣି ଲତା ।

ନ୍ୟଗ୍ରୋଧାଦ୍ୟଘୃତ—କ୍ଲୀ. ବ. ଭୈଷଜ୍ୟ-ରତ୍ନାବଳୀଧୃତ ଘୃତ ଔଷଧିବିଶେଷ ।

ନ୍ୟଗ୍ରୋଧାଦ୍ୟଚୂର୍ଣ୍ଣ—କ୍ଲୀ. ବ. ଭାବପ୍ରକା-ଶୋକ୍ତ ଚୂର୍ଣ୍ଣୌଷଧିଭେଦ ।

ନ୍ୟଗ୍ରୋଧାରାମ—କପିଳବାସ୍ତୁ ନଗରସ୍ଥ ବୌଦ୍ଧମାନଙ୍କର ଗୋଟିଏ ସଙ୍ଘାରାମ ।

ନ୍ୟଗ୍ରୋଧିକ—ତ୍ରି.ବିଂ. ନ୍ୟଗ୍ରୋଧସନ୍ନିକୃଷ୍ଟ ଦେଶାଦି ।

ନ୍ୟଗ୍ରୋଧିକା—ସ୍ତ୍ରୀ. ବ. ଆଖୁକର୍ଣ୍ଣି ଲତା. ମୂଷାକାନି ଲତା ।

ନ୍ୟଗ୍ରୋଧୀ—ତ୍ରି.ବିଂ. ନ୍ୟଗ୍ରୋଧ ସନ୍ନିକୃଷ୍ଟ ଦେଶାଦି ।

ନ୍ୟଙ୍କ—ପୁଂ.ବ. ଯାନାଦିର ଅଂଶଭେଦ ।

ନ୍ୟଙ୍କୁ—ପୁଂ.ବ. (ନି+ଅନ୍‌ଚ+କ.ଉ) ମୃଗଭେଦ, ମୃଦଙ୍ଗଭେଦ, ଖୁରଣ୍ଟି, ଅତି-କ୍ଷୁଦ୍ର ଚହଦେହ ମୃଗବିଶେଷ, ବହୁ-ଶୃଙ୍ଗ ମୃଗବିଶେଷ,(ବିଂ)ନିତାନ୍ତ ଗମନ-ଶୀଳ ।

ନ୍ୟଙ୍କୁଭୂରୁହ—ପୁଂ. ବ. ଶ୍ୟୋନାକବୃକ୍ଷ, ଫଣଫଣା ଗଛ ।

ନ୍ୟଚ୍ଛ—କ୍ଲୀ. ବ. କ୍ଷୁଦ୍ର ରୋଗ ଓ ଚର୍ମ-ରୋଗବିଶେଷ, (ବିଂ)ଅତ୍ୟନ୍ତ ନିର୍ମଳ ।

ନ୍ୟଞ୍ଚ—ତ୍ରି.ବିଂ. (ନି+ଅନ୍‌ଚ+କ.କ୍ୱିପ୍) ନିମ୍ନ, ନୀଚ, କାର୍ତ୍ସ୍ନ୍ୟ, (ମ.କ୍ୱିପ୍) ଖର୍ବ, ହେୟ ।

ନ୍ୟଞ୍ଚନ—କ୍ଲୀ.ବ. ଅତିଶୟ ଗମନ ।

ନ୍ୟଞ୍ଚିତ—ତ୍ରି.ବିଂ. (ନି+ଅନ୍‌ଚ+ମ.ତ) ଅଧଃକ୍ଷିପ୍ତ ।

ନ୍ୟଞ୍ଜଳିକା—ସ୍ତ୍ରୀ. ବ. (ନି+ଅଞ୍ଜଳି+କ +ଆ) ନିମ୍ନଭାଗରେ ନ୍ୟସ୍ତ ହସ୍ତପୃଷ୍ଠ, ତଳଆଡ଼କୁ ପ୍ରସାରିତ ଅଞ୍ଜଳି ।

ନ୍ୟନ୍ତ—ପୁଂ.ବ. ଚରମଭାଗ, ଶେଷଭାଗ ।

ନ୍ୟୟ—ପୁଂ.ବ. (ନି+ଇ+ଭ.ଅ)ଅପ-ଚୟ, ନାଶ, କ୍ଷତ, ବ୍ୟୟ ।

ନ୍ୟୟନ—କ୍ଲୀ.ବ. ହ୍ରଦ ।

ନ୍ୟର୍ଣ୍ଣ—ତ୍ରି.ବିଂ. (ନି+ଅର୍ଣ୍ଣ) ଦ୍ରବୀଭୂତ ।

ନ୍ୟର୍ଥ—ପୁଂ.ବ. (ନି+ଋ+ଥ) ନିକୃଷ୍ଟ-ଗତି,(ବିଂ—ବ.ଗ୍ରା) ନିକୃଷ୍ଟାର୍ଥ,ଧ୍ୱଂସ ।

ନ୍ୟର୍ବୁଦ—କ୍ଲୀ.ବ. ଦଶଗୁଣିତ ଅର୍ବୁଦ-ସଂଖ୍ୟା, ତତ୍‌ସଂଖ୍ୟେୟ ।

ନ୍ୟର୍ବୁଦ—ପୁଂ.ବ. ରୁଦ୍ରଭେଦ ।

ନ୍ୟସନ—ବ. ( ନି+ଅସ୍ + ଭ.ଅନ ) ଦାନ, ଅର୍ପଣ, ତ୍ୟାଗ,ରକ୍ଷିବା,ସ୍ଥାପନ ।

ନ୍ୟସ୍ତ—ତ୍ରି. ବିଂ. ( ନି + ଅସ୍ + ମ.ତ ) ନିକ୍ଷିପ୍ତ, ତ୍ୟକ୍ତ, ବିସୃଷ୍ଟ, ନିହିତ,ସ୍ଥାପିତ, ବିନ୍ୟସ୍ତ, ସଜ୍ଜିତ, ହସ୍ତାନ୍ତରିତ,ରଚିତ, ବିସ୍ତାରିତ, ବନ୍ଧକ ରଖାଯାଇଥିବା ।

ନ୍ୟସ୍ତଦଣ୍ଡ—ତ୍ରି. ବିଂ. ଯେ ଦଣ୍ଡ ନତ କରିଅଛି । [ ମୃତଦେହ ।

ନ୍ୟସ୍ତଦେହ—ତ୍ରି. ବିଂ. ସ୍ଥାପିତ ଦେହ,

ନ୍ୟସ୍ତଶସ୍ତ୍ର—ପୁଂ. ବ. ପିତୃଲୋକ, (ବିଂ) ଯୁଦ୍ଧ କରିବାକୁ ପରାଙ୍ମୁଖ, ଯେ ଶସ୍ତ୍ର ଛାଡ଼ିଅଛି ।

ନ୍ୟସ୍ତିକା—ସ୍ତ୍ରୀ.ବ. ଦୌର୍ଭାଗ୍ୟ ଲକ୍ଷଣ ।

ନ୍ୟସ୍ୟ—ତ୍ରି.ବିଂ. ( ନି + ଅସ୍ + ମ.ଯ ) ସ୍ଥାପନୀୟ, ତ୍ୟକ୍ତବ୍ୟ, ନ୍ୟସ୍ତହେବାର ଯୋଗ୍ୟ ।

ନ୍ୟହ୍ନ—ପୁଂ.ବ.ମାସର ଶେଷଦିନ,ଅମା-ବାସ୍ୟାର ସାୟଂକାଳ ।

ନ୍ୟାକ୍ୟ—କ୍ଲୀ.ବ. (ନି + ଅକ+ଯ)ଭୃଷ୍ଟ-ତଣ୍ଡୁଳ, ଗୁଡ଼ଲଭଜା, ମୁଢ଼ି ।

ନ୍ୟାଙ୍କବ—ତ୍ରି.ବିଂ. ନ୍ୟଙ୍କୁ ମୃଗଚର୍ମ ।

ନ୍ୟାଦ—ପୁଂ.ବ.(ନି+ଅଦ+ଅ)ଆହାର ।

ନ୍ୟାୟ—ପୁଂ.ବ. (ନି + ଇ + କ.ଅ)ବିଷ୍ଣୁ, ସତ୍ୟ, ନିର୍ଦ୍ଧାରଣ, ଉଦାତ୍ତ ।ଅନୁଦାତ୍ତ ଓ ସ୍ୱରିତ ଏହି ତ୍ରିବିଧ ସ୍ୱର, ସାଧୁ-ନୀତି, ଜୟୋପାୟ, ଯାଥାର୍ଥ୍ୟ, ଯୋଗ, ଯୁକ୍ତି, ବିତର୍କ, ଯୁକ୍ତିମୂଳକ ଦୃଷ୍ଟାନ୍ତ-ବିଶେଷ, ବିଚାର, ପ୍ରତିଜ୍ଞାହେତୁ ଉଦା-ହରଣ,ଉପନୟନ, ନିଗମନାତ୍ମକ ପଞ୍ଚ ଅବୟବ ବାକ୍ୟ, ଷଡ଼୍‌ଦର୍ଶନାନ୍ତର୍ଗତ ଗୌତମ ପ୍ରଣୀତ ଦର୍ଶନଶାସ୍ତ୍ର ବା ଆନ୍ୱୀ-କ୍ଷିକୀଶାସ୍ତ୍ର,ନ୍ୟାୟଦର୍ଶନ, (ଗ୍ରା.ବ)ନିକ୍ଷାପ, ପଞ୍ଚାୟତ୍ ବିଚାର, ( ଗ୍ରା.ବିଂ ) ପର, ନ୍ୟାଯ୍ୟ, (ତ୍ରି.ବିଂ)ସଦ୍‌ଗୁଣ ।

ନ୍ୟାୟକ—ପୁଂ.ବ. (ନ୍ୟାୟ+କୃ+କ.ଅ) ବିଚାରକ, ତାର୍କିକ ।

ନ୍ୟାୟକର୍ତ୍ତା—ପୁଂ.ବିଂ. ସୁବିଚାରକ, (ବି) ବିଚାରପତି । [ ଗୃହୀ ।

ନ୍ୟାୟକୋକିଳ—ପୁଂ.ବ.ଜଣେ ବୌଦ୍ଧା-

ନ୍ୟାୟଗତ—ବିଂ. ( ୨ତତ୍ ) ନ୍ୟାଯ୍ୟ, ନ୍ୟାୟସଙ୍ଗତ ।

ନ୍ୟାୟତଃ--ଅବ୍ୟ.(ନ୍ୟାୟ+ତସ୍)ନ୍ୟାୟା-ନୁସାରେ, ନ୍ୟାୟରୂପେ, ଧର୍ମତଃ ।

ନ୍ୟାୟତା—ସ୍ତ୍ରୀ.ବ. ( ନ୍ୟାୟ+ଭ.ତା ) ନ୍ୟାୟର ଭାବ, ଉପଯୁକ୍ତତା,ଔଚିତ୍ୟ ।

ନ୍ୟାୟଦେବ—ଭରଣ ପ୍ରଣୀତ ସଙ୍ଗୀତ-ନୃତ୍ୟାକର ଗ୍ରନ୍ଥର ଟୀକାକାର ।

ନ୍ୟାୟଦେଶ—କ୍ଲୀ.ବ. ବିଚାରାଳୟ,ବିଚାର ସମ୍ବନ୍ଧୀୟ କର୍ମ ।

ନ୍ୟାୟନିଷ୍ଠ—ବିଂ. (ବ.ଗ୍ରା) ନ୍ୟାୟପରା-ୟଣ, ଅପକ୍ଷପାତୀ ।

ନ୍ୟାୟନିଷ୍ଠା—ବ. (୭ତତ୍) ନ୍ୟାୟପରା-ୟଣତା, ଅପକ୍ଷପାତିତା ।

ନ୍ୟାୟନିକ୍ଷାପ—ଗ୍ରା.ବ.ପଞ୍ଚାୟତ୍ ବିଚାର ।

ନ୍ୟାୟପଥ—ପୁଂ.ବ.ମୀମାଂସା ଶାସ୍ତ୍ର,ନୀତି ସମ୍ମତ ପଥ,ଧର୍ମମାର୍ଗ, ନ୍ୟାୟଉପାୟ ।

ନ୍ୟାୟପର—ବିଂ. (ବ.ଗ୍ରା) ନ୍ୟାୟପଥ-ଗାମୀ । [ କାର୍ଯ୍ୟ ।

ନ୍ୟାୟପରତା—ସ୍ତ୍ରୀ. ବ. ନ୍ୟାୟବାନର

ନ୍ୟାୟପରାୟଣ—ପୁଂ.ବିଂ.(ବ.ଗ୍ରା)ନ୍ୟାୟ-ପର ଦେଖ ।

ନ୍ୟାୟବନ୍ତ—ଗ୍ରା. ବିଂ. (ସଂ-ନ୍ୟାୟବାନ୍) ନ୍ୟାୟପରାୟଣ ।

ନ୍ୟାୟବଳ—ଗ୍ରା.ବ. ସତରଞ୍ଜ ଖେଳପରି ଏକପ୍ରକାର ଖେଳ ।

ନ୍ୟାୟବର୍ତ୍ତୀ—ପୁଂ.ବିଂ. (ନ୍ୟାୟ+ବୃତ୍‌+ଇନ୍) ଯେ ନ୍ୟାୟପଥରେ ଚାଲେ ।

ନ୍ୟାୟବାଗୀଶ—ପୁଂ. ବ. କାବ୍ୟଚନ୍ଦ୍ରିକା ନାମରେ ଗୋଟିଏ ଅଳଙ୍କାର ଗ୍ରନ୍ଥର ପ୍ରଣେତା ।

ନ୍ୟାୟବାନ୍—ପୁଂ.ବିଂ. (ନ୍ୟାୟ + ବତ୍) ନ୍ୟାୟପରାୟଣ ।

ନ୍ୟାୟବିଗ୍ରହ—ବ. ( କ.ଧା ) ଧର୍ମବିଗ୍ର-ହଣା, ଅପକ୍ଷପାତ ବିଗ୍ରହଣା ।

ନ୍ୟାୟବିରୁଦ୍ଧ—ବି. (୭ତତ୍ପୁ) ଅନ୍ୟାଯ୍ୟ, ଅଯୌକ୍ତିକ, ଅବୈଧ ।
ନ୍ୟାୟବିହିତ—ବି.ବିଂ. ନ୍ୟାୟାନୁସାରେ କୃତ, ଯାହା ନ୍ୟାୟପୂର୍ବକ କରାଯାଏ ।
ନ୍ୟାୟବୁଦ୍ଧି—ବି. ( କ.ଧା ବା ୬ତତ୍ପୁ ) ନ୍ୟାୟାନ୍ୟାୟ, ବୋଧଶକ୍ତି, ବିବେକ ।
ନ୍ୟାୟବୃତ୍ତ—କ୍ଲୀ.ବି.ଶାସ୍ତ୍ରବିହିତ ଆଚାର, (ବିଂ) ଶାସ୍ତ୍ର ବିହିତାଚାରୀ ।
ନ୍ୟାୟରତ୍ନ—ଗ୍ରା. ବି. ନ୍ୟାୟଶାସ୍ତ୍ର ପାରଦର୍ଶୀ ପଣ୍ଡିତଙ୍କୁ ପ୍ରଦତ୍ତ ଉପାଧିବିଶେଷ, ଶ୍ରେଷ୍ଠ ନୈୟାୟିକ ।
ନ୍ୟାୟଶାସ୍ତ୍ର—ବି. ଗୌତମ ଋଷି ପ୍ରଣୀତ ତର୍କଶାସ୍ତ୍ରବିଶେଷ, ଯୁକ୍ତିଶାସ୍ତ୍ର ।
ନ୍ୟାୟଶାସ୍ତ୍ରୀ—ପୁଂ.ବି.ମହାରାଷ୍ଟ୍ର ଦେଶରେ ଧର୍ମ ପ୍ରବକ୍ତାର ଉପାଧି । [ ଦେଖ ।
ନ୍ୟାୟଶୀଳ—ବିଂ. (ବ.ବ୍ରୀ) ନ୍ୟାୟପର
ନ୍ୟାୟସଙ୍ଗତ—ବିଂ. (୭ତତ୍ପୁ) ନ୍ୟାଯ୍ୟ, ନ୍ୟାୟାନୁଗତ,ଯୁକ୍ତିଯୁକ୍ତ, ଯୁକ୍ତିସଙ୍ଗତ ।
ନ୍ୟାୟସଭା—ବି. ଅଦାଲତ, ପଞ୍ଚାଏତ ବିଚାରସ୍ଥାନ ।
ନ୍ୟାୟସାରଣୀ—ସ୍ତ୍ରୀ. ବିଂ. ଯୁକ୍ତି ପୂର୍ବକ କର୍ମାନୁସାରଣୀ ।
ନ୍ୟାୟସାରୀ—ପୁଂ. ବିଂ. (ନ୍ୟାୟ+ସୃ+ କ.ଇନ୍) ନ୍ୟାୟ ବା ଯୁକ୍ତିପୂର୍ବକ କାର୍ଯ୍ୟ କରିବା (ବ୍ୟକ୍ତି) ।
ନ୍ୟାୟସୂତ୍ର—ବି. (୬ତତ୍ପୁ) ନ୍ୟାୟ ଶାସ୍ତ୍ରବିହିତ ଯୁକ୍ତିଯୁକ୍ତ ପଦ ବା ବାକ୍ୟ ।
ନ୍ୟାୟାଗତ—ବିଂ.(୩ୟାତତ୍ପୁ)ନ୍ୟାଯ୍ୟ ।
ନ୍ୟାୟାଚାର—ବି. ( କ.ଧା ) ସଦାଚାର, ଧର୍ମାଚରଣ । [ ଅଦାଲତ ।
ନ୍ୟାୟାଧିକରଣ—ବି. (୬ତତ୍ପୁ) କୋର୍ଟ,
ନ୍ୟାୟାଧୀଶ—ବି. (୬ତତ୍ପୁ) ବିଚାରପତି, ଜଜ୍ ଉପାଧି ବିଶେଷ ।
ନ୍ୟାୟାନୁଗତ—ବିଂ. (୩ତତ୍ପୁ)ଯୁକ୍ତିଯୁକ୍ତ, ବିବେକପରାୟଣ, ନ୍ୟାୟସମ୍ମତ ।
ନ୍ୟାୟାନ୍ୟାୟ—ବି. (ନ୍ୟାୟ + ଅନ୍ୟାୟ) ନ୍ୟାୟ ଓ ଅନ୍ୟାୟ,ବିଚାର ଓ ଅବିଚାର ।
ନ୍ୟାୟାଳୟ—ବି.(୬ତତ୍ପୁ)କଚେରି,ଅଦାଲତ
ନ୍ୟାୟୀ—ପୁଂ. ବିଂ. ( ନ୍ୟାୟ+ଇନ୍ ) ନ୍ୟାୟପର, ନ୍ୟାୟକର୍ତ୍ତା । [ ନଷ୍ଟ ।
ନ୍ୟାୟୋପେତ—ପୁଂ.ବିଂ.(୩ତତ୍ପୁ)ନ୍ୟାୟ-
ନ୍ୟାଯ୍ୟ—ବିଂ.(ନ୍ୟାୟ+ଯ)ନ୍ୟାୟସଙ୍ଗତ, ଯୁକ୍ତିଯୁକ୍ତ, ଯଥାର୍ଥ, ଯୋଗ୍ୟ, ଉଚିତ, ଆଇନ୍‌ସଙ୍ଗତ ।
ନ୍ୟାସ—ବି. (ନି+ଅସ୍+ଭା.ଅ)ଅର୍ପଣ, ଡିପୋଜିଟ୍, ସ୍ଥାପନ,ଥୋଇବା,ନିକ୍ଷେପ, ଶ୍ୱାସପୂରଣ, ଧାରଣ ଓ ରେଚନପୂର୍ବକ ମନ୍ତ୍ରଜପ, ପୂରକ କୁମ୍ଭକ ଓ ରେଚକ ପୂର୍ବକ ମନ୍ତ୍ରଜପ, (ମି.ଅ)ଗଚ୍ଛିତଦ୍ରବ୍ୟ, ବନ୍ଧକଦେବା,ବନ୍ଧକ ଦିଆଯିବା ସମ୍ପତ୍ତି, ତ୍ୟାଗ, ବର୍ଜନ, ମନରେ କୌଣସି ବିଷୟର ଦୃଢ଼ାଧିଷ୍ଠାନ, ଧାରଣା,ସନ୍ନ୍ୟାସ, (ସଙ୍ଗୀତ) ରାଗର ବିଶ୍ରାମକ ସ୍ୱର,ପୂଜା କରିବା ସମୟରେ ତାନ୍ତ୍ରିକ ପଦ୍ଧତି ଅନୁସାରେ ମନ୍ତ୍ରପାଠ ପୂର୍ବକ ଦେବତାଙ୍କ ଭିନ୍ନ ଭିନ୍ନ ଅଙ୍ଗରେ ଭିନ୍ନ ଭିନ୍ନ ବର୍ଣ୍ଣ ସ୍ଥାପନ,ଯଥା ସମୟରେ ପ୍ରତ୍ୟର୍ପିତ ହେବା ବା ବ୍ୟୟିତ ହେବାପାଇଁ କୌଣସି ବ୍ୟକ୍ତିଙ୍କ ଠାରେ ଅର୍ପିତ ଧନ, କୌଣସି ବାଧା ବା ରୋଗର ଶାନ୍ତ୍ୟର୍ଥେ ବାଧାଗ୍ରସ୍ତ ବା ରୋଗୀର ଭିନ୍ନ ଭିନ୍ନ ଅଙ୍ଗରେ ହସ୍ତ ସ୍ଥାପନ ପୂର୍ବକ ମନ୍ତ୍ରପାଠ, (ଗ୍ରା.ବି) ପରମ୍ପରାଗତ ବ୍ୟବସ୍ଥା ।
ନ୍ୟାସଧାରକ—ପୁଂ. ବିଂ. ବନ୍ଧକଗ୍ରାହୀ, ଗଚ୍ଛିତ ବସ୍ତୁର ଜମାଦାର ।
ନ୍ୟାସଧାରଣ—ବି.(୬ତତ୍ପୁ)ଗଚ୍ଛିତ ବସ୍ତୁର ସଂରକ୍ଷଣ, କୌଣସି ବସ୍ତୁକୁ ନ୍ୟାସରୂପେ ରଖିବା ।
ନ୍ୟାସାପହ୍ନବ—ବି. (୬ତତ୍ପୁ) ନ୍ୟାସର ଅସ୍ୱୀକାର, ନ୍ୟସ୍ତବସ୍ତୁ ବା ଧନର ଅପବ୍ୟବହାର ।
ନ୍ୟାସିକ—ପୁଂ. ବି. (ନ୍ୟାସ+କ)ଗଚ୍ଛିତ ବସ୍ତୁ ବା ଧନର ରକ୍ଷକ,ବନ୍ଧକ ଗ୍ରହୀତା, ସନ୍ନ୍ୟାସୀ, ନ୍ୟାସକର୍ତ୍ତା, (ବିଂ) ଯାହା ନିକଟରେ ଗଚ୍ଛିତ ବସ୍ତୁ ରଖାଯାଏ ।
ନ୍ୟାସିବା—ଗ୍ରା. (ପଦ୍ୟ) କ୍ରି. (କଥା) ପ୍ରୟୋଗ କରିବା,ଯଥା ସ୍ଥାନରେ ସନ୍ନିବେଶିତ କରିବା,ଅର୍ପଣ କରିବା,ଦେବା, ଦାନ କରିବା ।
ନ୍ୟାସୀ— ପୁଂ. ବି ଓ ବିଂ. ( ନ୍ୟାସ+ ଇନ୍) ନ୍ୟାସିକ ଦେଖ ।
ନ୍ୟୁଙ୍ଖ—ପୁଂ. ବି. (ନି+ଉଙ୍ଖ+ଅ)ରାଗ୍ଭେଦ, ସମ୍ୟକ୍, ମନୋଜ୍ଞ ।
ନ୍ୟୁବ୍ଜ—ବିଂ. (ନି + ଉବ୍ଜ+କ.ଅ) ବଙ୍କା, ବକ୍ର, ଅଧୋମୁଖ, ବକ୍ରୀକୃତ, ଓଲଟି ପଡ଼ିଥିବା, କୁଜା, (ବି) ଚଟୁ, ଅଣକ, ଗୋଲାକାର ପଦାର୍ଥର ପିଠିଭାଗ,କୁଣ୍ଡ, ମାଳା,କରମଙ୍ଗା ଫଳ, ଦର୍ଭମୟ ସ୍ରୁକ୍ ।
ନ୍ୟୁବ୍ଜଖଡ୍ଗ—ପୁଂ. ବି. କୁବ୍ଜଖଡ୍ଗ, ବାଙ୍କ ତରବାରି ।
ନ୍ୟୁବ୍ଜଦେହ—ବିଂ. (ବ.ବ୍ରୀ)କୁଜାପିଠିଆ, ଉପର ଆଡ଼କୁ କୁଜା ।
ନ୍ୟୂନ—ବିଂ.(ନି+ଊନ+କ.ଅ)ଜଘନ୍ୟ, ହୀନ, ନୀଚ, ଅଳ୍ପ, ଅଭାବ ଯୁକ୍ତ, ଅକୁଳାନ, ଅଳ୍ପତର ।
ନ୍ୟୂନକଳ୍ପେ—ଗ୍ରା. କ୍ରି. ବିଂ. ନିତାନ୍ତ ପକ୍ଷରେ,ଅତି କମରେ,ଅତିକ୍ଷୁଦ୍ରଭାବରେ ।
ନ୍ୟୂନତର—କ୍ରି. ବିଂ. ପ୍ରଚଳିତ ପ୍ରମାଣର ହ୍ରାସ, ଚଳିତ ମୂଲ୍ୟ ବା ଓଜନ ଅପେକ୍ଷା କମ୍ । [ ଅଳ୍ପତା ।
ନ୍ୟୂନତା—ସ୍ତ୍ରୀ. ବି.(ନ୍ୟୂନ+ତା)କ୍ଷୁଦ୍ରତା,
ନ୍ୟୂନଧୀ—ବି. (ବ.ବ୍ରୀ)ଅଜ୍ଞ,ହୀନବୁଦ୍ଧିଆ ।
ନ୍ୟୂନପଞ୍ଚାଶଦ୍ଭାବ—ବିଂ. ଊନପଞ୍ଚାଶତ୍, ବାୟୁଗ୍ରସ୍ତ, ପାଗଳ,ବାତୁଳ,ହତଜ୍ଞାନ ।
ନ୍ୟୂନାଙ୍ଗ—ପୁଂ. ବିଂ.(ବ.ବ୍ରୀ)ବିକଳାଙ୍ଗ ।
ନ୍ୟୂନାତିରିକ୍ତ—ବିଂ. (କ.ଧା) ଅଳ୍ପାଧିକ, କମ୍‌ବେଶୀ, ଅଳ୍ପବହୁତ ।
ନ୍ୟୂନାତିରେକ—ବି.(ନ୍ୟୂନ+ଅତିରେକ) ସାମାନ୍ୟରେ କମ୍‌ବେଶୀ ଅବସ୍ଥା,ଅଳ୍ପାଧିକ୍ୟ, କମ୍ ବେଶୀ ।
ନ୍ୟୂନାଧିକ—ବିଂ. ( ନ୍ୟୂନ+ଅଧିକ ) ନ୍ୟୂନାତିରିକ୍ତ ଦେଖ ।
ନ୍ୟୂନାଧିକ୍ୟ—ବି. ( ନ୍ୟୂନ+ଆଧିକ୍ୟ ) ନ୍ୟୂନାତିରେକ ଦେଖ ।
ନ୍ୟୂନେନ୍ଦ୍ରିୟ—ପୁଂ.ବିଂ.(ବ.ବ୍ରୀ)ବିକଳେନ୍ଦ୍ରିୟ,ଯାହାର କେତେକ ଇନ୍ଦ୍ରିୟ ନାହିଁ ।
ନ୍ୟୋକଃ—କ୍ରି. ବିଂ. (ବ.ବ୍ରୀ) ନିୟତ-

. ସ୍ଥାନ ଯୁକ୍ତ ।
ନ୍ୟୋଚନୀ—ସ୍ତ୍ରୀ. ବି. ଦାସୀ ।
ନ୍ୟୋଜଃ—ତ୍ରି. ବି°. (ନ+ଉଜସ୍) ଆର୍ଜବ ଶୂନ୍ୟ, କୁଟିଳ ।
ନୃଷ୍ଠିମାଳୀ—ପୁଂ. ବି. (ନୃ+ଅସ୍ଥିମାଳ+ଇନ୍) ଶିବ, ଶୁଭ, (ବି°)ନର ଅସ୍ଥିମାଳ ବିଶିଷ୍ଟ ।

# ପ

ପ—ପୁଂ. ବି. ଏକବିଂଶ ବ୍ୟଞ୍ଜନବର୍ଣ୍ଣ, 'ପ' ବର୍ଗର ପ୍ରଥମ ବର୍ଣ୍ଣ, (ପା+କ.ଅ) ରାଜା, ରାଜପୁତ୍ର, ଶାସ୍ତା, ଶାସନକର୍ତ୍ତା, (ପତ୍+କ.ଅ) ପବନ, ଅଣ୍ଡ, (ପା+ଘ.ଅ) ପାନ, (ଣ.ଅ) ପାତ୍ର, ରକ୍ଷା ।
ପଅ—ଗ୍ରା. ବି. (ସଂ-ପାଦ) ପୁଅ, ପଣାକାଠିରେ ପଡ଼ିବା ଏକସଂଖ୍ୟକ ଦାନ ।
ପଅଁର—ଗ୍ରା. ବି. ଗୁଆଁଣୀ, ଝାଙ୍କୁଆ ।
ପଅଁର—ପ୍ରା. (ସମ୍ବଲ) ବି. ଗୋଡ଼ର ବଳା ।
ପଅଁଷଠୀ—ଗ୍ରା.ବି ଓ ବି°. ୬୦ଅପେକ୍ଷା ୫ ଊର୍ଦ୍ଧ୍ୱସଂଖ୍ୟା, ୬୫ ସଂଖ୍ୟକ ।
ପଅରେଦିନ—ଗ୍ରା. ବି. (ସଂ-ପରେଦ୍ୟୁ) ପରଶୁ, ଗତକାଲର ପୂର୍ବଦିନ ଓ ଆଗାମୀ କାଲର ପରଦିନ ।
ପଇ—ଗ୍ରା. ବି. (ସଂ-ପ୍ରଧି) ପହି, ଶଗଡ଼ ଚକର ପରିଧିକୁ ଘେରିଥିବା କାଷ୍ଠଖଣ୍ଡମାନ, ନେମି, କ୍ଷୁଦ୍ର ନାଳୀ ।
ପଇଆ—ଗ୍ରା.ବି. ଶଗଡ଼ଚକ,ପଇଦେଖ ।
ପଇଁଚାଳିଶ(ଶି)—ଗ୍ରା. ବି ଓ ବି°. ୪୦ ଅପେକ୍ଷା ୫ଅଧିକସଂଖ୍ୟା, ୪୫ସଂଖ୍ୟକ ।
ପଇଁତିରିଶ(ଶି)—ଗ୍ରା. ବି ଓ ବି°. ୩୦ ଅପେକ୍ଷା ୫ ଅଧିକ ସଂଖ୍ୟା,୩୫ସଂଖ୍ୟକ
ପଇକାର(ରୀ)—ଗ୍ରା. ବି. କୋଗୃ ବିକି କରିବା ବେପାରୀ, (ଗ୍ରା.ବି°) କୋଗୃବିକି ସମ୍ବନ୍ଧୀୟ ।
ପଇକାସ୍ତ—ଯା.ବି. ପାହିରଇତ,ଆପଣା ନିବାସ ମୌଜାଛଡ଼ା ଅନ୍ୟ ମୌଜାରେ ଜମି ଚାଷକରିବା ପ୍ରଜା ।
ପଇଖାନା—ଯା. ବି. ପାଇଖାନା, ମଳ ତ୍ୟାଗର ସ୍ଥାନ, ମଳ, ଝାଡ଼ାଫେରିବା ।
ପଇଟ—ଗ୍ରା. ବି. (ସଂ-ପୁନରାବୃତ୍ତି) କୌଣସି ପାଠ ବା ବିଦ୍ୟା ମୁଖସ୍ଥ ହେବା, (ଗ୍ରା.ବି°) ମୁଖସ୍ଥ, କଣ୍ଠସ୍ଥ ।
ପଇଟା—ଗ୍ରା.ବି. (ସଂ-ପୁନରାବୃତ୍ତି)ପୁନରାବୃତ୍ତି, ମୁଖସ୍ଥୀ କରଣ, (ବି°) ମୁଖସ୍ଥ ।
ପଇଟା(ଟେ)ଇବା—ଗ୍ରା. କ୍ରି. କୌଣସି ପାଠକୁ ବାରମ୍ବାର ଘୋଷିବା,ଅଭ୍ୟାସ କରିବା, ମୁଖସ୍ଥ କରିବା, ଧନ, ନଗଦ ଅର୍ଥ ।
ପଇଟିବା—ଗ୍ରା. କ୍ରି. (ସଂ-ପ୍ରବିଷ୍ଟ) ମୁଖସ୍ଥ ହେବା, (କୌଣସି ବିଦ୍ୟା) ଆୟତ୍ତ ହେବା, (ଘୋଷିଥିବା ବିଷୟ) ସ୍ମୃତିପଥାରୂଢ଼ ହେବା ।
ପଇଠ—ଗ୍ରା. ବି. (ସଂ-ପୀଠ) କରପୃଷ୍ଠ, ହାତପାପୁଲି,(ଧନ ବା ବସ୍ତୁର) ଦାଖଲ, ଖାତକର ମହାଜନଙ୍କୁ କିସ୍ତିବନ୍ଦୀ ଅନୁସାରେ ଦେବା ଧନ,କିସ୍ତି, ଥର,(ବି°) ଦାଖଲ କରାଯାଇଥିବା, ମୁଖସ୍ଥ ।
ପଇଠି—ଗ୍ରା. ବି. ଘାଟ, ନିର୍ଝର, କର ତଳର ଭାଗ, ପାହାଚର ଧାପ, (ବି) ପଇଠ ଦେଖ ।
ପଇଡ଼—ଗ୍ରା. ବି. କଞ୍ଚିନଡ଼ିଆ ।
ପଇତା—ଗ୍ରା.ବି.ଯଜ୍ଞୋପବୀତ,ଯଜ୍ଞସୂତ୍ର, ଯଜ୍ଞୋପବୀତ ଗ୍ରହଣ ଅନୁଷ୍ଠାନ ।
ପଇତାମନ୍ତ୍ର—ଗ୍ରା. ବି. ଯଜ୍ଞୋପବୀତରେ ଗଣ୍ଠି ପକାଇ ସାର ପିନ୍ଧିବା ପୂର୍ବରୁ ଯେଉଁ ମନ୍ତ୍ରଦ୍ୱାରା ତାକୁ ସଂସ୍କାର କରାଯାଏ ।
ପଇତାସୂତା—ଗ୍ରା. ବି. ଯେଉଁ ସୂତାରେ ପଇତା ତିଆରି ହୁଏ ।
ପଇତ—ଗ୍ରା. ବି. ରନ୍ଧାଡାଲି, ମୁଗ ବିରି କୋଳଥ ଆଦିର ପାଣିଆ ଡାଲି ।
ପଇଦଲ—ଗ୍ରା. ବି°. ପାଦଚାରୀ,(ଗ୍ରା.ବି) ପଦାତିସୈନ୍ୟ, ପାଦରେ ଚାଲିବା, ପାଦଚାରଣ ।
ପଇଦା—ଯା. ବି. ଜନ୍ମ, ଉତ୍ପତ୍ତି, ଲାଭ, ଆୟ, (ବି°) ଜାତ, ପ୍ରସୂତ, ପ୍ରାପ୍ତ, ଅର୍ଜିତ ।
ପଇଦ—ପ୍ରା. (ମାନ୍ଦ୍ରାଜ) ବି. ମାନ୍ଦ୍ରାଜ ପ୍ରଦେଶରେ ପଇଦ ନାମକ ଅଞ୍ଚଳରେ ପ୍ରଚଳିତ ଏକପ୍ରକାର ବିକୃତ ଓଡ଼ିଆ ଭାଷା ।
ପଇନା—ପ୍ରା. (ଗଞ୍ଜାମ) ବି. କମାଣ ।
ପଇମାସ—ଯା. ବି. ରାଜସ୍ୱ ବନ୍ଦୋବସ୍ତ ସଂକ୍ରାନ୍ତ ଭୂମିର ଜରିପ ।
ପଇମାସି—ଯା.ବି°. ପଇମାସ ସମ୍ବନ୍ଧୀୟ, (ବି) ପଇମାସ ଦେଖ ।
ପଇଲି—ପ୍ରା. (ସିଂହଭୂମ) ବି. ଏକସେର ଓଜନର ଶସ୍ୟ ମାପିବାର ଗୌଣୀ ।
ପଇସା—ଗ୍ରା.ବି. ତାମ୍ରମୁଦ୍ରା,ଏକଅଣାର ଚତୁର୍ଥାଂଶ ଓ ଟଙ୍କାର ୬୪ ଭାଗରୁ ଏକଭାଗ ମୂଲ୍ୟର ତାମ୍ରମୁଦ୍ରା ।
ପଇସାକ—ଗ୍ରା. ବି. ଏକପଇସା ମାତ୍ର ।
ପଇସାକମା(ମେ)ଇବା—ଗ୍ରା. କ୍ରି. ଧନ ଅର୍ଜନ କରିବା,ଅନ୍ୟକୁ ଦିଆଯାଉଥିବା ଧନର ପରିମାଣ ଊଣା କରିଦେବା ।
ପଇସାକର—ଗ୍ରା.ବି°.ଏକପଇସା ମୂଲ୍ୟର ।
ପଇସାକିଆ—ଗ୍ରା.ବି°.ଏକପଇସା ମୂଲ୍ୟର ।
ପଇସାଖାଇବା—ଗ୍ରା.କ୍ରି.ଅବୈଧ ଭାବରେ ଅନ୍ୟର ଧନ ଅପହରଣ ବା ଆତ୍ମସାତ୍ କରିବା, ଲାଞ୍ଚନେବା, ଆୟକୁ ନିଜ ନେବା ।
ପଇସାଖିଆ—ଗ୍ରା. ବି°. ଉତ୍କୋଚଗ୍ରାହୀ, (ଗ୍ରା.ବି) ଉତ୍କୋଚଗ୍ରହଣ ।
ପଇସାବାଲା—ଗ୍ରା. ପୁଂ. ବି°. ଧନବାନ୍, ଧନୀ, ମୂଲ୍ୟବାନ୍ ।
ପଉଚ—ଗ୍ରା. ବି°. ବିସ୍ତୃତ ବା ଉଚ୍ଚ ।
ପଉଟୀ—ଗ୍ରା. ବି. ଶସ୍ୟାଦିର ପରିମାଣବିଶେଷ, ୨୦ ଗୌଣୀ ପରିମାଣ ।
ପଏଁର—ପ୍ରା. (ସମ୍ବଲ) ବି. ଗୋଡ଼ର ବଳା, ଅଳଙ୍କାରବିଶେଷ ।
ପଏଁଟିଲି—ପ୍ରା. (ସମ୍ବଲ ଓ ଲରିଆ)ବି. ପନକି । [ ପୈନ୍ୟ ।
ପଏକାର—ଗ୍ରା.ବି. (ସଂ-ପଦାତ) ପଦାତି

. ସ୍ଥାନ ଯୁକ୍ତ ।
ନ୍ୟୋଚନୀ—ସ୍ତ୍ରୀ. ବ. ଦାସୀ ।
ନ୍ୟୋଜଃ—ବି. ବଂ. ( ନ+ଉଜସ୍ ) ଆର୍ଜବ ଶୂନ୍ୟ, କୁଟିଳ ।
ନ୍ଵସ୍ଥିମାଲୀ—ପୁଂ. ବ. (ନୃ+ଅସ୍ଥିମାଲ+ଇନ୍) ଶିବ, ଶୁଭ, (ବଂ)ନର ଅସ୍ଥିମାଳ ବିଶିଷ୍ଟ ।

# ପ

ପ—ପୁଂ. ବ. ଏକବିଂଶ ବ୍ୟଞ୍ଜନବର୍ଣ୍ଣ, 'ପ' ବର୍ଗର ପ୍ରଥମ ବର୍ଣ୍ଣ, (ପା+କ.ଅ) ରାଜା, ରାଜପୁତ୍ର, ଶାସ୍ତା, ଶାସନକର୍ତ୍ତା, (ପତ୍+କ.ଅ) ପବନ, ଅଣ୍ଡ, (ପା+ଭା.ଅ) ପାନ, (ଣ.ଅ) ପାତ୍ର, ରକ୍ଷା ।
ପଅ—ଗ୍ରା. ବ. (ସଂ-ପାଦ) ପୁଅ, ପଣାକାଠିରେ ପଡ଼ିବା ଏକସଂଖ୍ୟକ ଦାନ ।
ପଅଁର—ଗ୍ରା. ବ. ଗୁଆଣୁଣୀ, ଝାଁଟୁଆ ।
ପଅଁର—ପ୍ରା. (ସମ୍ବଲ) ବ. ଗୋଡ଼ର ବଳା ।
ପଅଁଷଠୀ—ଗ୍ରା.ବ ଓ ବଂ. ୬୦ଅପେକ୍ଷା ୫ ଊର୍ଦ୍ଧ୍ୱସଂଖ୍ୟା, ୬୫ ସଂଖ୍ୟକ ।
ପଅରେଦନ—ଗ୍ରା. ବ. ( ସଂ-ପରେଦ୍ୟୁ ) ପରଶୁ, ଗତକାଲର ପୂର୍ବଦିନ ଓ ଆଗାମୀ କାଲର ପରଦିନ ।
ପଇ—ଗ୍ରା. ବ. (ସଂ-ପ୍ରଧି) ପଦ୍ମ, ଶଗଡ଼ ଚକର ପରିଧିକୁ ଘେରିଥିବା କାଷ୍ଠଖଣ୍ଡମାନ, ନେମି, କ୍ଷୁଦ୍ର ନାଳୀ ।
ପଇଆ—ଗ୍ରା.ବ. ଶଗଡ଼ଚକ,ପଇଦେଖ ।
ପଇଁଚାଳିଶ(ଶି)—ଗ୍ରା. ବ ଓ ବଂ. ୪୦ ଅପେକ୍ଷା ୫ଅଧିକସଂଖ୍ୟା, ୪୫ସଂଖ୍ୟକ ।
ପଇଁତିରିଶ(ଶି)—ଗ୍ରା. ବ ଓ ବଂ. ୩୦ ଅପେକ୍ଷା ୫ ଅଧିକ ସଂଖ୍ୟା,୩୫ସଂଖ୍ୟକ
ପଇକାର(ରୀ)—ଗ୍ରା. ବ. କୋଗୃ ବିକି କରିବା ବେପାର, (ଗ୍ରା.ବଂ) କୋଗୃବିକି ସମ୍ବନ୍ଧୀୟ ।
ପଇକାସ୍ତ—ଯା.ବ. ପାହୁରଇତ,ଆପଣା ନିବାସ ମୌଜାଛଡ଼ା ଅନ୍ୟ ମୌଜାରେ ଜମି ଗୃଷକରିବା ପ୍ରଜା ।
ପଇଖାନା—ଯା. ବ. ପାଇଖାନା, ମଳ ତ୍ୟାଗର ସ୍ଥାନ, ମଳ, ଝାଡ଼ାଫେରିବା ।
ପଇଟ—ଗ୍ରା. ବ. ( ସଂ-ପୁନରାବୃତ୍ତି ) କୌଣସି ପାଠ ବା ବିଦ୍ୟା ମୁଖସ୍ଥ ହେବା, (ଗ୍ରା.ବଂ) ମୁଖସ୍ଥ, କଣ୍ଠସ୍ଥ ।
ପଇଟା—ଗ୍ରା.ବ. (ସଂ-ପୁନରାବୃତ୍ତି)ପୁନରାବୃତ୍ତି, ମୁଖସ୍ଥୀ କରଣ, (ବଂ) ମୁଖସ୍ଥ ।
ପଇଟା(ଟେ)ଇବା—ଗ୍ରା. କ୍ରି. କୌଣସି ପାଠକୁ ବାରମ୍ବାର ଘୋଷିବା,ଅଭ୍ୟାସ କରିବା, ମୁଖସ୍ଥ କରିବା, ଧନ, ନଗଦ ଅର୍ଥ ।
ପଇଟିବା—ଗ୍ରା. କ୍ରି. (ସଂ-ପ୍ରବିଷ୍ଟ) ମୁଖସ୍ଥ ହେବା, ( କୌଣସି ବିଦ୍ୟା ) ଆୟତ୍ତ ହେବା, (ଘୋଷିଥିବା ବିଷୟ) ସ୍ମୃତିପଥାରୂଢ଼ ହେବା ।
ପଇଠ—ଗ୍ରା. ବ. (ସଂ-ପୀଠ) କରପୃଷ୍ଠ, ହାତପାପୁଲି,(ଧନ ବା ବସ୍ତୁର) ଦାଖଲ, ଖାତକର ମହାଜନଙ୍କୁ କିସ୍ତିବନ୍ଦୀ ଅନୁସାରେ ଦେବା ଧନ,କିସ୍ତି, ଥର,(ବଂ) ଦାଖଲ କରାଯାଇଥିବା, ମୁଖସ୍ଥ ।
ପଇଠି—ଗ୍ରା. ବ. ଘର, ନିର୍ଝର, କର ତଳର ଭାଗ, ପାହାଚର ଧାପ, (ବ) ପଇଠ ଦେଖ ।
ପଇଡ଼—ଗ୍ରା. ବ. କଷିନଡ଼ିଆ ।
ପଇତା—ଗ୍ରା.ବ.ଯଜ୍ଞୋପବୀତ,ଯଜ୍ଞସୂତ୍ର, ଯଜ୍ଞୋପବୀତ ଗ୍ରହଣ ଅନୁଷ୍ଠାନ ।
ପଇତାମନ୍ତ୍ର—ଗ୍ରା. ବ. ଯଜ୍ଞୋପବୀତରେ ଗଣ୍ଠି ପକାଇ ସାର ପିନ୍ଧିବା ପୂର୍ବରୁ ଯେଉଁ ମନ୍ତ୍ରଦ୍ୱାରା ତାକୁ ସଂସ୍କାର କରାଯାଏ ।
ପଇତାସୂତା—ଗ୍ରା. ବ. ଯେଉଁ ସୂତାରେ ପଇତା ତିଆରି ହୁଏ ।
ପଇତ—ଗ୍ରା. ବ. ରନ୍ଧାଡାଲି, ମୁଗ ବିରି କୋଲଥ ଆଦିର ପାଣିଆ ଡାଲି ।
ପଇଦଲ—ଗ୍ରା. ବଂ. ପାଦଗୃଷ୍ଟ,(ଗ୍ରା.ବ) ପଦାତିସୈନ୍ୟ, ପାଦରେ ଚାଲିବା, ପାଦଚାରଣ ।
ପଇଦା—ଯା. ବ. ଜନ୍ମ, ଉତ୍ପତ୍ତି, ଲାଭ, ଆୟ, (ବଂ) ଜାତ, ପ୍ରସୂତ, ପ୍ରାପ୍ତ, ଅର୍ଜିତ ।
ପଇଦ—ପ୍ରା. (ମାନ୍ଦ୍ରାଜ) ବ. ମାନ୍ଦ୍ରାଜ ପ୍ରଦେଶରେ ପଇଦ ନାମକ ଅଞ୍ଚଳରେ ପ୍ରଚଳିତ ଏକପ୍ରକାର ବିକୃତ ଓଡ଼ିଆ ଭାଷା ।
ପଇନା—ପ୍ରା. (ଗଞ୍ଜାମ) ବ. କମାଣ ।
ପଇମାସ—ଯା. ବ. ରାଜସ୍ୱ ବନ୍ଦୋବସ୍ତ ସଂକ୍ରାନ୍ତ ଭୂମିର ଜରିପ ।
ପଇମାସି—ଯା.ବଂ. ପଇମାସ ସମ୍ବନ୍ଧୀୟ, (ବ) ପଇମାସ ଦେଖ ।
ପଇଲି—ପ୍ରା. (ସିଂହଭୂମ) ବ. ଏକସେର ଓଜନର ଶସ୍ୟ ମାପିବାର ଗୌଣୀ ।
ପଇସା—ଗ୍ରା.ବ. ତାମ୍ରମୁଦ୍ରା,ଏକଅଣାର ଚତୁର୍ଥାଂଶ ଓ ଟଙ୍କାର ୬୪ ଭାଗରୁ ଏକଭାଗ ମୂଲ୍ୟର ତାମ୍ରମୁଦ୍ରା ।
ପଇସାକ—ଗ୍ରା. ବ. ଏକପଇସା ମାତ୍ର ।
ପଇସାକମା(ମେ)ଇବା—ଗ୍ରା. କ୍ରି. ଧନ ଅର୍ଜନ କରିବା,ଅନ୍ୟକୁ ଦିଆଯାଉଥିବା ଧନର ପରିମାଣ ଊଣା କରିଦେବା ।
ପଇସାକର—ଗ୍ରା.ବଂ.ଏକପଇସା ମୂଲ୍ୟର ।
ପଇସାକିଆ—ଗ୍ରା.ବଂ.ଏକପଇସା ମୂଲ୍ୟର ।
ପଇସାଖିଇବା—ଗ୍ରା.କ୍ରି.ଅବୈଧ ଭାବରେ ଅନ୍ୟର ଧନ ଅପହରଣ ବା ଆତ୍ମସାତ୍ କରିବା, ଲାଞ୍ଚନେବା, ଆୟକୁ ନିଜ ନେବା ।
ପଇସାଖିଆ—ଗ୍ରା. ବଂ. ଉତ୍କୋଚଗ୍ରାହୀ, (ଗ୍ରା.ବ) ଉତ୍କୋଚଗ୍ରହଣ ।
ପଇସାବାଲା—ଗ୍ରା. ପୁଂ. ବଂ. ଧନବାନ୍, ଧନୀ, ମୂଲ୍ୟବାନ୍ ।
ପଉଚ—ଗ୍ରା. ବଂ. ବିସ୍ମୃତ ବା ଭୁଲ ।
ପଉଟୀ—ଗ୍ରା. ବ. ଶସ୍ୟାଦିର ପରିମାଣବିଶେଷ, ୨୦ ଗୌଣୀ ପରିମାଣ ।
ପଏଁର—ପ୍ରା. (ସମ୍ବଲ) ବ. ଗୋଡ଼ର ବଳା, ଅଳଂକାରବିଶେଷ ।
ପଏଁଟିଲି—ପ୍ରା. (ସମ୍ବଲ ଓ ଲରିଆ)ବ. ପନକ । [ ପୈନ୍ୟ ।
ପଏକାର—ଗ୍ରା.ବ. (ସଂ-ପଦାତି) ପଦାତି

ପଏକ୍—ପ୍ରା. (ସମ୍ବଲ) ବି. ଚାନ୍ଦ୍ରପକ୍ଷ, ଚାନ୍ଦ୍ରମାନ ମାସର ପ୍ରଥମ ବା ଶେଷ ପନ୍ଦରଦିନ ।

ପଏଡ଼—ଗ୍ରା.ବି.(ସଂ-ପ୍ରତିବନ୍ଧକ)ବ୍ୟାଘାତ, ବାଧା, ପ୍ରତିବନ୍ଧକ, କୌଣସି ପଦାର୍ଥ ଉପରେ ମାଡ଼ିବସିବା ଗୃପପାହୁଣ୍ଡ ।

ପଏଣ୍ଟ—ଯା ବି. ଗୋଟିଏ ରେଲ ଲାଇନ୍ ସଙ୍ଗେ ଅନ୍ୟ ଗୋଟିଏ ରେଲ-ଲାଇନ୍ ମିଶିଥିବା ସ୍ଥାନ,(କ୍ରିକେଟ୍‌ଖେଳ) ବାଟଧରି ଖେଳୁଥିବା ଖେଳାଳିର ସମ୍ମୁଖର ଦକ୍ଷିଣ ଦିଗରେ ଯେଉଁ ବିପକ୍ଷ ପକ୍ଷର ଲୋକ ଜଗିଥାଏ, କୌଣସି ବିଷୟର ନିର୍ଦ୍ଦିଷ୍ଟ ତର୍କସ୍ଥଳ, ବିବାଦୀସ୍ଥ ସ୍ଥଳ ।

ପଏଦଲ୍—ଗ୍ରା. ବି. ପଇଦଲ ଦେଖ ।

ପଏର(ଶ)—ପ୍ରା. (ସମ୍ବ) ବି. ବେଙ୍ଗଲା ।

ପଏରନ୍—ପ୍ରା. (ସମ୍ବ) ବି. ଠାକୁରଙ୍କ-ଠାରେ ଅଧାପଡ଼ିବା ।

ପଏଶନ୍—ପ୍ରା. (ସମ୍ବଲ) ବି. ଲୁଗାର ଭରଣୀସୂତା, (ଗ୍ରା.ବି) ଝାଳ, ସ୍ୱେଦ ।

ପଁ—ଗ୍ରା. ବି. ଅଧୋବାୟୁ ନିଃସାରଣ କାଳୀନ ନାଥିଉ ଶବ୍ଦ ।

ପଁଅ—ପ୍ରା. (ବାଲେ) ବି.ମାଛର ଡେଣା ।

ପକାର—ପୁଂ. ବି. 'ପ' ଏହି ବର୍ଣ୍ଣମାନ ।

ପକାରାଦି—ତ୍ରି. ବିଂ. (ବ.ବ୍ରୀ) ଯାହାର ଆଦ୍ୟରେ 'ପ' ଏହି ବର୍ଣ୍ଣ ଅଛି ।

ପକାରାନ୍ତ—ତ୍ରି. ବିଂ. (ବ.ବ୍ରୀ) ଯାହାର ଶେଷରେ 'ପ' ଏହି ବର୍ଣ୍ଣ ଅଛି ।

ପକା—ଗ୍ରା. ବି. କୋଠାଘର, (ଗ୍ରା.ବିଂ) ସୁପରିପକ୍ୱ, ଘୃତପକ୍ୱ, ରନ୍ଧାହୋଇ-ଥିବା, ଚିରସ୍ଥାୟୀ, ନିବାଡ଼, ମଜବୁତ୍, ସୁଦୃଢ଼, ପ୍ରବୀଣ ।

ପକା(କେ)ଇବା—ଗ୍ରା. କ୍ରି. (ସଂ-ପ୍ରକ୍ଷେପ) ସ୍ଥାପନ କରିବା, ପିନ୍ଧିବା,ଫୋପାଡ଼ିବା, ଖାଇବା, ଭୂମିସାତ୍ କରିବା, କୌଣସି ପ୍ରସଙ୍ଗ ଉତ୍ଥାପନ କରିବା,(ପଙ୍ଖାଆଦି) ସଞ୍ଚାଳନ କରିବା,ପୋତିବା,ଗେପିବା, ( ଆସ୍ତରଣାଦି ) ବିଛାଇବା, ପାରିବା, ଶୀଘ୍ର କୌଣସି କ୍ରିୟା କରିବା,ବୁଜିବା, (ଧୋବାକୁ ଲୁଗାଆଦି) ଦେବା,ଖଡ଼ିରେ ଲେଖି ଗଣନା କରିବା, ତ୍ୟାଗକରିବା, ବିସ୍ତୃତ କରିବା, ଆଘାତ କରିବା,ଜନ୍ମ କରିବା,ମଳ ନିଃସାରଣ କରିବା,ନିଯୁକ୍ତ କରିବା,ଯୋଗକରିବା, ସ୍ଥାପନକରିବା, ଦୁଃଖଆଦି ଭୋଗ କରାଇବା ।

ପକାଡ଼ିଲା—ଗ୍ରା. ବି. ଇତସ୍ତତଃ ବିକ୍ଷିପ୍ତ କରିବା, (ଲ.ଅର୍ଥ) ଅଣଦେଖିଲା ।

ପକାଣ—ଗ୍ରା. ବି. (ସଂ-ପକ୍କଣ) ଶବର-ମାନଙ୍କର କୁଡ଼ିଆ, ଶବରଘର ।

ପକା(କ୍କା)ମାଲ—ଗ୍ରା. ବି. ଅତି ଉତ୍କୃଷ୍ଟ ପଦାର୍ଥ, ସୁଦୃଢ଼ବସ୍ତୁ ।

ପକେଟ୍—ଯା.ବି. ପାକେଟ୍,ଜାମାରେ ଲାଗି-ଥିବା ଥଳି ବା ମୁଣି ।

ପକେଟଖରଚ—ଗ୍ରା. ବି. ରାଜାଆଦି ବଡ଼ ଲୋକଙ୍କର ବାଜେ ବା ସୌଖୀନ କରିବାର ଧନ ।

ପକୋଡ଼ି—ଗ୍ରା. ବି. ( ସଂ-ପକ୍ୱବଟକ ) ଫେଣ୍ଟାହୋଇଥିବା ବୁଟ ବେସନ ବା ବୁଟ ବଟାକୁ ଘିଅ ବା ତେଲରେ ଛାଣ୍କି ଫୁଲବଡ଼ି ଆକାରରେ ତିଆର କରିବା ଖାଦ୍ୟ ।

ପକ୍କଣ—ପୁଂ.କ୍ଲୀ. ବି. (ପଚ+ଅଧି.କଣ) ଶବରାଳୟ, ଚଣ୍ଡାଳମାନଙ୍କର ବାସ-ସ୍ଥାନ, (ଶ.କଣ) ଅଗ୍ନି ।

ପକ୍କା—ଗ୍ରା. ବିଂ. (ସଂ-ପକ୍ୱ) ଚିରସ୍ଥାୟୀ, ସ୍ଥାୟୀ,ମଜବୁତ୍,ଚୂନଗାରୁଡ଼ିରେ ତିଆରି ଘୃତପକ୍ୱ,ନିପୁଣ, ଚତୁର, ଦେଶଜାତ ବସ୍ତୁରୁ କୌଶଳ ପୂର୍ବକ ନିର୍ମିତ ।

ପକ୍ତି—ସ୍ତ୍ରୀ. ବି. (ପଚ+ଭା.ତି) ପାକ, ରନ୍ଧନ, ପାଚିବା, ଗୌରବ ।

ପକ୍ତିଶୂଳ—କ୍ଲୀ. ବି. ଶୂଳରୋଗବିଶେଷ ।

ପକ୍ତ୍ରିମ—ତ୍ରି. ବିଂ. (ପଚ+କ. ତ୍ରିମକ୍) ପକ୍ୱ, ପାକରୁ ଜାତ ।

ପକ୍‌ଥ—ପୁଂ. ବି. ପାକ । [ ପାକଯୁକ୍ତ ।

ପକ୍‌ଥୀ—ପୁଂ. ବିଂ. ( ପକ୍‌ଥ+ଇନ୍ )

ପକ୍ୱ—କ୍ଲୀ. ବି. (ପଚ୍+କ.ତ) ସ୍ୱିନ୍ନ-ତଣ୍ଡୁଳାଦି, ଖାଦ୍ୟପ୍ରଭୃତି, ( ତ୍ରି.ବିଂ ) ସମ୍ପୂର୍ଣ୍ଣରୂପେ ବର୍ଦ୍ଧିତ, ସୁସିଦ୍ଧ, ସୁଜୀର୍ଣ୍ଣ, ପରିଣତ, ବୁଦ୍ଧିମାନ୍, ଶୁଭ୍ର (କେଶ), ପାଚିଲା ।

ପକ୍ୱକୃତ୍—ପୁଂ. ବିଂ. ପାକକର୍ତ୍ତା, ଯେ ଅନ୍ନାଦି ପାକ କରେ ।

ପକ୍ୱକେଶ—ପୁଂ.ବି. (କ.ଧା) ଶୁକ୍ଳକେଶ, ପାଚିଲାବାଳ, ( ବିଂ-ବ.ବ୍ରୀ ) ଯାହାର ବାଳ ପାଚିଯାଇଅଛି,ଶୁକ୍ଳକେଶବିଶିଷ୍ଟ ।

ପକ୍ୱଗାତ୍ର—ବିଂ. (ବ.ବ୍ରୀ) କ୍ଷତଗାତ୍ର, ଯାହାର ପ୍ରତ୍ୟଙ୍ଗ ସ୍ଫୋଟକ ସମନ୍ୱିତ ।

ପକ୍ୱଣ—ବି.(ପଚ୍+ଅଧି.ବଣ) କୁଟୀର ।

ପକ୍ୱତା—ସ୍ତ୍ରୀ. ବି. ପକ୍ୱାବସ୍ଥା, ପରିଣତା-ବସ୍ଥା ।

ପକ୍ୱମାଂସ—କ୍ଲୀ. ବି. ପାକସିଦ୍ଧ ମାଂସ ।

ପକ୍ୱମାନ—ତ୍ରି. ବିଂ. ପଚ୍ୟମାନ ।

ପକ୍ୱରସ—ପୁଂ. ବି. ମଦ୍ୟ ।

ପକ୍ୱବାରି—କ୍ଲୀ. ବି. କାଞ୍ଜି, କାଞ୍ଜିକ, ପକ୍ୱଜଳ ।

ପକ୍ୱଶ—ପୁଂ. ବି. ଅନ୍ତ୍ୟଜାତିବିଶେଷ ।

ପକ୍ୱଶସ୍ୟୋପମୋନ୍ନତ—ପୁଂ.ବି. (ବ.ବ୍ରୀ) ରାଜକଦମ୍ବ ।

ପକ୍ୱାତିସାର—ପୁଂ.ବି. ଅତିସାର ରୋଗ-ବିଶେଷ ।

ପକ୍ୱାଧାନ—କ୍ଲୀ. ବି. (କ.ଧା) ପକ୍ୱାଶୟ, ପାକସ୍ଥଳୀ, ପାକାଶୟ ।

ପକ୍ୱାନ୍ନ—ବି. (କ.ଧା) କୃତପାକ ତଣ୍ଡୁ-ଳାଦି, ରନ୍ଧାଯାଇଥିବା ଖାଦ୍ୟ,ପଲଉ ।

ପକ୍ୱାଶୟ—ପୁଂ. ବି. ପାକାଶୟ,ନାଭିର ଅଧୋଭାଗ, ପାକସ୍ଥଳୀ ।

ପକ୍ଷେତା—ବି. ଜନପଦବିଶେଷ ।

ପକ୍ଷ—ପୁଂ.ବି. ପଞ୍ଚଦଶ ଅହୋରାତ୍ର,ପକ୍ଷ-ଦ୍ୱିବିଧ, ଶୁକ୍ଳ ଓ କୃଷ୍ଣ, ପାର୍ଶ୍ୱ, ବାଣର ପୁଙ୍ଖ, ପୁଚ୍ଛ, ପକ୍ଷିମାନଙ୍କର ଡେଣା, ସହାୟ, ମହାକାଳ, ଶିବ, ସଖା, ବାଣ ବା ଶରରେ ଲାଗିଥିବା ପକ୍ଷ ବା ପୁଚ୍ଛ, ପାଖ, ଗୁଚ୍ଛ, ସମୂହ, ଭିତ୍ତି, କାନ୍ଥ, ପିଣ୍ଡା, ପାର୍ଶ୍ୱଗୃହ, ରାଜହସ୍ତୀ, ବିରୋଧ, ଅରି, ବାରି, ସୈନ୍ୟ,ପ୍ରଶ୍ନ ବା ଉତ୍ତର, ପ୍ରତ୍ୟୁତ୍ତର, ଦୁଇଟି ବିପକ୍ଷ ଦଳମଧ୍ୟରେ ଏକ, ଗଣ, ଦଳ,ଏକପକ୍ଷଭୁକ୍ତ ବ୍ୟକ୍ତି,

ଚୁଲର ପଙ୍ଗା ବା ମୁହଁ, ଦୁଇସଂଖ୍ୟା ବୋଧକ ଅଙ୍କ, ମତ, ଦ୍ୱନ୍ଦ୍ୱ, ଯୋଡ଼ା, ( ନ୍ୟାୟଦର୍ଶନ ) ଅନୁମେୟ ବସ୍ତୁର ଆଧାର, ବିବାହର ସଂଖ୍ୟା ବା ବାର, ତରଫ, ରନ୍ଧ୍ର, (ଗ୍ରା.ବି) ଏକ କଡ଼ାର ଦୁଇଭାଗରୁ ଏକଭାଗ, ଘଟଣା,ଅବସ୍ଥା, ଚକ୍ଷୁର ଡୋଳା, ( ଗ୍ରା.ବିଂ ) ବିପକ୍ଷ, ପ୍ରତିକୂଳ ।

ପକ୍ଷକ—ପୁଂ. ବି. ପକ୍ଷଦ୍ୱାର, ପାର୍ଶ୍ୱଦ୍ୱାର, ସହାୟ, ( ପକ୍ଷ + କ ) ଖିଡ଼କୀଦ୍ୱାର, ବାଡ଼ିଦ୍ୱାର, ପାର୍ଶ୍ୱବିଭାଗ ।

ପକ୍ଷଗମ—ବି. ପକ୍ଷୀ, ପର୍ବତ ।

ପକ୍ଷଗୁପ୍ତ—ପୁଂ. ବି. ପକ୍ଷୀବିଶେଷ ।

ପକ୍ଷଗ୍ରହଣ—କ୍ଲୀ. ବି. (୬ତତ୍) ସାହାଯ୍ୟ ଗ୍ରହଣ,ଦୁଇ ବିପକ୍ଷିତ ପକ୍ଷମଧ୍ୟରୁ ଗୋଟିଏ ପକ୍ଷକୁ ଆଶ୍ରୟ କରିବା, ପକ୍ଷପାତ ।

ପକ୍ଷଗ୍ରାହ—ବି. ବିଂ. ପକ୍ଷ ଗ୍ରହଣକାରୀ ।

ପକ୍ଷଗ୍ରାହୀ—ପୁଂ. ବିଂ.(ପକ୍ଷ+ଗ୍ରହ+ଇନ୍) ପକ୍ଷ ଗ୍ରହଣକାରୀ । [ ରୋଗ ।

ପକ୍ଷଘାତ—ପୁଂ. ବି. (ବ.ଗ୍ରା) ପକ୍ଷ ଘାତ

ପକ୍ଷଘ୍ନ—ବି. ବିଂ. ( ପକ୍ଷ + ହନ୍ + ଅ ) ପକ୍ଷନାଶକ ।

ପକ୍ଷଚର—ପୁଂ. ବି. (ପକ୍ଷ+ଚର+ଅ) ଚନ୍ଦ୍ର, ହସ୍ତୀ, ଦ୍ୱନ୍ଦ୍ୱଚର, ଚକ୍ରବାକ, ସହଚର ।

ପକ୍ଷଚ୍ଛିଦ୍—ବି. (ପକ୍ଷଚ୍ଛିଦ୍+କ୍ୱିପ୍)ଇନ୍ଦ୍ର ।

ପକ୍ଷଚ୍ଛେଦ—ପୁଂ ବି. (୬ତତ୍) ଡେଣା କାଟିଦେବା ।

ପକ୍ଷଜ—ବି. (ପକ୍ଷ+ଜନ୍+ଅ) ଚନ୍ଦ୍ର, (ବିଂ) ପକ୍ଷଜାତ ମାତ୍ର ।

ପକ୍ଷଜନ୍ମା—ପୁଂ. ବି.(ବ.ଗ୍ରା) ଚନ୍ଦ୍ର,(ବିଂ) ପକ୍ଷଜାତ ମାତ୍ର ।

ପକ୍ଷତା—ସ୍ତ୍ରୀ. ବି. (ପକ୍ଷ+ତା) ପକ୍ଷଧର୍ମ, ସାଧ୍ୟବତ୍ତ୍ୱ, ଅନୁମାନ ।

ପକ୍ଷତି—ସ୍ତ୍ରୀ. ବି.(ପକ୍ଷ+ତି)ପକ୍ଷର ମୂଳ, ପ୍ରତିପଦ୍ ତିଥି । [ ପକ୍ଷତା ।

ପକ୍ଷତ୍ୱ—କ୍ଲୀ. ବି.(ପକ୍ଷ+ତ୍ୱ)ପକ୍ଷଧର୍ମତା,

ପକ୍ଷଦ୍ୱାର—କ୍ଲୀ. ବି. ( ପକ୍ଷ+ଦ୍ୱାର ) ପାର୍ଶ୍ୱଦ୍ୱାର, ଖିଡ଼କୀ ଦ୍ୱାର, ଗଳିବାଟ ।

ପକ୍ଷଧର—ପୁଂ. ବି. (ପକ୍ଷ+ଧୃ+କ.ଅ) ଚନ୍ଦ୍ର,ମହାଦେବ, ପକ୍ଷୀ,(ବିଂ)ପକ୍ଷଯୁକ୍ତ ।

ପକ୍ଷଧରିବା—ଗ୍ରା.କ୍ରି.ବିବାଦରେ କୌଣସି ପକ୍ଷଗ୍ରହଣ କରିବା, ପକ୍ଷପାତୀ ହେବା ।

ପକ୍ଷପାତ—ପୁଂ. ବି. (ପକ୍ଷ + ପାତ)ଏକ ପକ୍ଷରେ ଆସକ୍ତି, ଅନୁଗ୍ରହ, ଗୋଟିଏ ପାଖକୁ ଆଉଜିବା, ଅନ୍ୟାୟ ପକ୍ଷାବଲମ୍ବନ ।

ପକ୍ଷପାତକାରୀ—ବିଂ. ( ପକ୍ଷପାତ+କୃ +ଇନ୍) ଅନ୍ୟାୟରୂପେ ପକ୍ଷ ସମର୍ଥନ କାରୀ ।

ପକ୍ଷପାତିତା—ସ୍ତ୍ରୀ.ବି.(ପକ୍ଷପାତିନ୍+ତା) ସହାୟତା,ପକ୍ଷପାତନ,ଅନୁକୂଳବର୍ତ୍ତିତା

ପକ୍ଷପାତୀ—ବି. ବିଂ.(ପକ୍ଷ + ପତ୍+ଇନ୍) ପକ୍ଷ ଦ୍ୱାରା ପତନଶୀଳ, ଅନ୍ୟାୟ ପକ୍ଷରେ ସାହାଯ୍ୟକାରୀ ।

ପକ୍ଷପାଳ—ପୁଂ.ବି.(୬ତତ୍)ଖିଡ଼କୀଦ୍ୱାର, ପାର୍ଶ୍ୱଦ୍ୱାର ।

ପକ୍ଷପୁଟ—ପୁଂ. ବି. ( ୬ତତ୍ ) ପକ୍ଷୀର ଡେଣା, ଡେଣା ।

ପକ୍ଷପୋଷଣ—ପୁଂ. ବିଂ. ପକ୍ଷପୋଷଣ କାରୀ, ପକ୍ଷସମର୍ଥକ ।

ପକ୍ଷପ୍ରଦ୍ୟୋତ—କ୍ଲୀ. ବି. ନୃତ୍ୟକାଳେ ହସ୍ତର ଅବସ୍ଥାନ ଭେଦ ।

ପକ୍ଷଭାଗ—ପୁଂ. ବି. ହସ୍ତୀ ପାର୍ଶ୍ୱଭାଗ ।

ପକ୍ଷମୂଳ—କ୍ଲୀ. ବି. ( ୬ତତ୍ ) ଡେଣା, ପ୍ରତିପଦ୍ ତିଥି । [ କରଣ ।

ପକ୍ଷରଚନା—ସ୍ତ୍ରୀ.ବି.ପକ୍ଷଗଠନ,ଷଡ଼ଯନ୍ତ୍ର-

ପକ୍ଷରୂପ—ପୁଂ. ବି. ମହାଦେବ ।

ପକ୍ଷବଞ୍ଚିତକ—ପୁଂ. ବି. ନୃତ୍ୟକାଳେ ଏକପ୍ରକାର ହାତଚଳିବା ।

ପକ୍ଷବର୍ଦ୍ଧିନୀ—ସ୍ତ୍ରୀ.ବି.ଦ୍ୱାଦଶୀତିଥିବିଶେଷ, ଏକ ସୂର୍ଯ୍ୟୋଦୟଠାରୁ ଅପର ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ ବ୍ୟାପିଥିବା ଦ୍ୱାଦଶୀତିଥି

ପକ୍ଷବଳ—କ୍ଲୀ. ବି. (୬ତତ୍) ସହାୟର ଜୋର, ସହାୟକବର୍ଗ ।

ପକ୍ଷବାଦ—ପୁଂ. ବି. ଏକପକ୍ଷର ଉକ୍ତି, ପକ୍ଷ ସମର୍ଥନ ।

ପକ୍ଷବାନ୍—ପୁଂ. ବିଂ. ( ପକ୍ଷ+ବତ୍ ) ପକ୍ଷବିଶିଷ୍ଟ, ଉଚ୍ଚକୁଳୋଦ୍ଭବ,(ବି)ପର୍ବତ

ପକ୍ଷବାହନ—ପୁଂ. ବି. (ବ.ଗ୍ରା) ପକ୍ଷୀ ।

ପକ୍ଷବାହୁ—ପୁଂ. ବି. କୂର୍ମାଙ୍ଗକାଣ୍ଡ ବର୍ଣ୍ଣିତ ଭରତ ଖଣ୍ଡର ଅନ୍ତର୍ଗତ ଜନପଦ ବିଶେଷ ।

ପକ୍ଷବିନ୍ଦୁ—ପୁଂ. ବି. କଙ୍କପକ୍ଷୀ

ପକ୍ଷଶଃ—ଅବ୍ୟ.(ପକ୍ଷ+ଶସ୍)ପ୍ରତିପକ୍ଷରେ, ପକ୍ଷେ ପକ୍ଷେ । [ ପକ୍ଷୀ ।

ପକ୍ଷସ୍—କ୍ଲୀ. ବି. (ପକ୍ଷ+ଅସ୍) ଗରୁଡ଼,

ପକ୍ଷସଞ୍ଚାଳନ—ବି. ( ୬ତତ୍ ) ଡେଣାକୁ ଇତସ୍ତତଃ ଚଳାଇବା,ଡେଣା ଝାଡ଼ିବା ।

ପକ୍ଷସନ୍ଧି—ପୁଂ.ବି.(୬ତତ୍)ପର୍ବ ସନ୍ଧିକାଳ ।

ପକ୍ଷସମର୍ଥନ—ବି. (୬ତତ୍) ଏକପକ୍ଷର ସହାୟତା ।

ପକ୍ଷସୁନ୍ଦର—ପୁଂ.ବି. (ପକ୍ଷରେ ଦେହାଙ୍ଗରେ କୁସୁମଦ୍ୱାରା ସୁନ୍ଦର ଯେ)ଲୋଧ୍ର ।

ପକ୍ଷହତ—ବି. ବିଂ. ପକ୍ଷଦ୍ୱାରା ଆହତ, ଏକଦିଗରେ ପକ୍ଷାଘାତ ।

ପକ୍ଷହୋମ—ପୁଂ. ବି.ପକ୍ଷପର୍ଯ୍ୟନ୍ତକର୍ତ୍ତବ୍ୟ ହୋମଭେଦ ।

ପକ୍ଷାଘାତ—ପୁଂ. ବି.(୬ତତ୍)ବାତରୋଗ ବିଶେଷ, ଏକାଙ୍ଗୀ ବାତ ।

ପକ୍ଷାଘାତୀ—ପୁଂ. ବିଂ. ( ପକ୍ଷାଘାତ+ ଇନ୍) ରୋଗାକ୍ରାନ୍ତ ।

ପକ୍ଷାଧ୍ୟାୟ—ନ୍ୟାୟ ଶାସ୍ତ୍ରର ଅନ୍ତର୍ଗତ ବିବାଦ ମତ ଅଧ୍ୟାୟ ।

ପକ୍ଷାନ୍ତ—ପୁଂ. ବି. (୬ତତ୍) ଅମାବାସ୍ୟା, ପୂର୍ଣ୍ଣିମା, ପକ୍ଷର ଶେଷଦିନ ।

ପକ୍ଷାନ୍ତର—କ୍ଲୀ. ବି. ( ପକ୍ଷ + ଅନ୍ତର ) ଅପର ପକ୍ଷ, ମତାନ୍ତର, ଅନ୍ୟପକ୍ଷ ।

ପକ୍ଷାନ୍ତରେ—ଗ୍ରା.କ୍ରି.ବିଂ. ଅପରପକ୍ଷରେ ଅନ୍ୟଥା, ପରନ୍ତୁ ।

ପକ୍ଷାଭାସ—ପୁଂ.ବି.ହେତ୍ୱାଭାସ,ସିଦ୍ଧାନ୍ତାଭାସ, ମିଥ୍ୟା ଅନୁଯୋଗ ।

ପକ୍ଷାଳିକା—ସ୍ତ୍ରୀ.ବି.କୁମାରାନୁଚର ମାତୃଭେଦ ।

ପକ୍ଷାଳୁ—ପୁଂ. ବି. ପକ୍ଷୀ ।

ପକ୍ଷାବସର—ପୁଂ.ବି.ପୂର୍ଣ୍ଣିମା,ଅମାବାସ୍ୟା ।

ପକ୍ଷାହାର—ବି.ବିଂ.ଯେ ଏକପକ୍ଷ ମଧ୍ୟରେ

ଏକବାର ଆହାର କରେ ।
ପକ୍ଷିଣୀ—ସ୍ତ୍ରୀ. ବ. ( ପକ୍ଷ+ଇନ୍+ଈ ) ପୂର୍ଣ୍ଣିମା, ସ୍ତ୍ରୀ ପକ୍ଷୀ, ଶାକିନୀଭେଦ, ପୂତନା, ଦୁଇ ଦିବା ଓ ତନ୍ମଧ୍ୟସ୍ଥ ରାତ୍ରି । [ ସମ୍ପାତ ।
ପକ୍ଷିପତି—ପୁଂ. ବ. (୬ତତ୍ପୁ) ପକ୍ଷିରାଜ,
ପକ୍ଷିପାଣି—ଗ୍ରା. ବ. ଗୁହ୍ମକାଳିକା ଓ କୋଚିଲାଖାଇଥାନ୍ତି ପକ୍ଷୀଙ୍କ ପକ୍ଷକୁ ପାଣିରେ ସିଦ୍ଧକରି ସନ୍ନିପାତ ଓ ଆମ-ବାତାଦି ରୋଗରେ ଦିଆଯିବା ପାନୀୟ ବିଶେଷ । [ ପାନ ସ୍ଥାନ ।
ପକ୍ଷିପାନୀୟଶାଳିକା—ସ୍ତ୍ରୀ.ବ.ପକ୍ଷୀର ଜଳ-
ପକ୍ଷିପୁଙ୍ଗବ—ପୁଂ.ବ.(୬ତତ୍ପୁ)ପକ୍ଷିଶ୍ରେଷ୍ଠ, ଜଟାୟୁ ।
ପକ୍ଷିପ୍ରବର—ପୁଂ.ବ.ପକ୍ଷିଶ୍ରେଷ୍ଠ, ଗରୁଡ଼ ।
ପକ୍ଷିବିଦ୍ୟା—ବି. ପକ୍ଷିମାନଙ୍କ ବିବରଣ ସମ୍ବନ୍ଧୀୟ ବିଦ୍ୟାବିଶେଷ ।
ପକ୍ଷିମଞ୍ଚ—ଗ୍ରା.ବ.ରାତିରେ ବିଲଉପର ଚୋବାଇ ଗ୍ରୁଡ଼ିବା ପକ୍ଷିବିଶେଷ ।
ପକ୍ଷିମୃଗତା—ସ୍ତ୍ରୀ.ବ.ପକ୍ଷିତ୍ୱ ଓ ମୃଗତ୍ୱ ।
ପକ୍ଷିରା—ଗ୍ରା. ବିଂ. ଶୀର୍ଣ୍ଣଶୀର୍ଣ୍ଣ, (ଗ୍ରା.ବି) ଶୀର୍ଣ୍ଣଶୀର୍ଣ୍ଣ ଅବସ୍ଥା ।
ପକ୍ଷିରାଜ—ପୁଂ. ବ. (୬ତତ୍ପୁ) ଗରୁଡ଼, ମୟୂର, ଶ୍ରେଷ୍ଠପକ୍ଷୀ ।
ପକ୍ଷିରାଜଘୋଡ଼ା—ଗ୍ରା. ବ. କାହାଣୀ ଓ ପୁରାଣରେ ବର୍ଣ୍ଣିତ ଉଡ୍ଡୟନଶୀଳ ପକ୍ଷ-ଯୁକ୍ତ ଘୋଟକବିଶେଷ ।
ପକ୍ଷିଳ—ପୁଂ.ବ. ପକ୍ଷିଳ ସ୍ୱାମୀ, ବାତ୍ସ୍ୟାୟନ, ମଲ୍ଲନାଗ, ନ୍ୟାୟ ଭାଷ୍ୟକାର ।
ପକ୍ଷିଶାଳା—ସ୍ତ୍ରୀ.ବ. (୬ତତ୍ପୁ)ନୀଡ଼, ପକ୍ଷୀମାନଙ୍କର ଆଶ୍ରୟ ସ୍ଥାନ, ଚଢ଼ଆଖାନା ।
ପକ୍ଷିଶାବକ—ବ. ଚଢ଼େଇଛୁଆ ।
ପକ୍ଷିସିଂହ—ପୁଂ. ବ. (୬ତତ୍ପୁ) ଗରୁଡ଼, ପକ୍ଷିରାଜ ।
ପକ୍ଷିସ୍ୱାମୀ—ପୁଂ.ବ. (୬ତତ୍ପୁ)ଗରୁଡ଼ ।
ପକ୍ଷୀ—ପୁଂ.ବ. (ପକ୍ଷ+ଇନ୍)ଖଗ, ବିହଙ୍ଗମ, ବାଣ, ଶର, ଚଢ଼େଇ ।
ପକ୍ଷୀନ୍ଦ୍ର—ପୁଂ. ବ. ପକ୍ଷିଶ୍ରେଷ୍ଠ, ଗରୁଡ଼, ଜଟାୟୁ ।
ପକ୍ଷୀୟ—ପୁଂ. ବିଂ. (ପକ୍ଷ+ଈୟ)ପକ୍ଷଭୁକ୍ତ, ଦଳଭୁକ୍ତ ।
ପକ୍ଷୀଶ୍ୱର—ପୁଂ. ବ. (୬ତତ୍ପୁ)ଗରୁଡ଼ ।
ପକ୍ଷୋଦ୍ଗମ—ବ(୬ତତ୍ପୁ)ପକ୍ଷୀର ଦେହରେ ପକ୍ଷର ଉତ୍ପତ୍ତି ।
ପକ୍ଷ୍ମ—ତ୍ରି.ବିଂ.(ପଚ+ସ୍ନୁ)ପାକକର୍ତ୍ତା ।
ପକ୍ଷ୍ମ—ବ.(ପକ୍ଷ+ମିଂ.ମନ୍) ନେତ୍ର,ଲୋମ. ଆଖି ପତାର ଲୋମ, ପୁଷ୍ପକେଶର, ସୂକ୍ଷ୍ମାଂଶ, ସୂତାର ଅଗ୍ରଭାଗ ।
ପକ୍ଷ୍ମକୋପ—ପୁଂ.ବ.ଚକ୍ଷୁପତାର ନେତ୍ରରୋଗ-ବିଶେଷ ।
ପକ୍ଷ୍ମଘାତ—ପୁଂ.ବ. ନେତ୍ରରୋଗବିଶେଷ
ପକ୍ଷ୍ମପ୍ରକୋପ—ତ୍ରି.ବିଂ.ପକ୍ଷ୍ମକୋପ ରୋଗ ବିଶେଷ ।
ପକ୍ଷ୍ମଳ—ତ୍ରି. ବିଂ. (ପକ୍ଷ୍ମ+ଇଲ୍)ପକ୍ଷ୍ମଯୁକ୍ତ, ନେତ୍ର ଲୋମବିଶିଷ୍ଟ ।
ପକ୍ଷ୍ମାକ୍ଷ—ବି. ପକ୍ଷ୍ମକୋପ ରୋଗଭେଦ ।
ପକ୍ଷ୍ୟ—ତ୍ରି. ବିଂ. ( ପକ୍ଷ+ଯ ) ପକ୍ଷୀୟ, ପକ୍ଷାବଲମ୍ବୀ, ପକ୍ଷୀୟ ଦେଖ । [ ପକ୍ଷ
ପଙ୍ଗ—ଗ୍ରା. ବ. ପଦ୍ମ, ମାର୍ଜାର, ଗୃଦ୍ଧମାନ
ପଖ(ଖୋ)ଜ—ଗ୍ରା. ବ. ଦୁଇ ପାଖରେ ଚର୍ମାବଦ୍ଧ ଗୋଲ ଓ ଲମ୍ବ ବାଦ୍ୟବିଶେଷ. ଢୋଲକ, ମର୍ଦ୍ଦଳ ।
ପଖନ୍—ପ୍ରା. (ସଂ)ବ. ପାଷାଣ, ପଥର ।
ପଖନା—ପ୍ରା.(ବସ୍ତର)ବ.ପାଷାଣ, ପଥର
ପଖଳା—ଗ୍ରା.ବ(ସଂ-ପ୍ରକ୍ଷାଳନ)ପ୍ରକ୍ଷାଳନ, ଧୋଇବା, ଭାତ ପଖାଳିବା, (ଗ୍ରା.ବିଂ) ଧୌତ, ପ୍ରକ୍ଷାଳିତ ।
ପଖା—ଗ୍ରା. ବ. ଡେଣା, ଚୁଲିର ଝିଙ୍କା. ଖୁଆମୁଣ୍ଡି,ବାହୁର ମୂଳ, ବ୍ୟଜନ, ପଙ୍ଖା, ଚୁଲ୍ଲିର ରନ୍ଧ୍ର ବା ମୁଖ ।
ପଖାପଡ଼ିବା—ଗ୍ରା.ବି. ବ୍ୟଜନ ଚାଳନ ।
ପଖାଳ—ଗ୍ରା.ବ. ପାଣିମିଶା ଭାତ, ପ୍ରକ୍ଷାଳନ, ଧୋଇବା ।
ପଖାଳକରଆ—ଗ୍ରା.ବ.ପଟର ପିନ୍ଧାଯିବା ଲୁଗା, ଗାଡ଼ପିନ୍ଧା, ଯେଉଁ ଲୁଗା ପ୍ରତିଦିନ ଧୂଆଯାଏ ।
ପଖାଳଖିଆ—ଗ୍ରା.ବ.ପଖାଳ ଭାତ ଖାଇବା. (ବିଂ)ଯେ ପ୍ରତିଦିନ ପଖାଳ ଭାତ ଖାଇ-ବାରେ ଅଭ୍ୟସ୍ତ,ମେଦାକୁଟିଆ,ଗରିବ ।
ପଖାଳିଆ—ଗ୍ରା.ବିଂ.ପଖାଳଖିଆ ଦେଖ ।
ପଖାଳିବା—ଗ୍ରା.କ୍ରି.ଧୋଇବା, ପ୍ରକ୍ଷାଳନ କରିବା,ଭାତରେ ପାଣି ପକାଇବା ।
ପଖିଆ—ଗ୍ରା. ବ. (ସଂ-ପକ୍ଷ)ବର୍ଷାରୁ ରକ୍ଷା ପାଇବା ନିମନ୍ତେ ବ୍ୟବହୃତ ମୁଣ୍ଡଠାରୁ ଜଙ୍ଘ ପର୍ଯ୍ୟନ୍ତ ପଡ଼ୁଥିବା ତାଳପତ୍ର ନିର୍ମିତ ଏକପ୍ରକାର ଘୋଡ଼ଣି, ଘରର କାଠ ଓ ଖୁଣ୍ଟ ଉପରେ ଥିବା କାଷ୍ଠଖଣ୍ଡ, ଚିଙ୍କିର ଅଣ୍ଟା ଭାଗରେ ଫୋଡ଼ ହୋଇ ଲାଗିଥିବା ଗାଲା, (ଗ୍ରା.ସମ୍ବଲ.ବ)ଆନୁକୂଲ୍ୟ ।
ପଗଡ଼ି – ଗ୍ରା. ବ. (ସଂ-ପ୍ରଗ୍ରହ) ମିଶ୍ରୀ ବା ଗୁଡ଼ଆଦିର ବଡ଼ ବଡ଼ ଦାନା, ଗୋଲ, ଗୁଳା, ଅପରାଧୀକୁ ଧରାବନ୍ଧା କରିବା, ଧରାଧରି, ମାଡ଼ଆଦିର ହସ୍ତ ।
ପଗଡ଼ା—ଗ୍ରା. ବ. ଧରିବା, ଆୟତ୍ତାଧୀନ କରିବା, ଗିରଫଦାର୍ କରିବା ।
ପଗଡ଼ି—ବ. ଠେକା, ଉଷ୍ଣୀଷ, କାନରେ ପିନ୍ଧାଯିବା ଏକଟିକ ର ନୋଳ ।
ପଗଡ଼ିବା—ଗ୍ରା. କ୍ରି. (ସଂ-ପ୍ରଗ୍ରହ)ଧରିବା, ଗିରଫଦାର କରିବା,ଜୋର୍ କରି ଧରିବା
ପଗର—ଗ୍ରା. ବ. ସୁନା ମହଳଆଦିରେ ସୁନ୍ଦର ଦିଶିବାପାଇଁ ଯେଉଁ ସବୁ ଗାର କଟାଯାଇଥାଏ,ନାକାସୀ । [ ବାତୁଳ ।
ପଗଳ(ଲ)—ଗ୍ରା. ପୁଂ.ବିଂ.ବାୟା,ପାଗଳ,
ପଗଳା(ଲେ)ଇବା—ଗ୍ରା.କ୍ରି. ବାରଗାଉ-ଳେଇ କଥା କହିବା, ପାଗଳପରି କଥା କହିବା ।
ପଗଳା(ଲୋ)ମି—ଗ୍ରା. ବ. ବାତୁଳତା ।
ପଗାର—ଗ୍ରା. ବ. କ୍ଷେତ୍ରର ହିଡ଼,ସୀମା-ବନ୍ଧ, କ୍ଷେତ୍ରର ସୀମା, ହିଡ଼ ଉପରେ ଦିଆଯାଇଥିବା ବାଡ଼, ରାସ୍ତା ଓ ଉଦ୍ୟାନାଦିର ପାର୍ଶ୍ୱସ୍ଥ ନର୍ଦ୍ଦମା ।
ପଘା—ଚ.ବ. ( ସଂ-ପ୍ରଗ୍ରହ ) ଗୋରୁ ଓ ବାଛୁରି ବାନ୍ଧିବାର ଦଉଡ଼ି ।
ପଙ୍ଗାଇବା—ଗ୍ରା.କ୍ରି. ବଦାଇବା,ଚୁଙ୍କିବା ।
ପଙ୍କ—ଗ୍ରା. ବ. ପଙ୍କ, କାଦୁଅ ।

ପଙ୍କଢ—ଗ୍ରା. ବି. ବ୍ୟାଘ୍ରାମ ଆଦେଶ ବଚନ ।

ପଙ୍କ—ପୁଂ. କ୍ଲୀ.ବି. (ପନଚ୍+ଅ)କର୍ଦ୍ଦମ, ପାପ, ଚନ୍ଦନ ଦି କାଷ୍ଠମର୍ଦ୍ଦନରୁ ଜାତ ପଙ୍କବତ୍ ପ୍ରଲେପ ।

ପଙ୍କଉଝ(ଝୁ)ଲା—ଗ୍ରା. ବି. ପୋଖରୀ ବା କୂଅର ତଳରୁ ପଙ୍କ କାଢ଼ିବା କର୍ମ, ପଙ୍କୋଦ୍ଧାର ।

ପଙ୍କକର୍ଦ୍ଦମ—ପୁଂ. ବି. ଜଳଯୁକ୍ତ ପଙ୍କ, କୋମଳ କର୍ଦ୍ଦମ । [ ଯଷ୍ଟିକ ।

ପଙ୍କଗାରୁ—ପୁଂ. ବି. ଟିଟିଭପକ୍ଷୀ, କୋ-

ପଙ୍କକ୍ରୀଡ଼—ପୁଂ. ବି. (ପଙ୍କ+କ୍ରୀଡ଼+ଅ) ଶୂକର, ଘୃଷ୍ଟର, (ବିଂ) କର୍ଦ୍ଦମ-ଖେଳକ, ଯେଉଁମାନେ କାଦୁଅରେ କ୍ରୀଡ଼ା କରନ୍ତି । [ ଶୂକର ।

ପଙ୍କକ୍ରୀଡ଼କ—ପୁଂ.ବି. (ପଙ୍କକ୍ରୀଡ଼+କ)

ପଙ୍କଗଡ଼କ—ପୁଂ. ବି. ମତ୍ସ୍ୟବିଶେଷ ।

ପଙ୍କଗଡ—ସ୍ତ୍ରୀ.ବି.ପଙ୍କରେ ରହୁବା ମାଛ ।

ପଙ୍କଗ୍ରାହ—ପୁଂ.ବି. (ପଙ୍କ+ଗ୍ରାହ) ଜଳଜନ୍ତୁ ଭେଦ, ମକର, କୁମ୍ଭୀର ।

ପଙ୍କଜ—କ୍ଲୀ.ବି. (ପଙ୍କ+ଜନ+କ.ଅ) ପଦ୍ମ, ସାରସପକ୍ଷୀ ।

ପଙ୍କଜନୟନ—ପୁଂ. ବିଂ. (ବ.ବ୍ରୀ) ପଦ୍ମପରି ସୁନ୍ଦର ଚକ୍ଷୁଯୁକ୍ତ ।

ପଙ୍କଜନ୍ମ—କ୍ଲୀ.ବି. (ପଙ୍କ+ଜନ+ମନ୍) ପଦ୍ମ, (ପୁଂ.ବି) ସାରସପକ୍ଷୀ, (ବିଂ) କର୍ଦ୍ଦମଜାତ ।

ପଙ୍କଜଜନ୍ମା—ପୁଂ. ବି. (ପଙ୍କଜ+ଜନ୍ମନ୍) ବ୍ରହ୍ମା, ପଦ୍ମଯୋନି, (ବିଂ) କର୍ଦ୍ଦମଜାତ ।

ପଙ୍କଜାବଳୀ—ସ୍ତ୍ରୀ. ବି. ଛନ୍ଦୋଭେଦ, ପଦ୍ମସମୂହ ।

ପଙ୍କଜିତ୍—ପୁଂ. ବି. ଗରୁଡ଼ର ପୁତ୍ର ।

ପଙ୍କଜିନୀ—ସ୍ତ୍ରୀ.ବି. (ପଙ୍କଜ+ଇନ୍+ଈ) ପଦ୍ମାକର, ପଦ୍ମସମୂହ, କମଳିନୀ, ପୁଷ୍କରିଣୀ । [ ଗୃହ ।

ପଙ୍କଣ—ପୁଂ. ବି. ଶବରାଳୟ, ଚଣ୍ଡାଳ-

ପଙ୍କଦଗ୍ଧଶରୀର—ପୁଂ.ବି. ଦାନବଭେଦ, କର୍ଦ୍ଦମାକ୍ତ ଦେହ । [ ଭେଦ ।

ପଙ୍କଦଗ୍ଧାଙ୍ଗ—ପୁଂ. ବି. କୁମାରାନୁଚର

ପଙ୍କଧୂମ—ପୁଂ. ବି. ନରକବିଶେଷ ।

ପଙ୍କପର୍ପଟୀ—ସ୍ତ୍ରୀ.ବି. (୬ତତ୍ପୁ) ସୌରାଷ୍ଟ୍ର ମୃତ୍ତିକା, କାଦୁଅ ଶୁଖିଗଲେ ତାଉପରେ ପିଠାଭଳି ଯେଉଁ ଖୋଲ ବା ଚେପା-ଉଠେ ।

ପଙ୍କପ୍ରକ୍ଷାଳନନ୍ୟାୟ—ପ୍ରଥମେ ପଙ୍କରେ ପଶି ଦେହରେ ପଙ୍କ ଦୋଳିହୋଇ ପରେ ଦେହରୁ ତାହା ଛଡ଼ାଇବାଲାଗି ଧୋଇଧାଇହେବା ଅପେକ୍ଷା ପଙ୍କରେ ନ ପଶିବା ଭଲ, ଏହିପରି କୌଣସି ଜଟିଳ ବା ଅନିଷ୍ଟଜନକ ବିଷୟରେ ପ୍ରବେଶ ନ କଲେ ପରେ ତଜ୍ଜନିତ ଆପଦ ବିପଦରୁ ନିଜକୁ ମୁକ୍ତ କରିବା ଦରକାର ପଡ଼େ ନାହିଁ, 'କାଦୁଅରେ ପଶିରେ ଗୋଡ଼ ଧୋଉରେ' ନ୍ୟାୟ ।

ପଙ୍କପ୍ରଭା—ସ୍ତ୍ରୀ. ବି. କର୍ଦ୍ଦମଯୁକ୍ତ ନରକବିଶେଷ ।

ପଙ୍କମଣ୍ଡୂକ—ପୁଂ.ବି. ଶାମୁକା, ଜଳଶୁକ୍ତି ।

ପଙ୍କରୁ(ରୂ)ହ—କ୍ଲୀ. ବି. (ପଙ୍କ+ରୁହ+କ.ଅ) ପଦ୍ମ, (ପୁଂ) ସାରସପକ୍ଷୀ ।

ପଙ୍କବାନ୍—ବିଂ. (ପଙ୍କ+ମତ୍) କର୍ଦ୍ଦମଯୁକ୍ତ ।

ପଙ୍କବାର—କ୍ଲୀ. ବି. କାଞ୍ଜିକ, କାଞ୍ଜି ।

ପଙ୍କବାସ—ପୁଂ. ବି. (ବ.ବ୍ରୀ) କର୍କଟ, ମତ୍ସ୍ୟାଦି । [ ଭେଦ ।

ପଙ୍କଶୁକ୍ତି—ସ୍ତ୍ରୀ. ବି. ଶାମୁକା, ଜଳଶୁକ୍ତି-

ପଙ୍କଶୂରଣ—ପୁଂ. ବି. (କ.ଧା) ଶାଳୁକ, ପଦ୍ମାଦିର ମୂଳ ।

ପଙ୍କା—ପ୍ରା. (ସମ୍ପ୍ର) ବି. ଅନାର୍ଯ୍ୟ ଗଣ୍ଡ ଜାତିଙ୍କ ଗୁରୁ ଓ ପୁରୋହିତ ଜାତି-ବିଶେଷ ।

ପଙ୍କାର—ପୁଂ. ବି. (ପଙ୍କ+ଋ+ଅ) ଜଳଜ ବୃକ୍ଷବିଶେଷ, କଣ୍ଟକ ସେବତୀ, ଶୈବାଳ, ସେତୁ, ସୋପାନ, ଗଡ଼ଖାଇ ।

ପଙ୍କିଳ—ତ୍ରି. ବିଂ. (ପଙ୍କ+ଇଲ) ପଙ୍କଯୁକ୍ତ, କର୍ଦ୍ଦମାନ୍ୱିତ, (ବି) ତୁଡ଼ମାଛ ।

ପଙ୍କୁଆ—ଗ୍ରା. ବିଂ. ପଙ୍କିଳ, କାଦୁଅ, ପଙ୍କଲିପ୍ତ ।

ପଙ୍କେଇ—ଗ୍ରା.ବି. ପାନର ରୋଗବିଶେଷ ।

ପଙ୍କେଜ—କ୍ଲୀ. ବି. ପଦ୍ମ ।

ପଙ୍କେରୁହ—କ୍ଲୀ. ବି. ପଙ୍କଜ ଦେଖ ।

ପଙ୍କେଶୟ—ତ୍ରି.ବିଂ. (ପଙ୍କେ+ଶୀ+ଅ) ପଙ୍କସ୍ଥାୟୀ, (ସ୍ତ୍ରୀ.ବି) ଏକପ୍ରକାର ଜଳୌକା ।

ପଙ୍କୋଦ୍ଧାର—ବି.(୬ତତ୍) ପଙ୍କଉଝୁଲା ।

ପଙ୍କ୍ତି—ସ୍ତ୍ରୀ.ବି.(ପନ୍ଚ+ଭା.ତି) ଶ୍ରେଣୀ, ଗ୍ରନ୍ଥ, ଦଳ, ଧାଡ଼ି, ସମୂହ, ପାକ, ଦଶସଂଖ୍ୟା, ଛନ୍ଦୋବିଶେଷ, ପୃଥିବୀ, ଗୌରବ । [ ଦେଖ ।

ପଙ୍କ୍ତିକଣ୍ଟକ—ପୁଂ. ବିଂ. ପଙ୍କ୍ତିଦୂଷକ

ପଙ୍କ୍ତିକା—ସ୍ତ୍ରୀ. ବି. ଶ୍ରେଣୀ ।

ପଙ୍କ୍ତିକୃତ—ତ୍ରି. ବିଂ. ଶ୍ରେଣୀବଦ୍ଧ ।

ପଙ୍କ୍ତିଗ୍ରୀବ—ପୁଂ. ବିଂ. (ବ.ବ୍ରୀ) ରାବଣ ।

ପଙ୍କ୍ତିଚର—ପୁଂ. ବି. କୁରର ପକ୍ଷୀ ।

ପଙ୍କ୍ତିଦୂଷ—ପୁଂ. ବିଂ. ପଙ୍କ୍ତିଦୂଷକ ।

ପଙ୍କ୍ତିଦୂଷକ—ପୁଂ. ବି. ପତିତ ବା ସମାଜଚ୍ୟୁତ ବ୍ୟକ୍ତି, ଅପାଙ୍କ୍ତେୟ ।

ପଙ୍କ୍ତିପାବନ—ପୁଂ.ବି. (ବ.ବ୍ରୀ) ଶ୍ରେଣୀ-ପବିତ୍ରକାରୀ, ସର୍ବବେଦଜ୍ଞ ବ୍ରାହ୍ମଣ, ଯେଉଁ ବ୍ୟକ୍ତି ପଙ୍କ୍ତିରେ ଭୋଜନ କଲେ ତାଙ୍କସଙ୍ଗେ ବସିବା ବ୍ୟକ୍ତିମାନେ ପବିତ୍ର ହୁଅନ୍ତି ।

ପଙ୍କ୍ତିଭୋଜନ—କ୍ଲୀ.ବି. (୬ତତ୍) ଶ୍ରେଣୀବଦ୍ଧ ହୋଇ ବହୁବ୍ୟକ୍ତିଙ୍କ ଏକତ୍ର ଭୋଜନ । [ ରାଜା ।

ପଙ୍କ୍ତିରଥ—ପୁଂ.ବି. (ବ.ବ୍ରୀ) ଦଶରଥ-

ପଙ୍କ୍ତିରାଧସ—ବି. ଯଜ୍ଞବିଶେଷ ।

ପଙ୍କ୍ତିବୀଜ—ପୁଂ. ବି. ବବୁର ବୃକ୍ଷ, ଆରଗ୍ୱଧ ବୃକ୍ଷ, ସୁନାରି ଗଛ, କର୍ଣ୍ଣି-କାର ବୃକ୍ଷ, କନିଅର ଗଛ ।

ପଙ୍ଖା—ଗ୍ରା.ବି. (ସଂ-ପକ୍ଷ) ପଙ୍ଖା, ବ୍ୟଜନ ।

ପଙ୍ଖୁ—ଗ୍ରା. ବି. ନଡ଼ିଆ ଫଳର ଶୁଷ୍କ ବା ଅସାର ଅଂଶ ।

ପଙ୍ଗତ—ଗ୍ରା. ବି. ଏକସ୍ଥାନରେ ପଂକ୍ତି-କ୍ରମେ ବସି ଆହାର କରିବା ।

ପଙ୍ଗତବଢ଼ିବା—ଗ୍ରା. ବି. ବହୁବ୍ୟକ୍ତିଙ୍କର ଏକପଙ୍କ୍ତିରେ ଭୋଜନକ୍ରିୟା ସମାପନ ।

ପଙ୍ଗପାଳ—ବ. ପତଙ୍ଗ ଜାତିବିଶେଷ, ଝିଣ୍ଟିକା ପୋକ ।
ପଙ୍ଗା—ଗ୍ରା.ବି. ଏକପ୍ରକାର ଲୁଣ,ଉଦ୍ଭିଦ ପାଂଶରୁ ଉତ୍ପନ୍ନ ଲୁଣ ।
ପଙ୍ଗାମଛ—ଗ୍ରା. ବି. ଚିଲିକା ବା ଆଳ କାଖସ୍ଥ ଏକପ୍ରକାର ମଧୁର ମାଛ ।
ପଙ୍ଗାସ—ବ.କଣ୍ଟିଆମାଛ,ମତ୍ସ୍ୟବିଶେଷ ।
ପଙ୍ଗୁକ—ବି. ବଂ. ପଙ୍ଗୁ ଦେଖ ।
ପଙ୍ଗୁଗ୍ରାହ—ପୁଂ. ବ. ମକର ନାମକ ଜଳଜନ୍ତୁ, ମକରରାଶି ।
ପଙ୍ଗୁତା—ସ୍ତ୍ରୀ. ବ. ପଙ୍ଗୁତ୍ୱ, ପଙ୍ଗୁର ଧର୍ମ ।
ପଙ୍ଗୁହହାରିଣୀ—ସ୍ତ୍ରୀ. ବ. ବୃକ୍ଷବିଶେଷ, ଶିମୂଳୀକ୍ଷୁପ ।
ପଙ୍ଗୁଲ—ପୁଂ. ବ. (ପଙ୍ଗୁ+ଲ) ଶ୍ୱେତ-ଘୋଟକ, ଏରଣ୍ଡ ବୃକ୍ଷ ।
ପଙ୍ଗୁଲ୍ୟହାରିଣୀ—ସ୍ତ୍ରୀ. ବ. ଶିମ୍ବଳୀକ୍ଷୁପ ।
ପଚ୍‌ପଚ୍—ଗ୍ରା. ଅବ୍ୟ. କାଦୁଅପରି ଲଟ ଲଟ ଓ କୋମଳ କର୍ଦ୍ଦମମୟ ସ୍ଥାନ, କାଦୁଅ ଉପରେ ଚାଲିବାର ଶବ୍ଦ, ବାରମ୍ବାର ଛେପ ପକାଇବାର ଶବ୍ଦ ।
ପଚ—ପୁଂ.ବଂ. (ପଚ୍+କ.ଅ) ପାଚକ, ପାକକର୍ତ୍ତା ।
ପଚକ—ଗ୍ରା.ବ. କାଶ୍ମୀରଜାତ ଏକପ୍ରକାର ଗୁଳ୍ମର ମୂଳ, ସ୍ଥାନଭେଦରେ ଏହାକୁ କୁଷ୍ଠ ବା କୁଡ଼ ବୋଲନ୍ତି ।
ପଚତ—ପୁଂ. ବ. ( ପଚ+କ. ଅତ ) ସୂର୍ଯ୍ୟ, ଅଗ୍ନି, ଇନ୍ଦ୍ର, (ବଂ) ପରିପକ୍ୱ ।
ପଚତଭୃଜ୍ଜତା—ସ୍ତ୍ରୀ.ବ. ରାନ୍ଧ ଭାଜ ଏହିପରି ଆଦେଶ କରିବା ।
ପଚତ୍ର—ବଂ. (ପଚ୍+ଅତ୍ର) ପାକକର୍ତ୍ତା ।
ପଚତ୍ରପୁଟ—ପୁଂ. ବ. (ବ.ଗ୍ରା) ସୂର୍ଯ୍ୟ-ମଣି ବୃକ୍ଷ ।
ପଚତନରମ୍-ଅବ୍ୟ. ଅତିଶୟ ପାକକର୍ତ୍ତା ।
ପଚଥ୍ୟ—ବି.ବଂ. ପାକ ବିଷୟରେ ସାଧୁ, ଯେ ଉତ୍ତମରୂପେ ପାକ କରେ ।
ପଚନ—କ୍ଲୀ.ବ. (ପଚ+ଭା.ଅନ) ପାକ, ପାକସାଧନ, ପାଚିଯିବା, ରନ୍ଧନ, (ପୁଂ.ବ. ପଚ+କ.ଅନ) ଅଗ୍ନି, (ବଂ) ପାକକାରୀ,(ସ୍ତ୍ରୀ) ପଚନା ।
ପଚନାଗାର—ବ. (ପଚନ+ଆଗାର) ପାକଶାଳା ।
ପଚନାଗ୍ନି—ବ. (ବ.ଗ୍ରା) ଜଠରାଗ୍ନି ।
ପଚନିକା—ସ୍ତ୍ରୀ. ବ. (ପଚନ+ଇକ+ଆ) କରେଇ ।
ପଚମ୍ପା—ସ୍ତ୍ରୀ. ବ. କାଗଜୀଲେମ୍ବୁ ।
ପଚନ୍ତୀ—ସ୍ତ୍ରୀ. ବ. (ପଚ+ଅନ୍ତ+ଈ) ପାକକର୍ତ୍ତ୍ରୀ ।
ପଚପଚ—ପୁଂ. ବ. ମହାଦେବ ।
ପଚପଚିଆ—ଗ୍ରା. ବଂ. ଘୃତାକ୍ତ ଓ କୋମଳ(ଖାଦ୍ୟ), କର୍ଦ୍ଦମାକ୍ତ, କାଦୁଅପରି ଲଟପଟ ।
ପଚପ୍ରକୁଟ—ସ୍ତ୍ରୀ.ବ. ପାକକର,ଛେଦନକର ଏହିପରି ଆଦେଶ ।
ପଚମାନ—ବଂ. (ପଚ+କ.ମାନ)ପାକକର୍ତ୍ତା, (ବ) ଅଗ୍ନି ।
ପଚମ୍ପିଦ୍ର—ସ୍ତ୍ରୀ. ବ. ଦାରୁହରିଦ୍ରା ।
ପଚରି—ଗ୍ରା. ବ. (ସଂ ପୃଚ୍ଛଧାତୁ) ପୃଚ୍ଛା, ପ୍ରଶ୍ନ,(ବଂ-ସଂ-ପଚ୍‌ଧ ତୁ) ସଢ଼ା,ଗନ୍ଧିଆ, ପର୍ଯ୍ୟୁଷିତ,(ବ.ସଂ-କର୍ଚ୍ଚୀ)କାନ୍ଥଆଦିରେ ଚୂନ ଲେପିବାରେ ବ୍ୟବହୃତ ଗୁମରପରି ଝୋଟର ବ୍ରୁସ୍,ଶଗଡ଼ ଚକର ପୁଟିକୁ ଅର ସହିତ ଦୃଢ଼ଭାବରେ ଆବଦ୍ଧ ରଖିବାପାଇଁ ବ୍ୟବହୃତ ଖିଲ ।
ପଚରାଉଚରା—ଗ୍ରା. ବ. ଜୁହାବୋଲ, ଗପ, ତଦାରଖ, ତତ୍ତ୍ୱନେବା ।
ପଚରାପଚରି—ଗ୍ରା. ବ. ଅନ୍ୟୋନ୍ୟରେ ପ୍ରଶ୍ନକରାକରି,ଉପର୍ଯ୍ୟୁପରି ପ୍ରଶ୍ନକରିବା ।
ପଚା—ସ୍ତ୍ରୀ. ବଂ. ( ପଚ+ଆ ) ପାକ, ପାକକର୍ତ୍ତ୍ରୀ, ପାଚିକା, ( ବ ) ପଚନ, ପାକ, (ଗ୍ରା.ବଂ) ପୂଯ ପୂର୍ଣ୍ଣହୋଇଥିବା (କ୍ଷତ), ବିକୃତ, ନଷ୍ଟ, ଈଷତ୍ ନୀଳବର୍ଣ୍ଣ, (ଗ୍ରା.ବ) ରତ୍ନବିଶେଷ ।
ପଚା(ଚୋ)ଇବା—ଗ୍ରା.କ୍ରି. ପକ୍ୱକରାଇବା, (ଲ.ଅର୍ଥ)ଫଳରେ ପରିଣତ କରାଇବା, (ପଣବାର ଶିକଳରୂପ) ,ସଢ଼ାଇବା, ରଞ୍ଜିତ କରିବା, ଲୁହାକୁ ନିଆଁରେ ତାଇ ନାଲି କରିବା, କୋରକୁ ଦାରଜ କରିଇବା, (ପ୍ରା. ସମ୍ବ. କ୍ରି.) ଗୋଡ଼-ହାତ ଆଦି ଘଷିବା ।
ପଚାକାଳ—ଗ୍ରା.ବ. ବର୍ଷାକାଳ,ଭାଦ୍ରମାସ ।
ପଚାପନ୍ଦ—ଗ୍ରା.ବ. ( ସଂ-ବାରେନ୍ଦ୍ରପନ୍ଦ ) ଏକପ୍ରକାର ସୁବାସିତ ପନ୍ଦ, ସଢ଼ାପନ୍ଦ ।
ପଚାପ୍ରବନ୍ଧ- ଗ୍ରା.ବ.ଉଚ୍ଛିଷ୍ଟଗ୍ରସ୍ତ ବା ପଦ୍ଧତି
ପଚାରିବା--ଗ୍ରା.କ୍ରି.ଜିଜ୍ଞାସାକରିବା,ପୁଚ୍ଛିବା, ପ୍ରଶ୍ନକରିବା, ତତ୍ତ୍ୱନେବା ।
ପଚା(ଶ୍ୱା)ଶ--ଗ୍ରା.ବ ଓ ବଂ.(ସଂ-ପଞ୍ଚ ଶତ୍) ପାଞ୍ଚର ଦଶଗୁଣ ସଂଖ୍ୟା, ୫୦ ।
ପଚି—ପୁଂ.ବ.(ପଚ+ଇ),ଅଗ୍ନି,ପଚନ,
ପଚିନା—ଗ୍ରା. କ୍ରି. ସଢ଼ିବା, ପର୍ଯ୍ୟୁଷିତ ହେବା ।
ପଚିଶ—ବ ଓ ବଂ. (ସଂ-ପଞ୍ଚବିଂଶ) ୨୫ ସଂଖ୍ୟା, (ଗ୍ରା.ବ) କଉଡ଼ି ଖେଳରେ ପାଞ୍ଚଟିଯାକ କଉଡ଼ି ଚିତହୋଇ ପଡ଼ିବା ଦାନ ।
ପଚିଶାକୁଟା—ଗ୍ରା.ବ. ୨୫ ଗୌଣୀ ଧାନ କୁଟାଳିକୁ ଦେଲେ ସେ ୧୦ ଗୌଣୀ ଉଷୁନା ଚାଉଳ ଦେବାର ସର୍ତ୍ତ ।
ପଚେଳିମ—ପୁଂ.ବ. ସୂର୍ଯ୍ୟ, ଅଗ୍ନି,(ବଂ) (ପଚ୍+ମିଁ.କେଳିମ୍) ସ୍ୱୟଂପକ୍ୱ, ଗଛ-ପାଚିଲି ।
ପଚେଲୁକ—ପୁଂ. ବ. ସୂଦ, ପାଚକ, ପାକକର୍ତ୍ତା ।
ପଚ୍ୟ—ବି.ବଂ.(ପଚ୍+ମିଁ.ଯ) ରାନ୍ଧିବାର ଯୋଗ୍ୟ,ଯାହା ଖାଇଲେ ହଜମ ହୁଏ ।
ପଚ୍ୟମାନ—ବି. ବଂ. (ପଚ୍+ମିଁ.ମାନ) କର୍ତ୍ତିମାନ ପଚନ କର୍ମତାଶସ୍ୟ, ବର୍ତ୍ତମାନ ପାକବିଶିଷ୍ଟ ତଣ୍ଡୁଳାଦି ।
ପଛଗୁ—ପ୍ରା.(ସମ୍ବଲ)ବ.ଚାଳୁଡ଼ା,ଗୁଦର, ବଢ଼ଣା ଗୁଦର ।
ପଛ—ଗ୍ରା. ବ. ପୃଷ୍ଠଦେଶ, ପୂର୍ବବର୍ତ୍ତୀ କାଳ, ପରବର୍ତ୍ତୀ କାଳ, ଶେଷଭାଗ, (ଗ୍ରା.ବଂ) ପଶ୍ଚାଦ୍ବର୍ତ୍ତୀ, ପରେ ଆସିବା, ପଛରେ ଆସୁଥିବା ।
ପଛଆଡ଼--ଗ୍ରା.ବ.ପଶ୍ଚାଦ୍ଭାଗ,ବାଡ଼ିଆଡ଼, ଘରର ସଦର ଦାଣ୍ଡର ବିପରୀତ ଦିଗର ଅଂଶ ।
ପଛଆଡ଼ୁଆ—ଗ୍ରା.ବଂ.ପଶ୍ଚାଦ୍ଭାଗ ସମ୍ବ-

ଛୀପୁ, ପଶ୍ଚାଦ୍‌ବର୍ତ୍ତୀ ।
ପଛକଥା—ଗ୍ରା.ବି. ଅତୀତ ବିଷୟ, ଯେଉଁ ବିଷୟ ପରେ କରିବା ଉଚିତ ।
ପଛକରିବା—ଗ୍ରା.କ୍ରି. ପିଠି ବୁଲାଇଦେବା, (ଲ.ଅର୍ଥ) ଅନାସ୍ଥା କରିବା ।
ପଛକୁ—ଗ୍ରା.ଅବ୍ୟ.ପଶ୍ଚାତ୍, ପରେ,ପୃଷ୍ଠଦେଶକୁ, ଶେଷରେ, ଭବିଷ୍ୟତକୁ, ଅନୁକର ଉତ୍ତରାଧିକାରୀ ରୂପେ ।
ପଛକୁପକା(କେ)ଇବା—ଗ୍ରା. କ୍ରି. ନିକୃଷ୍ଟ ବୋଲି ବିଚାର କରିବା, ଅନାଦର କରିବା, ମନରେ ନଧରିବା,ପାଶୋରିଦେବା, କୌଣସି ବ୍ୟକ୍ତିକୁ ପଛରେ ଛାଡ଼ି ଚାଲିଯିବା ।
ପଛକୁହା—ଗ୍ରା. ପୁଂ. ବିଂ. ଯେ ସମସ୍ତଙ୍କ ପଛରେ କଥା କହେ, ଚୁଗୁଲିଆ, ଯେ ପରୋକ୍ଷରେ ନିନ୍ଦା କରେ ।
ପଛକେ—ଗ୍ରା.ଅବ୍ୟ.କାଳେ, ଯଦ୍ୟପି ତ. ସୁଦ୍ଧା, ହେଲେମଧ୍ୟ ।
ପଛଦୁଆ—ଗ୍ରା. ବି. ପଶ୍ଚାତ୍‌ପଦ ହେବା, (ଲ.ଅର୍ଥ) ଅନିଚ୍ଛା ପ୍ରକାଶ ।
ପଛଦୁଆଦେବା—ଗ୍ରା. କ୍ରି. ପଶ୍ଚାଦ୍‌ପଦ ହେବା,କୁଣ୍ଠିତହେବା ଅର୍ଦ୍ଧାଙ୍ଗୀକୃତହେବା, ଅନିଚ୍ଛା ପ୍ରକାଶ କରିବା
ପଛଧରିବା—ଗ୍ରା.କ୍ରି. କୌଣସି ବ୍ୟକ୍ତିର ପଛରେ ଯିବା, ଅନୁସରଣ କରିବା, ପଛରେ ଲାଗିବା,କୌଣସି କାର୍ଯ୍ୟପାଇଁ ବାରମ୍ବାର କୌଣସି ବ୍ୟକ୍ତିକୁ ତାଗିଦ କରିବା ।
ପଛନ୍ତେ—ଗ୍ରା.ଅବ୍ୟ. (ସଂ-ପଶ୍ଚାତ୍) ପୃଷ୍ଠଭାଗରେ, ପରେ, ଶେଷକୁ, ପଛେପଛେ, ପଛରେ ।
ପଛନ୍ଦ—ଗ୍ରା.ବି. ପସନ୍ଦ ଦେଖ
ପଛବୁଦ୍ଧିଆ—ଗ୍ରା.ବିଂ. ଯାହାର ଉପସ୍ଥିତ ବୁଦ୍ଧି ନଥାଏ,ଯଥା ସମୟରେ ଯାହାକୁ ବୁଦ୍ଧି ଦିଶେନାହିଁ
ପଛବୁହା—ଗ୍ରା. ବିଂ. ଯାହା ହାତ ପଛଆଡ଼କୁ ବନ୍ଧାହୋଇଥାଏ, ( ଗ୍ରା.କ୍ରି ) ପଛଆଡ଼ୁଆ । [ ଅନୁହିତ
ପଛଭର—ଗ୍ରା.ବିଂ.ପଶ୍ଚାଦ୍‌ବର୍ତ୍ତୀ,ପଛରେ

ପଛରେ—ଗ୍ରା.ଅବ୍ୟ. ପୃଷ୍ଠଭାଗରେ,ଭବିଷ୍ୟତରେ, ପରୋକ୍ଷରେ,ବହୁଦୂରରେ ।
ପଛରେପଡ଼ିବା—ଗ୍ରା. କ୍ରି. ସଙ୍ଗୀଲୋକମାନଙ୍କ ସଙ୍ଗେ ଚାଲି ନପାରି ପଛରେ ରହିଯିବା, ସଙ୍ଗୀମାନଙ୍କର ସଙ୍ଗେ ପ୍ରତିଯୋଗିତାରେ ନପାରିବା ।
ପଛରେଲଗା ( ଗେ ) ଇବା—ଗ୍ରା. କ୍ରି. କୌଣସି ବ୍ୟକ୍ତିର ଗତିବିଧି ପ୍ରତି, ଦୃଷ୍ଟି ରଖିବାପାଇଁ ଅନ୍ୟ ବ୍ୟକ୍ତିକୁ ନିଯୁକ୍ତ କରିବା,କୁକୁର ଆଦିଙ୍କୁ ଶୀକାର ପଛରେ ଧଉଡ଼ାଇବା ।
ପଛରେଲାଗିବା—ଗ୍ରା. କ୍ରି. କୌଣସି ବ୍ୟକ୍ତିର ଗତିବିଧିକୁ ସାବଧାନତା ସହକାରେ ଓ ତାହାର ଅଜ୍ଞାତରେ ଲକ୍ଷ୍ୟ କରିବା, କୌଣସି ବ୍ୟକ୍ତିର ଅନିଷ୍ଟାଚରଣ କରିବାକୁ ତାହାର ଦୋଷ ସନ୍ଧାନକରିବା , ପଛରେ ଗୋଡ଼ାଇବା
ପଛଲ(ଲି)—ଗ୍ରା.ବି. ପିଛିଲ ଦେଖ ।
ପଛୁଆ—ଗ୍ରା. ପୁଂ. ବିଂ. ପଶ୍ଚାଦ୍‌ବର୍ତ୍ତୀ, ପରେ ଆସିଥିବା, ଯେ ପଛଦୁଆ ଦିଏ. ଅକଦୁଆ, ଗ୍ରା. (ସମ୍ବଲ) ବି. ଭୃତ୍ୟ, ଅନୁଚର ।
ପଛେ—ଗ୍ରା. ଅବ୍ୟ. (ସଂ-ପଶ୍ଚାତ୍) ପଛକୁ ଦେଖ, ପଛକେ ଦେଖ ।
ପଛେପଛେ—ଗ୍ରା.ଅବ୍ୟ. ପଛରେ,ଅବ୍ୟବହିତ ପରେ, ଅନୁସରଣ କରି ।
ପଛୋଲି—ଗ୍ରା. ବି. ଘର ଭିତି ବା ପରିସର । [ କର୍ମ
ପଜ—ଗ୍ରା. ବି. ଟଙ୍କାକୁ ପଡ଼ିକବ
ପଜାଇବା—ଗ୍ରା.କ୍ରି. ଧାଡ଼ିକରିବା,ଟଙ୍କାକୁ ନିଆଁରେ ତତାଇ ପିଟି ବାଡ଼େଇ ଧାଡ଼ିଆ କରିବା ।
ପଜ୍ଜ—ପୁଂ.ବି. ( ପଦ+ଜନ+ଡ.ଅ ) ଶୂଦ୍ର, (ବିଂ) ପଦଜାତ ।
ପଜ୍ଝଟିକା—ସ୍ତ୍ରୀ. ବି. ମହାବୃତ୍ତଭେଦ, ଛନ୍ଦ ଦଣ୍ଡିକ , ଛନ୍ଦବିଶେଷ ।
ପଞ୍ଚ—ବି. ଚେମ୍ପଟ୍ଟ, ପାକୁଳକରିବା, ଚର୍ଚ୍ଚିତବେଣ୍ଟ, ପଜା ।
ପଙ୍କର୍ଣ୍ଣ—ଗ୍ରା.ବି. କୌଯାଣୀ,ତୁଙ୍ଗାରେ ଚଢ଼ି ପାରହେଉଥିବା ଯାତ୍ରୀ ।

ପଞ୍ଚ—ବି. (ପଚ୍‌+ଅନ୍) ସଂଖ୍ୟାବିଶେଷ, ୫ସଂଖ୍ୟା, (ବିଂ) ୫ସଂଖ୍ୟକ, (ଗ୍ରା.ବି) ପଞ୍ଚ ଏତ୍, ଏକାଧିକ ବ୍ୟକ୍ତି ।
ପଞ୍ଚକ—ବିଂ. (ପଞ୍ଚନ୍ + କ) ପାଞ୍ଚସଂଖ୍ୟାସମ୍ବନ୍ଧୀୟ, ପାଞ୍ଚସଂଖ୍ୟକ, ପାଞ୍ଚଜଣଙ୍କଦ୍ୱାରା କୀତ, ପଞ୍ଚପରିମିତ, ପଞ୍ଚଅଙ୍ଗ ବା ଅବୟବବିଶିଷ୍ଟ, (ବି) ପଞ୍ଚର ସମୂହ, ପାଞ୍ଚର ସମାହାର, ପଞ୍ଚାଏତ୍, ପଞ୍ଚୁକ, କାର୍ତ୍ତିକ ମାସର ଶେଷ ପାଞ୍ଚଦିନ, ଜାତିବିଶେଷ, ସ୍କନ୍ଦଙ୍କ ଅନୁଚରବିଶେଷ, ନହୁଷଙ୍କ ପୁତ୍ରବିଶେଷ, ଗୌତମ ବୁଦ୍ଧଙ୍କର ପ୍ରଥମ ପାଞ୍ଚଜଣ ଶିଷ୍ୟ,ପଞ୍ଚାଧ୍ୟାୟବିଶିଷ୍ଟ ଗ୍ରନ୍ଥ,ଯୁଦ୍ଧଭୂମି,ଶକୁନଶାସ୍ତ୍ର ।
ପଞ୍ଚକନ୍ୟା—ସ୍ତ୍ରୀ.ବି. ଅହଲ୍ୟା, ଦ୍ରୌପଦୀ, ତାରା, କୁନ୍ତୀ , ମନ୍ଦୋଦରୀ ।
ପଞ୍ଚକପାଳ—ବି. (ବୈ.ଗ୍ରା) ଯଜ୍ଞବିଶେଷ, କପାଳପଞ୍ଚକ । [ ବିଶେଷ ।
ପଞ୍ଚକର୍ପଟ—ପୁଂ.ବି. ପ୍ରାଚୀନ ଜନପଦ-
ପଞ୍ଚକର୍ଣ୍ଣୀ—ବିଂ.(ବୈ.ଗ୍ରା) ଯେଉଁ ଗୋରୁର କାନରେ ଉତ୍ତପ୍ତ ଲୌହଦ୍ୱାରା ପାଞ୍ଚ ଅଙ୍କପରି ଚିହ୍ନ ଦିଆଯାଏ ।
ପଞ୍ଚକର୍ମ—କ୍ଲୀ. ବି. ବୈଦ୍ୟକୋକ୍ତ କର୍ମପଞ୍ଚକବିଶେଷ, ପଞ୍ଚପ୍ରକାର ଶାରୀରିକ ଚିକିତ୍ସାବିଶେଷ, ଭାଷା ପରିଚ୍ଛେଦୋକ୍ତ, ପଞ୍ଚକର୍ମ ।
ପଞ୍ଚକର୍ମେନ୍ଦ୍ରିୟ—କ୍ଲୀ. ବି. ହସ୍ତ, ପାଦ, ପାୟୁ,ଉପସ୍ଥ ଓ ଜିହ୍ୱା ଏହି ପାଞ୍ଚଟି ଇନ୍ଦ୍ରିୟକୁ ପଞ୍ଚକର୍ମେନ୍ଦ୍ରିୟ କହନ୍ତି ।
ପଞ୍ଚକଳସ—ଗ୍ରା.ବି. ବେମୁଲ ପ୍ରଦେଶବାସୀ ଶୂଦ୍ରଜାତିବିଶେଷ ।
ପଞ୍ଚକଲ୍ୟାଣ(ଣୀ)—ବି ଓ ବିଂ. ( ବୈ.ଗ୍ରା ) ଯେଉଁ ଘୋଡ଼ାର ଚାରିଗୋଡ଼ ଓ କପାଳରେ ଧଳା ଲୋମ ଥାଏ ।
ପଞ୍ଚକଷାୟ—ପୁଂ. ବି. ବୈଦ୍ୟକୋକ୍ତ ପଞ୍ଚପ୍ରକାର କଷାୟ ଦ୍ରବ୍ୟ, ଜାମ୍ବୁ-ଶିମିଳି, ବାଡ଼ିଅଁଳା, ବଉଳ ଓ ବରକୋଳି ପ୍ରଭୃତି ।
ପଞ୍ଚକାମ—ପୁଂ. ବି. ପଞ୍ଚପ୍ରକାର କାମ,

ଅର୍ଥାତ୍ କାମଦେବର ୫ଟି ନାମ ।

ପଞ୍ଚକାର—ପୁଂ.ବି. ଜଳ କୁକ୍କୁଭ ।

ପଞ୍ଚକୁଳ—ପ୍ରାଚୀନ ହିନ୍ଦୁ ରାଜାମାନଙ୍କର ପ୍ରବର୍ତ୍ତିତ ଏକଗୋଟି ନଗର ସୁରକ୍ଷିଣୀ ସଭା,ଯେଉଁ ସଭାରେ ଜଣ୫ ସଦସ୍ୟଙ୍କ ଦ୍ୱାରା ସଭାର ସମୁଦାୟ କାର୍ଯ୍ୟ ପରିଚାଳିତ ହୁଏ ।

ପଞ୍ଚକୃତ୍ୟ—ବି. ଈଶ୍ୱରଙ୍କ ସୃଷ୍ଟିସମ୍ବନ୍ଧୀ ୫ଟି କର୍ମ, (ସୃଷ୍ଟି,ସ୍ଥିତି,ଧ୍ୱଂସ,ତିରୋଭାବ ବା ଅନୁଗ୍ରହ କର୍ମ) ପ୍ଳଷ ଦେଖ ।

ପଞ୍ଚକୃଷ୍ଣ—ପୁଂ.ବି. ସୌମ୍ୟ କୀଟବିଶେଷ (ସୁଶ୍ରୁତକଲ୍ପସ୍ଥାନ) ।

ପଞ୍ଚକୋଟ—ବି. ଗିରିଶ୍ରେଣୀବିଶେଷ ।

ପଞ୍ଚକୋଣ—କ୍ଳୀ. ବି. ପଞ୍ଚକୋଣାତ୍ମକ କ୍ଷେତ୍ରବିଶେଷ, ତନ୍ତ୍ରୋକ୍ତ ଯନ୍ତ୍ରବିଶେଷ, (ବିଂ) ପାଞ୍ଚକୋଣିଆ, ପଞ୍ଚକୋଣବିଶିଷ୍ଟ ।

ପଞ୍ଚକୋଲ—କ୍ଳୀ. ବି. ପାଚନବିଶେଷ, (ପିପ୍ପଳି, ବଣ ପିପ୍ପଳୀମୂଳ,ଗୁଇଁ କାଠ, ଧଳାଚିତାମୂଳ ଓ ଶୁଣ୍ଠି ।

ପଞ୍ଚକୋଲଘୃତ—କ୍ଳୀ. ବି. ଚରକୋକ୍ତ ଘୃତୌଷଧବିଶେଷ ।

ପଞ୍ଚକୋଶୀ—ଗ୍ରା.ବିଂ. ତୀର୍ଥଠାରୁ ପାଞ୍ଚକୋଶ ସୀମା ମଧ୍ୟରେ ଅବସ୍ଥିତ ଓ ବାସ କରୁଥିବା,ପୁରୀଠାରୁ ପାଞ୍ଚକୋଶ ମଧ୍ୟରେ ବାସ କରୁଥିବା, ( ଗ୍ରା.ବି. ) କାଶୀତୀର୍ଥର ପରିକ୍ରମା ।

ପଞ୍ଚକୋଷ—ବି. ବେଦାନ୍ତ ବର୍ଣ୍ଣିତ ଆତ୍ମାର ୫ଗୋଟି ଆବରଣ, (ଯଥା—ଅନ୍ନମୟ କୋଷ, ପ୍ରାଣମୟ କୋଷ, ମନୋମୟ କୋଷ, ବିଜ୍ଞାନ କୋଷ ଓ ଆନନ୍ଦମୟ କୋଷ) ।

ପଞ୍ଚକ୍ରୋଶ—ବି. ପାଞ୍ଚକ୍ରୋଶ ଦୂରତ୍ୱ, କାଶୀ, ବାରାଣସୀ ।

ପଞ୍ଚକ୍ରୋଶୀ—ସ୍ତ୍ରୀ. ବି. କାଶୀର ମଧ୍ୟସ୍ଥିତ ୫ କ୍ରୋଶସ୍ଥାନ, ବାରାଣସୀ,କାଶୀ(ବିଂ) (ଦେ.ଗ୍ରା) ପଞ୍ଚକ୍ରୋଶପରିମିତ ଦୈର୍ଘ୍ୟ ଓ ପ୍ରସ୍ଥରେ ୫କୋଶ ବ୍ୟାପୀ ।

ପଞ୍ଚକ୍ଷାର—ପୁଂ.ବିଂ ପଞ୍ଚଲବଣ ଦେଖ ।

ପଞ୍ଚଗଙ୍ଗ—ଅବ୍ୟ.ପାଞ୍ଚଟି ସମାହୃତ ନଦୀ, କାଶୀସ୍ଥିତ ପଞ୍ଚନଦତୀର୍ଥ ।

ପଞ୍ଚଗଙ୍ଗା—ସ୍ତ୍ରୀ.ବି. ନଦୀବିଶେଷ,(ଭାଗୀରଥୀ,ଗୌତମୀ,କୃଷ୍ଣବେଣୀ,ପିନାକିନୀ, କାବେରୀ ଏହି ପାଞ୍ଚନଦୀ, କାଶୀସ୍ଥ ତୀର୍ଥବିଶେଷ ।

ପଞ୍ଚଗଙ୍ଗାଘାଟ—ପୁଣ୍ୟକ୍ଷେତ୍ର ବାରାଣସୀ ଧାମର ଅନ୍ତର୍ଗତ ଗୋଟିଏ ପବିତ୍ର ତୀର୍ଥ ।

ପଞ୍ଚଗତ୍—ତ୍ରି.ବିଂ. ଯେଉଁ ରାଶିକୁ ପାଞ୍ଚଗୁଣିତ କରାଯାଇଅଛି ।

ପଞ୍ଚଗବ—କ୍ଳୀ ବି. ପଞ୍ଚଗୋର ସମାହାର,

ପଞ୍ଚଗବଧନ—ତ୍ରି. ବିଂ. ପଞ୍ଚ ସଂଖ୍ୟାନ୍ୱିତ ଗବଧନ ସ୍ୱାମୀ ।

ପଞ୍ଚଗବ୍ୟ—କ୍ଳୀ. ବି. ଗୋସମ୍ବନ୍ଧୀ ପଞ୍ଚପ୍ରକାର ଦ୍ରବ୍ୟ, (ଦଧି, ଦୁଗ୍ଧ, ଘୃତ, ଗୋମୟ ଓ ଗୋମୂତ୍ର) ।

ପଞ୍ଚଗବ୍ୟଘୃତ—କ୍ଳୀ.ବି.ପକ୍ୱ ଘୃତୌଷଧବିଶେଷ ।

ପଞ୍ଚଗୁ—ତ୍ରି.ବିଂ. ପଞ୍ଚ ଗୋଦ୍ୱାରା କ୍ରୀତ

ପଞ୍ଚଗୁଣ—ପୁଂ.ବି. ଶବ୍ଦ, ସ୍ପର୍ଶ, ରୂପ,ରସ ଓ ଗନ୍ଧ ଏହି ପଞ୍ଚଗୁଣ,ପଦାର୍ଥର ପାଞ୍ଚଗୋଟି ଇନ୍ଦ୍ରିୟଗ୍ରାହ୍ୟ ଗୁଣ, ପୃଥିବୀ ।

ପଞ୍ଚଗୁପ୍ତ—ପୁଂ.ବି.ଚାର୍ବାକ୍ଦର୍ଶନ,କଚ୍ଛପ ।

ପଞ୍ଚଗୁପ୍ତିରସା—ସ୍ତ୍ରୀ. ବି. ସ୍ପୃକ୍କା, ସୁଗନ୍ଧ ଶାକବିଶେଷ ।

ପଞ୍ଚଗୃହୀତ—ତ୍ରି.ବିଂ. ପାଞ୍ଚଦ୍ୱାରା ଲବ୍ଧ ।

ପଞ୍ଚଗୌଡ଼—ବି.ବ୍ରାହ୍ମଣମାନଙ୍କର ବିଭାଗବିଶେଷ, ପୁରାତନ ନଗରବିଶେଷ ।

ପଞ୍ଚଗ୍ରାମୀ—ସ୍ତ୍ରୀ.ବି. ପଞ୍ଚଗ୍ରାମର ଲୋକ ।

ପଞ୍ଚଗ୍ରାସ—ବି. ପଞ୍ଚକବଳ ଦେଖ,ବ୍ରାହ୍ମଣ ଚକ୍ର କରସାର ଭୋଜନପୂର୍ବରୁ ପଞ୍ଚପ୍ରାଣବାୟୁଙ୍କ ନାମଧରି ଯେଉଁ ପାଞ୍ଚଗ୍ରାସ ଅନ୍ନ ଖାଏ ।

[ ଚକ୍ର ।

ପଞ୍ଚଚକ୍ର—କ୍ଳୀ.ବି. ତନ୍ତ୍ରୋକ୍ତ ପାଞ୍ଚପ୍ରକାର

ପଞ୍ଚଚକ୍ଷୁଃ—ବି. (ଦେ.ଗ୍ରା) ବୁଦ୍ଧଙ୍କ ନାମ ।

ପଞ୍ଚଚତ୍ୱାରିଂଶ—ତ୍ରି.ବିଂ. ପଞ୍ଚଚତ୍ୱାରିଂଶତ୍ ସଂଖ୍ୟାର ପୂରକ ।

ପଞ୍ଚଚତ୍ୱାରିଂଶତ୍—ସ୍ତ୍ରୀ.ବି. ୪୫ ସଂଖ୍ୟା ।

ପଞ୍ଚଚାମର—କ୍ଳୀ.ବି. ଛନ୍ଦୋବିଶେଷ ।

ପଞ୍ଚଚିତିକ—ପୁଂ.ବି. ଅଗ୍ନିଭେଦ ।

ପଞ୍ଚଚୀର—ପୁଂ.ବି.ମଞ୍ଜୁଶ୍ରୀର ନାମାନ୍ତର, ମଞ୍ଜୁଘୋଷ ।

ପଞ୍ଚଚୂଡ଼—ବିଂ. (ଦେ.ଗ୍ରା) ପାଞ୍ଚଟି ଶାଖାବିଶିଷ୍ଟ, ପଞ୍ଚଶିଖ ।

ପଞ୍ଚଚୂଡ଼ା—ସ୍ତ୍ରୀ. ବି. ଅପ୍ସରାବିଶେଷ ।

ପଞ୍ଚଶୈଳ—ବି. ହିମାଳୟ ପର୍ବତର ଅଂଶବିଶେଷ ।

ପଞ୍ଚଛତ୍ର—ପବିତ୍ର କ୍ଷେତ୍ରବିଶେଷ ।

ପଞ୍ଚଜନ—ବିଂ. ( ପଞ୍ଚ + ଜନ + କ.ଅ ) ପଞ୍ଚ ମହାଭୂତରୁ ଜାତ, (ବି) ପ୍ରାଣୀ, ମନୁଷ୍ୟ, ଦୈତ୍ୟବିଶେଷ, ଆତ୍ମା, ପଞ୍ଚପ୍ରକାର ମହାପ୍ରାଣୀ, ପ୍ରାଚୀନ ଆର୍ଯ୍ୟମାନଙ୍କ ଗଣନା କ୍ରମେ ୫ ଜାତି, ରାଜା ସଗରଙ୍କର କେଶିନୀଙ୍କ ଗର୍ଭଜାତ ଏକ ପୁତ୍ର, ପଞ୍ଚ ମହାଭୂତ, ଏକ ପ୍ରଜାପତିଙ୍କ ନାମ ।

[ ସଂଜ୍ଞାବିଶେଷ ।

ପଞ୍ଚଜନାଲୟ— ବି. ଆଭୀରମାନଙ୍କର

ପଞ୍ଚଜନୀ—ସ୍ତ୍ରୀ. ବି. ପାଞ୍ଚଜଣର ସମ୍ମିଳନ, ପଞ୍ଚାଏତ, ବିଶ୍ୱରୂପ କନ୍ୟା ।

ପଞ୍ଚଜନୀନ—ପୁଂ. ବି. ନଟ, ବିଦୂଷକ, ଅଭିନେତା, ( ବିଂ) ପାଞ୍ଚଜଣ ସମ୍ବନ୍ଧୀୟ, ପାଞ୍ଚଜଣିଆ ।

ପଞ୍ଚଜନ୍ୟ—ବି.ଶଙ୍ଖାସୁରର ପୁତ୍ର, ଶଙ୍ଖରୂପଧାରୀ ପଞ୍ଚଜନ୍ୟ ଅସୁରର ଅସ୍ଥି; ଯାହାକୁ ଶ୍ରୀକୃଷ୍ଣ ଶଙ୍ଖ ରୂପେ ବ୍ୟବହାର କରୁଥିଲେ ।

[ ବିଶେଷ ।

ପଞ୍ଚଜୀରକଗୁଡ଼—ପୁଂ. ବି. ଗୁଡ଼ୌଷଧ-

ପଞ୍ଚଜ୍ଞାନ—ପୁଂ.ବି.ପଞ୍ଚସଂଖ୍ୟାଯୁକ୍ତବର୍ଗ ।

ପଞ୍ଚତତ୍ତ୍ୱ—କ୍ଳୀ. ବି. ପଞ୍ଚଭୂତ (ସାଂଖ୍ୟମତେ) କ୍ଷିତି, ଅପ୍, ତେଜ, ବାୟୁ ଓ ବ୍ୟୋମ ଏହି ପଞ୍ଚ ମହାଭୂତ, ପଞ୍ଚମକାର,(ତନ୍ତ୍ରମତେ)ମଦ୍ୟ,ମାଂସ,ମତ୍ସ୍ୟ, ମୈଥୁନ ଓ ମୁଦ୍ରା, (ବୈଷ୍ଣବ ମତରେ ତନ୍ତ୍ରୋକ୍ତ ପାଞ୍ଚଟି ତତ୍ତ୍ୱ—ଗୁରୁତତ୍ତ୍ୱ, ମନ୍ତ୍ରତତ୍ତ୍ୱ, ମନସ୍ତତ୍ତ୍ୱ, ଦେବତତ୍ତ୍ୱ ଓ ଧ୍ୟାନତତ୍ତ୍ୱ) ।

ପଞ୍ଚତନ୍ତ୍ର—ବି. ବିଷ୍ଣୁଶର୍ମା ପ୍ରଣୀତ ନୀତିଶାସ୍ତ୍ରବିଶେଷ ।

ପଞ୍ଚତନ୍ତ୍ରୀ--ସ୍ତ୍ରୀ.ବି.(ପଞ୍ଚତନ୍ତ୍ର+ଈ)ପାଞ୍ଚଟି ତାରଯୁକ୍ତ ବୀଣା ।

ପଞ୍ଚତନ୍ମାତ୍ର—କ୍ଳୀ.ବି. ସୂକ୍ଷ୍ମ ପଞ୍ଚ ମହାଭୂତ. ଯଥା:—ଶବ୍ଦ, ସ୍ପର୍ଶ,ରୂପ,ରସ ଓ ଗନ୍ଧ ପୃଥିବ୍ୟାଦି ।

ପଞ୍ଚତପ—ପୁଂ.ବି.(ବ.ବ୍ରୀ)ପଞ୍ଚାଗ୍ନି ଦ୍ୱାରା ଯେଉଁମାନେ ତପସ୍ୟା କରନ୍ତି ।

ପଞ୍ଚତପଃ—ପୁଂ. ବିଂ. (ପଞ୍ଚନ୍+ତପସ୍) ପଞ୍ଚାଗ୍ନି ସ୍ଥାପନ ପୂର୍ବକ ତପଃସାଧନକାରୀ ।

ପଞ୍ଚତୟ—ବିଂ. ପଞ୍ଚାବୟବ, ପଞ୍ଚସଂଖ୍ୟା, ପଞ୍ଚସଂଖ୍ୟାଯୁକ୍ତ ।

ପଞ୍ଚତରୁ—ବି.ସ୍ୱର୍ଗରେ ଥିବା ପାଞ୍ଚଟି ବୃକ୍ଷ ( ମନ୍ଦାର, ପାରିଜାତ, କଳ୍ପବୃକ୍ଷ. ସନ୍ତାନ ଓ ହରିଚନ୍ଦନ ) ।

ପଞ୍ଚତା—ସ୍ତ୍ରୀ.ବି. (ପଞ୍ଚନ୍+ତା)ପଞ୍ଚତ୍ୱର ପରିଣତି, ମୃତ୍ୟୁ, ପଞ୍ଚତାର ଭାବ,ପଞ୍ଚଭୂତ

ପଞ୍ଚତିକ୍ତ—କ୍ଳୀ.ବି. ପଞ୍ଚବିଧ ତିକ୍ତ ଦ୍ରବ୍ୟ. (ଯଥା—ନିମ୍ବଗଛର ବକଳ, ଗୁଳୁଚି, ବାସଙ୍ଗ, ଶୁଣ୍ଠି ଓ କଣ୍ଟକାରୀ) ।

ପଞ୍ଚତିକ୍ତଘୃତ--କ୍ଳୀ.ବି.ଘୃତୌଷଧିବିଶେଷ

ପଞ୍ଚତିକ୍ତଘୃତଗୁଗ୍ଗୁଲ--ବି. ଔଷଧବିଶେଷ

ପଞ୍ଚତୀର୍ଥ—କ୍ଳୀ. ବି. କାଶୀସ୍ଥ ପଞ୍ଚଗୋଟି ଶିବାଧିଷ୍ଠିତ ପୁଣ୍ୟସ୍ଥାନ,(ଯଥ :—ଜ୍ଞାନବାପୀ, ନନ୍ଦିକେଶ୍ୱର, ତାରକେଶ୍ୱର. ମହାକାଳେଶ୍ୱର ଓ ଦଣ୍ଡପାଣି), ପୁରୁଷୋତ୍ତମକ୍ଷେତ୍ରସ୍ଥ ପାଞ୍ଚଗୋଟି ପୁଣ୍ୟସ୍ଥାନ,(ଯଥା-ମାର୍କଣ୍ଡେୟ, ଶ୍ୱେତଗଙ୍ଗା, ରୋହିଣୀକୁଣ୍ଡ, ସମୁଦ୍ର ଓ ଇନ୍ଦ୍ରଦ୍ୟୁମ୍ନ) ।

ପଞ୍ଚତୃଣ—କ୍ଳୀ.ବି. କୁଶ,କାଶତଣ୍ଡି, ଅଶଅଁକୁଆ, କାଣ୍ଡଶର ଓ ଆଖୁ ଏହି ପଞ୍ଚଗୋଟି ତୃଣ ଜାତୀୟ ଗୁଳ୍ମ ମୂଳର ସମାହାର ।

ପଞ୍ଚତ୍ରିଂଶ—ତ୍ରି.ବିଂ.୩୫ ସଂଖ୍ୟାର ପୂରଣ. ୩୫ ସ୍ଥାନୀୟ ।

ପଞ୍ଚତ୍ରିଂଶତ୍—ସ୍ତ୍ରୀ.ବି. ୩୫ ସଂଖ୍ୟା, ୩୦ରୁ ଅଧିକ ୫ ସଂଖ୍ୟା ।

ପଞ୍ଚତ୍ୱ—କ୍ଳୀ.ବି.(ପଞ୍ଚନ୍+ତ୍ୱ)ପାଞ୍ଚର ଭାବ, ପଞ୍ଚଭୂତରେ ପରିଣତି, ମରଣ ।

ପଞ୍ଚଥ—ତ୍ରି. ବିଂ.ପଞ୍ଚସଂଖ୍ୟାର ପୂରଣ ।

ପଞ୍ଚଥୁ—ପୁଂ.ବି. କୋକିଳ, କୋଇଲି ।

ପଞ୍ଚଦକ—ପୁଂ. ବି. ଦେଶବିଶେଷ ।

ପଞ୍ଚଦଶ—ବି.ବିଂ.ପଞ୍ଚଦଶ ସଂଖ୍ୟାବାଚକ ଶବ୍ଦ, ୧୫ ସଂଖ୍ୟା, ୧୫ ସଂଖ୍ୟକ, ତିଥି, (ସ୍ତ୍ରୀ) ପଞ୍ଚଦଶୀ ।

ପଞ୍ଚଦଶକୃତ୍ୱସ୍—ଅବ୍ୟ. ପଞ୍ଚଦଶବାର, ୧୫ ଥର ।

ପଞ୍ଚଦଶଧା—ଅବ୍ୟ. ପଞ୍ଚଦଶ ପ୍ରକାର, ୧୫ ପ୍ରକାର ।

ପଞ୍ଚଦଶାହ—ପୁଂ.ବି.ପନ୍ଦରଦିନ ବ୍ୟାପୀକାଳ, ପକ୍ଷ ।

ପଞ୍ଚଦଶାହିକ—ତ୍ରି.ବିଂ. (ପଞ୍ଚଦଶାହ+ଇକ)୧୫ ଦିନରେ ସାଧ୍ୟ ବା କରଣୀୟ, ପକ୍ଷବ୍ୟାପୀ ।

ପଞ୍ଚଦଶୀ—ସ୍ତ୍ରୀ. ବି. (ପଞ୍ଚ+ଦଶ+ଈ) ପୂର୍ଣ୍ଣିମା , ଅମାବାସ୍ୟା, ବେଦାନ୍ତ ଗ୍ରନ୍ଥବିଶେଷ,ପଞ୍ଚଦଶବର୍ଷ ବୟସ୍କା କିଶୋରୀ

ପଞ୍ଚଦଳ—ବି. ବୈଦ୍ୟରେ ପଞ୍ଚ ବର୍ଣ୍ଣନଲକ୍ଷଣବିଶେଷ ।

ପଞ୍ଚଦେବତା—ସ୍ତ୍ରୀ. ବି. ଗଣେଶ, ବିଷ୍ଣୁ, ଶିବ,ଦୁର୍ଗା ଓ ସୂର୍ଯ୍ୟ ଏହି ପଞ୍ଚ ଦେବତା

ପଞ୍ଚଦ୍ରାବିଡ଼—ବି. ବିନ୍ଧ୍ୟଗିରିର ଦକ୍ଷିଣବାସୀ ବ୍ରାହ୍ମଣମାନଙ୍କର ପଞ୍ଚଗୋଟି ଶାଖା, (ଯଥ —ମହାରାଷ୍ଟ୍ର, ତୈଲଙ୍ଗ, କର୍ଣ୍ଣାଟ, ଗୁର୍ଜର ଓ ଦ୍ରାବିଡ଼), ଦ୍ରାବିଡ଼ ରାଜ୍ୟସ୍ଥ ୫ଗୋଟି ଜନପଦ ।

ପଞ୍ଚଦ୍ରାବକ—ବି. ଶୁଣ୍ଠି , ଚାଙ୍ଗେରି, ମନ୍ଥ, ପିପ୍ପଳି ଓ ବୃହତୀ ।

ପଞ୍ଚଧା—ଅବ୍ୟ.ପଞ୍ଚପ୍ରକାର, ପଞ୍ଚବିଭାଗରେ, ପଞ୍ଚଭାଗରେ, ପଞ୍ଚବିଷୟ, ପଞ୍ଚଗୁଣ

ପଞ୍ଚଧୂନି—କଠୋରତପସ୍ୱୀ ବୈଷ୍ଣବ ତପସ୍ୱୀସମ୍ପ୍ରଦାୟ ।

ପଞ୍ଚନଖ—ପୁଂ. ବି. (ବ.ବ୍ରୀ) ମନୁଷ୍ୟ. ବାନର, ହସ୍ତୀ, କୂର୍ମ, ବ୍ୟାଘ୍ରାଦି ପଞ୍ଚନଖବିଶିଷ୍ଟ ଜନ୍ତୁ. (ବିଂ) ପଞ୍ଚ ନଖଯୁକ୍ତ, ଯେଉଁ ଜନ୍ତୁର ହାତ ବା ଗୋଡ଼ରେ ୫ଗୋଟି ନଖ ଥାଏ ।

ପଞ୍ଚନଦ—ବି.(ବ.ବ୍ରୀ) ଶତଦ୍ରୁ, ବିପାଶା, ଇରାବତୀ, ଚନ୍ଦ୍ରଭାଗା, ବିତସ୍ତା ଏହି ପାଞ୍ଚନଦୀଯୁକ୍ତ ଦେଶ, ପଞ୍ଚାବପ୍ରଦେଶ, କିରଣା, ଧୂତପାପା, ସରସ୍ୱତୀ, ଗଙ୍ଗା, ଯମୁନା ଏହି ପାଞ୍ଚନଦୀର ସମାହାର ।

ପଞ୍ଚନବତ—ତ୍ରି.ବିଂ.ପଞ୍ଚାନବେ ସ୍ଥାନୀୟ, ୯୫ ସଂଖ୍ୟାର ପୂରଣ ।

ପଞ୍ଚନବତି—ବି. ବିଂ. ୯୫ସଂଖ୍ୟା, ତତ୍‌ସଂଖ୍ୟାଯୁକ୍ତ ।

ପଞ୍ଚନାଥ—ଗ୍ରା. ବି. ଭାରତରେ ଥିବା ପ୍ରସିଦ୍ଧ ପାଞ୍ଚଗୋଟି ଦେବ, ସପ୍ତସ୍ଥଳମହାତ୍ମ୍ୟ ପ୍ରଣେତା ।

ପଞ୍ଚନାମ—ତ୍ରି. ବିଂ ପଞ୍ଚନାମଯୁକ୍ତ, (ଗ୍ରା. ବି) ପଞ୍ଚାଏତ ସଭାସଦ ।

ପଞ୍ଚନିଦାନ—କ୍ଳୀ.ବି.ରୋଗ ଜ୍ଞାନର ପଞ୍ଚବିଧ ଉପାୟ, ଯଥା—ନିଦାନ,ପୂର୍ବରୂପ, ଉପଶୟ,ସଂପ୍ରାପ୍ତି ରୋଗ ଲକ୍ଷଣ ।

ପଞ୍ଚନିମ୍ବ—ବି. ନିମ୍ବ ବୃକ୍ଷର ପତ୍ର, ତ୍ୱକ୍, ପୁଷ୍ପ, ଫଳ ଓ ମୂଳ ।

ପଞ୍ଚନିମ୍ବଚୂର୍ଣ୍ଣ—ବି. ଔଷଧବିଶେଷ ।

ପଞ୍ଚନୀ—ସ୍ତ୍ରୀ. ବି. ଶାରିଫଳକ, ପଶାଖେଳିବାର ଛକ ।

ପଞ୍ଚନୀରାଜନ—କ୍ଳୀ.ବି. (ତନ୍ତ୍ର) ପ୍ରଦୀପ, ପଦ୍ମ, ବସନ, ଆମ୍ର ବା ତାମ୍ବୁଳ ପତ୍ର; ଏହି ଚତୁର୍ବିଧ ଦ୍ରବ୍ୟ ଦ୍ୱାରା ଦେବତାର ଆରତି କରି ପରେ ସାଷ୍ଟାଙ୍ଗ ପ୍ରଣିପାତ, ଏହି ପାଞ୍ଚ ଦ୍ୱାରା ଆରତି ।

ପଞ୍ଚପକ୍ଷୀ—ପୁଂ.ବି. ଶୁଭାଶୁଭ ପ୍ରଶ୍ନ ସମାଧାନ ଯୁକ୍ତି ବିଷୟକ ଶାକୁନ ଶାସ୍ତ୍ରବିଶେଷ ।

ପଞ୍ଚପଟି—ପୁଂ.ବି. ବୃକ୍ଷବିଶେଷ, ଚଣ୍ଡାଳକନ୍ଦ । [ପଞ୍ଚପଟିକା ।

ପଞ୍ଚପର୍ଣ୍ଣିକା—ସ୍ତ୍ରୀ. ବି. ଗୋରକ୍ଷୀ କ୍ଷୁପ,

ପଞ୍ଚପର୍ବ—ବି. ଚତୁର୍ଦ୍ଦଶୀ, ଅଷ୍ଟମୀ, ଅମାବାସ୍ୟ, ପୂର୍ଣ୍ଣିମା ଓ ରବି ସଂକ୍ରାନ୍ତି ଏହି ପଞ୍ଚଦିନ ।

ପଞ୍ଚପଲ୍ଲବ – ବି(ବୈଦିକ କର୍ମରେ ପ୍ରଯୁକ୍ତ) ଆମ୍ର, ଅଶ୍ୱତ୍ଥ, ବଟ, ପ୍ଲକ୍ଷ (ଜରି) ଓ ଯଜ୍ଞ ଡୁମ୍ବିରି ଏହି ଗଛମାନଙ୍କର ପତ୍ର, (ତାନ୍ତ୍ରିକ କର୍ମରେ)ପନସ, ଆମ୍ବ,ଅଶ୍ୱତ୍ଥ, ବଟ ଓ ବଉଳ ଏହି ପାଞ୍ଚ,(ଔଷଧରେ)

ଆମ୍ବ, ଜାମ୍ବୁ, କଇଥ, ଟଭ ଓ ବେଲ ଏହି ପାଞ୍ଚ ଗଛର ପତ୍ର ।

ପଞ୍ଚପଲ୍ଲବଲଗି—ଗ୍ରା.ବି. ମାଘ ଶୁକ୍ଲପଞ୍ଚମୀ ଦିନ ପୁରୀ ଶ୍ରୀଜଗନ୍ନାଥଙ୍କ ଉପରେ ୫ଗୋଟି ଗଛର ପତ୍ର ଅର୍ପଣ କରିବାର ଉତ୍ସବବିଶେଷ ।

ପଞ୍ଚପାଣ୍ଡବ—ବି. (ପଞ୍ଚ + ପାଣ୍ଡବ) ଯୁଧିଷ୍ଠିର, ଭୀମ, ଅର୍ଜ୍ଜୁନ, ନକୁଳ ଓ ସହଦେବ ଏହି ପାଞ୍ଚଜଣ ପାଣ୍ଡୁ ପୁତ୍ର ।

ପଞ୍ଚପାଣ୍ଡବା—ଗ୍ରା.ବି.ନୂଆଗଡ଼ ଓ ଦଶପଲ୍ଲା ମଧ୍ୟରେ ଥିବା ପାଞ୍ଚଗୋଟି ଶୃଙ୍ଗଯୁକ୍ତ ପର୍ବତବିଶେଷ ।

ପଞ୍ଚପାତ୍ର—କ୍ଲୀ. ବି. ଅମାବାସ୍ୟା ଓ ପିତୃପକ୍ଷରେ ଏବଂ ମୃତ ବ୍ୟକ୍ତିର ସାମ୍ବତ୍ସରିକ ପିଣ୍ଡୀକରଣ ଶ୍ରାଦ୍ଧାଦିରେ ଯେଉଁ ପାଞ୍ଚଗୋଟି ପାତ୍ର ବା ପକ୍ଷ (ଦେବପକ୍ଷ ଦୁଇ ଓ ପିତୃପକ୍ଷ ତିନି) ପୂଜାର୍ଥ ବ୍ୟବହୃତ ପଞ୍ଚଧାତୁ ନିର୍ମିତ ଜଳପାତ୍ର ।

ପଞ୍ଚପିତା—ପୁଂ. ବି. ଅନ୍ନଦାତା, ଭୟତ୍ରାତା, ଜନକ, ଶ୍ୱଶୁର, ଉପନେତା, ବା ଦୀକ୍ଷାଗୁରୁ ।

ପଞ୍ଚପିତୃ—ପୁଂ. ବି. ପଞ୍ଚପିତା ଦେଖ ।

ପଞ୍ଚପିତ୍ତ—କ୍ଲୀ.ବି. ବରାହ, ଛାଗ, ମହିଷ, ମତ୍ସ୍ୟ ଓ ମୟୂର ପିତ୍ତ ।

ପଞ୍ଚପୁଷ୍ପ—କ୍ଲୀ. ବି. ପଞ୍ଚପ୍ରକାର ଫୁଲ, (ଯଥା—ଚମ୍ପା, ଆମ୍ବ, ଶମୀ, ପଦ୍ମ ଓ କନିଅର) ।

ପଞ୍ଚପ୍ରଦୀପ—ପୁଂ. ବି. ଆଳତି ନିମନ୍ତେ ବ୍ୟବହୃତ ପଞ୍ଚମୁଖ ପ୍ରଦୀପବିଶେଷ ।

ପଞ୍ଚପ୍ରସ୍ଥ—କ୍ଲୀ. ବି. ସଂସାରରୂପ ବନ, ଧୃତରାଷ୍ଟ୍ର ପ୍ରଦତ୍ତ ପାଣ୍ଡବମାନଙ୍କୁ ପାଞ୍ଚଖଣ୍ଡି ଗ୍ରାମ ।

ପଞ୍ଚପ୍ରାଣ—ପୁଂ. ବି. ଦେହସ୍ଥିତ ବାୟୁପଞ୍ଚକ, ପ୍ରାଣ, ଅପାନ, ସମାନ, ଉଦାନ, ବ୍ୟାନ ।

ପଞ୍ଚପ୍ରାସାଦ—ପୁଂ. ବି. ପଞ୍ଚଚୂଡ଼ାନ୍ୱିତ ପ୍ରାସାଦ, ଦେବଗୃହବିଶେଷ ।

ପଞ୍ଚବନ୍ଧ—ପୁଂ. ବି. ନଷ୍ଟ ଦ୍ରବ୍ୟର ପଞ୍ଚମାଂଶ ଦଣ୍ଡ ।

ପଞ୍ଚବଳା—ସ୍ତ୍ରୀ. ବି. ବୈଦ୍ୟକୋକ୍ତ ପାଞ୍ଚପ୍ରକାର ବଳା, ଯଥା—ବଳା, ଅତିବଳା, ନାଗବଳା, ରାଜବଳା ଓ ମହାବଳା ।

ପଞ୍ଚବାଣ—ପୁଂ.ବି.(ବି.ଗ୍ରା) କାମଦେବ, କାମଦେବର ପଞ୍ଚବାଣ ।

ପଞ୍ଚବାହୁ—ପୁଂ. ବି. ମହାଦେବ ।

ପଞ୍ଚବ୍ରହ୍ମ—କ୍ଲୀ. ବି. ଉପନିଷଦ୍‌ବିଶେଷ ।

ପଞ୍ଚଭଦ୍ର—ପୁଂ. ବି. ଅଶ୍ୱବିଶେଷ, ଯେଉଁ ଘୋଡ଼ାର ମୁହଁ ପିଠି ହୃଦୟ ଓ ଦୁଇପାର୍ଶ୍ୱରେ ଶୁଭଲକ୍ଷଣ ସୂଚକ ଆବର୍ତ୍ତ ବା ରୋମ ଭଉଁରି ଥାଏ, ପଞ୍ଚକଲ୍ୟାଣ ଦେଖ, ପାଚନବିଶେଷ ।

ପଞ୍ଚଭୂତ—କ୍ଲୀ. ବି. ସୃଷ୍ଟିର ମୌଳିକ ୫ଗୋଟି ଉପାଦାନ (କ୍ଷିତି, ଅପ୍, ତେଜ, ମରୁତ୍ ଓ ବ୍ୟୋମ) ।

ପଞ୍ଚଭୂତାତ୍ମା—ବି. (ପଞ୍ଚଭୂତ+ଆତ୍ମନ୍) ଜୀବାତ୍ମା, ପଞ୍ଚଭୂତରେ ଗଠିତ ଆତ୍ମା ବା ଶରୀର ।

ପଞ୍ଚଭୃଙ୍ଗ—କ୍ଲୀ.ବି. ବୈଦ୍ୟକୋକ୍ତ ପାଞ୍ଚପ୍ରକାର ବୃକ୍ଷବିଶେଷ (ଯଥା—ଦେବତାଡ଼, ଶମୀ, ସିଦ୍ଧି, ତାଳୀଶପତ୍ର ଓ ନିର୍ଗୁଣ୍ଡି) ।

ପଞ୍ଚମ—ତ୍ରି. ବିଂ. ପଞ୍ଚସଂଖ୍ୟାର ପୂରଣ, ରୁଚିର, ସୁନ୍ଦର, ଦକ୍ଷ, (ବି) ସଙ୍ଗୀତର ରାଗବିଶେଷ, ମୈଥୁନ ।

ପଞ୍ଚମ—ଦାକ୍ଷିଣାତ୍ୟବାସୀ ଲିଙ୍ଗାୟତମାନଙ୍କର ଶାଖାବିଶେଷ, ଜୈନମାନଙ୍କର ୮୪ ଗଚ୍ଛ ମଧ୍ୟରୁ ଗୋଟିଏ ।

ପଞ୍ଚମକାର—କ୍ଲୀ. ବି. ମଦ୍ୟାଦି ମକାରପଞ୍ଚକ,(ମଦ, ମାଂସ, ମତ୍ସ୍ୟ, ମୁଦ୍ରା ଓ ମୈଥୁନ) ।

ପଞ୍ଚମଣ୍ଡଳୀ—ବି. ଗ୍ରାମ୍ୟପଞ୍ଚାୟତ ।

ପଞ୍ଚମହଲ—ବି. ଗୁଜରାଟସ୍ଥ ଗୋଟିଏ ଜିଲ୍ଲା ।

ପଞ୍ଚମତାନ—ବି. ସଙ୍ଗୀତର ସପ୍ତସ୍ୱର, ଗ୍ରାମର ପଞ୍ଚମ ସ୍ୱର, 'ପା' ସ୍ୱର ।

ପଞ୍ଚମହାପାତକ—ବି. ପଞ୍ଚପ୍ରକାର ମହାପାତକ, (ବ୍ରହ୍ମହତ୍ୟା, ସୁରାପାନ, ବ୍ରହ୍ମସ୍ୱହରଣ, ଗୁରୁପତ୍ନୀ ସଂସର୍ଗ, ପାପୀ ସହବାସ) ।

ପଞ୍ଚମହାଭୂତ—ବି. ପଞ୍ଚଭୂତ ଦେଖ ।

ପଞ୍ଚମହାଯଜ୍ଞ—ବି. (ପଞ୍ଚନ୍ + ମହତ୍ + ଯଜ୍ଞ) ପଞ୍ଚ ପ୍ରକାର ନିତ୍ୟକର୍ମ ( ଯଥା—ବ୍ରହ୍ମଯଜ୍ଞ (ବେଦାଧ୍ୟୟନ), ଦେବଯଜ୍ଞ (ଅଗ୍ନିହୋତ୍ର), ପିତୃଯଜ୍ଞ (ତର୍ପଣ), ଭୂତଯଜ୍ଞ (ବୈଶ୍ୱଦେବ), ନୃଯଜ୍ଞ (ଅତିଥି ସେବା), ଏହି ପାଞ୍ଚଗୋଟି ଯାଗ ବା ପୂଜା

ପଞ୍ଚମହାବ୍ୟାଧି—ବି. ଅର୍ଶ, ଯକ୍ଷ୍ମା, କୁଷ୍ଠ, ପ୍ରମେହ ଓ ଉନ୍ମାଦ ଏହି ପାଞ୍ଚଟି ବ୍ୟାଧି ।

ପଞ୍ଚମହାବ୍ରତ—ବି.ଯୋଗ ଶାସ୍ତ୍ର ମତରେ ଯତିମାନଙ୍କର ଅବଶ୍ୟ ଆଚରଣୀୟ କର୍ମ(ଯଥା—ଅହିଂସା, ସୁନୃତା, ଅସ୍ତେୟ, ବ୍ରହ୍ମଚର୍ଯ୍ୟ, ଅପରିଗ୍ରହ ।

ପଞ୍ଚମହାଶବ୍ଦ—ବି. ପଞ୍ଚପ୍ରକାର ବାଦ୍ୟ ( ଯଥା—ଶଙ୍ଖ, ଭେରୀ, କାହାଳୀ, ଢକ୍କା ଓ ଡମ୍ବରୁ ଏହି ପଞ୍ଚବାଦ୍ୟର ଶବ୍ଦ ।

ପଞ୍ଚମହିଷ—କ୍ଲୀ. ବି. ପଞ୍ଚଗବ୍ୟ ପରି ମହିଷର ମୂତ୍ରାଦି ପଞ୍ଚକ ।

ପଞ୍ଚମାଥ—ଗ୍ରା.ପୁଂ. ବି. ପଞ୍ଚାନନ, ଶିବ ।

ପଞ୍ଚମାର—ପୁଂ. ବି. ବଳଦେବ ପୁତ୍ର, ପଞ୍ଚ ବୁଧ କାମ, ଜଣେ ଜୈନଧର୍ମସଂସ୍କାରକ ।

ପଞ୍ଚମାସ୍ୟ—ପୁଂ. ବି. ( ପଞ୍ଚମ+ଆସ୍ୟ ) କୋକିଳ, (ବିଂ) (ପଞ୍ଚମାସ + ଯ) ପ୍ରତି ପାଞ୍ଚ ମାସରେ ଘଟିବା, ପାଞ୍ଚମାସ ବ୍ୟାପୀ, (ବି.ଗ୍ରା) ପଞ୍ଚମ ରାଗରେ ଗୀତ ଗାଉଥିବା ।

ପଞ୍ଚମୀ—ତ୍ରି. ବିଂ.ପଞ୍ଚଯୁକ୍ତ, ଏକପୁରୁଷର ଦୈର୍ଘ୍ୟର ଏକ ପଞ୍ଚମାଂଶ ପରିମିତ ଇଷ୍ଟକ, (ସ୍ତ୍ରୀ.ବି)ଦ୍ରୌପଦୀ, ପଣାପାଲି, ରାଗିଣୀ,ବି. ପଞ୍ଚମୀ ବିଭକ୍ତି, ତିଥିବିଶେଷ, ମୈଥୁନ, ବ୍ରତ ବିଶେଷ, ନଦୀ ।

ପଞ୍ଚମୀତିଥି—ସ୍ତ୍ରୀ. ବି. ଚାନ୍ଦ୍ରମାନ ପକ୍ଷର ୫ମ ଦିନ ।

ପଞ୍ଚମୀବିଭକ୍ତି—ସ୍ତ୍ରୀ. ବି. ( ବ୍ୟାକରଣ ) ବିଶେଷ୍ୟର ଅପାଦାନ ବିଭକ୍ତି ।

ପଞ୍ଚମୀବ୍ରତ—କ୍ଲୀ. ବି. ମାଘମାସ ଶୁକ୍ଳ ପଞ୍ଚମୀରୁ ଆରମ୍ଭକରି ୬ବର୍ଷ ପର୍ଯ୍ୟନ୍ତ

. ପ୍ରତ୍ୟେକ ମାସରେ ସ୍ୱାମୀ ନଙ୍କର କର୍ତ୍ତବ୍ୟ ନିୟମ ବିଶେଷ ।

ପଞ୍ଚମୁଖ—ପୁଂ. ବି. ଶିବ, ସିଂହ, ପାଞ୍ଚରେଖା ବିଶିଷ୍ଟ ରୁଦ୍ରାକ୍ଷ ବୀଜ, ପାଞ୍ଚଟି ମୁନଯୁକ୍ତ ଶର, (ପୁଂ. ବିଂ ବ.ବ୍ରୀ) ପାଞ୍ଚଗୋଟି ମୁଖବିଶିଷ୍ଟ, (ଗ୍ରା. ବି) ପାଞ୍ଚଜଣଙ୍କ ମୁହଁର କଥା, ଏକାଧିକ ବ୍ୟକ୍ତିଙ୍କ ମୁଖନିଃସୃତଃ ବାକ୍ୟ ।

ପଞ୍ଚମୁଖୀ—ବି. (ପଞ୍ଚମୁଖ+ଈ) ସାଧାରଣ ଗେଣ୍ଡୁଫୁଲ, ମନ୍ଦାରଫୁଲ, (ସ୍ତ୍ରୀ. ବି) ପଞ୍ଚମୁଖର ସ୍ତ୍ରୀଲିଙ୍ଗ ।

ପଞ୍ଚମୁଦ୍ରା—ସ୍ତ୍ରୀ. ବି. ପୂଜା ବିଧିରେ କର୍ତ୍ତବ୍ୟ ପାଞ୍ଚପ୍ରକାର ମୁଦ୍ରା (ଯଥା— ଆବାହନୀ, ସ୍ଥାପନୀ, ସନ୍ନିଧାପନୀ, ସମ୍ବୋଧନୀ ଓ ସମ୍ମୁଖୀକରଣୀ ।

ପଞ୍ଚମୁଷ୍ଟିକ—ପୁଂ. ବି. ଯବ, ବଦରୀଫଳ, କୁଳତ୍ଥ, ମୁଦ୍ଗ ଓ କାଷ୍ଠମଳକ ଏହି ପାଞ୍ଚଦ୍ରବ୍ୟ ମିଶିଥିବା ପାଚନ ବିଶେଷ

ପଞ୍ଚମୂତ୍ର—କ୍ଲୀ.ବି. ଗୋରୁ, ଛେଳି, ମେଣ୍ଢା, ମଇଁଷି ଓ ଗଧିଆ ଏହି ପାଞ୍ଚ ଜନ୍ତୁର ମୂତ୍ର ।

ପଞ୍ଚମୂଳ—କ୍ଲୀ. ବି. ପାଚନ ବିଶେଷ, ପାଞ୍ଚ ପ୍ରକାର ଗଛର ମୂଳ ।

ପଞ୍ଚମୂଳସ୍ପର୍ଦ୍ଧିକା—ମୂତ୍ରକୃଚ୍ଛ୍ର ରୋଗର ପାଚନ ବିଶେଷ, ( ଯଥା—ପାସକରେଣ୍ଟା, ଭୁଇଁ ଅଇଁଳା, ଗୁଣ୍ଡି, ମୁଥ ଓ ଗୁଳୁଚି)

ପଞ୍ଚମୂଳୀ—ସ୍ତ୍ରୀ.ବି. ସ୍ୱଳ୍ପ ପଞ୍ଚମୂଳ ପାଚନ (ଯଥା—ଶାଳପର୍ଣ୍ଣୀ, କୃଷ୍ଣପର୍ଣ୍ଣୀ, ଲଟାବେଙ୍କୋଳି, ଅଙ୍କରୀ ଓ ଗୋକ୍ଷୁରମୂଳ ।

ପଞ୍ଚଯକ୍ଷା—ସ୍ତ୍ରୀ. ବି. ତୀର୍ଥ ବିଶେଷ

ପଞ୍ଚଯଜ୍ଞ—ପୁଂ. ବି. ଗୃହସ୍ଥର କର୍ତ୍ତବ୍ୟ ପାଞ୍ଚପ୍ରକାର ଯଜ୍ଞ ବିଶେଷ, ପଞ୍ଚ ମହାଯଜ୍ଞ ଦେଖ ।

ପଞ୍ଚଯମ—ପୁଂ. ବି. ( ବ.ବ୍ରୀ ) ବାଦ୍ୟ ଉତ୍ପାଦକ ଦେବତ ବିଶେଷ ।

ପଞ୍ଚରତ୍ନ—କ୍ଲୀ. ବି. ପଞ୍ଚପ୍ରକାର ରତ୍ନ (ଯଥା —କନକ, ହୀରା, ଇନ୍ଦ୍ରନୀଳମଣି, ପଦ୍ମରାଗ ଓ ମୁକ୍ତା ) ମତ ଭେଦ କବିତାପଞ୍ଚ ପର୍ବତ ବିଶେଷ, ପଞ୍ଚଚୂଡ଼ ଦେବବୃକ୍ଷ

ବିଶେଷ ।

ପଞ୍ଚରଶ୍ମି—ପୁଂ. ବି. ସୂର୍ଯ୍ୟତେଜରେ ବିଦ୍ୟମାନ ବର୍ଣ୍ଣ ପଞ୍ଚ (ଯଥା—ପିଙ୍ଗଳ, ଶୁକ୍ଳ, ନୀଳ, ପୀତ ଓ ଲୋହିତ) ।

ପଞ୍ଚରସଲୌହ—କ୍ଲୀ.ବି. ବର୍ତ୍ତଲୌହ ।

ପଞ୍ଚରସା—ସ୍ତ୍ରୀ. ବି. (ବ.ବ୍ରୀ) ଆମଳକୀ, ହରିତକୀ, ରସୁଣ ଇତ୍ୟାଦି ସମସ୍ତ ଦ୍ରବ୍ୟମାନଙ୍କରେ ପାଞ୍ଚଟି ଲେଖାଏଁ ରସ ଅଛି ।

ପଞ୍ଚରାତ୍ର—କ୍ଲୀ. ବି. (ପଞ୍ଚନ୍+ରାତ୍ର) ପଞ୍ଚ ଦିନ, ପାଞ୍ଚ ଦିନରେ ସମ୍ପାଦନୀୟ ଯଜ୍ଞ ବିଶେଷ, ପାଞ୍ଚଦିନ ଓ ପାଞ୍ଚରାତ୍ର ବ୍ୟାପୀ ସମୟ, ବୈଷ୍ଣବ ଶାସ୍ତ୍ର ବିଶେଷ ।

ପଞ୍ଚରାତ୍ରିକ—ପୁଂ. ବି. ବିଷ୍ଣୁ ।

ପଞ୍ଚରାଶିକ—ପୁଂ. ବି. ଗଣିତରେ ଗୁଣ ବୃଦ୍ଧି ଦିଆଥିଲେ ଅଜ୍ଞାତ ପଞ୍ଚମରାଶି ନିରୂପଣ କରିବାର ପ୍ରଣାଳୀ ।

ପଞ୍ଚରୋହାଦିକ୍ୱାଥ—ବି. ବେଲ, ବେଙ୍କଞ୍ଚ, ଏରଣ୍ଡ, ଶୁଣ୍ଠି ଓ ଏରଣ୍ଡ ମୂଳର କ୍ୱାଥ ।

ପଞ୍ଚରୋହିଣୀ—ବାତଜ, କଫଜ, ପିତ୍ତଜ, ସନ୍ନିପାତଜ ଓ ରକ୍ତଜ ରୋଗ ।

ପଞ୍ଚଳ—ବି. ଶକରକନ୍ଦ ।

ପଞ୍ଚଲକ୍ଷଣ—କ୍ଲୀ. ବି. ( ବ.ବ୍ରୀ ) ପୁରାଣ, ଯହିଁରେ ସୃଷ୍ଟି ପ୍ରଳୟ, ବଂଶ ବର୍ଣ୍ଣନ, ମନ୍ୱନ୍ତର ଏବଂ ମନୁଙ୍କ ବଂଶର ବର୍ଣ୍ଣନା ଥାଏ ।

ପଞ୍ଚଲକ୍ଷଣୀ—ବି. (ବ.ବ୍ରୀ) ନବ୍ୟ ନ୍ୟାୟର ଗ୍ରନ୍ଥ ବିଶେଷ

ପଞ୍ଚଲବଣ—କ୍ଲୀ. ବି. ପଞ୍ଚବିଧ ଲବଣ. (ଯଥ —କାଚ, ସୈନ୍ଧବ, ସାମୁଦ୍ର, ବିଟ ଓ ସୌବର୍ଚ୍ଚଳ ।

ପଞ୍ଚଲାଙ୍ଗଳକ—କ୍ଲୀ.ବି. ମହାଦାନ ବିଶେଷ ।

ପଞ୍ଚଲୋକପାଳ—ପୁଂ. ବି. ବ୍ରହ୍ମଯଜ୍ଞଦାତାଙ୍କ ବିନାୟକାଦି ଦେବପଞ୍ଚକ ( ଯଥା— ଗଣେଶ, ଦୁର୍ଗା, ବାୟୁ, ଆକାଶ ଓ ଅଶ୍ୱିନୀକୁମାରଦ୍ୱୟ

ପଞ୍ଚଲୌହ—ବି. ପଞ୍ଚପ୍ରକାର ଲୌହ, (ଯଥ —ସୁବର୍ଣ୍ଣ, ରଜତ, ତାମ୍ର, ରଙ୍ଗ, ସୀସକ) ।

ପଞ୍ଚଲୌହକ—କ୍ଲୀ.ବି. ପଞ୍ଚଲୌହ ଦେଖ ।

ପଞ୍ଚଲୌହ—ବି. ବଜ୍ରଲୌହ, ସ୍ୱର୍ଣ୍ଣଲୌହ, କାନ୍ତଲୌହ, ପିଣ୍ଡଲୌହ ଓ କୋଞ୍ଚ ଲୌହ ।

ପଞ୍ଚବକ୍ତ୍ର—ପୁଂ. ବି. ( ପଞ୍ଚନ୍+ବକ୍ତ୍ର ) ମହାଦେବ, ସିଂହ, ପଞ୍ଚମୁଖରୁଦ୍ରାକ୍ଷ, (ବିଂ) ପଞ୍ଚମୁଖବିଶିଷ୍ଟ ।

ପଞ୍ଚବକ୍ତ୍ରରସ—ପୁଂ.ବି. ଔଷଧ ବିଶେଷ ।

ପଞ୍ଚବଟ—ବି. ଅଶ୍ୱତ୍ଥ, ବେଲ, ବର, ଅଁଳା ଓ ଅଶୋକ ଏହି ପାଞ୍ଚଗୋଟି ଗଛ ।

ପଞ୍ଚବଟୀ—ସ୍ତ୍ରୀ. ବି. ପାଞ୍ଚପ୍ରକାର ବୃକ୍ଷ ବିଶେଷ, ଦଣ୍ଡକାରଣ୍ୟସ୍ଥ ବନ ବିଶେଷ ।

ପଞ୍ଚବଦରୀ—ବି. ବଦରୀନାଥ କ୍ଷେତ୍ରର ଅନ୍ତର୍ଗତ ତୀର୍ଥ ବିଶେଷ ।

ପଞ୍ଚବର୍ଗ—ପୁଂ. ବି. ପଞ୍ଚପ୍ରହରଣାନ୍ୱିତ ଯାଗ ବିଶେଷ, ପାଞ୍ଚପ୍ରକାର ଚର, ବ୍ୟଞ୍ଜନ ବର୍ଣ୍ଣମାଳା ମଧ୍ୟସ୍ଥ କ, ଚ, ଟ, ତ, ପ, ଏହି ପାଞ୍ଚଗୋଟି ବର୍ଗ, ପାଞ୍ଚଟି ବସ୍ତୁର ସମୂହ ।

ପଞ୍ଚବର୍ଣ୍ଣ—କ୍ଲୀ. ବି. ପଞ୍ଚବର୍ଣ୍ଣାନ୍ୱିତ ତନ୍ତ୍ରୋକ୍ତ ମୂର୍ତ୍ତି, ଅକାର ଉକାର ମକାର ନାଦ ଓ ବିନ୍ଦୁଯୁକ୍ତ ପ୍ରଣବ, ଗାୟତ୍ରୀ, ପର୍ବତ ବିଶେଷ ଓ ବନ ବିଶେଷ, ଶରୀରର ପଞ୍ଚଇନ୍ଦ୍ରିୟ, ପଞ୍ଚଭୂତ ।

ପଞ୍ଚବର୍ତ୍ତିକ—ପୁଂ. ବି. ଧୂସ୍ତୁରକ ବୃକ୍ଷ ।

ପଞ୍ଚବର୍ଷୀୟକ—ତ୍ରି. ବିଂ. ପଞ୍ଚବର୍ଷବ୍ୟାପୀ ପଞ୍ଚବର୍ଷଯୁକ୍ତ, ପାଞ୍ଚବର୍ଷର ପୁରୁଣା ।

ପଞ୍ଚବଲ—ବି. ମହୀସୁରବାସୀ କମାର ଜାତି ବିଶେଷ ।

ପଞ୍ଚବଳା—ବି. ବୈଦ୍ୟଶାସ୍ତ୍ରୋକ୍ତ ବଳା, ଅତିବଳା, ମହାବଳା, ନାଗବଳା ଓ ରାଜବଳା ।

ପଞ୍ଚବଲ୍କଳ—କ୍ଲୀ.ବି. ପାଞ୍ଚପ୍ରକାର ବଲ୍କଳ, (ଯଥ— ନ୍ୟଗ୍ରୋଧ, ଉଡୁମ୍ବର, ଅଶ୍ୱତ୍ଥ, ପ୍ଲକ୍ଷ, ବେତସ) ।

ପଞ୍ଚବାଣ—ପୁଂ. ବି. ( ବ.ବ୍ରୀ ) ମଦନ, କନ୍ଦର୍ପର ପଞ୍ଚବାଣ (ଯଥା—ସମ୍ମୋହନ, ଉନ୍ମାଦନ, ଶୋଷଣ, ତାପନ, ସ୍ତମ୍ଭନ)

ଅରବିନ୍ଦ, ଅଶୋକ ଚୂତ, ନବମାଲିକା, ନୀଳୋତ୍ପଳ ଏ କାମଦେବଙ୍କର ପଞ୍ଚବାଣ ।

ପଞ୍ଚବାତ—ବି. ପଞ୍ଚପ୍ରାଣ ଦେଖ ।

ପଞ୍ଚବାତୀୟ—କ୍ଳୀ. ବି. ରାଜ ସୂୟାଙ୍ଗ ଫାଲ୍‌ଗୁନ ଶୁକ୍ଳ ପ୍ରତିପଦରେ କର୍ତ୍ତବ୍ୟ ପଞ୍ଚାଗ୍ନିସାଧ୍ୟ ହୋମ କର୍ମ ।

ପଞ୍ଚବାୟୁ—ବି.ଶରୀର ମଧ୍ୟରେ ପ୍ରତିଷ୍ଠିତ ପ୍ରାଣ, ଅପାନ, ସମାନ ଉଦାନ ଓ ବ୍ୟାନ ପ୍ରଭୃତି ବାୟୁ ।

ପଞ୍ଚବାରି—ବି. କୌପ, ନାଦେୟ, ଆନ୍ତରୀକ୍ଷ, ତଡ଼ାଗ ଓ ସମୁଦ୍ର ଜଳ ।

ପଞ୍ଚବାର୍ଷିକ—ବି. ବିଂ. ପଞ୍ଚବର୍ଷ ସାଧ୍ୟ କାର୍ଯ୍ୟ, ଯାହା ପାଞ୍ଚବର୍ଷ ବ୍ୟାପୀ ହୁଏ ।

ପଞ୍ଚବାହ୍ୟ—ବି. ବିଂ. ଯାନଆଦି, ଯାହା ପାଞ୍ଚଜଣ ଦ୍ୱାରା ଟଣାହୁଏ ।

ପଞ୍ଚବାହୁ—ବିଂ. (ବ.ଗ୍ରା)ଯେଉଁ କ୍ଷେତ୍ରର ପାଞ୍ଚଟି ବାହୁଥାଏ ।

ପଞ୍ଚବିଂଶ—ବି. ଓ ବିଂ. ୨୫ସଂଖ୍ୟା ଯୁକ୍ତ, ୨୫ସ୍ଥାନୀୟ, ୨୫ସଂଖ୍ୟା ।

ପଞ୍ଚବିଂଶକ—ବି.ବିଂ.୨୫ବର୍ଷର ପୁରାତନ. ପଞ୍ଚବିଂଶ ସମ୍ବନ୍ଧୀୟ ।

ପଞ୍ଚବିଂଶତି—ସ୍ତ୍ରୀ. ବି. ୨୫ସଂଖ୍ୟା ।

ପଞ୍ଚବିଂଶତିତମ—ବି. ବିଂ. ୨୫ସଂଖ୍ୟକ ।

ପଞ୍ଚବିଂଶତମ—ବି. ବିଂ. ୨୫ ସଂଖ୍ୟକ ।

ପଞ୍ଚବିଧ—ବି.ବିଂ.(ବ.ଗ୍ରା) ପାଞ୍ଚପ୍ରକାରର ।

ପଞ୍ଚବିଧପ୍ରକୃତି—ସ୍ତ୍ରୀ. ବି. ପାଞ୍ଚପ୍ରକାର ରାଜ୍ୟାଙ୍ଗ (ଯଥା—ସ୍ୱାମୀ, ଅମାତ୍ୟ, ରାଷ୍ଟ୍ର, ଦୁର୍ଗ, ଅର୍ଥ ଓ ଦଣ୍ଡ ଏହି ପଞ୍ଚପ୍ରକୃତି, ପଞ୍ଚଭୂତ ଦେଖ ।

ପଞ୍ଚବିଧେୟ—ବି. ବିଂ. ପଞ୍ଚପ୍ରକାର ।

ପଞ୍ଚବିନ୍ଦୁପ୍ରସୃତ—କ୍ଳୀ. ବି.ନୃତ୍ୟର ଗତିବିଶେଷ ।

ପଞ୍ଚବିଷ—ତାମ୍ର, ହରିତାଳ, ସର୍ପଗରଳ, କରବୀର ଓ ବତ୍ସନାଭ ।

ପଞ୍ଚବୀଜ—କ୍ଳୀ. ବି. ପଞ୍ଚପ୍ରକାର ବୀଜ (ଯଥା—କାକୁଡ଼ି, ଶଶା, ଡାଳିମ୍ବ, ପଦ୍ମ, ବାଇଗଣ, ଅନ୍ୟବିଧ ରାଇସୋରିଷ, ମୁଆଣୀ, ଜୀରା, ତିଳ ଓ ପ୍ରସ୍ତ ।

ପଞ୍ଚବୁଦ୍ଧୀନ୍ଦ୍ରିୟ—କ୍ଳୀ.ବି. ଇନ୍ଦ୍ରିୟାଦି ଜ୍ଞାନପଞ୍ଚକ, (ଯଥା—ସ୍ପର୍ଶନ, ରସନ, ଘ୍ରାଣ, ଦର୍ଶନ ଓ ଶ୍ରୋତ୍ର, (ଚରକ) ।

ପଞ୍ଚବୃକ୍ଷ—ବି. ପାଞ୍ଚଟି ବୃକ୍ଷ, (ଯଥା—ମନ୍ଦାର, ପାରିଜାତ, ସନ୍ତାନ, କଳ୍ପବୃକ୍ଷ ଓ ହରିଚନ୍ଦନ ।

ପଞ୍ଚବୃତ—ଅବ୍ୟ. ପଞ୍ଚପ୍ରକାର, ପାଞ୍ଚଥର ।

ପଞ୍ଚବୃତ୍ତି—ସ୍ତ୍ରୀ. ବି. ପାଞ୍ଚପ୍ରକାର ମନୋବୃତ୍ତି ବିଶେଷ ।

ପଞ୍ଚଶବ୍ଦ—ବି. ମଙ୍ଗଳ କାର୍ଯ୍ୟରେ ବାଦିତ ପାଞ୍ଚପ୍ରକାର ବାଦ୍ୟର ଶବ୍ଦ, (ଯଥା—ତନ୍ତ୍ରୀ, ତାଳ, ଝାଞ୍ଜ, ନାଗରା ଓ ତୂରୀ, (ବ୍ୟାକରଣ) ସୂତ୍ର, ବାର୍ତ୍ତିକ, ଭାଷ୍ୟ, କୋଷ ଓ ମହାକବି ପ୍ରୟୋଗ ନାମକ ପଞ୍ଚପ୍ରକାର ଶବ୍ଦ, ବେଦଧ୍ୱନି, ବନ୍ଦୀଧ୍ୱନି, ଜୟଧ୍ୱନି, ଶଙ୍ଖଧ୍ୱନି ଓ ବାଦ୍ୟଧ୍ୱନି) ।

ପଞ୍ଚଶର—ପୁଂ. ବି. କାମଦେବ, ପଞ୍ଚବାଣ ଦେଖ ।

ପଞ୍ଚଶର—ବି. ଔଷଧ ବିଶେଷ ।

ପଞ୍ଚଶଲାକାଚକ୍ର—ବି. ଜ୍ୟୋତିଷୋକ୍ତ ଚକ୍ର ବିଶେଷ ।

ପଞ୍ଚଶସ୍ୟ—କ୍ଳୀ. ବି. ପଞ୍ଚପ୍ରକାର ଶସ୍ୟ, (ଯଥା—ଧାନ, ମୁଗ, ରାଶି, ଯବ ଓ ଧଳା ସୋରିଷ) ।

ପଞ୍ଚଶାଖ—ପୁଂ. ବି. ହସ୍ତ, ପଞ୍ଚଶାଖାଯୁକ୍ତ ମସାଲ, (ବିଂ) (ବ.ଗ୍ରା)ପଞ୍ଚଶାଖା ବିଶିଷ୍ଟ, ପଞ୍ଚଶାଖାର ସମାହାର ।

ପଞ୍ଚଶାଖା—ବି. ପଞ୍ଚଶାଖା ଯୁକ୍ତ ମସାଲ ।

ପଞ୍ଚଶାରଦୀୟ—ବି. ଶରତ୍‌କାଳରେ ଅନୁଷ୍ଠେୟ ଯାଗ ବିଶେଷ ।

ପଞ୍ଚଶିଖ—ପୁଂ. ବି. ସିଂହ, ମୁନି ବିଶେଷ, ଶିଙ୍ଘା ବାଜା, ମହର୍ଷି କପିଳଙ୍କ ପୁତ୍ର, ବିଂ. (ବ.ଗ୍ରା) ପଞ୍ଚଚୂଡ଼, ଯାହାର ପାଞ୍ଚ କୋଟି ଚୂଡ଼ା ବା ଅଗ୍ରଭାଗ ଅଛି ।

ପଞ୍ଚଶିଖୀ—ବିଂ. (ପଞ୍ଚନ୍+ଶିଖା+ଇନ୍) ପଞ୍ଚଶିଖ ଦେଖ ।

ପଞ୍ଚଶୀଳ—ବି.ବୁଦ୍ଧ ପ୍ରୋକ୍ତ ଧର୍ମପ୍ରକରଣ ।

ପଞ୍ଚଶୀର୍ଷ—ପୁଂ. ବି. ମହାଦେବ, ସର୍ପ ବିଶେଷ, ଚୀନ୍ ଦେଶସ୍ଥ ମଞ୍ଜୁଶ୍ରୀ ପର୍ବତର ପ୍ରାଚୀନନାମ, (ବିଂ) ପାଞ୍ଚମୁଣ୍ଡିଆ ।

ପଞ୍ଚଶୁକ୍ଳ—ପୁଂ. ବି. କୀଟ ବିଶେଷ ।

ପଞ୍ଚଶୈରୀଷକ—କ୍ଳୀ. ବି. ଶିରୀଷ ବୃକ୍ଷର କୁସୁମ ମୂଳ ଫଳ ପତ୍ର ଓ ତ୍ୱକ୍ ।

ପଞ୍ଚଶୈଳ—ପୁଂ. ବି ପର୍ବତ ବିଶେଷ, ରାଜଗୃହର ଚାରିଦିଗରେ ଅବସ୍ଥିତ ପାଞ୍ଚଟି ଶୈଳ ।

ପଞ୍ଚଶ୍ୱାସ—ବି. ମହାଶ୍ୱାସ, ଊର୍ଦ୍ଧ୍ୱଶ୍ୱାସ, ଛିନ୍ନ ଶ୍ୱାସ, କ୍ଷୁଦ୍ର ଶ୍ୱାସ ଓ ତମକ ଶ୍ୱାସ ।

ପଞ୍ଚଷ—ବି. ବିଂ. ଯାହାର ପରିମାଣ ପାଞ୍ଚ ବା ଛଅ ।

ପଞ୍ଚଷଷ୍ଟ—ବି. ବିଂ. (ପଞ୍ଚଷଷ୍ଟି+ଅ) ୬୫ସଂଖ୍ୟାର ପୂରକ ।

ପଞ୍ଚଷଷ୍ଟି—ବି ଓ ବିଂ. ୬୦ରୁ ୫ ଅଧିକ, ୬୫ ସଂଖ୍ୟା ।

ପଞ୍ଚଷଷ୍ଟିତମ—ବି. ୬୫ ସଂଖ୍ୟା ।

ପଞ୍ଚସପ୍ତତ—ବି.ବିଂ. ୭୫ ସଂଖ୍ୟକ, ୭୫ ସ୍ଥାନୀୟ ।

ପଞ୍ଚସପ୍ତତି—ବି ଓ ବିଂ. ୭୫ ସଂଖ୍ୟା, ୭୦ ଅପେକ୍ଷା ୫ ଅଧିକ ସଂଖ୍ୟା ବା ସଂଖ୍ୟକ ।

ପଞ୍ଚସିଦ୍ଧାନ୍ତ—କ୍ଳୀ.ବି.ବ୍ରହ୍ମ, ସୂର୍ଯ୍ୟ, ସୋମାଦ୍ୟୁକ୍ତ ପଞ୍ଚଜ୍ୟୋତିଷ ସିଦ୍ଧାନ୍ତ ।

ପଞ୍ଚସିଦ୍ଧାନ୍ତିକା—ବି. ବରାହମିହିର ଶକ ପଞ୍ଚମ ଶତାବ୍ଦୀର ମଧ୍ୟଭାଗରେ ବ୍ରାହ୍ମ, ବଶିଷ୍ଠ, ରୋମକ, ପୌଲିସ ଓ ସୌର ଏହି ପୁରାତନ ପଞ୍ଚସିଦ୍ଧାନ୍ତ ଅବଲମ୍ବନରେ ଯେଉଁ ଜ୍ୟୋତିଷ କରଣ ଗ୍ରନ୍ଥ ରଚନା କରିଥିଲେ ।

ପଞ୍ଚସୁଗନ୍ଧକ—କ୍ଳୀ.ବି.ପାଞ୍ଚପ୍ରକାର ସୁଗନ୍ଧ ଦ୍ରବ୍ୟବିଶେଷ, (ଯଥା:-ଲବଙ୍ଗ, କର୍ପୂର, କଙ୍କୋଲ, ଗୁବାକ, ଜାଇଫଳ, (ମତାନ୍ତରେ) ଲବଙ୍ଗ, ଶୀତଳ ଚୀନି, ଅଗର ଚନ୍ଦନ, ଜାଇଫଳ ଓ କର୍ପୂର ।

ପଞ୍ଚସୂନା—ସ୍ତ୍ରୀ. ବି. ଗୃହସ୍ଥର ଗୃହସ୍ଥିତ ପାଞ୍ଚପ୍ରକାର ପ୍ରାଣୀବଧ ସ୍ଥାନ, (ଯଥା:- ୧ ଚୁଲିଜାଳିବା, ୨ ଚକିପେଷିବା ବା ଶିଳରେ ବାଟିବା, ୩ ଘର ଓଳାଇବା, ୪ ଢେଙ୍କି କୁଟିବା, ୫ ପାଣିମାଠିଆ

ବ୍ୟବହାର କରିବାରେ ଗୃହସ୍ଥ ଅଜ୍ଞାତ-
ରୂପେ ଯେଉଁ ଜୀବହତ୍ୟା କରେ ।
ପଞ୍ଚସ୍ତୂରି—ଗ୍ରା.ବି ଓ ବିଂ. ୭୫, ୭୦ରୁ ୫
ଅଧିକ ।
ପଞ୍ଚସ୍ନେହ—ବି.ପାଞ୍ଚପ୍ରକାର ଚିକ୍କଣ ଦ୍ରବ୍ୟ
ଯଥା:- ଘୃତ, ତୈଳ, ବସା, ମଜ୍ଜା ଓ
ମିକ୍ଥଳ ବା ମହମ । [ବିଶେଷ ।
ପଞ୍ଚସ୍ରୋତସ—କ୍ଲୀ.ବି. ତୀର୍ଥବିଶେଷ,ଯାଗ-
ପଞ୍ଚସ୍ୱର—ସ୍ତ୍ରୀ.ବି.ପ୍ରଜାପତି ଦାସ ବୈଦ୍ୟ-
କୃତ ଜ୍ୟୋତିର୍ଗ୍ରନ୍ଥବିଶେଷ, (ବିଂ) ପଞ୍ଚ
ସ୍ୱରଯୁକ୍ତ (ରାଗିଣୀ) ।
ପଞ୍ଚସ୍ୱରୋଦୟ—ବି. ଅ, ଇ, ଉ, ଏ ଓ,
ଏହି ପାଞ୍ଚୋଟି ସ୍ୱରଘଟିତ ଗଣନା
ପଦ୍ଧତି ନାମ୍ନୀଯୁକ୍ତ ଜ୍ୟୋତିଷଗ୍ରନ୍ଥ-
ବିଶେଷ ।
ପଞ୍ଚସ୍ୱେଦ—ବି.ହିନ୍ଦୁ ବୈଦ୍ୟଶାସ୍ତ୍ର ମତରେ
୫ପ୍ରକାର ସେକ, (ଯଥା:-ଲୋଷ୍ଟ୍ରସ୍ୱେଦ,
ବାଲୁକାସ୍ୱେଦ, ବାଷ୍ପସ୍ୱେଦ, ଘଟସ୍ୱେଦ
ଓ ଜ୍ୱାଲାସ୍ୱେଦ ।
ପଞ୍ଚହତା—ଗ୍ରା. ବିଂ. ପଞ୍ଚହାତ ଉଚ୍ଚ,
ଖୁବ୍ ଡେଙ୍ଗା ।
ପଞ୍ଚା—ଗ୍ରା.ବିଂ. (ସଂ-ପଞ୍ଚନ୍) ପାଞ୍ଚସଂଖ୍ୟା
ଦ୍ୱାରା ଗୁଣିତ, (ଗ୍ରା. ବି) ପାଞ୍ଚଟିଯୁକ୍ତ
ତାସ,ପଶାଖେଳରେ ୫ସଂଖ୍ୟକ ଦାନ,
ବଗୁର, ପାଞ୍ଚ, ଭେଦା, ଗୁଦା ।
ପଞ୍ଚାଏତ—ଗ୍ରା.ପୁଂ.ବି. କୌଣସି ବିଷୟ
ନିଷ୍ପତ୍ତି ପାଇଁ ପାଞ୍ଚଜଣ ମିଶି ଯେଉଁ
ସଭା କରନ୍ତି ।
ପଞ୍ଚାକ୍ଷର—ତ୍ରି. ବିଂ. ପାଞ୍ଚଟି ଅକ୍ଷରଯୁକ୍ତ
(ମନ୍ତ୍ର), (ବି) ମନ୍ତ୍ରବିଶେଷ, ପ୍ରତିଷ୍ଠାଖ୍ୟ
ଛନ୍ଦୋବିଶେଷ, ପ୍ରଣବ, ନମଃଶିବାୟ
ଏହି ମନ୍ତ୍ର ।
ପଞ୍ଚାଗ୍ନି—ବି. (ପଞ୍ଚ+ଅଗ୍ନି) ବେଦୋକ୍ତ
ପାଞ୍ଚଗୋଟି ଅଗ୍ନି, ତପସ୍ୱୀମାନଙ୍କର
ଚତୁର୍ଦ୍ଦିଗରେ ଜଳୁଥିବା ଚାରିଗୋଟି ଅଗ୍ନି,
ଉପରେ ସୂର୍ଯ୍ୟ ଏପରି ପାଞ୍ଚଗୋଟି
ଉତ୍ତାପଦାୟକ ତେଜ, (ବ.ଗ୍ରା)ତପସ୍ୱୀ-
ବିଶେଷ, ପାଞ୍ଚପ୍ରକାର ଅଗ୍ନି, (ଯଥା:-
ଅନ୍ୱାହାର୍ଯ୍ୟ, ପଚନ ବା ଗାର୍ହପତ୍ୟ,
ଆହବନୀୟ, ସଭ୍ୟ ଓ ଆବସଥ୍ୟ ଏହି
ପାଞ୍ଚଗୋଟି ଅଗ୍ନି ।
ପଞ୍ଚାଙ୍କ—ବିଂ. ପାଞ୍ଚଅଙ୍କବିଶିଷ୍ଟ(ନାଟକ)
ପଞ୍ଚାଙ୍ଗ—ବିଂ. (ବ.ଗ୍ରା) ପାଞ୍ଚ ଅବୟବ-
ବିଶିଷ୍ଟ, ବାହୁଦ୍ୱୟ, ଜାନୁଦ୍ୱୟ, ମସ୍ତକ,
ବକ୍ଷସ୍ଥଳ ଓ ଚକ୍ଷୁଦ୍ୱାରା ସାଧନୀୟ(ପ୍ରଣାମ),
(ବି) ରାଜ୍ୟରକ୍ଷାର ପାଞ୍ଚଟି ଉପାୟ,
(ଯଥା:-ସହାୟ, ସାଧନୋପାୟ,ଦେଶ-
କାଳ ବିଭାଗ, ବିପତ୍ତି ପ୍ରତୀକାର, ସିଦ୍ଧି)
କଚ୍ଛପ, ଘୋଡ଼ା, ଜପ,ତପ (ବା ହୋମ)
ତର୍ପଣ, ଅଭିଷେକ ଓ ବ୍ରାହ୍ମଣ ଭୋଜନ,
ଏହି ପାଞ୍ଚଗୋଟି ତାନ୍ତ୍ରିକକର୍ମ,(ବୈଦ୍ୟକ),
ଗଛର ମୂଳ, ଛାଲ, ପତ୍ର, ଫୁଲ ଓ ଫଳ
ମନୁଷ୍ୟର ୫ଟି ଅଙ୍ଗ, (ଯଥା:-ତିଥି,ବାର,
ନକ୍ଷତ୍ର, ଯୋଗ ଓ କରଣ)ଅଶୌଚାନ୍ତ
ଶ୍ରାଦ୍ଧେ, ସୁଲକ୍ଷଣା ଶଯ୍ୟା, କାଞ୍ଚନ
ପୁରୁଷ, ଦ୍ୱିଜ ଦମ୍ପତି ପୂଜା, କପିଳା,
ଦାନ, ବୃଷୋତ୍ସର୍ଗ, ନ୍ୟାୟଶାସ୍ତ୍ରର
୫ଗୋଟି ଅଙ୍ଗ, ପ୍ରତିଜ୍ଞା, ହେତୁବାଦ,
ଉଦାହରଣ, ଉପନୟ ଓ ନିଗମନ ।
ପଞ୍ଚାଙ୍ଗଗୁପ୍ତ—ପୁଂ.ବି. (ବ.ଗ୍ରା) କଚ୍ଛପ ।
ପଞ୍ଚାଙ୍ଗପତ୍ର—କ୍ଲୀ.ବି. ପଞ୍ଜିକା ।
ପଞ୍ଚାଙ୍ଗପ୍ରଣାମ—ବି. (କ.ଧା) ବାହୁ,ଜାନୁ,
ମସ୍ତକ, ବକ୍ଷସ୍ଥଳ ଓ ଚକ୍ଷୁଦ୍ୱାରା ପ୍ରଣତି,
ଦୁଇହାତ, ଦୁଇଆଣ୍ଠୁ ଓ ମୁଣ୍ଡକୁ
ଭୂମିରେ ଲଗାଇ କରାଯିବା ପ୍ରଣାମ ।
ପଞ୍ଚାଙ୍ଗଯୋଗ—ବି. (ଜ୍ୟୋତିଷ) ବାର,
ତିଥି, ନକ୍ଷତ୍ର, ଯୋଗ ଓ କରଣ ଏହି
ପାଞ୍ଚଗୋଟିର ଅନୁକୂଳ ଅବସ୍ଥା ।
ପଞ୍ଚାଙ୍ଗଶୁଦ୍ଧି—ବି. (ତନ୍ତ୍ର)ନ୍ୟାସବିଶେଷ,
ପୂଜା ସମୟରେ ହୃଦୟ, ଶିର, ଶିଖା,
ବାହୁମୂଳ ଓ ନେତ୍ର ଏହି ପାଞ୍ଚଗୋଟି
ଅଙ୍ଗକୁ ମନ୍ତ୍ରଦ୍ୱାରା ଶୋଧନ କରିବା
ପ୍ରକ୍ରିୟା, ତିଥି,ବାର,ନକ୍ଷତ୍ର, ଯୋଗ ଓ
କରଣ ଏହି ପଞ୍ଚାଙ୍ଗ ବିଷୟକ ଶୁଦ୍ଧି ।
ପଞ୍ଚାଙ୍ଗିକପଞ୍ଚଗଣ—ବି.ପାଞ୍ଚପ୍ରକାର ପଞ୍ଚ-
ମୂଳ, ସ୍ୱଳ୍ପ, ବୃହତ୍, ତୃଣ, ବଲ୍ଲୀ ଓ
କଣ୍ଟକ, ଏହି ପାଞ୍ଚପ୍ରକାର ପଞ୍ଚମୂଳ ।
ପଞ୍ଚାଙ୍ଗୀ—ସ୍ତ୍ରୀ.ବି.ହାତୀର ଅଣ୍ଟାରେ ବନ୍ଧା-
ଯିବା ରଜ୍ଜୁବିଶେଷ ।
ପଞ୍ଚାଙ୍ଗୁରି—ତ୍ରି.ବିଂ. (ବ.ଗ୍ରା) ପଞ୍ଚାଙ୍ଗୁଳି-
ବିଶିଷ୍ଟ (ହସ୍ତ) ।
ପଞ୍ଚାଙ୍ଗୁଳ—ପୁଂ.ବିଂ.( ବ.ଗ୍ରା )ଗନ୍ଧଗଛ,
ଏରଣ୍ଡବୃକ୍ଷ, ତେଜପତ୍ର, (ବିଂ)ପଞ୍ଚାଙ୍ଗୁଳ
ପରିମିତ ।
ପଞ୍ଚାଙ୍ଗୁଳି—ବି. (ପଞ୍ଚନ୍+ଅଙ୍ଗୁଳି) ପଞ୍ଚ-
ଅଙ୍ଗୁଳିଯୁକ୍ତ,ଯାହାର ପାଞ୍ଚଗୋଟି ଅଙ୍ଗୁଳି
ଅଛି ।
ପଞ୍ଚାଙ୍ଗୁଳୀ—ସ୍ତ୍ରୀ.ବି. ତକାଦ୍ୱାଧା କ୍ଷୁପ ।
ପଞ୍ଚାଜ—କ୍ଲୀ.ବି. ଛେଳିର ମୂତ୍ର, ବିଷ୍ଠା,
ଦଧି, ଦୁଗ୍ଧ ଓ ଘୃତ, ଅଜାର ପୁରୀଷାଦି
ପଞ୍ଚକ ।
ପଞ୍ଚାଞ୍ଜନ—ବି. ରସାଞ୍ଜନ, ସ୍ରୋତାଞ୍ଜନ,
ସୌବୀରାଞ୍ଜନ, ଝର୍ପର ଓ ସୀସା ଏହି
ପାଞ୍ଚ ଦ୍ରବ୍ୟଦ୍ୱାରା ପ୍ରସ୍ତୁତ ଅଞ୍ଜନ ।
ପଞ୍ଚାତପ—ବି. ତପସ୍ୟାବିଶେଷ ।
ପଞ୍ଚାତପା—ବି.(ବ.ଗ୍ରା) ଯୋଗୀର ଆସ-
ନର ଏକହସ୍ତ ପରିମିତ ଦୂରରେ ଚତୁ-
ର୍ଦ୍ଦିଗରେ ଚାରିଗଦା ନିଆଁ ଓ ମଧ୍ୟରେ
ସୂର୍ଯ୍ୟ ଏପରି ୫ଗୋଟି ଆତପଯୁକ୍ତ
ସ୍ଥାନରେ ତପସ୍ୟା ।
ପଞ୍ଚାତ୍ମକ—ପୁଂ.ବି. (ପଞ୍ଚ+ଆତ୍ମନ୍+କ)
ଆକାଶାଦି ପଞ୍ଚଭୂତ ଘଟିତାନ୍ତ, ସାଂସା-
ରିକ, ୫ସଂଖ୍ୟକ ।
ପଞ୍ଚାନନ—ପୁଂ.ବି. ( ପଞ୍ଚନ୍+ଆନନ )
ଶିବ, ସିଂହ, ଅଘୋର, ସିଂହରାଶି,
ରୁଦ୍ରାକ୍ଷବିଶେଷ, (ବିଂ—ବ.ଗ୍ରା) ପଞ୍ଚ-
ମୁଖବିଶିଷ୍ଟ ।
ପଞ୍ଚାନନମେଳା—ଗ୍ରା.ବି. ପାଞ୍ଚଅଣାର ବା
ପାଞ୍ଚପଇସାର ପାଞ୍ଚଟି ଜିନିଷ (ଯଥା:-
ଗଞ୍ଜେଇ, ପାଚିଲାକଦଳୀ, ପାନଗୁଆ ଓ
ତେଲ) ମହାଦେବଙ୍କୁ ଭୋଗ କରିବା
ଉତ୍ସବବିଶେଷ ।
ପଞ୍ଚାନନୀ—ସ୍ତ୍ରୀ. ବି. ( ପଞ୍ଚାନନ+ଈ )
ପାର୍ବତୀ, ଦୁର୍ଗା ।
ପଞ୍ଚାନବେ—ଗ୍ରା. ବି ଓ ବିଂ. ୯୫, ୯୦
ଅପେକ୍ଷା ୫ ଅଧିକ ।
ପଞ୍ଚାପଞ୍ଚି—ଗ୍ରା.ବି. ଅନ୍ୟୋନ୍ୟରେ ବିଗୁରୁ

ପଞ୍ଚାପ୍‌ସର—ଗ୍ରା.ବି.ଦଣ୍ଡକାରଣ୍ୟସ୍ଥ ସରୋବରବିଶେଷ ।

ପଞ୍ଚାଭିଜ୍ଞା—ଷ୍ଟୀ. (ବୌଦ୍ଧମତେ) ପାଞ୍ଚଟି ଐଶ୍ୱରିକ ଗୁଣଶାଳୀ ।

ପଞ୍ଚାଭିଷେକ—ବି.ବୌଦ୍ଧଧର୍ମର ସଂସ୍କାର (ବ୍ରତ) ବିଶେଷ ।

ପଞ୍ଚାବ୍ଜମଣ୍ଡଳ—କ୍ଲୀ. ବି. ସର୍ବତୋଭଦ୍ର ମଣ୍ଡଳାନ୍ତର୍ଗତ ପଞ୍ଚପଦ୍ମାତ୍ମକ ମଣ୍ଡଳବିଶେଷ ।

ପଞ୍ଚାମରା—ସ୍ତ୍ରୀ. ବି. ଅମରଲତା ପଞ୍ଚକ, (ଯଥା:-ଦୂର୍ବା, ବିଜୟା, ବେଲ,ବେଗୁନିଆଁ ଓ କଳାତୁଳସୀ) ।

ପଞ୍ଚାମୃତ—କ୍ଲୀ.ବି. ଦଧି, ଦୁଗ୍ଧ, ଘୃତ,ମଧୁ ଓ ଗୁଡ଼ ଏହି ପାଞ୍ଚପ୍ରକାର ଦ୍ରବ୍ୟ, (ବୈଦ୍ୟକ) ଗୁଳଞ୍ଚ, ଗୋକ୍ଷୁର, ତାଳମୂଳୀ, ଗୋରଖମୁଣ୍ଡୀ ଓ ଶତମୂଳୀ ଏହି ପଞ୍ଚପ୍ରକାର ଦ୍ରବ୍ୟର ଏକତ୍ର ।

ପଞ୍ଚାମୃତଯୂଷ—ପୁଂ. ବି. କୋଳଥ,ମୁଗ, ବିରି, ହରଡ଼ ଓ ବରଗୁଡ଼ି ସିଝାଇ ପ୍ରସ୍ତୁତ କରାଯିବା କ୍ୱାଥବିଶେଷ ।

ପଞ୍ଚାମ୍ନାୟ—ପୁଂ.ବି.ମହାଦେବଙ୍କର ପଞ୍ଚବକ୍ତ୍ର ବିନିର୍ଗତ ତନ୍ତ୍ରଶାସ୍ତ୍ରବିଶେଷ ।

ପଞ୍ଚାମ୍ର—ବି. (ପଞ୍ଚ+ଆମ୍ର) ଅଶ୍ୱତ୍ଥ,ନିମ୍ବ, ଚମ୍ପକ, ବଉଳ, ଓ ନାରକେଳ ଏହି ପାଞ୍ଚଟି ଗଛ--୧-ଅଶ୍ୱତ୍ଥ, ୧-ନିମ୍ବ, ୨ ଚମ୍ପା, ୩-ନାଗେଶ୍ୱର, ୭-ତାଳ ଓ ୯-ନଡ଼ିଆ ଏହିପରି ଏକତ୍ର ଲଗିଥିବା ୨୩ଗଛ ।

ପଞ୍ଚାମ୍ଳ—କ୍ଲୀ.ବି.ପାଞ୍ଚଗୋଟି ଖଟା ଜିନିଷ, (ଯଥା:-ବରକୋଳି, ଡାଳିମ୍ବ, ଟଭା, ଖଟାପାଳଙ୍ଗ ଓ ତିନ୍ତୁଳି ଏମାନେ ପଞ୍ଚାମ୍ଳ. (ମତାନ୍ତରରେ) ଅମ୍ଳ ବେତସ୍ ତେନ୍ତୁଳି ଜମ୍ବୀର, ଲେମ୍ବୁ, ଟଭା) ।

ପଞ୍ଚାୟତ—ଗ୍ରା. ବି. ଗ୍ରାମ୍ୟବିଚାର ସଭା ପଞ୍ଚାଏତ ଦେଖ ।

ପଞ୍ଚାୟତନ—ବି. କୌଣସି ଦେବତାଙ୍କ ପାଞ୍ଚଟି ମୂର୍ତ୍ତିର ସମାହାର ।

ପଞ୍ଚାୟୁଧ—ବି. ବିଷ୍ଣୁଙ୍କର ନାମବିଶେଷ ।

ପଞ୍ଚାରି—ସ୍ତ୍ରୀ. ବି. ଶାରିଶୃଙ୍ଖଳା, ପଶାର ଛକ, ପଶାପାଲି ।

ପଞ୍ଚାର୍ଚ୍ଚିଃ—ପୁଂ.ବି. ବୁଧଗ୍ରହ ।

ପଞ୍ଚାଳ—ପୁଂ. ବି. (ପଞ୍ଚନ୍+ଆଲ)ଦେଶବିଶେଷ, ଦ୍ରୁପଦ ରାଜ୍ୟ, ତଦ୍‌ଦେଶବାସୀ ବ୍ୟକ୍ତି ଓ ରାଜା, ନାଗ ବା ରାକ୍ଷସବିଶେଷ, ଋଷିବିଶେଷ, ବିଷଧର କୀଟବିଶେଷ, ରାଗବିଶେଷ, ଶିବ, ବଢ଼େଇ ଓ କମାର କାମ କରୁଥିବା ଦକ୍ଷିଣ ଦେଶର ଏକଜାତି, (ବିଂ) ପଞ୍ଚାଳଦେଶୀୟ ।

ପଞ୍ଚାଳି—ଗ୍ରା.ବି. ବିଷମସମସ୍ୟା,ଦୋଘାଇ, ପ୍ରହେଳିକା, ପ୍ରହେଳି ।

ପଞ୍ଚାଳି—କ୍ଲୀ.ବି. ପାଁଗୁଲି ଦେଖ ।

ପଞ୍ଚାଳିକ—ବି. ଗ୍ରାମ୍ୟ ପଞ୍ଚାୟତ ।

ପଞ୍ଚାଳିକା—ସ୍ତ୍ରୀ.ବି. (ପଞ୍ଚାଳ+ଇକ+ଆ) ବସ୍ତ୍ରାଦିକୃତ ପ୍ରତିମା,କଣ୍ଢେଇ, ପଶାଛକ, ଗୀତବିଶେଷ ।

ପଞ୍ଚାଳୀ—ସ୍ତ୍ରୀ.ବି.(ପଞ୍ଚାଳ+ଈ)ବସ୍ତ୍ରାଦିକୃତ ପୁତ୍ତଳିକା,ଗୀତବିଶେଷ, ପଶାର ଛକ, ଦ୍ରୌପଦୀ । [ ବିଶେଷ

ପଞ୍ଚ କେଶ୍ୱର—ବି. ପ୍ରାଚୀନ ଶିବମନ୍ଦିର-

ପଞ୍ଚାବଟ—କ୍ଲୀ. ବି. ପଞ୍ଚବଟୀ, ଯଜ୍ଞୋପବୀତ । [ ୫ ଅଧିକ ।

ପଞ୍ଚାବନ—ଗ୍ରା.ବି ଓ ବିଂ.ପଞ୍ଚାବନ,୫୦ରୁ

ପଞ୍ଚାବୟବ—ବି.ନ୍ୟାୟଶାସ୍ତ୍ରର ୫ଟି ଅଙ୍ଗ (ପ୍ରତିଜ୍ଞା, ହେତୁବାଦ, ଉଦାହରଣ, ଉପନୟ ଓ ନିଗମନ) ।

ପଞ୍ଚାବର୍ତ୍ତି—ବି.ବିଂ. ପାଞ୍ଚଭାଗରେ ବିଭକ୍ତ ଯଜ୍ଞୀୟ ଚରୁ, ଆଜ୍ୟପ୍ରଭୃତି ।

ପଞ୍ଚାବର୍ତ୍ତିନ୍—ବି. ବିଂ. ପଞ୍ଚଧା ଖଣ୍ଡିତ ଚରୁପ୍ରଭୃତି ।

ପଞ୍ଚାବର୍ତ୍ତୀୟ—ବି. ବିଂ. ପଞ୍ଚାବର୍ତ୍ତି ଯଜ୍ଞସମ୍ବନ୍ଧୀୟ (ଆଜ୍ୟ) ।

ପଞ୍ଚ ବକ୍ତ୍ର—ପୁଂ.ବି. ଶିବ, ପ୍ରେତଦେହ ।

ପଞ୍ଚାବିକ—କ୍ଲୀ. ବି. ମେଷୀର ଦଧି,ଦୁଗ୍ଧ, ଘୃତ,ମୂତ୍ର ଓ ମଳ ଏହି ପଞ୍ଚବିଧ ଦ୍ରବ୍ୟ ।

ପଞ୍ଚାବୀ—ସ୍ତ୍ରୀ.ବି. ଅଢ଼ାଇ ବର୍ଷର ଗାଈ ।

ପଞ୍ଚାଶ—ବି.ବିଂ. (ପଞ୍ଚାଶତ୍+ଅ)ପଚାଶ ସ୍ଥାନୀୟ, ପଚାଶ ସଂଖ୍ୟାର ପୂରଣ ।

ପଞ୍ଚାଶକ—ବି. ପଚାଶ ସଂଖ୍ୟକ ବସ୍ତୁର ସମାହାର ।

ପଞ୍ଚ ଶତ୍—ବି ଓ ବିଂ. (ପଞ୍ଚନ୍+ଶତ୍) ସଂଖ୍ୟାବିଶେଷ ୫୦ ସଂଖ୍ୟା,୫୦ସଂଖ୍ୟାଯୁକ୍ତ । [ ପୂରଣ ।

ପଞ୍ଚାଶତ୍ତମ—ବି.ବିଂ. ପଞ୍ଚାଶତ୍ ସଂଖ୍ୟାର

ପଞ୍ଚାଶତି—ବି. ୮୫ ସଂଖ୍ୟା ।

ପଞ୍ଚାଶକ—ବି.ବିଂ. ପଞ୍ଚାଶତ ସମ୍ବନ୍ଧୀୟ ।

ପଞ୍ଚାଶଭାଗ—ପୁଂ.ବି. ୫୦ଭାଗ ।

ପଞ୍ଚାଶିକା—ସ୍ତ୍ରୀ. ବି, ପଞ୍ଚାଶ ଅଧିକ ଶତ ବା ସହସ୍ରଯୁକ୍ତ ସଂଖ୍ୟା ।

ପଞ୍ଚାଶିନ୍—ବି. ବିଂ. ପଞ୍ଚାଶତ ଅଧିକ ଶତ ଓ ସହସ୍ର (ସଂଖ୍ୟା) ।

ପଞ୍ଚାଶୀତି—ବି. ୮୫ ସଂଖ୍ୟା ।

ପଞ୍ଚାଶୀତି—ସ୍ତ୍ରୀ. ବି. ପଞ୍ଚାଅଶୀ, ପଞ୍ଚାଅଶୀ ସଂଖ୍ୟାଯୁକ୍ତ ।

ପଞ୍ଚ ଶୀତିତମ—ବି. ୮୫ ସଂଖ୍ୟା ।

ପଞ୍ଚାସ୍ୟ—ପୁଂ. ବି. (ପଞ୍ଚନ୍+ଆସ୍ୟ) ସିଂହ, ଶିବ, (ବିଂ) ପଞ୍ଚମୁଖ ବିଶିଷ୍ଟ ।

ପଞ୍ଚାସ୍ର—ବି. (ବି.ଗ୍ରା) ପଞ୍ଚଭୁଜ କ୍ଷେତ୍ର, (ବିଂ) ପଞ୍ଚଭୁଜ ସମ୍ବନ୍ଧୀୟ, ପଞ୍ଚଭୁଜାକୃତି ।

ପଞ୍ଚାହ—ବି. ବିଂ. (ପଞ୍ଚ+ଅହନ୍) ପଞ୍ଚଦିନ ବ୍ୟାପୀ ଯଜ୍ଞୀୟ କାର୍ଯ୍ୟ, ଯେଉଁ ପାଞ୍ଚଟି ସୁତ୍ୟାଦିନେ ସୋମ ବା ଅଗ୍ନିକୁ ପଶ୍ଚାଦ ଉତ୍ସର୍ଗ କରାଯାଏ ।

ପଞ୍ଚାହିକ—ବି.ବିଂ. ପାଞ୍ଚଦିନ ସାଧ୍ୟ ଯଜ୍ଞ ବା ଉତ୍ସବ । [ ବା ଖଣ୍ଡ ।

ପଞ୍ଚିକା—ସ୍ତ୍ରୀ. ବି. ପୁସ୍ତକାଦିର ବିଭାଗ

ପଞ୍ଚିନ—ବି. ବିଂ. ପଞ୍ଚପରିମାଣ ଯୁକ୍ତ ।

ପଞ୍ଚୀକରଣ—କ୍ଲୀ.ବି. ବେଦାନ୍ତ ମତରେ ପଞ୍ଚଭୂତର ବିଭାଗବିଶେଷ ।

ପଞ୍ଚୀକୃତ—ବି.ବିଂ. ଯାହାର ପଞ୍ଚୀକରଣ କରାହୋଇଅଛି ।

ପଞ୍ଚୁ—ଗ୍ରା. ବି. ପଞ୍ଚ ଯୁତ, ୫ ସଂଖ୍ୟା, ବୈଷ୍ଣବମାନଙ୍କର ଏକତ୍ର ପଙ୍‌କ୍ତି ।

ପଞ୍ଚୁଆଠ—ଗ୍ରା. ବି.ଶିଶୁଜନ୍ମର ପଞ୍ଚମଦିନ ଉତ୍ସବ, ପଶଖେଳରେ ୫ ସଂଖ୍ୟାକ ଦାନ ।

ପଞ୍ଚୁଆଫରୁର—ପ୍ରା. (ପୁରୀ) ବି. ଇଂରେଜ ସରକାରଙ୍କ ବିପକ୍ଷରେ ୧୮୧୮ ସାଲରେ ଘଟିଥିବା ଖୋରଧା ବାଣପୁରର ପାଇକ ବିଦ୍ରୋହ।

ପଞ୍ଚୁକ—ଗ୍ରା.ବି.(ସଂ-ପଞ୍ଚକ)ପଞ୍ଚକ ଦେଖ।

ପଞ୍ଚୁଗ୍ରାସୀ—ଗ୍ରା. ବି. ବ୍ରତଘର ଦିନ ଯଜ୍ଞୋପବୀତ ଗ୍ରହଣ ପରେ ନୂଆବ୍ରାହ୍ମଣ ଯେଉଁ ପାଞ୍ଚଗୁଣ୍ଡା ଅନ୍ନ ଖାଏ।

ପଞ୍ଚୁଦୋଳ—ଗ୍ରା. ବି. ଦୋଳପୂର୍ଣ୍ଣିମା ପରେ ପ୍ରତିପଦ୍‌ଠାରୁ ୫ଦିନ ଭିନ୍ନ ଭିନ୍ନ ସ୍ଥାନରେ ରଖାଯାଉଥିବା ବିଗ୍ରହମାନଙ୍କର ମିଳନ।

ପଞ୍ଚୁପାଣ୍ଡବ—ଗ୍ରା. ବି. (ସଂ-ପଞ୍ଚପାଣ୍ଡବ) ପଞ୍ଚପାଣ୍ଡବ।

ପଞ୍ଚୁବର୍ଣ୍ଣୀ(ର୍ଣ୍ଣୀ)—ଗ୍ରା. ବିଂ. ୫ ବର୍ଣ୍ଣର, (କଳା, ଧଳା,ନେଳୀ, ରଙ୍ଗ ଓ ହଳଦିଆ ମୁଣ୍ଡିକ)।

ପଞ୍ଚୋଦ୍ଧୀୟ—ପୁଂ, ବି. ପଞ୍ଚୋଦ୍ଧାୟାୟ ହୋମବିଶେଷ।

ପଞ୍ଚେନ୍ଦ୍ର—ବି. ଇନ୍ଦ୍ରାଦି ପଞ୍ଚଦେବତାଙ୍କର ଉଦ୍ଦେଶ୍ୟରେ କରାଯିବା ହୋମ।

ପଞ୍ଚେନ୍ଦ୍ରିୟ—କ୍ଲୀ. ବି. (ପଞ୍ଚନ୍+ଇନ୍ଦ୍ରିୟ), ନାସିକା, କର୍ଣ୍ଣ, ତ୍ୱକ୍, ନେତ୍ର, ଜିହ୍ୱା-ପ୍ରଭୃତି ପଞ୍ଚଜ୍ଞାନେନ୍ଦ୍ରିୟ, ବାକ୍, ପାଣି, ପାୟୁ,ପାଦ ଓ ଉପସ୍ଥ ଏହି ୫ଟି କର୍ମେନ୍ଦ୍ରିୟ। [ କାମଦେବ।

ପଞ୍ଚେଷୁ—ପୁଂ. ବି. ( ପଞ୍ଚନ୍ + ଇଷୁ )

ପଞ୍ଚୋପଚାର—ବି. ( ପଞ୍ଚ+ଉପଚାର ) ପଞ୍ଚପ୍ରକାର ଉପକରଣ ସଂଯୁକ୍ତ ଦେବପୂଜା, ଯଥା—ଆସନ, ଅର୍ଘ୍ୟ, ଗନ୍ଧ, ପୁଷ୍ପ ଓ ନୈବେଦ୍ୟ।

ପଞ୍ଚୋପବିଷ—କ୍ଲୀ. ବି. ଉପବିଷ ପଞ୍ଚକ, ଯଥା—ମନସା, ଅର୍କ, କରବୀ ବିଷ, ଲାଙ୍ଗୁଲି ଓ ବିଷମୁଷ୍ଟି ଏହି ପଞ୍ଚଦ୍ରବ୍ୟ।

ପଞ୍ଚୋଷଣ—କ୍ଲୀ. ବି. ପଞ୍ଚକୋଲ,ପିପ୍ପଳ, ପିପ୍ପଳୀମୂଳ, ଚବ୍ୟ, ଚିତକ ଓ ଶୁଣ୍ଠି ଏହି ପଞ୍ଚପ୍ରକାର ଦ୍ରବ୍ୟ।

ପଞ୍ଚୌଦନ୍—ପୁଂ. ବି. ଆହାର ପାଚକ ଜଠରସ୍ଥିତ ପଞ୍ଚାଗ୍ନି।

ପଞ୍ଚୌଦନ—ପୁଂ. ବି. ପଞ୍ଚାଙ୍ଗୁଳି ଦ୍ୱାରା ପାଞ୍ଚଭାଗରେ ବିଭକ୍ତ ଓଦନ।

ପଞ୍ଜନଗର—ବୋମ୍ବାଇ ପ୍ରେସିଡେନ୍ସିର ଯୋଲାପୁର ବାସୀ ଜାତିବିଶେଷ।

ପଞ୍ଜର—ବି. (ପଞ୍ଜ+ଅର)ଅସ୍ଥିକଙ୍କାଳ, ଶରୀର, ଖାଟ, ପଞ୍ଜୁରି, ପଞ୍ଜରହାଡ଼, ଜାଲ, କେତେକ ସ୍ତବ ଓ କବଚର ନାମ (ଯଥା—ବିଷ୍ଣୁପଞ୍ଜର), କଳିଯୁଗ, ଗାଈମାନଙ୍କର ସଂସ୍କାରବିଶେଷ.ଭୂଇଁକଖାରୁ, (ଗ୍ରା.ବି) ଗୃହ, ଝରକା,ପାଦ।

ପଞ୍ଜରକ—ପୁଂ. ବି. କାଲା, ପଞ୍ଜୁଟ, ପଞ୍ଜୁରିପରି ବୁଣାଯାଇଥିବା ଟୋକେଇ।

ପଞ୍ଜରଖେଟ—ପୁଂ. ବି. ମାଛଧରିବାର ଯନ୍ତ୍ରବିଶେଷ, ଝୋଇଁ।

ପଞ୍ଜରା—ଗ୍ରା. ବି. ଅସ୍ଥିକଙ୍କାଳ, କଳାକବାଟ, ଘରଗୃହର ଏକପାଖ।

ପଞ୍ଜରି—ଗ୍ରା. ବି. ପଞ୍ଜୁରି, ଆବଦ୍ଧପକ୍ଷୀର ବନ୍ଧନଶାଳା, ପିଞ୍ଜରା,(ପ୍ରା. ସିଂହଭୂମ.) ଶଗଡ଼ର ଫଳ।

ପଞ୍ଜଲ—ପୁଂ. ବି. କାଲକନ୍ଦ।

ପଞ୍ଜାବ—ସା. ବି. ଭାରତର ଉତ୍ତରପଶ୍ଚିମସ୍ଥ ପଞ୍ଚନଦ ପ୍ରଦେଶ।

ପଞ୍ଜାବି—ଗ୍ରା.ବିଂ. ପଞ୍ଜାବଦେଶୀୟ,ପଞ୍ଜାବ ଦେଶବାସୀ, ( ଗ୍ରା.ବି ) ଫରଗୁମୁହାଁ ଆସ୍ତିନ୍, ହାତ ଓ ବେକପାଖେ ବୋତାମ ଥିବା ଏକପ୍ରକାର କୁର୍ତ୍ତା।

ପଞ୍ଜି(ସ୍ତ୍ରୀ)—ବି. (ପନ୍ଜ+ଇ.ଈ) ପଞ୍ଜି. ଦିବସ ଓ କାଳଜ୍ଞାପକ ଗ୍ରନ୍ଥ, ପଞ୍ଜାଙ୍ଗ, ପଞ୍ଜିକା, ତୁଳାର ବଳଣା, ପ୍ରସ୍ତାବନା, ବ୍ୟାକରଣର ବୃତ୍ତିଗ୍ରନ୍ଥବିଶେଷ।

ପଞ୍ଜିକ(କା)ର—ପୁଂ. ବି. କାୟସ୍ଥଜାତି, ପଞ୍ଜିକାପ୍ରଣେତା। [ ପିଞ୍ଜରା।

ପଞ୍ଜୁରି—ଗ୍ରା. ବି. ପକ୍ଷୀଙ୍କର ବନ୍ଦଗୃହ,

ପଞ୍ଝା—ଗ୍ରା. ବି. (ସଂ-ପୁଞ୍ଜ ବା ପଞ୍ଚ) ପାଞ୍ଚ ଆଙ୍ଗୁଳିଯୁକ୍ତ କରତଳର ଦାଗ ବା ଛାପ, ଦଳ, ସମୂହ,ଦୁଇଜଣ ମଲ୍ଲ ପରସ୍ପରଙ୍କ ହାତର ପଞ୍ଝା ଭିଡାଭିଡ଼ି ଓ ଚପାଚପି କରି ଅନ୍ୟୋନ୍ୟରେ ବଳ ପରୀକ୍ଷା କରିବା, ତାସଖେଳର ପାଞ୍ଚଟିଯୁକ୍ତ ସାର, ପଶୁପକ୍ଷୀଙ୍କ ନଖଯୁକ୍ତ ପାଦତଳ।

ପଞ୍ଝାଏ—ଗ୍ରା. ବି ଓ ବିଂ. ଏକଦଳ।

ପଞ୍ଝାପଞ୍ଝା—ଗ୍ରା. କ୍ରି. ବିଂ. ଦଳ ଦଳ ହୋଇ। [ ପଞ୍ଚଭାଗ।

ପଟ୍—ଗ୍ରା.ବି. କୌଣସି ଚେପ୍ଟା ପଦାର୍ଥର

ପଟ୍‌କନ୍(ଣ.ଣି)—ଗ୍ରା. ବି. ଫୋପାଡ଼ି ଦେବା, କଚାଡ଼ିବା, ଭୂମିରେ ପତିତ ହେବା, କଚଡ଼ା।

ପଟ୍‌କା—ଗ୍ରା. ବି. ପଟ୍‌କନ୍ ଦେଖ,ଫଟୁକା, ଫୋଟକା, ପଟକା,ଉକ୍ତ ପଟ୍ ଶବ୍ଦ,(ପ୍ରା. ସମ୍ବ. ବି) ଗାମୁଛା।

ପଟ୍‌ଲିନ—ଗ୍ରା. କ୍ରି. ବିଂ. ପଟ୍ ଶବ୍ଦକରି, ପଟାପଟ୍ (ପଡ଼ିଯିବା), ଉପର୍ଯ୍ୟୁପରି, ଅତିଶୀଘ୍ର।

ପଟ୍‌କୁଡ—ପ୍ରା. ( ବସ୍ତର ) ବି. ପିଠି, ପିଠିଆଡ଼।

ପଟ୍‌ପଟ୍—ଗ୍ରା. ଅବ୍ୟ. ଅଠାଳିଆ ବା ନାଳୁଆ ପଦାର୍ଥରେ ଘନବସ୍ତୁ ଟିକିଏ ଲାଗି ଓ ଟିକିଏ ଛାଡ଼ି ଘଷିହେବାର ଶବ୍ଦ, ଫଟ୍‌ଫଟ୍ ଶବ୍ଦ।

ପଟ—ବି. (ପଟ୍+ଅ) ଅଖାପାଲ, ବସ୍ତ୍ର, ଚିତ୍ରପଟ ବା ଛବି, ସୂକ୍ଷ୍ମ ବସନ, ପରଦା, ଛାତ, ଚାଲ, ବଲ୍କଲ, ପିୟାଲ ବୃକ୍ଷ, ପୁରସ୍କୃତ, କାର୍ପାସ, ଭୂତୃଣ, ଛଦକ୍, ଛାଲ, ଯବନିକା, ( ଗ୍ରା.ବି ) ପଶାଖେଳରେ ପଶାକାଠିକୁ ଗଡ଼ାଇଲେ ଯେଉଁ ଦାନ ପଡେ, ଦିଗ, ତରଫ, ଆଡ଼, କଦଳୀ ଗଛର ଛାଲ, ପଟକା, ପାର୍ଶ୍ୱ, ପାଖ, ବ୍ୟକ୍ତି, ପକ୍ଷ, ତରଫ, ବସ୍ତ୍ର, ଦୁଇ ବା ବହୁଖଣ୍ଡ ମଧ୍ୟରୁ ଏକଖଣ୍ଡ, ସୁବିଧା, ଅର, ବାର, ଛଣପଟ, ପ୍ରତିଯୋଗିତା, ପଟ, ଯହିଁରେ ଦଉଡ଼ା ଆଦି ବଳାଯାଏ, ( ଗ୍ରା.ବିଂ ) ଶ୍ରେଷ୍ଠ, ଉତ୍କୃଷ୍ଟ, ( ପ୍ରା. ପୁରୀ. ବି. ) ନଡ଼ଆର ସଂଖ୍ୟାବିଶେଷ, ଗୃହପଣ ୧୦ ଗଣ୍ଡା ବା ୩୨୦ କଡ଼ା ନଡ଼ିଆ।

ପଟକ—ପୁଂ. ବି. ଶିବିର, ତମ୍ବୁ, ସୂତାଲୁଗା, (ଗ୍ରା.ବି) ଏକପଟ ବା ଗୋଟାଏ ମାତ୍ର।

ପଟକା—ଖା. ବ. ଶୁଷ୍କଜମି, ବାଙ୍ଗ,ବାଣ, କଟିବସ୍ତ୍ର,ଅଣ୍ଟାଭିଡ଼ା, ଫଟକା ବାଣ ।

ପଟକାଣିଆ—ଗ୍ରା. ବି॰. ଦୁଇପଟ ବା ଏକଯୋଡ଼ା ପଦାର୍ଥ ମଧ୍ୟରୁ ଏକପଟ ପଦାର୍ଥ ନ ଥିବା ଅବସ୍ଥାଯୁକ୍ତ ।

ପଟକାର—ପୁଂ. ବ. (ପଟ୍+କୃ+କ.ଅ) ତନ୍ତୁବାୟ, ତନ୍ତି, ଚିତ୍ରକର ।

ପଟକିବା—ଗ୍ରା. କ୍ରି. (ସଂ-ପତନ)ଅନ୍ୟକୁ ଭୂମିରେ କଚାଡ଼ିବା, (ଲ.ଅର୍ଥ) କୌଣସି ବ୍ୟକ୍ତିକୁ ଫୁସୁଲାଇ ନିଜର ପକ୍ଷକୁ ଟାଣି ଆଣିବା, ପଟକାଇବା ।

ପଟକୁଟୀ—ସ୍ତ୍ରୀ. ବ. ତମ୍ବୁ, ପଟ୍ଟଗୃହ ।

ପଟଚର—ବ. ଜୀର୍ଣ୍ଣବସ୍ତ୍ର, ଚୌର,ପୁରାଣ-ଉକ୍ତ ପ୍ରାଚୀନ ଦେଶବିଶେଷ ।

ପଟଣା(ନା)—ଗ୍ରା. ବ. ( ସଂ ପତ୍ତନ ) ପାଟଣା, ଗ୍ରାମ, ନଗର, ବଡ଼ଗ୍ରାମକୁ ଲାଗିଥିବା କ୍ଷୁଦ୍ର ଗ୍ରାମ, ବିହାର ପ୍ରଦେଶାନ୍ତର୍ଗତ ପାଟଣା ବିଭାଗ ଜିଲ୍ଲା ଓ ବିହାର ପ୍ରଦେଶର ରାଜଧାନୀ ।

ପଟତ୍—ଅବ୍ୟ. ଅବ୍ୟକ୍ତାନୁକରଣ, ଶବ୍ଦ-ଭେଦ, ପଟ ।

ପଟତ୍ରକ—ପୁଂ. ବ. ଶ୍ବେତ ।

ପଟତ୍ରକକଚ୍ଛୁ—କ୍ଲୀ. ବ. ଶ୍ବେତର କଚ୍ଛୁ ।

ପଟଦ—ପୁଂ. ବ. କାର୍ପାସ ବୃକ୍ଷ ।

ପଟଧରିବା—ଗ୍ରା. କ୍ରି. ଏକପକ୍ଷ ପ୍ରତି ଆପଣା ଆସକ୍ତି ଦେଖାଇବା,ପକ୍ଷପାତ କରିବା, ସାହାଯ୍ୟ କରିବା ।

ପଟନାୟକ—ଗ୍ରା.ବ.କ୍ଷତ୍ରିବଂଶୀୟ କରଣ-ମାନଙ୍କ ଉପାଧିବିଶେଷ ।

ପଟପଟ—ଗ୍ରା. ବି॰. ସରସର,(ଲାଳଦ୍ୱାରା) ଦେହତମାମ ଆବୃତ୍ତ, ( ଗ୍ରା. ଅବ୍ୟ ) ଲାଳମୟ ମସୃଣ ବସ୍ତୁ କୌଣସି ଛିଦ୍ରରେ ଉପର୍ଯ୍ୟୁପରି ପଶିବା ଓ ବାହାରିବା ବେଳେ ଉତ୍ପନ୍ନ ଶବ୍ଦ ।

ପଟପାଟ—ଗ୍ରା. ଅବ୍ୟ. ଦଉଡ଼ି ଛିଣ୍ଡିବାର ଶବ୍ଦ, ଝଟପଟ୍, ଅତିଶୀଘ୍ର ।

ପଟପାଡ଼ି—ବ. ମନୁଷ୍ୟାଦିର ଅଭ୍ୟନ୍ତରସ୍ଥ ବାୟୁକୋଷ ।

ପଟଭାଣ୍ଡ—ବ.ପ୍ରେକ୍ଷଣ ସାଧନ ଯନ୍ତ୍ରଭେଦ ।

ପଟଭେଦନ—କ୍ଲୀ. ବ. ପୁଟଭେଦନ, ନଗର ।

ପଟମଞ୍ଜରୀ—ବ. ରାଗିଣୀବିଶେଷ ।

ପଟମଣ୍ଡପ—ପୁଂ. ବ. ପଟକୁଟୀ, ତମ୍ବୁ, ବସ୍ତ୍ରଗୃହ ।

ପଟମୟ—କ୍ଲୀ. ବ. ବସ୍ତ୍ରଗୃହ, ତମ୍ବୁ, ଶାଟୀ, ଶାଢ଼ୀ । [ ବିଶେଷ ।

ପଟମ୍ବ—ଗ୍ରା. ବ. କୁମ୍ଭାରମାନଙ୍କ ଉପାଧି-

ପଟର—ବି.ବି॰. ଗତିଶୀଳ,ବସ୍ତ୍ରବାୟକ ।

ପଟରକ—ପୁଂ. ବ. ଗୁନ୍ଦ୍ରବୃକ୍ଷ ।

ପଟଲ—କ୍ଲୀ. ବ. (ପଟ୍+ଅଲ) ଗୃହ, ନେତ୍ରରୋଗ,ପିଟକ, ପରିଚ୍ଛଦ,ତିଳକ, ସମୂହ, ସ୍ତୂପାକାର, ପଟଲ ପଡ଼ିବା, ଚକ୍ଷୁର ପରଦା, ଗ୍ରନ୍ଥ, ବୃକ୍ଷ, କାସମର୍ଦ୍ଦ ବୃକ୍ଷ, କପାବୃକ୍ଷ, ପଟୋଳ ବୃକ୍ଷ ।

ପଟଲକ—ପୁଂ. ବ. ସ୍ତୂପ, ଶ୍ରେଣୀ ।

ପଟଲପ୍ରାନ୍ତ—କ୍ଲୀ. ବ. ଗୃହ ଗୃହର ଶେଷଭାଗ, ତଳ, ଆଚ୍ଛାଦନ ବସ୍ତ୍ରର ଶେଷଭାଗ ।

ପଟଲୀ—ସ୍ତ୍ରୀ. ବ. (ପଟଲ+ଈ) ଗୃହ, ସମୂହ, ଗଣ, ବେଦାଂଶ, ତନ୍ତ୍ରର ପରିଚ୍ଛେଦ, ସଞ୍ଚୟ, ବାକ୍ସ,ପେଟରା,ଛପର ।

ପଟବ—ବ. ଜନପଦବିଶେଷ ।

ପଟବର୍ଦ୍ଧନ—ବ. ବ୍ରାହ୍ମଣ ଶ୍ରେଣୀବିଶେଷ ।

ପଟବାଦ୍ୟ—ବ. ଗୀତଆଦି ବୋଲୁଥିବା ବେଳେ ତାଳଦେବାପାଇଁ ପ୍ରାଚୀନ କାଳରେ ବ୍ୟବହୃତ ଏକପ୍ରକାର ଝାଞ୍ଜ ।

ପଟବାପ—ପୁଂ. ବ. ବସ୍ତ୍ର ଗୃହ, ତମ୍ବୁ ।

ପଟବାସ—ପୁଂ. ବ. ବସ୍ତ୍ରଗୃହ, ଶାଟୀ, ସୁଗନ୍ଧ ଅବିର, ପିଠଉ, ଲହଙ୍ଗାଦେଖ, ବସ୍ତ୍ରସୁରଭିକରଣ ଦ୍ରବ୍ୟବିଶେଷ ।

ପଟବାସକ—ପୁଂ. ବ. ପଟବାସ ଚୂର୍ଣ୍ଣ ।

ପଟବେଶ୍ମ—କ୍ଲୀ. ବ. ବସ୍ତ୍ରଗୃହ, ତମ୍ବୁ ।

ପଟବ୍ୟ—ବି. ବି॰. ପଟୁବିଷୟରେ ହିତକର ।

ପଟହ—ବ. (ପଟ୍+ହା+ଅ) ନାଗରା, ରଣଢ଼କ୍କା, ଆଡ଼ମ୍ବର, ବଧ, ମାରଣ, ସମାରମ୍ଭ, ହିଂସନ,କର୍ଣ୍ଣପଟହ,ଯହିଁରେ ଶବ୍ଦଯାଇ ବାଜେ ।

ପଟହଘୋଷକ—ପୁଂ. ବ. ଯେ ବ୍ୟକ୍ତି ଢ଼କ୍କା ବାଦ୍ୟ ବଜାଇ ଘୋଷଣା କରେ ।

ପଟହତା—ସ୍ତ୍ରୀ. ବ. ପଟହର ଶବ୍ଦ ।

ପଟହଭ୍ରମଣ—ବି. ବି॰. ଗ୍ରାମସ୍ଥ ଲୋକମାନଙ୍କୁ ଏକତ୍ର ସମବେତ କରିବାକୁ ଯେ ଢ଼େଙ୍କୁରା ବଜାଇ ଗମନ କରେ ।

ପଟା—ଗ୍ରା.ବ.(ସଂ-ପଟ୍ଟ) କାଠର ପଟଳା ଲମ୍ୱଖଣ୍ଡ, ଅଧିକାର ପତ୍ର, ସନନ୍ଦ, ଲମ୍ବା ଓ ଚଉଡ଼ା ଦାଗ, ଥର,ବସ୍ତ୍ର'ବ, (ଗ୍ରା.ବି॰)ପଟାପରି ସମତୁଲ ବା ଚେପ୍ଟା ।

ପଟା(ଟେ)ଇବା—ଗ୍ରା.କ୍ରି.ଧନ ବା ବସ୍ତୁଆଦି ଦାଖଲ କରିବା,ସମ୍ମତକରାଇବା ।

ପଟାଏ—ଗ୍ରା. ଅବ୍ୟ. ଥରେ ।

ପଟାଏତ—ଗ୍ରା.ବ.ରାଜାଙ୍କର ମହିଷୀ ପୁଅ ବା ଜ୍ୟେଷ୍ଠପୁତ୍ରଙ୍କ ତଳପୁଅ ।

ପଟାକ—ପୁଂ. ବ. ପକ୍ଷିବିଶେଷ ।

ପଟାକା—ସ୍ତ୍ରୀ. ବ. ପତାକା, ନିଶାନ ।

ପଟାକ୍ଷେପ—ପୁଂ. ବ. ରଙ୍ଗ ଭୂମିରେ ନାଟକର ପ୍ରତି ଗର୍ଭାଙ୍କେ ଦୃଶ୍ୟ ପରିବର୍ତ୍ତନ ପାଇଁ ଯେଉଁ ନିର୍ଦ୍ଦିଷ୍ଟ ଚିତ୍ରପଟ ଥାଏ—ତାହାର କ୍ଷେପଣ ।

ପଟାନ୍ତର—ବ. (ପଟ+ଅନ୍ତର)ତୁଳନା, ଉପମା ।

ପଟାଦାର୍—ଗ୍ରା.ବ.ଯେ ପଟା ନେଇଥାଏ ।

ପଟାପଟା—ଗ୍ରା. ଅବ୍ୟ. ଲମ୍ବ ଲମ୍ବ ଦାଗ ବା ରେଖାଯୁକ୍ତ ହୋଇ ।

ପଟାପଟି—ଗ୍ରା.ବ,ଫୁସୁଲା ଫୁସୁଲି, ଭଣ୍ଡାଇବା,ଫୁସୁଲାଇବା,(ପ୍ରା.ଗଞ୍ଜାମ)କଳହ ।

ପଟାପତ୍ର—ଗ୍ରା. ବ. ସନନ୍ଦ, ଦଉପତ୍ର, ଅଧିକାର ପତ୍ର ।

ପଟାମ୍ବର—ବ.(ପଟ+ଅମ୍ବର)ପାଟଖଦି, ପଟ୍ଟବସ୍ତ୍ର ।

ପଟାଳ—ଗ୍ରା. ବ. କ୍ଷୁଦ୍ର କିଆରି, କାଠ ବା ବାଉଁଶାଦିର ଭେଳା ।

ପଟାଳୁକା—ସ୍ତ୍ରୀ.ବ.ଜଳୌକା, ଜୋକ ।

ପଟାସ୍—ଖା. ଗ୍ରା. ବ. ବୃକ୍ଷର ପାଉଁଶରୁ ଉତ୍ପନ୍ନ ଏକପ୍ରକାର କ୍ଷାର ।

ପଟି—ସ୍ତ୍ରୀ. ବ. (ପଟ+ଇ)ବସ୍ତ୍ର ବିଶେଷ, ପଲ୍ଲୀ, ପଥ, ସମ ବ୍ୟବସାୟୀମାନଙ୍କର

ଦୋକାନ ଶ୍ରେଣୀ,ପଟ୍ଟ ବିଶେଷ,ବାଗୁଲି, କୃତ୍ତିକା, (ଗ୍ରା. ବି) ଶ୍ରେଷ୍ଠ ଚନ୍ଦ୍ରପଟ୍ଟ, କେରପାଲ, ଅଳ୍ପ ଚଉଡ଼ା ଲମ୍ବା ଭୂଖଣ୍ଡ, ଡାଳ, ଝଜର ଆଦ ପଦରେ ବୁଣା ହୋଇଥିବା ବିଛଣା ବା ଆସନ, ଶ୍ରେଣୀ, ଧାଡ଼ି, ବଣ୍ଟାରେ କୌଣସି ପକ୍ଷର ହିସାବରେ ପଡ଼ିଥିବା ଲମ୍ବ ଭୂଖଣ୍ଡ ସିଲ୍, କ୍ଷତ ଉପରେ ଔଷଧ ପ୍ରଲେପ ଦେଇ ତହିଁ ଉପରେ ସ୍ଥାପିତ ବସ୍ତ୍ରଖଣ୍ଡ, ଛଳ, ଛଳନା,(ପ୍ରା—ବସ୍ତ୍ର)ବି. କର, ଖଜଣା ।

ପଟିଆ—ଗ୍ରା. ବି. ପଟାଦ୍ୱାରା ଏକପ୍ରକାର ଖେଳ, କଟକ ଜିଲାରେ ଗୋଟିଏ ଲଖରାଜ କିଲା, ଚଟେଇ, ମସିଣା,ଝଙ୍କୁଲ ପଟି, ତଲେଇ, (ଗ୍ରା. ବିଂ) ଯେ ପକ୍ଷ ନିଏ, ସହାୟକ, ପାର୍ଶ୍ୱରେ ଥିବା ।

ପଟିକା—ସ୍ତ୍ରୀ.ବି.ପଟି ବସ୍ତ୍ର,ପର୍ଦ୍ଦା,ଯବନିକା।

ପଟିକିଆ—ଗ୍ରା. ବିଂ. ଦୁଇଟି ବା ଯୋଡ଼ ମଧ୍ୟରୁ ଗୋଟିକିଆ ହୋଇ ରହିବା, ଗୋଟିକିଆ ।

ପଟିଦେବା—ଗ୍ରା. କ୍ରି. ଧପ୍ପା ମାରିବା, ଛଳନା କରିବା ।

ପଟିବା—ଗ୍ରା. କ୍ରି. ରାଜିହେବା, ଏକମତ ହେବା,ମେଳ ଖାଇବା, ଖାପ୍ ଖାଇବା ।

ପଟିମନ୍—ପୁଂ. ବି. ପଟୁତ୍ୱ ।

ପଟିମା—ବି. (ପଟୁ+ଇମନ୍) ପଟୁତା, ଖଟାପଣ ।

ପଟିଷ୍ଠ—ତ୍ରି. ବିଂ. ଅତିଶୟ ପଟୁ ।

ପଟୀ—ସ୍ତ୍ରୀ.ବି.(ପଟ+ଈ)ପଟି ଦେଖ ।

ପଟୀୟସ୍—ତ୍ରି.ବିଂ.ଅତିଶୟ ପଟୁ,ସୁଦକ୍ଷ, ସମର୍ଥ ।

ପଟୀୟାନ୍—ବିଂ. (ପଟୁ+ଈୟସ୍) ଅତି ପଟୁ, ସୁଚତୁର, ସୁନିପୁଣ ।

ପଟୀର—ବି. (ପଟ+ଈର)ପେଣ୍ଟ୍ର,ମୂଳା, ହରଣୀୟ ସନ୍ଧି,ବାହୁ, କ୍ଷେତ୍ର, ଉଚ୍ଚତା, ଚନ୍ଦନ, ମେଘ, ବଂଶ, ଉଦର, ମୂଳକ, ଖଦିର, ବାତରୋଗ ବିଶେଷ, କନ୍ଦର୍ପ, ଚନ୍ଦନବୃକ୍ଷ,ମେଘ,ଗୁଲୁଚୀ,ଶର୍ଦ୍ଦି, (ବିଂ) ସୁନ୍ଦର, ଉଚ୍ଚ ।

ପଟୁ—ତ୍ରି. ବିଂ. ଦକ୍ଷ, ନୀରୋଗ, ଚତୁର, ମଧୁର, ତୀକ୍ଷ୍ଣ, ନିଷ୍ଠୁର,ଧୂର୍ତ୍ତ,(ବି)କଳରା, ପଟୋଲ, ଛତୁ, ଲବଣ, (ଗ୍ରା.ବି)ନଈବଢ଼ିରେ ପାଣିରେ ଗୋଳିହୋଇ ଆସି ଭୂମିରେ ପଡ଼ିଥିବା ପଙ୍କ ଓ କାଦୁଅ, ମାଟିର ସ୍ତର, ମଳ, ମଇଳା, (ଗ୍ରା.ବିଂ) ଚେମଡ଼ା, ପଟୁମାଟିଯୁକ୍ତ ।

ପଟୁଆ—ଗ୍ରା. ବିଂ. ପଟୁମାଟି ଯୁକ୍ତ, ଯେ ପକ୍ଷ ଧରିଥାଏ, (ଗ୍ରା. ବି) ଶ୍ରେଷ୍ଠତଙ୍ଗା, ଦୁଧ ବା ଦହିମାଠିଆ ।

ପଟୁଆର—ଗ୍ରା. ବି. ନୃତ୍ୟ ବାଦ୍ୟାଦିସହ ଶୋଭାଯାତ୍ରା ।

ପଟୁଆରି—ଗ୍ରା. ବି. ଅମିନ,ଗ୍ରାମସ୍ଥ ସରକାରୀ ମାପ କର୍ମଚାରୀ ।

ପଟୁକ—ପୁଂ. ବି. ପଟୋଳ ।

ପଟୁକଳ୍ପ—ତ୍ରି.ବିଂ.ସାମାନ୍ୟ,କମ୍,ପଟୁ ।

ପଟୁକା—ଗ୍ରା. ବି. କଦଳୀ ବାହୁଙ୍ଗା, କଟିବସ୍ତ୍ର, ପଗଡ଼ି, ପେଟି ।

ପଟୁକୋଟଇ—ମାନ୍ଦ୍ରାଜ ପ୍ରେସିଡେନ୍ସିର ତଞ୍ଜାଉର ଜିଲାର ଅନ୍ତର୍ଗତ ଉପବିଭାଗ ବିଶେଷ ।

ପଟୁଜାତୀୟ—ତ୍ରି. ବିଂ. ପଟୁପ୍ରକାର ।

ପଟୁତା—ସ୍ତ୍ରୀ.ବି.ଦକ୍ଷତା,କୁଶଳତା, ପଟୁତ୍ୱ

ପଟୁତୃଣକ—କ୍ଲୀ. ବି. ଲବଣ ତୃଣ ।

ପଟୁତୂଳକ—କ୍ଲୀ. ବି. ଲବଣ ତୃଣ ।

ପଟୁଦ୍ୱୟ—କ୍ଲୀ. ବି. ଲବଣଦ୍ୱୟ, ଯଥା. ସୈନ୍ଧବ ଓ ସୌବର୍ଚ୍ଚ ଲବଣ ।

ପଟୁତ୍ୱ—କ୍ଲୀ. ବି. ଦକ୍ଷତା, ପଟୁତା ।

ପଟୁପତ୍ରିକା—ସ୍ତ୍ରୀ. ବି. କ୍ଷୁଦ୍ର ଚଞ୍ଚୁକ୍ଷୁପ, କ୍ଷୀରକା ।

ପଟୁପର୍ଣ୍ଣିକା—ସ୍ତ୍ରୀ. ବି. କ୍ଷୀରିଣୀ ବୃକ୍ଷ ।

ପଟୁପର୍ଣ୍ଣୀ—ସ୍ତ୍ରୀ. ବି. ସ୍ୱର୍ଣ୍ଣ କ୍ଷୀରୀ ।

ପଟୁମତ୍ର—ପୁ. ବି.ଆନ୍ଧ୍ରବଂଶୀୟ ଏକରାଜା

ପଟୁମିତ୍ର—ପୁଂ. ବି. ରାଜପୁତ୍ର ବିଶେଷ ।

ପଟୁୟା—ବି. ହିନ୍ଦୁ ଓ ମୁସଲମାନଙ୍କ ଜାତୀୟ ଚିତ୍ରକର ବିଶେଷ ।

ପଟୁୟାଖାଲି—ବି.ଉପବିଭାଗ ବିଶେଷ ।

ପଟୁରୂପ—ତ୍ରି. ବିଂ. ଅତିଶୟ ପଟୁ ।

ପଟୁଶ—ପୁଂ. ବି. ରାକ୍ଷସ ବିଶେଷ ।

ପଟୁସ—ପୁଂ. ବି. ରାଜ ବିଶେଷ ।

ପଟେ—ଗ୍ରା. ବି. ଅଧଯୋଡ଼ା, ଏକପଟ ମାତ୍ର, ସମକକ୍ଷ ଲୋକ, (ଗ୍ରା. କ୍ରି. ବିଂ) ଦଗରେ, ଆଡ଼ରେ, ପାଖେ, ପାଖରେ, ପାର୍ଶ୍ୱରେ ।

ପଟେରକ—ବି. ପାଣିକୂଳେ ଜନ୍ମିବା ଏକପ୍ରକାର ତୃଣ, ପଟୁଡ଼ି, ସିନ୍ତ୍ରି ।

ପଟେଲ—ଗ୍ରା.ବିଂ. ପଣ୍ଡିତାଳି,ଧୂର୍ତ୍ତ, (ଗ୍ରା. ବି) ବଂଶୋପାଧିବିଶେଷ, ଗ୍ରାମର ମୁଖିଆ ବ୍ୟକ୍ତି ।

ପଟେଶ୍ୱର—ବି. ନଗରବିଶେଷ ।

ପଟୋକା-ବି.ଅଗ୍ନି କ୍ରୀଡ଼ାର ଦ୍ରବ୍ୟବିଶେଷ।

ପଟୋଟଜ—କ୍ଲୀ.ବି.ଛତ୍ରାକ, ଛତ,ଚମ୍ପୁ।

ପଟୋଲ—କ୍ଲୀ. ବି. (ପଟ୍+ଓଲ) ବସ୍ତ୍ରବିଶେଷ, ସ୍ୱନାମ ପ୍ରସିଦ୍ଧ ଲତିକା ଫଳ ।

ପଟୋଲକ—ପୁଂ. ବି. ଶୁକ୍ତି, ଶାମୁକା ।

ପଟୋଲପତ୍ର—କ୍ଲୀ.ବି.ବଲ୍ଲୀଶାକବିଶେଷ, ପଲ୍ତା ।

ପଟୋଲାଦି—ପୁଂ.ବି. ସୁଶ୍ରୁତୋକ୍ତ ଗଣଭେଦ, ପଟୋଲପତ୍ର, ରକ୍ତଚନ୍ଦନ, ମୂର୍ବା, ଗୁଡୁଚୀ,ଅକାନବିଲ୍ୱୀ ଓ କଟୁକୀ ।

ପଟୋଲାଦି କ୍ୱାଥ—ବି. ପଟୋଲପତ୍ର, କଟୁକୀ, ଶତମୂଳୀ, ତ୍ରିଫଳା, ଗୁଡୁଚୀ ପ୍ରଭୃତିର କ୍ୱାଥବିଶେଷ ।

ପଟୋଲାଦ୍ୟଘୃତ—କ୍ଲୀ. ବି.ଚକ୍ରଦତ୍ତୋକ୍ତ ଘୃତଭେଦ ।

ପଟୋଲିକା—ସ୍ତ୍ରୀ.ବି.ଜହ୍ନି, କୁଆମଇତା ।

ପଟୋଲୀ—ସ୍ତ୍ରୀ.ବି.(ପଟୋଲ+ଈ)ଜହ୍ନି।

ପଣ୍ଡ—କ୍ଲୀ. ବି. ( ପଟ୍+ତ ) ସନନ୍ଦ, ଧୋବାଗଣ୍ଡି, ଗ୍ରାମ, ନଗର, ଟିଳା, ବ୍ରଣାଦିର ବନ୍ଧନ, ପେଷଣ ପ୍ରସ୍ତର, ଚଉପଥ, ଚକ, କୌଟିଷେୟ, ଗୁନ୍ଦୁଆ, ଲୁଗା, ଖୋଟ, ଘୋଡ଼ାର ପେଟୀ,ପଣ୍ଡା, ପୀଠ, ଢାଲ, ପାଗ, ଉତ୍ତରୀୟ,ରେଶମ, ରାଜସିଂହାସନ, ପଣ୍ଡି, ମୁକୁଟ, କାଷ୍ଠାସନ ।

ପଣ୍ଡକ—ପୁଂ.ବି.ପଣ୍ଡ, ତାମ୍ରପଟା, ଉତ୍କୀର୍ଣ୍ଣ ଶାସନାଦି, ମୋକଦ୍ଦମାର ନଥି, ପଗଡ଼ି

ପାଇଁ ରେଶମୀ ବସ୍ତ୍ର, ବୃକ୍ଷବିଶେଷ, ଦଲାଲ ।
ପଟ୍ଟଗୃହ—ବି. (ପଟ୍ଟ + ଗୃହ)ତମ୍ବୁ, ବସ୍ତ୍ରନିର୍ମିତ ଗୃହ ।
ପଟ୍ଟଜ—କ୍ଲୀ.ବି.ବସ୍ତ୍ରବିଶେଷ, ପାଟଲୁଗା ।
ପଟ୍ଟଜ୍ୟୋତିଷୀ—ବି. ରାଜାଙ୍କର ପ୍ରଧାନ ଜ୍ୟୋତିଷୀ ପଣ୍ଡିତ ।
ପଟ୍ଟଦଲକ—ବି. ନାଗରବିଶେଷ ।
ପଟ୍ଟଦେବୀ—ସ୍ତ୍ରୀ. ବି. ସିଂହାସନଯୋଗ୍ୟା କୃତାଭିଷେକା ରାଜ୍ଞୀ, ପାଟରାଣୀ ।
ପଟ୍ଟନ—କ୍ଲୀ.ବି.ପଟ୍ଟଣା, ନଗର, ଗ୍ରାମ ।
ପଟ୍ଟନାୟକ—ବି.ରାଜକର୍ମଚାରୀଙ୍କ ଉପାଧିବିଶେଷ ।
ପଟ୍ଟମା—ସ୍ତ୍ରୀ. ବି. ପତ୍ତନ ।
ପଟ୍ଟମଙ୍ଗଳମ୍—ମଦୁରା ଜିଲାର ଅନ୍ତର୍ଗତ ଗୋଟିଏ ନଗର ।
ପଟ୍ଟମହିଷୀ—ସ୍ତ୍ରୀ. ବି. ପାଟରାଣୀ ।
ପଟ୍ଟରଙ୍ଗ—କ୍ଲୀ.ବି. ପତ୍ରରଙ୍ଗ, ପତାଙ୍ଗ, ବକମ କାଠ ।
ପଟ୍ଟରଞ୍ଜକ—କ୍ଲୀ.ବି. ପତରଙ୍ଗ, ପତାଙ୍ଗ, ବକମ କାଠ ।
ପଟ୍ଟରାଜ—ବି. ମହାରାଷ୍ଟ୍ରଦେଶୀୟ ପୂଜାହାରୀ ବ୍ରାହ୍ମଣଙ୍କ ଉପାଧି ।
ପଟ୍ଟବନ୍ଧୋତ୍ସବ—ବି. ରାଜାମାନଙ୍କର ରାଜ୍ୟାଭିଷେକ ସମୟର ଉତ୍ସବବିଶେଷ
ପଟ୍ଟବସ୍ତ୍ର—ବି. ପାଟଲୁଗା, ତମ୍ବୁ ।
ପଟ୍ଟଶାକ—ବି. ନଳିତା ଶାକ ।
ପଟ୍ଟଶାଲୀ—ବି.ଧାରବାଡ଼ ପ୍ରଦେଶବାସୀ ତନ୍ତୁବାୟ ଜାତି ।
ପଟ୍ଟସୂତ୍ରକାର—ଜାତିବିଶେଷ, ଗୁଟିପୋକର ଗୃହ ଓ ରେଶମର ସୂତାଦି ପ୍ରସ୍ତୁତ କରିବା ଏମାନଙ୍କର ବ୍ୟବସାୟ ।
ପଟ୍ଟା—ବି. ମହାରାଷ୍ଟ୍ରୀୟମାନଙ୍କର ତରବାରିବିଶେଷ, ଜମି ଭୋଗ କରିବା ନିମିତ୍ତ ଜମିଦାରଠାରୁ ପ୍ରାପ୍ତ ଅନୁମତି ପତ୍ର ।
ପଟ୍ଟାଗ୍ରାର୍ଯ୍ୟ—ବି.ଦକ୍ଷିଣାତ୍ୟବାସୀ ପ୍ରାଚୀନ ପଣ୍ଡିତମାନଙ୍କର ଉପାଧିବିଶେଷ ।
ପଟ୍ଟାମ୍ବର—ବି. ପାଟବସ୍ତ୍ର ।
ପଟ୍ଟାର—ବି. ଦେଶବିଶେଷ ।
ପଟ୍ଟାରକ—ତ୍ରି.ବି°. ପଟ୍ଟାରଦେଶଭବ ।
ପଟ୍ଟାବାସ—ବି. ତମ୍ବୁ, ପଟ୍ଟଗୃହ ।
ପଟ୍ଟାର୍ହୀ—ସ୍ତ୍ରୀ. ବି. ପାଟରାଣୀ ।
ପଟ୍ଟିକା—ସ୍ତ୍ରୀ.ବି.(ପଟ୍ଟ+କ+ଆ)ରକ୍ତବର୍ଣ୍ଣ ଲୋଧ୍ର, ବିତସ୍ତି ପ୍ରମାଣ ବସ୍ତ୍ର, ପଟା, ପଟ୍ଟୀ, ଅଟ୍ଟାଳ ।
ପଟ୍ଟିକାଖ୍ୟ—ପୁଂ. ବି. ରକ୍ତଲୋଧ୍ର ।
ପଟ୍ଟିକାର—ତ୍ରି.ବି°.ପଟ୍ଟବସ୍ତ୍ର ବୟନକାରୀ
ପଟ୍ଟିକାଲୋଧ୍ର—ପୁଂ.ବି. ରକ୍ତଲୋଧ୍ର ଗଛ ।
ପଟ୍ଟିକାବାପକ—ପୁଂ. ବି. ଯେଉଁମାନେ ଲୋଧ୍ରବପନ କରନ୍ତି ।
ପଟ୍ଟିକାବାୟକ—ପୁଂ. ବି. ଯେଉଁମାନେ ରେଶମର ଫିତା ବୁଣନ୍ତି ।
ପଟ୍ଟିଉଦଣ୍ଡୁ—ବି. ସିଂହଳ ଦ୍ୱୀପବାସୀ କୌଣସି ଜାତିର ଶାଖାବିଶେଷ ।
ପଟ୍ଟିନ୍—ପୁଂ. ବି. ପଟ୍ଟିକା ଲୋଧ୍ର ।
ପଟ୍ଟିଲ—ପୁଂ. ବି. ପୂତିକରଞ୍ଜ ।
ପଟ୍ଟିଲୋଧ୍ର—ପୁଂ. ବି. ପଟ୍ଟିକା ଲୋଧ୍ର, ଲାଲଲୋଧ୍ର ।
ପଟ୍ଟିଲୋଧ୍ରକ—ପୁଂ. ବି. ପଟ୍ଟିକା ଲୋଧ୍ର, ଲାଲଲୋଧ୍ର ।
ପଟ୍ଟିଶ(ସ)—ପୁଂ. ବି. ଦୁଇଆଡ଼େ ଧାର ଥିବା ଅସ୍ତ୍ରବିଶେଷ ।
ପଟ୍ଟୀ—ସ୍ତ୍ରୀ. ବି. ପଟ୍ଟିକାଲୋଧ୍ର, ଲଲାଟଭୂଷା, ଉଲ ସାରକ, ଅଶ୍ୱର ବକ୍ଷସ୍ଥଳର ବନ୍ଧନ ରଜ୍ଜୁ ।
ପଟ୍ଟୀ—ପଞ୍ଜାବ ପ୍ରଦେଶର ପୁରାତନ ନଗରବିଶେଷ, ଅଯୋଧ୍ୟାର ତହସିଲବିଶେଷ, ଜମିର ପରିମାଣବିଶେଷ, ଶଙ୍ଖବିଶେଷ
ପଟ୍ଟୀକାର—ବି. ଜାତିବିଶେଷ ।
ପଟ୍ଟୀଶ—ପୁଂ. ବି. ମହାଦେବ ।
ପଟ୍ଟୀଶ(ସ)—ପୁଂ.ବି. ଅସ୍ତ୍ରବିଶେଷ ।
ପଟ୍ଟେରକ—ବି. ବୃକ୍ଷବିଶେଷ ।
ପଟ୍ଟୋପାଧ୍ୟାୟ—ପୁଂ. ବି. ଯେଉଁମାନେ ଦାନ ବିଷୟକ ପଟ୍ଟା ଲେଖନ୍ତି ।
ପଟ୍ଟୋଲିକା—ସ୍ତ୍ରୀ.ବି. (ପଟ୍ଟ + ଉଲ + କ. ଆ) ପଟ୍ଟା ଆଇନ ବିଷୟକ ଲିଖିତ ମନ୍ତବ୍ୟ ।
ପଠ୍‌ଚ୍ଚ—ଗ୍ରା. (ଲରିଆ) ବି. କାଙ୍କୁଡ଼ି ।
ପଠକ—ପୁଂ.ବି. (ପଠ+କ.ଅକ)ପାଠକର୍ତ୍ତା, ପଢୁଥିବା (ବ୍ୟକ୍ତି) । [ ବସ୍ତା ।
ପଠଦଶା—ସ୍ତ୍ରୀ.ବି.ପଢ଼ାର ସମୟ,ପ୍ରୁଚ୍ଚା-
ପଠନ—କ୍ଲୀ.ବି. (ପଠ୍+ଅନ) ଅଧ୍ୟୟନ, ପାଠ, ଆବୃତ୍ତି ।
ପଠନପାଠନ—ବି. ନିଜେ ପଢ଼ିବା ଓ ଅନ୍ୟକୁ ପଢ଼ାଇବା ।
ପଠନୀୟ—ତ୍ରି.ବି° (ପଠ+ଅନୀୟ)ପାଠ୍ୟ, ପଢ଼ିବାର ଯୋଗ୍ୟ ।
ପଠନେଚ୍ଛୁ—ପୁଂ.ବି°.(୭ତତ୍ପୁ)ପଢ଼ିବାକୁ ଇଚ୍ଛୁକ, ପଠନାଭିଳାଷୀ ।
ପଠମଞ୍ଜରୀ—ସ୍ତ୍ରୀ.ବି.ଶ୍ରୀରାଗର ଚତୁର୍ଥ ରାଗିଣୀ
ପଠବନ—ପୁଂ. ବି. ଜଣେ ରାଜର୍ଷି ।
ପଠମଞ୍ଜରୀ—ସ୍ତ୍ରୀ. ବି. ରାଗିଣୀବିଶେଷ ।
ପଠା—ଗ୍ରା. ବି. ପୃଷ୍ଠଦେଶସ୍ଥ ବ୍ରଣରୋଗବିଶେଷ, ନଦୀ ମଧ୍ୟସ୍ଥ ଗୋଚର ସ୍ଥାନ, ପ୍ରେରଣ ।
ପଠାଇବା—ଗ୍ରା. କ୍ରି. ପ୍ରେରଣ କରିବା, ଅନ୍ୟ ଦ୍ୱାରା ପ୍ରେରଣ କରାଇବା ।
ପଠାଣ—ଯା. ବି. ଯବନ, ମୁସଲମାନ ଜାତିବିଶେଷ, (ଲ.ଅର୍ଥ) ଦୁଷ୍ଟ ବ୍ୟକ୍ତି ।
ପଠାଣିଯିବା—ଗ୍ରା. (ସମ୍ବଲ) କ୍ରି. ବିବାହିତା କନ୍ୟା ରଜସ୍ୱଳା ହେବା ପରେ ପ୍ରଥମେ ସ୍ୱାମୀ ଘରକୁ ଯିବା ।
ପଠାଣିସାମନ୍ତ—ଗ୍ରା.ବି. ଉତ୍କଳର ପ୍ରସିଦ୍ଧ ଜ୍ୟୋତିଷୀ ମହାମହୋପାଧ୍ୟାୟ ଚନ୍ଦ୍ରଶେଖର ସାମନ୍ତଙ୍କ ଡାକନାମ ।
ପଠି—ସ୍ତ୍ରୀ. ବି. ( ପଠ+ଇନ୍ ) ପଠନ, ପାଠ ।
ପଠିତ—ତ୍ରି.ବି°. (ପଠ+ତ) କୃତପାଠ, ପଢ଼ାସରିଥିବା, ଉଚ୍ଚାରିତ, ଅଧୀତ ।
ପଠିତବ୍ୟ—ତ୍ରି. ବି°. ( ପଠ+ତବ୍ୟ ) ପାଠ୍ୟ, ପଢ଼ିବାର ଯୋଗ୍ୟ ।
ପଠିତାଙ୍ଗ—କ୍ଲୀ. ବି. ମେଖଳାବିଶେଷ ।
ପଠିତି—ସ୍ତ୍ରୀ. ବି. ଶବ୍ଦାଳଙ୍କାରବିଶେଷ ।
ପଠ୍ୟମାନ—ତ୍ରି.ବି°. ଯାହା ପାଠ କରାହୋଇଅଛି ।
ପଡ଼୍‌ପଡ଼୍—ଗ୍ରା. ଅବ୍ୟ. ପଡ଼ ପଡ଼ ଶବ୍ଦ,

ବାରମ୍ବାର ଅଧୋବାୟୁ ନିର୍ଗମନର ଶବ୍ଦ

ପଡ଼ଗୃ(ଚୋ)ଇବା—ଗ୍ରା.କ୍ରି. ପରୋକ୍ଷରେ ହୋଇଥିବା ନିନ୍ଦାବାଦକୁ କହିଥିବା ବ୍ୟକ୍ତି ସଙ୍ଗେ ମୁକାବିଲା କରିବା ।

ପଡ଼ା—ଗ୍ରା.ବି.ପଲ୍ଲିଗ୍ରାମ, ଖଣ୍ଡ, ପଡ଼ିବା ।

ପଡ଼ି—ଗ୍ରା.ବି. କୌଣସି ଲୋକର ଭରଣ ପୋଷଣାର୍ଥ ଦିଆଯିବା ଦୈନିକ ଖଞ୍ଜା/ ଧାନ୍ୟ ବା ଖାଦ୍ୟସାମଗ୍ରୀ ।

ପଡ଼ିଆ—ଗ୍ରା.ବି. ପଦା, ସମତଳ, ଘାସ-ଭୂମି, ପଡ଼ିତ ଭୂମି, (ଗ୍ରା.ବିଂ) ପଡ଼ିତ, ଅକର୍ଷିତ, (ବାଛୁରି ଚଢ଼ି ଘଇଥିବାରୁ) ଯେଉଁ ଗାଈର ଦୁଗ୍ଧ କମିଯାଇଥାଏ, ନିରସା ।

ପଡ଼ିଆଭିଠିଆ—ଗ୍ରା. ବିଂ. ଅନାବାଦୀ ଓ ଆବାଦୀ (ଜମି) ।

ପଡ଼ିବା—ଗ୍ରା.କ୍ରି. ପତିତହେବା, (ସମସ୍ୟ) ଉପସ୍ଥିତ ହେବା, ସ୍ୱସ୍ଥାନରୁ ନିମ୍ନକୁ ଖସିବା, (ନଦୀ) ବହିଯାଇ ସାଗର-ଆଦିରେ ମିଶିବା, ଶଯ୍ୟାଗତ ହେବା, ଧରାହେବା, ମନମିଳିବା,ମେଳହେବା, ଲୋଡ଼ା ହେବା, ଲାଗିବା, ବାୟହେବା, ଆଲୋଚିତ ହେବା, ବିଖ୍ୟାତ ହେବା, ବନ୍ଦ ହେବା, ଫଳ ଘଟିବା, ଅବଶ ହେବା, ଖିଆପିଆ ହେବା, (ସୁବିଧା) ଜୁଟିବା, ଭୂମି ଉପରେ ବିସ୍ତୃତ ହେବା, ଆଶ୍ରମ୍ଭ କରି ରହିବା, ଉଚ୍ଚାରିତହେବା, ଜାତହେବା,(ରୋଗ)ଆକ୍ରମଣ କରିବା, ପାତିତ ହେବା, ମିଶ୍ରିତ ହେବା,(ଘରର ଚାଳଆଦି) ଉଡ଼ିଯିବା, ଇତସ୍ତତଃ ବିକ୍ଷିପ୍ତ ହେବା, ଉକ୍ତି ପ୍ରତ୍ୟୁକ୍ତି ରୂପେ କଥିତ ହେବା, ଲୁଣାହେବା, ପ୍ରବୃତ୍ତ ହେବା, ଝଣାଟିବା, ବାଡ଼ିବା, ବର୍ଷିବା, ମାଗ-ଣାରେ ମିଳିବା ।

ପଡ଼ିବାଛଟିବା—ଗ୍ରା. କ୍ରି. ବିକ୍ଷିପ୍ତ ହେବା ଓ ଉତ୍କ୍ଷିପ୍ତ ହେବା, (ଲ.ଅର୍ଥ) ଘନ-ଘନ ଗର୍ଜନ ବା ଉଚ୍ଚୈଃସ୍ୱର ବା ଅତ୍ୟାଚାର ଯୋଗୁଁ କର୍ମ୍ମମାନ ବା ଅସ୍ଥିର ହେବା ।

ପଡ଼ିମରିବା—ଗ୍ରା.କ୍ରି. କୌଣସି ସ୍ଥାନରେ କୋରରେ ପତିତ ହେବା ।

ପଡ଼ିରହିବା—ଗ୍ରା. କ୍ରି. କାର୍ଯ୍ୟ ଅସମାପ୍ତ ବା ଅକୃତ ହୋଇ ବହୁକାଳ ରହିବା, ବହୁକାଳ ରୋଗ ଯୋଗୁଁ ଶଯ୍ୟାଗତ ହୋଇ ରହିବା ।

ପଡ଼ିସା—ଗ୍ରା.ବି.ପ୍ରତିବାସୀ, ସାଇପଡ଼ିସା, (ଗ୍ରା.ବିଂ) ପ୍ରତିବେଶୀ, ପାର୍ଶ୍ୱସ୍ଥ ।

ପଡ଼ିହାରି—ଗ୍ରା. ବି. ଦ୍ୱାରପାଳ, ଦେବ-ପୂଜକବିଶେଷ ।

ପଡ଼ୋଶୀ—ଗ୍ରା. ବି. ପ୍ରତିବାସୀ ।

ପଢ଼ରେନ୍—ପ୍ରା. (ସମ୍ବଲ) ବି. ଗଡ଼ାଣି, ତଳଆଡ଼କୁ ଢାଲୁ ।

ପଢ଼ା—ଗ୍ରା. ବି. ପଠନ, ଶିକ୍ଷା, (ଗ୍ରା.ବିଂ) ପଠିତ ହୋଇଥିବା, ଶିକ୍ଷିତ ।

ପଢ଼ା(ଚୋ)ଇବା—ଗ୍ରା. କ୍ରି. ଅଧ୍ୟାପନା କରିବା, ପରାମର୍ଶ ଦେବା । [ ଶିକ୍ଷା ।

ପଢ଼ାପଢ଼ି—ଗ୍ରା.ବି. ପଠନ କର୍ମ, ବିଦ୍ୟା-

ପଢ଼ି—ପ୍ରା. ( ବାଲେଶ୍ୱର )ବି. ମୂଳଆଙ୍କ କଣ୍ଠିନ, ମୂଳ ।

ପଢ଼ିଆରି—ଗ୍ରା. ବି. ଦ୍ୱାରୀ, ଦ୍ୱାରରକ୍ଷକ, ଜଗନ୍ନାଥ ମହାପ୍ରଭୁଙ୍କ ସେବକବିଶେଷ

ପଢ଼ିବା—ଗ୍ରା.କ୍ରି. ପାଠକରିବା, ଅଧ୍ୟୟନ କରିବା, ଲେଖା ଅକ୍ଷରକୁ ପାଠ କରିବା

ପଢ଼ିହେବା—ଗ୍ରା. କ୍ରି. କୌଣସି ଅକ୍ଷର ସ୍ପଷ୍ଟରୂପେ ପଠିତ ହୋଇ ପାରିବା ।

ପଢୁଆ—ଗ୍ରା. ବିଂ. ( ସଂ-ପ୍ରଥମ ) ପ୍ରଥମ-ଜାତ (ସନ୍ତାନ) । ( ଅଷ୍ଟମୀ ।

ପଢୁଆଅଷ୍ଟମୀ—ଗ୍ରା. ବି. ମାର୍ଗଶିରର କୃଷ୍ଣ

ପଣକା—ପ୍ରା.(ସମ୍ବଲ)ବି.କପୋତ,କାପ୍ତା ।

ପଣଚୁ—ପ୍ରା. (ସିଂହଭୂମ)ବି. ଧନୁର୍ଗୁଣ ।

ପଣ—ବି. (ପଣ୍ +ଅ) ଶୌଣ୍ଡିକ, ଗୃହ, ବିଷ୍ଟୁ, ଅଶିସଂଖ୍ୟା, କୋଡ଼ିଏ ଗଣ୍ଡା କଉଡ଼ି, କାହାଣର ଏକ ଷୋଡ଼ଶାଂଶ, ଅଣା, ବିଣ୍ଡା, ବାଜି, ସରେଇ, କ୍ରୟ ବିକ୍ରୟ ଦ୍ରବ୍ୟ, ଚୁକ୍ତି, ପ୍ରତିଜ୍ଞା, ଜୁଆ-ଖେଳ, ଭଡ଼ା, ମୂଲ୍ୟ, କନ୍ୟାପଣ, ବର-ପଣ, ବେପାର, ଆଦାନ ପ୍ରଦାନ, ବ୍ୟବହାର, ବେତନ, ବନ୍ଧମୁଷ୍ଟି, ସନ୍ଧି, ସ୍ତୁତି, ପ୍ରଶଂସା, ପ୍ରାଚୀନ କାଳର ଏକ-ମୁଠା ଶସ୍ୟର ପରିମାଣ, କାର୍ଷାପଣ, କାହାଣ, ଷୋଳପଣ, (ଗ୍ରା.ବି)ବାଲିଙ୍ଗି, ଦମ୍ଭ, ମୁହିଁ ଭୁରୁଡ଼ୁ, (ଅମୁକ) କାର୍ଯ୍ୟ, ଶ୍ଳେଷଭାଷା, ଅଧିକାର, ଷୋଳ ଭାଗର ଏକଭାଗ, ଅବସ୍ଥା, କାଚୁଧନ, (ଯା. ବି) ଅଧସେରରୁ ଏକ ଦୋପଇସା କମ ଓଜନ ପରିମାଣ ।

ପଣଅଜା—ଗ୍ରା. ବି. ବୃଦ୍ଧ ପ୍ରମାତାମହ, ବୃଦ୍ଧ ପ୍ରପିତାମହ, ଅଜାଙ୍କ ଅଜା ।

ପଣକରିବା—ଗ୍ରା. କ୍ରି. ପ୍ରତିଜ୍ଞାକରିବା ।

ପଣକିଆ—ଗ୍ରା. ବି. ଦେଶୀୟ ଗଣିତଅନୁ-ସାରେ ଗୁଣନ ।

ପଣଗନ୍ଥି—ବି. ହାଟ, ବଜାର ।

ପଣନ୍ତ—ଗ୍ରା.ବି. ବସ୍ତ୍ରାଞ୍ଚଳ,ପିନ୍ଧିବା ବସ୍ତ୍ରର ଶେଷଭାଗ, ଯେଉଁ ପଟାମାନ ଯୋଡ଼ା ହୋଇ ଗୋଟିଆ ଶଗଡ଼ର ଅରଖିଆ ଚକ ତିଆରି ହୁଏ ।

ପଣଧା—ସ୍ତ୍ରୀ. ବି. ପଣ୍ୟାଧା ଭୂଣ ।

ପଣନ—କ୍ଲୀ. ବି. (ପଣ+ଅନ) ବିକ୍ରୟ, ପଣ୍ୟଦ୍ରବ୍ୟର ବଦଳ ।

ପଣନାଡ଼—ଗ୍ରା.ପୁଂ. ବି. ନାଡ଼ର ନାଡ଼, ନାଡୁଣୀର ନାଡ଼ ।

ପଣନୀୟ—ବିଂ. (ପଣ+ଅନୀୟ) ବିକ୍ରୟ ଯୋଗ୍ୟ, ଯାହା ପଣରୂପେ ରଖାଯାଇ-ପାରେ ।

ପଣପଣ—ଗ୍ରା.ବିଂ. ଅସଂଖ୍ୟ, ଏକପଣ ବା ଅଶି ସଂଖ୍ୟାରେ ଗଣିତ ।

ପଣଫର—କ୍ଲୀ.ବି.ଲଗ୍ନ ସ୍ଥାନଠାରୁ ଦ୍ୱିତୀୟ, ପଞ୍ଚମ, ଅଷ୍ଟମ ଓ ଏକାଦଶ ସ୍ଥାନ ।

ପଣବ—ପୁଂ. ବି. (ପଣ+ଅବ) ବାଦ୍ୟ-ଯନ୍ତ୍ରବିଶେଷ, ସଂସ୍କୃତଭାଷାର ଦଶାକ୍ଷର ଛନ୍ଦ ବିଶେଷ ।

ପଣବନ୍ଧ--ପୁଂ.ବି.(ତନ୍ତ୍ର) ନିୟମବିଶେ-ଷରେ ବନ୍ଧନ,ଚୁକ୍ତି,(ବିଂ)କୃତପ୍ରତିଜ୍ଞ ।

ପଣବା—ସ୍ତ୍ରୀ. ବି. ବାଦ୍ୟଯନ୍ତ୍ରବିଶେଷ ।

ପଣବାନକ—ବି. ନାଗରା ।

ପଣବନ୍—ପୁଂ. ବି. ମହାଦେବ ।

ପଣଶ(ସ)—ବୃହତ୍ କଣ୍ଟକାଚ୍ଛାଦିତ ଖାଦ୍ୟ ଫଳ ଓ ତାହାର ଅଙ୍କାଙ୍କିକ ଗଛ ।

ପଣସ—ପୁଂ. ବ. (ପଣ+ଅସ୍) ପଣ୍ୟ-ଦ୍ରବ୍ୟ, ଫଳବିଶେଷ । [ ସ୍ତୁପା ।

ପଣସବୋଦା—ଗ୍ରା. ବ. ପାଚିଲା ପଣସର

ପଣସୁନ୍ଦରୀ—ସ୍ତ୍ରୀ. ବ. (କ.ଧା) ବେଶ୍ୟା ।

ପଣସ୍ତି—ବ. କପର୍ଦ୍ଦକ, କଉଡ଼ି ।

ପଣସ୍ତ୍ରୀ—ସ୍ତ୍ରୀ. ବ. କୁଳଟା, ବେଶ୍ୟା ।

ପଣା—ଗ୍ରା. ବ. ( ଫ-ପ୍ରଧାନକ ) ଗୁଡ଼ ବା କଦଳୀ ମିଶ୍ରିତ ଜଳ,ଆଖୁବୋଉଥ, (ଗ୍ରା.ବଂ) କୁଟିବା ନିମନ୍ତେ ଡିଙ୍କିମୁଣ୍ଡା ଗାତରେ ଭରିହୋଇଥିବା ।

ପଣାଙ୍ଗନା—ସ୍ତ୍ରୀ. ବ. (ପଣ+ଅଙ୍ଗନା) ବେଶ୍ୟା, କୁଳଟା ।

ପଣାତୀର୍ଥ—ବ. ତୀର୍ଥବିଶେଷ ।

ପଣାପଣ—ବ. (ପଣ+ଆପଣ) କୌଣସି ପଣ୍ୟର ଦରଦାମ୍ ନିରୂପଣ,ମୂଲଚୂଲ କରିବା ।

ପଣାସ୍ତ୍ରୀ—ସ୍ତ୍ରୀ. ବ. କ୍ରୟ ବିକ୍ରୟ ରୂପ ବ୍ୟବହାର, ସ୍ତୁତି, ଦ୍ୟୂତ ।

ପଣାୟିତ(ପଣିତ)—ବି.ବଂ.(ପଣ+ଆୟ+ତ) ସ୍ତୁତ,ବ୍ୟବହୃତ, କ୍ରୀତ,ବିକ୍ରୀତ, ପ୍ରଶଂସିତ, ବର୍ଣ୍ଣିତ ।

ପଣାସଂକ୍ରାନ୍ତି—ବ. ମହାବିଷୁବ ସଂକ୍ରାନ୍ତି, ବୈଶାଖ ମାସର ପ୍ରଥମ ଦିନ ।

ପଣାସ୍ଥି—କ୍ଲୀ. ବ. କଉଡ଼ି ।

ପଣାସ୍ଥିକ—କ୍ଲୀ. ବ. କଉଡ଼ି ।

ପଣି—ବ. ବଣିକ, ପଣଧାରୁ, (ଗ୍ରା.ବ) ଟଙ୍କାମୁଣ୍ଡେ ଅଣାଏ ବା କାହାଣମୁଣ୍ଡେ ପଣେ ହିସାବରେ ନିର୍ଦ୍ଧାରିତ ରାଜସ୍ୱ ବା କମିଶନ୍, (ବଂ) ଏଡେ ପାଉଣ୍ଡ ଓଜନର ।

ପଣିଆ(ଆଁ)—ଗ୍ରା. ବ. (ବିଶେଷ୍ୟ ଓ ବିଶେଷଣ ପରେ ଭାବାର୍ଥ ପ୍ରତ୍ୟୟ) ଯଥା—ମନୁଷ୍ୟପଣିଆଁ,ସୁନ୍ଦରପଣିଆଁ ।

ପଣିକ—ପୁଂ. ବ. ପଣ ।

ପଣିତ—ବି. ବଂ. (ପଣ+ମି.ତ) କ୍ରୀତ, ବ୍ୟବହୃତ, ବିକ୍ରୀତ, ସ୍ତୁତ, ବର୍ଣ୍ଣିତ, (କ୍ଲୀ.ବ) ବାଜି ବା ପଣ ।

ପଣିତବ୍ୟ—ବି. ବଂ. ( ପଣ+ତବ୍ୟ ) ପଣ୍ୟ, କ୍ରୟବିକ୍ରୟ ଯୋଗ୍ୟ,ବାଜିରୂପେ ରଖାଯିବାର ଉପଯୁକ୍ତ ।

ପଣିତା—ପୁଂ. ବଂ. ( ପଣ+କ.ତୃ ) ସ୍ତୋତା, କ୍ରେତା, ବିକ୍ରେତା, (ସ୍ତ୍ରୀ.ବଂ) କ୍ରୀତା, ବିକ୍ରୀତା ।

ପଣିନ୍—ବି. ବଂ. କ୍ରୟାଦି ବ୍ୟବହାର-ଯୁକ୍ତ, ସ୍ତୁତିଯୁକ୍ତ, (ବ) ଋଷିବିଶେଷ ।

ପଣିବା—ଗ୍ରା. କ୍ରି. କୁଟିବା ନିମନ୍ତେ କୌଣସି ବସ୍ତୁକୁ ଡିଙ୍କିମୁଣ୍ଡାରେ ସଜ୍ଜିତ କରିବା ବା ଭରିବା, ବାଧାଆଦିଦ୍ୱାରା ଉପର୍ଯ୍ୟୁପରି ବସ୍ତୁ ପ୍ରହାର କରିବା, କୌଣସି ସ୍ଥାନରେ କୌଣସି ବସ୍ତୁ ବହୁପରିମାଣରେ ଯୋଗାଇବା ।

ପଣେ—ଗ୍ରା. ବ. କଚ୍ଛଧନ, (ଗ୍ରା.ଅବ୍ୟ) ସଂଖ୍ୟାରେ ଏକପଣ ବା ଗୋ ୮୦ ଟା, ଏକଷୋଡ଼ଶାଂଶ, ବହୁସଂଖ୍ୟକ ।

ପଣ୍ଡଲଉଣି-ବ. ବୋମ୍ବାଇ ପ୍ରେସିଡେନ୍ସୀର ରେବାକାଣ୍ଠାର ଅନ୍ତର୍ଗତ ସଂଖେଡ଼ା-ମେବାସେର ଅଧିକୃତ କ୍ଷୁଦ୍ର ସାମନ୍ତ-ରାଜ୍ୟ । [ ରଜା ।

ପଣ୍ଡଲସୃନ୍—ବ. ଏକଜଣ ପ୍ରାଚୀନ ଗ୍ରୀକ୍

ପଣ୍ଡ୍କା--ପ୍ରା.(ସମ୍ବଲ)ବ.କପୋତ,କାପ୍ତା ।

ପଣ୍ଡ—କ୍ଲୀ. ବ. (ପଣ୍ଡ+ଅ) ନପୁଂସକ, କ୍ଳୀବ, (ବଂ) ନିଷ୍ଫଳ, ନଷ୍ଟ, ନିରର୍ଥକ ।

ପଣ୍ଡକ—ପୁଂ. ବ. ସାବର୍ଣ୍ଣିମନୁଙ୍କ ପୁତ୍ର-ବିଶେଷ, ପଣ୍ଡା ।

ପଣ୍ଡଗ—ପୁଂ. ବ. ଖୋଜା, ପଣ୍ଡକର ପାଠାନ୍ତର ।

ପଣ୍ଡରଣୀ—ବ.ମାଲବାର ଉପକୂଳବର୍ତ୍ତୀ ଗୋଟିଏ ପ୍ରଧାନ ବନ୍ଦର ।

ପଣ୍ଡଶ୍ରମ—ବ. ଅନର୍ଥକ ଆୟାସ,ବିଫଳ-ଯତ୍ନ, ନିରର୍ଥକ ଶ୍ରମ ।

ପଣ୍ଡା—ସ୍ତ୍ରୀ. ବ. ବିଜ୍ଞାନ, ଜ୍ଞାନ,ତତ୍ତ୍ୱବୁଦ୍ଧି, ଶାସ୍ତ୍ରଜ୍ଞାନ, ବେଦୋଜ୍ଜ୍ୱଳା ବୁଦ୍ଧି, ( ଗ୍ରା.ବ ) ଦେବପୂଜକ ନିମ୍ନଶ୍ରେଣୀର ବ୍ରାହ୍ମଣ, ପୂଜାହାରୀ ବ୍ରାହ୍ମଣ, ତୀର୍ଥରେ ଦର୍ଶନାଦି କରାଇବା ପାଇଁ ନିଯୁକ୍ତ ପ୍ରତ୍ୟେକ ଯାତ୍ରୀର ନିର୍ଦ୍ଦିଷ୍ଟ ତୀର୍ଥ ଗୁରୁ, ଅଣ୍ଡିରା ମଇଁଷି, ପେଡୁଅ ।

ପଣ୍ଡପଡିଆଣ—ଗ୍ରା. ବ. ଦେବପୂଜକ ବ୍ରାହ୍ମଣ ଓ ଶୂଦ୍ର ସେବକମାନେ ।

ପଣ୍ଡାପୂର୍ବ—କ୍ଲୀ. ବ. ଫଳସାଧନର ଅଯୋଗ୍ୟ ଅଦୃଷ୍ଟବିଶେଷ ।

ପଣ୍ଡାରସ—ବ. ନୀଚ ବା ଶୂଦ୍ରଶ୍ରେଣୀସ୍ଥ ହିନ୍ଦୁ ସନ୍ନ୍ୟାସୀ ।

ପଣ୍ଡିଆ—ଗ୍ରା.ବ. ବୃକ୍ଷର ଅକର୍ମଣ୍ୟ ଅଂଶ ।

ପଣ୍ଡିକି —ପ୍ରା. (କଟକ) ବ. କପୋତ ।

ପଣ୍ଡିଚେରି —ଗ୍ରା. ବ. ଭାରତର ମାନ୍ଦ୍ରାଜ ପ୍ରେସିଡେନ୍ସୀରେ ଫ୍ରାନ୍ସଦେଶ ଶାସିତ ସମୁଦ୍ର କୂଳବର୍ତ୍ତୀ ନଗର ।

ପଣ୍ଡିତ—ପୁଂ. ବ. ଶାସ୍ତ୍ରଜ୍ଞବ୍ୟକ୍ତି, ମହା-ଦେବ, ବୁଦ୍ଧଗ୍ରହ, (ପୁଂ.ବଂ) ବିଦ୍ୱାନ୍, ନିପୁଣ, ଦକ୍ଷ,ମେଧାବୀ, (ଗ୍ରା.ବ)ସଂସ୍କୃତ ଓ ଓଡ଼ିଆ ଭାଷାର ଶିକ୍ଷକ, ଗୁରୁ, ଜ୍ୟୋତିଷଜ୍ଞ ବ୍ରାହ୍ମଣ, କାର୍ଣ୍ଣୀସ୍ଥ ଓ ବିହାରସ୍ଥ ବ୍ରାହ୍ମଣଙ୍କ ବଂଶୋପାଧି, କମ-ବ୍ରାହ୍ମଣ ।

ପଣ୍ଡିତକ—ପୁଂ.ବ. ଧୃତରାଷ୍ଟ୍ରର ଏକପୁତ୍ର, ପଣ୍ଡିତ ଦେଖ ।

ପଣ୍ଡିତଜାତୀୟ—ପୁଂ. ବଂ. ସାମାନ୍ୟରେ ଚତୁର, ମାତୃଗ୍ରାମବିଶେଷ, ମହାମାନ୍ୟ-ବିଶେଷ ।

ପଣ୍ଡିତତା—ସ୍ତ୍ରୀ.ବ.ପଣ୍ଡିତତ୍ୱ,ପାଣ୍ଡିତ୍ୟ ।

ପଣ୍ଡିତପ୍ରବର—ବଂ. ଶ୍ରେଷ୍ଠ ପଣ୍ଡିତ ।

ପଣ୍ଡିତବାର—ବ. ବୁଧବାର ।

ପଣ୍ଡିତମାନିକ—ବି. ବଂ. ମୂର୍ଖ, ସାମାନ୍ୟ ପଣ୍ଡିତହୋଇ ଯେ ମହାପଣ୍ଡିତବୋଲି ଅଭିମାନ କରନ୍ତି ।

ପଣ୍ଡିତମାନୀ—ବି. ବଂ. ମୂର୍ଖ ।

ପଣ୍ଡିତମୂର୍ଖ—ବ. ବିଦ୍ୱାନ୍ ଅଥଚ ନିର୍ବୁଦ୍ଧି ବ୍ୟକ୍ତି ।

ପଣ୍ଡିତମ୍ମନ୍ୟ—ପୁଂ. ବଂ. (ପଣ୍ଡିତ+ମନ୍+ଯ) ପଣ୍ଡିତମାନ୍ୟ ଦେଖ ।

ପଣ୍ଡିତମ୍ମନ୍ୟ—ବି. ବ . ପଣ୍ଡିତମାନୀ ।

ପଣ୍ଡିତମ୍ମନ୍ୟମାନ—ବି.ବଂ. ଯେ ନିଜକୁ ପଣ୍ଡିତ ବୋଲି ବିବେଚନା କରେ ।

ପଣ୍ଡିତରାଜ—ପୁଂ. ବ. ପଣ୍ଡିତଶ୍ରେଷ୍ଠ ।

ପଣ୍ଡିତସୂର—ବ.ନରସିଂହ ଚମ୍ପୂପ୍ରଣେତା ।

ପଣ୍ଡିତା—ସ୍ତ୍ରୀ.ବଂ. (ପଣ୍ଡିତ+ଆ)ବିଜ୍ଞତା,

ବଦୁଷୀ (ନାସ୍ତି)।
ପଣ୍ଡିତାଭିମାନୀ—ପୁଂ. ବିଂ. (ପଣ୍ଡିତ+ଅଭିମାନ+ଇନ୍) ପଣ୍ଡିତମାନୀ ଦେଖ।
ପଣ୍ଡିତାୟମାନ—ଯେ ପୂର୍ବେ ପଣ୍ଡିତ ନ ଥିଲେ କିନ୍ତୁ ବର୍ତ୍ତମାନ ପଣ୍ଡିତ ପାଲଟି ଅଛନ୍ତି, ଭୁଷ୍ପଣ୍ଡିତ।
ପଣ୍ଡିତିମା—ପୁଂ. ବ. ପାଣ୍ଡିତ୍ୟ।
ପଣ୍ଡୁ—ସ୍ତ୍ରୀ. ବ. ମାର୍ଗଶିର ପୂର୍ଣ୍ଣିମା, ଶୀତଋତୁର ଆରମ୍ଭ, (ବିଂ) ପାଣ୍ଡୁର,ମାଟିଆ ମିଶା ହଳଦିଆ।
ପଣ୍ଡୁକ—ପୁଂ. ବିଂ. ବାତରୋଗ ଯୁକ୍ତ, ପଙ୍ଗୁ, ଛୋଟା।
ପଣ୍ଣେଇ—ପ୍ରା. (ସମ୍ବ) ବ. ଯୋଦ୍ଧା।
ପଣ୍ୟ—ତ୍ରି. ବିଂ. (ପଣ+ଯ) ବିକ୍ରେୟ, ଯାହା କିଣାଯାଇପାରେ ବା ବିକାଯାଇପାରେ, ପ୍ରଶଂସନୀୟ, ବିକ୍ରୀତ, (ବ) ବିକ୍ରେୟ ବସ୍ତୁ, ସଉଦା, ମୂଲ୍ୟ, ମାସୁଲ, ଭଡ଼ା, ବେପାର, ବଜାର, ହାଟ, ଦୋକାନ।
ପଣ୍ୟାଜୀବ—ପୁଂ.ବ. (ବ.ବ୍ରୀ) ବ୍ୟବସାୟୀ, ବେପାରୀ, ସଉଦାଗର, ବଣିକ।
ପଣ୍ୟତା—ସ୍ତ୍ରୀ. ବ. ପଣବିଷୟତା।
ପଣ୍ୟଦାସୀ—ବ. (କ.ଧା) ପୋଇଲି।
ପଣ୍ୟଦ୍ରବ୍ୟ—କ୍ଳୀ. (କ.ଧା) ସଉଦା, ସଉଦାପାତି, ବଜାରରେ ବିକା କିଣା ହେବା ଦ୍ରବ୍ୟ।
ପଣ୍ୟପତି—ପୁଂ. ବ. ବଡ଼ ବେପାରୀ, ସଉଦାଗର।
ପଣ୍ୟପରିଣୀତା—ସ୍ତ୍ରୀ. ବ. ମୂଲ୍ୟଦେଇ ବିବାହ କରିବା ସ୍ତ୍ରୀ, ରାଜାମାନଙ୍କର ରକ୍ଷିତା ପତ୍ନୀବିଶେଷ।
ପଣ୍ୟଫଳା—ବ. (୬ତତ୍) ବେପାରରୁ ଉତ୍ପନ୍ନ ଲାଭ।
ପଣ୍ୟଭୂମି—ସ୍ତ୍ରୀ. ବ. ପଣ୍ୟଶାଳୀ, ଯେଉଁ ଗୃହରେ ପଣ୍ୟଦ୍ରବ୍ୟ ରଖାହୁଏ।
ପଣ୍ୟମୂଲ୍ୟ—କ୍ଳୀ. ବ. ଯେଉଁ ମୂଲ୍ୟଦେଇ ପଣ୍ୟଦ୍ରବ୍ୟ କିଣାଯାଏ।
ପଣ୍ୟଯୋଷିତା—ସ୍ତ୍ରୀ,ବ.ପଣ୍ୟ ସ୍ତ୍ରୀ,ବେଶ୍ୟା।
ପଣ୍ୟବିକ୍ରୟଶାଳା—ସ୍ତ୍ରୀ. ବ. ଦୋକାନଘର।
ପଣ୍ୟବିକ୍ରୟିନ୍—ପୁଂ. ବ. ବଣିକ।
ପଣ୍ୟବିଳାସିନୀ—ସ୍ତ୍ରୀ. ବ. ବେଶ୍ୟା।
ପଣ୍ୟବୀଥିକା—ସ୍ତ୍ରୀ.ବ. ଗୋଦାମ,ବିପଣୀ, ବଜାର, ହାଟ।
ପଣ୍ୟବୀଥୀ—ସ୍ତ୍ରୀ.ବ. କ୍ରୟ ବିକ୍ରୟ ସ୍ଥାନ, ହାଟ।
ପଣ୍ୟଶାଳା—ସ୍ତ୍ରୀ. ବ. (ପଣ୍ୟ+ଶାଳା) କ୍ରୟବିକ୍ରୟ ଗୃହ, ହାଟ, ବଜାର।
ପଣ୍ୟସ୍ତ୍ରୀ—ସ୍ତ୍ରୀ.ବ. (ପଣ୍ୟ+ସ୍ତ୍ରୀ)ବେଶ୍ୟା।
ପଣ୍ୟାଙ୍ଗନା—ସ୍ତ୍ରୀ.ବ. (ପଣ୍ୟ+ଅଙ୍ଗନା) ବେଶ୍ୟା।
ପଣ୍ୟାଜୀବ—ପୁଂ. ବ. ବଣିକ।
ପଣ୍ୟାଜୀବକ—କ୍ଳୀ. ବ. ହାଟ, ଯେଉଁଠାରେ ପଣ୍ୟଦ୍ରବ୍ୟ କ୍ରୟ ବିକ୍ରୟ ହୁଏ।
ପଣ୍ୟାନ୍ଧା—ପୁଂ. ସ୍ତ୍ରୀ. ବ. ତୃଣବିଶେଷ।
ପତ୍(ଦ୍)—ପୁଂ. ବ. ଚରଣ, ପାଦ।
ପତ—ବ. (ପତ୍+ଅ) ପକ୍ଷ, ଉଡ଼ିବା, ପତନ, ଅବତରଣ, ଗମନ, (ବିଂ) ସୁପରିପୁଷ୍ଟ।
ପତ—ତ୍ରି.ବିଂ. ପୁଷ୍ଟ, (କ୍ଳୀ) ପତନକର୍ତ୍ତା।
ପତକ—ପୁଂ. ବିଂ. (ପତ୍+କ.ଅକ) ପଡ଼ୁଥିବା,(ବ) ଜ୍ୟୋତିଷିକ ତାଲିକା।
ପତକା—ସ୍ତ୍ରୀ. ବ. (ସଂ-ପତାକା) ବାନା, ପତାକା, ଛୋଟମାଛ।
ପତକୁନ୍ତ—ପୁଂ. ବ. ପକ୍ଷିବିଶେଷ।
ପତଗ—ପୁଂ. ବ. ପକ୍ଷୀ।
ପତଙ୍ଗ—ପୁଂ. ସ୍ତ୍ରୀ. ବ. (ପତ୍+ଗମ୍+ଅ) ମଧୁମକ୍ଷି, ବାଣ, ପକ୍ଷୀ, ସୂର୍ଯ୍ୟ, ଝିଣ୍ଟିକା, ଶଲଭ, ଅଗ୍ନି, ଶର, ପାରଦ, ଶାରଦଧାନବିଶେଷ, ଖେଳିବାର ପେଣ୍ଡୁ, ଚନ୍ଦନବିଶେଷ, ଅଶ୍ୱ, ପିଶାଚ, ପର୍ବତ, ଲେଖାଆଦିରେ ବ୍ୟବହୃତ +ଚିହ୍ନ।
ପତଙ୍ଗମ—ପୁଂ.ସ୍ତ୍ରୀ.ବ. ପତଙ୍ଗ ଦେଖ।
ପତଙ୍ଗର—ପୁଂ. ବ. ଉତ୍ପ୍ଲବନ ଦ୍ୱାରା ଗତିଯୁକ୍ତ, ଚଢ଼ିପହଁରା।
ପତଙ୍ଗବୃତ୍—ତ୍ରି.ବିଂ.ପତଙ୍ଗପରି ଆଗ୍ରହବିଶିଷ୍ଟ, ପତଙ୍ଗର ଆଚରଣ।
ପତଙ୍ଗବୃତ୍ତି—ବ. (୬ତତ୍) ପତଙ୍ଗ ନିଆଁକୁ ଡେଇଁପଡ଼ିବା ପରି ଅବଶ୍ୟମ୍ଭାବୀ ବିପଦକୁ ଆକୃଷ୍ଟ ହେବା।
ପତଙ୍ଗଭବ—ବିଂ. (ପତଙ୍ଗ+ଭୂ+କ.ଅ) ସୂର୍ଯ୍ୟଙ୍କଠାରୁ ଉତ୍ପନ୍ନ।
ପତଙ୍ଗା—ସ୍ତ୍ରୀ. ବ. ଅଶ୍ୱ, ନଦୀବିଶେଷ।
ପତଙ୍ଗିକା—ସ୍ତ୍ରୀ.ବ. (ପତଙ୍ଗ+କ+ଆ) ମଧୁମକ୍ଷିକାବିଶେଷ, ଛୋଟପକ୍ଷୀ।
ପତଙ୍ଗିନ୍—ପୁଂ. ବ. ଖଗ ପକ୍ଷୀ।
ପତଞ୍ଚଲ—ପୁଂ. ବ. ଗୋତ୍ର ପ୍ରବର୍ତ୍ତକ ଋଷିବିଶେଷ।
ପତଞ୍ଜିକା—ସ୍ତ୍ରୀ. ବ. ଧନୁର୍ଜ୍ୟା,ଧନୁର ଡୋର।
ପତଞ୍ଜଲି—ପୁଂ. ବ. ଯୋଗଶାସ୍ତ୍ରପ୍ରଣେତା ମୁନିବିଶେଷ, ପାଣିନିର ମହାଭାଷ୍ୟ ପ୍ରଣେତା।
ପତତ୍—ତ୍ରି. ବିଂ. ପତନଶୀଳ, ତଳକୁ ପଡ଼ୁଥିବା, ଉଡ଼ୁଥିବା, (ବ) ପକ୍ଷୀ।
ପତତ୍ପତଙ୍ଗ—ବ.(କ.ଧା) ଅସ୍ତ ହେଉଥିବା ସୂର୍ଯ୍ୟ।
ପତତ୍ପ୍ରକର୍ଷତା—ବ. ରଚନାର ଦୋଷବିଶେଷ।
ପତତ୍ର—କ୍ଳୀ. ବ. (ପତ+ତ୍ରୈ+ଅ) ପକ୍ଷିଡେଣା।
ପତତ୍ରି(ତ୍ରୀ)—ପୁଂ. ବ. (ପତତ୍ର+ଇ) ପକ୍ଷୀ, ବିହଙ୍ଗ, ଖଗ, ଘୋଡ଼ା, (ବିଂ) ଉଡ଼ୁଥିବା ଡେଣାବିଶିଷ୍ଟ।
ପତତ୍ରିକେତନ—ପୁଂ. ବ. ବିଷ୍ଣୁ, ଗରୁଡ଼ଧ୍ୱଜ।
ପତତ୍ରିନ୍—ପୁଂ. ବ. ପକ୍ଷୀ।
ପତତ୍ରିରାଜ—ପୁଂ.ବ. (୬ତତ୍)ପକ୍ଷୀରାଜ, ଗରୁଡ଼।
ପତଦ୍ଗ୍ରହ—ପୁଂ.ବ. (ପତତ୍+ଗ୍ରହ+କ.ଅ) ପିକଦାନୀ, ପ୍ରତିଗ୍ରହ।
ପତଦ୍ଭୀରୁ—ପୁଂ. ବ. (ପତତ୍+ଭୀରୁ) ବାଜପକ୍ଷୀ, ଛଞ୍ଚାଣ।
ପତନ—କ୍ଳୀ.ବ. (ପତ୍+ଅନ) ଉଡ଼ିବା, ସ୍ଖଳନ, ନାଶ, ପାପ, ପତିତ୍ୟ, ଚଳନ, ଭ୍ରଂଶ, ଓହ୍ଲାଇବା, ଖସିପଡ଼ିବା, ଅସ୍ତଗମନ, ମୃତ୍ୟୁ, ଗର୍ଭପାତ, (ଗଣିତ) ବିଯୋଗ, ଫେଡ଼ାଣ,(ଜ୍ୟୋତିଷ)ଗ୍ରହର ଅକ୍ଷାଂଶ।
ପତନଶୀଳ—ବିଂ. (ବ.ବ୍ରୀ) ବିନାଶ୍ୟ, ଯାହାର ପତନ ବା ବିନାଶ ଅବଶ୍ୟମ୍ଭାବୀ।

ପତନି—ଗ୍ରା.ବି(ସଂ-ପଠନ)ଲୁଗା,ସର୍ପିଆ ।
ପତନୀ—ଗ୍ରା. ବିଂ. ସରୁ ।
ପତନୀୟ—ବି. ବିଂ. (ପତ୍ + ସଂ.ଅନୀୟ) ପତ୍ୟ, ପତନାର୍ହ, ପତନଯୋଗ୍ୟ, ପତନଶୀଳ ।
ପତନୋଦ୍ୟତ—ବିଂ. (୭ତତ୍)ପଡ଼ିବାକୁ ଯାଉଥିବା, ଯାହା ଶୀଘ୍ର ପଡ଼ିଯିବ ।
ପତନୋନ୍ମୁଖ—ବିଂ. (୭ତତ୍) ପତନୋଦ୍ୟତ ଦେଖ ।
ପତନ୍ତକ—ବି. ଅଶ୍ୱମେଧ ଯାଗବିଶେଷ ।
ପତପତ—ଗ୍ରା.ଅବ୍ୟ. ବାୟୁଚାଳିତ ପତାକାଦିର ଶବ୍ଦ, ଶ୍ଳେଷ୍ମ ଶୋଷରେ ଅତି ଆନନ୍ଦ, (ଉପ୍ପାଦରେ)ପୁରୁପୁରୁ ।
ପତମ—ପୁଂ.ବି.(ପତ + ଅମ)ଚନ୍ଦ୍ର, ପକ୍ଷୀ, ପତଙ୍ଗ ।
ପତୟାଳୁ—ବି. ବିଂ. ପତନଶୀଳ ।
ପତୟିଷ୍ଣୁ—ବି. ବିଂ. ପତନଶୀଳ ।
ପତୟିଷ୍ଣୁକ—ବି.ବିଂ.ଇତସ୍ତତଃ ପତନଶୀଳ ।
ପତର—ବି.ବିଂ.(ପତ + କ.ଅର) ଗନ୍ତା, ଗମନଶୀଳ, (ବି) ଲୌହ ପିତ୍ତଳାଦି ଧାତୁର ପାତଆ, (ଗ୍ରା.ବି) ଗଛର ପତ୍ର, ଧାତୁଆଦିର ପାତଆ, ପତ୍ର, ଚଟି; ପୁସ୍ତକର କାଗଜ । [ ବାଘ ।
ପତରଖୁରୁକ—ପ୍ରା.(ବସ୍ତର)ବି. ଗଧିଆ-
ପତରପାଣି—ଗ୍ରା. ବି. ଖାଇବା ନିମନ୍ତେ ପତର ବିଛାଇବା ଓ ତହିଁ ଉପରେ ପାଣି ଛିଞ୍ଚିବା ।
ପତରଫଳ—ପ୍ରା. (ମେଦିନୀ)ବି. କହ୍ଣି ।
ପତରସଉରୁଣୀ—ସ୍ତ୍ରୀ. ବି.ପ ବଂଶୀୟ ସ୍ତ୍ରୀଜାତିବିଶେଷ ।
ପତରସୁନା—ଗ୍ରା.ବି.ପତଳା ପତ୍ର ଆକାରରେ ପ୍ରସ୍ତୁତ ଉତ୍କୃଷ୍ଟ ସୁନା ।
ପତରୁ—ବି.ବିଂ.(ପତ୍ + କ.ଅରୁ)ପତନଶୀଳ, ଗମନଶୀଳ ।
ପତଳା—ଗ୍ରା. ବିଂ. ସରୁ, ସୂକ୍ଷ୍ମ, ପାତଳ, ଯାହାର ବେଧ ଅତି କମ୍ ।
ପତା—ଯା. ବି. ଠିକଣା, ଚିହ୍ନ, ଖବର, ଗୂଢ଼ତତ୍ତ୍ୱ, ଆଖିର ଉପରସ୍ଥିତ ପିଛଡ଼ା, ପଲକ ।
ପତାଇବା—ଗ୍ରା. କ୍ରି. (କର) ପ୍ରସାରିତ କରିବା, ବଢ଼ାଇବା, ଆଘାତ ଅପେକ୍ଷାରେ ମୁଣ୍ଡକୁ ବା ଶରୀରର କୌଣସି ଅଙ୍ଗକୁ ଦେଖାଇବା, ଆଡ଼ିବା ।
ପତାକା—ସ୍ତ୍ରୀ. ବି. (ପତ୍ + ଅକ + ଆ) ଧ୍ୱଜ, ନିଶାଣୀ, ସୌଭାଗ୍ୟ, ପିଙ୍ଗଳୋକ୍ତ ନିର୍ଦ୍ଧାରଣାଙ୍କସମୂହ, ଚିହ୍ନ, ଲକ୍ଷଣ, ଜ୍ୟୋତିଷିକ ରାଶିଚକ୍ରବିଶେଷ, ଦଶଖର୍ବ ସଂଖ୍ୟା, ପ୍ରତି ସ୍ୱୀକାରଦ ନିର୍ଦ୍ଧାରଣ, ନାଟକାଙ୍ଗବିଶେଷ । [ ବିଶେଷ ।
ପତାକାସ୍ଥାନକ—କ୍ଲୀ. ବି. ନାଟକାଙ୍ଗ-
ପତାକିକ—ବି. ବିଂ. (ପତାକା+ଇକ) ପତାକାଯୁକ୍ତ, ଧ୍ୱଜବାହୀ । [ (ବି) ସେନା ।
ପତାକିନୀ—ସ୍ତ୍ରୀ. ବିଂ. ପତାକାଧାରିଣୀ,
ପତାକୀ—ବି. ବିଂ. ( ପତାକ+ଇନ୍ ) ପତାକାଧାରୀ,(ବି)ରିଷ୍ଟ ରିଷ୍ଟା ବୋଧକଚକ୍ରବିଶେଷ, ରଥ, ପତାକା, ସେନା ।
ପତାକୀଚକ୍ର—ବି. ( ଜ୍ୟୋତିଷ ) ଶିଶୁର ରିଷ୍ଟ ଗଣନାର୍ଥେ ଅଙ୍କିତ ଗ୍ରହଚକ୍ରବିଶେଷ ।
ପତାପତ—ବି. ବିଂ. ଅତିଶୟ ପତାକାଯୁକ୍ତ, ଉଡ୍ଡୀୟମାନ ପତାକାର ଅସ୍ଫୁଟ ଶବ୍ଦ ।
ପତି—ପୁଂ. ବି. (ପା + ଅତି) ମୂଳ,ଗତି, ପାଣି ଗୃହୀତା ବା ବରିତା, ଅଧିପତି, ଭର୍ତ୍ତା, ସ୍ୱାମୀ,(ଗ୍ରା.ବି) ଗଛେଇ ଗଛର ପତ୍ର, ବ୍ରାହ୍ମଣଙ୍କ ଉପାଧିବିଶେଷ ।
ପତିଆର—ଗ୍ରା. ବି. ଖାତିର, ବିଶ୍ୱାସ ।
ପତିଆଲ—ଗ୍ରା. ବି. ଉତ୍ତର ଭାରତର ରାଜପୁତ ରାଜ୍ୟବିଶେଷ । [ ଜାରକ ।
ପତିଂବରା—ସ୍ତ୍ରୀ. ବି. ସ୍ୱୟଂବରା, କୃଷ୍ଣ-
ପତିକ—ବି. କାର୍ଷାପଣ ନାମକ ଏକ ପ୍ରାଚୀନ ମୁଦ୍ରା ।
ପତିକାମା—ବି.ବିଂ. ପତ୍ୟଭିଳାଷିଣୀ ।
ପତିଗତପ୍ରାଣ—ପୁଂ.ବିଂ(ବ.ବ୍ରୀ) ପତିଙ୍କଠାରେ ଏକାନ୍ତ ଆସକ୍ତ ।
ପତିଗତପ୍ରାଣା—ସ୍ତ୍ରୀ.ବିଂ. (ବ.ବ୍ରୀ) ପତିଗତପ୍ରାଣର ସ୍ତ୍ରୀଲିଙ୍ଗ, ସତୀ ସ୍ତ୍ରୀ ।
ପତିଘାତିନୀ—ସ୍ତ୍ରୀ. ବିଂ. (ପତି+ହନ୍+ଇନ୍+ଈ) ସ୍ୱାମୀ ହତ୍ୟାକାରିଣୀ,ପତିନାଶିକା (ସ୍ତ୍ରୀ) ।
ପତିଘାତୀ—ପୁଂ. ବିଂ. ଯେ ଆପଣା ପ୍ରଭୁ ବା ସ୍ୱାମୀକୁ ହତ୍ୟା କରେ ।
ପତିଘ୍ନ—ପୁଂ.ବିଂ. ପତିଘାତୀ ଦେଖ, (ବି) ପତିନାଶ ସୂଚକ ଲକ୍ଷଣବିଶେଷ, (ସ୍ତ୍ରୀ) ପତିଘ୍ନୀ ।
ପତିତ—ବି. ବିଂ. ( ପତ+ତ ) ପଡ଼ିଯାଇଥିବା, ପରାଜିତ, ଅକର୍ଷିତ,ପଡ଼ିଆ, ସମାଜ ବହିର୍ଭୂତ, ଆଗତ, ଅତି ଅପବିତ୍ର, ପାପୀ ।
ପତିତପାବନ—ପୁଂ.ବିଂ.ପତିତର ପରିତ୍ରାଣକାରୀ, (ପୁଂ.ବି) ଈଶ୍ୱର ।
ପତିତବୃତ୍ତି—ବିଂ. ଜାତିଚ୍ୟୁତ ହୋଇ ଯେ ଜୀବନଯାପନ କରେ ।
ପତିତବ୍ୟ—ବିଂ. (ପତ + ତବ୍ୟ)ପତନଯୋଗ୍ୟ, ଯାହା ପଡ଼ିଯିବ ।
ପତିତସାବିତ୍ରୀକ—ବିଂ.(ବ.ବ୍ରୀ) ସାବିତ୍ରୀପରିଭ୍ରଷ୍ଟ ।
ପତିତସ୍ଥିତ—ବିଂ. ଉପଚିତ ।
ପତିତୋତ୍ପନ୍ନ—ପୁଂ.ବିଂ.(ବ.ବ୍ରୀ)ପତିତା ବା କୁଳଭ୍ରଷ୍ଟା ନାରୀ ଗର୍ଭଜାତ(ସନ୍ତାନ)
ପତିତୋଦ୍ଧାରଣ—ପୁଂ.ବି. ବିଂ. (ବ.ବ୍ରୀ) ପତିତପାବନ ଦେଖ ।
ପତିତ୍ୱ—କ୍ଲୀ. ବି. ( ପତି+ତ୍ୱ ) ପ୍ରଭୁତ୍ୱ, ପତିର ଧର୍ମ ।
ପତିତ୍ୱନ—କ୍ଲୀ.ବି. ଯୌବନ ।
ପତିଦେବତା—ସ୍ତ୍ରୀ.ବି.(ପତି+ଦେବତା) ପତିବ୍ରତା, ଯେଉଁ ସ୍ତ୍ରୀର ପତି ଏକମାତ୍ର ଦେବତା ।
ପତିଦେବା—ସ୍ତ୍ରୀ. ବି. ପତିବ୍ରତା ସ୍ତ୍ରୀ ।
ପତିଦ୍ୱିଷ୍—ସ୍ତ୍ରୀ. ବି. ପତିଦ୍ୱେଷିଣୀ ସ୍ତ୍ରୀ ।
ପତିଧର୍ମ—ପୁଂ.ବି.(୬ତତ୍) ସ୍ୱାମୀର ଧର୍ମ, (କ.ଧା) ପତିପ୍ରତି ପତ୍ନୀର କର୍ତ୍ତବ୍ୟ ।
ପତିପ୍ରାଣା—ସ୍ତ୍ରୀ.ବିଂ.ବ.ବ୍ରୀ;ପତିବ୍ରତା,ସତୀ ।
ପତିୟାନ—ବିଂ. ସ୍ୱାମୀ ପଥାନୁବର୍ତ୍ତୀ ।
ପତିରିପ୍—ସ୍ତ୍ରୀ. ବି. ପତିଦ୍ୱେଷିଣୀ ସ୍ତ୍ରୀ ।
ପତିଲୋକ—ପୁଂ.ବି.ପତିର ସହିତ ଧର୍ମା-

ଚରଣ ଦ୍ୱାରା ପ୍ରାପ୍ୟ ସ୍ୱର୍ଗାଦିଲୋକ, ପତିର ସମୀପ ।
ପତିବତ୍ନୀ—ସ୍ତ୍ରୀ. ବି. ସଧବା, ଅହିଅ, ସଭର୍ତ୍ତୃକା । [ ଦେଖ ।
ପତିବେଦନ—ପୁଂ.ବି.ପତିପ୍ରାପକ, ମହା-
ପତିବ୍ରତା—ସ୍ତ୍ରୀ. ବି. (ପତି+ବ୍ରତ+ଆ) ସାଧ୍ୱୀ ସ୍ତ୍ରୀ, ସ୍ୱାମୀ ପ୍ରତି ଏକାନ୍ତ ଅନୁରକ୍ତା ସ୍ତ୍ରୀ ।
ପତିମତୀ—ସ୍ତ୍ରୀ. ବିଂ. (ପତି+ମତ୍+ଈ) ସଧବା, ସଭର୍ତ୍ତୃକା (ସ୍ତ୍ରୀ) ।
ପତିମ୍ୱରା—ସ୍ତ୍ରୀ. ବି. ( ପତି + ବୃ + ଆ ) ସ୍ୱୟମ୍ୱରା, ଯେ ଅନେକ ପୁରୁଷ ମଧ୍ୟରୁ ପତି ମନୋନୀତ କରେ, କଳାଜୀରା ।
ପତିଷ୍ଣୁ—ତ୍ରି.ବିଂ. (ପତ୍ + ଇଷ୍ଣୁ)ଅତିଶୟ ପତନଶୀଳ ।
ପତିହୀନା—ସ୍ତ୍ରୀ.ବିଂ.(ପତି + ହୀନା) ପତିରହିତ, ସ୍ୱାମୀହୀନା, ବିଧବା ।
ପତୁଲି—ଗ୍ରା.ବି. ମାଟିର କ୍ଷୁଦ୍ର ସର୍ପ, ଧାନ ବେଙ୍ଗଲା ।
ପତେର—ପୁଂ. ସ୍ତ୍ରୀ. ବି. ପକ୍ଷୀ, ଗନ୍ତା, ଆତଙ୍କ, ଗତି ।
ପତୋଳିଆଦେଶୀ—ଦେଶୀ ମଦ୍ଦଳବିଶେଷ ।
ପତୌଦିବ—ପଞ୍ଜାବ ଅଧୀନସ୍ଥ ଗୋଟିଏ ସାମନ୍ତ ରାଜ୍ୟ ।
ପତ୍ତ୍ରକାଷିନ୍—ତ୍ରି.ବିଂ.ପାଦ ଦ୍ୱାରା ଗନ୍ତା ।
ପତ୍ତ—ପୁଂ. ବି. ପାଦ ।
ପତ୍ତଙ୍ଗ—କ୍ଲୀ. ବି. ରକ୍ତଚନ୍ଦନ, (ପୁଂ) ଭୃଙ୍ଗରାଜ, କେଶରାଜ, ଶାଳୀଧାନ-ବିଶେଷ ।
ପତ୍ତତସ—ଅବ୍ୟ. ପାଦଠାରୁ ।
ପତ୍ତନ—କ୍ଲୀ.ବି.(ପତ୍+ତନ) ମୂଳଦୁଆ, ସୂତ୍ରପାତ, ଉପନିବେଶ,ନଗର,ମୃଦଙ୍ଗ. ଉପକ୍ରମ, ଆରମ୍ଭ ।
ପତ୍ତନାଧିପତି—ପୁଂ. ବି. ରାଜବିଶେଷ ।
ପତ୍ତରଙ୍ଗ—କ୍ଲୀ. ବି. ରକ୍ତଚନ୍ଦନ, ବକମ କାଠ, ପତଙ୍ଗ ଦେଖ ।
ପତ୍ତଲକ—ବି.ଆନ୍ଧ୍ରବଂଶୀୟ ଜଣେ ରାଜା
ପତ୍ତସ୍—ଅବ୍ୟ. ତନ୍ନିଷ୍କଳଙ୍କ ପାଦଦ୍ୱାରା ।
ପତ୍ତି—ବି.(ପଦ୍+କ୍ତି) ଗମନ, ଗତି, ( କ.ତି ) ବୀର, ପଦାତିକ ସୈନ୍ୟ, ଯୋଦ୍ଧା, ୧ ହସ୍ତୀ, ୧ ରଥ, ୩ ଅଶ୍ୱ, ୫ ପଦାତିକ ସମନ୍ୱିତ ସେନା, ୫୫ ଜଣ ପଦାତିକ ।
ପତ୍ତିକ—ବି. ପଦାତି, ଦଶଘୋଡ଼ା,ଦଶହାତୀ, ଦଶରଥ, ଓ ଦଶପଦାତି ସମନ୍ୱିତ ସେନାଦଳ, ଉପର୍ଯ୍ୟୁକ୍ତସେନାର ଅଧ୍ୟକ୍ଷ ।
ପତ୍ତିକାୟ—ପୁଂ.ବି. ପଦାତିକ ସୈନ୍ୟ ।
ପତ୍ତିଗଣକ—ବିଂ. ପତ୍ତି ଗଣୟିତା, ଯେ ପତ୍ତି ଗଣନା କରେ ।
ପତ୍ତିନ୍—ବିଂ. ପାଦଦ୍ୱାରା ଗମନଶୀଳ ।
ପତ୍ତିସଂହତି—ସ୍ତ୍ରୀ.ବି.(ଷତତ୍)ସୈନ୍ୟବୃନ୍ଦ ।
ପତ୍ତୂର—ବି. ଶାକବିଶେଷ, ଜଳପିପ୍ପଳୀ, ପର୍କଟୀବୃକ୍ଷ, ଶମୀବୃକ୍ଷ, କୁଚନ୍ଦନ, ପତଙ୍ଗ, ବାଭଣମନ ।
ପତ୍ନୀ—ସ୍ତ୍ରୀ. ବି. (ପତି+ଈ) ଆପଣାର ବିବାହିତା ସ୍ତ୍ରୀ, ଭାର୍ଯ୍ୟା, ସହଧର୍ମିଣୀ ।
ପତ୍ନୀତ୍ୱ—କ୍ଲୀ.ବି. ପତ୍ନୀର ଭାବ ବା ଧର୍ମ, ସ୍ତ୍ରୀତ୍ୱ ।
ପତ୍ନୀବତ୍—ବିଂ. ସ୍ତ୍ରୀପର ।
ପତ୍ନୀବତ୍ସଳ—ପୁଂ.ବିଂ. ଆପଣା ଭାର୍ଯ୍ୟା-ପ୍ରତି ଏକାନ୍ତ ଅନୁରକ୍ତ ।
ପତ୍ନୀବ୍ରତ—ବି.(କ.ଧା) ଆପଣାର ବିବାହିତା ସ୍ତ୍ରୀ ଛଡ଼ା ଅନ୍ୟ ସ୍ତ୍ରୀ ଅଭିଗମନ ନକରିବାରୂପ ବ୍ରତ ।
ପତ୍ନୀଶାଳା—ସ୍ତ୍ରୀ.ବି. ଯଜ୍ଞକାଳେ ପତ୍ନୀର ନିମିତ୍ତ ନିର୍ମିତ ଗୃହବିଶେଷ ।
ପତ୍ନୀସଂଯାଜ—ପୁଂ.ବି. ପତ୍ନୀସଂଯାଜ ରୂପ ବୈଦିକ କର୍ମବିଶେଷ ।
ପତ୍ର—କ୍ଲୀ.ବି.(ପତ+କ.ର)ବୃକ୍ଷାବୟବ ବିଶେଷ, ଦଳ, ପତର, ବାଣର ପକ୍ଷ, ପୁସ୍ତକାଦି ପୃଷ୍ଠା, ପକ୍ଷୀଡେଣା, ଯାନ, ବାହନ, ଚିଠି,ଭାଷା, ଲିପି, ଧାତୁର ପାତିଆ,ଦେହରେ ପତ୍ରାକୃତି ରଚନା-ବଳି, ଖଳପତ୍ର, ତେଜପତ୍ର, ପକ୍ଷୀ, (ଗ୍ରା.ବି) ଅନ୍ୟ ଶବ୍ଦସଙ୍ଗେ ସହଚର ରୂପେ ବ୍ୟବହୃତ (ଯଥା:-ପଇସାପତ୍ର, ଚଟିପତ୍ର ଇତ୍ୟାଦି) ସମୂହ, ଆଦି, ଇତ୍ୟାଦି ।
ପତ୍ରକ—କ୍ଲୀ.ବି. ( ପତ୍ର+କ ) ବୃକ୍ଷର ପତ୍ର, ତେଜପତ୍ର, ପତ୍ରାବଳୀ ରଚନା ।
ପତ୍ରକଲ୍କ—କ୍ଲୀ.ବି. ଚନ୍ଦ୍ରମଲ୍ଲ ଦେଖ ।
ପତ୍ରକାହଳା—ସ୍ତ୍ରୀ.ବି.ପତ୍ରଶବ୍ଦ,ପିଚ୍ଛୋଲା ।
ପତ୍ରକୀଟ—ବି.ବହି ଓ କାଗଜରେ ଯେଉଁ କୀଟ ଲାଗନ୍ତି ।
ପତ୍ରକୂର୍ଚ୍ଚୀ—ବି. (କ.ଧା) ପତ୍ରକୁଣ୍ଡିଆ ।
ପତ୍ରକୋବି—ଗ୍ରା.ବି. ଏକପ୍ରକାର ବନ୍ଧା-କୋବି ।
ପତ୍ରଗୁଣ୍ଡି—ଗ୍ରା.ବି. ପନାହିଆ ଦେଖ ।
ପତ୍ରଗୁପ୍ତ—ପୁଂ. ବି. ସିଜୁଗଛ, ମୁଷ୍କବୃକ୍ଷ-ବିଶେଷ ।
ପତ୍ରଙ୍ଗ—ବି. ରକ୍ତଚନ୍ଦନ । [ ବିଶେଷ ।
ପତ୍ରଗୃଣକା—ସ୍ତ୍ରୀ. ବି. ଭୌତିକ କ୍ରିୟା-
ପତ୍ରଚ୍ଛେଦକ—ବିଂ. ପତ୍ରଚ୍ଛେଦନକାରୀ ।
ପତ୍ରଜାସବ—ପୁଂ.ବି. ପଞ୍ଚୋଲ ଓ ତାଳ ପତ୍ରାଞ୍ଚ ଆସବ,ପତ୍ରଜାତ ମଦ୍ୟବିଶେଷ
ପତ୍ରଣା—ସ୍ତ୍ରୀ.ବି. ଶରପତ୍ର ରଚନା ।
ପତ୍ରତଣ୍ଡୁଲୀ—ସ୍ତ୍ରୀ. ବି. ଯବତିକ୍ତା ଲତା, ପତ୍ରତଣ୍ଡୁଲା ।
ପତ୍ରତରୁ—ପୁଂ. ବି. ବିଟ୍‌ଖଦିର ବୃକ୍ଷ, ପାକଡ଼ାଟଇର ଗଛ ।
ପତ୍ରତାଳକ—କ୍ଲୀ.ବି.ବଂଶପତ୍ର ହରିତାଳ ।
ପତ୍ରଦାରକ—ପୁଂ.ବି. କ୍ରକଚ,କରତ ।
ପତ୍ରଦ୍ରୁମ—ପୁଂ.ବି.ତାଡ଼ିବୃକ୍ଷ,ତାଳଗଛ ।
ପତ୍ରନାଡ଼ିକା—ସ୍ତ୍ରୀ.ବି. ପତ୍ରଶିରା ।
ପତ୍ରନାମକ—କ୍ଲୀ.ବି. ତେଜପତ୍ର ।
ପତ୍ରପରଶୁ—ପୁଂ. ବି. ସ୍ୱର୍ଣ୍ଣାଦି ଛେଦନ କରିବାର ଛେଣୀ ।
ପତ୍ରପା—ସ୍ତ୍ରୀ.ବି. ଲଙ୍କା । [ କଟାର ।
ପତ୍ରପାଲ—ପୁଂ. ବି. ଲମ୍ବ ଛୁରୀ ବା
ପତ୍ରପାଲୀ—ସ୍ତ୍ରୀ.ବି. କତୁରୀ, ବାଣର ପକ୍ଷ-ଭାଗ ।
ପତ୍ରପାଶ୍ୟା—ସ୍ତ୍ରୀ. ବି. ସ୍ୱର୍ଣ୍ଣାଦି ରଚିତ ଲଲାଟ ଭୂଷଣ, ଟୀକା ବା ସ୍ୱର୍ଣ୍ଣଚିତା ।
ପତ୍ରପିଶାଚିକା—ସ୍ତ୍ରୀ. ବି. ଜଳନ୍ତ୍ର, ଜଳ ବାରଣ ସାଧନ ଯନ୍ତ୍ରବିଶେଷ,ମସ୍ତକରେ ପଲାଶପତ୍ର ବନ୍ଧନ ।

ପତ୍ରପୁଟ—ବି. (୬ତତ୍) ଚଉପଦୀ, ପତ୍ର-ଠୋଲା ।
ପତ୍ରପୁତ୍ରା—ସ୍ତ୍ରୀ. ବି. ପ୍ରାଚୀନ ଜଳଯାନ-ବିଶେଷ । [ ତୁଳସୀ ।
ପତ୍ରପୁଷ୍ପ—ପୁଂ.ବି. ରକ୍ତତୁଳସୀ, କଳା-
ପତ୍ରପୁଷ୍ପକ—ପୁଂ.ବି. ଭୂର୍ଜପତ୍ର ।
ପତ୍ରପୁଷ୍ପା—ସ୍ତ୍ରୀ. ବି. ତୁଳସୀ, ରକ୍ତ ବା କଳାତୁଳସୀ ।
ପତ୍ରବନ୍ଧ—ପୁଂ.ବି. (ତ.ସ୍ତ୍ର) ପୁଷ୍ପରଚନା, ପତ୍ରପୁଷ୍ପଦ୍ୱାରା ସଜେଇବା, ଚିତ୍ରକାବ୍ୟ ବିଶେଷ । [ କାତ ।
ପତ୍ରବାଳ—ପୁଂ.ବି. ତୁଳାଘଟ, କ୍ଷେପଣୀ,
ପତ୍ରଭଙ୍ଗ—ପୁଂ. ବି. ( କ.ଧା ) ସ୍ତନ ଓ କପୋଳାଦିରେ କସ୍ତୁରିକାଦି ରଚିତ ପତ୍ରାବଳୀ ।
ପତ୍ରମଞ୍ଜୁଷା—ସ୍ତ୍ରୀ. ବି. ( ୬ତତ୍ ) ପତ୍ରର ଅଗ୍ରଭାଗ,ପତ୍ରାକାର ମଞ୍ଜୁଷାଯୁକ୍ତ ତିଳକ-ବିଶେଷ । [ ବୃକ୍ଷ ।
ପତ୍ରମାଳ—ପୁଂ.ବି. ବେତସବୃକ୍ଷ, ବେତ-
ପତ୍ରମାଳା—ସ୍ତ୍ରୀ. ବି. ପତ୍ରସମୂହ, ପତ୍ରର ମାଳା ।
ପତ୍ରମୁଦ୍ରା—ସ୍ତ୍ରୀ.ବି.ମୁଦ୍ରିତ ପତ୍ର,ମୁଦ୍ରାଚିଠି ।
ପତ୍ରଯୌବନ—କ୍ଲୀ. ବି. ନୂତନପତ୍ର, ପଲ୍ଲବ । [ କାଣ୍ଡ ।
ପତ୍ରରଥ—ପୁଂ.ବି. (ବ.ସ୍ତ୍ର) ପକ୍ଷୀ,ବାଣ,
ପତ୍ରରେଖା—ବି. ପତ୍ରାବଳୀ ରଚନା, ତିଳକାଦି, କପୋଳାଦିରେ ଚିତ୍ର ରଚନା ।
ପତ୍ରଳ—କ୍ଲୀ.ବି. ପତଳା ଦୁଗ୍ଧ,ଘୋଳଦହି
ପତ୍ରଲତା—ସ୍ତ୍ରୀ. ବି. ପତ୍ରାକାର ତିଳକ-ବିଶେଷ, ପତ୍ରାବଳି ରଚନା, ପତ୍ରପ୍ରଧାନ ଲତା, ପାନଗଛ । [ ବିଶେଷ ।
ପତ୍ରଲବଣ—କ୍ଲୀ.ବି.ସୁଶ୍ରୁତୋକ୍ତ ଲବଣ-
ପତ୍ରଲିଖନ—ବି. ଚିଠି ଲେଖିବା ।
ପତ୍ରଲେଖ—ବି. ପତ୍ରବିଶେଷକ ଦେଖ ।
ପତ୍ରଲେଖା—ସ୍ତ୍ରୀ.ବି. ପତ୍ରଭଙ୍ଗ, ସ୍ତନ ଓ କପୋଳ ପ୍ରଭୃତିରେ ପତ୍ରାବଳି ରଚନା, ତିଳକାଦି । [ ଭଙ୍ଗ ।
ପତ୍ରବଲ୍ଲରୀ—ସ୍ତ୍ରୀ.ବି. ତିଳକବିଶେଷ, ପତ୍ର-

ପତ୍ରବଲ୍ଲୀ—ସ୍ତ୍ରୀ.ବି. ପତ୍ରଭଙ୍ଗ,ରୁଦ୍ରଜଟା, ପଲାଶୀଲତା, ପର୍ଣ୍ଣଲତା, ପାନଗଛ ।
ପତ୍ରବାହ—ପୁଂ.ବି. ବାଣ,( ଜଟାଧର ) ଲିପିବାହକ, ଯେ ଚିଠି ବୁହାଏ ।
ପତ୍ରବାହକ—ପୁଂ.ବିଂ. ପତ୍ରବହନକାରୀ ।
ପତ୍ରବିଶେଷକ—କ୍ଲୀ.ବି.ତିଳକ,ପତ୍ରଭଙ୍ଗ, ପତ୍ରାବଳୀ ବିରଚନ ତିଳକ ।
ପତ୍ରବୃଶ୍ଚିକ—କ୍ଲୀ.ବି. ପତ୍ରାକାର ବୃଶ୍ଚିକ-ବିଶେଷ, ଏକପ୍ରକାର ବିଛା ।
ପତ୍ରବେଷ୍ଟ--ପୁଂ.ବି.ଭୂଷଣବିଶେଷ,ତାଡ଼ି ।
ପତ୍ରଶବର—ବି. (କ.ଧା) ଜାତିବିଶେଷ, ପତରଶବର । [ ଶାଗ ।
ପତ୍ରଶାକ—ପୁଂ. ବି. ଭକ୍ଷଶାକ, ପତର-
ପତ୍ରଶିରା—ସ୍ତ୍ରୀ. ବି. ପତ୍ରଭଙ୍ଗ, ପର୍ଣ୍ଣପଂକ୍ତି, ପର୍ଣ୍ଣନାଡ଼ି, ପାନର ଶିରା ।
ପତ୍ରଶୃଙ୍ଗୀ—ସ୍ତ୍ରୀ.ବି. ଦ୍ରବନ୍ତୀଲତା, ମୂଷକ କର୍ଣ୍ଣିକା, ମୂଷାକାନି ଲତା ।
ପତ୍ରଶ୍ରେଣୀ—ସ୍ତ୍ରୀ.ବି. ଦ୍ରବନ୍ତୀ ଲତା,ପତ୍ର, ପଂକ୍ତି ।
ପତ୍ରଶ୍ରେଷ୍ଠ—ପୁଂ.ବି.ବିଲ୍ୱପତ୍ର,ବେଲପତ୍ର
ପତ୍ରସୁନ୍ଦର— ପୁଂ. ବି. ସ୍ୱନାମଖ୍ୟାତ ବୃକ୍ଷବିଶେଷ ।
ପତ୍ରସୂଚୀ—ପୁଂ. ବି. କଣ୍ଟକ, କଣ୍ଟା, ସୂଚୀପତ୍ର ଦେଖ ।
ପତ୍ରା—ସ୍ତ୍ରୀ. (ସମ୍ବ) ବି. ସାନସାନ ଗୁଡ଼ା, ସାନ ସାନ ଗୁଡ଼ାଥିବା ସ୍ଥାନ । [ ପତ୍ର ।
ପତ୍ରାଖ୍ୟ—କ୍ଲୀ. ବି. ତେଜପତ୍ର, ତାଳୀଶ-
ପତ୍ରାଙ୍କ—ବି.(୬ତତ୍) ପୁସ୍ତକର ପୃଷ୍ଠାଙ୍କ, ବହିର ପ୍ରତ୍ୟେକ ପୃଷ୍ଠାରେ ଯେଉଁ କ୍ରମିକ ସଂଖ୍ୟା ଲେଖାଯାଇଥାଏ ।
ପତ୍ରାଙ୍ଗ—କ୍ଲୀ. ବି. ରକ୍ତଚନ୍ଦନ, ବକମ ଗଛ, ରକ୍ତଚନ୍ଦନ ପରି କାଠବିଶେଷ, ଭୂର୍ଜପତ୍ର, ପଦ୍ମକାଠ ।
ପତ୍ରାଙ୍ଗୁଳି—ସ୍ତ୍ରୀ. ବି. ପତ୍ରଭଙ୍ଗ, ସ୍ତନ କପୋଳାଦିରେ କସ୍ତୂରିକାଦି ରଚିତ ପତ୍ରାବଳୀ ।
ପତ୍ରାଞ୍ଜନ—କ୍ଲୀ. ବି. ( ପତ୍ର+ଅଞ୍ଜନ ) କାଳି, ମସୀ ।
ପତ୍ରାଢ୍ୟ—କ୍ଲୀ. ବି. ପିପ୍ପଳୀ ମୂଳ,ପର୍ବତ-

ତୃଣ, ଗନ୍ଧତୃଣବିଶେଷ, ତାଳୀଶପତ୍ର, ରକ୍ତଚନ୍ଦନ,ଧନର୍ଦ୍ଧୀ,ବଂଶପତ୍ର,ହରିତାଳ ।
ପତ୍ରାମ୍ଳା—ସ୍ତ୍ରୀ.ବି. ଚୁକ୍ରିକା,ଖଟାପ ଲଙ୍କ ।
ପତ୍ରାଳୀ—ସ୍ତ୍ରୀ.ବି. ପତ୍ରାବଳୀ,ପତ୍ରଶ୍ରେଣୀ, ଗ୍ରେଟ ଗ୍ରେଟ ଗୁଡ଼ାଥିବା ସ୍ଥାନ ।
ପତ୍ରାବଳି—ସ୍ତ୍ରୀ. ବି. ଗୈରିକ,ପତ୍ରଶ୍ରେଣୀ, ଚିଠି ସମୂହ,ପତ୍ରରଚନା,ଅଳକ,ତିଳକ ।
ପତ୍ରାବଳୀ—ସ୍ତ୍ରୀ.ବି. ପତ୍ରଭଙ୍ଗ,ନବଦୁର୍ଗା-ସମ୍ପ୍ରଦାନକ ମଧୁମିଶ୍ରିତ ଯବଚୂର୍ଣ୍ଣଯୁକ୍ତ ନବାଶ୍ୱତ୍ଥ ପତ୍ର ।
ପତ୍ରି—ସ୍ତ୍ରୀ.ବି. ବନ୍ୟଗୁଳ୍ମବିଶେଷ,ଦେବ-ତାଙ୍କର ସେବକବିଶେଷ, ପତ୍ରିବଡ଼ୁ ।
ପତ୍ରିକା—ସ୍ତ୍ରୀ. ବି. ( ପତ୍ର+କ+ଆ ) ଚିଠି, ଭୂଷା, ଲିପି, ସମ୍ବାଦପତ୍ର ।
ପତ୍ରିକାଖ୍ୟ—ପୁଂ. ବି. କର୍ପୂରବିଶେଷ ।
ପତ୍ରିଣୀ—ସ୍ତ୍ରୀ.ବି. ନବାଙ୍କୁର, ନବପଲ୍ଲବ, କିଶଳୟ ।
ପତ୍ରୀ—ବି. (ପତ୍ର+ଇନ୍) ପକ୍ଷୀ, ଶର, ବାଣ, ପର୍ବତ, ରଥ, ବୃକ୍ଷ, ତାଳଗଛ, (ପତ୍ର + ଈ) ପତ୍ରିକା, ଚିଠି, ଶ୍ୟେନ, ଚୁଞ୍ଚାଟ, ଦମନକ ବୃକ୍ଷ, ଦଅଣା ଗଛ, ମହାସୁଗନ୍ଧ ତୈଳ, ଗଙ୍ଗାପତ୍ରୀ, ଦୁରା-ଲଭା, ଝଦିର ବୃକ୍ଷ, ତାଳବୃକ୍ଷ, ଜାଖି-ପତ୍ରୀ,ମହାତେଜ ପତ୍ର,(ତ୍ରିଂ.)ପତ୍ରବିଶିଷ୍ଟ ।
ପତ୍ରୋଦ୍ଗମ—ବି. (୬ତତ୍) ପତ୍ରନିର୍ଗମ, ନୂତନ ପତ୍ର ବାହାରିବା ।
ପତ୍ରୋପସ୍କର—ବି. କାସମର୍ଦ୍ଦ ଦେଖ ।
ପତ୍ରୋର୍ଣ୍ଣ--କ୍ଲୀ.ବି.ରେଶମୀ ଲୁଗା,(ପୁଂ.ବି) ଶ୍ୟୋନାକ ବୃକ୍ଷ, ଫଣଫଣା ଗଛ ।
ପତ୍ରୋଲ୍ଲାସ—ବି. ଫୁଲର କଢ଼ି,ମୁକୁଳ ।
ପତ୍ର୍ୟ—ପୁଂ. ବି. ଶ୍ୟୋନାକ ବୃକ୍ଷ,ଫଣ-ଫଣା ଗଛ ।
ପଥ—ବି. ( ପଥ + ଅ ) ରାସ୍ତା, ବାଟ, ମାର୍ଗ, ରନ୍ଧ୍ର, ଛିଦ୍ର, ଦ୍ୱାର, କୌଶଳ, ଉପାୟ, ଶୀଳ, ଚଳନ, ରୀତି, ଦୃଷ୍ଟି ଆଦିର ସୀମା,କାର୍ଯ୍ୟର ଗତି ବା ଧାରା ।
ପଥକ—ପୁଂ. ବି.(ପଥ+କ)ମାର୍ଗକୁଶଳ, ମାର୍ଗ, ଯେ ବାଟ ଦେଖାଏ, ଜିଲ୍ଲା, ପ୍ରଦେଶ, (ସ୍ତ୍ରୀ) କପିଳ ଦ୍ରାକ୍ଷା ।

ପଥକଢ଼ା(ଢ଼େ)ଇବା—ଗ୍ରା. କ୍ରି. ଆଗରେ ଥାଇ ପଶ୍ଚାଦ୍‌ବର୍ତ୍ତୀ ବ୍ୟକ୍ତିଙ୍କୁ ବାଟ ଦେଖାଇବା ।

ପଥକର—ପୁଂ. ବି.(କ.ଧା)ପଥନିର୍ମାଣାଦି-ପାଇଁ ପ୍ରଜାର ଦେୟ କର ବା ଶୁଲ୍କ ।

ପଥକଳ୍ପନା—ବି. ଇନ୍ଦ୍ରଜାଲ ।

ପଥଗାମୀ—ପୁଂ. ବିଂ. ( ପଥ+ଗମ୍+ କ.ଇନ୍) ବାଟରେ ଯାଉଥିବା,(ପୁଂ.ବି) ପଥିକ, ବାଟୋଇ ।

ପଥତ୍ର—ପୁଂ. ବିଂ. (ପଥ+ଶତୃ)ଗମନ କର୍ତ୍ତା, (ବି) ପଥ । [ କଢ଼ାଏ ।

ପଥଦର୍ଶକ—ବି. ପଥଦର୍ଶକ, ଯେ ବାଟ

ପଥଦେଖା(ଖେ)ଇବା—ଗ୍ରା. କ୍ରି. ବାଟ ଦେଖାଇବା, ବାଟକଢ଼ାଇବା. (ଲ.ର୍ଥ) ପରବର୍ତ୍ତୀ ବ୍ୟକ୍ତିମାନଙ୍କପାଇଁ ଗୋଟିଏ ନୂଆ ଉପାୟ ବା ରୀତି ଆରମ୍ଭ କରିବା ।

ପଥପ୍ରଦର୍ଶକ—ପୁଂ. ବିଂ. (୬ତତ୍) ପଥ ପ୍ରଦର୍ଶନ କାରୀ, ଯେ ବାଟ କଢ଼ାଏ ।

ପଥପ୍ରାନ୍ତ—ବି. ( ୬ତତ୍ ) ବାଟପାଖ, ପଥର ଶେଷ ସୀମା ।

ପଥଭ୍ରଷ୍ଟ—ବିଂ. ( ୫ତତ୍ ) ପଥଚ୍ୟୁତ, ବିପଥଗାମୀ ।

ପଥଭ୍ରାନ୍ତ—ବିଂ. (୭ତତ୍) ଯେ ବାଟ ଭୁଲିଛି, ବିପଥଗାମୀ ।

ପଥର—ଗ୍ରା. ବି. ପାଷାଣ ( ଗ୍ରା.ବିଂ ) (ପଥରପରି)ଦୁଃଖସହନଶୀଳ (ହୃଦୟ), ଧୈର୍ଯ୍ୟଶୀଳ, ନିର୍ଦ୍ଦୟ, ନିର୍ମମ ।

ପଥରଗାର—ଗ୍ରା. ବି. ପଥରଉପରେ ପକାଯିବା ରେଖା,(ଗ୍ରା.ବିଂ)ଚିରସ୍ଥାୟୀ, ଅଟଳ,(ଅଙ୍ଗୀକାର ବା ପ୍ରତିଜ୍ଞା)ଅପରି-ବର୍ତ୍ତନୀୟ ।

ପଥରପାଣିହୋଇଯିବା—ଗ୍ରା.ବି. (ଲ.ର୍ଥ) ଅତ୍ୟନ୍ତ ନିଷ୍ଠୁର ହୃଦୟ ମଧ୍ୟ ଦୟାରେ ତରଳିଯିବା ।

ପଥରୋଧ—ବି. (୬ତତ୍) ଯିବାବାଟରେ ଉପସ୍ଥିତ ବାଧା ।

ପଥଶ୍ରମ--ବି.(କ.ଧା)ଭ୍ରମଣ ଜନିତକ୍ଲେଶ ।

ପଥଶ୍ରମୀ—ପୁଂ. ବିଂ. ( ପଥଶ୍ରମ+ଇନ୍) ପଥଶ୍ରାନ୍ତ ।

ପଥଶ୍ରାନ୍ତ—ପୁଂ. ବିଂ. ବାଟ ଚାଲି ଚାଲି କ୍ଲାନ୍ତ ।

ପଥଶ୍ରାନ୍ତି--ବି.ବାଟଚାଲିବା ଯୋଗୁଁ କ୍ଲାନ୍ତି ।

ପଥି—ଗ୍ରା. ବି. (ସଂ-ପଥ୍ୟ) ରୋଗୀବିହିତ ଆହାର, ସୁପଥ୍ୟ, (ସଂ-ବି.-ପଥ+ଅଧି. ଇ) ପଥ, ମାର୍ଗ, ମତବାଦ ସମ୍ପ୍ରଦାୟ, ନରକ ବିଶେଷ ।

ପଥିକ - ପୁଂ. ବିଂ.(ପଥିନ୍+କ)ପଥରେ ଯେଉଁମାନେ ଗମନାଗମନ କରନ୍ତି, ପର୍ଯ୍ୟଟକ, ପଥଦର୍ଶକ, ଭ୍ରମଣକାରୀ, ପ୍ରବାସୀ, ( ବି ) ପାନ୍ଥ, ବାଟୋଇ, ପଥଗାମୀ ଜନ ।

ପଥିକଜନବଧୂ—ସ୍ତ୍ରୀ. ବି.(କ.ଧା) ଯେଉଁ ସ୍ତ୍ରୀର ସ୍ୱାମୀ ପ୍ରବାସୀ । [ ଚଟି ।

ପଥିକନିବାସ—ବି (୬ତତ୍)ପାନ୍ଥନିବାସ ,

ପଥିକରିବା—ଗ୍ରା. କ୍ରି. (ରୋଗୀ) ପଥ୍ୟ ଖାଇବା ।

ପଥିକଶାଳା—ସ୍ତ୍ରୀ.ବି. ପାନ୍ଥ ଗୃହ, ଧର୍ମ-ଶାଳା, ଚଟିଘର ।

ପଥିକସଂହତି—ସ୍ତ୍ରୀ. ବି. ପଥିକ ସମୂହ ।

ପଥିକସନ୍ତତି—ସ୍ତ୍ରୀ. ବି. ପଥିକ ସମୂହ ।

ପଥିକା—ସ୍ତ୍ରୀ. ବି. କପିଳ ଦ୍ରାକ୍ଷା, ନାଲି ଦ୍ରାକ୍ଷା ଫଳ ।

ପଥିକାର—ତ୍ରି. ବିଂ. ମାର୍ଗକାରକ, ଯେଉଁମାନେ ପଥ ପ୍ରସ୍ତୁତ କରନ୍ତି ।

ପଥିଚକ୍ର—କ୍ଲୀ. ବି. ଜ୍ୟୋତିଃଶାସ୍ତ୍ରୋକ୍ତ ଚକ୍ରବିଶେଷ ।

ପଥିଦେୟ—କ୍ଲୀ.ବି.(୬ତତ୍) ରାଜପଥରେ ଯିବା ବ୍ୟକ୍ତିମାନଙ୍କଠାରୁ ଆଦାୟ କରା-ଯିବା ଶୁଳ୍କ ।

ପଥିଦ୍ରୁମ—ପୁଂ. ବି. ଖଦିର ବୃକ୍ଷ ।

ପଥିପ୍ରଜ୍ଞ—ତ୍ରି. ବିଂ. ପଥାଭିଜ୍ଞ, ଯେଉଁ-ମାନେ ପଥ ଜାଣନ୍ତି । [ ରକ୍ଷକ ।

ପଥିରକ୍ଷସ—ପୁଂ. ବି.ରୁଦ୍ର ବିଶେଷ, ମାର୍ଗ-

ପଥିଲ—ବି.(ପଥି+ଲା+କ. ଅ)ପଥିକ, ପାନ୍ଥ ।

ପଥିବାହକ—ତ୍ରି. ବିଂ. ମାର୍ଗବାହକ, ଭାରବାହକ, ଶାକୁନିକ, ନିଷ୍ଠୁର ।

ପଥିସ୍ଥ—ତ୍ରି. ବିଂ. ପଥରେ ବର୍ତ୍ତମାନ, ପଥରେ ଅବସ୍ଥିତ ।

ପଥୀ—ପୁଂ. ବି. (ପଥ+ଇନ୍) ପଥିକ, ପଥଦର୍ଶକ ।

ପଥୀୟ--ବିଂ.(ପଥ+ଈୟ)ପଥସମ୍ବନ୍ଧୀୟ, ସମ୍ପ୍ରଦାୟ ସମ୍ବନ୍ଧୀୟ ।

ପଥୁକ—ଗ୍ରା. ବି. ପଥିକ,ପାନ୍ଥ, (ଗ୍ରା.ବିଂ) ପଥଭ୍ରମଣକାରୀ, ଅନୁଭବୀ, ପଥିକ ।

ପଥୁରି—ଗ୍ରା. ବି. ପଥର ବାସନ ।

ପଥୁରିଆ—ଗ୍ରା. ବି. ପଥର ଶିଳ୍ପୀ, ପଥର କାଟିବା ମିସ୍ତ୍ରୀ,ପଥୁରିଆ ରୋଗ,(ଗ୍ରା.ବିଂ) ପଥରପରି ଟାଣୁଆ, ପଥରମୟ ।

ପଥ୍ୟ—ବିଂ. (ପଥ+ଯ)ହିତକର,ଉପ-କାରକ, ଯୋଗ୍ୟ, ସ୍ୱାସ୍ଥ୍ୟକର, ପଥ ସମ୍ବନ୍ଧୀୟ, (ବି) ରୋଗୀର ଯୋଗ୍ୟ ଆହାର, ପଥି, ସୁପଥ୍ୟ ଖାଦ୍ୟ, ସୈନ୍ଧବଖାଦ୍ୟ, ହିତ, ମଙ୍ଗଳ, ଶ୍ରେଷ୍ଠ ହରିଡ଼ାଗଛ, ତଣ୍ଡୁଲୀୟ ଶାକ ।

ପଥ୍ୟକା—ସ୍ତ୍ରୀ. ବି. ମେଥିକା, ମେଥୀ ।

ପଥ୍ୟଭୋଜନ—କ୍ଲୀ.ବି.ହିତଭୋଜନ,ପଥି ।

ପଥ୍ୟଶାକ—ପୁଂ. ବି. ତଣ୍ଡୁଲୀୟ ଶାକ, ଲେଉଟିଆ ଶାଗ ।

ପଥ୍ୟସେବନ—ବି. (୬ତତ୍) ରୋଗୀର ଉପଯୁକ୍ତ ଆହାର୍ଯ୍ୟ ଭୋଜନ, ହିତକର ଭୋଜ୍ୟ ଭକ୍ଷଣ ।

ପଥ୍ୟା—ସ୍ତ୍ରୀ. ବି. (ପଥ୍ୟ+ଆ) ହରିଡ଼ା, ହରିତକୀ, ଗସ୍ତା, ବାଟ, (ସଂ) ଛନ୍ଦୋ ବିଶେଷ, ଚିର୍ଭିଟି, କାକୁଡ଼ି, ବନ୍ଧ୍ୟାକ-ର୍କୋଟିକା,ଅଷ୍ଟାଡ଼ୁଆ, ଗଙ୍ଗା, ଲବଣ ବିଶେଷ,(ସ୍ତ୍ରୀ.ବିଂ)ଉପକାରିକା, ଯୋଗ୍ୟା

ପଥ୍ୟାଦି—ପୁଂ. ବି. ପାଚନ ବିଶେଷ ।

ପଥ୍ୟାପଥ୍ୟ—କ୍ଲୀ. ବି. ରୋଗର ହିତ ଓ ଅହିତ କାରକ ଦ୍ରବ୍ୟ, (ବିଂ) ପଥ୍ୟ ଓ ଅପଥ୍ୟ (ଖାଦ୍ୟ),ଉପକାରୀ ଓ ଅନୁପ-କାରୀ ।

ପଥ୍ୟାଶୀ—ପୁଂ. ବିଂ. ( ପଥ୍ୟ+ଅଶ୍+ ଇନ୍) ଯେ ପଥ୍ୟ ଖାଏ ।

ପଦ—ବି. (ପଦ୍+ଣ.ଅ)ଚରଣ,ଗୋଡ଼, ତଳପା, ପାଦ, ପଦଚିହ୍ନ, ଲକ୍ଷ୍ୟ, (ବ୍ୟାକରଣ) ବାଚକଶବ୍ଦ, ବିଭକ୍ତି-

ଯୁକ୍ତ ଶବ୍ଦ, ଅବସ୍ଥାନ, ସ୍ଥାନ, ଶ୍ଲୋକର ଚରଣ, ଉପାଧି, ପଦବୀ, ଆଧିପତ୍ୟ, ଚିହ୍ନ-ସମ୍ମାନ ସୂଚକଅଧିକାର, ଗୃହକର, ଐଶ୍ୱର୍ଯ୍ୟ, କ୍ଷମତା, ସମ୍ମାନ, ଗୌରବ, ଛଳ, କପଟ, ନିନ୍ଦା, ପ୍ରଶଂସା ଆଦର ବିଷୟ,ପ୍ରକରଣ, ଗ୍ରନ୍ଥର ବିଭାଗ, ବାକ୍ୟ ବସ୍ତୁ, ପଦାର୍ଥ, କାରଣ, ଚତୁର୍ଥାଂଶ, ମୋକ୍ଷ, ନିର୍ବାଣ, ପ୍ରବେଶ, ଭଜନ, ସ୍ତବ, ପହଣ୍ଡ, ସ୍ତୁପ,ଆଧାର, ନାହାନା. (ଗଣିତ) ବର୍ଗମୂଳ, ରକ୍ଷା, ପଣା ବା ସତରଞ୍ଜି ପାଲିର ଘର,ବାକ୍ୟର ଅଂଶ, କ୍ଷେତ୍ର, (ଗ୍ରା.ବି) ଗୀତ, ପଦ୍ୟ, ଗାରୁଡ଼ି ମନ୍ତ୍ର, ଆଦେଶ, ମାର୍ଗ, ବାହନ, (ଛତ୍ର, ଉପାନହ, କମଣ୍ଡଳୁ, ବସ୍ତ୍ର, ମୁଦ୍ରିକା, ଆସନ, ଭାଜନ ଓ ଭୋଜ୍ୟ),ଏହି ଆଠ-ଗୋଟିକୁ ପଦ ବୋଲାଯାଏ ।

ପଦକ—ପୁଂ.ବି. (ପଦ+କ) କଣ୍ଠଭୂଷଣ ଲିପିଯୁକ୍ତ ମୁଦ୍ରାକୃତ ଧାତୁଖଣ୍ଡ,ତକମା, ନିଷ୍କ, (ଗ୍ରା.ବି) ଏକପଦ ବା ବାକ୍ୟ-ମାତ୍ର, ପଦାତ ।

ପଦକଟକ—ବି. ନୂପୁର ।

ପଦକମଳ—ବି. ( କ.ଧା ) ପାଦପଦ୍ମ, ପଦ୍ମପାଦ, ପଦ୍ମପରି ସୁନ୍ଦର ଗୋଡ଼ ।

ପଦକାର—ପୁଂ. ବି.ବେଦର ମନ୍ତ୍ରପଦ ବିଭାଜକ ଗ୍ରନ୍ଥକର୍ତ୍ତା, ଗୀତରଚୟିତା ।

ପଦକ୍ରମ—ପୁଂ. ବି. ବେଦମନ୍ତ୍ରର ପଦ-ବିଭାଜକ କର୍ମ, ଚାଲିବା,ପହଣ୍ଡ,ପାହୁଣ୍ଡ ।

ପଦକ୍ଷେପ—ବି. (୬ତତ୍) ପାହୁଣ୍ଡପକାଇ ଚାଲିବା, ପଦାର୍ପଣ, ପାହୁଣ୍ଡ ।

ପଦଗ—ପୁଂ. ବି. ପଦାତିକ, (ତ୍ରି.ବିଂ) ପଦଦ୍ୱାରା ଗମନକର୍ତ୍ତା (ପଦ+ଗମ୍ +ଅ) ।

ପଦଗତି—ସ୍ତ୍ରୀ.ବି. (୬ତତ୍) ପଦସଞ୍ଚାର, ଚାଲିବାର ଢଙ୍ଗ, ଚାଲି ।

ପଦଗର୍ବ—ବି. (କ.ଧା) ଅଧିକାରଯୋଗୁଁ ମନରେ ହେବା ଗର୍ବ ।

ପଦଗର୍ବିତ—ପୁଂ. ବିଂ. (୫ତତ୍) ଅଧି-କାର ପାଇବା ଯୋଗୁଁ ଗର୍ବପ୍ରକାଶ କରିବା (ବ୍ୟକ୍ତି) ।

ପଦଗୌରବ—ବି. (୬ତତ୍) ପଦ ବା ଆଧିପତ୍ୟଜନିତ ସମ୍ମାନ ।

ପଦଚର—ବି. (ପଦ+ଚର+କ.ଅ) ପଦାତିକ ।

ପଦଚାରଣ—ବି. ଚାଲିବା, ଟହଲିବା ।

ପଦଚାରୀ—ପୁଂ. ବିଂ. (ପଦ+ଚର+କ.ଇନ୍) ଗୋଡ଼ରେ ଚାଲିବା(ବ୍ୟକ୍ତି) ।

ପଦଚିହ୍ନ—ବି. (୬ତତ୍) ପଦାଙ୍କ,ପାଦର ଛାପ ।

ପଦଚ୍ଛାୟା—ବି. (୬ତତ୍) ଚରଣାଶ୍ରୟ, ପ୍ରଭୁ ବା ମହତ୍ ବ୍ୟକ୍ତିଙ୍କ ପାଦତଳେ ଶରଣ ।

ପଦଚ୍ଛେଦ—ପୁଂ. ବି. (୬ତତ୍) ପଦ-ବିଶ୍ଳେଷଣ,ସନ୍ଧି ବା ସମାସଯୁକ୍ତ କୌଣସି ବାକ୍ୟରେ ଥିବା ପଦମାନଙ୍କୁ ପୃଥକ୍ କରିବା ।

ପଦଚ୍ୟୁତ—ପୁଂ. ବିଂ. (୫ତତ୍)ଅଧିକାର-ଭ୍ରଷ୍ଟ, କୌଣସି ଅଧିକାରରୁ ବଞ୍ଚିତ କରାଯାଇଥିବା ।

ପଦଜ—ବିଂ. ( ପଦ+ଜନ+କ.ଅ ) ପଦରୁ ଜାତ, (ବି) ଗୋଡ଼ର ଆଙ୍ଗୁଠି, ଶୂଦ୍ର ।

ପଦଜାତ—କ୍ଲୀ. ବି. ଆଖ୍ୟାତ ନାମ ନିପାତ ଓ ଉପସର୍ଗ ରୂପ ପଦସମୂହ ।

ପଦଜ୍ଞ—ତ୍ରି. ବିଂ. ମାର୍ଗଜ୍ଞ, ଯେ ପଦ ଜାଣେ,ପ୍ରକୃତିପ୍ରତ୍ୟୟ ଯୋଗେ ନିଷ୍ପନ୍ନ ପଦବିଷୟରେ ଜ୍ଞାନୀ ।

ପଦଞ୍ଜଲ—ପୁଂ. ବି. ଋଷିବିଶେଷ ।

ପଦଟୀକା—ବି. କୌଣସି ପୁସ୍ତକର ମୌଳିକ ଅଂଶରେ ଲେଖାଥିବା ଦୁର୍ବୋଧ ବିଷୟର ବ୍ୟାଖ୍ୟା, ଯାହାକି ସେହି ପୃଷ୍ଠାର ନିମ୍ନଦେଶରେ ଲେଖା-ଯାଇଥାଏ ।

ପଦତଳ—କ୍ଲୀ. ବି. ( ୬ତତ୍ ) ପାଦର ତଳ, ତଳିପା ।

ପଦତା—ସ୍ତ୍ରୀ. ବି. ପଦତ୍ୱ,ପଦର ଧର୍ମ ।

ପଦତ୍ୟାଗ—ବି. (୬ତତ୍) କର୍ମତ୍ୟାଗ, ଇସ୍ତଫା ।

ପଦତ୍ରାଣ—ବି. (ପଦ+ତ୍ରୈ+କ.ଅନ) ଜୋତା, ଉପାନହ ।

ପଦତ୍ରୀ—ବି. ପକ୍ଷୀ ।

ପଦଦଳିତ--ବିଂ.(୩ତତ୍);ଚରଣମର୍ଦ୍ଦିତ ।

ପଦଦାରିକା—ବି. ଗୋଡ଼ ଫାଟ ରୋଗ ।

ପଦଦୋଷ—ବି. (୬ତତ୍)ଯେଉଁ ଦୋଷ ବାକ୍ୟମଧ୍ୟସ୍ଥ ପଦକୁ ଆଶ୍ରୟ କରି ରହି-ଥାଏ ।

ପଦଧୂଳି—ବି. ( ୬ତତ୍ ) ଚରଣ ରଜ, ପାଦତଳେ ଲାଗିଥିବା ଧୂଳି ।

ପଦନ୍ୟାସ—ବି. ( ୬ତତ୍ )ଚରଣାର୍ପଣ, ପଦଚିହ୍ନ,ଗୋକ୍ଷୁର,ତନ୍ତ୍ରୋକ୍ତ ଅନୁପୂର୍ବୀ ମନ୍ତ୍ରସ୍ଥିତ ପଦର ନ୍ୟାସ ।

ପଦପକା (କେ) ଇବା—ଗ୍ରା. କ୍ରି. ବାକ୍ୟ କହିବା,ଗୀତବୋଲିବା, ମନ୍ତ୍ରୋଚ୍ଚାରଣ କରିବା, ରଚିତ ପଦରେ ମିତାକ୍ଷର ମିଳାଇବା, ପଦକ୍ଷେପକରିବା ।

ପଦପଡ଼ିବା—ଗ୍ରା.ବି. ପଦ୍ୟରେ ମିତାକ୍ଷର ଘଟିବା ବାକ୍ୟର କଥନ ।

ପଦପଦକେ—ଗ୍ରା.ଅବ୍ୟ. ପ୍ରତି ପଦରେ, ପ୍ରତି ପଦକ୍ଷେପରେ,ପ୍ରତି ମୁହୂର୍ତ୍ତରେ ।

ପଦପଙ୍କଜ ବା ସରୋଜ ବା ଅମ୍ବୁଜ—କ୍ଲୀ.ବି. ପଦାରବିନ୍ଦ, ପାଦପଦ୍ମ,ଚରଣ-କମଳ ।

ପଦପଂକ୍ତି—ସ୍ତ୍ରୀ.ବି.ପଦଚିହ୍ନ.ପଦଶ୍ରେଣୀ ।

ପଦପଦ୍ଧତି—ସ୍ତ୍ରୀ.ବି. ପଦଚିହ୍ନ ।

ପଦପଲ୍ଲବ—ବି. (କ.ଧା) କିଶଳୟସଦୃଶ କୋମଳ ଚରଣ ।

ପଦପାଠ—ପୁଂ. ବି. ( ୬ତତ୍ ) ବେଦ ପଦବିଭାଜକ ଗ୍ରନ୍ଥବିଶେଷ, ବୈଦିକ ପଦମାନଙ୍କର ପୃଥକ୍ ଲେଖନ ବା ଉଚ୍ଚାରଣ ।

ପଦପୂରଣ—କ୍ଲୀ. ବି. ପଦପୂରଣ, ପାଦ-ପୂରଣ, (ବିଂ) ପଦପୂରଣବିଶିଷ୍ଟ ।

ପଦପୃଷ୍ଠ—ବି. ( ୬ତତ୍ ) ଗୋଡ଼ ତଳି-ପାର ଉପରିଭାଗ ବା ଗୋଡ଼ର ପାପୁଲି ।

ପଦପ୍ରାନ୍ତ—ବି. ( ୬ତତ୍ ) ପଦତଳ, ଚରଣର ଅଗ୍ରଭାଗ,ପଦର ନିକଟସ୍ଥ ସ୍ଥାନ ।

ପଦପ୍ରାର୍ଥୀ--ପୁଂ.ବିଂ. ଅଧିକାରଲାଭେଚ୍ଛୁ, ଉମେଦୁଆର,(ଲ.ଅର୍ଥ)ଅନୁଗ୍ରହପ୍ରାର୍ଥୀ ।

ପଦବନ୍ଧ—ପୁଂ. ବି. ପଦଚିହ୍ନ,ପଦକ୍ଷେପ, ପାହୁଣ୍ଡ ।
ପଦଭଞ୍ଜନ—କ୍ଲୀ. ବି. (୬ତତ୍) ନିରୁକ୍ତ, ଶବ୍ଦବ୍ୟାଖ୍ୟା, ସନ୍ଧି ବା ସମାସଯୁକ୍ତ ବାକ୍ୟର ପଦମାନଙ୍କର ପୃଥକ୍‌କରଣ ।
ପଦଭଞ୍ଜିକା—ସ୍ତ୍ରୀ.ବି. ପଞ୍ଜିକା ବା ଟିପ୍ପଣୀ ।
ପଦମତ୍ତ—ପୁଂ. ବିଂ. (୩ତତ୍) ଅଧିକାର ଯୋଗୁଁ ଗର୍ବିତ ।
ପଦମଦ—ପୁଂ. ବି. (କ.ଧା) ଉଚ୍ଚପଦ ଲାଭଜନ୍ୟ ଗର୍ବ, ଆଧିପତ୍ୟ ଲାଭଜନ୍ୟ ଅଭିମାନ ।
ପଦମର୍ଦ୍ଦନ—ବି. (୬ତତ୍) ଗୋଡ଼ ମୋଡ଼ିବା, ଗୋଡ଼ ଘଷିବା, (ଲ.ଅର୍ଥ) ଖୋସାମତ କରିବା ।
ପଦମର୍ଯ୍ୟାଦା—ବି. (୬ତତ୍) ଅଧିକାରର ଉପଯୁକ୍ତ ସମ୍ମାନ, ଅଧିକାର ଜନିତ ମର୍ଯ୍ୟାଦା ।
ପଦମାଳା—ସ୍ତ୍ରୀ.ବି. ପଦଶ୍ରେଣୀ,ମୋହନ-ଶୀଳା ବିଦ୍ୟା ।
ପଦମୂଳ—କ୍ଲୀ. ବି. (୬ତତ୍) ପଦତଳ, ପଦପ୍ରାନ୍ତ ।
ପଦଯୁଗଳ—କ୍ଲୀ. ବି. (୬ତତ୍) ଚରଣ-ଦ୍ୱୟ, ପାଦଦୁଇଟି ।
ପଦରଜଃ—କ୍ଲୀ. ବି. (କ.ଧା) ପାଦଧୂଳି ।
ପଦଲେହନ—ବି. (୬ତତ୍) ଅନ୍ୟର ଗୋଡ଼ ଚାଟିବା, (ଲ.ଅର୍ଥ) ଖୋସାମତ କରିବା ।
ପଦବାୟ୍ୟ—ବି. ବିଂ. ପଥପ୍ରଦର୍ଶକ ।
ପଦବି(ବୀ)—ସ୍ତ୍ରୀ.ବି. (ପଦ୍ + ଅବି)ପଦ୍ଧତି, ପନ୍ଥା, ଉପାଧି, ପଦ, ନିୟୋଗ,ବ୍ୟବସାୟ, ଉପଗମ ।
ପଦବିକ୍ଷେପ—ପୁଂ. ବି. ପଦନ୍ୟାସ,ପାଦ ପକାଇବା, ପଦକ୍ଷେପ ।
ପଦବିଗ୍ରହ—ପୁଂ. ବି. ସମାସ ବାକ୍ୟ-ବିଶେଷ, ସମାସ ।
ପଦବିଚ୍ଛେଦ—ପୁଂ.ବି. ପଦର ବିଚ୍ଛେଦ, ପଦର ବିଶ୍ଳେଷଣ, ପଦଭଙ୍ଗୀ ।
ପଦବିଦ୍—ବି. ବିଂ. (ପଦ+ବିଦ୍+କ୍ୱିପ୍) ପଦବେତ୍ତା, ପଦଜ୍ଞ ।

ପଦବୀ—ସ୍ତ୍ରୀ. ବି. (ପଦ୍+ଅବ୍+କ.ଈ) ପନ୍ଥା, ପଦ୍ଧତି, ପଦ, ଅଧିକାର, ବିଶିଷ୍ଟ ଅଧିକାର ଯୁକ୍ତ ସ୍ଥାନ, ମର୍ଯ୍ୟାଦା,ଅବସ୍ଥିତି, ସମ୍ମାନ ସୂଚକ ଉପାଧି.ବଂଶଗତ ନାମ, ବ୍ୟବସାୟ, ସଦାଚରଣ ।
ପଦଗ୍ରୟ—କ୍ଲୀ.ବି. ବସ୍ତୁର ଅନୁସନ୍ଧାନ ।
ପଦବୃତ୍ତି—ସ୍ତ୍ରୀ. ବି. ପଦଦ୍ୱୟର ମଧ୍ୟରେ ଛେଦ ।
ପଦବୃଦ୍ଧି—ବି.(୬ତତ୍) ଅଧିକାରର ବୃଦ୍ଧି, ପ୍ରମୋସନ, ଗୋଡ଼ଫୁଲା, ଗୋଦର ।
ପଦବ୍ୟାଖ୍ୟାନ—କ୍ଲୀ. ବି ବେଦ ମନ୍ତ୍ରର ବିଭାଜକ ଗ୍ରନ୍ଥବିଶେଷ ।
ପଦବ୍ରଜ(ଜ୍ୟା)—ବି. (୩ତତ୍) ପଦଦ୍ୱାରା ଗମନ, ଚାଲିବା ।
ପଦବ୍ରଜେ—କ୍ରି. ବିଂ. (ବ.ଗ୍ରା) ପଦ-ଚାଳନା ପୂର୍ବକ ।
ପଦଶବ୍ଦ—ବି. (୬ତତ୍) ଚାଲିବାବେଳେ ପାଦ ପକାଇବାର ଶବ୍ଦ ।
ପଦଶୃଙ୍ଖଳା—ବି. ନୂପୁର । [ ପଂକ୍ତି ।
ପଦଶ୍ରେଣୀ—ସ୍ତ୍ରୀ. ବି. ପଦଶ୍ରେଣୀ, ପଦ-
ପଦଷ୍ଠୀବ—କ୍ଲୀ. ବି. ବସିବା ବେଳେ ଜାନୁ ଓ ଚରଣଦ୍ୱୟ ଏକତ୍ର କରିବା, ଢେଙ୍କହୋଇ ବସିବା ।
ପଦସଂହିତା—ସ୍ତ୍ରୀ. ବି. ପଦସଂଯୋଜନା, ବେଦ ସଂହିତାର ଯେ ସମସ୍ତ ପଦ-ବିଶିଷ୍ଟ ସମାସାଦି ଦ୍ୱାରା ତାହାର ଏକ-ତ୍ରୀକରଣ ।
ପଦସଂଘାଟ—ପୁଂ.ବି.ଟୀକାକାର, ଯେଉଁ-ମାନେ ଶବ୍ଦ ବା ପଦ ସଂଗ୍ରହ କରନ୍ତି ।
ପଦସଧାତୁ—କ୍ଲୀ. ବି. ଗୀତର ପ୍ରସରଣ-ବିଶେଷ । [ ସଂଯୋଜନା ।
ପଦସନ୍ଧି—ପୁଂ. ବି. ଶ୍ରୁତି ମଧୁର ପଦ
ପଦସମୂହ—ପୁଂ.ବି.ପଦଶ୍ରେଣୀ, କବିତା-ଦିର ଚରଣ, ପଦପାଠ ।
ପଦସେବକ—ପୁଂ. ବି. ଗୋଡ଼ ଘଷିବା ଚାକର, ବିନୀତ ଭୃତ୍ୟ ସ୍ଥାନୀୟ ବ୍ୟକ୍ତି ।
ପଦସେବା—ବି.(୬ତତ୍) ଗୋଡ଼ ଘଷିବା, ଆଶ୍ରୟ କରିବା ।
ପଦସ୍ଖଳନ—ବି. (୬ତତ୍) ଗୋଡ଼ ଖସି-ଯିବା, ପଦଚ୍ୟୁତ, କଥା କହୁ କହୁ କୌଣସି ପଦ ଭୁଲିଯିବା ।
ପଦସ୍ଖଳିତ—ପୁଂ. ବିଂ. (ବ.ଗ୍ରା) ସ୍ଖଳିତ-ପଦ, ଯାହାର ଗୋଡ଼ ଖସି ଯାଇଅଛି ।
ପଦସ୍ତୋଭ—ପୁଂ. ବି. ପଦ ମଧ୍ୟ ପଠିତ ନିରର୍ଥକ ଶବ୍ଦବିଶେଷ ।
ପଦସ୍ଥ—ବି. ବିଂ. (ପଦ+ସ୍ଥା+କ.ଅ) କର୍ମ ପଦରେ ନିଯୁକ୍ତ, ଦଣ୍ଡାୟମାନ, ସମ୍ଭ୍ରାନ୍ତ ।
ପଦସ୍ଥାନ—କ୍ଲୀ.ବି. ପଦଚିହ୍ନଯୁକ୍ତ ସ୍ଥାନ ।
ପଦସ୍ଥିତ—ବି. ବିଂ. ପଦସ୍ଥ,ସମ୍ଭ୍ରାନ୍ତ ।
ପଦା—ଗ୍ରା. ବି. ପଡ଼ିଆ, ବାହାର, ବୃକ୍ଷ-ଲତାହୀନ ସ୍ଥାନ,(ଗ୍ରା.ବିଂ)ଶୂନ୍ୟ,ଉନ୍ମୁକ୍ତ, ଖୋଲା, ପଡ଼ିଆପରି ଜନଶୂନ୍ୟ,ବନସ୍ଥ ।
ପଦାକରିବା—ଗ୍ରା.କ୍ରି. କୌଣସି ସ୍ଥାନର ବୃକ୍ଷଲତାଦି ଉପାଡ଼ି ବା କାଟି ତାହାକୁ ପଡ଼ିଆରେ ପରିଣତ କରିବା, ଜନ-ଶୂନ୍ୟ କରିବା, ସମୂଳେ ବିନାଶ କରିବା
ପଦାକୁଯିବା—ଗ୍ରା.କ୍ରି. ବାହାରକୁ ଯିବା, ଝାଡ଼ା ଫେରିଯିବା । [ ପଦପ୍ରହାର ।
ପଦାଘାତ—ବି. (୬ତତ୍) ଗୋଇଠା,
ପଦାଙ୍କ—ବି. ବିଂ. ପାଦଚିହ୍ନ, କ୍ରମାଙ୍କ, (ଲ.ଅର୍ଥ) କୌଣସି ବ୍ୟକ୍ତିଙ୍କ ଆଚରିତ ପନ୍ଥା ।
ପଦାଙ୍ଗୀ—ସ୍ତ୍ରୀ. ବି. ହଂସପଦୀ ଲତା ।
ପଦାଙ୍ଗୁଳି—ବି.(୬ତତ୍)ଗୋଡ଼ର ଆଙ୍ଗୁଠି ।
ପଦାଙ୍ଗୁଷ୍ଠ—ବି.(୬ତତ୍) ଗୋଡ଼ର ବୁଢ଼ା ଆଙ୍ଗୁଠି ।
ପଦାଜି—ପୁଂ. ବି. (ପଦ+ଅଜ+କ. ଇନ୍) ପଦାତି । [ ପଦାତିକ ।
ପଦାତ—ପୁଂ.ବି. (ପଦ+ଅତ୍+କ.ଅ)
ପଦାତି—ପୁଂ.ବି. (ପଦ+ଅତ୍+ଇ) ପିଆଦା, ପଦାତିକ, ପାଇକ, ସମ୍ବାଦ-ବାହକ ।
ପଦାତିକ—ପୁଂ.ବି. ପାଇକ, ପଦାତି ।
ପଦାତିନ୍—ବି.ବି. ପଦାତିସୈନ୍ୟ ।
ପଦାତୀୟ—ପୁଂ.ବି. ପଦାତି ।
ପଦାତ୍ୟଧ୍ୟକ୍ଷ—ପୁଂ.ବି. ପଦାତି ସେନାର ଅଧିପତି ।

ପଦାଦି—ପୁଂ.ବି. ପଦର ଆଦି ।

ପଦାଦ୍ୟବିଦ୍—ପୁଂ. ବି. ଅପକୃଷ୍ଟ ଛାତ୍ର, ଯେଉଁ ଛାତ୍ର ପଦର ଆଦ୍ୟ ଉଚ୍ଚାରଣ କରିପାରେ ନାହିଁ ।

ପଦାଧ୍ୟୟନ—କ୍ଳୀ. ବି. ପଦର ପଠନ ।

ପଦାନତ—ବି. ବିଂ. (୬ତତ୍) ଚରଣରେ ପତିତ, ଗୋଡ଼ତଳେ ପଡ଼ିଥିବା, ଅନୁଗତ ।

ପଦାନୁଗ—ବି. ବିଂ. ପଦାନୁସରଣ ।

ପଦାନୁରାଗ—ପୁଂ.ବି. ପଦରେ ଅନୁରକ୍ତି, ଭଲପାଇବା, ଦେବତାଙ୍କ ଚରଣରେ ଭକ୍ତି ।

ପଦାନୁବର୍ତ୍ତୀ—ପୁଂ. ବିଂ.(୬ତତ୍) ପଦାନୁସରଣକାରୀ, ପଦ ଅନୁସରିବା (ବ୍ୟକ୍ତି), ଅଧୀନ । [ ବ୍ୟାକରଣ ।

ପଦାନୁଶାସନ—କ୍ଳୀ. ବି. ଶବ୍ଦାନୁ ଶାସନ

ପଦାନୁସ୍ୱାର—ପୁଂ. ବି. ସାମଭେଦ ।

ପଦାନ୍ୱୟ—ବି.(୬ତତ୍) ବାକ୍ୟର ଅନ୍ତର୍ଗତ ଗୋଟିଏ ଗୋଟିଏ ପଦର ପ୍ରକାର ଭେଦ ଏବଂ ଲିଙ୍ଗ, ବଚନ, କାରକ, ପୁରୁଷ, ଉପକାରକ, କାଳ ଓ ବାଚ୍ୟ ଭେଦର ଯଥାସମ୍ଭବ ଉଲ୍ଲେଖ ସାନ୍ୱୟ ପଦ ନିର୍ବାଚନ ।

ପଦାନ୍ତ—ପୁଂ. ବି. ପଦର ଶେଷ, ବ୍ୟାକରଣରେ ଯାହାର ପଦ ସଂଜ୍ଞା କରାହୋଇଅଛି ତାହାର ଅନ୍ତ ।

ପଦାନ୍ତର—ଭିନ୍ନପଦ, ସ୍ଥାନାନ୍ତର ।

ପଦାନ୍ତୀୟ—ବି. ବିଂ. ପଦାନ୍ତ ସମ୍ବନ୍ଧୀୟ

ପଦାବଳି(ଳୀ)—ବି.(୬ତତ୍) ଶବ୍ଦସମୂହ, ଗୀତ ସମୂହ, ଭଜନମାଳା ।

ପଦାବୃତ୍ତି—ବି. (୬ତତ୍) ଗୋଟିଏ ପଦର ପୁନରୁଚ୍ଚାରଣ, ( ଅଳଙ୍କାର ଶାସ୍ତ୍ର ) ପୃଥକ ଅର୍ଥରେ ଏକ ଶବ୍ଦର ଏକାଧିକ ଥର ପ୍ରୟୋଗ ।

ପଦାଭିଳାଷୀ—ପୁଂ.ବିଂ. କୌଣସି ପଦ ବା ଅଧିକାର ପାଇବାପାଇଁ ଇଚ୍ଛାକରିବା (ବ୍ୟକ୍ତି) । [ ସ୍ଥାପିତ

ପଦାଭିଷେକ—ବି. ବିଂ. ପଦରେ

ପଦାମ୍ବୁଜ—ବି. (କ.ଧା) ପାଦପଦ୍ମ, ପଦ୍ମ-

ପର ସୁନ୍ଦର ଚରଣ, ଚରଣପଦ୍ମ, ମାନ୍ୟ ବ୍ୟକ୍ତି ବା ଗୁରୁଜନଙ୍କ ପଦ ।

ପଦାମ୍ଭୋଜ—କ୍ଳୀ. ବି. ପଦାରବିନ୍ଦ, ପାଦପଦ୍ମ ।

ପଦାର—ପୁଂ. ବି. ପାଦଧୂଳି, ନୌକା ।

ପଦାରବିନ୍ଦ—କ୍ଳୀ. ବି. (କ.ଧା) ପାଦପଦ୍ମ, ଚରଣକମଳ ।

ପଦାର୍ଘ୍ୟ—ବି. (କ.ଧା) ଅତିଥି ବା ଆଗନ୍ତୁକ ଗୁରୁଜନଙ୍କ ପାଦ ଧୋଇବା ନିମନ୍ତେ ଦିଆଯିବା ଜଳ ।

ପଦାର୍ଥ—ପୁଂ. ବି. (୬ତତ୍) ସଦାଭିଧେୟ ଦ୍ରବ୍ୟାଦି, ପଦର ଅର୍ଥ, ବସ୍ତୁ, ସାର, ସ୍ୱତ୍ତ୍ୱ, ( ବୈଶେଷିକ ଦର୍ଶନ ) ପ୍ରମାଣ ଯୋଗ୍ୟ ୬ଗୋଟି ବିଷୟ ।

ପଦାର୍ଥଦର୍ଶନ—ବି.ବସ୍ତୁ ବିଜ୍ଞାନ, ପ୍ରାକୃତିକ ବିଜ୍ଞାନ, ଯେଉଁ ବିଦ୍ୟାଦ୍ୱାରା ଚେତନାଚେତନ ବସ୍ତୁମାନଙ୍କର ଉତ୍ପତ୍ତି, ଗୁଣ ଓ କର୍ମାଦି ସମ୍ବନ୍ଧରେ ଜ୍ଞାନ ଲାଭ ହୁଏ, ଜଡ଼ବିଜ୍ଞାନ ।

ପଦାର୍ଥବାଦ—ବି.ଜଡ଼ବାଦ, ଯେଉଁ ସିଦ୍ଧାନ୍ତରେ ଜଡ଼ ପଦାର୍ଥକୁହିଁ ଏ ସୃଷ୍ଟିର ପ୍ରଧାନ ବା ପ୍ରଥମ ମୂଳ ବୋଲି ଉପସ୍ଥାପିତ କରାଯାଏ ।

ପଦାର୍ଥବିତ୍—ପୁଂ. ବିଂ. (ପଦାର୍ଥ+ବିଦ୍ +କ.କ୍ୱିପ୍) ବୈଜ୍ଞାନିକ, ପ୍ରକୃତ ବିଜ୍ଞାନାଭିଜ୍ଞ, ପ୍ରାକୃତିକ ତତ୍ତ୍ୱଜ୍ଞ ।

ପଦାର୍ଥବିଦ୍ୟା—ବି.ଶାସ୍ତ୍ର ବିଶେଷ, ଯେଉଁ ଶାସ୍ତ୍ରରେ ପଦାର୍ଥ ସମଷ୍ଟିର ଗୁଣାଗୁଣ ବିଚାର କରି ତାହାର କାର୍ଯ୍ୟାଦି ବର୍ଣ୍ଣିତ ହୋଇଅଛି ।

ପଦାର୍ପଣ—ବି. (୬ତତ୍) ଚରଣ ବିନ୍ୟାସ, ପ୍ରବେଶ, ଆସି ପହଞ୍ଚିବା, ଉପସ୍ଥାନ ।

ପଦାୟତ—ବିଂ. (ପଦ+ଆୟତ) ପାଦ ସମାନ ଲମ୍ବ ।

ପଦାୟତା—ବି.(ପଦାୟତ+ଆ) ଯୋତା ।

ପଦାଳିକ—ପୁଂ.ବି.ପାଦର ଉପରଭାଗ ।

ପଦାଶ୍ରୟ—ବି. ( ୬ତତ୍ ) ଚରଣାଶ୍ରୟ, କୌଣସି ବ୍ୟକ୍ତିର ଚରଣରେ ଆଶ୍ରୟ

ପଦାଶ୍ରିତ—ପୁଂ. ବି . (୬ତତ୍) ଅନ୍ୟର

ପଦତଳେ ଆଶ୍ରୟ ପ୍ରାପ୍ତ, ଅନୁଗତ, ବଶଂବଦ ।

ପଦାସ—କ୍ଳୀ. ବି. ସାମ ଭେଦ ।

ପଦାସନ—କ୍ଳୀ. ବି. ପାଦପୀଠ, ପୀଢ଼ା ।

ପଦାସ୍ତ—ଗ୍ରା. (ଗଞ୍ଜାମ) ବି. ପଦାର୍ଥ ।

ପଦାହତ—ବିଂ. (୩ତତ୍) ଯାହାକୁ ପାଦ ଦ୍ୱାରା ଆଘାତ କରାଯାଇ ଅଛି ।

ପଦି—ପୁଂ. ବି. ଗନ୍ତବ୍ୟ ।

ପଦିଏ—ଗ୍ରା.ବି.ଏକପଦ ବା ବାକ୍ୟମାତ୍ର ।

ପଦିକ—ପୁଂ. ବି. ( ପଦ+କ.ଇକ ) ପଦାତିସୈନ୍ୟ, ଗୋଡ଼ର ଅଗ, (ବିଂ) ପାଦରେ ବୁଲୁଥିବା, ଏକପଦଲମ୍ବ, ଗୋଟିଏମାତ୍ର ଅଂଶ ବା ଖଣ୍ଡବିଶିଷ୍ଟ, (ଗ୍ରା. ବି) ଏକପଦ ମାତ୍ର ।

ପଦିକା—ଗ୍ରା.ବି. ଭୂମି ପରିମାପକ ଦଣ୍ଡ, ଚଲ, ଗୃହଅଣା, ଗୃହସଜ । [ ବିଶେଷ ।

ପଦିନ୍ୟାସ—ପୁଂ. ବି. ଜୈମିନି ସୂତ୍ରୋକ୍ତ ନ୍ୟାୟଭେଦ ।

ପଦିହୋମ—ପୁଂ.ବି.ଶ୍ରୁତିବିହିତ ହୋମ-

ପଦେ—ଗ୍ରା. ବି. ପଦିକ, ଏକପଦମାତ୍ର, (ଗ୍ରା.ଅବ୍ୟ) ରୂପ, ସ୍ୱରୂପ ।

ପଦେଅଧେ—ଗ୍ରା. ବି. ଅଳ୍ପକଥା ବା ବାକ୍ୟମାତ୍ର, ଅଳ୍ପମାତ୍ର ।

ପଦେପଦେ—ଗ୍ରା. ବି. ପ୍ରତିପଦରେ, ପ୍ରତି ପଦକ୍ଷେପରେ, ପ୍ରତିଥର, ଏକ ଏକ ଶବ୍ଦ ଉଚ୍ଚାରଣ କରି, ଠିକେଠିକେ, ଚୁମ୍ବକରୂପେ, ଏକଏକ ପଦ କରି, ପ୍ରତ୍ୟେକ ଏକପଦମାତ୍ର ।

ପଦୋଦକ—ବି. (କ.ଧ ) ଗୁରୁଜନ ବା ଦେବତାଙ୍କର ପାଦଧୁଆ ପାଣି, ଚରଣାମୃତ, ପାଦୁକ ।

ପଦୋନ୍ନତି—ବି. (୬ତତ୍) ଅଧିକାର ବା କ୍ଷମତାର ବୃଦ୍ଧି, ଚାକିରିରେ ଉନ୍ନତି ।

ପଦୋପହତ—ବି.ବିଂ.ପାଦଦ୍ୱାରା ଉପହତ

ପଦ୍ଗ—ପୁଂ.ବି. (ପଦ+ଗମ୍+ଅ) ପଦାତିକ, ପଦଗୃହ ।

ପଦ୍ଘୋଷ—ପୁଂ.ବି. ପାଦଶବ୍ଦ ।

ପଦ୍ଝଟିକା—ବି. ପଜ୍ଝଟିକା ଦେଖ ।

ପଦ୍ଧତ(ତି)—ସ୍ତ୍ରୀ.ବି. (ପଦ୍+ହନ୍+ତି)

ପଂକ୍ତି, ଗ୍ରନ୍ଥାର୍ଥବୋଧକ ଗ୍ରନ୍ଥ, ପଦବନ୍ଧ-ପ୍ରଣାଳୀ, ପଥଶ୍ରେଣୀ, ରାସ୍ତା, ରେଖା, ପ୍ରବାହ, ସରଣି, ଗ୍ରନ୍ଥରଚନା ଆଗୃର, ଆଗୃର ନିର୍ଣ୍ଣାୟକ ଗ୍ରନ୍ଥ ।

ପଦ୍ମିମ—କ୍ଲୀ.ବି.ପାଦର ଶୀତଳତା ।

ପଦ୍ମ—ପୁଂ.କ୍ଲୀ.ବି. ସ୍ୱନାମଖ୍ୟାତକୋମଳ ବୃକ୍ଷ, ତଜ୍ଜାତ ପୁଷ୍ପବିଶେଷ, କମଳ, ପଦ୍ମକ, ସେନା ବ୍ୟୂହବିଶେଷ, ନିଧି-ବିଶେଷ, ପଦ୍ମରାଗ ମଣି, ସଂଖ୍ୟାବିଶେଷ, ଲକ୍ଷକୋଟୀ ସୀସକ, କଳ୍ପବିଶେଷ, ବିଷ୍ଣୁଙ୍କର ହସ୍ତଧୃତ ଏକ ଆୟୁଧ, ଶରୀରସ୍ଥ ଷଟ୍ପଦ୍ମ, ଦାଶରଥି, ନାଗ-ବିଶେଷ, ବଳଦେବ, ରତିବନ୍ଧବିଶେଷ, ରାଜାବିଶେଷ, ହାତୀର ଶୁଣ୍ଢ ଓ ମୁଣ୍ଡ ଉପରେ ଥିବା ରକ୍ତବର୍ଣ୍ଣ ଚିହ୍ନବିଶେଷ, (ବାସ୍ତୁବିଦ୍ୟା) ସ୍ତମ୍ଭର ସପ୍ତମଭାଗ, ପଦ୍ମ-କାଷ୍ଠ, ମନ୍ଦିରବିଶେଷ, ପଦ୍ମାସନ, ଏକ-ପ୍ରକାର ଲୋଭାନ୍, ନକ୍ଷତ୍ର ପୁଞ୍ଜବିଶେଷ, ସୀତାକାନ୍ତ, ନରକବିଶେଷ, ହସ୍ତୀ, ପଦ୍ମପୁରାଣ, ସ୍ଥଳପଦ୍ମ ।

ପଦ୍ମକ—କ୍ଲୀ.ବି. (ପଦ୍ମ+କ) କୁଷ୍ଠରୋଗ, ବିନ୍ଦୁଜାତ କୁଡ଼, ପଦ୍ମକାଷ୍ଠ ପଦ୍ମାସନ, ସେନାବ୍ୟୂହ, କୁଷ୍ଠୌଷଧ, ପଦ୍ମତୀର୍ଥ ଗୃହାୟତନଭେଦ ।

ପଦ୍ମକଣ୍ଟକ—ବି. (ଷତତ୍) ପଦ୍ମନାଡ଼ରେ ଥିବା କଣ୍ଟା, ଦେହରେ ପଦ୍ମକଣ୍ଟା ପରି ଫଳିଥିବା ରୋଗବିଶେଷ ।

ପଦ୍ମକନ୍ଦ—ବି. (ଷତତ୍) ପଦ୍ମମୂଳ ।

ପଦ୍ମକର—ପୁଂ.ବି.ପଦ୍ମହସ୍ତ, ବିଷ୍ଣୁ, ସୂର୍ଯ୍ୟ ।

ପଦ୍ମକରଗାର—ପୁଂ.ବି.ପୁଷ୍ପବୃକ୍ଷବିଶେଷ ।

ପଦ୍ମକର୍କଟ—ପୁଂ. ସ୍ତ୍ରୀ. ବି. କମଳାକ୍ଷ, ପଦ୍ମଶାବ ।

ପଦ୍ମକର୍ଣ୍ଣିକା—ସ୍ତ୍ରୀ. ବି. ପଦ୍ମାକାରରେ ସଜ୍ଜିତ ସେନା ମଣ୍ଡଳୀର ମଧ୍ୟଭାଗ, କମଳ-କର୍ଣ୍ଣିକା । [ଶେଷକଳ୍ପ ।

ପଦ୍ମକଳ୍ପ—ବି. କଳ୍ପବିଶେଷ, ବିଗତ

ପଦ୍ମକାଦ୍ୟଘୃତ—କ୍ଲୀ. ବି. ଘୃତୌଷଧ-ବିଶେଷ ।

ପଦ୍ମକାନ୍ତ—ବି.ଷତତ୍ ସୂର୍ଯ୍ୟ, ପଦ୍ମରାଗମଣି ।

ପଦ୍ମକାହ୍ୱୟ—କ୍ଲୀ.ବି. ପଦ୍ମକାଷ୍ଠ ।

ପଦ୍ମକିଞ୍ଜଳ୍କ—ପୁଂ.ବି.ଷତତ୍ ପଦ୍ମକେଶର ।

ପଦ୍ମକିନ୍—ପୁଂ.ବି. ଭୂର୍ଜବୃକ୍ଷ ।

ପଦ୍ମକୀଟ—ପୁଂ.ବି.ଅଗ୍ନିପ୍ରକୃତି କୀଟବିଶେଷ

ପଦ୍ମକୂଟ—କ୍ଲୀ. ବି. ପ୍ରାଚୀନ ଜନପଦ-ବିଶେଷ । [ ପଦ୍ମନିବାସ ।

ପଦ୍ମକେତନ—ବି. ଗରୁଡ଼ାତ୍ମଜବିଶେଷ,

ପଦ୍ମକେତୁ—ପୁଂ. ବି. ପଶ୍ଚିମାକାଶରେ ସମୟେ ସମୟେ ଗାଢ ତମାମ୍ ଦେଖା-ଯିବା ଧୂମକେତୁବିଶେଷ ।

ପଦ୍ମକେଶ(ସ)ର—ପୁଂ.କ୍ଲୀ.ବି.ପଦ୍ମରେଣୁ

ପଦ୍ମକୋଷ—ପୁଂ.ବି. ପଦ୍ମଫୁଲର ବୀଜ-କୋଷ ।

ପଦ୍ମକ୍ଷେତ୍ର—କ୍ଲୀ. ବି. ଓଡ଼ିଶାର କଟକ ଜିଲ୍ଲାର କେନ୍ଦ୍ରାପଡ଼ାରେ ଥିବା ତୀର୍ଥ ।

ପଦ୍ମଖଣ୍ଡ—କ୍ଲୀ. ବି. ପଦ୍ମପରିବେଷ୍ଟିତ ସ୍ଥାନ, ପଦ୍ମସମୂହ ।

ପଦ୍ମଖେପିପଡ଼ିବା—ଗ୍ରା. ବି. ଗୁହ୍ୟ ଦ୍ୱାର-ବାଟେ ପଦ୍ମ ବାହାରିବା ।

ପଦ୍ମଗନ୍ଧ—ତ୍ରି. ବିଂ. ପଦ୍ମତୁଲ୍ୟ ଗନ୍ଧଯୁକ୍ତ, (ବି—ଷତତ୍) ପଦ୍ମଫୁଲର ଗନ୍ଧ, ପଦ୍ମ-କାଷ୍ଠ ।

ପଦ୍ମଗନ୍ଧା—ସ୍ତ୍ରୀ.ବି. (ପଦ୍ମଗନ୍ଧ+ଆ)ପଦ୍ମ-ଗନ୍ଧର ସ୍ତ୍ରୀଲିଙ୍ଗ, ( ସ୍ତ୍ରୀ.ବି. ) ସୀତାଙ୍କ ନାମାନ୍ତର ।

ପଦ୍ମଗନ୍ଧି(ନ୍ଧୀ)—ବିଂ. (ପଦ୍ମଗନ୍ଧ+ଇ. ଇନ୍) ପଦ୍ମଗନ୍ଧବିଶିଷ୍ଟ, (ବି) ପଦ୍ମକାଷ୍ଠ ଦେଖ ।

ପଦ୍ମଗର୍ଭ—ପୁଂ. ବି.ସୂର୍ଯ୍ୟ, ବୁଦ୍ଧ, ବ୍ରହ୍ମା, ବିଷ୍ଣୁ, ଶିବ, ଶାମୁକା, କମଳ ମଧ୍ୟଭାଗ ।

ପଦ୍ମଗିରି—ବି. ପର୍ବତବିଶେଷ ।

ପଦ୍ମଗୁଣା—ସ୍ତ୍ରୀ.ବି. ଲକ୍ଷ୍ମୀ ।

ପଦ୍ମଗୁପ୍ତ—ବି. ରାଜକବି ବିଶେଷ ।

ପଦ୍ମଗୁଲଞ୍ଚ—ବି. ପଦ୍ମଗୁଳୁଚି, ଔଷଧରେ ବ୍ୟବହୃତ ଲତାବିଶେଷ ।

ପଦ୍ମଗୃହା—ସ୍ତ୍ରୀ.ବି. ପଦ୍ମାଳୟା, ଲକ୍ଷ୍ମୀ ।

ପଦ୍ମଚରଟୀ—ସ୍ତ୍ରୀ. ବି.ସ୍ଥଳପଦ୍ମ, ନବମୀତ ଖୋଟୀ ।

ପଦ୍ମଚାରିଣୀ—ସ୍ତ୍ରୀ. ବି. (ପଦ୍ମ+ଚର+ଇନ୍+ଈ) ଲତାବିଶେଷ, ସ୍ଥଳ କମ-ଳିନୀ, ଖର୍ଗୀ, ସମୀବୃକ୍ଷ, ହରିଦ୍ରା, ଲକ୍ଷ, ବୃଦ୍ଧି । [ ବ୍ରହ୍ମା ।

ପଦ୍ମଜ—ପୁଂ.ବି. (ପଦ୍ମ+ଜନ+କ.ଅ)

ପଦ୍ମତନ୍ତୁ—ପୁଂ.ବି. ( ଷତତ୍ ) ମୃଣାଳ, ମୃଣାଳର ସୂତ୍ର ।

ପଦ୍ମତୀର୍ଥ—କ୍ଲୀ.ବି. ପୁଷ୍କର ମୂଳ ।

ପଦ୍ମତୋଳା—ଗ୍ରା. ବି. କେଳାମାନଙ୍କର ସାପ ଧରିବା ବା ସାପ ଖେଳାଇବା ନିମନ୍ତେ ବୋଲିବା ଗୀତ ।

ପଦ୍ମଦଳେକ୍ଷଣ—ପୁଂ.ବିଂ.(ବ.ବ୍ରୀ)ଯାହାର ଆଖି ପଦ୍ମଫୁଲର ପାଖୁଡ଼ାପରି ।

ପଦ୍ମଦର୍ଶନ—ପୁଂ. ବି. ଶ୍ରୀବାସ, ସର୍ଜରସ, ଲୋଭାନ୍ ।

ପଦ୍ମଧାତୁ—କରୁଣାପୁଣ୍ଡରୀକ ନାମକ ବୌଦ୍ଧ ଗ୍ରନ୍ଥବର୍ଣ୍ଣିତ ଦ୍ୱୀପଭେଦ ।

ପଦ୍ମନନ୍ଦୀ—ପ୍ରସିଦ୍ଧ ଦିଗମ୍ବରାଚାର୍ଯ୍ୟ କୁନ୍ଦ-କୁନ୍ଦର ନାମାନ୍ତର, ରାଘବପାଣ୍ଡବୀୟର ଟୀକା ରଚୟିତା ।

ପଦ୍ମନାଡ଼ିକା—ସ୍ତ୍ରୀ.ବି. ସ୍ଥଳପଦ୍ମିନୀ ।

ପଦ୍ମନାଭ—ପୁଂ. ବି. (ପଦ୍ମ+ନାଭି+ଅ) ବିଷ୍ଣୁ, ମହାଦେବ, ଧୃତରାଷ୍ଟ୍ର ପୁତ୍ରବିଶେଷ, ନାଗବିଶେଷ, ଆଶ୍ୱିନମାସ, ସ୍ତମ୍ଭନାସ୍ତ୍ର-ବିଶେଷ, ବିଂ.ପଦ୍ମପରି ନାଭିଯୁକ୍ତ ।

ପଦ୍ମନାଭ—ବି. ପ୍ରାଚୀନ ଜ୍ୟୋତିର୍ବିଦ୍-ବିଶେଷ, କାବ୍ୟ ରଚୟିତାବିଶେଷ, ଜଣେ ପ୍ରସିଦ୍ଧ ନୈୟାୟିକ । [କରଣ ।

ପଦ୍ମନାଭଦତ୍ତ—ଜଣେ ପ୍ରସିଦ୍ଧବୈୟା-

ପଦ୍ମନାଭଦୀକ୍ଷିତ— ପ୍ରତିଷ୍ଠାଦର୍ପଣ ଓ ପ୍ରୟୋଗଦର୍ପଣର ରଚକ ।

ପଦ୍ମନାଭଦେବ—ଗ୍ରା. ବି. ଓଡ଼ିଶା ଗଡ଼-ଜାତର ଜନୈକ ରାଜା ।

ପଦ୍ମନାଭପଣ୍ଡା—ଗ୍ରା.ବି. ଜଣେ ଓଡ଼ିଆ ସଙ୍ଗୀତଜ୍ଞ । [ବୀଜଗଣିତ ।

ପଦ୍ମନାଭବୀଜ—କ୍ଲୀ.ବି. ପଦ୍ମନାଭରଚିତ

ପଦ୍ମନାଭଭଞ୍ଜ—ଗ୍ରା. ବି. ଭଞ୍ଜଯୁଗର ଜନୈକ ଓଡ଼ିଆ କବି ।

ପଦ୍ମନାଭି—ପୁଂ.ବି. ବିଷ୍ଣୁ ।

ପଦ୍ମନାଳ—କ୍ଲୀ.ବି. ମୃଣାଳ ।

ପଦ୍ମନିଧି—ବି. କୁବେରଙ୍କର ରତ୍ନମାନଙ୍କ
ମଧ୍ୟରୁ ଏକତମ । [ ଚକ୍ଷୁଯୁକ୍ତ ।
ପଦ୍ମନିଭେକ୍ଷଣ—ବି. ବିଂ. ପଦ୍ମସଦୃଶ
ପଦ୍ମନିମୀଳନ—ବି.ବିଂ. ପ୍ରସ୍ଫୁଟିତ ପଦ୍ମର
ସଙ୍କୋଚନ ।
ପଦ୍ମନେତ୍ର—ପୁଂ.ବି. ପକ୍ଷୀବିଶେଷ,ବୁଦ୍ଧ-
ବିଶେଷ, (ବିଂ) ପଦ୍ମତୁଲ୍ୟ ନେତ୍ରଯୁକ୍ତ ।
ପଦ୍ମପଣ୍ଡିତ—ନାଗରସର୍ବସ୍ୱ ନାମକ
ସଂସ୍କୃତଗ୍ରନ୍ଥ ରଚୟିତା ।
ପଦ୍ମପତ୍ର—କ୍ଲୀ. ବି. ପୁଷ୍କର ମୂଳ, ପଦ୍ମର
ପତ୍ର, କମଳଦଳ । [ ରେଣୁ ।
ପଦ୍ମପରାଗ—ବି.(ଷତତ୍) ପଦ୍ମଫୁଲ ମଧ୍ୟସ୍ଥ
ପଦ୍ମପର୍ଣ୍ଣ—କ୍ଲୀ. ବି. ପଦ୍ମପତ୍ର ।
ପଦ୍ମପଲାଶଲୋଚନ—ପୁଂ. ବି. ବିଷ୍ଣୁ ।
ପଦ୍ମପାଣି—ପୁଂ. ବି. ବ୍ରହ୍ମା, ବିଷ୍ଣୁ,ବୁଦ୍ଧ-
ମୂର୍ତ୍ତିବିଶେଷ, ସୂର୍ଯ୍ୟ, (ବିଂ) ପଦ୍ମଫୁଲ
ହାତରେ ଧରିଥିବା, ପଦ୍ମହସ୍ତକ, ପଦ୍ମ-
ପରି ସୁନ୍ଦର ପାଦ ।
ପଦ୍ମପାଦାଚାର୍ଯ୍ୟ—ବି. ଆଚାର୍ଯ୍ୟବିଶେଷ ।
ପଦ୍ମପୁର—ବି. ନଗରବିଶେଷ,ପୁଣ୍ୟସ୍ଥାନ
ବିଶେଷ ।
ପଦ୍ମପୁରାଣ—କ୍ଲୀ.ବି.ମହର୍ଷି ବେଦବ୍ୟାସ-
କୃତ ମହାପୁରାଣବିଶେଷ ।
ପଦ୍ମପୁଷ୍କର—ଗ୍ରା. ବି. ସୁପକ୍ୱ ଓ ଶୁଷ୍କ
ପଦ୍ମବୀଜ ।
ପଦ୍ମପୁଷ୍ପ—ବି. କର୍ଣ୍ଣିକାର ବୃକ୍ଷ, ପିକାଙ୍ଗ
ପକ୍ଷୀ, ସ୍ଥଳପଦ୍ମ, ପଦ୍ମଫୁଲ ।
ପଦ୍ମପ୍ରଭ—ପୁଂ. ବିଂ. (ବ.ବ୍ରୀ) ପଦ୍ମଫୁଲ
ପରି ପ୍ରଭାବିଶିଷ୍ଟ ।
ପଦ୍ମପ୍ରିୟା—ସ୍ତ୍ରୀ. ବି. (ବ.ବ୍ରୀ) ମନସା-
ଦେବୀ, ଗାୟତ୍ରୀରୂପା ମହାଦେବୀ ।
ପଦ୍ମବନ୍ଧ—ପୁଂ. ବି. ଚିତ୍ରକାବ୍ୟବିଶେଷ,
ରତିବନ୍ଧବିଶେଷ,ଶବ୍ଦାଳଙ୍କାରବିଶେଷ ।
ପଦ୍ମବନ୍ଧୁ—ପୁଂ. ବି. ( ଷତତ୍ ) ସୂର୍ଯ୍ୟ,
ଭ୍ରମର, ଅର୍କବୃକ୍ଷ ।
ପଦ୍ମଭବ—ପୁଂ. ବି. (ବ.ବ୍ରୀ) ବ୍ରହ୍ମା ।
ପଦ୍ମଭାସ—ବି. (ପଦ୍ମ+ଭାସ୍+ଅ) ବିଷ୍ଣୁ ।
ପଦ୍ମଭୂ—ପୁଂ.ବି. (ପଦ୍ମ+ଭୂ+କ.କ୍ୱିପ୍)
ବ୍ରହ୍ମା ।

ପଦ୍ମମୟ—ବି. ବିଂ. (ପଦ୍ମ+ ମୟ) ପଦ୍ମ-
ଯୁକ୍ତ, ପଦ୍ମନିର୍ମିତ ।
ପଦ୍ମମାଳିନୀ—ସ୍ତ୍ରୀ. ବି. ଗଙ୍ଗା, (ପୁଂ.ବି)
ପଦ୍ମମାଳାଧାରୀ ରାକ୍ଷସବିଶେଷ ।
ପଦ୍ମମିହିର—ପୁଂ. ବି. କାଶ୍ମୀର ଦେଶର
ଏକ ପୁରାତନ ଇତିହାସ ପ୍ରଣେତା ।
ପଦ୍ମମୁଖ—ବିଂ. (ବ.ବ୍ରୀ) ଯାହାର ପଦ୍ମ-
ଫୁଲପରି ସୁନ୍ଦର, (ବି) ବିଷ୍ଣୁ, ବ୍ରହ୍ମା ।
ପଦ୍ମମୁଖୀ—ସ୍ତ୍ରୀ. ବିଂ. ( ପଦ୍ମମୁଖ+ଈ )
ସୁନ୍ଦରମୁହୀଁ, (ବି) ଦୂର୍ବାଲତା, ଦୁରା-
ଲଭା । [ ବିଶେଷ ।
ପଦ୍ମମୁଦ୍ରା—ସ୍ତ୍ରୀ.ବି. ତନ୍ତ୍ରସାରୋକ୍ତ ମୁଦ୍ରା-
ପଦ୍ମଯୋନି—ପୁଂ. ବି. (ପଦ୍ମ+ଯୋନି)
ବ୍ରହ୍ମା, ପିତାମହ ।
ପଦ୍ମରାଗ—ପୁଂ. ବି. ରକ୍ତବର୍ଣ୍ଣ ମଣି-
ବିଶେଷ, ପ୍ରବାଳ, ପର୍ଣ୍ଣୀ ।
ପଦ୍ମରାଗମୟ—ବି. ବିଂ. ପଦ୍ମରାଗବିଶିଷ୍ଟ ।
ପଦ୍ମରେଖା—ସ୍ତ୍ରୀ.ବି.(କ.ଧା. ଜ୍ୟୋତିଷ)
ହସ୍ତସ୍ଥିତ ପଦ୍ମାକାର ରେଖାବିଶେଷ ।
ପଦ୍ମଲାଞ୍ଛନ—ପୁଂ. ବି. ( ବ.ବ୍ରୀ ) ବ୍ରହ୍ମା,
ସୂର୍ଯ୍ୟ, କୁବେର,ରାଜା,(ବିଂ)ପଦ୍ମରେଖା-
ଯୁକ୍ତ ।
ପଦ୍ମଲାଞ୍ଛନା—ସ୍ତ୍ରୀ.ବି.(ବ.ବ୍ରୀ)ଲକ୍ଷ୍ମୀ, ସର-
ସ୍ୱତୀ, ଦୁର୍ଗା । [ ବିଶେଷ ।
ପଦ୍ମଲେଖା—ସ୍ତ୍ରୀ.ବି. କାଶ୍ମୀର ରାଜକନ୍ୟା
ପଦ୍ମଲୋଚନ—ବି. ( କ.ଧା ) ପଦ୍ମପରି
ସୁନ୍ଦର ନେତ୍ର, (ପୁଂ.ବି . ବ.ବ୍ରୀ)ପଦ୍ମ-
ତୁଲ୍ୟ ସୁନ୍ଦର ଚକ୍ଷୁବିଶିଷ୍ଟ ।
ପଦ୍ମବର୍ଣ୍ଣ—ବି.(ରୂପ. କ.ଧା) ପଦ୍ମଫୁଲ-
ପରି ଈଷତ୍ ରକ୍ତବର୍ଣ୍ଣ, ଯଦୁଙ୍କର ଏକ
ପୁତ୍ର, ( ବିଂ. ବ.ବ୍ରୀ ) ପଦ୍ମଫୁଲପରି
ରକ୍ତବର୍ଣ୍ଣବିଶିଷ୍ଟ, (ସ୍ତ୍ରୀ) ପଦ୍ମବର୍ଣ୍ଣା ।
ପଦ୍ମବର୍ଣ୍ଣକ—କ୍ଲୀ.ବି. ପୁଷ୍କର ମୂଳ, (ବିଂ)
କମଳତୁଲ୍ୟ ବର୍ଣ୍ଣଯୁକ୍ତ । [ ବ୍ରହ୍ମ ।
ପଦ୍ମବାଳ—ବି. (ପଦ୍ମ+ବାଳ) ବିଧାତା,
ପଦ୍ମବାସା—ସ୍ତ୍ରୀ.ବି. (ବ.ବ୍ରୀ) ପଦ୍ମାଳୟା,
ଲକ୍ଷ୍ମୀ, ସରସ୍ୱତୀ ।
ପଦ୍ମବୀଜ—ବି. କମଳବୀଜ, ପଦ୍ମଫୁଲ
ମଧ୍ୟସ୍ଥ ଫଳ ବା ମଞ୍ଜି ।

ପଦ୍ମବୃକ୍ଷ—କ୍ଲୀ. ବି. ପଦ୍ମକାଷ୍ଠ ।
ପଦ୍ମବ୍ୟୂହ—ପୁଂ. ବି. ସମାଧିବିଶେଷ ।
ପଦ୍ମଷଣ୍ଡ—କ୍ଲୀ. ବି. ପଦ୍ମସମୂହ ।
ପଦ୍ମସମାସନ—ପୁଂ. ବି. (ବ.ବ୍ରୀ) ବ୍ରହ୍ମା,
(ବିଂ)ଯାହାର ପଦ୍ମତୁଲ୍ୟ ଆସନ ଅଛି ।
ପଦ୍ମସମ୍ଭବ—ପୁଂ.ବି.ବ୍ରହ୍ମା, ବୌଦ୍ଧ ପଣ୍ଡିତ
ବିଶେଷ ।
ପଦ୍ମସୁନ୍ଦର—ବି. ଜୈନ ପଣ୍ଡିତବିଶେଷ ।
ପଦ୍ମସରସ—କ୍ଲୀ. ବି. କାଶ୍ମୀରସ୍ଥ ହ୍ରଦ-
ବିଶେଷ ।
ପଦ୍ମସୁଷା—ସ୍ତ୍ରୀ. ବି. ଗଙ୍ଗା, ଦୁର୍ଗା ।
ପଦ୍ମସ୍ୱସ୍ତିକ—ବି. ପଦ୍ମ ଚିହ୍ନଯୁକ୍ତ ସ୍ୱସ୍ତିକ-
ବିଶେଷ ।
ପଦ୍ମହାସ—ପୁଂ. ବି. ବିଷ୍ଣୁ, ପଦ୍ମଭାସ ।
ପଦ୍ମା—ସ୍ତ୍ରୀ. ବି. (ପଦ୍ମ+ଅ+ଆ) ଲକ୍ଷ୍ମୀ,
ଲବଙ୍ଗ, ପଦ୍ମଚାରିଣୀ ଲତା, ମନସା
ଦେବୀ, ମଞ୍ଜୁ କୁସୁମଫୁଲ, ଚନ୍ଦ୍ରାବଳୀ-
ଙ୍କର ଏକତମା ସଖୀ, ଭାଦ୍ର ଶୁକ୍ଳ ଏକା-
ଦଶୀ, ନଦୀବିଶେଷ ।
ପଦ୍ମାକର—ପୁଂ.ବି. (ଷତତ୍) ପଦ୍ମଜନକ
ଜଳାଶୟ, ପଦ୍ମ ପୋଖରୀ ।
ପଦ୍ମାକ୍ଷ—ପୁଂ. ବି. (ଷତତ୍)ବିଷ୍ଣୁ, ପଦ୍ମ-
ବୀଜ, ପଦ୍ମନେତ୍ର, (ବିଂ.ବ.ବ୍ରୀ)କମଳ-
ଲୋଚନ ।
ପଦ୍ମାଟ—ପୁଂ. ବି. ଚକ୍ରମର୍ଦ୍ଦ, ଗୁଳୁଞ୍ଚ ।
ପଦ୍ମାଳୟା—ସ୍ତ୍ରୀ. ବି. (ପଦ୍ମ+ଆଳୟ+
ଆ) ଲକ୍ଷ୍ମୀ, ଲବଙ୍ଗ, ଗଙ୍ଗା ।
ପଦ୍ମାବତୀ—ସ୍ତ୍ରୀ. ବି. (ପଦ୍ମ+ବତ୍+ଈ)
ମନସାଦେବୀ,ନଦୀବିଶେଷ,ପଦ୍ମଚାରିଣୀ,
ପ୍ରସିଦ୍ଧ କବି ଜୟଦେବଙ୍କ ପତ୍ନୀ,ନବଦ୍ୱୀପ-
ବାସୀ ମହାତ୍ମା ନିତ୍ୟାନନ୍ଦଙ୍କ ମାତା,କାଞ୍ଚି
ରାଜକନ୍ୟା, ପୁରୁଷୋତ୍ତମ ଦେବଙ୍କ
ପଟ୍ଟମହିଷୀ, ଉଜ୍ଜୟିନୀ ନଗରର ପୁରା-
ତନ ନାମ, କର୍ଣ୍ଣରାଜାଙ୍କ ପତ୍ନୀ,ପାଟଣା
ନଗରର ପ୍ରାଚୀନ ନାମ,ଗେଣ୍ଡୁଫୁଲ,
ଅପ୍ସରାବିଶେଷ ।
ପଦ୍ମାବତୀପ୍ରିୟ—ପୁଂ.ବି.(ଷତତ୍) ଜରତ୍-
କାରୁ ମୁନି, ଜୟଦେବ ।
ପଦ୍ମାସନ—କ୍ଲୀ.ବି. (କ.ଧା) ଯୋଗାସନ

ବିଶେଷ, ପୂଜା ନିମିତ୍ତ ଧାତୁମୟ ଆସନ ବିଶେଷ, (ପୁଂ. ବି) ବ୍ରହ୍ମା, ବିଷ୍ଣୁ, ଶିବ, ସୂର୍ଯ୍ୟ ।

ପଦ୍ମାସନା—ସ୍ତ୍ରୀ.ବି(ପଦ୍ମାସନ+ଆ)ଲକ୍ଷ୍ମୀ ।

ପଦ୍ମାହ୍ୱା—ସ୍ତ୍ରୀ. ବି. (ବ.ବ୍ରୀ) ପଦ୍ମଚାରିଣୀ ଲତା, ଲବଙ୍ଗ ।

ପଦ୍ମିନୀ—ସ୍ତ୍ରୀ. ବି. ( ପଦ୍ମ+ଇନ୍+ଈ ) ପଦ୍ମଲତା, ସ୍ତ୍ରୀବିଶେଷ, ପଦ୍ମଗନ୍ଧା ସ୍ତ୍ରୀ, ନଳିନୀ, ପଙ୍କଜିନୀ, ନାଡ଼, ପତ୍ର ପୁଷ୍ପାଦି ସହିତ ପଦ୍ମଲତା, ହସ୍ତିନୀ, ମାଈହାତୀ, ପଦ୍ମସମୂହ, ପଦ୍ମବହୁଳ ପୁଷ୍କରିଣୀ, (ଗ୍ରା. ବି) ରାଣା ଭୀମସିଂହଙ୍କ ପତ୍ନୀ ।

ପଦ୍ମିନୀକଣ୍ଟକ—ପୁଂ.ବି. ପଦ୍ମକଣ୍ଟା ନାମକ ରୋଗବିଶେଷ ।

ପଦ୍ମିନୀକାନ୍ତ—ପୁଂ. ବି. (୬ତତ୍ପୁ)ସୂର୍ଯ୍ୟ ।

ପଦ୍ମିନୀବଲ୍ଲଭ—ପୁଂ. ବି. ସୂର୍ଯ୍ୟ ।

ପଦ୍ମୀ—ପୁଂ. ବି. ( ପଦ୍ମ+ଇନ୍ ) ହସ୍ତୀ, ବିଷ୍ଣୁ, ପଦ୍ମସମୂହ, ଭବିଷ୍ୟତ୍ ବୁଦ୍ଧ ବିଶେଷ, (ବିଂ) ପଦ୍ମବିଶିଷ୍ଟ ।

ପଦ୍ମେଶୟ—ପୁଂ.ବି.(ବ.ବ୍ରୀ)ବ୍ରହ୍ମା,ବିଷ୍ଣୁ ।

ପଦ୍ମୋତ୍ତର—ପୁଂ. ବି. କୁସୁମ୍ଭ, ତତ୍ପୁଷ୍ପ, କୁସୁମ୍ଭ ଶାଗ । [ ବିଶେଷ ।

ପଦ୍ମୋତ୍ତରାତ୍ମଜ—ପୁଂ.ବି.ଜିନ ଚକ୍ରବର୍ତ୍ତୀ

ପଦ୍ମୋଦ୍ଭବ—ପୁଂ.ବି(ବ.ବ୍ରୀ)ବ୍ରହ୍ମା,ବିଷ୍ଣୁ ।

ପଦ୍ମୋଦ୍ଭବା—ସ୍ତ୍ରୀ.ବି.ମନସାଦେବୀ,ଲକ୍ଷ୍ମୀ

ପଦ୍ୟ—କ୍ଲୀ.ବି (ପଦ୍+ଯ)ଶ୍ଳୋକାଦିବିଶେଷ, ଶ୍ଳୋକ, ଛନ୍ଦଯୁକ୍ତ ରଚନା, ଶ୍ରୁଦ୍ର,ଶ୍ରୁତି ମଧୁର ଶବ୍ଦବିନ୍ୟାସରେ ରଚିତ କବିତା ବା କାବ୍ୟ, (ବିଂ) ଶାଠ୍ୟ, କର୍ଦ୍ଦମ ବିଶେଷ, ପଦ୍ୟଯୁକ୍ତ, ପଦ୍ୟସମ୍ବନ୍ଧୀୟ ।

ପଦ୍ୟମୟ—ତ୍ରି.ବିଂ.ପଦ୍ୟ ସ୍ୱରୂପ, ପଦ୍ୟଯୁକ୍ତ(ରଚନା),ପଦ୍ୟପରି ମଧୁର(ଜୀବନ) ।

ପଦ୍ୟା—ସ୍ତ୍ରୀ.ବି. (ପଦ୍ୟ+ଯ+ଆ)ସ୍ତୁତି, ପନ୍ଥା, ଶର୍କରା,ପ୍ରଶଂସା, ରାସ୍ତା ।

ପଦ୍ୟାବଳୀ—ବି. (୬ତତ୍ପୁ) ପଦ୍ୟସମୂହ ।

ପଦ୍ରଥ—ପୁଂ. ବିଂ. ପାଦଚାରୀ ।

ପଦ୍ୱ—ପୁଂ. ବି. ଭୂଲୋକ,ରଥ, ପନ୍ଥା ।

ପଦ୍ୱନ—ପୁଂ. ବି. ପନ୍ଥ ।

ପଧାନ—ପୁଂ. ବି. ରାଜକରଯୁକ୍ତ ଗ୍ରାମର ପ୍ରଧାନ ବ୍ୟକ୍ତି, ଗ୍ରାମର ରାଜସ୍ୱ ଅସୁଲକାରୀ କର୍ମଚାରୀ,ଚଷାଙ୍କ ଉପାଧିବିଶେଷ

ପଧାନି—ଗ୍ରା.ବି. ପଧାନର ଅଧିକାର ବା କର୍ମ, ପଧାନର ପାରିଶ୍ରମିକ, (ଗ୍ରା.ବିଂ) ପ୍ରଧାନ ସମ୍ବନ୍ଧୀୟ ।

ପନ୍ଶି—ଗ୍ରା. ବି. ପନ୍ଦଳ ଦେଖ ।

ପନକ—ବି. ଏକପ୍ରକାର ସାରୁ ।

ପନଙ୍ଗାନାରାୟଣ—ବି. ଦୁର୍ଯ୍ୟୋଧନ ।

ପନଫର—ବି. ଜ୍ୟୋତିଷୋକ୍ତ ସଙ୍ଖ୍ୟାବିଶେଷ ।

ପନଭେଲ—ବି.ଦକ୍ଷିଣ ଆର୍କଟର ଗୋଟିଏ ନଗର ଓ ରେଲଷ୍ଟେସନ ।

ପନସ—ପୁଂ.ବି. (ପନ୍+ଅସ)ଫଳବୃକ୍ଷବିଶେଷ, ପଣସ ଫଳ, ବାନରବିଶେଷ, କଣ୍ଟକ, ଏକପ୍ରକାର ସାପ ।

ପନସକୀଳ—ବି.(୬ତତ୍ପୁ) ପଣସ ଭଣ୍ଡି ।

ପନସନ୍ତା(ନା)ଳିକା—ବି. ପଣସଗଛ, କଣ୍ଟକି ଫଳ । [ ଚର୍ମରୋଗ ।

ପନସ(ସୀ)—ବି. ଏକପ୍ରକାର ବ୍ରଣଯୁକ୍ତ

ପନସାସ୍ଥି—ବି. (୬ତତ୍ପୁ) ପଣସ ଭଣ୍ଡି ।

ପନସିକା—ସ୍ତ୍ରୀ. ବି. କାନ ଓ ବେକରେ ବାହାରିବା ବିସ୍ଫୋଟକ ରୋଗବିଶେଷ ।

ପନସ୍ୟ—ନାମଧାତୁ.ସ୍ତୋତ୍ରେଚ୍ଛା ।

ପନସ୍ୟୁ—ତ୍ରି.ବିଂ.ନିଜର ସ୍ତୋତ୍ରେଚ୍ଛା ।

ପନହ—ପ୍ରା. ( ବସ୍ତର ) ବି. ଜୋତା, ପାଣ୍ଡୋଇ ।

ପନା(ହ୍ନା)—ଗ୍ରା. ବି. ଗୋଆଦି ପଶୁଙ୍କ ସ୍ତନ, ଲୁଗାର ପ୍ରସ୍ଥ, (ପ୍ରା. ସମ୍ବଲ. ବି) ଆଖୁଦୋରୁଅ ।

ପନା(ନେ)ଇବା—ଗ୍ରା. କି. ବତ୍ସ ପହ୍ନା ବାହାର କରିବା, (ଦୁଧିଆଳ ଗାଈ ବା ଛେଳି)ନିଜର ପହ୍ନା ସ୍ତନ୍ୟପୂର୍ଣ୍ଣ ଥିବାର ଦର୍ଶାଇବା ।

ପନାୟିତ—ବିଂ. (ପନ+ଆୟ + ର୍ମ.ତ) ବର୍ଣ୍ଣିତ, ପ୍ରଶଂସିତ, ସ୍ତୁତ ।

ପନାସି—ଗ୍ରା. ବି. ( ସଂ.ପଣ୍ୟାନ୍ଧା ) ମଧ୍ୟଭାରତ ଓ ଗଡ଼ଜାତରେ ଜନ୍ମିବା ଏକପ୍ରକାର ଘାସ, ସବାଇ ।

ପନି—ଗ୍ରା. ବି. ରଙ୍ଗତା, ପତଳା ଜଳ, ପାଉଁଆ, ସୁନେଲି ଓ ରୁପେଲି କାଗଜ, ଲଙ୍ଗଳର ପକ୍ଷ ।

ପନିଅର—ଗ୍ରା.ବି.ପରିବାପତ୍ର, ବାଇଗଣ ଫଳ, ସୁବାସିତ ଜଳ, କ୍ଷୌରଦ୍ରବ୍ୟ ।

ପନିକ—ଗ୍ରା. ବି. ପରିବା କାଟିବାର ଅସ୍ତ୍ରବିଶେଷ ।

ପନିପରିବା—ଗ୍ରା.ବି. ପରିବାପତ୍ର,ରନ୍ଧନୋପଯୋଗୀ ଶାକଶବଜୀ ।

ପନିଷ୍ଟମ—ତ୍ରି. ବିଂ. ସ୍ତୁତ୍ୟତମ ।

ପନିଷ୍ଠ—ତ୍ରି. ବିଂ. ସ୍ତୋତ୍ତୃତମ ।

ପନିଷ୍ପଦ—ତ୍ରି. ବିଂ. ଅତିଶୟ ସ୍ପନ୍ଦମାନ ।

ପନୀର—ଲବଣୀରୁ ପ୍ରସ୍ତୁତ ଖାଦ୍ୟଦ୍ରବ୍ୟ, ସୁବାସିତ ଜଳ ।

ପନୁ—ସ୍ତ୍ରୀ. ବି. (ପନ୍+ଉ)ସ୍ତୁତି ।

ପନ୍ତାଡ଼(ର)—ଗ୍ରା. ବି. ପ୍ରାନ୍ତ, ପ୍ରାନ୍ତର, କୌଣସି ଆଶ୍ରୟଶୂନ୍ୟ ଦୀର୍ଘ ପ୍ରଶସ୍ତ ପଡ଼ିଆ, ବଗଚର, ନଈଆଦିର କୂଳ ।

ପନ୍ତି—ଗ୍ରା.ବି. (ସଂ-ପଂକ୍ତି) ଧାଡ଼ି, ଶ୍ରେଣୀ, ସମୂହ, ରାଶି ।

ପନ୍ତିରଥ—ଗ୍ରା. ବି. ରାଜା ଦଶରଥ ।

ପନ୍ତୁଆ—ପ୍ରା. (ସମ୍ବଲ)ବି. ଚିତ୍ତୁମଣ୍ଡା ସ୍ଥିର ପଣନ୍ତ କାନି ।

ପନ୍ଥ—ଗ୍ରା.ବି, ଦୂରତ୍ୱ, ମାର୍ଗ, ପଥ, ଶିଷ୍ୟସମ୍ପ୍ରଦାୟ ।

ପନ୍ଥକ—ତ୍ରି. ବିଂ.ପଥ ରୁ ଜାତ,ପଥୋତ୍ପନ୍ନ

ପନ୍ଥା—ପୁଂ. ବି. ପଥ, ଉପାୟ, ରାହା, କୌଣସି ଧର୍ମସମ୍ପ୍ରଦାୟ ।

ପନ୍ଥୀ—ଗ୍ରା. ବିଂ. ଧର୍ମସମ୍ପ୍ରଦାୟଭୁକ୍ତ ।

ପନ୍ଦର—ପୁଂ. ବି. ଗିରିବିଶେଷ, (ଗ୍ରା.ବି) ପଞ୍ଚଦଶ ସଂଖ୍ୟାବିଶେଷ ।

ପନ୍ଦାଡ଼(ର)—ଗ୍ରା.ବି.ପେଣ୍ଡା,ଘରର ଓଳି, ଓଳିତଳ ।

ପନ୍ଦାଡ଼(ର)—ଗ୍ରା.ବି.ଶଗଡ଼ଗୁମ୍ଫି ମୁହଁରେ ଲଗିଥିବା ଲୁହା ବଳା, ପନ୍ଦାଡ଼ ଦେଇ, ଓଲୁଆ । [ ଅଧୋମୁଖ ।

ପନ୍ନ—ତ୍ରି.ବିଂ.(ପଦ୍+ତ)ଚ୍ୟୁତ, ଗଳିତ,

ପନ୍ନଗ—ପୁଂ. ବି. (ପଦ୍+ନ+ଗମ୍+ଅ) ସୀସା, ସର୍ପ, ଔଷଧବିଶେଷ, ପଦ୍ମକାଷ୍ଠ ।

ପନ୍ନଗକେଶର—ପୁଂ. ବ. (ବ.ଗ୍ରା)ନାଗକେଶର ପୁଷ୍ପ, ନାଗେଶ୍ୱର ।
ପନ୍ନଗନାଶକ—ପୁଂ. ବ. ଗରୁଡ଼ ।
ପନ୍ନଗମୟ—ତ୍ରି. ବଂ. ସର୍ପସଙ୍କୁଳ ।
ପନ୍ନଗାରି—ପୁଂ. ବ. (୬ତତ୍ପୁ) ଗରୁଡ଼, ମୟୂର, ନକୁଳ, ନେଉଳ ।
ପନ୍ନଗାଶନ—ପୁଂ. ବ. (ବ.ଗ୍ରା)ଗରୁଡ଼ ।
ପନ୍ନଗୀ—ସ୍ତ୍ରୀ. ବ. ପନ୍ନଗ ପତ୍ନୀ, ମନସାଦେବୀ, ସର୍ପୀ ।
ପନ୍ନଧା—ସ୍ତ୍ରୀ. ବ. (ପଦ+ନଦ୍ଧ+ତ୍ତ) ଚର୍ମପାଦୁକା, ପାଣ୍ଡୋଇ, ଯୋତା ।
ପନ୍ନଦ୍ଧ୍ରୀ—ସ୍ତ୍ରୀ.ବ. ଚର୍ମପାଦୁକା,ପାଣ୍ଡୋଇ, ଯୋତା ।
ପନ୍ନା—ଗ୍ରା. ବ. ମରକତମଣି ।
ପନ୍ନାଗାର—ପୁଂ. ବ. ଗୋତ୍ରପ୍ରବର୍ତ୍ତିକ ଋଷିବିଶେଷ ।
ପନ୍ନି—ଗ୍ରା. ବ. ମାଲବାର ଉପକୂଳବାସୀ ଗୋଟିଏ ଜାତି ।
ପନ୍ନୀର—ବ. ( ପତ୍ର+ନୀର ) ଭୂମିରେ ଛିଞ୍ଚାଯିବା ସୁବାସିତ ଜଳ ।
ପନ୍ହଇ—ଗ୍ରା. ( ଉତ୍ତରଖଣ୍ଡ ) ଯୋତା, ପାଣ୍ଡୋଇ ।
ପନ୍ହା—ଗ୍ରା. (ସିଂହଭୂମ) ବ. ମାଛଜାଆଁଳ । [ ଫଳ ।
ପପସ୍ତା—ଗ୍ରା. ବ. ଅମୃତଭଣ୍ଡା ଗଛ ଓ
ପପି—ପୁଂ. ବ. ଚନ୍ଦ୍ର, (ବଂ) ପାନକର୍ତ୍ତା ।
ପପୀ—ପୁଂ. ବ. ସୂର୍ଯ୍ୟ, ଚନ୍ଦ୍ର ।
ପପୁ—ପୁଂ. ବ. ପାଳକ,(ସ୍ତ୍ରୀ.ବ)ଧାତ୍ରୀ ।
ପପୃକ୍ଷେଣ୍ୟ—ତ୍ରି. ବଂ. ସମ୍ପର୍କ ଯୋଗ୍ୟ, ସମ୍ପର୍କାର୍ହ ।
ପପୁରି—ତ୍ରି. ବଂ. ପୂରଣଶୀଳ ।
ପଫଲ—ପୁଂ. ବ. ଗୋତ୍ରପ୍ରବର୍ତ୍ତିକ ଋଷିବିଶେଷ ।
ପବ—ଗ୍ରା.ବ. (ସଂ-ପର୍ବ) ଅଙ୍ଗୁଳିର ଦୁଇ ଗଣ୍ଠିର ମଧ୍ୟସ୍ଥ ଅଂଶ,ବାଉଁଶ ଓ ବେତର ଦୁଇଗଣ୍ଠି ମଧ୍ୟସ୍ଥ ଅଂଶ, (ବ.ପୂ+କ.ଅ) ପବନ, ଗୋବର, ( ଭା.ଅ ) ଧାନରୁ ଅଗାଡ଼ ସଫା କରିବା ।
ପବଅଇର—ଗ୍ରା. ବ. ହାଡ଼ଭଙ୍ଗା ଦେଖ ।

ପମ୍ପ—କର୍ଣ୍ଣାଟଭାଷାର ପ୍ରଥମ କବି,ଜୈନକବିବିଶେଷ ।
ପମ୍ପା—ସ୍ତ୍ରୀ. ବ. ( ପ+ମିଁ. ପ+ଆ ) ଋଷ୍ୟମୂକ ପର୍ବତରୁ ବାହାରି ଓଡ୍ରଦେଶ ମଧ୍ୟଦେଇ ତୁଙ୍ଗଭଦ୍ରାରେ ପଡ଼ିଥିବା ନଦୀବିଶେଷ, ସ୍ୱନାମଖ୍ୟାତ ସରୋବର ।
ପୟଃ—ବ. (ପା+ମିଁ.ଅସ୍) ଜଳ, ଦୁଗ୍ଧ, ରସ,ଜଳୀୟ ବସ୍ତୁ,ବର୍ଷାଜଳ, ରେତଃ, ଖାଦ୍ୟ ।
ପୟଃକନ୍ଦା—ସ୍ତ୍ରୀ. ବ. (ବ.ଗ୍ରା) ଭୂଇଁକଖାରୁ, କ୍ଷୀରବିଦାରୀ ।
ପୟଃପୟୋଷ୍ଣୀ—ସ୍ତ୍ରୀ. ବ. ନଦୀବିଶେଷ ।
ପୟଃପାନ—କ୍ଲୀ. ବ. ଦୁଗ୍ଧପାନ ।
ପୟଃପୂର—ପୁଂ.ବ.ପୁଷ୍କରିଣୀ ବା ହ୍ରଦ ।
ପୟଃପେଟୀ—ବ. ନଡ଼ିଆ ।
ପୟଃପ୍ରଣାଳୀ—ସ୍ତ୍ରୀ. ବ. (୬ତତ୍ପୁ) ଜଳନିର୍ଗମନ ପଥ, ନର୍ଦ୍ଦମା, ପଣିନଳା, ପାଣିମାହାର । [ ଫେଣ ।
ପୟଃଫେନ—ବ. ( ୬ତତ୍ପୁ ) ଦୁଧର
ପୟଃଫେନୀ—ସ୍ତ୍ରୀ. ବ. ବୃକ୍ଷବିଶେଷ, ଦୁଗ୍ଧଫେନୀ କ୍ଷୁପ ।
ପୟଗମ୍ବର—ଯା.ବ. ମୁସଲମାନମାନଙ୍କ ଧର୍ମଶାସ୍ତ୍ରବର୍ଣ୍ଣିତ ଈଶ୍ୱର ପ୍ରେରିତ ଦୂତ ।
ପୟଗମ୍ବରି—ଗ୍ରା. ବ. ଈଶ୍ୱର ପ୍ରେରିତ ଦୂତର କର୍ମ ।
ପୟର—ଗ୍ରା. ବ. ପାଦ,ଚରଣ,ଗୋଡ଼ ।
ପୟଶ୍ଚୟ—ପୁଂ.ବ. (୬ତତ୍ପୁ) ଜଳସମୂହ, ପୂର, ବେଣୀ ।
ପୟସ୍—ବ. (ପା+ମିଁ.ଅସ୍) ଜଳ ।
ପୟସ୍ୟ—ବ.(ପୟସ୍+ଯ)ପୟୋବିକାର, ଘୃତ, ଦଧି, ପୟୋଦ୍ଭବ, ବରଡ଼ି,(ବଂ) ଦୁଗ୍ଧପ୍ରସ୍ତୁତ, ଜଳୀୟ ।
ପୟସ୍ୟା—ସ୍ତ୍ରୀ.ବ. (ପୟସ୍ୟ+ଆ)ଦୁଗ୍ଧିକା, କ୍ଷୀରକାକୋଲୀ, ଅର୍କପୁଷ୍ପିକା,କୁଟୁମ୍ବିନୀ କ୍ଷୁପ, ଛେନା, ଆମିକ୍ଷା, ସ୍ୱର୍ଣ୍ଣକ୍ଷୀରୀ ।
ପୟସ୍ୱଲ—ତ୍ରି. ବଂ. ( ପୟସ୍ + ବଲ ) ଜଳଯୁକ୍ତ,ଦୁଗ୍ଧମୟ, (ସ୍ତ୍ରୀ) ପୟସ୍ୱଲା, (ବ) ଛାଗ, ଛେଳି ।
ପୟସ୍ୱାନ୍—ପୁଂ. ବଂ. (ପୟସ୍+ବତୁ) ଜଳଯୁକ୍ତ, ଦୁଗ୍ଧଯୁକ୍ତ, (ବ) ମେଘ ।

ପୟସ୍ୱିନୀ—ସ୍ତ୍ରୀ.ବଂ. (ପୟସ+ବିନ୍+ଈ) ଦୁଗ୍ଧବତୀ, ଦୁଧିଆଳୀ, (ସ୍ତ୍ରୀ.ବ) ଦୁଧିଆଳୀ ଗାଈ, ନଦୀ, ରାତ୍ରି, ଛାଗୀ,କ୍ଷୀରକାକୋଲୀ, ଜୀବନ୍ତୀ ଲତା, ଗାୟତ୍ରୀ ସ୍ୱରୂପା ମହାଦେବୀ,ଦୁଗ୍ଧଫେନୀ, କ୍ଷୀରବିଦାରୀ ।
ପୟସ୍ୱୀ—ବଂ.(ପୟସ+ବିନ୍) ଜଳପୂର୍ଣ୍ଣ, ଦୁଗ୍ଧମୟ ।
ପୟା—ସ୍ତ୍ରୀ. ବ. ତୁଣ୍ଡି, (ଗ୍ରା.ବ) ଶଗଡ଼ର ପଣଧି, ପଦ୍ମ, ପୁଞ୍ଜି ।
ପୟାଅମାବାସ୍ୟା—ଗ୍ରା. ବ. କାର୍ତ୍ତିକ ଅମାବାସ୍ୟା, ପିତୃମେଇ ଅମାବାସ୍ୟା ।
ପୟୋଘନ—ପୁଂ. ବ. (ପୟସ୍+ଘନ) ବର୍ଷୋପଳ, କୁଆପଥର, କରକା ।
ପୟୋଜ—କ୍ଲୀ.ବ.(ପୟସ୍+ଜନ+ଅ) ପଦ୍ମ, ଜଳଜ ।
ପୟୋଜନ୍ମ—ପୁଂ. ବ. (ବ.ଗ୍ରା) ମେଘ, ମୁସ୍ତକ, ମୁଥା ।
ପୟୋଦ—ପୁଂ. ବ. (ପୟସ୍+ଦା+କ ଅ) ମେଘ, ମୁସ୍ତକ, ଯଦୁରାଜ ପୁତ୍ରବିଶେଷ ।
ପୟୋଦନ—ବ. (କ.ଧା) ଦୁଧଭାତ ।
ପୟୋଧର—ବ. (ପୟସ୍ + ଧୃ + କ.ଅ) ସ୍ତ୍ରୀ ସ୍ତନ, ମେଘ, ମୁସ୍ତକ, କୋଷକାର, ନାରିକେଳ, ପଶୁଙ୍କ ପହ୍ନା, ଅର୍କ ଗୁଳ୍ମ, ସମୁଦ୍ର, ପର୍ବତ, (ବଂ) ଦୁଗ୍ଧ ଧାରଣକାରୀ, ଜଳପୂର୍ଣ୍ଣ ।
ପୟୋଧସ୍—ପୁଂ. ବ. (ପୟଃ+ଧା+ଅସ୍) ସମୁଦ୍ର,ଜଳାଧାର ।
ପୟୋଧାରା—ସ୍ତ୍ରୀ. ବ. (୬ତତ୍ପୁ) ଜଳଧାରା, ନଦୀବିଶେଷ ।
ପୟୋଧି—ପୁଂ.ବ. (ପୟସ୍+ଧି+କ.ଇ) ସମୁଦ୍ର, ଜଳଧି, ମେଘ ।
ପୟୋଧିକ—କ୍ଲୀ. ବ. (ପୟଃ+ଅଧିକ) ସମୁଦ୍ର ଫେନ ।
ପୟୋନିଧି—ପୁଂ. ବ. (ପୟସ୍+ନିଧି) ସମୁଦ୍ର, ମେଘ ।
ପୟୋମୁକ୍—ବ. (ପୟସ୍+ମୁଚ୍+କ.

କ୍ୱିପ୍) ମେଘ, ମୁସ୍ତକ, ମୁଥା ।
ପୟୋମୁଖ—ବିଂ. ( ବ.ଗ୍ରୀ ) ଯେଉଁ ପାତ୍ରରେ ମୁହଁ ପାଖରେ କେବଳ ଦୁଧ ଥାଏ (ଅବଶିଷ୍ଟାଂଶ ଅସାର ପଦାର୍ଥରେ ପୂର୍ଣ୍ଣ ହୋଇଥାଏ), ଦୁଗ୍ଧପୋଷ୍ୟ ଶିଶୁ, ସ୍ତନନ୍ଧୟ ।
ପୟୋର—ପୁଂ. ବ. (ପୟୋ+ଋ+ଅ) ଖଦିର ।
ପୟୋବାହ—ପୁଂ. ବ. (ପୟସ୍+ବହ +କ.ଅ) ମେଘ, ମୁସ୍ତକ, ମୁଥା ।
ପୟୋବୃଧ୍—ବି.ବିଂ. ଜଳପ୍ଲାବିତ,ଜଳପରିବର୍ଦ୍ଧିତ ।
ପୟୋବ୍ରତ—ବ.(ପୟସ୍+ବ୍ରତ)ଫାଲ୍‌ଗୁନ ଶୁକ୍ଳପକ୍ଷରେ ଅନୁଷ୍ଠେୟ ବ୍ରତବିଶେଷ, ଏକଦିନ ଓ ଏକରାତ୍ର ବା ତିନରାତ୍ର ବ୍ୟାପୀ କାଳ କେବଳ ଜଳପାନ କରି କରାଯିବା ବ୍ରତ ।
ପର୍‌ଓଆନା—ଯା. ବ. ଆଦେଶପତ୍ର, ହୁକୁମନାମା,ନୋଟିସ୍, ଛାଡ଼ପତ୍ର,ସମନ ।
ପର୍‌ଘନିଆ—ପ୍ରା. (ସମ୍ବ) ବ. ଅନାର୍ଯ୍ୟ ଚଣ୍ଡୀକାଡିର ଦଳପତି ।
ପର୍‌ବସ୍ତ(ସ୍ତି)—ଯା.ବ. ପାଳଣ, ପୋଷଣ, (ବିଂ) ପାଳିତ, ଦୁଃଖପୋଷିତ ।
ପର୍‌ହୁର୍—ପ୍ରା. (ସମ୍ବ) ବ. ଗତବର୍ଷ, ଆଗାମୀବର୍ଷ ।
ପର୍‌ହେଜ୍—ଯା. ବ. ପଥ୍ୟ,ପଥିଜଗିବା, ସଂଯମ ।
ପର—କ୍ଳୀ. ବ. ( ପୃ+ଅ ) କେବଳ, ମୋକ୍ଷ, ବ୍ରହ୍ମା, ବ୍ରହ୍ମ, ବିଷ୍ଣୁ, ବ୍ରହ୍ମାର ଆୟୁ, ଶିବ, ଶମ୍ଭୁ, ନିର୍ବାଣ,ମୁକ୍ତି, (ବିଂ) ଆସକ୍ତ, ନିଷ୍ଠ,ଅନନ୍ତର,ଶ୍ରେଷ୍ଠ, ଅଧିକ, ପରମ, ଚରମ, ଅପର, ଅନାତ୍ମୀୟ, ଭିନ୍ନ, ବୈରୀ, (ସ୍ତ୍ରୀ) ପରା, ( ଯା. ବ ) ପକ୍ଷ, ପକ୍ଷୀର ପାଲକ ।
ପରଂ—ଅ.ବ . କେବଳ,ନିଶ୍ଚିତଭାବରେ, କିନ୍ତୁ, ପଶ୍ଚାତ୍, ପରେ ।
ପରଂତ—ଅବ୍ୟ. ଆହୁରିମଧ୍ୟ, ଏବଂମଧ୍ୟ, ହେଲେସୁଦ୍ଧା, ଅପର ପକ୍ଷରେ ମଧ୍ୟ ।
ପରଂବ୍ରହ୍ମ—ବ. ପରମେଶ୍ୱର,ପରମାତ୍ମା ।
ପରଃଶତ—ବି. ବିଂ. ଶତାଧିକ ସଂଖ୍ୟକ, (ବ) ଶତାଧିକ ସଂଖ୍ୟା ।
ପରଃଶ୍ୱ—ଅବ୍ୟ. (ପର+ଶ୍ୱସ୍) ପଅରଦିନ, ଆଗାମୀଦିନର ପରଦିନ ।
ପରଃସହସ୍ର—ବି.ବିଂ. (୫ତତ୍) ସହସ୍ରାଧିକ ସଂଖ୍ୟକ, (ବ)ସହସ୍ରାଧିକ ସଂଖ୍ୟା ।
ପରକ—ପୁଂ. ବ. କେଶରାଜ ।
ପରକଟ—ଗ୍ରା. ବିଂ. (ପଦ୍ୟ) ପ୍ରକଟିତ, ବିଖ୍ୟାତ ।
ପରକନା—ଗ୍ରା. ବ. କଣ୍ଟାଗୁଲ୍ମ କାଟିବା ନିମନ୍ତେ ବ୍ୟବହୃତ ଦୁଇଶାଖିଆ ଯଷ୍ଟିବିଶେଷ,ତୋପ ଓ ବନ୍ଧୁକର ପାଖରେ ଥିବା କର୍ଣ୍ଣବତ୍ ସ୍ଥାନ,ଯହିଁର ଛିଦ୍ରବାଟେ ନିଆଁ ଲଗାଯାଏ ।
ପରକର୍ମ—କ୍ଳୀ. ବ. ପରର କାର୍ଯ୍ୟ ।
ପରକର୍ମନିରତ—ବି.ବିଂ. ପରକାର୍ଯ୍ୟରେ ତତ୍ପର ।
ପରକଳତ୍ର—ବ. ପର ସ୍ତ୍ରୀ ।
ପରକଳତ୍ରାଭିଗମନ—କ୍ଳୀ.ବ. ପରର ସ୍ତ୍ରୀ ସହିତ କୁସଂସର୍ଗରେ ଲିପ୍ତହେବା ।
ପରକଲମ—ଗ୍ରା. ବ. ପକ୍ଷକଲମ ।
ପରକଲା—ଯା. ବ. ଡାକସାଜ ମଧ୍ୟରେ ଦିଆଯିବା ଆରଶି ବା କ୍ଷୁଦ୍ର କାଚଖଣ୍ଡ ।
ପରକାୟପ୍ରବେଶ—ବ. (୭ତତ୍) ଆପଣାର ଆତ୍ମାକୁ ଅନ୍ୟବ୍ୟକ୍ତିର ବା ପ୍ରାଣୀର ଦେହରେ ପ୍ରବିଷ୍ଟ କରିବାର ଯୋଗସାଧନର ସିଦ୍ଧିବିଶେଷ ।
ପରକାର୍ଯ୍ୟ—ବ.ଅନ୍ୟର ସେବା,ପରୋପକାର, ଅନ୍ୟବ୍ୟକ୍ତିର ନାମ ।
ପରକାଳ—ପୁଂ. ବ. ( ପର+କାଳ ) ଉତ୍ତରକାଳ, ଶେଷକାଳ, ପରଦି, ପରଲୋକ, ମୃତ୍ୟୁର ପରବର୍ତ୍ତୀ ସମୟ ।
ପରକାଶ—ଗ୍ରା.(ପଦ୍ୟ)ବ. ପ୍ରକାଶ ଦେଖ
ପରକୀୟ—ବି. ବିଂ. (ପର + କ+ଈୟ) ଅନାତ୍ମୀୟ, ପରସମ୍ବନ୍ଧୀୟ, (ସ୍ତ୍ରୀ) ପରକୀୟା ।
ପରକୀୟରସ—ବ.ପରପୁରୁଷ ଓ ପର ସ୍ତ୍ରୀ ମଧ୍ୟରେ ଘଟିବା ପ୍ରଣୟ ।
ପରକୀୟସାଧନ(ନା)—ପରକୀୟା ନାୟିକାର ପରପୁରୁଷ ପ୍ରତି ଯେପରି ଗୋପନ ପ୍ରଣୟ ଥାଏ ଈଶ୍ୱରଙ୍କୁ ସେହିପରି ଏକାନ୍ତ ଅନୁରାଗ ସହ ଭଜିବା ପ୍ରଣାଳୀ ।
ପରକୀୟା—ସ୍ତ୍ରୀ. ବ. ନାୟିକାବିଶେଷ, ଗୁପ୍ତଭାବରେ ଯେଉଁମାନଙ୍କର ପରପୁରୁଷପ୍ରତି ଅନୁରାଗ ଥାଏ ।
ପରକୁସ୍ତ୍ରୀ—ବ. (୬ତତ୍) ପରର ନିନ୍ଦା ।
ପରକୃତି—ସ୍ତ୍ରୀ.ବ. ଅନ୍ୟର କୃତକାର୍ଯ୍ୟର ଚରିତାଖ୍ୟାନ ।
ପରକ୍ରାନ୍ତିଜ୍ୟା—ସ୍ତ୍ରୀ. ବ. ଯୋଜନ ମିଶ୍ରା ଜ୍ୟା (ସୂର୍ଯ୍ୟସିଦ୍ଧାନ୍ତ) । [ ସମୟ ।
ପରକ୍ଷଣ—ବ. ଅନ୍ୟମୁହୂର୍ତ୍ତ, ପରବର୍ତ୍ତୀ
ପରକ୍ଷେତ୍ର—କ୍ଳୀ. ବ. (୬ତତ୍) ଅପର ଭୂମି, ପର ସ୍ତ୍ରୀ, ଅନ୍ୟର ଶରୀର ।
ପରଖ—ଗ୍ରା. ବ. ପରୀକ୍ଷା, ଅନୁସନ୍ଧାନ, ପର୍ଯ୍ୟାଲୋଚନା, ଗୁଣ ଦୋଷର ବିବେଚନା, ପରୀକ୍ଷ ଔଷଧର ଅନୁପାନ ।
ପରଖଦେବା—ଗ୍ରା. କ୍ରି. ପରୀକ୍ଷା ଦେବା, ପରୀକ୍ଷିତ ହେବାପାଇଁ ଉପସ୍ଥିତ ହେବା
ପରଖାପରଖି—ଗ୍ରା.ବ଼ଓ ବିଂ. କଷାକଷି, ପରସ୍ପର ପରସ୍ପରକୁ ପରୀକ୍ଷା କରିବା, ଭଲମନ୍ଦ ପରୀକ୍ଷା କରିବା ବା ବାଛିବା ।
ପରଖିବା—ଗ୍ରା. କ୍ରି. ପରୀକ୍ଷା କରିବା ।
ପରଗଛା(ଛି)—ଗ୍ରା.ବ.ମଲ୍ଲୀଙ୍ଗ, ନିର୍ମୂଳୀ ।
ପରଗଣା—ଯା.ବ. ଜିଲ୍ଲାର ରାଜସ୍ୱ ବିଭାଗ, ପ୍ରଗନ୍ନା, ଜିଲ୍ଲା, ଚକଲା ।
ପରଗତ—ବି. ବିଂ. (୨ତତ୍) ପରପ୍ରାପ୍ତ, ଅପରଗତ ।
ପରଗାମିନ୍—ବି . ବିଂ. (ପର+ଗମ୍+ଇନ୍) ବାଚ୍ୟଲିଙ୍ଗ ଶବ୍ଦ ।
ପରଗୁଣ—ବି. ବିଂ. ପରର ଉପକାରୀ ।
ପରଗ୍ରନ୍ଥି—ପୁଂ.ବ. ଅଙ୍ଗୁଳି ପବ, ଆଙ୍ଗୁଳିର ଗଣ୍ଠି । [ ବାଦ ।
ପରଗ୍ଲାନି—ସ୍ତ୍ରୀ. ବ. ପରର ନିନ୍ଦା,ପରାପ-
ପରଘର—ଗ୍ରା. ବ. ଅନ୍ୟ ବ୍ୟକ୍ତିର ଘର, ଅନ୍ୟ ବ୍ୟକ୍ତିର ପରିବାର ।
ପରଘରପଶା—ଗ୍ରା. ପୁଂ. ବ. ଜାର, ପରନାରୀ ଭୋଗୀ ବ୍ୟକ୍ତି, ଲମ୍ପଟ ବ୍ୟକ୍ତି,

(ଗ୍ରା.ବ) ଯେ ପରର ଗୃହରେ ପ୍ରବେଶ କରେ ।

ପରଘରଭଙ୍ଗା—ଗ୍ରା. ପୁଂ. ବଂ. ଯେ ଅନ୍ୟ ବ୍ୟକ୍ତିର ପରିବାର ମଧ୍ୟରେ କଳହ ବୀଜ ରୋପଣକରେ,ଯେ ଅନ୍ୟ ବ୍ୟକ୍ତିର ସର୍ବନାଶ କରେ ।

ପରଙ୍ଗ—ଗ୍ରା. ବି. ପୁଣ୍ଡି ଜଲ ଖୋର୍ଦ୍ଧା ସବ୍‌ଡିଭିଜନର ପ୍ରସ୍ତରମୟ ବା ଟାଙ୍ଗି ଅଞ୍ଚଳ ।

ପରଚନ୍ଦ—କ୍ଳୀ. ବି. ଅନ୍ୟ ଲୋକର ବା ଶତ୍ରୁ ପକ୍ଷର ଚକ୍ରାନ୍ତ ।

ପରଚନ୍ଦକାମ— ପରରାଜ୍ୟପିପାସୁ ନେପାଳ ରାଜ ୨ୟ ଜୟଦେବଙ୍କର ନାମାନ୍ତର ।

ପରଚଖା—ପ୍ରା. (ମେଦନୀ)ବି. କାଣ୍ଡିପାଣି ଦେଖ ।

ପରଚଣ୍ଡ—ଗ୍ରା.(ପଦ୍ୟ)ବଂ. ପ୍ରଚଣ୍ଡ ଦେଖ ।

ପରଚର୍ଚ୍ଚା—ବି. (୬ତତ୍) ଅନ୍ୟ ବ୍ୟକ୍ତି ବିଷୟରେ ଆଲୋଚନା ।

ପରଚ୍ଚ—ଯା. ବି. ପାରଚ୍ଚ, ବନ୍ଦୋବସ୍ତ ଖାନାପୁରୀ ଅମିନ ରଚିତ ଜମିର ଯେଉଁ ପ୍ରାଥମିକ ବିବରଣଲିପି ପ୍ରଜାଙ୍କୁ ଦିଅନ୍ତି ।

ପରଚ୍ଚ(ଚେ)ଇବା—ଗ୍ରା. କ୍ରି. ପରିଚିତ କରାଇବା, କଣାଇବା,ପଡ଼ଚୁଆ ଦେବା

ପରଚିତ୍ତଜ୍ଞାନ—କ୍ଳୀ. ବି. ଅପରର ମନୋଭାବ ଜାଣିବା ।

ପରଚିତ୍ତପର୍ଯ୍ୟାୟଜ୍ଞାନ—-ବି. ଅନ୍ୟର ମନୋଗତ ଭାବକୁ ଜାଣିପାରିବା ।

ପରଚିବା—ଗ୍ରା. କ୍ରି. (ସଂ-ପରିଚୟ)ପରିଚୟ ଦେବା, ଚହ୍ନାଇଦେବା ।

ପରଚୁଆ—ଗ୍ରା. ବି. ପଡ଼ଚୁଆ ଦେଖ ।

ପରଚ୍ଛନ୍ଦ—ବଂ. (ବ.ବ୍ରୀ)ପରାଧୀନ, ପରବଶ, (ବି.-୬ତତ୍) ପରର ଅଭିପ୍ରାୟ ।

ପରଚ୍ଛନ୍ଦବତ୍—ବି. ପରଚ୍ଛନ୍ଦଯୁକ୍ତ ।

ପରଚ୍ଛନ୍ଦାନୁବର୍ତ୍ତୀ—ପୁଂ. ବଂ. (ପରଚ୍ଛନ୍ଦ +ଅନୁବର୍ତ୍ତିନ୍) ପରାଧୀନ, ଯେ ପରର ମନ ଜାଣି କାମ କରେ ।

ପରଚ୍ଛିଦ୍ର—କ୍ଳୀ. ବି. (୬ତତ୍)ପରଦୋଷ, ଅନ୍ୟ ବ୍ୟକ୍ତିର ଗୁପ୍ତ କଥା ।

ପରଚ୍ଛିଦ୍ରାନୁସାରୀ—ପୁଂ.ବଂ. ଯେ ପରର ଦୋଷ ଧରେ ।

ପରଚ୍ଛିଦ୍ରାନ୍ୱେଷୀ—ପୁଂ. ବଂ. ପରଦୋଷ ଖୋଜି ବୁଲିବା (ବ୍ୟକ୍ତି) ।

ପରଛୁଇ—ଗ୍ରା. ବି.(ସଂ-ପ୍ରତିଚ୍ଛାୟା)ଦର୍ପଣ ଓ ପାଣି ଆଦିରେ ପଡ଼ିବା କୌଣସି ବସ୍ତୁର ଛାୟା, ପ୍ରତିବିମ୍ବ ।

ପରଜ—ଗ୍ରା.ବି. ସଙ୍ଗୀତର ରାଗ ବିଶେଷ ।

ପରଜନ—ବି. ଶତ୍ରୁ, ଅନ୍ୟବ୍ୟକ୍ତି ।

ପରଜାତ—ବି. ବଂ. (୫ତତ୍)ଅନ୍ୟଠାରୁ ଉତ୍ପନ୍ନ, (୩ତତ୍) ପରପୁଷ୍ଟ,ଅନ୍ୟକର୍ତ୍ତୃକ ପାଳିତ,(ସ୍ତ୍ରୀ)ପରଜାତା, (ପୁଂ)ଅନ୍ୟୋତ୍ପନ୍ନ, କୋକିଲ ।

ପରଜିତ—ବି. ବଂ. (୩ତତ୍)ପରପୁଷ୍ଟ, ଅନ୍ୟଦ୍ୱାରା ପାଳିତ,ଶତ୍ରୁଦ୍ୱାରା ପରାଜିତ

ପରଜି(ଝି)ବା—ଗ୍ରା. କ୍ରି. ଘିଅଣକୁ ବଘାରିବା ବା ଫୁଟାଇବା ।

ପରଞ୍ଜ—ପୁଂ. ବି. (ପରଂ+ଜି+କ.ଅ) ଛୁରିକାର ଦାଢ଼,ଫେଣ, ତୈଳ ନିଷ୍ପେଷଣ ଯନ୍ତ୍ର, ତେଲ୍‌ଘଣା ।

ପରଞ୍ଜନ— ପୁଂ. ବି. ବରୁଣ ।

ପରଞ୍ଜୟ—ପୁଂ. ବି. (ପରଂ + ଜି + କ. ଅ) ବରୁଣ, ଶତ୍ରୁଜୟ କର୍ତ୍ତା,ଶତ୍ରୁଞ୍ଜୟ ।

ପରଞ୍ଜୋ—ପ୍ରା. (ଗଞ୍ଜାମ) ବି. ଗୃହଘରର ଚୁଅ, ଚୁଅ ।

ପରଟ(ଟା)—ଗ୍ରା. ବି. ( ସଂ-ପ୍ରଲୋଠନ ) ଘିଅ ବୋଲାଯାଇ ସେକା ଯାଇ ପରସ୍ତ ପରସ୍ତ ଭାଙ୍ଗ କରାଯାଇଥିବା ରୁଟି ।

ପରଡାଲ—ପ୍ରା.(ସମ୍ବଲ) ବି. ହୁଦା ।

ପରଣ—ବି. ପାର, ପଠନ, ( ଗ୍ରା.ବ ) ପରିଧାନ, ପିନ୍ଧିବା, ପିନ୍ଧିବାଲୁଗା ।

ପରତଃ—-ଅବ୍ୟ. ( ପର + ତସ୍ )ପର ଲୋକରେ, ପରଠାରୁ, ଭବିଷ୍ୟତରେ, ପରୋକ୍ଷରେ ।

ପରତଃପ୍ରମାଣ—ବି. (ବ.ବ୍ରୀ) ଯାହାସ୍ୱତଃ ପ୍ରମାଣିତ ନୁହେଁ,ପରୋକ୍ଷରେ ପ୍ରମାଣିତ ଯାହା ଅନ୍ୟ ପ୍ରମାଣର ଅପେକ୍ଷା ରଖେ

ପରତଙ୍ଗଣ—ପ୍ରାଚୀନ ଜନପଦ ବିଶେଷ

ପରତନ୍ତ୍ର—ବି. ବଂ. ପରବଶ, ପରାଧୀନ, (କ୍ଳୀ. ବି) ପରକୀୟ ଶାସ୍ତ୍ର, ଶ୍ରେଷ୍ଠ ଶାସ୍ତ୍ର, ଉତ୍ତମ ପୋଷାକ ।

ପରତର୍କୁକ—ବି.ବଂ.ଶତ୍ରୁର ଭୟଯୁକ୍ତ

ପରତବାଡ଼ା—-ଇଚ୍ଛାପୁର ଜିଲ୍ଲାର ସଦର ଓ ସେନାନିବାସବିଶେଷ ।

ପରତା—ସ୍ତ୍ରୀ. ବି. (ପର+ତା) ଚରମ ସୀମା, ଶ୍ରେଷ୍ଠତା, ଭିନ୍ନତା, ପାର୍ଥକ୍ୟ, ବୈର, ଅନୁରକ୍ତି,ଅଗବର୍ତ୍ତିତା,ସାନ୍ନିଧ୍ୟ

ପରତାପ—-ପୁଂ. ବି. (୬ତତ୍) ଅନ୍ୟର ଦୁଃଖ ।

ପରତାପନ—ପୁଂ.ବି.ପରପୀଡ଼କ, ଗରୁଡ଼ର ପୁତ୍ରବିଶେଷ ।

ପରତେ—ଗ୍ରା.ବି.ବିଶ୍ୱାସ,ପ୍ରତେ,ଅନୁମାନ

ପରତୋଗ୍ରାହ୍ୟ—ଅବ୍ୟ. ପରପ୍ରାମାଣ୍ୟ ।

ପରତ୍ର—ଅବ୍ୟ.(ପର+ତ୍ର)ପରକାଳରେ, ପରେ, ଭବିଷ୍ୟତରେ ।

ପରତ୍ରଭୀରୁ—-ବି. ବଂ. ଯାହାର ପର କାଳର ଭୟ ଅଛି,ଧର୍ମଭୀରୁ, ଧାର୍ମିକ ।

ପରତ୍ୱ—କ୍ଳୀ. ବି. (ପର+ତ୍ୱ) ପରତା, ପ୍ରଭେଦ, ଶତ୍ରୁତା, ବୈଶେଷିକୋକ୍ତ ଦ୍ରବ୍ୟାଶ୍ରିତଗୁଣବିଶେଷ, ଦୂରତ୍ୱ, ଦୂରବର୍ତ୍ତିତ ।

ପରଦା—ଯା. ବି. କାନ ଭିତରେ ଓ ଆଖିର ଡୋଳାଉପରେ ଥିବା ଖୁବ୍ ସୂକ୍ଷ୍ମ ଚର୍ମ,ଝିଲ୍ଲୀ, ଆବରଣ,ଘୋଟାପ,ଇଙ୍ଗିତ ।

ପରଦାଜ୍—ଯା. ବଂ. ସମ୍ପାଦନକାରୀ ।

ପରଦାଡେଶ୍ୱର—ଶିବଲିଙ୍ଗବିଶେଷ ।

ପରଦାନସିନ୍—ଯା.ବଂ.ଯେଉଁ ସ୍ତ୍ରୀମାନେ ପରଦା ମଧ୍ୟରେ ରହନ୍ତି ।

ପରଦାର(ଗ୍ରା)-ବି.ପର ସ୍ତ୍ରୀ,ପର ଭାର୍ଯ୍ୟା ।

ପରଦାରଗମନ—କ୍ଳୀ.ବି.ପର ସ୍ତ୍ରୀ ସହିତ ସଂସର୍ଗ ।

ପରଦାରଗାମୀ—ବି.ବଂ. (ପରଦାର + ଗମ + ଇନ୍) ପର ସ୍ତ୍ରୀ ସଂସର୍ଗକାରୀ ।

ପରଦାରାଭିଗମନ—କ୍ଳୀ. ବି. ପରସ୍ତ୍ରୀଗମନ

ପରଦାରିକ—ବି. ବଂ. ( ପରଦାର+ ଇକ) ପରଦାରଗାମୀ ।

ପରଦାରୀ—ବି. ବଂ. (ପରଦାର + ଇନ୍) ଯେ ପରସ୍ତ୍ରୀ ପାଖକୁ ଗମନ କରେ, ଲମ୍ପଟ ।

ପରଦିବସ—ବି. ପରବର୍ତ୍ତୀ ଦିବସ ।
ପରଦୁଃଖ—କ୍ଲୀ.ବି. ପରର ଦୁଃଖ, ଅନ୍ୟ ଲୋକର ପୀଡ଼ା ।
ପରଦେବତା—ସ୍ତ୍ରୀ.ବି. ପରମଦେବତା, ଶ୍ରେଷ୍ଠଦେବତା, ଇଷ୍ଟଦେବତା ।
ପରଦେଶ--ପୁଂ.ବି.ଅପରଦେଶ,ବିଦେଶ, ସ୍ଥାନ ବିଶେଷ ।
ପରଦେଶୀ—ପୁଂ.ବିଂ.(ପରଦେଶ+ଇନ୍) ଭିନ୍ନଦେଶବାସୀ, ବିଦେଶୀ, ପ୍ରବାସୀ ।
ପରଦ୍ୱେଷୀ—ପୁଂ. ବିଂ. (୬ତତ୍) ପର-ହିଂସାକାରୀ, ପରର ଅନିଷ୍ଟ ଚେଷ୍ଟା-କାରୀ,ବିଦୂଷକ,ଖଳ,(ସ୍ତ୍ରୀ)ପରଦ୍ୱେଷିଣୀ
ପରଧର୍ମ—ପୁଂ. ବି. (କ.ଧା)ନିଜର ଧର୍ମ ଛଡ଼ା ଅନ୍ୟ ଧର୍ମ, (୬ତତ୍) ଅନ୍ୟଜାତି ବା ବର୍ଣ୍ଣର ଆଚରିତ ଧର୍ମ ।
ପରଧାମ—ବି. (କ.ଧା) ବୈକୁଣ୍ଠ, ସ୍ୱର୍ଗ, ମୁକ୍ତି, ମୋକ୍ଷଗତି, ପରମେଶ୍ୱର ।
ପରଧାରିତା—ଗ୍ରା. ବିଂ ଯେଉଁ ବ୍ୟକ୍ତି ଅନ୍ୟ ବ୍ୟକ୍ତିଠାରେ ଋଣୀ,ଅନ୍ୟ ବ୍ୟକ୍ତିର ଖାତକ, (ଗ୍ରା.ବି) ପରଠାରୁ ଆଣିଥିବା ଋଣ ।
ପରଧ୍ୟାନ—କ୍ଲୀ. ବି. ଧ୍ୟାନବିଶେଷ, ଶ୍ରେଷ୍ଠଧ୍ୟାନ, ବ୍ରହ୍ମଚିନ୍ତନ, ପରର ଅନିଷ୍ଟ ଚିନ୍ତା କରିବା ।
ପରନ—ପ୍ରା. (ସମ୍ପ)ବି. ଅଧା,ଦେବତାଙ୍କ ନିକଟରେ ଧାରଣା
ପରନିନ୍ଦକ—ବିଂ. ପରର ନିନ୍ଦାକାରୀ ।
ପରନିନ୍ଦା—ସ୍ତ୍ରୀ.ବି. ପରର କୁତ୍ସା,ଅନ୍ୟର ଦୋଷ କୀର୍ତ୍ତନ ।
ପରନ୍ତପ—ତ୍ରି. ବିଂ. (ପରଂ+ତପ+କ.ଅ) ଶତ୍ରୁର ପୀଡ଼ାଦାୟକ (ବ୍ୟକ୍ତି), ଜିତେନ୍ଦ୍ରିୟ, (ବି) ତାମସ ମନୁଙ୍କ ପୁତ୍ର-ବିଶେଷ,ମଗଧର ଜଣେ ରାଜା ।
ପରନ୍ତୁ—ଅବ୍ୟ. ( ପରମ୍+ତୁ ) କିନ୍ତୁ, ତଥାପି, ଏବଂ ମଧ୍ୟ, ଅଧିକନ୍ତୁ ।
ପରପଞ୍ଚ—ଗ୍ରା. ବିଂ. କୁତ୍ସିତ, କଟିଳ. କଦର୍ଯ୍ୟ, ମାୟାବୀ,(ବି) ମାୟା,ବଞ୍ଚନା, ଅମଙ୍ଗଳ, କପଟତା ।
ପରପଦ—କ୍ଲୀ.ବି. (ପର+ପଦ) ଶ୍ରେଷ୍ଠ-ସ୍ଥାନ, ମୁକ୍ତି, ମୋକ୍ଷ ।
ପରପର—ଗ୍ରା. ଅବ୍ୟ. କ୍ରମିକ, କ୍ରମଶଃ, ପରବର୍ତ୍ତୀ, ତରତିବ । [ ଶ୍ୱର ।
ପରପରମେଶ୍ୱର-ଗ୍ରା.ବି.ପରାତ୍ପର,ପରମେ-
ପରପାକନିବୃତ୍ତି—ପୁଂ.ବିଂ. ପରଗୃହେଭୋଜନକ ପାକରହିତ ପଞ୍ଚଯଜ୍ଞ କର୍ତ୍ତା ।
ପରପାକରତ—ପୁଂ. ବିଂ. ପ୍ରାତଃକାଳେ ପଞ୍ଚଯଜ୍ଞ ସମାପନ କରି ଯେ ପରାନ୍ନ ଭୋଜନ କରେ, ପରପାକ ରୁଚି ।
ପରପାଟ—ପ୍ରା. (ଗଞ୍ଜାମ) ବିଂ.ଭ୍ରମାତ୍ମକ, ଭୁଲ, ଭ୍ରାନ୍ତ, (ବି) ଭ୍ରମ, ଭ୍ରାନ୍ତି ।
ପରପିଣ୍ଡାଦ—ତ୍ରି.ବିଂ. ( ପର+ପିଣ୍ଡ+ଅଦ୍+ଅ) ପରାନ୍ନଭୋଗୀ, ପରାନ୍ନଜୀବୀ ।
ପରପୀଡ଼କ—ତ୍ରି.ବିଂ. (୬ତତ୍) ଅନ୍ୟର ଉତ୍ପୀଡ଼ନକାରୀ, ଅପରର ଉପରେ ଦୌରାତ୍ମ୍ୟକାରୀ ।
ପରପୀଡ଼ନ—କ୍ଲୀ. ବି. ( ୬ତତ୍ ) ପର-ଉପରେ ଅତ୍ୟାଚାର, ଅନ୍ୟକୁ ପୀଡ଼ା ଦେବା ।
ପରପୁତ୍ର—ଗ୍ରା. ବି. ଅନ୍ୟ ବ୍ୟକ୍ତିର ପୁତ୍ର, ଅନାତ୍ମୀୟ ବ୍ୟକ୍ତି ।
ପରପୁରଞ୍ଜୟ-ପୁଂ. ବି. ଶତ୍ରୁପୁର ଜେତା ।
ପରପୁରୁଷ—ପୁଂ.ବି. ( କ.ଧା ) ପରମ-ପୁରୁଷ,ବିଷ୍ଣୁ,ଉପପତି,ଅନାତ୍ମୀୟ ବ୍ୟକ୍ତି, ଶ୍ରେଷ୍ଠପୁରୁଷ ।
ପରପୁରୁଷଗାମିନୀ--ସ୍ତ୍ରୀ.ବିଂ.ବ୍ୟଭିଚାରିଣୀ ।
ପରପୁଷ୍ଟ—ପୁଂ.ବି(ପର+ପୁଷ୍ଟ)କୋକିଳ, (ବିଂ) ପରପୋଷିତ, ଅନ୍ୟ ଦ୍ୱାରା ପ୍ରତି-ପାଳିତ ।
ପରପୁଷ୍ଟମହୋତ୍ସବ—ପୁଂ. ବି. ଆମ୍ର ।
ପରପୁଷ୍ଟା—ସ୍ତ୍ରୀ. ବି. ( ପରପୁଷ୍ଟ+ଆ ) ମଳଙ୍କ,ବେଶ୍ୟା,(ବିଂ)ଅନ୍ୟ ଦ୍ୱାରା ପ୍ରତି-ପାଳିତା ।
ପରପୂର୍ବା—ସ୍ତ୍ରୀ. ବି. (ପର+ପୂର୍ବ+ଆ) ପ୍ରଥମ ପତି ପରିତ୍ୟାଗ କରି ଯେ ପୁନ-ର୍ବାର ପତି ଗ୍ରହଣ କରେ, ଯେଉଁ ସ୍ତ୍ରୀର ବର୍ତ୍ତମାନ ସ୍ୱାମୀଙ୍କ ଛଡ଼ା ଆଉ ଜଣେ ସ୍ୱାମୀ ଥିଲେ । [ ବିଶେଷ ।
ପରପୋର—ମଧ୍ୟପ୍ରଦେଶର ସାମନ୍ତ ରାଜ୍ୟ
ପରପ୍ରଣବ—ଋଚନିର୍ଦ୍ଧାରଣରହିତ ମାଳା-ପ୍ରଣେତା ।
ପରପ୍ରବାଦନ୍—ଯେ ଅଯଥା ବାଦ ଶିକ୍ଷା ଦିଏ, ଭଣ୍ଡାଗୁରୁ ଗୁରୁ ।
ପରପୌରବତନ୍ତବ—ପୁଂ.ବି. ବିଶ୍ୱାମିତ୍ର-ଙ୍କର ପୁତ୍ରବିଶେଷ ।
ପରପ୍ରତିନପ୍ତୃ—ପୁଂ.ବି.ବୃଦ୍ଧ ପ୍ରପୌତ୍ର ।
ପରପ୍ରପୌତ୍ର—ପୁଂ.ବି.ବୃଦ୍ଧ ପ୍ରପୌତ୍ର ।
ପରପ୍ରେମ—କ୍ଲୀ. ବି. (୬ତତ୍) ଅନ୍ୟର ପ୍ରଣୟ, ଅନ୍ୟର ପ୍ରୀତି ।
ପରପ୍ରେଷ୍ୟ—ପୁଂ.ସ୍ତ୍ରୀ.ବି. ଦାସ, ଦାସୀ ।
ପରବ—ଗ୍ରା.ବି(ସଂ-ପର୍ବ)ବ୍ରତାଦି ଧର୍ମୋ-ତ୍ସବ,ଆଶ୍ୱିନ ମାସର ଦୁର୍ଗାପୂଜା,ପୂର୍ଣ୍ଣିମା, ଅମାବାସ୍ୟା, ମହାଭାରତ ଗ୍ରନ୍ଥର ଖଣ୍ଡ, ଆନନ୍ଦଜନକ କ୍ରିୟା ।
ପରବତ—ଗ୍ରା.ବି.ପର୍ବତ,ଜନୈକ ଋଷି ।
ପରବତା—ଗ୍ରା.ବି.ଯେଉଁ କାଠ ଖୁଣ୍ଟରେ ହାବିଳ ବାଣ ଡେଇଁଯାଇ ମରାଯାଏ ।
ପରବତିଆ--ଗ୍ରା.ବିଂ.ପାର୍ବତୀୟ,ପାର୍ବତ୍ୟ ।
ପରବପରବାଣି-—ଗ୍ରା. ବି. ପୁଣ୍ୟ ପର୍ବ ଉତ୍ସବାଦି ।
ପରବଶ(ଶ୍ୟ)— ବିଂ. (ପର+ବଶ) ଅନ୍ୟ ବ୍ୟକ୍ତିର ବଶୀଭୂତ, ପରାଧୀନ ।
ପରବସ(ସ୍ତ)—ଯା.ବିଂ.ପ୍ରତିପାଳିତ (ଯା. ବି) ପ୍ରତିପୋଷଣ, ଜୀବିକାନିର୍ବାହ ।
ପରବାଣୀ—ବି.ଧର୍ମାଧ୍ୟକ୍ଷ, ବତ୍ସର, ମୟୂର
ପରବାନ୍—ପୁଂ.ବିଂ.(ପର+ବତ୍)ପରା-ଧୀନ ।
ପରବ୍ରହ୍ମ—ପୁଂ.କ୍ଲୀ. ବି. (ପର+ବ୍ରହ୍ମନ୍) ପରଂବ୍ରହ୍ମ, ନିର୍ଗୁଣ ନିରୁପାଧି ବ୍ରହ୍ମ, ତତ୍ତ୍ୱ ପ୍ରତିପାଦକ ଉପନିଷଦ୍‌ଭେଦ ।
ପରଭାଗ—ପୁଂ.ବି. (କ.ଧା) ଗୁଣୋତ୍କର୍ଷ, ସୁସମ୍ପଦ,ଶେଷାଂଶ,ପଶ୍ଚିମଭାଗ,ଶ୍ରେଷ୍ଠାଂଶ, ପରବର୍ତ୍ତୀ ଅଂଶ, ଉତ୍କୃଷ୍ଟ ଭାଗ୍ୟ ।
ପରଭାଗ୍ୟୋପଜୀବୀ--ପୁଂ.ବିଂ. ଯେ ଅନ୍ୟ ବ୍ୟକ୍ତିର ଭାଗ୍ୟ ଉପରେ ନିର୍ଭର କରି ଆପଣା ଜୀବିକା ନିର୍ବାହ କରେ, ପରାନ୍ନ-ଭୋଜୀ । [ ଭାଷା ।
ପରଭାଷ—ସ୍ତ୍ରୀ.ବି. ସଂସ୍କୃତ ଭିନ୍ନ ଅନ୍ୟ-

ପରଭୃକ୍ତ—ବି.ବଂ.ଅନ୍ୟ ଦ୍ୱାରା ଅଧିକୃତ, ଅପର କର୍ତ୍ତୃକ ଭୃକ୍ତ ।

ପରଭୃକ୍ତା—ସ୍ତ୍ରୀ.ବଂ. (ପର+ଭୁଜ୍+ତ +ଆ) ଅନ୍ୟ ପୁରୁଷ ସମ୍ଭୋଗବିଶିଷ୍ଟା, ଅନ୍ୟଭୃକ୍ତା, ପରପୁରୁଷରତା ସ୍ତ୍ରୀ ।

ପରଭୃତ୍—ବି.ବଂ.କାକ, (ବଂ)ପରଜନ-ପୋଷକ ।

ପରଭୃତ—ପୁଂ.ବ(ପର+ଭୃତ୍)କୋକିଳ. ଅନ୍ୟପୁଷ୍ଟମାତ୍ର ।

ପରଭୃତ୍ୟ—ବି. ଅନ୍ୟର ସେବକ ।

ପରମ୍—ଅବ୍ୟ.ନିୟୋଗ, କ୍ଷେପ, ପଶ୍ଚାତ୍, କିନ୍ତୁ, ଅଧିକ, ଅନନ୍ତର ।

ପରମ—ଅବ୍ୟ. ଅନୁଜ୍ଞା, ହଁ ।

ପରମ—ବି.ବଂ. (ପର+ମା+ଅ)ପର. ପ୍ରଧାନ, ଆଦ୍ୟ, ଓଁକାର, ଅଗ୍ରେସର, ପ୍ରଥମ, ସମଧିକ, ପ୍ରକୃତ, ଅତ୍ୟନ୍ତ, ମହତ୍, (ବ) ମହାଦେବ, ବିଷ୍ଣୁ ।

ପରମ—ବ. କବିବିଶେଷ, ପଦ୍ମମଣିଙ୍କ ପୁତ୍ର ଓ ପଦ୍ମାକର ପୌତ୍ର ।

ପରମକାନ୍ତ—ସ୍ତ୍ରୀ.ବ.ସୂର୍ଯ୍ୟର ଶେଷକାନ୍ତ

ପରମକ୍ରୁଦ୍ଧ—ପୁଂ.ବଂ.ଅତ୍ୟନ୍ତ ରାଗାନ୍ୱିତ

ପରମକ୍ରୋଧୀ—ପୁଂ.ବଂ.ଅତ୍ୟନ୍ତ କ୍ରୋଧା-ନ୍ୱିତ, (ବ) ବିଶ୍ୱଦେବବିଶେଷ ।

ପରମଗତି—ସ୍ତ୍ରୀ. ବ. (ପରମ+ଗତି) ମୁକ୍ତି, (ବଂ) ମୋକ୍ଷହେତୁ ।

ପରମଗବ—ପୁଂ.ସ୍ତ୍ରୀ.ବ. ଉତ୍କୃଷ୍ଟ ବଳଦ ।

ପରମଗହନ—ବଂ. ଅତ୍ୟନ୍ତ ଗୁପ୍ତ ବା ଅବୋଧ ।

ପରମଗୁରୁ—ବ. (କ.ଧା) ଗୁରୁଙ୍କ ଗୁରୁ, ଅଜାଗୁରୁ, (ଗ୍ରାଂ.ବ) ବ୍ରାହ୍ମଣଙ୍କ ରାଜଦତ୍ତ ଉପାଧିବିଶେଷ ।

ପରମଜା—ସ୍ତ୍ରୀ.ବ. ପ୍ରକୃତି ।

ପରମଜ୍ୟା—ବି. ଇନ୍ଦ୍ର ।

ପରମଜ୍ୟୋତିଃ—ବ. (ବ.ବ୍ରୀ) ପରମେଶ୍ୱର. (କ.ଧା) ଦିବ୍ୟଜ୍ୟୋତିଃ, ସ୍ୱର୍ଗୀୟ ପ୍ରଭା ।

ପରମଣି—ପୁଂ.ବ. ରାଜପୁତ୍ରବିଶେଷ ।

ପରମତ—କ୍ଲୀ.ବ. (କ.ଧା) ଭିନ୍ନରୂପ ଅଭିମତ, ଅନ୍ୟପକ୍ଷର ଅଭିପ୍ରାୟ, (ଷତତ୍) ଅପର ଲୋକର ଅଭିପ୍ରାୟ ।

ପରମତତ୍ତ୍ୱ—ବ. (କ.ଧା) ଉତ୍କୃଷ୍ଟତତ୍ତ୍ୱ, ଈଶ୍ୱରଙ୍କ ତତ୍ତ୍ୱ, ସର୍ବୋତ୍କୃଷ୍ଟ ସତ୍ୟ ।

ପରମଦ—ପୁଂ. ବ. ସୁରାପାନ ଯୋଗୁଁ ହେବା ରୋଗବିଶେଷ ।

ପରମଦେବ—ହିନ୍ଦୁସ୍ଥାନବାସୀ ଜଣେ ପ୍ରଭାବଶାଳୀ ରାଜା ।

ପରମଦେବୀ—ସ୍ତ୍ରୀ.ବ.ମହାଦେବୀ,ଶ୍ରେଷ୍ଠା-ଦେବୀ, ରାଜମହିଷୀମାନଙ୍କର ଉପାଧି-ବିଶେଷ ।

ପରମଦ୍ରୁ—ବ. ଅଗୁରୁଚନ୍ଦନ ।

ପରମଧାମ—ବ. (କ.ଧା)ବୈକୁଣ୍ଠ,ସ୍ୱର୍ଗ ।

ପରମନ୍ୟୁ—ପୁଂ. ବ. କକ୍ଷେୟୁର ପୁତ୍ର-ବିଶେଷ ।

ପରମପଦ—ବ.ଶ୍ରେଷ୍ଠସ୍ଥାନ, ପରମ ଦେବ-ଙ୍କର ଚରଣ, ମୁକ୍ତି, ଅପବର୍ଗ ।

ପରମପଦାର୍ଥ-ବ.କ.ଧା;ପରମପଦ ଦେଖ

ପରମପରମ—ବ. ସର୍ବୋତ୍କୃଷ୍ଟ,ସର୍ବୋଚ୍ଚ

ପରମପରିତୋଷ—ବ. (କ.ଧା) ଅତ୍ୟନ୍ତ ଆନନ୍ଦ ।

ପରମପିତା—ବ. (କ.ଧା) ପରମେଶ୍ୱର, ଜଗତ୍ପିତା, ଈଶ୍ୱର ।

ପରମପୁରୁଷ—ପୁଂ. ବ. ପୁରୁଷୋତ୍ତମ, ବିଷ୍ଣୁ, ପରମେଶ୍ୱର ।

ପରମଫଳ—ବ. (କ.ଧା) ସର୍ବାପେକ୍ଷା ଉତ୍ତମଫଳ, ଉତ୍କୃଷ୍ଟ ପରିଣାମ, ମୋକ୍ଷ, ମୁକ୍ତି ।

ପରମବନ୍ଧୁ—ବ. (କ.ଧା)ଶ୍ରେଷ୍ଠବନ୍ଧୁ ।

ପରମବ୍ରହ୍ମ-କ୍ଲୀ.ବ.ପରମେଶ୍ୱର,ନାରାୟଣ

ପରମବ୍ରହ୍ମଚାରିଣୀ—ସ୍ତ୍ରୀ.ବ. ଦୁର୍ଗା ।

ପରମଭକ୍ତ—ବ. ଅତ୍ୟନ୍ତ ଅନୁଗତ ଭକ୍ତ ।

ପରମଭଟ୍ଟାରକ—ବ. ସମ୍ରାଟଙ୍କରପ୍ରାଚୀନ ଉପାଧିବିଶେଷ ।

ପରମଭଟ୍ଟାରିକା—ବ. ରାଜମହିଷୀମାନ-ଙ୍କର ସମ୍ମାନସୂଚକ ଉପାଧି ।

ପରମମ—ଅବ୍ୟ. ଅନୁଜ୍ଞା, ସ୍ୱୀକାର ।

ପରମମହତ୍—ବି. ସର୍ବାପେକ୍ଷା ଉତ୍କୃଷ୍ଟ, ମହତ୍ତ୍ୱ ଗୁଣଯୁକ୍ତ ଆକାଶାଦି ।

ପରମମାୟା—ବ. ପରମେଶ୍ୱର ।

ପରମମାହେଶ୍ୱର—ଶିବୋପାସନାକାରୀ, ଶୈବମାନଙ୍କର ସାମ୍ପ୍ରଦାୟିକ ଉପାଧି ।

ପରମମୁକ୍ତି—ବ. (କ.ଧା) ନିର୍ବାଣ,ମୁକ୍ତି ।

ପରମଯୋଗୀ—ବ. ଶ୍ରେଷ୍ଠଯୋଗୀ, ମହା-ଦେବ ।

ପରମର୍ଦ୍ଧିକ—ପୁଂ. ବଂ. (ପରମ+ଋଦ୍ଧି-+କ) ଅତ୍ୟନ୍ତ ଭାଗ୍ୟବାନ୍ ।

ପରମରସ—ପୁଂ. ବ. ଜଳମିଶ୍ରିତ ତକ୍ର, ଘୋଳଦହି ।

ପରମରହସ୍ୟ—ବ. (କ.ଧା) ଅତ୍ୟନ୍ତ ଗୋପନୀୟ ବା ଗୂଢ଼ତତ୍ତ୍ୱ ।

ପରମର୍ଦ୍ଦୀଦେବ—ବ. ବୁନ୍ଦେଲ ଖଣ୍ଡର ଅନ୍ତର୍ଗତ ମହୋବା ପ୍ରଦେଶର ଜଣେ ରାଜା ।

ପରମଲ୍ଲ—ବ. ଜଣେ କବି ।

ପରମବୈଷ୍ଣବ—ବଂ. ବିଷ୍ଣୁଙ୍କ ପ୍ରଧାନ ଉପାସକ,ତାମ୍ର ଶାସନୋଲ୍ଲିଖିତପ୍ରାଚୀନ ହିନ୍ଦୁ ରାଜାମାନଙ୍କର ଏହିରୂପ ଉପାଧି ଦେଖାଯାଏ ।

ପରମବୈଷ୍ଣବୀ—ସ୍ତ୍ରୀ. ବ. ଯେଉଁ ଦେବୀ ବା ଶକ୍ତି ପ୍ରତିମାଙ୍କ ଆଗରେ ଜୀବ ବଳି ପଡ଼େନାହିଁ,ଦୁର୍ଗା ।

ପରମବ୍ରହ୍ମଣ୍ୟ—ବ୍ରହ୍ମାଙ୍କ ଉପାସକ, ଯେ ବ୍ରହ୍ମାଙ୍କ ପୂଜାକରେ ।

ପରମର୍ଷି—ପୁଂ.ବ. (ପରମ+ଋଷି)ବେଦ-ବ୍ୟାସାଦି ଋଷି, ଶ୍ରେଷ୍ଠଋଷି ।

ପରମଶିବାଚାର୍ଯ୍ୟ—ସିଦ୍ଧାନ୍ତସାନୁଭୂତପ୍ରକା-ଶିକା ନାମକ ଗ୍ରନ୍ଥପ୍ରଣେତା ।

ପରମ ଶିବେନ୍ଦ୍ରସରସ୍ୱତୀ—ବ. ଜଣେ ବିଖ୍ୟାତ ପଣ୍ଡିତ ।

ପରମସମୁଦାୟ—ବ. ଅତ୍ୟନ୍ତ ମଙ୍ଗଳ-ସୂଚକ, ଅତ୍ୟନ୍ତ କୃତକାର୍ଯ୍ୟ ।

ପରମସମ୍ମତ—ବଂ. ଅତ୍ୟନ୍ତ ସମ୍ମାନିତ ।

ପରମସଙ୍ଗତ—ଅବ୍ୟ.ସବୁଠାରେ ।

ପରମସୁଖ—ବ.ଜଣେ ବିଖ୍ୟାତ ଜ୍ୟୋତି-ର୍ବିଦ୍, ଅତ୍ୟନ୍ତ ଆନନ୍ଦ ।

ପରମସୁନ୍ଦର—ପୁଂ.ବଂ. ଅତ୍ୟନ୍ତସୁନ୍ଦର ।

ପରମସୌଗତ—ବଂ. ବୌଦ୍ଧ ଧର୍ମରେ ଯେଉଁମାନଙ୍କର ଆସ୍ଥା ଅବିଚଳିତ ।

ପରମସ୍ୱାମୀ—ରାଜଚକ୍ରବର୍ତ୍ତୀ, ସର୍ବଶ୍ରେଷ୍ଠ ରାଜା ।
ପରମହଂସ—ପୁଂ.ବି. (ବ.ଗ୍ରା)ଜ୍ଞାନଦ୍ୱାରା ଇନ୍ଦ୍ରିୟ ଦମନ କରିଥିବା ଯୋଗୀ, ସିଦ୍ଧପୁରୁଷ, ମହାଯୋଗୀ ।
ପରମା—ସ୍ତ୍ରୀ.ବିଂ. (ପରମ+ଆ)ପରମର ସ୍ତ୍ରୀଲିଙ୍ଗ, (ବି) ଚବ୍ୟ ।
ପରମାକ୍ଷର—ବି. (କ-ଧା) ଓଁକାର ।
ପରମାଖ୍ୟ—ବି. ପରମାର୍ଥ ।
ପରମାଣିକ—ଗ୍ରା. ବି. ଜାତିର ପ୍ରଧାନ ବ୍ୟକ୍ତି, ତନ୍ତୀମାନଙ୍କର ଉପାଧିବିଶେଷ, ଭଣ୍ଡାରୀ ଜାତିର ମୁଖ୍ୟ ବ୍ୟକ୍ତିଙ୍କ ଉପାଧି
ପରମାଣୁ—ପୁଂ. ବି, ( ପରମ+ଅଣୁ ) ଜଡ଼ ପଦାର୍ଥର ସୂକ୍ଷ୍ମତମ ଅଂଶ, ସୂକ୍ଷ୍ମତମ ଅଂଶ ।
ପରମାଣ୍ୱଙ୍ଗକ—ପୁଂ.ବି. ଈଶ୍ୱର, ବିଷ୍ଣୁ ।
ପରମାତ୍ମକ—ବି. ପରମାତ୍ମା ସ୍ୱରୂପ ।
ପରମାତ୍ମା—ପୁଂ.ବି. ( ପରମ+ଆତ୍ମନ୍ ) ପରମେଶ୍ୱର, ପରଂବ୍ରହ୍ମ, ଜୀବିତ ମନୁଷ୍ୟର ଅଭ୍ୟନ୍ତରରେ ଥିବା ଈଶ୍ୱରଙ୍କ ସତ୍ତା । [ ବନ୍ଧୁ ।
ପରମାତ୍ମୀୟ—ପୁଂ.ବି. (କ.ଧା) ଅନ୍ତରଙ୍ଗ
ପରମାଦର—ବି. ( କ.ଧା ) ଅତିଶୟ ଆଦର, ସମାଦର ।
ପରମାଦ୍ୱୈତ—ପୁଂ. ବି. (କ.ଧା) ସର୍ବଭେଦରହିତ ପରମାତ୍ମା, ବିଷ୍ଣୁ ।
ପରମାନନ୍ଦ—ପୁଂ. ବି. (ପରମ+ଆନନ୍ଦ) ସକଳ ଆନନ୍ଦ ମଧ୍ୟରେ ଉତ୍କୃଷ୍ଟ ଆନନ୍ଦାତ୍ମକ ପରମାତ୍ମା,ଅତ୍ୟନ୍ତଆନନ୍ଦ ।
ପରମାନନ୍ଦ—ଅମରକୋଷମାଳା ରଚୟିତା, ଗ୍ରନ୍ଥକାରବିଶେଷ ।
ପରମାନନ୍ଦଘନ -ବି.ଜଣେ ବିଖ୍ୟାତ ପଣ୍ଡିତ
ପରମାନନ୍ଦଚକ୍ରବର୍ତ୍ତୀ— କାବ୍ୟପ୍ରକାଶର ଟୀକା ରଚୟିତା ।
ପରମାନନ୍ଦଦାସ-ଶ୍ରୀଚୈତନ୍ୟ ସମ୍ପ୍ରଦାୟୀ ବୈଷ୍ଣବ କବି ।
ପରମାନନ୍ଦଦେବ—ସଂସ୍କୃତ ରତ୍ନମାଳା ନାମକ ଗ୍ରନ୍ଥ ପ୍ରଣେତା ।
ପରମାନନ୍ଦନାଥ— ଭୁବନେଶ୍ୱରୀପଦ୍ଧତି ନାମକ ଗ୍ରନ୍ଥ ରଚୟିତା ।
ପରମାନନ୍ଦପାଠକ— କର୍ପୂରସ୍ତବଦୀପିକା ନାମକ ଗ୍ରନ୍ଥପ୍ରଣେତା । [ ପ୍ରଣେତା ।
ପରମାନନ୍ଦଭଟ୍ଟାଚାର୍ଯ୍ୟ-ମହାଭାରତଟୀକା-
ପରମାନନ୍ଦମିଶ୍ର--ଯୋଗ ବାଶିଷ୍ଠ ସାରୋଦ୍ଧାର ରଚୟିତା ।
ପରମାନନ୍ଦଯୋଗୀନ୍ଦ୍ର--ପରମାନନ୍ଦଲହରୀ ସ୍ତୋତ୍ର ରଚୟିତା । [ ବି.ଶେଷ ।
ପରମାନନ୍ଦଲାଲ ପୁରାଣୀକ—ହିନ୍ଦୀ କବି-
ପରମାନ୍ନ—କ୍ଲୀ. ବି. (କ.ଧା) ପାୟସାନ୍ନ, କ୍ଷୀରୀ, ଦୁଗ୍ଧ ଓ ଶର୍କରା ଦ୍ୱାରା ପକ୍ୱଅନ୍ନ ।
ପରମାପକ୍ରମଜ୍ୟା—ସ୍ତ୍ରୀ. ବି. ସୂର୍ଯ୍ୟସିଦ୍ଧାନ୍ତୋକ୍ତ ପରମକ୍ରାନ୍ତିଜ୍ୟା ।
ପରମାପଦ—ଗ୍ରା. ବି. (କ.ଧା) ଘୋର ସଙ୍କଟ ।
ପରମାପଦ—ଗ୍ରା.ବି. (କ.ଧା) ଘୋରସଙ୍କଟ
ପରମାପୂର୍ବ—କ୍ଲୀ. ବି. ସ୍ୱର୍ଗାଦିଫଳ ସାଧନ ଅପୂର୍ବବିଶେଷ ।
ପରମାପ୍ୟାୟିତ—ବିଂ. ଅତିଲବ୍ଧାର୍ଥ ।
ପରମାପ୍ରକୃତି—ସ୍ତ୍ରୀ. ବି. ମହାମାୟା ।
ପରମାମୁଦ୍ରା—ସ୍ତ୍ରୀ. ବି. ତ୍ରିପୁରାଦେବୀର ପୂଜାଙ୍ଗ ମୁଦ୍ରାବିଶେଷ ।
ପରମାୟୁଃ—କ୍ଲୀ. ବି. ପ୍ରାଣୀର ଜୀବନ କାଳ, ଆୟୁଷ, (ବିଂ) ଯେ ବହୁକାଳ ଜୀବିତ ରହିଅଛି ।
ପରମାୟୁଷ—ପୁଂ. ବି. ପିଆଶାଲ ଗଛ, ଅସନ ବୃକ୍ଷ ।
ପରମାର—ଗ୍ରା. ବି. ଅଗ୍ନିକୁଳର ଅନ୍ତର୍ଗତ ରାଜପୁତ ଜାତିବିଶେଷ ।
ପରମାର—ପୁଂ. ବି. ଶୌନକ ଋଷିଙ୍କ ପୁତ୍ରବିଶେଷ ।
ପରମାର୍ଥ—ପୁଂ. ବି. ( କ.ଧା ) ଉତ୍କୃଷ୍ଟ ବସ୍ତୁ, ଯଥାର୍ଥ,ମୋକ୍ଷ, ସୁଖ, ଧର୍ମ,ଧନ, ପରଂବ୍ରହ୍ମ,ବେଦାନ୍ତାଦି ଅଧ୍ୟାତ୍ମିକ ଜ୍ଞାନ ।
ପରମାର୍ଥତତ୍ତ୍ୱ—ବି. ବ୍ରହ୍ମଜ୍ଞାନ ।
ପରମାର୍ଥତତ୍ତ୍ୱଜ୍ଞ—ପୁଂ.ବିଂ. ବେଦାନ୍ତଜ୍ଞ, ବ୍ରହ୍ମଜ୍ଞ, ଈଶ୍ୱରତତ୍ତ୍ୱଜ୍ଞ । [ ଯାଥାର୍ଥ୍ୟ
ପରମାର୍ଥତା—ସ୍ତ୍ରୀ. ବି. ସତ୍ୟର ଭାବ,
ପରମାର୍ଥଦରିଦ୍ର—ବିଂ. ଫଳତଃ ଗରୀବ, କଦାନ୍ନ ଛଅବସ୍ଥା ଦରିଦ୍ର ।
ପରମାର୍ଥବିଦ୍—ବି. ବିଂ. (ପରମାର୍ଥ+ବିଦ୍+କ୍ୱିପ୍) ପରମାର୍ଥବେତ୍ତା,ଈଶ୍ୱରତତ୍ତ୍ୱଜ୍ଞ ।
ପରମାର୍ଥବିଦ୍ୟା—ବି. ଅଧ୍ୟାତ୍ମ ବିଦ୍ୟା ।
ପରମାର୍ଥବିନ୍ଦ—ବି. (ପରମାର୍ଥ+ବିଦ୍+କ) ତତ୍ତ୍ୱଜ୍ଞାନୀ,ଯଥେଷ୍ଟ ଧନଲାଭକାରୀ ।
ପରମାର୍ଥସୁପ୍ତ—ବି. ଯଥାର୍ଥ ନିଦ୍ରିତ ।
ପରମାର୍ଥୀ—ବିଂ. ମୁମୁକ୍ଷୁ,ପରମାର୍ଥ ତତ୍ତ୍ୱଜିଜ୍ଞାସୁ ।
ପରମାର୍ହତ—ପୁଂ.ବି. ଜୈନରାଜବିଶେଷ, କୁମାରପାଳର ନାମାନ୍ତର । [ବିଶେଷ ।
ପରମାବଟିକ—ପୁଂ.ବି. ବେଦର ଶାଖା-
ପରମାହ୍ୱ—ପୁଂ. ବି. ଶୁଭଦିନ ।
ପରମୀକରଣମୁଦ୍ରା—ସ୍ତ୍ରୀ. ବି. ଦେବତାମାନଙ୍କର ଆହ୍ୱାନାଙ୍ଗ ମୁଦ୍ରାବିଶେଷ, ମହାମୁଦ୍ରା ।
ପରମୁଖ—କ୍ଲୀ. ବି. (ଷତତ୍ପୁ) ଅନ୍ୟର ମୁଖ, ଅନ୍ୟର ସାହାଯ୍ୟ ।
ପରମୁଖାପେକ୍ଷା—ବି. ( ଷତତ୍ପୁ ) ପରନିର୍ଭରତା, ଅପରର ସାହାଯ୍ୟ ବା ଉପଦେଶ ପ୍ରତ୍ୟାଶା ।
ପରମୁଖାପେକ୍ଷିତା—ବି. ପର ନିର୍ଭରଶୀଳତା,ପରମୁହଁକୁ ଚାହିଁରହିବା ଭାବ ।
ପରମୁଖାପେକ୍ଷୀ—ପୁଂ. ବିଂ. ଅପରର ସାହାଯ୍ୟ ବା ଆଦେଶପ୍ରତ୍ୟାଶୀ ।
ପରମୁଖୀ—ପୁଂ. ବି. କାକ, କୁଆ ।
ପରମେଷ୍ଟୁ—ପୁଂ.ବି. ଅଣୁର ପୁତ୍ରବିଶେଷ, ପରମେଷ୍ଠୁର ନାମାନ୍ତର ।
ପରମେଶ—ପୁଂ.ବି. (କ.ଧା)ପରମେଶ୍ୱର, ବିଷ୍ଣୁ , ଶିବ ।
ପରମେଶୀ—ସ୍ତ୍ରୀ. ବି. (ପରମେଶ+ଈ) ପାର୍ବତୀ, ଦୁର୍ଗା ।
ପରମେଶ୍ୱର—ପୁଂ.ବି. (ପରମ+ଈଶ୍ୱର) ଜଗତ୍‌ସୃଷ୍ଟ୍ୟାଦିକାରକ ସଗୁଣ ତ୍ରିମୂର୍ତ୍ତିକ ବ୍ରହ୍ମ, ବିଷ୍ଣୁ, ଶିବ, ଇନ୍ଦ୍ର, (ସ୍ତ୍ରୀ) ଦୁର୍ଗା ।
ପରମେଶ୍ୱର— ଆର୍ଯ୍ୟଭଟ୍ଟସିଦ୍ଧାନ୍ତଟୀକାପ୍ରଣେତା ।
ପରମେଶ୍ୱରତନ୍ତ୍ର—କ୍ଲୀ.ବି. ତନ୍ତ୍ରବିଶେଷ ।

ପରମେଶ୍ୱରଦତ୍ତ—ବୈରାଗ୍ୟ ପ୍ରକରଣ ନାମେ ଗ୍ରନ୍ଥ ପ୍ରଣେତା ।
ପରମେଶ୍ୱରରକ୍ଷିତ—ଗଣାଧ୍ୟାୟ ନାମକ ଗ୍ରନ୍ଥ ରଚୟିତା ।
ପରମେଶ୍ୱରବର୍ମା—ପଲ୍ଲବ ବଂଶୀୟ ଜଣେ ରାଜା ।
ପରମେଶ୍ୱରୀ—ବି. (ପରମେଶ୍ୱର+ଈ) ପାର୍ବତୀ, ଦୁର୍ଗା ।
ପରମେଷ୍ଠ—ପୁଂ. ବି. ଚତୁର୍ମୁଖ ବ୍ରହ୍ମା, ପ୍ରଜାପତି ।
ପରମେଷ୍ଠୀ—ପୁଂ. ବି. (ପରମେ+ସ୍ଥା ଇନ୍) ବ୍ରହ୍ମା ବା ଅଗ୍ନି ପ୍ରଭୃତି ଦେବତା, ଇଷ୍ଟମନ୍ତ୍ରଦାତା, ଜିନବିଶେଷ, ବିଷ୍ଣୁ, ଶିବ, ଶାଳଗ୍ରାମ ମୂର୍ତ୍ତିବିଶେଷ, ପ୍ରଜାପତି, ଗରୁଡ଼ ।
ପରମେଷ୍ଠିନୀ—ସ୍ତ୍ରୀ. ବି. ବ୍ରାହ୍ମୀକ୍ଷୁପ, ଶ୍ରୀ, ପରମେଷ୍ଠୀଙ୍କ ଶକ୍ତି, ବାଗ୍ଦେବୀ ।
ପରମୈଶ୍ୱର୍ଯ୍ୟ—କ୍ଳୀ. ବି. (କ.ଧା) ଶ୍ରେଷ୍ଠ-ଐଶ୍ୱର୍ଯ୍ୟ, ବିପୁଳବିଭବ ।
ପରମୋତ୍କୃଷ୍ଟ—ବିଂ. (ପରମ+ଉତ୍କୃଷ୍ଟ) ଅତିଉତ୍ତମ ।
ପରମୋନ୍ନତି—ବି. (କ.ଧା) ଉନ୍ନତିର ଚରମସୀମା, (ଜ୍ୟୋତିଷ) ଗ୍ରହର ସର୍ବୋଚ୍ଚ ଅବସ୍ଥା ।
ପରମ୍ପର—ବିଂ. (ପରଂ+ପର) ଧାରାବାହିକ, ଏକର ପର ଅନ୍ୟ, (ବି) ଅନୁକ୍ରମ, ଅଣନାତିର ପୁଅ, ପଣନାତି, ପ୍ରପୌତ୍ରର ପୁଅ, ପୁତ୍ର ପୌତ୍ର, ପ୍ରପୌତ୍ର, ପରପୌତ୍ରଆଦି, ବଂଶ, ସନ୍ତତି, ମୃଗମଦ, କସ୍ତୁରୀ, ଏକପ୍ରକାର ହରିଣ ।
ପରମ୍ପରା—ସ୍ତ୍ରୀ. ବି. (ପର+ପର+ଆ) ଅନ୍ୱୟ, ସନ୍ତାନ, ବଧ, ହିଂସା, ପରିପାଟୀ, ଅନୁକ୍ରମ, ପୂର୍ବାପର, କ୍ରମ, ଶ୍ରେଣୀ, ବଂଶ, (ଗ୍ରା.ବିଂ) ଧାରାବାହିକ, ଅବଚ୍ଛିନ୍ନ, (ଗ୍ରା. ଅବ୍ୟ) ଆବାଲ୍ୟରୁ, ବହୁପୁରୁଷହେଲା ଅବଚ୍ଛିନ୍ନରୂପେ ।
ପରମ୍ପରାକ—କ୍ଳୀ.ବି. ଯଜ୍ଞାର୍ଥ ପଶୁହନନ ।
ପରମ୍ପରାକ୍ରମେ—ଗ୍ରା. କ୍ରି. ବିଂ. ଧାରାନୁକ୍ରମେ, କ୍ରମାନୁସାରେ, ଅବଚ୍ଛିନ୍ନଧାରାରେ ।
ପରମ୍ପରାଗତ—କ୍ରି. ବିଂ. କ୍ରମାଗତ, ପିତୃପିତାମହକ୍ରମ, ବଂଶାନୁକ୍ରମେ ଆଗତ ।
ପରମ୍ପରାପ୍ରାପ୍ତ—କ୍ରି.ବିଂ. ପୁରୁଷାନୁକ୍ରମେ ଲବ୍ଧ, ଜନଶ୍ରୁତ, ପବାଦ ।
ପରମ୍ପରାସମ୍ବନ୍ଧ—କ୍ରି. ବିଂ. ପର ପର ସମ୍ବନ୍ଧଯୁକ୍ତ, ଶ୍ରେଣୀବଦ୍ଧରୂପେ ଆବଦ୍ଧ ।
ପରମ୍ପରୀଣ—କ୍ରି.ବିଂ. (ପରମ୍ପରା+ଈନ) ପରମ୍ପରା ପ୍ରାପ୍ତ, କ୍ରମାଗତ, ଧାରାବାହିକ ।
ପରରମଣ—ପୁଂ.ବି.ଯେଉଁ ପୁରୁଷ ପତ୍ନୀ-ଭିନ୍ନ ଅନ୍ୟ ସ୍ତ୍ରୀ ରମଣ କରେ, ଲମ୍ପଟ, ଉପପତି । [ମାଳଭୃଙ୍ଗରାଜ ।
ପରରୁ—ପୁଂ. ବି. କେଶରାଜ ଶାକ,
ପରରୂପ—କ୍ରି. ବିଂ. ପରର ରୂପସଦୃଶ ରୂପବିଶିଷ୍ଟ ।
ପରଳ—ଗ୍ରା. ବି. ନେତ୍ରରୋଗବିଶେଷ, ଆଖିଡୋଳା ଉପରେ ମାଡ଼ିଯିବା ଆବରଣ । [ଡାଳ ।
ପରଳ—ପ୍ରା. (କଳାହାଣ୍ଡି) ବି. ବାଉଁଶ-
ପରଲୋକ—ପୁଂ. ବି. (କ.ଧା) ମୃତ୍ୟୁର ପରବର୍ତ୍ତୀ ଅବସ୍ଥା, ଲୋକାନ୍ତର, ସ୍ୱର୍ଗାଦି ସ୍ଥାନବିଶେଷ, ମୃତ୍ୟୁ ।
ପରଲୋକଗତ—କ୍ରି. ବିଂ. (୨ତତ୍) ସ୍ୱର୍ଗପ୍ରାପ୍ତ, ମୃତ ।
ପରଲୋକଗତି—ବି. (୬ତତ୍) ମୃତ୍ୟୁ, ମୃତ୍ୟୁପରେ ମୋକ୍ଷ ।
ପରଲୋକଗମ—ପୁଂ. ବି. ମୃତ୍ୟୁ ।
ପରଲୋକଗମନ—କ୍ଳୀ.ବି. (୨ତତ୍) ମୃତ୍ୟୁ ।
ପରଲୋକପ୍ରାପ୍ତି—ସ୍ତ୍ରୀ.ବି.(୬ତତ୍) ଲୋକାନ୍ତର ପ୍ରାପ୍ତି, ମୃତ୍ୟୁ ।
ପରବତ୍—କ୍ରି. ବିଂ. ପରାଧୀନ । [କର୍ତ୍ତା ।
ପରବର—କ୍ରି. ବିଂ. ପ୍ରତିପାଳକ, ରକ୍ଷା-
ପରବଶ୍ୟ—କ୍ରି.ବିଂ. ପରର ବଶତାପନ୍ନ, ଅଧୀନ ବ୍ୟକ୍ତି ।
ପରବଶ୍ୟତା—ସ୍ତ୍ରୀ. ବି. ଅଧୀନତା ।
ପରବସ୍ତୁ—ଅଗ୍ରୟ୍ୟଚମ୍ପୂନାମକ ଚମ୍ପୂକାବ୍ୟ ପ୍ରଣେତା ।
ପରବାଚ୍ୟ—କ୍ରି. ବିଂ. ପରଦ୍ୱାରା ନିନ୍ଦନୀୟ, ନିନ୍ଦିତ ।
ପରବାଦ—ପୁଂ. ବି. ପରର ଅପବାଦ, ଉତ୍ତରବାଦ, ପ୍ରବାଦ ।
ପରବାଦୀ—ପୁଂ. ବିଂ. ପ୍ରତ୍ୟର୍ଥୀର ପ୍ରତି ଉତ୍ତରବାଦୀ । [ବିଶେଷ ।
ପରବାପ୍ରତିଷେଧ—ପୁଂ. ବି. ବିପ୍ରତିଷେଧ-
ପରବାସୀ—କ୍ରି. ବିଂ. ପ୍ରବାସୀ, ଅନ୍ୟର ଗୃହବାସୀ ।
ପରବୀରହନ୍—କ୍ରି. ବିଂ. ଶତ୍ରୁପକ୍ଷୀୟ ଯୋଦ୍ଧାମାନଙ୍କର ବଧକର୍ତ୍ତା ।
ପରବେଷ୍ମ—କ୍ଳୀ. ବି. (କ.ଧା) ସ୍ୱର୍ଗ ।
ପରବ୍ୟୂହବିନାଶନ—ପୁଂ. ବି.ଶତ୍ରୁପକ୍ଷୀୟ ବ୍ୟୂହଭେଦକାରୀ ।
ପରବ୍ରତ—ପୁଂ. ବି. ଧୃତରାଷ୍ଟ୍ର ।
ପରଶ—କ୍ଳୀ. ବି. ରତ୍ନବିଶେଷ, ପରଶ-ପଥର ।
ପରଶପଥର—ଗ୍ରା. ବି. ସ୍ପର୍ଶମଣି ।
ପରଶବ୍ୟ—କ୍ରି. ବିଂ. ପରଶୁର ଯୋଗ୍ୟ, ପରଶୁର ହିତକର ।
ପରଶାଳା—ବି. (କ.ଗ୍ରା) ମଲ୍ଲଙ୍ଗ ।
ପରଶାସନ—କ୍ଳୀ.ବି. ଅନ୍ୟର ଆଦେଶ ।
ପରଶୁ—ପୁଂ. ବି. (ପର+ଶୃ+ଉ) ଅସ୍ତ୍ରବିଶେଷ, ଟାଙ୍ଗି, କୁଠାର, କୁରାଢ଼ୀ ।
ପରଶୁକେଦାର—ଗ୍ରା. ବି. ଏକପ୍ରକାର ଗଛ(ଯହିଁରେ ସାପ ବିଷ ଦୂର ହୁଏ) ।
ପରଶୁଚ—ପୁଂ. ବି. ଉତ୍ତମ ମନୁଙ୍କ ପୁତ୍ର-ବିଶେଷ ।
ପରଶୁଧର—ପୁଂ.ବି. (୬ତତ୍) ଗଣେଶ, ପରଶୁରାମ, ଶିବ, (ବିଂ) ଯେ ପରଶୁ ଧରିଥାଏ ।
ପରଶୁମତ୍—କ୍ରି.ପରଶୁଯୁକ୍ତ, ପରଶୁଧାରୀ ।
ପରଶୁରାମ—ପୁଂ. ବି.ଭଗବାନ୍ ଅବତାର ବିଶେଷ, ଜମଦଗ୍ନିଙ୍କ ପୁତ୍ର, ଭାର୍ଗବ ।
ପରଶୁରାମ—ରାଜପୁତ ରାଜାବିଶେଷ ।
ପରଶୁରାମ—ଜଣେ ଗ୍ରନ୍ଥକାର, କୃଷ୍ଣ-ଦେବଙ୍କ ପୁତ୍ର ।
ପରଶୁରାମ-ଯମୁନାପୁରର ଜନୈକ ରାଜା ।
ପରଶୁରାମକ୍ଷେତ୍ର—ପନାଲାର ଅନ୍ତର୍ଗତ ଗୋଟିଏ ଗିରିଗୁହା ।
ପରଶୁରାମଗୁର୍ଜର—ଜଣେ ଗ୍ରନ୍ଥକାର ।

ପରଶୁରାମଠାପା—ନେପାଳର ସୀମାନ୍ତ ପ୍ରଦେଶର ଜଣେ ଶାସନକର୍ତ୍ତା ।
ପରଶୁରାମଦେବ—ନିମ୍ବାର୍କ ସମ୍ପ୍ରଦାୟୀ ଜଣେ ଗୁରୁ ।
ପରଶୁରାମ ମିଶ୍ର—ଜଣେ ବିଖ୍ୟାତ ଜ୍ୟୋତିର୍ବିଦ୍, ମଥୁରା ଚମ୍ପୂ ନାମକ ଗ୍ରନ୍ଥ ପ୍ରଣେତା ।
ପରଶୁରାମମୁନି—ବିଦ୍ୟାକଳ୍ପ ସୂତ୍ର ନାମକ ଗ୍ରନ୍ଥ ପ୍ରଣେତା ।
ପରଶୁରାମଶାସ୍ତ୍ରୀ--ଜଣେ ବିଖ୍ୟାତ ପଣ୍ଡିତ ।
ପରଶୁରାମହିମ୍ନକ—ଜଣେ ମହାରାଷ୍ଟ୍ରୀୟ ସଚୀବ ।
ପରଶୁରାମଭାଉପଟ୍ଟବର୍ଦ୍ଧନ—ଜଣେ ମହାରାଷ୍ଟ୍ରୀୟ ଯୋଦ୍ଧା ପୁରୁଷ ।
ପରଶୁରାମ ଶ୍ରୀନିବାସ—ଜଣେ ମହାରାଷ୍ଟ୍ରୀୟ ପ୍ରତିନିଧି ।
ପରଶୁରାମପୁର—ଗଣ୍ଡ ଗ୍ରାମବିଶେଷ ।
ପରଶୁରାମେଶ୍ୱର—ଓଡ଼ିଶାର ଭୁବନେଶ୍ୱର ଅନ୍ତର୍ଗତ ଭୁବନେଶ୍ୱର ନିକଟବର୍ତ୍ତୀ ଗୋଟିଏ ଦେବମନ୍ଦିର ।
ପରଶୁବନ—କ୍ଳୀ. ବି. ନରକବିଶେଷ ।
ପରଶ୍ଚତ୍ୱାରିଂଶ—ବି. ବିଂ. ଚତ୍ୱାରିଂଶର ଊର୍ଦ୍ଧ୍ୱ ସଂଖ୍ୟା ।
ପରଶ୍ୱଧ—ପୁଂ. ବି. କୁଠାର, ପରଶୁ ।
ପରଶ୍ୱଧିନ—ବି. ବିଂ. ପରଶୁଧାରୀ ।
ପରଶ୍ୱସ୍—ଅବ୍ୟ. ପଅରଦିନ, ଆଗାମୀ ଦିନର ପରଦିନ ବା ଗତଦିନର ପୂର୍ବଦିନ ।
ପରଶ୍ରୀ—ବି. (୬ତତ୍) ଅନ୍ୟ ବ୍ୟକ୍ତିର ଶ୍ରୀ ବା ସମ୍ପଦ ।
ପରଶ୍ରୀକାତର—ପୁଂ.ବିଂ.(୬ତତ୍) ଅସହିଷ୍ଣିକ, ଯେ ଅନ୍ୟ ବ୍ୟକ୍ତିର ସୁଖ ସମ୍ପଦ ଦେଖିଲେ ଦୁଃଖିତ ହୁଏ ।
ପରଶ୍ରେୟସ୍—କ୍ଳୀ. ବି. ପରମୁକ୍ତି, ପରମ ଉତ୍କର୍ଷ ଲାଭକର ଅନନ୍ତରେ ମୋକ୍ଷ ପ୍ରାପ୍ତି ।
ପରଷା—ସ୍ତ୍ରୀ. ବି. ପରିବେଷଣ ।
ପରଷାପଦ୍ଧତି—ସ୍ତ୍ରୀ. ବି.ପରିବେଷଣ କର୍ମ
ପରଷିବା—କ୍ରି. ବି. ଖାଦ୍ୟ ପରିବେଷଣ କରିବା, ଖାଇବା ଲୋକର ପାଖରେ ଖାଦ୍ୟ ଦେବା ।
ପରଷୁଣୀ—ସ୍ତ୍ରୀ.ବିଂ.ପୁଂ.ସ୍ତ୍ରୀ.ପରିବେଷଣକାରୀ । [ସ୍ୱରେ ।
ପରସ୍—ଅବ୍ୟ.ପରଠାରୁ ବା ପର ବିଷ-
ପରସଙ୍ଗ—ବି. ବିଂ. ଅନ୍ୟର ସଙ୍ଗ ବା ବନ୍ଧୁତା, ଅନ୍ୟର ସହିତ ବିବାହିତ ପ୍ରସଙ୍ଗ ।
ପରସଞ୍ଚାରକ—ପୁଂ. ବି. ଦେଶବିଶେଷ, ତନ୍ନାମକ ଦେଶବାସୀ ।
ପରସଙ୍କକ—ପୁଂ. ବି. ଆତ୍ମା ।
ପରସମ୍ବନ୍ଧ—ପୁଂ. ବି. ଅନ୍ୟ ସଙ୍ଗରେ ସମ୍ବନ୍ଧ, ଆତ୍ମୀୟତା, କୁଟୁମ୍ବିତା ।
ପରସବର୍ଣ୍ଣ—ପୁଂ. ବି. (୬ତତ୍) ପର ବା ଉତ୍ତରବର୍ତ୍ତୀ ବର୍ଣ୍ଣର ସମାନ ବର୍ଣ୍ଣ ।
ପରସସ୍ଥାନ—ବି.ପରବର୍ତ୍ତୀ ବର୍ଣ୍ଣର ସମାନ ବର୍ଣ୍ଣ ।
ପରସାତ୍—ଅବ୍ୟ ପରକୁ ଦେବା ।
ପରସାତ୍କୃତା-ସ୍ତ୍ରୀ.ବି.ବିବାହିତା ଦୁହିତା ।
ପରସେବା—ସ୍ତ୍ରୀ. ବି. ଅନ୍ୟର ସେବା ।
ପରସୀମା—ବି. (୬ତତ୍) ଅନ୍ୟ ବ୍ୟକ୍ତିର ଜମିର ବା ରାଜ୍ୟର ସୀମା ।
ପରସ୍ତ—ସ୍ତ୍ରୀ.ବି.ସ୍ତର, ଥର, ବାର, ଭଙ୍ଗ, (ପ୍ରା. ବାଲେ. ବି) ଛଞ୍ଚା ।
ପରସ୍ତର--ବି.ଅତଏବ ରୂପେ ତରଣୀୟ
ପରସ୍ତାତ୍—ଅବ୍ୟ. ପଶ୍ଚାତ୍, ପରେ, ଆହୁର, ପୁନଶ୍ଚ, ପରଠାରୁ ବା ପର ବିଷୟରେ ।
ପରସ୍ପରେ—ସ୍ତ୍ରୀ. ଅବ୍ୟ. ଏକ ପରସ୍ତ ଏକଥର, ବୁଢ଼େ, (ଗାଳଆଦର) ଏକତ୍ରସ୍ଥ ।
ପରସ୍ତ୍ରୀ—ସ୍ତ୍ରୀ. ବି. ପରର ପତ୍ନୀ ।
ପରସ୍ତ୍ରୀଗମନ—ବି. ଅନ୍ୟର ସ୍ତ୍ରୀ ସଙ୍ଗେ ଜାର କର୍ମ, ବ୍ୟଭିଚାର କର୍ମ ।
ପରସ୍ତ୍ରୀଗାମୀ—ପୁଂ. ବିଂ. (ପରସ୍ତ୍ରୀ+ଗମ୍ +କ.ଇନ୍) ପର ସ୍ତ୍ରୀସଙ୍ଗ ସହବାସକାରୀ ।
ପରସ୍ପର—ବି.ବିଂ.ଅନ୍ୟୋନ୍ୟ, ଇତରେତର, ଉଭୟତଃ, (କ୍ରି.ବିଂ) ଅନ୍ୟୋନ୍ୟରେ, ଜଣେ ଅନ୍ୟ ଜଣକୁ ଏହିପରି ଭାବରେ, ଆପଣା ଆପଣା ମଧ୍ୟରେ, ଆପୋସରେ, (ବି) ମୃଗବିଶେଷ, ପ୍ରତ୍ୟେକର ପୁତ୍ର, ବଂଶ, ସର୍ବ, ଅନ୍ୟୋନ୍ୟ ।
ପରସ୍ପରବିରୋଧୀ—ପୁଂ. ବିଂ. ଜଣେ ଅନ୍ୟର ପ୍ରତିକୂଳ, ଅନ୍ୟୋନ୍ୟର ବିପରୀତ । [ମତ ।
ପରସ୍ପରାନୁମତ—ସ୍ତ୍ରୀ.ବି.ପରସ୍ପରର ଅନୁ-
ପରସ୍ମୈପଦ—କ୍ଳୀ. ବି. କର୍ତ୍ତୃବାଚ୍ୟରେ ପ୍ରଯୁଜ୍ୟ କ୍ରିୟାର ବିଭକ୍ତି, କର୍ତ୍ତୃବାଚ୍ୟର କ୍ରିୟାରୂପ ।
ପରସ୍ମୈପଦିନ୍—ବି.ଧାତୁବିଶେଷ, ଯେଉଁ ସମସ୍ତ ଧାତୁର ଉତ୍ତର ପରସ୍ମୈପଦ ବିଭକ୍ତି ହୁଏ । [ଧନ ।
ପରସ୍ୱ—ବି. (୬ତତ୍) ପରଦ୍ରବ୍ୟ, ପର-
ପରସ୍ୱଧ—ପୁଂ. ବି. ପରଶ୍ୱଧ,କୁଠାର ।
ପରହନ୍—ବି. ବିଂ. ପରହନନକାରୀ ।
ପରହସ୍ତ—ବି.(ପର+ହସ୍ତ) ଅନ୍ୟ ବ୍ୟକ୍ତିର ହାତ, ଅନ୍ୟ ବ୍ୟକ୍ତିର ଅଧିକାର ।
ପରହସ୍ତଗତ—ବିଂ. (ପର+ହସ୍ତ+ଗତ) ଆପଣାର ଆୟତ୍ତରେ ନ ଥିବା, ପରର ହାତକୁ ଯାଇଥିବା (ଧନ) ।
ପରହିତ—ବି. ବିଂ. ପରର ମଙ୍ଗଳାଭିଳାଷୀ, ହିତାକାଂକ୍ଷୀ, (ବି) ପରର ମଙ୍ଗଳ, ପରୋପକାର ।
ପରହିତରକ୍ଷିତ—ପୁଂ.ବି.ପଞ୍ଚକ୍ରମ ନାମକ ଗ୍ରନ୍ଥର ଟୀକାକାର । [ରାଜା ।
ପରହିତରାଜ—ଗୁଲ୍ଲୁକ୍ୟ ବଂଶୀୟ ଜଣେ
ପରହିତବାନୋଦେବଗମ୍—ସମ୍ରାଟ୍ ସାହାଜାହାନଙ୍କ କନ୍ୟା ।
ପରହିତବ୍ରତ—ବି. ବିଂ. (ବ.ବ୍ରୀ) ପରୋପକାରୀ, ପରର ଉପକାର ସାଧନ ଯାହାର ମୂଳମନ୍ତ୍ର (ବି. କ.ଧା) ଅନ୍ୟର ଉପକାରରୂପ ପୁଣ୍ୟକାର୍ଯ୍ୟ ।
ପରହିତବ୍ରତୀ—ପୁଂ. ବିଂ. (ପରହିତ ବ୍ରତ +ଇନ୍) ଅନ୍ୟର ଉପକାର ସାଧନେ ନିଯୁକ୍ତ, ପରୋପକାରୀ ।
ପରହିତୈଷଣା—ସ୍ତ୍ରୀ.ବି.(୬ତତ୍) ଅନ୍ୟର ଇଷ୍ଟସାଧନର ବାସନା, ଅନ୍ୟର ମଙ୍ଗଳ କରିବାରେ ଇଚ୍ଛା, ପରୋପକାର ପ୍ରବୃତ୍ତି ।
ପରହିତୈଷୀ—ପୁଂ. ବିଂ. (ପରହିତ+

ଇଷ + କ.ଇନ୍)ଅନ୍ୟର ମଙ୍ଗଳାକାଙ୍କ୍ଷୀ
ପରହିଂସ୍ରା—ପାର୍ବତୀୟ ଜାତିବିଶେଷ ।
ପରା—ଅବ୍ୟ. ବିମୋକ୍ଷ,ପ୍ରାଧାନ୍ୟ, ଗମନ, ପ୍ରାତିଲୋମ୍ୟ, ଧର୍ଷଣ,ଆଭିମୁଖ୍ୟ,ଭୃଶାର୍ଥ ବିକ୍ରମ, ଗତି, ବଧ, ଉପସର୍ଗବିଶେଷ, ଏହାର ଅର୍ଥ—ଭଙ୍ଗ, ଅନାଦର, ପ୍ରତ୍ୟାବୃତ୍ତି, ଅହଂକାର, ନ୍ୟଗ୍ଭାଗ ।
ପରା—ସ୍ତ୍ରୀ.ବି.ବନ୍ଧ୍ୟା କର୍କୋଟକୀ, ନାଭିଠାରୁ ପ୍ରଥମେ ଜାତ ନାଦ ସ୍ୱରୂପ ବର୍ଣ୍ଣ, ଗଙ୍ଗା, ଗାୟତ୍ରୀ, (ସ୍ତ୍ରୀ.ବିଂ. ପର+ଆ) ପରର ସ୍ତ୍ରୀଲିଙ୍ଗ, ଉତ୍କୃଷ୍ଟା, ପରମା, ପ୍ରଧାନା, ମୁଖ୍ୟା,ବ୍ରହ୍ମଜ୍ଞାନ ପ୍ରତିପାଦିକା, (ଗ୍ରା.ଅ. ଫ-ପ୍ରାୟ) ଠି, ଭଳିତ, ପରାଏ, ପ୍ରାୟ, ସମାନ, (ଗ୍ରା. ସମ୍ବଲ.ବ) ପଡ଼ା, ସଇ ।
ପରାଙ୍କୁଶୋଅ—ଜଣେ ସଂସ୍କୃତଜ୍ଞ ପଣ୍ଡିତ ।
ପରାକ୍—ଅବ୍ୟ. ପରାଙ୍ ଦେଖ ।
ପରାକ୍‌ପୁଷ୍ପୀ—ସ୍ତ୍ରୀ. ବି. ଅପାମାର୍ଗ ।
ପରାକ—ବି.(ପରା+ଅକ+ଅ) ଦୂରବ୍ର, ଦ୍ୱାଦଶ ଦିନବ୍ୟାପୀ ଉପବାସ ବ୍ରତ ବା ପ୍ରାୟଶ୍ଚିତ୍ତବିଶେଷ, ଖଡ୍ଗ, ଜନ୍ତୁବିଶେଷ, ରୋଗବିଶେଷ, (ବିଂ) କ୍ଷୁଦ୍ର ।
ପରାକରଣ—କ୍ଳୀ. ବି. (ପରା+କୃ+ଭା. ଅନ) ଅବଜ୍ଞା କରିବା, ଅବହେଳନ, ଉଦ୍‌କଳିବା ।
ପରାକାଶ—ପୁଂ.ବି.ବାକ୍ୟ ଦ୍ୱାରା ପ୍ରତିଜ୍ଞାତ ଓ କାର୍ଯ୍ୟେ ଅକୃତ ଅର୍ଥର ପରୀକ୍ଷା ।
ପରାକାଷ୍ଠା—ବି. (ପରା+କାଷ୍ଠା) ଚରମସୀମା, ଆତିଶଯ୍ୟ, ସର୍ବୋଚ୍ଚ ସୀମା, ବ୍ରହ୍ମାଙ୍କ ଆୟୁର ଅର୍ଦ୍ଧେ,ଗାୟତ୍ରୀବିଶେଷ
ପରାକୃତ—ବିଂ.(ପରା+କୃ+ତ)ପ୍ରାକୃତ, ଘୃଣିତ, ତ୍ୟକ୍ତ, (ସ୍ତ୍ରୀ) ପରାକୃତା ।
ପରାକ୍ରମ—ପୁଂ. ବି. (ପରା+କ୍ରମ+ଅ) ଶକ୍ତି, ବିକ୍ରମ, ଉଦ୍ୟୋଗ, ନିଷ୍କ୍ରାନ୍ତ, ବିଷ୍ଣୁ, ପୁରୁଷକାର, ବଳ, ଶୌର୍ଯ୍ୟ ।
ପରାକ୍ରମ—ଚନ୍ଦ୍ରବଂଶୀୟ ଜନୈକ ନରପତି, ପାଣ୍ଡୁବଂଶୀୟ ନୃପବିଶେଷ ।
ପରାକ୍ରମକେଶରୀ—ପୁଂ. ବି. ବିକ୍ରମକେଶରୀ, ବିକ୍ରମ କେଶରୀ ରାଜାଙ୍କ ପୁତ୍ର ବିଶେଷ ।
ପରାକ୍ରମଜ୍ଞ—ତ୍ରି.ବିଂ.ଶତ୍ରୁର ପରାକ୍ରମ ଯେ ଜାଣିପାରେ । [ ଯୁକ୍ତ ।
ପରାକ୍ରମବତ୍—ତ୍ରି.ବିକ୍ରମଶାଳୀ, ପରାକ୍ରମ-
ପରାକ୍ରମବାହୁ—(ମହାତ୍ମ) ସିଂହଳ ଦ୍ୱୀପର ଜଣେ ରାଜା ।
ପରାକ୍ରମବାହୁଗାରରାଜନାଃଶଙ୍କମଲ୍ଲ—ସିଂହଳର ଜନୈକ ରାଜା ।
ପରାକ୍ରମବାହୁଙ୍କସ୍ୟ—ସିଂହଳ ଦ୍ୱୀପର ଜନୈକ ବୌଦ୍ଧ ରାଜା ।
ପରାକ୍ରମବାହୁ ୪ର୍ଥ—ସିଂହଳ ଦ୍ୱୀପର ଜଣେ ବୌଦ୍ଧ ରାଜା ।
ପରାକ୍ରମବାହୁ୫ମ—ସିଂହଳ ଦ୍ୱୀପର ଜଣେ ବୌଦ୍ଧ ରାଜା ।
ପରାକ୍ରମବାହୁ ୬ଷ୍ଠ—ସିଂହଳ ଦ୍ୱୀପର ଜଣେ ପ୍ରବଳ ପରାକ୍ରାନ୍ତ ବୌଦ୍ଧରାଜା ।
ପରାକ୍ରମବାହୁ୭ମ—ସିଂହଳ ଦ୍ୱୀପର ଜଣେ ବୌଦ୍ଧ ରାଜା ।
ପରାକ୍ରମଶାଳୀ—ପୁଂ. ବିଂ. ଶକ୍ତିଶାଳୀ, ବଳୁଆ, ସାହସୀ ।
ପରାକ୍ରମୀ—ତ୍ରି. ବିଂ. ପରାକ୍ରମଯୁକ୍ତ ।
ପରାକ୍ରାନ୍ତ—ବିଂ. ( ପରା + କ୍ରମ୍ + ତ ) ପ୍ରଭାବଶାଳୀ,ଶୌର୍ଯ୍ୟସମ୍ପନ୍ନ,ଶକ୍ତି ସମ୍ପନ୍ନ, ସାହସୀ ।
ପରାଗ—ପୁଂ. ବି. ( ପରା + ଗମ୍ + ଅ ) ବୃଷ୍ଟି, ଗୁଣ୍ଡା, ସୁନାମ, ସୂର୍ଯ୍ୟୋପରାଗ, ଚନ୍ଦ୍ରଗ୍ରହଣ, ପୁଷ୍ପରେଣୁ, ଧୂଳି, ସ୍ନାନୀୟ ଦ୍ରବ୍ୟବିଶେଷ, ଗିରି ପ୍ରଭେଦ,ବିଖ୍ୟାତି, ଉପରାଗ, ଚନ୍ଦନ, ସ୍ୱଚ୍ଛନ୍ଦ ଗମନ, କର୍ପୂରର ରଜଃ ।
ପରାଗକେଶର—ବି. (ପରାଗ+କେଶର) ଶିରୋଦେଶରେ ରେଣୁଯୁକ୍ତ ପୁଷ୍ପମଧ୍ୟସ୍ଥ ସୂକ୍ଷ୍ମ ତୃଣସମୂହ ।
ପରାଗକୋଷ—ପୁଂ. ବି. (କ.ଧା) ପୁଷ୍ପର ମଧ୍ୟସ୍ଥଳରେ କୋଷର ଆକାରବିଶିଷ୍ଟ ଯେଉଁ ପଦାର୍ଥର ମଧ୍ୟରେ ପରାଗ ଥାଏ ।
ପରାଗତ—ବିଂ. (ପରା+ଆ+ଗମ୍+ତ) ଯୁକ୍ତ,ବ୍ୟାପ୍ତ, ପ୍ରତ୍ୟାଗତ, ପଶ୍ଚାଦାଗତ, ବିସ୍ତୃତ, ବିକସିତ, (ସ୍ତ୍ରୀ) ପରାଗତା ।
ପରାଗଢ଼—ପୁଂ.ବି. ଶିବ, (ସ୍ତ୍ରୀ)ଗାୟତ୍ରୀ ।
ପରାଗଦ୍ରୁଣ—ତ୍ରି.ବିଂ. ବହୁଦୃଷ୍ଟି ।
ପରାଗବସୁ—ପୁଂ.ବି.ପରାବସୁର ନାମାନ୍ତର ।
ପରାଗମ—ପୁଂ.ବି. ଶତ୍ରୁର ଆଗମନ ବା ଆକ୍ରମଣ । [ ପଶ୍ଚାଦ୍ଭାଗ ।
ପରାଙ୍ଗ—କ୍ଳୀ. ବି. ଶରୀରର ଅଧଃ ବା
ପରାଙ୍ଗଦ—ପୁଂ.ବି. ଶିବ ।
ପରାଙ୍ଗବ—ପୁଂ.ବି. ସମୁଦ୍ର ।
ପରାଙ୍—ଅବ୍ୟ. ପଶ୍ଚାତ୍, ପଛକୁ ।
ପରାଙ୍ମୁଖ—ତ୍ରି. ବିଂ. ( ପରାଙ୍ + ମୁଖ ) ବିମୁଖ, ପ୍ରତିକୂଳ, ଉଦାସୀନ, ନିବୃତ୍ତ, (ବି) ଅସ୍ତ୍ରୋକ୍ତ ମନ୍ତ୍ରବିଶେଷ ।
ପରାଙ୍ମୁଖତା—ସ୍ତ୍ରୀ.ବି. ପରାଙ୍ମୁଖତ୍ୱ ।
ପରାଚ—ତ୍ରି. ବିଂ. ପ୍ରତିଲୋମଗାମୀ, ଉର୍ଦ୍ଧ୍ୱଗାମୀ, ଓଲଟା ଗତି କରୁଥିବା, (ପୁଂ) ଅପ୍ରତ୍ୟକ୍ଷଗମ୍ୟ, ପରର ଆସ୍ପଦ, ପରଗାମୀ ବାହ୍ୟ ପଦାର୍ଥବୋଧକ, ପ୍ରତ୍ୟଗ୍ ରୂପ ସ୍ୱଭିନ୍ନ ।
ପରାଚିତ—ତ୍ରି.ବିଂ. (ପର+ଆଚିତ)ପରଦ୍ୱାରା ପ୍ରତିପାଳିତ, ସମ୍ୟଗ୍ ବ୍ୟାପ୍ତ ।
ପରାଚୀ—ସ୍ତ୍ରୀ.ବି. ଅନୁଲୋମଦ୍ୱାରା ଆବୃତ୍ତ ଋକ୍, ପରବର୍ତ୍ତିନୀ, ବିଷ୍ଣୁଭେଦ ।
ପରାଚୀନ—ତ୍ରି. ବିଂ. ( ପରାଚ୍ + ଈନ ) ବିମୁଖ. ପ୍ରାଚୀନ, ଅନିଚ୍ଛୁକ,ପରାଙ୍ମୁଖ, ପୁରାତନ ।
ପରାଚୈସ—ଅବ୍ୟ. ପରାଙ୍ମୁଖ ।
ପରାଜୟ—ପୁଂ.ବି. (ପରା + ଜି + ଭା.ଅ) ରଣରେ ଭଙ୍ଗ, ଯୁଦ୍ଧରେ ହାରିଯିବା, ପରାଭବ । [ ବିଶେଷ ।
ପରାଜିତ୍—ପୁଂ.ବି. ରୁକ୍ମ କବଚର ପୁତ୍ର-
ପରାଜିତ—ତ୍ରି.ବିଂ. (ପରା + ଜିତ) କୃତପରାଜୟ, ପରାଭୂତ, ବିଜିତ, ଯେ ହାରି ଯାଇଅଛି ।
ପରାଜେତ୍ର—ତ୍ରି. ବିଂ. ଜୟୀ, ବିଜେତା ।
ପରାଞ୍ଚ—ବିଂ.(ପରା+ଅନଚ୍) ପରାଙ୍ମୁଖ, ବିମୁଖ ।
ପରାଞ୍ଜ—ପୁଂ. ବି. ତୈଳନିଷ୍ପୀଡ଼ନ ଯନ୍ତ୍ର, ଫେନ, ଛୁରିକାଫଳ ।
ପରାଞ୍ଜନ—କ୍ଳୀ. ବି. ତୈଳଯନ୍ତ୍ର, ଫେନ,

- ଚୁରିକାଦଳ ।

ପରାଣ—ପୁଂ.ବି. ପ୍ରାଣ, (କ୍ଲୀ) ସାମଭେଦ ।

ପରାଣକ୍ତି—ସ୍ତ୍ରୀ.ବି. ବିତାଡ଼ନ, ଦୂରୀକରଣ, ଭିନ୍ନସ୍ଥାନକୁ ପ୍ରେରଣ ।

ପରାତସ—ପୁଂ. ବି. ତାଡ଼ିତ, ଧକ୍କାମାରି ହଟେଇ ଦେବା ।

ପରାତର—ବି. ବଂ. ଅତ୍ୟନ୍ତ ଦୂରତର ।

ପରାତ୍ପର—ପୁଂ.ବି.ଶ୍ରୀକୃଷ୍ଣ,ପରମେଶ୍ୱର, (ପୁଂ.ବଂ)ଶ୍ରେଷ୍ଠ ଅପେକ୍ଷା ଶ୍ରେଷ୍ଠତର ।

ପରାତ୍ପରୀ—ସ୍ତ୍ରୀ. ବି. ( ପରାତ୍ପର+ଈ ) ଭଗବତୀ ଦୁର୍ଗା ।

ପରାତ୍ପ୍ରିୟ—ପୁଂ.ବି. ତୃଣବିଶେଷ, ଉଲୁ-ଖଡ଼ । [ ଆତ୍ମା ।

ପରାତ୍ମନ—ପୁଂ. ବି. ପରମାତ୍ମା, ପରର

ପରାଦ—ପୁଂ.ବଂ. (ପର + ଅଦ + କ.ଅ) ପରାନ୍ନଜୀବୀ ଦେଖ ।

ପରାଦଦ—ବି.ବଂ.ଯେଉଁପରି ଶତ୍ରୁମାନଙ୍କ ପରାଙ୍ମୁଖ ହୁଏ;ସେହିପରି ଦାନକାରୀ ।

ପରାଦନ—ପୁଂ.ବି. ପାରସ୍ୟ ଦେଶୋଦ୍ଭବ ଘୋଟକ ।

ପରାଦାନ—କ୍ଲୀ. ବି. (୬ତତ୍ତ୍ୱ) ପରାର୍ଥେ ଦାନ, ପରୋପକାରାର୍ଥେ ଦାନ ।

ପରାଧି—ପୁଂ. ବି. (୬ତତ୍ତ୍ୱ) ଅନ୍ୟବ୍ୟକ୍ତିର ରୋଗ, (କ.ଧା) ଉତ୍କଟ ବ୍ୟାଧି ।

ପରାଧିକାର—ବି. (୬ତତ୍ତ୍ୱ) ଅନ୍ୟବ୍ୟକ୍ତିର ଆଧିପତ୍ୟ, ଅନ୍ୟର ଇଲାକା ।

ପରାଧିକାରଚର୍ଚ୍ଚା—ବି. ଅନ୍ୟ ବ୍ୟକ୍ତି ବିଷୟରେ ଆଲୋଚନା ।

ପରାଧୀନ—ବି. ବଂ. (୬ତତ୍ତ୍ୱ) ପରବଶ, ପରବୃତ୍ତି,ଅସ୍ୱାଧୀନ,ଅନ୍ୟର ବଶୀଭୂତ ।

ପରାଧୀନତା—ସ୍ତ୍ରୀ. ବି. ପରାଧୀନର ଭାବ, ପରାଧୀନର ଧର୍ମ ।

ପରାନସା—ସ୍ତ୍ରୀ. ବି. ଚିକିତ୍ସା ।

ପରାନ୍ତକ—ବି. ( ୬ତତ୍ତ୍ୱ ) ମହାଦେବ, ସୀମାନ୍ତଦେଶ,(ବଂ) ଶତ୍ରୁନାଶକ,ଶତ୍ରୁ-ସଂହାରକ ।

ପରାନ୍ତକରାୟ—ଶୈଳବଂଶୀୟ ଜଣେ ନରପତି ।

ପରାନ୍ତକାଳ—ପୁଂ. ବି. ଦେହାନ୍ତକାଳ, ଯେଉଁ ସମୟରେ ଶରୀରର ଅବସାନ ହୁଏ ।

ପରାନ୍ତିକା—ସ୍ତ୍ରୀ.ବି. ଗୀତରୂପ ମାତ୍ରାବୃତ୍ତ ବିଶେଷ ।

ପରାନ୍ତିଜ—ବୋମ୍ବାଇ ପ୍ରେସିଡେନ୍ସୀର ଉପବିଭାଗବିଶେଷ ଏବଂ ତାହାର ପ୍ରଧାନ ନଗର ।

ପରାନ୍ନ—ବି. (୬ତତ୍ତ୍ୱ) ଯେଉଁ ଖାଦ୍ୟ ସ୍ୱୋପାର୍ଜିତ ନୁହେ,ସ୍ୱଜନେତର ବ୍ୟକ୍ତି-ଦ୍ୱାରା ରନ୍ଧାହୋଇଥିବା ଅନ୍ନ ବା ଖାଦ୍ୟ, (ବ.ବ୍ରୀ) ଭୃତ୍ୟ, (ବଂ-ବ.ବ୍ରୀ) ପରାନ୍ନଜୀବୀ ।

ପରାନ୍ନଜୀବୀ—ପୁଂ. ବଂ. ପରାନ୍ନ ଦ୍ୱାରା ପ୍ରତିପାଳିତ, ମାଗଣାଖିଆ ।

ପରାନ୍ନପରିପୁଷ୍ଟ—ବି. ବଂ. ଅନ୍ୟର ଅନ୍ନାଦିଭୋଜନରେ ପରିବର୍ଦ୍ଧିତ(ଦେହ) ।

ପରାନ୍ନଭୋଜୀ—ବି. ବଂ. ଯେ ଅନ୍ୟର ଭୋଜ୍ୟ ଭୋଜନ କରେ ।

ପରାପ—ବି. ପରାଗତ ଜଳାପାଦନ ।

ପରାପତିତ—ବଂ.(ପର + ଆ + ପତ୍ + କ.ଅ) ପ୍ରତ୍ୟାବୃତ୍ତ,ପ୍ରତ୍ୟାଗତ,ସମାଗତ ।

ପରାପବାଦ—ବି. ( ୬ତତ୍ତ୍ୱ ) ପରନିନ୍ଦା, ପର ନାମରେ ଅପବାଦ ।

ପରାପର—କ୍ଲୀ.ବି.ପରୁଷକ ଫଳ,(ଫାରସୀ ଗଛ ଓ କୋଳି), (ବଂ-ପର+ଅପର) ଦୂରବର୍ତ୍ତୀ ଓ ନିକଟବର୍ତ୍ତୀ, ପ୍ରାଥମିକ ଓ ପରବର୍ତ୍ତୀ, ଉଚ୍ଚ ଓ ନୀଚ, ଆଗ ଓ ପଛ ।

ପରାପରଗୁରୁ—ପୁଂ. ବି. ଗୁରୁବିଶେଷ, ତନ୍ତ୍ରରେ ଭଗବତୀଙ୍କ ପରାପର ଗୁରୁ-ବୋଲି କୁହାଯାଇଅଛି ।

ପରାପରତ୍ୱ—କ୍ଲୀ.ବି. ପରତ୍ୱ ଓ ଅପରତ୍ୱ ଯୁକ୍ତର ଭାବ, ପରାପରତ୍ୱ ।

ପରାପରେତ୍ତୃ—ବି.ବଂ. ପଶ୍ଚାଦନୁସରଣ, ଶ୍ରେଣୀବଦ୍ଧରୂପେ ପରଲୋକାଦିକୁ ଗମନ । [ ନ୍ଧୀୟ ।

ପରାପାତୁକ—ବି. ବଂ. ଗର୍ଭସ୍ରାବ ସମ୍ବ-

ପରାପୁର—ସ୍ତ୍ରୀ. ବି. ସ୍ଥୂଳଦେହ ।

ପରାପ୍ରାସାଦମନ୍ତ୍ର—ପୁଂ.ବି. ପ୍ରସାଦନକାରୀ, ଗୁପ୍ତମନ୍ତ୍ରବିଶେଷ ।

ପରାପୃଷ୍ଠୀଭୂତ—ବି. ପରକୁ ପୃଷ୍ଠ-ଦେଖାଇଥିବା ।

ପରାବଦ—କ୍ଲୀ. ବି. ଗ୍ରାମଭେଦ ।

ପରାଭକ୍ତି—ସ୍ତ୍ରୀ. ବି. ସଖ୍ୟଭକ୍ତି,ଶ୍ରୀକୃଷ୍ଣଙ୍କ ପ୍ରତି ଗୋପିନୀମାନଙ୍କର ଯେ ଉତ୍ତମ ଅନୁରକ୍ତି ।

ପରାଭବ—ପୁଂ. ବି. (ପରା+ଭୂ+ଅ) ପରାଜୟ, ତିରସ୍କାର,ଅତିକ୍ରମ, ବିନାଶ, ବିଫଳତ୍ୱ, ଅନ୍ତର୍ଦ୍ଧାନ, ବିଚ୍ଛେଦ, ଅବ-ମାନନା,ଘୃଣା,କ୍ଷତି, ବାର୍ହସ୍ପତ୍ୟ ଚତ୍ୱାରିଂଶ ମଧ୍ୟରୁ ଚତୁର୍ଦ୍ଦଶ ବା ଚତ୍ୱାରିଂଶ ବର୍ଷର ନାମ, (ଗ୍ରା.ବି) କଷ୍ଟ ।

ପରାଭବୀ—ବଂ.(ପରା+ଭୂ+କ.ଇନ୍) ପରାଭବକାରୀ, କଷ୍ଟଦାୟକ । [ଶୀଳ

ପରାଭବୁକ—ବି. ବଂ. ପତନ ବା ଧ୍ୱଂସ-

ପରାଭକ୍ଷ—ପୁଂ ବି. ବାନପ୍ରସ୍ଥବିଶେଷ ।

ପରାଭୂତ—ବି. ବଂ. (ପରା+ଭୂ+ତ) ପରାଜିତ, ପରାସ୍ତ, ତିରସ୍କୃତ, ଅବ-ମାନିତ, କଷ୍ଟପ୍ରାପ୍ତ, ବିନଷ୍ଟ ।

ପରାଭୂତି—ସ୍ତ୍ରୀ.ବି (ପରା+ଭୂ+ଭା.ତି) ପରାଜୟ ।

ପରାଭୃତ—ବଂ. (ପରା+ଭୃ+ର୍ମ.ତ) ଲୁକ୍କାୟିତ, ବାହୃତ, କଢ଼ାଯାଇଥିବା ।

ପରାମନନ—ବଂ. (ପରା+ମନ+ଭା. ଅନ) ପ୍ରଗାଢ଼ ଚିନ୍ତା,ଧ୍ୟାନ, ଅନୁତାପ ।

ପରାମର୍ଶ—ପୁଂ.ବି.(ପରା + ମୃଶ + ଭା.ଅ) ଯୁକ୍ତି, ବିବେଚନା, ତର୍କ, ମନ୍ତ୍ରଣା, ସ୍ମରଣ, ବ୍ୟାପ୍ତି ବିଶିଷ୍ଟର ପକ୍ଷ, ଧର୍ମତ୍ୱ, ବୁଦ୍ଧି, ଜ୍ଞାନ, ଉପଦେଶ, ଧରିବା,ଆକର୍ଷଣ, ଟାଣିବା, ନୁଆଁଇବା, (ଧାତୁ) ଅବମାନନ, ଅତ୍ୟାଗ୍ରହ, ଆକ୍ରମଣ, ଧର୍ଷଣ, ବାଧାପ୍ରଦାନ, ଯୁଦ୍ଧ, ସ୍ମରଣ କରିବା, କର୍ତ୍ତୃତ୍ୱ, ପ୍ରତିଜ୍ଞାର ପ୍ରଧାନ ଓ ଅପ୍ରଧାନ ଅଙ୍ଗ ମଧ୍ୟରେ ସମ୍ପର୍କ ଥିବା ସମ୍ବନ୍ଧୀୟ ଜ୍ଞାନ, ( ଗ୍ରା.ବି ) ଗାଳିମନ୍ଦ, ତିରସ୍କାର ।

ପରାମର୍ଶକରିବା—ଗ୍ରା.କ୍ରି. ମନ୍ତ୍ରଣାକରିବା, ବିଚାର କରିବା, ଆର୍ଦ୍ଦିବା ।

ପରାମର୍ଶଦାତା—ପୁଂ. ବିଂ. ଯେ ବୁଦ୍ଧି ବତାଏ, ମନ୍ତ୍ରଣାଦାତା ।
ପରାମର୍ଶନ—କ୍ଲୀ. ବି. ସ୍ମରଣ, ପୂର୍ବସ୍ମୃତି ଚିନ୍ତନ, ବିଗ୍ରହକରଣ ।
ପରାମର୍ଶୀ—ପୁଂ. ବିଂ. ସ୍ମୃତ୍ୟାରୂଢ଼ ନିର୍ଦ୍ଦେଶକ ।
ପରାମର୍ଷ—ପୁଂ. ବି. (ପରା+ମୃଷ୍+ଭା.ଅ) ସହନ, କ୍ଷମା ।
ପରାମୃତ—କ୍ଲୀ. ବି. ( ପର+ଅମୃତ ) ବୃଷ୍ଟି,(ବିଂ) ମୃତ୍ୟୁଆଦି ବନ୍ଧନରୁ ମୁକ୍ତ ।
ପରାମୃଷ୍ଟ—ତ୍ରି. ବିଂ. (ପରା+ମୃଶ୍+ମି.ତ) ସମ୍ବନ୍ଧ, ସମ୍ବନ୍ଧଯୁକ୍ତ, ବିଚାରିତ, ସ୍ପୃଷ୍ଟ, ନିର୍ଣ୍ଣୀତ, ଧୃତ, ବିବେଚିତ,ଯତ୍ସମ୍ବନ୍ଧେ ମନ୍ତ୍ରଣା କରାଯାଇଅଛି, ଅବମାନିତ, ଧର୍ଷିତ, ପୀଡ଼ିତ ।
ପରାୟ—ଗ୍ରା.ଅବ୍ୟ. ପ୍ରାୟ,ପରାଏ,ପ୍ରାଏ, ତୁଲ୍ୟ, ପ୍ରକାରେ, ଅନୁସାରେ, (ଗ୍ରା.ବିଂ) ତୁଲ୍ୟ, ସମ ।
ପରାୟଣ—ପୁଂ. ବିଂ. (ପର+ଅୟନ) ବ.ବ୍ରୀ; ଅତ୍ୟାସକ୍ତ ତତ୍ପର, ସେବା କରିବାକୁ ତତ୍ପର, ଅଭିଷ୍ଟ, ସମ୍ପୂର୍ଣ୍ଣରୂପେ କୌଣସି ବିଷୟରେ ଲାଗିଥିବା, (ବି-କ.ଧା) ଉତ୍ତମଅବଲମ୍ବନ,ସର୍ବୋଚ୍ଚ ଅବସ୍ଥା, ଚରମ ଆଶ୍ରୟ, ( ୬ତତ୍ ) ନାରାୟଣ, ଭଗବାନ୍ ।
ପରାୟତ—ସ୍ତ୍ରୀ.ବିଂ. (ପର+ଆୟ+ଅତ) ଅତି ବିସ୍ତୃତକାୟବିଶିଷ୍ଟ, ପଶ୍ଚାଦ୍ଗାମୀ, ପ୍ରତ୍ୟକ୍,ଗନ୍ତା, ପରାଧୀନ, (ବି-କ ଧା) ଅତିଶୟ ବିସ୍ତାର ।
ପରାୟତ୍ତ—ତ୍ରି.ବିଂ. (୬ତତ୍)ପରାଧୀନ, ପରବଶ, ଅନ୍ୟର ଅଧିକୃତ ।
ପରାୟୁଃ—ବି. (ବ.ବ୍ରୀ) ବ୍ରହ୍ମା, ( ବିଂ ) ଯେଉଁ ଲୋକ ଶତବର୍ଷ ଞ୍ଜିଅଛି ।
ପରାରି—ଅବ୍ୟ. (ପର+ଅରି) ତଦଗ୍ରବର୍ଷ, ଆସନ୍ନା ବର୍ଷର ପରବର୍ତ୍ତୀ ବର୍ଷ, ଗତବର୍ଷର ପୂର୍ବବର୍ଷ,ଗତ ତୃତୀୟବର୍ଷ ।
ପରାରିନ୍ନ—ତ୍ରି. ବିଂ. ପରାରିଭବ, ପୂର୍ବତର ବର୍ଷ ସମ୍ବନ୍ଧୀୟ ।
ପରାରୁ—ପୁଂ. ବି. (ପୃ+ଆରୁ) କାରବେଲ, କଲରା ଫଳ ଓ ଗଛ ।
ପରାରୁକ—ପୁଂ. ବି. (ପରା+ଋ+ଉକ) ପ୍ରସ୍ତର ।
ପରାର୍ଥ—ବିଂ. ( ପର+ଅର୍ଥ ) ବ.ବ୍ରୀ, ଅନ୍ୟୋଦ୍ଦେଶ୍ୟଯୁକ୍ତ, ପରନିମିତ୍ତକ,(ବି. ୬ତତ୍ ) ପରର ଉପକାର, ( କ.ଧା) ପ୍ରଧାନ ପ୍ରୟୋଜନ, ମୁଖ୍ୟ ଉଦ୍ଦେଶ୍ୟ, ମୁଖ୍ୟ ଅର୍ଥ, ରତି, ସଙ୍ଗମ ।
ପରାର୍ଥପର—ପୁଂ.ବିଂ. (ବ.ବ୍ରୀ)ପରୋପକାର କରିବାକୁ ସର୍ବଦା ତତ୍ପର ।
ପରାର୍ଦ୍ଧ—ବି. ( ପର+ଋଧ୍+ଅ ) ଶତସହସ୍ର ଲକ୍ଷକୋଟି ସଂଖ୍ୟା, ଏକ ସଂଖ୍ୟା ପରେ ୧୭ ଗୋଟି ଶୂନ୍ୟ ବସାଇଲେ ଯେଉଁ ସଂଖ୍ୟା ହୁଏ, ସର୍ବୋଚ୍ଚ ସଂଖ୍ୟା, ଅପରାର୍ଦ୍ଧ, ଶେଷାର୍ଦ୍ଧ, ବ୍ରହ୍ମାଙ୍କ ଆୟୁର ଶେଷାର୍ଦ୍ଧ, ବିଷ୍ଣୁ ।
ପରାର୍ଦ୍ଧକ—ବି. (ପରାର୍ଦ୍ଧ+କ) କୌଣସି ବସ୍ତୁର ଅଧେ ।
ପରାର୍ଦ୍ଧି—ପୁଂ. ବି. ବିଷ୍ଣୁ ।
ପରାର୍ଦ୍ଧ୍ୟ—ତ୍ରି. ବିଂ. (ପର+ଅର୍ଦ୍ଧ+ଯ) ଅତି ଉତ୍କୃଷ୍ଟ, ଅପରାର୍ଦ୍ଧରେ ଅବସ୍ଥିତ, ପ୍ରଧାନ,ଶ୍ରେଷ୍ଠ,(ବି) ପରାର୍ଦ୍ଧ, ସ୍ବର୍ଗଲୋକ ।
ପରାଲବ୍ଧ—ଗ୍ରା.ବି. ଅଦୃଷ୍ଟ, ଭାଗ୍ୟ,କପାଳ
ପରାବତ—କ୍ଲୀ.ବି. (ପରା+ଅବ+ଅତ) ପରୁଷକ ।
ପରାବର—ବିଂ.(ପର+ଅବର)ପରାପର ଦେଖ, କାଳ ପରମ୍ପରା କ୍ରମେ ଆଗତ, ପ୍ରତ୍ୟେକ ପରବର୍ତ୍ତୀ, (ବି) ପୂର୍ବପୁରୁଷଗଣ ଓ ବଂଶଧରଗଣ, କାରଣ ଓ କାର୍ଯ୍ୟ, ଉଦ୍ଦେଶ୍ୟ ଓ ଫଳ, ଜଗତ୍, ବେଦାନ୍ତ ।
ପରାବର୍ତ୍ତ—ପୁଂ.ବି. (ପରା+ବୃତ୍+ଅ) ପରିବର୍ତ୍ତନ, ବଦଳ, ବିନିମୟ, ପ୍ରତ୍ୟାବର୍ତ୍ତନ, ପ୍ରତିଦାନ, ପୁନରାଗମନ ।
ପରାବର୍ତ୍ତନ—କ୍ଲୀ.ବି. ପ୍ରତ୍ୟାବର୍ତ୍ତନ ପ୍ରତିଫଳନ ।
ପରାବର୍ତ୍ତବ୍ୟବହାର—ପୁଂ. ବି. ଥରେ ବିଚାର ହୋଇଥିବା ମକଦ୍ଦମାର ପୁନର୍ବିଚାର ।
ପରାବର୍ତ୍ତିତ—ତ୍ରି.ବିଂ.(ପରା+ବୃତ୍+ତ) ପ୍ରତିଫଳିତ,ପ୍ରତ୍ୟାବର୍ତ୍ତିତ, ଫେରିଥିବା ।
ପରାବର୍ଯ୍ୟ—ତ୍ରି. ବିଂ. ( ପରାବର+ଯ) ପରାବରସମ୍ବନ୍ଧୀୟ ।
ପରାବସୁ—ପୁଂ. ବି. ଅସୁରମାନଙ୍କର ହୋତୃବିଶେଷ, ରୈଭ୍ୟ ମୁନିଙ୍କ ପୁତ୍ର, ଗନ୍ଧର୍ବବିଶେଷ ।
ପରାବହ—ପୁଂ.ବି. (ପରା+ବହ୍+କ.ଅ) ଊର୍ଦ୍ଧ୍ବକୁ ପ୍ରବାହିତ ବାୟୁ, ସପ୍ତବାୟୁ ମଧ୍ୟରୁ ଅନ୍ୟତମ ।
ପରାବିଦ୍ଧ—ପୁଂ. ବି. (ପରା+ବ୍ୟଧ୍+ତ) କୁବେର, (ବିଂ) ପ୍ରତ୍ୟାବିଦ୍ଧମାତ୍ର ।
ପରାବୃତ୍ତ—ବିଂ. (ପରା+ବୃତ୍+କ.ତ) ପ୍ରତ୍ୟାବୃତ୍ତ, ପରିବର୍ତ୍ତିତ, ପଳାୟିତ, ବଦଳା ଯାଇଥିବା,ଅନ୍ତର୍ହିତ, ଭୂମିରେ ଲୁଣ୍ଠିତ,ରଦ୍ଦ କରାଯାଇଥିବା(ଆଦେଶ) ।
ପରାବୃତ୍ତି—ସ୍ତ୍ରୀ ବି. (ପରା+ବୃତ୍+ତି) ପ୍ରତ୍ୟାବୃତ୍ତି, ପରିବର୍ତ୍ତନ, ପଳାୟନ, ପ୍ରତ୍ୟାବର୍ତ୍ତନ, ବଦଳ, ମୋକଦ୍ଦମାର ରାୟର ରଦ୍ଦ ହେବା, ନିଆ ଯାଇଥିବା ସମ୍ପତ୍ତିର ଫେରସ୍ତ, ପ୍ରତିଘାତ ସଫଳ ନ ହେବା ।
ପରାବେଦୀ—ସ୍ତ୍ରୀ. ବି. ବୃହତୀ ।
ପରାବ୍ୟାଧ—ବି. (ପରା+ବ୍ୟଧ+ଭା.ଅ) କୌଣସି ଢେଲା ବା ଯନ୍ତ୍ରରୁ ନିକ୍ଷିପ୍ତ ଟୁଲାଆଦି ଆଘାତ କରିବାର ଶେଷସୀମା ।
ପରାଶର—ପୁଂ.ବି. (ପର+ଆ+ଶୃ+କ.ଅ) ମୁନିବିଶେଷ, ବ୍ୟାସଦେବଙ୍କ ପିତା, ନାଗବିଶେଷ, ଆୟୁର୍ବେଦତନ୍ତ୍ରକାରକ ଋଷିବିଶେଷ, ଇନ୍ଦ୍ର, ହଂସାକର୍ଣ୍ଣ, ଜ୍ୟୋତିର୍ବିଦ୍‌ବିଶେଷ, କୃଷିପଦ୍ଧତି ପ୍ରଣେତା, ବୃହତ୍ସଂହିତାବ୍ୟାଖ୍ୟା ରଚୟିତା, ପୁରାଣରତ୍ନ ନାମକ ଗ୍ରନ୍ଥପ୍ରଣେତା, ଯୋଗଶାସ୍ତ୍ର ପ୍ରଣେତା ।
ପରାଶରସଂହିତା—ବି. (କ.ଧା) ପରାଶର ମୁନିଙ୍କ କୃତ ସ୍ମୃତିଶାସ୍ତ୍ର ।
ପରାଶରୀ—ବି. ପରାଶର+ଇନ୍) ଚତୁର୍ଥାଶ୍ରମୀ, ଭିକ୍ଷୁ ।
ପରାଶରେଶ୍ବର—ପୁଂ.ବି. ସ୍କନ୍ଦପୁରାଣ ବର୍ଣ୍ଣିତ

ବାରାଣସୀତୀର୍ଥର ଶିବଲିଙ୍ଗବିଶେଷ ।

ପରାଶରେଶ୍ୱରତୀର୍ଥ—କ୍ଲୀ.ବି. ତୀର୍ଥବିଶେଷ

ପରାଶ୍ରୟ—ପୁଂ.ବିଂ.(ବ.ବ୍ରୀ) ଅପର ଦ୍ୱାରା ପାଳିତ, ଅନାଶ୍ରିତ, ( ପୁଂ.ବି କ.ଧା ) ପ୍ରଧାନ ଆଶ୍ରୟ,(ଷତତ୍‌)ଅନ୍ୟର ଆଶ୍ରୟ, ଅପରର ସାହାଯ୍ୟ ।

ପରାଶ୍ରୟା—ସ୍ତ୍ରୀ.ବି. (ବ.ବ୍ରୀ)ପରପାଳିତା, ଅନ୍ୟର ଆଶ୍ରିତା,(ବି)ମଲ୍ଲୀକା, ନିର୍ମୂଲୀ-ଲତା ।

ପରାଶ୍ରୟୀ—ପୁଂ. ବିଂ. (ଷତତ୍‌) ଅନ୍ୟର ଆଶ୍ରୟ ଗ୍ରହଣକାରୀ, ଅପରର ସାହା-ଯ୍ୟାର୍ଥୀ, ପରାଶ୍ରିତ, (ସ୍ତ୍ରୀ)ପରାଶ୍ରୟିଣୀ ।

ପରାଶ୍ରିତ—ତ୍ରି.ବିଂ. (ଷତତ୍‌) ପରାଧୀନ, ଅନ୍ୟର ଆଶ୍ରିତ, ପରପାଳିତ, (ବି) ଦାସ, ଭୃତ୍ୟ ।

ପରାସ—ପୁଂ. ବି. ( ପରା + ଅସ୍ + ଅ ) କୌଣସି ସ୍ଥାନରୁ ଫିଙ୍ଗାଯିବା ଢେଲା ବା ଶର ବା ଗୋଳାଆଦି ପଡ଼ିବାର ଦୂରତ୍ୱ, (ଗ୍ରା.ବିଂ) ବ୍ୟଥାଯୁକ୍ତ, ଜରଜ ହୋଇଥିବା,(ବି)ଜରଜ, ପୀଡ଼ା,ବ୍ୟଥା, ଦୁଃଖ । [ ପୁରୁଷରେ ଆସକ୍ତି

ପରାସଙ୍ଗ—ପୁଂ. ବି. ଅବରୋଧ, ଅନ୍ୟ

ପରାସନ—କ୍ଲୀ. ବି. (ପର+ଅସ୍+ଅନ) ମାରଣ, ବଧ, ଶ୍ରେଷ୍ଠାସନ ।

ପରାସୁ—ତ୍ରି.ବିଂ.(ବ.ବ୍ରୀ) ମୃତ, ଯାହାର ପ୍ରାଣବାୟୁ ନିର୍ଗତ ହୋଇଅଛି,ଗତପ୍ରାଣ

ପରାସୁତା—ସ୍ତ୍ରୀ.ବି.(ପରାସୁ + ତା)ମୃତ୍ୟୁ. ନିଦ୍ରାପରବଶତା, ପ୍ରାଣହୀନତା ।

ପରାସ୍କନ୍ଦୀ—ପୁଂ.ବି. (ପର+ଆ+ସ୍କନ୍ଦ୍ +ଇନ୍)ଚୋର, ଉକାୟତ, ତସ୍କର ।

ପରାସ୍ତ—ତ୍ରି.ବିଂ. (ପରା + ଅସ୍ + ମି.ତ) ନିରସ୍ତ,ପରାଜିତ,ପରିତ୍ୟକ୍ତ,ଅସ୍ୱୀକୃତ, ନିନ୍ଦିତ, ତିରସ୍କୃତ, ଅତିକ୍ରାନ୍ତ ।

ପରାସ୍ରୋତ—କ୍ଲୀ. ବି. ଉତ୍କୃଷ୍ଟ ସ୍ରବ ।

ପରାହ୍ୟ—ତ୍ରି. ବିଂ. ନିକ୍ଷେପ ଯୋଗ୍ୟ ।

ପରାହ୍ନ—ପୁଂ.ବି(ପର+ଅହନ୍) ପରଦିନ

ପରାହତ—ପୁଂ.ବିଂ.(ପରା + ହନ୍+ମି. ତ) ପରାଭୂତ, ତିରସ୍କୃତ, ଆହତ, ଆକ୍ରାନ୍ତ, ବିକୃତ,ଚୂର୍ଣ୍ଣ, ବିନଷ୍ଟ, ବାଧା-ପ୍ରାପ୍ତ, ପଛକୁ ହଟା ଯାଇଥିବା ।

ପରାହେବା—ଗ୍ରା.କ୍ରି. (ଆମ୍ବଆଦି ଫଳ) ଗଛରୁ ତୋଳା ହେବା, (ବିଛଣାଦି) ଭୂମିରେ ପାତିତ ହେବା ।

ପରାହ୍ଣ—ପୁଂ. ବି. (ଷତତ୍‌) ଅପରାହ୍ଣ, ଉପରବେଳା, ଦିବସର ଶେଷଭାଗ ।

ପରି—ଅବ୍ୟ.(ପୃ+କ.ଇନ୍) ସର୍ବତୋ-ଭାବ, ଲିପ୍ସା, ନିରାସ, ଗାଢ଼, ବର୍ଜନ, ବ୍ୟାପ୍ତି, ଶେଷ, ତୁଲ୍ୟ, ଆଖ୍ୟାନ, ଭାଗ, ଆଲିଙ୍ଗନ, ଲକ୍ଷଣ, ପୂଜା, ବ୍ୟାପ୍ତି, ଭୂଷଣ, ଶୋକ, ଉପସର୍ଗବିଶେଷ, ସମ୍ପୂର୍ଣ୍ଣରୂପେ, ଚତୁର୍ଦ୍ଦିଗରେ, ଅତିଶୟ, ବାରମ୍ବାର,ନିମନ୍ତ, ସହ, ପଶ୍ଚାତ୍, ପୁନ-ର୍ବାର, ପ୍ରତିବଦଳ, କ୍ଷୁଦ୍ର, ଉପରି ନିବୃତ୍ତି, ସର୍ବାଙ୍ଗରେ, ପୂର୍ବରୁ. ଏକତ୍ର, ନିୟମ, କ୍ରମ, (ଗ୍ରା.ଅବ୍ୟ) ତୁଲ୍ୟ,ସଦୃଶ, ପରା, ପ୍ରାଏ ।

ପରିକ—ଗ୍ରା. ବି. ରାଜପୁତାନା ବ୍ରାହ୍ମଣ-ମାନଙ୍କର ଶାଖାବିଶେଷ ।

ପରିକଥା—ସ୍ତ୍ରୀ. ବି. କଥାବିଶେଷ, ଉପ-କଥା, ଆଖ୍ୟାୟିକା, ଧର୍ମସମ୍ବନ୍ଧୀୟ ଆଖ୍ୟାନ ।

ପରିକମ୍ପ—ପୁଂ.ବି. ( ପରି+କମ୍ପ୍+ଅ ) ଭୟ, ପରିତଃ, କମ୍ପ ।

ପରିକର—ପୁଂ. ବି. (ପରି+କୃ+ଅଧି. ଅ) ପର୍ଯ୍ୟଙ୍କ, ଶଯ୍ୟା, (କ.ଅ) ଯାନ-ବାହନ, ସହଚର, କିଙ୍କର, ଅନୁଚର, ପରିବାର, (ମି.ଅ) ଉପକରଣ, ସମୂହ, କଟିବନ୍ଧ, ଆରମ୍ଭ, ନିଷ୍ପତ୍ତି, ପ୍ରଗାଢ଼ ଚେଷ୍ଟା, ବିବେକ, ଦୃଢ଼ ସଂକଳ୍ପ, (ପରି +କର) ବାହାଡ଼ା ଆଙ୍ଗୁଠି, ଆଙ୍ଗୁଠିରୁ ବାହାରିଥିବା ଅଧିକା ଆଙ୍ଗୁଠି, କାବ୍ୟା-ଲଂକାରବିଶେଷ ।

ପରିକର୍ତ୍ତନ—କ୍ଲୀ.ବି.ଅଧଶ୍ଛେଦନ,ଛେଦନ-ବତ୍ ଅନୁଭବ ।

ପରିକର୍ତ୍ତା—ପୁଂ. ବି. ( ପରି + କୃ + ତୃ ) ଜ୍ୟେଷ୍ଠର ବିବାହ ନ ହେବା ପୂର୍ବରୁ କନିଷ୍ଠର ବିବାହରେ ମନ୍ତ୍ରପାଠକ ଯାଜକ ।

ପରିକର୍ତ୍ତିକା—ସ୍ତ୍ରୀ.ବି. କର୍ତ୍ତନବତ୍ ପୀଡ଼ା, ବମନ ଓ ବିରେଚନର ବ୍ୟାଧିବିଶେଷ ।

ପରିକର୍ମ—କ୍ଲୀ.ବି. (ପରି+କର୍ମନ୍)ବେଶ-ହେବା,କୁଙ୍କୁମାଦି ଦ୍ୱାରା ଶରୀର ଶୋଭା-ସାଧନ ରୂପ ସଂସ୍କାର,ପ୍ରସାଧନ (ପୁଂ.ବି) ସେବକ, ଭୃତ୍ୟ ।

ପରିକର୍ମା—ପୁଂ.ବି.ପରିଚାରକ ଭୃତ୍ୟ ।

ପରିକର୍ମୀ—ପୁଂ. ବି. (ପରିକର୍ମ+ଇନ୍) ବେଶକାରୀ ବ୍ୟକ୍ତି, ପ୍ରସାଧକ ଭୃତ୍ୟ, ପରିଚାରକ, ( ବିଂ ) ପରିଷ୍କାରକାରୀ, ବେଶକାରୀ ।

ପରିକର୍ଷ—ପୁଂ. ବି. (ପରି+କୃଷ୍+ଭା. ଅ) ସମାକର୍ଷଣ, କର୍ଷବର୍ଜନ ।

ପରିକର୍ଷଣ—ପୁ .ବି. ଟାଣିନେଇ ନାନା ସ୍ଥାନରେ ଗମନ ।

ପରିକର୍ଷୀ—ତ୍ରି.ବିଂ.ଯେ ଟାଣିନିଏ ନିଏ ।

ପରିକଳନ(ନା)—ବି. ( ପରି+କଳ+ ଭା.ଅନ)ଗୋଡ଼ାଇବା, ଧରିବା, ଗିଳିବା, ବ୍ରତାଦିର ଆଚରଣ, ବିଗ୍ରହ କରିବା, ବିବେଚନ, (ଗ୍ରା.ବି) ଗଣନା, ଇଯୁଗ୍ମ ।

ପରିକଳିତ— କ୍ଲୀ.ବି.(ପରିକଳ+ଭା.ତ) ଆକଳନ, କଳନା କରିବା ।

ପରିକଲ୍କନ—ବି.(ପରି+କଲ୍କ+ଭା.ଅନ) ଶଠତା,ଠକାଇବା, ପ୍ରବଞ୍ଚନା,ଦଗାବାଜି ।

ପରିକଳ୍ପ—କ୍ଲୀ.ବି.ସ୍ଥିର,ନିଶ୍ଚୟ, ରଚନା, ଆମନ୍ତ୍ରଣ, ନିର୍ଦ୍ଦେଶ ।

ପରିକଳ୍ପନ—ବି. ( ପରି+କୃପ୍+ଭା. ଅନ) କଳ୍ପନା, ଆବିଷ୍କରଣ, ରଚନା, ସ୍ଥିରୀକରଣ, ବଣ୍ଟନ, ପ୍ଲାନ୍, ନକ୍ସା ।

ପରିକଳ୍ପିତ— ତ୍ରି . ବିଂ. (ପରି + କୃପ୍ + ତ) ଅନୁଷ୍ଠିତ, ସଜ୍ଜିତ, ନିର୍ଦ୍ଦିଷ୍ଟ, ସ୍ଥିରୀ-କୃତ, ରଚିତ, ଆବିଷ୍କୃତ, ସମ୍ପାଦିତ ।

ପରିକାଙ୍କ୍ଷିତ—ତ୍ରି.ବିଂ.(ପରି + କାଙ୍କ୍ଷ + ଇତ) ତପସ୍ୱୀ, ଯୋଗୀ, (ବିଂ. ମି.ତ) ସମ୍ପୂର୍ଣ୍ଣ ଅଭିଳାଷଯୁକ୍ତ, (କ.ତ) ଯେ ସମସ୍ତ ପାର୍ଥିବ ଅଭିଳାଷ ତ୍ୟାଗ କରିଅଛି ।

ପରିକାତର—ବିଂ. ଅତି ଭୀରୁ ।

ପରିକୀର୍ଣ୍ଣ—ତ୍ରି . ବିଂ. (ପରି+କୃ+କ୍ତ)

ବ୍ୟାପ୍ତ, ବିସ୍ତୃତ, ବେଷ୍ଟିତ, ଗହଳିଆ, ସମର୍ପିତ, ପ୍ରସାରିତ, ପ୍ରକୃତିତ ।

ପରିକୀର୍ତ୍ତନ—କ୍ଲୀ. ବି. (ପରି+କୀର୍ତ୍ତନ) ଉଚ୍ଚ ସ୍ୱରରେ କୀର୍ତ୍ତନ, ଆତ୍ମପ୍ରଶଂସା, ଉଚ୍ଚାରଣ ।

ପରିକୀର୍ତ୍ତିତ—ବି. ବିଂ. (ପରି+କୀର୍ତ୍ତିତ) ପ୍ରଶଂସିତ, ଉଚ୍ଚାରିତ, କଥିତ, ଗୀତ, ବ୍ୟକ୍ତ, ବିଖ୍ୟାତ, ପ୍ରଚାରିତ, ଆହୂତ, ଉଦ୍ଘୋଷିତ ।

ପରିକୃଶ—ପୁଂ.ବିଂ. (ପରି+କୃଶ୍)ଅତି-ଶୟ କ୍ଷୀଣ, (ବି) କ୍ଷୁଦ୍ରାକାର ।

ପରିକୃଷ୍ଟ—ପୁଂ.ବି.ଆୟୁର୍ବେଦୀୟବିଶେଷ,(ବିଂ) ସର୍ବତୋଭାବେ କର୍ଷିତ ।

ପରିକେଶ—ଅବ୍ୟ. କେଶର ଉପରିଭାଗ ।

ପରିକୋପ—ପୁଂ.ବି. ଅତ୍ୟନ୍ତ କ୍ରୋଧ ।

ପରିକ୍ରମ—ପୁଂ.ବି. (ପରି+କ୍ରମ୍+ଭା.ଅ) ଧାଉଁ, ଚତୁର୍ଦ୍ଦିଗରେ ଭ୍ରମଣ,ଇତଃସ୍ତତଃ ପାଦଚାଳନ,ଚହଲିବା,ପ୍ରଦକ୍ଷିଣ,ଗମନ, ବିହାର, ପର୍ଯ୍ୟଟନ ।

ପରିକ୍ରମଣ—କ୍ଲୀ.ବି. (ପରି+କ୍ରମ୍+ଅନ) ପରିକ୍ରମ, ଗମନ, ପ୍ରଦକ୍ଷିଣ ।

ପରିକ୍ରମସହ—ପୁଂ.ବି. (ପରିକ୍ରମ+ସହ୍-+ଅ) ଛାଗଳ, ଛେଳି ।

ପରିକ୍ରମା—ଦେବ ମନ୍ଦିରର ଚତୁଃପାର୍ଶ୍ୱେ ଯେ ସମସ୍ତ ଛୋଟ ଛୋଟ ଦେବମନ୍ଦିର ବା ଗୃହ ଥାଏ,ତାହାକୁ ଉକ୍ତ ମନ୍ଦିରର ପରିକ୍ରମା କହନ୍ତି, ମନ୍ଦିରର ଚତୁର୍ଦ୍ଦିଗସ୍ଥ ପାଚେରି ।

ପରିକ୍ରୟ—ପୁଂ.ବି. (ପରି+କ୍ରୟ) ବିନି-ମୟ, ଟଙ୍କା ଦେଇ ଶାନ୍ତିକ୍ରୟ, ଭଡ଼ା, ବନ୍ଧକ ବସ୍ତୁକୁ ମୁକୁଳାଇବା ମୂଲ୍ୟ,କ୍ରୟ, କିଣିବା ।

ପରିକ୍ରୟଣ—କ୍ଲୀ.ବି. (ପରି+କ୍ରୀ+ଅନ) ପରିକ୍ରୟ ଦେଖ ।

ପରିକ୍ରିୟା—ସ୍ତ୍ରୀ.ବି. (ପରି+କ୍ରିୟା)ଚତୁ-ର୍ଦ୍ଦିଗ ପରିଖାଦି ଦ୍ୱାରା ବେଷ୍ଟନ, ଏକାହ-ସାଧ୍ୟ ଯାଗବିଶେଷ, ସଂସ୍କରଣ,( ଗ୍ରା.ବି ) କୌଣସି ଔଷଧ ବା ପ୍ରୟୋଗର ଗୁଣ ବା ଫଳ ।

ପରିକ୍ଲାନ୍ତ—ବିଂ. ଅତିଶୟ କ୍ଲାନ୍ତ, ପରି-ଶ୍ରାନ୍ତ ।

ପରିକ୍ଲିଷ୍ଟ—ବି.ବିଂ.(ପରି+କ୍ଲିଶ୍+କ.ତ) ପରିକ୍ଷତ, ଅତିକ୍ଲିଷ୍ଟ, ଉତ୍ୟକ୍ତ, ବିନଷ୍ଟ, ବିରକ୍ତ ।

ପରିକ୍ଲେଦ—ପୁଂ.ବି.(ପରି+କ୍ଲିଦ୍ +ଅ) ଆର୍ଦ୍ରତା, ଅତିଶୟ କାଦୁଅ ।

ପରିକ୍ଲେଦୀ—ପୁଂ.ବି.ଂପରିକ୍ଲେଦଯୁକ୍ତ ।

ପରିକ୍ଲେଶ—ପୁଂ.ବି. (ପରି+କ୍ଲିଶ୍+ଅ) ଅତିଶୟ କ୍ଲେଶ ।

ପରିକ୍ଲେଷ୍ଟ—ପୁଂ. ବିଂ. (ପରି+କ୍ଲିଶ୍+ତୃ) ଅତିଶୟ ଶ୍ରାନ୍ତ, କଷ୍ଟଦାୟକ ।

ପରିକ୍ୱଣନ—ପୁଂ. ବି. (ପରି+କ୍ୱଣ୍+କ.ଅନ) ମେଘ,(ବିଂ)ଉଚ୍ଚଗର୍ଜନକାରୀ ।

ପରିକ୍ଷତ—ବି. ବିଂ. (ପରି+କ୍ଷଣ+ତ) ଭ୍ରଷ୍ଟ, ନଷ୍ଟ, ବିନଷ୍ଟ, ଅତ୍ୟନ୍ତ ଆହତ, କ୍ଷତ ବିକ୍ଷତ ।

ପରିକ୍ଷୟ—ପୁଂ. ବି. (ପରି+କ୍ଷୟ)ଧ୍ୱଂସ, ବିନାଶ, ଶେଷ, ଅନ୍ତ, ପତନ, ସମ୍ପୂର୍ଣ୍ଣ ନିବୃତ୍ତି ।

ପରିକ୍ଷବ—ପୁଂ. ବି. କ୍ଷୁତ, ଛିଙ୍କ ।

ପରିକ୍ଷା—ସ୍ତ୍ରୀ. ବି. (ପରି+କ୍ଷୈ+କ.ଅ +ଆ) କର୍ଦ୍ଦମ,ମୃତ୍ତିକା, ମଇଳା,ମଳ ।

ପରିକ୍ଷାଣ—ବିଂ. ( ପରି+କ୍ଷି+କ.ନ ) ଭସ୍ମୀଭୂତ ।

ପରିକ୍ଷାମ—ପୁଂ. ବିଂ. (ପରି+କ୍ଷୈ+ତ୍ତ) ଅତି କୃଶ, କ୍ଲିଷ୍ଟ, ଅତ୍ୟନ୍ତ କୃଶୀକୃତ ।

ପରିକ୍ଷାଳନ—କ୍ଲୀ. ବି. (ପରି+କ୍ଷଲ+ଅନ) ପରିକ୍ଷାଳନୀୟ ବସ୍ତୁ, ଜଳ, ଧୋଇବା, ଧୌତକରଣ ।

ପରିକ୍ଷିତ୍—ପୁଂ. ବି. ଅଭିମନ୍ୟୁଙ୍କ ପୁତ୍ର, ଅର୍ଜ୍ଜୁନଙ୍କ ନାତି, କୁରୁପୁତ୍ରବିଶେଷ, ଅବିକ୍ଷିତ୍ର ପୁତ୍ର ।

ପରିକ୍ଷିପ୍ତ—ବିଂ. (ପରି+କ୍ଷିପ୍+ର୍ମ.ତ) ପ୍ରକ୍ଷିପ୍ତ,ବେଷ୍ଟିତ,ପରିତ୍ୟକ୍ତ, ଚାରିଆଡ଼େ ଘେରାହୋଇଥିବା ।

ପରିକ୍ଷୀଣ—ବି. ବିଂ. ( ପରି+କ୍ଷୀଣ ) ଅତିଶୟ କ୍ଷୀଣ, ଅତି ଦୁର୍ବଳ ।

ପରିକ୍ଷେପ—ପୁଂ.ବି.(ପରି+କ୍ଷିପ୍+ଭା.ଅ) ଇତସ୍ତତଃ,ଚତୁର୍ଦ୍ଦିଗରେ ବେଷ୍ଟନ,ବିକ୍ଷେପ, ବୃତ୍ତର ପରିଧି, ପରିତ୍ୟାଗ,ପକ୍ଷେପ ।

ପରିକ୍ଷେପକ—ବି. ବିଂ. (ପରି+କ୍ଷିପ୍+କ.ଅକ) ପରିଚରଣଶୀଳ, ଯେ ପରି-ବେଷ୍ଟନ କରେ, ଯେ ଇତସ୍ତତଃ ବାଣ୍ଟି-ଦିଏ । [ (ସ୍ତ୍ରୀ) ପରିକ୍ଷେପିଣୀ ।

ପରିକ୍ଷେପୀ—ବି .ବିଂ. ପରିକ୍ଷେପଣଶୀଳ,

ପରିଖା—ସ୍ତ୍ରୀ. ବି. (ପରି+ଖନ୍+ର୍ମ.ଅ +ଆ) ରାଜଧାନ୍ୟାଦି ବେଷ୍ଟନୀ ଖାତ, ଗଡ଼ଖାଇ, ଖାଦମ୍ବରା ବେଷ୍ଟନ ।

ପରିଖାତ—କ୍ଲୀ. ବି. ପରିଖା, ପରିଖନନ କର୍ମ । [ କରିବା ।

ପରିଖିବା—ଗ୍ରା. କ୍ରି. ପରଖିବା, ପରୀକ୍ଷା-

ପରିଖୀକୃତ—ବି. ବିଂ. (ପରିଖା+ଚ୍ୱି +ର୍ମ.ତ) ପୂର୍ବେ ଯାହାର ପରିଖା ନ ଥିଲା, ବର୍ତ୍ତମାନ ପରିଖାଯୁକ୍ତ, ଯେଉଁ ସ୍ଥାନର ଚାରିପାଖରେ ପରିଖା ଖୋଳା-ହୋଇଅଛି,ପରିଖାଦ୍ୱାରା କୃତବେଷ୍ଟନ ।

ପରିଖେଦ—ପୁଂ. ବି. (ପରି+ଖିଦ୍+ଭା.ଅ) ଅତ୍ୟନ୍ତ ଖେଦ, କ୍ଲେଶ, ଦୁଃଖ, ପରିଶ୍ରମ, ଅବସାଦ, କ୍ଲାନ୍ତ ।

ପରିଖ୍ୟାତ—ବି .ବିଂ. ବିଖ୍ୟାତ,ପ୍ରଖ୍ୟାତ, ଅତିପ୍ରସିଦ୍ଧ ।

ପରିଗ—ବି. (ପରି+ଗମ୍+ଅ) ଚତୁ-ର୍ଦ୍ଦିଗରେ ଭ୍ରମଣ ।

ପରିଗଣନ(ନା)—ବି. (ପରି+ଗଣ୍+ଭା.ଅନ+ଆ) ସର୍ବତୋଭାବେ ଗଣନ, ବିଧି ଓ ନିଷେଧ ଶାସ୍ତ୍ରର ବିଶେଷ-ରୂପରେ କୀର୍ତ୍ତନ ।

ପରିଗଣନୀୟ—ବି. ବିଂ. ପରିଗଣନାର ଯୋଗ୍ୟ, ସଂଖ୍ୟା କରିବାର ଉପଯୁକ୍ତ ।

ପରିଗଣିତ—ବି. ବିଂ. (ପରି+ଗଣିତ) ସର୍ବତୋଭାବରେ ଗଣନାଯୁକ୍ତ, ଯାହା ଗଣନା କରା ହୋଇଅଛି, ସଂଖ୍ୟାତ, ବିବେଚିତ ।

ପରିଗଣ୍ୟ—ବି .ବିଂ.(ପରି+ଗଣ୍+ଯ) ପରିଗଣନାର ଯୋଗ୍ୟ ।

ପରିଗତ—ବି. ବିଂ. (ପରି+ଗମ୍+ତ) ପ୍ରାପ୍ତ, ମୃତ, ବିସ୍ମୃତ, ଜ୍ଞାତ,ବେଷ୍ଟିତ,

· ଗତ, ବେଷ୍ଟିତ ।
ପରିଗଦିତ—ତ୍ରି. ବିଂ. (ପରି+ଗଦ୍+କ୍ତ) ପରିକଥନ, ସମ୍ୟକ୍ କୀର୍ତ୍ତନ, (ବିଂ—ମି.ତ) ବର୍ଣ୍ଣିତ ।
ପରିଗମିତ—ବିଂ. ( ପରି+ଗମ୍+ଣିଚ୍ +ମି.ତ ) ପରିବ୍ୟାପ୍ତ, ଅତିବାହିତ (ସମୟ) ।
ପରିଗର୍ଭିକ—ପୁଂ. ବି. ଗର୍ଭିଣୀ ମାତାର ସ୍ତନ୍ୟପାନ କରିବା ଯୋଗୁଁ ପିଲାଙ୍କୁ ହେବା ରୋଗ, ଅଇଣ୍ଠିଆ ରୋଗ ।
ପରିଗର୍ହଣ—କ୍ଲୀ. ବି. ଅତିନିନ୍ଦା ।
ପରିଗହନ—କ୍ଲୀ. ବି. (ପରି+ଗହ୍+ଭା. ଅନ) ଅତ୍ୟନ୍ତ ଗହନ ।
ପରିଗୀତି—ସ୍ତ୍ରୀ. ବି. ଛନ୍ଦୋବିଶେଷ ।
ପରିଗୁଣିତ—ବି. (ପରି+ଗୁଣ+ମି.ତ) ପୁନଃ କଥିତ, ପୁନରାବର୍ତ୍ତିତ, ସଂଖ୍ୟା ଯୋଗ କରାଯାଇ ବର୍ଦ୍ଧିତ ।
ପରିଗୁଣ୍ଠିତ—ବିଂ. (ପରି+ଗୁଣ୍ଠ+ମି.) ତ) ଆବୃତ, ଯୋଡ଼ା ହୋଇଥିବା, ଲୁକ୍କାୟିତ ।
ପରିଗୁଣ୍ଡିତ—ବିଂ. (ପରି+ଗୁଣ୍ଡ+ମି.ତ) ଧୂଳି ବା ଗୁଣ୍ଡା ଦ୍ୱାରା ଆବୃତ ।
ପରିଗୂଢ଼—ତ୍ରି. ବିଂ. (ପରି+ଗୁହ୍+ମି. ତ) ଅତ୍ୟନ୍ତ ଗୁପ୍ତ ।
ପରିଗୃଦ୍ଧ—ତ୍ରି. ବିଂ. (ପରି+ଗୃଧ୍+କ. ତ) ଅତିପେଟୁ, ଉଦରମ୍ଭରି ।
ପରିଗୃହୀତ—ତ୍ରି. ବିଂ. (ପରି+ଗ୍ରହ୍+ ମି.ତ) ମଞ୍ଜୁର କରାଯାଇଥିବା, ବେଷ୍ଟିତ, ଧୃତ, ପ୍ରାପ୍ତ, ପାଳିତ, ଲବ୍ଧ ।
ପରିଗୃହ୍ୟ—ବିଂ. (ପରି+ଗ୍ରହ୍+ମି.ଯ) ଗ୍ରହଣଯୋଗ୍ୟ, ସ୍ୱୀକାର୍ଯ୍ୟ, ପ୍ରାପ୍ୟ, ମଞ୍ଜୁର କରାଯିବାର ଯୋଗ୍ୟ ।
ପରିଗୃହ୍ୟ—ବିଂ. ( ପରିଗୃହ୍ୟ+ମି.ତ) ପରିଗୃହ୍ୟ ଯୁକ୍ତ ।
ପରିଗୃହ୍ୟା—ସ୍ତ୍ରୀ. ବି. (ପରିଗୃହ୍ୟ+ଆ) ବିବାହିତା ସ୍ତ୍ରୀ, ଧର୍ମପତ୍ନୀ, ନାରୀ ।
ପରିଗ୍ରହ—ବି. ( ପରି+ଗ୍ରହ୍+ଭା.ଅ ) ସ୍ୱୀକାର, ଦାନ ଗ୍ରହଣ, ସଂସର୍ଗ, ଅର୍ଜନ, ଆୟତ୍ତୀକରଣ, ଧାରଣ, ସୂର୍ଯ୍ୟଗ୍ରହଣ, ଦଖଲ, ଅଧିକାର, ସମ୍ପତ୍ତି, ପିନ୍ଧିବା, ବିବାହ, ଅନୁଗ୍ରହ, ସମ୍ମାନ ପ୍ରଦର୍ଶନ, ଦଣ୍ଡ, କୌଣସି ବ୍ୟକ୍ତିକୁ ନିଜ ଘର ମଧ୍ୟକୁ ପ୍ରବେଶ କରାଇବା, ବୋଧ, ଗାଡ଼ ବୁଜିବା, ଘେରାଇବା, ବେଷ୍ଟନ, ରୂପ-ଗ୍ରହଣ, (ମି.ଅ) ପତ୍ନୀ, ରକ୍ଷିତା ସ୍ତ୍ରୀ, ପରି-ଜନ, ଗ୍ରହଣ, ଶପଥ, ଶାପ, ଅଭିସମ୍ପାତ, ରାହୁଗ୍ରସ୍ତ ସୂର୍ଯ୍ୟ, ସେନାର ପଶ୍ଚାଦ୍ଭାଗ, ଘରକରଣା, ସ୍ତ୍ରୀ ପୁତ୍ରାଦି ପରିବାର, ଅନ୍ତଃପୁର, ଗୃହ, ମୂଳକାରଣ, ଦତ୍ତ-ବସ୍ତୁ, ଦାନ, ଯୋଗଫଳ, ( ଭା. ଅ ) ସାଦର ଗ୍ରହଣ ।
ପରିଗ୍ରହକ—ବିଂ. ପରିଗ୍ରହ କର୍ତ୍ତା, ଯେ ପରିଗ୍ରହ କରେ ।
ପରିଗ୍ରହକରିବା-ଗ୍ରା.କ୍ରି. ବିବାହକରିବା ।
ପରିଗ୍ରହଣ—କ୍ଲୀ. ବି. ସର୍ବତୋଭାବେ ଗ୍ରହଣ, ବସ୍ତ୍ର ପରିଧାନ ।
ପରିଗ୍ରହଦ୍ୱିତୀୟ—ବିଂ. (ବ.ବ୍ରୀ) ସସ୍ତ୍ରୀକ, ଯାହା ସଙ୍ଗେ ଭାର୍ଯ୍ୟା ଅଛି, ସପରିବାର ।
ପରିଗ୍ରହବାନ୍—ପୁଂ.ବିଂ.(ପରିଗ୍ରହ+ବତ୍) ପରିଗ୍ରହଯୁକ୍ତ, ସ୍ତ୍ରୀ ପୁତ୍ରାଦି ସମନ୍ୱିତ, ପରିବାରଯୁକ୍ତ ।
ପରିଗ୍ରହୀତା—ବି.(ପରିଗ୍ରହ+ତୃ) ଦତ୍ତକ ଗ୍ରହଣକାରୀ ପିତା, (ବିଂ) ଗ୍ରହଣକାରୀ ।
ପରିଗ୍ରହୀ—ପୁଂ.ବିଂ. ( ପରିଗ୍ରହ+ଇନ୍ ) ପରିଗ୍ରହଯୁକ୍ତ ।
ପରିଗ୍ରାମ—ଅବ୍ୟ. ଗ୍ରାମର ଅଭିମୁଖେ, ଗ୍ରାମର ସମ୍ମୁଖରେ, (ବି)ଗ୍ରାମର ସାମନା ଭାଗ ।
ପରିଗ୍ରାହକ—ପୁଂ. ବି. (ପରି+ଗ୍ରହ୍+ କ.ଅକ) ଯଜ୍ଞବେଦୀ ବିଶେଷ, (ବିଂ) ଯେ ପରିଗ୍ରହ କରେ, ସ୍ୱୀକାରକର୍ତ୍ତା, ସ୍ୱୀକାରକ ।
ପରିଗ୍ରାହ୍ୟ—ତ୍ରି. ବିଂ. (ପରି+ଗ୍ରହ୍+ ମି.ଯ) ଗ୍ରହଣୀୟ, ଗ୍ରହଣର ଯୋଗ୍ୟ ।
ପରିଘ—ପୁଂ. ବି. (ପରି+ହନ୍+ଣ.ଅ) ପ୍ରାଚୀନ କାଳର ଯୁଦ୍ଧାସ୍ତ୍ର ବିଶେଷ, ମୁଦ୍ଗର, ଶୂଳ, ଲୁହାର କିଳଣୀ, ଅର୍ଗଳ, ( ଜ୍ୟୋତିଷ ) ବିଷ୍କୁମ୍ଭାଦି ସପ୍ତବିଂଶ ଯୋଗ ମଧ୍ୟରୁ ଊନବିଂଶ ଯୋଗ, ଘଟ, କଳସ, ( ଭା.ଅ ) ବ୍ୟାଘାତ, ବାଧା, ଆଘାତ, (ମି.ଅ) ତୋରଣ ଦ୍ୱାର, ଫାଟକ, ଗୋପୁର, କାଚଘଡ଼ି, ଘର, ପର୍ବତ, ବଜ୍ର, ଶେଷ ନାଗ, ବାସୁକି, ଚନ୍ଦ୍ର, ସୂର୍ଯ୍ୟ, ନଦୀ, ସ୍ଥଳ, ଅବିଦ୍ୟା, ସୂର୍ଯ୍ୟୋକ୍ତ ମୂଢ଼ଗର୍ଭ ବିଶେଷ, ଉଦୟ ଅସ୍ତବେଳେ ସୂର୍ଯ୍ୟଙ୍କୁ ଘୋଡ଼ାଇବା ମେଘ, ଜଳପାତ୍ର ।
ପରିଘଟ୍ଟନ—କ୍ଲୀ. ବି. ( ପରି+ଘଟ୍ଟ+ ଭା.ଅନ) ଘାଣ୍ଟିବା, ଆଲୋଡ଼ନ, ଘଷିବା ।
ପରିଘଟ୍ଟିତ—ତ୍ରି. ବିଂ. ( ପରି+ଘଟ୍ଟ+ ତ) ସମ୍ୟକ୍ ଘର୍ଷିତ ।
ପରିଘର୍ମ—ପୁଂ. ବି. (ପରି+ଘୃ+ମନ୍) ଯଜ୍ଞୀୟ ମହାବୀର ପାତ୍ର ପତିତ ଫେନା-ଦିର କ୍ଷରଣ ।
ପରିଘର୍ମ୍ୟ—ପୁଂ. ବି. ମହାବୀରଙ୍କ ଘର୍ମ ସମ୍ବନ୍ଧୀୟ ପାତ୍ର ।
ପରିଘାଇ—ଗ୍ରା. କ୍ରି. ବିଂ. ଦୃଢ଼ରୂପେ, ଉପର୍ଯ୍ୟୁପରି ।
ପରିଘାତ—ପୁଂ. ବି. ( ପରି+ହନ୍+ ଭା.ତ) ବଧ, ଆଘାତ, ( ଣ.ଅ ) ବିଘ୍ନ, ପ୍ରତିବନ୍ଧକ, ପରିଘ ଅସ୍ତ୍ର, ଅର୍ଗଳ ।
ପରିଘାତନ—କ୍ଲୀ. ବି. (ପରି+ଣିଚ୍+ ହନ୍+ଅନ) ଅର୍ଗଳ, ସର୍ବତୋଭାବେ ହନନ, ଆଘାତ, ବ୍ୟାଘାତ, ପ୍ରତିବନ୍ଧ ।
ପରିଘାତୀ—ବିଂ. ହନନକାରୀ, ଅବଜ୍ଞାକାରୀ ।
ପରିଘୃଷ୍ଟିକ—ବି. ବାନପ୍ରସ୍ଥ ବିଶେଷ ।
ପରିଘୋଷ—ପୁଂ. ବି. (ପରି+ଘୋଷ) ମେଘର ଶବ୍ଦ, ଶବ୍ଦ, ଆରାବ, ଘଡ଼ଘଡ଼ି
ପରିଚକ୍ର—ପୁଂ. ବି. ଦ୍ୱାବିଂଶତି ଅବଦାନ-କର ଶାଖା ବିଶେଷ, (ସ୍ତ୍ରୀ) ନଗରୀ-ବିଶେଷ ।
ପରିଚକ୍ଷା—ସ୍ତ୍ରୀ. ବି. ନିନ୍ଦା, ବର୍ଜନ ।
ପରିଚକ୍ଷ୍ୟ—ତ୍ରି. ବିଂ. ବର୍ଜନୀୟ ।
ପରିଚପଳ—ତ୍ରି. ବିଂ. ଅତିଚପଳ ।
ପରିଚୟ—ପୁଂ. ବି. ( ପରି+ଚି+ଭା. ଅ) ଆଳାପ, କୌଣସି ବ୍ୟକ୍ତିର ନାମ-ଧାମାଦି ଜାଣିବା, ଚିହ୍ନା, ବିଶେଷ ରୂପରେ ଜ୍ଞାନ, ପ୍ରଣୟ, ଜଣାଶୁଣା,

ଅଭ୍ୟାସ, ନାଦର ଅବସ୍ଥା ବିଶେଷ ।
ପରିଚର—ପୁଂ. ବି. (ପରି + ଚର + କ.ଅ) ଯୁଦ୍ଧ ସମୟରେ ପରପ୍ରହାରରୁ ରଥରକ୍ଷକ,ପ୍ରଜାସାମନ୍ତ,ବ୍ୟବସ୍ଥାପକକାରୀ, ସେନା ବିଷୟରେ ରାଜ୍ୟର ଦଣ୍ଡନାୟକ ଅନୁଚର, ସେବକ, (ଭା.ଅ) ସେବା, ଭୃତ୍ୟ ।
ପରିଚରଣ—ପୁଂ. ବି.ପରିଚର୍ଯ୍ୟା,ସେବା ।
ପରିଚରଣକର୍ମ—କ୍ଲୀ. ବି. ପରିଚର୍ଯ୍ୟା, ସେବ୍ୟ।
ପରିଚରଣୀୟ—ତ୍ରି. ବିଂ. ପରିଚର୍ଯ୍ୟାଯୋଗ୍ୟ,ସେବା ।
ପରିଚରିତବ୍ୟ—ତ୍ରି. ବିଂ. (ପରି+ଚର +ତବ୍ୟ) ପରିଚର୍ଯ୍ୟାର ଯୋଗ୍ୟ ।
ପରିଚରିତା—ପୁଂ. ବିଂ. ( ପରି+ଚର +ତୃ) ପରିଚର୍ଯ୍ୟାକାରକ ।
ପରିଚର୍ଣ୍ଣିନ—କ୍ଲୀ. ବି.ଅଶ୍ୱ ରଜ୍ଜୁ ବିଶେଷ ।
ପରିଚର୍ମଣ୍ୟ—କ୍ଲୀ. ବି. ଚର୍ମଖଣ୍ଡ ।
ପରିଚର୍ଯ୍ୟା—ସ୍ତ୍ରୀ. ବି. (ପରି+ଚର+ଭା.ଯ+ଆ) ସେବା, ଶୁଶ୍ରୂଷା, ଉପାସନା, ଭୃତ୍ୟପଣ, ପୂଜା, ପ୍ରଦକ୍ଷିଣ ।
ପରିଚର୍ଯ୍ୟାବାନ୍—ବିଂ.ଯାହାର ପରିଚର୍ଯ୍ୟା କରାହୋଇଅଛି, ମାନନୀୟ ।
ପରିଚାୟକ—ପୁଂ. ବିଂ. (ପରି + ଚି + କ. ଅକ)କୌଣସିବ୍ୟକ୍ତିକୁ ଅନ୍ୟ କୌଣସି ବ୍ୟକ୍ତି ସଙ୍ଗେ ଯେ ପରିଚୟ କରାଇ ଦିଏ, ଯେ ଚିହ୍ନାଇ ଦିଏ, ଜ୍ଞାପକ, ପ୍ରଦର୍ଶକ,ସୂଚକ ।
ପରିଚାଯ୍ୟ—ପୁଂ. ବି. ( ପରି + ଚି + ମଁ. ଯ)ଯଜ୍ଞାଗ୍ନି ,ସମୂହ୍ୟ,ଉପଚାଯ୍ୟ,ଯଜ୍ଞାଗ୍ନିକୁଣ୍ଡ (ବିଂ) ସେବା ଶୁଶ୍ରୂଷାର୍ହ ।
ପରିଚାର—ପୁଂ. ବି. ପରିଚର ଦେଖ ।
ପରିଚାରକ—ପୁଂ. ବିଂ. (ପରି + ଚର+ କ.ଅକ)ସେବକ,ଚାକର, ଦେବମନ୍ଦିର କାର୍ଯ୍ୟ ନିର୍ବାହକ, ପରିଚ୍ଛା ।
ପରିଚାରଣ—କ୍ଲୀ. ବି. ( ପରି+ଣିଚ୍. ଚର+ଭା.ଅନ ) ସେବା, ସହବାସ କରଣ, ପରିଚର୍ଯ୍ୟା, ସେବା ସକାଶେ ଅପେକ୍ଷା କରିବା ।
ପରିଚାରକ—ପୁଂ.ବି. ଦାସ, (ସ୍ତ୍ରୀ) ପରିଚାରିକା ବା ଦାସୀ ।
ପରିଚାରୀ—ବିଂ. ଭ୍ରମଣକାରୀ, ସେବକ ।
ପରିଚାର୍ଯ୍ୟ—ପୁଂ. ବିଂ. (ପରି + ଚର + ମଁ.ଯ) ପରିଚର୍ଯ୍ୟା ପାଇବା ଯୋଗ୍ୟ, ସେବ୍ୟ ।
ପରିଚାଳକ—ପୁଂ.ବି. (ପରି + ଚଳ+ କ.ଅକ) ପରିଚାଳନକାରୀ, ନେତା, ଚାଳକ, ଅଧ୍ୟକ୍ଷ, ଯେ ଗାଡ଼ିଆଦିକୁ ଚଳାଏ, (ବିଂ) ପରିଚାଳନକାରୀ ।
ପରିଚାଳନକତା—ବି. ଜଡ଼ ବସ୍ତୁର ଏକ ପରମାଣୁରୁ ଅନ୍ୟ ପରମାଣୁକୁ ତାପଆଦି ସଂଚାଳନ କରିବାର ଗୁଣ, ଅଧ୍ୟକ୍ଷତା, ନେତୃତ୍ୱ ।
ପରିଚାଳନ—ବି.(ପରି+ଚଳ+ଣିଚ୍+ଭା.ଅନ)ସମ୍ପାଦନ, ନିର୍ବାହ, ସଞ୍ଚାଳନ ।
ପରିଚାଳିତ—ବିଂ. (ପରି+ଚଳ+ଣିଚ୍ +ମଁ.ତ)ସମ୍ପାଦିତ,ନିର୍ବାହିତ,ଚାଳିତ ।
ପରିଚିତ୍ର—ବିଂ. (ପରି+ଚି + ମଁ.କ୍ୱିପ୍) ସ୍ଥାପିତ, ସର୍ବତୋଭାବେ ସ୍ଥାପିତ, ଚତୁର୍ଦ୍ଦିଗରେ ସ୍ଥାପିତ, ପରିଚୟକର୍ତ୍ତା ।
ପରିଚିତ—ପୁଂ.ବିଂ. (ପରି+ଚି + ମଁ.ତ) ଜ୍ଞାତ, ପରିଚୟବିଶିଷ୍ଟ, ଚିହ୍ନିତ, ଜଣାଶୁଣା, ଗଦା କରାଯାଇଥିବା,ଅଭ୍ୟସ୍ତ ।
ପରିଚିତି—ସ୍ତ୍ରୀ.ବି. ପରିଚୟ, ଜଣାଶୁଣା, ଜ୍ଞପ୍ତି ।
ପରିଚିନ୍ତକ—ଚିନ୍ତାଶୀଳ, ଅନୁଧ୍ୟାନକାରୀ ।
ପରିଚିନ୍ତନ—କ୍ଲୀ.ବି. ( ପରି + ଚିନ୍ତନ ) ପରିକଳ୍ପନ ଦେଖ, ମନନ ।
ପରିଚିନ୍ତିତ—ବିଂ. ସମ୍ୟକ୍‌ରୂପେ ଚିନ୍ତିତ, ଉତ୍ତମରୂପେ ବିବେଚିତ ।
ପରିଚୁମ୍ବନ—କ୍ଲୀ.ବି. (ପରି + ଚୁମ୍ବ + ଭା. ଅନ) ସପ୍ରେମ ଚୁମ୍ବନ ।
ପରିଚେୟ—ପୁଂ.ବିଂ. ପରିଚୟ ଯୋଗ୍ୟ, ଗଦା କରିହେବାର ଯୋଗ୍ୟ, ଅଭ୍ୟାସମୀୟ ।
ପରିଚ୍ୟୁତ—ତ୍ରି.ବିଂ. (ପରି+ଚ୍ୟୁତ)ଭ୍ରଷ୍ଟ, ସ୍ଖଳିତ, ପତିତ,(ସ୍ତ୍ରୀ) ପରିଚ୍ୟୁତା ।
ପରିଚ୍ଛଦ୍—ବିଂ. (ପରି+ଛଦ୍+କ.କ୍ୱିପ୍) ଭୂଷଣବିଶିଷ୍ଟ ।
ପରିଚ୍ଛଦ—ପୁଂ. ବି. (ପରି + ଛଦ୍+ଅ) ବେଶ, ପୋଷାକ, ପିନ୍ଧିବା ଲୁଗା,ହସ୍ତୀ, ଅଶ୍ୱ, କମ୍ବଳାଦି ଉପକରଣ,ଆଚ୍ଛାଦନ, ଆସବାବ, ପରିଜନ, ଅନୁଚର, ଯାନ ବାହାନାଦି ରାଜଚିହ୍ନ ।
ପରିଚ୍ଛଦ—ପୁଂ.ବି. ପରିଚ୍ଛଦ, ପୋଷାକ, କୁରୁତା, ଅନୁଚର, ସହଚରଗଣ ।
ପରିଚ୍ଛନ୍ନ—ତ୍ରି.ବିଂ. (ପରି+ଛଦ୍+ମଁ.ତ) ପରିଚ୍ଛଦବିଶିଷ୍ଟ, ପରିଷ୍କୃତ, ଆଚ୍ଛାଦିତ, ସଜ୍ଜିତ, ଭୂଷିତ, ଲୁକ୍କାୟିତ, ଆବୃତ, ପରିଶୁଦ୍ଧ, ସଂବୃତ ।
ପରିଚ୍ଛିତ—ସ୍ତ୍ରୀ.ବି. ଦୁଇ ପଦାର୍ଥକୁ ପରସ୍ପରଠାରୁ ସମ୍ପୂର୍ଣ୍ଣରୂପେ ପୃଥକ୍‌କରିବା, ବିଭାଗ, ବଣ୍ଟନ, ସୀମା ।
ପରିଚ୍ଛିତ୍ତି—ବି. ( ପରି+ଛଦ୍+ଭା.ତି ) ବ୍ୟବଧାନ, ଯଥାର୍ଥ ବର୍ଣ୍ଣନା,ପରିଚ୍ଛେଦ, ନିର୍ଣ୍ଣୟ, ଅବଧାରଣ,ଅନ୍ତରାଳ, ନିର୍ଣ୍ଣୀତ ସଂଜ୍ଞା ବିଭାଗ, ପୃଥକ୍‌କରଣ, ସୀମା ।
ପରିଚ୍ଛିନ୍ନ—ବିଂ. (ପରି+ଛଦ୍+ମଁ.ତ) ପରିମିତ, ସୀମାବଦ୍ଧ, ନିର୍ଣ୍ଣୀତ, ବିଭକ୍ତ, ପ୍ରତିକୃତ ।
ପରିଚ୍ଛେଦ—ବି. (ପରି + ଛଦ୍ + ମଁ.ଅ) ବିଚ୍ଛେଦ, ଅଂଶ, ଭାଗ, ସୀମା, ସମାପ୍ତି, ଗ୍ରନ୍ଥର ଭିନ୍ନ ଭିନ୍ନ ବିଷୟ ବିଭାଗ, ଅଧ୍ୟାୟ, ନିଶ୍ଚୟ, (ଭା.ଅ) ଅବଧାରଣ, ନିର୍ଣ୍ଣୟ, ସମ୍ପୂର୍ଣ୍ଣ ବିନାଶ, ଭେଦଜ୍ଞାନ; କାଟିକରି ବିଭକ୍ତ କରିବା, ବିଭାଗ, ବଣ୍ଟନ, ସଂକଳ୍ପ, ପ୍ରକୃତ ସଂଜ୍ଞା, ପ୍ରତାରଣ
ପରିଚ୍ଛେଦକ—କ୍ଲୀ. ବି. ସୀମା, ପରିମାଣ, (ବିଂ) ବିଚ୍ଛେଦ, ସୀମା ନିରୂପକ,ଅନ୍ତ-] ନିର୍ଦ୍ଦେଶକ ।
ପରିଚ୍ଛେଦକର—ପୁଂ.ବି. ସମାଧିବିଶେଷ ।
ପରିଚ୍ଛେଦ୍ୟ—ତ୍ରି. ବିଂ. (ପରି+ଛଦ୍+ ମଁ.ଯ) ପରିମେୟ, ଅବଧାର୍ଯ୍ୟ,ବିଭାଜ୍ୟ ।
ପରିଚ୍ଛା—ଗ୍ରା. ବି. ଗ୍ରାମର ପ୍ରଧାନ ବ୍ୟକ୍ତି, ମନ୍ଦିରାଦିର ପରିଚାଳକ, ଶ୍ରୀକ୍ଷେତ୍ରରେ

ମନ୍ଦିରର ପ୍ରଧାନ ପୁରୋହିତ, ତନ୍ତ୍ରାବଧାରକ ।

**ପରିଜନ**—ପୁଂ.ବି.(ପରି+ଜନ)ପରିବାର, ପ୍ରତିପାଳ୍ୟ ଲୋକ, ପୋଷ୍ୟବର୍ଗ, ପରିଚାରକ, ଭୃତ୍ୟ ।

**ପରିଜନତା**—ସ୍ତ୍ରୀ.ବି. ଅଧୀନତା,ପରାଧୀନତା, ପରିଜନର ଭାବ ।

**ପରିଜନ୍ମ**—ପୁଂ.ବି.ଚନ୍ଦ୍ର, ଅଗ୍ନି,ପରିଗନ୍ତା ।

**ପରିଜ୍ରମ**—ବି.ବି. ଫଳକବିଶିଷ୍ଟ, କାଚ ।

**ପରିଜଯ୍ୟ**—ବି.ବିଂ. ( ପରି+ଜି+ଯ ) ସର୍ବଥା ଜୟ କରିବାକୁ ସମର୍ଥ ।

**ପରିଜପିତ**—ବି. ଅନୁଚ୍ଚ ସ୍ୱରରେ ଆରାଧନା କରିବା, ଗୁଣୁ ଗୁଣୁ କରି ମନ୍ତ୍ରପାଠ କରିବା ।

**ପରିଜପ୍ତ**—ବି.ବିଂ. ମୁଗ୍ଧ, ମୋହିତ ।

**ପରିଜଳ୍ପିତ**—କ୍ଳୀ. ବି. କଥନବିଶେଷ, ଦଶାଙ୍ଗଚିତ୍ର ଜଳ୍ପର ଅନ୍ତର୍ଗତ ଦ୍ୱିତୀୟ ଜଳ୍ପନ । [ ଜନ୍ମଭୂମି ।

**ପରିଜା**—ସ୍ତ୍ରୀ. ବି. ଉତ୍ପତ୍ତି ସ୍ଥାନ ଆଦି,

**ପରିଜାଡ୍ୟ**—ବି. ମୂର୍ଖତା, ଜଡ଼ତା,ଗତିହୀନର ଭାବ ।

**ପରିଜ୍ଞପ୍ତି**—ସ୍ତ୍ରୀ.ବି.କଥୋପକଥନ,ପ୍ରତ୍ୟଭିଜ୍ଞାନ । [ ଜ୍ଞାନ ।

**ପରିଜ୍ଞା**—ସ୍ତ୍ରୀ.ବି. ନିଶ୍ଚୟାବଧାରଣ,ସମ୍ୟକ୍

**ପରିଜ୍ଞାତ**—ବି.ବିଂ. (ପରି+ଜ୍ଞାତ) ଅବଧାରିତ, ସୁପରିଚିତ, ଚିହ୍ନା ଥିବା, ସ୍ଥିରୀକୃତ, ବିଶେଷରୂପେ ଜ୍ଞାତ ।

**ପରିଜ୍ଞାତା**—ବିଂ. ( ପରି+ଜ୍ଞା+କ.ତୃ ) ଯେ ସକଳ ବିଷୟ ଜ୍ଞାତ ଅଛନ୍ତି ବା ସମ୍ୟକ୍ ପର୍ଯ୍ୟାଲୋଚନା କରନ୍ତି, ପରିଦର୍ଶକ, ଜ୍ଞାନୀ, ବୁଦ୍ଧିମାନ୍ ।

**ପରିଜ୍ଞାନ**—କ୍ଳୀ.ବି. ସୂକ୍ଷ୍ମଜ୍ଞାନ, ସର୍ବତୋଭାବେ ଜାଣିବା, ସୁପରିଚୟ, ଅନୁଭବ, ଭଲ ମନ୍ଦର ପ୍ରଧାନ ଜ୍ଞାନ ।

**ପରିଜ୍ଞେୟ**—ବି. ବିଂ. ଜ୍ଞାତବ୍ୟ, ଯାହା ଅବଧାରଣ କରିଯାଏ ।

**ପରିଜ୍ୱନ୍**—ପୁଂ.ବି. ଇନ୍ଦ୍ର, ଅଗ୍ନି ।

**ପରିଡ଼ା**—ଗ୍ରା. ବି. ଶୂଦ୍ରଜାତି ବିଶେଷର ଉପାଧିବିଶେଷ, ଘୋଡାସଇସ ।

**ପରିଡ଼ୀନ**—ବି. (ପରି+ଡ଼ୀ+ଭା.ଅନ) ଚକ୍ରବତ୍ ଉଡ଼ିବା ।

**ପରିଡୀନକ**—କ୍ଳୀ.ବି. (ପରି+ଡୀ+ତ) ପକ୍ଷୀମାନଙ୍କର ଗତିବିଶେଷ ।

**ପରିଣତ**—ବି. ବିଂ. (ପରି+ନମ୍+କ.ତ ) ବିନତ, ବୃଦ୍ଧ, ଅବସ୍ଥାନ୍ତରପ୍ରାପ୍ତ, ସୁପକ୍ୱ, ଭକ୍ତ, ଅବସ୍ଥାପ୍ରାପ୍ତ, ସର୍ବତୋଭାବେ ନତ, ନଦୀତୀରାଦିରେ ବକ୍ରଭାବେ ପ୍ରବୃତ୍ତ ହସ୍ତ୍ୟାଦି, ତର୍ଯ୍ୟକ୍‌ଗତ ଗଜ, ଅସ୍ତଗତ (ସୂର୍ଯ୍ୟ), ସୁଜୀର୍ଣ୍ଣ (ଅନ୍ନ) ।

**ପରିଣତବୟସ୍କ**—ପୁଂ.ବିଂ. (ବି.ବ୍ରୀ)ବୃଦ୍ଧବୟସ୍କ ।

**ପରିଣତି**—ସ୍ତ୍ରୀ.ବି. (ପରି+ନମ୍+ଭା.ତି) ଅବନତି, ବିନତି, ପରିପାକ, ଅବସ୍ଥାନ୍ତର ପ୍ରାପ୍ତି, ଅବସାନ,ଶେଷ,ବାର୍ଦ୍ଧକ୍ୟ, ଚରମଦଶା, ସଫଳ ହେବା ଅବସ୍ଥା ।

**ପରିଣଦ୍ଧ**—ବି.ବିଂ. (ପରି+ନହ୍+ମି.ତ) ଉତ୍ତମରୂପେ ବନ୍ଧା ହୋଇଥିବା,ସଂଯୁକ୍ତ, ବିସ୍ତୀର୍ଣ୍ଣ, ପରିବୃତ, ଆଲିଙ୍ଗିତ ।

**ପରିଣମନ**—କ୍ଳୀ. ବି. ରୂପାନ୍ତର ପ୍ରାପ୍ତି, କଞ୍ଚାରୁ ପକ୍ୱାବସ୍ଥା, ଉତ୍ତରାବସ୍ଥା ।

**ପରିଣମୟିତା**—ପୁଂ.ବିଂ.ନମନକାରୟିତା, ପରିପାଚୟିତା ।

**ପରିଣୟ**—ପୁଂ.ବି. (ପରି+ନୀ+ଭା.ଅ) ବିବାହ, ଦାର ପରିଗ୍ରହ, ପାଣିଗ୍ରହଣ ।

**ପରିଣୟସମ୍ବନ୍ଧଜାତ**—ପୁଂ. ବିଂ. ଧର୍ମପତ୍ନୀର ଗର୍ଭଜାତ ।

**ପରିଣାମ**—ପୁଂ.ବି. (ପରି+ନମ୍+ଭା.ଅ) ବିକାର, ପ୍ରକୃତିର ଅନ୍ୟଥା ଭାବ, ଅବସାନ, ଶେଷଫଳ, ଶେଷ, ପରିପକ୍ୱତା, ଅବସ୍ଥାନ୍ତର ପ୍ରାପ୍ତି, କାବ୍ୟାଲଂକାରବିଶେଷ । [ ଯୁକ୍ତ ।

**ପରିଣାମକ**—ବି.ବିଂ. ପରିଣାମ,ପରିଣାମ-

**ପରିଣାମଦର୍ଶନ**—ବି. ଦୂରଦର୍ଶନ, ଭବିଷ୍ୟତରେ କଅଣ ଘଟିବ ଏହା ଜାଣିବା ।

**ପରିଣାମଦର୍ଶିତା**—ବି. (ପରିଣାମଦର୍ଶିନ୍+ତା) ଦୂରଦର୍ଶିତା ।

**ପରିଣାମଦର୍ଶୀ**—ପୁଂ. ବିଂ. (ପରିଣାମ+ଦୃଶ୍+କ.ଇନ୍)ଚରମଦର୍ଶୀ,ଭବିଷ୍ୟତ୍‌ଦର୍ଶୀ, ପରେ କି ଫଳ ଘଟିବ ଏଥିପ୍ରତି ଲକ୍ଷ୍ୟରଖି ଯେ କାର୍ଯ୍ୟ କରେ ।

**ପରିଣାମବାଦ**—ବି.ସମସ୍ତ ଜୀବ ପ୍ରଥମରେ ଗୋଟିଏ ଜୀବର ଜନ୍ମ ବିକାଶ ବା ପରିଣାମ ହେଉଅଛି ବୈଜ୍ଞାନିକ ମତବିଶେଷ, ବିବର୍ତ୍ତନବାଦ, ସାଂଖ୍ୟମତ, ଯେଉଁ ମତରେ ଜଗତର ଉତ୍ପତ୍ତି ଓ ନାଶାଦି ନିତ୍ୟ ପରିଣାମ ରୂପେ କଥିତ ।

**ପରିଣାମଶୂଳ**—ପୁଂ. ବି. ଶୂଳରୋଗବିଶେଷ, ଖାଦ୍ୟଦ୍ରବ୍ୟର ପରିପାକ ହେବା ସମୟରେ ପେଟକୁ ମାରିବା ରୋଗ ।

**ପରିଣାମୀ**—ବିଂ.(ପରିଣାମ+ଇନ୍)ପରିବର୍ତ୍ତନଶୀଳ, ପରିଣାମଯୁକ୍ତ ।

**ପରିଣାମଦୃଷ୍ଟି**—ସ୍ତ୍ରୀ. ବି. ଭବିଷ୍ୟତ୍ ଦୃଷ୍ଟି, (ବିଂ.ବି.ବ୍ରୀ)ଯେ ଭବିଷ୍ୟତ୍ ବିଷୟରେ ଦୃଷ୍ଟି ରଖି କାର୍ଯ୍ୟ କରନ୍ତି ।

**ପରିଣାୟ**—ପୁଂ. ବି. (ପରି+ନୀ+ଭା.ଅ) ସାରି ବଗରେ ପଶାର ଗୁଟି ଚଳାଇବା, ବିବାହ, ଗ୍ରାମ ସ୍ୱରପାଖେ ଥିବା ସର୍ବସାଧାରଣ ଜମି ।

**ପରିଣାୟକ**—ପୁଂ.ବିଂ. (ପରି+ନୀ+କ.ଅକ)ବିବାହକାରୀ, ଯେ କୌଣସି ସ୍ତ୍ରୀକୁ ବିବାହ କରେ,(ବି)ପତି,ସେନାପତି ।

**ପରିଣାହ**—ପୁଂ. ବି.(ପରି+ନହ୍+ଭା.ଅ) ବିସ୍ତାର,ଓସାର, ଚଉଡ଼ା, ପରିଧି, ଦୀର୍ଘଶ୍ୱାସ. ବିଶାଳତା ।

**ପରିଣାହୀ**—ବିଂ.(ପରି+ନହ୍+କ.ଇନ୍) ଓସାରିଆ, ବିସ୍ତୃତ,ପରିଧିବିଶିଷ୍ଟ,ବିସ୍ତାରଯୁକ୍ତ । [ କାରୀ ।

**ପରିଣିଂସକ**—ବିଂ. ଚୁମ୍ବନକାରୀ, ଭକ୍ଷଣ-

**ପରିଣିଂସା**—ସ୍ତ୍ରୀ. ବି. ଚୁମ୍ବନ, ଭକ୍ଷଣ ।

**ପରିଣିନଂସୁ**—ବିଂ. ପରିଣତ ହେବାକୁ ଇଚ୍ଛୁକ, ତିର୍ଯ୍ୟକ୍ ପ୍ରହାରେଚ୍ଛୁ ।

**ପରିଣୀତ**—ପୁଂ. ବିଂ. (ପରି+ନୀ+ମି.ତ) ବିବାହିତ, ସମାପ୍ତ. ସମ୍ପନ୍ନ ।

**ପରିଣେତା**—ପୁଂ,ବିଂ. (ପରି+ନୀ+କ.ତୃ)ବିବାହକର୍ତ୍ତା,ବି.ପତି, ସ୍ୱାମୀ,ଭର୍ତ୍ତା ।

**ପରିଣେୟ**—ପୁଂ.ବିଂ.(ପରି+ନୀ+ମି.ଯ)

ବିବାହ ହେବାର ଉପଯୁକ୍ତ (ପୁରୁଷ), ଚତୁର୍ଦ୍ଦିଗରେ ଆୟୁମାନ ।
ପରିତଃ—ଅବ୍ୟ. ( ପରି+ତସ୍ ) ଚତୁର୍ଦ୍ଦିଗରେ, ସମ୍ପୂର୍ଣ୍ଣ ରୂପେ, ସର୍ବତୋଭାବରେ ।
ପରିତ—ଗ୍ରା.ବି. ବୋମ୍ବାଇ ପ୍ରଦେଶବାସୀ ରଜକ ଜାତି ।
ପରିତପ୍ତ—ବି. ବିଂ. (ପରି+ତପ୍+ର୍ମି. ତ) ପରିତାପଯୁକ୍ତ, ସନ୍ତପ୍ତ, ପଶ୍ଚାତ୍ତାପଯୁକ୍ତ, ଯାହାର ପରିତାପ ହୋଇଅଛି ।
ପରିତପ୍ତି—ସ୍ତ୍ରୀ. ବି. (ପରି+ତପ୍+ତି) ପରିତାପ । [ ଚିନ୍ତା ।
ପରିତର୍କଣ—କ୍ଲୀ.ବି.ବିବେଚନା, ଏକାଗ୍ର-
ପରିତର୍କିତ—ବି.ବିଂ. ସମ୍ୟକ୍ ବିବେଚିତ, ବାଦାନୁବାଦ ଦ୍ୱାରା ସ୍ଥିରୀକୃତ ।
ପରିତର୍ପଣ—ବି.ବିଂ.ପରିତୁଷ୍ଟକର, (କ୍ଲୀ) ସମ୍ୟକ୍ ତୃପ୍ତି, ସନ୍ତୋଷ ।
ପରିତର୍ପିତ—ବି. ବିଂ. ଯାହାକୁ ତୃପ୍ତ ବା ସନ୍ତୁଷ୍ଟ କରାହୋଇଅଛି ।
ପରିତାପ—ପୁଂ. ବି. (ପରି+ତପ୍+ଅ) ମାନସିକ କ୍ଳେଶ, ସ୍ୱେଦ, ଅନୁତାପ, ଦୁଃଖ, ସନ୍ତାପ, ମନସ୍ତାପ, ନରକାନ୍ତର, ଶୋକ, ଭୟ, କମ୍ପ ।
ପରିତାପିତ—ବିଂ. ( ପରିତାପ+ଇତ ) ସନ୍ତାପିତ, ଶୋକାନ୍ୱିତ, ଅନୁତାପିତ ।
ପରିତାପୀ—ପୁଂ.ବିଂ. (ପରିତାପ+ଇନ୍) ପରିତାପିତ ଦେଖ, ଦୁଃଖ ବା ବ୍ୟଥାଦାୟକ ।
ପରିତାରଣୀୟ—ବି. ବିଂ. ପରିତାରଣର ଯୋଗ୍ୟ, ରକ୍ଷଣଶୀଳ ।
ପରିତାଳ—ଗ୍ରା. ବି. ଦୁଇ ବସ୍ତୁ ପରସ୍ପର ସହିତ ବାଜିବା, ଘାତ ପ୍ରତିଘାତ ।
ପରିତିକ୍ତ—ବିଂ. (ପରି+ତିକ୍ତ) ଅତ୍ୟନ୍ତ ତିକ୍ତ, (ବି) ନିମ, ନିମ୍ବ ।
ପରିତୁଷ୍ଟ—ପୁଂ.ବିଂ. (ପରି+ତୁଷ୍+କ୍ତ) ହୃଷ୍ଟ, ପରିତୋଷଯୁକ୍ତ, ପ୍ରସନ୍ନ, ଆହ୍ଲାଦିତ, ପରିତୋଷ ପ୍ରାପ୍ତ ।
ପରିତୁଷ୍ଟି—ସ୍ତ୍ରୀ.ବି( ପରି+ତୁଷ୍+କ୍ତି) ପରିତୋଷ, ସନ୍ତୋଷ, ତୃପ୍ତି ।

ପରିତୃପ୍ତ—ବିଂ. (ପରି+ତୃପ୍+କ୍ତ) ପରିତୁଷ୍ଟ ଦେଖ ।
ପରିତୋଷ—ବି. ( ପରି+ତୁଷ୍+ଅ ) ସନ୍ତୋଷ, ତୃପ୍ତି, ମହାନନ୍ଦ ।
ପରିତୋଷଣ—ବି. ବିଂ. ଯଦ୍ଦ୍ୱାରା ତୃପ୍ତ ହୁଅନ୍ତି, (ବି) ସର୍ବତୋଭାବେ ତୋଷଣ, ତୁଷ୍ଟି ।
ପରିତୋଷୟିତା—ପୁଂ.ବିଂ. ପରିତୋଷକାରୀ, ଯଦ୍ଦ୍ୱାରା ତୁଷ୍ଟି ସମ୍ପାଦନ ହୁଏ ।
ପରିତୋଷୀ—ପୁଂ.ବିଂ.ପରିତୁଷ୍ଟ, ସନ୍ତୁଷ୍ଟ ।
ପରିତ୍ୟକ୍ତ—ବିଂ.(ପରି+ତ୍ୟଜ୍+ର୍ମି.ତ) ବର୍ଜିତ, ଯାହାର ସଙ୍ଗ ତ୍ୟାଗ କରାଯାଇଥାଏ ।
ପରିତ୍ୟକ୍ତା—ସ୍ତ୍ରୀ. ବିଂ. (ପରିତ୍ୟକ୍ତ+ଆ) ଯେଉଁ ସ୍ତ୍ରୀକୁ ସ୍ୱାମୀ ତ୍ୟାଗ କରିଅଛି, ( ପୁଂ. ବିଂ. ପରି+ତ୍ୟଜ୍+କ୍ତୃ ) ପରିତ୍ୟାଗକାରୀ ।
ପରିତ୍ୟଜନ—କ୍ଲୀ.ବି. (ପରି+ତ୍ୟଜ୍+ଭା.ଅନ)ବର୍ଜନ, ପରିତ୍ୟାଗ, ସଙ୍ଗତ୍ୟାଗ, ଅଭ୍ୟାସାଦିର ତ୍ୟାଗ ।
ପରିତ୍ୟଜ୍ୟ—ବିଂ.(ପରି+ତ୍ୟଜ୍+ର୍ମି.ଯ) ପରିତ୍ୟାଜ୍ୟ, ବର୍ଜନୀୟ ।
ପରିତ୍ୟାଗ—ପୁଂ. ବି. (ପରି+ତ୍ୟଜ୍+ଭା.ଅ) ପରିତ୍ୟଜନ ଦେଖ ।
ପରିତ୍ୟାଗୀ—ପୁଂ. ବିଂ. (ପରିତ୍ୟାଗ+ଇନ୍) ଯେ ବର୍ଜନ କରିଅଛି ।
ପରିତ୍ୟାଜନ—କ୍ଲୀ. ବି. ପରିତ୍ୟାଗ ।
ପରିତ୍ୟାଜ୍ୟ—ବି. ବିଂ. (ପରି+ତ୍ୟଜ୍+ର୍ମି.ଯ) ପରିତ୍ୟାଗର ଯୋଗ୍ୟ, ତ୍ୟଜ୍ୟ, ବର୍ଜନୀୟ । [ ଭୀତ ।
ପରିତ୍ରସ୍ତ—ବି. ବିଂ. (ପରି+ତ୍ରସ୍+ତ)
ପରିତ୍ରାଣ—କ୍ଲୀ. ବି. (ପରି+ତ୍ରୈ+ଭା. ଅନ)ରକ୍ଷଣ, ନିବାରଣ, ଉଦ୍ଧାର, ରକ୍ଷା, ନିସ୍ତାର, ଦେହର ଲୋମ, (ବି. ବିଂ. କ.ଅନ)ପରିତ୍ରାତା, ରକ୍ଷାକର୍ତ୍ତା, ମୋକ୍ଷଦାତା, ଉଦ୍ଧାରକର୍ତ୍ତା ।
ପରିତ୍ରାତ—ପୁଂ.ବିଂ. (ପରି+ତ୍ରୈ+ର୍ମି. ତ) ରକ୍ଷିତ, ମୁକ୍ତିପ୍ରାପ୍ତ, ମୁକ୍ତ ।
ପରିତ୍ରାତା—ବିଂ. (ପରି+ତ୍ରୈ+କ.ତୃ) ପରିତ୍ରାଣ କାରକ, ରକ୍ଷକ, ଉଦ୍ଧାରକର୍ତ୍ତା, ମୋକ୍ଷଦାତା ।
ପରିତ୍ରାୟକ—ପୁଂ.ବିଂ. ପରିତ୍ରାତା, ପରିତ୍ରାଣକର୍ତ୍ତା, ମୋକ୍ଷଦାତା ।
ପରିତ୍ରାହି—ବି.ରକ୍ଷାକର, ଉଦ୍ଧାରକର ।
ପରିଦଗ୍ଧ—ବିଂ. (ପରି+ଦଗ୍ଧ)ନିଃଶେଷ ଦଗ୍ଧ,ସାମାନ୍ୟରେ ପୋଡ଼ି ଯାଇଥିବା ।
ପରିଦର—ପୁଂ.ବି. (ପରି+ଦୃ+କ.ଅ) ଦନ୍ତରୋଗବିଶେଷ ।
ପରିଦର୍ଶନ—କ୍ଲୀ.ବି.ସମ୍ୟକ୍ ରୂପେ ଅବଲୋକନ, ଉତ୍ତମ ରୂପେ ଦେଖିବା ।
ପରିଦାନ—କ୍ଲୀ. ବି. (ପରି+ଦାନ)ପରିବର୍ତ୍ତ, ବିନିମୟ, ପ୍ରତିବଦଳ, ବନ୍ଧକି ଜିନିଷକୁ ଫେରାଇ ଦେବା, ନେଇଥିବା ବସ୍ତୁକୁ ଫେରାଇବା । [ ସୁଗନ୍ଧ ।
ପରିଦାୟୃ—ପୁଂ. ବି. ଆମୋଦଦାୟୀ,
ପରିଦାୟୀ—ପୁଂ. ବି. (ପରି+ଦା+କ. ଇନ୍ ) ଜ୍ୟେଷ୍ଠ ଅବିବାହିତ ଥିଲେ କନିଷ୍ଠକୁ କନ୍ୟାଦାନକାରୀ ବ୍ୟକ୍ତି ।
ପରିଦାହ—ପୁଂ. ବି. ମାନସିକ ଦୁଃଖ, ଅତ୍ୟନ୍ତ ଦାହ, ସନ୍ତାପ ।
ପରିଦାହୀ—ପୁଂ. ବିଂ. ପରିଦାହଯୁକ୍ତ, ଅତ୍ୟନ୍ତ ଦାହ ବା ପୀଡ଼ିତ । [ପିଠା ।
ପରିଦିଗ୍ଧ—ବି.ମାଂସ ପୂର ଦିଆଯାଇଥିବା
ପରିଦିନ—ଗ୍ରା.ବି.ଆଗାମୀ ବା ଗତ ଦିବସର ପର ବା ପୂର୍ବ ଦିବସ ।
ପରିଦୀନ—ପୁଂ. ବିଂ. ଅତିଶୟ ମାନସିକ କ୍ଲିଷ୍ଟ, ଅତିବିମର୍ଷ ।
ପରିଦୁର୍ବଳ—ପୁଂ. ବିଂ. ଅତି ଦୁର୍ବଳ, ଅତିଶୟ କ୍ଷୀଣ, କାର୍ଯ୍ୟାକ୍ଷମ ।
ପରିଦୃଶ୍ୟମାନ—ବିଂ (ପରି+ଦୃଶ୍ୟମାନ) ଚତୁର୍ଦ୍ଦିଗରେ ଦେଖା ଯାଉଥିବା ।
ପରିଦୃଷ୍ଟ—ବିଂ. ଭଲକରି ଦେଖା ଯାଇଥିବା, ଅନୁଭୂତ, ଜ୍ଞାତ ।
ପରିଦୃଢ—ବିଂ.(ପରି+ଦୃହ୍ନ୍+ର୍ମି.ତ) ଦୃଢ଼ୀକୃତ ।
ପରିଦେବ—ପୁଂ. ବି. (ପରି+ଦେବ+ଭା.ଅ) ପରିଦେବନ, ଅନୁଶୋଚନ, ଖେଦୋକ୍ତି, ବିଳାପ, ବାହୁନା କାନ୍ଦଣା ।

ପରିଦେବକ—ପୁଂ. ବିଂ. (ପରି + ଦେବ + କ.ଅକ ) ପରିଦେବନକାରୀ, ଅନୁଶୋଚନକାରୀ, ବିଳାପକାରୀ ।

ପରିଦେବନ—କ୍ଲୀ.ବି. (ପରି + ଦେବ + ଅନ)ବିଳାପ,ଅନୁଶୋଚନା, ଅନୁତାପ, ବାହୁନା କାନ୍ଦ ।

ପରିଦେବନା—ସ୍ତ୍ରୀ. ବି. ଶୋକ ନିମିତ୍ତ ବିଳାପ, ଦୁଃଖେ ଅନୁଶୋଚନା ।

ପରିଦେବିତ—ବିଂ.(ପରି+ଦେବ+ମି.ତ) ଯାହାପାଇଁ ବିଳାପ କରାଯାଏ, ଦୁଃଖିତ, (ବି. ଭା.ତ) ବିଳାପ ।

ପରିଦେବୀ—ପୁଂ.ବିଂ. (ପରି+ଦେବ+କ.ଇନ୍) ପରିଦେବନଶୀଳ, ବିଳାପକାରୀ, ଅନୁତାପୀ ।

ପରିଦ୍ୟୂନ—ବିଂ. (ପରି + ଦେବ + କ. ତ)ଦୁଃଖିତ, ଅନ୍ୟ ଦ୍ୱାରା ଦୁଃଖପ୍ରାପ୍ତ ।

ପରିଦ୍ୱୀପ—ପୁଂ.ବି.ଗରୁଡ଼ଙ୍କ ପୁତ୍ରବିଶେଷ

ପରିଦ୍ୱେଷଃ—ତ୍ରି. ବିଂ. ସର୍ବତୋଭାବେ ବିରୁଦ୍ଧାଚାରୀ ।

ପରିଦ୍ରଷ୍ଟା—ପୁଂ. ବିଂ. ପରିଦର୍ଶନକାରୀ ।

ପରିଧର୍ଷଣ—କ୍ଲୀ. ବି. ଆକ୍ରମଣ ।

ପରିଧାତବ୍ୟ—ବିଂ. ( ପରି+ଧା+ମି. ତବ୍ୟ) ପରିଧେୟ ।

ପରିଧାନ—କ୍ଲୀ. ବି. (ପରି + ଧା+ଅନ) ପରିଧେୟ ବସ୍ତ୍ର, ପିନ୍ଧିବା ଆଚ୍ଛାଦନ, ଘୋଡ଼ାଇବା, ଘୋଡ଼ଣୀ, ପୋଷାକ, ସ୍ତବଆଦିର ସମାପ୍ତି ।

ପରିଧାନବଲ୍କଳ—ବି. ବସ୍ତ୍ରରୂପେ ବ୍ୟବହୃତ ଗଛର ଛାଲି । [ଗୁଦର ।

ପରିଧାନବସ୍ତ୍ର—ବି.ପିନ୍ଧିବା ଲୁଗା,ପୋଷାକ,

ପରିଧାନୀୟ—ବିଂ(ପରି+ଧା+ମି.ଅନୀୟ) ପିନ୍ଧିବାର ଯୋଗ୍ୟ,(ବି)ଧୋତି, ପିନ୍ଧିବା ଲୁଗା ।

ପରିଧାପନ—କ୍ଲୀ. ବି. ( ପରି+ଧାପି+ଅନ) ପରିଧେୟ ବସ୍ତ୍ର, ପିନ୍ଧିବା, ପିନ୍ଧାଇବା ।

ପରିଧାପନୀୟ—ତ୍ରି.ବିଂ.(ପରି+ଧାପ୍+ଅନୀୟ) ପରିଧାନର ଯୋଗ୍ୟ ।

ପରିଧାୟ—କ୍ଲୀ.ବି. (ପରି + ଧା + ମି.ଅ) ପରିଚ୍ଛଦ, ପୋଷାକ, (ପରି + ଧା + ଭା. ଅ)ପରିଧାନ,ପିନ୍ଧିବା, (ଅଧି.ଅ)ନିତମ୍ବ, ଜଳାଧାର, (କ.ଅ)ଅନୁଚରବର୍ଗ ।

ପରିଧାୟକ—ପୁଂ. ବିଂ. ( ପରି+ଧା+କ.ଅକ) ଘେରିଥିବା, ଗୁଡ଼ାଇଥିବା, ଆଚ୍ଛାଦକ, (ବି) ବାଡ଼, ହତା, ଛଡ଼, ଦେବାଲି ।

ପରିଧାରଣ—କ୍ଲୀ. ବି. (ପରି+ଧୃ+କ. ଅନ) ପ୍ରତିବନ୍ଧକ, (ଭା.ଅନ) ବହନ, ଟେକି ଧରିବା, ସହନ ।

ପରିଧାରଣା—ବି. ( ପରି+ଧୃ+ଭା.ଅନ +ଆ)ଧରିରଖିବା, ଧୈର୍ଯ୍ୟ,ଅଧ୍ୟବସାୟ

ପରିଧାର୍ଯ୍ୟ—ତ୍ରି.ବିଂ.ପରିଧାରଣ ଯୋଗ୍ୟ, ରକ୍ଷଣୀୟ ।

ପରିଧାବନ—କ୍ଲୀ. ବି. (ପରି+ଧାବନ) ପଶ୍ଚାଦ୍ଧାବନ, ଅନୁଗମନ, ଅନୁଶୀଳନ, ପର୍ଯ୍ୟାଲୋଚନା, ପଳାଇଯିବା, ଭୃତ୍ୟ ରୂପେ ସେବା ।

ପରିଧାବୀ—ପୁଂ.ବିଂ. (ପରିଧାବ+ଇନ୍) ପରିଧାବନକାରୀ, ଭ୍ରମଣକାରୀ ।

ପରିଧାବୀ—ପୁଂ.ବି. ଷଷ୍ଟିସମ୍ବତ୍ସର ଅନ୍ତର୍ଗତ ଏକ ସମ୍ବତ୍ସର ।

ପରିଧି—ବି. ( ପରି+ଧା+କ.ଇ ) ବୃତ୍ତର ସୀମା ସୂଚକ ଗୋଲାକାର ରେଖା, ପରିବେଶ, ବୃତ୍ତର ବେଢ, ପରିବେଷ୍ଟନ, ଚନ୍ଦ୍ର ଓ ସୂର୍ଯ୍ୟମଣ୍ଡଳ, ପରିଧେୟ ବସ୍ତ୍ର, ଚକର ପଟ୍ଟି, ବାଡ଼, ଘେର, ସମୁଦ୍ର, ଘୋଡ଼ଣୀ ।

ପରିଧିସ୍ଥ—ବି. ( ପରିଧି+ସ୍ଥା+କ.ଅ ) ଶରୀରରକ୍ଷକ ଭୃତ୍ୟ, ଯୁଦ୍ଧରେ ରଥ ଓ ରଥୀକୁ ପରପ୍ରହାରରୁ ରକ୍ଷାକରିବା ପ୍ରହରୀ, (ବିଂ)ପରିବେଷ୍ଟନକାରୀ,ଚତୁଃପାର୍ଶ୍ୱସ୍ଥ ।

ପରିଧିପତିଖେଚର—ପୁଂ.ବି. ମହାଦେବ ।

ପରିଧୂପନ—ବି. (ପରି + ଧୂପି +ଭା. ଅନ) ଗୃହଆଦିରେ ଧୂଆଁ ଦେବା, ସୁଶ୍ରୁତ ଅନୁସାରେ ତୃଷ୍ଣାରୋଗର ଏକ ଉପଦ୍ରବ, ଯହିଁରେ ବେଶି ବାନ୍ତି ହୁଏ ।

ପରିଧୂପିତ—ବିଂ. (ପରି+ଧୂପି+ମି.ତ) ଧୂପଦ୍ୱାରା ସୁଗନ୍ଧୀକୃତ,ଧୂପଦ୍ୱାରା ସୁବାସିତ ।

ପରିଧୂମନ—କ୍ଲୀ. ବି. ସୁଶ୍ରୁତୋକ୍ତ ତୃଷ୍ଣପୀଡ଼ିତର ଉଦ୍ଗାରଭେଦରୂପ ଉପଦ୍ରବ ବିଶେଷ, ଢେକାର, ଅଡ଼ ।

ପରିଧୂସର—ବିଂ. ଅତିଶୟ ଧୂସରବର୍ଣ୍ଣ ।

ପରିଧେୟ—ବିଂ. (ପରି+ଧା+ମି.ଯ) ପରିଧାନୀୟ,ପିନ୍ଧିବାର ଉପଯୁକ୍ତ ବସ୍ତ୍ରାଦି, (ବି-ଭା.ଯ) ପିନ୍ଧାଲୁଗା, ଧୋତି ।

ପରିଧେୟବସ୍ତ୍ର—ବି. (କ.ଧା) ପୋଷାକ ।

ପରିଧ୍ୱଂସ—ବି. (ପରି + ଧ୍ୱନ୍ସ+ଅ)ନାଶ ।

ପରିଧ୍ୱଂସୀ—ପୁଂ. ବିଂ. (ପରି + ଧ୍ୱନ୍ସ+ +ଇନ୍) ଧ୍ୱଂସଶୀଳ, ବିନଶ୍ୱର ।

ପରିନନ୍ଦନ—କ୍ଲୀ. ବି. (ପରି+ନନ୍ଦି+ଣିଚ୍+ଭା.ଅନ)ସନ୍ତୋଷକରଣ,(ବିଂ-କ.ଅନ) ସନ୍ତୋଷକାରକ ।

ପରିନନ୍ଦା—ସ୍ତ୍ରୀ. ବି. ଅତିଶୟ ନିନ୍ଦା ।

ପରିନମ୍ର—ବିଂ. ଅତିଶୟ ନମ୍ର ।

ପରିନିର୍ବାପଣ—ବି. (ପରି + ନିର୍ + ବପ୍ +ଭା.ଅନ) ଦାନ ।

ପରିନିର୍ବାଣ—କ୍ଲୀ. ବି. ସମ୍ପୂର୍ଣ୍ଣମୋକ୍ଷ, ବ୍ୟକ୍ତିତ୍ୱର ସମ୍ପୂର୍ଣ୍ଣଲୋପ ।

ପରିନିର୍ବୃତ୍ତି—ସ୍ତ୍ରୀ. ବି. ମୋକ୍ଷ ।

ପରିନିଶ୍ଚୟ—ପୁଂ. ବି. ସ୍ଥିର ନିଶ୍ଚୟ ।

ପରିନିଷ୍ଠା—ସ୍ତ୍ରୀ. ବି. (ପରି+ନି+ସ୍ଥା +ଭା.ଅ+ଆ) ପର୍ଯ୍ୟବସାନ, ସମାପ୍ତି, ପରାକାଷ୍ଠା,ଚରମସୀମା,ଜ୍ଞାନର ପୂର୍ଣ୍ଣତା, ଅଭ୍ୟାସର ପୂର୍ଣ୍ଣତା ।

ପରିନୈଷ୍ଠିକ—ବିଂ. (ପରିନିଷ୍ଠା + ଇକ) ସର୍ବୋତ୍କୃଷ୍ଟ, ସର୍ବୋଚ୍ଚ ।

ପରିନ୍ୟାସ—ପୁଂ. ବି. (ପରି+ନି+ଅସ୍ +ଭା.ଅ) (ନାଟ୍ୟ) ମୁଖସନ୍ଧିର ଅଙ୍ଗବିଶେଷ, କାବ୍ୟାର୍ଥର ନିଶ୍ଚୟରୂପେ ନିଷ୍ପତ୍ତିସ୍ଥଳ ।

ପରିପକ୍ୱ—ବିଂ. (ପରି + ପକ୍ୱ) ପରିପାକଯୁକ୍ତ, ପରିଣତ, ସୁପକ୍ୱ, ପାଚିଲା,ବହୁଦର୍ଶୀ, ସୁଜୀର୍ଣ୍ଣ, ସିଦ୍ଧ, ପଟୁ, ନିପୁଣ, ସମ୍ପୂର୍ଣ୍ଣ, ପ୍ରୌଢ଼ ।

ପରିପକ୍ୱତା—ସ୍ତ୍ରୀ. ବି. ପରିଣତାବସ୍ଥା,

ପକ୍ୱାବସ୍ଥା, ବହୁଦର୍ଶିତା ।
ପରିପଣ—କ୍ଲୀ.ବି. (ପରି+ପଣ୍+ଣ.ଅ) ମୂଳଧନ, ପୁଞ୍ଜି, ପାଣ୍ଠି ।
ପରିପଣିତ—ବି°. (ପରି+ପଣ୍+ର୍ମ.କ୍ତ) ବେପାରରେ ଲଗାଯାଇଥିବା,ନ୍ୟାସୀକୃତ,ବନ୍ଧକ ରଖାଯାଇଥିବା,ବାଜିରୂପେ ରଖାଯାଇଥିବା ।
ପରିପଣ୍ଡିମା—ବି.(ପରିପଣ୍ଡୁ+ଭା.ଇମନ୍) ସମ୍ପୂର୍ଣ୍ଣ ଧଳାରଙ୍ଗ ବା ଫିକ୍କାରଙ୍ଗ ।
ପରିପନ୍ଥକ—ପୁଂ. ବି°. (ପରି+ପନ୍ଥକ) ପ୍ରତିକୂଳ, ପ୍ରତିବନ୍ଧକ, ବ୍ୟାଘାତ, ବିରୋଧୀ, ଶତ୍ରୁଭାବାପନ୍ନ,ବାଧାଜନକ, (ବି) ପଥରୋଧକ ବ୍ୟକ୍ତି, ଶତ୍ରୁ,ବିପକ୍ଷ, ଦସ୍ୟୁ, ଡ଼କାଏତ, ବିରୋଧୀ ବ୍ୟକ୍ତି ।
ପରିପରି—ଗ୍ରା. ପୁଂ ଓ ସ୍ତ୍ରୀ. ବି°. ମନୁଆ, ଯେ ଆପଣାକୁ ଅତି ବଡ଼ ବୋଲି ମନେକରେ, ନିର୍ଲ୍ଲଜ,ଯେ ଆପଣାର ବଡ଼େଇ କହିହୁଏ, ଆପଣାର ପ୍ରଶଂସା ଶୁଣିବାକୁ ଇଚ୍ଛୁକ ।
ପରିପନ୍ଥୀ—ବି. ପରିଶତ୍ରୁ, ନାନାସ୍ଥାନ ଭ୍ରମଣକାରୀ ତସ୍କରବିଶେଷ,ଡ଼କାଏତ ।
ପରିପବନ—ପୁଂ. ବି.(ପରି+ପୂ+ଣ. ଅନ) ଚାଲୁଣୀ ।
ପରିପଣବ୍ୟ—ବି°. ସକଳ ପକ୍ଷସମ୍ବନ୍ଧୀୟ ।
ପରିପାକ—ପୁଂ.ବି. (ପରି+ପଚ୍+ଭା.ଅ) ପରିପକ୍ୱତା, ଜୀର୍ଣ୍ଣତା,ହଜମ,ନୈପୁଣ୍ୟ, ପରିଣାମ, ଶେଷାବସ୍ଥା, ଚତୁରତା, ଉତ୍କର୍ଷ, ପୂର୍ଣ୍ଣତା, ଫଳ, ଉତ୍ତମପାକ, ଅନୁଭବ ।
ପରିପାକିନୀ—ସ୍ତ୍ରୀ. ବି. (ପରିପାକ+ଇନ୍ ଈ) ତ୍ରିବୃତ୍ତ, ତିହୁଡ଼ିଲତା ।
ପରିପାଚନ—ବି°. ( ପରି+ପାଚନ ) ସମ୍ୟକ୍ ପଚନଶୀଳ, (ବି) ପରିପାକକରଣ ।
ପରିପାଚନୀ—ବି. ସମ୍ୟକ୍‌ରୂପେ ପକ୍ୱତାରେ ପରିଣତ କରଣ, ପକ୍ୱାବସ୍ଥାକୁ ଆଣିବା ।
ପରିପାଚୟିତା—ପୁଂ.ବି°. ପରିପାକକାରୀ ।
ପରିପାଟଳ—ବି°. ( ପରି+ପାଟଳ ) ପକ୍କା ନାଲି ।
ପରିପାଟି(ଟୀ)—ସ୍ତ୍ରୀ. ବି. (ପରି+ପଟ୍+ଭା.ଇ.ଈ)ସୁଶୃଙ୍ଖଳା,ଅନୁକ୍ରମ, ପର୍ଯ୍ୟାୟ, ଆନୁପୂର୍ବିକ ଧାରା,ସୁବ୍ୟବସ୍ଥା,କୌଶଳ, କ୍ରମଗଣ୍ଡି, ଉତ୍କର୍ଷ,ଢଙ୍ଗ, ଅଙ୍କ,ଗଣିତ, (ବି°) ଧାରାବାହିକ, ସୁଶୃଙ୍ଖଳ, ମନୋହର, ସୁନ୍ଦର, ସୁବ୍ୟବସ୍ଥିତ, ଉତ୍କୃଷ୍ଟ, ସୌଷ୍ଠବ ସମ୍ପନ୍ନ, ପରିଚ୍ଛନ୍ନ ।
ପରିପଠକ—ବି°. ଆନୁପୂର୍ବ ପାଠ ବା ପ୍ରକାଶକାରୀ । [ ଯୁକ୍ତ ।
ପରିପାଣ୍ଡୁ—ବି°. ପାଣ୍ଡୁବର୍ଣ୍ଣ ବା କୃଶତା-
ପରିପାତ—ବି. (ପରି+ପତ୍+ଭା.ଅ) ବିଶେଷ ଭାବରେ ପତନ ।
ପରିପାତନ—କ୍ଲୀ.ବି. ନିପାତନ,ଧ୍ୱଂସନ, ନଷ୍ଟକରଣ । [ ଗୁଡ଼ ।
ପରିପାଦ—ଅବ୍ୟ. ପାଦବର୍ଜନକରି,ପାଦ-
ପରିପାର୍ଶ୍ୱ—ବି°. ନିକଟବର୍ତ୍ତୀ,ପାର୍ଶ୍ୱବର୍ତ୍ତୀ, (ବି) ପାର୍ଶ୍ୱ ।
ପରିପାଳକ—ପୁଂ. ବି°. (ପରି+ପାଳକ) ପରିରକ୍ଷକ, ଯେ ପ୍ରତିପୋଷଣ କରେ, ଆଶ୍ରୟଦାତା, ତତ୍ତ୍ୱାବଧାୟକ ।
ପରିପାଳନ—କ୍ଲୀ. ବି. (ପରି+ପାଳ+ଣି+ଭା.ଅନ) ପରିରକ୍ଷଣ, ପରିପୋଷଣ, ରକ୍ଷଣାବେକ୍ଷଣ, ପାଳନ କରିବା, ସହିନେବା ।
ପରିପାଳୟିତା—ପୁଂ. ବି°. (ପରିପାଳି+କ.ତୃ) ପରିପାଳକ ଦେଖ ।
ପରିପାଳିତ—ବି°. (ପରି+ପାଳ+ତ) ରକ୍ଷିତ, ପୋଷିତ ।
ପରିପାଲ୍ୟ—ବି°. ପାଳନଯୋଗ୍ୟ,ରକ୍ଷଣଯୋଗ୍ୟ, ଶାସନଯୋଗ୍ୟ ।
ପରିପିଙ୍ଗ(ଙ୍ଗଳ)—ବି°.ପିଙ୍ଗଳ ବା ରକ୍ତବର୍ଣ୍ଣ, ପକ୍କାନାଲି ।
ପରିପିଣ୍ଡୀକୃତ—ବି°.ଯାହା ପିଣ୍ଡାକାରରେ ପରିଣତ ହୋଇଅଛି, ଘନୀଭୂତ ।
ପରିପାଳୟିଷା—ସ୍ତ୍ରୀ. ବି. ପାଳନ ବା ରକ୍ଷଣ କରିବାର ଇଚ୍ଛା ।
ପରିପିଷ୍ଟ—ବି°. (ପରି+ପିଷ୍+ର୍ମ.କ୍ତ) ଦଳିତ, ପରିମର୍ଦ୍ଦିତ ।
ପରିପିଷ୍ଟକ—କ୍ଲୀ. ବି. ସୀସକ, ସୀସା ।
ପରିପୀଡ଼ନ—କ୍ଲୀ.ବି.ପେଷଣ, ଉତ୍ପୀଡ଼ନ, ଚପୁଡ଼ିବା,ଅତ୍ୟନ୍ତ ଦୁଃଖଦେବା,ଅନିଷ୍ଟ କରିବା ।
ପରିପୀଡ଼ା—ସ୍ତ୍ରୀ. ବି. ପେଷଣ, ପୀଡ଼ାଦେବା, ଚପୁଡ଼ିବା ।
ପରିପୁଷ୍ଟ—ବି°. ପରିବର୍ଦ୍ଧିତ,ପରିପୋଷିତ, ପରିପକ୍ୱ, ହୃଷ୍ଟପୁଷ୍ଟ । [ ପୁଷ୍ଟି ।
ପରିପୁଷ୍ଟତା—ସ୍ତ୍ରୀ. ବି. ସମ୍ୟକ୍‌ବୃଦ୍ଧି,ପରି-
ପରିପୂଜିତ—ବି°. ଉପାସିତ, ଅର୍ଚ୍ଚିତ, ଆରାଧିତ ।
ପରିପୂତ—ବି°. (ପରି+ପୂ+ତ) ବିଶୁଦ୍ଧ, ପାଛୁଡ଼ା ହୋଇଥିବା,ପରିଷ୍କୃତ(ଶସ୍ୟାଦି), ଛଣାହୋଇଥିବା, ପବିତ୍ର ।
ପରିପୂରକ—ବି°.ପରିପୂରଣକାରୀ,ସମ୍ପୂର୍ଣ୍ଣ, ଯେ ପୂରଣ କରେ ।
ପରିପୂରଣ—କ୍ଲୀ. ବି. ପୂରଣ କରିବା, ସମ୍ପୂର୍ଣ୍ଣତାସାଧନ,ଅଭାବ ମେଣ୍ଟାଇଦେବା ।
ପରିପୂରିତ—ବି°. ( ପରି+ପୂରିତ ) ସମ୍ପୂର୍ଣ୍ଣ, ସମାପ୍ତ, ପୂର୍ଣ୍ଣହୋଇଥିବା, ସମ୍ପାଦିତ, ଅନୁଭୂତ ।
ପରିପୂର୍ଣ୍ଣ—ବି°. ( ପରି+ପୃ+କ.ତ ) ସମ୍ପୂର୍ଣ୍ଣ, ପରିତୃପ୍ତ,ସଫଳ,ସିଦ୍ଧ,ସ୍ୱଚ୍ଛନ୍ଦ, ଯଥେଷ୍ଟ, ବ୍ୟାପ୍ତ ।
ପରିପୂର୍ଣ୍ଣତା—ସ୍ତ୍ରୀ.ବି. ସମ୍ପୂର୍ଣ୍ଣତା,ଆଭୋଗ, ପରିତୃପ୍ତି ।
ପରିପୂର୍ଣ୍ଣସହସ୍ରଚନ୍ଦ୍ରାବତୀ—ସ୍ତ୍ରୀ.ବି. ଇନ୍ଦ୍ରଙ୍କର ପତ୍ନୀବିଶେଷ ।
ପରିପୂର୍ଣ୍ଣାହତରଶ୍ମି—ପୁଂ. ବି. ଚନ୍ଦ୍ର ।
ପରିପୂର୍ଣ୍ଣେନ୍ଦୁ—ପୁଂ. ବି. ପୂର୍ଣ୍ଣଚନ୍ଦ୍ର ।
ପରିପୂର୍ତ୍ତି—ସ୍ତ୍ରୀ.ବି.ପରିପୂର୍ଣ୍ଣତା,ସମ୍ପୂର୍ଣ୍ଣତା ।
ପରିପୃଚ୍ଛା—ସ୍ତ୍ରୀ. ବି. (ପରି+ପ୍ରଚ୍ଛ+ଆ) ଜିଜ୍ଞାସା, ପ୍ରଶ୍ନ କରିବା, ପଚାରିବା ।
ପରିପୃଷ୍ଟ—ବି°. (ପରି+ପୃଷ୍ଟ) ସମ୍ୟକ୍‌ରୂପେ ଜିଜ୍ଞାସିତ, ତଦନ୍ତ କରାଯାଇଥିବା ।
ପରିପେଲ—କ୍ଲୀ. ବି. (ପରି+ପେଲ+ଅ) କୈବର୍ତ୍ତିମୁସ୍ତକ,କେଉଟିଆ ମୁଥା ।
ପରିପେଲବ—ବି°. ଅତି ସୁକୁମାର,ଅତି

କୋମଳ, (ବ) କେଉଟିଆ ମୂଥା ।
ପରିପୋଟ—ପୁଂ. ବ. (ପରି+ପୁଟ+ଘ.ଅ) ଚେପା ବା ଗୁଲ୍ଲ ଗୁଡ଼ିଯିବା, ବହୁ ଭାରୀ ଅଳଙ୍କାର ପିନ୍ଧିବା ଯୋଗୁଁ କାନରେ ହେବା ଫୁଲ ଓ କ୍ଷତରୋଗ ।
ପରିପୋଷ—ବ. (ପରି+ପୁଷ୍+ଘ.ଅ) ପୂର୍ଣ୍ଣ ପୁଷ୍ଟି ବା ବୃଦ୍ଧି ।
ପରିପୋଷକ—ବିଂ. (ପରି+ପୁଷ୍+ଅକ) ପରିରକ୍ଷକ, ପରିପାଳକ ।
ପରିପୋଷଣ—କ୍ଳୀ. ବ. (ପରି+ପୁଷ୍+ଘ.ଅନ) ପରିପୁଷ୍ଟି, ରକ୍ଷଣାବେକ୍ଷଣ, ପାଳନ ।
ପରିପୋଷଣୀୟ—ବିଂ. (ପରି+ପୁଷ୍+ମିଂ.ଅନୀୟ) ପରିପୋଷଣ ଯୋଗ୍ୟ,ପରିପାଳ୍ୟ । [ ଜିଜ୍ଞାସା ।
ପରିପ୍ରଶ୍ନ—ପୁଂ. ବ. ଯୁକ୍ତିଯୁକ୍ତ ପ୍ରଶ୍ନ,
ପରିପ୍ରାପ୍ୟ—ବିଂ. (ପରି+ପ୍ରାପ୍ୟ) କରଣୀୟ, ସମାଧାର ଯୋଗ୍ୟ । [ ପ୍ରାପଣ ।
ପରିପ୍ରାପ୍ତି—ସ୍ତ୍ରୀ. ବ. ଲାଭ, ପାଇବା,
ପରିପ୍ରେକ୍ଷିତ—ବ. (ପରି+ପ୍ର+ଈକ୍ଷ୍+ତ) ଚକ୍ଷୁକୁ ଯେପରି ଦର୍ଶେ ଛବିରେ ତାହାର ସେହିପରି ବିନ୍ୟାସ ନିୟମକ ବିଦ୍ୟା ।
ପରିପ୍ରେପ୍ସୁ—ବିଂ. (ପରି+ପ୍ର+ଆପ୍+ସନ୍.ଉ) ପାଇବାକୁ ଇଚ୍ଛୁକ, ପରିପାଳନ ଅଭିଳାଷୀ, ଇଚ୍ଛୁକ ।
ପରିପ୍ରେଷଣ—କ୍ଳୀ. ବ. (ପରି+ପ୍ର+ଇଷ୍+ଘ.ଅନ) ଗୁରିଆଡ଼େ ଦୂତ ପଠାଇବା, ନିର୍ବାସନ, ପରିତ୍ୟାଗ ।
ପରିପ୍ରେଷିତ—ବିଂ. (ପରି+ପ୍ରେଷ୍+ତ) ପ୍ରେରିତ, ନିର୍ବାସିତ, ପରିତ୍ୟକ୍ତ ।
ପରିପ୍ରେଷ୍ୟ—ପୁଂ. ବ. (ପରି+ପ୍ରେଷ୍+ମିଂ.ଯ) ଭୃତ୍ୟ, ପରିଚର, ଦାସ, (ବିଂ) ଦୂତରୂପେ ପ୍ରେରିତ ହେବାଯୋଗ୍ୟ ।
ପରିପ୍ଳବ—ବ. (ପରି+ପ୍ଳୁ+ଘ.ଅ) ପ୍ଲାବନ, ଉପଦ୍ରବ,ସନ୍ତରଣ, ଇତସ୍ତତଃ ଦୌଡ଼ିବା, (ଣ.ଅ) ନୌକା, ପୋତ, (ବିଂ-କ.ଅ) ଆକୁଳ,ଅସ୍ଥିର, କମ୍ପମାନ, ଚଞ୍ଚଳ ।
ପରିପ୍ଳବନ—ବ. (ପରି+ପ୍ଳୁ+ଘ.ଅନ) ପରିପ୍ଳବ, ପ୍ଲାବନ ।
ପରିପ୍ଲାବ୍ୟ—ଅବ୍ୟ. (ପରି+ପ୍ଳୁ+ଅ+ଯ) ପ୍ଲାବିତହୋଇ, ଜଳରେ ବୁଡ଼ାଇ ।
ପରିପ୍ଳୁତ—ବିଂ. (ପରି+ପ୍ଳୁ+କ.ତ) ପ୍ଲାବିତ, ମଗ୍ନ, ସିକ୍ତ, ଅଭିଷିକ୍ତ, ପରିକମ୍ପିତ, କମ୍ପମାନ, ସ୍ନାତ,ଓଦା,ଆର୍ଦ୍ର, (ବ) ଡିଆଁ, କୁଦା ।
ପରିପ୍ଳୁତା—ସ୍ତ୍ରୀ. ବ. (ପରିପ୍ଳୁତ+ଆ) ମଦିରା, ମଦ୍ୟ, ମୈଥୁନ ବା ଋତୁସ୍ରାବ କାଳରେ ବେଦନାଯୁକ୍ତ ସ୍ତ୍ରୀର ଯୋନି ।
ପରିପ୍ଳୁଢ଼—ବ. ( ପରି+ପ୍ଳୁ+ଘ.ଢ ) ଅତିପ୍ରସକ୍ତି, ଶୃଙ୍ଖଳ୍ୟ, ବ୍ୟାପ୍ତି ।
ପରିଭକ୍ଷ—ବିଂ. ( ପରି+ଭକ୍ଷ୍+କ.ଅ ) ପରଦ୍ରବ୍ୟ ଭକ୍ଷଣକାରୀ, ପରାନ୍ନଭୋଜୀ ।
ପରିଭକ୍ଷଣ—କ୍ଳୀ. ବ. ସମ୍ପୂର୍ଣ୍ଣରୂପେ ଭୋଜନ, ଚିବାଇ ଖାଇଯିବା, ପୋଛିପାଛି ଖାଇଦେବା ।
ପରିଭକ୍ଷିତ—ବିଂ. (ପରି+ଭକ୍ଷ୍+ତ) ଖାଦ୍ୟାଦିରୁ ବର୍ଜିତ, ଉପବାସୀ, କୃତଭକ୍ଷଣ ।
ପରିଭଙ୍ଗ—ବ. ସର୍ବତୋଭାବେ ଭଙ୍ଗ, ଟିକିଟିକି କରିବା,ଚୂର୍ଣ୍ଣବିଚୂର୍ଣ୍ଣ କରିବା ।
ପରିଭୟ—ପୁଂ. ବ. (ପରି+ଭୀ+ଅ) ଅତ୍ୟନ୍ତ ଭୟ । [ ପ୍ରଦର୍ଶନ ।
ପରିଭର୍ତ୍ସନ—କ୍ଳୀ.ବ. ତିରସ୍କରଣ,ଭୟ-
ପରିଭବ—ପୁଂ. ବ. (ପରି+ଭୂ+ଘ.ଅ) ଅନାଦର, ତିରସ୍କାର,ଅବଜ୍ଞା,ପରାଜୟ, ପରାଭବ, ଦର୍ଶନ, ଅସମ୍ମାନ ।
ପରିଭବନୀୟ—ବିଂ. (ପରି+ଭୂ+ମିଂ.ଅନୀୟ) ପରାଭବ ଯୋଗ୍ୟ ।
ପରିଭ(ବ)ାବୀ—ପୁଂ. ବିଂ. (ପରି+ଭୂ+କ.ଇନ୍) ତିରସ୍କାରୀ.ଅପମାନକାରୀ, ଅବଜ୍ଞାକାରୀ, ଦ୍ରଷ୍ଟା ।
ପରିଭାବ—ପୁଂ. ବ. ପରିଭବ ଦେଖ ।
ପରିଭାଷ୍—ସ୍ତ୍ରୀ. ବ. (ପରି+ଭାଷ୍+କ୍ୱିପ୍) ଉତ୍ସାହିତକରଣ, କୌଣସି କଥା କହିବା, ହିତପରାମର୍ଶ ଦେବା ।
ପରିଭାଷକ—ବିଂ. (ପରି+ଭାଷ୍+କ. ଅକ) ନିନ୍ଦକ, ଅପବାଦକାରୀ, ତିରସ୍କାରକ ।
ପରିଭାଷଣ—କ୍ଳୀ. ବ. (ପରି+ଭାଷଣ) ନିନ୍ଦାବାକ୍ୟ, ନିନ୍ଦାପୂର୍ବକ ତିରସ୍କାର, ଲକ୍ଷଣା, ସଙ୍କେତ, ଆଳାପ, ନିୟମ, କଥୋପକଥନ ।
ପରିଭାଷଣୀୟ—ବିଂ. (ପରି+ଭାଷ୍+ମିଂ. ଅନୀୟ)ଭର୍ତ୍ସନୀୟ,ପରିଭାଷଣ ଯୋଗ୍ୟ ।
ପରିଭାଷା—ବ. (ପରି+ଭାଷା) ବିଶେଷାର୍ଥ ବୋଧକ ସଙ୍କେତ,ସଂଜ୍ଞାବିଶେଷ, ସ୍ପଷ୍ଟଭାଷଣ, ବିଶିଷ୍ଟ ପଦମାନଙ୍କ ଅର୍ଥ, ବିଶିଷ୍ଟ ପଦମାନଙ୍କ ତାଲିକା, ନିନ୍ଦା, ଭର୍ତ୍ସନା ।
ପରିଭାଷିତ—ବିଂ.(ପରି+ଭାଷ୍+ମିଂ.ତ) କଥିତ, ଅବଧାରିତ, ଉକ୍ତ,ସଙ୍କେତବାକ୍ୟରୂପେ ବ୍ୟବହୃତ ।
ପରିଭାଷୀ—ପୁଂ. ବିଂ. (ପରି+ଭାଷ୍+ଇନ୍) କଥନଯୁକ୍ତ, କଥକ ।
ପରିଭୁକ୍ତ—ବିଂ. (ପରି+ଭୁଜ+ମିଂ.ତ) ଉପଭୁକ୍ତ, ପୂର୍ବରୁ ବ୍ୟବହୃତ, ଯାହା ଭୋଗ କରାହୋଇଛି, ଅନ୍ୟ ଦ୍ୱାରା ପୂର୍ବରୁ ଭକ୍ଷିତ ।
ପରିଭୂତ—ବିଂ. (ପରି+ଭୂ+ମିଂ.ତ) ତିରସ୍କୃତ, ଅନାଦୃତ, ଅବଜ୍ଞାତ, ଅଭିଭୂତ, ଅବହେଳିତ, ପରାଜିତ, (ସ୍ତ୍ରୀ) ପରିଭୂତା ।
ପରିଭୂଷଣ—ପୁଂ. ବ. କୌଣସି ଜମିର ସମ୍ପୂର୍ଣ୍ଣ ରାଜସ୍ୱ ଶତ୍ରୁକୁ ଦେଇ ଶାନ୍ତି ସ୍ଥାପନ, ସଜାଇବା ।
ପରିଭେଦ—ବ. (ପରି+ଭିଦ୍+ଅ) ଅସ୍ତ୍ରଶସ୍ତ୍ରାଦିର ଆଘାତ ।
ପରିଭେଦକ—ବିଂ. ଭେଦନକାରୀ ।
ପରିଭୋକ୍ତା—ପୁଂ.ବିଂ.ପରଦ୍ରବ୍ୟ ଭୋଜନକାରୀ, ଗୁରୁ ଧନୋପଜୀବୀ ।
ପରିଭୋଗ—ପୁଂ. ବ. (ପରି+ଭୁଜ୍+ଘ.ଅ) ଉପଭୋଗ, ସମ୍ଭୋଗ, ମୈଥୁନ, ଆସ୍ୱାଦନ, ସମ୍ଭୋଗଚିହ୍ନ, ଜୀବିକା, ପରଦ୍ରବ୍ୟର ଅବୈଧ ବ୍ୟବହାର, ଗୁରୁ-

ଧନର ଉପଭୋଗ ।
ପରିଭ୍ରଂଶ—ବି. ବିଚ୍ୟୁତ, ପଳାୟନ ପୂର୍ବକ ରକ୍ଷା । [ ଉନ ।
ପରିଭ୍ରଂଶନ—କ୍ଲୀ.ବି.ପରିଚ୍ୟୁତ,ବିଭ୍ରା-
ପରିଭ୍ରମ—ପୁଂ.ବି.(ପରି + ଭ୍ରମ)ପର୍ଯ୍ୟଟନ, ଭ୍ରମଣ, ଘୂରିଆଡେ ବୁଲିବା ପରିକ୍ରମ, ପରିଧି ।
ପରିଭ୍ରଷ୍ଟ—ବିଂ. (ପରି+ଭ୍ରଷ୍ଟ)ପତିତ, ଚ୍ୟୁତ, ନଷ୍ଟ, ଧ୍ୱସ୍ତ, ପଳାୟିତ ।
ପରିମଣ୍ଡଳ—ବି. (ପରି+ମଣ୍ଡଳ) ବୃତ୍ତ, ପରିଧି, ସୂର୍ଯ୍ୟ ଓ ଚନ୍ଦ୍ରଙ୍କ ମଣ୍ଡଳ, ଗୋଲକାର, ଗୋଲକ, ଏକପ୍ରକାର ବିଷାକ୍ତ ମଶକ, (ବିଂ)ଗୋଲ, ବର୍ତ୍ତୁଳ, ଅଣୁପରିମିତ । [ ଗୋଲତ୍ୱ ।
ପରିମଣ୍ଡଳତା—ସ୍ତ୍ରୀ. ବି. ବର୍ତ୍ତୁଳତା,
ପରିମଣ୍ଡଳିତ—ବିଂ.ଗୋଲକାରଆବର୍ତ୍ତିବିଶିଷ୍ଟ ।
ପରିମଣ୍ଡିତ—ବିଂ. (ପରିମଣ୍ଡ+ମି.ତ) ସମ୍ୟକ୍ ଭୂଷିତ, ଉତ୍ତମରୂପେ ସଜ୍ଜିତ ।
ପରିମନ୍ଥର—ବି. ମନ୍ଦ ମନ୍ଦ ଗତି, ଧୀରଗତି ।
ପରିମନ୍ଦ—ବିଂ. ପରିଶ୍ରାନ୍ତ, କ୍ଳାନ୍ତ ।
ପରିମନ୍ଦତା—ସ୍ତ୍ରୀ. ବି. କ୍ଳାନ୍ତିଜନକତା, ଅବସାଦ, ଗ୍ଳାନି ।
ପରିମର୍ଦ୍ଦ—ପୁଂ. ବି. ଘର୍ଷଣ, ନାଶନ, ଧ୍ୱଂସନ ।
ପରିମର୍ଦ୍ଦନ—କ୍ଲୀ. ବି.(ପରି+ମୃଦ୍+ଅନ) ପରିମର୍ଦ୍ଦ ଦେଖ ।
ପରିମର୍ଶ—ବି. (ପରି + ମୃଶ୍ + ଭା.ଅ) ଘର୍ଷଣ, ସଂସ୍ପର୍ଶ, ଲଗିଥିବା, ଛୁଇଁବା, ସ୍ପର୍ଶ, ବିବେଚନା, ସୁଚିନ୍ତନ ।
ପରିମର୍ଷ—ପୁଂ. ବି.(ପରି + ମୃଷ୍ + ଅ) ଈର୍ଷା, ଅସୂୟା, ଦ୍ୱେଷ ।
ପରିମଳ—ପୁଂ. ବି. (ପରି + ମଳ + ଭା. ଅ) କୁଙ୍କୁମଚନ୍ଦନାଦିର ଲେପନ ଜନିତ ସୁଗନ୍ଧ, କୁସୁମ ସୌରଭ, ସମ୍ଭୋଗ, ମୈଥୁନ, ସଜ୍ଜନସମବାୟ,ପଣ୍ଡିତମାନଙ୍କ ମିଳନ, କଳଙ୍କ, ଦଳନ, ବାଟିବା, (ଗ୍ରା. ବି) ଅବସ୍ଥା, ଆଭ୍ୟନ୍ତରୀଣ ଅବସ୍ଥାର ପୂର୍ବ ସୂଚନା, ମେଳା, ଗହଳି, (ବିଂ) ସୁବାସିତ, ସୁଗନ୍ଧଯୁକ୍ତ ।
ପରିମଳମୟ—ବିଂ. ସୁବାସ ପୂର୍ଣ୍ଣ,ସୁଗନ୍ଧଯୁକ୍ତ ।
ପରିମାଣ—କ୍ଲୀ. ବି. (ପରି+ମା+ଅନ) ମାପ,ଓଜନ, ସଂଖ୍ୟା କରଣ,(ମି.ଅନ) ବିସ୍ତାର, ଦୈର୍ଘ୍ୟାଦି ମାପର ଉପକରଣ, ଆକାରର ବର୍ଗ ବା ଘନଫଳ ।
ପରିମାଣଫଳ—କ୍ଲୀ. ବି. କ୍ଷେତ୍ରଫଳ, ଭୂମିମାନ୍ତର୍ଗତ ସ୍ଥାନର ପରିମାଣ ।
ପରିମାଣି—ଗ୍ରା. ଅବ୍ୟ. ( ସ-ପ୍ରମାଣ ) ତୁଲ୍ୟ, ପରି, ପ୍ରମାଣେ ।
ପରିମାଣିକା—(ପ୍ରା.ପ୍ରଶ୍ରୀ).ବି. ଜଗନ୍ନାଥ ଆଦି ଦେବତାଙ୍କୁ କୌଣସି ବିଶେଷ ଖଟଣି ଲଗାଇବା ପାଇଁ ଯାହା ଦେବା ଫିସ୍ ।
ପରିମାପ—ବି. (ପରି+ଣିଚ୍.ମାପ+ଭା.ଅ)ବସ୍ତୁାଦିଦ୍ୱାରା ପରିଚ୍ଛେଦ, ମାପିବା
ପରିମାର୍ଗ—ପୁଂ. ବି. ପରିମାର୍ଜନ, ପରିଷ୍କାର କରଣ । [ ସନ୍ଧାନ ।
ପରିମାର୍ଗଣ—କ୍ଲୀ. ବି. ଅନ୍ୱେଷଣ, ଅନୁ-
ପରିମାର୍ଗିତବ୍ୟ—ବିଂ. ଅନ୍ୱେଷଣୀୟ ।
ପରିମାର୍ଗୀ—ପୁଂ. ବିଂ. ଅନ୍ୱେଷଣକାରୀ, ଶିକାରାର୍ଥ ପଶ୍ଚାତ୍ ଅନୁସରଣକାରୀ ।
ପରିମାର୍ଗ୍ୟ—ବିଂ. ପରିଶୋଧନୀୟ, ପରିଷ୍କାର ଯୋଗ୍ୟ, ଅନ୍ୱେଷଣୀୟ ।
ପରିମାର୍ଜ୍ଜ—ବି.ପରିଷ୍କାରକରଣ, ଘଷାମଜା
ପରିମାର୍ଜ୍ଜନ—କ୍ଲୀ. ବି. ଖାଦ୍ୟବିଶେଷ, ମଧୁମସ୍ତକ, ପରିଶୋଧନ, ପରିଷ୍କରଣ, ମଧୁତୈଳ ପକ୍ୱ ।
ପରିମିତ—ବିଂ. ( ପରି+ମା+ମି.ତ ) ନିର୍ଦ୍ଦିଷ୍ଟ ସୀମାବଦ୍ଧ, ଯଥାଯୋଗ୍ୟ ପରିମାଣଯୁକ୍ତ ।
ପରିମିତବ୍ୟୟ—ବି(କ.ଧା)ଉଚିତ ଖରଚ, ଆୟଅନୁସାରେ ବ୍ୟୟ ।
ପରିମିତଭୋଜନ—ବି. ( କ.ଧା ) ଖାଦ୍ୟ ସମ୍ବନ୍ଧେ ସଂଯମ, (ବିଂ.ବି.ଗ୍ରା) ଖାଦ୍ୟମାନ ସମ୍ବନ୍ଧେ ସଂଯତ ।
ପରିମିତାଗ୍ରହ—ବି.(କ.ଧା)ସଂଯତ ଆଚରଣ ବା ବ୍ୟବହାର,(ପୁଂ.ବିଂ)ସଂଯତା ।
ପରିମିତାଗ୍ରହୀ—ପୁଂ. ବିଂ. ସଂଯତ ।
ପରିମିତି—ସ୍ତ୍ରୀ. ବି. (ପରି+ମା+ତି) କ୍ଷେତ୍ର ପରିମାଣ ବିଦ୍ୟା, ମାପିବା,ମାପର ଫଳ, ପରିମାଣ ।
ପରିମୁଖ—ବି. ମୁଖମଣ୍ଡଳର ଚାରିପାଖ ।
ପରିମୁକ୍ତ—ବିଂ. ସମ୍ୟକ୍ ରୂପେ ମୁକ୍ତ, ସ୍ୱାଧୀନ, ପରିତ୍ୟକ୍ତ, ବର୍ଜିତ ।
ପରିମୁଗ୍ଧ—ବିଂ.ସୁନ୍ଦର ଅଥଚ ସରଳ ।
ପରିମୁଚ୍ୟ—ବିଂ. ମୋଚନୀୟ, ମୋଚନଯୋଗ୍ୟ ।
ପରିମୁଣ୍ଡା—ଗ୍ରା. ବି. ଅନ୍ୟ ବ୍ୟକ୍ତି ବା ଦେବତାଙ୍କ ନିକଟରେ ନିଜର ହୀନତା ପ୍ରକାଶ, ମନର ଦୁଃଖ ପ୍ରକାଶ ।
ପରିମୁଣ୍ଡାଦିବା--ଗ୍ରା.କ୍ରି.ନମସ୍କାର କରିବା, ଆପଣାର ହୀନତା ପ୍ରକାଶ କରିବା. ଧନ୍ୟ ଧନ୍ୟ କରିବା,ପ୍ରଶଂସା କରିବା, ନେହୁରା ହେବା, ଅଭିମାନକରିବା ।
ପରିମୂଢ଼—ବିଂ. (ପରି+ମୁହ୍ + କ.ତ) ବ୍ୟାକୁଳ, ଆଲୋଡ଼ିତ, କ୍ଷୋଭିତ ।
ପରିମୂଢ଼ତା—ସ୍ତ୍ରୀ.ବି. ବ୍ୟାକୁଳତା, ଭ୍ରମ, ବିରକ୍ତି । [ ଜରାତୁର ।
ପରିମୂର୍ଣ୍ଣୀ—ସ୍ତ୍ରୀ. ବିଂ. ବୃଦ୍ଧା, ଜରାଗ୍ରସ୍ତା,
ପରିମୃଷ୍ଟ—ବିଂ.(ପରି+ମୃଷ୍+ମି.ତ) ମାର୍ଜିତ, ଘୃଷ୍ଟ, ମର୍ଦ୍ଦିତ, ଆଲିଙ୍ଗିତ ।
ପରିମେୟ—ବିଂ. (ପରି+ମା+ମି.ଯ) ପରିମାଣବିଶିଷ୍ଟ, ଗଣନୀୟ,ପରିମିତ, ସଂଯତ, ନିର୍ଦ୍ଦିଷ୍ଟ ସଂଖ୍ୟକ, ପରିମାଣ ଯୋଗ୍ୟ ।
ପରିମୋକ୍ଷ—ପୁଂ.ବି.(ପରି + ମୋକ୍ଷ+ଭା.ଅ) ପରିତ୍ରାଣ, ପରିତ୍ୟାଗ ମଳତ୍ୟାଗ, ବିଷ୍ଠା, ନିର୍ବାଣ,ମୋଚନ,ଭଙ୍ଗ ।
ପରିମୋକ୍ଷଣ—କ୍ଲୀ.ବି. (ପରି+ମୋକ୍ଷ୍+ଭା.ଅନ) ପରିତ୍ୟାଗ, ମୁକ୍ତି, ମୋକ୍ଷ, ମଳତ୍ୟାଗ କରିବା,ଧୌତକ୍ରିୟା ଦ୍ୱାରା ପରିଷ୍କାରକରଣ ।
ପରିମୋଷ—ପୁଂ.ବି. ସ୍ତେୟ, ଚୋରି ।
ପରିମୋଷକ—ପୁଂ. ବି. ପରିମୋଷଣକାରୀ, ଚୋର ।

ପରିମୋଷୀ—ବି°.(ପରି+ମୁଷ+ଇନ୍) ପରିମୋଷଣଶୀଳ, ଚୌର୍ଯ୍ୟସ୍ୱଭାବାପନ୍ନ, ଚୋର ସ୍ୱଭାବଯୁକ୍ତ ।

ପରିମୋହନ—କ୍ଲୀ. ବି. ବଶୀକରଣ, ମୋହ ସମ୍ପାଦନ ।

ପରିମୋହିତ—ବି°.ଆଲୋଡ଼ିତ,ଚେତନାଶୂନ୍ୟ, ଅନ୍ତର୍ବୋଧଶୂନ୍ୟ ।

ପରିମ୍ଳାନ—ବି°. ଅତ୍ୟନ୍ତ ମ୍ଳାନ, କ୍ଷୀଣୀଭୂତ, କ୍ଳାନ୍ତ, ଝାଉଁଳି ଯାଉଥିବା,(ବି) ମୁଖମାଳିନ୍ୟ, ଶୋକ, କଳଙ୍କ, ଦାଗ ।

ପରିରକ୍ଷକ—ପୁଂ.ବି. (ପରି+ରକ୍ଷ୍+ଅକ) ରକ୍ଷାକର୍ତ୍ତା, ସର୍ବତୋଭାବରେ ରକ୍ଷାକାରୀ ।

ପରିରକ୍ଷଣ—କ୍ଲୀ.ବି. (ପରି+ରକ୍ଷ୍+ଭା.ଅନ)ସଂରକ୍ଷଣ,ଯତ୍ନ, ସାବଧାନତା ।

ପରିରକ୍ଷଣୀୟ—ବି°. (ପରି+ରକ୍ଷ୍+ମିଁ.ଅନୀୟ)ରକ୍ଷାଯୋଗ୍ୟ, ସକଳପ୍ରକାର ରକ୍ଷାର ଯୋଗ୍ୟ ।

ପରିରକ୍ଷିତବ୍ୟ—ବି°. (ପରି+ରକ୍ଷ୍+ତବ୍ୟ) ପରିରକ୍ଷଣୀୟ ଦେଖ ।

ପରିରକ୍ଷିତା—ପୁଂ.ବି°. (ପରି+ରକ୍ଷ୍+କ.ତୃ) ପରିରକ୍ଷକ, ରକ୍ଷାକର୍ତ୍ତା, ସର୍ବତୋଭାବେ ରକ୍ଷାକାରୀ ।

ପରିରଟନ—ବି. (ପରି+ରଟନ) ଉଚ୍ଚୈଃସ୍ୱରରେ କାନ୍ଦିବା, ଚିତ୍କାର କରିବା ।

ପରିରବ୍ଧ—ବି°.(ପରି+ରଭ୍+ମିଁ.ତ) ଆଲିଙ୍ଗିତ, (କ.ତ) ଆଲିଙ୍ଗନକାରୀ ।

ପରି(ରୀ)ରମ୍ଭ—ପୁଂ.ବି. (ପରି+ରଭ୍+ଭା.ଅ) ଆଲିଙ୍ଗନ, କୁଣ୍ଢେଇବା, ରମଣ ।

ପରିରମ୍ଭଣ—କ୍ଲୀ.ବି. (ପରି+ରଭ୍+ଭା.ଅନ) ଆଲିଙ୍ଗନ, ଆଶ୍ଳେଷ, ରମଣ, କୁଣ୍ଢାଇବା ।

ପରିରଚକ—ବି°. (ପରି+ରଚ୍+କ.ଅକ) ସର୍ବଦା ରଚନାକାରୀ, ଉଚ୍ଚୈଃସ୍ୱରରେ ଚିତ୍କାରକାରୀ ।

ପରିରପ୍ସୁ—ବି°. (ପରି+ରଭ୍+ସନ୍.ଉ) ଆଲିଙ୍ଗନେଚ୍ଛୁ, ରମଣେଚ୍ଛୁ ।

ପରିରୋଧ—ପୁଂ.ବି. (ପରି+ରୁଧ୍+ଅ) ସମ୍ୟକ୍ ଅବରୋଧ,ଅଟକ,ଅଟକାଇବା ।

ପରିଲଘୁ—ବି°. ଅତିଲଘୁ, ସହଜରେ ଯାହା ପରିପାକ ହୁଏ ।

ପରିଲମ୍ବନ—ବି. (ଜ୍ୟୋତିଷ)କୌଣସି ଜ୍ୟୋତିଷ୍କର ଆପଣାର ମେରୁଦଣ୍ଡ ଉପରେ ଘୁରୁ ଘୁରୁ ବିଷୁବରେଖାର ଏକଦିଗରେ ୨୭ ଡିଗ୍ରୀ ପର୍ଯ୍ୟନ୍ତ ଯାଇ ପୁଣି ଫେରିଆସି ଅପର ଦିଗରେ ୨୭ ଡିଗ୍ରୀ ପର୍ଯ୍ୟନ୍ତ ଗତି କରି ପୁଣି ଆପଣା ସ୍ଥାନକୁ ଫେରି ଆସିବା, ପଛରେ ରହିଯିବା ।

ପରିଲଙ୍ଘନ—ବି. (ପରି+ଲଙ୍ଘନ)ଘଷିମାଜି ଚିକ୍କଣ କରିବା, ପାଲିସକରିବା ।

ପରିଲୁପ୍ତ—ବି°. (ପରି+ଲୁପ୍+ତ) ଅଦୃଶ୍ୟ, ଗତ, ହୃତ ।

ପରିଲେଖ—ପୁଂ. ବି. (ପରି+ଲିଖ୍+ଅ) ପରିତୋ ଲେଖନ ସାଧନ ଦ୍ରବ୍ୟ ।

ପରିଲେଖନ—କ୍ଲୀ.ବି. (ପରି+ଲିଖ+ଭା.ଅନ) ସଙ୍କସ୍ଥାନର ସୀମାକୁ ଗୁରିଆଡ଼େ ରେଖାଦ୍ୱାରା ବେଷ୍ଟନ,କୌଣସି ବସ୍ତୁର ଚତୁଃପାର୍ଶ୍ୱରେ ରେଖା କାଟିବା ।

ପରିଲେପ—ପୁଂ.ବି. ଦାଜ, ବିଲାପ ।

ପରିବଲ୍ଲା—ସ୍ତ୍ରୀ.ବି. ଗୋଲକାର ବେଢ଼ବିଶେଷ, ନଗରୀବିଶେଷ ।

ପରିବତ୍ସର—ପୁଂ.ବି.ସମ୍ବତ୍ସର ପଞ୍ଚକର ଅନ୍ତର୍ଗତ୨ୟ ବତ୍ସର,ବୃହସ୍ପତିର ଦ୍ୱାଦଶ ରାଶିଭୋଗ୍ୟ କାଳ, ସମ୍ବତ୍ସର, ଏକବର୍ଷ ।

ପରିବତ୍ସରୀଣ—ବି°. ସମସ୍ତ ବର୍ଷବ୍ୟାପୀ ।

ପରିବତ୍ସରୀୟ—ବି°. ସମସ୍ତ ବର୍ଷ ସମ୍ବନ୍ଧୀୟ ।

ପରିବଦନ—କ୍ଲୀ.ବି. (ପରି+ବଦ୍+ଭା.ଅନ) ପରିବାଦ, ନିନ୍ଦା, ପରର ଦୋଷ ବର୍ଣ୍ଣନ ।

ପରିବନ୍ଧନ—ବି. (ପରି+ବନ୍ଧନ) ଗୁଡ଼େଇକରି ବାନ୍ଧିବା ।

ପରିବର୍ଜ୍ଜକ—ବି°.(ପରି+ବୃଜ୍+କ.ଅକ) ପରିବର୍ଜନକାରୀ, ପରିତ୍ୟାଗୀ ।

ପରିବର୍ଜ୍ଜନ—କ୍ଲୀ.ବି. (ପରି+ବୃଜ୍+ଭା.ଅନ) ମାରଣ, ହତ୍ୟା,ବଧ, ପରିତ୍ୟାଗ, ବିସର୍ଜନ ।

ପରିବର୍ଜ୍ଜନୀୟ—ବି°. ପରିବର୍ଜନର ଯୋଗ୍ୟ, ପରିତ୍ୟାଗାର୍ହ ।

ପରିବର୍ଜିତ—ବି°. (ପରି+ବୃଜ୍+ମିଁ.ତ) ପରିତ୍ୟକ୍ତ, ଗୁରିଆଡ଼େ ଗୁଡ଼ିଆ ହୋଇଥିବା ।

ପରିବର୍ତ୍ତ—ପୁଂ.ବି. (ପରି+ବୃତ୍+ଅ) ବିନିମୟ, ବଦଳ, ଅବସ୍ଥାନ୍ତର, ଜଗତର ଅନ୍ତ, ବର୍ଷ, ଫେରସ୍ତ, କୂର୍ମରାଜ, ଅପବର୍ତ୍ତନ, ଯୁଗାନ୍ତକାଳ, ମୃତ୍ୟୁପୁଅ ଦୁଃସହଙ୍କ ପୁତ୍ରବିଶେଷ, ଗ୍ରହର ସ୍ୱକକ୍ଷରେ ଘୂର୍ଣ୍ଣନ, ଗୃହ, ସ୍ଥାନ, ପୁସ୍ତକର ପରିଚ୍ଛେଦ,କଡ଼ ଲେଉଟାଇବା, ଲୁଣ୍ଠନ, ଇତସ୍ତତଃ ଚଳନ ।

ପରିବର୍ତ୍ତକ—ବି°. ଯେ ବଦଳାଏ, ଯେ ଫେରିଆସେ ।

ପରିବର୍ତ୍ତନ—କ୍ଲୀ.ବି. (ପରି+ବୃତ୍+ଅନ)ପରିବର୍ତ୍ତ ଦେଖ,ବାଳକାଟିବା, ରକ୍ଷଣ ।

ପରିବର୍ତ୍ତନଶୀଳ—ବି°. (ବ.ବ୍ରୀ) ପରିବର୍ତ୍ତନ ସ୍ୱଭାବବିଶିଷ୍ଟ,ଯାହାର କେବଳ ରୂପାନ୍ତରିତ ହୋଇଅଛି, ଯାହା ବଦଳେ, ଯାହା ଘୂରେ ।

ପରିବର୍ତ୍ତନୀୟ—ବି°. (ପରି+ବୃତ୍+ମିଁ.ଅନୀୟ) ପରିବର୍ତ୍ତନ ଯୋଗ୍ୟ,ଯାହା ବଦଳାଇବା ଉଚିତ ।

ପରିବର୍ତ୍ତମାନ—ବି°. (ପରି+ବୃତ୍+କ.ଆନ) ଯାହା ବଦଳା ହୋଇଅଛି ।

ପରିବର୍ତ୍ତିକା—ସ୍ତ୍ରୀ.ବି. ଉପସ୍ଥର ରୋଗବିଶେଷ ।

ପରିବର୍ତ୍ତିତ—ବି°. (ପରି+ବର୍ତ୍ତି+ମିଁ.ତ) ଯାହା ବଦଳ କରାହୋଇଅଛି, ଏକ ସ୍ଥଳରେ ଅନ୍ୟର ସ୍ଥାପିତ,ରୂପାନ୍ତରିତ, ଅବସ୍ଥାନ୍ତର ପ୍ରାପ୍ତ ।

ପରିବର୍ତ୍ତିନୀ—ସ୍ତ୍ରୀ. ବି°. ପରିବର୍ତ୍ତୀର ସ୍ତ୍ରୀଲିଙ୍ଗ, (ବି) ଭାଦ୍ର ଶୁକ୍ଳ ଏକାଦଶୀ, ପାର୍ଶ୍ୱ ପରିବର୍ତ୍ତନ ଏକାଦଶୀ ।

ପରିବର୍ତ୍ତୀ—ପୁଂ.ବି°.ପରିବର୍ତ୍ତନ ସ୍ୱଭାବ

ବିଶିଷ୍ଟ, ଯେ ବଦଳଯାଏ,ପରିବର୍ତ୍ତନଶୀଳ ।

**ପରିବର୍ତ୍ତୁଳ**—ବି°. ପୂର୍ଣ୍ଣଗୋଲାକାର ।

**ପରିବର୍ତ୍ତେ**—ଗ୍ରା. ଅବ୍ୟ. ( ଅମୁକର ) ବଦଳରେ, ସ୍ଥାନରେ ।

**ପରିବର୍ଦ୍ଧକ**—ବି°. (ପରି+ବୃଧ୍+କ. ଅକ) ବୃଦ୍ଧିକାରକ, ପାଳନକାରୀ, (ବି) ଘୋଡାସହିସ, ଅଶ୍ୱରକ୍ଷକ ।

**ପରିବର୍ଦ୍ଧନ**—କ୍ଲୀ. ବି. (ପରି+ବର୍ଦ୍ଧି+ଭା.ଅନ) ସମ୍ୟକ୍‌ରୂପେ ବୃଦ୍ଧିକରଣ, ବଢ଼ିବା, ଗୋରୁଆଦି ଜୀବମାନଙ୍କୁ ପାଳି ବଢ଼ାଇବା ।

**ପରିବର୍ଦ୍ଧିତ**—ବି°. (ପରି+ବର୍ଦ୍ଧି+ର୍ମ.ତ) ବୃଦ୍ଧିପ୍ରାପିତ,ଯାହା ବଢ଼ାହୋଇଅଛି, ବିସ୍ତାରିତ, ଲାଳିତପାଳିତ, ଖୋଳାଯାଇଥିବା (ଜଳାଶୟ) ।

**ପରିବର୍ହ**—ପୁ°. ବି. (ପରି+ବର୍ହ+ଣ. ଅ) ପରିଧେୟ,ପୋଷାକ, ଗୃହଦ୍ରବ୍ୟାଦି, ଅସବାବ, ପରିଚ୍ଛଦ, ରାଜଚିହ୍ନ ଗୃହର ଛଣାଦି ।

**ପରିବସଥ**—ପୁ°. ବି. (ପରି+ବସ୍+ଅଧି.ଅଥ) ଗ୍ରାମ ।

**ପରିବହ**—ପୁ°.ବି. (ପରି+ବହ+କ.ଅ) ସପ୍ତବାୟୁର ଅନ୍ତର୍ଗତ ଷଷ୍ଠବାୟୁ ।

**ପରିବା**—ଗ୍ରା. ବି. କଞ୍ଚାତରକାରୀ,ରନ୍ଧାହୋଇ ନ ଥିବା ଉଦ୍ଭିଜ୍ଜ ଖାଦ୍ୟଦ୍ରବ୍ୟ, ଭକ୍ଷଣଯୋଗ୍ୟ ଫଳମୂଳ ।

**ପରି(ରୀ)ବାଦ**—ପୁ°.ବି. ଅପବାଦ,ନିନ୍ଦା, ତିରସ୍କାର,ବୀଣାଦିର ତନ୍ତ୍ରୀକୁ ବଜାଇବା ପାଇଁ ବ୍ୟବହୃତ ଅଙ୍ଗୁଳିତ୍ର,ମିଜରାବ ।

**ପରିବାଦକ**—ବି°. (ପରି+ବଦ୍+କ ଅକ) ଅପବାଦକାରୀ, ନିନ୍ଦକ,ଦୋଷକୀର୍ତ୍ତିକ, ବୀଣାବାଦକ ।

**ପରିବାଦିନୀ**—ସ୍ତ୍ରୀ. ବି. (ପରି+ବଦ୍+ଇନ୍+ଈ) ସପ୍ତତନ୍ତ୍ରୀଯୁକ୍ତ ବୀଣା, (ସ୍ତ୍ରୀ. ବି°) ପରିବାଦୀର ସ୍ତ୍ରୀଲିଙ୍ଗ ।

**ପରିବାଦୀ**—ପୁ°. ବି°. (ପରିବାଦ+ଇନ୍) ନିନ୍ଦକ, ଅପବାଦକ, ଅପବାଦଯୁକ୍ତ, ପରିବାଦକର୍ତ୍ତା ।

**ପରିବାଧା**—ବି. (ପରି+ବାଧା) ଅତ୍ୟନ୍ତ ପୀଡ଼ା ବା କଷ୍ଟ, ଶ୍ରମ, ମିହନ୍ତ ।

**ପରିବାପ**—ପୁ°. ବି. (ପରି+ବପ୍+ଣିଚ୍+ଭା.ଅ) ପର୍ଯ୍ୟୁପ୍ତ,ବପନ,ପରିଚ୍ଛେଦ, ମୁଣ୍ଡନ, ଲଣ୍ଡାକରିବା,(ଅଧି.ଅ) କୃତ୍ରିମ କ୍ଷୁଦ୍ର ଜଳାଶୟ, ଘରର ଉପକରଣ, ଅନୁଚରବର୍ଗ, (ର୍ମ.ଅ) ମୃତି ।

**ପରିବାପନ**—କ୍ଲୀ. ବି. (ପରି+ବାପି+ଭା.ଅନ) ମୁଣ୍ଡନ, ଲଣ୍ଡାକରି କ୍ଷୌର କରିବା,ପରିବାପ ଦେଖ,ପରିଚ୍ଛେଦ ।

**ପରିବାପିତ**—ବି°. (ପରି+ବାପି+ର୍ମ.ତ) ମୁଣ୍ଡିତ, ଲଣ୍ଡାକରାଇଯାଇଥିବା, ବୁଣାଯାଇଥିବା, ଉପ୍ତ, ରୋପିତ ।

**ପରିବାପ୍ୟ**—ବି°. ପରିବାପଯୋଗ୍ୟ, ମୁଣ୍ଡନଯୋଗ୍ୟ ।

**ପରି(ରୀ)ବାର**—ପୁ°. ବି. (ପରି+ବୃ+ଅ) ପରିଜନ, କୁଟୁମ୍ବାଦି,ପୋଷ୍ୟବର୍ଗ, ଖଡ୍ଗକୋଷ, ଖଣ୍ଡାର ଖୋଳ, ପରିଚ୍ଛଦ, ଆବରଣ, ଭାର୍ଯ୍ୟା, ଗ୍ରାମର ଚତୁଃପାର୍ଶ୍ୱସ୍ଥ ବାଡ,କାଠ ଓ ବୃକ୍ଷବର୍ଗ, ରଜା ଓ ଦେବତାଙ୍କ ଗହଣରେ ଥିବା ଛତ୍ରଚାମରାଦି ସାମଗ୍ରୀ ।

**ପରିବାରଣ**—କ୍ଲୀ.ବି.ଆବରଣ,ଘୋଡ଼ଣି, କୋଷ, ଖାପ, ଖୋଳ ।

**ପରିବାରିତ**—ବି°. (ପରିବାର+ତ) ବେଷ୍ଟିତ,ଆବୃତ, ଘୂରିଆଡ଼େ ଘେରାଯାଇଥିବା । [ ଶ୍ରେଣୀ ।

**ପରିବାରୀ**—ଗ୍ରା. ସ୍ତ୍ରୀ. ବି. ଦାସୀ, ଗୃହକ-

**ପରିବାସ**—ପୁ°. ବି. (ପରି+ବସ୍+ଅଧି.ଅ)ଗୃହ, (ଭା.ଅ)ଅବସ୍ଥାନ,ପ୍ରବାସ, ବିଦେଶବାସ,(ପରି+ବାସ) ସୁବାସ, ସୁଗନ୍ଧ ।

**ପରିବାସନ**—କ୍ଲୀ. ବି. ଯଜ୍ଞୀୟ ବେଦୀଚ୍ଛାଦନାନୁକୂଳ ବ୍ୟାପାରବିଶେଷ,ଖଣ୍ଡ ।

**ପରିବାହ**—ପୁ°. ବି.(ପରି+ବହ୍+ଅ) ଜଳପ୍ରବାହ, ଜଳୋଚ୍ଛ୍ୱାସ, ଉଚ୍ଛୁଳିବା, ମୁହାଣ, ଜଳ ନିର୍ଗମ ପ୍ରଣାଳୀ, ରାଜୋପହାର ଯୋଗ୍ୟ ପଦାର୍ଥ । [ ଶୀଳ ।

**ପରିବାହୀ**—ପୁ°.ବି°. ଭାସମାନ,ପ୍ରବାହ-

**ପରିବିକ୍ଷୋଭ**—ପୁ°. ବି°. (ପରି+ବି+କ୍ଷୁଭ୍+ଅ) ସମ୍ପୂର୍ଣ୍ଣ କ୍ଷୋଭନଶୀଳ, ହାନିକର ।

**ପରିବିତ୍ତ(ନ୍ନ)**—ପୁ°. ବି. (ପରି+ବିଦ୍+ର୍ମ.ତ) ଯେଉଁ ଅବିବାହିତ ବ୍ୟକ୍ତିର ସାନଭାଇ ବିବାହ ହୋଇଥାଏ, ବିବାହିତ କନିଷ୍ଠଭ୍ରାତାର ଅବିବାହିତ ଜ୍ୟେଷ୍ଠଭ୍ରାତା ।

**ପରିବିତ୍ତା(ନ୍ନା)**—ସ୍ତ୍ରୀ. ବି. (ପରିବିତ୍ତ+ଆ) ବିବାହିତ କନିଷ୍ଠାର ଅବିବାହିତା ଜ୍ୟେଷ୍ଠା ଭଗିନୀ ।

**ପରିବେତ୍ତ**—ପୁ°. ବି. (ପରି+ବିଦ୍+ତ) ପରିବିତ୍ତ ଦେଖ ।

**ପରିବିତ୍ତି**—ପୁ°. ବି. ପରିବିତ୍ତ ଦେଖ ।

**ପରିବେଦକ**—ପୁ°. ବି. (ପରି+ବିଦ୍+କ.ଅକ) ପରିବେତ୍ତା, ଅବିବାହିତ ଜ୍ୟେଷ୍ଠର ବିବାହିତ କନିଷ୍ଠ ଭ୍ରାତା ।

**ପରିବିନ୍ଦତ୍**—ପୁ°. ବି.(ପରି+ବିଦ୍+ଅତ୍) ପରିବେଦନକର୍ତ୍ତା, ଅବିବାହିତ ଜ୍ୟେଷ୍ଠ ଥାଉଥାଉ କୃତବିବାହ କନିଷ୍ଠ ।

**ପରିବେଦନ**—ବି. (ପରି+ବିଦ୍+ଭା. ଅନ) ବଡ଼ଭାଇର ବିବାହ ପୂର୍ବରୁ ସାନଭାଇର ବିବାହ, କ.ଅନ. ପରିବିତ୍ତ ଦେଖ ।

**ପରିବିତର୍କ**—କ୍ଲୀ. ବି. ପରୀକ୍ଷା, ପ୍ରଶ୍ନଜିଜ୍ଞାସା, ପ୍ରଶ୍ନପଚାରିବା ।

**ପରିବିଷ୍ଟ**—ବି°. (ପରି+ବିଶ୍+ର୍ମ.ତ) ପରିବୃତ, ବେଷ୍ଟିତ, ( ବିଷ୍+ତ ) ପରଷାଯାଇଥିବା (ଖାଦ୍ୟ) ।

**ପରିବିଷ୍ଟି**—ସ୍ତ୍ରୀ. ବି. (ପରି+ବିଶ୍+ଭା.ତି) ପରିଚର୍ଯ୍ୟା, ସେବା, ଚାକରି, ବେଷ୍ଟନ ।

**ପରିବୀକ୍ଷଣ**—କ୍ଲୀ. ବି. (ପରି+ବି+ଈକ୍ଷ୍+ଅନ)ପର୍ଯ୍ୟବେକ୍ଷଣ,ଅବଲୋକନ, ଅଭିନିବେଶ ପୂର୍ବକ ଦର୍ଶନ ।

**ପରିବୀତ**—ବି°. ( ପରି+ବୀ+ର୍ମ.ତ ) ପରିବେଷ୍ଟିତ, ସମାଚ୍ଛାଦିତ, ବ୍ୟାପ୍ତ ।

**ପରିବୃଂହଣ**—କ୍ଲୀ. ବି. (ପରି+ବୃଂହ୍+ଣିର୍+ଅନ) ବହୁଳୀକରଣ ।

ପରିବୃଂହିତ—ବି°. ସର୍ବତୋଭାବେ ବୃଦ୍ଧି-ବିଶିଷ୍ଟ, ହସ୍ତୀଗର୍ଜିତ, ବୃଦ୍ଧିବିଶିଷ୍ଟ, ସର୍ବତୋଭାବେ ଧ୍ୱନିତ ।

ପରିବୃଢ଼—ବି. (ପରି + ବୃହ୍ + କ.ତ) ଅଧିପ, ପ୍ରଭୁ, ସ୍ୱାମୀ ।

ପରିବୃତ—ବି°. (ପରି + ବୃ + ର୍ମି.ତ) ଆବୃତ, ବେଷ୍ଟିତ, ସମାବୃତ, ଆଚ୍ଛାଦିତ, ଘେରାହୋଇଥିବା ।

ପରିବୃତି—ସ୍ତ୍ରୀ.ବି. (ପରି + ବୃ + ଭା.ତି) ବେଷ୍ଟନ, ପରିବେଷ. ପରିଧି, ବାଡ଼, ଆବରଣ, ଢାଙ୍କୁଣୀ, ଘେରିବା ।

ପରିବୃତ୍ତ—ବି°. (ପରି + ବୃତ୍ + ର୍ମି.ତ) ବେଷ୍ଟିତ, ସମାହୃତ, ଘୂରିଥିବା, ପଛକୁ ଫେରିଥିବା, ବଦଳାଯାଇଥିବା, ଓଲଟା ପାଲଟା କରାଯାଇଥିବା, (ଭା-ଭା.ତ) ଆଲିଙ୍ଗନ ।

ପରିବୃତ୍ତି—ବି. (ପରି + ବୃତ୍ + ଭା.ତି) ପରିବର୍ତ୍ତନ, ବଦଳ, ପ୍ରତ୍ୟାବୃତ୍ତି, ଫେରିବା, ସମାପ୍ତି, ଘେର, ବେଷ୍ଟନ, ଅବସ୍ଥାନ, ଲିଙ୍ଗର ଅଗ ଚମର ସଂକୋଚନ, ରଚନାରେ ଭାବର ପରିବର୍ତ୍ତନ କରି ଏକଶବ୍ଦ ସ୍ଥଳରେ ଅନ୍ୟ ଶବ୍ଦର ବ୍ୟବହାର, ପରିବର୍ଜନ, ଅର୍ଥାଲଙ୍କାର-ବିଶେଷ ।

ପରିବେତ୍ତା—ପୁଂ.ବି. (ପରି + ବିଦ୍ + କ.ତୃ) ଜ୍ୟେଷ୍ଠ ଅବିବାହିତ ଥାଉଁ ଥାଉଁ ବିବାହିତ କନିଷ୍ଠ ଭ୍ରାତା ।

ପରିବେଦ—ପୁଂ.ବି. (ପରି + ବିଦ + ଭା.ଅ) ପରିଜ୍ଞାନ, ସମ୍ପୂର୍ଣ୍ଣ ଜାଣିବା ।

ପରିବେଦକ—ପୁଂ.ବି°. (ପରି + ବିଦ୍ + କ.ଅକ) ପରିବେତ୍ତା ଦେଖ, ପରିବେଦନକାରୀ ।

ପରିବେଦନ—କ୍ଲୀ.ବି. (ପରି + ବିଦ୍ + ଭା.ଅନ) ବିବାହ, ଜ୍ୟେଷ୍ଠବିବାହ ନ କରୁଣୁ କନିଷ୍ଠର ବିବାହ, ଅଗ୍ନ୍ୟାଧାନ, ପୂର୍ଣ୍ଣଜ୍ଞାନ, ସର୍ବତୋଭାବେ ବିଚାରଣ, ପ୍ରାପ୍ତି, ଲାଭ, ଅତ୍ୟନ୍ତ ଦୁଃଖ, କ୍ଲେଶ, ବାଦାନୁବାଦ, ଆଲୋଚନା, ବାଦବିବାଦ, ସର୍ବତୋଭାବେ ବିଦ୍ୟମାନତା ।

ପରିବେଦନା—ସ୍ତ୍ରୀ.ବି. ବିଦଗ୍ଧତା, ତୀକ୍ଷ୍ଣ ବୁଦ୍ଧିତା, ପରିମାଣଦର୍ଶିତା, ଯାତନା, ପରିତାପ, ବୁଦ୍ଧି, ବିବେଚନା ।

ପରିବେଦନୀ—ସ୍ତ୍ରୀ.ବି. (ପରି + ବିଦ୍ + କ.ଇନ୍ + ଈ) ପରିବେତ୍ତାର ସ୍ତ୍ରୀ, ଅବିବାହିତ ଜ୍ୟେଷ୍ଠର ବିବାହିତ, କନିଷ୍ଠ ଭ୍ରାତାର ପତ୍ନୀ ।

ପରିବେଶ(ଷ)—ପୁଂ.ବି. (ପରି + ବିଶ୍ (ଷ) + ଅ) ବେଷ୍ଟନୀ, ପରିଧି, ଚନ୍ଦ୍ର. ସୂର୍ଯ୍ୟମଣ୍ଡଳ, ମଣ୍ଡଳ ପରିଧାନ, ପରିବେଷଣ, ପରଷିବା ।

ପରିବେଷକ—ପୁଂ.ବି. (ପରି + ବିଷ୍ + କ.ଅକ) ବିଭାଜକ, ଯେ ବାଣ୍ଟିଦିଏ, ଯେ ପରିବେଷଣ କରେ, ପରଷୁଣି ।

ପରିବେଷଣ—କ୍ଲୀ.ବି. (ପରି + ବିଷ୍ + ଭା.ଅନ) ବେଷ୍ଟନ, ଭୋଜନ ମାତ୍ରରେ ଅନ୍ନାଦି ଦାନ, ଖାଦ୍ୟ ପରଷିବା, (କ.-ଅନ) ପରିଧି, ଚନ୍ଦ୍ର ସୂର୍ଯ୍ୟମଣ୍ଡଳ ।

ପରିବେଷବାନ—ବି°. (ପରି + ବେଷ + ବତ୍) ପରିବେଷଯୁକ୍ତ, ପରିବିଷ୍ଟ, ପରିମଣ୍ଡଳଯୁକ୍ତ, ଚନ୍ଦ୍ର ସୂର୍ଯ୍ୟାଦିଙ୍କର ଚତୁର୍ଦ୍ଦିଗସ୍ଥ ଜ୍ୟୋତିର୍ବିଶିଷ୍ଟ ।

ପରିବେଷ୍ଟନ—କ୍ଲୀ.ବି. (ପରି + ବେଷ୍ଟ + ଭା.ଅନ) ଘେରିବା, ପ୍ରଦକ୍ଷିଣ, ବେଷ୍ଟନ କରିବା, ( ଣ.ଅନ ) ପଟୀ, ବାଡ଼, ଘୋଡ଼ଣୀ, ହତା; ( କ.ଅନ ) ପରିଧି, ଗୁଡ଼ାଇବା, ବାନ୍ଧିବା ।

ପରିବେଷ୍ଟା—ପୁଂ. ବି°. (ପରି + ବିଷ୍ + କ.ତୃ) ପରିବେଷକ, ପରଷୁଣି, ବିଭାଗକାରୀ, ଅର୍ପଣକାରୀ ।

ପରିବେଷ୍ଟିତ—ବି°. (ପରି + ବେଷ୍ଟ + ର୍ମି.ତ) ଆବୃତ, ପରିବୃତ, ଚତୁର୍ଦ୍ଦିଗରେ ବେଷ୍ଟିତ, କୃତପ୍ରଦକ୍ଷିଣ ।

ପରିବେଷ୍ଟବ୍ୟ—ବି°. (ପରି + ବିଷ୍ + ର୍ମି.ତବ୍ୟ) ପରିବେଷଣଯୋଗ୍ୟ ।

ପରିବୋଧ—ବି. (ପରି + ବୋଧ) ସମ୍ୟକ୍-ଜ୍ଞାନ, ଦଣ୍ଡର ଧମକ ଦେଇ ବା କୁଫଳର ଭୟ ଦେଖାଇ କୌଣସି କାର୍ଯ୍ୟରୁ ରୋକିବା, ଚେତାଇବା ।

ପରିବ୍ୟକ୍ତ—ବି°. ପ୍ରକଟିତ, ସମ୍ୟକ୍ ରୂପେ ପ୍ରକାଶିତ ।

ପରିବ୍ୟୟ—ପୁଂ. ବି. ଖରଚ, ଦାନ, ପଣ୍ୟଦ୍ରବ୍ୟ, ମସଲା ।

ପରିବ୍ୟାଧ—ପୁଂ. ବି. ( ପରି + ବ୍ୟଧ + ଅ) ଜଳବେତସ, ପାଣି ବେଗୁନିଆ, ଦ୍ରୁମୋତ୍ପଳ, କନିଅର, ଗେଣ୍ଡୁଫୁଲ, ଋଷିବିଶେଷ, ( ବି° ) ଚତୁର୍ଦ୍ଦିଗରେ ବେଧନକାରକ ।

ପରିବ୍ରଜ୍ୟ—ବି°. ପରିଭ୍ରମଣ ଯୋଗ୍ୟ

ପରିବ୍ରଜ୍ୟା—ସ୍ତ୍ରୀ. ବି. ( ପରି + ବ୍ରଜ୍ୟା ) ତପସ୍ୟା, ସନ୍ନ୍ୟାସଧର୍ମ, ଧର୍ମାର୍ଥ ପରିଭ୍ରମଣ, ଇତସ୍ତତଃ ପରିଭ୍ରମଣ, ବାନପ୍ରସ୍ଥ ଆଶ୍ରମ ପରେ ଚତୁର୍ଥ ଆଶ୍ରମ ବା ଭିକ୍ଷୁବୃତ୍ତି ଅବଲମ୍ବନ ପୂର୍ବକ ନାନାସ୍ଥାନ ପର୍ଯ୍ୟଟନ ।

ପରିବ୍ରଢ଼ିମା—ପୁଂ. ବି. ( ପରି + ବୃଢ଼ + ଇମନ୍) ଆଧିପତ୍ୟ ।

ପରିବ୍ରାଜ୍—ପୁଂ.ବି. (ପରି + ବ୍ରଜ + କ୍ୱିପ୍) ଭିକ୍ଷୁ, ଯତି, ପର୍ଯ୍ୟଟକ ।

ପରିବ୍ରାଜ—ପୁଂ. ବି. (ପରି + ବ୍ରଜ୍ + ଅ) ପରିବ୍ରାଜକ ଦେଖ ।

ପରିବ୍ରାଜକ—ପୁଂ. ବି. (ପରି + ବ୍ରଜ୍ + ଅକ) ଭ୍ରମଣକାରୀ, ସନ୍ନ୍ୟାସୀ, ଭିକ୍ଷୁ, ଚତୁର୍ଥାଶ୍ରମୀ, (ସ୍ତ୍ରୀ) ପରିବ୍ରାଜିକା ।

ପରିବ୍ରାଜନ—ବି. (ପରି + ବ୍ରଜ୍ + ଅନ) ପରିଭ୍ରମଣ, ପରିବ୍ରଜ୍ୟା ଗ୍ରହଣ, ପର୍ଯ୍ୟଟନ ।

ପରିବ୍ରାଜିକା—ସ୍ତ୍ରୀ. ବି. ( ପରି + ବ୍ରଜ୍ + ଅକ + ଆ) ଭିକ୍ଷୁଣୀ ।

ପରିବ୍ରାଟ୍—ପୁଂ. ବି. ପରିବ୍ରାଜ୍ ଦେଖ ।

ପରିଶଙ୍କନୀୟ—ବି°. (ପରି + ଶଙ୍କ୍ + ର୍ମି.ଅନୀୟ) ଅତିଶୟ ଶଙ୍କାର ଯୋଗ୍ୟ, ଭୟର ବିଷୟ ।

ପରିଶଙ୍କୀ—ପୁଂ. ବି°. (ପରିଶଙ୍କ + ଇନ୍) ଅତିଶୟ ଶଙ୍କାଯୁକ୍ତ, ଭୀତ ।

ପରିଶାପ—ପୁଂ.ବି. ଅଭିସମ୍ପାତ, ଅଭିଶାପ, ତିରସ୍କାର ।

ପରିଶମିତ—ବି°. ନିର୍ବାପିତ, ଉପଶମ-ପ୍ରାପ୍ତ, ଦୂରୀଭୂତ ।

ପରିଶାଶ୍ୱତ—ବି. ଚିରକାଲ ଏକରୂପ ।
ପରିଶିଷ୍ଟ—ବି. (ପରି+ଶିଷ୍+ର୍ମ.ତ) ଅବଶିଷ୍ଟ, ବାକି, ଯାହା ପରିଶେଷରେ ଯୁକ୍ତହୁଏ,(ବି)ପୁସ୍ତକ ଶେଷରେ ଯୋଗ କରିବା ଅତିରିକ୍ତ ଜ୍ଞାତବ୍ୟ ବିଷୟ ଲେଖାଥିବା ଅଂଶ, ବାକିଥିବା ଅଂଶ ।
ପରିଶୀଳନ—କ୍ଲୀ. ବି. (ପରି+ଶୀଲ୍+ଅନ) ଅତିଶୟ ଅନୁଶୀଳନ, ଚର୍ଚ୍ଚା, ଅବଗାହନ, ସଙ୍ଗମ, ଆଲିଙ୍ଗନ, ଅନୁଷ୍ଠାନ । [ ଅନୁଶୀଳନ ।
ପରିଶୀଳନୀ—ବି. ( ପରିଶୀଳନ+ଈ )
ପରିଶୁଦ୍ଧ—ବି.(ପରି+ଶୁଧ+ତ)ଶୁଦ୍ଧ, ପରିଷ୍କୃତ,କଳ୍ପିତ,ସଂଶୋଧିତ,ପବିତ୍ରୀକୃତ ।
ପରିଶୁଷ୍କ—ବି. (ପରି+ଶୁଷ୍+କ.ତ) ବିଶୁଷ୍କ, ନୀରସ, ଶୁଖିଲା, ଝାଉଁଳିଥିବା, (କ୍ଲୀ.ବି.ଭା.ତ)ପରିପକ୍ୱ ମାଂସବିଶେଷ ।
ପରିଶୂନ୍ୟ—ବି. ଅତିଶୟ ଶୂନ୍ୟ ବା ବିରହିତ ।
ପରିଶ୍ରୁ(ସ୍ରୁ)ତ—କ୍ଲୀ. ବି. ସୁରା, ମଦ୍ୟ ।
ପରିଶେଷ—ପୁଂ. ବି. ( ପରି + ଶେଷ ) ଅବଶେଷ, ଅବସାଦ, ଉପସଂହାର, ସମାପନ, ଅନ୍ତ, ଧଡ଼ି, ସୀମା, (ବି) ଅବଶିଷ୍ଟ, ପରିଶିଷ୍ଟ ।
ପରିଶେଷରେ—କ୍ରି.ବି.ବି.ସର୍ବଶେଷରେ, ସବା ଶେଷରେ ।
ପରିଶୋଧ—ପୁଂ. ବି. ( ପରି + ଶୁଧ୍+ଭା.ଅ) ପରିଶୋଧନ, ସର୍ବତୋଭାବେ ଶୁଦ୍ଧି, ସଂଶୋଧନ, ଋଣଶୋଧ, ଧାର କରଜ ସୁଝିବା ।
ପରିଶୋଧନ—କ୍ଲୀ. ବି. (ପରି+ଶୁଧ୍+ଭା.ଅନ) ପରିଶୋଧ ଦେଖ ।
ପରିଶୋଷ—ପୁ . ବି. (ପରି+ଶୁଷ୍+ଭା.ଅ) ସର୍ବତୋଭାବେ ଶୁଷ୍କତା, ନୀରସତା, ବାଷ୍ପ ଦ୍ୱାରା ଜଳାଦିର ଅନ୍ତର୍ଦ୍ଧାନ ।
ପରିଶୋଷଣ—କ୍ଲୀ.ବି. (ପରି+ଶୁଷ୍+ଭା.ଅନ) ପରିଶୋଷ ଦେଖ ।
ପରିଶ୍ରମ—ପୁଂ. ବି. (ପରି+ଶ୍ରମ୍+ଭା.ଅ)ଅଭ୍ୟାସ, କ୍ଲେଶ, ମିହନ୍ତ, ଉଦ୍ଯୋଗ, ଅଧ୍ୟବସାୟ, ଚେଷ୍ଟା ।
ପରିଶ୍ରମାପହ—ବି.(ପରିଶ୍ରମ+ଅପ୍+ହନ୍+କ.ଅ) ପରିଶ୍ରମ ଅପନୋଦନକାରୀ (ବାୟୁ, ଜଳ ପ୍ରଭୃତି) ।
ପରିଶ୍ରମୀ—ପୁଂ. ବି. (ପରିଶ୍ରମ+ଇନ୍) ଅଧ୍ୟବସାୟୀ, ସହନଶୀଳ, ଉଦ୍ଯୋଗୀ, ପରିଶ୍ରମକାରୀ ।
ପରିଶ୍ରୟ—ପୁଂ.ବି. (ପରି+ଶ୍ରୀ+ର୍ମ.ଅ) ସଭା, ଆଶ୍ରୟସ୍ଥାନ, ବେଷ୍ଟନ, ବାଡ଼ ।
ପରିଶ୍ରାନ୍ତ—ବି.(ପରି+ଶ୍ରମ୍+ତ)ସର୍ବତୋଭାବେ ଶ୍ରାନ୍ତିଯୁକ୍ତ, କ୍ଲିଷ୍ଟ, କ୍ଲାନ୍ତ ।
ପରିଶ୍ରାନ୍ତି—ବି. (ପରି+ଶ୍ରମ୍+ଭା.ତି) ପରିଶ୍ରମ ଦେଖ ।
ପରିଶ୍ରୁତ—ବି. (ପରି+ଶ୍ରୁ+ର୍ମ.ତ) ଯାହା ଶୁଣାଯାଇଅଛି, ବିଖ୍ୟାତ, ବିଶ୍ରୁତ ।
ପରିଶ୍ଳିଷ୍ଟ—ବି. (ପରି+ଶ୍ଳିଷ୍+ର୍ମ.ତ) ଆଲିଙ୍ଗିତ ।
ପରିଶ୍ଳେଷ—ପୁଂ. ବି. (ପରି+ଶ୍ଳିଷ୍+ଭା.ଅ) ଆଶ୍ଳେଷ, ଆଲିଙ୍ଗନ ।
ପରିଷଦ୍—ସ୍ତ୍ରୀ.ବି. (ପରି+ସଦ୍+ଅଧି. କ୍ୱିପ୍) ସଭା, ସମାଜ, ବହୁ ଜନସମାଗମ ସ୍ଥାନ, ସମୂହ, ( ପରି+କ+କ୍ୱିପ୍ ) ସଭାର ସଭ୍ୟ, ଦର୍ଶକ ।
ପରିଷଦ—ପୁଂ. ବି. (ପରି+ସଦ୍+ଅ) ପରିଷଦ୍, ଅନୁଚର, ସଭାସଦ୍, ସଭ୍ୟ, ସଦସ୍ୟ ।
ପରିଷଦ୍ବଳ—ବି. ( ପରିଷଦ୍+ବଳ ) ସଭ୍ୟ, ସଦସ୍ୟ ।
ପରିଷ୍କଣ୍ଣ—ବି. (ପରି+ସ୍କନ୍ଦ୍+ର୍ମ.ତ) ପରିସ୍କନ୍ଦ, ପରିପୁଷ୍ଟ, ପରିପାଳିତ, (ବି)କୋକିଳ,ମାତା ପିତା ଛଡ଼ା ଅନ୍ୟ ବ୍ୟକ୍ତି ଦ୍ୱାରା ପାଳିତ ପୁତ୍ର, ଦୁଲ୍ଲାଳ, ଭୃତ୍ୟବିଶେଷ ।
ପରିଷ୍କନ୍ଦ—ବି. ବି. ପରିଷ୍କଣ୍ଣ ଦେଖ ।
ପରିଷ୍କର୍ତ୍ତା—ପୁଂ. ବି. (ପରି+କୃ+କ. ତୃ)ସଂଶୋଧକ,ସଂସ୍କାରକ,ପରିଷ୍କାରକ ।
ପରିଷ୍କରଣ—ବି. (ପରି+କୃ+ଭା.ଅନ) ପରିଷ୍କାର ଦେଖ ।
ପରିଷ୍କାର—ବି. ( ପରି+କୃ+ଭା.ଅ ) ଶୋଧନ, ସଂସ୍କାର, ପାକକରଣ,ସଜ୍ଜିତୀକରଣ, (ର୍ମ.ଅ) ଗୃହର ଉପକରଣାଦି, ସଂଯମ, ସ୍ୱଚ୍ଛତା, ଶୋଭା, ଅଳଂକାର; ଦୀକ୍ଷା ଗ୍ରହଣ, (ଗ୍ରା.ବି. ସଂ-ପରିଷ୍କୃତ) ପରିଷ୍କୃତ, ନିର୍ମଳ, ସଫା, ସ୍ୱଚ୍ଛ, ସ୍ପଷ୍ଟ, ମନୋହର, ମଳହୀନ,ଅକପଟ, ନିଃସନ୍ଦେହ, ସୁନ୍ଦର, ଖୋଲସା, ପରିଚ୍ଛନ୍ନ, ସ୍ୱାଭାବିକ,(ଗ୍ରା.କ୍ରି.ବି)ସ୍ପଷ୍ଟରୂପେ,ସୁନ୍ଦରରୂପେ,ନିର୍ମଳରୂପେ, ସରଳ ଭାଷାରେ ।
ପରିଷ୍କାରଣ--ବି. ପାଳିତପୁତ୍ର,ଦତ୍ତକପୁତ୍ର ।
ପରିଷ୍କୃତ—ବି. (ପରି+କୃତ) ଭୂଷିତ, ବେଷ୍ଟିତ, ସୁବୋଧ, ଶୋଭାଯୁକ୍ତ,ନିର୍ମଳ, ଶୋଧିତ, ସଫା, ନିର୍ମଳୀକୃତ ।
ପରିଷ୍କ୍ରିୟା—ସ୍ତ୍ରୀ. ବି. ପରିଷ୍କାରକରଣ, ଅଳଂକରଣ, ଶୋଧନ, ମଜାମଜି, ସଜାଇବା ।
ପରିଷ୍ଟବନ—ବି. (ପରି+ସ୍ତୁ+ଭା.ଅନ) ଅତ୍ୟନ୍ତ ପ୍ରଶଂସା କରିବା, ସମ୍ୟକ୍ ପ୍ରକାର ସ୍ତୁତିକରିବା ।
ପରିଷ୍ଟି—ସ୍ତ୍ରୀ.ବି. ଚତୁର୍ଦ୍ଦିଗରେ ଅନ୍ବେଷଣ, ସବୁଆଡ଼େ ଖୋଜିବା, ବଳାତ୍କାର, ବାଧା, ବିଷମସମସ୍ୟା ।
ପରିଷ୍ଟୋମ—ପୁଂ.ବି. ଗଜପୃଷ୍ଠସ୍ଥିତ ଚିତ୍ରକମ୍ବଳ, ଝୁଲ ।
ପରିଷ୍ୟନ୍ଦ—ପୁଂ.ବି. (ପରି+ସ୍ୟନ୍ଦ୍+ଅ) ନଦୀ, ସ୍ରୋତ, ବାଲୁକାମୟ ଜଳାଭୂମି, ଦ୍ୱୀପ ।
ପରିଷ୍ୟନ୍ଦୀ—ବି. ( ପରିସ୍ୟନ୍ଦ+ଇନ୍ ) ପ୍ରବର୍ଦ୍ଧମାନ (ସ୍ରୋତ) ।
ପରିଷ୍ୱକ୍ତ—ବି. ଆଲିଙ୍ଗିତ ।
ପରିଷ୍ୱଙ୍ଗ—ପୁଂ. ବି. (ପରି+ସ୍ୱଞ୍ଜ+ଭା.ଅ) ଆଲିଙ୍ଗନ, ଆସଙ୍ଗ, ଆଶ୍ଳେଷ ।
ପରିଷ୍ୱଞ୍ଜ(ଜ)ନ—କ୍ଲୀ.ବି. ଆଲିଙ୍ଗନ ।
ପରିସଂବତ୍ସର—ଅବ୍ୟ. ବର୍ଷକରୁ ଊର୍ଦ୍ଧ୍ୱ, ଏକ ବର୍ଷ ପରେ, ପରିବତ୍ସର ।
ପରିସଂଖ୍ୟା—ସ୍ତ୍ରୀ.ବି. ପରିଗଣନା,ମୋଟ, ସମଷ୍ଟି, ପୁନରାବୃତ୍ତି, ଅର୍ଥାଲଙ୍କାରବିଶେଷ, ବିଧିବିଶେଷ ।
ପରିସଂଖ୍ୟାତ—ବି. (ପରି+ସଂଖ୍ୟା+

ତ) ପରିଗଣିତ ।
**ପରିସଂଖ୍ୟାନ**—କ୍ଳୀ. ବି. ପରିଗଣନ, ମୋଟ, ସମଷ୍ଟି, ସମୁଚିତ ବିବେଚନା ବା ବିଚାର ।
**ପରିସଂଘୁଷ୍ଟ**—ବିଂ. (ପରି+ସମ୍+ଘୁଷ୍ +ତ)ଝନ୍ଦନ ବା ଗୋଳମାଳଶବ୍ଦରେ ପୂର୍ଣ୍ଣ ।
**ପରିସଖ୍ୟ**—ବି. (ପରି+ସଖ୍ୟ) ଅଟଳ ବନ୍ଧୁତା, ପ୍ରକୃତ ବନ୍ଧୁତା ।
**ପରିସଞ୍ଚକ୍ଷ୍ୟ**—ବିଂ. ପରିତ୍ୟାଗ ଯୋଗ୍ୟ ନିକ୍ଷେପ ଯୋଗ୍ୟ ।
**ପରିସଞ୍ଚର**—ପୁଂ.ବି.ସୃଷ୍ଟିର ପ୍ରଳୟକାଳ, (ବିଂ) ଇତସ୍ତତଃ ବିଚରଣକାରୀ ।
**ପରିସନ୍ତାନ**—ପୁଂ. ବି. (ପରି+ସମ୍+ ତନ୍+ ର୍ମି.ଅ) ତନ୍ତ୍ରୀ, ତାର ।
**ପରିସଭ୍ୟ**—ପୁଂ. ବି. ସଭ୍ୟ, ସଭାସଦ୍ ।
**ପରିସମନ୍ତ**—ବି. ଚତୁର୍ଦ୍ଦିଗର ପରିଧି, ଗୋଲବୃତ୍ତର ଚତୁଃସୀମା ।
**ପରିସମାପନ**—କ୍ଳୀ. ବି. ସମ୍ୟକ୍‌ରୂପେ ସମାଧାକରଣ, ଶେଷ, ସମ୍ପୂର୍ଣ୍ଣତା ।
**ପରିସମାପ୍ତି**—ସ୍ତ୍ରୀ. ବି. ପରିଶେଷ, ସମ୍ପୂର୍ଣ୍ଣତା ।
**ପରିସମୂହନ**—ବି. ( ପରି+ସମ୍+ ଊହ+ଭା.ଅନ ) ଯଜ୍ଞାଦିରେ ଅଗ୍ନି ଉପରେ ମୌନଭାବେ ସମିଧ ପ୍ରଦାନ, ଓଳାଇ କରି ଗଦାକରିବା, ଅଗ୍ନିର ଚାରିପାଖ ମାର୍ଜନ ।
**ପରିସର**—ବି. (ପରି+ସୃ+ଅଧି ଅ) ପର୍ଯ୍ୟନ୍ତଭୂ.ନଦୀ ନଗର ଓ ପର୍ବତାଦିର ଉପାନ୍ତଭୂମି, ମୃତ୍ୟୁ, ବିଧି, ନିକଟବର୍ତ୍ତୀ ସ୍ଥାନ, ଆକାର, ବିସ୍ତାର, ଚଉଡ଼ା, ପ୍ରସ୍ଥ, ଚଉଡ଼ା, ପ୍ରଦେଶ, ଶିରା, ନାଡ଼ୀ, ଦେବତା,ପରିସରଣ,(ବିଂ)ପାର୍ଶ୍ୱବର୍ତ୍ତୀ, ସଂଲଗ୍ନ ।
**ପରିସରଣ**—କ୍ଳୀ. ବି. ( ପରି+ସୃ+ ଅନ) ଇତଃସ୍ତତଃ ଭ୍ରମଣ ବା ଚଳନ, ଟହଳିବା, ପରାଭବ,ମୃତ୍ୟୁ, ପରାଜୟ ।
**ପରିସର୍ପ**—ପୁଂ. ବି. (ପରି+ସୃପ୍+ଭା. ଅ)କୌଣସି ବସ୍ତୁ ବା ବ୍ୟକ୍ତିକୁ ଚୋର୍‍... ବାକୁ ଯିବା, ପରିଜନାଦି ଦ୍ୱାରାବେଷ୍ଟନ ପଶ୍ଚାଦ୍ଧାବନ, ଟହଳିବା, ବେଷ୍ଟନ, ବେଢ଼ିବା, (କ.ଅ)କୁଷ୍ଠରୋଗ ବିଶେଷ, ସର୍ପ ବିଶେଷ ।
**ପରିସର୍ଯ୍ୟ**—ବି. (ପରି+ସୃ+ଭା.ଯ) ପରିସାର, ବାହ୍ଣ୍ଡି ହୋଇଯିବା, ସର୍ବସ୍ୱ, ଅନ୍ତଃସରଣ, ସେବା ।
**ପରିସାରକ**—ବିଂ. ( ପରି+ସୃ+କ. ଅକ) ଚାରିଆଡ଼େ ବୁଲୁଥିବା ।
**ପରିସାରୀ**—ବିଂ. (ପରି+ସାର+ଇନ୍) ଭ୍ରମଣକାରୀ ।
**ପରିସୀମା**—ସ୍ତ୍ରୀ. ବି. (ପରି+ସୀମନ୍) ଇୟତ୍ତା, ସୀମା, ପର୍ଯ୍ୟନ୍ତ, ଚତୁଃସୀମା, ଚଉହଦି ।
**ପରିସ୍କନ୍ଦ**—ପୁଂ. ବିଂ. ପରପୁଷ୍ଟ, ମାତା ପିତା ଛଡ଼ା ପରଦ୍ୱାରା ପ୍ରତିପାଳିତ (ବାଳକ) ।
**ପରିସ୍କନ୍ନ**—ପୁଂ. ବିଂ. (ପରି+ସ୍କନ୍ଦ+ ତ) ପରିସ୍କନ୍ଦ ଦେଖ ।
**ପରିସ୍ତର**—ପୁଂ. ବି. ଏଣେ ତେଣେ ଫିଙ୍ଗିବା, ବିକିରଣ କରଣ ।
**ପରିସ୍ତରଣ**—କ୍ଳୀ. ବି.(ପରି+ସ୍ତୃ+ଭା. ଅନ) ଚାରିଆଡ଼େ ବିଛିଦେବା,ବୁଣିବା, ବିକ୍ଷେପଣ, ନିଆଁ ଉପରେ କୁଟା ଆଦି ପକାଇବା, ଘୋଡ଼ାଇବା, ଏକାଠି ଗଦା କରିବା ।
**ପରିସ୍ତୋମ**—ପୁଂ. ବି. (ପରି+ସ୍ତୋମ +ର୍ମି.ଅ)ହାତୀ ପିଠିରେ ପଡ଼ିବା ଚିତ୍ରିତ କମ୍ବଳ, ହାତୀଝୁଲ, ଘୋଡ଼ଣୀ, ଘଟା- ଟୋପ, ଗଦି ।
**ପରିସ୍ଥିତ୍ୟ**—ଗ୍ରା. ବି. ( ସଂ-ପରିସ୍ଥାନ ) ସ୍ଥିରତା, ନିଷ୍ଠୟ ।
**ପରିସ୍ଥାନ**—କ୍ଳୀ. ବି. ବାସଗୃହ, ସ୍ଥିତି, ସହିଷ୍ଣୁତା, ସ୍ଥିରତା, ଦୃଢ଼ତା ।
**ପରିସ୍ଥିତି**—ବି. (ପରି+ସ୍ଥା+ଭା.ତ୍ତି) ଅବସ୍ଥା, ଅବସ୍ଥାନ, ନିର୍ଣ୍ଣୟ, ପରିସ୍ଥାନ ଦେଖ ।
**ପରିସ୍ପନ୍ଦ**—ପୁଂ. ବି.(ପରି+ସ୍ପନ୍ଦ)ବିକମ୍ପନ, ଥରିବା,ଗତି,ଯଜ୍ଞାଗ୍ନିର ରକ୍ଷଣ, ପଦାବଳୀର ରଚନା, ପରିକର,ମଦନ କେଶର ସଜ୍ଜା, ଚାପ, ଉଚ୍ଚ ଶବ୍ଦ ସହ- କାରେ ପତନ, (କ.ଅ)ଅନୁଚର ବର୍ଗ ।
**ପରିସ୍ପନ୍ଦନ**—କ୍ଳୀ. ବି. (ପରି+ସ୍ପନ୍ଦ+ ଭା.ଅନ) ସର୍ବତୋଭାବେ କମ୍ପନ ।
**ପରିସ୍ପନ୍ଦମାନ**—ବିଂ. ( ପରି+ସ୍ପନ୍ଦ+ ଆନ) ସର୍ବତୋ ଭାବେ କମ୍ପମାନ ।
**ପରିସ୍ପର୍ଦ୍ଧା**—ବି. (ପରି+ସ୍ପର୍ଦ୍ଧା) ପ୍ରତି- ଯୋଗିତା ।
**ପରିସ୍ପର୍ଦ୍ଧୀ**—ପୁଂ. ବିଂ. ( ପରିସ୍ପର୍ଦ୍ଧା+ ଇନ୍) ସ୍ପର୍ଦ୍ଧାକାରୀ, ଜିଗୀଷାକାରୀ, ପ୍ରତି- ଯୋଗିତା କାରୀ ।
**ପରିସ୍ଫୁଟ**—ବିଂ. (ପରି+ସ୍ଫୁଟ+କ.ଅ) ବ୍ୟକ୍ତ, ପ୍ରକାଶିତ, ସ୍ପଷ୍ଟ, ବିଶଦ, ଉତ୍ତମ ରୂପେ ଫୁଟିଥିବା ।
**ପରିସ୍ଫୁରଣ**—ବି. (ପରି+ସ୍ଫୁରଣ)ଆଖି ମିଟିକା ମାରିବା, ଚାହିଁବା, କଢ଼ି ଫୁଟିବା, ଉଜ୍ଜ୍ୱଳ ଭାବରେ ଦେଖାଯିବା, ଶୋଭାପାଇବା, ଠକ୍ ଠକ୍ ଡେଇଁବା, ସ୍ପନ୍ଦନ ।
**ପରିସ୍ଫୁରନ୍ତ**—ଗ୍ରା. ବିଂ. ବିଶେଷଭାବରେ ପ୍ରକାଶିତ, ପ୍ରକଟିତ ।
**ପରିସ୍ମାପନ**—କ୍ଳୀ. ବି. ବିସ୍ମୟ ସମ୍ପାଦନ, ଅଳ୍ପ ବୁଦ୍ଧିରେ ପରର କୌତୁହଳ ବର୍ଦ୍ଧନ ।
**ପରିସ୍ୟନ୍ଦ**—ପୁଂ. ବି. (ପରି+ସ୍ୟନ୍ଦ+ ଭା.ଅ) ପରିସ୍ପନ୍ଦ, ଘୃତାଦିର କ୍ଷରଣ, ଝରିବା, ଟୋପା ଟୋପା ପଡ଼ିବା, ସ୍ରୋତଃ, ହସ୍ତୀ ପ୍ରଭୃତିର ମଦକ୍ଷରଣ ।
**ପରିସ୍ରବ**—ପୁଂ.ବି.(ପରି+ସ୍ରୁ+ଭା.ଅ) ବହିଯିବା,ସନ୍ତାନ ଜନ୍ମ, କୁସୁମଫୁଲ ।
**ପରିସ୍ରା**—ଗ୍ରା. ବି. ପ୍ରସ୍ରାବ, ମୂତ୍ର ।
**ପରିସ୍ରାପେଛା**—ଗ୍ରା. କ୍ରି .ଯନ୍ତ୍ରଣାସହ ଅଳ୍ପ ଅଳ୍ପ ପରିସା ବାହାରିବା ।
**ପରିସ୍ରାବ**—ପୁଂ. ବି. ପରିସ୍ରବ ଜନକ ଉପଦ୍ରବବିଶେଷ, ପାଣି ବୋହିଯିବା, ଛାଣିନେବା, ଛାଙ୍କିବା; ଅର୍କ ବାହାର କରିବା ପ୍ରକ୍ରିୟା, ବମନ, ବିରେଚନ,

ବ୍ୟାପଦ୍ ବିଶେଷ, (ଗ୍ରା. ବି) ମୂତ୍ର, ମୂତ୍ରତ୍ୟାଗ ।

ପରିସ୍ରାବଣ—କ୍ଲୀ. ବି. ( ପରି+ସ୍ରୁ+ଣିଚ୍+ଅଧି.ଅନ ) ଜଳପରିଷ୍କାରକ ପାତ୍ର ବିଶେଷ, ଯେଉଁ ପାତ୍ରରେ ପାଣି ଛଣାଯାଏ ।

ପରିସ୍ରାବୀ—ବିଂ. ( ପରି+ସ୍ରାବ+କ. ଇନ୍) ନିରନ୍ତର ସ୍ରାବଶୀଳ,ବହି ଯାଉଥିବା, ଝରୁଥିବା, (ବି)ଜଙ୍ଘଜ ଭଗନ୍ଦର ରୋଗବିଶେଷ ।

ପରିସ୍ରୁତ୍—ସ୍ତ୍ରୀ. ବି. ( ପରି+ସ୍ରୁ+କ୍ୱିପ୍)ବରୁଣାପ୍ରିୟା,ମଦିରା,ମଦ୍ୟ,କ୍ଷରଣ, (ବିଂ)ସର୍ବତୋଭାବେ କ୍ଷରିତ,ଚ୍ୟାବିତ

ପରିସ୍ରୁତ—ବିଂ. (ପରି+ସ୍ରୁ+କ.ତ) ସ୍ରାବଯୁକ୍ତ, କ୍ଷରିତ, ଟୋପା ଟୋପା ହୋଇ ଝରୁଥିବା ।

ପରିସ୍ରୁତଦଧି—କ୍ଲୀ. ବି. ବସ୍ତ୍ର ଦ୍ୱାରା ଛଣାଯାଇଥିବା ଦହି, ଛଣାଦହି ।

ପରିସ୍ରୁତା—ସ୍ତ୍ରୀ. ବି. ( ପରିସ୍ରୁତ+ଆ ) ଦ୍ରାକ୍ଷାମଦ୍ୟ, ବାରୁଣୀ ମଦ୍ୟ, ମଦିରା ।

ପରିହଣନ—କ୍ଲୀ. ବି. (ପରି+ହନ୍+ଅନ) ସମ୍ୟକ୍ ନାଶ, କ୍ଷୟ ।

ପରିହତ—ବିଂ. (ପରି+ହନ୍+ମଁ.ତ) ପରିତ୍ୟକ୍ତ, ଧୃତ, (ବି) ଲଙ୍ଗଳକଣ୍ଠି, ଲଙ୍ଗଳ ।

ପରିହର—ପୁଂ, ବି. (ପରି+ହୃ+ଭା. ଅ) ପରିହାର, ତ୍ୟାଗ ।

ପରିହରଣ—କ୍ଲୀ. ବି. (ପରି+ହୃ+ଭା. ଅନ) ପରିବର୍ଜନ. ତ୍ୟାଗ,ହାନି,କ୍ଷତ, କ୍ଷୀଣତା, (ଦୋଷ) ଛଡ଼ାଇବା, ନିରାକରଣ, କବଳରୁ ଛଡ଼ାଇ ନେବା ।

ପରିହରଣୀୟ—ବିଂ. ( ପରି+ହୃ+ମଁ. ଅନୀୟ)ପରିତ୍ୟାଗର ଉପଯୁକ୍ତ,ତ୍ୟାଜ୍ୟ. ଗ୍ରହଣଯୋଗ୍ୟ, ଛଡ଼ାଇ ନେବାର ଯୋଗ୍ୟ, ନିବାରଣୀୟ, ପରିହାର୍ଯ୍ୟ ।

ପରିହର୍ତ୍ତବ୍ୟ—ବିଂ. ( ପରି+ହୃ+ମଁ. ତବ୍ୟ) ତ୍ୟାଗଯୋଗ୍ୟ, ପରିହରଣୀୟ, ପରିହାର୍ଯ୍ୟ ।

ପରିହସନୀୟ—ବିଂ. (ପରି+ହସ୍+ମଁ. ଅନୀୟ) ଉପହାସ୍ୟ, ପରିହାସର ଉପଯୁକ୍ତ (ପାତ୍ର) ।

ପରିହସିତ—ପୁଂ. ବିଂ. (ପରି+ହସ୍+ମଁ.ତ) ଯାହାକୁ ପରିହାସ ବା ଥଟ୍ଟା କରଯାଏ ।

ପରିହାଣ—କ୍ଲୀ. ବି. ( ପରି+ହା+ଭା. ଅନ) କ୍ଷତି, କ୍ଷୟ, ହ୍ରାସ ।

ପରିହାନି—ସ୍ତ୍ରୀ. ବି. ( ପରି+ହା+ଭା. ତି) ପରିକ୍ଷୟ, ନ୍ୟୂନତା,ବିଶେଷହାନି, କ୍ଷୀଣତା ।

ପରି(ରୀ)ହାର—ପୁଂ. ବି. (ପରି+ହୃ+ଭା.ଅ ) ଅବଜ୍ଞା, ଅନାଦର, ଦୋଷ ପରିହରଣ, ପ୍ରାର୍ଥନା, ମୁକ୍ତି, ତ୍ୟାଗ, ଗୋପନ, ଦୋଷାପନୟ, ଉପେକ୍ଷା, ଏଡ଼ିବା, ସୂର୍ଯ୍ୟ ଓ ଚନ୍ଦ୍ର ବଂଶୀୟ ରାଜପୁତ ଜାତିର ଶାଖା ବିଶେଷ, (ମଁ.ଅ) ଗୋଚରଣଭୂମି,ପଡ଼ିଆଭୂମି, ଜିତଧନ, କରବସାଣରୁ ମୁକ୍ତି, ତିରସ୍କାର ।

ପରିହାରୀ—ପୁଂ.ବିଂ. (ପରି+ହୃ+ଇନ୍) ପରିତ୍ୟାଗୀ, ପରକୀୟକାରୀ, ( ସ୍ତ୍ରୀ ) ପରିହାରିଣୀ ।

ପରିହାର୍ଯ୍ୟ-ପରିହର୍ତ୍ତବ୍ୟ—ବିଂ. (ପରି+ହୃ+ଯ. ତବ୍ୟ ) ପରିହାରଯୋଗ୍ୟ, ପରିତ୍ୟାଜ୍ୟ,ମୁକ୍ତିଲାଭ ପାଇବାଯୋଗ୍ୟ, ବଳୟାୟ(ପୁଂ.ବି) ହାର, ବଳୟପ୍ରଭୃତି ଅଳଙ୍କାର ବିଶେଷ ।

ପରି(ରୀ)ହାସ—ପୁଂ. ବି. ( ପରି+ହସ୍+ଭା.ଅ)ଥଟ୍ଟା, ପରିହାସ, କୌତୁକ, ଉପହାସ, କ୍ରୀଡ଼ା, ଖେଳ ।

ପରିହାସକ—ପୁଂ. ବିଂ. ( ପରି+ହସ୍+କ.ଅକ) ଯେ ପରିହାସ କରେ ।

ପରିହାସି—ଗ୍ରା.ବିଂ. ଯାହା ସଙ୍ଗେ ପରିହାସ ବା ଥଟ୍ଟା କରିବା ସମାଜସମ୍ମତ, ପରିହାସ କରୁଥିବା, ଯେ ସର୍ବଦା ଥଟ୍ଟା ପରିହାସ କରେ, ଥଟିଲ ।

ପରିହାସ୍ୟ—ବିଂ. ( ପରି+ହସ୍+ଯ ) ପରିହାସ କରିବା ଯୋଗ୍ୟ, ପରିହସନୀୟ, ଉପହାସାସ୍ପଦ ।

ପରିହିତ—ବିଂ. (ପରି+ଧା+ମଁ.ତ) ଆଚ୍ଛାଦିତ, ସ୍ଥାପିତ, ଯାହା ପରିଧାନ କରାହୋଇଅଛି, ପିନ୍ଧା, ଆମୁକ୍ତ ।

ପରିହୀ(ଣ)ନ—ବିଂ.(ପରି+ହା+ମଁ. ତ) ସର୍ବତୋଭାବେ ହୀନ,ଶ୍ରୀଭ୍ରଷ୍ଟ.ପରିତ୍ୟକ୍ତ, କ୍ଷୀଣ, ବଞ୍ଚିତ, ହ୍ରାସପ୍ରାପ୍ତ ।

ପରିହୃତ୍—ବିଂ. ( ପରି+ହୃ+କ୍ୱିପ୍) ପତିତ, ଭ୍ରଷ୍ଟ, ଧ୍ୱସ ।

ପରିହୃତ—ବିଂ. (ପରି+ହୃ+ମଁ.ତ) ବର୍ଜିତ, ପରିତ୍ୟକ୍ତ, ବିମୁକ୍ତ, ବଳପୂର୍ବକ ଗୃହୀତ, ଷାଳିତ, ପତିତ, ଭ୍ରଷ୍ଟ, ନଷ୍ଟ, ଧ୍ୱସ୍ତ ।

ପରିହୃତି—ସ୍ତ୍ରୀ. ବି. ( ପରି+ହୃ+ତି) ସର୍ବତୋଭାବେ ହାନି,ନାଶ, ଧ୍ୱଂସ ।

ପରୀକ୍ଷ—ଗ୍ରା. ବି. ପରୀକ୍ଷା, ଜଳୀୟଔଷଧ ସହିତ ଅନୁପାନ ମିଶ୍ରଣ,ପରୀକ୍ଷିତରାଜା ।

ପରୀକ୍ଷକ—ବିଂ. ( ପରି+ଈକ୍ଷ୍+କ. ଅକ) ଯେ ପରୀକ୍ଷା କରେ,ଗୁଣ ଦୋଷବିଚାରକ ।

ପରୀକ୍ଷଣ—କ୍ଲୀ. ବି. (ପରି+ଈକ୍ଷ୍+ଭା. ଅନ) ପରୀକ୍ଷା, ବସ୍ତୁତତ୍ତ୍ୱାବଧାରଣ, ଗୁଣଦୋଷ ବିଚାର, ଶପଥ ।

ପରୀକ୍ଷା—ସ୍ତ୍ରୀ. ବି. (ପରି+ଈକ୍ଷ୍+ଭା.ଅ +ଆ) ଦୋଷଗୁଣ ବିବେଚନା,ସତ୍ୟାସତ୍ୟ ନିର୍ଣ୍ଣୟ, ବସ୍ତୁର ତତ୍ତ୍ୱାବଧାରଣ, ଅନୁସନ୍ଧାନ, ପର୍ଯ୍ୟବେକ୍ଷଣ, ( ଗ୍ରା.ବି ) ଛାତ୍ରର ବିଦ୍ୟାବସ୍ଥା ନିର୍ଣ୍ଣୟ, ଦେବୋତ୍ତର ସମ୍ପତ୍ତିର ତତ୍ତ୍ୱାବଧାରକ ପ୍ରଧାନ କର୍ମଚାରୀ, ପରିଛା ।

ପରୀକ୍ଷାର୍ଥୀ—ପୁଂ.ବିଂ. (ପରୀକ୍ଷା+ଅର୍ଥିନ୍) ପରୀକ୍ଷାଦେବାପାଇଁ ଇଚ୍ଛୁକ, ( ବି ) ପରୀକ୍ଷାଦେବାପାଇଁ ପ୍ରସ୍ତୁତ ବା ଉପସ୍ଥିତ ବ୍ୟକ୍ତି ।

ପରୀକ୍ଷିତ୍—ପୁଂ. ବି. (ପରି+କ୍ଷି+କ୍ୱିପ୍) ଜନମେଜୟଙ୍କ ପିତା, ଅଭିମନ୍ୟୁଙ୍କ ପୁତ୍ର, ଅର୍ଜୁନଙ୍କ ନାତି ।

ପରୀକ୍ଷିତ—ପୁଂ.ବି. (ପରି+କ୍ଷି+ମଁ.ତ) ପରୀକ୍ଷିତ୍ ଦେଖ,(ବିଂ) ଯାହାକୁ ପରୀକ୍ଷା କରାହୋଇଅଛି, ପର୍ଯ୍ୟବେକ୍ଷିତ, ପରୀକ୍ଷ୍ଟ, (ସ୍ତ୍ରୀ) ପରୀକ୍ଷିତା ।

ପରୀକ୍ଷିତବ୍ୟ—ବିଂ.(ପରି+ଈକ୍ଷ୍+ତବ୍ୟ) ପରୀକ୍ଷଣୀୟ, ପରୀକ୍ଷାର ଯୋଗ୍ୟ ।

ପରୀଣାୟ—ପୁଂ. ବ. ପରିଣାୟ ଦେଖ ।

ପରୀତ—ବିଂ. (ପରି+ଇ+ର୍ମ.ତ) ପରିବୃତ, ପରିବେଷ୍ଟିତ, ଯୁକ୍ତ, ବିଶିଷ୍ଟ, ପରିଗତ ।

ପରୀତତ୍—ବିଂ. (ପରି+ତନ୍+କ. କ୍ୱିପ୍) ସର୍ବତୋଭାବେ ବିସ୍ତୃତ ।

ପରୀତ୍ତ—ବିଂ. ସୀମାବଦ୍ଧ, କ୍ଷୁଦ୍ର, ସଂକୀର୍ଣ୍ଣ, ସଙ୍କୁଚିତ ।

ପରୀଷ୍ଟି—ସ୍ତ୍ରୀ.ବ. (ପରି+ଇଷ୍+ଭା.ତି) ଗବେଷଣା, ଅନୁସନ୍ଧାନ, ପରିଚର୍ଯ୍ୟା, ଇଚ୍ଛା ।

ପରୁ(ସ୍)—ପୁଂ. ବ. (ପୃ+ଉ,ଉସ୍) ସମୁଦ୍ର, ସ୍ୱର୍ଗଲୋକ, ଗ୍ରନ୍ଥି, ପର୍ବତ ।

ପରୁଆ—ଗ୍ରା. ବ. ଭୟ, ଭ୍ରାନ୍ତି, ଚିନ୍ତା, ଭାବନା, ଉଦ୍ବେଗ, ଦକ, ଧ୍ୟାନ, ମନୋଯୋଗ ।

ପରୁଆନା—ଯା.ବ. ଆଦେଶପତ୍ର, ନିଯୁକ୍ତିପତ୍ର, ହୁକୁମନାମା, ନୋଟିସ୍, ସମନ ।

ପରୁତ୍—ଅବ୍ୟ. ପରବର୍ଷେ, ଗତବର୍ଷ, ଗୋଦସ୍ତା, ପୂର୍ବବର୍ଷ ।

ପରୁତ୍ନ—ବିଂ. ଗତବର୍ଷୀୟ, ପରବର୍ଷଭବ, ଅତୀତବର୍ଷରେ ଯାହା ଘଟିଅଛି ।

ପରୁଦ୍ବାର—ପୁଂ. ବ. ଘୋଟକ ।

ପରୁଷ—କ୍ଲୀ. ବ.(ପୃ+କ.ଉଷ) ନିଷ୍ଠୁର ବାକ୍ୟ, ଗାଳି, କାର୍କଶ୍ୟ, କାଠିନ୍ୟ, ଶର, ବାଣ, କାଣ୍ଡଶର, କାଠ, କୁଲ, ଫାରସାକୋଳି, ବନ୍ଧ୍ୟା, ନୀଳ, ରୁପ, ବୃତ୍ତି, ଆଗୃର, ପରିଚ୍ଛଦ, ନୀଳଝିଣ୍ଟୀ, ବାଣ, (ବିଂ) କର୍ବୁର, ବିଚିତ୍ରବର୍ଣ୍ଣ ବିଶିଷ୍ଟ, ରୁକ୍ଷ, କର୍କଶ, କଠିନ, ନିଷ୍ଠୁର, ଉଦ୍ଧତ, ମଳିନ, ଶୃଙ୍ଖଳକଣ୍ଟ, କଷ୍ଟଦାୟକ(ପବନ), ଛପଛପକଆ, ଝାମ୍ପୁଡ଼ା ।

ପରୁଷଫଳ—ବ. ଫାରସାକୋଳି ।

ପରୁଷାକ୍ଷର—ବ. କର୍କଶ ବଚନ, ଯାହାର ବର୍ଣ୍ଣସକଳ ଅତି କର୍କଶ ।

ପରୁଷହ୍ୱ—ପୁଂ.ବ. (ବ.ଗ୍ରୀ) ଏକପ୍ରକାର ନଳଗଛ ।

ପରୁଷିତ—ବିଂ. କର୍କଶଭାଷୀ ।

ପରୁଷିମା—ପୁଂ. ବିଂ. (ପରୁଷ+ଇମନ୍) ପରୁଷଯୁକ୍ତ, କର୍କଶ ବ୍ୟବହାରୀ ।

ପରୁଷେତର—ତ୍ରି.ବିଂ. କୋମଳ, ପରୁଷଭିନ୍ନ । [ ନିଷ୍ଠୁରବଚନ ।

ପରୁଷୋକ୍ତି—ସ୍ତ୍ରୀ. ବ. (ପରୁଷ+ଉକ୍ତି)

ପରୂଷ—କ୍ଲୀ. ବ. ଫଳବୃକ୍ଷବିଶେଷ, ଫାରସାକୋଳି ।

ପରୂଷକ—କ୍ଲୀ. ବ. ଫାରସାକୋଳି ।

ପରେ—ଅବ୍ୟ. ଉତ୍ତରେ, ଶେଷରେ, ପଶ୍ଚାତ୍, ଭବିଷ୍ୟତରେ, ଉପରନ୍ତୁ, ଆଡ଼କୁ, ଅପେକ୍ଷାରୁ, ଅଧିକା ।

ପରେତ—ବିଂ. (ପର+ଇ+କ.ତ) ମୃତ, (ବ) ମୁର୍ଦାର, ମଢ଼ା, ପ୍ରେତ, ଭୂତାନ୍ତର, ଭୂତଯୋନିବିଶେଷ ।

ପରେତଭୂମି—ସ୍ତ୍ରୀ.ବ.ପ୍ରେତଭୂମି, ଶ୍ମଶାନ ।

ପରେତବାସ—ପୁଂ. ବ. ଶ୍ମଶାନଭୂମି, ପ୍ରେତଭୂମି ।

ପରେତରାଟ୍—ପୁଂ. ବ. (ପରେତ+ରାଜ୍+କ.କ୍ୱିପ୍)ଯମ, ପ୍ରେତ ଅଧିପତି ।

ପରେଦ୍ୟବି—ଅବ୍ୟ. ପରଦିନ ।

ପରେଦ୍ୟୁଃ—ଅବ୍ୟ. (ପର+ଏଦ୍ୟୁସ୍) ପରଦିନ ।

ପରେଶ—ପୁଂ. ବ. (ପର+ଈଶ) ବ୍ରହ୍ମା, ବିଷ୍ଣୁ, ପରମେଶ୍ୱର, ଶିବ ।

ପରେଶନାଥ—ପୁଂ. ବ. ପାର୍ଶ୍ୱନାଥ ଦେଖ । [ ବ୍ରହ୍ମା ।

ପରେଷ୍ଟି—ପୁଂ. ବ. (ପର+ଇଷ୍ଟି)

ପରେଷ୍ଟୁକା—ସ୍ତ୍ରୀ. ବ. ବହୁପ୍ରସୂତା ଗାଭୀ, ବାରମ୍ବାରିଆଣୀ ଗାଈ ।

ପରେଧିତ—ବିଂ. ଔଦାସୀନ୍ୟ ଦ୍ୱାରା ପରପୁଷ୍ଟ, ପରପାଳିତ, (ବ) କୋକିଳ ।

ପରୋକ୍ଷ—ବିଂ. (ପର+ଅକ୍ଷ) ଇନ୍ଦ୍ରିୟାତୀତ, ଅସାକ୍ଷାତ୍, ଅଦୃଶ୍ୟ, ଦୃଷ୍ଟିର ବହିର୍ଭୂତ, ଅପ୍ରତ୍ୟକ୍ଷ, ଗୁପ୍ତ, (ବ) ଅନୁପସ୍ଥିତ, ଅଭାବ, ପରମଜ୍ଞାନୀ ବ୍ୟକ୍ତି, ଅତୀତକାଳ, ତପସ୍ୱୀ, ଯଜାତିଙ୍କ ପୌତ୍ର, ଅନୁଙ୍କ ପୁତ୍ରବିଶେଷ ।

ପରୋକ୍ଷଜ୍ଞାନ—ବ.(କ.ଧା) ଅତୀନ୍ଦ୍ରିୟଜ୍ଞାନ, ଅପ୍ରତ୍ୟକ୍ଷ ଜ୍ଞାନ ।

ପରୋକ୍ଷପ୍ରମାଣ—ବ. ସାକ୍ଷାତ୍ ପ୍ରମାଣ ଛଡ଼ା ଅନ୍ୟପ୍ରକାର ପ୍ରମାଣ ।

ପରୋକ୍ଷରେ—ଗ୍ରା. କ୍ରି. ବିଂ. ଜଣଙ୍କର ଅନୁପସ୍ଥିତିରେ । [ ଚର କାର୍ଯ୍ୟ ।

ପରୋକ୍ଷବୃତ୍ତି—ସ୍ତ୍ରୀ. ବ. ଚକ୍ଷୁର ଅଗୋ-

ପରୋକ୍ଷାର୍ଥ—ବିଂ. ଅଦୃଷ୍ଟଅର୍ଥ, ଅଦୃଶ ବିଷୟ ବା ବସ୍ତୁ ।

ପରୋଢ଼ା—ସ୍ତ୍ରୀ. ବ.(ପର+ଊଢ଼ା) ୩ତତ୍; ପରକର୍ତ୍ତୃକ ବିବାହିତା, ଅନ୍ୟର ପରିଣୀତା, ପରସ୍ତ୍ରୀ ।

ପରୋପକାର—ପୁଂ. ବ. (ପର+ଉପକାର) ୬ତତ୍; ଅନ୍ୟର ଉପକାର, ପରର ହିତସାଧନ ।

ପରୋପକାରକ—ପୁଂ.ବିଂ.୬ତତ୍ ଅନ୍ୟର ହିତସାଧକ ।

ପରୋପକାରୀ—ପୁଂ. ବିଂ. (ପର+ଉପକାରିନ୍) ପରୋପକାରକ, ଯେ ପରର ଉପକାର କରେ ।

ପରୋପକୃତ—ପୁଂ. ବିଂ. ଅନ୍ୟ ବ୍ୟକ୍ତିଦ୍ୱାରା ଉପକାର ପ୍ରାପ୍ତ ।

ପରୋପଜାପ—ପୁଂ. ବ. ଶତ୍ରୁମାନଙ୍କ ମଧ୍ୟରେ ପରସ୍ପର ବିଚ୍ଛେଦ ଘଟାଇବା ।

ପରୋପଜୀବୀ—ପୁଂ. ବିଂ. (ପର+ଉପଜୀବିନ୍) ପରାନ୍ନରେ ପାଳିତ, ପରର ସାହାଯ୍ୟରେ ଜୀବିକା ନିର୍ବାହକାରୀ, ଅନ୍ୟର ଗଲଗ୍ରହ, ପରମୁଖାପେକ୍ଷୀ, (ସ୍ତ୍ରୀ.ବିଂ) ପରୋପଜୀବିନୀ ।

ପରୋପଜୀବ୍ୟ—ବିଂ. (ବ.ଗ୍ରୀ) ପରୋପଜୀବୀ ଦେଖ, (ସ୍ତ୍ରୀ) ପରୋପଜୀବ୍ୟା ।

ପରୋରଜାଃ—ବିଂ. (୬ତତ୍) ବିମୁକ୍ତ, ରଜୋଗୁଣାତୀତ ।

ପରୋବରଂ—ଅବ୍ୟ. ପରମ୍ପରାକ୍ରମେ, ମସ୍ତକଠାରୁ ପାଦପର୍ଯ୍ୟନ୍ତ ।

ପରୋବରୀଣ—ବିଂ. ଭଲମନ୍ଦ ଯୁକ୍ତ, ଶ୍ରେଷ୍ଠାଶ୍ରେଷ୍ଠ ଯୁକ୍ତ । [ ପରମାତ୍ମା ।

ପରୋବରୀୟାନ୍—ବ. ଅତ୍ୟନ୍ତ ଶ୍ରେଷ୍ଠ

ପର୍କଟ—ବ. ଏକପ୍ରକାର ବଗ, ଅନୁଶୋଚନା, ଉତ୍କଣ୍ଠା ।

ପର୍କଟି(ଟୀ)—ସ୍ତ୍ରୀ.ବ. (ପୃର୍+ଅଟ୍+ଇ) ପ୍ଲକ୍ଷବୃକ୍ଷ, ଏକପ୍ରକାର ଅଶ୍ୱତ୍ଥ ବୃକ୍ଷ, ଜରୀବଛ, ଜଷାଗୁଆ ।

ପର୍ଜନୀ—ସ୍ତ୍ରୀ. ବ. (ପର+ଜନ୍+ଣିଚ୍+ଅ+ଇ) ଦାରୁହରଦ୍ରା,ଦାରୁହଳଦୀ ।

ପର୍ଜନ୍ୟ—ପୁଂ. ବ. (ପୃଜ୍+କ. ଅନ୍ୟ) ଇନ୍ଦ୍ର, ମେଘ,ଶବ୍ଦାୟମାନ ମେଘ,ବୃଷ୍ଟି ।

ପର୍ଜନ୍ୟା—ସ୍ତ୍ରୀ. ବ. ଦାରୁହଳଦୀ, ଦାରୁହରଦ୍ରା ।

ପର୍ଣ୍ଣ—କ୍ଳୀ. ବ. ( ପର୍ଣ୍ଣ+କ.ଅ ) ପତ୍ର, ଫୁଲର ପାଖୁଡ଼ା ବା ଦଳ, ତାମ୍ବୂଳ, ପାନ,ପକ୍ଷୀର ଡେଣା,(ପୁଂ)ପଳାଶ ବୃକ୍ଷ ।

ପର୍ଣ୍ଣକ—ବ. (ପର୍ଣ୍ଣ+କ) ପର୍ଣ୍ଣ ଦେଖ ।

ପର୍ଣ୍ଣକାର—ପୁଂ. ବ. ( ପର୍ଣ୍ଣ+କାର ) ପାନର ଜାତିବିଶେଷ, ତାମ୍ବୂଳୀ ।

ପର୍ଣ୍ଣକୁଟିକା—ସ୍ତ୍ରୀ.ବ. ପର୍ଣ୍ଣକୁଟୀ,ପତ୍ରଦ୍ୱାର ନିର୍ମିତ ଗୃହ, ପତ୍ରକୁଡ଼ିଆ, ପଲ୍ଲ ।

ପର୍ଣ୍ଣକୁଟୀ—ସ୍ତ୍ରୀ. ବ. ପର୍ଣ୍ଣକୁଟିକା ଦେଖ ।

ପର୍ଣ୍ଣକୁଟୀର—ବ. (ପର୍ଣ୍ଣ+କୁଟୀର) ପତ୍ରକୁଡ଼ିଆ, ପଲ୍ଲ ।

ପର୍ଣ୍ଣକୃତ୍—ବ. ବୃନ୍ତ, ଫଳକଢ଼ିକୁ ରକ୍ଷାକରୁଥିବା କୋମଳ ପତ୍ରାଂଶ ।

ପର୍ଣ୍ଣକୃଚ୍ଛ୍ର—ପୁଂ. ବ. ପତ୍ରକୃଚ୍ଛ୍ର, ବ୍ରତବିଶେଷ, କେବଳ ଗଛର ପତ୍ର ଖାଇ ଯେଉଁ ବ୍ରତ ଅନୁଷ୍ଠାନ କରାଯାଏ ।

ପର୍ଣ୍ଣଖଣ୍ଡ—ପୁଂ. ବ. (ବ.ବ୍ରୀ) ପୁଷ୍ପହୀନ ବୃକ୍ଷ, ବନସ୍ପତି, ତାମ୍ବୂଳଖଣ୍ଡ,ଗୋଟିଏ ପାନ, ପର୍ଣ୍ଣସମୂହ ।

ପର୍ଣ୍ଣଦାହ—ବ. ପଳାଶଦାହ,ମୃତବ୍ୟକ୍ତିର ଦେହ ନ ମିଳିଲେ ଜ୍ଞାତିକୁଟୁମ୍ବମାନେ ପଳାଶପତ୍ର ଦ୍ୱାରା ମୃତବ୍ୟକ୍ତିର ମୂର୍ତ୍ତିରଚନାକରି ଉକ୍ତକଳ୍ପିତ ମୃତବ୍ୟକ୍ତିକୁ ଦାହକରିବା ପ୍ରକ୍ରିୟା ।

ପର୍ଣ୍ଣନର—ପୁଂ. ବ. ଶବଦାହାର୍ଥ ପଳାଶ ପତ୍ରଦ୍ୱାରା ରଚିତ ମୃତବ୍ୟକ୍ତିର ମୂର୍ତ୍ତି ।

ପର୍ଣ୍ଣନାଳ—କ୍ଳୀ.ବ.୬ତତ୍;ପତ୍ରରଡେମ୍ଫ ।

ପର୍ଣ୍ଣଭେଦନୀ—ସ୍ତ୍ରୀ. ବ. (ପର୍ଣ୍ଣ+ଭିଦ୍+ଇନ୍+ଈ) ପ୍ରିୟଙ୍ଗୁ ।

ପର୍ଣ୍ଣଭୋଜନ—ପୁଂ. ବ. (ପର୍ଣ୍ଣ+ଭୁଜ୍+କ.ଅନ) ଛାଗଲ, ଛେଳି, (ବିଂ) ପର୍ଣ୍ଣ ବା ପତ୍ରଭୋଜୀ ମାତ୍ର,(କ୍ଳୀ.ବ)ପତ୍ରଖାଇ ବଞ୍ଚିବା ।

ପର୍ଣ୍ଣମଣି—ପୁଂ.ବ.ହରନ୍ମଣି, ଏକପ୍ରକାର ଐନ୍ଦ୍ରଜାଲିକ ଯନ୍ତ୍ର ।

ପର୍ଣ୍ଣମୟ—ବିଂ(ପର୍ଣ୍ଣ+ମୟଟ୍)ପତ୍ର ନିର୍ମିତ, ପତ୍ରାକାର, ପତ୍ରବହୁଳ ।

ପର୍ଣ୍ଣମାଚୁଳ—ପୁଂ. ବ. କର୍ମରଙ୍ଗ ବୃକ୍ଷ, କରମଙ୍ଗାଗଛ ।

ପର୍ଣ୍ଣମୃଗ—ବ.ଶାଖାମୃଗ, ବାନର, ବୃକ୍ଷମାର୍ଜ୍ଜାର, କଟାଶ, ଯେଉଁ ପଶୁମାନେ ଗଛ ଉପରେ ଚଳ ପ୍ରଚଳ ହୁଅନ୍ତି ।

ପର୍ଣ୍ଣରୁହ—ବ. ( ପର୍ଣ୍ଣ+ରୁହ+କ୍ୱିପ୍ ) ଯେଉଁ ସମୟରେ ପତ୍ରମାନେ କଅଁଳନ୍ତି, ବସନ୍ତକାଳ ।

ପର୍ଣ୍ଣଲ—ବିଂ. (ପର୍ଣ୍ଣ+ଲ)ପତ୍ରଯୁକ୍ତ ।

ପର୍ଣ୍ଣଲତା—ସ୍ତ୍ରୀ.ବ.(ପର୍ଣ୍ଣ+ଲତା) ନାଗବଲ୍ଲୀ, ତାମ୍ବୂଳୀଲତା, ପାନଲତା ।

ପର୍ଣ୍ଣବଲ୍ଲୀ—ସ୍ତ୍ରୀ. ବ. ପଲାଶୀଲତା ।

ପର୍ଣ୍ଣବାଦ୍ୟ—କ୍ଳୀ. ବ. (୬ତତ୍) (ତାଳଆଦିର) ପତ୍ରରେ ତିଆରି ପେଁକାଳି, ପତ୍ର ନିର୍ମିତ ପେଁକାଳିର ଶବ୍ଦ ।

ପର୍ଣ୍ଣବାଟିକା—ସ୍ତ୍ରୀ.ବ.ପାନବଡ଼ିଆ, ପାନଖିଲ ।

ପର୍ଣ୍ଣଶଯ୍ୟା—ବ.(ମଧ୍ୟ-କ.ଧା) ପତ୍ରଶଯ୍ୟା, ପତ୍ରର ବିଛଣା ।

ପର୍ଣ୍ଣଶବର—ପୁଂ.ସ୍ତ୍ରୀ. ବ. ପତର ଶବର ଦେଖ ।     [ ପଲ୍ଲ ।

ପର୍ଣ୍ଣଶାଳା—ବ(ପର୍ଣ୍ଣ+ଶାଳା)ପତ୍ରକୁଡ଼ିଆ,

ପର୍ଣ୍ଣଶୁଷ୍—ବ. (ପର୍ଣ୍ଣ+ଶୁଷ୍+କ.କ୍ୱିପ୍) ବୃକ୍ଷର ପତ୍ରଶୋଷକ ଶୀତକାଳ ।

ପର୍ଣ୍ଣସି—ବ. କମଳ, ପଦ୍ମ, ଜଳଗୃହ, ଶାକସବଜୀ, ପରିବା, ଆଭରଣକ୍ରିୟା ।

ପର୍ଣ୍ଣାଦ—ପୁଂ. ବ . (ପର୍ଣ୍ଣ+ଅଦ୍+କ. ଅ) ଯେ ପତ୍ର ଭକ୍ଷଣ କରି ବ୍ରତାନୁଷ୍ଠାନ କରେ,(ବ) ଋଷିବିଶେଷ ।

ପର୍ଣ୍ଣାଶନ—ବ. (ପର୍ଣ୍ଣ+ଅଶନ) ୬ତତ୍; ଖାଦ୍ୟ ରୂପେ ବ୍ୟବହୃତ ପତ୍ର, (ବ.ବ୍ରୀ) ମେଘ (ପ୍ରବାଦ ଅଛି ମେଘମାନେ ପତ୍ର ଖାଆନ୍ତି),(ବିଂ.ବ.ବ୍ରୀ) ଯେ ପତ୍ର ଖାଇ ବଞ୍ଚେ ।     [ ଘାସ ।

ପର୍ଣ୍ଣାସ—ବ.ଏକପ୍ରକାର ତୁଳସୀ, ପନାସି

ପର୍ଣ୍ଣାସି—ବ. ତୁଳସୀଗଛ, ପନାସିଘାସ ।

ପର୍ଣ୍ଣାହାର—ବିଂ. (ବ.ବ୍ରୀ) ଯେଉଁମାନେ ପତ୍ର ଆହାର କରନ୍ତି, ବ୍ରତାର୍ଥ ପତ୍ରଭୋଜନକାରୀ ।

ପର୍ଣ୍ଣିକ—ବିଂ.(ପର୍ଣ୍ଣ+କ) ପର୍ଣ୍ଣବିକ୍ରେତା, ଯେ ପାନ ବିକ୍ରୟ କରେ ।

ପର୍ଣ୍ଣିକା—ସ୍ତ୍ରୀ. ବ. ସ୍ଥଳପଦ୍ମ, ପୃଶ୍ନିପର୍ଣ୍ଣୀ, ଶାଳପର୍ଣ୍ଣୀ, ଅଗ୍ନିମନ୍ଥ, ଗନିଆରି ଗଛ ।

ପର୍ଣ୍ଣିମାଦ୍ୱୟ—କ୍ଳୀ. ବ. ମାଷପର୍ଣ୍ଣୀ ଓ ମୁଦ୍ଗପର୍ଣ୍ଣୀ, ବଣମୁଗ ଓ ବଣବିରି ।

ପର୍ଣ୍ଣୀ—ପୁଂ. ବ. (ପର୍ଣ୍ଣ+ଇନ୍) ବୃକ୍ଷ, ଗଛ, ଶାଳପର୍ଣ୍ଣୀ, ପୃଶ୍ନିପର୍ଣ୍ଣୀ, ତେଜପତ୍ର, (ବିଂ) ପତ୍ରଯୁକ୍ତ ।

ପର୍ଣ୍ଣୋଟଜ—କ୍ଳୀ. ବ. (ମଧ୍ୟ-କ.ଧା)ପର୍ଣ୍ଣଶାଳା, ପତ୍ରକୁଡ଼ିଆ, ପଲ୍ଲ ।

ପର୍ତ୍ତୁଗାଲ—ଯା.ବ.ୟୁରୋପ ମହାଦେଶର ଅନ୍ତର୍ଗତ ଗୋଟିଏ ରାଜ୍ୟ ।

ପର୍ତ୍ତୁଗୀଜ—ବ. ପର୍ତ୍ତୁଗାଲର ଖ୍ରୀଷ୍ଟାନ ଅଧିବାସୀ ।

ପର୍ଦ୍ଦ—ପୁଂ.ବ. କେଶସମୂହ, ଘନକେଶ, ମୁଣ୍ଡର ବାଳ, ଅପାନ ବାୟୁର ତ୍ୟାଗ, ବାତକର୍ମ, ପାଡ଼ ।

ପର୍ଦ୍ଦନ—କ୍ଳୀ. ବ. (ପର୍ଦ୍ଦ+ଅନ)ଅଧୋବାୟୁର ତ୍ୟାଗ, ବାତକର୍ମ, ପାଡ଼, ପାଡ଼ିବା ।

ପର୍ଦ୍ଦା—ଯା. ବ. ଯବନିକା, ବସ୍ତ୍ର ନିର୍ମିତ ବ୍ୟବଧାନ,ପଟ, ଗୋପନ, ଅନ୍ତଃପୁର, ନାରୀର ଅବରୋଧ ପ୍ରଥା ।

ପର୍ପ—କ୍ଳୀ. ବ. ( ପର୍ପ+ଅ ) ନବତୃଣ, କଅଁଳଘାସ, ଗୃହ, ଖଞ୍ଜବାହ୍ୟ ଶକଟ, ଯେଉଁ ଯାନରେ ପଙ୍ଗୁମାନେ ଯାତାୟାତ କରନ୍ତି ।

ପର୍ପଟ—ପୁଂ. ବ. (ପର୍ପ+ଅଟ) ସ୍ୱନାମଖ୍ୟାତ କ୍ଷୁଦ୍ର କ୍ଷୁପ, କ୍ଷେତ ପାପଡ଼ା, ଘରପୋଡ଼ିଆ ଗୁଳ୍ମ, ପାମ୍ପଡ଼, ପିଷ୍ଟକ-

ବିଶେଷ, ସୌରାଷ୍ଟ୍ର ମୃତ୍ତିକା, ସୁଗନ୍ଧ-ବିଶେଷ ।

ପର୍ପଟକ—ପୁଂ.ବି. ପର୍ପଟ ଦେଖ ।

ପର୍ପଟଦ୍ରୁମ—ବି. ଯେଉଁ ଗଛର ଫୁଲ ପର୍ପଟ ପରି, କୁମ୍ଭିଚକ୍ର ।

ପର୍ପଟୀ—ସ୍ତ୍ରୀ. ବି. ସୌରାଷ୍ଟ୍ର ମୃତ୍ତିକା, ଉତ୍ତର ଦେଶଭବ ସୁଗନ୍ଧି ଦ୍ରବ୍ୟ ।

ପର୍ପରୀ—ବି. ବାଳର ବେଣୀ ।

ପର୍ପରୀକ—ବି.ସୂର୍ଯ୍ୟ, ବହ୍ନି, ଜଳାଶୟ ।

ପର୍ପରୀଣ—ପୁଂ.ବି.ପର୍ବ,ପର୍ବ, ପର୍ଣ୍ଣ ବୃନ୍ତ-ରସ, ପତ୍ରଦେଣ୍ଟିର ରସ, ପତ୍ରଶିରା, ପତ୍ରଚୂର୍ଣ୍ଣ ରସ, ଦ୍ୟୂତକମୂଳ ।

ପର୍ପିକ—ପୁଂ. ସ୍ତ୍ରୀ ବି. ଶ୍ରେଷ୍ଠ ଲୋକ, ଦୋଳାରେ ନିଆଅଣା କରାଯାଉଥିବା ଖଞ୍ଜ ବ୍ୟକ୍ତି ।

ପର୍ଫରୀକ—କ୍ଲୀ.ବି.ନବପଲ୍ଲବ,ନୂତନପତ୍ର ।

ପର୍ଯ୍ୟଗ୍ନି—ପୁଂ.ବି.ଯଜ୍ଞୋଦ୍ଦେଶେ ଉତ୍ସର୍ଗ କରଣୀୟ ପଶୁର ଚତୁର୍ଦ୍ଦିଗରେ ଯେଉଁ ଜଳନ୍ତା ନିଆଁ ଧରି ପରିକ୍ରମା କରାଯାଏ ।

ପର୍ଯ୍ୟଗ୍ନିକରଣ—ବି. ହୋମ ବା ଯଜ୍ଞୀୟ ପଶୁର ଚାରିପାଖେ ଜଳନ୍ତା ନିଆଁ ଧାରଣପୂର୍ବକ ପରିକ୍ରମଣ ।

ପର୍ଯ୍ୟଗ୍ନିକୃତ—ବିଂ. ଚାରିପାଖେ ଅଗ୍ନି ବେଷ୍ଟନ ଦ୍ୱାରା କୃତ ସଂସ୍କାର ।

ପର୍ଯ୍ୟଙ୍କ—ବି. ( ପରି+ଅନ୍କ+ଅ ) ପଲଙ୍କ, ଖଟ, ପାଲିଙ୍କି, ଯୋଗପଟ୍ଟ, ଯୋଗାସନ,ନର୍ମଦାର ଉତ୍ତରସ୍ଥ ପର୍ବତ-ବିଶେଷ ।

ପର୍ଯ୍ୟଙ୍କପାଦିକା—ସ୍ତ୍ରୀ. ବି. କୋଳଶିମ୍ବି, ଧଳା ବାଇଗଙ୍କ ।

ପର୍ଯ୍ୟଙ୍କବନ୍ଧ(ନ)—ବି.ବସ୍ତ୍ରାଦି ଦ୍ୱାରା ପୃଷ୍ଠ ଜାନୁ ଓ ଜଙ୍ଘାର ବନ୍ଧନ, ବୀରାସନ ।

ପର୍ଯ୍ୟଙ୍କିକା—ବି. (ପର୍ଯ୍ୟଙ୍କ+କ+ଆ) ଶ୍ରେଷ୍ଠ ପଲଙ୍କ ।

ପର୍ଯ୍ୟଙ୍ଗ୍ୟ—ବି.ଅଶ୍ୱମେଧ ଯଜ୍ଞ ସମ୍ବନ୍ଧୀୟ ପ୍ରଥମ ଯୂପ ବନ୍ଧନୀୟ ପଞ୍ଚଦଶ ସଂଖ୍ୟକ ପଶୁବିଶେଷ ।

ପର୍ଯ୍ୟଟକ—ପୁଂ.ବି. (ପରି+ଅଟ୍+କ. ଅକ) ପରିବ୍ରାଜକ, ଇତସ୍ତତଃ ଭ୍ରମଣକାରୀ ପଥିକ ।

ପର୍ଯ୍ୟଟନ—କ୍ଲୀ.ବି.(ପରି+ଅଟ୍+ଅନ) ଭ୍ରମଣ, ପରିଭ୍ରମଣ,ଇତସ୍ତତଃ ଭ୍ରମଣ ।

ପର୍ଯ୍ୟଧ୍ୟୟନ—ପୁଂ.ବିଂ. ପଢ଼ିବାକୁ ଅନିଚ୍ଛୁକ ।

ପର୍ଯ୍ୟନ୍ତ—ବି.(ପରି+ଅନ୍ତ) ଶେଷସୀମା, ପ୍ରାନ୍ତ, ଅବଧି, ନିକଟ, ଅବସାନ. ସୀମା.(ବିଂ)ଶେଷସୀମା ପ୍ରାପ୍ତ, ନିକଟ-ବର୍ତ୍ତୀ,ଗ୍ରା.କ୍ରି.ବିଂ. (କାଳ, ସ୍ଥାନ,ବିଷୟ) ଅବଧି, ଯାକେ, ଶେଷ ପର୍ଯ୍ୟନ୍ତ ।

ପର୍ଯ୍ୟନ୍ତଭୂ—ସ୍ତ୍ରୀ. ବି. ( ପର୍ଯ୍ୟନ୍ତ+ଭୂ ) ପର୍ଯ୍ୟନ୍ତଭୂମି ଦେଖ ।

ପର୍ଯ୍ୟନ୍ତଭୂମି—ବି. (କ.ଧା) ସୀମାଭୂମି, ନିକଟବର୍ତ୍ତୀ ଅଞ୍ଚଳ, ନଦୀ ଶୈଳାଦିର ସନ୍ନିକଟବର୍ତ୍ତୀ ଭୂଭାଗ ।

ପର୍ଯ୍ୟନ୍ୟ—ପୁଂ. ବି. ଇନ୍ଦ୍ର, ଶବ୍ଦାୟମାନ ମେଘ, ମେଘଶବ୍ଦ ।

ପର୍ଯ୍ୟୟ—ପୁଂ. ବି. (ପରି+ଅୟ+ଭା. ଅ) ବୈପରୀତ୍ୟ, ଅବୈଧ ଆଚାର, କ୍ରମୋଲ୍ଲଙ୍ଘନ, ବ୍ୟତିକ୍ରମ, ପରିତ୍ୟାଗ, ପ୍ରାତକୃତ୍ୟ ।

ପର୍ଯ୍ୟୟଣ—ବି. ( ପରି+ଅୟ+ଅନ ) ପଲାଣ, ପଶୁ ପୃଷ୍ଠରେ ପଡ଼ିବା ଆସନ. ଜିନ୍ ।

ପର୍ଯ୍ୟବଦାତ—ବିଂ. ଉତ୍ତମ ରୂପେ ପରି-ଚ୍ଛିନ୍ନ, ପରିଷ୍କୃତ, ଜ୍ଞାନଯୁକ୍ତ ।

ପର୍ଯ୍ୟବଧାରଣ-କ୍ଲୀ.ବି.ଯଥାଯଥ ନିରୂପଣ

ପର୍ଯ୍ୟବରୋଧ—ବି.ବାଧା, ପ୍ରକୃଷ୍ଟ ରୂପେ ଅଟକାଇବା ।

ପର୍ଯ୍ୟବସାନ—କ୍ଲୀ.ବି. (ପରି+ଅବସାନ) ସମାପନ, ପ୍ରକୃତାର୍ଥ ନିରୂପଣ, ଶେଷା-ବଧି, ରାଗ ବା କ୍ରୋଧ ।

ପର୍ଯ୍ୟବସାନକ—ବିଂ.ଶେଷ ଅବସ୍ଥା ପ୍ରାପ୍ତ, ମୁଖ୍ୟ ଉଦ୍ଦେଶ୍ୟରେ ଉପନୀତ ।

ପର୍ଯ୍ୟବସିତ—ବିଂ. ( ପରି+ଅବସିତ ) ପୂର୍ବାପର ଆଲୋଚନା ଦ୍ୱାରା ଅବ-ଧାରିତ, ସମାପ୍ତ,ନିଃଶେଷିତ, ପରିଣତ, ଅପେକ୍ଷାକୃତ ଦୂରସ୍ଥ, ନଷ୍ଟସ୍ୱାର୍ଥ ।

ପର୍ଯ୍ୟବସ୍କନ୍ଦ—ପୁଂ. ବି. ରଥାଦିରୁ ଲମ୍ଫ-ପ୍ରଦାନ ପୂର୍ବକ ଅବତରଣ ।

ପର୍ଯ୍ୟବସ୍ଥା—ବି. (ପରି+ଅବସ୍ଥା)ବିରୋ-ଧନ, ପ୍ରତିପକ୍ଷବାଦ, ଅବରୋଧ,ଅଟକ, ବାଧା ।

ପର୍ଯ୍ୟବସ୍ଥାନ—ବି. ( ପରି+ଅବସ୍ଥାନ ) ପର୍ଯ୍ୟବସ୍ଥା ଦେଖ ।

ପର୍ଯ୍ୟବସ୍ଥାତା—ପୁଂ.ବିଂ. (ପରି+ଅବ+ସ୍ଥା+କ.ତୃ)ପର୍ଯ୍ୟବସ୍ଥାନକର୍ତ୍ତା,ବିରୋଧୀ, ପ୍ରତିକୂଳ, ବ୍ୟାଘାତକ, ଶତ୍ରୁତାଚରଣ ।

ପର୍ଯ୍ୟବସ୍ଥିତ—ବିଂ. (ପରି+ଅବସ୍ଥିତ) ସର୍ବତ୍ର ବ୍ୟାପ୍ତ ହୋଇ ସ୍ଥିତ, ଅବସ୍ଥିତ, (ଅମୁକ ପ୍ରତି)ଆସକ୍ତ, ଆନନ୍ଦିତ, ହୃଷ୍ଟ, ସୁଖୀ, (ବି) ବିଷ୍ଣୁ, ଈଶ୍ୱର ।

ପର୍ଯ୍ୟବେକ୍ଷକ—ପୁଂ.ବିଂ. (ପରି+ଅବ+ଈକ୍ଷ୍+କ.ଅକ ) ପର୍ଯ୍ୟବେକ୍ଷଣକାରୀ, ନିରୀକ୍ଷଣକାରୀ, ପରିଦର୍ଶକ, ପରୀକ୍ଷକ, ତତ୍ତ୍ୱାବଧାରକ, (ସ୍ତ୍ରୀ) ପର୍ଯ୍ୟବେକ୍ଷକା ।

ପର୍ଯ୍ୟବେକ୍ଷଣ—କ୍ଲୀ.ବି. ( ପରି+ଅବ+ଈକ୍ଷ୍+ଭା.ଅନ) ମନୋନିବେଶ ପୂର୍ବକ ନିରୀକ୍ଷଣ, ତତ୍ତ୍ୱାବଧାରଣ, ତଦନ୍ତ, ତତ୍ତ୍ୱାବଧାନ ।

ପର୍ଯ୍ୟବେକ୍ଷଣିକା—ସ୍ତ୍ରୀ.ବି. (ପର୍ଯ୍ୟବେକ୍ଷଣ +ଇକ+ଆ) ଗ୍ରହନକ୍ଷତ୍ରାଦି ଦେଖି-ବାର ଘର, ମାନମନ୍ଦିର ।

ପର୍ଯ୍ୟବେକ୍ଷିତ—ବିଂ. (ପରି+ଅବ+ଈକ୍ଷ୍+ମି.ତ) ପରିଦୃଷ୍ଟ, ନିରୀକ୍ଷିତ ।

ପର୍ଯ୍ୟଶ୍ରୁ—ବି. (ପରି+ଅଶ୍ରୁ)ଅଶ୍ରୁଜଳେ ସ୍ନାତ, ଅଶ୍ରୁପୂର୍ଣ୍ଣ ।

ପର୍ଯ୍ୟସନ—କ୍ଲୀ. ବି. (ପରି+ଅସ+ଭା. ଅନ) ଅପସାରଣ, ଦୂରୀକରଣ, ଇତ-ସ୍ତତଃ ଫିଙ୍ଗିବା ।

ପର୍ଯ୍ୟସ୍ତ—ବିଂ. (ପରି+ଅସ୍ତ) ନିହତ, ବିସ୍ତୃତ, ବିକ୍ଷିପ୍ତ, ଫିଙ୍ଗିଦିଆ ଯାଇଥିବା, ପ୍ରସାରିତ, ବେଷ୍ଟିତ, ଆହତ,ଆକ୍ରାନ୍ତ, ଦୂରୀକୃତ, ଉଦ୍ବର୍ତ୍ତିତ, ଓଲଟାଇ ଦିଆ ଯାଇଥିବା, ପତିତ, ବ୍ୟାପ୍ତ ।

ପର୍ଯ୍ୟସ୍ତି—ବି. ( ପରି+ଅସ୍+ଭା.ତି ) ପଲ୍ୟଙ୍କ, ଦୂରୀକରଣ, ଡେରି ହୋଇ ତଳିପାରେ ବସିବା, ପିରୁମାଡ଼ି ବସିବା,

ଚକାପକାଇ ବସିବା ।

ପର୍ଯ୍ୟସ୍ତିକା—ସ୍ତ୍ରୀ. ବି. (ପର୍ଯ୍ୟସ୍ତ+କ.ଆ) ଖଟ, ପଲଙ୍କ, ଶଯ୍ୟା ।

ପର୍ଯ୍ୟାକୁଳ—ବିଂ. (ପରି+ଆକୁଳ) ଅତିଶୟ ବ୍ୟାକୁଳ, କାତର, ବ୍ୟତିବ୍ୟସ୍ତ, ବିକ୍ଷିପ୍ତ, ଗୋଳିଆ,ସ୍ଖଳିତଗତି ।

ପର୍ଯ୍ୟାକୁଳତ୍ୱ—କ୍ଲୀ.ବି. ବ୍ୟାକୁଳତା ।

ପର୍ଯ୍ୟାଖ୍ୟାନ—କ୍ଲୀ.ବି. ଆଖ୍ୟାନ,ପରିତଃକଥନ ।

ପର୍ଯ୍ୟାଚାନ୍ତ—ବି. (ପରି+ଆଚାନ୍ତ) ଏକ ପଂକ୍ତିରେ ବସି ଭୋଜନ କରୁଥିବା ବ୍ୟକ୍ତିମାନଙ୍କ ମଧ୍ୟରୁ ଜଣେ ଉଠିଗଲେ ବା ଆଚମ୍ବାଇଲେ ଅନ୍ୟ ବ୍ୟକ୍ତିମାନଙ୍କ ଭୋଜନପାତ୍ର ବା ପାତ୍ରରେ ଯେଉଁ ଖାଦ୍ୟସାମଗ୍ରୀ ନଷ୍ଟ ରହିଥାଏ ।

ପର୍ଯ୍ୟାଣ—କ୍ଲୀ.ବି. (ପରି+ଯା+ଣ.ଅନ) ଅଶ୍ୱପୃଷ୍ଠର ଆସନ, ଜିନ, ଅଶ୍ୱସଜ୍ଜା, ପଲାଣ ।

ପର୍ଯ୍ୟାପ୍ତ—ବିଂ. (ପରି+ଆପ୍+କ.ତ) ପ୍ରାପ୍ତ, ଲବ୍ଧ, ସମର୍ଥ, ସମ୍ପୂର୍ଣ୍ଣ,ଯଥେଷ୍ଟ, ପ୍ରଚୁର, ସମସ୍ତ, ପରିମିତ, ସମ୍ପନ୍ନ, ବିସ୍ତୃତ, ସମାପ୍ତ, ବୃଦ୍ଧ, ଯୋଗ୍ୟ, ଉପଯୁକ୍ତ, (ଭି. ଭା.ତ) ପ୍ରାଚୁର୍ଯ୍ୟ, ଶକ୍ତି, ସାମର୍ଥ୍ୟ, ତୃପ୍ତି, ଯୋଗ୍ୟତା ।

ପର୍ଯ୍ୟାପ୍ତବାଦୀ—ପୁଂ. ବିଂ. ମିତବାଦୀ, ମିତଭାଷୀ ।

ପର୍ଯ୍ୟାପ୍ତଭୋଗ—ବି. ଭୋଗାତିଶଯ୍ୟ ।

ପର୍ଯ୍ୟାପ୍ତି—ସ୍ତ୍ରୀ. ବି. (ପରି+ଆପ୍+ଭା.ତି) ପ୍ରାଚୁର୍ଯ୍ୟ, ପରିପୂର୍ଣ୍ଣତା, ପରିତୃପ୍ତି, ସାମର୍ଥ୍ୟ, ସ୍ୱାଚ୍ଛନ୍ଦ୍ୟ, ଅବସାନ, ପରିତ୍ରାଣ, ମରଣୋଦ୍ୟତର ନିବାରଣ, ପ୍ରକାଶ, ପ୍ରାପ୍ତି, ପରିମିତତା,ଅପସାରଣ, (ଗ୍ରା.ବି) ଜୀବିକା, ଆବଶ୍ୟକତା ।

ପର୍ଯ୍ୟାୟ—ପୁଂ.ବି. (ପରି+ଇ+ଭା.ଅ) ଅନୁକ୍ରମ, ପାଳି, ସୁବିଧା, କ୍ରମ,ଶ୍ରେଣୀ, ପ୍ରକାର, ଅବସର, ନିର୍ମାଣ; ତାତ୍ପର୍ଯ୍ୟ, ଆନୁପୂର୍ବ, ଦ୍ରବ୍ୟଧର୍ମ, ପ୍ରାଚୁର୍ଯ୍ୟ, ଏକାର୍ଥବାଚକ ଶବ୍ଦ,ସମାନାର୍ଥକ ଶବ୍ଦ, ସମନାମ,ବଂଶପ୍ରବର୍ତ୍ତକଠାରୁ ଗଣିତ ପୁରୁଷ ସଂଖ୍ୟା, ଅର୍ଥାଲଙ୍କାରବିଶେଷ ।

ପର୍ଯ୍ୟାୟକ୍ରମେ—କ୍ରି.ବି.ବିଂ. ଯଥାକ୍ରମ, ପାଳି ଅନୁସାରେ, ଏକର ପର ଅନ୍ୟ ।

ପର୍ଯ୍ୟାୟଚ୍ୟୁତ—ବିଂ. ସ୍ୱାଧିକାର ପଥରୁ ଭ୍ରଷ୍ଟ, ପର୍ଯ୍ୟାୟକ୍ରମେ ଯାହାର ପଦୋନ୍ନତି ହୁଏ ନାହିଁ । [ ଶବ୍ଦ ।

ପର୍ଯ୍ୟାୟବଚନ--କ୍ଲୀ.ବି. ଏକାର୍ଥ ପ୍ରକାଶକ

ପର୍ଯ୍ୟାୟବୃତ୍ତି—ସ୍ତ୍ରୀ.ବି. ଗୋଟିକୁ ତ୍ୟାଗ କରି ଅନ୍ୟକୁ ଗ୍ରହଣ କରିବାର ବୃତ୍ତି ବା କାର୍ଯ୍ୟ ।

ପର୍ଯ୍ୟାୟଶବ୍ଦ—ଗ୍ରା. ବି. ଏକ ପଦାର୍ଥର ଏକାର୍ଥବୋଧକ ଭିନ୍ନ ନାମ ।

ପର୍ଯ୍ୟାୟଶୟନ—କ୍ଲୀ.ବି. ପହରିମାନଙ୍କର ପାଳି ଅନୁସାରେ ଶୋଇବା ।

ପର୍ଯ୍ୟାୟଶଃ—ଅବ୍ୟ. ସମସ୍ତ ସମୟରେ, ପର୍ଯ୍ୟାୟକ୍ରମେ ।

ପର୍ଯ୍ୟାୟାନ୍ନ—କ୍ଲୀ.ବି. ପର୍ଯ୍ୟାଚାନ୍ତ ଦେଖ

ପର୍ଯ୍ୟାୟୋକ୍ତ—ବିଂ. (ଅତନ୍ତ୍ର) କ୍ରମାନୁସାରେ କଥିତ, (ବି) ଅର୍ଥାଲଙ୍କାରବିଶେଷ ।

ପର୍ଯ୍ୟାଲୋଚନ—କ୍ଲୀ.ବି. (ପରି+ଆଲୋଚନ) ସର୍ବତୋଭାବେ ଆଲୋଚନା, ବିତର୍କ, ଅନୁଶୀଳନ, ସମାଲୋଚନା, ସର୍ବଦା ଅଭ୍ୟାସ ।

ପର୍ଯ୍ୟାବର୍ତ୍ତ—ବି. ସଂସାରରେ ପୁନର୍ବାର ଜନ୍ମ ଗ୍ରହଣ, ପ୍ରତ୍ୟାଗମନ,ବଦଳ ।

ପର୍ଯ୍ୟାବର୍ତ୍ତନ—କ୍ଲୀ.ବି. ସୂର୍ଯ୍ୟଙ୍କର ପଶ୍ଚିମ ବର୍ତ୍ତିନୀ ଗ୍ରସ୍ଥାରୁ ପୂର୍ବ ଦିଗ୍ବର୍ତ୍ତୀରୂପେ ପରିବୃତ୍ତି, ନରକବିଶେଷ ।

ପର୍ଯ୍ୟାବିଲ—ବିଂ.ଅତିଶୟକଳୁଷ,ଅତ୍ୟନ୍ତ ଗୋଳିଆ ।

ପର୍ଯ୍ୟାସ—ବି. (ପରି+ଅସ୍+ଭା.ଅ) ପତନ, ହନନ, ପରିବର୍ତ୍ତନ, ବିସ୍ତାର, ବିନାଶ, ବିପର୍ଯ୍ୟୟ, କ୍ରମଭଙ୍ଗ, ଓଲଟପାଲଟ ହେବା, ବେଢ଼ିକରି ବସିବା, ପରିକ୍ରମା ।

ପର୍ଯ୍ୟାସିତ—ବିଂ. (ପରି-ଅସ୍+ଣିଚ୍+ମି.ତ)ପରିଣତ,ପରିବର୍ତ୍ତିତ,ବିସ୍ତାରିତ, (ସ୍ତ୍ରୀ) ପର୍ଯ୍ୟାସିତା ।

ପର୍ଯ୍ୟାହାର—ବି. ବହଙ୍ଗିକା, ବାହୁଙ୍ଗୀ, ବୋଝ, କଳଶ, ଶସ୍ୟସଞ୍ଚୟ, ନଡ଼ା ଗଦାକରିବା ।

ପର୍ଯ୍ୟୁକ୍ଷଣ—ବି.(ପରି+ଉକ୍ଷ+ଭା.ଅନ) ଶ୍ରାଦ୍ଧ, ହୋମ, ପୂଜାଆଦିରେ ମନ୍ତ୍ରପାଠ ପୂର୍ବକ ଚାରିଆଡ଼େ ପାଣି ସିଞ୍ଚିବା ।

ପର୍ଯ୍ୟୁକ୍ଷଣୀ—ବି. (ପର୍ଯ୍ୟୁକ୍ଷଣ+ଈ) ଯେଉଁ ପାତ୍ରରୁ ଜଳ ନେଇ ଚାରିଆଡ଼େ ଛିଞ୍ଚାଯାଏ ।

ପର୍ଯ୍ୟୁତ୍ସୁକ—ପୁଂ.ବିଂ. (ପରି+ଉତ୍ସୁକ) ଉତ୍କଣ୍ଠିତ, ବ୍ୟାକୁଳ, ଆସକ୍ତ, ଅନୁରକ୍ତ, ଲାଳାୟିତ, (ସ୍ତ୍ରୀ) ପର୍ଯ୍ୟୁତ୍ସୁକା ।

ପର୍ଯ୍ୟୁଦଞ୍ଚନ—କ୍ଲୀ.ବି.(ପରି+ଉଦ୍+ଅଞ୍ଚ+ଭା.ଅନ) ଋଣ, ଧାର, କରଜ ।

ପର୍ଯ୍ୟୁଦୟେ—ଅବ୍ୟ. ସୂର୍ଯ୍ୟୋଦୟର ସମୀପବର୍ତ୍ତୀ କାଳରେ ।

ପର୍ଯ୍ୟୁଦସ୍ତ—ବିଂ. (ପରି+ଉଦ୍+ଅସ୍+ମି.ତ) ପର୍ଯ୍ୟୁଦାସବିଶିଷ୍ଟ, ନିଷିଦ୍ଧ, ପରାଜିତ, ନାମଞ୍ଜୁର କରାଯାଇଥିବା, ହୀନବଳ ।

ପର୍ଯ୍ୟୁଦାସ—ପୁଂ. ବି. (ପରି+ଉଦ୍+ଅସ୍+ଅ) ନିବାରଣ, ପରାଜୟ,ନିଷେଧାତ୍ମକ ନିୟମ ।

ପର୍ଯ୍ୟୁପସ୍ଥାନ—କ୍ଲୀ.ବି. (ପରି+ଉପ+ସ୍ଥା+ଅନ) ପରିଚର୍ଯ୍ୟା, ସେବା ।

ପର୍ଯ୍ୟୁପାସକ—ପୁଂ.ବିଂ. (ପରି+ଉପ+ଆସ+ଅକ)ପର୍ଯ୍ୟୁପାସନକାରୀ,ସେବକ ।

ପର୍ଯ୍ୟୁପାସନ—କ୍ଲୀ.ବି. (ପରି+ଉପ+ଆସ+ଭା.ଅନ) ସେବା, ସତ୍କାର, ଚାରିଆଡ଼େ ବସିବା, କ୍ଷମା ମାଗିବା, ବନ୍ଧୁତା, (ଅଧି.ଅନ) ଯେଉଁଠାରେ ଗୁଡ଼ଣି ପକାଯାଏ । [ ସେବକ ।

ପର୍ଯ୍ୟୁପାସିତା—ପୁଂ. ବିଂ. ପର୍ଯ୍ୟୁପାସକ,

ପର୍ଯ୍ୟୁପ୍ତି—ସ୍ତ୍ରୀ.ବି. (ପରି+ବପ୍+ଭା.ତି) ଚାରିଆଡ଼େ ମଞ୍ଜି ବୁଣିବା ।

ପର୍ଯ୍ୟୁଷଣ—କ୍ଲୀ. ବି. ସେବା, ପୂଜା, ଜୈନମାନଙ୍କର ପର୍ବବିଶେଷ ।

ପର୍ଯ୍ୟୁଷିତ—ବିଂ. (ପରି+ବସ୍+ତ) ଭ୍ରଷ୍ଟ, ବାସି, ଗତଗନ୍ଧିକ(ଦ୍ରବ୍ୟ), ପଚା,

ସନ୍ଧ୍ୟା, ପୂର୍ବ ଦିବସୀୟ ।
ପର୍ଯ୍ୟୁଷିତଭୋଜୀ—ପୁଂ. ବିଂ. ଯେ ବାସି ଜିନିଷ ଭୋଜନ କରେ ।
ପର୍ଯ୍ୟୁହଣ—କ୍ଲୀ.ବି. (ପରି+ଉହ+ଭା. ଅନ) ପରିସମୂହନ, ଅଗ୍ନିର ଚାରି-ପାଖ ମାର୍ଜନ ।
ପର୍ଯ୍ୟେଷଣ—କ୍ଲୀ. ବି.( ପରି + ଏଷଣ ) ଅନ୍ୱେଷଣ, ଗବେଷଣା, ସବିଶେଷ ଅନୁସନ୍ଧାନ ।
ପର୍ଯ୍ୟେଷ୍ଟବ୍ୟ—ବିଂ. ( ପରି+ଇଷ୍+ ତବ୍ୟ) ଅନ୍ୱେଷଣଯୋଗ୍ୟ, ପର୍ଯ୍ୟେ-ଷଣୀୟ ।
ପର୍ଯ୍ୟେଷ୍ଟି—ସ୍ତ୍ରୀ.ବି. ଅନ୍ୱେଷଣ,ଗବେଷଣା ।
ପର୍ବ(ର୍ବ)—କ୍ଲୀ.ବି. ( ପୃ+ବନ୍ ) ଗ୍ରନ୍ଥି, ସନ୍ଧି, ଉତ୍ସବ, ଅଧ୍ୟାୟ, ଅଷ୍ଟମୀ,ପୂର୍ଣ୍ଣିମୀ, ଚତୁର୍ଦ୍ଦଶୀ, ଅମାବାସ୍ୟା ତିଥି ଓ ସଂକ୍ରାନ୍ତି ଏହି ପଞ୍ଚ ପର୍ବ, ଆଖୁ ବେତ ବାଉଁଶ ଆଦିର ଦୁଇଟି ଗଣ୍ଠିମଧ୍ୟସ୍ଥ ଅଂଶ, ଅଙ୍ଗୁଠିର ମଧ୍ୟସ୍ଥ ଅଂଶ, ପବ, ପଗ, ଅମାବାସ୍ୟା ଓ ପ୍ରତିପଦାର ସନ୍ଧି, ପ୍ରସ୍ତାବ, କ୍ଷଣ, ବିଷୁବ, ସମ ଦିବାରାତ୍ର, ଅଂଶ, ବିଭାଗ, ସିଡ଼ି, ପାବଚ୍ଛ, ନିର୍ଦ୍ଦିଷ୍ଟ କଳାଂଶ ସୂର୍ଯ୍ୟ ବା ଚନ୍ଦ୍ରଗ୍ରହଣ,ସୁବିଧା, ଚନ୍ଦ୍ରପକ୍ଷ, (ଗ୍ରା.ବି) ବ୍ୟାପାର, ଘଟନା, ଗୋଳମାଳ । [ ଆଣ୍ଠୁ ।
ପର୍ବକ—କ୍ଲୀ.ବି. (ପର୍ବ+କ) ଉରୁପର୍ବ,
ପର୍ବକାର—ବିଂ. ଧନଲୋଭରେ ଅପର୍ବ ଦିନରେ ପର୍ବୋକ୍ତ କର୍ମକାରକ ।
ପର୍ବକାରୀ—ପୁଂ. ବିଂ. ଧନାଢ଼ ଲୋଭେ ଅପର୍ବ ଦିନରେ ପର୍ବାଦିକ୍ରିୟା ନିବର୍ତ୍ତକ
ପର୍ବକାଳ—ପୁଂ.ବି. ପର୍ବସମୟ,ପର୍ବଦିନ, ଚନ୍ଦ୍ରଙ୍କର କ୍ଷୟକାଳ ଅମାବାସ୍ୟା ଚତୁର୍ଦ୍ଦଶୀ ଭେଦ ।
ପର୍ବଗାମୀ—ପୁଂ.ବିଂ.ପର୍ବଦିନେ ସ୍ତ୍ରୀଗାମୀ, ଯେ ପର୍ବ ଦିବସରେ ସ୍ତ୍ରୀ ସହବାସ କରେ । [ ବିଶେଷ ।
ପର୍ବଗୁପ୍ତ—ପୁଂ. ବି. କାଶ୍ମୀରର ରାଜା-
ପର୍ବଣ—ବି. ( ପୃ+ଅନ ) ପୂର୍ତ୍ତିକରଣ, ରାକ୍ଷସବିଶେଷ, ଗ୍ରନ୍ଥି, ଗଣ୍ଠି ।

ପର୍ବ(ଣିକା)ଣୀ—ସ୍ତ୍ରୀ. ବି. ପୂର୍ଣ୍ଣିମା, ଚକ୍ଷୁ-ସନ୍ଧିର ରୋଗବିଶେଷ, ପୂରଣ କରିବା କର୍ମ, ଉତ୍ସବ ।
ପର୍ବତ—ବି. ( ପର୍ବନ୍+ତ ) ଭୂପୃଷ୍ଠସ୍ଥ ଉଚ୍ଚ ପ୍ରସ୍ତରମୟ ସ୍ଥାନ, ପାହାଡ଼, ସାତସଂଖ୍ୟା, ଗନ୍ଧର୍ବବିଶେଷ, ସୋମ ରସକୁ ଛେଚିବାପାଇଁ ବ୍ୟବହୃତ ପ୍ରସ୍ତରଖଣ୍ଡ, ଅଷ୍ଟାବସୁ ମଧ୍ୟରୁ ଏକ, ରାମାୟଣୋକ୍ତ ମର୍କଟବିଶେଷ.ଦଶନାମୀ ସନ୍ନ୍ୟାସୀ ମଧ୍ୟରୁ ଏକଶ୍ରେଣୀ, ଦେବର୍ଷି ବିଶେଷ, ମତ୍ସ୍ୟବିଶେଷ, ବୃକ୍ଷ, ଶାକ-ବିଶେଷ, ଧର୍ମଙ୍କ ପୁତ୍ର, ( ଗ୍ରା.ବି.-ଲ. ଅର୍ଥ) କୌଣସି ପଦାର୍ଥର ବହୁ ପରିମାଣ ଗଦା ।
ପର୍ବତକାକ—ପୁଂ.ବି.ଦ୍ରୋଣକାକ, ଡ଼ାମରା କାଉ ।
ପର୍ବତକୀଲା—ସ୍ତ୍ରୀ. ବି. (ବି.ଗ୍ରା) ପୃଥିବୀ ।
ପର୍ବତଜ—ବିଂ. (ବି.ଗ୍ରା)ପର୍ବତରୁ ଜାତ-ମାତ୍ର । [ ପାର୍ବତ୍ୟ ନଦୀ ।
ପର୍ବତଜା—ସ୍ତ୍ରୀ. ବି. ପାର୍ବତୀ, ଦୁର୍ଗା,
ପର୍ବତପତି--ପୁଂ.ବି.ହିମାଳୟ, ଗିରିରାଜ ।
ପର୍ବତପ୍ରମାଣ--ବିଂ.(ବି.ଗ୍ରା)ପର୍ବତସଦୃଶ ।
ପର୍ବତବାସିନୀ—ସ୍ତ୍ରୀ. ବି. ( ପର୍ବତବାସିନ୍ +ଈ) କ୍ଷୁଦ୍ର ଜଟାମାଂସୀ, କାଳୀ,ଦୁର୍ଗା, ଗାୟତ୍ରୀ ।
ପର୍ବତବାସୀ—ପୁଂ. ବିଂ. ପାହାଡ଼ିଆ, ପାହାଡ଼ରେ ବାସ କରୁଥିବା (ବ୍ୟକ୍ତି)।
ପର୍ବତମୋଚା—ସ୍ତ୍ରୀ. ବି. ଗିରିକଦଳୀ, ପାହାଡ଼ିଆ କଦଳୀ ।
ପର୍ବତରାଜ—ପୁଂ. ବି. ହିମାଳୟ ପର୍ବତ, ଉଚ୍ଚତମ ପର୍ବତ ।
ପର୍ବତରାଜପୁତ୍ରୀ—ସ୍ତ୍ରୀ. ବି. ଦୁର୍ଗା ।
ପର୍ବତଶିଖର—ବି. (ଷତତ୍) ଗିରିଶୃଙ୍ଗ, ପାହାଡ଼ର ଚୂଡ଼ା ।
ପର୍ବତାକାର—ବିଂ. (ବି.ଗ୍ରା)ପର୍ବତପରି ଆକୃତିବିଶିଷ୍ଟ ।
ପର୍ବତାତ୍ମଜା—ସ୍ତ୍ରୀ. ବି. ଦୁର୍ଗା । [ ଦୁର୍ଗା ।
ପର୍ବତାଧାରା—ସ୍ତ୍ରୀ. ବି. (ବି.ଗ୍ରା) ପୃଥିବୀ,
ପର୍ବତାରି—ପୁଂ. ବି. (ପର୍ବତ+ଅରି)

ପର୍ବତମାନଙ୍କର ଶତ୍ରୁ, ଇନ୍ଦ୍ର,ଦେବରାଜ ।
ପର୍ବତାଶୟ—ପୁଂ.ବି. (ପର୍ବତ+ଆଶୟ) ବି.ଗ୍ରା ; ମେଘ,ଜଳଧର ।
ପର୍ବତାଶ୍ରୟ—ବି.(ବି.ଗ୍ରା)ଶରଭ, ପାର୍ବତ୍ୟ ବ୍ୟକ୍ତି,(ବିଂ) ଯେଉଁମାନେ ପର୍ବତରେ ବାସ କରନ୍ତି ।
ପର୍ବତାଶ୍ରୟୀ—ବିଂ. (ପର୍ବତ+ଆ+ଶ୍ରି +ଇନ୍) ପର୍ବତନିବାସୀ, ପର୍ବତର ସୀମାନ୍ତ । [ ବିଶେଷ ।
ପର୍ବତାସ୍ତ୍ର—ବି.ପ୍ରାଚୀନ କାଳର ଯୁଦ୍ଧାସ୍ତ୍ର-
ପର୍ବତୀୟ—ବିଂ. (ପର୍ବତ+ଈୟ) ପର୍ବତ ସମ୍ବନ୍ଧୀୟ,ପାର୍ବତୀୟ,ପାହାଡ଼ିଆ,ପର୍ବତ-ଭବ, ପର୍ବତବାସୀ ।
ପର୍ବତେଶ୍ୱର—ବି.ପର୍ବତରାଜ,ହିମାଳୟ, ମୁଦ୍ରାରାକ୍ଷସ ବର୍ଣ୍ଣିତ ରାଜାବିଶେଷ, ଶୈଳେଶ୍ୱର ।
ପର୍ବତୋଦ୍ଭବ—ବି. ହିଙ୍ଗୁଳ, ପାରଦ ।
ପର୍ବତୋଦ୍ଭୂତ—ବି. ଅଭ୍ରକଧାତୁ, ଅଭ୍ର ।
ପର୍ବଧି—ପୁଂ. ବି.। (ପର୍ବନ୍+ଧା+କି.ଇ) ଚନ୍ଦ୍ର ।
ପର୍ବପର୍ବାଣି—ଗ୍ରା.ବି.ଉତ୍ସବ ଦିବସମାନ, ଯାନଯାତ୍ରା, ପୁନଅପର୍ବ ।
ପର୍ବମୂଳ—କ୍ଲୀ. ବି. ଚତୁର୍ଦ୍ଦଶୀ ଓ ଅମାବାସ୍ୟାର ମଧ୍ୟବର୍ତ୍ତୀ ମୁହୂର୍ତ୍ତ ।
ପର୍ବମୂଳା—ସ୍ତ୍ରୀ. ବି. ଶ୍ୱେତା, ଶ୍ୱେତଦୁବ
ପର୍ବଯୋନି—ବି. (ବି.ଗ୍ରା) ଇକ୍ଷୁପ୍ରଭୃତି ।
ପର୍ବସ୍ୱର—କ୍ଲୀ. ବି. ପର୍ବ, ପବ, (ବି) ଗର୍ବ, ମାରୁତ, ପର୍ଣ୍ଣଶିରା, ପାନଶିରା, ଦୂଂଡକମ୍ବଳ, ପର୍ଣ୍ଣ ଚୂର୍ଣ୍ଣରସ ।
ପର୍ବରୁହ—ବି. ଡାଳିମ୍ବ, ଦାଡ଼ିମ ।
ପର୍ବବଲ୍ଲୀ-ସ୍ତ୍ରୀ.ବି.ମାଳାଦୁବା,ଦୂର୍ବାଲତା ।
ପର୍ବସନ୍ଧି—ବି. ( ଷତତ୍ ) ପୂର୍ଣ୍ଣିମା ଓ ପ୍ରତିପଦା କିମ୍ବା ଅମାବାସ୍ୟା ଓ ପ୍ରତି-ପଦାର ସନ୍ଧିସ୍ଥଳ, ସୂର୍ଯ୍ୟ ବା ଚନ୍ଦ୍ର ଗ୍ରହଣର ସମୟ, ଆଣ୍ଠୁର ଗଣ୍ଠି ।
ପର୍ବାସ୍ଫୋଟ—ବି.ଅଙ୍ଗୁଳି ପର୍ବର ଆସ୍ଫୋଟ, ଆଙ୍ଗୁଳି ଫୁଟାଇବା ।
ପର୍ବାହ୍ନ—ବି.(ପର୍ବନ୍+ଅହ୍ନ)ପର୍ବଦିବସ, ଉତ୍ସବଦିନ ।

ପର୍ବିତ—ବି.ପର୍ବତ ମତ୍ସ୍ୟ, ପାବତାମାଛ ।

ପର୍ବେଶ—ବି. ଗ୍ରହଣ କାଳବିଶେଷ ।

ପର୍ଶୁ—ବି. ( ପର୍ +ଶୃ+ଉ ) ପରଶୁ, କୁଠାର, କୁରାଢ଼ୀ, ଟାଙ୍ଗିଆ, ଟାଙ୍ଗି, ମୁଗୀ, ପାର୍ଶ୍ୱସ୍ଥି ଉଅସ୍ଥି, ଆୟୁଧଜାତିସଙ୍ଘ ବିଶେଷ ।

ପର୍ଶୁକା—ସ୍ତ୍ରୀ. ବି. ( ପର୍ଶୁ+କ+ଆ ) ପାର୍ଶ୍ୱାସ୍ଥି, ପଞ୍ଜରାସ୍ଥି. ପଞ୍ଜରାହାଡ଼ ।

ପର୍ଶୁପାଣି—ପୁଂ. ବି. (ବ.ବ୍ରୀ) ଗଣେଶ, ପର୍ଶୁରାମ, ଶିବ ।

ପର୍ଶୁରାମ—ପୁଂ. ବି. ଯାମଦଗ୍ନ୍ୟ, ପରଶୁରାମ, ଯେ କି ପରଶୁ ସହିତ ଜନ୍ମ ହୋଇଥିଲେ ।

ପର୍ଶ୍ୱଧ—ବି. କୁଠାର ।

ପର୍ଷଦ—ସ୍ତ୍ରୀ. ବି. ସଭା ।

ପର୍ଷଦ୍‌ବଳ—ବିଂ. ପାରିଷଦ, ସଭାସଦ୍ ।

ପର୍ଷା—ପ୍ରା. ସମ୍ବ. ବି. ପରୀକ୍ଷା ଦେଖ ।

ପର୍ଷିବା—ଗ୍ରା.କ୍ରି. ପରିବେଷଣ କରିବା ।

ପଲ୍‌ଟନ୍—ଯା. ବି. ସେନାଦଳ,ସୈନ୍ୟ ।

ପଳ—କ୍ଲୀ. ବି. ( ପଲ୍+ଅ ) ଆମିଷ, ମାଂସ, ଗନ୍ଧ, ମୂର୍ଖଲୋକ, ମୁହୂର୍ତ୍ତି, ପାଳ, କୁଟା, ପ୍ରତାରଣ,ଚଳନ, ଓଜନ ବିଶେଷ,ଗୁରତୋଳା ପରିମାଣ,ତରାଜ, ତୁଳାଯନ୍ତ୍ର ।

ପଲ—ଗ୍ରା. ବି. (ସଂ-ଦଳ) ଏକଜାତୀୟ ଜୀବଙ୍କ ସମୂହ, ଦଳ, ପଞ୍ଝା ।

ପଳ(ଲ)ଉ—ଗ୍ରା. ବି. ପଲାନ୍ନ, ମାଂସ ମିଶା ଖେଚଡ଼ି ।

ପଲକ—ବି. ପଲଶବ୍ଦାର୍ଥ, ଏକଦଲମାତ୍ର, ପଞ୍ଝାଏ ମାତ୍ର,ଆଖି ପିଚ୍ଛୁଡ଼ିବାର ସମୟ, ନିମେଷ, ଆଖିପତା,ଆଖିପିଛଡ଼ା ।

ପଲକୁପଲ—ଗ୍ରା. କ୍ରି. ବିଂ. ପଲପଲ, ଏକଦଳପରେ ଅନ୍ୟଦଳ, ଦଳଦଳ-ହୋଇ ଅନେକଦଳ ।

ପଲକ୍ୟା—ସ୍ତ୍ରୀ. ବି. ପାଳଙ୍ଗ ଶାଗ ।

ପଲକ୍ଷ—ବି. ବଲକ୍ଷ, ଶ୍ୱେତବର୍ଣ୍ଣ, (ବିଂ) ଶ୍ୱେତବର୍ଣ୍ଣ ଯୁକ୍ତ, ଧବଳ, ଶ୍ୱେତ ।

ପଲକ୍ଷାର—ବି. ଶୋଣିତ, ରକ୍ତ ।

ପଲଖା—ଗ୍ରା.ବି.କାଠର ଉପରେ ଗୁର-ଆଡ଼େ ଗ୍ଲୁଲତଳେ ଥିବା ଅସାର ଅଂଶ

ପଲଗଣ୍ଡ—ପୁଂ. ବି. ଲେପକ,ରାଜମିସ୍ତ୍ରୀ ।

ପଲଙ୍କ—ଗ୍ରା. ବି. (ସଂ-ପର୍ଯ୍ୟଙ୍କ) ପର୍ଯ୍ୟଙ୍କ, ଖଟ ।

ପଲଙ୍କଟ—ବିଂ. (ପଲ୍+କଟ୍+କ.ଅ) ଭୟ ଶୀଳ,ଭୀରୁ, ଲଜକୁଳା,ଲଜ୍ଜାଶୀଳ

ପଲଙ୍କପିଠିଆ—ଗ୍ରା. ବିଂ. ଯାହାର ପିଠି ପଲଙ୍କପରି ଚଉଡ଼ା(ଘୋଡ଼ା ବା ହାତୀ) ।

ପଲଙ୍କର—ବି. (ପଲ+କୃ+ଅ)ପିତ୍ତ ।

ପଲଙ୍କଷ—ବି. (ପଲ + କଷ୍+ଅ)ରାକ୍ଷସ

ପଲଙ୍କଷା—ସ୍ତ୍ରୀ. ବି. (ପଲଙ୍କଷ+ଆ) ରାକ୍ଷସୀ, ଗୋକ୍ଷୁରକ, ରାସ୍ନା, ଗୁଗ୍ଗୁଳ, କିଂଶୁକ,ପଲାଶ, ଲକ୍ଷା, ଲାଖ, ମହା-ଶ୍ରାବଣୀ, ମକ୍ଷିକା ।

ପଲତା—ପ୍ରା. ମେଦନୀ. ବି. ଖୋଟଗଛ, ପଟୋଳପତ୍ର ଓ ଲତା, ନିମ ଓ ପଣା-ରୁଣୀ ଆଦି ପତ୍ରକୁ ବାଟି ତହିଁରେ ପଣିବା ମିଶାଇ କରାଯିବା ଝୋଳ ।

ପଲଦ—ବିଂ. (ପଲ+ଦା+ଅ)ସେବନ ଦ୍ୱାରା ମାଂସ ବୃଦ୍ଧି କାରକ, ଯାହା ଖାଇଲେ ମାଂସ ବୃଦ୍ଧି ହୁଏ ।

ପଲପ୍ରିୟ—ବି. ଦ୍ରୋଣକାକ,ଡାମରାକୁଆ, (ବିଂ ବ.ବ୍ରୀ )ଆମିଷଭୋଜନାନୁରାଗୀ, ମାଂସାଶୀ ।

ପଲଭା—ସ୍ତ୍ରୀ. ବି. ମେଷ ସଂକ୍ରମଣରେ ଅର୍ବାକ୍ ଦିନର ମଧ୍ୟାହ୍ନ କାଳରେ ଦ୍ୱାଦଶାଙ୍ଗୁଳ ପରିମିତ ଶଙ୍କୁ ଚ୍ଛାୟା ।

ପଲମ—ଗ୍ରା. ବି. ମାଟିନିର୍ମିତ ଟେକାପାତ୍ର ବିଶେଷ ।

ପଲଲ—କ୍ଲୀ. ବି. (ପଲ୍+ଅଲ୍) ମାଂସ, ପଙ୍କ, ତିଳଚୂର୍ଣ୍ଣ, ତିଳ ଓ ଚିନି ଦ୍ୱାରା ପ୍ରସ୍ତୁତ ମିଷ୍ଟାନ ବିଶେଷ,ରାଶିଖଜା,ଜମ୍ବାଳ ପ୍ରସ୍ତର, ଶବ, କ୍ଷୀର, ବଳ, ( ପୁଂ.ବି ) (ପଲ+ଲା+କ.ଅ) ରାକ୍ଷସ ।

ପଲଲଜ୍ୱର—ବି. ପିତ୍ତ ।

ପଲଲାଶୟ—ବି. ଅଜୀର୍ଣ୍ଣ ରୋଗ ।

ପଳ(ଲ)ବ—ବି. ( ପଲ+ବା+ଣ.ଅ ) ପୋଲୁହ,ମାଛ ଧରିବାର ବାଉଁଶପାତିଆ, ନିର୍ମିତ ଯନ୍ତ୍ର ବିଶେଷ, ପେଲଣା ।

ପଲସ୍ତର—ଗ୍ରା. ବି. ଲେପନୀୟ ଦ୍ରବ୍ୟ, ଗୃହର କାନ୍ଥ ଉପରେ ପତଳାସ୍ତରରେ ମାଟି ବା ଚୂନର ଲେପ ।

ପଲା—ଗ୍ରା. ବି. ସମୁଦ୍ରଜ ଜୀବଭେଦ, ପ୍ରବାଳ କୀଟର ଅସ୍ଥି, ପ୍ରବାଳ, ପରି-ମାଣ ବିଶେଷ,ତୈଳାଦି ତରଳପଦାର୍ଥ ଉତ୍ତୋଳନ କରିବାର ଶ୍ରେଷ୍ଠ ପାତ୍ର ବା ଗୁମୁଚ,( କ୍ରି— ପଲାଇବା କ୍ରିୟାର ଅନାଦରାର୍ଥକ ଅନୁଜ୍ଞା ଦ୍ୱିତୀୟ ପୁରୁ-ଷରେ ରୂପ) ତୁ ପଲାଇ ଯା ।

ପଲ୍ଲୀ—ଗ୍ରା. ବି. ପର୍ଣ୍ଣଶାଳା, ପତ୍ରକୁଡ଼ିଆ, ଶ୍ରେଷ୍ଠ ଘର, (ପ୍ରା. ସମ୍ବ. ବି) ତୁଷାର, କାକର, (ଗଞ୍ଜାମ) ତଳି, ଗୃରାଗଛ, (ସଂ ହ. ବିଂ) ପୋଲା, ଫମ୍ପା, ମାଗଣା, ମୋଫତ୍ ।

ପଲାଇ—ଗ୍ରା. ବି. ( ସଂ-ଗୋପାଳକ ) ଗଉଡ଼ମାନଙ୍କ ଜାତିର ପ୍ରଧାନ ବ୍ୟକ୍ତି, ଗଉଡ଼ମାନଙ୍କର ବଂଶଗତ ଉପାଧି ।

ପଲାଇବା—ଗ୍ରା. କ୍ରି.ପଳାୟନ କରିବା, ଅନ୍ତରିତ ହେବା, ଦ୍ରୁତଗତି କରିବା, ଅନ୍ୟଦ୍ୱାରା ପାଳିତ କରାଇବା ।

ପଲାଗ୍ନି—ପୁଂ. ବି. (୬ତତ୍) ପିତ୍ତଧାତୁ ।

ପଲାଗ୍ର—କ୍ଲୀ. ବି. ମାଂସର ସାରାଂଶ ।

ପଲାଙ୍ଗ—ପୁଂ. ବି. ଶିଶୁମାର ।

ପଲାଣ—ଗ୍ରା.ବି. ଘୋଡ଼ା ବଳଦ ପିଠିରେ ଦିଆଯାଉଥିବା ଅଖା ଗଦିବିଶେଷ, ଯୁଦ୍ଧସଜ୍ଜା, ସେନାସାଜିବା ।

ପଲାଣ୍ଟି—ଗ୍ରା. ବି. ପତଳାକୁଣ୍ଠା ଗୁଆର, ଘରଛାଉଣି କରିବାର ତାଳପତ୍ର, ବରଡ଼ା ।

ପଲାଣ୍ଡୁ—ପୁଂ. ବି. (ପଲ୍+ଅଣ୍ଡୁ) ମୂଳ-ବିଶେଷ, ପିଆଜ ।

ପଲାତକ—ଗ୍ରା. ବିଂ, ଯେ ପଳାୟନ କରିଅଛି, ନିରୁଦ୍ଦେଶ ।

ପଲାଦ—ପୁଂ ଓ ସ୍ତ୍ରୀ. ବି. (ପଲ୍+ଅଦ୍ +କ.ଅ) ରାକ୍ଷସ, (ବିଂ) ମାଂସଭୋଜୀ, ମାଂସାଶୀ, (ସ୍ତ୍ରୀ) ପଲାଦୀ ।

ପଲାଦନ—ବି. (ପଲ+ଅଦ୍+କ.ଅନ) ରାକ୍ଷସ,(ବିଂ)ମାଂସଭକ୍ଷଣଶୀଳ,ମାଂସାଶୀ ।

ପଳାନ୍ନ—କ୍ଲୀ. ବ. (ପଳ+ଅନ୍ନ) ପଲାଉ, ମାଂସାଦିଯୁକ୍ତ ସିଦ୍ଧ ଅନ୍ନ ।

ପଲପ—ପୁଂ. ବ. କଣ୍ଠପାଶକ, ପଘା, ହାତୀର ଗଣ୍ଡସ୍ଥଳ, ହସ୍ତୀକପୋଳ ।

ପଲାପହା—ସ୍ତ୍ରୀ. ବ୍ରୁ. ନେତ୍ରାଞ୍ଜନ ।

ପଲାୟନ—କ୍ଲୀ.ବ. (ପରା+ଅୟ୍+ଭା. ଅନ) ଭୟାଦିହେତୁ ଚଞ୍ଚଳ ସ୍ଥାନାନ୍ତର ଗମନ, ଦୌଡ଼ିକରି ଗୃଳିଯିବା ।

ପଲାୟନପର—ପୁଂ. ବଂ. ପଲାଇବାକୁ ଉଦ୍ୟତ, ପଲାୟମାନ, ପଲାଉଥିବା ।

ପଲାୟମାନ—ପୁଂ. ବଂ. (ପରା+ଅୟ୍+କ.ଆନ) ପଲାୟନକାରୀ, ଯେ ପଲାଇ-ଅଛି, ପଲାଉଥିବା ।

ପଲାୟିତ—ପୁଂ. ବଂ. (ପରା+ଅୟ୍+ତ) ଭୟହେତୁ, ପ୍ରସ୍ଥିତ, ପଲାଇଯାଇ-ଥିବା ।

ପଲାଲ—ବ. (ପଲ+ଅଲ) ପୋଆଲ, ପାଲ, କୁଟା, ଶସ୍ୟଶୂନ୍ୟ ଧାନ୍ୟନାଲ, ଶୁଖିଲାଘାସ ।

ପଲାଲଜଶାକ—ବ. ପୁଆଲଛତୁ, ପାଲ-ଥିବା ସ୍ଥାନରେ ଫୁଟିବା ଛତୁ ।

ପଲାଲଦୋହଦ—ବ. (ବ.ଗ୍ର) ଆମ୍ରବୃକ୍ଷ

ପଲା(ଳ)ଶ—ବ. (ପଲ୍+ଅଶ୍+କ.ଅ) କିଂଶୁକବୃକ୍ଷ, କ୍ରବ୍ୟାଦ, ରାକ୍ଷସ,ପ୍ରେତ, ଗୃଧ୍ରଜାତୀୟ ପକ୍ଷୀବିଶେଷ,(ପଲ+ଅଶ) ପତ୍ର, ଫୁଲର ପାଖୁଡ଼ା, ମଗଧଦେଶ, ଲକ୍ଷା, ତୋଫାନାଲ,ଶଟୀ,ଗନ୍ଧପଲାଶୀ, ଭୂମିକୁଷ୍ମାଣ୍ଡ, (ବଂ) ସବୁଜବର୍ଣ୍ଣବିଶିଷ୍ଟ, ଶ୍ୟାମଳ, ନିଷ୍ଠୁର, ନିର୍ଦ୍ଦୟ ।

ପଲାଶକ—ବ. ( ପଲାଶ+କ ) ଶଟୀ, ପଲାଶ ବୃକ୍ଷ ଓ ଫୁଲ, କର୍ପୂର, ଲକ୍ଷା, କିଂଶୁକ ।

ପଲାଶଗନ୍ଧା—ବ.ବଂଶଲୋଚନାବିଶେଷ ।

ପଲାଶଚ୍ଛଦନ—କ୍ଲୀ. ବ. ତମାଲପତ୍ର ।

ପଲାଶତରୁଶୋଣିତ—କ୍ଲୀ. ବ. ପଲାଶ ଗଛର ଅଠା ।

ପଲାଶନ—ବ. ଶାରିକା ।

ପଲାଶପର୍ଣ୍ଣୀ—ସ୍ତ୍ରୀ.ବ. (ବ.ଗ୍ର)ଅଶ୍ୱଗନ୍ଧା ।

ପଲାଶିବା—ଗ୍ରା.କ୍ରି. ଦ୍ରୁତଗତିରେ ଗୃଳିବା ବେଗରେ ଗମନ କରିବା ।

ପଲା(ଳ)ଶୀ—ପୁଂ. ବ. (ପଲାଶ+କ. ଇନ୍) କ୍ଷୀରିବୃକ୍ଷ ଗଛ, ରାକ୍ଷସ, ହଂସ୍ରଜନ୍ତୁ, ପଲାଶଲତା, ବୃକ୍ଷ, ଶଟୀ, (ବଂ) ପତ୍ରଯୁକ୍ତ, ପତ୍ରବହୁଳ,ମାଂସାଶୀ ।

ପଲାଶୀଯୁଦ୍ଧ—ଗ୍ରା. ବ. ଖ୍ରୀ ୧୭୫୭ ଷ୍ଟା-ବ୍ଦରେ ପଲାଶୀଠାରେ ହୋଇଥିବା ଯୁଦ୍ଧ ।

ପଲାଶୀୟ—ବଂ. (ପଲାଶ+ଈୟ) ପତ୍ର-ଯୁକ୍ତ ।

ପଲି—ଗ୍ରା. ବ. ପଟୁମାଟି ।

ପଲି(ଲୀ)—ଗ୍ରା.ବ. (ଫ-ପଲ୍ଲୀ) ଗ୍ରେଟଗାଁ, ଦଶଲକ୍ଷ ଗାଈଙ୍କର ସମଷ୍ଟି ।

ପଲିକ୍ନୀ—ସ୍ତ୍ରୀ. ବ. ବାଳଗର୍ଭିଣୀ ଗାଈ, ପଳିତକେଶ ବୃଦ୍ଧା ସ୍ତ୍ରୀ ।

ପଲିଘ—ବ. କାଚର ଜଳପାତ୍ର, କାଚ-ଗିଲାସ, ମୁଦ୍ଗର, ପ୍ରାକାର, ଉଚ୍ଚକାନ୍ଥ, ଗୋଗୋଷ୍ଠ, ଗୃହଜାଲ,ଅର୍ଗଳ,ଗୋପୁର, ଫାଟକ ।

ପଳିତ—ବ. ( ପଳ+ତ ) ବୃଦ୍ଧହେତୁ କେଶର ଶୁକ୍ଲତା,ପାଚିଲାକେଶ,ଶୈଳଜ, ଶିଳାଜତୁ, ତାପ, କର୍ଦ୍ଦମ, କେଶପାଶ, ମରିଚ, ଗୁଗ୍ଗୁଳୁ, କପାଳରୋଗ, (ବଂ) ବୃଦ୍ଧ ।

ପଳିତଗ୍ରହ—ପୁଂ. ବ. ପୁଷ୍ପବୃକ୍ଷବିଶେଷ, ଝଟରୀ ଫୁଲଗଛ ।

ପଳିତା—ଯା.ବ. ବସ୍ତ୍ରଖଣ୍ଡ ନିର୍ମିତ ମୋଟା ବଳିତା, ସଳିତା, ବନ୍ଧୁକରେ ନିଆଁ ଲଗାଇବାରେ ବ୍ୟବହୃତ ରଜ୍ଜୁକ,ବାଣ ଲଗାଇବାର ରସବଳିତା,କଥରୁ ପୂଜ ଆଦି ବାହାର କରିବା ପାଇଁ ଦିଆଯିବା ସଳୁ ।

ପଳିତାପତ୍ର—ପ୍ରା.(ଚାଉଳ)ବ. ପାଟୋଳ ଗଛର ଲଟା ଓ ପତ୍ର,ପସାରୁଣୀଲତାର ପତ୍ର ।

ପଳିତୀ—ପୁଂ.ବଂ.(ପଳିତ+ଇନ୍)ଯାହାର ବାଳ ପାଚିଯାଇଅଛି ।

ପଲେ—ଗ୍ରା.ବଂ. ଏକପଲ ବା ଏକଦଳ ( ଗାଈଆଦି ), ବହୁସଂଖ୍ୟକ, (ଅବ୍ୟ) ଏକଦଳମାତ୍ର ।

ପଲ୍ୟଙ୍କ—ବ. ( ପରି+ଅଙ୍କ ) ପଲଙ୍କ, ଖଟ, ମଞ୍ଚ, କୃଷି,ଜଙ୍ଘପାପିଣ୍ଡ ଭୂମିରେ ଲଗାଇ ବସିବା ।

ପଲ୍ୟୟନ—କ୍ଲୀ. ବ. (ପରି+ଅୟ୍+ଅଧି.ଅନ) ପର୍ଯ୍ୟାଣ, ଘୋଡାର ଜିନ୍, ଲଗାମ, ପଲାଣ ।

ପଲ୍ଲି—ବ. (ପଲ୍+ଅ)ଶସ୍ୟରକ୍ଷଣ ସ୍ଥାନ, ଡୋଲି, ମରାଇ, ଗୁରୁଣ୍ଡି, ଓଳିଆ ।

ପଲ୍ଲବ—ବ. (ପତ୍ର+ଲବ) ନୂଆପତ୍ର, କିଶଳୟ, ନବପଲ୍ଲବଯୁକ୍ତ ବୃକ୍ଷର ଶାଖାଗ୍ର, ଗ୍ରେଟଡାଳ, ପତ୍ର, ଶୃଙ୍ଗାର, ବଳୟ,ଖଡୁ, ଜାରପୁରୁଷ, ପାଳ,କୁଟା, ବିସ୍ତାର, କଡି, ଅଳତା, ବଳ,ରୂପଲ୍ୟ, ବସ୍ତ୍ରାନ୍ତ,କାନି, ନୃତ୍ୟକାଳରେ ହାତର ଏକପ୍ରକାର ସ୍ଥିତି,କାମୁକବ୍ୟକ୍ତି,ନାଗର ।

ପଲ୍ଲବକ—ବ.(ପଲ୍ଲବ+କ)ଜାରପୁରୁଷ, ଅସ୍ୱାଭାବିକ ପ୍ରକ୍ରିୟାରେ ପୁରୁଷଚିହ୍ନ କାମ-ପ୍ରବୃତ୍ତି ରଚିତାର୍ଥକାରୀ ବାଳକ,ବେଶ୍ୟା-ପତି, ଅଶୋକଗଛ, ଏକପ୍ରକାର ମାଛ, ପଲ୍ଲବ ଦେଖ ।

ପଲ୍ଲବଗ୍ରାହିତା(ତ୍ୱ)—ବ. (ପଲ୍ଲବଗ୍ରାହିନ୍+ତା. ତ୍ୱ ସବୁବିଷୟରେ ଉପରୋଉପରିଆ ଜ୍ଞାନ, ବେଦରକାର୍ଯ୍ୟ ବା ଗ୍ରେଟକଥାର ଟୋ ।

ପଲ୍ଲବଗ୍ରାହୀ—ପୁଂ. ବଂ. (ପଲ୍ଲବ+ଗ୍ରହ+କ.ଇନ୍) ସବୁବିଷୟରେ କିଞ୍ଚିତ୍ କିଞ୍ଚିତ୍ ଜ୍ଞାନବିଶିଷ୍ଟ,କୌଣସି ବିଷୟରେ ପ୍ରଗାଢ଼ଜ୍ଞାନ ଯାହାର ନ ଥାଏ,ନୂଆପତ୍ର କଅଁଳିଥିବା ( ବୃକ୍ଷ ବା ଲତା ), ଯେ ଗ୍ରେଟକଥା ଚର୍ଚ୍ଚାକରେ ।

ପଲ୍ଲବଦ୍ରୁ—ବ. ଅଶୋକବୃକ୍ଷ ।

ପଲ୍ଲବାଦ—ବ. (ପଲ୍ଲବ+ଅଦ୍+କ.ଅ) ହରିଣ ।

ପଲ୍ଲବାଧର—ପୁଂ.ବଂ. (ବ.ଗ୍ର) ଯାହାର ଅଧର ବା ଓଷ୍ଠ ପଲ୍ଲବପରି କୋମଳ, ରକ୍ତାଭ ଓ ମନୋହର ।

ପଲ୍ଲବାଧାର—ବ. ( ପଲ୍ଲବ+ଆଧାର ) ଡଙ୍କୁ; ଗଛର ଡାଳ । [ ରକ୍ତାଭ ।

ପଲ୍ଲବାରୁଣ—ବଂ. ପଲ୍ଲବପରି ଅରୁଣ ବା

ପଲ୍ଲବାସ୍ତ୍ର—ବି. (ପଲ୍ଲବ+ଅସ୍ତ୍ର) ବ.ବ୍ରୀ; କାମଦେବ, କନ୍ଦର୍ପ ।

ପଲ୍ଲବାହ୍ୱୟ—କ୍ଲୀ. ବି. ତାଳଶପତ୍ର ।

ପଲ୍ଲବିକ—ବି. (ପଲ୍ଲବ+ଇକ) କାମୁକ, ଲମ୍ପଟ ।

ପଲ୍ଲବିତ—ବିଂ. ( ପଲ୍ଲବ+ଇତ ) ପତ୍ର କଅଁଳିଥିବା, ନୂତନ ପତ୍ରଯୁକ୍ତ, ଅଳ-ରଞ୍ଜିତ, ବିସ୍ତାରିତ, ଲାକ୍ଷାରଞ୍ଜିତ, ରୋମାଞ୍ଚିତ, (ବିଂ) ଲାକ୍ଷାରସ ।

ପଲ୍ଲବିବା—ଗ୍ରା. କ୍ରି. (ଗଛ) କଅଁଳିବା, (ଲ,ଅର୍ଥ) ସତେଜହେବା ।

ପଲ୍ଲବୀ—ପୁଂ. ବି. (ପଲ୍ଲବ+ଇନ୍) ବୃକ୍ଷ, ଗଛ, (ବିଂ) ପଲ୍ଲବବିଶିଷ୍ଟ, ପତ୍ରଯୁକ୍ତ ।

ପଲ୍ଲି(ଲ୍ଲୀ)—ବି. ( ପଲ୍ଲ+ଇ.ଈ ) କୁଟୀ, କୁଡ଼ିଆ, ଛୋଟଗ୍ରାମ, ଗୃହ, ସ୍ଥାନ,ପଡ଼ା, ଗୃହଗୋଧିକା, ଝିଟିପିଟି ।

ପଲ୍ଲିକା—ବି. ଗୃହଗୋଧିକା, ଝିଟିପିଟି ।

ପଲ୍ଲିବାହ—ପୁଂ. ବି. ତୃଣବିଶେଷ,ତାମ୍ର-ବର୍ଣ୍ଣ ପତ୍ରବିଶିଷ୍ଟ ତୃଣ ।

ପଲ୍ଲୀବାଳା—ସ୍ତ୍ରୀ.ବି. (ମଧ୍ୟ-କ.ଧା) ପଲ୍ଲୀ-ଗ୍ରାମବାସିନୀ ବାଳିକା ବା କୁମାରୀ ।

ପଲ୍ଲୀବାସୀ—ପୁଂ.ବିଂ. ପଲ୍ଲୀଗ୍ରାମରେ ବାସ କାରୀ ।

ପଲ୍ୱଳ—ବି. (ପଲ୍+ବଲ)କ୍ଷୁଦ୍ରଜଳା-ଶୟ, ଡ଼ାଭ, ଗାଡ଼ିଆ, ଚୁଆ ।

ପଲ୍ୱଳାବାସ—ବି.(ବ.ବ୍ରୀ)କଚ୍ଛପ,କଇଁଛ ।

ପବ—ବି.(ପୂ+ଅ) ନିଷ୍ପାବ, ଧାନ୍ୟାଦିର ନିସ୍ତୁଷୀକରଣ, ଧାନଆଦିରୁ ଅଗାଡ଼ି ସଫା କରିବା. ଲୌହାଦିର ଶୋଧନ ଓ ବର୍ତ୍ତୁଳୀକରଣ, ଅଂଶ ଓ ଖଣ୍ଡ, ଗୋମୟ. (କୁମ୍ଭକାର, ବାୟୁ, ଗଣ୍ଡି, ପଗ ଦେଖ) (ବିଂ) ପରିଷ୍କୃତ, ପବିତ୍ର, ବିଶୁଦ୍ଧ । [ହାଡ଼ଭଙ୍ଗା ।

ପବଅଇଠି—ଗ୍ରା.ବି. ହାଡ଼ ଯୋଡ଼ା ଗଛ,

ପବନ—ପୁଂ. ବି. ( ପୂ+ଅନ ) ନିଷ୍ପାବ, ବାୟୁ, ଅନ୍ତରୀକ୍ଷ ସଞ୍ଚାରୀ ବାୟୁ, ପ୍ରାଣ-ବାୟୁ. କୁମ୍ଭକାର, ଧାନ୍ୟାଦିରୁ ତୁଷ ଉତ୍ସାରଣ, ଶୋଧନ, କୁମ୍ଭାର ଉହା, ଜଳ, ଶ୍ୱାସ, ବିଷ୍ଣୁ, ଗୃଲ୍ଲଣୀ(ବିଂ)ପରି-ଷ୍କୃତ, ବିଶୁଦ୍ଧ ।

ପବନଗତି—ବି.(୬ତତ୍) ବାୟୁର ବେଗ (ବିଂ.ବ.ବ୍ରୀ) ବାୟୁର ଗତି ପରି ଦ୍ରୁତ, ବାୟୁ ବେଗ ।

ପବନଚକ୍ର—ଗ୍ରା. ବି. ଯେଉଁ ଚକ ବା କଳ ପବନ ପରି ବୁଲେ,(ବି)ଘୂର୍ଣ୍ଣିବାୟୁ

ପବନତନୟ—ପୁଂ.ବି.(୬ତତ୍)ପବନର ପୁତ୍ର, ହନୁମାନ୍, ଭୀମ । [ଭୀମ ।

ପବନନନ୍ଦନ—ପୁଂ.ବି(୬ତତ୍)ହନୂମାନ,

ପବନପଥ—ପୁଂ. ବି. ( ପବନ+ପଥ ) ଆକାଶ, ବାୟୁ ସଞ୍ଚାଳନ ମାର୍ଗ ।

ପବନବନ୍ଧ—ଗ୍ରା. ବି. (ପବନ+ବନ୍ଧ+ କ.ଅ) ନାକ, ନାସିକା ।

ପବନବାହନ—ପୁଂ.ବି.(ବ.ବ୍ରୀ) ଅଗ୍ନି ।

ପବନବିଜୟ—ବି. ଶରୀରସ୍ଥିତ ଶ୍ୱାସ ଓ ପ୍ରଶ୍ୱାସ ବାୟୁର ଗତିବିଶେଷ, ଶୁଭାଶୁଭ ସୂଚକ ଗ୍ରନ୍ଥବିଶେଷ ।

ପବନବ୍ୟାଧି—ପୁଂ.ବି. ଉଦ୍ଧବ, ଶ୍ରୀକୃଷ୍ଣ-ଙ୍କର ସଖା, ଆମବାତ ।

ପବନାଙ୍ଗଜ—ପୁଂ. ବି. ହନୂମାନ୍, ଭୀମ-ସେନ, ଅଗ୍ନି ।

ପବନାତ୍ମଜ—ପୁଂ.ବି.(୬ତତ୍) ହନୂମାନ୍, ଭୀମ ।

ପବନାଶ—ପୁଂ. ବିଂ. ( ପବନ+ଅଶ୍+ କ.ଅ)ବ.ବ୍ରୀ, ଯେ ପବନ ଖାଇ ବଞ୍ଚେ, ବାୟୁଭୁକ୍, (ବି) ସର୍ପ ।

ପବନାଶନ—ପୁଂ.ବି.ବିଂ.(ପବନ+ଅଶ୍ +ଅନ) ପବନାଶ ଦେଖ ।

ପବନାଶନାଶ—ପୁଂ.ବି. (ପବନାଶନ+ ଅଶ୍+ଅ)ବ.ବ୍ରୀ; ଗରୁଡ଼, ମୟୂର ।

ପବନାଶୀ—ପୁଂ. ବି. ସର୍ପ, (ବିଂ) ବାୟୁ-ଭକ୍ଷକ, ଯେ ପବନ ଖାଇ ବଞ୍ଚେ ।

ପବନେଶ୍ୱର—ପୁଂ. ବି. କାଶୀସ୍ଥିତ ଶିବ ଲିଙ୍ଗବିଶେଷ ।

ପବନେଷ୍ଟ—ବି. ମହାନିମ୍ବ, ଲେମ୍ବୁଗଛ, ବାତାପି ଲେମ୍ବୁ ।

ପବମାନ—ପୁଂ. ବି. (ପୂ+ଆନ) ବାୟୁ, ଅଗ୍ନିଙ୍କର ସ୍ୱାହା ଜାତ ପୁତ୍ରବିଶେଷ, ଗାର୍ହପତ୍ୟାଗ୍ନି, ସୋମ, (ବିଂ) ପବିତ୍ର-କାରକ ।

ପବମାନାତ୍ମଜ—ପୁଂ.ବି. (୬ତତ୍) ହବ୍ୟ-ବାହନ, ଅଗ୍ନି ।

ପବାକା—ସ୍ତ୍ରୀ.ବି.(ପୂ+ଆକ+ଆ)ବାତ୍ୟା, ଚକ୍ରବାୟୁ. ଘୂର୍ଣ୍ଣିବାୟୁ ।

ପବାରୁ—ପୁଂ.ବି. କାରବେଲ, କଲରା ।

ପବି—ପୁଂ.ବି.(ପୂ+କ.ଇ)ବଜ୍ର,ଅଶନି ।

ପବିତ—ବିଂ. (ପୂ+ମି.ତ)ପୂତ, ପବିତ୍ର, (କ୍ଲୀ. ବି) ମରିଚ, ସୂତ୍ର, ଉପବୀତ ।

ପବିତା—ବିଂ.(ପୂ+କ.ତୃ)ପବିତ୍ରକାରକ, ଯେ ପବିତ୍ର କରେ,(ସ୍ତ୍ରୀ) ପବିତ୍ରୀ ।

ପବିତ୍ର—ବି. (ପୂ+କ.ଇତ୍ର)ବର୍ଷା, କୁଶ, ତାମ୍ର, ପୟଃ, ଅର୍ଘୋପକରଣ, ଯଜ୍ଞୋ-ପବୀତ, ବେଦମନ୍ତ୍ର,କୁଶବଟୁ, ଋଷିଗଛ, ସଫାକରିବା, ଘଷିବା, ଘୃତ, ମଧୁ, ବିଷ୍ଣୁ,(ବିଂ)ପାପଶୂନ୍ୟ, ବିଶୁଦ୍ଧ, ବ୍ରତାଦି-ଦ୍ୱାରା ବିଶୁଦ୍ଧ ।

ପବିତ୍ରକ—କ୍ଲୀ. ବି. ଶଣ ସୂତ୍ର ଜାଲ, ଛନ୍ଦିସୂତ୍ର ଯଜ୍ଞୋପବୀତ,କୁଶ, ଦମନକ, ଅଶ୍ୱତ୍ଥ, ଉଦୁମ୍ବର ।

ପବିତ୍ରତା—ସ୍ତ୍ରୀ.ବି. ପବିତ୍ରତ୍ୱ, ବିଶୁଦ୍ଧତା, ନିଷ୍କଳଙ୍କତ୍ୱ ।

ପବିତ୍ରଧାନ୍ୟ—କ୍ଲୀ. ବି. ଯବଧାନ ।

ପବିତ୍ରମନାଃ—ପୁଂ.ବିଂ(ବ.ବ୍ରୀ)ପବିତ୍ରାତ୍ମା ।

ପବିତ୍ରା—ସ୍ତ୍ରୀ. ବି. (ପବିତ୍ର+ଆ)ତୁଳସୀ, ନଦୀବିଶେଷ, ହରିଦ୍ରା, ହଳଦୀ, ଅଶ୍ୱତ୍ଥ ବୃକ୍ଷ, ଅଗର୍ଭସାର କୁଶ, ଶ୍ରାବଣ ଶୁକ୍ଳ ଏକାଦଶୀ ।

ପବିତ୍ରାରୋପଣ—କ୍ଲୀ. ବି. ଶ୍ରାବଣ ଶୁକ୍ଳ ଦ୍ୱାଦଶୀରେ ବିଷ୍ଣୁ ପ୍ରଭୃତି ଦେବତାଙ୍କୁ ଯଜ୍ଞୋପବୀତ ଦାନ ରୂପ ଉତ୍ସବ, ଉପ-ନୟନ, ବ୍ରତ । [ଦେଖ ।

ପବିତ୍ରାରୋହଣ—କ୍ଲୀ. ବି. ପବିତ୍ରାରୋପଣ

ପବିତ୍ରିତ—ବିଂ.(ପବିତ୍ର+ଇତ) ସଂଶୋ-ଧିତ, ପରିଷ୍କୃତ, ପୂତ, ଶୁଦ୍ଧ ।

ପବିତ୍ରୀକୃତ—ବିଂ. (ପବିତ୍ର+ଚ୍ୱି+କୃତ) ଯାହାକୁ ପବିତ୍ର କରାହୋଇଅଛି ।

ପବିଧର—ପୁଂ.ବି. (ପବି+ଧୃ+କ.ଅ) ଇନ୍ଦ୍ର ।

ପଶ୍ୱାର—କ୍ଳୀ. ବି. ଅସ୍ତ୍ରଧ, ଶସ୍ତ୍ର, ଚକ୍ର, ଲଙ୍ଗଳ ଲୁହା ।

ପଶବ୍ୟ—ବିଂ.(ପୂ+ଯ)ଶୋଧ ଯଜ୍ଞପାତ୍ରାଦି ।

ପଶମ—ଯା.ବି. ଉର୍ଣ୍ଣା, ଛାଗ ମେଷାଦିର ଲୋମ, ପଶୁଲୋମ ।

ପଶମୀ—ଯା.ବିଂ. ଲୋମନିର୍ମିତ, ଲୋମ-ସମ୍ବନ୍ଧୀୟ, ପଶମନିର୍ମିତ ।

ପଶବ୍ୟ—ବିଂ.(ପଶୁ+ଯ)ପଶୁସମ୍ବନ୍ଧୀୟ, ପଶୁହିତକର, ପଶୁର ଉପଯୁକ୍ତ ।

ପଶା—ଗ୍ରା. ବି. (ସଂ-ପାଶକ) ଅକ୍ଷକ୍ରୀଡ଼ା, ଚଉପାର, (ସଂ-ପାର୍ଷ୍ଣୀ) କୋଡ଼ିକାଙ୍କ-ଆଦିର ମୂଳଦେଶସ୍ଥ ବଳୟ (ଯାହା ମଧ୍ୟ ଦେଇ ବେଣ୍ଟ ପଶିଥାଏ), (ସଂ-ପ୍ରବେଶ) ବିଂ. ପ୍ରବେଶକାରୀ, (ଯଥା—ଚାଉପଶା),(ପ୍ରା.ଯାଜ.ବାଳୁଙ୍କୁର କଣା

ପଶାକାଠି—ଗ୍ରା.ବି. ହାତୀ ଦାନ୍ତଆଦିରେ ନିର୍ମିତ ପଶାଖେଳିବାର ଚିହ୍ନଯୁକ୍ତ କାଠି ।

ପଶାଖେଳ—ଗ୍ରା.ବି.ପାଶକ କ୍ରୀଡ଼ା, ଚଉ-ପାର ଖେଳ ।

ପଶାଖେଳାଳି—ଗ୍ରା. ବିଂ. ଯେଉଁ ବ୍ୟକ୍ତି ପଶାଖେଳରେ ନିପୁଣ ।

ପଶାଦାନ—ଗ୍ରା.ବି. ପଶା କାଠିଲୁ ଗଡ଼ା-ଇଲେ ୩ ଖଣ୍ଡ ଯାକ ପିଠିରେ ଦେଖା-ଯିବା ବିନ୍ଦୁମାନଙ୍କର ସମଷ୍ଟି ।

ପଶାପଶି—ଗ୍ରା.ବି. ପଶାଇବା କ୍ରିୟାମାନ, ପୂରାପୂରି, ପ୍ରବେଶଆଦି ।

ପଶାପାଲି—ଗ୍ରା. ବି. ପଶାଖେଳିବାର କନା ନିର୍ମିତ ଚଉତାନା ।

ପଶି—ପ୍ରା. (ଯାଜ)ବି. ମଫସଲ ।

ପଶିଆ—ପ୍ରା. (ବସ୍ତର)ବି. ପେଜ ।

ପଶିବା—ଗ୍ରା.କ୍ରି.ପ୍ରବେଶକରିବା, ଭିତରେ ଅବସ୍ଥାନ କରିବା, ଆଶ୍ରୟ ବା ଶରଣ ନେବା, କୌଣସି କର୍ମରେ ପ୍ରବୃତ୍ତ ହେବା, ନିକଟକୁ ଯିବା,ଆସକ୍ତହେବା ।

ପଶୁ—ପୁଂ.ବି. (ଦୃଶ୍+ଉ) ଚତୁଷ୍ପଦ ଓ ଲୋମ ଲାଙ୍ଗୁଳବିଶିଷ୍ଟ ଜନ୍ତୁ, ମୂର୍ଖବ୍ୟକ୍ତି, ପଶୁ ପ୍ରକୃତିକ ବ୍ୟକ୍ତି, ଅଗ୍ନି, ପ୍ରମଥ, ଦେବତା, ପ୍ରାଣିମାତ୍ର, ପାଗଳ, ଯଜ୍ଞ, ଯଜ୍ଞୀୟଦ୍ରବ୍ୟ, ପଶ୍ୱାଚାରୀମାନଙ୍କର ଆସ୍ଥା, ବଳି ଦିଆଯିବା ଛେଳିଆଦି, (ତନ୍ତ୍ର-ମତେ) ନିରାମିଷାଶୀ, ମାଦକତ୍ୟାଗୀ ଓ ଜିତେନ୍ଦ୍ରିୟ ବ୍ୟକ୍ତି, ଯେଉଁ ବ୍ୟକ୍ତି ମନ୍ତ୍ର ଗ୍ରହଣ କରି ନ ଥାଏ, (ବିଂ) ମୂର୍ଖ,ପଶୁ-ପ୍ରକୃତି ବିଶିଷ୍ଟ ।

ପଶୁକର୍ମ—କ୍ଳୀ.ବି. ପଶୁକ୍ରିୟା, ବଳିଦାନ, ମୈଥୁନ, ଯଜ୍ଞରେ ପଶୁବଧ ।

ପଶୁକଳ୍ପ—ପୁଂ. ବି. ଯଜ୍ଞାଦିରେ ବିହିତ ପଶୁର ଉପକରଣାଦି ଓ ସଂସ୍କାରାଦି କର୍ମ. (ବିଂ) ପଶୁପରି, ପଶୁସଦୃଶ ।

ପଶୁକା—ସ୍ତ୍ରୀ.ବି.କ୍ଷୁଦ୍ର ପଶୁ,ହରିଣବିଶେଷ ।

ପଶୁକ୍ରିୟା—ବି.(ପଶୁ + କ୍ରିୟା) ମୈଥୁନ, ରମଣ, ବଳିଦାନ କର୍ମ ।

ପଶୁଗାୟତ୍ରୀ—ସ୍ତ୍ରୀ. ବି. ପଶୁ ବଳିଦାନ ସମୟରେ ତାହାର କାନରେ କହିବା ଗାୟତ୍ରୀ ମନ୍ତ୍ରବିଶେଷ ।

ପଶୁଘ୍ନ—ବିଂ.(ପଶୁ+ହନ୍+କ.ଅ)ପଶୁ-ଘାତକ, ଯେ ପଶୁବଧ କରେ ।

ପଶୁଚର୍ଯ୍ୟା—ସ୍ତ୍ରୀ.ବି.(୬ତତ୍ପୁ)ସ୍ୱେଚ୍ଛାଚାର. ରମଣ, ପଶୁପାଳନ, ପଶୁ ସଦୃଶ ନିର୍ଲ୍ଲଜ ଆଚରଣ, ପାଶବବ୍ୟବହାର ।

ପଶୁତା—ସ୍ତ୍ରୀ. ବି. ପଶୁତ୍ୱ, ପଶୁର ଧର୍ମ, ପଶୁଯୋନି, ପଶୁଭାବ ।

ପଶୁଧର୍ମ—ବି. (୬ତତ୍ପୁ) ପଶୁକର୍ମ ଦେଖ. ବିଧବା ବିବାହ, ଗମ୍ୟାଗମ୍ୟ ବିଚାର-ରହିତ ମୈଥୁନ, (ବିଂ) ପଶୁର ଆଚାର ବିଶିଷ୍ଟ ।

ପଶୁନାଥ—ପୁଂ.ବି.ଶିବ, ପଶୁସ୍ୱାମୀ,ସିଂହ

ପଶୁପ—ବିଂ. ( ପଶୁ+ପା+ଅ ) ପଶୁ-ପାଳକ, ପଶୁମାନଙ୍କର ପତି ।

ପଶୁପତି—ପୁଂ.ବି. (୬ତତ୍ପୁ)ଶିବ, ଅଗ୍ନି, ଓଷଧି,ଶିବଙ୍କର ଯଜମାନ ମୂର୍ତ୍ତି, ସିଂହ, ପଶୁରକ୍ଷକ, ନେପାଳ ଦେଶସ୍ଥିତ ଶିବ-ଲିଙ୍ଗବିଶେଷ ।

ପଶୁପତିନାଥ—ବି. ଭାରତ ବିଖ୍ୟାତ ନେପାଳରେ ଅବସ୍ଥିତ ଶିବ ମୂର୍ତ୍ତି ଓ ପ୍ରସିଦ୍ଧ ଶୈବ ତୀର୍ଥ ।

ପଶୁପା—ସ୍ତ୍ରୀ. ବି. ପଶୁପାଳକ, ଈଶାନ କୋଣସ୍ଥିତ ଦେଶବିଶେଷ ।

ପଶୁପାଳ(କ)—ବି. ପଶୁପାଳନ କରିବା ବ୍ୟକ୍ତି, ପଶୁ ଜଗୁଆଳ, (ସ୍ତ୍ରୀ) ପଶୁ-ପାଳିକା, (ଗ୍ରା.ବି) ଜଗନ୍ନାଥ ଓ ଲିଙ୍ଗ-ରାଜଆଦି ମହାପ୍ରଭୁଙ୍କ ସେବକବିଶେଷ ।

ପଶୁପାଳନ—ବି(୬ତତ୍ପୁ) ଗୋମେଷାଦିଙ୍କୁ ପାଳିବା ଓ ଜଗିବା ।

ପଶୁପାଶ—ବି.(୬ତତ୍ପୁ)ପଶୁ ବନ୍ଧା ଦଉଡ଼ି, ପଘା, ଯଜ୍ଞ ପଶୁ ବାନ୍ଧିବାର ରଜ୍ଜୁ, ଜୀବର ସଂସାର ବନ୍ଧନ, ପଶୁବନ୍ଧବିଶିଷ୍ଟ ଯଜ୍ଞ, ପଶୁମେଧ ।

ପଶୁପାଶକ—ବି. (ପଶୁପାଶ+କ) ପଶୁ-ପାଶ ଦେଖ, ରତିବନ୍ଧ ବିଶେଷ ।

ପଶୁପ୍ରେରଣ—କ୍ଳୀ.ବି.(୬ତତ୍ପୁ)ଗବାଦିର ଚାଳନ ।

ପଶୁପ୍ରୋକ୍ଷଣ—ବି. (୬ତତ୍ପୁ)ବଳିନିମନ୍ତେ ଅଭିପ୍ରେତ ପଶୁକୁ ଛେଦନ କରିବା ପୂର୍ବରୁ ମନ୍ତ୍ର ଦ୍ୱାରା ପବିତ୍ରୀକରଣ ।

ପଶୁବନ୍ଧକ—ବି. ଦଉଡ଼ି, ପଶୁମାନଙ୍କର ବନ୍ଧନରଜ୍ଜୁ, ପଘା, ଗ୍ରନ୍ଥି ।

ପଶୁଭର୍ତ୍ତା—ପୁଂ. ବି. (୬ତତ୍ପୁ)ଶିବ ।

ପଶୁଭାବ—ପୁଂ.ବି.ପଶୁତ୍ୱ,ସାଧକମାନଙ୍କର ମନ୍ତ୍ରସିଦ୍ଧିର ପ୍ରକାର ବିଶେଷ ।

ପଶୁମାର—ବି. କଂସେଇ । [ କରାଯାଏ ।

ପଶୁମେଧ—ବି.ଯେଉଁ ଯଜ୍ଞରେ ପଶୁବଧ

ପଶୁରାଜ—ପୁଂ.ବି.(ପଶୁ+ରାଜା) ୬ତତ୍ପୁ; ପଶୁଶ୍ରେଷ୍ଠ, ସିଂହ, ମୃଗେନ୍ଦ୍ର ।

ପଶୁରି—ଗ୍ରା. ବି. ପାଞ୍ଚସେର ପରିମାଣ ବା ଓଜନ, ୫ସେର ଓଜନର ବଟ-କରା, (ବିଂ) ୫ସେର ଓଜନବିଶିଷ୍ଟ ।

ପଶୁବତ୍—ଅବ୍ୟ. (ପଶୁ+ବତ୍)ପଶୁତୁଲ୍ୟ

ପଶୁବୁଦ୍ଧି—ବି. (ମଧ୍ୟ-କ.ଧା) ପଶୁପରି ଅଳ୍ପବୁଦ୍ଧି, ଯୁକ୍ତି ଓ ବିଚାର ହୀନବୁଦ୍ଧି, (ବିଂ) ମୂର୍ଖ, ଅଜ୍ଞ, ହିତାହିତ ବିବେ-ଚନା ଶୂନ୍ୟ ।

ପଶୁବୃତ୍ତି—ବି. (୬ତତ୍ପୁ) ପଶୁକର୍ମ ଦେଖ ।

ପଶୁଶାଳା—ବି.ପଶୁମାନଙ୍କ ରହିବା ଘର ।

ପଶୁସଖ—ପୁଂ.ବି. (୬ତତ୍ପୁ)ପଶୁର ସଖା, ଶୂଦ୍ରର ନାମ ବିଶେଷ ।

ପଶୁହସ୍ତିକା—ସ୍ତ୍ରୀ. ବି. (୬ତତ୍ପୁ) ଆମ୍ବ-

ତକ ଫଳ, ଆମ୍ବଡ଼ା ।
ପଶ୍ୱଦ୍ରବ୍ୟ—କ୍ଳୀ. ବି. ପଶୁମାଂସ ।
ପଶ୍ୱବ୍ରତ୍ୟା—ବି.ଯଜ୍ଞରେ ପଶୁବଳିଦେବା, ଜୀବହତ୍ୟା ।
ପଚଶର୍—ପ୍ରା.(କଳାହାଣ୍ଡି)ବି.ବାଳୁଙ୍ଗା ।
ପଶ୍ଚାତ୍—(ଅବ୍ୟ) ( ଅପର+ଅସ୍ତାତ୍ ) ପରେ, ପରବର୍ତ୍ତୀ କାଳରେ, ପଛରେ, ପିଠିଆଡ଼େ,ଭବିଷ୍ୟତରେ, ପଛଆଡ଼ ବା ଆଡ଼କୁ, ଅବଶେଷରେ, ପଶ୍ଚିମଦିଗକୁ ବା ରୁ, (ବିଂ) ପଛଆଡ଼େଥିବା, ପରେ ଘଟିଲା ।
ପଶ୍ଚାତ୍କର୍ମ—କ୍ଳୀ.ବି. ବୈଦ୍ୟୋକ୍ତ ଭଲ ବର୍ଣ୍ଣାଗ୍ନି କାର୍ଯ୍ୟ, ଆରୋଗ୍ୟ ହେବା ପରେ ଯଦ୍ୱାରା ବଳ ଓ ଅଗ୍ନି ବୃଦ୍ଧି ହୁଏ ଏହିରୂପ କାର୍ଯ୍ୟ ।
ପଶ୍ଚାତ୍କୃତ—ବିଂ. ଯାହାକୁ ପଛରେ ଛାଡ଼ି ଆସିବାକୁ ହୋଇଥାଏ, ଯାହାକୁ କେହି ପଚୁରନ୍ତି ନାହିଁ ।
ପଶ୍ଚାଦ୍ଗାମୀ—ପୁଂ. ବି . ଯେ ପଛେ ପଛେ ଯାଏ, ପରବର୍ତ୍ତୀ ।
ପଶ୍ଚାତେ—ଗ୍ରା.ଅବ୍ୟ. ପଶ୍ଚାତ୍ ଦେଖ ।
ପଶ୍ଚାତ୍ତାପ—ବି. ଅନୁଶୋଚନ, ଅନୁତାପ, ପସ୍ତେଇବା ।
ପଶ୍ଚାତ୍ତାପୀ—ପୁଂ.ବିଂ.ଯେଉଁମାନେ ପଶ୍ଚାତ୍ତାପ କରନ୍ତି, ଅନୁତାପଯୁକ୍ତ,ଅନୁତାପୀ,
ପଶ୍ଚାଦନୁସରଣ—କ୍ଳୀ.ବି. (୭ତତ୍)ପଶ୍ଚାଦ୍ଗମନ, ପଛେପଛେ ଗିବା ।
ପଶ୍ଚାଦ୍ଦିଗ—ବି.(କ.ଧା)ପଶ୍ଚାଦ୍ଭାଗ ଦେଖ, ପଶ୍ଚିମ । [ ସ୍ଥିତ ।
ପଶ୍ଚାଦ୍ବର୍ତ୍ତୀ—ପୁଂ.ବିଂ. ପଛଆଡ଼େ ଅବ-
ପଶ୍ଚାଦ୍ଭାଗ—ବି. ପୃଷ୍ଠଭାଗ, ପଛଆଡ଼, ଶେଷଭାଗ । [ଦିଗର ପବନ ।
ପଶ୍ଚାଦ୍ବାତ—ପୁଂ.ବି. ପଶ୍ଚିମବାୟୁ, ପଶ୍ଚିମ
ପଶ୍ଚାର୍ଦ୍ଧ—ବିଂ. (ଅପର + ଅର୍ଦ୍ଧ )ଶେଷାର୍ଦ୍ଧ, ଅପରାର୍ଦ୍ଧ,ପାଦଠାରୁ ନାଭିପର୍ଯ୍ୟନ୍ତଅଂଶ, ବସ୍ତୁର ଦ୍ୱିତୀୟାର୍ଦ୍ଧ ।
ପଶ୍ଚିମ—ବି. ( ପଶ୍ଚାତ୍+ଇମ ) ପ୍ରତୀଚୀ, ସୂର୍ଯ୍ୟ ଯେଉଁ ଦିଗରେ ଅସ୍ତ ହୁଅନ୍ତି, ପୃଷ୍ଠଦେଶ, ଶେଷଭାଗ, ଚରମସୀମା, (ବିଂ) ପଶ୍ଚିମ ଦିଗସ୍ଥ, ଶେଷ, ଚରମ, ଶେଷଆଡ଼ର, ( ଗ୍ରା.ବି ) ଘରର ପଶ୍ଚିମ ଅଂଶ, ପଶ୍ଚିମାଞ୍ଚଳ ।
ପଶ୍ଚିମଅବସ୍ଥା—ବି. ମୃତ୍ୟୁ, ଶେଷଅବସ୍ଥା, ମୁମୂର୍ଷୁଅବସ୍ଥା ।
ପଶ୍ଚିମକବାଟ—ଗ୍ରା.ବି.କ୍ଷତ୍ରିୟଙ୍କ ବଂଶୋପାଧିବିଶେଷ ।
ପଶ୍ଚିମଘାଟ—ଗ୍ରା. ବି. ବିନ୍ଧ୍ୟ ପର୍ବତର ପଶ୍ଚିମ ଶାଖା, ଯାହା ବମ୍ବେଇ ପ୍ରଦେଶର ପଶ୍ଚିମାଂଶରେ ସମୁଦ୍ରର ସମାନ୍ତର ହୋଇଅଛି ।
ପଶ୍ଚିମଜୀବନ—ବି. ଶେଷଜୀବନ,ଜୀବନର ଶେଷଭାଗ । [ ଶେଷରାତ୍ରି ।
ପଶ୍ଚିମରାତ୍ରି—ବି. ରାତ୍ରିର ଶେଷଭାଗ,
ପଶ୍ଚିମା—ଗ୍ରା. ବିଂ. ପଶ୍ଚିମଦେଶୀୟ, ପଶ୍ଚିମାଞ୍ଚଳବାସୀ ।
ପଶ୍ଚିମାଚଳ—ପୁଂ.ବି. ଅସ୍ତାଚଳ,ଅସ୍ତଗିରି
ପଶ୍ଚିମପବନ—ଗ୍ରା. ବି. ପଶ୍ଚିମ ଦିଗରୁ ବହିବା ଥଣ୍ଡା ପବନ ।
ପଶ୍ଚିମାର୍ଦ୍ଧ—ବି. ଶେଷାର୍ଦ୍ଧ,ଅପରାର୍ଦ୍ଧ ।
ପଶ୍ଚିମୋତ୍ତର—ବି. ବାୟୁକୋଣ, ପଶ୍ଚିମ ଉତ୍ତର ଦିଗର ମଧ୍ୟସ୍ଥିତ ଦିଗ୍ ।
ପଶ୍ୟତୋହର—ପୁଂ.ବି. ଚୌର,ଯେଉଁମାନେ ଦର୍ଶକର ସମ୍ମୁଖରେ ତାହାକୁ ଭୁଲାଇ ଚୋରି କରନ୍ତି, ସ୍ୱର୍ଣ୍ଣକାର, ବଣିଆ ।
ପଶ୍ୟନ୍—ପୁଂ.ବିଂ. (ଦୃଶ୍+ଅତ୍)ଦର୍ଶକ, ଦର୍ଶନକାରୀ ।
ପଶ୍ୟନ୍ତୀ—ସ୍ତ୍ରୀ. ବି. ମୂଳାଧାରୋତ୍ଥିତ ହୃଦୟଗତ ନାଦରୂପ ବର୍ଣ୍ଣ, ବାକ୍ବିଶେଷ, ଦର୍ଶିନୀ ସ୍ତ୍ରୀ, ଈକ୍ଷଣକର୍ତ୍ତ୍ରୀ ।
ପଶ୍ୱବଦାନ—କ୍ଳୀ.ବି.ପଶୁର ଅଙ୍ଗବିଶେଷ ଛେଦନ ।
ପଶ୍ୱାଚାର—ପୁଂ.ବି.(ମଧ୍ୟ-କ.ଧା)ତନ୍ତ୍ରୋକ୍ତ ଆଚାରବିଶେଷ, ପାଶବ ବ୍ୟବହାର ।
ପଶ୍ୱାଚାରୀ—ପୁଂ.ବିଂ. (ପଶ୍ୱାଚାର+ଇନ୍) ପାଶବ ବ୍ୟବହାରକାରୀ, ପଶ୍ୱାଚାର ବିଧିରେ ତାନ୍ତ୍ରିକ ଅନୁଷ୍ଠାନକାରୀ ।
ପସନା—ପ୍ରା. (ବସ୍ତ୍ର)ବି. ଝାଲ ।
ପସନାଫୁଟିବା—ପ୍ରା. (ବସ୍ତ୍ର) ବି. ଝାଳ ବହିବା ।
ପସନ୍ଦ—ଯା.ବି. ନିର୍ବାଚନ, ଅନୁମାନ, ଅନୁମୋଦନ,ରୁଚି,ମନୋନୟନ,ସମ୍ମାନ, ବାଞ୍ଛିତ, ମଞ୍ଜୁର, ( ବିଂ ) ମନୋନୀତ, ଅନୁମୋଦିତ, ଗୃହୀତ, ଇଚ୍ଛାନୁରୂପ, ଅନୁରୂପ,ରୁଚ୍ୟ,ରୁଚିକର,ସୁନ୍ଦର,ଉଚିତ, ବିଶ୍ୱାସଯୋଗ୍ୟ, ଯୋଗ୍ୟ, ଅନୁକୂଳ ।
ପସର—ଗ୍ରା. ବି. ବିକ୍ରେୟ ଦ୍ରବ୍ୟସମୂହ ଓ ତଦ୍ରୂପାଧାର, ଗୁଙ୍ଗୁଡ଼ା, ପଣ୍ୟାଧାର, ଦୋକାନ, ଆଶ୍ରୟ, ଭରସା, ଜୀବିକା ନିର୍ବାହର ଉପାୟ, ବୋଝ, ଆଧାର, (ଲ.ଅର୍ଥ) ପୂର୍ଣ୍ଣ ପରିମାଣ । [ ଅଟଗ ।
ପସଲ—ଗ୍ରା. ବି. ଋତୁମରୁଡ଼େ ବର୍ଷଣ,
ପସାର—ଗ୍ରା. ବି. ପ୍ରସାର, ସୁଖ୍ୟାତି, ବ୍ୟବସାୟଗତ ସୁନାମ, ବିସ୍ତୃତି, ପ୍ରତିପତ୍ତି, ପ୍ରତିଷ୍ଠା, ବ୍ୟବସାୟର ଉନ୍ନତି ।
ପସାରିବା—ଗ୍ରା.କ୍ରି. ଦୋକାନର ପଣ୍ୟଦ୍ରବ୍ୟକୁ ମେଲାଇ ରଖିବା, ମେଲାଇବା ।
ପସାରୀ—ଗ୍ରା.ବିଂ. ବିକ୍ରେତା, ଦୋକାନୀ, ବୁଲାବିକା । [ ଲତା ।
ପସାରୁଣୀ—ଗ୍ରା.ବି. ଏକପ୍ରକାର ଔଷଧି-
ପସିନା—ଗ୍ରା.ବି. (ଫ-ପ୍ରସ୍ୱେଦନ)ଝାଳ ।
ପସ୍ତା— ଗ୍ରା.ବି. ଅନୁତାପ, ପଶ୍ଚାତ୍ତାପ ।
ପସ୍ତାଇବା—ଗ୍ରା.କ୍ରି. ଅନୁତାପ କରିବା,
ପହଁଟିଆ—ପ୍ରା. (ସମ୍ବଲ)ବି. (ଫ-ପ୍ରହାତ) ପାହାନ୍ତିଆ ।
ପହଁଚ—ଗ୍ରା. ବି. (ଫ-ବହୁକରା--ଝାଡ଼ୁ) ଓଳାଇବା, ଝାଡ଼ୁ, ସମ୍ମାର୍ଜନୀ, (ଫ-ପ୍ଲବନ) ସନ୍ତରଣ ।
ପହଁଚପହଁର—ଗ୍ରା.ବି. ଝାଡ଼ୁଦ୍ୱାରା ପରିଷ୍କାର କରିବା କର୍ମ, ସନ୍ତରଣ କର୍ମ ।
ପହଁରାମୁଠ—ଗ୍ରା. ବି. ଘରଆଦି ଓଳାଇବା ପାଇଁ ଏକାଠି ବନ୍ଧା ଖଡ଼ିକାକୋଛା ।
ପହଁରିବା—ଗ୍ରା.କ୍ରି.ଝାଡ଼ୁଦ୍ୱାରା ଓଳାଇବା, ସନ୍ତରଣ କରିବା, ଭାସିବା, ଭାସମାନ ହେବା ।
ପହଞ୍ଚା—ଗ୍ରା.ବି. ପହଞ୍ଚିବା କର୍ମ, ଦୋଳ

ଚଳାଇବା, ଦୋଳର ଇତସ୍ତତଃ ଚାଳନ

ପହଣ୍ଡା(ଣ୍ଡେ)ଇବା—ଗ୍ରା. କ୍ରି. ପହଣ୍ଡିବା କ୍ରିୟାର ଣିଜନ୍ତରୂପ, ଉପସ୍ଥିତ କରାଇବା, (ଦୋଳକୁ) ଝୁଲାଇବା ।

ପହଣ୍ଡିବା—ଗ୍ରା. କ୍ରି. ଉପସ୍ଥିତ ହେବା, ଉପନୀତହେବା ।

ପହଟିବା—ଗ୍ରା.କ୍ରି.ଅଭ୍ୟାସବଶତଃଲୋଳାୟିତ ହେବା, (କଥାଁ)ଲାଗିଯିବା ।

ପହଡ଼—ଗ୍ରା. ବି. ପହୁଡ଼, ରାଜା ବା ଦେବତାଙ୍କର ଶୟନ, ବିଶ୍ରାମ ନୀତି ।

ପହଡ଼ପକା(କେ)ଇବା--ଗ୍ରା.କ୍ରି.ଦେବତାଙ୍କର ଦୈନିକ ନିର୍ଦ୍ଧାରିତ ନୀତି ଶେଷକରି ପହଡ଼ ପଡ଼ିବାର ନୀତି ସମାଧାନ କରିବା ।

ପହଡ଼ପଡ଼ିବା—ଗ୍ରା.ବି. (ଦେବତା ରାଜାଆଦି) ନିଦ୍ରିତହେବା ।

ପହଡ଼ିବା—ଗ୍ରା.କ୍ରି. (ରାଜା) ଶୋଇବା, ଗଡ଼ିବା, ବିଶ୍ରାମକରିବା ।

ପହଣ(ନା)—ପ୍ରା. (ମେଦ-ଯାଜ-ଭଦ୍ରଖ) ବି. ମାଛଜାଆଁଳ, ମାଛକୁଆ ।

ପହଣୀ—ଗ୍ରା. ବି. ପାଣିନାଳ, (ସଂ-ପ୍ରବେଣୀ) ଲମ୍ବ ଚଖୋର ଗାତ ।

ପହଣ୍ଡି—ବି. ( ସଂ-ପ୍ରଦଣ୍ଡି ) ପଦକ୍ଷେପ, ଚାଲିବାବେଳେ ଦୁଇପାଦମଧ୍ୟସ୍ଥ ସ୍ଥାନ, ଇରୁଣ୍ଡିବନ୍ଧ, ସରୁପିଣ୍ଡା, ଚାଲିବା ।

ପହଣ୍ଡିପକା(କେ)ଇବା—ଗ୍ରା. କ୍ରି. ପାଦକ୍ଷେପ କରି ଚାଲିବା, ଧୀରେ ଧୀରେ ଚାଲିବା ।

ପହଣ୍ଡିମଣା—ଗ୍ରା. ବି. ରାଜା ବା ଦେବତାଙ୍କ ପହଣ୍ଡି ବିଜେ ସମୟରେ ଜଣେ ସେବକ ଆଗେ ଆଗେ ଚାଲି ବାଟ କଢ଼ାଇବା କର୍ମ ।

ପହଣ୍ଡିମଣା(ଣେ)ଇବା—ଗ୍ରା. କ୍ରି. ରାଜାମାନଙ୍କ ଚାଲିବା ଆଗରୁ ଜଣେ ଆଗୁଆ ଲୋକ ବାଟ କଢ଼ାଇବା ।

ପହଣ୍ଡି—ଗ୍ରା.ବି. ଧୀରଗମନ, ଏକପ୍ରକାର ଖେଳ, ପହଣ୍ଡି ବିଜୟ ଦେଖ ।

ପହଣ୍ଡି ବିଜୟ—ଗ୍ରା. ବି. ଭ୍ରମଣ, ପାଦଚାରଣ, ଧୀରେ ଧୀରେ ପଦକ୍ଷେପ ପୂର୍ବକ ଚାଲି, ଗୁଣ୍ଡିଚା ଯାତ୍ରା ସମୟରେ ଶ୍ରୀ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ମୂର୍ତ୍ତିକୁ ଦେଉଳରୁ ରଥ ଉପରକୁ ଓ ରଥରୁ ମନ୍ଦିରକୁ ସେବକମାନେ ବାହା ଦଣ୍ଡା କରି ପାଟଡ଼ୋରିରେ ଟାଣି ଏକସ୍ଥାନରୁ ଅନ୍ୟ ସ୍ଥାନକୁ ଡ଼ୁଆଁଇ ଡ଼ୁଆଁଇ ନେବା ବିଧି । [ଅଭ୍ୟାଗତ ।

ପହନା—ପ୍ରା. (ଲରିଆ)ବି. କୁଣିଆ, ଅତିଥି,

ପହନ୍ଦ—ଗ୍ରା. ବି. ଡ଼ଙ୍ଗାର ଧନୁରାକାର ଦାଢ଼ ବା ଫନ୍ଦ ।

ପହପଟ—ଗ୍ରା.ବିଂ. ଅନାବୃତ, ଉନ୍ମୁକ୍ତ, (ବି) ନାଳବିଶେଷ ।

ପହପଟମେଲ୍—ଗ୍ରା. ବିଂ. ସମ୍ପୂର୍ଣ୍ଣରୂପେ ଖୋଲା, ମୁକୁଳା, ଉନ୍ମୁକ୍ତ ।

ପହର—ଗ୍ରା.ବି. ପ୍ରହର, ଦିନ ବା ରାତ୍ରିର ୪ଭାଗର ଏକଭାଗ ସମୟ, ଘଣ୍ଟାଘଡ଼ି, ଯାମ, (ପ୍ରା. ଯାସପୁର)ସମୟ ।

ପହରଣ—ଗ୍ରା.ବି. (ସଂ-ପ୍ରବରଣ)ବସ୍ତ୍ରାଦି ପରିଧାନ, ଲୁଗା ପିନ୍ଧିବାର ଢାଞ୍ଚା ବା ଢଙ୍ଗ, ପୋଷାକ ପରିଚ୍ଛଦ ।

ପହରା—ଗ୍ରା.ବି. ( ସଂ-ପ୍ରହର ) ଜଗିବା, ଜଗିବାର ପାଳି, ଚୌକିଦେବା, ଚାଲିଚଳନ ।

ପହରାକରିବା(ଦେବା)—ଗ୍ରା.କ୍ରି. ଜଗିବା, ଚୌକିଦେବା ।

ପହରାବାଲା—ଯା.ବି. ଜଗୁଆଳ, ଚଉକିଦାର ।

ପହରିକେଆ—ଗ୍ରା.ବିଂ. ଏକପ୍ରହରସ୍ଥାୟୀ ।

ପହରୀ—ଗ୍ରା. ବି. (ସଂ-ପ୍ରହରୀ) ପ୍ରହରୀ, ଚୌକିଦାର, ପହରାଦେବାବାଲା ।

ପହଲ—ଯା. ବି. କାଠଖଣ୍ଡର ଦାଢ଼କୁ ରନ୍ଦା ଦ୍ୱାରା ଗଡ଼ାଣିଆ କରିବା, କୋଣ ବିଶିଷ୍ଟ ଘନ ବସ୍ତୁର ଗୋଟିଏ ସମତଳ ପାର୍ଶ୍ୱ, ପରସ୍ତ, ସ୍ତର, ଅତିମୂଲ୍ୟବାନ୍ ମଣିମାନଙ୍କର କଟାହୋଇ ଥିବା ପାର୍ଶ୍ୱ ।

ପହଲ—ଗ୍ରା. ବି. ହାତକୁ ହଲାଇ ସଗର୍ବ ଚାଲି ।

ପହଳି—ଗ୍ରା. ବି. (ସଂ-ପ୍ରହେଳିକା) ଢଗ, ପ୍ରବଚନ, ପ୍ରହେଳିକା, ବ୍ୟଙ୍ଗୋକ୍ତି ।

ପହଲିବା—ଗ୍ରା.କ୍ରି. ଦମ୍ଭ ବା ଗର୍ବ ସହକାରେ ହାତହଲାଇ ଚାଲିବା ।

ପହ—ଯା. ବି. ହଡ଼, ବଗିଚା ସୀମା, (ଗ୍ରା.ବି) ପଇ ଦେଖ ।

ପହଆ--ଗ୍ରା.ବି.ଶଗଡ଼ଚକ, ପଇଆ ଦେଖ ।

ପହଜ—ଗ୍ରା. ବି. ଗର୍ବପ୍ରକାଶ, ଗୋଳମାଳ, ବିବାଦ, କ୍ରୋଧ, ବଳପରୀକ୍ଷା କରିବା ପାଇଁ ଡାକିବା, ବୃଦ୍ଧି, ଆସ୍ଫାଳନ, ପାହୁଡ଼ ।

ପହଲ୍(ଲ)ମାନ୍—ବି. ମଲ୍ଲ, ମାଲ ।

ପହଲ—ଗ୍ରା.ବିଂ. ପ୍ରଥମ, ଆଦ୍ୟ, ଆଦ୍ୟଜାତ, ଅଗ୍ରଜ ।

ପହଲା—ଗ୍ରା. ବିଂ. ପହଲ ଦେଖ, (ବି) ମାସର ଆଦ୍ୟ ଦିବସ ବା ପ୍ରଥମ ତାରିଖ

ପହଲାନମ୍ବର—ଗ୍ରା. ବିଂ. ପ୍ରଥମଶ୍ରେଣୀସ୍ଥ, ଉତ୍କୃଷ୍ଟ, (ବି) ପ୍ରଥମସଂଖ୍ୟା ।

ପହଲିଧୂପ—ଗ୍ରା. ବି.ଦେବଙ୍କ ନିକଟରେ ସକାଳେ ସର୍ବ ପ୍ରଥମେ କରାଯିବା ଧୂପଦୀପ ନୈବେଦ୍ୟାଦି ପୂଜା ।

ପହଲିପାଲି—ଗ୍ରା. ବି. ବାଲ୍ୟବିବାହିତା କନ୍ୟା ରଜସ୍ୱଳା ହେଲାପରେ ପ୍ରଥମେ ଶ୍ୱଶୁରାଳୟକୁ ସ୍ୱାମୀର ସହିତ ଯିବା, ନବବଧୂ ଯାତ୍ରା ।

ପହଲିଭୋଗ—ଗ୍ରା. ବି. ଧନୁସଂକ୍ରାନ୍ତିଠାରୁ ମକର ସଂକ୍ରାନ୍ତି ପର୍ଯ୍ୟନ୍ତ ସକାଳେ ଦେବତାଙ୍କ ନିକଟରେ ହେବା ପିଠା ଖେଚୁଡ଼ି ଆଦି ଭୋଗ, ପାହାନ୍ତାଭୋଗ ।

ପହଲୁ—ଗ୍ରା. କ୍ରି.ବିଂ. ପହଲେ ଦେଖ ।

ପହଲେ—ଗ୍ରା. କ୍ରି. ବିଂ. ଆଦ୍ୟରେ, ପ୍ରଥମେ, ପ୍ରଥମରୁ, ଆଦ୍ୟରୁ ।

ପହ୍ନା—ଗ୍ରା. ବି.ଗବାଦିପଶୁର ଦୁଗ୍ଧାଧାର, ଗାଈ ପ୍ରଭୃତିଙ୍କ ସ୍ତନ ।

ପହ୍ନାଇବା—ଗ୍ରା. କ୍ରି. ଗାଈ ଛେଳି ଆଦି କଅଁଳାଇବା ଅଲଗଦିନ ପୂର୍ବରୁ ପହ୍ନାକୁ ଦୁଗ୍ଧଗଡ଼ାଇ ବଡ଼ ଆକୃତ କରିବା, ଛୁଆ ପିଇଲାବେଳେ ଗାଈମାନେ ମୂତପକାଇ ପହ୍ନାରୁ ଚରିଲୁ ଦୁଗ୍ଧ ଗଡ଼ାଇବା ।

ପହ୍ଲବ—ଗ୍ରା. ବି. ପ୍ରାଚୀନପାରସିକ ଜାତି-

ବିଶେଷ, (ବିଂ) ପହ୍ଲବୀ । [ ଭାଷା ।

ପହ୍ଲବୀ—ଗ୍ରା.ବିଂ.ପହ୍ଲବୀମାନଙ୍କର କଥିତ

ପା—ବିଂ. ପାଳକର୍ତ୍ତା, ରକ୍ଷାକର୍ତ୍ତା, (ବି) ରକ୍ଷା, ପାନ, ବେଢ,(ଗ୍ରା.ବି)ଚତୁର୍ଥାଂଶ, ଏକପାଆମାପ ପାତ୍ର, ପଦ, ଚରଣ, ଚଉଠ ।

ପାଆ—ଗ୍ରା.ବି.ପା ଦେଖ, ରୁ ଖେଳକର

ପାଆଁପଡ଼ିବା—ଗ୍ରା. କ୍ରି. ଗୋଡ଼ତଳେ ପଡ଼ିବା, ଦାନ୍ତରଜୁଟା ହେବା,ଦାନ୍ତରେ ତୃଣଧରି ଅନ୍ୟର ପାଦତଳେ ପଡ଼ିବା ।

ପାଆକଆ—ଗ୍ରା.ବିଂ. ଏକପାଆ ପରିମାଣ ବା ଓଜନ ବିଶିଷ୍ଟ,(ବି)ଏକପାଆ ମପିବାର ପାତ୍ର । [ଗୋଡ଼ତଳ ।

ପାଆତଳ—ଗ୍ରା. ବି. ( ସଂ-ପାଦତଳ )

ପାଆତଳିଆ—ଗ୍ରା. ବିଂ. ପାଦତଳସ୍ଥ, ଅଧୀନସ୍ଥ (ବ୍ୟକ୍ତି) ।

ପାଆଷ୍ଟଲ—ଗ୍ରା. ବି. ବାରଣ୍ଡା,ପିଣ୍ଡା,ଆଙ୍ଗୁଘରର ବାରଣ୍ଡା ଉପରେ ହୋଇଥିବା ପଟୋଉନ ଗୃହ । [ ଦଣ୍ଡବତ ।

ପାଆଲଗି—ଗ୍ରା. ବି. (ସଂ-ପାଦ+ଲଗ୍ନ)

ପାଇ—ଗ୍ରା. ବି. ପାଇଁ, ନିମନ୍ତେ, ଲାଗି, ଡୁଡୁଖେଳରେ ଏକପକ୍ଷର ସୀମାନିର୍ଦ୍ଦିଷ୍ଟ ସ୍ଥାନ,ଗୃହଭାଗରୁ ଏକଭାଗ, ଦୁଇସେର ଓଜନର ଶସ୍ୟମପା ଗଉଣି, ଦୁଇବାଟି ଓଜନ (ତୋ୧୬୮ ବା ୨୦୦ଲା) ।

ପାଇଁ—ଗ୍ରା. (ଅବ୍ୟ) ଲାଗି, ନିମନ୍ତେ, ଯୋଗୁଁ, ହେତୁରୁ ।

ପାଇକ—ଗ୍ରା. ବି. (ସଂ-ପଦାତିକ)ପଦାତିକସୈନ୍ୟ, ରକ୍ଷୀ,କ୍ଷତ୍ରିୟ ଜାତିବିଶେଷ

ପାଇକକାହାଣୀ—ଗ୍ରା.ବି. ଅସମ୍ଭବ ଗପ, ଆତ୍ମପ୍ରଶଂସାପୂର୍ଣ୍ଣ ଗପ ।

ପାଇକଜାଗିର—ଗ୍ରା. ବି. ପାଇକମାନଙ୍କ ଦରମା ପରିବର୍ତ୍ତେ ଦିଆଯାଇଥିବା ମାଫି ଭୂସମ୍ପତ୍ତି ।

ପାଇକବିଦ୍ରୋହ—ଗ୍ରା. ବି. ୧୮୧୭ଖ୍ରୀଷ୍ଟାବ୍ଦରେ ଖୋରଧାର ପାଇକମାନେ କରିଥିବା ମେଳ ।

ପାଇକରା—ଗ୍ରା.ବି.ଓଡ଼ିଶାର ରାଜପ୍ରଦତ୍ତ ପାଇକମାନଙ୍କର ଉପାଧିବିଶେଷ, ପାଇକରାଏ ବା ରାୟ ।

ପାଇକସ୍ତ(ସ୍ତା)—ଯା. ବି. ପ୍ରଜାବିଶେଷ, ଯେଉଁ ସମସ୍ତ ପ୍ରଜା ଜଣେ ଜମିଦାରଙ୍କ ଅଧିକାରରେ ବାସକରି ଅନ୍ୟଗ୍ରାମରେ ଭୂମିଚାଷ କରନ୍ତି, ପାହିପ୍ରଜା ।

ପାଇକରିବା—ପ୍ରା. ସମ୍ବ.କ୍ରି. ପିଲାମାନଙ୍କୁ ଖାଖକରିବା, କାଖେଇବା ।

ପାଇକା—ଗ୍ରା. ବି. କଟକ ଜିଲ୍ଲାରେ ମହାନଦୀର ଦୁଇଟି କ୍ଷୁଦ୍ର ଶାଖାନଦୀ ।

ପାଇକାର—ଗ୍ରା. ବି. ପଇକାରି ଦେଖ ।

ପାଇକାଲି—ଗ୍ରା. ବିଂ. ପାଇକମାନଙ୍କ ପ୍ରାପ୍ୟ, ପାଇକମାନଙ୍କ ସମ୍ପର୍କୀୟ ।

ପାଇଖାନା—ଯା.ବି. ମଳତ୍ୟାଗର ସ୍ଥାନ, ପଇଖାନା ଦେଖ ।

ପାଇଚ୍ଛା—ଗ୍ରା.ବି.ବାଦସାହା,ରାଜା,ସମ୍ରାଟ୍

ପାଇଟି—ଗ୍ରା. ବି. ଗୃହାଦିର କାର୍ଯ୍ୟ, ଦୈନିକ ଧନ୍ଦା, ଶ୍ରେଷ୍ଟଶୃଙ୍କର, ହଳିଆ କାର୍ଯ୍ୟ । [ କରେ ।

ପାଇଟିଆଳ—ଗ୍ରା.ବିଂ.ମୂଲିଆ,ଯେ ପାଇଟି

ପାଇଣ୍ଡା—ପ୍ରା. ଗଞ୍ଜା. ବି. ଗଞ୍ଜାମର ଓଡ଼ିଆ ଅସ୍ପୃଶ୍ୟ ଜାତିବିଶେଷ ।

ପାଇନ—ପ୍ରା. ସମ୍ବ. ବି. ପାଣି, ( ପ୍ରା-ମେଡ଼ା)ସୁନାରେ ଝଲାଯିବା ନିକୃଷ୍ଟ ଧାତୁ

ପାଇପ୍—ଯା. ବି. ନଳ, ଧାତୁଆଦିର ବଡ଼ନଳ ।

ପାଇବା—ଗ୍ରା. କ୍ରି. ( ସଂ-ଆପ୍ଧାତୁ ) ପ୍ରାପ୍ତହେବା, ଅର୍ଜନ କରିବା, ଭୋଗ କରିବା, ଅଣ୍ଟିବା,ମେଳଖାଇବା, ପହଞ୍ଚିବା, ବୋଧହେବା,ମନୋମତହେବା, ମାନିବା, ଅନୁମୋଦନ କରିବା, ବୁଝିପାରିବା, ଖାଇବା, ହାତଗୋଡ଼ ଆଦି କୌଣସି ଉଚ୍ଚନୀଚ ଆଦି ସ୍ଥାନକୁ ଲାଗିବା, ଗ୍ରହଣ କରିବା, (ପ୍ରା. ଗଞ୍ଜାମ) ( ବି ) ପିଲା ପ୍ରସବ କରିବା ।

ପାଇଯିବା—ଗ୍ରା.କ୍ରି. ପ୍ରାପ୍ତହେବା, ଉପସ୍ଥିତ ହେବା, ନିକଟବର୍ତ୍ତୀ ହେବା ।

ପାଇଲା—ଗ୍ରା. ବିଂ. ଯେଉଁଠାରୁ ଦ୍ରବ୍ୟ ପ୍ରାପ୍ତି ହୁଏ, ଲବ୍ଧ, ପ୍ରାପ୍ତ, (କ୍ରି) ପ୍ରାପ୍ତହେଲା ।

ପାଉଁରୁଟି—ଯା.ବି. ଅଟାରେ ଏକପ୍ରକାର ଖମୀରା ବା ଚୂନା ମିଶାଇ ଦହକ ନିଆଁ ଧାସରେ ସିଦ୍ଧ କରାଯିବା ଏକପ୍ରକାର ଫୁଲୁକା ରୁଟି ।

ପାଉଁଶ—ଗ୍ରା.ବି.(ସଂ-ପାଂଶୁ)ପାଂଶୁ,ଭସ୍ମ ।

ପାଉଁଶକୁଢ଼—ଗ୍ରା. ବି. ଯେଉଁଠାରେ ଗୃହସ୍ଥର ଚୁଲିରୁ କଢ଼ାହେବା ପାଉଁଶ ଜମାକରାଯାଏ ।

ପାଉଁଶମାଉଁସିଆ—ଗ୍ରା. ବି. ପାଷାଣଭେଦୀ ଗୁଳ୍ମ, ରୁକ୍ମିଣୀହାତପୋଡ଼ା, ଏକପ୍ରକାର ଶାକଜାତୀୟ ଗୁଳ୍ମ ।

ପାଉଁଶିଆ—ଗ୍ରା. ବିଂ. ପାଂଶୁବର୍ଣ୍ଣବିଶିଷ୍ଟ, ପାଉଁଶପରି ବର୍ଣ୍ଣ ଦେଖାଯାଉଥିବା, ପାଉଁଶ ବୋଲାହୋଇଥିବା ।

ପାଉଁଶୀ—ପ୍ରା. (ବସ୍ତର) ବି. ପନିକ ।

ପାଉଜର—ଯା. ବି. (ସଂ-ପାଦମଞ୍ଜୀର) ପାଦର ଘୁଙ୍ଗୁରଯୁକ୍ତ ବଳା ।

ପାଉଡ଼ିଆ—ପ୍ରା. (ସମ୍ବ) ବି. ଭୂୟାଁନାମକ ଆଦିମ ପାର୍ବତ୍ୟଜାତି ।

ପାଉଡ଼ୀ—ପ୍ରା. (ସିଂହ) ବି. ସିଂହଭୂମିରେ ପୂଜିତା ପାର୍ବତୀଦେବୀ ।

ପାଉଡ଼ୀମେଳ—ପ୍ରା. (ସିଂହ)ବି. ପାଉଡ଼ୀ ଠାକୁରାଣୀଙ୍କର ୧୨ ବର୍ଷରେ ଥରେ ହେବା ଯାତ୍ରା ।

ପାଉଣା—ଗ୍ରା.ବିଂ.ପ୍ରାପ୍ୟ,ଆଦାୟଯୋଗ୍ୟ, (ସଂ-ପାଦୋନ) ପୌନେ, ଗୃହଭାଗରୁ ଏକଭାଗ ଊଣା, (ବି) ପ୍ରାପ୍ୟଧନ ।

ପାଉଣ୍ଡ୍—ଯା. ବି. ପ୍ରାୟ ୧୦ ଟଙ୍କା ମୂଲ୍ୟର ଇଂଲଣ୍ଡ ପ୍ରଚଳିତ ସ୍ୱର୍ଣ୍ଣମୁଦ୍ରା, କାଞ୍ଚିହାଉସ୍, ଦାଲେଶ୍ୱରୀ ଅଧସେର ।

ପାଉତି—ଗ୍ରା. ବି. ପ୍ରାପ୍ତିସ୍ୱୀକାର ପତ୍ର, ରସିଦ, ଖଜଣାପ୍ରାପ୍ତିର ରସିଦ,ଚେକ-ପାଉତି ।

ପାଉସେର—ଗ୍ରା. ବି. ମହାଜନମାନଙ୍କୁ ବେପାରୀଠାରୁ କିଣାଇଦେବା ବ୍ୟକ୍ତିର ପ୍ରାପ୍ୟ, ଦଲାଲର କମିଶନ୍ ବା ଦସ୍ତୁରି, (ଲ.ଅର୍ଥ) ଦୁଇଜଣଙ୍କ ମଧ୍ୟରେ କରାଯିବା ଦେଣନେଣରେ ତୃତୀୟ ବ୍ୟକ୍ତି ମଝିରେ ପାଇବା ଲାଭ ।

ପାଏ—ଗ୍ରା. ବି ଓ ବିଂ. ଗୃହଭାଗରୁ ଏକଭାଗ, ଏକଚତୁର୍ଥାଂଶ, (ଗ୍ରା.କ୍ରି) ପ୍ରାପ୍ତହୁଏ। [ ପଡ଼ିବା।

ପାଏପଡ଼ିବା—ଗ୍ରା. କ୍ରି. ପାଦତଳେ

ପାଏବନ୍ଦ୍—ଗ୍ରା. ବିଂ. ଏକାନ୍ତ ନିଯୁକ୍ତ, ଅସ୍ୱାଧୀନ, ନାଚାର, ବାଧ୍ୟ।

ପାଏର୍—ଗ୍ରା. (ସମ୍ବ) ବି. କ୍ଷେତର ହିଡ଼, ସ୍ତେଟବନ୍ଧ।

ପାଂକ୍ତ—ବିଂ. (ପଂକ୍ତି+ଅ) ଶ୍ରେଣୀବଦ୍ଧ, ସମାଜ ସମ୍ବନ୍ଧୀୟ, ସାମାଜିକ ଭୋଜନ ବା ପଂକ୍ତିଭୋଜନ ସମ୍ବନ୍ଧୀୟ।

ପାଂଶନ—ବିଂ. (ପନ୍ଶ+କ.ଅନ)ଦୂଷକ, ଦୂଷଣକାରୀ, ବିନାଶକ।

ପାଂଶବ—ବି. ( ପାଂଶୁ+ଅ ) ଲବଣବିଶେଷ, ପଙ୍ଗାଲୁଣ, (ବିଂ) ଧୂଳିସମ୍ବନ୍ଧୀୟ।

ପାଂଶୁ—ବି.(ପନଶ୍+ଉ) ଧୂଳି,ଗୋମୟ, ସାର, ଛାବର, ସମ୍ପତ୍ତି, ପାପ, ପର୍ପଟ, କର୍ପୂରବିଶେଷ, ସ୍ତ୍ରୀରଜଃ, ପାଉଁଶ, କଳଙ୍କ, ପଙ୍ଗାଲୁଣ, ପୁଷ୍ପପରାଗ।

ପାଂଶୁକ—ବିଂ. ( ପାଂଶୁ+କ ) ଧୂଳିଧୂସରିତ, ପାପିଷ୍ଠ, ଧୂସରବର୍ଣ୍ଣ ବିଶିଷ୍ଟ, ମାଟିଆ, ଦୁଷ୍ଟ, ଲମ୍ପଟ, ମଇଳା, ଅପବିତ୍ରୀକୃତ, ଅବମାନିତ, ( ବି ) ପୂତିକରଞ୍ଜ, ବରପୋଲ, ପାପୀବ୍ୟକ୍ତି, ଶିବଙ୍କ ଅସ୍ତ୍ରବିଶେଷ, ଖଟ୍ୱାଙ୍ଗ, ଉପପତି, ଜାର, ଶିବ, ଧୂଳିମୟ ସ୍ଥାନ।

ପାଂଶୁକାସୀସ—କ୍ଲୀ. ବି. ହୀରାକସ।

ପାଂଶୁକା—ସ୍ତ୍ରୀ. ବି. ( ପାଂଶୁକ+ଈ ) ଅସତୀ ସ୍ତ୍ରୀ, ରଜସ୍ୱଳା ସ୍ତ୍ରୀ, କଳଙ୍କିନୀ ସ୍ତ୍ରୀ, ପୃଥିବୀ, କେତକୀ ବା କିଆଫୁଲ, ଦୁଷ୍ଟଚରିତ୍ରା ସ୍ତ୍ରୀ, (ବିଂ) ପାପିଷ୍ଠ, ଧୂଳିଯୁକ୍ତ।

ପାଂଶୁକୁଳ—କ୍ଲୀ. ବି. ବୌଦ୍ଧ ଯାଜକର ବସ୍ତ୍ର, ବିଶିଷ୍ଟ ପକ୍ଷଙ୍କ ନାମ ଲେଖାଯାଇନ ଥିବା ଦଲିଲ।

ପାଂଶୁକୁଳୀ—ବି. ( ପାଂଶୁକୁଳ+ଈ ) ରାଜପଥ।

ପାଂଶୁକୂଳ—ବି. ଧୂଳି ବା ଅଳିଆଗଦା, ପାଉଁଶକୁଡ଼, ବୌଦ୍ଧଭିକ୍ଷୁମାନଙ୍କର ପରି ଧାର୍ଯ୍ୟ ଚିରାକନା ବା ସିଆଁକନ୍ଥା।

ପାଂଶୁକ୍ରୀଡ଼ା—ବି. (୬ତତ୍ପୁ ବା ୭ତତ୍ପୁ) ଧୂଳିଖେଳ।

ପାଂଶୁକୃତ—ବିଂ. ଯାହା ଧୂଳିରେ ପରିଣତ ହୋଇଅଛି।

ପାଂଶୁକ୍ଷାର—ପୁଂ. ବି. କ୍ଷାରଲବଣ, ପଙ୍ଗାଲୁଣ। [ କରକା।

ପାଂଶୁଚତ୍ୱର—ପୁଂ. ବି. ଘନୋପଳ,

ପାଂଶୁଚନ୍ଦନ—ପୁଂ. ବି. (ବ.ବ୍ରୀ) ଶିବ।

ପାଂଶୁଚାମର—ବି. ଧୂଳିଗଦା, ପଟବାସ, ସୁବାସିତ ରଜଃ, ଦୂର୍ବଘାସରେ ଆଚ୍ଛାଦିତ ଭୂମି, କଷିକାକୁଡ଼, ପ୍ରଶଂସା।

ପାଂଶୁଜ—ବି. ପଙ୍ଗାଲୁଣ।

ପାଂଶୁଜାଳକ—ପୁଂ. ବି. ବିଷ୍ଣୁଙ୍କର ନାମାନ୍ତର।

ପାଂଶୁପଟୁ—କ୍ଲୀ. ବି. ପଙ୍ଗାଲୁଣ।

ପାଂଶୁପତ୍ର—କ୍ଲୀ. ବି. (ବ.ବ୍ରୀ) ବାସ୍ତୁକଶାକ, ବଥୁଆଶାଗ।

ପାଂଶୁବର୍ଣ୍ଣ—ବି. (କ.ଧା) ପାଉଁଶିଆ ବର୍ଣ୍ଣ, ମାଟିଆରଙ୍ଗ, (ବିଂ-ବ.ବ୍ରୀ) ପାଉଁଶିଆ, ମାଟିଆ।

ପାଂଶୁଭବ—କ୍ଲୀ. ବି. ମୃତ୍ତିକାଲବଣ, ସଚଲଲବଣ।

ପାଂଶୁଭିକ୍ଷା—ସ୍ତ୍ରୀ. ବି. ଧାତକୀ ବୃକ୍ଷ।

ପାଂଶୁମର୍ଦ୍ଦନ—ବି. କେଦାରଭୂମି, ଆଲବାଲ, ଗଛରେ ପାଣିଦେବାର ମଲା।

ପାଂଶୁର—ବିଂ. (ପାଂଶୁ+ର) ଚଳତ୍ଶକ୍ତିହୀନ, କେମ୍ପା, ଖୋଟା, ଛୋଟ, ପାଂଶୁବିଶିଷ୍ଟ, ( ବି ) ପୀଠସର୍ପୀ, ଦଂଶକ, ଡାଉଁସ।

ପାଂଶୁରାଗିଣୀ—ସ୍ତ୍ରୀ. ବି. ମହାମେଦା।

ପାଂଶୁଳ—ବି ଓ ବିଂ. ପାଂଶୁକ ଦେଖ।

ପାଂଶୁଳା—ସ୍ତ୍ରୀ. ବି. ( ପାଂଶୁଳ+ଆ ) କୁଳଟା, ଭୂମି, କେତକୀ ବା କିଆ, ଅସତୀ ସ୍ତ୍ରୀ, ରଜସ୍ୱଳା ସ୍ତ୍ରୀ, ଦୁଷ୍ଟଚରିତ୍ରା ସ୍ତ୍ରୀ, (ବିଂ) ଧୂଳିଯୁକ୍ତା, ପାପିଷ୍ଠା।

ପାଂସୁ(ଇତ୍ୟାଦି)—ବି. ( ପନ୍ସ+ଉ ) ପାଂଶୁ ଇତ୍ୟାଦି ଦେଖ।

ପାକ—ପୁଂ. ବି. (ପଚ୍+ଭା.ଅ) ରନ୍ଧନ, ରାନ୍ଧିବା, ସିଝାଇବା, ଭାଜିବା, ସିଝିବା, ପରିପାକ, ହଜମ, ପରିଣତି, (ଫଳ ଆଦିର) ପକ୍ୱତା, ପାଚିଯିବା, ବଥିଆଦି ପାଚିବା, କେଶର ଶୁକ୍ଳତା, ଇଡ଼ାପୋଡ଼ା, ପକ୍ୱାନ୍ନ, ବଥ, ସମ୍ପୂର୍ଣ୍ଣତା, ପୋଖତହେବା ଅବସ୍ଥା, ନିଷ୍ପତ୍ତି, ଉତ୍କର୍ଷ, ଫଳବିଶିଷ୍ଟ କର୍ମ, ଅଗ୍ନି, ଯେଉଁ ଅଗ୍ନି ଦ୍ୱାରା ପରିବାରର ପାକକ୍ରିୟା ସମ୍ପାଦିତ ହୁଏ, ରନ୍ଧନପାତ୍ର, ସମୂହ, ଭୟର ଉପସ୍ଥିତି, ପାଗ, (ପା+କ.ଅକ) ଇନ୍ଦ୍ରଙ୍କ ଦ୍ୱାରା ନିହତ ଦୈତ୍ୟବିଶେଷ, ପେଚକ, ( ମ୍ପି.ଅକ ) ଶିଶୁ, ପିଲା, (ଗ୍ରା.ବି) ଗୃହସ୍ଥର ପାଗହାଣ୍ଡିର ଏକସାର, ଅଶୌଚ ପରେ କରାଯିବା ନୂଆହାଣ୍ଡିରେ ରନ୍ଧାବାଢ଼, (ବିଂ) ଅତିଶିଶୁ, ସରଳାନ୍ତଃକରଣ, ମୂର୍ଖ, ଅକୃତ୍ରିମ, ସାଧୁ, (ଗ୍ରା.ବିଂ) ସୁପରିପକ୍ୱ, ଫଳପ୍ରସୂ, ସିଦ୍ଧ, ପରିଣତ।

ପାକକରିବା—ଗ୍ରା. କ୍ରି. ରାନ୍ଧିବା, ସିଝାଇବା, ଭାଜିବା, ଆଉଟିବା।

ପାକକାର—ବି. (ପାକ+କୃ+କ.ଅ ) ପାଚକ, ରନ୍ଧନକାରୀ ବ୍ୟକ୍ତି।

ପାକକାର୍ଯ୍ୟ—ବି. ରନ୍ଧନକ୍ରିୟା, ଖାଦ୍ୟ ଜୀର୍ଣ୍ଣହେବାର ଆଭ୍ୟନ୍ତରୀଣ କ୍ରିୟା।

ପାକକୁଟୀ—ବି. କୁମ୍ଭାରଶାଳ, ଉହାଘର।

ପାକକୃଷ୍ଣ—ପୁଂ. ବି. ( ପାକ+କୃଷ୍ଣ ) କରମଦାକୋଳି।

ପାକକୃଷ୍ଣଫଳ—ବି. କରମଦାକୋଳି।

ପାକଚକ୍ର—ଗ୍ରା. ବି. ଶଠତା, ଷଡ଼ଯନ୍ତ୍ର, କଳକୌଶଳ, ଜଟିଳରହସ୍ୟ, ଅପରାଧୀକୁ ଦଣ୍ଡଦେବାର ଏକପ୍ରକାର ଚକ, ଘୂରୁଥିବା ଚକ।

ପାକଜ—କ୍ଲୀ.ବି. (ପାକ+ଜନ୍+କ.ଅ) ପାକଲବଣ, ପଙ୍ଗାଲୁଣ, ପରିଣାମଶୂଳ, ପେଟଫମ୍ପା, (ବିଂ) ପାକରୁ ଉତ୍ପନ୍ନ।

ପାକଦ୍ୱିଟ୍—ପୁଂ. ବି. (ପାକ+ଦ୍ୱିଷ୍+କ. କ୍ୱିପ୍) ପାକଶାସନ, ଇନ୍ଦ୍ର।

ପାକପାତ୍ର—କ୍ଲୀ. ବି. ( ୬ତତ୍ପୁ ) ପାକସାଧନ ପାତ୍ର, ରାନ୍ଧିବାର ବାସନ, ହାଣ୍ଡିପ୍ରଭୃତି।

ପାକପୁଟୀ—ସ୍ତ୍ରୀ. ବି. କୁମ୍ଭାରଶାଳ, ହାଣ୍ଡିଘର ।
ପାକଭାଣ୍ଡ—କ୍ଲୀ. ବି. ପାକପାତ୍ର ଦେଖ ।
ପାକଯଜ୍ଞ—ବି. ବୃଷୋତ୍ସର୍ଗ ଓ ଗୃହପ୍ରତିଷ୍ଠା ଆଦି କର୍ମରେ ଖିରି ଆହୁତି ଦିଆଯିବା ହୋମ, ବ୍ରହ୍ମଯଜ୍ଞ ଛଡ଼ା ଗୃହସ୍ଥର ନିତ୍ୟକର୍ତ୍ତବ୍ୟ ଅନ୍ୟ ଗୃହଗୋଟି ଯଜ୍ଞ, (ଯଥା—ବୈଶ୍ୱଦେବ, ହୋମ, ବଳିକର୍ମ ଓ ଅତିଥିସେବା) ।
ପାକଯନ୍ତ୍ର—କ୍ଲୀ ବି. (୬ତତ୍) ପରିପାକ ଯନ୍ତ୍ର. ପାକାଶୟ, ପାକସ୍ଥଳୀ ।
ପାକରଞ୍ଜନ—କ୍ଲୀ. ବି. ତେଜପତ୍ର ।
ପାକଲ—କ୍ଲୀ. ବି. ( ପାକ+ଲା+ଅ ) କୁଷ୍ଠୌଷଧି, କୁଡ଼, ଅନଳ, ଅନଳ, ସନ୍ନିପାତଜ୍ୱରବିଶେଷ, ହସ୍ତୀର ଜ୍ୱର, ଲୋହିତବର୍ଣ୍ଣ, (ବିଂ) ବୃଦ୍ଧ, ଅବସ୍ଥାନ୍ତର ପ୍ରାପ୍ତ, ପକ୍ୱ, ବ୍ରଣାଦିକାରକ, ପରିଣତିପ୍ରାପ୍ତ, ଅତ୍ୟନ୍ତ କଳା, (ଗ୍ରା.ବିଂ) ପକ୍ୱ, (ସୂତା ଦଉଡ଼ିଆଦି) ଉତ୍ତମରୂପେ ବଳା ହୋଇଥିବା, ସୁପରିଣତ, ପକ୍ୱପ୍ରାପ୍ତ, ବଳାଯାଇଥିବା, ବ୍ୟଥାଯୁକ୍ତ ।
ପାକଲ—ଗ୍ରା.ବିଂ.ପାଚିଲା, ପକ୍ୱ,ପାଣିରେ କଷ କରାଯାଇଥିବା ( ଗାମୁଛାଆଦି ) ସୁରକ୍ଷିତ, ଶକ୍ତ, ଘିଅ ତେଲ ପିଇଥିବା (ମାଟିପାତ୍ର), ସଢ଼, ଘିଅ ତେଲଆଦି ମରାଯିବାର ରକ୍ତାଭ (ବାଉଁଶବାଡ଼ି) ।
ପାକଲା(ଲେ)ଇବା—ଗ୍ରା. କ୍ରି. ପରୁଇବା, ସୂତାଆଦିକୁ ବଳି ପାକ କରିବା, ଫୁସୁଲେଇବା ।
ପାକଳ(ଳୀ)—ସ୍ତ୍ରୀ.ବି.ବୃକ୍ଷବିଶେଷ, କର୍କଟୀକ, କକଡ଼ାଶୃଙ୍ଗୀ ।
ପାକଳିଆ—ଗ୍ରା. ବିଂ. ପକ୍ୱ, ଅର୍ଦ୍ଧପକ୍ୱ, ପକ୍ୱପ୍ରାପ୍ତ, ସୁପରିଣତ ।
ପାକଶାଳା—ବି. (ପାକ+ଶାଳା)ରନ୍ଧନଗୃହ, ରନ୍ଧାଘର, ହାଣ୍ଡିଶାଳ ।
ପାକଶାସନ—ପୁଂ.ବି. (ପାକ+ଶାସନ) ଇନ୍ଦ୍ର ।
ପାକଶାସନି—ପୁଂ. ବି. (ପାକ+ଶାସନ+ଇ) ଇନ୍ଦ୍ରପୁତ୍ର, ଜୟନ୍ତ, ଅର୍ଜୁନ, ବାଳି ବାନର ।
ପାକଶୁକ୍ଲା—ସ୍ତ୍ରୀ. ବି. କଠିନୀ, ଖଡ଼ୀ ।
ପାକସ୍ଥଳୀ—ସ୍ତ୍ରୀ. ବି. (୭ତତ୍) ଉଦରସ୍ଥ ପାକପାତ୍ର, ପକ୍ୱାଶୟ ।
ପାକସ୍ଥାନ—କ୍ଲୀ.ବି(ପାକ+ସ୍ଥାନ)ରନ୍ଧନାଳୟ, ରୋଷାଇ ଘର, କୁମ୍ଭାର ହାଟ ।
ପାକସ୍ଥାଳୀ—ବି. ( ୭ତତ୍ ) ପାଗହାଣ୍ଡି, ରନ୍ଧାହାଣ୍ଡି ।
ପାକହନ୍ତା—ପୁଂ.ବି.ପାକଶାସନ, ଇନ୍ଦ୍ର ।
ପାକାଗାର—ପୁଂ.ବି. ପାକଶାଳା, ରନ୍ଧାଘର, ହାଣ୍ଡିଶାଳ ।
ପାକାତିସାର—ବି. ଅତିସାର ରୋଗବିଶେଷ, ଗ୍ରହଣୀ ।
ପାକାତ୍ୟୟ—ବି. ଚକ୍ଷୁରୋଗବିଶେଷ ।
ପାକାମ୍ବର—ଗ୍ରା.ବି. (ସଂ-ପକ୍ୱ+ଅମ୍ବର) ଗେରୁଆ ଲୁଗା ।
ପାକାରି—ପୁଂ. ବି. (ପାକ+ଋ+ଇନ୍) ଶ୍ୱେତ କାଞ୍ଚନ, (୬ତତ୍) ପାକଶାସନ, ଇନ୍ଦ୍ର ।
ପାକାସ୍ପର୍ଶ—ଗ୍ରା. ବି. (ସଂ-ପାକସ୍ପୃଶ୍ୟା) ସ୍ତ୍ରୀର ରଜଃସ୍ରାବ, (ବିଂ) ରଜସ୍ୱଳା,(ସ୍ତ୍ରୀ) ଋତୁମତୀ ।
ପାକିମ—ବିଂ.(ପାକ+ଇମ)ପକ୍ୱ, ରନ୍ଧାହୋଇଥିବା, ପାକନିଷ୍ପନ୍ନ, ପୋଡ଼ାଯାଇଥିବା (ମାଟିପାତ୍ର), ପାଚିଲା ।
ପାକୀ—ପୁଂ. ବିଂ. ପାକକର୍ତ୍ତା, ପାଚକ ।
ପାକୁ—ବିଂ(ପାକ+ଉ)ସୂପକାର,ପାଚକ, ରୋଷେଇଆ, ରନ୍ଧୁଣିଆ ।
ପାକୁଆ—ବିଂ. (ସଂ-ଫଲକ) ଦନ୍ତହୀନ, ଜର୍ଜର, ଦନ୍ତୁରା (ବୃଦ୍ଧଆର) ।
ପାକୁକ—ବିଂ. ( ପାକ+ଉକ ) ପାକୁ ଦେଖ ।
ପାକୁଡ଼—ଗ୍ରା. ବି. (ସଂ-ପର୍କଟୀ)ଜରିଗଛ, ପ୍ରାଚୀନ ସ୍ଥାନବିଶେଷ ।
ପାକୁଡ଼—ପ୍ରା.(ଗଞ୍ଜାମ)ବି. (ସଂ-ପକ୍ୱବଟକ) ବଟା ବରରେ ପିଆଜ ଓ ଲଙ୍କାମରିଚ ମିଶାଇ ଘିଅ ବା ତେଲରେ ଛାଣିବା ଏକପ୍ରକାର ପିଠା ।
ପାକୁପାକୁ—ଗ୍ରା. (ଅବ୍ୟ) ଉପର୍ଯ୍ୟୁପରି ପାଟିକୁ ଆଁ କରି ପୁଣି ବନ୍ଦ କରିବା; ମୁମୂର୍ଷୁ ବ୍ୟକ୍ତିର କ୍ଷୀଣ ନିଃଶ୍ୱାସସହ ପାଟିକୁ ମେଲି କରିବା ଓ ବନ୍ଦକରିବା ।
ପାକୁ(ଲା)ଳି—ଗ୍ରା. ବି. ( ସଂ-ପ୍ରୋଦ୍ଗାର ) ରୋମନ୍ଥ, ଚର୍ବିତ ଚର୍ବଣ, ରଘା ।
ପାକ୍ୟ—କ୍ଲୀ.ବି(ପଚ୍+ମ୍.ଯ)ବିଟ୍‌ଲବଣ, ପାଂଶୁଲବଣ, ( ପୁଂ.ବି ) ଯବକ୍ଷାର, ସୋରା, (ବିଂ) ରନ୍ଧା ଯିବାର ଉପଯୁକ୍ତ, ଯାହାକୁ ପରୁଇ ଦିଆଯିବ ।
ପାକ୍ୟକ୍ଷାର—ପୁଂ.ବି.ଯବକ୍ଷାର, ସୋରା ।
ପାକ୍ୟା—ବି. ସର୍ଜିକ୍ଷାର, ସାଚକ୍ଷାର, ଯବକ୍ଷାର, ସୌବର୍ଚ୍ଚଳ ଲବଣ, ମୃତ୍ତିକାଲବଣ ।
ପାକ୍ଷ—ବିଂ. (ପକ୍ଷ+ଅ) ଏକପକ୍ଷ, (୧୫ ଦିନ)ସମ୍ବନ୍ଧୀୟ, କୌଣସି ପକ୍ଷ (ଦଳ) ସମ୍ବନ୍ଧୀୟ ।
ପାକ୍ଷିକ—ବିଂ. (ପକ୍ଷ+ଇକ) ପକ୍ଷପାତୀ, ପକ୍ଷିଘାତକ, ପକ୍ଷକାଳ ଭବ, ଯାହା ଏକପକ୍ଷ (୧୫ ଦିନରେ) ହୁଏ, ପକ୍ଷସମ୍ବନ୍ଧୀୟ, ପକ୍ଷୀସମ୍ବନ୍ଧୀୟ, ଇଚ୍ଛାଧୀନ, ପକ୍ଷସାଧ, (କ୍ର) ବାଣୁଆ, ବ୍ୟାଧ, ପକ୍ଷୀ ଧରିବା ବ୍ୟକ୍ତି, ଉପଯୁକ୍ତର ।
ପାକ୍ଷିକଜ୍ୱର—ବି. ( କ.ଧା ) ୧୫ ଦିନ ଅନ୍ତରରେ ହେଉଥିବା ଜର ।
ପାକ୍ଷିକଶ୍ରାଦ୍ଧ—ବି. (କ.ଧା) ୧୫ ଦିନରେ କରାଯିବା ଶ୍ରାଦ୍ଧବିଶେଷ ।
ପାଖ—ଗ୍ରା. ବି. ( ସଂ-ପାର୍ଶ୍ୱ ) ନୈକଟ୍ୟ, ଦେହର ପାର୍ଶ୍ୱ, କଡ, ଦିଗ, ତରଫ, ଆଡ଼, ସୀମା, ସନ୍ନିଧି, ସାମୁଖ୍ୟ,ରକ୍ଷଣାବେକ୍ଷଣ, ଅଧିକାର, ସାହଚର୍ଯ୍ୟ, (ସଂ-ପକ୍ଷ) ଦଳ, (ବିଂ) ପାର୍ଶ୍ୱବର୍ତ୍ତୀ, ସଂଲଗ୍ନ, ଅଳ୍ପ ଦୂରସ୍ଥ, ତତ୍ପରବର୍ତ୍ତୀ, ନିକଟତର, ସହଚର ରୂପେ ସଙ୍ଗେ ରହିଥିବା (ଲୋକ), ସମ୍ମୁଖରେ ଅବସ୍ଥିତ ।
ପାଖଆଖ—ଗ୍ରା.ବି. ପାଖ, ପାର୍ଶ୍ୱବର୍ତ୍ତୀ ଓ ସମ୍ମୁଖ ସ୍ଥାନ, ( ବିଂ ) ନିକଟବର୍ତ୍ତୀ, ଲଗାଲଗି, ଅଳ୍ପ ଦୂରରେ ଅବସ୍ଥିତ ।
ପାଖକୁ—ଗ୍ରା.ଅବ୍ୟ. ନିକଟକୁ, ସନ୍ନିଧିକୁ, ଠାକୁ, ଲଗିକରି, କାର୍ଯ୍ୟର ସହାୟକ

ବା ସହକର୍ମୀ ରୂପେ ଆବଶ୍ୟକ ହେଲା-ବେଳେ ସହାୟ ହେବ ପାଇଁ ।
ପାଖକେ—ଗ୍ରା. ଅବ୍ୟ. ଏକ ପାର୍ଶ୍ୱରେ, ଗୋଟିଏ ସୀମାରେ,ଗୋଟିଏ ପକ୍ଷରେ ।
ପାଖଡ଼ା—ଗ୍ରା. ବି. ଏକପ୍ରକାର ଖଇର, ପାଖର ଖଇର । [ ବିଶ୍ୱାସଶମନ ।
ପାଖଣ୍ଡ—ଗ୍ରା.ପୁଂ. ବିଂ. ପାଷଣ୍ଡ,ଈଶ୍ୱର-
ପାଖପଡ଼ଶା—ଗ୍ରା.ବି. ନିକଟବର୍ତ୍ତୀ ପ୍ରତି-ବାସୀ, ସାଇପଡ଼ଶା ।
ପାଖପାଖ—ଗ୍ରା. ବିଂ. ପରସ୍ପର ନିକଟ-ବର୍ତ୍ତୀ, ଲଗାଲଗି ।
ପାଖର—ଗ୍ରା. ବିଂ. ନିର୍ଲ୍ଲଜ, ଜଳଜଳା, ଦୁଷ୍ଟ, ପାଜି, ଅସ୍ଥିର, (ବି) ଖଇର-ବିଶେଷ ।
ପାଖରୁ—ଗ୍ରା. ଅବ୍ୟ. ନିକଟରୁ, ନିକଟ-ବର୍ତ୍ତୀ ସ୍ଥାନରୁ, (ଅମୁକର) ଅଧିକାରରୁ, ସାହଚର୍ଯ୍ୟରୁ, ଗୃହକରୁ ବା ସେବାରୁ, ଦ୍ୱାରରୁ ।
ପାଖରେ—ଗ୍ରା.ଅବ୍ୟ.ନିକଟରେ,ଠାରେ, ସଙ୍ଗରେ, ତୁଳନାରେ, ସାହଚର୍ଯ୍ୟ ବା ସହବାସରେ, ସେବାରେ, ସହାୟକ ସ୍ୱରୂପ, ଏକ ସଙ୍ଗରେ, କଡ଼ରେ ।
ପାଖରେବସିବା—ଗ୍ରା. କ୍ରି. ସଙ୍ଗରେ ବସିବା, (ଲ.ଅ) ସମାନସ୍କନ୍ଧ ହେବା ।
ପାଖଲୋକ—ଗ୍ରା. ବି. (ସଂ-ପାର୍ଶ୍ୱଲୋକ) ପାର୍ଶ୍ୱଚର, ଅନୁଚର, ଗୃହକର ।
ପାଖାଣ୍ଡି—ଗ୍ରା.ବିଂ.ପାଷଣ୍ଡ,ଦୁଷ୍ଟ, ଦୁର୍ବୃତ୍ତ, (ବି) ଦୁଷ୍କର୍ମ ।
ପାଖିପଟା—ଗ୍ରା.ବି. କରତା ପଟାର ଦୁଇ ପାଖରେ ଥିବା ପଲଖା ପଟା ।
ପାଖୁ—ଗ୍ରା. ଅବ୍ୟ. ପାଖରୁ ଦେଖ ।
ପାଖୁଡ଼ା—ଗ୍ରା.ବି. ପୁଷ୍ପର ଅଂଶ, ଫୁଲର ଦଳ, ଉପର୍ଯ୍ୟୁପରି ନ୍ୟସ୍ତ ପତଳା ସ୍ତର
ପାଖେ—ଗ୍ରା. ଅବ୍ୟ. ପାଖରେ ଦେଖ ।
ପାଖେପାଖେ— ଗ୍ରା. ଅବ୍ୟ. ବରାବର ପାଖରେ ବା ନିକଟରେ, ସବୁବେଳେ ନିକଟରେ ।
ପାଗ—ଗ୍ରା.ବି.ଶିରସ୍ତ୍ରାଣ, ପଗଡ଼ି,ଠେକା, ରନ୍ଧନ, ରନ୍ଧନ ବା ଚକ୍ଷୁଆଦି କର-ବାର ଏକ ଥର, ଖରା ମେଘ ଓ ପବ-ନର ଅବସ୍ଥା, ଯହିଁରେ ଏକାଧିକ ବସ୍ତୁ ମିଶାଇ ପ୍ରସ୍ତୁତ କରାଯାଏ, ସୁଯୋଗ, ସୁବିଧା ।
ପାଗଛଡ଼ା—ଗ୍ରା.ବିଂ.(ସଂ-ପାକ+ଉତ୍ସୃଷ୍ଟ) ବର୍ଜିତ, ମୃତକାଦି ଅଶୌଚ ଶେଷରେ ରନ୍ଧାଘରୁ କଢ଼ା ହେବା ହାଣ୍ଡି ।
ପାଗଦେବା—ଗ୍ରା.କ୍ରି. ସୁଯୋଗ ଦେବା, ପାଗିବା ।
ପାଗଯୋଗ—ଗ୍ରା. ବି. ଯୁକ୍ତିଯୁକ୍ତ ଅନୁ-କୂଳ ଅବସ୍ଥା, ସୁଯୋଗ, ଅନୁକୂଳ ଅବସ୍ଥାମାନଙ୍କର ସମୁଚ୍ଚୟ ।
ପାଗଲ(ଳ)—ପୁଂ.ବିଂ. ଉନ୍ମତ୍ତ, ବାଉଳ, ବିକୃତ ମସ୍ତିଷ୍କ, କ୍ଷିପ୍ତ, ଅସ୍ଥିର, ବାୟା ।
ପାଗଲଖାନା—ଗ୍ରା. ବି. ବାଉଳାମାନଙ୍କର ଚିକିତ୍ସାର୍ଥ ପ୍ରତିଷ୍ଠିତ ଆଶ୍ରମ, ବାଉଳାଶ୍ରମ
ପାଗଲା—ଗ୍ରା. ବିଂ. ପାଗଲ ଦେଖ ।
ପାଗଲା(ଲେ)ଇବା—ଗ୍ରା. କ୍ରି. ବାଉଳ ପରି ଗପିବା, ପ୍ରଳାପ କରିବା, କଥାରେ ଭଣ୍ଡାଇବା, ଭୁଲାଇବା, ପ୍ରକୃତ କଥା ନ କହି ଏଣୁ ତେଣୁ କହିବା ।
ପାଗଲାମି—ଗ୍ରା. ବି. ପାଗଲପଣ, ବାଉ-ଳତା, ବାଉଳ ପରି ପ୍ରଳାପ କରିବା, ନିର୍ବୋଧତା । [ ସ୍ତ୍ରୀଲିଙ୍ଗ ।
ପାଗଳୀନୀ—ଗ୍ରା. ସ୍ତ୍ରୀ. ବିଂ. ପାଗଲର
ପାଗହାଣ୍ଡି—ଗ୍ରା.ବି.(ସଂ-ପାକ+ହଣ୍ଡିକା) ପାକଶାଳାରେ ପାକାର୍ଥ ବ୍ୟବହୃତ ହାଣ୍ଡି, ପାକଭାଣ୍ଡ ।
ପାଗା—ଗ୍ରା.ବି. ଅଶ୍ୱାଦି ରହିବାର ମେଲା ଘର, ଅସ୍ତାବଲ, ଘୋଡ଼ାଶାଳ ।
ପାଗିବା—ଗ୍ରା. କ୍ରି. ଖୁବ୍ ବର୍ଷା ପରେ କ୍ଷେତ୍ରରୁ ପାଣି ମରଯାଇ କୃଷୋପ-ଯୋଗୀ ହେବା ।
ପାଗୁଡ଼—ଗ୍ରା. ବି. ଫାଟକ, ଦ୍ୱାରରେ ଦିଆଯିବା ବଡ଼ ତାଟିଆଦି ।
ପାଙ୍କ୍ତତା—ବି.ଶ୍ରାଦ୍ଧକାଳେ ଏକପଂକ୍ତିରେ ଆହାର କରିବାର ଅଧିକାର ।
ପାଙ୍କ୍ତେୟ—ବିଂ.(ପଂକ୍ତି+ଏୟ)ପଂକ୍ତି-ସ୍ଥିତ, ଏକ ପଂକ୍ତିରେ ଭୋଜନାର୍ହ ।
ପାଙ୍କ୍ତ୍ୟ—ବିଂ. ଏକ ପଂକ୍ତିରେ ଭୋଜନ କରିବାର ଯୋଗ୍ୟ ।
ପାଙ୍କ୍ତ୍ରୁ—ପୁଂ.ବି. ମୂଷିକ ଜାତିବିଶେଷ ।
ପାଙ୍ଗିବା—ଗ୍ରା. କ୍ରି. କୌଣସି ବ୍ୟକ୍ତିର ଅଶୁଭ ଚାହିଁବା,ଅମଙ୍ଗଳ ଇଚ୍ଛା କରିବା, ଗୁଣି ଗାରେଡ଼ି ପ୍ରୟୋଗ ଦ୍ୱାରା ଲୋକର ଅନିଷ୍ଟ କରିବା ।
ପାଙ୍ଗୁଲା—ଗ୍ରା.ବି. (ସଂ-ପାଗଲ)ମନ୍ଦାଗ୍ନି-ଜନିତ ରୋଗବିଶେଷ, ବାଉଳତା, ଗ୍ରା.ବିଂ.ବାଉଳ,ବିକୃତ ମସ୍ତିଷ୍କ (ବ୍ୟକ୍ତି) ।
ପାଚିବା—ଗ୍ରା.(ସମ୍ବ)କ୍ରି. (ସଂ-ପଚ୍‌ଧାତୁ) ପାଚିବା ।
ପାଚକ—ବି. (ପଚ୍+କ.ଅକ) ଯେ ପାକ କରେ, ରନ୍ଧୁଣିଆ, ସୁଆର, ବହ୍ନି, ଜଠରାଗ୍ନି, ଟାଙ୍ଗଣା, ପିତ୍ତ, ହଜମୀ ଔଷଧ, (ବିଂ)ରନ୍ଧନକାରୀ,ଜୀର୍ଣ୍ଣକାରକ, କ୍ଷୁଧାବର୍ଦ୍ଧକ, ଯାହା ପରିପକ୍ୱ କରାଏ ।
ପାଚକପାଣି—(ପ୍ରା.ଯୁଗ୍ମ)ବି.(ସଂ ପାଚକ-+ପାନୀୟ) ଭାଙ୍ଗ, ପିଠ ମରିଚ ଓ ମସଲା ଘୋଟାପାଣି, ସିଦ୍ଧି ।
ପାଚନ—ବି. (ପଚ୍+ଣିଚ୍+କ.ଅନ) ଔଷଧସିଦ୍ଧ ଜଳ, ଅଗ୍ନି, ଅମ୍ଳରସ,ରକ୍ତ ଏରଣ୍ଡ, ଖଟାସ୍ୱାଦ, ରନ୍ଧନ,ଫଳଆଦିକୁ ପକ୍ୱ କରିବା କର୍ମ, ଘାଆ ଆଦିକୁ ଶୁଖା-ଇବା କର୍ମ ଓ ଔଷଧ ପ୍ରୟୋଗ, ଖାଦ୍ୟ ଜୀର୍ଣ୍ଣହେବା ପ୍ରକ୍ରିୟା, ପ୍ରାୟଶ୍ଚିତ୍ତ,ଜୀର୍ଣ୍ଣ-କାରକ ଔଷଧ, ଯାହା ଅନ୍ୟ ପଦାର୍ଥକୁ ମିଳାଇଦିଏ, ( ବିଂ ) ଜୀର୍ଣ୍ଣକାରକ, ହଜମୀ, ରନ୍ଧନକାରୀ,ଯାହା ଫଳଆଦିକୁ ପକ୍ୱ କରାଏ, ଯାହା ନରମ କରେ, ଆମ୍ବିଳା, ଖଟା,(ପ୍ରା. ବସ୍ତୁର ) ପାଞ୍ଚଣ, ଗବାଦି ପଶୁତାଡ଼ନ ଦଣ୍ଡ ।
ପାଚନକ—ବି. ଟାଙ୍ଗଣା, ସୋହାଗା, ଅମ୍ଳରସ, ଅଗ୍ନି, ଏକପ୍ରକାର ପାନୀୟ ଖାଦ୍ୟ, ଜୀର୍ଣ୍ଣକାରକ ଔଷଧ, ଘାଆ ଆଦିକୁ ଶୁଖାଇବା କର୍ମ, ଯାହା ଅନ୍ୟ ପଦାର୍ଥକୁ ମିଳାଇଦିଏ ।
ପାଚନିକା—ବି. (ପାଚନ+ଇକ+ଆ) ରନ୍ଧନ, ପକ କରାଇବା ।

ପାଚନୀ—ସ୍ତ୍ରୀ. ବି. ହରୀତକୀ, ହରଡ଼ା, (ବିଂ) ପରିପାଚକ ।

ପାଚନୀୟ—ବିଂ. (ପଚ୍ + ଣି. ଅନୀୟ) ପାଚ୍ୟ, ପାକଯୋଗ୍ୟ, ଯାହା ପାକ କରାଯାଇ-ପାରେ ।

ପାଚୟିତା—ପୁଂ. ବିଂ. ( ପାଚ + କ. ତୃ ) ପାଚକ, ରନ୍ଧନକାରୀ, ଜୀର୍ଣ୍ଣକାରକ, ପକ୍ୱକାରୀ, ଯାହା ଖାଇଲେ ପରିପାକ ହୁଏ ।

ପାଚଲ—ବି. ( ପାଚ + ଅଲ ) ପାଚକ, ଅଗ୍ନି, ରନ୍ଧନ ସାମଗ୍ରୀ, ବାୟୁ, ପାଚନ, (ବିଂ) ରନ୍ଧନକାରୀ, ଯାହା ପଚାଏ, ଜୀର୍ଣ୍ଣ-କାରକ । [ ଦେଖ ।

ପାଚ(ଚି)ଲି—ଗ୍ରା. ବିଂ. ପାକଲି ଇତ୍ୟାଦି

ପାଚି—ଗ୍ରା. ବି. ପାଳକ, ଭଲ ଫସଲ ଆମଦାନୀ ହେବାର ଅବସ୍ଥା ବା ସମୟ, ଫସଲ, ଅନାର୍ଯ୍ୟମାନଙ୍କର ପାନୀୟ ମଦ୍ୟବିଶେଷ ।

ପାଚିଆ—ଗ୍ରା. ବି. ( ସଂ-ପଚ ) ବାଉଁଶ ପାଡିଆ ଆଦିରେ ତିଆରି ଏକପ୍ରକାର ଟୋକେଇ ।

ପାଚିକା—ସ୍ତ୍ରୀ. ବି. (ପାଚକ + ଆ) ପାକ-କର୍ତ୍ତ୍ରୀ, ରନ୍ଧନକାରିଣୀ ସ୍ତ୍ରୀ, ରାନ୍ଧୁଣୀ ।

ପାଚିତ—ବିଂ. ( ପଚ୍ + ଣିଚ୍ + ଣି. ତ ) ରନ୍ଧା ହୋଇଥିବା, ଜୀର୍ଣ୍ଣ କରାଯାଇଥିବା ।

ପାଚିବା—ଗ୍ରା. କ୍ରି. ପକ୍ୱହେବା, (କେଶ) ଶୁକ୍ଳହେବା, (ବ୍ରଣ) ପୂଯେଇବା, (ଧାତୁ-ଆଦିଅଗ୍ନି ତାପରେ ଲାଲହେବା, (ଗାମୁଛା-ଦାନ୍ତ) ରଞ୍ଜିତହେବା, ଅତି ବୃଦ୍ଧହେବା, ଫଳରେ ପରିଣତ ହେବା, (କଉଡ଼ି-ପଶାଆଦି) ଖେଳାଳିର ସାରି ସବୁଘର ଛପି ଶେଷମୁଣ୍ଡରେ ପହଞ୍ଚିବା, ଭବିଷ୍ୟତ ପାଇଁ ସଞ୍ଚିତହେବା, ଇଟାହାଣ୍ଡି ଆଦି ଦଗ୍ଧମରୂପେ ପୋଡ଼ିବା ।

ପାଚ(ଚେ)ରି—ଗ୍ରା. ବି. (ସଂ-ପ୍ରାଚୀର) ବେଢ଼ା, କାନ୍ଥ, ଭିଡ଼ି । [ ମଦ୍ୟବିଶେଷ ।

ପାଚୀ—ବି. ସ୍ତ୍ରୀ. ଔଷଧି ଲତାବିଶେଷ,

ପାଚୁଆ—ଗ୍ରା. ବି. ବାଉଁଶ ପାଡିଆରେ ତିଆରି ସାନଟୋକେଇ ।

ପାଛୁଡ଼ା—ଗ୍ରା. ବି. (ସଂ-ପ୍ରଚ୍ଛଦପଟ) ଗୃହର, ଉପରିସ୍ଥ ବସ୍ତ୍ର, (ସଂ-ପ୍ରକ୍ଷୋଟନ) କୁଲା-ଛଟା, ପାଛୁଡ଼ିବା ।

ପାଛୁଡ଼ିବା—ଗ୍ରା. କ୍ରି. କୁଲାଦ୍ୱାରା ଧାନ ଗୃଣ୍ଡିଲ ଆଦିରୁ ଚଷୁ ଓ ଆବର୍ଜନା ଦୂର କରିବା ।

ପାଛୋଟିବା—ଗ୍ରା. କ୍ରି ( ସଂ-ପ୍ରତ୍ୟୁଦ୍ଗମନ ) ଆଗବଢ଼ି ଆଣିବା, ଆଗନ୍ତୁକ ବନ୍ଧୁ ବା ମାନ୍ୟ ବ୍ୟକ୍ତିଙ୍କୁ ଖଣ୍ଡେଦୂରକୁ ଯାଇ ତାଙ୍କୁ ସଙ୍ଗେ ସଙ୍ଗେ ଆଣିବା, ଯାତ୍ରା ଉପଲକ୍ଷରେ ନିମନ୍ତ୍ରିତ ହୋଇଥିବା ଦେବତାଙ୍କୁ ବାଟରୁ ଅଭ୍ୟର୍ଥନାପୂର୍ବକ ଆଣି ଯଥାସ୍ଥାନରେ ବସାଇବା, ବନ୍ଧୁ ବା ମାନ୍ୟ ବ୍ୟକ୍ତିଙ୍କ ସଙ୍ଗରେ କିଛିଦୂର ଯାଇ ବିଦାୟ ଦେବା ।

ପାଛୋଣି—ଗ୍ରା. ବି. ଏକପ୍ରକାର ବାସନ ।

ପାଜସ—କ୍ଲୀ. ବି. (ପଜ୍ + ଷି. ଅସ୍) ଦୃଢ଼ତା, ଉଜ୍ଜ୍ୱଳତା, ସ୍ୱର୍ଗ ଓ ମର୍ତ୍ତ୍ୟ, ଖାଦ୍ୟଦ୍ରବ୍ୟ ଅନ୍ନ ।

ପାଜସ୍ୟ—ବି. ( ପାଜସ + ଯ ) ପ୍ରାଣୀର ପେଟଅଂଶ, ଦେହର ପାର୍ଶ୍ୱ, କଡ଼ ।

ପାଜାମା—ଯା. ବି. ପାଇଜାମା ଦେଖ ।

ପାଜିକ—ବି. ଛଞ୍ଚାଣ ।

ପାଜି—ଯା. ବିଂ. ଅଧମ, ପାମର, ନୀଚ, ଦୁଷ୍ଟ, ଖଳ, ପଥର ଅନିଷ୍ଟକାରୀ ।

ପାଞ୍ଚ—ବି ଓ ବିଂ. (ସଂ-ପଞ୍ଚନ୍) ୫ସଂଖ୍ୟା, ୫ସଂଖ୍ୟକ, (ଗ୍ରା. ବି) ବିଚାର, ଆଲୋ-ଚନା, ଚିନ୍ତା, ପରାମର୍ଶ, ଅନୁମାନ, କାମନା, ପଞ୍ଚାୟତ, ଆପୋଷୀ ମୀମାଂସା ।

ପାଞ୍ଚଅବକାଶ—ଗ୍ରା. ବି. ଦେବତାଙ୍କର ଯେଉଁ ପାଞ୍ଚଟି ନିର୍ଦ୍ଦିଷ୍ଟ ସମୟରେ ଏକ ବେଶ ପରିବର୍ତ୍ତନ ଓ ଅନ୍ୟବେଶ ଲାଗି-ହେବା ସମୟରେ ଯାତ୍ରୀମାନଙ୍କ ଦର୍ଶ-ନର ଅଭାବ ହେବା ଅବସ୍ଥା ।

ପାଞ୍ଚକରିବା—ଗ୍ରା. କ୍ରି. ଭାବିବା, ପାଞ୍ଚିବା, ପରାମର୍ଶ କରିବା ।

ପାଞ୍ଚକାଣ୍ଡିଆ—ଗ୍ରା. ବିଂ. ଛଡ଼ା ଛଡ଼ା ହୋଇ ସ୍ଥାନେ ସ୍ଥାନେ ଉପୁଜିଥିବା (ବସନ୍ତାଦି) ।

ପାଞ୍ଚକୋଡ଼ିମେଇ—ଗ୍ରା. ବି. ଗହମ କାକୁଡ଼ି, ମହାକାଳ ।

ପାଞ୍ଚଜଣରେବସିବା—ଗ୍ରା. କ୍ରି. ସମାଜରେ ସମ୍ଭ୍ରାନ୍ତ ବ୍ୟକ୍ତିବୋଲି ପରିଗଣିତ ହେବା ।

ପାଞ୍ଚଜନୀ—ସ୍ତ୍ରୀ. ବି. ପାଞ୍ଚଜନ ନାମକ ପ୍ରଜାପତିଙ୍କ କନ୍ୟା, ଅସିକ୍ନୀ ।

ପାଞ୍ଚଜନୀନ—ବିଂ. ଯେ ପାଞ୍ଚଜଣ ପ୍ରତି ସାଧୁ ବ୍ୟବହାର କରେ ।

ପାଞ୍ଚଜନ୍ୟ—ବି. (ପାଞ୍ଚଜନ + ଯ) ଅଗ୍ନି, ହାରୀତ ମୁନିବଂଶୀୟ ଧୀର୍ଘବୁଦ୍ଧିଙ୍କ ପୁତ୍ର, ଶ୍ରୀକୃଷ୍ଣଙ୍କ ଶଙ୍ଖର ନାମ, ଏକପ୍ରକାର ମାଛ, ଜମ୍ବୁଦ୍ୱୀପର ଆଠଟି ଉପଦ୍ୱୀପ ମଧ୍ୟରୁ ଏକ ।

ପାଞ୍ଚଜନ୍ୟଧର—ପୁଂ. ବି. ବିଷ୍ଣୁ ।

ପାଞ୍ଚଟା—ଗ୍ରା. ବିଂ. ପାଞ୍ଚ ସଂଖ୍ୟକ, (ବି) ପାଞ୍ଚଗୋଟା, ସଂଖ୍ୟାରେ ପାଞ୍ଚ, ଘଣ୍ଟାରେ ପାଞ୍ଚ ବାଜିବା ସମୟ ।

ପାଞ୍ଚଣ—ଗ୍ରା. ବି. (ସଂ-ପ୍ରାଜନ) ପାଚଣ, ପଶୁ ତାଡନ ଦଣ୍ଡ ।

ପାଞ୍ଚଦଶ—କ୍ରି. ବିଂ. ( ପଞ୍ଚଦଶ + ଅ ) ପଞ୍ଚଦଶ ସମ୍ବନ୍ଧୀୟ ପଞ୍ଚଦଶୀ ତିଥି ସମ୍ବ-ନ୍ଧୀୟ, (ଗ୍ରା. ବି ଓ ବିଂ) ପାଞ୍ଚରୁ ଅଧିକ ଓ ଦଶରୁ ଅନଧିକ ।

ପାଞ୍ଚଦଶ୍ୟ—ପୁଂ. ବି. ପନ୍ଦରର ସମାହାର, ପଞ୍ଚଦଶ ସାମଧେନୀ ମନ୍ତ୍ରଦ୍ୱାରା ପ୍ରକାଶ୍ୟ ଅଲୌକିକ ବହ୍ନି, (ବିଂ) ପଞ୍ଚଦଶ ।

ପାଞ୍ଚଧାର—ଗ୍ରା. ବି. ଆଠମଲ୍ଲିକର ପର୍ବତ ବିଶେଷ ।

ପାଞ୍ଚନଖ—କ୍ରି. ବିଂ. ( ପଞ୍ଚନଖ + ଅ ) ପାଞ୍ଚନଖ ବିଶିଷ୍ଟ ଜନ୍ତୁର ଚମଡ଼ାରେ ନିର୍ମିତ, (ବି) ପାଞ୍ଚନଖ ବିଶିଷ୍ଟ ଜନ୍ତୁର ମାଂସ ।

ପାଞ୍ଚନଖିଆ—ଗ୍ରା. ବିଂ. ଯେଉଁ ଜୀବ-ମାନଙ୍କର ପାଞ୍ଚଟି ଲେଖାଏ ନଖଅଛି ।

ପାଞ୍ଚନଦ—କ୍ରି, ବିଂ. ( ପଞ୍ଚନଦ + ଅ ) ପଞ୍ଚନଦ ବା ପଣବ ସମ୍ବନ୍ଧୀୟ ।

ପାଞ୍ଚପଚଶ—ଗ୍ରା. ବି. ସର୍ବସାଧାରଣ, ବି. ଓ ବିଂ. (ସଂଖ୍ୟବାଚକ) ବସ୍ତୁ ।

ପାଞ୍ଚପାଦିକ—(ପଞ୍ଚପାଦ + ଇକ) ପାଞ୍ଚ-

ପାଦ ଲମ୍ବା ।
ପାଞ୍ଚଭୌତିକ—ବି. ବିଂ. ( ପଞ୍ଚଭୂତ+ଇକ) ପଞ୍ଚଭୂତ ସମ୍ବନ୍ଧୀୟ, ପଞ୍ଚଭୂତରୁ ଉତ୍ପନ୍ନ, ଯହିଁରେ ପଞ୍ଚଭୂତ ଥାଏ, (ବି) ଆକାଶାଦି ଭୂତ, ପଞ୍ଚକାର ଦେହାଦି ।
ପାଞ୍ଚମାହ୍ନିକ—ବି. ବିଂ.ପଞ୍ଚଦିନସମ୍ବନ୍ଧୀୟ
ପାଞ୍ଚଲିକା—ସ୍ତ୍ରୀ. ବି. ପାଞ୍ଚାଳିକା, ବସ୍ତ୍ରାଦି ନିର୍ମିତ ପୁତ୍ତଳିକା, କଣ୍ଢେଇ ।
ପାଞ୍ଚବର୍ଷିକ—ବି. ବିଂ.ପଞ୍ଚବର୍ଷ ବୟସ୍କ ।
ପାଞ୍ଚବାତ୍ସରିକ--ବିଂ.(ପଞ୍ଚବତ୍ସର+ଇକ) ପଞ୍ଚବର୍ଷୀୟ, ପାଞ୍ଚ ବର୍ଷ ଅନ୍ତରରେ ଘଟିବା, ଯାହାର ବୟସ ପାଞ୍ଚବର୍ଷ ।
ପାଞ୍ଚଶବ୍ଦିକ---ବି. ପଞ୍ଚପ୍ରକାର ବାଦ୍ୟ, ନାନା ବାଦ୍ୟ ଯନ୍ତ୍ର ।
ପାଞ୍ଚଶର—ବି. ବିଂ. ( ପଞ୍ଚଶର+ଅ ) ପଞ୍ଚଶର ବା କାମଦେବ ସମ୍ବନ୍ଧୀୟ ।
ପାଞ୍ଚାଳ—ପୁଂ. ବି. (ପଞ୍ଚାଳ+ଅ)ଦେଶ ବିଶେଷ, ଦ୍ରୁପଦ ରାଜାଙ୍କର ନଗର, (ବିଂ)ପଞ୍ଚାଳ ଦେଶୀୟ,ପଞ୍ଚାଳଦେଶୋଦ୍ଭବ ।
ପାଞ୍ଚାଳନନ୍ଦିନୀ—ସ୍ତ୍ରୀ.ବି. (୬ତତ୍ପୁ)ପଞ୍ଚାଳ ରାଜତନୟା ଦ୍ରୌପଦୀ ।
ପାଞ୍ଚାଳି—ବି. ଗାନ ବିଶେଷ ।
ପାଞ୍ଚାଳିକା—ସ୍ତ୍ରୀ. ବି. ବସ୍ତ୍ର ବା ଦନ୍ତାଦି ନିର୍ମିତ ପୁତ୍ତଳିକା, ଗୀତ ବିଶେଷ ।
ପାଞ୍ଚାଳୀ—(ପଞ୍ଚାଳ+ଈ)ପଞ୍ଚାଳଦେଶର ନାରୀ ବା ରାଜକୁମାରୀ,କୁଣ୍ଢେଇ,ପାଞ୍ଚାଳ ଦେଶର ଭାଷା, ଦ୍ରୌପଦୀ, ଏକପ୍ରକାର ପିତ୍ତଳ, ଗୀତ ବିଶେଷ ।
ପାଞ୍ଚାଳ୍ୟ—ବି. ବିଂ. ପାଞ୍ଚାଳ ସମ୍ବନ୍ଧୀୟ, (ପୁଂ. ବି) ପାଞ୍ଚାଳ ଦେଶର ରାଜପୁତ୍ର ।
ପାଞ୍ଚି—ଗ୍ରା. ବି. ବିବାହ ବେଦିରେ ବର ପିନ୍ଧିବା ବସ୍ତ୍ର ଯୁଗ୍ମ, ବ୍ରତ ବେଦୀରେ ବ୍ରହ୍ମଚାରୀ ପିନ୍ଧିବା ଲୁଗା ଯୋଡ଼, (ପ୍ର. (ସମ୍ବଲ) ଗ୍ରେଟ ଗାମୁଛା ।
ପାଞ୍ଚିବା—ଗ୍ରା. କ୍ରି. ( ସଂ-ବାଞ୍ଛା ) ଇଚ୍ଛା କରିବା, କାମନା କରିବା, ଭାବିବା, ଅନୁମାନ କରିବା, ପରାମର୍ଶ କରିବା, କଳ୍ପନା କରିବା, ବିଚାର, କରିବା, ସ୍ଥିରକରିବା ।
ପାଞ୍ଚର୍ଯ୍ୟ—ବି. ବିଂ. ପାଞ୍ଚର ସମ୍ବନ୍ଧୀୟ ।
ପାଞ୍ଜି—ଗ୍ରା. ବି. (ସଂ-ପଞ୍ଜିକା) ପଞ୍ଜିକା, ମାସ ତିଥି ବାର ନକ୍ଷତ୍ର ଆଦି ଜ୍ଞାପକ ଜୋତିଷ ଗ୍ରନ୍ଥ,ଯମରାଜାଙ୍କ ମହାଫେସ୍ଖାନାରେ ରକ୍ଷିତ ଚିତ୍ରଗୁପ୍ତଙ୍କ ସଙ୍କଳିତ ମନୁଷ୍ୟଙ୍କର ପାପପୁଣ୍ୟର ତାଲିକା ।
ପାଞ୍ଜିଆ—ଗ୍ରା. ବି. ଯେ ପାଞ୍ଜି ଧରି ଦିନବାର ଆଦି କହେ, ନାହାକ,ଜ୍ୟୋତିଷ, ଯେ ରାଜାଙ୍କର ହିସାବ ପତ୍ର ରଖେ ।
ପାଞ୍ଜିକହିବା—ଗ୍ରା. କ୍ରି. ଦିନାଦିପାଞ୍ଜିରୁ ତିଥି ବାର ନକ୍ଷତ୍ର ଆଦି ପାଠ କରିବା ।
ପାଞ୍ଜିକାର—ଗ୍ରା.ବି. ପଞ୍ଜିକା ସଙ୍କଳୟିତା
ପାଟ୍—ବି.(ପାଟ୍+ଣିଚ୍+କ୍ୱିପ୍)ସଂମ୍ବୋଧନ, ବିସ୍ତାର ।
ପାଟ—ଗ୍ରା. ବି. (ସଂ-ପଟ୍ଟ) କୌଷେୟ ବସ୍ତ୍ର, ରାଜସିଂହାସନ, ପ୍ରଶସ୍ତ ଭୂଖଣ୍ଡ, ଖାଲୁଆ ଜଳାଭୂମି, ଏକ ପୁରୁଷ, ସ୍ଥାନ ହ୍ରଦ, ରାଜବଂଶ, ପ୍ରଭୁ, ରକ୍ଷକ, ରାଜା, ଅଧିକାରୀ, ମାଲିକ, ସମୂହ, ଝୋଟ, ଚୌଡ଼ା, ପ୍ରସ୍ତ ପଣାସଂକ୍ରାନ୍ତିରେ ବ୍ରତଧାରୀମାନେ ଉପରେ ଗଡ଼ିବାପାଇଁ ଭୂମିରେ ଜଳାଯିବା ନିଆଁ ବା ବିଛାଯିବା କଣ୍ଟା,(ପ୍ରା.ଦାମଣ୍ଡା)ଜଳପ୍ରପାତ,(ଗ୍ରା.ବିଂ) କୌଷେୟ ନିର୍ମିତ ପଟ୍ଟ, ପ୍ରଧାନ ରାଜାଙ୍କର ଖାସ୍ ବ୍ୟବହାରରେ ଲାଗୁଥିବା. ଗୋଲପୀ, ପାଟଳ ବର୍ଣ୍ଣ ବିଶିଷ୍ଟ ।
ପାଟଉପାଡ଼ିବା—ଗ୍ରା. କ୍ରି. ( ଲ.ଅର୍ଥ ) ଦର୍ପ ହାନିକରିବା,ବହୁତ କ୍ଷତି ଘଟାଇ ନାରଖାର କରିବା.ଅବମାନିତ କରିବା
ପାଟକ—ପୁଂ.ବି.(ପଟ୍+ଣ.ଅକ)ନଦ୍ୟାଦିର କୂଳ,ପଶାର ଗୋଟି ଗୁଳିବା,ବାଦ୍ୟ ଯନ୍ତ୍ର, ମହାନିଷ୍କ, କଟକାନ୍ତର ବାଦ୍ୟ. ମୂଳ ଦ୍ରବ୍ୟାପଚୟ, ରୋଧ, ଗ୍ରାମୈକଦେଶ, ପାଣିନିକଟକୁ ଯିବାପାଇଁ ରଚିତ ସୋପାନ ଶ୍ରେଣୀ, ଫଟାଇବା ଅସ୍ତ୍ର, ପଣାକାଠି ଗଡ଼ାଇବା,ଦୀର୍ଘ,ଫାଙ୍କ, ପଶା, (ଗ୍ରା. ବି) ଶୂଦ୍ରମାନଙ୍କର ବିଭିନ୍ନ ଉପଜାତି ବା ହାଟୁଆ ଜାତି ।
ପାଟକପୁର—ଗ୍ରା. ବି. କାଠିଆକଦଳୀ ବିଶେଷ ।
ପାଟକି—ଗ୍ରା.ବି. ପାଟକି ଦେଖ(ଗ୍ରା.ବିଂ) ପାଟକସମ୍ବନ୍ଧୀୟ ।
ପାଟଖୋଷା—ଗ୍ରା. ବି. ପାଟ ବା ରେଶମ ପୋକଙ୍କ ଖୋଳ ବା ଗେଣ୍ଡି ।
ପାଟଚର—ପୁଂ. ବି. ( ପଟଚର+ଅ ) ଚୋର, ତସ୍କର ।
ପାଟଛତ—ଗ୍ରା.ବି. ରାଜା ଓ ଦେବତାଙ୍କ ଉପରେ ଟେକା ଯାଉଥିବା ରେଶମ କନାର ଛତା ।
ପାଟଜଥା—ଗ୍ରା.ବି. ଏକନିର୍ ବୁଣା ପାଟର ଧୋତି ଓ ଚଦର । [ କନ୍ୟା ।
ପାଟଜେମା—ଗ୍ରା.ସ୍ତ୍ରୀ.ବି. ରାଜାଙ୍କ ଜ୍ୟେଷ୍ଠା
ପାଟଜୋଷି—ଗ୍ରା. ବି. ରାଜାଙ୍କ ପ୍ରଧାନ ଜ୍ୟୋତିଷ ପଣ୍ଡିତ,ବ୍ରାହ୍ମଣମାନଙ୍କୁ ରାଜଦତ୍ତ ଉପାଧିବିଶେଷ ।
ପାଟଣା(ନା)—ଗ୍ରା. ବି. ( ସଂ-ପତ୍ତନ ) ନଗର, ସହର, ଗ୍ରାମ, ପାଟଳିପୁତ୍ରର ଆଧୁନିକ ନାମ, ଉତ୍କଳର ଗୋଟିଏ ଗଡ଼ଜାତ ରାଜ୍ୟ, ବଲାଙ୍ଗିର ପାଟନା ।
ପାଟଦେ—ବି. କାର୍ପାସ, କପା ।
ପାଟଦେଓ—ଗ୍ରା. ବି. ଯୁବରାଜ, ରାଜାଙ୍କର ଜ୍ୟେଷ୍ଠକୁମାରଙ୍କ ଉପାଧି ।
ପାଟନ—ବି. ( ପଟ+ଣିଚ୍+ଭା.ଅନ ) ଫାଡ଼ିବା, ବିଦାରଣ, କର୍ତ୍ତନ,ବିଭଞ୍ଜନ, ବିନାଶନ, ନଗର ବିଶେଷ, ଛେଦନ, ଗ୍ରାମ ବିଶେଷ, ନାୟୁଗିରି ବିଶେଷ, ଉପବିଭାଗ ବିଶେଷ, ଫୋଡ଼ିବା ।
ପାଟନା—ଗ୍ରା. ବି. ଜିଲ୍ଲା ବିଶେଷ ଏବଂ ତାହାର ପ୍ରଧାନ ନଗର ।
ପାଟନେତ—ଗ୍ରା.ବି. ରେଶମର ସରୁଲୁଗା
ପାଟପୋକ---ଗ୍ରା. ବି. ଇନ୍ଦ୍ରଗୋପ, ହାଧନ ପୋକ, ପଟ ସୂତାର ଫୁଟି ତିଆର କରିବା ପୋକ ।
ପାଟଫୁଲ---ଗ୍ରା.ବି.ପାଟ ନିର୍ମିତ ଥୋପ, ଫୁଲଲଗା କସ୍ତା ସୂତାର ଫିତା,ଭୁଲୁବକ, ତ୍ରେଣ୍ଟିଣ୍ଟା । [ ଧୋତି ।
ପାଟଫେଟ—ଗ୍ରା.ବି. ପାଟଜଥା,ରେଶମ-

ପାଟଭଣଜା—ଗ୍ରା.ବି. ଆପଣାର ଜ୍ୟେଷ୍ଠା ଭଗିନୀର ଜ୍ୟେଷ୍ଠପୁତ୍ର ।

ପାଟଭୃଆଷୁଣୀ—ଗ୍ରା. (ଙ୍କୋମ)ବି. ପାଟ-ପୋକ, ସାଧବ ପୋକ । [ ଦେଖ ।

ପାଟମଣିମା—ଗ୍ରା.ସ୍ତ୍ରୀ.ବି.ପାଟମହାଦେଈ

ପାଟମହାଦେଈ—ଗ୍ରା. ସ୍ତ୍ରୀ. ବି.ରାଜାଙ୍କର ପ୍ରଥମ ଓ ପ୍ରଧାନ ରାଣୀ ।

ପାଟମୁଦ—ଗ୍ରା. ବି. କ୍ଷତ୍ରିୟ ଓ ରାଜା-ମାନଙ୍କ ବିବାହ ପୂର୍ବରୁ ବର କନ୍ୟାଙ୍କର ମହାପ୍ରସାଦ ଉତ୍ସବ ।

ପାଟମ୍ବର—ବି. ପଟାମ୍ବର, ରେଶମୀଲୁଗା

ପାଟରା—ଗ୍ରା. ପୁଂ. ବି. (ସଂ-ପଟ୍ଟକାର) ପାଟ, କନା, ସୂତା ଓ ଲୁଗାଆଦି ବ୍ୟବସାୟୀ ଶୂଦ୍ର ଜାତି ବିଶେଷ ।

ପାଟରାଣୀ—ଗ୍ରା.ସ୍ତ୍ରୀ. ବି. ପାଟମହାଦେଈ, ପାଟରା ଜାତୀୟା ସ୍ତ୍ରୀ ।

ପାଟଳ—କ୍ଲୀ. ବି. ( ପାଟଳା+ଅ ) ଫିକାନାଲି, ଶ୍ୱେତ ରକ୍ତବର୍ଣ୍ଣ,ଗୋଲପି ରଙ୍ଗ, ପାଟଳୀ ପୁଷ୍ପ, ରୋହିଷତୃଣ, ନାଗେଶ୍ୱର ଗଛ, ଗୋଲାପ, ସେବତୀ ଫୁଲ(ବିଂ)ଗୋଲାପୀ,ପାଟଳ ବର୍ଣ୍ଣବିଶିଷ୍ଟ ।

ପାଟଳା—ସ୍ତ୍ରୀ. ବି. (ପାଟ+ଲା+କ.ଅ+ଆ) ପାଟଳ ଗଛ ଓ ଫୁଲ, ଦୁର୍ଗା, ପୁଷ୍ପ ବୃକ୍ଷ ବିଶେଷ,ରକ୍ତଲୋଧ୍ର, ବୋର-ଝିଙ୍କି, (ସ୍ତ୍ରୀ. ବିଂ) ପାଟଳର ସ୍ତ୍ରୀଲିଙ୍ଗ ।

ପାଟଳାପୁଷ୍ପବର୍ତ୍ତିକ—କ୍ଲୀ.ବି. ପଦ୍ମକାଷ୍ଠ ।

ପାଟଳାପୁଷ୍ପସନ୍ନିଭ—କ୍ଲୀ. ବି. ପଦ୍ମକାଷ୍ଠ ।

ପାଟଳାବତୀ--ସ୍ତ୍ରୀ.ବି.ନଦୀବିଶେଷ,ଦୁର୍ଗା ।

ପାଟଳି—ସ୍ତ୍ରୀ. ବି. (ପାଟଳା+ଇ)ପାଟଳା ପୁଷ୍ପ ବୃକ୍ଷ, ଘଣ୍ଟାପାଟଳି, ତାମ୍ରପୁଷ୍ପ, କଟଭୀ ବୃକ୍ଷ, ମୁଷ୍କକ ବୃକ୍ଷ ।

ପାଟଳକ—ପୁଂ.ବିଂ. ଯେ ଅନ୍ୟର ଗୁପ୍ତ କଥା ଜାଣେ,କାଳ ସମସ୍ୟଜ୍ଞ,(ପୁଂ.ବି) ଶିଷ୍ୟ, ଛାତ୍ର ।

ପାଟଳିତ—ବିଂ.(ପାଟଳ+ଇତ)ପାଟଳ ବର୍ଣ୍ଣ ଯୁକ୍ତ, ପାଟଳ ବର୍ଣ୍ଣରଞ୍ଜିତ ।

ପାଟଳିପୁତ୍ର—କ୍ଲୀ. ବି. (ପାଟଳ+ପୁତ୍ର) ପାଟଳିପୁତ୍ର, ସ୍ୱନାମ ଖ୍ୟାତ ନଗର ବିଶେଷ, ଆଧୁନିକ ନାମ ପାଟନା ।

ପାଟଳିମ—ତ୍ରି. ବିଂ. (ପାଟଳ+ଇମନ୍) ଅତିଶୟ ପାଟଳ ବର୍ଣ୍ଣ ।

ପାଟଳୀ—ସ୍ତ୍ରୀ. ବି. (ପାଟ+ଲା+କ.ଈ) ପାଟଳି ଦେଖ, ପାଟନା ନଗରର ଅଧିଷ୍ଠାତ୍ରୀ ଦେବୀ, ଗାଧିଙ୍କ କନ୍ୟା ଓ ବିଶ୍ୱାମିତ୍ରଙ୍କ ଭଉଣୀ ।

ପାଟଳୀତୈଳ—କ୍ଲୀ. ବି. ଗୁହଳ ମୁଗୁର ତୈଳ, ତୈଳ ଔଷଧ ବିଶେଷ ।

ପାଟଲୁଗା—ଗ୍ରା. ବି. ପଟ୍ଟବସ୍ତ୍ର ।

ପାଟବ—କ୍ଲୀ. ବି. (ପଟୁ+ଅ) ଦୃଢତା, ଶୀଘ୍ରତା, ସ୍ୱାସ୍ଥ୍ୟ, ତେଜଃ, ପଟୁତା, ନିପୁଣତା, କୌଶଳ, ଆରୋଗ୍ୟ,(ବିଂ) ପଟୁ, ଚତୁର ।

ପାଟବଂଶୀ--ଗ୍ରା.ବି.ପଟ୍ଟମହିଷୀ,ପାଟରାଣୀ ।

ପାଟବରତ—ଗ୍ରା. ବି. ଅନନ୍ତବ୍ରତ ଓ ସୁଦଶାବ୍ରତ ଆଦି କରିଥିବା ବ୍ୟକ୍ତି-ମାନେ ହାତରେ ବାନ୍ଧିଥିବା ପାଟଡୋର

ପାଟବଳିଆ—ଗ୍ରା.ବି.ଏକପ୍ରକାର ବଳିଆ-କୁକୁର ।

ପାଟବିକ—ତ୍ରି. ବିଂ. ( ପାଟବ+ଇକ ) ପଟୁ, ଧୂର୍ତ୍ତ, ନିପୁଣ, ଶଠ, ଚତୁର ।

ପାଟବୋହୂମଣିମା—ଗ୍ରା. ବି. ଯୁବରାଣୀ, ଯୁବରାଜଙ୍କ ପ୍ରଧାନା ସ୍ତ୍ରୀ ।

ପାଟା—ଗ୍ରା. ( ଗଞ୍ଜାମ ) ବିଂ. ଟାଙ୍ଗରା, ଚନ୍ଦା ମୁଣ୍ଡିଆ,(ଗ୍ରା.ବସ୍ତ୍ରର ବି.) ଖଦ ।

ପାଟି—ଗ୍ରା. ବି. ( ସଂ-ପଙ୍କ୍ତି ) ଶ୍ରେଣୀ, ମୁଖ, ତୁଣ୍ଡ,ମୁଖଧ୍ୱନି,ଉଚ୍ଚସ୍ୱର,ଗୋଳ-ମାଳ, ଲଲାଟର ଫଳକ,ଧାତୁର ଲମ୍ବା ପତଳା ପତ୍ର, କାଠର ପଟା ।

ପାଟିକରିବା—ଗ୍ରା. କ୍ରି. ଉଚ୍ଚୈଃସ୍ୱରରେ ଚିତ୍କାର କରିବା ।

ପାଟିକା—ବି. ଏକଦିନର ମୂଳ, ଗୁଳି, ରେଡ଼ିପା, ବୃକ୍ଷବିଶେଷ ।

ପାଟିତ—ତ୍ରି. ବିଂ. (ପାଟି+ତ) କୃତ-ପାଟନ, ଭିନ୍ନ, ଭଗ୍ନ, ବିଦୀର୍ଣ୍ଣ, କ୍ଷତ, ଫୋଡ଼ାଯାଇଥିବା ।

ପାଟିତୁଣ୍ଡ—ଗ୍ରା. ବି. ମୁଖଧ୍ୱନି ।

ପାଟିତୁଣ୍ଡବାଜିବା—ଗ୍ରା. ବି. ଉଚ୍ଚୈଃସ୍ୱର ଶୁଣାଯିବା ।

ପାଟିପଡ଼ିଯିବା—ଗ୍ରା. ବି. ରୋଗଆଦି ଯୋଗୁଁ ବାକ୍ଶକ୍ତି ରହିତହେବା,କଥା କହି ନ ପାରିବା ।

ପାଟିଫିଟା(ଟେ)ଇବା—ଗ୍ରା. କ୍ରି. ମୁହଁ ଖୋଲି କଥା କହିବା ।

ପାଟିଫିଟିବା—ଗ୍ରା.ବି. ବାକ୍ୟ ସ୍ଫୁରିବା ।

ପାଟିବୁଜିବା—ଗ୍ରା. କ୍ରି. ଉଚ୍ଚୈଃସ୍ୱରରେ କଥାବାର୍ତ୍ତା ସ୍ଥଗିତ କରିବା,ଚୁପ୍ ରହିବା ।

ପାଟିରେ ବେଙ୍ଗ ବନ୍ଧାହେବା—ଗ୍ରା. ବି. (ଲ.ଅର୍ଥ)କଥା କହିବାର ଶକ୍ତି ନ ଥିବା ।

ପାଟୀ—ସ୍ତ୍ରୀ.ବି. ( ପଟି+ଈ ) ଶୃଙ୍ଖଳା, ଅଙ୍କ ପଂକ୍ତି, ପୁଞ୍ଜ, ପ୍ରଣାଳୀ, ବଳାକ୍ଷୁପ, ପରିପାଟୀ, ଅନୁକ୍ରମ ।

ପାଟୀକୁଟ—ପୁଂ.ବି. ଚନ୍ଦନବୃକ୍ଷ ।

ପାଟୀଗଣିତ—କ୍ଲୀ. ବି. ଗଣିତଶାସ୍ତ୍ର, ଅଙ୍କଶାସ୍ତ୍ର ।

ପାଟୀନ—ପୁଂ. ବି. ( ପାଟୀ+ଈନ ) ପାଠୀନ ଦେଖ ।

ପାଟୀର—ପୁଂ.ବି (ପାଟୀର+ଅ) ପଟୀର ଚନ୍ଦନବିଶେଷ ।

ପାଟୁଆ—ଗ୍ରା. ବି. ଘଣ୍ଟାପାଟୁଆ, ଚୈତ୍ର ସଂକ୍ରାନ୍ତି ବା ପଣାସଂକ୍ରାନ୍ତିରେ ବ୍ରତପାଳନ ପୂର୍ବକ ଝାମୁନାଟ କରିବା ନର୍ତ୍ତକ ।

ପାଟୁପାଟୁ—ଗ୍ରା. ବିଂ. କ୍ଷୁଧା ବା ତୃଷାରେ ପରିଶୁଷ୍କ (କଣ୍ଠତାଳୁ), କ୍ଷୁଧାରେ ବା ତୃଷାରେ ଆତୁର ।

ପାଟେକଲି—ଗ୍ରା. ବି. କଲିର ଏକ ଝୁଙ୍କ, ବୃହେ କଳିଆ ।

ପାଟ୍ୟ—ବି. (ପଟ୍+କ.ଯ) ଛଣପଟ ।

ପାଠ—ପୁଂ. ବି. ( ପଠ୍+ଅ ) ପଠନ, ଆବୃତ୍ତି, ଶିଷ୍ୟର ଅଧ୍ୟାପକ,ପଢ଼ା ପୁସ୍ତକର ପଠନୀୟ ଅଂଶ, ବିଦ୍ୟାଶିକ୍ଷା, (ଗ୍ରା.ବି) ଶିକ୍ଷାଲାଭ, ପାଠ୍ୟପୁସ୍ତକ,ଧର୍ମଶାସ୍ତ୍ର, ପ୍ରଚଳିତ ବିଧି,ପନ୍ଥା,ମାର୍ଗ,ପଦ୍ଧତି, ନିତ୍ୟକର୍ମ, ଖବର, ସମ୍ବାଦ, ଅଭ୍ୟାସ, (ଗ୍ରା. ଉତ୍ତରଖଣ୍ଡ)ପିଠି ।

ପାଠକ—ପୁଂ. ବି. ( ପଠ+କ.ଅକ ) ଉପାଧ୍ୟାୟ, ଅଧ୍ୟାପକ, ଯେ ପଢ଼ାନ୍ତି, ବାଚକ,ଅଧ୍ୟେତା, ଛାତ୍ର, ଯେ ପଢ଼େ,

(ବିଂ) ପଠନକାରୀ, ଆବୃତ୍ତିକାରୀ, ଅଧ୍ୟୟନକାରୀ, (ଗ୍ରା.ବି) ପଶ୍ଚିମା ବ୍ରାହ୍ମଣଙ୍କ ଉପାଧିବିଶେଷ ।

ପାଠଗୃହ—କ୍ଲୀ. ବି. (୪ତତ୍) ପଢ଼ିବାଘର, ପାଠାଗାର ।

ପାଠଚ୍ଛେଦ—ପୁଂ. ବି. (୬ତତ୍) ପାଠର ବିଚ୍ଛେଦ, ଯତି ।

ପାଠଡ଼ାକୁଛି—ଗ୍ରା. (ବାକ୍ୟ)ଅମୁକବିଷୟ ପ୍ରାଚୀନ ଗ୍ରନ୍ଥମାନଙ୍କରେ ବା ଶାସ୍ତ୍ରରେ ଲେଖାଅଛି ।

ପାଠନ(ନା)—କ୍ଲୀ. ବି. (ପଠ + ଣିଚ୍ + ଭା.ଅନ + ଆ) ପଢ଼ାଇବା, ଛାତ୍ରକୁ ବିଦ୍ୟାଶିକ୍ଷା ଦେବା ।

ପାଠପଢ଼ା—ଗ୍ରା.ବି. ବିଦ୍ୟାଶିକ୍ଷା,ଅଧ୍ୟୟନ, ଅଧ୍ୟାପନା,(ଗ୍ରା.ବିଂ)ଅଧ୍ୟୟନକାରୀ(ଛାତ୍ର), ଅଧ୍ୟାପନକାରୀ (ଗୁରୁ), ଶିକ୍ଷିତ, ଯେଉଁ ସ୍ଥାନରେ ପିଲେ ପଢ଼ନ୍ତି ।

ପାଠପଢ଼ା(ଢ଼େ)ଇବା—ଗ୍ରା. କ୍ରି. ଛାତ୍ରକୁ ବିଦ୍ୟାଶିକ୍ଷା ଦେବା, (ଲ.ଅର୍ଥ) ଉପଦେଶ ଦେବା ।

ପାଠପଢ଼ିବା—ଗ୍ରା.କ୍ରି. ବିଦ୍ୟାଶିକ୍ଷାକରିବା, ଶିକ୍ଷକଙ୍କଠାରୁ ବିଦ୍ୟାଶିକ୍ଷା ଲାଭକରିବା ।

ପାଠଭୂ—ସ୍ତ୍ରୀ. ବି. ବେଦାଦି ପାଠସ୍ଥାନ, ଯେଉଁ ସ୍ଥାନରେ ବେଦାଦିଶାସ୍ତ୍ର ଅଧୀତ ହୁଏ ।

ପାଠଶାଠ—ଗ୍ରା.ବି. ବିଦ୍ୟାଆଦି ପାଣ୍ଡିତ୍ୟ ପ୍ରକାଶ, ବିଦ୍ୟା ଓ ବୁଦ୍ଧି,ଲେଖାପଢ଼ା ।

ପାଠଶାଳା—ସ୍ତ୍ରୀ. ବି. (୬ତତ୍) ଅଧ୍ୟୟନ ଗୃହ, ବିଦ୍ୟାଳୟ, ସ୍କୁଲ ।

ପାଠଶାଳିନୀ—ସ୍ତ୍ରୀ. ବି. ସାରିକା ପକ୍ଷୀ, ସାରି ଚଢ଼େଇ ।

ପାଠା—ସ୍ତ୍ରୀ. ବି. ଅକାନବିନ୍ଧ ଲତା ।

ପାଠାଗାର—ବି. ( ପାଠ+ଆଗାର ) ପାଠଗୃହ, ବିଦ୍ୟାଳୟ ।

ପାଠାନୁରାଗ—ପୁଂ. ବି. (୬ତତ୍) ଅଧ୍ୟୟନରେ ଆସକ୍ତି, ପଢ଼ାଶୁଣାରେ ଖୁବ୍ ଆଗ୍ରହ ।

ପାଠାନ୍ତର—କ୍ଲୀ. ବି. ଅପରପାଠ, ଲିଖିତ ବିଷୟର ଅନ୍ୟରୂପ ।

ପାଠାଭ୍ୟାସ—ପୁଂ.ବି. (୬ତତ୍) ବିଦ୍ୟାନୁଶୀଳନ, ପାଠ ପ୍ରସ୍ତୁତ କରିବା ।

ପାଠାର୍ଥୀ—ପୁଂ. ବିଂ. ବିଦ୍ୟା ଅର୍ଜନ କରିବା ପାଇଁ ଇଚ୍ଛୁକ, ପାଠାଭିଳାଷୀ, (ବି) ଛାତ୍ର ।

ପାଠି—ପୁଂ. ବି. (ପାଠ+ଇ) ପୃଷ୍ଠ ।

ପାଠିକ—ତ୍ରି. ବିଂ. ପ୍ରକୃତ ପାଠବିଶିଷ୍ଟ ।

ପାଠିକା—ସ୍ତ୍ରୀ. ବି. ଅକାନବିନ୍ଧ, (ବି ଓ ବିଂ) ପାଠକର ସ୍ତ୍ରୀଲିଙ୍ଗ ।

ପାଠିତ—ବିଂ. (ପଠ୍+ଣିଚ୍+ମଁ.ତ) ଅଧ୍ୟାପିତ, ପଠିତ ।

ପାଠୀ—ପୁଂ. ବିଂ. ( ପଠ୍ + କ.ଇନ୍ ) ପାଠକ, ଯେ ପଢ଼େ, (ବି) ଧଳାଚିତା ଗୁଳ୍ମ, ବ୍ରାହ୍ମଣଙ୍କ ଉପାଧିବିଶେଷ ।

ପାଠୀକୁଟ—ପୁଂ. ବି. ଚିତ୍ରକ ବୃକ୍ଷ,ଧଳାଚିତା ଗୁଳ୍ମ ।

ପାଠୀନ—ବି. ( ପାଠ+ଈନ )ପାଠକ, ( ପାଠୀ + ନମ୍+ଅ ) ବାଲିଆମାଛ, ଗୁଗ୍ଗୁଳ ବୃକ୍ଷ ।

ପାଠୋଦ୍ଧାର—ବି. (୬ତତ୍) ପୁସ୍ତକରେ ଦେଖାଯିବା କୌଣସି ଦୁରୂହ ବା ଅବୋଧ୍ୟ ପଦ ବା ବାକ୍ୟର ଅର୍ଥକୁ ବୋଧଗମ୍ୟ କରାଇବା ।

ପାଠୋନ୍ନତି—ବି. ( ୬ତତ୍ ) ଶିକ୍ଷାର କ୍ରମୋନ୍ନତି ।

ପାଠ୍ୟ—ତ୍ରି. ବିଂ. ( ପଠ୍+ଯ ) ପାଠଯୋଗ୍ୟ, ପଠନୀୟ, ପଢ଼ାର ଯୋଗ୍ୟ ।

ପାଠ୍ୟନିର୍ଘଣ୍ଟ—ବି. ( ପାଠ୍ୟ+ନିର୍ଘଣ୍ଟ ) ପାଠ୍ୟପୁସ୍ତକମାନଙ୍କର ତାଲିକା ।

ପାଠ୍ୟପୁସ୍ତକ—ବି. ( ପାଠ୍ୟ+ପୁସ୍ତକ ) ବିଦ୍ୟାଳୟରେ ପଠିତ ହେବାପାଇଁ କର୍ତ୍ତୃପକ୍ଷଙ୍କ ନିର୍ଦ୍ଦିଷ୍ଟ ପୁସ୍ତକ, ପଢ଼ାବହି ।

ପାଡ଼୍—ଗ୍ରା. ବି. ତଟ, ଧାର, ଲୁଗାର ପ୍ରାନ୍ତଭାଗ ବା ଧଡ଼ି, କିନାର ।

ପାଡ—ଗ୍ରା.ବି. (ସଂ-ପର୍ଦ୍ଦନ) ଅପାନବାୟୁ, ବାତକର୍ମ, ଗୁହ୍ୟବାୟୁ ।

ପାଡ଼ୁର—ଗ୍ରା. ପୁଂ. ବିଂ. ( ସଂ-ପର୍ଦ୍ଦକ ) ଯେ ବାତକର୍ମ କରେ, ଯେ ପାଡ଼େ, ଡ଼ରୁଆ, ପାଡ଼ପରି ପୂତିଗନ୍ଧବିଶିଷ୍ଟ ।

ପାଡ଼ରପୋକ—ଗ୍ରା. ବି. (ସଂ ପୂତ୍ୟଣ୍ଡ) ପାରଡ଼ା ବା ପାଡ଼ରା ପୋକ, ଦୁର୍ଗନ୍ଧିଯୁକ୍ତ ଦୃଢ଼ପତ୍ରୀ ଷଟ୍‌ପଦୀ କୀଟ ।

ପାଢ଼ଆ—ଗ୍ରା. ବି. (ସଂ-ପାର୍ଶ୍ୱ) ଘରର ଓଳିପାଖରେ ଥିବା ଶେଣୀ ଓ ସେହି ଶେଣୀ ଯେଉଁ ଖୁଣ୍ଟଉପରେ ରହେ ।

ପାଢ଼ଣୀ—ସ୍ତ୍ରୀ. ବି. ମାଟିର ହାଣ୍ଡି ।

ପାଢ଼ିବା—ଗ୍ରା.କ୍ରି. ଅପାନବାୟୁ ଛାଡ଼ିବା, ବାତକର୍ମ କରିବା, ପାତିତ କରାଇବା, ପକାଇବା, ବସାଇବା, (ଭ୍ରୂଣ) ଗର୍ଭରୁ ନିର୍ଗତ କରିବା, ଉଆର କରିବା,ଉଚ୍ଚଶବ୍ଦ କରିବା, କାନଦେଇ ଶୁଣିବା ।

ପାଢ଼ି—ଗ୍ରା. ବି. ପଣ୍ଡାଜାତୀୟ ଦେବଳକ ସେବକ ବ୍ରାହ୍ମଣଙ୍କର ବଂଶୋପାଧିବିଶେଷ, ଲୁଣଗାନ୍ଧିବା ବ୍ୟକ୍ତି, (ପ୍ରା. ସମ୍ବ.ବି) ମଇଁଷି ଛୁଆ ।

ପାଢ଼ିବା—ଗ୍ରା.କ୍ରି.କାଳରେ ସଉଦାନେବା, କୌଣସି ଦେୟକୁ ସୁଝିବା ପାଇଁ ବିଳମ୍ବ କରିବା ।

ପାଢ଼ୁ—ଗ୍ରା. ବିଂ. ଯେ ଉଧାର ନେଇ ଆଦାୟ ଦେଇନାହିଁ, ଦେଣାଦାର୍, ଋଣଗ୍ରସ୍ତ, ଧପ୍ପାବାଜ୍ ।

ପାଣ—ଗ୍ରା. ବି. ନୀଚ ଅସ୍ପୃଶ୍ୟ ଜାତିବିଶେଷ,(ସଂ-ବି.ପଣ୍ + ଭା.ଅ) ବାଣିଜ୍ୟ, ବେପାର, ବଣିକ, ବେପାରୀ, ଜୁଆଖେଳ,ଜୁଆରେ ରଖାଯିବା ବାଜି,କର, ହସ୍ତ, ପ୍ରଶଂସା । [ ମାଦଳ ।

ପାଣବ—ବି. ( ପଣବ+ଅ ) ମର୍ଦ୍ଦଳ,

ପାଣବିକ—ବିଂ. (ପଣବ+ଇକ) ଢୋଲ ସମ୍ବନ୍ଧୀୟ, (ପୁଂ.ବି) ବାଦ୍ୟବାଦକ,ଯେ ବାଜା ବଜାଏ, ପକ୍ଷୀବିଶେଷ ।

ପାଣି—ପୁଂ. ବି.(ପଣ + ଣ.ଇ)ଦୋକାନ, ପଣ୍ୟ ବୀଥୀ, ହାଟ, ହସ୍ତ, ଭୁଇଁଲିଖିଆ ଗୁଳ୍ମ, (ଗ୍ରା. ବି) (ସଂ-ପାନୀୟ) ଜଳ, ଦ୍ରବପଦାର୍ଥ,ପଣା, କମାରମାନେ ଅସ୍ତ୍ରଶସ୍ତ୍ରକୁ ଦୃଢ଼ କରିବା ନିମନ୍ତେ ତାତିଲା ଲୁହାକୁ ପାଣିରେ ବୁଡ଼ାଇବା କ୍ରିୟା, ବ୍ରାହ୍ମଣମାନଙ୍କର ବଂଶୋପାଧି ବିଶେଷ, ପୁରୁଷର ବୀର୍ଯ୍ୟ, ରେତଃ, ସ୍ତ୍ରୀରଜଃ,

ତେଜଃ, ବର୍ଷା, ବନ୍ୟାଜଳ ଜଳବାୟୁ, ତପଣ ଜଳ ।

ପାଣିଅଅଁଳା—ଗ୍ରା. ବି. (ସଂ-ପ୍ରାଚୀନାମଳକ ) ନେପାଳ, ବଙ୍ଗ, ଆସାମ ଓ ଦକ୍ଷିଣ ଭାରତରେ ଜନ୍ମିବା ଗ୍ଲେଟଗୁଳ୍ମ ।

ପାଣିଅଛୁଆଁଜାତି—ଗ୍ରା. ବି. ଯେଉଁ ନୀଚ ଶୂଦ୍ର ଜାତିଙ୍କ ସ୍ପୃଷ୍ଟଜଳ ବ୍ରାହ୍ମଣାଦି ଉଚ୍ଚ ଜାତିଙ୍କ ଅସ୍ପୃଶ୍ୟ ।

ପାଣିଆ—ଗ୍ରା.ବିଂ.ଜଳୀୟ,ଜଳ ବହୁଳ, ଜଳ ମିଶ୍ରିତ, ତରଳ, ପାଣିଗୁ, ଜଳ ବୁହାଳ, ଜଳବାହକ, ଶୀତଳ ।

ପାଣିଆଗଉଡ଼—ଗ୍ରା.ବି.ପାଣିଆପଟ ଦେଖ ।

ପାଣିଆପଟ—ଗ୍ରା.ବି.ରଜାମାନଙ୍କ ନହରକୁ ପାଣି ବୁହାଇବା ଗଉଡ଼ ।

ପାଣିଆଳୁ—ଗ୍ରା. ବି. ବନ୍ୟଜାତ ଆଳୁ ବିଶେଷ ।

ପାଣିଇତୀ—ଗ୍ରା. ବି. ସ୍ତ୍ରୀ. ଯେଉଁ ସ୍ତ୍ରୀ ଲୋକ ପାଣିଆଣି ଟୃଷ୍ଣାମାନଙ୍କୁ ଯୋଗାଏ ।

ପାଣିଓତା—ପ୍ରା. (ସମ୍ବଲ) ବି. ଶୁଣ୍ଠିଜାତି ।

ପାଣିକଖାରୁ—ଗ୍ରା. ବି. କଖାରୁ ଜାତୀୟ ଲତା ଓ ଫଳ,କୁଷ୍ମାଣ୍ଡ ।

ପ୍ରାଣିକଚ୍ଛପିକା—ସ୍ତ୍ରୀ. ବି. କୂର୍ମ ମୁଦ୍ରା ।

ପାଣିକଣ୍ଟିବା—ଗ୍ରା. କ୍ରି. ଜଳର ଗଭୀରତାକୁ ମାପିବା ।

ପାଣିକଥୁ—ଗ୍ରା. ବି. ଚକ୍ଷୁରୋଗ ବିଶେଷ, ଆଖିଧରା ରୋଗ ।

ପାଣିକରିବା—ଗ୍ରା.କ୍ରି.କୌଣସି କଠିନ ପଦାର୍ଥକୁ ତରଳ କରିବା, ପ୍ରସ୍ତୁତ କରିବା, ଗ୍ରୁନଆଁ କରିଦେବା, ଉତ୍ତମରୂପେ ପଢ଼ାଇବା ବା ମୁଖସ୍ଥ କରିବା ।

ପାଣିକର୍ତ୍ତୃ—ପୁଂ. ବି. ଶିବ ।

ପାଣିକର୍ମ—ପୁଂ. ବି. ମହାଦେବ, (ବିଂ) ହସ୍ତଦ୍ୱାରା ବାଦକ ।

ପାଣିକଳ—ଗ୍ରା. ବି. ଯେଉଁ କଳ ଦ୍ୱାରା କୂପାଦିରୁ ପାଣି ଉଠାଯାଏ, ଦମକଳ ।

ପାଣିକଷ—ଗ୍ରା.ବିଂ. ପାଣିରେ ବହୁବାର ଭିଜା ଓ ଶୁଖାହୋଇ ରଙ୍ଗ କରାଯାଇଥିବା (ଗାମୁଛା) ।

ପାଣିକାଚ—ଗ୍ରା. ବି. ହାତରେ ପିନ୍ଧିବା ସବୁଆ କାଚ, ଅଳଙ୍କାରବିଶେଷ ।

ପାଣିକାଟିବା—ଗ୍ରା.କ୍ରି. ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ପାଣିନେବାର ପାଇ କରିବା, (ଲ.ଅର୍ଥ) ଦୁଃଖ କଷ୍ଟ ସହି ଚଳିବା, ଜଳବାୟୁ ଦେହରେ ଯିବା ।

ପାଣିକାଢ଼ିବା—ଗ୍ରା. କ୍ରି. କୂପରୁ ଜଳ ତୋଳିବା, କୌଣସି ପଦାର୍ଥରୁ ଜଳ ଚିପୁଡ଼ିବା ବା ନିଗାଡ଼ିବା ।

ପାଣିକାଦୁଅ—ଗ୍ରା.ବି. ବର୍ଷା ଜନିତ ଜଳ ଓ ତଜ୍ଜନିତ କର୍ଦ୍ଦମ ।

ପାଣିକିଚେଲ—ଗ୍ରା.ବିଂ. କୌଣସିକାର୍ଯ୍ୟ କରିବାକୁ ନିତାନ୍ତ ଅମଙ୍ଗ ।

ପାଣିକି(କୁ)ପକା(କେ)ଇବା—ଗ୍ରା. କ୍ରି. (ଲ.ଅର୍ଥ) (ଧନକୁ)ବୃଥା ବ୍ୟୟ କରିବା, ଅପାତ୍ରରେ ଧନ ଦେବା ।

ପାଣିକୁଆ—ଗ୍ରା. ବି. ପ୍ଳବଗ ବର୍ଗର ପ୍ରାୟ ଏକହାତ ଦୀର୍ଘ ଜଳଚର ଲମ୍ବପଦୀ ପକ୍ଷିବିଶେଷ ।

ପାଣିକୁମ୍ଭା—ଗ୍ରା.ବି. ମାଟିଆ ବର୍ଣ୍ଣ ବିଶିଷ୍ଟ ରାତ୍ରିରେ ଶବ୍ଦ କରିବା ଏକପ୍ରକାର ପକ୍ଷୀ ।

ପାଣିକୁହୁଡ଼ି—ଗ୍ରା. ବି. ଶୀତ ଋତୁ ଛଡ଼ା ଅନ୍ୟ ସମୟରେ ହେବା କୁହୁଡ଼ି ।

ପାଣିଖାଇବା—ଗ୍ରା.କ୍ରି.ଜଳପାନ କରିବା, ଜଳଖିଆ କରିବା ।

ପାଣିଗାମୁଛା—ଗ୍ରା. ବି. ଯେଉଁ ବସ୍ତ୍ରକୁ ପାଣିକଷ କରି ପଛେଇ ଅମ୍ଳାନ ବସ୍ତ୍ର ରୂପେ ବ୍ୟବହାର କରନ୍ତି ।

ପାଣିଗାର—ଗ୍ରା.ବି. ଜଳ ଉପରେ କଟାଯିବା ରେଖା, (ଲ.ଅର୍ଥ) ପାଣିରେ ରେଖାପରି ଅସ୍ଥାୟୀ ବିଷୟ ।

ପାଣିଗୃହୀତ—ବି.ବିଂ. ପାଣି ଦ୍ୱାରା ଯାହା ଗ୍ରହଣ କରାଯାଇଅଛି, ବିବାହିତ ।

ପାଣିଗୃହୀତୀ—ସ୍ତ୍ରୀ.ବି. (ପାଣିଗୃହୀତ+ଈ) ବିଧିପୂର୍ବକ ବିବାହିତା ସବର୍ଣ୍ଣା ସ୍ତ୍ରୀ, ଭାର୍ଯ୍ୟା, ପତ୍ନୀ । [ଅ) ବିବାହ ।

ପାଣିଗ୍ରହ—ପୁଂ.ବି. (ପାଣି+ଗ୍ରହ+ଅଧି.

ପାଣିଗ୍ରହକର—ପୁଂ.ବି.ଯେ ପାଣି ଗ୍ରହଣ କରିଅଛନ୍ତି, ଧର୍ମତଃ ପତି ।

ପାଣିଗ୍ରହଣ—କ୍ଳୀ. ବି. ବିବାହ ।

ପାଣିଗ୍ରହଣିକ—ବି.ବିଂ. ବିବାହାଙ୍ଗ ମନ୍ତ୍ର, ଯେଉଁ ମନ୍ତ୍ରରେ ପାଣି ଗ୍ରହଣ ସମ୍ପନ୍ନ ହୁଏ ।

ପାଣିଗ୍ରହଣୀୟ—ବି. ବିଂ. ପାଣିଗ୍ରହଣ ଯୋଗ୍ୟ, (କ୍ଳୀ.ବି) ବିବାହରେ ଦେୟ ଉପହାର, କୌତୁକ ।

ପାଣିଗ୍ରହୀତା—ପୁଂ.ବି. ପାଣିଗ୍ରହଣକର୍ତ୍ତା, ପତି, ସ୍ୱାମୀ । [କର୍ତ୍ତା ।

ପାଣିଗ୍ରାହ—ପୁଂ.ବି. ପତି, ପାଣିଗ୍ରହଣ-

ପାଣିଗ୍ରାହୀ—ବି.(ପାଣି+ଗ୍ରହ+କ.ଇନ୍) ହାତ ଧରିଥିବା ଲୋକ,(ଗ୍ରା.ବି)ବ୍ରାହ୍ମଣମାନଙ୍କ ଉପାଧିବିଶେଷ ।

ପାଣିଘ—ପୁଂ. ବି. (ପାଣି+ହନ୍+ଅ) ହସ୍ତ ଦ୍ୱାରା ମୃଦଙ୍ଗାଦି ବାଦ୍ୟ, ଶିଳ୍ପୀ, ବାଦ୍ୟ ବଜାଇବା ବ୍ୟକ୍ତି ।

ପାଣିଘାଟ—ଗ୍ରା. ବି. ପୁଷ୍କରିଣୀଆଦିର ଯେଉଁ ଅଂଶରେ ଲୋକ ସ୍ନାନାଦି କର୍ମ କରନ୍ତି ।

ପାଣିଘାତ—ପୁଂ.ବି.ହାତ ଦ୍ୱାରା ଆଘାତ ।

ପାଣିଘେନିବା—ଗ୍ରା.କ୍ରି. ମଳ ମୂତ୍ର ପରେ ଜଳ ଦ୍ୱାରା ଶୌଚହେବା ।

ପାଣିଚଢ଼ା(ଢ଼େ)ଇବା—ଗ୍ରା.କ୍ରି. ଦେବତାଙ୍କ ଉପରେ ପାଣି ଢାଳିବା, ପାଣି ନିଗିଡ଼ିଇବା ।

ପାଣିଚୁ(ଚ)ଆ—ଗ୍ରା.ବିଂ.ସୁସ୍ୱାଦୁ ଦ୍ରବ୍ୟର ଜଳପରି ସ୍ୱାଦନ, ଜଳୀୟ ସ୍ୱାଦବିଶିଷ୍ଟ, ଅତିରିକ୍ତ ଜଳଯୁକ୍ତ ।

ପାଣିଛଡ଼ା(ଡ଼େ)ଇବା—ଗ୍ରା.କ୍ରି.କିଆରିରୁ ପାଣି କାଟି ନିକାଶ କରାଇବା, ଦେବତାଙ୍କ ଉଦ୍ଦେଶ୍ୟରେ ନିବେଦିତ ଭୋଗର ଚତୁଃପାର୍ଶ୍ୱେ ଚଳେ ପାଣି ବୁଲାଇ ଦେବା, ମନ୍ତ୍ରୋଚ୍ଚାରଣ ପୂର୍ବକ ଭୋଗକୁ ଉତ୍ସର୍ଗ କରିବା, (ଜୀବନର) ଆଶା ପରିତ୍ୟାଗ କରିବା ।

ପାଣିଛତର—ଗ୍ରା. ବି. ଜଳଛତ୍ର, ତୃଷାର୍ତ୍ତିକୁ ଜଳଦାନ ।

ପାଣିଛୁଞ୍ଚା—ଗ୍ରା.ବି.ଜଳସେଚନ,ବାଲ୍ଟିରେ

ପାଣି ମଡ଼ାଇବା ।

ପାଣିଛୁଞ୍ଚିବା—ଗ୍ରା.କ୍ରି.କୌଣସି ସ୍ଥାନରେ ଜଳ ବିନ୍ଦୁ ସେଚନ କରିବା, (ଲ.ଅର୍ଥ) କୋମଳ କଥା କହି ମନୋରଞ୍ଜନ କରିବା, ଖାଇବା ପୂର୍ବରୁ ଜଳସେଚନ କରିବା ।

ପାଣିଛୁଡ଼ିକା—ଗ୍ରା.ବି.ଯେଉଁ ପାଣି ପ୍ରଥମେ ଭୂପୃଷ୍ଠରେ ପଡ଼ି ତହିଁରୁ ପ୍ରତିଘାତ ପାଇ ଅନ୍ୟ ବସ୍ତୁରେ ପଡ଼େ ।

ପାଣିଛୁଆଁଜାତି—ଗ୍ରା. ବି. ଯେଉଁ ଶୂଦ୍ର ଜାତିଙ୍କ ସ୍ପୃଷ୍ଟଜଳ ବ୍ରାହ୍ମଣାଦି ଉଚ୍ଚ ଜାତିଙ୍କ ବ୍ୟବହାର୍ଯ୍ୟ ଓ ପେୟ ହୁଏ ।

ପାଣିଛେଚା(ଚେ)ଇବା—ଗ୍ରା. କ୍ରି. ଡଙ୍ଗାରେ ଝର ପଶିଥିବା ପାଣିକୁ ବେଣ୍ଟୁଆ ଦ୍ୱାରା ଉଠାଇ ପକାଇବା, ଟେଣାଆଦି ଦ୍ୱାରା କ୍ଷେତକୁ ପାଣିଦାହିବା ।

ପାଣିଜ—ପୁଂ. ବି. (ପାଣି+ଜନ୍+କ. ଥ) ନଖ, କରରୁହ ।

ପାଣିଟେକିବା—ଗ୍ରା. କ୍ରି. ଭୂମିଆଦି କୌଣସି ବସ୍ତୁ ବ୍ରାହ୍ମଣକୁ ଦାନ କରିବା ପୂର୍ବରୁ ସଂକଳ୍ପମନ୍ତ୍ର ଉଚ୍ଚାରଣପୂର୍ବକ ବ୍ରାହ୍ମଣଙ୍କ ହାତକୁ ମୁନ୍ଦାଏ ପାଣି ଦେବା, ଦେବତା ଓ ପିତୃ ଉଦ୍ଦେଶ୍ୟରେ ତର୍ପଣ କରିବା, ଶତ୍ରୁର ଅମଙ୍ଗଳ କାମନା କରି ଦେବତାଙ୍କ ନାମ ଧରି ପାଣି ଅଞ୍ଜୁଳା ଦେବା ।

ପାଣିଢାଳିବା—ଗ୍ରା.କ୍ରି.କୌଣସି ପାତ୍ରରୁ ପାଣି ଗଡ଼ିବା, ଶିବଲିଙ୍ଗଙ୍କ ଉପରେ ଜଳ ଅଜାଡ଼ିବା, (ଗ୍ରା.ବି) ବହୁ ପରିମାଣରେ ବର୍ଷା ହେବା ।

ପାଣିତଳ—କ୍ଲୀ.ବି.(୬ତତ୍) ହସ୍ତର ତଳ-ପାଙ୍ଗ, ପରିମାଣବିଶେଷ ।

ପାଣିତୋଳା—ଗ୍ରା.ବି.ଦଣ୍ଡଜାତ ସଂକଳ୍ପ କରିଥିବା ବ୍ୟକ୍ତିମାନେ ବାଦ୍ୟ ସହିତ ସନ୍ଧ୍ୟାବେଳେ ଗୋଟିଏ ପୋଖରୀକୁ ଯାଇ ସେଠାରେ ସ୍ନାନ କରି ସେଠାରୁ ପାଣି ଆଣିବା ଉତ୍ସବ, ବିବାହାଦି କର୍ମରେ ପ୍ରତିବେଶୀମାନଙ୍କ ଗୃହରୁ ଜଳ ସଂଗ୍ରହ ରୂପ ମଙ୍ଗଳ କର୍ମ ।

ପାଣିଦ(ଦେ)ବା—ଗ୍ରା.କ୍ରି. (ବୃକ୍ଷଆଦିର ମୂଳରେ) ଜଳ ଢାଳିବା, ଲୁହାକୁ ଦୃଢ଼ କରିବା ସକାଶେ ତାତିଲା ଲୁହାକୁ ଜଳରେ ବୁଡ଼ାଇବା, (ତର୍ପଣାଦିରେ) ପିତୃ ଲୋକଙ୍କୁ ତର୍ପଣ କରିବା, ସ୍ଥାନାନ୍ତରରୁ ଘଟଆଦି ଦ୍ୱାରା ଜଳ ବହି ଆଣି ଯୋଗାଇବା, ତୃଷାତୁରକୁ ଜଳ ପିଇବାକୁ ଦେବା, (ଘାଆଆଦି) ଜଳୀୟ ରସ ଉଦ୍ଗୀରଣ କରିବା, (ଗ୍ରା.ବି)ଘାଆ ଆଖିଆଦିରୁ ଜଳସ୍ରାବ ହେବା, ପାଣି ଗଡ଼ିବା, (କୋଠା ଘରଆଦିର ଛିଦ୍ର ବାଟେ) ଜଳ ଭେଦ କାହାରିବା ।

ପାଣିଦଳ—ଗ୍ରା.ବି.ଜଳଜ ବା ଅର୍ଦ୍ଧଜଳଜ ଘାସ ।

ପାଣିଦିଆ—ଗ୍ରା.ବିଂ.ଦୃଢ଼ କରିବା ନିମନ୍ତେ ନିର୍ଦ୍ଦିଷ୍ଟ ସମୟରେ ଉତ୍ତପ୍ତ ଅବସ୍ଥାରେ ପାଣିରେ ବୁଡ଼ାଯାଇଥିବା (ଶସ୍ତ୍ରାଦି), (ଲ.ଅର୍ଥ)ଶାଣିତ, ଜଳବାହକ(ବ୍ୟକ୍ତି)

ପାଣିଦୁଧ—ଗ୍ରା. ବି. ଜଳମିଶ୍ରିତ ଦୁଗ୍ଧ ।

ପାଣିଦେହରେଘିବା—ଗ୍ରା. ବି. କୌଣସି ସ୍ଥାନର ଜଳବାୟୁ କୌଣସି ବ୍ୟକ୍ତିର ଦେହରେ ସହ୍ୟ ହେବା ।

ପାଣିଦ୍ରବ୍ୟ—ଗ୍ରା. ବି. ସ୍ୱର୍ଣ୍ଣ ଓ ରତ୍ନ ।

ପାଣିଧଣ୍ଡ—ଗ୍ରା. ବି. ବିଷହୀନ ଜଳଚର ସର୍ପବିଶେଷ ।

ପାଣିଧରିବା—ଗ୍ରା. ବି. କୌଣସି ସ୍ଥାନର ଜଳବାୟୁ କୌଣସି ବ୍ୟକ୍ତିର ଦେହରେ ନ ଚଳିବାରୁ ତାକୁ ରୋଗ ଧରିବା ।

ପାଣିଧର୍ମ—ପୁଂ.ବି. (କ.ଧ) ପାଣିଗ୍ରହଣ ରୂପ ଧର୍ମ ।

ପାଣିଧାନ—ଗ୍ରା.ବି.ଯେଉଁ ଧାନ ବେଶୀ ପାଣିଥିବା ସ୍ଥାନରେ ଆବାଦ କରାଯାଏ ।

ପାଣିନ୍—ପୁଂ. ବି. କୌଶିକ ବଂଶର ଗୋଟିଏ ପରିବାର ।

ପାଣିନ—ପୁଂ.ବି. ପାଣିନି ମୁନି ।

ପାଣି ନଗଳିବା—ଗ୍ରା.ବି. ଛିଦ୍ର ଶୂନ୍ୟତା ଯୋଗୁଁ ଜଳ ଭେଦ ନ ପାରିବା ଅବସ୍ଥା, (ଲ.ଅର୍ଥ) ଦୁଇଜଣଙ୍କ ମଧ୍ୟରେ ଅଭେଦ୍ୟ ପ୍ରୀତି ।

ପାଣିନଳା—ଗ୍ରା.ବି. (ସଂ-ପ୍ରଣାଳୀ) ପାଣି ବୋହିଯିବାର ରାସ୍ତା ।

ପାଣିନି—ବି. ପ୍ରସିଦ୍ଧ ସଂସ୍କୃତ ବ୍ୟାକରଣ ସୂତ୍ରକାର, (ଗ୍ରା.ବି) ପାଣିନିଙ୍କ କୃତ ସଂସ୍କୃତ ବ୍ୟାକରଣ ।

ପାଣିନୀ—ସ୍ତ୍ରୀ.ବି. ମାଳାପରାଜିତା ।

ପାଣିନୀୟ—ବି.ବିଂ. (ପାଣିନି+ଈୟ) ପାଣିନି କର୍ତ୍ତୃକ କୃତ ଗ୍ରନ୍ଥାଦି,ପାଣିନି-ପ୍ରୋକ୍ତ, ପାଣିନି ଉକ୍ତିଯୁକ୍ତ, ପାଣିନିଗ୍ରନ୍ଥ ପାଠକ । [ ବାଦକ ।

ପାଣିନ୍ଧମ—ବି.ବିଂ. ପାଣିତାପକ, ପାଣି-

ପାଣିନ୍ଧୟ—ବି.ବିଂ.ହସ୍ତଦ୍ୱାରା ପାନକର୍ତ୍ତା ।

ପାଣିପଡ଼ିବା—ଗ୍ରା.ବି. ଜଳ ପତିତ ହେବା, ମନୁଷ୍ୟତା ବା ହ୍ରୀହି ପ୍ରାପ୍ତ ହେବା ।

ପାଣିପଣ—ଗ୍ରା. ବି. ଜଳ ବା ଅନ୍ୟ କୌଣସି ପାନୀୟ ଦ୍ରବ୍ୟ, ଜଳଖିଆ ।

ପାଣିପଥ—ଦିଲ୍ଲୀ ଓ ଆମ୍ବାଲ ମଧ୍ୟସ୍ଥଳରେ ଥିବା ପ୍ରସିଦ୍ଧ ଯୁଦ୍ଧକ୍ଷେତ୍ର, ଜଳରାସ୍ତା ।

ପାଣିପବନ—ଗ୍ରା.ବି. ବର୍ଷା ଓ ତୋଫାନ, ଝଡ଼ ଓ ବରଷା,ଜଳବାୟୁ ଆବହାଉଆ ।

ପାଣିପରି—ଗ୍ରା.କ୍ରି.ବିଂ. ଅବର୍ଗଳ ବା ପ୍ରାଞ୍ଜଳ ରୂପ, ଅଜସ୍ର (ବ୍ୟୟକରିବା) ।

ପାଣିପାଇବା—ଗ୍ରା.କ୍ରି.ମୃତ୍ୟୁପରେ ପୁତ୍ରାଦିଙ୍କଠାରୁ ତର୍ପଣ ପ୍ରଭୃତି ପାଇବା, କ୍ଷେତପାଇଁ ବା ବ୍ୟବହାର ପାଇଁ ଯଥେଷ୍ଟ ଜଳପ୍ରାପ୍ତ ହେବା ।

ପାଣିପାଣ୍ଡେ—ଗ୍ରା.ବି.ରେଲ ଷ୍ଟେସନରେ ଯାତ୍ରୀମାନଙ୍କୁ ପିଇବା ପାଣି ଯୋଗାଇବା ପାଇଁ ନିଯୁକ୍ତ ଭୃତ୍ୟ ।

ପାଣିପାତ୍ର—ବି.ବିଂ. (ବ.ବ୍ରୀ) ଯାହାର ହସ୍ତତଳ ପାତ୍ରସ୍ୱରୂପ ।

ପାଣିପିଆ—ଗ୍ରା.ବି.ଜଳପାନ, ଜଳଖିଆ, କୂଳେଚର ପକ୍ଷୀବିଶେଷ ।

ପାଣିପିଆଇବା—ଗ୍ରା.କ୍ରି. ଅନ୍ୟ ବ୍ୟକ୍ତିକୁ ଜଳପାନ କରିବାକୁ ଦେବା, (ଲ.ଅର୍ଥ) କୌଣସି ବ୍ୟକ୍ତିକୁ ଅତ୍ୟନ୍ତ କ୍ଲାନ୍ତ କରିବା ବା ପରିଶ୍ରମ କରାଇବା ।

ପାଣିପିଡ଼ା—ଗ୍ରା.ବି. ଆଗନ୍ତୁକ ବ୍ୟକ୍ତିକୁ ଗୋଡ଼ ଧୋଇବାପାଇଁ ପାଣି ଓ ବସିବା

ପାଇଁ ଦିଆଯିବା ପିଢ଼ା ପାଦ୍ୟ ଓ ଆସନ ।

ପାଣିପୀଡ଼ନ—କ୍ଲୀ.ବି. (ପାଣି+ପୀଡ଼ନ) ପାଣିଗ୍ରହଣ, ବିବାହ, କ୍ରୋଧାଦିଦ୍ୱାରା ହସ୍ତମର୍ଦ୍ଦନ ।

ପାଣିପ୍ରଦାନ—କ୍ଲୀ.ବି. ହସ୍ତଦାନ, ହସ୍ତଦ୍ୱାରା ଶପଥକରଣ ।

ପାଣିଫଳ—ଗ୍ରା.ବି. ଶିଙ୍ଗଡ଼ା ।

ପାଣିଫାଟିଯିବା—ଗ୍ରା. କ୍ରି. ଦୁଧଆଦିର ଜଳୀୟାଂଶ ଓ ଛେନା ପୃଥକ୍ ହେବା, (ଲ.ଅର୍ଥ) ନିଷ୍ଫଳ ହେବା, ବ୍ୟର୍ଥହେବା ।

ପାଣିଫୁକାର—ଗ୍ରା.ବି. କୌଣସି ବନ୍ଧ ବା ପୋଲ ମଧ୍ୟ ଦେଇ ପାଣି ବୋହିଯିବାର ଘର ।

ପାଣିଫୋଟକା—ଗ୍ରା. ବି. ଜଳ ବୁଦ୍ବୁଦ, (ଲ.ଅର୍ଥ) କୌଣସି ନଶ୍ୱର ବସ୍ତୁ ।

ପାଣିଭଉଁରି—ଗ୍ରା. ବି. ଯେଉଁଠାରେ ପାଣି ଚକ୍ରପରି ଘୂରି ତଳକୁ ପଶିଯାଉଥାଏ, ଜଳାବର୍ତ୍ତ ।

ପାଣିଭୁଜ୍—ପୁଂ.ବି.(ପାଣି+ଭୁଜ+କ୍ୱିପ୍) ଉଡ଼ୁମ୍ବରବୃକ୍ଷ, ପାଣିକରଣିକ ଲେଖକ ।

ପାଣିମଡ଼ା(ଡ଼େ)ଇବା—ଗ୍ରା. କ୍ରି. ଫସଲ ଆଦି ପାଇଁ ଜଳକୁ କ୍ଷେତର ସବୁ ଅଂଶରେ ବିସ୍ତୃତ କରାଇବା ।

ପାଣିମନ୍ତୁରିବା—ଗ୍ରା. କ୍ରି. ଜଳକୁ ଅଭିମନ୍ତ୍ରିତ କରିବା ।

ପାଣିମରିବା—ଗ୍ରା.ବି. କୌଣସି ଅଙ୍ଗରୁ ଶକ୍ତି କମ୍‌ହେବା, ଅଙ୍ଗ ଅବଶ ହେବା, ଉତ୍ତାପଦ୍ୱାରା କୌଣସି ବସ୍ତୁ ନିର୍ଜଳ ହେବା ।

ପାଣିମାରିବା—ଗ୍ରା. କ୍ରି. ଅଗ୍ନିଆଦିର ଉତ୍ତାପଦ୍ୱାରା କୌଣସି ପଦାର୍ଥର ଜଳୀୟାଂଶ ନିଃଶେଷ କରିବା, ଅତିରିକ୍ତ ମୈଥୁନଦ୍ୱାରା ସ୍ତ୍ରୀଲୋକର କଣ୍ଡୂ ପ୍ରଶମନ କରିବା, ଦୁଷ୍ଟଲୋକକୁ ଦମନ କରିବା ।

ପାଣିମିଲ୍—ପ୍ରା. (ସମ୍ବଲ)ବି. ମୃତବ୍ୟକ୍ତିଙ୍କ ବନ୍ଧୁମାନେ ଦଶାହ ଶୁଦ୍ଧକ୍ରିୟା ଉପଲକ୍ଷରେ ମୃତ ବ୍ୟକ୍ତିଙ୍କ ଘରକୁ ଯେଉଁ ଲୁଗା ବେଖରରୂପେ ପଠାନ୍ତି ।

ପାଣିମୁକ୍ତ—କ୍ଲୀ. ବି. ହସ୍ତଦ୍ୱାରା ନିକ୍ଷେପଣୀୟ ଅସ୍ତ୍ର ।

ପାଣିମୁଖ—ବି. (ବି.ଗ୍ରା) ପିତୃଲୋକ ।

ପାଣିରଖିବା—ଗ୍ରା.କ୍ରି. କୌଣସି ବଂଶର ବା ବ୍ୟକ୍ତିର ପ୍ରତିଷ୍ଠା ବା ସୁନାମ ବଜାଏ ରଖିବା । [ନଖ ।

ପାଣିରୁହ—ପୁଂ.ବି.(ପାଣି+ରୁହ୍+ଅ)

ପାଣିରେପକା( କେ )ଇବା—ଗ୍ରା. କ୍ରି. କୌଣସି ଦ୍ରବ୍ୟକୁ ଜଳସାତ୍ କରିବା, ଅପାତ୍ରରେ ଧନ ଦେବା, ବୃଥାରେ (ଧନ) ବ୍ୟୟ କରିବା ।

ପାଣିରେ ସରପକା(କେ)ଇବା—ଗ୍ରା.କ୍ରି. ହୃଦୟରେ କପଟ ରଖି ମୁଖରେ ମଧୁର ବାକ୍ୟ କହିବା ।

ପାଣିଲଇ—ଗ୍ରା. ବି. ଜଙ୍ଗଲରେ ଶୀତଳ ଓ ଛାୟାଯୁକ୍ତ ସ୍ଥାନରେ ତଳେ ମାଡ଼ିବା ଲତାବିଶେଷ ।

ପାଣିଲଗି—ଗ୍ରା. ବି. ସଂକଳ୍ପ ପୂର୍ବକ ଦେବତାଙ୍କ ଉପରେ ପାଣି ଢାଳିବା ବା ଚଢ଼ାଇବା ।

ପାଣିବନ୍ଧା(ନ୍ଧେ)ଇବା—ଗ୍ରା. କ୍ରି. ଜଳପ୍ରବାହ ବନ୍ଦ କରିବା ପାଇଁ ବନ୍ଧ ପକାଇବା ।

ପାଣିବସନ୍ତ—ଗ୍ରା. ବି. ହାଟ ଫୁଟି, ଏକପ୍ରକାର ସ୍ୱଳ୍ପ କଷ୍ଟପ୍ରଦ ବସନ୍ତ ରୋଗ ।

ପାଣିବାଟ—ଗ୍ରା.ବି. ନଦୀ ଓ ପୋଖରୀର ଗାଧୁଆ ଘାଟ ନିକଟକୁ ଯିବାର ରାସ୍ତା, ଜଳ ନିର୍ଗମର ପଥ, (ଲ.ଅର୍ଥ) ଅଳ୍ପଦୂର, ନିକଟ, ପାଖ ।

ପାଣିବିଛା—ଗ୍ରା. ବି. ପାଣିରେ ବିଚରଣକାରୀ ଏକପ୍ରକାର ବିଷାକ୍ତ ଲମ୍ବକୀଟ ।

ପାଣିବିରାଡ଼ି—ଗ୍ରା. ବି. ଉଧ ।

ପାଣିବୁଡ଼ା(ଡ଼େ)ଇବା—ଗ୍ରା.କ୍ରି.କୌଣସି ବଂଶର ବ୍ୟକ୍ତିର ବା ସ୍ଥାନର ପ୍ରତିଷ୍ଠାକୁ ନଷ୍ଟ କରିବା ।

ପାଣିବୁହା—ଗ୍ରା. ବି. ଜଳକୁ ପାତ୍ର ଦ୍ୱାରା ଏକସ୍ଥାନରୁ ଅନ୍ୟ ସ୍ଥାନକୁ ନେବା, (ଲ.ଅର୍ଥ) କୌଣସି କଠିନ ପରିଶ୍ରମସାଧ୍ୟ କାର୍ଯ୍ୟ ।

ପାଣିବୁହାଳି—ଗ୍ରା.ବିଂ. ଯେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ପାଣି ବହନ କରି ନିଏ ।

ପାଣିବେତୁନିଆଁ—ଗ୍ରା.ବି.ଜଳବେତସ ।

ପାଣିବେତ—ଗ୍ରା. ବି. ଜଳବେତସ, ବେତର ପ୍ରକାରବିଶେଷ ।

ପାଣିବୋହିବା—ଗ୍ରା.ବି.ସ୍ରୋତବୋହିବା, ମୁଖରୁ ଲାଳ ସ୍ରାବ,ସ୍ୱେଦୋଦ୍ଗମ ହେବା, ଶରଦି ଯୋଗୁଁ ନାସିକାରୁ ଜଳୋଦ୍ଗମ, ଚକ୍ଷୁରୁ ଲୋତକ ସ୍ରାବ, ଘାଆଆଦି ନିସ ଦେବା ।

ପାଣିଶଙ୍ଖ—ଗ୍ରା. ବି. ଯେଉଁ ଶଙ୍ଖର ଜଳ ଦେବୋଦ୍ଦେଶେ ପ୍ରଦତ୍ତ ହୁଏ ।

ପାଣିସର୍ଗ୍ୟା—ସ୍ତ୍ରୀ. ବି. (ପାଣି+ସୃଜ୍+ର୍ମି. ଯ+ଆ) ରଜ୍ଜୁ ।

ପାଣିସାରିବା—ଗ୍ରା.କ୍ରି.ଗୁହ୍ୟ ଦ୍ୱାର ଜଳ ଦ୍ୱାରା ଶୌଚ କରିବା,ଜଳପାନ କରିବା ।

ପାଣିସାରୁ—ଗ୍ରା. ବି. (ସଂ-କୋଚ) ପାଣି କୂଳରେ ଜନ୍ମିବା ଏକପ୍ରକାର ସାରୁ ।

ପାଣିହଳା—ଗ୍ରା.ବି. ଉଭୟଚର ବିଷକ୍ତ ସର୍ପବିଶେଷ ।

ପାଣିହେବା—ଗ୍ରା. ବି. ଜଳାର୍ଦ୍ର ହେବା, ମିଳେଇଯିବା, ( ଲୁଣଆଦି ) ପାଣିରେ ପରିଣତ ହେବା, (ଲ.ଅ) ପାଣିପରି ଥଣ୍ଡା ହୋଇଯିବା ।

ପାଣୀ—ବି. (ପଣ+କ.ଇନ୍) ବେଦାର୍ଥବ୍ୟବସାୟୀ ବୈଦିକ ବ୍ରାହ୍ମଣ ସମ୍ପ୍ରଦାୟ ବିଶେଷ, ହସ୍ତ, ହାତ, ସ୍ତ୍ରୀ.ବି. (ପଣ+ଅଧି+ଇନ୍+ଈ) ଦୋକାନ, ହାଟ ।

ପାଣେଇବା—ଗ୍ରା. କ୍ରି. ଜଳରୂପେ ପରିଣତ ହେବା, ଜଳପୂର୍ଣ୍ଣ ହେବା, ଜଳୀୟ ପଦାର୍ଥରେ ପୂର୍ଣ୍ଣ ହେବା ।

ପାଣ୍ଠା—ପ୍ରା.(ଗଞ୍ଜାମ)ବି. ଫନ୍ଦା, ଫସଲ ।

ପାଣ୍ଠି—ଗ୍ରା. ବି. ମୂଳଧନ, ପୁଞ୍ଜି, ଗଚ୍ଛିତ ଧନ, ସଞ୍ଚିତ ଧନ ।

ପାଣ୍ଡର—ପୁଂ.ବି.(ପଣ୍ଡ+କ.ଅର)କୁନ୍ଦଫୁଲ, ଚେରୁ, ଗୈରିକ, ପୀତ, ଶୁକ୍ଳବର୍ଣ୍ଣ, ମରୁଆ, ମରୁବକ ବୃକ୍ଷ, ଶୁକ୍ଳବର୍ଣ୍ଣ, ପର୍ବତବିଶେଷ, ଐରାବତ ହସ୍ତୀ,କୁଲୋ-

ସୂକ୍ଷ୍ମ ନାଗବିଶେଷ, ପକ୍ଷିବିଶେଷ (ବି°) ପାଣ୍ଡୁବର୍ଣ୍ଣବିଶିଷ୍ଟ, ଛେତା, ଶେଥୁଆ ।

ପାଣ୍ଡରା—ଗ୍ରା. ବି°. ପାଣ୍ଡୁବର୍ଣ୍ଣବିଶିଷ୍ଟ, ହରିଦ୍ରାଭ ଶୁକ୍ଲବର୍ଣ୍ଣବିଶିଷ୍ଟ, ପାଉଁଶିଆ, (ସ୍ତ୍ରୀ.ବି°) ପାଣ୍ଡରର ସ୍ତ୍ରୀଲିଙ୍ଗ ।

ପାଣ୍ଡବ—ପୁଂ. ବି. (ପାଣ୍ଡୁ+ଅ) ପାଣ୍ଡୁନନ୍ଦନ, ପଞ୍ଚପାଣ୍ଡବ, ଜନପଦବିଶେଷ ।

ପାଣ୍ଡବାୟନ—ପୁଂ.ବି (ପାଣ୍ଡବ+ଅୟନ) ଶ୍ରୀକୃଷ୍ଣ ।

ପାଣ୍ଡବକ—ପୁଂ. ବି. କୃଷ୍ଣଚଟକ ।

ପାଣ୍ଡବୀୟ—ତ୍ରି. ବି°. (ପାଣ୍ଡବ+ଈୟ) ପାଣ୍ଡବସମ୍ବନ୍ଧୀୟ, ପାଣ୍ଡବ ପକ୍ଷୀୟ ।

ପାଣ୍ଡବେୟ—ପୁଂ. ବି. (ପାଣ୍ଡୁ+ଏୟ) ପାଣ୍ଡୁଙ୍କର ଅପତ୍ୟ, ଯୁଧିଷ୍ଠିରାଦି ପଞ୍ଚଭ୍ରାତା, (ପାଣ୍ଡବ+ଏୟ) ଅଭିମନ୍ୟୁଙ୍କ ପୁତ୍ର ନରପତି ପରୀକ୍ଷିତ ।

ପାଣ୍ଡା—ଗ୍ରା. ବି°. ବିଫଳ ମନୋରଥ, ନିଷ୍ଫଳ, ଚିଲିକାରେ ଶୀତ ଦିନରେ ଦେଖାଯିବା ଏକପ୍ରକାର ପକ୍ଷୀ ।

ପାଣ୍ଡିଆ—ଗ୍ରା. ବି. ଏକପ୍ରକାର ପାଣ୍ଡୁର ଲିପ୍ତପଦ ଜଳଚର ପକ୍ଷୀ, ଜଙ୍ଘ ।

ପାଣ୍ଡିତ୍ୟ—କ୍ଳୀ. ବି. (ପଣ୍ଡିତ+ଯ) ଚତୁରତା, ବିଦ୍ବତ୍ତା, ପଣ୍ଡିତମାନଙ୍କର ଧର୍ମ ବା କର୍ମ, ପଣ୍ଡିତଭାବ ।

ପାଣ୍ଡୁ—ପୁଂ. ବି.(ପନ୍ଡ଼+ଉ) ପାଣ୍ଡୁର ଫଳୀ କ୍ଷୁପ, ପଟୋଲ, ଶୁକ୍ଲ ପୀତମିଶ୍ରିତ ବର୍ଣ୍ଣ, ପାଣ୍ଡବଙ୍କ ପିତା, ଶ୍ୱେତହସ୍ତୀ, ରୋଗବିଶେଷ, ପାଣ୍ଡୁରୋଗ, (ବି°) ଧୂସର, ପାଂଶୁବର୍ଣ୍ଣ ବିଶିଷ୍ଟ ।

ପାଣ୍ଡୁକ—ପୁଂ.ବି. (ପାଣ୍ଡୁ+କ)ପାଣ୍ଡୁରୋଗ, ପାଣ୍ଡୁରାଜା, ପାଣ୍ଡୁବର୍ଣ୍ଣ ।

ପାଣ୍ଡୁକଣ୍ଟକ—ପୁଂ. ବି. ଅପାମାର୍ଗ ।

ପାଣ୍ଡୁତରୁ—ପୁଂ. ବି. ଧବବୃକ୍ଷ ।

ପାଣ୍ଡୁପତ୍ରୀ—ସ୍ତ୍ରୀ. ବି. ରେଣୁକା ।

ପାଣ୍ଡୁପୁତ୍ର—ପୁଂ.ବି. (୬ତତ୍)ଯୁଧିଷ୍ଠିରାଦି ପଞ୍ଚ ଭ୍ରାତା ।

ପାଣ୍ଡୁପୁଷ୍ପା—ସ୍ତ୍ରୀ.ବି.କର୍କଟିକା, କାକୁଡ଼ି ।

ପାଣ୍ଡୁଫଳା—ବି. ପଟୋଳ, ଚିଚିଣ୍ଡା,ଫୁଟି କାକୁଡ଼ି ।

ପାଣ୍ଡୁର—ବି°.ବି. (ପଣ୍ଡ୍+ଉର)ପାଣ୍ଡର ଦେଖ, (ବି) ଧବଳ କୃଷ୍ଣ ।

ପାଣ୍ଡୁରଙ୍ଗ—ପୁଂ. ବି. ପଣ୍ଢରଙ୍ଗ. ବିଷ୍ଣୁଙ୍କର ଅବତାରବିଶେଷ, ଶାକବିଶେଷ, କୁଆମଇତା ବା ମଟମଟିକା ।

ପାଣ୍ଡୁରଚ୍ଛଦ—ପୁଂ.ବି. (ବ.ବ୍ରୀ)କେତକ ବୃକ୍ଷ, କିଆଗଛ ।

ପାଣ୍ଡୁରଦ୍ରୁମ—ପୁଂ. ବି. କୁଟଜ ବୃକ୍ଷ. କୁରେଇ ଗଛ ।

ପାଣ୍ଡୁରା—ସ୍ତ୍ରୀ.ବି. ମାସପର୍ଣ୍ଣୀ,ଶୁକ୍ଳ ଯୁଥିକା ବୃକ୍ଷ, କର୍କଟିକା । [ ଚୌପଡ଼ି ।

ପାଣ୍ଡୁରାଗ—ପୁଂ.ବି.ଦମନକ କ୍ଷୁପ,ଦନା,

ପାଣ୍ଡୁରାଗପ୍ରିୟ—ପୁଂ. ବି. ବକୁଳ ବୃକ୍ଷ ।

ପାଣ୍ଡୁରିମା—ବି. ( ପାଣ୍ଡୁର+ଇମନ୍ ) ପାଣ୍ଡୁତା,ଫିକାବର୍ଣ୍ଣ । [ ଆଖୁ ।

ପାଣ୍ଡୁରେକ୍ଷୁ—ପୁଂ.ବି.ଶ୍ୱେତ ଇକ୍ଷୁ, ଧଳା

ପାଣ୍ଡୁରୋଗ—ପୁଂ.ବି.ସ୍ୱନାମଖ୍ୟାତ ରୋଗ ।

ପାଣ୍ଡୁଲିପି—ବି. (କ.ଧା) ହସ୍ତ ଲେଖା ପୁସ୍ତକ, ଭୂମିରେ ବା ପଟାରେ ଖଡ଼ି ଦ୍ୱାରା ଅଙ୍କିତ ଚିହ୍ନ ।

ପାଣ୍ଡୁଲେଖ—ପୁଂ.ବି.ପାଣ୍ଡୁଲିପି, ଚିଠା ।

ପାଣ୍ଡୁଲୋମଶା—ସ୍ତ୍ରୀ.ବି.ମାଷପର୍ଣ୍ଣୀ,ପାଣ୍ଡୁବର୍ଣ୍ଣ ଲୋମଯୁକ୍ତା ।

ପାଣ୍ଡୁଲୋମା—ସ୍ତ୍ରୀ. ବି ମାଷପର୍ଣ୍ଣୀ, (ବି°) ପାଣ୍ଡୁବର୍ଣ୍ଣ ଲୋମଯୁକ୍ତ ।

ପାଣ୍ଡୁଶର୍କରା—ସ୍ତ୍ରୀ. ବି. ରୋଗବିଶେଷ, ପ୍ରମେହରୋଗ ।

ପାଣ୍ଡୁଶର୍ମିଳା—ସ୍ତ୍ରୀ. ବି. ଦ୍ରୌପଦୀ ।

ପାଣ୍ଡୁସୂଦନରସ—ପୁଂ.ବି. ପାଣ୍ଡୁରୋଗନାଶକ ଔଷଧବିଶେଷ ।

ପାଣ୍ଡୁସୋପାକ—ପୁଂ. ବି. ବର୍ଣ୍ଣଶଙ୍କର ଜାତିବିଶେଷ ।

ପାଣ୍ଡେ—ଗ୍ରା.ବି. କନଉଜୀ ବ୍ରାହ୍ମଣମାନଙ୍କ ବଂଶୋପାଧିବିଶେଷ, ( ପ୍ରା. ସମ୍ବ.ବି ) ଅଗରଆ ଓ କେଉଟମାନଙ୍କର ବଂଶୋପାଧିବିଶେଷ ।

ପାଣ୍ଡେଇ—ଗ୍ରା. ବି. (ଫ-ପନ୍ନାହ୍ଵୀ) ଚର୍ମପାଦୁକା, ଜୋତା । [ ପୋଷାକ ।

ପାଣ୍ଡୁ—ରଙ୍ଗ ଯାଇ ନ ଥିବା ପଣମର

ପାଣ୍ଡ୍ୟ—ପୁଂ. ବି. ପାଣ୍ଡୁ ଦେଶବାସୀ ବ୍ୟକ୍ତି, ପାଣ୍ଡୁଦେଶ ରାଜା, ଦକ୍ଷିଣ ଭାରତର ପୁରାଣ ଓ ଇତିହାସ ପ୍ରସିଦ୍ଧ ରାଜା ।

ପାଣ୍ଡ୍ୟବାଟ—ପୁଂ. ବି. ପାଣ୍ଡ୍ୟଦେଶସ୍ଥିତ ମୁକ୍ତାର ଆକରବିଶେଷ ।

ପାଣେ(ଣୋ)ଇ—ଗ୍ରା.ବି.ଜୋତା, ଚର୍ମପାଦୁକା ।

ପାଣ୍ୟ—ତ୍ରି. ବି°. (ପଣ୍+ମି.ଯ) ସ୍ତୁତ୍ୟ, ସ୍ତବମାନ୍ୟ ।

ପାଣ୍ହଇ—ପ୍ରା. (ଜାଣପୁର)ବି.ପାଣେଇ, ଜୋତା ।

ପାତ—ପୁଂ. ବି. (ପତ୍+ଭା.ଅ)ପତନ, ନାଶ, କ୍ଷୟ, ନିପାତ,ନିକ୍ଷେପ,ପ୍ରୟୋଗ, ସଂଘଟନ, ଘଟନା, ଗମନ, ଆପାତ ଲଗନ, ଓହ୍ଲାଇବା, ଭୂମିରେ ପକାଇବା, ଆଘାତ, ଆକ୍ରମଣ,(ପତ୍+କ. ଅ) ରାହୁଗ୍ରହ. କୌଣସି ଗ୍ରହର ଅମଙ୍ଗଳ ଜନକ ଅବସ୍ଥିତି,(ବି°. ପାତ+ମି.ତ)ରକ୍ଷିତ, ପାଳିତ, (ଗ୍ରା.ବି)ଧାତୁର ପାତିଆ, ମୁସଲମାନଙ୍କ ସ୍ତ୍ରୀଲୋକଙ୍କ ମଝି କାନରେ ପିନ୍ଧିବା ସୁନା ଓ ରୁପାର କାରୁକାର୍ଯ୍ୟ ।

ପାତକ—କ୍ଳୀ. ବି. ( ପାତ+କ.ଅକ ) ଦୋଷ, ଅପରାଧ, ପତନକାରକ ବସ୍ତୁ, ପାପ, ଯାହା ଲୋକକୁ ପତନ ବା ଭ୍ରଷ୍ଟ କରାଏ ।

ପାତକଛଡ଼ାଇବା—ଗ୍ରା.କ୍ରି. ପ୍ରାୟଶ୍ଚିତ୍ତ ଦ୍ୱାରା ନିଜର ପାପ କ୍ଷୟ କରିବା ।

ପାତକଲାଗିବା—ଗ୍ରା.ବି. ଶାସ୍ତ୍ର ଅନୁସାରେ ଦୋଷଭାଗୀ ହେବା,ପାତକ ପ୍ରବର୍ତ୍ତିବା ।

ପାତକୀ—ପୁଂ. ବି°. ( ପାତକ+ଇନ୍ ) ଅପରାଧୀ, ଖଳ, ଦୁଷ୍ଟ, ପାପୀ ।

ପାତଙ୍ଗି—ପୁଂ.ବି. (ପତଙ୍ଗ+ଇ) ଶନି, ଯମ, କର୍ଣ୍ଣ, ବୈବସ୍ୱତ ମନୁ, ସୁଗ୍ରୀବ ।

ପାତଞ୍ଜଳ—କ୍ଳୀ. ବି. ( ପତଞ୍ଜଳି+ଅ ) ପାଣିନି ସୂତ୍ର ଓ ତାହାର ବାର୍ତ୍ତିକ ବ୍ୟାଖ୍ୟାନ ରୂପଗ୍ରନ୍ଥ, ପତଞ୍ଜଳି ମୁନିପ୍ରଣୀତ ଦର୍ଶନଶାସ୍ତ୍ର ।

ପାତନ—ବି. ( ପତ୍+ଣିଚ୍+ଭା.ଅନ ) ଅଧଃକ୍ଷେପଣ, ଭୂମିରେ ପକାଇବା, ବିନ୍ୟାସ,(ରସାୟନ)ନିଃସ୍ୟନ୍ଦନ,କ୍ଷାରଣ, ନିଷ୍କ୍ରାମଣ, ବିନାଶନ,(ମି.ଅନ)କାନର ପତା, ବିସ୍ତାର କରିବା, ଲେଖିବା, ଅଙ୍କନ,ଫିଙ୍ଗିଦେବା, ଅବମାନନ,ଦୂରୀକରଣ, ପତନ ଘଟାଇବା, ମୋଚନ, ସ୍ରାବ, ଦଣ୍ଡାଦି ଦ୍ୱାରା ଆଘାତ କରିବା ।

ପାତନା—ବି. (ପାତନ+ଆ)ସଂସ୍ଥାପନା, ପାତନ ଦେଖ; ଉଆଣ, ସମ୍ପାଦନ, (ଗ୍ରା. ମେଦିନୀ. ବି) ବଡ଼ଭ୍ରାନ୍ତି,ନଉଡ ।

ପାତନୀୟ—ବି. ବିଂ. (ପତ୍+ଣିଚ୍+ଅନୀୟ) ପାତନଯୋଗ୍ୟ ।

ପାତର—ଗ୍ରା. ବି. ପାତ୍ର ଦେଖ, (ବିଂ) ପାତ୍ର, ଯୋଗ୍ୟ, ଭାଜନ, ଉପଯୁକ୍ତ, (ଗ୍ରା. ବସ୍ତର. ବି) ପାତଳ୍, ସରୁ ।

ପାତରଅନ୍ତର—ଗ୍ରା. ବି ଓ ବିଂ.ପକ୍ଷପାତ, ସମାନ ପଦସ୍ଥ ବ୍ୟକ୍ତିଦ୍ୱୟଙ୍କ ପ୍ରତି କରାଯିବା ଭିନ୍ନ ଭିନ୍ନ ବ୍ୟବହାର ।

ପାତରଆଣୀ—ପ୍ରା. ( କୋରାପୁଟ ) ବିଂ. ବେଶ୍ୟା, ନର୍ତ୍ତକୀ ।

ପାତଲ୍‌ଘଣ୍ଟା—ପ୍ରା. (ସମ୍ବ) ବିଂ. ବଳିତ ବାଇଗଣ ।

ପାତଲ—ଗ୍ରା. ବି. ( ସଂ-ପା+ତଳ ) ପାଦତଳ, ( ଗ୍ରା. ବିଂ ) ପାଦତଳିଆ, ଅନୁଗତ, (ସଂ-ପତ୍ରତୁଲ୍ୟ ବା ପତ୍ରଳ) ପତଳା, ସରୁ, କୃଶ, ଜଳୀୟ,ତରଳ, ହାଲୁକା, ଅଗଭୀର, ଲଘୁ, ଭଙ୍ଗୁର ।

ପାତଶା—ଗ୍ରା. ବି. ବାଦଶାହ, ସମ୍ରାଟ୍ ।

ପାତଶାଇ—ଯା. ବି. (ଫା-ପାତଶାହୀ) ସମ୍ରାଟପଣ,(ଗ୍ରା.ବିଂ) ବାଦଶାହୀ,ସମ୍ରାଟ୍ ସୁଲଭ, ରାଜକୀୟ ।

ପାତାଳ—କ୍ଳୀ. ବି. (ପତ୍+ଅଧି.ଆଲ) ତଳ, ଅତଳ, ବିତଳ, ନିତଳ,ତଳାତଳ, ମହାତଳ, ସୁତଳ, ଏହି ସପ୍ତପାତାଳ, ନାଗଲୋକ, ଭୂଗର୍ଭ, ଅଧୋଭୁବନ, ଜିଜଗତ, ନରକ, ବିବର, ବଡ଼ବାନଳ, ଲଗ୍ନର ଚତୁର୍ଥ ସ୍ଥାନ ।

ପାତାଳକେତୁ—ପୁଂ. ବି. ପାତାଳବାସୀ ଦୈତ୍ୟବିଶେଷ ।

ପାତାଳଗଙ୍ଗା—ବି. (ପାତାଳ+ଗଙ୍ଗା) ପୁରାଣ ବର୍ଣ୍ଣିତ ପାତାଳରେ ପ୍ରବାହିତ ନଦୀ, ଭୋଗବତୀ ।

ପାତାଳଗରୁଡ଼—ଗ୍ରା. ବି. ଔଷଧ ଲତାବିଶେଷ, ଗନ୍ଧବିଶେଷ,ସର୍ପବିଷ ନାଶକ ଚେର ।

ପାତାଳନିଲୟ—ପୁଂ.ବି.(ବ.ବ୍ରୀ)ଦୈତ୍ୟ, ସର୍ପ, (ବିଂ) ପାତାଳବାସୀ ।

ପାତାଳପୁରୀ—ବି. ପାତାଳ, ସପ୍ତପାତାଳ ମଧ୍ୟରୁ ସର୍ବନିମ୍ନ ଲୋକ ।

ପାତାଳଫୁଟା—ଗ୍ରା. ବିଂ. ଅତିଗଭୀର, ଅତଳସ୍ପର୍ଶୀ, ସ୍ୱୟମ୍ଭୂ (ଲିଙ୍ଗ) ।

ପାତାଳଭେଦୀ—ଗ୍ରା. ବି. ଗୁଳ୍ମବିଶେଷ ।

ପାତାଳୀ—ଗ୍ରା.ବିଂ. ଭୂଗର୍ଭରେ ପୋତାଯାଇଥିବା, ପାତାଳସ୍ପର୍ଶୀ ।

ପାତାଳୌକାଃ—ପୁଂ. ବି. ( ବ.ବ୍ରୀ ) ଦୈତ୍ୟ, ସର୍ପ,(ବିଂ)ପାତାଳବାସୀ ମାତ୍ର ।

ପାତି—ପୁଂ. ବି. (ପା+କ.ଅତି) ପ୍ରଭୁ, ସ୍ୱାମୀ, ଅଧିପତି, ( ଗ୍ରା.ବି ) କୌଣସି ପଦାର୍ଥର କ୍ଷୁଦ୍ର ଓ ପାତଳା ହୋଇ କଟାଯାଇଥିବା ସରୁଖଣ୍ଡମାନ,ବାନରବିଶେଷ,ପାତିମାକଡ଼, (ଗ୍ରା.ବିଂ)ଶ୍ରେଷ୍ଠ, କ୍ଷୁଦ୍ରାକୃତି ବିଶିଷ୍ଟ, (ଗ୍ରା.ଅବ୍ୟ) ନିରର୍ଥକ ଇତ୍ୟାଦି ।

ପାତିଆ—ଗ୍ରା. ବି. ସରୁ ପତଳା ପତ୍ର, ଧାତବ ଅଳଂକାରକୁ ମୋଡ଼ିବାପାଇଁ ତିଆର କରାଯାଇଥିବା ମିଶ୍ରଧାତୁର ସରୁପତ୍ର, ପତଳା ହୋଇ ଚିରାହୋଇଥିବା ବାଉଁଶ ପାତିଆ, (ଗ୍ରା.ବିଂ) ଅତି ପାତଳ, ଶୀର୍ଣ୍ଣକାୟ ।

ପାତିକ—ପୁଂ. ବି. ଶିଶୁମାର, ଶୁଶୁକ ।

ପାତିଗ୍ରେର—ଗ୍ରା. ବି. ଠାକୁକାଗ୍ରେର, ଯେଉଁମାନେ କ୍ଷୁଦ୍ର ଦ୍ରବ୍ୟ ଗ୍ରେରକରନ୍ତି ।

ପାତିତ—ବି.ବିଂ. (ପତ୍+ଣିଚ୍+ମି.ତ) ନିକ୍ଷିପ୍ତ, ଝଡ଼ାଯାଇଥିବା, ଅଧଃକୃତ, ଝୁଣ୍ଡିଥିବା,ଫୋପଡ଼ାଯାଇଥିବା,ଭୂମିରେ ପକାଯାଇଥିବା, ବିସ୍ତାରିତ ।

ପାତିତ୍ୟ—କ୍ଳୀ. ବି. (ପତିତ+ଯ) ପତିତର ଧର୍ମ, ପତିତହିବାର ଅବସ୍ଥା,ପତିତ ବା ହୀନାବସ୍ଥା, ନୈତିକହୀନତା,ପାପ ।

ପାତିଦେବା—ଗ୍ରା. ବି. (ବିଛଣା) ପକାଇବା,(ହାତ,କାନ) ଟେକିକରି ଦେଖାଇବା, ପ୍ରସାରିତ କରିବା,(ଗଣ୍ଡି)ରଚନା କରିବା, ପକାଇବା, (କାନ)ଡେରିବା, ନିରୁପଣ କରିବା ।

ପାତିନୀ—ସ୍ତ୍ରୀ. ବିଂ. ପାତିର ସ୍ତ୍ରୀଲିଙ୍ଗ ।

ପାତିମାକଡ଼—ଗ୍ରା. ବି. ନାଲିମୁହାଁ ଗ୍ରେଟ ଜାତୀୟ ମାକଡ ।

ପାତିସ୍ତାଲ—ଗ୍ରା. ବି. ଦେଶୀୟ ରାଜ୍ୟବିଶେଷ ଏବଂ ତାହାର ରାଜଧାନୀ ।

ପାତିଲ—ବି. ( ପତ୍+ଣିଚ୍+ମି.ଲ ) ଚୌଡ଼ାମୁହାଁ ଗ୍ରେଟ ଆଣ୍ଡିକା, ପତୁଲି ।

ପାତିଲୀ—ସ୍ତ୍ରୀ. ବି. (ପତ୍+ଣିଚ୍+ଲ +ଈ) ବାଗୁରା, ପକ୍ଷୀଧରା ଜାଲ,ନାରୀ, ସ୍ତ୍ରୀ, ଚୌଡ଼ାମୁହାଁ ଗ୍ରେଟ ଆଣ୍ଡିକା, ପତୁଲି ।

ପାତିବ୍ରତ୍ୟ—କ୍ଳୀ. ବି. (ପାତିବ୍ରତ+ଯ) ପତିବ୍ରତାର ଭାବ ବା ଧର୍ମ, ସତୀତ୍ୱ, ପତିପରାୟଣତା ।

ପାତିଶିଆଲ—ଗ୍ରା. ବି. ଶୃଗାଳବିଶେଷ, କୋକିଶିଆଳି, କୋକ୍ଳୀ ।

ପାତିହଂସ—ଗ୍ରା. ବି. ଏକପ୍ରକାର କୁଜାହଂସ, ଗେଡ଼ୀହଂସ, ବତକ ।

ପାତୀ—ପୁଂ. ବିଂ. (ପତ୍+କ.ଇନ୍) ଯେ ପଡ଼େ, ପଡ଼ୁଥିବା, ପତନଶୀଳ, (ପତ୍ +ଣିଚ୍+ଇନ୍) ଯେ ପକାଏ ।

ପାତୁଆ—ଗ୍ରା.ବିଂ. ଏକପାର୍ଶ୍ୱରେ ପାତଳ, (ଗ୍ରା.ବି) ବନଚର ଜାତିବିଶେଷ ।

ପାତୁକ—ବି. ବିଂ. ( ପତ୍+କ.ଉକ ) ପତନଶୀଳ, (ପୁଂ.ବି) ପର୍ବତର ସାନୁ, ପ୍ରପାତ୍ର, ଜଳହସ୍ତୀ ।

ପାତୁଲ୍—ପ୍ରା. (ସମ୍ବ) ବି. ଗ୍ରେଟହାଣ୍ଡି, ଆଣ୍ଡିକା ।

ପାତ୍ର—ବି. (ପା+କ.ତ୍ର) ନାନା ଗୁଣାଲଂକୃତ ଜନ,ଆଧେୟ,ଧୃତବସ୍ତୁ,ରାଜମନ୍ତ୍ରୀ, ଯୋଗ୍ୟ, ଭାଜନ,ଦେହ,ଶରୀର, ଅଷ୍ପଦ, ବିଷୟ, ପତ୍ରପୁଟ, ବାସନ,

ତୀରଦ୍ୱୟର ମଧ୍ୟବର୍ତ୍ତୀ ଜଳାଧାର, (ବିଂ- ପା+କ.ତ୍ର) ଯୋଗ୍ୟ, ଉପଯୁକ୍ତ, (ପତ୍ର +ଅ) ପତ୍ରନିର୍ମିତ, (ସ୍ତ୍ରୀ) ପାତ୍ରୀ, (ବି) ବିବାହର ବର, ଆଧାର, ପର୍ଣ୍ଣ,ଆଢ଼କ ପରିମାଣ, ସ୍ରୁବାଦି ଯଜ୍ଞପାତ୍ର, ନାଟ- କୋକ୍ତ ନାୟକାଦି ।

ପାତ୍ରକ—କ୍ଲୀ. ବି. ସ୍ଥଳୀ, ହାଣ୍ଡି, ପାତ୍ର ।

ପାତ୍ରଟ—ବି. ଛିନ୍ନବସ୍ତ୍ର, କର୍ପଟକ, (ବିଂ) କୃଶ ।

ପାତ୍ରଟୀର—ପୁଂ. ବି. ଉଚିତ ବ୍ୟାପାର ଯୁକ୍ତ ମନ୍ତ୍ରୀ, ଯେ ମନ୍ତ୍ରୀ ଯଥୋପଯୁକ୍ତ କାର୍ଯ୍ୟକରେ, ଲୌହପାତ୍ର, କାଂସ୍ୟ- ପାତ୍ର, ରଜତପାତ୍ର, ସିଂହାଣ, ପାବକ, ପିଙ୍ଗାଣ ବାୟସ ।

ପାତ୍ରତା—ସ୍ତ୍ରୀ. ବି. ପାତ୍ରତ୍ୱ,ପାତ୍ରର ଧର୍ମ, ଗୌରବ, ଉପଯୋଗିତା, ସମ୍ମାନ ।

ପାତ୍ରପକ୍ଷ—ବି. (ପାତ୍ର+ପକ୍ଷ) ବରଯାତ୍ରୀ, ବରଙ୍କ ଦଳ ।

ପାତ୍ରମନ୍ତ୍ରୀ—ଗ୍ରା. ବି. ରାଜସଭାସ୍ଥ ଅମା- ତ୍ୟାଦି କର୍ମଚାରୀ ।

ପାତ୍ରଶେଷ--ବି. (କ.ଧା)ଅଇଣ୍ଠା,ଉଚ୍ଛିଷ୍ଟ, ଭୁକ୍ତାବଶିଷ୍ଟ ଦ୍ରବ୍ୟ ।

ପାତ୍ରସଂସ୍କାର—ପୁଂ. ବି. (୬ତତ୍) ମନ୍ତ୍ରାଦି ଦ୍ୱାରା ପୂଜାପାତ୍ରକୁ ଶୁଦ୍ଧ କରିବା ।

ପାତ୍ରସାତ୍—ଅବ୍ୟ. ସତ୍ପାତ୍ରେ ଦାନ, ବରହସ୍ତରେ ଅର୍ପିତ ବା ନ୍ୟସ୍ତ ।

ପାତ୍ରସ୍ଥ—ବିଂ. ( ପାତ୍ର + ସ୍ଥା + କ.ଅ ) ପାତ୍ରରେ ଅବସ୍ଥିତ, ଭାଜନସ୍ଥିତ, ପାତ୍ର- ସାତ୍, ବରହସ୍ତରେ ଅର୍ପିତ ବା ନ୍ୟସ୍ତ, (ସ୍ତ୍ରୀ) ପାତ୍ରସ୍ଥା ।

ପାତ୍ରା—ପ୍ରା. (ସମ୍ବଲ) ସ୍ତ୍ରୀ. ବି. ବିଷ୍ଟାଲ ଜମିଦାର ପ୍ରଥମେ ଜମିଦାରି ଗାଦିରେ ବସିବାଦିନ ଯେଉଁ ସ୍ତ୍ରୀକୁ ବିବାହ କରନ୍ତି ।

ପାତ୍ରାପାତ୍ର—କ୍ଲୀ. ବି. (ଦ୍ୱନ୍ଦ୍ୱ) ଯୋଗ୍ୟ ଓ ଅଯୋଗ୍ୟ ବ୍ୟକ୍ତି ।

ପାତ୍ରାପାତ୍ରଜ୍ଞାନ—ବି. କୌଣସି ବ୍ୟକ୍ତିର ଯୋଗ୍ୟତା ବା ଅଯୋଗ୍ୟତା ବିଷୟରେ ଜ୍ଞାନ ।

ପାତ୍ରାସାଦନ—କ୍ଲୀ. ବି. (୬ତତ୍) ଯଜ୍ଞ- ପାତ୍ରରେ ଯଥୋକ୍ତ କ୍ରମେ ଯଜ୍ଞନିଷ୍ପାଦନ ପାଇଁ ସ୍ଥାପନ ।

ପାତ୍ରି—ଗ୍ରା. ବି. ତର୍ପଣାଦିରେ ବ୍ୟବହୃତ ତମ୍ବାର ନୌକାକୃତ ପାତ୍ର, ଗ୍ଲେଟ ଗ୍ଲାସ ।

ପାତ୍ରିୟ—ତ୍ରି.ବିଂ. (ପାତ୍ର+ଇୟ) ସହ- ଭୋଜୀ, ଯେଉଁ ବ୍ୟକ୍ତିଙ୍କ ସଙ୍ଗେ ଏକ- ପାତ୍ରରେ ଭୋଜନ କରାଯାଇଥାଏ ।

ପାତ୍ରୀ—ସ୍ତ୍ରୀ. ବି. (ପାତ୍ର + ଈ) ହୋମ ଯଜ୍ଞାଦିରେ ବ୍ୟବହୃତ ପାତ୍ର, ବିବାହ ଯୋଗ୍ୟା କନ୍ୟା,କୁମାରୀ,ନବବିବାହିତା କନ୍ୟା, ବଧୂ, ଉଠାଚୁଲି ।

ପାତ୍ରୀୟ—କ୍ଲୀ. ବି. ଯଜ୍ଞପାତ୍ର, ( ବିଂ ) (ପାତ୍ର + ଈୟ) ପାତ୍ରସମ୍ବନ୍ଧୀୟ ।

ପାତ୍ରୀର—ପୁଂ. ବି. ଯଜ୍ଞଦ୍ରବ୍ୟ ।

ପାତ୍ରେସମିତ—ତ୍ରି. ବିଂ. (୭ତତ୍) ଯେ କାର୍ଯ୍ୟସମୟରେ ନ ଥାଇ ଭୋଜନ ସମୟରେ ଉପସ୍ଥିତ ହୁଏ, ପାପ- ବିଶେଷ ।

ପାଥ—ବି. (ପା + ଥ) ଅନ୍ନ,ଜଳ,ଆକାଶ, ବାୟୁ, ସୂର୍ଯ୍ୟ, ଅଗ୍ନି ।

ପାଥଃ—ବି. (ପା+ର୍ମ.ଅସ୍) ପାଥଦେଖ ।

ପାଥନାଥ—ବି. (୬ତତ୍) ସମୁଦ୍ର ।

ପାଥରଥ—ବି. (କ.ଧା)ନୌକା,ଡଙ୍ଗା ।

ପାଥିଃ—ବି. (ପା + ଥ + ଇସ୍) ସମୁଦ୍ର, ଆଖି, ଜଳ, ଘାଆ ଉପରେ ଆଚ୍ଛାଦକ ଖୋଳ, ଘାଆ ଖଟି ।

ପାଥିକ—ପୁଂ. କ୍ଲୀ. ବି. ( ପଥିକ+ଅ ) ପଥିକ ବା ବିଦେଶ ବାସୀ ବ୍ୟକ୍ତିର ସନ୍ତାନ ।

ପାଥିକ୍ୟ—କ୍ଲୀ. ବି. (ପଥିକ + ଯ) ପଥି- କତ୍ୱ, ପଥିକଭାବ ।

ପାଟୁରି—ଗ୍ରା. ବି. ( ସଂ-ପ୍ରସ୍ତରୀ ) ମୂତ୍ରା- ଶୟରେ ପଥର ଜନ୍ମିବା ରୋଗ,ଅଶ୍ମରୀ ।

ପାଥେୟ—କ୍ଲୀ. ବି. (ପଥ+ଏୟ) ପଥି- କର ବାଟରେ ଲୋଡ଼ାହେବା ପଦାର୍ଥ, ବାଟଖର୍ଚ୍ଚ, କନ୍ୟାରାଶି ।

ପାଥୋଜ—କ୍ଲୀ. ବି. (ପାଥସ୍+ଜନ୍+ ଡ.ଅ) କମଳ ବା ପଦ୍ମ ।

ପାଥୋଦ—ପୁଂ. ବି. (ପାଥସ୍+ଦା+ କ.ଅ) ମେଘ, ଜଳଦ ।

ପାଥୋଧର—ପୁଂ. ବି. ମେଘ ।

ପାଥୋଧି—ପୁଂ. ବି. (ପାଥସ୍+ଧା+ ଅଧି.ଇ) ସମୁଦ୍ର, ଜଳନିଧି ।

ପାଥୋନ--ବି. କନ୍ୟାରାଶି ।

ପାଥୋନିଧି—ପୁଂ. ବି. (୬ତତ୍) ସମୁଦ୍ର, ଜଳନିଧି ।

ପାଥୋରୁହ—କ୍ଲୀ. ବି. (ପାଥସ୍ + ରୁହ +କ.ଅ) ଜଳଜ, ପଦ୍ମ ।

ପାଥ୍ୟ—ତ୍ରି. ବିଂ. (ପଥ + ଯ) ଆକାଶ- ବାସୀ,ବାୟୁରେ ରହୁବାବାଲା, ହୃଦୟା- କାଶରେ ଯାହା ହୁଏ ତାହାକୁ ପାଥ୍ୟ କହନ୍ତି ।

ପାଦ—ପୁଂ. ବି. (ପଦ୍ + ଣିଚ୍ + କ୍ୱିପ୍) ପାଦ ।

ପାଦ—ପୁଂ. ବି. (ପଦ୍+ଣ.ଅ) ଗୋଡ଼, ତଳିପା, ବୃକ୍ଷମୂଳ, ଚେର, ପର୍ବତର ମୂଳଦେଶ, ପ୍ରତ୍ୟନ୍ତ ପର୍ବତ, ଚରଣ, ଋକ୍‌ବେଦର ମନ୍ତ୍ର,ଚତୁର୍ଥାଂଶ, ଶ୍ଳୋକର ଚତୁର୍ଥାଂଶ, ଚତୁର୍ଥ ଭାଗ, ଶିବ,କିରଣ, ରଶ୍ମି, ଋଷିବିଶେଷ, କୌଣସି ବସ୍ତୁର ମୂଳଦେଶ, ପାହାଚ, ଚକ୍ରାସ୍ତ୍ରର ଗୁରି- ଗୋଟି ଅଙ୍ଗ, ପାଦର କ୍ରିୟା, ଗମନ ।

ପାଦକଟକ—ପୁଂ. ବି. (୬ତତ୍)ନୂପୁର, ହଂସକ, ବଳା, ପାହୁଡ଼ ।

ପାଦକୀଳିକା—ସ୍ତ୍ରୀ. ବି. ନୂପୁର, ପାଦର ଅଳଙ୍କାର ବିଶେଷ ।

ପାଦକୃଚ୍ଛ୍ର—ପୁଂ. ବି. ବ୍ରତବିଶେଷ ।

ପାଦକ୍ଷେପ—ପୁଂ.ବି. ପଦବିକ୍ଷେପ, ପାଦ ପକାଇବା ।

ପାଦଚତ୍ୱର—ପୁଂ.ବି.ଶ୍ଳୀପଦ,ଗୋଦର ।

ପାଦଗତ—ବିଂ. ( ୨ତତ୍ ) ପଦାଶ୍ରିତ, ପାଦତଳେ ପଡ଼ିଥିବା (ବ୍ୟକ୍ତି) ।

ପାଦଗୟା—ଗ୍ରା.ବି.ହିନ୍ଦୁ ତୀର୍ଥସ୍ଥାନବିଶେଷ

ପାଦଗାମୀ—ପୁଂ. ବିଂ. (ପାଦ+ଗମ୍+ କ.ଇନ୍) ପାଦଚାରୀ ।

ପାଦଗ୍ରନ୍ଥି—ପୁଂ.ବି.ବଳାଗଣ୍ଠି ,ଗୋଇଠି ।

ପାଦଗ୍ରହଣ—କ୍ଲୀ. ବ. ( ୬ତତ୍ ) ଅଭି-ବାଦନ, ପାଦସ୍ପର୍ଶ ପୂର୍ବକ ପ୍ରଣାମ ।
ପାଦଚତ୍ୱର—ପୁଂ. ବ. ଛାଗ, ସୈକତ, ପିପ୍ପଳ, କରକ, ଯେଉଁମାନେ କେବଳ ପରର ଦୋଷ କହନ୍ତି ।
ପାଦଚାର—ବ. (ପାଦ+ଚର୍+ଘ.ଅ) ଚାଲିବା, ଚାଲିବୁଲି, (ଜ୍ୟୋତିଷ)ଗ୍ରହ-ମାନଙ୍କର ଆହ୍ନିକ ଭୋଗ ।
ପାଦଚାରୀ—ପୁଂ. ବ. ( ପାଦ + ଚର୍ + ଇନ୍) ପଦାତିକ, ( ବିଂ ) ପଦଦ୍ୱାରା ଗମନଶୀଳ, ଚାଲୁଥିବା ।
ପାଦଚିହ୍ନ—କ୍ଲୀ. ବ.(୬ତତ୍)ପାଦଦ୍ୱୟର ଚିହ୍ନ ବା ଦାଗ ।
ପାଦଛୁଇଁବା—ଗ୍ରା. କ୍ରି. ପାଦରେ ହାତ-ଦେଇ ଶପଥ କରିବା ।
ପାଦଜ—ପୁଂ. ବ. (ପାଦ+ଜନ୍+କ. ଅ) ଶୂଦ୍ରଜାତି,(ବିଂ) ପାଦୋଦ୍ଭବମାତ୍ର, ପାଦରୁ ଜାତ ।
ପାଦଜଳ—କ୍ଲୀ. ବ. (କ.ଧା)ପାଦୋଦକ, ଚତୁର୍ଥାଂଶମିତ ଜଳଯୁକ୍ତ ତକ୍ର,ଘୋଳ-ଦହି ।
ପାଦଜାହ—କ୍ଲୀ. ବ. ପାଦମୂଳ ।
ପାଦଟୀକା—ବ. ପୁସ୍ତକାଦିର ପୃଷ୍ଠାର ନିମ୍ନ ଦେଶରେ ଲିଖିତ ଟିପ୍ପଣି ।
ପାଦତଳ—କ୍ଲୀ. ବ. (୬ତତ୍) ଚରଣର ଅଧୋଭାଗ, ତଳପା, ଗୋଡ଼ର ତଳ, (ଗ୍ରା.ବ) ପାଦର ନିକଟସ୍ଥ ଭୂଭାଗ ।
ପାଦତ୍ର—ତ୍ରି. ବିଂ. (ପାଦ+ତ୍ରୈ+ଅ ପାଦରକ୍ଷକ, (କ୍ଲୀ. ବ) କଠଉ,ପାଦୁକା
ପାଦତ୍ରାଣ—ବ.(ବ.ବ୍ରୀ)ପାଦୁକା,ଜୋତା, କଠଉ, ମୋଜା ।
ପାଦଦାରିକା—ସ୍ତ୍ରୀ.ବ.ପାଦତଳ ଫାଟିବା ରୋଗ ବିଶେଷ ।
ପାଦଦେଶ—ବ.ପଦ, ଚରଣ, ପର୍ବତର ବା ବୃକ୍ଷର ତଳଦେଶ, ନିମ୍ନାଂଶ ।
ପାଦଧାବନିକା—ସ୍ତ୍ରୀ. ବ. ପାଦ ଧୌତ-କରଣାର୍ଥ ବାଲି ବା ମାଟି ।
ପାଦଧୂଳି—ବ. ପାଦରଜ ଦେଖ ।
ପାଦନଧୃତ—ବ. ଗାସ୍ତୁ ଜୀବିଶେଷ ।
ପାଦନ୍ୟାସ—ପୁଂ. ବ. (୬ତତ୍) ପାଦ ବିକ୍ଷେପ, ନୃତ୍ୟ ବା ନାଚ ।
ପାଦପ—ପୁଂ. ବ. (ପାଦ+ପା+କ.ଅ) ବୃକ୍ଷ, ପାଦପୀଠ, ଜୋତା ।
ପାଦପଖଣ୍ଡ—କ୍ଲୀ. ବ. (ପାଦପ+ଖଣ୍ଡ) ପାଦପ ସମୂହ ।
ପାଦପଡ଼ିବା—ଗ୍ରା. ବ. ଗମନ କରିବା, କୌଣସି ସ୍ଥାନରେ କୌଣସି ବ୍ୟକ୍ତିର ଉପସ୍ଥିତି, ପଦ୍ୟରେ ଦୁଇ ଧାଡ଼ିର ସାମଞ୍ଜସ୍ୟ ହେବା ।
ପାଦପଦ୍ଧତି—ସ୍ତ୍ରୀ. ବ. ପଥ,ଯେଉଁଠାରେ ପାଦଚିହ୍ନ ପଡ଼ିଅଛି । [ ଚରଣପଦ୍ମ ।
ପାଦପଦ୍ମ—କ୍ଲୀ.ବ.ପଦ୍ମପରି ସୁନ୍ଦର ପଦ,
ପାଦପା—ସ୍ତ୍ରୀ. ବ. ପାଦୁକା ।
ପାଦପାଶ—ପୁଂ. ବ. ଖେପାଦଉଡ଼ି, ଅଶ୍ୱଦାମ ରଜ୍ଜୁ ।
ପାଦପୀଠ—କ୍ଲୀ. ବ. (କ.ଧା) ପାଦରଖି-ବାର ଆସନ । [ପାଦପୀଠ ।
ପାଦପୀଠିକା—ସ୍ତ୍ରୀ. ବ. ନାପିତାଦି ଶିଳ୍ପ,
ପାଦପୂଜା—ବ. (୬ତତ୍)ସମ୍ମାନାର୍ହ ବ୍ୟକ୍ତି ବା ଦେବତାଙ୍କର ଚରଣରେ ଅର୍ପିତ ପୂଜା, (ଲ.ଅର୍ଥ) ବିଶେଷ ସମ୍ମାନ ।
ପାଦପୂରଣ—କ୍ଲୀ. ବ. ପାଦର ପୂରଣ, ଶ୍ଳୋକର ଏକ ବା ତିନିଟି ଚରଣ ଶୁଣି ବାକି ଚରଣଙ୍କୁ ରଚନା କରିବା ।
ପାଦପ୍ରକ୍ଷାଳନ—କ୍ଲୀ. ବ.(୬ତତ୍)ଚରଣ ଧୌତକରଣ, ଗୋଡ଼ ଧୋଇଦେବା ।
ପାଦପ୍ରତିଷ୍ଠାନ—କ୍ଲୀ. ବ. ପାଦପୀଠ, ପାଦାସନ, ପୀଢ଼ା ।
ପାଦପ୍ରଧାରଣ—କ୍ଲୀ. ବ. (ପାଦ+ପ୍ର+ଧୃ+ଣିଚ୍+ଅନ) ପାଦୁକା ।
ପାଦପ୍ରହାର—ପୁଂ. ବ. (୩ତତ୍) ପଦା-ଘାତ, ଗୋଇଠା, ନାତ ।
ପାଦବନ୍ଧ—ପୁଂ. ବ. ପାଦଶୃଙ୍ଖଳ,ଯଦ୍ଦ୍ୱାରା ପାଦ ବନ୍ଧାଯାଏ ।
ପାଦବନ୍ଧନ—କ୍ଲୀ. ବ. ଗୋ ମହିଷାଦିର ବନ୍ଧନ, ଗୋ ମହିଷାଦିର ପାଦବନ୍ଧନ ଦ୍ରବ୍ୟ ।
ପାଦବଲ୍ମୀକ—ବ. ପାଦଗଣ୍ଡିର ଦେଖ ।
ପାଦବିକ—ପୁଂ. ବ. ( ପଦବୀ+ଇକ ) ପାନ୍ଥ, ପଥିକ, ପର୍ଯ୍ୟଟକ ।
ପାଦଭାଗ—ପୁଂ. ବିଂ. ଯେ ଚତୁର୍ଥାଂଶ ଭୋଗ କରେ, ଚରଣର ଅଧୋଭାଗ, ଚତୁର୍ଥାଂଶ ।
ପାଦଭାକ୍—ତ୍ରି. ବିଂ.ପାଦ ଭଜନକାରୀ, ଯେ ସୁଳ ଅଂଶ ପାଇପାରେ ।
ପାଦଭୂଜ—ପୁଂ. ବ. ଶିବ ।
ପାଦମୁଦ୍ରା—ସ୍ତ୍ରୀ. ବ. ପଦଚିହ୍ନ, ପାଦର ଦାଗ ।
ପାଦମୂଳ—କ୍ଲୀ.ବ.ଚରଣର ଅଧୋଭାଗ, ଗୋଇଠି, ଚରଣ ସମୀପ, ପ୍ରତ୍ୟନ୍ତ ପର୍ବତର ଅଧୋଭାଗ ।
ପାଦରକ୍ଷ—ତ୍ରି. ବିଂ. ଚରଣ ରକ୍ଷକ ପାଦୁକାଦି,ରଥଚରଣ ରୂପ ଚକ୍ର,ରକ୍ଷକ
ପାଦରକ୍ଷକ—ବ. ( ୬ତତ୍ ) ପାଦତ୍ରାଣ, ପାଦୁକା, ଯୋତା । [ ଯୋତା ।
ପାଦରକ୍ଷଣ—କ୍ଲୀ. ବ. (ବ.ବ୍ରୀ) ପାଦୁକା,
ପାଦରଜସ—କ୍ଲୀ. ବ. ପାଦଧୂଳି ।
ପାଦରଜ୍ଜୁ—ସ୍ତ୍ରୀ. ବ. ହସ୍ତୀ ପାଦ ବନ୍ଧନ ରଜ୍ଜୁ, ଗୋଡ଼ରେ ବନ୍ଧାଯିବା ପଛି ।
ପାଦରଥ—ବ. (୬ତତ୍) ପାଦୁକା ।
ପାଦରଥୀ—ସ୍ତ୍ରୀ. ବ. ପାଦୁକା ।
ପାଦରି—ଖ୍ରୀଷ୍ଟାନମାନଙ୍କର ପୁରୋହିତ ବା ଧର୍ମଯାଜକଙ୍କ ନାମ ।
ପାଦରୋଗ—ପୁଂ. ବ. ପାଦର ରୋଗ-ବିଶେଷ ।
ପାଦରୋହ—ପୁଂ. ବ. ବଟବୃକ୍ଷ ।
ପାଦରୋହଣ—ପୁଂ. ବ. ବଟବୃକ୍ଷ ।
ପାଦଲିପ୍ତ—ଜଣେ ବିଖ୍ୟାତ ଜୈନ ଗ୍ରନ୍ଥକାର । [ ଅଲତାଦି ।
ପାଦଲେପ—ପୁଂ. ବ. ପାଦର ପ୍ରଲେପ,
ପାଦବଲ୍ମୀକ—ପୁଂ. ବ. ଶ୍ଲୀପଦ ରୋଗ, ଗୋଦର ।
ପାଦବିକ—ପୁଂ. ବ. ( ପଦବୀ+ଇକ ) ପଥିକ, ପର୍ଯ୍ୟଟକ ।
ପାଦବିକ୍ଷେପ—ପୁଂ. ବ. (୬ତତ୍) ପାଦ-ପକାଇବା, ପାଦ ପ୍ରକ୍ଷେପ ।
ପାଦବିଗ୍ରହ—ପୁଂ. ବ. ଅବଯୁବ ଗ୍ରହଣ,

(ବି°) ପାଦମିତ ଅବୟବଯୁକ୍ତ ।

ପାଦବଦାରିକା—ସ୍ତ୍ରୀ. ବି. ଅଶ୍ୱର ପଦ ରୋଗବିଶେଷ ।

ପାଦବିରଜସ୍—ସ୍ତ୍ରୀ.ବି. (ବ.ବ୍ରୀ)ପାଦୁକା, ଦେବତା ।

ପାଦବୀଥୀ—ସ୍ତ୍ରୀ. ବି. ପାଦପୀଠ ।

ପାଦବେଷ୍ଟନକ—ପୁଂ. ବି. ମୋଜା ।

ପାଦବ୍ୟଥା—ବି. (୬ତତ୍)ପାଦ ପୀଡ଼ା, ଗୋଡ଼ରେ ଜନ୍ମିବା ରୋଗ ।

ପାଦବ୍ୟାଖ୍ୟାନ—ତ୍ରି.ବି°.ପଦ ବ୍ୟାଖ୍ୟାନ ସମ୍ବନ୍ଧୀୟ ।

ପାଦଶଲାକା-ସ୍ତ୍ରୀ.ବି.ଶଲାକାବତ୍,ପାଦାସ୍ଥି ।

ପାଦଶସ୍—ଅବ୍ୟ.ପାଦେ ପାଦେ, ପାଦଶବ୍ଦାର୍ଥ ।

ପାଦଶାଖା—ସ୍ତ୍ରୀ.ବି.ପାଦାଙ୍ଗୁଳି, ପାଦାଗ୍ର।

ପାଦଶିଷ୍ଟଜଳ—କ୍ଲୀ.ବି.ଚତୁର୍ଥାଂଶାବଶିଷ୍ଟ ପକ୍ୱ ଜଳ, ଯେଉଁ ଜଳ ଗରମ କଲେ ଚାରିଭାଗରୁ ଏକଭାଗ ଥାଏ ।

ପାଦଶୀଳୀ—ସ୍ତ୍ରୀ. ବି. ନୂପୁର ।

ପାଦଶୁଶ୍ରୂଷା—ସ୍ତ୍ରୀ. ବି. (୬ତତ୍) ପାଦସେବା ।

ପାଦଶୈଳ—ପୁଂ. ବି.(କ.ଧା)ବଡ଼ ପର୍ବତର ପାଦଦେଶରେ ଥିବା ଛୋଟ ପାହାଡ଼, ପ୍ରତ୍ୟନ୍ତ ପର୍ବତ ।

ପାଦଶୋଥ—ପୁଂ. ବି. ପାଦଫୋଲା ରୋଗବିଶେଷ ।

ପାଦଶୌଚ—କ୍ଲୀ. ବି. ପାଦ ପ୍ରକ୍ଷାଳନ, ପାଦ ଧୌତ । [ ଦେଖ ।

ପାଦସମ୍ବାହନ—ବି.(୬ତତ୍) ପାଦସେବା

ପାଦସେବା—ଗ୍ରା.ବି. ଗୋଡ଼ ଘଷିବା ବା ମୋଡ଼ିବା ।

ପାଦସ୍ଫୋଟ—ପୁଂ. ବି. ଗୋଇଠିରେ ଉଠିବା ବଥ, ଫାଟଅଣ୍ଟୁଣ ।

ପାଦାଗ୍ର—କ୍ଲୀ. ବି.(୬ତତ୍)ଚରଣାଗ୍ରଭାଗ, ପ୍ରପଦ ।

ପାଦାଘାତ—ପୁଂ.ବି.(୬ତତ୍)ପଦାଘାତ।

ପାଦାଙ୍ଗଦ—କ୍ଲୀ. ବି. (ପାଦ+ଅଙ୍ଗ+ଦା+କ.ଅ) ନୂପୁର ।

ପାଦାଙ୍ଗୁଳି--ବି(୬ତତ୍) ଗୋଡ଼ରଆଙ୍ଗୁଠି

ପାଦାଙ୍ଗୁଳୀୟକ--କ୍ଲୀ.ବି. ପାଦର ଅଙ୍ଗୁଳି ।

ପାଦାଙ୍ଗୁଷ୍ଠ—ବି. (୬ତତ୍)ଗୋଡ଼ର ବୁଢା ଆଙ୍ଗୁଠି ।

ପାଦାତ୍—ପୁଂ.ବି. (ପଦ+ଅତ୍+କ୍ୱିପ୍) ପଦାତି, (ପଦ୍+ଅଦ୍+କ୍ୱିପ୍) ବୃଷ ।

ପାଦାତ—ବି (ପାଦ+ଅତ୍+କ.ଅ) ପଦାତି ସମୂହ, ପଦାତି ।

ପାଦାତି—ପୁଂ. ବି. (ପାଦ+ଅତ୍+କ. ଇ) ପଦାତିକ ସୈନ୍ୟ ।

ପାଦାତିକ—ପୁଂ. ବି. ପଦାତି ଦେଖ ।

ପାଦାନ୍—ଯା. ବି. ପାଦପୀଠ, ଗାଡ଼ି ଇତ୍ୟାଦିର ଉପରକୁ ଉଠିବା ନିମନ୍ତେ ଯେଉଁ ପଟା ଉପରେ ପାଦ ଦେବାକୁ ହୁଏ । [ ପଦାନୁସୃତ ।

ପାଦାନୁଧ୍ୟାତ—ବି.ପିତୃ ପଦାନୁଚିନ୍ତନ,

ପାଦାନ୍ତ—ପୁଂ.ବି. (୬ତତ୍) ପାଦସମୀପ, ପାଦର ନିକଟ ।

ପାଦାନ୍ତର—କ୍ଲୀ.ବି. ପଦପ୍ରାନ୍ତ, ପାଦର ଶେଷଭାଗ । [ ନିକଟ ।

ପାଦାନ୍ତିକ—କ୍ଲୀ.ବି. ପାଦସମୀପ,ପାଦର

ପାଦାଭ୍ୟଙ୍ଗ—ପୁଂ. ବି. ପାଦଦ୍ୱୟରେ ତୈଳମର୍ଦ୍ଦନ ।

ପାଦାମ୍ବୁ—କ୍ଲୀ. ବି. ତକ୍ର, ଘୋଳଦହି,

ପାଦାମ୍ଭଃ—କ୍ଲୀ.ବି. ପାଦଶୌଚ ଜଳ ।

ପାଦାରକ—ପୁଂ.ବି. (ପାଦ+ର+ଅକ) ପୋତାଶ୍ରୟ ନୌକାର ଅବୟବବିଶେଷ ।

ପାଦାର୍ଦ୍ଧ—କ୍ଲୀ. ବି. ପାଦର ଅର୍ଦ୍ଧେକ, ଆଠଭାଗରୁ ଏକଭାଗ ।

ପାଦାଳିକ—ପୁଂ.ବି. ଧୁନ୍ଧୁମାର ।

ପାଦାଳିନ୍ଦ—ବି. (୬ତତ୍)ନୌକା ।

ପାଦାଳିନ୍ଦୀ—ସ୍ତ୍ରୀ.ବି. ନୌକା ।

ପାଦାବର୍ତ୍ତ—ପୁଂ. ବି. କୂପାଦିରୁ ଜଳ ତୋଳିବାର ଯନ୍ତ୍ର । [ ଳନ ।

ପାଦାବସେଚନ—କ୍ଲୀ. ବି. ପାଦ ପ୍ରକ୍ଷା-

ପାଦାବିକ—ପୁଂ.ବି. ପଦାତି ।

ପାଦାଷ୍ଠୀଳ—ପୁଂ.ବି. ପାଦର ଗୋଇଠି, ପାଦଗ୍ରନ୍ଥି, କଲାଗଣ୍ଠି ।

ପାଦାସନ—କ୍ଲୀ. ବି. ପାଦ ରଖିବାର ଆସନ, ଚୌକି, ପୀଢ଼ା ।

ପାଦିକ—ତ୍ରି. ବି°. (ପାଦ୍.+ଇକ)ଚତୁର୍ଥାଂଶ ବୃତ୍ତିଯୁକ୍ତ, ଚତୁର୍ଥ, (ସ୍ତ୍ରୀ)ପାଦିକା

ପାଦୀ—ପୁଂ. ବି°. (ପାଦ+ଇନ୍) ଚତୁର୍ଥାଂଶ ଭାଗୀ, (ସ୍ତ୍ରୀ) ପାଦିନୀ, (ପୁଂ.ବି) ମକର କୁମ୍ଭୀରାଦି ଚରଣବିଶିଷ୍ଟ ଜଳଜନ୍ତୁ । [ ଯୋତା ।

ପାଦୁ—ସ୍ତ୍ରୀ. ବି. ( ପାଦ + ଉ ) ଗମନ,

ପାଦୁକ—ତ୍ରି .ବି°. (ପଦ୍+ଣିଚ୍+ଉକ) ଗମନଶୀଳ, ( ପାଦ+ଉକ ) ଯେଉଁ ଶିଶୁର ପାଦଦ୍ୱୟ ପ୍ରଥମେ ମାତୃଗର୍ଭରୁ ବାହାରିଥାଏ, ( ଗ୍ରା.ବି ) ଦେବତାଙ୍କ ସ୍ନାନ ଜଳ, ବ୍ରାହ୍ମଣ ବା ଗୁରୁଜନଙ୍କ ପାଦଧୌତ ଜଳ ।

ପାଦୁକା—ସ୍ତ୍ରୀ.ବି. (ପାଦ+କ.ଉ+କ-ଆ) କଠଉ, ଜୋତା ।

ପାଦୁକାକାର—ପୁଂ.ବି. ଚର୍ମକାର,ମୋଚି, ଜୋତା ପ୍ରସ୍ତୁତକାରୀ । [ ଜୋତା ।

ପାଦୂ—ସ୍ତ୍ରୀ. ବି. ( ପଦ୍+ଉ ) ପାଦୁକା,

ପାଦୂକୃତ୍—ପୁଂ.ବି. (ପାଦୂ+କୃ+କ୍ୱିପ୍) ଚର୍ମକାର, ମୋଚୀ ।

ପାଦୋଦକ—କ୍ଲୀ.ବି.ଚରଣଧୌତ ଜଳ, ଚରଣାମୃତ, ପାଦୁକ । [ ସାପ ।

ପାଦୋଦର—ପୁଂ.ବି. ( ବ.ବ୍ରୀ ) ସର୍ପ,

ପାଦୋନ—ବି°. (୩ତତ୍)ଚତୁର୍ଥାଂଶହୀନ, ଚାରିଭାଗରୁ ଏକଭାଗ କମ୍,ପୌନେ ।

ପାଦୋପଜୀବୀ—ପୁଂ.ବି. ଦୂତ, ସନ୍ଦେଶବାହକ ।

ପାଦ୍ୟ—କ୍ଲୀ. ବି.( ପାଦ+ଯ ) ଆଗନ୍ତୁକ ମାନ୍ୟବ୍ୟକ୍ତିଙ୍କ ପାଦ ପ୍ରକ୍ଷାଳନାର୍ଥଜଳ, (ବି°) ପାଦସମ୍ବନ୍ଧୀୟ ।

ପାଦ୍ରି—ଯା. ବି. ପାଦରୀ, ଖ୍ରୀଷ୍ଟାନ୍ ଧର୍ମଯାଜକ, ଖ୍ରୀଷ୍ଟାନଧର୍ମ ପ୍ରଚାରକ ।

ପାନ—କ୍ଲୀ. ବି. (ପା+ଭା.ଅନ)ଜଳୀୟ ପଦାର୍ଥର ଗଳାଧଃକରଣ, ଶୋଣୋତ୍କ୍ଷେପନ, ପକାଇବା, ପିଇବା,ଭଜନ, ରକ୍ଷଣ, ଜପ, (ଅଧି+ଅନ)ପାନପାତ୍ର, ଶୁଣ୍ଡୀଶାଳ, ଜଳନାଳି, ନିଃଶ୍ୱାସ, ପାନୀୟ ବସ୍ତୁ, ମଦ୍ୟାଦି ପାନ, (ଗ୍ରା.ବି) ଦୀର୍ଘାୟୁ ଲତା ବିଶେଷର ପତ୍ର,ତାମ୍ବୁଳ,

ପ୍ରା.(ବାମଣ୍ଡା ଆଠମଲକ)ବ.ଗଛର ପତ୍ର ।
ପାନଅଇଡ଼(ର)—ଗ୍ରା. ବ. ଏକପ୍ରକାର ଔଷଧି ଲତା, ନାଗଦଅଣା ।
ପାନକ—କ୍ଲୀ.ବ. (ପାନ+କ)ପାନଦ୍ରବ୍ୟ ବିଶେଷ, ପ୍ରପାନକ, ପଣା, ସରବତ ।
ପାନଖିଲ(ଲି)—ଗ୍ରା. ବ. ଗୁଆ ମସଲା ଆଦିରେ ପୂର୍ଣ୍ଣକର ମୋଡ଼ା ଯାଇଥିବା ପାନପତ୍ରର କାହାଲି ।
ପାନଗୋଷ୍ଠୀ—ବ. ମଦ୍ୟପାନ ସଭା, ଭୈରବୀ ଚକ୍ର, ମଦୁଆଙ୍କ ଆଡ୍ଡା ।
ପାନଟେକା—ପ୍ରା.(ସିଂହଭୂମ) ବ.ବିବାହ ପୂର୍ବରୁ ବରପକ୍ଷ ଓ କନ୍ୟାପକ୍ଷ ବ୍ୟକ୍ତିଙ୍କ ମଧ୍ୟରେ ହେବା ମହାପ୍ରସାଦ ବନ୍ଧନ ।
ପାନଠ—ବିଂ. ପାନକୁଶଳ ।
ପାନଡବା—ଗ୍ରା. ବ. ଯେଉଁ ଧାତୁମୟ ଦୁଇଫାଳିଆ ପାତ୍ରରେ ଖିଲପାନ ରଖା-ଯାଏ, ପାନବଟା ।
ପାନଡ଼ୁଆ—ଗ୍ରା. ବ. ମିଷ୍ଟାନ୍ନ ବିଶେଷ ।
ପାନଦୋଷ—ବ.ଅତିରିକ୍ତ ମଦ୍ୟ ପାୟିତା, ମଦୁଆଗିରି ।
ପାନପ—ବିଂ. ( ପାନ+ପା+କ.ଅ ) ସୁରାପାୟୀ, ମଦ୍ୟପ, ମଦୁଆ ।
ପାନପାତ୍ର—କ୍ଲୀ. ବ. (କ.ଧା)ମଦ୍ୟପାନ ପାତ୍ର, ପାନଭାଜନ, ଗିଲାସ, ପାଣି ପିଇବାର ପାତ୍ର ।
ପାନପିକ—ଗ୍ରା. ବ. ଖିଲପାନ ଖାଇବା ଲୋକର ପାଟିରୁ ବାହାରିବା ପାନରସ ମିଶ୍ରିତ ଛେପ ।
ପାନବଟା—ଗ୍ରା. ବ. ପାନଡବା ଦେଖ ।
ପାନବଟୁଆ—ଗ୍ରା.ବ.ପାନଭାଙ୍ଗି ଖାଇବାର ଉପକରଣ ଆଦି ରଖାଯିବା ମୁଣି ।
ପାନବଣିକ—ବ. ଶୌଣ୍ଡିକ, ଶୁଣ୍ଢୀ ।
ପାନବରଜ—ଗ୍ରା. ବ. ଯେଉଁ ଗୁମ୍ଫା ମଣ୍ଡପମଧ୍ୟରେ ପାନ ଫସଲ ଲଗିଥାଏ ।
ପାନବରଜି—ଗ୍ରା.ବ.ଯେଉଁ ଲୋକ ପାନ ବରଜକର ପାନ ବ୍ୟବସାୟ କରେ ।
ପାନବଡ଼ା—ପ୍ରା.(ସମ୍ବ.)ବ.ପାନଖିଲ ଦେଖ ।
ପାନବଡ଼ିଆ—ଗ୍ରା. ବ. ପାନଖିଲ ।
ପାନଭାଣ୍ଡ—କ୍ଲୀ. ବ.(୬ତତ୍ପୁ)ପାନପାତ୍ର ।
ପାନଭୂମି—ସ୍ତ୍ରୀ. ବ. ଯେଉଁ ସ୍ଥାନରେ ବସି ମଦ୍ୟପାନ କରନ୍ତି,ମଦଖାଇବାର ଆଡ୍ଡା ।
ପାନମଙ୍ଗଳ—କ୍ଲୀ.ବ.ପାନଗୋଷ୍ଠୀ ଦେଖ ।
ପାନମଦ—ପୁଂ. ବ. ନିଶା ।
ପାନମହୁରି—ଗ୍ରା. ବ. ଧନ୍ୟାଦି ବର୍ଗର ବର୍ଷାୟୁ ଶାକ ବିଶେଷ ।
ପାନରି—ଗ୍ରା. ବ. ତାମ୍ବୁଲ ବ୍ୟବସାୟୀ ।
ପାନଲୋଡ଼ା—ଗ୍ରା. ବ. ପାନ ଲତାରୁ ପାନ ଛିଣ୍ଡାଇବା ପ୍ରକ୍ରିୟା ।
ପାନଲୋଡ଼ିବା—ଗ୍ରା. କ୍ରି. ପାନଲତାରୁ ପାନ ତୋଳିବା ।
ପାନଶୌଣ୍ଡ—ପୁଂ. ବିଂ. ଅତ୍ୟନ୍ତ ପାନ-ରତ, ମଦୁଆ, ମଦ୍ୟପାନାସକ୍ତ ।
ପାନସ—କ୍ଲୀ. ବ. (ପନସ+ଅ) ପନସ-ଭବମଦ୍ୟ, (ବିଂ)ପନସସମ୍ବନ୍ଧୀୟ, (ଗ୍ରା. ବ) କାଚ, ମେଘନାଳ,କାଗଜ ନିର୍ମିତ ଦୀପାଧାର ବିଶେଷ, ପଣସୁଆ ।
ପାନାଗାର—ପୁଂ.ବ ପାନଗୃହ, ଯେଉଁ ଘରେ ମଦ୍ୟପାନ କରଯାଏ ।
ପାନାତ୍ୟୟ—ବ. ଅତ୍ୟଧିକ ମଦ୍ୟପାନ ଯୋଗୁଁ ଜନ୍ମିବା ରୋଗ ବିଶେଷ ।
ପାନାର୍ଥୀ—ପୁଂ. ବିଂ. ( ପାନ+ଅର୍ଥ+ ଇନ୍)ଯେ ପିଇବାପାଇଁ ଇଚ୍ଛାକରୁଥାଏ ।
ପାନାସକ୍ତ—ପୁଂ.ବିଂ.ପାନଶୌଣ୍ଡ ଦେଖ ।
ପାନି—ପ୍ରା. ( ସମ୍ବଲପୁର ଓ ବସ୍ତର ) ବ. ପାଣି, ଜଳ ।
ପାନିଆ—ଗ୍ରା.ବ (ଫ-ପବେଣୀ)କଙ୍କତିକା, ଚଉଣୀ, ଲୁଗା ବୁଣିବାର କଙ୍କତିକା ସଦୃଶ ଯନ୍ତ୍ର ବିଶେଷ, କାନ୍ଧ ଓ ଝୁଆ-ମୁଣ୍ଡି ଭିତରେ ଥିବା ତ୍ରିକୋଣ ହାଡ଼ ।
ପାନିକ—ପୁଂ.ବ. (ପାନ+ଇକ) ପାନ-ବିକ୍ରୟକାରୀ, ଶୌଣ୍ଡିକ, ଶୁଣ୍ଢି ।
ପାନିଲ—କ୍ଲୀ.ବ.(ପାନ+ଇଲ)ପାନପାତ୍ର ।
ପାନୀୟ—କ୍ଲୀ. ବ. (ପାନ+ମି.ଅନୀୟ) ପନାର୍ହଦ୍ରବ୍ୟ, ସରବତ, ଜଳ, ( ବିଂ ) ପାନଯୋଗ୍ୟ, ପେୟ, ରକ୍ଷଣୀୟ ।
ପାନୀୟକାକଳ—ପୁଂ. ବ. ପକ୍ଷି ବିଶେଷ, ପାଣିକୁଆ ।
ପାନୀୟକୁକ୍କୁଟ—ପୁଂ. ବ. ଜଳକୁକ୍କୁଟ, ଡାହୁକ ।
ପାନୀୟଚୂର୍ଣ୍ଣିକା—ସ୍ତ୍ରୀ. ବ. ବାଲୁକା ।
ପାନୀୟନକୁଳ—ପୁଂ.ବ.ଉଦବିଡାଲ,ଓଧ ।
ପାନୀୟପୃଷ୍ଠଜ—ପୁଂ.ବ.କୁମ୍ଭୀ,ବୋରଢ଼ଙ୍କି ।
ପାନୀୟଫଳ—କ୍ଲୀ. ବ. (କ.ଧା) ଜଳକନ୍ଦ ଫଳ ବିଶେଷ, ପାଣିଫଳ, ଶିଙ୍ଗଡ଼ା ।
ପାନୀୟଶାଳା—ବ.ପାଣି ରଖିବାର ଘର, ଜଳସତ୍ର ।
ପାନୀୟାମଳକ—କ୍ଲୀ. ବ. ପାଣିଅଁଳା ।
ପାନୀୟାଳୁ—ପୁଂ. ବ. ଗୟାଆଳୁ, ଶଙ୍ଖ-ସାରୁ ।
ପାନୀୟାମ୍ଳା—ସ୍ତ୍ରୀ. ବ. ବଲ୍ୱଜା ।
ପାନୁ—ପ୍ରା. (ଗଞ୍ଜାମ) ବ. ଟାକ୍ସ, ଟିକସ, ଶୁଳ୍କ, ମାସୁଲ ।
ପାନ୍ଥ—ପୁଂ. ବ. (ପଥନ୍+ଅ)ବାଟୋଇ, ପଥିକ,ବିଦେଶ ବାସଯୋଗୁଁ ସ୍ତ୍ରୀ ବିଚ୍ଛେଦ ଦୁଃଖୀ ବ୍ୟକ୍ତି ।
ପାନ୍ଥନିବାସ—ପୁଂ.ବ. (୬ତତ୍ପୁ) ପଥିକ-ମାନେ ରହିବାର ଘର,ଧର୍ମଶାଳା,ଚଟି ।
ପାନ୍ଥପାଦପ—ବ.ମାଡ଼ାଗାସ୍କର ଆଦି ଦ୍ୱୀପ ପୁଞ୍ଜରେ ଜନ୍ମିବା କଦଳୀଜାତୀୟ ଏକପ୍ରକାର ଗଛ ।
ପାନ୍ଥଶାଳା—ସ୍ତ୍ରୀ.ବ.(୬ତତ୍ପୁ)ପଥିକମାନ-ଙ୍କର ଆହାରାଦି କରିବାର ସ୍ଥାନ, ଚଟି ।
ପାପଚପିଠା—ପ୍ରା.(ସିଂହଭୂମ)ବ. ଗୁଡ଼ଭାଗ କମଥିବା ଖୁବ୍ ମୋଟା କାକରପିଠା ।
ପାପ—କ୍ଲୀ. ବ. (ପା+ଅପା.ପ)ପାତକ, ମନ୍ଦକର୍ମ, ଦୁଷ୍କୃତ, ଆପଦ, ଦୁରଦୃଷ୍ଟ, କଳୁଷ,ଅନିଷ୍ଟ, ବଧ,ହତ୍ୟା,(ବିଂ)ପାପ+ ଅ)ପାପୀ, ପାପିଷ୍ଠ, ଅନିଷ୍ଟକର, ଦୁଷ୍ଟ, ଖଳ, ଅଶୁଭ, ଅମଙ୍ଗଳ ଜନକ, (ଗ୍ରା. ବ) ବିରକ୍ତିକର ବିଷୟ ବିରକ୍ତିର କାରଣ, କଳଙ୍କ ।
ପାପକ—କ୍ଲୀ. ବ.(ପାପ+କ)ପାପ,(ବିଂ) ପାପଯୁକ୍ତ ।
ପାପକର୍ମ—ବ. (ପାପ+କର୍ମନ୍) (କ.ଧା) ମନ୍ଦକର୍ମ, ପାପକାର୍ଯ୍ୟ, ନିଷିଦ୍ଧ କର୍ମ ।
ପାପକର୍ମୀ—ବିଂ. (ଦ.କୃ) ପାପୀ ।

ପାପକାରୀ—ବିଂ. ( ପାପ+କୃ+ଇନ୍ ) ପାପକାର୍ଯ୍ୟକାରୀ, ପାପୀ ।

ପାପକୃତ୍—ବି.ବିଂ.(ପାପ+କୃ+କ.କ୍ୱିପ୍) ପାପକର୍ତ୍ତା, ଯେ ପାପାନୁଷ୍ଠାନ କରେ ।

ପାପକୃତ୍ୟା—ସ୍ତ୍ରୀ. ବି. ପାପକରଣ ।

ପାପକ୍ଷୟ—ପୁଂ. ବି.(୬ତତ୍)ପାପର କ୍ଷୟ, ପାପନାଶ, (କ୍ଳୀ. ବି) (ବ.ବ୍ରୀ) ତୀର୍ଥ ।

ପାପଗର୍ଭ—ବି.(କ.ଧା)ପାପପ୍ରଣୟ ଜନିତ ଗର୍ଭାବସ୍ଥା ।

ପାପଗ୍ରହ—ପୁଂ. ବି. କୃଷ୍ଣାଷ୍ଟମୀଠାରୁ ଶୁକ୍ଲାଷ୍ଟମୀ ପର୍ଯ୍ୟନ୍ତ ଦେଖାଯିବା ଚନ୍ଦ୍ର, ଅର୍ଦ୍ଧଚନ୍ଦ୍ର, କୁଜ, ରାହୁ, ଶନି ଓ ରବି ଏହିମାନେ ପାପଗ୍ରହ ।

ପାପଘ୍ନ—ପୁଂ.ବିଂ.(ପାପ+ହନ୍+କ୍ୱିପ୍) ଯାହା ମନୁଷ୍ୟର ପାପନାଶକରେ,(ସ୍ତ୍ରୀ ପାପଘ୍ନୀ, (ବି) ଗଣି, ତିଳ ।

ପାପଘ୍ନୀ—ସ୍ତ୍ରୀ. ବିଂ. ( ପାପଘ୍ନ+ଈ ) ପାପଘ୍ନର ସ୍ତ୍ରୀଲିଙ୍ଗ, (ବି) ତୁଳସୀ ।

ପାପଚନ୍ଦ୍ର—ବି. ବିଶାଖା ଓ ଅନୁରାଧା ନକ୍ଷତ୍ର ଦକ୍ଷିଣ ଭାଗରେ ସ୍ଥିତ ଚନ୍ଦ୍ର ।

ପାପଚର—ବିଂ. (ପାପ+ଚର୍+କ.ଅ) ପାପଆଚରଣକାରୀ, ପାପୀ ।

ପାପଚର୍ଯ୍ୟ—ବିଂ. ପାପାଚରଣକାରୀ, ଯେ ପାପ କରେ ।

ପାପଚିନ୍ତା—ବି. ପାପ କରିବାର ଚିନ୍ତା ।

ପାପଚେତା—ବିଂ. (ବ.ବ୍ରୀ) ପାପବୁଦ୍ଧି, ପାପିଷ୍ଠ, ଦୁଷ୍ଟଚିତ୍ତ (ବ୍ୟକ୍ତି) ।

ପାପଚେଲିକା—ସ୍ତ୍ରୀ. ବି. ଅକାନବନ୍ଧି ।

ପାପଚେଳୀ—ସ୍ତ୍ରୀ.ବି. ଅକାନବନ୍ଧି ଲତା ।

ପାପଛୁଇଁବା—ଗ୍ରା. ବି. ଆପଣାର ପ୍ରିୟପାତ୍ରର ଅମଙ୍ଗଳାଶଙ୍କା ଉଦୟହେବା ।

ପାପଜନକ—ବିଂ. (୬ତତ୍) ପାପକର, ପାତକୋତ୍ପାଦକ, ଅଧର୍ମଜନକ ।

ପାପଜୀବ—ବି. (କ.ଧା) ପାପିଷ୍ଠଜୀବ, ସ୍ତ୍ରୀ ଶୂଦ୍ର, ହୂନ,ଶବରଆଦି ବ୍ୟକ୍ତି ।

ପାପଡ଼—ଗ୍ରା. ବି. ବଟାମୁଗ ବା ବୁଟ-ସହିତ ଲୁଣ ଜିରା ସାଜିମାଟି ହେଙ୍ଗୁ-ଆଦି ମିଶାଇ ପ୍ରସ୍ତୁତ କରାଯିବା ଏକ-ପ୍ରକାର ପତଳା ପିଠା, (ଯା.ବି) ମନ-ଦମାର ଖର୍ଚ୍ଚ ଚଳାଇବାକୁ ଅକ୍ଷମ ବ୍ୟକ୍ତି ।

ପାପଡ଼ା—ଗ୍ରା.ବି. ନାରଙ୍ଗ ବୃକ୍ଷବିଶେଷ ।

ପାପଡ଼ି—ଗ୍ରା. ବି. ହିମାଳୟରେ ଉତ୍ପନ୍ନ କ୍ଷୁଦ୍ର ଶାକବିଶେଷ,ଘରପୋଡ଼ୁଆ ଦେଖ, (ଗ୍ରା. ବାଲେ) ଏକପ୍ରକାର ଲୁଣିମାଛ ।

ପାପତାପ—ବି. (ପାପ+ତାପ) ପାପ ଓ ଦୁଃଖ ।

ପାପତି—ବି. ବିଂ. (ପାପତ+ଇ) ପୁନଃ ପୁନଃ ପତନଶୀଳ ।

ପାପଦ—ବିଂ. ( ପାପ+ଦା+କ.ଅ ) ପାପଦାୟୀ, ପାପଦାତା ।

ପାପଦୃଷ୍ଟି—ବି. ପାପଯୁକ୍ତ ଉଦ୍ଦେଶ୍ୟ ସହିତ କୌଣସି ବ୍ୟକ୍ତିକୁ ଦେଖିବା, ପ୍ରତକୂଳଦୃଷ୍ଟି, (ବିଂ-ବ.ବ୍ରୀ) ଯାହାର ଦୃଷ୍ଟି ପାପମୟ ଅଟେ ।

ପାପଦୋସ୍ତି—ଗ୍ରା. ବି. ପାପପ୍ରଣୟ ।

ପାପଧୀ—ବିଂ. (ବ.ବ୍ରୀ) ପାପମତି, ମନ୍ଦବୁଦ୍ଧି ।

ପାପନାମା—ବିଂ. ( ପାପ+ନାମନ୍ ) ଅମଙ୍ଗଳ ନାମଧାରୀ,ବଦନାମୀ,ଯାହାର ଅଖ୍ୟାତି ଅଛି ।

ପାପନାଶକ—ବିଂ. ( ୬ତତ୍ ) ପାପଘ୍ନ, ପାତକଧ୍ୱଂସୀ,ପୁଣ୍ୟଜନକ,କଳୁଷହନ୍ତା ।

ପାପନାଶନ—ପୁଂ. ବିଂ. ପାପନାଶକ ଦେଖ, (ବି) ପ୍ରାୟଶ୍ଚିତ୍ତ, ବିଷ୍ଣୁ, ଶିବ, ପାପମୋଚନ ।

ପାପନାଶିନୀ—ସ୍ତ୍ରୀ. ବି. (୬ତତ୍) ଶମୀବୃକ୍ଷ, କୃଷ୍ଣତୁଳସୀ ବୃକ୍ଷ ।

ପାପନାଶିନୀକୁଣ୍ଡ—ଗ୍ରା. ବି. ଭୁବନେଶ୍ୱରରେ ଥିବା ଗୋଟିଏ ପ୍ରାଚୀନ ପୁଷ୍କରିଣୀ । [ ନାର ।

ପାପପତି—ପୁଂ.ବି. ( କ.ଧା ) ଉପପତି

ପାପପୁରୁଷ—ପୁଂ.ବି. ପାପାକୃତି ପୁରୁଷ, ମୂର୍ତ୍ତିମାନ୍ ପାପ, ଶଇତାନ୍, ପାପ ନାମଧାରୀ କଳିତ ପୁରୁଷ,( କ.ଧା ) ପାପୀବ୍ୟକ୍ତି ।

ପାପପ୍ରଣୟ—ବି. ପର ସ୍ତ୍ରୀ ବା ପର ପୁରୁଷ ସଙ୍ଗେ ପ୍ରେମ ।

ପାପପ୍ରବୃତ୍ତି—ବି ଓ ବିଂ. (ବ.ବ୍ରୀ) ପାପମତି ଦେଖ ।

ପାପଫଳ—କ୍ଳୀ. ବି. ( ୬ତତ୍ ) ପାପର ଫଳ, (କ.ଧା) ଅଶୁଭ ଫଳ, (ବିଂ. ବ.ବ୍ରୀ) ଯେଉଁ କର୍ମର ଫଳ ପାପ, ପାପଜନକ ।

ପାପବୁଦ୍ଧି—ବିଂ. ପାପମତି, ପାପଚେତାଃ ଦେଖ, (ବି) ମନ୍ଦପ୍ରକୃତି ।

ପାପଭକ୍ଷଣ—ପୁଂ.ବି.କାଳଭୈରବ,ଶିବ ।

ପାପଭାକ୍—ପୁଂ.ସ୍ତ୍ରୀ.ବିଂ. (ପାପ+ଭଜ୍+କ.କ୍ୱିପ୍) ପାପର ଫଳଭୋଗୀ ।

ପାପଭାଗୀ—ପୁଂ. ବିଂ. (ପାପ+ଭଜ୍+କ.ଇନ୍) ପାପଭାକ୍ ଦେଖ ।

ପାପଭୀରୁ—ପୁଂ.ବିଂ. (୬ତତ୍).ଧର୍ମଭୀରୁ, ପାପ କରିବାକୁ ଯେ ଡରେ ।

ପାପମତି—ବିଂ. ( ବ.ବ୍ରୀ ) ପାପବୁଦ୍ଧି, ଯାହାର ମନ ସର୍ବଦା ପାପ କରିବା ଆଡ଼କୁ ଧାଏଁ (ବି.-କ.ଧା) ପାପକର୍ମୀ-କୃଷ୍ଟ ମନ ।

ପାପମୟ—ବିଂ. (ପାପ+ମୟ) ପାପରେ ପୂର୍ଣ୍ଣ କର୍ମ (ଜୀବନ), ପାପୀ । [ନିଷ୍ପାପ ।

ପାପମୁକ୍ତ—ବିଂ. (୫ତତ୍) ପାପରୁ ମୁକ୍ତ,

ପାପମୋଚନ—ବି. ( ୫ତତ୍ ) ପାପରୁ ମୁକୁଳାଇବା, (୬ତତ୍) ଦୋଷର ବା ପାପର କ୍ଷମା, (ବିଂ) ପାପୀକୁ ଯେ ମୁକ୍ତ କରେ । [ ଏକାଦଶୀ ।

ପାପମୋଚନୀ—ବି. ଚୈତ୍ର କୃଷ୍ଣପକ୍ଷ

ପାପଯୋଗ—ପୁଂ. ବି. ବାର ତିଥି ସଂଯୋଗେ ଜାତ ଯୋଗବିଶେଷ, ରବି ଓ ମଙ୍ଗଳବାରେ ନନ୍ଦାତିଥି, ସୋମ ଓ ଶୁକ୍ରବାରେ ଭଦ୍ରାତିଥି; ବୁଧବାରେ ଜୟା, ବୃହସ୍ପତିବାରେ ରିକ୍ତା, ଏବଂ ଶନିବାରେ ପୂର୍ଣ୍ଣା, ତିଥିହେଲେ ପାପଯୋଗ ହୋଇଥାଏ ।

ପାପଯୋନି—ସ୍ତ୍ରୀ. ବି. ତିର୍ଯ୍ୟକ୍‌ଯୋନି ପ୍ରଭୃତି, ପାପହେତୁକ ଯୋନି, ପାପହେତୁକ ଜନ୍ମବିଶେଷ ।

ପାପରୋଗ—ପୁଂ.ବି. ( କ.ଧା ) ଯେଉଁ ରୋଗ ପୂର୍ବଜନ୍ମ ବା ଇହଜନ୍ମରେ

କଣବା ପାପର ପରିଣାମ ବୋଲି ଲୋକେ ବିଶ୍ୱାସ କରନ୍ତି, ମସୁରିରୋଗ, ବସନ୍ତରୋଗ ।

ପାପର୍ଦ୍ଧି—ସ୍ତ୍ରୀ.ବି. (ପାପ + ଋଦ୍ଧି)ମୃଗୟା ।

ପାପଲୋକ—ପୁଂ.ବି. ନରକ,ପାପୀମାନଙ୍କର ଅବସ୍ଥାନ ଭୂମି ।

ପାପଲୌକ୍ୟ—ତ୍ରି.ବିଂ. ନରକସମ୍ବନ୍ଧୀୟ ।

ପାପନାଶନ--କ୍ଲୀ.ବି.(ବ.ବ୍ରୀ)ତୀର୍ଥବିଶେଷ, (ବିଂ)ଯେଉଁ ସ୍ଥାନରେ ପାପ ବିନଷ୍ଟ ହୁଏ

ପାପବିନଶ୍ଚୟ—ବିଂ. ପାପକାର୍ଯ୍ୟରେ କୃତସଙ୍କଳ୍ପ, ଯେ ପାପ କରିବାପାଇଁ ସ୍ଥିର କରିଅଛି ।

ପାପଶମନୀ--ସ୍ତ୍ରୀ. ବି. ଶମୀବୃକ୍ଷ, ପାପନାଶିକା ।

ପାପଶୀଲ—ବିଂ. (ବ.ବ୍ରୀ) ଦୁଷ୍ଟସ୍ୱଭାବ, ନୀଚଚିତ୍ତା ।

ପାପଶୋଧନ—ପୁଂ.ବି. (୬ତତ୍) ପ୍ରାୟଶ୍ଚିତ୍ତଦ୍ୱାରା ପାପଶୁଦ୍ଧି, (କ୍ଲୀ.ବି-ବ.ବ୍ରୀ) ତୀର୍ଥସ୍ଥାନ ।

ପାପସଂକଳ୍ପ—ବିଂ. (ବ.ବ୍ରୀ) ପାପବିଷୟରେ କୃତନିଶ୍ଚୟ, ଅନ୍ୟାୟକାର୍ଯ୍ୟରେ ସ୍ଥିରସଂକଳ୍ପ । [ ସଦୃଶ ।

ପାପସମ—ଅବ୍ୟ. ପାପତୁଲ୍ୟ, ପାପ-

ପାପସମ୍ଭବ—ବିଂ. ପାପରୁ ଜାତ ।

ପାପସୂଦନ—ବିଂ.ପାପନାଶକ ଦେଖ ।

ପାପହର—ବିଂ. ( ପାପ + ହୃ + କ.ଅ ) ପାପନାଶକ ।

ପାପା—ବି. ହସ୍ତା, ଜ୍ୟେଷ୍ଠା, ଅନୁରାଧା ନକ୍ଷତ୍ରରେ ବୁଧଗ୍ରହର ଗତି ।

ପାପାଙ୍କୁଶା—ସ୍ତ୍ରୀ. ବି. ଆଶ୍ୱିନ ମାସର ଶୁକ୍ଳା ଏକାଦଶୀ । [ କରିବା ।

ପାପାଚରଣ—ବି. (୬ତତ୍) ପାପକାର୍ଯ୍ୟ

ପାପାଚାର—ପୁଂ.ବିଂ. ପାପକାର୍ଯ୍ୟ କାରୀ, ଦୁରାଚାର, ପାପାଚାରୀ, ( ବି ) ପାପାଚରଣ, ପାପଯୁକ୍ତ ଆଚାର ।

ପାପାଚାରୀ—ପୁଂ. ବିଂ. (ପାପ + ଆ + ଚର୍ + କ.ଇନ୍) ପାପକର୍ମକାରୀ ।

ପାପାତ୍ମକ—ବିଂ. ( ବ.ବ୍ରୀ ) ପାପାତ୍ମା, ପାପମୟ, ପାପବହୁଳ ।

ପାପାତ୍ମ—ପୁଂ. ବିଂ. ( ବ.ବ୍ରୀ ) ପାପୀ, ପାପିଷ୍ଠ, ପାପଚେତା, ଦୁଷ୍ଟାତ୍ମା ।

ପାପାଶୟ—ପୁଂ.ବିଂ. (ବ.ବ୍ରୀ) ପାପାତ୍ମା, ପାପିଷ୍ଠ, ଅଧାର୍ମିକ, ପାପୀ ।

ପାପାସକ୍ତ—ବିଂ. ( ୭ତତ୍ ) ପାପପ୍ରତି ଅନୁରାଗୀ, ପାପକାର୍ଯ୍ୟରେ ନିରତ ।

ପାପାହ୍ନ—ପୁଂ. ବି. ( ପାପ + ଅହ୍ନନ୍ ) ନିନ୍ଦିତଦିନ, ଅଶୁଭଦିନ ।

ପାପିଷ୍ଠ—ପୁଂ.ବିଂ. (ପାପ + ଇଷ୍ଠ) ଅତିଶୟ ପାପଯୁକ୍ତ, ମହାପାପୀ, ଅପରାଧୀ, (ସ୍ତ୍ରୀ) ପାପିଷ୍ଠା ।

ପାପିଷ୍ଠୀ—ଗ୍ରା. ସ୍ତ୍ରୀ.ବିଂ. ପାପକାରିଣୀ ସ୍ତ୍ରୀ ।

ପାପୀ—ପୁଂ. ବିଂ. (ପାପ+ଇନ୍) ପାପଯୁକ୍ତ, ପାପକାରୀ, ପାତକୀ, ଅପରାଧୀ, ଖଳ ।

ପାପୀୟସୀ—ସ୍ତ୍ରୀ.ବିଂ. (ପାପିନ୍ + ଇୟସ୍ + ଈ) ଅତିପାପିନୀ, ପାପିଷ୍ଠା ।

ପାପୀୟାନ୍—ପୁଂ. ବିଂ. (ପାପିନ୍+ଇୟସ୍) ଅତିଶୟ ପାପୀ, (ସ୍ତ୍ରୀ) ପାପୀୟସୀ ।

ପାପୁଲି—ଗ୍ରା. ବି. ହାତତଳି,କରତଳ ।

ପାପ୍ମା—ପୁଂ. ବି. (ପାପ + ଅପା + ମନ୍) ପାପ, ଅପରାଧ, ଖଳତା, ଦୁଷ୍ଟତା, ମନ୍ଦଦଶା, (ବିଂ) ପାପମୟ, ପାପୀ, ଅନିଷ୍ଟକର । [ ବିଶେଷ ।

ପାବ୍—ପ୍ରା. (ସମ୍ବ) ବି. ଆଦମ ଜାତି-

ପାମ୍ବାଗ—ଗ୍ରା.ବି. ଗୃହର ପିଣ୍ଡା,ବାରଣ୍ଡା ।

ପାମ(ମା)—ବି. (ପେ+କ.ମନ୍) କାଛୁ, କୁଣ୍ଡିଆ, ବିଚର୍ଚ୍ଚିକା । [ ଗନ୍ଧକ ।

ପାମଘ୍ନ—ପୁଂ.ବି. (ପାମନ୍+ହନ୍+କ.ଅ)

ପାମଘ୍ନୀ—ସ୍ତ୍ରୀ.ବି. (ପାମଘ୍ନ+ଈ) କଟୁକା ।

ପାମନ୍—ପୁଂ.ବିଂ. (ପାମନ୍+ନ) ପାମରୋଗବିଶିଷ୍ଟ,କାଛୁରୋଗାକ୍ରାନ୍ତ,ଖସୁଆ ।

ପାମର—ବିଂ. ( ପାମନ୍ + ର + କ.ଅ ) ଖଳ, ନୀଚ,ଅଧମ,ପାପିଷ୍ଠ, ମୂର୍ଖ,ପାପୀ ।

ପାମରଯୋଗ—ବି. ଏକପ୍ରକାର ନିକୃଷ୍ଟ ଯୋଗସାଧନ, ଯଦ୍ଦ୍ୱାରା ନଟ ଓ ବାଜିଗରମାନେ ଅଦ୍ଭୁତ ଖେଳ ଦେଖାନ୍ତି ।

ପାମରା—ଗ୍ରା. ବି. ମୂତ୍ରର ସମ୍ପୂର୍ଣ୍ଣ ଲକ୍ଷଣ ପ୍ରକାଶିତ ହେବାପରେ ପୁନର୍ବାର ଜାଗି ଉଠିବା ।

ପାମରୀ—ସ୍ତ୍ରୀ.ବି. (ପାମର + ଈ)ପାପିଷ୍ଠା, ପାମରର ସ୍ତ୍ରୀଲିଙ୍ଗ ।

ପାମା—ସ୍ତ୍ରୀ. ବି. (ପେ + କ.ମନ୍) ଚର୍ମରୋଗ, କାଛୁ, କୁଣ୍ଡିଆ, ଶୁଖିଲା କାଛୁ, ବିଇଞ୍ଚି ।

ପାମାରି—ପୁଂ. ବି. ( ୬ତତ୍ ) ଗନ୍ଧକ, ପାପ, ରୋଗର ଶତ୍ରୁ ।

ପାୟ୍ୟ—କ୍ଲୀ. ବି. (ପା + ଅ + ଯ) ଜଳ, ପରିମାଣ, ପାନ ।

ପାୟକ—ପୁଂ. ବିଂ. ( ପା + କ.ଅକ ) ପାନକାରୀ, ପାୟୀ ।

ପାୟନ—କ୍ଲୀ. ବି. ପାନ ।

ପାୟନା—ସ୍ତ୍ରୀ. ବି. ଅସ୍ତ୍ରାଦି ପଜାଇବା ପରେ ଦୃଢ଼ନିମିତ୍ତ ପାଣିଦେବା ।

ପାୟସ—ପୁଂ. ସ୍ତ୍ରୀ. ବି. ( ପୟସ୍ + ଅ ) ଖିର, ଦୁଗ୍ଧ ଓ ଶର୍କରା ପକ୍ୱ ଅନ୍ନ,ସରଳ, ନିର୍ଯ୍ୟାସ,ଦୁଗ୍ଧ, (ବିଂ) ପୟଃସମ୍ବନ୍ଧୀୟ ।

ପାୟସିକ—ପୁଂ. ବିଂ. (ପୟସ୍ + ଇକ) ପାୟସ ଭକ୍ତିଯୁକ୍ତ, ଯେ ଆଉଟା ଦୁଧ ଖାଇବାକୁ ଭଲପାଏ ।

ପାୟା—ଗ୍ରା. ବି. ପଦବୀ, ପଦ,ତୁଲ୍ୟତା, ଚୌକି ପ୍ରଭୃତିର ଗୋଡ଼, ସ୍ତମ୍ଭ,ଖୁଣ୍ଟ, ସମ୍ମାନ, ମର୍ଯ୍ୟାଦା ।

ପାୟାଯିବା—ଗ୍ରା.କ୍ରି.ପ୍ରାପ୍ତ ହେବା,ମିଳିବା ।

ପାୟିକ—ପୁଂ.ବି. (ପ + କ.ଇକ)ପଦାତିକ, ଶରୀର ରକ୍ଷକ ସୈନ୍ୟ,ଚୌକିଦାର, ପିଆଦା ।

ପାୟିତ—ବିଂ. (ପା + ଣିଚ୍ + ତ) ପାଣିଦିଆ ଅସ୍ତ୍ର,ଯେଉଁ ଅସ୍ତ୍ରରେ ପାଣି ଦିଆହୋଇଅଛି ।

ପାୟୀ-ପୁଂ.ବିଂ.(ପା + କ.ଇନ୍)ପାନକାରୀ ।

ପାୟୁ—ପୁଂ.ବି. (ପା + କ.ଉ) ମଳଦ୍ୱାର, ଗୁହ୍ୟଦ୍ୱାର, ସ୍ୱନାମଖ୍ୟାତ ଭରଦ୍ୱାଜ ପୁତ୍ର, ପାଳକ ।

ପାୟୁକ୍ଷାଳନବେଶ୍ମ—କ୍ଲୀ.ବି. ପାଇଖାନା ।

ପାୟୁଭେଦ—ପୁଂ.ବି.ଚନ୍ଦ୍ର ଗ୍ରହଣର ଏକପ୍ରକାର ମୋକ୍ଷ ।

ପାର୍ଯ୍ୟ—କ୍ଲୀ.ବି. (ପା + ଯ) ରକ୍ଷା, ପର-

ମାଣ, ପାନ, ଜଳ, ବ୍ୟବସାୟ, ପେଷା, (ବିଂ)ସ୍ନାତ,ସ୍ନାନ, ପାନ କରିବା ଯୋଗ୍ୟ ।

ପାର—ଗ୍ରା. ଅବ୍ୟ ଉଲ୍ଲଙ୍ଘନ, ଛୁ, ପଳାୟିତ, ବିପଦରୁ ଉଦ୍ଧାର ପାଇଥିବା ।

ପାରଉତା(ଓ୍ୱା)ର—ଗ୍ରା. ବି. ନଦୀଆଦିକୁ ନୌକା ଦ୍ୱାରା ପାରିହେବା, କୌଣସି ବିପଦରୁ ପରିତ୍ରାଣ ।

ପାର—କ୍ଲୀ.ବି.(ପର+ଅ) ନଦୀର ଅପର ତୀର, ପାରି, ଉଦ୍ଧାର, ମୁକ୍ତି, (ପୃ+ଭା. ଅ)କୌଣସି ବିଷୟର ସୀମା ବା ଶେଷପ୍ରାନ୍ତ, ପୂର୍ଣ୍ଣତା, ପାରଦ, ପାରିଧାତୁ, (ଗ୍ରା.ବି) ନଦୀଆଦିର ଉଲ୍ଲଙ୍ଘନ, ବିପଦଆଦିକୁ ଟପିଯିବା, ମୁକ୍ତି, ମୋକ୍ଷ, (ଗ୍ରା. ବିଂ) ଜୀର୍ଣ୍ଣ କରାଯାଇଥିବା (ଖାଦ୍ୟ) ।

ପାରକ—ପୁଂ. ତ୍ରି. (ପୃ+କ.ଅକ)ପୂର୍ତ୍ତିକାରକ,ପାଳନକାରକ,ପଟୁ,ସନ୍ତୋଷଜନକ, ଦକ୍ଷ, ଚତୁର ।

ପାରକରିବା—ଗ୍ରା.କ୍ରି. ଏପାରରୁ ସେପାରିକୁ ଡଙ୍ଗାଆଦି ଦ୍ୱାରା ନେବା, ଗୁରୁପାକ ଖାଦ୍ୟକୁ ଜୀର୍ଣ୍ଣ କରିବା, ଉଦ୍ଧାର କରିବା, ଶେଷକରିବା, ମୁକ୍ତିଲଭିବା ।

ପାରକାମ—ବିଂ. ଅପର ପାରିକୁ ଯିବାର ଅଭିଳାଷୀ ।

ପାରକ୍ୟ—କ୍ଲୀ.ବି.(ପର+କ.ଯ)ପରୋପକାରିତା,ପରାଧୀନତା,ପରକତା,ସାମର୍ଥ୍ୟ, ଶତ୍ରୁ, ପୁଣ୍ୟକର୍ମ, (ବିଂ) ପରକୀୟ, ପରସମ୍ବନ୍ଧୀୟ, ଶତ୍ରୁସମ୍ବନ୍ଧୀୟ, ଶାତ୍ରବ, ବିପକ୍ଷ, ପରକାଳରେ ଉପକାରୀ ।

ପାରଗ—ବିଂ. ( ପାର+ଗମ୍+କ.ଅ ) ପାରଗାମୀ, ସମର୍ଥ ।

ପାରଗତ—ବିଂ. ( ୨ତତ୍ ) ପାରପ୍ରାପ୍ତ, ପରପାରେ ଉପନୀତ, ଉତ୍ତୀର୍ଣ୍ଣ, (ବି) ଜିନ, (ଗ୍ରା.ବିଂ) ତାଲିମ ହୋଇଥିବା ।

ପାରଗ୍ରାମିକ—ବିଂ. ( ପରଗ୍ରାମ+ଇକ ) ପରର ଗ୍ରାମସମ୍ବନ୍ଧୀୟ, ବୈରକାରୀ, ବିପକ୍ଷ ।

ପାରଙ୍ଗ—ବିଂ. (ପାରଂ+ଗମ୍+କ.ଅ) ପଟୁ, ନିପୁଣ ।

ପାରଙ୍ଗତ—ପୁଂ. ବିଂ. (ପାରଂ+ଗତ) ପାରଗତ ଦେଖ ।

ପାରଙ୍ଗମ—ପୁଂ.ବିଂ. (ପାରଂ+ଗମ୍+କ,ଅ) ପାରଗ ଦେଖ ।

ପାରଗୃ—ଯା. ବି. ପାର୍ଚ୍ଚା ଦେଖ ।

ପାରଜ—ପୁଂ. ବି. ସୁବର୍ଣ୍ଣ, ସୁନା ।

ପାରଜାୟିକ—ପୁଂ. ବିଂ. (ପାରଜାୟା+ଇକ) ପାରଦାରିକ, ପରସ୍ତ୍ରୀଗାମୀ ।

ପାରଟୀଟ—ପୁଂ. ବି. ପ୍ରସ୍ତର ।

ପାରଣ—କ୍ଲୀ. ବି. (ପୃ+ଭା.ଅନ) ବ୍ରତ ବା ଉପବାସ ପରେ ପ୍ରଥମ ଭୋଜନ, ପାଳନା, ବ୍ରତ ସମାପ୍ତି, (ପୃ+ଣିଚ୍+ଭା.ଅନ)ତୃପ୍ତି,(କ.ଅନ) ମେଘ, କାର୍ଯ୍ୟ ସମାପନ, ସମାପ୍ତି, ସମଗ୍ର ଲେଖାର ପଠନ, ଭୋଜନ ।

ପାରଣା—ସ୍ତ୍ରୀ. ବି. (ପାର+ଅନ+ଆ) ତୃପ୍ତି, ସନ୍ତୋଷ, ବ୍ରତାନ୍ତଭୋଜନ ।

ପାରତ—ପୁଂ. ବି. ଏକ ପ୍ରାଚୀନ ଦେଶ ଓ ତଦ୍ଦେଶର ଅଧିବାସୀ ମ୍ଳେଚ୍ଛଜାତିବିଶେଷ ।

ପାରତନ୍ତ୍ରିକ—ବିଂ. ( ପରତନ୍ତ୍ର+ଇକ ) ପରାଧୀନ, ପରତନ୍ତ୍ର ।

ପାରତନ୍ତ୍ର୍ୟ—କ୍ଲୀ. ବି. (ପାରତନ୍ତ୍ର+ଭା.ଯ) ପରତନ୍ତ୍ରତା, ପରାଧୀନତା ।

ପାରତ୍ରିକ—ତ୍ରି.ବିଂ.(ପରତ୍ର+ଇକ)ପରଲୋକସମ୍ବନ୍ଧୀୟ, ମୃତ୍ୟୁ ପରେ ଭୋଗ କରାଯିବା ।

ପାରଦ—ପୁଂ. ବି. ( ପାର+ଦା+ଅ ) ପାରା, ଧାତୁବିଶେଷ, ମ୍ଳେଚ୍ଛ ଜାତିବିଶେଷ, (ବିଂ) ପାରକାରୀ, ପାରଦାୟୀ

ପାରଦର୍ଶନ—ତ୍ରି.ବିଂ.ସର୍ବଜ୍ଞ,ପାରଗାମୀ ।

ପାରଦର୍ଶିକ—ତ୍ରି.ବିଂ. (ପାରଦୃଶ୍+ଣିଚ୍+କ.ଅକ) ସ୍ୱଚ୍ଛ, ଯାହା ଭିତରେ ଦେଇ ଦେଖାଯାଇ ପାରେ ।

ପାରଦର୍ଶିତା—ବି.(ପାରଦର୍ଶିନ୍+ଭା.ତା) ପଟୁତା, ଅଭିଜ୍ଞତା, ଦୂରଦର୍ଶିତା ।

ପାରଦାରିକ—ବିଂ. (ପାରଦାର+ଇକ) ପରଦାରରତ, ପରସ୍ତ୍ରୀଗାମୀ ।

ପାରଦାର୍ଯ୍ୟ—କ୍ଲୀ. ବି. (ପାରଦାର+ଯ) ପରଦାରାଗମନ ।

ପାରଦୃଶ୍ୱ—ବି. ପାରଦ୍ରଷ୍ଟା, ଯେ ଶେଷ ସୀମାକୁ ଯାଇଅଛି ।

ପାରଦେଶ୍ୟ—ତ୍ରି. ବିଂ. ପ୍ରୋଷିତ, ପାରଦେଶିକ, ପଥିକ, ପରଦେଶଜାତ ।

ପାରନେତୃ—ବିଂ. (ପାର+ନୀ+କ.ତୃ) ପାରନୟନକାରୀ, ଯେ ପରପାରେ ନେଇଯାଏ ।

ପାରପାଇବା—ଗ୍ରା.କ୍ରି.ପରିତ୍ରାଣ ପାଇବା, ଉଦ୍ଧାର ପାଇବା, ବିପଦକୁ ଲଙ୍ଘିବା, ତରିବା ।

ପାରମହଂସ୍ୟ—ତ୍ରି. ବିଂ. (ପରମହଂସ+ଯ) ପରମହଂସ ସମ୍ବନ୍ଧୀୟ,(ବି)ପରମହଂସଙ୍କ ଆଚରିତ କର୍ମ, ପରଂବ୍ରହ୍ମ ଧାମ

ପାରମାଣବ—ବିଂ. (ପରମାଣୁ+ଅ)ପରମାଣୁସମ୍ବନ୍ଧୀୟ ।

ପାରମାଣବାକର୍ଷଣ—କ୍ଲୀ. ବି. ପରମାଣୁ ସକଳର ପରସ୍ପର ଆକର୍ଷଣ ।

ପାରମାର୍ଥିକ—ବିଂ. (ପରମାର୍ଥ+ଇକ) ପରମାର୍ଥ ତତ୍ତ୍ୱସମ୍ବନ୍ଧୀୟ,ଧର୍ମସମ୍ବନ୍ଧୀୟ, ଆଧ୍ୟାତ୍ମିକ, ପରମାର୍ଥଯୁକ୍ତ, ଧାର୍ମିକ, ମଙ୍ଗଳଜନକ, ଅଭୀଷ୍ଟ. ସତ, ବାସ୍ତବ, ଯଥାର୍ଥ, ସ୍ୱାଭାବିକ, ଉତ୍କୃଷ୍ଟ, (ସ୍ତ୍ରୀ) ପରମାର୍ଥିକା ।

ପାରମିକ—ବିଂ. (ପରମ+ଇକ)ଶ୍ରେଷ୍ଠ, ପ୍ରଧାନ, (ସ୍ତ୍ରୀ) ପାରମିକୀ ।

ପାରମିତ—ବିଂ. (ପାରଂ+ଇ+କ.ତ) ଅନ୍ୟ ପାରକୁ ଯାଇଥିବା,ସର୍ବୋତ୍କୃଷ୍ଟ, ଯତ୍ପରୋନାସ୍ତି ।

ପାରମେଷ୍ଠ୍ୟ—ବି. ( ପରମେଷ୍ଠି+ଯ ) ସର୍ବୋଚ୍ଚତା, ଉତ୍କର୍ଷ, ଛତ୍ର ଚାମରାଦି ରାଜଚିହ୍ନ ।

ପାରମ୍ପରୀଣ—ତ୍ରି.ବିଂ. ପରମ୍ପରା+ଈନ) କ୍ରମେ ଆଗତ,ପରମ୍ପରା କ୍ରମେ ଆଗତ, କ୍ରମିକ ।

ପାରମ୍ପର୍ଯ୍ୟ—ବି. (ପରମ୍ପରା+ଯ) ଅନୁକ୍ରମ, ପରମ୍ପରା କ୍ରମେ, ପୁରୁଷାନୁକ୍ରମ, ଧାରାବାହିକତା, ମଧ୍ୟସ୍ଥତା,(ବିଂ)ପାରମ୍ପରିକ,ପୁରୁଷାନୁକ୍ରମେ ଆଗତ ।

ପାରମ୍ପର୍ଯ୍ୟୋପଦେଶ—ପୁଂ. ବି. ଯେଉଁ

ହିତବାକ୍ୟ ପୁରୁଷାନୁକ୍ରମେ ଚଳି ଆସୁ-ଅଛି, ଉପଦେଶ ପରମ୍ପରା ।

ପାରଝିବା—ଗ୍ରା. କ୍ରି. ବିଷମୟ ଫଳରେ ପରିଣତ ହେବା, ସହ୍ୟହେବା, ଜୀର୍ଣ୍ଣ ହେବା, ( ପାପଆଦି ) ନିକଟରେ ନ ଲାଗିବା, ଶେଷହେବା, ମୁକ୍ତହେବା ।

ପାରୟିଷ୍ଣୁ—ବି. ବିଂ. ( ପାର+ଇଷ୍ଣୁ ) ମନୋହର, ପାରଗମନେ ସମର୍ଥ, ପାରଗାମୀ ।

ପାରଯୁଗୀନ—ବିଂ. ପରଯୁଗେ ଉତ୍ତମ, ପର ଯୁଗେ ସାଧୁ ।

ପାରଲାଖେମୁଣ୍ଡି—ଗ୍ରା. ବି. ଗଞ୍ଜାମର ଗୋଟିଏ ପ୍ରସିଦ୍ଧ ଓଡ଼ିଆ ରାଜ୍ୟ ଓ ତାହାର ରାଜଧାନୀ ।

ପାରଲୌକିକ—ବି. ବିଂ. (ପରଲୋକ+ଇକ) ପରଲୋକ ସମ୍ବନ୍ଧୀୟ, ପର-ଲୋକେ ହିତକର ।

ପାରବତ—ପୁଂ. ବି. ପାରାବତ, ପାରା ।

ପାରବଶ୍ୟ—କ୍ଲୀ.ବି.ପାରତନ୍ତ୍ର୍ୟ,ପରାଧୀନତା

ପାରଶବ—ପୁଂ.ବି (ପରଶୁ+ଅ)ବ୍ରାହ୍ମଣ ଔରସରେ ଶୂଦ୍ରାର ଗର୍ଭଜାତ ସଙ୍କୀର୍ଣ୍ଣ ଜାତିବିଶେଷ, ପରସ୍ତ୍ରୀଜାତ ସନ୍ତାନ, ଜାରଜ, ଲୌହ ନିର୍ମିତ ଅସ୍ତ୍ରବିଶେଷ, ପରଶୁ(ଲୌହ),(ବିଂ)ପରଶୁସମ୍ବନ୍ଧୀୟ ।

ପାରଶୀ(ସୀ)—ଗ୍ରା.ବି. ଏକପ୍ରକାର ଧର୍ମ, ପାରସ୍ୟ ଦେଶ, ତଦ୍ଦେଶବାସୀ,ତଦ୍ଦେଶ ଭାଷା, (ବିଂ) ପାରସ୍ୟଦେଶୀୟ ।

ପାରଶୀ(ସୀ)କବଚ—ବି. ଖୋରାସାନୀ ବଚ, ଶ୍ୱେତବଚ, ଘୋଡ଼ାବଚ ।

ପାରଶ୍ୟ(ସ୍ୟ)—ବି.ଭାରତର ବହୁ ପଶ୍ଚିମ ଓ ଆଫଗାନି ସ୍ଥାନର ସନ୍ନିକଟ ପଶ୍ଚିମ-ବର୍ତ୍ତୀ ଦେଶବିଶେଷ ।

ପାରଶ୍ୱଧ—ପୁଂ. ବି. ( ପରଶ୍ୱଧ+ଅ ) ପରଶୁଧାରୀ ଯୋଦ୍ଧା, କୁଠାରଧାରୀ ।

ପାରଶ୍ୱନ୍ତ୍ର—କ୍ଲୀ. ବି. ସୁବର୍ଣ୍ଣ, ସୁନା ।

ପାରସ୍କର—ପୁଂ. ବି. ଦେଶବିଶେଷ, ଗୃହ୍ୟ ସୂତ୍ରକାରକ ମୁନିବିଶେଷ ।

ପାରସ୍ତ୍ରୈଣ—ବିଂ. (ପରସ୍ତ୍ରୀ+ନ) ପାର-ଦାରିକ ।

ପାରସ୍ତ୍ରୈଣେୟ—ବି.ବିଂ(ପରସ୍ତ୍ରୀ+ଏୟ) ପର ସ୍ତ୍ରୀର ପୁତ୍ର, ଜାରଜ ସନ୍ତାନ ।

ପାରସ୍ପରିକ—ବିଂ.(ପରସ୍ପର+ଇକ)ପର-ସ୍ପରସମ୍ବନ୍ଧୀୟ ।

ପାରସ୍ୟକୁଲୀନ—ପୁଂ. ବି. (ପରସ୍ୟକୁଳ+ଇନ୍) ପରକୁଳୋତ୍ପନ୍ନ ଦତ୍ତକ ପୁତ୍ରାଦି, ପୋଷ୍ୟପୁତ୍ର ।

ପାରହଂସ୍ୟ—ବି.ବିଂ.ପରମହଂସସମ୍ବନ୍ଧୀୟ

ପାରହେବା—ଗ୍ରା.କ୍ରି.ପାରିହେବା, ତରିବା, (ବିପଦରୁ) ଉତ୍ତୀର୍ଣ୍ଣ ହେବା, (ବିବାହ ଯୋଗ୍ୟା କନ୍ୟା) ବିବାହିତା ହେବା, ବିଷମୟ ଫଳରେ ପରିଣତ ନ ହେବା ।

ପାରା—ଗ୍ରା.ବି. (ସଂ-ପାରାବତ) କପୋତ ଜାତୀୟ ପକ୍ଷୀ,କବୁତର,ଗୃହ କପୋତ, (ସଂ-ପାରଦ) ପାରାଧାତୁ ।

ପାରାପତ—ପୁଂ.ବି. (ପାର+ଆ+ପତ୍+କ.ଅ) ପାରା, ଗୃହ କପୋତ ।

ପାରାପାର—ପୁଂ. ବି.( ପାର+ଅପାର ) ପାରାବାର, ସମୁଦ୍ର, ନଦୀଆଦିର ଏପାଖ ସେପାଖ ।

ପାରାୟଣ—କ୍ଲୀ. ବି. ( ପାର+ଅୟନ ) ସମ୍ପୂର୍ଣ୍ଣତା, ସମାପ୍ତି, ନିୟମ ମୁତାବକ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ କୌଣସି ଗ୍ରନ୍ଥ ପାଠ କରି ଶେଷକରିବା ।

ପାରାୟଣିକ—ପୁଂ.ବି.(ପାରାୟଣ+ଇକ) ପାଠକ, ଛାତ୍ର, ଉତ୍କୃଷ୍ଟ ସ୍ଥାନ ।

ପାରାବତ—ପୁଂ.ବି. (ପାର+ଅବ+କ. ଅତ) ପକ୍ଷିବିଶେଷ, ପାରା, ମର୍କଟ, ତିନ୍ଦୁକ, ଗିରି, ନାଗବିଶେଷ, ଦତ୍ତା-ତ୍ରେୟଙ୍କ ଗୁରୁ ।

ପାରାବତକ—ପୁଂ.ବି.ବ୍ରୀହି ଧାନ୍ୟବିଶେଷ

ପାରାବତକଳିକା—ସ୍ତ୍ରୀ.ବି. ମହାଜ୍ୟୋତି-ଷ୍ମତୀ ଲତା ।

ପାରାବତଘ୍ନୀ—ସ୍ତ୍ରୀ. ବି. ସରସ୍ୱତୀ ନଦୀ, ପାରାବାରଘାତିନୀ । [କାକଜଙ୍ଘା ।

ପାରାବତପଦୀ—ସ୍ତ୍ରୀ. ବି. ପାରାବତାଙ୍ଘ୍ରି,

ପାରାବତାଙ୍ଘ୍ରି—ସ୍ତ୍ରୀ. ବି. ଜ୍ୟୋତିଷ୍ମତୀ ଲତା, କାକଜଙ୍ଘା ।

ପାରାବତୀ—ବି. ଗୋପଗୀତ, ନଈବି-କୋଳି, ନଦୀବିଶେଷ ।

ପାରାବାର—ବି.(ପାର+ଅବାର)ବି.ଗ୍ରା; ସମୁଦ୍ର, ନଦ୍ୟାଦିର ଉଭୟତୀର, ପରି-ଗଣନା, ଇୟତ୍ତା, କଳନା ।

ପାରାବାରୀଣ—ବି. ବିଂ. ( ପାରାବାର+ଈନ)ପାରଗାମୀ, ପାରଙ୍ଗମ, ତଟଦ୍ୱୟ-ଗାମୀ, ସମୁଦ୍ରଗାମୀ ।

ପାରାଶର(ରି)ର୍ଯ୍ୟ—ପୁଂ. ବି. (ପରାଶର+ଅ-ଇ+ଯ)ପରାଶର ପୁତ୍ର ବ୍ୟାସଦେବ, ପରାଶର ପ୍ରଣୀତ ଧର୍ମଶାସ୍ତ୍ର, ପରାଶର ସଂହିତା, ବୃହତ୍ ହୋରାଗ୍ରନ୍ଥ, (ବିଂ) ପରାଶର ପ୍ରଣୀତ(ଶାସ୍ତ୍ର),ପରାଶରମୁନିଙ୍କ ସମ୍ବନ୍ଧୀୟ ।

ପାରାଶରୀ—ପୁଂ.ବିଂ. (ପରାଶର+ଇନ୍) ମସ୍କରୀ, ଚତୁର୍ଥାଶ୍ରମୀ, ଭିକ୍ଷୁ,ବେଦବ୍ୟାସ କୃତ ଭିକ୍ଷୁ ସୂତ୍ରାଧ୍ୟାୟୀ ।

ପାରି—କ୍ଲୀ.ବି.(ପା+ଅଧି+ଅରି) ସୁରା-ପାନ ପାତ୍ର, (ଗ୍ରା.ବି)ନଦୀଆଦିର ଅପର ପାର ବା ପାଖ, ନଦୀଆଦିର ତୀର, ପାଖ, ପାରହେବା, ଉତ୍ତରଣ, ବିପଦ-ଆଦିରୁ ଉଦ୍ଧାର ।

ପାରିକରିବା—ଗ୍ରା. କ୍ରି. ଲୋକଆଦିଙ୍କୁ ନଦୀର ଏକ ପାରିରୁ ଅପର ପାରିକୁ ନୌକାଆଦି ଦ୍ୱାରା ନେବା, ଉଦ୍ଧାର କରିବା ।

ପାରିକାଙ୍କ୍ଷୀ—ପୁଂ.ବି. ବ୍ରହ୍ମଜ୍ଞାନାଭିଳାଷୀ, ଧ୍ୟାନନିରତ ତପସ୍ୱୀ ।

ପାରିକୁଟ—ପୁଂ. ବି. ସେବକ, ଭୃତ୍ୟ ।

ପାରିକୁଦ—ଗ୍ରା. ବି. ଓଡ଼ିଶାର ଦ୍ୱୀପପୁଞ୍ଜ ଓ ରାଜ୍ୟବିଶେଷ ।

ପାରିକ୍ଷିତ—ବି. (ପରିକ୍ଷିତ+ଅ)ପରିକ୍ଷିତ ପୁତ୍ର ଜନମେଜୟ, ଅଥର୍ବ ସଂହିତା-ମନ୍ତ୍ରର ନାମବିଶେଷ ।

ପାରିଖ—ବି.ବିଂ. (ପରିଖା+ଅ)ପରିଖା-ଭବ, ପାରିଖୀୟ, ପରିଖାସମ୍ବନ୍ଧୀୟ ।

ପାରିଖେୟ—ବି. ବିଂ. (ପରିଖା+ଏୟ) ପରିଖାବେଷ୍ଟିତ ।

ପାରିଗର୍ଭିକ—ପୁଂ.ବି. (ପରିଗର୍ଭ+ଇକ) କପୋତ,କବୁତର, ପରିଗର୍ଭିକ ରୋଗ ।

ପାରଗ୍ରାମିକ—ପୁଂ. ବିଂ. (ପରଗ୍ରାମ+ଇକ) ଗ୍ରାମର ଚତୁର୍ଦ୍ଦିଗରେ ଅବସ୍ଥିତ, ଯାହା ଗ୍ରାମର ଗୃହାଦିଗରେ ଥାଏ ।

ପାରଜାତ—ପୁଂ. ବି. (ପାର+ଜାତ) ପାରିଭଦ୍ର ବୃକ୍ଷ, ସୁରତରୁ, ଶୀରବତ, କୁଳଜାତ ନାଗବିଶେଷ, ଋଷିବିଶେଷ, ତନ୍ତ୍ରଶାସ୍ତ୍ରବିଶେଷ,ପର୍ବତବିଶେଷ, ସୁଗନ୍ଧି ଦ୍ରବ୍ୟବିଶେଷ, ପାଳଧୂଆ ଗଛ,ଶୃଙ୍ଗାର ହାର, କୋବିଦାର, ସୁଗନ୍ଧ ।

ପାରିଜାତକ—ପୁଂ. ବି. ଦେବତରୁ, ମନ୍ଦାର, ପାରିଭଦ୍ର ।

ପାରିଜାତବନ—କ୍ଲୀ. ବି. ସିଦ୍ଧାନ୍ତ ପର୍ବତର ଉପରିସ୍ଥିତ ବନ ବିଶେଷ ।

ପାରିଣାଯ୍ୟ—ତ୍ରି. ବିଂ. (ପରିଣୟ+ଯ) ବିବାହକାଳେ ଲବ୍ଧ (ଧନାଦି), ବିବାହ ସମ୍ବନ୍ଧୀୟ ।

ପାରିଣାହ୍ୟ—ବି. (ପରିଣାହ+ଯ) ଗୃହ ସାମଗ୍ରୀ, ଅସବାବ ପତ୍ର, ଗୃହର ଆବଶ୍ୟକୀୟ ଦ୍ରବ୍ୟ ବିଶେଷ ।

ପାରିତଥ୍ୟା—(ସ୍ତ୍ରୀ) ସ୍ତ୍ରୀମାନଙ୍କର ମୁଣ୍ଡର ଅଳଙ୍କାର ବିଶେଷ ।

ପାରିତୋଷିକ—ବି. କ୍ଲୀ. (ପରିତୋଷ+ଇକ) ପରିତୋଷଜନକ ଦ୍ରବ୍ୟ, ପୁରସ୍କାର, ଉପହାର, ଭେଟି, ଆନନ୍ଦକର, ପ୍ରୀତିଜନକ ।

ପାରିଧି—ବି. ମୃଗୟା, ଶିକାର ।

ପାରିଧ୍ୱଜିକ—ପୁଂ.ଧ୍ୱଜବାହକ, ପତାକାବାହକ ।

ପାରିନ୍ଦ୍ର—ପୁଂ. ବି. (ପର+ଇନ୍ଦ୍ର)ସିଂହ, ମୃଗେନ୍ଦ୍ର, ଅଜଗର ସର୍ପ ।

ପାରିପନ୍ଥିକ—ପୁଂ. ବି. (ପରିପନ୍ଥିନ୍+ଇକ) ଶତ୍ରୁ, ହନ୍ତା, ଚୋର, ତସ୍କର ।

ପାରିପାଟ୍ୟ—କ୍ଲୀ. ବି. (ପରିପାଟୀ+ଯ) ପରିପାଟୀ, ସୁଶୃଙ୍ଖଳା, ପରିଚ୍ଛନ୍ନତା ।

ପାରିପାତ୍ର—ପୁଂ. ବି. ପର୍ବତବିଶେଷ, ସପ୍ତକୁଳ ପର୍ବତରୁ ଏକ ।

ପାରିପାତ୍ରକ—ପୁଂ.ବି. ପାରିପାତ୍ର ପର୍ବତ ।

ପାରିପାର୍ଶ୍ୱ—କ୍ଲୀ. ବି. (ପରିପାର୍ଶ୍ୱ+ଅ) ଅନୁଚର, ପାରିଷଦ ।

ପାରିପାର୍ଶ୍ୱିକ—ପୁଂ.ବି.(ପରି+ପାର୍ଶ୍ୱ+କ) ନଟ ବିଶେଷ, ପାର୍ଶ୍ୱେ ଅବସ୍ଥାନକାରୀ ସେବକାଦି, ଭୃତ୍ୟ, ଗୃହର ଗୃହପୋଷେ ବୁଲୁଥିବା କ୍ଷୁଦ୍ର ଗୃହ, (ବିଂ) ପାର୍ଶ୍ୱବର୍ତ୍ତୀ, ଚତୁର୍ଦ୍ଦିଗବର୍ତ୍ତୀ, ସେବକ ।

ପାରିପ୍ଲାବ—ବିଂ. (ପରିପ୍ଲବ+ଅ)ଚଞ୍ଚଳ, କାତର, ଆକୁଳ, କମ୍ପମାନ, (ବି) ହିନ୍ଦୁମାନଙ୍କର ତୀର୍ଥ ବିଶେଷ, ଉଦ୍ବେଗ, ଅସ୍ଥିରତା, ଜଳପକ୍ଷୀ ବିଶେଷ ।

ପାରିପ୍ଲାବ—ବିଂ. ପାରିପ୍ଲବ ଦେଖ, (ବି) ପାତିହଂସ, ବତକ ।

ପାରିବା—ଗ୍ରା. କ୍ରି. କ୍ଷମ ହେବା, ଡିମ୍ବ ପ୍ରସବ କରିବା ।

ପାରିଭଦ୍ର—ପୁଂ. ବି. ( ପରିଭଦ୍ର+ଅ ) ନିମଗଛ, ପାଳଧୂଆ ଗଛ, ମନ୍ଦାର, ପାରିଜାତ, ରକ୍ତକେଶର, ଦେବଦାରୁ, ସରଳବୃକ୍ଷ, ଶାଲ୍ମଳୀଦ୍ୱୀପପତିର ପୁତ୍ରଙ୍କ ବର୍ଷ ବିଶେଷ, ପ୍ଲକ୍ଷ ଦ୍ୱୀପର ବର୍ଷ ବିଶେଷ, କୁଡ଼ଔଷଧି ।

ପାରିଭଦ୍ରକ—ପୁଂ. ବି. (ପାରିଭଦ୍ର+କ) ଦେବଦାରୁ ବୃକ୍ଷ,ନିମ୍ବବୃକ୍ଷ, କୁଡ଼ଔଷଧି, ପାରିଜାତ ବୃକ୍ଷ, ସରଳ ବୃକ୍ଷ ।

ପାରିଭାବ୍ୟ—କ୍ଲୀ. ବି. ( ପରିଭୂ+ଯ ) ଜାମୀନହେବା, ପ୍ରତିଭୂତ୍ୱ, କୁଡ଼ଔଷଧି. ( ବିଂ ) ସାଧାରଣ ପ୍ରଚଳିତ ପରିଭାଷା ସମ୍ବନ୍ଧୀୟ ।

ପାରିଭାଷିକ—କ୍ଲୀ.ବି.(ପରିଭାଷା+ଇକ) ପରିଭାଷା ଦ୍ୱାରା ଅର୍ଥବୋଧକ ପଦ ।

ପାରିମାଣ୍ଡଲ୍ୟ—କ୍ଲୀ. ବି. (ପରିମଣ୍ଡଲ+ଯ) ଅଣୁପରିମାଣ, ପରମାଣୁର ପରିମାଣ ସୂର୍ଯ୍ୟକିରଣରେ ଭାସମାନ ରେଣୁ ।

ପାରିମାପ୍ୟ—ବି. (ପରିମାପ+ଯ) ପରିଧି

ପାରିମିତ୍ୟ—ବି. (ପରିମିତ+ଯ) ସୀମା, ନିର୍ଦ୍ଦିଷ୍ଟ ପରିମାଣ ବା ସଂଖ୍ୟା ।

ପାରିମୁଖିକ—ପୁଂ. ବିଂ.(ପରିମୁଖ+ଇକ) ସମ୍ମୁଖବର୍ତ୍ତୀ,ନିକଟରେ ଥିବା,ଉପସ୍ଥିତ

ପାରିଯାତ୍ର—ପୁଂ. ବି. (ପରିଯାତ୍ର+ଅ) କୁଳ ପର୍ବତ ବିଶେଷ, ରାଜ୍ୟ ବିଶେଷ

ପାରିଯାନିକ—ପୁଂ. ବି. ( ପରିଯାନ+ଇକ)ଯେଉଁ ଗାଡ଼ି ବା ଯାନରେ ପର୍ଯ୍ୟଟକ ପରିଭ୍ରମଣ କରନ୍ତି, ମାର୍ଗଯାନଯୋଗ୍ୟ ରଥ ।

ପାରିରକ୍ଷକ—ପୁଂ.ବି.ମୁନି, ଋଷି, ତପସ୍ୱୀ ।

ପାରିଲକ୍ଷକନ୍ୟା—ଗ୍ରା. ବି. ବଡ଼ିଲିଙ୍ଗକନ୍ୟା, ପ୍ରାପ୍ତରଜସ୍କା କନ୍ୟା ।

ପାରିଲର—ଗ୍ରା. ବିଂ. ପାରିବାର ଦେଖ ।

ପାରିବା—ଗ୍ରା. କ୍ରି. କ୍ଷମହେବା, ସମର୍ଥ ହେବା,ଯୋଗ୍ୟ ହେବା,ଭୂମିରେ ବସୁଇବା, ପକାଇବା, ତୋଳିବା, ଦମନକ୍ଷମ ହେବା, ପରାଜୟ କରିବା, କାର୍ଯ୍ୟକ୍ଷମ ହେବା, ଡିମ୍ବ ପ୍ରସବ କରିବା ।

ପାରିବାର—ଗ୍ରା. ପୁଂ ଓ ସ୍ତ୍ରୀ. ବି. ଯୋଗ୍ୟ, ସାମର୍ଥ୍ୟ, ବଳୁଆ, ଅର୍ଜନକାରୀଆ,ଉତ୍କୃଷ୍ଟ ।

ପାରିବେତ୍ୟ—କ୍ଲୀ. ବି. (ପରିବେତ୍ତା+ଯ) ସାନଭାଇର ବିବାହପରେ (ବଡ଼ଭାଇ) ଅବିବାହିତ ରହିବା ଅବସ୍ଥା ।

ପାରିବୃତ୍ୟ—କ୍ଲୀ. ବି. ପରିବୃତର ଭାବ, ଅର୍ଥାତ୍ କ୍ୟେଷ୍ଠଭ୍ରାତାର ବିବାହର ଅଗ୍ରେ କନିଷ୍ଠର ବିବାହ ।

ପାରିବ୍ରାଜକ—କ୍ଲୀ. ବି. ପରିବ୍ରାଜକର ଭାବ, ସନ୍ନ୍ୟାସ ।

ପାରିବ୍ରାଜ୍ୟ—କ୍ଲୀ. ବି. (ପରିବ୍ରାଜ+ଯ) ପରିବ୍ରାଜକର କର୍ମ, ଅଶ୍ୱଥ ବିଶେଷ ।।

ପାରିଶ—ପୁଂ. ବି. ଅଶ୍ୱତ୍ଥ ବୃକ୍ଷ ବିଶେଷ, ପର୍ବତ କାଉଁରିଆ ।

ପାରିଶୀଳ-ପୁଂ.ବି.ପିଷ୍ଟକବିଶେଷ,ମାଲପୁଆ

ପାରିଶୁଆ—ଗ୍ରା. ବି. ଶଯ୍ୟା, ବିଛଣା, ବିଛଣାଗୃହର ।

ପାରିଶେଷ୍ୟ-କ୍ଲୀ.ବି.ପରିଶେଷ,ଅବଶିଷ୍ଟାଂଶ

ପାରିଶ୍ରମିକ—ବି. ( ପରିଶ୍ରମ+ଇକ ) ମେହନ୍ତାନା, ମଜୁରୀ ।

ପାରିଷତ୍କ—ପୁଂ. ବି. ପରିଷଦ ଗ୍ରନ୍ଥାଧ୍ୟେତା, ପରିଷଦ ଗ୍ରନ୍ଥବେତ୍ତା ।

ପାରିଷଦ—ବି.(ପରିଷଦ+ଅ)ରାଜସଭାର ସଭ୍ୟ, ସଭାସଦ, ସଭ୍ୟ, ପାଖଲୋକ, ନାଟ୍ୟାଦିର ଦର୍ଶକ, ହସାବ ପରୀକ୍ଷାସହଚର,(ବିଂ)ପାର୍ଶ୍ୱଗୃହ, ପାରିପାର୍ଶ୍ୱିକ

ପାରିଷଦ୍ୟ—ପୁଂ. ବି. ( ପରିଷଦ+ଯ)

ଦେଖଣାହାରୀ, ସଭାର ଦର୍ଶକ ।

ପାରେଶୀର୍ଯ୍ୟ—ବି. ବି°. ଯାହା କୁକ୍ଷିରୁ ଉତ୍ପନ୍ନ ନୁହେ ।

ପାରିହାଟିକ—ବି. ବି°. ବେଷ୍ଟନକାରୀ, ଯେ ଧରେ, ପରିହାରକର୍ତ୍ତା, (ପୁଂ.ବି) ମାଳାକାର ।

ପାରିହାର୍ଯ୍ୟ—ବି. (ପାରିହାର+ଯ)ହାତ ଖଡ଼ୁ, ଧରିବା ବଳୟ, କରଭୂଷଣ ।

ପାରିହାସ୍ୟ—ବି°.(ପରିହାସ+ଯ)ପରିହାସ ଜନିତ, ପରିହାସମୟ,(ବି)ଥଟ୍ଟା,

ପାରିହେବା—ଗ୍ରା. କ୍ରି. ନଦୀ ଆଦି ଅତିକ୍ରମ କରିବା,ପାରହେବା,ଉଦ୍ଧାରପାଇବ

ପାରୀ—ସ୍ତ୍ରୀ. ବି. ପୂର, ହସ୍ତୀବନ୍ଧନୀ,କିଞ୍ଚିଜଳ,କର୍କରୀ, ପୁଷ୍ପର ପରାଗ ,ଦୋହନପାତ୍ର, ପାନପାତ୍ର,ପାଣି,(ପୁଂ.ବି)ସମୁଦ୍ର

ପାରୀକ୍ଷିତ—ପୁଂ. ବି. ( ପରୀକ୍ଷିତ+ଅ ) ପରୀକ୍ଷିତଙ୍କର ଅପତ୍ୟ, ଜନମେଜୟ, ପରୀକ୍ଷିତ ରାଜା ।

ପାରୀଣ—ବି. ବି°. (ପାର+ଇନ୍) ପାରଗମନକାରୀ, ପାରଗାମୀ, ସୁବିଜ୍ଞ ।

ପାରୀନ୍ଦ୍ର—ପୁଂ. ବି. (ପାର+ଇନ୍ଦ୍ର) ସିଂହ, ଅଜଗର ସର୍ପ ।

ପାରୀରଣ—ପୁଂ. ବି.କଚ୍ଛପ. ଯଷ୍ଟି,କମଠ, ଦଣ୍ଡ, ପାଟଶାଢ଼ୀ ।

ପାରୀଶ—ବି. ଏକପ୍ରକାର ନାତିବୃହତ୍ ବୃକ୍ଷ, ଗର୍ଦ୍ଦଭାଣ୍ଡ ବୃକ୍ଷ,ଗସ୍ୟାଶ୍ୱତ୍ଥ ।

ପାରୀଶ(ଷ)ଫଳ—ବି.ଅମୃତଭଣ୍ଡା ଫଳ, ପଃ ପୟା ।

ପାରୁ—ପୁଂ. ବି. (ପା+ରୁ) ଅଗ୍ନି,ସୂର୍ଯ୍ୟ, (ଗ୍ରା. ବି) ରସ ଚପୁଡ଼ା ହେଲା ପରେ ବେଲ ପଣସ ଆଦିର ତନ୍ତୁମୟ ସିଠା, ଶକ୍ତି, ସାମର୍ଥ୍ୟ,(ବି°)ଚେଷ୍ଟା,ନତ,ନମ୍ର, (ପ୍ରା. ଗଞ୍ଜାମ ବି.) ମହତ୍ତ୍ୱ, ମର୍ଯ୍ୟାଦା ।

ପାରୁଆ—ଗ୍ରା.ବି. ପାରାବତ, କବୁତର, ପାବତା ମାଛ ।

ପାରୁଡ଼ା—ଗ୍ରା. ବି. ପାଡୁରି ଦେଖ ।

ପାରୁପର୍ଯ୍ୟନ୍ତ--ଗ୍ରା.ଅବ୍ୟଯଥାଶକ୍ତି,ସାଧାନୁସାରେ ।

ପାରୁଣ—ଗ୍ରା. ବି.ପାର୍ଶ୍ୱ,ପାର୍ଶ୍ୱ,ଭୋଜନାର୍ଥ ପାତ୍ର; ନୈକଟ୍ୟ, ସାମୀପ୍ୟ ।

ପାରୁଷକ—ପୁଂ.ବି.ପୁଷ୍ପ ବିଶେଷ,( ବି° ) କଠୋର ।

ପାରୁଷ୍ୟ—ବି. (ପାରୁଷ+ଯ)କଠୋରତା, ତିରସ୍କାର, ଅପମାନ,ବିବାଦ ବିଶେଷ, ବ୍ୟସନ,ଅପ୍ରିୟ ବାକ୍ୟକଥନ,ଇନ୍ଦ୍ରଙ୍କର ବନ, ଅଗୁରୁ, ବୃହସ୍ପତି ।

ପାରେଗଙ୍ଗ—ଅବ୍ୟ,ଗଙ୍ଗାରଅପରପାରେ

ପାରେବତ—ପୁଂ. କ୍ଲୀ. ବି. ଫଳ ବୃକ୍ଷ ବିଶେଷ,ପିଜୁଳି,ଦ୍ୱୀପାନ୍ତରଭବ ଖର୍ଜୁର

ପାରେରକ—ପୁଂ. ବି. ଖଡ୍ଗ ।

ପାର୍କ—ଯା. ବି. ଜନାକୀର୍ଣ୍ଣ ନଗର ମଧ୍ୟରେ ସାମୟିକ ବିଶ୍ରାମ ଉଦ୍ଦେଶ୍ୟରେ ନିର୍ମିତ ହୋଇଥିବା ବୃକ୍ଷ ବେଷ୍ଟିତ ଉପବନ ।

ପାର୍ଘଟ—କ୍ଲୀ. ବି. ପାଉଁଶ, ଭସ୍ମ, ଧୂଳି ।

ପାର୍ଚା—ଯା.ବି. ପାରଗ୍ରୂ, ଜମିର ନମ୍ବର ଥାଇ ଅମିନଠାରୁ ପ୍ରଜାଙ୍କୁ ମିଳିବା ଚହ୍ଲୋଟ କାଗଜ ।

ପାର୍ଜନ୍ୟ—ବି. ବି. ( ପର୍ଜନ୍ୟ+ଯ ) ପର୍ଜନ୍ୟ ସମ୍ବନ୍ଧୀୟ, (କ୍ଲୀ. ବି) ଯୁଦ୍ଧାସ୍ତ୍ର ବିଶେଷ ।

ପାର୍ଥ—ପୁଂ. ବି.(ପୃଥା+ଅ)ପୃଥିବୀ ପତି, ପୃଥାପୁତ୍ର, ଅର୍ଜ୍ଜୁନ,ଅର୍ଜ୍ଜୁନ ବୃକ୍ଷ,ପାର୍ଥଶ୍ରବସ, ପୃଥୁ ଶ୍ରବାର ଅପତ୍ୟ, ଗନ୍ଧର୍ବ ବିଶେଷ ।

ପାର୍ଥକ୍ୟ—ବି. (ପୃଥକ୍+ଯ) ବିଚ୍ଛେଦ, ବିଭିନ୍ନତା, ବ୍ୟକ୍ତିତ୍ୱ, ପ୍ରଭେଦ, ଏକାକିତା ।

ପାର୍ଥବ—କ୍ଲୀ.ବି. ( ପୃଥୁ+ଅ ) ପୃଥୁତା, ବିଶାଳତା,ପ୍ରସ୍ଥ,ପୃଥୁନାମକ ରାଜା,(ବି°) ପୃଥୁରାଜ ସମ୍ବନ୍ଧୀୟ ।

ପାର୍ଥସାରଥି—ପୁଂ.ବି. (୬ତତ୍)ଶ୍ରୀକୃଷ୍ଣ ।

ପାର୍ଥିବ—ବି°. ( ପୃଥିବୀ+ଅ ) ପୃଥିବୀ ସମ୍ବନ୍ଧୀୟ, ସାଂସାରିକ,ପୃଥିବୀରୁ ଉତ୍ପନ୍ନ, ପୃଥିବୀ ଶାସନକାରୀ, ରାଜକୀୟ,ମାଟିରେ ତିଆରି, ପୃଥିବୀବାସୀ, (ପୁଂ) ରାଜା, ଯୋଦ୍ଧା, ତଗରପୁଷ୍ପ, ମାଟିପାତ୍ର,ଶରୀର, ମଙ୍ଗଳଗ୍ରହ, ମୃତ୍ତିକା ନିର୍ମିତ ଶିବଲିଙ୍ଗ ।

ପାର୍ଥିବଶକ୍ତି—କ୍ଲୀ.ବି. ( କ.ଧା ) ପୃଥିବୀ ସମ୍ବନ୍ଧୀୟ ଶକ୍ତି, ରାଜଶକ୍ତି, ମର ଜଗତର କ୍ଷମତା ।

ପାର୍ଥିବୀ—ସ୍ତ୍ରୀ.ବି. ( ପୃଥିବୀ+ଅ+ଈ ) ସୀତା, ଉମା, ଲକ୍ଷ୍ମୀ, ପାର୍ଥିବତ୍ୱ,ପାର୍ଥିବର ଭାବ ।

ପାର୍ଥୁକ—ଗ୍ରା.ବି. କ୍ଷମତା, ବଳ ।

ପାର୍ଥ୍ୟ—ପୁଂ. ବି. ପୃଥୁବଂଶୋଦ୍ଭବ ନୃପବିଶେଷ ।

ପାର୍ପର—ପୁଂ. ବି. (ପାର+ପୃ+କ.ଅ) ଯମ, ଏକପୋଷ ଚାଉଳ,କଦମ୍ବ ଫୁଲର କେଶର, କ୍ଷୟରୋଗ, ପାଉଁଶ ।

ପାର୍ଯ୍ୟ—ପୁଂ.ବି. ରୁଦ୍ରବିଶେଷ ।

ପାର୍ଯ୍ୟନ୍ତିକ—ବି°. ( ପର୍ଯ୍ୟନ୍ତ+ଇକ ) ଅନ୍ତିମ ।

ପାର୍ଯ୍ୟାତ୍ରିକ—ବି.ବି°.ହର୍ମ୍ୟ,[illegible],ମୃଗଭେଦ

ପାର୍ବଣ—ପୁଂ.ବି. ( ପାର୍ବନ୍+ଅ )ଅମାବାସ୍ୟା ଓ ପୂର୍ଣ୍ଣିମାଦି ପର୍ବରେ କୃତ ଶ୍ରାଦ୍ଧ, ଚନ୍ଦ୍ରଙ୍କ କଳାବୃଦ୍ଧି, ମୃଗବିଶେଷ, (ଗ୍ରା.ବି) ଦଶହରା, ଦୁର୍ଗାପୂଜା ।

ପାର୍ବଣୀ—ଗ୍ରା.ବି. ଦୁର୍ଗୋତ୍ସବ ଓ ଦୋଳପୂର୍ଣ୍ଣିମା ପ୍ରଭୃତିରେ ଗୁରୁମାନଙ୍କୁ ଯେଉଁ ପୁରସ୍କାର ଦିଆଯାଏ ।

ପାର୍ବତ—ପୁଂ. ବି. ମହାନିମ୍ବ, ପାରାବତ, ପାରା,ଅସ୍ତ୍ରବିଶେଷ, ହିଙ୍ଗୁଳ, ଶିଳାଜତୁ, ସୀସା, (ବି°)ପର୍ବତସମ୍ବନ୍ଧୀୟ,ପାର୍ବତ୍ୟ ।

ପାର୍ବତପୀଲୁ—ପୁଂ. ବି. ଅକ୍ଷୋଟବୃକ୍ଷ, ଆଖୋଟ । [ ପର୍ବତମାଳା ।

ପାର୍ବତିକ—କ୍ଲୀ. ବି. ( ପର୍ବତ+ଇକ )

ପାର୍ବତୀ—ସ୍ତ୍ରୀ.ବି. ( ପର୍ବତ+ଅ+ଈ ) ଗିରିଜା, ଦୁର୍ଗା, ପର୍ବତରାଜ ଦୁହିତା, ପର୍ବତଜାତ ନଦୀ, ଶଲ୍ଲକୀ, ଗଉଡୁଣୀ, ଦ୍ରୌପଦୀ, ଜୀବନୀ, ସୌରାଷ୍ଟ୍ର ମୃତ୍ତିକା, କ୍ଷୁଦ୍ର ପାଷାଣଭେଦୀ,ଧାତକୀ,ସୈହଳୀ, (ସ୍ତ୍ରୀ.ବି°) ପର୍ବତଜାତା, ପର୍ବତ ସମ୍ବନ୍ଧୀୟା, ପର୍ବତବାସିନୀ,(ଗ୍ରା.ବି) ପତଙ୍ଗବିଶେଷ, ପ୍ରଜାପତି ପୋକ ।

ପାର୍ବତୀକ୍ଷେତ୍ର—କ୍ଲୀ. ବି. ବିରଜାକ୍ଷେତ୍ର, ଯାଜପୁର ।

ପାର୍ବତୀନନ୍ଦନ—ପୁଂ.ବି. କାର୍ତ୍ତିକେୟ ।
ପାର୍ବତୀୟ—ବି. ବିଂ. (ପର୍ବତ+ଈୟ) ପର୍ବତଭବ, ପାହାଡ଼ିଆ, ପର୍ବତ ସମ୍ବନ୍ଧୀୟ ।
ପାର୍ବତୀୟକୁମାର—ପୁଂ.ବି. ପାର୍ବତୀ ପୁତ୍ର
ପାର୍ବତୀଶ୍ୱର—ପୁଂ. ବି. କାଶୀସ୍ଥିତ ଶିବଲିଙ୍ଗବିଶେଷ ।
ପାର୍ବତେୟ—କ୍ଳୀ.ବି. ସୌବୀରାଞ୍ଜନ,ସୁମା, କଙ୍କିମା, ଧାତକୀ, ପାର୍ବତୀୟ ବ୍ୟକ୍ତି, ସୂର୍ଯ୍ୟାବର୍ତ୍ତ ବୃକ୍ଷ, ଗଜପିପ୍ପଳୀ, (ବିଂ) ପାର୍ବତୀୟ ଦେଖ ।
ପାର୍ବତ୍ୟ—ବିଂ. (ପର୍ବତ+ଯ)ପର୍ବତଜାତ ପର୍ବତ ସମ୍ବନ୍ଧୀୟ, ପର୍ବତବାସୀ, ପର୍ବତସଙ୍କୁଳ ।
ପାର୍ଶବ—ପୁଂ.ବି.(ପର୍ଶୁ+ଅ) ପର୍ଶୁ ଅସ୍ତ୍ରଧାରୀ ଯୋଦ୍ଧା ।
ପାର୍ଶୀ—ଗ୍ରା.ବି. ପାରଶୀ ଦେଖ ।
ପାର୍ଶୁକା—ସ୍ତ୍ରୀ. ବି. (ପର୍ଶୁ+କ+ଆ) ପଞ୍ଜରାହାଡ଼ ।
ପାର୍ଶ୍ୱ—ପୁଂ. କ୍ଳୀ. ବି. (ପର୍ଶୁ+ଅ) କଡ଼, କଙ୍କାଳ, ଧାର,ଡାହାଣ ବା ବାମପାଖ, ନୈକଟ୍ୟ, ଚକ୍ରୋପାନ୍ତ, ପର୍ଶୁଗଣ, ପାର୍ଶ୍ୱାସ୍ଥି, ସମୂହ,କୁଟିଳ ଉପାୟ,ଜୈନମାନଙ୍କର ତ୍ରୟୋବିଂଶତି ତୀର୍ଥଙ୍କର ।
ପାର୍ଶ୍ୱକ—ବିଂ. (ପାର୍ଶ୍ୱ+କ) କୁଟିଳ ଉପାୟରେ ଧନ ଅର୍ଜନକାରୀ,ଠକ,(ବି) ପାର୍ଶ୍ୱ ଦେଖ ।
ପାର୍ଶ୍ୱଗ—ପୁଂ. ବିଂ. (ପାର୍ଶ୍ୱ+ଗମ୍+କ. ଅ) ପାର୍ଶ୍ୱବର୍ତ୍ତୀ, ଯେ ପାଖେ ପାଖେ ଚାଲେ, (ବି) ସହଚର, ଅନୁଚର, ଚାକର ।
ପାର୍ଶ୍ୱଚର—ପୁଂ. ବି. (ପାର୍ଶ୍ୱ+ଚର+କ.ଅ) ଅନୁଚର, ପାର୍ଶ୍ୱବର୍ତ୍ତୀ ଭୃତ୍ୟ, ସଙ୍ଗୀ ।
*ପାର୍ଶ୍ୱତଃ—ଅବ୍ୟ. ପାର୍ଶ୍ୱଦେଶରେ ।
ପାର୍ଶ୍ୱଦ—ପୁଂ. ବି. (ପାର୍ଶ୍ୱ+ଦା+କ.ଅ) ଅନୁଚର ।
ପାର୍ଶ୍ୱଦେଶ—ପୁଂ. ବି. ପାର୍ଶ୍ୱଭାଗ, କଡ଼, ପଞ୍ଜରାର ସ୍ଥାନ ।
ପାର୍ଶ୍ୱନାଥ—ପୁଂ.ବି. ପରେଶନାଥ,ଜୈନବିଶେଷ,ଜୈନମାନଙ୍କର ତ୍ରୟୋବିଂଶତି ତୀର୍ଥଙ୍କର ।
ପାର୍ଶ୍ୱପରିବର୍ତ୍ତନ—କ୍ଳୀ. ବି. (ପାର୍ଶ୍ୱ+ପରିବର୍ତ୍ତନ) କଡ଼ିଦାନ, କଡ଼ଲେଉଟା, ଉତ୍ସବବିଶେଷ ।
ପାର୍ଶ୍ୱପରିବର୍ତ୍ତନଏକାଦଶୀ—ବି. ଭାଦ୍ରବ ଶୁକ୍ଳ ଏକାଦଶୀ ।
ପାର୍ଶ୍ୱପରିବର୍ତ୍ତୀ—ବିଂ. (ପାର୍ଶ୍ୱ+ପରି+ବୃତ୍+ଇନ୍) ପାର୍ଶ୍ୱସ୍ଥ, ପାର୍ଶ୍ୱବର୍ତ୍ତୀ, ନିକଟକୁ ଲାଗିଥିବା ।
ପାର୍ଶ୍ୱଭାଗ—ପୁଂ. ବି. ପାଖ, କଡ଼, ପକ୍ଷଭାଗ, ହସ୍ତୀପ୍ରଭୃତିର ପାର୍ଶ୍ୱଦେଶ ।
ପାର୍ଶ୍ୱବକ୍ତ୍ର—ବି. (ବ,ବ୍ରୀ) ମହାଦେବ ।
ପାର୍ଶ୍ୱଶୟ—ବିଂ. ଯେ କଡ଼ମାଡ଼ି ଶୁଏ, ପାର୍ଶ୍ୱଦେଶ ଶୟନକାରୀ ।
ପାର୍ଶ୍ୱଶାୟୀ—ପୁଂ. ବିଂ. (ପାର୍ଶ୍ୱ+ଶୀ+ଇନ୍) ଯେ କଡ଼ମାଡ଼ି ଶୁଏ ।
ପାର୍ଶ୍ୱଶୂଳ—ବି. କଙ୍କାଳକୁ ମାରିବା ଶୂଳରୋଗବିଶେଷ ।
ପାର୍ଶ୍ୱସୂଚକ—ବି. ଅଳଂକାରବିଶେଷ, ଅଣ୍ଟାସୂତା ।
ପାର୍ଶ୍ୱସ୍ଥ—ପୁଂ. ବି. (ପାର୍ଶ୍ୱ+ସ୍ଥା+କ.ଅ) ପାର୍ଶ୍ୱସ୍ଥିତ ନଟ, (ବିଂ) ପାଖରେଥିବା, ସମୀପସ୍ଥ ।
ପାର୍ଶ୍ୱାସ୍ଥି—କ୍ଳୀ. ବି. ଶରୀରରେ ପାର୍ଶ୍ୱସ୍ଥିତ ଅସ୍ଥି, ପଞ୍ଜରାହାଡ଼ ।
ପାର୍ଶ୍ୱିକ—ବି. ବିଂ. (ପାର୍ଶ୍ୱ+ଇକ) ପାର୍ଶ୍ୱକ ଦେଖ ।
ପାର୍ଶ୍ୱୋଦରପ୍ରିୟ—ପୁଂ. ବି. ମର୍କଟ ।
ପାର୍ଶ୍ୱ୍ୟ—ବି. ସ୍ୱର୍ଗ ଓ ମର୍ତ୍ତ୍ୟ ।
ପାର୍ଷତ—ବିଂ. (ପୃଷତ+ଅ) ଦ୍ରୁପଦରାଜା ପୃଷତ ସମ୍ବନ୍ଧୀୟ, (ବି) ଦ୍ରୁପଦ ପୁତ୍ର ଧୃଷ୍ଟଦ୍ୟୁମ୍ନ ।
ପାର୍ଷତୀ—ସ୍ତ୍ରୀ.ବି. (ପାର୍ଷତ+ଈ)ଦ୍ରୌପଦୀ
ପାର୍ଷଦ୍—ପୁଂ.ବି. ପରିଷଦ, ଗୋଷ୍ଠୀ,ସଭା,
ପାର୍ଷଦ—ପୁଂ. (ପର୍ଷଦ୍+ଅ) ପାରିଷଦ, ମନ୍ତ୍ରୀ, ସଭାସଦ, ଚାକର, ଦର୍ଶକ,ଖ୍ୟାତନାମା ବ୍ୟକ୍ତି, ପଦ୍ଧତିବିଶେଷ,ପ୍ରଚଣ୍ଡଶାଖ୍ୟ,
ପାର୍ଷ୍ଣି(ଷ୍ଣୀ)—ପୁଂ.ସ୍ତ୍ରୀ.ବି.(ପୃଷ+ନି.ନୀ) ଗୋଇଠି, ପୃଷ୍ଠଦେଶ, ଧୃଷ୍ଟ, ଶତ୍ରୁ, ଗୋଇଠା, ପାଦଗଣ୍ଠିର ଅଧୋଭାଗ, ସୈନ୍ୟପୃଷ୍ଠ,ପୃଷ୍ଠ.ଜିଗୀଷା,ଅନୁସନ୍ଧାନ, ତଦନ୍ତ, ଦୁଷ୍ଟଚରିତ୍ରା ସ୍ତ୍ରୀ, କୁନ୍ତୀ ।
ପାର୍ଷ୍ଣିକ୍ଷେମ—ପୁଂ.ବି.ବିଶ୍ୱଦେବବିଶେଷ ।
ପାର୍ଷ୍ଣିଗ୍ରହ—ପୁଂ.ବି. (ପାର୍ଷ୍ଣି+ଗ୍ରହ+କ. ଅ) ଅନୁଚର ।
ପାର୍ଷ୍ଣିଗ୍ରାହ—ପୁଂ.ବି. (ପାର୍ଷ୍ଣି+ଗ୍ରହ+କ.ଅ) ସେନାର ପଶ୍ଚାଦ୍ଭାଗରୁ ଆକ୍ରମଣ କରିବା ଶତ୍ରୁ, ରାଜାଙ୍କ ସହାୟକ ମିତ୍ର ରାଜା.ଦ୍ୱାଦଶ ପ୍ରକାର ରାଜଚକ୍ର ମଧ୍ୟରେ ପୃଷ୍ଠସ୍ଥାୟୀ ନୃପ ।
ପାର୍ଷ୍ଣିଘାତ—ବି. (ଶତ୍ରୁ) ଗୋଇଠା ।
ପାର୍ଷ୍ଣିତ୍ର—କ୍ଳୀ.ବି. (ପାର୍ଷ୍ଣି+ତ୍ରୈ+ଅ) ପଶ୍ଚାଦ୍‌ରକ୍ଷକ ସେନା ।
ପାର୍ଷ୍ଣିବାହ—ବିଂ. ପୃଷ୍ଠସ୍ଥ କାର୍ଯ୍ୟ ନିର୍ବାହକ, ଯେଉଁମାନେ ପଛରେ ଥାଇ କାର୍ଯ୍ୟ ସମାଧା କରନ୍ତି ।
ପାଲ—ବିଂ. (ପାଳ+କ.ଅ) ପାଳକ ଦେଖ,(ବି) ପିକଦାନ, ଚନ୍ଦନବୃକ୍ଷ, ପଶୁଚାରଣକାରୀ ବ୍ୟକ୍ତି, ଦଳ,ସମୂହ, (ଗ୍ରା.ବି) (ହି-ପଲାଲ) କୁଟା, ପୁଆଳ, ନଦୀତୀରସ୍ଥ ପଟୁ ପଡ଼ିଥିବା ଉର୍ବର ଜମି, ବଙ୍ଗଦେଶୀୟ ପ୍ରାଚୀନ ରାଜବଂଶବିଶେଷ, ଓଡ଼ିଶା ଗଡ଼ଜାତ ପାଲଲହଡ଼ା ରାଜବଂଶୋପାଧି, ଓଡ଼ିଆ ବ୍ରାହ୍ମଣ, କ୍ଷତ୍ରିୟ ଓ ଶୂଦ୍ରଙ୍କ ଉପାଧିବିଶେଷ ।
ପାଲ—ଗ୍ରା.ବି.ଅଖାରେ ତିଆରି ପରଦା, କେରପାଲ, ବଣ୍ଟିଏ ଅଖାରେ ନିର୍ମିତ ଗ୍ରେଟ ତମ୍ବୁ, ଜାହାଜ ଓ ଡଙ୍ଗାକୁ ପବନରେ ଚଳାଇବା ନିମନ୍ତେ ଖୁଣ୍ଟରେ ବନ୍ଧାହେବା ମୋଟା ବସ୍ତ୍ର, ଅଖାପାଲ, କଇଆଦି ମାଛର ବସା, ବମ୍ବୁର,କୁଚକ, ଫାନ୍ଦ, ପ୍ରଲେଭନ, ଜମିର ଡୁଡ଼ାକୁ ଲାଗି ରହିଥିବା ନିମ୍ନ ନିମ୍ନ ଅଂଶ (ଯାହାକି ଚାଷ ହୁଏ ନାହିଁ) ।
ପାଲକ—ବି.ବିଂ. (ପାଲ+ଅକ) ଯେ ଜଗେ, ରକ୍ଷକ, ପାଳନକର୍ତ୍ତା, (ବି)

ପାଲଙ୍କଶାଗ, ଘୋଟକ, ରକ୍ଷକ,ସଇସ, ଅଭିଭାବକ, ପୋଷ୍ୟପୁତ୍ର, ଚନ୍ଦନବୃକ୍ଷ, ଗଜକ୍ଷୁର, ହିଙ୍ଗୁଳ, (ଗ୍ରା.ବି) ଶସ୍ୟର ଅନୁକୂଳ ସୁବୃଷ୍ଟି ଆଦି ଯୁକ୍ତ ଋତୁ ବା ଅବସ୍ଥା, ଭଲପାଗ ।

ପାଲ୍କ—ପ୍ରା. (ମେଦିନୀପୁର)ବି. ଚଢ଼େଇଙ୍କ ଶ୍ରେଷ୍ଠ ପ୍ରେମ,ପର । [ସନ୍ତାନ ।

ପାଳକପୁତ୍ର—ପୁଂ.ବି.ପୋଷ୍ୟପୁତ୍ର,ପାଳିତ

ପାଳକାଧିପ—ବି. ଗଣନାନୁସାରେ କୌଣସି ବର୍ଷରେ ସୃଷ୍ଟିର ପାଳନକାରୀ ଗ୍ରହ ।

ପାଲକୁଟା—ଗ୍ରା.ବି. କୁଟା ।

ପାଲଙ୍କ—କ୍ଲୀ.ବି. ଉପରତ୍ନବିଶେଷ,(ପୁଂ. ବି) ପାଲଙ୍କଶାଗ, ବାଜପକ୍ଷୀ ।

ପାଲଙ୍କୀ—ସ୍ତ୍ରୀ. ବି. କୁନ୍ଦୁରୁନାମକ ଗନ୍ଧଦ୍ରବ୍ୟ, ପାଲଙ୍କଶାଗ, (ଗ୍ରା.ବି) ଉପରେ ଶୁଆଇଥିବା ମନୁଷ୍ୟବାହ୍ୟ ଯାନ ।

ପାଲଙ୍କ୍ୟ—କ୍ଲୀ.ବି.ଶାକବିଶେଷ,ପାଲଙ୍କଶାଗ ।

ପାଲଙ୍କ୍ୟା—ସ୍ତ୍ରୀ.ବି. କୁନ୍ଦୁରୁ, ପାଲଙ୍କଶାଗ

ପାଲଙ୍ଗ—ଗ୍ରା.ବି. ଶାକବିଶେଷ ।

ପାଲଛତ୍ରୁ—ଗ୍ରା. ବି. ପାଲ ଜମାହେବା ସ୍ଥାନରେ ପାଲ ସଡ଼ିଯିବା ପରେ ଫୁଟିବା ଛତ୍ରୁ ।

ପାଲଚୁଣ୍ଡାମନ୍ତ୍ରୀ—ଗ୍ରା. ବି. ଅବିବେଚକ ରାଜାଙ୍କର ନବୁଦ୍ଧିଆ ମନ୍ତ୍ରୀ ।

ପାଲଟ—ଗ୍ରା. ବି. (ଫ-ପର୍ଯ୍ୟସ୍ତ) ବଦଳ, ପରିବର୍ତ୍ତନ, ବିପରୀତ ବା ଅସଙ୍ଗତ ଘଟଣା ।

ପାଲଟା—ଗ୍ରା. ବିଂ. ପରିବର୍ତ୍ତିତ, ବଦଳ ହୋଇଥିବା, ବକ୍ର, ଆଡ଼, ବିପର୍ଯ୍ୟସ୍ତ ।

ପାଲଟିଆ—ପ୍ରା. (କଟକ ପୁରୀ) ବି. ଶୂଦ୍ର ଓ ଶ୍ରେଷ୍ଠଜାତିର ସ୍ତ୍ରୀମାନେ ହାତରେ ପିଉଳରେ ଯେଉଁ ବାହୁ ଚୁଡ଼ି ପିନ୍ଧନ୍ତି ।

ପାଲଟିବା—ଗ୍ରା. କ୍ରି. ବଦଳିବା, ବସ୍ତ୍ର ପରିବର୍ତ୍ତନ କରିବା, ଲେଉଟିବା, ଫେରିବା ।

ପାଲଣ—ଗ୍ରା. ବି. ପାଳନ ଦେଖ, (ବିଂ) ପାଳିତ, ରକ୍ଷିତ ।

ପାଲଣା—ଗ୍ରା.ବି.ବିଂ. ପାଳନ ଦେଖ ।

ପାଲଣୀ—ସ୍ତ୍ରୀ. ବିଂ. ପାଳନକର୍ତ୍ତ୍ରୀ ।

ପାଲଖୀ—ଗ୍ରା.ସ୍ତ୍ରୀ.ବି. ଦାସୀ, ପୋଇଲୀ ।

ପାଲଧୁଆ—ଗ୍ରା. ବି. ଏକପ୍ରକାର ଗଛ ।

ପାଲନ—କ୍ଲୀ.ବି.(ପାଲ+ଭା.ଅନ) ପ୍ରତିପୋଷଣ, ରକ୍ଷଣ, ବ୍ରତାଦି ଯଥାବିଧି ଆଚରଣ କରିବା, ଜଗିବା, ପାଖରେ ରଖିବା, ସଦ୍ୟପ୍ରସୂତା ଗାଈର ଦୁଗ୍ଧ, ସଙ୍ଗୀତବିଶେଷ, ଆଦେଶମାନିବା ।

ପାଲନକର୍ତ୍ତା—ପୁଂ. ବିଂ. ପ୍ରତିପାଳକ, ପୋଷଣକାରୀ ।

ପାଲନା—ଗ୍ରା. ବି. ବ୍ରତ ଉପବାସ ପରେ ପ୍ରଥମ ଭୋଜନ, ପାଳନ ଦେଖ ।

ପାଲନୀୟ—କ୍ରି.ବିଂ. (ପାଲ+ମି.ଅନୀୟ) ପାଳନ ଯୋଗ୍ୟ,ପାଳନାର୍ହ,ରକ୍ଷଣୀୟ ।

ପାଲନ୍ତା—ଗ୍ରା. ବି. ପାଳତା, ପାଳକ ।

ପାଲୟିତା—ପୁଂ. ବିଂ. (ପାଲ+କ.ତୃ) ପାଳନକର୍ତ୍ତା, ରକ୍ଷକ, ବ୍ରତଧାରୀ ।

ପାଲରାଜବଂଶ—ଗୌଡ଼ ଓ ମଗଧର ଏକ ପରାକ୍ରାନ୍ତ ବୌଦ୍ଧ ରାଜବଂଶ ।

ପାଲରେପକା(କେ)ଇବା—ଗ୍ରା.କ୍ରି.ବିପଦରେ କୌଣସି ବ୍ୟକ୍ତିକୁ ପକାଇବା, ପ୍ରଲୋଭନ ଦେଖାଇ ବଶ କରିବା ।

ପାଲରେପଡ଼ିବା—ଗ୍ରା. କ୍ରି. ବଶୀଭୂତ ହେବା କରଗତ ହେବା, କୁମନ୍ତ୍ରଣା ଦ୍ୱାରାବଶବର୍ତ୍ତୀ ହେବା ।

ପାଲଲହଡ଼ା—ଗ୍ରା.ବି.ଓଡ଼ିଶାର ଗୋଟିଏ ଗଡ଼ଜାତ ରାଜ୍ୟ ।

ପାଲା—ଗ୍ରା. ବି. ସତ୍ୟପୀର ବା ସତ୍ୟନାରାୟଣ ଦେବଙ୍କ ପୂଜା ଓ ତନ୍ମାହାତ୍ମ୍ୟ ବର୍ଣ୍ଣିତ ୧୪ ଅକ୍ଷରୀ ଗୀତବିଶେଷ, ଧର୍ମ, ସଙ୍ଗୀତସହ ନୃତ୍ୟଗୀତାଦି.(ଲ.ଅର୍ଥ ଉଚ୍ଚୈଃସ୍ୱରରେ କଲ କଳିଆ ।

ପାଲଗି—ଗ୍ରା. ବି. ଦଣ୍ଡବତ ।

ପାଲାବାଲା—ଗ୍ରା. ବି. ପାଲା ବୋଲିବା ଗାୟକ ବା ନର୍ତ୍ତକ ।

ପାଲାଶ—ବି. ତମାଲ ପତ୍ର, ତେଜପତ୍ର, ହରିତ୍ ବର୍ଣ୍ଣ ବୃକ୍ଷବିଶେଷ, ମଗଧଦେଶ, (ବିଂ) ପଲାଶସମ୍ବନ୍ଧୀୟ ।

ପାଲାଶି—ପୁଂ. ବି. ପଲାଶ ଗୋତ୍ର ପ୍ରବର ଋଷିଭେଦ ।

ପାଳି—ବି. (ପା+ଣିଚ୍—ମି.ଇ) ପଂକ୍ତି, ଶ୍ରେଣୀ, ପ୍ରାନ୍ତଭାଗ, ପ୍ରଦେଶ, ଖଡ୍ଗାଦିର ତୀକ୍ଷ୍ଣ ଧାର, ବାଡ଼, ସିଦ୍ଧ କରିବାର ପାତ୍ର, ଅଙ୍କ, କୋଡ଼, ପ୍ରଶଂସା ବଚନ, କୋଣ, ଦ୍ୱାରି, ସ୍ଥାଳୀ, ସେତୁ,ବନ୍ଧ, ପୋଲ, ଦାଗ, ଚିହ୍ନ, ସୀମା, ଶ୍ମଶ୍ରୁଳା ସ୍ତ୍ରୀ, ପିଗ୍ଧ,ଗୃହବୃତ୍ତି, କାନର ଅଗ୍ରଭାଗ, କେଶକୀଟ,ଉକୁଣୀ,ଗୋରୁଙ୍କ ଅଟେଇ, ଗୁହାଳ, ଶସ୍ୟ ମାପିବାର ପାତ୍ର, ରାଶି, ପାଲଗଦା, ଲମ୍ବ ଜଳାଶୟ, ଶିକ୍ଷା ପାଉଥିବା ସମୟରେ ଗୁରୁଙ୍କ ଦ୍ୱାରା ଶୁଦ୍ଧର ପ୍ରତିପାଳନ କର୍ମ ପରିଧି ଏକପ୍ରସ୍ଥ ପରିମିତ ଚାଉଳ (ପ୍ରାୟ ପାଞ୍ଚ ସେର), ପାଲ, (ଗ୍ରା. ବି. ଫ-ପର୍ଯ୍ୟାୟ) ପର୍ଯ୍ୟାୟ, କୌଣସି କାର୍ଯ୍ୟ କରିବାର କ୍ରମିକ ସମୟ, ପର୍ଯ୍ୟାୟ କ୍ରମେ ପୂଜା ଓ ସେବାଆଦି କରିବାର ନିର୍ଦ୍ଦିଷ୍ଟ ଦିବସ ବା ସମୟ, ପ୍ରଧାନ ଗାୟକ ଗୀତ ବୋଲିବା ପରେ ଗୀତର ଯେଉଁ ଘୋଷଣାକୁ ଅନ୍ୟମାନେ ବୋଲନ୍ତି,ଊହା ପାଲି—ଗ୍ରା. ବି. ଯେଉଁ ଭାଷାରେ ବୁଦ୍ଧଦେବ ଉପଦେଶ ଦେଉଥିଲେ ଓ ଯହିଁରେ ବୌଦ୍ଧ ଗ୍ରନ୍ଥମାନ ଲିଖିତ ହୋଇଅଛି, ବୌଦ୍ଧ ମାଗଧୀ ଭାଷା, ପଶାଖେଳର ଘରମାନ, ଚିହ୍ନ ହୋଇଥିବା କନାର ଚତୁଷ୍କ,(ପ୍ରା.ସମ୍ବ)ପଡ଼ାଗାଁ ।

ପାଳିଆ—ଗ୍ରା. ବିଂ. ଯେ ଗୀତର ପାଳି ଧରେ, ଅନୁଗାୟକ, ସାହାଯ୍ୟକାରୀ ।

ପାଳିଆ—ପ୍ରା. (ଗଞ୍ଜାମ)ବି. ଅତି ନୀଚ ଶୂଦ୍ରଜାତିବିଶେଷ ।

ପାଳିକା—ସ୍ତ୍ରୀ. ବି. ( ପାଳି+କ+ଆ ) ଅଣି, କୋଣ, କର୍ଣ୍ଣପତ୍ର, କୁନ୍ତଳିକା, ଖଡ୍ଗର ତୀକ୍ଷ୍ଣ ଧାର, (ବିଂ) ରକ୍ଷୟିତ୍ରୀ, ପାଳନକର୍ତ୍ତ୍ରୀ ।

ପାଲଙ୍କି—ଗ୍ରା.ବି. (ଫ-ପଲ୍ୟଙ୍କ) ମନୁଷ୍ୟବାହ୍ୟ ଯାନବିଶେଷ ।

ପାଳକର—ଗ୍ରା.ବି.ଯେଉଁ କର ପର୍ଯ୍ୟାୟକ୍ରମେ ଏକ ବା ଅଧିକ ଧନ ଗ୍ରହଣ ଆକ୍ରମଣ କରେ ।

ପାଳଗ୍ର(ଥି)—ଗ୍ରା.ବି.ବଙ୍ଗ କାୟସ୍ଥମାନଙ୍କ ଉପାଧିବିଶେଷ ।

ପାଳିତ—ତ୍ରି. ସଂ. (ପାଳ+ତ)ରକ୍ଷିତ, ବର୍ଦ୍ଧିତ, (ବି) ଶାଖୋଟ ବୃକ୍ଷ, ସାହାଡ଼ା ଗଛ, କୋଷ୍ଟୁବଂଶୀୟ ନୃପବିଶେଷ, ଦେଶବିଶେଷ ।

ପାଳିତବ୍ୟ—ସଂ. ( ପାଳ+ର୍ମ.ତବ୍ୟ ) ପାଳିତ ହେବାର ଉପଯୋଗୀ ।

ପାଳଧରିବା—ଗ୍ରା.କ୍ରି.ଗାୟକର ବୋଲିବା ଗୀତକୁ ଅନୁସରଣ କରି ଘୋଷିବା ।

ପାଳିନ୍ଦ—ପୁଂ. ବି. (ପାଳି+ଇନ୍ଦ) କୁନ୍ଦୁରକ, କନ୍ଦଫୁଲ ।

ପାଳିନ୍ଦୀ—ସ୍ତ୍ରୀ. ବି. (ପାଳି+ଇନ୍ଦ+ଈ) ତ୍ରିବୃତ୍ ଲତା, କୁଆମଇତା, ଶ୍ୟାମାଲତା, ଭାର୍ଗୀ,ଶ୍ୱେତ ଅପରାଜିତା, ହସ୍ତିମାଣାଲତା, କାରବେଲ, କଲରା ।

ପାଳିବା—ଗ୍ରା.କ୍ରି. ଶିଶୁ କାଳରୁ ଲାଳନ ପାଳନ କରିବା,(ଜୀବଆଦିକୁ)ପୋଷିବା, ରଖିବା, ଜଗିବା, (ଆଦେଶ) ମାନିବା, ପ୍ରତିଜ୍ଞାନୁସାରେ କାର୍ଯ୍ୟ କରିବା, ବ୍ରତଆଦିର ବିଧି ଅନୁସାରେ କାର୍ଯ୍ୟ କରିବା, ସୁଶାସନ କରିବା, ଅଶୌଚର ବିଧି ରକ୍ଷାକରିବା । [ ଗଛ ।

ପାଳିକୁଟ—ପୁଂ.ବି. ଚନ୍ଦ୍ରକ ବୃକ୍ଷ, ଚତା-

ପାଲୁ—ପ୍ରା. (ଗଞ୍ଜାମ)ବି. ଦୁଧ, ଦୁଗ୍ଧ ।

ପାଲୁଅ—ଗ୍ରା. ବି. ସ୍ୱନାମପ୍ରସିଦ୍ଧ ଚୂର୍ଣ୍ଣବିଶେଷ, ଜଳସି ଜାତୀୟ ବଡ଼ ବନ୍ୟଶାକ ବୃକ୍ଷବିଶେଷର ଈଷତ୍ ସୁଗନ୍ଧ ମୂଳ ଓ ତାହାର ଚୂର୍ଣ୍ଣ । [ ନରମ ।

ପାଳୁଆ—ଗ୍ରା.ସଂ.ପାଳ ଜମିରେ ଉତ୍ପନ୍ନ,

ପାଲୁଣୀ—ଗ୍ରା.ସ୍ତ୍ରୀ.ବି.ପାଣ ଜାତୀୟା ସ୍ତ୍ରୀ ।

ପାଲ୍ୟ—ତ୍ରି. ସଂ. (ପାଳ+ର୍ମ.ଯ)ପାଳନୀୟ ଦେଖ ।

ପାବକ—ପୁଂ. ବି. (ପୂ+କ.ଅକ)ଭଲ୍ଲାତକ, ଭଲିଆ, ସଦାଚାର, ଅଗଦସ୍ତୁ ଗଛ, ଅଗ୍ନିମନ୍ଥ, ଅଗ୍ନି, ବୈଦ୍ୟୁତାଗ୍ନି, ସଦାଚାର ବ୍ୟକ୍ତି, ଚିତ୍ରକବୃକ୍ଷ, ବଡ଼ଙ୍ଗ, କୁସୁମ, ବରୁଣ, ସୂର୍ଯ୍ୟ, ଅଗ୍ନିଦେବ, ତପସ୍ୟା, ମୁନି, ଋଷି, ବହ୍ନିମନ୍ଥ, ସଂ. ଶୁଦ୍ଧିକାରକ, ଯାହା ପବିତ୍ର ବା ଶୁଦ୍ଧ କରେ ।

ପାବକର୍ଷି—ବି.(କ.ଧା)ବ୍ରହ୍ମାଙ୍କ ଅଙ୍ଗରୁ ଜାତ ଜଣେ ଋଷି ।

ପାବକାତ୍ମଜ—ପୁଂ. ବି. କାର୍ତ୍ତିକେୟ, ଇକ୍ଷ୍ୱାକୁବଂଶୀୟ ଦୁର୍ଯ୍ୟୋଧନର କନ୍ୟା ସୁଦର୍ଶନା ର ପୁତ୍ର ।

ପାବକାରଣି—ପୁଂ. ବି. ଅଗ୍ନିମନ୍ଥ ବୃକ୍ଷ, ଅଗଦଥୁ ଗଛ ।

ପାବକାମଣି—ପୁଂ.ବି.ସୂର୍ଯ୍ୟକାନ୍ତମଣି ।

ପାବକେ—ପୁଂ. ବି. (ପାବକ+ଇ)କାର୍ତ୍ତିକେୟ,ପାବକାତ୍ମଜ,ସୁଦର୍ଶନର ପୁତ୍ର ।

ପାବଚ୍ଛ—ଗ୍ରା.ବି.ପାହାଚ,ସୋପାନ,ସିଢ଼ି ।

ପାବତା—ଗ୍ରା. ବି. ପବନ ମତ୍ସ୍ୟ ।

ପାବନ—ସଂ.(ପୂ+ଣିଚ୍+ଅନ) ପବିତ୍ର, ପବିତ୍ରତା ବିଧାୟକ,ତ୍ରାଣକର୍ତ୍ତା,(ପବନ+ଅ) ପବନ ଖାଇ ଯେ ବଞ୍ଚେ, (ବି) ଜଳ, ଗୋମୟ, ପ୍ରାୟଶ୍ଚିତ୍ତ, ରୁଦ୍ରାକ୍ଷ, (ଭା.ଅନ) ପବିତ୍ରୀକରଣ, ଶୁଦ୍ଧି, ଚନ୍ଦନ, (କ.ଅନ) ବିଷ୍ଣୁ, ଅଗ୍ନି, ବ୍ୟାସଦେବ, କୁଡ଼, ପୀତ ଭୃଙ୍ଗରାଜ, ଚମ୍ପକ ବୃକ୍ଷ, ଚନ୍ଦନ, ଶିହ୍ଲକ, ଦ୍ୱିଜ ପୁରୁଷ ।

ପାବନଧ୍ୱନି—ପୁଂ. ବି. ( ବ.ବ୍ରୀ ) ଶଙ୍ଖ. ପବିତ୍ର ଧ୍ୱନି ।

ପାବନି—ପୁଂ.ବି (ପବନ+ଇ)ପବନର ପୁତ୍ର, ହନୁମାନ୍, ଭୀମ ।

ପାବନୀ—ସ୍ତ୍ରୀ.ବି.(ପାବନ+ଈ)ହରୀତକୀ, ତୁଳସୀ, ଗାଈ, ଗଙ୍ଗା, ଶାକଦ୍ୱୀପସ୍ଥ ନଦୀବିଶେଷ, (ସଂ) ପବିତ୍ରକାରିଣୀ ।

ପାବନ୍ତ—ଗ୍ରା.କ୍ରି.ପାଇବା କ୍ରିୟାର(ପାଆନ୍ତୁ) ବିକଳ୍ପରୂପ ।

ପାବମାନ—ପୁଂ. ସଂ. ( ପୂ+କ.ଆନ ) ପବିତ୍ରତା ବିଧାୟକ, (ବି) ଋଗ୍ବେଦ, ସାମ୍ୟେଦର ଅଧିକାରେ ପ୍ରବୃତ୍ତ ସୂକ୍ତ ।

ପାବିତ—ସଂ. ( ପୂ+ଣିଚ୍+ର୍ମ.ତ ) ପବିତ୍ରୀକୃତ, ଶୋଧିତ ।

ପାଶୀ—ପୁଂ. ସଂ. ( ପାବ+କ.ଇନ୍ ) ପବିତ୍ରତାକାରକ ।

ପାଭୁଡ଼—ପ୍ରା. (ସମ୍ବ)ବି. ପାହାଡ଼ ।

ପାବ୍ୟ—ତ୍ରି.ସଂ. (ପୂ+ର୍ମ.ଯ) ପବିତ୍ରାର୍ହ, ପବିତ୍ର କରିବାର ଯୋଗ୍ୟ ।

ପାଶ୍—ଯା.ବି.ପରୀକ୍ଷାରେ ଉତ୍ତୀର୍ଣ୍ଣହେବା, ମଟରଆଦି ଚଳାଇବାର ବା କୌଣସି ଭିତରେ ପ୍ରବେଶ କରିବାର ଅନୁମତିପତ୍ର, (ପ୍ରା.ସମ୍ବ.ବି) ନୈକଟ୍ୟ, ପାଖ ।

ପାଶ—ବି. (ପଶି+ଣ.ଅ) ବନ୍ଧନ, ରଜ୍ଜୁ, ଫାଶ, ଫାନ୍ଦ,ଜାଲ, ଅକ୍ଷ, ପଶାଖେଳ, ଯୁଦ୍ଧାସ୍ତ୍ରବିଶେଷ, ଗଣ୍ଠି, ସୂତ୍ର, ବୃତ୍ତାକାର ହୋଇଥିବା ବସ୍ତ୍ରର ଧଡ଼ି, (କେଶ ବାଚକ ଶବ୍ଦ ପରେ ବସିଲେ ) ସମୂହ, ଗୁଚ୍ଛ, ବଡ଼ା, (ଗ୍ରା.ବି) ପାଖ ।

ପାଶକ—ବି. ( ପଶି+କ.ଅକ ) ପଶାଖେଳ, ପଶାକାଠି, ସାର ।

ପାଶକପୀଠ—ବି.ପଶାପାଲି, ଜୁଆଖେଳର ଘର ।

ପାଶକ୍ରୀଡ଼ା—ସ୍ତ୍ରୀ.ବି.(ତତ୍ପୁ) ପଶାଖେଳ, ଚଉପାର, ଅକ୍ଷକ୍ରୀଡ଼ା ।

ପାଶଙ୍ଗ—ଗ୍ରା.ବି. ତରାଜୁର ଦୁଇ ପାଖକୁ ସମାନ କରିବାକୁ ଯେଉଁ ପାଷାଣଆଦି ଦେବାକୁ ହୁଏ, ତୁଳାଦଣ୍ଡର ଦୁଇପାଖର ସମତା ।

ପାଶଙ୍ଗରେ ପକା(କେ)ଇବା—ଗ୍ରା. କ୍ରି. ( ଲ.ଅର୍ଥ ) ଖାତିର କରିବା, ସମ୍ମାନ ଚକ୍ଷୁରେ ଦେଖିବା, ଅନୁରୋଧଆଦିକୁ ଗ୍ରାହ୍ୟ କରିବା ।

ପାଶଧର—ପୁଂ.ବି. (ପାଶ+ଧୃ+କ.ଅ) ପାଶଧାରୀ, ବରୁଣ ।

ପାଶନ—କ୍ଲୀ. ବି. ବନ୍ଧନ ।

ପାଶପାଣି—ପୁଂ. ବି. ( ବ.ବ୍ରୀ ) ବରୁଣ, (ତ୍ରି) ପାଶରୂପ ଅସ୍ତ୍ର ଦ୍ୱାରା ସଜ୍ଜିତ ।

ପାଶଭୃତ୍—ପୁଂ. ବି. (ପାଶ+ଭୃ+କ.କ୍ୱିପ୍) ବରୁଣ, (କ୍ଲୀ) ତଦ୍ଦେବତାକ ଶତଭିଷା ନକ୍ଷତ୍ର,(ସଂ)ପାଶଧାରୀମାତ୍ର ।

ପାଶମୁଦ୍ରା—ସ୍ତ୍ରୀ. ବି. ତନ୍ତ୍ରୋକ୍ତ ମୁଦ୍ରାବିଶେଷ ।

ପାଶବ—ବି.(ପଶୁ+ଅ) ପଶୁପଲ, ପଶୁସମୂହ, (ବିଂ) ପଶୁସମ୍ବନ୍ଧୀୟ, ନିଷ୍ଠୁର, ପଶୁର ଯୋଗ୍ୟ। [ ଥିବା।

ପାଶବଦ୍ଧ—ବିଂ.(ଂତତ୍)ଫାନ୍ଦରେ ପଡ଼ି-

ପାଶବନ୍ଧ—ପୁଂ.ବି.ପାଶବନ୍ଧନ, ଫାଶରେ ପଡ଼ିବା, ଫାଶରେ ବାନ୍ଧି ହେବା।

ପାଶବନ୍ଧକ—ପୁଂ. ବି. ବ୍ୟାଧ, ଯେଉଁମାନେ ଫାଶ ବା ଜାଲ ପକାଇ ପକ୍ଷୀ-ଆଦି ଧରନ୍ତି। [ ପଡ଼ିବା।

ପାଶବନ୍ଧନ—କ୍ଲୀ.ବି.ପାଶବନ୍ଧ,ଫାନ୍ଦରେ

ପାଶବବୃତ୍ତି—ସ୍ତ୍ରୀ. ବି. (କ.ଧା) ପଶୁତୁଲ୍ୟ ନୀଚପ୍ରବୃତ୍ତି, ଘୃଣିତ ମନୋବୃତ୍ତି।

ପାଶବଶକ୍ତି—ସ୍ତ୍ରୀ. ବି. (କ.ଧା) ପାଶବ-ବଳ, ପଶୁବତ୍ ହିତାହିତ ଜ୍ଞାନଶୂନ୍ୟ କ୍ଷମତା।

ପାଶବାନ୍—ପୁଂ. ବି. ( ପାଶ+ବତ୍ ) ବରୁଣ, (ବିଂ) ପାଶଧାରୀ। [ ଦେଖ।

ପାଶବିକ—ବିଂ. (ପଶୁ+ଇକ) ପାଶବ

ପାଶହସ୍ତ—ପୁଂ. ବି. (ବ.ବ୍ରୀ) ବରୁଣ, ଶତଭିଷା ନକ୍ଷତ୍ର,ବିଂ.ହସ୍ତସ୍ଥିତ ପାଶକ।

ପାଶା—ପ୍ରା. (ବସ୍ତର) ବି. ପଶାଖେଳ, (ଯା.ବି) ତୁରସ୍କର ସର୍ଦ୍ଦାରମାନଙ୍କର ଉପାଧିବିଶେଷ।

ପାଶିକ—ବିଂ. ( ପାଶ+ଇକ ) ଯେ ଫାଶଦ୍ୱାରା ପକ୍ଷୀ ଧରେ।

ପାଶିତ—ବିଂ. (ପାଶ+ଇତ)ପାଶଯୁକ୍ତ, ପାଶବଦ୍ଧ।

ପାଶୀ—ପୁଂ. ବି. (ପାଶ+ଇନ୍, ବରୁଣ, ବ୍ୟାଧ, ଯମ, (ବିଂ) ପାଶଧାରୀ।

ପାଶୁକ—ପୁଂ. ବି. (ପଶୁ+ଅକ) ପଶୁ-ଯାଗଜ୍ଞାପକ ଗ୍ରନ୍ଥ ବ୍ୟାଖ୍ୟାନ, ( ବିଂ ) ପଶୁସମ୍ବନ୍ଧୀୟ, ବଳିସମ୍ବନ୍ଧୀୟ।

ପାଶୁପତ—ପୁଂ. ବି. (ପାଶୁ+ପତି+ଅ) ବକପୁଷ୍ପ, ଅଗସ୍ତି ଫୁଲ, ପଶୁପ୍ରତ୍ୟଧି ଦେବତା, ଶୈବ, ତଦ୍ଭକ୍ତ ଅଥର୍ବ ବେଦର ଅନ୍ତର୍ଗତ ଉପନିଷଦ୍‌ବିଶେଷ, ବିଂ.ପଶୁପତି ବା ମହାଦେବଙ୍କ ସମ୍ବ-ନ୍ଧୀୟ, (ସ୍ତ୍ରୀ) ପାଶୁପତୀ। [ ବିଶେଷ।

ପାଶୁପତଦର୍ଶନ—ବି. ହିନ୍ଦୁଦର୍ଶନ ଶାସ୍ତ୍ର-

ପାଶୁପତବ୍ରତ—କ୍ଲୀ. ବି. ପଶୁପତି ସମ୍ବ-ନ୍ଧୀୟ ବ୍ରତବିଶେଷ, ଯୋଗବିଶେଷ।

ପାଶୁପତାସ୍ତ୍ର--କ୍ଲୀ.ବି.ପଶୁପତିଙ୍କ ଶୂଳାସ୍ତ୍ର।

ପାଶୁପାଲ୍ୟ—କ୍ଲୀ. ବି. (ପଶୁପାଳ+ଅ) ବୈଶ୍ୟବୃତ୍ତି, ପଶୁପାଳିବା ବୃତ୍ତି।

ପାଶୁବନ୍ଧକ—ବି. ( ପଶୁବନ୍ଧକ+ଯ ) ଯଜ୍ଞର ବଳିପଶୁ ବନ୍ଧାଯିବା ସ୍ଥାନ।

ପାଶେ—ଗ୍ରା. ଅବ୍ୟ. ନିକଟରେ, ନିକ-ଟକୁ, ଠାରେ।

ପାଶ୍ଚା—ଗ୍ରା.ବି. ବାଦଶାହା, ମୁସଲମାନ ରଜା, ସମ୍ରାଟ୍।

ପାଶ୍ଚାତ୍ୟ—ବିଂ. (ପଶ୍ଚାତ୍+ଯ) ପଶ୍ଚିମ-ଦିଗସ୍ଥ, ପ୍ରତୀଚୀନ,ପ୍ରାଚୀଚ୍ୟ,ପଛଆଡ଼େ-ଥିବା, ପରେ ଘଟିବା, ପଛେ ଆସିବା, ପଶ୍ଚିମଦେଶୀୟ, ପଶ୍ଚିମଦେଶାଗତ, ଅନ୍ତିମ, (ବି) ୟୁରୋପୀୟ ବ୍ୟକ୍ତି।

ପାଶ୍ଚାତ୍ୟଶିକ୍ଷା—ବି. ଭାରତରେ ୟୁରୋପ-ବାସୀଙ୍କ ଦ୍ୱାରା ପ୍ରବର୍ତ୍ତିତ ଶିକ୍ଷା।

ପାଷକ—ବି. ଗୋଡ଼ରେ ପିନ୍ଧାଯିବା ଅଳଂକାରବିଶେଷ।

ପାଷଣ୍ଡ—ବି ଓ ବିଂ.(ପା+ଷଣ୍+କ.ଅ) ବେଦବିରୁଦ୍ଧାଚାରୀ,ସ୍ୱଧର୍ମୀସଦାଚାରଭ୍ରଷ୍ଟ, ଅଧାର୍ମିକ, ନାସ୍ତିକ,ସର୍ବବର୍ଣ୍ଣ ଚିହ୍ନଧାରୀ, ପାପୀ,କପଟଧାର୍ମିକ,ପ୍ରତାରକ।

ପାଷଣ୍ଡକ—ବି ଓ ବିଂ. ପାଷଣ୍ଡ ଦେଖ।

ପାଷଣ୍ଡତା(ତ୍ୱ)—( ପାଷଣ୍ଡ+ଭା.ତା.ତ୍ୱ ) ଅଧାର୍ମିକତା, ଭଣ୍ଡତା, ଈଶ୍ୱରନିନ୍ଦା, ନାସ୍ତିକତା, ବିରୁଦ୍ଧଧର୍ମ, ଧର୍ମାନ୍ତର।

ପାଷଣ୍ଡଦଳନ—ବି.(୬ତତ୍) ଅଧାର୍ମିକର ଦମନ, ସଦୁପଦେଶ ଦ୍ୱାରା ନାସ୍ତିକକୁ ସତ୍‌ପଥେ ଆନୟନ, ଗ୍ରନ୍ଥବିଶେଷ।

ପାଷଣ୍ଡୀ—ପୁଂ. ବିଂ. (ପାପ+ସନ୍+କ.ଇନ୍) ବେଦବିରୁଦ୍ଧ ଆଚାରବାନ୍, ସଦାଚାରଭ୍ରଷ୍ଟ,ନାସ୍ତିକ,(ସ୍ତ୍ରୀ)ପାଷଣ୍ଡିନୀ।

ପାଷାଣ—ବି. ( ପିଷ+ଆନ ) ପଥର, ଶିଳା, ବଟକରି, ପାଣଙ୍ଗ।

ପାଷାଣଗର୍ଦ୍ଦଭ—ହନୁ ସନ୍ଧିଜାତ କ୍ଷୁଦ୍ର-ରୋଗବିଶେଷ, ଦାନ୍ତମୂଳ ଫୁଲା ରୋଗ।

ପାଷାଣଚତୁର୍ଦ୍ଦଶୀ—ବି. ମାର୍ଗଶିର ମାସ ଶୁକ୍ଳ ଚତୁର୍ଦ୍ଦଶୀ।

ପାଷାଣଦାରକ—ବି. ପଥରଭେଦ କରି-ବାର ଶସ୍ତ୍ର, ଟାଙ୍ଗିଆ, ଗଇନ୍ତି।

ପାଷାଣଦାରଣ—ବି. ପାଷାଣ ଦାରକ ଦେଖ। [ ଦେଖ।

ପାଷାଣଭେଦକ—ବି. ପାଷାଣଭେଦୀ

ପାଷାଣଭେଦୀ—ବି. ରୁକୁଣୀହାତପୋସ୍ତ ଗୁଳ୍ମ, ତୁଳସ୍ୟାଦି ବର୍ଗର ସୁବାସଯୁକ୍ତ ଶାକଗୁଳ୍ମ ବିଶେଷ, ହେମସାଗର।

ପାଷାଣମୟ—ବିଂ. ( ପାଷାଣ+ମୟ ) ପାଷାଣ ବା ପଥରରୁ ପୂର୍ଣ୍ଣ, ପଥ-ରରେ ତିଆରି।

ପାଷାଣରୋଗ—ପୁଂ. ବି. ଅଶ୍ମରୀ ରୋଗ, ପଥୁରି ରୋଗ।

ପାଷାଣବୃଷ-କ୍ଲୀ.ବି. ଦାରୁଚିନିଜାତିବିଶେଷ।

ପାଷାଣସମ୍ଭବବଲ୍ଲୀ—ସ୍ତ୍ରୀ. ବି. ପ୍ରବାଳ, ପୋହଳା।

ପାଷାଣହୃଦୟ—ବି. ( କ.ଧା ) କଠିନ-ହୃଦୟ, (ବିଂ-ବ.ବ୍ରୀ) ନିଷ୍ଠୁର।

ପାଷାଣାନ୍ତକ—ପୁଂ. ବି. ଅଶ୍ମାନ୍ତକ ବୃକ୍ଷ।

ପାଷାଣୀ—ସ୍ତ୍ରୀ. ବି. ( ପାଷାଣ+ଈ ) ବଟକରି, ଦୁର୍ଗା, କ୍ଷୁଦ୍ର ପାଷାଣ।

ପାଷାଣ୍ଡ—ଗ୍ରା. ବି ଓ ବିଂ. ପାଷଣ୍ଡଦେଖ।

ପାସୁର—ଗ୍ରା.ବି ଓ ବିଂ.ପାସୋରଦେଖ।

ପାସେଞ୍ଜର—ଯା.ବି. ରେଲ ଓ ଜାହାଜ ଆଦିରେ ଯିବା ଯାତ୍ରୀ,ପାସେଞ୍ଜରଗାଡ଼ି

ପାସୋର—ଗ୍ରା. ବି. ବିସ୍ମୃତି, ବିସ୍ମରଣ, ଭୁଲିଯିବା।

ପାସୋରା—ଗ୍ରା.ପୁଂ.ବିଂ. ବିସ୍ମରଣଶୀଳ।

ପାସୋରିବା—ଗ୍ରା. କ୍ରି. ଭୁଲିବା,ବିସ୍ମୃତ ହେବା।

ପାହା—ପ୍ରା. (ସମ୍ବଲ) ବି. ପାହୁଣ୍ଡ।

ପାହାଚ—ଗ୍ରା. ବି. ସୋପାନ, ପାହୁଚ, ସିଡ଼ି।

ପାହାଡ଼—ପୁଂ.ବି.ବ୍ରହ୍ମଦାରୁ ବୃକ୍ଷ,ପାହାଡ଼, (ଗ୍ରା.ବି) ଅନୁଚ୍ଚ ପର୍ବତ, ମୁଣ୍ଡିଆ।

ପାହାଡ଼ତଳ--ଗ୍ରା.ବି.ପର୍ବତର ପାଦଦେଶ

ପାହାଡ଼ତଳି--ଗ୍ରା. ବି. ପର୍ବତର ପାଦ-ଦେଶସ୍ଥ ଭୂଭାଗ, ଉପତ୍ୟକା।

ପାହାଡ଼ତଳିଆ—ଗ୍ରା. ବିଂ. ଉପତ୍ୟକା ସମ୍ବନ୍ଧୀୟ, ଉପତ୍ୟକାବାସୀ ।

ପାହାଡ଼ତୋଡ଼—ଗ୍ରା.ବିଂ. ଯାହା ପାହାଡ଼ ଭାଙ୍ଗିବାକୁ ସମର୍ଥ, ଖୁବ୍ ବଳୁଆ, ଟାଣୁଆ ।

ପାହାଡ଼ା—ଗ୍ରା. ବି. ପାଏଡ଼ା, ଘୋଡ଼ା କନ୍‌ର ରେକାବ୍, ରଜା ବା ମହାପ୍ରଭୁ ଯିବା ପଥରେ ପଡ଼ିବା ବସ୍ତ୍ର ।

ପାହାଡ଼ାସିଂହ—ଗ୍ରା. ବି. କ୍ଷତ୍ରିୟଙ୍କ ବଂଶୋପାଧିବିଶେଷ ।

ପାହାଡ଼ିଆ—ଗ୍ରା. ବିଂ. ( ସଂ-ପାର୍ବତ୍ୟ ) ପାର୍ବତ୍ୟୀୟ, ପର୍ବତ ସମ୍ବନ୍ଧୀୟ, ପର୍ବତବାସୀ, ପର୍ବତଜନ୍ତୁ ।

ପାହାଡ଼ିଆକେଦାର—ଗ୍ରା.ବି. ସଙ୍ଗୀତର ରାଗବିଶେଷ, ପାହାଡ଼ ନିକଟରେ ଥିବା ଶସ୍ୟକ୍ଷେତ୍ର ।

ପାହାଡ଼ୀ—ଗ୍ରା.ବି. ପାର୍ବତ୍ୟୀୟ, ହିମାଳୟର ପାର୍ବତ୍ୟୀୟ ଅଧିବାସୀମାନେ ପାହାଡ଼ୀ ନାମରେ ଖ୍ୟାତ, ଦାକ୍ଷିଣାତ୍ୟବାସୀ ଜାତିବିଶେଷ ।

ପାହାଣ—ଗ୍ରା. ବି. ପିତ୍ତଳ ଝିଲାହେବା ସକାଶେ ତମ୍ବା ଓ ଖପର ମିଶ୍ରିତ ଧାତୁ ।

ପାହାଣିଆ—ଗ୍ରା.ବିଂ. (ସଂ-ପତନ) ନିମ୍ନ, ଢାଲୁ, ଗଡ଼ାଣିଆ ।

ପାହାତ—ପୁଂ. ବି. ବ୍ରହ୍ମଦାରୁ ବୃକ୍ଷ ।

ପାହାନ୍ତା—ଗ୍ରା.ବି. ପ୍ରଭାତର ପୂର୍ବ ସମୟ ।

ପାହାନ୍ତି—ଗ୍ରା. ବି. ( ସଂ-ପ୍ରଭାତ ) ରାତି ପାହିବା ସମୟ, ରାତିର ଶେଷଭାଗ, ବଡ଼ଭୋର, (ଗ୍ରା.ବିଂ) ପ୍ରଭାତ ସମ୍ବନ୍ଧୀୟ, ପ୍ରଭାତ କାଳୀନ ।

ପାହାନ୍ତିଅବକାଶ—ଗ୍ରା. ବି. ପ୍ରଭାତ ସମୟରେ ଦେବତାମାନଙ୍କର ପହଡ଼ ଭାଙ୍ଗିବା ପରେ କରାଯିବା ଆରତି ଆଦି, ଶଯ୍ୟାତ୍ୟାଗ କରିବା ସମୟରେ ବୋଲାଯିବା ସ୍ତୁତିଗୀତ ।

ପାହାନ୍ତିତାରା—ଗ୍ରା. ବି. ( ସଂ-ପ୍ରଭାତୀ ) ପ୍ରଭାତୀ ତାରା, ରାତି ପ୍ରହରେ ଥାଇଁ ଯେଉଁ ତାରା ପୂର୍ବଦିଗରୁ ଉଇଁ ସକାଳ ହେଲା ବେଳକୁ ପୂର୍ବାକାଶରେ ଦେଖାଯାଇଥାଏ, ଶୁକ୍ରଗ୍ରହ ।

ପାହାର—ଗ୍ରା. ବି. ମାଡ଼, ଆଘାତ, ଯଷ୍ଟି ବା ବେତଦ୍ୱାରା ଆଘାତ, ଢିଙ୍କିରେ କୁଟିବା, ଢିଙ୍କିର ମୁଣ୍ଡରେ ଲାଗିଥିବା ମୂଷଳ, ଉପର୍ଯ୍ୟୁପରି କୁଟିବା ।

ପାହାରପୁର—ଗ୍ରା.ବି. ଆଇ. ବି.ରେଲର ଜମାଲଗଞ୍ଜ ଷ୍ଟେସନ ନିକଟବର୍ତ୍ତୀ ରାଜସାହୀ ଜିଲ୍ଲାର ଗୋଟିଏ ଗ୍ରାମ ।

ପାହାରି—ଗ୍ରା.ବି. ପ୍ରହରୀ, ଦ୍ୱାରୀ, ଦରୁଆନ୍ ।

ପାହାରୁଣୀ—ପ୍ରା. (ସିଂହଭୂମ) ବି. ପଥର ଉପରେ ଧାନ କୁଟି ଚାଉଳ ବାହାର କରିବାପାଇଁ ବ୍ୟବହୃତ ସମାଲଗା ଠେଙ୍ଗା ବା ମୂଷଳ ।

ପାହୁ—ଗ୍ରା.ବି. ପାହୁଲା, ପଇସାର ଏକତୃତୀୟାଂଶ, ପଇସା, ଅଣାକର ଚାରିଭାଗରୁ ଭାଗେ, ବଳବସ୍ତୁ, ଧାନକଟା ପ୍ରଭୃତି ବେଳେ ପ୍ରତ୍ୟେକ ଶ୍ରମିକ ନିଜେ ଯେଉଁ ଲମ୍ବ ଭୂମିଖଣ୍ଡରେ କାର୍ଯ୍ୟକରେ, ସ୍ତ୍ରୀ ଓ ଗୃହିଣୀ ଛଡ଼ା ଅନ୍ୟ ରଇତଜମି ।

ପାହୁଆ—ଯା. ବି. ପଦଚିହ୍ନ, ଖୁଣ୍ଟ, ସ୍ତମ୍ଭ, ଖଟର ଖୁରା, କୌଣସି ବ୍ୟକ୍ତିର ସାମାଜିକ ବା ସାଂସାରିକ ପରସ୍ଥିତି; ପାହାଚ, ଅବସ୍ଥିତି, (ଗ୍ରା.ବିଂ) ପାହୁ(ରଇତ) ।

ପାହୁଁ—ପ୍ରା. (ଯାଜପୁର) ଅବ୍ୟ. ପାଇଁ, ନିମନ୍ତେ ।

ପାହୁପଣକିଆ—ଗ୍ରା. ବି. ପାହୁ, ଅଣା, ସୁକା ଓ ଟଙ୍କାର ହିସାବ ଶିଖାଇବା ପାଇଁ ଏକପ୍ରକାର ଗାଣିତିକ ପଦ୍ଧତି ।

ପାହୁପ୍ରଜା—ଗ୍ରା.ବି. ଏକ ଗ୍ରାମରେ ବାସ କରୁଥିବା ଅନ୍ୟ ଗ୍ରାମବାସୀ ପ୍ରଜା ।

ପାହୁବା—ଗ୍ରା. କ୍ରି. ପ୍ରଭାତ ହେବା ।

ପାହୁ—ଗ୍ରା. ବିଂ. ଧପାବାଜ୍, ଠକ, ଧୂର୍ତ୍ତ, ପ୍ରତାରକ । [ ବିଶେଷ ।

ପାହୁଡ଼—ଗ୍ରା. ବି. ପାଦର ଅଳଂକାର

ପାହୁଣ୍ଡ—ଗ୍ରା. ବି. ପାଦକ୍ଷେପ, ପଦଗଣ୍ଡ ।

ପାହୁମାରିବା—ଗ୍ରା. କ୍ରି. ଠକିବା, ଠକିକରି କୌଣସି ବସ୍ତୁ ଲାଭ କରିବା ।

ପାହୁରାରୋଇବା—ଧୀରେ ଧୀରେ ଢିଙ୍କିରେ କୁଟିବା ।

ପାହୁରାଣୀ—ଗ୍ରା.ବି. ଧାନକୁଟିବା ମୂଷଳ, ଢିଙ୍କିପାହାର, ଶ୍ରେଷ୍ଠ ଠେଙ୍ଗା ।

ପାହୁଲ—ଗ୍ରା. ବି. (ସଂ-ପାଦ) ପଦଚିହ୍ନ, ହସ୍ତିପ୍ରଭୃତିଙ୍କର ପାଦତଳ, ପାହୁଣ୍ଡ, ଶିଖଧର୍ମରେ ଦୀକ୍ଷିତ ବ୍ୟକ୍ତିର ଶିଖଧର୍ମ ଦୀକ୍ଷାଗ୍ରହଣ ।

ପାହୁଲା—ଗ୍ରା. ବି.° (ସଂ-ପାଦିକ) ପାହୁ, ପଇସାର ଏକତୃତୀୟାଂଶ, କରତଳ, ଲେଢ଼ି ।

ପାହୁଲାଏ—ଗ୍ରା. ବି. ଏକପାହୁଲା ମାତ୍ର ।

ପାହୁଲାକିଆ—ଗ୍ରା. ବିଂ. ଏକ ପାହୁଲା ମୂଲ୍ୟର, ମୂଲ୍ୟହୀନ ।

ପାହୁଲେ—ଗ୍ରା. ବି. ଏକପାହୁଲା ମାତ୍ର, ଏକମାତ୍ର ପାହୁଣ୍ଡ ।

ପିଅଁଳା—ଗ୍ରା. ବି. (ସଂ-ପିଙ୍ଗଳା) ପିଙ୍ଗଳା ନାଡ଼ୀ, ତିନି ପ୍ରଧାନନାଡ଼ୀ ମଧ୍ୟରୁ ଏକତମ

ପିଅଳ—ଯା.ବି. ଚପରାଶି, ପିଆଦା, ବରକନ୍ଦାଜ୍ । [ ତାତ ।

ପିଅର—ଗ୍ରା. ବି. ପିତା, ଜନକ, ବାପା,

ପିଆ—ଗ୍ରା.ବିଂ. ପେୟ, ଯାହା ପାନ କରାଯାଇଛି, ପାନ ହେବାପାଇଁ ଅଭିପ୍ରେତ (ବସ୍ତୁ), ବି. ପାନକରିବା ।

ପିଆଇବା—ଗ୍ରା. କ୍ରି. ପିଇବା କ୍ରିୟାର ଣିଜନ୍ତରୂପ, (ମାତା ଶିଶୁକୁ) ସ୍ତନ୍ୟପାନ କରାଇବା, ପାନାର୍ଥ କୌଣସି ବ୍ୟକ୍ତିକୁ ବା ଜୀବକୁ ଜଳାଦି ଦେବା, ମାଳିର ଦାନା, ଗୁଡ଼ିକୁ ସାରଦ୍ରବରେ ବୁଡ଼ିଦେବା, କୌଣସି ବ୍ୟକ୍ତିର ବା ଜୀବର ମୁଖରେ ପାନୀୟ ବସ୍ତୁକୁ ଦେବା ବା ଢାଳିବା, ତରଳ ପଦାର୍ଥ ଢାଳି, ସନ୍ଧିମାନ ବୁଜିବା ।

ପିଆଜ—ଗ୍ରା.ବି. ପଳାଣ୍ଡୁ ।

ପିଆଜି—ଗ୍ରା. ବି. ପିଆଜକୁ ପିଠଉରେ ମିଶାଇ ତେଲଆଦିରେ ଛଣାଯାଇଥିବା ଏକପ୍ରକାର ପିଠା, ପିଆଜ ପତ୍ର ଫିକା ନାଲିରଙ୍ଗ, (ବିଂ) ପିଆଜ ପତ୍ର ଫିକା ନାଲି ।

ପିଆଦା—ଯ. ବି. ପିଅନ, ପଦାତିକ,

ଅଁଙ୍କାଙ୍କାସି ଗୃହର, ପ୍ରା. (ଗଞ୍ଜାମ) ବି. ଅଧିକାର ।

ପିଅପିଇ—ଗ୍ରା.ବି. ପରସ୍ପରକୁ ପିଆଇବା, ବହୁବାର ପିଇବା କ୍ରିୟା ।

ପିଆର—ଗ୍ରା. ବି. ( ସଂ-ପ୍ରିୟ ) ନାଗଷର ପ୍ରିୟତମ ବ୍ୟକ୍ତି, (ବିଂ) ପ୍ରିୟ ।

ପିଆରି—ଗ୍ରା.ବିଂ. (ସଂ-ପ୍ରିୟ) ପ୍ରିୟ, ପ୍ରିୟତମ,ଅଧୀନ,ବଶମ୍ବଦ,ଗ୍ରା.ବି.ଏକପ୍ରକାର ପିଜୁଳି, ପ୍ରିୟପାତ୍ର, ସ୍ନେହ,ପ୍ରେମ,ଆଦର

ପିଆଲ—ଗ୍ରା.ବି. ଏକପ୍ରକାର ବନ୍ୟତରୁ, ପିଆଶାଳ ।

ପିଆଲା—ଗ୍ରା.ବି. ପାନପାତ୍ର,ଗିନା,ବାଟି ।

ପିଆଶ୍—ପ୍ରା.(ଲଉଆ)ବି.ପିପାସା,ଶୋଷ ।

ପିଆଶାଳ—ଗ୍ରା.ବି. ସ୍ୱନାମ ପ୍ରସିଦ୍ଧ ବୃକ୍ଷବିଶେଷ ।

ପିଇଦେବା—ଗ୍ରା.. କ୍ରି. ପିଇବା କର୍ମ ଶେଷ କରିବା, ସମ୍ପୂର୍ଣ୍ଣରୂପେ ପିଇବା ।

ପିଇବା—ଗ୍ରା. କ୍ରି. ପାନକରିବା, ଉତ୍ତମରୂପେ ଜଡ଼ିଯିବା, (ଲ.ଅର୍ଥ) ସମ୍ପୂର୍ଣ୍ଣରୂପେ ନିଜର ଅଙ୍ଗୀଭୂତ କରିବା ।

ପିଇ(ଉ)ସା—ଗ୍ରା.ବି. ପିତାଙ୍କର ଭଣେଇ

ପିଇଶାଶୁ—ଗ୍ରା.ସ୍ତ୍ରୀ. ବି. ଆପଣା ସ୍ୱାମୀଙ୍କର ବା ସ୍ତ୍ରୀଙ୍କର ପିଉସୀ, ଶ୍ୱଶୁରଙ୍କ ଭଉଣୀ ।

ପିଉସା—ଗ୍ରା.ପୁଂ.ବି. ପିତାଙ୍କ ଭଗିନୀପତି

ପିଉସାଶୁର—ଗ୍ରା.ପୁଂ. ବି. ଆପଣା ସ୍ୱାମୀ ବା ସ୍ତ୍ରୀଙ୍କ ପିଉସା ।

ପିଉସୀ—ଗ୍ରା. ସ୍ତ୍ରୀ. ବି. ପିତୃଷ୍ୱସା, ପିତାଙ୍କ ଭଗିନୀ । [ ଶବ୍ଦ ।

ପିଁ—ଗ୍ରା.ବି. ଏକପ୍ରକାର ଅବ୍ୟକ୍ତ ମଧୁର

ପିକ—ପୁଂ.ବି. (ପି+କୈ+ଅ)କୋକିଳ, କୋଇଲି, (ସ୍ତ୍ରୀ) ପିକୀ, (ଗ୍ରା.କ୍ର) ଛେପ, ପାନଛେପ ।

ପିକଠ—ପ୍ରା.(ବସ୍ତର) ବି. ଅଶ୍ୱତ୍ଥ ବୃକ୍ଷ ।

ପିକଦାନୀ—ଗ୍ରା. ବି. ନିଷ୍ଠୀବନପାତ୍ର, ପିକ ପକାଇବାର ପାତ୍ର ।

ପିକଦେବ—ପୁଂ.ବି. ଆମ୍ରବୃକ୍ଷ,ଆମ୍ବଗଛ ।

ପିକପ୍ରିୟ—ପୁଂ. ବି, ବସନ୍ତକାଳ, ଆମ୍ରବୃକ୍ଷ ।

ପିକପ୍ରିୟା—ସ୍ତ୍ରୀ.ବି. ମହାଜମ୍ବୁ,କୋକିଳା ।

ପିକବନ୍ଧୁ—ପୁଂ. ବିଂ. (୬ତତ୍) ଆମ୍ରବୃକ୍ଷ, ଆମ୍ବଗଛ ।

ପିକମହୋତ୍ସବ—ପୁଂ. ବି. ଆମ୍ରବୃକ୍ଷ ।

ପିକଭକ୍ଷକା—ସ୍ତ୍ରୀ. ବି. ଭୂମିଜ ଜମ୍ବୁବୃକ୍ଷ, ବନଜାମୁ ।

ପିକରାଗ—ପୁଂ. ବି. ଆମ୍ରବୃକ୍ଷ ।

ପିକବର—ପୁଂ.ବି. (୭ତତ୍) କୋକିଳ, ଶ୍ରେଷ୍ଠ କୋକିଳ ।

ପିକବଲ୍ଲଭ—ପୁଂ.ବି.ଆମ୍ରବୃକ୍ଷ,ପିକପ୍ରିୟ ।

ପିକା—ଗ୍ରା. ବି. ଧୂଆଁପତ୍ରର ବଣ୍ଡି, ଧୂମପାନ ବର୍ତ୍ତିକା,କାହାଳୀ, ଧୂଆଁ ।

ପିକାକ୍ଷ—ପୁଂ. ବି. ( ବ ବ୍ରୀ ) ଗୋରଣୀ ବୃକ୍ଷ,(ବିଂ-ବ.ବ୍ରୀ) ପିକବତ୍ ରକ୍ତନେତ୍ରଯୁକ୍ତ, (ସ୍ତ୍ରୀ) ପିକାକ୍ଷୀ ।

ପିକାଙ୍ଗ—ପୁଂ. ବି. ପକ୍ଷିବିଶେଷ,ଚାତକପକ୍ଷୀ ।

ପିକାନନ୍ଦ—ପୁଂ.ବି.(ବ.ବ୍ରୀ)ବସନ୍ତକାଳ ।

ପିକୀ—ସ୍ତ୍ରୀ.ବି.କୋକିଳା,ମାଈକୋକିଳ ।

ପିକେକ୍ଷଣ—ପୁଂ.ବିଂ. (ବ.ବ୍ରୀ) କୋକିଳ ପରି ରକ୍ତିମ ଚକ୍ଷୁବିଶିଷ୍ଟ,(ବି)କୋଇଲିଖିଆ ଦେଖ ।

ପିକେକ୍ଷଣା—ସ୍ତ୍ରୀ. ବି. କୋକିଳାକ୍ଷ ବୃକ୍ଷ, (ସ୍ତ୍ରୀ.ବିଂ-ବ.ବ୍ରୀ)କୋକିଳର ଚକ୍ଷୁସଦୃଶ ଚକ୍ଷୁଯୁକ୍ତା ।

ପିକ୍କ—ପୁଂ. ବି. (ପିକ+କୈ+କ.ଅ) ହସ୍ତିଶାବକ ।

ପିଗିଳ(ଳି)ବା—ଗ୍ରା. କ୍ରି. ତରଳିବା ।

ପିଙ୍ଗ—ବି.(ପିନ୍ଜ+ଅ) ବାଳକ,ବାଳା, ହରିତାଳ, ମଇଁଷି, ପିଙ୍ଗଳ, ପଶୁଶାବକ. ମାଟିଆବର୍ଣ୍ଣ, ପିଙ୍ଗଳବର୍ଣ୍ଣ, ବନମୂଷିକ, (ବିଂ) ପିଙ୍ଗଳବର୍ଣ୍ଣଯୁକ୍ତ ।

ପିଙ୍ଗକପିଶା—ସ୍ତ୍ରୀ. ବି. ତେଲପୋକ, ଅସରପା, (ବିଂ) ପିଙ୍ଗଳବର୍ଣ୍ଣଯୁକ୍ତ ।

ପିଙ୍ଗଚକ୍ଷୁଃ—ପୁଂ. ବି. କୁମ୍ଭୀର, (ବିଂ—ବ.ବ୍ରୀ) ଯାହାର ଚକ୍ଷୁ ଦେଖିବାକୁ ମାଟିଆ, ଚଲଆଖିଆ ।

ପିଙ୍ଗଜଟ—ପୁଂ. ବି. (ବ.ବ୍ରୀ) ଶିବ ।

ପିଙ୍ଗମୂଳ—କ୍ଳୀ. ବି. ( କ.ଧା ) ଗର୍ଜର, ଗାଜର ।

ପିଙ୍ଗର—ପୁଂ. ବି. ପିଙ୍ଗଳ ।

ପିଙ୍ଗଳ—ପୁଂ.ବି. (ପିନ୍ଜ+ଅଳ)ଉଶୀର, ବେଣାମୂଳ, ନିଧିବିଶେଷ,ମଣିବିଶେଷ, ସ୍ଥାବର ବିଷବିଶେଷ, ରାଗବିଶେଷ, ଦେବବିଶେଷ, ଧୂସର,ନାଳ, ପୀତବର୍ଣ୍ଣ, ନେଉଳ ,ମଙ୍ଗଳଗ୍ରହ,ଛନ୍ଦଶାସ୍ତ୍ର,ପିଙ୍ଗଳବର୍ଣ୍ଣ, ନୀଳ ପୀତ ମିଶ୍ରିତ ବର୍ଣ୍ଣ, ରୁଦ୍ର, ମୁନିବିଶେଷ, ଗ୍ରନ୍ଥକାର ବିଶେଷ, କପି, ଅଗ୍ନି, ପିତଳ, ହରିତାଳ, ପେଚକ, ଗୃଧ୍ର, ସର୍ପବିଶେଷ, (ବିଂ) କପିଶବର୍ଣ୍ଣଯୁକ୍ତ, ହଳଦିଆ, ନସ୍ୟର ବର୍ଣ୍ଣବିଶିଷ୍ଟ ।

ପିଙ୍ଗଳକ—ପୁଂ. ବି. ପିଙ୍ଗଳ ଶବ୍ଦାର୍ଥ, ଯକ୍ଷବିଶେଷ ।

ପିଙ୍ଗଳଲୌହ—କ୍ଳୀ. ବି. ପିତ୍ତଳ ।

ପିଙ୍ଗଳା—ସ୍ତ୍ରୀ.ବି. (ପିଙ୍ଗଳ+ଆ) ରାଶିଚକ୍ରର ସ୍ଥାନ ବା ସମୟ, ଲକ୍ଷ୍ମୀ, ଗୋରୋଚନା,ବାମନା ନାମକ ଦକ୍ଷିଣଦିଗ୍‌ଗଜର ସ୍ତ୍ରୀ, କୁମୁଦର କରିଣୀ, ବେଶ୍ୟାବିଶେଷ,କର୍ଣ୍ଣିକା, ନାଡ଼ୀବିଶେଷ, ପକ୍ଷିବିଶେଷ, ରାଜନୀତି, ଶିଂଶପାବୃକ୍ଷ ।

ପିଙ୍ଗଳାତନ୍ତ୍ର—କ୍ଳୀ. ବି. ତନ୍ତ୍ରବିଶେଷ ।

ପିଙ୍ଗଳାନଦୀ—ଗଞ୍ଜାମଣ୍ଡଳର ଉତ୍ତର ଅଂଶରୁ ନିର୍ଗତା ଗୋଟିଏ ସ୍ରୋତସ୍ୱତୀ, ନଦୀବିଶେଷ ।

ପିଙ୍ଗଳିକା—ସ୍ତ୍ରୀ.ବି. (ପିଙ୍ଗଳ + କ+ଆ) ବ୍ଳକାକ୍ଷୀ, କାଣ୍ଡିବଗ,ଏକପ୍ରକାର ଦଂଶକ ମକ୍ଷିକା ।

ପିଙ୍ଗଳିତ—ବି. ବିଂ. ପିଙ୍ଗଳବର୍ଣ୍ଣଯୁକ୍ତ ।

ପିଙ୍ଗଳେଶ୍ୱର—କ୍ଳୀ. ବି. ତୀର୍ଥବିଶେଷ ।

ପିଙ୍ଗଲୋଚନ—ତ୍ରି.ବିଂ.ପିଙ୍ଗାକ୍ଷ, ପିଙ୍ଗଳବର୍ଣ୍ଣ ଚକ୍ଷୁଯୁକ୍ତ ।

ପିଙ୍ଗଶ—ବି. ପଙ୍ଗାଶ ଦେଖ ।

ପିଙ୍ଗସାର—ପୁଂ.ବି. (କ.ଧା)ହରିତାଳ ।

ପିଙ୍ଗସ୍ଫଟିକ—ପୁଂ. ବି. ଗୋମେଦମଣି ।

ପିଙ୍ଗା—ସ୍ତ୍ରୀ. ବି. ( ପିନଜ୍+ଅ+ଆ ) ଗୋରୋଚନା,ହିଙ୍ଗୁ, ନାଳିକା, ଚଣ୍ଡିକା, ହରିଦ୍ରା, ବଂଶଲୋଚନା, ସ୍ୱନାମଖ୍ୟାତ ତପସ୍ୱିନୀ, ପିଙ୍ଗଳା ନାଡ଼ୀ ।

ପିଙ୍ଗାକ୍ଷ—ପୁଂ.ବ. ଶିବ,କୁମ୍ଭୀର,ଦ୍ରୋଣ-ପୁତ୍ର ଖଗବିଶେଷ, ବିଡ଼ାଳ,କୁମାରାନୁଚର ମାତୃଭେଦ, ବ୍ୟାଧବିଶେଷ,(ତ୍ରିଂ-ବ.ବ୍ରୀ) ପିଙ୍ଗଳନେତ୍ର ।

ପିଙ୍ଗାତୀର୍ଥ—ବି. ମହାଭାରତ ବର୍ଣ୍ଣିତ ହନୁମାନଙ୍କର ତୀର୍ଥବିଶେଷ ।

ପିଙ୍ଗାଶ—ପୁଂ. ବ. କଚ,କେଶ ।

ପିଙ୍ଗାଶ—ବି. (ପିଙ୍ଗ+ଆଶ) ପଲ୍ଲୀପତି, ପଦ୍ମଣାମାଛ,ଗ୍ରାମାଧିପତି,ଉତ୍କୃଷ୍ଟ ସୁନା ।

ପିଙ୍ଗାଶୀ—ସ୍ତ୍ରୀ. ବ. (ପିଙ୍ଗା+ଅଶ୍+ଅ+ଈ) ନଳିକା, ନୀଳଗଛ ।

ପିଙ୍ଗାସ୍ୟ—ପୁଂ. ବ. ପିଙ୍ଗାଶ ଦେଖ ।

ପିଙ୍ଗାହ୍ୱ—ପୁଂ. ବ. ପକ୍ଷିବିଶେଷ ।

ପିଙ୍ଗୀ—ସ୍ତ୍ରୀ. ବ. ଶମୀବୃକ୍ଷ ।

ପିଙ୍ଗେକ୍ଷଣ—ପୁଂ. ବ. ଶିବ, କୁମ୍ଭୀର, (ତ୍ରିଂ) ପିଙ୍ଗଳନେତ୍ର ।

ପିଙ୍ଗେଶ—ପୁଂ.ବ. ଅଗ୍ନିର ନାମାନ୍ତର ।

ପିଚ—ଗ୍ରା. ବ. ସ୍ୱନାମଖ୍ୟାତ ଫଳ ଓ ବୃକ୍ଷବିଶେଷ ।

ପିଚକା(କେ)ଇବା—ଗ୍ରା. କ୍ରି. ପାଚିଲା ଆମ୍ବ ବା ମହୁଲକୁ ଚିପିଦେଇ ତାମଧରୁ ମଞ୍ଜି କ ବାହାର କରଦେବା ।

ପିଚ୍‌ପିଚ୍—ଗ୍ରା. ଅବ୍ୟ. ହଠାତ୍ କୌଣସି ସ୍ଥାନ ଫୋଡ଼ିହୋଇଗଲେ ସେଥିରୁ ପିଚକାର ମୁହଁରୁ ପାଣିଆଦି ବାହାରିବା ପରି ଜୋରରେ ରକ୍ତ ଛୁଟିକିବା ।

ପିଚକାରି—ଗ୍ରା. ବ. ବେଗେ ଜଳାଦି ନିଃସାରକ ଯନ୍ତ୍ର ।

ପିଚଣ୍ଡ—ପୁଂ. ବ. (ଅପି+ଚମ+ଡ) ଅନ୍ତ୍ରଲପେଟ, ଉଦର, ପଶୁର ପୃଷ୍ଠ-ଦେଶ ।

ପିଚଣ୍ଡକ—ତ୍ରି. ବଂ. ଔଦରିକ, ଉଦର ପୂରଣରେ କୁଶଳ,ପେଟୁ, (ବି)କୋକି-ଲାକ୍ଷ ବା କୋଇଲେଖା ଗଛ ।

ପିଚଣ୍ଡିକ—ତ୍ରି. ବଂ. ଭୁନ୍ଦଲ ।

ପିଚଣ୍ଡିକା—ବ. ( ପିଚଣ୍ଡ+କ+ଆ ) ଗୋଡ଼ର ପାପୁଲି ।

ପିଚଣ୍ଡିଲ—ତ୍ରି. ବଂ. ଅନ୍ତ୍ରଲପେଟିଆ, ସ୍ଥୂଳକାୟ ।

ପିଚଣ୍ଡୀ—ପୁଂ. ବଂ. ଭୁନ୍ଦଲ ।

ପିଚବ୍ୟ—ପୁଂ. ବ. କାର୍ପାସ । [ଲେନ୍ଧରା ।

ପିଚରା—ପ୍ରା. (ସମ୍ଭାବ. ଅଖିରୁ ବହିବା

ପିଗୃଣ—ଗ୍ରା. ବ. ପିଶାଚ, ପ୍ରେତ, ଭୂତ ।

ପିଗୃଣି—ଗ୍ରା.ପୁଂ.ବଂ. ପିଗୃଣିଆ ଦେଖ ।

ପିଗୃଣିଆ—ଗ୍ରା. ପୁଂ. ବଂ. ପିଶାଚ ପ୍ରକୃତିକ, ଲୋଭୀ, କୃପଣ, ଦୁଷ୍ଟ ।

ପିଗୃଣୁଣୀ—ଗ୍ରା. ବ. ପିଶାଚୀ, ଡାହାଣୀ, ପ୍ରେତ ଯୋନିବିଶେଷ ।

ପିଚକା—ଗ୍ରା. ବ. ପାଣିକୁ ଦୂରକୁ ଫିଙ୍ଗିବାର ସରୁମୁହାଁ ନଳଯନ୍ତ୍ରବିଶେଷ ।

ପିଚକାରି—ଗ୍ରା. ବ. ପିଚକା ଦେଖ ।

ପିଚକିବା—ଗ୍ରା. କ୍ରି. ପିଚକାରିରୁ ପାଣି ଛୁଟିଲାପରି ରକ୍ତଆଦି ବାହାରିବା, ଛୁଟିକିବା ।

ପିଚକିଲା—ଗ୍ରା. ବି. ଲଙ୍ଗଳର ଈଶକୁ ଦୃଢ଼ ଭାବରେ ରଖିବା ପାଇଁ ଦିଆଯିବା କିଲା ।

ପିଚଣ୍ଡ—ପୁଂ.ବ.ଉଦର, ପଶୁର ଅବୟବ

ପିଚଣ୍ଡିକା—ସ୍ତ୍ରୀ. ବ. ଗୋଡ଼ର ପାପୁଲି ।

ପିଚଣ୍ଡିଲ—ପୁଂ. ବଂ. (ପିଚଣ୍ଡ+ଇଲ) ଅନ୍ତ୍ରଲପେଟିଆ, ସ୍ଥୂଳକାୟ ।

ପିଚୁ—ପୁଂ. ବ. (ପିଚ୍+ମି.ଉ) କାର୍ପାସ, ତୁଳା, କୁଷ୍ଠ ରୋଗବିଶେଷ, ପରିମାଣବିଶେଷ, ଅସୁରବିଶେଷ, ଭୈରବ, ଶସ୍ୟବିଶେଷ, କ୍ରିୟାବିଶେଷ, କପା. କରଷେ ପରିମାଣ, କର୍ଷ ।

ପିଚୁକ—ପୁଂ.ବ.ମଦନ ବୃକ୍ଷ, ମୟନାଗଛ

ପିଚୁଟୀ—ଗ୍ରା. ବ. ପିଚଟ, ନେତ୍ରମଳ, ଲେନ୍ଧରା ।

ପିଚୁତୂଳ—କ୍ଲୀ.ବ.କପାର ତୁଳା, ତୁଳା ।

ପିଚୁମର୍ଦ୍ଦ—ପୁଂ. ବ. ନିମ୍ବବୃକ୍ଷ ।

ପିଚୁଲ—ପୁଂ.ବ. (ପିଚୁ+ଲା+ଅ)ହିଜ୍ଜଳ ଗଛ, ପାଣିକୁଆ, କପାତୁଳା ।

ପିଚୂ—ବ.ଷୋଳମଶା ବା ଏକକର୍ଷ ଓଜନ

ପିଚଟ(ର)—କ୍ଲୀ.ବ(ପିଚ+ଅଟ)ସୀସକ, ରଙ୍ଗ, (ପୁଂ.ବ) ନେତ୍ରରୋଗବିଶେଷ ।

ପିଚ୍ଚିଟ—ପୁଂ. ବ. କୀଟବିଶେଷ, ଏହି କୀଟ କାମୁଡ଼ିଲେ ପୀଡ଼ାଜନକ ରୋଗ ହୁଏ ।

ପିଚ୍ଛ — ବି. ( ପିଚ୍ଛ+ଅ ) ଲାଙ୍ଗୁଳ, ମୟୂରପୁଚ୍ଛ, ଚୂଡ଼ା, ମୋଚରସ ।

ପିଚ୍ଛକ—ପୁଂ.ବ.(ପିଚ୍ଛ+କ)ମୋଚରସ, ଲାଙ୍ଗୁଳ, (କ୍ଲୀ) ମୟୂର ପୁଚ୍ଛ ।

ପିଚ୍ଛନ—କ୍ଲୀ.ବ.(ପିଚ୍ଛ+ଭା.ଅନ)ଅଙ୍ଗୀୟଳ ପୀଡ଼ନ, ଚିପିବା, ଚିପିକରି ଚେପଟା କରିବା ।

ପିଚ୍ଛଭାର—ପୁଂ. ବ. ମୟୂର ପୁଚ୍ଛ ।

ପିଚ୍ଛବାଣ—ପୁଂ. ବ. (ବ.ବ୍ରୀ) ବାଜପକ୍ଷୀ, ଶ୍ୟେନପକ୍ଷୀ ।

ପିଚ୍ଛଲ—ତ୍ରିଂ. ( ପିଚ୍ଛ+ଅଲ ) ଖସଡ଼ା, (ପିଚ୍ଛ+ଲ)ପୁଚ୍ଛଯୁକ୍ତ,(ବି) ମୋଚରସ, ଆକାଶବଲ୍ଲୀ, ନିର୍ମଳୀଲତା, ଶିଶୁଗଛ, ବାସୁକି ବଂଶର ସର୍ପବିଶେଷ ।

ପିଚ୍ଛଲଚ୍ଛଦା—ବ.(ପିଚ୍ଛଲ+ଛଦ+ଆ) ବରକୋଳିଗଛ, ପୋଇଲତା ।

ପିଚ୍ଛଲତ୍ୱକ୍—ପୁଂ. ବ. ନାଗରଙ୍ଗ ବୃକ୍ଷ, ( ସ୍ତ୍ରୀ ) ନାଗରଙ୍ଗ ବଲ୍କଲ ।

ପିଚ୍ଛା—ସ୍ତ୍ରୀ. ବ. (ପିଚ୍ଛ+ଅ+ଆ) ଗୁଆଗଛ, ଖୋଳ, ମୋଚରସ, ଭାତର ପେଜ, ପୂଗ, ଛଟା, କୋଷ, ପଂକ୍ତି, ଧାଡ଼ି ଘୋଡ଼ାଙ୍କର ଫାଟୁଆ ରୋଗ, ଶିଶୁଗଛ, କଦଳୀ ବୃକ୍ଷ, ସାପର ଗରଳ, ଶିମିଳି ଗଛର ଅଠା, ନାରଙ୍ଗଗଛ, ନିର୍ମଳୀଲତା, ନିର୍ମଳୀଗଛ ।

ପିଚ୍ଛିକା—ସ୍ତ୍ରୀ.ବ.(ପିଚ୍ଛ+କ+ଆ)ଗୁମର, ମୟୂର ପୁଚ୍ଛ ।

ପିଚ୍ଛିଢିକା—ସ୍ତ୍ରୀ.ବ. ଶିଂଶପା, ଶିଶୁଗଛ ।

ପିଚ୍ଛିଲ—ତ୍ରି.ବଂ(ପିଚ୍ଛ+ଇଲ)ପେଜୁଆ, ଖସଡ଼ା, ପୁଚ୍ଛଯୁକ୍ତ. ନାଳୁଆ, ତେଲିଆ, (ବି) ପେଜୁଆ ଭାତ, ଘୃତ ତେଲ ବା ଜଳଯୁକ୍ତ ବ୍ୟଞ୍ଜନ,ଡ଼ାଲି, ଝୋଳ, ସୁପ, ଝାଉଁଗଛ, ଝଟା କୋମଳ ଓ କଫକାରୀ ପଦାର୍ଥ, ଶ୍ଳେଷ୍ମାତ୍ମକ, ଓଦା ।

ପିଚ୍ଛିଲଚ୍ଛଦା—ବ. ପିଚ୍ଛଲଚ୍ଛଦା ଦେଖ ।

ପିଚ୍ଛିଲତ୍ୱକ୍—ପୁଂ. ବ. ନାଗରଙ୍ଗ ବୃକ୍ଷ, ଧନ୍ୱନବୃକ୍ଷ, ଧାମଣାଗଛ,(ବଂ) ଯାହାର ଛାଲି ବା ବକଲ ନାଳୁଆ ।

ପିଚ୍ଛିଲସାର—ପୁଂ. ବି. ମୋଚରସ ।
ପିଚ୍ଛିଲା—ସ୍ତ୍ରୀ. ବି. (ପିଚ୍ଛ + ଇଲ + ଆ) ଶିଶୁଗଛ, ସାରୁ, ଅଗୁରୁ, ପୋଇ, କାମରୂପସ୍ଥ କ୍ଷେତ୍ରବିଶେଷ ।
ପିଚୁଡ଼ା—ଗ୍ରା. ବି. ଆଖିପତା, ଆଖିର ପଲକ, ଦୃଗଞ୍ଚଳ ।
ପିଛ—ଗ୍ରା. ବି. (ସଂ-ପୃଷ୍ଠ) ପିଠି, (ସଂ-ପଶ୍ଚାତ୍) ଘୋଡ଼ାଆଦିଙ୍କ ପଛ ଗୋଡ଼, ଶିମିଳି ଅଠା, ଆଖିର ପିଛଡା, ପଶ୍ଚାତ୍-ଭାଗ, (ଗ୍ରା.ଅ) ପଛରେ, ସକାଶେ, ପାଇଁ
ପିଛୁଡ଼—ଗ୍ରା. ବି. ପଲକ, ପଲକ ପକାଇବା, ନିମିଷମାତ୍ର ସମୟ ।
ପିଛୁଡ଼—ଗ୍ରା. ବିଂ. ପଛଗୋଡ ସମ୍ବନ୍ଧୀୟ, (ଗ୍ରା. ବି) ପିଛୁଡ଼ ଦେଖ । [ ଇବା ।
ପିଛୁଡ଼ିବା—ଗ୍ରା. କ୍ରି. ଆଖିର ପଲକ ପକା-
ପିଛୁଧରିବା—ଗ୍ରା. କ୍ରି. ପଛେ ପଛେ ଯିବା, କୌଣସି ବ୍ୟକ୍ତିର ସଙ୍ଗେ ଗୋଡ଼ାଇବା
ପିଛୁରେ—ଗ୍ରା. ଅବ୍ୟ. ପଛରେ, ଲାଗି, ପାଇଁ
ପିଛୁଲ୍—ପ୍ରା. (ସମ୍ବ.) ବି. ଘରର ଓଳି, ଘରର ପଛଆଡ଼, ବାଡ଼ିଆଡ଼ ।
ପିଛୁଲ୍—ଗ୍ରା. ବିଂ. (ସଂ-ପଶ୍ଚାତ୍) ବାକିଥିବା, ପଛରେ ଥିବା, ପଶ୍ଚବର୍ତ୍ତୀ, ବିଗତକାଳୀନ, (ବି) ପଶ୍ଚାଭାଗ, ପଛଆଡ଼, ଅଗତକାଳ ।
ପିଛୁଳା(ଳେ)ଇବା—ଗ୍ରା. କ୍ରି. (ସଂ-ପ୍ରକ୍ଷାଳନ) ଅଇଁଠାବାସନକୁ ପାଉଁଶ ଆଦିରେ ନ ମାଜି କେବଳ ପାଣି ଧୋଇଦେବା ।
ପିଛୁକ—ଗ୍ରା. ବି. ସନ୍ଧିସ୍ଥାନର ଗଣ୍ଠି ଫୁଲିବା ରୋଗ, ଗିଲ୍ଟି ପଡ଼ିବା ରୋଗ ।
ପିଛୋଡ଼ା—ଗ୍ରା. ବି. ଆଖିର ପକ୍ଷ୍ମ ।
ପିଜ—ଦୀପ୍ତି, ବାସ, ବଳ, ଦାନ, ହିଂସା, ଧାତୁ ବିଶେଷ ।
ପିଜର—ପ୍ରା. (ସମ୍ବ.) ବି. ସୂତା କାଟିବାରେ ବ୍ୟବହୃତ ତୁଳାର ବଳଣା ।
ପିଜାସ—ଗ୍ରା. ବି. (ସଂ-ପିଞ୍ଜୂଷ) କର୍ଣ୍ଣମଳ, କାନଗୁହ, କାନଗଇ ।
ପିଜଳ—ଗ୍ରା. ବି. ଗୁଳିଆ ଫଳ, ପିଆରୁ, ପିଜୁଳ ।
ପିଜ୍ଜଲ—ପୁଂ. ବି. ଋଷିବିଶେଷ ।
ପିଞ୍ଚୁ—ଗ୍ରା. ବି. ଶୁଖିଲା ନଡ଼ିଆ ପତ୍ରର ଗ୍ରେଟ ବଡ଼ା, (ପ୍ରା.ସମ୍ବ.) ଘଣାର ଖାଡ଼ି ।
ପିଞ୍ଜ—ବି. (ପିଞ୍ଜ + ଭା.ଅ) ବଳ, ବଧ, କର୍ପୂର ବିଶେଷ, (ବିଂ) ବ୍ୟାକୁଳିତ, କାତର ।
ପିଞ୍ଜକ—କ୍ଳୀ. ବି. ହରିତାଳ ।
ପିଞ୍ଜଟ—ପୁଂ. ବି. (ପିନଜ୍ + କ.ଅଟ) ନେତ୍ରମଳ, ନେତ୍ରଗୁ ।
ପିଞ୍ଜନ—କ୍ଳୀ. ବି. (ପିଞ୍ଜ + ଅନ) କପାଭଣିବା ଧନୁ, କାର୍ପାସ କ୍ଷୋଟକ ଧନୁ. (ଭା.ଅନ) ତୁଳାଭଣିବା ।
ପିଞ୍ଜର— ବି. (ପିନଜ୍ + ଅର) ପଞ୍ଜରା ହାଡ଼, ପିତ୍ତଳ, ନାଗେଶ୍ୱର ଫୁଲ, ହରିତାଳ, ସ୍ୱର୍ଣ୍ଣ, ପକ୍ଷୀପ୍ରଭୃତିର ବନ୍ଧନଗୃହ, ପିଞ୍ଜରା, କାପୀଶ୍ଚ ବୃନ୍ଦ, ପୀତ ବର୍ଣ୍ଣ, ପିଙ୍ଗଳବର୍ଣ୍ଣ, ଅଶ୍ୱ ବିଶେଷ, ପୀତ ରକ୍ତ ବର୍ଣ୍ଣ, ସୁମେରୁର ପଶ୍ଚିମ ପାର୍ଶ୍ୱ ସ୍ଥିତ ପର୍ବତ ବିଶେଷ, (ବିଂ) ପୀତ, ହଳଦିଆ, ପିଙ୍ଗଳ ।
ପିଞ୍ଜରକ—ବି. ହରିତାଳ, ପର୍ବତବିଶେଷ
ପିଞ୍ଜରତା—ସ୍ତ୍ରୀ. ବି. ପିଞ୍ଜରର ଭାବ ବା ଧର୍ମ ।
ପିଞ୍ଜରାପୋଲ—ଗ୍ରା. ବି. ବୃଦ୍ଧ ଓ ଅକ୍ଷମ ଗୋରୁମାନଙ୍କର ଆଶ୍ରମ, ଗୋଶାଳା ।
ପିଞ୍ଜରା—ଗ୍ରା. ବି. ପକ୍ଷୀମାନଙ୍କୁ ରଖିବା ପାଇଁ ନିର୍ମିତ କାଠ ବା ଲୁହାର ଗ୍ରେଟ ଘର ।
ପିଞ୍ଜଲ—କ୍ଳୀ. ବି. (ପିଞ୍ଜ + କ.ଅଲ) କୁଶପତ୍ର, ହରିତାଳ, ଜଳବେତସ, ପ୍ରଦୀପର ବର୍ତ୍ତିକା, (ବିଂ) ଫଙ୍କାପଡ଼ି ଯାଇଥିବା, କିଂ କର୍ତ୍ତବ୍ୟ ବିମୂଢ଼ ।
ପିଞ୍ଜଳକ—କ୍ରି. ବିଂ. ଅତ୍ୟନ୍ତ ବ୍ୟାକୁଳ ।
ପିଞ୍ଜଳୀ—ସ୍ତ୍ରୀ. ବି. ଯଜ୍ଞ ଓ ଶ୍ରାଦ୍ଧରେ ବ୍ୟବହୃତ ଏକତ୍ର ବନ୍ଧା ହୋଇଥିବା ଦୁଇଟି କୁଶ ।
ପିଞ୍ଜା—ସ୍ତ୍ରୀ. ବି. (ପିଞ୍ଜ + ଅ + ଆ) ହିଂସା, କ୍ଷତ, ବଗ, ଠେଙ୍ଗା, ବାଡ଼ି, ହଳଦୀ, ତୁଳା, ହସ୍ତରେ ଧରି ପିଞ୍ଜିବା ।
ପିଞ୍ଜାନ—କ୍ଳୀ. ବି. ସ୍ୱର୍ଣ୍ଣ, ସୁନା ।
ପିଞ୍ଜିକା—ସ୍ତ୍ରୀ. ବି. (ପିଞ୍ଜ + ଇକ + ଆ) ଭଣାତୁଳାର ବଳଣା ।
ପିଞ୍ଜିବା—ଗ୍ରା. ବି. ତୁଳାକୁ ଭଣିବା, ଛିନ୍ନ ବିଚ୍ଛିନ୍ନ କରିବା, ତୁଳାଭଣିବାପରି ମନ୍ଥି ପକାଇବା ।
ପିଞ୍ଜିଲ—କ୍ଳୀ. ବି. ଭଣାତୁଳାର ବଳଣା
ପିଞ୍ଜୁ—ବି. (ପିଞ୍ଜ + ଉ) ଦୀପର ବଳିତା, ବତୀ ।
ପିଞ୍ଜୂଷ—ପୁଂ. ବି. (ପିଞ୍ଜ + ମଁ. ଊଷ) କର୍ଣ୍ଣମଳ ବା କାନଗୁହା ।
ପିଞ୍ଜେଟ—ପୁଂ. ବି. ନେତ୍ରମଳ ବା ଲେତଗ
ପିଟ—କ୍ଳୀ. ବି. (ପିଟ + ମଁ.ଅ) ବାଉଁଶ-ପାତିଆ ନିର୍ମିତ ଟୋକେଇ, ଡୋଲା, ପେଡ଼ି, ଫୋଟକା, ଗୃହ [illegible] ଅଟେଇ, ଧ୍ୱଜାରେ ଲାଗିବା ଅଳଙ୍କାର ବିଶେଷ, ଗଛର ଖଣ୍ଡ, ଶସ୍ୟାଗାର ।
ପିଟକ—ବି. (ପିଟ + କ) ପିଟ ଦେଖ ।
ପିଟକା—ସ୍ତ୍ରୀ. ବି. (ପିଟକ + ଆ) ପିଡ଼ିକା, ମସୂରିକା, ବସନ୍ତ, ଗ୍ରେଟବ୍ରଣ, ଗ୍ରେଟ ପେଟରା ।
ପିଟଣା(ଣୀ)—ଗ୍ରା. ବି. ଓଳିଆକୁ ପିଟିବାର ବାଡ଼ି, କାଠନିର୍ମିତ ଦ୍ରବ୍ୟବିଶେଷ, କୁଟା, ମାଡ଼, ପ୍ରହାର ।
ପିଟା—ଗ୍ରା. ବି. ପିଟିବା, ବାଡ଼େଇବା, ବେତାଦିଦ୍ୱାରା ପ୍ରହାର, (ଗ୍ରା. ବିଂ) ବାଡ଼ିଆ ହୋଇଥିବା, ମାଡ଼ୁଆ ।
ପିଟା(ଟେ)ଇବା—ଗ୍ରା. କ୍ରି. ପିଟିବା କ୍ରିୟାର ଣିଜନ୍ତ ରୂପ ।
ପିଟାଘଣ୍ଟା—ଗ୍ରା. ବି. ଯେଉଁ ଘଣ୍ଟାରେ ଆଘାତ କରି ଶବ୍ଦ କରାଯାଏ, (ଲ.ଅର୍ଥ) ଯେଉଁ ଲୋକ ଅନେକ ତାଡ଼ନା ସହି ପଥର ପାଲଟି ଗଲଣି ।
ପିଟପିଟି—ଗ୍ରା. ବି. ମରାମରି, ବାଡ଼ିଆବାଡ଼େଇ, ଉପର୍ଯ୍ୟୁପରି ପ୍ରହାର, (ଗ୍ରା. ବିଂ) ପରସ୍ପର ମଧ୍ୟରେ ବାଡ଼ିଆବାଡ଼େଇ ହେବା । [ କିଆ ।
ପିଟି—ପ୍ରା. (ମେଦିନୀପୁର) ବି. ପେଡ଼ିପେଡ଼-
ପିଟିପକା(କେ)ଇବା—ଗ୍ରା. କ୍ରି. ଉପର୍ଯ୍ୟୁ-

ପର ପିଟିବା, ଉଦ୍ଦାମ ମାଡ଼ଦେବା ।

ପିଟ୍ଟିବା—ଗ୍ରା. କ୍ରି. ଉପର୍ଯ୍ୟୁପର ଆଘାତ କରିବା, ଘଘାତ କରିବା, ବାଡ଼େଇବା ।

ପିଠଚ—ବି. ଦନ୍ତମଳ, ଦାନ୍ତର ଛଡ଼ଆ ।

ପିଠ—ବି. (ପିଠ୍+ଅ) କ୍ଳେଶ, ଯାତନା, (ଗ୍ରା.ବି) ପୃଷ୍ଠ ।

ପିଠଉ—ଗ୍ରା.ବି. (ସଂ ପିଷ୍ଟୋଦକ) ଚାଉଳ ଗୁଣ୍ଡଲକୁ ବାଟି କରାଯିବା ଘନ ଲେହ

ପିଠର—କ୍ଳୀ.ବି. (ପିଠ+ଅ+ଅ) ମୁଥା, ମନ୍ଥନ ଦଣ୍ଡ, ଗୃହବିଶେଷ, ହାଣ୍ଡି, ସ୍ଥାଲୀ, ପେଟରା, ମୁନ୍ଦୁରା, ରାକ୍ଷସବିଶେଷ, ଅଗ୍ନିବିଶେଷ ।

ପିଠରିକା—ସ୍ତ୍ରୀ.ବି. ସ୍ଥାଲୀ, ପାତ୍ର, ହାଣ୍ଡି, କୁଣ୍ଡ, ଭାଣ୍ଡ ।

ପିଠରୀ—ସ୍ତ୍ରୀ.ବି. (ପିଠ+ର+ଈ) ରାଜମୁକୁଟ, ପିଠର ଦେଖ ।

ପିଠା—ଗ୍ରା.ବି. (ସଂ ପିଷ୍ଟକ) ପୂପ, ଗୁଣ୍ଡଲଆଦି ଚୂନା ବା ପିଠଉଦ୍ୱାରା ପ୍ରସ୍ତୁତ ହୋଇଥିବା ଖାଦ୍ୟ । [ ଦେଖ ।

ପିଠା(ଠେ)ଇବା—ଗ୍ରା. କ୍ରି. ପିଠିଆଇବା

ପିଠାଖଣ୍ଡିକା—ଗ୍ରା.ବି. ପିଠାପାଉଁଆ ।

ପିଠାପଣା—ଗ୍ରା. ବି. ଉତ୍ସବ ଆଦିରେ ଖିଆଯିବା ନାନାପ୍ରକାର ମିଷ୍ଟାନ୍ନ ।

ପିଠାପାଉଁଆ—ଗ୍ରା. ବି. ଲୁହାଖଣ୍ଡିକା, ଚକୁଳିଆଦି ପିଠାକୁ ପଲମରୁ ଉଠାଇବା ନିମନ୍ତେ ଖନତାଦି ଲୌହଦଣ୍ଡ ।

ପିଠାପୁର—ଗ୍ରା. ବି. ମାନ୍ଦ୍ରାଜ ପ୍ରେସିଡେନ୍ସୀର ଅନ୍ତର୍ଗତ ଏକ ତାଲୁକା ଓ ତାହାର ପ୍ରଧାନ ନଗର ।

ପିଠି—ଗ୍ରା.ବି. ପୃଷ୍ଠଦେଶ, ଜୀବ ଦେହର ପେଟର ବିପରୀତ ଅଂଶ, ପଦାର୍ଥର ଉପରଭାଗ, କୌଣସି ସ୍ଥାନକୁ ଯିବା ବା ଫେରିବାର ଏକଅର, ପଛପାଖ, ପକ୍ଷ, ତରଫ ।

ପିଠିଆ—ଗ୍ରା. ବି. କଳାପିଠିଆ, କଳାବେଠିଆ, ଜଗନ୍ନାଥଙ୍କ ରଥ ଟାଣିବା ଲୋକ, (ବିଂ) ପୃଷ୍ଠଯୁକ୍ତ, ପିଠି ବୁଲାଇଥିବା, ଅନୁଜ, କନିଷ୍ଠ (ଭାଇ) ।

ପିଠିଆଇବା—ଗ୍ରା.କ୍ରି. ପଠିଆଡ଼କୁ ବୁଲାଇବା, ଖରା ବା ବର୍ଷାକୁ ପିଠି ଦେଖାଇବା, ମାଡ଼ ଗାଳିକୁ ଭ୍ରୂକ୍ଷେପ ନ କରିବା, ଖାତିର ନ କରିବା, ପିଠିକରି ବସିବା ।

ପିଠିଆଉଠିଆ—ଗ୍ରା.ବିଂ. ଅଗ୍ରଜ ଓ କନିଷ୍ଠ (ଭାଇମାନେ), ଏକୋଦର ଦ୍ଵୈତ ।

ପିଠିଆଡ଼େଇବା—ଗ୍ରା. କ୍ରି. କୌଣସି ସ୍ଥାନରୁ ଗୁଳିଯିବା ।

ପିଠିକରିବା—ଗ୍ରା.କ୍ରି. ପଛଆଡ଼କୁ ବୁଲିଯିବା, ଅମାନ୍ୟ କରିବା, ପୃଷ୍ଠଭଙ୍ଗ ଦେବା, କୌଣସି ସ୍ଥାନରୁ ଗୁଳିଯିବା, ଅନାଦର କରିବା, ନ ପଚାରିବା, ଭୁଲିଯିବା ।

ପିଠିକୁଣ୍ଡା(ଣ୍ଡେ)ଇହେବା—ଗ୍ରା.ବି. (ଲ. ଅର୍ଥ) ମାଡ଼ ଖାଇବାର ଉପଯୁକ୍ତ କାର୍ଯ୍ୟ କରିବା ।

ପିଠିପେଟ ଏକାଠି ଲାଗିଯିବା—ଗ୍ରା. କ୍ରି. କ୍ଷୁଧା ବା ଉପବାସ ଯୋଗୁଁ ପେଟ ଭିତରଆଡ଼କୁ ପଶିଯିବା, ଅତଶୀର୍ଣ୍ଣକାୟ ହେବା । [ ଓ ଭଉଣୀ) ।

ପିଠିରି—ଗ୍ରା.(ସମ୍ବଲ) ବିଂ. କନିଷ୍ଠ (ଭାଇ

ପିଠିରେପଡ଼ିବା—ଗ୍ରା.କ୍ରି. (ଲ.ଅର୍ଥ) ପକ୍ଷ ସମର୍ଥନ କରିବା, ସହାୟହେବା, ରକ୍ଷା କରିବା ।

ପିଠୀନସ—ପୁଂ.ବି. ଋଷିବିଶେଷ ।

ପିଡ଼କ—ପୁଂ.ବି. ଫୋଟକା, ସ୍ଫୋଟବ୍ରଣ

ପିଡ଼କା—ସ୍ତ୍ରୀ.ବି. ଫୋଟକା, କ୍ଷୁଦ୍ର କ୍ଷୁଦ୍ର ବ୍ରଣ ।

ପିଡ଼ଙ୍ଗ—ଗ୍ରା. ବି. (ସଂ-ମୃଦ୍ଗ୍ନା) ଶିମ୍ବାଦି ବର୍ଗର ବର୍ଷାୟୁଃ, ଶାକବିଶେଷ ।

ପିଢ଼—ଗ୍ରା.ବି.(ସଂ ପିଠ) ଚଉତରା, ବେଦୀ, ପୀଠସ୍ଥାନ, ବଂଶାନୁଗତ ପୁରୁଷ, ପୋସ୍ତାମା, ଉଚ୍ଚ ହଡ଼, ଦେବ ମୂର୍ତ୍ତିର ମୂଳର ଆସ୍ଥାନ, ବାଜ, ବାସସ୍ଥାନ, ଗଦା, ଗଣ୍ଡି, ମୃତ୍ପୂ ।

ପିଢ଼ା—ଗ୍ରା. ବି. ( ସଂ-ପୀଠ ) ତଳରେ ବସିବାର କାଷ୍ଠାସନ ।

ପିଣ୍ଟ—ଗ୍ରା.(କଟକ) ଅବ୍ୟ. ( ସଂ-ପୁନଃ ) ପୁଣି, ପୁନର୍ବାର ।

ପିଣ୍ଡ—ପୁଂ.କ୍ଳୀ.ବି. (ପିଣ୍ଡ+ମଁ.ଅ) ବୃନ୍ଦ, ସମୂହ, ମେଞ୍ଚା, ଗଦା, ସ୍ତୂପ, ଚେଣ୍ଡା, ଗୋଚ୍ଛା, ପରମାଣ, ଜୀବିକା, ଲୌହ, ଗୋଲ, ଗୋଲକ, ଆଜୀବନ, ଆୟୁ, ଧନ, ବଳ, ଶକ୍ତି, ଗଜକୁମ୍ଭ, ମଦନବୃକ୍ଷ, ଶରୀର, ଶ୍ରାଦ୍ଧରେ ପିତୃମାନଙ୍କୁ ଦେୟ ହାତରେ ବଳାଯାଇଥିବା ବର୍ତ୍ତୁଳାକାର ଅନ୍ନାଦିର ଗୁଣ୍ଡା, କବଳ, ଗ୍ରାସ, ଗୁଣ୍ଡା, ଘରର ପିଣ୍ଡା ଗୁଗ୍ଗୁଳ, କୁନ୍ଦୁରୁଖୁଣ୍ଟୀ, ସୁଗନ୍ଧ ଧୂପବିଶେଷ, ଲୋଭନ, ମନ୍ଦାରଫୁଲ, ଖାଦ୍ୟସାମଗ୍ରୀ, ମାଂସ, ଗର୍ଭସ୍ଥ ଭ୍ରୂଣ, (ଗଣିତ) ରାଶିମାନଙ୍କ ସମଷ୍ଟି, ଲହୁଣୀ, ଭୋଜନ, ଆହାର, (ବିଂ) ସଂଗୃହୀକୃତ, ଏକୀଭୂତ, ଘନ, ସାନ୍ଦ୍ର, ଗୋଟାଳିଆ ରାଶିକୃତ, ( ଗ୍ରା.ବି ) ମୂଳଧନ, ପିଆଜଆଦିର ଗୋଲାକାର ମୂଳ, ଗଣିତର ମୂଳସଂଖ୍ୟା

ପିଣ୍ଡକ—କ୍ଳୀ.ବି. (ପିଣ୍ଡ+କ) ପିଣ୍ଡମୂଳ, ଗୋଲ, ଗର୍ଭସ୍ଥ ବାଳକର ତୃତୀୟ ମାସର ଆକାର, (ପୁଂ) ଶିହ୍ଲନାମକ ଗନ୍ଧଦ୍ରବ୍ୟ, ପିଶାଚ, ପିଣ୍ଡାଳୁ, କବଳ, ଗାଜର, ଅସୁର ।

ପିଣ୍ଡକନ୍ଦ—ପୁଂ.ବି. ( ବ.ଗ୍ରା ) ପିଣ୍ଡାଳୁ, ଲମ୍ବଆଳୁ ।

ପିଣ୍ଡକର୍କଟୀ—ବି. ବୋଇତ କଖାରୁ ।

ପିଣ୍ଡକା—ସ୍ତ୍ରୀ.ବି. ମସୂରିକା ।

ପିଣ୍ଡଖର୍ଜ୍ଜୁର(ରୀ)—ବି. ଆରବଦେଶୀୟ ପାଚଲା ଖଜୁରକୋଳି ।

ପିଣ୍ଡତଗର—ବି. ଏକପ୍ରକାର ତଗର (ଫୁଲ ଓ ଗୁଳ୍ମ) ।

ପିଣ୍ଡତର୍କୂଲ—ପୁଂ.ବି. ପିଣ୍ଡ ଲେପଭାଗୀ ବୃଦ୍ଧ ପ୍ରପିତାମହାଦି ତିନପୁରୁଷ ।

ପିଣ୍ଡତୈଳକ—ପୁଂ.ବି. ତୁରସ୍କ, ଶିହ୍ଲକ, ଶିଳାରସ ।

ପିଣ୍ଡଦ—ପୁଂ. ବି. (ପିଣ୍ଡ+ଦା+କ.ଅ) ପିଣ୍ଡଦାନକର୍ତ୍ତା, ପିଣ୍ଡଦାତା ମାତ୍ର, ଅନ୍ନଦାତା ।

ପିଣ୍ଡଦାତା—ପୁଂ. ବିଂ. ପିଣ୍ଡଦ ଦେଖ ।

ପିଣ୍ଡଦାନ—କ୍ଳୀ.ବି. (୬ତତ୍) ପିଣ୍ଡପ୍ରଦାନ,

ପିତ୍ୟାଦିର ଉଦ୍ଦେଶ୍ୟେ ପିଣ୍ଡଦେବା ।
ପିଣ୍ଡଦେବା—ଗ୍ରା. କ୍ରି. ପିତୃଲୋକଙ୍କ ଉଦ୍ଦେଶ୍ୟରେ ପିଣ୍ଡ ଉତ୍ସର୍ଗ ବା ଅର୍ପଣ କରିବା ।
ପିଣ୍ଡନିର୍ବପଣ—କ୍ଳୀ. ବ. ପିଣ୍ଡଦାନାର୍ଥ ପାର୍ବଣ ବିଧିଦ୍ୱାରା କୃତ ଶ୍ରାଦ୍ଧ ।
ପିଣ୍ଡପଦ—କ୍ଳୀ.ବ.ଅଙ୍କବିଶେଷ, ପିଣ୍ଡସ୍ଥାନ
ପିଣ୍ଡପାତ—ପୁଂ.ବ. (୬ତତ୍) ପିଣ୍ଡଦାନ, ଭିକ୍ଷାଦାନ । [ ଭିକ୍ଷାପାତ୍ର
ପିଣ୍ଡପାତ୍ର—କ୍ଳୀ. ବ. ପିଣ୍ଡ ପ୍ରଦାନ ପାତ୍ର,
ପିଣ୍ଡପାଦ—ବ. (ବ.ବ୍ରୀ) ହସ୍ତୀ ।
ପିଣ୍ଡପିତୃଯଜ୍ଞ—ପୁଂ.ବ. ସାଗ୍ନିକ ଗୃହସ୍ଥମାନଙ୍କର କର୍ତ୍ତବ୍ୟ ପିତୃ ଉଦ୍ଦେଶ୍ୟକ ପିଣ୍ଡଦାନାତ୍ମକ ଯଜ୍ଞବିଶେଷ ।
ପିଣ୍ଡପୁଷ୍ପ—ବ. (ବ.ବ୍ରୀ) ଅଶୋକ ପୁଷ୍ପ, ଜବାପୁଷ୍ପ, ପଦ୍ମପୁଷ୍ପ, ତଗରପୁଷ୍ପ, ଦାଡ଼ିମ ବୃକ୍ଷ ।
ପିଣ୍ଡପ୍ରଷ୍ଠକ—ପୁଂ.ବ.ବାସ୍ତୂକ, ବଥୁଆଶାଗ
ପିଣ୍ଡଫଳା—ସ୍ତ୍ରୀ. ବ. (ବ.ବ୍ରୀ) କଟୁତୁମ୍ବୀ, ପିତାଲାଉ ।
ପିଣ୍ଡବୀଜ—ପୁଂ.ବ(ବ.ବ୍ରୀ)କଣିଅରଗଛ ।
ପିଣ୍ଡବୀଜକ—ପୁଂ. ବ. କର୍ଣ୍ଣିକାର, କଣିଅରଗଛ । [ ସଂସାର ।
ପିଣ୍ଡବ୍ରହ୍ମାଣ୍ଡ—ଗ୍ରା. ବ. ଶରୀରରୂପକ
ପିଣ୍ଡଭାକ୍—ପୁଂ.ସ୍ତ୍ରୀ.ବ. (ପିଣ୍ଡ+ଭଜ୍+କ୍ୱିପ୍)ସନ୍ତାନଙ୍କ ସନ୍ତତ ପ୍ରଦତ୍ତ ପିଣ୍ଡକୁ ଯେଉଁ ପୂର୍ବପୁରୁଷ ଗ୍ରହଣ କରନ୍ତି ।
ପିଣ୍ଡଭାଗୀ—ପୁଂ.ବଂ. (ପିଣ୍ଡ+ଭଜ୍+କ. ଇନ୍) ପିଣ୍ଡଭାକ୍ ଦେଖ । [ ଉପାୟ ।
ପିଣ୍ଡଭୃତି—ସ୍ତ୍ରୀ.ବ.ଜୀବିକା, ଜୀବନ ଧାରଣ
ପିଣ୍ଡମାତ୍ରୋପଜୀବୀ—ପୁଂ, ବଂ. ପିଣ୍ଡମାତ୍ର ଭୋଜୀ, ଯେଉଁମାନେ ପିଣ୍ଡ ଭୋଜନ କରି ଜୀବିକା ନିର୍ବାହ କରନ୍ତି ।
ପିଣ୍ଡମୁସ୍ତା—ସ୍ତ୍ରୀ. ବ, ନାଗର ମୁସ୍ତା ।
ପିଣ୍ଡମୂଳ—କ୍ଳୀ. ବ. ( ବ.ବ୍ରୀ ) ଗାଜର, ସାଲଗମ୍ । [ ଶ୍ରାଦ୍ଧ ।
ପିଣ୍ଡଯଜ୍ଞ—ପୁଂ.ବ. ପିଣ୍ଡଦାନ ରୂପ ଯଜ୍ଞ,
ପିଣ୍ଡରୋଗ—ବ. (ବ.ବ୍ରୀ) ଯେଉଁ ରୋଗ କୌଣସି ବ୍ୟକ୍ତିର ଦେହରେ ସ୍ଥାୟୀ ହୋଇ ରହିଅଛି, କୁଷ୍ଠରୋଗ ।
ପିଣ୍ଡଲ—ପୁଂ. ବ. ସେତୁ ।
ପିଣ୍ଡଲେପ—ବ.(୬ତତ୍) ପିତୃ ପିତାମହ ଓ ପ୍ରପିତାମହଙ୍କୁ ପିଣ୍ଡଦେବା ସମୟରେ ତାଙ୍କ ଉପର ତିନି ପୁରୁଷଙ୍କୁ ଯେଉଁ ଶ୍ରେଷ୍ଠ ପିଣ୍ଡମାନ ଦିଆଯାଏ, ଲେପଭାଗ ।
ପିଣ୍ଡଲୋପ—ପୁଂ. ବ. (୬ତତ୍) ପିଣ୍ଡର ଲୋପ, ବଂଶଲୋପ ।
ପିଣ୍ଡଲୋପହେବା—ଗ୍ରା.ବ.କୁଳବୁଡ଼ିଯିବା, ନିର୍ବଂଶ ହେବା ।
ପିଣ୍ଡଦ—ପୁଂ.ବ.ଭିକ୍ଷାଶୀ, ଭିକ୍ଷୋପଜୀବୀ ।
ପିଣ୍ଡସମ୍ବନ୍ଧ—ପୁଂ. ବ. ଦେହର ସହିତ ଜନ୍ୟ ଜନକତା ରୂପ ସମ୍ବନ୍ଧ, ଦେୟ ପିଣ୍ଡର ଦାତୃତ୍ୱ ଭୋକ୍ତୃତ୍ୱର ଅନ୍ୟତର ସମ୍ବନ୍ଧ, ପିଣ୍ଡର ସମ୍ବନ୍ଧ ।
ପିଣ୍ଡସମ୍ବନ୍ଧୀ—ବଂ.ପିଣ୍ଡସମ୍ବନ୍ଧଯୁକ୍ତ ପିତା ଓ ପିତାମହାଦି ।
ପିଣ୍ଡସ୍ଥ—ବି. ବଂ. ( ପିଣ୍ଡ + ସ୍ଥା + ଅ ) ସଂଯୁକ୍ତ, ଏକତ୍ର ମିଶ୍ରିତ ।
ପିଣ୍ଡା—ସ୍ତ୍ରୀ. ବ. (ପିଣ୍ଡ+ଆ) ଇସ୍ପାତ, କସ୍ତୁରୀବିଶେଷ, ହଳଦୀ, ବଂଶପତ୍ରୀ ତୃଣ ।
ପିଣ୍ଡାତ—ପୁଂ. ବ. ସିହ୍ଲକ ।
ପିଣ୍ଡାଦାନ—କ୍ଳୀ. ବ. (୬ତତ୍) ପିଣ୍ଡଗ୍ରହଣ, ମାଧୁକରୀ, ଅନ୍ନଭିକ୍ଷା, ଅନ୍ନଗ୍ରହଣ ।
ପିଣ୍ଡାପା—ସ୍ତ୍ରୀ. ବ. ନାଡ଼ୀହିଙ୍ଗୁ ।
ପିଣ୍ଡାଭ—ସ୍ତ୍ରୀ. ବ. ଶର୍କରାବିଶେଷ ।
ପିଣ୍ଡାଭ୍ର—କ୍ଳୀ, ବ. ଘନୋପଳ, କରକା ।
ପିଣ୍ଡାମୃତା—ସ୍ତ୍ରୀ. ବ. କନ୍ଦଗୁଡୁଚୀ ।
ପିଣ୍ଡାମ୍ଳ—କ୍ଳୀ. ବ. ଔଷଧବିଶେଷ ।
ପିଣ୍ଡାୟସ—କ୍ଳୀ. ବ.(କ.ଧା) ତୀକ୍ଷ୍ଣାୟସ, ଇସ୍ପାତ ।
ପିଣ୍ଡାର—କ୍ଳୀ. ବ. ଫଳଶାକ ବିଶେଷ, ବିକଙ୍କତ ବୃକ୍ଷ, ଭୁଇଁଅଁ, କ୍ଷପଣକ, ଗୋପ, ମହିଷୀ ରକ୍ଷକ, ସର୍ପବିଶେଷ, କୃଷ୍ଣମଦନ ବୃକ୍ଷ, ତୀର୍ଥବିଶେଷ ।
ପିଣ୍ଡାରକ—ବ.ନାଗବିଶେଷ, ବୃଷ୍ଣିବିଶେଷ, ବସୁଦେବ ଓ ରୋହିଣୀର ପୁତ୍ରବିଶେଷ, ପୁଣ୍ୟତୋୟ ନଦଭେଦ, ଦ୍ୱାରକାସ୍ଥିତ ଯାଦବମାନଙ୍କର ତୀର୍ଥବିଶେଷ ।
ପିଣ୍ଡାରି—ଗ୍ରା. ବ. ସ୍ତ୍ରୀ; ଅଷ୍ଟାଦଶ ଶତାବ୍ଦୀରେ ମଧ୍ୟଭାରତରେ ଲୁଣ୍ଠନ ଆଦି ଉପଦ୍ରବ କରୁଥିବା ଦସ୍ୟୁଦଳ ।
ପିଣ୍ଡାଳୁ—ପୁଂ.ବ. କନ୍ଦଗୁଡୁଚୀ, ଖମ୍ବଆଳୁ
ପିଣ୍ଡାଳୁକ—କ୍ଳୀ. ବ. ଆଳୁବିଶେଷ, ଖମ୍ବଆଳୁ ।
ପିଣ୍ଡାଶୀ—ପୁଂ. ବ. ପିଣ୍ଡଭୋକ୍ତା, ଭିକ୍ଷୁକ ।
ପିଣ୍ଡାହ୍ୱ—କ୍ଳୀ. ବ. ତଗରପାଦୁକ ।
ପିଣ୍ଡାହ୍ୱା—ସ୍ତ୍ରୀ. ବ. ନାଡ଼ୀହିଙ୍ଗୁ ।
ପିଣ୍ଡି—ସ୍ତ୍ରୀ. ବ. (ପିଣ୍ଡ+ଇ) ଚକ୍ରନାଭି, ଚକ୍ରର ମଧ୍ୟମଣ୍ଡଳ, ଖଜୁରକୋଳି, ପିଣ୍ଡିକା, ଗୋଡ଼ର ପାପୁଲି, ଆଣ୍ଠୁ ଗୋଲ ହାଡ଼, ଲାଉ, ଗୋଡ଼ର ଡ଼ି, ଖଡଗୁଣ୍ଡା, ଦେବମୂର୍ତ୍ତିର ବଇଠି, ବେଦୀ, ପିଠ, ପିଣ୍ଡା, (ଗ୍ରା.ବ) ହାଣ୍ଡିଶାଳରେ ହାଣ୍ଡିଆଦି ରଖିବାର ଟେକଂଡ଼ା ।
ପିଣ୍ଡିକଶ୍ରୀଚନ୍ଦନ—ଗ୍ରା.ବ. ଖୋରଧାବାସୀ ଜଣେ କବି, ଏ ମୁକୁନ୍ଦମାଳା ଓ ବସନ୍ତରାସ ରଚନା କରିଥିଲେ ।
ପିଣ୍ଡିକା—ସ୍ତ୍ରୀ. ବ. ( ପିଣ୍ଡ+କ+ଆ ) ପିଣ୍ଡି ଦେଖ, ବଡ଼ ଆଳୁ, ( ଗ୍ରା. ବ ) ଭେଟି, ଉପଢୌକନ, ଶ୍ୱେତାମ୍ଳିକା, ତେନ୍ତୁଳି, କସ୍ତୁରୀ ।
ପିଣ୍ଡିତ—ବି. ବଂ. (ପିଣ୍ଡ+ତ) ସାନ୍ଦ୍ର, ମିଶାଣ କରାଯାଇଥିବା, ଗୁଣିତ, ସଂହତ, (ବ) ଶିଳାରସ, ତୁରସ୍କ, ଗଣିତ ।
ପିଣ୍ଡିତାର୍ଥ—ବ. (କ.ଧା) କୌଣସିବାକ୍ୟ ବା ବାକ୍ୟସମୂହର ସ୍ଥୂଳାର୍ଥ ।
ପିଣ୍ଡିରକା—ସ୍ତ୍ରୀ.ବ.ମଞ୍ଜିଷ୍ଠା, ତେନ୍ତୁଳୀସୂକ ।
ପିଣ୍ଡିଲ—ପୁଂ.ବଂ. (ପିଣ୍ଡ+ଲ) ମୋଟା ଗୋଡ଼ ଭଣ୍ଡାବିଶିଷ୍ଟ (ବ୍ୟକ୍ତି), ଗଣନାରେ ଦକ୍ଷ, (ବ)ଗଣକ, ଜ୍ୟୋତିଷ, ପୋଲ, ସେତୁ, ମାଟିଗଦା, ସ୍ତୂପ ।
ପିଣ୍ଡିଲା—ସ୍ତ୍ରୀ. ବ. କର୍କଟୀ ବିଶେଷ, ଗୋଲତୁମ୍ବା ।
ପିଣ୍ଡୀ—ବି. ବଂ. (ପିଣ୍ଡ+ଇନ୍) ଶରୀରୀ, ପିଣ୍ଡଭାକ୍, (ବ-ପିଣ୍ଡ+ଈ)ପିଣ୍ଡି ଦେଖ,

ପେଣ୍ଡୁଲ, ଭିକ୍ଷୁକ, ତଗର,ପିଣ୍ଡଖର୍ଜ୍ଜୁର ।

ପିଣ୍ଡୀକରଣ—ବି.(ପିଣ୍ଡ + ଚ୍ୱି + କରଣ) ଗୋଟାକରିବା ।

ପିଣ୍ଡୀକୃତ—ବିଂ. (ପିଣ୍ଡ+ଚ୍ୱି+କୃତ) ମେଣ୍ଟାକରାଯାଇଥିବା,ଗୁଣ୍ଡାବଳାହୋଇ-ଥିବା,କେନ୍ଦ୍ରରେ ରାଶୀକୃତ,ରାଶୀକୃତ ।

ପିଣ୍ଡୀତକ—ବି. ଟୋଲକ, ମଦନ ବୃକ୍ଷ, କୃଷ୍ଣମଦନ, ପିଣ୍ଡୀ ତଗର ।

ପିଣ୍ଡୀପୁଷ୍ପ—ପୁଂ. ବି. ଅଶୋକ ବୃକ୍ଷ ।

ପିଣ୍ଡୀଭୂତ—ବିଂ.(ପିଣ୍ଡ + ଚ୍ୱି+ଭୂ+ତ) ଏକତ୍ର ବଳାଯାଇ ମୋଟା କରାଯାଇ-ଥିବା ।

ପିଣ୍ଡୀର—ପୁଂ. ବି. (ପିଣ୍ଡ+ଇର)ଦାଡ଼ିମ ବୃକ୍ଷ,ସମୁଦ୍ରଫେଣ,(ବିଂ)ନୀରସ,ଟାଣିଆ

ପିଣ୍ଡୀଶୂର—ପୁଂ ବି.(୭ତତ୍)ଭୋଜନପଟୁ, କାପୁରୁଷ, ବାହାରେ ଭୀରୁ—ଆପଣା ଘରେ ବୀର, ଡମ୍ଭକୁତା ।

ପିଣ୍ଡୁଲା—ଗ୍ରା.ବି.ପିଣ୍ଡାକାରବସ୍ତୁ,ଗୋଲା ।

ପିଣ୍ଡୋଲା—ଗ୍ରା. ବି. ପିଣ୍ଡୁଲା ଦେଖ ।

ପିଣ୍ଡୋଲି—ସ୍ତ୍ରୀ. ବି. ( ପିଣ୍ଡ+ଓଲି ) ଭୁକ୍ତୋଜ୍ଝିତ ଦ୍ରବ୍ୟ, ଭୁକ୍ତାବଶେଷ ।

ପିଣ୍ୟା—ସ୍ତ୍ରୀ. ବି. ଜ୍ୟୋତିଷ୍ମତୀ ଲତା ।

ପିଣ୍ୟାକ—ବି. (ପିଷ୍+ମ୍.ଆକ)ତୈଳ-ବୀଜର ନିଷ୍ପିଷ୍ଟ ଅସାରାଂଶ, ପିଡ଼ିଆ, ଜାଫରାନ୍, ଶିଳାଜତୁ, ହିଙ୍ଗୁ, ବାଲ୍ହୀକ, ସରଳରସ ।

ପିତ୍—ପ୍ରା. (ସମ୍ବ) ପିତା, ତାତ ।

ପିତ—ଗ୍ରା. ବି. ପିତ୍ତ, ଶରୀରସ୍ଥ ଧାତୁ-ବିଶେଷ ।

ପିତଃ—ପିତୃ ଶବ୍ଦର ସମ୍ବୋଧନ ରୂପ, ହେ ପିତା ।

ପିତଳ—ଗ୍ରା. ବି. ପିତ୍ତଳ, ଧାତୁବିଶେଷ, ପିତଳରେ ପ୍ରସ୍ତୁତ ପାତ୍ରବିଶେଷ ।

ପିତଳକାନ—ଗ୍ରା. ବି. (ଲ.ଅର୍ଥ) ଦୂରରୁ ଲୁଚକଥା ଶୁଣି ପାରିବାର ଶକ୍ତି ।

ପିତଳିଆ—ଗ୍ରା. ବିଂ. ପିତଳପାତ୍ର,ପିତଳ ବାସନରେ ଲୁଣଆଦି ପଡ଼ିଥିବା ପଦାର୍ଥ ରଖାଯିବାରୁ ଉତ୍କଟିଯାଇ ଖାଦ୍ୟର ଅଯୋଗ୍ୟ ହେବା ।

ପିତା—ପୁଂ. ବି. (ପା + କ.ତୃ) ଜନକ, ଜନ୍ମଦାତା, ବାପ, ଜନକତୁଲ୍ୟ ଗୁରୁ-ଜନ, ଚନ୍ଦ୍ରଲୋକବାସୀ, ପିତୃଲୋକ, (ଗ୍ରା.ବିଂ) ତିକ୍ତ ।

ପିତାଆଳୁ—ଗ୍ରା. ବି. ଏକପ୍ରକାର ବନ୍ୟ-ଲତାର ଖାଦ୍ୟମୂଳ ବିଶେଷ ।

ପିତାକୋରୁଆଁ—ଗ୍ରା. ବି. (ସଂ-କୂଟଜ) କୁରେଇ, କୋରୁଆଁ ।

ପିତାପାଣି—ଗ୍ରା. ବି. ବର୍ଷାଋତୁର ପ୍ରଥମ ଅସରା ବର୍ଷାର ପାଣି ।

ପିତାପାଣିଆଁ—ଗ୍ରା.ବି. ପିତାପାଣି ଦେଖ ।

ପିତାପୁତ୍ର—ପୁଂ. ବି. ବାପ ଓ ପୁଅ ।

ପିତାମହ—ବି. (ପିତୃ+ଆମହ) ଜେଜେ-ବାପା, ଦକ୍ଷପ୍ରଜାପତି, ବ୍ରହ୍ମା, ଶିବ, ଋଷିବିଶେଷ, ଜ୍ୟୋତିଃଶାସ୍ତ୍ରକାର ।

ପିତାମହୀ—ସ୍ତ୍ରୀ. ବି. ( ପିତାମହ + ଈ ) ପିତାମହଙ୍କର ପତ୍ନୀ, ଜେଜେମା ।

ପିତାମାତା—ବି. (ଦ୍ୱନ୍ଦ୍ୱ) ବାପ ଓ ମାଆ ।

ପିତାଲଉ—ଗ୍ରା. ବି. କଟୁତୁମ୍ବୀ ।

ପିତାଲାଗିବା—ଗ୍ରା. କ୍ରି. ତିକ୍ତବୋଧ-ହେବା, (ଲ.ଅର୍ଥ) କୌଣସି ବିଷୟ ଅସୁଖକର ବୋଧହେବା । [ ବିଶିଷ୍ଟ ।

ପିତାଳିଆ—ଗ୍ରା. ବିଂ.ଈଷତ୍ ତିକ୍ତସ୍ୱାଦ-

ପିତାଶାଗ—ଗ୍ରା.ବି. ଏକପ୍ରକାର ବର୍ଷାସ୍ଥ (ତିକ୍ତ) ଶାକ ।

ପିତାଚୁର୍ଣ୍ଣ—ଗ୍ରା. ବି. ଡ଼ାହାଣୀବିଶେଷ ।

ପିତୁଃପୁତ୍ର—ପୁଂ. ବି. ଉପଯୁକ୍ତ ବା ବିଖ୍ୟାତ ପିତାଙ୍କର ଉପଯୁକ୍ତ ପୁତ୍ର, ବାପର ପୁଅ ।

ପିତୁଃଷ୍ୱସା—ସ୍ତ୍ରୀ.ବି. ପିତୃଭଗିନୀ,ପିଉସୀ ।

ପିତୁଲା—ଗ୍ରା. ବି. (ସଂ-ପୁତ୍ତଳିକା) ପ୍ରତିମା, ମୂର୍ତ୍ତି, ପୁତ୍ତଳିକା,କଣ୍ଢେଇ,ଆଖିର ପୁଅ, (ଲ.ଅର୍ଥ) ଆଖିର ପୁଅପରି ଅତି ପ୍ରିୟ-ବ୍ୟକ୍ତି ।

ପିତୁଳିଆ—ଗ୍ରା.ବିଂ. (ସଂ—ତିକ୍ତ)ପିତା-କିଆ, ଈଷତ୍ ତିକ୍ତ,ପିତଳ ସମ୍ବନ୍ଧୀୟ, ପିତଳ ବାସନରେ ରହିବା ଯୋଗୁଁ ଉତ୍କଟେଇ ଯାଇଥିବା (ଖାଦ୍ୟଦ୍ରବ୍ୟ) ।

ପିତୃ—ପୁଂ. ବି. (ପା+ତୃ) ବାପ, ପିତା, ଜନକ, ଉତ୍ପାଦକ ।

ପିତୃଅର୍ଜ୍ଜିତ—ଗ୍ରା. ବିଂ. ନିଜର ପିତା ବା ପୂର୍ବପୁରୁଷଙ୍କ ଅର୍ଜ୍ଜିତ ।

ପିତୃରିକ୍ଥ—ବି. ପୈତୃକ ସମ୍ପତ୍ତି ।

ପିତୃକ—ତ୍ରି. ବିଂ. (ପିତୃ+କ) ପିତୃ-ସମ୍ବନ୍ଧୀୟ, ପୈତୃକ, ପିତୃପୁରୁଷଙ୍କ ଠାରୁ ପ୍ରାପ୍ତ ।

ପିତୃକର୍ମ—ବି. (ପିତୃ+କର୍ମନ୍) ପିତୃ-ଲୋକଙ୍କ ଉଦ୍ଦେଶ୍ୟରେ କୃତ ଶ୍ରାଦ୍ଧ-ତର୍ପଣାଦି ।

ପିତୃକଳ୍ପ—ପୁଂ. ବି. ପିତୃମାନଙ୍କର ଶ୍ରାଦ୍ଧାଦି କାର୍ଯ୍ୟ, ପିତୃମାନଙ୍କର ଉତ୍-ପତ୍ତ୍ୟାଦି ଜ୍ଞାପକ ଗ୍ରନ୍ଥବିଶେଷ ।

ପିତୃକାନନ—କ୍ଳୀ. ବି. (୬ତତ୍) ଶ୍ମଶାନ, (ବିଂ) ପିତୃତୁଲ୍ୟ ।

ପିତୃକାର୍ଯ୍ୟ—କ୍ଳୀ.ବି.ଶ୍ରାଦ୍ଧ ଓ ତର୍ପଣାଦି ।

ପିତୃକୁଳ—ବି.(୬ତତ୍) ପିତାଙ୍କ ବଂଶ ।

ପିତୃକୃତ—ତ୍ରି. ବିଂ. ପିତୃପୁରୁଷ କୃତ, ଅନୁଷ୍ଠିତ ।

ପିତୃକୃତ୍ୟ—କ୍ଳୀ.ବି.ପିତୃକାର୍ଯ୍ୟ,ଶ୍ରାଦ୍ଧାଦି

ପିତୃକ୍ରିୟା—କ୍ଳୀ.ବି.ପିତୃକାର୍ଯ୍ୟ,ଶ୍ରାଦ୍ଧାଦି ।

ପିତୃଗଣ—ପୁଂ. ବି. ( ୬ତତ୍ ) ପିତୃ-ପୁରୁଷଗଣ, ପିତୃଲୋକ, ଅଗ୍ନିଷ୍ୱାତ୍ତାଦି ସପ୍ତ ।

ପିତୃଗୃହ—କ୍ଳୀ.ବି.ଶ୍ମଶାନ,ପୈତୃକ ଗୃହ ।

ପିତୃଗ୍ରହ—ପୁଂ. ବି. ସ୍କନ୍ଦାନୁଚର ଗ୍ରହ-ବିଶେଷ । [ ଦେଖ ।

ପିତୃଗୋତ୍ର—ବି. ( ୬ତତ୍ ) ପିତୃକୁଳ

ପିତୃଘାତକ—ପୁଂ. ବିଂ. ପିତାକୁ ଯେ ହତ୍ୟା କରେ ।

ପିତୃଘାତୀ—ପୁଂ.ବିଂ.ପିତୃଘାତକ ଦେଖ ।

ପିତୃଘ୍ନ—ପୁଂ. ବିଂ. (ପିତୃ+ହନ୍+ କ.ଅ) ପିତୃଘାତକ ।

ପିତୃତର୍ପଣ—କ୍ଳୀ. ବି. (୭ତତ୍) ପିତୃ-ଗଣଙ୍କ ଉଦ୍ଦେଶ୍ୟରେ ଜଳଦାନ କ୍ରିୟା, ପିତୃତୀର୍ଥ, ତିଳ ।

ପିତୃତିଥି—ସ୍ତ୍ରୀ. ବି. ଅମାବାସ୍ୟା ।

ପିତୃତୀର୍ଥ—କ୍ଳୀ. ବି. ଦକ୍ଷିଣ ହସ୍ତର ତର୍ଜ୍ଜନୀ ଓ ଅଙ୍ଗୁଷ୍ଠ ମୂଳରୁ ମଧ୍ୟସ୍ଥିତ

କରତଳର ଅଂଶ, ଗସ୍ଥୀତୀର୍ଥ ।
ପିତୃତ୍ୱ—କ୍ଲୀ. ବ. ପିତାର ଭାବ ବା ଧର୍ମ, ଜନକତ୍ୱ ।
ପିତୃଦଣ୍ଡ—ପୁଂ. ବିଂ. (୩ତତ୍ରୁ) ପିତାକର୍ତ୍ତୃକ ଦଣ୍ଡ ବା ଅର୍ପିତ (ଧନାଦ) ।
ପିତୃଦତ୍ତା—ସ୍ତ୍ରୀ. ବିଂ. ପିତାଙ୍କ ଦ୍ୱାରା ଜାମାତାଙ୍କ ହସ୍ତରେ ଅର୍ପିତା(କନ୍ୟା) ।
ପିତୃଦାନ—କ୍ଲୀ. ବ. (୪ତତ୍ରୁ) ପିତାଦର ଉଦ୍ଦେଶେ ଅନ୍ନବସ୍ତ୍ରାଦ ଦାନ ।
ପିତୃଦାନକ--କ୍ଲୀ.ବ.ପିତୃଉଦ୍ଦେଶ୍ୟକ ଦାନ
ପିତୃଦାୟ—ବ. (୬ତତ୍ରୁ),ପୁତ୍ର ପିତାଙ୍କ ଅନ୍ତେ ପାଇବା ସମ୍ପତ୍ତି, ପୈତୃକ ସମ୍ପତ୍ତି, ପିତାର ମରଣଜନତ ସଙ୍କଟ, ମୃତ ପିତାର ଶ୍ରାଦ୍ଧାଦ ନର୍ବାହ ରୂପ କଠିନ କାର୍ଯ୍ୟ ।
ପିତୃଦନ—ସାମ୍ବତ୍ସରକ ଶ୍ରାଦ୍ଧ ଦବସ, ଅମାବାସ୍ୟା, ପକ୍ଷଦ୍ୱୟସ୍ଥାତ୍ମକ ତତ୍ସମ୍ବନ୍ଧୀୟ ଦନ ।
ପିତୃଦବସ—ବ. ପିତୃଦନ ଦେଖ ।
ପିତୃଦେବ—ପୁଂ. ବ. ଦେବତାସ୍ୱରୂପ ପିତା,ପିତୃଗଣଙ୍କର ଅଧିଷ୍ଠାତ୍ରୀ ଦେବତା, ପିତୃ ଦେବତା,(୬ତତ୍ରୁ)ପିତାଙ୍କୁ ପୂଜା କରବା ।
ପିତୃଦେବତ—ନ୍ତି. ବିଂ. ପିତୃ ଦେବତା ସମ୍ବନ୍ଧୀୟ, ପିତୃ ଦେବତାମାନଙ୍କ ପ୍ରୀତ୍ୟର୍ଥେ ଅନୁଷ୍ଠିତ ଯଜ୍ଞାଦ । [ ଯମ ।
ପିତୃଦୈବତ—ବ.(ବ.ଗ୍ରୀ) ମଘା ନକ୍ଷତ୍ର,
ପିତୃଦୈବତ୍ୟ—ନ୍ତି.ବିଂ. ପିତୃ ଦେବତା ସମ୍ବନ୍ଧୀୟ ।
ପିତୃଦ୍ରୋହ—ବ. ପିତାଙ୍କ ପ୍ରତି ମନ୍ଦ ବ୍ୟବହାର ବା ବରୋଧାଚରଣ ।
ପିତୃଦ୍ରୋହକ – ବିଂ.ପିତାଙ୍କର ବରୋଧାଚାରୀ । [ ଦେଖ ।
ପିତୃଦ୍ରୋହୀ—ପୁଂ. ବିଂ. ପିତୃଦ୍ରୋହକ
ପିତୃଦ୍ୱେଷ—ବ.ପିତାଙ୍କ ପ୍ରତି ଈର୍ଷା ବା ଘୃଣା ।
ପିତୃଦ୍ୱେଷକ—ବିଂ.ପିତାଙ୍କ ପ୍ରତି ଈର୍ଷା ବା ଘୃଣାଯୁକ୍ତ, ପିତୃଶତ୍ରୁ । [ଦେଖ ।
ପିତୃଦ୍ୱେଷୀ—ପୁଂ. ବିଂ. ପିତୃଦ୍ୱେଷକ

ପିତୃଦ୍ୱେଷ୍ଟା—ପୁଂ. ବିଂ. ପିତୃଦ୍ୱେଷକ ଦେଖ, (ସ୍ତ୍ରୀ) ଦ୍ୱେଷ୍ଟ୍ରୀ ।
ପିତୃଧନ—ବ. ପୈତୃକ ସମ୍ପତ୍ତି ।
ପିତୃଧାର—ପୁଂ.ବ (୬ତତ୍ରୁ) ପିତୃଋଣ, ପିତାଙ୍କ ନକଟପ୍ରାପ୍ତ ଉପକାର ରୂପଧାର ।
ପିତୃପକ୍ଷ—ପୁଂ.ବ.(କ.ଧା)ଆଶ୍ୱିନମାସର କୃଷ୍ଣପକ୍ଷ, ପେତପକ୍ଷ, ଆତ୍ମୀୟ ପିତୃସମ୍ବନ୍ଧୀୟ, ସ୍ୱଜନାଦ ।
ପିତୃପତି—ପୁଂ. ବ. (୬ତତ୍ରୁ)ଯମ, ଶମନ
ପିତୃପଦ—ବ. ପିତୃଲୋକ ଦେଖ ।
ପିତୃପତା—ପୁଂ.ବ.(୬ତତ୍ରୁ)ପିତାମହ ।
ପିତୃପୁରୁଷ—ବ. ଆପଣାର ପିତୃପକ୍ଷ, ପୂର୍ବପୁରୁଷ, ପିତୃଗଣ ।
ପିତୃପୂଜନ—କ୍ଲୀ.ବ. (୬ତତ୍ରୁ) ଶ୍ରାଦ୍ଧାଦ କାର୍ଯ୍ୟ ।
ପିତୃପୈତାମହ—ନ୍ତି.ବିଂ. (ପିତୃପିତାମହ+ଅ) ପୂର୍ବପୁରୁଷସମ୍ବନ୍ଧୀୟ, ପିତା ଓ ପିତାମହ କର୍ତ୍ତୃକ ଅନୁଷ୍ଠିତ ।
ପିତୃପୈତାମହକ--ନ୍ତି.ବିଂ.(ପିତୃ ପିତାମହ +ଇକ) ପୂର୍ବପୁରୁଷସମ୍ବନ୍ଧୀୟ, ପିତା ଓ ପିତାମହଙ୍କ କର୍ତ୍ତୃକ ଅନୁଷ୍ଠିତ ।
ପିତୃପ୍ରସୂ—ସ୍ତ୍ରୀ.ବ.(୬ତତ୍ରୁ)ସନ୍ଧ୍ୟା,ପିତାମହୀ
ପିତୃପ୍ରିୟ—ବ.ଭୃଙ୍ଗରାଜ,ଅଗସ୍ତ୍ୟ ବୃକ୍ଷ ।
ପିତୃବନ୍ଧୁ—ପୁଂ. ବ. (୬ତତ୍ରୁ) ଆପଣା ପିତାଙ୍କର ବନ୍ଧୁ, ପିତାମହ, ପିତାମହୀର ଭଗିନୀ ପୁତ୍ର ଏବଂ ପିତାର ମାତୁଳ ପୁତ୍ର ଏମାନେ ଶାସ୍ତ୍ରୋକ୍ତ ପିତୃବନ୍ଧୁ ।
ପିତୃବାନ୍ଧବ—ପୁଂ.ବ.ପିତୃବନ୍ଧୁ ଦେଖ ।
ପିତୃଭକ୍ତ—ପୁଂ. ବିଂ. ପିତାଙ୍କ ପ୍ରତି ଭକ୍ତିମାନ୍ (ପୁତ୍ର) ।
ପିତୃଭକ୍ତି—ବ.ପିତାଙ୍କ ପ୍ରତି ପୁତ୍ରର ଶ୍ରଦ୍ଧା ଓ ଅନୁରକ୍ତି ।
ପିତୃଭୋଜନ—ପୁଂ.ବ.(କ.ଧା) ଶ୍ରାଦ୍ଧରେ ପିତାଙ୍କ ନାମରେ ଉତ୍ସୃଷ୍ଟ ଭୋଜ୍ୟବସ୍ତୁ ବା ପିଣ୍ଡ, ମାଷ ।
ପିତୃଭ୍ରାତା—ପୁଂ.ବ. (୬ତତ୍ରୁ) ପିତୃବ୍ୟ, ବାପାଙ୍କର ଭାଇ ।

ପିତୃମନ୍ଦର—କ୍ଲୀ.ବ. (୬ତତ୍ରୁ) ପିତୃଗୃହ, ପିତାଘର, ଶ୍ମଶାନ ।
ପିତୃମାତା—ସ୍ତ୍ରୀ.ବ.(୬ତତ୍ରୁ) ପିତାମହୀ ।
ପିତୃମାତୃ—ଗ୍ରା. ବ. ବାପ ଓ ମା ।
ପିତୃମାତୃହୀନ—ଗ୍ରା. ବିଂ. ମାଆ ବାପ ନ ଥିବା (ବ୍ୟକ୍ତି), ଟୋମୁଣ୍ଡ ।
ପିତୃମାନ୍—ପୁଂ. ବିଂ. ( ପିତୃ+ମତ୍ ) ଜୀବତ୍ପିତୃକ,ଯାହାଙ୍କ ପିତା ବଞ୍ଚିଅଛନ୍ତି, ବାପଥିଲ (ପୁଅ) ।
ପିତୃମୁଖୀ—ଗ୍ରା.ପୁଂ. ବିଂ. ଯେଉଁ ଶିଶୁର ଚେହେରା ପିତାଙ୍କ ଚେହେରା ପରି ।
ପିତୃମେଧ—ପୁଂ. ବ (୬ତତ୍ରୁ) ପିତୃଉଦ୍ଦେଶ୍ୟରେ ଅନୁଷ୍ଠିତ ଅନ୍ତ୍ୟେଷ୍ଟି କର୍ମ ଓ ଶ୍ରାଦ୍ଧ ତର୍ପଣାଦ । [ ଦେଖ ।
ପିତୃଯଜ୍ଞ—ପୁଂ.ବ. (୬ତତ୍ରୁ) ପିତୃମେଧ
ପିତୃଯାନ—ପୁଂ.ବ. (୬ତତ୍ରୁ) ପିତୃମାନଙ୍କର ଚନ୍ଦ୍ରଲୋକ ଗମନମାର୍ଗ, ପିତୃଲୋକ ଗମନ ମାର୍ଗ, ଦକ୍ଷିଣାୟନ କାଳ
ପିତୃରାଜ—ପୁଂ. ବ. (୬ତତ୍ରୁ) ଯମ ।
ପିତୃରିଷ୍ଟ—ପୁଂ.ବ. ପୁତ୍ର ଜନ୍ମରେ ପିତାଙ୍କର ଅମଙ୍ଗଳଜନକ ଜ୍ୟୋତିଷିକ ଯୋଗବଶେଷ ।
ପିତୃରୂପ—ପୁଂ. ବ. ଶିବ ।
ପିତୃଲୋକ—ପୁଂ. ବ. (୬ତତ୍ରୁ) ସ୍ୱର୍ଗରେ ପିତୃଗଣଙ୍କ ପାଇଁ ନର୍ଦ୍ଦିଷ୍ଟ ସ୍ଥାନ, ଚନ୍ଦ୍ରଲୋକ, ଆପଣାର ମୃତ ପୂର୍ବପୁରୁଷ ।
ପିତୃବଂଶ—ବ. ପିତୃକୁଳ ଦେଖ ।
ପିତୃବତ୍—ଅବ୍ୟ. ପିତୃତୁଲ୍ୟ ।
ପିତୃବନ—କ୍ଲୀ. ବ. ଶ୍ମଶାନ । [ ଶିବ ।
ପିତୃବନେଚର—ପୁଂ. ବ. ଶ୍ମଶାନବାସୀ,
ପିତୃବସତି—ସ୍ତ୍ରୀ. ବ. (୬ତତ୍ରୁ)ଶ୍ମଶାନ ।
ପିତୃବତ୍ତ—କ୍ଲୀ.ବ.(୬ତତ୍ରୁ)ପିତାଦ ପରମ୍ପରାଲବ୍ଧ ଧନ, ପିତୃଧନ । [ ମୃତ୍ୟୁ ।
ପିତୃବିୟୋଗ— ପୁଂ.ବ. (୬ତତ୍ରୁ)ପିତାର
ପିତୃବ୍ୟ—ପୁଂ.ବ. (ପିତୃ+ବ୍ୟ) ପିତାଙ୍କର ଭାଇ, କକେଇ, ଦଦେଇ ।
ପିତୃବ୍ରତ—ବ.ପିତୃଯଜ୍ଞ,ଶ୍ରାଦ୍ଧ ତର୍ପଣାଦ, ପିତୃସେବା । [ଦେଖ ।
ପିତୃଶୋକ—ବ. ପିତୃ ବିୟୋଗଜନତ

ପିତୃଶ୍ରାଦ୍ଧ—ବି. (୬ତତ୍ପୁ) ପିତୃଲୋକଙ୍କ ଉଦ୍ଦେଶ୍ୟରେ କରାଯିବା ଶ୍ରାଦ୍ଧ,ପିତୃକର୍ମ।

ପିତୃଷଦନ—କ୍ଲୀ. ବି. କୁଶ ।

ପିତୃଷ୍ୱସା—ସ୍ତ୍ରୀ. ବି.( ୬ତତ୍ପୁ ) ପିତାଙ୍କର ଭଗିନୀ, ପିଉସୀ ।

ପିତୃଷ୍ୱସେୟ—ପୁଂ.ବି.(ପିତୃଷ୍ୱସୃ+ଏୟ) ପିଉସୀ ପୁଅ ଭାଇ ।

ପିତୃଷ୍ୱସ୍ରୀୟ—ପୁଂ.ବି.ପିଉସୀର ପୁତ୍ର ।

ପିତୃଷ୍ୱସ୍ରେୟ—ପୁଂ.ବି. ପିତାଙ୍କ ଭଗିନୀର ପୁତ୍ର, ପିଉସୀ ପୁଅ ଭାଇ ।

ପିତୃସଦନ—ବି. ପିତୃଗୃହ ଦେଖ ।

ପିତୃସଦ୍ମ—ବି. (୬ତତ୍ପୁ) ଶ୍ମଶାନ ।

ପିତୃସନ୍ନିଭ—ପୁଂ.ବିଂ ପିତୃତୁଲ୍ୟ, ପିତୃକଳ୍ପ ।

ପିତୃସମ୍ୱତ୍ସର—ବି.ପିତାଙ୍କର ମୃତ୍ୟୁଦିବସ ଠାରୁ ଏକବର୍ଷ ସମୟ ।

ପିତୃସୂ—ସ୍ତ୍ରୀ. ବି. (ପିତୃ+ସୁ+କ.କ୍ୱିପ୍) ସନ୍ଧ୍ୟା, ପିତାମହୀ, ଜେଜେ ମା ।

ପିତୃସେବା—ବି. (୬ତତ୍ପୁ) ଭକ୍ତି ପୂର୍ବକ ପିତାଙ୍କର ଶୁଶ୍ରୂଷା ।

ପିତୃସ୍ଥାନ—ବି. (୬ତତ୍ପୁ) ଶ୍ମଶାନ, ପିତୃଲୋକ, ଚନ୍ଦ୍ରଲୋକ, ପିତୃତୁଲ୍ୟ ପୂଜ୍ୟ ବ୍ୟକ୍ତି ।

ପିତୃସ୍ଥାନୀୟ—ପୁଂ. ବିଂ. ପିତୃତୁଲ୍ୟ, ପିତାଙ୍କ ପରି ମାନନୀୟ, ଆପଣାର ଅଭିଭାବକ, ମୁରବି, ଗୁରୁଜନ ।

ପିତୃହତ୍ୟା—ବି. (୬ତତ୍ପୁ) ବାପାଙ୍କୁ ବଧ କରିବା ।

ପିତୃହନ୍ତା—ପୁଂ. ବିଂ. (ପିତୃ+ହନ୍+ତୃ) ପିତୃଘ୍ନ, ପିତୃଘାତୀ ।

ପିତୃହା—ପୁଂ. ବିଂ. (ପିତୃ+ହନ୍+କ. କ୍ୱିପ୍ )ପିତୃହନ୍ତା, ପିତୃଘାତୀ,ପିତୃଘ୍ନ ।

ପିତୃହୀନ—ପୁଂ.ବିଂ, ( ୩ତତ୍ପୁ ) ବାପଛେଉଣ୍ଡ, ଯାହାର ପିତା ମରିଅଛନ୍ତି, (ସ୍ତ୍ରୀ) ପିତୃହୀନା ।

ପିତୃହୂ—ପୁଂ.ବି. ଡାହାଣ କାନ, ପିତୃମାନଙ୍କୁ ଦେୟ ବସ୍ତୁ ।

ପିତୃହ୍ୱୟ—କ୍ଲୀ.ବି, ପରଲୋକଗତ ପିତୃମାନଙ୍କର ଅହ୍ୱାନ ।

ପିତ୍ତ—କ୍ଲୀ. ବି. (ଅପି+ଦୋ+କ.ତ) ଶରୀରରେ ଅଗ୍ନି ବା ତାପଜନକ ଧାତୁ, ଯକୃତରୁ ସଂସୃଷ୍ଟ ଉକ୍ତ ରସବିଶେଷ, ପିତ୍ତଧାତୁ ।

ପିତ୍ତକର—ତ୍ରି.ବିଂ. ପିତ୍ତଜନକ ଦ୍ରବ୍ୟ ।

ପିତ୍ତକାସ—ପୁଂ.ବି. ପିତ୍ତ ନିମିତ୍ତ କାସରୋଗବିଶେଷ ।

ପିତ୍ତକୋଷ—ବି.(୬ତତ୍ପୁ) ପ୍ରାଣୀର ଶରୀରସ୍ଥ ପିତ୍ତଥିବା ଆଧାର ବା ମୁଣା ।

ପିତ୍ତଘ୍ନ—ତ୍ରି, ବିଂ, (ପିତ୍ତ+ହନ୍+କ. ଅ) ପିତ୍ତନାଶକ, (ବି) ଘିଅ ।

ପିତ୍ତଘ୍ନୀ—ସ୍ତ୍ରୀ. ବି. ଗୁଡୁଚୀ ଲତା ।

ପିତ୍ତଜ—ବିଂ, ( ପିତ୍ତ+ଜନ୍+କ.ଅ ) ଶରୀରରେ ପିତ୍ତର ଆଧିକ୍ୟରୁ ଜାତ ।

ପିତ୍ତଜନକ—ବିଂ.ଶରୀରରେ ପିତ୍ତ ବୃଦ୍ଧିକାରକ (ଔଷଧ) ।

ପିତ୍ତଜ୍ୱର—ପୁଂ.ବି.(କ,ଧା) ପିତ୍ତ ନିମିତ୍ତ ଜ୍ୱର, ପୈତ୍ତିକ ଜ୍ୱର ।

ପିତ୍ତଦେହୀ—ଗ୍ରା.ପୁଂ.ବିଂ.ଯେଉଁ ଲୋକର ଦେହରେ ପିତ୍ତଧାତୁ ଅଧିକ ଥାଏ ।

ପିତ୍ତଦ୍ରାବୀ—ପୁଂ.ବି.(ପିତ୍ତ+ଦ୍ରୁ+ଣିଚ୍ +ଇନ୍) ମଧୁର ଜମ୍ବୀର ବୃକ୍ଷ, (ବିଂ) ପିତ୍ତଦ୍ରବକାରୀ ମାତ୍ର ।

ପିତ୍ତନାଡ଼ୀ—ସ୍ତ୍ରୀ.ବି.ଦନ୍ତ ମୂଳଗତ ରୋଗ, ପିତ୍ତ ହେତୁ ନାଡ଼ୀବ୍ରଣ ।

ପିତ୍ତନାଶକ—ବିଂ. ଯେଉଁ ଔଷଧାଦି ଦ୍ୱାରା ଶରୀରର ପିତ୍ତାଧିକ୍ୟ ନିବୃତ୍ତି ହୁଏ ।

ପିତ୍ତପାଗଳା—ଗ୍ରା, ପୁଂ. ବିଂ. ସାମୟିକ ପାଗଳ, ଚଉଳ, ବାଉଳ ।

ପିତ୍ତପାଣ୍ଡୁ—ପୁଂ.ବି.ହଳଦିଆକାମଳରୋଗ

ପିତ୍ତପ୍ରକୃତି—ବିଂ. ( ବ.ବ୍ରୀ ) ଯେଉଁ ବ୍ୟକ୍ତିଠାରେ ପିତ୍ତଧାତୁ ଆଧିକ୍ୟ ଥାଏ

ପିତ୍ତପ୍ରକୋପୀ—ତ୍ରି. ବିଂ. ପିତ୍ତବର୍ଦ୍ଧକ ପାନ ଓ ଅନ୍ନ, ତକ୍ର, ସୁରା ଓ ମାଂସାଦି

ପିତ୍ତପ୍ରବର୍ତ୍ତନ—କ୍ଲୀ.ବି.ଊର୍ଦ୍ଧ୍ୱ ବା ଅଧୋମାର୍ଗ ଦ୍ୱାରା ପିତ୍ତ ନିର୍ଗମ ।

ପିତ୍ତଭେଷଜ—କ୍ଲୀ. ବି. ମସୂର ।

ପିତ୍ତରକ୍ତ—କ୍ଲୀ. ବି. ରକ୍ତ ପିତ୍ତ ରୋଗ, ଅମ୍ଳ ପିତ୍ତ ରୋଗ ।

ପିତ୍ତଳ—କ୍ଲୀ. ବି.(ପିତ୍ତ+ଲା+କ.ଅ) ତାମ୍ର ଓ ସୀସା ମିଶ୍ରିତ ଧାତୁ ବିଶେଷ, ଭୂର୍ଜପତ୍ର, ହରିତାଳ, ଜଳପିପ୍ପଳୀ ଶାଳପର୍ଣ୍ଣୀ ।

ପିତ୍ତଳା—ସ୍ତ୍ରୀ.ବି.ଯୋନି ରୋଗ ବିଶେଷ

ପିତ୍ତବର୍ଗ—ପୁଂ.ବି.ପିତ୍ତସମୂହ, ଯଥା—ମତ୍ସ୍ୟ, ଗୋ, ଅଶ୍ୱ, ରୁରୁ ଓ ବର୍ହୀ ଏହି ପାଞ୍ଚ ଜୀବର ପିତ୍ତ,(ମତାନ୍ତରରେ)ବରାହ ଛାଗ, ମହିଷ, ମତ୍ସ୍ୟ ଓ ମୟୂର ଏହି ପାଞ୍ଚ ଜୀବର ପିତ୍ତ ।

ପିତ୍ତବର୍ଦ୍ଧକ—ବିଂ.ପିତ୍ତ ଜନକ ଦେଖ

ପିତ୍ତବଲ୍ଲଭା—ସ୍ତ୍ରୀ. ବି. କୃଷ୍ଣାତବଷା ।

ପିତ୍ତଶୂଳ—କ୍ଲୀ. ବି. ପିତ୍ତହେତୁ ଶୂଳ ରୋଗ ବିଶେଷ ।

ପିତ୍ତଶ୍ଳେଷ୍ମ—ଗ୍ରା. ବି. ଶରୀରରେ ପିତ୍ତ ଓ କଫର ଆଧିକ୍ୟ ଜନିତ ଅସୁସ୍ଥତା ।

ପିତ୍ତଶ୍ଳେଷ୍ମଜ୍ୱର—ପୁଂ. ବି. ପିତ୍ତ ଓ କଫର ଆଧିକ୍ୟରୁ ଯେଉଁ ଜ୍ୱର ହୁଏ ।

ପିତ୍ତହା—ପୁଂ. ବିଂ.ପିତ୍ତନାଶକ(ଦ୍ରବ୍ୟ), ପିତ୍ତଘ୍ନ, (ବି) ଘରପୋଡ଼ିଆ, ପର୍ପଟକ, ପାପଡ଼ା ।

ପିତ୍ତାତିଶଯ୍ୟ—ବି. (୬ତତ୍ପୁ) ଶରୀରରେ ପିତ୍ତର ବୃଦ୍ଧି । [ ଝାଡ଼ା ।

ପିତ୍ତାତିସାର—ପୁଂ.ବି.ପିତ୍ତାଧିକ୍ୟ ଜନିତ

ପିତ୍ତାଧାର—ବି. (୬ତତ୍ପୁ) ପିତ୍ତକୋଷ ।

ପିତ୍ତାଧିକ୍ୟ—ବି. (୬ତତ୍ପୁ) ପିତ୍ତାତିଶଯ୍ୟ ଦେଖ ।

ପିତ୍ତାନୁବନ୍ଧ—ପୁଂ, ବି. ପିତ୍ତାନୁବଳ ।

ପିତ୍ତାଭିଷ୍ୟନ୍ଦ—ପୁଂ.ବି. ପିତ୍ତହେତୁ ଚକ୍ଷୁ ଧରିବା ରୋଗ, ଅକ୍ଷିଧରା ।

ପିତ୍ତାରି—ପୁଂ. ବି. ( ୬ତତ୍ପୁ ) କ୍ଷେତପାପଡ଼ା,ପର୍ପଟ, ଲାକ୍ଷା,ବର୍ବର,ଚନ୍ଦନ ।

ପିତ୍ତୋଦର—କ୍ଲୀ.ବି.ପିତ୍ତହେତୁ ଉଦରରୋଗ ବିଶେଷ ।

ପିତ୍ତୋଲ୍ୱଣ—ତ୍ରି. ବିଂ. ପିତ୍ତାଧିକ୍ୟ, ଶରୀରରେ ପିତ୍ତର ବୃଦ୍ଧି ।

ପିତ୍ତୋଲ୍ୱଣସନ୍ନିପାତ—ପୁଂ.ବି. ଏକପ୍ରକାର ସନ୍ନିପାତ ଜ୍ୱର ।

ପିତ୍ରାଳୟ—ବି. (୬ତତ୍ପୁ) ପିତୃଭବନ

ବାପଘର, ପୈତୃକ ବାସସ୍ଥାନ ।
ପିତ୍ର୍ୟ—କ୍ଳୀ.ବ. (ପିତୃ+ଯ ବଦଳେ ଇ), ଜ୍ୟେଷ୍ଠଭ୍ରାତ, ମାଷ, ଶ୍ଵଶ, ବଡ଼ଭାଇ, ପିତୃତୀର୍ଥ, ତର୍ଜନୀ ଓ ଅଙ୍ଗୁଷ୍ଠର ମୂଳମଧ୍ୟସ୍ଥ କରତଳ, ( ବି° ) ପୈତୃକ, ପିତାଙ୍କଠାରୁ ପ୍ରାପ୍ତ,ପିତୃଗଣ ନିମନ୍ତେ ଉତ୍ସୃଷ୍ଟ, ଶ୍ରାଦ୍ଧାଦିକର୍ମରେ ପ୍ରଶସ୍ତ ।
ପିତ୍ର୍ୟା—ସ୍ତ୍ରୀ. ବ. (ପିତ୍ର୍ୟ+ଆ) ମଘାନକ୍ଷତ୍ର, ପୂର୍ଣ୍ଣିମୀ, ଅମାବାସ୍ୟା ।
ପିତ୍ସତ୍—ପୁଂ. ବ. (ପି+ଅତ୍) ପକ୍ଷୀ, (ବି°) ପ୍ରତପନ୍ନ, ପତନେଚ୍ଛୁ ।
ପିତ୍ସଲ—କ୍ଳୀ. ବ. (ତ୍ସ+ଅଲ) ପନ୍ଥା, ମାର୍ଗ । [ଲିଙ୍ଗାନୁ ।
ପିଦୁଡ଼—ଗ୍ରା. ବ. ପିଳୁକ, ଗୁଣ୍ଡୁଳିଆ,
ପିଧାତବ୍ୟ—ତ୍ରି. ବି°. (ଅପି+ଧା+ତବ୍ୟ) ଆଚ୍ଛାଦନୀୟ ।
ପିଧାନ—କ୍ଳୀ. ବ. (ଅପି+ଧା+ଅନ) ଆବରଣ ବସ୍ତୁ, କୁରୁତା, ଅଙ୍ଗରଖା, ପଲମ, ଖଡ୍ଗକୋଷ, ଖାପ ।
ପିଧାନକ—ବ.(ପିଧାନ+କ)ଖଡ୍ଗକୋଷ, ଘୋଡ଼ଣୀ, ଆବରଣ ।
ପିନଦ୍ଧ—ତ୍ରି. ବି°. (ଅପି+ନହ୍+ତ) ବନ୍ଧାହୋଇଥିବା, ପିନ୍ଧାହୋଇଥିବା ।
ପିନସ—ପୁଂ.ବ. ନାସିକାରୋଗ ବିଶେଷ, ଶ୍ଳେଷ୍ମା, କଫ ।
ପିନାକ—ବ. (ପା+କ.ଆକ) ଶିବଧନୁ, ତ୍ରିଶୂଳ, ପାଂଶୁବର୍ଷଣ, ନଳାଭୁକବିଶେଷ ।
ପିନାକଧାରୀ—ପୁଂ. ବ. (ବ.ବ୍ରୀ) ଶିବ, ମହାଦେବ ।
ପିନାକଧୃକ୍—ବ. (ବ.ବ୍ରୀ) ଶିବ, ମହାଦେବ । [ଦେବ ।
ପିନାକପାଣି—ବ. (ବ.ବ୍ରୀ) ଶିବ, ମହା-
ପିନାକୀ—ବ. (ବ.ବ୍ରୀ) ଶିବ, ଧନ୍ଵାକୃତି ସପ୍ତତନ୍ତ୍ରବିଶିଷ୍ଟ ବାଦ୍ୟଯନ୍ତ୍ରବିଶେଷ ।
ପିନ୍ଧା—ଗ୍ରା. ବ. ପିନ୍ଧିବା, ପରିଧାନ କରିବା କର୍ମ, ପୋଷାକ, ପରିଧେୟ ବସ୍ତ୍ର, ଅଧୋବାସ, ଧୋତି, ( ବି° ) ପରିହିତ, ପିନ୍ଧାଯାଇଥିବା ।
ପିନ୍ଧା(ନ୍ଧେ)ଇଦେବା—ଗ୍ରା.କ୍ରି.ଅନ୍ୟଲୋକର ଦେହରେ ବସ୍ତ୍ରାଦି ଆବରଣ କରିବା ।
ପିନ୍ଧା(ନ୍ଧେ)ଇବା—ଗ୍ରା. କ୍ରି. ପିନ୍ଧିବା କ୍ରିୟାର ଣିଜନ୍ତରୂପ ।
ପନ୍ଧାପିନ୍ଧି—ଗ୍ରା. ବ. ପରସ୍ପର ପରସ୍ପରକୁ ଲୁଗା ପିନ୍ଧାଇବା,ବସ୍ତ୍ର ପରିଧାନକ୍ରିୟା ।
ପିନ୍ଧିବା—ଗ୍ରା. କ୍ରି. ପରିଧାନ କରିବା, ନାଇବା,ଅଳଙ୍କାରାଦି ଦେହରେ ଘେନିବା
ପିନ୍ଧିଲ—ଗ୍ରା. ବି°. ପରିହିତ,ପିନ୍ଧାଯାଇଥିବା । [ମାଉସୀ ।
ପିନ୍ନିଆମ୍ମା—ଗ୍ରା. (ଚିନ୍ନାମ୍ମା) ବ. ଖୁଡ଼ି ବା
ପିନ୍ୟାସ—କ୍ଳୀ. ବ. ହିଙ୍ଗୁ ।
ପିପତିଷତ୍—ତ୍ରି. ବି°. (ପତ୍+ସନ୍+ଅତ୍) ପତନେଚ୍ଛୁ, (ବ) ବିହଙ୍ଗମ ।
ପିପତିଷା—ବ. (ପତ୍+ସନ୍+ଭା.ଅ+ଆ) ପତନେଚ୍ଛା, ପଡ଼ିବାକୁ ଇଚ୍ଛା ।
ପିପତିଷୁ—ପୁଂ. ବ. (ପତ୍+ସନ୍+ଉ) ପକ୍ଷୀ, (ବି°) ପତନେଚ୍ଛୁ ।
ପିପବିଷା—ବ. (ପୂ+ସନ୍+ଆ)ପବିତ୍ର ହେବାର ଇଚ୍ଛା ।
ପିପବିଷୁ—ବି°. (ପୂ+ସନ୍+ଉ) ପବିତ୍ର ହେବାକୁ ଅଭିଳାଷୀ ।
ପିପା—ଗ୍ରା.ବ. ତୈଳାଦି ରଖିବାର ବଡ଼ କୋଠ, ଟିଣଆଦିର ଡ଼ବା, ଢ଼ିବରି ।
ପିପାଇ—ଗ୍ରା. ବ. ପିପେଇ ଦେଖ ।
ପିପାସତ୍—ତ୍ରି.ବି°. (ପା+ସନ୍+ଅତ୍) ପିପାସ ଯୁକ୍ତ, ପାନେଚ୍ଛୁ ।
ପିପାସା—ସ୍ତ୍ରୀ. ବ. (ପା+ସନ୍+ଭା.ଅ+ଆ) ତୃଷା, ତୃଷ୍ଣା, ଲାଳସା, ପିଇବାର ଇଚ୍ଛା, ରୋଗବିଶେଷ ।
ପିପାସାନ୍ଵିତ—ବି°. (୩ତତ୍) ଶୋଷୀ, ତୃଷାର୍ତ୍ତ, ତୃଷିତ, (ଲ.ଅର୍ଥ) କୌଣସି ବିଷୟ ପ୍ରତି ଲୋଭାସକ୍ତ ।
ପିପାସିତ—ପୁଂ. ବି°. (ପିପାସା+ଇତ) ପିପାସାଯୁକ୍ତ, ତୃଷିତ ।
ପିପାସୁ—ତ୍ରି. ବି°. (ପା+ସନ୍+କ.ଉ) ପିପାସାନ୍ଵିତ ଦେଖ ।
ପିପିଲି—ଗ୍ରା. ବ. ବାଲେଶ୍ଵର ନିକଟସ୍ଥ ପ୍ରାଚୀନ ବନ୍ଦର ।
ପିପିଲୀ—ସ୍ତ୍ରୀ. ବ. ପିପୀଲିକା ।
ପିପୀତକ—ପୁଂ. ବ. ଭବିଷ୍ୟପୁରାଣୋକ୍ତ ଜଣେ ବ୍ରାହ୍ମଣର ନାମ ।
ପିପୀତକୀ—ସ୍ତ୍ରୀ. ବ. (ପିପୀତକ+ଈ) ବୈଶାଖ ମାସର ଶୁକ୍ଳଦ୍ଵାଦଶୀ, ପିପୀତକ,ବ୍ରାହ୍ମଣର ପାଳନୀୟ ବ୍ରତବିଶେଷ ।
ପିପୀଲ(ଲ)—ବ. ପିମ୍ପୁଡ଼ି ।
ପିପୀଲକ—ପୁଂ. ବ. ପୀଲକ, ପିମ୍ପୁଡ଼ିବିଶେଷ ।
ପିପୀଲିକା—ସ୍ତ୍ରୀ. ବ. (ପୀଲ+ଅଚ୍+ଅକ+ଆ) ସ୍ଵନାଙ୍ଗୀ, ପିମ୍ପୁଡ଼ି ।
ପିପୃଚ୍ଛିଷା—ବ. (ପ୍ରଚ୍ଛ+ସନ୍+ଭା.ଅ+ଆ) ପଚାରିବାର ଇଚ୍ଛା ।
ପିପୃଚ୍ଛିଷୁ—ତ୍ରି. ବି°. (ପ୍ରଚ୍ଛ+ସନ୍+କ.ଉ) ପଚାରିବାକୁ ଇଚ୍ଛୁକ ।
ପିପେଇଅମାବାସ୍ୟା—ଗ୍ରା. ବ. ପଯ୍ଯୁ ଅମାବାସ୍ୟା, କାର୍ତ୍ତିକ ଅମାବାସ୍ୟା ।
ପିପ୍ପକା—ସ୍ତ୍ରୀ. ବ. ପକ୍ଷିଣୀ ।
ପିପ୍ପଟା—ସ୍ତ୍ରୀ. ବ. ଖାଦ୍ୟଦ୍ରବ୍ୟବିଶେଷ, ଗୁଡ଼, ଶର୍କରା ।
ପିପ୍ପଳ—କ୍ଳୀ. ବ. (ପା+ଅଳ) ଜଳ, ବସ୍ତ୍ରବିଶେଷ, ଅଶ୍ଵତ୍ଥ ବୃକ୍ଷ, ନଗ୍ନବ୍ୟକ୍ତି, ବସ୍ତ୍ରଖଣ୍ଡ, ପକ୍ଷିବିଶେଷ, ରେବତୀ ଗର୍ଭଜାତ ମିତ୍ରଙ୍କର ପୁତ୍ରବିଶେଷ ।
ପିପ୍ପଳକ—କ୍ଳୀ. ବ. (ପା+ଅଳ+କ) ସ୍ତନାଗ୍ରଭାଗ, ଚୁଚୁକ, ସୀବନସୂତ୍ର, ସେଇବା ସୂତା ।
ପିପ୍ପଳାଦ—ବ. ଜଣେ ଅଥର୍ବ ବେଦଶାଖା ପ୍ରବର୍ତ୍ତକ ଋଷି ।
ପିପ୍ପଳି(ଳୀ)—ବ.(ପା+ଅଳ+ଇ.ଈ) ତାମ୍ବୁଳାଦି ବର୍ଗର ଦୀର୍ଘାୟୁ ଲତାବିଶେଷ ।
ପିପ୍ପଳୀକା—ସ୍ତ୍ରୀ. ବ. ଅଶ୍ଵତ୍ଥୀ ବୃକ୍ଷ ।
ପିପ୍ପଳୀଦ୍ଵୟ—କ୍ଳୀ. ବ. ପିପ୍ପଳ ଓ ଗଜପିପ୍ପଳ ଏହି ଦ୍ଵିବିଧ ଦ୍ରବ୍ୟ ।
ପିପ୍ପଳୀମୂଳ—କ୍ଳୀ. ବ. ସ୍ଵନାମଖ୍ୟାତ ମୂଳବିଶେଷ, ବଣ ପିପଳି ମୂଳ ।
ପିପ୍ପଳ୍ୟାଦିଗଣ—ପୁଂ. ବ. ସୁଶ୍ରୁତୋକ୍ତ ଗଣବିଶେଷ, ପିପଳି, ପିପଳି ମୂଳ, ଚଇ, ଚିତା, ଅଦା, ମରିଚ, ଗଜ-

ପିପ୍ପଳ, ହରେଣୁ, ଅଳାଇଚ, ବନ
ଯମାନୀ, ଇନ୍ଦ୍ରଯବ, ଆକାନବନ୍ଦୀ, ଜୀରା,
ସର୍ଷପ, ମହାନିମ୍ବ, ହେଙ୍ଗୁ, ଭାର୍ଗୀ, ମଧୁର,
ଅତିବିଷା, ବଚ, ବଡ଼ଙ୍ଗ ଓ କଟୁକୀ
ଏହି ସମସ୍ତ ଦ୍ରବ୍ୟ ।
ପିପ୍ପିକା—ସ୍ତ୍ରୀ.ବି. (ପ୍ୟାସ୍+ଇକ+ଆ)
ଦାନ୍ତର ମଇଳା ।
ପିପ୍ପୀକ—ପୁଂ. ବି. ପକ୍ଷୀବିଶେଷ ।
ପିପ୍ରୀଷା—ସ୍ତ୍ରୀ.ବି.ପ୍ରୀତିକାମନା,ପ୍ରୀତିଇଚ୍ଛା ।
ପିପ୍ରୀଷୁ—ବି. ବିଂ. ପ୍ରୀତିକାମନା କର-
ବାକୁ ଇଚ୍ଛୁକ, ପ୍ରୀତ୍ୟାଭିଳାଷୀ ।
ପିପ୍ରୁ—ପୁଂ ବି ଅସୁରବିଶେଷ ।
ପିପ୍ଲୁ—ପୁଂ. ବି. ... ନୀ, ଜଡ଼ୁ ।
ପିମ୍ପା—ଗ୍ରା. ବି. ତେଲାଦି ରଖିବାର
ମୃଦଙ୍ଗାକୃତ ବଡ଼ ମାଟିପାତ୍ର,ଲୁହା ବା
ଟିଣଆଦି ପାତ୍ର ।
ପିମ୍ପୁଡ଼ି—ଗ୍ରା.ବି. ( ସଂ-ପିପିଲୀ ) ପ୍ରସିଦ୍ଧ
ଷଟ୍‌ପଦ କୀଟବିଶେଷ,ବଡ଼,ସାନ କଳା-
ନାଲି ଭେଦରେ ଏମାନେ ନାନାପ୍ରକାର
ଜନ୍ଦା, କାଇ, ଉଇ ଓ କଳାପିମ୍ପୁଡ଼ି
ପ୍ରଭୃତି ଏହି ଶ୍ରେଣୀର ଅନ୍ତର୍ଗତ ।
ପିମ୍ପୁଡ଼ିଆ—ଗ୍ରା. ବିଂ.ପିମ୍ପୁଡ଼ି ସମ୍ବନ୍ଧୀୟ,
ପିମ୍ପୁଡ଼ିପରି, (ବି) ଗୋରୁମାନଙ୍କର
ରୋଗବିଶେଷ ।
ପିୟାଲ—ବି. (ପିପ+କ.ଆଲ )ଗୁର-
କୋଳି ଗଛ, ରାଜାଦନବୃକ୍ଷ, ଅମ୍ରାଦି
ବର୍ଗର ଅରଣ୍ୟ ତରୁବିଶେଷ ।
ପିୟାଲି—ଯା. ବି. ପାନପାତ୍ର, ଡାଟିଆ,
ବାଟି, ଗିନା । [ ଗଛ ।
ପିୟାଶାଳ—ଗ୍ରା.ବି. ବୃକ୍ଷବିଶେଷ, ବିଜା
ପିୟାସ—ଗ୍ରା.ବି. ପିପାସା,ଶୋଷ,ତୃଷା ।
ପିର(ପୀର)—ଯା.ବି.ମୁସଲମାନ ପୁଣ୍ୟାତ୍ମା
ଧାର୍ମିକ ବ୍ୟକ୍ତି, ମହାତ୍ମା, ହିନ୍ଦୁମାନଙ୍କର
ପୂଜିତ ସତ୍ୟପୀର, ଧର୍ମଗୁରୁ ।
ପିରଡ଼ା—ପ୍ରା.(ସମ୍ବ)ବି. (ସଂ-ପୀଠ)ପିଢ଼ା,
ଛପରଘରର ଗୃହର ଉପରିଭାଗ,ଗୃହ ।
ପିରତି—ଗ୍ରା.ବି. (ସଂ-ପ୍ରୀତି)ପ୍ରଣୟ ।
ପିରାଲି—ଯା.ବି. ମୁସଲମାନଙ୍କ ଅନ୍ନଜଳ
ବା ଘ୍ରାଣ କରିଥିବା ଯୋଗୁଁ ପତିତ
ବଂଶୀୟ ବ୍ରାହ୍ମଣବିଶେଷ ।
ପିରିଜ—ଗ୍ରା.ବି. ରେକାବି,ପାତ୍ରବିଶେଷ,
ଶ୍ରେଷ୍ଠ ଆଳିଆ ।
ପିରୋଜା—ଯା.ବି. ଭୁରସ୍ୱମଣି ।
ପିଲଖାନା—ଯା.ବି. ହାତୀଶାଳ ।
ପିଲ—ଗ୍ରା. ବି. କଦଳୀଗଛ ପିଣ୍ଡରୁ
ବାହାରିବା ଶ୍ରେଷ୍ଠ ପୁଆ, (ପ୍ରା. ବାଲେ.
ବି.) ଇଲିଶି ମାଛର ଛୁଆ ।
ପିଲପାଇଆ—ଯା. ବି. ମୋଟ ଓ ଶ୍ରେଷ୍ଠ
ଖୁଣ୍ଟି, ସୀମାଖୁଣ୍ଟି, ଖୁଣ୍ଟ ।
ପିଲ୍(ଲ)ସଜ—ଗ୍ରା. ବି. (ସଂ-ଦୀପଶଯ୍ୟା)
ପିତ୍ତଳର ଦୀପବୃକ୍ଷ, ପିତ୍ତଳର ଦୀପା-
ଧାର, ଗଛଦୀପ, ଯେଉଁ ବୃକ୍ଷାକାର
ଦଣ୍ଡରେ ସ୍ତର ସ୍ତର ହୋଇ ଉପର୍ଯ୍ୟୁ-
ପରି ଦୀପମାଳ ଖଞ୍ଜା ହୋଇଥାଏ ।
ପିଲା—ଗ୍ରା.ବି. ଶିଶୁ, ସନ୍ତାନ, ବାଳକ,
ଅପ୍ରାପ୍ତବୟସ୍କା ବାଳିକା,ପରିବାର ବର୍ଗ,
(ବିଂ) ଅଳ୍ପବୟସ୍କ, କ୍ଷୁଦ୍ର, (ସଂ-ପୀତ)
ହଳଦିଆ ।
ପିଲାଏ—ଗ୍ରା.ବି. ପିଲାମାନେ,ଶିଶୁମାନେ,
ପରିବାରସ୍ଥ ସ୍ତ୍ରୀ ପୁତ୍ରାଦି ।
ପିଲାକନ୍ୟା—ସ୍ତ୍ରୀ.ବି. ଅରଜସ୍କା କନ୍ୟା ।
ପିଲାକବିଲା—ଗ୍ରା.ବି. ପିଲାଟିଲା ଦେଖ ।
ପିଲାକାଳ—ଗ୍ରା. ବି. ଶିଶୁକାଳ, ଶିଶୁ-
ଅବସ୍ଥା, ଅଳ୍ପ ବୟସ ।
ପିଲାକୁହା—ଗ୍ରା.ବି. ଶିଶୁର କଥା,ଶିଶୁପରି
ନଗଣ୍ୟ ବ୍ୟକ୍ତିର ଉପଦେଶ ।
ପିଲାଖେଳ—ଗ୍ରା.ବି. ଶିଶୁକ୍ରୀଡ଼ା, ପିଲା-
ଖେଳପରି ଅସ୍ଥାୟୀ ବିଷୟ ।
ପିଲାଖୋଇ—ଗ୍ରା.ବି. ବାଳସ୍ୱଭାବ,ବାଳ-
ଚାପଲ୍ୟ ।
ପିଲାଟିଲା—ଗ୍ରା.ବି. ବାଳବଚ୍ଚା, ସନ୍ତାନ-
ସନ୍ତତି, ପୁତ୍ର ବା କନ୍ୟା ।
ପିଲାଟୁକେଲ—ପ୍ରା. (ସମ୍ବ)ବି. ପୁଅଝିଅ,
ପିଲାପିଲି ।
ପିଲାପାଇବା—ପ୍ରା.(ଗଞ୍ଜାମ)କ୍ରି.(ସ୍ତ୍ରୀଲୋକ)
ସନ୍ତାନ ପ୍ରସବ କରିବା ।
ପିଲାପିଚିକା—ଗ୍ରା.ବି. ଶିଶୁଆଦିଙ୍କ ସହିତ
ପରିବାରସ୍ଥ ବ୍ୟକ୍ତିଗଣ ।
ପିଲାପିଲି—ଗ୍ରା. ବି. ଶିଶୁଆଦିଙ୍କ ସହିତ
ପରିବାରସ୍ଥ ବ୍ୟକ୍ତିଗଣ, ସନ୍ତାନସନ୍ତତି,
ଗ୍ରେଟପିଲା ।
ପିଲାବସାଣି—ପ୍ରା.(ଗଞ୍ଜାମ)ବି. ପ୍ରଥମ ରଜ-
ସ୍ୱଳା ବାଳିକାର ସାତଦିନ ପର୍ଯ୍ୟନ୍ତ
ଅସ୍ପୃଶ୍ୟାବସ୍ଥାରେ ପୃଥକ୍ ରହିବାବିଧାନ
ପିଲାଳିଆ—ଗ୍ରା.ବିଂ. ବାଳୋଚିତ, ବାଳ-
ସୁଲଭ, (ଗ୍ରା.ବି) ବାଳସ୍ୱଭାବ ।
ପିଲାହ—ଗ୍ରା. ବି. ଏକପ୍ରକାର ଲୁହାର
ଚମୁଟା ବା ସଣ୍ଢୁଆସି ।
ପିଳପିଳା—ଗ୍ରା.ବି. ମନୁଷ୍ୟର ଅଚର୍ଚ୍ଚ ବା
ଭୟଚିତ୍ତ ହେବା ଅବସ୍ଥା ।
ପିଲୁ—ବି. ରାଗିଣୀବିଶେଷ, ସୀତାରର
ଘତବିଶେଷ ।
ପିଲୁକ—ବି. ପିଲୁବୃକ୍ଷ ଦେଖ ।
ପିଲୁନୀ—ସ୍ତ୍ରୀ.ବି. ମୂର୍ବା ।
ପିଲୁପର୍ଣ୍ଣୀ—ବି. ମୋରଟା, ମୂର୍ବା ।
ପିଲେ—ଗ୍ରା.ବି. ପିଲାଏ ଦେଖ ।
ପିଲେହୁ—ଗ୍ରା.ବି. ( ସଂ-ପ୍ଲୀହା ) ପ୍ଲୀହା,
ପ୍ଲୀହାବୃଦ୍ଧି ରୋଗ ।
ପିଲେହୁପାଣିହେବା—ଗ୍ରା. ବି. ଭୟରେ
ଅସ୍ଥିର ହେବା, ଅଚର୍ଚ୍ଚ ହେବା ।
ପିଲ୍ଲ—ବି. କ୍ଲେଦଯୁକ୍ତ ଚକ୍ଷୁ,ନେତ୍ରରୋଗ-
ବିଶେଷ, (ବିଂ) ଯାହାର ଚକ୍ଷୁ ସର୍ବଦା
କ୍ଲେଦରୋଗଯୁକ୍ତ ।
ପିଲ୍ଲକା—ସ୍ତ୍ରୀ.ବି. ହସ୍ତିନୀ, ହାତୁଣୀ ।
ପିଶଙ୍ଗ—ପୁଂ. ବି. ( ପିଶ୍+କ.ଅଙ୍ଗ )
ପିଙ୍ଗଳବର୍ଣ୍ଣ, ପଦ୍ମଧୂଳି ତୁଲ୍ୟ ବର୍ଣ୍ଣ,
(ବିଂ) ପିଙ୍ଗଳ, ପିଙ୍ଗଳବର୍ଣ୍ଣଯୁକ୍ତ ।
ପିଶଙ୍ଗକ—ବି. (ପିଶଙ୍ଗ+କ) ପିଙ୍ଗଳ
ବର୍ଣ୍ଣ (ପିଶଙ୍ଗ+କୈ+ଅ ବିଷ୍ଣୁ ।
ପିଶଙ୍ଗିତ—ବିଂ. ( ପିଶଙ୍ଗ+ଇତ )
ପିଙ୍ଗଳବର୍ଣ୍ଣବିଶିଷ୍ଟ ।
ପିଶାଚ—ବି. (ପିଶିତ+ଅଶ୍+କ.ଅ)
ମାଂସାଶୀରାକ୍ଷସ, ଦୈତ୍ୟ, ଦେବଯୋନି-
ବିଶେଷ ଏକପ୍ରକାର ଭୂତ, ପ୍ରେତ-
ଯୋନିବିଶେଷ, ( ଲ.ଅଥ ) ନରାଧମ,
(ଗ୍ରା.ବିଂ) ଦୁଷ୍ଟ, ନଷ୍ଟଚ, ନିର୍ଲ୍ଲଜ,କୃପଣ,
ଲୋଭୀ ।

ପିଶାଚକ—ବି. ପିଶାଚ ଦେଖ,ପର୍ବତ-ବିଶେଷ,କୁବେରଙ୍କ ବାସସ୍ଥାନ,ପିଶାଚ-ରୂପୀ ଯକ୍ଷ ଗୁହ୍ୟକାଦି । [ କୁବେର ।
ପିଶାଚକୀ—ପୁଂ.ବି. (ପିଶାଚକ+ଇନ୍)
ପିଶାଚଗ୍ରହ—ପୁଂ.ବି. ଭୂତ ଗ୍ରହବିଶେଷ
ପିଶାଚଘ୍ନ—ବି. ଶ୍ୱେତସର୍ଷପ, ସରିଷୋ ବିଶେଷ । [ ଗଛ ।
ପିଶାଚଦ୍ରୁ—ବି. ଶାଖୋଟବୃକ୍ଷ, ଶାହାଡ଼ା
ପିଶାଚପ୍ରକୃତି—ବି. (ତଦ୍ଭବ) ଦୁଷ୍ଟବୁଦ୍ଧି, (ବିଂ--ବହୁ) ପିଶାଚ ପ୍ରକୃତିବିଶିଷ୍ଟ ।
ପିଶାଚପ୍ରକୃତିକ—ପୁଂ.ବିଂ.ପୈଶାଚିକ ।
ପିଶାଚମୋଚନତୀର୍ଥ—କ୍ଲୀ.ବି. କାଶ୍ମୀରର ପ୍ରାଚୀନ ତୀର୍ଥବିଶେଷ । [ ଗଛ ।
ପିଶାଚବୃକ୍ଷ—ବି.ଶାଖୋଟବୃକ୍ଷ,ଶାହାଡ଼ା-
ପିଶାଚାଳୟ—ବି.ପିଶାଚମାନଙ୍କର ଗୃହ
ପିଶାଚିକା—ସ୍ତ୍ରୀ.ବି. ସୂକ୍ଷ୍ମ ଜଟାମାଂସୀ ।
ପିଶାଚୀ--ସ୍ତ୍ରୀ.ବି. ପିଶାଚ ସ୍ତ୍ରୀ,ଜଟାମାଂସୀ ପୈଶାଚୀ ଭାଷା ।
ପିଶାଚୁଣୀ—ଗ୍ରା.ସ୍ତ୍ରୀ.ବି.ପିଶାଚୀ,ପିଶାଚ-ପ୍ରକୃତିକା ସ୍ତ୍ରୀ ।
ପିଶିତ—ବି. (ପିଶ୍+ମଁ.ତ)ମାଂସ ।
ପିଶିତଭୁକ୍—ବିଂ. (ପିଶିତ+ଭୁଜ୍+କ୍ୱିପ୍) ମାଂସାଶୀ, ଯେଉଁମାନେ ମାଂସ ଭକ୍ଷଣ କରନ୍ତି, ପିଶିତାଶୀ ରାକ୍ଷସାଦି ।
ପିଶିତା—ସ୍ତ୍ରୀ.ବି. ଜଟାମାଂସୀ ।
ପିଶିତାଶନ—ବିଂ. (ପିଶିତ+ଅଶ୍+କ.ଅନ) ମାଂସଭୋଜୀ ରାକ୍ଷସାଦି, (ବି) ପିଶାଚ ।
ପିଶିତାଶୀ—ପୁଂ.ବିଂ.(ପିଶିତ+ଅଶ୍+କ.ଇନ୍) ମାଂସଭକ୍ଷକ, (ବି) ରାକ୍ଷସ, ପିଶାଚ ।
ପିଶୀ—ସ୍ତ୍ରୀ. ବି. (ପିଶ୍+ଅ+ଈ) ଜଟାମାଂସୀ, ବୃକ୍ଷବିଶେଷ ।
ପିଶୀଲ—କ୍ଲୀ.ବି. (ପିଶ୍+ଈଲ) ଶରାବ, ଶରା, ମୃଣ୍ମୟପାତ୍ର ।
ପିଶୁନ—ବିଂ. (ପିଶ୍+କ.ଉନ) ହିଂସ୍ର, ନିଷ୍ଠୁର, କଠୋର, କ୍ରୂର, ଦୁଷ୍ଟ,ଖଳ, ନୀଚ, ବିଶ୍ୱାସଘାତକ, ଘୃଣ୍ୟ,ନିର୍ବୋଧ, ଅପବାଦସୂଚକ, ଯେ ପରସ୍ପର ମଧ୍ୟରେ ଭେଦ ଜନ୍ମାଏ, ଚୁଗୁଲିଆ, ଶଠ, (ବି) ବାୟସ, ଗୁପ୍ତଚର, ତୁଳା, କୁଙ୍କୁମ, ହିଙ୍ଗୁଳ, ନାରଦମୁନି, ଠଗର ।
ପିଶୁନତା—ସ୍ତ୍ରୀ.ବି. ଖଳତା,କ୍ରୂରତା ।
ପିଶୁନବଚନ—ବି. କୁକଥା, ଗାଳି, ନିଷ୍ଠୁର କଥା ।
ପିଶୁନା—ସ୍ତ୍ରୀ.ବି. (ପିଶୁନ+ଆ) ଚୁଗୁଲି, ପୃକ୍କା, ଚୁଗୁଲିଆ ଘର, ପାଲଙ୍ଗଶାଗ ।
ପିଷ୍ଟ—ବିଂ. (ପିଷ୍+ମଁ.ତ) ଘୃଷ୍ଟ, ବଟା-ହୋଇଥିବା, ମର୍ଦ୍ଦିତ, ଦଳିତ, ପେଷି-ହେବା, ଚକଟା ହୋଇଥିବା, ଚୂର୍ଣ୍ଣିତ, (ବି) ପିଷ୍ଟକ, ଶସ୍ୟ ଚୂନାପିଠା,ସୀସକ ।
ପିଷ୍ଟକ—ବି. ( ପିଷ୍ଟ + କ ) ପୂପ, ପିଠା, ପିଢ଼ିଆ, ତିଳଚୂର୍ଣ୍ଣ, ନେତ୍ରରୋଗବିଶେଷ, ଆଖି ଜଳକାହେବା ରୋଗ, ଆଖିରେ ଫୁଲପଡ଼ିବା ରୋଗ ।
ପିଷ୍ଟପ—ବି. (ପିଶ୍+ଅଧି.ଅପ) ଭୁବନ, ଜଗତ୍ ।
ପିଷ୍ଟପଚନ—କ୍ଲୀ. ବି. (ବ.ବ୍ରୀ) ପିଷ୍ଟକ ପାକ ପାତ୍ର, ପିଠା କରିବାର ପାତ୍ର, ପଲମ, ତାଉଆ, ଚଟୁ ।
ପିଷ୍ଟପର୍ଣ୍ଣୀ—ବି. ପୃଶ୍ନିପର୍ଣ୍ଣୀ ।
ପିଷ୍ଟପାକଭୃତ୍—ବି. (ପିଷ୍ଟପାକ+ଭୃ+କ୍ୱିପ୍) ପିଷ୍ଟପାକ ପାତ୍ର ।
ପିଷ୍ଟପିଣ୍ଡ—ବି. ପିଷ୍ଟକ, ପୁରୋଡ଼ାଶ ।
ପିଷ୍ଟପୂର—ବି. ( ପିଷ୍ଟ + ପୂର + ମଁ.ଅ ) ବଟକ, ବରା, ପିଷ୍ଟକବିଶେଷ ।
ପିଷ୍ଟପେଷଣ—ବି. (ତତ୍ପୁ) ଘୃଷ୍ଟଘର୍ଷଣ, ଥରେ ବଟାହୋଇଥିବା ବସ୍ତୁକୁ ଆଉ ଥରେ ବାଟିବା, ( ଲ.ଅର୍ଥ ) ଥରେ ଆଲୋଚିତ ବିଷୟକୁ ଆଉଥରେ ବୃଥା ଆଲୋଚନା କରିବା ।
ପିଷ୍ଟବର୍ତ୍ତି—ବି. ( ପିଷ୍ଟ+ବୃତ+ଇ ) ମୁଦ୍ଗ ଓ ମସୁରାଦିର ପିଠା ।
ପିଷ୍ଟସୌରଭ—ବି. ( ବ.ବ୍ରୀ ) ଚନ୍ଦନ, ଏହା ପେଷଣ କଲେ ସୁଗନ୍ଧ ବାହାରେ ।
ପିଷ୍ଟାତ—ବି. ପଟବାସଚୂର୍ଣ୍ଣ, ଗନ୍ଧଚୂର୍ଣ୍ଣ, ଅବୀର, ପିଠଉ ।
ପିଷ୍ଟାତକ—ବି. ପିଷ୍ଟାତ ଦେଖ ।
ପିଷ୍ଟିକ—ବି. (ପିଷ୍ଟ+କ) ପିଠଉ, ଖଳି ।
ପିଷ୍ଟିକା—ବି. ପିଷ୍ଟକବିଶେଷ,ପିଠା ।
ପିଷ୍ଟୋଦକ—ବି. ତଣ୍ଡୁଳଚୂର୍ଣ୍ଣମିଶ୍ରିତ ଜଳ, ପିଠଉପାଣି । [ ଧାର ତୃଷ୍ଟ ।
ପିହ୍ଲାନ୍—ଟ୍ରା.(ବସ୍ତ୍ର)ବି. ଚୂନା, ଶସ୍ୟା-
ପିସ୍ତଲ—ଯା.ବି. ଛୋଟ ବନ୍ଧୁକ ।
ପିସ୍ତ ବ—ପ୍ରା.(ମେଦିନୀପୁର)ବି.ମରସ୍ତା ।
ପିହଲ—ପ୍ରା.(ପୁରୀ)ବି. ସୁଯୋଗ ।
ପିହାଣ—ଗ୍ରା. ବି. ( ସଂ-ପିଧାନ ) ହାଣ୍ଡି ଉପରେ ଘୋଡ଼ାଯିବା ପଲମ, ସରା, ଡେଲୁଣି ।
ପିହାଣିଆ—ଗ୍ରା. ବି. ପିହାଣର ଆକୃତି-ବିଶିଷ୍ଟ ମଝିରେ ରନ୍ଧ୍ରଥିବା ଓ ପାଟ-ଫୁଲ ଆଦିରେ ପିନ୍ଧିବା ସ୍ତ୍ରୀଲୋକମାନ-ଙ୍କର ହାତର ଅଳଙ୍କାରବିଶେଷ ।
ପିହିତ—ବିଂ. ( ପି+ଧା+ମଁ.ତ ) ଆଚ୍ଛାଦିତ, ଆବୃତ, ଅବରୁଦ୍ଧ, ତିରୋହିତ ।
ପିହୁଡ଼ା—ଗ୍ରା.ବି. ପିହୁଲା ଦେଖ ।
ପିହୁଲା—ଗ୍ରା.ବି.(ସଂ-ପୂତନା)ଶିଶୁରୋଗ-ବିଶେଷ, ପୂତନାରୋଗ ।
ପୀଠ—ବି. ( ପୀଠ+ଅଧି.ଅ ) ପିଢ଼ା, ଚୌକିଇତ୍ୟାଦି, ବ୍ରତୀମାନଙ୍କର କୁଶା-ସନ ପ୍ରଭୃତି,ମନ୍ତ୍ରସିଦ୍ଧି ନିମନ୍ତେ ଜପସ୍ଥାନ-ବିଶେଷ, କ ସର ମନ୍ତ୍ରୀ,ଅସୁରବିଶେଷ, ଦେବତା ମୂର୍ତ୍ତିସ୍ଥାପନ ଆଧାର, ଦେବତା ପୂଜନାଙ୍କ ହୃଦୟରୂପ ଆଧାର, ଧର୍ମକ୍ଷେତ୍ର, ଧର୍ମକେନ୍ଦ୍ର, ତୀର୍ଥ, ଦେବତାଙ୍କ ଅଧିଷ୍ଠିତ ସ୍ଥାନ,ଦେଉଳର ମୂଳଅଂଶ, ଦେବତାଆଦିଙ୍କ ମୂର୍ତ୍ତିର ଗୋଡ଼ତଳର ବଇଠି, ପିଣ୍ଡି, ବେଦୀ, (ଜ୍ୟାମିତି)ବୃତ୍ତଖଣ୍ଡର ପୂରକ,(ପୁରାଣ-ମତେ) ଦକ୍ଷଯଜ୍ଞ ଶେଷରେ ବିଷ୍ଣୁଚକ୍ର ବିଭକ୍ତ ମହାଦେବଙ୍କ ପତ୍ନୀ ସତୀ ଦେବୀ-ଙ୍କର ମୃତ ଶରୀରର ଭିନ୍ନ ଭିନ୍ନ ଅବୟବ ଖଣ୍ଡମାନ ପଡ଼ିଥିବା ଭିନ୍ନ ଭିନ୍ନ ସ୍ଥାନ, ଯାହାକି ହିନ୍ଦୁମାନଙ୍କର ତୀର୍ଥରୂପ ପରିଗଣିତ ହୋଇଅଛି, ଦେବୀପୀଠ, ସିଦ୍ଧକ୍ଷେତ୍ର ।

ପୀଠକ—ବି. ( ପୀଠ+କ ) ଆସନ, ପୃଷ୍ଠସ୍ଥ ଆସନ,ଚୌକି,ପୀଢ଼ାଇତ୍ୟାଦି ।
ପୀଠକେଳି—ବି. ପୀଠମର୍ଦ୍ଦନାୟକ, ନାୟକର ସହାୟକ ବିଶ୍ୱାସୀ ବ୍ୟକ୍ତି ।
ପୀଠଗ—ବିଂ. ( ପୀଠ+ଗମ୍+କ ଅ ) ଚଗ୍ଣ୍ଟା ଖଞ୍ଜ ।
ପୀଠଗର୍ଭ—ବି. ( ୬ତତ୍ପୁ ) ଦେବମୂର୍ତ୍ତି ଆଦିର ବଇଠିର ନିମ୍ନଦେଶରେ ଥିବା ଗର୍ଭ,ପୀଠବିବର ।
ପୀଠଚକ୍ର—ବି. ରଥବିଶେଷ,ଗୋରୁଗାଡ଼ି ଚକ୍ରଯୁକ୍ତ ଯାନ,ପ୍ରଣବ ମନ୍ତ୍ରଦ୍ୱାରା ନ୍ୟାସ-ବିଶେଷ ।
ପୀଠଦେବତା—ବି. ପୀଠସ୍ଥାନର ଅଧି-ଷ୍ଠାତ୍ରୀ ଦେବତା, ଆଧାରଶକ୍ତିପ୍ରଭୃତି ଦେବଗଣ ।
ପୀଠନାୟିକା—ସ୍ତ୍ରୀ.ବି.ଅଧିଷ୍ଠାତ୍ରୀ ଦେବୀ, ଭଗବତୀ, ଦୁର୍ଗା ।
ପୀଠନ୍ୟାସ—ବି. (କ.ଧା) ତନ୍ତ୍ରସାରୋକ୍ତ ନ୍ୟାସବିଶେଷ ।
ପୀଠଭୂ—ବି. ପ୍ରାକାର ସମୀପସ୍ଥ ଭୂଭାଗ, ପାଚେରି ବା କାନ୍ଥଆଦିର ମୂଳଦେଶର ଜମି ।
ପୀଠମର୍ଦ୍ଦ—ବି.ପିଠକେଳି ଦେଖ ।
ପୀଠମର୍ଦ୍ଦିକା—ସ୍ତ୍ରୀ. ବି. ନାଗର ସଙ୍ଗେ ଭେଟ କରାଇବା ବିଷୟରେ ନାୟିକାକୁ ଯେଉଁ ସଖୀ ସାହାଯ୍ୟ କରେ,ବେଶ୍ୟା-ମାନଙ୍କୁ ନାଚ ଶିଖାଇବା ଗୁରୁ ।
ପୀଠସର୍ପ—ବିଂ. ଗ୍ଣେଣ୍ଟା, ଖଞ୍ଜ, ପଙ୍ଗୁ ।
ପୀଠସର୍ପୀ—ବିଂ. (ପୀଠ+ସୃପ୍+କ. ଇନ୍) ଖଞ୍ଜ, ପଙ୍ଗୁ, (ସ୍ତ୍ରୀ) ପୀଠସର୍ପିଣୀ ।
ପୀଠସ୍ଥାନ—କ୍ଲୀ. ବି. ଦେବତାଧିଷ୍ଠିତ ଦେଶ, ପୁରାଣପ୍ରସିଦ୍ଧ ତୀର୍ଥସ୍ଥାନ, ଦକ୍ଷ ଯଜ୍ଞରେ ସତୀ ଦେହତ୍ୟାଗ କଲାପରେ ଯେଉଁ ସ୍ଥାନରେ ତାଙ୍କର ଅବୟବ ପଡ଼ିଥିଲା,ପ୍ରାଚୀନ ତୀର୍ଥ ଓ ଦେବାଳୟ ।
ପୀଠିକା—ବି. ( ପୀଠକ+ଆ ) ପିଢ଼ା, ଆସନ, ଚୌକି, ପୁସ୍ତକର ଅଂଶ, ମୂର୍ତ୍ତି ବା ସ୍ତମ୍ଭାଦିର ମୂଳଭାଗ, ଅଂଶ ।
ପୀଠୀ—ବି. (ପୀଠ+ଈ) ଆସନ,ପୀଢ଼ା, ଚୌକି ପ୍ରଭୃତି ।
ପୀଡ଼କ—ପୁଂ. ବିଂ. ( ପୀଡ଼+କ.ଅକ ) ଯନ୍ତ୍ରଣାଦାତା, ବିରକ୍ତିଜନକ,ଉତ୍ପୀଡ଼କ, କଷ୍ଟଦାୟକ, (ବି) ଉତ୍ପୀଡ଼କ ବ୍ୟକ୍ତି, ବ୍ରଣ ଚକ୍ର ପ୍ରଭୃତି ଚର୍ମରୋଗ ବିଶେଷ ।
ପୀଡ଼ନ—କ୍ଲୀ. ବି. ( ପୀଡ଼+ଭା.ଅନ ) ଚିପିବା, ଦାବି ଦେବା, ଦୁଃଖଦେବା, ଜୋରକରିବା, ଚିପିବା, ଉଚ୍ଛେଦନ, ବିନାଶ, ଗ୍ରହଣ, ନିପୀଡ଼ନ, ଘାଆଆଦିର ପୋଡ଼ାଜଳା, ବ୍ୟଥା, ପଦ୍ରିତ୍ର କରିବା, ପେଷଣ, ସୂର୍ଯ୍ୟ ଚନ୍ଦ୍ରାଦିଙ୍କ ଗ୍ରହଣ, ଉପରୋଧ, ଲୋପ, ପରଦେଶ ଅବରୋଧ ।
ପୀଡ଼ାମାତ୍ୟ—ବିଂ. ( ପୀଡ଼+ମ୍.ଅମାତ୍ୟ ) ଯନ୍ତ୍ରଣାଦେବାର ଉପଯୁକ୍ତ, (ବି)ମନ୍ତ୍ରୀ ଓ ସେନାଦଳହନ୍ତା ରାଜା, (ଯାଜ୍ଞବଲ୍କ୍ୟ-ସ୍ମୃତି) ଗ୍ରହପ୍ରକାର ଶତ୍ରୁ ମଧ୍ୟରୁ ଏକ ।
ପୀଡ଼ା—ସ୍ତ୍ରୀ. ବି. (ପୀଡ଼+ଆ) ପୀଡ଼ନ, କ୍ଲେଶ,ବାଧା,ଦୁଃଖ,ରୋଗ, ଅତ୍ୟାଚାର, ବିନାଶ,ଷଣ୍ଢ, ଶାନ୍ତିଭଙ୍ଗ,କଷ୍ଟ,ଦେବଦାରୁ,କୃପା,ଶିରୋମାଳା,ସରଳଦ୍ରୁ ।
ପୀଡ଼ାପୀଡ଼ି—ଗ୍ରା. ବି. ଅତିଶୟ ଯନ୍ତ୍ରଣା ଦେବା, ଉତ୍ପୀଡ଼ନ, ଜୋରକରିବା ବା ଜବରଦସ୍ତି କରିବା ।
ପୀଡ଼ାସ୍ଥାନ—କ୍ଲୀ. ବି. (୬ତତ୍ପୁ) ଲଗ୍ନର ୩ୟ, ୬ଷ୍ଠ, ୧୦ମ ଓ ଏକାଦଶସ୍ଥାନ-ମାନଙ୍କ ଛଡ଼ା ଅନ୍ୟସ୍ଥାନମାନ, ଅଶୁଭ ଗ୍ରହମାନେ ରହିଥିବା ସ୍ଥାନ ।
ପୀଡ଼ିତ—ବିଂ. ( ପୀଡ଼ା+ଇତ ) ରୁଗ୍ଣ, ରୋଗଗ୍ରସ୍ତ, ବ୍ୟଥିତ, ଦୁଃଖିତ,ଦଳିତ, ବାଧିସ୍ତ, ପୀଡ଼ାଯୁକ୍ତ, ଉଚ୍ଛିନ୍ନ, ମର୍ଦ୍ଦିତ, (ବି) (ପୀଡ଼+ତ) ସ୍ତ୍ରୀମାନଙ୍କ କାନର ନୋଳି ଆଦି ପିନ୍ଧିବା ଛିଦ୍ର, ( ଭା.ତ ) ପୀଡ଼ା, ରୋଗ ।
ପୀଡ଼ିବା—ଗ୍ରା. କ୍ରି. ପୀଡ଼ାଦେବା, ପୀଡ଼ା କରିବା, ଉତ୍ପୀଡ଼ନକରିବା, ଚପୁଡ଼ିବା, ଚିପିବା ।
ପୀଡ଼୍ୟମାନ—ବିଂ. (ପୀଡ଼+ଣିଚ୍+ମ୍. ଆନ) ଯାହାକୁ ପୀଡ଼ା ଦିଆଯାଉଅଛି, କ୍ଲିଶ୍ୟମାନ, ଚିପୁଡ଼ା ଯାଉଥିବା, ଚପା ଯାଉଥିବା ।
ପୀତ—କ୍ଲୀ. ବି. ( ପା+ଭା.ତ ) ପାନ, ପିଇବାକର୍ମ, ହରିତାଳ, ହରିଚନ୍ଦନ, ହଳଦୀରଙ୍ଗ, ବେତଗଛ, ପୁଷ୍ପରାଗମଣି, କଦମ୍ବବୃକ୍ଷ,ସୋମଲତା ବିଶେଷ, ପୀତ-ଝିଣ୍ଟି,ଦାସକେରେଣ୍ଡା,ପଦ୍ମକାଷ୍ଠ,ପୀତୋଶୀର, ପ୍ରବାଳ, -( ବିଂ-ପା+ମ୍.ତ ) ପାନକରାଯାଇଥିବା,(କ.ତ)ପାନକର୍ତ୍ତା, ପିଇଥିବା, ହଳଦିଆ, ପାଣ୍ଡୁ, କପିଳ, (ବିଂ)କୁସୁମଫୁଲ,ଗୋରୋଚନା,ଶାଲ୍ମଳୀ ଗଛ, ଧଳାଆଙ୍କୁଗଛ,ସରଳଧୂପ,କୁଙ୍କୁମ ।
ପୀତକ—କ୍ଲୀ, ବି.(ପୀତ+କ)ହରିତାଳ, କୁଙ୍କୁମ, ଅଗୁରୁ, ପଦ୍ମକାଷ୍ଠ,କୁସୁମଫୁଲ, ପିତ୍ତଳ, ମଧୁ, ମକ୍ଷିକ, ରାକ୍ଷସ ବିଶେଷ, କଦମ୍ବବୃକ୍ଷ, ପିଆଶାଳ, ଶ୍ୟୋନାକବୃକ୍ଷ, ହରିଦ୍ରା, ହଳଦୀ,ପୀତବର୍ଣ୍ଣ, କିଙ୍କିରାତ-ବୃକ୍ଷ, ଏକପ୍ରକାର ବବୁରଗଛ, ପୀତ-ଲୋଧ୍ର, ଚରେଇତା, ଅଶୋକ, ଶାଳ-ନିର୍ଯ୍ୟାସ, ବିଜୟସାର, ଗାଜର, ଧଳା-ଜିରା, ଧଳାଆଙ୍କୁଗଛ ।
ପୀତକଣ୍ଟକୀ—ବି.ପୀତରୋହିଣୀ,ପୀତବର୍ଣ୍ଣ କଣ୍ଟକୀ । [ କଦଳୀ ।
ପୀତକଦଳୀ—ବି. ସ୍ୱର୍ଣ୍ଣକଦଳୀ, ଚମ୍ପା-
ପୀତକନ୍ଦ—ବି. ଗର୍ଜ୍ଜରମୂଳକ, ଗାଜର ।
ପୀତକରବୀରକ—ବି. ପୀତବର୍ଣ୍ଣ କର-ବୀର ପୁଷ୍ପ ବୃକ୍ଷ, ହଳଦିଆ କନିଅର ।
ପୀତକା—ସ୍ତ୍ରୀ.ବି.ହରିଦ୍ରା, ହଳଦୀ, ଦାରୁ-ହଳଦୀ, ପୀତଝିଣ୍ଟୀ, ଦାସକେରେଣ୍ଡା, ସ୍ୱର୍ଣ୍ଣ ଯୂଥିକା,ହଳଦିଆ ଯୂଇ, କୁଷ୍ମାଣ୍ଡ, ଘୋଷାଲତା, ଜନ୍ତି, ପାଳଙ୍ଗ ଶାଗ, ଶତପଦୀ କୀଟବିଶେଷ, ମାଙ୍କଡ଼ସା ।
ପୀତକାବେର—କ୍ଲୀ.ବି. କୁଙ୍କୁମ, ପିତ୍ତଳ, ପିତାକୋରୁଆ ଗୁଳ୍ମ, କୁରେଣ୍ଟିଗଛ ।
ପୀତକାଷ୍ଠ—କ୍ଲୀ. ବି. ପୀତଚନ୍ଦନ, ପଦ୍ମ-କାଷ୍ଠ ।
ପୀତକାଷ୍ଟ—ବି. ପୀତଚନ୍ଦନ ।
ପୀତକୁରୁବକ—ବି. ପୀତଝିଣ୍ଟୀ, ଦାସ-କେରେଣ୍ଡା ।

ପୀତକୁଷ୍ମାଣ୍ଡ—ବି. ବୋଇତକଖାରୁ ।
ପୀତକୁସୁମ—ବି. ପୀତଝିଣ୍ଟୀ, ବାସ-କେରେଣ୍ଡା ।
ପୀତଗନ୍ଧ—ବି. ପୀତଚନ୍ଦନ ।
ପୀତଗନ୍ଧକ—ବି. ଗନ୍ଧକ ।
ପୀତଘୋଷା—ସ୍ତ୍ରୀ. ବି. ଘୋଷାଲତା, ଜହ୍ନିଲତା ।
ପୀତଚନ୍ଦନ—କ୍ଲୀ.ବି. ପୀତବର୍ଣ୍ଣ ଚନ୍ଦନ, ହରିଚନ୍ଦନ ।
ପୀତଚମ୍ପକ—ବି. (କ.ଧା) ପୀତବର୍ଣ୍ଣ ଚମ୍ପକ ପୁଷ୍ପ ବୃକ୍ଷ, (ବ.ବ୍ରୀ) ପ୍ରଦୀପ ।
ପୀତଝିଣ୍ଟୀ—ସ୍ତ୍ରୀ.ବି. ପୀତପୁଷ୍ପ ଝିଣ୍ଟୀକ୍ଷୁପ, ବାସକେରେଣ୍ଡା ।
ପୀତତଣ୍ଡୁଳ—ବି.କଙ୍ଗୁଧାନ୍ୟ, ଶାଳଗଛ, ହଳଦିଆ ଚାଉଳ ।
ପୀତତଣ୍ଡୁଳା—ବି. ଷବକା ବୃକ୍ଷ ।
ପୀତତଣ୍ଡୁଳିକା—ବି. ଶାଳଗଛ ।
ପୀତତୁଣ୍ଡ—ବି. କାରଣ୍ଡବ ପକ୍ଷୀ, ବାଲି-ହଂସ, ବାୟା ଚଢ଼େଇ ।
ପୀତତୈଳା—ବି. ଜ୍ୟୋତିଷ୍ମତୀଲତା, ମହାଜ୍ୟୋତିଷ୍ମତୀ ।
ପୀତଦାରୁ—ବି.ଦେବଦାରୁ,ସରଳକାଷ୍ଠ, ହଳଦୀ, କବ୍ରତଢକ୍କକ, ପୂତିକରଞ୍ଜ ।
ପୀତଦୁଗ୍ଧା—ସ୍ତ୍ରୀ. ବି. ସ୍ୱର୍ଣ୍ଣକ୍ଷୀରୀ, କ୍ଷୀରଣୀ, ଦୁହାଁଳି ଗାଈ, ଯେଉଁ ଗାଈର ଦୁଗ୍ଧ ବନ୍ଧକ ଥାଏ ।
ପୀତଦ୍ରୁ—ବି. ଦେବଦାରୁ ବୃକ୍ଷ, ସରଳ ବୃକ୍ଷ, ଦାରୁହରିଦ୍ରା ।
ପୀତନ—କ୍ଲୀ. ବି. (ପୀତ+ଣ+ଅନ) କୁଙ୍କୁମ, ହରିତାଳ, ସରଳ ଧୂପ, ଦେବ-ଦାରୁ, ଆମ୍ବ୍ରାତକ, ପ୍ଲକ୍ଷବୃକ୍ଷ,ଜରଗଛ ।
ପୀତନକ—ବି. ଆମ୍ରାତକ, ଆମ୍ବଡ଼ା, କୁଙ୍କୁମ, ହରିତାଳ ।
ପୀତନାଶ--ବି.ଅନାରସ,ଲକୁଚ,ଜେଉଠ
ପୀତନୀ—ସ୍ତ୍ରୀ. ବି. ଶାଳପର୍ଣ୍ଣୀ ।
ପୀତପଃ—ପୁଂ.ବି. (ବ.ବ୍ରୀ) ପୀତବସ୍ତ୍ର-ପରିଧାନକାରୀ, (ବି) ଶ୍ରୀକୃଷ୍ଣ ।
ପୀତପରାଗ—ବି.(ବ.ବ୍ରୀ) ପଦ୍ମକେଶର ।
ପୀତପର୍ଣ୍ଣୀ—ସ୍ତ୍ରୀ.ବି. ଶ୍ୱିତ୍ରଘ୍ନୀ, ବୃଶ୍ଚିକାଳୀ, ବିଚ୍ଛୁଆତି ।
ପୀତପାକ୍ଷୀ—ବି. ବାଟ୍ୟାଳକବିଶେଷ, ବାଡ଼ିଅଇଁଲା ।
ପୀତପାଠୀ—ବି. ଚଣକ ବୃକ୍ଷ ।
ପୀତପାଦପ—ବି.ପୀତଲୋଧ୍ର ବୃକ୍ଷ, ଶ୍ୟୋନାକ, ଫଣଫଣା ।
ପୀତପାଦ୍ୟା—ସ୍ତ୍ରୀ. ବି. (ବ.ବ୍ରୀ) ଶାରିକା-ପକ୍ଷୀ, ଶାଗ୍ର ଚଢ଼େଇ ।
ପୀତପିଷ୍ଟ—ବି. ସୀସକ, ସୀସାଧାତୁ ।
ପୀତପୁଷ୍ପ—ବି. କୁଷ୍ମାଣ୍ଡ, ପାଣିକଖାରୁ, ହଳଦିଆ ଫୁଲ, କଣିଅର, ଚମ୍ପକ, ପୀତଝିଣ୍ଟୀ,ଇଙ୍ଗୁଦୀବୃକ୍ଷ, ଜହ୍ନି, ତଗର, ଚକ୍ରକାଞ୍ଚନ ।
ପୀତପୁଷ୍ପକ—ବି. (ପୀତପୁଷ୍ପ+କ)ବବ୍ବୁର ବୃକ୍ଷ, ପୀତପୁଷ୍ପ ଦେଖ ।
ପୀତପୁଷ୍ପକା--ବି.କର୍କଟୀବିଶେଷ, କାକୁଡ଼ି
ପୀତପୁଷ୍ପା—ବି. (ବ.ବ୍ରୀ) ଇନ୍ଦ୍ରବାରୁଣୀ, ମହାକାଳ, ଜହ୍ନୀ, ପୀତପୁଷ୍ପ ବାଟ୍ୟା-ଳକ, ପୀତଝିଣ୍ଟୀ, ହଳଦିଆ କଣିଅର, ସ୍ୱର୍ଣ୍ଣ ଯୂଥିକା, ହଳଦିଆ ଯୂଇ, ଗଣି-କାରିକା ।
ପୀତପୁଷ୍ପୀ—ସ୍ତ୍ରୀ. ବି. ଏକପ୍ରକାର ବାଡ଼ି-ଅଇଁଲା, ଶଣପୁଷ୍ପୀ, କାକୁଡ଼ି, ମହାକାଳ, ଶ୍ୱେତ ଅପରାଜିତା, ଜହ୍ନିଲତା, ହଳ-ଦିଆ ଯୂଇ, ମହାଶଣ ବୃକ୍ଷ ।
ପୀତପ୍ରସବ—ବି. ପୀତକରବୀର ବୃକ୍ଷ, ହଳଦିଆ କଣିଅର ।
ପୀତଫଳ—ବି. (ବ.ବ୍ରୀ) ଶାଖୋଟବୃକ୍ଷ, ଶାହାଡ଼ାଗଛ, ଧବବୃକ୍ଷ, କର୍ମରଙ୍ଗବୃକ୍ଷ, କରମଙ୍ଗାଗଛ । [ ରିଠାଗଛ ।
ପୀତଫଳକ—ବି. ପୀତଫଳ ଦେଖ,
ପୀତବଲ୍କ—ବି. ଗନ୍ଧକ ।
ପୀତଭଦ୍ରକ—ବି. ଦେବବବ୍ବୁର ବୃକ୍ଷ ।
ପୀତଭୃଙ୍ଗରାଜ—ବି.ପୀତପୁଷ୍ପ ଭୃଙ୍ଗରାଜ
ପୀତମଣି—ବି. ପୁଷ୍ପରାଗମଣି ।
ପୀତମଣ୍ଡୂକ—ବି.ସ୍ୱର୍ଣ୍ଣମଣ୍ଡୂକ,ସୁନାବେଙ୍ଗ
ପୀତମସ୍ତକ—ବି. (ବ.ବ୍ରୀ) ଖଗବିଶେଷ, ବୃଦ୍ଧ ଶ୍ୟେନପକ୍ଷୀ ।
ପୀତମାକ୍ଷିକ- ବି.ସ୍ୱର୍ଣ୍ଣମାକ୍ଷିକ, ସୁବର୍ଣ୍ଣମାକ୍ଷୀ
ପୀତମୁଣ୍ଡ—ବି. (ବ.ବ୍ରୀ) ହରିଣବିଶେଷ ।
ପୀତମୁଦ୍ଗ—ବି. ସୁନାମୁଗ, ମେଥିମୁଗ ।
ପୀତମୂଳକ—ବି.ଗାଜ୍ଜର, ଗାଜରମୂଳ ।
ପୀତଯୂଥୀ—ସ୍ତ୍ରୀ. ବି. ହଳଦିଆ ଯୂଇ ।
ପୀତରକ୍ତ—କ୍ଲୀ.ବି. ପୁଷ୍ପରାଗମଣି, ପଦ୍ମ-କାଷ୍ଠ ।
ପୀତରମ୍ଭା—ବି. ସୁବର୍ଣ୍ଣ କଦଳୀ ବୃକ୍ଷ, ଚମ୍ପା କଦଳୀ ।
ପୀତରସ—ବି. କଶେରୁ, କେଶୁର ।
ପୀତରାଗ—କ୍ଲୀ.ବି.କିଞ୍ଜଲ୍କ, ପଦ୍ମକେଶର, ସିକ୍ଥ, ମହୁମହମ, (ପୁଂ) ପୀତବର୍ଣ୍ଣ, (ବିଂ) ପୀତବର୍ଣ୍ଣଯୁକ୍ତ ।
ପୀତରୋହିଣୀ—ବି.କାଶ୍ମୀରୀ, ପୀତକଟୁକୀ
ପୀତଳ--ବି.(ପୀତ+ଲା+ଅ)ପୀତବର୍ଣ୍ଣ, (ବିଂ)ପୀତବର୍ଣ୍ଣବିଶିଷ୍ଟ,(ବି)ପିତ୍ତଳ ଧାତୁ ।
ପୀତଲକ—ବି. ପିତ୍ତଳଧାତୁବିଶେଷ ।
ପୀତଲୋହ—କ୍ଲୀ. ବି. ପିତ୍ତଳ ଧାତୁ ।
ପୀତବର୍ଣ୍ଣ—ବି.ସ୍ୱର୍ଣ୍ଣମଣ୍ଡୂକ, ସୁନାବେଙ୍ଗ, ତାଳବୃକ୍ଷ , କଦମ୍ବ , ଦାରୁଦ୍ରୁ ବୃକ୍ଷ , କାଞ୍ଚନବୃକ୍ଷ, ମନଃଶିଳା, ପୀତଚନ୍ଦନ, କୁଙ୍କୁମ, ହଳଦିଆ ରଙ୍ଗ ।
ପୀତବଲ୍ଲୀ—ସ୍ତ୍ରୀ.ବି.ଆକାଶଲତା,ନିର୍ମୂଳୀ, ଆଲୋକଲତା ।
ପୀତବାଲୁକା—ବି. ହଳଦୀ, ହଳଦିଆ ବର୍ଣ୍ଣ ବାଲି ବା ଧୂଳି ।
ପୀତବାସ—ବି. (ବ.ବ୍ରୀ) ଶ୍ରୀକୃଷ୍ଣ, (ବି) ପୀତବସ୍ତ୍ରଯୁକ୍ତ ।
ପୀତବାସଃ—କ୍ଲୀ.ବି. (କ.ଧା) ପୀତବର୍ଣ୍ଣ ବସ୍ତ୍ର, ହଳଦିଆ ଲୁଗା ।
ପୀତବୀଜା—ବି. (ବ.ବ୍ରୀ) ମେଥୀ ।
ପୀତବୃକ୍ଷ—ବି.ପୁଥୁଟ୍ରିମ୍ବ ଶ୍ୟୋନାକ ବୃକ୍ଷ, ପୀତଲୋଧ୍ର ବୃକ୍ଷ, ସରଳ ଦେବଦାରୁ ।
ପୀତଶାଳ—ବି. ଅସନଗଛ, ପିଆଶାଳ ।
ପୀତସାର—ବି. (ପୀତ+ସାର) ପୀତ-ଚନ୍ଦନ, ହରିଚନ୍ଦନ, ଲେମ୍ବୁ, କମଳା, ଅସନ, ପିଆଶାଳ, ଗୋମେଦମଣି, ଅଙ୍କୋଠବୃକ୍ଷ, ଧଳା ଆଙ୍କୁଗଛ,ତୁରୁଷ୍କ, ଶଲାରସ । [ ଆଙ୍କୁ ଗଛ ।
ପୀତସାରକ—ପୁଂ. ବି. ନିମ୍ବବୃକ୍ଷ, ଧଳା

ପୀତସାର—କ୍ଲୀ.ବି.ସୁର୍ମା, ସ୍ରୋତୋଂଞ୍ଜନ

ପୀତସାଳ—ବି. ପିଆଶାଳ, ଅସନ।

ପୀତସ୍କନ୍ଧ—ବି.(ବ.ବ୍ରୀ) ହରିଦ୍ରାଭ ସ୍କନ୍ଧ-ଯୁକ୍ତ ବୃକ୍ଷବିଶେଷ, ଶୂକର।

ପୀତସ୍ଫଟିକ—ବି. ପଦ୍ମରାଗମଣି।

ପୀତସ୍ଫୋଟ—ବି. ପୀତବର୍ଣ୍ଣ ସ୍ଫୋଟକ, କଚ୍ଛୁ, କୁଣ୍ଡିଆ।

ପୀତା—ବି.(ପୀତ+ଆ) ହରିଦ୍ରା, ଦାରୁ-ହରିଦ୍ରା, ମହାଜ୍ୟୋତିଷ୍ମତୀ, ଗୋରୋ-ଚନା, ପ୍ରିୟଙ୍ଗୁ, ବନବୀଜପୂର, ବଣ-ଟଙ୍କ ଲେମ୍ବୁ, କପିଳ ଶିଂଶପା, ଅତିବିଷା, ଚମ୍ପାକଦଳୀ, ହରିତାଳ, ହଳଦିଆ ଯୂଇ, ଧୂନକ, ଝୁଣା, ଦେବଦାରୁ, ଶାଳପର୍ଣ୍ଣୀ,ଅଶ୍ୱଗନ୍ଧା, ଜମ୍ବୁଲୀ,ମଲଙ୍ଗ, (ସ୍ତ୍ରୀ.ବିଂ)ପୀତର ସ୍ତ୍ରୀଲିଙ୍ଗ, ପୀତବର୍ଣ୍ଣଯୁକ୍ତ

ପୀତାଙ୍ଗ—ବି. ଶ୍ୟୋନାକ ବୃକ୍ଷ, ପୀତ-ଲୋଧ୍ର ବୃକ୍ଷ, ପୀତମଣ୍ଡୂକ,ସୁନାବେଙ୍ଗ ନାରଙ୍ଗ ବୃକ୍ଷ, ହରିଦ୍ରା, ହଳଦୀ।

ପୀତାବ୍ଧି—ପୁଂ. ବି. ( ପୀତ+ଅବ୍ଧି ) ବ.ବ୍ରୀ; ଅଗସ୍ତ୍ୟମୁନି।

ପୀତାଭ—ବି. ପୀତଚନ୍ଦନ, ହରିଚନ୍ଦନ, (ବିଂ)ପୀତବର୍ଣ୍ଣ ଆଭାଯୁକ୍ତ, ହଳଦିଆ।

ପୀତାଭ୍ର—ବି. ପୀତବର୍ଣ୍ଣ ଅଭ୍ରବିଶେଷ।

ପୀତାମ୍ବର—ପୁଂ. ବି, (ପୀତ+ଅମ୍ବର) ବ.ବ୍ରୀ; ବିଷ୍ଣୁ, ଶ୍ରୀକୃଷ୍ଣ, ହଳଦିଆ ବସ୍ତ୍ର-ଧାରୀ ସନ୍ନ୍ୟାସୀ,ଶୈଳୂଷ,ନର୍ତ୍ତକ,(କ.ଧା) ହଳଦିଆ ଲୁଗା, (ବିଂ) ପୀତବସ୍ତ୍ରଯୁକ୍ତ।

ପୀତାମ୍ବରଦାସ—ଗ୍ରା.ବି.ଜନୈକ ଗଞ୍ଜମ-ବାସୀ ଓଡ଼ିଆ ବ୍ରାହ୍ମଣ କବି।

ପୀତାମ୍ବରଦେବ—ଗ୍ରା, ବି. ଜନୈକ ଓଡ଼ିଆ କବି,(ଅଖିଳ ଚନ୍ଦ୍ରାମଣି ନାମରେ ଭକ୍ତିଗ୍ରନ୍ଥ ରଚନା କରିଥିଲେ)।

ପୀତାମ୍ବରା—ସ୍ତ୍ରୀ.ବିଂ. (ପୀତାମ୍ବର+ଆ) ପୀତାମ୍ବର ପରିଧାନକାରିଣୀ, ( ବି ) ମହାଲକ୍ଷ୍ମୀ, ବଗଳାମୁଖୀ।

ପୀତାରୁଣ—ବି. ହଳଦିଆ ମିଶା ନାଲି-ରଙ୍ଗ, (ବିଂ) ପୀତରକ୍ତ ମିଶ୍ରିତ ବର୍ଣ୍ଣ ହଳଦିଆ ମିଶା ନାଲି।

ପୀତାଶ୍ମା—ବି. (ପୀତ+ଅଶ୍ମନ୍) ପୁଷ୍ପ-ରାଗମଣି।

ପୀତାହ୍ୱ—ବି. ସର୍ଜ୍ଜରସ, ଧୂନା, ଝୁଣା।

ପୀତି—ବି. ( ପା+କ.ତି ) ଘୋଟକ, (ଭା.ତି) ପିଇବା, ପାନ, ( ଅଧି.ତି ) ଶୁଣ୍ଡୀଦୋକାନ,ଦାଣ୍ଡିଶୁଣ୍ଡ,ଗତି,ଗମନ।

ପୀତିକା—ସ୍ତ୍ରୀ.ବି. (ପୀତକ+ଆ)ହରିଦ୍ରା ଦାରୁହରିଦ୍ରା,ସ୍ୱର୍ଣ୍ଣଯୂଥୀ,ହଳଦିଆ ଯୂଇ।

ପୀତୀ—ପୁଂ. ବି. (ପୀତି+ଇନ୍) ପୀତି, ଘୋଟକ, ଘୋଡ଼ା।

ପୀତୁ—ପୁଂ. ବି. (ପା+କ.ତୁ) ସୂର୍ଯ୍ୟ, ଅଗ୍ନି, ଯୂଥପତି, ହସ୍ତୀ।

ପୀତୁଦାରୁ—ବି. ଉଦୁମ୍ବର,ଦେବଦାରୁ।

ପୀଥ—କ୍ଲୀ.ବି. (ପା+କ.ଥ) ସୂର୍ଯ୍ୟ,ଅଗ୍ନି, କାଳ, (ମି.ଥ) ଜଳ, ଘୃତ।

ପୀଥି—ପୁଂ.ବି. (ପା+ଥି)ପୀତି,ଘୋଟକ, ଘୋଡ଼ା।

ପୀନ—ବିଂ. ( ପ୍ୟାୟ+କ.ତ ) ସ୍ଥୂଳ, ମୋଟା, କଠିନ, ପରିବୃଢ଼, ପୁଷ୍ଟ.ପୃଥୁଳ, ପୂର୍ଣ୍ଣ, ସମ୍ପୂନ୍ନ, ମାଂସଳ।

ପୀନଉରଜା—ଗ୍ରା, ସ୍ତ୍ରୀ. ବି. ପୃଥୁଶାରୁ ଜନ୍ତା ହୀତା, (ଗ୍ରା. ସ୍ତ୍ରୀ. ବିଂ) ପୃଥୁଳ ସ୍ତନବିଶିଷ୍ଟା (ସ୍ତ୍ରୀ)।

ପୀନତା—ବି, ( ପୀନ+ତା ) ସ୍ଥୂଳତ୍ୱ, ପୀନର ଭାବ ବା ଧର୍ମ।

ପୀନପୟୋଧର—ବି. (କ.ଧ) ଲଉଆ ଦୁଧ, ସ୍ଥୂଳସ୍ତନ, ପୀବରସ୍ତନ।

ପୀନପୟୋଧରା—ସ୍ତ୍ରୀ.ବିଂ, ଲଉଆଦୁଧୀ, ପୀବରସ୍ତନୀ, ସ୍ଥୂଳକଠିନ କୁଚ।

ପୀନଶିଳା—ବି. (କ.ଧା) କଠିନପ୍ରସ୍ତର।

ପୀନସ—ବି,(ପୀନ+ସୋ+ଅ)ପୀନାସ, ନାସିକା ରୋଗବିଶେଷ, ଶର୍ଦ୍ଦି।

ପୀନସା—ବି. କର୍କଟୀ, କାକୁଡ଼ି।

ପୀନସୀ—ପୁଂ. ବିଂ. ( ପୀନସ+ଇନ୍ ) ପୀନସ ରୋଗୀ।

ପୀନୋଧ୍ନୀ—ସ୍ତ୍ରୀ. ବି. (ପୀନ+ଊଧସ୍+ଈ) ବ.ବ୍ରୀ; ପୀବରସ୍ତନୀ ଗାଈ, ଯେଉଁ ଗାଈର ପହ୍ନା ଅତି ସ୍ଥୂଳ।

ପୀନୋନ୍ନତ—ବିଂ. ( କ.ଧା ) ସ୍ଥୂଳ ଓ ଉଚ୍ଚ, ମୋଟା ଏବଂ ଉଚ୍ଚ।

ପୀନୋନ୍ନତପୟୋଧର—ବି. (କ.ଧା)ସ୍ଥୂଳ ଓ କଠିନ ସ୍ତନ,ଓହଳି ନ ଥିବା ସ୍ତନ।

ପୀନୋନ୍ନତପୟୋଧରା—ସ୍ତ୍ରୀ.ବିଂ.(ବ.ବ୍ରୀ) ଯେଉଁ ସ୍ତ୍ରୀର ସ୍ତନ ସ୍ଥୂଳ ଓ ଉନ୍ନତ।

ପୀପର—ବି. ହ୍ରସ୍ୱପ୍ଲକ୍ଷ ବୃକ୍ଷ, ଶ୍ରେଷ୍ଠ ଜରି ଗଛ। [ ହିଂସ୍ର।

ପୀୟୂକ୍ଷୁ—ବିଂ.(ପୀୟ+କ୍ଷୁ) ହିଂସାଶୀଳ,

ପୀୟୁ—ବି. ( ପୀ+ଉ ) କାଳ, ଦେବ, ଘୂକ, କାକ, ପେଚକ, (ବିଂ) ହିଂସକ, ପ୍ରତିକୂଳ। [ ବିଶେଷ।

ପୀୟୂକ୍ଷା—ସ୍ତ୍ରୀ. ବି. ବୃକ୍ଷଭେଦ, ପର୍କଟୀ

ପୀୟୂଷ—କ୍ଲୀ. ବି. ( ପୀୟ+କ. ଊଷ ) ଅମୃତ, ସୁଧା, ଅତି ମଧୁରବସ୍ତୁ,ଦୁଗ୍ଧ, ନବପ୍ରସୂତା ଗାଈର ସପ୍ତଦିନାଭ୍ୟନ୍ତରୀଣ ଦୁଗ୍ଧ।

ପୀୟୂଷକଣ୍ଠୀ—ସ୍ତ୍ରୀ, ବିଂ, (ବ.ବ୍ରୀ) ମଧୁର ଗଳାଥିବା (ସ୍ତ୍ରୀ)। [ଭାଷୀ।

ପୀୟୂଷଭାଷୀ—ପୁଂ. ବିଂ. (ବ.ବ୍ରୀ)ମଧୁର-

ପୀୟୂଷମହ—ପୁଂ, ବି. (ବ.ବ୍ରୀ) ଚନ୍ଦ୍ର, (ଚନ୍ଦ୍ରଙ୍କ କିରଣ ଅମୃତ ତୁଲ୍ୟ ଥିବାରୁ)

ପୀୟୂଷରୁଚି—ପୁଂ. ବି. (ବ.ବ୍ରୀ) ଚନ୍ଦ୍ର, ଦେବଗଣ, (ବିଂ) ଅମୃତପ୍ରିୟ।

ପୀୟୂଷବଚନ—କ୍ଲୀ. ବି. ପୀୟୂଷବାଣୀ, (ପୁଂ.ବିଂ) ପୀୟୂଷଭାଷୀ ଦେଖ।

ପୀୟୂଷବର୍ଷ—ପୁଂ, ବି, ଚନ୍ଦ୍ର, କର୍ପୂର, ଚନ୍ଦ୍ରାଲୋକନାମକ ଅଳଂକାର ଗ୍ରନ୍ଥ-ପ୍ରଣେତା।

ପୀୟୂଷବାଣୀ—ବି.(ଲ.ଅର୍ଥ)ମଧୁରବଚନ।

ପୀର—ଯା. ବି. ଧର୍ମପ୍ରାଣ ମୁସଲମାନ୍, ମୁସଲମାନ ସନ୍ନ୍ୟାସୀ ବିଶେଷ,ସିଂହଭୂମ ଜିଲ୍ଲାର ଗ୍ରାମସମଷ୍ଟି।

ପୀରତି—ଗ୍ରା, ବି.( ସଂ-ପ୍ରୀତି ) ପ୍ରୀତି, ଅନୁରାଗ, ପ୍ରଣୟ,ପ୍ରୀତିପାତ୍ର,ପ୍ରେମଭକ୍ତି, ସଦ୍ଭାବ, ଅବୈଧ ବା ଗୁପ୍ତପ୍ରଣୟ।

ପୀଲୁ—ବି. (ପୀଲ୍+ଉ) ପ୍ରସୂନ, ଫୁଲ, ପରମାଣୁ, ଭୂମିଜାମ୍ବୁ. ବୃହତ୍ ସ୍ତୂପ-ବିଶେଷ, ଏକପ୍ରକାର କୀଟ, ମତ୍ତହସ୍ତୀ, ଅସ୍ଥିଖଣ୍ଡ, ତାଳକାଣ୍ଡ, ବାଣ,କଙ୍କଣାଦି ଦେଶପ୍ରସିଦ୍ଧ ଫଳବୃକ୍ଷ, ଗୁଡ଼ଫଳ,

କଣ୍ଟକଶାକ, ଶାଳ୍ମଳୀ ପୃଷ୍ଠ, କଙ୍କିଣିତ ବୃକ୍ଷ, ଅକ୍ଷୋଟବୃକ୍ଷ, ଆଖରୋଟ ଗଛ, ହସ୍ତର ମଧ୍ୟଭାଗ, ନାଲଦାସକେରେଣ୍ଡା. ରାଗିଣୀବିଶେଷ ।

ପୀଲୁକ—ପୁଂ.ବି. କୃମିଭେଦ, ଏକପ୍ରକାର କୀଟ । [ ବୃକ୍ଷ ।

ପୀଲୁପତ୍ର—ବି. ମୋରଟା ଲତା,ଅଶ୍ମନ୍ତକ

ପୀଲୁପତ୍ରା—ସ୍ତ୍ରୀ. ବି. କ୍ଷୀରମୋରଟା ।

ପୀଲୁପର୍ଣ୍ଣିକ—କ୍ଲୀ. ବି. ତୀର୍ଥବିଶେଷ ।

ପୀଲୁପର୍ଣ୍ଣୀ—ବି. ମୂର୍ବା, ତୁଣ୍ଡିକା, ଏକ ପ୍ରକାର ଶାଗ, ମୋରଟା, ବିମ୍ବିକା, କଇଁଚାକାକୁଡ଼ ।

ପୀଲୁମୂଳ—କ୍ଲୀ. ବି. ପୀଲୁର ମୂଳ, (ସ୍ତ୍ରୀ) ପୀଲୁମୂଳା, ଶତମୂଳୀ, ଶାଳପର୍ଣ୍ଣୀ, ତରୁଣୀଗାଭୀ ।

ପୀଲୁସାର—ବି. ପର୍ବତବିଶେଷ ।

ପୀବର—ବିଂ, (ପ୍ୟୈ + ବର) ସ୍ଥୂଳାଙ୍ଗ, ମୋଟା, ଖର, ଗୁରୁ, (ବି) ତାମସମନ୍ୱନ୍ତରସ୍ଥ ସପ୍ତର୍ଷିବିଶେଷ, କଚ୍ଛପ, ଜଟା, କ୍ରୌଞ୍ଚଦ୍ୱୀପର ଅନ୍ତର୍ଗତ ଗୋଟିଏ ବର୍ଷ ।

ପୀବରସ୍ତନୀ—ସ୍ତ୍ରୀ. ବିଂ, ପୀନସ୍ତନୀ, ଘନକୁଚା, କୁଚୋନ୍ନତୀ ।

ପୀବରା—ସ୍ତ୍ରୀ, ବି, ଅଶ୍ୱଗନ୍ଧା, ଶତାବରୀ, ସ୍ଥୂଳା, ତରୁଣୀ, ଯୁବତୀ ।

ପୀବରୀ—ସ୍ତ୍ରୀ. ବି. ଶତମୂଳୀ, ଶାଳପର୍ଣ୍ଣୀ, ଓଲଟକମଳ ଚୁଲ୍ଲୀ, ତରୁଣୀ, ଗାଭୀ ବର୍ହିଷଦ ।

ପୀବା—ସ୍ତ୍ରୀ.ବି,(ପ୍ୟାୟ୍ + କ.ବନ୍)ଉଦକ. ବାୟୁ, (ବିଂ) ସ୍ଥୂଳ,ମୋଟା, ବଳିଷ୍ଠ ।

ପୀବିଷ୍ଠ—ପୁଂ. ବିଂ, ( ପୀବର + ଇଷ୍ଠ ) ସାତିଶୟ ସ୍ଥୂଳ, ଅତି ମୋଟା ।

ପୁଃ—ବି, ନଗର, ଦୁର୍ଗ, ଦୁର୍ଗର ପ୍ରାଚୀର, ଶରୀର, ବୁଦ୍ଧିବୃତ୍ତି ।

ପୁଅ—ଗ୍ରା. ବି, (ସଂ-ପୁତ୍ର) ପୁତ୍ର, ବାଳକ, ପିଲା, ଶିଶୁ, ସନ୍ତାନ, ବଂଶଧର, ପଶାକାଠିର ଏକସଂଖ୍ୟା ଦାନ, କଦଳୀଗଛର ମୂଳରୁ ଉତ୍ପନ୍ନ ପୁଆ,(ବ୍ୟଙ୍ଗାର୍ଥ)ଖେଳର କଣ୍ଢେଇ, ମନୁଷ୍ୟ ଅକ୍ଷିର ପିତୁଳା ।

ପୁଅକରିବା—ଗ୍ରା. କ୍ରି, ଧର୍ମପୁତ୍ର ରୂପେ ଗ୍ରହଣ କରିବା,ପୋଷ୍ୟପୁତ୍ର ଗ୍ରହଣକରିବା

ପୁଅଜାଉଁଢଆ—ପ୍ରା.(ସମ୍ବ) ବି. ଷଷ୍ଠୀଓଷାବ୍ରତ । [ ସନ୍ତତି ।

ପୁଅଝିଅ—ଗ୍ରା. ବି. ପୁତ୍ରକନ୍ୟା, ସନ୍ତାନ

ପୁଅପଣ—ଗ୍ରା. ବି. ପୁତ୍ରତ୍ୱ, ମନୁଷ୍ୟତା, ବୀରତ୍ୱ ।

ପୁଅବାର—ଗ୍ରା. ବି. ପଶାଖେଳର ଦାନବିଶେଷ, ୧୩ ସଂଖ୍ୟକ ଦାନ,(ଲ.ଅର୍ଥ) ଅତିସୁବିଧା, ସୌଭାଗ୍ୟ, ସୁଯୋଗ ।

ପୁଅବାହ୍ମଣ—ଗ୍ରା. ବି. ରଜାଙ୍କ ମୃତ୍ୟୁପରେ ତାଙ୍କର ପୁତ୍ରଙ୍କ ପ୍ରତିନିଧିସ୍ୱରୂପ ଯେଉଁ ବ୍ରାହ୍ମଣ ମୃତରଜାଙ୍କର ଶବଦାହାଦି ଓ ଅଶୌଚ ପାଳନାଦି କର୍ମମାନ କରନ୍ତି ।

ପୁଅରୋଗ—ଗ୍ରା. ବି. ପିଲାଙ୍କୁ ଡାହାଣୀ ଖାଇବା ରୋଗ, ଶିଶୁର ଶୀର୍ଣ୍ଣତାଜନକ ରୋଗ, ଡାହାଣିଆଁ ରୋଗ ।

ପୁଆ—ଗ୍ରା. ବି. (ସଂ-ପୂତ) କଦଳୀ ଓ ବାଉଁଶ ଆଦିର ମୂଳରୁ ବାହାରିବା ନୂଆ ଗଜା, ବୃକ୍ଷର ନୂତନ ଡାଳ, ତେଲ ବା ଘିଅରେ ଛଣାହୋଇଥିବା ପିଠାଆଦି, ଖେଳ ବା ଶିଳରେ ପିଠଉଆଦି ବାଟିବାର କ୍ଷୁଦ୍ର ଲମ୍ବୁଡ଼ା ପଥର ଖଣ୍ଡ, ଆଖୁ ଓ କପାଖାଇର ଯେଉଁ ଗୋଲ କାଠବ ଦ୍ରବ୍ୟ ଘୂରିବା ଦ୍ୱାରା ଆଖୁ ପେଡ଼ାଯାଏ ଓ କପାଖିଆ ହୁଏ,ଡାବଲପୁଆ ଖେଳରେ ଯେଉଁ ଗ୍ରେଟ କାଠିଖଣ୍ଡିକୁ ବାଡ଼ିଦ୍ୱାରା ଦୂରକୁ ନିକ୍ଷେପ କରାଯାଏ, (ବିଂ) ଘିଅ ବା ତେଲରେ ଛଣାହୋଇଥିବା (ବୁଟପିଠାଆଦି) ।

ପୁଆଁଇବା—ଗ୍ରା. କ୍ରି. ଅଗ୍ନି ବା ଖରାର ଉତ୍ତାପକୁ ସେବନ କରିବା ।

ପୁଆଇବା—ଗ୍ରା. କ୍ରି. (ସଂ-ପୂପ) ଘିଅ ବା ତେଲରେ ପିଠାଆଦିକୁ ଭଜିବା, ଉପଶମ କରିବା,ଧାଇବା କ୍ରିୟାର ଣିଜନ୍ତରୂପ, (ପ୍ରା. ବସ୍ତର. ବି) ଶୁଆଇବା ।

ପୁଆଁ—ଗ୍ରା, ବି, ଅଗ୍ନି ବା ଖରାତାପ ସେବନ ।

ପୁଆଣୀ—ଗ୍ରା.ବି. (ସଂ-ପରିଧାନ) ସ୍ତ୍ରୀମାନଙ୍କର ପିନ୍ଧିଥିବା ଶାଢ଼ୀ ଉପରେ ଆଉଖଣ୍ଡେ ଓଢ଼ଣା ପକାଇବା ଅବସ୍ଥା, ପୁଆଣୀଘର ଦେଖ, ଝିଅର ପ୍ରଥମଥର ଶାଶୁଘରକୁ ଯିବା ।

ପୁଆଣୀଘର—ଗ୍ରା.ବି. ବାଳକାର ଆଶୀର୍ବାଦ ଘର ବା ବନ୍ଦାପନା ଉତ୍ସବ, ରଜସ୍ୱଳା ବାଳକାର ସ୍ୱାମୀ ସହିତ ପ୍ରଥମ ମିଳନରୂପ ଅନୁଷ୍ଠାନ, କନ୍ୟାର ଦ୍ୱିରାଗମନ ସଂସ୍କାର ।

ପୁଆତି—ଗ୍ରା.ବି. (ସଂ-ପୁତ୍ରବତୀ) ଗର୍ଭିଣୀ, ଆସନ୍ନ ପ୍ରସବା ନାରୀ, ସଦ୍ୟ ପ୍ରସୂତା ସ୍ତ୍ରୀ, ସ୍ତନ୍ୟପାୟୀ ଶିଶୁର ମାତା ।

ପୁଆର—ଗ୍ରା.ବି. ବଣିଆମାନଙ୍କର ଅଳଙ୍କାର ଉପରେ କାମ କରିବାର ଏକପ୍ରକାର ଛେଣୀ ।

ପୁଆରୁ—ଗ୍ରା.ବି. ଶ୍ରେଷ୍ଠ ଲକ୍ଷଣ, ଡାଗି ।

ପୁଆଲ୍—ପ୍ରା.(ସମ୍ବ)ବି. ପୁଆଳ,କୁଟା ।

ପୁଆଳ—ଗ୍ରା.ବି.(ସଂ-ପଲାଳ)ପାଳ,କୁଟା

ପୁଆଳଛତୁ—ଗ୍ରା. ବି. ଛତାକବିଶେଷ, ପାଳ ପଚିଲା ପରେ ତହିଁରେ ଫୁଟିବା ଛତୁ ।

ପୁଆଳିଆ—ପ୍ରା. (କନ୍ଧମାଳ) ବି, ବଡ଼ଉକୁଣି, ( ଗ୍ରା.ବିଂ ) କଞ୍ଚା ଦ୍ୱାରାରେ ବୁଣା ହୋଇଥିବା (ଲୁଗାଆଦି) ।

ପୁଇ—ଗ୍ରା.ବି. (ସଂ-ପୂତିକା) ପୁଇଶାଗ, ପ୍ରା.(ସିଂହଭୂମ)ବି. ଚିଙ୍କିର ପକ୍ଷିଆ ବା ଅଖ ।

ପୁଇଁ—ଗ୍ରା.ବିଂ, ପଚା, ସଢ଼ା । [ ସଢ଼ା ।

ପୁଇଁଆ—ଗ୍ରା. ବିଂ. ଦୁର୍ଗନ୍ଧଯୁକ୍ତ, ପଚା,

ପୁଏ—ଗ୍ରା.କ୍ରି. ପୁଅମାନେ, ବାଳକଗଣ ।

ପୁଂ—ବି. ( ସଂ-ପୁମସ୍ ଶବ୍ଦ ) ପୁଂଲିଙ୍ଗ, ଅଣ୍ଡିରା, ପୁରୁଷ, ମନୁଷ୍ୟ, ପୁଂଲିଙ୍ଗ ଶବ୍ଦ, ଆତ୍ମା ।

ପୁଂଯୋଗ—ପୁଂ. ବି. ( ୬ତତ୍ ) ସ୍ତ୍ରୀର ପୁରୁଷ ସଙ୍ଗେ ମିଳନ, ପୁରୁଷ ସଙ୍ଗମ ।

ପୁଂରତ୍ନ—କ୍ଲୀ.ବି. ପୁରୁଷରତ୍ନ, ପୁରୁଷଶ୍ରେଷ୍ଠ ।

ପୁଂରାଶି—ବି. ପୁରୁଷରାଶି, ବିଷମରାଶି, ମେଷ, ମିଥୁନ, ସିଂହ, ତୁଳା,ଧନୁ ଓ

କୁମ୍ଭଗଣି ।

ପୁଂଲକ୍ଷଣା—ସ୍ତ୍ରୀ. ପୁରୁଷଲକ୍ଷଣା ସ୍ତ୍ରୀ ।

ପୁଂଲିଙ୍ଗ—ବି. (ପୁମସ୍+ଲିଙ୍ଗ୍+ଅ) ପୁଂଚିହ୍ନ, ଶିଶ୍ନ, ପୁରୁଷର ଲିଙ୍ଗ, ପୁରୁଷତ୍ୱ, ପୁରୁଷବାଚକ ଶବ୍ଦ ।

ପୁଂବତ୍—ଅବ୍ୟ. ପୁରୁଷତୁଲ୍ୟ, ପୁରୁଷ ଶବ୍ଦର ତୁଲ୍ୟ ।

ପୁଂବତ୍ସା—ସ୍ତ୍ରୀ. ବି. (ବ.ବ୍ରୀ) ପୁରୁଷ ପ୍ରସବକାରୀ ସ୍ତ୍ରୀ, ଯେଉଁ ସ୍ତ୍ରୀ କେବଳ ପୁତ୍ର ସନ୍ତାନ ପ୍ରସବ କରିଅଛି ।

ପୁଂମୂଷ—ପୁଂ.ବି. ଗନ୍ଧମୂଷିକ, ଚୁଚୁନ୍ଦରା ମୂଷା ।

ପୁଂବେଶ—ବି.(ଷତତ୍) ପୁରୁଷର ବେଶ, (ବିଂ.-ବ.ବ୍ରୀ) ପୁରୁଷସଦୃଶ ବେଶଧାରୀ, (ସ୍ତ୍ରୀ) ପୁଂବେଶା ।

ପୁଂଶକ୍ତି—ବି. ଜନନଶକ୍ତି, ମନୁଷ୍ୟତ୍ୱ, ପୁଂସ୍ତ୍ୱ ।

ପୁଂଶ୍ଚଲ—ପୁଂ.ବି. (ପୁମସ୍+ଚଲ+କ.ଅ) ବ୍ୟଭିଚାରୀ, ପରସ୍ତ୍ରୀଗାମୀ ପୁରୁଷ ।

ପୁଂଶ୍ଚଲୀ—ସ୍ତ୍ରୀ. ବି. (ପୁମସ୍+ଚଲ୍+ଅ ଈ) ବ୍ୟଭିଚାରିଣୀ ସ୍ତ୍ରୀ, ଅସତୀ, ବେଶ୍ୟା, ଭ୍ରଷ୍ଟା, କୁଳଟା, ଛିନାଳି ।

ପୁଂଶ୍ଚଲୀୟ—ବି. (ପୁଂଶ୍ଚଲୀ+ଈୟ) ବେଶ୍ୟାପୁତ୍ର, ଅସତୀପୁତ୍ର ।

ପୁଂଚିହ୍ନ—ବି. (ଷତତ୍) ଶିଶ୍ନ, ଲିଙ୍ଗ, ପୁରୁଷର ଜନନେନ୍ଦ୍ରିୟ ।

ପୁଂସ—ଗ୍ରା. ବି. (ସଂ-ପୁମସ୍) ପୁରୁଷ, ଅଣ୍ଡିରା, ମନୁଷ୍ୟ ।

ପୁଂସ୍କାର—ବି. (ପୁମସ୍+କୃ+ଅ) ପୁରୁଷକାର, ପୁରୁଷତ୍ୱ, ପୌରୁଷ, ପ୍ରଶଂସା ।

ପୁଂସବନ—ବି. (ପୁମସ୍+ସୂ+ଣ.ଅନ) ଗର୍ଭିଣୀର ଗର୍ଭ ଧାରଣର ୨ୟ ବା ୩ୟ ମାସରେ କର୍ତ୍ତବ୍ୟ ସଂସ୍କାରବିଶେଷ ।

ପୁଂସ୍କାମା—ସ୍ତ୍ରୀ.ବିଂ. (ପୁଂ+କାମ+ଅ+ଆ) ପୁଂଶ୍ଚଲୀ, ଯେଉଁ ସ୍ତ୍ରୀ ପୁରୁଷକୁ ଇଚ୍ଛାକରେ ।

ପୁଂସ୍କୋକିଳ—ପୁଂ.ବି. ପୁରୁଷକୋକିଳ, ଅଣ୍ଡିରା କୋଇଲିପକ୍ଷୀ ।

ପୁଂସ୍ତ୍ୱ—ବି. (ପୁମସ୍+ତ୍ୱ) ଶୁକ୍ର, ପୁରୁଷତ୍ୱ, ପୁରୁଷଶକ୍ତି, ପୁଂଲିଙ୍ଗତ୍ୱ, ଭୂତୃଣ, ଗନ୍ଧତୃଣ ।

ପୁଂସ୍ତ୍ୱଦା—ସ୍ତ୍ରୀ.ବି. ଲକ୍ଷଣାମୂଳ, (ବିଂ) ପୁଂସ୍ତ୍ୱଦାୟିନୀମାତ୍ର ।

ପୁଂସ୍ତ୍ୱନାଶକ—ବି. ତୃଣଭେଦ ।

ପୁଂସ୍ତ୍ୱବିଗନ୍ଧ—ପୁଂ.ବି. (ବ.ବ୍ରୀ) ଭୂତୃଣ, ସୁଗନ୍ଧ ତୃଣବିଶେଷ ।

ପୁଂସ୍ପୁତ୍ର—ପୁଂ.ବି. ଅଗ୍ନିଶିଖା ।

ପୁଁ—ଗ୍ରା.ଅବ୍ୟ.ବାତକର୍ମର କ୍ଷୀଣ ଶବ୍ଦ । ଧୀରଭାବରେ ତୁରୀଆଦି ବଜାଇବାର ଧ୍ୱନି ।

ପୁକ୍‌ପୁକ୍—ଗ୍ରା. ଅବ୍ୟ. ପାଣି ଓ ଗୁହ୍ୟଦ୍ୱାରାଦି ଇତ୍ୟାଦିର ସଂକୋଚନ ଓ ପ୍ରସାରଣ ଦ୍ୱାରା ପାକୁ ପାକୁ କରିବା ।

ପୁକ—ପୁଂ.ବି. (ପୁ+କ) ପବିତ୍ର, ଉତ୍ସନ୍ନିକୃଷ୍ଟ ଦେଶାଦି ।

ପୁଂକ୍କଶ(ଷ,ସ)—ପୁଂ.ବି. (ପୁକ୍+କଶ୍+କ.ଅ) ଚଣ୍ଡାଳ, ନୀଚଜାତୀୟ ବ୍ୟକ୍ତି, (ଅଧି.ଅ) ଶବଗାଳୟ, ଚଣ୍ଡାଳାଦି ମ୍ଲେଚ୍ଛଜାତିଙ୍କ ବାସସ୍ଥାନ, (ବିଂ) ଅଧମ, ନୀଚ ।

ପୁକ୍କସୀ—ସ୍ତ୍ରୀ.ବି. (ପୁକ୍କସ+ଈ) ନୀଳଗୁଲ୍ମ, ମୁକୁଳ, କଳି, ଚଣ୍ଡାଳୀ, ଶବର ସ୍ତ୍ରୀ, କଣା, କଣିକା, କାଳିମା ।

ପୁଷ୍ପରାଜ—ଗ୍ରା. ବି. ସ୍ୱନାମ ପ୍ରସିଦ୍ଧ ସ୍ଫଟିକ ମଣିବିଶେଷ, ପୁଷ୍ପରାଗମଣି ।

ପୁ(ପୁଂ)ଗୁଲ—ଗ୍ରା ବି.ସ୍ତ୍ରୀ ସମ୍ପତ୍ତି, ସ୍ୱାମୀଙ୍କ ଭାଇମାନେ ଯହିଁରୁ ଭାଗ ପାଇବେ ନାହିଁ ।

ପୁଘା—ଗ୍ରା.(ଗଞ୍ଜାମ)ବି. କଞ୍ଚାହାଣ୍ଡି ।

ପୁଙ୍ଖ—ବି. (ପୁମସ୍+ଖନ୍+କ.ଅ) ବାଣର ପକ୍ଷଯୁକ୍ତ ଅଂଶ, କାଣ୍ଡମୂଳ, ବାଜପକ୍ଷୀ, ମଙ୍ଗଳାଚାର ।

ପୁଙ୍ଖତୀର୍ଥ—କ୍ଲୀ.ବି. ରାମକୃତ ତୀର୍ଥବିଶେଷ

ପୁଙ୍ଖାନୁପୁଙ୍ଖ—ଗ୍ରା.ବିଂ.(ପୁଙ୍ଖ+ଅନୁପୁଙ୍ଖ) ସୂକ୍ଷ୍ମାନୁସୂକ୍ଷ୍ମ, ଅତିସୂକ୍ଷ୍ମ, ତନ୍ନତନ୍ନ, ଗବେଷଣାଯୁକ୍ତ, ଉତ୍ସୁକ, (କ୍ରି.ବିଂ) ଅତି ସୂକ୍ଷ୍ମଭାବରେ କୌଣସି ବିଷୟର ମୂଳରୁ ଶେଷ ପର୍ଯ୍ୟନ୍ତ, ତନ୍ନତନ୍ନକରି, ଉତ୍ତମରୂପେ, ବିଶୃଙ୍ଖଳପୂର୍ବକ । [ (ଶର), ବାଣ ।

ପୁଙ୍ଖିତ—ବିଂ. (ପୁଙ୍ଖ+ଇତ) ପୁଙ୍ଖଯୁକ୍ତ

ପୁଙ୍ଖୋଟ—ପୁଂ.ବି. ପୁଂନକ୍ଷତ୍ର ।

ପୁଙ୍ଗ—ବି. (ପୁମସ୍+ଗମ୍+କ.ଅ) ସମୂହ, ଗଦା, ରାଶି, ପରିମାଣ ।

ପୁଙ୍ଗବ—ପୁଂ.ବି. (ପୁମସ୍+ଗୋ+ଅ) ବୃଷ, ଷଣ୍ଢ, ମହୋକ୍ଷ, ଋଷଭନାମକ ଔଷଧି, (ଲ.ଅର୍ଥ) ପ୍ରଧାନ ବ୍ୟକ୍ତି, ଶ୍ରେଷ୍ଠବ୍ୟକ୍ତି ।

ପୁଙ୍ଗଲ—ପୁଂ. ବି. (ପୁଂମସ୍+ଗଲ+କ.ଅ) ଆତ୍ମା ।

ପୁଙ୍ଗଲକେତୁ—ପୁଂ.ବି. (ବ.ବ୍ରୀ) ବୃଷଧ୍ୱଜ, ଶିବ, ମହାଦେବ । [ବାଦ୍ୟ ।

ପୁଙ୍ଗି—ଗ୍ରା.ବି. ନାଗେଶ୍ୱରୀ, ନାଗେଶ୍ୱର

ପୁଚ୍‌ଲୁକା—ଗ୍ରା.(ସମ୍ବ)ବି. ଘରର ମଇଳା ପାଣି ବୋହିଯାଇ ଜମାହେବା ସ୍ଥାନ, ପୁଲ ।

ପୁଚ୍‌ପୁଚ୍—ଗ୍ରା. ବିଂ. (ବ୍ରଣ ବା ଫଳ) ସଢ଼ିପଚିଯାଇ ଲତ ଲତ ହୋଇଥିବା ଲତରା, ଖତ, ନଷ୍ଟ ।

ପୁଚ୍‌କା—ଗ୍ରା.ବିଂ. (ସଂ-ପେଟକ) ଚେପଟା ଚେପା କରାଯାଇଥିବା ଫୁଲକା, (ଖାଦ୍ୟ) ପୋଚରା, ବାସିହୋଇ ସଢ଼ିଯାଇଥିବା, ପର୍ଯ୍ୟୁଷିତ, ପଚା, ସଢ଼ା ।

ପୁଚ୍‌କେବା—ଗ୍ରା.(ସିଂହଭୂମ)ବି. ଖସିଯିବା

ପୁଚ୍‌ରା—ଗ୍ରା.ବି. (ସଂ-କୁର୍ଚ୍ଚ) ଚୂନଲଧା ହେବାର ଚୋଟ ବେଣ୍ଡା, (ବିଂ) ବାସୀ, ସଢ଼ା, ପଚା ।

ପୁଚୁ—ଗ୍ରା. (ସମ୍ବ) ବିଂ. ଅତି ସାମାନ୍ୟ ସାମାନ୍ୟ କଥାରେ ପ୍ରଶ୍ନକରି ଉତ୍ତର ଦାତାକୁ ବିରକ୍ତ କରୁଥିବା (ବ୍ୟକ୍ତି) ।

ପୁଚୁଳ—ଗ୍ରା.ବିଂ: (ସଂ-ପୂତ) ପୋଚରା, ସଢ଼ା, ବାସୀ ଓ ଗନ୍ଧିଆ, (ଫଳ ଓ ଖାଦ୍ୟାଦି) ।

ପୁଚ୍ଛ—ବି. (ପିଚ୍ଛ+କ.ଅ) ଲାଙ୍ଗୁଳ, ଲାଞ୍ଜ, ଲାଞ୍ଜି, କୌଣସି ଲମ୍ବ ପଦାର୍ଥର ଶେଷଭାଗ, ଶେଷ ଟୁଣ୍ଡୁପୋଡ଼ା, ପଶ୍ଚଭାଗ, ଲୋମଯୁକ୍ତ ଲାଙ୍ଗୁଳ, କଳାପ, (ଗ୍ରା.ବି) ଶରୀରର ମଧ୍ୟଭାଗ ।

ପୁଚ୍ଛକଣ୍ଟକ—ଷ. (ପୁଚ୍ଛ+କଣ୍ଟକ-ବ.ବ୍ରୀ) ବୃଶ୍ଚିକ,ବିଛା,ଯେଉଁ ଜୀବର ଲାଙ୍ଗୁଡ଼ରେ କାହୁଡ଼ ଥାଏ ।

ପୁଚ୍ଛଟି—କ୍ଲୀ. ବ. ( ପୁଚ୍ଛ+ଟି ) ଆଙ୍ଗୁଠି ଫୁଟାଇବା, କାହୁଡ଼,ଶ୍ରେଷ୍ଠପୁଚ୍ଛା ।

ପୁଚ୍ଛାଣ୍ଡକ—ବ. (ପୁଚ୍ଛ+ଅଣ୍ଡକ) ତକ୍ଷକ ଜାତୀୟ ନାଗବିଶେଷ ।

ପୁଚ୍ଛଦା—ବ. ଲକ୍ଷଣାମୂଳ । [ ବିଶେଷ ।

ପୁଚ୍ଛନ୍ଦକ—ପୁଂ.ବ. ତକ୍ଷକବଂଶୀୟ ନାଗ-

ପୁଚ୍ଛଫଳ—ବ, ( ବ.ବ୍ରୀ ) ବଦରୀବୃକ୍ଷ, ବରକୋଳିଗଛ ।

ପୁଚ୍ଛା—ଗ୍ରା.ବ. (ସଂ-ପୃଚ୍ଛା) ପ୍ରଶ୍ନ,ଜିଜ୍ଞାସା, କହିବା, ଅନୁସନ୍ଧାନ, ପୋଚ୍ଛିବା,ସାନ-ଶାମୁଗ୍ରା ।

ପୁଚ୍ଛାପୁଚ୍ଛି—ଗ୍ରା.ବ ଓ ବଂ.(ସଂ-ପ୍ରୋଚ୍ଛା) ଅନ୍ୟୋନ୍ୟ ପ୍ରଶ୍ନକରିବା, ପଚରାପଚରି ।

ପୁଚ୍ଛିବା—ସ୍ତ୍ରୀ.ବ. ମାଷପର୍ଣ୍ଣୀ, ବଣବିରି ।

ପୁଚ୍ଛିବା—ଗ୍ରା.କ୍ରି. ପଚାରିବା.ପ୍ରଶ୍ନକରିବା ।

ପୁଚ୍ଛୀ—ବଂ. (ପୁଚ୍ଛ+ଇନ୍) ପୁଚ୍ଛଯୁକ୍ତ. (ବ୍ଲ) ଅର୍କବୃକ୍ଷ, ଅରଖଗଛ, ନକ୍ଷଦିଲଣ୍ଡା, ଲମ୍ବଗଛ ।

ପୁଚ୍ଛିବା—ପ୍ରା.(ସମ୍ବ)କ୍ରି. ପଚାରିବା ।

ପୁଞ୍ଜ—ବ, (ପୁମସ୍+ଜନ୍+କ.ଅ)ସମୂହ, ରାଶି, ସ୍ତୂପ, ପଞ୍ଝା, ଗଦା, ଗୋଷ୍ଠୀ ।

ପୁଞ୍ଜଦଳ--କ୍ଲୀ.ବ.ପୁନକଷଣ୍ଡ,ସୁନୁସୁନିଆଶାଗ

ପୁଞ୍ଜରାଜ—ପୁଂ.ବ.ଦଳପତି,ଜନୈକଗ୍ରନ୍ଥକାର ।

ପୁଞ୍ଜଶଃ—ଅବ୍ୟ.(ପୁଞ୍ଜ+ଶସ୍)ପୁଞ୍ଜ,ପୁଞ୍ଜ, ରାଶିରାଶି,ଗଦା ଗଦା,ଦଳ ଦଳହୋଇ

ପୁଞ୍ଜା—ଗ୍ରା.ବ.ପୁଞ୍ଜ, ସମୂହ, ଗୁଚ୍ଛଗୋଟା, ଗଣ୍ଡା, ଗୁଚ୍ଛିବସ୍ତୁର ସମାହାର ।

ପୁଞ୍ଜାଏ—ଗ୍ରା. ବ ଓ ବଂ.ଗୁଚ୍ଛଗୋଟା ବା ଗଣ୍ଡାଏ, ଅଳ୍ପ, ସାମାନ୍ୟ ମାତ୍ର ।

ପୁଞ୍ଜାକିଆ—ଗ୍ରା.ବଂ.ଗୁଚ୍ଛଗୋଟି ଲେଖାଏ ଏକତ୍ର ହୋଇ ।

ପୁଞ୍ଜି (ଞ୍ଜୀ)—ଗ୍ରା.ବ. ସମୂହ, ପାଣ୍ଠି, ମୂଳ-ଧନ, ସଞ୍ଚିତଧନ, ଗଦା, ଭଣ୍ଡାର ।

ପୁଞ୍ଜିକ— ବ. ପୁଞ୍ଜୀଭୂତତୁଷାର, (ଗ୍ରା. ବ ଓ ବଂ.) ପୁଞ୍ଜାଏ ଦେଖ ।

ପୁଞ୍ଜିତ—ବଂ. (ପୁଞ୍ଜ+ଇତ)ରାଶୀକୃତ, ରାଶୀଭୂତ, ଗଦା କରାଯାଇଥିବା, ଗଚ୍ଛିତ. ସଞ୍ଚିତ, ଗୋଷ୍ଠୀ କରାଯାଇଥିବା ।

ପୁଞ୍ଜିପାଣ୍ଠି—ଗ୍ରା. ବ. ସଞ୍ଚିତଧନ, ବ୍ୟବ-ସାୟର ମୂଳଧନ ।

ପୁଞ୍ଜିଷ୍ଠ—ବଂ. (ପୁଞ୍ଜ+ସ୍ଥା+କ.ଅ)ପକ୍ଷି-ପକ୍ଷିଘାତକ, ପୁଞ୍ଜୀଭୂତ, ରାଶୀକୃତ ।

ପୁଞ୍ଜୀକୃତ—ବଂ. ( ପୁଞ୍ଜ+ଚ୍ୱି+କୃତ ) ଏକତ୍ର ଗଦା କରାଯାଇଥିବା ।

ପୁଞ୍ଜୀଭୂତ—ବଂ. (ପୁଞ୍ଜ+ଚ୍ୱ+ଭୂତ) ଯାହା ଏକସ୍ଥାନରେ ଗଦାହୋଇଅଛି ।

ପୁଟ୍କା—ପ୍ରା. ସମ୍ବ. ବ. ଶାମୁଗ୍ରା ।

ପୁଟ୍ପୁଟ୍—ପ୍ରା.. ସମ୍ବ. ଅବ୍ୟ. ଛଟ୍ପଟ୍ (ଜୀବନ) ।

ପୁଟ୍ଲଇବା—ପ୍ରା. ସମ୍ବ. କ୍ରି. ଆଲିଙ୍ଗନ କରିବା, କୁଣ୍ଢାଇବା ।

ପୁଟ—ବ. (ପୁଟ୍+ଅ) ଜାତିଫଳ,ଜାଇ-ଫଳ, ଖୁରା, ଟୋପୁ,ଆବରଣ,ଘୋଡ଼ଣି, ଚଉପଦୀ, ଠୋଲା, ଦନା, ଲୁଗାଆଦର ଭଙ୍ଗ, ପୁଡ଼ା, ପୃଷ୍ଠା, ଗୋଲ ଓ ଗଭୀର ପାତ୍ର, ଖୋଲ, ଖୋପ, ଥଳି, ପିଣ୍ଡୁଲା, ଗଣ୍ଠିର, ପୁଡ଼ିଆ, କରତଳ କୃତଆଧାର, ପୋଷ, ଆଞ୍ଜୁଳା, ଖୋଲ. ଗଣ୍ଠି, ପାକ-ପାତ୍ର, କୋଇ, ପେଡ଼ା, ଡବା,ଫରୁଆ, ବାକସ, ସମ୍ପୁଟ, ପେଡ଼ି, ଅଗଣ୍ଠିରପାତ୍ର, ଖଳି, ଥାଳି, ଆଲିଙ୍ଗନ, ଓଷ୍ଠପୁଟ, ଟୋପି, ପଗଡ଼ି,କାନର ପୁଡ଼ା,ନାକର-ପୁଡ଼ା, ଗୁହ୍ୟଦେଶର ଆବରକବସ୍ତ୍ର, କୌପୀନ, ସଙ୍କୋଚନ, ଆଖିପତା, ସୂର୍ଯ୍ୟ ବା ଅଗ୍ନି ତାପରେ ଶୁଖାଇବାର ଏକଥର, କୋମଳ ଶଜା ବା ପତ୍ର ଉପରର ଆବରଣ, (ଗ୍ରା.ବ) କୌଣସି ପଦାର୍ଥ ଉପରେ ବୋଳାଯିବା ପତଳା-ସ୍ତର, ଦ୍ରାବକ, ବର୍ଣ୍ଣକସକାଶେ ଭଡ଼ା-ଦେଇ ଅନ୍ୟର ବଳଦକୁ ହଳ ଆଦି କାର୍ଯ୍ୟ ପାଇଁ ଆଣିବା ସ୍ଥିତ,ଦୁହାଁଳିଆ ଗାଈ ବା ମଇଁଷିକୁ ବନ୍ଧାଦେବା, (ପାଉଁଶଆଦିର) ଗଦା, ରାଶି ।

ପୁଟକ—କ୍ଲୀ. ବ. ,( ପୁଟ+କୈ+ଅ ) ପଦ୍ମ, ପୁଡ଼ା, ପତ୍ରନିର୍ମିତ ପାତ୍ର, ଖଳି, ଚଉପଦୀ,ଖୋଲ,ଖୋପ,ଜାଇଫଳ,ଭଙ୍ଗ

ପୁଟକିତ—ବଂ.(ପୁଟକ+ଇତ) ଆବଦ୍ଧ, ଆବୃତ, ଭଙ୍ଗକରା ଯାଇଥିବା ।

ପୁଟକିନୀ—ସ୍ତ୍ରୀ. ବ. ( ପୁଟକ+ଇନ୍+ଈ)ପଦ୍ମଯୁକ୍ତ ଦେଶ, ପଦ୍ମିନୀ,ପଦ୍ମସମୂହ, ପଦ୍ମନାଡ଼, ପଦ୍ମଲତା ।

ପୁଟଗ୍ରୀବ—ବ. (ବ.ବ୍ରୀ) ଗର୍ଗରୀ, ଗରା, ତମ୍ବାଗରା, ତାମ୍ରକୁମ୍ଭ ।

ପୁଟପାକ—ବ. ( ପୁଟ+ପାକ ) ଦୁଇଟି ହାଣ୍ଡିର ମୁହଁ ପରସ୍ପର ସଂଯୋଗକରି ଅଗ୍ନି ସାହାଯ୍ୟରେ ତଳ୍ଳିରେ କରାଯିବା ଔଷଧର ପାକକ୍ରିୟା,ମାଟି ବା ଗୋବର ପିଣ୍ଡୁଳା ମଧ୍ୟରେ ଔଷଧ ପୂରାଇ ନିଆଁରେ ପୋଡ଼ିବା ପ୍ରକ୍ରିୟା, ପୁଟପାକ ଦ୍ୱାରା ସିଦ୍ଧ ଔଷଧ, ଜୀର୍ଣ୍ଣକରଣ, ନେତ୍ର ପ୍ରସାଧନର ଉପାୟବିଶେଷ ।

ପୁଟଭେଦ—ପୁଂ. ବ. (୬ତତ୍) ନଦୀର ବକ୍ରଗତି, ଜଳଭଉଁରୀ,ନଗର, ବୀଣା ।

ପୁଟଭେଦନ—କ୍ଲୀ.ବ. (ଆଖିପତା)ମେଲା କରିବା, ଜଳାବର୍ତ୍ତ, ନଗର, ସହର, ଆତୋଦ୍ୟ, ଏକପ୍ରକାର ବାଜା ।

ପୁଟଲି—ଗ୍ରା. ବ. ପୁଡ଼ା, ପୁଡ଼ିଆ ।

ପୁଟା—ଗ୍ରା. ବ. (ସଂ-ପୁଟ) ଅନ୍ତ୍ରବୁଜୁଲା, ଗର୍ଭସ୍ଥ ଅନ୍ତାଦି. ଫୁସ୍ଫୁସ୍ ଯନ୍ତ୍ର, (ପ୍ରା, ବସ୍ତ୍ରର) ବାଉଁଶିଆଁ, ଟୋକେଇ ।

ପୁଟାପୁଟିକା—ବଂ. ପୂର୍ବେ ସଂଶ୍ଳିଷ୍ଟ ଏବଂ ପରେ ଅସଂଶ୍ଳିଷ୍ଟ ।

ପୁଟାଳିବା—ଗ୍ରା.କ୍ରି.ବନ୍ଧ ଯାଉଥିବା ଜଳ ଆଗରେ କୌଣସି ପ୍ରତିବନ୍ଧକ ପାଇ ଅଟକି ଯିବାରୁ ପୁଟ ପଡ଼ିବା,(ପ୍ରା.ଯାଜ, ବ) ଆଲିଙ୍ଗନ କରିବା, କୁଣ୍ଢାଇବା ।

ପୁଟାଲି—ପ୍ରା. (ସମ୍ବ)ବ. ପରସ୍ଥ, ଦେଉ-ଳର ତତ୍ତ୍ୱନେବା କର୍ମଚାରୀ ।

ପୁଟାଳୁ—ବ.(ପୁଟ+ଆଳୁ) କୋଲକନ୍ଦ, ବାରାହୀକନ୍ଦ ।

ପୁଠି—ଗ୍ରା. ବ, (ସଂ-ପୁଟ) ଅନ୍ତ୍ରବୁଜୁଲା, ଶଗଡ଼ ଚକର ପଦ୍ମ, ( ସଂ-ପ୍ରୋଷ୍ଠୀ ) କେରାଣ୍ଡିମାଛ ।

ପୁଟିଆ—ଗ୍ରା. ବି. ଅଣ୍ଠୁରୁ ଗଣ୍ଠିକି ପର୍ଯ୍ୟନ୍ତ ଗୋଡ଼ର ଅଂଶ ଓ ତାହାର ତଳ ପାଖର ମାଂସଳ ଅଂଶ ।

ପୁଟିକା—ବି. (ପୁଟ+କ+ଆ) ଏଳା, ଅଳେଇଚ, ପୁଡ଼ିଆ, (ଗ୍ରା.ବି) ନଳ ଗୋଡ଼ର ପଛ ପାଖର ମାଂସଳ ଅଂଶ ।

ପୁଟିତ—ବିଂ. (ପୁଟ+ଇତ) ଗ୍ରଥିତ, ଆବୃତ, ମର୍ଦ୍ଦିତ, ସଙ୍କୁଚିତ, ଅବରୁଦ୍ଧ, ପାଟିତ, ସ୍ୟୁତ, ଆଦ୍ୟ ଓ ଅନ୍ତରେ ମନ୍ତ୍ର ବା ଶ୍ଳୋକବିଶେଷ ଦ୍ୱାରା ଯୁକ୍ତ ହୋଇ ବୋଲାଯିବା (ଶ୍ଳୋକ ବା ମନ୍ତ୍ର) । (ବି) ଅଞ୍ଜଳିଯୁକ୍ତ କରଦ୍ୱୟ, ଦ୍ୱୟପୁଟ ।

ପୁଟୀ—ବି.(ପୁଟ+ଈ) କୌପୀନ, ଆଚ୍ଛାଦନ, ଘୋଡ଼ଣି, ଢାଙ୍କୁଣି, ସୀମାବଦ୍ଧ ଖୋଳ ସ୍ଥାନ, ପତ୍ରର ଠୋଲା, ଡଉପରୀ, ଦନା ।

ପୁଟୁକା—ଗ୍ରା. ବିଂ. ବେଣୀ ଲମ୍ବା ନୁହେଁ କିନ୍ତୁ ମୋଟା ଗୁଚ୍ଛ ।

ପୁଟୁଲା—ଗ୍ରା.(ସଂ-ପୋଟଲିକା) ପୋଟଳା, ପୁଡ଼ା । [ପୁଡ଼ା ।

ପୁଟୁଳି—ଗ୍ରା.ବି. (ସଂ-ପୋଟଲିକା) କ୍ଷୁଦ୍ର

ପୁଟୁଳିବଣିଆ—ଗ୍ରା.ବି.ପୋଟଳ ବଣିଆ, ଗନ୍ଧବଣିକ (ଜାତି) ।

ପୁଟେଟଜ—କ୍ଳୀ.ବି.ଶ୍ୱେତଛତ୍ର, କନାଛତା

ପୁଟୋଦକ—ବି. ନାରକେଳ, ନଡ଼ିଆ ।

ପୁଠି—ପ୍ରା. (ସମ୍ବ)ବି. (ସଂ-ପୃଷ୍ଠ) ଶଗଡ଼ ଚକର ପୁଠି, ପଇଆ, (ସଂ-ପ୍ରୋଷ୍ଠୀ) କେରଣ୍ଡିମାଛ ।

ପୁଡ଼ା—ଗ୍ରା. ବି. (ସଂ-ପୁଟ) ନାକର ଦୁଇ ପାଖର ରନ୍ଧ୍ର, ଜାଉଁଳି କବାଟର ଏକ ପାଳ, ଶସ୍ୟାଦିର କ୍ଷୁଦ୍ର ଓଳିଆ, ନୀଚ ସହରଆଦି ଜାତିର ଲୋକେ କନ୍ୟା ପ୍ରସଙ୍ଗ ନେଇ କନ୍ୟା ଘରକୁ ନେବା ଚୁଡ଼ାଗୁଡ଼ ଆଦିର ଭାର ।

ପୁଡ଼ିଆ—ଗ୍ରା.ବି.(ସଂ-ପୁଟିକା) କ୍ଷୁଦ୍ରପୁଡ଼ା, ଘାସ ଦ୍ରବ୍ୟତର ସାନ ବଡ଼ା, ଏକପାନ ଔଷଧ ଚୂର୍ଣ୍ଣାଦି ପୂର୍ଣ୍ଣ କାଗଜର ପୁଡ଼ା ।

ପୁଡ଼ୁକା—ଗ୍ରା. (ଗଞ୍ଜାମ) ବି. କୌଣସି ଖାଦ୍ୟଜିନିଷ ବାନ୍ଧିକ ନଆଁରେ ପୋଡ଼ାଯିବା ପତ୍ରର ପୁଡ଼ା, ପତ୍ରର ପୋଡ଼ା ।

ପୁଡ଼ୁଗ—ଗ୍ରା. ବି. (ସଂ-ପୁଟକ) ଶସ୍ୟାଦିର ଓଳିଆ, ଶସ୍ୟାଦିର ପରିମାଣବିଶେଷ, ୨୦ଖଣ୍ଡି, ଭରଣକରୁ ଅଧା ।

ପୁଡ଼ୁଗା—ପ୍ରା.(ସମ୍ବ)ବି. ପୋଡ଼ା ହୋଇଥିବା ବାଇଗଣଆଦି ଫଳ ଓ ତାହାର ଭରତା ।

ପୁଡ଼ୁଙ୍ଗା—ପ୍ର.(ଗଞ୍ଜାମ)ବି. ପତ୍ରରପୋଡ଼ା

ପୁଡ଼ୁର—ପ୍ରା. (ସମ୍ବ)କ୍ରି. ମଇଁଷି ଭୁଆ ।

ପୁଡ଼େଇବା—ପ୍ରା.(ସମ୍ବ)କ୍ରି. ପୋଡ଼ିଦେବା

ପୁଡ଼୍ଡା—ପ୍ରା. (ଗଞ୍ଜା)ବି. ପୋଡ଼ପିଠା ।

ପୁଢ଼—ପ୍ରା. (ସମ୍ବ ଓ ଗ୍ରାମ୍ୟ)କ୍ରି. ପୋଢୁଅ, ଅଣ୍ଡିରା ମଇଁଷି, ପଣ୍ଡା ।

ପୁଢ଼ା—ପ୍ରା.(ସମ୍ବ)ବି.ପୋଢ଼ା, ପୁଢ଼ ଦେଖ

ପୁଣ—ଗ୍ରା. ଅବ୍ୟ. (ସଂ-ପୁନଃ) ପୁନର୍ବାର, ଏବଂ, ଅଧିକନ୍ତୁ, ଆହୁରି, ମଧ୍ୟ, ପରେ, କିନ୍ତୁ, ପଶ୍ଚାନ୍ତରେ, ପୁଣ୍ଡା ।

ପୁଣପୁଣ—ଗ୍ରା. ଅବ୍ୟ. ପୁନଃପୁନଃ, ଉପର୍ଯ୍ୟୁପରି, ଥରକୁଥର ।

ପୁଣି—ଗ୍ରା. ଅବ୍ୟ. ପୁଣ ଦେଖ ।

ପୁଣ୍ଡ—ପୁଂ. ବି. (ପୁଣ୍ଡ+କ.ଅ) ତିଳକ, ଚନ୍ଦନର ଚିତା ।

ପୁଣ୍ଡରୀ—ବି.(ପୁଣ୍ଡ+ଅରୀ) ସୁବାସିତ ପତ୍ର ଗୁଳ୍ମବିଶେଷ, ସ୍ଥଳପଦ୍ମ, ପୁଣ୍ଡରୀକ ।

ପୁଣ୍ଡରୀକ—ବି.(ପୁଣ୍ଡ+କ.ଅରୀକ) ଶ୍ୱେତପଦ୍ମ, ପଦ୍ମମାତ୍ର, ଶ୍ୱେତଛତ୍ର, ଧଳାରଙ୍ଗ ଧଳାରଙ୍ଗର ଆମ୍ବ, କମଣ୍ଡଳୁ, କୁଷ୍ଠରୋଗ, ଅଗ୍ନିକୋଣର ଦିଗ୍ଗଜ, ଚିତାବାଘ, ବ୍ୟାଘ୍ର, କୋଷକାରବିଶେଷ, ସହକାର, ହାତୀଙ୍କୁ କରିବା ଜ୍ୱର, ଗଜଜ୍ୱର, ଦମନକ, ଦଅଣାଗଛ, ଗଣଧର, ଧାନ୍ୟବିଶେଷ, ପର୍ବତବିଶେଷ, ତୀର୍ଥବିଶେଷ, ଯକ୍ଷବିଶେଷ, ନାଗବିଶେଷ, ପଦ୍ମନାଗ, ଶର୍କରା, ଚନ୍ଦ୍ର, ଆଜ୍ୟ, ବଶିଷ୍ଠଙ୍କ କନ୍ୟା, ଅପ୍ସରାବିଶେଷ, ମେଦିନୀପୁରର ପ୍ରାଚୀନ ନାମ, ତିଳକ, ଶ୍ୱେତହସ୍ତୀ, ଏକପ୍ରକାର ଶ୍ୟେନପକ୍ଷୀ, ଧଳା ସାପ, ଚିତାସାପ, ଅଗ୍ନି, ବାଣ, ଶଙ୍ଖ, ଆକାଶ, ରଘୁବଂଶର ଏକ ରାଜା, ସୂର୍ଯ୍ୟବଂଶୀୟ ରାଜାବିଶେଷ, ରକ୍ତାକ୍ଷୀ ଦେବୀଙ୍କର ଭକ୍ତ ।

ପୁଣ୍ଡରୀକପ୍ଲବ—ବି. ଜଳଚର ପକ୍ଷୀବିଶେଷ

ପୁଣ୍ଡରୀକମୁଖୀ—ସ୍ତ୍ରୀ.ବି. ନିର୍ବିଷ ଜଳୌକାବିଶେଷ ।

ପୁଣ୍ଡରୀକବାସୁଦେବ—ବି. ପୁଣ୍ଡରୀକନାମଧାରୀ ଜଣେ ପୌରାଣିକ ରାଜା ।

ପୁଣ୍ଡରୀକାକ୍ଷ—ବି. (ପୁଣ୍ଡରୀକ+ଅକ୍ଷ) ପୁଣ୍ଡାର୍ଯ୍ୟ, କୃଷ୍ଣ, ଜଳଚର ପକ୍ଷୀବିଶେଷ, (ବିଂ.ବ.ବ୍ରୀ) ଶ୍ୱେତପଦ୍ମ ପରି ସୁନ୍ଦର ଚକ୍ଷୁବିଶିଷ୍ଟ ।

ପୁଣ୍ଡରୀକାୟତାକ୍ଷ—ପୁଂ,ବି. ଶ୍ୱେତପଦ୍ମପରି ବିସ୍ତୃତ ଚକ୍ଷୁବିଶିଷ୍ଟ (ବ୍ୟକ୍ତି) ।

ପୁଣ୍ଡରୀସ୍ରକ—କ୍ଳୀ.ବି.(ପୁଣ୍ଡ+ଅରୀସ୍ରକ) ସ୍ଥଳପଦ୍ମ, ପ୍ରପୌଣ୍ଡରୀକ ।

ପୁଣ୍ଡର୍ଯ୍ୟ—ବି. (ପୁଣ୍ଡ+ଅର୍ଯ୍ୟ) ପୁଣ୍ଡରୀ ଦେଖ, ନେତ୍ରରୋଗ ନିବାରକ ଭୈଷଜ୍ୟ ଲତାବିଶେଷ ।

ପୁଣ୍ଡା—ପ୍ରା(କଟକ)ବିଂ. ହୃଷ୍ଟପୁଷ୍ଟ, କୋଧା, କୋଦା, (ଗ୍ରା.ବି) ଗାଈମଇଁଷିଆଦିଙ୍କ (ପଲ ବା ଦଳ) ।

ପୁଣ୍ଡ୍ର—ବି. (ପୁଣ୍ଡ+ର) ଧଳାରଙ୍ଗର ଆଖୁ, ବଙ୍ଗର ପୂର୍ବ, ଦୈତ୍ୟବିଶେଷ, ତିଳକ, କପାଳର ଚିତା, ଅଙ୍କିତଚିହ୍ନ, ଅତିମୁକ୍ତକ, ପୁଣ୍ଡରୀକ, ଭୁବନ, ତିଳକ ବୃକ୍ଷ, ଶ୍ୱେତପଦ୍ମ, କୃମି, ମାଧବୀଲତା, ଗୌଡ଼ଦେଶ ଓ ତଦ୍‌ଦେଶବାସୀ ବ୍ୟକ୍ତି, ତିନିଶଗଛ, ହ୍ରସ୍ୱପ୍ଳକ୍ଷ, ଜିଙ୍ଗଗଛ, ପୁରାଣୋକ୍ତ ଭାରତର ପ୍ରାଚୀନ ଜାତିବିଶେଷ, ଘୋଡ଼ା ଦେହରେ ରୋମଚକ୍ରର ଭଙ୍ଗୀ ଅନୁସାରେ ହେବା ଶଙ୍ଖଚକ୍ର ଗଦାପଦ୍ମ ଖଡ୍ଗ ଅଙ୍କୁଶ ଆଦିର ଚିହ୍ନ ।

ପୁଣ୍ଡ୍ରକ—ବି. (ପୁଣ୍ଡ୍ର+କ) ପୁଣ୍ଡ୍ର ଦେଖ

ପୁଣ୍ଡ୍ରକା—ସ୍ତ୍ରୀ.ବି. ମାଧବୀଲତା, ତିଳକବୃକ୍ଷ, ଧଳା ଯୁଈଫୁଲଗଛ ।

ପୁଣ୍ଡ୍ରବର୍ଦ୍ଧନ—ବି.ପୁଣ୍ଡ୍ରଦେଶର ପ୍ରାଚୀନ ରାଜଧାନୀ ।

ପୁଣ୍ଡ୍ରଶର୍କରା—ସ୍ତ୍ରୀ.ବି. ଧଳା ଆଖୁରୁ ଗୁଡ଼ ବା ସେହି ଗୁଡ଼ରୁ ଉତ୍ପନ୍ନ ଚିନି ।

ପୁଣ୍ଡ୍ରସାହ୍ୱ—ବି. ପୁଣ୍ଡ୍ରସାକବୃକ୍ଷ ।
ପୁଣ୍ୟ—ବି. (ପୁଣ୍+ଯ) ଶୁଭାଦୃଷ୍ଟ,ସଦାଚରଣ ଅନୁଷ୍ଠାନ, ଧର୍ମ, ସୁକୃତ,ପବିତ୍ରତା, ପରୋପକାର, ଶୋଭନ କର୍ମ, (ବିଂ) ସୁନ୍ଦର, ପୂତ, ନିର୍ମଳ, ଧର୍ମାନୁମୋଦିତ, ଧାର୍ମିକ, ଶୁଭସୂଚକ,ସୁଗନ୍ଧ, ଆନନ୍ଦପ୍ରଦ, ସତ୍, ନୈତିକ, ନିଷ୍ପାପ. (ଗ୍ରା.ବି) ଧର୍ମଉତ୍ସବ, ପୁଣ୍ୟ, ଧର୍ମାଥ-ବ୍ରତ ସାଧନ ।
ପୁଣ୍ୟକ—ବି. (ପୁଣ୍ୟ+କୈ+ଅ)ବ୍ରତ, ବିଷ୍ଣୁ, ପୁତ୍ରର କଲ୍ୟାଣ କାମନାରେ ପୁତ୍ରବତୀ ସ୍ତ୍ରୀର ଆଚରିତ ବ୍ରତ ।
ପୁଣ୍ୟବ୍ରତ—କ୍ଲୀ. ବି. ସନ୍ତାନ ଲାଭାର୍ଥ ସଧବା ସ୍ତ୍ରୀମାନଙ୍କର ସବିଧିରେ ଏକବର୍ଷକାଳ କର୍ତ୍ତବ୍ୟ ବିଷ୍ଣୁପୂଜା ।
ପୁଣ୍ୟକର୍ତ୍ତା—ପୁଂ,ବିଂ. (ପୁଣ୍ୟ+କର୍ତ୍ତୃ) ପୁଣ୍ୟକର୍ମକାରକ, ଯେ ପୁଣ୍ୟକର୍ମ କରେ ।
ପୁଣ୍ୟକର୍ମ—କ୍ଲୀ. ବି. ଶୁଭକର୍ମ, ଯେଉଁ କାର୍ଯ୍ୟ ଅନୁଷ୍ଠାନରେ ପୁଣ୍ୟ ହୁଏ ।
ପୁଣ୍ୟକର୍ମା—ପୁଂ.ବିଂ. (ବ.ବ୍ରୀ) ଧାର୍ମିକ, ସତ୍, ସତ୍କର୍ମି ।
ପୁଣ୍ୟକାଳ—ବି. (କ.ଧା) ପୁଣ୍ୟଜନକ କାଳ, ଗ୍ରହମାନଙ୍କର ନିର୍ଦ୍ଦିଷ୍ଟ ସ୍ଥାନରେ ଉପସ୍ଥାନ ଯୋଗୁଁ ଯେଉଁ ଶୁଭ ବା ପବିତ୍ର କାଳ ଉପସ୍ଥିତ ହୁଏ ।
ପୁଣ୍ୟକୀର୍ତ୍ତନ—ବି.(ବ.ବ୍ରୀ) ବିଷ୍ଣୁ,(କ.ଧା) ପୁଣ୍ୟବାକ୍ୟର କଥନ,(ବିଂ)ପୁଣ୍ୟଜନକ କୀର୍ତ୍ତିନଯୁକ୍ତ ।
ପୁଣ୍ୟକୀର୍ତ୍ତି—ବି. (କ.ଧା) ପୁଣ୍ୟଶ୍ଳୋକ, ବିଷ୍ଣୁ, ପୁଣ୍ୟକାର୍ଯ୍ୟଜନକ ଯଶ, ବୁଦ୍ଧଙ୍କର ନାମାନ୍ତର, (ବିଂ) ପୁଣ୍ୟବାନ୍, ପୁଣ୍ୟଜନିତ କୀର୍ତ୍ତିବିଶିଷ୍ଟ ।
ପୁଣ୍ୟକୃତ୍—ବିଂ. ( ପୁଣ୍ୟ+କୃ+କ୍ୱିପ୍ ) ପୁଣ୍ୟକର୍ତ୍ତା, ଧାର୍ମିକ, ସତ୍କର୍ମି ।
ପୁଣ୍ୟକୃତ୍ୟା—ସ୍ତ୍ରୀ.ବି. ପୁଣ୍ୟକର୍ମ ।
ପୁଣ୍ୟକ୍ଷୟ—ବି. ( ୬ତତ୍ ) ଆପଣାର ସଞ୍ଚିତ ପୁଣ୍ୟଫଳର ବିନାଶ ।
ପୁଣ୍ୟକ୍ଷେତ୍ର—ବି. ପୁଣ୍ୟଭୂମି, ତୀର୍ଥ,ପୀଠ, ପବିତ୍ରଧାମ, କୁରୁକ୍ଷେତ୍ର, ଆର୍ଯ୍ୟାବର୍ତ୍ତ, ହିମାଳୟ ଓ ବିନ୍ଧ୍ୟପର୍ବତ ମଧ୍ୟବର୍ତ୍ତୀ ଦେଶ, ଶାକ୍ୟ ବୁଦ୍ଧଙ୍କର ନାମାନ୍ତର ।
ପୁଣ୍ୟଗନ୍ଧ—ବି. (ବ.ବ୍ରୀ) ଚମ୍ପକ,ଚମ୍ପାଗଛ, (କ.ଧା) ପବିତ୍ର ଗନ୍ଧ,ମନୋହର ଗନ୍ଧ, ସ୍ୱର୍ଣ୍ଣଯୂଥିକା, ହଳଦିଆ ଯୂଇ ।
ପୁଣ୍ୟଗନ୍ଧି—ବିଂ. (ପୁଣ୍ୟ+ଗନ୍ଧ+ଇ) ମନୋହର ଗନ୍ଧଯୁକ୍ତ,ପବିତ୍ର ଗନ୍ଧଯୁକ୍ତ ।
ପୁଣ୍ୟଗର୍ଭା—ସ୍ତ୍ରୀ. ବି.ଗଙ୍ଗା ।
ପୁଣ୍ୟଗୃହ—କ୍ଲୀ.ବି. ପୁଣ୍ୟଶାଳା, ପବିତ୍ରଗୃହ ।
ପୁଣ୍ୟଜନ—ପୁଂ. ବି (କ.ଧା) ରାକ୍ଷସ, ସଜ୍ଜନ, ଯକ୍ଷ ।
ପୁଣ୍ୟଜନକ—ବି. (ପୁଣ୍ୟ+ଜନ୍,ଣିଚ୍+କ.ଅକ) ପୁଣ୍ୟପ୍ରଦ ଦେଖ ।
ପୁଣ୍ୟଜନେଶ୍ୱର—ପୁଂ.ବି. (ପୁଣ୍ୟ+ଜନ୍+ଈଶ୍ୱର)-୬ତତ୍; କୁବେର ।
ପୁଣ୍ୟଜିତ—ପୁଂ,ବି. ଚନ୍ଦ୍ରଲୋକ ।
ପୁଣ୍ୟତର—ସ୍ତ୍ରୀ,ବିଂ.(ପୁଣ୍ୟ+ତର+ଆ) ସୂର୍ଯ୍ୟସଂକ୍ରମଣଜନିତ ଅଧିକ ପୁଣ୍ୟଜନକ (ବ୍ୟକ୍ତି) । [ ଭାବ ।
ପୁଣ୍ୟତା—ବି. ପୁଣ୍ୟତ୍ୱ, ପୁଣ୍ୟକାର୍ଯ୍ୟର
ପୁଣ୍ୟତୃଣ—କ୍ଲୀ.ବି. ଶ୍ୱେତ କୁଶ ।
ପୁଣ୍ୟତୋୟ—ବିଂ. (ବ.ବ୍ରୀ)ପବିତ୍ର ଜଳବିଶିଷ୍ଟ, (ସ୍ତ୍ରୀ) ପୁଣ୍ୟତୋୟା ।
ପୁଣ୍ୟତୋୟା—ସ୍ତ୍ରୀ.ବି. (ବ.ବ୍ରୀ)ଗଙ୍ଗାନଦୀ
ପୁଣ୍ୟଦ—ବିଂ. (ପୁଣ୍ୟ+ଦା+ଅ) ପୁଣ୍ୟଦାୟକ, ସୁକୃତପ୍ରଦାନକାରୀ, (ସ୍ତ୍ରୀ) ପୁଣ୍ୟଦା ।
ପୁଣ୍ୟଦର୍ଶନ—ପୁଂ.ବିଂ. (ବ.ବ୍ରୀ) ଦେବପ୍ରତିମାଦି, ଯାହାର ଦର୍ଶନରେ ପୁଣ୍ୟ ହୁଏ, (ବି) ଚାଷପକ୍ଷୀ, ଭଦଭଦଳିଆ ।
ପୁଣ୍ୟଦାୟକ—ବିଂ. (ପୁଣ୍ୟ+ଦାୟକ) ପୁଣ୍ୟପ୍ରଦ ଦେଖ ।
ପୁଣ୍ୟଦୁହ୍—ବିଂ.(ପୁଣ୍ୟ+ଦୁହ+କ୍ୱିପ୍) ପୁଣ୍ୟଧୁକ୍, ପୁଣ୍ୟଦାତା । [ ବିଶିଷ୍ଟ ।
ପୁଣ୍ୟଦେହା—ଗ୍ରା. ବିଂ. ପବିତ୍ର ଶରୀର-
ପୁଣ୍ୟପୁରୁଷ—ବି. ସତ୍ଶ୍ଳୋକ,ସାଧୁବ୍ୟକ୍ତି, ପବିତ୍ରଚେତା ବ୍ୟକ୍ତି ।
ପୁଣ୍ୟପ୍ରତାପ—ବିଂ. ପୁଣ୍ୟବଳରେ ବଳୀୟାନ୍ ।
ପୁଣ୍ୟପ୍ରଦ—ବିଂ, (ପୁଣ୍ୟ+ପ୍ର+ଦା+କ.ଅ) ପୁଣ୍ୟପ୍ରଦାନକାରୀ, ଯାହା ପବିତ୍ରତା ଦିଏ । [ ବିଶେଷ ।
ପୁଣ୍ୟପ୍ରସବ—ବି,ବୌଦ୍ଧମାନଙ୍କର ଦେବ-
ପୁଣ୍ୟଫଳ—ବି. (୬ତତ୍) ଲକ୍ଷ୍ମ୍ୟାବାସବନବିଶେଷ,କୁଞ୍ଜବନ,ଆରାମ,ଉପବନ, ସତ୍କାର୍ଯ୍ୟର ଫଳ ।
ପୁଣ୍ୟଫଳଭାଗୀ-ପୁଂ.ବିଂ.ପୁଣ୍ୟଭାଗୀଦେଖ ।
ପୁଣ୍ୟଭାକ୍—ବିଂ. ( ପୁଣ୍ୟଭଜ+କ୍ୱିପ୍ ) ପୁଣ୍ୟାତ୍ମା, ପୁଣ୍ୟଶୀଳ, ପୁଣ୍ୟଭାଗୀ ।
ପୁଣ୍ୟଭାଗୀ—ପୁଂ. ବିଂ. (ପୁଣ୍ୟ+ଭାଗିନ୍) ପୁଣ୍ୟକାର୍ଯ୍ୟରେ ବା ଫଳରେ ଯାହାର ଭାଗ ରହେ ।
ପୁଣ୍ୟଭୂ—ସ୍ତ୍ରୀ. ବି. (କ.ଧା) ଆର୍ଯ୍ୟାବର୍ତ୍ତ, ପୀଠ, ତୀର୍ଥ, ପୁତ୍ରବତୀ ସ୍ତ୍ରୀ ।
ପୁଣ୍ୟଭୂମି—ସ୍ତ୍ରୀ. ବି. ପୁଣ୍ୟଭୂ ଦେଖ ।
ପୁଣ୍ୟମିତ୍ର—ବି. ବୌଦ୍ଧମାନଙ୍କର ସପ୍ତବିଂଶତିତମ ଧର୍ମଗୁରୁ ବା ସ୍ଥବିର ।
ପୁଣ୍ୟଯଶଃ--ବି.ବୌଦ୍ଧମାନଙ୍କର ଏକାଦଶ ଧର୍ମଗୁରୁ, (ବିଂ) ପୁଣ୍ୟଯଶୋଯୁକ୍ତ ।
ପୁଣ୍ୟରାଜ—ବି. ଭର୍ତ୍ତୃହରି କୃତ ବାକ୍ୟପଦୀୟ ଗ୍ରନ୍ଥର ଟୀକାକାର ।
ପୁଣ୍ୟଲାଭ—ବି.(୬ତତ୍)ସୁକୃତର ଅର୍ଜ୍ଜନ
ପୁଣ୍ୟଲୋକ—ପୁଂ.ବି. (କ.ଧା) ବୈକୁଣ୍ଠ, ଚନ୍ଦ୍ରଲୋକାଦି, ସାଧୁବ୍ୟକ୍ତି, ଧାର୍ମିକ ।
ପୁଣ୍ୟବନ୍ତ—ଗ୍ରା. ପୁଂ. ବିଂ. ପୁଣ୍ୟବାନ୍ ।
ପୁଣ୍ୟବାନ୍—ପୁଂ. ବିଂ. (ପୁଣ୍ୟ+ବତ୍) ଧାର୍ମିକ, ଭାଗ୍ୟବାନ୍, ସୁନ୍ଦର,ମନୋଜ୍ଞ, ଧର୍ମଶୀଳ, ଧନ୍ୟ, ସୌଭାଗ୍ୟଶାଳୀ ।
ପୁଣ୍ୟଶକୁନ—କ୍ଲୀ.ବି. ଶୁଭସୂଚକ ଶକୁନ, ଶୁଭଚିହ୍ନ । [ ଗୃହ ।
ପୁଣ୍ୟଶାଳା—ସ୍ତ୍ରୀ, ବି. ପବିତ୍ରଗୃହ,ପୁଣ୍ୟ-
ପୁଣ୍ୟଶାଳୀ—ପୁଂ.ବିଂ. ପୁଣ୍ୟବାନ୍‌ଦେଖ ।
ପୁଣ୍ୟଶୀଳ—ପୁଂ.ବିଂ. (ବ.ବ୍ରୀ)ଧର୍ମଶୀଳ, ଧାର୍ମିକ ।
ପୁଣ୍ୟଶୀଳା—ସ୍ତ୍ରୀ. ବି. ଗାୟତ୍ରୀ ।
ପୁଣ୍ୟଶ୍ଳୋକ—ପୁଂ, ବି. ବିଷ୍ଣୁ, ଯୁଧିଷ୍ଠିର,

ନଳରାଜା, (ବିଂ) ପୂତଚରିତ୍ର, ଧାର୍ମିକ, ପବିତ୍ରସ୍ୱଭାବ ।

ପୁଣ୍ୟଶ୍ଳୋକା—ସ୍ତ୍ରୀ.ବି. ଦ୍ରୌପଦୀ,ସୀତା ।

ପୁଣ୍ୟସଞ୍ଚୟ—ପୁଂ. ବି. (ଷତତ୍) ପୁଣ୍ୟ-ଉପାର୍ଜନ, ସତ୍କାର୍ଯ୍ୟ ଦ୍ୱାରା ପୁଣ୍ୟଲାଭ ।

ପୁଣ୍ୟସ୍ଥାନ—କ୍ଲୀ.ବି.(କ.ଧା)ତୀର୍ଥାଦି ସ୍ଥାନ (ଜ୍ୟୋତିଷ) ଲଗ୍ନଠାରୁ ନବମସ୍ଥାନ ।

ପୁଣ୍ୟହା—ବିଂ. (ପୁଣ୍ୟ+ହନ୍+କ୍ୱିପ୍) ଯାହା ପୁଣ୍ୟ ନାଶକରେ ।

ପୁଣ୍ୟା—ସ୍ତ୍ରୀ. ବି. (ପୁଣ୍ୟ+ଆ) ତୁଳସୀ-ଗଛ, ନଦୀବିଶେଷ ।

ପୁଣ୍ୟାକାଙ୍କ୍ଷା—ବି. (କ.ଧା) ପବିତ୍ରଇଚ୍ଛା, (ଷତତ୍) ପୁଣ୍ୟଲାଭ କରିବାର ଇଚ୍ଛା, ସତ୍କାର୍ଯ୍ୟ କରିବାର ଇଚ୍ଛା ।

ପୁଣ୍ୟାତ୍ମା—ବିଂ. ( ବ.ବ୍ରୀ ) ଧର୍ମଶୀଳ, ଧର୍ମାତ୍ମା, ପୁଣ୍ୟଶୀଳ, ପବିତ୍ରସ୍ୱଭାବ ।

ପୁଣ୍ୟାର୍ଥୀ—ପୁଂ, ବିଂ. (ପୁଣ୍ୟ+ଅର୍ଥ+ଇନ୍)ପୁଣ୍ୟଲାଭେଚ୍ଛୁ,(ସ୍ତ୍ରୀ) ପୁଣ୍ୟାର୍ଥିନୀ ।

ପୁଣ୍ୟାଲଙ୍କୃତ—ବିଂ.(ତତତ୍)·ପୁଣ୍ୟଦ୍ୱାରା ପ୍ରଶଂସିତ, ପୁଣ୍ୟାତ୍ମା ।

ପୁଣ୍ୟାହ—କ୍ଲୀ. ବି. ( ପୁଣ୍ୟ+ଅହନ୍ ) ପୁଣ୍ୟଦିନ, ଶୁଭଦିବସ, ପବିତ୍ରଦିବସ ।

ପୁଣ୍ୟାହବାଚନ—କ୍ଲୀ, ବି. ବୈଦିକ ଓ ମାଙ୍ଗଳିକ କର୍ମର ଆଦ୍ୟରେ କରାଯିବା ସ୍ୱସ୍ତିବାଚନ ବା ସଙ୍କଳ୍ପ ।

ପୁଣ୍ୟୋଦକା—ସ୍ତ୍ରୀ. ବି. ପବିତ୍ରଜଳଯୁକ୍ତା ନଦୀ,(ଯଥା—ଗଙ୍ଗା,ଯମୁନା,ସରସ୍ୱତୀ, ସିନ୍ଧୁ, ନର୍ମଦା, ଗୋଦାବରୀ, କାବେରୀ, ଏହି ସପ୍ତ ପବିତ୍ରତୋୟା ନଦୀ) (ବିଂ) ପୂତସଲିଳା ।

ପୁଣ୍ୟୋଦୟ—ପୁଂ.ବି. (ଷତତ୍) ପୁଣ୍ୟ-କର୍ମର ଉଦୟ, ସୌଭାଗ୍ୟବୃଦ୍ଧି ।

ପୁତ୍—କ୍ଲୀ.ବି.ନରକବିଶେଷ,ବିଂ.କୁତ୍ସିତ ।

ପୁତ୍‌ପୁତ୍—ଗ୍ରା.ଅବ୍ୟ. ପୁଚ୍‌ପୁଚ୍ ଦେଖ ।

ପୁତ୍‌ଲି—ପ୍ରା. (ସମ୍ବଲ) ବି. ପୁତ୍ତଳିକା, କୁଣ୍ଢେଇ, ଚୌଡ଼ାମୁହାଁ ଛୋଟ ହାଣ୍ଡି ।

ପୁତ—ଗ୍ରା. ବି. (ସଂ-ପୁତ୍ର) ପୁତ୍ର, ପୁଅ ।

ପୁତକ—ବି. ପକ୍ଷଯୁକ୍ତ କ୍ଷୁଦ୍ର ପୋକ,କ୍ଷୁଦ୍ର-ପତଙ୍ଗ ।

ପୁତଖାଇ—ଗ୍ରା.ସ୍ତ୍ରୀ.ବିଂ. ପୁତ୍ରଘ୍ନୀ,ଯାହାର ପୁଅ ମରିଅଛି, ପୁଅଖାଇ ।

ପୁତମୁଣ୍ଡଖାଇ—ଗ୍ରା. ସ୍ତ୍ରୀ. ବି. ଯେ ଆପଣା ପୁଅର ମୁଣ୍ଡକୁ ଖାଏ, ଡାହାଣୀ (ଗାଳି) ।

ପୁତା—ଗ୍ରା. ଅବ୍ୟ. ପୁତ, ପୁତ୍ର, ପୁଅ, ପୋତା ଦେଖ ।

ପୁତି—ଗ୍ରା. ବି. ପଥରମାଳି, ଅଠିଲମାଳି, ଛୋଟ ଛୋଟ କାଚଦାନାର ମାଳି ।

ପୁତୁରା—ଗ୍ରା. ପୁଂ. ବି. ଭାଇର ପୁଅ, ଭ୍ରାତୃଷ୍ପୁତ୍ର । [ ସ୍ତ୍ରୀ ।

ପୁତୁରାବୋହୂ—ଗ୍ରା.ସ୍ତ୍ରୀ. ବି. ଭ୍ରାତୃଷ୍ପୁତ୍ରର

ପୁତ୍ତଳ—ପୁଂ. ବି. ପୁତ୍ରାଦି ନିର୍ମିତ ପ୍ରତି-ମୂର୍ତ୍ତି, ପ୍ରତିମା, ପୁତ୍ତଳୀ ଦେଖ ।

ପୁତ୍ତଳକ—ପୁଂ. ବି. ପୁତ୍ତଳ ଦେଖ ।

ପୁତ୍ତଳିକା—ସ୍ତ୍ରୀ, ବି. ତୃଣ କାଷ୍ଠ ମୃତ୍ତିକା ପ୍ରସ୍ତର ଧାତୁଆଦି ନିର୍ମିତ ପ୍ରତିମୂର୍ତ୍ତି, କଣ୍ଢେଇ, ପ୍ରତିମା ।

ପୁତ୍ତଳୀ—ସ୍ତ୍ରୀ. ବି. ମୃଦାଦି ନିର୍ମିତ ପ୍ରତି-ମୂର୍ତ୍ତି, ପ୍ରତିମା, ଶବଦାହ କରିବାପାଇଁ ପତ୍ରାଦିରେ ରଚିତ ମୂର୍ତ୍ତି, ପର୍ଣ୍ଣନର ।

ପୁତ୍ତଳୀପୂଜକ—ପୁଂ, ବିଂ. ( ଷତତ୍ ) ପୌତ୍ତଳିକ,ପ୍ରତିମାର ଆରାଧକ,ଯେଉଁମାନେ ଦେବପ୍ରତିମା ପୂଜା କରନ୍ତି ।

ପୁତ୍ତଳୀପୂଜା—ସ୍ତ୍ରୀ.ବି. (ଷତତ୍) ପ୍ରତିମା-ପୂଜା, ପ୍ରତିମାର ଆରାଧନା, ପୌତ୍ତଳି-କତା ।

ପୁତ୍ତିକା—ସ୍ତ୍ରୀ. ବି. ମଧୁମକ୍ଷିକା ବିଶେଷ, ନକୁଟି ମହୁମାଛି,ପତଙ୍ଗିକା,ପିପୀଲିକା-ବିଶେଷ, ଉଇପୋକ ।

ପୁତ୍ର—ପୁଂ. ବି. (ପୁ+କ.ନ ବା ପୁତ୍+ତ୍ରୈ+କ,ଅ) ନନ୍ଦନ, ଆତ୍ମଜ,ଜୀବ ଶାବକ, ପୁଅ, ସୁତ, ପୁଂସନ୍ତାନ, ଯେ ପୁତ୍ ନାମକ ନରକରୁ ପିତାମାତାଙ୍କୁ ତ୍ରାଣକରେ, ଔରସାଦି ଦ୍ୱାଦଶ ପ୍ରକାର ପୁତ୍ର, ଜ୍ୟୋତିଷଶାସ୍ତ୍ରରେ ଲଗ୍ନଠାରୁ ପଞ୍ଚମ ସ୍ଥାନ ।

ପୁତ୍ରଂଜୀବ—ବି. ( ପୁତ୍ରଂ+ଜୀବ+ଅ ) ପୁତ୍ରଜୀବ ଦେଖ ।

ପୁତ୍ରକ—ପୁଂ. ବି. ( ପୁତ୍ର+କ ) ପୁତ୍ର, ଶରଭ, ଧୂର୍ତ୍ତବ୍ୟକ୍ତି, ପୁତ୍ରପରି ସ୍ନେହର-ପାତ୍ର,କଣ୍ଢେଇ,ଶୈଳବିଶେଷ, ପତଙ୍ଗ, ଟିଣ୍ଟିକା, ଅନୁକମ୍ପାନ୍ୱିତ ଜନ,ଦମନକ ବୃକ୍ଷ, ଦଅଣା ଗଛ, ମୂଷିକବିଶେଷ ।

ପୁତ୍ରକର୍ମ—କ୍ଲୀ. ବି. ପୁତ୍ରନିମିତ୍ତ କର୍ମ ବା ପୁତ୍ରର କାର୍ଯ୍ୟ ।

ପୁତ୍ରକଳତ୍ର—କ୍ଲୀ. ବି. (ଷତତ୍) ପୁତ୍ରର ଭାର୍ଯ୍ୟା ପୁତ୍ରବଧୂ,(ଦ୍ୱନ୍ଦ୍ୱ) ପୁତ୍ର ଓ ଭାର୍ଯ୍ୟା ।

ପୁତ୍ରକଷ୍ଟ—ବି. (କ.ଧା) ପୁତ୍ରର ମରଣ-ଜନିତ ଦୁଃଖ, ଅପୁତ୍ରିକ ହେବାରୁ ମନରେ ଜାତ ହେବା ଦୁଃଖ ।

ପୁତ୍ରକଷ୍ଟି—ଗ୍ରା. ପୁଂ ଓ ସ୍ତ୍ରୀ. (ବିଂ)ଅପୁତ୍ରକ ହେବାରୁ ଦୁଃଖ ଭୋଗକରୁଥିବା (ବ୍ୟକ୍ତି) ।

ପୁତ୍ରକା—ସ୍ତ୍ରୀ. ବି, ପୁତ୍ରିକା, ଔରସଜାତା କନ୍ୟା,ପିତୁଳା, କଣ୍ଢେଇ, ଅଳତାପତ୍ର ।

ପୁତ୍ରକାମ(ମୀ)—ପୁଂ. ବିଂ. (ପୁତ୍ର+କାମ+ଇନ୍)ପୁତ୍ରାଭିଳାଷୀ,ଯେ ପୁତ୍ରକାମନା କରେ ।

ପୁତ୍ରକାମ୍ୟା—ସ୍ତ୍ରୀ.ବି.ଆପଣାର ପୁତ୍ରେଚ୍ଛା ।

ପୁତ୍ରକାର୍ଯ୍ୟ—କ୍ଲୀ.ବି.(ଷତତ୍)ପୁତ୍ରର କାର୍ଯ୍ୟ

ପୁତ୍ରକୃତ୍—ବି ପୋଷ୍ୟପୁତ୍ର ।

ପୁତ୍ରକୃତକ—ବି.ପୋଷ୍ୟପୁତ୍ର,ଦତ୍ତକପୁତ୍ର

ପୁତ୍ରକୃତ୍ୟ—କ୍ଲୀ. ବି. ( ଷତତ୍ ) ପୁତ୍ରର କାର୍ଯ୍ୟ, ପୁତ୍ରତ୍ୱ ।

ପୁତ୍ରଘ୍ନ—ବି.(ପୁତ୍ର+ହନ୍+କ,ଅ)ପୁତ୍ର-ହନ୍ତା, ପୁତ୍ରଘାତକ ।

ପୁତ୍ରଘ୍ନୀ—ସ୍ତ୍ରୀ. ବି. ଯୋନିରୋଗ ବିଶେଷ, ପୁତ୍ରଘାତିନୀ ସ୍ତ୍ରୀ ।

ପୁତ୍ରଜଗ୍ଧୀ—ସ୍ତ୍ରୀ. ବି. (ପୁତ୍ର+ଅଦ୍+କ, ତ+ଈ) ପୁଅଖାଇ, ପୁତ୍ରହନ୍ତ୍ରୀ ସ୍ତ୍ରୀ ।

ପୁତ୍ରଜନନୀ—ସ୍ତ୍ରୀ. ବି. ପୁତ୍ରଦାତ୍ରୀ ଲତା ।

ପୁତ୍ରଜାତ—ବିଂ.ଜାତପୁତ୍ର, ଯାହାର ପୁତ୍ର ହୋଇଅଛି ।

ପୁତ୍ରଜୀବ—ବି. ( ପୁତ୍ର+ଜୀବ+ଅ ) ବୃକ୍ଷ ବିଶେଷ, ପୋଇବୃନ୍ଦିଆ ଗଛ ।

ପୁତ୍ରଜୀବକ—ବି.ପୁତ୍ରଜୀବକ ବୃକ୍ଷ,ପୋଇ ବୃନ୍ଦିଆଗଛ, (ବିଂ) ପୁତ୍ରର ଜୀବକ ।

ପୁତ୍ରତା—ସ୍ତ୍ରୀ. ବ.ପୁତ୍ରର ଭାବ ବା ଧର୍ମ, ପୁତ୍ରର କାର୍ଯ୍ୟ ।

ପୁତ୍ରଦା—ସ୍ତ୍ରୀ. ବ. ( ପୁତ୍ର + ଦା + ଅ + ଆ ) ବନ୍ଧ୍ୟାକର୍କୋଟକୀ, ଅଷାଢ଼ୁଆ (ଲତାଫଳ),ଲକ୍ଷଣାମୂଳ, ଗର୍ଭଦାତ୍ରୀ କ୍ଷୁପ, ଶ୍ୱେତକଣ୍ଟକାରି, ଜୀବନ୍ତୀ ।

ପୁତ୍ରଦାତା—ପୁଂ. ବଂ. ( ପୁତ୍ର + ଦାତୃ ) ଯେଉଁ ଦେବତା ବା ମହାପୁରୁଷ ଅପୁତ୍ରିକ ବ୍ୟକ୍ତିମାନଙ୍କୁ ପୁତ୍ରଦାନ କରନ୍ତି ।

ପୁତ୍ରଦାତ୍ରୀ—ସ୍ତ୍ରୀ.ବଂ.ପୁତ୍ରଦାତାର ସ୍ତ୍ରୀଲିଙ୍ଗ, (ବ) ପୁତ୍ରଦା ଦେଖ ।

ପୁତ୍ରଧର୍ମ—ବ.(୬ତତ୍)ପିତାମାତାଙ୍କ ପ୍ରତି ପୁତ୍ରର କର୍ତ୍ତବ୍ୟ କର୍ମ ।

ପୁତ୍ରପୌତ୍ର—ବ. ପୁତ୍ର ଓ ପୌତ୍ରର ସମାହାର, ପୁଅ ଓ ନାତି ।

ପୁତ୍ରପୌତ୍ରାଦିକ୍ରମ—ବ. ବଂଶରେ ପୁଅ ନାତି ଅଣନାତି ଓ ପଣନାତି ଜନ୍ମିବା ରୂପ ଧାରା ।

ପୁତ୍ରପୌତ୍ରାଦିକ୍ରମେ—ଗ୍ରା. କ୍ରି. ବଂ. ବାପ ପରେ ପୁଅ, ପୁଅ ପରେ ନାତି ଓ ନାତି ପରେ ଅଣନାତି ଏହିପରି କ୍ରମରେ (ସମ୍ପତ୍ତିଭୋଗ କରିବା) ।

ପୁତ୍ରପୌତ୍ରୀ—ବଂ. ପୁରୁଷାନୁକ୍ରମିକ ।

ପୁତ୍ରପୌତ୍ରୀଣ—ବଂ.ପୁତ୍ର ପୌତ୍ରପର୍ଯ୍ୟନ୍ତ ଲାଗିଥିବା ।

ପୁତ୍ରପୌତ୍ରୀୟ—ବଂ.(ପୁତ୍ର + ପୌତ୍ର + ଈୟ)ବଂଶାନୁକ୍ରମରେ ପ୍ରାପ୍ତ ବା ଚାଲୁଥିବା

ପୁତ୍ରପ୍ରଦା—ସ୍ତ୍ରୀ.ବ.କ୍ଷବକା,ବନ୍ଧ୍ୟାକର୍କୋଟକୀ, ଅଷାଢ଼ୁଆ ।

ପୁତ୍ରଭଦ୍ରା—ବ. ବୃହଜ୍ଜୀବନ୍ତୀ ଲତା ।

ପୁତ୍ରଭାବ—ବ. ପୁତ୍ରତ୍ୱ, ଜ୍ୟୋତିଷୋକ୍ତ, ପଞ୍ଚମଭାବ ।

ପୁତ୍ରଲାଭ-ବ.୬ତତ୍;ନିଜର ପୁଅ ଜନ୍ମ ହେବା

ପୁତ୍ରବତ୍ସଳ—ବଂ. ପୁତ୍ରପ୍ରତି ଅତିଶୟ ସ୍ନେହ ଯୁକ୍ତ ।

ପୁତ୍ରବଧୂ—ସ୍ତ୍ରୀ. ବ. (୬ତତ୍) ପୁଅର ସ୍ତ୍ରୀ, ପୁତ୍ରର ପତ୍ନୀ, ବୋହୂ ।

ପୁତ୍ରବଳ—ବଂ. (ପୁତ୍ର+ବଳ) ପୁତ୍ରଯୁକ୍ତ ଯାହାର ପୁତ୍ର ଅଛି ।

ପୁତ୍ରବାନ୍—ପୁଂ. ବଂ. (ପୁତ୍ର+ବତ୍)ପୁତ୍ରବିଶିଷ୍ଟ, ଯାହାର ପୁଅ ଅଛି ।

ପୁତ୍ରବେଦ୍ୟ—କ୍ଲୀ. ବ. ପୁତ୍ରଲାଭ ।

ପୁତ୍ରଶୃଙ୍ଗୀ—ସ୍ତ୍ରୀ.ବ.ଅଜଶୃଙ୍ଗୀ,ମେଷଶୃଙ୍ଗ

ପୁତ୍ରଶୋକ—ବ.(ମଧ-କ.ଧା)ପୁତ୍ରର ମୃତ୍ୟୁ-ଜନିତ ଶୋକ,ପୁତ୍ରର ବିଚ୍ଛେଦ ।

ପୁତ୍ରଶୋକୀ—ଗ୍ରା. ବଂ. ପୁତ୍ରର ମୃତ୍ୟୁ ବା ବିଚ୍ଛେଦ ଜନିତ ଶୋକଦ୍ୱାରା ସନ୍ତପ୍ତ ।

ପୁତ୍ରଶ୍ରେଣୀ—ସ୍ତ୍ରୀ. ବ. ମୂଷିକପର୍ଣ୍ଣୀ ।

ପୁତ୍ରସଙ୍କର—ପୁଂ. ବଂ. ଯେଉଁମାନେ ଅନ୍ୟର ସ୍ତ୍ରୀଠାରେ ପୁତ୍ରଉତ୍ପାଦନ କରନ୍ତି

ପୁତ୍ରହତ—କ୍ରି. ବଂ. ଯାହାର ପୁତ୍ର ହତ ହୋଇଅଛି, (ପୁଂ.ବ) ବଶିଷ୍ଠ ।

ପୁତ୍ରକ—ପୁଂ.ବଂ (ପୁତ୍ର + କ)ପୁତ୍ରବାନ୍, ପୁତ୍ରଯୁକ୍ତ, ସପୁତ୍ର ।

ପୁତ୍ରିକା—ସ୍ତ୍ରୀ.ବ(ପୁତ୍ର+କ+ଆ)କନ୍ୟା, ଆତ୍ମଜା,ଦୁହିତା,ସୁତା, ନନ୍ଦନୀ,ତନୟା. ପିତୁଳା, କଣ୍ଢେଇ, ଅଳକ୍ତ, ପୁତ୍ତ୍ରିକା, ଅଳତା ପତ୍ର, ବାଲ୍ୟକାଳରୁ ଲାଳିତା-ପାଳିତା ଦାସୀ,ନକୁଟି ମହୁମାଛି,ଝାଉଁଗଛର କୋମଳ ଲୋମବତ୍ ତନ୍ତୁ. ଆଖିର ପିତୁଳା, ସ୍ତ୍ରୀଲୋକର ଚିତ୍ର, କୌଣସି ଶ୍ରେଣୀର କ୍ଷୁଦ୍ର ଶ୍ରେଣୀ ।

ପୁତ୍ରିକାପୁତ୍ର—ପୁଂ. ବ. (୬ତତ୍) ଝିଅର ପୁଅ, ଦୌହିତ୍ର ।

ପୁତ୍ରିକାପ୍ରସୂ—ସ୍ତ୍ରୀ. ବ. ପୁତ୍ରିକା, ଜନନୀ, ଧନପ୍ରସୂ, ଯେଉଁ ସ୍ତ୍ରୀ କେବଳ ଝିଅ ଜନ୍ମ କରେ ।

ପୁତ୍ରିକାଭର୍ତ୍ତା—ପୁଂ.ବ.(୬ତତ୍)ପୁତ୍ରିକାର ସ୍ୱାମୀ, ଜ୍ୱାଇଁ ।

ପୁତ୍ରିକାସୁତ—ପୁଂ.ବ.(୬ତତ୍) ପୁତ୍ରିକାର ପୁତ୍ର, ନାତି, ଝିଅର ପୁଅ ।

ପୁତ୍ରିଣୀ—ସ୍ତ୍ରୀ. ବଂ. (ପୁତ୍ରିନ୍+ଈ)ପୁତ୍ରୀର ସ୍ତ୍ରୀଲିଙ୍ଗ, (ବ) ପୁତ୍ରବତୀ ସ୍ତ୍ରୀ, ପୁଅଆଈ, ପୁଅର ମା, ମଲ୍ଲିଙ୍ଗ, ନିର୍ମଳୀ ଲତା ।

ପୁତ୍ରୀ—ପୁଂ ବଂ.(ପୁତ୍ର+ଇନ୍) ଯାହାର ପୁତ୍ର ଅଛି, ପୁତ୍ରବାନ୍, (ବ) ପୁତ୍ରବାନ୍ ବ୍ୟକ୍ତି, ପିତା, (ସ୍ତ୍ରୀ) ପୁତ୍ରବତୀ ସ୍ତ୍ରୀ ।

ପୁତ୍ରୀ—ସ୍ତ୍ରୀ.ବ.(ପୁତ୍ର+ଈ)ସୁତା, କନ୍ୟା, ପୁତ୍ରବତୀ ସ୍ତ୍ରୀ ।

ପୁତ୍ରୀୟ—ବଂ.(ପୁତ୍ର+ଈୟ)ପୁତ୍ର ନିମିତ୍ତକ, ପୁତ୍ରସମ୍ବନ୍ଧୀୟ ।

ପୁତ୍ରେଷ୍ଟି—ସ୍ତ୍ରୀ.ବ.(୪ତତ୍)ପୁତ୍ର କାମନାପୂର୍ବକ ଅନୁଷ୍ଠିତ ଯଜ୍ଞ ।

ପୁତ୍ରେଷ୍ଟିକା—ସ୍ତ୍ରୀ.ବ. ପୁତ୍ର ଲାଭାର୍ଥ ଯାଗବିଶେଷ । [ ପୁତ୍ରେଚ୍ଛା ।

ପୁତ୍ରୈଷଣା—ସ୍ତ୍ରୀ. ବ. ( ପୁତ୍ର + ଏଷଣା )

ପୁତ୍ରୋତ୍ସବ—ବ.ପୁତ୍ରର ଜନ୍ମାଦି ସକାଶେ ଉତ୍ସବବିଶେଷ ।

ପୁତ୍ର୍ୟ—ତ୍ରି.ବଂ.(ପୁତ୍ର + ଯ)ପୁତ୍ରସମ୍ବନ୍ଧୀୟ

ପୁଥି—ଗ୍ରା.ବ.(ସଂ-ପୁସ୍ତକ)ପୁସ୍ତକ,ପୋଥି ।

ପୁଦିନା—ଗ୍ରା.ବ. ପୋଦିନା, ତୁଳସ୍ୟାଦି ବର୍ଗର ସୁଗନ୍ଧ କ୍ଷୁଦ୍ର ଶାକବିଶେଷ, ଏହାର ପତ୍ରରେ ଚଟଣି ହୁଏ ।

ପୁଦ୍ଗଳ—ବ. ( ପୁତ୍+ଗଳ+କ.ଅ ) ଦେହ, ଆତ୍ମା, ପରମାଣୁ, ସୁନ୍ଦରାକାର, ଶିବ, ରୂପାଦିମନ୍ଦ, ଦ୍ରବ୍ୟ, ଗନ୍ଧତୃଣ, ରାମକର୍ପୂର, (ବଂ) ସୁନ୍ଦର, ସୁଶ୍ରୀକ ।

ପୁନଃ—ଅବ୍ୟ.ପୁନର୍ବାର, ପୁନରପି,ଆଉଥରେ, ଏବଂ, ପକ୍ଷାନ୍ତରେ, ମଧ୍ୟ, କିନ୍ତୁ, ଯାହାହେଉ, ତଥାପି, ଅଧିକନ୍ତୁ, ଏହାଛଡ଼ା, ଅନନ୍ତର, ପରେ ।

ପୁନଃପାକ—ପୁଂ.ବ. ଦ୍ୱିତୀୟବାର ପାକ, ପୁନର୍ବାର ସିଦ୍ଧ କରିବା ।

ପୁନଃପୁନଃ—ଅବ୍ୟ.ବାରମ୍ବାର,ମୁହୁର୍ମୁହୁ, ଥରକୁଥର ।

ପୁନଃପୁନା—ସ୍ତ୍ରୀ. ବ. ବିହାର ଅନ୍ତର୍ଗତ ଗୟାର ତୀର୍ଥ ନଦୀବିଶେଷ ।

ପୁନଃଶ୍ରାବଣ—କ୍ଲୀ. ବ. ବୌଦ୍ଧ ଭିକ୍ଷୁକମାନଙ୍କର ଶ୍ରମ କ୍ରମବିଶେଷ ।

ପୁନଃସଂସ୍କାର—ପୁଂ. ବ. ଦ୍ୱିତୀୟବାର ଶୋଧନ ବା ସଂସ୍କାର, ପତିତ ବ୍ୟକ୍ତିକୁ ପ୍ରାୟଶ୍ଚିତ୍ତ କରାଇବା, ଦ୍ୱିତୀୟବାର କରାଯିବା ଉପନୟନାଦି ସଂସ୍କାର ।

ପୁନଃସଙ୍ଗମ—ବ.ଆଉଥରେ ମିଳନ,ଲିଭି ଯାଇଥିବା ହୋମାଗ୍ନିକୁ ଆଉଥରେ ଜଳାଇବା ।

ପୁନଃସମ୍ଭବ—ବ. ପୁନର୍ଜନ୍ମ, ମୃତ୍ୟୁ ପରେ

ସଂସାରରେ ଜନ୍ମଗ୍ରହଣ ।
ପୁନଃସ୍ଥାପନ—କ୍ଳୀ.ବି.ପୁନର୍ବାର ପ୍ରତିଷ୍ଠା, ପୁନର୍ବାର ରଖିବା ।
ପୁନରଧିକାର—ବି. (ପୁନଃ+ଅଧିକାର) ଦ୍ୱିତୀୟବାର ଅଧିକାର,ଥରେ ଦଖଲଚ୍ୟୁତ ହୋଇ ପୁନର୍ବାର ଦଖଲ ।
ପୁନରପଗମ--ପୁଂ.ବି. ପୁନର୍ବାର ଗମନ ।
ପୁନରପି—ଅବ୍ୟ. ପୁନର୍ବାର, ଆଉଥରେ, ମଧ୍ୟ, ପୁଣି, ପକ୍ଷାନ୍ତରେ, ଏବଂ, ମଧ୍ୟ ।
ପୁନରଭିଧାନ--କ୍ଳୀ.ବି.ପୁନର୍ବାର କଥନ ।
ପୁନରଭିଷେକ—ପୁଂ.ବି.ପୁନର୍ବାର ଅଭିଷେକ ।
ପୁନରର୍ଥିତା--ସ୍ତ୍ରୀ.ବି.ପୁନର୍ବାର ପ୍ରାର୍ଥିତା ।
ପୁନରାଗତ—ତ୍ରି. ବିଂ. ପ୍ରତ୍ୟାଗତ, ପୁନର୍ବାର ଆଗତ ।
ପୁନରାଗମ(ନ)—କ୍ଳୀ.ବି (ପୁନଃ+ଆଗମନ) ପୁନର୍ବାର ଘଟିବା, ପୁନର୍ଜନ୍ମ, ଦ୍ୱିତୀୟବାର ଆସିବା । [ (ବ୍ୟକ୍ତି) ।
ପୁନରାଗମୀ—ପୁଂ.ବିଂ. ଫେରି ଆସିଥିବା
ପୁନରାଦାୟ—ଅବ୍ୟ. ପୁନର୍ଗ୍ରହଣ ।
ପୁନରାଧାନ—କ୍ଳୀ. ବି. ସ୍ଥାପିତ ହୋମାଗ୍ନିର ପୁନର୍ବାର ସ୍ଥାପନ ।
ପୁନରାଧେୟ କ୍ଳୀ.ବି. ଶ୍ରୌତ କର୍ମବିଶେଷ, ସୋମଯାଗବିଶେଷ ।
ପୁନରାଧେୟକ—ବିଂ.ପୁନରାଧାନକାରୀ ।
ପୁନରାୟ—ଗ୍ରା.ଅବ୍ୟ.ପୁନର୍ବାର,ପୁନଶ୍ଚ, ପୁଣି, ଫେର୍, ଆଉଥରେ ।
ପୁନରାୟନ—କ୍ଳୀ.ବି.ପୁନରାଗମନ ଦେଖ
ପୁନରାୟାତ—ବିଂ. (ପୁନଃ+ଆୟାତ) ପୁନରାଗତ ଦେଖ ।
ପୁନରାଲମ୍ଭ—କ୍ଳୀ. ବି. ପୁନର୍ଗ୍ରହଣ ।
ପୁନରାବର୍ତ୍ତି—କ୍ଳୀ.ବି. (ପୁନର୍+ଆବର୍ତ୍ତି) ପୁନର୍ବାର ଆବର୍ତ୍ତି, ପୁନର୍ଭ୍ରମଣ, ପୁନର୍ଜନ୍ମ ।
ପୁନରାବର୍ତ୍ତନ—ବି. (ପୁନଃ+ଆବର୍ତ୍ତନ) ପୁନରାଗମନ ଦେଖ ।
ପୁନରାବର୍ତ୍ତିତ—ବିଂ.(ପୁନଃ+ଆବର୍ତ୍ତିତ) ପୁନରାଗତ, ପ୍ରତ୍ୟାଗତ, ଆଉଥରେ ଘଟିବା ।
ପୁନରାବର୍ତ୍ତୀ—ବିଂ. (ପୁନଃ+ଆ+ବୃତ୍+ଇନ୍)ଇହଲୋକକୁ ବାରମ୍ବାର ଆଗମନଶୀଳ ।
ପୁନରାବୃତ୍ତ—ତ୍ରି.ବିଂ.ପୁନରାବର୍ତ୍ତିତ ଦେଖ
ପୁନରାବୃତ୍ତି—ସ୍ତ୍ରୀ.ବି. (ପୁନଃ+ଆବୃତ୍ତି) ପୁନର୍ଜନ୍ମ, ପୁନରୁଚ୍ଚାରଣ, ପୁନର୍ବାର ଆଲୋଚନ । [ ଭୋଜନ ।
ପୁନରାହାର—ପୁଂ. ବି. ଦ୍ୱିତୀୟବାର
ପୁନରୁକ୍ତ—ବିଂ. (ପୁନ+ଉକ୍ତ) ଆଉଥରେ କଥିତ,ଅନାବଶ୍ୟକ ଓ ଅତିରିକ୍ତ
ପୁନରୁକ୍ତଜନ୍ମ—ପୁଂ.ବି. (ପୁନଃ+ଉକ୍ତ+ଜନ୍ମନ୍)ଦ୍ୱିଜାତି, ବ୍ରାହ୍ମଣ, ଅଣ୍ଡଜ, ସର୍ପ, ସରୀସୃପ, ପକ୍ଷୀ, ଚନ୍ଦ୍ର ।
ପୁନରୁକ୍ତତା—ସ୍ତ୍ରୀ. ବି. କଥିତ ବିଷୟକୁ ଆଉଥରେ କହିବା ରୂପ ରଚନା ଦୋଷ
ପୁନରୁକ୍ତବଦାଭାସ—ପୁଂ.ବି.ଶବ୍ଦାଳଙ୍କାରବିଶେଷ ।
ପୁନରୁକ୍ତି—ସ୍ତ୍ରୀ.ବି.(ପୁନଃ+ଉକ୍ତି)ଦ୍ୱିରୁକ୍ତି. କଥିତ ବିଷୟକୁ ଆଉଥରେ କହିବା ।
ପୁନରୁକ୍ତିକରିବା—ଗ୍ରା. କ୍ରି. କଥିତ ବିଷୟକୁ ଆଉଥରେ କହିବା ।
ପୁନରୁଜ୍ଜୀବନ—ବି.ମୃତ୍ୟୁପରେ ଆଉଥରେ ଜୀଇଁ ଉଠିବା । [ ଉଠିବା ।
ପୁନରୁଜ୍ଜୀବିତ— ପୁଂ.ବିଂ.ପୁନର୍ବାର ଜୀଇଁ
ପୁନରୁତ୍ଥାନ—ବି.ପୁନର୍ବାର ଜୀଇଁବା ବା ଆବିର୍ଭାବ ହେବା, ପତନ ପରେ ପୁନର୍ବାର ଉନ୍ନତ ।
ପୁନରୁତ୍ଥିତ—ବିଂ. (ପୁନଃ+ଉତ୍ଥିତ) ଆଉଥରେ ଉଠିଥିବା ।
ପୁନରୁତ୍ପତ୍ତି—ସ୍ତ୍ରୀ. ବି. (ପୁନ+ଉତ୍ପତ୍ତି) ପୁନର୍ଜନ୍ମ,ପୁନର୍ବାର ଆବିର୍ଭାବ ହେବା ।
ପୁନରୁତ୍ପାଦନ—ବି. (ପୁନଃ+ଉତ୍ପାଦନ) ଆଉଥରେ ଜନ୍ମ କରିବା ।
ପୁନରୁଦ୍ଦୀପନ—ବି. ପୁନଃ ପ୍ରଜ୍ୱଳନ, ପୁନରାୟ ଉତ୍ତେଜିତ ବା ଉତ୍ସାହିତକରଣ ।
ପୁନରୁଦ୍ଦୀପ୍ତ—ବିଂ.ପୁନର୍ବାର ପ୍ରଜ୍ୱଳିତ, ଦ୍ୱିତୀୟବାର ପ୍ରକାଶିତ ।
ପୁନରୁଦ୍ଦୀପ୍ତତା—ବି. ରଚନାର ରସଦୋଷବିଶେଷ, ଗୋଟିଏ ରସ ପୁନଃ ପୁନଃ କଥିତ ହେବା ଦୋଷ ।
ପୁନରୁଦ୍ଭବ—ବିଂ. (ପୁନଃଉଦ୍ଭବ) ମୃତ୍ୟୁପରେ ସଂସାରରେ ପୁନର୍ବାର ଜନ୍ମହେବା, (ଲ.ଅର୍ଥ) କୌଣସି କଠିନ ପୀଡ଼ାରୁ ବା ବିପଦଜନିତ ଆସନ୍ନମୃତ୍ୟୁରୁ ରକ୍ଷା ପାଇବା । [ ଆସିବା ।
ପୁନରୁପଗମ--ବି.(ପୁନଃ+ଉପଗମ) ଫେରି
ପୁନରୁପୋଢ଼ା-ସ୍ତ୍ରୀ.ବିଂ(ପୁନଃ+ଉପୋଢ଼ା) ପ୍ରଥମେ ବିବାହିତା ହେବା ପରେ ଯେଉଁ ସ୍ତ୍ରୀର ଦ୍ୱିତୀୟଥର ବିବାହ ହୋଇଅଛି ।
ପୁନରୁଲ୍ଲେଖ—ବି. ପୁନର୍ବାର ନିର୍ଦ୍ଦେଶ, ଦ୍ୱିତୀୟବାର କଥନ,(ବିଂ)ପୁନରୁଲ୍ଲିଖିତ
ପୁନର୍ଗତି—ବି.ପୁନର୍ଜନ୍ମ,ଆଉଥରେ ଯିବା
ପୁନର୍ଗମନ—କ୍ଳୀ. ବି. ପୁନର୍ବାର ଗମନ, ପୁନର୍ଜନ୍ମ । [ ପୁନରୁକ୍ତି ।
ପୁନର୍ଗ୍ରହଣ—କ୍ଳୀ. ବି. ପୁନରାୟ ଗ୍ରହଣ,
ପୁନର୍ଜନ୍ମ—କ୍ଳୀ. ବି. (ପୁନର୍+ଜନ୍ମନ୍) ପୁନର୍ବାର ଉତ୍ପତ୍ତି, ସଂସାରରେ ପୁନର୍ବାର ଜନ୍ମଗ୍ରହଣ ।
ପୁନର୍ଜାତ—ବିଂ. ପୁନରାୟ ଉତ୍ପନ୍ନ, ପୁନର୍ଜନ୍ମପ୍ରାପ୍ତ ।
ପୁନର୍ଜୀବନ—କ୍ଳୀ. ବି.(ପୁନଃ+ଜୀବ+ଭା.ଅନ) ମରିବଞ୍ଚିବା ।
ପୁନର୍ଜୀବିତ—ବିଂ.(ପୁନଃ+ଜୀବ+କ.ତ) ପୁନର୍ବାର ଜୀବନପ୍ରାପ୍ତ ।
ପୁନର୍ନଖ—ପୁ.ବି. ନଖ, ଯାହା ମରିଗଲେ ପୁଣି ଜନ୍ମେ । [ ବିଶେଷ ।
ପୁନର୍ନବା—ସ୍ତ୍ରୀ. ବି. ପୁରୁଣିଶାକ, ଶାକ-
ପୁନର୍ବାଲ—ତ୍ରି.ବିଂ.ପୁନର୍ବାର ବାଲକତ୍ୱପ୍ରାପ୍ତ, ବୃଦ୍ଧାବସ୍ଥାରେ ବାଳକ ସଦୃଶ ଭାବ ପ୍ରକାଶ ।
ପୁନର୍ଭବ—ପୁଂ.ବି.ନଖ, ରକ୍ତ ପୁନର୍ନବା, କରରୁହ, (ବିଂ) ପୁନର୍ବାର ଜାତ ।
ପୁନର୍ଭବୀ—ପୁଂ. ବି. (ପୁନଃ+ଭବ+ଇନ୍)ଆତ୍ମା (ଯାହା ଜୀବର ମୃତ୍ୟୁ ପରେ ଅନ୍ୟ ଦେହରେ ଆବିର୍ଭୂତ ହୁଏ) ।
ପୁନର୍ଭବ—ପୁଂ. ବି. ପୁନର୍ବାର ଜନ୍ମ, ମୃତ୍ୟୁର ପର ପୁନର୍ବାର ଜନ୍ମ ।

ପୁନର୍ଭବା—ତ୍ରି.ବିଂ. ପୁନର୍ବସୁ ଜନ୍ମଯୁକ୍ତ ।

ପୁନର୍ଭୂ—ସ୍ତ୍ରୀ.ବି. (ପୁନର୍+ଭୂ+କ୍ୱିପ୍) ଦ୍ୱିରୂଢ଼ା,ବିଧବା ହୋଇ ଦ୍ୱିତୀୟବାର ବିବାହ କରିଥିବା ସ୍ତ୍ରୀ,ବରପୂର୍ବା କନ୍ୟା ।

ପୁନର୍ମିଳନ—କ୍ଳୀ.ବି. ( ପୁନଃ+ମିଳନ ) ଦ୍ୱିତୀୟବାର ବା ନୂତନ କରି ସଂଯୋଗ, ବିବାଦ ବା ବିଚ୍ଛେଦ ପରେ ପୁନର୍ବାର ମିଳନ ହେବା ।

ପୁନର୍ମୂଷିକ—ପୁଂ.ବି.ପୁନର୍ବାର ଇନ୍ଦୁରତ୍ୱ-ପ୍ରାପ୍ତି , ଲ ଅର୍ଥ) ପ୍ରଥମେ ଯେପରି ଥିଲ ସେହିପରି ଅବସ୍ଥା ପ୍ରାପ୍ତି, ପୁନର୍ବାର ନୀଚାବସ୍ଥା ପ୍ରାପ୍ତି ।

ପୁନର୍ଯାତ୍ରା—ସ୍ତ୍ରୀ.ବି. ( ପୁନଃ+ଯାତ୍ରା ) ବାହୁଡ଼ିବା, ପ୍ରତ୍ୟାବର୍ତ୍ତନ, ଜଗନ୍ନାଥ ଦେବଙ୍କର ବାହୁଡ଼ା ଯାତ୍ରା ।

ପୁନର୍ଲାଭ—ପୁଂ.ବି. ପୁନର୍ବାର ପ୍ରାପ୍ତି, ନଷ୍ଟ ବସ୍ତୁର ପ୍ରାପ୍ତି ।

ପୁନର୍ବକ୍ତବ୍ୟ—ତ୍ରି.ବିଂ.ପୁନର୍ବାର ବକ୍ତବ୍ୟ, ପୁନର୍ବାର ବକ୍ତବ୍ୟ ।

ପୁନର୍ବଚନ—କ୍ଳୀ. ବି. ପୁନର୍ବାର ବଚନ, ବାରମ୍ବାର ବାକ୍ୟ ପ୍ରୟୋଗ ।

ପୁନର୍ବରଣ—କ୍ଳୀ. ବି. ପୁନର୍ବାର ବରଣ, ମନୋନୀତ କରଣ ।

ପୁନର୍ବସୁ—ପୁଂ.ବି. ବିଷ୍ଣୁ, ଶିବ, କାତ୍ୟାୟନ ମୁନି, ଲୋକବିଶେଷ, ଧନାରମ୍ଭ, କୁକୁରବଂଶୀୟ ରାଜାବି, ନକ୍ଷତ୍ରବିଶେଷ, ଅଶ୍ୱିନ୍ୟାଦି ସପ୍ତବିଂଶତି ନକ୍ଷତ୍ର ମଧ୍ୟରୁ ୭ମ ନକ୍ଷତ୍ର ।

ପୁନର୍ବାର—ଗ୍ରା.କ୍ରି.ବିଂ.ପୁନରପି, ପୁନଶ୍ଚ, ଆଉଥରେ, ପୁଣି ।

ପୁନର୍ବିଚାର—ବି. ନିଷ୍ପତ୍ତି ହୋଇଥିବା ବିଷୟର ଆଉଥରେ ବିଚାର ।

ପୁନର୍ବିବାହ—ପୁଂ.ବି. ପୁନର୍ବାର ବିବାହ, ଦ୍ୱିତୀୟବାର ଦାରପରିଗ୍ରହ,ଦ୍ୱିତୀୟ ହେବା ।

ପୁନର୍ବିଶ୍ୱ—ଗ୍ରା. ବି. ଆଶୀର୍ବାଦ ଘର, ଦୂର୍ବାକ୍ଷତ ଘର ।

ପୁନଶ୍ଚ—ଅବ୍ୟ. ପୁଣି, ପୁନର୍ବାର, ଫେର, ଏବଂ. ମଧ୍ୟ, ଆଉଥରେ ।

ପୁନଶ୍ଚନ୍ଦ୍ରା—ସ୍ତ୍ରୀ.ବି. ମହାଭାରତୋକ୍ତ ନଦୀ ବିଶେଷ ।

ପୁନଷ୍ଟରଣ—କ୍ଳୀ. ବି. ପୁନଃପୁନଃ ଚର୍ବଣ ବା ରୋମନ୍ଥନ ।

ପୁନା—ଗ୍ରା. ବି. ବମ୍ବେଇ ପ୍ରଦେଶର ପ୍ରସିଦ୍ଧ ନଗର ।

ପୁନାଗ(ଙ୍ଗ)—ଗ୍ରା.ବି. ପୁନ୍ନାଗ ଦେଖ ।

ପୁନାଦ—ପ୍ରା. (ଗଞ୍ଜାମ) ବି. ପାଟେଗୀ. ମୂଳଦୁଆ ।

ପୁନାନ—ବିଂ. (ପୁ+କ.ଆନ) ପବିତ୍ର-କାରକ, (ସ୍ତ୍ରୀ) ପୁନନା ।

ପୂନୀତ—ବିଂ. ( ପୁ+ଣିଚ୍+ମ.ତ ) ପବିତ୍ରୀକୃତ ।

ପୁନ୍ନରକ—ବି. ( ପୁତ୍ର+ନରକ ) ପୁତ୍ର ନାମକ ନରକ, ଯେଉଁଠାରେ ଅପୁତ୍ରକ ଲୋକ ଦୁଃଖ ଭୋଗକରେ ।

ପୁନ୍ନାଗ—ପୁଂ.ବି. (ପୁମସ୍+ ନାଗ)ଶ୍ୱେତ-ହସ୍ତୀ, ଅଶ୍ୱରୋହୀ, ନାଗେଶ୍ୱରବୃକ୍ଷ, ଶ୍ୱେତୋତ୍ପଳ, ଜାତିଫଳ,ଅଶ୍ୱିନୀ ସାପ, ନରଶ୍ରେଷ୍ଠ, (କ୍ଳୀ.ବି) ପୁନ୍ନାଗପୁଷ୍ପ ।

ପୁନ୍ନାଗକେଶର—କ୍ଳୀ. ବି. ପୁନ୍ନାଗ ପୁଷ୍ପର କେଶର ।  [ ଗଛ ।

ପୁନ୍ନାଟ—ପୁଂ.ବି. ଚକ୍ରମର୍ଦ୍ଦବୃକ୍ଷ, ଗୁଳୁଣ୍ଡା-

ପୁନ୍ନାଟସଙ୍ଘ—ବି. ଜୈନ ସମ୍ପ୍ରଦାୟ-ବିଶେଷ ।  [ ଗଛ ।

ପୁନ୍ନାଡ଼—ପୁଂ.ବି. ଚକ୍ରମର୍ଦ୍ଦବୃକ୍ଷ,ଗୁଳୁଣ୍ଡା-

ପୁନ୍ନାମନରକ—ପୁଂ.ବି. ନରକବିଶେଷ ।

ପୁପ୍ପୁଟ—ପୁଂ. ବି. ଦନ୍ତପୁଟଗତ ରୋଗ, ତାଳୁଗତ ରୋଗବିଶେଷ ।  [ ବାୟୁ ।

ପୁପ୍‌ଫୁଲ—ପୁଂ.ବି. ପୁପ୍‌ଫୁସ୍ ଉଦରସ୍ଥ

ପୁପ୍‌ଫୁସ୍—ପୁଂ.ବି. ପଦ୍ମବୀଜାଧାର, ବାମ ପାର୍ଶ୍ୱସ୍ଥ ମଳାଶୟ,କୋଷ୍ଠ, ଫୁସ୍‌ଫୁସ୍ ।

ପୁମନୁଜା—ସ୍ତ୍ରୀ.ବି. ପୁରୁଷାନନ୍ତରଜାତା ଭଗିନୀ, ଭାଇପରେ ଜନ୍ମ ଭଉଣୀ ।

ପୁମପତ୍ୟ—କ୍ଳୀ.ବି. ପୁରୁଷରୂପ ଅପତ୍ୟ, ଅଣ୍ଡିରା ସନ୍ତାନ ।

ପୁମର୍ଥ—ପୁଂ.ବି. ପୁରୁଷାର୍ଥ ।

ପୁମାଖ୍ୟ—ପୁଂ.ବି. ପୁରୁଷବାଚକ ଶବ୍ଦ, ପୁରୁଷ ସଂଜ୍ଞା ।

ପୁମାଚାର—ପୁଂ. ବି. ପୁରୁଷର ଆଚାର

ପୁମାନ୍—ପୁଂ.ବି.(ପା+ଡୁମସ୍)ପୁରୁଷ, ମନୁଷ୍ୟ, ପୁଂଲିଙ୍ଗ, ଅଣ୍ଡିରା ପୁଅ ।

ପୁମ୍ବତ୍—ଅବ୍ୟ. (ପୁମସ୍+ବତ୍)ପୁରୁଷ ପରି, ମନୁଷ୍ୟପରି, (ବିଂ) ପୁରୁଷର ଶକ୍ତି ବା ପ୍ରକୃତିବିଶିଷ୍ଟ ।

ପୁୟ—ଗ୍ରା.ବି. ବିକୃତ ଦୁର୍ଗନ୍ଧମୟ ରକ୍ତ ।

ପୁର୍—ଗ୍ରା. ଅବ୍ୟ. ଲୁଗା ବା ପତଳା ଓ ନରମ ଜିନିଷ ଚିରିଯିବାର ଶବ୍ଦ, (ବି) (ପୁ+ଅ) ପୁଃ ଦେଖ ।

ପୁରଥି—ପ୍ରା.(ସମ୍ବଲ) ଅବ୍ୟ. ପୁରତଃ, ସାମନାରେ, ନିକଟକୁ ।

ପୁରନି—ପ୍ରା.(ସମ୍ବଲ)ବି. ପଦ୍ମଫୁଲ ।

ପୁରପୁର—ଗ୍ରା. ଅବ୍ୟ ପୁର୍ ଦେଖ, ବିଂ. (ଲୁଗା) ଚିକଚିକ ହୋଇ ଚିରି ଯାଇଥିବା, (ପ୍ରା.ସମ୍ବ.ଅବ୍ୟ.)ବହୁ ପରିମାଣରେ ।

ପୁର—ବି. (ପୃ+ଅ) ଜନପଦ, ଗ୍ରାମ, ନଗର, ଅନ୍ତଃପୁର,ଗୃହ, ବାସସ୍ଥାନ, ଆଧାର, ଚଉପଦୀ, ପାଟଳିପୁତ୍ର ନଗର,ନାଗରମୁଥା, କୁସୁମ ଦଳାବୃତ, ଚର୍ମ, ପୀଠଚିଣ୍ଡି, ଗୃହ ଉପରସ୍ଥ ଗୃହ, ଦେହ, ନକ୍ଷତ୍ରମଞ୍ଚ, ଦୈତ୍ୟବିଶେଷ, ଗନ୍ଧଦ୍ରବ୍ୟବିଶେଷ, କେଶଦୁଦୁର, ଚୁଙ୍ଗାନଳ, ଗୁଗ୍ଗୁଲଗୁଳ୍ମ, ବେଶ୍ୟାଳୟ, ଭଣ୍ଡାରଘର, (କୋଠଷରୀ)ଶ୍ରେଣି, (ବିଂ.-ପୃ+ମ.ଅ) ପୂର୍ଣ୍ଣ, ପ୍ରଚୁର, (ଗ୍ରା.ବି) ଗ୍ରାମ, ବେଢ଼, ପରସ୍ତ, ପ୍ରସ୍ଥ, ଥର,ବାର, ପିଠାଭିତରେ ଦିଆଯିବା ଛେନା ନଡ଼ିଆ ପ୍ରଭୃତି ପୁର ।

ପୁରଃ—ଅବ୍ୟ. ଅଗ୍ରତଃ, ଆଗରେ, ସମ୍ମୁଖରେ, ପଶ୍ଚିମ ଦିଗରେ, ପ୍ରଥମତଃ ଏଥିପୂର୍ବ, ପୂର୍ବକାଳରେ, ପଛ-ଆଡ଼ରେ ଅତିକ୍ରାନ୍ତ, ।

ପୁରଃସର—ପୁଂ.ବିଂ. (ପୁର+ସୃ+କ.ଅ) ଅଗ୍ରସର, ଅଗ୍ରଗାମୀ, ପୂର୍ବବର୍ତ୍ତୀ, ଅଗ୍ରଣୀ, (ବି) ପୁରୋବର୍ତ୍ତୀ ବ୍ୟକ୍ତି,ପରିଚାଳକ, ନେତା, ସହଚର, ଅଗ୍ରଗମନ, ସଙ୍ଗ, ସାହଚର୍ଯ୍ୟ, (କ୍ରି.ବିଂ) ପୂର୍ବକ,

ସଙ୍ଗେ, ସହକାରେ, ସମଭିବ୍ୟାହାରରେ ।

ପୁରଃସରଣ—ବି. ( ପୁରଃ + ସରଣ ) ଆଗେ ଆଗେ ଯିବା ।

ପୁରକୁପୁରୁ—ଗ୍ରା. ଅବ୍ୟ. ପ୍ରସ୍ତ, ପ୍ରସ୍ତ, ଥରକୁଥର, ବାରମ୍ବାର ।

ପୁରଜନ—ବି. ( କ.ଧା ) ପୁରବାସୀ ବ୍ୟକ୍ତି ନାଗରକ ।

ପୁରଜିତ୍—ପୁଂ. ବି. (ପୁର + ଜି + କ. କ୍ୱିପ୍ ) ଜଣେ ରାଜା, ତ୍ରିପୁରାରି, ଶିବ, ଜାମ୍ବବତୀଙ୍କ ଗର୍ଭଜାତ କୃଷ୍ଣଙ୍କର ଏକ ପୁତ୍ର ।

ପୁରଜ୍ୟୋତିଃ—ପୁଂ.ବି.(ବ.ବ୍ରୀ)ଅଗ୍ନି ।

ପୁରଞ୍ଜନ—ପୁଂ. ବି. (ପୁରଂ+ଜନ୍+କ.ଅ)ଜୀବାତ୍ମା, ଆତ୍ମା, ଜୀବନ, ଭାଗବତ ବର୍ଣ୍ଣିତ ବ୍ରାହ୍ମଣର ନାମ ।

ପୁରଞ୍ଜନୀ—ସ୍ତ୍ରୀ.ବି.(ପୁରଞ୍ଜନ+ଈ) ବୁଦ୍ଧି

ପୁରଞ୍ଜୟ—ପୁଂ. ବି. ସୂର୍ଯ୍ୟବଂଶୀୟ ନରପତିବିଶେଷ, ବନ୍ଧ୍ୟା ଶକ୍ତିର ପୁତ୍ର,ଶିବାବତ ପୁତ୍ର, ମେଧାଗିଙ୍କ ନାମାନ୍ତର,ଶିବ, (ବିଂ)ଃପୁର ଜୟକର୍ତ୍ତା,ପୁରବନେତା ।

ପୁରଞ୍ଜର—ବି.(ପୁରଂ + ଜ + କ.ଅ)କୁକ୍ଷି, କାଖତଳି, ଉପବନ, ବଗିଚା ।

ପରଟ—କ୍ଲୀ.ବି. (ପୁର+ଅଟ୍+କ.ଅ) ସୁବର୍ଣ୍ଣ ।

ପୁରଣ—ପୁଂ.ବି.(ପୁର+କ.ଅନ)ସମୁଦ୍ର, (ପ୍ରା. ବସ୍ତର. ବି.) ପଦ୍ମଫୁଲ ।

ପୁରତଃ—କ୍ରି.ବିଂ.(ପୁର + ତସ୍) ଅଗ୍ରତ, ଅଗ୍ରେ, ସମ୍ମୁଖରେ ।

ପୁରତଟୀ—ସ୍ତ୍ରୀ.ବି.(ପୁର+ତଟୀ)ହାଟ, ପଲ୍ଲୀ, କ୍ଷୁଦ୍ର ହାଟ, କ୍ଷୁଦ୍ର ଗ୍ରାମ ।

ପୁରତେ—ଗ୍ରା.କ୍ରି.ବିଂ.ସମ୍ମୁଖରେ,ଆଗରେ

ପରତ୍ରାଣ—ବି. (ପୁର+ତ୍ରୈ+କ.ଆନ) ନଗରର ପାଚେରି ।

ପୁରଦ୍ୱିଟ୍—ପୁଂ.ବି (ପୁର+ଦ୍ୱିଷ୍+କ. କ୍ୱିପ୍) ଶିବ, ମହାଦେବ ।

ପୁରନାରୀ—ସ୍ତ୍ରୀ. ବି. ପୁର ସ୍ତ୍ରୀ ।

ପୁରନ୍ଦର—ପୁଂ. ବି. (ପୁରଂ+ଦୃ+ଅ) ଇନ୍ଦ୍ର, ମହାଦେବ,ବସ୍ତ,ଜ୍ୟେଷ୍ଠାନକ୍ଷତ୍ର, (କ୍ଲୀ) ଚବକା, ରଇ, ମରଚ ।

ପୁରନ୍ଦରଚାପ—ପୁଂ.ବି. (୬ତତ୍)ଇନ୍ଦ୍ରଧନୁ

ପୁରନ୍ଦରପୁତ୍ରୀ—ସ୍ତ୍ରୀ.ବି.(୬ତତ୍)ଇନ୍ଦ୍ରପୁତ୍ରୀ

ପୁରନ୍ଦରା—ସ୍ତ୍ରୀ.ବି. (ପୁରଂ + ଦୃ + ଅ + ଆ) ଗଙ୍ଗା ।

ପୁରନ୍ଧ୍ରୀ—ସ୍ତ୍ରୀ. ବି. ଇଷ୍ଟକା ସମୂହଧାରକ, ପ୍ରଭୁତା, ବୃଦ୍ଧି, ସ୍ୱର୍ଗ ଓ ପୃଥିବୀ ।

ପୁରନ୍ଧ୍ରି(ନ୍ଧ୍ରୀ) –ସ୍ତ୍ରୀ.ବି.(ପୁରଂ+ଧୃ+କ. ଅ+ଈ ) କୁଟୁମ୍ବିନୀ, ସୁଚରିତ୍ରା ସ୍ତ୍ରୀ, ଗୃହିଣୀ, ପତିପୁତ୍ର ବୃଦ୍ଧିବାଦମତୀ ସ୍ତ୍ରୀ, ସୀମାନ୍ତ ।

ପୁରପାଳ—ପୁଂ.ବି. (ପୁର + ପାଳ + ଅ) ଗ୍ରାମରକ୍ଷକ,ଚୌକିଦାର, ନଗରରକ୍ଷକ, ଦେହପାଳକ ।

ପୁରଭିଦ୍—ପୁଂ.ବି. (ପୁର+ଭିଦ୍+କ. କ୍ୱିପ୍) ଶିବ, ମହାଦେବ ।

ପୁରମଥନ—ପୁଂ.ବି.(ପୁର+ମଥ୍+କ.ଅନ) ଶିବ ।

ପୁରମାର୍ଗ—ପୁଂ. ବି. (୬ତତ୍) ନଗରର ପଥ, ରାଜପଥ ।

ପୁରରକ୍ଷ—ପୁଂ. ବି. (ପୁର+ରକ୍ଷ୍+ଅ) ନଗରରକ୍ଷକ, ଗ୍ରାମରକ୍ଷକ, ଜୀବନ ।

ପୁରରକ୍ଷୀ—ବିଂ. (ପୁର + ରକ୍ଷ୍ + ଇନ୍) ଗୃହରକ୍ଷକ, ଦ୍ୱାରବାନ୍, ନଗର ରକ୍ଷାକାରୀ, (ସ୍ତ୍ରୀ) ନଗରରକ୍ଷିଣୀ ।

ପୁରଲକ୍ଷ୍ମୀ—ସ୍ତ୍ରୀ.ବି.(୬ତତ୍)ଗୃହର ଲକ୍ଷ୍ମୀ, ଗୃହର ଲକ୍ଷ୍ମୀ ସ୍ୱରୂପା ସ୍ତ୍ରୀ ।

ପୁରଲା—ସ୍ତ୍ରୀ.ବି. (ପୁର + ଲ + ଆ)ଦୁର୍ଗା

ପୁରବଧୂ—ବି. ପୁରସ୍ତ୍ରୀ ।

ପୁରବାସୀ—ପୁଂ. ବି. (ପୁର+ବାସିନ୍) ନଗରବାସୀ ବ୍ୟକ୍ତି, ନାଗରକ,ଗୃହସ୍ଥ, ଗ୍ରାମବାସୀ ।

ପୁରଶାସନ—ପୁଂ. ବି. (ପୁର+ଶାସ୍+ଅନ) ଶିବ, ମହାଦେବ ।

ପୁରଶ୍ଚରଣ—କ୍ଲୀ. ବି. ବି. (ପୁରସ୍+ଚର + ଭା ଅନ ) ମନ୍ତ୍ରସିଦ୍ଧି, ଜନକ କ୍ରିୟାବିଶେଷ,ଅଗ୍ରତ ଆଚରଣ, ପୁରସ୍କ୍ରିୟାମନ୍ତ୍ର ଗ୍ରହଣ ପୂର୍ବକ ତତ୍ତ୍ୱ ସିଦ୍ଧି ନିମିତ୍ତ ପ୍ରୟୋଗ ବିଶେଷ ।

ପୁରଶ୍ଛଦ—ପୁଂ. ବି. ଦର୍ଭ, କୁଶ, ଉଲୁଅ ଗଛ, (ପୁରଃ+ଛଦ୍+କ.ଅ) ।

ପୁରସଃ—ଅବ୍ୟ. ପୁରଃ ଦେଖ ।

ପୁରସଂସ୍କାର--ବି.(୬ତତ୍)ଦୁର୍ଗର ମଙ୍ଗମତ

ପୁରସ୍କରଣ—ବି. (ପୁରଃ + କରଣ )ପୂଜା, ସଂପୂର୍ତ୍ତୀକରଣ, ସମ୍ମୁଖରେ ରଖିବା ।

ପୁରସ୍କରଣୀୟ--ବିଂ. ( ପୁରସ୍+କରଣୀୟ) ସମ୍ମାନ ବା ଭକ୍ତି କରିବାର ଉପଯୁକ୍ତ, ପୂଜନୀୟ, ପୁରସ୍କୃତହେବାର ଉପଯୁକ୍ତ ।

ପୁରସ୍କର୍ତ୍ତବ୍ୟ—କ୍ରି.ବିଂ.(ପୁରସ୍+କର୍ତ୍ତବ୍ୟ) ଅଗ୍ରେ କରଣୀୟ, ସମ୍ପୂର୍ଣ୍ଣ କରିବାର ଉପଯୁକ୍ତ,ପ୍ରସ୍ତୁତ ହେବାର ଉପଯୁକ୍ତ ।

ପୁରସ୍କର୍ତ୍ତା—ବିଂ. ( ପୁରସ୍+କର୍ତ୍ତୃ ) ଯେ ସମ୍ମାନ କରେ ।

ପୁରସ୍କାର—ପୁଂ.ବି.( ପୁରସ୍+କୃ+ଅ) ପୁରସ୍କ୍ରିୟା,ଅଭିଶ୍ୟାସ୍,ପୂଜନ,ସ୍ୱୀକାର, ସେକ, ପାରିତୋଷିକ ଦାନ, ପାରିତୋଷିକ,ସମ୍ମାନ,ଆଦର, ଭେଟଦେବା, ଉପହାର, ଆଗରେ ଥୋଇବା, ଆଶା କରିବା, ଶତ୍ରୁକୁ ଆକ୍ରମଣ, ସାଙ୍ଗ ବା ସମ୍ପୂର୍ଣ୍ଣ କରିବା,ସମାଧା କରିବା, ମସ୍ଣ କରିବା, ତତ୍ପର ହେବା, ସଜାଇବା, ଅଭିଷେକ, ଅପବାଦ, ଅଭିଯୋଗ, ଅଭିଶାପ, ରାଜକୀୟ ଦାନ, ଦାନ, ଉନ୍ନତ,ଆକ୍ରମଣ,ପବିତ୍ରୀ କରଣ,ଗ୍ରହଣ, ସାଙ୍ଗରେ ଯିବା ।

ପୁରସ୍କାର୍ଯ୍ୟ---କ୍ରି.ବିଂ. (ପୁରସ୍+କାର୍ଯ୍ୟ) ପୁରସ୍କର୍ତ୍ତବ୍ୟ ଦେଖ ।

ପୁରସ୍କୃତ—କ୍ରି.ବିଂ.ଅଭିଶପ୍ତ, ଅଗ୍ରସ୍ତ, ଅଗ୍ରକୃତ, ପୂଜିତ,ସ୍ୱୀକୃତ,ପବିତ୍ରୀକୃତ, ଅବଲମ୍ବିତ, ଅଭିଷିକ୍ତ,ଅଭିଯୁକ୍ତ,ଅପବାଦିତ, ସମ୍ମାନିତ,ସମ୍ପାଦିତ,ନିଯୁକ୍ତ ।

ପୁରସ୍କ୍ରିୟା—ସ୍ତ୍ରୀ. ବି. (ପୁରସ୍+କ୍ରିୟା) ପୁରସ୍କାର ଦେଖ ।

ପୁରସ୍ତାତ୍—ଅବ୍ୟ. ( ପୁରସ୍+ତାତ୍ ) ପୂର୍ବେ,ପୂର୍ବକାଳରେ,ପ୍ରଥମେ, ଆଗରେ ସମ୍ମୁଖେ, ପୂର୍ବଦିଗରେ, ପୁରାଅର୍ଥ ।

ପୁରସ୍ତାତ୍—ତ୍ରି.ବିଂ.ଅଗ୍ରବର୍ତ୍ତୀ,ପୁରତୋଗନ୍ତା ।

ପୁରସ୍ତାଦ୍ଧୋମ—ପୁଂ. ବି. ହୋମ କରିବା ଆଗରୁ ଉଦ୍ଗୀଥ ।

ପୁରସ୍ତ୍ରୀ—ସ୍ତ୍ରୀ.ବି. ନଗରବାସିନୀ ସ୍ତ୍ରୀଲୋକ, ଗୃହକାର୍ଯ୍ୟଦକ୍ଷା ସ୍ତ୍ରୀ, ପତିବ୍ରତା ସ୍ତ୍ରୀ, ଗୃହିଣୀ ।

ପୁରସ୍ଥ—ପୁଂ. ବିଂ.(ପୁର+ସ୍ଥା+କ.ଅ) ସମ୍ମୁଖସ୍ଥ, ଗୃହମଧ୍ୟସ୍ଥ, ଘରେ ସର୍ବଦା ରହୁଥିବା ।

ପୁରସ୍ଥାୟୀ—ପୁଂ, ବିଂ. (ପୁର+ସ୍ଥା+କ. ଇନ୍) ପୁରସ୍ଥ ଦେଖ ।

ପୁରହର—ପୁଂ. ବି. (ପୁର+ହୃ+କ.ଅ) ତ୍ରିପୁରାରି, ଶିବ ।

ପୁରହା—ପୁଂ. ବି. ( ପୁର+ହନ୍+କ. କ୍ୱିପ) ପୁରହନ୍ତା, ବିଷ୍ଣୁ, ଶିବ ।

ପୁରା—ଅବ୍ୟ. (ପୁର+କ.ଅ+ଆ)ବହୁକାଳ ପୂର୍ବେ, ଏଥିପୂର୍ବେ, ପ୍ରଥମେ, ପଶ୍ଚାତ୍,ଆଜପର୍ଯ୍ୟନ୍ତ,ଅନତିବିଲମ୍ବ,(ବି) ପୁରାଣ, ଇତିହାସ.ପୂର୍ବଦିଗ,ଗଙ୍ଗାନଦୀ, ଦୁର୍ଗ, ସୁଗନ୍ଧି ବିଶେଷ, (ବିଂ) ପ୍ରାଚୀନ, ଚିରାତୀତ, ଅତୀତ, ଅଳ୍ପଦିନ ପୂର୍ବରେ ଘଟିଥିବା, ଚିରନ୍ତନ, ଚିର, ନିକଟ, ସନ୍ନିହିତ, ଅନାଗତ, ଶୀଘ୍ର, ନିକଟ-ଭବିଷ୍ୟତ୍ ।

ପୁରାକଥା--ସ୍ତ୍ରୀ.ବି.(ପୁରା+କଥା) ପ୍ରାଚୀନ-କଥା, ଇତିହାସ, ପୁରାବୃତ୍ତ ।

ପୁରାକଳ୍ପ—ପୁଂ. ବି. ପ୍ରାଚୀନ କଳ୍ପ, ଅତୀତଯୁଗ, ପୂର୍ବବର୍ତ୍ତୀ ସୃଷ୍ଟି,ଅର୍ଥବାଦ ବିଶେଷ ।

ପୁରାକାଳ—ପୁଂ.ବି.(କ,ଧା) ପ୍ରାଚୀନଯୁଗ

ପୁରାକୃତ—ବିଂ. (ପୁରା+କୃତ)ପୂର୍ବେ କରାଯାଇଥିବା, ( ବି ) ପୂର୍ବଜନ୍ମକୃତ କର୍ମଚୟ ।

ପୁରାଗତ—ବିଂ.(ପୁରା+ଆଗତ)ପୂର୍ବକାଳୀନ,ପୂର୍ବକାଳରୁ ଆଗତ,ଆବହମାନ କାଳରୁ ଚଳିଆସୁଥିବା ।

ପୁରାଣ—ବି. ( ପୁରା+ନ )କାର୍ଷାପଣ, କାହାଣ, ୧୬ପଣ କଉଡି ପରିମିତ ରୁପା ବା ମୁଦ୍ରା, ଅତୀତ ଘଟନା, ଅତି ପ୍ରାଚୀନ କାଳର ବିବରଣ,ସର୍ଗ, ପ୍ରତିସର୍ଗ, ବଂଶ, ମନ୍ୱନ୍ତର, ବଂଶାନୁଚରିତ, ଏହି ପଞ୍ଚଲକ୍ଷଣାକ୍ରାନ୍ତ ବ୍ୟାସଦେବ ପ୍ରଣୀତ ଅଷ୍ଟାଦଶ ଶାସ୍ତ୍ର.(ଯଥା—ବ୍ରହ୍ମ, ବିଷ୍ଣୁ,ଶିବ, ପଦ୍ମ,ଅଗ୍ନି,ବ୍ରହ୍ମାଣ୍ଡ,ଗରୁଡ଼, ବ୍ରହ୍ମବୈବର୍ତ୍ତ, ଲିଙ୍ଗ, ନାରଦ, ସ୍କନ୍ଦ, ମାର୍କଣ୍ଡେୟ,ମତ୍ସ୍ୟ, କୂର୍ମ,ବାମନ, ବରାହ ଭବିଷ୍ୟତ୍ କଳ୍କି,) ଅଠର ସଂଖ୍ୟା(ବିଂ) ପୁରୁଣା, ଅତି ପ୍ରାଚୀନ, ପୁରାତନ, ଅନାଦି, କ୍ଷୟପ୍ରାପ୍ତ, ଜୀର୍ଣ୍ଣ ।

ପୁରାଣକ—ପୁଂ. ବି. ପୁରାଣ ଦେଖ ।

ପୁରାଣକଳ୍ପ—ପୁଂ. ବି. ପ୍ରାଚୀନକଳ୍ପ, ପୁରାଣ ପ୍ରକାଶିତ ।

ପୁରାଣକାର—ବିଂ. (ପୁରାଣ+କୃ+କ. ଅ) ପୁରାଣକର୍ତ୍ତା, ପୁରାଣ ରଚୟିତା ।

ପୁରାଣଗ—ପୁଂ.ବି.(ପୁରାଣ+ଗମ୍+ଅ) ପୁରାଣ କଥକ ବ୍ୟକ୍ତି, ବ୍ରହ୍ମା, ( ବିଂ ) ପୁରାଣଗାମୁକ ।

ପୁରାଣତତ୍ତ୍ୱ—କ୍ଲୀ. ବି. (କ.ଧା) ପୁରାଣ ସମ୍ବନ୍ଧୀୟ ତଥ୍ୟ, ପ୍ରାଚୀନ କାହାଣୀ ।

ପୁରାଣପଣ୍ଡା—ଗ୍ରା.ବି. ଶ୍ରୋତାଙ୍କ ଆଗରେ ଯେ ପୁରାଣପାଠ କରନ୍ତି ।

ପୁରାଣପୁରୁଷ—ପୁଂ. ବି. (କ.ଧା)ବିଷ୍ଣୁ, ପରଂବ୍ରହ୍ମ, ଆଦିପୁରୁଷ, ବୃଦ୍ଧବ୍ୟକ୍ତି ।

ପୁରାଣପ୍ରସିଦ୍ଧ--ବିଂ.ପୁରାଣାଦିରେ ବର୍ଣ୍ଣିତ ବା ଖ୍ୟାତ ।

ପୁରାଣପ୍ରସିଦ୍ଧି—ସ୍ତ୍ରୀ. ବି. (୬ତତ୍) ବହୁକାଳବ୍ୟାପିନୀ ପ୍ରସିଦ୍ଧି ।

ପୁରାଣପ୍ରୋକ୍ତ—ତ୍ରି. ବିଂ. ପୁରାଣୋକ୍ତ, ପୁରାଣରେ ଯାହା କଥିତ ଅଛି ।

ପୁରାଣଫିଟା(ଟେ)ଇବା—ଗ୍ରା.କ୍ରି.ପୁରାଣ-ପାଠ ନିମନ୍ତେ ପୋଥିକୁ ଫିଟାଇବା, ପ୍ରାୟଶ୍ଚିତ୍ତାଦିର ବ୍ୟବସ୍ଥା ହେବାନିମନ୍ତେ ପୁରାଣପୋଥି ଖୋଲିବା, ( ଲ.ଅର୍ଥ ) କୁବାକ୍ୟରେ ଗାଳିଦେବା,ବହୁଛିଦ୍ର ବା ଗୁହ୍ୟ ଖୋଲିବା ।

ପୁରାଣବିତ୍—ବିଂ. ପୁରାଣବେତ୍ତା,ପୁରାଣଜ୍ଞ

ପୁରାଣବୈରାଗ୍ୟ—ଗ୍ରା.ବି. ପୁରାଣ ଶ୍ରବଣ ପରେ କିଛିକ୍ଷଣପାଇଁ ମନରେ ଯେଉଁ ବୈରାଗ୍ୟ ଉଦୟ ହୁଏ ।

ପୁରାଣାନ୍ତ—ପୁଂ.ବି.ଯମ,ପୁରାଣର ଶେଷ

ପୁରାଣୋକ୍ତ—ବିଂ. (୩ତତ୍) ପୁରାଣରେ ଲେଖାଯାଇଥିବା ।

ପୁରାତତ୍ତ୍ୱ—ବି.ଇତିହାସ,ପୁରାଣ,ପ୍ରାଚୀନ କାଳର ଘଟଣାବଳୀ ସମ୍ବନ୍ଧୀୟ ଜ୍ଞାନ, ପ୍ରତ୍ନତତ୍ତ୍ୱ ।

ପୁରାତତ୍ତ୍ୱବିତ୍—ବିଂ. ପୁରାବିତ୍ ଦେଖ ।

ପୁରାତନ—ପୁଂ. ବି. ପ୍ରାଚୀନ କାହାଣୀ, ପୁରାଣ, ବିଷ୍ଣୁ,ବିଂ ପ୍ରାଚୀନ,ଅନାଦି,ବୃଦ୍ଧ

ପୁରାତନଘୃତ—କ୍ଲୀ. ବି. ପୁରୁଣା ଘିଅ, ଦଶାଧିକ ବର୍ଷୀୟ ଘୃତ ।

ପୁରାତନଧାନ୍ୟ—କ୍ଲୀ. ବି. ପୁରୁଣାଧାନ ।

ପୁରାତଳ—କ୍ଲୀ. ବି. ତଳାତଳ; ସପ୍ତ ପାତାଳର ଅଧୋଗତ ଭୂମିବିଶେଷ ।

ପୁରାଧ୍ୟକ୍ଷ—ପୁଂ. ବି. (୬ତତ୍) କଞ୍ଚୁକୀ, ଅନ୍ତଃପୁରରକ୍ଷକ, ନଗରରକ୍ଷକ ।

ପୁରାନ୍ତକ—ବି. (୬ତତ୍) ଶିବ ।

ପୁରାଯୋନି—ପୁଂ. ବି. ମହାଦେବ ।

ପୁରାରାତି—ପୁଂ. ବି. (୬ତତ୍) ତ୍ରିପୁର-ଭେଦକ, ଶିବ । [ ତ୍ରିପୁରାରି ।

ପୁରାରି—ପୁଂ.ବି.(୬ତତ୍)ଶିବ,ମହାଦେବ,

ପୁରାର୍ଦ୍ଧବିସ୍ତର—ପୁଂ.ବି.ଖେଟ,ଖେଟକାସ୍ତ୍ର ।

ପୁରାବସୁ—ପୁଂ.ବି. (ପୁରା+ବସୁ)ଭୀଷ୍ମ ।

ପୁରାବିତ୍—ପୁଂ. ବିଂ. (ପୁରା+ବିଦ୍+କ.କ୍ୱିପ୍) ପୁରାବୃତ୍ତାଭିଜ୍ଞ,ପୁରାଣବେତ୍ତା, ଇତିହାସବେତ୍ତାପଣ୍ଡିତ ।

ପୁରାବୃତ୍ତ—କ୍ଲୀ.ବି. (ପୁରା+ବୃତ୍) ପୂର୍ବବୃତ୍ତାନ୍ତ ବିବରଣ, ଇତିହାସ, ପୂର୍ବଚରିତ,ପୁରାଣ,(ବିଂ)ପ୍ରାଚୀନ କାଳରେ ଘଟିଥିବା, ପ୍ରାଚୀନକାଳ ସମ୍ବନ୍ଧୀୟ ।

ପୁରାସାହ—ପୁଂ. ବି. (ପୁରା+ସହ୍+ଅ) ଶକ୍ରପୁରଭିଭାବକ, ଇନ୍ଦ୍ର ।

ପୁରାସୁହୃତ୍—(୬ତତ୍) ଶିବ ।

ପୁରୀ—ସ୍ତ୍ରୀ. ବି. ପୁରୀ, ସହର, ନଗର, ନଦୀ, ଶରୀର, ରଜା,ସନ୍ନ୍ୟାସୀ,(ଗ୍ରା.ବି) ଘିଅରେ ଛଣା ଅଠାର ପିଠା, ଲୁଚି ।

ପୁରଣ—ପୁଂ. ବି. ( ପୁର+ଶୀ+ଅ ) ପୁରୁଷ ।

ପୁରୀ—ସ୍ତ୍ରୀ. ବି. (ପୁର+ଈ) ନଗରୀ, ଭବନ, ଦେହ, ବାସସ୍ଥାନ, ପ୍ରାସାଦ, ଦୁର୍ଗ, (ଗ୍ରା.ବି) ପୁରୁଷୋତ୍ତମ କ୍ଷେତ୍ର, ପୁରୀସହର ଓ ଜିଲ୍ଲା, ଦଶନାମୀ ସନ୍ନ୍ୟାସୀମାନଙ୍କର ଉପାଧିବିଶେଷ ।

ପୁରୀତତ୍—ବି. (ପୁରି+ତନ୍+କ୍ୱିପ୍) ଅନ୍ତ୍ର, ଅନ୍ତବୁଜୁଳା, ଦେହ ।

ପୁରୀତତି—ବି. ଦେହସ୍ଥ ନାଡ଼ୀବିଶେଷ ।

ପୁରୀମୋହ—ପୁଂ.ବି. (ବ.ବ୍ରୀ) ଧୂସ୍ତୁର, ଧାତୁରା, ଦୁଦୁରା ।

ପୁରୀଷ—କ୍ଲୀ.ବି. (ପୃ+ଈଷ) ମଳ,ବିଷ୍ଠା, ଗୁହ, ଜଳି, ମଇଲା, ଅଳଆ ।

ପୁରୀଷଣ—ପୁଂ.ବି. ପୁରୀଷ ଦେଖ,ପୁରୀଷ ତ୍ୟାଗ, ଝାଡ଼ାଫେରିବା ।

ପୁରୀଷତ୍ୟାଗ—ବି. (୬ତତ୍) ମଳତ୍ୟାଗ, ଝାଡ଼ାଫେରିବା, ହଗିବା ।

ପୁରୀଷମ—ପୁଂ.ବି. (ପୁରୀଷ+ମା+ଅ) ମାଷ, ବିରି ।

ପୁରୀଷବାହଣ—ତ୍ରି. ବିଂ. ପାଂଶୁରୂପ ମୃଦ୍‌ବାହକ, ଅବସବାହକ ଗର୍ଦ୍ଦଭ ।

ପୁରୀଷାଧାନ—କ୍ଲୀ.ବି. (୬ତତ୍) ଦେହସ୍ଥ ପୁରୀଷାଶୟସ୍ଥାନ, ମଳଭାଣ୍ଡ ।

ପୁରୀଷୋତ୍ସର୍ଗ—ବି. (୬ତତ୍)ମଳତ୍ୟାଗ ।

ପୁରୀଷ୍ୟବାହନ—ତ୍ରି. ବିଂ. (ପୁରୀଷ+ବହ୍+ଅନ)ପୁରୀଷ୍ୟବାହକ,ମଳବହନକାରୀ ।

ପୁରୁ—ପୁଂ.ବି. (ପୃ+ଉ) ଦେବଲୋକ, ସ୍ୱର୍ଗ, ନୃପବିଶେଷ, ଯଯାତିଙ୍କ କନିଷ୍ଠ ପୁତ୍ର, ପୁଷ୍ପପରାଗ,ଦୈତ୍ୟ,ନଦୀବିଶେଷ, ଚାକ୍ଷୁଷମନୁଙ୍କ ପୁତ୍ରବିଶେଷ, ପର୍ବତବିଶେଷ,ଶରୀର,(ବିଂ)ପ୍ରଚୁର,ପର୍ଯ୍ୟାପ୍ତ ।

ପୁରୁକୁତ୍ସ—ପୁଂ. ବି. ମାନଧାତାଙ୍କର ପୁତ୍ରବିଶେଷ ।

ପୁରୁଖା—ଗ୍ରା.ବିଂ. ପ୍ରବୀଣ,ପୁରୁଣା,ବୃଦ୍ଧ, ଅନୁଭବୀ, ସୁପକ୍ୱ, ଜୀର୍ଣ୍ଣ, (ଗ୍ରା.ବି)ପ୍ରବୀଣ ଓ ବୃଦ୍ଧବ୍ୟକ୍ତି ।

ପୁରୁଜା—ସ୍ତ୍ରୀ. ବି. ମାଡ଼ବାଡ଼ିମାନଙ୍କ ବ୍ୟବହାରରେ ପ୍ରଚଳିତ ହାଣ୍ଡନୋଟ୍, ଋଣପତ୍ର ।

ପୁରୁଜିତ୍—ବି. ପାଣ୍ଡବଙ୍କ ମାମୁଁ,କୁନ୍ତୀଙ୍କ ଭାଇ, ବିଷ୍ଣୁ ।

ପୁରୁଡ଼ା—ପ୍ରା.(ଗଞ୍ଜାମ)କ୍ରି.ଖାଲଫୋଡ଼ିବା ।

ପୁରୁଣା—ଗ୍ରା. ବିଂ. ପ୍ରାଚୀନ, ପୁରାତନ, ପୁରୁଖା, ବହୁକାଳରୁ ଥିବା, ଅତୀତ ।

ପୁରୁଣାକାଳ—ଗ୍ରା. ବି. ଅତୀତକାଳ ।

ପୁରୁଣାକାଳିଆ—ଗ୍ରା.ବିଂ. ପ୍ରାଚୀନକାଳସମ୍ବନ୍ଧୀୟ, ମରହଟିଆ ।

ପୁରୁଣାଗୁଡ଼—ଗ୍ରା. ବି. ଏକବର୍ଷରୁ ଊର୍ଦ୍ଧ୍ୱକାଳ ସଞ୍ଚିତ ଗୁଡ଼ ।

ପୁରୁଣାଘିଅ—ଗ୍ରା. ବି. ଦଶବର୍ଷରୁ ଊର୍ଦ୍ଧ୍ୱକାଳ ସଞ୍ଚିତ ଘୃତ ।

ପୁରୁଣି—ଗ୍ରା.ବି. ଶାକବିଶେଷ.ପୁନର୍ନବା ।

ପୁରୁଦ—ବି.(ପୁରୁ+ଦା+କ.ଅ) ସ୍ୱର୍ଣ୍ଣ ।

ପୁରୁଦଂଶକ—ପୁଂ. ବି. (ପୁରୁ+ଦଂଶକ) ହଂସ ।

ପୁରୁଦଂଶାଃ—ପୁଂ. ବି. (ପୁରୁ+ଦନ୍ଶ୍+କ.ଅସ୍) ଇନ୍ଦ୍ର,(ବିଂ) ବହୁକର୍ମଯୁକ୍ତ ।

ପୁରୁଦ୍ରୁହ—ତ୍ରି. ବିଂ. (ପୁରୁ+ଦ୍ରୁହ୍+କ.ଅ) ବିଶେଷ ହିଂସାକାରୀ, (ବି) ପୁରୁହୂତ, ଇନ୍ଦ୍ର ।

ପୁରୁଧା—ଅବ୍ୟ. ବହୁପ୍ରକାର, ବହୁଧା ।

ପୁରୁଭୁଜ—ବି. ଏକପ୍ରକାର ସାମୁଦ୍ରିକ କୀଟ, ବହୁଭୁଜ ବିଶିଷ୍ଟ ଏକପ୍ରକାର ସାମୁଦ୍ରିକ କୀଟ ।

ପୁରୁଭୂତ—ପୁଂ. ବି. ପୁରୁହୂତ,ଇନ୍ଦ୍ର ।

ପୁରୁଭୋଜା—ପୁଂ. ବି. (ପୁରୁ+ଭୁଜ୍+ଅସ୍) ମେଷ, ମେଣ୍ଢା, (ବିଂ) ଯେ ଖୁବ୍ ଖାଇପାରେ, ପେଟୁ ।

ପୁରୁରବାଃ—ପୁଂ. ବି. ସୋମବଂଶୀୟ ନୃପବିଶେଷ, ପାର୍ବଣଶ୍ରାଦ୍ଧ, ଦେବତା ।

ପୁରୁରବା—ବିଂ.ବହୁବିରୁଦ୍ଧ ଫଳଦାତା ।

ପୁରୁଷ—ପୁଂ. ବି. (ପୃ+ଉଷ) ପୁମାନ୍, ମନୁଷ୍ୟ, ନର, ଆତ୍ମା, ଅଧିଷ୍ଠାନ,ଜଣ, ବ୍ୟକ୍ତି, ପରମାତ୍ମା, ସାଂଖ୍ୟୋକ୍ତ ପ୍ରାଣୀମାନଙ୍କର ଆତ୍ମାସ୍ୱରୂପ, ବିଷ୍ଣୁ, ଶିବ, ଜୀବ,ଦୁର୍ଗା,ଅଶ୍ୱସ୍ଥାନକ ବିଶେଷ,ପୁନ୍ନାଗ ବୃକ୍ଷ, ପାରଦ, ଗୁଗ୍ଗୁଳ, ତିଳକ ।

ପୁରୁଷକ—ବି. (ପୁରୁଷ+କ) ଅଶ୍ୱାଦି ପଶୁଙ୍କର ଦୁଇଟି ଆଗଗୋଡ଼କୁ ଟେକିଦେଇ ଦୁଇଟି ପଛଗୋଡ଼ରେ ଠିଆ ହେବାର ଭଙ୍ଗୀ ।

ପୁରୁଷକାର—ପୁଂ.ବି. (ପୁରୁଷ+କାର) ପୌରୁଷ, ଚେଷ୍ଟା, ଉତ୍ସାହ, ଉଦ୍ୟମ ।

ପୁରୁଷକୁଞ୍ଜର—ପୁଂ. ବି. ପୁରୁଷଶ୍ରେଷ୍ଠ, ବ୍ୟାଘ୍ର, ପୁଙ୍ଗବ, ଋଷଭ ଓ କୁଞ୍ଜର ପ୍ରଭୃତି ।

ପୁରୁଷକେଶରୀ—ପୁଂ. ବି. ପୁରୁଷଶ୍ରେଷ୍ଠ, ନରସିଂହରୂପୀ ବିଷ୍ଣୁ ।

ପୁରୁଷକ୍ଷେତ୍ର—କ୍ଲୀ. ବି. ଜ୍ୟୋତିଷୋକ୍ତ ଯେଉଁ କ୍ଷେତ୍ରରେ ପୁରୁଷର ଜନ୍ମ ନିର୍ଦ୍ଦିଷ୍ଟ ହୁଏ ।

ପୁରୁଷଗ୍ରହ—ପୁଂ. ବି. (କ, ଧା) ସୂର୍ଯ୍ୟ, ମଙ୍ଗଳ ଓ ବୃହସ୍ପତି ଗ୍ରହ ।

ପୁରୁଷଘ୍ନ—ତ୍ରି.ବିଂ. (ପୁରୁଷ+ହନ୍+ଅ) ପୁରୁଷହନନ ସାଧ୍ୟ, ଆୟୁଧ, ପୁରୁଷଘାତକ ।

ପୁରୁଷତା—ସ୍ତ୍ରୀ. ବି. ( ପୁରୁଷ+ତା ) ମନୁଷ୍ୟତ୍ୱ, ପୌରୁଷ, ବୀର୍ଯ୍ୟ, ଉତ୍ସାହ, ବଳ, ପରାକ୍ରମ । [ ଦେଖ ।

ପୁରୁଷତ୍ୱ—ବି. (ପୁରୁଷ+ତ୍ୱ) ପୁରୁଷତା

ପୁରୁଷତ୍ୱନାଶ—ବି.(୬ତତ୍) ପୁଂସ୍ତ୍ୱଲୋପ, ପୁରୁଷପଣିଆର ବିନାଶ,ସ୍ତ୍ରୀସଙ୍ଗମରେ ଅପାରଗତା ।

ପୁରୁଷତ୍ୱପ୍ରକାଶ—ବି. (୬ତତ୍) ବୀରତ୍ୱ ବା ବିକ୍ରମ । [ ଶକ୍ତିବିଶିଷ୍ଟ ।

ପୁରୁଷତ୍ୱବିଶିଷ୍ଟ—ପୁଂ. ବିଂ. ସ୍ତ୍ରୀସଙ୍ଗମ-

ପୁରୁଷତ୍ୱହୀନ—ବିଂ.ପୁଂସ୍ତ୍ୱହୀନ,ନପୁଂସକ ।

ପୁରୁଷଦଘ୍ନ—ବିଂ. ( ପୁରୁଷ+ଦଘ୍ନ ) ଉଚ୍ଚରେ ଏକପୁରୁଷ ପରିମିତ, ପ୍ରାୟ ସାଢେ ତିନିହାତ ଉଚ୍ଚ ।

ପୁରୁଷଦ୍ୱୟସ—ବିଂ. ପୁରୁଷଦଘ୍ନ ଦେଖ ।

ପୁରୁଷଦ୍ୱେଷୀ—ତ୍ରି.ବିଂ. (ପୁରୁଷ+ଦ୍ୱିଷ୍+ଇନ୍)ପୁରୁଷଦ୍ୱେଷଶୀଳ, ମନୁଷ୍ୟଘୃଣାକାରୀ । [ ମନୁଷ୍ୟତା ।

ପୁରୁଷଧର୍ମ—ପୁଂ.ବି.(୬ତତ୍)ପୌରୁଷ,

ପୁରୁଷନକ୍ଷତ୍ର—ବି. ହସ୍ତା, ମୂଳା, ଶ୍ରବଣା, ପୁନର୍ବସୁ, ମୃଗଶିରା ଓ ପୁଷ୍ୟା ନକ୍ଷତ୍ରମାନେ ।

ପୁରୁଷନାଗ—ପୁଂ. ବି. ପୁରୁଷଶ୍ରେଷ୍ଠ ।

ପୁରୁଷପରମ୍ପରା—ବି. (୬ତତ୍) ବଂଶପରମ୍ପରା, ବଂଶାନୁକ୍ରମ, ପୁରୁଷାନୁକ୍ରମ ।

ପୁରୁଷପରମ୍ପରାକ୍ରମେ— ଗ୍ରା. କ୍ରି. ବିଂ. ବାପପରେ ପୁଅ ଓ ପୁଅପରେ ନାତି ଏହିପରି କ୍ରମରେ ।

ପୁରୁଷପରମ୍ପରାଗତ—ବିଂ. (୫ତତ୍) ବହୁ ପୁରୁଷରୁ ଚାଲିଆସୁଥିବା । [ପୁରୁଷ

ପୁରୁଷପଶୁ—ବି. ପଶୁପରି ଆଚରଣକାରୀ

ପୁରୁଷପୁଙ୍ଗବ—ପୁଂ. ବି. ପୁରୁଷଶ୍ରେଷ୍ଠ, ପୁରୁଷପ୍ରଧାନ, ରାଜା ।

ପୁରୁଷପୁଣ୍ଡରୀକ—ପୁଂ. ବି. ପୁରୁଷ ବ୍ୟାଘ୍ର, ପୁରୁଷଶ୍ରେଷ୍ଠ ।

ପୁରୁଷପୁର—ବି. ପ୍ରାଚୀନ ଗାନ୍ଧାର ରାଜ୍ୟର ରାଜଧାନୀ, ଆଧୁନିକ ପେଶାବାର ।

ପୁରୁଷପ୍ରଧାନ—ବିଂ. ପୁରୁଷଶ୍ରେଷ୍ଠ, ନରଶ୍ରେଷ୍ଠ ।

ପୁରୁଷମାତ୍ର—ତ୍ରି. ବିଂ. (ପୁରୁଷ + ମାତ୍ରଚ୍) ପୁରୁଷ ପରିମାଣ, କେବଳହିଁ ପୁରୁଷ । [ ମୁଖବିଶିଷ୍ଟ ।

ପୁରୁଷମୁଖ—ତ୍ରି. ବିଂ. ପୁରୁଷ ସଦୃଶ

ପୁରୁଷମେଧ—ବି. ନରମେଧ, ଯେଉଁ ଯଜ୍ଞରେ ନରବଳି ଦିଆଯାଉଥିଲା ।

ପୁରୁଷରକ୍ଷଃ—ପୁଂ. ବି. ପୁରୁଷାକାର ରାକ୍ଷସବିଶେଷ ।

ପୁରୁଷରତି—ବି. ପୁରୁଷାୟିତ ଦେଖ ।

ପୁରୁଷରାଜ—ପୁଂ. ବି. ପୁରୁଷଶ୍ରେଷ୍ଠ ।

ପୁରୁଷରାଶି—ବି. ମେଷ, ମିଥୁନ, ସିଂହ, ତୁଳା, ଧନୁ ଓ କୁମ୍ଭ ଏହି ରାଶିମାନେ ।

ପୁରୁଷରୂପକ—ତ୍ରି. ବିଂ. ନରାକୃତିବିଶିଷ୍ଟ ।

ପୁରୁଷର୍ଷଭ—ବିଂ. (ପୁରୁଷ + ଋଷଭ) ପୁରୁଷଶ୍ରେଷ୍ଠ ।

ପୁରୁଷବଧ—ପୁଂ. ବି. ନରହତ୍ୟା ।

ପୁରୁଷବତ୍—ଅବିଂ. ନରବତ୍ ।

ପୁରୁଷବାନ୍—ସ୍ତ୍ରୀ. ବି. ପୁରୁଷବଦ୍ ଭାଗ୍ୟସାର ।

ପୁରୁଷବାର—ବି. ରବି, ମଙ୍ଗଳ, ବୃହସ୍ପତି ଓ ଶନିବାର ।

ପୁରୁଷବିଧ—ତ୍ରି. ବିଂ. ପୁରୁଷପ୍ରକାର ।

ପୁରୁଷବ୍ୟାଘ୍ର—ପୁଂ. ବି. (ପୁରୁଷ + ବ୍ୟାଘ୍ର) ପୁରୁଷଶ୍ରେଷ୍ଠ ।

ପୁରୁଷଶାର୍ଦ୍ଦୂଳ—ପୁ. ବିଂ. ପୁରୁଷ ଶ୍ରେଷ୍ଠ, ପ୍ରଧାନ ବ୍ୟକ୍ତି ।

ପୁରୁଷଶୀର୍ଷକ—କ୍ଳୀ. ବି. ନରମସ୍ତକ ଯୁକ୍ତ ଚୌର ବ୍ୟବହୃତ ଯନ୍ତ୍ର ବିଶେଷ ।

ପୁରୁଷଶ୍ରେଷ୍ଠ—ବି. (୭ତତ୍) ପୁରୁଷଶାର୍ଦ୍ଦୂଳ ଦେଖ ।

ପୁରୁଷସିଂହ—ପୁଂ. ବି. (ପୁରୁଷ + ସିଂହ) ପୁରୁଷ ଶ୍ରେଷ୍ଠ, ପ୍ରଧାନ ବ୍ୟକ୍ତି ।

ପୁରୁଷସୂକ୍ତ—କ୍ଳୀ. ବି. ସୂକ୍ତଭେଦ, ବେଦୋକ୍ତ ଷୋଳଗୋଟି ମନ୍ତ୍ର ।

ପୁରୁଷାଂଶକ—ପୁଂ. ବି. ପୁରୁଷାଂଶଭେଦ, ତତ୍ତ୍ୱ ପ୍ରତିପାଦକ ଗ୍ରନ୍ଥ ।

ପୁରୁଷାଙ୍ଗ—ପୁଂ. ବି. କ. ଧା; ପୁଂଚିହ୍ନ, ଲିଙ୍ଗ

ପୁରୁଷାଦ—ପୁଂ. ସ୍ତ୍ରୀ. ବି. ( ପୁରୁଷ + ଅଦ୍ + କ. ଅ) ନରମାଂସ ଭୋଜୀ ବ୍ୟକ୍ତି, ରାକ୍ଷସ, ମଧ୍ୟଦେଶ ବିଶେଷ ।

ପୁରୁଷାଦକ—ବି. ନରଭକ୍ଷକ ରାକ୍ଷସ, ଜନପଦ ବିଶେଷ ଓ ତଜ୍ଜନପଦବାସୀ ଲୋକ ।

ପୁରୁଷାଦ୍ୟ—ପୁଂ. ବି. (ପୁରୁଷ + ଆଦ୍ୟ) ଆଦିପୁରୁଷ, ଆଦିନାଥ ନାମକ ଜୈନ ବିଶେଷ, ବିଷ୍ଣୁ, ରାକ୍ଷସ ।

ପୁରୁଷାଧମ—ପୁଂ. ବି. ନରାଧମ, ଅତି ଘୃଣ୍ୟ ବ୍ୟକ୍ତି ।

ପୁରୁଷାନୁକ୍ରମ-ବି. ପୁରୁଷପରମ୍ପରା ଦେଖ ।

ପୁରୁଷାନୁକ୍ରମେ—ଗ୍ରା. କ୍ରି. ବିଂ. ପୁରୁଷ ପରମ୍ପରାକ୍ରମେ ଦେଖ ।

ପୁରୁଷାନ୍ତର—ପୁଂ. ବି. ଅପର ପୁରୁଷ ।

ପୁରୁଷାନ୍ତରାତ୍ମା—ପୁଂ. ବି. ଜୀବାତ୍ମା ।

ପୁରୁଷାୟୁଶ--ତ୍ରି. ବିଂ. ଆତ୍ମପ୍ରତିଷ୍ଠ ପ୍ରାଣୀତ

ପୁରୁଷାୟିତ—ବି. (ପୁରୁଷ + ଆୟ + ଇତ ) ପୁରୁଷପରି କର୍ମ କରିବା, ମନୁଷ୍ୟୋଚିତ ଆଚରଣ, ବିପରୀତ ରତି

ପୁରୁଷାୟିତା—ସ୍ତ୍ରୀ. ବିଂ. ରତିକାଳରେ ପୁରୁଷର ସ୍ଥାନ ଅଧିକାରକରିଥିବା (ସ୍ତ୍ରୀ)

ପୁରୁଷାୟୁଷ—କ୍ଳୀ. ବି. (ପୁରୁଷ + ଆୟୁସ୍ + ଅ) ପୁରୁଷର ଜୀବିତ କାଳ, ଶତବର୍ଷ

ପୁରୁଷାର୍ଥ—ପୁଂ. ବି. (ପୁରୁଷ + ଅର୍ଥ) ମନୁଷ୍ୟ ଜୀବନର ଲକ୍ଷ୍ୟ, ସୁଖ, ମୁକ୍ତି, ସଂସାର, ପୌରୁଷ, ପୁରୁଷର ପ୍ରୟୋଜନ (ଯଥା—ଧର୍ମ, ଅର୍ଥ, କାମ ଓ ମୋକ୍ଷ, ପୁରୁଷକାର, ଉଦ୍ୟମ, ବଳ, ଶକ୍ତି, ସାମର୍ଥ୍ୟ ।

ପୁରୁଷାର୍ଥୀ—ପୁଂ. ବିଂ. ( ପୁରୁଷାର୍ଥ + ଇନ୍) ଉଦ୍‌ଯୋଗୀ, ଉଦ୍ୟମୀ, ପରିଶ୍ରମୀ, ବଳୀ, ସାମର୍ଥ୍ୟବାନ୍ ।

ପୁରୁଷାଶୀ—ପୁଂ. ବି. (ପୁରୁଷ + ଅଶ୍ କ. ଇନ୍) ନରଭକ୍ଷକ ରାକ୍ଷସ ।

ପୁରୁଷାସ୍ଥିମାଳୀ—ପୁଂ. ବି. ଶିବ ।

ପୁରୁଷେ—ଗ୍ରା. ବିଂ. ପୁରୁଷର ଉଚ୍ଚତା ଠାରୁ ଏକହାତ ଉଚ୍ଚ ବା ଗଭୀର, (ଗ୍ରା. ବି) ବଂଶର ଏକ ପୁରୁଷର ଜୀବିତ କାଳ

ପୁରୁଷେନ୍ଦ୍ର—ପୁଂ. ବି. ପୁରୁଷଶ୍ରେଷ୍ଠ ।

ପୁରୁଷେଷିତ—ତ୍ରି. ବିଂ. ପୁରୁଷକର୍ତ୍ତୃକ ପ୍ରେରିତ ।

ପୁରୁଷୋତ୍ତମ—ବି. ପୁରୁଷଶ୍ରେଷ୍ଠ, ନରପୁଙ୍ଗବ, ଭଗବାନ୍, ବିଷ୍ଣୁ, ଜୈନ ବିଶେଷ, ଜଗନ୍ନାଥକ୍ଷେତ୍ର, ନୀଳାଚଳଧାମ, ପୁରୀ, ମଳମାସ, ଅଧିମାସ, ଶତ୍ରୁ ମିତ୍ରମାନଙ୍କ ପ୍ରତି ସର୍ବଦା ଉଦାସୀନ, ନିଷ୍ପାପ ପୁରୁଷ,

ପୁରୁଷୋତ୍ତମକ୍ଷେତ୍ର—ବି. ଉତ୍କଳର ଅନ୍ତର୍ଗତ ଜଗନ୍ନାଥ ଦେବାଧିଷ୍ଠିତ ଶ୍ରୀକ୍ଷେତ୍ର ତୀର୍ଥ, ପୁରୀଧାମ ।

ପୁରୁଷୋତ୍ତମଦାସ—ଗ୍ରା. ବି. ଜଣେ ଓଡ଼ିଆ କବି, (ଗଙ୍ଗାମାହାତ୍ମ୍ୟ ଏହାଙ୍କ ଚରିତ ପ୍ରଧାନ ଗ୍ରନ୍ଥ ଅଟେ) ।

ପୁରୁଷୋତ୍ତମଦେବ—ଗ୍ରା. ବି. ଉତ୍କଳର ସ୍ୱାଧୀନ ନରପତି ।

ପୁରୁଷୋତ୍ତମପାଢ଼ି—ଗ୍ରା. ବି. ଜଣେ ସଂସ୍କୃତ ଟୀକାକାର, (ଅନର୍ଘରାଘବ ଟୀକା ଏହାଙ୍କ ରଚିତ) ।

ପୁରୁଷୋତ୍ତମମାନଧାତା—ଗ୍ରା. ବି. ଜଣେ ଓଡ଼ିଆ କବି (ଏ ନବଦୁର୍ଗ ରାଜ୍ୟର ରାଜା

ଓ ଶୋକାବସ୍ଥା କାବ୍ୟର ପ୍ରଣେତା ।

ପୁରୁହ—ବି. ସଂ. (ପୁରୁ+ହନ୍+ଅ) ପ୍ରଚୁର, ଅଧିକ ।

ପୁରୁହୁ—ବି. ସଂ. ପ୍ରଚୁର ।

ପୁରୁହୁତ—ବି. ପରମେଶ୍ୱର, ବିଷ୍ଣୁ ।

ପୁରୁହୂତ—ବି. (ପୁରୁ+ହୂତ) ଇନ୍ଦ୍ର ।

ପୁରୁହୂତା—ସ୍ତ୍ରୀ.ବି. ଭଗବତୀଙ୍କ ମୂର୍ତ୍ତିବିଶେଷ ।

ପୁରୁହୂତି—ସ୍ତ୍ରୀ.ବି.ଦାକ୍ଷାୟଣୀ, (ପୁଂ.ବି) ବିଷ୍ଣୁ, (ସଂ) ପୁରୁ ଦେଖ ।

ପୁରୁଜନ୍ମ—ପୁଂ. ବି. ପୌରବବଂଶୀୟ ନୃପଶ୍ରେଷ୍ଠ, ଦ୍ୱାଦଶ ମନ୍ୱନ୍ତରୀୟ ରୁଦ୍ରସାବର୍ଣ୍ଣିମନୁଙ୍କ ପୁତ୍ରବିଶେଷ ।

ପୁରୁରବାଃ—ପୁଂ.ବି.(ପୁରୁ+ରୁ+ଅସ୍ ଚନ୍ଦ୍ରବଂଶୀୟ ନୃପବିଶେଷ, ବୁଧପୁତ୍ର, କୁବେର, ବିଶ୍ୱଦେବ, ପାର୍ବଣ ଶ୍ରାଦ୍ଧରେ ଅର୍ଚ୍ଚିତ ଦେବବିଶେଷ,(ସଂ)ବହୁ ଫଳଦାତା, ବରଦାତା ।

ପୁରେ—ପ୍ରା.(ଭବିଷ୍ୟଭାଷା)ଅବ୍ୟ.ସମ୍ମୁଖରେ, ନିକଟରେ,(ଗ୍ରା.ଅବ୍ୟ) ଏକଥର ମାତ୍ର, ଏକଓଡ଼ ।

ପୁରେନ୍—ପ୍ରା. (ସମ୍ବ)ବି. ପଦ୍ମଫୁଲ ।

ପୁରେଇବା—ଗ୍ରା.କ୍ରି. ପୁରାଇବା ଦେଖ ।

ପୁରୋଗ—ବି.ସଂ (ପୁରସ୍+ଗମ୍+ଅ) ବାଟ କଢ଼ାଉଥିବା, ଶ୍ରେଷ୍ଠ, ପୂର୍ବରୁ ଯାଇଥିବା ।

ପୁରୋଗତ—ବି. ସଂ. ( ପୁରସ୍+ଗତ ) ଅଗ୍ରେଗତ,ଯେ ଆଗେ ଗମନ କରିଅଛି, ପ୍ରଧାନ ।

ପୁରୋଗତି—ବି.(ପୁରସ୍+ଗତି) କୁକ୍କୁର, ଅଗ୍ରେ ଗମନ, (ସଂ.ବ.ଗ୍ରା)ଅଗ୍ରଗ,ଅଗ୍ରଗାମୀ ।

ପୁରୋଗନ୍ତା—ବି.ସଂ. (ପୁରସ୍+ଗମ୍+ତୃ) ପୁରୋଗାମୀ, ଅଗ୍ରଗାମୀ ।

ପୁରୋଗମ—ବି.ସଂ.ଅଗ୍ରଗାମୀ,(ବି)କୁକ୍କୁର

ପୁରୋଗମନ—ବି.(କ.ଧା)ଆଗରେ ଯିବା. ନେତୃତ୍ୱ, (ବ.ଗ୍ରା) କୁକ୍କୁର ।

ପୁରୋଗାମୀ—ପୁଂ. ସଂ. (ପୁରଃ+ଗମ୍+କ.ଇନ୍)ଅଗ୍ରଗାମୀ, ଶ୍ରେଷ୍ଠ, ପ୍ରଧାନ, (ସ୍ତ୍ରୀ) ପୁରୋଗାମିନୀ ।

ପୁରୋଚନ—ପୁଂ.ବି.ଜତୁଗୃହରେ ପାଣ୍ଡବମାନଙ୍କୁ ଦହନ କରିବା ପାଇଁ ଦୁର୍ଯ୍ୟୋଧନଙ୍କ ନିଯୁକ୍ତ ଯବନ ମନ୍ତ୍ରୀ, ବଳି ବା ଉତ୍ସର୍ଗବିଶେଷ, ହୋମମନ୍ତ୍ରବିଶେଷ ।

ପୁରୋଜନ୍ମା—ବି. ଅଗ୍ରଜ ଭ୍ରାତା, ଅଗ୍ରଜ ଭଗିନୀ,ବଡ଼ଭାଇ,(ସଂ)ଅଗ୍ରଜ,ଅଗ୍ରଜାତ ।

ପୁରୋଜ୍ୟୋତିଃ—ବି. ସଂ. ଅଗ୍ରଗାମୀ ଜ୍ୟୋତିର୍ବିଶିଷ୍ଟ । [ ଣ୍ଢ ।

ପୁରୋଟି—ପୁଂ.ବି. ପତ୍ରଝଙ୍କାର, ପତ୍ରର

ପୁରୋଡ଼ାଶ—ପୁଂ.ବି. (ପୁରଶ୍+ଦାଶ୍+ଅ) ଘୃତ, ହବିର୍ଭାଗ, ଚରୁ, ଯବଚୂର୍ଣ୍ଣନିର୍ମିତ ରୁଟି,ମାଲପୁଆ, ପିଷ୍ଟକ,ଚମସୀ, କାଳଚଟୁ, ହୁତଶେଷ, ଯଜ୍ଞରେ ବଳି ଦିଆଯିବା ପଶୁର ଅବୟବ, ପୁରୋଡ଼ା ପ୍ରସ୍ତୁତ କରିବା ସମୟରେ ଉଚ୍ଚାରିତ ମନ୍ତ୍ର, ସୋମରସ । [ ସମ୍ବନ୍ଧୀୟ ।

ପୁରୋଡ଼ାଶୀ—ବି.ସଂ.ଯଜ୍ଞୀୟ ପୁରୋଡାଶ

ପୁରୋଡ଼ାଶ୍ୟ—ବି. ସଂ. (ପୁରୋଡ଼ାଶ+ଯ) ହବିର୍ଯୋଗ୍ୟ, ହବିସହିତ ଆହୁତି ଦିଆଯିବା ଯୋଗ୍ୟ ।

ପୁରୋଭବ—ପୁଂ.ସଂ.(ପୁରସ୍+ଉଦ୍ଭବ) ପୂର୍ବେ ଜାତ, ନଗରଜାତ ମାନବ ।

ପୁରୋଭବା—ସ୍ତ୍ରୀ. ବି. ମହାମେଦା ।

ପୁରୋଧ—ପୁଂ. ବି. ପୁରୋହିତ ।

ପୁରୋଧସ୍—ପୁଂ.ବି(ପୁରସ୍+ଧା+ଅସ୍) ପୁରୋହିତ, ଯଜ୍ଞାଦିରେ ମନ୍ତ୍ରାଦି ଉଚ୍ଚାରଣ କରିବା ବ୍ରାହ୍ମଣ ।

ପୁରୋଧାତୃ—ପୁଂ. ବି. (ପୁରସ୍+ଧା+ତୃ) ପୁରୋହିତ ନିଯୋଗକାରୀ, ଯେ ପୌରହିତ୍ୟ ପ୍ରଦାନ କରେ ।

ପୁରୋଧାନୀୟ—ପୁଂ. ସଂ. ପୁରୋହିତ ।

ପୁରୋଧିକା—ବି. ଅଗ୍ରପତ୍ନୀ, ପ୍ରିୟତମା ଭାର୍ଯ୍ୟା ।

ପୁରୋଭାଗ—ପୁଂ.ବି.(ପୁରସ୍+ଭାଗ)ଅଗ୍ରଭାଗ, ସାମନା ଅଂଶ,(ସଂ)ଅଗ୍ରଭାଗଯୁକ୍ତ

ପୁରୋଭାଗୀ—ପୁଂ. ସଂ. (ପୁରସ୍+ଭଜ୍+ଇନ୍)କେବଳ ଦୋଷଦର୍ଶୀ,ଦୋଷଗ୍ରାହୀ, ପ୍ରଥମେ ଅଂଶ ପାଇବାର ଯୋଗ୍ୟ ।

ପୁରୋମାରୁତ—ପୁଂ.ବି.ପୂର୍ବଦିଗ୍‌ଭବ ବାୟୁ

ପୁରୋବର୍ତ୍ତୀ—ପୁଂ.ସଂ, (ପୁରସ୍+ବୃତ୍+ଇନ୍) ସମ୍ମୁଖବର୍ତ୍ତୀ,ଅଗ୍ରେସ୍ଥିତ ।

ପୁରୋବୃତ୍ତ—ବି. ସଂ. ଅଗ୍ରବର୍ତ୍ତୀ ।

ପୁରୋହିତ—ପୁଂ.ବି. (ପୁରସ୍+ଧା+ତ) ଋତ୍ୱିକ୍, ପୁରୋଧା, ଶ୍ରାଦ୍ଧ ଯଜ୍ଞାଦିକାରୟିତା, ଯେଉଁ ବ୍ୟକ୍ତି ଯଜମାନଙ୍କ ଯଜ୍ଞ କର୍ମ କରାଇବାକୁ ନିଯୁକ୍ତ ହୁଅନ୍ତି, ପ୍ରଧାନ ଯାଜକ, ଗୃହସ୍ଥର ଗାର୍ହସ୍ଥ୍ୟ ଅନୁଷ୍ଠାନରେ ନିଯୁକ୍ତ ବ୍ରାହ୍ମଣ ।

ପୁରୋହିତା—ସ୍ତ୍ରୀ.ବି.ପୁରୋଧାନ, ପୌରହିତ୍ୟ । [ ହିତ ପତ୍ନୀ ।

ପୁରୋହିତକା—ସ୍ତ୍ରୀ.ବି.ଅନୁକମ୍ପିତ,ପୁରୋ-

ପୁର୍ଯ୍ୟଷ୍ଟ—କ୍ଲୀ. ବି. ଶରୀରର ପ୍ରଧାନ ଅଷ୍ଟାଙ୍ଗ । [ ବିଶେଷ ।

ପୁର୍ଯ୍ୟାଦ୍ରି—ବୃହନ୍ନୀଳତନ୍ତ୍ରୋକ୍ତ ପୀଠସ୍ଥାନ

ପୁଲ—ପୁଂ. ବି. (ପୁଲ+ଅ) ରୋମାଞ୍ଚ, ଗଦା, ଘଣି, ଶିବାନୁଚରବିଶେଷ,(ସଂ) ବିପୁଳ, ବୃହତ୍, ବିସ୍ତୃତ ।

ପୁଲକ—ପୁଂ.ବି.(ପୁଲ+ଅକ) ରୋମାଞ୍ଚ, ହର୍ଷ, ହରିତାଳ, ଜୀବଙ୍କ ଦେହରେ ଲାଗିବା ପୋକ, ପ୍ରସ୍ତର ମଣିବିଶେଷ, ଗଜାନ୍ନପିଣ୍ଡ, ହାତୀକୁ ଖାଇବାକୁ ଦିଆଯିବା କୁଣ୍ଠାରେ ବନ୍ଧାହେବା ଶସ୍ୟାଦିର ପିଣ୍ଡୁଳା, ପାନପାତ୍ର, ଗନ୍ଧର୍ବବିଶେଷ, ଛଡକଣ୍ଟା,କଙ୍କୋଷ୍ଠ,ପାର୍ବତୀୟ ମୃତ୍ତିକାବିଶେଷ, ରତ୍ନର ଦୋଷବିଶେଷ, ମଦ୍ୟପାତ୍ର, ଏକପ୍ରକାର ଗେରୁ, ସୋରିଷ ।

ପୁଲକକଣ୍ଟକିତ—ସଂ(ଷତତ୍ପୁ) ଆନନ୍ଦରେ ରୋମାଞ୍ଚିତ ।

ପୁଲକଜାଲକ—ବି. ( ୬ତତ୍ପୁ ) ବହୁ ରୋମୋଦ୍ଗମ, ଦେହରେ ପୁଲକୋଦ୍ଗମ ।

ପୁଲକାଙ୍ଗ—ପୁଂ. ବି. (ବ.ବ୍ରୀ) ବରୁଣଙ୍କ ପାଶାସ୍ତ୍ର । [ ନ୍ତର ।

ପୁଲକାଳୟ—ପୁଂ.ବି.କୁବେରଙ୍କ ନାମା-

ପୁଲକିତ—ବି. ସଂ. (ପୁଲକ+ଇତ) ରୋମାଞ୍ଚିତ,(ପୁଷ୍ପାଦି ପ୍ରସ୍ଫୁଟିତ)ହର୍ଷଯୁକ୍ତ, ଆହ୍ଲାଦିତ, ଉଲ୍ଲସିତ ।

ପୁଲକିବା—ଗ୍ରା. କ୍ରି. ଦେହ ରୋମାଞ୍ଚିତ

ହେବା, ରୋମ ଟାଙ୍କୁରି ଉଠିବା, ଆନନ୍ଦିତ ହେବା, (ଫୁଲ) ପ୍ରସ୍ଫୁଟିତ ହେବା ।

**ପୁଲକୀ**—ତ୍ରି.ବି°. (ପୁଲକ+ଇନ୍) ପୁଲକିତ ଦେଖ, (ବି) କେଳିକଦମ୍ବ, ଧାରାକଦମ୍ବ ।

**ପୁଲକୋଦ୍‌ଗମ**—ପୁଂ. ବି. ହର୍ଷ ।

**ପୁଲସ୍ତି**—ପୁଂ. ବି. (ପୁଲ+ସ୍ତ୍ୟୈ+ଅ) ସପ୍ତର୍ଷି ମଧ୍ୟରୁ ଜଣେ, ବ୍ରହ୍ମାଙ୍କ ମାନସପୁତ୍ର, ସପ୍ତର୍ଷି ମଣ୍ଡଳର ଗୋଟିଏ ନକ୍ଷତ୍ର

**ପୁଲସ୍ତ୍ୟ**—ପୁଂ.ବି. (ପୁଲ+ସ୍ତ୍ୟୈ+ଅ) ପୁଲସ୍ତି ଦେଖ ।

**ପୁଲହ**—ପୁଂ. ବି. (ପୁଲ+ହା+ଅ) ବ୍ରହ୍ମାଙ୍କ ମାନସପୁତ୍ର, ସପ୍ତର୍ଷିମଣ୍ଡଳର ଗୋଟିଏ ନକ୍ଷତ୍ର, ପ୍ରଜାପତି, ଗନ୍ଧର୍ବବିଶେଷ, ଶିବଙ୍କର ନାମାନ୍ତର ।

**ପୁଲା**—ବି.(ପୁଲ୍+ଆ) ପୁଲାସ୍ଥିତ ଦେଖ, ଘଣ୍ଟିକା, (ଗ୍ରା.ବି) ମେଞ୍ଚା, ଥରେ କାମୁଡ଼ି କରି ଯେତେ ପରିମିତ ବସ୍ତୁ ନିଆଯାଇ ପାରେ, ମେଞ୍ଚେ ।   [ ଫମ୍ପା ।

**ପୁଲି**—ଗ୍ରା.ବି°. ମାଗଣା, ମାଣ୍ଡୁଲିଆ, ପୋଲି,

**ପୁଲା(ଳେ)ଇବା**—ଗ୍ରା.କ୍ରି. ପୃଥକ୍ ପୃଥକ୍ ପୁଲାରେ ରଖିବା, ମାଛ ମାରିବା ପାଇଁ ପୁଲ ଯନ୍ତ୍ରକୁ ପାଣିରେ ସ୍ଥାନେ ସ୍ଥାନେ ପକାଇବା ।

**ପୁଲାଏ**—ଗ୍ରା.ବି.ବି°. ମେଞ୍ଚାଏ, ଏକପୁଲା ମାତ୍ର, ଥୋଡ଼େ ।

**ପୁଲାକ**—ପୁଂ.ବି. ତୁଚ୍ଛଧାନ୍ୟ, ଅଗାଡ଼ିଭାତ, ଶସ୍ୟହୀନ ଡ଼ାଙ୍ଗ, ଭାତଗୁଣ୍ଡା, କ୍ଷିପ୍ରତା, ସଂକ୍ଷେପ, ପେଜ, ଅଳ୍ପତା, ଶୀଘ୍ର, ମାଂସୋଦନ, ପଲଉ, (ଗ୍ରା.ବି.ବି°) ପୁଲାଏ ଦେଖ ।

**ପୁଲାକକାରୀ**—ବି°. କ୍ଷିପ୍ରକାରୀ ।  [ ଗଛ ।

**ପୁଲକୀ**—ପୁଂ.ବି. (ପୁଲକ+ଇନ୍) ବୃକ୍ଷ,

**ପୁଲଙ୍ଗ**—ଗ୍ରା. ବି. ପୁନ୍ନାଗ ଦେଖ ।

**ପୁଲାପୁଲା**—ଗ୍ରା. ଅବ୍ୟ. ଉପର୍ଯ୍ୟୁପରି ଥରକୁଥର କାମୁଡ଼ିବା ପ୍ରକାରେ, ଏକାଥରକେ ହାତରେ ଯେତେ ନେଇ ହେବ, ଏହିପରି ବହୁବାର ।

**ପୁଲାସ୍ଥିତ**—ବି. (ପୁଲ୍+ଆ+ତ) ଘୋଡ଼ାର ମନ୍ଦ ଦୌଡ଼, ଦୁଲକି, ଘାସର ବା ଶସ୍ୟର ଗୋଛା ।

**ପୁଳି**—ଗ୍ରା.ବି. ଏକପ୍ରକାର ଠାକୁର ଭୋଗ ପିଠା, ଛୋଟ ପୁଳା ବା ମେଞ୍ଚା ।

**ପୁଳକେଶି**—ବି. ଚାଲୁକ୍ୟବଂଶୀୟ ଜଣେ ପରାକ୍ରାନ୍ତ ରାଜା ।

**ପୁଳିନ**—ବି.(ପୁଳ+ଇନ) ନଦୀ ମଧ୍ୟରେ ପଡ଼ିବା ଦ୍ୱିପ, ବାଲିକୁଦ, ପଠା, ନଦୀ ଓ ଜଳାଶୟ ଆଦିର ଅନୁଚ୍ଚତଟ, ନଦୀ ଗର୍ଭସ୍ଥ ଛୋଟ ଦ୍ୱୀପ, ନଦୀତଟସ୍ଥ ବାଲି

**ପୁଳିନବତୀ**—ସ୍ତ୍ରୀ. ବି. ତଟଶୀଳା, ନଦୀବିଶେଷ ।

**ପୁଳିନ୍ଦ**—ପୁଂ. ବି.(ପୁଳ+ଇନ୍ଦ) କେଳା, ପୁଳିନ୍ଦ ଜାତିଙ୍କ ଦେଶ, କନ୍ଧମାଳ, ଶବର, କନ୍ଧଜାତି ।

**ପୁଳିନ୍ଦା**—ବି. ଦାକ୍ଷିଣାତ୍ୟର ଉପନଦୀବିଶେଷ, ଗ୍ରା.ବି. ଲଫାପା, କାଗଜଖୋଳ, ବୋକଚି

**ପୁଲିରକ**—ପୁଂ. ବି. ସର୍ପ ।

**ପୁଲିଶ**—ପୁଂ. ବି. ପୌଲିଶସିଦ୍ଧାନ୍ତ ନାମକ ଗ୍ରନ୍ଥରଚୟିତା ।

**ପୁଲିସ୍**—ଯା.ବି. ଶାନ୍ତିରକ୍ଷକ ରାଜକର୍ମଚାରୀ

**ପୁଲୋମ**—ପୁଂ. ବି. ଦୈତ୍ୟ ବିଶେଷ, ଇନ୍ଦ୍ରଙ୍କ ଶ୍ୱଶୁର ଓ ଶଚୀଙ୍କ ପିତା, ବଚ

**ପୁଲୋମଜା**—ସ୍ତ୍ରୀ. ବି. (ପୁଲୋମନ୍+ଜନ୍+ଆ) ପୁଲୋମ ନାମକ ଦୈତ୍ୟର କନ୍ୟା, ଶଚୀ, ଇନ୍ଦ୍ରାଣୀ ।

**ପୁଲୋମଜିତ୍**—ବି. (ପୁଲୋମ+ଜି+କ. କ୍ୱିପ୍) ଇନ୍ଦ୍ର ।

**ପୁଲୋମଦ୍ୱିଟ୍**—ପୁଂ. ବି. (ପୁଲୋମ+ଦ୍ୱିଷ୍+କ. କ୍ୱିପ୍) ଇନ୍ଦ୍ର ।

**ପୁଲୋମଭିଦ୍**—ପୁଂ. ବି. (ପୁଲୋମ+ଭିଦ୍+କ. କ୍ୱିପ୍) ଇନ୍ଦ୍ର ।

**ପୁଲୋମହା**—ସ୍ତ୍ରୀ. ବି. ଅହିଫେନ, ଅଫିମ ।

**ପୁଲୋମା**—ସ୍ତ୍ରୀ.ବି. ଭୃଗୁଙ୍କ ପତ୍ନୀ, ଚ୍ୟବନ ଋଷିଙ୍କର ମାତା, ବଚ ।

**ପୁଲୋମାରି**—ପୁଂ.ବି. (୬ତତ୍) ଇନ୍ଦ୍ର ।

**ପୁଲୋମାର୍ଚ୍ଚିସ**—ପୁଂ.ବି. ବିଷ୍ଣୁ ପୁରାଣୋକ୍ତ ରାଜପୁତ୍ରବିଶେଷ ।

**ପୁଲ୍ଲ**—ତ୍ରି. ବି°. (ପୁଲ+ତ) ବିକଶିତ, ବିସ୍ତୃତ, ସମ୍ପୂର୍ଣ୍ଣ ପ୍ରସ୍ଫୁଟିତ, (ବି) ଫୁଲ ।

**ପୁଲ୍ଲିକ**—କ୍ଲୀ.ବି. ଆଶ୍ଚର୍ଯ୍ୟ ।

**ପୁଷ୍**—ଗ୍ରା. ଅବ୍ୟ. ବଳଦକୁ ଡ଼ାକିବାର ସମ୍ବୋଧନ ।

**ପୁଷ**—ଗ୍ରା.ବି. ପୌଷମାସ ।

**ପୁଷକାହାଲ**—ଗ୍ରା. ବି. ପୌଷମାସରେ କରିବା ଓ ସମୟ ସମୟରେ ଦେଖାଯିବା ମେଘୁଆ ବା କୁହୁଡ଼ିଆ ପାଗ ।

**ପୁଷମାସ**—ଗ୍ରା.ବି. ପୌଷମାସ, (ଲ, ଅର୍ଥ) ଆନନ୍ଦର ସମୟ ।

**ପୁଷରଇବାରଓଷା**—ଗ୍ରା. ବି. ପୁଷମାସର ପ୍ରତି ରବିବାରଦିନ ସ୍ତ୍ରୀମାନଙ୍କର କରାଯିବା ଓଷା ।

**ପୁଷଣ**—ଗ୍ରା.ବି. ପାଳନ, ଭରଣ ।

**ପୁଷା**—ସ୍ତ୍ରୀ. ବି. (ପୁଷ୍+ଭା.ଅ+ଆ) ଲଙ୍ଗଳୀବୃକ୍ଷ, ପୋଷଣ କରିବା, ପାଳନ ।

**ପୁଷି**—ଗ୍ରା.ବି. ବିରାଡ଼ି, ପ୍ରିୟବିରାଡ଼ି ।

**ପୁଷିତ**—ତ୍ରି. ବି°. (ପୁଷ୍+ମ°.ତ) ପୁଷ୍ଟ, ପ୍ରତିପାଳିତ, ବର୍ଦ୍ଧିତ ।

**ପୁଷିବା**—ଗ୍ରା.କ୍ରି. ପାଳିବା, ପୋଷିବା ।

**ପୁଷ୍କ**—କ୍ଲୀ.ବି. (ପୁଷ୍+କ) ପୁଷ୍ଟି ।

**ପୁଷ୍କର**—ବି. (ପୁଷ୍+କର) ହସ୍ତୀଶୁଣ୍ଡାଗ୍ର, ବାଦ୍ୟଭାଣ୍ଡ ମୁଖ, କାଣ୍ଡ, ବାଣ; ଜଳ, ପଦ୍ମକୋଷ, ବରୁଣଙ୍କ ପୁତ୍ର; ଆକାଶ, ନଳରାଜାଙ୍କ ଭ୍ରାତା, କୁଡ଼ନାମକ ଔଷଧ, ପଦ୍ମ, ତୀର୍ଥବିଶେଷ, ରୋଗବିଶେଷ, କାନ୍ତ, ଦ୍ୱୀପବିଶେଷ, ସାରସପକ୍ଷୀ, ରାଜାବିଶେଷ, ଅସୁରବିଶେଷ, ଯୋଗବିଶେଷ, ଭଗବାନ୍, ସର୍ପ, ମେଘ, ଅସିଫଳକ, ଖଡ୍ଗକୋଷ, ଯୁଦ୍ଧ, ନୃତ୍ୟଶାସ୍ତ୍ର, ନୃତ୍ୟକଳା, ଅଂଶ, ଭାଗ, ମତ୍ତତା, ନିଶା, ସଂଯୋଗ, ମିଳନ, ନାଗବିଶେଷ, ପଦ୍ମନାଗ, ହ୍ରଦ, ପୋଖରୀ, ମୁର୍ଦ୍ଦାର, ଶବ, ନୀଳପଦ୍ମ, ଏକପ୍ରକାର ଢୋଲ, (ଜ୍ୟୋତିଷ) ପୁଷ୍କର ଦୋଷ (ଦେଖ), ସୂର୍ଯ୍ୟ, ପଞ୍ଜୁରୀ, ପୁଷ୍କରମୂଳ, ଦିଗ୍‌ଗଜବିଶେଷ, ଶିବ, କୃଷ୍ଣଙ୍କର ଏକ ପୁତ୍ର, ଭରତଙ୍କର ଏକପୁତ୍ର, କରଚୁଲି କଟରା, ପଦ୍ମକନ୍ଦ, ବୁଦ୍ଧଙ୍କର ଏକ ନାମ,

(ଗ୍ରା.ବ) ପଦ୍ମବୀଜ, ପଦ୍ମମଞ୍ଜି ।
ପୁଷ୍କରକ—କ୍ଲୀ.ବ. ପୁଷ୍କରମୂଳ ।
ପୁଷ୍କରକର୍ଣ୍ଣିକା—ସ୍ତ୍ରୀ. ବ. (ପୁଷ୍କର+କର୍ଣ୍ଣ+କ+ଆ) ସ୍ଥଳପଦ୍ମିନୀ ।
ପୁଷ୍କରଚୂଡ଼—ପୁଂ. ବ. ଲୋକାଲୋକ ପର୍ବତୋପରି ସ୍ଥିତ ଦିଗ୍‌ଗଜବିଶେଷ ।
ପୁଷ୍କରତୀର୍ଥ—ଗ୍ରା. ବ. ହିନ୍ଦୁତୀର୍ଥବିଶେଷ, ହ୍ରଦବିଶେଷ ।
ପୁଷ୍କରଦୋଷ—ବ. (ଜ୍ୟୋତିଷ)ଜ୍ୟୋତିଷୋକ୍ତ ଛଅଗୋଟି ନକ୍ଷତ୍ର, ତିନୋଟି ବାର ଓ ତିନୋଟି ତିଥିରେ ମୃତ୍ୟୁଘଟିବା ଜନିତ ଅମଙ୍ଗଳ, ପୁନର୍ବସୁ, ଉତ୍ତରାଷାଢ଼ା, କୃତ୍ତିକା, ଉତ୍ତରା ଫାଲ୍‌ଗୁନୀ,ପୂର୍ବଭାଦ୍ରପଦ ଓ ବିଶାଖା ଏ ଛଅ ନକ୍ଷତ୍ର, ଦ୍ୱିତୀୟା, ସପ୍ତମୀ ଓ ଦ୍ୱାଦଶୀ ଏହି ତିନି ତିଥି, ରବି, ମଙ୍ଗଳ ଓ ଶନି ଏହି ତିନିବାର ।
ପୁଷ୍କରନାଡ଼ୀ—ସ୍ତ୍ରୀ.ବ. ସ୍ଥଳପଦ୍ମିନୀ ।
ପୁଷ୍କରନାଭ—ପୁଂ.ବ. (ବ.ବ୍ରୀ)ପଦ୍ମନାଭ, ବିଷ୍ଣୁ । [ ବିଶେଷ ।
ପୁଷ୍କରପର୍ଣ୍ଣ—କ୍ଲୀ.ବ. ପଦ୍ମପତ୍ର, ଇଷ୍ଟକ-
ପୁଷ୍କରପର୍ଣ୍ଣିକା—ସ୍ତ୍ରୀ.ବ.ପୁଷ୍କରପର୍ଣ୍ଣୀ, ସ୍ଥଳପଦ୍ମିନୀ ।
ପୁଷ୍କରପ୍ରାଦୁର୍ଭାବ—ପୁଂ.ବ. ଭଗବାନଙ୍କର ପଦ୍ମରୂପେ ପ୍ରାଦୁର୍ଭାବ ।
ପୁଷ୍କରପ୍ରିୟ—ପୁଂ.ବ. ମଧୁମକ୍ଷିକା,ସୋମ ।
ପୁଷ୍କରମାଳା—ବ. ପଦ୍ମଫୁଲର ମାଳ ।
ପୁଷ୍କରମାଳ—ଗ୍ରା.ବ.ପଦ୍ମବୀଜ ବା ମଞ୍ଜିରେ ଗୁନ୍ଥାହୋଇଥିବା ମାଳା ।
ପୁଷ୍କରମୂଳ—କ୍ଲୀ.ବ. ପୁଷ୍କରଦେଶ, ପ୍ରସିଦ୍ଧ ଔଷଧବିଶେଷ, ପାତାଳ ପଦ୍ମିନୀ, କାଶ୍ମୀରଦେଶ, ପ୍ରସିଦ୍ଧ କନ୍ଦବିଶେଷ ।
ପୁଷ୍କରମୂଳକ—କ୍ଲୀ.ବ. କୁଡ଼ଗଛର ମୂଳ, ପଦ୍ମମୂଳ । [ ବିଶେଷ ।
ପୁଷ୍କରଯୋଗ—ବ. (ଜ୍ୟୋତିଷ) ଯୋଗ-
ପୁଷ୍କରବୀଜ—କ୍ଲୀ.ବ. ପୁଷ୍କର ମୂଳ, ପଦ୍ମଫୁଲର ମଞ୍ଜି ।
ପୁଷ୍କରବ୍ୟାଘ୍ର—ପୁଂ.ବ. ଗୃଧ୍ର ।
ପୁଷ୍କରଶାନ୍ତି—ସ୍ତ୍ରୀ. ବ. କୌଣସି ବ୍ୟକ୍ତି ପୁଷ୍କର ଦୋଷ ଯୋଗରେ ମଲେ ତାହାର ଅନ୍ତ୍ୟେଷ୍ଟି କ୍ରିୟାପରେ କରାଯିବା ପୁଷ୍କର ଦୋଷର ଶାନ୍ତି,ହୋମାଦି କ୍ରିୟା ।
ପୁଷ୍କରଶାୟିକା—ସ୍ତ୍ରୀ.ବ. ଏକପ୍ରକାର ଜଳଚର ପକ୍ଷୀ ।
ପୁଷ୍କରସାଗର—ପୁଂ.ବ. ପୁଷ୍କର ମୂଳ ।
ପୁଷ୍କରସ୍ଥପତି—ପୁଂ.ବ. ମହାଦେବ ।
ପୁଷ୍କରସ୍ରଜ—ପୁଂ.ବ. ଅଶ୍ୱିନୀକୁମାରଦ୍ୱୟ, (ବଂ) ଅଶ୍ୱିନୀକୁମାରତୁଲ୍ୟ ।
ପୁଷ୍କରହ୍ରଦ—ଗ୍ରା.ବ. ପୁଷ୍କରତୀର୍ଥଦେଖ ।
ପୁଷ୍କରା—ବ.(ପୁଷ୍କର+ଆ) ପଦ୍ମର ବୀଜକୋଷ ।
ପୁଷ୍କରାକ୍ଷ—ପୁଂ.ବ. (ପୁଷ୍କର+ଅକ୍ଷି+ଅ) ବିଷ୍ଣୁ, ଶ୍ରୀକୃଷ୍ଣ, ପୁଣ୍ଡରୀକାକ୍ଷ,ପଦ୍ମତୁଲ୍ୟ ନେତ୍ର, ସୁଚନ୍ଦ୍ରର ଏକପୁତ୍ର, କାମ୍ବୋଜର ଏକ ହିନ୍ଦୁରାଜା ।
ପୁଷ୍କରାହ୍ୱ—ପୁଂ.ବ. (ବ.ବ୍ରୀ)ପୁଷ୍କରାହ୍ୱୟ, କୁଡ଼ଔଷଧ, ସାରସପକ୍ଷୀ ।
ପୁଷ୍କରାଙ୍ଘ୍ରିଜ—କ୍ଲୀ. ବ. ପୁଷ୍କର ମୂଳ,କୁଡ଼ନାମକ ଔଷଧ ।
ପୁଷ୍କରାଦ୍ୟ—କ୍ଲୀ. ବ. ପୁଷ୍କର ମୂଳ ।
ପୁଷ୍କରାଦ୍ୟା—ସ୍ତ୍ରୀ. ବ. ସ୍ଥଳପଦ୍ମିନୀ ।
ପୁଷ୍କରାହ୍ୱ—ପୁଂ. ବ. (ବ.ବ୍ରୀ) ସାରସପକ୍ଷୀ, ପୁଷ୍କର ମୂଳ ।
ପୁଷ୍କରାହ୍ୱୟ—କ୍ଲୀ. ବ. ପୁଷ୍କର ମୂଳ ।
ପୁଷ୍କରିକା—ସ୍ତ୍ରୀ.ବ. ଲିଙ୍ଗର ଅଗ୍ରଭାଗରେ ଛୋଟ ଛୋଟ ବ୍ରଣ ବାହାରିବା ରୋଗବିଶେଷ ।
ପୁଷ୍କରିଣୀ—ସ୍ତ୍ରୀ. ବ. (ପୁଷ୍କର+ଇନ୍+ଈ) ସ୍ଥଳପଦ୍ମିନୀ, ପୁଷ୍କର ମୂଳ, ହସ୍ତିନୀ, ସରୋଜିନୀ, ପଦ୍ମଯୁକ୍ତ ସରୋବର,ଜଳାଶୟ, କୁଡ଼ୌଷଧ, ଶତଧନୁ ବା ୪୦୦ ହାତ ପରିମିତସମ ଚତୁରସ୍ର ଜଳାଶୟ ।
ପୁଷ୍କରୀ—ବ. (ପୁଷ୍କର+ଇନ୍) ହସ୍ତୀ ।
ପୁଷ୍କର୍ଣ୍ଣ—ମାରବାଡ଼ ଓ ସିନ୍ଧୁପ୍ରଦେଶ ବାସୀ ବ୍ରାହ୍ମଣବିଶେଷ ।
ପୁଷ୍କଳ—ପୁଂ.ବଂ. (ପୁଷ୍+କଲ)ଶ୍ରେଷ୍ଠ, ଉତ୍କୃଷ୍ଟ, ଅଧିକ, ଉପସ୍ଥିତ, ପ୍ରଚୁର, ପୂର୍ଣ୍ଣ, ଶୁଭ, ହୃତ, ପବିତ୍ର, (ବ) ପରିମାଣ ବିଶେଷ,ପଣ୍ଡିତ, ଅଷ୍ଟକୁଞ୍ଚି ଅର୍ଥାତ୍ ୬୪ ପୋଷ,ଗ୍ରାସଚତୁଷ୍ଟୟାତ୍ମିକା ଭିକ୍ଷା, ଯେତିକରେ ମନୁଷ୍ୟ ଗୃହଗୁଣ୍ଡା ଖାଇ ପାରିବ ସେତିକ ପରିମାଣ ଭିକ୍ଷାନ୍ନ, ମେରୁ ପର୍ବତ, ପୁଷ୍କରତୀର୍ଥ, ବରୁଣଙ୍କର ଏକପୁତ୍ର, ଶିବ, ଭରତଙ୍କର ଏକପୁତ୍ର, ଅସୁରବିଶେଷ, ଏକପ୍ରକାର ଢୋଲ, ବୀଣା । [ ଖାଳ ।
ପୁଷ୍କଳକ—ପୁଂ. ବ. ଗନ୍ଧମୃଗ,କ୍ଷପଣକ,
ପୁଷ୍କଳାବତ୍—ପୁଂ. ବ. ଉତ୍ତରସ୍ଥ ଦେଶବିଶେଷ ।
ପୁଷ୍କଳାବତୀ—ବ. ଗାନ୍ଧାର ରାଜ୍ୟର ପ୍ରାଚୀନ ରାଜଧାନୀ ।
ପୁଷ୍ଟ—ତ୍ରି. ବଂ. (ପୁଷ୍+ମ.ତ) କୃତପୋଷଣ, ପ୍ରତିପାଳିତ, ସ୍ଥୂଳ, ମୋଟା, ଦୃଢ଼,(କ.ତ)ବଳବର୍ଦ୍ଧକ,ପୋଷଣକାରୀ, (ବ) ପୁଷ୍ଟି, ବିଷ୍ଣୁ ।
ପୁଷ୍ଟଦା—ଗ୍ରା.ବଂ.ଉନ୍ନତିପ୍ରଦ, ଶୁଭପ୍ରଦ ।
ପୁଷ୍ଟାଙ୍ଗ—ପୁଂ.ବ.(ବ.ବ୍ରୀ)ସ୍ଥୂଳ, ମୋଟା, ସ୍ଥୂଳକାୟ ।
ପୁଷ୍ଟି—ସ୍ତ୍ରୀ.ବ. (ପୁଷ୍+ଭା.ତି) ପରିଣତି, ଉନ୍ନତି, ପ୍ରଚୁରତା, ପ୍ରର୍ଯ୍ୟାପ୍ତି, ପାଳନ, ପୋଷଣ, ବୃଦ୍ଧି, ଷୋଡ଼ଶ ମାତୃକାର ଅନ୍ତର୍ଗତ ମାତୃକାବିଶେଷ, ତନ୍ତ୍ରୋକ୍ତ ଚନ୍ଦ୍ରକଳାର ନାମାନ୍ତର, ଧର୍ମର ପତ୍ନୀବିଶେଷ, ଯୋଗିନୀବିଶେଷ, ଅଶ୍ୱଗନ୍ଧା, ବୃଦ୍ଧି ନାମକ ଔଷଧି ।
ପୁଷ୍ଟିକର—ତ୍ରି.ବଂ. (ପୁଷ୍ଟି+କର)ପୁଷ୍ଟିକାରକ, ବୃଦ୍ଧିକାରକ, ବଳପ୍ରଦ, ଯାହା ଶରୀରକୁ ପୁଷ୍ଟ କରାଏ ।
ପୁଷ୍ଟିକର୍ତ୍ତ୍ରୀ—ସ୍ତ୍ରୀ. ବ. ଗଙ୍ଗା ।
ପୁଷ୍ଟିକର୍ମ—କ୍ଲୀ.ବ.ପୁଷ୍ଟି ନିମିତ୍ତକ କାର୍ଯ୍ୟ, ଶୁଭକର୍ମ ।
ପୁଷ୍ଟିକା—ସ୍ତ୍ରୀ. ବ. ( ପୁଷ୍ଟ+କ+ଆ ) ଶାମୁକା, ଗେଣ୍ଡା ।
ପୁଷ୍ଟିକାନ୍ତ—ପୁଂ.ବ.(ପୁଷ୍ଟି+କାନ୍ତ)ଗଣାଧିପ, ଗଣେଶ ।
ପୁଷ୍ଟିକାମ—ବଂ.ପୁଷ୍ଟ୍ୟଭିଳାଷୀ, ଯେ ପୁଷ୍ଟି

କାମନା କରେ ।

ପୁଷ୍ଟିଦ—ତ୍ରି. ବଂ. (ପୁଷ୍ଟି+ଦା+ଅ) ପୋଷଣକାରକ,(ସ୍ତ୍ରୀ) ପୁଷ୍ଟିଦା, ଅଶ୍ୱଗନ୍ଧା,ବୃଦ୍ଧି ନାମକ ଔଷଧି, ପୁଷ୍ଟିଦାତ୍ରୀ ।

ପୁଷ୍ଟୁ—ଆଫଗାନ ସ୍ଥାନର ବହୁସଂଖ୍ୟକ ଜାତି, ଯେଉଁମାନେ ଏକଭାଷା କହନ୍ତି ।

ପୁଷ୍ପ—କ୍ଲୀ.ବ.(ପୁଷ୍ପ+ଅ) ତରୁଲତାଦିର ପ୍ରସବ ଫୁଲ,କୁବେରଙ୍କର ରଥ,କୁସୁମ, ସୁମନ, ସ୍ତ୍ରୀ ରଜଃ, ଚକ୍ଷୁରୋଗବିଶେଷ, ଆଖିର ଫୁଲ, ଘୋଟକ ଲକ୍ଷଣବିଶେଷ ବିକାଶ, ପୁଷ୍ପାଞ୍ଜନ, ରସାଞ୍ଜନ, ପୁଷ୍କର ମୂଳ, ଲବଙ୍ଗ ।

ପୁଷ୍ପକ—କ୍ଲୀ. ବ. ଖାତପୁଷ୍ପ, କୁବେରଙ୍କର ବିମାନ, ନେତ୍ର ରୋଗ, ରତ୍ନ କଙ୍କଣ, ରସାଞ୍ଜନ, ସୁରୁମା, ଲୌହ, କାଂସ୍ୟ, ପୁଷ୍ପ, (ପୁଂ) ନିର୍ବିଷ ସର୍ପଜାତିବିଶେଷ, ପର୍ବତବିଶେଷ,ପ୍ରାସାଦର ମଣ୍ଡପବିଶେଷ ଇନ୍ଦ୍ରଙ୍କର ପ୍ରିୟ ଶୁକପକ୍ଷୀ, ସୀସା, ସ୍ୱଗକସ, ପିତ୍ତଳ, ମାଟି ଉହ୍ମେଇ, ମୃତଶକଟୀ ।

ପୁଷ୍ପକରଣ୍ଡକ—କ୍ଲୀ.ବ. ଉଜ୍ଜୟିନୀସ୍ଥ ଶିବଙ୍କର ଉଦ୍ୟାନ ଭେଦ, ଫୁଲ ଗୁଙ୍ଗୁଡ଼ି, ଫୁଲଡାଲି ।

ପୁଷ୍ପକରଣ୍ଡିନୀ—ସ୍ତ୍ରୀ. ବ. ଉଜ୍ଜୟିନୀ ।

ପୁଷ୍ପକାଳ—ପୁଂ. ବ. ସ୍ତ୍ରୀମାନଙ୍କର ଋତୁସମୟ, ବର୍ଷାକାଳ, ବସନ୍ତକାଳ ।

ପୁଷ୍ପକାସୀସ—କ୍ଲୀ.ବ. ପୀତବର୍ଣ୍ଣ କାସୀସ, ସ୍ୱାଗକସବିଶେଷ ।

ପୁଷ୍ପକୀଟ—ପୁଂ. ବ. ( କ.ଧା ) ଭ୍ରମର, କୁସୁମ କୃମିମାତ୍ର ।

ପୁଷ୍ପକେତନ—ପୁଂ. ବ. (ବ.ବ୍ରୀ) କାମଦେବ,କନ୍ଦର୍ପ, କାଳକେତୁ ନାମକ ବ୍ୟାଧର ପୁତ୍ର ।

ପୁଷ୍ପକେତୁ—କ୍ଲୀ. ବ. କୁସୁମାଞ୍ଜନ, (ପୁଂ) କାମଦେବ ।

ପୁଷ୍ପଗଣ—ପୁଂ. ବ. ପୁଷ୍ପବର୍ଗ ।

ପୁଷ୍ପଗଣ୍ଡିକା—ସ୍ତ୍ରୀ. ବ. ନର ଓ ନାରୀର ବିରୁଦ୍ଧ ଅଭିପ୍ରାୟ ବା ଚେଷ୍ଟା ।

ପୁଷ୍ପଗନ୍ଧା—ସ୍ତ୍ରୀ.ବ.ସ୍ୱର୍ଣ୍ଣଯୂଥିକା,ଧଳାଯୁଇ ।

ପୁଷ୍ପଗବେଧୁକା—ସ୍ତ୍ରୀ. ବ. ନାଗବଳା ।

ପୁଷ୍ପଗର୍ଭକ—ବ. ଫୁଲର ତୋଡ଼ା ବା ପେଣ୍ଡା ।

ପୁଷ୍ପଗିରି—ବ. ବରୁଣାଧିଷ୍ଠିତ ମାଲ୍ୟବାନ୍ ପର୍ବତ, ମାନ୍ଦ୍ରାଜର ଶୈଳବିଶେଷ ।

ପୁଷ୍ପଗୁଚ୍ଛ—ବ. ଫୁଲର ଗୋଛା ।

ପୁଷ୍ପଘାତକ—ପୁଂ. ବ. (ପୁଷ୍ପ+ଘାତକ) ବାଉଁଶ ।

ପୁଷ୍ପଚୟନ—ବ.(୬ତତ୍ପୁ)ଫୁଲତୋଳିବା ।

ପୁଷ୍ପଚାପ—ପୁଂ. ବ. (ବ.ବ୍ରୀ) କାମଦେବ, କନ୍ଦର୍ପ, (କ.ଧା) କନ୍ଦର୍ପଙ୍କ ଧୃତ ଧନୁ ।

ପୁଷ୍ପଚାମର—ପୁଂ. ବ. (ବ.ବ୍ରୀ) ଦମନ ବୃକ୍ଷ, ଦଅଣା ଗଛ, କିଆ ଓ କେତକୀ ଗଛ ।

ପୁଷ୍ପଜ—କ୍ଲୀ.ବ. ପୁଷ୍ପରସ, ମଧୁ, (ତ୍ରି) ପୁଷ୍ପରୁ ଜାତ ।

ପୁଷ୍ପଜାତି—ସ୍ତ୍ରୀ. ବ. ମଳୟ ପର୍ବତରୁ ନିର୍ଗତ ନଦୀବିଶେଷ ।

ପୁଷ୍ପଜୀବୀ—ତ୍ରି.(ପୁଷ୍ପ+ଜୀବ+ଇନ୍)ପୁଷ୍ପବ୍ୟବସାୟୀ, ମାଳୀ, ଫୁଲୁରି ।

ପୁଷ୍ପଦ—ପୁଂ.ବ.(ପୁଷ୍ପ+ଦା+ଅ) ଫୁଲଧରିବା ଗଛ, ବୃକ୍ଷ, ( ତ୍ରି ) ପୁଷ୍ପଦାତୃ ମାତ୍ର, ଯେ ଫୁଲଦିଏ ।

ପୁଷ୍ପଦଂଷ୍ଟ୍ର—ପୁଂ. ବ. ନାଗଭେଦ ।

ପୁଷ୍ପଦନ୍ତ—ପୁଂ.ବ. ଶିବଙ୍କର ମହିମ୍ନଃସ୍ତବ ରଚୟିତା ଗନ୍ଧର୍ବବିଶେଷ,ବାୟୁକୋଣସ୍ଥ ଦିଗ୍‌ଗଜ,ବର୍ତ୍ତମାନ ଅବସର୍ପିଣୀର ନବମ ଜୈନଭେଦ, ନାଗଭେଦ, ବିଷ୍ଣୁଙ୍କ ଅନୁଚର ବିଶେଷ, ଶିବଙ୍କର ଅନୁଚର ବିଶେଷ,ଚନ୍ଦ୍ରସୂର୍ଯ୍ୟ, ନଗର ଦ୍ୱାରବିଶେଷ

ପୁଷ୍ପଦନ୍ତକ—ପୁଂ. ବ. ଗନ୍ଧର୍ବବିଶେଷ, ମହିମ୍ନ ସ୍ତବ ପ୍ରଣେତା ।

ପୁଷ୍ପଦନ୍ତତୀର୍ଥ—କ୍ଲୀ. ବ. ତୀର୍ଥବିଶେଷ ।

ପୁଷ୍ପଦନ୍ତଭିଦ୍—ପୁଂ. ବ. ଶିବ ।

ପୁଷ୍ପଦାମ—କ୍ଲୀ.ବ. (ପୁଷ୍ପ+ଦାମନ୍)ପୁଷ୍ପନିର୍ମିତ ମାଲ୍ୟ,ପୁଷ୍ପମାଳା,ଛନ୍ଦୋଭେଦ ।

ପୁଷ୍ପଦ୍ରବ—ପୁଂ. ବ. (୬ତତ୍ପୁ) ପୁଷ୍ପରସ, ମଧୁ, ମକରନ୍ଦ ।

ପୁଷ୍ପଦ୍ରୁମକୁସୁମିତମୁକୁଟ—ପୁଂ.ବ.ଗନ୍ଧର୍ବରାଜବିଶେଷ ।

ପୁଷ୍ପଧ—ପୁଂ.ବ. (ପୁଷ୍ପ+ଧା+ଅ)ବ୍ରାତ୍ୟ ବିପ୍ରଜାତ ଜାତିଭେଦ,ପତିତ ବ୍ରାହ୍ମଣର ସନ୍ତାନ ।

ପୁଷ୍ପଧନୁଃ—ପୁଂ.ବ. (ବ.ବ୍ରୀ)କାମଦେବ, (କ.ଧା) ଫୁଲର ଧନୁ,ଫୁଲର ଧନୁକ ।

ପୁଷ୍ପଧନ୍ୱା—ପୁଂ. ବ. (ପୁଷ୍ପ+ଧନୁସ୍) କାମଦେବ, କନ୍ଦର୍ପ, ପୁଷ୍ପଚାପ ।

ପୁଷ୍ପଧର—ପୁଂ. ବ. ମହାଦେବ ।

ପୁଷ୍ପଧାରଣ—ପୁଂ. ବ. ବିଷ୍ଣୁ ।

ପୁଷ୍ପଧ୍ୱଜ—ପୁଂ. ବ. (ବ.ବ୍ରୀ) କାମଦେବ, ପୁଷ୍ପକେତନ ।

ପୁଷ୍ପନକ୍ଷ—ପୁଂ. ବ. ଭ୍ରମର ।

ପୁଷ୍ପନିର୍ଯ୍ୟାସ—ପୁଂ. ବ. ପୁଷ୍ପରସ,ମକରନ୍ଦ ।

ପୁଷ୍ପନ୍ଧୟ—ପୁଂ. ବ. (ପୁଷ୍ପ+ଧେ+ଅ) ଭ୍ରମର, ଅଳି, ପୁଷ୍ପରସ ପାନକର୍ତ୍ତା ।

ପୁଷ୍ପପତ୍ର—କ୍ଲୀ.ବ. ( ୬ତତ୍ପୁ ) ପୁଷ୍ପଦଳ, ଫୁଲର ପାଖୁଡ଼ା ।

ପୁଷ୍ପପତ୍ରୀ—ପୁଂ.ବ. (ବ.ବ୍ରୀ) କୁସୁମଶର, କାମଦେବ, ମଦନ ।

ପୁଷ୍ପପଥ—ପୁଂ. ବ. (୬ତତ୍ପୁ) ସ୍ତ୍ରୀମାନଙ୍କର ଋତୁରଜର ନିର୍ଗତ ଦ୍ୱାର,ଯୋନି ।

ପୁଷ୍ପପରାଗ—ବ. ଫୁଲର ରେଣୁ ।

ପୁଷ୍ପପଲ୍ଲବ—ବ. ପୁଷ୍ପପତ୍ର ଦେଖ ।

ପୁଷ୍ପପିଣ୍ଡ—ପୁଂ. ବ. ଅଶୋକ ବୃକ୍ଷ ।

ପୁଷ୍ପପୁଟ—ପୁଂ. ବ. ପୁଷ୍ପର ଆବରଣ, ତଦ୍‌ବତ୍ ହସ୍ତସ୍ଥାପନ ।

ପୁଷ୍ପପୁର—କ୍ଲୀ. ବ. ( ପୁଷ୍ପ+ପୁର ) ପାଟଳିପୁତ୍ର ନଗର, ପାଟନା ।

ପୁଷ୍ପପ୍ରଚୟ—ପୁଂ. ବ. ଚୌର୍ଯ୍ୟଦ୍ୱାରା କୁସୁମହରଣ ।

ପୁଷ୍ପପ୍ରଚାୟ—ପୁଂ.ବ. ହସ୍ତଦ୍ୱାରା ପୁଷ୍ପସଂଗ୍ରହ ।

ପୁଷ୍ପଫଳ—ପୁଂ. ବ. (ବ.ବ୍ରୀ) କୁଷ୍ମାଣ୍ଡ, ପାଣିକଖାରୁ, ବୋଇତିକଖାରୁ, ଲାଉ, କପିତ୍ଥ, (ଦ୍ୱନ୍ଦ୍ୱ) ଫୁଲ ଓ ଫଳ ।

ପୁଷ୍ପଫଳା—ସ୍ତ୍ରୀ. ବ. କୁଷ୍ମାଣ୍ଡ ଲତା ।

ପୁଷ୍ପଭଦ୍ରା—କ୍ଲୀ.ବ. ଏକାମ୍ରକାନନରେ ପ୍ରବାହିତ ନଦୀବିଶେଷ, ମଳୟଗିରିର

ପଶ୍ଚିମରେ ପ୍ରବାହିତ ନଦୀବିଶେଷ ।
ପୁଷ୍ପଭବ—ପୁଂ.ବି.ମକରନ୍ଦ,ମଧୁ,ମହୁ ।
ପୁଷ୍ପଭୂଷଣ—ବି.(୬ତତ୍ପୁ)ଫୁଲରେ ମଣ୍ଡିଣି ହେବା, ଫୁଲରେ ରଚିତଭୂଷଣ ।
ପୁଷ୍ପଭୂଷିତ—ତ୍ରି. ବିଂ. କୁସୁମାଲଂକୃତ, ପୁଷ୍ପଦ୍ୱାରା ଭୂଷିତ ।
ପୁଷ୍ପମଞ୍ଜରିକା—ସ୍ତ୍ରୀ.ବି.ଇନ୍ଦୀବର ଲତା, ନୀଳପଦ୍ମିନୀ, ନୀଳପଦ୍ମ ।
ପୁଷ୍ପମଞ୍ଜୁଷା--ସ୍ତ୍ରୀ.ବି. ଘୃତକରଞ୍ଜ,ଘୋଡ଼ା, କରଞ୍ଜ, ପୁଷ୍ପର ମଞ୍ଜୁଷା, ( ୬ତତ୍ପୁ ) ଫୁଲର ପେଡ଼ି ।
ପୁଷ୍ପମୟ—ତ୍ରି. ବିଂ. ପୁଷ୍ପ ସ୍ୱରୂପ, ଫୁଲରେ ନିର୍ମିତ, ଫୁଲରେ ପୂର୍ଣ୍ଣ ।
ପୁଷ୍ପମାଳା-ସ୍ତ୍ରୀ.ବି.୬ତତ୍ପୁ,ଫୁଲର ମାଳା ।
ପୁଷ୍ପମାସ—ପୁଂ. ବି. (୬ତତ୍ପୁ) ବସନ୍ତ-କାଳ, ଚୈତ୍ରମାସ ।
ପୁଷ୍ପମିତ୍ର—ବି. ଜଣେ ପରାକ୍ରାନ୍ତ ହିନ୍ଦୁ ରାଜା, ଗୋଟିଏ ରାଜବଂଶ ।
ପୁଷ୍ପରକ୍ତ—ପୁଂ. ବି. ସୂର୍ଯ୍ୟମଣି ବୃକ୍ଷ ।
ପୁଷ୍ପରଜସ୍—କ୍ଲୀ. ବି. ପୁଷ୍ପରେଣୁ, କୁସୁମପରାଗ ।
ପୁଷ୍ପରଥ—ପୁଂ. ବି. (ପୁଷ୍ପ+ରଥ) ପୁଷ୍ପ ଦ୍ୱାରା ନିର୍ମିତ ରଥ, ଭ୍ରମଣାର୍ଥ ରଥ, କ୍ରୀଡ଼ାରଥ ।
ପୁଷ୍ପରସ—ପୁଂ. ବି. (୬ତତ୍ପୁ) ପୁଷ୍ପର ମଧୁ, ମକରନ୍ଦ, ମହୁ ।
ପୁଷ୍ପରସାହ୍ୱୟ—କ୍ଲୀ. ବି. ମଧୁ ।
ପୁଷ୍ପରାଗ—ପୁଂ. ବି. ମଣିବିଶେଷ,ପୁଖ-ରାଜ, ପଦ୍ମରାଗମଣି ।
ପୁଷ୍ପରେଣୁ—ପୁଂ.ବି. (୬ତତ୍ପୁ) ପରାଗ, କୁସୁମରଜଃ, ପୁଷ୍ପଧୂଳି ।
ପୁଷ୍ପରୋଚନ—ପୁଂ. ବି. ନାଗକେଶର ।
ପୁଷ୍ପଲାବ—ପୁଂ. ବି. ମାଳାକାର, (ସ୍ତ୍ରୀ) ମାଳାକାର ପତ୍ନୀ ।
ପୁଷ୍ପଲାବୀ—ପୁଂ. ବି. (ପୁଷ୍ପ+ଲୂ+ କ.ଇନ୍) ମାଳାକାର, ମାଳୀ ।
ପୁଷ୍ପଲକ୍ଷ—ପୁଂ. ବି. ଭ୍ରମର ।
ପୁଷ୍ପଲିହ—ପୁଂ.ବି. (ପୁଷ୍ପ+ଲିହ୍+ଅ ଭ୍ରମର, ମଧୁକର ।
ପୁଷ୍ପବଟୁକ—ପୁଂ. ବି. ନାୟକବିଶେଷ ।
ପୁଷ୍ପବତୀ—ସ୍ତ୍ରୀ. ବି. ଋତୁମତୀ,ରଜସ୍ୱଳା ।
ପୁଷ୍ପବନ—କ୍ଲୀ. ବି. ଫୁଲବଗିଚା ।
ପୁଷ୍ପବନ୍ତ—ଦ୍ୱି. ବି. ଚନ୍ଦ୍ର ଓ ସୂର୍ଯ୍ୟ ।
ପୁଷ୍ପବର୍ଗ—ପୁଂ. ବି. ପୁଷ୍ପସମୂହ ।
ପୁଷ୍ପବର୍ଷ—ପୁଂ.ବି. ବର୍ଷପର୍ବତବିଶେଷ, ସାତଟି ବର୍ଷ ପର୍ବତମଧ୍ୟରୁ ଏକତମ ।
ପୁଷ୍ପବାଟିକା(ବାଟୀ)—ସ୍ତ୍ରୀ.ବି.ପୁଷ୍ପୋ-ଦ୍ୟାନ,ଫୁଲବଗିଚା । [ ଦେବ, ମଦନ
ପୁଷ୍ପବାଣ—ପୁଂ. ବି. (ବ.ବ୍ରୀ) କାମ-
ପୁଷ୍ପବାନ୍—ପୁଂ. ବି. (ପୁଷ୍ପ+ବତ୍) ପୁଷ୍ପିତ ।
ପୁଷ୍ପବାସ-ବି.(୬ତତ୍ପୁ)ଫୁଲର ବାସନା ।
ପୁଷ୍ପବିଷ—ବି. ଆୟୁର୍ବେଦୋକ୍ତ ପାଞ୍ଚ-ପ୍ରକାର ବିଷାକ୍ତ ଫୁଲ, (ଯଥା—ବେତ୍ର, କଦମ୍ବ,ବଲ୍ଲିକ,କରମ୍ଭ ଓ ମହାକରମ୍ଭ ।
ପୁଷ୍ପବୃଷ୍ଟି—ସ୍ତ୍ରୀ. ବି. (୬ତତ୍ପୁ) ପୁଷ୍ପ-ବର୍ଷଣ, ଫୁଲର ବୃଷ୍ଟି ।
ପୁଷ୍ପବେଣୀ—ସ୍ତ୍ରୀ. ବି. ଫୁଲର ବେଣୀ, ଫୁଲ ଖୁପା, ଫୁଲପେଣ୍ଡୁ ।
ପୁଷ୍ପଶକଟୀ—ସ୍ତ୍ରୀ. ବି. ଆକାଶବାଣୀ, ଦୈବବାଣୀ, ପୁଷ୍ପବୃଷ୍ଟି ।
ପୁଷ୍ପଶକଲୀ—ପୁଂ. ବି. ନିର୍ବିଷ ଜାତୀୟ ସର୍ପବିଶେଷ, ଧଣ୍ଡସାପ ।
ପୁଷ୍ପଶର୍କରା—ସ୍ତ୍ରୀ. ବି. ମହୁ, ମଧୁ ।
ପୁଷ୍ପଶଯ୍ୟା—ସ୍ତ୍ରୀ.ବି.ପୁଷ୍ପ ନିର୍ମିତଶଯ୍ୟା, ଫୁଲର ବିଛଣା । [ କନ୍ଦର୍ପ ।
ପୁଷ୍ପଶର—ପୁଂ.ବି.(ବ.ବ୍ରୀ)କାମଦେବ,
ପୁଷ୍ପଶରାସନ—ପୁଂ.ବି. (ବ.ବ୍ରୀ)କନ୍ଦର୍ପ, କାମଦେବ ।
ପୁଷ୍ପଶୂନ୍ୟ—ପୁଂ.ବି. ଉଦୁମ୍ବର, (ବିଂ) କୁସୁମରହିତ ।
ପୁଷ୍ପଶ୍ରୀ—ବି. (କ.ଧା) ପ୍ରସ୍ଫୁଟିତ ଫୁଲ ସମୂହର ସୌନ୍ଦର୍ଯ୍ୟ ।
ପୁଷ୍ପଶ୍ରୀଗର୍ଭ—ପୁଂ.ବି.ବୋଧିସତ୍ତ୍ୱଭେଦ ।
ପୁଷ୍ପସମୟ—ପୁଂ. ବି. ବସନ୍ତକାଳ, ଋତୁସମୟ ।
ପୁଷ୍ପସାଧାରଣ—ପୁଂ. ବି. ବସନ୍ତକାଳ ।
ପୁଷ୍ପସାୟକ—ପୁଂ. ବି. (ବ.ବ୍ରୀ) କନ୍ଦର୍ପ, କାମଦେବ ।
ପୁଷ୍ପସାର—ପୁଂ. ବି. (୬ତତ୍ପୁ) ପୁଷ୍ପଦ୍ରବ, ଫୁଲର ରସ,ମକରନ୍ଦ,(ବ.ବ୍ରୀ)ତୁଳସୀ ।
ପୁଷ୍ପସୌରଭ—ସ୍ତ୍ରୀ. ବି.ବିଷ ଲଙ୍ଗଳିକା ।
ପୁଷ୍ପସ୍ୱେଦ—ପୁଂ. ବି. (୬ତତ୍ପୁ)ମକରନ୍ଦ, ପୁଷ୍ପଦ୍ରବ, (ବ.ବ୍ରୀ) ତୁଳସୀ ।
ପୁଷ୍ପହାସ—ପୁଂ. ବି. ( ୬ତତ୍ପୁ ) ବିଷ୍ଣୁ, କୁସୁମ ବିକାଶ, ଫୁଲ ଫୁଟିବା ।
ପୁଷ୍ପହାସା—ସ୍ତ୍ରୀ. ବି. ରଜସ୍ୱଳା ସ୍ତ୍ରୀ, ଋତୁମତୀ, ସ୍ତ୍ରୀ ।
ପୁଷ୍ପହୀନ—ପୁଂ. ବି. କୁସୁମରହିତ ଦ୍ରୁମ, ଉଦୁମ୍ବର ବୃକ୍ଷ, ନିଷ୍ଫଳା,ରଜଃଶୂନ୍ୟାସ୍ତ୍ରୀ, (ବିଂ) ପୁଷ୍ପ ବିବର୍ଜିତ, ଅପୁଷ୍ପକ,ଯହିଁରେ ଫୁଲ ଫୁଟେନାହିଁ ।
ପୁଷ୍ପହୀନା—ସ୍ତ୍ରୀ. ବି. ନିବୃତ୍ତରଜସ୍କା ସ୍ତ୍ରୀ, ବନ୍ଧ୍ୟା ସ୍ତ୍ରୀ, ଡୁମ୍ବୁରିଗଛ ।
ପୁଷ୍ପା—ସ୍ତ୍ରୀ. ବି. କର୍ଣ୍ଣପୁରୀ, ବର୍ତ୍ତମାନ ଭାଗଲପୁର, ବୃହଜ୍ଜଟପୁଷ୍ପ, ସଉପ ।
ପୁଷ୍ପାକର—ବି. ବସନ୍ତଋତୁ, ଜଣେ ପ୍ରସିଦ୍ଧ ମୀମାଂସକ ।
ପୁଷ୍ପାକରଦେବ—ପୁଂ. ବି. ଜଣେ ସଂସ୍କୃତ କବି ।
ପୁଷ୍ପାଗମ—ପୁଂ. ବି. ବସନ୍ତଋତୁ ।
ପୁଷ୍ପାଜୀବ--ବି.ମାଳାକାର,ମାଳି,ଫୁଲରମାଳି
ପୁଷ୍ପାଜୀବୀ—ପୁଂ. ବି. ମାଳାକାର ।
ପୁଷ୍ପାଞ୍ଜନ--କ୍ଲୀ.ବି.ଦାରୁହରିଦ୍ରା ପ୍ରଭୃତିରେ ପ୍ରସ୍ତୁତ ଏକପ୍ରକାର ଅଞ୍ଜନ । [ଆଞ୍ଜୁଳା
ପୁଷ୍ପାଞ୍ଜଳି—ପୁଂ.ବି. କୁସୁମାଞ୍ଜଳି, ଫୁଲ-
ପୁଷ୍ପାନନ—ପୁଂ.ବି.ମଦ୍ୟ ବିଶେଷ,ଏହାର ସେବନରୁ ମୁଖ ପୁଷ୍ପପରି ବିକଶିତ ହୁଏ
ପୁଷ୍ପାମ୍ବୁଜ—କ୍ଲୀ. ବି.ମକରନ୍ଦ । [ ଜଳ ।
ପୁଷ୍ପାମ୍ଭଃ—କ୍ଲୀ. ବି. ତୀର୍ଥ ବିଶେଷ,ଫୁଲର
ପୁଷ୍ପାୟୁଧ—ପୁଂ. ବି.(ବ.ବ୍ରୀ)କୁସୁମାୟୁଧ, କାମଦେବ, (କ.ଧା)କାମଦେବଙ୍କ ଧନୁ ଓ ଶର ।
ପୁଷ୍ପାର୍କ—ପୁଂ ଓ କ୍ଲୀ.ବି. ସେବତୀ ପ୍ରଭୃତି ଫୁଲର ଅର୍କ,ଫୁଲରୁ କଢ଼ାହେବା ଅର୍କ ।
ପୁଷ୍ପାବଗ୍ରୟ—ବି. (୬ତତ୍ପୁ)ଫୁଲତୋଳା ।
ପୁଷ୍ପାବଗ୍ରସ୍ଥୀ—ପୁଂ.ବି.(ପୁଷ୍ପ+ଅବଗ୍ରସ୍ଥିନ୍

ମାଳାକାର, ଫୁଲବମାଳୀ ।
ପୁଷ୍ପାସବ—କ୍ଳୀ.ବ. (୬ତତ୍ପୁ)ମଧୁ,ମକରନ୍ଦ
ପୁଷ୍ପାସାର—ପୁଂ. ବ. (୬ତତ୍ପୁ)ପୁଷ୍ପବୃଷ୍ଟି
ପୁଷ୍ପାସ୍ତ୍ର—ପୁଂ.ବ. (ବ.ବ୍ରୀ)କୁସୁମାୟୁଧ, କାମଦେବ ।
ପୁଷ୍ପାହ୍ୱା—ସ୍ତ୍ରୀ. ବ. ( ପୁଷ୍ପ+ଆ+ହ୍ୱେ+ଅ+ଆ) ଶତପୁଷ୍ପା, ସତ୍ପ ।
ପୁଷ୍ପିକା—ସ୍ତ୍ରୀ. ବ. (ପୁଷ୍ପକ+ଆ)ଦନ୍ତମଳ, ଲିଙ୍ଗମଳ, ଚେଳ୍ଡା, ଗ୍ରନ୍ଥର ଅଧ୍ୟାୟ ଶେଷରେ ବା ଗୀତ ଶେଷରେ ଗ୍ରନ୍ଥକାରଙ୍କ ନିଜର ପରିଚୟ ସୂଚକବାକ୍ୟ, ଭଣିତା, ଝିଙ୍କା ବା ଝିଣ୍ଟିକା ।
ପୁଷ୍ପିଣୀ—ସ୍ତ୍ରୀ. ବ. ଧାତକୀ ବୃକ୍ଷ, ତୂଳା, ସ୍ୱର୍ଣ୍ଣକେତକୀ ।
ପୁଷ୍ପିତ—ବି. ବଂ. ( ପୁଷ୍ପ+ଇତ ) ଜାତପୁଷ୍ପ, ପ୍ରକାଶିତ, କୁସୁମିତ, (ବ) ପର୍ବତ ବିଶେଷ । [(ସ୍ତ୍ରୀ)
ପୁଷ୍ପିତା—ସ୍ତ୍ରୀ.ବଂ. ଋତୁମତୀ, ପୁଷ୍ପବତୀ
ପୁଷ୍ପିତାଗ୍ରା—ସ୍ତ୍ରୀ. ବ.ବୃତ୍ତଭେଦ,ସଂସ୍କୃତ ଛନ୍ଦୋ ବିଶେଷ ।
ପୁଷ୍ପୀ—ବି. ବଂ. ( ପୁଷ୍ପ+ଇନ୍ ) ପୁଷ୍ପଯୁକ୍ତ, ପୁଷ୍ପିତ ।
ପୁଷ୍ପେଷୁ—ପୁଂ.ବ.(ବ.ବ୍ରୀ)କାମଦେବ, କନ୍ଦର୍ପ ।
ପୁଷ୍ପୋତ୍କଟା—ସ୍ତ୍ରୀ.ବ. ରାକ୍ଷସୀ ବିଶେଷ, ରାବଣ ଓ କୁମ୍ଭକର୍ଣ୍ଣର ମାତା ।
ପୁଷ୍ପୋଦକା—ସ୍ତ୍ରୀ. ବ. ପାତାଳସ୍ଥିତା ନଦୀ ବିଶେଷ ।
ପୁଷ୍ପୋଦ୍ଭବ—ପୁଂ. ବ. ଦଶକୁମାରଚରିତୋକ୍ତ ନାୟକ ବିଶେଷ ।
ପୁଷ୍ପୋତ୍ସବ—ପୁଂ. ବ. ( ପୁଷ୍ପ+ଉତ୍ସବ ) ସ୍ତ୍ରୀଲୋକମାନଙ୍କର ପ୍ରଥମ ରଜୋ ଦର୍ଶନର ଉତ୍ସବ ବିଶେଷ,କୁସୁମ କ୍ରୀଡ଼ା, ଆଶୀର୍ବାଦଘର ।
ପୁଷ୍ପୋଦ୍ୟାନ—ବ.(କ,ଧା)ଫୁଲବଗିଚ୍ଛ
ପୁଷ୍ୟ—ବ. (ପୁଷ୍+କ.ଯ) ୨୭ଗୋଟି ନକ୍ଷତ୍ରମଧ୍ୟରୁ ୮ମ ନକ୍ଷତ୍ର, ପୌଷମାସ, କଳିଯୁଗ, (ଗ୍ରା. ବ) ଫୁଲ, ସ୍ତ୍ରୀ ରଜଃ (ପ୍ରା-ବାଲେଶ୍ୱର, ବ) ପୋଷ୍ୟପୁତ୍ର ।
ପୁଷ୍ୟରଥ—ପୁଂ. ବ. କ୍ରୀଡ଼ାରଥ,ଭ୍ରମଣ ବା ଉତ୍ସବାଦିପରିଦର୍ଶନାର୍ଥ ରଥ ।
ପୁଷ୍ୟଲକ—ବ.(ପୁଷ୍+ଣିଚ୍+ଅଲ+କ.ଅ) ଗନ୍ଧ ମୃଗ, କସ୍ତୁରୀମୃଗ,କ୍ଷପଣକ, କୀଳ, ଗୋଜ ।
ପୁଷ୍ୟସ୍ନାନ—କ୍ଳୀ.ବ. ପୁଷ୍ୟାଭିଷେକଦେଖ
ପୁଷ୍ୟା—ସ୍ତ୍ରୀ. ବ. (ପୁଷ+ଯ+ଆ)ପୁଷ୍ୟ ଦେଖ ।
ପୁଷ୍ୟାଭିଷେକ—ପୁଂ. ବ. ପୁଷ୍ୟା ନକ୍ଷତ୍ରଯୁକ୍ତ ପୌଷ ପୂର୍ଣ୍ଣିମାରେ ରାଜାମାନଙ୍କର ସିଂହାସନରେ ଅଭିଷେକ ।
ପୁଷି—ଗ୍ରା. ବ. ବିରାଡ଼ି ।
ପୁସ୍ତ—କ୍ଳୀ. ବ. (ପୁସ୍ତ+ଘ.ଅ) ଲେପ୍ୟାଦି ଶିଳ୍ପକର୍ମ, ଚିତ୍ରକର୍ମ, ଲେପାପୋଛା,ଧାତୁ ବା କାଷ୍ଠ ବା ମୃତ୍ତିକା ନିର୍ମିତ ବସ୍ତୁ, (ମି.ଅ) ଗ୍ରନ୍ଥ, ବହି, କିତାପ, ପୋଥି, (ବଂ) ବନ୍ଧ, ବନ୍ଧା ହୋଇଥିବା, ଆଚ୍ଛାଦିତ, ପରିପୂର୍ଣ୍ଣ ।
ପୁସ୍ତକ—କ୍ଳୀ.ବ.(ପୁସ୍ତ+କ)ପୁସ୍ତ ଦେଖ ।
ପୁସ୍ତକଦାନା—ଗ୍ରା.ବ.ପୋସ୍ତବଦାନା ଦେଖ
ପୁସ୍ତକର୍ମ—ବ. ଶିଳ୍ପକର୍ମ, ଚିତ୍ରକର୍ମ, ଲେପନ କର୍ମ ।
ପୁସ୍ତକର୍ମୀ—ପୁଂ. ବଂ. ( ପୁସ୍ତ+କର୍ମନ୍) ଶିଳ୍ପୀ, ଶିଳ୍ପକାର ।
ପୁସ୍ତକାଗାର—ପୁଂ.ବ.(୬ତତ୍ପୁ) ପୁସ୍ତକାଳୟ, ଲାଇବ୍ରେରୀ ।
ପୁସ୍ତକାଗ୍ରୀୟ—ବ (ପୁସ୍ତକ+ଆଗ୍ରୀୟ) ଯେଉଁ ବ୍ୟକ୍ତି ବୈଦିକ ଅନୁଷ୍ଠାନରେ ପୁସ୍ତକ ପାଠକରି ପୁରୋହିତଙ୍କୁ ସାହାଯ୍ୟ କରନ୍ତି ।
ପୁସ୍ତକାଧାର—ବ.(୬ତତ୍ପୁ) ବହି ରଖିବା ବାକ୍ସ, ଆଲମାରି, ବ୍ୟାସାସନ ।
ପୁସ୍ତକାଳୟ—କ୍ଳୀ. ବ. ପୁସ୍ତକାଗାର ଲାଇବ୍ରେରୀ ।
ପୁସ୍ତିକା—ପୁଂ.ସ୍ତ୍ରୀ.ବ. କ୍ଷୁଦ୍ରବହି,ପୋଥି ।
ପୁଷ୍ଟୁସ—ପୁଂ.ବ.ଶରୀରାଭ୍ୟନ୍ତରସ୍ଥ ନିଃଶ୍ୱାସକୋଷ ।
ପୁଷ୍ଟୁସ୍ୱାସକ—ବ.ସ୍ଥଳଜ ଶମ୍ବୁକ,ଗେଣ୍ଡା
ପୁହର—ପ୍ରା. (ସମ୍ବ)ବ. ମଳି, ମଇଳା, (ବଂ) ମଇଳା, ମଳିଆ ।
ପୁହାଇବା—ଗ୍ରା. କ୍ରି. ପ୍ରଭାତ କରାଇବା, କଥା ବା ଖେଳ ସେବନ କରିବା, ରାତ୍ରିଯାକ ଚେଇଁ ରହିବା, ରାତ୍ରି ପ୍ରଭାତ ହେବା ପର୍ଯ୍ୟନ୍ତ ସମସ୍ତ ଅତିବାହିତ କରିବା, ଅତିବାହିତ କରିବା, ସମସ୍ତ କ୍ଷେପଣ ବା ନଷ୍ଟ କରିବା ।
ପୁହାଁର—ପ୍ରା. (ବାଲେ)ବ. ଧାନ ଗଛର କେଣ୍ଡାକୁ ନଷ୍ଟ କରିବା ଏକପ୍ରକାର ପୋକ ।
ପୁହାଁଣ—ପ୍ରା.(ଜୟପୁର)ବ.ପୁଆଳ,ପାଳ, ଖଣ୍ଡାୟତଙ୍କ ବଂଶୋପାଧି ।
ପୁହୁଣା(ଣି)—ପ୍ରା. (ବାଲେଶ୍ୱର) ବ.ମାଛଯାଆଁଳ । [ଅପରଚ୍ଛନ୍ନ ।
ପୁହୁର—ପ୍ରା. (ସମ୍ବଲ) ବଂ. ଅପରିଷ୍କାର,
ପୁହୁର—ପ୍ରା.(ସମ୍ବଲ)ବଂ. ଅପରିଚ୍ଛନ୍ନ(ସ୍ତ୍ରୀ)
ପୂଗ—ପୁଂ.ବ. ( ପୂଜ୍+ଣ.ଅ ) ଗୁବାକ, ଗୁଆଗଛ, ଅଙ୍କୋଟ, ପଣସଗଛ,ରୁଦ୍ରବୃକ୍ଷ, ଛନ୍ଦ, ଭାବ, କଣ୍ଟକୀବୃକ୍ଷ, ସମୂହ, ବୃନ୍ଦ, ସମାଜ ।
ପୂଗକୃତ—ବି,ବଂ. ସ୍ତୂପାକାରେ ସ୍ଥାପିତ, ସଂଗୃହୀତ, ପୁଞ୍ଜୀକୃତ । [ ପାତ୍ର ।
ପୂଗପାତ୍ର—କ୍ଳୀ.ବ.ପିକଦାନୀ, ନିଷ୍ଠୀବନ-
ପୂଗପୀଠ—କ୍ଳୀ. ବ. ପୂଗପାତ୍ର, ପିକଦାନୀ
ପୂଗପୋତ—ବ. କ୍ଷୁଦ୍ର ଗୁଆଗଛ ।
ପୂଗଫଳ—କ୍ଳୀ.ବ. ଗୁବାକଫଳ,ଗୁଆ ।
ପୂଗମଣ୍ଡ—ପୁଂ.ବ. ପ୍ଲକ୍ଷବୃକ୍ଷ, ଜରିଗଛ ।
ପୂଗରୋଟ—ପୁଂ.ବ. (ପୂଗ+ରୁଟ୍+ଅ) ହିନ୍ତାଳବୃକ୍ଷ, ଖର୍ଜ୍ଜୁରବିଶେଷ ।
ପୂଗବୃକ୍ଷ—ପୁଂ.ବ. ସୁପାରି,ଗୁଆଗଛ ।
ପୂଗୀ—ପୁଂ.ବ. ଗୁଆଗଛ ।
ପୂଗୀଫଳ—କ୍ଳୀ.ବ. ଗୁବାକ, ଗୁଆ ।
ପୂଗ୍ୟ—ବି.ବଂ. (ପୂଗ+ଯ) ପୂଗୋତ୍ପନ୍ନ ସୁପାରିରୁ ଯାହା ହୁଏ ।
ପୂଜ—ଗ୍ରା.ବ. (ସଂ-ପୂୟ) ପୂୟ,କ୍ଳେଦ ।
ପୂଜକ—ପୁଂ. ବଂ. ଯେ ପୂଜାକରେ, ଅର୍ଚ୍ଚକ, ସେବକ, ଉପାସକ ।
ପୂଜନ—କ୍ଳୀ.ବ.(ପୂଜ+ଘ.ଅନ)ପୂଜା, ଅର୍ଚ୍ଚନା,ଉପାସନା,ଆରାଧନା,ବନ୍ଦନା ।

ପୂଜନୀୟ—ତ୍ରି.ବିଂ. ( ପୂଜ+ଅନୀୟ ) ଆରାଧ୍ୟ, ପୂଜାର ଯୋଗ୍ୟ, ପୂଜ୍ୟ, ନମସ୍ୟ, ଆଦରଣୀୟ ।

ପୂଜୟିତବ୍ୟ—ପୁଂ.ବିଂ.(ପୂଜ+ର୍ମ.ତବ୍ୟ) ଆରାଧ୍ୟ, (ସ୍ତ୍ରୀ) ପୂଜୟିତବ୍ୟା ।

ପୂଜୟିତା—ପୁଂ. ବିଂ. ( ପୂଜ+କ.ତୃ ) ଉପାସକ, ଅର୍ଚ୍ଚକ, (ସ୍ତ୍ରୀ)ପୂଜୟିତ୍ରୀ ।

ପୂଜୟିତ୍ରୀ—ସ୍ତ୍ରୀ.ବିଂ. (ପୂଜ+ତୃ+ଈ) ପୂଜାକାରିଣୀ ।

ପୂଜା—ବି.(ପୂଜ+ଭା.ଅ+ଆ)ଅର୍ଚ୍ଚନା, ଆରାଧନା, ଉପାସନା, ପଞ୍ଚୋପଚାର ବା ଦଶୋପଚାର ବା ଷୋଡ଼ଶୋପଚାରରେ କରାଯିବା ଦେବାଦେବୀଙ୍କ ଆରାଧନା, ସମ୍ମାନନା, ପ୍ରଶଂସା, ଗୁଣଗାନ, ସ୍ତୁତି, (ଗ୍ରା.ବି) ପୂଜାର୍ଚ୍ଚନ,ପାଲି, ଦେବତାଙ୍କୁ ନୈବେଦ୍ୟ ଅର୍ପଣକରିବା, ଦୈନିକ ସନ୍ଧ୍ୟା ବନ୍ଦନାଦି, ସମ୍ମାନ, ନୈବେଦ୍ୟ, ( ବ୍ୟଙ୍ଗାର୍ଥ ) ଶୋଧନ, ଗାଳିଦେବା,ଶରତ୍କାଳୀନ ଦୁର୍ଗାପୂଜା ।

ପୂଜା(ଜେ)ଇବା—ଗ୍ରା.କ୍ରି, ପୂଜାକରାଇବା, ପୂଜିବା କ୍ରିୟାର ଣିଜନ୍ତରୂପ ।

ପୂଜାକରିବା—ଗ୍ରା. କ୍ରି. ସମ୍ମାନକରିବା, ସେବା କରିବା, ପାଳିକରିବା, ଦେବତାଙ୍କୁ ନୈବେଦ୍ୟ ଅର୍ପଣ ଓ ବନ୍ଦନାଦି କରିବା, (ଲ.ଅର୍ଥ) କୌଣସିବ୍ୟକ୍ତିଙ୍କୁ ନାନାବିଧ ସୁଖ ବା ଭୋଗରେ ରଖିବା, ବ୍ୟବହାର୍ଯ୍ୟ ବସ୍ତୁକୁ ଅଭିପ୍ରେତ ବ୍ୟବହାରରେ ନ ଲଗାଇ ରଖିଦେବା, (ବ୍ୟଙ୍ଗ) ଶୋଧିବା, ଗାଳିଦେବା ।

ପୂଜାଖଣ୍ଡ—ବି. ବୌଦ୍ଧଗ୍ରନ୍ଥ ବିଶେଷ ।

ପୂଜାଛୁଟି—ଗ୍ରା. ବି. ଶାରଦୀୟ ଦୁର୍ଗାପୂଜା ସମୟରେ ସ୍କୁଲ ଓ କଚେରିଆଦି କିଛିଦିନ ବନ୍ଦହେବା ।

ପୂଜାପଟଳ—ବି. ପୂଜାର ଅଙ୍ଗସମୂହ ।

ପୂଜାପଣ୍ଡା—ଗ୍ରା. ବି. ଯେଉଁ ପଣ୍ଡା ମନ୍ତ୍ରପାଠ ପୂର୍ବକ ଦେବତାଙ୍କୁ ପୂଜାକରନ୍ତି

ପୂଜାପାଠ—ବି. ଦେବପୂଜା ଓ ଧର୍ମପୁସ୍ତକରୁ ମନ୍ତ୍ରାଦି ପାଠ କରିବା ।

ପୂଜାବାଲି—ଗ୍ରା.ବି. ଯେଉଁମାନେ ସତ୍ୟପୀର ପାଲାର ଗୀତ ଓ ନାଟ କରନ୍ତି ।

ପୂଜାବିଧି—ବି.(ତନ୍ତ୍ର) ଦେବତାଙ୍କୁ ପୂଜା କରିବାର ବିଶିଷ୍ଟ ବା କ୍ରମିକ ବିଧାନ ।

ପୂଜା(ହା)ରୀ—ଗ୍ରା.ପୁଂ. ବି. ଦେବପୂଜକ ବ୍ରାହ୍ମଣ, (ବିଂ) ପୂଜାକାରୀ, ପାଚକ ବ୍ରାହ୍ମଣ, (ପ୍ରା.ସମ୍ବଲ) ବ୍ରାହ୍ମଣମାନଙ୍କ ବଂଶୋପାଧି ବିଶେଷ ।

ପୂଜାର୍ହ—ପୁଂ.ବିଂ.(ପୂଜା+ଅର୍ହ)ପୂଜାର ଯୋଗ୍ୟ, ମାନ୍ୟ, ସମ୍ମାନଭାଜନ ।

ପୂଜାସାମଗ୍ରୀ—ବି. ଦେବପୂଜାର ଉପକରଣ, ପୂଜାଦ୍ରବ୍ୟ, ନୈବେଦ୍ୟ ।

ପୂଜିତ—ବିଂ. (ପୂଜ+ର୍ମ.ତ) ଯାହାଙ୍କ ପୂଜା କରାଯାଇଅଛି, ସତ୍କୃତ, ସମ୍ମାନିତ, ପ୍ରଶଂସିତ ।

ପୂଜିତବ୍ୟ—ବିଂ. ( ପୂଜ+ର୍ମ.ତବ୍ୟ ) ପୂଜନୀୟ, ପୂଜୟିତବ୍ୟ, (ସ୍ତ୍ରୀ) ପୂଜିତବ୍ୟା ।

ପୂଜିବା—ଗ୍ରା. କ୍ରି. (ଦେବତାଙ୍କୁ) ପୂଜାକରିବା, ସମ୍ମାନକରିବା,(ପ୍ରା. କଳାହାଣ୍ଡି ଓ ଯାଜପୁର) ହାଣିବା, କାଟିବା ।

ପୂଜିଳ—ପୁଂ.ବିଂ. (ପୂଜ+ଇଲ)ପୂଜ୍ୟ. ପୂଜନୀୟ, (ବି) ଦେବତା ।

ପୂଜୋପକରଣ—ବି. (ତନ୍ତ୍ର) ପୂଜାସାମଗ୍ରୀ, ପୂଜାର ଅଙ୍ଗ ।

ପୂଜୋପହାର—ପୁଂ. ବି. ( ତନ୍ତ୍ର ) ପୂଜାର ଉପକରଣ ।

ପୂଜ୍ୟ—ପୁଂ.ବି. (ପୂଜ+ର୍ମ.ଯ)ଶ୍ୱଶୁର, (ବିଂ)ପୂଜନୀୟ,ପୂଜାଯୋଗ୍ୟ,ଆରାଧ୍ୟ ।

ପୂଜ୍ୟପଦ—ପୁଂ. ବିଂ.(ବ.ବ୍ରୀ) ପରମପୂଜନୀୟ, ପରମାରାଧ୍ୟ ।

ପୂଜ୍ୟପାଦ—ବିଂ. ( ବ.ବ୍ରୀ ) ଯାହାଙ୍କ ପାଦପୂଜା କରାଯାଏ, ଆରାଧ୍ୟ ।

ପୂଜ୍ୟମାନ—ପୁଂ. ବିଂ. (ପୂଜ୍ୟ+ର୍ମ.ଆନ) ପୂଜ୍ୟ, ଯାହାକୁ ପୂଜା କରାଯାଉଛି, (ବି) ଶ୍ୱେତମରିଚ ।

ପୂଝାରୀ—ଗ୍ରା.ବି.ପୂଜାହାରୀ,ପାଚକବ୍ରାହ୍ମଣ

ପୂତ—ତ୍ରି. ବିଂ. ( ପୂ+ତ ) ବ୍ରତାଦି ଦ୍ୱାରା ଶୁଦ୍ଧ, ନିର୍ମଳ, ପବିତ୍ର, ସତ୍ୟ, ଅକପଟ, ପରିଷ୍କୃତ, ସାଧୁ, (ବି) ପଞ୍ଚୁଡ଼ା ଧାନ ବା ଗୁଣ୍ଡିଚ,ଶଙ୍ଖ,କୁନ୍ଦ,ଶ୍ୱେତକୁଶ, ଭୃଙ୍ଗରାଜ, ବିକଙ୍କତ ବୃକ୍ଷ, ପ୍ଲକ୍ଷ ବୃକ୍ଷ, ତିଳକ ବୃକ୍ଷ, ଦୁବ ।

ପୂତକ୍ରତାୟୀ—ସ୍ତ୍ରୀ. ବି.(ପୂତକ୍ରତୁ+ଈ) ଇନ୍ଦ୍ରପତ୍ନୀ, ଶଚୀ ।

ପୂତକ୍ରତୁ—ପୁଂ.ବି.(ବ.ବ୍ରୀ)ଦେବରାଜ,ଇନ୍ଦ୍ର

ପୂତଗନ୍ଧ—ପୁଂ. ବି. ତୁଳସୀ, ବର୍ବରକ, (ବିଂ) ଦୁର୍ଗନ୍ଧଯୁକ୍ତ ।

ପୂତତୃଣ—କ୍ଲୀ. ବି. ଶ୍ୱେତ କୁଶ ।

ପୂତଦ୍ରୁ—ପୁଂ. ବି. କିଂଶୁକ, ପଳାଶବୃକ୍ଷ

ପୂତଧାନ୍ୟ—କ୍ଲୀ. ବି. ତିଳ, ରାଶି, ଖସା ।

ପୂତନା—ସ୍ତ୍ରୀ. ବି. (ପୂତ+ଅନ+ଆ) ହରୀତକୀ, ହରିଡ଼ା, ଶିଶୁମାନଙ୍କର ପୂଅରୋଗ, ଶାଳିଆପତ୍ରୀ, ଗନ୍ଧମାଂସୀ, ସୁଗନ୍ଧ, ଜଟାମାଂସୀ, ଦାନବ ବିଶେଷ, ବକାସୁରର ଭଉଣୀ । [ ଶ୍ରୀକୃଷ୍ଣ ।

ପୂତନାରି—ପୁଂ.ବି.( ପୂତନା+ଅରି )

ପୂତନ ସୂଦନ—ପୁଂ. ବି. ଶ୍ରୀକୃଷ୍ଣ ।

ପୂତନାହା—ପୁଂ.ବି. ଶ୍ରୀକୃଷ୍ଣ । [ଦେଖ ।

ପୂତନୀ—ବି.(ପୂତ+ଅନ+ଈ)ପୂତନା

ପୂତଫଳ—ପୁଂ.ବି.ପଣସ(ଗଛ ଓ ଫଳ)

ପୂତମତି—ପୁଂ. ବିଂ. (ବ.ବ୍ରୀ)ପବିତ୍ରମତି, ବିଶୁଦ୍ଧଚିତ୍ତ,ବି. ଶିବଙ୍କର ନାମଭେଦ, (କ.ଧା) ପବିତ୍ରଚିତ୍ତ ।

ପୂତା—ସ୍ତ୍ରୀ. ବି. ( ପୂତ+ଆ ) ଦୁବ, ଦୁବ, (ସ୍ତ୍ରୀ.ବିଂ) ପବିତ୍ରା ।

ପୂତାତ୍ମା—ପୁଂ.ବିଂ. ପବିତ୍ରାତ୍ମା, (ବି) ପବିତ୍ର ସ୍ୱଭାବ, ବିଷ୍ଣୁ ।

ପୂତି—ସ୍ତ୍ରୀ. ବି. (ପୂ+ତି) ପବିତ୍ରତା, ପବିତ୍ରୀକରଣ, ମଡ଼ାର ଗନ୍ଧ, ଶାଳିଆପତ୍ରୀର କୋଷ, (ବିଂ) ଦୁର୍ଗନ୍ଧବିଶିଷ୍ଟ ।

ପୂତିକ—ବି.ମଳ,ବିଷ୍ଠା, ପୂତିକରଞ୍ଜ ବୃକ୍ଷ, ପୋଇଶାଗ ।

ପୂତିକରଞ୍ଜ—ପୁଂ. ବି. ଲଟାକରଞ୍ଜ ବା କରଞ୍ଜପାଳି ଗଛ ।

ପୂତିକଣ୍ଟକ—ପୁଂ. ବି. ଇଙ୍ଗୁଦୀ ବୃକ୍ଷ ।

ପୂତିକନ୍ୟା-ସ୍ତ୍ରୀ.ବି.ପୂତିକା,ପୋଇ,ପୁଦିନା

ପୂତିକର୍ଣ୍ଣ—ପୁଂ.ବି. କର୍ଣ୍ଣରୋଗ ବିଶେଷ, କାନପଚା ରୋଗ ।

ପୂତିକା—ସ୍ତ୍ରୀ. ବ. (ପୂୟ୍+ତି+କ+ଆ) ପୋଇଶାଗ, ପୋତିକରଞ୍ଜ,ଶାଳଆ-ପତଳୀ, ପାରୁଡ଼ାପୋକ।
ପୂତିକାମକ୍ଷିକା—ସ୍ତ୍ରୀ.ବ. ଡାଉଁଶ, ମାଛି।
ପୂତିକାମୁଖ—ପୁଂ. ବ. (ବ.ବ୍ରୀ) ଶମ୍ବୁକ ଶାମୁକା।
ପୂତିକାଷ୍ଠ—କ୍ଲୀ. ବ. ଦେବଦାରୁ,ସରଳ ବୃକ୍ଷ, ପତଳଦାରୁ।
ପୂତିକାଷ୍ଠକ—କ୍ଲୀ. ବ. ସରଳ ବୃକ୍ଷ।
ପୂତିକାହ୍ୱ—ପୁ. ବ. ପୂତିକରଞ୍ଜ।
ପୂତିକୀଟ—ପୁଂ. ବ.(କ.ଧା)କୀଟବିଶେଷ, ପାରୁଡ଼ାପୋକ।
ପୂତିକେଶର—ପୁଂ. ବ. ଗନ୍ଧମାର୍ଜାର, ଶାଳଆପତଳୀ।
ପୂତିଗନ୍ଧ—ବ. (ପୂତି+ଗନ୍ଧ) ଗନ୍ଧକ, ରଙ୍ଗଧାତୁ, ସୁଗନ୍ଧତୃଣ, ଶାଳଆପତଳୀ, ଇଙ୍ଗୁଦୀ ବୃକ୍ଷ, (ବିଂ) ଦୁର୍ଗନ୍ଧ, ପଗୁଗନ୍ଧ।
ପୂତିଗନ୍ଧା—ସ୍ତ୍ରୀ. ବ. ସୋମରାଜୀ।
ପୂତିଗନ୍ଧି—ତ୍ରି.ବିଂ.ବ.ବ୍ରୀ.ଦୁର୍ଗନ୍ଧ,ଗନ୍ଧଆ
ପୂତିଗନ୍ଧିକ—ତ୍ରି. ବିଂ. ଦୁର୍ଗନ୍ଧ,ଗନ୍ଧଆ।
ପୂତିଗନ୍ଧିକା—ସ୍ତ୍ରୀ.ବ.ଔଷଧ ବୃକ୍ଷ ବିଶେଷ, ବାକୁଚୀ, ପୂତିକା।
ପୂତିତୈଲା—ସ୍ତ୍ରୀ.ବ. ଜ୍ୟୋତିଷ୍ମତୀଲତା, ଲତାକଟଣୀ, ଫୁଟିଫୁଟିକାଲତା।
ପୂତିଦ—ପୁଂ.ବ. ତରୁବିଡ଼ାଳ, ତୁଳଥିଁ।
ପୂତିଦଳା—ସ୍ତ୍ରୀ. ବ. ତେଜପତ୍ର।
ପୂତିନସ୍ୟ—ପୁଂ. ବ. (ପୂତି+ନସ୍+ଯ)ନାସାରୋଗ ବିଶେଷ,ନାକରୁ ଦୁର୍ଗନ୍ଧ ବାହାରିବା ରୋଗ।
ପୂତିନାସିକ—ତ୍ରି.ବିଂ.ଦୁର୍ଗନ୍ଧ ନାସାଯୁକ୍ତ, ପୂତିନସ୍ୟ ରୋଗଗ୍ରସ୍ତ।
ପୂତିପତ୍ର—ପୁଂ. ବ. ଶ୍ୟୋନାକବିଶେଷ, ପୀତଲୋଧ୍ର।
ପୂତିପର୍ଣ୍ଣ—ପୁଂ. ବ. କରଞ୍ଜବୃକ୍ଷ, ଇଙ୍ଗୁଦୀ ବୃକ୍ଷ।
ପୂତିପଲ୍ଲବା—ସ୍ତ୍ରୀ.ବ. ରାଜସୁଗନ୍ଧ, ଗସ୍ୟା-କଳଗ।
ପୂତିପୁଷ୍ପ—ପୁଂ. ବ.ଇଙ୍ଗୁଦୀବୃକ୍ଷ,ପୁଇଗନ୍ଧଆ।
ପୂତିପୁଷ୍ପିକା—ସ୍ତ୍ରୀ. ବ. ମଧୁମାତୁଲୁଙ୍ଗ, ମିଠାଲେମ୍ବୁ।

ପୂତିଫଳ—ସ୍ତ୍ରୀ. ବ. ସୋମରାଜୀ।
ପୂତିଫଳୀ—ସ୍ତ୍ରୀ. ବ. ସୋମରାଜୀ।
ପୂତିମଜ୍ଜା—ସ୍ତ୍ରୀ. ବ. ଇଙ୍ଗୁଦୀ ବୃକ୍ଷ।
ପୂତିମୟୂରିକା—ସ୍ତ୍ରୀ. ବ.ଅଜଗନ୍ଧା,ବନ୍ୟ-ତୁଳସୀ।
ପୂତିମାରୁତ—ପୁଂ.ବ.କର୍କନ୍ଧୁ,ବରକୋଳି ଗଛ, ବିଲ୍ୱ ବୃକ୍ଷ।
ପୂତିମାଂସ—କ୍ଲୀ.ବ. ସଢ଼ା ବା ପଗୁମାଂସ
ପୂତିମୂଷିକା—ସ୍ତ୍ରୀ. ବ. ଚୁଚୁନ୍ଦ୍ରା, ମୂଷା।
ପୂତିମୃତ୍ତିକ—କ୍ଲୀ. ବ. ନରକଭେଦ।
ପୂତିମେଦ—ପୁଂ.ବ.ଅରିମେଦ,ବିଟଖଦିର
ପୂତିଯୋନ—ପୁଂ. ବ.ଉପପ୍ଲୁତା ନାମକ ଯୋନିରୋଗ ବିଶେଷ।
ପୂତିରକ୍ତ—ପୁଂ.ବ.ନାସାରୋଗ ବିଶେଷ
ପୂତିବକ୍ତ୍ର—ପୁଂ. ବ.(କ.ଧା) ଦୁର୍ଗନ୍ଧଯୁକ୍ତ ମୁଖ.(ବିଂ.ବ.ବ୍ରୀ)ଯାହା ମୁହଁରୁ ସର୍ବଦା ଦୁର୍ଗନ୍ଧ ବାହାରେ।
ପୂତିବର୍ବରା—ସ୍ତ୍ରୀ. ବ. ବନତୁଳସୀ।
ପୂତିବାତ—ପୁଂ. ବ. ଶ୍ରୀଫଳ, ବିଲ୍ୱବୃକ୍ଷ. ଦୁର୍ଗନ୍ଧ ବାୟୁ।
ପୂତିବାଷ୍ପ—ବ,ନର୍ଦ୍ଦମା ଆଦିରୁ ବାହାରିବା ଦୁର୍ଗନ୍ଧ ବାଷ୍ପ।
ପୂତିବୃକ୍ଷ—ପୁଂ. ବ. ଶ୍ୟୋନାକ, ପବନ ବା ଦୁର୍ଗନ୍ଧ ବୃକ୍ଷ।
ପୂତିଶାକ—ପୁଂ. ବ. ବକ ବୃକ୍ଷ, ଅଗସ୍ତି ଗଛ, ପୋଇଶାଗ।
ପୂତିଶାରିକା—ସ୍ତ୍ରୀ. ବ. ଶାଳଆପତଳୀ, ଗନ୍ଧମାର୍ଜାର।
ପୂତୀକ—ପୁଂ. ବ. ପୂତିକରଞ୍ଜ, ଗନ୍ଧ-ମାର୍ଜାର, ଶାଳଆପତଳୀ।
ପୂତୀକା—ସ୍ତ୍ରୀ. ବ. (ପୂୟ୍+ତି+କ+ଆ) ପୂତିକା, ପୋଇଶାଗ।
ପୂତୁଦାରୁ—ପୁ. ବ. ପଳାଶ ବୃକ୍ଷ।
ପୂତୁଦ୍ରୁ—ପୁଂ. ବ.ଖଦିର ବୃକ୍ଷ, ଦେବ-ଦାରୁ ବୃକ୍ଷ, (କ୍ଲୀ.ବ) ଦେବଦାରୁଫଳ।
ପୂତ୍ୟଣ୍ଡ—ପୁଂ. ବ. ଗନ୍ଧକୀଟ, ଶାଳଆ-ପତଳୀ, କସ୍ତୁରୀ ମୃଗ, ପାଡ଼ୁରିପୋକ।
ପୂନ—ତ୍ରି. ବିଂ. (ପୂ+କ.ତ) ନଷ୍ଟ, ପତିତ, ନାଶପ୍ରାପ୍ତ।

ପୂନା—ସ୍ତ୍ରୀ. ବ. ପୂତ, ଶୁଦ୍ଧି।
ପୂପ—ପୁଂ.ବ. (ପୂ+ପ)ପିଷ୍ଟକ, ପିଠା।
ପୂପକାର—ପୁଂ. ବ. ପିଷ୍ଟକାଦି ପ୍ରସ୍ତୁତ କାରକ।
ପୂପଲା—ସ୍ତ୍ରୀ. ବ. (ପୂପ୍+ଲ+କ.ଅ+ଆ) ପୋଲିକା, ଘିଅପିଠା।
ପୂପଲୀ—ସ୍ତ୍ରୀ. ବ. ପୋଲୀ, ଘୃତପକ୍ୱ ପିଷ୍ଟକ ବିଶେଷ।
ପୂପାଷ୍ଟକ(କା)—ସ୍ତ୍ରୀ. ବ. ପୌଷମାସର କୃଷ୍ଣାଷ୍ଟମୀଦିନ ପିଷ୍ଟକଦ୍ୱାରା କରାଯିବା ଶ୍ରାଦ୍ଧ।
ପୂପିକ(କା)—ସ୍ତ୍ରୀ.ବ.(ପୂପ+କ+ଆ) ପୂଳିକ, ଘୃତପକ୍ୱ ପିଷ୍ଟକ ବିଶେଷ।
ପୂୟ—କ୍ଲୀ. ବ. ଦୁର୍ଗନ୍ଧ, ଭେଦକ, ବିଗ-ରଣ, ପକ୍ୱ ବ୍ରଣାଦି ସମ୍ଭବ।
ପୂୟ-କ୍ଲୀ.ବ.ଘନୀଭୂତ ଶୁକ୍ଳବର୍ଣ୍ଣ ବିକୃତରକ୍ତ
ପୂୟରକ୍ତ—ପୁଂ.ବ.ନାସାରୋଗ ବିଶେଷ, ପୂଜ ଓ ରକ୍ତ।
ପୂୟାରି—ପୁଂ. ବ. ନିମ୍ବବୃକ୍ଷ,ଲିମ୍ବଗଛ।
ପୂୟୋଦ—କ୍ଲୀ. ବ. ନରକ ଭେଦ।
ପୂର—ବ. (ପୂର+ଅ)ଦାହାଗୁରୁ, ଗୁଗ୍ଗୁଳ, ଜଳ ସମୃଦ୍ଧି, ଜଳସ୍ରୋତ, ପୁଷ୍କରିଣୀ, ବ୍ରଣସଂଶୁଦ୍ଧି, ଖାଦ୍ୟ ବିଶେଷ, ପୂର୍ଣ୍ଣ, (ବିଂ) ପୂର୍ଣ୍ଣ।
ପୂରକ—ପୁଂ.ବ.(ପୂର+ଅକ) ବୀଜପୂର, ଲେମ୍ବୁ, ଗୁଣକ ସଂଖ୍ୟା, ଯେଉଁ ସଂଖ୍ୟା ଦ୍ୱାରା ମୂଳ ସଂଖ୍ୟା ଗୁଣନ କରାଯାଏ, ପ୍ରାଣାୟାମର ଅଙ୍ଗବିଶେଷ,ମୃତାଶୌଚ କାଳରେ ପ୍ରେତୋଦ୍ଦେଶ୍ୟରେ ଦେୟ ଦଶପିଣ୍ଡ,(ବିଂ)ପରିପୂର୍ତ୍ତିକାରକ, ପୂରଣ-କର୍ତ୍ତା, ଗୁଣକ।
ପୂରକପତ୍ର—ବି. (କ.ଧା) ମୃତ ବ୍ୟକ୍ତିର ଅଶୌଚାନ୍ତ ଦିନରେ ଦେୟ ପିଣ୍ଡ।
ପୂରକୃତ—ବିଂ. ପରିପୂର୍ଣ୍ଣ।
ପୂରଣ—ବିଂ. (ପୂର+କ.ଅନ) ପୂରକ, (ବ) ପୂରକ, ଗୁଣନ, (ଭା.ଅନ) ପୂର୍ତ୍ତି-କରିବା, ପୂରକ ପିଣ୍ଡ, ଗୁଣନ, ବର୍ଷଣ, ବୃଷ୍ଟି, ଲୁଗାର ଆଡ଼ ସୂତା,ଭରଣୀସୂତା, ସେତୁ, ପୋଲ, ସମୁଦ୍ର।

ପୂରଣୀ—ସ୍ତ୍ରୀ. ବ. (ପୂରଣ+ଈ)ଶିମିଳିଚଛ, ବାପଟଲ୍ଲି, ଭରଣୀସୂତ୍ରା, ପୂରଣକାରିକା ।

ପୂରଣୀୟ—ତ୍ରି. ବଂ. (ପୂରଣ+ଅନୀୟ) ପୂରଣର ଯୋଗ୍ୟ ।

ପୂରନ୍ତା—ଗ୍ରା. ବଂ. ଲୋକପୂର୍ଣ୍ଣ, ପୂର୍ଣ୍ଣ, ପୁରାତନ, ପ୍ରାଚୀନ ।

ପୂରବୀ—ଗ୍ରା, ବ(ସଂ-ପୂର୍ବୀ)ମାଳବ ଗୌଡ଼ା ରାଗର ମିଶ୍ରଣରେ ଉତ୍ପନ୍ନ ସଙ୍ଗୀତର ରାଗିଣୀବିଶେଷ ।

ପୂରୟିତବ୍ୟ—ତ୍ରି.ବଂ. ପୂରଣୀୟ, ଯାହା ପୂରଣ କରାଯାଏ ।

ପୂରୟିତା—ବଂ.(ପୂର+ଣିଚ୍+ତୃ) ପୂରକ, ପୂର୍ଣ୍ଣକାରକ, (ପୁଂ.ବ) ବିଷ୍ଣୁ ।

ପୂରା—ଗ୍ରା.ବଂ.ସମାପ୍ତ, ସମାହୃତ,ସମ୍ପୂର୍ଣ୍ଣ, ଅଖଣ୍ଡ, ପ୍ରଚୁର,ପରିପୂର୍ଣ୍ଣ,(ବଂର ବଂ.) ପୂର୍ଣ୍ଣରୂପେ, ଅତ୍ୟନ୍ତ ।

ପୂରା(ରେ)ଇବା—ଗ୍ରା, କ୍ରି. ପୂର୍ଣ୍ଣକରିବା, ସମ୍ପୂର୍ଣ୍ଣ କରିବା, ସମାଧା କରିବା,ଉର୍ତ୍ତିକରିବା, ପୂରଣ କରିବା, ଭିତରକୁ ପ୍ରବିଷ୍ଟ କରାଇବା, (କାମନା) ପରିତୃପ୍ତ କରିବା ।

ପୂରାକରିବା—ଗ୍ରା,କ୍ରି.ପୂର୍ଣ୍ଣକରିବା, ସମାପ୍ତ କରିବା, ସମାଧା କରିବା ।

ପୂରାପୂରି—ଗ୍ରା. ବ. ଅନ୍ୟୋନ୍ୟରେ ପୂର୍ଣ୍ଣ କରିବା, ପଶାପଶି, ଅନ୍ୟୋନ୍ୟରେ ପ୍ରବେଶ କରାଇବା, (ବଂ) ପରିପୂର୍ଣ୍ଣ, ସମାପ୍ତ, ସମ୍ପୂର୍ଣ୍ଣ ।

ପୂରାମ୍ଳ—କ୍ଲୀ.ବ.ବୃକ୍ଷାମ୍ଳ, ତେନ୍ତୁଳି, ଆମ୍ରାତକ, ଆମ୍ବଡ଼ା ।

ପୂରି—ଗ୍ରା,ବ, ଗୋଧୂମ ପିଷ୍ଟକ, ମୃଦଙ୍ଗଆଦିର ମୁହଁରେ ମଡ଼ାଯିବା ଚମଡ଼ା ।

ପୂରିକା—ସ୍ତ୍ରୀ. ବ. (ପୂରି+କ+ଆ)ପୂରି, ପିଷ୍ଟକବିଶେଷ, ପୁରପିଠା, କଚୁରି ପ୍ରଭୃତି ।

ପୂରିତ—ତ୍ରି.ବଂ. (ପୂର+ତ)ପୂର୍ଣ୍ଣ କରାଯାଇଥିବା, କୃତପୂରଣ,ଗୁଣିତ, ପୂର୍ଣ୍ଣ ।

ପୂରିବା—ଗ୍ରା.କ୍ରି.ବ୍ୟାପ୍ତହେବା, ସମାହୃତ ହେବା, ଅଣ୍ଟିବା, ସନ୍ତୁଷ୍ଟ ହେବା, ପୂର୍ଣ୍ଣ ହେବା,(ମନୋବାଞ୍ଛା)ଫଳବତୀହେବା, ସମୟର ମିଆଦ ଅତିକ୍ରାନ୍ତ ହେବା ।

ପୂରୁ—ପୁଂ. ବ. (ପୂର+ଉ) ମନୁଷ୍ୟ, ବୈଦିକ ମନ୍ତ୍ରର ସୂକ୍ତବିଶେଷ,ଜହ୍ନୁପୁତ୍ରବିଶେଷ, ରାକ୍ଷସବିଶେଷ, ଯଯାତି ପୁତ୍ରଭେଦ ।

ପୂରୁଜିତ—ପୁଂ. ବ. ବିଷ୍ଣୁ ।

ପୂରୁଦ—ଗ୍ରା, ବ. (ସଂ-ପୂର୍ବ) ପୂର୍ବଦିଗ, ପୂର୍ବକାଳ,ଅତୀତ,(ବଂ)ପ୍ରାଚୀନ, ପୂର୍ବଦିଗସ୍ଥ ।

ପୂରୁବାପୁରୁଷୀ—ଗ୍ରା. ବଂ. ବହୁକାଳରୁ ପ୍ରଚଳିତ, ଅତିପ୍ରାଚୀନ, ପିତୃ ପୈତାମହିକ, ପୈତୃକ ।

ପୂରୁଷ—ପୁଂ. ବ. (ପୂର+ଉଷ୍) ପୁରୁଷ. ଈଶ୍ୱର,ଚୈତନ୍ୟଯୁକ୍ତ ଶୁଦ୍ଧ ସ୍ୱଭାବ, ଚେତନ, ଆତ୍ମା ।

ପୂର୍ଣ୍ଣ—ତ୍ରି.ବଂ. (ପୂର+ନି.ତ) ପୂରିତ, କୃତପୂରଣ, ସମ୍ପୂର୍ଣ୍ଣ, ସମସ୍ତ, ସମର୍ଥ, ସଫଳ, ଦୋଷଶୂନ୍ୟ, ସ୍ୱାଧୀନ, ଅପ୍ରକାମ,(ବ)ପ୍ରଧାନ ପୁତ୍ର ଗନ୍ଧର୍ବବିଶେଷ, ନାଗଭେଦ,ପକ୍ଷିବିଶେଷର ସ୍ୱରଭେଦ, ଜଳ, ବିଷ୍ଣୁ, ପରମେଶ୍ୱର ।

ପୂର୍ଣ୍ଣକ—ପୁଂ. ବ. ସ୍ୱର୍ଣ୍ଣଚୂଡ଼ ପକ୍ଷୀ, ତାମ୍ରଚୂଡ଼, କୁକ୍କୁଡ଼ା, ଦେବଯୋନିବିଶେଷ, ପୂର୍ଣ୍ଣ (ଦେଖ) ।

ପୂର୍ଣ୍ଣକଂସ—ପୁଂ. ବ. ପରିପୂର୍ଣ୍ଣ ଘଟ ।

ପୂର୍ଣ୍ଣକକୁଦ୍—ବ.(ବ.ବ୍ରୀ)ତରୁଣବୟସ୍କବୃଷଭ

ପୂର୍ଣ୍ଣକର—ଗ୍ରା. କ୍ରି. ବଂ. ସମ୍ପୂର୍ଣ୍ଣ ରୂପେ. ପୂର୍ଣ୍ଣମାତ୍ରାରେ ।

ପୂର୍ଣ୍ଣକରିବା—ଗ୍ରା.କ୍ରି. ପୂରାଇବା, ସମ୍ପୂର୍ଣ୍ଣ କରିବା, ଭରତିକରିବା, ସଫଳକରିବା

ପୂର୍ଣ୍ଣକଳସ—ବ. ପୂର୍ଣ୍ଣକୁମ୍ଭ ଦେଖ ।

ପୂର୍ଣ୍ଣକାମ-ପୁଂ.ବ(ପୂର୍ଣ୍ଣ+କାମ)ଆପ୍ତେଚ୍ଛୁ, ପରମେଶ୍ୱର,(ବଂ.ବ.ବ୍ରୀ)ପୂର୍ଣ୍ଣ ମନୋରଥ, ସନ୍ତୁଷ୍ଟ, ତୃପ୍ତ ।

ପୂର୍ଣ୍ଣକୁମ୍ଭ—ପୁଂ. ବ. ଜଳ ପୂରିତ ଘଟ, ପୂରା ମାଠିଆ ।

ପୂର୍ଣ୍ଣଗର୍ଭ—ବ.ଗର୍ଭସ୍ଥ ସନ୍ତାନ,ପୂର୍ଣ୍ଣାବସ୍ଥା ପ୍ରାପ୍ତ ହୋଇଥିବା ଗର୍ଭାବସ୍ଥା ।

ପୂର୍ଣ୍ଣଗର୍ଭା—ସ୍ତ୍ରୀ. ବ. ଆସନ୍ନପ୍ରସବା ସ୍ତ୍ରୀ, ପୂରଣ ପୋଳିକା, ପୂରପିଠା ।

ପୂର୍ଣ୍ଣଚନ୍ଦ୍ର—ପୁଂ.ବ.ପୂର୍ଣ୍ଣିମାର ଚନ୍ଦ୍ର,ଧାନ୍ଦୁଷ ପାରସ୍କର ନାମରେ ଗ୍ରନ୍ଥପ୍ରଣେତା ।

ପୂର୍ଣ୍ଣଚ୍ଛେଦ—ବ.କୌଣସି ଲେଖାର ପଙ୍କ୍ତି ଦୀର୍ଘକାଳ ସ୍ଥଗିତ ରଖାଯିବାର ସୂଚକ ଚିହ୍ନ, କୌଣସି ବାକ୍ୟର ସମାପ୍ତି ସୂଚକ ଚିହ୍ନ ।

ପୂର୍ଣ୍ଣତା—ସ୍ତ୍ରୀ.ବ.ପୂର୍ଣ୍ଣତ୍ୱ, ପୂର୍ଣ୍ଣର ଭାବ, ସଫଳତା, ପରିପୂର୍ଣ୍ଣତା ।

ପୂର୍ଣ୍ଣପରାବର୍ତ୍ତିକ—ବ.ଯେଉଁମାନେ ଜନ୍ମାବଧି ବାରମ୍ବାର ସମ୍ୟକ୍ ରୂପେ ଦେହ ପରିବର୍ତ୍ତନ କରନ୍ତି. ଦଂଶ, ମଶକ, ମକ୍ଷିକା ପ୍ରଜାପତି ପ୍ରଭୃତି ।[ ପୂର୍ଣ୍ଣିମା ।

ପୂର୍ଣ୍ଣପର୍ବେନ୍ଦୁ—ସ୍ତ୍ରୀ. ବ. ପୌର୍ଣ୍ଣମାସୀ,

ପୂର୍ଣ୍ଣପାତ୍ର—କ୍ଲୀ.ବ(କ,ଧା)ବସ୍ତୁପୂର୍ଣ୍ଣ ପାତ୍ର, ଜଳପୂର୍ଣ୍ଣ ପାତ୍ର, ହୋମାନ୍ତେ ବ୍ରହ୍ମାଙ୍କୁ ଦେୟ ଦକ୍ଷିଣା ରୂପ ଦ୍ରବ୍ୟବିଶେଷ, ପୁତ୍ର ଜନ୍ମାଦି ଉତ୍ସବରେ ଆଶ୍ରିତ ଜନମାନଙ୍କୁ ଦେୟ ପାରିତୋଷିକ ବସ୍ତ୍ରାଲଂକାରାଦି, ପୁଷ୍କଳ ଚତୁଷ୍ଟୟ, ଅର୍ଥାତ୍ ୨୫୬ମୁଷ୍ଟି ପରିମାଣ ।

ପୂର୍ଣ୍ଣପ୍ରଜ୍ଞ—ତ୍ରି.ବଂ.(ବ.ବ୍ରୀ) ସମ୍ପୂର୍ଣ୍ଣବୁଦ୍ଧି, ପୂର୍ଣ୍ଣଜ୍ଞାନୀ, ପୂର୍ଣ୍ଣପ୍ରଜ୍ଞ ଦର୍ଶନର ପ୍ରଣେତା ମାଧ୍ୱାଚାର୍ଯ୍ୟ । [ ଦର୍ଶନଶାସ୍ତ୍ର ।

ପୂର୍ଣ୍ଣପ୍ରଜ୍ଞଦର୍ଶନ—ବ.ପୂର୍ଣ୍ଣପ୍ରଜ୍ଞ ପ୍ରବର୍ତ୍ତିତ

ପୂର୍ଣ୍ଣବୀଜ—ପୁ. ବ. (ବ.ବ୍ରୀ) ବୀଜପୁର ମାତୁଳୁଙ୍ଗ ବୃକ୍ଷ, ଟଭା, ଲେମ୍ବୁ ।

ପୂର୍ଣ୍ଣଭଦ୍ର—ପୁଂ.ବ.ନାଗଭେଦ, ଜନୈକ ରାଜପଣ୍ଡିତ ।

ପୂର୍ଣ୍ଣମା—ସ୍ତ୍ରୀ.ବ.ପୂର୍ଣ୍ଣମାସୀ ତିଥି,ପୂର୍ଣ୍ଣିମା ।

ପୂର୍ଣ୍ଣମାତ୍ରା—ବ.ସମ୍ପୂର୍ଣ୍ଣ ପରିମାଣ, ଔଷଧର ସମ୍ପୂର୍ଣ୍ଣ ଏକପାଳି,ଅଖଣ୍ଡିତ ଅବସ୍ଥା ।

ପୂର୍ଣ୍ଣମାସ—ପୁଂ.ବ.ପୂର୍ଣ୍ଣମାସୀ, ପୂର୍ଣ୍ଣିମାରେ କର୍ତ୍ତବ୍ୟ ଯାଗବିଶେଷ, ଧାତାର ଅନୁମତି ନାମ୍ନୀ ଭାର୍ଯ୍ୟାଠାରୁ ଜାତ ପୁତ୍ରବିଶେଷ, ପୂର୍ଣ୍ଣିମା ।

ପୂର୍ଣ୍ଣମାସୀ—ସ୍ତ୍ରୀ.ବ.ପୂର୍ଣ୍ଣିମା ତିଥି, ଗୋପପୁରବାସିନୀ ସନ୍ନ୍ୟାସିନୀବିଶେଷ ।

ପୂର୍ଣ୍ଣମୁଖ—ପୁଂ.ବ.ଜନମେଜୟଙ୍କର ସର୍ପଯାଗରେ ଦଗ୍ଧ ନାଗବିଶେଷ ।

ପୂର୍ଣ୍ଣଯୋଗ—ପୁଂ.ବ. ବାହୁଯୁଦ୍ଧବିଶେଷ, ଜରାସନ୍ଧଙ୍କ ସହିତ ଭୀମ ଏହି ଯୁଦ୍ଧ କରିଥିଲେ ।

ପୂର୍ଣ୍ଣବପୁଃ—ବିଂ. ପୂର୍ଣ୍ଣଦେହବିଶିଷ୍ଟ ।

ପୂର୍ଣ୍ଣବୟସ୍କ—ବିଂ.ସାବାଳକ,ପ୍ରାପ୍ତବୟସ୍କ, ପରିଣତବୟସ୍କ ।

ପୂର୍ଣ୍ଣବିକାଶ—ବି.(କ.ଧା) ସମ୍ପୂର୍ଣ୍ଣ ରୂପେ ବିକଶିତ ହେବା ଅବସ୍ଥା ।

ପୂର୍ଣ୍ଣବ୍ରହ୍ମ—ବି. ପରଂବ୍ରହ୍ମ, ପରମେଶ୍ୱର, ଅଖଣ୍ଡ ବ୍ରହ୍ମ ।

ପୂର୍ଣ୍ଣସେନ—ବି. ବରରୁଚିକୃତ ଯୋଗଶତକର ଟୀକାକାର ।

ପୂର୍ଣ୍ଣହୋମ—ପୁଂ.ବ.(ବ.ବ୍ରୀ) ପୂର୍ଣ୍ଣାହୁତି ହୋମ ଶେଷରେ ଦିଆଯିବା ଆହୁତି ।

ପୂର୍ଣ୍ଣା—ସ୍ତ୍ରୀ.ବ.(ପୂର୍ଣ୍ଣ+ଆ) ତିଥିବିଶେଷ, ପଞ୍ଚମୀ, ଦଶମୀ, ପୂର୍ଣ୍ଣିମା ଓ ଅମାବସ୍ୟା ଏହି ସମସ୍ତ ତିଥି ।

ପୂର୍ଣ୍ଣାନକ—କ୍ଲୀ.ବ.(ପୂର୍ଣ୍ଣ+ଅନ+ଆକ) ପୂର୍ଣ୍ଣାଲକ, ପୂର୍ଣ୍ଣପାତ୍ର, ଚନ୍ଦ୍ରାଲୋକ, ପଟହ ଶବ୍ଦ ।

ପୂର୍ଣ୍ଣାନନ୍ଦ—ପୁଂ.ବ.(ବ.ବ୍ରୀ)ପରମେଶ୍ୱର, ତନ୍ତ୍ରପ୍ରକରଣକାର ବ୍ରହ୍ମଜ୍ଞବିଶେଷ ।

ପୂର୍ଣ୍ଣାନନ୍ଦ—ପୁଂ.ବ.ମହାବାକ୍ୟାର୍ଥ ପ୍ରବନ୍ଧ ଯୋଗସଂଗ୍ରହଟୀକା ଶ୍ରୁତିସାର ପ୍ରଭୃତି ଗ୍ରନ୍ଥକାର, ମନ୍ତ୍ରସାରସମୁଚ୍ଚୟ ପ୍ରଣେତା

ପୂର୍ଣ୍ଣାଭିଷେକ—ପୁଂ.ବ.ତନ୍ତ୍ରୋକ୍ତ କୌଳ ଅଭିଷେକବିଶେଷ ।

ପୂର୍ଣ୍ଣାମୃତା—ସ୍ତ୍ରୀ. ବ ଚନ୍ଦ୍ରଙ୍କ ଷୋଡ଼ଶ କଳାର ନାମ ।

ପୂର୍ଣ୍ଣାୟୁ—ବି. (ପୂର୍ଣ୍ଣ+ଆୟୁସ୍) ପ୍ରାଚେତସ ଗନ୍ଧର୍ବବିଶେଷ, ପୂର୍ଣ୍ଣମାୟୁରସ୍ୟ, ଶତବର୍ଷମିତ ଜୀବନ କାଳ, (ବିଂ.ବ.ବ୍ରୀ) ଶତାୟୁଷ୍କ ।

ପୂର୍ଣ୍ଣାବତାର—ପୁଂ. ବ. ଭଗବାନଙ୍କର ସମ୍ପୂର୍ଣ୍ଣ ଅବତାର, ନୃସିଂହ, ରାମ ଓ ଶ୍ରୀକୃଷ୍ଣ, (ମତାନ୍ତରରେ ଶ୍ରୀକୃଷ୍ଣ ବିଷ୍ଣୁଙ୍କର ପୂର୍ଣ୍ଣାବତାର ବୋଲି କଥିତ) ।

ପୂର୍ଣ୍ଣାହୁତି—ସ୍ତ୍ରୀ. ବ. ହୋମ ସମାପ୍ତିରେ ଶେଷ ଆହୁତି । [ ପୂରଣ ।

ପୂର୍ତ୍ତି— ସ୍ତ୍ରୀ.ବ.(ପୃ+ତି) ପୂର୍ତ୍ତି, ପୂର୍ଣ୍ଣିମା,

ପୂର୍ଣ୍ଣିକା—ସ୍ତ୍ରୀ.ବ.ନାସାଚ୍ଛିନ୍ନୀ ନାମକ ପକ୍ଷୀ

ପୂର୍ଣ୍ଣିମା—ସ୍ତ୍ରୀ.ବ.(ପୂର୍ଣ୍ଣ+ଇମ+ଆ)ଶୁକ୍ଳପକ୍ଷର ପଞ୍ଚଦଶୀ ତିଥି ।

ପୂର୍ଣ୍ଣେନ୍ଦୁ—ପୁଂ. ବ. ପଞ୍ଚଦଶ କଳା ଦ୍ୱାରା ପରିପୂର୍ଣ୍ଣ ଚନ୍ଦ୍ର,ପୂର୍ଣ୍ଣଚନ୍ଦ୍ର । [ବିଶେଷ

ପୂର୍ଣ୍ଣୋପମା—ସ୍ତ୍ରୀ. ବ. ଉପମାଳଙ୍କାର

ପୂର୍ତ୍ତ—କ୍ଲୀ. ବ. (ପୃ+କ୍ତ) ପୂରଣ, ପାଳନ, ଜଳାଶୟାଦି ଖନନ, ଖାତାଦି କର୍ମ, (ବିଂ-ମି.ତ) ପୂର୍ତ୍ତକର୍ମଶିଳ୍ପ, ପୂରିତ, ଛନ୍ନ, ଆଚ୍ଛନ୍ନ, ସମାପିତ ।

ପୂର୍ତ୍ତକର୍ମ—ବି. ସାଧାରଣଙ୍କ ହିତାର୍ଥ ରାଜମାର୍ଗ, ପୁଷ୍କରଣୀ ଓ କୂପାଦି ନିର୍ମାଣ କର୍ମ ।

ପୂର୍ତ୍ତବିଭାଗ—ପୁଂ.ବ.ନାରକ୍ୱିମିସ୍ତ୍ରୀ ଇଲାକା

ପୂର୍ତ୍ତି—ସ୍ତ୍ରୀ.ବ.(ପୃ+କ୍ତି)ପୂରଣ, ଗୁଣନ, ବ୍ୟାପ୍ତି,ସମ୍ଭାର,ପୂର୍ଣ୍ଣତା କର୍ମ,ସନ୍ତୋଷ. ସମାପ୍ତି । [ ପୂରଣାଭିଳାଷୀ ।

ପୂର୍ତ୍ତିକାମ—ବି. ବିଂ. (ବ.ବ୍ରୀ) ଧନାଦି

ପୂର୍ତ୍ତୀ—ପୁଂ.ବିଂ.(ପୂର୍ତ୍ତ+ଇନ୍)ତୃପ୍ତିପ୍ରଦ. ଇଚ୍ଛାପୂରକ,ଶ୍ରାଦ୍ଧ,କୃତପୂରଣ,ପୂରିତ

ପୂର୍ଦ୍ୱାର—କ୍ଲୀ.ବ. (ଷତତ୍ତ୍ୱ)ପୁରର ଦ୍ୱାର, ଗୋପୁର । [ପୁରର ସ୍ୱାମୀ ।

ପୂର୍ପତି—ପୁଂ. ବ.(ଷତତ୍ତ୍ୱ)ପୁରର ପତି,

ପୂର୍ଯ୍ୟ—ବି.ବିଂ. (ପୃ+ଯ) ପୂରଣୀୟ, ପାଳନୀୟ, (ପୁଂ.ବ) ତୃଣବୃକ୍ଷ ।

ପୂର୍ବ—ସର୍ବ. (ପୂର୍ବ+କ.ଅ)ଆଦି,ପ୍ରଥମ, ଅତୀତ, ପ୍ରାଚୀନ, ପୂର୍ବୋକ୍ତ, ଅଗ୍ର, ଅଗ୍ର୍ୟ,ଊର୍ଦ୍ଧ୍ୱସ୍ଥ, ପ୍ରାଚ୍ୟଦେଶୀୟ,ଜ୍ୟେଷ୍ଠ, ପୂର୍ବଦିଗ, (ବ) ପୂର୍ବ ପୁରୁଷଗଣ, ଅତୀତ କାଳର ବ୍ୟକ୍ତିମାନେ,କାରଣ, ଇତିବୃତ୍ତ, (ବିଂ) ପୂର୍ବେ ଘଟିଥିବା ।

ପୂର୍ବକ—ବିଂ.ପୁରଃସର,ସହିତ ପୂର୍ବରେ ଅମୁକ ବିଷୟ ଆଏ, (ଅବ୍ୟ)ପୁରଃସର. ସହିତ,ସହକାରେ,ଦ୍ୱାରା, କ୍ରମେ ।

ପୂର୍ବକଥିତ—ବିଂ. ପ୍ରାଗୁକ୍ତ, ପ୍ରଥମୋକ୍ତ ପୂର୍ବୋକ୍ତ ।

ପୂର୍ବକାଲଜ—ପୁଂ.ବ.ପୂର୍ବକାଳ,ପୂର୍ବବର୍ତ୍ତୀ କାଳଜ ।

ପୂର୍ବକାୟ—ପୁଂ. ବ. ( ପୂର୍ବ+କାୟ ) କାୟର ପୂର୍ବଭାଗ, ନାଭିର ଊର୍ଦ୍ଧ୍ୱଶରୀରାଂଶ । [ କାଳର ।

ପୂର୍ବକାର—ଗ୍ର . ବିଂ. ଆଗକାର,ପୂର୍ବ-

ପୂର୍ବକାଳ—ପୁଂ.ବ. (କ.ଧା)ପୁରାକାଳ, ପ୍ରାଚୀନକାଳ, ଅତୀତସମୟ ।

ପୂର୍ବକାଳୀକ—ବି.ବିଂ.ଆଗକାର,ପ୍ରାଚୀନ କାଳର, ପୂର୍ବକାଳୀନ ।

ପୂର୍ବକାଷ୍ଠା—ସ୍ତ୍ରୀ.ବ. ପୂର୍ବାକାଷ୍ଠା, ପୂର୍ବଦିକ୍ ।

ପୂର୍ବକୃତ୍—ବି. ( ପୂର୍ବ+କୃ+କ୍ୱିପ୍ ) ପୂର୍ବଦିଗର କର୍ତ୍ତା ସୂର୍ଯ୍ୟ ।

ପୂର୍ବକୃତ—ବିଂ. ପୂର୍ବକାଳରେ କରାଯାଇଥିବା, ପୂର୍ବଜନ୍ମରେ ଅନୁଷ୍ଠିତ ।

ପୂର୍ବକୋଟି—ସ୍ତ୍ରୀ.ବ. ପୂର୍ବପକ୍ଷ ।[ଗାମୀ ।

ପୂର୍ବଗ—ବି.ବିଂ.(ପୂର୍ବ+ଗମ୍.ଅ)ପୂର୍ବ-

ପୂର୍ବଗଙ୍ଗା—ସ୍ତ୍ରୀ.ବ. ନର୍ମଦାନଦୀ ।

ପୂର୍ବଗତ—ବି. ଜୈନମାନଙ୍କର ଦୃଷ୍ଟିବାଦର ଅନ୍ତର୍ଗତ ଗ୍ରନ୍ଥବିଶେଷ ।

ପୂର୍ବଗାମୀ—ବିଂ. (ପୂର୍ବ+ଗମ୍+କ. ଇନ୍) ପୂର୍ବଦିଗକୁ ଗମନଶୀଳ, ଅଗ୍ରେ ଗମନକାରୀ । [ ପୂର୍ବାର୍ଦ୍ଧ ।

ପୂର୍ବଗୋଲାର୍ଦ୍ଧ—ପୃଥିବୀ ଗୋଲକର

ପୂର୍ବଚିତ୍ତି—ସ୍ତ୍ରୀ.ବ. ଅପ୍ସରୋଭେଦ ।

ପୂର୍ବଜ—ପୁଂ.ବ. (ପୂର୍ବ+ଜନ୍+ଅ) ଜ୍ୟେଷ୍ଠଭ୍ରାତା, ଚନ୍ଦ୍ରଲୋକସ୍ଥିତ ଦିବ୍ୟ ପିତୃଗଣ, (ବିଂ) ଅଗ୍ରଜ, ଜ୍ୟେଷ୍ଠ, ପୂର୍ବକାଳୋତ୍ପନ୍ନ ।

ପୂର୍ବଜନ—ପୁଂ.ବ. ପୁରାକାଳର ଲୋକ ।

ପୂର୍ବଜନ୍ମ—କ୍ଲୀ.ବ. ( କ.ଧା ) ବର୍ତ୍ତମାନ ଜନ୍ମର ପୂର୍ବଜନ୍ମ ।

ପୂର୍ବଜନ୍ମଲବ୍ଧ—ବିଂ. ( ଷତତ୍ତ୍ୱ ) ପୂର୍ବଜନ୍ମରେ ମିଳିଥିବା । [ଭଗ୍ନୀ ।

ପୂର୍ବଜା—ସ୍ତ୍ରୀ.ବ. (ପୂର୍ବଜ+ଆ) ବଡ଼ପୂର୍ବଜାତ —ସ୍ତ୍ରୀ.ବ. ପୂର୍ବଜନ୍ମ ।

ପୂର୍ବଜନ—ପୁଂ.ବ. (କ.ଧ ) ମଞ୍ଜଘୋଷ ନାମକ ସର୍ବପ୍ରଥମ ଜୈନଗୁରୁ ।

ପୂର୍ବଜୀବନ—ବି. (କ.ଧା) ମନୁଷ୍ୟ ଜୀବନର ଅଜ୍ଞାତ କାଳ, ପୂର୍ବଜନ୍ମ ।

ପୂର୍ବଜ୍ଞାନ—କ୍ଲୀ.ବି.ପୂର୍ବଜନ୍ମାର୍ଜିତ ଜ୍ଞାନ ।

ପୂର୍ବତନ—ତ୍ରି.ବି., (ପୂର୍ବ+ତନ)ପୂରାକାଳୀନ,ପୂର୍ବକାର, ଆଗକାର,ଆଦ୍ୟ ।

ପୂର୍ବତଃ—ଅବ୍ୟ. (ପୂର୍ବ+ତସ୍) ପୂର୍ବଠାରୁ, ପୂର୍ବରେ, ପୂର୍ବରୁ ।

ପୂର୍ବତ୍ର—ଅବ୍ୟ. ପୂର୍ବେ ।

ପୂର୍ବଥା—ଅବ୍ୟ. ପୂର୍ବତୁଲ୍ୟ,ପୂର୍ବପରି ।

ପୂର୍ବଦକ୍ଷିଣା—ବି. ପୂର୍ବ ଓ ଦକ୍ଷିଣ ଦିଗର ମଧ୍ୟବର୍ତ୍ତୀ ଦିଗ, ଅଗ୍ନିକୋଣ, ତଦ୍ଦିଗସ୍ଥ ଦେଶ ।

ପୂର୍ବଦିଗ୍‌ପତି—ପୁଂ, ବି. (୬ତତ୍ପୁ) ଇନ୍ଦ୍ର, ମେଷ ସିଂହାଦି ରାଶି ।

ପୂର୍ବଦିଗ୍‌ବଦନ—କ୍ଲୀ. ବି. ମେଷ, ସିଂହ ଓ ଧନୁ ରାଶିତ୍ରିକ ।

ପୂର୍ବଦିଗୀଶ—ପୁଂ, ବି. ପୂର୍ବଦିଗର ଅଧିପତି, ଇନ୍ଦ୍ର,ମେଷ ସିଂହ ଓ ଧନୁରାଶି ।

ପୂର୍ବଦିନ—କ୍ଲୀ. ବି. ପୂର୍ବଦିବସ ।

ପୂର୍ବଦିଷ୍ଟ—ବିଂ. ପୂର୍ବଭାଗ୍ୟାନୁରୂପ ଦୁଃଖସୁଖାଦି ।

ପୂର୍ବଦୃଷ୍ଟ—ବିଂ. (୭ତତ୍ପୁ) ପୂର୍ବେଲକ୍ଷିତ, ପୂର୍ବେ ଅନୁମିତ,ପୂର୍ବରେ ଅବଲୋକିତ

ପୂର୍ବଦେବ—ପୁଂ. ବି. (କ.ଧା) ଅସୁର, ନରନାରାୟଣ, ପିତୃଲୋକ ।

ପୂର୍ବଦେବତା—ସ୍ତ୍ରୀ, ବି. ଅନାଦିଦେବତା ରୂପପିତୃଲୋକ ।

ପୂର୍ବଦେଶ—ପୁଂ. ବି. (କ.ଧା) ପ୍ରାଚୀଦିଗସ୍ଥିତ ଜନପଦ ବା ଭୂଭାଗ ।

ପୂର୍ବଦେହିକ—ବିଂ. ପୂର୍ବଜନ୍ମକୃତ ।

ପୂର୍ବନିପାତ— ବି. (ବ୍ୟାକରଣ) ଯେଉଁ ସମସ୍ତ ବା ସମାସ ନିଷ୍ପନ୍ନ ପଦରେ ପରବର୍ତ୍ତୀପଦ ପ୍ରଥମେ ନ୍ୟସ୍ତହୁଏ ଓ ପୂର୍ବବର୍ତ୍ତୀ ପଦ ପରେ ନ୍ୟସ୍ତହୁଏ ।

ପୂର୍ବନିରୂପଣ—ବି. ଭାଗ୍ୟ ।

ପୂର୍ବପକ୍ଷ—ବି. (ପୂର୍ବ+ପକ୍ଷ) ଶୁକ୍ଳପକ୍ଷ, ଶାସ୍ତ୍ରୀୟପ୍ରଶ୍ନ, ସିଦ୍ଧାନ୍ତବିରୁଦ୍ଧ କୋଟି, ବ୍ୟବହାର ବିଶେଷ, (ହିନ୍ଦୁସ୍ମୃତି) ମକଦ୍ଦମାରେ ବାଦୀ ନା ମୁଦେଇ,ମକଦ୍ଦମାରେ ଅଭିଯୋଗ ପତ୍ର ବା ଅରଜି, କୃଷ୍ଣପକ୍ଷ ।

ପୂର୍ବପକ୍ଷପାଦ—ବି.(ହିନ୍ଦୁ ସ୍ମୃତି) ଧର୍ମାଧିକରଣରେ ପ୍ରତିକାର ପ୍ରାର୍ଥନା ସମ୍ବନ୍ଧୀୟ, ଚତୁଷ୍ପାଦ ବା ଉପଗୃହ ମଧ୍ୟରୁ ସର୍ବପ୍ରଥମ ଭାଷା ପାଦ, ଅରଜି,ଦରଖାସ୍ତ ।

ପୂର୍ବପକ୍ଷୀୟ—ବିଂ ପୂର୍ବପକ୍ଷ ସମ୍ବନ୍ଧୀୟ ।

ପୂର୍ବପର୍ବତ—ପୁଂ.ବି.ଉଦୟାଚଳ,ଉଦୟପର୍ବତ, ଯେଉଁ ପର୍ବତରେ ସୂର୍ଯ୍ୟ ଉଦୟ ହୁଅନ୍ତି ।

ପୂର୍ବପାଦ—ପୁଂ,ବି. ଅଗ୍ରଚରଣ,ଅଗ୍ରପାଦ ।

ପୂର୍ବପିତାମହ—ପୁଂ. ବି. ପ୍ରପିତାମହ, ପିତାଙ୍କ ପିତାମହ ।

ପୂର୍ବପୀଠିକା—ବି. କଥାଗ୍ରନ୍ଥାବତରଣିକା ବିଶେଷ ।

ପୂର୍ବପୁରୁଷ—ପୁଂ.ବି. ବଂଶର ଆଦିପୁରୁଷ, ପିତାଦି ତିନିପୁରୁଷ, ବ୍ରହ୍ମା ।

ପୂର୍ବପ୍ରଚଳିତ—ବିଂ. ବହୁପୂର୍ବରୁ ଯାହା ଚଳିଆସୁଅଛି, ମରହଟିଆ ।

ପୂର୍ବପ୍ରଥା—ବି. ପୂର୍ବକାଳରୁ ଚଳିଆସୁଥିବା ରୀତି ବା ଆଚାର,ଆଗକାର ଢଙ୍ଗ

ପୂର୍ବଫଲ୍‌ଗୁନୀ—ସ୍ତ୍ରୀ. ବି. ଅଶ୍ୱିନୀାଦି ସପ୍ତବିଂଶତି ନକ୍ଷତ୍ର ମଧ୍ୟରୁ ଏକାଦଶ ନକ୍ଷତ୍ର ।

ପୂର୍ବଫଲ୍‌ଗୁନୀଭବ—ପୁଂ.ବି.(ପୂର୍ବଫଲ୍‌ଗୁନୀ+ଭୂ+ଅ) ବୃହସ୍ପତି ।

ପୂର୍ବଭକ୍ଷିକା—ବି.ପ୍ରାତର୍ଭୋଜନ,ଜଳଖିଆ ।

ପୂର୍ବଭାଦ୍ରପଦ—ପୁଂ. ବି. ଅଶ୍ୱିନ୍ୟାଦି ସପ୍ତବିଂଶତି ନକ୍ଷତ୍ର ମଧ୍ୟରୁ ପଞ୍ଚବିଂଶତି ନକ୍ଷତ୍ର

ପୂର୍ବମୀମାଂସା—ସ୍ତ୍ରୀ. ବି. ଜୈମିନି ପ୍ରବର୍ତ୍ତିତ ହିନ୍ଦୁଦର୍ଶନ ଶାସ୍ତ୍ରବିଶେଷ,ବେଦର କର୍ମକାଣ୍ଡ ବିଷୟକ ତର୍କଶାସ୍ତ୍ର ।

ପୂର୍ବଯକ୍ଷ—ବି. ଜିନବିଶେଷ,ବୁଦ୍ଧଦେବଙ୍କ ଜନ୍ମପୂର୍ବରେ ଆବିର୍ଭୂତ ମହାତ୍ମାବିଶେଷ

ପୂର୍ବଯୋଗିନୀ—ବି, ଯେଉଁ ସମୟରେ ଯୋଗିନୀ ବା ପାର୍ବତୀ ପୂର୍ବଦିଗରେ ବା ଉତ୍ତରପୂର୍ବ (ଐଶାନ୍ୟ) କିମ୍ବା ଦକ୍ଷିଣପୂର୍ବ (ଅଗ୍ନି) କୋଣରେ ଥାଆନ୍ତି,ପ୍ରତିପଦ୍ ଓ ନବମୀ ତିଥି ।

ପୂର୍ବରଙ୍ଗ—ପୁଂ. ବି. ( ପୂର୍ବ+ରଙ୍ଗ ) ନାଟ୍ୟୋପକ୍ରମ,ପ୍ରସ୍ତାବନା,ପ୍ରାକ୍‌ସଙ୍ଗୀତ, ନାଟ୍ୟଶାଳା ।

ପୂର୍ବରାଗ—ପୁଂ, ବି. ନାୟକ ଓ ନାୟିକାର ମିଳନହେତୁ ପୂର୍ବଜାତ ଅନୁରାଗ ବିଶେଷ, ପ୍ରଥମାନୁରାଗ ।

ପୂର୍ବରାତ୍ର—ବି. (ପୂର୍ବ+ରାତ୍ରି) ରାତ୍ରିର ପୂର୍ବଭାଗ, ରାତ୍ରିର ପ୍ରଥମଭାଗ ।

ପୂର୍ବରୂପ—କ୍ଲୀ. ବି. (ପୂର୍ବ+ରୂପ)କ.ଧା; ପୂର୍ବଲକ୍ଷଣ,ଭାବିବ୍ୟାଧି ବୋଧକ ଚିହ୍ନ ।

ପୂର୍ବଲକ୍ଷଣ—ବି, (ପୂର୍ବ+ଲକ୍ଷଣ) ପୂର୍ବଚିହ୍ନ, ଭାବିପଦାର୍ଥର ପ୍ରଥମ ଚିହ୍ନ ।

ପୂର୍ବବଙ୍ଗ—ବି. ବଙ୍ଗଦେଶର ପୂର୍ବାଂଶ ।

ପୂର୍ବବତ୍—ଅବ୍ୟ. ଆଗପରି, ପୂର୍ବୋକ୍ତ ପ୍ରକାରେ, ପୂର୍ବେ ଯେଉଁପରି ଥିଲା ସେହିପରି, କାରଣ ଦ୍ୱାରା କାର୍ଯ୍ୟର ଅନୁମାନ ।

ପୂର୍ବବୟଃ—ବିଂ, ବାଲ୍ୟାବସ୍ଥାଯୁକ୍ତ, (ବି) ବାଲ୍ୟାବସ୍ଥା, ପୂର୍ବାବସ୍ଥା ।

ପୂର୍ବବୟସ—କ୍ଲୀ. ବି, (କ.ଧା) ବାଲ୍ୟବୟସ, ବାଲ୍ୟକାଳ ।

ପୂର୍ବବର୍ତ୍ତୀ—ବିଂ. (ପୂର୍ବ+ବୃତ୍+ଇନ୍) ଅଗ୍ରଗାମୀ,ଅଗ୍ରସର, ପୂର୍ବଦିଗରେ ସ୍ଥିତ, ଏଥିପୂର୍ବେ ଘଟିଥିବା, (ସ୍ତ୍ରୀ) ବର୍ତ୍ତିନୀ ।

ପୂର୍ବବାଦ—ପୁଂ. ବି. ପ୍ରଥମେ ଉଚ୍ଚାରିତ ବାକ୍ୟ, ରାଜାଙ୍କ ସମୀପରେ ପ୍ରଥମେ ଆବେଦନ, ପ୍ରଥମ ଏତଲାଇ, ପ୍ରଥମେ ନାଲିଶ ।

ପୂର୍ବବାଦୀ—ପୁଂ. ବିଂ. ପ୍ରାଗଭିଯୋକ୍ତା, ପ୍ରଥମ ବିବାଦୀ, ବାଦୀ, ମୁଦେଇ ।

ପୂର୍ବବାୟୁ—ପୁଂ. ବି. ପୂର୍ବଦିଗରୁ ଉତ୍ଥିତ ବାୟୁ ପୂର୍ବେଇ ପବନ ।

ପୂର୍ବବିଦ୍—ବିଂ. (ପୂର୍ବ+ବିଦ୍+କ୍ୱିପ୍) ପୂର୍ବବୃତ୍ତାନ୍ତବେତ୍ତା, ଯେ ପୂର୍ବବୃତ୍ତାନ୍ତ ଅବଗତ ହୋଇଅଛି ।

ପୂର୍ବବୃତ୍ତ—କ୍ଲୀ. ବି. (କ.ଧା) ପୁରାବୃତ୍ତ, ଇତିହାସ ।

ପୂର୍ବଶାରଦ—ବିଂ, ଶରତ୍ ଋତୁର ପୂର୍ବଭବ,ଯାହା ଶରତ୍‌ଋତୁର ପୂର୍ବେ ହୁଏ ।

ପୂର୍ବଶୈଳ—ପୁଂ. ବି. (ପୂର୍ବ+ଶୈଳ)

ଉଦୟାଚଳ,ଉଦୟ ପର୍ବତ ।
ପୂର୍ବଷୋଡ଼ଶ—ବି. ଅନ୍ତ୍ୟେଷ୍ଟି କ୍ରିୟାର ପ୍ରଥମଦିବସ ଠାରୁ ଦଶମଦିବସ ପର୍ଯ୍ୟନ୍ତ ଅନୁଷ୍ଠିତ କର୍ମ ।
ପୂର୍ବସଂସ୍କାର—ବି. ପୂର୍ବଜନ୍ମାର୍ଜିତ ପ୍ରକୃତ ବା ଧାରଣା,ପ୍ରଥମେ ମନୁଷ୍ୟର ମନରେ ହୋଇଥିବା ଧାରଣା ।
ପୂର୍ବସଦ୍—ବିଂ. ( ପୂର୍ବ+ସଦ୍+କ୍ୱିପ୍ ) ସମ୍ମୁଖେ ଉପବିଷ୍ଟ ।
ପୂର୍ବସନ୍ଧ୍ୟା—ସ୍ତ୍ରୀ. ବି. ପ୍ରାତଃକାଳ, ପୂର୍ବଦିନର ସନ୍ଧ୍ୟା, ସନ୍ଧ୍ୟାର ପୂର୍ବସମୟ ।
ପୂର୍ବସମୁଦ୍ର—ପୁଂ. ବି. ପୂର୍ବବର୍ତ୍ତୀ ସମୁଦ୍ର, ପୂର୍ବ ସାଗର ।
ପୂର୍ବସର—ବିଂ. (ପୂର୍ବ+ସୃ+ଅ) ଅଗ୍ରଗାମୀ, ଅଗ୍ରସର ।
ପୂର୍ବସାଗର—ପୁଂ.ବି. ପୂର୍ବସମୁଦ୍ରଦେଖ ।
ପୂର୍ବସାରୀ—ପୁଂ.ବିଂ.(ପୂର୍ବ+ସୃ+ଇନ୍) ପୂର୍ବଗାମୀ ।
ପୂର୍ବସ୍ଥ—ବିଂ. (ପୂର୍ବ+ସ୍ଥା+ଅ) ପୂର୍ବସ୍ଥିତ ।
ପୂର୍ବା—ସ୍ତ୍ରୀ. ବି. (ପୂର୍ବ+ଆ) ପୂର୍ବଦିଗ, ପୂର୍ବାଫାଲ୍ଗୁନୀ ନକ୍ଷତ୍ର. ( ବିଂ ) ପ୍ରଥମା, ପୂର୍ବକାଳୀନା, ପୂର୍ବଦିଗସ୍ଥିତା ।
ପୂର୍ବାଚରିତ—ବିଂ. ( ପୂର୍ବ+ଆଚରିତ ) ପୂର୍ବକୃତ, ପ୍ରଥମେ କରାଯାଇଥିବା ।
ପୂର୍ବାଚଳ—ପୁଂ. ବି. (କ.ଧା) ପୂର୍ବାଦ୍ରି, ଉଦୟାଚଳ ।
ପୂର୍ବାଦ୍ରି—ପୁଂ.ବି. (କ.ଧା) ଉଦୟାଚଳ ।
ପୂର୍ବାନିଳ—ପୁଂ. ବି. (କ.ଧା) ପୂର୍ବଦିଗର ବାୟୁ, ପୂବେଇ ପବନ ।
ପୂର୍ବାନୁକ୍ରମ—ଗ୍ରା. ବି. ପୂର୍ବେ ପ୍ରକାଶିତ, ପ୍ରବନ୍ଧର ପରବର୍ତ୍ତୀ ଅଂଶର ବିବୃତ୍ତି ।
ପୂର୍ବାନୁଯୋଗ—ପୁଂ. ବି. ଦୃଷ୍ଟିବାଦବିଶେଷ, (ଯଥା—ପ୍ରତିକର୍ମ, ସୂତ୍ର, ପର୍ବାନୁଯୋଗ, ପୂର୍ବଗତ ଓ ଚୂଳିକା ।
ପୂର୍ବାନୁରାଗ—ବି. (କ.ଧା) ପ୍ରେମର ପ୍ରଥମ ସଞ୍ଚାର, ପୂର୍ବରାଗ ।
ପୂର୍ବାପର—ବି. ( ପୂର୍ବ+ଅପର, ଦ୍ୱନ୍ଦ୍ୱ ) ଆରମ୍ଭ ଓ ଶେଷ, ପୂର୍ବ ଓ ପଶ୍ଚିମ,ଆନୁପୂର୍ବ୍ୟ, ଆଗ ଓ ପଛ, (ବିଂ) ଆନୁପୂର୍ବିକ, ଧାରାବାହିକ, ଆଗିଲା ଓ ପିଛିଲା, ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ, (କ୍ରି.ବିଂ) ମୂଳଠାରୁ ଶେଷପର୍ଯ୍ୟନ୍ତ,ଆନୁପୂର୍ବିକରୂପେ ।
ପୂର୍ବାପରସମ୍ବନ୍ଧ—ବି. କିଏ ଆଗ କିଏ ପଛ ଏବଂଭୂତ ସମ୍ପର୍କ ।
ପୂର୍ବାପର୍ଯ୍ୟ—କ୍ଲୀ. ବି. ପୂର୍ବାପର ଭାବ, ପୌର୍ବାପର୍ଯ୍ୟ ।
ପୂର୍ବାପୂର୍ବୀ—ଗ୍ରା.ଅବ୍ୟ.ବହୁକାଳରୁ (ଘଟିଆସୁଥିବା) ବହୁକାଳରୁ, ଧାରାବାହିକରୂପେ ।
ପୂର୍ବାପେକ୍ଷା—ବି. ପୂର୍ବବିଷୟ ବା ପ୍ରସଙ୍ଗ ପ୍ରତି ଦୃଷ୍ଟି, (ଗ୍ରା, କ୍ରି. ବିଂ) ପୂର୍ବଠାରୁ, ପୂର୍ବଅପେକ୍ଷା,ପୂର୍ବବିଷୟ ସଙ୍ଗେ ତୁଳନା କରାଯିବାରେ ।
ପୂର୍ବାବଧି—କ୍ରି. ବିଂ. ( ପୂର୍ବ+ଅବଧି ) ପୂର୍ବକାଳଠାରୁ, ଆଗରୁ, ଆଦ୍ୟରୁ, ପ୍ରଥମରୁ ।
ପୂର୍ବାବସ୍ଥା—ବି. ଆଗକାଳର ଅବସ୍ଥା ।
ପୂର୍ବାଭାସ—ବି.(ପୂର୍ବ+ଆଭାସ)କୌଣସି ବିଷୟ ଘଟିବାର ପୂର୍ବସୂଚନା ।
ପୂର୍ବାଭିଭାଷୀ—ପୁଂ. ବି. (ପୂର୍ବ+ଅଭି+ଭାଷ+ଇନ୍) ପୂର୍ବବକ୍ତା, ପୂର୍ବାଭିଭାଷଣଶୀଳ ।
ପୂର୍ବାଭ୍ୟାସ—ବି. ( ପୂର୍ବ+ଅଭ୍ୟାସ ) ପୂର୍ବଜନ୍ମରେ ଗଠିତ ହୋଇଥିବା ଅଭ୍ୟାସ,ଆଗକାଳର ଅଭ୍ୟାସ,ପୂର୍ବପ୍ରଥା ।
ପୂର୍ବାମ୍ବୁଧି—ପୁଂ. ବି.(କ.ଧା)ପୂର୍ବସମୁଦ୍ର ।
ପୂର୍ବାରାମ—କ୍ଲୀ. ବି. ବୌଦ୍ଧସଙ୍ଘାରାମବିଶେଷ ।
ପୂର୍ବାର୍ଜିତ—ବିଂ. ପ୍ରଥମାର୍ଜିତ, ପୂର୍ବେ ଯାହା ଅର୍ଜନ କରାଯାଇ ଅଛି, ପୂର୍ବଜନ୍ମାର୍ଜିତ, ପୂର୍ବଜନ୍ମ କାର୍ଯ୍ୟର ଫଳ ସ୍ୱରୂପ ।
ପୂର୍ବାର୍ଦ୍ଧ—ପୁଂ. ବି. ପ୍ରଥମାର୍ଦ୍ଧ,କୌଣସି ବିଷୟର ବା ସମୟର ବା ବସ୍ତୁର ପହିଲ ଅଧିକ, ଦୁଇଭାଗ ବିଶିଷ୍ଟ ଗ୍ରନ୍ଥର ପ୍ରଥମଭାଗ, ଦେହର ନାଭିର ଉପରସ୍ଥିତ ଅଂଶ, ପଶୁଦେହର ଆଗଅଂଶ,(ଗ୍ରା.ବି) ପୂର୍ବଗୋଲାର୍ଦ୍ଧ, ଭୂଗୋଲକର ପୂର୍ବ ପାଖରେ ଅବସ୍ଥିତ ସ୍ଥାନ ।
ପୂର୍ବାର୍ଦ୍ଧକାୟ—ପୁଂ.ବି.ଦେହର ପୂର୍ବାର୍ଦ୍ଧ ବା ସମ୍ମୁଖଭାଗ, ନାଭିର ଉପରସ୍ଥିତ ଅଂଶ ।
ପୂର୍ବାର୍ଦ୍ଧ୍ୟ— ବିଂ. ( ପୂର୍ବାର୍ଦ୍ଧ+ଯ ) ପୂର୍ବାର୍ଦ୍ଧଭବ, ଯାହା ପୂର୍ବାର୍ଦ୍ଧରେ ହୁଏ ।
ପୂର୍ବାଲାପ—ବି.କୌଣସି କାର୍ଯ୍ୟସମ୍ବନ୍ଧେ ପୂର୍ବରୁ କରାଯିବା କଥାବାର୍ତ୍ତା ।
ପୂର୍ବାବେଦକ—ପୁଂ.ବି,ପ୍ରଥମେ ଆବେଦନକାରୀ, ବାଦୀ.ମୁଦେଇ । [ ପ୍ରାଚୀ ।
ପୂର୍ବାଶା—ବି. (ପୂର୍ବ+ଆଶା)ପୂର୍ବଦିଗ,
ପୂର୍ବାଶୀ—ବିଂ. (ପୂର୍ବ+ଅଶ୍+ଇନ୍) ପୂର୍ବେ ଭୋଜନକାରୀ,ଯେ ଆଗେ ଖାଇଅଛି ।
ପୂର୍ବାଷାଢ଼ା—ସ୍ତ୍ରୀ. ବି.(ପୂର୍ବ+ଆଷାଢ଼ା) ଅଶ୍ୱିନୀ ପ୍ରଭୃତି ୨୭ନକ୍ଷତ୍ରାନ୍ତର୍ଗତ ବିଂଶ ନକ୍ଷତ୍ର ।
ପୂର୍ବାହ୍ନ—ବି(ପୂର୍ବ+ଅହନ୍+ଅ)ତତ୍ପୁ, ଦ୍ୱିଧାବିଭକ୍ତ ଦିବସର ପ୍ରଥମଭାଗ,ଦ୍ୱିଧାବିଭକ୍ତ ଦିନର ପୂର୍ବଭାଗ, ଦିନର ତିନି ଭାଗରୁ ପ୍ରଥମ ଭାଗ ।
ପୂର୍ବାହ୍ନକ-ପୁଂ.ବିଂ.ପୂର୍ବାହ୍ନଜାତ, ପୂର୍ବାହ୍ନ ସମ୍ବନ୍ଧୀୟ, ପୂର୍ବାହ୍ନରେ କରଣୀୟ,(ବି) ପୂର୍ବାହ୍ନ ଦେଖ ।
ପୂର୍ବାହ୍ନିକ—ବିଂ(ପୂର୍ବାହ୍ନ+ଇକ)ପୂର୍ବାହ୍ନ ସମ୍ବନ୍ଧୀୟ, ପୂର୍ବାହ୍ନ ସାଧ୍ୟ, ପୂର୍ବାହ୍ନରେ ଯାହା କରାଯାଏ, ପୂର୍ବାହ୍ନରେ କର୍ତ୍ତବ୍ୟ, (ବି) ପୂର୍ବାହ୍ନରେ କୃତ୍ୟ କର୍ମ ।
ପୂର୍ବିକ—ବିଂ. ଯାହା ପୂର୍ବେ କରାହୋଇଅଛି, ପୂର୍ବେ ଆମନ୍ତ୍ରିତ, ପୂର୍ବକ ।
ପୂର୍ବୀୟ—ବିଂ. (ପୂର୍ବ+ଈୟ) ପୂର୍ବଦିଗସମ୍ବନ୍ଧୀୟ, ପୂବେଇ, ଅତୀତକାଳସମ୍ବନ୍ଧୀୟ ।
ପୂର୍ବେ—ଗ୍ରା.ଅବ୍ୟ. ଆଗେ ପୂର୍ବରେ,ପୂର୍ବକାଳରେ, ପ୍ରାଚୀନ କାଳରେ, ସର୍ବପ୍ରଥମେ, ପୂର୍ବଦିଗରେ ।
ପୂର୍ବେଣ-ଅବ୍ୟ.ପୂର୍ବଦିଗରେ ବା ଦେଶରେ ବା କାଳରେ ।
ପୂର୍ବେତର—ବିଂ. ପୂର୍ବଭିନ୍ନ, ପଶ୍ଚିମ ।

ପୂର୍ବେଦ୍ୟୁଃ—ଅବ୍ୟ.(ପୂର୍ବ+ଏଦ୍ୟୁଃ)ପୂର୍ବଦିନ, ପ୍ରାତଃକାଳ, ଧର୍ମବାସର ।

ପୂର୍ବୋକ୍ତ—ବିଂ.(ପୂର୍ବ + ଉକ୍ତ) ପୂର୍ବକଥିତ, ଯାହା ପ୍ରଥମରେ ବୋଲି ଯାଇଅଛି, ପ୍ରାଗୁକ୍ତ ।

ପୂର୍ବୋତ୍ତର—ବି.(ପୂର୍ବ+ଉତ୍ତର) ପୂର୍ବ ଓ ଉତ୍ତର ଦିଗ ମଧ୍ୟବର୍ତ୍ତୀ କୋଣ,ଈଶାନ କୋଣ ।

ପୂର୍ବୋତ୍ତରା—ସ୍ତ୍ରୀ. ବି. ପୂର୍ବ ଓ ଉତ୍ତରର ମଧ୍ୟବର୍ତ୍ତୀ କୋଣ, ଈଶାନ କୋଣ ।

ପୂର୍ବୋତ୍ପନ୍ନ—ବିଂ. ପୂର୍ବକାଳେ ଉତ୍ପନ୍ନ ।

ପୂର୍ବୋଦିତ—ବିଂ. (ପୂର୍ବ+ଉଦିତ) ପୂର୍ବଦିଗରେ ଉଠିଥିବା,ପୂର୍ବୋକ୍ତ,ପୂର୍ବକଥିତ

ପୂର୍ବୋଲ୍ଲିଖିତ—ବିଂ.(ପୂର୍ବ+ଉଲ୍ଲିଖିତ)ଅନ୍ୟଠାରୁ ସଂଗୃହୀତ ଏଥିପୂର୍ବରୁ ଲେଖାଯାଇଥିବା (ବିଷୟ),ଆଗରୁ ସଂଗୃହୀତ ।

ପୂଳ—ବି. (ପୂଳ+ଅଧି.ଅ) ପୂଳପିଠା, ପାଦବିଶେଷ, ସନ୍ଦେହ ।

ପୂଳକ—ବି.( ପୂଳା+ମି.ଅକ)ପୋଟଳା, ପୁଡ଼ା, ପୂଳପିଠା, ଧାନ୍ୟ ତୃଣାଦିର ମୁଷ୍ଟି, କଷ୍ଟିପୋଥ ।

ପୂଳକା(ପୂଳୀ)—ବି.(ପୂଳ+ମି.ଇକ+ଆ+ଈ)ପୂଳପିଠ,ଘିଅରେ ପୁଆ ହୋଇଥିବା ପିଠା,ବାଷ୍ପସିଦ୍ଧ ପିଠା,ମୁହାଁ,ଏଣ୍ଡୁରି

ପୂଷ—ବି.(ପୂଷ+କ.ଅ) ବ୍ରହ୍ମଦାରୁବୃକ୍ଷ, ତୁନ୍ତଗଛ, ପୌଷମାସ ।

ପୂଷକ—ବି.(ପୂଷ + ଅକ)ବ୍ରହ୍ମଦାରୁବୃକ୍ଷ, ତୁନ୍ତଗଛ, ତୁନ୍ତଫଳ ।

ପୂଷଣ —ବି. ( ପୂଷ + କ.ଅନ ) ସୂର୍ଯ୍ୟ, ଦ୍ୱାଦଶଆଦିତ୍ୟଙ୍କ ମଧ୍ୟରୁ ଏକ ।

ପୂଷଭାଷା—ସ୍ତ୍ରୀ.ବି.ଇନ୍ଦ୍ରନଗରୀ,ସୁରପୁରୀ ।

ପୂଷା—ସ୍ତ୍ରୀ. ବି. (ପୂଷ+ଅ+ଆ)ପୃଥିବୀ, ଶରୀରସ୍ଥ ଦଶ ନାଡ଼ୀ ମଧ୍ୟରୁ ଗୋଟିଏ ନାଡ଼ୀ, (ପୁଂ.ବି) ସୂର୍ଯ୍ୟ ।

ପୂଷାତ୍ମଜ—ପୁଂ. ବି. ( ପୂଷା + ଆତ୍ମଜ ) ମେଘ, ଇନ୍ଦ୍ର ।

ପୂଷାସୁହୃତ୍—ପୁଂ.ବି.(ପୂଷା +ଅସୁହୃତ୍) ଶିବ, (ସେ ଦକ୍ଷ ଯଜ୍ଞ କାଳରେ ସ୍ୱୀୟ ଅଂଶଜ ବୀରଭଦ୍ର ରୂପେ ସୂର୍ଯ୍ୟଙ୍କର ଦନ୍ତ ଉତ୍ପାଟନ କରିଥିଲେ, ଏଣୁ ତାଙ୍କ ନାମ ପୂଷାସୁହୃତ୍) ।

ପୃକ୍କା—ସ୍ତ୍ରୀ. ବି. (ସ୍ପୃଶ୍+କ+ଆ) ଶାକବିଶେଷ, ପିଡ଼ଙ୍ଗଶାଗ, ଲତାକସ୍ତୁରୀ ।

ପୃକ୍ତ—କ୍ଲୀ. ବି. (ପୃଚ୍+ତ) ଧନ, (ବିଂ) ସମ୍ପର୍କଯୁକ୍ତ, ମିଶ୍ରିତ, ଯୁକ୍ତ, ସଂଲଗ୍ନ ।

ପୃକ୍ତି—ସ୍ତ୍ରୀ.ବି.(ପୃଚ୍+ତି)ସମ୍ପର୍କ,ମିଶ୍ରଣ, ସଂସ୍ପର୍ଶ, ସଂଯୋଗ ।

ପୃକ୍ଥ—କ୍ଲୀ. ବି. ଧନ, ସମ୍ପତ୍ତି ।

ପୃକ୍ଷ—ବି. ଅନ୍ନ, ତଣ୍ଡୁଳଲକ୍ଷଣାନ୍ନ ।

ପୃଚ୍ଛକ—ବିଂ.(ପ୍ରଚ୍ଛ୍ + କ.ଅକ) ଜିଜ୍ଞାସାକାରୀ, ଅନୁସନ୍ଧିତ୍ସୁ, ଅନୁସନ୍ଧାନକାରୀ ।

ପୃଚ୍ଛଣ(ନ,ନା )—ବି. (ପ୍ରଚ୍ଛ +ଭା.ଅନ + ଆ) ପଚାରିବା, ଅନୁସନ୍ଧାନ ।

ପୃଚ୍ଛା—ବି.(ପ୍ରଚ୍ଛ୍+ଆ)ପ୍ରଶ୍ନ, ପଚାରିବା, ଜିଜ୍ଞାସା ।

ପୃତନା—ବି.(ପୃତନ+ଆ)ଯୁଦ୍ଧ,ସୈନ୍ୟ, ସଂଗ୍ରାମ, ମନୁଷ୍ୟ, ବାହିନୀବିଶେଷ (ଯେଉଁ ସୈନ୍ୟ ଦଳରେ ୨୪୩ ଟକାରୋହୀ, ୨୪୩ ରଥାରୋହୀ, ୭୨୯ ଅଶ୍ୱାରୋହୀ, ୧୨୧୫ ପଦାତି, ମୋଟ ୨୪୦୦ଜଣ ସିପାହି) ।

ପୃତନାନୀ—ସ୍ତ୍ରୀ. ବି. ( ପୃତନା + ନୀ ) ସେନାନୀ, ସେନାପତି ।

ପୃତନାପତି—ପୁଂ. ବି. ସେନାପତି ।

ପୃତନାଷାଟ୍—ପୁଂ. ବି. ଇନ୍ଦ୍ର ।

ପୃତନ୍ୟା—ବି. ସେନା ।

ପୃତନ୍ୟୁ—ବିଂ. ଯୁଦ୍ଧାଭିଳାଷୀ ।

ପୃଥକ୍—ଅବ୍ୟ. (ପୃଥ୍+ମି.ଅକ୍) ଭିନ୍ନ, ଛଡ଼ା, ଅଲଗା, ସ୍ୱତନ୍ତ୍ର, ବିନା, ବର୍ଜନ, ଇତର, ନାତ, ନାନା, (ବିଂ) ଭିନ୍ନ ସ୍ୱତନ୍ତ୍ର, ଅନ୍ୟ,(କ୍ରି.ବିଂ)ସ୍ୱତନ୍ତ୍ରରୂପେ ।

ପୃଥକ୍କରଣ—କ୍ଲୀ.ବି.ଭିନ୍ନକରଣ, ଅଲଗା କରିବା କାର୍ଯ୍ୟ । [ କାମ ।

ପୃଥକ୍କାର୍ଯ୍ୟ—କ୍ଲୀ,ବି.ଭିନ୍ନକାର୍ଯ୍ୟ,ଅଲଗା

ପୃଥକ୍କ୍ରିୟା—ବି. ପୃଥକ୍ ପୃଥକ୍ କ୍ରିୟା, ଭିନ୍ନକର୍ମ, ପୃଥକ୍ କାର୍ଯ୍ୟ ।

ପୃଥକ୍କ୍ଷେତ୍ର—ବି.ଏକ ପିତା ଔରସରେ ବିଭିନ୍ନ ମାତାଙ୍କଠାରୁ ଜାତ ସନ୍ତାନଗଣ, ବୈମାତ୍ରେୟ ଭ୍ରାତୃଗଣ ।

ପୃଥକ୍ତା(ତ୍ୱ)—ବି. ପାର୍ଥକ୍ୟ, ପ୍ରଭେଦ, ସ୍ୱାତନ୍ତ୍ର୍ୟ, ଅଲଗା ଅଲଗା ହେବା ଅବସ୍ଥା,ନାନାଭାବ,ଅନେକତା,(ବୈଶେଷିକ ଦର୍ଶନ) ଭେଦ ବୁଦ୍ଧି ପ୍ରତିପାଦକ ଗୁଣବିଶେଷ । [ ମୂର୍ବା ।

ପୃଥକ୍ତ୍ୱଚା—ବି. (ପୃଥକ୍+ତ୍ୱଚ+ଆ)

ପୃଥକ୍ପର୍ଣ୍ଣୀ—ସ୍ତ୍ରୀ.ବି. କ୍ଷୁଦ୍ର ବୃକ୍ଷବିଶେଷ, ପୃଶ୍ନିପର୍ଣ୍ଣୀ ଦେଖ ।

ପୃଥକ୍ପିଣ୍ଡ—ବି.(ବ.ବ୍ରୀ)ଅସପିଣ୍ଡ, ଯେଉଁ ବ୍ୟକ୍ତିଙ୍କୁ ପିଣ୍ଡ ଦିଆଯାଇ ପାରିବ ନାହିଁ, ଯେଉଁ ବ୍ୟକ୍ତିର ମୃତକାଶୌଚ ବନ୍ଧୁ ପୁରୁଷ ହୋଇ ଯିବାରୁ ଜ୍ଞାତିମାନେ ପାଳନ୍ତି ନାହିଁ ।

ପୃଥକ୍ପୃଥକ୍—ଅବ୍ୟ.ସ୍ୱତନ୍ତ୍ର ରୂପେ, ଭିନ୍ନଭିନ୍ନ ହୋଇ,ଅଲଗା ଅଲଗା ହୋଇ ।

ପୃଥକ—ଗ୍ରା.ବିଂ.ପୃଥକ୍, ପୃଥଗନ୍ନ,ପୃଥଗ୍ବାସ ଦେଖ ।

ପୃଥକ୍କରଣ—ବି(ପୃଥକ୍+ଚ୍ୱି+କରଣ) ମିଳିତ ବସ୍ତୁକୁ ଭିନ୍ନଭିନ୍ନ କରିବା,ବିଚ୍ଛିନ୍ନ କରିବା । [ ବିଚ୍ଛିନ୍ନ ।

ପୃଥକ୍କୃତ—ବିଂ.(ପୃଥକ୍+ଚ୍ୱି+କୃତ)

ପୃଥଗନ୍ନ—ବିଂ. (ବ.ବ୍ରୀ) ହାଣ୍ଡି ଅଲଗା କରିଥିବା, ଅଲଗା ରୋଷେଇ କରି ଖାଉଥିବା(ଏକପରିବାରର ବ୍ୟକ୍ତିଗଣ), ଯେ ଏକାନ୍ନବର୍ତ୍ତୀ ନୁହନ୍ତି, (ବି) ଏକାଧିକ ବ୍ୟକ୍ତି ନିଜନିଜର ପୃଥକ୍ ରୋଷେଇ କରି ଖାଇବାର ବ୍ୟବସ୍ଥା ।

ପୃଥଗନ୍ନବର୍ତ୍ତୀ—ବିଂ. ଅଲଗା ରୋଷେଇ କରି ବାସ କରୁଥିବା ।

ପୃଥଗନ୍ନବାସ—ବିଂ. ପୃଥଗନ୍ନ ଓ ପୃଥକ୍ବାସ, ହାଣ୍ଡି ଓ ଘର ଅଲଗା କରି ନେଇ ବାସ କରୁଥିବା(ଏକ ପରିବାରସ୍ଥ ବ୍ୟକ୍ତିଗଣ) ।

ପୃଥଗାତ୍ମତା—ବି. ବିବେକ, ବିରକ୍ତତା, ଇତରବିଶେଷ,ଭେଦବିଶେଷ,ସ୍ୱାତନ୍ତ୍ର୍ୟ ।

ପୃଥଗାତ୍ମା—ବି. ପରମାତ୍ମାଠାରୁ ପୃଥକ୍କୃତ ଆତ୍ମା ( ବିଂ ) ସ୍ୱତନ୍ତ୍ରତାବିଶିଷ୍ଟ, ଭିନ୍ନସ୍ୱଭାବବିଶିଷ୍ଟ ।

ପୃଥଗ୍ଗୁଣ – ବି.(କ.ଧା)ବିଭିନ୍ନ ଗୁଣ,(ବିଂ) ପୃଥକ୍ ପୃଥକ୍ ଗୁଣବିଶିଷ୍ଟ, ବିଭିନ୍ନ ଗୁଣ ବିଶିଷ୍ଟ ।

ପୃଥଗ୍ଜନ—ବି. (କ.ଧା) ମୂର୍ଖଲୋକ, ନୀଚ ବ୍ୟକ୍ତି, ଇତର ଲୋକ, ବାଜେ ଲୋକ, ପାପୀ ବ୍ୟକ୍ତି, ପାମର ଜନ ।

ପୃଥଗ୍ବାସ—ବିଂ. ପୃଥକ୍ ପୃଥକ୍ ଘରେ ରହୁଥିବା, ଭିନ୍ନେ ହୋଇଥିବା (ଏକ-ପରିବାରସ୍ଥ ବ୍ୟକ୍ତି) ।

ପୃଥଗ୍ବିଧ—ବିଂ.(ବ.ବ୍ରୀ)ଭିନ୍ନପ୍ରକାରର, ନାନାପ୍ରକାରର,ନାନାରୂପ,ନାନାବିଧ ।

ପୃଥଗ୍ବୀଜ—ବି.(ବ.ବ୍ରୀ) ଭଲ୍ଲାତକବୃକ୍ଷ, ଭାଲିଆ ।

ପୃଥଗ୍ଭାବ—ବି.(କ.ଧା) ପୃଥକତ୍ୱ,ସ୍ୱାତନ୍ତ୍ର୍ୟ, ବିଶେଷତ୍ୱ, ଭିନ୍ନମନୋଭାବ ।

ପୃଥଗ୍ଭୂତ—ବିଂ. ସ୍ୱତନ୍ତ୍ରୀକୃତ, ଯାହା ପୃଥକ୍ ହୋଇଅଛି ।

ପୃଥଗ୍ବୀ—ସ୍ତ୍ରୀ.ବି.(ପ୍ରଥ+ଵୀ)ପୃଥିବୀ,ଧରା ।

ପୃଥା—ସ୍ତ୍ରୀ. ବି. (ପଥ+ଥ+ଆ)କୁନ୍ତି-ଭୋଜକନ୍ୟା,କୁନ୍ତୀ,ପାଣ୍ଡୁ ରାଜାଙ୍କ ପତ୍ନୀ

ପୃଥାଜ—ପୁଂ. ବି. (ପୃଥା+ଜନ୍+ଅ) କୁନ୍ତୀପୁତ୍ର ଯୁଧିଷ୍ଠିରାଦି, ଅର୍ଜୁନବୃକ୍ଷ ।

ପୃଥାପତି—ପୁଂ.ବି.(୬ତତ୍ପୁ)ପାଣ୍ଡୁରାଜା ।

ପୃଥିକା—ସ୍ତ୍ରୀ. ବି. ଶତପଦୀ କୀଟ ।

ପୃଥିବୀ—ସ୍ତ୍ରୀ. ବି. ( ପ୍ରଥ + ଇ + ଈ ) ମନୁଷ୍ୟାଦିର ଅଧିଷ୍ଠାନଭୂତ, ମନୁଷ୍ୟପ୍ରଭୃତି ଯାବତୀୟର ଆଧାର ସ୍ୱରୂପ,ଭୂ, ଭୂମି, ଧରଣୀ, କ୍ଷିତି, ବସୁମତୀ ଇତ୍ୟାଦି ।

ପୃଥିବୀକ୍ଷିତ୍—ପୁଂ. ବି. (ପୃଥିବୀ+କ୍ଷି+ +କ୍ୱିପ୍) ପୃଥିବୀପତି, ରାଜା ।

ପୃଥିବୀଚନ୍ଦ୍ର—ପୁଂ. ବି. ରାଜା ।

ପୃଥିବୀତଳ—ବି. ( ୬ତତ୍ପୁ ) ଧରାତଳ, ପୃଥିବୀର ଉପରଭାଗ ।

ପୃଥିବୀପତି—ପୁଂ. ବି. (୬ତତ୍ପୁ) ରାଜା, ଯମ, ସମ୍ରାଟ୍, ଋଷଭନାମୌଷଧି ।

ପୃଥିବୀପାଳ—ପୁଂ.ବି. (ପୃଥିବୀ + ପାଳ) ରାଜା ।

ପୃଥିବୀଭୁକ୍—ପୁଂ. ବି. ଭୂପାଳ,ରାଜା ।

ପୃଥିବୀମଣ୍ଡ—ବି. ପୃଥିବୀର କର୍ଦ୍ଦମ,ମଳ ।

ପୃଥିବୀମଣ୍ଡଳ—ବି. ମହୀତଳ, ଭୂମଣ୍ଡଳ, ସମଗ୍ର ପୃଥିବୀ, ଭୂଗୋଳ ।

ପୃଥିବୀମୟ—ବିଂ. ମୃଣ୍ମୟ, ମୃତ୍ତିକାଯୁକ୍ତ ।

ପୃଥିବୀରୁହ—ବି. (ପୃଥିବୀ+ରୁହ) ଭୂମି-ରୁହ, ବୃକ୍ଷ, ଉଦ୍ଭିଦ ଜଗତ୍ ।

ପୃଥିବୀଲୋକ—ପୁଂ. ବି. ଭୂଲୋକ ।

ପୃଥିବୀଶ—ପୁଂ. ବି. ରାଜା, ସମ୍ରାଟ୍ ।

ପୃଥିବୀଶ୍ୱର—ପୁଂ. ବି. ପୃଥିବୀର ଅଧି-ପତି, ରାଜା, ସମ୍ରାଟ୍ । [ କରେ ।

ପୃଥିବୀସ୍ଥ—ବିଂ. ଯେ ପୃଥିବୀରେ ବାସ-

ପୃଥୁ—ବି. ( ପ୍ରଥ୍+ଉ ) ତ୍ରେତାଯୁଗର ସୂର୍ଯ୍ୟବଂଶୀୟ ୫ମ ରାଜା, ମହାଦେବ, ଅଗ୍ନି,କୃଷ୍ଣଜୀରକ,ହିଙ୍ଗୁପତ୍ରୀ, ଅହିଫେନ ଅଫିମ, ନାଲିଶପତ୍ରୀ ଘାସ,(ବିଂ) ସ୍ଥୂଳ, ମୋଟା, ବହୁଦୂର ବିସ୍ତୃତ, ବିଶାଳ, ମହତ୍, ବଡ, ନିପୁଣ, ଚତୁର,ପ୍ରଚୁର, ଅସଂଖ୍ୟ, ପ୍ରଧାନ ।

ପୃଥୁକ—ପୁଂ. ବିଂ. (ପ୍ରଥ+ଉକ)ଚିପି-ଟକ,ଚୁଡ଼ା,ବାଳକ,ହିଙ୍ଗୁପତ୍ରୀ,ବାଳିକା, ପ୍ରାଣି ଶିଶୁ, ଶାବକ, ଛୁଆ ।

ପୃଥୁକା—ସ୍ତ୍ରୀ. ବି. ହିଙ୍ଗୁପର୍ଣ୍ଣୀ, ହିଙ୍ଗୁପତ୍ରୀ, ନାଲିଶପତ୍ରୀ ଘାସ, ବାଳିକା ।

ପୃଥୁକୋଲ—ବି. ରାଜବଦର ।

ପୃଥୁଗ୍ରୀବ—ପୁଂ. ବିଂ. (ବ.ବ୍ରୀ) ଯାହାର ବେକ ମୋଟା, ମୋଟା ବେକ ଥିବା (ଲୋକ), ବିସ୍ତୀର୍ଣ୍ଣ ଗ୍ରୀବ ।

ପୃଥୁଚ୍ଛଦ—ପୁଂ.ବି.ହରିଦର୍ଭ,ଏକପ୍ରକାର ଘାସ, ହସ୍ତୀକନ୍ଦ, (ବିଂ) ବୃହତ୍ପତ୍ର ବିଶିଷ୍ଟ ।

ପୃଥୁତଣ୍ଡୁଳ—ବି. ଚୁଡ଼ା ବା ମୁଢ଼ି ।

ପୃଥୁତା—ବି. ସ୍ଥୂଳତ୍ୱ, ପୃଥୁର ଭାବ ବା ଧର୍ମ ।

ପୃଥୁଦର୍ଶୀ—ପୁଂ. ବିଂ. (ପୃଥୁ+ଦୃଶ୍+ ଇନ୍) ବହୁଦର୍ଶୀ ।

ପୃଥୁନିତମ୍ବ—ପୁଂ. ବିଂ. (ବ.ବ୍ରୀ) ବଡ଼ ବଡ଼ ପିଚୁଥିବା (ବ୍ୟକ୍ତି) ।

ପୃଥୁପତ୍ର—ବି, (ବ.ବ୍ରୀ) ନାଲିରସୁଣ, ହସ୍ତୀକନ୍ଦ, (ବିଂ) ବୃହତ୍ପତ୍ରଯୁକ୍ତ ।

ପୃଥୁପଲାଶିକା—ସ୍ତ୍ରୀ. ବି. (ବ.ବ୍ରୀ) ଶଟୀ, ପାଳୁଅଗଛ ।

ପୃଥୁପାଣି—ବିଂ. (ବ.ବ୍ରୀ) ବିପୁଳହସ୍ତ, ଆଜାନୁଲମ୍ବିତ ଭୁଜ ।

ପୃଥୁପ୍ରଥ—ବିଂ. (ବ.ବ୍ରୀ) ବିସ୍ତୃତକୀର୍ତ୍ତି, ଯାହାର କୀର୍ତ୍ତି ବ୍ୟାପ୍ତହୋଇଅଛି ।

ପୃଥୁପ୍ରୋଥ— ବିଂ. ଅଶ୍ୱସଦୃଶ ବିସ୍ତୃତ ନାସାରନ୍ଧ୍ର ବିଶିଷ୍ଟ ।

ପୃଥୁମୃଦ୍ୱୀକା—ସ୍ତ୍ରୀ.ବି. ଦୀର୍ଘଦ୍ରାକ୍ଷା, କିସ୍‌ମିସ୍

ପୃଥୁଯଶାଃ—ପୁଂ. ବିଂ. (ବ.ବ୍ରୀ) ବିପୁଳ ଯଶସ୍ୱୀ । [ ବିଶିଷ୍ଟ ।

ପୃଥୁରଶ୍ମି—ପୁଂ.ବିଂ.(ବ.ବ୍ରୀ)ବିସ୍ତୃତକିରଣ

ପୃଥୁରୋମା—ପୁଂ. ବି. ମତ୍ସ୍ୟ, ମିନରାଶି, (ବିଂ) ଘନଲୋମ ଯୁକ୍ତ, ବଡ଼ବଡ଼ କାତି ବିଶିଷ୍ଟ ।

ପୃଥୁଳ-ବିଂ(ପୃଥୁ+ଲ)ମହତ୍,ସ୍ଥୂଳ,ମୋଟା

ପୃଥୁଲାକ୍ଷ—ବିଂ. ବୃହତ୍ ନେତ୍ରଯୁକ୍ତ, ବିଶାଳନେତ୍ର, (ପୁଂ.ବି) ପୁରୁବଂଶୀୟ ଚତୁରଙ୍ଗଙ୍କ ପୁତ୍ରବିଶେଷ ।

ପୃଥୁବକ୍ତ୍ର—ପୁଂ. ବିଂ. (ବ.ବ୍ରୀ)ବଡ଼ମୁହାଁ, ଯାହାର ମୁହଁ ବଡ଼, ବୃହନ୍ମୁଖ ଯୁକ୍ତ ।

ପୃଥୁବେଗ—ବିଂ. (ବ.ବ୍ରୀ) ମହତ୍‌ବେଗ ଯୁକ୍ତ, (ବି-କ.ଧ) ପ୍ରବଳବେଗ ।

ପୃଥୁଶୃଙ୍ଗକ—ବି. ମେଷବିଶେଷ, ଦୁମ୍ବା ।

ପୃଥୁଶେଖର—ପୁଂ.ବିଂ.(ପୃଥୁ+ଶେଖର) ଉଚ୍ଚଶୃଙ୍ଗ ଯୁକ୍ତ, (ବି) ପର୍ବତ ।

ପୃଥୁଶ୍ରବାଃ-ବିଂ.(ବ.ବ୍ରୀ)ବୃହତ୍ କର୍ଣ୍ଣଯୁକ୍ତ, ବଡ଼ ବଡ଼ କାନଯୁକ୍ତ,(ବି)କୁମାରାନୁଚର-ବିଶେଷ, ଶଶବିନ୍ଦୁ ନୃପପୁତ୍ର ଭେଦ, ନବମମନୁଙ୍କର ପୁତ୍ରବିଶେଷ ।

ପୃଥୁଶ୍ରୋଣି-ବିଂ.(ବ.ବ୍ରୀ)ବିପୁଳନିତମ୍ବ ଯୁକ୍ତ

ପୃଥୁସ୍କନ୍ଧ— ବି.( ପୃଥୁ+ସ୍କନ୍ଧ ) ଶୂକର, ବରାହ,(ବିଂ ବ.ବ୍ରୀ ) ସ୍ଥୂଳସ୍କନ୍ଧବିଶିଷ୍ଟ ।

ପୃଥୂଦକ—କ୍ଲୀ.ବି.କୁରୁକ୍ଷେତ୍ରର ଅନ୍ତର୍ଗତ ଗୋଟିଏ ନଗର ଓ ପ୍ରାଚୀନତୀର୍ଥ,ଆଧୁ-ନିକ ନାମ ପେହୋଲା ।

ପୃଥୂଦର—ପୁଂ. ବି. ( ପୃଥୁ+ଉଦର ) ବ.ବ୍ରୀ; ମେଘ, (ବିଂ)ସ୍ଥୂଳୋଦରବିଶିଷ୍ଟ, ଅନ୍ତଲପେଟିଆ ।

ପୃଥ୍ୱୀ—ସ୍ତ୍ରୀ. ବି. ( ପୃଥୁ+ଈ ) ପୃଥିବୀ,

ପୃଥୁଙ୍କ ରାଜ୍ୟ, ମାଟି, ମୃତ୍ତିକା, ବଡ଼ ଅଳେଇଚ, କଳାଜୀରା, ପୁନର୍ନବା, ପୁଷ୍କୁଣୀ, ଅର୍କବୃକ୍ଷ,ଆଦିତ୍ୟଭକ୍ତା,ହିଙ୍ଗୁ-ପତ୍ରୀ, ବାଉଁଶପତର ଘାସ, ଛନ୍ଦୋ-ବିଶେଷ ।

ପୃଥ୍ୱୀକା--ସ୍ତ୍ରୀ.ବି.ବଡ଼ଅଳାଇଚ,ଗୁଜରାତ, କଳାଜୀରା, ହିଙ୍ଗୁପତ୍ରୀ ଘାସ, ବାଉଁଶ-ପତ୍ରୀଘାସ ।

ପୃଥ୍ୱୀକୁରୁବକ—ବି. ଶ୍ୱେତମନ୍ଦାରକ ।

ପୃଥ୍ୱୀଗର୍ଭ—ପୁଂ.ବି.ଲମ୍ବୋଦର, ଗଣେଶ

ପୃଥ୍ୱୀଗୃହ—କ୍ଲୀ. ବି. ଗୁହା, ଗହ୍ୱର ।

ପୃଥ୍ୱୀଜ—ବିଂ. ଭୂମିଜାତ, (ବି) ଲବଣ ବିଶେଷ ।

ପୃଥ୍ୱୀଦଣ୍ଡପାଳ----ବି. ରାଜଦଣ୍ଡଦାତା, କଟୁଆଳ,ପୁଲିସର ପ୍ରଧାନ କର୍ମଚାରୀ ।

ପୃଥ୍ୱୀଧର— ପୁଂ. ବି. ପର୍ବତ, ମହୀଧର ।

ପୃଥ୍ୱୀପତି—ପୁଂ.ବି.(୬ତତ୍)ପୃଥିବୀପାଳ, ପୃଥିବୀର ଅଧୀଶ୍ୱର, ରାଜା ।

ପୃଥ୍ୱୀପାଳ—ବି. ପୃଥିବୀ ପାଳକ ରାଜା, ଯେ ପୃଥିବୀ ପାଳନ କରେ । [ଭୌମ।

ପୃଥ୍ୱୀପୁତ୍ର—ପୁଂ.ବି. (୬ତତ୍)ମଙ୍ଗଳଗ୍ରହ,

ପୃଥ୍ୱୀଭୁକ୍—ପୁଂ. ବି. (ପୃଥିବୀ+ଭୁଜ+କ୍ୱିପ୍) ମହୀପତି, ରାଜା ।

ପୃଥ୍ୱୀରାଜ—ପୁଂ. ବି. ଭାରତର ସ୍ୱାଧୀନ ପ୍ରଧାନ ହିନ୍ଦୁ ନରପତି ।

ପୃଥ୍ୱୀଶ—ପୁଂ.ବି.(୬ତତ୍)ଭୂମିପତି,ରାଜା

ପୃଦାକୁ—ପୁଂ. ବି. (ପର୍ଦ+ଆକୁ) ସର୍ପ, ବିଚ୍ଛା,ଚିତାବାଘ,ବାଘ,ବୃକ୍ଷ,ଗଛ,ହାତୀ।

ପୃଶ୍ନି—ବିଂ. (ପୃଶ୍+ନି) ବାମନ, ଖର୍ବ, ଦୁର୍ବଳାସ୍ଥିଯୁକ୍ତ, ଶୁକ୍ଳବର୍ଣ୍ଣ, ଧଳା, ସୂକ୍ଷ୍ମ, ନାନାବର୍ଣ୍ଣ, ସାଧାରଣ, ( ବି ) କିରଣ, ରଶ୍ମି, ବୋରଝାଞ୍ଜି, ପୃଥ୍ୱୀ, ସୁତପା-ରାଜାଙ୍କ ମହିଷୀ,ଶ୍ରୀକୃଷ୍ଣଙ୍କ ମାତା ଦେବ-କୀଙ୍କ ନାମାନ୍ତର, ଘୃତ, ଅନ୍ନ, ଛୁଉକା ଗାଈ, ଜଳ, ବେଦ, ଅମୃତ, ରତ୍ନ, ପୃଶ୍ନିପର୍ଣ୍ଣୀ ।

ପୃଶ୍ନିକା—ବି. କୁମ୍ଭିକା, ବୋରଝାଞ୍ଜି ।

ପୃଶ୍ନିଗର୍ଭ—ପୁଂ. ବି. ( ବ.ବ୍ରୀ ) ଶ୍ରୀକୃଷ୍ଣ, ଭଗବାନ୍, ବିଷ୍ଣୁ ।

ପୃଶ୍ନିପର୍ଣ୍ଣୀ—ସ୍ତ୍ରୀ. ବି. ଔଷଧ କ୍ଷୁପବିଶେଷ, କୃଷ୍ଣପର୍ଣ୍ଣୀ କ୍ଷୁପ ।

ପୃଶ୍ନିଭଦ୍ର--ପୁଂ.ବି.ପୃଶ୍ନିଗର୍ଭଜାତ ଶ୍ରୀକୃଷ୍ଣ।

ପୃଶ୍ନିଶୃଙ୍ଗ—ପୁଂ. ବି. ବିଷ୍ଣୁ, ଗଣେଶ ।

ପୃଶ୍ନୀ—ସ୍ତ୍ରୀ. ବି. ଦାରପର୍ଣ୍ଣୀ, କୁମ୍ଭିକା, ଦଳ, ବୋରଝାଞ୍ଜି ।

ପୃଷତ୍—କ୍ଲୀ. ବି. (ପୃଷ୍+ଅତ୍) ଜଳ-ବିନ୍ଦୁ,ମୃଗବିଶେଷ, ମଣ୍ଡଳାକାର ଦାଗ, ମଣ୍ଡଳାକାର ଚିତା, ଶ୍ୱେତବିନ୍ଦୁଯୁକ୍ତ ହରିଣ ।

ପୃଷତ—ବି. (ପୃଷ୍+ଅତ) ବିନ୍ଦୁ, ଜଳ-କଣା, ଶ୍ୱେତବିନ୍ଦୁଯୁକ୍ତ ମୃଗ, ଚିତ୍ରମୃଗ, ସର୍ପବିଶେଷ, ରୋହିତମତ୍ସ୍ୟ, ଦ୍ରୁପଦ ରାଜାଙ୍କର ପିତା, ଭରଦ୍ୱାଜମୁନି ପୁତ୍ର ।

ପୃଷତାମ୍ପତି—ପୁଂ.ବି. (ପୃଷତାଂ+ପତି) ବାୟୁ, ମୃଗବାହନ, ଅନଳ ।

ପୃଷତାଶ୍ୱ—ପୁଂ.ବି. ମୃଗବାହନ ବାୟୁ ।

ପୃଷତୀ—ସ୍ତ୍ରୀ. ବି. (ପୃଷତ୍+ଈ) ଶ୍ୱେତ-ବିନ୍ଦୁଯୁକ୍ତ ମୃଗୀ, ହରିଣୀବିଶେଷ,ଅଞ୍ଜନ-ଶଳାକା ।

ପୃଷତ୍କ—ପୁଂ. ବି. ବାଣ ।

ପୃଷଦଂଶ—ପୁଂ. ବି. ବାୟୁ, ଅନଳ ।

ପୃଷଦଶ୍ୱ—ପୁଂ. ବି. ( ପୃଷତ୍+ଅଶ୍ୱ ) ବାୟୁ,ରାଜର୍ଷିବିଶେଷ,ବିରୂପାକ୍ଷଙ୍କ ପୁତ୍ର ।

ପୃଷଦାଜ୍ୟ—କ୍ଲୀ. ବି. (ପୃଷତ୍+ଆଜ୍ୟ) ସଦଧ୍ୟାଜ୍ୟ, ଦଧିମିଶ୍ରିତ ଘୃତ ।

ପୃଷଦ୍ୱରା—ବି. ମୃଗୀବିଶେଷ, ଗୁରୁଙ୍କର ପତ୍ନୀ, ମେନକାଙ୍କ କନ୍ୟା ।

ପୃଷଦ୍ୱଳ—ପୁଂ. ବି. ବାୟୁଙ୍କର ଅଶ୍ୱ ।

ପୃଷଦ୍ଧ୍ର—ପୁଂ. ବି. ବୈବସ୍ୱତମନୁଙ୍କର ପୁତ୍ରବିଶେଷ ।

ପୃଷଦ୍ଧୃ—ପୁଂ.ବି. ଦ୍ୱାପରଯୁଗୀୟ ଯୁଧି-ଷ୍ଠିରଙ୍କ ପକ୍ଷସ୍ଥିତ ନୃପବିଶେଷ ।

ପୃଷନ୍ତ—ବି. (ପୃଷ+ଅନ୍ତ) ବିନ୍ଦୁ, ଜଳ-କଣା ।

ପୃଷଭାଷା—ସ୍ତ୍ରୀ. ବି ଅମରାବତୀ ।

ପୃଷାକରା—ସ୍ତ୍ରୀ ବି. କ୍ଷୁଦ୍ର ଶିଳା,ବଟକରା ।

ପୃଷାତକ—କ୍ଲୀ. ବି. ଦଧିମିଶ୍ରିତ ଘୃତ ।

ପୃଷୋଦର—ପୁଂ.ବିଂ.(ପୃଷତ୍+ଉଦର) ବ.ବ୍ରୀ; ସ୍ୱଳ୍ପୋଦର,ଯାହାର ପେଟରେ ଗୋଲାକାର ଚିହ୍ନ ଅଛି, (ପୁଂ.ବି) ବାୟୁ, (ସ୍ତ୍ରୀ) ପୃଷୋଦରୀ ।

ପୃଷୋଦ୍ୟାନ—କ୍ଲୀ. ବି. କ୍ଷୁଦ୍ରୋଦ୍ୟାନ, ଗ୍ରୀଷ୍ମବଗିଚ୍ଚ ।

ପୃଷ୍ଟ—ବିଂ. ( ପ୍ରଚ୍ଛ୍+ତ ) ଜିଜ୍ଞାସିତ, ସିକ୍ତ, ସଂସୃଷ୍ଟ, (ବି-ଭା.ତ) ଜିଜ୍ଞାସା ।

ପୃଷ୍ଟି—ସ୍ତ୍ରୀ. ବି. (ପୃଷ୍+ଭା.ତି) ସେକ, ରଶ୍ମି, କିରଣ, ସ୍ପର୍ଶ, (ପ୍ରଚ୍ଛ୍+ଭା.ତି) ଜିଜ୍ଞାସା, ପୃଷ୍ଠଦେଶ, ପଛଅଂଶ,(ଗ୍ରା.ବି) ବଣିଆ ଓ ଯାଚକଆଦିଙ୍କ ବଂଶୋପାଧି ।

ପୃଷ୍ଠ—ବି. (ପୃଷ୍+ଥ) ପିଠି, ପଛଆଡ଼, ବସ୍ତୁର ଉପରପାଖ,ବାହାରପାଖ,ପର୍ବତ ଆଦିର ମଥାନ, ମଞ୍ଚ, ଶେଷଭାଗ, ଏକପାଖ, ତଳ, ପୁସ୍ତକର ପୃଷ୍ଠା ।

ପୃଷ୍ଠଗୋପ--ବି. ( ପୃଷ୍ଠ+ଗୁପ୍+ଅ ) ପୃଷ୍ଠରକ୍ଷୀ ଦେଖ ।

ପୃଷ୍ଠଗ୍ରନ୍ଥି—ବି.(୬ତତ୍)ପିଠିର କୁଜ,ଟାଳ ।

ପୃଷ୍ଠଚକ୍ଷୁ—ବି. (ବ.ବ୍ରୀ) କର୍କଟ,କଙ୍କଡ଼ା, ଭଲ୍ଲୁକ, ଭାଲୁ ।

ପୃଷ୍ଠାଚର—ବି. (ପୃଷ୍ଠ+ଚର+କ.ଅ) ପଶ୍ଚାଦ୍ଭାଗରେ ସ୍ଥିତ, ପଶ୍ଚାଦନୁସରଣ-କାରୀ, ଅନୁଗାମୀ ।

ପୃଷ୍ଠଜ—ବିଂ. ( ପୃଷ୍ଠ+ଜନ୍+କ.ଅ ) ପଶ୍ଚାଦ୍‌ଜାତ, ପିଠିରେ ଜନ୍ମିବା, ପରେ ଜନ୍ମିଥିବା ।

ପୃଷ୍ଠତଃ—ଅବ୍ୟ. (ପୃଷ୍ଠ+ତସ୍) ପଶ୍ଚାତ୍, ପୃଷ୍ଠଦେଶରେ, ପଛରେ, ପଛଆଡ଼କୁ ବା ରେ ।

ପୃଷ୍ଠଦୃଷ୍ଟି—ପୁଂ. ବି. (ବ.ବ୍ରୀ) ଭଲ୍ଲୁକ, ଭାଲୁ, ସିଂହ, (ବିଂ) ଯେ ପଛଆଡ଼କୁ ଚାହିଁପାରେ ।

ପୃଷ୍ଠଦେଶ—ବି. ପିଠି,ଉପରଅଂଶ,ତଳ ।

ପୃଷ୍ଠପର୍ଣ୍ଣୀ—ବି. ପୃଶ୍ନିପର୍ଣ୍ଣୀ ।

ପୃଷ୍ଠପୋଷକ--ପୁଂ. ବିଂ. (ପୃଷ୍ଠ+ପୋଷକ) ଅନୁକୂଳ, ସାହାଯ୍ୟକାରୀ, ସହାୟକ ।

ପୃଷ୍ଠପୋଷଣ---ବି. ପଛଆଡ଼ ଆଉ ସାହାଯ୍ୟ କରିବା,ଅନୁକୂଳ୍ୟ,ସାହାଯ୍ୟ ।

ପୃଷ୍ଠପୋଷିତ—ବିଂ.ଅନ୍ୟଦ୍ୱାରା ପଛଆଡ଼ୁ

ସାହାଯ୍ୟପ୍ରାପ୍ତ,ଉତ୍ସାହଦ୍ୱାରା ସାହାଯ୍ୟ-ପ୍ରାପ୍ତ ।

ପୃଷ୍ଠପ୍ରଦର୍ଶନ—ବ. ପଳାୟନ, ଯୁଦ୍ଧରେ ଭଙ୍ଗଦେବା, ଯୁଦ୍ଧଭୂମିରୁ ପଳାଇବା ।

ପୃଷ୍ଠଫଳ—ଗ୍ରା. ବ. (ଜ୍ୟୋତିଷ) କ୍ଷେତ୍ରର କର୍ଣ୍ଣଫଳ ।

ପୃଷ୍ଠଭଙ୍ଗ—ବ. (ପୃଷ୍ଠ+ଭଜ୍‌+ଅ) ପରାଜୟ, ପଳାୟନ ।

ପୃଷ୍ଠଭାଗ—ବ. ପିଠି, ପଛଆଡ଼ ।

ପୃଷ୍ଠମର୍ମ—କ୍ଲୀ. ବ. ସୁଶ୍ରୁତଅନୁସାରେ ମନୁଷ୍ୟର ପିଠିରେ ମେରୁଦଣ୍ଡର ଦୁଇ-ପାଖରେ ଥିବା ୧୪ ଗୋଟି ମର୍ମସ୍ଥାନ ।

ପୃଷ୍ଠମାଂସ—କ୍ଲୀ. ବ. ପଶୁପ୍ରଭୃତିଙ୍କର ପୃଷ୍ଠସ୍ଥିତ ମାଂସ ।

ପୃଷ୍ଠମାଂସାଦ—ବଂ. (ପୃଷ୍ଠ+ମାଂସ+ଅଦ୍‌+ଅ)ପଶ୍ଚାତ୍ କୁତ୍ସାକାରୀ,ଚୁଗୁଲିଆ, ପୃଷ୍ଠମାଂସଭକ୍ଷକ ।

ପୃଷ୍ଠମାଂସାଦନ—କ୍ଲୀ. ବ. ପରୋକ୍ଷରେ ଦୋଷକୀର୍ତ୍ତନ, ଚୁଗୁଲି, (ବଂ) ପରୋ-କ୍ଷରେ ଦୋଷକୀର୍ତ୍ତିକ, ଚୁଗୁଲିଆ, ପୃଷ୍ଠ-ମାଂସ ଭକ୍ଷକ ।

ପୃଷ୍ଠରକ୍ଷ—ପୁଂ. ବ. ପୃଷ୍ଠଦେଶ ରକ୍ଷକ ଯୋଦ୍ଧାବିଶେଷ, ପୃଷ୍ଠଗୋପ ।

ପୃଷ୍ଠରକ୍ଷକ—ବଂ. ପଛଆଡ଼େ ଥାଇ ସାହାଯ୍ୟ କରିବା (ବ୍ୟକ୍ତି) ।

ପୃଷ୍ଠରକ୍ଷଣ—କ୍ଲୀ.ବ. ପୃଷ୍ଠଦେଶର ରକ୍ଷା, ପଶ୍ଚାଦ୍‌ରକ୍ଷା ।

ପୃଷ୍ଠରକ୍ଷା—ବ.ପଛଆଡ଼େ ରହି ସୈନ୍ୟଙ୍କୁ ରକ୍ଷାକରିବା ।

ପୃଷ୍ଠରକ୍ଷୀ—ବଂ. (ପୃଷ୍ଠ+ରକ୍ଷ+ଇନ୍) ଯେଉଁ ଯୋଦ୍ଧାମାନେ ସୈନ୍ୟର ପିଠି-ଆଡ଼େ ଜଗିଥାଆନ୍ତି । [ ଆଡ଼ରେ ।

ପୃଷ୍ଠରେ—ଗ୍ରା. ଅବ୍ୟ. ପଛରେ, ପଛ-

ପୃଷ୍ଠବଂଶ—ବ. (ପୃଷ୍ଠ+ବଂଶ) କ.ଧା; ପୃଷ୍ଠାସ୍ଥି, ମେରୁହାଡ଼, ମେରୁଦଣ୍ଡ, ବେଣିର ହାଡ଼ ।

ପୃଷ୍ଠବାସ୍ତୁ—କ୍ଲୀ. ବ. ଗୃହର ଉପରଗୃହ, ଗୋଟିଏ ଘର ଉପରେ ତିଆର ହୋଇଥିବା ଘର ।

ପୃଷ୍ଠବାହ—ପୁଂ. ବ. (ପୃଷ୍ଠ+ବହ+ଅ) ଯୁଗପାର୍ଶ୍ୱଗ ବୃଷ, ଖାଡ଼ୁ (ଡ୍ର) ବଳଦ. (ବଂ) ଯେଉଁ ପଶୁର ପିଠିରେ ବୋଝ ବୁହାଯାଏ, ପଶ୍ଚାଦ୍ଭାଗ ବାହକ ।

ପୃଷ୍ଠ୍ୟବାହ୍ୟ—ପୁଂ. ବ. ପୃଷ୍ଠଦ୍ୱାରା ଭାର-ବାହକ ବୃଷ, ଖାଡ଼ୁବଳଦ ।

ପୃଷ୍ଠବ୍ରଣ—ବ. ପଠା, ପିଠିରେ ହେବା ମାରାତ୍ମକ ବଥ ।

ପୃଷ୍ଠଶୟ—ପୁଂ.ବଂ. (ପୃଷ୍ଠ+ଶୀ+କ.ଅ) ପୃଷ୍ଠଶାୟୀ, ଉତ୍ତାନଶାୟୀ, ଯେ ଚିତ୍-ହୋଇ ଶୁଏ ।

ପୃଷ୍ଠଶୃଙ୍ଗ—ପୁଂ.ବ. (ପୃଷ୍ଠ+ଶୃଙ୍ଗ)ବ.ଗ୍ରା; ବନଗୁଗ, ବନଛେଳି ।

ପୃଷ୍ଠଶୃଙ୍ଗୀ—ପୁଂ. ବ. (ପୃଷ୍ଠ+ଶୃଙ୍ଗ+ଇନ୍) ଭୀମସେନ, ନପୁଂସକ, ମେଣ୍ଢା. ମହିଷ । [ପଦ, ପୀଢ଼ା ।

ପୃଷ୍ଠା—ବ. ( ପୃଷ୍ଠ+ଆ ) ପୁସ୍ତକାଦିର

ପୃଷ୍ଠାନୁଗ—ବଂ. ପୃଷ୍ଠଦେଶରେ ଅନୁ-ଗମନକାରୀ, ପଛରେ ଯିବା ଲୋକ ।

ପୃଷ୍ଠାନୁଗାମୀ—ପୁଂ. ବଂ. ପଶ୍ଚାଦ୍‌ଗାମୀ ।

ପୃଷ୍ଠାସ୍ଥି—କ୍ଲୀ. ବ. (ଜ୍ୟୋତିଷ) ମେରୁଦଣ୍ଡ, ମେରୁହାଡ଼ ।

ପୃଷ୍ଠୋଦୟ—ପୁଂ.ବ. (ଜ୍ୟୋତିଷ)ମେଷ, ବୃଷ, କର୍କଟ, ଧନୁ, ମକର ଓ ମୀନ-ରାଶିମାନ ।

ପୃଷ୍ଠୋପରି—କ୍ରି. ବଂ. ପିଠିଉପରେ ।

ପୃଷ୍ଠ୍ୟ—ବଂ. (ପୃଷ୍ଠ+ଯ) ପୃଷ୍ଠସମ୍ବନ୍ଧୀୟ, (ବ) ପିଠିରେ ଲଦନ ବୋହିବା ଘୋଡ଼ା କିମ୍ବା ପଶୁ ।

ପୃଷ୍ଣି—ବ. ( ପୃଷ୍+ନି ) ପାର୍ଷ୍ଣିଭାଗ, ଗୋଇଠି, କିରଣ, ରଶ୍ମି, (ବଂ)ନାନା-ବର୍ଣ୍ଣଯୁକ୍ତ, କ୍ଷୁଦ୍ର ।

ପେଇଁ—ଗ୍ରା. ଅବ୍ୟ. ପାଇଁ, ନିମନ୍ତେ ।

ପେଇବା—ଗ୍ରା. କ୍ରି. ପିଆଇବା ଦେଖ ।

ପେଇଁକାଲ—ଗ୍ରା. ବ. ହାତୀର ରଡ଼ିବା ଶବ୍ଦ ।

ପେଇଁକାଲ—ଗ୍ରା. ବ. ମହୁରୀ, ତୁରୀ, କାହାଳୀ, ପିଲାମାନେ ବଜାଇବା ବରଡ଼ା ଆଦିରେ ତିଆରି ବାଦ୍ୟଯନ୍ତ୍ର-ବିଶେଷ । [ ବେଗବିଶେଷ ।

ପେଇଁକାଲିଆ—ଗ୍ରା. ବ. ଧାନଗଛର

ପେଁ—ଗ୍ରା. ଅବ୍ୟ. ତୁରୀ ଭେରୀ ଆଦିର ଶବ୍ଦ ବା ଧ୍ୱନି ।

ପେକମ—ପ୍ରା. (ଗଞ୍ଜାମ) ବ.ମୟୂରପୁଚ୍ଛ ।

ପେକିନ୍—ଗ୍ରା.ବି. ଚୀନଦେଶର ଉତ୍ତର ପଶ୍ଚିମରେ ଥିବା ନଗର ।

ପେଖନା—ଗ୍ରା.ବ. (ସଂ-ପ୍ରେକ୍ଷଣ)ଛଳନା, ବାହାନା, କପଟ ବ୍ୟବହାର, ଛଇ, ଅଳି, ଦୁଷ୍ଟାମି ।

ପେଖାଣ୍ଡି—ଗ୍ରା. ବ. ଛଳନା, ଧୃଷ୍ଟତା ।

ପେଗମ୍ବର—ଯା.ବ.ଦୂତ,ଧର୍ମପ୍ରବର୍ତ୍ତକ ।

ପେଗାମ—ଯା. ବ. ସମ୍ବାଦ ।

ପେଗୁ—ଗ୍ରା. ବ. ବ୍ରହ୍ମଦେଶର ବନ୍ଦର ଓ ସହର,ବ୍ରହ୍ମଦେଶୀୟ ଉତ୍କୃଷ୍ଟ ଘୋଡ଼ା ବା ଟଟୁ । [ ବିଶେଷ ।

ପେଙ୍ଗ—ଗ୍ରା. ବ. କରଷଣା, ବନ୍ୟବୃକ୍ଷ-

ପେଙ୍ଗା—ଗ୍ରା.ବ.ଖ୍ରୋଟା,ପଙ୍ଗୁ,ଲେଙ୍ଗଡ଼ା, (ବ) ଖ୍ରୋଟେଇ ଚାଲିବା ।

ପେଙ୍ଗା(ଙ୍ଗେ)ଇବା—ଗ୍ରା. କ୍ରି. ଖ୍ରୋଟେ-ଇବା, ଖ୍ରୋଟେଇ ଚାଲିବା ।

ପେଙ୍ଗୁ—ଗ୍ରା. ବ. ବନ୍ୟଗୁଳ୍ମବିଶେଷ ।

ପେଙ୍ଗୁନଳ—ଗ୍ରା.ବ. ଶିଶୁମାନେ ପେଙ୍ଗୁ ଫଳ ପୁରାଇ ଫୁଟାଇବା ପାଇଁ ବ୍ୟବ-ହୃତ ବାଉଁଶ ନଳବିଶେଷ ।

ପେଚପାଞ୍ଚବା,ପେଞ୍ଚପାଞ୍ଚ—ଗ୍ରା. ବ. କଳ-କବଜ, ମଲ୍ଲ ଦ୍ୱାରା ପ୍ରଯୁକ୍ତ କୌଶଳ, କୂଟନୀତି ପ୍ରୟୋଗ, କୌଶଳ, କୂଟ-ନୀତି, ଗୋଲକଧନ୍ଦା, ବିଷମ ସମସ୍ୟା, ଗୃହଚ୍ଛିଦ୍ର ।

ପେଚ(ଞ୍ଚ)—ଗ୍ରା. ବ. ଏକପ୍ରକାର ଲୁହା କଣ୍ଟା, କଳ, କୁଣ୍ଡଳୀକୃତ ରଜ୍ଜୁ, ଦଉ-ଡ଼ିକୁ ଗୋଡ଼ାଇବାର ଥର ବା ମୋଡ଼ା, କୂଟକୌଶଳ, ଗୂଢ଼ ଉପାୟ, ବିଷମ ସମସ୍ୟା, ପ୍ରତିଦ୍ୱନ୍ଦ୍ୱୀକୁ ତଳେ ପକାଇବା ପାଇଁ ମଲ୍ଲର ହସ୍ତ ପଦାଦିର କୌଶଳ-ଯୁକ୍ତ ଚାଳନା ।

ପେଚକ—ପୁଂ.ବ. (ପିଚ୍+ଅକ) ପକ୍ଷୀ-ବିଶେଷ, ଉଲୂକ, ମଧୁମକ୍ଷିକା, ହସ୍ତୀ

ପୁଚ୍ଛର ମୂଳ ବା ଅଗ୍ର,ପର୍ଯ୍ୟଙ୍କ,ସ୍ତ୍ରୀଯୋନି ଆଚ୍ଛାଦକ ମାଂସପିଣ୍ଡବିଶେଷ, ଗୁହ୍ୟ-ଦେଶାଚ୍ଛାଦକ ମାଂସପିଣ୍ଡ,ପଦ୍ମ,ଉକୁଣି ।

ପେଚକଧ୍ୱନି—ବି, ପେଚାର ରବ ।

ପେଚ(ଞ୍ଚ)କଣ୍ଟା—ଗ୍ରା. ବି. ଅଗ ପାଖ ମୋଡ଼ି ମୋଡ଼ି ହୋଇଥିବା ଲୁହାକଣ୍ଟା ।

ପେଚ(ଞ୍ଚ)କସ୍—ଗ୍ରା.ବି.ଯେଉଁ ହତିଆର ଦ୍ୱାରା ପେଞ୍ଚକଣ୍ଟାକୁ ଆଣ୍ଠିବା ବା କାଢ଼ି-ବାକୁ ହୁଏ । [ ଚେପ୍ଟା, ଚଟକା ।

ପେଟକା—ଗ୍ରା, ବିଂ.ପେଚାପକ୍ଷୀ, ଚେପା,

ପେଚକୀ—ପୁଂ. ବି. ( ପେଚକ+ଇନ୍ ) ହସ୍ତୀ, (ସ୍ତ୍ରୀ.ବି.-ପେଚକ+ଈ) ମାଈ ପେଚା, ପେଚୀ ।

ପେଚବାନ୍—ଯା.ବି. ଅଲବଲି ହୁକାରେ ଲଗାଯିବା ବଡ଼ ନଳ, ବଡ଼ହୁକା ।

ପେଚା—ଗ୍ରା. ବି. ରାତ୍ରିଚର ପକ୍ଷିବିଶେଷ, ପେଚକ, ଉଲୂକ ।

ପେଚାଡାକିବା—ଗ୍ରା.କ୍ରି. (ଲ.ଅର୍ଥ)ଆସନ୍ନ ବିପଦ ବା ଅମଙ୍ଗଳର ସୂଚନା ଜଣା-ଯିବା ।

ପେଚାବସିବା—ଗ୍ରା. କ୍ରି. ଅମଙ୍ଗଳ ସୂଚକ ଶକୁନ ଦେଖାଯିବା ।

ପେଚିଲ—ପୁଂ.ବି.(ପେଚ+ଇଲ)ହସ୍ତୀ ।

ପେଚୀ—ଗ୍ରା.ସ୍ତ୍ରୀ.ବିଂ. ପେଚା ପରି ଜାକ-ଜୁକ ହୋଇ ବସିଥିବା ( ସ୍ତ୍ରୀଲୋକ ବା ବାଳିକା) ।

ପେଚୁକ—କ୍ଲୀ. ବି. (ପିଚ୍+ଉକ)କଚ-ଶାକ, ସାରୁପତ୍ର ।

ପେଚୁଲୀ—ସ୍ତ୍ରୀ.ବି.କଚୁଶାକ, ସାରୁପତ୍ର ।

ପେଜ—ଗ୍ରା. ବି. (ଫ-ପେୟ) ରନ୍ଧନାନ୍ନ ନିର୍ଗତ ଜଳ, (ପ୍ରା. ଜୟପୁର.ବି) ଭାତ, ପକ୍ୱାନ୍ନ, ଜାଉ, (ପ୍ରା. ସମ୍ବ. ଓ କଳାହାଣ୍ଡି, ବି). ପଖାଳଭାତ ।

ପେଜୁଆ--ଗ୍ରା.ବିଂ. ପେଜମିଶ୍ରିତ, ଜାଉଆ, ଫେନିଲ, ଫେଣପରି ଦିଶୁଥିବା ।

ପେଟ—ବି.(ପିଟ+ଅ) ମଞ୍ଜୁଷା, ପେଟରା, ପେଡ଼ି, ସମୂହ, ଜୀବିକା, ଉଦରପୂରଣ, ହସ୍ତର ବିସ୍ତୃତ, ଗୃହଖଣ୍ଡ, ଅଳି, (ଗ୍ରା.ବି) ଜଠର, ଉଦର, ଗର୍ଭ, ଗର୍ଭାବସ୍ଥା,(ଲ, ଅର୍ଥ) କୌଣସି ବସ୍ତୁର ମଧ୍ୟଭାଗ, ଅନ୍ତ-ର୍ଭାଗ, ମନ, ଅନ୍ତର, ହୃଦୟ, ମସ୍ତିଷ୍କ, ପରିବାରରେ ପୋଷା ହେବା ବ୍ୟକ୍ତି ।

ପେଟଆଉଁଠିହେବା—ଗ୍ରା. ବି. ଶୋକରେ ପେଟ ଭିତର ଘାଣ୍ଟିଚକଟି ହେବା ।

ପେଟକ—ବି.(ପେଟ+କ)ଗୋଲ ପାତ୍ର, କୁମ୍ଭୀ, ବୋତଲ,ଟ୍ରଙ୍କ ପେଡ଼ା,ପେଡ଼ି, ପେଟରା, ବାକସ, (ଗ୍ରା.ବି) ଉଦରପୂର୍ତ୍ତି ଏକଥର ଭୋଜନ । [ ପେଟୁ ।

ପେଟକାବୁରା—ଗ୍ରା.ପୁଂ.ବିଂ. ଉଦରମ୍ଭରି,

ପେଟକାମୁଡ଼ା—ଗ୍ରା. ବି, ଉଦର ପୀଡ଼ା, ଶୂଳରୋଗ,ପେଟ ବଥାଇବା,ଆମାଶୟ ।

ପେଟକୁଦେଇପିଠିକୁ ମାରିବା—ଗ୍ରା. କ୍ରି. କୌଣସି ବ୍ୟକ୍ତିକୁ ଖାଇବାକୁ ଦେଇ ତାକୁ ପ୍ରହାର କରିବା ।

ପେଟଘାଣ୍ଟିବା—ଗ୍ରା.ବି, ଅଜୀର୍ଣ୍ଣ ବା ବାୟୁ ଯୋଗୁଁ ଖାଦ୍ୟ ପେଟରୁ ବାହାରି ନ ସରି-ଯିବାରୁ ପେଟ ମଧ୍ୟରେ ଆନ୍ଦୋଳନ ବା ଶବ୍ଦର ଅନୁଭୂତ ହେବା ।

ପେଟଚିରିବା—ଗ୍ରା.କ୍ରି.ଗର୍ଭିଣୀ ଅବସ୍ଥାରେ ସ୍ତ୍ରୀ ମରିଗଲେ ତାର ପେଟକୁ ଚିରି ପିଲା ବାହାର କରିବା,ଉଦର ମଧ୍ୟସ୍ଥ ଅର୍ବୁଦ ଆଦିକୁ ଚିକିତ୍ସା କରିବା ପାଇଁ ପେଟରେ ଅସ୍ତ୍ରୋପଚାର କରିବା ।

ପେଟଜଳିବା—ଗ୍ରା. ବି. ଜଠରାଗ୍ନି ପ୍ରଜ୍ୱ-ଳିତ ହେବା, କ୍ଷୁଧାରେ ଅସ୍ଥିର ହେବା ।

ପେଟଜ୍ୱାଳା—ଗ୍ରା.ବି, ଅନ୍ନଚିନ୍ତା, କ୍ଷୁଧାର ଜ୍ୱାଳା, ଉପର୍ଯ୍ୟୁପରି ଗର୍ଭବତୀ ହେବାର ଯନ୍ତ୍ରଣା ।

ପେଟଟାଣିବା—ଗ୍ରା.କ୍ରି.ପେଟ ମାରିବା ।

ପେଟଥଣ୍ଡାହେବା—ଗ୍ରା.ବି. ଖାଦ୍ୟ ଦ୍ୱାରା ଜଠରାଗ୍ନିର ଶାନ୍ତି, ଔଷଧାଦିର ପ୍ରୟୋ-ଗରେ ଉଦର ମଧ୍ୟରେ ଅନୁଭୂତ ଦାହର ନିବୃତ୍ତି ।

ପେଟନ—ବି.(ପିଟ୍+ଅନ)ମାରିବା,ପିଟିବା ।

ପେଟପିଲା—ଗ୍ରା. ବି. ଗର୍ଭସ୍ଥ ଭ୍ରୂଣ, ମାତୃ ଗର୍ଭରୁ ଉତ୍ପନ୍ନ ସନ୍ତାନ, ଅଳ୍ପ ଶିଶୁ ।

ପେଟପୂରା—ଗ୍ରା. ବି. ପୂର୍ଣ୍ଣଭୋଜନଜନିତ ସନ୍ତୋଷ,(ବିଂ)ପୂର୍ଣ୍ଣ ଭୋଜନ କରିଥିବା, (କ୍ରି.ବିଂ) ପୂର୍ଣ୍ଣ ସନ୍ତୋଷସହିତ,ସମ୍ପୂର୍ଣ୍ଣ ସନ୍ତୋଷ ହେବା ପର୍ଯ୍ୟନ୍ତ ।

ପେଟପୂରିବା—ଗ୍ରା.ବି.ଖାଦ୍ୟ ଦ୍ୱାରା ଉଦର ପୂର୍ତ୍ତି,(ଲ.ଅର୍ଥ)ସନ୍ତୁଷ୍ଟ ହେବା, ଆଶାର ପୂର୍ତ୍ତି । [ ସନ୍ତାନ ।

ପେଟପୋଛ—ପ୍ରା. (ବାଲେ) ବି. ଗର୍ଭସ୍ଥ

ପେଟପୋଛା—ପ୍ରା. (ସମ୍ବ) ବିଂ. କୋଳ-ପୋଛା, ଯେଉଁ ସନ୍ତାନ ପରେ ମାତା-ଙ୍କର ଆଉ ସନ୍ତାନ ଜନ୍ମେ ନାହିଁ ।

ପେଟପୋଡ଼ା—ଗ୍ରା. ବି, ସ୍ତ୍ରୀମାନେ ଗର୍ଭ ନହେବାର ଔଷଧବିଶେଷ ।

ପେଟପୋଷା—ଗ୍ରା, ବି. ଜୀବିକା ନିର୍ବାହ, ଉଦର ପୋଷଣ । [ କରିବା ।

ପେଟପୋଷିବା—ଗ୍ରା.କ୍ରି. ଉଦରପୋଷଣ

ପେଟଫଟା—ଗ୍ରା, ବିଂ. ପୂର୍ଣ୍ଣ (ଭୋଜନ) ।

ପେଟଫମ୍ପା—ଗ୍ରା.ବି. ଗର୍ଭସ୍ଫୀତି. ବାୟୁର ପ୍ରକୋପରୁ ଗର୍ଭସ୍ଫୀତ ହେବା ।

ପେଟଫୁଲ୍—ଗ୍ରା.ବି, (ପେଟ ଫୁଲିଲେ) ମନୁଷ୍ୟ ଯେପରି ଅସ୍ଥିର ହୁଏ ସେହି-ପରି) କୌଣସି ଗୁପ୍ତକଥା ପ୍ରକାଶ ନକରିବା ପର୍ଯ୍ୟନ୍ତ ଅସ୍ଥିର ହେବା ।

ପେଟବଥା—ଗ୍ରା. ବି, ଶୂଳରୋଗ, ଗର୍ଭି-ଣୀର ପ୍ରସବବେଦନା ।

ପେଟବିକଳ—ଗ୍ରା. ବି. କ୍ଷୁଧାର ଜ୍ୱାଳା ।

ପେଟବିକ(ଳା)ଳିଆ-ଗ୍ରା.ପୁଂ.ବିଂ.କ୍ଷୁଧାରେ ବା ଅନ୍ନାଭାବରୁ ଯେ କଳବଳ ବା ଛଟ-ପଟ ହୁଏ, ଯେ କ୍ଷୁଧା ସହି ନ ପାରେ ।

ପେଟଭଗାରହେବା—ଗ୍ରା, ବି. ଉଦର ଜ୍ୱାଳାରୁ ମନୁଷ୍ୟର ଅସ୍ଥିରହେବା ଅବସ୍ଥା, ଅଗ୍ନିମାନ୍ଦ୍ୟ ବା ଅଜୀର୍ଣ୍ଣ ଦି ରୋଗ ହେତୁ ଆଶାନୁରୂପ ଖାଦ୍ୟ ଖାଇ ନ ପାରିବା ବା ହଜମ ନ ହେବା ।

ପେଟଭଙ୍ଗା-ଗ୍ରା.ବି.ଗର୍ଭପାତ କରାଇବା, ଗର୍ଭପାତ,(ପୁଂ.ବିଂ)ଅନ୍ୟର ଗର୍ଭପାତ-କାରୀ ।

ପେଟଭଙ୍ଗା(ଙ୍ଗେ)ଇବା--ଗ୍ରା.କ୍ରି.କୌଣସି ସ୍ତ୍ରୀର ଗର୍ଭପାତ କରାଇବା,(ସ୍ତ୍ରୀ ନିଜେ) ଆପଣାର ଗର୍ଭପାତ କରାଇବା ।

ପେଟଭାତ—ଗ୍ରା. ବି. ଉଦରାନ୍ନ ମାତ୍ର,

ଗୃହକର ଯୋଗୁଁ କୌଣସି ନଗଦ ଦରମା ନ ମିଳି କେବଳ ମୁଠାଏ ଖୋରାକ ମିଳିବା ।

ପେଟମାରିବା—ଗ୍ରା.କ୍ରି.(ଲ.ଅର୍ଥ) ଭୋକ ହେଲାବେଳେ ନ ଖାଇବା, ପେଟ କାଟିବା, ଶୂଳାଦି ରୋଗ ଯୋଗୁଁ ପେଟ ବଥାଇବା ।

ପେଟମୋଡ଼ା—ଗ୍ରା. ବି. ଆମାଶୟାଦି ଯୋଗୁଁ ପେଟ ବଥାଇବା ।

ପେଟର କଥା—ଗ୍ରା.ବି.ମନୋଗତ ଭାବ ।

ପେଟରପିଲା—ଗ୍ରା.ବି.ଆପଣା ଗର୍ଭଜାତ ସନ୍ତାନ, ସ୍ତନ୍ୟପାୟୀ ଶିଶୁ, ମାତୃଗର୍ଭ ମଧ୍ୟସ୍ଥ ଜୀବନ୍ତ ଭ୍ରୂଣ ।

ପେଟ(ଟେ)ରା—ଗ୍ରା. ବି. ( ସଂ-ପେଟକ, ପିଟକ) ପେଡ଼ି, ପେଡ଼ା, ବେତ ବା ବାଉଁଶ ନିର୍ମିତ ଆବରଣଯୁକ୍ତ ପେଡ଼ି, ସିନ୍ଦୁକ, ବାକ୍ସ,(ଗ୍ରା.ବିଂ)ପେଟା,ପେଟୁଆ

ପେଟରୁଣ୍ଡିଆ—ଗ୍ରା. ପୁଂ. ସ୍ତ୍ରୀ.ବିଂ. ମାତା ଗର୍ଭବତୀ ଥାଇ ପିତାର ମୃତ୍ୟୁ ଘଟିବା ପରେ ଜାତ (ସନ୍ତାନ) ।

ପେଟ(ଟି)ସି—ଗ୍ରା.ସ୍ତ୍ରୀ.ବିଂ.ଗର୍ଭବତୀ (ସ୍ତ୍ରୀ)

ପେଟରେଓଦାକନାପକାଇବା—ଗ୍ରା.କ୍ରି. ନ ଖାଇ ନ ପିଇ ଉପାସ ଭୋକରେ କାମ କରିବା,ଦରମା ବା ଖୋରାକ ନ ପାଇ ଗୃହକର ବା କାମ କରିବା ।

ପେଟରେ କରିବା--ଗ୍ରା.କ୍ରି(ସଙ୍ଗମଦ୍ୱାରା) ସ୍ତ୍ରୀର ଗର୍ଭସଞ୍ଚାର କରାଇବା, ଗର୍ଭାଧାନ କରିବା ।

ପେଟରେପକା(କେ)ଇବା—ଗ୍ରା. କ୍ରି. (ଲ.ଅର୍ଥ) ଅନ୍ୟାଯ୍ୟ ଭାବରେ ଆତ୍ମସାତ୍ କରିବା,ଖାଇବା, ଉଦରସାତ୍ କରିବା, ଅନ୍ୟକୁ ଖାଇବାକୁ ଦେବା ।

ପେଟରେ ପଶିବା—ଗ୍ରା. କ୍ରି. ଅନ୍ୟର ଖାଦ୍ୟଦ୍ରବ୍ୟରେ ଦୃଷ୍ଟି ପକାଇବା, ଗୋପନରେ ବିପକ୍ଷର ପକ୍ଷ ଅବଲମ୍ବନ କରି ତାକୁ ଗୁପ୍ତକଥା କହିବା,କୌଣସି ବ୍ୟକ୍ତିର ଗୁପ୍ତକଥା ବା ରହସ୍ୟ ଜାଣିବା ପାଇଁ ତାହା ସହିତ ଘନିଷ୍ଠତା ସ୍ଥାପନ କରିବା ।

ପେଟରେ ଭୋକ ମୁହଁରେ ଲାଜ—ଗ୍ରା. (ନ୍ୟାୟ) କ୍ଷୁଧାର୍ତ୍ତ ବ୍ୟକ୍ତି ଖାଦ୍ୟ ପ୍ରାର୍ଥନା କରିବା ପାଇଁ ଲଜ୍ଜା ବୋଧ କରିବା, (କୌଣସି ବିଷୟରେ) ଅନ୍ତରରେ ଅନୁଭୂତ ଅଭାବ ଲଜ୍ଜାବଶତଃ ପ୍ରକାଶ ନ କରିବା ।

ପେଟରେ ଯିବା--ଗ୍ରା.କ୍ରି.କୌଣସି ଖାଦ୍ୟଦ୍ରବ୍ୟ ଆପଣା ଶରୀରରେ ସହ୍ୟହେବା ବା ଜୀର୍ଣ୍ଣ ହେବା ।

ପେଟରେ ରଖିବା—ଗ୍ରା. କ୍ରି. କୌଣସି ଗୁପ୍ତକଥା ଅନ୍ୟ ବ୍ୟକ୍ତି ଆଗେ ପ୍ରକାଶ ନ କରିବା ।

ପେଟରେ ରହିବା—ଗ୍ରା. କ୍ରି. (କୌଣସି କଥା) ବାହାରେ ପ୍ରକାଶିତ ନ ହୋଇ ମନମଧ୍ୟରେ ରହିବା ।

ପେଟରେ ହେବା—ଗ୍ରା ବି. ଗର୍ଭବତୀ ବା ଅନ୍ତଃସତ୍ତ୍ୱା ହେବା ।

ପେଟପାନଆଖିବଡ଼—ଗ୍ରା.(ନ୍ୟାୟ)ବେଶି-ପରିମାଣରେ ଖାଇବାର ଶକ୍ତି ନ ଥିବା ସ୍ଥଳେ ବେଶିଗୁଡ଼ାଏ ଖାଦ୍ୟ ବଢ଼ା ହେବାପାଇଁ ଆଗ୍ରହ ପ୍ରକାଶ କରିବା ।

ପେଟା—ଗ୍ରା. ପୁଂ. ବିଂ. ସ୍ଥୂଳୋଦର, ଉଦରମ୍ଭରି, ପେଟୁ, (ବି)ମୁଗବିରି ଆଦି ଝିଙ୍କାହେଲାବେଳେ କ୍ଷେତରେ ସ୍ଥାନେ ସ୍ଥାନେ ରଖାଯିବା ଅଳ୍ପପରିମାଣର ଗଦା,(ପ୍ରା.ସମ୍ବ.ବି).କଚରା,ଧାନକୁ କାଟି କ୍ଷେତରେ ଧାର ଧାର କରି ରଖିବା ।

ପେଟା(ଟେ)ଇବା—ଗ୍ରା. କ୍ରି. ଭୂମିରେ ପେଟଲଗାଇ ହାତଗୋଡ଼କୁ ଚଳାଇ ଗଡ଼କରିବା, ପେଟମାଡ଼ି ଶୋଇବା ।

ପେଟାକ—ପୁଂ.ବି.ପେଟକ,ପେଡ଼ା,ପେଡ଼ି, ପେଟରା ।

ପେଟି—ଗ୍ରା. ବି. ପେଟରେ ବନ୍ଧାଯିବା ମେଖଳା,କମରବନ୍ଧ,ପୋଷା ଗୋଦରା-ଚଢେଇଙ୍କ ଲାଞ୍ଜପାଖ ପେଟରେ ବନ୍ଧାହେବା ସୁତୁଲି, ଘୋଡ଼ାଙ୍କର ଜିନକୁ ଘୋଡ଼ାର ପେଟବାଟେ ବନ୍ଧାଯିବାଫିତା

ପେଟିକା—ବି. ପେଟାକ ଦେଖ, ପେଢ଼ି-ପେଢ଼ିକଆ, ସମୂହ, ସମୁଚ୍ଚୟ, ଶ୍ରେଣି ।

ପେଟୀ—ବି. ପେଟାକ ଦେଖ, (ଗ୍ରା.ବି) ପେଟି ଦେଖ,(ଗ୍ରା.ବିଂ)ପେଟାର ସ୍ତ୍ରୀଲିଙ୍ଗ ।

ପେଟୁ—ଗ୍ରା. ପୁଂ. ବିଂ. ଉଦରମ୍ଭରି ।

ପେଟୁଆ—ଗ୍ରା. ପୁଂ. ବିଂ. ଯାହାର ପେଟ ବୃହତ୍ ଅଟେ ।

ପେଟୁକ—ଗ୍ରା.ପୁଂ. ବିଂ. ପେଟୁ,ଉଦରମ୍ଭରି

ପେଟୁରା(ଲା)—ଗ୍ରା.ପୁଂ. ବିଂ.ସ୍ଥୂଳୋଦର ।

ପେଟୁଲି—ସ୍ତ୍ରୀ. ବିଂ. ଗର୍ଭବତୀ (ସ୍ତ୍ରୀ) ।

ପେଟେ—ଗ୍ରା. ବିଂ ଓ କ୍ରି. ବିଂ. ଉଦର-ପୂର୍ତ୍ତି ରୂପେ (ଭୋଜନ), ପେଟପର୍ଯ୍ୟନ୍ତ ଲାଗିଥିବା ଗଭୀର (ଜଳ) ।

ପେଟେଖାଇବା--ଗ୍ରା.କ୍ରି.ଉଦରପୂର୍ତ୍ତିକରି ଭୋଜନ କରିବା, କୌଣସି ବ୍ୟକ୍ତି କୌଣସି ବ୍ୟକ୍ତିର ଉଚ୍ଚତା ପେଟପର୍ଯ୍ୟନ୍ତ ହେବା ।

ପେଟେହେବା—ଗ୍ରା. କ୍ରି. ଉଦର ପୂର୍ତ୍ତି ହେବା,ପେଟପର୍ଯ୍ୟନ୍ତ ଉଚ୍ଚତା ହେବା, (ପ୍ରା-ସମ୍ବ.କ୍ରି)ଗର୍ଭବତୀ ହେବା ।

ପେଟ୍ରୋଲ୍—ଯା. ବି. ମାର୍ଜିତକେରାସିନ୍, ମଟର ଆଦି ଚଳାଇବା ତେଲ ।

ପେଠା(ଣ୍ଠା)—ପୁଂ. ବିଂ. ବାଙ୍ଗର, ଖର୍ବ, (ସମ୍ବ-ବିଂ) ଉଦରମ୍ଭରି, ପେଟୁ ।

ପେଠୀ(ଣ୍ଠୀ)—ଗ୍ରା. ସ୍ତ୍ରୀ. ବିଂ. ବାଙ୍ଗରୀ (ସ୍ତ୍ରୀ), ଗେଡ଼ୀ, ମୋଟୀ (ସ୍ତ୍ରୀ) ।

ପେଡ଼ା—ସ୍ତ୍ରୀ.ବି.(ପିଡ୍+ଅ+ଆ)ପେଟରା, ବାକ୍ସ, ମଇଁଷିଚୁଆ, ଆରୋପଣ, (ଗ୍ରା. ବି) ମିଷ୍ଟାନ୍ନ ବିଶେଷ, (ବିଂ) ଘଣାରେ ପେଡ଼ା ହୋଇଥିବା ।

ପେଡ଼ା(ଡ଼ୋ)ଇବା—ଗ୍ରା. କ୍ରି. ପେଢ଼ିବା କ୍ରିୟାର ଣିଜନ୍ତରୂପ,ଅନ୍ୟଦ୍ୱାରାପେଢ଼ିବା କାର୍ଯ୍ୟ କରାଇବା ।

ପେଡ଼ି—ଗ୍ରା. ବି. (ସଂ-ପେଟୀ) ପେଟରା, ମଞ୍ଜୁଷ, ପେଡ଼ା,ଚନ୍ଦନଘୋରିବା ପଥର, (ପ୍ରା-ଗଞ୍ଜା-ବି) ବାକ୍ସ ।

ପେଢ଼ପେଢ଼କଆ—ଗ୍ରା. ବି.ଜବାଦବର୍ଗର ବନ୍ୟଗୁଳ୍ମ ବିଶେଷ ।

ପେଢ଼ିବା—ଗ୍ରା.କ୍ରି.ଚେପିବାହାର କରିବା, ପେଷଣ କରିବା,ବିଶେଷ ପୀଡ଼ା ଦେବା ।

ପେଢ଼ଭୋଗ—ଗ୍ରା. ବି, ଜଗନ୍ନାଥ ବଲ-

ଭଦ୍ର ଓ ସୁଭଦ୍ରା ରଥରେ ଥିବା ସମୟରେ ଲୋକମାନେ ପେଡ଼ିରେ ରଖି କରିବା ମିଷ୍ଟାନ୍ନାଦି ଭୋଗ ।

ପେଡ଼ିଲୁଗା—ଗ୍ରା.ବି. ଉତ୍ସବାଦି ଉପଲକ୍ଷ୍ୟେ ପିନ୍ଧିବାପାଇଁ ପେଡ଼ିରେ ସାଇତାହୋଇଥିବା ଲୁଗା ।

ପେଣ୍ଟ୍—ଯା. ବି. ପେଣ୍ଟାଲୁନ୍ ଦେଖ, (ଯା. କ୍ରି) ରଙ୍ଗକରିବା, ରଙ୍ଗବୋଳା ।

ପେଣ୍ଟାଲୁନ୍—ଯା.ବି. ଏକପ୍ରକାର ପାଇଜାମା, ପତଲମ, ଗାଣ୍ଠିମୁଣ୍ଡା ।

ପେଣ୍ଠ—ପ୍ରା,ଗଞ୍ଜା,ବି. ଶିକାର, ମୃଗୟା ।

ପେଣ୍ଠିଆ—ପ୍ରା.ଜୟପୁର. ବି.ଏକଜାତୀୟ ଓଡ଼ିଆ କୃଷକ ।

ପେଣ୍ଠ--ଗ୍ରା.ବି.ଗଞ୍ଜ,ହାଟ,ପ୍ରସିଦ୍ଧ ବାଣିଜ୍ୟ କେନ୍ଦ୍ର, ବହୁ ଜନସମାଗମ ସ୍ଥାନ ।

ପେଣ୍ଡା—ଗ୍ରା, ପୁଂ. ବିଂ. ପେଠ ଦେଖ, (ସ୍ତ୍ରୀ) ପେଣ୍ଡୀ ।

ପେଣ୍ଡିଆ—ଗ୍ରା. ପୁଂ. ବିଂ.ଶ୍ଳେଟ,ବାଙ୍ଗର, ଶିକାରର ସାହାଯ୍ୟକାରୀ ବ୍ୟକ୍ତି ।

ପେଣ୍ଡୀ—ଗ୍ରା. ସ୍ତ୍ରୀ. ବିଂ. ଗେଡ଼ୀ ( ସ୍ତ୍ରୀ ), ବାଙ୍ଗୁଣୀ, ବୁଟୀ, (ବି)ଶ୍ଳେଟ ମାଇଛେଳିବା ମେଣ୍ଢା, ମାଈକୁକୁଡ଼ା ।

ପେଣ୍ଡ୍ରା—ଗ୍ରା. ବି. ଏକପ୍ରକାର ଶ୍ଳେଟ ବାଘ, ଚିତାବାଘ, ହେଟାବାଘ ।

ପେଣ୍ଡା—ଗ୍ରା. ବି. ଗୁଚ୍ଛ, କାନ୍ଧି, ଫୁଲ ଫଳର ପେଣ୍ଡା,କଦଳୀଫଳର ଫେଣା, ବିଡ଼ା, ଗୋଡ଼ର ଆଣ୍ଠୁତଳଠାରୁ ବଳାଗଣ୍ଠି ପର୍ଯ୍ୟନ୍ତ ଅଂଶର ମାଂସଳସ୍ଥାନ, ଭଣ୍ଡା(ପ୍ରା.ଯାଜ.ବି.)ଧାନର କେଣ୍ଡା ।

ପେଣ୍ଡାପେଣ୍ଡା—ଗ୍ରା. କ୍ରି. ବିଂ. ଗୁଚ୍ଛ ଗୁଚ୍ଛ ହୋଇ, ଥୋପା ଥୋପା, ପେଚ୍ଛିପେଚ୍ଛି

ପେଣ୍ଡାଳିବା—ଗ୍ରା. କ୍ରି. ସମ୍ଭାଳିବା ।

ପେଣ୍ଡି—ଗ୍ରା. ବି. ଶ୍ଳେଟଗୁଚ୍ଛ, ଧାତୁର ପାଟଫୁଲର ଗୁଚ୍ଛ, ଭୁଣ୍ଡିର ସ୍ତବକ, ପିଣ୍ଡି,ଶ୍ଳେଟବେଣୀ, ଲୁଅତଳରେ ଝୁଲୁଥିବା ଝୁମ୍ପା ।

ପେଣ୍ଡିଜଣ୍ଡୀ—ଗ୍ରା, ବି.ଏକପ୍ରକାର ଜଣ୍ଡୀ, ଗୋଟିଏ ବେଣ୍ଟରେ ଗୁଚ୍ଛ ଗୁଚ୍ଛ ଫୁଲଧରିବା ଜଣ୍ଡୀ ।

ପେଣ୍ଟୁ—ଗ୍ରା. ବି. କନ୍ଦୁକ, ବଲ୍, ନଟୁ ।

ପେତ୍ରୁନି—ପ୍ରା.ସମ୍ଭ.ସ୍ତ୍ରୀ.ବି. ପେତୃଣୀଦେଖ

ପେତୃଣୀ—ଗ୍ରା.ସ୍ତ୍ରୀ. ବି. ପିଶାଚୁଣୀ, ନବପ୍ରସୂତା ସ୍ତ୍ରୀ ମୃତାହେଲେ ତାହାର ପ୍ରେତ,ସ୍ତ୍ରୀରୂପଧାରିଣୀ ଭୂତ ।

ପେଦ୍ରୁ(ଡ଼ା)ଡ୍ଡ(ଡ୍ରୁ)—ଗ୍ରା.ବି.ଗୃହଲିଅପାଳ ଲଙ୍କାଆମ୍ବ ।

ପେନ୍—ଯା. ବି. କଲମ, ଲେଖନୀ ।

ପେନ୍ସ୍—ଯା. ବି.ଇଂଲଣ୍ଡରେ ପ୍ରଚଳିତ ତାମ୍ରମୁଦ୍ରା, ଏକଶିଲିଂର ୧୨ଭାଗରୁ ଏକଭାଗ ।

ପେନ୍‌ସନ୍—ଯା. ବି. କର୍ମରୁ ଅବସର ପ୍ରାପ୍ତ ବୃଦ୍ଧ ଓ ଅକ୍ଷମ୍ୟାନ୍ଧ ବିରହିତ କର୍ମଗୃହଙ୍କୁ ଖଞ୍ଜାହେବା ବୃତ୍ତି ବା ଖୋରାକି ।

ପେନ୍‌ସିଲ୍—ଯା. ବି. ସୀସାଥିବା ଏକପ୍ରକାର କଲମ ।

ପେନାଙ୍ଗ—ଗ୍ରା. ବି. ମାଳୟ ଉପଦ୍ୱୀପର ପଶ୍ଚିମରେ ଥିବା କ୍ଷୁଦ୍ର ଦ୍ୱୀପ ।

ପେନୁ—ଗ୍ରା. ବି, (କନ୍ଧଭାଷା) ଦେବତା ।

ପେନୁଆ—ପ୍ରା.ଗଞ୍ଜା. ବି. ଗଞ୍ଜାମଜିଲ୍ଲାର ପାଇକ(ଶୁଦ୍ର) ବିଶେଷ । [ ଗୁଚ୍ଛ ।

ପେଚ୍ଛା(ଚ୍ଛି)—ଗ୍ରା. ବି. (ସଂ-ପିଣ୍ଡ)ପେଣ୍ଡା,

ପେନ୍ଦ—ଗ୍ରା, ବି (ସଂ-ପିଣ୍ଡ) ସ୍ତ୍ରୀଲୋକଙ୍କ ଯୋନିଭ୍ରଂଶରୋଗ, ସ୍ତ୍ରୀଲୋକମାନଙ୍କ ଜନନେନ୍ଦ୍ରିୟବାଟେ ଖସିପଡ଼ିଥିବାଜରାୟୁ ବା ପଦ୍ମ ।

ପେନ୍ଦ—ଗ୍ରା. ବି. ( ସଂ-ପିଣ୍ଡ ) ଗେଣ୍ଡୁ, ଗାଣ୍ଡ, କଂସା ଗିନା ବୋତଲ ଆଦିର ତଳେ ଭିତର ପାଖକୁ ପଶିଯାଇଥିବା ଗାଣ୍ଡି, ଭୁଷ୍ଟରେ କାଦୁଅ ପୂରିଯାଇ ଗଡ଼ାହେବା କଣ୍ଢାଇଟାର ତଳେ ଲାଗି ରହିଥିବା ବହଳ ମାଟି, କାକୁଡ଼ି ଜହ୍ନି ଆଦି ଫଳର ମୁଣ୍ଡି ପାଖେ ଥିବା ପିଚାଳିଆ ଅଂଶ, ଭୁମ୍ବବାଣର ସେଉଁସଙ୍କୀର୍ଣ୍ଣ ମୁହଁରେ ନିଆଁ ଧରାଇବାଆଯାଏ, ଗିନା ଆଦିର ବଇଠି,ପେନ୍ଦ ଦେଖ ।

ପେନ୍ଦଗାତ—ଗ୍ରା. ବି. ଭୁମ୍ବବାଣର ନିଆଁ ଧରିଯିବା ସଙ୍କୀର୍ଣ୍ଣ ମୁହଁ ।

ପେମ—ଗ୍ରା. ବି. ( ସଂ-ପ୍ରେମ ) ପ୍ରଣୟ, ପ୍ରେମ, ସ୍ନେହ, ପ୍ରୀତି, ଆନନ୍ଦଉତ୍ସବ, ଆଦର, ସୁହାଗ, ଥଟ୍ଟା, ଅଦ୍ଭୁତକାଣ୍ଡ, ନୂଆକଥା,କୌତୁକ,ତାମସା,(ବ୍ୟଙ୍ଗାର୍ଥ) ଗୁପ୍ତପ୍ରେମ, ଅବୈଧପ୍ରେମ, ଅସାଧାରଣ ବିଷୟ ।

ପେମକାଢ଼ିବା—ଗ୍ରା. କ୍ରି. ଅଦ୍ଭୁତ ବିଷୟର ପ୍ରସ୍ତାବ ଆଗତ କରିବା, ତାମସା ଲଗାଇବା, ସୁହାଗ କରିବା ।

ପେମା—ଗ୍ରା. ପୁଂ. ବିଂ. ପ୍ରେମିକ ।

ପେମେଣ୍ଟ୍—ଯା. ବି. ଧନଦେବା କର୍ମ ।

ପେୟ—ବିଂ. (ପା+ଯ) ପାନଯୋଗ୍ୟ, ପାନୀୟ,(ବି)ପାନୀୟବସ୍ତୁ,ପାଣିଆଜିନିଷ ।

ପେୟା—ସ୍ତ୍ରୀ. ବି. ( ପେୟ+ଆ )ଏକପ୍ରକାର ଯବାଗୁ, ଯାଉ, ଯାଉପାଣି, ଗୃହଳକୁ ୧୧ ବା ୧୫ ଗୁଣ ଜଳରେ ପାକକରି ଗୋଳାଇ ପସ୍ତୁତ କରିବା ମଣ୍ଡ, ଆର୍ଦ୍ରକ,ଅଦା,ଶତପୁଷ୍ପୀ, ଶଉପ, କଷାୟ ।

ପେୟୂ—ପୁଂ. ବି. (ପି+କ.ଉ) ସମୁଦ୍ର, ଅଗ୍ନି, ସୂର୍ଯ୍ୟ ।

ପେୟୂଷ—ବି. (ପୀୟୂଷ+ଅ) ଅଭିନବ ଦୁଗ୍ଧ,ନବପ୍ରସୂତା ଗାଭୀର ୭ଦିନର ଦୁଗ୍ଧ, ଅମୃତ, ସଦ୍ୟପ୍ରସ୍ତୁତ ଘୃତ,ତଟକା ଘିଅ ।

ପେରଗୁ—ଗ୍ରା. ବି. ( ଜାହାଜିଆଭାଷା ) ଜାହାଜର ବାଡ଼ ।

ପେରଲ—ବି.ତାଣ୍ଡବ ନୃତ୍ୟର ଏକଭେଦ

ପେରୁ—ପୁଂ.ବି.(ପୀ+କ୍ରୁ)ଅଗ୍ନି,ସୂର୍ଯ୍ୟ ସମୁଦ୍ର, ସ୍ୱର୍ଣ୍ଣାଦ୍ରି,ସ୍ୱର୍ଣ୍ଣଗିରି,(ବିଂ)ରକ୍ଷକ, ପୂରଣକାରୀ, ( ଗ୍ରା.ବି ) ଆମେରିକାରୁ ପ୍ରଥମେ ଆନୀତ ବୃହଦାକାର ଗୃହପାଳିତ କୁକ୍କୁଟ ବିଶେଷ, ଦକ୍ଷିଣ ଆମେରିକାର ଦେଶ ବିଶେଷ ।

ପେରୁ(ଅ)ଆ—ପ୍ରା.ସମ୍ଭ.ବି.ପାରା,ପାରାବନ୍ଧ

ପେରୋଜ—କ୍ଲୀ,ବି.ଉରସ୍କମଣି,ପାରସ୍ୟଦେଶୀୟ ନୀଳହରିଦ୍ବର୍ଣ୍ଣ ଉପରତ୍ନ ବିଶେଷ ।

ପେଲ୍‌କେଇବା—ଗ୍ରା.କ୍ରି. ଠେଲିଦେବା, ପେଲି ପକାଇଦେବା ।

ପେଲ୍‌ବା—ଗ୍ରା.(ଭଙ୍ଗୀଭଙ୍ଗୀ)କ୍ରି.(ହୁକୁମ) ଅମାନ୍ୟ କରିବା ।

ପେଲ—କ୍ଲୀ. ବି. (ପେଲ୍+କ.ଅ) ପୁଂ.- ଚିହ୍ନାଙ୍ଗଭେଦ,ଅଣ୍ଡକୋଷ,ମୁଷ୍କ,ଲିଙ୍ଗ, ମେଢ୍ର, (ଗ୍ରା.ଅ) କ୍ଷୁଦ୍ରାଂଶ, ଗମନ ।

ପେଲବ—ବିଂ. ( ପେଲ+ବା+ଅ ) ବିରଳ, କ୍ଷୀଣ, କୃଶ, କୋମଳ, ମୃଦୁ, ସରୁ, ସୂକ୍ଷ୍ମ,ଭଙ୍ଗୁର,ତନୁ,ଲଘୁ, ହାଲୁକା

ପେଲ୍ଲ—ଗ୍ରା. ପୁଂ. ବିଂ. ଯେ ହରଦମ୍ ପେଲେ, ଯେ ପେଲେ ବା ଠେସେ, ଠେସ,ଠିଅ, ଶ୍ୱାସବେଗ ଜନିତ ଅଙ୍ଗ-ବିକ୍ଷେପ, (ଗ୍ରା. ପୁଷ୍ପ. ବି)ଦଣ୍ଡ, କୁସ୍ତି ।

ପେଲ୍ଲ(ଲେ)ଇବା—ଗ୍ରା. କ୍ରି. ଧାନଆଦି କୁଟିଲାବେଳେ କୁଟିବା ଦ୍ୱାରା ଉଗଣ୍ଡିରେ ଥିବା ଧାନଆଦି ଇତସ୍ତତଃ ହେଉ-ଥିବାରୁ ତାକୁ ଏକତ୍ରିତ କରିବା ।

ପେଲି(ଲୀ)—ପୁଂ. ବି.(ପେଲ+ଇ.ଇନ୍) ଗମନଶୀଳ,ଗନ୍ତା,(ବି)ଘୋଟକ,ଘୋଡ଼ା

ପେଲିବା—ଗ୍ରା.କ୍ରି. ଠେଲିବା,ନମାନିବା, ଲଙ୍ଘିବା, ଅତିକ୍ରମଣ କରିବା । [ନୃତ୍ୟ ।

ପେବଲୀ—ବି.ଅଙ୍ଗ ବିକ୍ଷେପ ସହକାରେ

ପେଶ—ପୁଂ.ବି.(ପିଶ୍+ଅ)ରୂପ,ଆକାର, (ଯା.ବି) ସମ୍ମୁଖଭାଗ, (ବିଂ) ବିଶ୍ୱସ୍ତ ।

ପେଶଓ୍ୱାଜ୍—ଯା.ବି. ନର୍ତ୍ତକୀମାନଙ୍କର ପରିଧେୟ ବସ୍ତ୍ର ବିଶେଷ ।

ପେଶଲ—ବିଂ.(ପିଶ୍+ଅଲ)ସୁରୁ, ସୁନ୍ଦର, ଦକ୍ଷ, ଚତୁର, ଧୂର୍ତ୍ତ, କୋମଳ, ମୃଦୁ, ଚିକ୍କଣ, (ପୁଂ. ବି) ବିଷ୍ଣୁ ।

ପେଶବା—ଯା.ବି. ମହାରାଷ୍ଟ୍ରୀୟ ସେନା-ପତି ବା ନାୟକ,ପୁରୋହିତ,ମହାରାଷ୍ଟ୍ରର ପ୍ରଧାନ ରାଜମନ୍ତ୍ରୀ ।

ପେଶବାର—ଗ୍ରା. ବି. ଭାରତର ପଶ୍ଚିମ ସୀମାନ୍ତ ଅଞ୍ଚଳ ଓ ନଗର ।

ପେଶସ୍କାର—ବି. ସ୍ୱରୂପକର କୀଟଭେଦ, କୁମ୍ଭକାର କୀଟ ।

ପେଶି(ଶୀ)—ବି. ( ପିଶ୍+ଇ ) ମାଂସ, ଶରୀରସ୍ଥମାଂସପିଣ୍ଡ, ବଜ୍ର, ଚଡ଼କ, ଖଡ୍‌ଗାଦିର କୋଷ, ଅଣ୍ଡ, ବୃନ୍ତ, ଜଟାମସୀ ବିଶେଷ, ପିଶାଚୀ ବିଶେଷ, ନଦୀବିଶେଷ, ଫୁଟିନଥିବା କଳି, ମୁକୁଳ, ଜଟାମାଂସୀ, ଡାଲ,ରଗଡ଼ାବିରି, ବିଦ-ଳିତ ମାଷ,ଅତସୀ, ତୈଳପ୍ରଦ ଶସ୍ୟ-ବିଶେଷ ।

ପେଣି(ଶୀ)କୋଷ—(ବି) ଅଣ୍ଡକୋଷ ।

ପେଶ୍ୟଣ୍ଡ—କ୍ଲୀ.ବି.ମାଂସ ପିଣ୍ଡାକାର ଅଣ୍ଡ ।

ପେଷ—ବିଂ. (ପେଷ୍+ଅ)ସୁନ୍ଦର,ଦକ୍ଷ ।

ପେଷକ—ବିଂ. ପେଷଣକାରୀ ।

ପେଷଣ—କ୍ଲୀ.ବି. (ପିଷ୍+ଅନ) ମର୍ଦ୍ଦନ, ବାଟିବା, ରଗଡ଼ିବା, ଦଳନ, ଖଲ, ଶତଗୁପ୍ତା, ସ୍ନୁହୀ ବୃକ୍ଷବିଶେଷ, ତ୍ରିକଣ୍ଟା ସିଜୁ, ପେଷଣ କରିବାର ପାତ୍ର, ଶିଳ, ଖଲ, ଚକି, (ଗ୍ରା.ବି) ପଠାଇବା, ଭୂତ ପ୍ରେତାଦିଙ୍କୁ ମନ୍ତ୍ରଦ୍ୱାରା ପ୍ରବେଶ କରାଇବା

ପେଷଣଦନ୍ତ—ବି. କଲଦାନ୍ତ, ଚକାଦାନ୍ତ

ପେଷଣା—ଗ୍ରା.ବି.ଘୋରଣା ଚକି, ଶିଳ, ପେଷିବା, ବାଟିବା ।

ପେଷଣି(ଣୀ)—ବି. (ପିଷ୍+ଅନ+ଇ) ପେଷଣ ଶିଳା, ବଟାଶିଳ, ଗୃହକଚ୍ଛପ, ବେଲଣା ପିଢ଼ା, ଶିଳପୁଆ, ଖଲପୁଆ, ଚକି ।

ପେଷଣୀୟ—ବିଂ.(ପିଷ୍+ଅନୀୟ)ପେଷ-ଣାର୍ହ, ପେଷଣ ଯୋଗ୍ୟ, ବାଟିବାର ଯୋଗ୍ୟ ।

ପେଷଲ—ବିଂ. ପେଶଲ ଦେଖ ।

ପେଷା—ଗ୍ରା.ବିଂ.(ସଂ-ପ୍ରେଷିତ) ପ୍ରେଷିତ, ପ୍ରେରିତ, ପିଷ୍ଟ, ଚୂରାଯାଇଥିବା,(ଯା.ବି) ଜୀବିକା, ବୃତ୍ତି, ବେପାର, ବ୍ୟବସାୟ ।

ପେଷାକ—ପୁଂ.ବି(ପିଷ୍+ଆକ)ପେଷଣୀ, ଚକି, ଶିଳ, ଖଲ ।

ପେଷାଦାର—ଯା.ବିଂ. ବେପାରୀ, ବ୍ୟବ-ସାୟୀ, ମାମଲତ୍‌କାର ।

ପେଷାଦାରୀ—ଯା.ବି. ବ୍ୟବସାୟ କରିବା ବୃତ୍ତି, ପେଷାଦାରର କାର୍ଯ୍ୟ ।

ପେଷି—ପୁଂ.ବି. (ପିଷ୍+ଇ)ବଜ୍ର, ଚଡ଼କ

ପେଷିବା—ଗ୍ରା.କ୍ରି.(ସଂ-ପିଷ୍ଧାତୁ)ପ୍ରେରଣ କରିବା, ଚୂର୍ଣ୍ଣକରିବା,ବାଟିବା, ଚୂରିବା, ମଳିବା, ଦଳିବା, ମର୍ଦ୍ଦନ କରିବା ।

ପେଷୀ—ସ୍ତ୍ରୀ. ବି. ହିଂସିକା, ପିଶାଚିକା ।

ପେଷ୍ଟା—ବିଂ. (ପିଷ୍+ତୃ) ପେଷଣକାରୀ

ପେଷ୍ୟ—ବିଂ. ପେଷଣ ଯୋଗ୍ୟ ।

ପେସ୍—ଯା.ବିଂ.ସମ୍ମୁଖବର୍ତ୍ତୀ, ଉପସ୍ଥାପିତ, (ବି) ବିଚାରାର୍ଥ ବିଚାରପତିଙ୍କ ନିକଟ କାଗଜ ପତ୍ରର ଉପସ୍ଥାପନ ।

ପେସକବଜ—ଯା.ବି. ଧୂଇଆଡ଼େ ଧାର-ଥିବା କଟାରୀ ।

ପେସ୍‌କରିବା—ଗ୍ରା.କ୍ରି.ଆଦେଶ ଅନୁସାରେ କୌଣସି ବିଷୟ ହାକିମଙ୍କ ନିକଟରେ ଉପସ୍ଥାପିତ କରିବା ।

ପେସ୍‌କସ୍—ଯା. ବି. ଦେଶୀୟ ରାଜ୍ୟରୁ ସରକାରଙ୍କର ପ୍ରାପ୍ୟ ରାଜସ୍ୱ କର, ସମ୍ରାଟଙ୍କୁ ଦିଆଯିବା ନଗଦ ସଲାମୀ, ଉପଢୌକନ, କମରବନ୍ଧ, ବନ୍ଧାକାର କ୍ଷୁଦ୍ର ଅସ୍ତ୍ରବିଶେଷ ।

ପେସ୍‌କାର—ଯା. ବି. ହାକିମଙ୍କ ନିକଟ ମକଦ୍ଦମା ସମ୍ପର୍କୀୟ କାଗଜପତ୍ର ଉପ-ସ୍ଥାପିତ କରିବା କର୍ମଚାରୀ ।

ପେସ୍‌କାରୀ—ଯା.ବି.ପେସ୍‌କାରର ବୃତ୍ତି ବା କର୍ମ ।

ପେସୀ—ଗ୍ରା. ବି. (ସଂ-ଅତସୀ) ଫେସୁ, ଫେସୀ, ମସିଣା, ସୋରିଷଠାରୁ ଶ୍ରେଷ୍ଠ ତୈଳପ୍ରଦ ଶସ୍ୟବିଶେଷ ।

ପେସୁକ—ବିଂ. ଅଭିବର୍ଦ୍ଧନଶୀଳ ।

ପେସ୍ତା—ଯା.ବି. ପିସ୍ତା, କାବୁଲଦେଶୀୟ ଖାଦ୍ୟଫଳବିଶେଷ ।

ପେସ୍ୱର—ବିଂ.(ପିସ୍+ବର) ଗତିଶୀଳ, ଜଙ୍ଗମ, ବିନାଶଯୋଗ୍ୟ, ଶୋଭାଯୁକ୍ତ ।

ପୈଙ୍ଗ୍ଲୁଷ—ବି. ଶ୍ରୋତ୍ର, କର୍ଣ୍ଣ ।

ପୈଠର—ବିଂ.(ପିଠର+ଅ) ସ୍ଥାଲୀପକ୍ୱ ମାଂସାଦି, ହାଣ୍ଡିରେ ସିଝା ଯାଇଥିବା (ମାଂସ) ।

ପୈଠୀନସି—ବି. ମୁନିବିଶେଷ, ଗୋତ୍ର-ପ୍ରବର୍ତ୍ତକ ଋଷିବିଶେଷ ।

ପୈତାମହ—ବିଂ.(ପିତାମହ+ଅ) ପିତା-ମହ ସମ୍ବନ୍ଧୀ (ଧନାଦି),ପିତାମହଙ୍କଠାରୁ ଆଗତ ।

ପୈତାମହକ—ବିଂ. (ପିତାମହ+ଇକ) ପିତାମହଙ୍କଠାରୁ ଆଗତ ବା ପ୍ରାପ୍ତ ।

ପୈତୃକ—ବି°.(ପିତୃ+କ)ପିତୃସମ୍ବନ୍ଧୀୟ, ପିତୃ ପିତାମହାଦିସମ୍ବନ୍ଧୀୟ ।

ପୈତୃକଭୂମି—ସ୍ତ୍ରୀ.ବି.ପିତୃସମ୍ବନ୍ଧୀୟ ସ୍ଥାନ, ପିତୃ ପିତାମହାଦିସମ୍ବନ୍ଧୀୟ ସ୍ଥାନ ।

ପୈତୃମତ୍ୟ—ବି°(ପିତୃମତୀ+ଯ)ଅନୂଢ଼ା କନ୍ୟାଠାରୁ ଜାତ, କାନୀନ( ପୁତ୍ର)

ପୈତୃଷ୍ୱସ୍ରୀ(ସ୍ରେ)ୟ—ପୁ°. ବି. (ପିତୃଷ୍ୱସୃ +ଈୟ-ଏୟ)ପିତାଙ୍କ ଭଉଣୀର ପୁଅ, ପିଉସୀ ପୁଅ ଭାଇ ।

ପୈତ୍ତ—ବି. ( ପିତ୍ତ+ଅ ) ପିତ୍ତଜନିତ, ପିତ୍ତସମ୍ବନ୍ଧୀୟ ।

ପୈତ୍ତଲ—ବି°. (ପିତ୍ତଲ+ଅ) ପିତ୍ତଲ-ସମ୍ବନ୍ଧୀୟ, (ପୁ°.ବି) ଢଳବୃକ୍ଷ,ଢଳଗଛ

ପୈତ୍ତିକ—ବି°. (ପିତ୍ତ+ଇକ) ପିତ୍ତଜ (ବ୍ୟାଧି), ପିତ୍ତପ୍ରଧାନ, ପିତ୍ତସମ୍ବନ୍ଧୀୟ ।

ପୈତ୍ର—କ୍ଲୀ. ବି. (ପିତୃ+ଅ) ପିତୃତୀର୍ଥ, ଅଙ୍ଗୁଷ୍ଠ ଓ ତର୍ଜନୀର ମଧ୍ୟଭାଗ,(ବି°)ପିତୃ-ସମ୍ବନ୍ଧୀୟ (ଶ୍ରାଦ୍ଧାଦି), ପିତାଙ୍କଠାରୁ ଆଗତ ବା ପ୍ରାପ୍ତ ।

ପୈତ୍ରଦିବସ—ବି. ମନୁଷ୍ୟ ଗଣନାରେ ଏକମାସ ସମୟ ପିତାଙ୍କର ଏକଦିନ ।

ପୈ(ତ୍ରିକ)ତ୍ର୍ୟ—ବି°. (ପିତୃ+ଇକ.ଯ) ପିତୃସମ୍ବନ୍ଧୀୟ,ପିତାଙ୍କଠାରୁ ଆଗତ ବା ପ୍ରାପ୍ତ ।

ପୈଲ—ବି.(ପିଲୀ+ଅ)ପିଲାଙ୍କ ଅପତ୍ୟ, ଋଗ୍‌ବେଦ ପ୍ରଯୋକ୍ତା ମୁନିବିଶେଷ ।

ପୈଲବ—ବି(ପେଲବ+ଅ)କୋମଳତା. ମୃଦୁତା, (ବି°) ପୀଲୁବୃକ୍ଷସମ୍ବନ୍ଧୀୟ ।

ପୈଶଲ୍ୟ—କ୍ଲୀ. ବି. ( ପେଶଲ+ଯ ) ପେଶଲତା, କୋମଳତା ।

ପୈଶାଚ—ବି. (ପିଶାଚ+ଅ) ଅଷ୍ଟବିଧ ବିବାହ ମଧ୍ୟରୁ ଏକ, ଛଳେ ବଳେ କୌଶଳେ କନ୍ୟା ଗ୍ରହଣ,(ବି°)ପିଶାଚ-ସମ୍ବନ୍ଧୀୟ, ଆସୁରିକ, ପିଶାଚକୃତ ।

ପୈଶାଚପଦ୍ଧତି—ବି. (କ.ଧା)ପୈଶାଚିକ ଧାରା ବା ରୀତି ।

ପୈଶାଚବିବାହ—ବି.ବଳପୂର୍ବକ କନ୍ୟାକୁ ଅପହରଣ କରି ବିବାହ କରିବା ପଦ୍ଧତି

ପୈଶାଚିକ—ବି°(ପିଶାଚ+ଇକ)ପିଶାଚ ସମ୍ପର୍କୀୟ,ପିଶାଚ ପରିଗୃହୀତ, ପିଶାଚ-କୃତ, ଭୀଭତ୍ସ ।

ପୈଶାଚିକଭାଷା—ବି. ସଂସ୍କୃତ ଭାଷାର ବିକୃତ ରୂପ ଓ ବିକୃତ ଉଚ୍ଚାରଣଯୁକ୍ତ ପ୍ରାକୃତ ଭାଷାବିଶେଷ ।

ପୈଶୁନ(ନ୍ୟ)—କ୍ଲୀ.ବି (ପିଶୁନ+ଅ.ଯ) ପିଶୁନତା, ଧୂର୍ତ୍ତତା, ଶଠତା, ଠକାମି, ଦୁଷ୍ଟାମି, ନୀଚତା, କଷ୍ଟରତା, ଚୁଗୁଲି, (ଗ୍ରା.ବି) ନିନ୍ଦା, କୁର୍ନାମ, ଲଜ୍ଜା, (ବି°) ନିନ୍ଦାଜନକ, ନିନ୍ଦାରେ ମ୍ରିୟମାଣ, ଲଜ୍ଜିତ ।

ପୈଶୁନକ—ବି°. ଉତ୍ତେଜନାକାରୀ ।

ପୈଷ୍ଟ—ବି°. (ପିଷ୍ଟ+ଅ)ପିଷ୍ଟସମ୍ବନ୍ଧୀୟ ।

ପୈଷ୍ଟିକ—ବି°. (ପିଷ୍ଟ+ଇକ) ପିଷ୍ଟସମ୍ବ-ନ୍ଧୀୟ,(ବି)ପିଷ୍ଟକସମୂହ, ମଦ୍ୟବିଶେଷ, ଗୁହ୍ଳଲ ମଦ, ଦେଶୀ ସରପ ।

ପୈଷ୍ଟୀ—ସ୍ତ୍ରୀ.ବି. ବିବିଧ ଧାନ୍ୟ ବିକାରଜ ଅମ୍ଳମଦ୍ୟ, ସୁରାବିଶେଷ, ଗୁହ୍ଳଲୀ ମଦ ।

ପୋ—ବି°. ଶୁଦ୍ଧ, ଶୋଧକ, (ଗ୍ରା. ବି) ସନ୍ତାନ, ପୁଅ, ବଂଶଧର ।

ପୋଇ—ଗ୍ରା. ବି. ପୃଥିକା, ଏକପ୍ରକାର ଶାକଲତା, ଶ୍ରେଷ୍ଠ ପୁଅ, ପିଲା, ଶ୍ରେଷ୍ଠ କନ୍ୟା, ରାଗବିଶେଷ, ପୋଇଶାଗ,(ଗ୍ରା. ଗଞ୍ଜା.ବି) ରେଳପଥ, (ଗ୍ରା. ସମ୍ବ.ବି.) ମାଈ କୁକୁଡ଼ା ।

ପୋଇଁବା—ଗ୍ରା.କି.ପୁଆଇଁବା ଦେଖ ।

ପୋଇକେରାଣ୍ଡି—ଗ୍ରା.ବି.ଶ୍ରେଷ୍ଠ କେରାଣ୍ଡି ମାଛ, ଚୂନାକେରାଣ୍ଡି ।

ପୋଇଖଡ଼ା—ଗ୍ରା. ବି. ପୋଇ ଲତାର ପଞ୍ଚସ୍ଥିନ ଡଙ୍କ । [ ଚନ୍ଦ୍ରିକା ।

ପୋଇଗୁନ୍ଦ—ଗ୍ରା. ବି. ଟଙ୍କାଗୁନ୍ଦ ମାଛ,

ପୋଇଗୁନ୍ଦିଆ—ଗ୍ରା. ବି. (ସଂ-ପୁତ୍ରଞ୍ଜୀବ) ଇଙ୍ଗୁଦୀ, ପୁତ୍ରଞ୍ଜୀବ ଦେଖ ।

ପୋଇଲା—ଗ୍ରା. ପୁ°. ବି. ଦାସୀପୁତ୍ର, ଗୋଲାମ, କ୍ରୀତଦାସ, (ସ୍ତ୍ରୀ)ପୋଇଲୀ ।

ପୋଇଲୀ—ଗ୍ରା.ସ୍ତ୍ରୀ.ବି.ଗୃହକର୍ମୀ,ଦାସୀ ।

ପୋଇଲୀପରିବାର—ଗ୍ରା.ସ୍ତ୍ରୀ. ବି.ଦାସୀ ଓ ରକ୍ଷିତା ସ୍ତ୍ରୀ ଆଦି ।

ପୋଇଲୀମାଇପ—ଗ୍ରା. ବି. ରକ୍ଷିତା ସ୍ତ୍ରୀ, ଉପପତ୍ନୀ, ଦାସୀ ।

ପୋଏ—ଗ୍ରା.ବି.ପୁଅମାନେ,ପିଲାମାନେ ।

ପୋଏଳା—ଗ୍ରା. ବି. ପୋହଳା,ପ୍ରବାଳ ।

ପୋକ—ଗ୍ରା. ବି. ( ସଂ-ପୁତ୍ରିକା ) କୀଟ, କୀଟପତଙ୍ଗ, ଅଂଶେଇ, କୃମି ।

ପୋକକାଟିବା—ଗ୍ରା.କି.କୌଣସି ବସ୍ତୁକୁ ପୋକ ଆକ୍ରମଣ କରି ନଷ୍ଟ କରିବା ।

ପୋକଖିଆ—ଗ୍ରା.ବି°.କୀଟଦଷ୍ଟ,କୀଟଦ୍ୱାରା ନଷ୍ଟ ହୋଇଥିବା ।

ପୋକଡାଉଁଡାଉଁ—ଗ୍ରା. ବି°. ପୋକ ସାଲୁ ସାଲୁ ଦେଖ ।

ପୋକ(ଖୋ)ଡ(ଡ଼ା)—ଗ୍ରା.ବି°.ଦୃଢ଼,କଠିନ, ମଜବୁତ, ପକ୍କା, ପାକଲ, ସୁପରଣତ, ଅନୁଭବୀ, ବୃଦ୍ଧ ।

ପୋକପଡ଼ିବା—ଗ୍ରା. କି. ମାଛିବସିବା, ଅଂଶେଇବସିବା, ବ୍ରଣ ଆଦିରେ କୀଟ-ଜନ୍ମିବା ।

ପୋକଫୁଟିବା—ଗ୍ରା.କି. କୌଣସି ସଢ଼ା-ପଦାର୍ଥ ବା ଘାଆରେ ପୋକଜନ୍ମିବା ।

ପୋକଯୋକ—ଗ୍ରା. ବି. ପୋକଆଦି ।

ପୋକ(ଡ଼ା)ଗ୍ର—ଗ୍ରା. ବି°. ପୋକଖିଆ, କୀଟଦଷ୍ଟ ।

ପୋକଶୁଙ୍ଘା—ଗ୍ରା. କି. ସୋମରାଜ୍ୟାଦି ବର୍ଗର ବର୍ଷାୟୁ ଶାକ ବିଶେଷ ।

ପୋକସାଲୁସାଲୁ—ଗ୍ରା. ବି°. କୀଟପୂର୍ଣ୍ଣ, ଯହିଁରେ ବହୁତ ପୋକ ହୋଇଥାଆନ୍ତି

ପୋକ୍ତ—ଗ୍ରା. ବି°. ପରିପକ୍ୱ, ପାକଲ, ଦୃଢ଼, କଠିନ ।

ପୋକ୍ତା—ଗ୍ରା. ବି°. ପରିପକ୍ୱ, କଠିନ ।

ପୋକ୍ତାନ—ଗ୍ରା. ବି. ଦୃଢ଼ତା, ପକ୍ୱତା, ସମ୍ପୂର୍ଣ୍ଣତା, ଲୁଣରାନ୍ଧିବା, ଆମଡାଣ୍ଡା ।

ପୋଖତାନ—ଗ୍ରା.ବି°. ପୁରୁଷାନୁକ୍ରମିକ, ପାରମ୍ପରିକ, ଅତି ପ୍ରାଚୀନ ଓ ଭଦ୍ର (ପରିବାର) ।

ପୋଖତା—ଗ୍ରା. ସ୍ତ୍ରୀ. ବି. ସନ୍ତାନପ୍ରସବ, ନବପ୍ରସୂତା ଅବସ୍ଥା, ଜାତାପତ୍ୟା ସ୍ତ୍ରୀ, (ବି°) ସଦ୍ୟପ୍ରସୂତା

ପୋଷଣ୍ଡବୈରାଗ୍ୟ—ଗ୍ରା. ବି. (ଲ.ଅର୍ଥ) ଅଳ୍ପକାଳ ସ୍ଥାୟୀ ବୈରାଗ୍ୟ ।

ପୋଖରଜ—ଗ୍ରା. ବି. ପୁଷ୍କରଗାମିଣୀ ।
ପୋଖରିଆ—ଗ୍ରା. ବି. ଦେଉଳ ମଧ୍ୟସ୍ଥ ଚତୁରସ୍ର ବନ୍ଧୁର, ଚତୁରସ୍ରଗର୍ତ୍ତ ।
ପୋଖରୀ—ଗ୍ରା. ବି. (ସଂ-ପୁଷ୍କରିଣୀ) ପୁଷ୍କରିଣୀ, ବନ୍ଧ, ଝାଡ଼ା, ହୁଇକା ।
ପୋଖରୀପାଣି—ଗ୍ରା. ବି. ଝାଡ଼ାଫେରିଯିବା, ଝାଡ଼ା, ମଇଦାନଯିବା, ପୋଖରୀର ଜଳ ।
ପୋଗଣ୍ଡ—ପୁଂ.ବିଂ. (ଅପ୍+ଗମ୍+ଡ଼) ପାଞ୍ଚବର୍ଷରୁ ଷୋହଳବର୍ଷ ବୟସ୍କ,ବିକଳାଙ୍ଗ, ସ୍ୱଭାବତଃ ନ୍ୟୁନାଧିକାଙ୍ଗ, (ବି) ବିକଳାଙ୍ଗ ବ୍ୟକ୍ତି, ପାଞ୍ଚବର୍ଷରୁ ବଡ଼ ଓ ଷୋହଳ ବର୍ଷରୁ ସାନପିଲା ।
ପୋଙ୍ଗା—ଗ୍ରା.ବି. ବାଉଁଶର ସରୁ ନଳ ।
ପୋଙ୍ଗୀ—ଗ୍ରା.ବି, ବୌଦ୍ଧସନ୍ନ୍ୟାସୀ, ଚୀନଦେଶୀୟ ଏକପ୍ରକାର ନରମ ରେଶମ କନା ।
ପୋଚ—ଗ୍ରା.ବି. (ସଂ-ପୂତି) ବଦବୋଇ, ଦୁର୍ଗନ୍ଧ, ପୂତିଗନ୍ଧ, (ପ୍ରା. ଗଞ୍ଜାମ. ବିଂ) ସଢ଼ା, ପଚା, ପୋଚଆ ।
ପୋଚର—ଗ୍ରା.ବିଂ. ସଢ଼ା,ପଚା,ମଇଳା ।
ପୋଚୁଇ—ପ୍ରା. (ସିଂହଭୂମ) ବି. ଗୁହାଳ ଗବାଆଦିକୁ ସଢ଼ାଇ ତାକୁ ସିଝା ଚୂଆଇ ଯେଉଁ ମଦ ତିଆର କରାଯାଏ ।
ପୋଚଆ—ଗ୍ରା. ବିଂ. ପୋଚର, ସଢ଼ା ।
ପୋଛ—ଗ୍ରା.ବି. (ସଂ-ପ୍ରୋଞ୍ଛନ)କୌଣସି ପଦାର୍ଥ ଉପରେ ରଙ୍ଗଆଦି ବୋଳିବାର ଥର, ସ୍ତର, ଲେପ, ବନ୍ଧାଳି ଓ ଚଦାଣଆଦି ଶସ୍ତର ଯେଉଁ ଅଂଶ ଶାଣିଦିଆଯାଇ ପାହାଚିଆ ହୋଇଥାଏ, ବିନାଶ, ଧ୍ୱଂସ, ମୂଳପୋଛ, ଜ୍ୱରାଦିରୁ ମୁକ୍ତ ବ୍ୟକ୍ତିର ପ୍ରଥମେ ସାମାନ୍ୟଗାଧୁଆ ।
ପୋଛା—ଗ୍ରା. ବି. ପୋଛିବା, ଲେପିବା, ବୋଳିବା, ପରିଷ୍କରିବା, ଗାତ୍ରମାର୍ଜନୀ, ଗାମୁଛା, (ବିଂ) ପୋଛାହୋଇ ସମ୍ପୂର୍ଣ୍ଣରୂପେ ହୋଇଥିବା, ଲେପିତ ।
ପୋଛାପୋଛି—ଗ୍ରା,କ୍ରି,ବିଂ. ଉତ୍ତମରୂପେ ପୋଛିକରି,ସମ୍ପୂର୍ଣ୍ଣରୂପେ ନିଃଶେଷକରି, ସମ୍ପୂର୍ଣ୍ଣରୂପେ ପରିଷ୍କାରକରି ।
ପୋଛିବା—ଗ୍ରା. କ୍ରି. ପରିଷ୍କାର କରିବା, ପ୍ରଲେପ କରିବା, ଲିପିବା, ମାର୍ଜନ କରିବା, ନିଃଶେଷ କରିବା, ଅଦୃଶ୍ୟ କରାଇବା, ପରିଷ୍କରିବା, କାଢ଼ିବା ।
ପୋଟ—ପୁଂ. ବି (ପୁଟ୍+ଘ.ଅ)ବେଷ୍ଟନ, ଭୂମି, ଯୋଗ, ସଂଯୋଗ, ସଂଶ୍ଲେଷ, ମୂଳଦୁଆ, ସଦ୍ଭାବ, ସ୍ୱର୍ଣ, ମିଳନ ।
ପୋଟକ—ପୁଂ.ବି.(ପୁଟ+ଅକ)ସେବକର, ଭୃତ୍ୟ, (ସ୍ତ୍ରୀ) ପୋଟିକା ।
ପୋଟଗଲ—ବି. (ପୋଟ+ଗଲ୍+ଅ) କାଣ୍ଡଶର, ନଳତୃଣ, କାଶ,କାଉଁଶି, ମତ୍ସ୍ୟ, ବୈରଙ୍ଗିକ ସର୍ପବିଶେଷ ।
ପୋଟଲ—ବି. (ପୁଟ୍+ଅଲ) ମିଳନ, ସଂଶ୍ଲେଷ, ଯୋଗକରଣ, ଆଲିଙ୍ଗନ, ଭିତ୍ତି, ମୂଳଦୁଆ, ପୋଟଳା, ପୁଡ଼ା, (ଗ୍ରା.ବି) ପଟୋଳ ଦେଖ ।
ପୋଟଲା—ଗ୍ରା. ବି. ପୁଡ଼ା ।
ପୋଟଲାପୋଟଲି—ଗ୍ରା. ବି. ପରସ୍ପର ଆଲିଙ୍ଗନ,ବଡ଼ ଓ ସାନ ସବୁପୋଟଲାମାନ, ସବୁଲୁଗାପଟା ।
ପୋଟଳି—ଗ୍ରା. ବି. (ସଂ-ପୋଟଳିକା) ଗ୍ଲେଟ ପୁଡ଼ା, ଗ୍ଲେଟ ପୋଟଲା, (ସଂ—ପଟଳ) ପଟି, (ଯଥା—ଅନ୍ତପୋଟଳ) ।
ପୋଟଳିକା—ସ୍ତ୍ରୀ. ବି. (ପୁଟ୍+ଅଲ+କ+ଆ) ପୋଟଲା, ପୁଡ଼ା ।
ପୋଟଳବଣିଆ—ଗ୍ରା. ବି. ଗନ୍ଧବଣିକ, ଯେଉଁ ବଣିଆମାନେ ମସଲାଆଦି ବିକନ୍ତି ।
ପୋଟା—ବି, (ପୁଟ୍+ଆ) ସ୍ତ୍ରୀଲକ୍ଷଣଯୁକ୍ତ ପୁରୁଷ, ଯେଉଁ ସ୍ତ୍ରୀମାନଙ୍କର ସ୍ତନ ଓ ଶ୍ମଶ୍ରୁ ଅଛି, ପୋଇଲି, ଦାସୀ, ଅନ୍ତ୍ରଭୁଜଙ୍ଗୀ ।
ପୋଟାଳିବା—ପ୍ରା. (ସମ୍ବ) କ୍ରି. ଆଲିଙ୍ଗନ କରିବା, କୁଣ୍ଢାଇବା ।
ପୋଟିକ—ବି. (ପୁଟ୍+ଇକ)ବିସ୍ଫୋଟକ, ବଥ, ଫୋଟକା ।
ପୋଟୀ-ବି.(ପୋଟ+ଈ)ବୃହତ୍ କୁମ୍ଭୀର ।
ପୋଡ଼—ଗ୍ରା. କ୍ରି, ପୋଡ଼ିବା, ଉତ୍ତାପନ, ତତାଇବା, ଦାହ, (ପ୍ରା. ସମ୍ବଲ. ବି) ପୋଡ଼ୁଅ, ଅଣ୍ଡିରା ମଇଁଷି,(ବିଂ) ବଡ଼ ।
ପୋଡ଼ଲା—ଗ୍ରା. ବିଂ. ଜଳୁଥିବା, ଜଳିଯାଉଥିବା ।
ପୋଡ଼ପାଡ଼—ଗ୍ରା. ପୁଂ. ବିଂ. (ଗ୍ରାମ୍ୟ) ଅତି ମନ୍ଦ ବା ମ୍ଳାନ (ବ୍ୟକ୍ତି), ପୋଡ଼ାମୁହାଁ ।
ପୋଡ଼ପିଠା—ଗ୍ରା.ବି. କଟାପିଠଉକୁ ମାଟିଆଦି ପାତ୍ରରେ ରଖି ପାତ୍ରର ତଳେ ଓ ଉପରେ ନିଆଁ ଦେଇ ସିଦ୍ଧକରାଯିବା ପିଠା ।
ପୋଡ଼ା—ଗ୍ରା. ବିଂ. ଦଗ୍ଧ, ଭସ୍ମୀଭୂତ, ତାପିତ, ସନ୍ତପ୍ତ, ତୁଚ୍ଛ, ମ୍ଳାନ, ବ୍ୟର୍ଥ, ଅତିମନ୍ଦ, (ବି) ଦହନ,ଶରୀରର ଦାହ, ନିଆଁରେ ପକାଇ ସିଦ୍ଧକରାଯିବା ଫଳଆଦି, ନିଆଁଲଗାଯିବା ।
ପୋଡ଼ା(ଡେ)ଇବା—ଗ୍ରା. କ୍ରି. ପୋଡ଼ିବା କ୍ରିୟାର ଣିଜନ୍ତରୂପ, ଅନ୍ୟଦ୍ୱାରା ପୋଡ଼ିବାକ୍ରିୟା କରାଇବା ।
ପୋଡ଼ାକପାଳ—ଗ୍ରା. ବି. ମନ୍ଦଭାଗ୍ୟ ।
ପୋଡ଼ାକପାଳିଆ—ଗ୍ରା. ବିଂ. ମନ୍ଦଭାଗ୍ୟ, ହତଭାଗ୍ୟ ।
ପୋଡ଼ାଘା—ଗ୍ରା. ବି. ନିଆଁରେ ପୋଡ଼ିଯିବା ଦ୍ୱାରା ଦେହରେ ଯେଉଁ ଘାଆ ହୋଇଥାଏ ।
ପୋଡ଼ାଘାରେଚୂନଦେବା—ଗ୍ରା. କ୍ରି. (ଲ.ଅର୍ଥ)ବେଦନା ଅନୁଭବ କରୁଥିବା ବ୍ୟକ୍ତିକୁ ଆହୁରି ବେଦନା ଦେବା ।
ପୋଡ଼ାତଦ୍ଦୁଡ଼—ପ୍ରା.(ଗଞ୍ଜାମ) ବି.ହରଡ଼ ।
ପୋଡ଼ାନାରଙ୍ଗ—ଗ୍ରା. ବି. ଶିଶୁମାନଙ୍କ ମୁହଁରେ ଓ ଦେହରେ ହେବା ଚେକା ଚେକା ଫୋଟକା ପରି ବ୍ରଣବିଶେଷ ।
ପୋଡ଼ାପେଟ—ଗ୍ରା. ବି. ତୁଚ୍ଛଉଦର ଜ୍ୱାଳାରେ ପ୍ରଦୀପ୍ତ ଉଦର,କ୍ଷୁଧାର ଜ୍ୱାଳା ।
ପୋଡ଼ାଶଙ୍କର(ରୀ)—ଗ୍ରା.ବି. ଚଳକାରେ ଦେଖାଯିବା ଏକପ୍ରକାର ପକ୍ଷୀ ।
ପୋଡ଼ି—ଗ୍ରା.ବି.ଅଗ୍ନିସଂଯୋଗର ଦାହ ।
ପୋଡ଼ିଖାଇବା—ଗ୍ରା. କ୍ରି. (ଲ.ଅର୍ଥ) ସର୍ବଥା ତ୍ୟାଗ କରିବା, କୌଣସି ବ୍ୟକ୍ତିର ସର୍ବନାଶ ଘଟାଇବା,ପାଶୋରି ପକାଇବା ।

ପୋଡ଼ିଦେବା—ଗ୍ରା. କି. କୌଣସି ବସ୍ତୁକୁ ଅଗ୍ନି ଦ୍ୱାରା ଭସ୍ମୀଭୂତ କରିବା,(ଲ.ଅର୍ଥ) ବିନାଶ କରିବା, ନମାନିବା, କୌଣସି ପଦାର୍ଥକୁ ନଷ୍ଟକରିଦେବା ।

ପୋଡ଼ିପାଡ଼ିଦେବା—ଗ୍ରା. କି. ନିଃଶେଷ ରୂପେ ପୋଡ଼ିଦେବା, (ଲ.ଅର୍ଥ)ସର୍ବଥା ମନରୁ ପାଶୋରିଦେବା ।

ପୋଡ଼ିପାଡ଼ିଯିବା—ଗ୍ରା. କି. ସମ୍ପୂର୍ଣ୍ଣ ରୂପେ ଭସ୍ମୀଭୂତ ହେବା ।

ପୋଡ଼ିବା—ଗ୍ରା. କି. (ସକର୍ମକ) ତତାଇବା,ନିଆଁରେ ଉତ୍ତପ୍ତ କରିବା,ନିଆଁଲଗାଇବା, ବିନାଶ କରିବା, ଶବଦାହ କରିବା, ଅତି ସନ୍ତପ୍ତ କରିବା, ଅଗ୍ନିଭିତରେ ପକାଇ ସିଦ୍ଧ କରିବା, କ୍ଷାର ଉତ୍ପାଦନ କରିବା ପାଇଁ କଦଳୀବାଘୁଙ୍ଗା ଆଦିକୁ ଦଗ୍ଧ କରିବା, କଞ୍ଚା ଇଟାକୁ ବା ହାଣ୍ଡିକୁ (ଭାଟିରେ ବା ଉହାରେ) ଦଗ୍ଧ କରିବା, ପାଶୋରିଦେବା, (ଅକର୍ମକ) ନିଆଁ ଲାଗିଲାପରି ଜ୍ୱାଳା କରିବା, (ମନ) ଦୁଃଖରେ ବା ଚିନ୍ତାରେ ସନ୍ତପ୍ତ ହେବା,ବିନଷ୍ଟହେବା, ପୋଡ଼ିଯିବା ।

ପୋଡ଼ିଯା--ଗ୍ରା.ଅବ୍ୟ.ରୁ ଭସ୍ମୀଭୂତ ହୋ ।

ପୋଡ଼ିଯାଉ—ଗ୍ରା.ଅବ୍ୟ. ଗୁଡ଼ ସେକଥା, ଅମୁକ ବିଷୟରେ ଉଲ୍ଲେଖ କର ନା, (ଅମୁକ ବସ୍ତୁ ବା ବିଷୟ)ଥିଲେ କେତେ ଗଲେ କେତେ (ଉକ୍ତ ପ୍ରସଙ୍ଗ ବା ବସ୍ତୁ) ଚୁଲିକି ଯାଉ ।

ପୋଡ଼ିଯିବା—ଗ୍ରା.କି. ଦଗ୍ଧହେବା,ଅତି ଉତ୍ତପ୍ତ ହେବା, ଭସ୍ମୀଭୂତ ହେବା ବା ଅଙ୍ଗାରରେ ପରିଣତ ହେବା, ନିଆଁଲାଗିବା,ଯେତେ ପରିମାଣରେ ଅଗ୍ନି ତେ ସୁସିଦ୍ଧ ହେବାର କଥା,ତହିଁରୁ ବେଶିପରିମାଣରେ ଅଗ୍ନିପ୍ରୟୋଗ ଦ୍ୱାରା(ଭାତ ବା ତରକାରି ଆଦି)ନଷ୍ଟହେବା, (ଲ.ଅର୍ଥ) ବିନଷ୍ଟହେବା ।

ପୋଡ଼ିଶା—ପ୍ରା.(ସମ୍ବ) ବି. ଭାକୁଡ଼ମାଛ ।

ପୋଡ଼ୁ—ପୁଂ.ବି.( ପୁଡ଼+ଉ ) କପାଳାସ୍ଥି ତଳ ।

ପୋଡ଼ୁ(ଢ଼ୁ)ଅ(ହ)—ଗ୍ରା.ବି. ଅଣ୍ଡିରମଇଁଷି ।

ପୋଢ଼—ଗ୍ରା.ବି.ପୋଢ଼ୁଅ, ଅଣ୍ଡିରମଇଁଷି ।

ପୋଢ଼ୁଆଁ—ଗ୍ରା. ବିଂ. ପ୍ରଥମ, ମାତା ଗର୍ଭରୁ ଜାତ ସର୍ବଜ୍ୟେଷ୍ଠ (ସନ୍ତାନ) ।

ପୋଢ଼ୁଆଁଅଷ୍ଟମୀ—ଗ୍ରା. ବି. ପ୍ରଥମାଷ୍ଟମୀ, ମାର୍ଗଶିର କୃଷ୍ଣଅଷ୍ଟମୀ ।

ପୋଣ୍ଡୁଅ—ଗ୍ରା. ବି. ଭାତପୁଡ଼ା ଦେଖ ।

ପୋତ—ବି. (ପୂ+ର୍ମି.ତ) ବୋଇତ, ସମୁଦ୍ରଯାନ, ଜାହାଜ,ଜୀବଶିଶୁ,ଶାବକ, ଦଶବର୍ଷ ବୟସ୍କ ହାତୀଛୁଆ, ନୌକା, ବହିତ୍ର, ଆହୁଲା, ଗୃହନିର୍ମାଣର ସ୍ଥାନ, ବାସ୍ତୁ, ବସ୍ତ୍ର,କେରପାଲ,ପାଲ, ପ୍ରସ୍ତରବିଶେଷ, କାଚନିର୍ମିତ କ୍ଷୁଦ୍ରମାଳି ।

ପୋତକ—ବି. (ପୋତ+କ) ପ୍ରାଣୀର ଛୁଆ, ପୋତ ପଦାର୍ଥ, ନାଗଭେଦ. ଶିଶୁ, ଛଅମାସ ବୟସ୍କ ଶିଶୁ, ଦଶବର୍ଷ ବୟସ୍କ ହସ୍ତୀ ।

ପୋତକାର—ଗ୍ରା. ବି. ନାବିକ, ନାହୁର, ଜାହାଜର ମାଲିକ ।

ପୋତକୀ—ସ୍ତ୍ରୀ. ବି. (ପୂତ୍ର+କ.ଅକ+ଈ) ପୋଇଶାଗ, ପୂତିକା,ଶ୍ୟାମାପକ୍ଷୀ, ଗୃହକାଳିକା ଚଢ଼େଇ ।

ପୋତଜ—ପୁଂ. ବି. କୁଳଗଜ, ଶିଶୁରୂପେ ଜାୟମାନ ଗଜାଶାବକ ।

ପୋତଧାରୀ—ପୁଂ.ବି. ଜାହାଜର ଅଧକ୍ଷ, କର୍ଣ୍ଣଧାର ।

ପୋତନ—ବିଂ. (ପୂ+ତନ) ପବିତ୍ରତା କାରକ, ଶୁଦ୍ଧ, ପବିତ୍ର, ସ୍ୱଚ୍ଛ ।

ପୋତନାୟକ—ପୁଂ. ବି. ( ପୋତ+ନାୟକ)ଜାହାଜର ମାଲିକ, କାପ୍ତାନ, ପୋତାଧ୍ୟକ୍ଷ, ନୌକାର ମାଝି ।

ପୋତପାଳ—-ବି. ( ପୋତ+ପାଳ ) ପୋତନାୟକ ଦେଖ ।

ପୋତପ୍ଲବ—ବିଂ. (ପୋତ+ପ୍ଲୁ+ଅ) ଯେ ନୌକା ଦ୍ୱାରା ନଦୀଆଦି ପାରିହୁଏ

ପୋତବଣିକ୍ ବି.ବୋଇତଆଳ, ନୌକା ଦ୍ୱାରା ଜଳ ପଥରେ ବାଣିଜ୍ୟ କରିବା ବ୍ୟକ୍ତି, ସାଂଯାତ୍ରିକ ।

ପୋତବାହ—ବି.(ପୋତ+ବହ୍+କ. ଅ) ପୋତଚାଳକ, ନାବିକ, ମାଝି, ନିର୍ଯ୍ୟାମକ ।

ପୋତବ୍ୟସନ—କ୍ଲୀ.ବି.(୬ତତ୍ପୁ)ପୋତସଙ୍କଟ, ଜଳଯାନର ବିପଦ ।

ପୋତରକ୍ଷ—ବି. (ପୋତ+ରକ୍ଷ୍+ଣ. ଅ) ଡଙ୍ଗାର ମଙ୍ଗ, କର୍ଣ୍ଣ ।

ପୋତା—ବି.(ପୂ+କ.ତ) ବାସ୍ତୁ, ଗୃହଭୂମି, ଭିତ୍ତିମୂଳ, ମୂଳଦୁଆ, ଯଜ୍ଞାଦି କର୍ମରେ ନିୟୋଜିତ ପୁରୋହିତ, (ଗ୍ରା. ବି) ପ୍ରୋଥିତ, ପୋତିବା,(ବିଂ)ଭୂଗର୍ଭରେ ପ୍ରୋଥିତ (ଧନ),(ପ୍ରା.ବସ୍ତ୍ରଚ.ବି) ଅଣ୍ଡା, ବସ୍ତା.(ଯା.ବି) ଅଣ୍ଡକୋଷ,ଅଣ୍ଡକୋଷ ଆଚ୍ଛାଦକ ଚର୍ମ ଓ ମାଂସ । [ ଗୃହଭିତ୍ତି ।

ପୋତାଚ୍ଛାଦନ--କ୍ଲୀ.ବି.ବସ୍ତ୍ରକୁଟୀର,ତମ୍ବୁ,

ପୋତାଦେଶ—ଗ୍ରା. ବି. କୋଡ଼ଗାତ ।

ପୋତାଧାନ—ବି. (ପୋତ+ଆଧାନ) ମାଛ ଜାଆଁଳଙ୍କ ମନ୍ଦା ।

ପୋତାଧିଷ୍ଠାନ—ବି. (୬ତତ୍ପୁ) ପୋତାଶ୍ରୟ ଦେଖ । [ ଦେଖ ।

ପୋତାଧ୍ୟକ୍ଷ—ବି (୬ତତ୍ପୁ)ପୋତନାୟକ

ପୋତାନୋଡ଼ା(ଲୋଡ଼ା)ନିଧିନିଖାତ--ଗ୍ରା. ବି. ଭୂଗର୍ଭରେ ଥିବା ଓ ଭୂପୃଷ୍ଠରେ ଥିବା ସର୍ବପ୍ରକାର ଧନ ।

ପୋତାମୁହାଁ—ଗ୍ରା.ପୁଂ.ବିଂ. ଯେଉଁ ବ୍ୟକ୍ତି ସର୍ବଦା ତଳକୁ ମୁହଁ ପୋତିଥାଏ ଅର୍ଥାତ୍ ନୁଆଇଁ ଥାଏ ।

ପୋତା ଯେତେ ଉଞ୍ଚ ତେ(ସେ)ତେ—ଗ୍ରା. (ପ୍ରବଚନ ) ଯେଉଁ ଘରର କାନ୍ଥ ବା ଖୁଣ୍ଟ ଭୂମି ଉପରକୁ ଯେତେ ଉଠିଥାଏ ଭୂମିତଳେ ମୂଳଦୁଆ ସେତିକି ଥାଏ, (ଲ.ଅର୍ଥ) ଯେଉଁ ବ୍ୟକ୍ତିର ବାହାରେ ବ୍ୟବସାୟାଦିରେ ଯେତେ ଧନ ଲାଗିଥାଏ, ଘରେ ମଧ୍ୟ ସେତିକି ଧନ ଥାଏ ।

ପୋତାରୋହୀ—ପୁଂ. ବିଂ. ଜାହାଜରେ ଚଢ଼ି ଯାତ୍ରା କରୁଥିବା ।

ପୋତାଶ୍ରୟ—ପୁଂ.ବିଂ.(ପୋତ+ଆଶ୍ରୟ) ୬ତତ୍ପୁ; ଜାହାଜାଦି ଲାଗିବାର ସ୍ଥାନ, ବନ୍ଦର ।

ପୋତିବା—ଗ୍ରା. କ୍ରି. (ସଂ-ପ୍ରୋଥ୍‌ଧାତୁ) ଭୂଗର୍ଭରେ ନିହିତ କରିବା, ପ୍ରୋଥିତ କରିବା, ଭୂଗର୍ଭରେ ପୂରାଇବା, ମୁହଁ ତଳକୁ କରିବା, ଗର୍ତ୍ତଆଦିକୁ ମୃତ୍ତିକା ଦ୍ୱାରା ପୂର୍ଣ୍ଣ କରିବା, ରୋପଣ କରିବା, କୌଣସି ଜନଙ୍କଆଦିକୁ ପ୍ରକାଶ ନ କରିବା, (ଲ. ଅର୍ଥ) ବହୁ ପରିମାଣରେ କୌଣସି ବସ୍ତୁ ଦ୍ୱାରା କୌଣସି ବ୍ୟକ୍ତିକୁ ଆକ୍ରାନ୍ତ କରିବା ।

ପୋତୁକ—ପ୍ରା.(ମେଦିନୀ)ବି.ବେଙ୍ଗଲା ।

ପୋତ୍ର—ବି. ( ପୂତ୍ର+ଣ.ତ୍ର ) ଶୂକରର ମୁଖାଗ୍ର, ଘୁଷୁରି ଥୋମଣି, ହଳମୁଖ. ଲଙ୍ଗଳ ଲୁହାର ମୁହଁ, ବକ୍ତ୍ର, କ୍ରୋଡ଼, ବହିତ୍ର, ଆହୁଲା, ନାବ ।

ପୋତ୍ରାୟୁଧ—ବି(ପୋତ୍ର+ଆୟୁଧ)ବି.ସ୍ତ୍ରୀ, ଘୁଷୁରି, ବାରହା । | ଶୂକର ।

ପୋତ୍ରୀ—ପୁଂ.ବି.(ପୋତ୍ର+ଇନ୍)ଘୁଷୁରି

ପୋଥକ୍କୀ—ବି. ଶିଶୁମାନଙ୍କର ଚକ୍ଷୁର ଏକପ୍ରକାର କଷ୍ଟପ୍ରଦ ବ୍ରଣ ।

ପୋଥା(ଥି)—ଗ୍ରା.ବି.(ସଂ-ପୁସ୍ତୀ) ପୁସ୍ତକ, ବହି.ତାଳପତ୍ରର ଲେଖାଗ୍ରନ୍ଥ,ପୋଥିରେ ଲେଖାଥିବା ବିଷୟ ପରି ଦୀର୍ଘ ବିଷୟ, ଶାସ୍ତ୍ର, ଧର୍ମଶାସ୍ତ୍ର ।

ପୋଥିଗାଦି—ଗ୍ରା. ବି. ଭାଗବତ, ଧର୍ମ ପୁସ୍ତକମାନ ଏକତ୍ର ରଖାଯାଇ ପ୍ରତିଦିନ ପୂଜା କରାଯାଉଥିବା ସ୍ତୂପ, ଲାଇବ୍ରେରି, ବହୁଗ୍ରନ୍ଥ ସଂଗ୍ରହ ।

ପୋଥିରେ ଯା(ଯେ)ଇଁ—ଗ୍ରା.ବି.ଦେବତା ରୂପେ ପୂଜିତ ପୋଥିଗାଦି, ଭାଗବତାଦି ଗାଦି ।

ପୋଥିପତ୍ର—ଗ୍ରା.ବି.ପୁସ୍ତକଆଦି,ଦେବପତ୍ର

ପୋଥିପାଠ—ଗ୍ରା.ବି. ପୁସ୍ତକସ୍ଥ ଅନଭିଜ୍ଞ ବିଦ୍ୟା, ପୁସ୍ତକରେ ଲେଖା ହୋଇଥିବା ବିଷୟ ।

ପୋଥିପୂଜା—ଗ୍ରା. ବି. ଦେବତା ରୂପେ କରାଯିବା ପୁସ୍ତକମାନଙ୍କୁ ଆରାଧନା ।

ପୋଦ—ବି.ହିନ୍ଦୁ ଜାତିବିଶେଷ, ପୌଣ୍ଡ୍ର କ୍ଷତ୍ରିୟ ବା ବ୍ରାତ୍ୟ କ୍ଷତ୍ରିୟ ଉପାଧିଧାରୀ ହିନ୍ଦୁ ।

ପୋଦ୍ଦା(ଦ୍ଦା)ର—ଯା.ବି.ଟଙ୍କା କୃତ୍ରିମ କି ଭଲ ତାହା ପରୀକ୍ଷା କରିବା ବ୍ୟକ୍ତି. ତହବିଲଦାର କର୍ମଚାରୀ, ବଣିଆ, ସ୍ୱର୍ଣ୍ଣ-ରୌପ୍ୟ ବ୍ୟବସାୟୀ ବଣିକ, ମୁଦ୍ରା ବ୍ୟବସାୟୀ, ଅର୍ଥବଣିକ୍, ଧନରକ୍ଷକ, ଖଜାଞ୍ଚି, ଖଜଣାଖାନାରେ ଯେ ଟଙ୍କା ଗଣି କରି ରଖନ୍ତି ।

ପୋପ୍—ଯା.ବି.ଖ୍ରୀଷ୍ଟିୟାନମାନଙ୍କ ରୋମାନ୍ କାଥଲିକ୍ ସମ୍ପ୍ରଦାୟର ଧର୍ମଗୁରୁ ।

ପୋୟ(ୟେ)ଳା—ଗ୍ରା. (ପ୍ରାଚୀନ ପଦ୍ୟ) ବି. ପୋହଳା, ପ୍ରବାଳ ।

ପୋରଆ—ଗ୍ରା.ବିଂ(ସଂ-ପୁରାତନ)ଧତଡ଼ା, ପୁରୁଣା, ଜୀର୍ଣ୍ଣ ।

ପୋର୍ଟ୍—ଯା.ବି.ସମୁଦ୍ର ଉପକୂଳସ୍ଥ ବାଣି-ଜ୍ୟର କେନ୍ଦ୍ର ନଗର, ବନ୍ଦର ।

ପୋଲ—ବି. ଫୁଲୁକା ରୋଟି, ପିଷ୍ଟକ ବିଶେଷ,(ଯା.ବି)ନାଳିଟିବିର ସୁଡ଼ଙ୍ଗ, ଟଙ୍ଗ, (ଗ୍ରା.ବି)ନଳା, ବାଉଁଶ ବା ନଳ ମଧ୍ୟସ୍ଥ ଛିଦ୍ର, ଉଡ଼କଣା, ବିବର, (ବିଂ) ପୋଲ୍, ଫମ୍ପା, ଅନ୍ତଃସାରହୀନ, ଶୂନ୍ୟ ।

ପୋଲ୍—ଗ୍ରା. ବିଂ.ଫମ୍ପ,ଅନ୍ତଃସାରଶୂନ୍ୟ. ସାରହୀନ, ମାଗଣା,ମୋଫତ୍, ଅଯତ୍ନ-ସିଦ୍ଧ ।

ପୋଲଖିଆ—ଗ୍ରା. ବିଂ. ଯେ ମାଗଣା ଭୋଜନ କରେ,ପରାନ୍ନଭୋଜୀ,ମାଗଣା-ଖିଆ, ମୋଫତ୍ ।

ପୋଲାଣ୍ଡ—ୟୁରୋପ ମହାଦେଶର ଅନ୍ତ-ର୍ଗତ ଗୋଟିଏ ପ୍ରାଚୀନ ରାଜ୍ୟ ।

ପୋଲନ୍ତ—ପ୍ରା. (ଗଞ୍ଜାମ) ବିଂ. ହାଲୁକା ବା ଫୁସ୍‌ଫୁସିଆ ହୋଇ ଚଷା ହୋଇଥିବା (ଭୂମି) ।

ପୋଲଫାଙ୍କିଆ—ଗ୍ରା. ବିଂ.ଦାୟିତ୍ୱ ଜ୍ଞାନ-ଶୂନ୍ୟ, ନିଷ୍କର୍ମା, ଯେ ମାଗଣାରେ କାମ ତୁଠାଇ ନିଏ ।

ପୋଲରେଖାଇ ମେଲାରେ ଶୋଇବା—ଗ୍ରା. (ପ୍ରବଚନ) ପରାନ୍ନ ଭୋଜନ କରି ପର-ଘରେ ଶୋଇବା, ( ଲ.ଅର୍ଥ ) କିଛି ରୋଜଗାର ନକରି ପୋଲଫାଙ୍କିଆ ହୋଇ ଚଳିବା ।

ପୋଲିକା—ସ୍ତ୍ରୀ. ବି. ପୁଳି ରୋଟି,ପିଷ୍ଟକ ବିଶେଷ, ପତଳା ରୋଟି ।

ପୋଲିନ୍ଦ—ପୁଂ.ବି.ନୌକାବସ୍ତ୍ରବିଭେଦ ।

ପୋଲୀ—ସ୍ତ୍ରୀ. ବି. ପିଷ୍ଟକ ବିଶେଷ

ପୋଲୁଦ—ଗ୍ରା. ବି. ମାଛ ମାରିବା ଜାଲ ବିଶେଷ । [ ଭେଦ ।

ପୋଶାର—ବି.ରଜପୁତ ଜାତିର ଶାଖା-

ପୋଶାକ—ଯା. ବି. ବେଶ, ପରିଚ୍ଛଦ, ପିନ୍ଧିବାର ଉତ୍ତମ ବସ୍ତ୍ର, ଅଧଆଙ୍ଗରଖା, କୌଣସି ପଦରେ ପ୍ରତିଷ୍ଠିତ ବ୍ୟକ୍ତିଙ୍କ ପରିଧାନାର୍ଥ ନିର୍ଦ୍ଦିଷ୍ଟ ପରିଚ୍ଛଦ ।

ପୋଶାକୀ—ବିଂ.ପୋଷାକର ଉପଯୋଗୀ

ପୋଷ—ପୁଂ. ବି. (ପୁଷ୍+ଭା.ଅ)ବର୍ଦ୍ଧନ, ପୁଷ୍ଟି, ଆଧିକ୍ୟ, ବୃଦ୍ଧି, ସନ୍ତୋଷ, ପୋଷଣ, ପାଳନ, ( ଗ୍ରା.ବି ) ଗଣ୍ଡୁଷ, ଅର୍ଦ୍ଧାଞ୍ଜଳି, ଅର୍ଦ୍ଧାଞ୍ଜଳି ପରିମାଣ ।

ପୋଷକ—ପୁଂ. ବିଂ. (ପୁଷ୍+କ.ଅକ) ପାଳକ, ଯେ ପାଳନ କରନ୍ତି,ସହାୟକ, ବର୍ଦ୍ଧକ, ସମର୍ଥନକାରୀ, ବାକ୍ୟର ସହାୟକାରୀ ।

ପୋଷକତା—ବି. ପୋଷଣ କରିବାର ଭାବ

ପୋଷକପ୍ରମାଣ—ବି.ଯେଉଁ ପ୍ରମାଣ ଦ୍ୱାରା ତାହା ସମର୍ଥିତ ହୁଏ ।

ପୋଷଣ—କ୍ଲୀ. ବି. (ପୁଷ୍+ଅନ)ପୁଷ୍ଟି, ଧୃତି, ପାଳନ, ବର୍ଦ୍ଧନ, ସହାୟତା ।

ପୋଷଣପ୍ରବାହ—ଯେ କ୍ରିୟା ଦ୍ୱାରା ଅନ୍ନ ପାନୀୟ କ୍ରମେ ମାଂସାଦିରେ ପରିଣତ ହୋଇ ଶରୀରର ପୁଷ୍ଟି ସାଧନ କରେ ।

ପୋଷଣାହାରୀ—ଗ୍ରା.ବିଂ.ପୋଷଣକାରକ, ଯେ ପୋଷେ ପରିପାଳକ ।

ପୋଷଣୀୟ—ବିଂ. ( ପୁଷ୍+ର୍ମ.ଅନୀୟ ) ପାଳନୀୟ, ପୋଷିବାର ଯୋଗ୍ୟ ।

ପୋଷୟିତ୍ନୁ—ପୁଂ. ବି.(ପୁଷି+କ.ଇତ୍ନୁ) କାକପୋଷ୍ୟ, ପିକ, କୋକିଳ. ଭର୍ତ୍ତା, ସ୍ୱାମୀ, (ବିଂ) ପୋଷଣକର୍ତ୍ତା,ପୁଷ୍ଟିକର ।

ପୋଷା—ଗ୍ରା. ବି. ପୋଷଣ କରିବା, ପାଳନ କରିବା,(ଗ୍ରା.ବିଂ) ଯେ ପାଳେ, ବଶୀଭୂତ, ପାଳିତ ।

ପୋଷା(ଷେ)ଇବା—ଗ୍ରା. କ୍ରି. ପୋଷିବା

କ୍ରିୟାର ଣିଜନ୍ତ ରୂପ, ଅନ୍ୟଦ୍ୱାରା ପୋଷଣ କ୍ରିୟା କରାଇବା, ପଚ୍ଚିବା, ମନୋମତ ହେବା, ଅଣ୍ଟିବା, ଯଥେଷ୍ଟ ହେବା, ଲଭଜନକ ହେବା ।

ପୋଷାକ—ଯା. ବି. ପରିଚ୍ଛଦ, ପିନ୍ଧିବା ବସ୍ତ୍ର, ପୋଶାକ ଦେଖ ।

ପୋଷାକପତ୍ର—ଗ୍ରା. ବି. ପାଗପଟୁକା ଲୁଗାପଟା ।

ପୋଷାକୀ—ଯା. ବିଂ. ପୋଷାକସମ୍ବନ୍ଧୀୟ ପୋଷାକର ଉପଯୁକ୍ତ,ଯାହା ବଧୁକାଳ ପିନ୍ଧାଯାଇପାରେ, ( ବି ) ହେପାଜତ, ପାଳନ ବିଷୟରେ ଯତ୍ନ, ଫେସନ ।

ପୋଷିଆଁ—ଗ୍ରା. ବିଂ.ବଶୀଭୂତ,ପାଳିତ ।

ପୋଷିତ-ବି.ବିଂ.(ପୁଷି+ର୍ମ.କ୍ତ) ପୋଷାକ. ପାଳିତ, ବର୍ଦ୍ଧିତ, ଧୃତ ।

ପୋଷିବା—ଗ୍ରା. କ୍ରି. ପୋଷଣ କରିବା, ପାଳିବା, ପ୍ରତିପାଳନ କରିବା, ସହାୟ ହେବା, ଗ୍ରାସାଚ୍ଛାଦନ ଯୋଗାଇବା ।

ପୋଷୁକ—ପୁଂ. ବିଂ. ( ପୁଷ୍+ଉକ ) ପୋଷଣକାରୀ ।

ପୋଷେ—ଗ୍ରା.ବି ଓ ବିଂ. ହାତର କରତଳ ପୃଷ୍ଠରେ ଏକା ଥରକେ ସମ୍ଭାଇବା ପରିମାଣ, ଏକପୋଷ ମାତ୍ର ।

ପୋଷ୍ଟଅଫିସ୍—ଯ. ବି. ଡାକଘର ।

ପୋଷ୍ଟା—ବିଂ.(ପୁଷ୍+କ.ତୃ) ପ୍ରତିପାଳକ. ପାଳକକର୍ତ୍ତା, (ବି) ପୂତିକ, ପୂତିକରଞ୍ଜ, ବଣପୋଲ ।

ପୋଷ୍ୟ—ବି.ବିଂ.(ପୁଷ୍ + ର୍ମ.ଯ)ଯାହାକୁ ପୋଷାଯାଏ, ପୋଷଣୀୟ, ପୋଷଣ ଯୋଗ୍ୟ, ପ୍ରତିପାଳ୍ୟ(ବି)ଭୃତ୍ୟପରିବାର ।

ପୋଷ୍ୟପୁତ୍ର—ପୁଂ.ବି.(କ.ଧା) ପାଳନାଦି ଦ୍ୱାରା ପୁତ୍ରତ୍ୱ ପ୍ରାପ୍ତ, ଦତ୍ତକ ପୁତ୍ର, ପାଳକପୁତ୍ର ।

ପୋଷ୍ୟବର୍ଗ—ପୁଂ.ବି.(୬ତତ୍) ଆପଣାର ପରିବାରଭୁକ୍ତ ବ୍ୟକ୍ତିଗଣ, ପ୍ରତିପାଳନୀୟ ଗଣ, ଭୃତ୍ୟବର୍ଗ ।

ପୋସ୍ତ—ଯା. ବି. ସ୍ୱନାମପ୍ରସିଦ୍ଧ ବୃକ୍ଷ ବିଶେଷ, ଅଫିମଗଛର ବୀଜ,ଅଫିମଗଛ. ଛାଲ, ଚମଡ଼ା, ବଲ୍କଲ ।

ପୋସ୍ତକଦାନା—ଯ. ବି. ଅଫିମଫଳ ମଧ୍ୟରେ ଥିବା ଶ୍ୱେତବର୍ଣ୍ଣ ଅତିକ୍ଷୁଦ୍ର ମଞ୍ଜି ।

ପୋସ୍ତବନ୍ଧ—ଯା. ବି. କାନ୍ଥର ମୂଳରେ ଇଟା ପଥର ଆଦି ଦେଇ କାନ୍ଥକୁ ଅଟଳ କରିବା ପ୍ରଣାଳୀ ।

ପୋସ୍ତା—ଯା.ବି. ଅଫିମ ଗଛ ଓ ତାହାର ମଞ୍ଜି, ପୋସ୍ତବନ୍ଧ ଦେଖ ।

ପୋହଣା—ପ୍ରା. (ସଂ ହବ୍ଭନ) ବି. ମାଛର ଜାଆଁଳ ।

ପୋହଳାଖିଲା—ଗ୍ରା.ବି. ଶଗଡ଼ ଦଣ୍ଡାର ଶେଷ ଫାଳର ଦୁଇ ମୁଣ୍ଡରେ ଦିଆଯାଇ ଥିବା ଖିଲ ।

ପୋହଳା—ଗ୍ରା.ବି.(ସଂ-ପ୍ରବାଳ) ପ୍ରବାଳ, ବିଦ୍ରୁମ, ସାମୁଦ୍ରିକ ଉପରତ୍ନ ବିଶେଷ, ପୋହଳାମାଛ ।

ପୌଂଶ୍ଚଲେୟ—ପୁଂ, ସ୍ତ୍ରୀ. ବି. (ପୁଂଶ୍ଚଳୀ + ଏୟ) ପୁଂଶ୍ଚଳୀର ଅପତ୍ୟ, ଅସତୀ ତନୟ, ବେଶ୍ୟାପୁତ୍ର ।

ପୌଂଶ୍ଚଲ୍ୟ—କ୍ଲୀ. ବି. ( ପୁଂଶ୍ଚଲ+ଯ ) ଅସତୀତ୍ୱ, ପୁରୁଷ ଏବଂ ସ୍ତ୍ରୀର ଗୋପନରେ ବ୍ୟଭିଚାର ।

ପୌଂସବନ—କ୍ଲୀ. ବି.(ପୁଂସବନ+ଅ) ପୁଂସବନ ଦେଖ, ( ବିଂ ) ପୁଂସବନ ସମ୍ବନ୍ଧୀୟ ।

ପୌଂସ୍ନ—କ୍ଲୀ.ବି.ପୁଂସ୍ତ୍ୱ, ଧୈର୍ଯ୍ୟ, (ବିଂ) ପୁରୁଷଭବ, ପୁରୁଷଠାରୁ ଆଗତ, (ସ୍ତ୍ରୀ) ପୁରୁଷ ଯୋଗ୍ୟ, ପୁରୁଷହିତ ।

ପୌଗଣ୍ଡ—କ୍ଲୀ. ବି. (ପୋଗଣ୍ଡ+ଅ)୧୦ ବର୍ଷରୁ ଅଳ୍ପ ବୟସ୍କ ଶ୍ରେଷ୍ଠ ବାଳକ, ବାଳକାଙ୍କ,୫ବର୍ଷଠାରୁ ୧୦ବର୍ଷ ପର୍ଯ୍ୟନ୍ତ ପୌଗଣ୍ଡାବସ୍ଥା,ଅପ୍ରାପ୍ତ ବୟସ୍କ ବାଳକ, (ବିଂ) ପୌଗଣ୍ଡାବସ୍ଥାଯୁକ୍ତ ।

ପୌଟି—ଗ୍ରା.ବି.ପଉଟି ଦେଖ,(ପ୍ରା.ହିଂନ୍ଦୁ-ଭୁମ.ବି) ୧୦ମହଣ ପରିମାଣ ।

ପୌଣ୍ଡ୍ରଶାକ—କ୍ଲୀ.ବି.ପ୍ରପୌଣ୍ଡ୍ରଶାକ ଦେଖ

ପୌଣ୍ଡ୍ରର୍ଯ୍ୟ—କ୍ଲୀ.ବି.ପ୍ରପୌଣ୍ଡ୍ରଶାକ ଦେଖ

ପୌଣ୍ଡ୍ର—ପୁଂ.ବି. (ପୁଣ୍ଡ୍ର + ଅ) ଦେଶ-ବିଶେଷ, ପୁଣ୍ଡ୍ରଦେଶବାସୀ, ପୁଣ୍ଡ୍ର-ଦେଶର ରାଜା, ପୁଣ୍ଡ୍ର ଦେଶୋଦ୍ଭବ, ଇକ୍ଷୁ ଭେଦ, ବସୁଦେବଙ୍କର ପୁତ୍ର,ଭୀମ-ସେନଙ୍କ ଶଙ୍ଖର ନାମ ।

ପୌଣ୍ଡ୍ରକ—ପୁଂ.ବି.ଇକ୍ଷୁଭେଦ,ପୌଣ୍ଡ୍ର-ଦେଶୀୟ ନୃପ, ଜାତିବିଶେଷ, ପୌଣ୍ଡ୍ର ଦେଶର କ୍ଷତ୍ରିୟବିଶେଷ, ବର୍ଣ୍ଣସଙ୍କର ଜାତିବିଶେଷ, ବୈଶ୍ୟ ଔରସରେ ଶୌଣ୍ଡିକା ଗର୍ଭଜାତ ସନ୍ତାନ ।

ପୌଣ୍ଡ୍ରକବାସୁଦେବ—ପୁଣ୍ଡ୍ର ଦେଶର ଜଣେ ପରାକ୍ରାନ୍ତ ରାଜା ।

ପୌଣ୍ଡ୍ରବର୍ଦ୍ଧନ—ପୁଂ.ବି ନଗରବିଶେଷ, ପୁଣ୍ଡ୍ରବର୍ଦ୍ଧନ ଦେଖ ।

ପୌଣ୍ଡ୍ରିକ—ପୁଂ.ବି.(ପୁଣ୍ଡ୍ର+ଇକ)ବର୍ଣ୍ଣ-ସଙ୍କର ଜାତିବିଶେଷ,ପୌଣ୍ଡ୍ରକ ରାଜା, ତିତିର ଜାତୀୟ ପକ୍ଷୀବିଶେଷ, ଇକ୍ଷୁ-ଭେଦ, ଶୋଣ ପ୍ରବର ଋଷିଭେଦ, ଦେଶ ଭେଦ ।

ପୌଣ୍ୟ—ବି.ବିଂ. (ପୁଣ୍ୟ + ଅ) ପୁଣ୍ୟ-କର୍ମକାରକ ।

ପୌତନ—ବିଂ.ପୂତନାସମ୍ବନ୍ଧୀୟ, ଜନ-ପଦବିଶେଷ ଓ ତଦଧିବାସୀ ।

ପୌତିକ—ବି.ବିଂ.(ପୂତିକା+ଅ)ପୂତିକ ଦ୍ରବ୍ୟ ନିର୍ମିତ, ପୌତ୍ତିକ ଦେଖ ।

ପୌତିନାସିକ୍ୟ—କ୍ଲୀ. ବି. (ପୂତିନାସିକା +ଯ)ସିଙ୍ଘାଣି, ନାସିକାମଳ, ନାସିକା-ରୋଗ ବା ପୀନସ ରୋଗଗ୍ରସ୍ତ ବ୍ୟକ୍ତି ।

ପୌତ୍ତଳିକ—ପୁଂ.ବିଂ.(ପୁତ୍ତଳ + ଇକ) ପ୍ରତିମାପୂଜକ, ସାକାରୋପାସକ ।

ପୌତ୍ତଳିକତା—ବି.(ପୌତ୍ତଳିକ+ଭା. ତା) ପ୍ରତିମାପୂଜା, ସାକାର ଉପାସନା ।

ପୌତ୍ତିକ—କ୍ଲୀ.ବି(ପୁତ୍ତିକା+ଅ)ପୁତ୍ତିକା, ଅଷ୍ଟପ୍ରକାର ମଧୁ ମଧ୍ୟରୁ ଏକଜାତୀୟ ମଧୁ

ପୌତ୍ର—ପୁଂ, ବି. (ପୁତ୍ର+ଅ) ପୁତ୍ରର ପୁତ୍ର, ନାତି ।

ପୌତ୍ରିକ—ବି. (ପୁତ୍ରିକା+ଅ) ନିକୃଷ୍ଟ ମଧୁ,(ବିଂ.ପୁତ୍ର+ଇକ) ପୁତ୍ରସମ୍ବନ୍ଧୀୟ, (ପୌତ୍ର+ଇକ)ପୌତ୍ରସମ୍ବନ୍ଧୀୟ ।

ପୌତ୍ରିକେୟ—ପୁଂ.ବି.(ପୁତ୍ରିକା + ଏୟ) ଦୌହିତ୍ର, ଝିଅର ପୁଅ ନାତି ।

ପୌତ୍ରୀ—ସ୍ତ୍ରୀ. ବି. ( ପୁତ୍ର+ଅ+ଈ )

ପୁନ୍ନାମ୍ବଜା, ନାରୁଣୀ, ପୁଅର ଝିଅ ।

ପୌଣ୍ଡୀ—ପୁଂ.ବିଂ.ପୌଣ୍ଡବିଶିଷ୍ଟ,ଯାହାର ନାଡ ହୋଇଥାଏ ।

ପୌଦ୍ଗଳିକ—ତ୍ରି. ବିଂ. (ପୁଦ୍ଗଳ+ଇକ) ଦେହସମ୍ବନ୍ଧୀୟ, ଆତ୍ମା ସମ୍ବନ୍ଧୀୟ ପରମାଣୁସମ୍ବନ୍ଧୀୟ, ବିଷୟାନୁରକ୍ତ,ସ୍ୱାର୍ଥପର

ପୌନଃପୁନିକ—ବିଂ. ( ପୁନଃ ପୁନଃ+ +ଇକ) ପୁନଃପୁନଃ ଘଟୁଥିବା, ଅବର୍ତ୍ତନଶୀଳ, (ବି) ଏକପ୍ରକାର ଦଶମିକ ଭଗ୍ନାଂଶ ।

ପୌନଃପୁନିକତା—ବି. (ପୁନଃପୁନିକ+ ଭା.ତା ) ପୁନଃପୁନଃ ଘଟୁଥିବା ଅବସ୍ଥା, ପୁନଃପୁନଃ କଥନ ବା ଉଲ୍ଲେଖ ।

ପୌନଃପୁଣ୍ୟ—କ୍ଳୀ.ବି.ପୁନର୍ବାର, ବାରମ୍ବାର, ପୌନଃପୁନିକତା ଦେଖ ।

ପୌନରୁକ୍ତ—ତ୍ରି. ବିଂ. (ପୁନରୁକ୍ତ+ଅ) ପୁନର୍ବାର ଉକ୍ତି, ପୁନର୍ବାର କଥନ, ଦ୍ୱୈଗୁଣ୍ୟ ।

ପୌନରୁକ୍ତିକ—କ୍ଳୀ. ବି. ପୁନରୁକ୍ତାର୍ଥାଭିଜ୍ଞ,ପୁନରୁକ୍ତ ପଦାଧେତା । [ଭେଦ ।

ପୌନର୍ଣ୍ଣବ—ପୁଂ. ବି.ସନ୍ନିପାତ ରୋଗ-

ପୌନର୍ଭବ—ପୁଂ. ବି. (ପୁନର୍ଭୂ+ଅ) ବିଧବାର ଗର୍ଭରେ ପୁନର୍ବିବାହିତ ସ୍ୱାମୀଙ୍କ ଔରସ ସନ୍ତାନ, ପୁନର୍ଭୂଙ୍କର ପୁତ୍ର, ଦ୍ୱାଦଶବିଧ ପୁତ୍ରର ଅନ୍ତର୍ଗତ ପୁତ୍ରବିଶେଷ, ଦ୍ୱିରୂଢ଼ାପୁତ୍ର, (ସ୍ତ୍ରୀ) କନ୍ୟାବିଶେଷ ।

ପୌନର୍ଭବା—ସ୍ତ୍ରୀ.ବି. (ପୁନର୍ଭୂ+ଅ+ଆ)ବରପୂର୍ବା କନ୍ୟା,ପୁନର୍ଭୂର କନ୍ୟା

ପୌନେ—ଗ୍ରା. ବିଂ. ପଉନେ ଦେଖ ।

ପୌର—କ୍ଳୀ. ବି. ଧନନ୍ଦୀଘାସ,ରୋହିଷ ତଣ,ରାମକର୍ପୂର, (ପୁଂ.ବି)ନଗରଜନ ।

ପୌରକ—ପୁଂ.ବି.(ପୌର+କ)ଗୃହର ବାହ୍ୟଉପବନ, ସହରର ବାହାରେ ଥିବା ବଗିଚା ।

ପୌରକୁତ୍ସ—କ୍ଳୀ. ବି. ସାର୍ଥଭେଦ ।

ପୌରକୁତ୍ସୀ—ସ୍ତ୍ରୀ.ବି. ଗାଧିରାଜ ମାତା ।

ପୌରଗୀୟ—ତ୍ରି. ବିଂ. ପୂର୍ବଜନ୍ମ ସମ୍ବନ୍ଧୀୟ, ପୁରଜନ ସମୀପାଦି ।

ପୌରଜନ—ପୁଂ. ବି. ( କ.ଧା ) ପୁର ବା ଜନପଦବାସୀ, ନାଗରିକ ।

ପୌରଜନପଦ—ବି.(ଦ୍ୱନ୍ଦ୍ୱ)ନଗରବାସୀ ବ୍ୟକ୍ତିଗଣ । [ସମ୍ବନ୍ଧୀୟ ।

ପୌରଞ୍ଜନ—ତ୍ରି. ବିଂ.ରାଜା ପୁରଞ୍ଜନଙ୍କ

ପୌରନ୍ଦର—ବିଂ. (ପୁରନ୍ଦର+ଅ)ଇନ୍ଦ୍ର ସମ୍ବନ୍ଧୀୟ, (ବି) ଜ୍ୟେଷ୍ଠାନକ୍ଷତ୍ର ।

ପୌରନ୍ଦରୀ—ସ୍ତ୍ରୀ. ବି. (ପୁରନ୍ଦର+ଅ +ଈ) ଇନ୍ଦ୍ରାଧିଷ୍ଠିତ ପୂର୍ବଦିଗ ।

ପୌରଭାଗ୍ୟ—ବି. (ପୁରୋଭାଗିନ୍+ଯ) କେବଳ ଦୋଷମାତ୍ର ଦର୍ଶନ ।

ପୌରବ—ପୁଂ. ବି. ପୁରୁବଂଶ, ଦେଶବିଶେଷ, ତଦ୍ଦେଶନୃପ, (ବିଂ) ଯଯାତିଙ୍କ ପୁତ୍ର,ପୁରୁଙ୍କ ବଂଶୀୟ ।

ପୌରବକ—ପୁଂ. ବି. ପୌର ଦେଖ ।

ପୌରବୀ—ସ୍ତ୍ରୀ. ବି. (ପୁରୁ+ଅ+ଈ) ବସୁଦେବଙ୍କର ଏକପତ୍ନୀ, ରାଗିଣୀବିଶେଷ ।

ପୌରସ—ଗ୍ରା. ବି. ପୌରୁଷ ଦେଖ ।

ପୌରସଖ୍ୟ—ବି. (ପୁର+ସଖି+ଯ) ଏକନଗରରେ ବାସକରୁଥିବା ଲୋକଙ୍କ ମଧ୍ୟରେ ପରସ୍ପର ବନ୍ଧୁତା ।

ପୌରସ୍ତ୍ରୀ—ସ୍ତ୍ରୀ. ବି. (କ.ଧା) ପୁରନାରୀ, ଘରଣୀ, ସହରର ବେଶ୍ୟା ।

ପୌରସ୍ତ୍ୟ—ତ୍ରି. ବିଂ. (ପୁରସ୍+ତ୍ୟ) ପ୍ରଥମ, ପୂର୍ବଦିନ ଭବ, ପୂର୍ବଦେଶୀୟ, ପ୍ରାଚ୍ୟ, ସମ୍ମୁଖରେ ଅବସ୍ଥିତ, ଅଗ୍ରେଭବ । [ଦେଖ ।

ପୌରାଙ୍ଗନା—ସ୍ତ୍ରୀ.ବି. (କ.ଧା)ପୌରସ୍ତ୍ରୀ

ପୌରାଣ—ତ୍ରି. ବିଂ.(ପୁରାଣ+ଅ)ପୁରାଣକଥିତ, ପୁରାତନ, ପୁରାଣବକ୍ତା ।

ପୌରାଣିକ—ବିଂ. ( ପୁରାଣ+ଇକ ) ପୌରାଣ ଦେଖ, ( ବି ) ପୁରାଣବକ୍ତା ବ୍ରାହ୍ମଣ, ଆଖ୍ୟାନ, ଆଖ୍ୟାୟିକା ।

ପୌରିକ—ବି. (ପୁର+ଇକ) ପୌର ଦେଖ ।

ପୌରୁଷ—କ୍ଳୀ.ବି. (ପୁରୁଷ+ଅ)ପୁଂସ୍ତ୍ୱ, ତେଜ, ଗୌରବ, ମାହାତ୍ମ୍ୟ, ପୁରୁଷକାର, ଜଣେ ମନୁଷ୍ୟ ବୋହିପାରିବା ବୋଝ, ପୁରୁଷର ଭାବ,ପୁରୁଷର ଧର୍ମ, ରେତଃ, ପୁରୁଷତ୍ୱ, ସାହସ, ଉଦ୍ୟମ, (ବିଂ) ପୁରୁଷପ୍ରମାଣ ଉଚ୍ଚ,ପ୍ରାୟ ସାଢେଚାରିହାତ ଉଚ୍ଚ, ପୁରୁଷ ସମ୍ବନ୍ଧୀୟ, ମାନସିକ,(ଗ୍ରା.ବି)ପ୍ରଶଂସା, ବାହୁ ଦୂର ।

ପୌରୁଷତା—ବି. ( ପୌରୁଷ+ତା ) ସାହସୀକତା, ବୀର୍ଯ୍ୟବତ୍ତ୍ୱ ।

ପୌରୁଷମେଧିକ—ତ୍ରି. ବିଂ. ପୁରୁଷମେଧ ସମ୍ବନ୍ଧୀୟ ।

ପୌରୁଷାଦ—ବିଂ. ( ପୁରୁଷାଦ+ଅ ) ନରମାଂସ ଭକ୍ଷକ ସମ୍ବନ୍ଧୀୟ ।

ପୌରୁଷିକ—ତ୍ରି.ବିଂ. ପୁରୁଷ ସମ୍ବନ୍ଧୀୟ, ପୁରୁଷର ଉପାସିକ ।

ପୌରୁଷେୟ—ବିଂ. ( ପୁରୁଷ+ଏୟ ) ପୁରୁଷ ସମ୍ବନ୍ଧୀୟ, ମନୁଷ୍ୟରଚିତ, ମାନୁଷିକ,ପୁରୁଷର ପ୍ରକୃତିଗତ,ଆତ୍ମାରୁ ଜାତ, ଆଧ୍ୟାତ୍ମିକ, (ବି) ମନୁଷ୍ୟହତ୍ୟା, ପୁରୁଷ ସମୂହ, ବ୍ୟକ୍ତିଗତ ଆଇନ୍, ବ୍ୟକ୍ତିଗତ ଚେଷ୍ଟା, ଦିନମୂଲିଆ ।

ପୌରୁଷ୍ୟ—ତ୍ରି. ବିଂ. ( ପୁରୁଷ+ଯ ) ପୁରୁସମ୍ବନ୍ଧୀ,(କ୍ଳୀ.ବି) ପୁରୁଷତା,ସାହସ ।

ପୌରୁହୂତ—ବିଂ. (ପୁରୁହୂତ+ଅ)ଇନ୍ଦ୍ରଙ୍କ ସମ୍ବନ୍ଧୀୟ, (ବି) ବଜ୍ର ।

ପୌରୂରବସ—ତ୍ରି.ବିଂ. ପୁରୂରବା ସମ୍ବନ୍ଧୀୟ,(ପୁଂ.ବି)ପୁରୂରବା ଗୋତ୍ରାପତ୍ୟ ।

ପୌରେୟ—ତ୍ରି. ବିଂ. (ପୌର+ଏୟ) ପୌର ଦେଖ, (ବି) ନଗରର ସୀମାସ୍ଥ ଦେଶ ବା ଗ୍ରାମାଦି ।

ପୌରୋଗବ—ପୁଂ. ସ୍ତ୍ରୀ.ବି. (ପୁରୋଗ+ +ଅ) ପାକଶାଳାର ଅଧ୍ୟକ୍ଷ,ପାକଗୃହର କର୍ତ୍ତା ।

ପୌରୋଡ଼ାଶ—ପୁଂ. ବି. ପୁରୋଡ଼ାଶ, ପୁରୋଡ଼ାଶ ସହଚରିତ ମନ୍ତ୍ର ।

ପୌରୋଡାଶିକ—ପୁଂ. ବି.ପୁରୋଡ଼ାଶିକ, ପୁରୋଡ଼ାଶ ସହ ଚରିତ ମନ୍ତ୍ର ।

ପୌରୋଧାସ୍ୟ—ବି ଓ ବିଂ.(ପୁରୋଧସ୍+ ଯ) ପୌରୋହିତ୍ୟ (ଦେଖ) ।

ପୌରୋହିତ—ବି. ପୁରୋହିତର ଧର୍ମ, ପୁରୋହିତର କାର୍ଯ୍ୟ, (ବିଂ) ପୁରୋହିତ

ସମ୍ବନ୍ଧୀୟ ।

ପୌରୋହିତ୍ୟ—କ୍ଲୀ.ବ. (ପୁରୋହିତ+ଯ) ପୁରୋହିତର କର୍ମ, (ବି°) ପୁରୋହିତ ବଂଶୀୟ ।

ପୌର୍ଣ୍ଣମାସ—ପୁଂ. ବ. (ପୌର୍ଣ୍ଣମାସୀ+ଅ) ପୌର୍ଣ୍ଣମାସୀ ବିହିତ ଯାଗବିଶେଷ, ପୂର୍ଣ୍ଣିମାରେ ବିହିତ ଯଜ୍ଞଭେଦ ।

ପୌର୍ଣ୍ଣମାସାୟନ—କ୍ଲୀ. ବ. ପୂର୍ଣ୍ଣିମାରେ ଅନୁଷ୍ଠେୟ ଯାଗଭେଦ । [ ଯାଗାଦି ।

ପୌର୍ଣ୍ଣମାସିକ—ବି. ପୌର୍ଣ୍ଣମାସଭବ

ପୌର୍ଣ୍ଣମାସୀ—ସ୍ତ୍ରୀ. ବ. (ପୂର୍ଣ୍ଣମାସ+ଅ+ଈ) ପୂର୍ଣ୍ଣିମାତିଥି, ତନ୍ତ୍ରୋକ୍ତ ଦେବପଦ୍ ତିଥି, ବୃନ୍ଦାବନସ୍ଥ ବୃଦ୍ଧା ତପସ୍ଵିନୀ ।

ପୌର୍ଣ୍ଣମୀ—ସ୍ତ୍ରୀ. ବ. ପୂର୍ଣ୍ଣିମାତିଥି ।

ପୌର୍ଣ୍ଣିମ—ବି. (ପୂର୍ଣ୍ଣିମା+ଅ) ସନ୍ନ୍ୟାସୀ, ଯୋଗୀ, ତପସ୍ୱୀ । [ ପୂର୍ଣ୍ଣିମା ।

ପୌର୍ଣ୍ଣିମା—ବି. ( ପୂର୍ଣ୍ଣିମା+ଅ+ଆ )

ପୌର୍ତ୍ତ—କ୍ଲୀ. ବ. (ପୂର୍ତ୍ତ+ଅ) ପୂର୍ତ୍ତକର୍ମ, (କୂପଖନନ, ବ୍ରାହ୍ମଣ ଭୋଜନାଦି) ।

ପୌର୍ତ୍ତିକ—ତ୍ରି. ବି°. ( ପୂର୍ତ୍ତ+ଇକ ) ପୂର୍ତ୍ତସାଧନ କର୍ମ ସମ୍ବନ୍ଧୀୟ ।

ପୌର୍ବ—ବି°. (ପୂର୍ବ+ଅ) ପ୍ରାଚ୍ୟ,ପୂର୍ବସମ୍ବନ୍ଧୀୟ, ପ୍ରାଚୀନ, ପ୍ରାଥମିକ ।

ପୌର୍ବକାଳିକ—ବି°. (ପୂର୍ବକାଳ+ଇକ) ପୂର୍ବକାଳ ସମ୍ବନ୍ଧୀୟ ।

ପୌର୍ବକାଲ୍ୟ—ବି. ( ପୂର୍ବକାଳ+ଯ ) ପୂର୍ବେ ଘଟିଥିବା ଅବସ୍ଥା ।

ପୌର୍ବଦେହିକ—ତ୍ରି. ବି°. ପୂର୍ବଦେହ ସମ୍ବନ୍ଧୀୟ, ପୂର୍ବଦେହର କୃତକର୍ମ ।

ପୌର୍ବନଗରେୟ—ତ୍ରି.ବି°.ପୂର୍ବନଗରଭବ

ପୌର୍ବପଞ୍ଚାଳକ—ତ୍ରି. ବି°. ପୂର୍ବପଞ୍ଚାଳଭବ, ଯାହା ପୂର୍ବପଞ୍ଚାଳରେ ହୁଏ ।

ପୌର୍ବପଦିକ—ତ୍ରି. ବି°. (ପୂର୍ବପଦ+ଇକ) ପୂର୍ବପଦ ସମ୍ବନ୍ଧୀୟ, ପୂର୍ବପଦଗ୍ରାହକ,(ବ୍ୟାକରଣ) ସମାସସିଦ୍ଧ ପଦର ପୂର୍ବପଦ ସମ୍ବନ୍ଧୀୟ ।

ପୌର୍ବଭକ୍ତିକ—ବି°. (ପୂର୍ବଭକ୍ତ+ଇକ) ଭାତ ଖାଇବା ପୂର୍ବରୁ ଖିଆଯିବା ।

ପୌର୍ବବାର୍ଷିକ—ତ୍ରି. ବି°. (ପୂର୍ବବର୍ଷ+ଇକ) ପୂର୍ବବର୍ଷରେ ବା ବର୍ଷମାନଙ୍କରେ ଘଟିଥିବା ।

ପୌର୍ବାପର୍ଯ୍ୟ—କ୍ଲୀ. ବ. (ପୂର୍ବାପର+ଯ) ଧାରାବାହିକତା, ଆନୁପୂର୍ବିକତା, ପୂର୍ବାପରତ୍ୱ, ଅନୁକ୍ରମ, ଫଳ, ପରିଣାମ, କାର୍ଯ୍ୟ ଓ କାରଣ ସମ୍ବନ୍ଧ, କାରଣ, ହେତୁ, ଉତ୍ପତ୍ତି ।

ପୌର୍ବାର୍ଦ୍ଧ—ତ୍ରି.ବି°. ପୂର୍ବାର୍ଦ୍ଧଭବ, ଯାହା ପୂର୍ବାର୍ଦ୍ଧେ ହୁଏ ।

ପୌର୍ବାର୍ଦ୍ଧିକ—ତ୍ରି. ବି°. ପୂର୍ବାର୍ଦ୍ଧ ସମ୍ବନ୍ଧୀୟ, ପୂର୍ବାର୍ଦ୍ଧଘଟିତ ।

ପୌର୍ବାର୍ଦ୍ଧ୍ୟ—ତ୍ରି. ବି°. ପୂର୍ବାର୍ଦ୍ଧଭବ ।

ପୌର୍ବାହ୍ଣିକ—ତ୍ରି.ବି°. (ପୂର୍ବାହ୍ଣ+ଇକ) ପୂର୍ବାହ୍ଣ ସମ୍ବନ୍ଧୀୟ, ପ୍ରାତଃକାଳୀନ ।

ପୌର୍ବିକ—ତ୍ରି. ବି°. ( ପୂର୍ବ+ଇକ ) ପୌର୍ବ ଦେଖ ।

ପୌଲସ୍ତୀ—ସ୍ତ୍ରୀ ବ. (ପୁଲସ୍ତ+ଯ+ଈ) ପୁଲସ୍ତଙ୍କର ସ୍ତ୍ରୀ ଅପତ୍ୟ, ଶୂର୍ପଣଖା, କୁମ୍ଭୀନସୀ ।

ପୌଲସ୍ତ୍ୟ—ପୁଂ. ବ. (ପୁଲସ୍ତ୍ୟ+ଅ) ପୁଲସ୍ତଙ୍କର ଅପତ୍ୟ, ଚନ୍ଦ୍ର, ପୁଲସ୍ତଜ, କୁବେର, ରାବଣ, କୁମ୍ଭକର୍ଣ୍ଣ,ବିଭୀଷଣ ।

ପୌଲସ୍ତ୍ୟୀ—ସ୍ତ୍ରୀ. ବ. (ପୌଲସ୍ତ୍ୟ+ଈ) ଶୂର୍ପଣଖା,କୁମ୍ଭୀନସୀ,ରାବଣର ଭଉଣୀ ।

ପୌଳି—ବି. (ପୋଳ+ଇ) ପୁଳିପିଠା, ଈଷତ୍ ପକ୍ୱରୁଟି,ସାମାନ୍ୟ ଭଜାହୋଇଥିବା ଶସ୍ୟ (ଗୁଡ଼ଆଦି) ।

ପୌଲିଶସିଦ୍ଧାନ୍ତ—ବି. ପ୍ରାଚୀନ ହିନ୍ଦୁ ଜ୍ୟୋତିଷ ଗ୍ରନ୍ଥବିଶେଷ ।

ପୌଲୋମୀ—ସ୍ତ୍ରୀ. ବ. (ପୁଲୋମନ୍+ଅ+ଈ) ପୁଲୋମା ଦୈତ୍ୟର କନ୍ୟା, ଇନ୍ଦ୍ରାଣୀ, ଶଚୀ, ଭୃଗୁଋଷିଙ୍କ ପତ୍ନୀ ।

ପୌଷ—ପୁଂ. ବ. ( ପୌଷୀ+ଅ ) ବୈଶାଖାଦି ଦ୍ୱାଦଶ ମାସାନ୍ତର୍ଗତ ନବମ ମାସ, ଜୈବ ବର୍ଷଭେଦ, ପକ୍ଷ ।

ପୌଷପୂର୍ଣ୍ଣିମା—ବ.ପୌଷମାସର ପୂର୍ଣ୍ଣିମା

ପୌଷମାସ—ବ. ପୌଷ ଦେଖ,(ଗ୍ରା.ବ-ଲ.ଅର୍ଥ) ସୁଖ ଓ ଆନନ୍ଦର ସମୟ ।

ପୌଷୀ—ସ୍ତ୍ରୀ. ବ. (ପୁଷ୍ୟା+ଅ+ଈ) ପୌଷ ପୂର୍ଣ୍ଣିମା,ପୁଷ୍ୟାନକ୍ଷତ୍ର ଯୁକ୍ତା ରାତ୍ରି ଓ ପୂର୍ଣ୍ଣିମା ।

ପୌଷୀୟ—ବି°.(ପୌଷ+ଏୟ) ପୌଷମାସରେ ଜାତ ବା ପ୍ରସ୍ତୁତ ।

ପୌଷ୍କର—କ୍ଲୀ.ବ. (ପୁଷ୍କର+ଅ) ପୁଷ୍କର ମୂଳ, କୁଡ଼, କୁଷ୍ଠଭେଦ,ପଦ୍ମମୂଳ,ଏରଣ୍ଡ ମୂଳ,ସ୍ଥଳପଦ୍ମ, (ବି°)ପୁଷ୍କର ସମ୍ବନ୍ଧୀୟ ।

ପୌଷ୍କରକ—ତ୍ରି. ବି°. ସ୍ଥଳପଦ୍ମ ସମ୍ବନ୍ଧୀୟ, ପଦ୍ମରୂପ ବସ୍ତୁଙ୍କର ଆବର୍ତ୍ତିତ ସମ୍ବନ୍ଧୀୟ ।

ପୌଷ୍କରମୂଳ—କ୍ଲୀ. ବ. ପୁଷ୍କର ମୂଳ, ସୁଗନ୍ଧି ଦ୍ରବ୍ୟଭେଦ ।

ପୌଷ୍କରିଣୀ—ସ୍ତ୍ରୀ. ବ. (ପୁଷ୍କରିଣୀ+ଅ+ଈ) କ୍ଷୁଦ୍ର ପୋଖରୀ । [ସମ୍ପୂର୍ଣ୍ଣତା ।

ପୌଷ୍କଲ୍ୟ—କ୍ଲୀ. ବ. ( ପୁଷ୍କଲ+ଯ )

ପୌଷ୍ଟିକ—କ୍ଲୀ. ବ. (ପୁଷ୍ଟି+କ) ପୁଷ୍ଟିସାଧନକର୍ମ,ଯେଉଁ କର୍ମଦ୍ୱାରା ଧନଜନଆଦି ବୃଦ୍ଧି ହୁଏ, କ୍ଷୌର ସମୟରେ ଗାତାଚ୍ଛାଦନ ବସ୍ତ୍ରବିଶେଷ, ପୁଷ୍ଟିକର ଔଷଧ, ପୁଷ୍ଟିକର ଦ୍ରବ୍ୟଗଣ, ( ବି° ) ପୁଷ୍ଟିହିତ, ପୁଷ୍ଟିକର ।

ପୌଷ୍ଣ—ତ୍ରି.ବି°. ପୂଷ ଦେବତାଙ୍କ ଠାରୁ ପ୍ରଭୃତ, ପୂଷସମ୍ବନ୍ଧୀୟ, (ବ) ରେବତୀ ନକ୍ଷତ୍ର ।

ପୌଷ୍ପ—ବି°. ( ପୁଷ୍ପ+ଅ ) ପୁଷ୍ପନିର୍ମିତ, ପୁଷ୍ପସମ୍ବନ୍ଧୀୟ,ପୁଷ୍ପରଚିତ, (ବ)ପୁଷ୍ପପୁରୀ, ପାଟଳୀପୁତ୍ର, ପୁଷ୍ପପରାଗ, ପୁଷ୍ପରୁ ପ୍ରସ୍ତୁତ ମଦ୍ୟ ।

ପୌଷ୍ପକ—କ୍ଲୀ. ବ. କୁସୁମାଞ୍ଜନ ।

ପୌଷ୍ପୀ—ସ୍ତ୍ରୀ. ବ. ପୁଷ୍ପପୁର, ପାଟନା, ପାଟଳୀପୁତ୍ର ନଗରର ନାମାନ୍ତର ।

ପୌଷ୍ୟ—ପୁଂ.ବ.(ପୁଷନ୍+ଯ)କରବୀର-ପୁରାଧିପତି ପୁଷ୍ୟଙ୍କ ପୁତ୍ର, ନୃପଭେଦ, (କ୍ଲୀ.ବ) ମହାଭାରତର ଆଦି ପର୍ବାନ୍ତର୍ଗତ ପର୍ବ, (ବି°. ପୁଷ୍ୟା+ଯ) ପୁଷ୍ୟା ନକ୍ଷତ୍ରସମ୍ବନ୍ଧୀୟ ।

ପ୍ୟାଟ୍—ଅବ୍ୟ, ଡାକିବାରେ ବ୍ୟବହୃତ ଧ୍ୱନି, ହେ, ଆହେ, ଭୋ, ସମ୍ବୋଧନ ।

ପ୍ୟାତ(ନ)—ତ୍ରି.ବି°.(ପ୍ୟାୟ+ତ)ସ୍ଫୀତ,

ମେଦୋଯୁକ୍ତ, ସ୍ଥୂଳ, ପୀନ ।

ପ୍ୟାପ୍ୟନ—ତ୍ରି. ବିଂ. ( ପ୍ୟାୟ୍ + କ.ଅନ ) ବର୍ଦ୍ଧନଶକ୍ତିଶୀଳ, ବର୍ଦ୍ଧନକାରକ,(ମି. ଅନ) ଯାହାକୁ ସ୍ଥୂଳ କରାଯାଏ, (ବି.ଭା. ଅନ) ବର୍ଦ୍ଧନ, ବୃଦ୍ଧି ।

ପ୍ୟାୟିତ—ବିଂ. (ପ୍ୟାୟ୍ + ମି.ତ)ସ୍ଥୂଳୀକୃତ, ବର୍ଦ୍ଧିତ ।

ପ୍ୟାସ—ଗ୍ରା. (ସମ୍ଭ)ବି. ଶୋଷ, ତୃଷା ।

ପ୍ର—ଅ.ବିଂଶତି ଉପସର୍ଗମାନଙ୍କର ଅନ୍ତର୍ଗତ ପ୍ରଥମ ଉପସର୍ଗ, ଗତି, ଉତ୍କର୍ଷ, ସର୍ବତୋଭାବ,ପ୍ରାଥମ୍ୟ, ଖ୍ୟାତି,ଉତ୍ପତ୍ତି, ବ୍ୟବହାର, ଆରମ୍ଭ ।

ପ୍ରଉଗ—କ୍ଲୀ.ବି. ପ୍ରାଗ୍‌ବର୍ତ୍ତୀ ଯୁଗ, ପୂର୍ବବର୍ତ୍ତୀ ଯୁଗ, ଶସ୍ତ୍ରଭେଦ, ଇଷାର ଅଗ୍ରେ ଯୁଗ ବନ୍ଧନ ସ୍ଥାନ ।

ପ୍ରଉଗ—ବି.ରଥ ଦଣ୍ଡାର ସାମନା ପାଖର ତ୍ରିଭୁଜାକାର ଅଗ, ଶଗଡ଼ର ଝୁରମୁଣ୍ଡି

ପ୍ରକଟ—ତ୍ରି.ବିଂ(ପ୍ର+କଟ୍+ଅ)ପ୍ରଗୃହୀତ, ପ୍ରକାଶିତ,ବ୍ୟକ୍ତ,ପ୍ରତ୍ୟକ୍ଷ,ଶ୍ରେଷ୍ଠ,ଉତ୍ପନ୍ନ, ଆବିର୍ଭୂତ ।

ପ୍ରକଟକ—ପୁଂ.ବିଂ,(ପ୍ର+କଟ୍+କ.ଅକ) ଯାହା ପ୍ରକଟ କରେ, ପ୍ରକାଶକ ।

ପ୍ରକଟନ—କ୍ଲୀ. ବି. (ପ୍ର+କଟ୍+ଅନ) ବ୍ୟକ୍ତୀକରଣ, ପ୍ରକାଶ କରିବା ।

ପ୍ରକଟାଦିତ୍ୟ— କାଶୀଧାମର ଜଣେ ବୈଷ୍ଣବ ନରପତି ।

ପ୍ରକଟିତ—ତ୍ରି.ବିଂ. (ପ୍ର+କଟ୍+ମି.ତ) ପ୍ରକାଶିତ, ସ୍ପଷ୍ଟ, ବ୍ୟକ୍ତ, ପ୍ରଦର୍ଶିତ ।

ପ୍ରକଟିବା—ଗ୍ରା. କ୍ରି. ପ୍ରକଟିତ ବା ବ୍ୟକ୍ତ ହେବା, ପ୍ରକାଶ କରିବା,ଦେଖାଇବା ।

ପ୍ରକଟୀକରଣ—ବି. ଅବ୍ୟକ୍ତ ବିଷୟକୁ ବ୍ୟକ୍ତ କରିବା, ପ୍ରକାଶକରଣ, ସ୍ପଷ୍ଟ କରିବା ।

ପ୍ରକଟୀକୃତ—ତ୍ରି.ବିଂ.ସମ୍ପାଦିତ ବ୍ୟକ୍ତୀକୃତ, ପ୍ରକାଶିତ,ଘୋଷିତ ବିଷ୍ଟ୍ରୀକୃତ, ବିସ୍ତାରିତ । [ ପ୍ରକାଶିତ ।

ପ୍ରକଟୀଭୂତ—ବିଂ. ବର୍ତ୍ତମାନ ସ୍ପଷ୍ଟରୂପେ

ପ୍ରକଥନ—କ୍ଲୀ. ବି. (ପ୍ର+କଥ୍+ଅନ) ପ୍ରକୃଷ୍ଟ ରୂପେ କଥନ, ଉଚ୍ଚୈଃସ୍ୱରରେ ପ୍ରଗୃହୀତକରଣ ।

ପ୍ରକମ୍ପ—ପୁଂ. ବି. (ପ୍ର+କମ୍ପ୍+ଭା.ଅ) ପ୍ରକମ୍ପନ, ବେପଥୁ, ସ୍ଥିତିସ୍ଥାପକ ବସ୍ତୁ, ଅତିଶୟ କମ୍ପ, ନରକବିଶେଷ, ପ୍ରଭଞ୍ଜନ, ବାୟୁ, ରାବଣର ସେନାପତିବିଶେଷ,(ବିଂ.କ.ଅ)ଅତିଶୟ କମ୍ପମାନ, କମ୍ପନକାରକ ।

ପ୍ରକମ୍ପନ—ବି. (ପ୍ର+କମ୍ପ୍+ଭା.ଅନ) ପ୍ରକମ୍ପ ଦେଖ ।

ପ୍ରକମ୍ପନୀୟ—ତ୍ରି. ବିଂ. ( ପ୍ର+କମ୍ପ୍+ଅନୀୟ) ପ୍ରକମ୍ପନ ଯୋଗ୍ୟ ।

ପ୍ରକର—କ୍ଲୀ. ବି. (ପ୍ର+କୃ+ଅ) ଅଗୁରୁ ଚନ୍ଦନ,ଗାତଙ୍ଗ,ନଟନଟୀଙ୍କ ପୋଷାକ. ସମୂହ, ବିକୀର୍ଣ୍ଣ, କୁସୁମାଦି, ଅତିକ୍ଷେପ, ପୁଷ୍ପାଦିର ସ୍ତବକ, ସାହାଯ୍ୟ, ଅଧିକାର, ସ୍ତ୍ରୀଲୋକକୁ ଭୁଲାଇ ସତୀତ୍ୱ ହରଣ କରିବା, (ବିଂ) ବୃଦ୍ଧ, କର୍ମପଟୁ,କର୍ମଠ ।

ପ୍ରକରଣ—କ୍ଲୀ. ବି. (ପ୍ର+କୃ+ଅନ) ପ୍ରସ୍ତାବ, ବୃତ୍ତାନ୍ତ, ଅଭିନେୟ, ପ୍ରକାର, ରୂପକଭେଦ, ଗ୍ରନ୍ଥସନ୍ଧି, ପାଦ, ସର୍ଜନ, ନିର୍ମାଣ, କାର୍ଯ୍ୟ, ଘଟନା, ପ୍ରଭେଦ, ଉପାୟ, ପ୍ରକାର,ବିଷୟ, ଭୂମିକା,ନାଟକର ପୂର୍ବାଭାଷ, ଗ୍ରନ୍ଥାଂଶ, ଅଧ୍ୟାୟ, ପରିଚ୍ଛେଦ ।

ପ୍ରକରଣଗ୍ରନ୍ଥ—ବି. ଗୋଟିଏ ବିଷୟକୁ ଅବଲମ୍ବନ କରି ଲେଖାଯିବା କ୍ଷୁଦ୍ରଗ୍ରନ୍ଥ

ପ୍ରକରଣଜ୍ଞାନ—ବି. (ତନ୍ତ୍ର) ଆଲୋଚ୍ୟ ବିଷୟର ପ୍ରସଙ୍ଗବୋଧ ।

ପ୍ରକରଣିକା—ସ୍ତ୍ରୀ. ବି. କ୍ଷୁଦ୍ର ପ୍ରକରଣ, କ୍ଷୁଦ୍ର ନାଟକବିଶେଷ ।

ପ୍ରକରଣୀ—ସ୍ତ୍ରୀ. ବି. ନାଟିକା ବିଶେଷ, କ୍ଷୁଦ୍ର ନାଟକ ବିଶେଷ ।

ପ୍ରକରଣୀୟ—ବିଂ. ପରିଚ୍ଛେଦ ସମ୍ବନ୍ଧୀୟ, ପ୍ରବନ୍ଧ ବିଷୟକ ।

ପ୍ରକରୀ—ସ୍ତ୍ରୀ. ବି. ( ପ୍ର+କୃ+ଅଧି.ଅ +ଈ)ଅଭିନୟର ସାଜସଜ୍ଜା,ନାଟିକା, ଚତ୍ୱରଭୂମି, ଅନାବୃତ ସ୍ଥାନ ।

ପ୍ରକର୍ତ୍ତବ୍ୟ—ବିଂ. ( ପ୍ର+କୃ+ତବ୍ୟ ) ପ୍ରକୃଷ୍ଟରୂପେ କରଣୀୟ, ଅବଶ୍ୟ କରଣୀୟ ।

ପ୍ରକର୍ତ୍ତୃ—ବିଂ. ( ପ୍ର+କୃ+ତୃ ) ପ୍ରକୃଷ୍ଟ ରୂପେ କାରକ ।

ପ୍ରକର୍ଷ—ପୁଂ. ବି. ( ପ୍ର+କୃଷ୍+ଅ ) ଉତ୍କର୍ଷ, ଶ୍ରେଷ୍ଠତା,ଆଧିକ୍ୟ,ପ୍ରକୃଷ୍ଟରୂପେ କର୍ଷଣ ।

ପ୍ରକର୍ଷକ—ପୁଂ. ବିଂ.(ପ୍ର+କୃଷ୍+ଅକ) ଉତ୍କର୍ଷ ସମ୍ପାଦକ, ପ୍ରକର୍ଷତାଯୁକ୍ତ ।

ପ୍ରକର୍ଷଣ—କ୍ଲୀ. ବି.(ପ୍ର+କୃଷ୍+ଭା.ଅନ) ବିଶେଷ ଭାବରେ କର୍ଷଣ,ଆଗକୁ ଠେଲା, ଉତ୍କର୍ଷ, ଆଧିକ୍ୟ, ଆକର୍ଷଣ, ପ୍ରାଧାନ୍ୟ, ବନ୍ଧକୀ ଦ୍ରବ୍ୟକୁ ବ୍ୟବହାର କରିବାଦ୍ୱାରା ମୂଳଟଙ୍କାର ନ୍ୟାଯ୍ୟ ସୁଧ ଅପେକ୍ଷା ଅଧିକ ଆଦାୟ ପାଇବା ।

ପ୍ରକର୍ଷଣୀୟ—ତ୍ରି. ବିଂ. ( ପ୍ର+କୃଷ୍+ଅନୀୟ)ଉତ୍କର୍ଷଣୀୟ,ପ୍ରକର୍ଷର ଯୋଗ୍ୟ ।

ପ୍ରକର୍ଷିତ—ବିଂ. (ପ୍ର+କୃଷ୍+ଣିଚ୍+ମି.ତ)ଉତ୍ତମରୂପେ ଚଷା ହୋଇଥିବା, ପ୍ରକୃଷ୍ଟରୂପେ ଆକର୍ଷିତ, ( ବି ) ବନ୍ଧକୀ ଜନସର ବ୍ୟବହାର ଦ୍ୱାରା ପ୍ରାପ୍ୟ ସୁଧରୁ ବେଶି ଲାଭ ।

ପ୍ରକର୍ଷୀ—ବିଂ.(ପ୍ରକର୍ଷ+ଇନ୍)ପ୍ରକର୍ଷଯୁକ୍ତ

ପ୍ରକଳା—ସ୍ତ୍ରୀ. ବି. (ପ୍ର+କଳା) କଳାର ୬୦ ଭାଗର ଏକଭାଗ ।

ପ୍ରକଳ୍ପନା—ସ୍ତ୍ରୀ. ବି. ( ପ୍ର+କଳ୍ପି + ଅନ + ଆ) ସ୍ଥିରୀକରଣ, ପ୍ରକୃଷ୍ଟରୂପେ କଳ୍ପନା, ସ୍ଥିର କରିବା ।

ପ୍ରକଳ୍ପୟିତା—ବିଂ.ପ୍ରକୃଷ୍ଟରୂପେ କଳ୍ପନାକାରୀ, ବିଧାନକର୍ତ୍ତା ।

ପ୍ରକଳ୍ପିତ—ତ୍ରି. ବିଂ.(ପ୍ର+କଳ୍ପି+ମି.ତ) ଅନୁଭାବିତ, ସଂକଳ୍ପିତ, ଉଦ୍ଭାବିତ, ପାତିତ, ସ୍ଥିରୀକୃତ,ବିହିତ,ସମ୍ପାଦିତ ।

ପ୍ରକଳ୍ପ୍ୟ—ବିଂ.(ପ୍ର+କଳ୍ପି+ଯ)ପ୍ରକଳ୍ପନୀୟ, ପ୍ରକଳ୍ପନର ଯୋଗ୍ୟ ।

ପ୍ରକଲ୍ୟାଣ—ତ୍ରି.ବିଂ.ଅତିଉତ୍କୃଷ୍ଟ, ଅତ୍ୟୁତ୍ତମ

ପ୍ରକଶ—ପୁଂ. ବି. (ପ୍ର+କଶ୍+ଭା.ଅ) ପୀଡ଼ନ, କୋରଡ଼ା ମାରିବା, ମାରଣ, ପୀଡ଼ାଦେବା, କଷ୍ଟଦେବା ।

ପ୍ରକଶୀ—ସ୍ତ୍ରୀ. ବି. ଶୂକରୋଗ, ଯନ୍ତ୍ରରେ

ପୁରୁଷର ମୁଣ୍ଡେଦ୍ରସ୍ୟ ପୂର୍ଣ୍ଣଯାଏ ।

ପ୍ରକାଙ୍କ୍ଷା—ବି. (ପ୍ର+କାଙ୍କ୍ଷ+ଭା.ଅ+ଆ) କ୍ଷୁଧା, ଭୋକ ।

ପ୍ରକାଣ୍ଡ—ପୁଂ. କ୍ଲୀ. ବି. (ପ୍ର+କାଣ୍ଡ) ମୂଳଠାରୁ ଆରମ୍ଭ କରି ଶାଖାବଧି ବୃକ୍ଷ ଭାଗ, ବୃକ୍ଷ, ଗଣ୍ଡି,ଶାଖା,ଡାଳ, ବାହୁର ଉପର ଅଂଶ, ଡେଣା,(ବିଂ) ଉତ୍କୃଷ୍ଟ ପ୍ରଶସ୍ତ, ବହୁବିସ୍ତୃତ,ଖୁବ୍ ବଡ଼,ମୋଟା, ସୁଖୀ, ଡେଙ୍ଗା ।

ପ୍ରକାଣ୍ଡର—ପୁଂ. ବି. ବୃକ୍ଷ, ଗଛ ।

ପ୍ରକାମ—ଅବ୍ୟ ଓ ବିଂ.(ପ୍ର+କମ୍+ମି. ଅ)ଅତ୍ୟନ୍ତ, ପର୍ଯ୍ୟାପ୍ତ, ପ୍ରଚୁର,ଯଥେଷ୍ଟ, ଆନନ୍ଦ ସହକାରେ, ଯଥେଷ୍ଟ ରୂପେ, ସ୍ୱେଚ୍ଛାକ୍ରମେ ।

ପ୍ରକାମଭୁଜ୍—ପୁଂ. ବିଂ. (ପ୍ରକାମ+ଭୁଜ୍ +କ. କ୍ୱିପ୍) ପେଟପୂରିବା ପର୍ଯ୍ୟନ୍ତ ଖାଉଥିବା (ବ୍ୟକ୍ତି) ।

ପ୍ରକାର—ପୁଂ. ବି. (ପ୍ର+କୃ+ଅ) ରୀତି, ଜାତି, ଧାରା, ପ୍ରଭେଦ, ନିୟମ, ରକମ, କୌଶଳ, ଭେଦ, ସାଦୃଶ୍ୟ, ବିଶିଷ୍ଟ ଜ୍ଞାନହେତୁ ଭାସମାନ ପଦାର୍ଥ ।

ପ୍ରକାରକ—ପୁଂ. ବିଂ.ପ୍ରକାର ସମ୍ବନ୍ଧୀୟ, ସେହିଭଳିର, ସେହି ପ୍ରକାରର ।

ପ୍ରକାରଗତ—ବିଂ. ଗୁଣ ସମ୍ବନ୍ଧୀୟ ।

ପ୍ରକାରବିଶେଷ—ବି. ଅନେକପ୍ରକାର ବା ଶ୍ରେଣୀ ମଧ୍ୟରୁ ଏକତମ, ଏକପ୍ରକାର ।

ପ୍ରକାରାନ୍ତର—ପୁଂ.ବି.(ପ୍ରକାର+ଅନ୍ତର) ଅନ୍ୟପ୍ରକାର, ଭିନ୍ନନିୟମ ।

ପ୍ରକାରାନ୍ତରରେ—କ୍ରି.ବିଂ. ଅନ୍ୟଥା, ପରନ୍ତୁ,ଅନ୍ୟରୂପେ, ଅପ୍ରକାଶ ରୂପରେ

ପ୍ରକାଶ—କ୍ଲୀ. ବି. (ପ୍ର+କାଶ୍+ଅ) ଚକଚକ୍ୟ, ଉଜ୍ଜ୍ୱଳତା, ଶୋଭା, ସ୍ପଷ୍ଟତା, ବିକାଶ, ଆଲୋକ, ଜ୍ୟୋତିଃ,କାଂସ୍ୟ, ଦୀପ୍ତ, ଅଭିବ୍ୟକ୍ତି, ପ୍ରସରଣ, ପ୍ରସିଦ୍ଧି, ପ୍ରକଟନ, ଯଶଃ, ଖ୍ୟାତି, ଆବିଷ୍କାର, ରୌଦ୍ର,ଖରା, ସାଦୃଶ୍ୟ ଜ୍ଞାନ,ବୈବସ୍ୱତ ମନୁଙ୍କ ପୁତ୍ର, ହାସ୍ୟ, ଉଦୟ.(ବିଂ) ବିକଶିତ, ବ୍ୟକ୍ତ, ପ୍ରକଟ, ପ୍ରସନ୍ନ, ପ୍ରସିଦ୍ଧ, ଉଦ୍ଭାବିତ, ସଦ୍ଗୁଣ ।

ପ୍ରକାଶକ—ତ୍ରି. ବିଂ. (ପ୍ର+କାଶ୍+କ. ଅକ) ବ୍ୟାଖ୍ୟାକାରୀ,ଉଜ୍ଜ୍ୱଳ,ପ୍ରଦର୍ଶକ, (ବି) ଗ୍ରନ୍ଥାଦିର ପ୍ରଚାରକର୍ତ୍ତା, ବ୍ୟାଖ୍ୟା କରିବା ବ୍ୟକ୍ତି, ମହାଦେବ, କାଂସ୍ୟ. ସାଂଖ୍ୟମତସିଦ୍ଧ ସତ୍ତ୍ୱଗୁଣ,(ସ୍ତ୍ରୀ)ପ୍ରକାଶିକା

ପ୍ରକାଶକଜ୍ଞାତା—ପୁଂ.ବି.କୁକ୍କୁଟ,(ତ୍ରି.ବିଂ) ପ୍ରକାଶକ ଜ୍ଞାତୃମାତ୍ର ।

ପ୍ରକାଶକରିବା—କ୍ରି.ତ୍ରି.ପ୍ରକଟନ କରିବା, ସାଧାରଣଙ୍କ ନିକଟରେ କହିବା, ଗୁପ୍ତ ରହସ୍ୟ ଆଦି କହିବା, ଗ୍ରନ୍ଥକୁ ମୁଦ୍ରଣ ଦ୍ୱାରା ପ୍ରଚାର କରିବା ।

ପ୍ରକାଶକାମ—ପୁଂ. ବିଂ. ସୌନ୍ଦର୍ଯ୍ୟ ବା ସମ୍ମାନ ଅଭିଳାଷୀ, ଯଶଇଚ୍ଛୁ, ଯେ ଯଶଃ କାମନା କରେ,(ସ୍ତ୍ରୀ)ପ୍ରକାଶକାମା ।

ପ୍ରକାଶତଃ—ତ୍ରି. ବିଂ.ପ୍ରକାଶ୍ୟଭାବରେ ।

ପ୍ରକାଶତା—ସ୍ତ୍ରୀ. ବି. ଉଜ୍ଜ୍ୱଳତା, ସ୍ପଷ୍ଟତା ପ୍ରକାଶର ଭାବ ବା ଧର୍ମ, ପ୍ରକାଶତ୍ୱ, ପ୍ରତ୍ୟକ୍ଷୀଭୂତକରଣ ।

ପ୍ରକାଶଥାଉକି—କ୍ରି. (ବାକ୍ୟ) ଏଥିପ୍ରତି ପାଠକଙ୍କ ଦୃଷ୍ଟି ଆକର୍ଷଣ କରା ଯାଉଅଛି ।

ପ୍ରକାଶଧର—ପୁଂ. ବି. ତତ୍ତ୍ୱ ଚିନ୍ତାମଣି ଟୀକା ପ୍ରଣେତା ।

ପ୍ରକାଶନ—ତ୍ରି. ବିଂ.(ପ୍ର+କାଶ୍+ଅନ) ଉଜ୍ଜ୍ୱଳ, ଦୀପ୍ତିମାନ୍, ପ୍ରକାଶକରଣ, ଦେଖାଇବା,ଆଲୋଚିତ କରିବା,ସୁସ୍ପଷ୍ଟ କରିବା,ଗ୍ରହନକ୍ଷତ୍ରାଦିର ଉଦୟ,ବିଷ୍ଣୁ ।

ପ୍ରକାଶନାରୀ—ସ୍ତ୍ରୀ.ବି.ବାରନାରୀ,ବେଶ୍ୟା ।

ପ୍ରକାଶନୀୟ—ବିଂ. (ପ୍ର+କାଶ୍+ମି. ଅନୀୟ)ଦର୍ଶନୀୟ,ଦେଖାଇବାର ଯୋଗ୍ୟ, ପ୍ରଚାର ଯୋଗ୍ୟ ।

ପ୍ରକାଶମାନ—ବିଂ.(ପ୍ର+କାଶ+କ.ଆନ୍) ଦୀପ୍ତିମାନ, ଉଜ୍ଜ୍ୱଳ, ସ୍ପଷ୍ଟ ।

ପ୍ରକାଶାତ୍ମା—ପୁଂ. ବି. (ବ.ବ୍ରୀ) ଈଶ୍ୱର, ସୂର୍ଯ୍ୟ, (ବିଂ) ଯାହାର ଆଚରଣ ବା ସ୍ୱଭାବ ଅତି ଉଜ୍ଜ୍ୱଳ, ସ୍ୱୟଂଦୀପ୍ତ ।

ପ୍ରକାଶିତ—ତ୍ରି. ବିଂ. (ପ୍ର+କାଶ୍+ତ) ପ୍ରକାଶବିଶିଷ୍ଟ, ଦର୍ଶିତ, ପ୍ରକାଶ, ଶୋଭିତ, ଦୀପ୍ତ, ଉଦ୍ଭାସିତ,ପ୍ରସ୍ଫୁଟିତ, ଉଦ୍ଭାବିତ,ଜ୍ଞାନଗମ୍ୟ, ଆବିଷ୍କୃତ,ମୁଦ୍ରଣ ଦ୍ୱାରା ପ୍ରକଟିତ (ପୁସ୍ତକ) ।

ପ୍ରକାଶିତବିରୁଦ୍ଧତା—ବି. ଯେଉଁ ସ୍ଥଳରେ ପ୍ରକୃତ ବିରୁଦ୍ଧାର୍ଥ ପ୍ରକାଶିତ ହୁଏ ।

ପ୍ରକାଶିତବ୍ୟ—ବିଂ. ପ୍ରକାଶିତ ହେବାର ଯୋଗ୍ୟ ।

ପ୍ରକାଶିବା—କ୍ରି. ତ୍ରି. ପ୍ରକାଶିତ ହେବା, ପ୍ରକାଶିତ କରିବା, ଦର୍ଶାଇବା,କହିବା, ଦେଖାଯିବା, (ରାତି)ପାହିବା,ପ୍ରସ୍ଫୁଟିତ ହେବା ।

ପ୍ରକାଶୀ—ପୁଂ. ବିଂ. (ପ୍ରକାଶ+ଇନ୍) ପ୍ରକାଶଯୁକ୍ତ, ଦୀପ୍ତିମାନ୍ ।

ପ୍ରକାଶୀକରଣ—କ୍ଲୀ. ବି. ଅପ୍ରକାଶକୁ ପ୍ରକାଶ କରିବା ।

ପ୍ରକାଶ୍ୟ—ତ୍ରି. ବିଂ. (ପ୍ରକାଶ+ମି.ଯ) ସର୍ବସାଧାରଣଙ୍କପାଇଁ ଉନ୍ମୁକ୍ତ ଦୃଶ୍ୟ, ଯାହା ଗୋପନୀୟ ନୁହେ ।

ପ୍ରକିରଣ—କ୍ଲୀ. ବି. ପ୍ରକ୍ଷେପ,ବିତରଣ ।

ପ୍ରକୀର୍ଣ୍ଣ—ବିଂ. (ପ୍ର+କୃ+ତ) ବିକ୍ଷିପ୍ତ, ବୁଣାଯାଇଥିବା, ପ୍ରସାରିତ, ବିସ୍ତୃତ, ପ୍ରକାଶିତ, ମିଶ୍ରିତ, ଉନ୍ମାର୍ଗ, ତ୍ରୁଟିତ, ଉଚ୍ଛୃଙ୍ଖଳ, ବିକସିତ, ବିବିଧ,ଅସଂବଦ୍ଧ, (ବି) ପୁସ୍ତକର ଅଧ୍ୟାୟ, ପୂତିକରଞ୍ଜ, ବ୍ୟଞ୍ଜନବିଶେଷ, ଚାମର, ବିବିଧଗୀତ, ବଚନ ସଂଗ୍ରହ ।

ପ୍ରକୀର୍ଣ୍ଣକ—କ୍ଲୀ. ବି. ଚାମର, ବିସ୍ତାର, ଗ୍ରନ୍ଥବିଶେଷ,ଅନୁକ୍ତ ପ୍ରାୟଶ୍ଚିତ୍ତ,ପାତକଭେଦ, ତୁରଙ୍ଗ, ଅଶ୍ୱ,ଗ୍ରନ୍ଥର ଅଧ୍ୟାୟ ।

ପ୍ରକୀର୍ଣ୍ଣକେଶୀ—ସ୍ତ୍ରୀ. ବି. ଦୁର୍ଗା ।

ପ୍ରକୀର୍ତ୍ତନ—କ୍ଲୀ. ବି. (ପ୍ର+କୃତ୍+ଭା. ଅନ)ଉଚ୍ଚସ୍ୱରରେ ନାମଗାନ,ଘୋଷଣା, କଥନ ।

ପ୍ରକୀର୍ତ୍ତି—ସ୍ତ୍ରୀ. ବି. (ପ୍ର+କୃତ୍+ଭା.ତି) ପ୍ରଶସ୍ତି, ପ୍ରଶଂସା, ଖ୍ୟାତି, ପ୍ରସିଦ୍ଧି, ପ୍ରଚାର, ଘୋଷଣା ।

ପ୍ରକୀର୍ତ୍ତିତ—ତ୍ରି. ବିଂ.(ପ୍ର+କୃତ୍+ମି.ତ) କଥିତ, ବର୍ଣ୍ଣିତ, ବିଖ୍ୟାତ, ପ୍ରସିଦ୍ଧ, ବିଶଦୀକୃତ ।

ପ୍ରକୀର୍ଯ୍ୟ—ପୁଂ. ବି. (ପ୍ର+କୃ+ଯ)କରଞ୍ଜଭେଦ, ପୂତିକରଞ୍ଜ, ଘାଟାକରଞ୍ଜ,(ବିଂ)

ବିକ୍ଷେପ୍ୟ,ବ୍ୟାପ୍ୟ,ପ୍ରକାଶଯୋଗ୍ୟ,ବିସ୍ତାର-ଯୋଗ୍ୟ ।

ପ୍ରକୁପିତ—ବି.ବଂ.(ପ୍ର+କୁପ୍+କ.ତ) ଯାହାର ସ୍ୱଭାବ ଅତି ବଢ଼ିଯାଇଅଛି, ଅତିଶୟ କ୍ରୁଦ୍ଧ, ବିଶୃଙ୍ଖଳ ।

ପ୍ରକୁଳ—କ୍ଲୀ,ବ. (ପ୍ର+କୁଳ) ପ୍ରଶସ୍ତ ବପୁଃ, ପ୍ରଶସ୍ତଦେହ, ସୁନ୍ଦରଦେହ ।

ପ୍ରକୁଷ୍ମାଣ୍ଡୀ—ସ୍ତ୍ରୀ, ବ. ଦୁର୍ଗା ।

ପ୍ରକୃତ—ବି. ବଂ, (ପ୍ର+କୃ+ର୍ମ.ତ) ପ୍ରକାନ୍ତ, ବାଞ୍ଛିତ, ସତ୍ୟ,ବିଶୁଦ୍ଧ,ଅଧିକୃତ, ଆରବ୍ଧ, ପ୍ରକରଣପ୍ରାପ୍ତ, ନିର୍ମିତ, ରଚିତ, ଯଥାର୍ଥ, ବାସ୍ତବିକ, ପ୍ରକର୍ଷରୂପେ କୃତ, ଅବକୃତ ।

ପ୍ରକୃତତା—ସ୍ତ୍ରୀ. ବ. ଯାଥାର୍ଥ୍ୟ, ପ୍ରକୃତର ଭାବ, ଆରମ୍ଭ, ତର୍କାଦିର ଯାଥାର୍ଥ୍ୟ ନିରୂପଣ, ବାସ୍ତବତା ।

ପ୍ରକୃତାର୍ଥ—ବଂ,(ବ.ଗ୍ରା) ଦକ୍ଷଅର୍ଥ, ଠିକ, ସତ୍ୟ, (ବି) ନାଲିଶ କରିବାର ଯଥାର୍ଥ କାରଣ ।

ପ୍ରକୃତି—ସ୍ତ୍ରୀ. ବ. (ପ୍ର+କୃ+ତି)ସ୍ୱଭାବ, ଶୀଘ୍ର, ଲିଙ୍ଗ, ମେଢ୍ର, ଶିଳ୍ପୀ, ଶକ୍ତି, ଯୋଷିତ, (ସ୍ତ୍ରୀ) ପରମାତ୍ମା, ଆକାଶାଦି ଭୂତପଞ୍ଚକ, କରଣ, ଗୁହ୍ୟ, ଜନ୍ମ, ଛନ୍ଦୋଭେଦ,ମାତା,ଜଗତର ତ୍ରିଗୁଣାତ୍ମକ ମୂଳକାରଣ, ତମଃ, ମାୟା, ଅଜା, ଅଜ୍ଞାନ, ହେତୁ,କାରଣ,ନିସର୍ଗ,ସୁହୃତ୍, କୋଷ, ରାଷ୍ଟ୍ର, ଦୁର୍ଗ, ବଳ ଏହି ସପ୍ତପ୍ରକାର ରାଜ୍ୟାଙ୍ଗ, ଅବିଭକ୍ତ୍ୟନ୍ତ ଶବ୍ଦ ଓ ଧାତୁ, ଦେହ,ପ୍ରଜା,ଯୋନି, ଦେବୀ, ଠାକୁରାଣୀ, ଅଳଙ୍କାର ଶାସ୍ତ୍ର, ଗୁଣକ, (ଗ୍ରା.ବି) ବଳମୂଳ, ଅଭ୍ୟାସ ।

ପ୍ରକୃତିଖଣ୍ଡ—ବ. ବ୍ରହ୍ମବୈବର୍ତ୍ତ ପୁରାଣର ଦ୍ୱିତୀୟ ଖଣ୍ଡ ।

ପ୍ରକୃତିଗତ—ବଂ,(୭ତତ୍) ସ୍ୱଭାବସୁଲଭ, ସ୍ୱଭାବଶୁଦ୍ଧ ।

ପ୍ରକୃତିଛଡ଼ା—ଗ୍ରା. ବଂ, ଅମାନୁଷିକ, ପ୍ରକୃତି ବିରୁଦ୍ଧ, ଅମଙ୍ଗଳକର, ମନ୍ଦପ୍ରକୃତିବିଶିଷ୍ଟ ।

ପ୍ରକୃତିଛୁଆଁଇବା—ଗ୍ରା, ବ. ନିଜର ପ୍ରକୃତି ବା ସ୍ୱଭାବବିରୁଦ୍ଧ କାର୍ଯ୍ୟ କରିବା ବା କଥା କହିବା ।

ପ୍ରକୃତିଜ—ବି.ବଂ. ସ୍ୱଭାବଜ,ପ୍ରାକୃତିକ, (ବି) ପ୍ରକୃତିସ୍ୱଭାବରୂପ ସାଂଖ୍ୟମତସିଦ୍ଧ ସତ୍ତ୍ୱାଦି ଗୁଣତ୍ରୟ ।

ପ୍ରକୃତିଜନ—ବ. ରାଜ୍ୟର ପ୍ରଜା ।

ପ୍ରକୃତିଜନ୍ୟ—ବଂ. (୫ତତ୍) ପ୍ରକୃତିଉତ୍ପାଦ୍ୟ, ପ୍ରାକୃତିକ, ସ୍ୱଭାବଜାତ ।

ପ୍ରକୃତିତତ୍ତ୍ୱ—ବ.(୬ତତ୍) ପ୍ରକୃତି ସମ୍ବନ୍ଧୀୟ ଗୂଢ଼ତତ୍ତ୍ୱ, ପଦାର୍ଥ ବିଦ୍ୟା ।

ପ୍ରକୃତିଧର୍ମ—ପୁଂ. ବ. ସାଂଖ୍ୟମତସିଦ୍ଧ ପ୍ରକୃତିର ଧର୍ମଭେଦ ।

ପ୍ରକୃତିପୁଞ୍ଜ—ବ. ପ୍ରଜାବର୍ଗ,ପ୍ରଜାସକଳ ।

ପ୍ରକୃତିପୁରୁଷ—ପୁଂ, ବ. ପ୍ରଧାନ ପୁରୁଷ, ମନ୍ତ୍ରୀ, ଭୃତ୍ୟ, ପ୍ରକୃତି ଓ ପୁରୁଷ ।

ପ୍ରକୃତିପୂଜକ—ବଂ. (୬ତତ୍) ସ୍ୱଭାବୋପାସକ, ଲିଙ୍ଗାରାଧକ ।

ପ୍ରକୃତିପୂଜା—ବ. (୬ତତ୍) ସ୍ୱଭାବୋପାସନା, ଜଡ଼ାରାଧନା, ଲିଙ୍ଗାରାଧନା ।

ପ୍ରକୃତିବତ୍ସଳ—ବ.(୭ତତ୍) ପ୍ରଜାଙ୍କପ୍ରତି ସ୍ନେହପୂର୍ଣ୍ଣ ।

ପ୍ରକୃତିବାଦ—ବ. ପ୍ରକୃତିତତ୍ତ୍ୱ, ପ୍ରାକୃତଦର୍ଶନ, ଧାତୁବାଦ, ଶବ୍ଦର ପ୍ରକୃତାର୍ଥ ବିଚାର, ଜଡ଼ବାଦ ।

ପ୍ରକୃତିବାଦୀ—ପୁଂ.ବଂ. (ପ୍ରକୃତିବାଦ+ଇନ୍) ଜଡ଼ବାଦୀ,ପ୍ରକୃତି ସମସ୍ତର ମୂଳ ଏହିପରି ମତାବଲମ୍ବୀ ।

ପ୍ରକୃତିବିକୃତି—ବ. (୭ତତ୍) ସ୍ୱାଭାବିକ ଅବସ୍ଥାର ପରିବର୍ତ୍ତନ,ସ୍ୱାଭାବିକ ଅବସ୍ଥା ଓ ପରିବର୍ତ୍ତିତ ଅବସ୍ଥା ।

ପ୍ରକୃତିବିଜ୍ଞାନ—ବ.ପଦାର୍ଥ ବିଜ୍ଞାନ,ପ୍ରକୃତିତତ୍ତ୍ୱ ବିଷୟକ ଶାସ୍ତ୍ର ।

ପ୍ରକୃତିବିପର୍ଯ୍ୟୟ—ବ.ରଚନାଗତ ରସଦୋଷ ବିଶେଷ ।

ପ୍ରକୃତିବିରୁଦ୍ଧ—ବଂ. (୭ତତ୍) ସ୍ୱଭାବର ବିପରୀତ, ନିଜର ପ୍ରକୃତିର ପ୍ରତିକୂଳ ।

ପ୍ରକୃତିଭାବ—ପୁଂ. ବ. ସ୍ୱଭାବ ।

ପ୍ରକୃତିମଣ୍ଡଳ—କ୍ଲୀ. ବ. ରାଜ୍ୟାଙ୍ଗ ସ୍ୱାମୀ ଓ ଅମାତ୍ୟାଦି, ପ୍ରଜାସମୁଦାୟ, ଲୋକସମୂହ ।

ପ୍ରକୃତିମେଣ୍ଟଣ—ଗ୍ରା, ବ. ନିଜର ପ୍ରକୃତିର ଅନୁକୂଳ କୌଣସି କାର୍ଯ୍ୟ କରିବା, ପ୍ରକୃତିର ଆନୁକୂଲ୍ୟ ସାଧନ, ନିଜର ଅଭ୍ୟାସଗତ, କୌଣସି କାର୍ଯ୍ୟ କରିବା, ଦ୍ୱାରା ନିଜର ମନର ତୃପ୍ତିସାଧନ ।

ପ୍ରକୃତିମେଣ୍ଟା(ଣ୍ଟେ)ଇବା—ଗ୍ରା.କି.ନିଜର ପ୍ରକୃତିର ଅନୁକୂଳ କୌଣସି କାର୍ଯ୍ୟକରି ନିଜର ମନକୁ ତୃପ୍ତ କରିବା ।

ପ୍ରକୃତିରଞ୍ଜକ—ପୁଂ. ବ. (୬ତତ୍) ପ୍ରଜାରଞ୍ଜକ, ପ୍ରଜାବତ୍ସଳ ।

ପ୍ରକୃତିରଞ୍ଜନ—ବ. (୬ତତ୍) ନ୍ୟାୟ ଓ ଦୟାପୂର୍ଣ୍ଣ ଶାସନ ଦ୍ୱାରା ପ୍ରଜାମାନଙ୍କର ସନ୍ତୋଷ ବିଧାନ ।

ପ୍ରକୃତିସିଦ୍ଧ—ବଂ. (୩ତତ୍) ସ୍ୱଭାବସିଦ୍ଧ, ସ୍ୱାଭାବିକ, ନୈସର୍ଗିକ, ପ୍ରାକୃତିକ,ସ୍ୱଭାବଜ, ସହଜ ।

ପ୍ରକୃତିସୁଭଗ—ପୁଂ.ବଂ, (୩ତତ୍) ପ୍ରକୃତିର ଗୁଣରେ ସୁନ୍ଦର ବା ମନୋରମ ।

ପ୍ରକୃତିସୁଲଭ—ବଂ, ନିଜର ପ୍ରକୃତିର ଅନୁକୂଳ ।

ପ୍ରକୃତିସ୍ଥ—ବି. ବଂ, (ପ୍ରକୃତି+ସ୍ଥା+ଅ) ସ୍ୱୀୟସ୍ୱଭାବାପନ୍ନ, ସ୍ୱାଭାବିକ, ସୁସ୍ଥ, ସୁସ୍ଥତାଯୁକ୍ତ, ନଗ୍ନ ।

ପ୍ରକୃତୋତ୍ତର—ବ. (କ.ଧା) ସଦୁତ୍ତର, ଠିକ୍‌ଜବାବ ।

ପ୍ରକୃଷ୍ଟ—ବଂ, (ପ୍ର+କୃଷ୍+ର୍ମ.ତ) ଉତ୍କୃଷ୍ଟ, ଉତ୍ତମ,ପ୍ରଶଂସନୀୟ,ବେଦନାପ୍ରାପ୍ତ,ପ୍ରକର୍ଷଯୁକ୍ତ, ମୁଖ୍ୟ,ପ୍ରମୁଖ,ଆକୃଷ୍ଟ, ଟାଣାଯାଇଥିବା, ବହୁକାଳବ୍ୟାପୀ,ବହୁଦୂରବ୍ୟାପୀ, ପ୍ରଧାନ, ପ୍ରଶସ୍ତ ।

ପ୍ରକୃଷ୍ଟତା—ବ. ଉତ୍କର୍ଷ, ଉତ୍କୃଷ୍ଟତା ।

ପ୍ରକୃଷ୍ୟ—ବି. ବଂ. (ପ୍ର+କୃଷ+ଯ) ଯାହାକୁ ଭୂମିଲଗ୍ନ କରି ଆକର୍ଷଣ କରାଯାଏ ।

ପ୍ରକୃପ୍ତ—ବି, ବଂ. (ପ୍ର+କୃପ୍+ତ) ରଚିତ, ସମ୍ଭୂତ, କୃତ,ଗ୍ରଥିତ,ଉଦ୍ଭୂତ, ଜାତ ।

ପ୍ରକୃପ୍ତି—ସ୍ତ୍ରୀ. ବ. ବିଦ୍ୟମାନତା ।

ପ୍ରକେତ—ବି. ବିଂ. (ପ୍ର+କତ୍+ଣିଚ୍ +ଅ) ପ୍ରକର୍ଷ ରୂପେ ଜ୍ଞାପକ, (ବ) ପ୍ରକୃଷ୍ଟ ସୁଖସାଧନ ଅନ୍ନ । [ ଜ୍ଞାପନ ।

ପ୍ରକେତନ—କ୍ଲୀ. ବ. ଅନ୍ନ, ପ୍ରକୃଷ୍ଟରୂପ

ପ୍ରକୋଟ—ବ. (ପ୍ର+କୋଟ) ପଟଖା, ମାଟିଆଦିର ଗଦା ।

ପ୍ରକୋଥ—ବ. (ପ୍ର+କୁଥ୍+ଅ) ପ୍ରକୃଷ୍ଟ-ପତନ, ସଂଶୋଷ, (ବିଂ)ପୂତିଗନ୍ଧବାପନ୍ନ, ପଗୃ ।

ପ୍ରକୋପ—ପୁଂ. ବ. ( ପ୍ର+କୁପ୍+ଅ ) ଅତିଶୟ କୋପ, ଜ୍ୱରାଦିର ଉତ୍କଟତା, କ୍ଷୋଭ, ଶୃଙ୍ଖଲ୍ୟ, ପ୍ରାବଲ୍ୟ ।

ପ୍ରକୋପନ—ବିଂ.(ପ୍ର+କୁପି+କ.ଅନ) ଉତ୍ତେଜକ, (ବ.ଭା.ଅନ) ଉତ୍ତେଜନ, ବର୍ଦ୍ଧନ, ଅଗ୍ନି ପ୍ରଭୃତିକୁ ତେଜିବା, ରାଗିବା ।

ପ୍ରକୋପନୀୟ—ବିଂ.(ପ୍ର+କୁପି+ଅନୀୟ) ପ୍ରକୋପର ଯୋଗ୍ୟ,ପ୍ରକୋପନାର୍ହ ।

ପ୍ରକୋପିତ—ବିଂ. ରାଗାନ୍ୱିତ, ଉତ୍ତେଜିତ, କ୍ରୋଧାନ୍ୱିତ ।

ପ୍ରକୋପିତା—ପୁଂ. ବିଂ. (ପ୍ର+କୁପି+କ.ତୃ) ପ୍ରକୋପକ,ପ୍ରକୋପନକାରୀ ।

ପ୍ରକୋଷ୍ଠ—ପୁଂ. ବ. (ପ୍ର+କୁଷ୍+ଠ) କହୁଣି ତଳରୁ ମଣିବନ୍ଧ ପର୍ଯ୍ୟନ୍ତ ହସ୍ତାଂଶ,ଦ୍ୱାରର ଅଂଶବିଶେଷ, ଦ୍ୱାରର ପାର୍ଶ୍ୱଗୃହ, କୋଠରୀ, କକ୍ଷ, ଚଉକଠ ।

ପ୍ରକ୍ଷର—ପୁଂ. ବ. ( ପ୍ର+କ୍ଷର+ଅ ) ଅଶ୍ୱସନ୍ନାହ, ଅଶ୍ୱକବଚ, କୁକ୍କୁର, ଅଶ୍ୱତର, (ବିଂ) ଅତ୍ୟନ୍ତ ତୀବ୍ର ।

ପ୍ରକ୍ରନ୍ତା—ବିଂ. (ପ୍ର+କ୍ରମ୍+ତୃ) ଉପକ୍ରମକର୍ତ୍ତା, ଆରମ୍ଭକର୍ତ୍ତା ।

ପ୍ରକ୍ରମ—ପୁଂ. ବ. (ପ୍ର+କ୍ରମ୍+ଅ) କ୍ରମ, ଅବସର, ଅତିକ୍ରମ, ଉପକ୍ରମ, ଗମନ, ପଦକ୍ଷେପ, ବିକ୍ରମ, ଅନୁପାତ, ଅବକାଶ, ଗାଢ, ସମ୍ବନ୍ଧ, ପରିଭ୍ରମଣ ।

ପ୍ରକ୍ରମଣ—କ୍ଲୀ. ବ. (ପ୍ର+କ୍ରମ୍+ଭା.ଅନ) ପ୍ରକ୍ରମ ଦେଖ,ଆଗକୁ ଯିବା,(ପ୍ର+କ୍ରମି +ଭା.ଅନ)ପାରକରିବା,ଆରମ୍ଭକରିବା

ପ୍ରକ୍ରମଭଙ୍ଗ—ପୁଂ.ବ.(୬ତତ୍) ସାହିତ୍ୟ-ଦର୍ପଣଉକ୍ତ ରଚନାର ଦୋଷବିଶେଷ ।

ପ୍ରକ୍ରାନ୍ତ—ବି. ବିଂ. (ପ୍ର+କ୍ରମ୍+ତ) ପ୍ରକରଣସ୍ଥ, ପ୍ରକରଣପ୍ରାପ୍ତ, ଆରବ୍ଧ, ଦୃଷ୍ଟୀକୃତ, ଅତିକ୍ରାନ୍ତ ।

ପ୍ରକ୍ରିୟା—ସ୍ତ୍ରୀ. ବ. (ପ୍ର+କୃ+ଯ+ଆ) ଅନୁଷ୍ଠାନ, କାର୍ଯ୍ୟପ୍ରଣାଳୀ, ପ୍ରୟୋଗ, ପ୍ରକରଣ, ନୃପାଦିଙ୍କ ଚାମର ବ୍ୟଜନ ଏବଂ ଛତ୍ରଧାରଣ ପ୍ରଭୃତି ବ୍ୟାପାର, ପ୍ରକୃଷ୍ଟକାର୍ଯ୍ୟ, ଶବ୍ଦପ୍ରୟୋଗାବସ୍ଥା,ପକ୍ଷ ଓ ପ୍ରତିପକ୍ଷର ପ୍ରବୃତ୍ତି, ଔଷଧାଦିର ଫଳ, ପ୍ରଣାଳୀ, ଢଙ୍ଗ ।

ପ୍ରକ୍ରୀଡ଼—ପୁଂ. ବ. ପ୍ରକୃଷ୍ଟ କ୍ରୀଡ଼ନ ।

ପ୍ରକ୍ରୀଡ଼ୀ—ବିଂ. ( ପ୍ର+କ୍ରୀଡ଼+ଇନ୍ ) ପ୍ରକୃଷ୍ଟ ରୂପେ କ୍ରୀଡ଼ାଯୁକ୍ତ ।

ପ୍ରକ୍ରୋଶ—ପୁଂ. ଶ. ଆକ୍ରୋଶ ।

ପ୍ରକ୍ଲିନ୍ନ—ବି.ବିଂ. (ପ୍ର+କ୍ଲିଦ୍+ତ)ସିକ୍ତ, ଆର୍ଦ୍ର, ପ୍ରଚୁର କ୍ଳେଦଯୁକ୍ତ, ତୃପ୍ତ ।

ପ୍ରକ୍ଳେଦ—ପୁଂ. ବ. ଆର୍ଦ୍ରତା ।

ପ୍ରକ୍ଳେଦନ—କ୍ଲୀ.ବ.ଆର୍ଦ୍ରକରଣ, ଓଦାକରିବା । [ ଧ୍ୱନି, ଶବ୍ଦ, ଧ୍ୱନି ।

ପ୍ରକ୍ୱଣ—ପୁଂ.ବ.(ପ୍ର+କ୍ୱଣ+ଅ) ବୀଣା-

ପ୍ରକ୍ୱାଣ—ପୁଂ.ବ(ପ୍ର+କ୍ୱଣ+ଅ)ପ୍ରକ୍ୱଣ, ଶବ୍ଦ ।

ପ୍ରକ୍ଷୟ—ପୁଂ.ବ.(ପ୍ର+କ୍ଷି+ଅଚ୍)ନାଶ ।

ପ୍ରକ୍ଷୟଣ—ବ. ବିନାଶନ । [ କବଚ ।

ପ୍ରକ୍ଷର—ପୁଂ.ବ.(ପ୍ର+କ୍ଷର+ଅ) ଅଶ୍ୱ-

ପ୍ରକ୍ଷରଣ—କ୍ଲୀ.ବ.ପ୍ରକୃଷ୍ଟ ରୂପେ କ୍ଷରଣ ।

ପ୍ରକ୍ଷାଳ—ବ. ଶୋଧକ ପ୍ରାୟଶ୍ଚିତ୍ତ ।

ପ୍ରକ୍ଷାଳକ—ବିଂ (ପ୍ର+କ୍ଷାଳି+ଅକ)ଯେ ଧୌତ କରେ ।

ପ୍ରକ୍ଷାଳନ—କ୍ଲୀ.ବ. (ପ୍ର+କ୍ଷାଳ+ଅନ) ପ୍ରାୟଶ୍ଚିତ୍ତ, ଧାବନ, ମାର୍ଜନ,ଧୋଇବା, ପଖାଳିବା, (ବିଂ) ଯେ ସର୍ବଦା ଗାଧୁଏ, ଯେ ଧୁଆଧୋଇ କରେ ।

ପ୍ରକ୍ଷାଳନୀୟ—ବି. ବିଂ. ( ପ୍ର+କ୍ଷାଳି+ ଅନୀୟ) ପ୍ରକ୍ଷାଳନର ଯୋଗ୍ୟ, ଧୌତ ହେବାର ଯୋଗ୍ୟ ।

ପ୍ରକ୍ଷାଳିତ—ବି. ବିଂ. (ପ୍ର+କ୍ଷାଳି+ତ) ଧୌତ, ମାର୍ଜିତ, ପରିଷ୍କୃତ ।

ପ୍ରକ୍ଷାଲ୍ୟ—ବି. ବିଂ. (ପ୍ର+କ୍ଷାଳି+ଯ) ପ୍ରକ୍ଷାଳନୀୟ,(ଅବ୍ୟ) ଧୌତକରି ।

ପ୍ରକ୍ଷିପ୍ତ—ବିଂ.(ପ୍ର+କ୍ଷିପ୍+ତ)ଫୋପଡ଼ା ଯାଇଥିବା, ଏଣେ ତେଣେ ବାଞ୍ଛା ହୋଇଥିବା, ନିକ୍ଷିପ୍ତ,ବିନ୍ୟସ୍ତ,ଅନ୍ତର୍ନିବେଶିତ ।

ପ୍ରକ୍ଷେଦନ—ବ. (ପ୍ର+କ୍ଷିଦ୍+ଣ.ଅନ) ନାରାଚ, ଲୌହମୟ ବାଣ ।

ପ୍ରକ୍ଷେପ—ପୁଂ. ବ. ( ପ୍ର+କ୍ଷିପ୍+ଅ ) ଔଷଧାଦିରେ କ୍ଷେପଣୀୟ ଦ୍ରବ୍ୟ,ବିନ୍ୟାସ, ପ୍ରହରଣ, ଫୋପାଡ଼ିବା, ବିକ୍ଷେପ, ରଚନା, ରଥ ବା ଗାଡ଼ିରେ ଗୃହକର ବସିବା ଆସନ, ଅନ୍ତର୍ନିବେଶନ,ଏଣେ ତେଣେ ବାଞ୍ଛିବା, ନିକ୍ଷିପ୍ତକରଣ ।

ପ୍ରକ୍ଷେପକ—ବିଂ. (ପ୍ର+କ୍ଷିପ୍+କ.ଅକ) ଯେ ପ୍ରକ୍ଷେପ କରେ ।

ପ୍ରକ୍ଷେପଣ—କ୍ଲୀ. ବ. (ପ୍ର+କ୍ଷିପ୍+ଅନ) ପ୍ରକ୍ଷେପ ଦେଖ ।

ପ୍ରକ୍ଷେପିକା—ସ୍ତ୍ରୀ. ବ. (ପ୍ର+କ୍ଷିପ୍+ଅକ +ଆ) ଯେଉଁ ବ୍ୟକ୍ତି ଦ୍ୱାରା କୌଣସି ପଦାର୍ଥ ନିକ୍ଷିପ୍ତ ହୁଏ ।

ପ୍ରକ୍ଷେପ୍ତବ୍ୟ—ବି.ବିଂ(ପ୍ର+କ୍ଷିପ୍+ତବ୍ୟ) ପ୍ରକ୍ଷେପଣୀୟ, ପ୍ରକ୍ଷେପର ଯୋଗ୍ୟ ।

ପ୍ରକ୍ଷେପ୍ୟ—ବିଂ.(ପ୍ର+କ୍ଷିପ୍+ଯ)ପ୍ରକ୍ଷେପ-ଯୋଗ୍ୟ ।

ପ୍ରକ୍ଷୋଭଣ—କ୍ଲୀ. ବ.( ପ୍ର+କ୍ଷୋଭଣ ) ଘାବରା ହେବା, ଅସ୍ଥିରତା ।

ପ୍ରକ୍ଷ୍ୱେଡ଼ନ—ପୁଂ. ବ. (ପ୍ର+କ୍ଷ୍ୱିଡ଼୍+ଣ. ଅନ)ନାରାଚ ଅସ୍ତ୍ର, (ଣ.ଅନ)ଶବ୍ଦକାର, (ଭା.ଅନ)ବାଣ ଗତିର ସାଇଁ ସାଇଁ ଶବ୍ଦ

ପ୍ରକ୍ଷ୍ୱେଦନ—ପୁଂ ବ.ନାରାଚ, ବାଣ, ଅସ୍ତ୍ର ।

ପ୍ରଖର—ବିଂ. (ପ୍ର+ଖର) ଅତି ତୀବ୍ର, ଅତି କଠିନ, ଶାଣିତ, ଅତି ପ୍ରଚଣ୍ଡ, ଅତିଶୟ ଉଷ୍ଣ, ଅତ୍ୟନ୍ତ ରାଗ,(ବ. ପ୍ରା. +ଖନ୍+ର) ଅଶ୍ୱ ବା ହସ୍ତୀର ସାଞ୍ଜ, ଅଶ୍ୱତର, ଖଚ୍ଚର, କୁକୁର ।

ପ୍ରଖଲ—ପୁଂ. ବିଂ. (ପ୍ର+ଖଲ)ଅତ୍ୟନ୍ତ ଦୁଷ୍ଟ, (ସ୍ତ୍ରୀ) ପ୍ରଖଲା ।

ପ୍ରଖ୍ୟ—ପୁଂ.ବିଂ.(ପ୍ର+ଖ୍ୟା+ଅ)ବିଖ୍ୟାତ, ସଦୃଶ, ତୁଲ୍ୟ, (ସ୍ତ୍ରୀ) ପ୍ରଖ୍ୟା ।

ପ୍ରଖ୍ୟା—ସ୍ତ୍ରୀ.ବି.(ପ୍ର+ଖ୍ୟା+ଆ)ବିଖ୍ୟାତି, ଉପମା, ସାଦୃଶ୍ୟ, ଉଜ୍ଜ୍ୱଳତା, ଯଶଃ, ସମତା, (ସ୍ତ୍ରୀ.ବିଂ) ସ୍ପଷ୍ଟରୂପେ ପ୍ରଖ୍ୟାୟମାନ, ବିଖ୍ୟାତା, ସଦୃଶୀ ।

ପ୍ରଖ୍ୟାତ—ବି. ବିଂ. (ପ୍ର+ଖ୍ୟା+ତ) ବିଖ୍ୟାତ,ସୁଖୀ, ସନ୍ତୁଷ୍ଟ, ପୂର୍ବେ କଥିତ, ଅଗ୍ରେ ନିର୍ଦ୍ଧାରିତ, ଯଶସ୍ୱୀ, ଚିହ୍ନା ।

ପ୍ରଖ୍ୟାତବପ୍ତୃକ—ପୁଂ.ବି(ବ.ବ୍ରୀ)ବିଖ୍ୟାତ ପିତୃକ,ଯାହାର ପିତା ସୁବିଖ୍ୟାତ,ଭଦ୍ର ଲୋକ ।

ପ୍ରଖ୍ୟାତି—ସ୍ତ୍ରୀ.ବି.(ପ୍ର+ଖ୍ୟା+ତି) ପ୍ରକୃଷ୍ଟ କୀର୍ତ୍ତି, ଖ୍ୟାତି, ଯଶଃ, ପ୍ରଶଂସା ।

ପ୍ରଗ—ଅବ୍ୟ. ପ୍ରାତଃକାଳ, ସକାଳ ।

ପ୍ରଗଣା(ନା,ନ୍ନା)—ଯା. ବି. ପରଗଣା, ଜିଲାର ରାଜସ୍ୱବିଭାଗ, ଚକଲା ।

ପ୍ରଗଣ୍ଡ—ପୁଂ. ବି. କହୁଣିଠାରୁ କାନ୍ଧ ପର୍ଯ୍ୟନ୍ତ ବାହୁଭାଗ, ଡେଣା ।

ପ୍ରଗଣ୍ଡୀ—ସ୍ତ୍ରୀ. ବି. ବହିଃପ୍ରାକାର, ଦୁର୍ଗର ପ୍ରାକାର ଭିତ୍ତିରେ ବୀରମାନଙ୍କର ଉପବେଶନ ସ୍ଥାନ ।

ପ୍ରଗତ—ବିଂ.(ପ୍ର+ଗମ୍+ତ) ପ୍ରସ୍ଥିତ, ପୃଥଗ୍‌ଭୂତ, ମୃତ, ବିଯୁକ୍ତ ।

ପ୍ରଗତଜାନୁ—ବି.ବିଂ.(ବ.ବ୍ରୀ) ଅସଂହତଜାନୁକ, ଯାହାର ଜାନୁର ମଧ୍ୟରେ ମହତ୍ ଅନ୍ତରାଳ ଅଛି ।

ପ୍ରଗତି—ବି.(ପ୍ର+ଗତି)ଉନ୍ନତି,ପ୍ରସ୍ଥାନ ।

ପ୍ରଗତିବାଦୀ—ପୁଂ. ବିଂ. (ପ୍ରଗତିବାଦ+ଇନ୍)ସ୍ତ୍ରୀ ଶିକ୍ଷା ଓ ସ୍ତ୍ରୀ ସ୍ୱାଧୀନତା ପ୍ରଭୃତିର ସମର୍ଥକ ।

ପ୍ରଗନ୍ଧ—ପୁଂ.ବି. ଘରପୋଡ଼ିଆ, ପାପଡ଼ା. (ବିଂ) ପ୍ରକୃଷ୍ଟ ଗନ୍ଧଯୁକ୍ତ ।

ପ୍ରଗମ—ପୁଂ. ବି.(ପ୍ର+ଗମ୍+ଅ)ପ୍ରଗମନ ଦେଖ ।

ପ୍ରଗମନ—କ୍ଲୀ. ବି. (ପ୍ର+ଗମ୍+ଅନ) ଦୂରେ ଗମନ, ବିବାଦ, ଆଗ ବଢ଼ିବା, ଅଗ୍ରସର ହେବା, ଉନ୍ନତି, କଳି, ଯୁଦ୍ଧ, ଉତ୍ତମ ବା ଉପଯୁକ୍ତ ଉତ୍ତର ।

ପ୍ରଗମନୀୟ—ବି.ବିଂ (ପ୍ର+ଗମ୍+ଅନୀୟ) ଗମନର ଯୋଗ୍ୟ ।

ପ୍ରଗର୍ଜନ—କ୍ଲୀ. ବି. ଅତି ଗର୍ଜନ, ଭୀଷଣ ଶବ୍ଦ ।

ପ୍ରଗଲ୍ଭ—ବି. ବିଂ. (ପ୍ର+ଗଲ୍‌ଭ+ଅ) ପ୍ରତ୍ୟୁତ୍ପନ୍ନମତି, ପ୍ରତିଭାନ୍ୱିତ, ଉଦ୍ଧତ, ନିର୍ଲଜ, ଦାମ୍ଭିକ, ଅସ୍ତବ୍ଧ, ସମର୍ଥ, ଦୃଢ଼, ପ୍ରଧାନ, ନିର୍ଭୀକ, ସାହସୀ, ଉର୍ଦ୍ଧ୍ୱ, ଉତ୍ସାହୀ, ଅବନମିତ, ଧୃଷ୍ଟ, (ବ. ପ୍ର+ଗଲ୍‌ଭି+ଖ.ଅ) ଗର୍ବ, ଅହଂକାର ।

ପ୍ରଗଲ୍‌ଭତା—ସ୍ତ୍ରୀ. ବି. (ପ୍ରଗଲ୍‌ଭ+ତା) ପ୍ରାଗଲ୍‌ଭ୍ୟ, ଉତ୍ସାହ, ଅଭିଯୋଗ, ଔଦ୍ଧତ୍ୟ, ନିର୍ଲଜତା, ପ୍ରତିଭା, ଅଧ୍ୟବସାୟ, ଅକ୍ଷୋଭ, ଦମ୍ଭ, ଅହଂକାର, ସାମର୍ଥ୍ୟ, ପ୍ରାଧାନ୍ୟ, କାର୍ଯ୍ୟରେ ନିର୍ଭରତା, ସାହସ ।

ପ୍ରଗଲ୍‌ଭଯୌବନା—ସ୍ତ୍ରୀ. ବିଂ. (ବ.ବ୍ରୀ) ଉଦ୍ଧତ ଯୌବନବିଶିଷ୍ଟା ।

ପ୍ରଗଲ୍‌ଭା—ସ୍ତ୍ରୀ. ବି. ନାୟିକାବିଶେଷ, କାମାସକ୍ତା ସ୍ତ୍ରୀ, ନିର୍ଲଜା ସ୍ତ୍ରୀ, ପ୍ରୌଢ଼ା ନାୟିକା, ପତିମାତ୍ର ବିଷୟରେ କେଳିକଳାପ କୋବିଦା ସ୍ତ୍ରୀ ।

ପ୍ରଗଲ୍‌ଭିତ—ବି.ବିଂ.(ପ୍ରଗଲ୍‌ଭ+ଇତ) ପ୍ରଗଲ୍‌ଭଯୁକ୍ତ ।

ପ୍ରଗାଢ଼—ବି.ବିଂ.(ପ୍ର+ଗାଢ଼) ଅଗାଧ, ଘୋର, କଷ୍ଟସାଧ୍ୟ, ଭୃଶ, କୃଚ୍ଛ୍ର, ଅଧିକ, ଅତିଶୟ, ଦୃଢ଼, କଠିନ, ନିବିଡ଼, ଘନ, (ବି)କ୍ଲେଶ, ଯାତନା, ବେଦନା, କଷ୍ଟ. (ବି.ବିଂ) ଦୃଢ଼ରୂପେ, ଅତ୍ୟନ୍ତ ।

ପ୍ରଗାଢ଼ବିଦ୍ୟା—ବି(କ.ଧା)ଅଗାଧ ବିଦ୍ୟା, ଗଭୀର ଜ୍ଞାନ ।

ପ୍ରଗାତା—ପୁଂ.ବିଂ(ପ୍ର+ଗୈ+ତୃ) ଉତ୍ତମ ଗାୟକ, ସଙ୍ଗୀତ ନିପୁଣ,ଗାନନିପୁଣ ।

ପ୍ରଗାଦ୍ୟ—ବିଂ.ପ୍ରକୃଷ୍ଟ ରୂପେ କଥନୀୟ ।

ପ୍ରଗାହନ—କ୍ଲୀ. ବି. (ପ୍ର+ଗାହ୍+ଅନ) ପ୍ରକୃଷ୍ଟ ରୂପେ ଅବଗାହନ, ମଜ୍ଜନ ।

ପ୍ରଗୁଣ—ବି.ବିଂ.(ପ୍ର+ଗୁଣ)ଋଜୁ, ପ୍ରକୃଷ୍ଟ ଗୁଣଯୁକ୍ତ, ଅନୁକୂଳ, ଦକ୍ଷ,କାର୍ଯ୍ୟକୁଶଳ ସରଳ, ସିଧା, ସତ୍ତ୍ୱ । [ଗୁଣଶାଳୀ ।

ପ୍ରଗୁଣୀ—ବି.ବିଂ(ପ୍ରଗୁଣ+ଇନ୍) ପ୍ରକୃଷ୍ଟ

ପ୍ରଗୁଣ୍ୟ—ବି. ବିଂ. କାର୍ଯ୍ୟକୁଶଳ ।

ପ୍ରଗୃହୀତ—ବି. ବିଂ. (ପ୍ର+ଗ୍ରହ୍+ତ) ପ୍ରକୃଷ୍ଟ ରୂପେ ଗୃହୀତ,ସମୃତ ।

ପ୍ରଗେ—ଅବ୍ୟ.(ପ୍ର+ଗୈ+ଏ) ପ୍ରାତଃ, ପ୍ରଭାତ ।

ପ୍ରଗେତନ—ବି.ବିଂ. ପ୍ରାଗେଭବ, ପ୍ରାତର୍ଜାତ, ପ୍ରାଭାତିକ ।

ପ୍ରଗେନିଶା—ବି.ବିଂ. ପ୍ରାତଃକାଳଶାୟୀ, ଯେଉଁମାନେ ପ୍ରାତଃକାଳରେ ଶୟନ କରନ୍ତି ।

ପ୍ରଗେଶୟ—ବି.ବିଂ.ପ୍ରାତଃଶାୟୀ,ଯେଉଁମାନେ ପ୍ରାତଃକାଳରେ ଶୟନ କରନ୍ତି

ପ୍ରଗ୍ରହ—ପୁଂ. ବି. (ପ୍ର+ଗ୍ରହ୍+ଅ) ଘୋଡ଼ାର ଲଗାମ, ବାଗ,ଦଉଡ଼ି,ତୁଳାସୂତ୍ର, ନିକ୍ତିର ଦଉଡ଼ି, ବନ୍ଦୀ,ନିୟାମକ, ଭୁଜ, ରଶ୍ମି, ସୁବର୍ଣ୍ଣାଳୁ, ମହାରୁଦ୍ର, କର୍ଣ୍ଣିକାର ବୃକ୍ଷ,ଇନ୍ଦ୍ରିୟ ଦମନ,ଧାରଣ, ଅବଲମ୍ବନ, ବନ୍ଧ, (ବିଂ) ପ୍ରକୃଷ୍ଟାଧିଷ୍ଠାନ, ଉଦ୍ୟତବାହୁ, ସୁବର୍ଣ୍ଣ ।

ପ୍ରଗ୍ରାହ—ପୁଂ. ବି. ପ୍ରଗ୍ରହ ଦେଖ ।

ପ୍ରଗ୍ରୀବ—ବି.(ବ.ବ୍ରୀ) ଗୃହାଦିର ପ୍ରାନ୍ତଧାର୍ଯ୍ୟ ଦାରୁପଙ୍କ୍ତି, ବାତାୟନ,ଗବାକ୍ଷ, ବାରଣ୍ଡା, ଅଶ୍ୱଶାଳା, ମୁଖଶାଳୀ,ମନ୍ଦୁରା, ବୃକ୍ଷଶୀର୍ଷକ, ଘରର ଅଗ୍ରଭାଗ, (ବିଂ) ପ୍ରକୃଷ୍ଟ ଗ୍ରୀବାନ୍ୱିତ,ଯାହାର ବେକ ଲମ୍ବ ।

ପ୍ରଗ୍ଲ—ବିଂ. (ପ୍ର+ଗ୍ଲୈ+ଅ) ଶ୍ରାନ୍ତ ।

ପ୍ରଘଟ—ଗ୍ରା. ବିଂ. ପ୍ରକାଶିତ, ବିଖ୍ୟାତ, (ବି) ପ୍ରଖ୍ୟାତି, ପ୍ରଚାର ।

ପ୍ରଘଣ—ପୁଂ. ବି. (ପ୍ର+ହନ୍+ଅ)ବହିର୍ଦ୍ୱାର,ପ୍ରକୋଷ୍ଠକ, ଅଳିନ୍ଦ, ତାମ୍ରକୁମ୍ଭ, ଲୌହ, ମୁଦ୍‌ଗର, ଗୃହାଭ୍ୟନ୍ତର, ଶଯ୍ୟାର୍ଥ ପିଣ୍ଡିକା, ବାରଣ୍ଡା ।

ପ୍ରଘନ—ପୁଂ. ବି. ପ୍ରଘଣ ଦେଖ ।

ପ୍ରଘସ—ପୁଂ ବି. (ପ୍ର+ଅଦ୍+ଅ)ଅସୁର, ଦୈତ୍ୟ, ଭୂରିଭୋଜନ, (ବିଂ) ପେଟୁ, ଅଦ୍ମର ।

ପ୍ରଘସା—ସ୍ତ୍ରୀ. ବି. ମାତୃକାବିଶେଷ, (ସ୍ତ୍ରୀ. ବିଂ) ଅଦ୍ମରା, ପେଟୁଣୀ । [ଯୁଦ୍ଧ ।

ପ୍ରଘାତ—ପୁଂ. ବି. (ପ୍ର+ଘାତ)ମାରଣ,

ପ୍ରଘାସ—ପୁଂ. ବି. ପ୍ରକୃଷ୍ଟ ରୂପେ ଭକ୍ଷ-

ଣୀୟ ହବିର୍ଦ୍ଧ, ବରୁଣ, ପ୍ରଘାସ,ଶୃତୁ-ମାସ୍ୟ ଯାଗଭେଦ ।

ପ୍ରଘୁଣ—ବି. ଅତିଥି ।

ପ୍ରଘୂର୍ଣ୍ଣ—ପୁଂ. ବି. (ପ୍ର+ଘୂର୍ଣ୍ଣ+କ.ଅ) ପ୍ରକୃଷ୍ଟ ରୂପେ ଘୂର୍ଣ୍ଣନ ।

ପ୍ରଘୋଷକ—ପୁଂ. ବି. (ପ୍ର+ଘୋଷ+କ) ଧ୍ୱନି, ଶବ୍ଦ, ଗୋଳମାଳ,ଘୋଘା ।

ପ୍ରଚକ୍ର—କ୍ଲୀ. ବି. (ପ୍ର+ଚକ୍ର) ସୈନ୍ୟ, ଗମନଶୀଳ ସୈନ୍ୟଦଳ ।

ପ୍ରଚକ୍ଷସ୍—ପୁଂ. ବି.(ପ୍ର+ଚକ୍ଷୁ)ବୃହସ୍ପତି ।

ପ୍ରଚକ୍ଷୁ—ବି. ଚସମା ।

ପ୍ରଚଣ୍ଡ—ବିଂ. (ପ୍ର+ଚଣ୍ଡ)ଦୁର୍ଦ୍ଦମ,ଦୁର୍ଦ୍ଧର୍ଷ, ପ୍ରଗଲ୍ଭ, ଅଧୃଷ୍ଟ,ପ୍ରଖର,ଅସହ୍ୟ,ଦୁଃସହ, ଭୟାନକ, ଭୀଷଣ, ଅତି କୋପନ, ପ୍ରବଳ, (ବି) ଧଳାକନିଅର, ଶିବଙ୍କ ଅନୁଚର ବିଶେଷ ।

ପ୍ରଚଣ୍ଡତା—ବି.ଭୟଙ୍କରତ୍ୱ, ଦୁଃସହତା, ଉଗ୍ରତା, ପ୍ରାବଲ୍ୟ ।

ପ୍ରଚଣ୍ଡଧନ୍ୱା—ପୁଂ.ବିଂ. (ବ.ବ୍ରୀ) ଭୀଷଣ-କାର୍ମୁକ,ମହାଧନୁର୍ଦ୍ଧର,ଦୁର୍ଦ୍ଧର୍ଷ ଯୋଦ୍ଧା

ପ୍ରଚଣ୍ଡମୂର୍ତ୍ତି—ସ୍ତ୍ରୀ. ବି. ବରୁଣ ବୃକ୍ଷ.(ବିଂ. ବ.ବ୍ରୀ),ଉଗ୍ରମୂର୍ତ୍ତି, ଭୟାନକ ଦେହ-ବିଶିଷ୍ଟ । [ ଦେଶାଧିପତି ।

ପ୍ରଚଣ୍ଡସେନ—ପୁଂ. ବି.ଜଣେ ତାମ୍ରଲିପ୍ତ

ପ୍ରଚଣ୍ଡା—ସ୍ତ୍ରୀ. ବି. ଅତିକୋପନା, ଭଗ-ବତୀଙ୍କ ସଖୀ ବିଶେଷ, ଦୁର୍ଗାଙ୍କ ଅଷ୍ଟ-ନାୟିକାର ଅନ୍ତର୍ଗତ ନାୟିକା ବିଶେଷ, ଶ୍ୱେତଦୂର୍ବା ।

ପ୍ରଚୟ—ବି. (ପ୍ର+ଚି+ଅ)ରାଶି,ଜମାଟ ଉପରେ ବସିବା,ସଂଗ୍ରହ,ଚୟନ,ବୃଦ୍ଧି, ସ୍ତୂପ, ଦଳ, ସମୂହ, ଲଗି ବା ଆଙ୍କୁଡ଼ି ଆଦି ଦ୍ୱାରା ଗଛରୁ ଫୁଲଫଳ ସଂଗ୍ରହ କରିବା । [ ତୋଳାଳି ।

ପ୍ରଚୟକ—ବି. (ପ୍ର+ଚି+କ.ଅକ)ଫୁଲ

ପ୍ରଚର—ବି. ( ପ୍ର+ଚର୍+ଅ ) ପଥ, ମାର୍ଗ,ବ୍ୟବହାର,ଗତି,ପ୍ରଚଳନ,ବିସ୍ମୃତ ହେବା, ପ୍ରସିଦ୍ଧି, ପ୍ରକୃଷ୍ଟରୂପେ ଗମନ ।

ପ୍ରଚରଣ—କ୍ଲୀ. ବି. ( ପ୍ର+ଚର୍+ଭା. ଅନ)ବିଚରଣ,ଏଣେତେଣେ ବୁଲିବା ।

ପ୍ରଚରଦ୍ରୂପ—ବିଂ. (ବ.ବ୍ରୀ) ବ୍ୟକ୍ତରୂପ, ପ୍ରଚାରବିଶିଷ୍ଟ, ପ୍ରଚାରିତ, ପ୍ରଚଳିତ ।

ପ୍ରଚଲ—ବିଂ. (ପ୍ର+ଚଲ+କ.ଅ)ପ୍ରବଳ, ପ୍ରଚଳିତ, ଅଭ୍ୟସ୍ତ,ସର୍ବତ୍ର ପ୍ରଚାରିତ, (ବି) ମୟୂର, ( କ୍ରି.ବି )ଯିବାଆସିବା, ଚଳିବା ।

ପ୍ରଚଳନ—କ୍ଲୀ. ବି. ( ପ୍ର+ଚଲ୍+ଭା. ଅନ ) ପ୍ରବର୍ତ୍ତନ, ଚଳିବା, ପ୍ରଚାର, ପ୍ରାଦୁର୍ଭାବ, ଗତି, ଅନାଳସ୍ୟ ।

ପ୍ରଚଳା—ବି.(ପ୍ର+ଚଲ୍+ଭା.ଅ+ଆ) ବସିଥିବା ବା ଠିଆ ହୋଇଥିବା ବ୍ୟକ୍ତିକୁ ଯେଉଁ ନିଦ୍ରାଘଟେ,ଯେଉଁ ପାପ କର୍ମର ଉଦୟରେ ନିଦ୍ରାଘୋଟେ ।

ପ୍ରଚଳାକ—ପୁଂ. ବି.(ପ୍ର+ଚଲ୍+ଆକ) ଶରଘାତ, ମୟୂର ପୁଚ୍ଛ, ସାପଫେଣା, ଶିଖଣ୍ଡ, ଭୁଜଙ୍ଗମ ।

ପ୍ରଚଳାକୀ—ପୁଂ. ବି.(ପ୍ରଚଳାକ+ଇନ୍) ମୟୂର, ସର୍ପ ।

ପ୍ରଚଳାୟିତ—ବି. ବିଂ. ( ପ୍ର+ଚଳାୟ+ମି.ତ) ନିଦ୍ରାଦ୍ୱାରା ଘୂର୍ଣ୍ଣିତ ।

ପ୍ରଚଳିତ—ବି.ବିଂ.(ପ୍ର+ଚଲ୍+କ.ତ) ପ୍ରସ୍ଥିତ, ପ୍ରସିଦ୍ଧ, ପ୍ରବର୍ତ୍ତିତ, ବ୍ୟବହୃତ, (ବି.-ଭା.ତ) ଗତି ।

ପ୍ରଚାୟ—ପୁଂ. ବି. ( ପ୍ର+ଚି+ଭା.ଅ ) ହସ୍ତ ଦ୍ୱାରା ଦ୍ରବ୍ୟାଦି ଏକତ୍ର କରଣ, (ମି.ଅ) ଗଦା, ସାମାନ୍ୟ ମିଳନ, ରାଶି, ବୃଦ୍ଧି, ଉପଚୟ,ଜମାଟ,ଯତ୍ନଶୀଳ ସ୍ୱର, ଲଗି ବା ଆଙ୍କୁଡ଼ିଆଦିଦ୍ୱାରା ଫୁଲ ଫଳ ତୋଳିବା ।

ପ୍ରଚାୟକ—ପୁଂ. ବିଂ. ( ପ୍ର+ଚି+କ. ଅକ) ଫୁଲ ଫଳ ସଂଗ୍ରହକାରୀ (ବ୍ୟକ୍ତି), ଯେ ଗଦାକରେ ।

ପ୍ରଚାୟିକା—ସ୍ତ୍ରୀ. ବି.ପ୍ରଚୟନକର୍ତ୍ତ୍ରୀ ସ୍ତ୍ରୀ, ପରିପାଟୀ ପୂର୍ବକ ପୁଷ୍ପାଦିର ଚୟନ ।

ପ୍ରଚାର—ପୁଂ. ବି. (ପ୍ର+ଚର୍+ଭା.ଅ) ବିସ୍ତାର,ଧର୍ମମତର ଘୋଷଣା, ଗୋଚା-ରଣ, ଆଚରଣର ବ୍ୟବହାର, ଚଳନ, ପ୍ରଚରଣ, ବ୍ୟକ୍ତ, ପ୍ରସିଦ୍ଧି, ପ୍ରକାଶ ଗବାଦିର ଚରଣ ସ୍ଥାନ,( କ.ଅ)ଅଶ୍ୱର ନେତ୍ର ରୋଗ ବିଶେଷ ।

ପ୍ରଚାରକ—ବିଂ. ପ୍ରକାଶକ, ଯେ ପ୍ରକାଶ କରନ୍ତି, ବିଘୋଷକ, (ବି) ଗୋମେଷା-ଦିଙ୍କ ଜଗୁଆଳ, ପୁସ୍ତକାଚାର୍ଯ୍ୟ ।

ପ୍ରଚାରକରିବା—ଗ୍ରା.କ୍ରି.ଘୋଷଣାକରିବା, ବିଚାର କରିବା, ସାଧାରଣରେ ପ୍ରକାଶ କରିବା, ପଠାଇବା, ପ୍ରୟୋଗକରିବା ।

ପ୍ରଚାରଣ—କ୍ଲୀ. ବି. ( ପ୍ର+ଚାରି+ଅନ ) ପ୍ରକଟନ, ଧର୍ମ ମତାଦିର ପ୍ରଚାରକରଣ, ଚୟନ ।

ପ୍ରଚାରୟିତା—ପୁଂ.ବିଂ.(ପ୍ର+ଚାରି+କ. ତୃ) ପ୍ରଚାରକ ଦେଖ ।

ପ୍ରଚାରିତ—ବି. ବିଂ. (ପ୍ର+ଚାରି+ତ) ପ୍ରଚାର, ପ୍ରକାଶିତ, ବିଜ୍ଞାପିତ, ସର୍ବତ୍ର ଘୋଷିତ, ବିସ୍ତାରିତ ।

ପ୍ରଚାରୀ—ପୁଂ. ବିଂ. (ପ୍ର+ଚର୍+ଇନ୍) ପ୍ରଚାରକାରୀ, ଗମନଶୀଳ ।

ପ୍ରଚାଲ—ପୁଂ. ବି. (ପ୍ର+ଚଲ୍+ଅଧି.ଅ) ବୀଣାର କାଷ୍ଠମୟ ଅବୟବ,ବୀଣା ଯନ୍ତ୍ରର କଣ୍ଠଦେଶ ।

ପ୍ରଚାଳିତ—ବି. ବିଂ. (ପ୍ର+ଚାଲି+ତ) ପ୍ରଚାରିତ, ସର୍ବତ୍ର ପ୍ରକାଶିତ, ଚାଳିତ ।

ପ୍ରଚିକିତ—ବି.ବିଂ.ବିଶିଷ୍ଟ ଚୈତନ୍ୟଯୁକ୍ତ ।

ପ୍ରଚିକୀର୍ଷୁ—ବି. ବିଂ. ପ୍ରତିକାରେଚ୍ଛୁ ।

ପ୍ରଚିତ—ବି. ବିଂ.(ପ୍ର+ଚି+ତ)ଚୟିତ, ସଂଗୃହୀତ, ଆଚ୍ଛାଦିତ, ଅନୁଦାତ୍ତ, କୃତ ଚୟନ ।

ପ୍ରଚୀବଲ—ବି. ବାରଣ,ବେଣାର ମୂଳ ।

ପ୍ରଚୀୟମାନ—ବିଂ.(ପ୍ର+ଚି+ଆନ)ପୁଷ୍ୟ-ମାନ, ବୃଦ୍ଧିଶୀଳ ।

ପ୍ରଚୁର—ବିଂ.(ପ୍ର+ଚୁର୍+କ.ଅ)ପର୍ଯ୍ୟାପ୍ତ, ଯଥେଷ୍ଟ, ଅନେକ, ବହୁଳ,ଭୂୟ,ଭୂରି ।

ପ୍ରଚୁରତା—ସ୍ତ୍ରୀ. ବି. ପ୍ରାଚୁର୍ଯ୍ୟ, ବାହୁଲ୍ୟ, ପ୍ରଚୁରତ୍ୱ ।

ପ୍ରଚେତସୀ—ସ୍ତ୍ରୀ. ବି. (ପ୍ରଚେତସ୍+ଈ) କଟଫଳ, କାଫଡ଼,ପ୍ରଚେତାଙ୍କ କନ୍ୟା ।

ପ୍ରଚେତା—ପୁଂ. ବି. ( ପ୍ର+ଚିତ୍+କ. ତୃ) ସାରଥି, (ବିଂ) ସଂଗ୍ରହକାରୀ ।

ପ୍ରଚେତାଃ—ବି. (ପ୍ର+ଚେତସ୍)ବରୁଣ,

ମୁନିବିଶେଷ, ପ୍ରଜାପତି ଭେଦ, ଜଣେ ପ୍ରାଚୀନ ମୁନି ଓ ଧର୍ମଶାସ୍ତ୍ର ପ୍ରଣେତା, ପୃଥୁଙ୍କର ପ୍ରପୌତ୍ର, ପ୍ରାଚୀନବର୍ହି ରାଜ ପୁତ୍ର ଅନୁ ବଂଶୀୟ ନୃପ ବିଶେଷ, ପ୍ରାଚୀନ ବର୍ହିର ସାମୁଦ୍ରୀ ଭାର୍ଯ୍ୟାଙ୍କର ଗର୍ଭଜାତ ପୁତ୍ରଭେଦ, (ବିଂ.-ବ.ଗ୍ରା) ପ୍ରକୃଷ୍ଟଚିତ୍ତ, ଉନ୍ନତମନାଃ, ହୃଷ୍ଟଚିତ୍ତ ।

ପ୍ରଚେତିତ—ବିଂ. (ପ୍ର + ଚିତ୍ + ର୍ମି.ତ) ଜ୍ଞାତ ।

ପ୍ରଚେତୁନ—ତ୍ରି.ବିଂ. (ପ୍ର + ଚିତ୍ + ଉନ) ପ୍ରକୃଷ୍ଟ ଜ୍ଞାନଯୁକ୍ତ ।

ପ୍ରଚେୟ—ତ୍ରି. ବିଂ. (ପ୍ର + ଚି + ର୍ମି.ୟ) ବର୍ଦ୍ଧନୀୟ, ଚୟନୀୟ, ଗ୍ରହଣଯୋଗ୍ୟ, ଗ୍ରାହ୍ୟ । [ ପୀତଚନ୍ଦନ ।

ପ୍ରଚେଲ—କ୍ଳୀ. ବି. (ପ୍ର + ଚେଲ + ଅ)

ପ୍ରଚେଲକ—ପୁଂ. ବି. ଅଶ୍ୱ, ଘୋଟକ, (ବିଂ)ପ୍ରକୃଷ୍ଟ ଗତିଯୁକ୍ତ,ଯେ ବସ୍ତ୍ରିତ ଗୃହେ

ପ୍ରଚେଷ୍ଟା—ସ୍ତ୍ରୀ. ବି. ( ପ୍ର + ଚେଷ୍ଟ୍ + ଅ + ଆ)ପ୍ରୟାସ ଅଧ୍ୟବସାୟ,ସଦୁଦ୍ଦେଶ୍ୟ ସମବେତ ଚେଷ୍ଟା । [ପ୍ରେରଣ ।

ପ୍ରଚୋଦ—ପୁଂ. ବି. ( ପ୍ର + ଚୁଦ୍ + ଅ )

ପ୍ରଚୋଦକ—ପୁଂ. ବିଂ. (ପ୍ର + ଚୁଦ୍ + କ. ଅକ) ପ୍ରେରକ, ନିୟୋଗକାରୀ,ଉତ୍ତେଜକ ।

ପ୍ରଚୋଦନ(ନା)—କ୍ଳୀ. ବି. (ପ୍ର + ଚୋଦ + ଅନ) ପ୍ରେରଣ, ନିର୍ଦ୍ଦେଶ, ଆଦେଶ, ନିୟମ, ଆଇନ୍, ଉତ୍ତେଜନ ।

ପ୍ରଚୋଦନୀ—ସ୍ତ୍ରୀ. ବି. କଣ୍ଟକାରିକା ।

ପ୍ରଚୋଦିତ—ତ୍ରି. ବିଂ. (ପ୍ର + ଚୁଦ୍ + ର୍ମି.ତ) ପ୍ରେରିତ, ନିୟୋଜିତ, ଆଦିଷ୍ଟ, ଉତ୍ତେଜିତ । [ କାରିକା ।

ପ୍ରଚୋଦିନୀ—ସ୍ତ୍ରୀ. ବି. ଲତାଭେଦ,କଣ୍ଟ-

ପ୍ରଚୋଦୀ—ପୁଂ. ବିଂ. ପ୍ରେରଣାକାରୀ, ଉତ୍ତେଜନାକାରୀ ।

ପ୍ରଚ୍ଛ—ପୁଂ.ବିଂ.(ପ୍ରଚ୍ଛ୍ + କ.ଅ)ପ୍ରଶ୍ନକାରୀ ।

ପ୍ରଚ୍ଛଦ—ପୁଂ.ବି. (ପ୍ର + ଛଦ୍ + ଅ)ଆଚ୍ଛାଦନ ବସ୍ତ୍ରାଦି, ଆଚ୍ଛାଦନ, ଆବରଣ, ବିଛଣାଚଦର ଇତ୍ୟାଦି ।

ପ୍ରଚ୍ଛଦପଟ—ପୁଂ. ବି. (କ.ଧା) ଆଚ୍ଛାଦନପଟ, ଆବରଣ ବସ୍ତ୍ର, ପାଛୁଡ଼ା, ପରଦା,ବହିର ମଲାଟ,ଉତ୍ତରୀୟ ବସ୍ତ୍ର ।

ପ୍ରଚ୍ଛନା—ସ୍ତ୍ରୀ.ବି. (ପ୍ରଚ୍ଛ୍ + ଭା.ଅନ + ଆ) ଆମନ୍ତ୍ରଣା, ଜିଜ୍ଞାସା, ପ୍ରଶ୍ନ ।

ପ୍ରଚ୍ଛନ୍ନ—କ୍ଳୀ. ବି. (ପ୍ର + ଛଦ୍ + ର୍ମି.ତ) ଅନ୍ତର୍ଦ୍ୱାର, ଗୁପ୍ତକବାଟ, ( ବିଂ ) ଲୁକ୍କାୟିତ, ଗୁପ୍ତ, ଆବୃତ ।

ପ୍ରଚ୍ଛନ୍ନଚାରୀ—ପୁଂ. ବିଂ. ଗୁପ୍ତଭାବରେ ବିଚରଣକାରୀ, ଅଲକ୍ଷିତ, ଗୁପ୍ତ, (ବି) ଗୁପ୍ତଚର ।

ପ୍ରଚ୍ଛନ୍ନତାପ—ବି. ଯେଉଁ ତାପ କୌଣସି ବସ୍ତୁରେ ଅପ୍ରକାଶ୍ୟ ଭାବରେ ଥାଏ,ମାତ୍ର ତାପମାନ ଯନ୍ତ୍ର ବା ଅନ୍ୟ ପଦାର୍ଥରେ ତାହାର କାର୍ଯ୍ୟ ସ୍ପଷ୍ଟଭାବରେ ପ୍ରକାଶ ପାଏ ।

ପ୍ରଚ୍ଛନ୍ନବେଶ—ବି.(କ.ଧା) ଯେଉଁ ବେଶଦ୍ୱାରା ନିଜର ସ୍ୱରୂପକୁ ଗୋପନ କରାଯାଏ ।

ପ୍ରଚ୍ଛନ୍ନବେଶୀ—ପୁଂ. ବିଂ. (ପ୍ରଚ୍ଛନ୍ନବେଶ + ଇନ୍) ଗୁପ୍ତବେଶ ଧରିଥିବା ।

ପ୍ରଚ୍ଛର୍ଦ୍ଦନ—କ୍ଳୀ.ବି.(ପ୍ର + ଛର୍ଦ୍ + ଭା.ଅନ) ବମନ, କୋଷ୍ଠବାୟୁର ନାସିକା ପୁଟଦ୍ୱାରା ନିଃସାରଣ ପ୍ରଯତ୍ନଭେଦ,ରେଚନ, ଶ୍ୱାସବାୟୁର ନିଃସାରଣ ।

ପ୍ରଚ୍ଛର୍ଦ୍ଦିକା—ସ୍ତ୍ରୀ. ବି. ବମନ,ବାନ୍ତି,ବାନ୍ତ, ବମନରୋଗ, (ବିଂ) ବମନକାରକ ।

ପ୍ରଚ୍ଛାଦକ—ବି. (ପ୍ର + ଛାଦ + କ.ଅକ) ସ୍ୱାମୀ ପରିତ୍ୟକ୍ତା ସ୍ତ୍ରୀର ବିଳାପସୂଚକ ଗୀତ ।

ପ୍ରଚ୍ଛାଦନ—କ୍ଳୀ. ବି. (ପ୍ର + ଛାଦ + ଅନ) ଉତ୍ତରୀୟ ବସ୍ତ୍ର, ନେତ୍ରଚ୍ଛଦ, ଗୋପନ, ଆଚ୍ଛାଦନ, ପ୍ରଚ୍ଛଦ ଦେଖ ।

ପ୍ରଚ୍ଛାଦିତ—ବିଂ. (ପ୍ର + ଛାଦ + ତ)ଆଚ୍ଛାଦିତ, ଆବୃତ ।

ପ୍ରଚ୍ଛାୟ—କ୍ଳୀ. ବି. ପ୍ରକୃଷ୍ଟ ଛାୟା,ଉତ୍ତମଛାୟା, ପ୍ରକୃଷ୍ଟ ଛାୟାବିଶିଷ୍ଟ ସ୍ଥାନ ।

ପ୍ରଚ୍ୟବନ—କ୍ଳୀ. ବି. (ପ୍ର + ଚ୍ୟୁ + ଅନ) କ୍ଷରଣ, ସ୍ଖଳନ ।

ପ୍ରଚ୍ୟାବନ—କ୍ଳୀ. ବି. ଗତି ପରିବର୍ତ୍ତନ, ଆରବ୍ଧ କର୍ମ ଛାଡ଼ି ଅନ୍ୟ କାର୍ଯ୍ୟରେ ପ୍ରବର୍ତ୍ତନ କରଣ, କ୍ଷରଣ ।

ପ୍ରଚ୍ୟାବୁକ—ବିଂ. କ୍ଷଣସ୍ଥାୟୀ ।

ପ୍ରଚ୍ୟୁତ—ବିଂ. ସ୍ଖଳିତ,ବିଭ୍ରଷ୍ଟ,ନିପତିତ ।

ପ୍ରଚ୍ୟୁତି—ସ୍ତ୍ରୀ. ବି. କ୍ଷରଣ ।

ପ୍ରଜ—ପୁଂ. ବି. (ପ୍ର + ଜନ୍ + ଅ) ପତି, ସ୍ୱାମୀ, ଭର୍ତ୍ତା ।

ପ୍ରଜଙ୍ଘ—ପୁଂ. ବି. ରାବଣର ସେନାପତି ରାକ୍ଷସବିଶେଷ ।

ପ୍ରଜନ—ପୁଂ. ବି. (ପ୍ର + ଜନ + ଭା.ଅ) ଉପସର, ସ୍ତ୍ରୀଗବାଦିରେ ପୁଂଗବାଦିର ଅଭିଗମନ, ଗର୍ଭ ଗ୍ରହଣାର୍ଥ ମୈଥୁନ, ଗର୍ଭ କରିବା, ପଶୁମାନଙ୍କର ଗର୍ଭଗ୍ରହଣ କାଳ, ମୈଥୁନ ସାଧନ ଉପସ୍ଥେନ୍ଦ୍ରିୟ, ଲିଙ୍ଗ, (କ.ଅ) ପୂର୍ବପୁରୁଷ,ଜନ୍ମଦାତା, ଜନକ ।

ପ୍ରଜନନ—କ୍ଳୀ. ବି. (ପ୍ର + ଜନ + ଅନ) ଯୋନି,ଜନ୍ମ,ଧାତ୍ରୀକର୍ମ,ଗର୍ଭୋତ୍ପାଦନ, ସ୍ତ୍ରୀଗର୍ଭରେ ସନ୍ତାନ ଆଧାନ ।

ପ୍ରଜନନବିଦ୍ୟା—ବି. ଯେଉଁ ଶାସ୍ତ୍ରରେ ଜନ୍ମବିଷୟକ ତଥ୍ୟମାନଙ୍କର ଅନୁଶୀଳନ କରାଯାଏ ।

ପ୍ରଜନିକା—ସ୍ତ୍ରୀ. ବି. (ପ୍ର + ଜନ + କ. ଅକ + ଆ) ଜନନୀ, ମାତା ।

ପ୍ରଜନୟିତା—ପୁଂ. ବି. ସର୍ବସୃଷ୍ଟିକର୍ତ୍ତା ବ୍ରହ୍ମା, ଅଗ୍ନି ।

ପ୍ରଜନିଷ୍ଣୁ—ତ୍ରି.ବିଂ.(ପ୍ର + ଜନ + ଇଷ୍ଣୁ) ଜନନଶୀଳ । [ ପ୍ରଜନଶୀଳ ।

ପ୍ରଜନୁକ—ପୁଂ.ବିଂ (ପ୍ର + ଜନ୍ + ଉକ)

ପ୍ରଜଳ୍ପ—ପୁଂ. ବି. (ପ୍ର + ଜଳ୍ପ + ଭା.ଅ) ଗପସପ, ଆଳାପ, କଥୋପକଥନ ।

ପ୍ରଜଳ୍ପନ—କ୍ଳୀ. ବି. କଥୋପକଥନ, ଆଳାପ ।

ପ୍ରଜଳ୍ପିତ—ବିଂ. କଥିତ, ବ୍ୟକ୍ତବାକ୍ୟ, ବାକ୍ୟାରମ୍ଭୀ,ଯେ କଥା କହିବାକୁ ଆରମ୍ଭ କରିଅଛି । [ ବାକ୍ୟୋଚ୍ଚାରିଣୀ ।

ପ୍ରଜଳ୍ପିତା—ସ୍ତ୍ରୀ. ବିଂ ଜଳ୍ପନାକାରିଣୀ,

ପ୍ରଜବ—ପୁଂ.ବି. ପ୍ରକୃଷ୍ଟ ବେଗ,ଅତିଶୟ ବେଗ ।

ପ୍ରଜଗୀ—ପୁଂ.ବିଂ.(ପ୍ରଜବ+ଇନ୍)ପ୍ରକୃଷ୍ଟ ବେଗଯୁକ୍ତ, ଦ୍ରୁତଗାମୀ, ବେଗବାନ୍ ।

ପ୍ରଜହିତ—ପୁଂ. ବି. ପୁରାଣ, ଗାର୍ହପତ୍ୟ ଅଗ୍ନି ।

ପ୍ରଜା—ସ୍ତ୍ରୀ. ବି.(ପ୍ରଜନ୍+ଅ+ଆ)ରାଜ୍ୟ-ବାସୀ ଲୋକ, ରଇତ, ପ୍ରକୃତି,ସନ୍ତାନ-ସନ୍ତତି, ଜନ,ଉତ୍ପତ୍ତି,ଜନନ ।

ପ୍ରଜାକାମ—ପୁଂ.ବିଂ. (ବ.ଗ୍ରୀ) ପୁତ୍ରାଭି-ଲାଷୀ, ପୁତ୍ରେଚ୍ଛୁ, ସନ୍ତାନାର୍ଥୀ, (ସ୍ତ୍ରୀ) ପ୍ରଜାକାମା ।

ପ୍ରଜାକାମନା-ବି.(୪ତତ୍ତ୍ୱ)ସନ୍ତାନଲାଭେଚ୍ଛା

ପ୍ରଜାକାମୀ—ପୁଂ.ବିଂ.(ପ୍ରଜାକାମ+ଇନ୍) ପ୍ରଜାକାମ ଦେଖ ।

ପ୍ରଜାକାର—ପୁଂ. ବିଂ. ସୃଷ୍ଟିକର୍ତ୍ତା, ପ୍ରଜା-ପତି, ବ୍ରହ୍ମା ।

ପ୍ରଜାଗର—ପୁଂ. ବି. (ପ୍ରଜା+ଗୃ+ଅ) ପ୍ରକୃଷ୍ଟରୂପେ ଜାଗରଣ, ବିଷ୍ଣୁ, ପ୍ରାଣ, ପାଳକ,(ବିଂ) ଯେ ଚେଇଁ ଥାଏ,ଜାଗ-ରୁକ, ସତର୍କ । [ ନିଦ୍ରାହୀନତା ।

ପ୍ରଜାଗରଣ—କ୍ଲୀ.ବି. ଅତ୍ୟନ୍ତ ଜାଗରଣ,

ପ୍ରଜାଗରା—ସ୍ତ୍ରୀ. ବି. ଅପ୍ସରାବିଶେଷ ।

ପ୍ରଜାଘ୍ନ—ତ୍ରି. ବିଂ. ପ୍ରଜାନାଶକାରୀ ।

ପ୍ରଜାତ—ତ୍ରି. ବିଂ. (ପ୍ର+ଜନ୍+ତ) ଉତ୍ପନ୍ନ, ଉଦ୍ଭୂତ, ପ୍ରକୃଷ୍ଟରୂପେ ଜାତ, (ବି) ଅଶ୍ୱଭେଦ

ପ୍ରଜାତନ୍ତୁ—ପୁଂ. ବି.ସନ୍ତାନ, ପୁତ୍ର ପର-ମ୍ପରା, ବଂଶ, କୁଳ ।

ପ୍ରଜାତନ୍ତ୍ର—ବି. (କ.ଧା) ପ୍ରଜାମାନଙ୍କର ହସ୍ତଗତ ରାଜ୍ୟ ଶାସନ, (ବିଂ.ବ.ଗ୍ରୀ) ପ୍ରଜାମାନଙ୍କ ଦ୍ୱାରା କରାଯିବା ଶାସନ-ସମ୍ବନ୍ଧୀୟ ।

ପ୍ରଜାତା—ସ୍ତ୍ରୀ.ବିଂ.(ପ୍ର+ଜନ୍+ତ+ଆ) ଉତ୍ପନ୍ନା, ଜାତାପତ୍ୟା, ପ୍ରସୂତା, (ବି) ଗର୍ଭବତୀ ସ୍ତ୍ରୀ ।

ପ୍ରଜାତି—ସ୍ତ୍ରୀ.ବି.(ପ୍ର+ଜନ୍+ତି) ପ୍ରଜା, ଉତ୍ପାଦନ, ଶାଖାଜାତ, ପ୍ରଜନନ, ପୌତ୍ରୋତ୍ପତ୍ତି ।

ପ୍ରଜାତାର୍ଥ—ବି.ଜାତକର୍ମ ଉତ୍ସବ କାଳ ।

ପ୍ରଜାଦ—ବିଂ.(ପ୍ରଜା+ଦା+ଅ)ସନ୍ତାନ-ଦାତା, ବନ୍ଧ୍ୟାତ୍ୱ ନିବାରକ, ଗର୍ଭଦ ।

ପ୍ରଜାଦା—ସ୍ତ୍ରୀ. ବି, ଗର୍ଭଦାତ୍ରୀ କ୍ଷୁପ ।

ପ୍ରଜାଦାନ—କ୍ଲୀ. ବି. (୬ତତ୍ତ୍ୱ) ପ୍ରଜାର ଦାନ, ପ୍ରଜାର ଆଦାନ,ଗ୍ରହଣ,(ବ.ଗ୍ରୀ) ରଜତ, ରୌପ୍ୟ ।

ପ୍ରଜାଦ୍ୱାର—କ୍ଲୀ. ବି. ପୁତ୍ରୋତ୍ପତ୍ତିର ପଥ ବା ଉପାୟ, ସୂର୍ଯ୍ୟଙ୍କର ନାମାନ୍ତର ।

ପ୍ରଜାଧର୍ମ—ପୁଂ. ବି. (୬ତତ୍ତ୍ୱ) ପ୍ରଜା ବା ପୁତ୍ରର କର୍ତ୍ତବ୍ୟ କର୍ମ ।

ପ୍ରଜାଧ୍ୟକ୍ଷ—ପୁଂ.ବି. (୬ତତ୍ତ୍ୱ) ପ୍ରଜାପତି, ଦକ୍ଷ, କର୍ଦ୍ଦମ, ସୂର୍ଯ୍ୟ ।

ପ୍ରଜାନାଥ—ପୁଂ. ବି. ଲୋକନାଥ, ନୃପ, ପ୍ରଜାପାଳ, ବ୍ରହ୍ମା, ମନୁ, ଦକ୍ଷ ।

ପ୍ରଜାନତୀ—ସ୍ତ୍ରୀ.ବିଂ.ପଣ୍ଡିତା, ପ୍ରାଜ୍ଞୀ,(ପୁଂ. ବିଂ) ବିଶେଷନେତ୍ର ।

ପ୍ରଜାନିଷେକ—ପୁଂ. ବି. ଗର୍ଭଧାରଣ, ଗର୍ଭସ୍ଥ ଭ୍ରୂଣ, ପୁତ୍ର ।

ପ୍ରଜାନ୍ତକ—ପୁଂ.ବି.(୬ତତ୍ତ୍ୱ) କାଳ,ଯମ, ଅତ୍ୟାଚାରୀ ରାଜା.(ବିଂ) ପ୍ରଜାପୀଡ଼କ ।

ପ୍ରଜାପ—ପୁଂ. ବି. (ପ୍ରଜା+ପା+କ.ଅ) ରାଜା, (ବିଂ) ପ୍ରଜାପାଳକ ।

ପ୍ରଜାପତି—ପୁଂ. ବି. (୬ତତ୍ତ୍ୱ) ବିଶ୍ୱକର୍ମା, ବିଷ୍ଣୁ, ଲିଙ୍ଗ, ମନୁ, ଗୃହକର୍ତ୍ତା, ଦକ୍ଷାଦି ମହୀପାଳ, ଇନ୍ଦ୍ର, ଜାମାତା, ଦିବାକର, ବହ୍ନି, ତ୍ୱଷ୍ଟା, ପିତା,ସଙ୍ଖ, ସ୍ୱନାମଖ୍ୟାତ ନୃପଭେଦ, ଷଟ୍‌ପଦୀ ପତଙ୍ଗବିଶେଷ, ଷଷ୍ଟି ସମ୍ବତ୍ସରବିଶେଷ, ନକ୍ଷତ୍ରବିଶେଷ, ପ୍ରାଜାପତ୍ୟ ବିବାହ, ବ୍ରହ୍ମା, ବ୍ରହ୍ମାଙ୍କର ୧୦ଜଣ ମାନସପୁତ୍ର, ( ଯେଉଁମାନେ ଜୀବ ଜଗତର ଆଦିପୁରୁଷ, ଯଥା— ମରୀଚି, ଅତ୍ରି, ଅଙ୍ଗିରା, ପୁଲସ୍ତ୍ୟ,ପୁଲହ, କ୍ରତୁ, ବଶିଷ୍ଠ, ଭୃଗୁ, ଦକ୍ଷ ଓ ନାରଦ)

ପ୍ରଜାପତିନିର୍ବନ୍ଧ—ପୁଂ.ବି.(୬ତତ୍ତ୍ୱ)ପ୍ରଜା-ପତିର ବିଧାନ, ବିଧାତାର ବିଧି ।

ପ୍ରଜାପତିପତି—ପୁଂ.ବି. ଦକ୍ଷପ୍ରଜାପତି ।

ପ୍ରଜାପତିଲୋକ—ପୁଂ. ବି. ବ୍ରହ୍ମଲୋକ ।

ପ୍ରଜାପାଳ—ପୁଂ. ବି. (ପ୍ରଜା+ପାଳ+କ.ଅ) ରାଜା, ପ୍ରଜାପତି ।

ପ୍ରଜାପାଳକ—ବିଂ(୬ତତ୍ତ୍ୱ)ପ୍ରଜାପାଳନ-କାରୀ, ନ୍ୟାୟାନୁସାରେ ଅଧୀନସ୍ଥ ଲୋକ ସମୂହର ରକ୍ଷଣାବେକ୍ଷଣକାରୀ ।

ପ୍ରଜାପାଳନ—କ୍ଲୀ. ବି. (୬ତତ୍ତ୍ୱ) ଅଧୀନ ଜନସମୂହର ରକ୍ଷଣାବେକ୍ଷଣ ।

ପ୍ରଜାପାଲ୍ୟ—ବିଂ.ପ୍ରଜାପାଳନଯୋଗ୍ୟ ।

ପ୍ରଜାପୀଡ଼କ—ବିଂ.(୬ତତ୍ତ୍ୱ)ପ୍ରଜାପୀଡ଼ନ-କାରୀ ଶାସନକର୍ତ୍ତା ।

ପ୍ରଜାପୀଡ଼ନ—ବି.(୬ତତ୍ତ୍ୱ) ଅଧୀନ ଜନ-ମାନଙ୍କ ପ୍ରତି ଦୁର୍ବ୍ୟବହାର, ପ୍ରକୃତି-ନିଗ୍ରହ । [ ଅତ୍ୟାଚାର ।

ପ୍ରଜାପୀଡ଼ା—ବି.(୬ତତ୍ତ୍ୱ)ପ୍ରଜାଙ୍କ ଉପରେ

ପ୍ରଜାପୁଞ୍ଜ—ବି. (୬ତତ୍ତ୍ୱ) ପ୍ରଜାସମୂହ ।

ପ୍ରଜାଫୁଟ—ପ୍ରା.(ଯାଜପୁର) ବି.ଅତି ଗୁପ୍ତ କଥାର ସର୍ବତ୍ର ପ୍ରକାଶ ।

ପ୍ରଜାବତୀ—ସ୍ତ୍ରୀ.ବି. (ପ୍ରଜା+ବତ୍+ଈ) ଭ୍ରାତୃଜାୟା, ଜ୍ୟେଷ୍ଠ ଭ୍ରାତାର ପତ୍ନୀ, ଭାଉଜ, ମାତା, ସନ୍ତାନବତୀ, ପ୍ରିୟବ୍ରତ ରାଜାଙ୍କ ପତ୍ନୀ, ଗର୍ଭବତୀ ସ୍ତ୍ରୀ, (ସ୍ତ୍ରୀ.ବିଂ) ଗର୍ଭବତୀ,ସନ୍ତାନସନ୍ତତି ସମ୍ପନ୍ନା(ମାତା)

ପ୍ରଜାବତ୍ସଳ—ପୁଂ. ବିଂ. ପ୍ରଜାଙ୍କୁ ପୁତ୍ର ନିର୍ବିଶେଷରେ ପାଳନ କରୁଥିବା(ରାଜା)

ପ୍ରଜାବିଦ୍—ପୁଂ. ବିଂ. (ପ୍ରଜା+ବିଦ୍+କ୍ୱିପ୍) ପ୍ରଜାଲଭକାରୀ ।

ପ୍ରଜାବୃଦ୍ଧି—ବି. (୬ତତ୍ତ୍ୱ) ସନ୍ତାନ ବୃଦ୍ଧି, ରାଜ୍ୟର ଲୋକସଂଖ୍ୟା ବୃଦ୍ଧି ।

ପ୍ରଜାୟିନୀ—ସ୍ତ୍ରୀ. ବି. ( ପ୍ର+ଜନ୍+କ. ଇନ୍+ଈ ) ସନ୍ତାନଜନନୀ, ମାତା, ପ୍ରସୂତା ।

ପ୍ରଜାରଞ୍ଜକ—ପୁଂ.ବିଂ. ରାଜ୍ୟର ପ୍ରଜାଙ୍କ ମନୋରଞ୍ଜନକାରୀ,ପ୍ରଜାଙ୍କର ସୁଖ ଶାନ୍ତି ଓ ଆନନ୍ଦ ବିଧାୟକ ।

ପ୍ରଜାରଞ୍ଜନ—ବି.(୬ତତ୍ତ୍ୱ) ରାଜ୍ୟର ପ୍ରଜା-ମାନଙ୍କର ସୁଖଶାନ୍ତି ଓ ଆନନ୍ଦବିଧାନ ।

ପ୍ରଜାଲୋକ—ବି. ରାଜ୍ୟର ପ୍ରଜାମାନେ ।

ପ୍ରଜାଶ୍ରମ—ବି.(ପ୍ରଜା+ଆଶ୍ରମ) ଗୃହସ୍ଥା-ଶ୍ରମ ।

ପ୍ରଜାସୃକ୍—ପୁଂ.ବି (ପ୍ରଜା+ସୃଜ୍+କ. କ୍ୱିପ୍)ସୃଷ୍ଟିକର୍ତ୍ତା,ବ୍ରହ୍ମା, କଶ୍ୟପ,ଜନକ, ପିତା ।

ପ୍ରଜାସ୍ୱତ୍ୱ—ଗ୍ରା. ବି. ରଇତ ଜମିକୁ ୧୨ ବର୍ଷରୁ ଊର୍ଦ୍ଧ୍ୱ ଚାଷ କରିବା ପ୍ରଜାର ଉକ୍ତ ବୃତ୍ତି ଉପରେ ଆଇନ୍ ଅନୁସାରେ ପ୍ରବର୍ତ୍ତିବା ସ୍ୱତ୍ୱ ବା ଅଧିକାର, ସ୍ଥିତି-ବାନ୍ ସ୍ୱତ୍ୱ ।

ପ୍ରଜାସ୍ୱତ୍ୱଆଇନ୍—ଗ୍ରା.ବି. ଯେଉଁ ଆଇ-ନ୍‌ରେ ସରକାର ଜମିଦାର ଓ ପ୍ରଜା-ଙ୍କର ପରସ୍ପର ସମ୍ପର୍କ ଓ ସ୍ୱତ୍ୱଆଦି ଲିପିବଦ୍ଧ କରିଥାଆନ୍ତି ।

ପ୍ରଜାହିତ—ସ୍ତ୍ରୀ.ବି.(ବ.ବ୍ରୀ)ଜଳ,(୬ତତ୍) ସନ୍ତାନମାନଙ୍କର ମଙ୍ଗଳ, ପ୍ରଜାମାନ-ଙ୍କର ହିତ,(ବି°) ପ୍ରଜା ପକ୍ଷେ କଲ୍ୟାଣ-ଦାୟକ, ପ୍ରଜାମାନଙ୍କର ହିତକର ।

ପ୍ରଜିତ୍—ବି°. ପ୍ରକୃଷ୍ଟ ରୂପେ ଜୟଶୀଳ, ବିଜୟୀ, ବିଜେତା ।

ପ୍ରଜିନ—ପୁଂ. ବି. ବାୟୁ ।

ପ୍ରଜିହୀର୍ଷୁ—ବି°. ( ପ୍ର+ହୃ+ସନ୍+ଉ) ପ୍ରହାରେଚ୍ଛୁ ।

ପ୍ରଜୀବନ—କ୍ଳୀ. ବି. ଜୀବିକା, ଜୀବିକୋପ-ଜୀବୀ ଅର୍ଥ ।

ପ୍ରଜୁଷ୍ଟ—ପୁଂ. ବି°. (ପ୍ର+ଜୁଷ୍+କ୍ତ) ପ୍ରସକ୍ତ, ଅତ୍ୟନ୍ତ ଆସକ୍ତ ବା ଅନୁରକ୍ତ, (ସ୍ତ୍ରୀ) ପ୍ରଜୁଷ୍ଟା ।

ପ୍ରଜେଶ—ପୁଂ. ବି. (୬ତତ୍) ପ୍ରଜାପତି, ରାଜା, ପ୍ରଜେଶ୍ୱର ।

ପ୍ରଜେଶ୍ୱର—ପୁଂ. ବି. ରାଜା ।

ପ୍ରଜ୍ଝଟିକା—ସ୍ତ୍ରୀ.ବି.ପ୍ରାକୃତ ଛନ୍ଦୋଭେଦ, ପଜ୍ଝଟିକା ଦେଖ ।

ପ୍ରଜ୍ଞ—ବି°.(ପ୍ର+ଜ୍ଞା+ଅ) ପଣ୍ଡିତ,ପ୍ରଗତ-ଜାନୁକ,ବିଚକ୍ଷଣ,ଜ୍ଞାନବାନ୍,(ସ୍ତ୍ରୀ)ପ୍ରଜ୍ଞା ।

ପ୍ରଜ୍ଞପ୍ତି—ସ୍ତ୍ରୀ. ବି. ( ପ୍ର+ଜ୍ଞା+ଣିଚ୍+ତିନ୍)ବିଜ୍ଞପ୍ତି, ସୂଚନ, ସଙ୍କେତ, ଜ୍ଞାନ, ଜ୍ଞାପନ ।

ପ୍ରଜ୍ଞା—ସ୍ତ୍ରୀ.ବି.(ପ୍ର+ଜ୍ଞ+ଅ+ଆ)ବୁଦ୍ଧି, ଜ୍ଞାନ, ବିବେଚନା, ଏକାଗ୍ରତା, ଚତୁ-ରତା, ବୁଦ୍ଧିମତୀ ସ୍ତ୍ରୀ, ସଙ୍କେତ, ମନ୍ତ୍ରଣା, ସରସ୍ୱତୀ, (ବି°) ପ୍ରଜ୍ଞର ସ୍ତ୍ରୀଲିଙ୍ଗ ।

ପ୍ରଜ୍ଞାଚକ୍ଷୁଃ—ପୁଂ.ବି.(ବ.ବ୍ରୀ) ଧୃତରାଷ୍ଟ୍ରଙ୍କ ନାମ, ଚକ୍ଷୁ ସଙ୍ଗେ ତୁଳନୀୟ ବୁଦ୍ଧି, ଜ୍ଞାନୀ, (ବ୍ୟଙ୍ଗ) ଅନ୍ଧ ।

ପ୍ରଜ୍ଞାଢ୍ୟ—ପୁଂ.ବି°.(୩ତତ୍) ପ୍ରଜ୍ଞାସମ୍ପନ୍ନ, ବୁଦ୍ଧିଯୁକ୍ତ । [ ଭିଜ୍ଞ ।

ପ୍ରଜ୍ଞାତ—ପୁଂ.ବି°.(ପ୍ର+ଜ୍ଞା+କ୍ତ)ସର୍ବା-

ପ୍ରଜ୍ଞାନ—କ୍ଳୀ.ବି. (ପ୍ର+ଜ୍ଞା+ଅନ)ଜ୍ଞାନ, ବୁଦ୍ଧି, ଚିହ୍ନ, ଚୈତନ୍ୟ, (ପୁଂ. ବି°) ଜ୍ଞାନୀ, ପଣ୍ଡିତ ।

ପ୍ରଜ୍ଞାପାରମିତା—ସ୍ତ୍ରୀ.ବି.ବୌଦ୍ଧମାନଙ୍କର ଦର୍ଶନ ଶାସ୍ତ୍ରଭେଦ, ବୌଦ୍ଧ ଦେବୀ-ବିଶେଷ ।

ପ୍ରଜ୍ଞାବାଦ—ବି.(କ.ଧା)ହିତକଥା, ପ୍ରବୀଣ ବାକ୍ୟ, ଜ୍ଞାନୀ ବ୍ୟକ୍ତିର କଥାପରି ଅନୁ-ମିତ ବାକ୍ୟ ।

ପ୍ରଜ୍ଞାବାନ୍—ପୁଂ.ବି°.(ପ୍ରଜ୍ଞା+ବତ୍)ପ୍ରଜ୍ଞା-ଯୁକ୍ତ, ବୁଦ୍ଧିମାନ୍,ପଣ୍ଡିତ, ଜ୍ଞାନୀ,ଚତୁର ।

ପ୍ରଜ୍ଞାବୃଦ୍ଧ—ପୁଂ.ବି°.(୩ତତ୍) (ବୟସରେ ନୁହେଁ) ଜ୍ଞାନରେ ବଡ଼ ।

ପ୍ରଜ୍ଞାସନ୍ଦ୍ରାୟୁ—ପୁଂ. ବି°. (ବ.ବ୍ରୀ) ଜ୍ଞାନୀ, ବୁଦ୍ଧିମାନ୍ ।

ପ୍ରଜ୍ଞୀ—ପୁଂ.ବି°.(ପ୍ରଜ୍ଞା+ଇନ୍)ପଣ୍ଡିତ, ବୁଦ୍ଧିମାନ୍, ଚତୁର, ପ୍ରଜ୍ଞାଯୁକ୍ତ ।

ପ୍ରଜ୍ଞୁ—ପୁଂ. ବି°. ( ପ୍ର+ଜାନୁ )ବିରଳ-ଜାନୁକ, ପ୍ରଗତଜାନୁକ, ଖଞ୍ଜପାଦ ।

ପ୍ରଜ୍ୱଳନ—କ୍ଳୀ,ବି. (ପ୍ର+ଜ୍ୱଳ+ଅନ) ହୁ ହୁ ଜଳିବା, ପ୍ରଦୀପନ, ନିଆଁ ଲାଗିବା, ପ୍ରକୃଷ୍ଟ ଜ୍ୱଳନ ।

ପ୍ରଜ୍ୱଳନୀୟ—ବି°. ( ପ୍ର+ଜ୍ୱଳନୀୟ ) ଜ୍ୱଳନୋପଯୁକ୍ତ, ଦାହ୍ୟ ।

ପ୍ରଜ୍ୱଳିତ—ବି. ବି°. (ପ୍ର+ଜ୍ୱଳ+ତ) ପ୍ରଦୀପ୍ତ, ଜଳୁଥିବା, ପ୍ରକୃଷ୍ଟ ଜ୍ୱଳନ-ଯୁକ୍ତ, ଜ୍ୱଳନଯୁକ୍ତ ।

ପ୍ରଜ୍ୱାର—ପୁଂ. ବି. ଜ୍ୱରର ପ୍ରଦାହ ।

ପ୍ରଜ୍ୱାଳନ—ବି. (ପ୍ର+ଜ୍ୱାଳନ) ଜଳା-ଇବା, ନିଆଁ ଲଗାଇବା ।

ପ୍ରଜ୍ୱାଳିତ-ବି°.(ପ୍ର+ଜ୍ୱାଳିତ)ଯହିଁରେ ନିଆଁ ଲଗାଇ ଦିଆଯାଇଥାଏ, ପ୍ରଦୀପିତ ।

ପ୍ରଡୀନ—କ୍ଳୀ. ବି. ପକ୍ଷୀମାନଙ୍କର ଗତି-ବିଶେଷ, ତିର୍ଯ୍ୟକ୍‌ଗତି ।

ପ୍ରଣ—ବି.ପୁରାଣ,(ବି°)ପ୍ରାଚୀନ,ପୁରାତନ।

ପ୍ରଣଖ—ପୁଂ. ବି. ନଖାଗ୍ର ।

ପ୍ରଣତ—ବି°. (ପ୍ର+ନମ୍+କ୍ତ) ଯେ ପ୍ରଣାମ କରିଅଛି, ନମ୍ର, ନତ, ଆଗକୁ ନଇଁ ପଡ଼ିଥିବା, ଅନୁଗତ, ବନ୍ଦ,ଭକ୍ତ, ପଟୁ, ଉପାସକ ।

ପ୍ରଣତପାଳ—ପୁଂ. ବି°. (୬ତତ୍) ଭକ୍ତ-ମାନଙ୍କର ରକ୍ଷକ ।

ପ୍ରଣତାର୍ତ୍ତିହର—ପୁଂ. ବି°. ଯେ ଭକ୍ତର ଦୁଃଖକୁ ହରଣ କରେ ।

ପ୍ରଣତି—ସ୍ତ୍ରୀ. ବି. (ପ୍ର+ନମ୍+ଭା.ତି) ଶିଷ୍ଟାଚାର, ପ୍ରଣାମ, ନମ୍ରଭାବ, ନମ୍ରତା, ପ୍ରଣିପାତ । [ ପ୍ରଣାଦ ।

ପ୍ରଣଦନ—ପୁଂ. ବି. (ପ୍ର+ନଦ୍+ଅନ)

ପ୍ରଣପତ୍ୟ—ଗ୍ରା. ବି. ପ୍ରଣାମ କରିବା, ନମସ୍କାର, ଦଣ୍ଡବତ୍ ।

ପ୍ରଣମନୀୟ—ବି.ବି°. ପ୍ରଣମ୍ୟ,ନମସ୍କାରାର୍ହ ।

ପ୍ରଣମିତ—ବି°. (ପ୍ର+ନମିତ) ନମସ୍କାର କରିଥିବା, ନତ, ସମ୍ମାନ ସହକାରେ ପ୍ରଦତ୍ତ ।

ପ୍ରଣମିବା—ଗ୍ରା. କ୍ରି. ନମସ୍କାର କରିବା, ପ୍ରମାଣ କରିବା ।

ପ୍ରଣମ୍ୟ—ଗ୍ରା. ବି. ପ୍ରଣାମ, ନମସ୍କାର ।

ପ୍ରଣୟ—ପୁଂ. ବି. ( ପ୍ର+ନୀ+ଭା.ଅ ) ନେତୃତ୍ୱ, ପରିଚୟ, ଅନୁରାଗ, ପ୍ରୀତି, ପ୍ରୀତିଦ୍ୱାରା ପ୍ରାର୍ଥନା, ପ୍ରଶ୍ରୟ, ପ୍ରସର, ପ୍ରେମ, ଭଲପାଇବା, ଯାଚ୍ଞା,ପ୍ରାର୍ଥନା, ବିଶ୍ରମ୍ଭ, ବିଶ୍ୱାସ, ନିର୍ବାଣ,ପ୍ରସବ,ଶ୍ରଦ୍ଧା ।

ପ୍ରଣୟକଳହ—ବି. ( କ.ଧା ) ପ୍ରେମିକ ପ୍ରେମିକାଙ୍କ ମଧ୍ୟରେ ଅଳ୍ପକାଳସ୍ଥାୟୀ କଳି ।

ପ୍ରଣୟକୋପ—ପୁଂ. ବି. (କ.ଧା)ପ୍ରଣୟ-ଜନ୍ୟ କ୍ରୋଧ, ଅଭିମାନ ।

ପ୍ରଣୟଗର୍ଭ—ବି°. (ବ.ବ୍ରୀ) ପ୍ରୀତିପୂର୍ଣ୍ଣ ।

ପ୍ରଣୟନ—କ୍ଳୀ. ବି. (ପ୍ର+ନୀ+ଭା.ଅନ) ନିର୍ମାଣ, ସର୍ଜନ, ସମ୍ପାଦନ, ରଚନା, ଉଦ୍ଭାବନ, ଚଲାଇବା, ବାଣ୍ଟିବା,ପୁର-ସ୍କାର ଦାନ,ଦଣ୍ଡର ଆଦେଶ, କୌଣସି କାର୍ଯ୍ୟର ସୂତ୍ରପାତକରଣ, ସ୍ଥାପନ, ପ୍ରତିଷ୍ଠା, ( ଣ.ଅନ ) ଅଗ୍ନିସମିନ୍ଧନ

କରିବା ମନ୍ତ୍ର, ଯେଉଁ ମନ୍ତ୍ରପାଠ କରି ହୋମାଗ୍ନି ଜାଳିବାକୁ ହୁଏ ।

**ପ୍ରଣୟପତ୍ର**—ବି. ପ୍ରଣୟୀ ଓ ପ୍ରଣୟିନୀଙ୍କ ମଧ୍ୟରେ ଦିଆନିଆ ହେବା ପତ୍ର, ପ୍ରେମଲିପି ।

**ପ୍ରଣୟପାଶ**—ବି. ପାଶ ବା ଜାଲରୂପେ କଳ୍ପିତ ପ୍ରଣୟ, ପରସ୍ପର ପ୍ରତି ସୁଦୃଢ଼ ଅନୁରାଗ । [ କାମାତୁର ।

**ପ୍ରଣୟପୀଡ଼ିତ**—ବିଂ. (୭ତତ୍ର) ପ୍ରେମାର୍ତ୍ତ,

**ପ୍ରଣୟଭାଜନ**—ବିଂ. (୬ତତ୍ର)ପ୍ରୀତିପାତ୍ର, ଯାହାଙ୍କୁ ପ୍ରେମ କରିବା ଉଚିତ ।

**ପ୍ରଣୟବାନ୍**—ବିଂ.(ପ୍ରଣୟ+ବତ୍) ପ୍ରଣୟଯୁକ୍ତ, ପ୍ରୀତିଯୁକ୍ତ ।

**ପ୍ରଣୟବିହତ**—ସ୍ତ୍ରୀ.ବି.(୬ତତ୍ର)ଅସ୍ୱୀକାର, ପ୍ରତ୍ୟାଖ୍ୟାନ, ନିରାକୃତ ।

**ପ୍ରଣୟସମ୍ଭାଷଣ**—ବି. (କ.ଧା)ପ୍ରେମାଳାପ

**ପ୍ରଣୟାକାଙ୍କ୍ଷୀ**—ପୁଂ.ବିଂ.(୬ତତ୍ର)କୌଣସି ବ୍ୟକ୍ତିର ପ୍ରଣୟ ଲାଭାର୍ଥ ଉତ୍ସୁକ ।

**ପ୍ରଣୟାଭିମାନ**—ବି. ( କ.ଧା ) ପ୍ରଣୟ ବ୍ୟାପାର ସମ୍ପର୍କରେ ପ୍ରଣୟୀ ଓ ପ୍ରଣୟିନୀଙ୍କ ମଧ୍ୟରେ ଜାତ ଅଭିମାନ ।

**ପ୍ରଣୟାଳାପ**—ବି. (କ.ଧା) ପ୍ରେମସମ୍ଭାଷଣ, ପ୍ରେମାଳାପ ।

**ପ୍ରଣୟିନୀ**—ସ୍ତ୍ରୀ.ବି. (ପ୍ରଣୟ+ଇନ୍+ଈ) ଅନୁରକ୍ତା ଭାର୍ଯ୍ୟା ବା ନାୟିକା,(ସ୍ତ୍ରୀ.ବିଂ) ପ୍ରଣୟୀର ସ୍ତ୍ରୀଲିଙ୍ଗ ।

**ପ୍ରଣୟୀ**—ପୁଂ.ବି. (ପ୍ରଣୟ+ଇନ୍)ସ୍ୱାମୀ, ଅନୁରକ୍ତ ପତି ବା ନାୟକ ।

**ପ୍ରଣବ**—ପୁଂ. ବି. ( ପ୍ର+ନୁ+ଣ.ଅ ) ଓଁକାର, ବେଦାଦିରେ ପାଠ୍ୟ ଶବ୍ଦଭେଦ, ପରମେଶ୍ୱର, ସାମାବୟବଭେଦ ।

**ପ୍ରଣବରୁ ଅଶୁଦ୍ଧ**—ଗ୍ରା. ବିଂ. ପ୍ରଥମରୁ ବିଗିଡ଼ିବା (କର୍ମ) ।

**ପ୍ରଣବାତ୍ମକ**—ପୁଂ.ବିଂ. (ବ.ବ୍ରୀ)ଓଁକାରାତ୍ମକ (ବେଦମନ୍ତ୍ରାଦି) ।

**ପ୍ରଣସ**—ପୁଂ.ବିଂ.(ବ.ବ୍ରୀ) ବିଗତନାସିକ, ଯାହାର ନାସିକା ନାହିଁ ।

**ପ୍ରଣାଦ**—ପୁଂ.ବି. ( ବ.ବ୍ରୀ ) ଅନୁରାଗଜ ଶବ୍ଦ, ଚିତ୍କାର, କର୍ଣ୍ଣରୋଗବିଶେଷ, ପ୍ରଣୟ ନିବନ୍ଧନ ମୁଖକଣ୍ଠାଦିର ଶବ୍ଦ. ଉଚ୍ଚଶବ୍ଦ, ଚକ୍ରବର୍ତ୍ତୀବିଶେଷ ।

**ପ୍ରଣାମ**—ପୁଂ.ବି.(ପ୍ର+ନମ୍+ଅ)ପ୍ରଣତି, ପ୍ରଣିପାତ, ଭକ୍ତି ଶ୍ରଦ୍ଧାତିଶୟ ନମସ୍କାର. ଜ୍ୟେଷ୍ଠ, ଶ୍ରେଷ୍ଠ ଓ ଗରିଷ୍ଠ ବ୍ୟକ୍ତିମାନଙ୍କ ସମ୍ମୁଖରେ ବା ଦେବପ୍ରତିମା ସମ୍ମୁଖରେ ବା ଈଶ୍ୱରଙ୍କୁ ଲକ୍ଷ୍ୟକରି ମସ୍ତକ ସହ ଦେହକୁ ନତକରି ଅଭିବାଦନ କରିବା ।

**ପ୍ରଣାମୀ**—ପୁଂ. ବିଂ. ( ପ୍ରଣାମ+ଇନ୍ ) ପ୍ରଣାମକାରୀ, ପୂଜାକାରୀ, ଯେ ନମସ୍କାର କରୁଥାଏ ।

**ପ୍ରଣାୟକ**—ପୁଂ. ବି. ସେନାନାୟକ, ସର୍ଦ୍ଦାର, ନେତା ବ୍ୟକ୍ତି, (ବିଂ) ପଥପ୍ରଦର୍ଶକ ।

**ପ୍ରଣାଯ୍ୟ**—ତ୍ରି.ବିଂ. ( ପ୍ର+ନୀ+ର୍ମ.ଯ ) ଅସମ୍ମତ, ଅଭିଳାଷ ବିବର୍ଜିତ, ନିସ୍ପୃହ, ସାଧୁ, ନ୍ୟାୟବାନ୍, ପ୍ରିୟ ।

**ପ୍ରଣାଳ**—ପୁଂ. ବି. ( ପ୍ର+ନଲ+ଅ ) ପ୍ରଣାଳୀ ଦେଖ ।

**ପ୍ରଣାଳୀ**—ସ୍ତ୍ରୀ. ବି. ( ପ୍ର+ନଲ+ଈ ) ନର୍ଦ୍ଦମା, ପଦ୍ଧତି, ଧାରା, ସୋତ, ଦେଶାଗ୍ର, ପରମ୍ପରା, ଶ୍ରେଣୀ, ଦ୍ୱାର, ପୟଃନାଳ, ଜଳ ନିଃସାରଣ ମାର୍ଗ, ଯେଉଁ ସଂକୀର୍ଣ୍ଣ ଜଳଭାଗ ଦୁଇ ବୃହତ୍ ଜଳଭାଗକୁ ପରସ୍ପର ସଂଯୁକ୍ତ କରେ ।

**ପ୍ରଣାଶ**—ପୁଂ.ବି. ( ପ୍ର+ନଶ୍+ଭା.ଅ ) ମୃତ୍ୟୁ, ମରଣ,ପଳାୟନ,ନିଧନ,ଲୋପ ।

**ପ୍ରଣାଶନ**—ବି. ଅସ୍ତିତ୍ୱଲୋପକରଣ, ସମ୍ୟକ୍‌ରୂପେ ନାଶ ବା ଧ୍ୱଂସ ।

**ପ୍ରଣାଶିନ୍**—ପୁଂ.ବିଂ. ( ପ୍ରଣାଶ+ଇନ୍ ) ନାଶକାରୀ, ଲୟକାରୀ (ସ୍ତ୍ରୀ-ପ୍ରଣାଶିନୀ ।

**ପ୍ରଣିଂସିତ**—ତ୍ରି.ବିଂ. (ପ୍ର+ଣିଂସ୍+ତ) ଚୁମ୍ବିତ, କୃତଚୁମ୍ବନ ।

**ପ୍ରଣିକ୍ଷଣ**—କ୍ଲୀ. ବି. (ପ୍ର+ନିକ୍ଷ+ଅନ) ଉତ୍ତମରୂପେ ଚୁମ୍ବନ ।

**ପ୍ରଣିଧାନ**—କ୍ଲୀ. ବି. ( ପ୍ର+ନି+ଧା+ଭା.ଅନ) ଶତ୍ରୁ, ସମାଧି, ମନୋନିବେଶ, ଯତ୍ନ, ଯୋଗ,ମନର ଏକାଗ୍ରତା, ଧ୍ୟାନ, ଚେଷ୍ଟା, ପ୍ରବେଶ, ସମାଧିଦ୍ୱାରା ଦୃଷ୍ଟି ଅର୍ପଣ, ଭକ୍ତିବିଶେଷ, କର୍ମଫଳ ତ୍ୟାଗ, ଭବିଷ୍ୟତ୍ ଜନ୍ମର କୌଣସି ବିଷୟରେ ପ୍ରାର୍ଥନା ।

**ପ୍ରଣିଧି**—ପୁଂ.ବି. (ପ୍ର+ନି+ଧା+ଇ) ଚର, ଅନୁଚର, ଯାଚନ, ଅବଧାନ, କାଶ୍ୟପ ଗୋତ୍ରୀୟ ବୃହଦ୍ରଥଙ୍କ ପୁତ୍ର, ଭଜନା, ପ୍ରାର୍ଥନା, ମନୋଯୋଗ,ତତ୍ପରତା, ନିଯୋଗ ।

**ପ୍ରଣିଧେୟ**—ତ୍ରି.ବିଂ. (ପ୍ର+ନି+ଧା+ଯ) ପ୍ରଣିଧାନଯୋଗ୍ୟ ।

**ପ୍ରଣିନାଦ**—ପୁଂ. ବି. ବଜ୍ର ଶବ୍ଦବତ୍ ଗର୍ଜନଶବ୍ଦ, ଗମ୍ଭୀର ଶବ୍ଦ ।

**ପ୍ରଣିପତନ**—କ୍ଲୀ.ବି (ପ୍ର+ନି+ପତ୍+ଅନ) ନଇଁ ପଡ଼ିବା, ପ୍ରଣିପାତ,ପ୍ରଣାମ, ନଇଁକରି କରିବା ପ୍ରଣାମ ।

**ପ୍ରଣିପତିତ**—ବିଂ. (ପ୍ର+ନି+ପତ୍+କ.ତ)ପ୍ରଣତ, କୃତପ୍ରଣାମ ।

**ପ୍ରଣିପତ୍ୟ**—ଅବ୍ୟ. ପ୍ରଣାମପୂର୍ବକ, ନମସ୍କାର ସହ,ପ୍ରଣିପାତପୂର୍ବକ ।

**ପ୍ରଣିପାତ**—ପୁଂ.ବି. (ପ୍ର+ନି+ପତ୍+ଭା.ଅ) ପ୍ରଣତି, ପ୍ରଣାମ, ନଇଁକରି କରିବା ନମସ୍କାର ।

**ପ୍ରଣିହିତ**—ତ୍ରି. ବିଂ. (ପ୍ର+ନି+ଧା+ର୍ମ.ତ) ସ୍ଥିରୀକୃତ, ପ୍ରସାରିତ, ସ୍ୱୀକୃତ, ମନୋଯୋଗୀ,ସ୍ଥାପିତ, ପ୍ରାପ୍ତ ମିଳିତ, ଗୁପ୍ତଚର ବା ଅନୁସନ୍ଧାନ ସାହାଯ୍ୟରେ ପ୍ରାପ୍ତ ହୋଇଥିବା, (କ.ତ)ଯତ୍ନଶୀଳ, ସ୍ଥିରିଆର ।

**ପ୍ରଣୀ**—ବି. ( ପ୍ର+ନୀ+କ.କ୍ୱିପ୍ ) ଈଶ୍ୱର, (ବିଂ) କାରକ ।

**ପ୍ରଣୀତ**—ତ୍ରି.ବିଂ.(ପ୍ର+ନୀ+ତ)ଲିଖିତ, କଥିତ, ପ୍ରତିଷ୍ଠିତ, ସଂଗୃହୀତ, ପ୍ରେରିତ ନିର୍ମିତ, ରଚିତ, କୃତ, ପାକଦ୍ୱାରା ରୂପରସାଦି ସମ୍ପନ୍ନ ବ୍ୟଞ୍ଜନାଦି, ନିକ୍ଷିପ୍ତ, ନିହିତ, ପ୍ରବେଶିତ, ଅଦାଲତରେ ନିଷ୍ପନ୍ନ, ଫଇସଲ କରାଯାଇଥିବା, ସଂସ୍କୃତ, ଉତ୍ସୃଷ୍ଟ, (ବି) ମନ୍ତ୍ରାଦିଦ୍ୱାରା

ସଂସ୍କୃତ ଅଗ୍ନି, ମନ୍ତ୍ର ସଂସ୍କୃତ ଜଳ ।
ପ୍ରଣୀତା—ସ୍ତ୍ରୀ.ବି. ହୋମରେ ବ୍ୟବହୃତ ଚତୁଷ୍କୋଣ ଜଳପାତ୍ରବିଶେଷ,(ସ୍ତ୍ରୀ.ବିଂ) ରଚିତା, କଥିତା ।
ପ୍ରଣୀତି—ବି. (ପ୍ର+ନୀ+ଭା.ତି) ନେତୃତ୍ୱ, ଅନୁଗ୍ରହ ।
ପ୍ରଣୀୟ—ବି.(ପ୍ର+ନୀ+ଣ.ଯ)ଯଜ୍ଞପାତ୍ର, ଜଳ ଓ ଅଗ୍ନି ଆଦି ସଂସ୍କାର କରିବାର ବୈଦିକ ମନ୍ତ୍ର ।
ପ୍ରଣୁତ—ବି. ବିଂ. (ପ୍ର+ଣୁ+ର୍ମ.ତ) ଯାହାଙ୍କୁ ସ୍ତବ କରଯାଇଅଛି, ସ୍ତୁତ, ପ୍ରଶଂସିତ, (ସ୍ତ୍ରୀ) ପ୍ରଣୁତା ।
ପ୍ରଣୁଦ—ବିଂ. (ପ୍ର+ଣୁଦ୍+କ୍ୱିପ୍) ପ୍ରେରଣକାରୀ,ମୃଗଧ, ବିଚଳିତ, ଅନୁରୋଧ; ବିତାଡ଼ନକାରୀ ।
ପ୍ରଣୁନ୍ନ—ବି.ବିଂ. (ପ୍ର+ନୁଦ୍+ର୍ମ.ତ) ନିଯୁକ୍ତ, ପ୍ରେରିତ, କମ୍ପିତ, ବିତାଡ଼ିତ
ପ୍ରଣେଜନ—ବି. ପ୍ରକ୍ଷାଳନ, (ବିଂ)ପ୍ରକ୍ଷାଳନକାରକ ।
ପ୍ରଣେତା—ପୁଂ.ବିଂ.(ପ୍ର+ନୀ+କ.ତୃ) ରଚନାକାରୀ, ନିର୍ମାତା, ନେତା, ଧର୍ମମତ ପ୍ରଚାରକ.ଯେ ପ୍ରଣୟ ନ କରନ୍ତି
ପ୍ରଣେୟ—ବି.ବିଂ. (ପ୍ର+ନୀ+ର୍ମ.ଯ) ବଶ୍ୟ, ଅଧୀନ, ଅନୁଗତ, ସୁନ୍ଦର, କୃତଲୌକିକ ସଂସ୍କାର, ପ୍ରାପଣୀୟ ।
ପ୍ରଣୋଦନ—ବି.(ପ୍ର+ନୁଦ୍+ଭା.ଅନ) ପ୍ରେରଣ, ନିଯୋଜନ, ପ୍ରବର୍ତ୍ତନ ।
ପ୍ରଣୋଦିତ—ବି.ବିଂ. (ପ୍ର+ନୁଦ୍+ର୍ମ. ତ) ପ୍ରେରିତ, ନିଯୋଜିତ,ପ୍ରଚୋଦିତ ପ୍ରବର୍ତ୍ତିତ । [ ବିସ୍ତୃତ ।
ପ୍ରତତ—ବି. ବିଂ. (ପ୍ର+ତନ୍+କ.ତ)
ପ୍ରତତି—ସ୍ତ୍ରୀ.ବି. (ପ୍ର+ତନ୍+ତି)ବ୍ୟାପ୍ତି, ବିସ୍ତୃତି, ବ୍ରତତୀ, ବଲ୍ଲୀ, ବିସ୍ତାରିତ ଲତା । [ ଲତା ।
ପ୍ରତତୀ—ସ୍ତ୍ରୀ. ବି. ବ୍ରତତୀ,ଲତା, ବିସ୍ତୃତ
ପ୍ରତନ—ବି.ବିଂ.(ପ୍ର+ତନ)ପୁରାତନ, ପ୍ରାଚୀନ, ପୁରୁଣା ।
ପ୍ରତନୁ—ବି. ବିଂ. (ପ୍ର+ତନୁ) ସରୁ, ପତଳା, ଅତି ସାମାନ୍ୟ, କ୍ଷୁଦ୍ର ।

ପ୍ରତପନ—କ୍ଲୀ. ବି. (ପ୍ର+ତପ୍+ଭା. ଅନ) ନରକ ଭେଦ, ଉତ୍ତାପ, ତତାଇବା, ପ୍ରଜ୍ୱଳିତକରଣ, ତାପଦାନ ।
ପ୍ରତପ୍ତ—ବି.ବିଂ.(ପ୍ର+ତପ୍+ତ)ଗରମ, ଉତ୍ତପ୍ତ, ଉଷ୍ଣ, ତାପିତ, ପୋଡ଼ିତ, କ୍ୱଥିତ ।
ପ୍ରତମକ—ପୁଂ. ବି. ଶ୍ୱାସରୋଗ ଭେଦ, ତମକଶ୍ୱାସ ।
ପ୍ରତମାମ୍—ଅବ୍ୟ. ଅତ୍ୟନ୍ତ, ପ୍ରକର୍ଷ ।
ପ୍ରତର—ପୁଂ. ବି. (ପ୍ର+ତୃ+ଅ)ପ୍ରକୃଷ୍ଟ ରୂପେ ତରଣ, ପ୍ରତରଣାଧାର ।
ପ୍ରତର୍କ—ପୁଂ. ବି. (ପ୍ର+ତର୍କ+ଅ) ସଂଶୟ, ସନ୍ଦେହ, ଅନୁମାନ, ତର୍କ, ବାଦବିବାଦ ।
ପ୍ରତର୍କଣ—କ୍ଲୀ. ବି. (ପ୍ର+ତର୍କ+ଅନ) ବିତର୍କ, ବାଦାନୁବାଦ ।
ପ୍ରତର୍କ୍ୟ—ବି. ବିଂ. (ପ୍ର+ତର୍କ+ଯ) ବିଚାର ବା ଅନୁମାନ ଦ୍ୱାରା ନିର୍ଣ୍ଣେୟ, ଅତର୍କଣୀୟ ।
ପ୍ରତର୍ଦ୍ଦନ—ବି.(ପ୍ର+ତୃଦ୍+ଅନ) ତାଡ଼ନ, ଦିବୋଦାସଙ୍କ ପୁତ୍ର,ବିଷ୍ଣୁ, ଋଷିଭେଦ, (ବିଂ) ତାଡ଼କ ।
ପ୍ରତଳ—ବି.ପାତାଳଭେଦ, ବିସ୍ତୃତାଙ୍ଗୁଳି ପାଣି, ଚପେଟ, ଚାପୁଡ଼ା ।
ପ୍ରତାନ—ପୁଂ. ବି. (ପ୍ର+ତନ୍+ଅ) ବିସ୍ତାର, ତନ୍ତୁ, ବାୟୁରୋଗ ବିଶେଷ, ବାତରୋଗ,ଋଷିଭେଦ,(ବିଂ)ତନ୍ତୁମୟ, ବିସ୍ତୃତ ।
ପ୍ରତାନନୀ—ସ୍ତ୍ରୀ. ବି. (ପ୍ର+ତନ୍+ଇନ୍+ଈ) ପ୍ରତାନବତୀ, ବିସ୍ତୃତ ଲତାଦି,ଲତା
ପ୍ରତାନୀ—ବି. ବିଂ. (ପ୍ର+ତନ୍+ଇନ୍) ବିସ୍ତୀର୍ଣ୍ଣ ।
ପ୍ରତାପ—ବି.(ପ୍ର+ତପ+ଭା.ଅ) ମହତ୍ତ୍ୱ, ପ୍ରଭାବ, ଐଶ୍ୱର୍ଯ୍ୟ, ପୌରୁଷ, ପ୍ରଭୁତ୍ୱ, ତାପ, ବଳ, ତେଜଃ, ଅର୍କବୃକ୍ଷ, ଯୁବରାଜଙ୍କ ଛନ୍ଦ, ରାଜାଙ୍କର ଧନ, ଦଣ୍ଡ ଓ ସୈନ୍ୟାଦି ଜନିତ ଶକ୍ତି,ସାହସ, ଔଜ୍ଜ୍ୱଲ୍ୟ, ଦୀପ୍ତି, ବୀର୍ଯ୍ୟ, ଆତପ,ଖରା, ସନ୍ତାପ, ମନସ୍ତାପ, (କ.ଅ) ରାମଚନ୍ଦ୍ରଙ୍କର ଜଣେ ସଖା, ମିବାର ରାଜ୍ୟରେ ରାଜତ୍ୱ କରୁଥିବା ଜନୈକ ପ୍ରସିଦ୍ଧ ରାଣା ।
ପ୍ରତାପନ—ବି. (ପ୍ର+ତାପି+ଭା.ଅନ) ପୀଡ଼ନ, (ଅଧି.ଅନ) ନରକବିଶେଷ, (କ.ଅନ) ବିଷ୍ଣୁ, (ବିଂ) କ୍ଲେଶଦାୟକ, ସନ୍ତାପଜନକ ।
ପ୍ରତାପପୁରୁଷୋତ୍ତମଦେବ--ଗ୍ରା.ବି.ସ୍ୱାଧୀନ ଉତ୍କଳର ଜନୈକ ରାଜା ।
ପ୍ରତାପରାମଚନ୍ଦ୍ରଦେବ—ଗ୍ରା. ବି. ସ୍ୱାଧୀନ ଉତ୍କଳର ଜଣେ ରାଜା ।
ପ୍ରତାପରୁଦ୍ରଦେବ—ଗ୍ରା. ବି. ପ୍ରାଚୀନ ଉତ୍କଳର ଜଣେ ପ୍ରସିଦ୍ଧ ରାଜା ।
ପ୍ରତାପବାନ୍—ପୁଂ.ବିଂ.(ପ୍ରତାପ+ବତ୍) ପ୍ରତାପବିଶିଷ୍ଟ, ପରାକ୍ରମଶାଳୀ, ପ୍ରଭାବଶାଳୀ, ଉତ୍ପୀଡ଼କ,ତେଜୋମୟ,ଉଜ୍ଜ୍ୱଳ
ପ୍ରତାପସିଂହ—ଗ୍ରା.ବି. ରାଜସ୍ଥାନର ଅନ୍ତର୍ଗତ ସୁବିଖ୍ୟାତ ରାଜ୍ୟ ମିବାରର ଖ୍ୟାତନାମା ମହାରାଣା ।
ପ୍ରତାପାଦିତ୍ୟ—ପୁଂ. ବି. (୭ତତ୍)ସୂର୍ଯ୍ୟସମ ପରାକ୍ରାନ୍ତ ପୁରୁଷ, (ଗ୍ରା.ବି) ବଙ୍ଗଦେଶର ଜଣେ ସ୍ୱାଧୀନ ରାଜା ।
ପ୍ରତାପାନ୍ୱିତ—ପୁଂ.ବିଂ.(୩ତତ୍) ପ୍ରତାପବାନ୍ ଦେଖ ।
ପ୍ରତାପୀ—ପୁଂ. ବିଂ. (ପ୍ରତାପ+ଇନ୍) ପ୍ରତାପବାନ୍ ଦେଖ, (ସ୍ତ୍ରୀ) ପ୍ରତାପିନୀ, (ବି) ରାମଚନ୍ଦ୍ରଙ୍କର ଏକ ସଖା ।
ପ୍ରତାରକ—ବି. ବିଂ.(ପ୍ର+ତୃ+କ.ଅକ) ବଞ୍ଚକ, ଧୂର୍ତ୍ତ, ଶଠ, (ସ୍ତ୍ରୀ) ପ୍ରତାରିକା ।
ପ୍ରତାରଣ—କ୍ଲୀ. ବି. (ପ୍ର+ତୃ+ଅନ+ଅ) ବଞ୍ଚକ, ବଞ୍ଚନା, ଠକାମି, ଧୂର୍ତ୍ତତା, ଶଠତା ।
ପ୍ରତାରଣଶୀଳ—ବିଂ. (ବ.ବ୍ରୀ)ବଞ୍ଚନଶୀଳ, ସ୍ୱଭାବତଃ ବଞ୍ଚକ ।
ପ୍ରତାରଣା—ସ୍ତ୍ରୀ. ବି. (ପ୍ର+ତୃ+ଅନ+ଆ) ବଞ୍ଚନା,ଠକାଇବା, ପ୍ରତାରଣ, ଠକାମି, ଧୂର୍ତ୍ତତା, ଶଠତା ।
ପ୍ରତାରଣୀୟ—ବିଂ.(ପ୍ର+ତୃ+ଣିଚ୍+ଅନୀୟ) ପ୍ରତାରଣଯୋଗ୍ୟ ।
ପ୍ରତାରିତ—ବି. ବିଂ. (ପ୍ର+ତୃ+ଣିଚ୍

+ତ) ବଞ୍ଚିତ, ଯେ ଅନ୍ୟଦ୍ୱାରା ଠକା ଯାଇଥାଏ ।
ପ୍ରତାଳ—ଗ୍ରା. ବି. ତନଖିବା, ଚେକ୍ କରିବା, ପୁନର୍ବାର ମପିବା ।
ପ୍ରତି—ଅବ୍ୟ. (ପ୍ରଥ + ଭା.ଅତି)ପ୍ରତିନିଧି, ବିପରୀତ, ପ୍ରତିକୂଳତା, ପରିବର୍ତ୍ତି, ପ୍ରତ୍ୟେକ,ପ୍ରତିଦାନ, ପୁନର୍ବାର, ଲକ୍ଷ, ଉପରି, ଲକ୍ଷଣ, ଆଭିମୁଖ୍ୟ, ବୀପ୍ସା, ବ୍ୟାବୃତ୍ତି, ପ୍ରଶସ୍ତି,ବିରୋଧ, ଇତ୍ଥମ୍ଭୂତ କଥନ, ଅଳ୍ପମାନ, ଅଂଶ,ଭାଗ, ମାନ, ପ୍ରତିବଦନ, ସାଦୃଶ୍ୟ, ନିଶ୍ଚୟ, ନିନ୍ଦା, ସ୍ୱଭାବ, ବ୍ୟାପ୍ତି, ସମାଧି, ଦୁଇଥର, ବଦଳ, ଦିଗକୁ, ଆଡ଼କୁ, ପରସ୍ପର, ସମୀପ, ସମ୍ବନ୍ଧ, ସମତା, ଅଗ୍ରଭାଗ, ଅନୁସାରେ, କ୍ଷୁଦ୍ର, ନକଲ, ଉଦ୍ଦେଶ୍ୟ, ଉପଯୋଗୀ,ସଙ୍ଗ,ବିରୋଧ,ମନ୍ଦ,ପଶ୍ଚାତ୍, ଶରୀର, ପ୍ରଥମ, ସର୍ବଦା, (ଗ୍ରା.ବି)ପ୍ରସ୍ଥ, ଓସାର,ଚଉଡ଼ା,(ଗ୍ରା.ଅ)ଠାରୁ,ଅପେକ୍ଷା
ପ୍ରତିକ—ବିଂ.(କାର୍ଷାପଣ+ଇକ)କାହାଣେ ବା ଷୋଳପଣ କଉଡ଼ି ଦ୍ୱାରା କ୍ରୀତ ।
ପ୍ରତିକଞ୍ଚୁକ—ବି. ଶତ୍ରୁ, ବିପକ୍ଷ ।
ପ୍ରତିକଣ୍ଠ—ଅବ୍ୟ. କଣ୍ଠେ କଣ୍ଠେ, କଣ୍ଠ ସାମୀପ୍ୟ, କଣ୍ଠ ନିକଟରେ ।
ପ୍ରତିକର—ପୁଂ. ବି. (ପ୍ରତି + କୃ + ଅ) ବିସ୍ତୀର୍ଣ୍ଣତା, ବିକ୍ଷେପ ।
ପ୍ରତିକରଣୀୟ—ବି. (ପ୍ରତି+କରଣୀୟ) ପ୍ରତିକାର୍ଯ୍ୟ ଦେଖ ।
ପ୍ରତିକର୍ତ୍ତା—ପୁଂ. ବିଂ. (ପ୍ରତି + କୃ + ତୃ) ପ୍ରତିକାର କର୍ତ୍ତା, ପ୍ରତିଫଳଦାତା, ବୈର ନିର୍ଯ୍ୟାତକ, (ସ୍ତ୍ରୀ) କର୍ତ୍ତ୍ରୀ ।
ପ୍ରତିକର୍ତ୍ତବ୍ୟ—ତ୍ରି. ବିଂ. ପ୍ରତିକରଣୀୟ, ପ୍ରତିକାର୍ଯ୍ୟ ।
ପ୍ରତିକର୍ମ—କ୍ଲୀ.ବି.(ପ୍ରତି+କର୍ମନ୍)ପ୍ରସାଧନ,ବେଶ, ପ୍ରତୀକାର, ଅଙ୍ଗସଂସ୍କାର, ବିଦ୍ୟମାନ, ଗୁଣାନ୍ତରାଧାନ ।
ପ୍ରତିକର୍ଷ—ପୁଂ. ବି. (ପ୍ରତି+କର୍ଷ+ଭା. ଅ) ସମାକର୍ଷଣ ।
ପ୍ରତିକଳ୍ପ୍ୟ—ତ୍ରି. ବିଂ. ପ୍ରତି କଳ୍ପନୀୟ, ସଜ୍ଜା ହୋଇ ରଖାଯାଇଥିବା ।
ପ୍ରତିକଶ—ତ୍ରି. ବିଂ.(ପ୍ରତି+କଶ୍+ଅ) ସହାୟ, ପୁରୋଗ, ବାର୍ତ୍ତାହର, (ବି) କଶାଘାତ ପ୍ରାପ୍ତ ଅଶ୍ୱ । [ ତଦ୍ଭବ ।
ପ୍ରତିକଷ୍ଟ—କ୍ଲୀ. ବି. କର୍ମାନୁରୂପ କଷ୍ଟ,
ପ୍ରତିକାଙ୍କ୍ଷିନ୍—ପୁଂ.ବିଂ.ଆକାଂକ୍ଷା ଯୁକ୍ତ ।
ପ୍ରତିକାମ—ଅବ୍ୟ. ପ୍ରତ୍ୟେକ କାମ ।
ପ୍ରତିକାୟ—ପୁଂ.ବି. ଶରବ୍ୟ, ପ୍ରତିରୂପକ, ଅରି, ଶତ୍ରୁ, ପ୍ରତିପକ୍ଷ, ପ୍ରତିମୂର୍ତ୍ତି ।
ପ୍ରତି(ତୀ)କାର—ପୁଂ. ବି. ( ପ୍ରତି+କୃ +ଅ) ପ୍ରତୀକାର, ବୈରନିର୍ଯ୍ୟାତନ, ପ୍ରତିବିଧାନ, ପ୍ରତିଫଳ, ରୋଗାଦିର ଚିକିତ୍ସା ।
ପ୍ରତି(ତୀ)କାରୀ—ପୁଂ. ବିଂ. (ପ୍ରତି + କୃ +ଇନ୍) ପ୍ରତିକାରକ ଦେଖ ।
ପ୍ରତି(ତୀ)କାର୍ଯ୍ୟ—ବିଂ.(ପ୍ରତି + କୃ + ଯ) ପ୍ରତୀକାର ଯୋଗ୍ୟ, (ଅବ୍ୟ)ପ୍ରତ୍ୟେକ କାର୍ଯ୍ୟ ।
ପ୍ରତି(ତୀ)କାଶ(ସ)—ତ୍ରି. ବିଂ. (ପ୍ରତି+କଶ୍+ଅ) ପ୍ରତୀକାଶ,ସାଦୃଶ୍ୟ,ତୁଲ୍ୟ ।
ପ୍ରତି(ତୀ)କିତବ—ପୁଂ.ବିଂ.ଦ୍ୟୂତକାରର ପ୍ରତିକୂଳ ଦ୍ୟୂତକାର ।
ପ୍ରତିକୁଞ୍ଚିତ—ତ୍ରି. ବିଂ. (ପ୍ରତି + କୁଞ୍ଚ+ତ) ବକ୍ର, ବକ୍ରୀକୃତ, ଯାହାକୁ ବଙ୍କା କରାଯାଇଅଛି ।
ପ୍ରତିକୂପ—ପୁଂ. ବି. ( ପ୍ରତି+କୂପ ) ପରିଖା, ଗଡ଼ଖାଇ ।
ପ୍ରତିକୂଳ—ତ୍ରି. ବିଂ. ( ପ୍ରତି+କୂଳ ) ଅନନୁକୂଳ,ବିପକ୍ଷ, ଅପ୍ରସନ୍ନ,ବିରୋଧୀ, (ବି) ବିପରୀତାଚରଣ ।
ପ୍ରତିକୂଳକାରୀ—ପୁଂ. ବିଂ. (ପ୍ରତିକୂଳ+ କୃ + ଇନ୍) ପ୍ରତିକୂଳ ଆଚରଣକାରୀ ।
ପ୍ରତିକୂଳକୃତ୍—ତ୍ରି. ବିଂ. (ପ୍ରତିକୂଳ+ କୃ + କ୍ୱିପ୍ ) ବିରୁଦ୍ଧାଚାରୀ, ପ୍ରତିକୂଳ ଆଚରଣକାରୀ ।
ପ୍ରତିକୂଳତା—ସ୍ତ୍ରୀ. ବି.(ପ୍ରତିକୂଳ+ତା) ବିରୁଦ୍ଧାଚରଣ, ବିପକ୍ଷତା, ପ୍ରତିକୂଳତ୍ୱ ।
ପ୍ରତିକୂଳବଚନ—କ୍ଲୀ. ବି. ପ୍ରତିକୂଳ ବାକ୍ୟ, ବିରୁଦ୍ଧ ବାକ୍ୟ ।
ପ୍ରତିକୂଳବାଦୀ—ପୁଂ. ବିଂ. (ପ୍ରତିକୂଳ + ବଦ୍ + ଇନ୍) ଯେ ବିପକ୍ଷରେ କହନ୍ତି ।
ପ୍ରତିକୃତ—ବିଂ. (ପ୍ରତି+କୃ+ର୍ମ.ତ) କୃତପ୍ରତିବିଧାନ, ପ୍ରତିବର୍ଦ୍ଧିତ, ପରି, ଶୋଧିତ, ପ୍ରତିଦତ୍ତ (ସ୍ତ୍ରୀ)ପ୍ରତିକୃତା ।
ପ୍ରତିକୃତି—ସ୍ତ୍ରୀ. ବି. (ପ୍ରତି+କୃ+ତି) ପ୍ରତିମା, ପ୍ରତିନିଧି,ସାଦୃଶ୍ୟ,ଚେହେରା, ପ୍ରତୀକାର, ପ୍ରତିବିମ୍ବ, ପୂଜନ ।
ପ୍ରତିକୃତ୍ୟ—ତ୍ରି.ବିଂ.ପ୍ରତିକାରଯୋଗ୍ୟ, ପ୍ରତିକାରାର୍ହ ।
ପ୍ରତିକୃଷ୍ଟ—ତ୍ରି. ବିଂ. (ପ୍ରତି+କୃଷ୍+ତ) ଗର୍ହ୍ୟ, ନିନ୍ଦିତ, ନିକୃଷ୍ଟ,ଦୁଇବାର କର୍ଷିତ କ୍ଷେତ୍ରାଦି ।
ପ୍ରତିକ୍ରମ—ପୁଂ. ବି. ପ୍ରତ୍ୟାବର୍ତ୍ତନ, ଫେରିଆସିବା, ବିପରୀତଭାବ,ପ୍ରତିକୂଳ ଆଚାର ।
ପ୍ରତିକ୍ରିୟା—ସ୍ତ୍ରୀ. ବି. (ପ୍ରତି + କୃ + ଯ) ପ୍ରତୀକାର, ପ୍ରତିବିଧାନ, ପ୍ରସାଧନ, ଶୋଭା, ବିପରୀତ କ୍ରିୟା ।
ପ୍ରତିକ୍ରୁଷ୍ଟ—ତ୍ରି.ବିଂ.ଦରିଦ୍ର,ନୀରସ (ଭୂମି) ।
ପ୍ରତିକ୍ରୋଧ—ପୁଂ.ବି. କ୍ରୁଦ୍ଧ ବ୍ୟକ୍ତିର ପ୍ରତି ପ୍ରତିରୂପ କ୍ରୋଧ ।
ପ୍ରତିକ୍ଷଣ—ତ୍ରି. ବିଂ. କ୍ଷଣେ କ୍ଷଣେ, ପ୍ରତି ମୁହୂର୍ତ୍ତରେ, ସର୍ବଦା, ପୁନଃ ପୁନଃ ।
ପ୍ରତିକ୍ଷୟ—ପୁଂ. ବିଂ. (ପ୍ରତି + କ୍ଷି+ ଅ) ରକ୍ଷକ ।
ପ୍ରତିକ୍ଷିପ୍ତ—ତ୍ରି. ବିଂ. (ପ୍ରତି+କ୍ଷିପ୍ + ତ) ପ୍ରେରିତ, ଅସ୍ୱୀକୃତ,ପଦଚ୍ୟୁତ,ବାଧିତ, ନିବାରିତ, ପ୍ରେଷିତ, ନିନ୍ଦିତ ।
ପ୍ରତିକ୍ଷେପ--ପୁଂ.ବି.(ପ୍ରତି+କ୍ଷିପ୍+ଭା.ଅ) ନିର୍ବଂଶ,ଭର୍ତ୍ସନା,ତିରସ୍କାର,ନିରାଶା ।
ପ୍ରତିକ୍ଷେପଣ—କ୍ଲୀ. ବି. (ପ୍ରତି+କ୍ଷିପ୍+ ଣିଚ୍ + ଅନ) ନିରାକରଣ,ପ୍ରକ୍ଷେପଣ ।
ତିଖୁର—ପୁଂ. ବି. ମୂଢ଼ଗର୍ଭ ବିଶେଷ ।
ପ୍ରତିଖ୍ୟାତି—ସ୍ତ୍ରୀ. ବି. (ପ୍ରତି + ଖ୍ୟା + ଭା.ତି) ବିଖ୍ୟାତି, ଅତିଖ୍ୟାତି, ପ୍ରସିଦ୍ଧି ।
ପ୍ରତିଗଜ—ପୁଂ.ବି. ପ୍ରତିପକ୍ଷୀୟ ହସ୍ତୀ ।
ପ୍ରତିଗତ—କ୍ଲୀ.ବି. (ପ୍ରତି+ଗମ୍+ତ) ପକ୍ଷିମାନଙ୍କର ଗତି ବିଶେଷ, ( ବିଂ ) ଫେରି ଯାଇଥିବା, ପରାବୃତ୍ତ ।

ପ୍ରତିଗମନ—କ୍ଲୀ. ବ. ( ପ୍ରତି+ଗମ୍+ଣି.ଅନ) ପରାବୃତ୍ତି, ଫେରିଯିବା ।
ପ୍ରତିଗର୍ଜ୍ଜନ—କ୍ଲୀ. ବ. ଏକ ଗର୍ଜନର ପ୍ରତ୍ୟୁତ୍ତରରେ କରାଯିବା ଗର୍ଜନ,ଗର୍ଜ୍ଜନର ପ୍ରତିଧ୍ୱନି ।
ପ୍ରତିଗିରି—ପୁଂ.ବ. କ୍ଷୁଦ୍ର ପର୍ବତ,ପାହାଡ଼, ପର୍ବତ ପର ଦେଖାଯାଉଥିବା ସ୍ଥାନ ବା ବସ୍ତୁ, ଏକପର୍ବତର ବିପରୀତ ଦିଗରେ ଥିବା ପର୍ବତ ।
ପ୍ରତିଗୃହ—ଅବ୍ୟ. ପ୍ରତ୍ୟେକ ଗୃହରେ, ଗୃହେ ଗୃହେ ।
ପ୍ରତିଗୃହୀତ—ବି. ବିଂ.(ପ୍ରତି+ଗ୍ରହ୍+ତ) ଗୃହୀତ ସ୍ୱୀକୃତ ।
ପ୍ରତିଗୃହୀତା—ପୁଂ. ବିଂ. (ପ୍ରତି+ଗ୍ରହ୍+ତୃ) ପ୍ରତିଗ୍ରହକାରକ, ଯେ ପ୍ରତିଗ୍ରହ କରେ ।
ପ୍ରତିଗୃହୀତବ୍ୟ—ବି. ବିଂ. (ପ୍ରତି+ଗ୍ରହ୍+ତବ୍ୟ) ପ୍ରତି ଗ୍ରହର ଯୋଗ୍ୟ ।
ପ୍ରତିଗୃହ୍ୟ—ବି. ବିଂ. (ପ୍ରତି+ଗ୍ରହ୍+ଯ)ପ୍ରତିଗ୍ରହଣୀୟ,ପ୍ରତିଗ୍ରହର ଯୋଗ୍ୟ ।
ପ୍ରତିଗେହ—ଅବ୍ୟ. ଗୃହେ ଗୃହେ, ପ୍ରତ୍ୟେକ ଗୃହରେ ।
ପ୍ରତିଗ୍ରହ—ପୁଂ.ବ.(ପ୍ରତି+ଗ୍ରହ୍+ଅ) ଦାନଗ୍ରହଣ, ଅନୁଗ୍ରହ,ପ୍ରତ୍ୟଭିଯୋଗ, ଅପିଲ, ସ୍ୱୀକରଣ, ସୈନ୍ୟପୃଷ୍ଠ, ପିକଦାନୀ, ବ୍ରାହ୍ମଣଙ୍କୁ ବିଧିପୂର୍ବକ ଯାହା ଦିଆଯାଏ, ପ୍ରତିକୂଳଗ୍ରହ, ବନ୍ଧୁଚର୍ଯ୍ୟା, ସୈନ୍ୟରକ୍ଷା ।
ପ୍ରତିଗ୍ରହଣ—ବ. (ପ୍ରତି+ଗ୍ରହ୍+ଅନ) ସ୍ୱୀକାର, ଦାନନେବା, ପୁନର୍ଗ୍ରହଣ, ଫେରାଇନେବା ।
ପ୍ରତିଗ୍ରହୀ—ପୁଂ. ବିଂ. (ପ୍ରତି+ଗ୍ରହ୍+ଇନ୍) ପ୍ରତିଗ୍ରହକାରକ, ଯେ ପ୍ରତିଗ୍ରହ କରେ ।
ପ୍ରତିଗ୍ରହୀତା—ପୁଂ. ବିଂ. (ପ୍ରତି+ଗ୍ରହ୍+ତୃ) ପ୍ରତିଗ୍ରହକର୍ତ୍ତା, ଯେ ପ୍ରତିଗ୍ରହ କରେ । [ ଗ୍ରାମରେ ।
ପ୍ରତିଗ୍ରାମ—ଅବ୍ୟ.ଗ୍ରାମେଗ୍ରାମେ, ପ୍ରତ୍ୟେକ
ପ୍ରତିଗ୍ରାହ—ବ. ( ପ୍ରତି+ଗ୍ରହ୍+ଅ ) ପିକଦାନୀ, ପ୍ରତିଗ୍ରହଣ,ସ୍ୱୀକାର,ଦାନଗ୍ରହଣ, ଶ୍ରାଦ୍ଧ ତର୍ପଣାଦି ।
ପ୍ରତିଗ୍ରାହକ—ପୁଂ.ବିଂ. ପ୍ରତିଗ୍ରହକାରକ ।
ପ୍ରତିଗ୍ରାହିତ—ବିଂ.(ପ୍ରତି+ଗ୍ରହ୍+ଣି.ତ) ସ୍ୱୀକାରିତ, ଯାହାଙ୍କୁ ଗ୍ରହଣ କରିବାକୁ ବାଧ୍ୟ କରାଯାଇଅଛି ।
ପ୍ରତିଗ୍ରାହୀ—ପୁଂ. ବିଂ. (ପ୍ରତି+ଗ୍ରହ୍+ଇନ୍) ଦାନଗ୍ରହୀତା, ପ୍ରତିଗ୍ରହକାରକ ।
ପ୍ରତିଗ୍ରାହ୍ୟ—ବି.ବିଂ.ପ୍ରତିଗ୍ରହର ଯୋଗ୍ୟ, ଯାହା ପ୍ରତିଗ୍ରହ କରାଯାଇପାରେ ।
ପ୍ରତିଘ—ପୁଂ. ବ. (ପ୍ରତି+ହନ୍+ଅ) କ୍ରୋଧ, ପ୍ରତିବନ୍ଧ, ପ୍ରତିଘାତ, ମୂର୍ଚ୍ଛା, (ବିଂ) ବିରୁଦ୍ଧ, ପ୍ରତିବନ୍ଧକ,ପ୍ରତିକୂଳ ।
ପ୍ରତି(ତୀ)ଘାତ—ପୁଂ. ବ. (ପ୍ରତି+ହନ୍+ଅ) ମାରଣ, ଆଘାତ, ପ୍ରତିବନ୍ଧ, ଠୋକର, ବିରୋଧ, ଶତ୍ରୁତା, ନିବାରଣ, ଆହତ ବସ୍ତୁ ଆଘାତ କରିବା ପଦାର୍ଥକୁ ଯେଉଁ ଲେଉଟି ଆଘାତ କରେ ।
ପ୍ରତିଘାତକ—ପୁଂ.ବିଂ.ପ୍ରତିଘାତକାରୀ ।
ପ୍ରତିଘାତନ—କ୍ଲୀ. ବ. (ପ୍ରତି+ହନ୍+ଣିଚ୍+ଅନ) ମାରଣ, ହତ୍ୟା,ବଧ, ବାଧା, ବିଘ୍ନ ।
ପ୍ରତିଘାତକା—ସ୍ତ୍ରୀ. ବିଂ. ବିଘ୍ନକାରିଣୀ ।
ପ୍ରତିଘାତୀ—ପୁଂ. ବିଂ. (ପ୍ରତି+ହନ୍+ଇନ୍) ହନ୍ତା, ବଧକର୍ତ୍ତା, ବିଘ୍ନକାରକ, ପ୍ରତିଘାତକାରୀ, ଦୂରକାରୀ ।
ପ୍ରତିଘ୍ନ—କ୍ଲୀ. ବ. ଅଙ୍ଗ, ଶରୀର ।
ପ୍ରତିଚକ୍ର—କ୍ଲୀ.ବ. ପ୍ରତିରୂପ ରାଜମଣ୍ଡଳ, ପ୍ରତିରୂପ ଚକ୍ର ।
ପ୍ରତିଚକ୍ଷଣ—କ୍ଲୀ. ବ. (ପ୍ରତି+ଚକ୍ଷ୍+ଅନ)ପ୍ରତ୍ୟକ୍ଷ ଦର୍ଶନ,ନୟନ ଦର୍ଶନ ।
ପ୍ରତିଚକ୍ଷୁ—ବ. (ପ୍ରତି+ଚକ୍ଷୁସ୍) ଚଷମା, ପ୍ରଚକ୍ଷୁ । [ ପ୍ରତିକୃତି ।
ପ୍ରତିଚନ୍ଦ୍ର—ପୁଂ.ବ. ପ୍ରତିରୂପଚନ୍ଦ୍ର,ଚନ୍ଦ୍ରର
ପ୍ରତିଚିକୀର୍ଷା—ସ୍ତ୍ରୀ. ବ. ପ୍ରତିକାର କରିବାରେ ଇଚ୍ଛା, ଅଭିଲାଷ ।
ପ୍ରତିଛନ୍ଦ—ବିଂ.ଅଭିପ୍ରାୟାନୁଯାୟୀ,ପ୍ରତିରୂପ, (ବ) ପ୍ରତିକୃତି, ପ୍ରତିମୂର୍ତ୍ତି ।
ପ୍ରତିଛନ୍ଦକ—ବ. ( ପ୍ରତି+ଛନ୍ଦ+ଅକ ) ପ୍ରତିବିମ୍ବ ।
ପ୍ରତିଛନ୍ନ—ବିଂ. (ପ୍ରତି+ଛଦ୍+ଣି.ତ) ଆଚ୍ଛନ୍ନ, ପ୍ରତିବିମ୍ବ ସ୍ୱରୂପ ।
ପ୍ରତିଛାୟା—ସ୍ତ୍ରୀ. ବ. ପ୍ରତିକୃତି, ମୂର୍ତ୍ତି, ଫଟୋ, ସାଦୃଶ୍ୟ ।
ପ୍ରତିଚ୍ଛେଦ—ପୁଂ. ବ. (ପ୍ରତି+ଛିଦ୍+ଅ) ବାଧା, ପ୍ରତିବନ୍ଧ । [ ଅଗ୍ରଭାଗ ।
ପ୍ରତିଜଙ୍ଘା—ସ୍ତ୍ରୀ. ବ. ଅଗ୍ରଜଙ୍ଘା, ଜଙ୍ଘର
ପ୍ରତିଜନ୍ୟ—କ୍ଲୀ. ବ. (ବ.ଗ୍ରା) ପ୍ରତିବଳ, ପ୍ରତିପକ୍ଷ, ବିପକ୍ଷ ଦଳ ।
ପ୍ରତିଜଳ୍ପ—ପୁଂ. ବ. ବାକ୍ୟବିଶେଷ, ସମ୍ମତ ପ୍ରଦାନ ।
ପ୍ରତିଜାଗର—ପୁଂ. ବ. (ପ୍ରତି+ଜାଗୃ+ଅ) ପ୍ରତ୍ୟବେକ୍ଷଣ,ମନଯୋଗ,ସତର୍କତା, ତତ୍ତ୍ୱାବଧାନ,ରକ୍ଷାର୍ଥ ନିୟୋଗ, ରକ୍ଷା ।
ପ୍ରତିଜିହ୍ୱା—ସ୍ତ୍ରୀ.ବ. (ପ୍ରତି+ଜିହ୍ୱା)ତାଳୁମୂଳସ୍ଥ କ୍ଷୁଦ୍ର ଜିହ୍ୱିକା, ଘଣ୍ଟିକା ।
ପ୍ରତିଜିହ୍ୱିକା—ସ୍ତ୍ରୀ.ବ. ପ୍ରତିଜିହ୍ୱା,ଘଣ୍ଟିକା ।
ପ୍ରତିଜୀବନ—କ୍ଲୀ. ବ. ପୁନର୍ଜୀବନପ୍ରାପ୍ତି ।
ପ୍ରତିଜ୍ଞା—ସ୍ତ୍ରୀ. ବ. (ପ୍ରତି+ଜ୍ଞା+ଅ+ଆ) ଶପଥ, ପଣ, ଘୋଷଣା,ପ୍ରସ୍ତାବ,ଅଙ୍ଗୀକାର, (ନ୍ୟାୟ) ନ୍ୟାୟର ପ୍ରତିପାଦ୍ୟନିର୍ଦ୍ଦେଶକ ବାକ୍ୟ, (ଗଣିତ) ଅଙ୍କଶାସ୍ତ୍ରର ସମ୍ପାଦ୍ୟ ବିଷୟ, ( ଜ୍ୟାମିତି ) ପ୍ରସ୍ତାବ,ଜ୍ୟାମିତିର ଉପପାଦ୍ୟ ବିଷୟ ଅର୍ଥାତ୍ ଯେଉଁ ପ୍ରସ୍ତାବକୁ ପ୍ରମାଣ କରାଯାଏ, ଅଭିଯୋଗ, ଇସୁ ମକଦ୍ଦମାରେ ପ୍ରମାଣିତ ହେବା ବିଷୟ,(ଗ୍ରା.ବ)ପରାକ୍ରମ, କର୍ମମତ, ଆତ୍ମପ୍ରଶଂସା ।
ପ୍ରତିଜ୍ଞାତ—ବି. ବିଂ. (ପ୍ରତି+ଜ୍ଞା+ତ) ଅଙ୍ଗୀକୃତ, ପ୍ରତିଶ୍ରୁତ, ବ୍ୟକ୍ତ,ଘୋଷିତ, ପ୍ରତିଜ୍ଞା କରାଯାଇଥିବା, ସ୍ୱୀକୃତ ।
ପ୍ରତିଜ୍ଞାନ—କ୍ଲୀ. ବ. (ପ୍ରତି+ଜ୍ଞା+ଅନ) ପ୍ରତିଜ୍ଞା ।
ପ୍ରତିଜ୍ଞାପତ୍ର—କ୍ଲୀ.ବ. (ଇଂରା) ଘୋଷଣାପତ୍ର, ପ୍ରତିଶ୍ରୁତ ଲେଖ୍ୟ, ଚୁକ୍ତିନାମା ।
ପ୍ରତିଜ୍ଞାବଦ୍ଧ—ବିଂ.(ଅଭିନ୍ନ)ଅଙ୍ଗୀକାରରେ

ଆବଦ୍ଧ, କୃତପ୍ରତିଜ୍ଞ ।

ପ୍ରତିଜ୍ଞାଭଙ୍ଗ—ବି. (୬ତତ୍) ଆପେ କରିଥିବା ସତ୍ୟକୁ ଲଙ୍ଘନ କରିବା ।

ପ୍ରତିଜ୍ଞେୟ—ବିଂ. ( ପ୍ରତି + ଜ୍ଞା + ଯ ) ପ୍ରତିଜ୍ଞାର ଯୋଗ୍ୟ, ପ୍ରତିଜ୍ଞା ବିଷୟ, ପ୍ରତିଜ୍ଞାତବ୍ୟ,ପ୍ରତିଜ୍ଞା କରିବାରେ ସମର୍ଥ, (ବି) ସ୍ତୁତିପାଠକ, ଭାଟ, ବନ୍ଦୀ ।

ପ୍ରତିଜ୍ୟୋତିଃ—ବି. ପ୍ରତିଫଳିତ ଦୀପ୍ତି ।

ପ୍ରତିତନ୍ତ୍ର—କ୍ଲୀ. ବି. ଆପଣାର ଶାସ୍ତ୍ରମତର ବିରୁଦ୍ଧ ମତର ପ୍ରତିପାଦକ ଶାସ୍ତ୍ର, ସ୍ୱମତବିରୁଦ୍ଧ ଶାସ୍ତ୍ର ।

ପ୍ରତିତର—ପୁଂ. ବି. (ପ୍ରତି+ତୃ+ଣ.ଅ) ତରଣସାଧନ,ନୌକାଚାଳନ ଦଣ୍ଡାଦି, କାତ, କେନ୍ଦୁଆର ।

ପ୍ରତିତାଳୀ—ସ୍ତ୍ରୀ. ବି. (ପ୍ରତି+ତାଳ+ଈ) ତାଳକୋଦ୍ଘାଟନ ଯନ୍ତ୍ର, ଚାବି,କୁଞ୍ଚିକାଠି ।

ପ୍ରତିତୁଲ —ଗ୍ରା, ବିଂ. ପର, ସଦୃଶ ।

ପ୍ରତିଦିଶ—ପୁଂ. ବି. ଦେବରଥ ନାମକ ଜଣେ ଧର୍ମପ୍ରବର୍ତ୍ତକ ।

ପ୍ରତିଦଣ୍ଡ—ପୁଂ. ବିଂ. ଅବାଧ, ଦୁର୍ଦ୍ଧର୍ଷ।

ପ୍ରତିଦତ୍ତ—ବିଂ. (ପ୍ରତି+ଦା+ର୍ମ.ତ) ପ୍ରତ୍ୟର୍ପିତ, ଫେରାଇ ଦେଇଥିବା,(ସ୍ତ୍ରୀ) ପ୍ରତିଦତ୍ତା ।

ପ୍ରତିଦର୍ଶନ—କ୍ଲୀ.ବି.ପରିଦର୍ଶନ, ଫେରିଆସି ଦେଖିବା ।

ପ୍ରତିଦାନ(କ)—କ୍ଲୀ.ବି. ବିନିମୟ, ପରିବର୍ତ୍ତ, ବଦଳ, ନ୍ୟସ୍ତାର୍ପଣ, ଗଚ୍ଛିତ ଦ୍ରବ୍ୟର ପ୍ରତ୍ୟର୍ପଣ ।

ପ୍ରତିଦାରଣ—କ୍ଲୀ. ବି. (ପ୍ରତି+ଦୃ+ଣି +ଅନ) ଯୁଦ୍ଧ, ଭେଦନ, ସଂଗ୍ରାମ ।

ପ୍ରତିଦିନ—ଅବ୍ୟ.(ପ୍ରତି+ଦିନ)ପ୍ରତ୍ୟହ, ପ୍ରତ୍ୟେକଦିନ, ଦିନକୁଦିନ, ନିତି ।

ପ୍ରତିଦିବାନ୍—ପୁଂ.ବି.(ପ୍ରତି+ଦିବ୍+ଅନ) ସୂର୍ଯ୍ୟ, ଦିବସ, (ଅବ୍ୟ) ପ୍ରତିଦିନ ।

ପ୍ରତିଦିବସ—ଅବ୍ୟ.ପ୍ରତ୍ୟେକ ଦିନ,ପ୍ରତ୍ୟହ, ରୋଜରୋଜ, ଦିନକୁଦିନ, ନିତି ।

ପ୍ରତିଦିଶ—ବି. (ପ୍ରତି+ଦିଶ୍) ପ୍ରତ୍ୟେକଦିକ୍, (ଅବ୍ୟ) ପ୍ରତି ଦିଗରେ ।

ପ୍ରତିଦିଶି—ଅବ୍ୟ. ପ୍ରତିଦିଶ,ପ୍ରତିଦିଗରେ, ଚାରିଆଡ଼ରେ, ପ୍ରତିଦିଗର ।

ପ୍ରତିଦୂତ—ପୁଂ.ବି.ପ୍ରତିପକ୍ଷଠାକୁ ପ୍ରେରିତ ଦୂତ ବା ରାଜକର୍ମଚାରୀ ।

ପ୍ରତିଦେୟ—ବିଂ.(ପ୍ରତି+ଦା+ଯ)ପ୍ରତିଦାନର ଉପଯୁକ୍ତ, ପ୍ରତ୍ୟର୍ପଣ କରିବାର ଯୋଗ୍ୟ, ଫେରାଇବାର ଉପଯୁକ୍ତ ।

ପ୍ରତିଦ୍ୱନ୍ଦ—କ୍ଲୀ. ବି. ତୁଲ୍ୟଯୁଦ୍ଧ, ପ୍ରତିପକ୍ଷତା, ପ୍ରତିଯୋଗିତା, କାହାରି ସଙ୍ଗେ ଯୁଦ୍ଧ ବା ଦ୍ୱନ୍ଦ ।

ପ୍ରତିଦ୍ୱନ୍ଦତା—ସ୍ତ୍ରୀ. ବି. ପ୍ରତିଯୋଗିତା, ସମକକ୍ଷତା, ପ୍ରତିପକ୍ଷତା ।

ପ୍ରତିଦ୍ୱନ୍ଦୀ—ପୁଂ. ବିଂ. ( ପ୍ରତି+ଦ୍ୱନ୍ଦ+ଇନ୍) ଶତ୍ରୁ, ପ୍ରତିପକ୍ଷ, ବିରୋଧୀ, ପ୍ରତିଯୋଗୀ, ସମକକ୍ଷ, (ସ୍ତ୍ରୀ) ପ୍ରତିଦ୍ୱନ୍ଦିନୀ ।

ପ୍ରତିଦ୍ୱିରଦ—ପୁଂ. ବି. ପ୍ରତିଦ୍ୱନ୍ଦୀ ହସ୍ତୀ, ପ୍ରତିଗଜ ।

ପ୍ରତିଧାନ—କ୍ଲୀ. ବି. ( ପ୍ରତି+ଧା+ଭା. ଅନ) ପ୍ରତିବିଧାନ, ନିବାରଣ ।

ପ୍ରତିଧାବନ—କ୍ଲୀ. ବି. (ପ୍ରତି+ଧାବ+ଅନ) ପ୍ରତି ମୁଖରେ ଗମନ ।

ପ୍ରତିଧ୍ୱନି—ପୁଂ.ବି.(ପ୍ରତି+ଧ୍ୱନି) ପ୍ରତିଶବ୍ଦ, କୌଣସି ଗୋଟିଏ ଶବ୍ଦ ଉଚ୍ଚାରିତ ହେଲେ ତାହାର ଅନୁରୂପ ଶୁଣାଯିବା ଲେଉଟ ଶବ୍ଦ ।

ପ୍ରତିଧ୍ୱନିତ—ବିଂ. (ପ୍ରତି+ଧ୍ୱନି+ତ) ପ୍ରତିଶବ୍ଦିତ, କୃତଶବ୍ଦର ଅନୁରୂପ ଉଚ୍ଚାରିତ, (କ୍ଲୀ.ବି) ପ୍ରତିଶବ୍ଦ ।

ପ୍ରତିଧ୍ୱାନ—କ୍ଲୀ. ବି. (ପ୍ରତି+ଧ୍ୱନ+ଅ) ପ୍ରତିଧ୍ୱନି, ପ୍ରତିଶବ୍ଦ ।

ପ୍ରତିନନ୍ଦନ—କ୍ଲୀ. ବି.(ପ୍ରତି+ନନ୍ଦ+ଭା. ଅନ) ନନ୍ଦନ, ପ୍ରଶଂସା, ଆଶୀର୍ବାଦ ପୂର୍ବକ ଅଭିନନ୍ଦନ ।

ପ୍ରତିନପ୍ତା—ପୁଂ.ବି(ପ୍ରତି+ନପ୍ତୃ)ପ୍ରପୌତ୍ର ଅଣନାତି ।

ପ୍ରତିନବ—ବିଂ.ନୂତନ, ଅଭିନବ,ନୂଆ ।

ପ୍ରତିନାଗ—ପୁଂ.ବି.ପ୍ରତିଗଜ, ପ୍ରତିଦ୍ୱନ୍ଦୀ ହସ୍ତୀ । [ନାଡ଼ୀ ।

ପ୍ରତିନାଡ଼ୀ—ସ୍ତ୍ରୀ.ବି.ଉପନାଡ଼ିକା, ଶାଖା-

ପ୍ରତିନାଦ—ପୁଂ.ବି.(ପ୍ରତି+ନଦ+ଅ) ପ୍ରତିଶବ୍ଦ, ପ୍ରତିଧ୍ୱନି । [ ସମ୍ବନ୍ଧୀୟ ।

ପ୍ରତିନାମନ୍—ବିଂ. ସମନାମଯୁକ୍ତ, ନାମ-

ପ୍ରତିନାୟକ—ପୁଂ.ବି. ପ୍ରତିକୂଳନାୟକ, କାବ୍ୟନାଟକାଦି ବର୍ଣ୍ଣିତ ନାୟକର ପ୍ରତିନାୟକ ।

ପ୍ରତିନିଧି—ପୁଂ.ବି.(ପ୍ରତି+ନି+ଧା+ଇ) ପ୍ରତିମା, ସଦୃଶ, ପ୍ରତିରୂପ, ବଦଳିଆ, ମୁଖ୍ୟ ସଦୃଶ, ତୁଲ୍ୟବସ୍ତୁ,କ୍ଷମତାପ୍ରାପ୍ତ ବସ୍ତୁ ବା ବ୍ୟକ୍ତି, ଜାମିନ୍‌ଦାର ।

ପ୍ରତିନିନଦ—ବି.(ପ୍ରତି + ନିନାଦ)ପ୍ରତିଧ୍ୱନି, ପ୍ରତିଶବ୍ଦ ।

ପ୍ରତିନିୟତ—ଗ୍ରା.କ୍ରି.ବିଂ.ପ୍ରତିକ୍ଷଣ, ପ୍ରତିମୁହୂର୍ତ୍ତରେ, ସର୍ବଦା ।

ପ୍ରତିନିୟମ—ପୁଂ.ବି. ବ୍ୟବସ୍ଥା, ପ୍ରତ୍ୟେକର ପ୍ରତି ଏକ ନିୟମ ।

ପ୍ରତିନିର୍ଜ୍ଜିତ—ବିଂ. ପରାଜିତ, ବିତାଡ଼ିତ, କର୍ତ୍ତୃତ୍ୱସ୍ଥାପନ ।

ପ୍ରତିନିର୍ଦ୍ଦେଶ—ପୁଂ. ବି. ପୂର୍ବ ନିର୍ଦ୍ଦେଶ, ଆଗରୁ ଯାହା ଉଲ୍ଲିଖିତ ହୋଇଅଛି ।

ପ୍ରତିନିର୍ଦ୍ଦେଶକ—ବିଂ. ପୂର୍ବନିର୍ଦ୍ଦିଷ୍ଟ, ଅଗ୍ରେ କଥିତ ବା ଉକ୍ତ ।

ପ୍ରତିନିର୍ଯ୍ୟାତନ—କ୍ଲୀ. ବି. (ପ୍ରତି + ନିର୍ + ଯାତ + ଅନ) ଅପକାରର ପ୍ରତ୍ୟପକାର କରିବା, ପ୍ରତ୍ୟର୍ପଣ, ପ୍ରତିହିଂସା ସାଧନ ।

ପ୍ରତିନିବର୍ତ୍ତନ—କ୍ଲୀ.ବି. (ପ୍ରତି+ନିର୍ + ବୃତ୍+ଭା.ଅନ)ପ୍ରତ୍ୟାବର୍ତ୍ତନ,ଫେରିବା, ପ୍ରତ୍ୟାନୟନ, ଲକ୍ଷ୍ୟ ପ୍ରତି ଅଗ୍ରସର ନ ହୋଇ ନିବର୍ତ୍ତିବା, ଅଭୀଷ୍ଟ ବସ୍ତୁରୁ ନିବୃତ୍ତି, ନିରାକରଣ ।

ପ୍ରତିନିବର୍ତ୍ତିତ—ବିଂ. (ପ୍ରତି + ନି + ବର୍ତ୍ତି +ର୍ମ.ତ) ନିବର୍ତ୍ତିତ, ଫେରିଥିବା ।

ପ୍ରତିନିବାରଣ—କ୍ଲୀ. ବି. (ପ୍ରତି + ନି + ବୃ + ଣି + ଅନ) ପ୍ରତିଷେଧ,ପ୍ରତିବାରଣ ।

ପ୍ରତିନିବାସନ—କ୍ଲୀ.ବି. ବୌଦ୍ଧମାନଙ୍କର ଗାତ୍ରବସ୍ତ୍ରବିଶେଷ ।

ପ୍ରତିନିବୃତ୍ତ—ବିଂ. (ପ୍ରତି + ନି + ବୃତ୍ + ତ) ପ୍ରତ୍ୟାଗତ, ଫେରି ଆସିଥିବା,

ବିରତ, ଷାନ୍ତ ।

**ପ୍ରତିଦିନଶ**—ଅବ୍ୟ. ପ୍ରତିଦିନଶାରେ, ପ୍ରତି-ଦିବସରେ, ନିତ୍ୟପ୍ରତିରେ ।

**ପ୍ରତିନ୍ୟସ୍ତ**—ବିଂ. ପ୍ରତିଗଚ୍ଛିତ, ସ୍ଥଗିତ ।

**ପ୍ରତିପ**—ପୁଂ. ବି. ( ପ୍ରତି+ପା+ଅ ) ଶାନ୍ତନୁଙ୍କ ପିତା, ଭୀଷ୍ମଙ୍କ ପିତାମହ, ଚନ୍ଦ୍ରବଂଶୀୟ ରାଜାବିଶେଷ, (ବିଂ)ବିପ-ରୀତ, ବିରୁଦ୍ଧ, ପ୍ରତିକୂଳ ।

**ପ୍ରତିପକ୍ଷ**—ପୁଂ. ବି. (ପ୍ରତି+ପକ୍ଷ)ଶତ୍ରୁ, ସାଦୃଶ୍ୟ, ପ୍ରତିବାଦୀ, ଆସାମୀ, ବିପକ୍ଷ, ପ୍ରତିଦ୍ୱନ୍ଦୀ, ପ୍ରତ୍ୟର୍ଥୀ, ରୋଧକାରୀ ।

**ପ୍ରତିପକ୍ଷତା**—ସ୍ତ୍ରୀ.ବି. ପ୍ରତିପକ୍ଷତ୍ୱ, ପ୍ରତି-ପକ୍ଷର ଭାବ ।

**ପ୍ରତିପକ୍ଷୀ**—ପୁଂ. ବିଂ. ବିପକ୍ଷ, ପ୍ରତିପକ୍ଷ ।

**ପ୍ରତିପଚନ୍ଦ୍ର**—ବିଂ. ( ପ୍ରତିପତ୍+ଚନ୍ଦ୍ର ) ଅଦୃଶ୍ୟ ବିଷୟ ।

**ପ୍ରତିପତ୍(ଦ୍)**—ବି (ପ୍ରତି+ପଦ୍+କ୍ୱିପ୍) ଶୁକ୍ଳପକ୍ଷ ବା କୃଷ୍ଣପକ୍ଷର ପ୍ରଥମ ତିଥି, ବୃଦ୍ଧି, ବୁଦ୍ଧି, ପଦବୀ, ଫଳାଫଳ ।

**ପ୍ରତିପତ୍ତି**—ସ୍ତ୍ରୀ. ବି. (ପ୍ରତି+ପଦ୍+ତି) ବିଶ୍ୱାସ, ପ୍ରତ୍ୟୟ, ଅଭିଯୋଗ, ଉନ୍ନତି, ସୁଖ୍ୟାତି, ମାନ, ସମ୍ମାନ, ପ୍ରବୃତ୍ତି, ପ୍ରାଗଲ୍‌ଭ୍ୟ, ଗୌରବ, ସମ୍ପ୍ରାପ୍ତି, ଜ୍ଞାନ, ପ୍ରବୋଧ, ପଦପ୍ରାପ୍ତି, ମୀମାଂସକ ମତେ ସକଳ ଶୂନ୍ୟକର୍ମୀଙ୍କ ଭେଦ, ସ୍ୱୀକାର, ଦାନ, ପ୍ରୟୋଗ, ବ୍ୟବହାର, ଉପକାର, ଉପାୟ, ବ୍ୟବସ୍ଥା, ପ୍ରମାଣ, ସାକ୍ଷ୍ୟ, ଅଭିପ୍ରାୟ, ଇଚ୍ଛା, ଅଭିଳାଷ, ପ୍ରତା-ରଣା, ସ୍ଥିରତା, ଭକ୍ତି ବା ସ୍ନେହପୂର୍ଣ୍ଣ ଆଚରଣ, ସନ୍ତୋଷଉତ୍ପାଦନ, ଅନୁମତି ନିଶ୍ଚୟ ।

**ପ୍ରତିପତ୍ତିମାନ୍**—ପୁଂ.ବିଂ. (ପ୍ରତିପତ୍ତି+ମତ୍) ପ୍ରତିପତ୍ତିଯୁକ୍ତ ।

**ପ୍ରତିପତ୍ତିଶାଳୀ**—ପୁଂ. ବିଂ.(ପ୍ରତିପତ୍ତି+ଶାଳିନ୍) ପ୍ରତିପତ୍ତିମାନ୍, ପ୍ରତିଷ୍ଠାନ୍ୱିତ, ଯଶସ୍ୱୀ, (ସ୍ତ୍ରୀ) ପ୍ରତିପତ୍ତିଶାଳିନୀ ।

**ପ୍ରତିପତ୍ରଫଳା**—ସ୍ତ୍ରୀ. ବି. କ୍ଷୁଦ୍ରକାରବେଲ୍ଲ, ଟୁଣିକଲରା ।    [ ବାହାରେ ।

**ପ୍ରତିପଥ**—ଅବ୍ୟ.ପ୍ରତିମାର୍ଗ,ପଥମଧ୍ୟରେ,

**ପ୍ରତିପଥଗତ**—ବିଂ.(ବ.ବ୍ରୀ)ପ୍ରତିପଥାତି-ବାହନକାରୀ, ବିପଥଗାମୀ ।

**ପ୍ରତିପଥିକ**—ବିଂ. ପ୍ରତ୍ୟେକ ପଥରେ ଗମନକାରୀ ।

**ପ୍ରତିପଦ**—ଅବ୍ୟ. ପଦେ ପଦେ, ସ୍ଥାନେ ସ୍ଥାନେ, ଉପର୍ଯ୍ୟୁପରି, ସର୍ବଦା, (ବି) ପ୍ରତ୍ୟେକ ପଦଖଣ୍ଡ ବା ପଦକ୍ଷେପ ।

**ପ୍ରତିପଦା**—ସ୍ତ୍ରୀ. ବି. ପ୍ରତିପଦ୍, ଶୁକ୍ଳ ବା କୃଷ୍ଣପକ୍ଷର ପ୍ରଥମ ତିଥି ।

**ପ୍ରତିପନ୍ନ**—ବିଂ. (ପ୍ରତି+ପଦ+ର୍ମ.ତ) ସମ୍ପ୍ରାପ୍ତ, ପ୍ରାପ୍ତ, ଯୁକ୍ତ୍ୟାଦି ଦ୍ୱାରା ସମ-ର୍ଥିତ, ଅବଗତ, ଅଙ୍ଗୀକୃତ, ବିକ୍ରାନ୍ତ, ସମ୍ପାଦିତ, ଜ୍ଞାତ, ଅବଧାରିତ, ନିଶ୍ଚିତ, ଗୃହୀତ, ପ୍ରାପ୍ତ, ଅନୁମତ, ଅଭିଯୁକ୍ତ, ପ୍ରମାଣ ଓ ତର୍କାଦି ଦ୍ୱାରା ସ୍ଥିରୀକୃତ ।

**ପ୍ରତିପାନ୍ଥ**—ଅବ୍ୟ. ପ୍ରତ୍ୟେକ ଲୋକ ।

**ପ୍ରତିପାଦକ**—ପୁଂ. ବିଂ. (ପ୍ରତି+ପାଦି +କ.ଅକ) ପ୍ରତିପତ୍ତିଜନକ, ବୋଧକ, ଜ୍ଞାପକ, ନିର୍ବାହକ, ଉତ୍ପାଦକ, ପ୍ରତି-ପନ୍ନକାରକ, ନିର୍ଣ୍ଣାୟକ, (ସ୍ତ୍ରୀ) ପ୍ରତି-ପାଦିକା ।

**ପ୍ରତିପାଦନ**—କ୍ଲୀ.ବି. (ପ୍ରତି+ପାଦି+ଅନ) ବୋଧନ, ଜ୍ଞାପନ, ଦାନ, ପ୍ରତି-ପତ୍ତି, ମୀମାଂସା, ସମ୍ପାଦନ, ନିଷ୍ପାଦନ, ଅବଧାରଣ,ସ୍ଥିରୀକରଣ,ବୁଝାଇଦେବା ।

**ପ୍ରତିପାଦନୀୟ**—ବିଂ. (ପ୍ରତି+ପାଦି+ର୍ମ.ଅନୀୟ ) ଯାହା ପ୍ରତିପାଦନ ବା ପ୍ରମାଣ କରିବାକୁ ହେବ, ଦାନୀୟ, ଦାନର ଯୋଗ୍ୟ, ପ୍ରତିପାଦ୍ୟ, ପ୍ରତି-ପାଦନସାଧ୍ୟ, ପ୍ରମାଣ ସାପେକ୍ଷ,ପ୍ରମେୟ ।

**ପ୍ରତିପାଦୟିତା**—ପୁଂ.ବିଂ. ପ୍ରତିପାଦକ, ପ୍ରତିପାଦନକାରକ ।

**ପ୍ରତିପାଦିତ**—ବିଂ. ( ପ୍ରତି+ପଦ୍+ଣି +ତ) ନିଷ୍ପାଦିତ, ସମ୍ପାଦିତ, ଦତ୍ତ, ସ୍ଥିରୀକୃତ, ଶୋଧିତ, ବୋଧିତ, ଅବ-ଧାରିତ, ବୁଝାଇ ଦିଆଯାଇଥିବା ।

**ପ୍ରତିପାଦ୍ୟ**—ବିଂ.(ପ୍ରତି+ପଦ୍+ଣି+ର୍ମ.ଯ)ବୋଧନୀୟ, ବୋଧ୍ୟ, ଅଭିଧେୟ, ବର୍ଣ୍ଣନୀୟ, ଯାହା ବୁଝାଇ ଦିଆଯିବାର ଯୋଗ୍ୟ,ପ୍ରମାଣସାଧ୍ୟ(ବିଷୟାସମ୍ବନ୍ଧୀୟ) ।

**ପ୍ରତିପାନ**—କ୍ଲୀ.ବି. (ପ୍ରତି+ପା+ଅନ) ପାନୀୟ ଜଳ ।

**ପ୍ରତିପାପ**—ବି. ଅନାଗ୍ରହର ପ୍ରତିଦାନ, ପାପୀ ପ୍ରତି ତୁଲ୍ୟ ରୂପ ନିଷ୍ଠୁରବ୍ୟବ-ହାର ।

**ପ୍ରତିପାଳକ**—ପୁଂ. ବିଂ. (ପ୍ରତି+ପାଳି ଅକ)ପାଳନକର୍ତ୍ତା,ରକ୍ଷକ,ଯେ ପୋଷେ, ଅପେକ୍ଷାକାରୀ, (ବି) ରାଜା,ପାଳନକାରୀ ବ୍ୟକ୍ତି ।

**ପ୍ରତିପାଳନ**—କ୍ଲୀ. ବି. (ପ୍ରତି+ପାଳି+ଅନ) ଆଜ୍ଞାପାଳନ, ରକ୍ଷଣ, ପୋଷଣ, (ନିୟମ) ପାଳିବା, ମାନିବା ।

**ପ୍ରତିପାଳନା**—ସ୍ତ୍ରୀ.ବି.ପ୍ରତିପାଳନ ଦେଖ ।

**ପ୍ରତିପାଳନୀୟ**—ବିଂ. (ପ୍ରତି+ପାଳି+ଅନୀୟ) ପୋଷଣୀୟ,ପ୍ରତିପାଲ୍ୟ,ପୋଷ୍ୟ, ପ୍ରତିପାଳନର ଯୋଗ୍ୟ ।

**ପ୍ରତିପାଳିତ**—ବିଂ. (ପ୍ରତି+ପାଳ+ର୍ମ.ତ) ଯାହାକୁ ପ୍ରତିପାଳନ କରାଯାଇଅଛି, ପୋଷିତ, ରକ୍ଷିତ, ଅନୁସୃତ ।

**ପ୍ରତିପାଲ୍ୟ**—ବିଂ. (ପ୍ରତି+ପାଳି+ର୍ମ.ଯ) ପୋଷ୍ୟ, ଭରଣୀୟ, ରକ୍ଷଣୀୟ, ପ୍ରତି-ପାଳନୀୟ,ପ୍ରତିପାଳନ କରିବାର ଉପ-ଯୁକ୍ତ ।

**ପ୍ରତିପିତ୍ସା**—ସ୍ତ୍ରୀ. ବି. (ପ୍ରତି+ପଦ୍+ସନ୍ +ଅ+ଆ)ପ୍ରତିପତ୍ତିର ଇଚ୍ଛା,ପାଇବାର ଇଚ୍ଛା ।

**ପ୍ରତିପୁରୁଷ**—ଅବ୍ୟ. ପ୍ରତ୍ୟେକ ପୁରୁଷ, (ପୁଂ. ବି) ପ୍ରତିନିଧି, ପ୍ରତିରୂପ ପୁରୁଷ, ସଙ୍ଗୀ, ସହକାରୀ ।

**ପ୍ରତିପୁଷ୍ୟ**—ଅବ୍ୟ. ପ୍ରତ୍ୟେକଥର ଚନ୍ଦ୍ର-ଙ୍କର ପୁଷ୍ୟାନକ୍ଷତ୍ରରେ ପ୍ରବେଶ ।

**ପ୍ରତିପୂଜକ**—ପୁଂ. ବିଂ. ପ୍ରତିରୂପ ପୂଜା-କାରୀ, ପ୍ରତିମାପୂଜକ ।

**ପ୍ରତିପୂଜନ**—କ୍ଲୀ. ବି. (ପ୍ରତି+ପୂଜନ) ଅଭିବାଦନ, ସାଦର ସମ୍ଭାଷଣ ।

**ପ୍ରତିପୂଜା**—ସ୍ତ୍ରୀ. ବି. ପ୍ରତିରୂପ ପୂଜା, ପ୍ରତିମାପୂଜା ।

**ପ୍ରତିପୂଜ୍ୟ**—ବିଂ. ପ୍ରତିରୂପ ପୂଜନୀୟ ।

ପ୍ରତିପୂରଣ—କ୍ଳୀ. ବି.(ପ୍ରତି+ପୂର+ଅନ) ପୂର୍ଣ୍ଣୀକରଣ ।

ପ୍ରତିପୂର୍ବାହ୍ଣ—ଅବ୍ୟ.ପ୍ରତି ପ୍ରାତଃକାଳ, ସକାଳବେଳା ।

ପ୍ରତିପୋଷକ—ପୁଂ. ବିଂ. (ପ୍ରତି+ପୁଷ୍+ଅକ) ପ୍ରତିପାଳକ, ସହାୟକାରୀ, ଆନୁକୂଲ୍ୟକାରୀ ।

ପ୍ରତିପୋଷଣ—କ୍ଳୀ. ବି. (ପ୍ରତି+ପୁଷ୍+ଅନ) ପ୍ରତିପାଳକ,ଜୀବିକାନିର୍ବାହ ।

ପ୍ରତିପୋଷିତ—ବିଂ. (ପ୍ରତି+ପୋଷିତ) ପ୍ରତିପାଳିତ ଦେଖ ।

ପ୍ରତିପ୍ରଣାମ—ପୁଂ. ବି. ପ୍ରତିନମସ୍କାର ।

ପ୍ରତିପ୍ରତି—ଅବ୍ୟ. ତୁଲ୍ୟ, ପ୍ରତ୍ୟେକ. ସର୍ବଦା, ବାରମ୍ବାର, ସମାନ ସମାନ ।

ପ୍ରତିପ୍ରତିମା—ବି. ( ପ୍ରତି+ପ୍ରତିମା ) ଫଟୋ ।

ପ୍ରତିପ୍ରତିକ—ଅବ୍ୟ. ପ୍ରତିଆରମ୍ଭ ।

ପ୍ରତିପ୍ରଦାନ—କ୍ଳୀ. ବି. (ପ୍ରତି+ପ୍ର+ଦା+ଅନ) ପ୍ରତିପାଦନ,ପ୍ରତ୍ୟର୍ପଣ ।

ପ୍ରତିପ୍ରଭା—ସ୍ତ୍ରୀ. ବି. ପ୍ରତିବିମ୍ବ,ପ୍ରତିରୂପ ପ୍ରଭା ବା ଔଜ୍ଜ୍ୱଲ୍ୟ ।

ପ୍ରତିପ୍ରଭାତ-ଅବ୍ୟ.ପ୍ରାତଃକାଳ,ସକାଳବେଳା ।

ପ୍ରତିପ୍ରଭାବ—ପୁଂ. ବି. ବିରୁଦ୍ଧଶକ୍ତି ।

ପ୍ରତିପ୍ରମାଣ—ବି. ବିରୁଦ୍ଧସାକ୍ଷ୍ୟ ।

ପ୍ରତିପ୍ରୟାଣ—କ୍ଳୀ. ବି. (ପ୍ରତି+ପ୍ର+ଯା+ଅନ) ପ୍ରତିଗମନ,ପ୍ରତିପ୍ରସ୍ଥାନ, ପଳାୟନ, ଫେରିଯିବା । [ ପ୍ରଶ୍ନ ।

ପ୍ରତିପ୍ରଶ୍ନ—ପୁଂ. ବି. ଉତ୍ତର, ପ୍ରତିରୂପ

ପ୍ରତିପ୍ରସବ—ପୁଂ. ବି. (ପ୍ରତି+ପ୍ର+ସୂ+ଭା.ଅ) ନିଷିଦ୍ଧର ପୁନର୍ବିଧାନ, କୌଣସି ସାଧାରଣ ନିୟମରେ ଯେଉଁ ବିଷୟ ନିଷେଧ କରା ହୋଇଅଛି—ତାହା କୌଣସି ବିଶେଷ ବିଧି ଦ୍ୱାରା ବିଧାନ କରିବା ।

ପ୍ରତିପ୍ରସ୍ଥାନ—କ୍ଳୀ. ବି. (କ.ଧା) ବିରୁଦ୍ଧ ପକ୍ଷାଶ୍ରୟଣ, ପ୍ରତିପକ୍ଷର ଆଶ୍ରୟ,ପ୍ରତି-ପ୍ରୟାଣ, ପ୍ରତିଗମନ, ଫେରିଯିବା, (ବିଂ)ପ୍ରତିକୂଳ ପ୍ରସ୍ଥାନଯୁକ୍ତ,ନିର୍ଗାହ୍ୟ ।

ପ୍ରତିପ୍ରାଦାର—ପୁଂ. ବି. କୃତପ୍ରହାରର ଅନୁରୂପ ପ୍ରହାର, ପ୍ରତିଘାତ ବିଶେଷ

ପ୍ରତିପ୍ରାକାର—ପୁଂ. ବି. ତୁଲ୍ୟରୂପ ପ୍ରାଚୀର,ଦୁର୍ଗର ବହିର୍ଦ୍ଦେଶସ୍ଥ ପ୍ରାଚୀର

ପ୍ରତିପ୍ରିୟ—କ୍ଳୀ. ବି. ( ପ୍ରତି+ପ୍ରିୟ ) ପ୍ରତ୍ୟୁପକାର, ଉପକାରୀର ଉପକାର ।

ପ୍ରତିପ୍ଲବନ—କ୍ଳୀ. ବି. ପଶ୍ଚାଦୁଲ୍ଲମ୍ଫନ, ପଛକୁ ଡେଇଁବା ।

ପ୍ରତିଫଳ—କ୍ଳୀ. ବି. ( ପ୍ରତି+ଫଳ ) ପ୍ରତିବିମ୍ବ,କୌଣସି କାର୍ଯ୍ୟ ପାଇଁ ପ୍ରଦତ୍ତ ପୁରସ୍କାର ବା ଦଣ୍ଡ,ଯେଉଁ ବ୍ୟକ୍ତି ଯେପରି କର୍ମ କରେ ତାହାର ତୁଲ୍ୟରୂପ ଫଳ. ପ୍ରତିଶୋଧ,ପ୍ରତ୍ୟୁପକାର,ପ୍ରତ୍ୟପକାର, ଫଳସାକଲ୍ୟ, କାର୍ଯ୍ୟର ଶେଷ ଫଳ ।

ପ୍ରତିଫଳନ—କ୍ଳୀ. ବି. (ପ୍ରତି+ଫଳ+ଅନ)ପ୍ରତିବିମ୍ବପାତ; ଜଳାଦିରେ ପ୍ରତି-ବିମ୍ବିତ କୌଣସି ବସ୍ତୁର ଛାୟା ।

ପ୍ରତିଫଳିତ—ବିଂ. (ପ୍ରତି+ଫଳ+ତ) ପ୍ରତିବିମ୍ବିତ,ପ୍ରତିଶୋଧ କରାଯାଇଥିବ (ସ୍ତ୍ରୀ) ପ୍ରତିଫଳିତା ।

ପ୍ରତିଫୁଲ୍ଲକ—ବିଂ. ପ୍ରଫୁଲ୍ଲ, ପୁଷ୍ପଯୁକ୍ତ ।

ପ୍ରତିବଚଃ—କ୍ଳୀ. ବି. ପ୍ରତିବଚନ ।

ପ୍ରତିବଚନ—କ୍ଳୀ. ବି. (ପ୍ରତି+ବଚନ) ପ୍ରତିବାକ୍ୟ, ଉତ୍ତର,ପ୍ରତ୍ୟୁକ୍ତି,ପ୍ରତିଧ୍ୱନି, ପ୍ରତିକୂଳ ଉକ୍ତି ।

ପ୍ରତିବଦ୍ଧ—ବିଂ. ( ପ୍ରତି+ବନ୍ଧ+ତ ) ପ୍ରତିବନ୍ଧବିଶିଷ୍ଟ, ବାଧିତ, ବାଧାପ୍ରାପ୍ତ. ବ୍ୟାହତ,(ସ୍ତ୍ରୀ) ପ୍ରତିବଦ୍ଧା ।

ପ୍ରତିବଧ—ବି.(ପ୍ରତି+ବଧ+ଅ)ପ୍ରତି-ହିଂସା ମୂଳକ ହତ୍ୟା ।

ପ୍ରତିବଧ୍ୟ—ବିଂ. ( ପ୍ରତି+ବନ୍ଧ+ଯ ) ପ୍ରତିବନ୍ଧନୀୟ, ପ୍ରତିବନ୍ଧାର୍ହ ।

ପ୍ରତିବନ୍ଧ—ପୁଂ. ବି. ( ପ୍ରତି+ବନ୍ଧ+ଭା.ଅ) କାର୍ଯ୍ୟପ୍ରତିଘାତ, ବାଧା, ବିଘ୍ନ, ବ୍ୟାଘାତ, ବନ୍ଧନ ସମ୍ବନ୍ଧ, ନିରୋଧ, (ବିଂ) ନିବାରିତ, ବାଧାପ୍ରାପ୍ତ ।

ପ୍ରତିବନ୍ଧକ—ବିଂ.(ପ୍ରତି+ବନ୍ଧ+ଅକ) ପ୍ରତିରୋଧକ, ବାଧାଜନକ, ବ୍ୟାଘାତ-କାରକ,(ବି)ବାଧା,ବ୍ୟାଘାତ, ବାନ୍ଧିବା, ବନ୍ଧନ, ବୃକ୍ଷ, ଶାଖା ।

ପ୍ରତିବନ୍ଧା—ପୁଂ. ବିଂ. (ପ୍ରତି+ବନ୍ଧ+କ.ତୃ) ପ୍ରତିବନ୍ଧକ, ପ୍ରତିକୂଳ, (ସ୍ତ୍ରୀ) ପ୍ରତିବନ୍ଧ୍ରୀ ।

ପ୍ରତିବନ୍ଧି—ପୁଂ. ବି. (ପ୍ରତି+ବନ୍ଧ+ଇ) ଅନିଷ୍ଟାନ୍ତର ପ୍ରସଞ୍ଜକବାକ୍ୟ, ପ୍ରତିବନ୍ଧ, ବାଧା, ବ୍ୟାଘାତ ।

ପ୍ରତିବନ୍ଧିକା—ସ୍ତ୍ରୀ. ବି. କାରଣୀଭୂତାଭାବ ପ୍ରତିଯୋଗିତ୍ୱ, ପ୍ରତିବନ୍ଧକ, ଅତିରିକ୍ତ ଶକ୍ତି ନିରାଶ ।

ପ୍ରତିବନ୍ଧୀ—ପୁଂ. ବିଂ. (ପ୍ରତି+ବନ୍ଧ+କ.ଇନ୍) ପ୍ରତିବନ୍ଧକ,(ପ୍ରତିବନ୍ଧ+ଇନ୍) ପ୍ରତିବନ୍ଧବିଶିଷ୍ଟ, (ସ୍ତ୍ରୀ) ପ୍ରତିବନ୍ଧିନୀ ।

ପ୍ରତିବନ୍ଧୁ—ପୁଂ.ବି. ବନ୍ଧୁତୁଲ୍ୟ ଦୌହିତ୍ର-ସାଦ, ବନ୍ଧୁର ସମାନ ବ୍ୟକ୍ତି ।

ପ୍ରତିବଳ—ବିଂ. ସମବଳଶାଳୀ, ( ବି ) ସମକକ୍ଷଯୋଦ୍ଧା, ବିପକ୍ଷସୈନ୍ୟ ।

ପ୍ରତିଭ—ସ୍ତ୍ରୀ. ବି. ସାଦୃଶ୍ୟ, (ପୁଂ. ବିଂ.) (ଅନ୍ୟ ଶବ୍ଦସଙ୍ଗେ ସମାସଯୁକ୍ତ, ଯଥା-ସୂର୍ଯ୍ୟପ୍ରତିଭ) ଅନୁକପତ ପ୍ରଭାଯୁକ୍ତ ।

ପ୍ରତିଭଟ—ପୁଂ. ବି. ପ୍ରତିଯୋଧ, ଯାହା ସହିତରେ ପ୍ରତିରୂପ ଯୁଦ୍ଧହୁଏ, ଶତ୍ରୁ, ସମକକ୍ଷଯୋଦ୍ଧା ।

ପ୍ରତିଭୟ—ବିଂ.ଭୟଙ୍କର, (କ୍ଳୀ.ବି)ଭୟ, ବିପଦ ।

ପ୍ରତିଭା—ସ୍ତ୍ରୀ. ବି. (ପ୍ରତି+ଭା+ଅ+ଆ) ପ୍ରଜ୍ଞା, ନବନବୋନ୍ମେଷଶାଳିନୀ ବୁଦ୍ଧି, ବୁଦ୍ଧି, ପ୍ରତ୍ୟୁତ୍ପନ୍ନମତିତ୍ୱ,ଅସାଧାରଣ ବୁଦ୍ଧି-ଶକ୍ତି, ପ୍ରଭା, ଦୀପ୍ତି, ସାଦୃଶ୍ୟ, ସାହସି-କତା, ପ୍ରଗଲ୍ଭତା, ତୀକ୍ଷ୍ଣବୁଦ୍ଧି, (ଗ୍ରା.ବି) ଶକ୍ତି, ସାମର୍ଥ୍ୟ, କ୍ଷମତା ।

ପ୍ରତିଭାତ—ବିଂ. (ପ୍ରତି+ଭା+ତ) ଉଦିତ, ପ୍ରକାଶିତ, ପ୍ରଖ୍ୟାତ, (ମ.ତ) ପ୍ରଦୀପ୍ତ ।

ପ୍ରତିଭାନ—କ୍ଳୀ. ବି. (ପ୍ରତି+ଭା+ଅନ) ବୁଦ୍ଧି, ପ୍ରଭା ।

ପ୍ରତିଭାନ୍ୱିତ—ପୁଂ. ବିଂ. (ତତ୍ତ୍ୱ) ନବ-ନବୋନ୍ମେଷଶାଳିନୀ ବୁଦ୍ଧିଯୁକ୍ତ, ଉପସ୍ଥିତ-ବୁଦ୍ଧିସମ୍ପନ୍ନ, ପ୍ରଗଲ୍ଭ, ପ୍ରତ୍ୟୁତ୍ପନ୍ନମତି, ବୁଦ୍ଧିଜୀବୀ, ପ୍ରଭାବିଶିଷ୍ଟ ।

ପ୍ରତିଭାବାନ୍—ପୁଂ. ବିଂ. (ପ୍ରତିଭା+ବତ୍) ପ୍ରତିଭାନ୍ୱିତ, ପ୍ରାଗଲ୍ଭ୍ୟଯୁକ୍ତ, ତୀକ୍ଷ୍ଣବୁଦ୍ଧିଶାଳୀ. (ସ୍ତ୍ରୀ) ପ୍ରତିଭାବତୀ ।

ପ୍ରତିଭାଶାଳୀ—ପୁଂ.ବିଂ.(ପ୍ରତିଭା+ଶାଳିନ୍) ପ୍ରତିଭାସମ୍ପନ୍ନ, ତୀକ୍ଷ୍ଣବୁଦ୍ଧିଶାଳୀ, (ସ୍ତ୍ରୀ) ପ୍ରତିଭାଶାଳିନୀ ।

ପ୍ରତିଭାଷ—ବି. (ପ୍ରତି+ଭାଷ) ପ୍ରତ୍ୟୁତ୍ତର, ପ୍ରତିବାକ୍ୟ ।

ପ୍ରତିଭାଷା—ସ୍ତ୍ରୀ. ବି. ପ୍ରତ୍ୟୁତ୍ତର ।

ପ୍ରତିଭାଷିତ—ବିଂ. ପ୍ରତ୍ୟୁତ୍ତରରୂପେ କଥିତ. (ବି) ପ୍ରତ୍ୟୁତ୍ତର ।

ପ୍ରତିଭାସ—ପୁଂ. ବି. (ପ୍ରତି+ଭାସ୍+ଅ) ପ୍ରକାଶ,ପ୍ରକାଶମାନ,ଅଳଙ୍କରଣ,ଭ୍ରମ ।

ପ୍ରତିଭାସନ—କ୍ଲୀ. ବି. (ପ୍ରତି+ଭାସ୍+ଅନ) ପ୍ରକାଶନ ।

ପ୍ରତିଭାସମ୍ପନ୍ନ—ବିଂ.(ଷତତ୍)ପ୍ରତିଭାନ୍ୱିତ, ତୀକ୍ଷ୍ଣବୁଦ୍ଧି, ତୀକ୍ଷ୍ଣବୁଦ୍ଧି ବିଶିଷ୍ଟ ।

ପ୍ରତିଭାସିତ—ବିଂ. (ପ୍ରତି+ଭାସ୍+ଇତ) ପ୍ରଦୀପ୍ତ, ଶୋଭିତ,ଉଜ୍ଜ୍ୱଳ, (ସ୍ତ୍ରୀ) ପ୍ରତିଭାସିତା ।

ପ୍ରତିଭୂ—ପୁଂ.ବି. (ପ୍ରତି+ଭୂ+କ.କ୍ୱିପ୍) ଜାମିନଦାର,ପରର ଦାୟିତ୍ୱଗ୍ରହଣକାରୀ ବ୍ୟକ୍ତି, ଲଗାହାରୀ, ପ୍ରତିନିଧି ।

ପ୍ରତିଭେଦ—ପୁଂ.ବି. (ପ୍ରତି+ଭିଦ୍+ଅ) ପ୍ରଭେଦ,ଆବିଷ୍କାର,ବିପଥରେ ନେବା ।

ପ୍ରତିଭେଦନ—କ୍ଲୀ. ବି. (ପ୍ରତି+ଭିଦ୍+ଭା.ଅନ)ନେତ୍ରାଦି ଉତ୍ପାଟନ,ଭେଦନ ।

ପ୍ରତିଭୋଗ—ପୁଂ.ବି. (ପ୍ରତି+ଭୁଜ୍+ଅ) ଉପଭୋଗ, ସୁଖଭୋଗ ।

ପ୍ରତିମ—ପୁଂ. ବିଂ. (ପ୍ରତି+ମା+ର୍ମ.ଅ) ସମାନ,ସଦୃଶବାଚକ,ତୁଲ୍ୟତ୍ୱବାଚକ ।

ପ୍ରତିମଣ୍ଡଳ—କ୍ଲୀ. ବି. (ପ୍ରତି+ମଣ୍ଡଳ) ସୂର୍ଯ୍ୟାଦିମଣ୍ଡଳର ପରିଧି, ପରିବେଶ, ପ୍ରତ୍ୟେକ ମଣ୍ଡଳ ।

ପ୍ରତିମନ୍ତ୍ରଣ—କ୍ଲୀ. ବି. ଉତ୍ତରଦେବା ।

ପ୍ରତିମା—ସ୍ତ୍ରୀ.ବି.(ପ୍ରତି+ମା+ର୍ମ.ଅ+ଆ) ପିତୁଳା, ପ୍ରତିମୂର୍ତ୍ତି, ରୂପ, ସାଦୃଶ୍ୟ, ଅନୁକୃତି, ପ୍ରତିବିମ୍ବ, ଛବି,ଦେବବିଗ୍ରହ, ହାତୀର ଦନ୍ତଦ୍ୱୟର ମଧ୍ୟଭାଗରେ ଶୁଣ୍ଡର ଉପର ଅଂଶ,(ଣି.ଅ)ବିଟକରା,ସାହିତ୍ୟର ଅଳଙ୍କାର ବିଶେଷ । [ ଘର ।

ପ୍ରତିମାଗୃହ—ସ୍ତ୍ରୀ.ବି. ଦେବାଳୟ,ସାଦୃ-

ପ୍ରତିମାତତ୍ତ୍ୱ—ସ୍ତ୍ରୀ. ବି. ମୂର୍ତ୍ତିବିଶେଷ ।

ପ୍ରତିମାନ—କ୍ଲୀ. ବି. (ପ୍ରତି+ମା+ଅନ) ସାଦୃଶ୍ୟ, ପ୍ରତିନିଧି, ଦୃଷ୍ଟାନ୍ତ, ଉଦାହରଣ, ସମାନତା, ପ୍ରତିମା ଦେଖ ।

ପ୍ରତିମାନନା—ସ୍ତ୍ରୀ.ବି. (ପ୍ରତି+ମାନ୍+ଅନ+ଆ) ସମ୍ମାନ, ପୂଜା ।

ପ୍ରତିମାପୂଜା—ସ୍ତ୍ରୀ.ବି. ଈଶ୍ୱର ଜ୍ଞାନରେ ଦେବ ମୂର୍ତ୍ତିର ପୂଜା ।

ପ୍ରତିମାବିସର୍ଜନ—କ୍ଲୀ.ବି. (ଷତତ୍)ଜୀବନ୍ୟାସ ଓ ଆବାହନପୂର୍ବକ ଦେବତାରୂପେ ପୂଜିତ ଦେବମୂର୍ତ୍ତିଙ୍କୁ ପୂଜା ଶେଷରେ ମନ୍ତ୍ର ପ୍ରଣାମ ପୂର୍ବକ ବିଦାୟ ଦେଇ ପାଣିରେ ଫିଙ୍ଗିବା ।

ପ୍ରତିମାର୍ଗକ—ପୁଂ. ବି. ରାଜା ହରିଶ୍ଚନ୍ଦ୍ରଙ୍କ ଶୂନ୍ୟସ୍ଥ ନଗର, ପ୍ରତ୍ୟେକ ମାର୍ଗ ।

ପ୍ରତିମାଳା—ସ୍ତ୍ରୀ.ବି.ସ୍ମରଣ ଶକ୍ତି ପରିଚୟ ଦେବାପାଇଁ ଏକାଧିକ ବ୍ୟକ୍ତିଙ୍କର ଏକାନୁକ୍ରମେ ଶ୍ଳୋକ ବା କବିତାଦିର ଆବୃତ୍ତି ।

ପ୍ରତିମାସ—ଅବ୍ୟ. ପ୍ରତ୍ୟେକ ମାସରେ, ମାସେମାସେ ।

ପ୍ରତିମାସୀୟ—ବିଂ. (ପ୍ରତିମାସ+ଈୟ) ପ୍ରତି ମାସରେ ଘଟୁଥିବା ।

ପ୍ରତିମୁକ୍ତ—ବିଂ.(ପ୍ରତି+ମୁଚ୍+ତ)ପରିହିତ (ବସ୍ତ୍ରାଦି), ପରିତ୍ୟକ୍ତ, ପିନଦ୍ଧ, ବନ୍ଧନମୁକ୍ତ, ପ୍ରତ୍ୟର୍ପିତ ।

ପ୍ରତିମୁଖ—କ୍ଲୀ. ବି. ସାହିତ୍ୟଦର୍ପଣୋକ୍ତ ନାଟକାଙ୍ଗ ସନ୍ଧିଭେଦ,ପଶ୍ଚାଦ୍ଭାଗ, (ବିଂ) ସାମନାରେ ଥିବା, ଆଡ଼ମୁହାଁ କରିବା, ଅଭିମୁଖ, ସମ୍ମୁଖବର୍ତ୍ତୀ । [ ଗୁପ ।

ପ୍ରତିମୁଦ୍ରା—ସ୍ତ୍ରୀ. ବି. ନାମାଙ୍କିତ ମୋହର

ପ୍ରତିମୁହୂର୍ତ୍ତ—ଅବ୍ୟ. ପ୍ରତ୍ୟେକ ମୁହୂର୍ତ୍ତ, ଅନବରତ ।

ପ୍ରତିମୂର୍ତ୍ତି—ସ୍ତ୍ରୀ.ବି(ପ୍ରତି+ମୂର୍ତ୍ତି)ଦେବାଦିମୂର୍ତ୍ତି, ସଦୃଶୀମୂର୍ତ୍ତି, ପ୍ରତିମା, ସାଦୃଶ୍ୟ, ଆକୃତି, ଛବି ।

ପ୍ରତିମୋକ୍ଷଣ—କ୍ଲୀ. ବି. ମୋକ୍ଷପ୍ରାପ୍ତି, ମୋଚନ, ଛାଡ଼ିଦେବା ।

ପ୍ରତିମୋଚନ—କ୍ଲୀ. ବି. (ପ୍ରତି+ମୁଚ୍+ଅନ) ବିମୋଚନ, ବନ୍ଧନମୋଚନ, ନିର୍ଯ୍ୟାତନ, ପରିଧାନ ।

ପ୍ରତିଯତ୍ନ—ପୁଂ. ବି. ଲିପ୍ସା, ଲାଭେଚ୍ଛା, ଚେଷ୍ଟା, ଯୋଗାଡ଼,ଉପଗ୍ରହ,ନିଗ୍ରହାଦି, ଗୁଣାନ୍ତରାଧାନ ରୂପ ସଂସ୍କାର, ସଂସ୍କାର, ଗ୍ରହଣାଦି, ପ୍ରତିଗ୍ରହ, ରଚନା, କଇଦୀ, ବନ୍ଦୀ ।

ପ୍ରତିଯାତ—ବିଂ. (ପ୍ରତି+ଯା+କ.ତ) ପ୍ରତିନିବୃତ୍ତ, ପ୍ରତିଗତ ।

ପ୍ରତିଯାତନ—କ୍ଲୀ. ବି. (ପ୍ରତି+ଯାତ+ଅନ) ବୈରନିର୍ଯାତନ ।

ପ୍ରତିଯାତନା—ସ୍ତ୍ରୀ. ବି. (ପ୍ରତି+ଯତ+ଣି+ର୍ମ.ଅନ+ଆ) ପ୍ରତିମା, ତୁଲ୍ୟରୂପ ଯାତନା, ପ୍ରତିକୃତି ।

ପ୍ରତିଯାନ—କ୍ଲୀ.ବି. (ପ୍ରତି+ଯା+ଅନ) ପ୍ରତିଗମନ, ଫେରିଯିବା, ପ୍ରତ୍ୟାବର୍ତ୍ତନ

ପ୍ରତିଯୁଦ୍ଧ—କ୍ଲୀ.ବି. ତୁଲ୍ୟରୂପ ଯୁଦ୍ଧ,ଅନୁରୂପ ଯୁଦ୍ଧ, ବିପକ୍ଷର ଆକ୍ରମଣ ନିବାରଣ

ପ୍ରତିଯୂଥପ—ପୁଂ.ବି.ତୁଲ୍ୟରୂପ ଯୂଥପତି ।

ପ୍ରତିଯୋଗ—ପୁଂ.ବି. (ପ୍ରତି+ଯୁଜ୍+ଅ) ବିରୋଧ, ବିପକ୍ଷତା, ଶତ୍ରୁତା, ସହଯୋଗ, ବିରୁଦ୍ଧ ସମ୍ବନ୍ଧ, ପୁନରୁଦ୍ଯୋଗ, ସମକକ୍ଷତା ।

ପ୍ରତିଯୋଗିକ—ବିଂ. ପ୍ରତିଯୋଗଯୁକ୍ତ, ନିକଟ ସମ୍ବନ୍ଧଯୁକ୍ତ ।

ପ୍ରତିଯୋଗିତା—ସ୍ତ୍ରୀ.ବି.ସମକକ୍ଷତା, ପ୍ରତିଯୋଗିତ୍ୱ, ପ୍ରତିଦ୍ୱନ୍ଦ୍ୱିତା, ସାଦୃଶ୍ୟ ।

ପ୍ରତିଯୋଗୀ—ପୁଂ.ବି. ବିଂ. (ପ୍ରତି+ଯୁଜ୍+ଇନ) ବିରୋଧୀ, ପ୍ରତିଦ୍ୱନ୍ଦ୍ୱୀ, ବିପକ୍ଷ, ପ୍ରତିକୂଳ ସମ୍ବନ୍ଧଯୁକ୍ତ,ଅଂଶୀଦାର, ସହଯୋଗୀ ।

ପ୍ରତିଯୋଦ୍ଧା—ପୁଂ. ବି. (ପ୍ରତି+ଯୁଧ୍+ତୃ) ପ୍ରତିରୂପ ଯୋଦ୍ଧା, ତୁଲ୍ୟଯୋଦ୍ଧା, ଶତ୍ରୁ, ବିପକ୍ଷ ।

ପ୍ରତିଯୋଧ—ପୁଂ.ବି. (ପ୍ରତି+ଯୁଧ୍+ଅ) ପ୍ରତିଭଟ, ପ୍ରତିରୂପ ଯୋଦ୍ଧା ।

ପ୍ରତିରଥ—ପୁଂ.ବି. (ବ.ବ୍ରୀ) ପ୍ରତିଯୋଧ, ବିପକ୍ଷୀୟ ଯୋଦ୍ଧା, ତଂସୁଭ୍ରାତା ନୃପଭେଦ, ଯଦୁବଂଶୀୟ ବଜ୍ରାଶ୍ବ ପୁତ୍ର, ପ୍ରତ୍ୟେକ ରଥ ।

ପ୍ରତିରମ୍ଭ—ପୁଂ. ବି. ପ୍ରତିଲମ୍ଭ, ଲାଭ ।

ପ୍ରତିରବ—କ୍ଲୀ. ବି. (ପ୍ରତି+ରୁ+କ.ଅ) ପ୍ରତିଧ୍ୱନି, ପ୍ରାଣ, ପ୍ରତିକୂଳ ଶବ୍ଦ ।

ପ୍ରତିରାତ୍ରି—ଅବ୍ୟ.(ପ୍ରତି+ରାତ୍ରି)ପ୍ରତ୍ୟେକ ରାତ୍ରିରେ, ରାତି ରାତିରେ ।

ପ୍ରତିରୁଦ୍ଧ—ବିଂ. (ପ୍ରତି+ରୁଧ୍+ତ)ଅବରୁଦ୍ଧ, ବାଧାପ୍ରାପ୍ତ, ଘେରାଉ କରାଯାଇଥିବା, ଅବରୁଦ୍ଧ, ନିବାରିତ ।

ପ୍ରତିରୂପ—କ୍ଲୀ.ବି.(ପ୍ରତି+ରୂପ)ସାଦୃଶ୍ୟ, ପ୍ରତିମୂର୍ତ୍ତି, ପ୍ରତିମା, ପ୍ରତିଲିପି, ନକଲ, ଜାଲ, ପ୍ରତିବିମ୍ବ, ନମୁନା, ଅନ୍ୟରୂପ, ଛବି, ପ୍ରତିନିଧି.ସଦୃଶ,(ସ୍ତ୍ରୀ) ପ୍ରତିରୂପା ।

ପ୍ରତିରୂପକ—କ୍ଲୀ. ବି. ( ପ୍ରତିରୂପ+କ ) ପ୍ରତିବିମ୍ବ ।

ପ୍ରତିରୂପ୍ୟ—କ୍ଲୀ.ବି.ସମରୂପତା,ତୁଲ୍ୟରୂପତା

ପ୍ରତିରୋଦ୍ଧା—ପୁଂ.ବିଂ. (ପ୍ରତି+ରୁଧ୍+ତୃ) ପ୍ରତିରୋଧକାରୀ.ପ୍ରତିରୋଧକାରକ ।

ପ୍ରତିରୋଧ—ପୁଂ.ବି. (ପ୍ରତି+ରୁଧ୍+ଅ) ପ୍ରତିବନ୍ଧକ, ବାଧା, ନିବାରଣ, ନିଷେଧ, ଅଟକ, ବିପକ୍ଷତା, ପ୍ରତିକୂଳତା, ତିରସ୍କାର, ନିରୋଧ, ପ୍ରତିବିମ୍ବ, ସତ୍ପ୍ରତିପକ୍ଷ, ଚୌର୍ଯ୍ୟ ।

ପ୍ରତିରୋଧକ—ପୁଂ.ବିଂ.(ପ୍ରତି+ରୁଧ୍+ଅକ) ବାଧା ଦେଉଥିବା, ଅଟକକାରୀ, ଅବରୋଧକାରୀ, ପ୍ରତିବନ୍ଧକ, (ବି)ତସ୍କର, ଚୋର ।

ପ୍ରତିରୋଧନ—କ୍ଲୀ. ବି. ( ପ୍ରତି+ରୁଧ୍+ଅନ) ପ୍ରତିରୋଧ, ପ୍ରତିବନ୍ଧକ ।

ପ୍ରତିରୋଧିତ—ବିଂ.(ପ୍ରତି+ରୁଧ୍+ଣି+ତ) ନିବାରିତ, ବ୍ୟାହତ, (ସ୍ତ୍ରୀ) ପ୍ରତିରୋଧିତା ।

ପ୍ରତିରୋଧୀ—ପୁଂ. ବିଂ. (ପ୍ରତି+ରୁଧ୍+ଇନ୍) ପ୍ରତିବନ୍ଧକ, ନିରୋଧକ, ବ୍ୟାଘାତକ (ବି) ଚୌର ।

ପ୍ରତିଲକ୍ଷ(କ୍ଷ୍ୟ)—ସ୍ତ୍ରୀ. ବି.ଉପମା, ତୁଳନା, ଅନୁମିତ ସାଦୃଶ୍ୟ,(ବିଂ)ଉପମାଯୋଗ୍ୟ, ଉପମା ଦ୍ୱାରା ସମାନଥିବାର ପ୍ରତିପାଦିତ

ପ୍ରତିଲକ୍ଷଣ—କ୍ଲୀ. ବି. ଚିହ୍ନ ।

ପ୍ରତିଲଭ୍ୟ—ବିଂ.(ପ୍ରତି+ଲଭ୍+ଯ)ପ୍ରାପ୍ତିଯୋଗ୍ୟ, ଯାହା ଲାଭର ଯୋଗ୍ୟ ।

ପ୍ରତିଲମ୍ଭ—ପୁଂ. ବି.(ପ୍ରତି+ଲମ୍ଭ୍ +ଅ) ଲାଭ ।

ପ୍ରତିଲାଭ—ପୁଂ. ବି. (ପ୍ରତି+ଲଭ୍+ଅ) ପୁନରାୟ ପ୍ରାପ୍ତି, ଲାଭ, ପୁନଃପ୍ରାପ୍ତି ।

ପ୍ରତିଲିପି—ସ୍ତ୍ରୀ.ବି.(ପ୍ରତି+ଲିପି)ପ୍ରତିରୂପଲିପି.ପ୍ରତ୍ୟୁତ୍ତର,ନକଲ,ଅବିକଳ ଲେଖା

ପ୍ରତିଲେଖ—ବି (ପ୍ରତି+ଲେଖ)କୌଣସି ପତ୍ରର ଲିଖିତ ପ୍ରତ୍ୟୁତ୍ତର ।

ପ୍ରତିଲୋମ—ବିଂ. ବାମ, ପ୍ରତିକୂଳ, ବିପରୀତ, ବିରୁଦ୍ଧ, ଓଲଟା, ନୀଚ, ନିୟମବିରୁଦ୍ଧ, ବିଲୋମ, ନୀଚତର ଜାତୀୟ, ବର୍ଣ୍ଣଗତ ନିୟମ ବିରୁଦ୍ଧ, ( କ୍ରି. ବିଂ ) ଲୋମର ବିପରୀତ ଦିଗରେ ।

ପ୍ରତିଲୋମକ—ପୁଂ. ବିଂ. ( ପ୍ରତିଲୋମ+ସ୍ୱାର୍ଥେ,କ) ପ୍ରତିଲୋମ ଦେଖ ।

ପ୍ରତିଲୋମଜ—ବିଂ.(ପ୍ରତି+ଲୋମ+ଜନ୍ +କ.ଅ) ପ୍ରତିଲୋମ ବିବାହରୁ ଉତ୍ପନ୍ନ, ଉତ୍ତମବର୍ଣ୍ଣା ସ୍ତ୍ରୀଠାରୁ ଅଧମବର୍ଣ୍ଣ ପୁରୁଷ ଦ୍ୱାରା ଉତ୍ପନ୍ନ (ସନ୍ତାନ) ।

ପ୍ରତିଲୋମବିବାହ—ପୁଂ.ବି.(କ.ଧା)ଉଚ୍ଚତର ବର୍ଣ୍ଣର କନ୍ୟା ସଙ୍ଗେ ନୀଚତର ବର୍ଣ୍ଣର ପୁରୁଷର ବିବାହ ।

ପ୍ରତିବକ୍ତବ୍ୟ—ବିଂ.(ପ୍ରତି+ବଚ୍+ତବ୍ୟ) ପ୍ରତ୍ୟୁତ୍ତରଯୋଗ୍ୟ ।

ପ୍ରତିବଚନ—କ୍ଲୀ ବି. ପ୍ରତିବାକ୍ୟ, ପ୍ରତ୍ୟୁତ୍ତର, ଉତ୍ତର, ପ୍ରତିଧ୍ୱନି, ତୁଲ୍ୟାର୍ଥବିଶିଷ୍ଟ ବାକ୍ୟ, ବିରୁଦ୍ଧବାକ୍ୟ, ପ୍ରତିନିର୍ଦ୍ଦେଶ ।

ପ୍ରତିବଚସ୍—କ୍ଲୀ.ବି.ପ୍ରତ୍ୟୁତ୍ତର, ଉତ୍ତର ।

ପ୍ରତିବତ୍ସର—ଅବ୍ୟ. ପ୍ରତ୍ୟେକ ବତ୍ସରେ, ପ୍ରତିବର୍ଷ । [ ବନେ ବନେ ।

ପ୍ରତିବନ—ଅବ୍ୟ. ପ୍ରତ୍ୟେକ ବନରେ.

ପ୍ରତିବର୍ଣ୍ଣିକ—ବିଂ. ଅନୁରୂପ ବର୍ଣ୍ଣସମ୍ବନ୍ଧୀୟ, ତୁଲ୍ୟବର୍ଣ୍ଣଯୁକ୍ତ ।

ପ୍ରତିବର୍ତ୍ତନ—କ୍ଲୀ. ବି. (ପ୍ରତି+ବୃତ୍+ଅନ) ଫେରିଆସିବା, ପ୍ରତ୍ୟାଗମନ ।

ପ୍ରତିବସତି—ଅବ୍ୟ. ପ୍ରତ୍ୟେକର ଗୃହରେ

ପ୍ରତିବସଥ—ପୁଂ. ବି.(ପ୍ରତି+ବସ୍+ଅଥ) ଗ୍ରାମ । [ ପଦାର୍ଥ ।

ପ୍ରତିବସ୍ତୁ—କ୍ଲୀ. ବି. ତୁଲ୍ୟରୂପବସ୍ତୁ. ସଦୃଶ

ପ୍ରତିବସ୍ତୂପମା—ସ୍ତ୍ରୀ. ବି. ଅର୍ଥାଳଙ୍କାର ବିଶେଷ,କାବ୍ୟଗତ ଅଳଙ୍କାର ବିଶେଷ

ପ୍ରତିବାକ୍ୟ—କ୍ଲୀ. ବି. ପ୍ରତିରୂପ ବାକ୍ୟ, ଉତ୍ତର, ପ୍ରତ୍ୟୁତ୍ତର, ପ୍ରତିଧ୍ୱନି ।

ପ୍ରତିବା(ଣି)ଣୀ—ସ୍ତ୍ରୀ.ବି.ଉତ୍ତର, ପ୍ରତ୍ୟୁତ୍ତର, ପ୍ରତିକୂଳବାକ୍ୟ, ସମାନାର୍ଥକ ବାକ୍ୟ, ପ୍ରତିଧ୍ୱନି (ଅବ୍ୟ.)ପ୍ରତି କଥାରେ.ଉତ୍ତର, ବିରୁଦ୍ଧଉତ୍ତର ।

ପ୍ରତିବାତ—କ୍ରି.ବିଂ.ଯେଉଁ ଦିଗରୁ ପବନ ବହୁଛି ସେହିଦିଗକୁ, ବାତାଭିମୁଖେ, ବାୟୁର ପ୍ରତିକୂଳରେ,ବାୟୁର ବିପରୀତ ଦିଗରେ ।

ପ୍ରତିବାଦ—ବି. ( ପ୍ରତି+ବଦ୍+ଅ ) ପ୍ରତିକୂଳଉକ୍ତି, ମକଦ୍ଦମାରେ ପ୍ରତିବାଦୀର ପ୍ରଦତ୍ତ ଜବାବ, ଆପତ୍ତି, ବିବାଦ, ପ୍ରତ୍ୟୁତ୍ତର, ଅଭିଯୋଗ ।

ପ୍ରତିବାଦୀ—ପୁଂ. ବିଂ. ( ପ୍ରତି+ବଦ୍+ଇନ୍)ବାଦୀର ବିପକ୍ଷୀୟ ବ୍ୟକ୍ତି,ବିବାଦୀ, ପ୍ରତ୍ୟର୍ଥୀ, ବାଦୀପ୍ରଯୁକ୍ତ ନ୍ୟାୟବିରୁଦ୍ଧ ବାକ୍ୟ, ବିପକ୍ଷପକ୍ଷ, ଶହୁଭିବାପନ୍ନ, ଯେଉଁମାନେ ବୋଲନ୍ତି ବା କହନ୍ତି, ଆସାମୀ, ମୁଦ୍ଦାଲ୍ଲ ।

ପ୍ରତିବାପ—ପୁଂ. ବି. (ପ୍ରତି+ବପ୍+ଅ) କଷାୟ ଔଷଧରେ ଚୂର୍ଣ୍ଣାଦି ପ୍ରକ୍ଷେପ, କଲ୍କ, ସିଠା, ଧାତୁ ଭସ୍ମକରଣ, ପାକୀୟ ଔଷଧବିଶେଷ ।

ପ୍ରତିବାର—ପୁଂ. ବି. (ପ୍ରତି+ବୃ+ଅ) ନିବାରଣ, ପ୍ରତିଷେଧ ।

ପ୍ରତିବାରଣ—କ୍ଲୀ. ବି. (ପ୍ରତି+ବାର+ଅନ) ନିବାରଣ, ଦୈତ୍ୟଭେଦ, ମତ୍ତହସ୍ତୀ, (ବିଂ) ନିବାରକ ।

ପ୍ରତିବାର୍ତ୍ତା—ସ୍ତ୍ରୀ. ବି. ( ପ୍ରତି+ବାର୍ତ୍ତା ) ଲେଉଟ ଖବର, ପ୍ରେରିତ ବାର୍ତ୍ତାର ଉତ୍ତର ।

ପ୍ରତିବାର୍ଯ୍ୟ—ବି°.(ପ୍ରତି+ବୃ+ଯ)ନିବାରଣୀୟ ।

ପ୍ରତିବାସ—ବି. (ପ୍ରତି+ବାସ) ସୁଗନ୍ଧ, ନିକଟରେ ବାସ କରିବା ।

ପ୍ରତିବାସର—ଅବ୍ୟ. ପ୍ରତ୍ୟହ, ପ୍ରତିଦିନ ।

ପ୍ରତିବାସୀ—ପୁଂ. ବି°. (ପ୍ରତି+ବସ୍+ଇନ୍) ଆସନ୍ନଗୃହ, ନିକଟସ୍ଥାୟୀ, (ବି) ନିକଟବର୍ତ୍ତୀ ଗୃହସ୍ଥ, ପଡ଼ୋଶୀ ।

ପ୍ରତିବାହୁ—ପୁଂ.ବି. ଅକ୍ରୂରଙ୍କର ଅନୁଜ, ଶ୍ୱଫଲ୍କଙ୍କର ପୁତ୍ର, ବାହୁର ଅଗ୍ରଭାଗ ।

ପ୍ରତିବିଧାନ—କ୍ଲୀ.ବି.(ପ୍ରତି-ବି-ଧା+ଅନ) ପ୍ରତିକାର, ଲେଉଟ ଉପାୟ, ଉପାୟ, ନିବାରଣ, ପ୍ରତିଶୋଧ, ପ୍ରକୃତିର ଉପାଦାନର ନିମିତ୍ତ ।

ପ୍ରତିବିଧି—ପୁଂ.ବି. (ପ୍ରତି+ବି+ଧା+ଇ) ଉପାୟ ଅବଲମ୍ବନ, ପ୍ରତିବିଧାନ ଦେଖ ।

ପ୍ରତିବିଧିତ୍ସା—ସ୍ତ୍ରୀ.ବି. (ପ୍ରତି+ବି+ଧା+ସନ୍+ଆ) ପ୍ରତିକାରର ଇଚ୍ଛା, ପ୍ରତିବିଧାନର ଇଚ୍ଛା ।

ପ୍ରତିବିଧେୟ—ବି°. (ପ୍ରତି+ବି+ଧା+ଯତ୍) ପ୍ରତିବିଧାନର ଯୋଗ୍ୟ ।

ପ୍ରତିବିନ୍ଧ୍ୟ—ପୁଂ.ବି. ଦ୍ରୌପଦୀଙ୍କର ଗର୍ଭସମ୍ଭୂତ ଯୁଧିଷ୍ଠିରଙ୍କର ପୁତ୍ର ।

ପ୍ରତିବିଭାଗ—ପୁଂ. ବି. (ପ୍ରତି+ବି+ଭଜ୍+ଅ) ପ୍ରତ୍ୟେକ ବିଭାଗ ।

ପ୍ରତିବିମ୍ବ—ପୁଂ.କ୍ଲୀ.ବି. (ପ୍ରତି+ବିମ୍ବ) ପ୍ରତିଚ୍ଛାୟା, ସମାନାକୃତି, (ବି.ଗ୍ରା) ଦର୍ପଣ, ଆରଶୀ, ମୂର୍ତ୍ତି, ପ୍ରତିମା ।

ପ୍ରତିବିମ୍ବନ—କ୍ଲୀ. ବି. (ପ୍ରତି+ବିମ୍ବ+ଅନ) ପ୍ରତିବିମ୍ବ, ପ୍ରତିଫଳନ, ଅନୁକରଣ, ଦର୍ପଣାଦି ସ୍ୱଚ୍ଛ ପଦାର୍ଥରେ ଅନୁରୂପ ଆକୃତି ପତନ ।

ପ୍ରତିବିମ୍ବବାଦ—ପୁଂ. ବି. ବେଦାନ୍ତର ସିଦ୍ଧାନ୍ତବିଶେଷ, ଯହିଁରେ ଜୀବଙ୍କୁ ଈଶ୍ୱରଙ୍କର ପ୍ରତିବିମ୍ବଥିବାର ସ୍ୱୀକାର କରାଯାଏ ।

ପ୍ରତିବିମ୍ବିତ—ବି°. (ପ୍ରତିବିମ୍ବ+ଇତ) ପ୍ରତିଫଳିତ, ଯାହାର ଛାୟା ଦର୍ପଣ ବା ଜଳାଦିରେ ପଡ଼ିଥାଏ ।

ପ୍ରତିବିରକ୍ତି—ସ୍ତ୍ରୀ.ବି. (ପ୍ରତି+ବି+ରମ୍+ତି) ବୈରାଗ୍ୟ, ପ୍ରତ୍ୟେକ ବସ୍ତୁପ୍ରତି ବିରକ୍ତି, ବିରାମ ।

ପ୍ରତିବିରୁଦ୍ଧ—ବି°. ବିଦ୍ରୋହଭାବାପନ୍ନ, ବିରୁଦ୍ଧାଚାରୀ । [ ଉତ୍କୃଷ୍ଟ ।

ପ୍ରତିବିଶିଷ୍ଟ—ବି°.(ପ୍ରତି+ବି+ଶସ୍+ତ)

ପ୍ରତିବିଶେଷ—ପୁଂ.ବି. ବିଶେଷ ଘଟନା ।

ପ୍ରତିବିଶ୍ୱ—କ୍ଲୀ. ବି. ବିଶ୍ୱର ପ୍ରତ୍ୟେକ ପଦାର୍ଥ । [ ଆଚାରିତ ।

ପ୍ରତିବିଷା—ସ୍ତ୍ରୀ. ବି. ଅତିବିଷା, ଅଡ଼ୁଷୀ,

ପ୍ରତିବିଷ୍ଣୁ—କ୍ଲୀ. ବି. ପ୍ରତ୍ୟେକ ବିଷ୍ଣୁଙ୍କ ପ୍ରତି, (ପୁଂ.ବି) ବିଷ୍ଣୁଙ୍କର ପ୍ରତିଦ୍ୱନ୍ଦ୍ୱୀ, ମୁଚୁକୁନ୍ଦ ରାଜା ।

ପ୍ରତିହିତ—ବି°. (ପ୍ରତି+ହିତ) ପ୍ରତିବିଧାନକୃତ, ଯାହାର ପ୍ରତିବିଧାନ କରାଯାଇଅଛି, ଶୋଭିତ, ସଜ୍ଜିତ, ନିବାରିତ, ଉପଶମିତ ।

ପ୍ରତିବୀକ୍ଷଣୀୟ—ବି°.ପ୍ରତିବୀକ୍ଷଣର ଯୋଗ୍ୟ, ଦର୍ଶନଯୋଗ୍ୟ, ଦ୍ରଷ୍ଟବ୍ୟ ।

ପ୍ରତିବୀଜ—କ୍ଲୀ. ବି. ତାରନାଗାଭ ହେମକୃତ ପାରଦନିବନ୍ଧନ ଦ୍ରବ୍ୟ, (ବି°) ଯାହାର ବୀଜ ନଷ୍ଟହୋଇଅଛି, ଯାହାର ଉତ୍ପାଦିକା ଶକ୍ତି ନାହିଁ । [ ଶତ୍ରୁ ।

ପ୍ରତିବୀର—ପୁଂ.ବି. ସମକକ୍ଷ ବୀର, ତୁଲ୍ୟ-

ପ୍ରତିବାର୍ଯ୍ୟ—ବି°. ପ୍ରତିରୋଧ କରିବାର ଉପଯୁକ୍ତ ଶକ୍ତିସମ୍ପନ୍ନ ।

ପ୍ରତିବୃଦ୍ଧ—ପୁଂ. ବି°. (ପ୍ରତି+ବୃଦ୍ଧ) ପ୍ରସିଦ୍ଧ, ଉନ୍ନତ, ଯେ ସ୍ୱୟଂ ନିଦରୁ ଉଠିଛି । [ ଗାତ ବୃଦ୍ଧି ।

ପ୍ରତିବୃଦ୍ଧି—ସ୍ତ୍ରୀ.ବି. (ପ୍ରତି+ବୃଦ୍ଧି) ବିପ-

ପ୍ରତିବେଳ—ଅବ୍ୟ. ପ୍ରତ୍ୟେକବେଳାରେ ପ୍ରତି ମୁହୂର୍ତ୍ତରେ, ସର୍ବଦା ।

ପ୍ରତିବେଶ—ପୁଂ. ବି. (ପ୍ରତି+ବିଶ୍+ଅଧି.ଅ) ପ୍ରତିବାସିଗୃହ, ସନ୍ନିକଟସ୍ଥ ଅଞ୍ଚଳ, ପଡ଼ଶାଘର, (ବି°) ଆସନ୍ନବର୍ତ୍ତୀ

ପ୍ରତିବେଶବାସୀ—ପୁଂ. ବି°. (ପ୍ରତି+ବିଶ୍+ବସ୍+ଇନ୍) ପ୍ରତିବାସୀ, ପଡ଼ୋଶୀ, (ସ୍ତ୍ରୀ) ପ୍ରତିବେଶବାସିନୀ ।

ପ୍ରତିବେଶୀ—ପୁଂ.ବି°. (ପ୍ରତି+ବିଶ୍+କ.ଇନ୍) ପ୍ରତିବାସୀ, ନିକଟବର୍ତ୍ତୀ ଗୃହସ୍ଥ, ପଡ଼ୋଶୀ । [ ପ୍ରତ୍ୟେକ ଗୃହ ।

ପ୍ରତିବେଶ୍ମ—କ୍ଲୀ. ବି. ପ୍ରତିବାସୀର ଗୃହ,

ପ୍ରତିବୈର—କ୍ଲୀ. ବି. ପ୍ରତିହିଂସା, ଅପକାରର ପ୍ରତ୍ୟପକାର ।

ପ୍ରତିବୋଢ଼ବ୍ୟ—ବି°. (ପ୍ରତି+ବହ୍+ତବ୍ୟ) ପ୍ରତିବହନୀୟ, ପ୍ରତିବହନ ଯୋଗ୍ୟ ।

ପ୍ରତିବୋଧ—ପୁଂ.ବି. (ପ୍ରତି+ବୋଧ) ବିଶିଷ୍ଟଜ୍ଞାନ, ଜାଗରଣ, ନିଦ୍ରା ଭାଙ୍ଗିବା, ସ୍ମରଣ, ଭାବାନ୍ତର ।

ପ୍ରତିଶଙ୍କନୀୟ—ପୁଂ.ବି°.ଯାହାକୁ ସର୍ବଦା ସର୍ବୋଭାବରେ ଭୟ ବା ସନ୍ଦେହ କରାଯାଏ, ସର୍ବଥା ଶଙ୍କା ଉତ୍ପାଦକ ।

ପ୍ରତିଶଙ୍କା—ସ୍ତ୍ରୀ. ବି. ସର୍ବଦା ଶଙ୍କା ବା ଭୀତି, ଗୁରୁତର ସନ୍ଦେହ, ସତତ ଭୟ ।

ପ୍ରତିଶତ—ଅବ୍ୟ. (ପ୍ରତି+ଶତ) ଶତକଡ଼ା, ପ୍ରତିଶହ, ପ୍ରତିଶହ ହିସାବରେ

ପ୍ରତିଶତ୍ରୁ—ପୁଂ.ବି. ପ୍ରତିପକ୍ଷ ଶତ୍ରୁ ।

ପ୍ରତିଶବ୍ଦ—ପୁଂ.ବି. ପ୍ରତିଧ୍ୱନି, ସମାନାର୍ଥକ ଅନ୍ୟଶବ୍ଦ, ବୈୟାକରଣ ଶବ୍ଦବିଶେଷ ।

ପ୍ରତିଶବ୍ଦଗ—ବି°. (ପ୍ରତିଶବ୍ଦ+ଗମ୍+ଅ) ଶବ୍ଦାନୁସାରେ ଗମନକାରୀ ।

ପ୍ରତିଶମ—ପୁଂ.ବି. ମୁକ୍ତି, ନାଶ ।

ପ୍ରତିଶୟ(ନ)—କ୍ଲୀ.ବି.(ପ୍ରତି+ଶୀ+ଭା.ଅ ବା ଅନ) ପ୍ରତିଶାପ, ଧାରଣାଦେବା, ଅଭୀଷ୍ଟ ସିଦ୍ଧି ପାଇଁ ଦେବତାଙ୍କ ଠାରୁ ଆଦେଶ ଲଭ କରିବା ସଙ୍କଳ୍ପରେ ଭୋଜନାଦି ତ୍ୟାଗକରି ଦେବତାଙ୍କ ନିକଟରେ ପଡ଼ିରହିବା, ଧରଣାପଡ଼ିବା ।

ପ୍ରତିଶୟିତ—ବି°.(ପ୍ରତି+ଶୀ+ତ) ପ୍ରତିଶୟନକାରୀ ।

ପ୍ରତିଶର—ପୁଂ. ବି. ମନ୍ତ୍ର ଯନ୍ତ୍ର କରଣ, ବଶୀଭୂତୀକରଣ । [ ସ୍ଥାପନ ।

ପ୍ରତିଶରଣ—ପୁଂ.ବି. ସ୍ୱକର୍ମରେ ବିଶ୍ୱାସ-

ପ୍ରତିଶଶୀ—ପୁଂ.ବି. ଚନ୍ଦ୍ରଙ୍କର ପ୍ରତିବିମ୍ବ ।

ପ୍ରତିଶାଖ—ଅବ୍ୟ. ବେଦର ପ୍ରତ୍ୟେକ ଶାଖାରେ ।

ପ୍ରତିଶାପ—ପୁଂ. ବ. ପ୍ରତ୍ୟଭିସମ୍ପାତ, ଅଭିଶାପ ଦେଇଥିବା ବ୍ୟକ୍ତିକୁ ଅଭିଶପ୍ତ ବ୍ୟକ୍ତିର ଦେବା ଅଭିଶାପ ।

ପ୍ରତିଶାୟିତ—ବିଂ. (ପ୍ରତି+ଶୀ+କ.ତ) ଯେ ଦେବତାଙ୍କ ପାଖରେ ଧାରଣା ଦେଇଥାଏ ।

ପ୍ରତିଶାସନ—କ୍ଲୀ. ବ. (ପ୍ରତି+ଶାସ୍+ଭା.ଅନ) ବିଶିଷ୍ଟ ଆଦେଶ, ପ୍ରଥମ ଆଦେଶକୁ ରଦ୍ଦ କରିବା ହୁକୁମ, ଆହ୍ୱାନ କରି ଭୃତ୍ୟମାନଙ୍କୁ କାର୍ଯ୍ୟରେ ପ୍ରେରଣ । [ ଶିଷ୍ୟ ।

ପ୍ରତିଶିଷ୍ୟ—ପୁଂ.ବ.ଶିଷ୍ୟାନୁଶିଷ୍ୟ,ନାତି-

ପ୍ରତିଶିଷ୍ଟ—ବିଂ. ( ପ୍ରତି+ଶାସ୍+ତ ) ପ୍ରେଷିତ, ନିରାକୃତ, ପ୍ରତ୍ୟାଖ୍ୟାତ ।

ପ୍ରତିଶୀର୍ଷ—ପୁଂ.ବ. ପ୍ରତିନିଧି, ବଦଳି ।

ପ୍ରତିଶୀର୍ଷକ—ବ. ( ପ୍ରତିଶୀର୍ଷ+କ ) ନିଷ୍କ୍ରୟ, ମୂଲ୍ୟ ।

ପ୍ରତିଶୀବନ—ବ. ବିଶ୍ରାମସ୍ଥଳ ।

ପ୍ରତିଶୂନ୍ୟ—ଅବ୍ୟ. ଶୂନ୍ୟରନ୍ଧ୍ରର ଅଭିମୁଖରେ ।

ପ୍ରତିଶୋଧ—ପୁଂ. ବ. (ପ୍ରତି+ଶୋଧ) ପ୍ରତିହିଂସା, ପ୍ରତିବିଧାନ ।

ପ୍ରତିଶ୍ୟା(ସ୍ୟା)—ସ୍ତ୍ରୀ.ବ.ପ୍ରତିଶ୍ୟାୟ,ନାସାରୋଗବିଶେଷ ।

ପ୍ରତିଶ୍ୟା(ସ୍ୟା)ୟ—ପୁଂ.ବ. ନାସାରୋଗବିଶେଷ, ଶର୍ଦ୍ଦି, ପିନସରୋଗ ।

ପ୍ରତିଶ୍ରମ—ପୁଂ.ବ. ପରିଶ୍ରମ,ବ୍ୟାୟାମ ।

ପ୍ରତିଶ୍ରୟ—ପୁଂ.ବ. (ପ୍ରତି+ଶ୍ରି+ମି.ଅ) ଯଜ୍ଞଶାଳା, ସଭା, ଆଶ୍ରୟ, ନିବାସ, ବାସସ୍ଥାନ, ଗୃହ ।

ପ୍ରତିଶ୍ରବ—ପୁଂ.ବ.(ପ୍ରତି+ଶ୍ରୁ+ମି.ଅ) ଅଙ୍ଗୀକାର, ସ୍ୱୀକାର, ପ୍ରତ୍ୟୁତ୍ତର,ପ୍ରତିଶ୍ରୁତି ।

ପ୍ରତିଶ୍ରବଣ—କ୍ଲୀ.ବ. (ପ୍ରତି+ଶ୍ରୁ+ଭା. ଅନ) ଅଙ୍ଗୀକାର, ଶ୍ରବଣାନୁଗତ ।

ପ୍ରତିଶ୍ରବସ୍—ପୁଂ. ବ. ଗୋତ୍ରପ୍ରବର ଋଷିଭେଦ, ପରୀକ୍ଷିତ ପୁତ୍ର, ଭୀମସେନାତ୍ମଜ ।

ପ୍ରତିଶ୍ରୁତ—ସ୍ତ୍ରୀ. ବ. (ପ୍ରତି+ଶ୍ର+କ୍ୱିପ୍) ପ୍ରତିଧ୍ୱନି,ପ୍ରତିଶବ୍ଦ,ପ୍ରତିଶ୍ରୁତି,ପ୍ରତିଜ୍ଞା ।

ପ୍ରତିଶ୍ରୁତ—ବିଂ.(ପ୍ରତି+ଶ୍ରୁ+ତ)ଅଙ୍ଗୀକୃତ, ସ୍ୱୀକୃତ, ପ୍ରତିଜ୍ଞାତ ।

ପ୍ରତିଶ୍ରୁତି—ସ୍ତ୍ରୀ.ବ. (ପ୍ରତି+ଶ୍ରୁ+ଭା.ତି) ଅଙ୍ଗୀକାର,ସ୍ୱୀକାର,ପ୍ରତିଧ୍ୱନି, ପ୍ରତିଜ୍ଞା

ପ୍ରତିଶ୍ଳୋକ--ଅବ୍ୟ.ପ୍ରତ୍ୟେକ ଶ୍ଳୋକରେ ।

ପ୍ରତିଷିଦ୍ଧ—ବିଂ. (ପ୍ରତି+ସିଧ୍+ମି.ତ) ପ୍ରତିଷେଧ ବିଷୟ,ନିଷିଦ୍ଧ,ନିବାରିତ ।

ପ୍ରତିଷେଦ୍ଧା—ପୁଂ. ବିଂ. (ପ୍ରତି+ସିଧ୍+ତୃ) ପ୍ରତିଷେଧକର୍ତ୍ତା, ନିଷେଧକ, ନିବାରକ, (ସ୍ତ୍ରୀ) ପ୍ରତିଷେଦ୍ଧ୍ରୀ ।

ପ୍ରତିଷେଦ୍ଧବ୍ୟ—ବିଂ. (ପ୍ରତି+ସିଧ୍+ତବ୍ୟ) ପ୍ରତିଷେଧନୀୟ,ପ୍ରତିଷେଧର ଯୋଗ୍ୟ ।

ପ୍ରତିଷେଧ—ପୁଂ. ବ. (ପ୍ରତି+ସିଧ୍+ଭା.ଅ) ନିଷେଧ, ନିବାରଣ, ଅଙ୍ଗୀକାର, ବିରୋଧ, ପ୍ରତିବାଦ, ଅଟକାଇବା, ବର୍ଜ୍ଜନ, ପରିହାର, ତ୍ୟାଗ, ନିୟମର ନିପାତନ, ବାକ୍ୟାଳଂକାରବିଶେଷ ।

ପ୍ରତିଷେଧକ—ପୁଂ. ବିଂ. (ପ୍ରତି+ସିଧ୍+ଅକ) ପ୍ରତିଷେଧକର୍ତ୍ତା,ନିବାରକ, ପ୍ରତିକାରକାରୀ ।

ପ୍ରତିଷେଧନ—କ୍ଲୀ. ବ. (ପ୍ରତି+ସିଧ୍+ଅନ) ପ୍ରତିଷେଧ, ନିଷେଧ ।

ପ୍ରତିଷେଧନୀୟ—ବିଂ. (ପ୍ରତି+ସିଧ୍+ଅନୀୟ) ପ୍ରତିଷେଧଯୋଗ୍ୟ,ପ୍ରତିଷେଧାର୍ହ । [ ବାକ୍ୟ କଥନ ।

ପ୍ରତିଷେଧୋକ୍ତି—ସ୍ତ୍ରୀ. ବ. ପ୍ରତିଷେଧ-

ପ୍ରତିଷେଧୋପମା—ସ୍ତ୍ରୀ. ବ. ଉପମାଳଂକାର ଭେଦ ।

ପ୍ରତିଷ୍କ—ପୁଂ. ବ. ଦୂତ ।

ପ୍ରତିଷ୍କଶ—ପୁଂ. ବ. (ପ୍ରତି+କଶ୍+ଅ) ସହାୟ, ବାର୍ତ୍ତାବହ, ପୁରୋଗ, ଅଗ୍ରବର୍ତ୍ତୀ ।

ପ୍ରତିଷ୍କଷ—ପୁଂ.ବ.(ପ୍ରତି+କଷ୍+ଅ) ଚର୍ମରଜ୍ଜୁ, ଚମଡ଼ଦଉଡ଼ି । [ ବହ ।

ପ୍ରତିଷ୍କସ—ପୁଂ. ବ. ଚର, ଦୂତ,ବାର୍ତ୍ତା-

ପ୍ରତିଷ୍ଟବ୍ଧ—ବିଂ.ବାଧାପ୍ରାପ୍ତ,ରୁଦ୍ଧଗତି ।

ପ୍ରତିଷ୍ଟମ୍ଭ—ପୁଂ. ବ. (ପ୍ରତି+ସ୍ତମ୍ଭ+ଅ) ପ୍ରତିବନ୍ଧ, ବାଧା, ରୋଧ ।

ପ୍ରତିଷ୍ଟୋତ—ବିଂ.ପ୍ରତିକର୍ମରେ ବିଶେଷ ଦକ୍ଷ ।

ପ୍ରତିଷ୍ଠ—ପୁଂ. ବ. (ପ୍ରତି+ସ୍ଥା+ଅ) ଜୈନଭେଦ, (ବିଂ) ଗୌରବାନ୍ୱିତ, ପ୍ରତିପତ୍ତିଶାଳୀ, ଖ୍ୟାତିଯୁକ୍ତ,ପ୍ରତିଷ୍ଠାଯୁକ୍ତ ।

ପ୍ରତିଷ୍ଠା—ସ୍ତ୍ରୀ. ବ. (ପ୍ରତି+ସ୍ଥା+ଭା. ଅ+ଆ) ସୁଖ୍ୟାତି, ସୁନାମ, ପ୍ରସିଦ୍ଧି, ଗୌରବ, (ଅଧି.ଅ) କ୍ଷିତି, ପୃଥିବୀ, (ଭା.ଅ) ଉଚ୍ଚପଦପ୍ରାପ୍ତି,ବ୍ରତାଦିର ଉଦ୍ୟାପନା, ସମାପ୍ତି, ଚତୁରକ୍ଷର ଛନ୍ଦୋବିଶେଷ, ଅବସ୍ଥାନ, ସ୍ଥିତି, ଆଶ୍ରୟ, ସ୍ଥାନ, ଆସ୍ପଦ, ସୀମା, ସ୍ଥିରତା, ଅଧ୍ୟବସାୟ, ମନ୍ଦିର--ଦେବତା--ଜଳାଶୟ ଓ ଗୃହଆଦି ପ୍ରସ୍ତୁତ ହେବାପରେ ସେମାନଙ୍କୁ ମନ୍ତ୍ରାଦିଦ୍ୱାରା ପରିଶୁଦ୍ଧକରି ବ୍ୟବହାର ଯୋଗ୍ୟ କରିବା,ସଂସ୍ଥାପନ, ମୂଳଦୁଆ,ଦ୍ୱିଜାତିଙ୍କର ଗର୍ଭାଧାନଠାରୁ ବିବାହ ପର୍ଯ୍ୟନ୍ତ କର୍ତ୍ତବ୍ୟ ସଂସ୍କାରମାନ, ଦେବବ୍ରାହ୍ମଣ ବା ସର୍ବସାଧାରଣଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ,କନ୍ୟାଦାନ,ଶରୀର

ପ୍ରତିଷ୍ଠାକରିବା—ଗ୍ରା. କ୍ରି. ନୂତନଘର ପୁଷ୍କରିଣୀ କୂପ ଦେବାଳୟ ଦେବତାଆଦିଙ୍କୁ ବୈଦିକ ମନ୍ତ୍ରାଦିଦ୍ୱାରା ପରିଶୁଦ୍ଧକରି ଉଦ୍ଦିଷ୍ଟ କାର୍ଯ୍ୟପାଇଁ ଉତ୍ସର୍ଗ କରିବା, ସଂସ୍ଥାପନ କରିବା, ପ୍ରଶଂସା କରିବା ।

ପ୍ରତିଷ୍ଠକାମ—ପୁଂ ବିଂ. ଯଶଃପ୍ରାର୍ଥୀ, ଗୃହାଦିର ପ୍ରତିଷ୍ଠା କରିବାରେ ଇଚ୍ଛୁକ, ସ୍ଥିତିକାମ ।

ପ୍ରତିଷ୍ଠାତା—ପୁଂ. ବିଂ. (ପ୍ରତି+ସ୍ଥା+କ.ତୃ)ଯେ ପ୍ରତିଷ୍ଠା କରେ,ସଂସ୍ଥାପକ, ସ୍ଥାପୟିତା, (ସ୍ତ୍ରୀ) ପ୍ରତିଷ୍ଠାତ୍ରୀ ।

ପ୍ରତିଷ୍ଠାନ—କ୍ଲୀ. ବ. (ପ୍ରତି+ସ୍ଥା+ଅନ) ଜନପଦବିଶେଷ,ଆଲ୍ଲାହାବାଦର ପ୍ରାଚୀନ ନାମ, ଶାଲିବାହନଙ୍କ ରାଜଧାନୀ, ପ୍ରତିଷ୍ଠା, ପ୍ରତିପତ୍ତି, ପ୍ରସିଦ୍ଧି, ଲୋକହିତାର୍ଥେ ପ୍ରତିଷ୍ଠିତ ବ୍ୟବସ୍ଥା ବା

ବିଷୟ, ଅନୁଷ୍ଠାନ, ସଂସ୍ଥାପନ,ବ୍ରତାଦିର ଉଦ୍‌ଯାପନ ସମ୍ବନ୍ଧୀୟ କର୍ତ୍ତବ୍ୟକର୍ମ ।

**ପ୍ରତିଷ୍ଠାନ୍ୱିତ**—ବିଂ. (ଅତତ୍)ଗୌରବଯୁକ୍ତ, ପ୍ରତିଷ୍ଠିତ,ସୁଖ୍ୟାତିଯୁକ୍ତ,ଯଶସ୍ୱୀ, ବିଖ୍ୟାତ, ପ୍ରସିଦ୍ଧ ।

**ପ୍ରତିଷ୍ଠାପନ**—କ୍ଲୀ. ବି. (ପ୍ରତି + ସ୍ଥା + ଣି + ଅନ)ଦେବମୂର୍ତ୍ତି ଆଦିର ପ୍ରତିଷ୍ଠାକରଣ, ଅବସ୍ଥାପନ,ନିର୍ମାଣ, ସମାପନ ।

**ପ୍ରତିଷ୍ଠାପୟିତା**—ପୁଂ. ବିଂ. (ପ୍ରତି+ସ୍ଥା +ଣି+ତୃ) ପ୍ରତିଷ୍ଠାନକର୍ତ୍ତା ।

**ପ୍ରତିଷ୍ଠାପୟିତବ୍ୟ**—ବିଂ. (ପ୍ରତି+ସ୍ଥା+ ଣି+ତବ୍ୟ)ସ୍ଥାପନଯୋଗ୍ୟ,ସ୍ଥାପନାର୍ହ ।

**ପ୍ରତିଷ୍ଠାପିତ**—ବିଂ.(ପ୍ରତି+ସ୍ଥାପି+ତ) ସ୍ଥାପିତ, ଅର୍ପିତ, ଉତ୍ସୃଷ୍ଟ, ପ୍ରତିଷ୍ଠା କରାଯାଇଥିବା, ନିର୍ମିତ, ସମାପିତ ।

**ପ୍ରତିଷ୍ଠାବାନ୍**—ପୁଂ. ବିଂ. (ପ୍ରତିଷ୍ଠା + ବତ୍) ପ୍ରତିଷ୍ଠାଯୁକ୍ତ,ଖ୍ୟାତିଯୁକ୍ତ, ପ୍ରତିଷ୍ଠିତ,ଯଶସ୍ୱୀ, ଗୌରବାନ୍ୱିତ, ପ୍ରସିଦ୍ଧ, ପ୍ରତିପତ୍ତିଶାଳୀ, (ସ୍ତ୍ରୀ) ପ୍ରତିଷ୍ଠାବତୀ ।

**ପ୍ରତିଷ୍ଠିତ**—ବିଂ. (ପ୍ରତି+ସ୍ଥା+ଇତ) ସ୍ଥିତ, ଅଧିରୂଢ଼, ବଦ୍ଧମୂଳ, ଅଧିଗତ, ପ୍ରତିଷ୍ଠାଯୁକ୍ତ,ଗୌରବାନ୍ୱିତ, ବିଖ୍ୟାତ, ସଂସ୍କୃତ, ଆରବ୍ଧ, ଉତ୍ସର୍ଗୀକୃତ,ସମାପିତ, ସମାହୃତ,ଜାତପ୍ରତିଷ୍ଠଦେବାଦି. (ପୁଂ.ବି) ବିଷ୍ଣୁ ।

**ପ୍ରତିଷ୍ଣାତ**—ବିଂ. ( ପ୍ରତି+ସ୍ନା+ତ ) ପ୍ରତିସ୍ନାତ, ବିଶୁଦ୍ଧ, ପବିତ୍ର, ପୂତ ।

**ପ୍ରତିଷ୍ଣିକା**—ସ୍ତ୍ରୀ. ବି. (ପ୍ରତି+ସ୍ନା+କ +ଆ) ପ୍ରତିସ୍ନାନକାରିଣୀ ସ୍ତ୍ରୀ ।

**ପ୍ରତିସଂକ୍ରମ**—ପୁଂ. ବି. (ପ୍ରତି+ସମ୍+ କ୍ରମ୍+ଅ) ପ୍ରତିଚ୍ଛାୟା, ସଞ୍ଚାର, (ବିଂ) ପ୍ରତିସଂକ୍ରାନ୍ତ, ପ୍ରତିଚ୍ଛାୟାପନ୍ନ ।

**ପ୍ରତସଂଖ୍ୟାନ**--କ୍ଲୀ.ବି.ପ୍ରସଂଖ୍ୟାନ, ସଂଖ୍ୟାଦିସିଦ୍ଧ ଜ୍ଞାନବିଶେଷ ।

**ପ୍ରତିସଂଯୋଦ୍ଧା**—ପୁଂ. ବି. (ପ୍ରତି+ସମ୍+ ଯୁଧ୍ +ତୃ) ପ୍ରତିଯୋଦ୍ଧା, ତୁଲ୍ୟରୂପ ଯୋଦ୍ଧା ।

**ପ୍ରତିସଂଲୟନ**—କ୍ଲୀ. ବି. (ପ୍ରତି + ସମ୍ + ଲୀ + ଅନ) ସମ୍ପୂର୍ଣ୍ଣରୂପେ ଲୀନହେବା, ଗୁପ୍ତସ୍ଥବ ।

**ପ୍ରତିସମ୍ବତ୍ସର**—ଅବ୍ୟ. ପ୍ରତ୍ୟେକବତ୍ସର, ପ୍ରତିବର୍ଷରେ ।

**ପ୍ରତିସଂବିତ୍**—ସ୍ତ୍ରୀ. ବି. ପ୍ରତ୍ୟେକ ବସ୍ତୁର ଯଥାର୍ଥ ଜ୍ଞାନ ।

**ପ୍ରତିସଂବିଧାନ**—କ୍ଲୀ.ବି. (ପ୍ରତି+ସମ୍+ +ବି+ଧା+ଭା.ଅନ) ପ୍ରତିବିଧାନ, ପ୍ରତିକାର ।

**ପ୍ରତିସଂବେଦକ**—ପୁଂ.ବିଂ. ପୂର୍ଣ୍ଣତତ୍ତ୍ୱଜ୍ଞ ।

**ପ୍ରତିସଂବେଦୀ**—ପୁଂ.ବିଂ.ସୁଖଭୋଗୀ,ସୁଖୀ ।

**ପ୍ରତିସଂସ୍ଥାନ**—କ୍ଲୀ. ବି. (ପ୍ରତି+ସମ୍+ସ୍ଥା +ଅନ) ମଧ୍ୟରେ ଅବସ୍ଥାନ, ପ୍ରବେଶ ।

**ପ୍ରତିସଂହାର**—ପୁଂ. ବି. (ପ୍ରତି + ସମ୍ + ହୃ+ଅ) ନିବର୍ତ୍ତନ, ପ୍ରତ୍ୟାକର୍ଷଣ, ସଂକୋଚ,ସମ୍ବରଣ,ପ୍ରତ୍ୟାହାର,ଗୁଡ଼ିବା, ଫେରାଇନେବା ।

**ପ୍ରତିସଂହୃତ**—ବିଂ. (ପ୍ରତି+ସ+ହୃ+ ମିଂ.ତ) ସଙ୍କୁଚିତ,ପ୍ରତ୍ୟାନୀତ,ଅନୁରୁଦ୍ଧ, ନିବର୍ତ୍ତିତ ।

**ପ୍ରତିସଙ୍ଖିକା**—ସ୍ତ୍ରୀ. ବି. ବୌଦ୍ଧଭିକ୍ଷୁମାନଙ୍କର ଧୂଳିନିବାରଣାର୍ଥ ପରିଧେୟ ବସ୍ତ୍ରାଦି ।

**ପ୍ରତିସଞ୍ଚର**—ପୁଂ. ବି. (ପ୍ରତି + ସମ୍ + ଚର୍ + ଅଧି.ଅ) ପ୍ରଳୟଭେଦ,ପ୍ରଳୟମାତ୍ର ।

**ପ୍ରତିସଞ୍ଜିହୀର୍ଷୁ**—ପୁଂ. ବିଂ. (ପ୍ରତି+ସମ୍ +ହୃ+ସନ୍+ଉ) ପ୍ରତିସଂହାର କରିବାକୁ ଇଚ୍ଛୁକ ।

**ପ୍ରତିସନ୍ଦେଶ**—ପୁଂ.ବି. ସନ୍ଦେଶାନୁସାରେ ପ୍ରତ୍ୟୁତ୍ତରରୂପେବାଚକ ବୃତ୍ତାନ୍ତବିଶେଷ ।

**ପ୍ରତିସନ୍ଧାନ**—କ୍ଲୀ. ବି. (ପ୍ରତି+ସମ୍ +ଧା+ଭା.ଅନ) ଅନୁସନ୍ଧାନ, ଅନୁଚିନ୍ତନ, ସ୍ତୁତିପାଠ,ନଷ୍ଟଦ୍ରବ୍ୟର ଅନ୍ୱେଷଣ ।

**ପ୍ରତିସନ୍ଧି**—ପୁଂ. ବି. (ପ୍ରତି+ସମ୍+ଧା+ ଇ) ବିୟୋଗ, ଉପରମ, ପ୍ରତିସନ୍ଧାନ, ସନ୍ଧିରେ ସନ୍ଧିରେ, ପୁନର୍ଜନ୍ମ ।

**ପ୍ରତିସନ୍ଧେୟ**—ବିଂ. (ପ୍ରତି+ସମ୍+ଧା +ମିଂ.ଯ)ପ୍ରତିକାର୍ଯ୍ୟ,ପ୍ରତିକାରଯୋଗ୍ୟ

**ପ୍ରତିସମ**—ବିଂ. ବିସଦୃଶ ।

**ପ୍ରତିସମାଧାନ**—କ୍ଲୀ. ବି. (ପ୍ରତି+ସମ୍ +ଆ+ଧା+ଅନ) ପ୍ରତୀକାର,ପ୍ରତିବିଧାନ ।

**ପ୍ରତିସମାଧେୟ**—ବିଂ. (ପ୍ରତି+ସମ୍+ ଆ+ଧା+ଯ) ପ୍ରତିକାର୍ଯ୍ୟ, ପ୍ରତିକାରର ଯୋଗ୍ୟ, ପ୍ରତିବିଧେୟ ।

**ପ୍ରତିସମାସନ**—କ୍ଲୀ.ବି. (ପ୍ରତି+ସମ୍+ ଆ+ଅସ୍+ଅନ)ନିରସନ,ନିବାରଣ ।

**ପ୍ରତିସର**—ପୁଂ. ବି. (ପ୍ରତି+ସୃ+ଅ) ମନ୍ତ୍ରଭେଦ, ମାଲ୍ୟ, ହାର, ବଳୟ, କଙ୍କଣ, ବ୍ରଣଶୁଦ୍ଧି, ଚମୂପୃଷ୍ଠ, ପ୍ରାତଃକାଳ, ମଣ୍ଡଳ, ହସ୍ତୀର ଅରକ୍ଷ, ଭୃତ୍ୟ, ପ୍ରଜ୍ଞା, ବିବାହରେ ପିନ୍ଧାଯିବା ହସ୍ତସୂତ୍ର, କୌତୁକସୂତ୍ର, (ବିଂ) ଆଶ୍ରିତ, ଆଡ଼କୁ ଯାଉଥିବା, ଅବଲମ୍ବନକାରୀ ।

**ପ୍ରତିସରଣ**—କ୍ଲୀ.ବି. (ପ୍ରତି+ସୃ+ଅନ) ଠେସଦେଇ ରହିବା ।

**ପ୍ରତିସର୍ଗ**—ପୁଂ. ବି. (ପ୍ରତି+ସୃଜ୍+ଅ) ବ୍ରହ୍ମାଙ୍କର ସୃଷ୍ଟିରପର ଦକ୍ଷାଦିଙ୍କର ସୃଷ୍ଟି, ମରୀଚ୍ୟାଦିକର୍ତ୍ତୃକ ସୃଷ୍ଟି, ପୁରାଣର ପଞ୍ଚଲକ୍ଷଣ ଅନ୍ତର୍ଗତ ଲକ୍ଷଣ ବିଶେଷ ।

**ପ୍ରତିସର୍ଯ୍ୟ**—ପୁଂ.ବି.ରୁଦ୍ରଭେଦ,ବିବାହୋଚିତ ହସ୍ତସୂତ୍ର, କୌତୁକସୂତ୍ର ।

**ପ୍ରତିସବ୍ୟ**--ବିଂ.ପ୍ରତିକୂଳ,ବିପରୀତ,ବିରୁଦ୍ଧ ।

**ପ୍ରତିସାନ୍ଧାନିକ**—ପୁଂ.ବି. (ପ୍ରତିସନ୍ଧାନ+ ଇକ) ମାଗଧ, ସ୍ତୁତିପାଠକ, ଭାଟ ।

**ପ୍ରତିସାମନ୍ତ**—ପୁଂ. ବି. ବିପକ୍ଷ, ଶତ୍ରୁ ।

**ପ୍ରତିସାୟଂ**—ଅବ୍ୟ. ପ୍ରତିସନ୍ଧ୍ୟାରେ, ପ୍ରତି ସନ୍ଧ୍ୟାକାଳରେ ।

**ପ୍ରତିସାରଣ**—କ୍ଲୀ. ବି. (ପ୍ରତି + ସୃ + ଣି +ଅନ) ଅପସାରଣ, ଦୂରୀକରଣ, ସୁଶ୍ରୁତୋକ୍ତ ଅଗ୍ନି କାର୍ଯ୍ୟ ଭେଦ, ବ୍ରଣଚିକିତ୍ସାଙ୍ଗଉପକ୍ରମ ବିଶେଷ,ଦନ୍ତଘର୍ଷଣ ବିଶେଷ,(ବିଂ)ଅପସାରକ,ଦୂରୀକାରକ

**ପ୍ରତିସା(ସୀ)ରା**—ସ୍ତ୍ରୀ. ବି. ଯବନିକା,ପଟ ।

**ପ୍ରତିସାରିତ**—ବିଂ. (ପ୍ରତି+ସୃ+ଣି+ ମିଂ.ତ) ପରିତ୍ୟକ୍ତ, ଅପସାରିତ, ପ୍ରବ-

ଷିତ, ଦୂଷିତକୃତ, ସଂଶୋଧିତ, ଘୁଞ୍ଚାଇ ଦେବା ।

ପ୍ରତିସାରୀ—ପୁଂ. ବିଂ. (ପ୍ରତି + ସୃ + କ. ଇନ୍) ପ୍ରତ୍ୟପଗାମୀ, ନୀଚଗାମୀ, ପ୍ରତିକୂଳଗାମୀ, (ସ୍ତ୍ରୀ) ପ୍ରତିସାରିଣୀ ।

ପ୍ରତିସୀରା—ସ୍ତ୍ରୀ. ବି. ( ପ୍ରତି + ସୀ + ର + ଆ ) ଯବନିକା, ବ୍ୟବଧାୟକ ପଟ, ତିରସ୍କରଣୀ, ପର୍ଦ୍ଦା ।

ପ୍ରତିସୂର୍ଯ୍ୟ—ପୁଂ. ବି. ( ପ୍ରତି + ସୂର୍ଯ୍ୟ ) କୃକଲାସ, ଏଣ୍ଡୁଅ, ଦ୍ୱିତୀୟ ସୂର୍ଯ୍ୟ ପ୍ରାଦୁର୍ଭାବ ରୂପ ଅନ୍ତରୀକ୍ଷୋତ୍ପାତ ବିଶେଷ, ସୂର୍ଯ୍ୟପରିବେଶ ।

ପ୍ରତିସୂର୍ଯ୍ୟକ—ପୁଂ. ବି. ( ପ୍ରତି ସୂର୍ଯ୍ୟ + ସ୍ୱାର୍ଥେ.କ) କୃକଲାସ, ଏଣ୍ଡୁଅ, ସୂର୍ଯ୍ୟମଣ୍ଡଳ ।

ପ୍ରତିସୂର୍ଯ୍ୟଶୟାନକ—ପୁଂ. ବି. ସୂର୍ଯ୍ୟଙ୍କ ଉତ୍ତାପରେ ଶୟନକାରୀ (କୁମ୍ଭୀରସରଡ ପ୍ରଭୃତି ।

ପ୍ରତିସୃଷ୍ଟ—ବିଂ. (ପ୍ରତି + ସୃଜ୍ + ମଁ.ତ) ପ୍ରେଷିତ, ପ୍ରେରିତ, ପ୍ରତ୍ୟାଖ୍ୟାତ, ବିସୃଷ୍ଟ, ତ୍ୟକ୍ତ, (ସ୍ତ୍ରୀ) ପ୍ରତିସୃଷ୍ଟା ।

ପ୍ରତିସେନା—ସ୍ତ୍ରୀ. ବି. ବିପକ୍ଷମାନଙ୍କର ସେନା, ଶତ୍ରୁସେନା ।

ପ୍ରତିସ୍ତ୍ରୀ—ସ୍ତ୍ରୀ. ବି. ପ୍ରତିରୂପା ସ୍ତ୍ରୀ, ପରସ୍ତ୍ରୀ, ପରନାରୀ, (ଅବ୍ୟ) ସ୍ତ୍ରୀର ଅଭିମୁଖରେ ।

ପ୍ରତିସ୍ନେହ—ପୁଂ. ବି. (ପ୍ରତି + ସ୍ନିହ୍ + ଅ) ପ୍ରତିରୂପ ସ୍ନେହ, ଭଲପାଇବାର ପ୍ରତିଦାନ ।

ପ୍ରତିସ୍ପନ୍ଦନ—ବି. (ଆଧୁନିକବିଜ୍ଞାନପରିଭାଷା) ଆଘାତ ଫଳରେ ହେବା ସ୍ପନ୍ଦନ, ହଲିବା, କମ୍ପିବା ।

ପ୍ରତିସ୍ପନ୍ଦନଶୀଳ—ବିଂ. ଆଘାତ ଫଳରେ ଯାହା ସ୍ପନ୍ଦିତ ହୁଏ ।

ପ୍ରତିସ୍ପର୍ଦ୍ଧା—ସ୍ତ୍ରୀ. ବି. (ପ୍ରତି + ସ୍ପର୍ଦ୍ଧ + ଭା. ଆ) ପ୍ରତିଦ୍ୱନ୍ଦ୍ୱିତା, ପ୍ରତିଯୋଗିତା, ପ୍ରତିକକ୍ଷା ।

ପ୍ରତିସ୍ପର୍ଦ୍ଧୀ—ପୁଂ. ବିଂ. ( ପ୍ରତି + ସ୍ପର୍ଦ୍ଧା + ଇନ୍) ବିଦ୍ରୋହୀ, ପ୍ରତିସ୍ପର୍ଦ୍ଧାଯୁକ୍ତ, ପ୍ରତିଯୋଗୀ, ପ୍ରତିଦ୍ୱନ୍ଦ୍ୱୀ, (ସ୍ତ୍ରୀ) ପ୍ରତିସ୍ପର୍ଦ୍ଧିନୀ ।

ପ୍ରତିସ୍ପଶ—ପୁଂ. ବି. ପ୍ରତିଦୂତ, ଆଗମନପ୍ରତୀକ୍ଷା ।   [ (ବିଂ) ବାଧକ ।

ପ୍ରତିସ୍ପାଶନ—କ୍ଲୀ. ବି. ପ୍ରତିସ୍ପଶ, ପ୍ରତିମୁଖ,

ପ୍ରତିସ୍ମୃତି—ସ୍ତ୍ରୀ. ବି. ପ୍ରତିରୂପ ସ୍ମୃତିଶାସ୍ତ୍ର ।

ପ୍ରତିସ୍ରୋତଃ—କ୍ଲୀ. ବି. ସ୍ରୋତର ପ୍ରତିକୂଳ ଗମନ, ପ୍ରତିପ୍ରବାହ ।

ପ୍ରତିସ୍ୱନ—ବି. (ପ୍ରତି + ସ୍ୱନ) ପ୍ରତିଧ୍ୱନି, ପ୍ରତିଶବ୍ଦ ।

ପ୍ରତିହତ—ବିଂ. (ପ୍ରତି + ହନ୍ + ତ) ନିରସ୍ତ, ବ୍ୟାହତ, ଆହତ, ପ୍ରେରିତ, ଦ୍ୱିଷ୍ଟ, ପ୍ରତିବଦ୍ଧ, ରୁଦ୍ଧ, ପ୍ରତିସ୍ଖଳିତ, ପ୍ରତିବିମ୍ବିତ, କ୍ଷାନ୍ତ, ନିରାଶ, ଘୃଣିତ, ଦୂଷିତକୃତ, ଢାଲଆଦି ଦ୍ୱାରା ସମ୍ମୁଖରେ ଫେରିବା (ଆଘାତ), ଘୃଣିତ, ଦୂଷିତକୃତ ।

ପ୍ରତିହତପ୍ରତିକ୍ରିୟା—ସ୍ତ୍ରୀ. ବି. ଆଘାତ ଯୋଗୁଁ ସମ୍ବନ୍ଧବସ୍ତୁରେ ଲକ୍ଷିତ ପ୍ରତିକ୍ରିୟା ।

ପ୍ରତିହତି—ସ୍ତ୍ରୀ. ବି. (ପ୍ରତି + ହନ୍ + ଭା. ତି ) ପ୍ରତିଘାତ, ରୋଷ, ଠୋକର ।

ପ୍ରତିହନନ—କ୍ଲୀ. ବି. ( ପ୍ରତି + ହନ୍ + ଅନ) ହତ୍ୟାକାରୀକୁ ବିନାଶକରିବା ।

ପ୍ରତିହନ୍ତା—ପୁଂ. ବିଂ. (ପ୍ରତି ହନ୍ + ତୃ ) ପ୍ରତିହନନକାରୀ, ନିବାରକ, । ବିପକ୍ଷ, ବିରୋଧୀ, ପ୍ରତିଘାତକାରୀ ।

ପ୍ରତିହନ୍ତବ୍ୟ—ବିଂ. ( ପ୍ରତି + ହନ୍ + ତବ୍ୟ) ପ୍ରତିହନନର ଯୋଗ୍ୟ, ବିନାଶର ଯୋଗ୍ୟ ।   [ ବିନାଶ ।

ପ୍ରତିହରଣ—କ୍ଲୀ. ବି. (ପ୍ରତି + ହୃ + ଅନ)

ପ୍ରତିହର୍ତ୍ତା—ପୁଂ. ବିଂ. (ପ୍ରତି + ହୃ + କ. ତୃ ) ନିବାରକ, ପ୍ରତିହରଣକର୍ତ୍ତା, ପୁନର୍ହରଣକର୍ତ୍ତା, ନାଶକ, (ସ୍ତ୍ରୀ) ପ୍ରତିହର୍ତ୍ତ୍ରୀ ।

ପ୍ରତିହର୍ଷଣ—କ୍ଲୀ. ବି. ହର୍ଷାନୁରୂପହର୍ଷ, ପ୍ରତିରୂପ ସନ୍ତୋଷ ସମ୍ପାଦନ ।

ପ୍ରତିହସ୍ତ—ପୁଂ. ବି. (ପ୍ରତି + ହସ୍ତ ) ପ୍ରତିନିଧି ।

ପ୍ରତିହସ୍ତୀ—ପୁଂ. ବି. (ପ୍ରତି + ହସ୍ତ + ଇନ୍) ପ୍ରତିନିଧି, ପ୍ରତିଭୂ, ଗୋମାସ୍ତା, ଭୂମିକର ସଂଗ୍ରାହକ ।

ପ୍ରତି(ତୀ)ହାର—ପୁଂ. ବି. (ପ୍ରତି + ହୃ ମଁ. ଅ) ଦ୍ୱାର, ଫାଟକ, (କ. ଅ) ଦ୍ୱାରପାଳ, ବାଜୀକର, କୁହୁକୀ, (ଣ. ଅ) ପ୍ରତ୍ୟୁପକାରରୂପ ଅଭିସନ୍ଧିଯୁକ୍ତ ସନ୍ଧିପତ୍ର, (ଭା. ଅ) ମାୟା, କପଟତା, ଛଳ, ପରିହାର, ତ୍ୟାଗ, ପ୍ରତାରଣା, (ଗ୍ରା. ବ) ରାଜପୁତମାନଙ୍କର ଶାଖାବିଶେଷ ।

ପ୍ରତିହାରକ—ପୁଂ. ବି. (ପ୍ରତି + ହୃ + କ. ଅକ) ମାୟାକର, ବାଜୀକର, ଐନ୍ଦ୍ରଜାଳିକ, ପ୍ରତାରକ ବ୍ୟକ୍ତି, (ବିଂ) ମାୟାବୀ, ପ୍ରତାରକ, ସ୍ଥାନାନ୍ତର ପ୍ରାପକ ।

ପ୍ରତିହାରଣ—କ୍ଲୀ. ବି. (ପ୍ରତି + ହୃ + ଣି. ଅନ) ପ୍ରବେଶଦ୍ୱାର (ଭା. ଅନ), ପ୍ରବେଶନ, ଦ୍ୱାରେ ପ୍ରବେଶ କରିବାର ଅନୁମତି ।

ପ୍ରତି(ତୀ)ହାରଣୀ—ସ୍ତ୍ରୀ. ବି. (ପ୍ରତିହାରିନ୍ + ଈ) ଦ୍ୱାରପାଳିକା ।

ପ୍ରତି(ତୀ)ହାରୀ—ପୁଂ. ବି. (ପ୍ରତି + ହୃ + ଇନ୍) ଦ୍ୱାରପାଳ, ଦ୍ୱାରୀ, ପଡ଼ିଆରୀ, ରାଜାନ୍ତଃପୁରର ବହିର୍ଦ୍ୱାର ରକ୍ଷକ, (ସ୍ତ୍ରୀ) ଦ୍ୱାରପାଳିକା ।

ପ୍ରତିହାର୍ଯ୍ୟ—ବିଂ. ( ପ୍ରତି + ହୃ + ଯ ) ପରିହାର୍ଯ୍ୟ, ପ୍ରତିହାରଯୋଗ୍ୟ, ତ୍ୟାଜ୍ୟ ।

ପ୍ରତି(ତୀ)ହାସ—ପୁଂ. ବି. (ପ୍ରତି + ହସ୍ + କ. ଅ) ହାସ୍ୟକାରୀକୁ ଲକ୍ଷକରି ପୁନର୍ବାର ହସିବା, କରବୀର ବୃକ୍ଷ, ଶୁକ୍ଳକରବୀର ।

ପ୍ରତିହିଂସକ—ପୁଂ. ବିଂ. (ପ୍ରତି + ହିନ୍ସ୍ + କ. ଅକ) ଯେ ଦାଉ ସାଧେ, ଯେ ପ୍ରତିହିଂସା ନିଏ, ବୈରୀ, ଶତ୍ରୁ ।

ପ୍ରତିହିଂସନ—କ୍ଲୀ. ବି. ଦ୍ୱେଷକରଣ ।

ପ୍ରତିହିଂସା—ସ୍ତ୍ରୀ. ବି. ( ପ୍ରତି + ହିଂସା ) ବୈରଶୁଦ୍ଧି, ବୈରନିର୍ଯ୍ୟାତନ, ପ୍ରତିଶୋଧ, ଅନିଷ୍ଟକାରୀର ଅନିଷ୍ଟ ସାଧନ ପ୍ରବୃତ୍ତି ।

ପ୍ରତିହିତ—ପୁଂ. ବି. ଶରଯୋଜନା, ଜ୍ୟାରୋପଣ ।

ପ୍ରତୀକ—ପୁଂ. ବି. (ପ୍ରତି + ଇକ) ଅବୟବ, ପ୍ରତ୍ୟଙ୍ଗ, ପଦ୍ମ, ଚିହ୍ନ, ମୁଖ, ଆକୃତି, ପ୍ରତିରୂପ, ଅବୟବ, ପଟୋଳ, ଉପାସନାଭେଦ, (ବିଂ) ବିରୁଦ୍ଧ, ପ୍ରତିକୂଳ, ବିପରୀତ ଆଡ଼କୁ ଯାଉଥିବା, ଉପରକୁ ଉଠୁଥିବା ।

ପ୍ରତୀକାର—ବି. ପ୍ରତିକାର ଦେଖ ।

ପ୍ରତୀକାର୍ଯ୍ୟ—ବିଂ. ପ୍ରତିକାର୍ଯ୍ୟ ଦେଖ ।

ପ୍ରତୀକାଶ—ପୁଂ.ବି, (ପ୍ରତୀ+କାଶ୍+ଅ) ଉପମା, ତୁଲ୍ୟ, ସଦୃଶ, ପ୍ରତିକାଶ ଦେଖ ।

ପ୍ରତୀକାଶ୍ୱ—ପୁଂ. ବି. ଭାନୁବ୍ରତ ନୃପଙ୍କର ପୁତ୍ରବିଶେଷ ।

ପ୍ରତୀକ୍ଷ—ବିଂ. ( ପ୍ରତି+ଈକ୍ଷ୍+ମିଂ.ଅ ) ପ୍ରତୀକ୍ଷାକାରୀ, ସମ୍ମାନନୀୟ, ପୂଜନୀୟ, ପାଳନୀୟ ।

ପ୍ରତୀକ୍ଷକ—ପୁଂ. ବିଂ. ପ୍ରତୀକ୍ଷାକାରକ, ଯେ ଅପେକ୍ଷା କରନ୍ତି, ପୂଜକ ।

ପ୍ରତୀକ୍ଷଣ—କ୍ଳୀ.ବି. (ପ୍ରତି+ଈକ୍ଷ୍+ଅନ) ନିରୀକ୍ଷଣ, ବିଲୋକନ, ପ୍ରତୀକ୍ଷା, ବିବେଚନା, ପ୍ରତିପାଳନ, ସଫଳତା, ପ୍ରତୀକ୍ଷାକରଣ, ଅପେକ୍ଷା, କୃପାଦୃଷ୍ଟି, ଅଭିନିବେଶ ।

ପ୍ରତୀକ୍ଷଣୀୟ—ବିଂ.(ପ୍ରତି+ଈକ୍ଷ୍+ଅନୀୟ) ପ୍ରତୀକ୍ଷଣଯୋଗ୍ୟ, ଅପେକ୍ଷାର୍ହ ।

ପ୍ରତୀକ୍ଷା—ସ୍ତ୍ରୀ.ବି. ( ପ୍ରତି+ଈକ୍ଷ୍+ଆ ) ଆକାଙ୍କ୍ଷା, ଆଶା, ସମ୍ମାନ, ନିରୀକ୍ଷଣ, ଅନ୍ୱୟ, ପ୍ରଣିଧାନ, ପ୍ରତୀକ୍ଷଣ, ଅପେକ୍ଷା, ପ୍ରତିପାଳନ, ପୂଜା ।

ପ୍ରତୀକ୍ଷିତ—ବିଂ. (ପ୍ରତି+ଈକ୍ଷ୍+ମିଂ.ତ) ଅପେକ୍ଷିତ, ଯାହାପାଇଁ ଅପେକ୍ଷା କରାହୋଇଅଛି, ପ୍ରତ୍ୟାଶିତ ।

ପ୍ରତୀକ୍ଷ୍ୟ—ବିଂ. ( ପ୍ରତି+ଈକ୍ଷ୍+ଯ ) ଆରାଧ୍ୟ, ଅପେକ୍ଷଣୀୟ, ପୂଜ୍ୟ, ପ୍ରତୀକ୍ଷଣୀୟ, ପ୍ରତୀକ୍ଷାର ଉପଯୁକ୍ତ ।

ପ୍ରତୀକ୍ଷମାଣ—ବିଂ. (ପ୍ରତି+ଈକ୍ଷ୍+ମିଂ. ଆନ) ପରିଦୃଶ୍ୟମାନ, ପ୍ରତ୍ୟକ୍ଷ ।

ପ୍ରତୀଘାତ—ପୁଂ. ବି. (ପ୍ରତି+ହନ୍+ଘ୍ଞ.ଅ) ଆଘାତ, ପ୍ରତିବନ୍ଧ, ବ୍ୟାଘାତ, ନିରାସ, ନିକ୍ଷେପ ।

ପ୍ରତୀଘାତନ୍—ପୁଂ.ବିଂ: (ପ୍ରତି+ହନ୍+ଇନ୍( ପ୍ରତିଘାତୀ ଦେଖ ।

ପ୍ରତୀଚୀ—ସ୍ତ୍ରୀ.ବି. (ପ୍ରତି+ଅଞ୍ଚ୍+କ୍ୱିପ୍) ପଶ୍ଚିମଦିଗ ।

ପ୍ରତୀଚୀନ—ବିଂ. (ପ୍ରତୀଚୀ+ଇନ୍)ପଶ୍ଚିମ ଦିଗ ସମ୍ବନ୍ଧୀୟ, ପଶ୍ଚିମଦେଶୀୟ, ପଶ୍ଚିମ ଦେଶ ଜାତ, ପ୍ରତ୍ୟକ୍‌ଭବ, ପ୍ରତ୍ୟକ୍, ପଶ୍ଚିମଦିଗସ୍ଥ, ପରାଙ୍ମୁଖ, ପଛଆଡ଼େ ଥିବା

ପ୍ରତୀଚୀଶ—ପୁଂ. ବି. (୬ତତ୍) ବରୁଣ, ପଶ୍ଚିମଦିଗର ଅଧିପତି ।

ପ୍ରତୀଚ୍ୟ—ବିଂ. (ପ୍ରତୀଚୀ+ଯ) ପଶ୍ଚିମଦିକ୍‌ଜାତ, ପଶ୍ଚିମଦେଶୀୟ, ପାଶ୍ଚାତ୍ୟ ।

ପ୍ରତୀଚ୍ଛକ—ପୁଂ.ବି. (ବି.ସ୍ତ୍ରୀ), ଗ୍ରାହକ(ସ୍ତ୍ରୀ) ପ୍ରତୀଚ୍ଛକା ।

ପ୍ରତୀତ—ବିଂ.(ପ୍ରତି+ଇ+ତ)ବିଖ୍ୟାତ, ପ୍ରସିଦ୍ଧ, ସାଦର, ସମ୍ମାନିତ, ପ୍ରୀତ, ଜ୍ଞାନବାନ୍, ଅତୀତ, ବିଶ୍ୱସ୍ତ, ଜ୍ଞାତ, ହୃଷ୍ଟ, ଅନୁଭୂତ । [ତୀର୍ଥ ।

ପ୍ରତୀତାର୍ଥ—ବିଂ. ସ୍ୱୀକୃତାର୍ଥ, ଅନୁମୋଦି-

ପ୍ରତୀତି—ସ୍ତ୍ରୀ.ବି. (ପ୍ରତି+ଇ+ସ୍ତି.ତି) ଜ୍ଞାନ, ଖ୍ୟାତି, ହର୍ଷ, ଆଦର, ବିଶ୍ୱାସ, ବୋଧ, ସମ୍ମାନ, ପ୍ରସିଦ୍ଧି, ପ୍ରୀତି, ଅନୁଭୂତି ।

ପ୍ରତୀନାହ—ପୁଂ.ବି. (ପ୍ରତି+ନହ୍+ଅ) ବାଧାଦେବା, କର୍ଣ୍ଣରୋଧଭେଦ, ପତାକା

ପ୍ରତୀକ୍ଷକ—ପୁଂ. ବି. ବିଦେହ ରାଜାଙ୍କର ପୁତ୍ରବିଶେଷ (ରାମାୟଣ) ।

ପ୍ରତୀପ—ବିଂ.ବିରୁଦ୍ଧ, ପ୍ରତିକୂଳ, ବିପରୀତ, ପଶ୍ଚାଦ୍ଗାମୀ, ପରାଙ୍ମୁଖ, ପଶ୍ଚିମ ।

ପ୍ରତୀପକୋଣ—ବି. ( କ.ଧା ) ସମ୍ମୁଖସ୍ଥ କୋଣ, ବିପରୀତ କୋଣ ।

ପ୍ରତୀପଗ—ପୁଂ.ବି. (ପ୍ରତୀପ+ଗମ୍+ଅ) ପ୍ରତିକୂଳଗାମୀ । [ ବିରୁଦ୍ଧଗତି ।

ପ୍ରତୀପଗତି—ସ୍ତ୍ରୀ.ବି.(କ.ଧା)ପ୍ରତିକୂଳଗତି.

ପ୍ରତୀପଗମନ—କ୍ଳୀ.ବି. (କ.ଧା) ପ୍ରତିକୂଳ ଗମନ ।

ପ୍ରତୀପଗାମୀ—ପୁଂ. ବିଂ. (ପ୍ରତୀପ+ଗାମିନ୍)ପ୍ରତିକୂଳଗମନକାରୀ, ପ୍ରତିକୂଳାଚାରୀ, ଅମାନିଆଁ ।

ପ୍ରତୀପତରଣ—କ୍ଳୀ. ବି. ଜଳସ୍ରୋତର ବିପରୀତ ମୁଖରେ ପୋତଚାଳନ ।

ପ୍ରତୀପଦର୍ଶିନୀ—ସ୍ତ୍ରୀ.ବିଂ. (ପ୍ରତୀପଦର୍ଶିନ୍+ଈ) ବିପରୀତଦର୍ଶିନୀ, ( ବି ) ନାରୀ, ଯୋଷିତ୍, ବନିତା, ସ୍ତ୍ରୀମାତ୍ର ।

ପ୍ରତୀପଦର୍ଶୀ—ପୁଂ.ବିଂ. (ପ୍ରତୀପ+ଦର୍ଶିନ୍) ପ୍ରତିକୂଳଦର୍ଶକ, ଯେ ଭଲ କଥାକୁ ମନ୍ଦରୂପେ ଓ ମନ୍ଦ କଥାକୁ ଭଲରୂପେ ଦେଖେ, ପ୍ରତିକୂଳଦ୍ରଷ୍ଟା ।

ପ୍ରତୀପବଚନ—କ୍ଳୀ.ବି. (କ.ଧା)ପ୍ରତିକୂଳବାକ୍ୟ, ବିରୁଦ୍ଧବାଦ, ପ୍ରତିବାଦ, ଅପ୍ରକୃତ ଉତ୍ତର ।

ପ୍ରତୀୟମାନ—ବିଂ. (ପ୍ରତି+ଇ+ମିଂ. ଆନ)ଯାହା ଜଣାହୋଇଅଛି, ଜ୍ଞାୟମାନ, ବିଶ୍ୱାସକୃତ, ଯାହା ବିଶ୍ୱାସ କରାଯାଉଅଛି ।

ପ୍ରତୀୟମାନୋତ୍ପ୍ରେକ୍ଷା—ସ୍ତ୍ରୀ.ବି.(କ.ଧା) ଅର୍ଥାଲଙ୍କାରବିଶେଷ, ଯହିଁରେ ଉତ୍ପ୍ରେକ୍ଷାବ୍ୟଞ୍ଜକ ଶବ୍ଦ ନ ଥାଇ ମଧ୍ୟ ଉତ୍ପ୍ରେକ୍ଷା ବୋଲି ଜଣାପଡ଼େ ।

ପ୍ରତୀର—କ୍ଳୀ.ବି. ତଟ, କୂଳ, ଭୌତ୍ୟମନୁଙ୍କ ପୁତ୍ରବିଶେଷ । [ ଦେଖ ।

ପ୍ରତୀରୋଧ—ପୁଂ.ବି. ବାଧା, ବିଘ୍ନ, ପ୍ରତିରୋଧ

ପ୍ରତୀବାପ—ବି. (ପ୍ରତି+ବପ+ଘ୍ଞ.ଅ) ଗଳିତ ଧାତୁସଙ୍ଗେ ଦ୍ରବ୍ୟାନ୍ତର ମିଶ୍ରଣ, ନ୍ୟାସ, କୌଣସି ବସ୍ତୁର ଆକୃତି ଅବସ୍ଥା ବା ଗୁଣର ବୈଲକ୍ଷଣ୍ୟ ଉତ୍ପାଦନାର୍ଥ ସେଥିରେ ଦ୍ରବ୍ୟାନ୍ତର ନିକ୍ଷେପ, ରାଜ୍ୟରେ ଘଟିବାର ଉପଦ୍ରବ, ପାନୀୟ ଔଷଧରେ ମିଶାଯିବା ଔଷଧବିଶେଷ, ଦୈବୀ ଉପଦ୍ରବ ।

ପ୍ରତୀବେଶ—ପୁଂ.ବି. ପ୍ରତିବେଶ ଦେଖ ।

ପ୍ରତୀବେଶୀ—ପୁଂ.ବିଂ.ପ୍ରତିବେଶୀଦେଖ ।

ପ୍ରତୀଶା—ସ୍ତ୍ରୀ.ବି. ସମ୍ମାନନା, ଶ୍ରଦ୍ଧା ।

ପ୍ରତୀଷ୍ଟ—ବିଂ. (ପ୍ରତି+ଇଷ୍+ମିଂ.ତ) ଗୃହୀତ, ସ୍ୱୀକୃତ, ଅଙ୍ଗୀକୃତ ।

ପ୍ରତୀହ—ପୁଂ.ବି.ଭରତବଂଶୀୟ ସୁବର୍ଚ୍ଚଲାଙ୍କଠାରୁ ଜାତ ପରମେଷ୍ଠୀଙ୍କର ପୁତ୍ରବିଶେଷ ।

ପ୍ରତୁଦ—ପୁଂ.ବି. (ପ୍ର+ତୁଦ+ଅ)ଯେଉଁ ପକ୍ଷୀ ଆପଣା ଶିକାରକୁ ଥଣ୍ଟରେ ଚିରି ଖାଏ ।

ପ୍ରତୁଲ—ବି.(ପ୍ର+ତୁଲ+ମିଂ.ଅ)ବାହୁଲ୍ୟ, ବୃଦ୍ଧି, ଅଚଳାଚଳ ସମ୍ପତ୍ତି, ଐଶ୍ୱର୍ଯ୍ୟ, ବିଭବ, ସୌଭାଗ୍ୟ, ପ୍ରାଚୁର୍ଯ୍ୟ, ଯଥେ-

ଷ୍ଟତା, ମଙ୍ଗଳ, ଉପକାର,(ବି°) ବିଷମ, ଭୟାନକ, ପ୍ରଚୁର, ଯଥେଷ୍ଟ, ଅତୁଳନୀୟ ।

ପ୍ରତୁଷ୍ଟି—ସ୍ତ୍ରୀ.ବି. (ପ୍ର+ତୁଷ୍+ତି)ଅତିଶୟ ସନ୍ତୋଷ, ଉପାଦେୟ ।

ପ୍ରତୂଣୀ—ସ୍ତ୍ରୀ. ବି. ସ୍ନାୟୁଦୌର୍ବଲ୍ୟଜନତ ରୋଗବିଶେଷ ।

ପ୍ରତୂର୍ତ୍ତି— ବି°. ( ପ୍ର+ତୂର+ତ ) ପ୍ରକୃଷ୍ଟ ବେଗାନ୍ୱିତ,(କ୍ଲୀ.ବି) ପ୍ରକୃଷ୍ଟବେଗ ।

ପ୍ରତୂଲିକା—ସ୍ତ୍ରୀ.ବି. ଶଯ୍ୟଭେଦ,ତୋଷକ

ପ୍ରତେ—ଗ୍ରା. ବି. ବିଶ୍ୱାସ, ପ୍ରତ୍ୟୟ, ପରତେ, ନିଶ୍ଚିତ ଜ୍ଞାନ, (ବି°) ଯାହାକୁ ବିଶ୍ୱାସ କରଯାଏ,ବିଶ୍ୱାସଦ୍ୱାରା ଗୃହୀତ, ବିଶ୍ୱାସନୀୟ ।

ପ୍ରତେଜନ—କ୍ଲୀ. ବି. (ପ୍ର+ତିଜ୍+ଭା.ଅନ) ଉତ୍ତେଜନ,(ବି°)ପ୍ରତେଜିତ ।

ପ୍ରତୋଦ—ପୁଂ.ବି. (ପ୍ର+ତୁଦ୍+ଣ+ଅ) ଅଶ୍ୱାଦି ତାଡ଼ନଦଣ୍ଡ, ଚାବୁକ, କୋରଡ଼ା, ଅଙ୍କୁଶ, ଗବାଦି ପଶୁଚାଳନ ଦଣ୍ଡ, ପାଞ୍ଚଣ ।

ପ୍ରତୋଳ—ବି. (ପ୍ର+ତୁଲ+ଅଧି.ଅ) ଚଉଡ଼ାରାସ୍ତା,ବଡ଼ଦାଣ୍ଡ,ଅଭ୍ୟନ୍ତରମାର୍ଗ, ବାଙ୍କରାସ୍ତା, ଦୁର୍ଗର ଯେଉଁ ମାର୍ଗ ନଗର ଆଡ଼କୁ ଥାଏ, ବଥଆଦିରେ ବନ୍ଧାଯିବା ପଟୀ ।

ପ୍ରତୋଲୀ—ସ୍ତ୍ରୀ. ବି. (ପ୍ର+ତୁଲ+ଅଧି. ଅ+ଈ) ଗଳି, ରଥ୍ୟା, ବଡ଼ରାସ୍ତା, ଅଭ୍ୟନ୍ତରମାର୍ଗ, ହଟ୍ଟାଦିମଧ୍ୟନିର୍ମିତ ପଥ, ଦୁର୍ଗର ନଗରଦ୍ୱାର ।

ପ୍ରତୋଷ—ପୁଂ.ବି. (ପ୍ର+ତୁଷ୍+ଭା.ଅ) ସନ୍ତୋଷ,ସ୍ୱାୟମ୍ଭୁବମନୁଙ୍କ ପୁତ୍ରଭେଦ ।

ପ୍ରତ୍ତ—ବି°.(ପ୍ର+ଦା+ତ)ପ୍ରଦତ୍ତ,ତ୍ୟକ୍ତ

ପ୍ରତ୍ତି—ସ୍ତ୍ରୀ.ବି.(ପ୍ର+ଦା+ତି)ଦାନ,ତ୍ୟାଗ

ପ୍ରତ୍ନ—ବି°. (ପ୍ରାକ୍+ନ) ପ୍ରାଚୀନ,ପୁରୁଣା, ପୁରାତନ ।

ପ୍ରତ୍ନତତ୍ତ୍ୱ—ପୁଂ, ବି. (କ.ଧା) ପ୍ରାଚୀନ ଇତିହାସ, ପୁରାତତ୍ତ୍ୱ, ଜଗତଘଟନାର ବିଷୟର ଐତିହାସିକ ଆଲୋଚନା ।

ପ୍ରତ୍ନତତ୍ତ୍ୱଜ୍ଞ—ପୁଂ. ବି°. (ପ୍ରତ୍ନତତ୍ତ୍ୱ+ଜ୍ଞା+କ.ଅ) ପୁରାତତ୍ତ୍ୱବିଦ୍ ।

ପ୍ରତ୍ନତତ୍ତ୍ୱବିଦ୍—ପୁଂ. ବି°. (ପ୍ରତ୍ନତତ୍ତ୍ୱ+ବିଦ୍+କ୍ୱିପ୍) ପ୍ରତ୍ନତତ୍ତ୍ୱଜ୍ଞ, ପ୍ରାଚୀନ ଇତିହାସବେତ୍ତା ।

ପ୍ରତ୍ନତତ୍ତ୍ୱବେତ୍ତା—ପୁଂ. ବି°. ( ୬ତତ୍ ) ପୁରାତତ୍ତ୍ୱଜ୍ଞ, ପ୍ରତ୍ନତତ୍ତ୍ୱବିଦ୍, (ସ୍ତ୍ରୀ) ପ୍ରତ୍ନତତ୍ତ୍ୱବେତ୍ତ୍ରୀ ।

ପ୍ରତ୍ନତତ୍ତ୍ୱାନୁସନ୍ଧାନ—ବି.(କ.ଧା)ପ୍ରାଚୀନତତ୍ତ୍ୱସମ୍ବନ୍ଧେ ଗବେଷଣା ।

ପ୍ରତ୍ନତତ୍ତ୍ୱାନୁସନ୍ଧିତ୍ସୁ—ପୁଂ.ବି°. ପ୍ରାଚୀନତତ୍ତ୍ୱାନୁସନ୍ଧାନ ବିଷୟରେ ଦତ୍ତଚିତ୍ତ, ପ୍ରାଚୀନତତ୍ତ୍ୱାନୁସନ୍ଧାନରେ ଇଚ୍ଛୁକ ।

ପ୍ରତ୍ୟକ୍—ଅବ୍ୟ, (ପ୍ରତି+ଅନ୍ଚ୍+କ୍ୱିପ୍) ପଶ୍ଚାତ୍, ପୂର୍ବବର୍ତ୍ତୀ, ପୂର୍ବବର୍ତ୍ତୀକାଳ, ପୂର୍ବକାଳ, ପ୍ରାଚୀନକାଳ, ପଶ୍ଚିମଦିଗ, ପଶ୍ଚିମଦେଶୀୟ,ଅନ୍ତର୍ନିହିତ,ପଛଆଡ଼କୁ, ପଶ୍ଚିମଆଡ଼କୁ ।

ପ୍ରତ୍ୟକ୍‌ଚୈତନ୍ୟ— ବି. ( ପ୍ରତ୍ୟକ୍+ଚୈତନ୍ୟ) ଅନ୍ତରାତ୍ମା,ପ୍ରତ୍ୟେକ ବ୍ୟକ୍ତିର ଅନ୍ତର୍ନିହିତ ବ୍ୟକ୍ତିତ୍ୱ,ଜୀବାତ୍ମା,ପରମେଶ୍ୱର,ପରମାତ୍ମା,ଆତ୍ମଜ୍ଞାନପ୍ରାପ୍ତ ଯୋଗ୍ୟ ।

ପ୍ରତ୍ୟକ୍‌ପର୍ଣ୍ଣୀ—ସ୍ତ୍ରୀ, ବି. ଚଲ୍ଲିଅପାମାର୍ଗ, ଦ୍ରବନ୍ତୀ, ଦନ୍ତୀବୃକ୍ଷ ।

ପ୍ରତ୍ୟକ୍‌ପୁଷ୍ପୀ—ସ୍ତ୍ରୀ. ବି. (ବ.ବ୍ରୀ) ଅପାମାର୍ଗ, ଓବଡଖଣ୍ଡା ।

ପ୍ରତ୍ୟକ୍ଷ—ବି°. (ପ୍ରତି+ଅକ୍ଷ) ଇନ୍ଦ୍ରିୟଗ୍ରାହ୍ୟ, ସାକ୍ଷାତ୍, ଆଖିଆଗରେ ଥିବା, ଦୃଶ୍ୟମାନ, ସାକ୍ଷାତ୍ ସମ୍ପର୍କରେ ସମ୍ବନ୍ଧ, (ବି) ଇନ୍ଦ୍ରିୟଯୋଗୁଁ ହେବା ଜ୍ଞାନ, ପ୍ରତ୍ୟକ୍ଷ ପ୍ରମାଣ, (ଗ୍ରା.ବି°) ଅନୁଭୂତ, ଅନୁଭବଦ୍ୱାରା ଜ୍ଞାତ, ପ୍ରକୃତ, ସତ୍, (ଗ୍ରା.ଅବ୍ୟ) ନିଶ୍ଚୟ ।

ପ୍ରତ୍ୟକ୍ଷକାରୀ—ପୁଂ. ବି°. ଯେ ନିଜେ ଦେଖି ବା ଇନ୍ଦ୍ରିୟଦ୍ୱାରା ଅନୁଭବକରି କୌଣସି କଥା ଜାଣିଥାଏ,ସ୍ୱୟଂଦ୍ରଷ୍ଟା ।

ପ୍ରତ୍ୟକ୍ଷଗୋଚର—ବି°. ଦୃଷ୍ଟିଗୋଚର, ନୟନପଥବର୍ତ୍ତୀ, ଚକ୍ଷୁର୍ଗ୍ରାହ୍ୟ ।

ପ୍ରତ୍ୟକ୍ଷତଃ—ଅବ୍ୟ, ( ପ୍ରତ୍ୟକ୍ଷ+ତସ୍ ) ପ୍ରତ୍ୟକ୍ଷରୂପେ, ପ୍ରତ୍ୟକ୍ଷରେ, ସାକ୍ଷାତ୍ ସମ୍ବନ୍ଧରେ, ଇନ୍ଦ୍ରିୟଦ୍ୱାରା ଅନୁଭୂତ ହେବା ପ୍ରକାର ।

ପ୍ରତ୍ୟକ୍ଷଦର୍ଶନ—କ୍ଲୀ.ବି. (କ.ଧା)ସାକ୍ଷାତ୍‌ଦର୍ଶନ,(ବ.ବ୍ରୀ) ସାକ୍ଷୀ,ନିଜେ ଆଖିରେ ଦେଖିଥିବା ସାକ୍ଷୀ, ( ପୁଂ.ବି°-ବ.ବ୍ରୀ ) ସାକ୍ଷାତ୍‌ଦର୍ଶୀ,ସ୍ୱୟଂଦ୍ରଷ୍ଟା,(ସ୍ତ୍ରୀ)ପ୍ରତ୍ୟକ୍ଷଦର୍ଶନା ।

ପ୍ରତ୍ୟକ୍ଷଦର୍ଶୀ—ପୁଂ. ବି°. (ପ୍ରତ୍ୟକ୍ଷ+ଦୃଶ୍+କ.ଇନ୍) ସାକ୍ଷାତ୍‌ଦର୍ଶୀ, ସ୍ୱୟଂଦ୍ରଷ୍ଟା, ଯେ ନିଜେ ଦେଖିଥାଏ, ସାକ୍ଷୀ, (ବି) ସାକ୍ଷାତ୍ ଦେଖିଥିବା ବ୍ୟକ୍ତି ।

ପ୍ରତ୍ୟକ୍ଷଦୃକ୍—ବି°. ସ୍ୱୟଂଦ୍ରଷ୍ଟା,ପ୍ରତ୍ୟକ୍ଷଦର୍ଶୀ ।

ପ୍ରତ୍ୟକ୍ଷଦୃଶ୍ୟ—ବି°.ପ୍ରତ୍ୟକ୍ଷରୂପେ ଦର୍ଶନୀୟ, ପ୍ରତ୍ୟକ୍ଷରେ ଦର୍ଶନଯୋଗ୍ୟ ।

ପ୍ରତ୍ୟକ୍ଷଦୃଷ୍ଟ—ବି°.ପ୍ରତ୍ୟକ୍ଷରୂପେ ଯାହା ଦେଖାହୋଇଅଛି ।

ପ୍ରତ୍ୟକ୍ଷପ୍ରମା—ସ୍ତ୍ରୀ. ବି. ଯଥାର୍ଥଜ୍ଞାନ ।

ପ୍ରତ୍ୟକ୍ଷପ୍ରମାଣ—ବି. ( କ.ଧା ) ଚାକ୍ଷୁଷ ପ୍ରମାଣ, ସାକ୍ଷାତ୍ ପ୍ରମାଣ, ନିଜେ ଅନୁଭବ କରିଥିବା ରୂପ ପ୍ରମାଣ, ଇନ୍ଦ୍ରିୟଦ୍ୱାରା ଅନୁଭୂତ ପ୍ରମାଣ ।

ପ୍ରତ୍ୟକ୍ଷଫଳ— ବି. ( କ.ଧା ) ସାକ୍ଷାତ୍ ପରିଣାମ, ହାତେ ହାତେ ବା ସାଙ୍ଗେ ସାଙ୍ଗେ ଘଟିବା ଫଳ ।

ପ୍ରତ୍ୟକ୍ଷଭୂତ—ବି°. (ପ୍ରତ୍ୟକ୍ଷ+ଭୂତ) ଇନ୍ଦ୍ରିୟଗୋଚରୀଭୂତ, ଇନ୍ଦ୍ରିୟଦ୍ୱାରା ଅନୁଭୂତ ।

ପ୍ରତ୍ୟକ୍ଷଯୋଗ—ପୁଂ.ବି. (କ.ଧା)ସାକ୍ଷାତ୍ ଫଳପ୍ରାପ୍ତି,ହାତେ ହାତେ ପ୍ରତିଫଳ ।

ପ୍ରତ୍ୟକ୍ଷର—ଅବ୍ୟ, ପ୍ରତ୍ୟେକ ଅକ୍ଷର, ଆକ୍ଷରିକରୂପେ, ଗୋଟିଏ ଗୋଟିଏ ଅକ୍ଷରକୁ ଧରି-ଧରି (ପଢ଼ିବା) ।

ପ୍ରତ୍ୟକ୍ଷଲବଣ—କ୍ଲୀ. ବି. ପାକ ନିଷ୍ପତ୍ତି ପରେ ବ୍ୟଞ୍ଜନାଦିରେ ଯାହାମାନ ଲବଣ, ଚିନ୍ତସାର ତରକାରି ଆଦିରେ ପଛେ ମିଶାଇବା ଲୁଣ ।

ପ୍ରତ୍ୟକ୍ଷଲଭ—ପୁଂ,ବି. (କ.ଧା)ସାକ୍ଷାତ-

ଲଭ୍ୟ ବା ଫଳପ୍ରାପ୍ତି ।

ପ୍ରତ୍ୟକ୍ଷବାଦ—ପୁଂ. ବି. (କ.ଧା) ସମକ୍ଷରେ କହିବା, ଜଡ଼ବାଦ, ପ୍ରକୃତିତତ୍ତ୍ୱ, ଦେହାତ୍ମବାଦ, ପ୍ରତ୍ୟକ୍ଷପ୍ରମାଣ ଛଡ଼ା ଅନ୍ୟପ୍ରମାଣ ସ୍ୱୀକାର ନ କରିବା ରୂପ ମତ ।

ପ୍ରତ୍ୟକ୍ଷବାଦୀ—ପୁଂ. ବିଂ. (ପ୍ରତ୍ୟକ୍ଷ+ବଦ୍+କ.ଇନ୍) ଯେ ପ୍ରତ୍ୟକ୍ଷପ୍ରମାଣ ଛଡ଼ା ଅନ୍ୟ ପ୍ରମାଣ ସ୍ୱୀକାର କରେ ନାହିଁ, ଜଡ଼ବାଦୀ, ବୌଦ୍ଧ, ନାସ୍ତିକ, ଚାର୍ବାକ୍ ।

ପ୍ରତ୍ୟକ୍ଷସିଦ୍ଧ—ବିଂ. ପ୍ରତ୍ୟକ୍ଷପ୍ରମାଣଦ୍ୱାରା ପ୍ରମାଣୀଭୂତ, ପ୍ରତ୍ୟକ୍ଷ ପ୍ରମାଣରେ ପ୍ରମାଣୀକୃତ ।

ପ୍ରତ୍ୟକ୍ଷୀ—ପୁଂ. ବିଂ. (ପ୍ରତ୍ୟକ୍ଷ+ଇନ୍) ଯେ ନିଜେ ଇନ୍ଦ୍ରିୟଦ୍ୱାରା ଅନୁଭବ କରିଅଛି, ସ୍ୱୟଂଦ୍ରଷ୍ଟା ।

ପ୍ରତ୍ୟକ୍ଷୀକରଣ—କ୍ଲୀ. ବି. (ପ୍ରତ୍ୟକ୍ଷ+ଚ୍ୱି+କୃ+ଅନ)ଅପ୍ରତ୍ୟକ୍ଷର ପ୍ରତ୍ୟକ୍ଷକରଣ, ଏଥିପୂର୍ବେ ଅପ୍ରତ୍ୟକ୍ଷ ବିଷୟକୁ ପ୍ରତ୍ୟକ୍ଷ କରିବା, ଅପ୍ରତ୍ୟକ୍ଷ ବିଷୟକୁ ପ୍ରତ୍ୟକ୍ଷ ବା ସ୍ଫୁଟ ହେବାର ଉପାୟ କରିବା ।

ପ୍ରତ୍ୟକ୍ଷୀକୃତ—ବିଂ. (ପ୍ରତ୍ୟକ୍ଷ+ଚ୍ୱି+କୃ+ର୍ମ.ତ) ଯାହା ପୂର୍ବେ ପ୍ରତ୍ୟକ୍ଷ କରାହୋଇ ନଥିଲା ବର୍ତ୍ତମାନ ପ୍ରତ୍ୟକ୍ଷ କରାହେଲା ଏହିରୂପ ।

ପ୍ରତ୍ୟକ୍ଷୀଭୂତ—ବିଂ. (ପ୍ରତ୍ୟକ୍ଷ+ଚ୍ୱି+ଭୂ+ତ) ଯାହା ପୂର୍ବେ ପ୍ରତ୍ୟକ୍ଷ ହୋଇ ନ ଥିଲା କିନ୍ତୁ ବର୍ତ୍ତମାନ ପ୍ରତ୍ୟକ୍ଷ ହୋଇଅଛି ।

ପ୍ରତ୍ୟଗାତ୍ମା—ପୁଂ, ବି. (ପ୍ରତ୍ୟଗ୍+ଆତ୍ମା) ପ୍ରତ୍ୟକ୍ ଚୈତନ୍ୟ ଦେଖ ।

ପ୍ରତ୍ୟଗାନନ୍ଦ—ବିଂ, ମନେ ମନେ ଆନନ୍ଦଯୁକ୍ତ, (ବି) ବ୍ରହ୍ମ ।

ପ୍ରତ୍ୟଗାଶା—ବି, କ.ଧା (ପ୍ରତ୍ୟକ୍+ଆଶା) ପଶ୍ଚିମଦିଗ ।

ପ୍ରତ୍ୟଗାଶାପତି—ପୁଂ. ବି, (ପ୍ରତ୍ୟକ୍+ଆଶା+ପତି) ବିଚକ୍ଷଣ; ପଶ୍ଚିମଦିଗର ଅଧିପତି, ବରୁଣ ।

ପ୍ରତ୍ୟଗ୍ର—ବିଂ. (ପ୍ରତି+ଅଗ୍ର) ନୂତନ, ଶୋଧିତ, ଟଟକା, ଅମ୍ଳାନ, ଉଜ୍ଜ୍ୱଳ, ଅଳ୍ପକାଳହେଲା ଘଟିଥିବା, (ବି) ରାଜାବୃହଦ୍‌ରଥଙ୍କର ପୁତ୍ର ।

ପ୍ରତ୍ୟଗ୍ରଗନ୍ଧା—ସ୍ତ୍ରୀ. ବି. ସ୍ୱର୍ଣ୍ଣଯୂଥିକା, ହଳଦିଆ ଯୂଇ ।

ପ୍ରତ୍ୟଗ୍ରଥ—ପୁଂ. ବି. ଅହିଚ୍ଛତ୍ର ନଗର, ଅହିଚ୍ଛତ୍ରାଦେଶ ।

ପ୍ରତ୍ୟଙ୍ଗ—କ୍ଲୀ. ବି. (ପ୍ରତି+ଅଙ୍ଗ) ଅବୟବବିଶେଷ, ଅଙ୍ଗର ଅଙ୍ଗ, ଅପ୍ରଧାନ ଅଙ୍ଗ, ଉପାଙ୍ଗ, ଉପକରଣ, ଅଂଶ, ହତିଆର, ଅସ୍ତ୍ରଶସ୍ତ୍ର ।

ପ୍ରତ୍ୟଙ୍ଗିରା—ସ୍ତ୍ରୀ. ବି. ଦେବୀବିଶେଷ, ତନ୍ତ୍ରୋକ୍ତ ଦେବୀବିଶେଷ ।

ପ୍ରତ୍ୟଙ୍ମୁଖ—ବିଂ. (ବ.ବ୍ରୀ) ପଶ୍ଚିମାଭିମୁଖ, ପଛଆଡ଼କୁ ମୁହଁକରିଥିବା ।

ପ୍ରତ୍ୟଚ—ବିଂ. ପଶ୍ଚିମଦିଗ, ପଶ୍ଚିମଦେଶ, ପଶ୍ଚିମକାଳ, ପ୍ରତିଗତ, ଅଭିମୁଖ, ଅନ୍ତର୍ଯ୍ୟାମୀ ।

ପ୍ରତ୍ୟର୍ଚ୍ଚିତ—ପୁଂ.ବିଂ.(ପ୍ରତି+ଅର୍ଚ୍ଚ୍+ତ) ପ୍ରତିପୂଜିତ, ସମ୍ମାନିତ, ଅର୍ଚ୍ଚିତ ।

ପ୍ରତ୍ୟଦନ—କ୍ଲୀ.ବି. (ପ୍ରତି+ଅଦ୍+ଅନ) ଭୋଜନ, ଖାଦ୍ୟ ।

ପ୍ରତ୍ୟନନ୍ତର—ବିଂ, ପ୍ରତ୍ୟାସନ୍ନ, ସନ୍ନିକୃଷ୍ଟ ।

ପ୍ରତ୍ୟନୀକ—ପୁଂ. ବି. (ପ୍ରତି+ଅନୀକ) ଶତ୍ରୁ, ପ୍ରତିପକ୍ଷ, ବିରୋଧୀ, ବିଘ୍ନ, ଆସାମୀ, ପ୍ରତିବାଦୀ, ପ୍ରତିପକ୍ଷ ସୈନ୍ୟ, ଅର୍ଥାଲଂକାରବିଶେଷ, ପ୍ରତିଶୋଧ ନେବାକୁ ଅସମର୍ଥ ବ୍ୟକ୍ତିର ହାନି କରିବା, ମଲା ଉପରେ ଶଗଡ଼ ଚଳେଇବା, (ବିଂ) ଶତ୍ରୁତାପନ୍ନ, ବିରୋଧକାରୀ, ପ୍ରତିବାଦୀ, ବିପକ୍ଷ ।

ପ୍ରତ୍ୟନୁମାନ—କ୍ଲୀ.ବି.(ପ୍ରତି+ଅନୁମାନ) ଅନୁମାନର ବିରୁଦ୍ଧ ଅନୁମାନ, ପ୍ରତିପକ୍ଷ ଅନୁମାନ ।

ପ୍ରତ୍ୟନ୍ତ—ବିଂ.(ପ୍ରତି+ଅନ୍ତ) ପ୍ରାନ୍ତବର୍ତ୍ତୀ, ସନ୍ନିହିତ, ନିକଟବର୍ତ୍ତୀ, ସଂଲଗ୍ନ, ସନ୍ନିକୃଷ୍ଟ, (ବି) ସୀମା, ପ୍ରାନ୍ତ, ମ୍ଳେଚ୍ଛଦେଶ ।

ପ୍ରତ୍ୟନ୍ତପର୍ବତ—ପୁଂ.ବି. (କ.ଧା) ମହାପର୍ବତ ସମୀପବର୍ତ୍ତୀ କ୍ଷୁଦ୍ର ପର୍ବତ, ପର୍ବତର ନିକଟବର୍ତ୍ତୀ କ୍ଷୁଦ୍ର ପର୍ବତ ।

ପ୍ରତ୍ୟପକାର—ପୁଂ.ବି.(ପ୍ରତି+ଅପକାର) ଅପକାରର ପ୍ରତିଶୋଧାର୍ଥ କୃତ ଅପକାର

ପ୍ରତ୍ୟପରାଧ—ପୁଂ.ବି. (ପ୍ରତି+ଅପରାଧ) ପ୍ରତ୍ୟଭିଯୋଗ ଦେଖ, ଅପରାଧୀ ବ୍ୟକ୍ତି ପ୍ରତି କରାଯିବା ଅପରାଧ ।

ପ୍ରତ୍ୟବ୍ଦ—ଅବ୍ୟ. ପ୍ରତ୍ୟେକ ବତ୍ସର, ପ୍ରତିବର୍ଷ ।

ପ୍ରତ୍ୟଭିଜ୍ଞା—ବି. (ପ୍ରତି+ଅଭିଜ୍ଞା) ଚିହ୍ନିପାରିବା, ସ୍ମରଣ ସାହାଯ୍ୟରେ ଉତ୍ପନ୍ନଜ୍ଞାନ, ଚିହ୍ନଟ, (ଦର୍ଶନଶାସ୍ତ୍ର) 'ଏହା ସେହି' ଏହି ରୂପ ଜ୍ଞାନ, ପରମାତ୍ମା (ଈଶ୍ୱର) ଜୀବାତ୍ମା ଏକଥିବା ବିଷୟ ଯେଉଁ ଜ୍ଞାନ ଦ୍ୱାରା ମାନିବାକୁ ହୁଏ ।

ପ୍ରତ୍ୟଭିଜ୍ଞାତ—ବିଂ. (ପ୍ରତି+ଅଭି+ଜ୍ଞା ର୍ମ.ତ) ସମ୍ୟକ୍ ପରିଜ୍ଞାତ, ସୁପରିଚିତ ।

ପ୍ରତ୍ୟଭିଜ୍ଞାନ—କ୍ଲୀ. ବି. (ପ୍ରତି+ଅଭି+ଜ୍ଞା+ଅନ) ଅଭିଜ୍ଞାନ, ସ୍ମରଣ ସାଧକ ଅଭିଜ୍ଞାନ ବା ନିଦର୍ଶନ ।

ପ୍ରତ୍ୟଭିନନ୍ଦୀ—ପୁଂ.ବିଂ. (ପ୍ରତି+ଅଭି+ନନ୍ଦ+ଇନ୍) ପ୍ରତ୍ୟଭିନନ୍ଦନକାରକ, ଆହ୍ଲାଦକାରୀ ।

ପ୍ରତ୍ୟଭିଭାଷୀ—ପୁଂ.ବିଂ. (ପ୍ରତି+ଅଭି+ଭାଷ୍+ଇନ୍) ଅଭିନନ୍ଦନକାରକ ।

ପ୍ରତ୍ୟଭିମର୍ଶ—ବି. (ପ୍ରତି+ଅଭି+ମୃଶ୍+ଅ) ଘର୍ଷଣ, ସ୍ପର୍ଶନ ।

ପ୍ରତ୍ୟଭିମର୍ଶନ—କ୍ଲୀ. ବି. (ପ୍ରତି+ଅଭି+ମୃଶ+ଅନ)ଅଭିମର୍ଶଣ, ଘର୍ଷଣ, ସ୍ପର୍ଶନ ।

ପ୍ରତ୍ୟଭିଯୋଗ—ପୁଂ. ବି. (ପ୍ରତି+ଅଭି+ଯୁଜ୍+ଅ) ପ୍ରତ୍ୟପରାଧକରଣ, ଅଭିଯୁକ୍ତ ବ୍ୟକ୍ତିର ଆତ୍ମଦୋଷ ଖଣ୍ଡନ, ଅଭିଯୁକ୍ତ ବ୍ୟକ୍ତି ଅଭିଯୋକ୍ତା ବିରୋଧରେ କରିବା ଅଭିଯୋଗ, ପ୍ରଥମ ନିଷ୍ପତ୍ତିର ବିରୋଧରେ ଅଭିଯୋଗ, ଅପିଲ ।

ପ୍ରତ୍ୟଭିବାଦ—ପୁଂ.ବି. (ପ୍ରତି+ଅଭି+ବଦ୍+ଣି+ଅ) ପ୍ରତି ନମସ୍କାର, ଅଭିବାଦନର ତତ୍ପ୍ରତିରୂପ ଆଶୀ-

ବଚନାଦ, ପୂଜ୍ୟ ବ୍ୟକ୍ତିଙ୍କୁ ପ୍ରଣାମ କଲେ ସେ ଯେଉଁ ଆଶୀର୍ବାଦ କରନ୍ତି ।

ପ୍ରତ୍ୟଭିବାଦକ—ପୁଂ.ବିଂ.ପ୍ରତ୍ୟଭିବାଦନକାରୀ, ଯେ ପ୍ରତ୍ୟଭିବାଦନ କରନ୍ତି ।

ପ୍ରତ୍ୟଭିବାଦନ—କ୍ଲୀ.ବି(ପ୍ରତି+ଅଭି+ବଦ୍+ଣି+ଅନ)ପ୍ରତ୍ୟଭିବାଦ, ପ୍ରତିନମସ୍କାର ।

ପ୍ରତ୍ୟଭିବାଦୟିତା—ପୁଂ. ବିଂ. (ପ୍ରତି+ଅଭି+ବଦ୍+ଣି+ତୃ)ପ୍ରତ୍ୟଭିବାଦକ।

ପ୍ରତ୍ୟଭିସ୍କନ୍ଦନ—କ୍ଲୀ.ବି.(ପ୍ରତି+ଅଭି+ସ୍କନ୍ଦ+ଭା.ଅନ) ପ୍ରତ୍ୟଭିଯୋଗ ।

ପ୍ରତ୍ୟମିତ୍ର—ପୁଂ. ବିଂ. ଶତ୍ରୁ, ଆତତାୟୀ ଶତ୍ରୁ ।

ପ୍ରତ୍ୟୟ—ପୁଂ.ବି.(ପ୍ରତି+ଇ+ଭା.ଅ) ଅଧୀନ, ଶପଥ, ମାଣ୍ଡ, ଜ୍ଞାନ, ସ୍ଥିରୀକରଣ, ଆସ୍ଥା, ବିଶ୍ୱାସ, ନିଶ୍ଚୟାତ୍ମକ ଜ୍ଞାନପ୍ରତୀତି, କାରଣ, ହେତୁ, ଛିଦ୍ର, ଖ୍ୟାତି, ଆଗ୍ରହ,ପ୍ରସିଦ୍ଧି, ଖ୍ୟାତ, ନିଶ୍ଚୟ, ସ୍ୱାଦୁତା, ସହକାରୀ କାରଣ, ବିଷ୍ଣୁ, ପାରମାର୍ଥିକ ଚିନ୍ତା,ଧର୍ମସମ୍ବନ୍ଧୀୟ ଚିନ୍ତା, ବିବେଚନା, (ବ୍ୟାକରଣ) ଶବ୍ଦ ବା ଧାତୁ ପରେ ଯୋଗ କରାଯିବା ବିଭକ୍ତି ବା ଚିହ୍ନ ।

ପ୍ରତ୍ୟୟକାରୀ—ପୁଂ. ବିଂ. ବିଶ୍ୱାସକାରକ, ଯାହା ଅନ୍ୟ ମନରେ ବିଶ୍ୱାସ ଜନ୍ମାଏ, (ବି) ମୋହର, ଛାପ ।

ପ୍ରତ୍ୟୟଜନକ—ବିଂ. (୬ତତ୍) ଯାହା ବିଶ୍ୱାସ ଜନ୍ମାଏ, ଯାହା ଉପରେ ବିଶ୍ୱାସ ଜନ୍ମିଥାଏ, ବିଶ୍ୱସ୍ତ ।

ପ୍ରତ୍ୟୟଭାଜନ—ବିଂ.(୬ତତ୍) ବିଶ୍ୱାସର ପାତ୍ର, ବିଶ୍ୱସ୍ତ ।

ପ୍ରତ୍ୟୟଯୋଗ୍ୟ—ବିଂ.(୬ତତ୍) ବିଶ୍ୱାସର ଉପଯୁକ୍ତ, ବିଶ୍ୱାସ୍ୟ ।

ପ୍ରତ୍ୟୟହନ୍ତା—ପୁଂ.ବିଂ(୬ତତ୍)ବିଶ୍ୱାସଘାତକ, (ସ୍ତ୍ରୀ) ପ୍ରତ୍ୟୟହନ୍ତ୍ରୀ ।

ପ୍ରତ୍ୟୟାତୀତ—ବିଂ. (ପ୍ରତ୍ୟୟ+ଅତୀତ) ବିଶ୍ୱାସର ଅଯୋଗ୍ୟ ।

ପ୍ରତ୍ୟୟାର୍ହ—ପୁଂ.ବିଂ. (୬ତତ୍)ବିଶ୍ୱାସଯୋଗ୍ୟ, ବିଶ୍ୱାସ୍ୟ ।

ପ୍ରତ୍ୟୟିତ—ବିଂ.(ପ୍ରତ୍ୟୟ+ଇତ)ଆପ୍ତ, ବିଶ୍ୱସ୍ତ, ବିଶ୍ୱାସପାତ୍ର, ପ୍ରତୀତ ।

ପ୍ରତ୍ୟୟୀ—ପୁଂ. ବିଂ. (ପ୍ରତ୍ୟୟ+ଇନ୍) ବିଶ୍ୱାସୀ, ଯାହାକୁ ବିଶ୍ୱାସ କରାଯାଏ ।

ପ୍ରତ୍ୟରି—ପୁଂ.ବି. (ପ୍ରତି+ଋ+ଇ)ଶତ୍ରୁ, (ଜ୍ୟୋତିଷ) ଜନ୍ମତାରା ଠାରୁ ପଞ୍ଚମ ଚତୁର୍ଦ୍ଦଶ ଓ ତ୍ରୟୋବିଂଶ ତାରକ ।

ପ୍ରତ୍ୟର୍କ—ପୁଂ.ବି.ପ୍ରତିସୂର୍ଯ୍ୟ, ସୂର୍ଯ୍ୟାଭାସ, ସୂର୍ଯ୍ୟମଣ୍ଡଳ ଭେଦ ।

ପ୍ରତ୍ୟର୍ଚ୍ଚନ—କ୍ଲୀ.ବି.(ପ୍ରତି+ଅର୍ଚ୍ଚ୍+ଅନ) ପ୍ରତିନମସ୍କାର, ପ୍ରତିପୂଜା ।

ପ୍ରତ୍ୟର୍ଥ—ବି. (ପ୍ରତି+ଅର୍ଥ) ପ୍ରତ୍ୟୁତ୍ତର, ଶତ୍ରୁତା, ପ୍ରତିସ୍ପର୍ଦ୍ଧା ।

ପ୍ରତ୍ୟର୍ଥକ—ପୁଂ. ବିଂ. ଶତ୍ରୁ, ବିପକ୍ଷ ।

ପ୍ରତ୍ୟର୍ଥିକ—ପୁଂ. ବିଂ. ଶତ୍ରୁ, ବିପକ୍ଷ ।

ପ୍ରତ୍ୟର୍ଥୀ—ପୁଂ. ବିଂ. (ପ୍ରତି+ଅର୍ଥ+ଇନ୍)ବିପକ୍ଷ, ଶତ୍ରୁ, ପ୍ରତିକୂଳ,ଆସାମୀ, ପ୍ରତିବାଦୀ (ସ୍ତ୍ରୀ) ପ୍ରତ୍ୟର୍ଥିନୀ ।

ପ୍ରତ୍ୟର୍ପଣ—କ୍ଲୀ.ବି. (ପ୍ରତି+ଅର୍ପଣ)ପ୍ରତିଦାନ, ଗୃହୀତ ଧନାଦିର ପୁନର୍ଦ୍ଦାନ, ପ୍ରତିସମର୍ପଣ, ଦତ୍ତ ବସ୍ତୁକୁ ଦାତାକୁ ଫେରାଇ ଦେବା, ନେଇଥିବା ପଦାର୍ଥକୁ ଲେଉଟାଇବା ।

ପ୍ରତ୍ୟର୍ପଣୀୟ—ବିଂ. (ପ୍ରତି+ଋ+ଣିଚ୍+ଅନୀୟ)ଫେରାଇ ଦେବାର ଯୋଗ୍ୟ. ପ୍ରତ୍ୟର୍ପଣର ଯୋଗ୍ୟ ।

ପ୍ରତ୍ୟର୍ପିତ—ବିଂ. (ପ୍ରତି+ଅର୍ପିତ) ପ୍ରତିଦତ୍ତ, ଯାହା ଫେରାଇ ଦିଆହୋଇଅଛି ।

ପ୍ରତ୍ୟର୍ହ—ଅବ୍ୟ. ପ୍ରତିପୂଜାର ଯୋଗ୍ୟ, ସମ୍ମାନନୀୟ ।

ପ୍ରତ୍ୟବନେଜନ—କ୍ଲୀ.ବି.ଶ୍ରାଦ୍ଧାଙ୍ଗ ପ୍ରଥମ ଜଳାଦି ଦାନର ଅନୁରୂପ ପିଣ୍ଡର ଉପରିଭାଗରେ କ୍ରିୟମାଣ ପୁନରବନେଜନ, ଶ୍ରାଦ୍ଧ କାର୍ଯ୍ୟରେ ପିଣ୍ଡ ପୂଜାଦିର ପର ପିଣ୍ଡରେ ପ୍ରତ୍ୟବନେଜନ କରାଯାଏ ।

ପ୍ରତ୍ୟବମର୍ଶ—ପୁଂ.ବି.ଅନୁସନ୍ଧାନ,ବିବେକ

ପ୍ରତ୍ୟବମର୍ଶନ—କ୍ଲୀ. ବି. (ପ୍ରତି+ଅବ+ମୃଶ୍+ଅନ) ଅନୁସନ୍ଧାନ, ଯୁକ୍ତାଯୁକ୍ତ ବିଚାର ।

ପ୍ରତ୍ୟବମର୍ଷଣ—କ୍ଲୀ.ବି. (ପ୍ରତି+ଅବ+ମୃଷ୍+ଅନ) ସହନ, ଯୁକ୍ତାଯୁକ୍ତବିଚାର

ପ୍ରତ୍ୟବର—ବିଂ. ଅତି ନିକୃଷ୍ଟ ।

ପ୍ରତ୍ୟବରୋହ—ପୁଂ.ବି.ଅବରୋହ, ଅବତରଣ,ସୋପାନ, ଅଗ୍ରହାୟଣ ମାସରେ ଗୃହ୍ୟ ଉତ୍ସବବିଶେଷ ।

ପ୍ରତ୍ୟବରୋହଣୀୟ—ବିଂ. ଅବରୋହଣର ଯୋଗ୍ୟ, ବାଜପେୟ ଯଜ୍ଞର ଏକାହସାଧ୍ୟ ବଳି ।

ପ୍ରତ୍ୟବସାନ—କ୍ଲୀ. ବି. (ପ୍ରତି+ଅବ+ସୋ+ଅନ) ଭୋଜନ, ଭକ୍ଷଣ ।

ପ୍ରତ୍ୟବସିତ—ବିଂ. (ପ୍ରତି+ଅବ+ସୋ+କ୍ତ.ତ) ଭକ୍ଷିତ, ଭୁକ୍ତ ।

ପ୍ରତ୍ୟବସ୍କନ୍ଦ—ପୁଂ. ବି. (ପ୍ରତି+ଅବ+ସ୍କନ୍ଦ+ଭା.ଅ) ବ୍ୟବହାରରେ ଉତ୍ତରଭେଦ, ଆରୋପିତ ଦୋଷର ଖଣ୍ଡନ ନିମିତ୍ତ ପ୍ରତିବାଦୀର ଉପସ୍ଥାପିତ ଯୁକ୍ତି ବା ପ୍ରମାଣ, ପ୍ରତ୍ୟବସ୍କନ୍ଦନ ।

ପ୍ରତ୍ୟବସ୍କନ୍ଦନ—କ୍ଲୀ.ବି. (ପ୍ରତି+ଅବ+ସ୍କନ୍ଦ+ଅନ) ପ୍ରତ୍ୟର୍ଥୀର ପ୍ରତ୍ୟୁତ୍ତରବିଶେଷ, ଜବାବ, ପ୍ରତ୍ୟବସ୍କନ୍ଦ ଦେଖ ।

ପ୍ରତ୍ୟବସ୍ଥା—ସ୍ତ୍ରୀ.ବି. (ପ୍ରତି+ଅବ+ସ୍ଥା+ଅ+ଆ)ପ୍ରତିପକ୍ଷରୂପେ ଅବସ୍ଥାନ ।

ପ୍ରତ୍ୟବସ୍ଥାତା—ପୁଂ.ବିଂ.(ପ୍ରତି+ଅବ+ସ୍ଥା+କ.ତୃ) ପ୍ରତିପକ୍ଷ, ଶତ୍ରୁ, ଅବରୋଧକ, (ସ୍ତ୍ରୀ) ପ୍ରତ୍ୟବସ୍ଥାତ୍ରୀ ।

ପ୍ରତ୍ୟବସ୍ଥାନ—କ୍ଲୀ. ବି. (ପ୍ରତି+ଅବ+ସ୍ଥା+ଅନ) ବିପକ୍ଷ ରୂପେ ଅବସ୍ଥାନ, ଶତ୍ରୁ ରୂପେ ଠିଆହେବା ।

ପ୍ରତ୍ୟବହାର—ପୁଂ.ବି. (ପ୍ରତି+ଅବ+ହୃ+ଭା.ଅ) ପ୍ରଳୟ, ଧ୍ୱଂସ, ନାଶ, ଯୁଦ୍ଧ ନିମିତ୍ତ ଉଦ୍ୟୁକ୍ତ ସୈନ୍ୟମାନଙ୍କୁ ଯୁଦ୍ଧରୁ ନିବାରଣ ।

ପ୍ରତ୍ୟବାୟ—ପୁଂ. ବି. ପାପ, ଦୁରଦୃଷ୍ଟ, ବିପରୀତାଚରଣ, ଅନିଷ୍ଟ, ହାନି, କ୍ଷତି, ବାଧା, ବିପକ୍ଷତା, ନୈରାଶ୍ୟ, (ପ୍ରତି+ଅବ+ଇ+ଭା.ଅ) ବିଘ୍ନ, ଶାସ୍ତ୍ରବିହିତ ନିତ୍ୟକର୍ମ ନ କରିବା ଯୋଗୁଁ ପାପ ।

ପ୍ରତ୍ୟବେକ୍ଷଣ—କ୍ଲୀ.ବି. (ପ୍ରତି+ଅବ+

ଈକ୍ଷ+ଭା.ଅନ)ପୂର୍ବାପର ଆଲୋଚନ, ଅନୁସନ୍ଧାନ, ବିଚାର, ସତର୍କତା, ପର୍ଯ୍ୟବେକ୍ଷଣ ।

ପ୍ରତ୍ୟବେକ୍ଷା—ସ୍ତ୍ରୀ. ବି. ପ୍ରତ୍ୟବେକ୍ଷଣ, ତତ୍ତ୍ୱାବଧାନ ।

ପ୍ରତ୍ୟବେକ୍ଷ୍ୟ—ବିଂ.(ପ୍ରତି+ଅବ+ଈକ୍ଷ +ଯ) ପ୍ରତ୍ୟବେକ୍ଷଣ ଯୋଗ୍ୟ, ଅନୁସନ୍ଧେୟ, ବିଚାର୍ଯ୍ୟ, (ସ୍ତ୍ରୀ) ପ୍ରତ୍ୟବେକ୍ଷା ।

ପ୍ରତ୍ୟଶ୍ମ—ପୁଂ.ବି.ଗୈରିକ, ଗେରୁମାଟି ।

ପ୍ରତ୍ୟଷ୍ଠୀଲା—ସ୍ତ୍ରୀ.ବି.ମୂତ୍ରରୋଧକ ଅଷ୍ଠୀଲା ତୁଲ୍ୟ ରୋଗବିଶେଷ ।

ପ୍ରତ୍ୟସ୍ତଗମନ—କ୍ଳୀ.ବି. ସୂର୍ଯ୍ୟଙ୍କର ଅସ୍ତଗମନ ।

ପ୍ରତ୍ୟସ୍ତମୟ—ପୁଂ.ବି. ଅସ୍ତଗମନ,ବିରାମ, ଶେଷ, ଧ୍ୱଂସ ।

ପ୍ରତ୍ୟସ୍ତ୍ର—କ୍ଳୀ.ବି.ପ୍ରତିରୂପ ଅସ୍ତ୍ର, ତୁଲ୍ୟରୂପ ଅସ୍ତ୍ର । [ ନିତି ।

ପ୍ରତ୍ୟହ—ଅବ୍ୟ(ପ୍ରତି+ଅହନ୍)ପ୍ରତିଦିନ,

ପ୍ରତ୍ୟାକର୍ଷଣ—କ୍ଳୀ.ବି.(ପ୍ରତି+ଆକର୍ଷଣ) ଟାଣିଯିବା ବ୍ୟକ୍ତି ବା ବସ୍ତୁ ଦ୍ୱାରା ଟାଣୁଥିବା ବ୍ୟକ୍ତି ବା ବସ୍ତୁ ପ୍ରତି କରାଯିବା ଆକର୍ଷଣ, ଲେଉଟି ଓଟରା ।

ପ୍ରତ୍ୟାକାର—ପୁଂ.ବି.ଖଡ୍ଗକୋଷ, ଖାପ ।

ପ୍ରତ୍ୟାକ୍ରମଣ—କ୍ଳୀ.ବି. (ପ୍ରତି+ଆକ୍ରମଣ) ଆକ୍ରମଣକାରୀ ପ୍ରତି କରାଯିବା ଆକ୍ରମଣ

ପ୍ରତ୍ୟାକ୍ଷେପକ—ପୁଂ.ବିଂ. ଉପହାସକାରୀ

ପ୍ରତ୍ୟାଖ୍ୟାତ—ବିଂ. (ପ୍ରତି+ଆ+ଖ୍ୟା +ତ)ନାମଞ୍ଜୁର କରାଯାଇଥିବା,ଅସ୍ୱୀକୃତ, ନିବାରିତ, ଦୂରୀକୃତ, ନିରସ୍ତ, ନିରାକୃତ, ବିଜ୍ଞାପିତ, ନିରୁଷ୍ଟାସ୍ୱୀକୃତ ।

ପ୍ରତ୍ୟାଖ୍ୟାତା—ପୁଂ.ବିଂ. (ପ୍ରତି+ଆ+ଖ୍ୟା+ତୃ) ପ୍ରତ୍ୟାଖ୍ୟାନକାରକ ।

ପ୍ରତ୍ୟାଖ୍ୟାନ—କ୍ଳୀ. ବି. (ପ୍ରତି+ଆ+ଖ୍ୟା+ଅନ) ରଦକରିବା, ନାନାଞ୍ଜୁର କରିବା, ନିରାକରଣ,ଦୂରୀକରଣ,ଅସ୍ୱୀକାର, ତିରସ୍କାର, କହୁଥିବା କଥାକୁ ନ ମାନିବା ।

ପ୍ରତ୍ୟାଖ୍ୟେୟ—ବିଂ. (ପ୍ରତି+ଆ+ଖ୍ୟା +ର୍ମ.ଯ ) ପ୍ରତ୍ୟାଖ୍ୟାନର ଯୋଗ୍ୟ, ନିରାକରଣୀୟ ।

ପ୍ରତ୍ୟାଗତ—ବିଂ.(ପ୍ରତି+ଆ+ଗମ୍+ତ) ପ୍ରତିନିବୃତ୍ତ, ଫେରି ଆସିଥିବା, ପୁନରାଗତ ।

ପ୍ରତ୍ୟାଗତି—ସ୍ତ୍ରୀ.ବି.( ପ୍ରତି+ଆ+ଗମ୍ +ତି) ପ୍ରତ୍ୟାଗମନ,ପୁନରାୟ ଆଗମନ

ପ୍ରତ୍ୟାଗମ—ପୁଂ.ବି. (ପ୍ରତି+ଆ+ଗମ୍ +ଅ) ପ୍ରତ୍ୟାଗମନ, ଫେରି ଆସିବା, ଲେଉଟିବା, ଆଉ ଥରେ ଆସିବା ।

ପ୍ରତ୍ୟାଗମନ—କ୍ଳୀ.ବି(ପ୍ରତି+ଆ+ଗମ୍ +ଅନ) ପ୍ରତ୍ୟାଗମ, ଫେରି ଆସିବା, ପ୍ରତିନିବୃତ୍ତି ।

ପ୍ରତ୍ୟାଚାର—ପୁଂ. ବି. (ପ୍ରତି+ଆ+ଚର+ଅ) ସଦାଚାରସମ୍ପନ୍ନ ବ୍ୟକ୍ତି ।

ପ୍ରତ୍ୟାତ୍ମା—ବିଂ. ପ୍ରତ୍ୟେକଟି, ଏକାକୀ, ଗୋଟିଏ ।

ପ୍ରତ୍ୟାତ୍ମିକ—ବିଂ. ଜଣକର ଅଧିକୃତ ।

ପ୍ରତ୍ୟାଦିତ୍ୟ—ପୁଂ.ବି.ପ୍ରତିସୂର୍ଯ୍ୟ ଦେଖ ।

ପ୍ରତ୍ୟାଦିଷ୍ଟ—ବିଂ.(ପ୍ରତି+ଆ+ଦିଶ୍+ତ)ଅନ୍ୟ ଦ୍ୱାରା ସାବଧାନ କରାଇ ଦିଆଯାଇଥିବା, ପ୍ରତ୍ୟାଦେଶବିଶିଷ୍ଟ, ନିରାକୃତ,ତ୍ୟକ୍ତ, ଜ୍ଞାପିତ,ଦୈବବାଣୀ ରୂପେ ପ୍ରକାଶିତ (ବିଷୟ) ଦୈବବାଣୀ ଦ୍ୱାରା ଆଦେଶପ୍ରାପ୍ତ (ବ୍ୟକ୍ତି), ପ୍ରତ୍ୟାଖ୍ୟାତ ।

ପ୍ରତ୍ୟାଦେଶ—ପୁଂ. ବି. (ପ୍ରତି+ଆ+ଦିଶ୍+ଅ) ନିରାକରଣ, ପ୍ରତ୍ୟାଖ୍ୟାନ, ପ୍ରସଙ୍ଗନିବାରଣ,ଭକ୍ତପ୍ରତି ଦେବତାମାନଙ୍କର ଆଦେଶ, ଜ୍ଞାପନ, ଦୈବବାଣୀ, ଈଶ୍ୱର ପ୍ରେରଣାରେ ମନରେ ଜନ୍ମିଲା ଭାବ, ବାଧା, ବିଘ୍ନ, ପରିତ୍ୟାଗ, ନିଷେଧାଜ୍ଞା ।

ପ୍ରତ୍ୟାଦେଷ୍ଟା—ପୁଂ. ବିଂ. (ପ୍ରତି+ଆ +ଦିଶ୍+କ.ତୃ) ପ୍ରତ୍ୟାଦେଶକର୍ତ୍ତା, ଜ୍ଞାପୟିତା ।

ପ୍ରତ୍ୟାଧାନ—କ୍ଳୀ. ବି. (ପ୍ରତି+ଆ+ଧା+ଅନ) ମସ୍ତକ, ଦ୍ୱିତୀୟାଧାନ ।

ପ୍ରତ୍ୟାଧ୍ମାନ—ପୁଂ.ବି. ବାତବ୍ୟାଧି,ରୋଗବିଶେଷ ।

ପ୍ରତ୍ୟାନୟନ—କ୍ଳୀ. ବି. (ପ୍ରତି+ଆ+ନୀ+ଅନ) ପୁନରୁଦ୍ଧାର, ଫେରାଇ-ଆଣିବା ।

ପ୍ରତ୍ୟାନୀତ—ବିଂ. (ପ୍ରତି+ଆ+ନୀ +ତ) ବନ୍ଧକରୁ ମୁକୁଳାଯାଇଥିବା, ଯାହା ଫେରାଇ ଅଣାହୋଇଅଛି,ଯାହା ପୁନରୁଦ୍ଧାର ହୋଇଅଛି ।

ପ୍ରତ୍ୟାନେୟ—ବିଂ. ଫେରାଇ ଆଣିବାର ଯୋଗ୍ୟ, ସତ୍ପଥରେ ଆଣିବାର ଯୋଗ୍ୟ ।

ପ୍ରତ୍ୟାପତ୍ତି—ସ୍ତ୍ରୀ.ବି. (ପ୍ରତି+ଆ+ପଦ୍ +ତି) ବୈରାଗ୍ୟ, ପୁନରାଗମନ ।

ପ୍ରତ୍ୟାପ୍ଲବନ—କ୍ଳୀ.ବି. (ପ୍ରତି+ଆ+ପ୍ଲୁ +ଅନ) ଆପ୍ଳାବିତ ହେବା, ଉଛୁଳି-ଉଠିବା ।

ପ୍ରତ୍ୟାମ୍ନାନ—ବିଂ. ପ୍ରତିନିଧି ।

ପ୍ରତ୍ୟାୟ—ପୁଂ.ବି. ରାଜସ୍ୱ,କର,ଖଜଣା ।

ପ୍ରତ୍ୟାୟକ—ବିଂ.ବିଶ୍ୱାସକାରକ,ବୋଧକ

ପ୍ରତ୍ୟାୟନ—କ୍ଳୀ. ବି. (ପ୍ରତି+ଆ+ଇ +ଣି+ଅନ)ବୋଧନ ,ବିଶ୍ୱାସଜନନ ।

ପ୍ରତ୍ୟାୟିତ—ପୁଂ. ବିଂ. ବିଶ୍ୱସ୍ତ, ବିଶ୍ୱସ୍ତ କର୍ମଚାରୀ ।

ପ୍ରତ୍ୟାୟିତବ୍ୟ—ବିଂ. ବିଶ୍ୱାସର ଉପଯୁକ୍ତ, ପ୍ରତ୍ୟୟର ଯୋଗ୍ୟ ।

ପ୍ରତ୍ୟାରମ୍ଭ—ପୁଂ. ବି. (ପ୍ରତି+ଆରମ୍ଭ) ପଶ୍ଚାତ୍ ଆରମ୍ଭ, ବିଗିଡ଼ିଯାଇଥିବା କାର୍ଯ୍ୟର ପୁନରାରମ୍ଭ, ଉଦ୍‌ଯୋଗ କରିବା ।

ପ୍ରତ୍ୟାଲୀଢ଼—କ୍ଳୀ.ବି. (ପ୍ରତି+ଆ+ଲିହ୍ +ତ) ଧନ୍ୱୀମାନଙ୍କର ପଦସଂସ୍ଥାନବିଶେଷ, (ବିଂ) ଆସ୍ୱାଦିତ, ଭୁକ୍ତ,ଭକ୍ଷିତ, କଟାଯାଇଥିବା, ଶର ସନ୍ଧାନ ସମୟରେ ବାମ ପାଦକୁ ପ୍ରସାରଣ ଓ ଦକ୍ଷିଣ ପାଦକୁ ସଙ୍କୋଚନ କରି ବସିବା ।

ପ୍ରତ୍ୟାବର୍ତ୍ତନ—କ୍ଳୀ.ବି.(ପ୍ରତି+ଆ+ବୃତ୍ +ଅନ) ପ୍ରତ୍ୟାଗମ ଦେଖ ।

ପ୍ରତ୍ୟାବୃତ୍ତ—ବିଂ. (ପ୍ରତି+ଆ+ବୃତ୍ +ତ) ପ୍ରତ୍ୟାଗତ ଦେଖ ।

ପ୍ରତ୍ୟାଶା—ସ୍ତ୍ରୀ. ବି. ( ପ୍ରତି+ଆଶା ) ଆକାଙ୍କ୍ଷା, ପ୍ରତ୍ୟୟ, ଭରସା, ପ୍ରତୀକ୍ଷା,

ବିଶ୍ୱାସ, ଆଶା ।

ପ୍ରତ୍ୟାଶୀ—ପୁଂ. ବିଂ. (ପ୍ରତି+ଆଶା+ଇନ୍) ଯେ ପ୍ରତ୍ୟାଶା କରେ, ଫଳ ପ୍ରାପ୍ତି ପାଇଁ ଆଶାନ୍ୱିତ ।

ପ୍ରତ୍ୟାଶ୍ରୟ—ପୁଂ. ବି. (ପ୍ରତି+ଆ+ଶ୍ରି+ଅ) ଆଶ୍ରୟଗୃହ ।

ପ୍ରତ୍ୟାଶ୍ୱାସ—ପୁଂ. ବି. (ପ୍ରତି+ଆ+ଶ୍ୱସ୍+ଅ) ସ୍ୱାସ୍ଥ୍ୟ, ପୁନର୍ଜୀବନ, ପ୍ରତ୍ୟାଶା ।

ପ୍ରତ୍ୟାଶ୍ୱାସନ—କ୍ଲୀ. ବି. (ପ୍ରତି+ଆ+ଶ୍ୱସ୍+ଅନ) ସାନ୍ତ୍ୱନାର୍ଥ ଆଶ୍ୱାସନ ।

ପ୍ରତ୍ୟାସଙ୍ଗ—ପୁଂ.ବି. ସମ୍ବନ୍ଧ, ସଂଯୋଗ ।

ପ୍ରତ୍ୟାସତ୍ତି—ସ୍ତ୍ରୀ. ବି. (ପ୍ରତି+ଆ+ସଦ୍+କ୍ତି) ନୈକଟ୍ୟ, ସାମୀପ୍ୟ, ନୈୟାୟିକ ମତ ସିଦ୍ଧ ଅଲୌକିକ ପ୍ରତ୍ୟକ୍ଷଜନକ ସମ୍ବନ୍ଧମାତ୍ର ।

ପ୍ରତ୍ୟାସନ୍ନ—ବିଂ. (ପ୍ରତି+ଆ+ସଦ୍++ତ) ନିକଟବର୍ତ୍ତୀ, ସନ୍ନିହିତ, ନିକଟସ୍ଥ, ପରସ୍ପରକୁ ଲଗାଲଗି ।

ପ୍ରତ୍ୟାସର—ପୁଂ. ବି. (ପ୍ରତି+ଆ+ସୃ+ଅ) ସୈନ୍ୟପୃଷ୍ଠ, ସେନା ବ୍ୟୂହ ।

ପ୍ରତ୍ୟାସାର—ପୁଂ. ବି. (ପ୍ରତି+ଆ+ସୃ+ଅ) ସୈନ୍ୟପୃଷ୍ଠ, ପଶ୍ଚାଦ୍‌ବର୍ତ୍ତୀ ସୈନ୍ୟ ବ୍ୟୂହ । [ଅପସରଣ ।

ପ୍ରତ୍ୟାସ୍ତାର—ପୁଂ. ବି. ବୌଦ୍ଧଭିକ୍ଷୁଙ୍କର

ପ୍ରତ୍ୟାସ୍ୱର—ପୁଂ. ବି. (ପ୍ରତି+ଆ+ସ୍ୱୃ+ଅ) ପ୍ରତ୍ୟାଗତ, ଅସ୍ତ୍ରକ୍ଷେପରୁ ପୁନର୍ବାର ପ୍ରତ୍ୟାଗତ ଆଦିତ୍ୟ ।

ପ୍ରତ୍ୟାହତ—ବିଂ (ପ୍ରତି+ଆ+ହନ୍+ତ) ପ୍ରତିବନ୍ଧ, ବ୍ୟାହତ, ସଙ୍କୁଚିତ, କୁଣ୍ଠିତ ।

ପ୍ରତ୍ୟାହରଣ—କ୍ଲୀ. ବି. (ପ୍ରତି+ଆ+ହୃ+ଅନ) ପ୍ରତ୍ୟାହାର, ପ୍ରତ୍ୟାବର୍ତ୍ତନ, ଫେରାଇନେବା ।

ପ୍ରତ୍ୟାହାର—ପୁଂ. ବି. (ପ୍ରତି+ଆ+ହୃ+ଅ) ଫେରାଇନେବା, ଯୋଗାଙ୍ଗ ବିଶେଷ, ସଂଜ୍ଞାବିଶେଷ, ସ୍ୱ ସ୍ୱ ବିଷୟରୁ ଇନ୍ଦ୍ରିୟମାନଙ୍କୁ ନିବୃତ୍ତ କରାଇ ଈଶ୍ୱରଙ୍କଠାରେ ମନୋନିବେଶ କରିବା, ଇନ୍ଦ୍ରିୟ ଦମନ, ସଙ୍କୋଚନ, ସଂରସ ଙ୍କଳନ, କହିଥିବା କଥାକୁ ଲେଉଟାଇ ନେବା ।

ପ୍ରତ୍ୟାହାର୍ଯ୍ୟ—ବିଂ.(ପ୍ରତି+ଆ+ହୃ+ମିଂ.ଯ) ପୁନର୍ଗ୍ରହଣୀୟ, ପ୍ରତ୍ୟାହାରର ଯୋଗ୍ୟ ।

ପ୍ରତ୍ୟାହୃତ—ବିଂ. (ପ୍ରତି+ଆ+ହୃ+ମିଂ.ତ) ପ୍ରତ୍ୟାକୃଷ୍ଟ, ଯାହା ଫେରାଇ ନିଆ ହୋଇଅଛି ।

ପ୍ରତ୍ୟୁକ୍ତ—ବିଂ (ପ୍ରତି+ବଚ୍+ମିଂ.ତ) ଉତ୍ତରିତ, ପ୍ରତିଭାଷିତ, ପ୍ରତିବାକ୍ୟ ଦ୍ୱାରା ନିରାକୃତ, (ବି) ପ୍ରତିବଚନ, ଉତ୍ତର ।

ପ୍ରତ୍ୟୁକ୍ତି—ସ୍ତ୍ରୀ. ବି.(ପ୍ରତି+ବଚ୍+କ୍ତି) ପ୍ରତ୍ୟୁତ୍ତର, ଜବାବ, ପ୍ରତିବାକ୍ୟ କଥନ, ପ୍ରତିବଚନ ।

ପ୍ରତ୍ୟୁଚ୍ଚାରଣ—କ୍ଲୀ.ବି.ପୁନର୍ବାର ଉଚ୍ଚାରଣ

ପ୍ରତ୍ୟୁଜ୍ଜୀବନ—କ୍ଲୀ. ବି. (ପ୍ରତି+ଉତ୍+ଜୀବ୍+ଅନ) ପୁନର୍ଜୀବନ ।

ପ୍ରତ୍ୟୁତ—ଅବ୍ୟ.(ପ୍ରତି+ଉ+ତ) ବୈପରୀତ୍ୟ, ପରବାକ୍ୟ ଦ୍ୱାରା ପୂର୍ବବାକ୍ୟର ବୈପରୀତ୍ୟ ସମ୍ପାଦନ କରିବାକୁ ହେଲେ ପ୍ରତ୍ୟୁତ ବ୍ୟବହୃତ ହୋଇଥାଏ, ବରଂ, ପରନ୍ତୁ, ଅଥଚ । [ଆଧିକ୍ୟ ।

ପ୍ରତ୍ୟୁତ୍କର୍ଷ—ପୁଂ. ବି.ମୂଲ୍ୟାଧିକ୍ୟ,ଅବସ୍ଥାର

ପ୍ରତ୍ୟୁତ୍କ୍ରମଣ—କ୍ଲୀ. ବି. (ପ୍ରତି+ଉତ୍+କ୍ରମ୍+ଅନ) ପ୍ରକୃଷ୍ଟଯୋଗ, ଯୁଦ୍ଧାର୍ଥ ଉଦ୍‌ଯୋଗ, ପ୍ରଧାନ ପ୍ରୟୋଜନାନୁକୂଳ ଅପ୍ରଧାନ କାର୍ଯ୍ୟର ଅନୁଷ୍ଠାନ, ଯୁଦ୍ଧର ପ୍ରଥମ ଆକ୍ରମଣ ।

ପ୍ରତ୍ୟୁତ୍କ୍ରାନ୍ତି—ସ୍ତ୍ରୀ. ବି. (ପ୍ରତି+ଉତ୍+କ୍ରମ୍+ତି) ପ୍ରତ୍ୟୁତ୍କ୍ରମ ଦେଖ ।

ପ୍ରତ୍ୟୁତ୍ତବ୍ଧି—ସ୍ତ୍ରୀ.ବି. ଧାରଣ, ଅବଲମ୍ବନ, ରକ୍ଷଣ, ସ୍ଥାପନ ।

ପ୍ରତ୍ୟୁତ୍ତମ୍ଭ—ପୁଂ.ବି. ପ୍ରତ୍ୟୁତ୍ତବ୍ଧି ଦେଖ ।

ପ୍ରତ୍ୟୁତ୍ତର—କ୍ଲୀ. ବି (ପ୍ରତି+ଉତ୍ତର) ଉତ୍ତରର ଉତ୍ତର ।

ପ୍ରତ୍ୟୁତ୍ଥାନ—କ୍ଲୀ. ବି. (ପ୍ରତି+ଉତ୍+ସ୍ଥା+ଅନ) ଅଭ୍ୟୁତ୍ଥାନ, ଆଗତବ୍ୟକ୍ତିଙ୍କର ସମ୍ବର୍ଦ୍ଧନାର୍ଥ ଆସନରୁ ପୁନରାୟ ଉତ୍ଥାନ ।

ପ୍ରତ୍ୟୁତ୍ପନ୍ନ—ବିଂ.(ପ୍ରତି+ଉତ୍ପନ୍ନ) ପୁନରୁତ୍ପନ୍ନ, (ଗଣିତ) ଗୁଣିତ, ଉପସ୍ଥିତ, ସଦ୍ୟୋଜାତ, (ବି) ଗୁଣନ, ରାଶିର ଗୁଣଫଳ ।

ପ୍ରତ୍ୟୁତ୍ପନ୍ନମତି—ବି. (କ.ଧା) ଉପସ୍ଥିତବୁଦ୍ଧି, କାର୍ଯ୍ୟକାଳରେ ହଠାତ୍ ଉପସ୍ଥିତ ହେବା ବୁଦ୍ଧି, (ବିଂ.ବ.ବ୍ରୀ) ଉପସ୍ଥିତବୁଦ୍ଧିଯୁକ୍ତ, ହଠାତ୍ ଘଟିବା ଅବସ୍ଥାର ପ୍ରତିକାରପାଇଁ ଯାହାକୁ ବୁଦ୍ଧିସ୍ଫୁରେ ।

ପ୍ରତ୍ୟୁଦାହରଣ—କ୍ଲୀ. ବି. ଉଦାହରଣର ବିପରୀତ ଦୃଷ୍ଟାନ୍ତ ।

ପ୍ରତ୍ୟୁଦ୍ଗତ—ବିଂ.(ପ୍ରତି+ଉଦ୍ଗତ) ଯାହାକୁ ଉର୍ଦ୍ଧ୍ୱକୁ ଗତି କରାଇଦିଆ ହୋଇଅଛି, ଅଭ୍ୟର୍ଥନା ସହିତ ବିଦାୟପ୍ରାପ୍ତ, ଉତ୍ଥିତ ।

ପ୍ରତ୍ୟୁଦ୍ଗତି—ସ୍ତ୍ରୀ. ବି. (ପ୍ରତି+ଉତ୍+ଗମ୍+ତି) ପ୍ରତ୍ୟୁଦ୍ଗମ ଦେଖ ।

ପ୍ରତ୍ୟୁଦ୍ଗମ—ପୁଂ. ବି.(ପ୍ରତି+ଉତ୍+ଗମ୍+ଅ) ପ୍ରତ୍ୟୁତ୍ଥାନ, ପ୍ରତିଗମନ, ଆଗନ୍ତୁକଙ୍କୁ ପାଛୋଟି ଆଣିବାପାଇଁ ଯିବା ।

ପ୍ରତ୍ୟୁଦ୍ଗମନ—କ୍ଲୀ. ବି. (ପ୍ରତି+ଉତ୍+ଗମ୍+ଭା.ଅନ) ପ୍ରତ୍ୟୁତ୍ଥାନ, ଆଗତଙ୍କର ସମ୍ମାନାର୍ଥ ତଦଭିମୁଖେ ଆଗେ ଯିବା, ମାନ୍ୟବ୍ୟକ୍ତିଙ୍କୁ ପାଛୋଟିଯିବା ।

ପ୍ରତ୍ୟୁଦ୍ଗମନୀୟ—ବିଂ. (ପ୍ରତି+ଉତ୍+ଗମ୍+ମିଂ.ଅନୀୟ) ପ୍ରତ୍ୟୁଦ୍ଗମନର ଉପଯୁକ୍ତ, ସମ୍ପ୍ରସ୍ଥାନ ଯୋଗ୍ୟ, ପୂଜନୀୟ, (କ୍ଲୀ.ବି) ଧୌତବସ୍ତ୍ର ଯୁଗ୍ମ, ଯୋଡ଼ି, ଧୋତବସ୍ତ୍ରଦର

ପ୍ରତ୍ୟୁଦ୍ଧାର—ପୁଂ. ବି. ବାତଜନିତ ରୋଗ ବିଶେଷ ।

ପ୍ରତ୍ୟୁଦ୍ଧାତ—ବିଂ. ପ୍ରତ୍ୟୁଦ୍ଗତ ଦେଖ ।

ପ୍ରତ୍ୟୁଦ୍ୟମ—ପୁଂ. ବି. ତୁଲ୍ୟପରିମାଣ, (ବିଂ) ପ୍ରତ୍ୟୁଦ୍ୟମଯୁକ୍ତ, ତୁଲ୍ୟପରିମାଣବିଶିଷ୍ଟ ।

ପ୍ରତ୍ୟୁଦ୍ୟମୀ—ପୁଂ. ବିଂ. ତୁଲ୍ୟପରିମାଣ ବିଶିଷ୍ଟ, ଅଦମ୍ୟ, ସମାନବଳଶାଳୀ ।

ପ୍ରତ୍ୟୁଦ୍ୟାତା—ପୁଂ. ବି. (ପ୍ରତି+ଉତ୍+ଯା+ତୃ) ବିରୁଦ୍ଧରେ ଗମନକାରୀ ଶତ୍ରୁକୁ ଆକ୍ରମଣକାରୀ ।

ପ୍ରତ୍ୟୁଦ୍ୟାମୀ—ପୁଂ. ବିଂ. ତୁଲ୍ୟପରିମାଣବିଶିଷ୍ଟ, ଅଦମ୍ୟ, ସମକକ୍ଷ, ସମାନ ।

ପ୍ରତ୍ୟୁପକାର—ପୁଂ.ବି.(ପ୍ରତି+ଉପକାର) ଉପକାରାନୁରୂପ କୃତାନୁଷ୍ଠାନ,ଉପକାରୀର ଉପକାର ସାଧନ ।

ପ୍ରତ୍ୟୁପକାରୀ—ପୁଂ. ବିଂ. (ପ୍ରତି+ଉପ+କୃ+ଇନ୍) ଯେ ଉପକାରୀର ଉପକାର ସାଧନ କରେ, ପ୍ରତ୍ୟୁପକାରୀ ।

ପ୍ରତ୍ୟୁପକ୍ରିୟା—ସ୍ତ୍ରୀ.ବି. ପ୍ରତ୍ୟୁପକାରଦେଖ ।

ପ୍ରତ୍ୟୁପଦେଶ—ପୁଂ. ବି. (ପ୍ରତି+ଉପ+ଦିଶ୍+ଅ) ଉପଦେଶକାରୀ ପ୍ରତି ଉପଦେଶ, ଉପଦେଶାନୁରୂପ ଶିକ୍ଷା ପ୍ରଦାନ, ନିର୍ଦ୍ଦିଷ୍ଟ ବିଧାନାନୁଯାୟୀ ଉପଦେଶ ଦାନ ।

ପ୍ରତ୍ୟୁପଭୋଗ—ପୁଂ.ବି.ସୁଖଭୋଗ,ଭୋଗ ।

ପ୍ରତ୍ୟୁପମାନ—କ୍ଲୀ.ବି. ଉପମାନର ବୈପରୀତ୍ୟ । [ କରେଇବା ।

ପ୍ରତ୍ୟୁପଦେଶ—ପୁଂ. ବି. ବଳପୂର୍ବକ ରକ୍ଷା

ପ୍ରତ୍ୟୁପବେଶନ—କ୍ଲୀ.ବି. (ପ୍ରତି+ଉପ+ବିଶ୍+ଭା.ଅନ) ଅଭୀଷ୍ଟଲାଭ ଆଶାରେ ସ୍ଥିର ଭାବରେ ବସିବା ।

ପ୍ରତ୍ୟୁପସ୍ଥାନ—କ୍ଲୀ.ବି.ନିକଟବର୍ତ୍ତୀ ସ୍ଥାନ ।

ପ୍ରତ୍ୟୁପସ୍ପର୍ଶନ—କ୍ଲୀ.ବି.ଜଳଦ୍ୱାରା ଧୌତକରଣ ।

ପ୍ରତ୍ୟୁପହ୍ୱ—ପୁଂ. ବି. ଦେବତାମାନଙ୍କର ଆବାହନ ମନ୍ତ୍ରପାଠ ।

ପ୍ରତ୍ୟୁପହାର—ପୁଂ. ବି.(ପ୍ରତି+ଉପ+ହୃ+ଅ) ଅନୁରୂପ ଉପହାର, ଉପଢୌକନୀୟ ଦ୍ରବ୍ୟ ।

ପ୍ରତ୍ୟୁପେୟ—ବିଂ. ପ୍ରତିଦାନର ଯୋଗ୍ୟ, ପ୍ରତିଫଳର ଉପଯୁକ୍ତ, ଆଲୋଚନୀୟ ।

ପ୍ରତ୍ୟୁପ୍ତ—ବିଂ. ( ପ୍ରତି+ବପ୍+ତ)ଯାହା ବପନ କରାହୋଇଅଛି, ସଜ୍ଜିତ,ଖଚିତ, ବିଜଡ଼ିତ, ଗ୍ରଥିତ, ପ୍ରୋତ, ଉପ୍ତ, ଯାହା ବୁଣା ହୋଇଅଛି । [ ସ୍ଥଳରେ ।

ପ୍ରତ୍ୟୁରସ୍—ଅବ୍ୟ. ଉରଃସ୍ଥଳରେ, ବକ୍ଷ-

ପ୍ରତ୍ୟୁଳୂକ—ପୁଂ.ବି. କାକ,କାକ ଉଲୂକର ପ୍ରତିକୂଳ ଅର୍ଥାତ୍‌ ଶତ୍ରୁ ।

ପ୍ରତ୍ୟୁ(ତ୍ୟୂ)ଷ—ପୁଂ.ବି. ପ୍ରତ୍ୟୁଷ, ପ୍ରାତଃ, ପ୍ରାତଃକାଳ, ବଡ଼ଭୋର ।

ପ୍ରତ୍ୟୁ(ତ୍ୟୂ)ଷଃ—କ୍ଲୀ. ବି. ( ପ୍ରତି+ଉଷ୍ +ଅସ୍) ପ୍ରତ୍ୟୁଷ, ପ୍ରାତଃକାଳ,ପ୍ରଭାତ ।

ପ୍ରତ୍ୟୂଷ-ପୁଂ.ବି.ପ୍ରଭାତ,ସୂର୍ଯ୍ୟ,ବାସୁଦେବ

ପ୍ରତ୍ୟୂହ—ପୁଂ.ବି.(ପ୍ରତି+ଉହ୍+ଭା.ଅ) ବିଘ୍ନ, ବାଧା, ବ୍ୟାଘାତ, ଅନ୍ତରାୟ, ବିରୁଦ୍ଧତର୍କ ।

ପ୍ରତ୍ୟେକ—ସର୍ବ. (ତ୍ରି. ବିଂ) ଏକ ଏକ କରି ସମସ୍ତ,ଜଣ ଜଣକରି,ଜଣଜଣକେ ଜଣେ ଜଣେ ।

ପ୍ରତ୍ୟେକଶଃ—ଅବ୍ୟ. (ପ୍ରତ୍ୟେକ+ଶସ୍) ଜଣ ଜଣକେ, ପ୍ରତ୍ୟେକରେ ।

ପ୍ରତ୍ୟେକେ—ଗ୍ରା.ସର୍ବ.(ତ୍ରି.ବିଂ)ପ୍ରତ୍ୟେକ ଦେଖ ।

ପ୍ରତ୍ୟେତା—ପୁଂ. ବିଂ.(ପ୍ରତି+ଇ+କ. ତୃ) ବିଶ୍ୱାସୀ, ପ୍ରତ୍ୟୟକାରୀ, ବିଶ୍ୱାସକାରୀ । [ କାରୀ ।

ପ୍ରତ୍ୟେନସ—ପୁଂ.ବି.ବିଚାରକ, ଉତ୍ତରାଧି-

ପ୍ରହାସ—ପୁଂ.ବି. ପ୍ର+ହସ୍+ଅ)ଭୟ, କମ୍ପ ।

ପ୍ରଥନ—କ୍ଲୀ. ବି.(ପ୍ରଥ+ଭା.ଅନ)ପ୍ରକାଶକରଣ,ବ୍ୟକ୍ତକରିବା,ବିସ୍ତାର ଗୁଳ୍ମଭେଦ

ପ୍ରଥମ—ବିଂ. ( ପ୍ରଥ+ଅମ୍ ) ମୌଳିକ, ଜ୍ୟେଷ୍ଠ, ପ୍ରଧାନ, ଅଗ୍ରିମ, ପୂର୍ବବର୍ତ୍ତୀ, ଅଗ୍ରଜ, ଆଦିମ, ମୁଖ୍ୟ, ଆଦ୍ୟ,ଆଦି ।

ପ୍ରଥମକ—ବିଂ.(ପ୍ରଥମ+ସ୍ୱାର୍ଥେ.କ)ପ୍ରଥମ ଦେଖ ।

ପ୍ରଥମକଳ୍ପିତ—ବିଂ.ପ୍ରଥମେ ଯାହାକଳ୍ପନା କରାହୋଇଅଛି ।

ପ୍ରଥମକୁସୁମ—ପୁଂ.ବି. ଶୁକ୍ଳମରୁବକ ବୃକ୍ଷ ଶ୍ୱେତବକ ।

ପ୍ରଥମଜ—ବିଂ. ( ପ୍ରଥମ+ଜନ୍+ଅ ) ପୂର୍ବଜାତ, ପ୍ରଥମ ଗର୍ଭଜାତ, ପଢ଼ୁଆଁ, ଅଗ୍ରଜ, ଜ୍ୟେଷ୍ଠ (ସନ୍ତାନ) ।

ପ୍ରଥମଜାତ—ବିଂ. ଅଗ୍ରଜ, ପ୍ରଥମରେ ଜାତହୋଇଥିବା ସମସ୍ତ ।

ପ୍ରଥମତଃ—ଅବ୍ୟ.(ପ୍ରଥମ+ତସ୍)ପ୍ରଥମେ ଅଗ୍ରେ, ମୁଖ୍ୟତଃ, ପୂର୍ବେ,ପହିଲୁ, ଆରମ୍ଭରୁ ।

ପ୍ରଥମପୁରୁଷ—ପୁଂ ବି. ଆଦିପୁରୁଷ, ବ୍ୟାକରଣୋକ୍ତ ଆଖ୍ୟାତ ବିଭକ୍ତିର ସଂଜ୍ଞାବୋଧକ ଶବ୍ଦ, ମୈଥୁନୀସୃଷ୍ଟି ପ୍ରଣେତା, ( ବ୍ୟାକରଣ ) ଅନ୍ୟ ବ୍ୟକ୍ତି ସମ୍ବନ୍ଧେ ବ୍ୟବହୃତ ପୁରୁଷ (ଯାହାର ଚିହ୍ନ—ସେ, ସେମାନେ ଇତ୍ୟାଦି), ( ଗ୍ରା.ବି—ଓଡ଼ିଆ ବ୍ୟାକରଣ)କହିବା ବ୍ୟକ୍ତି ନିଜକୁ ଲକ୍ଷ୍ୟ କରିବା ପୁରୁଷ (ଏହାର ଚିହ୍ନ—ମୁଁ,ଆମ୍ଭେ ଇତ୍ୟାଦି) ।

ପ୍ରଥମଭାକ୍—ବିଂ.ଯେ ପ୍ରଥମ ବା ଅଗ୍ରଭାଗ ଗ୍ରହଣ କରେ,ଉତ୍ପତ୍ତିକାଳ ବିଭାଗକାରୀ ।

ପ୍ରଥମଭାର୍ଯ୍ୟା—ଗ୍ରା. ସ୍ତ୍ରୀ. ବି. ବହୁ ବିବାହିତ ପୁରୁଷର ପ୍ରଥମ ବିବାହିତା ସ୍ତ୍ରୀ ।

ପ୍ରଥମରାତ୍ର—ପୁଂ. ବି. ରାତ୍ରିର ପ୍ରଥମ ପ୍ରହର, ରାତ୍ରିର ପ୍ରଥମଭାଗ ।

ପ୍ରଥମବୟଃ—କ୍ଲୀ. ବି. (କ.ଧା) ବାଲ୍ୟକାଳ, ଶିଶୁ ଅବସ୍ଥା ।

ପ୍ରଥମବୟସୀ—ପୁଂ. ବିଂ. ପ୍ରଥମବୟୋଯୁକ୍ତ, ଜ୍ୟେଷ୍ଠ ।

ପ୍ରଥମବରଣ—ବି.ବିଭାବେଦୀରେ କନ୍ୟାଦାନ ପୂର୍ବରୁ ବରକୁ କନ୍ୟାଦାତାଙ୍କର ବିଧିଅନୁସାରେ କରିବା ବରଣ କର୍ମବିଶେଷ । [ ମହିଷୀ ।

ପ୍ରଥମବିତ୍ତା—ସ୍ତ୍ରୀ.ବି.ପ୍ରଥମ ପରିଣୀତା ସ୍ତ୍ରୀ,

ପ୍ରଥମବିବାହ—ପୁଂ.ବି. ଏକାଧିକ ବିବାହ କରିଥିବା ବ୍ୟକ୍ତିର ପ୍ରଥମ ଥର ହୋଇଥିବା ବିବାହ ।

ପ୍ରଥମସଙ୍ଗମ—ପୁଂ.ବି. ପ୍ରଥମ ସମ୍ମିଳନ ।

ପ୍ରଥମସାହସ—ପୁଂ.ବି. ସାହସ ଦଣ୍ଡଭେଦ, ଅଢ଼ାଇଶତ ପଣ ଦଣ୍ଡ,ସାର୍ଦ୍ଧଶତପଣଦ୍ରବ୍ୟରୂପ ଦଣ୍ଡ, ସାମାନ୍ୟ ଅର୍ଥଦଣ୍ଡ ।

ପ୍ରଥମସ୍ଥାନ—କ୍ଲୀ. ବି. ବେଦମନ୍ତ୍ର ଉଚ୍ଚାରଣ କାଳେ ନିମ୍ନସ୍ୱର ।

ପ୍ରଥମାଙ୍ଗୁଳି—ବି. ( କ.ଧା ) ବୃଦ୍ଧାଙ୍ଗୁଷ୍ଠ, ବୁଢ଼ାଆଙ୍ଗୁଠି ।

ପ୍ରଥମାପଦା—ଗ୍ରା. ବି. ବାଲେଶ୍ୱରର ସ୍ଥାନବିଶେଷ, ପହିଲପଦା ।

ପ୍ରଥମାର୍ଦ୍ଧ—ପୁଂ. କ୍ଲୀ. ବି. ପୂର୍ବାର୍ଦ୍ଧ, ପ୍ରଥମ ଅର୍ଦ୍ଧଭାଗ ।

ପ୍ରଥମାବିଭକ୍ତି—ସ୍ତ୍ରୀ. ବି. କର୍ତ୍ତାକାରକର ବିଭକ୍ତି (ବ୍ୟାକରଣ) ।

ପ୍ରଥମାଶ୍ରମ—ପୁଂ.କ୍ଳୀ. ବି. (କ.ଧା) ବ୍ରହ୍ମଚର୍ଯ୍ୟାଶ୍ରମ ।

ପ୍ରଥମାଷ୍ଟମୀ—ସ୍ତ୍ରୀ. ବି. (କ.ଧା) ମାର୍ଗଶୀର ମାସର କୃଷ୍ଣାଷ୍ଟମୀ, ପଢ଼ୁଆଁଷ୍ଟମୀ ।

ପ୍ରଥମେ—ଅବ୍ୟ. ପ୍ରଥମତଃ, ପହିଲେ, ଆଗେ, ପୂର୍ବେ ।

ପ୍ରଥମେତର—ବିଂ. ପ୍ରଥମଭିନ୍ନ, ଦ୍ୱିତୀୟ ।

ପ୍ରଥମୋତ୍ପନ୍ନ—ପୁଂ.ବିଂ. (ପ୍ରଥମ+ଉତ୍ପନ୍ନ) ଜ୍ୟେଷ୍ଠ, ପଢ଼ୁଆଁ ।

ପ୍ରଥୟିତା—ପୁଂ.ବିଂ. (ପ୍ରଥ୍+ଣିଚ୍+ତୃ) ବିସ୍ତୃତକାରକ, ଘୋଷଣାକାରୀ ।

ପ୍ରଥା—ସ୍ତ୍ରୀ.ବି. (ପ୍ରଥ୍+ଅ+ଆ)ଖ୍ୟାତି, ଢଙ୍ଗ, ରୀତି, ନିୟମ, ଧାରା, ପ୍ରସିଦ୍ଧି, ବିସ୍ତାର ।

ପ୍ରଥିତ—ବିଂ. ( ପ୍ରଥ୍+ମ୍.ତ ) ଖ୍ୟାତ, ପ୍ରସିଦ୍ଧ, ବିସ୍ତୃତ, ପ୍ରକଟିତ, ନିକ୍ଷିପ୍ତ, ଅତି ଦରକାରୀ, ପ୍ରଶଂସିତ, (ବି) ବିଷ୍ଣୁ, ସ୍ୱାରୋଚିଷମନୁଙ୍କର ପୁତ୍ରବିଶେଷ ।

ପ୍ରଥିତନାମା—ପୁଂ.ବିଂ. (ବ.ବ୍ରୀ)ପ୍ରଖ୍ୟାତନାମା, ଯଶସ୍ୱୀ, ସୁପ୍ରସିଦ୍ଧ ।

ପ୍ରଥିତଯଶାଃ—ପୁଂ. ବିଂ.(ବ.ବ୍ରୀ) ଖ୍ୟାତ, କୀର୍ତ୍ତିବିଶିଷ୍ଟ ଯାହାର ଯଶ ସର୍ବତ୍ର ବିସ୍ତୃତ ହୋଇଅଛି ।

ପ୍ରଥିତି—ସ୍ତ୍ରୀ. ବି. ଖ୍ୟାତି ।

ପ୍ରଥିମା—ପୁଂ.ବି. (ପୃଥୁ+ଇମନ୍) ପୃଥୁର ଭାବ, ପୃଥୁତ୍ୱ,ବିପୁଳତା,ସ୍ଥୂଳତ୍ୱ,ବିସ୍ତାର, ଘନତା, ବେଧ,ଓସାର, (ବିଂ) ଅତିଶୟ ପୃଥୁଳ ।

ପ୍ରଥିବୀ—ସ୍ତ୍ରୀ. ବି. ପୃଥିବୀ (ଭାରତ) ।

ପ୍ରଥିଷ୍ଠ—ପୁଂ. ବିଂ. (ପୃଥୁ+ଇଷ୍ଠ) ଅତିଶୟ ବୃହତ୍. ଖୁବ ମୋଟା, ଅତି ବଡ଼, ଖୁବଚୌଡ଼ା, ଅତିଶୟ ସ୍ଥୂଳ ।

ପ୍ରଥୀୟାନ୍—ପୁଂ. ବିଂ. (ପୃଥୁ+ଇୟସ୍) ପ୍ରଥିଷ୍ଠ ଦେଖ ।

ପ୍ରଥୁ—ପୁଂ. ବି. (ପ୍ରଥ+ଉ) ବିଷ୍ଣୁ ।

ପ୍ରଥୁକ—ପୁଂ.ବି. ପୃଥୁକ,ଚପିଟକ,ଚୂଡ଼ା ।

ପ୍ର(ପୃ)ଥୁଶ୍ରବା—ଗ୍ରା. ବି. ଜନୈକ ଋଷି ।

ପ୍ରଦ—ବିଂ. (ପ୍ର+ଦା+ଅ) ଦାନକାରୀ, ଦାତା, ଯେ ଦାନ କରେ ।

ପ୍ରଦକ୍ଷିଣ—ବି. ପ୍ରଦକ୍ଷିଣା ଦେଖ, (ବିଂ-ପ୍ର+ଦକ୍ଷିଣ) ଅନୁକୂଳ, ଶୁଭସୂଚକ ।

ପ୍ରଦକ୍ଷିଣକ୍ରିୟା—ସ୍ତ୍ରୀ.ବି. ପ୍ରଦକ୍ଷିଣା ଦେଖ ।

ପ୍ରଦକ୍ଷିଣପଙ୍କ୍ତିକା—ସ୍ତ୍ରୀ. ବି. ପ୍ରାଙ୍ଗଣଭୂମି, ବେହରଣ ସ୍ଥାନ ।

ପ୍ରଦକ୍ଷିଣା—ସ୍ତ୍ରୀ. ବି. (ପ୍ର+ଦକ୍ଷିଣ+ଆ) ଆପଣାର ଡାହାଣ ଆଡ଼କୁ ବୁଲି ଗତିକରିବା, ପରିକ୍ରମା, ପରିକ୍ରମଣ, ଦେବତା ବା ପୂଜ୍ୟବ୍ୟକ୍ତିଙ୍କର ଡାହାଣ ପାଖରୁ ଆରମ୍ଭକରି ଓ ତାଙ୍କଆଡ଼କୁ ଆପଣାର ଡାହାଣପାଖ ରଖି ଚାରିପାଖେ ବୁଲିଆସିବା, ଉପାସନା, ବନ୍ଦନା, ନମସ୍କାର ।

ପ୍ରଦକ୍ଷିଣାର୍ଚ୍ଚିସ୍—ବିଂ. ଯେଉଁ ଅଗ୍ନିର ଶିଖା ଦକ୍ଷିଣ ଦିଗକୁ ଯାଇ ପ୍ରଜ୍ୱଳିତ ହୁଏ ।

ପ୍ରଦଗ୍ଧବ୍ୟ—ବିଂ. (ପ୍ର+ଦହ୍+ତବ୍ୟ) ଦହନଯୋଗ୍ୟ ।

ପ୍ରଦତ୍ତ—ବିଂ. (ପ୍ର+ଦା+ତ) ସମର୍ପିତ, ପ୍ରକର୍ଷରୂପେ ଦତ୍ତ, ଅର୍ପିତ, ନ୍ୟସ୍ତ, ଯାହା ଦିଆଯାଇଅଛି, (ପୁଂ.ବି)ଗନ୍ଧର୍ବଭେଦ ।

ପ୍ରଦର—ପୁଂ. ବି. (ପ୍ର+ଦୃ+ଅ) ଭଙ୍ଗ, ଦାରଣସାଧନ ବାଣ, ବାଣ, ଫାଟ, ପାଡ଼ିବା, ବିଦାରଣ, ସ୍ତ୍ରୀରୋଗବିଶେଷ, ସ୍ତ୍ରୀମାନଙ୍କର ଜନନେନ୍ଦ୍ରିୟ ବାଟେ ଅତ୍ୟଧିକ ପରିମାଣରେ ନିର୍ଗତ ହେବା ଶ୍ୱେତରସ ବା ରକ୍ତସ୍ରାବରୂପ ରୋଗବିଶେଷ । [ ଆଦେଶ ।

ପ୍ରଦର୍ଶ—ପୁଂ.ବି. (ପ୍ର+ଦୃଶ୍+ଅ)ଦର୍ଶନ,

ପ୍ରଦର୍ଶକ—ପୁଂ.ବିଂ. (ପ୍ର+ଦୃଶ୍+ଅକ) ପ୍ରଦର୍ଶନକାରୀ, ଯେ ଦେଖାଏ, ବ୍ୟାଖ୍ୟାକାରୀ, ଯେ ଶିକ୍ଷାଦିଏ, ଯେ ଦେଖେ, (ବି) ଶିକ୍ଷକ, ଗୁରୁ; ବାଖ୍ୟାକାରବ୍ୟକ୍ତି, ଭବିଷ୍ୟଦ୍ବକ୍ତା, (ପଥ)କଢ଼ାଇବା(ବ୍ୟକ୍ତି) ।

ପ୍ରଦର୍ଶନ—କ୍ଳୀ.ବି.(ପ୍ର+ଦୃଶ୍+ଣି.ଅନ) ବର୍ଣ୍ଣନା, ଉଲ୍ଲେଖ, ଦେଖାଇବା, ସୂଚନା, ବାଖ୍ୟା କରିବା, ଭବିଷ୍ୟତ୍ ବିଷୟର କଥନ ।

ପ୍ରଦର୍ଶନୀ—ସ୍ତ୍ରୀ. ବି. ( ପ୍ରଦର୍ଶନ+ଈ ) ମେଳ, ଯେଉଁଠାରେ ବହୁସ୍ଥାନରୁ ସଂଗୃହୀତ ଦ୍ରବ୍ୟସମ୍ଭାର ସାଧାରଣଙ୍କୁ ପ୍ରଦର୍ଶିତ ହୁଏ ।

ପ୍ରଦର୍ଶନୀୟ—ବିଂ. (ପ୍ର+ଦୃଶ୍+ଅନୀୟ) ପ୍ରଦର୍ଶିତ ହେବା ଯୋଗ୍ୟ, ଯାହା ସାଧାରଣଙ୍କୁ ଦେଖାହେବା ଯୋଗ୍ୟ ।

ପ୍ରଦର୍ଶିତ—ବିଂ. (ପ୍ର+ଦୃଶ୍+ଣି+ତ) ଉଲ୍ଲିଖିତ, ଯାହା ଦେଖାଇ ଦିଆହୋଇଅଛି, ସୂଚିତ, ପ୍ରକଟିତ, ବ୍ୟାଖ୍ୟାତ ।

ପ୍ରଦଳ—ପୁଂ.ବି. (ପ୍ର+ଦଳ+ଅ)ବାଣ, ଶର । [ ଉଚ୍ଚ ସ୍ୱର ।

ପ୍ରଦଳି—ଗ୍ରା. ବି. ଗୋଳମାଳ, ବଡ଼ପାଟି,

ପ୍ରଦହନ—କ୍ଳୀ. ବି. (ପ୍ର+ଦହ୍+ଅନ) ପ୍ରକୃଷ୍ଟରୂପେ ଦହନ, ଭଲରୂପେ ପୋଡ଼ିବା ।

ପ୍ରଦା—ସ୍ତ୍ରୀ.ବି.(ପ୍ରଦ+ଆ)ପ୍ରଦାନକର୍ତ୍ତ୍ରୀ, ଦାୟିକା, ପ୍ରଦାୟିନୀ, (ସ୍ତ୍ରୀ.ବି) ବିଶିଷ୍ଟଦାନ ।

ପ୍ରଦାତବ୍ୟ—ବିଂ. ( ପ୍ର+ଦା+ତବ୍ୟ ) ଦାନର ଯୋଗ୍ୟ, ପ୍ରଦେୟ, ପ୍ରକୃଷ୍ଟରୂପେ ଦାନର ଉପଯୁକ୍ତ ।

ପ୍ରଦାତା—ପୁଂ. ବିଂ. ( ପ୍ର+ଦା+ତୃ ) ଯେ ଦିଏ, ପ୍ରଦ, ପ୍ରକୃଷ୍ଟ ଦାନକାରକ, ଦାତା, (ବି) ଇନ୍ଦ୍ର, ବିଶ୍ୱେଦେବାନ୍ତର୍ଗତ ଦେବତାବିଶେଷ ।

ପ୍ରଦାନ—କ୍ଳୀ. ବି. ( ପ୍ର+ଦା+ଅନ ) ଦାନ, ପ୍ରକୃଷ୍ଟଦାନ, ଅଙ୍କୁଶ, ଦେବା, ଆରୋପଣ, ଭେଟି, ଉପହାର, ବିବାହ, ପାଣିଗ୍ରହଣ, ପ୍ରେରଣ ।

ପ୍ରଦାନକ—କ୍ଳୀ. ବି. ପ୍ରଦାନ ଦେଖ ।

ପ୍ରଦାନକରିବା—ଗ୍ରା.କ୍ରି. ଦେବା,(କନ୍ୟା) ଦାନକରିବା ।

ପ୍ରଦାନଶୂର—ପୁଂ. ବି. ଦାନବୀର, ଯେ ଅତିଶୟ ଦାତା, ବୋଧିସତ୍ତ୍ୱଭେଦ ।

ପ୍ରଦାନିକ—ବିଂ. ପ୍ରଦାନ ସମ୍ବନ୍ଧୀୟ ।

ପ୍ରଦାନୀୟ—ବିଂ. ପ୍ରଦେୟ, ଅର୍ପଣୀୟ ।

ପ୍ରଦାନ୍ତ—ପୁଂ. ବି. ସମ୍ପ୍ରଦାୟଭେଦ ।

ପ୍ରଦାପୟିତା—ପୁଂ. ବିଂ. (ପ୍ର+ଦା+ଣି+ତ) ଦାନକାରୀ ।

ପ୍ରଦାୟକ—ବିଂ. (ପ୍ର+ଦା+ଣ.ଅକ)

ପ୍ରଦାନକାରୀ,ପ୍ରଦାତା, (ସ୍ତ୍ରୀ)ପ୍ରଦାୟିକା ।
ପ୍ରଦାୟୀ—ପୁଂ. ବିଂ. (ପ୍ର+ଦା+ଇନ୍) ପ୍ରଦାନକାରୀ, ଦାୟକ ।
ପ୍ରଦାବ—ପୁଂ.ବି. (ପ୍ର+ଦାବ)ଦାବାଗ୍ନି ।
ପ୍ରଦାହ—ପୁଂ. ବି. (ପ୍ର+ଦହ୍+ଭା.ଅ) ଶରୀରର ତାପବୃଦ୍ଧି, ଜ୍ୱରଯୋଗୁଁ ବା ଅନ୍ୟକାରଣରୁ ଶରୀରରେ ଅନୁଭୂତ ଜ୍ୱାଳାଯନ୍ତ୍ରଣା । [ ଦାତା ।
ପ୍ରଦି—ବିଂ. (ପ୍ର+ଦା+ଇ)ପ୍ରଦାନକର୍ତ୍ତା,
ପ୍ରଦିକ୍—ବି. (ପ୍ର+ଦିଶ୍) ବିଦିକ୍, ଦୁଇ ପ୍ରଧାନ ଦିଗର ମଧ୍ୟବର୍ତ୍ତୀ କୋଣ,(ଯଥା-ଅଗ୍ନି,ବାୟୁ, ନୈର୍ଋତ, ଈଶାନ୍ୟ) ।
ପ୍ରଦିଗ୍ଧ—କ୍ଲୀ. ବି. (ପ୍ର+ଦିହ୍+ମି.ତ) ମାଂସବ୍ୟଞ୍ଜନ ବିଶେଷ, ମସଲାଆଦି ଦିଆଯାଇ ଉତ୍ତମରୂପେ ସିଦ୍ଧହୋଇ-ଥିବା ମାଂସତରକାରୀ. (ବିଂ) ବୋଳା-ହୋଇଥିବା, ଲିପ୍ତ, ସ୍ନିଗ୍ଧ, ତୈଳା-ଦିରେ ସିକ୍ତ ।
ପ୍ରଦିବ—ବିଂ.ପ୍ରକର୍ଷରୂପେ ଦ୍ୟୋତମାନ, (ସ୍ତ୍ରୀ.ବି)ପ୍ରକୃଷ୍ଟ ଦିନ,ପୂର୍ବ ଦିନ ।
ପ୍ରଦିଷ୍ଟ—ବିଂ. ( ପ୍ର+ଦିଶ୍+ମି.ତ ) ନିର୍ଦ୍ଧାରିତ, ନିର୍ଦ୍ଦିଷ୍ଟ, ଉପଦିଷ୍ଟ, ଦତ୍ତ ।
ପ୍ରଦୀପ—ପୁଂ. ବି. (ପ୍ର+ଦୀପ୍+ଅ)ଦୀପ, ବର୍ତ୍ତିସ୍ଥ ଜ୍ୱଳନ୍ତ ଅଗ୍ନିଶିଖା, ଦୀପ୍ତି ପ୍ରଭା, ଆଲୋକ, ( ଲ.ଅର୍ଥ ) ଆଲୋକ ବା ଜ୍ଞାନପ୍ରଦବସ୍ତୁ, ଯେ ଉଜ୍ଜ୍ୱଳ ବା ଗୌର-ବିତ କରେ,ଦୀପକ ରାଗର ପୁତ୍ର ।
ପ୍ରଦୀପକ—ପୁଂ ବିଂ. (ପ୍ର+ଦୀପକ)ପ୍ରଦୀପ-ୟିତା, ପ୍ରଦୀପନକାରୀ, ଯାହା ଗୌରବ ବୃଦ୍ଧି କରେ,ଉତ୍ତେଜକ,ଯାହା ଆଲୋ-କିତ କରେ, (ବି)ଏକପ୍ରକାର ଭୟଙ୍କର ମାରାତ୍ମକ ଉଦ୍ଭିଜ୍ଜ ବିଷ, ଲଙ୍କନ ।
ପ୍ରଦୀପନ—କ୍ଲୀ. ବି. (ପ୍ର+ଦୀପ୍+ଭା.ଅନ) ପ୍ରକାଶନ, ଉଦ୍ଦୀପନ, ଜଳାଇବା, ଉତ୍ତେଜନ,ଉଦ୍ଭାସନ,ଗୌରବବର୍ଦ୍ଧନ, ସ୍ଥାବରବିଶେଷ, (ବିଂ-କ.ଅନ) ଉଦ୍ଦୀ-ପକ, (ସ୍ତ୍ରୀ) ପ୍ରଦୀପନା ।
ପ୍ରଦୀପାମାବାସ୍ୟା--ବି.(ପ୍ରଦୀପ+ଅମାବାସ୍ୟା) ପିପେଇ ଅମାବାସ୍ୟା, କାର୍ତ୍ତିକମାସର ଅମାବାସ୍ୟା ।
ପ୍ରଦୀପିକା—ସ୍ତ୍ରୀ. ବି. ( ପ୍ରଦୀପକ+ଆ ) ଶ୍ରେଷ୍ଠ ଲଙ୍କନ,ଦୀପକରାଗର ସ୍ତ୍ରୀ,ରାଗିଣୀ ବିଶେଷ,(ସ୍ତ୍ରୀ.ବିଂ) ପ୍ରଦୀପକର ସ୍ତ୍ରୀଲିଙ୍ଗ ।
ପ୍ରଦୀପ୍ତ—ବିଂ. (ପ୍ର+ଦୀପ୍+ତ) ଉଜ୍ଜ୍ୱଳ, ପ୍ରକାଶିତ, ପ୍ରଜ୍ୱଳିତ, ଦାଉ ଦାଉ ଜଳୁ-ଥିବା, ଉତ୍ତେଜିତ ।
ପ୍ରଦୀପ୍ତତେଜାଃ—ପୁଂ.ବିଂ.(ବ.ବ୍ରୀ)ଯାହାର ତେଜ ନିଆଁପରି ଜଳୁଅଛି ।
ପ୍ରଦୀପ୍ତି—ସ୍ତ୍ରୀ. ବି. (ପ୍ର+ଦୀପ୍+ଭା.ତି) ପ୍ରଭା, ଔଜ୍ଜ୍ୱଲ୍ୟ, ଛଟା, ପ୍ରକାଶ ।
ପ୍ରଦୀର୍ଘ—ବିଂ.ଅତିଶୟଦୀର୍ଘ,ଅତି ବିପୁଳ ।
ପ୍ରଦୂଷକ—ପୁଂ. ବିଂ. ନଷ୍ଟକାରୀ ।
ପ୍ରଦୃପ୍ତ—ପୁଂ.ବିଂ.(ପ୍ର+ଦୃପ୍ତ)ଅତିଗର୍ବିତ
ପ୍ରଦୃପ୍ତି—ସ୍ତ୍ରୀ.ବି. (ପ୍ର+ଦୃପ୍+ତି) ଦୃପ୍ତି-ଯୁକ୍ତ, ଅତ୍ୟନ୍ତ ଅହଙ୍କାରୀ ।
ପ୍ରଦେୟ—ପୁଂ.ବିଂ(ପ୍ର+ଦା+ଯ)ଦାନର ଉପଯୁକ୍ତ. ପ୍ରଦାନ ଯୋଗ୍ୟ,(ପୁଂ.ବି) ଉପହାର, ଉପଢୌକନ, ଭେଟି ।
ପ୍ରଦେୟା—ସ୍ତ୍ରୀ. ବିଂ. ( ପ୍ରଦେୟ+ଆ ) ପ୍ରଦେୟର ସ୍ତ୍ରୀଲିଙ୍ଗ, ବିବାହ ଯୋଗ୍ୟା (କନ୍ୟା) ।
ପ୍ରଦେଶ—ବି(ପ୍ର+ଦିଶ୍+ଅ)ଦେଶାଂଶ, ଅଞ୍ଚଳ, ଜିଲ୍ଲା, ସ୍ଥାନ, ଅଂଶ. ଦେଶ, ଭିତ୍ତି,ପ୍ରାଚୀର,ଅବକାଶ, ଆସ୍ଥା,ନିଷ୍ପତ୍ତି, ଅଙ୍ଗ, ସଂଜ୍ଞା,(ବ୍ୟାକରଣ) ଉଦାହରଣ, ବିସ୍ତାରିତ କରତଳର ବୁଢ଼ା ଆଙ୍ଗୁଠିର ଅଗରୁ ବଣି ଆଙ୍ଗୁଠିର ଅଗ ପର୍ଯ୍ୟନ୍ତ ଦୂରତ୍ୱର ପରିମାଣ, ଚେଡ଼ମ୍ପ ।
ପ୍ରଦେଶକାରୀ—ପୁଂ.ବିଂ.ଏକଦେଶକାରୀ, (ବି)ଯୋଗୀମାନଙ୍କର ସମ୍ପ୍ରଦାୟବିଶେଷ
ପ୍ରଦେଶନ—କ୍ଲୀ. ବି. ( ପ୍ର+ଦିଶ୍+ଭା. ଅନ)ଦାନ, ଉପହାର, ଭେଟି, ଭେଟି-ଦେବା, ଉତ୍କୋଚ, ଲାଞ୍ଚ, ପରାମର୍ଶ, ଉପଦେଶ, ଆଦେଶ, ଉପାୟ ।
ପ୍ରଦେଶ(ଶି)ନୀ—ସ୍ତ୍ରୀ. ବି. ( ପ୍ର+ଦିଶ୍+ଅନ+ଇ) ତର୍ଜ୍ଜନୀ, ବଣିଆଙ୍ଗୁଠି ।
ପ୍ରଦେଶୀ—ଗ୍ରା. ବିଂ. (ସଂ-ପରଦେଶୀୟ) ବିଦେଶୀୟ, ପ୍ରବାସୀ, (ଗ୍ରା.ବି) ବିଦେ-ଶୀୟ ବ୍ୟକ୍ତି, ପ୍ରବାସୀ ଲୋକ, (ସ୍ତ୍ରୀ.ବିଂ. ପ୍ରଦେଶ+ଇନ୍) ପ୍ରଦେଶସମ୍ବନ୍ଧୀୟ ।
ପ୍ରଦେଶୀୟ—ବିଂ. ( ପ୍ରଦେଶ+ଈୟ ) ପ୍ରଦେଶସମ୍ବନ୍ଧୀୟ, ପ୍ରାଦେଶିକ,(ଅମୁକ) ପ୍ରଦେଶବାସୀ, ପ୍ରଦେଶରେ ପ୍ରଚଳିତ ।
ପ୍ରଦେଷ୍ଟା—ପୁଂ. ବି. ଧର୍ମାଧିକରଣିକ, ବିଚାରକ ।
ପ୍ରଦେହ—ପୁଂ. ବି. (ପ୍ର+ଦିହ୍+ଅ) ପ୍ରଲେପ, ଲେପିବା, ମଲମ, ବ୍ୟଞ୍ଜନ-ବିଶେଷ ।
ପ୍ରଦୋଷ—ପୁଂ. ବି. (ପ୍ର+ଦୋଷ+ଅ) ରଜନୀମୁଖ, ସାୟଂକାଳ,ରାତ୍ରିର ପ୍ରଥମ ଦଣ୍ଡ ଚତୁଷ୍ଟୟର ନାମ ପ୍ରଦୋଷ,ସୂର୍ଯ୍ୟା-ସ୍ତର ପର ଗୁରିଦଣ୍ଡ କାଳକୁ ପ୍ରଦୋଷ କହନ୍ତି, (ପୁଂ.ବିଂ)ମନ୍ଦ, ଦୁଷ୍ଟ,ପାପିଷ୍ଠ ।
ପ୍ରଦୋଷଜ—ବିଂ.(ପ୍ରଦୋଷ+ଜ)ପ୍ରଦୋଷ-କାଳଭବ, ସନ୍ଧ୍ୟାରେ ଜାତ ବା ଘଟି-ଥିବା । [ ଦୋହନ ।
ପ୍ରଦୋହ—ପୁଂ. ବି. ( ପ୍ର+ଦୁହ୍+ଅ )
ପ୍ରଦ୍ୟୁ—କ୍ଲୀ. ବି. (ପ୍ର+ଦ୍ୟୌଃ) ପୁଣ୍ୟ, ଯହିଁ ସ୍ୱର୍ଗ ମିଳେ, ବର୍ଷ ।
ପ୍ରଦ୍ୟୁତିତ—ବିଂ. (ପ୍ର+ଦ୍ୟୁତିତ)ପ୍ରଜ୍ୱଳିତ, ପ୍ରକାଶିତ ।
ପ୍ରଦ୍ୟୁମ୍ନ—ପୁଂ. ବି. (ପ୍ର+ଦ୍ୟୁମ୍ନ) କନ୍ଦର୍ପ, କାମଦେବ, ରୁକ୍ମିଣୀ ଗର୍ଭଜାତ ଶ୍ରୀକୃଷ୍ଣ-ଙ୍କର ପୁତ୍ର,ଶାଳଗ୍ରାମବିଶେଷ, ବୈଷ୍ଣବ-ମାନଙ୍କର ଆଗମୋକ୍ତ ଚତୁର୍ବ୍ୟୂହାତ୍ମକ ବିଷ୍ଣୁଙ୍କର ଅଂଶବିଶେଷ, ସନତ୍କୁମା-ରାଂଶ ଜାତ ମନୁଙ୍କ ଅପତ୍ୟବିଶେଷ ।
ପ୍ରଦ୍ୟୋତ—ପୁଂ.ବି. (ପ୍ର+ଦ୍ୟୁତ୍+କ. ଅ)ରଶ୍ମି, ଆଲୋକ, ଯକ୍ଷବିଶେଷ,ଦୀପ୍ତି, ଆଭା, ନୃପବିଶେଷ ।
ପ୍ରଦ୍ୟୋତନ—ପୁଂ.ବି. (ପ୍ର+ଦ୍ୟୁତ୍+କ.ଅନ)ସୂର୍ଯ୍ୟ, (କ୍ଲୀ.ବି.ଭା.ଅନ)ଦ୍ୟୁତି, ଦୀପ୍ତି, ଆଭା, (ବିଂ.କ.ଅନ)ଦ୍ୟୋତନ-ଶୀଳ, ଉଜ୍ଜ୍ୱଳ, ଜଳୁଥିବା, ଯାହା ଉଜ୍ଜ୍ୱଳ ବା ଆଲୋକମୟ କରେ ।
ପ୍ରଦ୍ୟୋତିତ—ବିଂ. (ପ୍ର+ଦ୍ୟୁତ୍+ମି.ତ) ପ୍ରଦୀପ୍ତ, ଉଦ୍ଭାସିତ, ପ୍ରକାଶିତ ।

ପ୍ରଦ୍ୟୋତ୍ତ—ବିଂ. ଆଲୋକଯୁକ୍ତ, ଆଭା-ଯୁକ୍ତ, କାନ୍ତିବିଶିଷ୍ଟ ।

ପ୍ରଦ୍ରବ—ପୁଂ. ବି. ( ପ୍ର+ଦ୍ରୁ+ଭା.ଅ ) ପଳାୟନ, ପ୍ରସ୍ଥାନ, ଦୌଡ଼ିବା, ଦ୍ରୁତ-ଗତି ।

ପ୍ରଦ୍ରାବ—ପୁଂ.ବି.(ପ୍ର+ଦ୍ରୁ+କ.ଅ)ପଳା-ୟନ, ପ୍ରସ୍ଥାନ, ଦ୍ରୁତଗତି ।

ପ୍ରଦ୍ରାବୀ—ପୁଂ. ବିଂ. (ପ୍ର+ଦ୍ରୁ+ଇନ୍) ପଳାୟନଶୀଳ, ପ୍ରସ୍ଥିତ, ଧାବିତ ।

ପ୍ରଦ୍ରୁତ—ବିଂ.(ପ୍ର+ଦ୍ରୁ+କ.ତ)ପ୍ରସ୍ଥିତ, ପଳାୟିତ, ଧାବିତ ।

ପ୍ରଦ୍ୱାର—କ୍ଲୀ. ବି. ଦ୍ୱାର ପ୍ରାନ୍ତଭାଗ ।

ପ୍ରଦ୍ୱିଷ୍—ବିଂ. (ପ୍ର+ଦ୍ୱିଷ୍+କ୍ୱିପ୍)ଘୃଣା-ଯୁକ୍ତ ।

ପ୍ରଦ୍ୱେଷ—ପୁଂ. ବି. ( ପ୍ର+ଦ୍ୱିଷ୍+ଅ ) ଦ୍ୱେଷ, ଘୃଣା, ଶତ୍ରୁତା ।

ପ୍ରଦ୍ୱେଷଣ—କ୍ଲୀ.ବି. (ପ୍ର+ଦ୍ୱିଷ୍+ଅନ) ହିଂସା, ଘୃଣା, ଦ୍ୱେଷ ।

ପ୍ରଦ୍ୱେଷୀ—ସ୍ତ୍ରୀ. ବି. ଦୀର୍ଘତମାର ପତ୍ନୀ-ଭେଦ, ( ପୁଂ, ବିଂ.-ପ୍ରଦ୍ୱେଷ+ଇନ୍ ) ବିଦ୍ୱେଷୀ,ପରହିଂସାକାଂକ୍ଷୀ, ପ୍ରାଦେଶିକ, (ସ୍ତ୍ରୀ) ପ୍ରଦ୍ୱେଷିଣୀ ।

ପ୍ରଦ୍ୱେଷ୍ଟା—ବିଂ(ପ୍ର+ଦ୍ୱେଷ୍ଟୃ)ଶତ୍ରୁତାପନ୍ନ, ହିଂସାକାଂକ୍ଷୀ, ହିଂସ୍ର, ଦ୍ୱେଷ୍ଟାଜ୍ଞାନକାରୀ ।

ପ୍ରଧନ—କ୍ଲୀ.ବି,(ପ୍ର+ଧନ+ଭା.ଅ)ଯୁଦ୍ଧ, ନିଧନ,ମାରଣ,(ବିଂ.ବି.ସ୍ତ୍ରୀ)ଖୁବ୍ ଧନୀ ।

ପ୍ରଧମନ—କ୍ଲୀ.ବି. (ପ୍ର+ଧମ୍+ଭା.ଅନ) ମୁଖ ମାରୁତ ବ୍ୟାପାରବିଶେଷ, ନାକ ଦ୍ୱାରା ନସ୍ୟାଦି ଶୁଙ୍ଘିବା କ୍ରିୟା,(ମଁ.ଅନ) ଔଷଧାର୍ଥେ ବ୍ୟବହୃତ ନସ୍ୟ ।

ପ୍ରଧର୍ଷ—ପୁଂ.ବି.(ପ୍ର+ଧୃଷ୍+ଅ)ଧର୍ଷଣ, ଆକ୍ରମଣ ।

ପ୍ରଧର୍ଷକ—ପୁଂ. ବିଂ. ପ୍ରଧର୍ଷଣକାରୀ ।

ପ୍ରଧର୍ଷଣ—କ୍ଲୀ. ବି. ( ପ୍ର+ଧୃଷ୍+ଅନ ) ଆକ୍ରମଣ ।

ପ୍ରଧର୍ଷଣୀୟ—ବିଂ. (ପ୍ର+ଧୃଷ୍+ଅନୀୟ) ପ୍ରଧର୍ଷଣର ଯୋଗ୍ୟ,ଆକ୍ରମଣ କରିବାର ଯୋଗ୍ୟ ।

ପ୍ରଧା—ସ୍ତ୍ରୀ.ବି,ବିଧାନ, ଦକ୍ଷସୁତା, କଶ୍ୟ-ପଙ୍କ ପତ୍ନୀବିଶେଷ ।

ପ୍ରଧାନ—କ୍ଲୀ.ବି.(ପ୍ର+ଧା+ଅନ)ପ୍ରକୃତି, ମହାପାତ୍ର, ପରମାତ୍ମା, ଶ୍ରେଷ୍ଠ ବ୍ୟକ୍ତି. ଜଗତର ମୂଳ କାରଣ, ଆଦ୍ୟା ପ୍ରକୃତି, ଶ୍ରେଷ୍ଠ ବିଷୟ, ବୁଦ୍ଧି, ସଚିବ, ସେନା-ଧ୍ୟକ୍ଷ, ରାଜର୍ଷିଭେଦ, ମହାରାଷ୍ଟ୍ର ରାଜ୍ୟର ଉଚ୍ଚପଦସ୍ଥ ରାଜକର୍ମଚାରୀଙ୍କର ଉପାଧି-ବିଶେଷ, ଶ୍ରେଷ୍ଠ ପଦାର୍ଥ, ହସ୍ତୀପକ, ମାହୁନ୍ତ,(ବିଂ)ମୁଖ୍ୟ,ଶ୍ରେଷ୍ଠ, ସର୍ବୋତ୍କୃଷ୍ଟ, ଆଦ୍ୟ, ପ୍ରଶସ୍ତ, ( ଗ୍ରା.ବି ) ଚଷାଆଦି କେତେକ ଜାତିଙ୍କର ବଂଶୋପାଧି-ବିଶେଷ, ସରବରାକାର, ଗ୍ରାମର ମୁଖ୍ୟ ବ୍ୟକ୍ତି । [ କାର୍ଯ୍ୟ ।

ପ୍ରଧାନକର୍ମ—କ୍ଲୀ.ବି.ପ୍ରଧାନ କାର୍ଯ୍ୟ,ମୁଖ୍ୟ

ପ୍ରଧାନକାରଣ—କ୍ଲୀ.ବି.(କ.ଧା)ମୁଖ୍ୟ ବା ମୂଳ କାରଣ ।

ପ୍ରଧାନକାରଣବାଦ-ପୁଂ.ବି. ସାଂଖ୍ୟବାଦ, ଯେଉଁ ମତରେ ପ୍ରଧାନ ବା ଆଦ୍ୟା ପ୍ରକୃତି ଜଗତର କାରଣ ବୋଲି କଥିତ

ପ୍ରଧାନତଃ—ଅବ୍ୟ(ପ୍ରଧାନ+ତସ୍)ପ୍ରଧାନ ରୂପରେ, ଆଦୌ, ପ୍ରାଧାନ୍ୟ ରୂପେ, ଶ୍ରେଷ୍ଠତା ଅନୁସାରେ ।

ପ୍ରଧାନତା—ସ୍ତ୍ରୀ. ବି. ( ପ୍ରଧାନ+ତା ) ପ୍ରାଧାନ୍ୟ,ଶ୍ରେଷ୍ଠତା, ଉତ୍କର୍ଷ, ମୁଖ୍ୟତା ।

ପ୍ରଧାନତ୍ୱ—କ୍ଲୀ.ବି.(ପ୍ରଧାନ+ତ୍ୱ)ପ୍ରାଧାନ୍ୟ, ଶ୍ରେଷ୍ଠତା, ଉତ୍କର୍ଷ, ମୁଖ୍ୟତା ।

ପ୍ରଧାନଧାତୁ—ପୁଂ.ବି.(କ.ଧା) (ଶରୀରସ୍ଥ ସର୍ବଶ୍ରେଷ୍ଠ ଧାତୁ) ଶୁକ୍ର, ବୀର୍ଯ୍ୟ ।

ପ୍ରଧାନନଗର—ଗ୍ରା.ବି.ରାଜ୍ୟର ରାଜଧାନୀ

ପ୍ରଧାନପାଟ—ଗ୍ରା. ବି. ବାମଣ୍ଡା ରାଜ୍ୟର ରାଜଧାନୀ ଦେବଗଡ଼ର ସନ୍ନିକଟସ୍ଥ ଗୋଟିଏ ସ୍ୱନାମଖ୍ୟାତ ଘର ।

ପ୍ରଧାନାଙ୍ଗ—କ୍ଲୀ.ବି. (କ.ଧା) ଉତ୍ତମାଙ୍ଗ, ମସ୍ତକ, ସମାଜର ମୁଖ୍ୟ ସଭ୍ୟ, ରାଜ୍ୟର ପ୍ରଧାନ ବ୍ୟକ୍ତି, ଶ୍ରେଷ୍ଠ ଅବୟବ, ପ୍ରଧାନ ଉପକରଣ ।

ପ୍ରଧାନାତ୍ମା—ପୁଂ. ବି. ବିଷ୍ଣୁ, ପରମାତ୍ମା, ପ୍ରଧାନ ପୁରୁଷ ।

ପ୍ରଧାରଣ—କ୍ଲୀ.ବି. (ପ୍ର+ଧାରି+ଅନ) ପ୍ରକୃଷ୍ଟ ରୂପେ ଧାରଣ ।

ପ୍ରଧାବନ—କ୍ଲୀ. ବି. (ପ୍ର+ଧାବ୍+ଅନ) ପ୍ରକୃଷ୍ଟ ରୂପେ ଧାବନ, ଉତ୍ତମ ରୂପେ ଧୌତକରଣ, (ପୁଂ.ବି) ବାୟୁ ।

ପ୍ରଧି—ପୁଂ.ବି. (ପ୍ର+ଧା+କ.ଇ)ନେମି, ଚକ୍ରାବୟବ, ପହି, ଚକ୍ରପ୍ରାନ୍ତ ।

ପ୍ରଧିମଣ୍ଡଳ—କ୍ଲୀ. ବି. ( ୬ତତ୍ପୁ ) ଚକର ପରିଧି ବା ବେଢ଼, ପହିଆ ।

ପ୍ରଧୀ—ପୁଂ.ବିଂ.(ବି.ସ୍ତ୍ରୀ)ତୀକ୍ଷ୍ଣବୁଦ୍ଧି ବିଶିଷ୍ଟ, ଉତ୍ତମ ବୁଦ୍ଧିଯୁକ୍ତ,ପ୍ରକୃଷ୍ଟ ଧ୍ୟାନକାରକ, (ବି) ତୀକ୍ଷ୍ଣବୁଦ୍ଧି ।

ପ୍ରଧୂନିତ—ବିଂ. (ପ୍ର+ଧୂନିତ) ଯାହାକୁ ବିଶେଷ ଭାବରେ କମ୍ପିତ କରାଯାଇଅଛି ।

ପ୍ରଧୂପିତ—ବିଂ.(ପ୍ର+ଧୂପ୍+ମଁ.ତ)ଉତ୍ତପ୍ତ, ସନ୍ତପ୍ତ, ପ୍ରଦୀପ୍ତ, ଉତ୍ତେଜିତ ।

ପ୍ରଧୂପିତା—ସ୍ତ୍ରୀ.ବିଂ. କ୍ଳେଶିତା,(ବି)ସୂର୍ଯ୍ୟଙ୍କ ଗନ୍ତବ୍ୟ ଦିଗ୍ ।

ପ୍ରଧୂମିତ—ବିଂ. (ପ୍ର+ଧୂମ୍+ଇତ)ଜ୍ୱଳ-ନୋନ୍ମୁଖ, ଧୂମାୟିତ, ଧୂଆଁ ହେଉଥିବା, ଯହିଁରୁ ଧୂଆଁ ବାହାରୁଥାଏ ।

ପ୍ରଧୃଷ୍ଟ—ପୁଂ. ବିଂ. (ପ୍ର+ଧୃଷ୍ଟ) ଅତ୍ୟନ୍ତ ଗର୍ବିତ ।

ପ୍ରଧୃଷ୍ଟି—ସ୍ତ୍ରୀ ବି.(ପ୍ର+ଧୃଷ୍+ତି)ଦମନ, ଧର୍ଷଣ, ଦଳନ ।

ପ୍ରଧୃଷ୍ୟ—ବିଂ. (ପ୍ର+ଧୃଷ୍+ଯ)ପ୍ରଧର୍ଷଣ ଯୋଗ୍ୟ, ଯାହାର ଗର୍ବକୁ ଖର୍ବୀକୃତ କରାଯାଇପାରେ ।

ପ୍ରଧ୍ମାତ—ବିଂ (ପ୍ର+ଧ୍ମା+ମଁ.ତ)ଶବ୍ଦିତ, ଧ୍ୱନିତ,ମୁଖରିତ,ସନ୍ଧୁକ୍ଷିତ, ବାୟୁପୂରିତ, ଯହିଁରେ ଫୁଙ୍କିକରି ପବନ ପୂରାଯାଇ-ଥାଏ, ପ୍ରଜ୍ୱାଳିତ ।

ପ୍ରଧ୍ମାପନ—କ୍ଲୀ. ବି. (ପ୍ର+ଧ୍ମାପି+ଅନ) ଅବରୁଦ୍ଧ ବାୟୁ ଜନିତ ଶ୍ୱାସକ୍ରିୟା ସମ୍ପାଦନାର୍ଥ ପ୍ରକ୍ରିୟାବିଶେଷ ।

ପ୍ରଧ୍ମାପିତ—ବିଂ.ଧ୍ୱନିତ, ଶବ୍ଦିତ ମୁଖରିତ ।

ପ୍ରଧ୍ୟାନ—କ୍ଲୀ. ବି. ( ପ୍ର+ଧ୍ୟୈ+ଅନ ) ପ୍ରକୃଷ୍ଟ ରୂପେ ଧ୍ୟାନ, ଗଭୀର ଧ୍ୟାନ ।

ପ୍ରଧ୍ୱଂସ—ପୁଂ. ବି. (ପ୍ର+ଧ୍ୱଂସ୍+ଭା.ଅ) ନାଶ, ସାଂଖ୍ୟ ମତରେ ଅତୀତାବସ୍ଥା ।

ପ୍ରଧ୍ୱଂସକ—ପୁଂ. ବିଂ. ଧ୍ୱଂସକ, ଧ୍ୱଂସକାରୀ, (କ୍ଲୀ.ବ) ନାଶ, ଧ୍ୱଂସ ।
ପ୍ରଧ୍ୱଂସୀ—ପୁଂ.ବିଂ (ପ୍ର+ଧ୍ୱଂସ୍+ଇନ୍) ପ୍ରଧ୍ୱଂସଶୀଳ, ନାଶଶୀଳ ।
ପ୍ରଧ୍ୱସ୍ତ—ବିଂ. (ପ୍ର+ଧ୍ୱଂସ୍+ତ) ନାଶପ୍ରାପ୍ତ, ଯୋଗୀ, ଅଶାନ୍ତ, (ବି)ମନ୍ତ୍ରଭେଦ ।
ପ୍ରନପ୍ତା—ପୁଂ.ବି.ପୌତ୍ରର ପୁତ୍ର,ପ୍ରପୌତ୍ର, ଅଣନାତି ।
ପ୍ରନଷ୍ଟ—ବିଂ. (ପ୍ର+ନଶ୍+ତ) ମୃତ, ସମ୍ପୂର୍ଣ୍ଣ ରୂପେ ନଷ୍ଟ ।
ପ୍ରନାୟକ—ପୁଂ.ବିଂ.ପ୍ରକୃଷ୍ଟ ନାୟକଯୁକ୍ତ, ପ୍ରଣାୟକ, ପ୍ରଣୟକାରକ ।
ପ୍ରନଂସିତ—ବିଂ. (ପ୍ର+ନଂସ୍+ତ) ଚୁମ୍ବିତ, ପ୍ରକୃଷ୍ଟ ରୂପେ ଚୁମ୍ବିତ ।
ପ୍ରନଘାତନ—କ୍ଲୀ.ବି.ପ୍ରାଣିଘାତନ,ବଧ ।
ପ୍ରନନ୍ଦନ—କ୍ଲୀ. ବି. (ପ୍ର+ନନ୍ଦ୍+ଅନ) ପ୍ରକୃଷ୍ଟ ରୂପେ ନନ୍ଦ୍ୟ ।
ପ୍ରନୀଡ଼—ବିଂ. ନୀଡ଼ତ୍ୟାଗୀ, ଯେଉଁ ପକ୍ଷୀ ନୀଡ଼ (ବସା) ତ୍ୟାଗ କରିଅଛି ।
ପ୍ରପକ୍ଷ—ପୁଂ. ବି. ପକ୍ଷାଗ୍ର ।
ପ୍ରପଞ୍ଚ—ପୁଂ.ବି. (ପ୍ର+ପଞ୍ଚ୍+ଅ)ପରିସର, ବିସ୍ତୃତ, ରଚନାର ପ୍ରାଚୁର୍ଯ୍ୟ, ସମୂହ, ରାଶି, ପ୍ରକାଶ, ଧୂର୍ତ୍ତତା, ବିପର୍ଯ୍ୟାସ, ବିସ୍ତାର, ବୈପରୀତ୍ୟ, ଭ୍ରମ ବା ମାୟା, ଅଛା, ସଞ୍ଚୟ, ପ୍ରତାରଣା,ବିପ୍ରଲମ୍ଭନ, ସଂସାର,ପରିଦୃଶ୍ୟମାନ ଘଟନା, (ଗ୍ରା.ବିଂ)ପ୍ରବଞ୍ଚନାପୂର୍ଣ୍ଣ, ଶଠ, ମାୟାପୂର୍ଣ୍ଣ, ଦୁଷ୍ଟ, ଧୂର୍ତ୍ତ, ଚତୁର, ଅସୁନ୍ଦର, ପରପଞ୍ଚ, ମନ୍ଦ ପ୍ରକୃତିକ ।
ପ୍ରପଞ୍ଚକ—ବିଂ. ବିସ୍ତୃତକରଣ, ବିସ୍ତାରକ
ପ୍ରପଞ୍ଚନ—କ୍ଲୀ.ବି. ବିସ୍ତୃତକରଣ, ବାହୁଲ୍ୟକରଣ ।
ପ୍ରପଞ୍ଚବୁଦ୍ଧି—ଗ୍ରା.ବି. ଧୂର୍ତ୍ତତା, ମନ୍ଦବୁଦ୍ଧି, ଦୁଷ୍ଟବୁଦ୍ଧି । [ ଋଣାପୂର୍ଣ୍ଣ ।
ପ୍ରପଞ୍ଚମୟ—ବିଂ. (ପ୍ରପଞ୍ଚ+ମୟ) ପ୍ରତା-
ପ୍ରପଞ୍ଚିତ—ବିଂ. (ପ୍ର+ପଞ୍ଚ+ମିଂ.ତ) ବିସ୍ତୃତ, ଭ୍ରମଯୁକ୍ତ, ମାୟାପୂର୍ଣ୍ଣ,ବ୍ୟାଖ୍ୟାତ, ପ୍ରକାଶିତ, ପ୍ରତାରିତ ।
ପ୍ରପଞ୍ଚୀ—ପୁଂ.ବିଂ. (ପ୍ରପଞ୍ଚ+ଇନ୍)ଦୁଷ୍ଟ, ଖଳ, ଧୂର୍ତ୍ତ ।
ପ୍ରପଣ—ପୁଂ.ବି. ବନମଯୁ ।
ପ୍ରପତନ—କ୍ଲୀ.ବି.(ପ୍ର+ପତ୍+ଭା.ଅନ) ପତନାପାଦନବୃକ୍ଷାଦି, ପ୍ରକର୍ଷରୂପେ ପତନ, ମୃତ୍ୟୁ, ବିନାଶ । [ ଭକ୍ତି ।
ପ୍ରପତ୍ତି—ସ୍ତ୍ରୀ.ବି. ଅନନ୍ୟଭକ୍ତି, ଏକାନ୍ତ-
ପ୍ରପଥ—ବିଂ. (ବ.ସ୍ତ୍ରୀ) ଶିଥିଳ, ପ୍ରକୃଷ୍ଟମାର୍ଗ ।
ପ୍ରପଥ୍ୟ—ବିଂ. ଅତ୍ୟନ୍ତ ହିତ, ବହୁ ହେବିତ, ମାର୍ଗଭବ, (ବି) ହରୀତକୀ ।
ପ୍ରପଦ—କ୍ଲୀ. ବି. (ପ୍ର+ପଦ) ପାଦାଗ୍ର, ପାଦର ଅଗ୍ରଭାଗ; ଗୋଡ଼ର ଆଙ୍ଗୁଠି ।
ପ୍ରପଦନ—କ୍ଲୀ. ବି. (ପ୍ର+ପଦ+ଅନ) ପ୍ରବେଶ ।
ପ୍ରପଦୀନ—ବିଂ. (ପ୍ରପଦ+ଇନ)ପାଦାଗ୍ରବ୍ୟାପକ, ପାଦାଗ୍ରସମ୍ବନ୍ଧୀୟ, ପାଦାନ୍ତପର୍ଯ୍ୟନ୍ତ ।
ପ୍ରପନ୍ନ—ବିଂ (ପ୍ର+ପଦ+କ.ତ) ଅବଲମ୍ବନ କରିଥିବା, ଅଧିଗତ,ପୀଡ଼ିତ, ଆସକ୍ତ, ରକ୍ଷିତ, ସ୍ୱୀକୃତ, ପ୍ରାପ୍ତ,ଶରଣାଗତ, ଆଶ୍ରିତ, କୃତାନ୍ୱେଷଣ, ସମାଗତ, ଉପସ୍ଥିତ, କ୍ରନ୍ଦନ, ଗଢବ ।
ପ୍ରପନ୍ନାଡ଼—ପୁଂ. ବି. ପ୍ରପୁନ୍ନାଡ଼, ଚକ୍ରମର୍ଦ୍ଦକ, ଶୃଗୁଣ୍ଡାଗଛ, ଦଦ୍ରୁମର୍ଦ୍ଦନ ।
ପ୍ରପର୍ଣ୍ଣ—କ୍ଲୀ.ବି. ପତିତପତ୍ର,(ବିଂ.ବ.ସ୍ତ୍ରୀ) ଯେଉଁ ବୃକ୍ଷରୁ ପତ୍ର ଝଡ଼ି ପଡ଼ିଅଛି ।
ପ୍ରପଲାୟନ—କ୍ଲୀ. ବି. (ପ୍ର+ପଲାୟ+ଅନ)ଏକବାରକେ ପଳାଇଥିବା, ପ୍ରକୃଷ୍ଟରୂପେ ପଳାୟନ ।
ପ୍ରପବଣ—କ୍ଲୀ. ବି. (ପ୍ର+ପୂ+ଅନ) ପବିତ୍ରୀକରଣ, ପରିଷ୍କୃତକରଣ ।
ପ୍ରପା—ସ୍ତ୍ରୀ. ବି. (ପ୍ର+ପା+ଅପା.ଅ+ଆ)ପାନୀୟଶାଳା, ଗୋରୁମାନଙ୍କ ପାଣିକୁଣ୍ଡ, ଜଳାଶୟ, କୂପ,ଜଳସତ୍ର,ବିଶ୍ରାମସ୍ଥଳ, ପାଣିକୁଣ୍ଡ, ଜଳାଧାର, (ମିଂ.ଅ) ଛୋକ, (ଅଧି.ଅ) ଯଜ୍ଞଶାଳା ।
ପ୍ରପାକ—ପୁଂ.ବି. (ପ୍ର+ପଚ୍+ଭା.ଅ) ପକ୍ୱତାକରଣ, ଦିଥ ପାଚିବା, ଅଙ୍ଗର ଫୁଲ ଓ ପୋଡ଼ାଜଳା
ପ୍ରପାଠକ—ପୁଂ.ବି ଓ ବିଂ. ଉତ୍କୃଷ୍ଟପାଠକ, (ସ୍ତ୍ରୀ) ପ୍ରପାଠିକା, (କ୍ଲୀ.ବି) ବେଦାଂଶବିଶେଷ ।
ପ୍ରପାଣି—ପୁଂ. ବି. (ପ୍ର+ପାଣି) କରର ଅଧୋଦେଶ, ପାଣିତଳ, ହାତର ଅଗ, ଲେଞ୍ଚ ।
ପ୍ରପାଣ୍ଡୁ—ବିଂ. ଅତିଶୟ ପାଣ୍ଡୁବର୍ଣ୍ଣ ।
ପ୍ରପାଣ୍ଡୁର—ବିଂ. ଅତିଶୟ ପାଣ୍ଡୁର, ଅତିଶୟ ଶ୍ୱେତ ।
ପ୍ରପାତ—ପୁଂ.ବି. (ପ୍ର+ପତ୍+ଅ) ନିରବଲମ୍ବନ ପର୍ବତାଦିର ପାର୍ଶ୍ୱ,ଭୃଗୁଦେଶ, ପର୍ବତାଦିର ଅତିଉଚ୍ଚ ସ୍ଥାନବିଶେଷ, ନିର୍ଝର, କୂଳ, ତୀର, ଉଡ୍ଡୀନ ଗତିବିଶେଷ, ଝରଣା, ପତନ,(ବିଂ)ଆଗକୁ ଡେଇଁଥିବା ।
ପ୍ରପାତନ—କ୍ଲୀ.ବି. ପକାଇଦେବା,ପାତନ
ପ୍ରପାତୀ—ବି. (ପ୍ରପାତ+ଇନ୍)ପ୍ରପାତଯୁକ୍ତ ପର୍ବତ ।
ପ୍ରପାଥ—ବି. ପଥ, ରାସ୍ତା ।
ପ୍ରପାଦ—ବି. ଅସମୟରେ ପ୍ରସବ, ଅସମୟରେ ଦାନ ।
ପ୍ରପାଦକ—ପୁଂ.ବି. ମୟୂର ।
ପ୍ରପାନୁକ—ବି. ଗମନ, ପ୍ରତ୍ୟାଗମନ ।
ପ୍ରପାନ—କ୍ଲୀ ବି.(ପ୍ର+ପା+ଅନ)ପଣା, ସରବତ୍, ଘୋଡ଼ାର ଉପର ଥୋମଣିର ନିମ୍ନଭାଗ, ପ୍ରପା ଦେଖ ।
ପ୍ରପାନକ—କ୍ଲୀ. ବି. ପଣା, ଖଣ୍ଡମରିଚାଦି ମିଶ୍ରିତ ପାନୀୟ ଦ୍ରବ୍ୟବିଶେଷ,ସରବତ୍ ।
ପ୍ରପାୟୀ—ପୁଂ. ବିଂ. (ପ୍ର+ପା+ଇନ୍) ପାନକର୍ତ୍ତା,ରକ୍ଷାକର୍ତ୍ତା,(ସ୍ତ୍ରୀ) ପ୍ରପାୟିନୀ ।
ପ୍ରପାଳନ—କ୍ଲୀ.ବି. (ପ୍ର+ପାଳ+ଅନ) ପ୍ରକୃଷ୍ଟରୂପେ ପାଳନ, ରକ୍ଷାକରଣ ।
ପ୍ରପାଳୀ—ପୁଂ.ବି. (ପ୍ର+ପାଳ+ଇନ୍) ପାଳକ, ପାଳନକାରୀ,(ବି) ବଳଦେବଙ୍କର ନାମଭେଦ । [ ରଣ୍ୟ ।
ପ୍ରପାବନ—କ୍ଲୀ.ବି. ବନବିଶେଷ, କାମା-
ପ୍ରପିତାମହ—ପୁଂ. ବି. (ପ୍ର+ପିତାମହ) ବ୍ରହ୍ମା, ପରଂବ୍ରହ୍ମ, ଶ୍ରୀକୃଷ୍ଣ, ପିତାମହଙ୍କ ପିତା, (ସ୍ତ୍ରୀ) ପ୍ରପିତାମହୀ ।

ପ୍ରପିତାମହୀ—ସ୍ତ୍ରୀ.ବି. (ପ୍ରପିତାମହ + ଈ) ପିତାମହଙ୍କ ମାତା, ପ୍ରପିତାମହଙ୍କ ପତ୍ନୀ

ପ୍ରପିତୃବ୍ୟ—ପୁଂ. ବି. ପ୍ରପିତାମହଙ୍କର ଭ୍ରାତା, ପିତାମହଙ୍କ ପିତୃବ୍ୟ ।

ପ୍ରପିତ୍ୱ—ପୁଂ.ବି.ପ୍ରକ୍ରମ, ସଂଗ୍ରାମ,ସମୀପ, ପ୍ରାପ୍ତ, ସନ୍ନିହିତ ।

ପ୍ରପିତ୍ୱେ—ଅବ୍ୟ. ଉତ୍ତରିପ୍ସୁଣ ।

ପ୍ରପିତ୍ସୁ—ପୁଂ.ବିଂ. (ପ୍ର + ପଦ୍ + ସନ୍ ଉ) ପାଇବା ନିମିତ୍ତ ଅଭିଳାଷୀ ।

ପ୍ରପୀଡ଼ନ—କ୍ଲୀ.ବି. (ପ୍ର + ପୀଡ଼୍ + ଅନ) ଅତ୍ୟନ୍ତ ପୀଡ଼ନ, ଚିପା, ଚିପିବା, ଉତ୍ପୀଡ଼ନ । [ ଫୁଲଥିବା ।

ପ୍ରପୀତ(ନ)—ବିଂ. ( ପ୍ର + ପୀତନ )

ପ୍ରପୁତ୍ର—ପୁଂ.ବି. ପୌତ୍ର, ନାତି ।

ପ୍ରପୁନାଡ—ପୁଂ.ବି. ପ୍ରପୁନ୍ନାଡ଼,ଚକ୍ରମର୍ଦ୍ଦ, ଗୁଳୁଣ୍ଡା ।

ପ୍ରପୁନ୍ନଡ଼—ପୁଂ.ବି. ପ୍ରପୁନ୍ନାଡ଼,ଗୁଳୁଣ୍ଡା ।

ପ୍ରପୁନ୍ନାଟ—ପୁଂ.ବି. ଚକ୍ରମର୍ଦ୍ଦ,ଗୁଳୁଣ୍ଡା ।

ପ୍ରପୁନ୍ନାଡ—ପୁଂ.ବି.ପ୍ରପୁନ୍ନାଟ, ଚକ୍ରମର୍ଦ୍ଦ, ଗୁଳୁଣ୍ଡା । [ ଗୁଳୁଣ୍ଡା ।

ପ୍ରପୁନ୍ନାଲ—ପୁଂ.ବି.ପ୍ରପୁନ୍ନାଡ଼,ଚକ୍ରମର୍ଦ୍ଦ,

ପ୍ରପୁଷ୍ପିତ—ବିଂ. ଅତ୍ୟନ୍ତ ପୁଷ୍ପଯୁକ୍ତ, ବହୁତ ଫୁଲ ଧରିଥିବା ଗଛ ।

ପ୍ରପୂରକ—ବିଂ. (ପ୍ର + ପୂରକ)ପୂରଣ-କାରୀ, ଆନନ୍ଦଦାୟକ, ଅବଶିଷ୍ଟାଂଶ ପୂରଣକାରୀ, (ସ୍ତ୍ରୀ) ପ୍ରପୂରିକା ।

ପ୍ରପୂରଣ—କ୍ଲୀ.ବି. ( ପ୍ର + ପୂର + ଅନ ) ଅନୁପୂରଣ, ଅବଶିଷ୍ଟାଂଶ ପୂରଣ ।

ପ୍ରପୂରିକା—ସ୍ତ୍ରୀ.ବି. କଣ୍ଟକାରୀ ।

ପ୍ରପୂରିତ—ବିଂ.(ପ୍ର + ପୂର + ମିଂ.ତ)ଯାହା ପରିପୂର୍ଣ୍ଣ କରାହୋଇଅଛି ।

ପ୍ରପୂର୍ବଗ—ପୁଂ. ବିଂ. ସୃଷ୍ଟିର ପ୍ରାଗ୍‌ବର୍ତ୍ତୀ ପରମେଶ୍ୱର, ସୃଷ୍ଟିର ପୂର୍ବେ ଏକମାତ୍ର ପରମେଶ୍ୱର ଥିଲେ-ଏଣୁ ସେ ପ୍ରପୂର୍ବଗ ନାମରେ ଅଭିହିତ ।

ପ୍ରପୃଷ୍ଠ—ବିଂ. ଉନ୍ନତପୃଷ୍ଠ ।

ପ୍ରପୌଣ୍ଡରୀକ—କ୍ଲୀ. ବି. (ପ୍ର + ପୁଣ୍ଡରୀକ + ଅ) ଔଷଧ ବୃକ୍ଷବିଶେଷ, ପଦ୍ମମୂଳ, ହସ୍ତୀ ଓ ମନୁଷ୍ୟମାନଙ୍କର ଚକ୍ଷୁର ହିତ କର କ୍ଷୁଦ୍ର ବୃକ୍ଷ ।

ପ୍ରପୌତ୍ର—ପୁଂ. ବି. ( ପ୍ର + ପୌତ୍ର ) ପୌତ୍ରର ପୁତ୍ର, ଅଣନାତି, (ସ୍ତ୍ରୀ) ପ୍ରପୌତ୍ରୀ ।

ପ୍ରପୌତ୍ରୀ—ସ୍ତ୍ରୀ ବି. ( ପ୍ରପୌତ୍ର + ଈ ) ପୌତ୍ରର କନ୍ୟା, ନାତିର ଝିଅ ।

ପ୍ରପ୍ୟାୟନ—କ୍ଲୀ. ବି. (ପ୍ର + ପ୍ୟାୟ୍ + ଅନ) ବୃଦ୍ଧି, ସ୍ଥୂଳତା ।

ପ୍ରପ୍ୟାୟନୀୟ—ବିଂ. (ପ୍ର + ପ୍ୟାୟ୍ + ଅନୀୟ) ବୃଦ୍ଧିର ଯୋଗ୍ୟ ।

ପ୍ରପ୍ଲାବନ—କ୍ଲୀ.ବି. (ପ୍ର + ପ୍ଲୁ + ଣିଚ୍ + ଅନ) ଜଳପ୍ଲାବନ, ଜଳଦ୍ୱାରା ଅଗ୍ନ୍ୟାଦି ନିର୍ବାପଣ ।

ପ୍ରଫର୍ବୀ—ସ୍ତ୍ରୀ. ବି. ପ୍ରଶସ୍ତ ନିତମ୍ବା ସ୍ତ୍ରୀ, ନିତମ୍ବବତୀ, (ବିଂ) ପ୍ରକୃଷ୍ଟ ଗତିଯୁକ୍ତା ।

ପ୍ରଫୁଲ୍ଲତ—ବିଂ. ( ପ୍ର + ଫୁଲ + କ.ତ ) ବିକାଶଯୁକ୍ତ, ପ୍ରସ୍ଫୁଟିତ, ପ୍ରଫୁଲ୍ଲ ଦେଖ

ପ୍ରଫୁଲ୍ଲ—ବିଂ. ( ପ୍ର + ଫୁଲ୍ଲ + କ.ତ ) ବିକାଶଯୁକ୍ତ, ବିକଶିତ, ପ୍ରସ୍ଫୁଟିତ, ଫୁଟିଥିବା (ଫୁଲ), ହସୁଥିବା, ଉଜ୍ଜ୍ୱଳ, ପ୍ରସନ୍ନ, ଆନନ୍ଦିତ ।

ପ୍ରଫୁଲ୍ଲକର—ବିଂ. (ପ୍ରଫୁଲ୍ଲ + କୃ + କ.ଅ) ପ୍ରସନ୍ନତା ବିଧାୟକ, ହର୍ଷଜନକ, ଆନନ୍ଦଦାୟକ, (ସ୍ତ୍ରୀ) ପ୍ରଫୁଲ୍ଲକରୀ ।

ପ୍ରଫୁଲ୍ଲଚିତ୍ତ—କ୍ଲୀ. ବି. (କ.ଧା) ହୃଷ୍ଟଚିତ୍ତ, ଆନନ୍ଦିତ ମନ, ( ପୁଂ.ବିଂ.-ବ.ବ୍ରୀ ) ସନ୍ତୁଷ୍ଟ ହୃଦୟ, ହୃଷ୍ଟ. ଆନନ୍ଦିତ ।

ପ୍ରଫୁଲ୍ଲତା—ସ୍ତ୍ରୀ.ବି.(ପ୍ରଫୁଲ୍ଲ + ତା)ବିକାଶ, ବିସ୍ଫୁଟ, ବିସ୍ତାର,ଆହ୍ଲାଦ, ଉଲ୍ଲାସ.ହର୍ଷ

ପ୍ରଫୁଲ୍ଲତ୍ୱ—କ୍ଲୀ.ବି. (ପ୍ରଫୁଲ୍ଲ + ତ୍ୱ)ପ୍ରଫୁଲ୍ଲତା ଦେଖ ।

ପ୍ରଫୁଲ୍ଲନୟନ—କ୍ଲୀ.ବି. (କ.ଧା) ହର୍ଷୋତ୍ଫୁଲ୍ଲ ଚକ୍ଷୁ, (ବିଂ—ବ.ବ୍ରୀ) ହର୍ଷୋତ୍ଫୁଲ୍ଲ ନୟନଯୁକ୍ତ ।

ପ୍ରଫୁଲ୍ଲବଦନ—ବି. (କ.ଧା) ସହାସ୍ୟ ବା ପ୍ରସନ୍ନମୁଖ,(ପୁଂ.ବିଂ.-ବ.ବ୍ରୀ) ସହାସ୍ୟ ମୁଖବିଶିଷ୍ଟ, ପ୍ରସନ୍ନାନନ ।

ପ୍ରଫୁଲ୍ଲିତ—ବିଂ. (ପ୍ର + ଫୁଲ୍ଲ + ଣି + ମିଂ. ତ) ଆନନ୍ଦିତ, ଯାହାକୁ ପ୍ରଫୁଲ୍ଲ କରା-ହୋଇଅଛି ।

ପ୍ରଭ—ପୁଂ. ବିଂ. (ବ.ବ୍ରୀ) ଅମୁକପର ପ୍ରଭାଯୁକ୍ତ (ଯଥାଃ-ସୂର୍ଯ୍ୟପ୍ରଭ),(ଗ୍ରା.ବି) ପ୍ରଭା, କାନ୍ତି ।

ପ୍ରଭଙ୍ଗ—ବିଂ. (ପ୍ର + ଭଞ୍ଜ + ଅ)ପ୍ରକୃଷ୍ଟ ରୂପେ ଭଙ୍ଗା, ଭଙ୍ଗବିଶିଷ୍ଟ ।

ପ୍ରଭଙ୍ଗୁର—ବିଂ. ପ୍ରକୃଷ୍ଟରୂପେ ଭଙ୍ଗୁର, ନାଶଶୀଳ ।

ପ୍ରଭଞ୍ଜନ—ପୁଂ. ବି. (ପ୍ର + ଭଞ୍ଜ + କ. ଅନ) ଝଡ଼, ପ୍ରଚଣ୍ଡବାୟୁ, ବାୟୁ,ମଣି-ପୁରାଧିପତି ରାଜବିଶେଷ, ( ଭା.ଅନ ) ବିନାଶ, (ବିଂ) ଭଞ୍ଜନକାରୀ, ଯେ ଭାଙ୍ଗି-ପକାଏ, (ଗ୍ରା.ବି) ଭଗ୍ନ ।

ପ୍ରଭଞ୍ଜନପଥ—ପୁଂ.ବି. (ଷତତ୍ପୁ) ବାତା-ୟନ, ଝରକା । [ ଶ୍ରେଷ୍ଠ ।

ପ୍ରଭଦ୍ର—ପୁଂ.ବି. ନିମ୍ବ, ନିମ୍ବବୃକ୍ଷ, (ବିଂ)

ପ୍ରଭଦ୍ରକ—କ୍ଲୀ.ବି. ଛନ୍ଦୋଭେଦ ।

ପ୍ରଭଦ୍ରା—ସ୍ତ୍ରୀ. ବି. (ବ.ବ୍ରୀ) ପ୍ରସାରଣୀ ଲତା ।

ପ୍ରଭବ—ପୁଂ.ବି. (ପ୍ର + ଭୂ + ଅ)ଆଦ୍ୟୋ-ପଲବ୍ଧି ସ୍ଥାନ, ଜନ୍ମସ୍ଥାନ, ଜଳମୂଳ, ମୁନିଭେଦ, ପ୍ରଭାବ, ପରାକ୍ରମ,ଉତ୍ପତ୍ତି, ଜନ୍ମ, ସୃଷ୍ଟି, ସାଧ୍ୟଭେଦ, ଜ୍ୟୋତିଷୋକ୍ତ ଷଷ୍ଟିସମ୍ବତ୍ସର ମଧ୍ୟରେ ସମ୍ବତ୍ସରଭେଦ, ବିଷ୍ଣୁ, ଜୈନ ସ୍ଥବିରବିଶେଷ, ଅଷ୍ଟ-ବସୁର ଅନ୍ତର୍ଗତ ବସୁବିଶେଷ, ଉତ୍ପତ୍ତି-କାରଣ, ମୂଳକାରଣ, ନିମିତ୍ତକାରଣ, ଆଲୋକ, ଆକର,(ପୁଂ.ବିଂ) ଉତ୍ପାଦନ-କାରୀ, ପ୍ରଭାବଶାଳୀ ।

ପ୍ରଭବତ୍—ପୁଂ.ବିଂ. (ପ୍ର + ଭୂ + କ.ଅତ୍) ଶକ୍ତ, ସମର୍ଥ, ପ୍ରଭୁ, (ସ୍ତ୍ରୀ) ପ୍ରଭବନ୍ତୀ ।

ପ୍ରଭବନ—କ୍ଲୀ.ବି. ( ପ୍ର + ଭୂ + ଅନ ) ଉତ୍ପତ୍ତି, ଆକର, ମୂଳ, ଅଧିଷ୍ଠାନ,(ବିଂ) ଉତ୍ପନ୍ନ ।

ପ୍ରଭବିତା—ପୁଂ.ବିଂ. ( ପ୍ର + ଭୂ + ତୃ ) ପ୍ରଭାବଶାଳୀ ।

ପ୍ରଭବିଷ୍ଣୁ—ପୁଂ.ବିଂ. (ପ୍ର + ଭୂ + ଇଷ୍ଣୁ) ପ୍ରଭାବଶାଳୀ, କ୍ଲେଶଶାଳୀ, (ବି) ବିଷ୍ଣୁ, ପ୍ରଭୁ ।

ପ୍ରଭବିଷ୍ଣୁତା—ସ୍ତ୍ରୀ. ବ. ପ୍ରଭୁତା, ପ୍ରଭବିଷ୍ଣୁର ଭାବ, ସାମର୍ଥ୍ୟ ।

ପ୍ରଭବ୍ୟ—ବିଂ.(ପ୍ର+ଭୂ+ଯ) ପ୍ରଭାବମୟ, ମାନମୟ ।

ପ୍ରଭା—ସ୍ତ୍ରୀ. ବ. ( ପ୍ର+ଭ+ଅ+ଆ ) କିରଣ, ଉଜ୍ଜ୍ୱଲତା,ଜ୍ୟୋତିଃ,ଆଲୋକ, ପ୍ରକାଶ, କୁବେରପୁରୀ, ଦୀପ୍ତି, ସୂର୍ଯ୍ୟଙ୍କ ପତ୍ନୀବିଶେଷ, ଦୁର୍ଗା, ସ୍ୱର୍ଭାନୁର କନ୍ୟା, ଗୋପୀବିଶେଷ, ସୂର୍ଯ୍ୟଙ୍କର ବିମ୍ବ, ଅପ୍ସରୋଭେଦ, ଦ୍ୱାଦଶାକ୍ଷର ପାଦକ ବୃତ୍ତଭେଦ, ମନ୍ଦାକିନୀ,(ଗ୍ରା.ବ.)ଦେବମୂର୍ତ୍ତିଙ୍କ ପଛଆଡ଼େ ମୁଣ୍ଡର ଚାରିପାଖବେଢ଼ି ଲଗାଯାଇଥିବା କାରୁକାର୍ଯ୍ୟ ଖଚିତ ମେଢ଼ ।

ପ୍ରଭାକର—ପୁଂ.ବ.(ପ୍ରଭା+ଆକର)ସୂର୍ଯ୍ୟ, ଅଗ୍ନି, ଚନ୍ଦ୍ର, ସମୁଦ୍ର,ଅର୍କବୃକ୍ଷ,ତେଜୋମୟ ବସ୍ତୁ, ଜ୍ୟୋତିଷ୍କ, କୁଶଦ୍ୱୀପସ୍ଥ ବର୍ଷ ବା ଦେଶ ବିଶେଷ, ନାଗଭେଦ, ମୀମାଂସକଭେଦ, ଅତ୍ରିବଂଶୀୟ ମୁନି ବିଶେଷ, ଅଷ୍ଟମମନ୍ୱନ୍ତରୀୟ ଦେବଗଣ ଭେଦ, (ବିଂ—ପ୍ରଭା+କୃ+କ.ଅ ) ଅତ୍ୟନ୍ତ ଦୀପ୍ତିକର, ତେଜୋମୟ,ସମୁଜ୍ଜ୍ୱଳ ।

ପ୍ରଭାକୀଟ—ପୁଂ. ବ. (କ.ଧା) ଖଦ୍ୟୋତ, ଜୁଳୁଜୁଳିଆପୋକ, ଜ୍ୟୋତିରିଙ୍ଗଣ ।

ପ୍ରଭାଗ—ପୁଂ.ବ. (ପ୍ର+ଭଜ୍+ଅ)ବିଭାଗ, ଭାଗ, ଭଗ୍ନାଂଶର ଭଗ୍ନାଂଶ ।

ପ୍ରଭାଜନ—ପୁଂ. ବିଂ. (ପ୍ର+ଭଜ୍+ଣିଚ୍) ବିଭାଗକାରୀ ।

ପ୍ରଭାଞ୍ଜନ—ପୁଂ.ବ.ଶୋଭାଞ୍ଜନ,ସଜନାଗଛ

ପ୍ରଭାତ—କ୍ଲୀ. ବ.(ପ୍ର+ଭା+ତ)ଉଷା, ପାହାନ୍ତିଆ,ପ୍ରାତଃକାଳ, ସୂର୍ଯ୍ୟଙ୍କଔରସରେ ପ୍ରଭାଙ୍କ ଗର୍ଭଜାତ ଦେବତା,(ବିଂ) ପ୍ରଭାଯୁକ୍ତ ।

ପ୍ରଭାତଅବକାଶ—ଗ୍ରା. ବ. ପାହାନ୍ତାରୁ ଉଠି ବୋଲିବା ସ୍ତବବିଶେଷ ।

ପ୍ରଭାତବସନ—ଗ୍ରା. ବ. ଗାତପିନ୍ଧା,ଯାହାକୁ ସକାଳୁ ପାଲଟିବାକୁ ହୁଏ ।

ପ୍ରଭାତ(ତ)ତାରା—ଗ୍ରା. ବ. ଶୁକ୍ରତାରା, ପାହାନ୍ତିଆ ସମୟରେ ପୂର୍ବଦିଗରେ ଦେଖାଯିବା ଶୁକ୍ରଗ୍ରହ ।

ପ୍ରଭାତକା—ଗ୍ରା. କି. ପ୍ରଭାତହେବା, ସକାଳହେବା, (ଗତ) ପାହିବା ।

ପ୍ରଭାତି—ବ. ପ୍ରଭାତଅବକାଶ, ପ୍ରାତଃକାଳରେ ଗେୟ ସ୍ତବ,ଦାଣ୍ଡପଖା,(ଗ୍ରା.ବି) ପ୍ରଭାତକାଳୀନ,ପ୍ରାତଃକାଳରେ ଗେୟ, ପ୍ରାତଃକାଳରେ ଉପଯୁକ୍ତ । [ ରାଗ ।

ପ୍ରଭାତିବରାଡ଼ି—ଗ୍ରା.ବ.ରାଗବିଶେଷ,ଭୈରବୀ

ପ୍ରଭାସତୀର୍ଥ—କ୍ଲୀ.ବ. ଶିବପୁରାଣୋକ୍ତ ତୀର୍ଥବିଶେଷ ।

ପ୍ରଭାନ—କ୍ଲୀ.ବ.(ପ୍ର+ଭା+ଅନ)ଜ୍ୟୋତିଃ ଦୀପ୍ତି, ଆଲୋକ ।

ପ୍ରଭାନୁ—ପୁଂ.ବ.ଶ୍ରୀକୃଷ୍ଣଙ୍କର ପୁତ୍ରବିଶେଷ

ପ୍ରଭାପନ—କ୍ଲୀ. ବ. ଦୀପ୍ତି ସମ୍ପାଦନ ।

ପ୍ରଭାପନୀୟ—ବିଂ. ପ୍ରଭାପନର ଯୋଗ୍ୟ ।

ପ୍ରଭାପ୍ରଭୁ—ପୁଂ. ବ. (୬ତତ୍ପୁ) ସୂର୍ଯ୍ୟ ।

ପ୍ରଭାପ୍ରରୋହ—ପୁଂ.ବ. ଆଲୋକରଶ୍ମି ।

ପ୍ରଭାମଣ୍ଡଳ—କ୍ଲୀ.ବ.ଗୋଲାକାର ରଶ୍ମି, ଦୀପ୍ତିପୁଞ୍ଜ ।

ପ୍ରଭାମୟ—ପୁଂ.ବିଂ.ଦୀପ୍ତିମୟ, ପ୍ରଭାବିଶିଷ୍ଟ, ଜ୍ୟୋତିର୍ମୟ, (ସ୍ତ୍ରୀ) ପ୍ରଭାମୟୀ ।

ପ୍ରଭାବ—ପୁଂ.ବ (ପ୍ର+ଭୂ+ଅ)କୋଷଦଣ୍ଡ ଜାତ ତେଜଃ, ତେଜଃ, ବିକ୍ରମ, ଶାନ୍ତି, ଶକ୍ତି, ଉଦ୍ଭବ, ସ୍ୱାରୋଚିଷ ମନୁଙ୍କର ପୁତ୍ର, ପ୍ରଭା ଗର୍ଭଜାତ ସୂର୍ଯ୍ୟପୁତ୍ର, ସାମର୍ଥ୍ୟ, କ୍ଷମତା, ପ୍ରାଦୁର୍ଭାବ,ପ୍ରଭୁଶକ୍ତି, ପ୍ରତାପ, ସାହସ, ଅଷ୍ଟବସୁଙ୍କ ମଧ୍ୟରୁ ଜଣେ, ପ୍ରାବଲ୍ୟ । [ ଦାନ ।

ପ୍ରଭାବକ—ପୁଂ.ବିଂ.ଶକ୍ତିଶାଳୀ, ସାମର୍ଥ୍ୟ-

ପ୍ରଭାବଜ—ବିଂ. (ପ୍ରଭାବ+ଜନ୍+ଡ. ଅ) ପ୍ରଭାବରୁ ଉତ୍ପନ୍ନ, (ବ) ପ୍ରଭୁଶକ୍ତିବିଶେଷ ।

ପ୍ରଭାବତୀ—ସ୍ତ୍ରୀ. ବିଂ. (ପ୍ରଭାବତ୍+ଈ) ପ୍ରଭାବାନ ଶବ୍ଦର ସ୍ତ୍ରୀଲିଙ୍ଗ, କ୍ଷମତାଶାଳିନୀ, ଶକ୍ତିଶାଳିନୀ,(ବ) ବଜ୍ର ନାମକ ଅସୁରର କନ୍ୟା,ଜୈନ ତାପସୀବିଶେଷ, ମାଲ ନାମକ ଊନବିଂଶତୀର୍ଥଙ୍କର ମାତା, ସୂର୍ଯ୍ୟପତ୍ନୀ, ତ୍ରୟୋଦଶାକ୍ଷର ଛନ୍ଦଭେଦ,କୁମାରାନୁଚର ମାତୃଗଣବିଶେଷ, ଅପସରୋ ବିଶେଷ, ଅଙ୍ଗଦେଶାଧିପ ଚିତ୍ରରଥଙ୍କ ଭାର୍ଯ୍ୟା, ପ୍ରଦ୍ୟୁମ୍ନଙ୍କ ସ୍ତ୍ରୀ, ମହାଭାରତୋକ୍ତ ତାପସୀବିଶେଷ,ଶିବାନୁଚରଗଣ ଦେବତାଙ୍କର ବୀଣା, ରାଜା ବ୍ରଜନାଭଙ୍କ କନ୍ୟା, ପ୍ରଭାତୀ ରାଗ ବା ଗୀତ, ନଦୀବିଶେଷ ।

ପ୍ରଭାବନା—ସ୍ତ୍ରୀ. ବ. ( ପ୍ର+ଭାବନା ) ଉଦ୍ଭାବନା,ପ୍ରକାଶ ।

ପ୍ରଭାବନ୍ତ—ଗ୍ରା. ବିଂ. ପ୍ରଭାବନ୍ତା ଦେଖ ।

ପ୍ରଭାବାନ୍—ପୁଂ. ବିଂ. ( ପ୍ରଭା+ବତୁ ) ପ୍ରଭାବିଶିଷ୍ଟ, ଦୀପ୍ତଶାଳୀ, ତେଜୋମୟ, କ୍ଷମତାଶାଳୀ ।

ପ୍ରଭାଷ—ପୁଂ. ବ. ( ପ୍ର+ଭାଷ୍+ଭା.ଅ ) ପ୍ରକୃଷ୍ଟକଥନ, ( କ.ଅ ) ଅଷ୍ଟବସୁଙ୍କ ମଧ୍ୟରୁ ଏକତମ ।

ପ୍ରଭାଷଣ—କ୍ଲୀ. ବ. (ପ୍ର+ଭାଷ୍+ଅନ) ଉତ୍ତମରୂପେ କଥନ, ପ୍ରକୃଷ୍ଟରୂପେ ଭାଷଣ

ପ୍ରଭାଷୀ—ପୁଂ. ବିଂ. (ପ୍ର+ଭାଷ୍+ଇନ୍) ପ୍ରକୃଷ୍ଟରୂପେ କଥନଶୀଳ, ବକ୍ତା ।

ପ୍ରଭାସ—ପୁଂ.ବ. ସେ ମତୀର୍ଥ, ଅଷ୍ଟବସୁଙ୍କ ମଧ୍ୟରୁ ଏକତମ, ଜୈନଗଣାଧିପଭେଦ, କୁମାରାନୁଚରଗଣ ଭେଦ, ଅଷ୍ଟମମନ୍ୱନ୍ତର ଦେବଗଣ ଭେଦ,(ଭା.ଅ)ଦୀପ୍ତି,ଜ୍ୟୋତିଃ (ବିଂ. କ.ଅ) ପ୍ରଖରଦୀପ୍ତିଶାଳୀ ।

ପ୍ରଭାସନ—କ୍ଲୀ. ବ. ଦୀପ୍ତି, ଜ୍ୟୋତି ।

ପ୍ରଭାସ୍ୱର—ବିଂ. ଦୀପ୍ତିଶାଳୀ,ଜ୍ୟୋତିଷ୍ମାନ୍

ପ୍ରଭିଦ୍—ପୁଂ.ବିଂ.(ପ୍ରଭିଦ୍+କ୍ୱିପ୍)ପ୍ରକୃଷ୍ଟରୂପେ ଭେଦକାରକ ।

ପ୍ରଭିନ୍ନ—ପୁଂ. ବ. (ପ୍ର + ଭିଦ୍+ତ)ମଦମତ୍ତହସ୍ତୀ, (ବିଂ) ପ୍ରସ୍ଫୁଟିତ, ପ୍ରକାଶିତ, ପ୍ରକୃଷ୍ଟଭେଦ ବିଶିଷ୍ଟ, ବିଚ୍ଛିନ୍ନ,ବଦଳିତ

ପ୍ରଭୁ—ପୁଂ. ବ.(ପ୍ର+ଭ+କ.ଉ)ବିଷ୍ଣୁ, ଭଗବାନ୍, ଶିବ, ସ୍ୱାମୀ, ଭର୍ତ୍ତା,ମାଲିକ, ପାରଦ, ଶବ୍ଦ, ଅଧିପତି, ରାଜା,ଅଷ୍ଟମମନ୍ୱନ୍ତରୀୟ ଦେବଗଣ ଭେଦ,ବୋମ୍ବାଇ ପ୍ରଦେଶ କାୟସ୍ଥମାନଙ୍କର ଉପାଧି,(ବିଂ) ସମର୍ଥ, ଶକ୍ତ,ନିତ୍ୟ, ଚିରନ୍ତନ,ପ୍ରଧାନ, ଶ୍ରେଷ୍ଠ, ଅନୁଗ୍ରହ ଓ ନିଗ୍ରହକ୍ଷମ ।

ପ୍ରଭୁତା—ସ୍ତ୍ରୀ. ବ. (ପ୍ରଭୁ + ତା) କ୍ଷମତା, ଅଧିକାର, ପ୍ରାଧାନ୍ୟ, ମହତ୍ତ୍ୱ, ରାଜତ୍ୱ, ରାଜ୍ୟଶାସନ, ଶାସନାଧିକାର ।

ପ୍ରଭୁତ୍ୱ—କ୍ଲୀ.ବ.(ପ୍ରଭୁ+ତ୍ୱ)ପ୍ରଭୁତା ଦେଖ

ପ୍ରଭୁତ୍ୱପ୍ରୟାସୀ—ପୁଂ. ବିଂ. ( ୬ତତ୍ପୁ ) ଆଧିପତ୍ୟଲାଭର ଚେଷ୍ଟାନ୍ୱିତ, କର୍ତ୍ତୃତ୍ୱ ଚଳାଇବାର ଆକାଙ୍କ୍ଷୀ,(ସ୍ତ୍ରୀ)ପ୍ରୟାସିନୀ

ପ୍ରଭୁତ୍ୱାକ୍ଷେପ—ପୁଂ. ବ. ଅର୍ଥାଳଂକାର ଭେଦ । [ ଋଷି ଭେଦ ।

ପ୍ରଭୁଦେବ—ପୁଂ.ବ.ଯୋଗଶାସ୍ତ୍ର ପ୍ରବର୍ତ୍ତକ

ପ୍ରଭୁଦ୍ରୋହୀ—ପୁଂ.ବିଂ.(ପ୍ରଭୁ+ଦ୍ରୁହ୍+ଇନ୍) ପ୍ରଭୁର ବିରୁଦ୍ଧାଚାରୀ, (ସ୍ତ୍ରୀ)ପ୍ରଭୁଦ୍ରୋହିଣୀ ।

ପ୍ରଭୁପାଦ-ପୁଂ.ବିଂ.ସମ୍ମାନନୀୟ,ମାନ୍ୟାସ୍ପଦ

ପ୍ରଭୁଭକ୍ତ—ପୁଂ. ବ. (୬ତତ୍ପୁ) ଉତ୍ତମ-ଘୋଟକ (ବିଂ) ସ୍ୱାମ୍ୟନୁରକ୍ତ, କୁଳୀନ ।

ପ୍ରଭୁଭକ୍ତି—ସ୍ତ୍ରୀ. ବ. (ପ୍ରଭୁ+ଭଜ୍+ତି) ପ୍ରଭୁଙ୍କ ଠାରେ ଏକାନ୍ତ ଭକ୍ତି ।

ପ୍ରଭୁଶକ୍ତି—ସ୍ତ୍ରୀ. ବ. ( ୬ତତ୍ପୁ ) ପ୍ରଭାବ, ସାମର୍ଥ୍ୟ, ପ୍ରତାପ ।

ପ୍ରଭୁହନ୍ତା—ପୁଂ. ବିଂ. (୬ତତ୍ପୁ) ସ୍ୱାମୀଘାତକ, ପ୍ରଭୁବଧକାରୀ,(ସ୍ତ୍ରୀ)ପ୍ରଭୁହନ୍ତ୍ରୀ ।

ପ୍ରଭୂତ—ବିଂ.(ପ୍ର + ଭୂ + କ.ତ)ପ୍ରଚୁର, ଅତ୍ୟନ୍ତ,ଅଧିକ,ଅତ୍ୟନ୍ତ ପ୍ରୟୋଜନୀୟ, ଉଦ୍ଗତ, ଭୂତ, ଉନ୍ନତ, ଉଚ୍ଚ, ଶାସିତ ପରିପକ୍ୱ, ଅସାମାନ୍ୟ । [ ଯୁକ୍ତ ।

ପ୍ରଭୂତକ--ବିଂ.ପ୍ରଭୂତଯୁକ୍ତ,ପ୍ରଚୁରବଳାଢ୍ୟ-

ପ୍ରଭୂତତ୍ୱ(ତା)—କ୍ଲୀ.ବ(ପ୍ରଭୂତ+ତ୍ୱ.ତା) ପ୍ରଚୁରତା, ପ୍ରଭୂତତା, ପ୍ରଭୂତର ଭାବ ବା ଧର୍ମ ।

ପ୍ରଭୂତରତ୍ନ—ପୁଂ.ବ. ବୁଦ୍ଧଭେଦ, (ବିଂ) ବହୁଧନଯୁକ୍ତ, ବହୁଧନୀ ।

ପ୍ରଭୂତି—ସ୍ତ୍ରୀ.ବ. (ପ୍ର+ଭୂ+ତି)ଉତ୍ପତ୍ତି, ଶକ୍ତି, ପ୍ରଚୁରତା ।

ପ୍ରଭୂଷ୍ଣୁ—ପୁଂ.ବିଂ.କ୍ଷମ, ଶକ୍ତ, ପ୍ରଭାଶୀଳ ।

ପ୍ରଭୃତ—ସ୍ତ୍ରୀ. (ପଦ୍ୟ)ବ. (ଫ-ପରଭୃତ) ପରଭୃତ, କୋକିଳ, ପର ବା ଶତ୍ରୁମାନେ ଧୃତହେବା ।

ପ୍ରଭୃତି—ବିଂ. ଅବ୍ୟ. ( ପ୍ର+ଭୃ+ତି ) ଇତ୍ୟାଦି, ଇତ୍ୟାଦି, ଏବଂ, ଆଦି,ଅନ୍ୟମାନେ, ଓଗେର, ରୁ, ଠାରୁ, ତାହାଠାରୁ ଆରମ୍ଭ କରି, ଉକମ, ଅବଧି ।

ପ୍ରଭେଦ—ପୁଂ.ବ. (ପ୍ର+ଭିଦ୍+ଭା.ଅ) ଭେଦ,ବିଭିନ୍ନତା,ବୈଲକ୍ଷଣ୍ୟ,ପାର୍ଥକ୍ୟ, ବିଶେଷତ୍ୱ, ବିକାଶ, ପ୍ରସ୍ଫୁଟନ, ଫୁଟିବା, ବିଧି, ପ୍ରକାର, ଉକମ; ଭେଦ କରି ବାହାରିବା ।

ପ୍ରଭେଦକ—ବିଂ.(ପ୍ର+ଭିଦ୍+କ.ଅକ) ଯେ ଭେଦ କରେ, ପାର୍ଥକ୍ୟ ସାଧକ, ପ୍ରକୃଷ୍ଟ ରୂପେ ଭେଦକ, ବିଭାଗକାରୀ ।

ପ୍ରଭେଦକରିବା—ଗ୍ରା.କ୍ରି.ପାର୍ଥକ୍ୟ ବିଗ୍ଭର କରିବା, ଭିନ୍ନ କରିବା ।

ପ୍ରଭେଦନ—କ୍ଲୀ. ବ. ପ୍ରକୃଷ୍ଟ ରୂପେ ଭେଦନ (ବିଂ) ପ୍ରଭେଦକ ।

ପ୍ରଭେଦନୀ—ସ୍ତ୍ରୀ. ବ. ଯେଉଁ ଅସ୍ତ୍ର ଦ୍ୱାରା ଭେଦ କରାଯାଏ, ଫୋଡ଼ଣୀ, ଭଅଁର, (ସ୍ତ୍ରୀ. ବିଂ) ଭେଦକାରିଣୀ ।

ପ୍ରଭେଦିକା—ସ୍ତ୍ରୀ.ବିଂ.(ପ୍ର+ଭିଦ୍+ଇକ +ଆ) ଭେଦକାରିଣୀ, (ବି) ବେଧନ ଅସ୍ତ୍ରବିଶେଷ, ଫୋଡ଼ଣି, ଭଅଁର ।

ପ୍ରଭୋ—(ଫ-ସମ୍ବୋଧନ) ପ୍ରଭୁ ହେ ।

ପ୍ରଭ୍ରଂଶ—ପୁଂ. ବ. (ପ୍ର+ଭ୍ରଂଶ୍+ଭା.ଅ) ନାଶ, ପତନ, ଭ୍ରଷ୍ଟ ହେବା ।

ପ୍ରଭ୍ରଂଶଥୁ—ପୁଂ. ବ. (ପ୍ର+ଭ୍ରଂଶ+କ. ଥୁ )ସୁଶ୍ରୁତୋକ୍ତ ନାସା ରୋଗବିଶେଷ, ପିନସରୋଗ ।

ପ୍ରଭ୍ରଷ୍ଟ—ବିଂ. (ପ୍ର+ଭ୍ରଂଶ୍+ତ)ଭ୍ରଂଶଯୁକ୍ତ, ବିନଷ୍ଟ, ଚ୍ୟୁତ, ପତିତ, ଭଗ୍ନ, (ବି) ଶିଖାବଲମ୍ବି ମାଳୀ ।

ପ୍ରଭ୍ରଷ୍ଟକ—ବ.(ପ୍ରଭ୍ରଷ୍ଟ+କ) ଶିଖାବଲମ୍ବିନୀ ମାଳା, ମୁଣ୍ଡରୁ ତଳକୁ ପଡ଼ିଥିବା ମାଳା ।

ପ୍ରମଗନ୍ଧ—ପୁଂ. ବ. ବାର୍ଦ୍ଧୁଷିକ ପୁତ୍ର, ଯେଉଁମାନେ ଟଙ୍କା ସୁଧରେ ଜୀବିକା ନିର୍ବାହ କରନ୍ତି, ରାଜଭେଦ ।

ପ୍ରମଙ୍ଗନ—କ୍ଲୀ.ବ.ଅଗ୍ରଗାମୀ (ପୁରୁଷ) ।

ପ୍ରମଣାଃ—ପୁଂ.ସ୍ତ୍ରୀ. ବିଂ. (ବ.ବ୍ରୀ)ପ୍ରଫୁଲ୍ଲହୃଦୟ, ହର୍ଷଯୁକ୍ତ, ସୁମନସ୍କ, ଉତ୍ତମ ମନୋଯୁକ୍ତ ।

ପ୍ରମଣ୍ଡଳ—ପୁଂ. କ୍ଲୀ. ବ. ଚକ୍ରନେମି ।

ପ୍ରମତି—ପୁଂ.ବିଂ. (ବ.ବ୍ରୀ) ପ୍ରକୃଷ୍ଟ ମତି ଯୁକ୍ତ, ଉତ୍ତମ ବୁଦ୍ଧି ସମ୍ପନ୍ନ, ସୁମତି, ସୁବୁଦ୍ଧି,(ବି)କଶ୍ୟପବଂଶୀୟ ନୃପବିଶେଷ, ଚ୍ୟବନ ଋଷିଙ୍କର ପୁତ୍ର ଏବଂ ରୁରୁ ମୁନିଙ୍କର ପିତା ।

ପ୍ରମତ୍ତ—ପୁଂ.ବିଂ.( ପ୍ର + ମତ୍ତ ) ଅନବଧାନତାଯୁକ୍ତ, ପ୍ରମାଦୀ, ସନ୍ଧ୍ୟାହ୍ନସ୍ନାନ, ଯେଉଁମାନେ କୁକର୍ମରେ ରତ, ଅସାବଧାନ, ଗରହସିଆର,ଉନ୍ମତ୍ତ,ପାଗଳ, ମତ୍ତ ।

ପ୍ରମଥ—ପୁଂ. ବ. ( ପ୍ର + ମଥ୍ + କ.ଅ ) ଘୋଟକ, ଘୋଡ଼ା, ଶିବଙ୍କର ପରିଷଦ୍, ଧୃତରାଷ୍ଟ୍ରଙ୍କର ପୁତ୍ରବିଶେଷ, (ଭା.ଅ) ପ୍ରମଥନ ଦେଖ, ରାମାୟଣୋକ୍ତ ରାକ୍ଷସ ବିଶେଷ ।

ପ୍ରମଥନ—କ୍ଲୀ. ବ. ( ପ୍ର+ମଥ୍+ଅନ ) ହତ୍ୟା, ବଧ, ବିନାଶ, କ୍ଲେଶନ,ବିଲୋଡ଼ନ, ଉନ୍ମୂଳନ, ମର୍ଦ୍ଦନ, ଉତ୍ପାଟ, ପରାଭବ, ଯନ୍ତ୍ରଣା । [ ଦେବ, ଶିବ ।

ପ୍ରମଥନାଥ—ପୁଂ. ବ. (୬ତତ୍ପୁ) ମହା-

ପ୍ରମଥା—ସ୍ତ୍ରୀ.ବ. (ପ୍ର+ମଥ୍+ଅ+ଆ) ହରୀତକୀ, ହରିଡ଼ା, ପୀଡ଼ା । [ ଶିବ ।

ପ୍ରମଥାଧିପ-ପୁଂ.ବିଂ (୬ତତ୍ପୁ)ମହାଦେବ,

ପ୍ରମଥାଳୟ—ପୁଂ.ବ. (୬ତତ୍ପୁ) ନରକଭେଦ, ଦୁଃଖ ବା ଯନ୍ତ୍ରଣା ଦିଆଯିବାର ସ୍ଥାନ ।

ପ୍ରମଥିତ—କ୍ଲୀ.ବ.(ପ୍ର + ମଥିତ)ନବନୀତ, ନିର୍ଜଳ ତକ୍ର, ଘୋଳଦହି,(ବିଂ)ବିଲୋଡ଼ିତ, ପ୍ରକର୍ଷ ରୂପେ ମଥିତ, କ୍ଲେଶିତ, ଉତ୍ପୀଡ଼ିତ, ମଥିତ, ମର୍ଦ୍ଦିତ, ଚର୍ଣ୍ଣିତ ।

ପ୍ରମଥେଶ—ପୁଂ.ବ.(୬ତତ୍ପୁ) ମହାଦେବ, ଶିବ ।

ପ୍ରମଦ୍—ସ୍ତ୍ରୀ. ବିଂ. ( ପ୍ର+ମଦ୍+କ୍ୱିପ୍ ) କେତେକ, ଇଚ୍ଛା, ପ୍ରବୃତ୍ତି ।

ପ୍ରମଦ—ପୁଂ.ବିଂ.(ପ୍ର+ମଦ୍+ଅ)ଆନନ୍ଦ, ହର୍ଷ, ମତ୍ତତା, ଧୂସ୍ତୁର ଫୁଲ, ଦାନବବିଶେଷ, ବଶିଷ୍ଠ ପୁତ୍ରମାନଙ୍କ ମଧ୍ୟରୁ

ଏକତମ, (ବିଂ.କ.ଅ) ମତ୍ତ, ଉନ୍ମତ୍ତ, ନିଶାରେ ଭୋଳ, ମତୁଆଲ ।
ପ୍ରମଦକ—ପୁଂ.ବ.(ପ୍ର+ମଦ୍+କ.ଅକ) ପରଲୋକ ଅସ୍ୱୀକାର କରିବା ବ୍ୟକ୍ତି, ନାସ୍ତିକ ।
ପ୍ରମଦକାନନ—କ୍ଲୀ.ବ(ପ୍ରମଦ୍+କାନନ) ପ୍ରମଦବନ, ରାଜାମାନଙ୍କର ଅନ୍ତଃପୁରସ୍ଥିତ ଉଦ୍ୟାନ, ଆନନ୍ଦକାନନ ।
ପ୍ରମଦବନ—କ୍ଲୀ. ବ. ପ୍ରମୋଦକାନନ, ଆନନ୍ଦକାନନ ।
ପ୍ରମଦା—ସ୍ତ୍ରୀ.ବ(ପ୍ର+ମଦ୍+ଆ)ଉତ୍ତମା ସ୍ତ୍ରୀ, ଯୁବତୀ ସ୍ତ୍ରୀ,ସୁନ୍ଦରୀ ନାରୀ, ପ୍ରିୟଙ୍ଗୁ, ଚତୁର୍ଦ୍ଦଶାକ୍ଷର ପାଦକ ବୃତ୍ତବିଶେଷ, (ବିଂ.-ପ୍ରମଦ+ଆ) ମତ୍ତା ।
ପ୍ରମଦ୍ୱର—ପୁଂ.ବିଂ. (ପ୍ର+ମଦ୍+ବର) ଅମନୋଯୋଗୀ.ପ୍ରମାଦୀ,(ସ୍ତ୍ରୀ)ପ୍ରମଦ୍ୱରା।
ପ୍ରମଦ୍ୱରା—ସ୍ତ୍ରୀ.ବ.(ପ୍ରମଦ୍ୱର+ଆ)ଶୁନକ ଋଷିଙ୍କର ମାତା, ରୁରୁମୁନିଙ୍କ ଭାର୍ଯ୍ୟା, (ବିଂ) ଅମନୋଯୋଗିତା.ପ୍ରମାଦିନୀ ।
ପ୍ରମନାଃ—ପୁଂ. ବିଂ. (ପ୍ର+ମନଃ) ହର୍ଷଯୁକ୍ତ, ପ୍ରସନ୍ନ ।     [ ବିଶେଷ ।
ପ୍ରମନ୍ଥ—ପୁଂ. ବ. ଅଗ୍ନ୍ୟୁତ୍ପାଦକ କାଷ୍ଠ-
ପ୍ରମନ୍ୟୁ—ବିଂ. (ପ୍ର+ମନ୍ୟୁ) ଅତିଶୟ କ୍ରୋଧଯୁକ୍ତ, ଅତିକ୍ରୁଦ୍ଧ, (ବ) ଅତ୍ୟନ୍ତ କ୍ରୋଧ ।
ପ୍ରମୟ—ପୁଂ.ବ.(ପ୍ର+ମୀ+ଭା.ଅ)ବଧ ।
ପ୍ରମର୍ଦ୍ଦନ—କ୍ଲୀ. ବ. (ପ୍ର+ମୃଦ୍+ଭା.ଅନ ପ୍ରକର୍ଷରୂପେ ମର୍ଦ୍ଦନ,ଖୁବ୍‌ମଳିବା,ଉତ୍ତମ ରୂପେ ଦଳିବା, ଦଳନ,(ପୁଂ.ବ—କ. ଅନ) ବିଷ୍ଣୁ, ଦୈତ୍ୟବିଶେଷ, ( ବିଂ ) ଦଳନକାରୀ, ଚକଟୁଥିବା ।
ପ୍ରମର୍ଦ୍ଦିତା—ପୁଂ.ବିଂ. (ପ୍ର+ମର୍ଦ୍ଦ+କ.ତୃ) ପ୍ରମର୍ଦ୍ଦନକର୍ତ୍ତା,ଯେ ଉତ୍ତମରୂପେ ମର୍ଦ୍ଦନ କରେ ।
ପ୍ରମର୍ଦ୍ଦୀ—ପୁଂ. ବିଂ. (ପ୍ର+ମର୍ଦ୍ଦ+ଇନ୍) ପ୍ରକୃଷ୍ଟରୂପେ ମର୍ଦ୍ଦନକାରୀ ।
ପ୍ରମଲୋଟ—ପ୍ରା. (ଗଞ୍ଜାମ) ବ. ଋଣପତ୍ର, ହ୍ୟାଣ୍ଡନୋଟ ।
ପ୍ରମହାଃ—ପୁଂ. ବିଂ. ପ୍ରକୃଷ୍ଟ ତେଜସ୍ୱୀ, ଅତିଶୟ ତେଜସ୍ୱୀ ।
ପ୍ରମା—ସ୍ତ୍ରୀ. ବ. (ପ୍ର+ମା+ଭା.ଅ+ଆ) ଯଥାର୍ଥଜ୍ଞାନ, ମାପ, (ନ୍ୟାୟ)ସତ୍ୟଜ୍ଞାନ, ନିଆଁ, ମୂଳଦୁଆ ।
ପ୍ରମାଣ—ବ.(ପ୍ର+ମା+ଭା.ଅନ)ଯଥାର୍ଥଜ୍ଞାନ, ସାକ୍ଷୀ, ଯାହାଦ୍ୱାରା କୌଣସି ବିଷୟର ସତ୍ୟତା ନିରୂପିତ ହୁଏ,ସୀମା, ପରିମାଣ, ଇୟତ୍ତା, ଶାସ୍ତ୍ର, ଧର୍ମଗ୍ରନ୍ଥ, ପ୍ରାମାଣିକ ବାକ୍ୟ ବା ବିଷୟ, ନଜିର, ଲେଖ୍ୟ,ପାଣ୍ଡୁଲିପି,ଦଲିଲ,ଜ୍ଞାନସାଧନ ଇନ୍ଦ୍ରିୟ, ନିଶ୍ଚୟବିଶ୍ୱାସ, ଦୃଢ଼ଧାରଣା, (ନ୍ୟାୟ) ପ୍ରତ୍ୟକ୍ଷ-ଅନୁମାନ-ଉପମାନ ଓ ଶାବ୍ଦ ଏହି ଚାରିପ୍ରକାର ଜ୍ଞାନର ସୋପାନ, ହେତୁ, ଅନ୍ଦାଜ, ଅଟକଳ, ମୂଳଧନ, ଆଦେଶପତ୍ର, (ଗ୍ରା.ବ)ହଲପ, ଶପଥ, ନିୟମ କରିବା, ପରିମାଣ,ମାପ, (ବିଂ) ସୁପ୍ରମାଣିତ,ଠିକ୍,ଯଥାର୍ଥ,ସ୍ୱୀକୃତ, (ଗ୍ରା.ଅବ୍ୟ) ନିଶ୍ଚେ, ଅବଶ୍ୟ, ପର୍ଯ୍ୟନ୍ତ, ଅନୁସାରେ, ଏହା ମୋରସମ୍ମତ ଅଟେ, ଯଥାର୍ଥରେ, ପୂର୍ବକ, (ପ୍ରା. ଗଞ୍ଜାମ. ବ) ସ୍ୱାକ୍ଷର, ସନ୍ତକ ।     [ ପ୍ରମାଣ ଦେଖ ।
ପ୍ରମାଣକ—ପୁଂ.ବିଂ. ସତ୍ୟବାଦୀ,ପ୍ରମାତା,
ପ୍ରମାଣକୁଶଳ—ପୁଂ.ବିଂ. ଯେ ଭଲ ତର୍କ କରିପାରେ ।
ପ୍ରମାଣକୋଟି—ବ. (୬ତତ୍) କୌଣସି ବିଷୟର ପ୍ରମାଣପାଇଁ ପ୍ରୟୋଜନୀୟ ବିଷୟ ସକଳ ।
ପ୍ରମାଣତଃ—ଅବ୍ୟ. ( ପ୍ରମାଣ+ତସ୍ ) ପ୍ରମାଣ ଅନୁସାରେ ।
ପ୍ରମାଣପତ୍ର—କ୍ଲୀ.ବ.ନିଦର୍ଶନପତ୍ର,ରସିଦ, ପ୍ରାପ୍ତିସ୍ୱୀକାର ପତ୍ର ।
ପ୍ରମାଣପୁରୁଷ—ପୁଂ.ବ. (କ.ଧା) ବିଚାରକର୍ତ୍ତା, ମଧ୍ୟସ୍ଥ, ପଞ୍ଚାଏତ ।
ପ୍ରମାଣଲକ୍ଷଣ—କ୍ଲୀ.ବ. ପ୍ରମାଣର ଲକ୍ଷଣ, ଯେଉଁ ଲକ୍ଷଣଦ୍ୱାରା ପ୍ରମାଣ ବର୍ଣ୍ଣିତ ହୁଏ ।
ପ୍ରମାଣବାକ୍ୟ—କ୍ଲୀ. ବ.ପ୍ରାମାଣ୍ୟ ସ୍ୱରୂପ ବାକ୍ୟ, ବେଦବାକ୍ୟ, ଆପ୍ତବାକ୍ୟ ।
ପ୍ରମାଣବାଧିତାର୍ଥକ—ପୁଂ. ବ. ତର୍କବିଶେଷ ।
ପ୍ରମାଣସାପେକ୍ଷ୍ୟ—ବିଂ. (୭ତତ୍) ପ୍ରମାଣର ଅପେକ୍ଷାଯୁକ୍ତ,ପ୍ରମାଣ ଅପେକ୍ଷାରେ ରକ୍ଷିତ, ଯାହାର ପ୍ରମାଣ ଆବଶ୍ୟକ ।
ପ୍ରମାଣସିଦ୍ଧ—ବିଂ. (୩ତତ୍) ପ୍ରମାଣଦ୍ୱାରା ପ୍ରତିଷ୍ଠିତ ।     [ ଉପାୟ ।
ପ୍ରମାଣାନ୍ତରତା—ସ୍ତ୍ରୀ. ବ. ଅନ୍ୟପ୍ରମାଣର
ପ୍ରମାଣାଭାବ—ବ. ( ୬ତତ୍ ) ପ୍ରମାଣର ଅନୁପସ୍ଥିତି, ପ୍ରମାଣରହିତତା ।
ପ୍ରମାଣିକ—ବିଂ. ପ୍ରମାଣସିଦ୍ଧ, ପରିମାଣ ଭେଦଯୁକ୍ତ ।
ପ୍ରମାଣିକା—ସ୍ତ୍ରୀ. ବ. (ପ୍ରମାଣ+କ+ଆ) ଅଷ୍ଟାକ୍ଷରପାଦକ ଛନ୍ଦୋଭେଦ ।
ପ୍ରମାଣିତ—ବିଂ. (ପ୍ରମାଣ+ଇତ)ପ୍ରମାଣଯୁକ୍ତ, ନିଶ୍ଚିତ, ମୀମାଂସିତ ।
ପ୍ରମାଣୀକୃତ—ବିଂ. (ପ୍ରମାଣ+ଚ୍ୱି+କୃ+ମ୍.ତ) ପ୍ରମାଣରୂପେ ନିର୍ଣ୍ଣିତ,ଯାହା ପ୍ରମାଣ କରାହୋଇଅଛି ।
ପ୍ରମାଣୁ—ଗ୍ରା.ଅବ୍ୟ. ପରି,ସଦୃଶ,ସମାନ ।
ପ୍ରମାଣେ—ଗ୍ରା. ଅବ୍ୟ. ଅନୁସାରେ,ମୁତାବକ,ସଦୃଶ,ତୁଲ୍ୟ,ସହକାରେ,(ଶପଥ) ପୂର୍ବକ, ମାପମୁତାବକ, ଅମୁକର ସଙ୍ଗେ ମେଳଖାଇବା ଭଳି ।
ପ୍ରମାତବ୍ୟ—ବିଂ. ( ପ୍ର+ମା+ତବ୍ୟ ) ପ୍ରମାଣିତ ଯୋଗ୍ୟ,ହନନ କରାଇବାର ଯୋଗ୍ୟ ।
ପ୍ରମାତା—ପୁଂ. ବିଂ. ( ପ୍ର+ମା+ତୃ ) ବିଚାର କରିବାକୁ ସମର୍ଥ,ପ୍ରମାଣକାରକ, ପ୍ରମାଜ୍ଞାନକର୍ତ୍ତା,ଯେ ପ୍ରମାଣ ବା ସତ୍ୟଜ୍ଞାନଲାଭ କରିଅଛି, ( ବ ) ପ୍ରତ୍ୟକ୍ଷ ପ୍ରମାଣ, ପ୍ରକୃତସାକ୍ଷୀ, ପ୍ରତିଫଳିତ ମନୋବୃତ୍ତି, ନଜିର, ଆତ୍ମା ।
ପ୍ରମାତାମହ—ପୁଂ.ବ. ମାତାମହଙ୍କ ପିତା, ଅଜାଙ୍କ ବାପା, (ସ୍ତ୍ରୀ)ପ୍ରମାତାମହୀ ।
ପ୍ରମାତାମହୀ—ସ୍ତ୍ରୀ.ବ. ମାତାମହଙ୍କ ମାତା, ମାତାର ପିତାମହୀ ।
ପ୍ରମାନ—ପୁଂ. ସ୍ତ୍ରୀ. ବ. ନିର୍ଦ୍ଦିଷ୍ଟସଂଖ୍ୟା ।
ପ୍ରମାଥ—ପୁଂ. ବ. (ପ୍ର+ମଥ୍+ଭା.ଅ) ବଳୋଦ୍ଧତ, ନିପୀଡ଼ନ, ଯନ୍ତ୍ରଣାଦେବା, ପ୍ରମଥନ, ବଳପୂର୍ବକ ହରଣ, ହତ୍ୟା,

ନିପାତନ କରି ଭୂମିରେ ପେଷଣ, ମର୍ଦ୍ଦନ, ପୀଡ଼ନ, ବଧ, (କ.ଅ) ଝୁମାଙ୍କଚର ଭେଦ, ଶିବପାରିଷଦ ପ୍ରମଥଗଣ, ଧୃତରାଷ୍ଟ୍ରଙ୍କ ପୁତ୍ରବିଶେଷ,(ଲ୍ଲି.ଅ) (ମଲ୍ଲଯୁଦ୍ଧ)ପ୍ରତିଦ୍ୱନ୍ଦ୍ୱୀକୁ ଭୂମିରେ ଚିତ କରି ପକାଇଦେଇ ତା ଉପରେ ବସିବା, ବିନାଶ କରଣ ।

ପ୍ରମାଥିନୀ—ସ୍ତ୍ରୀ. ବିଂ. ( ପ୍ରମାଥିନ୍ + ଈ ) ମଥନକାରିଣୀ, ଦୁଃଖପ୍ରଦା, ( ସ୍ତ୍ରୀ.ବି ) ଅପ୍ସରୋବିଶେଷ ।

ପ୍ରମାଥୀ—ପୁଂ. ବିଂ. ( ପ୍ରମଥ + ଇନ୍ ) ପୀଡ଼ାଦାୟକ, କ୍ଲେଶକର, ବିନାଶକ, କ୍ଷୋଭଦାୟକ, ଆଲୋଡ଼ନକାରୀ,(ପୁଂ. ବି) ରାମଚନ୍ଦ୍ରଙ୍କର ବାନର ସେନାମଧ୍ୟରୁ ଏକଯୂଥପତି, ଖରର ସହଚର ରାକ୍ଷସ ବିଶେଷ, ଧୃତରାଷ୍ଟ୍ରଙ୍କର ଏକପୁତ୍ର,ମୁଖ, ଆଖି, କାନ ଆଦିରେ ସଞ୍ଚିତ କଫର ନିବାରକ ଔଷଧ ।

ପ୍ରମାଦ—ପୁଂ. ବି. (ପ୍ର + ମଦ୍ + ଭା.ଅ) ଅନବଧାନତା, ଅସାବଧାନତା ଭ୍ରମ, ଅନ୍ତଃକରଣର ଦୌର୍ବଲ୍ୟ, ବିପଦ, ଦୁର୍ଘଟନା, ବିସ୍ମୃତି, ପ୍ରମତ୍ତତା, ନିଶା, ବାତୁଳତା, (ଯୋଗଶାସ୍ତ୍ର) ସାଧକର ଚିତ୍ତ ବିକ୍ଷୋଭ ଜନ୍ମାଇବା ସମାଧିର ଅନ୍ତରାୟ ବିଶେଷ, ମୂର୍ଚ୍ଛା, ଅମନୋଯୋଗ, (ଗ୍ରା.ବି) ଦୁର୍ନାମ, ଦୌରାତ୍ମ୍ୟ, ଉପଦ୍ରବ, (ଗ୍ରା.ବିଂ) ଦୁଃଖଦାୟକ ।

ପ୍ରମାଦବଧ—ବି. (କ.ଧା) ଅନିଚ୍ଛାସତ୍ତ୍ୱେ କୃତ ବା ଅସାବଧାନତା ଜନିତ ନରହତ୍ୟା । [ ଅଭ୍ରାନ୍ତ ।

ପ୍ରମାଦଶୂନ୍ୟ—ବିଂ. (ଷତତ୍) ଭ୍ରାନ୍ତିହୀନ,

ପ୍ରମାଦିକା—ସ୍ତ୍ରୀ. ବି. ଦୂଷିତାକନ୍ୟା, ପ୍ରଗଲ୍ଭାକନ୍ୟା, ଅଭିସାରିଣୀ, ଅସାବଧାନା ସ୍ତ୍ରୀ ।

ପ୍ରମାଦିତ—ପୁଂ. ବିଂ. (ପ୍ରମାଦ + ଇତ) ଉପହସିତ, (ସ୍ତ୍ରୀ) ପ୍ରମାଦିତା ।

ପ୍ରମାଦୀ—ପୁଂ, ବିଂ. ( ପ୍ରମାଦ + ଇନ୍ ) ପ୍ରମାଦ ବିଶିଷ୍ଟ, ଅସାବଧାନତା ଯୁକ୍ତ, ଅମନୋଯୋଗୀ, ପ୍ରମତ୍ତ, ବାତୁଳ ।

ପ୍ରମାପକ—ବିଂ. (ପ୍ର + ମା + ଣି + କ. ଅକ)ଯାହା ପ୍ରମାଣ ଉପସ୍ଥାପିତ କରେ, (ବି) ନକ୍ଷତ୍ର ।

ପ୍ରମାପଣ—କ୍ଲୀ. ବି. (ପ୍ର + ମା + ଣି + ଅନ) ମାରଣ, ନାଶ ।

ପ୍ରମାପନ—କ୍ଲୀ. ବି. ପ୍ରମାପଣ ଦେଖ ।

ପ୍ରମାପୟିତା—ପୁଂ.ବିଂ.(ପ୍ର + ମା + ଣିଚ୍ + ତୃ) ପ୍ରମଥନଯୋଗ୍ୟ, ଅନିଷ୍ଟକର, ଘାତକ, ନାଶକ ।

ପ୍ରମାୟୁ—ତ୍ରି.ବିଂ.(ପ୍ର + ମା + ଉ)ବିନାଶଯୋଗ୍ୟ, ଧ୍ୱଂସଯୋଗ୍ୟ, ନାଶଶୀଳ, କ୍ଷର । [ ମରଣଶୀଳ ।

ପ୍ରମାୟୁକ—ତ୍ରି. ବିଂ. (ପ୍ର + ମା + ଉକ)

ପ୍ରମାରକ—ପୁଂ.ବି. ପ୍ରକୃଷ୍ଟରୂପେ ମୃତ୍ୟୁ, (ଗ୍ରା.ବି) ରାଜପୁତ୍ରମାନଙ୍କର ଶ୍ରେଣୀବିଶେଷ । [ ପରସ୍କାରକ ।

ପ୍ରମାର୍ଜକ—ତ୍ରି. ବିଂ. ପ୍ରମାର୍ଜନ କାରକ,

ପ୍ରମାର୍ଜନ—କ୍ଲୀ.ବି. ପ୍ରୋଞ୍ଛନ, ବାଲାଙ୍ଗୁଳ ବସ୍ତ୍ରଦ୍ୱାରା ଅକ୍ଷିରଜଃ ଶଳାଦିରେ ପ୍ରୋଞ୍ଛନ ।

ପ୍ରମିତ—ତ୍ରି. ବିଂ. (ପ୍ର + ମା + ତ) ଯେ ଯଥାର୍ଥ ଜ୍ଞାନଲାଭ କରିଅଛି, ଜ୍ଞାତ, ବିଦିତ, ଅବଗତ, ନିର୍ଣ୍ଣିତ, ପ୍ରମାଣିତ ପରିମିତ, ଅଳ୍ପତମ ।

ପ୍ରମିତାକ୍ଷରା—ସ୍ତ୍ରୀ.ବି. ସିଦ୍ଧାନ୍ତଶିରୋମଣି ବ୍ୟାଖ୍ୟାନରୂପ ଟୀକା,ମୁହୂର୍ତ୍ତଚିନ୍ତାମଣି ଟୀକାବିଶେଷ, ଦ୍ୱାଦଶାକ୍ଷର ପାଦକ ଛନ୍ଦୋଭେଦ ।

ପ୍ରମିତି—ସ୍ତ୍ରୀ. ବି. (ପ୍ର + ମା + ତି) ପ୍ରମା, ପ୍ରମାଣ, ପରିମାଣ, ନିଶ୍ଚୟଜ୍ଞାନ ।

ପ୍ରମିତାଶନ—କ୍ଲୀ. ବି. ଅତ୍ୟଳ୍ପମାତ୍ର ଭୋଜନ ।

ପ୍ରମୀଢ—ତ୍ରି. ବିଂ. (ପ୍ର + ମିହ୍ + କ.ତ) ଘନ, ମୁଦ୍ରିତ, ସାନ୍ଦ୍ର, ନିବିଡ଼ ।

ପ୍ରମୀତ—ତ୍ରି.ବିଂ. (ପ୍ର + ମୀ + ତ)ମୃତ, ଯଜ୍ଞାର୍ଥ ହତ (ପଶୁ), ନିହତ, ହତ, (ବି) ଯଜ୍ଞରେ ବଳି ଦିଆଯିବା ଜୀବ ।

ପ୍ରମୀତି—ସ୍ତ୍ରୀ.ବି, ହନନ, ନିଧନ, ମୃତ୍ୟୁ ।

ପ୍ରମୀଳନ—କ୍ଲୀ.ବି. (ପ୍ର + ମୀଲ + ଅନ) ନିମୀଳନ, ମୁଦ୍ରଣ, (ଆଖି) ମୁଦିବା ।

ପ୍ରମୀଳା—ସ୍ତ୍ରୀ. ବି. ( ପ୍ର + ମୀଲ + ଆ ) ତନ୍ଦ୍ରୀ, ନିମୀଳନ, ତନ୍ଦ୍ରା, ଅବସାଦ, ମୁଦ୍ରଣ, ଇନ୍ଦ୍ରଜିତର ପତ୍ନୀ, ଅର୍ଜୁନଙ୍କର ଅନ୍ୟତମା ପତ୍ନୀ ।

ପ୍ରମୀଳିତ—ବିଂ. (ପ୍ର + ମୀଲ + ମି.ତ) ନିମୀଳିତ, ମୁଦ୍ରିତ ।

ପ୍ରମୀଳୀ—ପୁଂ.ବିଂ. ମୁଦ୍ରଣକାରୀ ।

ପ୍ରମୁକ୍ତ—ବିଂ.(ପ୍ର + ମୁକ୍ତ) ମୁକୁଳା କରାଯାଇଥିବା, ବନ୍ଧନରୁ ମୁକ୍ତ, ପରିତ୍ୟକ୍ତ, ନିର୍ବାସିତ, ନିକ୍ଷିପ୍ତ ।

ପ୍ରମୁକ୍ତି—ସ୍ତ୍ରୀ.ବି. (ପ୍ର + ମୁଚ୍ + ତି)ମୋକ୍ଷ, ପ୍ରକୃଷ୍ଟରୂପେ ମୋଚନ ।

ପ୍ରମୁଖ—ବିଂ. (ପ୍ର + ମୁଖ)ପ୍ରଥମ,ଶ୍ରେଷ୍ଠ, ପ୍ରଧାନ, ପୁରଃସର, (ଅମୁକଙ୍କ)ନେତୃତ୍ୱରେ ଚାଳିତ, ଅମୁକଙ୍କ ସହିତ ମାନ୍ୟମାନ୍ୟ, (ବି) ଆଦି, ଆରମ୍ଭ, ମାନନୀୟ ବ୍ୟକ୍ତି, ସମୂହ,ପୁନ୍ନାଗବୃକ୍ଷ, ମୁଖ, ପାଟି, ଅଧ୍ୟାୟ ବା ପରିଚ୍ଛେଦର ଆରମ୍ଭ,ତତ୍କାଳ, ଉପସ୍ଥିତ ସମୟ, ବର୍ତ୍ତମାନ କାଳ, (ଅବ୍ୟ) ଆଦି, ଇତ୍ୟାଦି, ସମ୍ମୁଖରେ, ସେହି ସମୟରେ,ତତ୍କାଳେ ।

ପ୍ରମୁଖତଃ—ଅବ୍ୟ. ପ୍ରମୁଖାତ୍ ଦେଖ, ସାମନାରେ ।

ପ୍ରମୁଖାତ୍—ଅବ୍ୟ. ମୁଖରୁ (ଶୁଣାଯିବା ବିଷୟ),ମୌଖିକ ଭାବରେ ।

ପ୍ରମୁଦ୍(ଦ୍)—ତ୍ରି.ବିଂ. (ପ୍ର + ମୁଦ୍ + କ. କ୍ୱିପ୍) ହୃଷ୍ଟ, ଆନନ୍ଦିତ, ପ୍ରଫୁଲ୍ଲ,(ସ୍ତ୍ରୀ.ବି) ଅତିଶୟ ହର୍ଷ, ଅତ୍ୟାହ୍ଲାଦ ।

ପ୍ରମୁଦିତ—ତ୍ରି.ବିଂ. (ପ୍ର + ମୁଦ୍ + କ.ତ) ହୃଷ୍ଟ, ଆନନ୍ଦିତ, ବିକସିତ, ପ୍ରହୃଷ୍ଟିତ ।

ପ୍ରମୁଦିତବଦନ—ପୁଂ. ବିଂ. ( ବ.ବ୍ରୀ ) ପ୍ରଫୁଲ୍ଲ ମୁଖବିଶିଷ୍ଟ (ବ୍ୟକ୍ତି) ।

ପ୍ରମୁଦିତବଦନା—ସ୍ତ୍ରୀ. ବି. ଦ୍ୱାଦଶାକ୍ଷରପାଦକ ଛନ୍ଦୋଭେଦ, (ବିଂ) ପ୍ରମୁଦିତ ବଦନର ସ୍ତ୍ରୀଲିଙ୍ଗ ।

ପ୍ରମୁଷିତ—ତ୍ରି.ବିଂ. (ପ୍ର + ମୁଷ୍ + ମି.ତ) ଚୋରିତ, ଅପହୃତ, ଚେତନା ହରହିତ, ବ୍ୟଥିତ ।

ପ୍ରମୃଗ୍ୟ—ତ୍ରି.ବି°.(ପ୍ର+ମୃଗ+ଯ)ପ୍ରକୃଷ୍ଟରୂପେ ଅନ୍ୱେଷଣୀୟ ।
ପ୍ରମୃତ—କ୍ଲୀ. ବି. ( ବି.ସ୍ମୃ ) ଭିକ୍ଷାଦ୍ୱାରା ଜୀବିକା ନିର୍ବାହ, କୃଷି, (ତ୍ରି°) ସମ୍ମୂର୍ଚ୍ଛିତ, ମୃତ, ଅଲକ୍ଷିତ, ନିରୁଦ୍ଦିଷ୍ଟ ।
ପ୍ରମୃଷ୍ଟ—ତ୍ରି. ବି°. ( ପ୍ର+ମୃଜ+ତ ) ନିରସ୍ତ, ମାର୍ଜିତ, ମର୍ଦ୍ଦିତ ।
ପ୍ରମେଦିତ—ବି°.(ପ୍ର+ଣିଚ୍+ମିଦ+ତ) ଆନନ୍ଦିତ, ସ୍ନିଗ୍ଧୀକୃତ ।
ପ୍ରମେୟ—ତ୍ରି.ବି°. ( ପ୍ର+ମା+ର୍ମ.ଯ ) ପରମେୟ, ଯାହାର ମାପ କରାଯାଇଅଛି, ଜ୍ଞେୟ, ଅବଧାର୍ଯ୍ୟ,ପରିଚ୍ଛେଦ୍ୟ, ପ୍ରମାଣଯୋଗ୍ୟ, ସମୀପ, (ବି)ପ୍ରମାଣଯୋଗ୍ୟ ବିଷୟ, ଅନୁସନ୍ଧେୟ ବିଷୟ, ଆତ୍ମା ଓ ଜ୍ଞାନ ସାଧନ ଇନ୍ଦ୍ରିୟାଦି, (ନ୍ୟାୟ) ଶୁଦ୍ଧ ଚୈତନ୍ୟ, ପରିଚ୍ଛେଦ, ବିଷୟ, ଚରିତ, ଆଲୋଚ୍ୟ ବିଷୟ ।
ପ୍ରମେହ—ପୁ°. ବି. (ପ୍ର+ମିହ+ର୍ମ.ଅ) ମୂତ୍ରଦୋଷ ରୋଗବିଶେଷ,ମୂତ୍ର ମାର୍ଗରେ ଶୁକ୍ର ଓ ପୂଜଆଦି ପଡ଼ିବା ଯନ୍ତ୍ରଣାଦାୟକ ରୋଗ, ଧାତୁପଡିବା ରୋଗ ।
ପ୍ରମେହୀ—ପୁ°. ବି. (ପ୍ର+ମିହ+ଇନ୍) ପ୍ରମେହରୋଗୀ,ପ୍ରମେହ ରୋଗାକ୍ରାନ୍ତ ।
ପ୍ରମୋକ୍ତବ୍ୟ—ତ୍ରି. ବି°. (ପ୍ର+ମୁଚ୍+ତବ୍ୟ) ମୁକ୍ତିର ଯୋଗ୍ୟ ।
ପ୍ରମୋକ୍ଷ—ପୁ°.ବି. ବିମୁକ୍ତି, ମୋକ୍ଷଗତି, ନିର୍ବାଣ, ତ୍ୟାଗ, ପକେଇବା ।
ପ୍ରମୋକ୍ଷଣ—କ୍ଲୀ. ବି. ପ୍ରକୃଷ୍ଟରୂପେ ମୁକ୍ତି
ପ୍ରମୋଚନ—କ୍ଲୀ.ବି. ( ପ୍ର+ମୋଚନ ) ମୁକ୍ତକରଣ, ନିକ୍ଷେପକରଣ, ବଳପୂର୍ବକ ଛଡ଼ାଇନେବା, ନିସ୍ତୀକରଣ, ଖୋଲ ଛଡ଼ାଇବା ।
ପ୍ରମୋଦ—ପୁ°. ବି. (ପ୍ର+ମୁଦ୍+ଭା.ଅ) ହର୍ଷ, ପ୍ରିୟଲାଭ ନିମିତ୍ତ, ପ୍ରକୃଷ୍ଟ ହର୍ଷ, ଆମୋଦ, ସାଂଖ୍ୟଦର୍ଶନ ମତରେ ଅଷ୍ଟସିଦ୍ଧି ମଧ୍ୟରୁ ଗୋଟିଏ, କୁମାରଙ୍କ ଅନୁଚରବିଶେଷ, ନାଗବିଶେଷ, ଉଗ୍ରଗନ୍ଧ ।
ପ୍ରମୋଦକାନନ—ବି. (ପ୍ରମୋଦ+କାନନ)ଖୁସିବଗିଚା,ଆମୋଦ ପ୍ରମୋଦ ନିମନ୍ତେ ଉଦ୍ଦିଷ୍ଟ ଉଦ୍ୟାନ ।
ପ୍ରମୋଦନ—ତ୍ରି. ବି°. (ପ୍ର+ମୁଦ୍+ଣିଚ୍+ଅନ) ପ୍ରୀତିଦାୟକ, ହର୍ଷକାରକ, (ବି) ହର୍ଷ ସମ୍ପାଦନ, ଆନନ୍ଦ, ହର୍ଷ, ବିଷ୍ଣୁ ।
ପ୍ରମୋଦଭବନ—ବି. ବିଳାସଗୃହ ।
ପ୍ରମୋଦଭୂମି—ବି. କ୍ରୀଡ଼ାଭୂମି ।
ପ୍ରମୋଦମଦିରା—ବି. (କ.ଧା) ପ୍ରମୋଦଜାତ ମତ୍ତତା ।
ପ୍ରମୋଦମାନ—କ୍ଲୀ. ବି. ସାଂଖ୍ୟବର୍ଣ୍ଣିତ ଅଷ୍ଟସିଦ୍ଧି ମଧ୍ୟରୁ ଗୋଟିଏ ।
ପ୍ରମୋଦସଞ୍ଚକ—କ୍ଲୀ.ବି.ଶ୍ରାନ୍ତ ଓ ପିପାସା ଦୂରକାରୀ ପାନୀୟବିଶେଷ ।
ପ୍ରମୋଦିତ—ତ୍ରି.ବି°.(ପ୍ର+ମୁଦ୍+ଣିଚ୍+ର୍ମ.ତ) ପ୍ରମୋଦଯୁକ୍ତ, ଆନନ୍ଦିତ, (ପୁ°.ବି) କୁବେର ।
ପ୍ରମୋଦୀ—ପୁ°.ବି°. (ପ୍ର+ମୁଦ୍+ଣିଚ୍+ଇନ୍) ପ୍ରମୋଦକାରୀ, ଆନନ୍ଦଦାୟକ ।
ପ୍ରମୋହ—ସ୍ତ୍ରୀ. ବି. ( ପ୍ର+ମୁହ୍+ଅ ) ପ୍ରକୃଷ୍ଟରୂପ ମୋହ, ମୂର୍ଚ୍ଛା, ଭ୍ରାନ୍ତି, ବିମୋହିତ ହେବା ଅବସ୍ଥା ।
ପ୍ରମୋହନ—ବି. (ପ୍ର+ମୁହ୍+ଣିଚ୍+ଭା.ଅନ) ମୋହିତ କରିବା ( କ.ଅନ ) ଶତ୍ରୁବଳକୁ ମୋହଯୁକ୍ତ କରିବା ଅସ୍ତ୍ରବିଶେଷ, ମୋହନାସ୍ତ୍ର ।
ପ୍ରମୋହୀ—ପୁ°. ବି°. (ପ୍ର+ମୁହ+ଇନ୍) ମୋହଜନକ ।
ପ୍ରମ୍ଳାନ—ବି°. ( ପ୍ର+ମ୍ଳୈ+କ.ତ ) ଅତ୍ୟନ୍ତ ମ୍ଳାନ, ଅତି ମଳିଆ ।
ପ୍ରମ୍ଳୋଚା—ସ୍ତ୍ରୀ.ବି. ଅପ୍ସରାବିଶେଷ ।
ପ୍ରଯଜ—ସ୍ତ୍ରୀ.ବି. ବଳି, ଉତ୍ସର୍ଗ ।
ପ୍ରଯତ—ତ୍ରି.ବି°. ( ପ୍ର+ଯମ୍+କ.ତ ) ଜିତେନ୍ଦ୍ରିୟ, ପ୍ରଯତ୍ନଶୀଳ, ଦାନ୍ତ, ନମ୍ର, ପବିତ୍ର, ସଯତ । [ ନ୍ଦ୍ରିୟ,(ବି)ବିଧି ।
ପ୍ରଯତାତ୍ମା—ବି°.(ବି.ସ୍ମୃ) ସଂଯମୀ,ଜିତେ-
ପ୍ରଯତିତବ୍ୟ—ତ୍ରି.ବି°.(ପ୍ର+ଯତ୍+ତବ୍ୟ) ପ୍ରଯତ୍ନର ଯୋଗ୍ୟ ।
ପ୍ରଯତ୍ନ—ପୁ°. ବି. ( ପ୍ର+ଯତ୍+ନ ) ପରିଶ୍ରମ, ମନର ସଂକଳ୍ପ, ପ୍ରକୃଷ୍ଟଯତ୍ନ, ପ୍ରୟାସ, ଅଧ୍ୟବସାୟ, ଚେଷ୍ଟା, (ନ୍ୟାୟ) ପ୍ରବୃତ୍ତି ନିବୃତ୍ତି ଓ ଜୀବନ କାରଣ ।
ପ୍ରଯତ୍ନତଃ—ତ୍ରି. ବି°. ( ପ୍ରଯତ୍ନ+ତସ୍ ) ଅତ୍ୟନ୍ତ ଯତ୍ନସହକାରେ ।
ପ୍ରଯତ୍ନବାନ୍—ପୁ°. ବି°. (ପ୍ରଯତ୍ନ+ବତ୍) ପ୍ରଯତ୍ନଯୁକ୍ତ ।
ପ୍ରଯସ—କ୍ଲୀ.ବି.(ପ୍ର+ଯସ୍+କ୍ୱିପ୍)ଅନ୍ନ ।
ପ୍ରଯସ୍ତ—ତ୍ରି. ବି°. ( ପ୍ର+ଯସ୍+ତ ) ପ୍ରୟାସଦ୍ୱାରା କୃତ, ସୁସଂସ୍କୃତ, (ବି) ପକ୍ୱ, ଚତୁର୍ଜାତକାଦିଦ୍ୱାରା ପ୍ରଯତ୍ନ, ସଂସ୍କୃତ ବ୍ୟଞ୍ଜନ, ମସଲାଦିଆ ତିଅଣ ।
ପ୍ରଯା(ୟା)ଗ—ବି.(ପ୍ର+ଯାଗ ) (ବି.ସ୍ମୃ) ଶତକ୍ରତୁ, ଇନ୍ଦ୍ର, ( ପ୍ର+ଯା +କ.ଅ +ଗ ) ଅଶ୍ୱ, (ପ୍ର+ଯାଗ ) ଯଜ୍ଞ, ଯଜ୍ଞଭୂମି, ଗଙ୍ଗା ଯମୁନା ଓ ସରସ୍ୱତୀ ନଦୀମାନଙ୍କର ସଙ୍ଗମ ସ୍ଥଳ ।
ପ୍ରୟାଗଭବ—ପୁ°.ବି. (ପ୍ର+ଯାଗ+ଭୂ+ଅ) ଇନ୍ଦ୍ର ।
ପ୍ରୟାଗମେଳା—ସ୍ତ୍ରୀ.ବି. ପ୍ରତିବର୍ଷ ମକର ମାସରେ ପ୍ରୟାଗରେ ସ୍ନାନ ଯୋଗ ସମୟରେ ହେବା ମେଳା, କୁମ୍ଭମେଳା ।
ପ୍ରୟାଗରାଜ—ଯୌ. ବି. ପ୍ରୟାଗତୀର୍ଥ, ଆଲ୍ଲାହାବାଦ ।
ପ୍ରଯାଚକ—ପୁ°. ବି°. ପ୍ରାର୍ଥନାକାରୀ, ଯାଚନାକାରୀ ।
ପ୍ରଯାଚନ—କ୍ଲୀ.ବି. ଯାଚ୍ଞା, ପ୍ରାର୍ଥନା ।
ପ୍ରୟାଣ—କ୍ଲୀ.ବି. (ପ୍ର+ଯା+ଭା.ଅନ) ଯାତ୍ରା, ଗମନ, ପରଲୋକ ଯାତ୍ରା, ଯୁଦ୍ଧଯାତ୍ରା, ମୃତ୍ୟୁ, ପ୍ରସ୍ଥାନ, ଆରମ୍ଭ, (ଣ.ଅନ) ଘୋଡ଼ାର ପିଠି, କୌଶଳି, ଜନ୍ତୁର ପଛଭାଗ ।
ପ୍ରୟାଣକାଳ—ବି. ( ୬ତତ୍ ) ଯାତ୍ରା କରିବା ସମୟ, ମୃତ୍ୟୁକାଳ, ମରିବାବେଳ ।
ପ୍ରୟାଣଭଙ୍ଗ—ପୁ°. ବି. (୬ତତ୍) ଯାତ୍ରା ଭଙ୍ଗ,ଯାତ୍ରାସମୟରେ ଅନୁକୂଳ ବିଗିଡ଼ିବା
ପ୍ରୟାଣପୁଷ୍ପ—ବି.ଦକ୍ଷିଣାତ୍ୟର କାବେରୀ ନଦୀକୂଳସ୍ଥ ଗୋଟିଏ ପ୍ରାଚୀନ ତୀର୍ଥ ।

ପ୍ରୟାଣୀୟ—ତ୍ରି.ବିଂ. (ପ୍ର+ଯା+ଅନୀୟ) ଗମ୍ୟ, ଅଗ୍ରସରଯୋଗ୍ୟ ।
ପ୍ରୟାତ—ବିଂ. ( ପ୍ର+ଯା+କ.ତ ) ପ୍ରସ୍ଥିତ, ଗତ, ମୃତ, ସୁପ୍ତ, (ବି) (ଖ.ତ) ଅତଡ଼ା, ଭୃଗୁ ।
ପ୍ରଯାତା—ବିଂ. (ପ୍ର+ଯା+ତୃ)ପ୍ରକୃଷ୍ଟ ରୂପେ ଗନ୍ତା, ଅଗ୍ରଗାମୀ ।
ପ୍ରଯାପଣ—କ୍ଲୀ.ବି.ଅଗ୍ରଗମନ,ବତାଡ଼ନ ।
ପ୍ରଯାପଣୀୟ—ତ୍ରି. ବିଂ.ଅଗ୍ରଗାମୀ,ପ୍ରେରଣୀୟ ।
ପ୍ରଯାମ—ପୁଂ. ବି. ଦୁଷ୍ପ୍ରାପ୍ୟତା, ମାହାତ୍ମ୍ୟ ହେତୁ ଧାନ୍ୟାଦିରେ ଜନ ସମୂହର ଆଦରାତଶୟ, ଦ୍ରବ୍ୟଦେୟ ମୂଲ୍ୟାଧିକ ପରଚ୍ଛେଦନ, ଦୈର୍ଘ୍ୟ, ସଂଯମ ।
ପ୍ରଯାୟୀ—ପୁଂ. ବିଂ. (ପ୍ର+ଯା+ଇନ୍) ଗନ୍ତା, ଗମନକାରୀ ।
ପ୍ରୟାସ—ପୁଂ.ବି.(ପ୍ର+ଯସ୍+ଅ)ପ୍ରଯତ୍ନ, ଅଭିଲାଷ,ଚେଷ୍ଟା, ପର୍ଯ୍ୟାୟ--ଶ୍ରମ,କ୍ଲମ, କ୍ଲେଶ,ପରିଶ୍ରମ,ଇଚ୍ଛା,ଆୟାସ, ବ୍ୟାୟାମ
ପ୍ରୟାସୀ—ପୁଂ. ବିଂ. (ପ୍ରଯାସ+ଇନ୍) ଚେଷ୍ଟାନ୍ୱିତ, ଚେଷ୍ଟିତ, ସଚେଷ୍ଟ,ଯତ୍ନବାନ୍, ଅଭିଲାଷୀ, ପ୍ରତ୍ୟାଶୀ ।
ପ୍ରଯୁକ୍ତ—ତ୍ରି . ବିଂ.(ପ୍ର+ଯୁଜ୍+ମିଂ.କ୍ତ) ଉଲ୍ଲିଖିତ,ଉଚ୍ଚାରିତ,ବ୍ୟବହୃତ,ନିଦ୍ରୁତ, ଋଣ ଦିଆଯାଇଥିବା, ପ୍ରକୃଷ୍ଟ ସମାଧିଯୁକ୍ତ, ପ୍ରେରିତ, ପ୍ରଯୋଜ୍ୟ, ରଚିତ, ନିଯୁକ୍ତ, ଅନୁଷ୍ଠିତ, ଅର୍ପିତ, ଉଦାହୃତ, ନିହିତ,ସଂଯମ ବିଶିଷ୍ଟ ବିଖ୍ୟାତ, ସଂଯୁକ୍ତ, ଉତ୍ତେଜିତ,ନିକ୍ଷିପ୍ତ,(ବି)କାରଣ,ହେତୁ ।
ପ୍ରଯୁକ୍ତି—ସ୍ତ୍ରୀ. ବି. (ପ୍ର+ଯୁଜ୍+ଭା.କ୍ତି) ପ୍ରୟୋଜନ, ଶବ୍ଦୋଚ୍ଚାରଣ ଭେଦ, ପ୍ରୟୋଗ, ପ୍ରେରଣ, ଫଳ, ପ୍ରକୃଷ୍ଟ ଯୁକ୍ତି, ମୁଖ୍ୟ ଉଦ୍ଦେଶ୍ୟ,ହେତୁ,କାରଣ, ବ୍ୟବହାର, ପ୍ରଯତ୍ନ, ଉତ୍ତେଜନ ।
ପ୍ରଯୁଜ୍ୟ—ବିଂ. ( ପ୍ର+ଯୁଜ୍+ମିଂ.ଯ ) ପ୍ରୟୋଗ କରିବାର ଯୋଗ୍ୟ ।
ପ୍ରଯୁଜ୍ୟମାନ—ତ୍ରି. ବିଂ.(ପ୍ର+ଯୁଜ୍+ମିଂ. ଆନ)ଯାହାକୁ ପ୍ରୟୋଗ କରାହୋଇଅଛି
ପ୍ରଯୁଞ୍ଜାନ—ତ୍ରି. ବିଂ. ( ପ୍ର+ଯୁଜ୍+ ଆନ୍) ପ୍ରୟୋଗକାରୀ ।
ପ୍ରଯୁତ—କ୍ଲୀ. ବି. ନିଯୁତ, ଦଶଲକ୍ଷ ସଂଖ୍ୟା, (ବିଂ) ସଂଯୁକ୍ତ, ସମ୍ମିଳିତ ।
ପ୍ରଯୁତ୍ସୁ—ପୁଂ. ବି. (ପ୍ର+ଯୁଧ୍+କ.ସୁ) ଯୋଦ୍ଧା,ମେଷ, ସନ୍ୟାସୀ, ବାୟୁ,ଇନ୍ଦ୍ର ।
ପ୍ରଯୁଦ୍ଧ—କ୍ଲୀ.ବି.ଅତ୍ୟନ୍ତଯୁଦ୍ଧ,ଘୋରତର ଯୁଦ୍ଧ ।
ପ୍ରଯୋକ୍ତବ୍ୟ—ତ୍ରି. ବିଂ. (ପ୍ର+ଯୁଜ୍+ ତବ୍ୟ) ପ୍ରୟୋଗ ଯୋଗ୍ୟ, ଉଚ୍ଚାରଣ ଯୋଗ୍ୟ ।
ପ୍ରୟୋକ୍ତା—ପୁଂ. ବିଂ. (ପ୍ର+ଯୁଜ୍+କ. ତୃ) ପ୍ରୟୋଗକର୍ତ୍ତା, ଉତ୍ତେଜକ, ଯେ ବାଣଆଦି ମାରେ,ଅନୁଷ୍ଠାତା,ନିୟୋଗକର୍ତ୍ତା, ପ୍ରୟୋଜକ ମାତ୍ର, ( ପୁଂ.ବି ) ଉତ୍ତମର୍ଣ୍ଣ,ଋଣଦାତା,ନାଟକର ସୂତ୍ରଧାର
ପ୍ରୟୋଗ—ବି. ( ପ୍ର+ଯୁଜ୍+ମିଂ.ଅ ) ଉଦାହରଣ, ଦୃଷ୍ଟାନ୍ତ ନିଦର୍ଶନ,(ଖ.ଅ) ଅଭିନୟ, ପ୍ରଦର୍ଶନ,ବଶୀକରଣ,ଇନ୍ଦ୍ରଜାଲ, ବ୍ୟବହାର, ନିୟୋଜନ, ଋଣଦାନ, ବେପାର,ହେତୁ, କାରଣ,ପ୍ରତିକାର ବା ଔଷଧ ନିଯୋଗ, ଉଦ୍ଦେଶ୍ୟ, ଉପାୟ, ନିଯୋଗ, କାର୍ଯ୍ୟ, ବିଷୟ, ଉଲ୍ଲେଖ,ନମୁନା, ଆରମ୍ଭ, ଯଜ୍ଞ, ଅନୁଷ୍ଠାନ, ପ୍ରବର୍ତ୍ତନ, ତାନ୍ତ୍ରିକ ଉପଚାର, ଯଜ୍ଞାଦି କର୍ମର ଅନୁଷ୍ଠାନ ବିଧି, ପଦ୍ଧତି ।
ପ୍ରୟୋଗକରିବା—ଗ୍ରା. କ୍ରି. ଲଗାଇବା, ଖଟାଇବା, ନିୟୋଜିତ କରିବା,ବ୍ୟବସାୟରେ ଲଗାଇବା, (ବାକ୍ୟଆଦି) ବ୍ୟବହାର କରିବା ।
ପ୍ରୟୋଗତଃ-ଅବ୍ୟ.ପ୍ରୟୋଗ ଅନୁସାରେ, ଫଳରେ, କାର୍ଯ୍ୟତଃ, ଅନୁସାରେ, ବ୍ୟବହାରତଃ ।
ପ୍ରୟୋଗନିପୁଣ—ପୁଂ. ବିଂ. ( ୬ତତ୍ ) ପ୍ରୟୋଗ ବିଷୟରେ ପଟୁ,ପ୍ରୟୋଗରେ ଅନୁଭବୀ ।
ପ୍ରୟୋଗାତିଶୟ—ପୁଂ. ବି. ସାହିତ୍ୟଦର୍ପଣୋକ୍ତ ନାଟକାଙ୍ଗ ପ୍ରସ୍ତାବନା ବିଶେଷ ।
ପ୍ରୟୋଗାର୍ଥ—ପୁଂ.ବି.ପ୍ରଧାନ ପ୍ରୟୋଗାନୁଷ୍ଠାନାନୁକୂଳ ବ୍ୟାପାର ବିଶେଷ, ପ୍ରଯୁକ୍ତକ୍ରମ ।
ପ୍ରୟୋଗୀ—ପୁଂ. ବିଂ.(ପ୍ର+ଯୁଜ୍+କ. ଇନ୍) ଯେ ପ୍ରୟୋଗ କରେ, ପ୍ରୟୋଗକର୍ତ୍ତା ।
ପ୍ରଯୋଜକ—ବିଂ. (ପ୍ର+ଯୁଜ୍+କ.ଅକ) ବ୍ୟବହାରକାରୀ, ପ୍ରବର୍ତ୍ତକ,ଉତ୍ତେଜକ, ପ୍ରୟୋଗକର୍ତ୍ତା,ନିୟୋଗକର୍ତ୍ତା,ପ୍ରେରକ, (ବି)କାର୍ଯ୍ୟରେ ନିଯୁକ୍ତକାରୀ ବ୍ୟକ୍ତି, ଗ୍ରନ୍ଥକାର, ମହାଜନ, ଆଇନ୍‌କର୍ତ୍ତା, ପ୍ରବର୍ତ୍ତନ ।
ପ୍ରୟୋଜନ—କ୍ଲୀ. ବି.(ପ୍ର+ଯୁଜ୍+ଣିଚ୍ +ଅନ) କାର୍ଯ୍ୟ, ହେତୁ, ଉଦ୍ଦେଶ, ଆବଶ୍ୟକତା, ବ୍ୟବହାର, ଫଳ ,ପରିଣାମ, ପ୍ରବୃତ୍ତି ମୂଳ, ଅଭିପ୍ରାୟ ।
ପ୍ରୟୋଜନବତୀଲକ୍ଷଣା—ସ୍ତ୍ରୀ. ବି.(ଅଳଙ୍କାର ଶାସ୍ତ୍ର)ପ୍ରୟୋଜନ ଦ୍ୱାରା ବାଚ୍ୟାର୍ଥର ଭିନ୍ନ ଅର୍ଥ ପ୍ରକାଶିତ ହେବାଲକ୍ଷଣା
ପ୍ରୟୋଜନାତିରିକ୍ତ—ବିଂ. ( ୫ତତ୍ ) ଆବଶ୍ୟକତା ଅପେକ୍ଷା ବେଶି ।
ପ୍ରୟୋଜନାନୁରୂପ--ବିଂ.(୬ତତ୍)ଯେତିକି ଆବଶ୍ୟକ ସେତିକ, ଯଥେଷ୍ଟ ।
ପ୍ରୟୋଜନୀୟ—ବିଂ. (ପ୍ର+ଯୁଜ୍+ମିଂ, ଅନୀୟ)ଆବଶ୍ୟକ କାର୍ଯ୍ୟୋପଯୋଗୀ, ଉପଯୁକ୍ତ,ଦରକାରୀ,କାମିକା ।
ପ୍ରଯୋଜ୍ୟ—ତ୍ରି. ବିଂ. ( ପ୍ର+ଯୁଜ୍+ ମିଂ.ଯ) ପ୍ରୟୋଗର ଯୋଗ୍ୟ, କର୍ତ୍ତବ୍ୟ, ବ୍ୟବହାର୍ଯ୍ୟ,ଯାହା ପ୍ରୟୋଗ କରାଯାଏ, ଯାହାର ପ୍ରୟୋଗ କରାଯିବ, (ବି) ପ୍ରେଷ୍ୟ ଭୃତ୍ୟ, ମୂଳଧନ, କାର୍ଯ୍ୟ ସାଧନର ଉପାୟ । ।
ପ୍ରଯୋଜ୍ୟକର୍ତ୍ତା—ବି.(ବ୍ୟାକରଣ)ମୁଖ୍ୟକର୍ତ୍ତା,ନିଜେ କାର୍ଯ୍ୟ ସାଧନ କରି ଯାହାଦ୍ୱାରା କାର୍ଯ୍ୟ ସାଧନ କରାଏ ।
ପ୍ରରୁହ--ତ୍ରି .ବିଂ.ପରୋହଣକାରୀଅଙ୍କୁରାଦି ।
ପ୍ରରୁଢ଼—ତ୍ରି. ବିଂ. (ପ୍ର+ରୁହ୍+କ.କ୍ତ) ପ୍ରରୋହଣକର୍ତ୍ତା, ଅଙ୍କୁରିତ, ଉତ୍ପନ୍ନ, ବୃଦ୍ଧିପ୍ରାପ୍ତ, ପ୍ରସିଦ୍ଧ, ସଂଜାତ ବୃକ୍ଷାଦି, ଜାତ, ବଦ୍ଧମୂଳ, ପ୍ରବୃଦ୍ଧ ।

ପ୍ରରୂଢ଼ି—ସ୍ତ୍ରୀ. ବି. (ପ୍ର+ରୁହ+କ୍ତି) କଠର, ବୃଦ୍ଧି, ଉନ୍ନତି ।

ପ୍ରରୋଚକ—ବିଂ. ( ପ୍ର+ଣିଚ୍+ରୁଚ୍ କ.ଅକ)ପ୍ରବର୍ତ୍ତକ,ଉତ୍ତେଜକ,ଉତ୍ସାହଦାତା, (ସ୍ତ୍ରୀ) ପ୍ରରୋଚକା ।

ପ୍ରରୋଚନ(ନା)—କ୍ଲୀ. ବି. (ପ୍ର+ରୁଚ୍ +ଅନ ) ଉତ୍ତେଜନ, ମତାଇବା, ପ୍ରବର୍ତ୍ତାଇବା ସନ୍ତୋଷ କରାଇବା,ରୁଚିସମ୍ପାଦନ, ପ୍ରେରଣା,ପ୍ରସ୍ତାବନାର ଅଙ୍ଗ ବିଶେଷ, ଫୁସୁଲାଇବା ।

ପ୍ରରୋଚିତ—ବିଂ. (ପ୍ର+ଣିଚ୍+ରୁଚ୍+ମିଁ.ତ) ଉତ୍ତେଜିତ, ଉତ୍ସାହିତ ।

ପ୍ରରୋଧନ—କ୍ଲୀ. ବି.(ପ୍ର+ରୁଧ୍+ଅନ) ଆରୋହଣ, ଚଢ଼ିବା, ଉଠିବା ।

ପ୍ରରୋହ—ପୁଂ. ବି.( ପ୍ର+ରୁହ୍ +ଅ ) ଅଙ୍କୁର, ନନ୍ଦୀବୃକ୍ଷ, ଆରୋହ, ଉତ୍ପତ୍ତି, ମୂଳ, ଆରୋହଣ, ଗଜା, ମୂଳ,ବର ଆଦି ଗଛର ଓହଳ,ନୂଆପତ୍ର ବା ଡାଳ

ପ୍ରରୋହଣ—କ୍ଲୀ.ବି.(ପ୍ର+ରୁହ୍+ଅନ) ଆରୋହଣ, ଚଢ଼ିବା,ଉତ୍ପତ୍ତି, ଅଙ୍କୁରିତ ହେବା ।

ପ୍ରରୋହଭୂମି—ସ୍ତ୍ରୀ. ବି. ଉର୍ବରା ଜମି ।

ପ୍ରରୋହଶାଖୀ--ବି.ଯେଉଁ ଗଛର ଡାଳକୁ ପୋତିଲେ ତାହା ସ୍ୱତନ୍ତ୍ର ଗଛରେ ପରିଣତ ହୁଏ ।

ପ୍ରଲପନ—କ୍ଲୀ. ବି. ( ପ୍ର+ଲପ୍+ଭା.ଅନ) ପ୍ରଲାପ, ଅନର୍ଥକ ବାକ୍ୟପ୍ରୟୋଗ, ଗପ ।

ପ୍ରଲପିତ—ବି, ବିଂ. (ପ୍ର+ଲପ୍ +ମିଁ.ତ)କଥିତ, ବୃଥା ଉକ୍ତ, ଅନର୍ଥକ କଥିତ, (ବି. ଭା.ତ) ପ୍ରଲାପ ।

ପ୍ରଲବ୍ଧବ୍ୟ—ବି, ବିଂ. ( ପ୍ର+ଲଭ୍+ତବ୍ୟ) ପ୍ରକୃଷ୍ଟ ରୂପେ ଲବ୍ଧବ୍ୟ, ଲଭଯୋଗ୍ୟ, ପ୍ରବଞ୍ଚନାର୍ହ ।

ପ୍ରଲମ୍ବ—ପୁଂ. ବି. ( ପ୍ର+ଲମ୍ବ+ଅ ) ଦୈତ୍ୟଭେଦ, ଭାଗବତୋକ୍ତ ଜଣେ ଦାନବ, ତ୍ରପୁଷ, ପୟୋଧର, ସ୍ତନ, ଶାଖା, ହାର, ପ୍ରଲମ୍ବନ,ରମାୟଣୋକ୍ତ ଜନପଦବିଶେଷ, ଅଙ୍କୁର, ବଙ୍ଗ, ଡାଳାଙ୍କୁର, ଝୁଲିବା, ତ୍ରପୁଷଖାଜ, ଗଛର ଓହଳ, ଉଭିଜର ଅଙ୍କୁର ମେଘ, ବିଳମ୍ବକରିବା,(ବିଂ) ଲମ୍ବମାନ, ନଇଁପଡ଼ିଥିବା, ଅଳସ, ଦୀର୍ଘସୂତ୍ରୀ, ବିଶେଷ ଲମ୍ବ ।

ପ୍ରଲମ୍ବକୁନ୍ତଳା—ସ୍ତ୍ରୀ. ବିଂ. ( ବ.ବ୍ରୀ ) ସୁଦୀର୍ଘ କେଶା (ନାରୀ) ।

ପ୍ରଲମ୍ବଘ୍ନ—ବି. ( ପ୍ର+ଲମ୍ବ+ହନ୍+ଅ) ବଳରାମ ।

ପ୍ରଲମ୍ବନ—କ୍ଲୀ. ବି.ପ୍ରକୃଷ୍ଟରୂପେ ଲମ୍ବନ, ଅବଲମ୍ବନ, ଝୁଲାଇବା ।

ପ୍ରଲମ୍ବଭିଦ୍—ପୁଂ. ବି. ( ପ୍ରଲମ୍ବ + ଭିଦ୍ କ୍ୱିପ୍) ବଳରାମ ।

ପ୍ରଲମ୍ବିତ—ବି. ବିଂ. ( ପ୍ର+ଲମ୍ବ+ତ ) ପ୍ରକର୍ଷରୂପେ ଲମ୍ବିତ, (ମାଳାଦି)ଯାହା ଝୁଲିପଡ଼ିଛି, ଲମ୍ବିଥିବା, ଲମ୍ବମାନ ।

ପ୍ରଲମ୍ବୀ—ବି. ବିଂ.ପ୍ରଲମ୍ବ ଯୁକ୍ତ, ଆଶ୍ରୟୀ

ପ୍ରଲମ୍ଭ—ପୁଂ. ବି. (ପ୍ର+ଲଭ୍+ଭା.ଅ) ଛଳନା, ବଞ୍ଚନା, ବିଶେଷ ଲଭ ।

ପ୍ରଲମ୍ଭନ—କ୍ଲୀ. ବି. ( ପ୍ର+ଲମ୍ଭ+ଭା.ଅନ) ପ୍ରଲମ୍ଭ ଦେଖ ।

ପ୍ରଲୟ—ବି.(ପ୍ର+ଲୀ+ଭା.ଅ)ବ୍ରହ୍ମାଣ୍ଡର ବିନାଶ, କଳ୍ପାନ୍ତ, ସୃଷ୍ଟିର ଲୋପ, ମୃତ୍ୟୁ, କ୍ଷୟ, ବିନାଶ, ମୂର୍ଚ୍ଛା, ମୋହ, (ଲ.ଅର୍ଥ) ଭୟାନକ ବିପଦ, ଅଷ୍ଟସାତ୍ତ୍ୱିକର ବିକାର ମଧ୍ୟରୁ ଏକତମ, ସଂଜ୍ଞାହୀନତା

ପ୍ରଳୟକାଳ—ବିଂ.(୬ତତ୍)କଳ୍ପାନ୍ତରେ ବ୍ରହ୍ମାଣ୍ଡର ପ୍ରଳୟ ଘଟିବା ସମୟ ।

ପ୍ରଳୟକ୍ରୀଡ଼ା--ବି.(କ.ଧା)ଧ୍ୱଂସରୂପ ଲୀଳା, ସଂହାର ରୂପ ଖେଳା ।

ପ୍ରଳୟଙ୍କର—ବି. ( ପ୍ରଳୟ+କୃ+କ.ଅ) ପ୍ରଳୟକାରୀ, ସର୍ବନାଶ ସମ୍ପାଦକ

ପ୍ରଳୟପୟୋଧି--ପୁଂ.ବି.(୬ତତ୍)କଳ୍ପାନ୍ତ କାଳୀନ ସମୁଦ୍ର ।

ପ୍ରଳୟପବନ—ପୁଂ. ବି. (କ.ଧା)ସୃଷ୍ଟିନାଶକାରୀ ବାୟୁ ।

ପ୍ରଳୟମେଘ—ବି. ( କ.ଧା ) ସୃଷ୍ଟି ନାଶ କାଳୀନ ମେଘ, କଳ୍ପାନ୍ତ କାଳୀନ ମେଘପରି ଭୟଙ୍କର ମେଘ ।

ପ୍ରଳୟାନ୍ଧକାର—ବି. (୬ତତ୍) କଳ୍ପାନ୍ତ କାଳୀନ ଅନ୍ଧକାର, କଳ୍ପାନ୍ତ କାଳୀନ ଅନ୍ଧକାରପରି ଭୀଷଣ ଅନ୍ଧକାର ।

ପ୍ରଲାପ—ପୁଂ. ବି. (ପ୍ର+ଲପ୍+ଭା.ଅ) ପ୍ରଲାପନ,ଅନର୍ଥକ,ବାକ୍ୟ, ନଷ୍ଟପ୍ରୟୋଜନ ଉନ୍ମତ୍ତାଦି ବଚନ,ଆଲାପ ରୋଗର ଉପସର୍ଗ ବିଶେଷ, ବିଳାପ ।

ପ୍ରଲାପକ—ପୁଂ.ବି.ଏତନ୍ନାମକ ସନ୍ନିପାତ ଜ୍ୱରଭେଦ, ଏହାର ନାମ ପ୍ରଲାପ ।

ପ୍ରଲାପକରିବା—ଗ୍ରା. କ୍ରି. ଅସମ୍ବନ୍ଧବାକ୍ୟ ଗପିବା ।

ପ୍ରଲାପନ—କ୍ଲୀ. ବି. (ପ୍ର+ ଲପ୍+ଣିଚ୍ ଅନ) ଆଲାପନ, ନିରର୍ଥକ ଗପିବା ।

ପ୍ରଲାପୀ—ପୁଂ. ବିଂ. (ପ୍ର+ଲପ୍+କ.ଇନ୍) ଯେ ପ୍ରଲାପ କରେ, ପ୍ରଲପନଶୀଳ, (ବି) ସନ୍ନିପାତ ଜ୍ୱର ବିଶେଷ ।

ପ୍ରଲୀନ—ବି. ବିଂ.(ପ୍ର+ଲୀ+କ.ତ) ପ୍ରଳୟ ପ୍ରାପ୍ତ, ଚେଷ୍ଟାଶୂନ୍ୟ, ମିଳାଇ ଯାଇଥିବା, ମୂର୍ଚ୍ଛିତ, ଅନ୍ତର୍ହିତ ।

ପ୍ରଲୁବ୍ଧ—ବିଂ. ( ପ୍ର+ଲୁଭ୍+କ.ତ ) ଅତିଶୟ ଲୋଭୀ ।

ପ୍ରଲୂନ—ପୁଂ, ବି. କୀଟଭେଦ, (ବିଂ-ପ୍ର+ଲୂ+ତ) ଛିନ୍ନ ।

ପ୍ରଲେପ—ପୁଂ. ବି. ( ପ୍ର+ଲିପ୍+ଅ ) ପଦାର୍ଥ ଉପରେ ବୋଳାଯିବା ପତଳା ସ୍ତର,ମଲମ,ଉପରେ ବୋଳିବା ପୁଲ୍ଟିସ୍

ପ୍ରଲେପକ—ପୁଂ.ବିଂ(ପ୍ର+ଲିପ୍+ଅକ) ପ୍ରଲେପକର୍ତ୍ତା, ଯେ ପ୍ରଲେପନ କରେ, ବି. ଜୀର୍ଣ୍ଣଜ୍ୱରଭେଦ,ପ୍ରଲେପିକାର ଧର୍ମ ।

ପ୍ରଲେପ୍ୟ—ବି. ବିଂ. ପ୍ରଲେପ ଯୋଗ୍ୟ, ଲେପନୀୟ(ପୁଂ.ବି) କୁଞ୍ଚିତକେଶଦାମ ।

ପ୍ରଲେହ—ପୁଂ. ବି. ( ପ୍ର+ଲିହ୍+ଅ ) ବ୍ୟଞ୍ଜନବିଶେଷ ।

ପ୍ରଲେହନ—କ୍ଲୀ.ବି. (ପ୍ର+ଲିହ୍+ଅନ) ଚାଟିବା । [ ଧ୍ୱଂସ ।

ପ୍ରଲୋପ—ପୁଂ.ବି.ପ୍ରକୃଷ୍ଟ ରୂପେ ଲୋପ,

ପ୍ରଲୋଭ—ପୁଂ.ବି.(ପ୍ର+ଲୋଭ) ଅତିଶୟ ଲାଳସା, ଅତିଶୟ ଲୋଭ ।

ପ୍ରଲୋଭକ—ପୁଂ. ବିଂ. ପ୍ରଲୋଭନକାରୀ, ଲୋଭୀ ।

ପ୍ରଲୋଭନ—ବି.(ପ୍ର + ଲୋଭ + କ.ଅନ) ପ୍ରବଞ୍ଚକ, ଲୋଭଜନକ, ଲୋଭନକାରୀ. (ବି-ଭା.ଅନ) ଲୋଭଜନକ ବସ୍ତୁ, ଲୋଭ ଦେଖାଇବା, ଆକର୍ଷଣ ।

ପ୍ରଲୋଭିତ—ବିଂ.(ପ୍ର+ଲୋଭିତ)ପ୍ରଲୋଭନ ଦ୍ୱାରା ଆକୃଷ୍ଟ, ଅତ୍ୟନ୍ତ ଆକୃଷ୍ଟ ।

ପ୍ରଲୋଭୀ—ବିଂ. ( ପ୍ର + ଲୁଭ୍ + ଇନ୍ ) ପ୍ରଲୋଭଯୁକ୍ତ, ଲୁବ୍ଧ, ଅତି ଲୋଭୀ ।

ପ୍ରଲୋଭ୍ୟ—ବି.ବିଂ. ପ୍ରଲୋଭନ ଯୋଗ୍ୟ, ଆକର୍ଷଣୀୟ, ଅଭିଲାଷ ଯୋଗ୍ୟ ।

ପ୍ରଲୋଲୁପ—ପୁଂ. ବିଂ. ( ପ୍ର + ଯଙ୍ + ଲୁପ୍ + କ.ଅ) ଅତିଶୟ ଲୋଲୁପ, (ବି) ଗରୁଡ଼ବଂଶୀୟ କୁଲପ୍ରସୂନ ପକ୍ଷିଭେଦ ।

ପ୍ରବକ୍ତା—ପୁଂ.ବି (ପ୍ର+ବଚ୍+ତୃ)ପ୍ରଗଲ୍ଭବକ୍ତା, ଶିକ୍ଷକ, ଗୁରୁ, ବ୍ୟାଖ୍ୟାକାରକ ବ୍ୟକ୍ତି, ଗଳ୍ପର ଉଦ୍ଭାବକ, ବେଦାଦିର ଉପଦେଶକ, (ପୁଂ.ବିଂ) ବକ୍ତୃତାକାରୀ, ସୁବକ୍ତା ।

ପ୍ରବର୍ଗ—ପୁଂ. ସ୍ତ୍ରୀ.ବି. ଖଗପକ୍ଷୀ ।

ପ୍ରବଙ୍ଗ—ପୁଂ. ସ୍ତ୍ରୀ. ବି. ପ୍ଲବଙ୍ଗ, ପକ୍ଷୀ ।

ପ୍ରବଚନ—କ୍ଲୀ. ବି. (ପ୍ର+ବଚ୍+ଅନ) ପ୍ରବାଦ, ଜନଶ୍ରୁତି, ଶାସ୍ତ୍ରବଚନ, ନୀତିବାକ୍ୟ, ଅର୍ଥାନୁସନ୍ଧାନ ପୂର୍ବକ କଥନ, ବ୍ୟାଖ୍ୟା କରାଯାଇଥିବା ଧର୍ମବାଦ, ବେଦାଦି ଈଶ୍ୱରମୁଖନିଃସୃତ ଶାସ୍ତ୍ର, ଅଧ୍ୟାପନା, ଉତ୍କୃଷ୍ଟବକ୍ତୃତା, ବେଦାଙ୍ଗ ।

ପ୍ରବଚନପଟୁ—ବିଂ. ( ତତ୍ପୁ ) ବାଗ୍ମୀ, ଆବଶ୍ୟକ ବେଳେ ଯେଉଁମାନେ ପ୍ରବଚନମାନ ଉଦ୍ଧାର କରିପାରନ୍ତି ।

ପ୍ରବଞ୍ଚକ—ପୁଂ. ବିଂ. ( ପ୍ର + ବଞ୍ଚ + କ. ଅକ) ପ୍ରତାରକ, ଶଠ, ଧୂର୍ତ୍ତ, ଠକ ।

ପ୍ରବଞ୍ଚନ(ନା)—ବି. (ପ୍ର+ବଚନ) ପ୍ରତାରଣା, ଠକାମି ।

ପ୍ରବଞ୍ଚିତ—ପୁଂ. ବିଂ. (ପ୍ର+ବଞ୍ଚିତ)ପ୍ରତାରିତ, ଯେ ଠକାମିରେ ପଡ଼ିଥାଏ ।

ପ୍ରବଟ—ପୁଂ. ବି. ( ପ୍ର+ବଟ+ମିଁ.ଅ ) ଗୋଧୂମ, ଗହମ ।

ପ୍ରବଣ—ତ୍ରି. ବିଂ. (ପ୍ର+ବନ+କ.ଅ) ବନ୍ଧ, ନତ, ପୂର୍ଣ୍ଣ, ହୃଷ୍ଟିତ, ଅଭିମୁଖ, ସରଳ, ଉନ୍ମୁଖ, କ୍ରମ ନିମ୍ନ(ଭୂମି),ପ୍ରହ୍ୱ, ଆସ୍ୱାଦ, ପ୍ରଗୁଣ, ପ୍ଳୁତ, ସ୍ନିଗ୍ଧ,ଆସକ୍ତ, କ୍ଷୀଣ, ରତ, ନମ୍ର, ଅନୁକୂଳ, ନିପୁଣ, ବିନୀତ, ଆହୃତ, ଉନ୍ମୁଖ, ଉଦାର, ପ୍ରବନ୍ଧ, ନ୍ୟସ୍ତ,ସ୍ଥାପିତ,ବଦାନ୍ୟ,ବିନଷ୍ଟ, (ବି) ଚତୁଷ୍ପଥ, ଉଦର, ଢାଲୁ, ପାହାଡ଼ର ପାଖ, କ୍ଷଣ, ଆହୃତ, ପର୍ବତର ଭୃଗୁ (ସ୍ତ୍ରୀ) ପ୍ରବଣା ।

ପ୍ରବଣତା(ତ୍ୱ)—ବି.ପ୍ରବଣର ଭାବ ବା ଧର୍ମ, ଅନୁକୂଳତା, ଆସକ୍ତି, ନମ୍ରତା, ପୂର୍ଣ୍ଣତା

ପ୍ରବତ୍ସ୍ୟତ୍ପତିକା--ସ୍ତ୍ରୀ.ବି.ନାୟିକା ଭେଦ, ଯେଉଁ ନାୟିକାର ପତି ବା ନାଗର ବିଦେଶକୁ ଯିବାର ଅଛି । [ଘୋଷଣା ।

ପ୍ରବଦନ—କ୍ଲୀ. ବି. (ପ୍ର+ବଦ୍+ଭା.ଅନ)

ପ୍ରବଦିତା—ପୁଂ. ବିଂ. (ପ୍ର+ବଦ୍+ତୃ) ଘୋଷକ, ଘୋଷଣାକାରୀ ।

ପ୍ରବନ୍ଧ—ବି (ପ୍ର+ବନ୍ଧ+ମିଁ.ଅ)ସନ୍ଦର୍ଭ, ରଚନା,ଧାରାବାହିକ ଉପାଖ୍ୟାନ,ପରସ୍ପର ଅନ୍ୱୟଯୁକ୍ତ ବାକ୍ୟାବଳୀ, ପ୍ରକୃଷ୍ଟ ବନ୍ଧନ, କୌଶଳ, ଆରମ୍ଭ, ନିମିକତା, ପୂର୍ବାପର ସଙ୍ଗତ, ଯୋଜନା, ଆୟୋଜନ. ବନ୍ଦୋବସ୍ତ ।

ପ୍ରବନ୍ଧକାର—ପୁଂ. ବି.( ପ୍ରବନ୍ଧ+କୃ+କ.ଅ) ରଚକ, ସନ୍ଦର୍ଭର ରଚୟିତା ।

ପ୍ରବନ୍ଧନୃତ୍ୟ--ଗ୍ରା.ବି.ଅଙ୍ଗାଙ୍ଗିରେସୁକୌଶଳପୂର୍ଣ୍ଣ ଗୃଳନାସହ ନୃତ୍ୟବିଶେଷ ।

ପ୍ରବନ୍ଧମାଳା—ବି.(ତତ୍ପୁ) ଏକତ୍ର ସନ୍ନିବେଶିତ ପ୍ରବନ୍ଧଚୟ, (ଗ୍ରା.ବି) ସ୍ୱର୍ଗୀୟ ମଧୁସୂଦନ ରାଓଙ୍କ କୃତ ଓଡ଼ିଆ ସାହିତ୍ୟର ଗଦ୍ୟ ପାଠ୍ୟପୁସ୍ତକ ବିଶେଷ ।

ପ୍ରବନ୍ଧା—ପୁଂ. ବିଂ. (ପ୍ର+ବନ୍ଧ+କ.ତୃ) ସଂଗ୍ରାହକ,ପ୍ରବନ୍ଧ ଲେଖକ, ରଚୟିତା ।

ପ୍ରବପ—ବିଂ. ଅତିଶୟ ସ୍ଥୂଳ, ଅତ୍ୟନ୍ତ ମେଦୋଯୁକ୍ତ ।

ପ୍ରବପନ—କ୍ଲୀ.ବି. ପ୍ରକୃଷ୍ଟ ରୂପେ ବପନ, ଦାଣ ଦାଢ଼ିଆଦି କ୍ଷୌର ହେବା ।

ପ୍ରବୟଣ—କ୍ଲୀ. ବି. (ପ୍ର+ଅଜ୍+ଅନ) ପ୍ରତୋଦ, ପ୍ରାଜନ ଦଣ୍ଡ, ପାଞ୍ଚଣ ବାଡ଼ି, ଚାବୁକ ।

ପ୍ରବୟସ୍—ତ୍ରି.ବିଂ. ବୃଦ୍ଧ, ସ୍ଥବିର, ପୁରୁଣା, ପ୍ରାଚୀନ । [ ଯୁକ୍ତା ସ୍ତ୍ରୀ ।

ପ୍ରବୟା—ସ୍ତ୍ରୀ. ବି. ପ୍ରକର୍ଷ ରୂପେ ଗଢ଼-

ପ୍ରବର—କ୍ଲୀ.ବି. (ପ୍ର+ବୃ+ମିଁ.ଅ)ଆବରଣ ପାଦ, ଅଗୁରୁ ଚନ୍ଦନ, ଗୋତ୍ର, ସନ୍ତତ, ଗୋତ୍ର ପ୍ରବର୍ତ୍ତକ ମୁନିଗଣ, ବଂଶଧର,ଏକପ୍ରକାର କଳାମୁଗ, ବରଗୁଡ଼ି,(ବିଂ)ଶ୍ରେଷ୍ଠ, ଅଖିଳଶ୍ରେଷ୍ଠ,ପ୍ରଧାନ ।

ପ୍ରବରଣ—କ୍ଲୀ. ବି. ଦେବତାମାନଙ୍କର ଆବାହନ, ଆରାଧନ, ବୌଦ୍ଧମାନଙ୍କର ଉତ୍ସବବିଶେଷ ।

ପ୍ରବରବାହନ—ପୁଂ.ବି.ଅଶ୍ୱିନୀକୁମାରଦ୍ୱୟ

ପ୍ରବରା—ବି. ଅଗୁରୁ ଚନ୍ଦନ, ଗୋଦାବରୀର ଉପନଦୀବିଶେଷ, (ସ୍ତ୍ରୀ.ବିଂ)ପ୍ରବରର ସ୍ତ୍ରୀଲିଙ୍ଗ ।

ପ୍ରବର୍ତ୍ତି—ବି.(ପ୍ର+ବୃତ୍+ଭା.ଅ) ଆରମ୍ଭ, କାର୍ଯ୍ୟରେ ହାତ ଦେବା ।

ପ୍ରବର୍ତ୍ତକ—ପୁଂ. ବିଂ. (ପ୍ର+ବୃତ୍+କ. ଅକ) ପ୍ରବର୍ତ୍ତନକାରୀ, ଯେ ପ୍ରବର୍ତ୍ତାଏ, ପ୍ରବୃତ୍ତିଜନକ, ପ୍ରବର୍ତ୍ତକ, ଅନୁବର୍ତ୍ତକ ।

ପ୍ରବର୍ତ୍ତନ(ନା)—ବି. (ପ୍ର+ବୃତ୍+ଣିଚ୍ +ଭା.ଅନ+ଆ) ପ୍ରବୃତ୍ତି, ସୂତ୍ରପାତ, ଆରମ୍ଭ, ନିୟୋଜନ, ପ୍ରେରଣ,ଚାଳନ, ଉତ୍ତେଜିତ କରିବା, ମତାଇବା ।

ପ୍ରବର୍ତ୍ତନୀୟ—ତ୍ରି.ବିଂ.(ପ୍ର+ବୃତ୍+ଣିଚ୍ +ଅନୀୟ) ପ୍ରବର୍ତ୍ତନ ଯୋଗ୍ୟ ।

ପ୍ରବର୍ତ୍ତମାନ—ବିଂ.(ପ୍ର + ବୃତ୍ + ଣିଚ୍+ ଆନ) ଯେଉଁ ବ୍ୟକ୍ତି କୌଣସି କାର୍ଯ୍ୟରେ ପ୍ରବୃତ୍ତ ହୋଇଅଛି ।

ପ୍ରବର୍ତ୍ତୟିତା—ପୁଂ. ବିଂ. ( ପ୍ର + ବୃତ୍ + ଣିଚ୍+କ.ତୃ) ପ୍ରବର୍ତ୍ତକ, ଅନୁବର୍ତ୍ତକ, ସଂସ୍ଥାପକ, ନିୟୋଜକ, ଯେ କୌଣସି ବିଷୟରେ ପ୍ରବୃତ୍ତ କରାଏ ।

ପ୍ରବର୍ତ୍ତା(ର୍ତ୍ତେ)ଇବା—ଗ୍ରା. କ୍ରି. କୌଣସି କାର୍ଯ୍ୟ କରିବାକୁ ଉତ୍ତେଜିତ କରାଇବା, ମତାଇବା, ନିୟୋଜିତ କରିବା, ଫୁସୁଲାଇବା ।

ପ୍ରବର୍ତ୍ତିତ—ବି. ବଂ. (ପ୍ର+ବୃତ୍+ଣିଚ୍+ମଁ.ତ) ନିଯୋଜିତ, ସ୍ଥାପିତ, ଗୃହୀତ, ଯାହାକୁ ପ୍ରବୃତ୍ତି ଦିଆଯାଏ, ଉତ୍ପାଦିତ, ଜାତ, ଆରବ୍ଧ, ପ୍ରତ୍ୟାବର୍ତ୍ତିତ, ଉତ୍ତେଜିତ, ପ୍ରେରିତ, ଉତ୍ଥାପିତ ।

ପ୍ରବର୍ତ୍ତିତବ୍ୟ—ବି. ବଂ. (ପ୍ର+ବୃତ୍+ଣିଚ୍+ତବ୍ୟ) ପ୍ରବର୍ତ୍ତନଯୋଗ୍ୟ, ଅନୁଷ୍ଠେୟ ।

ପ୍ରବର୍ତ୍ତିତା—ପୁଂ.ବଂ. (ପ୍ର+ବୃତ୍+ତୃ) ପ୍ରବର୍ତ୍ତନକାରୀ ।

ପ୍ରବର୍ତ୍ତିବା—ଗ୍ରା. କ୍ରି. କୌଣସି କାର୍ଯ୍ୟ କରିବାକୁ ପ୍ରବୃତ୍ତ ହେବା, ମାତିବା, ମନ ବଳାଇବା, ଜନ୍ମିବା, ଘଟିବା, ଆରମ୍ଭ କରିବା, ଆରବ୍ଧ ହେବା, ବୃଦ୍ଧି କରିବା, ପ୍ରକାଶିତ ହେବା ।

ପ୍ରବର୍ତ୍ତୀ—ପୁଂ. ବଂ. (ପ୍ର+ବୃତ୍+ଇନ୍) ପ୍ରବୃତ୍ତ, ନିଯୁକ୍ତ, ପ୍ରବର୍ତ୍ତକ, ଅଗ୍ରଗାମୀ, ପ୍ରବାହଶୀଳ, (ସ୍ତ୍ରୀ) ପ୍ରବର୍ତ୍ତିନୀ, ଉତ୍ସୃଷ୍ଟିଶୀଳା ।

ପ୍ରବର୍ତ୍ତ୍ୟ—ବି. ବଂ. କୌଣସି କାର୍ଯ୍ୟରେ ପ୍ରବୃତ୍ତ ବା ଉତ୍ତେଜନ ଯୋଗ୍ୟ ।

ପ୍ରବର୍ଦ୍ଧକ—ପୁଂ.ବଂ.(ପ୍ର+ବୃଧ୍+ଣିଚ୍+ଅକ) ପ୍ରବର୍ଦ୍ଧନକାରୀ, ଯେ ବଢ଼ାଏ ।

ପ୍ରବର୍ଦ୍ଧନ—କ୍ଲୀ.ବ. (ପ୍ର+ବୃଧ୍+ଅନ) ପ୍ରତିପାଳନ, ବିବର୍ଦ୍ଧନ, ବଢ଼େଇବା, (ପୁଂ.ବଂ) ଯେ ବଢ଼ାଏ, ବୃଦ୍ଧିକାରକ ।

ପ୍ରବର୍ଦ୍ଧମାନ—ବଂ. (ପ୍ର+ବର୍ଦ୍ଧମାନ) ବିଶେଷରୂପେ ବଢ଼ୁଥିବା ।

ପ୍ରବର୍ଦ୍ଧିତ—ବଂ. (ପ୍ର+ବର୍ଦ୍ଧିତ) ବିଶେଷ ରୂପେ ବର୍ଦ୍ଧିତ, ପ୍ରତିପାଳିତ ।

ପ୍ରବର୍ଷ—ପୁଂ.ବ. ପ୍ରକୃଷ୍ଟ ରୂପେ ବର୍ଷଣ, ଅତିବୃଷ୍ଟି, ବୃଷ୍ଟି ।

ପ୍ରବର୍ଷଣ—କ୍ଲୀ.ବ. (ପ୍ର+ବର୍ଷଣ) ବୃଷ୍ଟି, ବର୍ଷା, ରାମ ଓ ଲକ୍ଷଣ ବାସ କରିଥିବା କିଷ୍କିନ୍ଧ୍ୟା ନିକଟସ୍ଥ ପର୍ବତ ।

ପ୍ରବର୍ଷୀ—ବଂ. ଅତ୍ୟନ୍ତ ବର୍ଷଣଶୀଳ ।

ପ୍ରବର୍ହ—ବି. ବଂ. (ପ୍ର+ବୃହ୍+କ.ଅ) ପ୍ରଧାନ, ଶ୍ରେଷ୍ଠ, ପ୍ରମାଣ ।

ପ୍ରବଳ—ବଂ. (ବ.ଗ୍ରା) ଅତି ବଳବାନ୍, ପ୍ରଭୂତ ବିକ୍ରମଶାଳୀ, ବଳୁଆ, ଯୁକ୍ତିସଙ୍ଗତ, ପ୍ରକୃଷ୍ଟ ରୂପେ ଆଧିପତ୍ୟ ବିସ୍ତାର କରୁଥିବା, ଭୟାନକ, ଅତ୍ୟଧିକ, ଘୋଟିଥିବା, ଅକାଟ୍ୟ (ଯୁକ୍ତି) ।

ପ୍ରବଳତା(ତ୍ୱ)-ବ.ଶକ୍ତିମତ୍ତା, ବଳଶାଳିତା, ଏକାଧିପତ୍ୟ, ଅତ୍ୟାଧିକ୍ୟ ।

ପ୍ରବଳପରାକ୍ରମ—ବ. (କ.ଧା) ଅତ୍ୟନ୍ତ କ୍ଷମତା,(ବଂ.ବ.ଗ୍ରା)ବିଶେଷ ବିକ୍ରମଶାଳୀ

ପ୍ରବଳପରାକ୍ରମୀ—ପୁଂ. ବଂ. ବିଶେଷ କ୍ଷମତାଶୀଳ, ଅତ୍ୟନ୍ତ ଶକ୍ତିଶାଳୀ ।

ପ୍ରବଳହେବା—ଗ୍ରା. କ୍ରି. ଘୋଟିଯିବା, ନିଜର ଆଧିପତ୍ୟ ବା ଶକ୍ତି ବିସ୍ତାର କରିବା ।

ପ୍ରବଳା—ସ୍ତ୍ରୀ. ବଂ. (ବ.ଗ୍ରା) ବଳବତୀ, (ସ୍ତ୍ରୀ.ବ) ପ୍ରସାରଣୀ ଲତା ।

ପ୍ରବଳାଳ୍ପ—ପୁଂ. ବ. ଭୁଜଙ୍ଗ, ସର୍ପ, ମୟୂର, ରଜମେଖଳକ ।

ପ୍ରବଳାନୁରାଗ—ବ. (କ.ଧା) ଅତ୍ୟନ୍ତ ସ୍ନେହ ବା ଆସକ୍ତି ।

ପ୍ରବହ୍ଲ—ପୁଂ. ବ. ପ୍ରହେଳିକା ।

ପ୍ରବହ୍ଲିକା—ସ୍ତ୍ରୀ.ବ. ପ୍ରହେଳିକା ।

ପ୍ରବସଥ—କ୍ଲୀ.ବ. (ପ୍ର+ବସ୍+ଅଥ) ପ୍ରସ୍ଥାନ, ପ୍ରବାସ ।

ପ୍ରବସନ—କ୍ଲୀ. ବ. (ପ୍ର+ବସ୍+ଅନ) ପ୍ରବାସ, ଯାତ୍ରା, ବିଦେଶରେ ବାସ କରିବା, ବହିର୍ଗମନ ।

ପ୍ରବସ୍ତବ୍ୟ—ବି.ବଂ. (ପ୍ର+ବସ୍+ତବ୍ୟ) ପ୍ରସ୍ଥାନଯୋଗ୍ୟ, ନିର୍ଗମନଯୋଗ୍ୟ ।

ପ୍ରବହ—ପୁଂ.ବ. (ପ୍ର+ବହ୍+କ.ଅ) ସ୍ରୋତଃ, ପ୍ରବାହ, ସପ୍ତ ବାୟୁର ଅନ୍ତର୍ଗତ ବାୟୁବିଶେଷ, ମେଘବିଶେଷ, ଅଗ୍ନିଙ୍କ ସପ୍ତଜିହ୍ୱା ମଧ୍ୟରୁ ଏକ, (ଭା. ଅ) ଗୃହ ନଗରାଦିରୁ ବହିର୍ଗମନ,(ଅଧି. ଅ) ଯେଉଁ କୁଣ୍ଡ ମଧ୍ୟକୁ ଜଳନାଳୀ ଆଦି ଦ୍ୱାରା ଜଳ ଯାଏ, (ପ୍ର+ବହ) ପ୍ରଖର ସ୍ରୋତ ।

ପ୍ରବହଣ(ନ)—କ୍ଲୀ. ବ. (ପ୍ର+ବହ+ଅନ) କର୍ଣ୍ଣୀରଥ, ଜଳଯାନ, ଦୋଳା, ଝୁଲିଆ, ଡୁଲି, ଯାନ, (ଭା.ଅ)ସ୍ରୋତପ୍ରବାହ, ନେଇ ଚାଲିଯିବା, (କ.ଅନ) ନାବ, ଡଙ୍ଗା, ପୋତ, (ଅଧି. ଅନ) କନ୍ୟାକୁ ବିବାହ ଦେବା ।

ପ୍ରବହ୍ଲି—ସ୍ତ୍ରୀ. ବ. (ପ୍ର+ବହ୍ଲ+ଇ) ପହଳି, ଢଗ, ପ୍ରହେଳିକା ।

ପ୍ରବହ୍ଲିକା—ସ୍ତ୍ରୀ. ବ. ପ୍ରହେଳିକା,ପହଳି ।

ପ୍ରବାକ୍—ବଂ. (ବ.ଗ୍ରା) ଉତ୍କୃଷ୍ଟ ବକ୍ତା, ବାଗ୍ମୀ ।

ପ୍ରବାଚକ—ବି.ବଂ. (ପ୍ର+ବଚ୍+ଅକ) ପ୍ରକୃଷ୍ଟ ବକ୍ତା, ଉତ୍ତମବକ୍ତା, ବାଗ୍ମୀ ।

ପ୍ରବାଚନ—କ୍ଲୀ. ବ. (ପ୍ର+ବଚ୍+ଣିଚ୍+ଅନ) ପ୍ରକୃଷ୍ଟରୂପେ କଥନ ।

ପ୍ରବାଚ୍ୟ—ବି.ବଂ. (ପ୍ର+ବଚ୍+ମଁ.ଯ) ସମ୍ୟକ୍ ବକ୍ତବ୍ୟ, ନିନ୍ଦ୍ୟ, ନିନ୍ଦନୀୟ ।

ପ୍ରବାଣ—କ୍ଲୀ. ବ. ଲୁଗାର ଧଡ଼ି ବା ପାଡ଼୍ ବାନ୍ଧିବା ।

ପ୍ରବାଣି—ସ୍ତ୍ରୀ. ବ. (ପ୍ର+ବେ+ଣ.ଅନ+ଈ) ତନ୍ତୁଶଳାକା, ମାକୁ, ତନ୍ତୀର କଣ୍ଡା । [ କଣ୍ଡା ।

ପ୍ରବାଣୀ—ସ୍ତ୍ରୀ. ବ. ତନ୍ତୁଶଳାକା, ତନ୍ତୀର

ପ୍ରବାତ—ବ. (ପ୍ର+ବା+କ.ତ) ପ୍ରବଳ ବାୟୁ, (ଭା.ତ)ପବନର ଝଙ୍କ,(ଅଧି.ତ) ଯେଉଁଠାରେ ଖୁବ୍ ପବନ ବୋହୁଥାଏ, ଢାଲୁ, ପ୍ରବଣ, (ବଂ-ପ୍ର+ବାତ) ବାୟୁଦ୍ୱାରା ଆନ୍ଦୋଳିତ ।

ପ୍ରବାଦ—ପୁଂ.ବ. (ପ୍ର+ବାଦ) ପରମ୍ପରା ବାକ୍ୟ, ପ୍ରବଚନ, ଜନରବ, ଜନଶ୍ରୁତି, ଅପବାଦ, ପରସ୍ପର କଥୋପକଥନ ।

ପ୍ରବାଦକ—ବି.ବଂ.ପ୍ରକୃଷ୍ଟରୂପେ ବାଦକ, ବାଦ୍ୟକାରୀ ।

ପ୍ରବାଦବଚନ—ବ. ପ୍ରବଚନ, ଢଗ ।

ପ୍ରବାଦୀ—ପୁଂ. ବଂ. (ପ୍ର+ବଦ୍+ଇନ୍) ପରସ୍ପର କଥୋପକଥନକାରକ ।

ପ୍ରବାଦ୍ୟ—ବି. ବଂ. (ପ୍ର+ବଦ୍+ଯ) କଥନଯୋଗ୍ୟ, ଘୋଷଣାର୍ହ ।

ପ୍ରବାପୟିତା—ପୁଂ. ବଂ. (ପ୍ର+ବପ୍+ଣିଚ୍+ତୃ) ରୋପୟିତା,ରୋପଣକାରୀ ।

ପ୍ରବାପୀ—ପୁଂ. ବଂ. (ପ୍ର+ବପ୍+ଇନ୍) ବପନକାରୀ, ଯେ ବପନ କରନ୍ତି ।

ପ୍ରବାର—ପୁଂ. ବି. ( ପ୍ର + ବୃ + କ.ଅ ) ପ୍ରାବର, (ଣି.ଅ) ବସ୍ତ୍ର, ଉତ୍ତରୀୟ ବସ୍ତ୍ର, ଆଚ୍ଛାଦନ ବସ୍ତ୍ର, ଘୋଡ଼ଣୀ ।

ପ୍ରବାରଣ—କ୍ଲୀ. ବି. (ପ୍ର + ବୃ + ଣିଚ୍ + ଅନ) କାମ୍ୟଦାନ, ସ୍ୱର୍ଗାଦି କାମନାକରି ଯେଉଁ ଦାନ କରାଯାଏ, ନିଷେଧ, ବର୍ଷାଋତୁର ଶେଷରେ ବୌଦ୍ଧମାନଙ୍କର ଅନୁଷ୍ଠେୟ ଉତ୍ସବବିଶେଷ ।

ପ୍ରବାର୍ଯ୍ୟ—ତ୍ରି. ବିଂ. ( ପ୍ର + ବୃ + ଯ ) ସନ୍ତୋଷଯୋଗ୍ୟ, ତୃପ୍ତିଯୋଗ୍ୟ ।

ପ୍ରବାଳ—ବି. (ପ୍ର + ବଲ + କ.ଅ)ଉପରତ୍ନବିଶେଷ, ବିଦ୍ରୁମ, ପୋହଳା, ଅଙ୍କୁର, ବୃକ୍ଷର ନବପଲ୍ଲବ ବା ଶାଖା, ବୀଣାଦଣ୍ଡ ।

ପ୍ରବାଳକୀଟ-ବି.ଯେଉଁ କୀଟମାନଙ୍କ କଙ୍କାଳ ପୋହଳା ଅଟେ, ସମୁଦ୍ରସମ୍ଭୂତ ରକ୍ତବର୍ଣ୍ଣ କୀଟବିଶେଷ ।

ପ୍ରବାଳଦ୍ୱୀପ—ଗ୍ରା. ବି. ପ୍ରବାଳକୀଟମାନଙ୍କର କଙ୍କାଳସ୍ତୂପଦ୍ୱାରା ରଚିତ ଦ୍ୱୀପ ।

ପ୍ରବାଳପଦ୍ମ—ବି. ରକ୍ତୋତ୍ପଳ ।

ପ୍ରବାଳଫଳ--କ୍ଲୀ. ବି.(ବି.ସ୍ତ୍ରୀ)ରକ୍ତଚନ୍ଦନ ।

ପ୍ରବାସ—ପୁଂ. ବି. ( ପ୍ର + ବସ୍ + ଅ ) ବିଦେଶ, ବିଦେଶସ୍ଥିତି, ବିଦେଶରେ ରହିବା ।

ପ୍ରବାସନ—କ୍ଲୀ. ବି. (ପ୍ର + ବାସି + ଭା. ଅନ)ବିଦେଶବାସନ, ନିର୍ବାସନ, ମାରଣ, ବଧ ।

ପ୍ରବାସିତ—ତ୍ରି.ବିଂ. (ପ୍ର + ବସ୍ + ଣିଚ୍ + ମଁ.ତ) ନିର୍ବାସିତ, ବିଦେଶପ୍ରେରିତ, ଯାହାକୁ ବିଦେଶ ପଠାହୋଇଅଛି, ହତ ।

ପ୍ରବାସୀ—ପୁଂ. ବିଂ. (ପ୍ର + ବସ୍ + କ. ଇନ୍)ପ୍ରୋଷିତ, ବିଦେଶସ୍ଥ ।

ପ୍ରବାସ୍ୟ—ତ୍ରି. ବିଂ. (ପ୍ର + ବାସି + ଯ ) ପ୍ରବାସନଯୋଗ୍ୟ, ଯାହାକୁ ନିର୍ବାସନ କରାଯାଇପାରେ ।

ପ୍ରବାହ—ପୁଂ. ବି. ( ପ୍ର + ବହ୍ + ଅ ) ଜଳଧାରା, ଶ୍ରେଣୀ, ଧାରାବାହିକତା, ଜଳସ୍ରୋତ, ବ୍ୟବହାର, ପୁସ୍ତକାଦିର ନିର୍ଗମ, ପ୍ରସାର, ବିସ୍ତାର, ଅବିଚ୍ଛେଦ କାର୍ଯ୍ୟକରଣ, ଦ୍ରୁତଗାମୀ ଘୋଟକ, ପୁଷ୍କରିଣୀ ।

ପ୍ରବାହକ—ବିଂ. (ପ୍ର + ବହ୍ + କ.ଅକ) ପ୍ରକୃଷ୍ଟବହନକର୍ତ୍ତା, ଯାହା ଉତ୍ତମରୂପେ ବହନ କରିପାରେ, ( ପୁଂ.ବି ) ରାକ୍ଷସ, ଯାହା ତାପ ବା ବିଦ୍ୟୁତ୍‌କୁ ଏକସ୍ଥାନରୁ ଅନ୍ୟସ୍ଥାନକୁ ଚଳିବାରେ ବାଧା ଦିଏନାହିଁ ।

ପ୍ରବାହିକା—ସ୍ତ୍ରୀ. ବି. (ପ୍ର + ବହ୍ + ଣିଚ୍ + କ.ଅକ + ଆ) ଗ୍ରହଣୀରୋଗ, ଅତିସାରବିଶେଷ ।

ପ୍ରବାହିତ—ବିଂ. (ପ୍ର + ବହ୍ + ଣିଚ୍ + ମଁ.ତ) ଧାରାବାହିକ, ଧାରାରେ ବହିଯାଉଥିବା, ସ୍ରୋତରୂପେ ଚଳିତ, ପ୍ରବାହବିଶିଷ୍ଟ ।

ପ୍ରବାହିନୀ—ସ୍ତ୍ରୀ. ବି. (ପ୍ରବାହ + ଇନ୍ + ଈ) ସ୍ରୋତସ୍ୱିନୀ ନଦୀ, (ସ୍ତ୍ରୀ.ବିଂ) ପ୍ରବାହର ସ୍ତ୍ରୀଲିଙ୍ଗ ।

ପ୍ରବାହୀ—ବିଂ. (ପ୍ର + ବହ୍ + ଇନ୍)ଯାହା ବହିଯାଉଥାଏ, ପ୍ରବାହ ବିଶିଷ୍ଟ, ସ୍ରୋତସ୍ୱାନ୍, ଯେ ବୋହିନିଏ, ତରଳ, (ସ୍ତ୍ରୀ.ବି) (ପ୍ରବାହ + ଈ) ବାଲୁକା ।

ପ୍ରବାହୁ—ବି. ( ପ୍ର + ବାହୁ ) କହୁଣିର ନିମ୍ନଭାଗ ।

ପ୍ରବିଖ୍ୟାତ—ସ୍ତ୍ରୀ. ବି. (ପ୍ର + ବି + ଖ୍ୟା + ତ) ଅତିପ୍ରସିଦ୍ଧ ।

ପ୍ରବିଗ୍ରହ—ବି. (ପ୍ର + ବିଗ୍ରହ)ସନ୍ଧିଭଙ୍ଗ ।

ପ୍ରବିଚୟ—ପୁଂ. ବି. (ପ୍ର + ବି + ଚି + ଭା.ଅ) ଅନୁସନ୍ଧାନ, ପରୀକ୍ଷା ।

ପ୍ରବିଚାର—ପୁଂ.ବି. ଉତ୍ତମରୂପେ ବିଚାର, ସୁବିଚାର ।

ପ୍ରବିଚିନ୍ତକ—ବିଂ. ଭବିଷ୍ୟଦ୍‌ଦର୍ଶୀ, ଯେ ଭବିଷ୍ୟତ୍ ଭାବିକରି କର୍ମକରେ ।

ପ୍ରବିଚେତନ—କ୍ଲୀ. ବି. ପ୍ରକୃଷ୍ଟରୂପେ ଚେତନ, ଜ୍ଞାନ । [ହେବା ।

ପ୍ରବିଦାର—ପୁଂ. ବି. ଅବଦାରଣ, ବିଦୀର୍ଣ୍ଣ-

ପ୍ରବିଦାରଣ—କ୍ଲୀ. ବି. (ପ୍ର + ବି + ଦୃ + ଣିଚ୍ + ଅନ)ଯୁଦ୍ଧ, ଅବଦାରଣ, ଆକୀର୍ଣ୍ଣ ।

ପ୍ରବିପଳ—ପୁଂ.ବି. କାଳପରିମାଣବିଶେଷ, ବିପଳର ୬୦ ଭାଗର ଏକଭାଗ ।

ପ୍ରବିଭକ୍ତ—ବିଂ. (ପ୍ର + ବିଭକ୍ତ) ବହୁଧା ବିଭକ୍ତ, ବଣ୍ଟାଗ କରାଯାଇଥିବା ।

ପ୍ରବିଭାଗ—ପୁଂ. ବି. (ପ୍ର + ବି + ଭଜ୍ + ଅ) ପ୍ରକୃଷ୍ଟରୂପେ ବିଭାଗ, ଅଂଶ ।

ପ୍ରବିର—ପୁଂ. ବି. ପୀତକାଷ୍ଠ, ଚନ୍ଦନବିଶେଷ ।

ପ୍ରବିରଳ—ତ୍ରି.ବିଂ.ଅତ୍ୟଳ୍ପ, ଅତିସାମାନ୍ୟ, ଅତିଦୁଷ୍ପ୍ରାପ୍ୟ ।

ପ୍ରବିଲୟ—ପୁଂ. ବି. ସମ୍ପୂର୍ଣ୍ଣରୂପେ ଧ୍ୱଂସ, ସମ୍ପୂର୍ଣ୍ଣରୂପେ ତରଳିଯିବା ।

ପ୍ରବିଲୁପ୍ତ—ବିଂ. (ପ୍ର + ବି + ଲୁପ୍ + ମଁ. ତ) ମୁଷ୍ଟ, ଲୟପ୍ରାପ୍ତ, ବିଲୀନ ।

ପ୍ରବିବିକ୍ଷୁ—ତ୍ରି.ବିଂ. (ପ୍ର + ବିଶ୍ + ସନ୍ + ଉ) ପ୍ରବେଶ କରିବାରେ ଇଚ୍ଛୁକ ।

ପ୍ରବିଶ୍ଳେଷ—ପୁଂ. ବି. ପ୍ରକୃଷ୍ଟବିଶ୍ଳେଷ, ବିଚ୍ଛେଦ, ବିୟୋଗ । [ମନ୍ଥରା ।

ପ୍ରବିଷା—ସ୍ତ୍ରୀ. ବି. ଅତିବିଷା, ଅତୁଷୀ,

ପ୍ରବିଷ୍ଟ—ତ୍ରି. ବିଂ. (ପ୍ର + ବିଶ୍ + କ.ତ) କୃତପ୍ରବେଶ, ଯାହା ଭିତରକୁ ପ୍ରବେଶ କରିଅଛି, ନିଯୁକ୍ତ, ଅନ୍ତର୍ଗତ ।

ପ୍ରବିସ୍ତର—ପୁଂ.ବି. (ପ୍ର + ବି + ସ୍ତୃ + ଅ) ବିସ୍ତାର, ବିସ୍ତୃତ ।

ପ୍ରବୀଣ—ବିଂ. (ପ୍ର + ବୀଣ୍ + ଣିଚ୍ + ଅ) ଅଭିଜ୍ଞ, ବହୁଦର୍ଶୀ, ଦକ୍ଷ, ନିପୁଣ, କୁଶଳ, ପଟୁ, ପ୍ରାଚୀନ, ସୁପକ୍ୱ, ଚତୁର, ବାକ୍‌ପଟୁ, ବୃଦ୍ଧ, ବିଦ୍ୱାନ୍, ଆନନ୍ଦିତ, ସୁଖୀ ।

ପ୍ରବୀଣତା—ସ୍ତ୍ରୀ. ବି. ଦକ୍ଷତା, ନୈପୁଣ୍ୟ, ବହୁଦର୍ଶିତା, ବିଜ୍ଞତା ।

ପ୍ରବୀର—ପୁଂ. ବି. (ପ୍ର + ବୀର) ସୁଭଟ, ଉତ୍ତମଯୋଦ୍ଧା, ଭୌତ୍ୟମନୁଙ୍କ ପୁତ୍ରବିଶେଷ, ଚଣ୍ଡାଳ ପୁରୁଷବିଶେଷ, ଉତ୍ତମ, ମାହିଷ୍ମତୀ ପୁରୀରାଜ ନୀଳଧ୍ୱଜଙ୍କ ପୁତ୍ର, ବୀରମାନଙ୍କ ମଧ୍ୟରେ ଶ୍ରେଷ୍ଠ ।

ପ୍ରବୁଦ୍ଧ—ବିଂ. ( ପ୍ର + ବୁଧ୍ + କ.ତ ) ପଣ୍ଡିତ, ଜ୍ଞାନୀ, ଉଦ୍‌ବୁଦ୍ଧ, ଜାଗରିତ, ପ୍ରଫୁଲ୍ଲ, ବିକସିତ, ( ପୁଂ.ବି ) ଭଗବତୋକ୍ତ ଋଷଭଦେବଙ୍କର ଏକ ପୁତ୍ର ।

ପ୍ରବୃତ୍ତି—କ୍ଲୀ.ବି.(ପ୍ର + ବୃ + କ୍ୱିପ୍)ଅନ୍ନ ।

ପ୍ରବୃତ୍ତ—ବି.ବି°. (ପ୍ର + ବୃତ୍ + କ୍ତ) ପ୍ରବୃତ୍ତି ବିଶିଷ୍ଟ, ନିର୍ଦ୍ଧାରିତ, ଉଦ୍ୟତ, ଆରମ୍ଭ, ପ୍ରକୃଷ୍ଟବର୍ତ୍ତିନବିଶିଷ୍ଟ, ରତ, ଉତ୍ପନ୍ନ,ଚଳିତ, ନିଯୁକ୍ତ, (ବ) ପ୍ରବୃତ୍ତି-ଲକ୍ଷଣ ଧର୍ମ ବିଶେଷ, ପ୍ରବୃତ୍ତି ।

ପ୍ରବୃତ୍ତଚକ୍ର—ପୁଂ.ବ.ଶାସ୍ତ୍ରାଦିରେ ଅପ୍ରତିହତାଜ୍ଞା ।

ପ୍ରବୃତ୍ତହେବା—କ୍ରି.ନି.କୌଣସି କାର୍ଯ୍ୟ କରିବାକୁ ମନ ବଳାଇବା, ଉଦ୍ୟତ ହେବା ।

ପ୍ରବୃତ୍ତି—ସ୍ତ୍ରୀ. ବ. (ପ୍ର + ବୃତ୍ + ତି) ପ୍ରବାହ, କାର୍ଯ୍ୟାରମ୍ଭ ଆଗ୍ରହ, ଗୁଣକ, ବାର୍ତ୍ତା, ଉଦନ୍ତ, ପ୍ରବର୍ତ୍ତନ, ଅବନ୍ତୀ ପ୍ରଭୃତି ଦେଶ,ହସ୍ତିମଦ, ଯଜ୍ଞବିଶେଷ, ବ୍ୟାପାର, ଉତ୍ପତ୍ତି, ଗତି,ଇଚ୍ଛା, ସ୍ପୃହା, ନିଯୋଗ, କାମ୍ୟ କର୍ମର ଅନୁଷ୍ଠାନ ।

ପ୍ରବୃତ୍ତିଜ୍ଞ—ପୁଂ. ବ. ଚର ବିଶେଷ ବାର୍ତ୍ତିକ, ବାର୍ତ୍ତାସୂଚକ, ସମ୍ବାଦ ବାହକ, (ବି°) ଖବର ଜାଣିଥିବା (ବ୍ୟକ୍ତି) ।

ପ୍ରବୃଦ୍ଧ—ବି. ବି°. (ପ୍ର + ବୃଧ୍ + ତ) ପୂର୍ଣ୍ଣତାପ୍ରାପ୍ତ, ଭୟଙ୍କର, ଖୁବ୍ ବଡ଼, ବିସ୍ତୃତ, ଗମ୍ଭୀର, ପ୍ରାଚୀନ, ଅତିଶୟ ଗର୍ବସ୍ଫୀତ, ବହୁ ବିସ୍ତୃତ, ବଢ଼ିଥିବା, (ବ) ତରବାରିର ଏକ କସରତ, ରଜା ରଘୁଙ୍କର ଏକ ପୁତ୍ର ।

ପ୍ରବୃଦ୍ଧି—ସ୍ତ୍ରୀ.ବ. ଅତିଶୟ ବୃଦ୍ଧି,ବଢ଼ିବା, ବୃଦ୍ଧି, ପ୍ରବ, ଉନ୍ନତ ।

ପ୍ରବେକ—ବି.ବି°. (ପ୍ର + ବିଚ୍ + ମି.ଅ) ଉତ୍ତମ, ପ୍ରଧାନ, ଶ୍ରେଷ୍ଠ ।

ପ୍ରବେଗ—ପୁଂ.ବ. ପ୍ରବଳ ବେଗ, ଅତିଶୟ ବେଗ, (ବି°) ବେଗବିଶିଷ୍ଟ ।

ପ୍ରବେଗିତ—ବି. ବି°. ପ୍ରବେଗଯୁକ୍ତ, ତ୍ୱରାନ୍ୱିତ । [ ଯବ ।

ପ୍ରବେଟ—ବ. (ପ୍ର + ବଟ୍ + କ.ଅ)

ପ୍ରବେଣି(ଣୀ)—ସ୍ତ୍ରୀ.ବ. (ପ୍ରବେଣ + ଇ) କୁଥ, ବେଣୀ, କେଶବିନ୍ୟାସ, ମହାଭାରତୋକ୍ତ ନଦୀବିଶେଷ, (ପ୍ରବେଣି + ଈ)ଗଜପୃଷ୍ଠସ୍ଥିତ ଚିତ୍ରିତ କମ୍ବଳ ।

ପ୍ରବେତ୍ତା—ପୁଂ.ବ. (ପ୍ର + ଅଜ + ତୃ) ସାରଥି ।

ପ୍ରବେପ—ପୁଂ.ବ. (ପ୍ର + ବେପ୍ + ଅ) ଅତିଶୟ କମ୍ପ, ପ୍ରକମ୍ପ ।

ପ୍ରବେପକ—ପୁଂ. ବି°. (ପ୍ର + ବେପ୍ + ଅକ) କମ୍ପକ, ଯାହାର କମ୍ପ ହୁଏ ।

ପ୍ରବେପଥୁ—ପୁଂ. ବ. (ପ୍ର + ବେପ୍ + ଅଥୁ) କମ୍ପନ ।

ପ୍ରବେପନ—ପୁଂ. ବ. ଦୈତ୍ୟବିଶେଷ, (କ୍ଳୀ.ବ) କମ୍ପନ, ଆନ୍ଦୋଳନ ।

ପ୍ରବେପନୀୟ—ବି.ବି°. (ପ୍ର + ବେପ୍ + ଅନୀୟ) କମ୍ପନାର୍ହ ।

ପ୍ରବେପୀ—ପୁଂ. ବି°. (ପ୍ର + ବେପ୍ + ଇନ୍) କମ୍ପନଶୀଳ ।

ପ୍ରବେରିତ—ସ୍ତ୍ରୀ. ବି°. ଇତସ୍ତତଃ ପାତିତ

ପ୍ରବେଲ—ପୁଂ. ବ. (ପ୍ର + ବେଲ + ଅ) ହଳଦିଆ ମୁଗ, ସୁନାମୁଗ ।

ପ୍ରବେଶ—ପୁଂ. ବ. (ପ୍ର + ବିଶ୍ + ଭା.ଅ) ଅନ୍ତର୍ନିବେଶ, ଭିତରେ ପ୍ରବେଶ, କୌଣସି ବିଷୟରେ ବିଶେଷରୂପେ ନିବିଷ୍ଟହେବା, ଶାସ୍ତ୍ରାଦିରେ ଅଧିକାର ବା ପଟୁତା, (ଣ.ଅ)*ବାଟ, ପଥ ।

ପ୍ରବେଶକ—ପୁଂ ବି°.(ପ୍ର+ବିଶ୍ + କ.ଅକ) ପ୍ରବେଶକାରୀ, ଅଭ୍ୟନ୍ତରଗାମୀ, ଯାହା ପୂର୍ବରୁ ସୂଚନା ଦିଏ, ପ୍ରଥମେ ଯାହା ପ୍ରବିଷ୍ଟ କରାଏ, ପ୍ରବେଶ ପ୍ରାପକ, (ବ) ନାଟକରେ ପରବର୍ତ୍ତୀ ଅଙ୍କରେ ପ୍ରସ୍ତାବନା ସ୍ୱରୂପ ପାତ୍ରଦ୍ୱାରା କଥିତ ଅଂଶବିଶେଷ, ବିଷ୍କମ୍ଭକ ।

ପ୍ରବେଶକରିବା—କ୍ରି.ନି.ଭିତରକୁ ଯିବା ଉପସ୍ଥିତ ହେବା, ଅଭିନିବେଶପୂର୍ବକ ବିଚାର କରିବା ।

ପ୍ରବେଶନ—କ୍ଳୀ. ବ. (ପ୍ର + ବିଶ୍ + ଣ. ଅନ) ସିଂହଦ୍ୱାର, ପ୍ରଧାନ ଦ୍ୱାର, (ଭା. ଅନ) ପ୍ରବେଶ କରିବା, ପ୍ରବେଶ ସମ୍ପାଦନ, (ପ୍ର + ବିଶ୍ + ଭା.ଅନ) ପ୍ରବିଷ୍ଟ କରାଇବା, ପୂରାଇବା ।

ପ୍ରବେଶଦ୍ୱାର—ବ. କୌଣସି ସ୍ଥାନକୁ ଯିବାର ଦ୍ୱାର ।

ପ୍ରବେଶମାର୍ଗ—ବ. କୌଣସି ସ୍ଥାନକୁ ଯିବାର ବାଟ ।

ପ୍ରବେଶୟିତବ୍ୟ—ବି.ବି°.ପ୍ରବେଶ କରାଇବାର ଯୋଗ୍ୟ ।

ପ୍ରବେଶାଧିକାର—ବ. (ଭିତର)ଭିତରକୁ ପଶିବାର ସ୍ୱତ୍ୱ ବା ଦାବି ।

ପ୍ରବେଶିକା—ସ୍ତ୍ରୀ. ବ. (ପ୍ର + ବିଶ୍ + ଅକ + ଆ) ଯାହା ଦେଖାଇଲେ ପ୍ରବେଶ କରିବାକୁ ହୁଏ, ଟିକଟ, ଅନୁମତିପତ୍ର, ପ୍ରବେଶାର୍ଥ ଦେୟ ଧନ ।

ପ୍ରବେଶିତ—ବି.ବି°. (ପ୍ର + ବିଶ୍ + ଣିଚ୍ + ତ) ଭିତରକୁ ଭରତି କରାଯାଇଥିବା, ଯାହାକୁ ପ୍ରବେଶ କରାହୋଇଅଛି ।

ପ୍ରବେଶୀ—ପୁଂ.ବି°. (ପ୍ର + ବିଶ୍ + ଇନ୍) ପ୍ରବେଶ କରିଥିବା, ପ୍ରବେଶକାରୀ, ପ୍ରବେଶଯୁକ୍ତ ।

ପ୍ରବେଶ୍ୟ—ବି.ବି°. (ପ୍ର + ବିଶ୍ + ଯ) ପ୍ରବେଶାର୍ହ, ପ୍ରବେଶଯୋଗ୍ୟ ।

ପ୍ରବେଷ୍ଟ—ପୁଂ. ବି°. (ପ୍ର + ବେଷ୍ଟ + ଣ. ଅ) ବାହୁ, ଦକ୍ଷିଣବାହୁ, ବାହୁର ମଠଭାଗ, ହସ୍ତିଦନ୍ତ, ମାଂସ, ଗଜ ପୃଷ୍ଠାସ୍ତରଣ । [ ଦକ୍ଷିଣବାହୁ ।

ପ୍ରବେଷ୍ଟକ—ପୁଂ.ବ. (ପ୍ରବେଷ୍ଟ + କ)

ପ୍ରବେଷ୍ଟା—ପୁଂ.ବି°. (ପ୍ର + ବିଶ୍ + ତୃ) ପ୍ରବେଶକାରୀ, ଯେ ପ୍ରବେଶ କରେ ବା ପଶେ ।

ପ୍ରବେଷ୍ଟବ୍ୟ—ବି.ବି°.(ପ୍ର + ବିଶ୍ + ଣିଚ୍ + ତବ୍ୟ) ପ୍ରବେଶାର୍ହ, ପ୍ରବେଶର ଯୋଗ୍ୟ ।

ପ୍ରବୋଢ଼ା—ପୁଂ. ବି°.(ପ୍ର + ବହ୍ + ତୃ) ପ୍ରବହନକାରୀ ।

ପ୍ରବୋଧ—ବ.(ପ୍ର + ବୁଧ୍ + ଭା.ଅ)ଜାଗରଣ, ନିଦରୁ ଉଠିବା, ବୁଦ୍ଧି, ସାନ୍ତ୍ୱନା, ସତର୍କତା, ସାଚ୍ଛନ୍ଦ୍ୟ, ଜ୍ଞାନ, ମହାପୁରୁଷର ଅବସ୍ଥାନବିଶେଷ, ବିକାଶ, ଉପଦେଶ, ଉତ୍ତେଜନା ।

ପ୍ରବୋଧକ—ପୁଂ.ବି°. (ପ୍ର + ବୁଧ୍ + ଣିଚ୍ + କ.ଅକ) ଜାଗରଣକାରୀ, ଯେ ନିଦରୁ ଉଠାଏ, ଉଦ୍ଦୀପକ, ଶାନ୍ତ୍ୱନାକାରୀ,

ଉଦ୍ବୋଧକ, ଯେ ଚେତାଇ ଦିଏ, ଉପଦେଶକ ।

**ପ୍ରବୋଧନ(ନା)**—ବି. (ପ୍ର+ବୁଧ୍+ଣି. ଅନ+ଆ) ଜାଗରିତକରଣ, ନିଦରୁ ଉଠାଇବା, ଉଦ୍ବୋଧନ, ସାନ୍ତ୍ୱନାଦାନ, ଜ୍ଞାପନ, ବୁଝାଇବା, ସୁଗନ୍ଧ ଦ୍ରବ୍ୟର ପୂର୍ବଗନ୍ଧର ପୁନରୁତ୍ପାଦନ, ଜ୍ଞାନଦେବା ।

**ପ୍ରବୋଧ(ଧି)ନୀ**—ବି. (ପ୍ରବୋଧନ+ଈ) ଦୁଗଲଭ, ହରିଙ୍କର ଉତ୍ଥାନ ଏକାଦଶୀ, କାର୍ତ୍ତିକ ଶୁକ୍ଳୈକାଦଶୀ ।

**ପ୍ରବୋଧିତ**—ବି°. (ପ୍ର+ବୁଧ୍+ଣିଚ୍+ମି.ତ) ଜାଗରିତ, ଉଦ୍ବୋଧିତ, ବିକସିତ, ଜ୍ଞାପିତ, ଶାନ୍ତ୍ୱନାପ୍ରାପ୍ତ ।

**ପ୍ରବ୍ୟକ୍ତ**—ବି°. (ପ୍ର+ବି+ଅନ୍ଜ୍+ତ) ସ୍ଫୁଟ, ସ୍ପଷ୍ଟ ।

**ପ୍ରବ୍ୟକ୍ତି**—ସ୍ତ୍ରୀ. ବି. ପ୍ରମାଣ ।

**ପ୍ରବ୍ୟାଧ**—ପୁଂ.ବି.ବଳାଧିକ୍ୟ ଦ୍ୱାରା ନିକ୍ଷିପ୍ତ ଶରର ପତନ ଯେ ସ୍ଥାନରେ ହୁଏ, ତାଦୃଶ ସ୍ଥାନ ।

**ପ୍ରବ୍ରଜନ**—କ୍ଳୀ. ବି. ସନ୍ନ୍ୟାସ, ଗୃହତ୍ୟାଗ ପୂର୍ବକ ସନ୍ନ୍ୟାସ ଅବଲମ୍ବନ ।

**ପ୍ରବ୍ରଜିତ**—ପୁଂ.ବି. (ପ୍ର+ବ୍ରଜ୍+କ୍ତ) ବୌଦ୍ଧ ଭିକ୍ଷୁ, ପ୍ରବ୍ରଜ୍ୟା ଗ୍ରହଣକାରୀ ସନ୍ନ୍ୟାସୀ, ପରିବ୍ରାଜକ ।

**ପ୍ରବ୍ରଜିତା**—ସ୍ତ୍ରୀ. ବି. ତାପସୀ, ମାତାଙ୍କୀ, ଜଟାମାଂସୀ, ଗୋରକ୍ଷମୁଣ୍ଡୀ ।

**ପ୍ରବ୍ରଜ୍ୟା**—ସ୍ତ୍ରୀ.ବି(ପ୍ର+ବ୍ରଜ୍+ଯ+ଆ) ସନ୍ନ୍ୟାସ, ସନ୍ନ୍ୟାସାଶ୍ରମ, ପ୍ରବ୍ରଜନ, ପ୍ରବାସ ।

**ପ୍ରବ୍ରଜ୍ୟାବସିତ**—ପୁଂ. ବି°. (୫ତତ୍) ସନ୍ନ୍ୟାସ ଧର୍ମରୁ ଭ୍ରଷ୍ଟ ।

**ପ୍ରବ୍ରଶ୍ଚନ**—ବି. କାଷ୍ଠ ଛେଦନାସ୍ତ୍ରବିଶେଷ, କୁଠାର, ଟାଙ୍ଗିଆ ।

**ପ୍ରବ୍ରସ୍କ**—ବି. କର୍ତ୍ତନ, କଟା ।

**ପ୍ରବ୍ରାଜ**—ପୁଂ.ବି. (ପ୍ର+ବ୍ରଜ୍+ଅଧି.ଅ) ଅତ୍ୟନ୍ତ ନିମ୍ନଦେଶ, (ଭା.ଅ)ସନ୍ନ୍ୟାସ ।

**ପ୍ରବ୍ରାଜନ**—କ୍ଳୀ. ବି. (ପ୍ର+ବ୍ରଜ୍+ଣିଚ୍ ଅନ) ନିର୍ବାସନ ।

**ପ୍ରବ୍ରାଜିତ**—ବି°. (ପ୍ର+ବ୍ରଜ୍+ଣିଚ୍+ମି.ତ) ନିର୍ବାସିତ ।

**ପ୍ରଶଂସନ**—କ୍ଳୀ.ବି. (ପ୍ର+ଶନ୍ସ୍+ଅନ) ଗୁଣ କୀର୍ତ୍ତନ ଦ୍ୱାରା ସ୍ତୁତି, ସ୍ତବ, ଧନ୍ୟବାଦ ।

**ପ୍ରଶଂସନୀୟ**—ତ୍ରି. ବି°. (ପ୍ର+ଶନ୍ସ୍+ଅନୀୟ) ପ୍ରଶଂସାର ଯୋଗ୍ୟ, ସୁଖ୍ୟାତିଭାଜନ ।

**ପ୍ରଶଂସା**—ସ୍ତ୍ରୀ. ବି. (ପ୍ର+ଶନ୍ସ୍+ଭା.ଅ +ଆ)ପ୍ରଶଂସନ, ବର୍ଣ୍ଣନା, ସ୍ତବ,ଧନ୍ୟବାଦ, ସ୍ତୋତ୍ର, ସ୍ତୁତି, ନୁତି ।

**ପ୍ରଶଂସାପତ୍ର**—ଗ୍ରା. ବି. ସାର୍ଟିଫିକେଟ୍ ।

**ପ୍ରଶଂସାବାଦ**—ବି. (୬ତତ୍) ସ୍ତୁତିବାଦ, ଗୁଣକୀର୍ତ୍ତନ । [ ଦେଖ ।

**ପ୍ରଶଂସାଭାଜନ**--ବି°.(୬ତତ୍) ପ୍ରଶଂସନୀୟ

**ପ୍ରଶଂସିତ**—ତ୍ରି. ବି°. (ପ୍ର+ଶନ୍ସ୍+ମି. ତ)ଯାହାର ଗୁଣ କୀର୍ତ୍ତନ କରାଯାଇଅଛି, ଯାହାକୁ ପ୍ରଶଂସା କରାଯାଇଅଛି ।

**ପ୍ରଶଂସିତବ୍ୟ**—ବି°. (ପ୍ର+ଶନ୍ସ୍+ମି. ତବ୍ୟ) ପ୍ରଶଂସାର୍ହ, ପ୍ରଶଂସିତ ହେବାର ଯୋଗ୍ୟ ।

**ପ୍ରଶଂସୀ**—ପୁଂ.ବି°. (ପ୍ର+ଶନ୍ସ୍+ଇନ୍) ଯାହାକୁ ପ୍ରଶଂସା କରାହୋଇଅଛି, ପ୍ରଶଂସାର୍ହ ।

**ପ୍ରଶଂସୋପମା**—ସ୍ତ୍ରୀ.ବି. କାବ୍ୟାଦର୍ଶୋକ୍ତ ଅର୍ଥାଲଙ୍କାରବିଶେଷ ।

**ପ୍ରଶଂସ୍ୟ**—ତ୍ରି. ବି°.(ପ୍ର+ଶନ୍ସ୍+ମି. ଯ) ପ୍ରକର୍ଷ ରୂପେ ସ୍ତୁତ୍ୟ, ପ୍ରଶଂସାର ଯୋଗ୍ୟ । [ ନଦୀ ।

**ପ୍ରଶଦ୍ବ**—ପୁଂ.ବି.ସମୁଦ୍ର, (ସ୍ତ୍ରୀ.ବି) ପ୍ରଶଦ୍ବରୀ

**ପ୍ରଶମ**—ପୁଂ. ବି. ( ପ୍ର+ଶମ+ଭା.ଅ ) ବୈରାଗ୍ୟ, ନାଶ, ଅବସାଦ, ସମତା, ଉପଶମ, ଶାନ୍ତ, ନିବୃତ୍ତି, ରୁଦ୍ରଦେବଙ୍କ ପୁତ୍ର,(ପୁଂ.ବି°.କ.ଅ)ଶାନ୍ତ, ଭଦ୍ର,ନମ୍ର ।

**ପ୍ରଶମନ**—କ୍ଳୀ.ବି. (ପ୍ର+ଶମ୍+ଣିଚ୍+ଭା.ଅନ)ବିଶ୍ରାମ,ନିବାରଣ, ଅସ୍ତ୍ରପ୍ରହାର, ମାରଣ, ବଧ, ଶମତା, ପ୍ରଶାନ୍ତ,କ୍ଷମତା, ପ୍ରତିପାଦନ, ଦାନ,ସ୍ଥିରୀକରଣ, ଶତ୍ରୁହତଙ୍କର ଏକ ଭାଗ ।

**ପ୍ରଶମରତ**—ବି. ଜୈନଗ୍ରନ୍ଥ ।

**ପ୍ରଶମା**—ସ୍ତ୍ରୀ. ବି. ଅପ୍ସରୋବିଶେଷ ।

**ପ୍ରଶମିତ**—ବି°(ପ୍ର+ଶମି+ମି.ତ)ନିବାରିତ, ସୁସ୍ଥ, ପ୍ରଶାନ୍ତ ।

**ପ୍ରଶସ୍ତ**—ତ୍ରି. ବି°. (ପ୍ର+ଶନ୍ସ୍+ମି.ତ) ମଙ୍ଗଳମୟ, ନିପୁଣ, ପ୍ରସାରଯୁକ୍ତ,ଠିକ୍, କ୍ଷେମ, ପ୍ରଶଂସନୀୟ,(ବି)ପାଷାଣବିଶେଷ, ଘାସବିଶେଷ ।

**ପ୍ରଶସ୍ତବ୍ୟ**—ତ୍ରି°ବି°. ପ୍ରଶଂସାର ଯୋଗ୍ୟ ।

**ପ୍ରଶସ୍ତାଦ୍ରି**—ବି. ମଧ୍ୟପ୍ରଦେଶର ପର୍ବତବିଶେଷ ।

**ପ୍ରଶସ୍ତି**—ସ୍ତ୍ରୀ.ବି(ପ୍ର+ଶନ୍ସ୍+ତି)ଶ୍ରେଷ୍ଠତା, ପଂକ୍ତି, ଲେଖାର ଶିରୋନାମା,ପ୍ରଶଂସା, ସ୍ତୁତି, ପ୍ରଶଂସା ସୂଚକ ଅନୁଶାସନ,ରାଜବଂଶର ଓ ରାଜାଙ୍କ କୀର୍ତ୍ତିଆଦିର ବର୍ଣ୍ଣନାତ୍ମକ ଏକପ୍ରକାର ଆଜ୍ଞାପତ୍ର, କୀର୍ତ୍ତନ, କେଳି, ପ୍ରେକ୍ଷଣ, ଗୁହ୍ୟଭାଷଣ,ସଂକଳ୍ପ, ଅଧ୍ୟବସାୟ,କ୍ରିୟାନିବୃତ୍ତି, ସ୍ମରଣ, ଏହି ଅଷ୍ଟବିଧ ମୈଥୁନ ଭାବ, ବର୍ଣ୍ଣନା, ଆଶୀର୍ବାଦ, ପ୍ରଶଂସାସୂଚକ କବିତା ।

**ପ୍ରଶସ୍ୟ**—ତ୍ରି.ବି°. (ପ୍ର+ଶନ୍ସ୍+ମି.ଯ) ପ୍ରଶଂସନୀୟ, ଶ୍ରେଷ୍ଠ, ଉତ୍ତମ, ପ୍ରଶଂସାର ଯୋଗ୍ୟ । [ ପ୍ରଶଂସନ ।

**ପ୍ରଶସ୍ୟତା**—ବି. ଉତ୍କୃଷ୍ଟତା, ଶ୍ରେଷ୍ଠତା,

**ପ୍ରଶାଖ**—ତ୍ରି. ବି°. ବିସ୍ତୃତ ଶାଖାଯୁକ୍ତ, ହାତଗୋଡ଼ ଯୁକ୍ତ ହେବା ଅବସ୍ଥାଯୁକ୍ତ (ଭ୍ରୂଣ)—ଜନ୍ମ ଗଠନର ପଞ୍ଚମାବସ୍ଥା ।

**ପ୍ରଶାଖା**—ସ୍ତ୍ରୀ.ବି. (ପ୍ର+ଶାଖା)ଅଗ୍ରଶାଖା, ବଡ଼ ଡ଼ାଳରୁ ବାହାରିଥିବା ଗ୍ରୋଟଡ଼ାଳ ।

**ପ୍ରଶାନ୍ତ**—ତ୍ରି. ବି°. (ପ୍ର+ଶମ୍+କ୍ତ) ପ୍ରକୃଷ୍ଟ ସମତାବିଶିଷ୍ଟ, ସ୍ଥିର,ଅବ୍ୟାକୁଳ, ନିବୃତ୍ତ, ସମାପ୍ତ, ମୁକ୍ତ, ଅଚଳ, ବଶୀକୃତ, ମୃତ ।

**ପ୍ରଶାନ୍ତଗର୍ଭ**—ତ୍ରି. ବି°. ସ୍ଥିରଭାବରେ ଭ୍ରମଣକାରୀ,(ପୁଂ.ବି)ଦେବତା ବିଶେଷ

**ପ୍ରଶାନ୍ତଚିତ୍ତ**—ବି. ( କ.ଧା ) ଅବ୍ୟାକୁଳଚିତ୍ତ, (ପୁଂ.ବି°-ବ.ବ୍ରୀ) ଯାହାର ଚିତ୍ତ ଅବ୍ୟାକୁଳ ।

**ପ୍ରଶାନ୍ତଚେଷ୍ଟ**--ପୁଂ,ବି°.(ବ.ବ୍ରୀ)ବ୍ୟାପାରଶୂନ୍ୟ, ସ୍ଥିର, ନିଶ୍ଚେଷ୍ଟ ।

ପ୍ରଶାନ୍ତବାଧ—ବିଂ. ( ବ.ବ୍ରୀ ) ଯାହାର ସମସ୍ତ ବାଧା ଦୂରୀକୃତ ହୋଇଅଛି ।

ପ୍ରଶାନ୍ତମହାସାଗର--ଗ୍ରା.ବି. ଆସିଆ ମହାଦେଶର ପୂର୍ବ ଓ ଆମେରିକାର ପଶ୍ଚିମରେ ଅବସ୍ଥିତ ମହାସମୁଦ୍ର ବିଶେଷ

ପ୍ରଶାନ୍ତାତ୍ମା—ପୁଂ.ବି. ମହାଦେବ, (ବିଂ-ବ.ବ୍ରୀ) ସ୍ଥିରମନାଃ, ଯାହାର ହୃଦୟ ଦୁଃଖାଦିରେ ବିଚଳିତ ହୁଏ ନାହିଁ ।

ପ୍ରଶାନ୍ତି—କ୍ଲୀ. ବି. ପ୍ରକୃଷ୍ଟ ଶାନ୍ତି, ପୂର୍ଣ୍ଣଶାନ୍ତି, ସ୍ଥିରତା ।

ପ୍ରଶାସନ—ବି. (ପ୍ର+ଶାସନ)ରାଜବିଧି, ଆଇନ୍, କର୍ତ୍ତବ୍ୟ ସମ୍ବନ୍ଧେ ଶିକ୍ଷାଦାନ, ରାଜ୍ୟଶାସନ ।

ପ୍ରଶାସିତ—ବିଂ. (ପ୍ର+ଶାସିତ)ଉତ୍ତମରୂପେ ଶାସିତ,ବ୍ୟବସ୍ଥା ଦ୍ୱାରା ପ୍ରକାଶିତ, ବିଧିବଦ୍ଧ ।

ପ୍ରଶାସିତା—ବି ଓ ବିଂ. ପୁଂ.(ପ୍ର+ଶାସ୍ କ.ତୃ)ଶାସନକାରୀ, ନିୟନ୍ତା, ମିତ୍ରପରିପାଳକ, ଋତ୍ୱିକ୍, ପୁରୋହିତ, ରାଜା, ପରାମର୍ଶଦାତା ।

ପ୍ରଶାସ୍ତା—ପୁଂ. ବିଂ. (ପ୍ର+ଶାସ୍+କ. ତୃ) ଶାସକ, ଶାସନକର୍ତ୍ତା, (ପୁଂ.ବି) ଋତ୍ୱିକ୍, ପୁରୋହିତ ।

ପ୍ରଶିଥିଳ—ବି. ବିଂ. ଅତ୍ୟନ୍ତ ଶିଥିଳ ।

ପ୍ରଶିଷ୍ଟି—ସ୍ତ୍ରୀ. ବି.ଆଦେଶ, ଅନୁଶାସନ ।

ପ୍ରଶିଷ୍ୟ—ପୁଂ. ବି. (ପ୍ର+ଶିଷ୍ୟ)ଶିଷ୍ୟର ଶିଷ୍ୟ, ନାତିଶିଷ୍ୟ ।

ପ୍ରଶୁଦ୍ଧି—ସ୍ତ୍ରୀ. ବି. ବିଶୁଦ୍ଧି ।

ପ୍ରଶ୍ନ—ବି. ( ପ୍ରଚ୍ଛ୍+ଭା.ନ) ପଚାରିବା, ଜିଜ୍ଞାସା,ପୃଚ୍ଛା, ଅଭିଯୋଗ,ଉପନିଷଦ୍ବିଶେଷ,ପରୀକ୍ଷାର୍ଥୀମାନଙ୍କୁ ସମାଧାନାର୍ଥ ଦିଆଯିବା ବିଷୟ ।

ପ୍ରଶ୍ନକରିବା--ଗ୍ରା. କ୍ରି. ପଚାରିବା ।

ପ୍ରଶ୍ନକର୍ତ୍ତା—ବି ଓ ବିଂ. ଜିଜ୍ଞାସୁ, ପରୀକ୍ଷକ

ପ୍ରଶ୍ନଚିହ୍ନ—ଗ୍ରା. ବି. ଯେଉଁ ଚିହ୍ନ ପ୍ରଶ୍ନସୂଚକ ବାକ୍ୟପରେ ବ୍ୟବହୃତ ହୁଏ, (? ଏହିପରି ଚିହ୍ନ) ।

ପ୍ରଶ୍ନବିବାକ—ପୁଂ.ବି.ତର୍କବିତର୍କ,ବିତଣ୍ଡା

ପ୍ରଶ୍ନସମାଧାନ—ବି.(୬ତତ୍)ପ୍ରଶ୍ନର ନିଶ୍ଚିତ ଉତ୍ତର ଦେବା ।

ପ୍ରଶ୍ନୋତ୍ତର—କ୍ଲୀ. ବି.( ଦ୍ୱନ୍ଦ୍ୱ ) ପ୍ରଶ୍ନ ଓ ଉତ୍ତର,(୬ତତ୍)ପ୍ରଶ୍ନର ଉତ୍ତର ଦେବା, ଶବ୍ଦାଳଙ୍କାର ଭେଦ ।

ପ୍ରଶ୍ରୟ—ପୁଂ. ବି. ( ପ୍ର+ଶ୍ରି+ଭା.ଅ ) ପ୍ରଣୟ, ସ୍ନେହ, ସମ୍ମାନ ସୂଚକ ଭଙ୍ଗୀ, ଗେଲ, ଯତ୍ନ, ବିଶ୍ୱାସ,ବିନୟ,ଆଦର, (ର୍ମି.ଅ) ଆଶ୍ରୟ,ଠେକ, ଆଶ୍ରୟ ସ୍ଥାନ ।

ପ୍ରଶ୍ରୟଣ--କ୍ଲୀ.ବି.ସୌଜନ୍ୟ, ଶିଷ୍ଟାଚରଣ

ପ୍ରଶ୍ରୟୀ—ପୁଂ.ବିଂ. ଶିଷ୍ଟ, ଶାନ୍ତ,ସୁଜନ ।

ପ୍ରଶ୍ରିତ—କ୍ରି. ବିଂ. (ପ୍ର+ଶ୍ରି+କ.ତ) ବିନୀତ, ଶିଷ୍ଟ, ଭଦ୍ର,ଆଦୃତ,ସ୍ନେହପ୍ରାପ୍ତ

ପ୍ରଶ୍ଳଥ—କ୍ରି. ବିଂ. (ପ୍ର+ଶ୍ଳଥ୍+କ.ଅ) ଶିଥିଳ, ଢିଲା,ବିଶ୍ଳିଷ୍ଟ, ବିଚ୍ଛିନ୍ନ ।

ପ୍ରଶ୍ଳିଷ୍ଟ—ବିଂ. ( ପ୍ର+ଶ୍ଳିଷ୍+ର୍ମି.ତ ) ଗୁଡ଼ିଆ ହୋଇଥିବା, ବଳାଯାଇଥିବା, ଯୁକ୍ତିଯୁକ୍ତ, ସନ୍ଧିପ୍ରାପ୍ତ, (ବି) ସ୍ୱରସନ୍ଧି, ସ୍ୱରସନ୍ଧିଦ୍ୱାରା ନିଷ୍ପନ୍ନ ସ୍ୱର ।

ପ୍ରଶ୍ଳେଷ—ପୁଂ. ବି. ଘନସନ୍ନିବେଶ,ସମ୍ମିଳନ, ଉଚ୍ଚାରଣ ଭେଦରେ ସ୍ୱର ସଂଯୋଗ, ସଂଯୁକ୍ତି, ସ୍ୱରସନ୍ଧି ।

ପ୍ରଶ୍ୱସିତବ୍ୟ—କ୍ରି. ବିଂ. ପ୍ରଶ୍ୱାସପକାଇବାର ଯୋଗ୍ୟ ।

ପ୍ରଶ୍ୱା—ବି.ପୁନର୍ବସୁ ନକ୍ଷତ୍ର ପୁଞ୍ଜର ଉଜ୍ଜ୍ୱଳତମ ତାରା, ଏହାର ଅନ୍ୟନାମ ଲୁବ୍ଧକ

ପ୍ରଶ୍ୱାସ—ପୁଂ.ବି. (ପ୍ର+ଶ୍ୱସ୍+ଅ)କୋଷ୍ଠ ବାୟୁର ବହିର୍ନିଃସରଣ, ନାସା ପ୍ରବିଷ୍ଟ ବାୟୁ,ନାସିକା ଦ୍ୱାରା ବାୟୁର ଗ୍ରହଣ

ପ୍ରଷ୍ଟ—ବି. ତିନିଟି ଘୋଡ଼ା ବା ବଳଦ ଲଗିଥିବା ଗାଡ଼ିରେ ଆଗରେ ଯେଉଁ ଘୋଡ଼ା ବା ବଳଦ ଲଗିଥାଏ, (ବିଂ) ପାର୍ଶ୍ୱସ୍ଥ ।

ପ୍ରଷ୍ଟବ୍ୟ—କ୍ରି. ବିଂ. (ପ୍ରଚ୍ଛ୍+ଶ.ତବ୍ୟ) ଜିଜ୍ଞାସିତବ୍ୟ,ପରାମର୍ଶର ଯୋଗ୍ୟ,ପଚାରିବାର ଯୋଗ୍ୟ । [ ଜିଜ୍ଞାସୁ ।

ପ୍ରଷ୍ଟା—ପୁଂ.ବିଂ.(ପ୍ରଚ୍ଛ୍+ତୃ)ପ୍ରଶ୍ନକାରକ,

ପ୍ରଷ୍ଠ—କ୍ରି. ବିଂ. ( ପ୍ର+ସ୍ଥା+କ.ଅ ) ଅଗ୍ରଗାମୀ, ଆଗୁଆ, ପ୍ରଧାନ,(ବି)ନେତା

ପ୍ରଷ୍ଠବାହ—ପୁଂ. ବି.ହଳରେ ମଣ ହେଉଥିବା ବଳଦ ।

ପ୍ରଷ୍ଠୌହୀ—ସ୍ତ୍ରୀ.ବି. ପଢ଼ୁଆ ଆଦ୍ୟ ଗାଈ, ବାଳ ଗର୍ଭିଣୀ, ପ୍ରଥମ ଗର୍ଭବତୀ ଗାଈ ।

ପ୍ରସଂଖ୍ୟା—ସ୍ତ୍ରୀ. ବି. (ପ୍ର+ସଂଖ୍ୟା) ସବୁ ସଂଖ୍ୟାର ଯୋଗ, ମୋଟ, ଚିନ୍ତା,ଅନୁଧ୍ୟାନ ।

ପ୍ରସଂଖ୍ୟାନ—କ୍ଲୀ. ବି. (ପ୍ର+ସମ୍+ଖ୍ୟା ଅନ) ଋଣାଦିର ପରିଶୋଧ, ଗଣନ, ସମ୍ୟକ୍ ଜ୍ଞାନ, ଆତ୍ମାନୁସନ୍ଧାନ, ଧ୍ୟାନ, ପୂର୍ବଘଟନାମାନଙ୍କ ସମ୍ବନ୍ଧରେ ମନରେ ଆଲୋଚନା, ପ୍ରସିଦ୍ଧି, ଖ୍ୟାତି, (ବିଂ) ସମ୍ୟକ୍ ଜ୍ଞାନଯୁକ୍ତ, ଅସଂଖ୍ୟ ।

ପ୍ରସଂଘ—ବି. (ପ୍ର+ସଂଘ)ଭିଡ଼, ବହୁଜନ ସମାଗମ ।

ପ୍ରସକ୍ତ—ବିଂ. ( ପ୍ର+ସନ୍ଜ୍+କ.ତ ) ଅବିରତ, ପ୍ରାପ୍ତ, ଅନୁରକ୍ତ, ନିଯୁକ୍ତ, ସ୍ୱଚ୍ଛ, ସଂଶ୍ଳିଷ୍ଟ, ପ୍ରସ୍ତାବିତ, ବ୍ୟବହୃତ, ବିସ୍ତୃତ, ଉତ୍ସୁକ,ସନ୍ନିକଟବର୍ତ୍ତୀ,ଢିଳଶିତ ।

ପ୍ରସକ୍ତି—ସ୍ତ୍ରୀ. ବି. (ପ୍ର+ସନ୍ଜ୍+ତି) ପ୍ରସଙ୍ଗ, ଅନୁମତି, ଆପତ୍ତି, ବ୍ୟାପ୍ତି, ଅନୁରକ୍ତି,ପ୍ରଣୟ,ପ୍ରେମ,ମିଳନ,ଉତ୍ସାହ, ଅଧ୍ୟବସାୟ,ଉପାର୍ଜନ,ନିଯୁକ୍ତି,ପ୍ରସନ୍ନତା, ସଂଶ୍ଳେଷ, ପ୍ରାପ୍ତି ।

ପ୍ରସଙ୍ଗ—ପୁଂ. ବି. ( ପ୍ର+ସନ୍ଜ୍+ଅ ) ପ୍ରକୃଷ୍ଟ ସଙ୍ଗ, ବ୍ୟାପ୍ତିରୂପ ସମ୍ବନ୍ଧ, ସଙ୍ଗତି, ଅନୁମତି, ଅନୁରକ୍ତତ୍ୱ, ମୈଥୁନ, ସକ୍ତି, ବ୍ୟାପ୍ତି,ପ୍ରସ୍ତାବ,ବିଚାରାଧୀନ ବିଷୟ, ଅନ୍ତିତ ବାକ୍ୟ ବା ପଦ, ଗୁପ୍ତ ବିଷୟର ପ୍ରକାଶ,ନାଟକର ଅବାନ୍ତର ଘଟନା,ସୁବିଧା,ଆପତ୍ତି,ଉଲ୍ଲେଖ, ଅବିବେଧ ସଙ୍ଗମ, ଘଟନା, ପିତା ଓ ମାତାଙ୍କର ନାମ ଉଲ୍ଲେଖ, ଅବିଚ୍ଛେଦ ସମ୍ପର୍କ ।

ପ୍ରସଙ୍ଗକ୍ରମେ—ଗ୍ରା. କ୍ରି. ବିଂ. କୌଣସି କଥା ପଡ଼ୁ ପଡ଼ୁ କୌଣସି ବିଷୟର ଉଲ୍ଲେଖହେବା, ସମ୍ପର୍କରେ ।

ପ୍ରସଙ୍ଗତଃ—କ୍ରି. ବିଂ. ପ୍ରସଙ୍ଗ କ୍ରମେ ।

ପ୍ରସଙ୍ଗବିଧ୍ୱଂସ—ବି.(୬ତତ୍) ମାନମୋକ୍ଷ-

ନଇରଚଟଗୋଟି ଉପାୟ ମଧ୍ୟରୁ ଗୋଟିଏ, ମିଥ୍ୟା ଭୟ ଦେଖାଇ ମାନନୀର ମନରେ ଭୟ ଉପୁଜାଇ ତାହାର ଅଭିମାନକୁ ଛଡ଼ାଇବା ।

ପ୍ରସଙ୍ଗବନବୃତ୍ତି—ବି. (ନାଟକ) ଭବିଷ୍ୟତରେ କୌଣସି ଘଟଣା ପୁଣି ଥରେ ନ ଘଟିବା ।

ପ୍ରସଙ୍ଗାନ୍ତର—ବି. (କ.ଧା)ଅନ୍ୟବିଷୟ, ଅନ୍ୟସମ୍ପର୍କ ।

ପ୍ରସଙ୍ଗୀ—ବିଂ.(ପ୍ରସଙ୍ଗ+ଇନ୍) ପ୍ରସଙ୍ଗଯୁକ୍ତ, ଅନୁରକ୍ତ, ଅପ୍ରଧାନ, ସାମୟିକ ଘଟିବା, ଭୋଗିବା ।

ପ୍ରସଙ୍ଗେ—କ୍ରି. ବି. ବିଂ. ପ୍ରସଙ୍ଗକ୍ରମେ ।

ପ୍ରସଙ୍ଘ—ବିଂ. (ପ୍ର+ସଙ୍ଘ) ଶ୍ରେଣୀଭେଦ ।

ପ୍ରସଜ୍ୟ—ପୁଂ.ବି.(ନାଟକ)ପ୍ରାପ୍ତିର ନିଷେଧ

ପ୍ରସଜ୍ୟପ୍ରତିଷେଧ—ପୁଂ. ବି. ଅତ୍ୟନ୍ତ ଅଭାବ, ପ୍ରାପ୍ତିର ନିଷେଧ ।

ପ୍ରସଞ୍ଜନ—ବି. ( ପ୍ର+ସନ୍ଜ୍+ଭା.ଅନ ) ଅବସର ଦାନ, ପ୍ରସଙ୍ଗକରଣ ।

ପ୍ରସତ୍ତି—ସ୍ତ୍ରୀ. ବି. (ପ୍ର+ସଦ୍+ତି) ପ୍ରସନ୍ନତା, ନୈର୍ମଲ୍ୟ, ସ୍ୱଚ୍ଛତା ।

ପ୍ରସଦ୍ମ—ପୁଂ. ବି. (ପ୍ର + ସଦ୍ + କ୍ୱନିପ୍) ଧର୍ମ, ପଜାପତି ।

ପ୍ରସହ୍ୱରା—ସ୍ତ୍ରୀ. ବି. ପ୍ରତିପତ୍ତି ।

ପ୍ରସନ୍ନ—ବି, ବିଂ. (ପ୍ର+ସଦ୍+କ.ତ) ମନୋହର, ସତ୍ୟ, ଠିକ୍, ଯଥାର୍ଥ, ହୃଷ୍ଟ, ସ୍ୱଚ୍ଛ, ଉଜ୍ଜ୍ୱଳ, ସୁବୋଧମୟ, ଶାନ୍ତ, ନିର୍ମଳ, ସନ୍ତୁଷ୍ଟ, ପ୍ରଫୁଲ୍ଲ, ଅନୁକୂଳ, (ପୁଂ, ବି) ମହାଦେବ ।

ପ୍ରସନ୍ନଚିତ୍ତ—ପୁଂ ବିଂ. (ବ.ବ୍ରୀ) ପ୍ରଫୁଲ୍ଲମନାଃ, ଯାହାର ମନ ଆନନ୍ଦିତ ଅଛି ।

ପ୍ରସନ୍ନତା—ସ୍ତ୍ରୀ. ବି. (ପ୍ରସନ୍ନ+ତା ଅନୁଗ୍ରହ, ପ୍ରସାଦ,ହର୍ଷ,ସନ୍ତୋଷ. ପ୍ରଫୁଲ୍ଲତା, ସ୍ୱଚ୍ଛତା, ନିର୍ମଳତା, ଉଜ୍ଜ୍ୱଳତା ।

ପ୍ରସନ୍ନତ୍ୱ—ସ୍ତ୍ରୀ. ବି. ପ୍ରସନ୍ନତା ଦେଖ ।

ପ୍ରସନ୍ନବଦନ—ପୁଂ.ବିଂ. (ବ.ବ୍ରୀ) ହର୍ଷମୁଖ,ଯାହାର ମୁଖ ସର୍ବଦା ପ୍ରଫୁଲ୍ଲଥାଏ, (ସ୍ତ୍ରୀ) ପ୍ରସନ୍ନବଦନା ।

ପ୍ରସନ୍ନମୂର୍ତ୍ତି—ବିଂ, ( ବ.ବ୍ରୀ ) ଯାହାର ଚେହେରା, ପ୍ରଫୁଲ୍ଲ, ସୁନ୍ଦର ।

ପ୍ରସନ୍ନସଲିଲ—ବି. (ବ,ବ୍ରୀ)ନିର୍ମଳ ଜଳପୂର୍ଣ୍ଣ ।

ପ୍ରସନ୍ନସଲିଲା—ସ୍ତ୍ରୀ. ବିଂ. (ବ.ବ୍ରୀ) ସ୍ୱଚ୍ଛତୋୟା, ନିର୍ମଳ ଜଳବିଶିଷ୍ଟା ।

ପ୍ରସନ୍ନା—ସ୍ତ୍ରୀ. ବି. (ପ୍ରସନ୍ନ + ଆ)ସନ୍ତୋଷ ବିଧାନ, ପ୍ରଶମନ, ମଦ୍ୟ ବିଶେଷ,(ସ୍ତ୍ରୀ. ବିଂ) ପ୍ରସନ୍ନର ସ୍ତ୍ରୀଲିଙ୍ଗ ।

ପ୍ରସନ୍ନାତ୍ମା—ବିଂ. (ବ,ବ୍ରୀ)ନିର୍ମଳହୃଦୟ. ପ୍ରସନ୍ନାନ୍ତଃକରଣ, (ପୁଂ.ବି) ବିଷ୍ଣୁ ।

ପ୍ରସନ୍ନାକ୍ଷ—ପୁଂ. ବି. ଅଶ୍ୱର ନେତ୍ରରୋଗ ବିଶେଷ ।

ପ୍ରସନ୍ନେ—କ୍ରି.ବି.ବିଂ. ପ୍ରକାଶ୍ୟରୂପରେ, ପ୍ରସନ୍ନତାସହକାରେ, ଆନନ୍ଦିତହୋଇ ।

ପ୍ରସନ୍ନେରା—ସ୍ତ୍ରୀ. ବି. ( ପ୍ରସନ୍ନା+ଇରା ) ମଦିରା ।

ପ୍ରସଭ—ବି. (ବ.ବ୍ରୀ)ବଳାତ୍କାର,ଜବରଦସ୍ତି. ବଳପ୍ରୟୋଗ, (କ୍ରି.ବିଂ) ହଠାତ୍, ବଳପୂର୍ବକ, ଅଧିକ ପରିମାଣରେ ।

ପ୍ରସଭହରଣ—କ୍ଲୀ. ବି. ବଳପୂର୍ବକ ହରଣ, ଜବରଦସ୍ତି, ଡକାଏତି ।

ପ୍ରସମୀକ୍ଷଣ—ବି.(ପ୍ର + ସମୀକ୍ଷଣ)ବିବେଚନା, ଉତ୍ତମରୂପେ ବିଚାର କରିବା, ତର୍କବିତର୍କ ।

ପ୍ରସୟନ—କ୍ଲୀ. ବି. (ପ୍ର+ସି+ଅନ) ବନ୍ଧନ ସାଧନ ତନ୍ତୁ, ଜାଲ ।

ପ୍ରସର—ପୁଂ.ବି. (ପ୍ର+ସୃ+ଅ) ତନ୍ତୁବ୍ରଣ ବିଟପାଦିରେ ବିସର୍ପଣ, ପ୍ରଣୟ. ବେଗ, ସମୂହ, ବିସ୍ତାର.ବ୍ୟାପ୍ତି,ପ୍ରକର୍ଷ, ସ୍ୱାର୍ଥ ପ୍ରବୃତ୍ତି, ଉତ୍ପତ୍ତି,ଗମନ, ଚଳନ, ଯୁଦ୍ଧ, ନାରାଚାସ୍ତ୍ର, ଯୋଚିଯିବା,ସୁବିଧା, ସ୍ଥାନ, ସ୍ନେହ, ପ୍ରଶଂସା,ଉପାୟ,ବିଗ୍ରହ, ସାହସ, ଦୃଷ୍ଟିର ସୀମା,ନଦୀବଢ଼ି,ସ୍ରୋତ. ସ୍ୱାଧୀନତା, ଆକାର, ପ୍ରାବଲ୍ୟ, ସ୍ନେହପୂର୍ଣ୍ଣ ପ୍ରାର୍ଥନା, ସର୍ବନାଶ. ବ୍ରଣ, ବଥଆଦିର ବୃଦ୍ଧି, (ବିଂ) ବିସର୍ପଣକର୍ତ୍ତା, ଗମନଶୀଳ ।

ପ୍ରସରଣ—କ୍ଲୀ. ବି. ( ପ୍ର+ସୃ+ଅନ ) ସୈନ୍ୟମାନଙ୍କର ସର୍ବତୋବ୍ୟାପ୍ତି, ସୈନ୍ୟମାନଙ୍କର ତୃଣକାଷ୍ଠାଦି ହେତୁ ଇତସ୍ତତଃ ଗମନ, ଗମନମାତ୍ର,ବ୍ୟାପ୍ତି, ଉତ୍ପତ୍ତି, ବିସ୍ତାର, ସ୍ୱାର୍ଥ ପ୍ରବୃତ୍ତି, ଇତସ୍ତତଗତି, (ବାୟୁଆଦି) ବହିବା, ଶତ୍ରୁ ସୈନ୍ୟକୁ ବେଷ୍ଟନ କରିବା, ବଢ଼ିବା, ବୃଦ୍ଧି,ମନୋହାରିତ୍ୱ,ବିକାଶ,ପଳାୟନ ।

ପ୍ରସରଣୀ—ସ୍ତ୍ରୀ. ବି. ( ପ୍ର+ସୃ+ଇନ୍ ) ଶତ୍ରୁକୁ ବେଷ୍ଟନ କରିବା, ଘେରାଉ ।

ପ୍ରସରିବା—କ୍ରି. କ୍ରି. ବହିର୍ଗତ ହେବା, (ନିଃଶ୍ୱାସାଦି) ବହିବା, ପ୍ରକଟିତହେବା, ବୃଦ୍ଧିପାଇବା, ବ୍ୟାପିବା, (ଶକ୍ତି) ସଞ୍ଚାରିତ ହେବା, ଉଣାହେବା ।

ପ୍ରସର୍ପ—ପୁଂ.ବି. (ପ୍ର + ସୃପ୍ + ଅ)ଗମନ, (କ୍ଲୀ.ବି) ସାମଭେଦ ।

ପ୍ରସର୍ପକ—ପୁଂ. ବିଂ. (ପ୍ର+ସୃପ୍+କ. ଅକ) ଯଜ୍ଞଦର୍ଶକ. ଋତ୍ୱିକର ସହକାରୀ ବିଶେଷ, ଗୁରୁଣ୍ଡି କରି ଯାଉଥିବା,ଅନିମନ୍ତ୍ରିତ(ବ୍ୟକ୍ତି),ଆଗକୁ ଗତି କରୁଥିବା, ବ୍ୟାପିଥିବା ।

ପ୍ରସର୍ପଣ—କ୍ଲୀ.ବି. ( ପ୍ର+ସୃପ୍+ଅନ ) ଗମନ, ପ୍ରସରଣ, ସୈନ୍ୟମାନଙ୍କର ସର୍ବତୋବ୍ୟାପ୍ତି, ବିସ୍ତାର, ଘୋଟିଯିବା, ସନ୍ତରଣ, ଅଗ୍ରସର ହେବା, ଗୁରୁଣ୍ଡିକରି ଯିବା ।

ପ୍ରସର୍ପୀ—ପୁଂ.ବିଂ. ( ପ୍ର+ସୃପ୍+ଇନ୍ ) ବକ୍ରଗତିଶୀଳ, ଚଳଶୀଳ ।

ପ୍ରସବ—ପୁଂ. ବି. (ପ୍ର+ସୂ+ଅ) ଗର୍ଭମୋଚନ, ବିସ୍ତାର.ପ୍ରସୂତ, ଗର୍ଭଗ୍ରହଣ, ଉତ୍ପାଦନ, ଜନ୍ମ, ଅପତ୍ୟ, ଫଳ,କୁସୁମ, ଆଜ୍ଞା, ନିମିତ୍ତ, ହେତୁ, କାରଣ, ଆଦିମୂଳ, ବୃଦ୍ଧି, ବିକାଶ, କଢ଼ି,କଳିକା,

ପ୍ରସବକ—ପୁଂ.ବି. ପିୟାଳବୃକ୍ଷ ।

ପ୍ରସବଧର୍ମୀ—ପୁଂ.ବିଂ. (ପ୍ରସବ+ଧର୍ମନ୍ +ଇନ୍) ଯେ ପ୍ରସବ କରେ,ସନ୍ତାନଉତ୍ପାଦକ ।

ପ୍ରସବନ—କ୍ଲୀ.ବି. (ପ୍ର+ସୂ+ଭା.ଅନ) ଅନୟନ, ଗର୍ଭଧାରଣ, ଶିଶୁ ଜନ୍ମକରିବା, ସନ୍ତାନ ଉତ୍ପାଦନ, ଉତ୍ପାଦିକା ଶକ୍ତି, ପ୍ରସବ କରାଇବା ।

ପ୍ରସବବନ୍ଧନ--କ୍ଲୀ.ବି.(୬ତତ୍)ବୃନ୍ତ,କଡ଼, ପତ୍ରାଦିର ଡେମ୍ଫ, ଫୁଲଗଛର କାଠି ।

ପ୍ରସବବେଦନା—ସ୍ତ୍ରୀ. ବି. ସନ୍ତାନ ଜନ୍ମ-କରିବା ସମୟରେ ପ୍ରସୂତି ଯେଉଁ କଷ୍ଟ ପାଏ ।

ପ୍ରସବସ୍ଥଳୀ—ସ୍ତ୍ରୀ.ବି. ( ୬ତତ୍ )ଉତ୍ପତ୍ତି-ସ୍ଥାନ, ମାତା, ପ୍ରସୂତି । [ ଗୃହ ।

ପ୍ରସବାଗାର—ବି. ଅନୁଡ଼ଶାଳ, ସୂତିକା-

ପ୍ରସବିତା—ପୁଂ. ବି. (ପ୍ର+ସୂ+କ.ତୃ) ପିତା, ଜନୟିତା, ଅନୁଜ୍ଞାକର୍ତ୍ତା, ପ୍ରସବ-କର୍ତ୍ତା । [ ଜନୟିତ୍ରୀମାତା, ।

ପ୍ରସବିତ୍ରୀ—ସ୍ତ୍ରୀ. ବି. ( ପ୍ରସବିତୃ+ଈ )

ପ୍ରସବିନୀ—ସ୍ତ୍ରୀ. ବିଂ. ( ପ୍ରସବିନ୍+ଈ ) ପ୍ରସବକାରିଣୀ, (ବି) ମାତା, ପ୍ରସୂତି ।

ପ୍ରସବୀ—ପୁଂ. ବିଂ. ( ପ୍ର+ସୂ+ଇନ୍ ) ପ୍ରସବଶୀଳ, ଉତ୍ପାଦୟିତା, ପ୍ରସବିତା, (ସ୍ତ୍ରୀ) ପ୍ରସବିନୀ ।

ପ୍ରସବ୍ୟ—ତ୍ରି.ବିଂ. (ପ୍ର+ସବ୍ୟ)ପ୍ରତିକୂଳ, ପ୍ରଦକ୍ଷିଣ, ବିପରୀତ,ଓଲଟା, (ପ୍ର+ସୂ+ ମି.ଯ)ପ୍ରସବନୀୟ,ଯାହା ପ୍ରସୂତ ହେବ ।

ପ୍ରସହ—ପୁଂ.ବି.( ପ୍ର+ସହ୍+କ.ଅ ) ବଳପୂର୍ବକ ଧରି ଯେଉଁ ପକ୍ଷୀ ଭକ୍ଷଣ କରେ, ଶିକାରୀ ପକ୍ଷୀ, କୁରର, କାକ, ଗୃଧ୍ର, ଉଲୂକ, ଚିଲ, ହିଂସ୍ରଜନ୍ତୁ. ମାଂସାଶୀ ଜନ୍ତୁ, (ଭା.ଅ) ସମ୍ଭାଳିବା, ଝୁଙ୍କ୍ ସହିବା, ବାଧାଦେବା, ବିରୋଧ, ସହିଷ୍ଣୁତା ।

ପ୍ରସହନ—ବି. ( ପ୍ର+ସହ୍+କ.ଅନ ) ଶିକାରୀ ପଶୁ ପକ୍ଷୀ,(ଭା.ଅନ)ଆଲିଙ୍ଗନ, ସହିଷ୍ଣୁତା,ସମ୍ଭାଳିବା,ସହିବା,ପରାଭବ, ଅନାଦର,ପରାସ୍ତକରଣ, ପ୍ରତିରୋଧନ, (ବିଂ) କ୍ଷମାରହିତ ।

ପ୍ରସହ୍ୟ—ଅବ୍ୟ. ( ପ୍ର+ସହ୍+ଯ ) ବଳାତ୍କାରାର୍ଥକ, ହଠାତ୍, ସହସା, ବଳପୂର୍ବକ, ଅତ୍ୟନ୍ତ, ପ୍ରକର୍ଷରୂପେ ସହନ କରିବାରେ ସମର୍ଥ ।

ପ୍ରସହ୍ୟଚୌର—ପୁଂ. ବି. ବଳପୂର୍ବକ ଚୋର କରିବା ବ୍ୟକ୍ତି, ଡ଼କାଏତ ।

ପ୍ରସହ୍ୟହରଣ—କ୍ଲୀ. ବି, ବଳପୂର୍ବକ ହରଣ, ଜବରଦସ୍ତି ନେଇଯିବା, ଡ଼କାଏତି ।

ପ୍ରସା—ସ୍ତ୍ରୀ.ବି. ମୂତ୍ର, ମୂତ୍ରତ୍ୟାଗ ।

ପ୍ରସାତିକା—ସ୍ତ୍ରୀ.ବି.ଅଣୁ ବ୍ରୀହି,ସୂକ୍ଷ୍ମ ଧାନ୍ୟ, ଶ୍ୱାଆଁ ଶସ୍ୟ ।

ପ୍ରସାଦ—ପୁଂ. ବି. ( ପ୍ର+ସଦ୍+ଅ ) ପ୍ରସନ୍ନତା, ପ୍ରସକ୍ତି, ଦୟା, ନୈର୍ମଲ୍ୟ, ସଂଯୋଗ, ଦାନ, ଭେଟି, ମଙ୍ଗଳ,ଅନୁଗ୍ରହ, କାବ୍ୟର ଗୁଣଭେଦ, ସ୍ୱାସ୍ଥ୍ୟ, ଦେବ ନୈବେଦ୍ୟ, ଗୁରୁଜନଙ୍କ ଭୁକ୍ତାବଶିଷ୍ଟ, ଧର୍ମଙ୍କର ପତ୍ନୀ ମୂର୍ତ୍ତିଙ୍କ ଠାରୁ ଜାତ ପୁତ୍ରବିଶେଷ ।

ପ୍ରସାଦକ—ତ୍ରି. ବିଂ. (ପ୍ର+ସଦ୍+ଣିଚ୍ +କ.ଅକ) ପ୍ରସାଦକର, ଯେ ପ୍ରସନ୍ନତା ଜନ୍ମାଏ, ଅନୁଗ୍ରହାକାଂକ୍ଷୀ, ପ୍ରୀତିକର, ନିର୍ମଳ, (ପୁଂ.ବି) ଦେବଧାନ୍ୟ, ବାସ୍ତୁକ, ବଥୁଆଶାଗ ।

ପ୍ରସାଦନ—କ୍ଲୀ.ବି. (ପ୍ର+ସଦ୍+ଣିଚ୍+ +ଅନ) ଅନ୍ନ, ପ୍ରସନ୍ନତାକରଣ, ପ୍ରସନ୍ନତା ସମ୍ପାଦନ, ପରିଷ୍କରଣ, ରାଜକୀୟ ପଞ୍ଚବସ୍ତ୍ର, (ପୁଂ. ବିଂ) ପ୍ରସନ୍ନତା-ସମ୍ପାଦନକାରୀ ।

ପ୍ରସାଦନା—ସ୍ତ୍ରୀ. ବି. (ପ୍ର+ସଦ୍+ଅନ+ଆ) ସେବା, ପରିଚର୍ଯ୍ୟା, ପୂଜା ।

ପ୍ରସାଦନୀୟ—ତ୍ରି. ବିଂ. (ପ୍ର+ସଦ୍+ଣିଚ୍ +ଅନୀୟ) ପ୍ରସାଦନ ଯୋଗ୍ୟ ।

ପ୍ରସାଦଭୋଜୀ—ପୁଂ.ବିଂ. (ପ୍ରସାଦ+ଭୁଜ୍ +କ.ଇନ୍) ଭୁକ୍ତାବଶିଷ୍ଟ ଭୋଜନକାରୀ, ଅନୁଗ୍ରହଭାଜନ, (ସ୍ତ୍ରୀ) ଭୋଜିନୀ ।

ପ୍ରସାଦବାନ୍—ପୁଂ.ବିଂ. (ପ୍ରସାଦ+ବତ୍) ପ୍ରସାଦଯୁକ୍ତ, ଅନୁଗ୍ରହବିଶିଷ୍ଟ, ପ୍ରସନ୍ନ ।

ପ୍ରସାଦାନ୍ନ—କ୍ଲୀ. ବି. ଦେବତାଙ୍କର ପ୍ରସାଦରୂପ ଅନ୍ନ, ମହାପ୍ରସାଦ ।

ପ୍ରସାଦିତ—ବିଂ. (ପ୍ର+ସଦ୍+ଣିଚ୍+ ମି.ତ) ଅନୁଗୃହୀତ, ସନ୍ତୁଷ୍ଟ, ପୂଜିତ, ପରିଷ୍କୃତ, ଶମିତ ।

ପ୍ରସାଦୀ—ବିଂ. (ପ୍ର+ସଦ୍+ଇନ୍) ପ୍ରୀତିକର, ଶାନ୍ତିକର, ଶାନ୍ତ, ଅନୁଗ୍ରହପ୍ରକାଶକ, ଅନୁଗ୍ରାହକ, ନିର୍ମଳ,ଉଜ୍ଜ୍ୱଳ

ପ୍ରସାଦୀକୃତ-ବିଂ.ଯେଉଁ ଖାଦ୍ୟଦ୍ରବ୍ୟ ଦେବତାଙ୍କୁ ନିବେଦିତ ହୋଇଅଛି,ଉପହାର ରୂପେ ପ୍ରଦତ୍ତ, ଅନୁଗ୍ରହରୂପେ ପ୍ରଦତ୍ତ ।

ପ୍ରସାଦ୍ୟ—ତ୍ରି.ବିଂ. ପ୍ରସାଦନଯୋଗ୍ୟ ।

ପ୍ରସାଧକ—ବିଂ.(ପ୍ର+ସାଧ୍+ଅକ)ଭୂଷକ, ବେଶକାରୀ, ସମ୍ପାଦକ, (ପୁଂ.ବି)ରଜାମାନଙ୍କର ପ୍ରସାଧନାର୍ଥ ଭୃତ୍ୟବିଶେଷ ।

ପ୍ରସାଧନ—ବି. ( ପ୍ର+ସାଧ୍+ଭା.ଅନ ) ଅଳଂକରଣ, ସଜାଇବା,ବେଶକରିବା, ବନ୍ଦୋବସ୍ତ, ସମ୍ପାଦନ, ସାଧନ, (କ. ଅନ) ବେଶ, ସଜ୍ଜାର ଉପକରଣ, ପାନିଆ, ମହାବଳା ଲତା । [ ପାନିଆଁ ।

ପ୍ରସାଧନୀ—ସ୍ତ୍ରୀ.ବି. ସିଦ୍ଧି, ଖଙ୍ଗି,କଙ୍କତିକା,

ପ୍ରସାଧିକା—ସ୍ତ୍ରୀ. ବି. (ପ୍ର+ସାଧ୍+ଅକ +ଆ) ନୀବାର ଧାନ୍ୟ, ଝରିଧାନ୍ୟ, ଅରଣ୍ୟବ୍ରୀହି, ବେଶକାରିଣୀ ସ୍ତ୍ରୀ ।

ପ୍ରସାଧିତ—ତ୍ରି.ବିଂ. (ପ୍ର+ସାଧ୍+ତ) ଅଳଂକୃତ, ପ୍ରମାଣିତ,ସମାହୃତ,ପ୍ରକୃଷ୍ଟ-ନିଷ୍ପନ୍ନ, ନିଷ୍ପାଦିତ ।

ପ୍ରସାଧ୍ୟ—ତ୍ରି. ବିଂ. ( ପ୍ର+ସାଧ୍+ଯ ) ପ୍ରସାଧନଯୋଗ୍ୟ, କର୍ତ୍ତବ୍ୟ, ନିଷ୍ପାଦନ-ଯୋଗ୍ୟ ।

ପ୍ରସାର—ପୁଂ.ବି. ( ପ୍ର+ସୃ+ଭା.ଅ ) ପ୍ରସାରଣ, ବିସ୍ତାର, ଓସାର,ଇତସ୍ତତଃ ଗମନ, ଗମନ, ନିର୍ଗମ, ମୁଖବ୍ୟାଦାନ, ତୃଣକାଷ୍ଠାଦି ସଂଗ୍ରହ ନିମନ୍ତେ ସୈନ୍ୟମାନଙ୍କର ଇତସ୍ତତଃ ଭ୍ରମଣ, ତୃଣକାଷ୍ଠାଦିର ପ୍ରବେଶ, ( ହାତଆଦି ) ବଢ଼ାଇବା, ପସରି ମେଲାଇବା ।

ପ୍ରସାରଣ—କ୍ଲୀ.ବି. (ପ୍ର+ସୃ+ଣିଚ୍+ ଅନ) ପଞ୍ଚବିଧ କର୍ମର ଅନ୍ତର୍ଗତ କର୍ମବିଶେଷ, ଉତ୍କ୍ଷେପଣ, ଅବକ୍ଷେପଣ ଆକୁଞ୍ଚନ, ପ୍ରସାରଣ, ଗମନ, ଏହି ପାଞ୍ଚପ୍ରକାର କର୍ମ, ପରିବର୍ଦ୍ଧନ,ବିସ୍ତାରି କରିବା, ମେଲାଇବା, ( ବ୍ୟାକରଣ ) ନିୟମାନୁସାରେ ଉଷ୍ମବର୍ଣ୍ଣମାନଙ୍କ (ଯ, ର, ବ) ସ୍ୱରବର୍ଣ୍ଣରେ ( ଇ. ଋ, ଉ ) ପରିବର୍ତ୍ତନ ।

ପ୍ରସାର(ରି)ଣୀ—ସ୍ତ୍ରୀ.ବି. (ପ୍ର+ସାର+

ଅନ+ଇନ୍+ଈ) ପ୍ରସାରୁଣୀ, ଲଜକୁଳି ଲତା, ଭଦ୍ରପର୍ଣ୍ଣୀ,ଶଙ୍ଖୁ ଘେରପିବା।

ପ୍ରସାରିତ—ବିଂ. (ପ୍ର+ସାର+ମ୍.ତ) ବିସ୍ତାରିତ, ବିକ୍ଷିପ୍ତ, ବ୍ୟାପ୍ତ, ସମ୍ପାଦିତ, ବିର୍ଦ୍ଧିତ, ବିକ୍ଷି ନିମନ୍ତେ ବିସ୍ତାରିତ।

ପ୍ରସାରୀ—ପୁଂ.ବିଂ. ( ପ୍ର+ସୃ+ଇନ୍ ) ମୃଦୁମନ୍ଦ ଗମନଶୀଳ, ପ୍ରସରଣଶୀଳ, ବ୍ୟାପ୍ତ, ପ୍ରକାଶିତ।

ପ୍ରସାର୍ଯ୍ୟ—ବି.ବିଂ. ( ପ୍ର+ସାର+ଯ ) ପ୍ରସାରଣଯୋଗ୍ୟ।

ପ୍ରସାର୍ଯ୍ୟମାଣ—ବିଂ. (ପ୍ର+ସୃ+ଣିର୍+ମ୍.ଆନ) ଯାହା ପ୍ରସାରିତ ବା ବିସ୍ତୃତ ହୋଇଅଛି।

ପ୍ରସାହ—ବି. ପରାଜୟ, ଆତ୍ମଶାସନ।

ପ୍ରସିତ—ବିଂ. (ପ୍ର+ସି+କ.ତ) ପୂର, (ବିଂ-ମ୍.ତ ) ବିଶୁଦ୍ଧ, ଶୁଭ୍ର, ଆସକ୍ତ, ନିଯୁକ୍ତ।

ପ୍ରସିତି—ସ୍ତ୍ରୀ.ବି. ( ପ୍ର+ସି+ତି ) ଜାଲ, ବଉଳିଧାଦ, ଶକ୍ତି, ଜ୍ୱାଳା,ପ୍ରବନ୍ଧନ।

ପ୍ରସିଦ୍ଧ—ବିଂ.(ପ୍ର+ସିଧ୍+କ.ତ)ଭୂଷିତ, ଖ୍ୟାତ, ବିଖ୍ୟାତ, ଉନ୍ନତ, ଅଳଂକୃତ।

ପ୍ରସିଦ୍ଧି—ସ୍ତ୍ରୀ.ବି. (ପ୍ର+ସିଧ୍+ତି)ଖ୍ୟାତି, ପ୍ରତିପତ୍ତି, ଭୂଷା, ଜନଶ୍ରୁତି, ଅଳଙ୍କାର, ସିଦ୍ଧି। [ ବିଶେଷ।

ପ୍ରସିଦ୍ଧିତ୍ୟାଗ--ବି.(ଅଳଙ୍କାର)ବେଦୋଷ-

ପ୍ରସୁପ୍ତ—ବି.ବିଂ.(ପ୍ର+ସୁ+ତ)ଚୁପୁଡ଼ାଯାଇଥିବା, ଉତ୍ପନ୍ନ,(ବି)ସଂଖ୍ୟାବିଶେଷ

ପ୍ରସୁପ୍ତ—ପୁଂ.ବିଂ. (ପ୍ର+ସୁପ୍ତ) ନିଦ୍ରିତ, ପ୍ରକୃଷ୍ଟରୂପେ ସୁପ୍ତ।

ପ୍ରସୁପ୍ତି—ସ୍ତ୍ରୀ. ବି. ( ପ୍ର+ସୁପ୍+ତି ) ଉତ୍ତମ ନିଦ୍ରା।

ପ୍ରସୁବ—ପୁଂ.ବି. ନିର୍ଯ୍ୟାସନ, ନିଗାଡ଼ିବା।

ପ୍ରସୂ—ସ୍ତ୍ରୀ. ବି. ( ପ୍ର+ସୂ+କ.କ୍ୱିପ୍ ) ମାତା,ଘୋଟକୀ, କଦଳୀବୃକ୍ଷ, ବିରୁତ୍, ଲତା, କୋମଳ ତୃଣ, କୁଟ୍ଟୃଣ, (ସ୍ତ୍ରୀ. ବିଂ) ପ୍ରସବକର୍ତ୍ତ୍ରୀ, ଯେ ଜନ୍ମକରେ।

ପ୍ରସୂକା—ସ୍ତ୍ରୀ. ବି. ( ପ୍ରସୂ+କ+ଆ ) ଅଶ୍ୱିନୀ, ଘୋଟକୀ, ଘୋଡ଼ୀ।

ପ୍ରସୂତ—ବି.ବିଂ. (ପ୍ର+ସୂ+ତ)ଉତ୍ପନ୍ନ, ଜନ୍ମଗ୍ରହଣ କରିଥିବା, ସଞ୍ଜାତ, କୃତପ୍ରସବ,ଉତ୍ପାଦକ,(ବି) ଫୁଲ, ଉତ୍ପାଦକ ବସ୍ତୁ, ସୂତିକାରୋଗ।

ପ୍ରସୂତା—ସ୍ତ୍ରୀ.ବିଂ. (ପ୍ର+ସୂ+ତ+ଆ) ଜାତାପତ୍ୟା, ଯେଉଁ ସ୍ତ୍ରୀ ଅଳ୍ପଦିନ ହେଲା ସନ୍ତାନ ଜନ୍ମ କରିଅଛି,ପୋଷଣୀ (ବି) ଘୋଟକୀ, ମାତା।

ପ୍ରସୂତି—ସ୍ତ୍ରୀ.ବି. (ପ୍ର+ସୂ+ତି)ପ୍ରସବ, ଉଦ୍ଭବ, ଜନ୍ମ, ଦୁହିତା, ସନ୍ତାନ, ଅପତ୍ୟ, ସନ୍ତତି,ଗର୍ଭ,କାରଣ,ଉତ୍ପତ୍ତିସ୍ଥାନ, ଦକ୍ଷଙ୍କ ପତ୍ନୀ, ଜାତପ୍ରସବା ସ୍ତ୍ରୀ, ମାତା, ଜନ୍ମଦାତ୍ରୀ।

ପ୍ରସୂତିକା—ସ୍ତ୍ରୀ.ବି. ପ୍ରସୂତା,ଜାତ ପ୍ରସବା ସ୍ତ୍ରୀ, ଦୁଃଖ।

ପ୍ରସୂତିଜ—କ୍ଲୀ. ବି. (ପ୍ରସୂତି + ଜନ୍+କ.ଅ) ପ୍ରସୂତିଜନ୍ୟ ଦୁଃଖ, ଜାତକ ସନ୍ତାନ, (ବିଂ) ପ୍ରସବଜାତମାତ୍ର।

ପ୍ରସୂନ—କ୍ଲୀ.ବି.(ପ୍ର+ସୂ+ମ୍.ତ)ଫୁଲ, କଢ଼, ଫଳ,ମୁକୁଳ,(ବିଂ)ଉତ୍ପନ୍ନ,ଜାତ।

ପ୍ରସୂନକ—କ୍ଲୀ.ବି. ପ୍ରସୂନ, ଫୁଲ,ମୁକୁଳ, କଢ଼।

ପ୍ରସୂନବାଣ—ପୁଂ.ବି.(ବ.ବ୍ରୀ)କାମଦେବ।

ପ୍ରସୂନେଷୁ—ପୁଂ.ବି.(ବ.ବ୍ରୀ)କାମଦେବ।

ପ୍ରସୃତ—ବି. ବିଂ. ( ପ୍ର+ସୃ+କ.ତ ) ନିର୍ଗତ, ବିସ୍ତୃତ, ବ୍ୟାପ୍ତ, ପ୍ରଚଳିତ, ପ୍ରଦର୍ଶିତ, ପ୍ରକାଶିତ, ପ୍ରବୃଦ୍ଧ, ପ୍ରସାରିତ, ବିନୀତ, ବେଷ୍ଟିତ, ଗତ, ନିଯୁକ୍ତ, ପ୍ରସରଣଯୁକ୍ତ, ଅର୍ଦ୍ଧାଞ୍ଜଳି, ପୋଷ, ଦୁଇପଲ ଓଜନ।

ପ୍ରସୃତଜ—ପୁଂ. ବି. କୁଣ୍ଡ ଗୋଲକ ରୂପ ପୁତ୍ରବିଶେଷ, ବ୍ୟଭିଚାର ସନ୍ତାନ।

ପ୍ରସୃତା—ସ୍ତ୍ରୀ. ବି. (ପ୍ର+ସୃ+ତ+ଆ) ଜଙ୍ଘା, (ବିଂ) ନିର୍ଗତା, ବିସ୍ତୃତା।

ପ୍ରସୃତି—ସ୍ତ୍ରୀ. ବି. (ପ୍ର+ସୃ+ତି)ପ୍ରସୃତ, କୁଞ୍ଚିତହସ୍ତ, ପୋଷ,ଅର୍ଦ୍ଧାଞ୍ଜଳି,ତୋଳା ପରିମାଣ, ବିସ୍ତାର, ବ୍ୟାପ୍ତି, ସନ୍ତାନ।

ପ୍ରସେକ—ପୁଂ. ବି. (ପ୍ର+ସିଚ୍+ଅ) ନିଷେକ, ସେଚନ, ଚ୍ୟୁତ, ବେଗବିଶେଷ, କଫହେତୁ ଲାଳାସ୍ରାବ।

ପ୍ରସେକୀ—ପୁଂ. ବିଂ. ପ୍ରସେଚନଶୀଳ, ପ୍ରସେକଯୁକ୍ତ, (ବି) ଅସାଧ୍ୟରୋଗ, ବ୍ରଣବିଶେଷ।

ପ୍ରସେଦିକା—ସ୍ତ୍ରୀ. ବି. (ପ୍ର+ସଦ୍+କ. ଅକ+ଆ) କ୍ଷୁଦ୍ର ଉପବନ।

ପ୍ରସେଦିବାନ୍—ପୁଂ. ବିଂ. (ପ୍ର+ସଦ୍+ବସୁ) ପ୍ରସନ୍ନ।

ପ୍ରସେନଜିତ୍—ପୁଂ. ବି. ଭାଗବତୋକ୍ତ ଆନମିତ୍ରଙ୍କ ପୌତ୍ର, ସତ୍ରାଜିତଙ୍କ ଏକଭାଇ।

ପ୍ରସେବ—ପୁଂ. ବି. ( ପ୍ର+ସିବ୍+ଅ ) ବୀଣାର ତୁମ୍ବି, ସୂତାର ଥଳି।

ପ୍ରସେବକ—ବି. ( ପ୍ର+ସିବ୍+ଅକ ) ପ୍ରସେବ ଦେଖ।

ପ୍ରସ୍କନ୍ଦ—ବି. (ପ୍ର+ସ୍କନ୍ଦ୍+ଭା.ଅ) କୁଦା, ଡ଼ିଆଁ, (କ.ଅ) ଶିବ, ଜୁଲବ, ବିରେଚକ ଔଷଧ, ଅତିସାର।

ପ୍ରସ୍କନ୍ଦନ—ବି. (ପ୍ର+ସ୍କନ୍ଦ୍+ଅନ)ପ୍ରସ୍କନ୍ଦ ଦେଖ। [ କ୍ଷୟରୋଗ।

ପ୍ରସ୍କନ୍ଦିକା —ବି. ସଂଗ୍ରହଗ୍ରହଣୀରୋଗ,

ପ୍ରସ୍କନ୍ନ—ବି. ବିଂ. (ପ୍ର+ସ୍କନ୍ଦ୍+କ.ତ) ଛରିତ, ଶୁଷ୍କ, ଗତ, ସମାଜର ନିଯମଭଙ୍ଗକାରୀ, ପତିତ, (ମ୍.ତ) ପରାଜିତ, (ବି) ଘୋଡ଼ାର ରୋଗବିଶେଷ,ସମାଜଚ୍ୟୁତବ୍ୟକ୍ତି। [ ପତନ।

ପ୍ରସ୍ଖଳନ—କ୍ଲୀ.ବି. ପ୍ରକୃଷ୍ଟରୂପେ ସ୍ଖଳନ,

ପ୍ରସ୍ତ—ଗ୍ରା. ବି. ପ୍ରସ୍ଥ, ଚଉଡ଼ା, ପରସ୍ତ, ପାଖୁଡ଼ା, ସ୍ତର, ଅଳଂକାର, ବାସନ ଅନ୍ଦର ଏକସାର, (ଗ୍ରା. ବାଲେ. ବି) ଖଞ୍ଜା, ଅଗଣା।

ପ୍ରସ୍ତର—ପୁଂ. ବି. ( ପ୍ର+ସ୍ତୃ+କ.ଅ ) ଶିଳା, ପଥର, ପାଷାଣ, ଉପଳ, ପୁଷ୍ପପଲ୍ଲବାଦି ରଚିତ ଶଯ୍ୟା, ତୃଣଆଦିର ଗୋଚ୍ଛ, ଯୋ୍ୟା, ବିଛଣା, ମଣି, ଚମଡ଼ାର ଥଳି, ସମତଳ, ପୁସ୍ତକର ପରିଚ୍ଛେଦ।

ପ୍ରସ୍ତରଣ(ଣୀ)—କ୍ଲୀ. ବି. (ପ୍ର+ସ୍ତୃ+କ. ଅନ+ଆ) ଆସ୍ତରଣ, ବିଛଣା, ଶଯ୍ୟା,

ଆସନ, ( ଖ୍ରୀ.ଅନ+ଆ ) ବିସ୍ତୃତ କରିବା, ବିସ୍ତୃତ କରିବା । [ କୋଷ ।
ପ୍ରସ୍ତରଣୀ--ସ୍ତ୍ରୀ.ବି.ଶ୍ୱେତଦୂର୍ବା, ଗୋଜିହ୍ୱା,
ପ୍ରସ୍ତରଫଳକ—ବି.ପଥରର ପଟା,ସ୍ଲେଟ୍
ପ୍ରସ୍ତରମୟ—ବିଂ.(ପ୍ରସ୍ତର+ମୟ)ପ୍ରସ୍ତର-ନିର୍ମିତ, ପଥୁରିଆ, ପ୍ରସ୍ତରବହୁଳ ।
ପ୍ରସ୍ତରମୂର୍ତ୍ତି—ବି. ( କ.ଧା ) ପଥରରେ ରଚିତ ଆକୃତି ।
ପ୍ରସ୍ତରସ୍ୱେଦ—ପୁଂ.ବି. ବାତାଦିବେଗରେ ସ୍ୱେଦବିଶେଷ ।
ପ୍ରସ୍ତରାଭୂତ—ବିଂ.ପାଷାଣରେ ପରିଣତ ।
ପ୍ରସ୍ତରୋଦ୍ଭୂତ—କ୍ଲୀ.ବି. ପ୍ରସ୍ତରଜଳ ।
ପ୍ରସ୍ତରୋପଳ—ପୁଂ. ବି. ଚନ୍ଦ୍ରକାନ୍ତମଣି ।
ପ୍ରସ୍ତବ—ପୁଂ. ବି. (ପ୍ର+ସ୍ତବ) ସ୍ତୁତି, ପ୍ରଶଂସା, ପ୍ରଭାବ,ସୁଯୋଗ,ଶୁଭମୁହୂର୍ତ୍ତି, ଶଯ୍ୟାମାନ, ଛନ୍ଦର ଗୁରୁଲଘୁଜ୍ଞାପକ କ୍ରିୟାବିଶେଷ ।
ପ୍ରସ୍ତାର—ବି. (ପ୍ର+ସ୍ତୃ+ଘ୍ଞ.ଅ)ବିସ୍ତାର, ଆଧିକ୍ୟ, ବୃଦ୍ଧି, ପତ୍ରପୁଷ୍ପ ତୃଣାଦିରଚିତ ଶଯ୍ୟା, ପରସ୍ତ, ସ୍ତର, (ଣ.ଅ) ସି, ତ, ସମତଳ, ଘାସବଣ,ବୁଦାଳିଆ ଜଙ୍ଗଲ, ଛନ୍ଦମାନଙ୍କର ବିଭିନ୍ନଭେଦ, ( ମି.ଅ ) ସମୂହ ।
ପ୍ରସ୍ତାବ—ପୁଂ.ବି. (ପ୍ର+ସ୍ତୁ+ଅ)ବିସ୍ତାର, ବିତର୍କ ନିମିତ୍ତ ଉତ୍ଥାପିତ ମତ, ଗ୍ରନ୍ଥର ଅଧ୍ୟାୟ, ପରିଚ୍ଛେଦ,ଅବସର, ପ୍ରସଙ୍ଗ-ସ୍ତୁତି, ପ୍ରସଙ୍ଗ, ପ୍ରକର୍ଷରୂପେ ସ୍ତବ, ଆରମ୍ଭ, ପ୍ରକରଣ,ସାମବେଦର ଅବୟବ ଭେଦ, ସୁଯୋଗ ।
ପ୍ରସ୍ତାବଆଗତକରିବା—ଗ୍ରା.କ୍ରି. ସଭାସମିତିରେ କୌଣସି ପ୍ରସ୍ତାବ ପ୍ରଥମେ ପକାଇବା, ପ୍ରସ୍ତାବ କରିବା ।
ପ୍ରସ୍ତାବକ—ପୁଂ. ବିଂ. (ପ୍ର+ସ୍ତୁ+ଣିଚ୍ +କ.ଅକ)ଯେ ପ୍ରସ୍ତାବ ଆଗତକରେ
ପ୍ରସ୍ତାବକରିବା—ଗ୍ରା. କ୍ରି. ସଭାଆଦିରେ କୌଣସି ବିଷୟ ଉତ୍ଥାପନ କରିବା ।
ପ୍ରସ୍ତାବଗ୍ରହଣ—ବି. (ଷତତ୍) ସଭାରେ ଉପସ୍ଥାପିତ ପ୍ରସ୍ତାବର ସଭ୍ୟମାନଙ୍କ ଦ୍ୱାରା ମଞ୍ଜୁର କରାଯିବା ।
ପ୍ରସ୍ତାବନ—ବି.(ପ୍ର+ସ୍ତୁ+ଖ୍ରୀ.ଅନ) ପ୍ରସ୍ତାବ କରିବା କର୍ମ ।
ପ୍ରସ୍ତାବନା—ସ୍ତ୍ରୀ. ବି. (ପ୍ର+ସ୍ତୁ+ଣିଚ୍+ ଅନ+ଆ) ଆରମ୍ଭ, ନାଟକାଦିଗ୍ରନ୍ଥରେ ଅଭିନୟାରମ୍ଭ ବିଷୟକ କଥା,ମଙ୍ଗଳାଚରଣ, ଉପକ୍ରମ, ଭୂମିକା ।
ପ୍ରସ୍ତାବିକା—ସ୍ତ୍ରୀ. ବିଂ. (ପ୍ରସ୍ତାବକ+ଆ) ପ୍ରସ୍ତାବକର ସ୍ତ୍ରୀଲିଙ୍ଗ, (ବି) କୌଣସି ଅନୁଷ୍ଠାନର ପୂର୍ବାଭାସପତ୍ର, ଅନୁଷ୍ଠାନ-ପତ୍ର ।
ପ୍ରସ୍ତାବିତ—ବିଂ. (ପ୍ରସ୍ତାବ+ଇତ)ଯାହା ପ୍ରସ୍ତାବ କରାଯାଇଅଛି,ଉଲ୍ଲିଖିତ,ଉତ୍ଥାପିତ, ପ୍ରସଙ୍ଗକ୍ରମେ ଉକ୍ତ ।
ପ୍ରସ୍ତାବ୍ୟ—କ୍ରି.ବିଂ.ପ୍ରସ୍ତାବନାର ଯୋଗ୍ୟ ।
ପ୍ରସ୍ତିର—ପୁଂ.ବି.ପଲ୍ଲବାଦି ରଚିତ ଶଯ୍ୟା
ପ୍ରସ୍ତୀ(ତ)ମ—କ୍ରି.ବିଂ. (ପ୍ର+ସ୍ତ୍ୟୈ+ତ) ସଂହତ, ଧ୍ୱନିତ, ଶବ୍ଦାୟମାନ, ଘନ-ସମାବିଷ୍ଟ ।
ପ୍ରସ୍ତୁତ—କ୍ରି.ବିଂ. (ପ୍ର+ସ୍ତୁ+ତ) ପ୍ରକରଣପ୍ରାପ୍ତ, ପ୍ରାକରଣିକ, ପ୍ରାସଙ୍ଗିକ, ନିଷ୍ପନ୍ନ,ପ୍ରକର୍ଷସ୍ତୁତିଯୁକ୍ତ,ଉପସ୍ଥିତ,ପ୍ରତିପନ୍ନ, ଉପଯୁକ୍ତ, ତୟାର, ପ୍ରଶଂସିତ, ଉଦ୍ୟତ, ସତର୍କ, ନିର୍ମିତ, ଉଲ୍ଲିଖିତ, କଥିତ,ଆଲୋଚିତ,ଉନ୍ମୁଖ,ଅଭିଳଷିତ, ପ୍ରତ୍ୟୁତ୍ପନ୍ନ, ପୁନର୍ବାର ଜାତ, ସୁଦକ୍ଷ, ଯଥାର୍ଥ, ଆରବ୍ଧ, ପ୍ରସ୍ତାବିତ, ( ବି ) ଆଲୋଚିତ ବିଷୟ ।
ପ୍ରସ୍ତୁତାଙ୍କୁର--ବି.କାବ୍ୟାଳଂକାରବିଶେଷ ।
ପ୍ରସ୍ତୁତାଳଂକାର—ବି. କାବ୍ୟର ଅଳଂ-କାରବିଶେଷ ।
ପ୍ରସ୍ତୁତି—ବି. (ପ୍ର+ସ୍ତୁ+ଖ୍ରୀ.ତି)ପ୍ରଶଂସା, ପ୍ରସ୍ତାବନା, ଉପସ୍ଥିତି, ନିଷ୍ପତ୍ତି ।
ପ୍ରସ୍ତୃତ—କ୍ରି. ବିଂ. ( ପ୍ର+ସ୍ତୃ+ତ ) ଅନ୍ତରିତ, ପ୍ରକର୍ଷରୂପେ ବିସ୍ତାରିତ ।
ପ୍ରସ୍ତୋତା—ପୁଂ. ବିଂ. (ପ୍ର+ସ୍ତୁ+ତୃ) ପ୍ରକର୍ଷରୂପେ ସ୍ତୋତା, (ପୁଂ.ବି)ସାମର ପ୍ରଥମଭାଗ ଗାୟକ ଋତ୍ୱିକ୍‌ଭେଦ ।
ପ୍ରସ୍ତୋଭ—ପୁଂ. ବି. (ପ୍ର+ସ୍ତୁଭ୍+ଅ) ନିବୃତ୍ତିମାର୍ଗ,ପ୍ରୋତ୍ସାହନ,ସାମଭେଦ ।
ପ୍ରସ୍ଥ—ବି. ( ପ୍ର+ସ୍ଥା+ଅଧି.ଅ ) ୪ ଆଞ୍ଜୁଳା, ୩୨ପଲ,ପାହାଡ଼ର ଉଚ୍ଚତଟ, ଭୃଗୁ, ଆଢ଼କର ଚତୁର୍ଥାଂଶ ପରିମାଣ, ଅଦ୍ରିର ସମଭୂଭାଗ, ବିସ୍ତାର, ପରିସର, ଓସାର, ବାହନର ଏକସାର, ସାନୁ, ଅଧିତ୍ୟକା, ଉପତ୍ୟକା, ବିସ୍ତୃତ ସମ-ତଳଭୂମି, ୧୨ ଆଙ୍ଗୁଳ ପରିମିତ ସ୍ଥାନ ।
ପ୍ରସ୍ଥାନ—କ୍ଲୀ. ବି. ( ପ୍ର+ସ୍ଥା+ଅନ ) ସୈନ୍ୟମାନଙ୍କର ଯୁଦ୍ଧାର୍ଥେ ଗମନ, ଯାତ୍ରା, ସ୍ଥିତି, ପଦ୍ଧତି, ମୃତ୍ୟୁ, ପ୍ରେରଣ, ବିଜିଗୀଷୁର ପ୍ରୟାଣ,ଅଭିଯାନ,ଗମନ, ପ୍ରସ୍ଥାନ, ପ୍ରତିପାଦକ ଗ୍ରନ୍ଥ,ମାର୍ଗ,ଉପଦେଶୋପାୟ, ହୀନବ୍ୟକ୍ତିଙ୍କ ଚରିତ ବର୍ଣ୍ଣନାତ୍ମକ ୨ଅଙ୍କ ଯୁକ୍ତ ନାଟକବିଶେଷ, (ଅଧି.ଅନ) ମାର୍ଗ ।
ପ୍ରସ୍ଥାନବିଘ୍ନ—ପୁଂ. ବି. ଗମନବ୍ୟାଘାତ ।
ପ୍ରସ୍ଥାନୀୟ—କ୍ରି. ବିଂ. (ପ୍ର+ସ୍ଥା+ଅନୀୟ) ପ୍ରସ୍ଥାନ ଯୋଗ୍ୟ, ପ୍ରସ୍ଥାନାର୍ହ ।
ପ୍ରସ୍ଥାପନ(ନା)—ବି. (ପ୍ର+ସ୍ଥାପି+ଖ୍ରୀ. ଅନ) ପ୍ରେରଣ, ନିୟୋଗ, ପ୍ରମାଣିତ କରିବା, ନିୟୋଜନ ।
ପ୍ରସ୍ଥାପିତ—କ୍ରି. ବିଂ. (ପ୍ର+ସ୍ଥା+ଣିଚ୍ +ମିଁ ତ) ପଠାଯାଇଥିବା, ପ୍ରେରିତ, ପ୍ରକର୍ଷରୂପେ ସ୍ଥାପିତ, ନିଯୁକ୍ତ ।
ପ୍ରସ୍ଥାପ୍ୟ—କ୍ରି. ବିଂ. ପ୍ରସ୍ଥାନଯୋଗ୍ୟ, ପ୍ରେରଣ ଯୋଗ୍ୟ ।
ପ୍ରସ୍ଥାୟୀ—ପୁଂ. ବିଂ. (ପ୍ର+ସ୍ଥା+ଇନ୍) ଭାବି ଗମନକର୍ତ୍ତା,ଭ୍ରମଣକାରୀ ।
ପ୍ରସ୍ଥିକା—ସ୍ତ୍ରୀ.ବି.ଆମ୍ରାତକ ବୃକ୍ଷ,ଆମ୍ବଡ଼ା, ମାଚିକା, ପୁଦିନା ।
ପ୍ରସ୍ଥିତ—କ୍ରି.ବିଂ.(ପ୍ର+ସ୍ଥା+ତ)ଗତ, ଗମନୋଦ୍ୟତ, ଯେ ଗମନ କରିଅଛି ।
ପ୍ରସ୍ଥିତି—ସ୍ତ୍ରୀ.ବି.(ପ୍ର+ସ୍ଥା+ତି)ପ୍ରସ୍ଥାନ, ଯାତ୍ରା ।
ପ୍ରସ୍ଥେୟ—କ୍ରି. ବିଂ. ପ୍ରସ୍ଥାନଯୋଗ୍ୟ ।
ପ୍ରସ୍ନ—ବି.(ପ୍ର+ସ୍ନା+ଅଧି.ଅ) ସ୍ନାନପାତ୍ର
ପ୍ରସ୍ନବ—ବି. (ପ୍ର+ସ୍ନୁ+ଖ୍ରୀ.ଅ) କ୍ଷୀରନିଃଷ୍ୟନ୍ଦ, ଜଳୀୟ ପଦାର୍ଥର ଧାର, କ୍ଷରଣଧାରା, ସ୍ରାବ ।

ପ୍ରସ୍ନାତା—ପୁଂ. ବିଂ. ( ପ୍ର + ସ୍ନା + ତୃ ) ସ୍ନାନକାରୀ ।
ପ୍ରସ୍ନାୟୀ—ପୁଂ. ବିଂ. କ୍ଷରଣଶୀଳ ।
ପ୍ରସ୍ନୁଷା—ସ୍ତ୍ରୀ. ବି. (ପ୍ର + ସ୍ନୁଷା)ନାତୁଣି ବୋହୂ, ନାତିର ସ୍ତ୍ରୀ ।
ପ୍ରସ୍ନେୟ—ତ୍ରି. ବିଂ. ( ପ୍ର + ସ୍ନା + ଯ ) ସ୍ନାନାର୍ହ ଜଳାଦି ।
ପ୍ରସ୍ପନ୍ଦନ—କ୍ଳୀ. ବି. (ପ୍ର + ସ୍ପନ୍ଦ୍ + ଅନ) ଥରିବା, ଧକଧକ ହେବା, କମ୍ପନ ।
ପ୍ରସ୍ଫୁଟ—ତ୍ରି. ବିଂ. (ପ୍ର + ସ୍ଫୁଟ୍ + କ.ଅ) ପ୍ରଫୁଲ୍ଲ, ପ୍ରକାଶିତ, ପ୍ରକଟିତ, ଉତ୍ତମରୂପେ ଫୁଟିଥିବା, ବିକଶିତ, ସୁସ୍ପଷ୍ଟ ।
ପ୍ରସ୍ଫୁରକ—ବି. ଦୀପକ ପଦାର୍ଥବିଶେଷ, ଅମ୍ଳଯାନ ବାଷ୍ପଯୋଗେ ଜଳିଉଠିବା ପଦାର୍ଥବିଶେଷ ।
ପ୍ରସ୍ଫୁରଣ—ବି. (ପ୍ର + ସ୍ଫୁର୍ + ଭା.ଅନ) ଈଷତ୍ କମ୍ପନ, ସ୍ପନ୍ଦନ, ଥରିବା ।
ପ୍ରସ୍ଫୁରିତ—ବିଂ. (ପ୍ର + ସ୍ଫୁରିତ) ସ୍ଫୀତ, ଫୁଲିଉଠିବା, ମୁକୁଳିତ, ବିକସିତ, ଥରୁଥିବା, କମ୍ପିତ ।
ପ୍ରସ୍ଫୁରିତାଧର—ପୁଂ. ବିଂ. ( ବ.ବ୍ରୀ ) ଯାହାର ଓଠ ଥରୁଥାଏ, କମ୍ପିତାଧର ।
ପ୍ରସ୍ଫୋଟନ—କ୍ଳୀ.ବି.(ପ୍ର + ସ୍ଫୁଟ୍ + ଅନ) ସୂର୍ପ, କୁଲା, ପୋଛିବା, ବିଦାରଣ, ଫୁଟିବା, ତାଡ଼ନ, ପବନ, ବିକାଶନ, ପାଚିବା, ପକ୍ୱ ହେବା, କୁଲାଦ୍ୱାରା ପାଛୁଡ଼ିବା, ପାଛୁଡ଼ା ହୋଇଥିବା ଶସ୍ୟ, ( ସ୍ଫୁଟ୍ + ଣିଚ୍ + ଭା.ଅନ ) ପ୍ରସ୍ଫୁଟିତ କରାଇବା, ପ୍ରକାଶିତ କରାଇବା ।
ପ୍ରସ୍ୟନ୍ଦ—ପୁଂ. ବି. (ପ୍ର + ସ୍ୟନ୍ଦ୍ + ଅ) ପ୍ରକର୍ଷରୂପେ କ୍ଷରଣ ।
ପ୍ରସ୍ୟନ୍ଦନ—କ୍ଳୀ ବି. (ପ୍ର + ସ୍ୟନ୍ଦ୍ + ଅନ) ପ୍ରକର୍ଷରୂପେ କ୍ଷରଣ, କ୍ଷରଣ, ନିଃସରଣ ।
ପ୍ରସ୍ୟନ୍ଦୀ—ପୁଂ.ବିଂ. (ପ୍ର + ସ୍ୟନ୍ଦ୍ + ଇନ୍) ପ୍ରସ୍ୟନ୍ଦଯୁକ୍ତ, କ୍ଷରଣଶୀଳ ।
ପ୍ରସ୍ରଂଶ—ପୁଂ.ବି. ( ପ୍ର + ସ୍ରଂଶ୍ + ଭା.ଅ ) ପତନ, ଭ୍ରଂଶନ, ଗର୍ଭସ୍ରାବ, ଗର୍ଭପାତ
ପ୍ରସ୍ରବ—ପୁଂ.ବି.(ପ୍ର + ସ୍ରୁ + ଭା.ଅ)କ୍ଷରଣ, ଗଳନ, ତରଳିବା, ଝରିବା, ବୋହିବା, (କ.ଅ)ସ୍ତନରୁ ସ୍ରବିବା, ଦୁଗ୍ଧ, ପ୍ରସ୍ରାବ, ମୂତ୍ର, ପେଜ, ଧାର, ସ୍ରୋତ ।
ପ୍ରସ୍ରବଣ—ବି.(ପ୍ର + ସ୍ରୁ + କ.ଅନ)ଝରଣା, ନିର୍ଝର, ଝରଣା, ଜଳପ୍ରବାହ, ଦୁଗ୍ଧ, ( ଭା.ଅନ ) ଟୋପା ଟୋପା ହୋଇ ଗଳିବା, କ୍ଷରଣ, ସ୍ୱେଦ, ଝାଳ, ମୂତ୍ରତ୍ୟାଗ, (ଅପା-ଅନ) ମାଲ୍ୟବାନ୍ ପର୍ବତ. ଜଳପ୍ରପାତ ।
ପ୍ରସ୍ରବଣୀ—ବି. (ପ୍ରସ୍ରବଣ + ଈ)ବୈଦ୍ୟକ) ସର୍ବଦା ଜଳୀୟ ସ୍ରାବ ହେଉଥିବା ଯୋନି
ପ୍ରସ୍ରା—ବି.(ପ୍ର + ସ୍ରୁ + ର୍ମ.ଅ) ମୂତ୍ର, ମୂତ, (ଭା.ଅ) ପ୍ରକୃଷ୍ଟ ରୂପେ କ୍ଷରଣ ।
ପ୍ରସ୍ରାବ—ବି. ( ପ୍ର + ସ୍ରୁ + ଅ ) ପ୍ରକର୍ଷରୂପେ କ୍ଷରଣ, ଝରିବା, ମୂତ୍ର, ମୂତିବା, ଗୋମୂତ୍ର ।
ପ୍ରସ୍ରୁତ—ତ୍ରି. ବିଂ. (ପ୍ର + ସ୍ରୁ + କ.ତ) କ୍ଷରିତ, ଗଳିତ ।
ପ୍ରସ୍ରୁତି—ସ୍ତ୍ରୀ. ବି. କ୍ଷରଣ, ନିଃସରଣ ।
ପ୍ରସ୍ୱନ—ପୁଂ.ବି.(ପ୍ର + ସ୍ୱନ୍ + ଅ)ଉଚ୍ଚୈଃ ଶବ୍ଦ, ଉଚ୍ଚଧ୍ୱନି ।
ପ୍ରସ୍ୱାନ୍—ପୁଂ.ବି. (ପ୍ର + ସ୍ୱନ୍ + ଅ)ଉଚ୍ଚୈଃ ଶବ୍ଦ, ଉଚ୍ଚଧ୍ୱନି ।
ପ୍ରସ୍ୱାପ—ବି.(ପ୍ର + ସ୍ୱପ୍ + ଭା.ଅ)ଗାଢ଼ନିଦ୍ରା, ସ୍ୱପ୍ନ,(କ.ଅ)ନିଦ୍ରାଉତ୍ପାଦକ ଅସ୍ତ୍ରବିଶେଷ
ପ୍ରସ୍ୱାପକ—ପୁଂ. ବିଂ. (ପ୍ର + ସ୍ୱପ୍ + ଣିଚ୍ କ.ଅକ) ନିଦ୍ରା ଉତ୍ପାଦକ, ନିହନ୍ତା ।
ପ୍ରସ୍ୱାପନ—କ୍ଳୀ.ବି.(ପ୍ର + ସ୍ୱପ୍ + ଣିଚ୍ + ଅନ) ନିଦ୍ରା ଉତ୍ପାଦନ, ଶତ୍ରୁର ନିଦ୍ରାକାରକ ଅସ୍ତ୍ରବିଶେଷ ।
ପ୍ରସ୍ୱାପିନୀ—ସ୍ତ୍ରୀ.ବି. ସତ୍ୟଭାମାଙ୍କ ସପତ୍ନୀ, ଶ୍ରୀକୃଷ୍ଣଙ୍କର ଏକଭାର୍ଯ୍ୟା ।
ପ୍ରସ୍ୱିନ୍ନ—ବିଂ. ( ପ୍ର + ସ୍ୱିଦ୍ + କ.ତ ) ଝାଳରେ ବୁଡ଼ିଥିବା, ଘର୍ମାକ୍ତ, ଉତ୍ତପ୍ତ, ବାମ୍ଫ ଆଣି ଗ୍ରହଣ କରୁଥିବା (ବ୍ୟକ୍ତି) ।
ପ୍ରସ୍ୱେଦ—ପୁଂ. ( ପ୍ର + ସ୍ୱିଦ୍ + ଅ ) ଅତିଶୟ ଘର୍ମ ବା ଝାଳ ।
ପ୍ରସ୍ୱେଦୀ—ପୁଂ ବିଂ. (ପ୍ରସ୍ୱେଦ + ଇନ୍) ପ୍ରସ୍ୱେଦଯୁକ୍ତ, ଘର୍ମଯୁକ୍ତ, ଘର୍ମାକ୍ତ ।
ପ୍ରହନେମି—ପୁଂ. ବି. ଚନ୍ଦ୍ର ।
ପ୍ରହତ—ବିଂ(ପ୍ର + ହନ୍ + ର୍ମ.ତ)ଆହତ, ହତ, ପରାକ୍ରାନ୍ତ, ବିସ୍ତୃତ, ନିକଟସ୍ଥ, ସୀମାରେଖା ବିତାଡ଼ିତ, ବିଦ୍ୱାନ୍, ଗୁଣିତ, ଏକତ୍ରୀଭୂତ, ଚୂର୍ଣ୍ଣିତ, କ୍ଷୁଣ୍ଣ ।
ପ୍ରହନ୍ତବ୍ୟ—ତ୍ରି.ବିଂ.(ପ୍ର + ହନ୍ + ତବ୍ୟ) ପ୍ରହଣନର ଯୋଗ୍ୟ, ବଧଯୋଗ୍ୟ ।
ପ୍ରହର—ପୁଂ. ବି. (ପ୍ର + ହୃ + ଅ)ବାସରର ଅଷ୍ଟ ଭାଗରୁ ଏକଭାଗ, ସମସ୍ତ ଦିନ ଓ ରାତିର ଆଠଭାଗରୁ ଏକଭାଗ, ଯାମ, ତିନଘଣ୍ଟା କାଳ ।
ପ୍ରହରଣ—କ୍ଳୀ.ବି.(ପ୍ର + ହୃ + ଅନ)ଆୟୁଧ, ଆଚ୍ଛାଦିତ ଶକଟ, ଯଟାଟପଥିବା ଶଗଡ଼, ବସ୍ତ୍ର, ଅସ୍ତ୍ର, ଯୁଦ୍ଧ, ପ୍ରହାର, ଆଘାତ ।
ପ୍ରହରଣକଳିକା—ସ୍ତ୍ରୀ ବି.ଚତୁର୍ଦ୍ଦଶାକ୍ଷରପାଦକ ଛନ୍ଦୋବିଶେଷ ।
ପ୍ରହରଣୀୟ—ତ୍ରି.ବିଂ(ପ୍ର + ହୃ + ଅନୀୟ) ପ୍ରହରଣର ଯୋଗ୍ୟ, ପ୍ରହାର ପାଇବା ଯୋଗ୍ୟ, (ବି) ଆୟୁଧ, ଅସ୍ତ୍ର ।
ପ୍ରହରି—ଗ୍ରା.ବି ପହରି, ପହରିର କର୍ମ ।
ପ୍ରହରାଜ—ଗ୍ରା. ବି. ବ୍ରାହ୍ମଣମାନଙ୍କର ରାଜଦତ୍ତ ଉପାଧିବିଶେଷ ।
ପ୍ରହରୀ—ପୁଂ.ବି.(ପ୍ରହର + ଇନ୍)ଯାମିକ, ପ୍ରହର କାଳାଧିକୃତ ସୈନ୍ୟବିଶେଷ, ପହରିବାଲା, ଚୌକିଦାର, ମନ୍ତ୍ରୀ ।
ପ୍ରହର୍ତ୍ତବ୍ୟ—ତ୍ରି.ବିଂ (ପ୍ର + ହୃ + ତବ୍ୟ) ପ୍ରହରଣୀୟ, ପ୍ରହାର ଯୋଗ୍ୟ ।
ପ୍ରହର୍ତ୍ତା—ପୁଂ.ବିଂ(ପ୍ର + ହୃ + ତୃ)ପ୍ରହାରକର୍ତ୍ତା, ଯୋଦ୍ଧା । [ ଆହ୍ଲାଦ ।
ପ୍ରହର୍ଷ—ପୁଂ.ବି (ପ୍ର + ହୃଷ୍ + ଅ)ଆନନ୍ଦ,
ପ୍ରହର୍ଷଣ—ପୁଂ. ବି. (ପ୍ର + ହୃଷ୍ + ଅନ) ଆନନ୍ଦ ସାଧନ, ବୁଧଗ୍ରହ, (ବିଂ) ହର୍ଷବିଶିଷ୍ଟ, ଆନନ୍ଦିତ ।
ପ୍ରହର୍ଷଣୀ—ସ୍ତ୍ରୀ.ବି.(ପ + ହୃଷ୍ + ଇନ୍ + ଈ) ହଳଦୀ, ଛନ୍ଦୋଭେଦ ।
ପ୍ରହସ—ପୁଂ. ବି. ରାକ୍ଷସବିଶେଷ ।
ପ୍ରହସନ—କ୍ଳୀ.ବି.(ପ୍ର + ହସ୍ + ଭା.ଅନ) ଉଚ୍ଚହାସ୍ୟ, ଉଲ୍ଲାସ, ବ୍ୟଙ୍ଗୋକ୍ତି, ପରିହାସ, ଥଟ୍ଟା, (ଅଧି-ଅନ) ହାସ୍ୟରସପ୍ରଧାନ ନାଟ୍ୟଗ୍ରନ୍ଥବିଶେଷ ।

ପ୍ରହସନ୍ତୀ—ସ୍ତ୍ରୀ.ବ. (ପ୍ର + ହସ୍ + ଅତ୍ + ଈ) ଯୂଥୀ, ବାସନ୍ତୀ, ବଡ଼ ଅଙ୍ଗାରରଖା ଚୋର୍ଦ୍ଦ ।

ପ୍ରହସ୍ତ—ପୁଂ. ବ. (ପ୍ର + ହସ୍ତ) ବିସ୍ତୃତାଙ୍ଗୁଳ ପାଣି, ଚପେଡ଼ା, ରାବଣର ଜଣେ ସେନାପତି ।

ପ୍ରହାଣ—କ୍ଳୀ.ବ(ପ୍ର + ହା + ଭା.ତ)ପରିତ୍ୟାଗ, ଚିତ୍ତର ଏକାଗ୍ରତା । [ ହାନି ।

ପ୍ରହାଣି—ସ୍ତ୍ରୀ.ବ(ପ୍ର + ହା + ନି)ଅପଚୟ,

ପ୍ରହାର—ପୁଂ.ବ(ପ୍ର + ହୃ + ଅ) ଆଘାତ, ମାଡ଼, ଯୁଦ୍ଧ, ନିଗ୍ରହ ।

ପ୍ରହାରକ—ପୁଂ. ବ. ପ୍ରହାରକାରୀ, ଯେ ମାରପିଟ କରେ ।

ପ୍ରହାସ—ପୁଂ.ବ.( ପ୍ର + ହସ୍ + ଅ ) ଶିବ, କାର୍ତ୍ତିକେୟଙ୍କ ଅନୁଚରବିଶେଷ, ନାଗବିଶେଷ,ନଟ, ଅଭିନେତା, ସୋମତୀର୍ଥ. ପ୍ରଭାସତୀର୍ଥ, ଅଟ୍ଟହାସ, ଫୁଟିବା, (ବିଂ) ସମୁଜ୍ଜ୍ୱଳ ।

ପ୍ରହାସିକ—ପୁଂ.ବିଂ.ହାସ୍ୟଜନକ, ଯେଉଁମାନେ ଲୋକଙ୍କୁ ହସାନ୍ତି ।

ପ୍ରହାସୀ—ପୁଂ.ବିଂ(ପ୍ର + ହସ୍ + କ.ଇନ୍) ଉଚ୍ଚହାସ୍ୟକାରୀ, ହାସ୍ୟୋତ୍ପାଦକ, (ପୁଂ. ବ) ବିଦୂଷକ, ଭଣ୍ଡ ।

ପ୍ରହି—ପୁଂ. ବ.(ପ୍ର + ହୃ + ଇ) କୂପ, କଅ

ପ୍ରହିତ—ବିଂ(ପ୍ର + ଧା + ମି.ତ)ପ୍ରେରିତ, ନିଯୁକ୍ତ, ବିସ୍ତୃତ, ନିରସ୍ତ, ପ୍ରଦତ୍ତ ।

ପ୍ରହୀଣ(ନ)—ତ୍ରି.ବିଂ.(ପ୍ର + ହା + ମି.ତ) ପରିତ୍ୟକ୍ତ, ବିଚ୍ୟୁତ, ନିହତ ।

ପ୍ରହୁତ—କ୍ଳୀ.ବ.(ପ୍ର + ହୁ + ତ)ଭୂତଯଜ୍ଞ, ବୈଶ୍ୱଦେବ ବଳି ।

ପ୍ରହୃତ—ବିଂ. (ପ୍ର + ହୃ + ମି.ତ)ନିକ୍ଷିପ୍ତ, ବିସ୍ତାରିତ, କୃତପ୍ରହାର, ନିଗୃହୀତ, ଆହତ, ଆଘାତପ୍ରାପ୍ତ,(ବି.ଭା.ତ)ପ୍ରହାର

ପ୍ରହୃଷ୍ଟ—ତ୍ରି. ବିଂ. ( ପ୍ର + ହୃଷ୍ + ତ ) ଅତିଶୟ ଆହ୍ଲାଦିତ ।

ପ୍ରହେଣକ—କ୍ଳୀ. ବ. ପିଷ୍ଟକବିଶେଷ, ମଣ୍ଡନ ଭୋଗ, ଯବାଗୁ, ଯାଉ ।

ପ୍ରହେତି—ବ. ରାକ୍ଷସବିଶେଷ ।

ପ୍ରହେଳା—ବ.(ପ୍ର + ହେଳା)ଅନାଦରିତ ଆଚରଣ ।

ପ୍ରହେଳିକା—ସ୍ତ୍ରୀ.ବ. (ପ୍ର + ହେଳ + ଣକ + ଆ)ଦୁର୍ବୋଧାର୍ଥ ପ୍ରଶ୍ନ,ପହେଳି,ପହେଳୀ କୂଟପ୍ରଶ୍ନ. ପହଳି ।

ପ୍ରହ୍ରାଦ—ପୁଂ. ବ. (ପ୍ର + ହ୍ରାଦ୍ + ଭା.ଅ) ପ୍ରହ୍ଲାଦ. ହର୍ଷ, ଗୋଳମାଳ, ଧ୍ୱନି. ନାଗବିଶେଷ ।

ପ୍ରହ୍ଲାଦ—ପୁଂ.ବ.ପୁରାଣ ପ୍ରସିଦ୍ଧ ଦୈତ୍ୟପତି ହିରଣ୍ୟକଶିପୁର ପୁତ୍ର ଓ ଜଣେ ପ୍ରଧାନ ବିଷ୍ଣୁଭକ୍ତ, ଜନପଦ ବିଶେଷ. ପ୍ରମୋଦ, ନାଗ ବିଶେଷ, ଶବ୍ଦ ।

ପ୍ରହ୍ଲାଦକ—ତ୍ରି. ବିଂ. ଆହ୍ଲାଦଜନକ, ସନ୍ତୋଷ ଜନକ ।

ପ୍ରହ୍ଲାଦନ—କ୍ଳୀ.ବ.(ପ୍ର + ହ୍ଲାଦ + ଅନ) ଆହ୍ଲାଦକରଣ, ଆନନ୍ଦିତକରଣ,(ବିଂ) ଆହ୍ଲାଦଜନକ, ଆନନ୍ଦକର ।

ପ୍ରହ୍ୱ—ତ୍ରି. ବିଂ. ( ପ୍ର + ହ୍ୱେ + କ.ଅ ) ନମ୍ର, ବିନୀତ, ପ୍ରବଣ, ଆସକ୍ତ, ଅନୁରକ୍ତ, ଅବନତ ।

ପ୍ରହ୍ୱଳିକା—ସ୍ତ୍ରୀ.ବ. ପ୍ରହେଳିକା ଦେଖ ।

ପ୍ରହ୍ୱାଞ୍ଜଳି—ବିଂ.କୃତାଞ୍ଜଳି ପୂର୍ବକ ମସ୍ତକାବନତଭାବେ ଦଣ୍ଡାୟମାନ ।

ପ୍ରାଇମେରୀ—ଯା. ବ. ପ୍ରାଥମିକ ।

ପ୍ରାଏ—ଗ୍ରା. ଅବ୍ୟ. ପରି, ପରି, ପ୍ରାୟ ।

ପ୍ରାଂଶୁ—ତ୍ରି. ବିଂ. ( ବ.ଗ୍ରା ) ଡେଙ୍ଗା, ଉଚ୍ଚ, ଉନ୍ନତ, (ପୁଂ. ବ) ବୈବସ୍ୱତ ମନୁଙ୍କ ପୁତ୍ରଭେଦ, ବତ୍ସପ୍ରୀନୃପର ସୁନନ୍ଦିନୀଠାରୁ ଜାତ ପୁତ୍ରଭେଦ, ବିଷ୍ଣୁ, ଡେଙ୍ଗା ଲୋକ ।

ପ୍ରାଂଶୁଲଭ୍ୟ—ବିଂ. ( ଷତତ୍ତ୍ୱ ) ଡେଙ୍ଗା ଲୋକର ହାତ ପାଉଥିବା (ପଦାର୍ଥ) ।

ପ୍ରାକ୍—ଅବ୍ୟ. (ପ୍ର + ଅନ୍ଚ୍ + ଅଧି.କ୍ୱିପ୍) ସମ୍ମୁଖରେ, ଆଗରେ, ପ୍ରଥମେ, ଆରମ୍ଭରେ, ପୂର୍ବ, ପୂର୍ବକାଳରେ, ପୂର୍ବ ଦେଶରେ, କ୍ରମେ,ଏଥିପୂର୍ବେ, ପ୍ରାତଃକାଳରେ, (ଅମୁକ) ପର୍ଯ୍ୟନ୍ତ ।

ପ୍ରାକ୍ଚରଣ—ବ.(ପ୍ରାକ୍ + ଚରଣ)ଯୋନି. ଭଗ ।

ପ୍ରାକ୍ପ୍ରୟୁ—ବ.(ବ.ଗ୍ରା)ଆରମ୍ଭ କାଳ ।

ପ୍ରାକ୍ପଦ—ବ. ( ପ୍ରାକ୍ + ପଦ) ସମାସଯୁକ୍ତ ବା ସମସ୍ତ ପଦର ପ୍ରଥମ ଶବ୍ଦ ।

ପ୍ରାକ୍ଫଳ—ବ. (ବ.ଗ୍ରା) ପଣସ ଫଳ ।

ପ୍ରାକ୍ଶିରାଃ—ପୁଂ. ବିଂ. ( ବ.ଗ୍ରା ) ପୂର୍ବ ଦିଗକୁ ମୁଣ୍ଡ କରିଥିବା, ପୂର୍ବମୁଖ ।

ପ୍ରାକ୍ସନ୍ଧ୍ୟା—ବ. (ପ୍ରାକ୍ + ସନ୍ଧ୍ୟା) ପ୍ରାତଃକାଳ,ସୂର୍ଯ୍ୟୋଦୟ କାଳୀନ ଦିବସର ଦକ୍ଷକାଳ ।

ପ୍ରାକରଣିକ—ତ୍ରି.ବିଂ.(ପ୍ରକରଣ + ଇକ) ପ୍ରକରଣ ବା ପରିଚ୍ଛେଦ ସମ୍ବନ୍ଧୀୟ ।

ପ୍ରାକର୍ଷିକ—ପୁଂ. ବିଂ. (ପ୍ରକର୍ଷ + ଇକ) ନିତ୍ୟ ପ୍ରକର୍ଷାର୍ହ, ଉତ୍କର୍ଷଯୋଗ୍ୟ, (ପୁଂ.ବ) ସ୍ତ୍ରୀମାନଙ୍କର ନର୍ତ୍ତକ, ଭଣ୍ଡୁଆ, କୁଟ୍ଟନ, ପରଦାରୋପଜୀବୀ ।

ପ୍ରାକାମ୍ୟ—ବ. (ପ୍ରକାମ + ଯ) ଯଥେଚ୍ଛାକରିତ୍ୱ. ଅଭିମତାପ୍ତି ମନଃ, ଅଷ୍ଟବିଧ ଐଶ୍ୱର୍ଯ୍ୟ ମଧ୍ୟରେ ଐଶ୍ୱର୍ଯ୍ୟ ବିଶେଷ, ସ୍ୱଚ୍ଛନ୍ଦାନୁବର୍ତ୍ତିତା ରୂପ ଐଶ୍ୱର୍ଯ୍ୟ,ଆପଣାର ଇଚ୍ଛାନୁସାରେ ଚଳିବାର କ୍ଷମତା ।

ପ୍ରାକାର—ପୁଂ. ବ. ( ପ୍ର + କୃ + ଅ ) ପ୍ରାଚୀର, ଦୁର୍ଗରେ ବେଢ଼ା ବାଡ଼ ।

ପ୍ରାକାଷିକ—ପୁଂ. ବ. ସ୍ତ୍ରୀମାନଙ୍କ ମଧ୍ୟରେ ନୃତ୍ୟକାରୀ ପୁରୁଷ, ପରସ୍ତ୍ରୀର କାରକର୍ମର ଉପାର୍ଜନ ଦ୍ୱାରା ପ୍ରତିପାଳିତ ପୁରୁଷ, ଭଣ୍ଡୁଆ ।

ପ୍ରାକାଶ—ପୁଂ. ବ. ( ପ୍ର + କଶ୍ + ଅ ) ପ୍ରକାଶ ଦେଖ ।

ପ୍ରାକାଶ୍ୟ—କ୍ଳୀ.ବ. ସର୍ବ ସମକ୍ଷରେ ପ୍ରକାଶନ, ଖ୍ୟାତି, ପ୍ରସିଦ୍ଧି, ଯଶ ।

ପ୍ରାକୃତ—ବିଂ. (ପ୍ରକୃତି + ଅ) ଅକୃତ୍ରିମ, ନୈସର୍ଗିକ, ପ୍ରକୃତି ସମ୍ବନ୍ଧୀୟ, ପ୍ରଜାସମ୍ବନ୍ଧୀୟ, ସାମାନ୍ୟ, ସାଧାରଣ, (ପ୍ର + ଅକୃତ)ନୀଚ,ଅଧମ, ଅଶିଷ୍ଟ, ଅଶିକ୍ଷିତ, ଭୌତିକ,ମାୟାମୟ,ମହତ୍ତତ୍ତ୍ୱାଦି ଦ୍ୱାରା ସୃଷ୍ଟ,ହେୟ, ଲୌକିକ, ପ୍ରାଦେଶିକ, (ବ) ଅସଂସ୍କୃତ ଭାଷା ବିଶେଷ, ଚଳିତ ଭାଷା, ଇତରଜନ,(ପରାଶରଙ୍କ ମତରେ) ସ୍ୱାତୀ, ଚିତ୍ରା ଓ କୃତ୍ତିକା ନକ୍ଷତ୍ରରେ ଥିବା ସମୟରେ ବୁଧଗ୍ରହର ଗତି ।

ପ୍ରାକୃତଇତବୃତ୍ତ—ବି. ପ୍ରକୃତ ବା ଜଡ଼-ଜଗତ ସମ୍ବନ୍ଧୀୟ ବିଜ୍ଞାନ, ଜଡ଼ବିଜ୍ଞାନ ।

ପ୍ରାକୃତଜନ—ପୁଂ. ବି. (କ.ଧା) ଇତର ଲୋକ ।

ପ୍ରାକୃତଜ୍ୱର—ପୁଂ.ବି. ବର୍ଷା, ଶରତ୍ ଓ ବସନ୍ତ ଏହି ଋତୁମାନଙ୍କରେ ଉତ୍ପନ୍ନ ଯଥାକ୍ରମେ ବାତ ପିତ୍ତ ଓ କଫ ଜ୍ୱର, ଋତୁ ଭେଦରେ ହେବା ଜ୍ୱର ।

ପ୍ରାକୃତତତ୍ତ୍ୱଦର୍ଶନ—ବି. ପ୍ରକୃତ ବା ସୃଷ୍ଟିସ୍ଥିତ ପଦାର୍ଥମାନଙ୍କୁ ଦେଖି ପରମାତ୍ମା ସମ୍ବନ୍ଧେ ଯେଉଁ ଜ୍ଞାନ ଜନ୍ମେ ।

ପ୍ରାକୃତତନ୍ତ୍ର—କ୍ଲୀ.ବି. ପ୍ରଜାତନ୍ତ୍ର,ପ୍ରଜାଙ୍କର ହସ୍ତଗତ ରାଜ୍ୟଶାସନ ।

ପ୍ରାକୃତଦୋଷ—ପୁଂ. ବି. (କ.ଧା) ବର୍ଷା ଶରତ୍ ଓ ବସନ୍ତ ଋତୁରେ ଯଥାକ୍ରମେ କୁପିତ ବାତ ପିତ୍ତ ଓ କଫର ଆଧିକ୍ୟ ।

ପ୍ରାକୃତପ୍ରକାଶ—ବି.ପୁରୀଜିଲ୍ଲାର ମାର୍କଣ୍ଡ ଦାସଙ୍କର ପ୍ରାକୃତଭାଷାର ଅଭିଧାନ ବିଶେଷ, ପ୍ରାକୃତ ଭାଷାର ବ୍ୟାକରଣ ଗ୍ରନ୍ଥବିଶେଷ ।

ପ୍ରାକୃତପ୍ରଳୟ—ପୁଂ.ବି. ବ୍ରହ୍ମାଙ୍କ ଦିବସର ଅବସାନହେଲେ ବ୍ରହ୍ମା ନିଦ୍ରାଯିବାରୁ ସୃଷ୍ଟିର ଯେଉଁ ବିନାଶ ଘଟେ ।

ପ୍ରାକୃତବନ୍ଧ—ଗ୍ରା. ବି. ଦେଶପ୍ରଚଳିତ କଥ୍ୟଭାଷାରେ ଛନ୍ଦୋବଦ୍ଧ ରଚନା ।

ପ୍ରାକୃତଭୂଗୋଳ--ଯେଉଁ ଭୂଗୋଳ ବୃତ୍ତାନ୍ତ ଦ୍ୱାରା ପୃଥିବୀର ଜଳ ସ୍ଥଳ ବିଭାଗ ପର୍ବତାଦିର ବିବରଣ ଭିନ୍ନ ଭିନ୍ନ ପ୍ରଦେଶର ଜଳବାୟୁ ଓ ତଦୁତ୍ପନ୍ନ ଦ୍ରବ୍ୟାଦିର ବିଷୟ ଜଣାଯାଏ ।

ପ୍ରାକୃତମିତ୍ର—କ୍ଲୀ. ବି. ସ୍ୱଭାବସିଦ୍ଧମିତ୍ର, ଯେଉଁମାନଙ୍କ ସହିତ ସ୍ୱାଭାବିକ ମିତ୍ରତା ହୁଏ ।

ପ୍ରାକୃତଶତ୍ରୁ—ପୁଂ. ବି. ସ୍ୱାଭାବିକ ଶତ୍ରୁ, ସ୍ୱଦେଶର ଅବ୍ୟବହିତ ଦେଶାବସ୍ଥିତ ରାଜ୍ୟାଦି ।

ପ୍ରାକୃତସମାଜ—ଇଂଲଣ୍ଡଦେଶର ରାଜକୀୟ ସଭାସଦାନ୍ତ, ସାଧାରଣ ଲୋକମାନଙ୍କର ସମାଜ ।

ପ୍ରାକୃତିକ—ତ୍ରି. ବିଂ. (ପ୍ରକୃତି+ଇକ) ପ୍ରକୃତିବିକାର, ପ୍ରକୃତି ସମ୍ବନ୍ଧୀୟ, ସ୍ୱାଭାବିକ, ସ୍ୱଭାବସିଦ୍ଧ,ଭୌତିକ,ଐଶ୍ୱରିକ, ଲୌକିକ, ସାଂସାରିକ, ସାଧକ ।

ପ୍ରାକ୍‌କର୍ମ—କ୍ଲୀ.ବି. ପୂର୍ବକର୍ମରୂପ ଅଦୃଷ୍ଟ, ଭାଗ୍ୟ ।

ପ୍ରାକ୍‌କଳ୍ପ—ପୁଂ.ବି.ପୁରାକଳ୍ପ,ପୂର୍ବକଳ୍ପ ।

ପ୍ରାକ୍‌କାଳ—ବି. ପୂର୍ବସମୟ, ଅତୀତ, ଆଦ୍ୟକାଳ ।

ପ୍ରାକ୍କାଳିକ—ବିଂ.(ପ୍ରାକ୍କାଳ+ଇକ)ପୂର୍ବକାଳରେ ଘଟିଥିବା, ପୁରାକାଳୀନ, ପୂର୍ବତନ, ଏଥିପୂର୍ବେ ଘଟିଥିବା ।

ପ୍ରାକ୍କାଳୀନ—ବିଂ. (ପ୍ରାକ୍କାଳ+ଈନ) ପ୍ରାକ୍କାଳିକ, ପୂର୍ବକାଳୀନ, ପ୍ରାଚୀନ ।

ପ୍ରାକ୍‌କେବଳ—ତ୍ରି. ବିଂ. ପ୍ରଥମରୁ ଭିନ୍ନ-ଆକାରରେ ପ୍ରକାଶିତ ।

ପ୍ରାକ୍‌ଚରଣା—ସ୍ତ୍ରୀ. ବି. ଜନନେନ୍ଦ୍ରିୟ ।

ପ୍ରାକ୍‌ଚିର—ଅବ୍ୟ. ବିଳମ୍ବ ହେବାର ପୂର୍ବେ, ଯଥାକାଳରେ ।

ପ୍ରାକ୍‌ଛାୟ—ତ୍ରି.ବିଂ.ପୂର୍ବଦିଗବର୍ତ୍ତୀ ଛାୟାଯୁକ୍ତ କାଳ, ଅପରାହ୍ଣର କାଳ ।

ପ୍ରାକ୍ତନ—ବିଂ. (ପ୍ରାକ୍+ତନ) ପୂର୍ବକାଳୀନ, ପୂର୍ବଜନ୍ମାର୍ଜିତ,ଜନ୍ମାନ୍ତରୀଣ, ପୁରାତନ, (ସ୍ତ୍ରୀ) ପ୍ରାକ୍ତନୀ, ( କ୍ଲୀ.ବି ) ଭାଗ୍ୟ, ଅଦୃଷ୍ଟ, ଲଲାଟଲିପି ।

ପ୍ରାକ୍ତନକର୍ମ—କ୍ଲୀ. ବି. (କ.ଧା) ଭାଗ୍ୟ, ଅଦୃଷ୍ଟ, ଦୈବ, ପୂର୍ବଜନ୍ମାର୍ଜିତ ପାପପୁଣ୍ୟ ।

ପ୍ରାକ୍ତନଜନ୍ମ—ବି. ମନୁଷ୍ୟର ଇହଜନ୍ମର ପୂର୍ବେ ଘଟିଥିବା ଜନ୍ମ, ପୂର୍ବଜନ୍ମ ।

ପ୍ରାକ୍ତନସଂସ୍କାର—ବି.ପୂର୍ବଜନ୍ମର କାର୍ଯ୍ୟଦ୍ୱାରା ଇହଜନ୍ମରେ ମନୁଷ୍ୟର ଆତ୍ମାରେ ଯେଉଁ ଛାପ ଲାଗିଯାଇଥାଏ ।

ପ୍ରାକ୍‌ଫଲ୍‌ଗୁନୀ—ସ୍ତ୍ରୀ. ବି. ପ୍ରାଚୀଫଲ୍‌ଗୁନୀ, ପୂର୍ବଫଲ୍‌ଗୁନୀ ନକ୍ଷତ୍ର ।

ପ୍ରାକ୍‌ଫଲ୍‌ଗୁନୀଭବ—ପୁଂ. ବିଂ ବୃହସ୍ପତି ।

ପ୍ରାକ୍‌ଫାଲ୍‌ଗୁନେୟ—ପୁଂ. ବି. ବୃହସ୍ପତି ।

ପ୍ରାଖର୍ଯ୍ୟ—କ୍ଲୀ.ବି. (ପ୍ରଖର+ଯ୍ୟ ଭାବାର୍ଥେ. ପ୍ରଖରତା, ରାଗ, କଟୁସ୍ୱାଦ, ଦୁଷ୍ଟାମି ।

ପ୍ରାଗଗ୍ର—ତ୍ରି.ବିଂ. (ବ.ବ୍ରୀ) ପୂର୍ବାଭିମୁଖ, ପୂର୍ବଆଡ଼କୁ ମୁଣ୍ଡ କରିଥିବା ।

ପ୍ରାଗଭାବ—ପୁଂ.ବି. (କ.ଧା)ପ୍ରାଗ୍‌ବର୍ତ୍ତୀ, ଅଭାବ, ସଂସର୍ଗାଭାବ ।

ପ୍ରାଗଲ୍‌ଭ୍ୟ—କ୍ଲୀ. ବି. (ପ୍ରଗଲ୍‌ଭ+ଯ) ପ୍ରଗଲ୍‌ଭତା, ସ୍ତ୍ରୀମାନଙ୍କ ଅଯତ୍ନଜ ଭାବ ବିଶେଷ,ଔଦ୍ଧତ୍ୟ, ତେଜସ୍ୱିତା,ସାହସ, ପ୍ରାଧାନ୍ୟ, ନୈପୁଣ୍ୟ, ପରପକ୍ୱତା, ପ୍ରକାଶ, ଗର୍ବ,ବକ୍ତୃତ୍ୱ, ଆଡମ୍ବର,ଦୃଢ଼ସଂକଳ୍ପତା ।

ପ୍ରାଗବସ୍ଥା—ସ୍ତ୍ରୀ. ବି. ପୂର୍ବାବସ୍ଥା ।

ପ୍ରାଗାର—ପୁଂ.କ୍ଲୀ. ବି. (ପ୍ର+ଆଗାର) ପ୍ରାସାଦ, ଗୃହ, ନିକେତନ, ଭବନ ।

ପ୍ରାଗାହ୍ଣିକ—ତ୍ରି.ବିଂ. ପୌର୍ବାହ୍ଣିକ,ଯାହା ପୂର୍ବାହ୍ଣରେ ଜାତ ।

ପ୍ରାଗୁକ୍ତ—ବିଂ. (୭ତତ୍) ପୂର୍ବକଥିତ ।

ପ୍ରାଗୁକ୍ତି—ସ୍ତ୍ରୀ. ବି. ପୂର୍ବୋକ୍ତି ।

ପ୍ରାଗୁତ୍ତରା—ସ୍ତ୍ରୀ. ବି. ଈଶାନକୋଣ ।

ପ୍ରାଗ୍‌ଗାମିନ୍—ତ୍ରି. ବିଂ. ପୂର୍ବଗାମୀ,ଅଗ୍ରଗାମୀ ।

ପ୍ରାଗ୍‌ଜନ୍ମ—କ୍ଲୀ. ବି. ପୂର୍ବଜନ୍ମ ।

ପ୍ରାଗ୍‌ଜ୍ୟୋତିଷ—ପୁଂ. ବି. କାମାକ୍ଷ୍ୟା ପ୍ରଦେଶ, ଈଶାନକୋଣ, କାମରୂପ ଦେଶ, ତଦ୍ଦେଶୀୟ ବ୍ୟକ୍ତି ।

ପ୍ରାଗ୍‌ଜ୍ୟୋତିଷପୁର—ବି.ଆସାମର ପ୍ରାଗ୍‌ଜ୍ୟୋତିଷ ରାଜ୍ୟର ରାଜଧାନୀ,ଆଧୁନିକ ଗୌହାଟୀର ପ୍ରାଚୀନ ନାମ ।

ପ୍ରାଗ୍‌ଦକ୍ଷିଣା—ବି.(ପ୍ରାକ୍+ଦକ୍ଷିଣ+ଆ) ଦକ୍ଷିଣ ପୂର୍ବକୋଣ, ଅଗ୍ନିକୋଣ ।

ପ୍ରାଗ୍‌ଦିଶ—ସ୍ତ୍ରୀ. ବି. ପୂର୍ବଦିଗ ।

ପ୍ରାଗ୍‌ଦିଶୀୟ—ତ୍ରି. ବିଂ. ପୂର୍ବଦିଗଭବ

ପ୍ରାଗ୍‌ଦେଶ—ପୁଂ.ବି. ପୂର୍ବାଞ୍ଚଳ, ପୂର୍ବଦେଶ ।

ପ୍ରାଗ୍‌ଦ୍ୱାର—ବି. ପୂର୍ବଦିଗସ୍ଥ ଦ୍ୱାର ।

ପ୍ରାଗ୍‌ଭକ୍ତ—କ୍ଲୀ. ବି. ସୁଶ୍ରୁତୋକ୍ତ ଅନ୍ନଭକ୍ଷଣ ପୂର୍ବ ଔଷଧ ସେବନ କାଳବିଶେଷ ।

ପ୍ରାଗ୍‌ଭବ—ବିଂ. (ପ୍ରାକ୍+ଭବ) ପୂର୍ବେ ଘଟିଥିବା ବା ଥିବା ।

ପ୍ରାଗ୍‌ଭାବ—ବି.(ପ୍ରାକ୍‌+ଭାବ)ପ୍ରାଧାନ୍ୟ, ଶ୍ରେଷ୍ଠତା,ପର୍ବତର ଶିଖର,ପୂର୍ବଜନ୍ମର ଅବସ୍ଥା, ପୂର୍ବଅବସ୍ଥା । [ ପରଭାଗ ।
ପ୍ରାଗ୍‌ଭାର—ପୁଂ.ବି.ପର୍ବତାଗ୍ରଭାଗ,ଉତ୍କର୍ଷ ।
ପ୍ରାଗ୍‌ବଂଶ—ବି. (ପ୍ରାକ୍‌+ବଂଶ) ପୂର୍ବବର୍ତ୍ତୀ ବଂଶ,(ବି.ସ୍ତ୍ରୀ) ବିଷ୍ଣୁ, ଯଜ୍ଞଗୃହର ସମ୍ମୁଖସ୍ଥ ଗୃହ, ଯଜ୍ଞଶାଳାର କାଳେଣି କାଠ । [ବଚନ ।
ପ୍ରାଗ୍‌ବଚନ—କ୍ଲୀ. ବି. ମନୁଙ୍କ କଥିତ
ପ୍ରାଗ୍‌ବତ—ଅବ୍ୟ.ପୂର୍ବଦେଶ,ପୂର୍ବପର
ପ୍ରାଗ୍ର—ବି. (ପ୍ର + ଅଗ୍ର) ସର୍ବୋଚ୍ଚ ସ୍ଥାନ ବା ବିନ୍ଦୁ ।
ପ୍ରାଗ୍ରସର—ବି. ବିଂ. (ପ୍ରାଗ୍ର + ସୃ+ଅ) ଅଗ୍ରଗ, ଶ୍ରେଷ୍ଠ, ପ୍ରଥମ ।
ପ୍ରାଗ୍ରହର—ବି. ବିଂ. (ପ୍ର + ଅଗ୍ର + ହୃ + ଅ) ଶ୍ରେଷ୍ଠ, ପ୍ରଧାନ, ମୁଖ୍ୟ ।
ପ୍ରାଗ୍ରାଟ—କ୍ଲୀ.ବି. (ପ୍ରାଗ୍ର + ଅଟ୍‌+କ.ଅ) ତରଳଦଧି, ଘୋଳଦହି, ବସାଦହି ।
ପ୍ରାଗ୍ର୍ୟ—ବି. ବିଂ (ପ୍ର+ଅଗ୍ର+ଯ) ଶ୍ରେଷ୍ଠ, ପ୍ରଧାନ ।
ପ୍ରାଘାତ—ପୁଂ. ବି. ( ପ୍ର+ଆଘାତ ) ବିଶେଷରୂପେ ଆଘାତ,ଯୁଦ୍ଧ,ପ୍ରହାର ।
ପ୍ରାଘାର—ପୁଂ. ବି. (ପ୍ର+ଆ+ଘୃ+ଣି.ଅ) ଘୃତାଦି କ୍ଷରଣ,ଟୋପା ଟୋପା ହୋଇ ପଡ଼ିବା ।
ପ୍ରାଘୁଣ—ପୁଂ.ବି. (ପ୍ର+ଆ+ଘୁଣ+କ.ଅ) ଅତିଥି, ଆଗନ୍ତୁକ ।
ପ୍ରାଘୁଣିକ—ପୁଂ. ବି. (ପ୍ରାଘୁଣ + ଇକ) ଅତିଥି, ଆଗନ୍ତୁକ ।
ପ୍ରାଘୂର୍ଣ୍ଣିକ—ପୁଂ. ବି. ଅତିଥି,ଆଗନ୍ତୁକ ।
ପ୍ରାଙ୍—ବି. (ପ୍ର + ଅନ୍ଚ୍‌ + କ.କ୍ୱିପ୍‌) ପ୍ରାଚୀ, ପୂର୍ବଦିଗ, ପୂର୍ବକାଳ, (ବିଂ) ପ୍ରାଚୀନ, ପୂର୍ବତନ ।
ପ୍ରାଙ୍‌ନ୍ୟାୟ—ବି. (ହିନ୍ଦୁ ସ୍ମୃତି) ଉପସ୍ଥିତ ମକଦ୍ଦମା ଦାଏର ହେବା ପୂର୍ବରୁ ଅଦାଲତଙ୍କ ଦ୍ୱାରା ଉକ୍ତ ବିଷୟର ମୀମାଂସା ।
ପ୍ରାଙ୍ମୁଖ—ବିଂ. ବି.ସ୍ତ୍ରୀ;ପୂର୍ବଦିଗକୁ ମୁହଁ କରିଥିବା, ପୂର୍ବମୁଖ,ଉନ୍ମୁଖ, ପ୍ରସ୍ତୁତ
ପ୍ରାଙ୍ଗ—ପୁଂ. ବି. (ପ୍ର+ଅଙ୍ଗ) ପଣବବାଦ୍ୟ, ଶ୍ରେଷ୍ଠବାଦ୍ୟ, ( ବିଂ )ଉତ୍ତମଦେହ ବିଶିଷ୍ଟ, (ସ୍ତ୍ରୀ) ପ୍ରାଙ୍ଗୀ ।
ପ୍ରାଙ୍ଗଣ(ନ)—କ୍ଲୀ. ବି. (ପ୍ର+ଅଙ୍ଗ+ଅଧି.ଅନ) ଅଗଣା, (ଣି.ଅନ) ପଣବବାଦ୍ୟ,ଘରର ତଳ,ଗୃହ,ଭୂମି,ଚଟାଣ ।
ପ୍ରାଚ୍—ବି. (ପ୍ର + ଅନ୍ଚ୍‌ + କ୍ୱିପ୍‌)ପୂର୍ବଦେଶପୂଜ୍ୟ,ପୂଜକର ଅନ୍ତରାଳଦେଶ, ପୂର୍ବଦିଗ, (ଅବ୍ୟ) ପୂର୍ବଦିଗରେ ।
ପ୍ରାଚଣ୍ଡ୍ୟ—ବି. (ପ୍ରଚଣ୍ଡ+ଭା.ଯ) ପ୍ରଚଣ୍ଡତା, ଉଗ୍ରତା, ଭୟଙ୍କରତା ।
ପ୍ରାଚୃର—ପୁଂ. ବି. କୀଟଭେଦ ।
ପ୍ରାଚୃର୍ଯ୍ୟ—ପୁଂ. ବି. ଆଚାର୍ଯ୍ୟ, ବିଦ୍ୱାନ୍ ।
ପ୍ରାଚକା—ସ୍ତ୍ରୀ. ବି. ବନମକ୍ଷିକା, ଡାଂଶ, ମଶା, ମାଛି ଛତ୍ରାଣ ।
ପ୍ରାଚୀ—ସ୍ତ୍ରୀ. ବି. (ପ୍ରାଚ୍‌+ଈ)ପୂର୍ବଦିଗ, ପୂଜ୍ୟପୂଜକର ମଧ୍ୟବର୍ତ୍ତୀ ସ୍ଥାନ,ପାଣିଅଁଳା, (ସ୍ଥା.ବି) ପୁରୀଜଲ୍ଲାର ନଦୀବିଶେଷ ।
ପ୍ରାଚୀନ—ବି. ବିଂ. ପୂର୍ବକାଳୀନ,ପୂର୍ବ, ବୃଦ୍ଧ, ପୁରାତନ, ପୂର୍ବଦିଗସ୍ଥ, ପ୍ରାଚ୍ୟ, (ପ୍ରାଚୀ+ଈନ) ପୂର୍ବଦିଗ୍‌ଭବ ।
ପ୍ରାଚୀନଗୌଡ଼—ପୁଂ. ବି. ଗୌଡ଼ଦେଶୀୟ ଜଣେ ପ୍ରାଚୀନ ଗ୍ରନ୍ଥକାର ।
ପ୍ରାଚୀନତା(ତ୍ୱ)—ବି. ପ୍ରାକ୍‌କାଳୀନତା, ପୁରାତନତ୍ୱ ।
ପ୍ରାଚୀନତିଲକ—ପୁଂ. ବି. ଚନ୍ଦ୍ର ।
ପ୍ରାଚୀନପକ୍ଷ—ବି. ବିଂ. (ବି.ସ୍ତ୍ରୀ) ଅଗ୍ରଭାଗେ ପକ୍ଷବିଶିଷ୍ଟ ।
ପ୍ରାଚୀନପନସ—ପୁଂ. ବି. ବିଲ୍ୱବୃକ୍ଷ, ବେଲଗଛ ।
ପ୍ରାଚୀନବର୍ହିଃ—ପୁଂ.ବି. ଇନ୍ଦ୍ର,ପ୍ରଚେତାମାନଙ୍କର ପିତା,ପ୍ରାଚୀନ ରାଜବିଶେଷ ।
ପ୍ରାଚୀନଶାଳ—ପୁଂ. ବି. ପୂର୍ବଦିଗସ୍ଥ ଗୃହ, ପୁରୁଣାଘର ।
ପ୍ରାଚୀନା—ସ୍ତ୍ରୀ. ବି. ( ପ୍ରାଚୀନ+ଆ ) ବନତିକ୍ତିକା, ରାସ୍ନା,ପାଠା,ଅକାଳନିଦ୍ରା, (ବିଂ) ପ୍ରାଚୀନର ସ୍ତ୍ରୀଲିଙ୍ଗ ।
ପ୍ରାଚୀନାମଲକ—କ୍ଲୀ. ବି. ପାଣିଅଁଳା, ବାଇବଦର ।
ପ୍ରାଚୀନାବୀତ-(ପ୍ରାଚୀନ+ଆବୀତ)ଶ୍ରାଦ୍ଧାଦି ପିତୃକାର୍ଯ୍ୟରେ ବାମହସ୍ତ ବାହାରକୁ ରଖି ଡାହାଣ ହାତରେ ଯଜ୍ଞୋପବୀତ ଧାରଣ କରିବା ପ୍ରକାର, ଅପସବ୍ୟ ।
ପ୍ରାଚୀନାବୀତୀ—ପୁଂ. ବିଂ. ଦକ୍ଷିଣ ସ୍କନ୍ଧସ୍ଥ ଯଜ୍ଞ ସୂତ୍ରାଦି ସମନ୍ୱିତ(ବ୍ୟକ୍ତି),ଅପସବ୍ୟ
ପ୍ରାଚୀପତି—ପୁଂ.ବି. (ଷତତ୍ପୁ)ଇନ୍ଦ୍ର, ପୂର୍ବଦିଗପାଳ ।
ପ୍ରାଚୀମାହାତ୍ମ୍ୟ—ବି.ସଂସ୍କୃତ ଗ୍ରନ୍ଥବିଶେଷ ।
ପ୍ରାଚୀର—କ୍ଲୀ.ବି. (ପ୍ର + ଆ + ଚୀ + ମିଂ. ର)ବେଢ଼ା, ପାଚେରି, ପ୍ରାନ୍ତସ୍ଥ ବେଷ୍ଟନ, ଘେରବନ୍ଦ, ବାଡ଼ ।
ପ୍ରାଚୁର୍ଯ୍ୟ—କ୍ଲୀ.ବି. (ପ୍ରଚୁର+ଯ)ପ୍ରଚୁରତା, ଆଧିକ୍ୟ, ବାହୁଲ୍ୟ ।
ପ୍ରାଚେତସ—ପୁଂ. ବି. (ପ୍ରଚେତସ୍‌+ଅ) ବାଲ୍ମୀକି ମୁନି, ପ୍ରଚେତାଙ୍କ ଅପତ୍ୟମାନ, ବିଷ୍ଣୁ, ଦକ୍ଷ, ବରୁଣ ପୁତ୍ର ।
ପ୍ରାଚ୍ୟ—ପୁଂ. ବି. (ପ୍ରାଚ୍‌+ଯ) ଶରାବତୀ ନଦୀର ପ୍ରାକ୍ ଦକ୍ଷିଣ ଦେଶ, ପୂର୍ବଦେଶୀୟ, ପ୍ରାଚୀନ ।
ପ୍ରାଚ୍ୟବାଟ—ବିଂ. ପ୍ରାଚ୍ୟଦେଶସ୍ଥ ।
ପ୍ରାଚ୍ଛ—ବିଂ. ଜିଜ୍ଞାସକ, ପ୍ରାଡ୍‌ବିବାକ ।
ପ୍ରାଜକ—ପୁଂ. ବି. (ପ୍ର+ଅଜ୍-ଣିଚ୍‌+କ.ଅକ) ସାରଥି, ଚାଳକ, ନିୟନ୍ତା ।
ପ୍ରାଜନ—କ୍ଲୀ.ବି. (ପ୍ର+ଅଜ୍-ଣିଚ୍‌+ଣି. ଅନ)ପଶୁଚାଳନ ଦଣ୍ଡ, ପାଚଣ ବାଡ଼ି, (ଭା.ଅନ) ଅଡ଼ାଇବା, ଚାଳନ ।
ପ୍ରାଜହିତ—ପୁଂ. ବି. ଗାର୍ହପତ୍ୟାଗ୍ନି ।
ପ୍ରାଜାପତ—ବି. (ପ୍ରଜାପତି + ଅ) ପ୍ରଜାପତିର ଧର୍ମ ।
ପ୍ରାଜାପତ୍ୟ—ବିଂ. (ପ୍ରଜାପତି+ଯ)ପ୍ରଜାପତିସମ୍ବନ୍ଧୀୟ,ପ୍ରଜାପତିଙ୍କଠାରୁ ଉତ୍ପନ୍ନ, (ବି) ହିନ୍ଦୁ ଧର୍ମାନୁମତ ଅଷ୍ଟବିଧ ବିବାହ ମଧ୍ୟରୁ ବିବାହବିଶେଷ, ପ୍ରୟାଗ, ଦ୍ୱାଦଶାହ ସାଧ୍ୟ ପ୍ରାୟଶ୍ଚିତ୍ତ ବ୍ରତବିଶେଷ, ରୋହିଣୀ ନକ୍ଷତ୍ର, ଅପୁତ୍ରିକ ବ୍ୟକ୍ତି ଆପଣା କନ୍ୟାର ପୁଅଟିଏ ହେଲେ ତାକୁ ପୁତ୍ର ସ୍ୱରୂପ ଗ୍ରହଣ କରିବେ ଏହି

ଉଦ୍ଦେଶ୍ୟରେ କନ୍ୟାକୁ ବିବାହ ଦେବା ପୂର୍ବେ ଯେଉଁ ଯଜ୍ଞ ସମ୍ପାଦନ କରନ୍ତି।
ପ୍ରାଜାପତ୍ୟା—ସ୍ତ୍ରୀ. ବ. (ପ୍ରଜାପତି + ଯ + ଆ) ପ୍ରବ୍ରଜ୍ୟା ଗ୍ରହଣ ପ୍ରବେଶ ପୂର୍ବରୁ ସର୍ବସ୍ୱ ଦାନ ସ୍ୱରୂପ ଯଜ୍ଞବିଶେଷ।
ପ୍ରାଜାବତ—ବି. ଭ୍ରାତୃଜାୟାର ଧର୍ମ।
ପ୍ରାଜିକ—ପୁଂ. ବ. ଶ୍ୟେନ, ବାଜପକ୍ଷୀ।
ପ୍ରାଜିତା—ପୁଂ. ବ. ସାରଥି, ଚାଳକ।
ପ୍ରାଜୀ—ପୁଂ. ବ. (ପ୍ର+ଅଜ୍+ଇନ୍) ପକ୍ଷିବିଶେଷ।
ପ୍ରାଜେଶ—କ୍ଲୀ. ବ. ରୋହିଣୀ ନକ୍ଷତ୍ର, ପ୍ରଜାପତି ଦେବତାଙ୍କ ଦେୟ ଚରୁ ପ୍ରଭୃତି
ପ୍ରାଜ୍ଞ—ପୁଂ. ବି. (ପ୍ର+ଆ+ଜ୍ଞା+ଅ) ଜ୍ଞାନୀ, ସୁପଣ୍ଡିତ, ବିଜ୍ଞ, ଦକ୍ଷ, (ପ୍ର + ଅଜ୍ଞ) ମୂର୍ଖ, ନିର୍ବୋଧ, (ବ) ପଣ୍ଡିତ ବ୍ୟକ୍ତି, ଜୀବାତ୍ମା, କଳିଦେବଙ୍କ ବଡ଼ଭାଇ
ପ୍ରାଜ୍ଞମାନୀ—ପୁଂ. ବି. (ପ୍ରାଜ୍ଞ+ମନ୍+ଇନ୍) ପାଣ୍ଡିତ୍ୟାଭିମାନୀ, ପଣ୍ଡିତମନ୍ୟ।
ପ୍ରାଜ୍ଞା—ସ୍ତ୍ରୀ. ବି. (ପ୍ର+ଆ+ଜ୍ଞା+ଅ+ଆ) ବୁଦ୍ଧିମତୀ, ଜ୍ଞାନବତୀ, (ବି) ବୁଦ୍ଧି।
ପ୍ରାଜ୍ଞୀ—ସ୍ତ୍ରୀ. ବି. ସୁସ୍ଥ ଜ୍ଞାନୀ, (ବ) ପଣ୍ଡିତ-ପତ୍ନୀ, ସୂର୍ଯ୍ୟପତ୍ନୀ।
ପ୍ରାଜ୍ୟ—ବି. ବି. (ପ୍ର + ଅଜ + କ.ଯ) ପ୍ରଚୁର, ପ୍ରଭୂତ, (ବି°-ପ୍ର + ଆଜ୍ୟ) ପ୍ରଚୁର ବହୁଳ, (କ୍ଲୀ. ବ) ପ୍ରକୃଷ୍ଟ ଘୃତ, ପ୍ରଚୁର ଘୃତ।
ପ୍ରାଞ୍ଚ—ବି. ବି. ପୂର୍ବଦେଶ ଜାତ ବସ୍ତୁ।
ପ୍ରାଞ୍ଜଳ—ବି. ବି. (ପ୍ର + ଅଞ୍ଜ + ର୍ମ. ଅଳ) ସରଳ, ସହଜ, ସତ୍ୟ, ସୁଖବୋଧ୍ୟ, ରୁଚିକର, ନିର୍ମଳ, ଉଜ୍ଜ୍ୱଳ, ସମାନ।
ପ୍ରାଞ୍ଜଳି—ପୁଂ. ବି. (ବ. ବ୍ରୀ) ବଦ୍ଧାଞ୍ଜଳି, କୃତାଞ୍ଜଳି, (ବ) ଅଞ୍ଜଳି, ଅଞ୍ଜୁଳା।
ପ୍ରାଞ୍ଜଳୀ—ପୁଂ. ବି. ବଦ୍ଧାଞ୍ଜଳିଯୁକ୍ତ, (ସ୍ତ୍ରୀ) ପ୍ରାଞ୍ଜଳିନୀ।
ପ୍ରାଡ଼୍ ବିବା(ବେ)କ—ବ. (ପ୍ରଚ୍ଛ + କ୍ୱିପ୍) ପ୍ରଧାନ ବିଚାରକ, ଜଜ୍, ମାଜିଷ୍ଟ୍ରେଟ୍, ଓକିଲ, ବ୍ୟବହାରଦର୍ଶୀ।
ପ୍ରାଣ୍—ପୁଂ. ବ. (ପ୍ର+ଅନ୍+କ୍ୱିପ୍) ପ୍ରାଣୀ।
ପ୍ରାଣ—ବ. (ପ୍ର+ଅନ+ଣ.ଅ) ହୃଦୟସ୍ଥ ପଞ୍ଚବାୟୁ ମଧ୍ୟରୁ ଏକତମ, ନିଃଶ୍ୱାସ, ଜୀବନ, ଚୈତନ୍ୟ, ପ୍ରାଣର ଅତ୍ୟାବଶ୍ୟକ ଅଙ୍ଗ, ବଳ, ଶକ୍ତି, ମନଃ, ସାର, ବ୍ରହ୍ମା, ବାୟୁ, ପାର୍ଶ୍ୱୋଚ୍ଚାରଣ, ଆପଣାର ପ୍ରାଣପରି ସ୍ନେହପାତ୍ର, ଶରୀରସ୍ଥ ପଞ୍ଚପ୍ରକାର ପ୍ରାଣବାୟୁ, ପଞ୍ଚପ୍ରାଣ, (ଯଥା— ପ୍ରାଣ, ଅପାନ, ବ୍ୟାନ, ଉଦାନ ଓ ସମାନ ଏହି ପଞ୍ଚ ଓ ନାଗ, କୂର୍ମ, କୃକଳ ଦେବଦତ୍ତ ଓ ଧନଞ୍ଜୟ ଶରୀରସ୍ଥ ଏହି ଦଶବାୟୁ, ବିଷ୍ଣୁ, ଅଗ୍ନି, 'ଯ' କାର ବର୍ଣ୍ଣ, (ବି°) ପୂରିତ।
ପ୍ରାଣ ଉପରେପଡ଼ିବା—ଗ୍ରା. ବ. ଜୀବନ ସଙ୍କଟ, ପ୍ରାଣାନ୍ତ କଷ୍ଟ।
ପ୍ରାଣକ—ପୁଂ. ବ (ପ୍ର + ଅନ + କ. ଅକ) ପ୍ରାଣୀ, ବସ୍ତୁ, ବୃକ୍ଷବିଶେଷ।
ପ୍ରାଣକର—ବି. ବି. ବଳକାରକ, (ସଦ୍ୟୋମାଂସ ଓ ନବାନ୍ନାଦି ପ୍ରାଣକର)।
ପ୍ରାଣକଷ୍ଟ—ବ. ମରଣ ସମୟରେ ଅନୁଭୂତ ଦୁଃଖ, ପ୍ରାଣାନ୍ତକ କଷ୍ଟ।
ପ୍ରାଣକାନ୍ତ—ପୁଂ. ବ. (ଷତତ୍ପୁ) ପ୍ରାଣନାଥ, ପତି, ପ୍ରାଣେଶ୍ୱର।
ପ୍ରାଣଖାଇବା—ଗ୍ରା. କ୍ରି. ଅତି ବ୍ୟସ୍ତ କରିବା
ପ୍ରାଣଘାତ—ବ. (ଷତତ୍ପୁ) ହତ୍ୟା, ବଧ।
ପ୍ରାଣନେବା—ଗ୍ରା. କ୍ରି. ମାରିବା, ହତ୍ୟା-କରିବା।
ପ୍ରାଣଘ୍ନ—ବି. ବି. (ପ୍ରାଣ+ହନ୍+ଅ) ପ୍ରାଣନାଶକ।
ପ୍ରାଣଚ୍ଛିଦ୍—ବି. ବି. (ପ୍ରାଣ + ଛିଦ୍ + କ. କ୍ୱିପ୍) ପ୍ରାଣଘାତକ, ଜୀବନନାଶକ
ପ୍ରାଣଛାଡ଼ିବା—ଗ୍ରା. କ୍ରି. ମୃତହେବା, ମରିବା
ପ୍ରାଣଛାଡ଼ିଯିବା—ଗ୍ରା. ବ. ପ୍ରାଣତ୍ୟାଗ, ମୃତ୍ୟୁ।
ପ୍ରାଣତ୍ୟାଗ—ପୁଂ. ବ. (ଷତତ୍ପୁ) ପ୍ରାଣ-ଛାଡ଼ିବା, ମୃତ୍ୟୁ।
ପ୍ରାଣଥ—ପୁଂ. ବ. (ପ୍ର+ଅନ+ଅଥ) ପ୍ରଜାପତି ତୀର୍ଥ।
ପ୍ରାଣଦ—କ୍ଲୀ. ବ (ପ୍ରାଣ+ଦା+ଅ) ଜଳ, ରକ୍ତ, (ପୁଂ. ବ) ଜୀବନ, ବିଷ୍ଣୁ, (ବି°) ପ୍ରାଣଦାତା, ପ୍ରାଣଦାନକାରୀ।
ପ୍ରାଣଦଣ୍ଡ—ବ. (ଷଧା) ଜୀବନ ନାଶରୂପ ଶାସ୍ତି, ମୃତ୍ୟୁଦଣ୍ଡ, ବଧ, ଫାଶି।
ପ୍ରାଣଦା—ସ୍ତ୍ରୀ. ବ. ହରିତକୀ, ହରିଡ଼ା, ପ୍ରାଣଦାୟୀ, ଋଦ୍ଧି ନାମକ ଔଷଧି।
ପ୍ରାଣଦାତା—ପୁଂ. ବି. (ପ୍ରାଣ + ଦା + କ. ତୃ) ପ୍ରାଣଦାୟୀ, ଯେ ବଞ୍ଚାଏ, ଯେ ପ୍ରାଣ ରକ୍ଷେ।
ପ୍ରାଣଦାନ—କ୍ଲୀ. ବ. (ଷତତ୍ପୁ) ଜୀବନ-ଦାନ, ଅନ୍ୟର ଜୀବନ ରକ୍ଷା, ଅନ୍ୟ ପାଇଁ ନିଜର ଜୀବନ ଉତ୍ସର୍ଗ।
ପ୍ରାଣଦିତ୍ସା—ବ. ପ୍ରାଣ+ଦା+ସନ+ଅ+ଆ) ପ୍ରାଣ ଦାନେଚ୍ଛା।
ପ୍ରାଣଦ୍ୟୂତ—କ୍ଲୀ ବ. ଜୀବନର ମାୟା ତ୍ୟାଗ ପୂର୍ବକ ଯୁଦ୍ଧ, ପ୍ରାଣପଣ ଦେଖ
ପ୍ରାଣଧନ—ବି°. (ଷତତ୍ପୁ) ଜୀବନସର୍ବସ୍ୱ।
ପ୍ରାଣଧରମିଶ୍ର—ବ. ଜାତକଚନ୍ଦ୍ରିକା ରଚୟିତା।
ପ୍ରାଣଧରିବା—ଗ୍ରା. କ୍ରି. ବଞ୍ଚିରହିବା।
ପ୍ରାଣଧାର—ବି. ବି. ଜୀବିତ, (ବ) ପ୍ରାଣ-ଯୁକ୍ତ ଜୀବ।
ପ୍ରାଣଧାରଣ—କ୍ଲୀ. ବ. (ଷତତ୍ପୁ) ଜୀବନ-ଧାରଣ, (ପୁଂ. ବ) ଶିବ।
ପ୍ରାଣନ—କ୍ଲୀ. ବ. (ପ୍ର+ଅନ+ଭା. ଅନ) ଜୀବନ, ବେଷ୍ଟନ, ଜଳ, ଜୀବନ ଧାରଣ, ଗଳଦେଶ।
ପ୍ରାଣନାଥ—ପୁଂ. ବ. (ଷତତ୍ପୁ) ଭର୍ତ୍ତା, ପତି, ସମ୍ରାଟ୍ ଆଓରଙ୍ଗଜେବଙ୍କ ସମସାମୟିକ ପ୍ରାଣନାଥୀ ସମ୍ପ୍ରଦାୟର ଆଚାର୍ଯ୍ୟ।
ପ୍ରାଣନାଥୀ—ଗ୍ରା. ବ. ପ୍ରାଣନାଥଙ୍କ ପ୍ରବର୍ତ୍ତିତ ସମ୍ପ୍ରଦାୟ ଓ ସେ ସମ୍ପ୍ରଦାୟର ବ୍ୟକ୍ତି।
ପ୍ରାଣନାଶ—ପୁଂ. ବ. (ଷତତ୍ପୁ) ପ୍ରାଣତ୍ୟାଗ, ମୃତ୍ୟୁ, ହତ୍ୟା।
ପ୍ରାଣନିଗ୍ରହ—ପୁଂ. ବ. ପ୍ରାଣାୟାମ।
ପ୍ରାଣନେବା—ଗ୍ରା. କ୍ରି. ମାରି ପକାଇବା।
ପ୍ରାଣନ୍ତ—ବ. ବାୟୁ, ରସାଞ୍ଜନ।
ପ୍ରାଣନ୍ତୀ—ସ୍ତ୍ରୀ. ବ. (ପ୍ରାଣନ୍ତ+ଈ) କ୍ଷୁଧା, ହିକ୍କା।
ପ୍ରାଣପଙ୍କ—ବ. ପ୍ରାଣ ବା ସ୍ପନ୍ଦନଯୁକ୍ତ

ମୌଳିକ ରକ୍ତ ମାଂସପିଣ୍ଡ ।
ପ୍ରାଣପଣ—ବି. (୬ତତ୍) ଅନୁଷ୍ଠିତ କର୍ମ ସମ୍ପାଦକ ନିମନ୍ତେ ଆପଣା ଜୀବନକୁ ପଣ ରଖିବା ।
ପ୍ରାଣପଣେ—କ୍ରି.ବି. ବିଂ. ପାରୁ ପର୍ଯ୍ୟନ୍ତ, ଆପଣା ପ୍ରାଣକୁ ଉତ୍ସର୍ଗ କରି ।
ପ୍ରାଣପତି—ପୁଂ. ବି. ( ୬ତତ୍ ) ଆତ୍ମା, ହୃଦୟ, ସ୍ୱାମୀ, ପ୍ରିୟତମ ପୁରୁଷ, ପରମେଶ୍ୱର ।
ପ୍ରାଣପତ୍ନୀ—ସ୍ତ୍ରୀ.ବି.ପ୍ରାଣସମା ପତ୍ନୀ,ସ୍ତ୍ରୀ ।
ପ୍ରାଣପରକ୍ରିୟ—ପୁଂ. ବି. ପ୍ରାଣର ମୂଲ୍ୟ, ପ୍ରାଣପଣ ।
ପ୍ରାଣପରକ୍ଷୀଣ—ବି.ବିଂ,ଯାହାର ଜୀବନ-କ୍ଷୟ ହେଉଅଛି, (କ୍ଲୀ.ବି) ବୃଦ୍ଧାବସ୍ଥା ।
ପ୍ରାଣପରିତ୍ୟାଗ—ପୁଂ. ବି. ପ୍ରାଣବିନାଶ ।
ପ୍ରାଣପରିବର୍ତ୍ତନ—ବି. କୌଣସି ମୃତ ବ୍ୟକ୍ତିର ଆତ୍ମାକୁ କୌଣସି ଜୀବିତ ବ୍ୟକ୍ତିର ଶରୀରକୁ ଆହ୍ୱାନ କରି ଆଣିବା
ପ୍ରାଣପାତ—ବି.(୬ତତ୍) ଜୀବନ ତ୍ୟାଗ ।
ପ୍ରାଣପ୍ରତିମା—ପୁଂ. ବିଂ. ପ୍ରାଣେଶ୍ୱର ।
ପ୍ରାଣପ୍ରତିଷ୍ଠା—ବି. (୬ତତ୍) ମନ୍ତ୍ରାଦି ଦ୍ୱାରା ଜୀବନ ନ୍ୟାସ, ନବ ନିର୍ମିତ ଦେବ-ପ୍ରତିମୂର୍ତ୍ତିଙ୍କଠାରେ ମନ୍ତ୍ରାଦିଦ୍ୱାରା ପ୍ରାଣର ଆରୋପଣ ।
ପ୍ରାଣପ୍ରଦ—ବି. ବିଂ.(ପ୍ରାଣ+ପ୍ର+ଦା+କ.ଅ) ପ୍ରାଣଦାତା, (ବି) ଋଦ୍ଧି ନାମକ ଔଷଧି ।
ପ୍ରାଣପ୍ରଦାୟକ—ବି. ବିଂ. ପ୍ରାଣଦାତା, ବଳକର, ପ୍ରାଣ ପ୍ରଦାନକାରୀ ।
ପ୍ରାଣପ୍ରଦାୟୀ—ପୁଂ. ବିଂ.(ପ୍ରାଣ+ପ୍ର+ଦା+ଇନ୍) ପ୍ରାଣଦାତା ।
ପ୍ରାଣଶ୍ୱସ୍ତ୍—ପୁଂ. ବି. ସମୁଦ୍ର ।
ପ୍ରାଣଭୃତ୍—ବି. ବିଂ. (ପ୍ରାଣ+ଭୃ+କ.କ୍ୱିପ୍) ପ୍ରାଣପୋଷକ, ଚେତନ, (ବି) ପ୍ରାଣୀ, ଜୀବ, ବିଷ୍ଣୁ, ଈଶ୍ୱର ।
ପ୍ରାଣମୟ—ବିଂ. ( ପ୍ରାଣ+ମୟ ) ପ୍ରାଣ-ବିଶିଷ୍ଟ, ଜୀବନ୍ତ, ଚେତନ ।
ପ୍ରାଣମୟକୋଷ—ବି. ପଞ୍ଚପ୍ରାଣ ଓ ପଞ୍ଚ କର୍ମେନ୍ଦ୍ରିୟ ମିଳିତ କୋଷ ।

ପ୍ରାଣମୋକ୍ଷଣ—କ୍ଲୀ.ବି. (୬ତତ୍) ପ୍ରାଣ-ତ୍ୟାଗ ।
ପ୍ରାଣଯ(ୟ)ମ—ପୁଂ.ବି. (ପ୍ରାଣ+ଯମ୍+ଣ.ଅ) ପ୍ରାଣାୟାମ ଦେଖ ।
ପ୍ରାଣଯାତ୍ରା—ପୁଂ. ବି. (୬ତତ୍) ପ୍ରାଣ-ନିମିତ୍ତ ଶ୍ୱାସ ପ୍ରଶ୍ୱାସାଦି ବ୍ୟାପାର, ପ୍ରାଣରକ୍ଷାର୍ଥ ଭୋଜନାଦି, ଜୀବନଯାତ୍ରା, ଜୀବିକା ।
ପ୍ରାଣଯାତ୍ରିକ—ପୁଂ. ବିଂ. ବିଶିଷ୍ଟ ଭୋଜନରେ ଯେ ପ୍ରାଣ ରଖେ । [ ବାୟୁ ।
ପ୍ରାଣଯୋନି--ପୁଂ.ବି.(୬ତତ୍)ପରମେଶ୍ୱର,
ପ୍ରାଣରଖିବା—କ୍ରି. ବି. ନିଜର ଜୀବନକୁ ମୃତ୍ୟୁ ମୁଖରୁ ବଞ୍ଚାଇ ରଖିବା, ଅନ୍ୟ ବ୍ୟକ୍ତିକୁ ପୋଷିବା ।
ପ୍ରାଣରନ୍ଧ୍ର—କ୍ଲୀ.ବି. ( କ.ଧା ) ନାସିକା, ମୁଖ, ପ୍ରାଣବାୟୁ ବହିର୍ଗମନର ଛିଦ୍ର ।
ପ୍ରାଣରହିବା—କ୍ରି.ବି. ବଞ୍ଚିରହିବା, ମୃତ୍ୟୁ-ମୁଖରୁ ରକ୍ଷା ପାଇବା ।
ପ୍ରାଣରୋଧ—ପୁଂ.ବି.( ୬ତତ୍ ) ପ୍ରାଣାୟାମଦ୍ୱାରା ପ୍ରାଣରୁଦ୍ଧ କରିବା । [ଚିହ୍ନ
ପ୍ରାଣଲିଙ୍ଗ—ବି. (୬ତତ୍) ପ୍ରାଣ ଥିବାର
ପ୍ରାଣବଧ—ବି. ହତ୍ୟା । [ ବ୍ୟକ୍ତି ।
ପ୍ରାଣବନ୍ଧୁ—ପୁଂ. ବି. (୬ତତ୍) ପ୍ରିୟତମ
ପ୍ରାଣବଲ୍ଲଭ—ପୁଂ. ବି. ( ୬ତତ୍ ) ପତି, ପ୍ରିୟତମ ବ୍ୟକ୍ତି ।
ପ୍ରାଣବାଧା—ପୁଂ.ବି. ପ୍ରାଣପୀଡ଼ା ।
ପ୍ରାଣବାନ୍—ପୁଂ.ବିଂ. ( ପ୍ରାଣ+ବତ୍ ) ପ୍ରାଣମୟ, ଜୀବବାନ୍, ସହୃଦୟ, ଦୟାଳୁ ।
ପ୍ରାଣବାୟୁ—ବି. ଶରୀରସ୍ଥ ଶ୍ୱାସବାୟୁ, ଜୀବିତ ଶରୀର ମଧ୍ୟରେ ଥିବା ପଞ୍ଚବାୟୁ ମଧ୍ୟରୁ ଏକତମ, ଜୀବନ ।
ପ୍ରାଣବିଦ୍ୟା—ସ୍ତ୍ରୀ.ବି. ପ୍ରାଣତତ୍ତ୍ୱ ଜାଣିବା ବିଦ୍ୟା । [ ମୃତ୍ୟୁ ।
ପ୍ରାଣବିନାଶ—ବି.( ୬ତତ୍ )ଜୀବନନାଶ,
ପ୍ରାଣବିୟୋଗ—ବି. (୬ତତ୍)ମୃତ୍ୟୁ ।
ପ୍ରାଣବିସର୍ଜନ—ବି. ( ୬ତତ୍ ) ଜୀବନ-ତ୍ୟାଗ, ମୃତ୍ୟୁ ।
ପ୍ରାଣବୃତ୍ତି—ସ୍ତ୍ରୀ.ବି, ପ୍ରାଣର କାର୍ଯ୍ୟ,ପଞ୍ଚ ବାୟୁର କାର୍ଯ୍ୟ ।
ପ୍ରାଣଶରୀର—ପୁଂ. ବି. ଉପନିଷଦ୍ଭ ଅନୁସାରେ ମନୋମୟ ସୂକ୍ଷ୍ମ ଶରୀରବିଶେଷ
ପ୍ରାଣଶୂନ୍ୟ—ବିଂ. (୩ତତ୍) ନିର୍ଜୀବ,ମୃତ, ନିଷ୍ଠୁର, ଅନୁଦାର ।
ପ୍ରାଣଶୋଷଣ—ବି. (ବ.ଗ୍ରା) ବାଣ ।
ପ୍ରାଣସଂଗତି—ଗ୍ରା.ସ୍ତ୍ରୀ.ବି. ପ୍ରାଣପ୍ରିୟା ।
ପ୍ରାଣସଂଯମ—ପୁଂ.ବି. ୬ତତ୍)ପ୍ରାଣାୟାମ, ପ୍ରାଣବାୟୁର ନିରୋଧ ।
ପ୍ରାଣସଂରୋଧ—ପୁଂ.ବି. ଶ୍ୱାସରୋଧ ।
ପ୍ରାଣସଂଶୟ—ପୁଂ.ବି. ( ୬ତତ୍ )ଜୀବନ-ସଂଶୟ,ଜୀବନ ନାଶ ହେବାର ଆଶଙ୍କା ।
ପ୍ରାଣସଂହାର—ବି. (୬ତତ୍)ହତ୍ୟା ।
ପ୍ରାଣସଂହାରକ--ପୁଂ.ବିଂ.ଯେ ପ୍ରାଣନିଏ ।
ପ୍ରାଣସଖ—ବି. (୬ତତ୍) ଜୀବନର ବନ୍ଧୁ, ପ୍ରିୟବନ୍ଧୁ ।
ପ୍ରାଣସଖା—ଗ୍ରା.ପୁଂ.ବି. ପ୍ରାଣସମ ପ୍ରିୟ-ବନ୍ଧୁ, ପ୍ରିୟତମ ସହଚର, ପରମେଶ୍ୱର
ପ୍ରାଣସଙ୍କଟ—ପୁଂ.ବି. (୬ତତ୍) ଜୀବନର ବିପଦ, ( ବିଂ.ବ.ଗ୍ରା ) ପ୍ରାଣସଂଶୟ, ଜୀବନ ନାଶର ଆଶଙ୍କାନ୍ୱିତ ।
ପ୍ରାଣସଙ୍ଗୀ—ଗ୍ରା.ପୁଂ. ବି. ଜୀବନସଙ୍ଗୀ, ଅନ୍ତରଙ୍ଗ ସହଚର ।
ପ୍ରାଣସଜନୀ—ଗ୍ରା. ସ୍ତ୍ରୀ. ବି. ପ୍ରାଣସଖୀ, ପ୍ରିୟତମା ସହଚରୀ ।
ପ୍ରାଣସଞ୍ଚାର—ପୁଂ. ବି. ( ୬ତତ୍ ) ମୃତ ଜୀବରେ ବା ଅଚେତନ ବସ୍ତୁରେ ଜୀବନୀ-ଶକ୍ତିର ଆବିର୍ଭାବ ।
ପ୍ରାଣସଦ୍ମ—କ୍ଲୀ. ବି. ( ୬ତତ୍ ) ଶରୀର, ଦେହ । [ ଦେଖ ।
ପ୍ରାଣସନ୍ଦେହ—ପୁଂ. ବି. ପ୍ରାଣସଂଶୟ
ପ୍ରାଣସନ୍ନ୍ୟାସ—ପୁଂ.ବି. ମରଣ ।
ପ୍ରାଣସମ—ପୁଂ.ବିଂ.ପ୍ରାଣପରି ପ୍ରିୟ,(ସ୍ତ୍ରୀ) ପ୍ରାଣସମା ।
ପ୍ରାଣସମା—ସ୍ତ୍ରୀ.ବିଂ.( ୬ତତ୍ ) ଜୀବନ-ତୁଲ୍ୟା, (ସ୍ତ୍ରୀ.ବି) ପତ୍ନୀ,ଜାୟା ।
ପ୍ରାଣସମ୍ଭୂତ—ପୁଂ.ବି. ବାୟୁ ।
ପ୍ରାଣସମ୍ମିତ—ବି. ବିଂ. ନାସିକା ପର୍ଯ୍ୟନ୍ତ ବିସ୍ତୃତ, ପ୍ରାଣତୁଲ୍ୟ ପ୍ରିୟ,ଅତିପ୍ରିୟ ।

ପ୍ରାଣସାଇଁ—ଗ୍ରା.ପୁଂ.ବି. ଈଶ୍ୱର, ସ୍ୱାମୀ ।

ପ୍ରାଣସାର—ବି.ବିଂ. ବଳ, ବଳଶାଳୀ ।

ପ୍ରାଣହନ୍ତା—ପୁଂ.ବିଂ. (ପ୍ରାଣ + ହନ୍ + କ.ତୃ) ପ୍ରାଣନାଶକ ।

ପ୍ରାଣହର—ପୁଂ.ବିଂ. (ପ୍ରାଣ + ହୃ + କ.ଅ) ଦେହରୁ ଦେହାନ୍ତର ପ୍ରାପକ, ମାରାତ୍ମକ, ବଳନାଶକ (ବିଷାଦି) ।

ପ୍ରାଣହରକ—କ୍ଲୀ. ବି. ବତ୍ସନାଭ, (ବି.ବିଂ) ପ୍ରାଣନାଶକ ।

ପ୍ରାଣହା—ପୁଂ. ବିଂ. (ପ୍ରାଣ + ହନ୍ + କ୍ୱିପ୍) ଜୀବନ ନାଶକ, ମାରାତ୍ମକ,ପ୍ରାଣାନ୍ତକର, ସାଙ୍ଘାତିକ ।

ପ୍ରାଣହାରିବା—ଗ୍ରା.କ୍ରି. (ବିଷଆଦି ଖାଇ ବା କୌଣସି ପ୍ରକାର ଅସାବଧାନତା ପ୍ରଯୁକ୍ତ)ନିଜର ମୃତ୍ୟୁର କାରଣ ହେବା ସ୍ୱଇଚ୍ଛାରେ ପ୍ରାଣ ଛାଡ଼ିବା ।

ପ୍ରାଣହାରୀ—ପୁଂ.ବିଂ. (ପ୍ରାଣ+ହୃ+କ.ଇନ୍) ପ୍ରାଣନାଶକ, ପ୍ରାଣ ସଂହାରକ, ଯେ ପ୍ରାଣରେ ମାରିଦିଏ ।

ପ୍ରାଣା—ସ୍ତ୍ରୀ. ବି. ପକ୍ଷିବିଶେଷ, ଅରୁଣ ଓ ଗରୁଡ଼ଙ୍କ ଶାଶୁ ।

ପ୍ରାଣାଗ୍ନିହୋତ୍ର—କ୍ଲୀ. ବି. ଭୋଜନ ଆରମ୍ଭରେ ପଞ୍ଚପ୍ରାଣ ଉଦ୍ଦେଶ୍ୟରେ ଯେଉଁ ପଞ୍ଚଗ୍ରାସୀ କରାଯାଏ ।

ପ୍ରାଣାଘାତ—ପୁଂ.ବି. ଜୀବହତ୍ୟା, ପ୍ରାଣପୀଡ଼ା, ଅତ୍ୟନ୍ତ କଷ୍ଟ, ମାରଣ ।

ପ୍ରାଣାତିପାତ—ପୁଂ.ବି.(୬ତତ୍ପୁ)ଜୀବହତ୍ୟା, ପ୍ରାଣବିନାଶ, ମାରଣ ।

ପ୍ରାଣାତ୍ମା—ପୁଂ.ବି. ଜୀବାତ୍ମା ।

ପ୍ରାଣାତ୍ୟୟ—ପୁଂ. ବି. (୬ତତ୍ପୁ) ପ୍ରାଣଧାରଣର ଅସମ୍ଭାବନା, ପ୍ରାଣତ୍ୟାଗ, ମୃତ୍ୟୁକାଳ ।

ପ୍ରାଣାଦ—ବି.ବିଂ. (ପ୍ରାଣ+ଅଦ୍+ଅ) ପ୍ରାଣଭକ୍ଷକ ।

ପ୍ରାଣାଧିକ—ବି.ବିଂ. ( ୫ତତ୍ପୁ ) ପ୍ରାଣରୁ ଅଧିକ, ଜୀବନ ଅପେକ୍ଷା ପ୍ରିୟ ।

ପ୍ରାଣାଧିନାଥ—ପୁଂ.ବି. (୬ତତ୍ପୁ)ପ୍ରାଣେଶ୍ୱର, ପତି, ଭର୍ତ୍ତା ।

ପ୍ରାଣାଧିପ--ପୁଂ.ବି.ପ୍ରାଣାଧିଷ୍ଠାତ୍ରୀ ଦେବତା।

ପ୍ରାଣାନ୍ତ—ପୁଂ.ବି. (୬ତତ୍ପୁ) ମରଣ,ମୃତ୍ୟୁ

ପ୍ରାଣାନ୍ତକ—ପୁଂ.ବିଂ. (ପ୍ରାଣ + ଅନ୍ତକ) ଜୀବନନାଶକ, (ବି) ଯମ ।

ପ୍ରାଣାନ୍ତକର—ବିଂ. (ପ୍ରାଣାନ୍ତ+କୃ+କ.ଅ) ଜୀବନନାଶକ, ମୃତ୍ୟୁଦାୟକ ।

ପ୍ରାଣାନ୍ତପଣ—ବି. ପ୍ରାଣପଣ ଦେଖ ।

ପ୍ରାଣାନ୍ତପରିଚ୍ଛେଦ—କ୍ରି. ( କ.ଧା ) ମୃତ୍ୟୁ ପର୍ଯ୍ୟନ୍ତ ସୀମା, କଷ୍ଟର ଏକଶେଷ ।

ପ୍ରାଣାନ୍ତିକ—ବି. ବିଂ. (୬ତତ୍ପୁ) ମରଣକାଳୀନ ପ୍ରାୟଶ୍ଚିତ୍ତ, ପ୍ରାଣନାଶକ ।

ପ୍ରାଣାପାନ—ପୁଂ. ବି. (ଦ୍ୱନ୍ଦ୍ୱ) ପ୍ରାଣ ଓ ଅପାନବାୟୁ, ଅଶ୍ୱିନୀକୁମାରଦ୍ୱୟ ।

ପ୍ରାଣାବାଧ—ପୁଂ. ବି. ( ୬ତତ୍ପୁ ) ପ୍ରାଣସଂଶୟ, ପ୍ରାଣପୀଡ଼ା ।

ପ୍ରାଣାୟତନ—କ୍ଲୀ.ବି. (୬ତତ୍ପୁ) ପ୍ରାଣର ଛିଦ୍ରରୂପ ମୋକ୍ଷ ସ୍ଥାନଭେଦ, ମୃତ୍ୟୁ ସମୟରେ ପ୍ରାଣବାୟୁ ବହିର୍ଗତ ହେବାର ପ୍ରଧାନ ଦ୍ୱାର ବା ଛିଦ୍ରମାନ ।

ପ୍ରାଣାୟାମ—ପୁଂ.ବି. (ପ୍ରାଣ+ଆ+ଯମ୍+ଣ.ଅ) ପ୍ରାଣସଂଯମ,ଯୋଗବିଶେଷ, ନାସିକାଦ୍ୱାରା ବାୟୁ ପୂରଣ, ରୋଧ ଓ ରେଚନରୂପ ବ୍ୟାପାର ।

ପ୍ରାଣାୟାମୀ—ପୁଂ. ବିଂ. (ପ୍ରାଣାୟାମ+ଇନ୍) ଯେ ପ୍ରାଣାୟାମ କରେ, ପ୍ରାଣାୟାମ ସାଧନକାରୀ ।

ପ୍ରାଣାଯ୍ୟ—ବି.ବିଂ. ଉପଯୁକ୍ତ,ଯୋଗ୍ୟ ।

ପ୍ରାଣାରାମ—ବିଂ. (ପ୍ରାଣ+ଆ+ରମ୍+ଅଧି.ଅ) ପ୍ରାଣରେ ଶାନ୍ତିଦାୟକ, ମନମୋହକର ।

ପ୍ରାଣାହୁତି—ବି. ଭୋଜନ ଆରମ୍ଭରେ ଦ୍ୱିଜାତିଙ୍କ କରିବା ପଞ୍ଚଗ୍ରାସୀ ।

ପ୍ରାଣିଘାତକ—ବି.ବିଂ.( ୬ତତ୍ପୁ ) ଜୀବହତ୍ୟାକାରୀ, କଂସେଇ, ବ୍ୟାଧ ।

ପ୍ରାଣିଘାତନ—ବି. (୬ତତ୍ପୁ) ଜୀବହତ୍ୟା

ପ୍ରାଣିଘାତୀ—ପୁଂ.ବିଂ. ଯେ ପ୍ରାଣୀ ନାଶକରେ, ଜୀବହତ୍ୟାକାରୀ । [ ସୃଷ୍ଟି ।

ପ୍ରାଣିଜଗତ୍—ବି. ( ୬ତତ୍ପୁ ) ଜୀବମୟ

ପ୍ରାଣିଣି—ବିଂ. ପ୍ରାଣେଚ୍ଛୁ, ଜୀବନେଚ୍ଛୁ ।

ପ୍ରାଣିତ—ବିଂ. (ପ୍ର+ଶିଚ୍+ଅନ+ଙ୍ମି.ତ) ପ୍ରାଣ ସଞ୍ଚାରିତ, ଯେ ବଞ୍ଚାଏ ।

ପ୍ରାଣିତତ୍ତ୍ୱ—ବି. ଜୀବତତ୍ତ୍ୱ ବା ବିଜ୍ଞାନ, ଯେଉଁ ବିଜ୍ଞାନରୁ ପ୍ରାଣୀମାନଙ୍କର ବିଷୟ ଜଣାଯାଏ ।

ପ୍ରାଣିଦ୍ୟୂତ—କ୍ଲୀ. ବି. ( ୬ତତ୍ପୁ ) ପଣପୂର୍ବକ ମେଷ ଓ କୁକ୍କୁଟାଦିଙ୍କ ଯୁଦ୍ଧ ।

ପ୍ରାଣିପୀଡ଼ନ—ବି. (୬ତତ୍ପୁ) ଜୀବମାନଙ୍କ ପ୍ରତି ଅତ୍ୟାଚାର ବା ନିଷ୍ଠୁରତା ।

ପ୍ରାଣିପ୍ରୟାଣ—ବି. କେତେକ ପ୍ରାଣୀଙ୍କର ( ବିଶେଷତଃ ପକ୍ଷୀଙ୍କର ) ଖାଦ୍ୟ ଅନ୍ୱେଷଣ ବା ସନ୍ତାନ ଉତ୍ପାଦନ ନିମନ୍ତେ ନିର୍ଦ୍ଦିଷ୍ଟ ଋତୁରେ ଏକ ଅଞ୍ଚଳ ଛାଡ଼ି ଅନ୍ୟ ଅଞ୍ଚଳକୁ ଚାଲିଯିବା ଓ ଉକ୍ତକାର୍ଯ୍ୟ ଶେଷପରେ ପୂର୍ବ ଅଞ୍ଚଳକୁ ଫେରି ଆସିବା ଗତି ।

ପ୍ରାଣିମାତା—ସ୍ତ୍ରୀ.ବି. ଗର୍ଭଦାତ୍ରୀ କ୍ଷୁପ ।

ପ୍ରାଣିମାନ୍—ବି. ବିଂ. ପ୍ରାଣିଯୁକ୍ତ ସ୍ଥାନ, ପ୍ରାଣିବିଶିଷ୍ଟ ଦେଶାଦି ।

ପ୍ରାଣିହିଂସା—ବି. (୬ତତ୍ପୁ) ଜୀବହିଂସା, ପ୍ରାଣୀମାନଙ୍କର ଅନିଷ୍ଟାଚରଣ ।

ପ୍ରାଣିହିତ—ବି. (ବି.ଗ୍ରା)ପ୍ରାଣିମାନଙ୍କର ହିତ ସାଧନ,ଜୋତା, ପାଦୁକା ।

ପ୍ରାଣୀ—ବିଂ. ( ପ୍ରାଣ+ଇନ୍ ) ଚେତନ, ପ୍ରାଣବିଶିଷ୍ଟ, ଜୀବିତ (ବି) ଜୀବଜନ୍ତୁ ।

ପ୍ରାଣେପ୍ରାଣେ—ଗ୍ରା. କ୍ରି. ବିଂ. ପ୍ରାଣମାତ୍ର ରକ୍ଷାକରି, ଯେ କୌଣସି ପ୍ରକାରେ ବଞ୍ଚିରହି, ପ୍ରତି ପ୍ରାଣରେ, ପ୍ରତ୍ୟେକ ବ୍ୟକ୍ତିର ପ୍ରାଣରେ, ପରସ୍ପରର ହୃଦୟର ମିଳନ ପୂର୍ବକ ।

ପ୍ରାଣେଶ—ପୁଂ. ବି. (୬ତତ୍ପୁ)ପତି,ସ୍ୱାମୀ, ପ୍ରିୟତମ ବ୍ୟକ୍ତି । [ଦେଖ ।

ପ୍ରାଣେଶ୍ୱର—ପୁଂ. ବି. (୬ତତ୍ପୁ) ପ୍ରାଣେଶ

ପ୍ରାଣେଶ୍ୱରୀ—ସ୍ତ୍ରୀ. ବି. (୬ତତ୍ପୁ) ପ୍ରିୟା ଭାର୍ଯ୍ୟା ।

ପ୍ରାଣୋପହାର—ପୁଂ.ବି.ଆହାର,ଭୋଜନ

ପ୍ରାଣ୍ୟଙ୍ଗ--କ୍ଲୀ.ବି.ପ୍ରାଣିମାନଙ୍କର ଅବୟବ

ପ୍ରାତଃ--ଅବ୍ୟ.(ପ୍ର+ଅତ୍+ଅର)ସକାଳ, ପ୍ରଭାତ, ସକାଳେ । [କର୍ମ ।

ପ୍ରାତଃକାର୍ଯ୍ୟ—କ୍ଲୀ.ବି. ସକାଳିଆ କର୍ତ୍ତବ୍ୟ

ପ୍ରାତଃକାଳ—ପୁଂ.ବି.ପ୍ରଭାତକାଳ,ସକାଳ
ପ୍ରାତଃକୃତ୍ୟ—କ୍ଲୀ. ବି. ପ୍ରଭାତକାଳେ ଶାସ୍ତ୍ର ବିହିତ ଅନୁଷ୍ଠିତ କର୍ମ ।
ପ୍ରାତଃକ୍ରିୟା—ବି. (୬ତତ୍)ପ୍ରାତଃକୃତ୍ୟ, ଶୌଚପୂଜାଦି, ପ୍ରାଭାତିକ କାର୍ଯ୍ୟ ।
ପ୍ରାତଃପ୍ରଣାମ—ବି. ଗୁରୁଜନଙ୍କୁ ପ୍ରାତଃକାଳୀନ ଅଭିବାଦନ ।
ପ୍ରାତଃସନ୍ଧ୍ୟା—ସ୍ତ୍ରୀ.ବି.ପ୍ରାତଃକାଳ କର୍ତ୍ତବ୍ୟ ବୈଦିକ ଓ ତାନ୍ତ୍ରିକ ଉପାସନା ବନ୍ଦନାଦି, ପ୍ରାତଃକାଳ,ପ୍ରତ୍ୟୁଷ ।
ପ୍ରାତଃସମୀର—ବି. ସକାଳ ବାୟୁ,ପ୍ରଭାତ ବାୟୁ ।
ପ୍ରାତଃସବନ—କ୍ଲୀ. ବି. ପ୍ରାତଃକାଳୀନ ଅନୁଷ୍ଠେୟ ସୋମ ଯାଗାଦି ।
ପ୍ରାତଃସୂର୍ଯ୍ୟ—ବି.ଉଦୟ କାଳୀନ ସୂର୍ଯ୍ୟ, ବାଳ ସୂର୍ଯ୍ୟ ।
ପ୍ରାତଃସ୍ନାନ—କ୍ଲୀ. ବି. ଅବଗାହନାଦି ପ୍ରଭାତ କାଳୀନ କର୍ତ୍ତବ୍ୟ ।
ପ୍ରାତଃସ୍ନାୟୀ—ପୁଂ. ବି.(ପ୍ରାତଃ+ସ୍ନା+କ.ଇନ୍)ଯେ ପ୍ରତିଦିନ ସକାଳୁ ଗାଧୁଏ
ପ୍ରାତଃସ୍ମରଣ—ବି.ସକାଳୁ ଉଠି ବୋଲିବା ନାମ ସ୍ମରଣ ସ୍ତବାଦି ।
ପ୍ରାତଃସ୍ମରଣୀୟ—ପୁଂ. ବି°.ସକାଳୁ ଉଠି ଯେଉଁ ମହାପୁରୁଷଙ୍କ ନାମଧରିଲେ ପୁଣ୍ୟ ହୁଏ, ପ୍ରାତଃକାଳେ ସ୍ମରଣଯୋଗ୍ୟ ।
ପ୍ରାତର୍—ଅବ୍ୟ. ( ପ୍ର+ଅତ+ଅର୍ ) ପ୍ରଭାତ, ପ୍ରାତଃ ଦେଖ ।
ପ୍ରାତରଭିବାଦ—ପୁଂ.ବି. ପ୍ରାତଃ ପ୍ରଣାମ ।
ପ୍ରାତରହ୍ନ—ପୁଂ.ବି. ଦିନର ଆଦ୍ୟାଂଶ, ମଧ୍ୟାହ୍ନର ପୂର୍ବକାଳ ।
ପ୍ରାତରାଶ—ପୁଂ. ବି. (ପ୍ରାତଃ+ଅଶ୍+ଭା.ଅ) ପ୍ରାତର୍ଭୋଜନ, ଦିବସର ପ୍ରଥମ ଭୋଜନ ।
ପ୍ରାତରାଶିତ—ତ୍ରି.ବି°.(ପ୍ରାତଃ+ଆଶିତ) ପ୍ରାତଃକାଳରେ ଭୁକ୍ତ, ଯେ ପ୍ରାତଃକାଳରେ ଭୋଜନ କରିଅଛି ।
ପ୍ରାତରାହ୍ନିକ—ବି.(କ.ଧା)ପ୍ରାତଃକାଳୀନ ସନ୍ଧ୍ୟା ବନ୍ଦନା । [ ମିଳ କରି ।
ପ୍ରାତରିନ୍ଦୀବର—ବି. ସକାଳେ ଫୁଟିଥିବା
ପ୍ରାତର୍ଗେୟ—ପୁଂ.ବି. ( ବ.ବ୍ରୀ ) ସ୍ତୁତିପାଠକ,ଭାଟ,ବନ୍ଦୀ,(ବି°)ପ୍ରାତଃକାଳେ ଗାନଯୋଗ୍ୟ ।
ପ୍ରାତର୍ଦିନ—କ୍ଲୀ. ବି.ପ୍ରାତଃକାଳ,ମଧ୍ୟାହ୍ନର ପୂର୍ବ କାଳ ।
ପ୍ରାତର୍ଭୋକ୍ତା—ପୁଂ.ବି. (ପ୍ରାତଃ+ଭୋକ୍ତୃ) କାକ, (ବି°) ପ୍ରଭାତେ ଭୋଜନକାରୀ ।
ପ୍ରାତର୍ଭୋଜନ—କ୍ଲୀ. ବି. ପ୍ରାତରାଶ, ଦିବସର ପ୍ରଥମ ଭୋଜନ ।
ପ୍ରାତସ୍ତ୍ୟ—ତ୍ରି.ବି°.ପ୍ରାତଃକାଳ ସମ୍ବନ୍ଧୀୟ
ପ୍ରାତସ୍ତିବର୍ଗା—ସ୍ତ୍ରୀ. ବି. ଗଙ୍ଗା ।
ପ୍ରାତି—ସ୍ତ୍ରୀ.ବି.ପୂରଣ, ବୃଦ୍ଧା ଓ ତର୍ଜନୀର ମଧ୍ୟବର୍ତ୍ତୀ, କରତଳାଂଶ, ପିତୃତୀର୍ଥ ।
ପ୍ରାତିକଣ୍ଠିକ—ତ୍ରି. ବି°. କଣ୍ଠ ଗ୍ରହଣକାରୀ
ପ୍ରାତିକା—ସ୍ତ୍ରୀ. ବି. ଦିବା ବୃକ୍ଷ ।
ପ୍ରାତିକାମୀ—ପୁଂ. ବି. ଭୃତ୍ୟ, ସେବକ, ଦୁର୍ଯ୍ୟୋଧନଙ୍କର ଜଣେ ଦୂତ ।
ପ୍ରାତିକୂଳିକ—ସ୍ତ୍ରୀ.ବି.(ପ୍ରତିକୂଳ+ଇକ) ପ୍ରତିକୂଳବର୍ତ୍ତୀ ।
ପ୍ରାତିକୂଲ୍ୟ—କ୍ଲୀ. ବି. ( ପ୍ରତିକୂଳ+ଭା.ଯ) ପ୍ରତିକୂଳତାଚରଣ, ବୈପରୀତ୍ୟ, ବିପକ୍ଷତା, ବାଧା ।
ପ୍ରାତିକ୍ଷେପିକ—ସ୍ତ୍ରୀ.ବି.ପ୍ରତିକ୍ଷେପକାରୀ ।
ପ୍ରାତିଜନୀନ—ବି°. ବିପକ୍ଷର ଉପଯୁକ୍ତ ।
ପ୍ରାତିଜ୍ଞ—କ୍ଲୀ. ବି. ପ୍ରତିଜ୍ଞାର ବିଷୟ, ଆଲୋଚନାର ବିଷୟ ।
ପ୍ରାତିଦୈବସିକ—ସ୍ତ୍ରୀ. ବି. ପ୍ରତିଦିବସେ ଯାହା ହୁଏ ।
ପ୍ରାତିପକ୍ଷ—ବି°. (ପ୍ରତିପକ୍ଷ+ଅ)ପ୍ରତିପକ୍ଷ ବା ବିପକ୍ଷ ସମ୍ବନ୍ଧୀୟ, ବିପରୀତପକ୍ଷାବଲମ୍ବୀ, ପ୍ରତିଦ୍ୱନ୍ଦ୍ୱୀ, (ବି) ଶତ୍ରୁ, ବିପକ୍ଷ । [ ଶତ୍ରୁତା ।
ପ୍ରାତିପକ୍ଷ୍ୟ—କ୍ଲୀ. ବି. (ପ୍ରତିପକ୍ଷ+ଯ)
ପ୍ରାତିପଥିକ—ସ୍ତ୍ରୀ.ବି°. ପ୍ରତିକୂଳଗାମୀ ।
ପ୍ରାତିପଦ—ସ୍ତ୍ରୀ. ବି. (ପ୍ରତିପଦ+ଅ) ପ୍ରତିପଦ ସମ୍ବନ୍ଧୀୟ,ପ୍ରତିପଦ ତିଥିରେ ଜାତ ।
ପ୍ରାତିପଦିକ—ବି°. (ପ୍ରତିପଦ+ଇକ) ପ୍ରତିପଦତିଥିଭବ,ପ୍ରତିପଦ ସମ୍ବନ୍ଧୀୟ, (ବି)ବିଭକ୍ତି ହୀନ ବିଶେଷ୍ୟ ବା ବିଶେଷଣ ପଦ, ଅଗ୍ନି ନାମ, ଅଭିଧା ।
ପ୍ରାତିପୌରୁଷିକ—ସ୍ତ୍ରୀ. ବି. ପ୍ରତିପୁରୁଷ ସମ୍ବନ୍ଧୀୟ, ମନୁଷ୍ୟଙ୍କ ସମ୍ବନ୍ଧୀୟ ।
ପ୍ରାତିଫଳିକ—ତ୍ରି. ବି°. (ପ୍ରତିଫଳ+ଇକ) ପ୍ରତିବିମ୍ବିକ, ଯାହା ଦ୍ରବ୍ୟର ପ୍ରତିବିମ୍ବ ଗ୍ରହଣକରେ ।
ପ୍ରାତିଭ—ବି°. (ପ୍ରତିଭା+ଅ)ପ୍ରତିଭାନ୍ୱିତ, ପ୍ରତିଭାଶାଳୀ, (ବି) ଯୋଗ ସାଧନାର ବିଘ୍ନକର, ଅନ୍ତରାୟବିଶେଷ ।
ପ୍ରାତିଭାବ୍ୟ—କ୍ଲୀ. ବି. ( ପ୍ରତିଭୂ+ଯ ) ଜମିନ୍‌ଦାରଙ୍କ ଦତ୍ତ ଜମିନ୍ ।
ପ୍ରାତିରୂପ୍ୟ—କ୍ଲୀ. ବି. ଅନୁରୂପ, ପ୍ରତିରୂପର ଭାବ ।
ପ୍ରାତିଲୋମିକ—ବି°. (ପ୍ରତିଲୋମ+ଇକ) ପ୍ରତିଲୋମ ବିବାହ ସମ୍ବନ୍ଧୀୟ,ପ୍ରତିଲୋମ ବିବାହଜାତ, ବିରୁଦ୍ଧ, ଅପ୍ରୀତିକର ।
ପ୍ରାତିଲୋମ୍ୟ—କ୍ଲୀ.ବି.(ପ୍ରତିଲୋମ+ଭା.ଯ) ବିପରୀତଭାବ,ବିରୁଦ୍ଧଭାବ, ପ୍ରତିକୂଳତା, ବିପର୍ଯ୍ୟୟ ।
ପ୍ରାତିବେଶ୍ମିକ—ବି°.ପ୍ରତିବେଶୀର ଗୃହସମ୍ବନ୍ଧୀୟ, ନିକଟବର୍ତ୍ତୀ ।
ପ୍ରାତିବେଶ୍ୟ—ପୁଂ. ବି°. (ପ୍ରତିବେଶ+ଯ) ଅନ୍ତରର ଗୃହବାସୀ, ପ୍ରତିବେଶବାସୀ, ପ୍ରତିବେଶୀ, ପ୍ରତିବେଶୀ ସମ୍ବନ୍ଧୀୟ । [ ଦେଖ ।
ପ୍ରାତିବେଶ୍ୟକ—ପୁଂ. ବି. ପ୍ରାତ୍ୟବେଶ୍ୟ
ପ୍ରାତିଶାଖ୍ୟ—କ୍ଲୀ. ବି. (ପ୍ରତିଶାଖା+ଯ) ବିଭିନ୍ନ ବେଦସ୍ୱର, ବେଦଶାଖା ସମ୍ବନ୍ଧୀୟ ବ୍ୟାକରଣବିଶେଷ ।
ପ୍ରାତିସ୍ୱିକ—ବି°. (ପ୍ରତିସ୍ୱ+ଇକ)ଅସାଧାରଣ ଧର୍ମଯୁକ୍ତ, ଅନ୍ୟର ଯାହା ନାହିଁ ଆବେଣିକ, ସ୍ୱକୀୟ, ପ୍ରତ୍ୟେକର ପ୍ରାପ୍ୟାଂଶ ଦାନକାରୀ ।
ପ୍ରାତିହାର—ବି. (ପ୍ରତିହାର+ଅ)ଦ୍ୱାରପାଳ, ପ୍ରତିହାରୀର କର୍ମ ।
ପ୍ରାତିହାର(ରି)କ—(ପ୍ରତିହାର+କ.ଇକ) ଐନ୍ଦ୍ରଜାଲିକ, ବାଜିଗର, କୁହୁକୀ ।
ପ୍ରାତିହାର୍ଯ୍ୟ—କ୍ଲୀ.ବି.ପ୍ରତିହାରର କାର୍ଯ୍ୟ,

ଐନ୍ଦ୍ରଜାଲିକର ଭେଲ୍‌କି ପ୍ରଦର୍ଶନ ରୂପ କର୍ମ, ଭୌତିକବ୍ୟାପାର ।

ପ୍ରାତଖିକ—ବି. (ପ୍ରଖାତ + ଇକ)ପ୍ରାତିଭାସିକ ପଦାର୍ଥ ଚିନ୍ତା ବା କଳ୍ପନାରେ ଭାସମାନ ବିଷୟ, ମାନସ ସମ୍ପର୍କୀୟ ବିଷୟ । [ ଖାତ ।

ପ୍ରାଖପିକ—ବିଂ. (ପ୍ରଖାପ+ଇକ) ବିପ-

ପ୍ରାତ୍ୟନ୍ତିକ—ପୁଂ. ବି. (ପ୍ରତ୍ୟନ୍ତ+ଇକ) ଦୁଇରାଜ୍ୟର ସୀମା ମଧ୍ୟରେ ଅବସ୍ଥିତ ରାଜ୍ୟ, ସୀମାନ୍ତ ରେଖାରେ ନିଯୁକ୍ତ ବ୍ୟକ୍ତି, (ବିଂ) ସୀମାନ୍ତରେ ଅବସ୍ଥିତ ।

ପ୍ରାତ୍ୟୟିକ—ବିଂ. ( ପ୍ରତ୍ୟୟ+ଇକ ) ପ୍ରତ୍ୟୟ ସମ୍ବନ୍ଧୀୟ, ପ୍ରତ୍ୟୟୀ,ବିଶ୍ୱାସକାରୀ, (ପୁଂ.ବି) ଜାମିନ୍‌ଦାର,ପ୍ରତିଭୂ ।

ପ୍ରାତ୍ୟହିକ—ବି.(ପ୍ରତ୍ୟହ + ଇକ)ପ୍ରତିଦିନ ସମ୍ପର୍କୀୟ, ପ୍ରତ୍ୟହ ଘଟନାଯୋଗ୍ୟ, ଦୈନିକ,ପ୍ରତିଦିନ ଘଟୁଥିବା ।

ପ୍ରାଥମିକ—ବିଂ. (ପ୍ରଥମ + ଇକ)ପ୍ରଥମଭବ, ପ୍ରଥମ କାଳୀନ, ପୂର୍ବକାଳୀନ, ପ୍ରଥମେ ବେଦାଧ୍ୟୟନରେ ପ୍ରବୃତ୍ତ ।

ପ୍ରାଥମ୍ୟ—ବିଂ. ପ୍ରଥମର ଭାବ,ପ୍ରଥମତ୍ୱ, ମୁଖ୍ୟତ୍ୱ, ଶ୍ରେଷ୍ଠତା, ପ୍ରାଧାନ୍ୟ ।

ପ୍ରାଦକ୍ଷିଣ—ପୁଂ.ବିଂ.ପ୍ରଦକ୍ଷିଣ ସମ୍ବନ୍ଧୀୟ ।

ପ୍ରାଦାନିକ—ବିଂ. ( ପ୍ରଦାନ + ଇକ ) ଦାନଯୋଗ୍ୟ,ପ୍ରଦତ୍ତହେବା ଯୋଗ୍ୟ ।

ପ୍ରାଦି—ବି. (ପ୍ର + ଆଦି) ପ୍ର,ପରା,ଅପ, ସମ୍ ଆଦି ୨୦ଟି ଉପସର୍ଗ । [ସମାସ ।

ପ୍ରାଦିସମାସ—ବି.ଉପସର୍ଗ ଯୋଗେ ନିଷ୍ପନ୍ନ

ପ୍ରାଦୁଃ—ଅବ୍ୟ. (ପ୍ର+ଅଦ୍+ଭା.ଉସ୍) ପ୍ରତ୍ୟକ୍ଷ, ପ୍ରକାଶ, ବୃତ୍ତି, ନାମ, ସତ୍ତା, ସମ୍ଭାବନା ।

ପ୍ରାଦୁର୍ଭାବ—ପୁଂ. ବି. (ପ୍ରାଦୁସ୍ + ଭୂ + ଭା.ଅ)ଆବିର୍ଭାବ,ପ୍ରଥମ ପ୍ରକାଶ,ପ୍ରାବଲ୍ୟ, ବାହୁଲ୍ୟ, କ୍ଷମତା ।

ପ୍ରାଦୁର୍ଭୂତ—ପୁଂ. ବି. (ପ୍ରାଦୁଃ+ଭୂତ) ଆବିର୍ଭୂତ, ପ୍ରକାଶିତ ।

ପ୍ରାଦୁଷ୍କରଣ—କ୍ଲୀ. ବି. ପ୍ରଦର୍ଶନ,ଅପ୍ରକଟିତ ବସ୍ତୁର ପ୍ରକାଶ କରଣ, ପ୍ରକଟୀକରଣ, ଦେଖାଇବା ।

ପ୍ରାଦୁଷ୍କୃତ—ପୁଂ. ବି. ଆବିର୍ଭୂତ, ଦୃଷ୍ଟିପଥ ରୂଢ଼ ।

ପ୍ରାଦେଶ—ପୁଂ.ବି. (ପ୍ର+ଆ+ଦିଶ୍+ଭା.ଅନ) ବିଘତ,ବୃଦ୍ଧ ଅଙ୍ଗୁଳିର ଅଗଠାରୁ ତର୍ଜନୀର ଅଗପର୍ଯ୍ୟନ୍ତ ବିସ୍ତାର ପରିମାଣ, ତେଓ୍ଣି, (ପ୍ରଦେଶ+ଅ) ସ୍ଥାନ, ଦେଶ, ପ୍ରଦେଶ ।

ପ୍ରାଦେଶନ—କ୍ଲୀ. ବି. (ପ୍ର + ଆ + ଦିଶ୍ +ଭା.ଅ) ଦାନ, ଅର୍ପଣ ।

ପ୍ରାଦେଶମାନ—ସ୍ତ୍ରୀ.ବି. ବିଘତପରିମାଣ, ବିତସ୍ତିପରିମାଣ, ତେଓ୍ଣି, ପରିମାଣ ।

ପ୍ରାଦେଶିକ—ବିଂ. (ପ୍ରଦେଶ+ଇକ) ପ୍ରଦେଶଜାତ, ପୂର୍ବଦୃଷ୍ଟାନ୍ତ ଦ୍ୱାରା ପ୍ରତିପନ୍ନ ବିଶେଷ,ସ୍ଥାନବିଷୟକ,ମଫସଲ୍, ଦେଶାଂଶ ପ୍ରଚଳିତ ( ଭାଷା ବା ଶବ୍ଦ ) ।

ପ୍ରାଦେଶିକତା—ସ୍ତ୍ରୀ. ବି. (ପ୍ରାଦେଶିକ+ତା) ପ୍ରଦେଶ ବିଶେଷରେ ପ୍ରଚଳିତ ଭାଷାର ବ୍ୟବହାର,ପ୍ରାଦେଶିକ ବୈଶିଷ୍ଟ୍ୟ

ପ୍ରାଦେଶିକସ୍ୱାତନ୍ତ୍ର୍ୟ—ଗା. ବି. ପ୍ରଦେଶର ବିଶେଷତ୍ୱ ଅଧିକାର ।

ପ୍ରାଦେଶିନୀ—ବି. ( ପ୍ର+ଆ+ଦିଶ୍+ଣିଚ୍+ଣ.ଅନ+ଈ) ତର୍ଜନୀ । [ଲମ୍ବ ।

ପ୍ରାଦେଶୀ—ବିଂ.ବିତସ୍ତି ପରିମିତ,ତେଓ୍ଣି,

ପ୍ରାଦୋଷ—ତ୍ରି. ବିଂ. ( ପ୍ରଦୋଷ+ଅ ) ପ୍ରଦୋଷସମ୍ବନ୍ଧୀୟ, ସାୟଂକାଳୀନ ।

ପ୍ରାଦୋଷ(ଷି)କ—ତ୍ରି. ବିଂ. (ପ୍ରଦୋଷ+ଇକ) ପ୍ରଦୋଷଜାତ, ପ୍ରଦୋଷସମ୍ବନ୍ଧୀୟ,(ସ୍ତ୍ରୀ) ପ୍ରାଦୋଷିକୀ ।

ପ୍ରାଧନିକ—ବି.(ପ୍ରଧନ+ଇକ) ଯୁଦ୍ଧୋପକରଣ, (ବିଂ) ଯୁଦ୍ଧପ୍ରିୟ ।

ପ୍ରାଧା—ସ୍ତ୍ରୀ.ବି. କଶ୍ୟପଙ୍କ ଭାର୍ଯ୍ୟା, ଦକ୍ଷକନ୍ୟା, ଗନ୍ଧର୍ବ ଓ ଅପ୍ସରାମାନଙ୍କର ମାତା ।

ପ୍ରାଧାନ୍ୟ—କ୍ଲୀ. ବି. (ପ୍ରଧାନ+ଯ)ପ୍ରଧାନତ୍ୱ, ଶ୍ରେଷ୍ଠତା,ଉତ୍କର୍ଷ, ପ୍ରଭୁତ୍ୱ,ପ୍ରାବଲ୍ୟ

ପ୍ରାଧାନ୍ୟତଃ—ତ୍ରି.ବିଂ(ପ୍ରାଧାନ୍ୟ + ତସ୍) ପ୍ରଧାନ ରୂପେ ।

ପ୍ରାଧୀତ—ବିଂ. ( ପ୍ର+ଅଧୀତ )ପ୍ରକୃଷ୍ଟରୂପେ ପଠିତ ।

ପ୍ରାଧ୍ୟୟନ—କ୍ଲୀ.ବି. ପ୍ରକୃଷ୍ଟ ରୂପେ ଅଧ୍ୟୟନ, ଉଚ୍ଚୈଃସ୍ୱରେ ଆବୃତ୍ତି ବା ପଠନ, ବେଦପାଠ । [ବିନୟ ।

ପ୍ରାଧ୍ୱମ୍—ଅବ୍ୟ.ଆନୁକୂଲ୍ୟ,ବନ୍ଧନ,ନମ୍ରତା,

ପ୍ରାଧ୍ୱ—ବିଂ. (ପ୍ର+ଅଧ୍ୱନ୍) ଦୂର, ନମ୍ର, ବଦ୍ଧ, ବିନୀତ,(ବି)ପ୍ରକୃଷ୍ଟ ପଥ,ରଥାଦି ଯାନ, ଦୂରପଥ, ବିନୟ, ପ୍ରଣତ ଭାବ ।

ପ୍ରାଧ୍ୱନ—ପୁଂ.ବି. (ପ୍ରାଧ୍ୱନ୍+ଅ)ପ୍ରକୃଷ୍ଟ ପଥ, ସଡ଼କ, ରାସ୍ତା, ନଦୀ ଗର୍ଭ ବା ନିମ୍ନଦେଶ ।

ପ୍ରାଧ୍ୱର—ବି. ବୃକ୍ଷଶାଖା, ଡାଳ ।

ପ୍ରାନ୍ତ—ପୁଂ.ବି. (ପ୍ର + ଅନ୍ତ)ଅନ୍ତ, ସୀମା, ଧାର, ଧଗ, ତରଫ, ଶେଷସୀମା ।

ପ୍ରାନ୍ତତଃ—ଅବ୍ୟ. ପ୍ରାନ୍ତଦେଶରେ, ଶେଷ ସୀମାରେ ।

ପ୍ରାନ୍ତଦୁର୍ଗ—କ୍ଲୀ.ବି. ( କ.ଧା ) ରାଜ୍ୟସୀମାରେ ନିର୍ମିତ ଦୁର୍ଗ, ନଗର ପ୍ରାଚୀରର ବାହାରେ ନିର୍ମିତ ଦୁର୍ଗ ।

ପ୍ରାନ୍ତବର୍ତ୍ତୀ—ବିଂ.(ପ୍ରାନ୍ତ+ବର୍ତ୍ତିନ୍)ସୀମାନ୍ତରେ ଅବସ୍ଥିତ, ଏକ ପାର୍ଶ୍ୱରେ ସ୍ଥିତ ।

ପ୍ରାନ୍ତଭାଗ—ବି. (କ.ଧା) ଶେଷଭାଗ ।

ପ୍ରାନ୍ତଭିତ୍ତି—ବି.(କ.ଧା) କୌଣସି ସ୍ଥାନର ସୀମାରେ ଥିବା ପ୍ରାଚୀର ।

ପ୍ରାନ୍ତଭୂମି—ସ୍ତ୍ରୀ. ବି. (କ.ଧା) ଶେଷସ୍ଥାନ, କୌଣସି ସ୍ଥାନର ସୀମାସ୍ଥ ଭୂମି,ସମାଧି, ଗିରି ।

ପ୍ରାନ୍ତସମଜ—ବି. ଶବ୍ଦାଳଂକାରବିଶେଷ, ସନ୍ଦର୍ଭର ପ୍ରାନ୍ତରେ ବିଭିନ୍ନାର୍ଥରେ ପ୍ରଯୁକ୍ତ ଏକ ଶବ୍ଦ ।

ପ୍ରାନ୍ତର—ବି. (ପ୍ର+ଅନ୍ତର) ଅପାନ୍ତର, ଛାୟା ଜଳାଦି ଶୂନ୍ୟ ପ୍ରଦେଶ,ମରୁଭୂମି, ବିସ୍ତୀର୍ଣ୍ଣ ପଡ଼ିଆ, ଜନଶୂନ୍ୟ ପ୍ରଦେଶ, ଅତି ଦୂର ଓ ଜନସଞ୍ଚାରଶୂନ୍ୟ ପଥ, ଅଗନାଗ୍ନି ବନସ୍ତ, ବନ ।

ପ୍ରାନ୍ତିକ—ବିଂ.(ପ୍ରାନ୍ତ + ଇକ)ପ୍ରାନ୍ତସମ୍ବନ୍ଧୀୟ, ପ୍ରାଦେଶିକ ।

ପ୍ରାନ୍ତେ—ଅବ୍ୟ. ସର୍ବଶେଷରେ ।

ପ୍ରାପ—ବି. ( ପ୍ର+ଅପ୍ ) ପ୍ରାପ୍ତି, (ବିଂ)

ଜଳସିକ୍ତ, ଜଳପୂର୍ଣ୍ଣ ।

**ପ୍ରାପକ**—ପୁଂ.ବିଂ. (ପ୍ର+ଆପ୍+ଣିଚ୍+କ.ଅକ) ଯାହା ପ୍ରାପ୍ତି କରାଏ, (ପ୍ର+ଆପ୍+କ.ଅକ) ଯେ ପାଏ, ପାଇବାର ଉପଯୁକ୍ତ ।

**ପ୍ରାପଣ**—କ୍ଲୀ.ବି. (ପ୍ର+ଆପ୍+ଭା.ଅନ) ପାଇବା, ପ୍ରାପ୍ତି, (ଣିଚ୍+ଭା.ଅନ) ପ୍ରେରଣ, ପ୍ରକର୍ଷ ବ୍ୟାପନ, ପ୍ରାପ୍ତି କରାଇବା ।

**ପ୍ରାପଣିକ**—ପୁଂ. ବି. (ପ୍ର+ଆପଣିକ) ପଣ୍ୟବିକ୍ରୟୀ, ମୁଦି, ଦୋକାନୀ ।

**ପ୍ରାପଣୀୟ**—ତ୍ରି. ବିଂ. (ପ୍ର+ଆପ୍+ମିଁ. ଅନୀୟ) ପ୍ରାପ୍ୟ, ପ୍ରାପ୍ତବ୍ୟ, ଲଭ୍ୟ ।

**ପ୍ରାପିତ**—ବିଂ. (ପ୍ର+ଆପ୍+ଣିଚ୍+ମିଁ.ତ) ଅଧିଗମିତ, ପ୍ରାପ୍ତ, ଆନୀତ, ସ୍ଥାପିତ ।

**ପ୍ରାପୀ**—ପୁଂ. ବିଂ. ପ୍ରାପ୍ତ, ଯେ ପାଇଛି ।

**ପ୍ରାପେୟ**—ପୁଂ.ବି. ଗନ୍ଧର୍ବଗଣବିଶେଷ ।

**ପ୍ରାପ୍ତ**—ବିଂ. (ପ୍ର+ଆପ୍+ମିଁ.ତ) ଲବ୍ଧ, ଯାହା ଲାଭ ହୋଇଅଛି, ଅଧିଗତ, ଯାହା ପାଇବାକୁ ହୋଇଅଛି, ପ୍ରସ୍ଥାପିତ. (କ.ତ) ଯେ ପାଇଅଛି, ଉପନୀତ, ଉପସ୍ଥିତ, ଗୃହୀତ, ଉତ୍ପନ୍ନ ।

**ପ୍ରାପ୍ତକଲ୍ୟାଣ**—ପୁଂ.ବିଂ. (ବ.ବ୍ରୀ) ଭାଗ୍ୟବାନ୍, ଲକ୍ଷ୍ମୀବାନ୍ ।

**ପ୍ରାପ୍ତକାଳ**—ପୁଂ. ବି. (କ.ଧା) ବାରଣ-ଯୋଗ୍ୟ କାଳ, ଉପଯୁକ୍ତ ସମୟ, ମରଣ-କାଳ, ବିବାହ ଯୋଗ୍ୟ ସମୟ, (ବିଂ. ବ.ବ୍ରୀ) ଯାହାର ମରଣ କାଳ ଉପସ୍ଥିତ ହୋଇଅଛି, ଆସନ୍ନମୃତ୍ୟୁ, ପ୍ରାପ୍ତ-ଯୌବନ, ପ୍ରାପ୍ତାବକାଶ ।

**ପ୍ରାପ୍ତଜୀବନ**—ପୁଂ. ବିଂ. (ବ.ବ୍ରୀ) ପୁନର୍ଜୀବିତ, ଯେ ବିପଦରୁ ବା ମୃତ୍ୟୁ ମୁଖରୁ ରକ୍ଷା ପାଇଛି, (ସ୍ତ୍ରୀ) ପ୍ରାପ୍ତ ଜୀବନା ।

**ପ୍ରାପ୍ତଦୋଷ**—ପୁଂ. ବିଂ. (ବ.ବ୍ରୀ) ଯାହା ପ୍ରତିବେଦ୍ଧ ଦୋଷ ଘଟାଇଅଛି, କୁଳଗ୍ନ ମୃତ୍ୟୁ ହେଲେ ଯେ ଦୋଷ ହୁଏ ।

**ପ୍ରାପ୍ତଧନ**—ପୁଂ. ବିଂ. (ବ.ବ୍ରୀ) ଯାହାକୁ ଧନ ମିଳିଅଛି ।

**ପ୍ରାପ୍ତପଞ୍ଚତ୍ୱ**—ପୁଂ. ବିଂ. (ବ.ବ୍ରୀ) ମୃତ ।

**ପ୍ରାପ୍ତବୁଦ୍ଧି**—ପୁଂ.ବିଂ. (ବ.ବ୍ରୀ) ଯେ ବୁଦ୍ଧି ପାଇଛି, ମୂର୍ଚ୍ଛାଦି ପରେ ଯେ ଜ୍ଞାନ ଲାଭ କରିଛି । [ବୃଷାଦି ।

**ପ୍ରାପ୍ତଭାର**—ପୁଂ. ବି. ଭାରସହନଶୀଳ

**ପ୍ରାପ୍ତଭାବ**—ପୁଂ. ବି. ଜାତୋତ୍କର୍ଷ, ଲବ୍ଧ-ସତ୍ତ୍ୱାଦ, ଯାହା ମନରେ ଅବସ୍ଥାନ୍ତର ଭାବ ଉପସ୍ଥିତ ହୋଇଅଛି ।

**ପ୍ରାପ୍ତମନୋରଥ**—ତ୍ରି.ବିଂ(ବ.ବ୍ରୀ)ଯାହାର ବାଞ୍ଛା ପୂର୍ଣ୍ଣ ହୋଇଅଛି ।

**ପ୍ରାପ୍ତଯୌବନ**—ବିଂ. (ବ.ବ୍ରୀ) ଯାହାର ଯୌବନ ଉପସ୍ଥିତ ହୋଇଅଛି, (ଯୁବତୀ ବା ଯୁବକ) ।

**ପ୍ରାପ୍ତରୂପ**—ପୁଂ. ବିଂ. (ବ.ବ୍ରୀ)ମନୋଜ୍ଞ. ପଣ୍ଡିତ, ରୂପବାନ୍, ସୁନ୍ଦର, ଉଚିତ ।

**ପ୍ରାପ୍ତବୟସ୍କ**—ପୁଂ.ବିଂ(ବ.ବ୍ରୀ)ସାବାଳକ ପୂର୍ଣ୍ଣବୟସ୍କ ।

**ପ୍ରାପ୍ତବୟାଃ**—ପୁଂ. ବିଂ. (ବ.ବ୍ରୀ)ପ୍ରାପ୍ତ-ବୟସ୍କ, ଉପଯୁକ୍ତ ବୟସରେ ଉପନୀତ, ପ୍ରାପ୍ତ ବ୍ୟବହାର, ସାବାଳକ ।

**ପ୍ରାପ୍ତବର**—ବିଂ. (ବ.ବ୍ରୀ) ଅନୁଗ୍ରହ ବା ଆଶୀର୍ବାଦ ଲାଭକାରୀ ।

**ପ୍ରାପ୍ତବ୍ୟ**—ତ୍ରି. ବିଂ. (ପ୍ର+ଆପ୍+ମିଁ.ତବ୍ୟ) ପ୍ରାପ୍ୟ, ପ୍ରାପ୍ତିଯୋଗ୍ୟ, ଯାହା ମିଳିପାରେ ।

**ପ୍ରାପ୍ତବ୍ୟବହାର**—ପୁଂ. ବିଂ. (ବ.ବ୍ରୀ)ଯେ କୁଳାଗ୍ରର ରକ୍ଷାକରେ, ପ୍ରାପ୍ତବୟସ୍କ, ସାବାଳକ ।

**ପ୍ରାପ୍ତସୂର୍ଯ୍ୟ**—ତ୍ରି.ବିଂ.ଯାହା ମୁଣ୍ଡ ଉପରେ ସମସୂତ୍ରରେ ସୂର୍ଯ୍ୟ ଅବସ୍ଥିତ ।

**ପ୍ରାପ୍ତାପରାଧ**—ପୁଂ.ବିଂ.(ବ.ବ୍ରୀ)ଅପରାଧ-ଗ୍ରସ୍ତ, ଯେ ଅପରାଧ ଭାଗୀ ହୋଇଅଛି ।

**ପ୍ରାପ୍ତି**—ସ୍ତ୍ରୀ. ବି. (ପ୍ର+ଆପ୍+ଭା.ତି) ଉଦୟ, ଧନବୃଦ୍ଧି, ଉନ୍ନତି, ଅଧିଗମ, ଲାଭ, ପ୍ରାପଣ, ସଂହତି, ଅର୍ଜନ, ଆୟ, ନାଟକର ସୁଖକର ଉପସଂହାର, ଉପ-ଲବ୍ଧି. ଆବିଷ୍କାର, ନୈକଟ୍ୟ, ଉପସ୍ଥିତି, ସମାପନ, ଅନୁମିତି, ଅଣିମାଦି ଐଶ୍ୱ-ର୍ଯ୍ୟରୁ ଏକତମ, ଅଭିପ୍ସିତ ବସ୍ତୁ ମିଳିବା ରୂପ ଐଶ୍ୱର୍ଯ୍ୟ, ଯଥେଚ୍ଛ ଗମନ, ମଗଧ-ରାଜ ଜରାସନ୍ଧର କନ୍ୟା, ଓ କଂସର ଭାର୍ଯ୍ୟା, କାମଦେବଙ୍କ ପତ୍ନୀ, (ଜ୍ୟୋତିଷ) ଚନ୍ଦ୍ରଠାରୁ ଏକାଦଶ ସ୍ଥାନ, ମିଳନ, ଭାଗ୍ୟ ।

**ପ୍ରାପ୍ତିଯୋଗ୍ୟ**—ବିଂ. (୬ତତ୍ପୁ) ପ୍ରାପ୍ତବ୍ୟ, ମିଳିବା ଯୋଗ୍ୟ ।

**ପ୍ରାପ୍ତିସ୍ଥାନ**—ବି. (୬ତତ୍ପୁ) କୌଣସି ପଦାର୍ଥର ମିଳିବାର ସ୍ଥାନ ।

**ପ୍ରାପ୍ତୀଚ୍ଛା**—ବି.(୬ତତ୍ପୁ)ପାଇବାର ଇଚ୍ଛା ।

**ପ୍ରାପ୍ତ୍ୟାଶା**—ବି.(୬ତତ୍ପୁ) କିଛି ପାଇବାର ଆଶା ।

**ପ୍ରାପ୍ୟ**—ତ୍ରି. ବିଂ. (ପ୍ର+ଆପ୍+ମିଁ.ଯ) ପ୍ରାପ୍ତବ୍ୟ, ଗମ୍ୟ, ସମାସାଦ୍ୟ, ଲଭ୍ୟ, ପାଉଣା, ବ୍ୟାକରଣ ନିୟମ କର୍ମଭେଦ ଲବ୍ଧାର୍ଥ ।

**ପ୍ରାଫୁଲ୍ୟ**—ବି. (ପ୍ରଫୁଲ୍ଲ+ଯ) ପ୍ରଫୁଲ୍ଲତା, ଆନନ୍ଦ, ଆହ୍ଲାଦ, ଫୁଲ ଫୁଟିବା ।

**ପ୍ରାଭବ**—କ୍ଲୀ. ବି. (ପ୍ରଭୁ+ଅ) ଶ୍ରେଷ୍ଠତ୍ୱ, ପ୍ରଭୁତା ।

**ପ୍ରାଭାକର**—ପୁଂ. ବି. ପ୍ରଭାକରସମ୍ବନ୍ଧୀୟ ମୀମାଂସକବିଶେଷ, (ବିଂ. ପ୍ରଭାକର+ଅ) ପ୍ରଭାକରସମ୍ବନ୍ଧୀୟ (ସ୍ତ୍ରୀ)ପ୍ରାଭାକରୀ

**ପ୍ରାଭାତିକ**—ତ୍ରି. ବିଂ. (ପ୍ରଭାତ+ଇକ) ପ୍ରଭାତସମ୍ବନ୍ଧୀୟ, ପ୍ରଭାତକାଳୀନ ।

**ପ୍ରାଭାସିକ**—ତ୍ରି.ବିଂ. ପ୍ରଭାସ ଦେଶୋଦ୍ଭବ

**ପ୍ରାଭୃତ**—କ୍ଲୀ.ବି. (ପ୍ର+ଆ+ଭୃ+ମିଁ.ତ) ଉପଢୌକନ ଦ୍ରବ୍ୟ, ଭେଟି, ନୈବେଦ୍ୟ । [କନ ।

**ପ୍ରାଭୃତକ**—କ୍ଲୀ.ବି.ଉପହାର, ଉପଢୌ-

**ପ୍ରାଭୃତକୃତ**—ତ୍ରି. ବିଂ. ଉତ୍ସର୍ଗୀକୃତ, ଉପହାର ରୂପେ ପ୍ରଦତ୍ତ ।

**ପ୍ରାମାଣିକ**—ତ୍ରି. ବିଂ. (ପ୍ରମାଣ+ଇକ) ମର୍ଯ୍ୟାଦାର୍ହ, ଶାସ୍ତ୍ରଜ୍ଞ, ପରିଚ୍ଛେଦକ, ପ୍ରମାଣକର୍ତ୍ତା, ଶାସ୍ତ୍ରସିଦ୍ଧ, ସତ୍ୟ, ବିଜ୍ଞ, ପ୍ରଧାନ, ପ୍ରମାଣସିଦ୍ଧ,(ବି) ସମାଜପତି, ଅଧ୍ୟକ୍ଷ, ପଣ୍ଡିତ, ଭଣ୍ଡାର ।

**ପ୍ରାମାଣ୍ୟ**—ବିଂ. (ପ୍ରମାଣ+ଯ) ପ୍ରମାଣ-ସମ୍ବନ୍ଧୀୟ, ପ୍ରମାଣଯୋଗ୍ୟ, ପ୍ରମାଣ-

ସଙ୍କ, ( ଡ.-ଷ୍ଣ.ଯ )ବିଶ୍ବାସ୍ୟତା, ମାନ-ମର୍ଯ୍ୟାଦା ।

**ପ୍ରାମାଣ ବଧି**—ବ. (କ.ଧା)ବଶିଷ୍ଟ ରୂପ ପ୍ରମାଣ ସିଦ୍ଧ ନୟମ ବା ଆଇନ୍,ନଜୀର

**ପ୍ରାମାଦକ**—ବି. ବଂ. (ପ୍ରମାଦ + ଇକ) ପ୍ରମାଦ ଘଟିତ,ଭ୍ରମଦଣତ,ଦୋଷଯୁକ୍ତ, ଅନବଧାନଘଟିତ ।

**ପ୍ରାମାଦ୍ୟ**—ପୁଂ. ବ. (ପ୍ରମାଦ + ଷ୍ଣ.ଯ) ଅଛରୂଷ ବୃକ୍ଷ, ବାହଙ୍ଗଗଛ ।

**ପ୍ରାମୀତ୍ୟ**—କ୍ଲୀ. ବ. ( ପ୍ର+ମୀ+ତ.ଯ ) ମୃତତ୍ବ, ଋଣ ।

**ପ୍ରାମୋଦ**—ବି. ବ. (ପ୍ରମାଦ+ଅ) ମନୋଜ୍ଞ, ମୁଗଧକର, ମନୋହର ।

**ପ୍ରାୟ**—ପୁଂ. ବ. (ପ୍ର+ଇ+ଷ୍ଣ.ଅ ) ବାହୁଲ୍ୟ, ବୟନ,ପାପ,ପ୍ରବେଶ,ଗମନ, ମୃତ୍ୟୁ,ଇଚ୍ଛାପୂର୍ବକ ଅନଶନ ଦ୍ଵାରା ମୃତ୍ୟୁ. ମୃତ୍ୟୁ ଇଚ୍ଛାପୂର୍ବକ ଅନଶନ, ଉପବାସ. (ବଂ)ତୁଲ୍ୟ, ପର, ସମ, କଳ୍ପ.(ଯଥା-ମୃତପ୍ରାୟ),'ଗ୍ରା.ଅ) ସମାନ ଭାବରେ, ତୁଲ୍ୟ, ସଚରାଚର, ସାଧାରଣତଃ, ସର୍ବଦା, ଘନଘନ, ଈଷତ୍. ପ୍ରାୟଶଃ, ଅଧିକ ରୂପେ,ମଝିରେ ମଝିରେ ।

**ପ୍ରାୟଃ**—ଅବ୍ୟ. ବାହୁଲ୍ୟ ।

**ପ୍ରାୟଗତ**—ପୁଂ.ବଂ.ଆସନ୍ନମୃତ୍ୟୁ., ମୃତ ପ୍ରାୟ, ମୁମୂର୍ଷୁ ।

**ପ୍ରାୟଣ**—କ୍ଲୀ. ବ. (ପ୍ର+ଆ+ଯା+ଷ୍ଣ. ଅନ) ଦେହ ତ୍ୟାଗ ଦ୍ଵାରା ସ୍ଥାନାନ୍ତର ଗମନ, ଜନ୍ମାନ୍ତର, ଅନଶନ ଦ୍ଵାରା ଦେହ ତ୍ୟାଗ,ପ୍ରକୃଷ୍ଟ ଗମନ,ପ୍ରବେଶ. ଦୁଗ୍ଧ ମିଶ୍ରିତ ଖାଦ୍ୟ, ପାରମ୍ଭ,ପାଢ଼ଣା, ଉପବାସ ପରେ ଖିଆଯିବା ପଥ୍ୟ ।

**ପ୍ରାୟଣାନ୍ତ**—ପୁଂ. ବ. ଜୀବନର ଶେଷ. ମରଣ, (ଅବ୍ୟ) ମୃତ୍ୟୁ ପର୍ଯ୍ୟନ୍ତ ।

**ପ୍ରାୟଦର୍ଶନ**—କ୍ଲୀ.ବ. (ବ.ବ୍ରୀ) ସଚରାଚର ଦର୍ଶନ ଯୋଗ୍ୟ, ଭୌତିକ ଦୃଶ୍ୟାଦ, ସାଧାରଣ ଘଟନା ।

**ପ୍ରାୟଦ୍ଵୀପ**—ବ. (ପ୍ରାୟ+ଦ୍ଵୀପ) ଉପଦ୍ଵୀପ ।

**ପ୍ରାୟଭବ**—ବି.ବଂ.ନତ୍ୟ ସଂଘଟନଶୀଳ ।

**ପ୍ରାୟବଧାୟୀ**—ପୁଂ. ବଂ. ଅନଶନ ବ୍ରତ-ଯୋଗେ ଜୀବନ ତ୍ୟାଗର ସଂକଳ୍ପକାରୀ

**ପ୍ରାୟବୃତ୍ତ**—ବ. ( ପ୍ରାୟ+ବୃତ୍ତ ) ଯେ ସମ୍ପୂର୍ଣ୍ଣ ଗୋଲାକାର ନୁହେ,ଅଣ୍ଡାକାର

**ପ୍ରାୟଶଃ**—ଅବ୍ୟ.ସର୍ବ ପ୍ରକାରେ,ବାହୁଲ୍ୟ ରୂପେ, ସମ୍ପୂର୍ଣ୍ଣ ରୂପେ, ସଦାସର୍ବଦା, ସଚରାଚର ।

**ପ୍ରାୟଶ୍ଚିତ୍ତ(ତ୍ତି)**—ବ. ( ପ୍ରାୟଃ+ଚିତ୍ତ ) ପାପକ୍ଷୟ ସାଧନାର୍ଥ କର୍ମ,କୃତଦୋଷର କ୍ଷୟସାଧନ,ଚିତ୍ତର ବଶୁଦ୍ଧତା ସାଧନ ।

**ପ୍ରାୟଶ୍ଚିତ୍ତକରିବା**—କ୍ରି.ବି.ପାତକଜନକ ପାପକୁ ଶାସ୍ତ୍ରନର୍ଦ୍ଦିଷ୍ଟ ଅନୁଷ୍ଠାନାଦ ଦ୍ଵାରା କ୍ଷୟ କରିବା ।

**ପ୍ରାୟଶ୍ଚିତ୍ତତତ୍ତ୍ବ**—କ୍ଲୀ.ବ. (ବ.ବ୍ରୀ)ପ୍ରାୟଶ୍ଚିତ୍ତ ତତ୍ତ୍ଵବିଷୟକ ଗ୍ରନ୍ଥବିଶେଷ ।

**ପ୍ରାୟଶ୍ଚିତ୍ତବଧି**—ବ. (ଡତତ୍ପୁ) ପ୍ରାୟଶ୍ଚିତ୍ତ କରିବାର ନର୍ଦ୍ଦିଷ୍ଟ ନୟମ । [ଯୋଗ୍ୟ ।

**ପ୍ରାୟଶ୍ଚିତ୍ତାର୍ହ**—ପୁଂ.ବଂ.ପ୍ରାୟଶ୍ଚିତ୍ତ କରିବା

**ପ୍ରାୟଶ୍ଚିତ୍ତିକ**—ବଂ. ପ୍ରାୟଶ୍ଚିତ୍ତାର୍ହ ।

**ପ୍ରାୟଶ୍ଚିତ୍ତୀ**—ପୁଂ.ବଂ.(ପ୍ରାୟଶ୍ଚିତ୍ତ+ଇନ୍) ପ୍ରାୟଶ୍ଚିତ୍ତର ଉପଯୁକ୍ତ, ପ୍ରାୟଶ୍ଚିତ୍ତ କରିବା ଯୋଗ୍ୟ (ବ୍ୟକ୍ତି) ।

**ପ୍ରାୟଶ୍ଚିତ୍ତୀୟ**—ବି.ବଂ. ପ୍ରାୟଶ୍ଚିତ୍ତ ସମ୍ବନ୍ଧୀୟ, ପ୍ରାୟଶ୍ଚିତ୍ତ ହୋମ ସମ୍ବନ୍ଧୀୟ ।

**ପ୍ରାୟଶ୍ଚେତନ**—ବ. (ପ୍ରାୟଶ୍+ଚେତନ) ପ୍ରାୟଶ୍ଚିତ୍ତ ।

**ପ୍ରାୟାଣିକ**—ବ. (ପ୍ରୟାଣ+ଇକ)ଶଙ୍ଖ ଗୁମଗୁମ ମଙ୍ଗଳ ଦ୍ରବ୍ୟ (ବଂ) ଯାତ୍ରା-ସମ୍ବନ୍ଧୀୟ । [ କର ଦ୍ରବ୍ୟ ।

**ପ୍ରାୟାହ୍ନିକ**—ବି.ବଂ.ଯାତ୍ରାକାଳେ ହିତ-

**ପ୍ରାୟିକ**—ବି.ବଂ.(ପ୍ରାୟ+ଇକ)ସାଧାରଣ, ଯାହା ବହୁଳ ଭାବରେ ହୋଇଥାଏ ।

**ପ୍ରାୟୋଗିକ**—ବି. ବଂ. (ପ୍ରୟୋଗ+ଇକ) ନତ୍ୟ ପ୍ରୟୋଜନୀୟ, ପ୍ରୟୋଗ ସମ୍ବନ୍ଧୀୟ, ପ୍ରଯୁକ୍ତ ହେବାର ଯୋଗ୍ୟ ।

**ପ୍ରାଯୋଜ୍ୟ**—ବି.ବଂ. (ପ୍ର+ଆ+ଯୁଜ୍ +ଣିଚ୍+ଯ) ପ୍ରୟୋଜନାର୍ହ ।

**ପ୍ରାୟୋଦେବତା**-ବ.ସ୍ଵର୍ବମାନ୍ୟ ଦେବତା, ଯେଉଁ ଦେବତାଙ୍କୁ ସମସ୍ତେ ମାନନ୍ତି ।

**ପ୍ରାୟୋଦ୍ଵୀପ**—ବ. ଉପଦ୍ଵୀପ, ପ୍ରାୟ ଚରୁଦିଗରେ ଜଳବେଷ୍ଟିତ ଭୂଭାଗ ।

**ପ୍ରାୟୋପଗମନ**—କ୍ଲୀ. ବ. ଅନାହାରେ ପ୍ରାଣତ୍ୟାଗ ଇଚ୍ଛା ।

**ପ୍ରାୟୋପବଷ୍ଟ**—ପୁଂ.ବଂ. (୨ତତ୍ପୁ) ଉପବାସ ପୂର୍ବକ ପ୍ରାଣତ୍ୟାଗ କରିବା ନମନ୍ତେ ଆସୀନ, ଯେ ଉପବାସ କରି ମରୁଅଛି ।

**ପ୍ରାୟୋପବେଶ(ନ)**—ବ. ( ୨ତତ୍ପୁ ) ସନ୍ୟାସ ଗ୍ରହଣପୂର୍ବକ ଅନାହାରରେ ମରଣପାଇଁ ବସିରହିବା,ଅନଶନ ବ୍ରତ ।

**ପ୍ରାୟୋପବେଶନକା**—ସ୍ତ୍ରୀ.ବ. ପ୍ରାୟୋପବେଶ ଦେଖ । [ ବେଶନ ।

**ପ୍ରାୟୋପବେଶିକା**—ସ୍ତ୍ରୀ. ବ. ପ୍ରାୟୋପ-

**ପ୍ରାୟୋପବେଶୀ**—ପୁଂ. ବଂ. ପ୍ରାୟୋପବଷ୍ଟ ଦେଖ । [ ଯୁକ୍ତ ।

**ପ୍ରାୟୋପେତ**—ବଂ. ପ୍ରାୟୋପବେଶନ-

**ପ୍ରାରବ୍ଧ**—ବଂ. (ପ୍ର+ଆ+ରଭ୍+ର୍ମ.ତ) ପ୍ରକୃଷ୍ଟରୂପେ ଆରବ୍ଧ,କୃତାରମ୍ଭ.ଯାହା ଆରମ୍ଭ କରାହୋଇଅଛି, (ବ) ପୂର୍ବଜନ୍ମର ହେତୁଭୂତ ଅଦୃଷ୍ଟ, ପୂର୍ବ ଜନ୍ମାର୍ଜିତ ପାପପୁଣ୍ୟ, ଭାଗ୍ୟ ।

**ପ୍ରାରବ୍ଧକର୍ମ**—ବ. (କ.ଧା) ଆରମ୍ଭକରାଯାଇଥିବା କାର୍ଯ୍ୟ, ପୂର୍ବ ଜନ୍ମାର୍ଜିତ କର୍ମ ବା ଅଦୃଷ୍ଟ ।

**ପ୍ରାରବ୍ଧି**—ସ୍ତ୍ରୀ.ବ. (ପ୍ର+ଆରବ୍ଧ)ଗଜବନ୍ଧନ ରଜ୍ଜୁ, ଆରମ୍ଭ ।

**ପ୍ରାରବ୍ଧୀ**—ପୁଂ. ବଂ. (ପ୍ରାରବ୍ଧ+ଇନ୍) ଭାଗ୍ୟବାନ୍ ।

**ପ୍ରାରମ୍ଭ**—ପୁଂ.ବ. (ପ୍ର+ଆ+ରଭ୍+ଷ୍ଣ.ଅ) ଆରମ୍ଭ, ଉପକ୍ରମ, ସୂତ୍ରପାତ, (ର୍ମ.ଅ)କାର୍ଯ୍ୟ, (ବଂ.-ବ.ବ୍ରୀ)ସତ୍କାର୍ଯ୍ୟକାରୀ ।

**ପ୍ରାରମ୍ଭଣ**—କ୍ଲୀ.ବ. ପ୍ରକର୍ଷରୂପେ ଆରମ୍ଭ ।

**ପ୍ରାରମ୍ଭିକ**—ବଂ. (ପ୍ରାରମ୍ଭ+ଇକ)ଆଦ୍ୟ, ପ୍ରାଥମିକ । [ ପ୍ରାରୋହ ।

**ପ୍ରାରୋହ**—ବି.ବଂ. ପ୍ରରୋହଣଶୀଳ,(ସ୍ତ୍ରୀ)

**ପ୍ରାର୍ଜସ୍ବିତା**—ପୁଂ.ବଂ. (ପ୍ର+ଊର୍ଜ+କ,

ତ୍ତ) ଦାନକଣ୍ଠା, ଦାନକାଙ୍କ୍ଷା ।
ପ୍ରାର୍ଣ୍ଣ—କ୍ଲୀ.ବି. ( କ.ଧା ) ଅଧିକ ଋଣ, (ବି°) ଅଧିକ ଋଣଯୁକ୍ତ ।
ପ୍ରାର୍ଥକ—ପୁଂ. ବି°. (ପ୍ର+ଅର୍ଥ+କ. ଅକ) ପ୍ରାର୍ଥନାକାଙ୍କ୍ଷୀ, ପ୍ରାର୍ଥୀ ।
ପ୍ରାର୍ଥନ(ନା)—ବି. (ପ୍ର+ଅର୍ଥ+ଭା.ଅନ +ଆ) ଯାଚ୍ଞା, ପ୍ରାର୍ଥନା, ବିନୀତ ନିବେଦନ, ଆବେଦନ, ଅଭିଯାନ, ଅବରୋଧ, ଆକ୍ରମଣ, ହିଂସା, ଦ୍ୱେଷ. ଣ.ଅନ) ସ୍ତବ, ଦେବତାଙ୍କ ଉଦ୍ଦେଶ୍ୟରେ ସ୍ତୁତି,ନାଟକର ଗର୍ଭାଙ୍କବିଶେଷ, (ମି.ଅନ ) ମୁଦ୍ରାବିଶେଷ । [ ଶାସ୍ତ୍ର ।
ପ୍ରାର୍ଥନାପତ୍ର—ବି.ଆବେଦନ ପତ୍ର,ଦର-
ପ୍ରାର୍ଥନାସମାଜ—ବି. ବ୍ରହ୍ମ ସମାଜର ପଦ୍ଧତି ଅନୁସାରେ ଏକେଶ୍ୱରଙ୍କୁ ଜାତି ନିର୍ବିଶେଷରେ ବହୁଲୋକ ମିଳି ପ୍ରାର୍ଥନା କରିବା ନିମନ୍ତେ ସମ୍ପ୍ରଦାୟବିଶେଷ ।
ପ୍ରାର୍ଥନୀୟ—କ୍ଲୀ. ବି. (ପ୍ର+ଅର୍ଥ+ମି. ଅନୀୟ) ଦ୍ୱାପର ଯୁଗ, (ବି°) ଯାଚିତବ୍ୟ, ପ୍ରାର୍ଥନା ବିଷୟକ, ଯାଚନୀୟ, ମାଗିବାର ଯୋଗ୍ୟ ।
ପ୍ରାର୍ଥୟିତବ୍ୟ—ତ୍ରି. ବି°. (ପ୍ର+ଅର୍ଥ+ତବ୍ୟ) ପ୍ରାର୍ଥନୀୟ,ପ୍ରାର୍ଥନାର ଯୋଗ୍ୟ ।
ପ୍ରାର୍ଥୟିତା—ପୁଂ.ବି°. (ପ୍ର+ଅର୍ଥ+କ. ତୃ) ପ୍ରାର୍ଥନାକାଙ୍କ୍ଷୀ, ଯେ ମାଗେ, ଯାଚକ
ପ୍ରାର୍ଥିତ—ତ୍ରି.ବି°. (ପ୍ର+ଅର୍ଥ+ମି.ତ) ଯାଚିତ, ଶତ୍ରୁସଂରୁଦ୍ଧ,ଆକ୍ରାନ୍ତ,ଅଭିହିତ. ହତ, ଅଭିଲଷିତ, ବାଞ୍ଛିତ, ପ୍ରାର୍ଥନାର ବିଷୟୀଭୂତ ।
ପ୍ରାର୍ଥୀ—ପୁଂ.ବି°. (ପ୍ର+ଅର୍ଥ+କ.ଇନ୍) ପ୍ରାର୍ଥନାଶୀଳ, ଯାଚକ, ଆବେଦକ, ପ୍ରାର୍ଥନାକାଙ୍କ୍ଷୀ, ଦରଖାସ୍ତକାରୀ ।
ପ୍ରାର୍ଥ୍ୟ—ତ୍ରି.ବି°. ପ୍ରାର୍ଥନାର ଯୋଗ୍ୟ ।
ପ୍ରାଲମ୍ବ—କ୍ଲୀ. ବି. (ପ୍ର+ଆ+ଲମ୍ବ+ କ.ଅ) ବେକରୁ ସ୍ତନ ପର୍ଯ୍ୟନ୍ତ ଲମ୍ବିଥିବା ମାଳା, ଗୋପ, ଦଉଡ଼ିପର ଲମ୍ବିଥିବା ବସ୍ତୁ । [ ହାର ।
ପ୍ରାଲମ୍ବିକା—ସ୍ତ୍ରୀ.ବି. ସୁବର୍ଣ୍ଣ ହାର, କଣ୍ଠ-
ପ୍ରାଲବ୍ଧ—ବି ଓ ବି°. ପ୍ରାରବ୍ଧ ଦେଖ ।

ପ୍ରାଲେୟ—କ୍ଲୀ. ବି. (ପ୍ର+ଆ+ଲୀ+ କ.ଅ) ହିମ, ଶିଶିର,କାକର, ବରଫ ।
ପ୍ରାଲେୟରଶ୍ମି—ପୁଂ. ବି. ଚନ୍ଦ୍ର, ଶୀତକିରଣ ।
ପ୍ରାଲେୟଶୈଳ—ପୁଂ.ବି.ହିମବାନ୍,ହିମାଳୟ ପର୍ବତ ।
ପ୍ରାଲେୟାଂଶୁ—ପୁଂ.ବି. ( ବ.ସ୍ର ) ଚନ୍ଦ୍ର, ହିମାଂଶୁ, ଶୀତକିରଣ, କର୍ପୂରଭେଦ ।
ପ୍ରାଲେୟାଦ୍ରି—ପୁଂ.ବି. (କ.ଧା)ହିମାଳୟ ପର୍ବତ । [ ସମ୍ବନ୍ଧୀୟ ।
ପ୍ରାବଚନ—ତ୍ରି. ବି°. ପ୍ରବଚନ ବା ସ୍ୱର-
ପ୍ରାବଟ—ପୁଂ. ବି. (ପ୍ର+ଆ+ବଟ+ ମି.ଅ) ଯବ ।
ପ୍ରାବଣ—କ୍ଲୀ. ବି. (ପ୍ର+ଆ+ବନ୍+ ଣ.ଅ) ଖନିତ୍ର, ଖଣତି ।
ପ୍ରାବଣୀ—ସ୍ତ୍ରୀ.ବି. ( ପ୍ର+ଅବ+ଅନ ) ପ୍ରକୃଷ୍ଟ ଅବନ ।
ପ୍ରାବର—ପୁଂ.ବି. (ପ୍ର+ଆ+ବୃ+ଣ. ଅ) ପ୍ରାଚୀର, ବାଡ଼ ।
ପ୍ରାବରଣ—କ୍ଲୀ. ବି. ( ପ୍ର+ଆବରଣ ) ଉତ୍ତରୀୟ ବସ୍ତ୍ର, ପ୍ରଚ୍ଛାଦନ, ଓଢ଼ଣୀ, ଚାଙ୍କୁଣି ।
ପ୍ରାବରଣଷଷ୍ଠୀ—ବି. ଓଢ଼ଣଷଷ୍ଠୀ, ମାର୍ଗଶିର ଶୁକ୍ଳଷଷ୍ଠୀ ।
ପ୍ରାବରଣୀୟ—କ୍ଲୀ. ବି. ଆଚ୍ଛାଦନ ବସ୍ତ୍ର, (ବି°) ଯଦ୍ଦ୍ୱାରା ଆବରଣ କରାଯାଏ ।
ପ୍ରାବଲ୍ୟ—ବି. (ପ୍ରବଳ+ଯ)ପ୍ରବଳତା, ବଳବତ୍ତା, ପ୍ରଚଣ୍ଡତା, ଉତ୍କର୍ଷତା,ଶକ୍ତି, ପ୍ରଭାବ । [ ବସ୍ତ୍ର ।
ପ୍ରାବାର—ପୁଂ.ବି. ଉତ୍ତରାସଙ୍ଗ,ଉତ୍ତରୀୟ-
ପ୍ରାବାରକ—ପୁଂ. ବି. ଉତ୍ତରୀୟ ବସ୍ତ୍ର, ବହିର୍ବାସ ।
ପ୍ରାବାରକର୍ଣ୍ଣ—ପୁଂ.ବି. ଉଲୂକଭେଦ ।
ପ୍ରାବାରକୀଟ—ପୁଂ. ବି. ଲୁଗାକୁ ନଷ୍ଟ କରିବା ଏକପ୍ରକାର କୀଟ, କୁଣ ।
ପ୍ରାବାଳିକ—ପୁଂ. ବି. (ପ୍ରବାଳ+ଇକ) ପୋହଳା ବ୍ୟବସାୟୀ ।
ପ୍ରାବାସିକ—ବି°. ( ପ୍ରବାସ+ଇକ ) ପ୍ରବାସ ସମ୍ବନ୍ଧୀୟ, ପ୍ରବାସଯୋଗ୍ୟ,

ପ୍ରବାସରେ ବ୍ୟବହାରର ଉପଯୋଗୀ ।
ପ୍ରାବନ୍ଧ—କ୍ଲୀ.ବି. ଆଶ୍ରୟ, ଅଭିଭାବକର ଅଧୀନରେ ଥିବା ।
ପ୍ରାହ୍ୱ—ତ୍ରି.ବି°. ଅବହିତ,ମନୋଯୋଗୀ
ପ୍ରାହ୍ୱଣ୍ୟ—କ୍ଲୀ.ବି. (ପ୍ରାହ୍ୱଣ+ଯ) ପ୍ରାହ୍ୱଣତା, ପଟୁତା, ଦକ୍ଷତା, ନୈପୁଣ୍ୟ ।
ପ୍ରାବୁବୂର୍ଷୁ—ପୁଂ. ବି°. (ପ୍ର+ଆ+ବୃ +ସନ୍+କ.ଉ) ପରିଧାନ କରିବାକୁ ଇଚ୍ଛୁକ, ଆବରଣେଚ୍ଛୁ ।
ପ୍ରାବୃଟ୍—ସ୍ତ୍ରୀ.ବି. (ପ୍ର+ଆ+ବୃଷ୍+କ. କ୍ୱିପ୍) ବର୍ଷାକାଳ, ବର୍ଷାଋତୁ, କଦମ୍ବଗଛ ।
ପ୍ରାବୃଟ୍‌କାଳ—ପୁଂ.ବି. ବର୍ଷାକାଳ,ଶ୍ରାବଣ ଓ ଭାଦ୍ରମାସ । [ କାଳ ।
ପ୍ରାବୃତତ୍ୟୟ—ପୁଂ.ବି. (୬ତତ୍)ଶରତ୍-
ପ୍ରାବୃତ—ବି°. (ପ୍ର+ଆ+ବୃ+ମି.ତ) ଆଚ୍ଛାଦିତ,ବେଷ୍ଟିତ,(ବି.-ଣ.ତ)ପ୍ରାବରଣ, ଓଢ଼ଣୀ ।
ପ୍ରାବୃତି—ସ୍ତ୍ରୀ.ବି. (ପ୍ର+ଆ+ବୃ+ଣ.ତି) ପ୍ରାଚୀର, ବାଡ଼, ଆବରଣ, ଯୋଡ଼ଣୀ, ମଳ । [ ଭେଦ ।
ପ୍ରାବୃଣ୍ଣିକ—ବି. ପ୍ରବୃଣ୍ଣିକାହ୍ୱକ ଦୂତ-
ପାବୃଷ୍—ସ୍ତ୍ରୀ.ବି. (ପ୍ର+ଆ+ବୃଷ୍+କ. କ୍ୱିପ୍) ବର୍ଷାକାଳ, ଶ୍ରାବଣ ଓ ଭାଦ୍ରବ ମାସ, କଦମ୍ବଗଛ ।
ପ୍ରାବୃଷା—ସ୍ତ୍ରୀ. ବି. (ପ୍ର+ଆ+ବୃଷ+ ଅଧି+କ୍ୱିପ୍+ଆ) ଘନାଗମ, ବର୍ଷାକାଳ । [ ଚିଙ୍କ ।
ପ୍ରାବୃଷାୟଣୀ—ସ୍ତ୍ରୀ.ବି. କପିକଚ୍ଛୁ, ବାଇ-
ପ୍ରାବୃଷିକ—ପୁଂ.ବି. ( ପ୍ରାବୃଷ+ଇକ ) ମୟୂର, (ବି°)ଯାହା ବର୍ଷାକାଳେ ହୁଏ, ବର୍ଷାସମ୍ବନ୍ଧୀୟ ।
ପ୍ରାବୃଷିଜ—ବି. (ପାବୃଷ+ଜନ୍+କ. ଅ) ଝଞ୍ଜାନିଳ, ଧାରାକଦମ୍ବ, କେଳିକଦମ୍ବ,ଗିରିମଲ୍ଲିକା, କୁଟଜ,(ବି°) ଯାହା ବର୍ଷାକାଳରେ ଜନ୍ମେ ।
ପ୍ରାବୃଷେଣ୍ୟ—ବି. ( ପ୍ରାବୃଷ+ଏଣ୍ୟ ) କଦମ୍ବଗଛ, କୁଟଜ, ଧାରାକଦମ୍ବ,

ପ୍ରାବୃଷ୍ୟ, (ବିଂ) ଯାହା ବର୍ଷାକାଳରେ ହୁଏ, ବର୍ଷାକାଳୀନ, ପ୍ରଚୁର ।
ପ୍ରାବୃଷେଣ୍ୟା—ସ୍ତ୍ରୀ.ବି. କପିକଚ୍ଛୁ, ବାଇଡଙ୍କ, ରକ୍ତପୁନର୍ନବା, ନାଲିପୁରୁଣୀ ।
ପ୍ରାବୃଷ୍ୟ—କ୍ଲୀ. ବି. ବୈଦୁର୍ଯ୍ୟମଣି,ଧାରାକଦମ୍ବ, କୁଟଜ, ବିକଣ୍ଟକ,(ବିଂ)ବର୍ଷାକାଳଭବ । [ ବିଶେଷ ।
ପ୍ରାବେଣ୍ୟ—କ୍ଲୀ. ବି. ପଶମୀ ଆଚ୍ଛାଦନ-
ପ୍ରାବେଶନ—କ୍ଲୀ. ବି.(ପ୍ର+ଆବେଶନ) ଶିଳ୍ପଶାଳା, କଳାଭବନ, (ପ୍ରବେଶନ+ଅ) ପ୍ରବେଶନ ।
ପ୍ରାବେଶିକ—ତ୍ରି. ବିଂ. ( ପ୍ରବେଶ+ଇକ) ପ୍ରବେଶ ସାଧନଭୂତ, ଯାହା ଦ୍ୱାରା ପ୍ରବେଶ ଲାଭ ହୁଏ ।
ପ୍ରାବୋଧିକ—ବି. ( ପ୍ରବୋଧ+ଇକ ) ଉଷାକାଳ, ସକାଳ, ମାଗଧ, ଭାଟ, ଯେଉଁ ଭାଟ ସ୍ତୁତିପାଠକରି ରାଜାଙ୍କ ନିଦ ଭଙ୍ଗାଏ ।
ପ୍ରାବ୍ରାଜ୍ୟ—ବିଂ. ପ୍ରବ୍ରାଜ୍ୟା ସମ୍ବନ୍ଧୀୟ ।
ପ୍ରାଶ—ପୁଂ. ବି. ( ପ୍ର+ଅଶ+ଭା. ଅ ) ପ୍ରକୃଷ୍ଟ ଭୋଜନ, ଭକ୍ଷଣ, ଭୋଜନ ।
ପ୍ରାଶନ—କ୍ଲୀ.ବି. (ପ୍ର+ଅଶ୍+ଭା.ଅନ) ଆହାର, ଭୋଜନ, ଚୁଷିବା ।
ପ୍ରାଶନୀୟ—ତ୍ରି. ବିଂ. ( ପ୍ର+ଅଶ୍+ଅନୀୟ) ପ୍ରକୃଷ୍ଟରୂପେ ଭୋଜନୀୟ ।
ପ୍ରାଶସ୍ତ୍ୟ—କ୍ଲୀ. ବି. (ପ୍ରଶସ୍ତ+ଯ)ପ୍ରଶସ୍ତତା, ପ୍ରଶଂସନୀୟତା, ଉତ୍କୃଷ୍ଟତା, ଉତ୍କର୍ଷ, ଶ୍ରେଷ୍ଠତା, ବିସ୍ତାର ।
ପ୍ରାଶିତ—କ୍ଲୀ. ବି. ( ପ୍ର+ଅଶ୍+ତ ) ପିତୃଯଜ୍ଞ, ତର୍ପଣ, ଭକ୍ଷଣ,(ବିଂ)ଭକ୍ଷିତ, ଭୁକ୍ତ ।
ପ୍ରାଶିତା—ପୁଂ. ବିଂ. (ପ୍ର+ଅଶ୍+ତୃ) ପ୍ରକୃଷ୍ଟରୂପେ ଭକ୍ଷକ ।
ପ୍ରାଶୀ—ପୁଂ. ବିଂ. (ପ୍ର+ଅଶ୍+କ.ଇନ୍) ପ୍ରକୃଷ୍ଟରୂପେ ଭକ୍ଷକ, ଭକ୍ଷଣକାରୀ ।
ପ୍ରାଶ୍ନିକ—ପୁଂ. ବି. (ପ୍ରଶ୍ନ+ଇକ)ସଭାସଦ୍,ସଭ୍ୟ,(ବିଂ) ପ୍ରଶ୍ନକର୍ତ୍ତା,ପ୍ରଶ୍ନଶ୍ରବଣପୂର୍ବକ ମୀମାଂସକ, ପରୀକ୍ଷକ ।
ପ୍ରାଶ୍ୟ—ବି. ଗ୍ରାମ୍ୟ ପ୍ରାକୃତ ଜନ୍ତୁ ।

ପ୍ରାସ—ପୁଂ. ବି. ( ପ୍ର+ଅସ୍+ନି.ଅ ) କୁନ୍ତାସ୍ତ୍ର,ବର୍ଚ୍ଛା,କ୍ଷେପଣୀୟ ଅସ୍ତ୍ରବିଶେଷ, ଟେଣ୍ଟା ।
ପ୍ରାସକ—ପୁଂ. ବି.(ପ୍ରାସ+କ)ପ୍ରାସାସ୍ତ୍ର, ପାଶକ, ପଶା ।
ପ୍ରାସଙ୍ଗ—ବି. (ପ୍ର+ଆ+ସଞ୍ଜ+କ.ଅ) ଯୁଗକାଷ୍ଠ, ଯୁଆଳି, ଦାମୁଡ଼ି ମଣ କରିବାରେ ବ୍ୟବହୃତ ହାଲୁକା ଯୁଆଳି, ତୁଳାଯନ୍ତ୍ର, ତରାଜୁର ଦଣ୍ଡି ।
ପ୍ରାସଙ୍ଗିକ—ତ୍ରି. ବିଂ. (ପ୍ରସଙ୍ଗ+ଇକ) ପ୍ରକୃତ ସଙ୍ଗକୃତ, ପ୍ରସଙ୍ଗରୁ ଆଗତ, ପ୍ରସଙ୍ଗ କ୍ରମେ ଉତ୍ଥାପିତ, ସମ୍ପର୍କୀୟ, ସମୟୋପଯୋଗୀ, ସ୍ୱାଭାବିକ ।
ପ୍ରାସଙ୍ଗ୍ୟ—ପୁଂ. ବି. ଯୁଗବୋଢ଼ ବୃଷ, ଯୁଆଳି ବୁହା ବଳଦ ବା ଦାମୁଡ଼ି ।
ପ୍ରାସନ—କ୍ଲୀ. ବି. ( ପ୍ର+ଆ+ଅସ୍+ଭା.ଅନ) ବିକ୍ଷେପଣ, ଦୂରେ ନିକ୍ଷେପ କରଣ, ଫିଙ୍ଗିବା ।
ପ୍ରାସାଦ—ପୁଂ. ବି. ( ପ୍ର+ଆ+ସଦ୍+ଅଧି. ଅ) ଦେବତା ଓ ରାଜାମାନଙ୍କ ଗୃହ, ହର୍ମ୍ମ୍ୟ, ଅଟ୍ଟାଳିକା ।
ପ୍ରାସାଦକୁକ୍କୁଟ—ପୁଂ. ବି.(୬ତତ୍ପୁ)ପାରାବତ, ପାରା ।
ପ୍ରାସାଦଚୂଡ଼ା—ବି. (୬ତତ୍ପୁ) ମନ୍ଦିରାଦିର ଅଗ୍ରଭାଗ, ଗମ୍ବୁଜ ।
ପ୍ରାସାଦପ୍ରସ୍ତର—ପୁଂ. ବି. ପ୍ରାସାଦତଳ ଗୃହାଦିର ସମତଳ ଛାତ ।
ପ୍ରାସାଦମଣ୍ଡନା—ବି. ପ୍ରାଚୀନକାଳରେ ପ୍ରାସାଦ ଉପରେ ଲେପା ଯାଉଥିବା ଏକପ୍ରକାର ସ୍ଥାୟୀ ନାଲି ବା ହଳଦିଆ ରଙ୍ଗ ।
ପ୍ରାସାଦରୋହଣ—କ୍ଲୀ. ବି. ପ୍ରାସାଦ ବା ଅଟ୍ଟାଳିକାରେ ପ୍ରବେଶ ।
ପ୍ରାସାଦଶିଖର—ବି. (୬ତତ୍ପୁ)ହର୍ମ୍ମ୍ୟଶୀର୍ଷ
ପ୍ରାସାଦଶୃଙ୍ଗ—କ୍ଲୀ.ବି.(୬ତତ୍ପୁ)ପ୍ରାସାଦର ଚୂଡ଼ାଦେଶ ।
ପ୍ରାସାଦିକ—ବିଂ. ( ପ୍ରସାଦ+ଇକ ) ଦୟାଳୁ, ମମତାବାନ୍,(ପ୍ରାସାଦ+ଇକ) ପ୍ରାସାଦ ସମ୍ବନ୍ଧୀୟ ।

ପ୍ରାସାଦୀୟ—ତ୍ରି. ବିଂ. (ପ୍ରାସାଦ+ଈୟ) ପ୍ରାସାଦ ସମ୍ପର୍କୀୟ ।
ପ୍ରାସିକ—ପୁଂ.ବିଂ.ପ୍ରାସାସ୍ତ୍ରଧାରୀ,କୌନ୍ତିକ, କୁନ୍ତାସ୍ତ୍ର ସମ୍ବନ୍ଧୀୟ ।
ପ୍ରାସୂ—ବି. (ପ୍ର+ଅସ୍+ଉ)ଦୀର୍ଘଶ୍ୱାସ ।
ପ୍ରାସ୍ଥାନିକ—ତ୍ରି. ବିଂ.(ପ୍ରସ୍ଥାନ+ଇକ) ପ୍ରସ୍ଥାନ ବା ବିଦାୟ କାଳୀନ, ବିଦାୟ କାଳରେ ବ୍ୟବହୃତ ବା ପ୍ରଦର୍ଶିତ (ମଙ୍ଗଳଦ୍ରବ୍ୟ) ।
ପ୍ରାହ୍ୱ—ପୁଂ. ବି. ନୃତ୍ୟୋପଦେଶ ।
ପ୍ରାହ(ହା)ରିକ—ପୁଂ.ବି.(ପ୍ରହର+ଇକ) ନଗରରକ୍ଷକ କର୍ମଚାରୀ ବିଶେଷ, ପ୍ରହରୀଦାର, ପ୍ରହରୀ, (ବିଂ-ପ୍ରହାର+ଇକ) ପ୍ରହାର ସମ୍ବନ୍ଧୀୟ ।
ପ୍ରାହସନିକ—ବିଂ. ( ପ୍ରହସନ+ଇକ ) ପ୍ରହସନ ସମ୍ବନ୍ଧୀୟ, ପ୍ରହସନର ଅଭିନେତା ।
ପ୍ରାହୁଣ—ପୁଂ. ବି. କୁଣିଆଁ, ଅତିଥି ।
ପ୍ରାହ୍ଣ—ପୁଂ. ବି. ( ପ୍ର+ଅହନ୍+ଅ ) ପୂର୍ବାହ୍ଣ, ସକାଳଓଳି, (ଅବ୍ୟ) ପ୍ରକୃଷ୍ଟ ଦିନଯୁକ୍ତ ।
ପ୍ରାହ୍ଣେତନ—ବିଂ. ( ପ୍ରାହ୍ଣ+ଇତନ) ପୂର୍ବାହ୍ଣରେ ଘଟିବା,ପୂର୍ବାହ୍ଣ ସମ୍ବନ୍ଧୀୟ
ପ୍ରାହ୍ଲା(ହ୍ଲା)ଦ—ପୁଂ. ବି.(ପ୍ରହ୍ଲାଦ+ଅ) ପ୍ରହ୍ଲାଦର ପୁତ୍ର ।
ପ୍ରିୟ—ପୁଂ. ବି. ଭର୍ତ୍ତା, ସ୍ୱାମୀ,ଜାମାତା, କାର୍ତ୍ତିକେୟ, ମୃଗ ବିଶେଷ, ଚିତ୍ରମୃଗ, ବେତସଲତା,ହରିତାଳ, ପ୍ରିୟଙ୍ଗୁ,ଧାରାକଦମ୍ବ,ଜୀବକ ନାମକ ଔଷଧ,ଋଷଭକ, ବୃଦ୍ଧିନାମକ ଔଷଧ, ଈଶ୍ୱର, କାଙ୍ଗୁଧାନ୍ୟ, ମଙ୍ଗଳ, (ବିଂ) (ପ୍ରୀ+କ.ଅ) ପ୍ରୀତିଭାଜନ, ପ୍ରୀତିକର, ରମ୍ୟ ।
ପ୍ରିୟକ—ପୁଂ. ବି. (ପ୍ରିୟ+କ)ଭ୍ରମର, କୁଙ୍କୁମ, ପ୍ରିୟଙ୍ଗୁ, ଚିତ୍ରମୃଗ, ନୀଳ ଅଶୋକ, ପୀତଶାଳକ, କେଳିକଦମ୍ବ, ଧାରା କଦମ୍ବ, ମହାକଦମ୍ବ, ପିଆଶାଳ ଗଛ, କାଙ୍ଗୁଧାନ, ମହୁମାଛି ।
ପ୍ରିୟକର—ତ୍ରି.ବିଂ.ପ୍ରିୟକାରୀ,ହିତକାରୀ
ପ୍ରିୟକର୍ମ—କ୍ଲୀ. ବି.ହିତକାର୍ଯ୍ୟ,ହିତକର୍ମ ।

ପ୍ରିୟକଳତ୍ର—ପୁଂ. ବଂ. ନିଜର ସ୍ତ୍ରୀପ୍ରତି ବିଶେଷ ସ୍ନେହୀ (ସ୍ୱାମୀ) ।

ପ୍ରିୟକାଙ୍କ୍ଷୀ—ପୁଂ. ବଂ. ଅନ୍ୟର ଶୁଭ ଚିନ୍ତକ । [ ଶୁଭକାଙ୍କ୍ଷୀ ।

ପ୍ରିୟକାମ—ବଂ (ବ.ବ୍ରୀ) ହିତାଭିଳାଷୀ,

ପ୍ରିୟକାର—ତ୍ରି ବଂ. ( ପ୍ରିୟ+କୃ+କ.ଅ) ହିତକାରୀ, ପ୍ରିୟକାରକ, ଅନୁକୂଳ ।

ପ୍ରିୟକାରକ—ବଂ. ହିତକାର ଦେଖ ।

ପ୍ରିୟକାରୀ—ପୁଂ. ବଂ. (ପ୍ରିୟ+କୃ+କ.ଇନ୍) ହିତକାରୀ ମାତ୍ର, ପ୍ରୀତିକର କାର୍ଯ୍ୟ ସମ୍ପାଦକ, ଅନୁକୂଳ ।

ପ୍ରିୟକୃତ—ତ୍ରି. ବଂ. ( ପ୍ରିୟ+କୃ+କ୍ୱିପ୍) ପ୍ରିୟକାରୀ,ଉପକାରୀ,ହିତକାରୀ, (ପୁଂ. ବ) ବିଷ୍ଣୁ, ବନ୍ଧୁ ।

ପ୍ରିୟଙ୍କର—ପୁଂ.ବଂ. (ପ୍ରିୟ+କୃ+କ.ଅ) ପ୍ରିୟକାରକ, ଅନୁକୂଳ, (ବ) ଦାନବିଶେଷ ।

ପ୍ରିୟଙ୍କରଣ--ବ.ଅପ୍ରିୟର ପ୍ରିୟତାକରଣ ତୁଷ୍ଟି ଜନକ କର୍ମ, ସଦୟ ବ୍ୟବହାର, (ବଂ)କୃତଜ୍ଞ,ଦୟା ସହକାରେ ବ୍ୟବହୃତ

ପ୍ରିୟଙ୍କରୀ—ସ୍ତ୍ରୀ. ବଂ. (ପ୍ରିୟଙ୍କର+ଈ) ପ୍ରିୟଙ୍କରର ସ୍ତ୍ରୀଲିଙ୍ଗ, (ବ)ଅଶ୍ୱଗନ୍ଧା, ବଡ଼ କଣ୍ଟକାରୀ, ଶ୍ୱେତକଣ୍ଟକାରୀ ।

ପ୍ରିୟଙ୍ଗୁ—ସ୍ତ୍ରୀ. ବ. ( ପ୍ରିୟ+ଅଙ୍ଗ+କ.ଉ) ସୁଗନ୍ଧି ଲତା ବିଶେଷ, ଶ୍ୟାମାଲତା, ପିପ୍ପଳୀ,କାଙ୍ଗୁଧାନ,ରାଇକଣ୍ଟକୀ, କଟୁକା । [ ଧାନ ।

ପ୍ରିୟଙ୍ଗୁଧାନ୍ୟ—ବ.ଧାନ୍ୟ ବିଶେଷ,କାଙ୍ଗୁ

ପ୍ରିୟଚିକୀର୍ଷା--ବ.ମଙ୍ଗଳକାମନା,ହିତେଚ୍ଛା

ପ୍ରିୟଚିକୀର୍ଷୁ--ପୁଂ.ବ.ହିତେଚ୍ଛୁ,ଶୁଭକାଙ୍କ୍ଷୀ

ପ୍ରିୟଜନ—ପୁଂ. ବ. ( କ.ଧା ) ସୁହୃଦ୍, ଆତ୍ମୀୟ, ବନ୍ଧୁ ।

ପ୍ରିୟଜୀବ—ପୁଂ. ବ. ଶ୍ୟୋନାକ ବୃକ୍ଷ, ଫଣଫଣା ଗଛ ।

ପ୍ରିୟତମ—ପୁଂ, ବ.ସ୍ୱାମୀ,ପତି, ମୟୂରଶିଖାବୃକ୍ଷ, ( ବଂ ) ଅତିଶୟ ପ୍ରିୟ, (ସ୍ତ୍ରୀ) ପ୍ରିୟତମା ।

ପ୍ରିୟତର—ତ୍ରି. ବଂ. ଦୁଇଜଣ ମଧ୍ୟରେ ଯେ ଅଧିକ ପ୍ରିୟ ।

ପ୍ରିୟତା(ତ୍ୱ)—ପ୍ରୀତି, ପ୍ରେମ, ସ୍ନେହ ।

ପ୍ରିୟତୋଷଣ—ବ.(୬ତତ୍ପୁ) ରତିବନ୍ଧବିଶେଷ. (ବଂ) ପ୍ରିୟବ୍ୟକ୍ତିର ତୁଷ୍ଟିକାରିଣୀ ।

ପ୍ରିୟଦ—ବଂ. ( ପ୍ରିୟ+ଦା+କ.ଅ ) ପ୍ରିୟବସ୍ତୁଦାନକାରୀ, (ସ୍ତ୍ରୀ)ପ୍ରିୟଦା ।

ପ୍ରିୟଦର୍ଶନ—ପୁଂ.ବଂ.(ବ.ବ୍ରୀ) ସୁଦୃଶ୍ୟ, ରମ୍ୟ, ଚକ୍ଷୁଷ୍ୟ, (ପୁଂ.ବ) ଶୁକପକ୍ଷୀ, କ୍ଷୀରିକା ବୃକ୍ଷ, ଗନ୍ଧର୍ବ ବିଶେଷ, ଏକପ୍ରକାର ଖଜୁରୀ ଗଛ ।

ପ୍ରିୟଦର୍ଶୀ—ପୁଂ. ବଂ. (ପ୍ରିୟ+ଦୃଶ୍+କ.ଇନ୍) ଯେ ସମସ୍ତଙ୍କୁ ପ୍ରିୟଭାବରେ ଦେଖନ୍ତି, (ଗ୍ରା.-ବ) ମହାରାଜ ଅଶୋକଙ୍କର ନାମାନ୍ତର ।

ପ୍ରିୟନାଥ—ବ. (କ.ଧା) ପ୍ରିୟସ୍ୱାମୀ ।

ପ୍ରିୟପାତ୍ର—ବଂ. (କ.ଧା) ପ୍ରୀତିଭାଜନ, ଅଶ୍ରଦ୍ଧପାତ୍ର, (ବ) ମନ୍ତ୍ରୀ ।

ପ୍ରିୟପ୍ରସାଦନ—ବ.(୬ତତ୍ପୁ) ସ୍ୱାମୀଙ୍କର ସନ୍ତୋଷ ବିଧାନ ।

ପ୍ରିୟପ୍ରାୟଃ—କ୍ଲୀ.ବ. ପ୍ରିୟବାକ୍ୟ,ଚାଟୁ

ପ୍ରିୟପ୍ରାୟ—ପୁଂ. ବଂ. ଅତିସଦୟ ।

ପ୍ରିୟପ୍ରେପ୍ସୁ—ତ୍ରି. ବଂ. ( ପ୍ରିୟ+ପ୍ର+ଈପ୍ସୁ)+କ.ଉ) ନିଜର ଅଭିଳଷିତ ବସ୍ତୁ ପାଇବାକୁ ଇଚ୍ଛୁକ ।

ପ୍ରିୟଭାଷଣ—କ୍ଲୀ.ବ.ପ୍ରିୟବାକ୍ୟ କଥନ, ମଧୁର ବାକ୍ୟ ପ୍ରୟୋଗ ।

ପ୍ରିୟଭାଷୀ—ପୁଂ.ବଂ. ପ୍ରିୟବାକ୍ୟ କଥନଶୀଳ, ମଧୁର ଭାଷୀ ।

ପ୍ରିୟଭୂମି—ସ୍ତ୍ରୀ. ବ. (କ.ଧା) ପ୍ରୀତିକର ସ୍ଥାନ,(ବଂ ବ.ବ୍ରୀ)ପ୍ରୀତିପାତ୍ର,ସ୍ନେହାସ୍ପଦ

ପ୍ରିୟମଣ୍ଡନ—ପୁଂ. ବଂ. (ବ.ବ୍ରୀ) ଅଳଙ୍କାର ବା ସାଜସଜ୍ଜାର ପ୍ରିୟ ।

ପ୍ରିୟମଧୁ—ପୁଂ. ବ. (ବ.ବ୍ରୀ) ବଳରାମ (ବଂ) ମଦ୍ୟପାନ ପ୍ରିୟ ।

ପ୍ରିୟମାଣ--ବଂ.(ପ୍ରୀ+କ.ଆନ)ପ୍ରେମଯୁକ୍ତ, ସ୍ନେହମୟ, ସନ୍ତୋଷ କାରକ ।

ପ୍ରିୟମାଲ୍ୟାନୁଲେପନ—ବଂ. ମାଲ୍ୟାନୁଲେପନପ୍ରିୟ,(ବ)ସ୍କନ୍ଦାନୁଚରଭେଦ ।

ପ୍ରିୟମ୍ବଦ—ପୁଂ.ବଂ. (ପ୍ରିୟଂ+ବଦ୍+କ.ଅ) ପ୍ରିୟଭାଷୀ, ମନୋଜ୍ଞ ବକ୍ତା, (ପୁଂ. ବ) ଖେଚର, ଗନ୍ଧର୍ବ ବିଶେଷ ।

ପ୍ରିୟମ୍ବଦା—ସ୍ତ୍ରୀ.ବ. (ପ୍ରିୟମ୍ବଦ+ଆ) ପ୍ରିୟଭାଷିଣୀ ସ୍ତ୍ରୀ, ଶକୁନ୍ତଳାଙ୍କ ସଖୀବିଶେଷ, ଦ୍ୱାଦଶାକ୍ଷର ଯୁକ୍ତ ଛନ୍ଦୋବିଶେଷ ।

ପ୍ରିୟମ୍ଭବିଷ୍ଣୁ—ତ୍ରି.ବଂ.(ପ୍ରିୟଂ+ଭୂ+କ.ଇଷ୍ଣୁ)ଯେ ସ୍ନେହର ପାତ୍ର ହୋଇ ଅଛି ।

ପ୍ରିୟରୂପ—ତ୍ରି.ବଂ.(ବ.ବ୍ରୀ)ହୃଦ୍ୟରୂପ, ଯାହାର ରୂପ ଅତିଶୟ ମନୋହର, (ବ. କ.ଧା) ମନୋହର ରୂପ ।

ପ୍ରିୟବକ୍ତା—ପୁଂ.ବ.ପ୍ରିୟବାଦୀ ଦେଖ ।

ପ୍ରିୟବଚନ—କ୍ଲୀ. ବ. (କ.ଧା) ପ୍ରିୟବାକ୍ୟ, ମଧୁର ବଚନ, ସୁମିଷ୍ଟବାକ୍ୟ, (ବଂ. ବ.ବ୍ରୀ) ମଧୁରବାକ୍ୟ ପ୍ରୟୋଗକାରୀ ।

ପ୍ରିୟବୟସ୍ୟ—ପୁଂ.ବ. (ପ୍ରିୟ+ବୟସ୍ୟ) ପ୍ରିୟସୁହୃଦ୍ ।

ପ୍ରିୟବର—ପୁଂ.ବଂ.(୬ତତ୍ପୁ)ଅତି ପ୍ରିୟ, ପ୍ରିୟତମ (ବ୍ୟକ୍ତି) ।

ପ୍ରିୟବର୍ଣ୍ଣୀ—ବ.(ବ.ବ୍ରୀ)ପ୍ରିୟଙ୍ଗୁ,ଯାହାର ଶରୀର ଗୌରବର୍ଣ୍ଣ ଅଟେ ।

ପ୍ରିୟବଲ୍ଲୀ—ସ୍ତ୍ରୀ. ବ. ପ୍ରିୟଙ୍ଗୁ ।

ପ୍ରିୟବାଦ—ବ.ପ୍ରିୟବାକ୍ୟ,ମଧୁରବାକ୍ୟ ।

ପ୍ରିୟବାଦିନୀ—ସ୍ତ୍ରୀ. ବଂ.(ପ୍ରିୟବାଦିନ୍+ଈ) ପ୍ରିୟବାଦୀର ସ୍ତ୍ରୀଲିଙ୍ଗ ।

ପ୍ରିୟବାଦୀ—ପୁଂ. ବଂ. (ପ୍ରିୟ+ବଦ୍+କ.ଇନ୍) ମିଷ୍ଟଭାଷୀ,ଚାଟୁକାର,ଖୋସାମଦିଆ ।

ପ୍ରିୟବିଚ୍ଛେଦ—ବ. (ପ୍ରିୟ+ବିଚ୍ଛେଦ) ପ୍ରିୟଲୋକଠାରୁ ଛଡ଼ାଛଡ଼ି ।

ପ୍ରିୟବିୟୋଗ—ବ. ( ୬ତତ୍ପୁ ) ପ୍ରିୟବ୍ୟକ୍ତିର ମୃତ୍ୟୁ ।

ପ୍ରିୟବ୍ରତ—ପୁଂ. ବଂ. (ବ.ବ୍ରୀ) ଯେଉଁବ୍ୟକ୍ତି ବ୍ରତପାଳନରେ ତତ୍ପର, (ବ) ସ୍ୱାୟମ୍ଭୁବମନୁଙ୍କର ଏକପୁତ୍ର, ଉତ୍ତାନପାଦଙ୍କର ଭାଇ ।

ପ୍ରିୟଶ୍ରବାଃ--ପୁଂ.ବ.(କ.ଧା) ପରମେଶ୍ୱର ।
ପ୍ରିୟସଖ—ପୁଂ.ବ (କ.ଧା) ଖଦିରବୃକ୍ଷ, ପ୍ରିୟବନ୍ଧୁ, ପରମମିତ୍ର ।
ପ୍ରିୟସଖୀ—ସ୍ତ୍ରୀ. ବ. ସ୍ତ୍ରୀବ୍ୟକ୍ତିର ବିଶ୍ୱସ୍ତ ସଙ୍ଗିନୀ ।
ପ୍ରିୟସଙ୍ଗମନ—ବ. ପ୍ରିୟ ଓ ପ୍ରିୟର ମିଳନସ୍ଥଳ, କଶ୍ୟପ ଓ ଅଦିତିର ମିଳନସ୍ଥାନ ।
ପ୍ରିୟସତ୍ୟ—କ୍ଲୀ. ବ. (କ.ଧା) ସୁନୃତ ବାକ୍ୟ, (ବ.ବ୍ରୀ) ସତ୍ୟକଥାର ପ୍ରିୟବ୍ୟକ୍ତି ।
ପ୍ରିୟସନ୍ଦେଶ—ପୁଂ ବ. (କ.ଧା) ପ୍ରିୟସମ୍ବାଦ, ବନ୍ଧୁତାମୟ ସମ୍ବାଦ,(୬ତତ୍) ପ୍ରେମିକ ବ୍ୟକ୍ତିଦ୍ୱାରା ପ୍ରେରିତ ସମ୍ବାଦ, (ବ.ବ୍ରୀ) ଚମ୍ପକବୃକ୍ଷ, (ବିଂ.-ଦ୍ୱନ୍ଦ୍ୱ) ମନୋହର ଓ ସତ୍ୟ(ବାକ୍ୟ), ବ.ବ୍ରୀ; ସତ୍ୟକଥା ଯାହାର ପ୍ରିୟ ।
ପ୍ରିୟସମାଗମ—ବ.(୬ତତ୍) ପ୍ରିୟଜନଙ୍କ ସହିତ ମିଳନ, ନାୟକ ନାୟିକାଙ୍କର ସାକ୍ଷାତ୍ ।
ପ୍ରିୟଶାଳ(ସାଲ)କ--ପୁଂ. ବ. ଅସନବୃକ୍ଷ, ପିଆଶାଳ ଗଛ ।
ପ୍ରିୟା—ସ୍ତ୍ରୀ.ବ.ବାଣେଶ୍ୱରୀରାଜାଙ୍କର ପତ୍ନୀ, ନାରୀ, ଭାର୍ଯ୍ୟା, ମଲ୍ଲିକା, ବର୍ଣ୍ଣ ଛନ୍ଦୋବିଶେଷ, ପ୍ରଣୟିନୀ,ଅଳେଇଚ, ମଦିରା, କାଙ୍ଗୁଧାନ୍ୟ, (ସ୍ତ୍ରୀ.ବିଂ) ସ୍ନେହପାତ୍ରୀ ।
ପ୍ରିୟାତିଥି—ବି. ବିଂ. ଆତିଥେୟୀ,ଅତିଥିସତ୍କାର ପ୍ରିୟ ।
ପ୍ରିୟାତ୍ମା—ବି. ବିଂ. (ବ.ବ୍ରୀ) ଉଦାରଚେତା, ସରଳପ୍ରକୃତି ।
ପ୍ରିୟାମ୍ବୁ—ପୁଂ. ବ. ହୃଦ୍ୟଜଳ,ଆମ୍ରବୃକ୍ଷ ଓ ଫଳ, (ବିଂ-ବ.ବ୍ରୀ) ଯହିଁର ଜଳ ସୁସ୍ୱାଦୁ, ଯେ ଜଳକୁ ଭଲପାଏ ।
ପ୍ରିୟାଳ—ବ. (ପ୍ରୀ+ଯାଲ) ପିଆଲ ଦେଖ ।
ପ୍ରିୟାଳା—ସ୍ତ୍ରୀ. ବ. ଦ୍ରାକ୍ଷା, ଅଙ୍ଗୁର ।
ପ୍ରିୟାଳାପ—ବ. (କ.ଧା) ତୁଷ୍ଟିଜନକ କଥୋପକଥନ, (୬ତତ୍)ପ୍ରିୟବ୍ୟକ୍ତିଙ୍କ ସଙ୍ଗେ ଆଳାପ ।

ପ୍ରିୟାହ୍ୱା—ସ୍ତ୍ରୀ.ବ.କାଙ୍ଗୁନିକା,କାଙ୍ଗୁଧାନ ।
ପ୍ରିୟୈଷୀ—ବି. ବିଂ. ପ୍ରିୟାଭିଳାଷୀ, ହିତାକାଂକ୍ଷୀ ।
ପ୍ରିୟୋଦିତ—କ୍ଲୀ. ବ. ଶ୍ଳାଘ୍ୟବାକ୍ୟ,ମିଷ୍ଟବାକ୍ୟ,(ବିଂ)ମନୋହରରୂପେ କଥିତ ।
ପ୍ରୀ—ବ. (ପ୍ରୀ+ଭା.କ୍ୱିପ୍) ପ୍ରୀତି,ପ୍ରେମ, କାନ୍ତି, ଔଜ୍ଜ୍ୱଲ୍ୟ, ଇଚ୍ଛା, ତୃପ୍ତି,ତର୍ପଣ ।
ପ୍ରୀଣ—ବି. ବିଂ. (ପ୍ରୀ+କ.ତ)ପୁରାତନ, ପ୍ରୀତ, ପ୍ରସନ୍ନ, ତୃପ୍ତ, ନମ୍ର ।
ପ୍ରୀଣନ—କ୍ଲୀ. ବ. (ପ୍ରୀ+ଣିଚ୍+ଭା. ଅନ) ଅନ୍ୟର ସନ୍ତୋଷ ସମ୍ପାଦନ, ତୃପ୍ତିଜନ୍ମାଇବା ।
ପ୍ରୀଣସ—ପୁଂ. ବ. ଗଣ୍ଡକ, ଗଣ୍ଡାପଶୁ ।
ପ୍ରୀଣିତ—ବିଂ. (ପ୍ରୀ+ଣିଚ୍+ମି.ତ) ତର୍ପିତ, ତୋଷିତ ।
ପ୍ରୀତ—ବି. ବିଂ. (ପ୍ରୀ+କ.ତ) ପ୍ରିୟ, ପ୍ରୀତିଯୁକ୍ତ, ମତ୍ତ, ତୃପ୍ତ, ପ୍ରମୁଦିତ, ଆନନ୍ଦିତ, ସୁଖୀ ।
ପ୍ରୀତାତ୍ମା—ପୁଂ. ବ. ଶିବ ।
ପ୍ରୀତି—ସ୍ତ୍ରୀ. ବ. (ପ୍ରୀ+ଭା.ତି) ତୃପ୍ତି, ଆନନ୍ଦ,ଇଷ୍ଟବସ୍ତୁ ପାଇବା ବା ଦେଖିବା ଜନିତ ସୁଖ, ସନ୍ତୋଷ, ସୁଖ, ପ୍ରେମ, ସ୍ନେହ, ବିଷ୍କୁମ୍ଭାଦି ୨୭ ଯୋଗ ମଧ୍ୟରୁ ୨ୟ ଯୋଗ ।
ପ୍ରୀତିକର—ବି. ବିଂ. (ପ୍ରୀତି+କୃ+ଅ) ପ୍ରୀତିଜନକ,ସନ୍ତୋଷ ଜନକ,ହର୍ଷୋତ୍ପାଦକ ।
ପ୍ରୀତିଜୁଷା—ସ୍ତ୍ରୀ. ବ. ଅନିରୁଦ୍ଧ ପତ୍ନୀ, ଉଷାର ଏକନାମ,(ବିଂ)ପ୍ରୀତିଭାଜନ ମାତ୍ର ।
ପ୍ରୀତିଦ—ପୁଂ. ବ. (ପ୍ରୀତି+ଦା+କ.ଅ) ଭଣ୍ଡ, ବିଦୂଷକ, (ବିଂ) ଆନନ୍ଦପ୍ରଦ, ସ୍ନେହଯୁକ୍ତ ।
ପ୍ରୀତିଦତ୍ତ—ବିଂ.ପ୍ରୀତିପୂର୍ବକ ଦତ୍ତ(ବସ୍ତୁ). ପ୍ରୀତିପୂର୍ବକ ଯେଉଁ ବସ୍ତୁ ଦାନକରାଯାଏ ।
ପ୍ରୀତିଦାନ—କ୍ଲୀ.ବ. ପ୍ରୀତିପୂର୍ବକ ଦାନ, ପ୍ରୀତିର ନିଦର୍ଶନ ସ୍ୱରୂପ ଦିଆଯିବା ବସ୍ତୁ
ପ୍ରୀତିଧନ—କ୍ଲୀ. ବ. ପ୍ରୀତିପୂର୍ବକ ଦେୟ ଧନ ।

ପ୍ରୀତିକଳସ--ବ.(୬ତତ୍)ପ୍ରୀତିର ଆଧାର
ପ୍ରୀତିପରାୟଣ—ପୁଂ.ବିଂ.ଅତ୍ୟନ୍ତ ପ୍ରେମଯୁକ୍ତ, ସ୍ୱଭାବତଃ ପ୍ରେମିକ ।
ପ୍ରୀତିପାତ୍ର—ବିଂ. (୬ତତ୍) ସ୍ନେହାସ୍ପଦ ।
ପ୍ରୀତିପ୍ରଦ—ବିଂ. (ପ୍ରୀତି+ପ୍ର+ଦା+କ.ଅ) ପ୍ରୀତିଦାତା, ତୃପ୍ତିଜନକ ।
ପ୍ରୀତିଭାଜନ—ବ ଓ ବିଂ.(୬ତତ୍)ପ୍ରୀତିପାତ୍ର, ପ୍ରଣୟଭାଜନ, ପ୍ରେମାସ୍ପଦ ।
ପ୍ରୀତିଭୋଜ(ନ)—ବ. ବନ୍ଧୁମାନଙ୍କ ମଧ୍ୟରେ ଭୋଜନ ।
ପ୍ରୀତିଭୋଜ୍ୟ—ବି.ବିଂ. (ପ୍ରୀତିଭୋଜ+ଯ) ପ୍ରୀତିପୂର୍ବକ ଭକ୍ଷଣୀୟ ।
ପ୍ରୀତିମାନ୍—ପୁଂ. ବିଂ. (ପ୍ରୀତି+ମତ୍) ପ୍ରୀତିଯୁକ୍ତ, ପ୍ରେମିକ, ପ୍ରଣୟୀ ।
ପ୍ରୀତିବଚଃ—କ୍ଲୀ.ବ. ପ୍ରୀତିପୂର୍ବକ ବାକ୍ୟ ।
ପ୍ରୀତିବର୍ଦ୍ଧନ—ବି.ବିଂ. ସନ୍ତୋଷ ବର୍ଦ୍ଧନ, ତୃପ୍ତିଦାୟକ, (ପୁଂ.ବ)ପ୍ରଣୟର ବୃଦ୍ଧି, (ବ.ବ୍ରୀ) ବିଷ୍ଣୁ ।
ପ୍ରୀତିରୀତି—ବ. (କ.ଧା) ପ୍ରଣୟପୂର୍ଣ୍ଣ ବ୍ୟବହାର, (୬ତତ୍)ପ୍ରେମିକ ପ୍ରେମିକାଙ୍କ ଢଙ୍ଗ ।
ପ୍ରୀତିସଙ୍ଗତି—ସ୍ତ୍ରୀ. ବ. ବାନ୍ଧବସମିତି ।
ପ୍ରୀତିସମ୍ଭାଷଣ—ବ. ପ୍ରଣୟ ଜ୍ଞାପକ କଥୋପକଥନ ।
ପ୍ରୀତିସୂଚକ—ବିଂ. ଯାହା ପ୍ରୀତିର ସୂଚନା ବା ଜ୍ଞାପନ କରେ । [ ହନୁସ୍ଥ ।
ପ୍ରୀୟମାଣ—ପୁଂ. ବିଂ. (ପ୍ରୀ+ମି.ଆନ)
ପ୍ରୁଷ୍ଟ—ବିଂ. (ପ୍ରୁଷ+ତ) ଦଗ୍ଧ ।
ପ୍ରୁଷ୍ୱ—ପୁଂ.ବିଂ. ଋତୁ, ଦିବାକର, ଜଳବିନ୍ଦୁ ।
ପ୍ରୁଷ୍ୱା—ସ୍ତ୍ରୀ. ବ. (ପ୍ରୁଷ୍ୱ+ଆ)ଜଳବିନ୍ଦୁ ।
ପ୍ରେକ୍ଷକ—ପୁଂ. ବିଂ. (ପ୍ର+ଈକ୍ଷ୍+କ. ଅକ) ଦର୍ଶକ, ପରିଦର୍ଶକ ।
ପ୍ରେକ୍ଷଣ(ଣା)—ବ. (ପ୍ର+ଈକ୍ଷ୍+ଭା. ଅନ+ଆ) ଦର୍ଶନ, ପରିଦର୍ଶନ,ପର୍ଯ୍ୟବେକ୍ଷଣ, (କ.ଅନ) ଚକ୍ଷୁଃ, ଆଖି ।
ପ୍ରେକ୍ଷଣିକ—ପୁଂ. ବିଂ. (ପ୍ରେକ୍ଷଣ+ଇକ) ପରଦର୍ଶକ ।
ପ୍ରେକ୍ଷଣୀୟ—ବିଂ.(ପ୍ର+ଈକ୍ଷ୍+ମି.ଅନୀୟ)

ପରଦର୍ଶନୀୟ, ଦର୍ଶନୀୟ, ଦେଖିବାର ଯୋଗ୍ୟ ।

ପ୍ରେକ୍ଷମାଣ—ପୁଂ. ବିଂ. (ପ୍ର+ଈକ୍ଷ୍+କ.ଆନ) ଦେଖୁଥିବା,ଦେଖାଯାଉଥିବା, ଦୃଶ୍ୟମାନ ।

ପ୍ରେକ୍ଷା—ସ୍ତ୍ରୀ. ବି. (ପ୍ର+ଈକ୍ଷ୍+ଭା.ଅ+ଆ) ପ୍ରଜ୍ଞା, ଦର୍ଶନ, ଦୃଷ୍ଟି, ପର୍ଯ୍ୟବେକ୍ଷଣ, ବିମୃଶ୍ୟକାରିତା,ନୃତ୍ୟଦର୍ଶନ, ବୃକ୍ଷର ଶାଖା, (ମିଁ.ଅ) ଶୋଭା ।

ପ୍ରେକ୍ଷାଗାର—କ୍ଳୀ. ବି. (୬ତତ୍) ରାଜାଙ୍କର ମନ୍ତ୍ରଣାଗୃହ ।

ପ୍ରେକ୍ଷାବାନ୍—ପୁଂ. ବିଂ. (ପ୍ରେକ୍ଷା+ବତ୍) ସମୀକ୍ଷ୍ୟକାରୀ, ସୁବିବେଚକ, ବୁଦ୍ଧିମାନ୍, ବିଜ୍ଞ, ବିମୃଶ୍ୟକାରୀ ।

ପ୍ରେକ୍ଷିତ—ତ୍ରି. ବିଂ. (ପ୍ର+ଈକ୍ଷିତ)ଦୃଷ୍ଟ, ପର୍ଯ୍ୟବେକ୍ଷିତ ।

ପ୍ରେକ୍ଷିତା—ପୁଂ. ବିଂ. (ପ୍ରେକ୍ଷ+ତୃ) ଦର୍ଶକ, ଦ୍ରଷ୍ଟା ।

ପ୍ରେଙ୍ଖଣ—କ୍ଳୀ. ବି. (ପ୍ର+ଇଂଖ+ଅନ) ପ୍ରକର୍ଷରୂପେ ଚଳନ, ନିରୁଦ୍ଦେଶ୍ୟ ଭାବରେ ଭ୍ରମଣ କରିବା, ଦୋହଲିବା, ପ୍ରବେଶ କରିବା, ନୀଚଶ୍ରେଣୀସ୍ଥ ନାୟକ ବିଶିଷ୍ଟ ଏକାଙ୍କଯୁକ୍ତ ବୀରରସପ୍ରଧାନ ରୂପକ ନାଟକବିଶେଷ ।

ପ୍ରେଙ୍ଖତ୍—ତ୍ରି. ବିଂ. (ପ୍ର+ଇଂଖ+ଅତ୍) ଚଳନବିଶିଷ୍ଟ, ଗତିକ୍ରି ବିଶିଷ୍ଟ ।

ପ୍ରେଙ୍ଖା—ସ୍ତ୍ରୀ. ବି. (ପ୍ର+ଇନ୍ଖ୍+ଭା.ଅ+ଆ) ପର୍ଯ୍ୟଟନ, ଅଶ୍ୱଗତି ବିଶେଷ, ଦୁଲୁକି, ଚଳନ, ଗତି,କମ୍ପନ,ଆନ୍ଦୋଳନ, ଗୃହବିଶେଷ, ଝୁଲିବା, ନାଚ, ନୃତ୍ୟ, (ଣ.ଅ+ଆ) ଦୋଳା ।

ପ୍ରେଙ୍ଖିତ—ସ୍ତ୍ରୀ.ବିଂ.(ପ୍ର+ଇନ୍ଖ୍+ମିଁ.ତ) କମ୍ପିତ, ଦୋଳିତ, ଚଳିତ ।

ପ୍ରେଙ୍ଖୋଳନ—କ୍ଳୀ. ବି. (ପ୍ରେଙ୍ଖୋଳ+ଅନ) ଦୋଳନ, କମ୍ପନ ।

ପ୍ରେଙ୍ଖୋଳା—ବି. (ପ୍ର+ଇନ୍ଖ୍+ଣି.ଉଲ+ଆ) ଦୋଳା ।

ପ୍ରେଙ୍ଖୋଳିତ—ବିଂ. (ପ୍ରେଙ୍ଖୋଳ+ତ) ଦୋଳିତ, ତରଳିତ, ଲୁଳିତ,ଆନ୍ଦୋଳିତ ।

ପ୍ରେଣ—ବି. (ପ୍ର+ଇ+ଅନ) ଗତି, ପ୍ରେରଣା, ଆଶ୍ଳେଷ ।

ପ୍ରେତ—ତ୍ରି. ବିଂ. (ପ୍ର+ଇ+କ.ତ) ଗତ,ମୃତ,(ବି) ଯଥାବିହିତ ଅନ୍ତ୍ୟେଷ୍ଟିକ୍ରିୟାଦି ସମ୍ପନ୍ନ ହୋଇ ନ ଥିବା ମୃତବ୍ୟକ୍ତିର ଅମୋକ୍ଷ ଆତ୍ମା, ପିଶାଚ,ଭୂତ, ନରକସ୍ଥ ଜୀବବିଶେଷ,ମୃତପ୍ରାଣୀ,ଶବ ।

ପ୍ରେତକର୍ମ—ବି. ପ୍ରେତକାର୍ଯ୍ୟ,ଅନ୍ତ୍ୟେଷ୍ଟିକ୍ରିୟା, ଦାହସପିଣ୍ଡୀକରଣାଦି ମୃତର କାର୍ଯ୍ୟ ।

ପ୍ରେତକାର୍ଯ୍ୟ—କ୍ଳୀ.ବି. ପ୍ରେତକର୍ମଦେଖ ।

ପ୍ରେତକୃତ୍ୟ—କ୍ଳୀ. ବି. ପ୍ରେତକର୍ମଦେଖ ।

ପ୍ରେତଗତ—ତ୍ରି.ବିଂ. ପ୍ରେତଯୋନିପ୍ରାପ୍ତ ।

ପ୍ରେତଗୃହ—କ୍ଳୀ.ବି. ଶ୍ମଶାନ,ମଶାଣିଭୂମି, କବରସ୍ଥାନ, ଶବସଂରକ୍ଷଣ ଗୃହ ।

ପ୍ରେତଗୃସ୍ତ—ପୁଂ. ବି. ଶିବ, ମହାଦେବ ।

ପ୍ରେତତର୍ପଣ—କ୍ଳୀ.ବି. (୬ତତ୍) ପ୍ରେତର ଉଦ୍ଦେଶେ ତର୍ପଣ, ମୃତତୃପ୍ତ୍ୟର୍ଥ ଜଳଦାନ ।

ପ୍ରେତତା(ତ୍ୱ)—ବି. ପ୍ରେତର ଭାବ ବା ଧର୍ମ, ପ୍ରେତର ଅବସ୍ଥା ।

ପ୍ରେତଦାହ—ବି. (୬ତତ୍) ଶବଦାହ, ମୁର୍ଦାର ପୋଡ଼ା ।

ପ୍ରେତଦେହ—ବି (୬ତତ୍)ପ୍ରେତଶରୀର, ମୃତ୍ୟୁ ପରେ ଜୀବ ଯେଉଁ ବାୟୁଶରୀର ଦେହପାଏ ।

ପ୍ରେତଧୂମ—ପୁଂ.ବି.ଚିତାଧୂମ,ଶବ ଦାହର ଧୂଆଁ ।

ପ୍ରେତନଦୀ—ସ୍ତ୍ରୀ.ବି.ନରକସ୍ଥ ବୈତରଣୀ ନଦୀ, ପ୍ରେତତରଣୀୟା ନଦୀ ।

ପ୍ରେତନିର୍ଯ୍ୟାତକ—ବି. ଯେଉଁ ଲୋକ ଧନ ଗ୍ରହଣ କରି ମୃତ ବ୍ୟକ୍ତିର ଶବ ଦାହାଦି କର୍ମ କରନ୍ତି ।

ପ୍ରେତନିର୍ହାରକ—ପୁଂ. ବି. ଶବହାରକ, ମଡ଼ାସାଙ୍ଗିଆ ଲୋକ, ଯେଉଁ ଲୋକମାନେ ମୁର୍ଦାର ଶ୍ମଶାନକୁ ନଅନ୍ତି ।

ପ୍ରେତପକ୍ଷ—ପୁଂ.ବି.ଗୌଣ ଚାନ୍ଦ୍ର ଆଶ୍ୱିନକୃଷ୍ଣପକ୍ଷ, ପିତୃପକ୍ଷ ।

ପ୍ରେତପଟହ—ପୁଂ. ବି. ମରଣ କାଳେ ବାଦନୀୟ ବାଦ୍ୟବିଶେଷ ।

ପ୍ରେତପତି—ପୁଂ. ବି. (୬ତତ୍) ଯମ ।

ପ୍ରେତପର୍ବତ-ପୁଂ.ବି ଗୟାତୀର୍ଥସ୍ଥ ସ୍ୱନାମଖ୍ୟାତ ପର୍ବତବିଶେଷ ।

ପ୍ରେତପାବକ—ବି. ଚିରଗୁଣୀ ଆଲୁଅ ।

ପ୍ରେତପିଣ୍ଡ—ପୁଂ. ବି. ମରଣାବଧି ସପିଣ୍ଡୀକରଣ ପର୍ଯ୍ୟନ୍ତ ପ୍ରେତ ଉଦ୍ଦେଶ୍ୟରେ ପ୍ରଦତ୍ତ ପିଣ୍ଡ ବା ଅନ୍ନ ଗୋଲକ ।

ପ୍ରେତପୁର—କ୍ଳୀ.ବି.(୬ତତ୍)ଯମାଳୟ ।

ପ୍ରେତଭାବ—ବି. ପ୍ରେତତ୍ୱ ଦେଖ ।

ପ୍ରେତମେଧ—ପୁଂ.ବି. ପ୍ରେତୋଦ୍ଦେଶ୍ୟକ ଶ୍ରାଦ୍ଧରୂପ ଯଜ୍ଞ ।

ପ୍ରେତରାକ୍ଷସୀ—ସ୍ତ୍ରୀ. ବି. ତୁଳସୀ ବୃକ୍ଷ ।

ପ୍ରେତରାଜ—ପୁଂ.ବି.(୬ତତ୍)ପ୍ରେତପତି, ଯମ ।

ପ୍ରେତଲୋକ—ପୁଂ. ବି. (୬ତତ୍) ମୃତ୍ୟୁ ପରେ ଜୀବଗଣ ଯେଉଁ ଲୋକରେ ଅବସ୍ଥାନ କରନ୍ତି, ଯମଲୋକ ।

ପ୍ରେତବନ—କ୍ଳୀ.ବି.ଶ୍ମଶାନ, ପ୍ରେତଗୃହ ।

ପ୍ରେତବାହିତ—ତ୍ରି. ବିଂ. (୩ତତ୍)ଭୂତାବିଷ୍ଟ, ପିଶାଚାକ୍ରାନ୍ତ ।

ପ୍ରେତଶିଳା—ସ୍ତ୍ରୀ.ବି.ପିଣ୍ଡ ଦାନାର୍ଥ ଗୟାସ୍ଥିତ ପ୍ରସ୍ତରବିଶେଷ ।

ପ୍ରେତଶୁଦ୍ଧି—ବି.ଜ୍ଞାତିର ମୃତ୍ୟୁର ଦଶାହ ଦିନ ନଖ କେଶ ଛେଦନପୂର୍ବକ ସ୍ନାନ କରି ଶୁଦ୍ଧହେବା କ୍ରିୟା ।

ପ୍ରେତଶ୍ରାଦ୍ଧ—କ୍ଳୀ.ବି.ପ୍ରେତୋଦ୍ଦେଶ୍ୟରେ କରାଯିବା ଶ୍ରାଦ୍ଧ ।

ପ୍ରେତହାର—ବି. ମଡ଼ାସାଙ୍ଗିଆ ବ୍ୟକ୍ତି, ଶବବାହକ ଜ୍ଞାତି ।

ପ୍ରେତା—ସ୍ତ୍ରୀ. ବିଂ.ପ୍ରେତଭାବାପନ୍ନା (ସ୍ତ୍ରୀ), ମୃତା, (ବି)ବୈତରଣୀ ନଦୀ, ଭଗବତୀ କାତ୍ୟାୟନୀ ।

ପ୍ରେତାତ୍ମା—ପୁଂ. ବି. (୬ତତ୍) ମୃତ ବ୍ୟକ୍ତିର ଆତ୍ମା,ପ୍ରେତର ଆତ୍ମା, (କ.ଧା) ପ୍ରେତ, ଭୂତ ।

ପ୍ରେତାଧିପ—ପୁଂ.ବି.(୬ତତ୍) ପ୍ରେତାଧିପତି, ଯମରାଜ ।

ପ୍ରେତାନ୍ନ—କ୍ଳୀ. ବି. ପ୍ରେତୋଦ୍ଦେଶ୍ୟକ

ଦେୟ ଅନ୍ନ । [ ଅଶୌଚ ।

ପ୍ରେତାଶୌଚ—କ୍ଲୀ. ବ.ପ୍ରେତ ନିମିତ୍ତକ

ପ୍ରେତାସ୍ଥି—କ୍ଲୀ. ବ. (ଷତତ୍ର) ମୃତ-ବ୍ୟକ୍ତିର ଅସ୍ଥି ।

ପ୍ରେତାସ୍ଥିଧାରୀ—ପୁଂ.ବ. ରୁଦ୍ରଙ୍କର ନାମାନ୍ତର,(ବିଂ) ହାଡ଼ମାଳଧାରୀ ମାତ୍ର ।

ପ୍ରେତ—ପୁଂ. ବ. ଅନ୍ନ, ମରଣ ।

ପ୍ରେତକ—ପୁଂ.ବ.ପ୍ରେତ ବ୍ୟକ୍ତି ବା ପ୍ରେତ ମୂର୍ତ୍ତି । [ ପ୍ରେତପତି ।

ପ୍ରେତେଶ—ପୁଂ.ବ.(ପ୍ରେତ+ଈଶ)ଯମ,

ପ୍ରେତୋନ୍ମାଦ-ବ.ଉନ୍ମାଦ ରୋଗବିଶେଷ, ଭୂତାଭିଷଙ୍ଗ ରୋଗ ।

ପ୍ରେତ୍ୟ—ବ.(ପ୍ର+ଇ+ଭା.ଯ)ଲୋକାନ୍ତର, ପରଲୋକ,(ଅ) ପରଲୋକରେ, ଲୋକାନ୍ତରେ ।

ପ୍ରେତ୍ୟଜାତି—ବ.ମରି କରି ଜନ୍ମ ହେବା ।

ପ୍ରେତ୍ୟଭାକ୍—ପୁଂ. ବିଂ. ମୃତ୍ୟୁର ପରେ ପରଲୋକ ଫଳଭାଗୀ ।

ପ୍ରେତ୍ୟଭାବ—ପୁଂ. ବ. ବାରମ୍ବାର ସଂସାରରେ ଜନ୍ମଗ୍ରହଣ ଓ ମରଣ ।

ପ୍ରେତ୍ୟା—ପୁଂ.ବ.(ପ୍ର+ଇ+ବନ)ଇନ୍ଦ୍ର. ବାତ ।

ପ୍ରେପ୍ସୁ—ବି. ବିଂ. (ପ୍ର+ସନ୍+ଆ+କ.ଉ) ପାଇବାକୁ ଇଚ୍ଛା କରୁଥିବା, ଲିପ୍ସୁ ।

ପ୍ରେମ—କ୍ଲୀ.ବ.(ପ୍ରିୟ+ଭା.ଇମନ୍)ପ୍ରଣୟ, ପ୍ରୀତି, ସ୍ନେହ,ପରିହାସ, ଦୟା,ବନ୍ଧୁତା, ହର୍ଷ ।

ପ୍ରେମକଳହ—ବ. ( କ.ଧା ) ପ୍ରେମିକଙ୍କ ମଧ୍ୟରେ କଳହ, ଥଟ୍ଟାରେ କଳିକଜିଆ

ପ୍ରେମଗର୍ବିତା—ସ୍ତ୍ରୀ. ବ. ସାହିତ୍ୟ ବର୍ଣ୍ଣିତ ନାୟିକାବିଶେଷ, ଆପଣା ପତିର ଅନୁରାଗ ଯୋଗୁଁ ଗର୍ବ ଅନୁଭବ କରୁଥିବା ସ୍ତ୍ରୀ

ପ୍ରେମଜନକ—ବିଂ. ଯାହା ମନରେ ପ୍ରେମ ଜନ୍ମାଏ ।

ପ୍ରେମଜଳ—ବ. (କ ଧା) ପ୍ରସ୍ୱେଦ, ଝାଳ, ଆନନ୍ଦାଶ୍ରୁ ।

ପ୍ରେମଡୋର(ରି)—ଗ୍ରା. ବ. ପ୍ରେମ ରୂପ ବନ୍ଧନ, ପ୍ରେମପାଶ ।

ପ୍ରେମତରଙ୍ଗ—ବ(ଷତତ୍ର) ପ୍ରଣୟ ଲହରୀ, ଢେଉ ପରି ଉଚ୍ଛୁଳୁଥିବା ପ୍ରେମ ।

ପ୍ରେମଧାରା—ବ. ( କ.ଧା ) ପ୍ରେମଜନିତ ଅଶ୍ରୁଧାରା,ଧାରାକାରେ ବହମାନ ପ୍ରେମ

ପ୍ରେମପଞ୍ଚାମୃତ—ଗ୍ରା.ବ.ଭୂପତି ପଣ୍ଡିତଙ୍କ ରଚିତ ଓଡ଼ିଆ ପଦ୍ୟ ଗ୍ରନ୍ଥ ।

ପ୍ରେମପତ୍ର—କ୍ଲୀ.ବ.(କ.ଧା)ପ୍ରଣୟ ଲିପି ।

ପ୍ରେମପାତନ—କ୍ଲୀ.ବ. ରୋଦନ, ନେତ୍ର-ଜଳ, ଆନନ୍ଦାଶ୍ରୁ ।

ପ୍ରେମପାତ୍ର—ବ.ଯାହାକୁ ପ୍ରେମ କରାଯାଏ

ପ୍ରେମପାଶ—ବ. ( କ.ଧା ) ଜାଲ ରୂପେ କଳ୍ପିତ ପ୍ରେମ, ପ୍ରେମବନ୍ଧନ ।

ପ୍ରେମପୁତ୍ତଳିକା—ବ.(ଷତତ୍ର) ପ୍ରିୟତମା ସ୍ତ୍ରୀ, ପତ୍ନୀ, ଭାର୍ଯ୍ୟା ।

ପ୍ରେମପୁଲକ—ବ. (କ.ଧା) ପ୍ରେମାଧିକ୍ୟ ଯୋଗୁଁ ହେବା ରୋମାଞ୍ଚ ।

ପ୍ରେମପୂର୍ତ୍ତି—ବିଂ. (ଷତତ୍ର) ପ୍ରଣୟପୂର୍ତ୍ତି ।

ପ୍ରେମପ୍ରତିମା—ସ୍ତ୍ରୀ.ବିଂ.ମୂର୍ତ୍ତିମାନ୍ ପ୍ରେମ-ସ୍ୱରୂପ ।

ପ୍ରେମବନ୍ଧ—ପୁଂ.ବ.(ଷତତ୍ର) ଗାଢ଼ ଅନୁରାଗ, ପ୍ରଣୟବନ୍ଧନ ।

ପ୍ରେମବନ୍ଧନ—ବ.(କ.ଧା) ପ୍ରେମରୂପ ଗଣ୍ଠି

ପ୍ରେମବାନ୍—ପୁଂ. ବିଂ. (ପ୍ରେମ+ବତ୍) ପ୍ରେମଯୁକ୍ତ ।

ପ୍ରେମବିଦ୍ୟାଳୟ—ଗ୍ରା.ବ. ବୃନ୍ଦାବନରେ ବୈଷ୍ଣବମାନଙ୍କର ଶିକ୍ଷାପାଇଁ ପ୍ରତିଷ୍ଠିତ ବିଦ୍ୟାଳୟ ।

ପ୍ରେମଭକ୍ତି—ସ୍ତ୍ରୀ.ବ.(କ.ଧା) ଗୋପୀମାନଙ୍କର ଶ୍ରୀକୃଷ୍ଣଙ୍କ ପ୍ରତି ଦେଖାଇବା ଭକ୍ତି, ପ୍ରୀତି ମିଶ୍ରିତ ପୂଜ୍ୟାନୁରାଗ, ପ୍ରଣୟଯୁକ୍ତ ଶ୍ରଦ୍ଧା ।

ପ୍ରେମଭକ୍ତିବ୍ରହ୍ମଗୀତା—ଗ୍ରା.ବ.ଓଡ଼ିଆ ପଦ୍ୟ ଭକ୍ତି ଗ୍ରନ୍ଥବିଶେଷ । [ ବା ସୁଧା ।

ପ୍ରେମମଦ(ମଧୁ)—ବ. ପ୍ରଣୟ ରୂପ ମଦିରା

ପ୍ରେମମୟ—ବିଂ.(ପ୍ରେମନ୍+ମୟଟ୍)ପ୍ରଣୟପୂର୍ଣ୍ଣ, ପ୍ରଣୟାତ୍ମକ, ଅସୀମ ପ୍ରେମଯୁକ୍ତ ।

ପ୍ରେମମୁଗ୍ଧ—ବିଂ. ( ଷତତ୍ର ) ପ୍ରେମରେ ମୋହପ୍ରାପ୍ତ, ପ୍ରଣୟ ବିମୋହିତ ।

ପ୍ରେମଲୁବ୍ଧ—ବିଂ.(ଷତତ୍ର)ପ୍ରେମ ପ୍ରୟାସୀ, ପ୍ରଣୟଲାଭେଚ୍ଛୁ ।

ପ୍ରେମଷୋଡ଼ଶୀ—ଗ୍ରା.ବ. ମନ୍ତ୍ରରାଜ ଦେବଙ୍କ

ପ୍ରେମସମୁଦ୍ର—ବ.(କ.ଧା) ଗଭୀର ପ୍ରେମ ।

ପ୍ରେମସିନ୍ଧୁ—ବ. (କ.ଧା) ପ୍ରେମସାଗର, ଅଗାଧ ପ୍ରେମ ।

ପ୍ରେମହେବା—ଗ୍ରା. କ୍ରି. ଅତି ଆନନ୍ଦିତ ହେବା, ଖୁସି ହେବା ।

ପ୍ରେମା—ବ. ( ପ୍ରେମ+ଇମନ୍ ) ସ୍ନେହ, ପ୍ରଣୟ, ଇନ୍ଦ୍ର, ବାୟୁ ।

ପ୍ରେମାକାଙ୍କ୍ଷୀ—ପୁଂ. ବିଂ ଯେ ଅନ୍ୟର ପ୍ରେମ ପାଇବାକୁ ଇଚ୍ଛା କରେ ।

ପ୍ରେମାତିଶଯ୍ୟ—ବ. ( ଷତତ୍ର ) ଅତ୍ୟନ୍ତ ପ୍ରେମ ।

ପ୍ରେମାତୁର—ବିଂ.(ଷତତ୍ର) ପ୍ରେମ ଯୋଗୁଁ ହିତାହିତ ବିବେଚନାଶୂନ୍ୟ ।

ପ୍ରେମାନନ୍ଦ—ବିଂ. ( ବ.ବ୍ରୀ ) ପ୍ରେମରେ ଆନନ୍ଦିତ, ପ୍ରେମ ଲାଭରେ ହୃଷ୍ଟ, (ବ. କ.ଧା) ପ୍ରେମଜନିତ ଆନନ୍ଦ ।

ପ୍ରେମାନଳ—ବ. (କ.ଧା) ଅନଳ ସଙ୍ଗେ ତୁଳିତ ପ୍ରେମ ।

ପ୍ରେମାନୁରକ୍ତ—ବିଂ.(ଷତତ୍ର)ପ୍ରେମ ଦ୍ୱାରା ବଶୀଭୂତ । [ ଆସକ୍ତି ।

ପ୍ରେମାନୁରାଗ—ବ. (ଷତତ୍ର) ପ୍ରେମରେ

ପ୍ରେମାମୃତ—କ୍ଲୀ. ବ. ପ୍ରେମରୂପ ସୁଧା ।

ପ୍ରେମାଳାପ—ବ.ସ୍ନେହାଳାପ, ପ୍ରେମଯୁକ୍ତ କଥୋପକଥନ ।

ପ୍ରେମାଲିଙ୍ଗନ—କ୍ଲୀ. ବ. (କ.ଧା) ସ୍ନେହଭାବେ ଆଲିଙ୍ଗନ, ନାୟକ ନାୟିକାର ପ୍ରଣୟ ଘଟିତ ଆଲିଙ୍ଗନ ।

ପ୍ରେମାବତାର—ବ.(କ.ଧା)ପ୍ରେମର ଅବତାର, ଯେ ଜନ୍ମ ହୋଇ ପ୍ରେମ ବିତରଣ କରେ ବା ସମସ୍ତ ଜୀବଙ୍କୁ ଭଲପାଏ

ପ୍ରେମାଶ୍ରୁ—କ୍ଲୀ. ବ. (କ.ଧା) ଆନନ୍ଦାଶ୍ରୁ, ପ୍ରେମର ଆଧିକ୍ୟରୁ ବୋହିବା ଲୋତକ

ପ୍ରେମାସକ୍ତ—ବିଂ.(ଷତତ୍ର) ପ୍ରେମାନୁରାଗୀ, ପ୍ରଣୟାସକ୍ତ, ପ୍ରେମ ସୂତ୍ରରେ ସବଦ୍ଧ ।

ପ୍ରେମିକ—ପୁ .ବିଂ.(ପ୍ରେମ+ଇକ)ଅନୁରକ୍ତ, ପ୍ରଣୟୀ, ସ୍ନେହୀ,ଭକ୍ତିଶୀଳ,ଭକ୍ତ

ପ୍ରେମୀ—ପୁଂ. ବିଂ. (ପ୍ରେମ+ଇନ୍)ପ୍ରେମ-

ଯୁକ୍ତ, ସ୍ନେହବଶୀଭୂତ,ପ୍ରଣୟୀ,ଅନୁରକ୍ତ ।
ପ୍ରେୟଃ—ପୁଂ. ବ. (ପ୍ର+ଇୟସ୍) ପତି, ଦୟିତ, ସ୍ୱାମୀ, (ବିଂ) ପ୍ରିୟ ।
ପ୍ରେୟସୀ—ସ୍ତ୍ରୀ.ବ (ପ୍ରେୟସ୍+ଈ)ପ୍ରିୟତମା (ସ୍ତ୍ରୀ),ବ. ପ୍ରିୟା, ଦୟିତା ।
ପ୍ରେୟାନ୍—ବିଂ. (ପ୍ରିୟ+ଇୟସ୍)ପ୍ରିୟତମ, ଅତିଶୟ ପ୍ରିୟ, ବଲ୍ଲଭ ।
ପ୍ରେରକ—ପୁଂ. ବିଂ. ( ପ୍ର+ଈର+କ. ଅକ)ପ୍ରୟୋଜକ,ଯେ ପଠାଏ,ନିୟୋଗକାରୀ, ପ୍ରେରଣକର୍ତ୍ତା ।
ପ୍ରେରଣ—କ୍ଲୀ.ବ.(ପ୍ର+ଈର+ଣିଚ୍+ଭା.ଅନ)ପ୍ରେଷଣ, ପଠାଇବା, ନିୟୋଜନ, ଆଦେଶଦେବା ।
ପ୍ରେରଣା—ସ୍ତ୍ରୀ. ବ. ( ପ୍ରେରଣ+ଆ ) ପଠାଇବା, ପ୍ରବର୍ତ୍ତାଇବା,ପ୍ରବୃତ୍ତି,ଆଜ୍ଞା ।
ପ୍ରେରଣାର୍ଥକ୍ରିୟା—ବ.(ବ୍ୟାକରଣ)ଅନ୍ୟଦ୍ୱାରା କୌଣସି କାର୍ଯ୍ୟସାଧନ କରାଇବା କ୍ରିୟା ଯେଉଁ ରୂପଦ୍ୱାରା ସୂଚିତ ହୁଏ ।
ପ୍ରେରଣୀୟ—ବି.ବିଂ.ପ୍ରେଷଣୀୟ,ପ୍ରେରଣ ଯୋଗ୍ୟ, ପଠାଇବାର ଯୋଗ୍ୟ ।
ପ୍ରେରୟିତା—ପୁଂ. ବିଂ. (ପ୍ର+ଈର+ଣିଚ୍+କ.ତୃ) ଯେ ପଠାଏ, ଯେ ପ୍ରବର୍ତ୍ତାଏ, ଆଦେଶକର୍ତ୍ତା, ନିୟୋଗକାରୀ ।
ପ୍ରେରିତ—ବି. ବିଂ. (ପ୍ର+ଈର+ଣିଚ୍+ତ) ପ୍ରେଷିତ, କ୍ଷମତାପ୍ରାପ୍ତ,ନିୟୋଜିତ, ବିସର୍ଜିତ, ବିତାଡ଼ିତ, ଆଜ୍ଞପ୍ତ ।
ପ୍ରେରିତପତ୍ର—ବ.ସମ୍ବାଦପତ୍ରରେ ପ୍ରକାଶିତ ସମ୍ବାଦ ଦାତାମାନଙ୍କ ପତ୍ର ।
ପ୍ରେରୟିତା—ପୁଂ. ବିଂ. ପ୍ରେରକ,ପ୍ରେରଣକାରୀ ।
ପ୍ରେଷ—ପୁଂ. ବ. (ପ୍ର+ଈଷ୍+ଣିଚ୍+ଭା.ଅ) ପ୍ରେଷଣ, ପୀଡ଼ନ,ପୀଡ଼ା,କ୍ଲେଶ, ମର୍ଦ୍ଦନ, ଉନ୍ମାଦ ।
ପ୍ରେଷକ—ପୁଂ. ବିଂ. (ପ୍ର+ଈଷ୍+ଣିଚ୍+କ.ଅକ) ପ୍ରେରକ, ଯେ ପଠାଏ, ଆଜ୍ଞାଦାତା, ନିୟୋଗକାରୀ ।
ପ୍ରେଷଣ(ଣା)—କ୍ଲୀ. ବ. (ପ୍ର+ଈଷ୍+ଣିଚ୍+ଭା.ଅନ+ଆ)ପ୍ରେରଣ,ନିୟୋଗ, ଆଜ୍ଞାଦେବା, ପଠାଇବା ।
ପ୍ରେଷଣୀ(ଷ୍ୟା)—ସ୍ତ୍ରୀ. ବ. ଦାସୀ, ଦୂତୀ, କଙ୍କ ।
ପ୍ରେଷୟିତା—ପୁଂ. ବିଂ. (ପ୍ରେଷ+ଣିଚ୍+ତୃ) ପ୍ରେରକ, ପ୍ରେରଣକାରୀ ।
ପ୍ରେଷିତ—ବି. ବିଂ. (ପ୍ର+ଈଷ୍+ତ) ପ୍ରେରିତ ଦେଖ ।
ପ୍ରେଷିତବାନ୍—ପୁଂ. ବିଂ. (ପ୍ରେଷିତ+ବତ୍) ଯାହାକୁ ପ୍ରେରଣକରାଯାଇଅଛି ।
ପ୍ରେଷିତବ୍ୟ—ବି. ବିଂ. (ପ୍ରେଷ+ତବ୍ୟ) ପ୍ରେରଣୀୟ, ପ୍ରେଷଣଯୋଗ୍ୟ, ଯାହା ପଠାଇବାର ଉପଯୁକ୍ତ ।
ପ୍ରେଷ୍ଠ—ପୁଂ. ବିଂ. (ପ୍ରିୟ+ଇଷ୍ଠ) ପ୍ରିୟତମ, ଅତିଶୟ ପ୍ରିୟ, ପ୍ରେୟାନ୍ ।
ପ୍ରେଷ୍ଠା—ସ୍ତ୍ରୀ. ବ. ପ୍ରିୟତମା ସ୍ତ୍ରୀ ।
ପ୍ରେଷ୍ୟ—ବି. ବିଂ. (ପ୍ର+ଈଷ୍+ର୍ମ.ଯ) ପ୍ରେରଣୀୟ, ପ୍ରେରିତ, ଆଦିଷ୍ଟ, (ବ) ଦାସ, ଭୃତ୍ୟ, ଦୂତ ।
ପ୍ରେସ୍—ଯା. ବ. ମୁଦ୍ରାଯନ୍ତ୍ର, ଛାପାଯନ୍ତ୍ର, ଛାପାଖାନା, ଛାପଦେବାର କଳ,ଛାପ ।
ପ୍ରୈଷ—ବ. (ପ୍ର+ଇଷ୍+ଯ) କ୍ଲେଶ, ମର୍ଦ୍ଦନ, ଉନ୍ମାଦ, ପ୍ରେରଣ ।
ପ୍ରୈଷ୍ୟ—ବ. ( ପ୍ରେଷ୍ୟ+ସ୍ୱାର୍ଥେ.ଅ ) ଦାସ, ସେବକ, ( ପ୍ରେଷ୍ୟ+ଭା.ଅ ) ଦାସତ୍ୱ ।
ପ୍ରୋକ୍ତ—ବି. ବିଂ. (ପ୍ର+ଉକ୍ତ)କଥିତ, ପୂର୍ବୋଚ୍ଚାରିତ, ବର୍ଣ୍ଣିତ, ଯାହା କୁହାଯାଇଅଛି, (ବ) କଥନ ।
ପ୍ରୋକ୍ଷଣ—କ୍ଲୀ. ବ. (ପ୍ର+ଉକ୍ଷ+ଭା. ଅନ) ସେଚନ, ସିଞ୍ଚିବା, ଯଜ୍ଞୀୟ ପଶୁ ବା ବଳିଦଆଯିବା ଜୀବଉପରେ ମନ୍ତ୍ରପାଠ ପୂର୍ବକ ଜଳସେଚନ,(ଅଧି.ଅନ) ପଶୁବଳି, ବଧ, ବଳିଦଆଯିବା ସମୟରେ ଉଚ୍ଚାରିତ ମନ୍ତ୍ର ।
ପ୍ରୋକ୍ଷଣି(ଣୀ)—ବ. ଜଳସେଚନ ପାତ୍ର, ହୋମାଦିରେ ଯଜ୍ଞକର୍ମରେ ବ୍ୟବହୃତ ଜଳସେଚନ ପାତ୍ର, କୁଣ୍ଡଦ୍ରୁ ।
ପ୍ରୋକ୍ଷଣୀୟ—ବି.ବିଂ.ପ୍ରୋକ୍ଷଣଯୋଗ୍ୟ ।
ପ୍ରୋକ୍ଷିତ—ବି. ବିଂ. (ପ୍ର+ଉକ୍ଷ୍+ତ) ନିହତ, ସିକ୍ତ, ହତ, ଯଜ୍ଞାର୍ଥେ ସଂସ୍କୃତ, (ବ) ଯଜ୍ଞପାଇଁ ସଂସ୍କୃତ ମାଂସ ।
ପ୍ରୋକ୍ଷିତବ୍ୟ—ବି. ବିଂ. ପ୍ରୋକ୍ଷଣଯୋଗ୍ୟ,ଯାହା ପ୍ରୋକ୍ଷଣର ଉପଯୁକ୍ତ ।
ପ୍ରୋଚ୍ଚ—ବିଂ. ( ପ୍ର+ଉଚ୍ଚ ) ଅତ୍ୟୁଚ୍ଚ, ଉତ୍ତୁଙ୍ଗ, ସମୁନ୍ନତ ।
ପ୍ରୋଜ୍ଜାସନ—କ୍ଲୀ. ବ. (ପ୍ର+ଉଦ୍+ଜସ୍+ଣିଚ୍+ଅନ) ମାରଣ ।
ପ୍ରୋଜ୍ଝନ—ବ. (ପ୍ର+ଉଜ୍ଝ+ଭା.ଅନ) ପରିତ୍ୟାଗ ।
ପ୍ରୋଜ୍ଝିତ—ବିଂ. ( ପ୍ର+ଉଜ୍ଝ+ତ ) ପରିତ୍ୟକ୍ତ, ବର୍ଜିତ ।
ପ୍ରୋଞ୍ଛନ—କ୍ଲୀ. ବ. (ପ୍ର+ଉଞ୍ଛ+ଭା. ଅନ) ପ୍ରବର୍ଜନ, ଲେପନ, ମାର୍ଜନ, ପୋଛିବା କର୍ମ ।
ପ୍ରୋଢ଼—ପୁଂ. ବିଂ.(ପ୍ର+ବହ୍+କ.ତ) ପ୍ରୌଢ଼ ଦେଖ ।
ପ୍ରୋଢ଼ା—ସ୍ତ୍ରୀ. ବିଂ. ରଜସ୍ୱଳା (ସ୍ତ୍ରୀ), ଯାହାର ରଜଦର୍ଶନ ହୋଇଅଛି ।
ପ୍ରୋଣ୍ଠ—ବ. (ପ୍ର+ଅଣ୍ଠ+ଅ) ନିଷ୍ଠୀବନପାତ୍ର, ପିକଦାନି ।
ପ୍ରୋତ—କ୍ଲୀ. ବିଂ. (ପ୍ର+ବେ+ର୍ମ.ତ) ଖଚିତ, ସ୍ୟୂତ, ସିଆଁ ହୋଇଥିବା, ଅନ୍ତର୍ବିଦ୍ଧ, ଫୋଡ଼ାଯାଇଥିବା, ଗ୍ରଥିତ, ଗୁମ୍ଫିତ,ଶୂଳରେ ବସାଯାଇଥିବା,ସଂଯୋଜିତ, ଭୂଗର୍ଭନିହିତ,ପୋତାଯାଇଥିବା, ଲୁକ୍କାୟିତ ।
ପ୍ରୋତ୍ତୁଙ୍ଗ—ବି. ବିଂ. ( ପ୍ର+ଉତ୍ତୁଙ୍ଗ ) ପ୍ରକୃଷ୍ଟରୂପେ ଉତ୍ତୁଙ୍ଗ, ଅତ୍ୟୁନ୍ନତ, ଅତ୍ୟୁଚ୍ଚ ।
ପ୍ରୋଦ୍ଧୃତ—ବିଂ. (ପ୍ର+ଉଦ୍ଧୃତ) ଉଚ୍ଚକରାଯାଇଥିବା, (ବ) ବସ୍ତ୍ର, ଲୁଗା ।
ପ୍ରୋତ୍ଫୁଲ୍ଲ—ବି. ବିଂ. (ପ୍ର+ଉତ୍ଫୁଲ୍ଲ) ବିକସିତ, ପ୍ରସ୍ଫୁଟିତ, ଅତିଶୟ ହୃଷ୍ଟ, ସମ୍ପୂର୍ଣ୍ଣରୂପେ ବିସ୍ତାରିତ ।
ପ୍ରୋତ୍ସାଦନ—ବ. (ପ୍ର+ଉତ୍+ସଦ୍+ଣିଚ୍+ଭା.ଅନ) ବିଲୋପ, ମନ୍ତ୍ରଣା, ଚକ୍ର, କୌଶଳ ।
ପ୍ରୋତ୍ସାରଣ—ବ. (ପ୍ର+ଉତ୍ସାରଣ)ବହିଷ୍କରଣ,ପରିତ୍ୟାଗ,ପରିବର୍ଜନ,ପ୍ରଦାନ,

ଉତ୍ତେଜନ ।

ପ୍ରୋତ୍ସାହ—ପୁଂ.ବି. (ପ୍ର+ଉତ୍ସାହ)ଅତି-ଶୟ ଉତ୍ସାହ,ସମ୍ୟକ୍ ଉତ୍ତେଜନ,ବିଶେଷ ଶ୍ରମ ।

ପ୍ରୋତ୍ସାହକ—ପୁଂ.ବିଂ. (ପ୍ର+ଉତ୍ସାହକ) ଉତ୍ସାହଦାତା, ଉତ୍ତେଜକ ।

ପ୍ରୋତ୍ସାହନ—କ୍ଳୀ. ବି. କର୍ତ୍ତବ୍ୟକାର୍ଯ୍ୟ ଅତିଶେ ଯତ୍ନ ସମ୍ପାଦନ,ଉତ୍ସାହଦାନ, ଉତ୍ତେଜନ, ନାଟ୍ୟାଳଂକାର ଭେଦ ।

ପ୍ରୋତ୍ସାହିତ—ନି.ବିଂ. (ପ୍ର+ଉତ୍ସାହିତ) ଉତ୍ସାହଯୁକ୍ତ, ଉତ୍ତେଜିତ, ପ୍ରଣୋଦିତ, ପ୍ରବର୍ଦ୍ଧିତ, ଉତ୍ସାହପ୍ରାପ୍ତ ।

ପ୍ରୋତ୍ସାହୀ—ପୁଂ. ବିଂ. (ପ୍ର+ଉତ୍ସାହ+ଇନ୍) ବିଶେଷ ଉତ୍ସାହଯୁକ୍ତ ।

ପ୍ରୋଥ—ବି. (ପ୍ରୁ+ଥ)ଅଶ୍ୱମୁଖ,ଘୋଡ଼ାର ନାକର ଅଗ୍ରଭାଗ, ଶୂକରର ନାସାଗ୍ର, ଗର୍ଭସ୍ଥ ଭ୍ରୂଣ, କଟିଦେଶ,ଅଣ୍ଟା, ଗର୍ତ୍ତ, ଗାତ ,ନିତମ୍ବ, ପିଗ୍ଭ,ଭୟ,ଶାଢ଼ୀତଳେ ପିନ୍ଧାଯିବା ଲୁଗା, ପୁରୁଣାଲୁଗା, (ବିଂ) ପ୍ରସିଦ୍ଧ, ବିସ୍ତୃତ, ଭ୍ରମଣକାରୀ, ସ୍ଥାପିତ ।

ପ୍ରୋଥଥ—ପୁଂ. ବି. ଅଶ୍ୱମୁଖ ନିସୃତ ହ୍ରେଷାରବ ।

ପ୍ରୋଥିତ—ନି. ବିଂ. (ପ୍ରୋଥ+ମଁ.ତ) ଭୂଗର୍ଭନିହିତ, ଘୋଡ଼ାଯାଇଥିବା ।

ପ୍ରୋଥୀ—ପୁଂ. ବି. ଅଶ୍ୱ ।

ପ୍ରୋଦ୍‌ଗୀର୍ଣ୍ଣ—ନି. ବିଂ. ଉଦ୍‌ବମନ, ଯାହା ଭିତରୁ ବାହାରକୁ ଆସିଛି ।

ପ୍ରୋଦ୍‌ଘୋଷଣା—ସ୍ତ୍ରୀ. ବି. ଉଚ୍ଚୈଃସ୍ୱରେ ଘୋଷଣା ।

ପ୍ରୋଦ୍‌ଘୁଷ୍ଟ—ବିଂ.ନିନାଦିତ, ବିଘୋଷିତ ।

ପ୍ରୋଦ୍ଦାମ-ନି.ବିଂ.ଅସୀମ,ବହୁଳ,ବୃହତ୍ ।

ପ୍ରୋଦ୍ବୋଧ—ପୁଂ.ବି. ଜାଗରଣ, ପ୍ରକୃଷ୍ଟ ଜ୍ଞାନ । [ ସମୁଦ୍ଭୂତ ।

ପ୍ରୋଦ୍ଭିନ୍ନ—ବିଂ. (ପ୍ର+ଉଦ୍ଭିନ୍ନ)ଉଦ୍ଗତ,

ପ୍ରୋଦ୍ୟତ—ବିଂ.ଅତିଶୟ ଉଦ୍ୟୁକ୍ତ,ସମ୍ୟକ୍ ପ୍ରସ୍ତୁତ,ଅଧ୍ୟବସାୟୀ,ସମ୍ୟକ୍ ଉତ୍ତୋଳିତ ।

ପ୍ରୋନ୍ନତ—ବିଂ.ଅତ୍ୟୁଚ୍ଚ,ସମୁନ୍ନତ,ସମ୍ୟକ୍ ଉତ୍କର୍ଷପ୍ରାପ୍ତ ।

ପ୍ରୋନ୍ମାଥୀ—ବିଂ. ପ୍ରଧ୍ୱଂସକାରୀ ।

ପ୍ରୋଫେସର—ଯା. ବି. କଲେଜର ଅଧ୍ୟାପକ ।

ପ୍ରୋଷ—ପୁଂ. ବି. ସନ୍ତାପ,ଜ୍ୱଳନ,ବହୁତ ଦୁଃଖ ବା କଷ୍ଟ ।

ପ୍ରୋଷିତ—ନି.ବିଂ. (ପ୍ର+ବସ୍+କ.ତ) ପ୍ରବାସଗତ, ପ୍ରବାସୀ, ଅବଗତ.ନିବୃତ୍ତ ।

ପ୍ରୋଷିତପତ୍ନୀକ—ପୁଂ. ବିଂ. ଯାହାର ସ୍ତ୍ରୀ ପ୍ରବାସରେ ଅଛି ।

ପ୍ରୋଷିତଭର୍ତ୍ତୃକା—ସ୍ତ୍ରୀ. ବି. ଯାହାର ପତି ପ୍ରବାସରେ ଅଛି, (ବି)ନାୟିକାବିଶେଷ, ପତିଙ୍କ ପ୍ରବାସଯୋଗୁଁ କାମାର୍ତ୍ତା ଓ ଦୁଃଖାର୍ତ୍ତା ସ୍ତ୍ରୀ ।

ପ୍ରୋଷିତଭାର୍ଯ୍ୟନାୟକ—ପୁଂ.ବି.ନାୟକ-ଭେଦ,ଯାହାର ସ୍ତ୍ରୀ ବିଦେଶରେ ଥାଏ ।

ପ୍ରୋଷିତପତ୍ନୀନାୟକ—ପୁଂ.ବି. ନାୟକ-ବିଶେଷ,ଯାହାର ପତ୍ନୀ ବିଦେଶକୁ ଯିବ ।

ପ୍ରୋଷ୍ଠ—ବି. (ପ୍ର+ଓଷ୍ଠ) ବଳଦଗାଈ, କେରଣ୍ଡିମାଛ, କାଷ୍ଠାସନ ।

ପ୍ରୋଷ୍ଠପଦ—ପୁଂ. ବି. ଭାଦ୍ରମାସ.ନକ୍ଷତ୍ର-ବିଶେଷ, (ବିଂ) ଗୋଷ୍ଠୁଲ୍ୟ ପଦଯୁକ୍ତ ।

ପ୍ରୋଷ୍ଠପଦା—ସ୍ତ୍ରୀ. ବି. ପୂର୍ବ ଓ ଉତ୍ତର-ଭାଦ୍ରପଦ ନକ୍ଷତ୍ରବିଶେଷ ।

ପ୍ରୋଷ୍ଠପଦୀ—ସ୍ତ୍ରୀ. ବି. ଭାଦ୍ରପୂର୍ଣ୍ଣିମା ।

ପ୍ରୋଷ୍ଠୀ—ପୁଂ.ସ୍ତ୍ରୀ. ବି. ଫେସା,କେରଣ୍ଡି-ମାଛ ।

ପ୍ରୋଷ୍ଣ—ନି. ବିଂ. ଅତ୍ୟନ୍ତ ଉଷ୍ଣ.ଗରମ ।

ପ୍ରୋହ—ପୁଂ. ବି. ହସ୍ତିଚରଣ, ହାତୀର ଗୋଡ଼, ପବ, ପର୍ବ, ଗଣ୍ଠି, ( ବିଂ ) ତାର୍କିକ, ନିପୁଣ ।

ପ୍ରୌଢ଼—ବିଂ.(ପ୍ର+ବହ୍+କ.ତ)ଯଥା-ବୟସରେ ପରିଣୀତ,ପ୍ରବୃଦ୍ଧ,ପ୍ରବୀଣ,ବୃଦ୍ଧ, ଯଥେଷ୍ଟ, ବିଜ୍ଞ, ପରିପୁଷ୍ଟ, ବିବାହିତ, ସାହସୀ, ନିପୁଣ, ପ୍ରଗଲ୍‌ଭ,ଗର୍ବୀ,ନିର୍ଲଜ, ନିବିଡ଼, ଘର୍ଷଣ, ପ୍ରସାରିତ, ଉଦ୍ବେଳିତ, ମହତ୍ତ୍ୱ, ବଳବାନ୍, ପ୍ରବଳ, ସମ୍ୟକ୍ ଆଲୋଚିତ, (ସ୍ତ୍ରୀ) ପୌଢ଼ା ।

ପ୍ରୌଢ଼ତା(ତ୍ୱ)—ବି. ପୌଢ଼ାବସ୍ଥା, ପରି-ଣତ ଅବସ୍ଥା, ପ୍ରବୀଣତ୍ୱ ।

ପ୍ରୌଢ଼ପାଦ—ପୁଂ.ବିଂ.ବସ୍ତ୍ରାଦିଦ୍ୱାରା ପୃଷ୍ଠ ଓ ଜାନୁ ଜଙ୍ଘ ଦ୍ୱୟକୁ ବାନ୍ଧି ନିର ବସି-ଥିବା,ପର୍ଯ୍ୟଙ୍କ ବନ୍ଧରେ ଆସୀନ ।

ପ୍ରୌଢ଼ବୟସ୍କ—ପୁଂ.ବିଂ. ପ୍ରୌଢ଼ାବସ୍ଥା-ପ୍ରାପ୍ତ(ପୁରୁଷ) ।

ପ୍ରୌଢ଼ସୁଲଭ—ବିଂ. (ତତ୍ତ୍ୱ) ପୌଢ଼-ସୁଲଭଜାତ, ଯାହା ପୌଢ଼କାଳରେ ସଚରାଚର ଘଟିଥାଏ ।

ପ୍ରୌଢ଼ା—ସ୍ତ୍ରୀ. ବି. ୩୦ବର୍ଷଠାରୁ ୫୫ବର୍ଷ ପର୍ଯ୍ୟନ୍ତ ବୟସ୍କା ସ୍ତ୍ରୀ, ନାୟିକାଭେଦ, (ବିଂ)ପ୍ରୌଢ଼ର ସ୍ତ୍ରୀଲିଙ୍ଗ,ପୌଢ଼ଦେଖ ।

ପ୍ରୌଢ଼ି—ସ୍ତ୍ରୀ. ବି. (ପ୍ର+ବହ୍+ଭା.ତି) ସାମର୍ଥ୍ୟ, ଅଧ୍ୟବସାୟ, ଉନ୍ନତି,ପ୍ରତିଷ୍ଠା, ଉଦ୍ୟମ, ପ୍ରଗଲ୍‌ଭତା, ଉତ୍ସାହ ।

ପ୍ରୌଣ—ନି. ବିଂ. ନିପୁଣ,ପ୍ରକର୍ଷରୂପେ ଅପସାରକ ।

ପ୍ରୌଷ୍ଠ—ପୁଂ. ବି. ଫେସା,କେରଣ୍ଡିମାଛ ।

ପ୍ରୌଷ୍ଠପଦ—ପୁଂ. ବି. ଭାଦ୍ରମାସ, (ବିଂ) ପୂର୍ବ ଓ ଉତ୍ତରଭାଦ୍ରପଦ ନକ୍ଷତ୍ରଜାତ ।

ପ୍ରୌଷ୍ଠିକ—ନି.ବିଂ. (ପ୍ର+ଓଷ୍ଠ+ଇକ) ଉତ୍ତମ ଓଷ୍ଠଯୁକ୍ତ ।

ପ୍ଳକ—ପୁଂ. ବି. ସ୍ତ୍ରୀମାନଙ୍କ ଅଧୋଙ୍ଗ (ଋକ୍‌ବେଦ) ।

ପ୍ଳକ୍ଷ—ବି.(ପ୍ଲକ୍ଷ+ଅ) ପର୍କଟୀ ବା ଜଟା-ଗଛ, ଅଶ୍ୱତ୍ଥବୃକ୍ଷ, ସପ୍ତଦ୍ୱୀପା ପୃଥିବୀର ଗୋଟିଏ ଦ୍ୱୀପ, ସୀଢ଼ିଦୁଆର, ଦୁଆର-ମୁହଁ ।

ପ୍ଳକ୍ଷଜାତା—ସ୍ତ୍ରୀ.ବି. ସରସ୍ୱତୀ ନଦୀ ।

ପ୍ଳକ୍ଷପ୍ରସ୍ରବଣ—କ୍ଳୀ. ବି. ସରସ୍ୱତୀ ନଦୀର ଉତ୍ପତ୍ତିସ୍ଥାନ ।

ପ୍ଳକ୍ଷାଦେବୀ—ସ୍ତ୍ରୀ.ବି. ସରସ୍ୱତୀ ନଦୀ ।

ପ୍ଳବ—ବିଂ.(ପ୍ଳୁ+କ.ଅ)ଡେଇଁ ଡେଇଁ ଗତି କରୁଥିବା, ଉତ୍ପ୍ଳୁତ, ପହଁରୁଥିବା, ଭାସୁଥିବା, (ବି.-ଭା.ଅ) ଲମ୍ଫନ, ଡିଆଁ, ସନ୍ତରଣ, ଭସିବା, (ଣ.ଅ) ଭେଳା, (କ.ଅ)ମାକଡ଼, ବାନର, ମେଷ,ବେଙ୍ଗ, ହଂସାଦି ଜଳଚର ପ୍ରାଣୀ, କାରଣ୍ଡବ ପକ୍ଷୀ, ପାଣିକୁଆ, ଜଳକୁକ୍କୁଟ, ଶ୍ୱପଚ, ଚଣ୍ଡାଳ, (ମଁ.ଅ) ନିମ୍ନ ଜମିଭୂମି,ଗଡ଼ାଣିଆଁ ସ୍ଥାନ, ଶତ୍ରୁ, ପ୍ରେରଣ, ପର୍କଟୀ-

ବୃକ୍ଷ, ଧ୍ୱନି, ପ୍ଲୁତ ସ୍ୱରର ଉଚ୍ଚାରଣ, ପୋଲୁହ, କୈବର୍ତ୍ତିମୁସ୍ତକ, ଗନ୍ଧତୃଣବିଶେଷ,ନଇବଢ଼ି, ଶ୍ଳେଷ୍ଟତେଙ୍ଗା,ମାଛଧରା ଜାଲ, ପ୍ରତ୍ୟାବର୍ତ୍ତନ, ଉତ୍ତେଜନ, ଅନ୍ନ, ଗୋପାଳ, କରଞ୍ଜ ।

ପ୍ଲବକ—ପୁଂ.ବି. (ପ୍ଲୁ+କ.ଅକ) ଖଣ୍ଡୁଧାରୀ, ନର୍ତ୍ତକ, ଯେ ବାଉଁଶ ବା ଦଣ୍ଡ ଉପରେ ନାଚେ, ଚଣ୍ଡାଳ, ସନ୍ତରଣଉପଜୀବୀ, ବେଙ୍ଗ, ପ୍ଲକ୍ଷବୃକ୍ଷ, କେଳା, ବାଜୀଗର ।

ପ୍ଲବଗ—ବିଂ. (ପ୍ଲବ+ଗମ୍+କ.ଅ)ପ୍ଲୁତଗତିବିଶିଷ୍ଟ, ଯେ ଡେଇଁ ଡେଇଁ ଗୃଲେ (ବି) ବାନର, ବେଙ୍ଗ, ହରିଣ, ସୂର୍ଯ୍ୟସାରଥି ଅରୁଣ, ଜଳଚର ପକ୍ଷୀ, ସୂର୍ଯ୍ୟ, ପ୍ଲକ୍ଷବୃକ୍ଷ, ଶିରିଷଗଛ ।

ପ୍ଲବଗତି—ପୁଂ.ବି.(ବ.ବ୍ରୀ)ଭେକ,ବେଙ୍ଗ. (କ.ଧା) ଭେକାଦିର ଗତି, ପ୍ଲୁତଗତି ।

ପ୍ଲବଗ(ଙ୍ଗ)ମ—ବି ଓ ବିଂ.ପ୍ଲବଗ ଦେଖ ।

ପ୍ଲବଚର—ବି.ଉଭୟ ଚର ପକ୍ଷୀ,ହଂସାଦି ।

ପ୍ଲବନ—ବି. ( ପ୍ଲୁ+ଭା.ଅନ ) ଲମ୍ଫନ, କୁଦିବା, ଡେଇଁବା, ସନ୍ତରଣ, ପହଁରିବା, ପ୍ଲାବନ, ବଢ଼ି, ଜମି ନିମ୍ନ ଭୂମି, ଖାଲ, ଘୋଡ଼ାର ଦୁଲ୍କି ଗୃଲି ।

ପ୍ଲବମାନ—ବିଂ.(ପ୍ଲୁ+କ.ଆନ)ଭାସମାନ, ଲମ୍ଫମାନ ।

ପ୍ଲବିକ—ବି.ବିଂ.ପ୍ଲବଦ୍ୱାରା ବିଚରଣକାରୀ, ଯେ ଭେଳାରେ ପାର ହୁଏ ।

ପ୍ଲବିତା—ପୁଂ. ବିଂ. ( ପ୍ଲବ+ତୃ ) ଯେ ପ୍ଲବ (ଭେଳା)ଦ୍ୱାରା ପାରହୁଏ ।

ପ୍ଲାକ୍ଷ—ବିଂ. (ପ୍ଲକ୍ଷ+ଅ) ପ୍ଲକ୍ଷସମ୍ବନ୍ଧୀୟ, (ବି) ପ୍ଲକ୍ଷଫଳ, ପ୍ଲକ୍ଷସମୂହ ।

ପ୍ଲାକ—ପୁଂ.ବି.(ପ୍ଲୁ+ଭା.ଅ)ଷରପୂର୍ଣ୍ଣତା, ବୁଡ଼ା, ଡୁବା ।

ପ୍ଲାବକ—ପୁଂ.ବିଂ. (ପ୍ଲୁ+କ.ଅକ)ପ୍ଲାବନକାରୀ, ଯାହା ଜଳାଦିଦ୍ୱାରା ବୁଡ଼ାଇ ଦିଏ ।

ପ୍ଲାବନ—ବି. (ପ୍ଲୁ+ଣିଚ୍+ଅନ)ନଦୀଆଦିର ବନ୍ୟା, ବଢ଼ି, ଜଳଯୋଗୁଁ ପ୍ରଳୟ, ତରଳ ଦ୍ରବ୍ୟର ସ୍ଫୀତି, ଅଭିଷେକ, ଉଠିଆ କୁଆର, ସନ୍ତରଣ, ମଜ୍ଜନ ।

ପ୍ଲାବିତ—ବି. ବିଂ. ( ପ୍ଲୁ+ଣିଚ୍+ତ ) ଜଳମଗ୍ନ ସ୍ଥାନାଦି, ଜଳଦ୍ୱାରା ବ୍ୟାପ୍ତ, ପାଣିରେ ବୁଡ଼ିଥିବା ।

ପ୍ଲାବିନୀ—ଗ୍ରା.ବି. ପ୍ରାଚୀନ ଅର୍ଣ୍ଣବପୋତ- [ ବିଶେଷ ।

ପ୍ଲାଶୀ—ସ୍ତ୍ରୀ.ବି. ଶିଶ୍ନମୂଳସ୍ଥ ନାଡ଼ୀ, ପୁରୁଷର ମୂତ୍ରେନ୍ଦ୍ରିୟର ମୂଳ ନିକଟସ୍ଥ ନାଡ଼ୀ

ପ୍ଲି(ପ୍ଲୀ)ହ—ବି.(ପ୍ଲିହ+ଅନ) ପିଳେହି, ପିଳେହି ବଢ଼ିବା ରୋଗ ।

ପ୍ଲି(ପ୍ଲୀ)ହଘ୍ନ—ବିଂ. (ପ୍ଲିହନ୍+ହନ୍+କ.ଅ) ଯାହା ପ୍ଲିହାବୃଦ୍ଧି ରୋଗ ନାଶକରେ ।

ପ୍ଲି(ପ୍ଲୀ)ହାଗ୍ନୀ—ବି. ଶରପୁଙ୍ଖ ଦେଖ ।

ପ୍ଲି(ପ୍ଲୀ)ହାବୃଦ୍ଧି—ବି. ପ୍ଲିହା ବଢ଼ିବା ରୋଗ ।

ପ୍ଲି(ପ୍ଲୀ)ହାରି—ପୁଂ.ବି. ଅଶ୍ୱତ୍ଥବୃକ୍ଷ ।

ପ୍ଲି(ପ୍ଲୀ)ହୋଦର—କ୍ଲୀ. ବି. ପ୍ଲିହାସମ୍ବନ୍ଧୀୟ ଉଦର ରୋଗବିଶେଷ,ପ୍ଲିହାବୃଦ୍ଧି ରୋଗ ।

ପ୍ଲୁଷି—ପୁଂ.ବି. ଅଗ୍ନି, ସ୍ନେହ,ଗୃହଦାହ ।

ପ୍ଲୁତ—କ୍ଲୀ.ବି. ( ପ୍ଲୁ+ଭା.ତ ) ଅଶ୍ୱର ଗତିବିଶେଷ, ଦୁଲୁକି ଗୃଲି,(ବିଂ)ଝମ୍ପଗତିଯୁକ୍ତ, ପ୍ଲାବିତ, ସିକ୍ତ, ବ୍ୟାପ୍ତ, (ବି) ଲମ୍ଫ, ଡେଇଁବା, ସ୍ୱରର ଦୀର୍ଘତମ ଉଚ୍ଚାରଣ, ଭେକର ଗତି, (ସଙ୍ଗୀତ) ତିନିମାତ୍ରାଯୁକ୍ତ ତାଳ ।

ପ୍ଲୁତଗତି—କ୍ଲୀ. ବି. ( କ.ଧା ) ପ୍ଲୁତଗମନ, ଡେଇଁ ଡେଇଁ ଗୃଲି, ଅଶ୍ୱର ଦୁଲୁକି ଗୃଲି, (ବ.ବ୍ରୀ) ଠେକୁଆ,(ବିଂ-ବ.ବ୍ରୀ) ଡେଇଁ ଡେଇଁ ଗୃଲୁଥିବା ।

ପ୍ଲୁତି—ବି.(ପ୍ଲୁ+ଭା.ତି) ଡେଇଁ ଡେଇଁ ଗୃଲିବା, ଜଳ ପ୍ଲାବନ, ବନ୍ୟା, ତିନିମାତ୍ରାରେ ଉଚ୍ଚାରିତ ବର୍ଣ୍ଣ ।

ପ୍ଲୁଷ—ବି.(ପ୍ଲୁଷ+ଭା.ଅ) ଦାହ,ଜ୍ୱଳନ, ପୂର୍ତ୍ତି, ପ୍ରେମ ।

ପ୍ଲୁଷ୍ଟ—ବି.(ପ୍ଲୁଷ+ମି.ତ)ଦଗ୍ଧ,ପୂରିତ ।

ପ୍ଲୁଷ୍ଟି—ବି. ବିଂ. ( ପ୍ଲୁଷ+ତି ) ଦଗ୍ଧ, ଝଲସିବା ।

ପ୍ଲୋଷ—ବି. ଦାହ, ପୋଡ଼ିବା ।

ପ୍ସା—ସ୍ତ୍ରୀ.ବି. ଭକ୍ଷଣ ।

ପ୍ସାତ—ବି.ବିଂ. (ପ୍ସା+ମି.ତ)ଭକ୍ଷିତ ।

ପ୍ସାନ—କ୍ଲୀ.ବି.(ପ୍ସା+ଭା.ଅନ)ଭୋଜନ, ଭକ୍ଷଣ ।

ପ୍ସୁ—ପୁଂ.ବି. ରୂପ ।

ପ୍ସୁର—ବି.ବିଂ. ରୂପଯୁକ୍ତ, ରୂପବାନ୍ ।

# ଫ

ଫ—ବ୍ୟଞ୍ଜନ ବର୍ଣ୍ଣର ଦ୍ୱାବିଂଶ ବର୍ଣ୍ଣ, ପଞ୍ଚମ ବର୍ଗର ଦ୍ୱିତୀୟ ବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ଓଷ୍ଠ, ମିଳିତ ଓଷ୍ଠଦ୍ୱୟ ନିଶ୍ୱାସର ଶକ୍ତିଦ୍ୱାରା ମେଲା ହେଲେ ଏ ଧ୍ୱନି ଉଚ୍ଚାରିତ ହୁଏ ।

ଫ—ବି.(ଫଣ୍+ଅ) ଫୁଲଉଠିବା,ସ୍ଫୀତ, ଝଞ୍ଜାବାତ, ଜୃମ୍ଭଣ, ହାଇ, ଫଳବଣ୍ଟା, ରୁକ୍ଷରତା, କଟୁଭାଷଣ, କର୍କଶ ବାକ୍ୟ, ଫୁତ୍କାର, ଫୁଙ୍କିବା, ନିଷ୍ଫଳ ବା ନିରର୍ଥକ ଭାଷଣ ।

ଫଇ(ଏ)ଜ(ଜ୍ଜ)ତ(ତି)—ଯା.ବି. କଳଙ୍କ, ଅପଯଶ, ଲାଞ୍ଛନା, ଅପମାନ, ଝଗଡ଼ା, ବିବାଦ, କଳି, ଗାଳି, ଶୋଧନ,(ବିଂ) ନିନ୍ଦ୍ୟ, ତିରସ୍କୃତ, ଗାଳି ଖାଇବାର ଯୋଗ୍ୟ ।

ଫଇ(ଏ)ଲ—ଯା.ବି. ଦୁଷ୍କାର୍ମି, (ପ୍ରା.ସମ୍ପ. ବିଂ) ଚତୁର୍ଦିଗରେ ବିସ୍ତୃତ ।

ଫଇଲଟ—ପ୍ରା. (ଫିହିଭୂମ) ବି. ଖୋଲା ସ୍ଥାନ, ଫଇସଲା ସ୍ଥାନ ।

ଫଇ(ଏ)ସଲ—ଯା.ବି.ନିଷ୍ପତ୍ତି,ମୀମାଂସା, କାର୍ଯ୍ୟ ସମାଧା, ଡିଗ୍ରୀ, ଅନାବୃତ ସ୍ଥାନ, (ବିଂ) ମୀମାଂସିତ, ଅନାବୃତ, ଶୂନ୍ୟ, ବିସ୍ତୀର୍ଣ୍ଣ, ଲମ୍ବାଚଉଡ଼ା ।

ଫଉଜ(ଦ)—ଯା. ବି. ସୈନ୍ୟ, ଜନସମୂହ, ଦଳ, ପଲ ।

ଫଉଜଦାର୍—ଯା. ବି. ସେନାଧ୍ୟକ୍ଷ, ଫଉଜଦାରି ମକଦ୍ଦମାର ବିଗ୍ରୁରପତି,

ବୃକ୍ଷ, ଧ୍ୱନି, ପ୍ଳୁତ ସ୍ୱରର ଉଚ୍ଚାରଣ, ପୋକ୍ତୃହ, କୈବର୍ତ୍ତିମୁସ୍ତକ, ଗନ୍ଧତୃଣବିଶେଷ, ନଈବଢ଼ି, ଶ୍ରେଷ୍ଠଡଙ୍ଗା, ମାଛଧରା ଜାଲ, ପ୍ରତ୍ୟାବର୍ତ୍ତନ, ଉତ୍ତେଜନ, ଅନ୍ନ, ଗୋପାଳ, କରଞ୍ଜ ।

ପ୍ଳବକ—ପୁଂ.ବି. (ପ୍ଳୁ+କ.ଅକ) ଖଡ୍ଗଧାରୀ, ନର୍ତ୍ତକ, ଯେ ଦଉଡ଼ି ବା ଖଣ୍ଡା ଉପରେ ନାଚେ, ଚଣ୍ଡାଳ, ସନ୍ତରଣ-ଉପଜୀବୀ, ବେଙ୍ଗ, ପ୍ଳକ୍ଷବୃକ୍ଷ, କେଳା, ବାଜୀଗର ।

ପ୍ଳବଗ—ବିଂ. (ପ୍ଳବ+ଗମ୍+କ.ଅ) ପ୍ଳୁତ-ଗତିବିଶିଷ୍ଟ, ଯେ ଡେଇଁ ଡେଇଁ ଚାଲେ (ବି) ବାନର, ବେଙ୍ଗ, ହରିଣ, ସୂର୍ଯ୍ୟ-ସାରଥି ଅରୁଣ, ଜଳଚର ପକ୍ଷୀ, ସୂର୍ଯ୍ୟ, ପ୍ଳକ୍ଷବୃକ୍ଷ, ଶିରିଷଗଛ ।

ପ୍ଳବଗତି—ପୁଂ.ବି.(ବ.ବ୍ରୀ)ଭେକ, ବେଙ୍ଗ. (କ.ଧା) ଭେକାଦିର ଗତି, ପ୍ଳୁତଗତି ।

ପ୍ଳବଗ(ଙ୍ଗ)ମ—ବି ଓ ବିଂ.ପ୍ଳବଗ ଦେଖ ।

ପ୍ଳବଚର—ବି.ଉଭୟ ଚର ପକ୍ଷୀ, ହଂସାଦି ।

ପ୍ଳବନ—ବି. ( ପ୍ଳୁ+ଭା.ଅନ ) ଲମ୍ଫନ, କୁଦିବା, ଡେଇଁବା, ସନ୍ତରଣ, ପହଁରିବା, ପ୍ଳାବନ, ବଢ଼ି, ଜମି ନିମ୍ନ ଭୂମି, ଖାଲ, ଘୋଡ଼ାର ଦୁଲ୍କୀ ଚାଲି ।

ପ୍ଳବମାନ—ବିଂ.(ପ୍ଳୁ+କ.ଆନ)ଭାସମାନ, ଲମ୍ଫମାନ ।

ପ୍ଳବିକ—ତ୍ରି.ବିଂ.ପ୍ଳବଦ୍ୱାରା ବିଚରଣକାରୀ. ଯେ ଭେଲାରେ ପାର ହୁଏ ।

ପ୍ଳବିତା—ପୁଂ. ବିଂ. ( ପ୍ଳବ+ତୃ ) ଯେ ପ୍ଳବ (ଭେଳା)ଦ୍ୱାରା ପାରହୁଏ ।

ପ୍ଳାକ୍ଷ—ବିଂ. (ପ୍ଳକ୍ଷ+ଅ) ପ୍ଳକ୍ଷସମ୍ବନ୍ଧୀୟ, (ବି) ପ୍ଳକ୍ଷଫଳ, ପ୍ଳକ୍ଷସମୂହ ।

ପ୍ଳାବ—ପୁଂ.ବି.(ପ୍ଳୁ+ଭା.ଅ)ଜଳପୂର୍ଣ୍ଣତା, ବୁଡ଼ା, ଡୁବା ।

ପ୍ଳାବକ—ପୁଂ.ବିଂ. (ପ୍ଳୁ+କ.ଅକ)ପ୍ଳାବନ-କାରୀ, ଯାହା ଜଳାଦିଦ୍ୱାରା ବୁଡ଼ାଇ ଦିଏ ।

ପ୍ଳାବନ—ବି. (ପ୍ଳୁ+ଣିଚ୍+ଅନ)ନଦୀ-ଆଦିର ବନ୍ୟା, ବଢ଼ି, ଜଳଯୋଗୁଁ ପ୍ରଳୟ, ତରଳ ଦ୍ରବ୍ୟର ସ୍ଥିତି, ଅଭି-ଷେକ, ଉଠିଆ ଜୁଆର, ସନ୍ତରଣ, ମଜ୍ଜନ ।

ପ୍ଳାବିତ—ତ୍ରି. ବିଂ. ( ପ୍ଳୁ+ଣିଚ୍+ତ ) ଜଳମଗ୍ନ ସ୍ଥାନାଦି, ଜଳଦ୍ୱାରା ବ୍ୟାପ୍ତ, ପାଣିରେ ବୁଡ଼ିଥିବା । [ ବିଶେଷ ।

ପ୍ଳାବିନୀ—ଗ୍ରା.ବି. ପ୍ରାଚୀନ ଅର୍ଣ୍ଣବପୋତ-

ପ୍ଳାଶୀ—ସ୍ତ୍ରୀ.ବି. ଶିଶ୍ନମୂଳସ୍ଥ ନାଡ଼ୀ, ପୁରୁଷର ମୂତ୍ରେନ୍ଦ୍ରିୟର ମୂଳ ନିକଟସ୍ଥ ନାଡ଼ୀ

ପ୍ଳି(ପ୍ଳୀ)ହ—ବି.(ପ୍ଳିହ+ଅନ) ପିଳେହି, ପିଳେହି ବଢ଼ିବା ରୋଗ ।

ପ୍ଳି(ପ୍ଳୀ)ହଘ୍ନ—ବିଂ. (ପ୍ଳିହନ୍+ହନ୍+କ.ଅ) ଯାହା ପ୍ଳିହାବୃଦ୍ଧି ରୋଗ ନାଶ-କରେ ।

ପ୍ଳି(ପ୍ଳୀ)ହାଗ୍ନୀ—ବି. ଶରପୁଙ୍ଖ ଦେଖ ।

ପ୍ଳି(ପ୍ଳୀ)ହାବୃଦ୍ଧି—ବି. ପ୍ଳିହା ବଢ଼ିବା ରୋଗ ।

ପ୍ଳି(ପ୍ଳୀ)ହାରି—ପୁଂ.ବି. ଅଶ୍ୱତ୍ଥବୃକ୍ଷ ।

ପ୍ଳି(ପ୍ଳୀ)ହୋଦର—କ୍ଳୀ. ବି. ପ୍ଳିହାସମ୍ବନ୍ଧୀୟ ଉଦର ରୋଗବିଶେଷ, ପ୍ଳିହାବୃଦ୍ଧି ରୋଗ ।

ପ୍ଳୁକ୍ଷି—ପୁଂ.ବି. ଅଗ୍ନି, ସ୍ନେହ, ଗୃହଦାହ ।

ପ୍ଳୁତ—କ୍ଳୀ.ବି. ( ପ୍ଳୁ+ଭା.ତ ) ଅଶ୍ୱର ଗତିବିଶେଷ, ଦୁଲୁକି ଚାଲି, (ବିଂ)ଲମ୍ଫ-ଗତିଯୁକ୍ତ, ପ୍ଳାବିତ, ସିକ୍ତ, ବ୍ୟାପ୍ତ, (ବି) ଲମ୍ଫ, ଡେଇଁବା, ସ୍ୱରର ଦୀର୍ଘତମ ଉଚ୍ଚାରଣ, ଭେକର ଗତି, (ସଙ୍ଗୀତ) ତିନିମାତ୍ରାଯୁକ୍ତ ତାଳ ।

ପ୍ଳୁତଗତି—କ୍ଳୀ. ବି. ( କ.ଧା ) ପ୍ଳୁତ-ଗମନ, ଡେଇଁ ଡେଇଁ ଚାଲି, ଅଶ୍ୱର ଦୁଲୁକି ଚାଲି, (ବ.ବ୍ରୀ) ଠେକୁଆ, (ବିଂ-ବ.ବ୍ରୀ) ଡେଇଁ ଡେଇଁ ଚାଲୁଥିବା ।

ପ୍ଳୁତି—ବି.(ପ୍ଳୁ+ଭା.ତି) ଡେଇଁ ଡେଇଁ ଚାଲିବା, ଜଳ ପ୍ଳାବନ, ବନ୍ୟା, ତିନି-ମାତ୍ରାରେ ଉଚ୍ଚାରିତ ବର୍ଣ୍ଣ ।

ପ୍ଳୁଷ—ବି.(ପ୍ଳୁଷ+ଭା.ଅ) ଦାହ, ଜ୍ୱଳନ, ପୂର୍ତ୍ତି, ପ୍ରେମ ।

ପ୍ଳୁଷ୍ଟ—ବି.(ପ୍ଳୁଷ+ମି.ତ) ଦଗ୍ଧ, ପୂରିତ ।

ପ୍ଳୁଷ୍ଟି—ତ୍ରି. ବିଂ. ( ପ୍ଳୁଷ+ତି ) ଦଗ୍ଧ, ଝଲସିବା ।

ପ୍ଳୋଷ—ବି. ଦାହ, ପୋଡ଼ିବା ।

ପ୍ସା—ସ୍ତ୍ରୀ.ବି. ଭକ୍ଷଣ ।

ପ୍ସାତ—ତ୍ରି.ବିଂ. (ପ୍ସା+ମି.ତ)ଭକ୍ଷିତ ।

ପ୍ସାନ—କ୍ଳୀ.ବି.(ପ୍ସା+ଭା.ଅନ)ଭୋଜନ, ଭକ୍ଷଣ ।

ପ୍ସୁ—ପୁଂ.ବି. ରୂପ ।

ପ୍ସୁର—ତ୍ରି.ବିଂ. ରୂପଯୁକ୍ତ, ରୂପବାନ୍ ।

# ଫ

ଫ—ବ୍ୟଞ୍ଜନ ବର୍ଣ୍ଣର ଦ୍ୱାବିଂଶ ବର୍ଣ୍ଣ, ପଞ୍ଚମ ବର୍ଗର ଦ୍ୱିତୀୟ ବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ଓଷ୍ଠ, ମିଳିତ ଓଷ୍ଠଦ୍ୱୟ ନିଶ୍ୱାସର ଶକ୍ତିଦ୍ୱାରା ମେଲା ହେଲେ ଏ ଧ୍ୱନି ଉଚ୍ଚାରିତ ହୁଏ ।

ଫ—ବି.(ସ୍ଫାୟ୍+ଅ) ଫୁଲିଉଠିବା. ସ୍ଫୀତ, ଝଞ୍ଜାବାତ, ଜୃମ୍ଭଣ, ହାଇ, ଫଳବସ୍ତୁ, ଉର୍ବରତା, କଟୁଭାଷଣ, କର୍କଶ ବାକ୍ୟ, ଫୁତ୍କାର, ଫୁଙ୍କିବା, ନିଷ୍ଫଳ ବା ନିରର୍ଥକ ଭାଷଣ ।

ଫଇ(ଏ)ଜ(ଜ୍ଜ)ତ(ତି)—ଯା.ବି. କଳଙ୍କ, ଅପଯଶ, ଲାଞ୍ଛନା, ଅପମାନ, ଝଗଡ଼ା, ବିବାଦ, କଳି, ଗାଳି, ଶୋଧନ, (ବିଂ) ନିନ୍ଦ୍ୟ, ତିରସ୍କୃତ, ଗାଳି ଖାଇବାର ଯୋଗ୍ୟ ।

ଫଇ(ଏ)ଲ—ଯା.ବି. ଦୁଷ୍କାମି, (ପ୍ରା.ସମ୍ବ: ବିଂ) ଚତୁର୍ଦ୍ଦିଗରେ ବିସ୍ତୃତ ।

ଫଇଲଟ—ପ୍ରା. (ସିଂହଭୂମ) ବି. ଖୋଲା ସ୍ଥାନ, ଫଇସଲା ସ୍ଥାନ ।

ଫଇ(ଏ)ସଲ—ଯା.ବି.ନିଷ୍ପତ୍ତି.ମୀମାଂସା, କାର୍ଯ୍ୟ ସମାଧା, ଡିଗ୍ରୀ, ଅନାବୃତ ସ୍ଥାନ, (ବିଂ) ମୀମାଂସିତ, ଅନାବୃତ, ଶୂନ୍ୟ, ବିସ୍ତୀର୍ଣ୍ଣ, ଲମ୍ବାଚଉଡ଼ା ।

ଫଉଜ(ଦ)—ଯା. ବି. ସୈନ୍ୟ, ଜନ-ସମୂହ, ଦଳ, ପଲ ।

ଫଉଜଦାର୍—ଯା. ବି. ସେନାଧ୍ୟକ୍ଷ, ଫଉଜଦାରି ମକଦ୍ଦମାର ବିଚାରପତି,

ପୁଲିସ୍ କର୍ମଚାରୀବିଶେଷ ।

ଫଉଜଦାରୀ—ଯା. ବି. ଅପରାଧ ଘଟିତ ମକଦ୍ଦମା, ଅପରାଧ, ଅପରାଧ ସମ୍ବନ୍ଧୀୟ ମକଦ୍ଦମାର ବିଚାର, ଅପରାଧ ଘଟିତ ମାଡ଼ପିଟ୍ ବା କଳହଗୋଳ ।

ଫଉଜି—ଯା.ବିଂ.ସାମରିକ,ସୈନିକସମ୍ବନ୍ଧୀୟ ।

ଫଉତ—ଯା.ବିଂ. ମୃତ, (ବି) ମୃତ୍ୟୁ ।

ଫଏଜି—ଯା.ବି. ମୋଗଲ ସମ୍ରାଟ ଆକ୍‌ବରଙ୍କ ସଭାର ନବରତ୍ନ ମଧ୍ୟରୁ ଏକତମ । [ ଫୈଜି ନା ।

ଫଏର—ଯା.ବି. ବନ୍ଧୁକ ମାରିବା,ବନ୍ଧୁକ

ଫଁ—ଗ୍ରା.ଅବ୍ୟ. ଫଁ ଫଁ ଦେଖ ।

ଫଁ ଫଁ—ଗ୍ରା. ଅବ୍ୟ. ସର୍ପ ଗର୍ଜନର ଶବ୍ଦ, କ୍ରୋଧରେ ଘନଘନ ନିଶ୍ୱାସ ମାରିବାର ଶବ୍ଦ ।

ଫକ୍—ଗ୍ରା.ଅବ୍ୟ. ଫକ ଫକ ଦେଖ ।

ଫକଡ଼—ଯା.ବିଂ. ଶଠ, ଧୂର୍ତ୍ତ, ପ୍ରବଞ୍ଚକ, ବାଚାଳ, ଅପବ୍ୟୟୀ, ନିର୍ଦ୍ଧନ, ଗରିବ, ତୁଚ୍ଛ, ହେୟ ।

ଫକତ୍—ଯା.ଅବ୍ୟ. କେବଳ,ମାତ୍ର,କିନ୍ତୁ ଅପରନ୍ତୁ ।

ଫକଫକ—ଗ୍ରା. ଅବ୍ୟ. ଡେଇଁ ଡେଇଁ ଚାଲିବା ବା ନାଚିବା ପ୍ରକାରେ ।

ଫକା(କ୍କା)—ଯା.ବିଂ. ପିଙ୍ଗଳ, ଫିକା, ପାଣ୍ଡୁର, ବିବର୍ଣ୍ଣ, ବ୍ୟର୍ଥ, ଶୂନ୍ୟ,ଫମ୍ପା ।

ଫକା(କ୍କା)ସିନ୍ଦୂର—ଗ୍ରା.ବି ମାଟିଆ ସିନ୍ଦୂର

ଫକୀର—ପୁଂ. ବି. ମୁସଲମାନ ସନ୍ନ୍ୟାସୀ ବା ସାଧୁ, ଭିକ୍ଷୁକ, ଅତି ଦରିଦ୍ର ଲୋକ ।

ଫକୀରଟକିଆ—ଯା. ବି. ମୁସଲମାନ ଭିକ୍ଷୁକମାନଙ୍କ ଆଶ୍ରମ ।

ଫକୀରମୋହନ—ଗ୍ରା.ବି. ଉତ୍କଳର ପ୍ରସିଦ୍ଧ ସ୍ୱର୍ଗୀୟ ସାହିତ୍ୟ ସେବକ ଓ କବି ।

ଫକୀରି—ଯା.ବି. ଫକୀରର ଅବସ୍ଥା ବା ବୃତ୍ତି, ଭିକ୍ଷାବୃତ୍ତି, ଦରିଦ୍ରତା ।

ଫକ୍କିକା—ସ୍ତ୍ରୀ.ବି.(ଫକ୍+କ.ଇକ+ଆ) ଅସଦ୍ ବ୍ୟବହାର, ପ୍ରବଞ୍ଚନା, ଫାଙ୍କି, କୂଟତର୍କ, ଗୂଢ଼ରସ, ମାୟା, କୂଟପ୍ରଶ୍ନ, ପ୍ରତାରଣା ।

ଫଖର—ଯା.ବି. ଖ୍ୟାତି, ଗୌରବ ।

ଫଗୁ—ଗ୍ରା.ବି. ଫଲ୍‌ଗୁ, ଅବିର ।

ଫଗୁଣ—ଗ୍ରା.ବି. ଫାଲ୍‌ଗୁନମାସ ।

ଫଗୁଦଶମୀ—ଗ୍ରା. ବି. ଫାଲ୍‌ଗୁନ ମାସର ଶୁକ୍ଳ ଦଶମୀ ।

ଫଙ୍କ—ଗ୍ରା.ବି. ଫିମ୍ପି, ଛଡ଼ିଆ ।

ଫଜର—ଯା.ବି. ସକାଳ, ବଡ଼ଭୋର ।

ଫଜିର—ଯା.ବିଂ. ପ୍ରାତଃକାଳୀନ ।

ଫଜଲି—ଯା. ବି. ମାଲଦାର ଦେଶୀୟ ଉତ୍କୃଷ୍ଟ ଆମ୍ବ ।

ଫଜିତ—ଯା.ବି. ଫଇଜତ ଦେଖ ।

ଫଜିହତ—ଯା.ବି. ଦୁର୍ନାମ, ଅପଯଶ ।

ଫଞ୍ଜିକା—ସ୍ତ୍ରୀ.ବି.ବ୍ରାହ୍ମଣଯଷ୍ଟିକା, ଦେବତାଡ଼, ଦୁରାଳଭା,ଦନ୍ତୀବୃକ୍ଷ ।

ଫଞ୍ଜୀ—ବି. ବ୍ରାହ୍ମଣ ଯଷ୍ଟୀ, ବୃନ୍ଦାରକ, ଦନ୍ତୀବୃକ୍ଷ, ଯୋଜନବଲ୍ଲୀ ।

ଫଟ୍—ଅ.(ସ୍ଫୁଟ+କ୍ୱିପ୍) ମନ୍ତ୍ର ଶେଷରେ ତାଳି ମାରି ଉଚ୍ଚାରଣ କରିବା ଶବ୍ଦ, ମନ୍ତ୍ରାଂଶବିଶେଷ, (ଗ୍ରା.ଅବ୍ୟ) ଫଟ୍‌ଫଟ୍ ଦେଖ ।

ଫଟ୍‌କରି—ଗ୍ରା.କ୍ରି.ବିଂ.ଫଟ୍ ଶବ୍ଦ ପୂର୍ବକ ।

ଫଟ୍‌କାର—ଗ୍ରା. ବି. ଫଟ୍ ଶବ୍ଦ, ହାତର ତାଳି ଶବ୍ଦ ।

ଫଟ୍‌ଫଟ୍—ଗ୍ରା. ଅବ୍ୟ.ଚଟି ଜୋତା ବା କଠଉ ମାଡ଼ିଲେ ଗୋଡ଼ର ତଳପାରେ ଥରକୁଥର ବାଜିବାର ଶବ୍ଦ ।

ଫଟ—ବି. (ସ୍ଫୁଟ+କ.ଅ) ସର୍ପର ଫଣା, ଦନ୍ତ, ପ୍ରତାରଣା, ଶଠତା, ଠକାମି ।

ଫଟଇ—ପ୍ରା, (ମେଦିନୀ)ବି. ପୋଷାକ, ଫତେଇ ।

ଫଟକା—ଗ୍ରା. ବି. ମୂହାଧାର, ହାତ ବା ଆଙ୍ଗୁଠିର ତାଳି ବା ସ୍ଫୋଟନ ଶବ୍ଦ, ଏକପ୍ରକାର ବନ୍ଧୁକ ଆବାଜ ପରି ଶବ୍ଦକାରୀ ବାଣ ।

ଫଟକୀ—ସ୍ତ୍ରୀ. ବି. ଫିଟିକିରୀ ।

ଫଟା—ବି.(ଫଟ୍+ଆ)ନାଗଆଦି ସର୍ପଙ୍କ ଫଣା, ଦନ୍ତ,ପ୍ରତାରଣା, ଶଠତା, (ଗ୍ରା. ବିଂ)ଫାଟଯୁକ୍ତ, ଫାଟି ଯାଇଥିବା,ଚିରା, ଦ୍ୱାହ୍ୱର, ଅଙ୍ଗମିକା, ସ୍ଥାନ ।

ଫଟା(ଟେ)ଇବା—ଗ୍ରା.କ୍ରି.ଫାଟିବା କ୍ରିୟାର ଣିଜନ୍ତରୂପ, ଫାଡ଼ିବା, ବିଦୀର୍ଣ୍ଣକରିବା, ଚିରିଦେବା, ଦୁଇ ବ୍ୟକ୍ତିଙ୍କ ମଧ୍ୟରେ ମନୋମାଳିନ୍ୟ ଘଟାଇ ପୃଥକ୍ କରାଇବା, (ଲ.ଅର୍ଥ)ବିନାଶକରିବା,ଲୋପକରିବା, ଫଟାଇଦେବା ଦେଖ ।

ଫଟାଇଦେବା—ଗ୍ରା.କ୍ରି.ଗୁଡ଼ାଏ କଥାରେ ବକିବା, ଗପିବା, ଜିଗର କରି ଉପର୍ଯ୍ୟୁପରି ପ୍ରଶ୍ନ କରିବା ।

ଫଟାକପାଳ—ଗ୍ରା.ବି.ହତଭାଗ୍ୟ,ଦୁର୍ଭାଗ୍ୟ, ମନ୍ଦକପାଳ ।

ଫଟାକପାଳିଆ—ଗ୍ରା.ପୁଂ.ବିଂ.ହତଭାଗ୍ୟ, ମନ୍ଦକପାଳିଆ ।

ଫଟାପାହୁଲି—ଗ୍ରା.ବି. କ୍ଷୁଦ୍ରତମ ଅବ୍ୟବହାର୍ଯ୍ୟ ମୁଦ୍ରାଖଣ୍ଡ, ଅତି ସାମାନ୍ୟ ଧନ ।

ଫଟିକାରୀ—ବି. ଫିଟିକିରୀ ।

ଫଟୋ—ଯା.ବି.ଆଲୋକ ଚିତ୍ର, ଆଲୋକ ସାହାଯ୍ୟରେ ଉଠିଥିବା ଛବି ।

ଫଡ଼୍—ଗ୍ରା, ଅବ୍ୟ, ଫଡ଼୍ ଫଡ଼୍ ଦେଖ ।

ଫଡ଼୍‌କା—ଗ୍ରା,ବି, ଶଗଡ଼ର ଦୁଇ ଦଣ୍ଡାର ରନ୍ଧ୍ରମାନଙ୍କରେ ଗଳା ହୋଇଥିବା ଆଡ଼କାଠ ଖଣ୍ଡମାନ ।

ଫଡ଼୍‌ଫଡ଼୍—ଗ୍ରା.ଅ.ପବନରେ ଲୁଗା ଉଡ଼ିବାର ଶବ୍ଦ, ଆମ ଦୋଷରୁ ଅଧୋବାୟୁ ସହିତ ମଳ ବାହାରିବା ଶବ୍ଦ, ଆଗପଛ ନ ବିଚାରି ଅନର୍ଗଳ ଗପିବା ।

ଫଡ଼ା—ଗ୍ରା. ବି. ବଡ଼ ବସ୍ତୁକୁ ଫାଡ଼ିଲେ ବା ଚିରିଲେ ସେଥିରୁ ବାହାରିବା ଅଂଶ ବା ଖଣ୍ଡ, ଏକଖଣ୍ଡ ମାଂସର ଲମ୍ବ ଭଡ଼ ଖଣ୍ଡ, ଫାଡ଼ିବା କର୍ମ,(ବିଂ)ଚିରା ହୋଇଥିବା,ପୃଥକ୍‌କୃତ, ବିଭକ୍ତ ।

ଫଡ଼ି—ଗ୍ରା, ବି. ଖଣ୍ଡା, ପାଇକମାନଙ୍କର ଖଣ୍ଡାଆଦିରେ ଖେଳିବା ଖେଳବିଶେଷ, ଢାଲ ।

ଫଡ଼ିଆ—ଗ୍ରା. ବି. ଜନ୍ତୁର ପୃଥକ୍ କରାଯାଇଥିବା ପିଠି ସହିତ ସମସ୍ତ ଗୋଡ଼ର ଅଂଶ, ଚଟୁଆ, ପିଠି ଓ ଜଙ୍ଘ ।

ଫଡ଼ିକାର—ଗ୍ରା.ବି.ରଜାଙ୍କ ଭୃତ୍ୟବିଶେଷ, ଯେ ଖଣ୍ଡାର ଖେଳ ଦେଖାଏ ।

ଫଡ଼ଙ୍ଗ—ଗ୍ରା.ବ. ଝିଙ୍କାଟ, ଝିଣ୍ଟିକା ।
ଫଡୁ—ପ୍ରା. (ଯାଜ)ବିଂ. ନଷ୍ଟଫଳ ।
ଫଣ(ଣା)—ବ, (ଫଣ୍+କ.ଅ-ଆ)ସର୍ପର ମସ୍ତକ, ସାପର ଫେଣା ।
ଫଣକର—ପୁଂ. ବ. ଭୁଜଙ୍ଗ, ସର୍ପ ।
ଫଣଧର—ପୁଂ. ବ. (ଫଣ୍+ଧୃ+କ.ଅ) ସର୍ପ,ଫଣୀ, ଫଣାଥିବା ସାପ ।
ଫଣଧରଧର—ପୁଂ.ବ.ଶିବ,ମହାଦେବ ।
ଫଣଫଣା—ଗ୍ରା.ବ. ଔଷଧି ବୃକ୍ଷବିଶେଷ, ଶ୍ୟୋଣାକ ।
ଫଣଭୃତ୍—ପୁଂ. ବ. (ଫଣ+ଭୃ+କ. କ୍ୱିପ୍) ସର୍ପ, ଫଣବାଲା ସର୍ପ ।
ଫଣମଣି—ବ.(କ.ଧା)ଫଣାବିଶିଷ୍ଟ ସର୍ପର ଫଣା ମଧ୍ୟରେ ଥିବା ମଣି ।
ଫଣବାନ୍—ପୁଂ. ବ. ( ଫଣ+ବତୁ ) ସର୍ପ, ସାପ ।
ଫଣା—ପୁଂ.ବ. (ଫଣ+ଆ)ସର୍ପ ଫଣା, ସାପର ଫେଣ ।
ଫଣାକର—ପୁଂ.ବ. ସର୍ପ ।
ଫଣାଧର—ବ. (୬ତତ୍)ଭୁଜଙ୍ଗ, ସର୍ପ ।
ଫଣାଭୃତ୍—ବ. (ଫଣା+ଭୃ+କ.କ୍ୱିପ୍) ସର୍ପ, ସାପ । [ ଫୁଲ ।
ଫଣିକେଶର—କ୍ଳୀ. ବ. ନାଗକେଶର
ଫଣିଜା—ସ୍ତ୍ରୀ. ବ.(ଫଣି+ଜନ୍+ଅ+ଆ)ଫଣିମନସା ବୃକ୍ଷ,ନାଗଫେଣିଆ ଗଛ
ଫଣିଜହ୍ୱକ—ବ. ବଳା ଦେଖ ।
ଫଣିଜହ୍ୱା—ସ୍ତ୍ରୀ, ବ. ମହାଶତାବରୀ ।
ଫଣିଜହ୍ୱିକା—ସ୍ତ୍ରୀ. ବ. ଶ୍ୱେତଶାରିବା, ମହାଶତାବରୀ ।
ଫଣିଜ୍ଝକ—ପୁଂ, ବ. କ୍ଷୁଦ୍ରପତ୍ର ତୁଳସୀ, ଚକ୍ରବର୍ତ୍ତି ତୁଳସୀ । [ ହୃତ ।
ଫଣିତ—ବିଂ.(ଫଣ+ତ)ଗତ, ନିଃସ୍ନେ-
ଫଣିତଳଗ—ପୁଂ.ବ.(ଫଣିତଳ+ଗମ୍ +କ.ଅ) ଭଗବାନ୍, ବିଷ୍ଣୁ ।
ଫଣିପ୍ରିୟ—ବ. (୬ତତ୍) ବାୟୁ ।
ଫଣିଫେନ—କ୍ଳୀ.ଅହିଫେନ, ଅଫିମ,ଆପୁ
ଫଣିଭଟକା—ସ୍ତ୍ରୀ.ବ,କୁଷ୍ଠୋଡୁମ୍ବର ବୃକ୍ଷ, କାକଡିମ୍ବିରୀ ।
ଫଣିଭୁକ୍—ପୁଂ.ବ. (ଫଣି+ଭୁଜ୍+କ. କ୍ୱିପ୍) ଗରୁଡ଼, ମୟୂର ।
ଫଣିଭୂଷଣ—ବ. (ବ.ବ୍ରୀ) ମହାଦେବ, (ରୂପକ-କ.ଧା)ସର୍ପରୂପ ଭୂଷଣ ।
ଫଣିମୁକ୍ତା—ସ୍ତ୍ରୀ. ବ. (୬ତତ୍) ସର୍ପମଣି, ସାପ ମୁଣ୍ଡରୁ ବାହାରିବା ମଣି ।
ଫଣିରାଜ—ବ.(୬ତତ୍)ସର୍ପରାଜ,ଅନନ୍ତ, ବାସୁକି । [ ପାନଗଛ ।
ଫଣିଲତା—ସ୍ତ୍ରୀ. ବ. ନାଗବଲ୍ଲୀ ଲତା,
ଫଣିବଲ୍ଲୀ—ବ. ନାଗବଲ୍ଲୀ, ପାନଗଛ ।
ଫଣିହନ୍ତ୍ରୀ—ବ. ଗନ୍ଧନାକୁଲୀ ।
ଫଣିହନ୍ତ୍ରୀ—ସ୍ତ୍ରୀ. ବ. କ୍ଷୁଦ୍ର ଦୁରାଲଭା ।
ଫଣୀ—ପୁଂ. ବ. (ଫଣ+ଇନ୍) ଯାହାର ଫଣାଅଛି, (ବି) ସର୍ପ । [ସର୍ପରାଜ ।
ଫଣୀନ୍ଦ୍ର—ପୁଂ.ବ(୬ତତ୍)ଅନନ୍ତ,ବାସୁକି,
ଫଣୀଶ—ପୁଂ. ବ. (୬ତତ୍) ସର୍ପେଶ୍ୱର, ଅନନ୍ତ, ବାସୁକି ।
ଫଣ୍ଡ—ପୁଂ.ବ.(ଫଣ୍+ଡ)ଜଠର,ଉଦର
ଫଣ୍ଡା—ପ୍ରା. (ଗଞ୍ଜା) ବ. ମାରାତ୍ମକ ଦଶା, ଆସନ୍ନ ମୃତ୍ୟୁ ଅବସ୍ଥା, ଶଙ୍କଟ ।
ଫତ୍କାରୀ—ପୁଂ.ବ (ଫତ୍+କୃ+ଇନ୍) ପକ୍ଷିମାତ୍ର ।
ଫତୁଆ—ଗ୍ରା,ପୁଂ.ବିଂ. ବ୍ୟର୍ଥ ମନୋରଥ, ଅକୃତ କାର୍ଯ୍ୟ, ହଟହଟା, ଅପବାଦ-ଗ୍ରସ୍ତ, କଳଙ୍କଯୁକ୍ତ, ପରାସ୍ତ, ଅପ୍ରସ୍ତୁତ, ମିଥ୍ୟାବାଦୀ, ମିଛୁଆ,(ଯା.ବ)ମୁସଲମାନ୍ କାଜି ବା ମୁଲ୍ଲାଙ୍କର ରାୟ ବା ବ୍ୟବସ୍ଥା-ପତ୍ର ।
ଫତୁର—ଯା.ବିଂ.ନିର୍ଦ୍ଧନ, ନିଃସ୍ୱ, ଦରିଦ୍ର ।
ଫତୁରାନ୍ତ—ଗ୍ରା.ବିଂ.ଫିକରକାରୀ,ଫତୁରିଆ
ଫତୁରି—ଯା.ବ.ମିଥ୍ୟା, ମିଛକଥା,ଦାମ୍ଭି-କତା, ବାଚାଳତା,ବୃଥାଭାଷଣ,ଉତ୍ପାତ, ବିଦ୍ରୋହ, ପ୍ରଜାମେଳି ।
ଫତୁରିଆ—ଗ୍ରା, ବିଂ. ଫତୁଆ ଦେଖ, ବୃଥାଭାଷୀ, ବାବଦୂକ,ବାଚାଳ, ଉତ୍ପାତ-କାରୀ, ବିଦ୍ରୋହୀ ।
ଫତୁରିକରିବା—ଗ୍ରା. କ୍ରି, ଭୁରୁଡ଼ାଇବା ।
ଫତେ—ଯା.ବ.ଜୟଲାଭ,କୃତକାର୍ଯ୍ୟତା, କାର୍ଯ୍ୟସମାଧା, (ବିଂ)ସୁସମାହିତ,ଜୟୀ, କୃତକାର୍ଯ୍ୟ ।
ଫତେଇ—ଯା.ବ.ହାତ ନ ଥିବା କୁରୁତା, ଜାକେଟ୍ ।
ଫତେକରିବା—ଗ୍ରା. କ୍ରି. ଜୟ କରିବା, ଜିଣିବା, ସମାଧା କରିବା, କାର୍ଯ୍ୟସିଦ୍ଧ କରିବା ।
ଫତେଖାଁ—ଯା.ବ.ଜନୈକ ଶାସନକର୍ତ୍ତା, ଜୟଲାଭ କରିଥିବା ସେନାପତି, ଆଡ଼-ମ୍ବରଯୁକ୍ତ ନାମଧାରୀ ବ୍ୟକ୍ତି ।
ଫତେସିଂହ—ଗ୍ରା.ବ. ରାଜାମାନେ କ୍ଷତ୍ରିୟ ପାଇକମାନଙ୍କୁ ଦେବା ଉପାଧିବିଶେଷ ।
ଫନସ—ପ୍ରା.(ବସ୍ତର)ବ. ପନସ,ପଣସ ।
ଫନ—ପ୍ରା. (ସମ୍ବ)ବ, ତନ୍ତୁ, ତନ୍ତ ।
ଫନୋଗ୍ରାଫ୍—ଯା.ବ.କୌଣସି ଗାୟକର ଗୀତକୁ ଅବିକଳ ଉତ୍ପାଦନ କରିବା ସଙ୍ଗୀତଯନ୍ତ୍ର, ଗ୍ରାମଫୋନ୍ ।
ଫନ୍ଦ—ଯା, ବ. ଚାତୁର୍ଯ୍ୟ, ଫାନ୍ଦ, ଜାଲ, କୌଶଳ, ଉପାୟ, ଜୀବିକା, (ଗ୍ରା.ବ) ପାଣିର ବା କୂପର ଚଉଡ଼ା ଧାର ।
ଫନ୍ଦଫିକର—ଯା. ବ. କୂଟ କୌଶଳ, ଉପାୟ,ଜୀବିକା ନିର୍ବାହର ଉପାୟ,ବୃତ୍ତି
ଫନ୍ଦା—ଯା. ବ. ଅବଲମ୍ବନ, ଆଶ୍ରୟ, ଜୀବିକା, ବୃତ୍ତି, ଉପାୟ, ଯୋଗାଡ଼, ଆୟୋଜନ, ଫିକର, କୌଶଳ, ଜାଲ, ଫାନ୍ଦ, କୂଟନୀତି, ଖେଳ,ଫସଲ, ପସରା, (ବିଂ) ଛନ୍ଦାଛନ୍ଦ ।
ଫନ୍ଦି—ଯା.ବ. ଫନ୍ଦ, ଚାତୁର୍ଯ୍ୟ,କୌଶଳ, ଜୀବିକା,ଉପାୟ,ଉପସ୍ଥିତ ବୁଦ୍ଧି,ବାହାନା, ଚକ୍ରାନ୍ତ, ପାଞ୍ଚ ।
ଫନ୍ଦିକରିବା—ଗ୍ରା.କ୍ରି,ଭୁଲାଇବା,କୌଶଳ କରିବା, ଉପାୟ କରିବା ।
ଫନ୍ଦିକାଢ଼ିବା—ଗ୍ରା. ବ. କୌଶଳ ବା ଉପାୟ ଉଦ୍ଭାବନ କରିବା ।
ଫନ୍ଦିଫିକର-ଯା,ବ.କୌଶଳପୂର୍ଣ୍ଣ ଉପାୟ ।
ଫନ୍ଦିବାଜ୍—ଗ୍ରା. ବିଂ. ଯୋଗାଡ଼ିଆ, କୌଶଳୀ, ଉପସ୍ଥିତ ବୁଦ୍ଧିଶାଳୀ, ପ୍ରତ୍ୟୁତ୍ପନ୍ନମତି ।
ଫପସା—ଗ୍ରା. ବିଂ, ବଳରହିତ ଓ ସ୍ଥୂଳ-କାୟ, ପୋଲ, (ଗ୍ରା.ବ)ଫସ୍‌ଫସ୍ ଶବ୍ଦ ।
ଫବେଇହେବା—ଗ୍ରା.କ୍ରି.ମିଛକଥା କହିବା,

ପ୍ରକୃତ ବା ସତ୍ୟକଥା ନ ଜାଣି ଗପିବା ।

**ଫମ୍ପା**—ଗ୍ରା.ବିଂ. ପୋଲା,ଅନ୍ତଃସାରଶୂନ୍ୟ, ଶୂନ୍ୟ, ଫୁଲୁକା, (ବି) ସ୍ଫୀତ, ଫୁଲା ।

**ଫର୍‌ଫର୍**—ଗ୍ରା. ଅବ୍ୟ. ପତଳା ଲୁଗା-ଆଦିର ପବନରେ ଉଡ଼ିବାର ଶବ୍ଦ, ଅତଃସ୍ତ, ଖୁବ୍ ବେଗି, ଅତି ଚଞ୍ଚଳ, ତ୍ୱରିତ, ଅଧୀର ରୂପେ ।

**ଫର୍ରର**—ଗ୍ରା.ଅବ୍ୟ.ଚଢ଼େଇ ଉଡ଼ିଯିବାର ଶବ୍ଦ, ଲୁଗା ଚିରିଯିବାର ଶବ୍ଦ ।

**ଫର**—ଗ୍ରା.ବି.(ସଂ-ଫଳକ) ଢାଲ, ବନ୍ଧ-ଆଦିରୁ ଯେଉଁ କଣ୍ଡଆ ଘାଇରେ ପାଣି ବାହାରିଯାଏ, (ପ୍ରା.ବସ୍ତର.ବି) ଫଳ ।

**ଫରକ**—ଯା. ବି. ଦୂରତ୍ୱ, ବିଭିନ୍ନତା, ପାର୍ଥକ୍ୟ, ପ୍ରଭେଦ,(ବିଂ)ବିଭିନ୍ନ,ପୃଥକ୍, ନଆସ୍, ଦୂର ।

**ଫରକଟା**—ଗ୍ରା.ବିଂ.ପରସ୍ପରଠାରୁ ଅଲଗା ହୋଇଥିବା,ଦୁଇ ଶାଖା ବିସ୍ତୃତ ହୋଇ ପୃଥକ୍ ହୋଇ ଯାଇଥିବା ।

**ଫରକ(ଙ୍କା)**—ଗ୍ରା.ବି. ବଢ଼େଇଙ୍କର ଛିଦ୍ର କରିବା ଭଅଁର ଯନ୍ତ୍ର ।

**ଫରଗ୍**—ଗ୍ରା.ବିଂ.ବିସ୍ତୃତ, ପ୍ରଶସ୍ତ,ଚଉଡ଼ା, ସୁନ୍ଦର, ସ୍ପଷ୍ଟ, ନିର୍ମଳ, ସୁପ୍ରକାଶିତ, ଆଲୋକିତ, ସାବକାଶ, ଉଜ୍ଜ୍ୱଳ, (ବି) ପ୍ରକାଶ, ଆଲୋକ, ରାତି ପାହିଯିବା ଅବସ୍ଥା, ଉଜ୍ଜ୍ୱଳତା ।

**ଫରଦ୍‌ଉସବ୍ରିନ**—ଯା.ବି.ସ୍ୱର୍ଗ (ମୁସଲମାନଙ୍କ ମତରେ) ।

**ଫରଦ**—ଯା. ବି. କାଗଜ ବା ଲୁଗାର ଏକଖଣ୍ଡ, ତାଲିକା ।

**ଫର୍‌ଫନ୍ଦ**—ଗ୍ରା. ବି. ଉପାୟ, ଆଶ୍ରୟ, ଶୀଦକା, ଛଳ, କପଟ, କୌଶଳ ।

**ଫରଫର**—ଗ୍ରା.ଅବ୍ୟ. ଫର୍‌ଫର୍ ଦେଖ, ସାମାନ୍ୟ ବୃଷ୍ଟି ପତନର ଶବ୍ଦ, (ବିଂ) ଅଳ୍ପ ଆକାରରେ ସ୍ଫୀତ, ଯେ ନଜର କଡ଼ମା ଦେଖାଇ ହୁଏ, ଇତସ୍ତତଃ ଗର୍ବ ସହକାରେ ଯିବା ଆସିବା କରୁଥିବା ।

**ଫରଫରି**—ଗ୍ରା.ବି.ସାମାନ୍ୟ ବର୍ଷା,ଝିଫିଝିଫି ।

**ଫରଫରିଆ**—ଗ୍ରା. ବିଂ. ଫାଜିଲ,ଚପଳ, ଖୁବ୍ ପତଳା; ଝିଲ୍‌ମିଲ୍ ।

**ଫର(ରେ)ବ**—ଯା.ବି. କପଟ, ଛଳ ।

**ଫର(ରେ)ବବାଜ**—ଯା.ବିଂ. ପ୍ରତାରକ, ଫନ୍ଦିବାଜ୍ ।

**ଫର(ରେ)ବି**—ଯା. ବିଂ. ପ୍ରତାରଣାପୂର୍ଣ୍ଣ, ଚଞ୍ଚକତାପୂର୍ଣ୍ଣ, (ବି)ଚଞ୍ଚକତା, ଠକାମି, ପ୍ରତାରଣା ।

**ଫରମାସ(ସି)**—ଯା.ବି. ଆଦେଶ,ବରାଦ, (ବିଂ) ଆଦେଶ ଅନୁସାରେ ପ୍ରସ୍ତୁତ, ଉତ୍କୃଷ୍ଟ ।

**ଫରଲ**—ଗ୍ରା.ବି. ବିସ୍ତୃତ ।

**ଫରସ**—ଗ୍ରା.ବିଂ. ନିର୍ମଳ,(ଯା.ବି)ବୈଠକ ଖାନାର ଚଟାଣରେ ପଡ଼ିଥିବା ସତରଞ୍ଜି ବା ଗାଲିଚା ଉପରେ ବିଛାଯାଇଥିବା ବଡ଼ ଚଦର ।

**ଫରସା**—ପ୍ରା. (ସିଂହଭୂମ)ବି. ଫାରସା ଦେଖ ।

**ଫରସି**—ଯା. ବି. ମେଡ଼ାଲ ହୁକା ଓ ଅଲଙ୍କାରରେ ଯେଉଁ ଅଂଶରେ ନଳ-ଆଦି ଝୁଲାଯାଇଥାଏ ।

**ଫରାକ**—ଗ୍ରା. ବି. ବସ୍ତ୍ରାବରଣ, (ଯା.ବି) ସ୍ତ୍ରୀଲୋକ ଓ ଶିଶୁଙ୍କ ପରିଧେୟ ଢିଲା କୁରୁତା ।

**ଫରାକତ(ତି)**—ଯା.ବିଂ. ବିସ୍ତୃତ, ନିର୍ମଳ, ସାବକାଶ, ପୃଥକ୍‌କୃତ, ଉନ୍ମୁକ୍ତ, ଖୋଲା, ସମତଳ, ଚଉଡ଼ା, (ବି) ମୁକ୍ତି, ଅବସର, ଅବକାଶ, ଛୁଟି, ପୃଥକତ୍ୱ, ସ୍ୱତନ୍ତ୍ରତା ।

**ଫରାର(ରି)**—ଯା.ବିଂ. ପଳାତକ,ଫେରାର

**ଫରାସ**—ଯା. ବି. ଭୂଇଁରେ ବିଛାଯିବା ବଡ଼ ଆସନ, ସତରଞ୍ଜି, ଗୃହର ନୀଚ-କର୍ମ କରିବା ଚାକର, ଫ୍ରାନ୍ସଦେଶ ।

**ଫରାସି**—ଯା.ବିଂ. ଫ୍ରାନ୍ସଦେଶୀୟ, (ବି) ଫ୍ରାନ୍ସଦେଶ,ଫ୍ରାନ୍ସଦେଶବାସୀ ବ୍ୟକ୍ତି ।

**ଫରାସିଡଙ୍ଗା**—ଯା.ବି. ଫ୍ରାନ୍ସ ଦେଶର ଅଧିକୃତ ରାଜ୍ୟ, କଲିକତା ନିକଟବର୍ତ୍ତୀ ଗଙ୍ଗାତୀରସ୍ଥ ଚନ୍ଦନନଗର, ବାଲେଶ୍ୱରରେ ଥିବା ଫରାସି ଅଧିକୃତ ଏକ ସ୍ଥାନ

**ଫରି**—ଗ୍ରା. ବି. ଫଡ଼ି ଦେଖ, ଢାଲ, ତନ୍ତୀଙ୍କ ବ୍ୟବହୃତ ନଟେଇର ମଝି ବାଉଁଶ ଦଣ୍ଡକୁ ଧରିବା ଲାଗି ରହିଥିବା ଛକ ।

**ଫରିକ**—ଗ୍ରା.ବି. ଫରିକାର ଦେଖ ।

**ଫରିକନା**—ଗ୍ରା. ବି. ଖଡ୍ଗପରି ଯୁଦ୍ଧାସ୍ତ୍ରବିଶେଷ ।

**ଫରିକା**—ପ୍ରା. (ବାଲେଶ୍ୱର) ବି. ଫରିକାର ଦେଖ ।

**ଫରିକାର୍**—ଯା.ବି. ଢାଲ ଖଣ୍ଡା ଧରିବା ବ୍ୟକ୍ତି, ସେନା, ସୈନ୍ୟଦଳ, ଫଡ଼ିକାର ଦେଖ ।

**ଫରିଖେଲ**—ଗ୍ରା.ବି. ଖଣ୍ଡାଦ୍ୱାରା ଖେଳ ।

**ଫରିମାନ**—ଗ୍ରା. ବି. ଖଣ୍ଡାର ଖୋଳ ବା ଖାପ ।

**ଫରିସ୍ତା**—ଯା.ବି.ମୁସଲମାନ ଧର୍ମଶାସ୍ତ୍ରାନୁସାରେ କୌଣସି କାର୍ଯ୍ୟ କରିବାପାଇଁ ଈଶ୍ୱର ପ୍ରେରିତ ଦୂତ ।

**ଫରୁଆ**—ଗ୍ରା.ବି.କାଠ ବା ଧାତୁର ଦୁଇ-ଫାଳଯୁକ୍ତ ଗୋଲପାତ୍ର, ଡବା, ଗାତ, ଖେବ, ଗୋଲମୁଖୀ କଣ୍ଠା, ଛଡକଣ୍ଠା ।

**ଫରେସ୍ଟ୍**—ଯା. ବି. ଜଙ୍ଗଲ, ବଣ, ରକ୍ଷିତ ଜଙ୍ଗଲ ।

**ଫର୍ଜ**—ଯା. ବି. କର୍ତ୍ତବ୍ୟକର୍ମ, ଉତ୍ତର-ଦାୟିତ୍ୱ କଳ୍ପନା ।

**ଫର୍ଦ୍ଦ**—ଯା. ବି. ଫରଦ ଦେଖ ।

**ଫର୍ଫର**—ବିଂ. (ସ୍ଫୁର୍+କ.ଅ) ଅତ୍ୟନ୍ତ ଚଞ୍ଚଳ, ଚପଳ ।

**ଫର୍ଫରୀ**—ବି. କଲସ ।

**ଫର୍ଫରୀକ**—ବି. (ସ୍ଫୁର୍+ଈକ) ଚପେଟ, ରୁପୁଡ଼ା, ନୂତନ କୋମଳପତ୍ର,ମୃଦୁତା, ମିଷ୍ଟତା ।

**ଫର୍ଫରୀକା**—ବି. ପାଦୁକା, ଚଟିଯୋତା ।

**ଫର୍ମ**—ଯା.ବି. ନିର୍ଦ୍ଦିଷ୍ଟ ବିଷୟ ଲେଖାଯିବା ପାଇଁ ଘର କଟାଯାଇଥିବା କାଗଜ, ଫରମା, ( ପ୍ରା. ଗଞ୍ଜାମ. ବି. ) ସ୍କୁଲର ଶ୍ରେଣୀ, କ୍ଲାସ୍ ।

**ଫର୍ମା**—ଯା. ବି. ଗ୍ରନ୍ଥ, ମୁଦ୍ରିତ କାଗଜର ଆକାର ବିଶେଷ, ଛପାର ଗ୍ରନ୍ଥପାଖେ ଦିଆଯାଇଥିବା କାଠର ଧଡ଼ି, ଗ୍ରୁପା—

ହେବା ପାଇଁ ସଜ୍ଜିତ ହୋଇଥିବା ଅକ୍ଷରର ସ୍ତମ୍ଭ ।

**ଫର୍ଲଙ୍ଗ**—ଯା.ବି. ଇଂରେଜୀଦୂରତ୍ୱ ପରିମାଣବିଶେଷ,ମାଇଲର ୮ଭାଗରୁ ଏକଭାଗ, ୨୨୦ଗଜ ।

**ଫର୍ଲୋ**—ଯା.ବି.ଦୀର୍ଘଦିନ ଚାକିରି କରିବା ସରକାରୀ କର୍ମଚାରୀଙ୍କୁ ଅଧାବେତନରେ ମିଳିବା ଦୀର୍ଘଛୁଟି ।

**ଫଲ୍ଶା**—ପ୍ରା. (ସମ୍ବ)ବି.ପଲ୍ଲଶ,କାଂଶୁକ ।

**ଫଲ୍ହା**—ପ୍ରା. (ସମ୍ବ) ବି. ପଲ୍ହା,ଧାନଆଦି ଗଛର ଗୁଚ୍ଛ, ତଳା ।

**ଫଳ**—କ୍ଲୀ. ବି. (ଫଲ୍+କ.ଅ) ବୀଜବିଶିଷ୍ଟ ବସ୍ତୁ, ଶସ୍ୟ, ଲାଭ, ସନ୍ତାନ, ପ୍ରତିଫଳ, ପରିଣାମ, କାର୍ଯ୍ୟ,ଉଦ୍ବେଗ, ପ୍ରଭାବ, ସୁଖଦୁଃଖ, ନର୍ଜ୍ଜାର, କୁଟଜ, କଙ୍କୋଳ, ତ୍ରୈରାଶିକର ୨ୟ ସଂଖ୍ୟା, କାର୍ଯ୍ୟଉତ୍ପନ୍ନ ବସ୍ତୁ, ଫସଲ, ନିଷ୍ପତ୍ତି, କାର୍ଯ୍ୟସିଦ୍ଧି, ସମ୍ପତ୍ତି, ଉନ୍ନତି, ପ୍ରୟୋଜନ, ସୁଖ, ଉତ୍ତର, ପୁରସ୍କାର, ଢାଲ, ଫଳକ, ତକ୍ତା,ପଟା, ଖଣ୍ଡାଆଦିର ତୀକ୍ଷ୍ଣ ପାଠଆ, ବାଣାଗ୍ର, ଲଙ୍ଗଳଲୁହା, ଫାଳ, ତ୍ରିଫଳା, (ହରଡ଼ା, ବାହାଡ଼ା,ଅଁଳା) ଜାଇଫଳ,ଗଣିତ ସମସ୍ୟାର ମୀମାଂସା, ସ୍ଥିରତୁ, ଆବର୍ତ୍ତି, ଦାନ, ସମୀକରଣ, ଗ୍ରହର ସମୀକରଣ, ଅଣ୍ଡକୋଷ, ଆବୁ, କଙ୍କାଳ,ଗ୍ରହମାନଙ୍କର ବିଶିଷ୍ଟ ଅବସ୍ଥିତି ବା ଯୋଗର ସୁଖଦୁଃଖଆଦି ପରିଣାମ, ପଣାକାଠିର ଚାଖିଆ, କ୍ଷେତ୍ରଫଳ ।

**ଫଳକ**—ବି. (ଫଳ+କ) ଢାଲ, ପଟା, ଅସ୍ତ୍ରର ପତ୍ର,କପାଳର ଅସ୍ଥି,ଧୋବାଗଣ୍ଡି, ଯେଉଁ ପଟାରେ ଧୋବା ଲୁଗା କାଚେ, ନାଗେଶ୍ୱର, କରତଳ, ଗୁଦର, ଫଳ, ଖଟର ପୃଷ୍ଠ, ମେଜ, ଟେବଲ ।

**ଫଳକଣ୍ଟକ**—ବି. (ବ.ସ୍ତ୍ରୀ) କଣ୍ଟକୀଫଳ, ପଣସଗଛ,କ୍ଷେତପାପଡ଼ା,ଘରପୋଡ଼ିଆ

**ଫଳକନ୍ଦଳ**—ପ୍ରା.(ଭଦ୍ରଖ)ବି. ଫଳମୂଳ ।

**ଫଳକପାଣି**—ପୁଂ. ବି. (ବ.ସ୍ତ୍ରୀ) ଚର୍ମୀ, ଯେ ଢାଲ ଧରିଥାଏ ।

**ଫଳକର୍କଶା**—ସ୍ତ୍ରୀ. ବି. ବନକୋଳି,ବନବଦର ବୃକ୍ଷ ।

**ଫଳକାମ**—ପୁଂ. ବିଂ. (ଫଳ+କମ୍+ଣିଚ୍+କ.ଅ)ବହୁବ୍ରୀହିକର୍ମର ଫଳକାମନା ଯୁକ୍ତ, ଫଳେଚ୍ଛୁ ।

**ଫଳକାମନା**—ବି. (୬ତତ୍ପୁ) କୌଣସି କୃତକାର୍ଯ୍ୟର ଫଳପାଇବାର ଆଶା ।

**ଫଳକାଦନ**—କ୍ଲୀ.ବି. ସରସ୍ୱତୀଙ୍କ ପ୍ରିୟବନ ।

**ଫଳକୀ**—ବି. (ଫଳକ+ଇନ୍)ଫଳମାଛ, (ପୁଂ.ବିଂ) ଢାଲୀ,ଯେ ଢାଲ ଧରିଥାଏ ।

**ଫଳକୃଷ୍ଣ**—ପୁଂ.ବି.ପାନୀୟାମଳକ,ପାଣିଅଁଳା, କଣ୍ଟକୀବୃକ୍ଷ, ( ବିଂ-ବ.ସ୍ତ୍ରୀ ) କୃଷ୍ଣଫଳଯୁକ୍ତ ।

**ଫଳକେଶର**—ପୁଂ. ବି. (ବ.ସ୍ତ୍ରୀ) ନାରିକେଳ ବୃକ୍ଷ, ନଡ଼ିଆଗଛ ।

**ଫଳକୋଷ**—ପୁଂ.ବି. ବୃଷଣ,ଅଣ୍ଡକୋଷ ।

**ଫଳକୋଷକ**—ବି. ବୃଷଣ,ମୁଷ୍କ, ଅଣ୍ଡକୋଷ ।

**ଫଳଗ୍ରହ**—ବିଂ. ଫଳେଗ୍ରହି, ଉପଯୁକ୍ତ ସମୟରେ ଫଳନ୍ତ ବୃକ୍ଷ ।

**ଫଳଗ୍ରାହୀ**—ପୁଂ. ବି. ବୃକ୍ଷ, (ବିଂ) ଯେ କୌଣସି ବିଷୟର ଫଳଗ୍ରହଣ କରେ ।

**ଫଳଚମସ**—ବି. ଦଧିମିଶ୍ରିତ ବଟତ୍ୱକ୍‌ଚୂର୍ଣ୍ଣ, ଲୌକିକ ନ୍ୟାୟବିଶେଷ ।

**ଫଳଚାରକ**—ପୁଂ. ବିଂ. ଫଳବିଭାଜକ, ଫଳବିଭାଗକାରୀ, ( ବି ) ବୌଦ୍ଧମତେ କର୍ମଚାରୀ ବିଶେଷ ।

**ଫଳଚୌରକ**—ପୁଂ. ବି. ଚୌରନାମକ ଗନ୍ଧଦ୍ରବ୍ୟ ।

**ଫଳଛଦନ**—କ୍ଲୀ. ବି. କାଷ୍ଠନିର୍ମିତ ଗୃହ ।

**ଫଳଛୁ**—ପ୍ରା. (ବାମଣ୍ଡା) ବି. ଯାନଘର ।

**ଫଳଣା**—ଯା. ସର୍ବ. ଅମୁକ,(ବିଂ)ଅମୁକ, ଅପ୍ରକାଶ୍ୟ ( ବିଷୟ ), ଜଘନ୍ୟ(କଥା), ଅଶ୍ଳୀଳ (ଶବ୍ଦ) ।

**ଫଳତଃ**—କ୍ରି. ବିଂ. ( ଫଳ+ତସ୍ ) ଫଳରେ,ବସ୍ତୁତଃ,କାର୍ଯ୍ୟତଃ, ଶେଷରେ, ପ୍ରକୃତରେ ।

**ଫଳତ୍ରୟ**—ବି.(ବୈଦ୍ୟକ)ତ୍ରିଫଳା,ହରଡ଼ା, ବାହାଡ଼ା, ଅଁଳା, ଶୁଣ୍ଠି, ପିପ୍ପଳୀ ଓ ଗୋଲମରିଚ ।

**ଫଳତ୍ରିକ**—ବି. ଶୁଣ୍ଠି, ପିପ୍ପଳୀ ଓ ମରିଚ ।

**ଫଳଦ**—ବିଂ. ( ଫଳ+ଦା+କ.ଅ ) ଯାହା ଫଳ ଦିଏ,ଫଳଦାତା,(ବି)ବୃକ୍ଷ ।

**ଫଳଦର୍ଶୀ**—ପୁଂ. ବିଂ. (ଫଳ+ଦୃଶ୍+ଇନ୍) ଯେ ଶେଷଫଳକୁ ଦେଖେ ।

**ଫଳଦାତା**—ପୁଂ. ବିଂ. (ଫଳ+ଦା+ତୃ ) ଯେ କୌଣସି କାର୍ଯ୍ୟରେ ଫଳଦିଏ ।

**ଫଳଦାୟକ**—ବି ଓ ବିଂ.ଫଳଦ ଦେଖ ।

**ଫଳଦ୍ରୁମ**—ପୁଂ. ବି. ଫଳନ୍ତବୃକ୍ଷ ।

**ଫଳଧରିବା**—ଗ୍ରା. କ୍ରି. ଫଳିବା,(ବୃକ୍ଷାଦି) ଫଳରେ ଶୋଭିତ ହେବା ।

**ଫଳନ**—ବି. (ଫଳ+ଭା.ଅନ) ଫଳିବା, ଫଳୋତ୍ପାଦନ,ପ୍ରସବନ,ପାଣିଅଁଳା ।

**ଫଳନ୍ତ**—ଗ୍ରା. ବିଂ. (ସଂ-ଫଳତ୍) ଫଳିଥିବା, ଫଳୁଥିବା, ଫଳୋତ୍ପାଦନ କରୁଥିବା ।

**ଫଳନ୍ତୀ**—ଗ୍ରା.ସ୍ତ୍ରୀ. ବିଂ. ସନ୍ତାନ ପ୍ରସବକରୁଥିବା (ସ୍ତ୍ରୀ), (ପୁଂ) ଫଳୁଥିବା(ବୃକ୍ଷ)

**ଫଳପଞ୍ଚାମ୍ଳ**—ବି. ଅମ୍ଳଫଳପଞ୍ଚକ ।

**ଫଳପାଇବା**—ଗ୍ରା. କ୍ରି. ପୁରସ୍କାରପାଇବା, ଲାଭପାଇବା, ଉପଯୁକ୍ତ ପ୍ରତିଫଳ ଲାଭ କରିବା ।

**ଫଳପାକ**—ପୁଂ. ବି. କରମର୍ଦ୍ଦକ,ପାନୀୟଆମଳକ ।

**ଫଳପାକାନ୍ତା**—ବି.(ଫଳ+ପାକ+ଅନ୍ତ) ଫଳପାକିଲେ ଯେଉଁସବୁ ଗଛ ମରିଯାଏ, (ଧାନ, କଦଳୀ ପ୍ରଭୃତି) ।

**ଫଳପାକୀ**—ବି. ଗର୍ଦ୍ଦଭାଣ୍ଡ ବୃକ୍ଷ ।

**ଫଳପାଦପ**—ବି. ( ଫଳ+ପାଦପ ) ଫଳବୃକ୍ଷ ।

**ଫଳପୁର**—ବି. (ଫଳ+ପୁର) ଡାଳିମ୍ବ, ଟଭା, ଲେମ୍ବୁ, ନଗରବିଶେଷ ।

**ଫଳପୁଷ୍ପା**—ବି. ପିଣ୍ଡ ଖର୍ଜ୍ଜୁରବୃକ୍ଷ ।

**ଫଳପୁଷ୍ପୀ**—ବି. ଫଳପୁଷ୍ପା ଦେଖ ।

**ଫଳପୂର(କ)**—ବି. ଫଳପୁର ଦେଖ, ବୀଜପୂର ।

**ଫଳପ୍ରଦ**—ବିଂ. (ଫଳ+ପ୍ର+ଦା+କ.ଅ) ଫଳଦାତା, ଗୁଣକାରକ,

ଫଳୋତ୍ପାଦକ ।
ଫଳପ୍ରାପ୍ତି—ବି. (୬ତତ୍ପୁ) କାମ୍ୟ ବସ୍ତୁର ପ୍ରାପ୍ତି । [ ଡ଼ାମରକୁଆ ।
ଫଳପ୍ରିୟ—ବି. (ବ.ବ୍ରୀ) ଦ୍ରୋଣକାକ,
ଫଳପ୍ରିୟା—ବି. (ଫଳ+ପ୍ରିୟା)ପ୍ରିୟଙ୍ଗୁ
ଫଳଫୁଲୁର—ଗ୍ରା.ବି. ପରବାପଣ ।
ଫଳବନ୍ଧୀ—ପୁଂ.ବିଂ. (ଫଳ+ବନ୍ଧ+ଇନ୍) ଫଳବନ୍ଧନକାରୀ । [ ବୃକ୍ଷ ।
ଫଳବନ୍ଧ୍ୟ—ବି. ଅବକେଶୀ, ଫଳଶୂନ୍ୟ
ଫଳବାନ୍—ପୁଂ. ବିଂ. ( ଫଳ+ବତ୍ ) ଫଳଯୁକ୍ତ, ଫଳଶାଳୀ, ସଫଳ ।
ଫଳଭକ୍—ବିଂ. (ଫଳ+ଭଜ୍+କ୍ୱିପ୍) ଫଳଭାଗୀ, ସୁଖଦୁଃଖାଦି ଫଳଭୋଗକାରୀ ।
ଫଳଭାଗୀ—ପୁଂ.ବିଂ. (ଫଳ+ଭଜ୍+କ.ଇନ୍) ପରିଣାମଭୋଗୀ, ଫଳଭୋଗକାରୀ, ଯେ ଫଳ ଭୋଗ କରେ ।
ଫଳଭୁକ୍—ପୁଂ. ବିଂ. (ଫଳ+ଭୁଜ୍+କ.କ୍ୱିପ୍) ଯେ ଫଳ ଖାଇ ପ୍ରାଣ ଧାରଣ କରେ ।
ଫଳଭୂମି—ବି. କର୍ମଫଳ ଭୋଗର ସ୍ଥାନ ଯେଉଁ ସ୍ଥାନରେ କର୍ମଫଳ ଭୋଗହୁଏ, ଭାରତବର୍ଷ ।
ଫଳଭୃତ୍—ବିଂ. ( ଫଳ+ଭୃ+କ୍ୱିପ୍ ) ଫଳଧାରୀମାତ୍ର, (ବି) ଫଳଡବୃକ୍ଷ ।
ଫଳଭୋଗ—ବି. (୬ତତ୍ପୁ) ନିଜ କୃତ କର୍ମର ସୁଖ ଦୁଃଖାଦିର ଅନୁଭୂତ ।
ଫଳଭୋଗୀ—ପୁଂ.ବିଂ. ଫଳଭୋଗକାରୀ, ସୁଖ ଦୁଃଖର ଉପଭୋକ୍ତା ।
ଫଳମସ୍ୟା—ବି.ଗୃହକନ୍ୟା,ଘୃତକୁମାରୀ ।
ଫଳମୁଖ—ବି. (୬ତତ୍ପୁ) ଫଳୋଦୟ ଦେଖ ।
ଫଳମୁଖ୍ୟା—ବି. ଅଜମୋଦା ।
ଫଳମୁଣ୍ଡ—ବି. ନାରକେଳ ବୃକ୍ଷ ।
ଫଳମୂଳୀ—ବିଂ. (ଫଳମୂଳ+ଇନ୍)ଫଳ ଓ ମୂଳଯୁକ୍ତ । [ ହେବା ।
ଫଳଯିବା—ଗ୍ରା.କ୍ରି. (ସ୍ତ୍ରୀପଶୁ) ଗର୍ଭବତୀ
ଫଳରାଜ—ବି. ଖର୍ବୁଜା ନାମେ ଖ୍ୟାତ ଫଳଶାକବିଶେଷ, ଖର୍ମୁଜ ।
ଫଳଲକ୍ଷଣା-ବି.ପ୍ରୟୋଜନବତୀ ଲକ୍ଷଣା ।
ଫଳଲାଭ—ବି. (୬ତତ୍ପୁ) ଚରିତାର୍ଥତା, ମନୋବାଞ୍ଛା ସିଦ୍ଧି ।
ଫଳବାନ୍—ପୁଂ.ବି. (ଫଳ+ବତ୍)ଫଳଯୁକ୍ତ ବୃକ୍ଷ, (ବିଂ) ଫଳିତ ।
ଫଳବିକ୍ରୟୀ—ପୁଂ. ବିଂ.(ଫଳ+ବିକ୍ରୟ+ଇନ୍) ଫଳ ବିକ୍ରୟକାରୀ, ଯେ ଫଳ ବିକି ଜୀବିକା ନିର୍ବାହ କରେ ।
ଫଳବୃକ୍ଷକ—ବି. ପନସବୃକ୍ଷ,ପଣସଗଛ ।
ଫଳଶ—ବି. ଫଳଯୁକ୍ତ, (ବି) ପନସ ।
ଫଳଶାକ—କ୍ଲୀ. ବି. ଷଡ଼୍ବିଧ ଶାକର ଅନ୍ତର୍ଗତ ଶାକବିଶେଷ ।
ଫଳଷାଡ଼୍ବ—ବି. ଡାଳିମ୍ବ ।
ଫଳଶାଳୀ—ବିଂ. (ଫଳ+ଶାଳିନ୍)ଫଳଯୁକ୍ତ, ଫଳୁଥିବା ।
ଫଳଶୈଶିର—ବି. ବଦରବୃକ୍ଷ ।
ଫଳଶ୍ରୁତି—ବି. ନିଜକୃତ କର୍ମଫଳ ଶ୍ରବଣ କରିବା, ଶାସ୍ତ୍ର ପାଠ ଓ ଧର୍ମ କାର୍ଯ୍ୟାଦି କଲେ କି ଫଳ ଲାଭ ହୁଏ ଏହାର ଉଲ୍ଲେଖ । [ ଆମ୍ବ ।
ଫଳଶ୍ରେଷ୍ଠ—ବି. ( ୬ତତ୍ପୁ ) ଆମ୍ରବୃକ୍ଷ,
ଫଳସଂସ୍କାର--ବି.ଚନ୍ଦ୍ରାଦି ଜ୍ୟୋତିଷ୍କ ପଦାର୍ଥର ମନ୍ଦଫଳ ନିରୂପଣ ।
ଫଳସିଦ୍ଧି—ସ୍ତ୍ରୀ.ବି. (୬ତତ୍ପୁ)ଅଭୀଷ୍ଟଲାଭ, ଇପ୍ସିତ ଫଳପ୍ରାପ୍ତି, ସଫଳତା,ଚରିତାର୍ଥ ।
ଫଳସ୍ଥାନ—ବି. ଫଳୋପଭୋଗର କାଳ
ଫଳସ୍ଥାପନ—ବି. ଦଶବିଧ ସଂସ୍କାର ମଧ୍ୟରୁ ତୃତୀୟ ସଂସ୍କାର, ସୀମନ୍ତୋନ୍ନୟନ ସଂସ୍କାର ।
ଫଳସ୍ନେହ—ବି. ଆଖୋଟବୃକ୍ଷ ।
ଫଳହାରୀ—ବିଂ. (ଫଳ+ହୃ+କ.ଇନ୍) ଫଳହାରକ, ଯେ ଫଳ ସଂଗ୍ରହ କରେ, (ସ୍ତ୍ରୀ.ବି) କାଳିକାଦେବୀ ।
ଫଳା—ସ୍ତ୍ରୀ. ବି. ତିକ୍ତିଂଶିକ୍ଷା କ୍ଷୁପ, ଇନ୍ଦ୍ରୀବରୀ, ଶମୀ, (ଗ୍ରା.ବି) ବ୍ୟଞ୍ଜନ ବର୍ଣ୍ଣରେ ଅନ୍ୟ ବ୍ୟଞ୍ଜନବର୍ଣ୍ଣ ସଂଯୁକ୍ତ ହେବାର ଆକୃତି, ଅସଲ ଅକ୍ଷରରେ ଯୁକ୍ତହେବା ବ୍ୟଞ୍ଜନ ବର୍ଣ୍ଣର ଚିହ୍ନ, ଶରୀର, ଫର-ଡାଲ, ଶସ୍ତ୍ରାଦିର ସୂକ୍ଷ୍ମ ମୁଖ,ପାନଲତାମାନଙ୍କ ଗଣ୍ଡିରୁ ବାହାରିବା ଶାଖା ।
ଫଳା(ଲେ)ଇବା—ଗ୍ରା.କ୍ରି. ଗଛରେ ଫଳ ଫଳିବାର ଉପାୟ କରିବା, ଚନ୍ଦର ରଙ୍ଗକୁ ସୁସ୍ପଷ୍ଟ କରାଇବା, କୌଣସି ବିଷୟର ସୂଚନା ବା ଇସାରା ଦେବା, ଫଳରେ ଦେଖାଇଦେବା,ବନ୍ଧ୍ୟା ସ୍ତ୍ରୀର ଗର୍ଭ ହେବାର ଉପଚାର କରିବା ।
ଫଳାକାଙ୍କ୍ଷା—ବି. ( ୬ତତ୍ପୁ ) ଫଳ ପାଇବାର ଆଶା ।
ଫଳାଗମ—ବି. (୬ତତ୍ପୁ) ଫଳ ଦେଖାଯିବା, ଗଛରେ ଫଳ ଦେଖାଯିବା ସମୟ, ଶରତ୍କାଳ ।
ଫଳାଢ୍ୟା—ବି. ( ଫଳ+ଆଢ୍ୟ+ଆ ) କାଷ୍ଠକଦଳୀ, ବଣକଦଳୀ ।
ଫଳାମ୍ଳିକା—ବି. କାରବେଲ୍ଲି, କଲରା ।
ଫଳାଦନ—ପୁଂ.ବି. (ଫଳ+ଅଦ୍+କ.ଅନ) ଶୁକପକ୍ଷୀ, (ବିଂ) ଫଳଭକ୍ଷକ ।
ଫଳାଧ୍ୟକ୍ଷ—ବି. ରାଜାଦନ ବୃକ୍ଷ, ଫଳଦାତାମାନଙ୍କର ଅଧ୍ୟକ୍ଷ ଈଶ୍ୱର ।
ଫଳାନୁବନ୍ଧ—ବି. କର୍ମଫଳର ପ୍ରଣାଳୀ ।
ଫଳାନ୍ତ—ବି. ( ବ.ବ୍ରୀ ) ବାଉଁଶଗଛ, (୬ତତ୍ପୁ) ଫଳର ଶେଷ ।
ଫଳାନ୍ୱେଷୀ—ପୁଂ.ବିଂ. (ଫଳ+ଅନୁ+ଇଷ+କ.ଇନ୍) ପରିଣାମ ଫଳର ଅନୁସନ୍ଧାନକାରୀ, ସିଦ୍ଧିଲାଭାର୍ଥୀ, (ସ୍ତ୍ରୀ) ଫଳାନ୍ୱେଷିଣୀ । [ ବୃକ୍ଷାମ୍ଳ ।
ଫଳାମ୍ଳ—ବି. ଫଳୋପକରଣ କୃତାମ୍ଳ,
ଫଳାପେକ୍ଷା—ବି. (୬ତତ୍ପୁ) ଫଳ ପାଇବାର ଆଶା ।
ଫଳାଫଳ—କ୍ଲୀ.ବି. ଭଲ କମ୍ବା ମନ୍ଦଫଳ, ଶେଷଫଳ ।
ଫଳାବନ୍ଧ୍ୟ—ବି. ଫଳଯୋଗ୍ୟ ବୃକ୍ଷ ।
ଫଳାମ୍ଳ—କ୍ଲୀ.ବି. ବୃକ୍ଷାମ୍ଳ, ଅମ୍ଳବେତସ, ଅମ୍ଳରସବିଶିଷ୍ଟ ଫଳମାତ୍ର ।
ଫଳାମ୍ଳପଞ୍ଚକ—କ୍ଲୀ. ବି. ପାଞ୍ଚପ୍ରକାର ଅମ୍ଳ ଫଳ ।
ଫଳାମ୍ଳିକ—ବି. ତେନ୍ତୁଳି ରସରେ ପ୍ରସ୍ତୁତ ଚଟଣୀ ।

ଫଳାଯୋଷିତ୍—ସ୍ତ୍ରୀ. ବି. ପତଙ୍ଗ, ସ୍ତ୍ରୀ ଟିଣ୍ଡିକା । [ ବଗିଚୁ ।
ଫଳାଗମ—ବି. (ଫଳ+ଆଗମ) ଫଳ-
ଫଳାର୍ଥୀ—ପୁଂ. ବିଂ. (ଫଳ+ଅର୍ଥ+ଇନ୍) ଫଳକାମୀ ।
ଫଳାଶନ—ପୁଂ. ବି. (ଫଳ+ଅଶ୍+ଅନ) ଶୁକପକ୍ଷୀ, ଶୁଆ (ବିଂ) ଫଳ-ଭୋଜନକାରୀ । [ ଫଳଭୋଜୀ ।
ଫଳାଶୀ—ପୁଂ.ବିଂ.(ଫଳ+ଅଶ୍+ଇନ୍)
ଫଳାସବ—ବି. (ଫଳ+ଆସବ) ଦ୍ରାକ୍ଷା ପ୍ରଭୃତି ଫଳରୁ ପ୍ରସ୍ତୁତ କରାଯିବା ଆସବ ।
ଫଳାସ୍ଥି—ବି. ନାରକେଳ ବୃକ୍ଷ ।
ଫଳାହାର—ବି. (ଫଳ+ଆହାର)ଫଳ-ଭୋଜନ, ଅନ୍ନ ବ୍ୟତୀତ ଫଳଭୋଜନ ।
ଫଳାହାରୀ—ପୁଂ.ବିଂ. (ଫଳ+ଆହାର+ଇନ୍) ଫଳମାତ୍ର ଭୋଜୀ, ଯେ କେବଳ ଫଳ ଖାଇ ବଞ୍ଚେ ।
ଫଳି—ବି. (ଫଳ୍+ଇ) ମତ୍ସ୍ୟବିଶେଷ, ଫଳିମାଛ । [ ବରଗୁଡ଼ି ।
ଫଳିକା—ବି.(ଫଳ+ଇକ+ଆ)ବର୍ବଟୀ,
ଫଳିତ—ବିଂ.(ଫଳ+ଇତ)ଫଳବାନ୍, ଫଳ ଫଳିଥିବା, ଯେଉଁ ବୃକ୍ଷରେ ଫଳ ଧରେ, ସଫଳ, (ଜ୍ୟୋତିଷ) ଯଦ୍ଦ୍ୱାରା ଭବିଷ୍ୟତ୍ ଫଳ ଗଣନା କରାଯାଏ, ଜଳିତ, (ବି) ବୃକ୍ଷ, ଶୈଳେୟ ।
ଫଳିତଜ୍ୟୋତିଷ—ବି. ଯେଉଁ ଜ୍ୟୋତିଃ ଶାସ୍ତ୍ରଦ୍ୱାରା ମନୁଷ୍ୟ ଜୀବନର ଭବିଷ୍ୟତ୍ ଘଟନାମାନଙ୍କର ଗଣନା କରାଯାଏ ।
ଫଳିତବ୍ୟ—ବିଂ. (ଫଳ+ତବ୍ୟ) ଫଳିବାର ଯୋଗ୍ୟ, ଯାହା ଫଳିବ ।
ଫଳିତାର୍ଥ—ବି. (କ.ଧା) ଅସଲ ଅର୍ଥ, ମର୍ମ, ପ୍ରକୃତାର୍ଥ, ସାରାଂଶ, ମୂଳାଧାର ଦେଖ ।
ଫଳିନୀ—ବି. ପ୍ରିୟଙ୍ଗୁଲତା, ଅଗ୍ନିଶିଖା ବୃକ୍ଷ, ତାଳମୂଳୀ, ଲକ୍ଷଣାମୂଳ, ବୃଷ-ଲଙ୍ଗଳିଆ, ହାପୁମାଣା, ଦ୍ରାକ୍ଷାସବ, ମେଞ୍ଜାଡ଼ି; ଫଣଫଣା, ଦୁଗ୍ଧିକା ।
ଫଳୀ—ପୁଂ.ବିଂ. (ଫଳ+ଇନ୍) ଫଳ-ବାନ୍, ଫଳିତ ଦେଖ,(ବି) ଫଳବାନ୍ ବୃକ୍ଷ, ପଣସଗଛ, ଫଣଫଣା, (ସ୍ତ୍ରୀ.ବି) (ଫଳ+ଈ) ପ୍ରିୟଙ୍ଗୁଲତା, ଫଳିମାଛ, ତାଳମୂଳୀ, ଆମ୍ରାତକ, ଆମ୍ବୃତା,ଶଗଗ, ଅସ୍ତର ଫଳା, (ଗ୍ରା.ବି) ଯୁଆଳୀର ଦୁଇମୁଣ୍ଡରେ ଥିବା ଯେଉଁ ପଟାଳିଆ କାଠ ଦୁଇଟଣ୍ଡର ଛିଦ୍ରରେ ଜୋତ ଲାଗେ, ଲଙ୍ଗଲଲୁଡ଼ା ।
ଫଳିବା—ଗ୍ରା.କ୍ରି. ଫଳ ଧରିବା,ଫଳଯୁକ୍ତ ହେବା, ସଫଳ ହେବା, କୃତକାର୍ଯ୍ୟ ହେବା, (ଗାଈଆଦି ପଶୁ) ଗର୍ଭବତୀ ହେବା, ଫଳପ୍ରଦାନ କରିବା, ମିଳିବା, ପ୍ରାପ୍ତିହେବା ।
ଫଳେଗ୍ରହି—ବି. ଯଥା ସମୟରେ ଫଳ-ଧର ବୃକ୍ଷ, (ବିଂ) ଫଳଗ୍ରହଣକର୍ତ୍ତା ।
ଫଳେଗ୍ରାହି—ପୁଂ. ବି ଓ ବିଂ. ଫଳେଗ୍ରହି ଦେଖ । [ ବଡ଼ଜାମ୍ବୁ ।
ଫଳେନ୍ଦ୍ର—ପୁଂ.ବି. ବୃହଜ୍ଜମ୍ବୁ, ରାଜଜମ୍ବୁ,
ଫଳେପାକୀ—ବି. ଗନ୍ଧମୂଆ, ପ୍ରସାରଣୀ-ବିଶେଷ । [ ଗଇଣଗଛ ।
ଫଳେପୁଷ୍ପା—ବି. (ବ.ବ୍ରୀ) ଦ୍ରୋଣପୁଷ୍ପୀ,
ଫଳେରୁହା—ବି. ପାଟଳିବୃକ୍ଷ ।
ଫଳୋତ୍ତମା—ସ୍ତ୍ରୀ. ବି. କାକଳୀଦ୍ରାକ୍ଷା, ଦୁଗ୍ଧିକା,ତ୍ରିଫଳା ।
ଫଳୋତ୍ପତ୍ତି—ପୁଂ.ବି. (ବ.ବ୍ରୀ)ଆମ୍ବଗଛ, (ସ୍ତ୍ରୀ.ବି-୬ତତ୍) ଫଳୋଦୟ, ଫଳ-ଲାଭ,ଫଳର ଉଦ୍ଭବ ।
ଫଳୋତ୍ପାଦକ—ବିଂ. (୬ତତ୍) ଫଳ-ଜନକ, ଲାଭଦାୟକ, ସୁଖଦ, (ସ୍ତ୍ରୀ) ଫଳୋତ୍ପାଦିକା ।
ଫଳୋତ୍ପାଦନ—ବି.(୬ତତ୍) ଫଳଜନନ, ଫଳଜନ୍ମାନ ।
ଫଳୋଦୟ—ବି. (୬ତତ୍) ଲାଭ, ସ୍ୱର୍ଗ, ହର୍ଷ,ଫଳୋତ୍ପତ୍ତି, ଫଳଘଟିବା ଅବସ୍ଥା, ସୁଖ, ଉପକାର ।
ଫଳୋଦ୍ଭବ—ବି. (୫ତତ୍) ଫଳରୁ ଉତ୍ପନ୍ନ ଦ୍ରବ୍ୟ, ତୈଳାଦି ।
ଫଳୋନ୍ମୁଖ—ବିଂ. (୭ତତ୍) ଫଳ ଦାନରେ ଉଦ୍ୟତ ।
ଫଳୋପଜୀବୀ—ପୁଂ. ବିଂ. (ଫଳ+ଉପ+ଜୀବ+ଇନ୍)ଯେ ଫଳଦ୍ୱାରା ଜୀବିକା ନିର୍ବାହ କରେ ।
ଫଳୋପଧାୟ—ବି. (ଫଳ+ଉପ+ଧା+ଘ.ଅ) ଫଳୋତ୍ପାଦନ, ଫଳଜନନ
ଫଳୋପଧାୟକ—ବିଂ. (ଫଳ+ଉପ+ଧା+କ.ଅକ) ଫଳୋତ୍ପାଦକ, ଫଳ-ଜନକ ।
ଫଳୋପଧାୟୀ—ପୁଂ. ବିଂ. (ଫଳ+ଉପ+ଧା+କ.ଇନ୍) ଫଳଜନକ, (ସ୍ତ୍ରୀ) ଫଳୋପଧାୟିନୀ ।
ଫଳୋପଲବ୍ଧି—ବି. (୬ତତ୍) ଫଳାନୁଭବ, ଫଳର ବୋଧ ।
ଫଲ୍ଗୁ—ବି. (ଫଲ୍+କ.ଗୁ) ଗୟାରେ ଥିବା ଅନ୍ତଃସଲିଳା ନଦୀ, ମିଥ୍ୟାକଥା, ଅସାର ବାକ୍ୟ, ଅବିର, ଫଗୁ, ବସନ୍ତ-କାଳ, (ବି) ତୁଚ୍ଛ, ଅସାର, ନୀରସ, କ୍ଷୀଣ, କୁତ୍ସିତ, ମନୋହର, ସୁନ୍ଦର, କ୍ଷୁଦ୍ର ।
ଫଲ୍ଗୁତା—ବି. ଅପଦାର୍ଥତା, ଅବସ୍ତୁତା ।
ଫଲ୍ଗୁଦା—ସ୍ତ୍ରୀ.ବି ଗୟାରେ ଥିବା ଅନ୍ତଃ-ସଲିଳା ନଦୀ, ଫଲ୍ଗୁନଦୀ ।
ଫଲ୍ଗୁନ—ପୁଂ.ବି.ଅର୍ଜୁନ, ଫାଲ୍ଗୁନମାସ, (ବିଂ--ଫଲ୍ଗୁନୀ+ଅ) ଫାଲ୍ଗୁନୀ ନକ୍ଷତ୍ର-ସମ୍ବନ୍ଧୀ ।
ଫଲ୍ଗୁନାଲ—ପୁଂ.ବି. ଫାଲ୍ଗୁନମାସ ।
ଫଲ୍ଗୁନୀ—ସ୍ତ୍ରୀ. ବି. ପୂର୍ବାଫାଲ୍ଗୁନୀ ଓ ଉତ୍ତର ଫାଲ୍ଗୁନୀ ନକ୍ଷତ୍ର ।
ଫଲ୍ଗୁନୀଭବ—ପୁଂ. ବି. ବୃହସ୍ପତିଙ୍କର ନାମାନ୍ତର ।
ଫଲ୍ଗୁବାଟିକା—ବି. କାକୋଦୁମ୍ବରିକା ।
ଫଲ୍ଗୁତ୍ସବ—ବି. (୬ତତ୍) ଦୋଳଯାତ୍ରା, ବସନ୍ତୋତ୍ସବ, ହୋଲି ।
ଫଲ୍ୟ—କ୍ଲୀ.ବି. (ଫଳ+ଯ) କୁସୁମ ।
ଫଲ୍ଲିଫଲ—ବି. ସୂର୍ପବାତ, କୁଲବାଆ ।
ଫଲ୍ସପଏଣ୍ଟ—ଓଡ଼ିଶାର ଗୋଟିଏ ଅନ୍ତ-ରୀପ ।
ଫସ୍—ଗ୍ରା. ଅବ୍ୟ. ଫସ୍‌ଫସ୍ ଦେଖ ।
ଫସ୍କା—ଗ୍ରା.ବିଂ.ଶ୍ଳଥ, ହୁଗୁଳା, ଚ୍ୟୁତ, ସ୍ଖଳିତ, କୋମଳ,ହାଲୁକା,(ଗ୍ରା.ବାଲେ.

ଶ୍‌ଂ) ପାଣିତଣ୍ଡା, ସ୍ୱାଦବହୀନ ।
ଫସ୍(ସ)କଯିବା—ଗ୍ରା.କ୍ରି.ବିଫଳ ହୋଇଯିବା, ଖସିଯିବା, ଶିଥିଳହେବା, ଆକାଂକ୍ଷିତ ଫଳ ପ୍ରସବ ନ କରିବା ।
ଫସ୍‌ଫରସ୍—ଯା.ବି.ଦୀପକ, ଉଗ୍ରଦାହକ କ୍ରିୟାଯୁକ୍ତ ଖଣିଜ ଦ୍ରବ୍ୟବିଶେଷ ।
ଫସ୍‌ଫସ୍—ଗ୍ରା.ଅବ୍ୟ.କୁଣ୍ଡା ଖେଦାଇବା ପରି ଶବ୍ଦ, ଶୀଘ୍ର ଶୀଘ୍ର କଥା କହିବାର ଶବ୍ଦ, ଚୁପ୍‌ଚୁପ୍ କଥାବାର୍ତ୍ତା ହେବା ଶବ୍ଦ, ବଡ଼ ଛିଦ୍ର ବାଟେ ପବନ ବାହାରି ଯିବାର ଶବ୍ଦ । [ନିଷ୍ଫଳ ।
ଫସଡ଼—ଗ୍ରା. ବିଂ. ( ଫ-ନିଷ୍ଫଳ ) ବୃଥା,
ଫସର୍‌ଫାସର—ଗ୍ରା.କ୍ରି. ବିଂ. ଖୁବ୍ ଉଚ୍ଚ ସ୍ୱରରେ (କାନ୍ଦିବା) ।
ଫସରଫସର—ଗ୍ରା. ଅବ୍ୟ. ଚୁପ୍‌ଚୁପ୍ କଥାବାର୍ତ୍ତାର ଶବ୍ଦ,ମୃଦୁସ୍ୱରରେ କଥାବାର୍ତ୍ତା ।
ଫସରଫସା—ଗ୍ରା. ବିଂ. ଅକୃତକାର୍ଯ୍ୟ, ନିଷ୍ପ୍ରୟୋଜନ, (ଗ୍ରା.ବି) ନିଷ୍ଫଳ ଆଡ଼ମ୍ବର, ବହ୍ୱାରମ୍ଭଯୁକ୍ତ ଲଘୁ କ୍ରିୟା ।
ଫସରଫାଟ—ଗ୍ରା.ବି.ବଡ଼ଭୋର,ପ୍ରତ୍ୟୁଷ ।
ଫସରଫାଟିବା—ଗ୍ରା.ବି. ସକାଳ ହୋଇଯିବା, ରାତି ପାହିଯିବା ଅବସ୍ଥା ହେବା, (କ୍ରି)ଥକିଯିବା, ଅକୃତ କାର୍ଯ୍ୟ ହେବା, (କୌଣସି ପ୍ରସ୍ତାବ) ନିଷ୍ଫଳ ହେବା ।
ଫସରଫାସ୍—ଗ୍ରା.ବିଂ.ଅତି ଅକର୍ମଣ୍ୟକର, ଅକୃତ କାର୍ଯ୍ୟ,(ବି) ଅକୃତକାର୍ଯ୍ୟତା ।
ଫସଲ—ଯା.ବି.ଶସ୍ୟ, କ୍ଷେତରେ ଉତ୍ପନ୍ନ ବସ୍ତୁଚୟ, କୃଷିଜାତ ଶସ୍ୟ ଓ ତାହାର ସଂଗ୍ରହ ସମୟ ।
ଫସଲଆମଦାନି—ଯା.ବି.କ୍ଷେତରୁ କୃଷିଜାତ ଶସ୍ୟର ସଂଗ୍ରହ ।
ଫସଲି—ଗ୍ରା. ବିଂ. ଫସଲ ଉତ୍ପନ୍ନ ହେବା କାଳରୁ ଗଣାଯିବା ( ବର୍ଷ ), ଫସଲସମ୍ବନ୍ଧୀୟ ।
ଫସା—ଗ୍ରା. ବି. ଟାଙ୍ଗିଆ କୋଡ଼ିଆଦିର ଯେଉଁ ଅଂଶର ଛିଦ୍ରରେ ବେଣ୍ଟ ଗଲାଯାଏ, । (ପ୍ରା.ବାଲେ.ବି)ସାମୁଦ୍ରିକ ମତ୍ସ୍ୟବିଶେଷ ।
ଫସାଦ—ଯା.ବି.ବିଦ୍ରୋହ, ଗୋଳମାଳ, ମିଥ୍ୟା, ଠକାମି ।
ଫସାଦୀ—ଯା.ବିଂ. କୁପଥଗାମୀ, ଗୋଳମାଳିଆ, ମିଛୁଆ, ଠକ ।
ଫସିଦେବା—ପ୍ରା. (ସମ୍ବ) କ୍ରି. ଠକିବା, ପ୍ରତାରଣା କରିବା ।
ଫସିବା—ଗ୍ରା.କ୍ରି.ଅଜ୍ଞାତ ଭାବରେ, ବିପଦରେ ପଡ଼ିବା ।
ଫସିଯିବା—ଗ୍ରା.କ୍ରି. ଅନ୍ୟ ଦ୍ୱାରା ପ୍ରତାରିତ ହେବା, ଠକାଇରେ ପଡ଼ିବା ।
ଫସୁଆ—ପ୍ରା.(ସମ୍ବ)ବିଂ.ଠକ, ଶଠ,ଧୂର୍ତ୍ତ, ପ୍ରତାରକ ।
ଫା—ପୁଂ. ବି. ସନ୍ତାପ, ନିଷ୍ଫଳ ଭାଷଣ ।
ଫାଇଁ—ଗ୍ରା. ଅବ୍ୟ. ଅଧିକ ରୂପେ, ଫଁ ଶବ୍ଦସହ ।
ଫାଇଁଫାଇଁ—ଗ୍ରା. ଅବ୍ୟ. ଫଁଫଁ ଦେଖ ।
ଫାଇଁଫାଇଁହେବା—ଗ୍ରା. କ୍ରି. ସାପପରି ଫଁଫଁ ହେବା,ଆପତ୍ତି କରିବା,କ୍ରୋଧରେ ଗର୍ଜିବା ।
ଫାଇଦା—ଯା.ବି.ଉପକାର,ଲାଭ,ଆୟ ।
ଫାଉ—ଯା.ବି. ନିର୍ଦ୍ଦିଷ୍ଟ ପରିମାଣର ଅତିରିକ୍ତ ବସ୍ତୁ, ଅଧିକ ଲାଭ, ଲଫା, ସୁଧ, ମୂଳ ଧନର ସୁଧ,(ବିଂ)ମାଗଣା,ଅଧିକା. (ପ୍ରା.ସମ୍ବ.ବିଂ) ଗପଡ଼, ବହୁଭାଷୀ ।
ଫାଉଡ଼ିବା—ପ୍ରା.(କି ହ)କ୍ରି.ଫୋପାଡ଼ିବା, ଫିଙ୍ଗିବା ।
ଫାଉମାରିବା—ଗ୍ରା.କ୍ରି.କୌଣସି ପଦାର୍ଥ ମାଗଣାରେ ହସ୍ତଗତ କରିବା, ଠକିନେବା,ଅଦାଜ କରି କଥାକହିବା ।
ଫାଉରି—ପ୍ରା. (ବସ୍ତର)ବି. ବେତା ।
ଫାକାଣି—ଯା.ବି. ଦମ୍, ନିଶ୍ୱାସ, ପ୍ରାଣବାୟୁ ।
ଫାକାଣିଉଡ଼ିବା—ଗ୍ରା.ବି.ବେଦମ୍ ହୋଇଯିବା, ହଂସା ଉଡ଼ିଯିବା, ଧୈର୍ଯ୍ୟଚ୍ୟୁତ, କିଂକର୍ତ୍ତବ୍ୟ ବିମୂଢ଼ତା ।
ଫାଙ୍କ—ଗ୍ରା. ବି. (ଫ-ପଙ୍କ୍ତିକା) ଦୁଇ ବସ୍ତୁ ମଧ୍ୟସ୍ଥ ବ୍ୟବଧାନ, ଅନ୍ତର, ରନ୍ଧ୍ର, ଛିଦ୍ର, ଦୋଷ, ତ୍ରୁଟି, ଅନାବୃତ ସ୍ଥାନ, ଫାଟ, ସୁବିଧା, ପ୍ରଭେଦ, ବିଶେଷତ୍ୱ, ନିର୍ଜନ ସ୍ଥାନ,ବିଶେଷ ଗୁଡ଼,ଅବସର,ବିଚ୍ଛେଦ, (ବିଂ)ପୃଥକ୍, ଭିନ୍ନ, ଛଡ଼ାଛଡ଼ା, ଖାଲି, ଶୂନ୍ୟ, ଜନଶୂନ୍ୟ, ଉନ୍ମୁକ୍ତ, ଖୋଲା ।
ଫାଙ୍କଡ଼ା—ଗ୍ରା.ବିଂ.ଛଳପୂର୍ଣ୍ଣ,ଠକ, ପ୍ରତାରକ ।
ଫାଙ୍କଡ଼ାମି—ଗ୍ରା. ବି. ପ୍ରତାରଣା,ଠକାମି, ଛଳନା, ଦାମ୍ଭିକତା, ଅବାଧ୍ୟତା ।
ଫାଙ୍କା—ଗ୍ରା.ବିଂ.ଛଳନାପୂର୍ଣ୍ଣ, ମାୟାପୂର୍ଣ୍ଣ, ଖୋଲା, ଅନାବୃତ, ଉନ୍ମୁକ୍ତ, ମିଥ୍ୟା, ଅସାର, ଖାଲି, ଶୂନ୍ୟ ।
ଫାଙ୍କାଅବାଜ୍—ଗ୍ରା. ବି. ବନ୍ଧୁକରେ ଗୁଳି ନ ଦେଇ କେବଳ ବାରୁଦ ଭରିଥି କରି ଫାଏର କରିବା ଶବ୍ଦ ।
ଫାଙ୍କି—ଗ୍ରା.ବି.ପ୍ରତାରଣା, ଛଳନା, ଧପ୍ପାବାଜି, ଗୁରୁଙ୍ଗି, ଭଣ୍ଡିବା, ମାୟା,କୁଟତର୍କ, ଭୁରୁଙ୍ଗୁ, ଔଷଧ ରୂପେ ବ୍ୟବହୃତ ଶୁଣ୍ଠି ପିପ୍ପଳୀଆଦିର ଚୂର୍ଣ୍ଣ, ଚୂନା, (ଗ୍ରା, ବିଂ) ପ୍ରତାରଣାପୂର୍ଣ୍ଣ ।
ଫାଙ୍କିଦେବା—ଗ୍ରା. କ୍ରି. ଧପ୍ପାମାରିବା, ଭଣ୍ଡିଦେବା, ଛଳନା କରିବା, ପରର ଆଖିରେ ଧୂଳି ପକାଇବା, ଅବାଧ୍ୟତା ଦେଖାଇବା । [ଦେବା ।
ଫାଙ୍କିବା—ଗ୍ରା.କ୍ରି.ମିଥ୍ୟାକଥା କହି ଠକି
ଫାଙ୍କିବାଜ୍—ଗ୍ରା.ବିଂ. ଛଳନାପୂର୍ଣ୍ଣ, ଧୂର୍ତ୍ତ, ଠକ, ଶଠ ।
ଫାଙ୍ଗୁଲା—ଗ୍ରା.ପୁଂ.ବିଂବାଉଳା,ଯାହାର କିଛି ଠିକଣା ନ ଥାଏ, ଅସ୍ଥିରମନା ।
ଫାଜଲ୍—ଯା. ବି. ବଳିପଡ଼ିବା ଅଂଶ, ଆଧିକ୍ୟ, ଅବଶିଷ୍ଟ ଅଂଶ,(ବିଂ)ଅଧିକ, ଉଦ୍‌ବୃତ୍ତ, ଫାଜିଲ୍ ।
ଫାଜଲମି—ଗ୍ରା.ବି,ଧୃଷ୍ଟତା, ପ୍ରଗଲ୍‌ଭତା, ଚତୁରତା, ଚଲାଖି ।
ଫାଜିଲ—ଯା.ବିଂ. ଧୃଷ୍ଟ, ପ୍ରଗଲ୍‌ଭ,ଚତୁର, ବାଗୁଲ, ମିଛୁଆ ।
ଫାଝେଇବା—ପ୍ରା. (ବାଲେ) କ୍ରି. ମଳତ୍ୟାଗ ପରେ ପାଣି ଦ୍ୱାରା ଶୌଚ ହେବା, ଛୁଅଁଣିବା ।
ଫାଟ—ଗ୍ରା. ବି- ଫାଙ୍କ, ଜଳା, ଚିରା, ଗୋଡ଼ ଫାଟ, ଲମ୍ବା ଛିଦ୍ର, ସନ୍ଧି, କଣା, ବିଦାରିତ ଅଂଶ ।

ଫାଟକ—ଯା.ବ. ତୋରଣ, ବହିର୍ଦ୍ୱାର, କାରାଗାର,କଏଦ,କାରାବନ୍ଧନ,ଜେଲ୍ ।

ଫାଟକ୍କା-ବ.(ସ୍ଫୁଟ+ଅକ+ଇ)ଫିଟ୍‌କିରୀ ।

ଫାଟଣ(ନ)—ଗ୍ରା. ବ. ବିଦାରଣ, ବିଦୀର୍ଣ୍ଣ ହେବା, ଫାଟ, ଫାଟିବା କ୍ରିୟା ।

ଫାଟଲ—ଗ୍ରା. ବ. ଛିଦ୍ର, ଫଟା, ଫାଟ ।

ଫାଟିପଡ଼ିବା—ଗ୍ରା.କି.(ଗୋଡ଼)ଅବସନ୍ନ ହେବା, ଅତିରିକ୍ତ କର୍ମ ଯୋଗୁଁ କ୍ଲାନ୍ତ ହେବା, (ଲ.ଅର୍ଥ) ଅତ୍ୟଧିକ ହେବା ।

ଫାଟିଫୁଟିଯିବା—ଗ୍ରା. କି. ବହୁ ସ୍ଥାନରେ ବିଦୀର୍ଣ୍ଣ ହେବା, ବହୁ ସ୍ଥାନରେ ଫାଟିଯାଇ ଖଣ୍ଡଖଣ୍ଡ ହେବା, ଅକୃତ କାର୍ଯ୍ୟ ହେବା, ପରାସ୍ତ ହେବା ।

ଫାଟିବା—ଗ୍ରା.କି.ବିଦୀର୍ଣ୍ଣ ହେବା, ଭାଙ୍ଗିଯିବା,ଦ୍ୱିଧା ବିଭକ୍ତ ହେବା,ଚିରିଯିବା, ( ଶୀତ କାଳରେ ଗୋଡ଼ର ଚମଡ଼ା ) ବିଦୀର୍ଣ୍ଣ ହେବା, ଅକିଯିବା, ଅବସନ୍ନ ହେବା, ବ୍ରଣାଦିର ମୁହଁ ଖୋଲିଯିବା, କମିଯିବା,(ଦୁଇଜଣଙ୍କର ମନର ମେଳ) ଭାଙ୍ଗିଯିବା, (ଲ.ଅର୍ଥ) ମନ ନିରୁତ୍ସାହ ହେବା, (କପାଳ)ମନ୍ଦଭାଗ୍ୟଯୁକ୍ତ ହେବା

ଫାଟୁଆ—ଗ୍ରା.ବ.ଗୋରୁମାନଙ୍କର ଖୁରାରେ ହେବା ମାରାତ୍ମକ ସଂକ୍ରାମକରୋଗବିଶେଷ

ଫାଡ଼—ଗ୍ରା. ବ. ଯୋନି ।

ଫାଡ଼ିବା—ଗ୍ରା.କ୍ରି.ଚିରିଦେବା, ବିଦାରଣ କରିବା, ଦୁଇ ଶାଖାଯୁକ୍ତ ଅଙ୍ଗକୁ ବିପରୀତ ଦିଗକୁ ବିସ୍ତୃତ କରିବା, ପୃଥକ୍ କରିବା, ବିଭକ୍ତ କରିବା, ଫଡ଼ାଫଡ଼ା ବା ଫାଳ ଫାଳ କରିବା ।

ଫାଣି—ବ.ଗୁଡ଼ ଦଧିମିଶ୍ରିତ ଛତୁ,କରମ୍ଭ

ଫାଣିତ—ବ.(ଫଣ+ଣି.ତ) ଗାଢ଼ଇକ୍ଷୁଗୁଡ଼, ଫେଣା,ଗୁଡ଼ ଆଉଟିକରି ତିଆରି କରାଯିବା ଏକପ୍ରକାର ଖଜା ।

ଫାଣ୍ଟ—ବି°. ( ଫଣ+କ.ତ ) ଯାହା ଫେଣାହୋଇ ତିଆରି ହୋଇଥାଏ, (ବ) କଷାୟ ବିଶେଷ, କ୍ୱାଥ, ନାନାଦ୍ରବ୍ୟର ସିଦ୍ଧପାଣି, ଅସ୍ୱାଦରେ ଫାଣିଦେବା ପ୍ରକ୍ରିୟା, ଧାତୁଦ୍ରବ୍ୟ ଝାଳିବାର ପୂର୍ବ, ଲହୁଣୀ,ଫେଣା ହୋଇଥିବା ବଟା କର ।

ଫାଣ୍ଡିବା—ଗ୍ରା.କି.ଫେଣ୍ଟିବା,ଫେଣିବା, ଏକାଧିକ ପଦାର୍ଥକୁ ମିଶାଇ ଗୋଳିବା ।

ଫାଣ୍ଡ—କ୍ଲୀ. ବ. ଗର୍ଭ, ପେଟ ।

ଫାଣ୍ଡି—ଗ୍ରା. ବ. ଷ୍ଟେଟଥାନା, ଶାନ୍ତିରକ୍ଷାର୍ଥ ପୁଲିସ୍‌ରଖାଯାଇଥିବା ଗ୍ରାମ୍ୟକେନ୍ଦ୍ର, ପୁଲିସ୍ ଚୌକି ।

ଫାଣ୍ଡୀ—ଗ୍ରା. ସ୍ତ୍ରୀ. ବ. ସ୍ଥୂଳକାୟା ସ୍ତ୍ରୀ, ସ୍ଥୂଳୋଦରୀ ସ୍ତ୍ରୀ, ଦୁଗ୍ଧନଥିବା ଗାଈ ।

ଫାତିଆ(ହା)—ଯା. ବ. କୋରାନ୍‌ପାଠ ପୂର୍ବକ ମୁସଲମାନ୍‌ମାନେ ପୀରଙ୍କ ଉଦ୍ଦେଶ୍ୟରେ ଦେବା ପୂଜାନୈବେଦ୍ୟ, ମୃତ ବ୍ୟକ୍ତିର ଉଦ୍ଦେଶ୍ୟରେ ଅର୍ପିତ ନୈବେଦ୍ୟ ।

ଫାଦମ୍—ଯା. ବ. ଛଅଫୁଟ ଗଭୀରତା ଜଳର ମାପ ବିଶେଷ ।

ଫାନସ—ଯା. ବ. ପାନସ ଦେଖ ।

ଫାନ୍ଦ—ଗ୍ରା. ବ. ଜାଲ, ପାଶ, ଦଉଡ଼ିର ଗଣ୍ଠି, ଫନ୍ଦି, କୌଶଳ,ଫିକର,ଉଭାବିତ ଉପାୟ, ଗୋଳମାଲ, ବିପଦ, କୂଟକୌଶଳ,ଛଳ,କପଟ,କାଳ୍ପନିକବିଷୟ,ଗୋଲକଧନ୍ଦା,ପରୀକ୍ଷାର ସ୍ଥାନ, ଦଉଡ଼ିର ଘେର, (ବି°) କପଟତାପୂର୍ଣ୍ଣ, କାଳ୍ପନିକ,ଉଭାବିତ, ଗୋଲମାଲିଆ ।

ଫାନ୍ଦପାତିବା—ଗ୍ରା.କି.କୌଣସି ଜୀବକୁ ଧରିବା ନିମନ୍ତେ ଜାଲ ବିସ୍ତାର କରିବା, କୂଟ କୌଶଳ ବା ଉପାୟ ପ୍ରୟୋଗ କରିବା ।

ଫାନ୍ଦଫାନ୍ଦିବା--ଗ୍ରା.କି.ମିଥ୍ୟା ବା କାଳ୍ପନିକ କଥା ଯୋଡ଼ିକରି କହିବା,ଫାନ୍ଦପାତିବା ଦେଖ ।

ଫାନ୍ଦରେପକାଇବା—ଗ୍ରା. କି. ଲୋକକୁ ବିପଦରେ ପକାଇବା,ଲୋକକୁ ପ୍ରଲୋଭନ ଦ୍ୱାରା ବଶୀଭୂତ କରିବା, ଗୋଳମାଳରେ ଜଡ଼ିତ କରିବା, ଜନ୍ତୁକୁ ଜାଲରେ ବା ଫାନ୍ଦରେ ପକାଇବା ।

ଫାନ୍ଦ(ନ୍ଦୁ)ଆ—ଗ୍ରା. ପୁଂ. ବି°. କୂଟମିଥ୍ୟାପୂର୍ଣ୍ଣ, ଯେ ମିଛକଥା ଫାନ୍ଦିକରି କହିପାରେ ।

ଫାନ୍ଦିବା—ଗ୍ରା. କି. କାଳ୍ପନିକ ବା ମନଗଢ଼ା କଥା କହିବା,ଉଦ୍ଭାବନକରିବା, ମନରୁ କାଢ଼ିବା,ଜାଲ ବିସ୍ତାର କରିବା, ଛନ୍ଦିବା, ଛନ୍ଦିକରି ବାନ୍ଧିବା, ଆରମ୍ଭ କରିବା, ରେଖା ଟାଣିବା ।

ଫାପଡ଼—ଗ୍ରା. ବ. ଫୋପାଡ଼ିବା କ୍ରିୟାର ଥର, ଫୋପଡ଼, ଲମ୍ଫିଆ ।

ଫାଫଣ—ଗ୍ରା. ବ. ଦଣ୍ଡିରେ ଝୁଲୁଥିବା ମୋଢ଼ ।

ଫାବିବା—ଗ୍ରା. କି. ଉପଯୁକ୍ତ ବିବେଚିତ ହେବା, ଘଟିବା, ନିର୍ଦ୍ଧାରିତ ହେବା, ସ୍ଥିରୀକୃତ ହେବା, ପ୍ରାପ୍ୟହେବା ।

ଫାମ୍ପ—ଗ୍ରା.ବ. ସ୍ଫୀତ,ଫୁଲ,ଫୁଲିଉଠିବା ।

ଫାମ୍ପଡ଼ା—ଗ୍ରା. ବି°. ଫାମ୍ପା ଦେଖ ।

ଫାମ୍ପଣିଆ—ଗ୍ରା. ବ. ଫମ୍ପଫମ୍ପା ଦେଖ ।

ଫାମ୍ପା—ଗ୍ରା. ବି°. ସ୍ଫୀତ, ଫମ୍ପା,ପୋଲା ।

ଫାମ୍ପିବା—ଗ୍ରା କି. ଫୁଲିଉଠିବା, ଫୁଲିଇବା, ଫମ୍ପେଇବା ।

ଫାର୍‌ଖତ୍(ତି)—ଯା. ବ. ବିବାହବନ୍ଧନଛେଦନପତ୍ର,ଗୁଡ଼ପତ୍ର,ମୁକ୍ତିପତ୍ର,ଦାବିତ୍ୟାଗପତ୍ର, ପାଉତି, ଉନ୍ମୁକ୍ତସ୍ଥାନ, ପୃଥକ୍‌ହେବା, ଅବସର, ମୁକ୍ତି, ପତ୍ନିତ୍ୟାଗ, ଘୁଞ୍ଚିବା ନିମନ୍ତେ ଯଥେଷ୍ଟ ସ୍ଥାନ, (ଯା.ବି°) ମୁକ୍ତ, ଗୁଡ଼ପତ୍ର ଦିଆଯାଇଥିବା (ସ୍ତ୍ରୀ), ପରିତ୍ୟକ୍ତ, ଉନ୍ମୁକ୍ତ, ଅବସରପ୍ରାପ୍ତ, ପୃଥକ୍ କରାଯାଇଥିବା ।

ଫାର—ପ୍ରା. (ବସ୍ତର) ବ. ଫାଳ,ଲଙ୍ଗଳଲୁହା ।

ଫାରକ—ଗ୍ରା. ବ. ଦେବମନ୍ଦିରର ଗୃହରକ୍ଷୀବା ସେବକବିଶେଷ ।

ଫାରକତ୍—ପ୍ରା.(ବାଲେ) ବି°.ପରିପୂର୍ଣ୍ଣ ।

ଫାରଶା—ଗ୍ରା. ବ. (ସଂ-ପରଶୁ) ଯୁଦ୍ଧାସ୍ତ୍ରବିଶେଷ, କୁଠାର, ଟାଙ୍ଗିଆ, ଟାଙ୍ଗି, ଫାରଶାକୋଲି ।

ଫାରଶାକୋଲି—ଗ୍ରା.ବ. (ସଂ-ପାରାଶତ) ଏକପ୍ରକାର କୋଳି ।

ଫାରସୀ—ଯା. ବି°. ପାରସ୍ୟ ଦେଶୀୟ, (ବ) ପାରସ୍ୟଦେଶ ଭାଷା ।

ଫାର୍ଶ—ଯା. ବ. ହାସ୍ୟରସ ଓ ବ୍ୟଙ୍ଗ-

ପୂର୍ଣ୍ଣ ସାମାଜିକ ନାଟକ, ପ୍ରହସନ ।
ଫାଳ—ବି.(ଫଳ+ଣ.ଅ)ଲଙ୍ଗଳ ଲୁହା, (ଫାଲ+ଅ) ଶିବ, ମହାଦେବ, ବଳରାମ, ଚଷା, (ବି°-ଫଲ+ଅ) କାର୍ପାସ ନିର୍ମିତ (ବସ୍ତ୍ର),(ସ୍ତ୍ରୀ) ଫାଳୀ,(ଗ୍ରା.ବି. ସଂ-ଫଲକ) କୌଣସି ବସ୍ତୁର ଅଧଖଣ୍ଡ, ଜାଉଁଳ କବାଟର ଏକପଟ, ଚରୁଡ଼ା, ଅଂଶ,କର୍ତ୍ତିତଦ୍ରବ୍ୟର ଅର୍ଦ୍ଧାଂଶ,କୌଣସି ବସ୍ତୁର ଏକପାଖ ।
ଫାଲ୍—ପ୍ରା. (ସମ୍ବ) ବି. ପାଖ, ପାର୍ଶ୍ୱ, ଅଂଶ, ଫାଳ, ଅର୍ଦ୍ଧାଂଶ, (ଅବ୍ୟ) ଖଣ୍ଡଖଣ୍ଡକରି ।
ଫାଲକାଣ୍ଡ—ଗ୍ରା. ବି°. ଅସମ୍ପୂର୍ଣ୍ଣ, ଏକପାର୍ଶ୍ୱରେ ଘଟିବା, ଆଂଶିକ ।
ଫାଳକୃଷ୍ଟ—ବି°. (୩ତତ୍) ଲଙ୍ଗଳଦ୍ୱାରା କୃଷହୋଇଥିବା, (ବି) କୃଷହୋଇଥିବା ଭୂମି । [ ନ୍ତର ।
ଫାଳଗୁପ୍ତ—ପୁଂ.ବି.ବଳରାମଙ୍କର ନାମ ।
ଫାଲତୁ—ଯା. ବି°. ଅତିରିକ୍ତ,ନିଷ୍ପ୍ରୟୋଜନ, ବୃଥା, ବାଜେ,ଅଦରକାର,ବଳକା ।
ଫାଳଫାଳ—ଗ୍ରା.ବି°. ଫଣ୍ଡ ଫଣ୍ଡ ହୋଇଥିବା, ଫାଳ ଫାଳ ହୋଇ ଚିରାଯାଇଥିବା (ବହୁଖଣ୍ଡ) ।
ଫାଳସିଆ—ପ୍ରା.(ବାମଣ୍ଡା)ବି. ଅସ୍ତ୍ରବିଶେଷ, (ବଳଭଦ୍ର ଗ୍ରନ୍ଥାବଳି) ।
ଫାଳା—ବି. ଜମ୍ବୀର ବୀଜ ।
ଫାଳ(କ୍ର)ଆ—ଗ୍ରା. ବି.(ସଂ-ଫାଳ) ବଡ଼ଖଣ୍ଡ,ଚରୁଳା,କୌଣସି ପଦାର୍ଥର ଲମ୍ବଖଣ୍ଡ, (ବି°) ବଡ଼ ଫାଳ ଫାଳହୋଇ ଚିରା ଯାଇଥିବା, ଫାଳକିଆ ଦେଖ ।
ଫାଳକିଆ—ଗ୍ରା. ବି°. ଏକଫାଳ ଯୁକ୍ତ ।
ଫାଲୁଆ—ଗ୍ରା. ବି°. ବଡ଼ବଡ଼ (ପୁଂ.ବି°) ମୋଟା, ସ୍ଥୂଳକାୟ ।
ଫାଲୁଆଗୁଣ୍ଡା—ଗ୍ରା. ବି. ଖାଦ୍ୟର ବଡ଼ ବଡ଼ ଗୁଣ୍ଡା । [ ମୁହଁ ।
ଫାଲୁଆମୁହଁ—ଗ୍ରା. ବି. ଚେପ୍ଟା ଓ ବଡ଼
ଫାଲୁଆମୁହାଁ—ଗ୍ରା.ପୁଂ. ବି°. ଚେପ୍ଟା ଓ ବଡ଼ ମୁଖ ଯୁକ୍ତ ।
ଫାଲୁକା-ଗ୍ରା.ବି.ଫୁଲଥିବା,ଫୁଲି ଯାଇଥିବା

ଫାଲେ—ଗ୍ରା. ବି°. ଅଧେ,ଏକଫାଳମାତ୍ର
ଫାଲ୍‌ଗୁନ—ବି. (ଫାଲ୍‌ଗୁନ+ଅ)ଅର୍ଜୁନ. ଅର୍ଜୁନଗଛ,ମାଘର ପରବର୍ତ୍ତୀ ଚାନ୍ଦ୍ରମାନ ମାସ ।
ଫାଲ୍‌ଗୁନପ୍ରିୟ—ବି. ଶଙ୍ଖ ।
ଫାଲ୍‌ନାନୁଜ—ବି. ବସନ୍ତକାଳ, ଚୈତ୍ର, ଅର୍ଜୁନଙ୍କ କନିଷ୍ଠ ଭ୍ରାତା ।
ଫାଲ୍‌ଗୁନି—ପୁଂ. ବି. (ଫାଲ୍‌ଗୁନ+ଇ) ଅର୍ଜୁନ ।
ଫାଲ୍‌ଗୁନିକ—ବି. ଫାଲ୍‌ଗୁନମାସ ।
ଫାଲ୍‌ଗୁନୀ—ବି. (ଫାଲ୍‌ଗୁନ+ଈ) ଫାଲ୍‌ଗୁନପୂର୍ଣ୍ଣିମୀ, ଦୋଳପୂର୍ଣ୍ଣିମା, ପୂର୍ବ ଓ ଉତ୍ତରଫାଲ୍‌ଗୁନୀ ନକ୍ଷତ୍ର ।
ଫାଲ୍‌ଗୁନୀଭବ—ପୁଂ. ବି. ବୃହସ୍ପତି ।
ଫାଶ—ଯା. ବି. ଧଳାକାଗଜ ଖଣ୍ଡ, ସ୍ପଷ୍ଟ, ପ୍ରତ୍ୟକ୍ଷ, (ଗ୍ରା. ବି) କ୍ଷୁଦ୍ରଛିଦ୍ର, ଜାଲ, ପାଶ,ସୂତା ବା ଦଉଡ଼ିର ଗଣ୍ଠି,ଫାସିଆ
ଫାଶି—ଗ୍ରା. ବି. (ସଂ-ପାଶ) ଉଦ୍‌ବନ୍ଧନ, ଦଉଡ଼ିଦେଇ ମରିବା, ପ୍ରାଣଦଣ୍ଡ,ଏକ ପ୍ରକାର ଜଙ୍ଗଲୀଗଛ ।
ଫାଶିଆ—ଗ୍ରା. ବି. ନାକ ଓ କାନରେ ପିନ୍ଧାଯିବା ତାରର ସରୁ ମୁଦିଆ,(ବି°) ଯେ ଫାଶିଦିଏ ।
ଫାଶିଆରି—ଗ୍ରା. ବି°.ଯେ ଫାଶିଦଣ୍ଡରେ ଦଣ୍ଡିତ ବ୍ୟକ୍ତିକୁ ଫାଶିଖୁଣ୍ଟରେ ଝୁଲାଏ, ନରଘାତୀ ଦସ୍ୟୁ, ଲୋକଙ୍କୁ ବିପଦରେ ପକାଉଥିବା (ବ୍ୟକ୍ତି) ।
ଫାଶିଆର—ପ୍ରା. (ବାଲେ).ବି.ବଡ଼ଫାଶଯୁକ୍ତ ମୁଣ୍ଡପୁରା ଜାଲ
ଫାଶିଷ୍ଟ—ଯା.ବି.ଇଉରୋପର ଇଟାଲୀରାଜ୍ୟରେ ପ୍ରତିଷ୍ଠିତ ସାମ୍ୟବାଦୀଙ୍କ ବିରୋଧୀ ରାଜନୀତିକ ଦଳ ବିଶେଷ ।
ଫାସାଣ୍ଡି—ପ୍ରା.(ଗଞ୍ଜା).ବି°. ପଣ୍ଡ,ବ୍ୟର୍ଥ ।
ଫାସୁ—ଗ୍ରା. ବି.କୋରା ନଡ଼ିଆକୁ ଚିପୁଡ଼ି ରସ ବାହାରକରିନେବା ପରେ ରହିଯିବା ନୀରସ ଭୁଷି, କତା ।
ଫାସୁଫାସୁ—ଗ୍ରା. ଅବ୍ୟ. ଝୁଣିଲ ଦ୍ରବ୍ୟ ଚୋବାଇବାର ଶବ୍ଦ, ମାସୁମାସୁ ।
ଫାସୁଣ୍ଡା—ଗ୍ରା. ବି°.ସ୍ଥୂଳକାୟ, ଭୁଷୁଣ୍ଡା ।

ଫାହିଆନ୍—ଗ୍ରା. ବି. ଜଣେକ ପ୍ରାଚୀନ ଚୀନପରିବ୍ରାଜକ । [ ପ୍ରତ୍ୟେକ ।
ଫି—ପୁଂ.ବି.ପାପ,ନିଷ୍ଫଳବାକ୍ୟ,(ଯା.ବି°)
ଫିଆ—ଗ୍ରା. ବି.(ସଂ-ଫେଟନ) ଫେଇବା, ପ୍ରକାଶିତ କରିବା, ଫିଟାଇବା, ଦେଖାଇବା, ଖୋଲିବା, (ବି°) ଦେଖାଇ ଦିଆଯିବା, ପ୍ରକାଶିତ କରାଯାଇଥିବା, ଖୋଲାଯାଇଥିବା, ମୁକ୍ତ ।
ଫିକଡ଼ୋ--ପ୍ରା.ସିଂହ.ବି.ଗୋବରାଚଢ଼େଇ
ଫିକର—ଯା.ବି. ଭାବନା, ଚିନ୍ତା,ଉପାୟଚିନ୍ତା,ଜୀବିକା ନିର୍ବାହର ଉପାୟ, ଫନ୍ଦି, କୌଶଳ, ଗୁରୁତ୍ୱ, ଛଳନା, ଉଦ୍ବେଗ, ଅବଲମ୍ବନ ।
ଫିକରବାଜ୍—ଯା. ବି°. ଫନ୍ଦିବାଜ୍, କୌଶଳୀ, ଉପାୟକୁଶଳ, ଉଦ୍ୟମୀ, ଉପସ୍ଥିତ ବୁଦ୍ଧିଯୁକ୍ତ ।
ଫିକା—ଗ୍ରା. ବି°. (ସଂ-ପିଙ୍ଗ) ପାଣ୍ଡୁର, ଫିକ୍କା, ବିବର୍ଣ୍ଣ,ରକ୍ତହୀନ,ବିରସ,ମଳିନ, ପାଣିଚିଆ, ଅଳଡ଼ା ।
ଫିକିର୍—ଯା. ବି. ଫିକର ଦେଖ ।
ଫିକିର୍‌ବାଜ୍—ଯା. ବି°. ଯେ ଷଡ଼ଯନ୍ତ୍ର କରେ, ଚକ୍ରାନ୍ତକାରୀ, ଫନ୍ଦିବାଜ୍ ।
ଫିକିରି—ଯା, ବି°. ବୁଦ୍ଧିକ, କୌଶଳୀ, ଚିନ୍ତିତ ।
ଫିଙ୍ଗ—ଗ୍ରା.ବି.ସବାର ପଛଆଡ଼ ବାଉଁଶ ।
ଫିଙ୍ଗକ—ବି.(ଫିଙ୍ଗ+କୈ+ଅ) ପକ୍ଷିବିଶେଷ, କଜଳପାତି ଚଢ଼େଇ ।
ଫିଙ୍ଗା—ଗ୍ରା. ବି. ଫିଙ୍ଗିବା, ଫୋପାଡ଼ିବା, କଜଳପାତି ଚଢ଼େଇ, (ବି°) ଫୋପଡ଼ା ଯାଇଥିବା ।
ଫିଙ୍ଗାଫିଙ୍ଗି—ଗ୍ରା.ବି. ପୋପଡ଼ାଫୋପଡ଼ି, ଅନେକ ବସ୍ତୁକୁ ଫିଙ୍ଗିବା କାର୍ଯ୍ୟ, ପରସ୍ପରକୁ ତଳେ ପକାଇବା, ପରସ୍ପର (ଟେକାଆଦି), ଫୋପଡ଼ା ଫୋପଡ଼ି ହେବା,(ବି°)ଫୋପଡ଼ାଫୋପଡ଼ିଦେଖ ।
ଫିଙ୍ଗିବା—ଗ୍ରା.କ୍ରି. ଦୂରକୁ ନିକ୍ଷେପକରିବା, ଫୋପାଡ଼ିବା, ତ୍ୟାଗ କରିବା, (ଦୃଷ୍ଟି, କଟାକ୍ଷ) ପକାଇବା ।
ଫିଟ୍‌ଫାଟ୍—ଗ୍ରା.ବି°. ପରିଷ୍କୃତ,ପରିଚ୍ଛନ୍ନ,

ସୁସଜ୍ଜିତ, ସମୁଜ୍ଜ୍ୱଳ, ଚମତ୍କାର, ଜାକ୍‌ଜମକ ।

ଫିଟା—ଗ୍ରା. ବିଂ. (ସଂ-ସ୍ଫେଟନ) ବନ୍ଧନ-ମୁକ୍ତ, ଉନ୍ମୁକ୍ତ, ମୁକୁଳା, ପୃଥକ୍, (ଗ୍ରା.ବି) ଉନ୍ମୋଚନ, (ଯଥା—ଗଇଁଠାଳଫିଟା)

ଫିଟା(ଟେ)ଇ—ଗ୍ରା. କ୍ରି. ବିଂ. ସ୍ପଷ୍ଟରୂପେ, ସ୍ପଷ୍ଟଭାବରେ ।

ଫିଟାଇକହିବା—ଗ୍ରା. କ୍ରି. ସମସ୍ତକଥା ଖୋଲିକରି କହିବା ।

ଫିଟା(ଟେ)ଇବା—ଗ୍ରା. କ୍ରି. ଖୋଲିବା, ମୁକ୍ତକରିବା, ମୁକୁଳାଇବା, (ଗୁପ୍ତକଥା) ପ୍ରକାଶ କରିବା, ବ୍ୟାଖ୍ୟାକରି କହିବା, ବିସ୍ତୃତ କରିବା, ତ୍ୟାଗକରିବା, ଛାଡ଼ିବା ।

ଫିଟାଫିଟି—ଗ୍ରା. ବି. ମନୋମାଳିନ୍ୟ, ଭେଦଭାବ, (ବିଂ) ପୃଥକ୍ ପୃଥକ୍, ଅଲଗା ଅଲଗା । [ ଫିଟାଇବା ।

ଫିଟାଫିଟିକରିବା—ଗ୍ରା. କ୍ରି. ଥରକୁଥର

ଫିଟିକଯିବା—ଗ୍ରା. କ୍ରି, ପୃଥକ୍‌ହେବା, ଟୁଶିଲ୍ଲ ଜଡ଼ାଆଦି ଫଳରୁ ମଞ୍ଜି ଛୁଏଁ ବାହାରିଯିବା ।

ଫିଟିକରି—ଗ୍ରା.ବି. (ସଂ-ସ୍ଫଟିକାରି) ରସାୟନିକ କଷାୟ ଦ୍ରବ୍ୟବିଶେଷ ।

ଫିଟିବା—ଗ୍ରା.କ୍ରି. ବନ୍ଧନରୁ ମୁକ୍ତହେବା, ଉନ୍ମୁକ୍ତହେବା, ମେଲହେବା, ବାହାରିବା, ପ୍ରକାଶିତ ହେବା, ପୃଥକ୍‌ହେବା, (ଝରି) ବହିବା, (ମୁହଁ) ବାକ୍ୟ ଉଚ୍ଚାରଣ କରିବା, ( କେଶ ) ଗ୍ରନ୍ଥିବିହୀନ ହେବା, ବହିର୍ଗତହେବା, ପ୍ରତ୍ୟାହାର କରାଯିବା ।

ଫିତା—ଗ୍ରା. ବି. ଲୁଗାଆଦି ଧଡ଼ିରେ ଓ ବେଣୀରେ ବନ୍ଧାଯିବା ମୋଟ ଲମ୍ବ ପଟି, ଦୂରତ୍ୱ ମାପିବାର ସରୁ ଲମ୍ବ ପଟି ।

ଫିତୁରା(ତ)—ଯା.ବି. ପ୍ରଜାଙ୍କ ମେଳି, ଅରାଜକତା, ଉପଦ୍ରବ, ( ବିଂ ) ଉପଦ୍ରବୀ, ମେଳିଆ ।

ଫିତୁରି—ପ୍ରା. (ଗଞ୍ଜା. ଓ ପୁରୀ)ବି.ପ୍ରଜାଙ୍କ ମେଳି ବା ବିଦ୍ରୋହ ।

ଫିନାଇଲ୍—ଯା. ବି. ଦୂଷିତ କୀଟ ଓ ଦୁର୍ଗନ୍ଧ ନଷ୍ଟ କରିବାରେ ବ୍ୟବହୃତ ରସାୟନିକ କୃଷ୍ଣବର୍ଣ୍ଣ ଦ୍ରବବିଶେଷ ।

ଫିମ୍ପି—ପ୍ରା.(ଗଞ୍ଜା.)ବି. ପେଡ଼ାଯିବା ପରେ ଆଖୁର ନୀରସ ଛେପା, ଆଖୁକତା ।

ଫିମ୍ପାଡ଼ିବା—ପ୍ରା.(ବାଲେଶ୍ୱର)କ୍ରି.ଫୋପାଡ଼ିବା ।

ଫିମ୍ପି—ଗ୍ରା.ବି. ବସ୍ତ୍ର ଓ ଶସ୍ୟଆଦି ବହୁଦିନ ଓଦା ସ୍ଥାନରେ ରହିଲେ ତହିଁ ଉପରେ ଦେଖାଯିବା ଛତଆ, ଫଙ୍ଗୁ ।

ଫିର—ପ୍ରା. ( ବାଲେ ଓ ଲଗଆ ) ବି. କବାଟ ।

ଫିରଙ୍ଗ—ଗ୍ରା.ବି. ଇଉରୋପ ଦେଶ ।

ଫିରଙ୍ଗରୋଗ—ବି.ଉପଦଂଶ ବା ଗରମୀ ରୋଗ । [ ପାଉଁରୋଟି ।

ଫିରଙ୍ଗରୋଟୀ—ବି. ଫିରଙ୍ଗପ୍ରିୟ ରୋଟି,

ଫିରଙ୍ଗିଣୀ—ସ୍ତ୍ରୀ.ବି. ଫିରଙ୍ଗ ଦେଶୋଦ୍ଭବା ସ୍ତ୍ରୀ ।

ଫିରଙ୍ଗୀ—ପୁଂ.ବି. ଫିରଙ୍ଗ ଦେଶୋଦ୍ଭବ ପୁରୁଷ, ସାହେବ । [ ଦେଖ ।

ଫିରତ୍—ଗ୍ରା.ଯା.ବି ଓ ବିଂ. ଫେରସ୍ତ

ଫିରା(ରେ)ଇ—ଗ୍ରା. ବି. ( ସଂ-ତୀର୍ଯ୍ୟକ୍ ) କପାଳ ଉପରସ୍ଥ କେଶର ବିନ୍ୟାସବିଶେଷ । [ ଦେଖ ।

ଫିରାଦ(ଦ)—ଯା.ବି ଓ ବିଂ. ଫେରାଦ

ଫିରିକ—ଗ୍ରା.ଯା.ବି. ପିରିକ ଦେଖ,(ପ୍ରା. ବାଲେ. ବି) ଏକପ୍ରକାର ଲୁଣୀମାଛ, (ଗ୍ରା.ବି) କଙ୍କୀ । [ ଧୂପ ।

ଫିରିଙ୍ଗୀସାମ୍ବ୍ରାଣୀ—ଗ୍ରା. ବି. ଏକପ୍ରକାର

ଫିରିଦି—ଗ୍ରା.ବି. ପକ୍ଷିବିଶେଷ ।

ଫିରିଫିରି—ଗ୍ରା. ବି. ଫାସିଆରେ ନୁଡ଼ୁକ ଝୁଲୁଥିବା କର୍ଣ୍ଣାଳଙ୍କାରବିଶେଷ, ଝୁଲ, ରଥାଦିମଣ୍ଡନ ଉପକରଣ ବିଶେଷ, ଲଫ୍‌ଲଫ୍ ବରଷା, (ପ୍ରା. କଳାହାଣ୍ଡି.ବି) ପ୍ରଜାପତି ।

ଫିରଫିର—ଗ୍ରା. ବିଂ. ଟିପିଟିପି, ଅତି ସାମାନ୍ୟ (ବରଷା),(କ୍ରି.ବିଂ) ଗୋରୁ ପୋଢ଼ୁଅ ଆଦି ଚମକିବା ପ୍ରକାରେ, (ପ୍ରା.ସମ୍ବ.ବି) ଲଙ୍କି । [ ଫର୍ଦ୍ଦ ।

ଫିରସ୍ତ—ଯା. ବି. ତାଲିକା, ସୂଚୀପତ୍ର,

ଫିରସ୍ତା—ଯା.ବି. ମୁସଲମାନ ଶାସ୍ତ୍ରୋକ୍ତ ଦେବଦୂତ ।

ଫିରୋଜ—ଯା. ଅବ୍ୟ. ପ୍ରତିଦିନ, ହର୍‌ରୋଜ, (ବି) ଫିରୋଜା ଦେଖ ।

ଫିରୋଜା—ଯା.ବି. ପିରୋଜା ଦେଖ ।

ଫିଲ୍—ଯା.ବି. ହାତୀ, ସତରଞ୍ଜି ଖେଳରେ ନୌକା ଗୋଟୀ ।

ଫିଲ୍‌ଖାନା—ଯା.ବି. ହାତୀଶାଳ ।

ଫିଲ୍‌ଫେର୍—ଯା. ବି. ତତ୍‌କ୍ଷଣାତ୍, (ଅବ୍ୟ) ତତ୍‌କ୍ଷଣାତ୍ ।

ଫିସାଦ—ଯା.ବି. କଳହ, ଝଗଡ଼ା, ଦ୍ୱନ୍ଦ୍ୱ, ବିବାଦ, ମନ୍ଦଫଳ, ଗୁପ୍ତମନ୍ତ୍ରଣା, ବିପଦ, ବିଦ୍ରୋହ, ଛଳନା, ଗୋଳମାଳ, ଅନିଷ୍ଟ ।

ଫିସାଦକରିବା—ଗ୍ରା. କ୍ରି. ଗୋଳମାଳ ଜାତକରିବା, ମେଳିକରିବା, ଧର୍ମଘଟ କରିବା, ଜାଲ୍ କରିବା, କୁଫଳ ଉତ୍ପାଦନ କରିବା ।

ଫିସାଦ—ଯା.ବି. ଫିସାଦ ଦେଖ, (ବିଂ) ଫିସାଦିଆ ଦେଖ ।

ଫିସାଦିଆ—ଯା. ବିଂ. କଳହପ୍ରିୟ, ଗୁପ୍ତ ମନ୍ତ୍ରଣାଦାତା, ମେଳିଆ, ଜାଲୁଆ ।

ଫୁ—ବି. ମନ୍ତ୍ରୋଚ୍ଚାରଣପୂର୍ବକ ଫୁତ୍କାର, ମୁଖରୁ ବାୟୁ ନିର୍ଗମନ ଦ୍ୱାରା ଅବ୍ୟକ୍ତ ଶବ୍ଦକରଣ । [ ଭସ୍ମ ।

ଫୁଆରା—ଯା.ବି. ଝରଣା, ଉତ୍ସ, କୃତ୍ରିମ-

ଫୁଁ—ଗ୍ରା.ଅବ୍ୟ. ଦୁଇ ଓଠ ମଧ୍ୟଦେଇ ନଳାଆଦିରେ ପବନ ଫୁଙ୍କିବାର ଶବ୍ଦ ।

ଫୁଃ—ଗ୍ରା.ଅବ୍ୟ. (ଅନାଦର ବା ତୁଚ୍ଛାର୍ଥବୋଧକ ଧ୍ୱନି) ଛିଃ ।

ଫୁକ୍‌ଲଲିଆ—ପ୍ରା. (ସମ୍ବ)ବି. ଖଇ, ଲିଆ ।

ଫୁକ—ପୁଂ.ବି. ପକ୍ଷୀ, ଚଢ଼େଇ ।

ଫୁକର—ଗ୍ରା. ବି. ଛିଦ୍ର, ଖିଲଣ, ପୋଲି ତଳେ ପାଣି ଯିବାର ଖିଲଣ, ଛୋଟ ଗଙ୍ଗ, ପୋଲ ।

ଫୁକା—ପ୍ରା. (ଗଞ୍ଜାମ) ବି. ଛିଦ୍ରନ୍ତ୍ରଣ, (ଗ୍ରା.ବି) ଫୁଲା, ସ୍ଫୀତ ।

ଫୁକାର—ଗ୍ରା. ବି. ଫୁକର ଦେଖ, ଫୁଫୁଶବ୍ଦ, ଫୁତ୍କାର, ମୁଖବାଦ୍ୟବିଶେଷ ।

ଫୁକାସ୍ତ—ଗ୍ରା.ବିଂ. ପ୍ରଶ୍ନରତ, (ବି)ପ୍ରଶ୍ନର ।

ଫୁଙ୍କାରବା—ଗ୍ରା. କ୍ରି. ଚତ୍କାର କରିବା, ପାଟିକରି ଡାକିବା, କହିବା, ଗର୍ଜନ କରିବା, ଘୋଷଣା କରିବା, ପ୍ରକାଶକରିବା ।

ଫୁକଆ—ଗ୍ରା. ବି. ଉଜ୍ଜ୍ୱଳକାନ୍ତି ବିଶିଷ୍ଟ, ହିଦଡହେବା, ପାହାନ୍ତିଆ ତାରା,ଶୁକ୍ରଗ୍ରହ । [ ଦେଖ ।

ଫୁକ(କ୍ଳ)ଆଣି--ପ୍ରା. (ପୁରୀ)ବି. ଫୁଟିଆଣି

ଫୁକୁଲ୍,ଫୁକୁଲ୍—ଗ୍ରା.କ୍ରି.ବିଂ.କୁଦକୁଦକା କ୍ଷୁଦ୍ରପ୍ରାଣୀ ନାଚିବା ବା ଡେଇଁବା ପ୍ରକାରେ ।

ଫୁଙ୍କ(ଙ୍କା)—ଗ୍ରା. ବି. (ଫ-ଫୁତ୍କାର)ଦୁଇ ଓଠରେ ପବନ ବାହାରକରିବା ପ୍ରକ୍ରିୟା, ନଳଦ୍ୱାରା ନିଆଁକୁ ପବନ ଯୋଗାଇବା, ଦୁଧ ଦୁହିଁଲାବେଳେ ଦୁଷ୍ଟାମି କରୁଥିବା ଗାଈକୁ ଧରିବା ।

ଫୁଙ୍କନଲ—ଗ୍ରା. ବି. ଯେଉଁ ଗ୍ଲେଟନଳ ମଧ୍ୟଦେଇ ନିଆଁ ଫୁଙ୍କାଯାଏ ।

ଫୁଙ୍କନଳି—ଗ୍ରା. ବି. ଫୁଙ୍କନଲ ଦେଖ, (ପ୍ରା. ପୁରୀ. ବି) ଫୁଙ୍କନଳିଆ ଦେଖ ।

ଫୁଙ୍କନଳିଆ—ପ୍ରା.(ପୁରୀ)ବି. ପୁରୀଜିଲାର ବାହାଙ୍ଗା ବ୍ରାହ୍ମଣଶାସନର କୁଳୀନ ବ୍ରାହ୍ମଣମାନଙ୍କର ବିଶିଷ୍ଟତା ପରିଚାୟକ ସଂଜ୍ଞାବିଶେଷ ।

ଫୁଙ୍କବାଦ୍ୟ—ଗ୍ରା. ବି. କାହାଳିଆଦି ଯେଉଁ ଯନ୍ତ୍ରକୁ ଫୁଙ୍କି ବଜାଇବାକୁ ହୁଏ ।

ଫୁଙ୍କା—ଗ୍ରା. ବି. ଫୁଙ୍କ ଦେଖ, (ବିଂ) ମୁଖଦ୍ୱାରା ବାୟୁ ଭରିତ କରାଯାଇଥିବା ।

ଫୁଙ୍କା(ଙ୍କେ)ଇବା—ଗ୍ରା.କ୍ରି. ଅନ୍ୟଦ୍ୱାରା ଫୁଙ୍କିବା କ୍ରିୟା କରାଇବା ।

ଫୁଙ୍କାଝଡ଼ା—ଗ୍ରା. ବି. ମନ୍ତ୍ରୋଚ୍ଚାରଣ ପୂର୍ବକ (ଘା କମ୍ବା ରକତକୁ) ଫୁଙ୍କିବା, ଭୂତୋଚ୍ଚାରଣ କରିବା ।

ଫୁଙ୍କାଫୁଙ୍କି—ଗ୍ରା. ବି. ଫୁଙ୍କିବାପ୍ରକ୍ରିୟା, ଝଡ଼ାଫୁଙ୍କା ।

ଫୁଙ୍କିବା—ଗ୍ରା. କ୍ରି. ମୁହଁବାଟେ ପବନ ଗୁଡ଼ିବା,ଫୁତ୍କାର କରିବା,ମନ୍ତ୍ରୋଚ୍ଚାରଣ ପୂର୍ବକ ଘା, ରକତ ଓ ଭୂତାବିଷ୍ଟବ୍ୟକ୍ତିକୁ ଫୁଙ୍କିବା, ଦୁଗ୍ଧଦୁହିଁଲାବେଳେ ଦୁଷ୍ଟାମି କରୁଥିବା ଗାଈର ଦନାରେ ନାକ ଭରତ କରି ପବନ ଗୁଡ଼ିବା, ଗାଈ ଧରିବା, (ଲ.ଅର୍ଥ) ଧନକୁ ଅପବ୍ୟୟ କରିବା,ଗୁପ୍ତଭାବରେ ଅନ୍ୟର କାନରେ କୌଣସି କଥାକହିବା, (ଗୁରୁ)ଶିଷ୍ୟର କାନରେ ମନ୍ତ୍ରଦେବା, ଶଙ୍ଖ ବଂଶୀଆଦି ବଜାଇବା ।

ଫୁଙ୍ଗୁଲା—ଗ୍ରା. ବିଂ. (ଫ-ନଗ୍ନ) ଅନାବୃତଶରୀର,ଲଙ୍ଗଳା,ଇତସ୍ତତଃ ବିକ୍ଷିପ୍ତ ଫାଙ୍ଗୁଲା ଦେଖ ।

ଫୁଙ୍ଗେଲ୍—ପ୍ରା.(ସମ୍ବ)ବି. ଗ୍ଲେଟଗାଡ ।

ଫୁଙ୍ଗି—ଗ୍ରା.ବି. ବୌଦ୍ଧସନ୍ନ୍ୟାସୀ ବା ଭିକ୍ଷୁ ।

ଫୁଟ୍—ଗ୍ରା. ଅବ୍ୟ. ଫୁଟ୍‌ଫୁଟ୍ ଦେଖ ।

ଫୁଟ୍‌କର—ଗ୍ରା. ବିଂ. (ଫ-ସ୍ଫୁଟ)ପୃଥକ୍, କ୍ଷୁଦ୍ର, ବାଜେ, ଅଯୁଗ୍ମ (ସଂଖ୍ୟା) ।

ଫୁଟ୍‌କା—ଗ୍ରା. ବି. ଫୋଟକା ଦେଖ, (ପ୍ରା. ବାଲେ. ବି) ଫୁକ୍‌ନା ।

ଫୁଟ୍‌ଫାଟ୍—ଗ୍ରା.ବି. ଚୁପ୍‌ଚୁପ୍ କଥାବାର୍ତ୍ତା, ଭୁଟ୍‌ଭାଟ୍, ଏକାଧିକ ବ୍ୟକ୍ତିଙ୍କ ମଧ୍ୟରେ ଅନୁଚ୍ଚ କଥାବାର୍ତ୍ତା ଦ୍ୱାରା ଗୁପ୍ତକଥାର ପ୍ରକଟନ ।

ଫୁଟ୍‌ଫୁଟ୍—ଗ୍ରା. ଅବ୍ୟ. ଭାତଫୁଟିବାର ଶବ୍ଦ, (ଗ୍ରା. ବିଂ) ଟିକ୍‌ଟିକି,ଗ୍ଲେଟ ଗ୍ଲେଟ ଖଣ୍ଡ(ମାଂସାଦି) ।

ଫୁଟ୍‌ବଲ୍--ଗ୍ରା.ବି.ପଦାଘାତରେ ଖେଳିବା ଏକପ୍ରକାର ରବର ନିର୍ମିତ ପୋଲ ପେଣ୍ଡୁଖେଳ ।

ଫୁଟ—ବି. (ସ୍ଫୁଟ+କ.ଅ) ସର୍ପଫଣା ସାପଫେଣ, ଟୋପା, ଫୁଟିକାକୁଡ଼ି, ପ୍ରକାଶ, ଯେଉଁ ଦ୍ରବ୍ୟ ସାହାଯ୍ୟରେ ଧାତୁ ତରଳାଇବାକୁ ହୁଏ, (ଗ୍ରା.ବିଂ) ଗ୍ଲେଟ ଗ୍ଲେଟ(ମାଂସଖଣ୍ଡ),ଗାଡ଼ିରେ ବା ବଗିରେ ଲାଗିଥିବା ଏକୁଟିଆ(ଘୋଡ଼ା), (ଗ୍ରା.ବି) ବୀଜକୋଷ, ପଣସ, ଡାଳିମ୍ବ, ଲେମ୍ବୁଆଦିର ମଧ୍ୟସ୍ଥ ବୀଜପୂର୍ଣ୍ଣ କୋଷ', (ଫ-ବିଂ) ବିଦୀର୍ଣ୍ଣ, ପ୍ରସ୍ଫୁଟିତ ।

ଫୁଟ(ଟୁ)ଣ—ଗ୍ରା. ବି. ଫୁଟା ଦେଖ ।

ଫୁଟ(ଟୁ)ଣା—ଗ୍ରା. ବି. ବଘାରମସଲା, ହାଣ୍ଡିଫୁଟା ।

ଫୁଟନ୍ତ(ନ୍ତା)—ଗ୍ରା.ବିଂ. ପ୍ରସ୍ଫୁଟିତ,ଫୁଟିଥିବା, ବିକଶିତ,ଅଗ୍ନିଉତ୍ତାପରେ ଫୁଟୁଥିବା ।

ଫୁଟା—ଗ୍ରା.ବି.ଭାତ ଫୁଟିବା, ହାଣ୍ଡିଫୁଟା, ଫୁଟଣା ମସଲା, ଛିଦ୍ର, କଣା, ଫୁଲଫୁଟିବା, ଶରୀରକୁ ଲାଗିବା ବାଧା,ଶ୍ରମ, (ବିଂ) ପ୍ରସ୍ଫୁଟିତ ହୋଇଥିବା, ବିକଶିତ (ଫୁଲ), ଛିଦ୍ର ହୋଇଥିବା, ଫୁଟିଯାଇଥିବା ।

ଫୁଟା(ଟେ)ଇବା—ଗ୍ରା.କ୍ରି.ପ୍ରସ୍ଫୁଟିତ କରାଇବା, ବିକଶିତକରିବା, ଛିଦ୍ରକରିବା,ହାତ ଗୋଡ଼ର ଅଙ୍ଗୁଳିମାନ ମୋଡ଼ିବା ଦ୍ୱାରା ଫୁଟ୍‌ଫାଟ୍ ଶବ୍ଦ କରିବା,ଅଙ୍ଗୁଳି ସ୍ଫୋଟନ, ଭାତଆଦିକୁ ପାଣିରେ ସିଦ୍ଧ କରିବା, (ଶୋଭା) ପ୍ରକାଶିତ କରାଇବା, ବନ୍ଧୁକଆଦି ଫାଇର କରିବା ତରକାରୀଆଦିକୁ ବଘାରିବା, ବୁଝାଇବା,ବିସ୍ତାରିତ ରୂପେ ପ୍ରକାଶ କରିବା । [ ଦେଖ ।

ଫୁଟାଣ—ଗ୍ରା.ବି.ପ୍ରସ୍ଫୁଟିତ ହେବା,ଫୁଟଣା

ଫୁଟାଣି—ଗ୍ରା.ବି. ବୃଥା ଆଡ଼ମ୍ବର ବାକ୍ୟ, ଅହମିକା, ନବାବ ।

ଫୁଟାଲୁଗା—ଗ୍ରା.ବି. ଭିନ, ବିଧବାମାନେ ପିନ୍ଧିବା ଧଡ଼ି ନ ଥିବା ଲୁଗା ।

ଫୁଟି(ଟୀ)—ଗ୍ରା.ବି. ସ୍ୱନାମଖ୍ୟାତ ଲତାଫଳ, ଏକପ୍ରକାର କାକୁଡ଼ି, ଚିର୍ଭିଟି, ପ୍ରକାଶ, (ବିଂ)ସ୍ଫୁଟ, ପ୍ରକାଶିତ, ଖ୍ୟାତ, ପ୍ରକଟିତ, କ୍ଲାନ୍ତ, ଶ୍ରାନ୍ତ ।

ଫୁଟିଆ—ଗ୍ରା. ବିଂ. (ସଂଖ୍ୟାବାଚକ ଶବ୍ଦ ସଙ୍ଗେ ବ୍ୟବହୃତ) ଏତେ ଫୁଟ ପରିମିତ ।

ଫୁଟିଆଣି—ଗ୍ରା. ବି. ଭାତ ଫୁଟିବା ସମୟରେ ହାଣ୍ଡିରେ ଫୁଟୁଥିବା ଗରମ ପାଣି

ଫୁଟିଉଠିବା—ଗ୍ରା.କ୍ରି. (ଫ-ସ୍ଫୁଟିତ)ପ୍ରସ୍ଫୁଟିତ ହେବା, ବିକସିତ ହେବା, ସ୍ପଷ୍ଟ ରୂପେ ଦେଖାଯିବା ।

ଫୁଟିକା—ଗ୍ରା.ବି.ଆଣ୍ଠୁରୁ ବଲାଗଣ୍ଠି ପର୍ଯ୍ୟନ୍ତ ଗୋଡ଼ର ଅଂଶ, ନଦୀ ବା ଝର ନିକଟରେ ହେବା ବୃକ୍ଷବିଶେଷ ।

ଫୁଟିକାକୁଡ଼ି—ଗ୍ରା. ବି. ଫୁଟି ଦେଖ ।

ଫୁଟିକିଆ—ଗ୍ରା.ବିଂ. ଏକ ଫୁଟ ପରିମିତ ଲମ୍ବ ।

ଫୁଟିବା—ଗ୍ରା. କ୍ରି. ପ୍ରସ୍ଫୁଟିତ ହେବା, ଭୁକିବା, ଫୋଡ଼ହେବା, (ମୂନଆ ପଦାର୍ଥ ଦ୍ୱାରା) ବିଦ୍ଧ ହେବା, ବିଦ୍ଧକରିବା, କଣା ହେବା, ଛିଦ୍ରଯୁକ୍ତ ହେବା, (ଶୋଭା) ବିକଶିତ ହେବା, ସ୍ପଷ୍ଟ ରୂପେ ଦେଖାଯିବା, ଅଗ୍ନି ଉତ୍ତାପରେ ପାଣି ବୁଦ୍‌ବୁଦ୍‌ଯୁକ୍ତ ହୋଇ ଟକ୍‌ମକ୍ ଶବ୍ଦ କରିବା, କାଣଆଦି ଫୁଟା ଶବ୍ଦ କରି ଫଟିବା ହେବା, (ଚକ୍ଷୁ) ଦୃଷ୍ଟିଶକ୍ତି ହୀନ ହେବା, ବହୁସଂଖ୍ୟକ ଗ୍ରେଟ ମାଛ ଜଳର ଉପରି ସ୍ତରକୁ ଡେଇଁବା, (ଅଶ୍ଳୀଳ) ବାଳିକା ପ୍ରଥମେ ଋତୁମତୀ ହେବା, ଧାନକୁ ଭାଜିଲେ ଧାନର ଚୋପା ବିଦୀର୍ଣ୍ଣ ହୋଇ ଲିଆରେ ପରିଣତ ହେବା, ପ୍ରକଟିତ ହେବା, ବ୍ରଣମୟ ହେବା, ଛିଦ୍ରମୟ ହେବା, ଭ୍ରାନ୍ତହେବା, ଅଙ୍କୁରିବା, ଆବରଣ ମଧ୍ୟରୁ ଫିଟି ବାହାରିପଡ଼ିବା, ଜାତହେବା, ଜନ୍ମହେବା, ପୀଡ଼ାକରିବା, ବିନ୍ଧହେବା।

ଫୁଟୀ—ଗ୍ରା.ବି. କାକୁଡ଼ି ଜାତୀୟ ଲତାଫଳବିଶେଷ, ଚିର୍ଭିଟୀ।

ଫୁଟୁକା—ଗ୍ରା. ବି. ଫୋଟକା ଦେଖ।

ଫୁଟୁକି—ଗ୍ରା.ବି.ଆଙ୍ଗୁଠି ଫୁଟାଇବାର ଶବ୍ଦ, କରତଳକୁ ପାତ୍ରାକାର କରି ଦେହର ମାଂସଳ ଅଂଶରେ ଚାପିପଡ଼ାଇବାର ଶବ୍ଦ।

ଫୁଟୁକିମାରିଦେବା—ଗ୍ରା. କ୍ରି. (ଲ.ଅର୍ଥ) କୌଣସି ବିଷୟକୁ ଶୁଣି ନ ଶୁଣିଲା ପରି କରି ବେଖାତିର କରିବା।

ଫୁଟୁକୁରିଆ—ଗ୍ରା. ବିଂ. ଗ୍ରେଟ, କ୍ଷୁଦ୍ର।

ଫୁଟୁଫୁଟୁକା—ଗ୍ରା. ବି. ( ସଂ-କଟଭୀ ) ବନ୍ୟପ୍ରଡାମୀ ଲତାବିଶେଷ, ଅନାରି ପୋଇ, (ଗ୍ରା.ବିଂ) ବିରି ବିରି ହୋଇ ଦେହରେ ଫଳ ଯାଇଥିବା, ଛିପିଛିପିକିଆ, ବହୁ ଛିଦ୍ରଯୁକ୍ତ।

ଫୁଟୁରୁଫୁଟୁରୁ ବା ଫୁସୁରୁଫୁସୁରୁହେବା-ଗ୍ରା. କ୍ରି. ଗୋପନରେ ଧୀରେ ଧୀରେ କଥାବାର୍ତ୍ତା ହେବା।

ଫୁଡ଼୍‌ଫୁଡ଼୍—ଗ୍ରା,ଅବ୍ୟ, ଫଡ଼୍‌ଫଡ଼୍ ଠାରୁ ଅଳ୍ପ ଶବ୍ଦ।

ଫୁତ୍—ଅବ୍ୟ.(ସ୍ଫୁର+ଭା.କ୍ୱିପ୍)ଧିକ୍କାର, ମୁଖରେ ଫୁଙ୍କିବା ଶବ୍ଦ, ତୁଚ୍ଛଭାଷଣ।

ଫୁ(ଫୂ)ତ୍କର—ବି. (ଫୁତ୍+କୃ+କ. ଅ) ଅଗ୍ନି।

ଫୁତ୍କାର—ବି. (ଫୁତ୍+କୃ+ଭା.ଅ) ଫୁଙ୍କିବା, ଫଁ ଫଁ ଶବ୍ଦ, ଧିକ୍କାର, ଘୃଣାପ୍ରଦର୍ଶନ।

ଫୁତ୍କୃତ—ବି. ଫୁତ୍କାର ଦେଖ।

ଫୁତ୍ନି—ପ୍ରା.(ବାଲେ)ବିଂ. ଅତି କ୍ଷୁଦ୍ର।

ଫୁନିବା—ପ୍ରା.(କଳାହାଣ୍ଡି)ବି. ପାଚୁଡ଼ିବା।

ଫୁପ୍‌ଫୁସ୍—ପୁଂ. ବି. କୋଷ୍ଠବିଶେଷ, ହୃଦୟସ୍ଥ ଶ୍ୱାସଯନ୍ତ୍ର।

ଫୁପା(ପ୍ପା,ଫା)—ଯା. ପୁଂ. ବି. (ମୁସଲମାନୀ ଭାଷା) ପିଉସା।

ଫୁପ୍ପୀ(ଫୀ)—ଗ୍ରା.ବି. ମୁଣ୍ଡର ରୂପୀରୋଗ, ଫିମ୍ପି, ଫଙ୍କୁ, ପୋକକଟା କାଠର ଗୁଣ୍ଡ, (ବିଂ) ଖଡଗ, କୀଟଦଷ୍ଟ। [ ପୁଅ।

ଫୁପୁ(ଫୂ)—ଗ୍ରା.ବି.ଶୁଉଡୁଆ ଓ ଦେଢ଼ୁଆ-

ଫୁପ ଫୁସ—ବି. ଫୁସ୍‌ଫୁସ୍ ଦେଖ।

ଫୁଫଲ—ପ୍ରା.(ସମ୍ବ)ବିଂ.ପାକୁଆ, ଦନ୍ତହୀନ। [ ଧାଉ।

ଫୁଫୁ—ଗ୍ରା.ବି.ସର୍ପମାନଙ୍କର ଶବ୍ଦ, (ସ୍ତ୍ରୀ)

ଫୁଫୁକାର—ଗ୍ରା. ବି. ଫୁଁ ଫୁଁ ଶବ୍ଦ।

ଫୁର୍—ଗ୍ରା. ଅବ୍ୟ. ଫୁରୁଫୁରୁ ଦେଖ, ଫୁରର୍ ଦେଖ।

ଫୁର୍‌ଫୁରିଆ—ଗ୍ରା.ବି.ଘାସପରି ବୋରଝାଞ୍ଜି ଉପରେ ମାଡ଼ିବା ଦଳବିଶେଷ।

ଫୁରର୍—ଗ୍ରା. ଅବ୍ୟ. ଗ୍ରେଟ ଚଢ଼େଇ ଉଡ଼ିଯିବାର ଶବ୍ଦ।

ଫୁରଲ୍ଲ—ପ୍ରା. (ବାମଣ୍ଡା)ବି. ଛତ୍ରୁଦା।

ଫୁରସ(ସେ)ତ—ଯା. ବି. ଅବକାଶ, ସୁବିଧା, ବିଶ୍ରାମ।

ଫୁରସ—ଗ୍ରା. ବି. ଫାରସୀ କୋଳି, ଉଦ୍ୟାନଜାତ ପୁଷ୍ପ କ୍ଷୁପବିଶେଷ।

ଫୁରସା(ସେ)ଇବା—ଗ୍ରା.କ୍ରି. ଫୁରସିବା କ୍ରିୟାର ଣିଜନ୍ତରୂପ, ଜଳ ବାୟୁ ବା ଅଗ୍ନି ସାହାଯ୍ୟରେ ଚୂନ ବା ଅଙ୍ଗମର ସହିତ ପୃଥକ୍ କରିବା, ( ଛେଳିର ) ଚମଡ଼ା ନିଆଁରେ ପକାଇ ରୋମକୁ ପୋଡ଼ିବା।

ଫୁରସିବା—ଗ୍ରା.କ୍ରି. ଗୋଟା ବାନ୍ଧିଥିବା ଚୂନ ସିପଆଦି ବାୟୁ ପ୍ରଭାବରେ ଚୂର୍ଣ୍ଣୀଭୂତ ହେବା, ଆମ୍ବଆଦିର ଫୁଲ କହୁଡ଼ି ଆଦି ଦ୍ୱାରା ନଷ୍ଟ ହେବା।

ଫୁରି—ଗ୍ରା. ବି. ଗ୍ରେଟ ଗ୍ରେଟ କାଠିର ସମୂହ, ଗ୍ରେଟ ଡାଳଆ କାଠ, ରଞ୍ଜି।

ଫୁରୁକୁଟିଆ—ଗ୍ରା. ବିଂ. ମୁର୍ଦ୍ଦାର, ଚର୍ବି, ଚମ, କେଶଆଦି ପୋଡ଼ିବା ଦ୍ୱାରା ଜାତ (ଗନ୍ଧ)।

ଫରୁଫୁରି—ଗ୍ରା.ବି. (ସଂ-ପର୍ପଟ) ଗଛର ଶୁଖିଲା ଛାଲି, ତେନ୍ତୁଳି, ପଣସ, ଭଇଁଷ, ଅଶ୍ୱତ୍ଥଆଦି ବୃକ୍ଷର ଗଣ୍ଡିର ବକଳା ଉପରେ ଜାତ ହେବା ପତଳା ଶୁଖିଲା ଛାଲି।

ଫରୁଫରୁ—ଗ୍ରା.ଅବ୍ୟ. ପତଳା ଲୁଗାଆଦି ଚିରିଯିବାର ଶବ୍ଦ, ଝୋଟଆଦିରେ ନିଆଁ ଲାଗିବାର ଶବ୍ଦ, କାଠିକୁଟାଆଦି ଜଳିବା ପ୍ରକାରେ, ତୈଳବିହୀନ କେଶଗୁଚ୍ଛ ପବନରେ ଉଡ଼ିବା ପ୍ରକାରେ।

ଫୁରୁଣା—ଗ୍ରା.ବିଂ. (ସଂ-ସ୍ଫୁରଣ)ପ୍ରଫୁଲ୍ଲ, ଆନନ୍ଦିତ, ଭାଗ୍ୟବାନ୍, ପୂର୍ଣ୍ଣମନୋରଥ, ସ୍ଫୁର୍ତ୍ତିଯୁକ୍ତ; (ବି) ଆନନ୍ଦ, ଫୁଲ୍ଲପଣ।

ଫୁଲ୍‌ଉଶାସ--ପ୍ରା.ସମ୍ବ.ବିଂ. ଅତି ହାଲୁକା

ଫୁଲ୍‌କା—ଗ୍ରା. ବି. ମଲ୍ଲ କ୍ରୀଡ଼ାପାଇଁ ଘେରହୋଇଥିବା ସ୍ଥାନ, (ପ୍ରା.ବାଲେ. ବି)ମାଛର ଗାଲସି, ଏକଜାତୀୟ ବଲଘାସ, (ଗ୍ରା.ବିଂ) ସ୍ଫୀତ, ଫୁଲିଥିବା।

ଫୁଲ—ଗ୍ରା.ବି. (ସଂ-ଫୁଲ୍ଲ) ପୁଷ୍ପ, ପ୍ରସୂନ, କୁସୁମ, ଜରାୟୁ ମଧ୍ୟସ୍ଥ ଭ୍ରୂଣର ନାଭିସଙ୍ଗେ ସଂଯୁକ୍ତ ପୁଷ୍ପାକୃତି ମାଂସପିଣ୍ଡ, ଫୁଲ ଆକାରରେ ଅଙ୍କିତ ଚିତ୍ର ବା କାରୁକାର୍ଯ୍ୟ, ପରସ୍ରବ, ରସାୟନିକ ପ୍ରକ୍ରିୟାରେ ପ୍ରସ୍ତୁତ(ପିପରମେଣ୍ଟଆଦିର) ଦାନା, ସ୍ତ୍ରୀରଜଃ, ମାଛର ଗାଲସି, ଫୁଲ ଆକାରର ଅଳଙ୍କାର, (ବିଂ)ଫୁଲପରି ଉଶ୍ୱାସ, ଖୁବ୍ ହାଲୁକା।

ଫୁଲଝଡ଼ା(ଡ଼େ)ଇବା—ଗ୍ରା.କ୍ରି. (ଧାନ-

ଗଛ) ପୁଷ୍ପଯୁକ୍ତ ହେବା ।

ଫୁଲକଷି—ଗ୍ରା.ବି. (ସଂ-ଫୁଲ୍ଲ+କଷାୟ) ଏକାଗଛରେ ଧରିଥିବା ଫୁଲ ଓ କଷି ବା ଛୋଟଫଳ, ଅତି ଛୋଟଫଳ ।

ଫୁଲକାଟିବା—ଗ୍ରା. କ୍ରି. କୃତ୍ରିମପୁଷ୍ପ ରଚନା କରିବା,(ସୋଲ ବା କାଗଜ-ଆଦିରେ)ଫୁଲଆକୃତିପରି ବସ୍ତୁ ପ୍ରସ୍ତୁତ କରିବା,କାଗଜରେ ପୁଷ୍ପର ଚିତ୍ର ଅଙ୍କନ କରିବା ।

ଫୁଲକାମ—ଗ୍ରା.ବି. କାଗଜ ଓ ସୋଲ-ଆଦିରେ ପ୍ରସ୍ତୁତ କୃତ୍ରିମଫୁଲ, ଲୁଗା-ଆଦିରେ ଫୁଲର ଚିତ୍ରଯୁକ୍ତ କାରୁକାର୍ଯ୍ୟ ।

ଫୁଲକନାରି—ଗ୍ରା.ବିଂ. ଧଡ଼ିରେ ଫୁଲ-ପରି ଚିତ୍ରକାର୍ଯ୍ୟ ବୁଣାଯାଇଥିବା(ଲୁଗା)

ଫୁଲକୋଦଣ୍ଡ--ଗ୍ରା.ବି.ଫୁଲଧନୁ ଦେଖ ।

ଫୁଲକୋବି—ଗ୍ରା.ବି.(ସଂ-ଫୁଲ୍ଲ+ଫା—ଗୋଭି) ପତ୍ରବେଷ୍ଟିତ ଛତ୍ରାକୃତି ବୃହତ୍ କେଶରଯୁକ୍ତ ବୈଦେଶିକ ଶାକ-ବିଶେଷ ।

ଫୁଲଖଡ଼ି—ଗ୍ରା. ବି. ଚକ୍‌ଖଡ଼ି ।

ଫୁଲଗନ୍ଧକ—ବି. ଏକପ୍ରକାର ଗନ୍ଧକ ।

ଫୁଲଗଭା—ଗ୍ରା.ବି. (ସଂ-ଫୁଲ୍ଲ+ଗର୍ଭକ) ଗୁଚ୍ଛାହୋଇଥିବା ଫୁଲର ଗୁଚ୍ଛ ।

ଫୁଲଗୁଣା—ଗ୍ରା. ବି. ନାକରେ ପିନ୍ଧା-ଯିବା ଅଳଂକାର ବିଶେଷ ।

ଫୁଲଚଢ଼ା(ହୋ)ଇବା—ଗ୍ରା.କ୍ରି. ଦେବ-ପ୍ରତିମାଙ୍କ ଉପରେ ପୁଷ୍ପ ଅର୍ପଣକରିବା ।

ଫୁଲଚନ୍ଦନ—ଗ୍ରା. ବି. ଫୁଲଚନ୍ଦନାଦି ଦେବପୂଜୋପକରଣ ବିଶେଷ ।

ଫୁଲଚୁଇଁ—ଗ୍ରା.ବି. (ସଂ-ଫୁଲ୍ଲ+ଚ୍ରେଷୀ) ଶାଖାଶ୍ରୟୀ ବର୍ଗର ପୁଷ୍ପମଧୁପାୟୀ କ୍ଷୁଦ୍ର ପକ୍ଷିବିଶେଷ ।

ଫୁଲଛଉ—ଗ୍ରା. ବି. ଯୁବାବୟସରେ ଦେହରେ ମାଡ଼ିଯିବା ଢଳାଛଉ,ବୟସ-ଛଉ ।

ଫୁଲଝୁଞ୍ଜୁଣୀ—ଗ୍ରା.ବି. ଫୁଲଝାଡ଼ୁ ଦେଖ ।

ଫୁଲଝଡ଼ିବା—ଗ୍ରା. କ୍ରି. ଗଛରୁ ଶୁଖିଁ ଫୁଲ ଖସିପଡ଼ିବା ।

ଫୁଲଝରା—ଗ୍ରା. ବି. ଫୁଲ ଗୁଚ୍ଛାହୋଇ ଝୁଆର ହୋଇଥିବା ଗୁଚ୍ଛ ।

ଫୁଲଝାଡ଼—ଗ୍ରା. ବି. ବୃକ୍ଷ ବା ଦୀପବୃକ୍ଷ ଆକାରରେ ସଜ୍ଜିତ କୃତ୍ରିମ ପୁଷ୍ପଗୁଚ୍ଛ ।

ଫୁଲଝାଡ଼ୁ—ଗ୍ରା. ବି. ଫୁଲ ବା ଛୁଣି ତୃଣର ଡେମ୍ଫ ଏକତ୍ର ବନ୍ଧାହୋଇଥିବା ସମ୍ମାର୍ଜନୀ ।

ଫୁଲଟାହୁଆ—ଗ୍ରା. ବି. ସରୁ ବାଉଁଶ କାଠିରେ ଗୁନ୍ଥା ହୋଇଥିବା ମୟୂରପୁଚ୍ଛ ଆକାରର ସଜ୍ଜିତ ପୁଷ୍ପମାନ ।

ଫୁଲଠାର—ଗ୍ରା.ବି.କେତେକ ଫୁଲର ନାମୋଚ୍ଚାରଣ ଦ୍ୱାରା କଥିତ ଏକପ୍ରକାର ଠାର ବା ସାଙ୍କେତିକ ଭାଷା, ବାକ୍ୟସ୍ଥ ଅକ୍ଷରମାନଙ୍କ ମଧ୍ୟରେ 'ଫୁଲ୍' ଶବ୍ଦ ପ୍ରୟୋଗ କରି ବାକ୍ୟ ପ୍ରକାଶ କରି-ବାର ଏକପ୍ରକାର ଠାର ।

ଫୁଲଡ଼(ଡା)ଲା—ଗ୍ରା. ବି. ଯେଉଁ ଗୃଙ୍ଗ-ଡ଼ାରେ ଫୁଲ ସଜାହୋଇ ଥାଏ ।

ଫୁଲତୋଡ଼ା—ଗ୍ରା.ବି. ଫୁଲଗଭା ଦେଖ

ଫୁଲତୋଳା—ଗ୍ରା. ବି. ଫୁଲତୋଳିବା କାର୍ଯ୍ୟ, ପୁଷ୍ପଚୟନ, ଏହି ନାମକ ଏକ ପ୍ରାଚୀନ ଓଡ଼ିଆ ଗୀତମାଳା ।

ଫୁଲଦାନ୍(ନୀ)—ଯା. ବି. ପୁଷ୍ପାଧାର, ପୁଷ୍ପଗୁଚ୍ଛ ସଜାଇ ରଖିବାର ପାତ୍ର ।

ଫୁଲଦାର୍—ଯା. ବିଂ. ଫୁଲର ଚିତ୍ର-ସମ୍ବଳିତ ।

ଫୁଲଧନୁ—ଗ୍ରା.ବି. (ସଂ-ଫୁଲ୍ଲ+ଧନୁସ୍) ପୁଷ୍ପଧନ୍ୱା, କନ୍ଦର୍ପ, କାମଦେବ, କାମ-ଦେବଙ୍କ କଳ୍ପିତ ପୁଷ୍ପନିର୍ମିତ ଧନୁ ଓ ଶର

ଫୁଲଧରିବା—ଗ୍ରା.ବି. ଗଛରେ ପୁଷ୍ପୋ-ଦ୍ଗମହେବା ।

ଫୁଲପଡ଼ିବା—ଗ୍ରା.ବି. ଶିଶୁଜନ୍ମ ହେବା-ପରେ ମାତୃଗର୍ଭରୁ ଫୁଲ ନିଃସୃତହେବା

ଫୁଲପତ୍ରକରିଟେକିଧରିବା—ଗ୍ରା. କ୍ରି. (ଲ.ଅର୍ଥ) ଅତ୍ୟନ୍ତ ଆଦର ଓ ସ୍ନେହ କରିବା, କୋମଳ ବ୍ୟବହାର କରିବା

ଫୁଲପରି—ଗ୍ରା.ବିଂ. ଅତି କୋମଳ,ଅତି ଉଜ୍ଜ୍ୱଳ, ସୁନ୍ଦର ।

ଫୁଲପିତାଖାଇଆସିବା—ପ୍ରା. ଗଞ୍ଜା,କ୍ରି. କନ୍ୟାରଜସ୍ୱଳା ହୋଇ ସ୍ୱାମିଗୃହକୁ ପ୍ରଥମଥର ଯାଇ କିଛିଦିନ ସ୍ୱାମିଙ୍କ ଘରେ ରହିବା ପରେ ବାପଘରକୁ ଲେଉଟି ଆସିବା, (ପ୍ରା. ଯାଜ. ବି) ରଜସ୍ୱଳା କନ୍ୟା ପ୍ରଥମଥର ଶାଶୁଘରକୁ ଯିବା ।

ଫୁଲବସିବା—ଗ୍ରା. କ୍ରି. ପରସ୍ପର ଫୁଲ ଦିଆ ଦେଇ ହୋଇ ଫୁଲ 'ଡକାଡକି' ହେବା ରୂପ ସମ୍ବନ୍ଧ ସ୍ଥାପନ କରିବା ।

ଫୁଲପିତା—ପ୍ରା. ପୁରୀ. ବିଂ. ରଜସ୍ୱଳା ହୋଇ ସ୍ୱାମୀଙ୍କଗୃହକୁ ଯିବା ପୂର୍ବରୁ ବାପଘରେ ରହିଥିବା (ବାଳିକା) ।

ଫୁଲଫୁଟିବା--ଗ୍ରା.କ୍ରି.ପୁଷ୍ପ ବିକଶିତହେବା, ପ୍ରସ୍ଫୁଟିତହେବା ।

ଫୁଲବଗଡ଼ୀ—ଗ୍ରା.ସ୍ତ୍ରୀ.ବିଂ.ଯେଉଁ ସ୍ତ୍ରୀର ଅକାଳରେ ଗର୍ଭପାତ ହୁଏ ।

ଫୁଲବଗିଚ୍ଚ—ଗ୍ରା. ବି. ପୁଷ୍ପୋଦ୍ୟାନ ।

ଫୁଲବଡ଼ି—ଗ୍ରା. ବି. (ସଂ-ଫୁଲ୍ଲ+ବଟକ) ଫେଣା ହୋଇଥିବା ବଟା ବିରି ବା ମୁଗ ଦ୍ୱାରା ପ୍ରସ୍ତୁତ ଖରାଶୁଖା ଛୋଟ ଛୋଟ ବଡ଼ି ।

ଫୁଲବାହା—ଗ୍ରା.ବି.(ସଂ-ଫୁଲ୍ଲ+ବିବାହ) ଫୁଲମାଳା ଦେଇ ପତ୍ନୀ ଗ୍ରହଣକରିବା ପ୍ରଥା ।

ଫୁଲ(ଶ୍ୱବାସ୍ତ୍ରୀ)ବେସ୍ତ୍ରୀ—ଗ୍ରା.ସ୍ତ୍ରୀ.ବି. ରାଜା-ମାନଙ୍କର ରକ୍ଷିତା ସ୍ୱଜାତୀୟା ସ୍ତ୍ରୀ ବିଶେଷ

ଫୁଲବୁକୁ—ଗ୍ରା. ବି. କଲିଜା, ଛାଗାଦି ପଶୁର ଯକୃତ ।

ଫୁଲରା—ଗ୍ରା. ବିଂ. ଫୁଲବ୍ୟବସାୟୀ, ଯେ ଫୁଲ ବିକେ, ( ବି ) ଫୁଲମାଳି, ଜାତି ବିଶେଷ ।

ଫୁଲ(ଲ୍ଲ)ରି—ଗ୍ରା.ବି. ତେଲ ବା ଘିଅରେ ଛଣା ହୋଇଥିବା ପିଷ୍ଟକ ବିଶେଷ, ପୁଷ୍ପବାସିତ ତୈଳ, ଫୁଲସମୂହ ।

ଫୁଲରିଅମାବାସ୍ୟା—ଗ୍ରା. ବି. ମହାଳୟା ଅମାବାସ୍ୟା ।

ଫୁଲରିତେଲ—ଗ୍ରା.ବି.ପୁଷ୍ପବାସିତତୈଳ

ଫୁଲଶଯ୍ୟା—ଗ୍ରା. ବି. ପୁଷ୍ପ ବିସ୍ତୃତଶଯ୍ୟା, ମଧୁଶଯ୍ୟା ।

ଫୁଲଶର—ଗ୍ରା. ବି. ଇଙ୍କଡ଼ ଜାତୀୟ ଜଙ୍ଗଲି ତୃଣ ବିଶେଷ ।

ଫୁଲଶାଗୁଣା—ଗ୍ରା. ବ.ଗୃଧ୍ରସ୍ତ୍ରୀ,ମାଈଗିରଧ
ଫୁଲସଞ୍ଜ(ନ୍ଧ୍ୟା)—ଗ୍ରା.ବ. ସନ୍ଧ୍ୟାର ଆରମ୍ଭ ଅବସ୍ଥା, ମୁହଁସନ୍ଧ୍ୟା ।
ଫୁଲସନ୍ଧ—ଗ୍ରା. ବ. ବରବଧୂ ଓ ବ୍ରତଧନ ସନ୍ଧ୍ୟାରେ ବୈଦିକବ୍ରାହ୍ମଣ ଓ ପଣ୍ଡିତମାନଙ୍କର ଆଶୀର୍ବାଦ ସନ୍ଧ ।
ଫୁଲା—ଗ୍ରା. ବ. ସ୍ଫୀତ, ଶୋଥ, ଆଧ୍ମାନ, ଆଖିର କଳାଡୋଳାରେ ମାଡ଼ିଯିବା ପରଳ, ଚକ୍ଷୁରୋଗ ବିଶେଷ, ବେଙ୍ଗଗର୍ଭରୁ ଜାତ ବୁଦ୍‌ବୁଦ୍‌ମୟ ଫେନ, ବେଙ୍ଗଫୁଲ, ବେଙ୍ଗପୁଞ୍ଚି, ଲାଙ୍ଗୁଳ ଯୁକ୍ତ ବେଙ୍ଗଛୁଆ, ମସଲାପାଣିରେ ସିଝିବାରୁ ଫୁଲିଥିବା ବଡ଼ାଭଅଣ, ବଡାଫୁଲ,(ବି°) ଫୁଲିଥିବା,ସ୍ଫୀତ, ଗର୍ବସ୍ଫୀତ,(ପ୍ରା-ବସ୍ତ୍ରର ବ) ବଥ ।
ଫୁଲାଇବା—ଗ୍ରା. କ୍ରି. ସ୍ଫୀତକରିବା,ଗର୍ବିତ ହେବା, ପୁଲକିତ କରିବା ।
ଫୁଲାଣ—ଗ୍ରା, ବ. ଫୁଲାଇବା କ୍ରିୟା ।
ଫୁଲାଣିଆ—ଗ୍ରା. ବି°. ଫୁଲିଥିବା, ସ୍ଫୀତ, ଗର୍ବଯୁକ୍ତ, ଦାୟିତ୍ୱଜ୍ଞାନ ଶୂନ୍ୟ,ନିଶ୍ଚିନ୍ତ, ଫୁଲିଥିବାର ଦେଖାଯାଉଥିବା ।
ଫୁଲାପଣ—ଗ୍ରା. ବ. ସ୍ଫୀତ, ଗର୍ବସ୍ଫୀତ, ଅତ୍ୟନ୍ତ ଗର୍ବ ବା ଅହଙ୍କାର ।
ଫୁଲାଫାଙ୍କିଆ—ଗ୍ରା.ବି°.ଗର୍ବିତ, ଅଳସୁଆ, ପରର ଗଳଗ୍ରହ, ଦାୟିତ୍ୱଜ୍ଞାନ ଶୂନ୍ୟ ।
ଫୁଲି—ଗ୍ରା. ବ. ସୁନା ବା ପାଟନିର୍ମିତ ପୁଷ୍ପାକାର ଗୁଚ୍ଛ, ପାଟଝୁମ୍ପା, ନାକର ଅଳଙ୍କାର ବିଶେଷ,ବଣାର ଗୁରୁଭାଗରୁ ଏକଭାଗ,ବଣାର ୫, ୧୦, ୧୫, ୨୦ ପଲର ଗାରଉପରେ ଦିଆଯାଇଥିବା ଛୋଟଚକ୍ର, କାନ୍ଦକୁସ, ଚାଖ ।
ଫୁଲିତ—ଗ୍ରା. ବି°. ଫୁଲିଥିବା ।
ଫୁଲିବା—ଗ୍ରା. କ୍ରି.ସ୍ଫୀତହେବା,ମୋଟାହେବା, ଗର୍ବସ୍ଫୀତ ହେବା ।
ଫୁଲୁକା—ଗ୍ରା. ବି°. ସ୍ଫୀତ, ଫୁଲିଥିବା, ସ୍ଥୂଳକାୟ, (ସ୍ତ୍ରୀ) ଫୁଲୁକୀ ।
ଫୁଲୁକାଗାଲିଆ—ଗ୍ରା. ବି°. ଯାହାର ଗାଲ ଫୁଲିଥାଏ, (ସ୍ତ୍ରୀ) ଫୁଲୁକୀଗାଲୀ ।
ଫୁଲୁକାମୁହାଁ—ଗ୍ରା. ପୁ°. ବି°. ଯାହାର ମୁହଁ ଫୁଲିଥାଏ, ଶୋଥମୁହାଁ, (ସ୍ତ୍ରୀ) ଫୁଲୁକୀମୁହାଁ ।
ଫୁଲ୍‌ଫୁଲିଆ—ଗ୍ରା.ବି°.ପୁଷ୍ପସଦୃଶ, ଫୁଲପର ମନୋହର, ଫୁଲପର ଉଚ୍ଛ୍ୱାସ, ସୁକୁମାର ଓ କୋମଳ ।
ଫୁଲ୍‌ଫୁଲୁଣିଆ—ଗ୍ରା. ବି°. ଫୁଲିଥିବା, ଫୁଲୁକା, ଫୁଲିଥିବାର ଦେଖାଯାଉଥିବା
ଫୁଲେଇହେବା—ଗ୍ରା. କ୍ରି. ଅଭିମାନ କରିବା, ଗର୍ବିତହେବା, ଆତ୍ମବଡ଼ିମା ପ୍ରକାଶ କରିବା ।
ଫୁଲ୍ଲା—ଗ୍ରା. ବ. ମାଛର ଗାଲସି ।
ଫୁଲ୍ଲ—ବ.(ଫୁଲ୍ଲ+କ.ଅ)ଫୁଲ,ପୁଷ୍ପ,(ବି°) ମୁକୁଳିତ, ପ୍ରସ୍ଫୁଟିତ, ବିକଶିତ, ପ୍ରଫୁଲ୍ଲ ।
ଫୁଲ୍ଲଫାଳ—ବ. ସୂର୍ପବାତ, କୁଲାବାଆ ।
ଫୁଲ୍ଲରା—ଗ୍ରା.ବ. କାଳକେତୁ ବ୍ୟାଧର ସ୍ତ୍ରୀ
ଫୁଲ୍ଲଲୋଚନ—ପୁ°. ବ. (ବ.ବ୍ରୀ) ମୃଗବିଶେଷ, (ବି°. ବ.ବ୍ରୀ) ପ୍ରଫୁଲ୍ଲନୟନ, ପ୍ରଫୁଲ୍ଲନେତ୍ରଯୁକ୍ତ ।
ଫୁଲ୍ଲାଧର—ପୁ°.ବି°.(ବ.ବ୍ରୀ)ପ୍ରଫୁଲ୍ଲବଦନ, ହାସ୍ୟମୁଖ ।
ଫୁଲ୍ଲାରବିନ୍ଦ—ବ.(କ.ଧା)ପ୍ରସ୍ଫୁଟିତ ପଦ୍ମ ।
ଫୁଲ୍ଲେନ୍ଦୀବର—ବ. ( କ.ଧା ) ପ୍ରସ୍ଫୁଟିତ ନୀଳକଇଁ ।
ଫୁଲ୍ଲେନ୍ଦୁ—ପୁ°. ବ. (କ.ଧା) ପୂର୍ଣ୍ଣଚନ୍ଦ୍ର ।
ଫୁଷ୍‌କେଲ୍—ପ୍ରା. ସମ୍ବ. ବ. (ଙ୍କ-ପୁଷ୍କର) ପଦ୍ମପୁଷ୍କର ।
ଫୁସ୍—ଗ୍ରା. ଅବ୍ୟ. ( ତୁଚ୍ଛାର୍ଥକ ) ଧିକ୍, (ବ) ଧୀରଭାବରେ ଗହ୍ୱରରୁ ବା ମୁଖରୁ ପବନ ବାହାରି ଯିବାର ଶବ୍ଦ, ପାଡ଼ିବାର ଅନୁଚ୍ଚ ଶବ୍ଦ ।
ଫୁସ୍‌କି—ପ୍ରା.(ସମ୍ବ)ବ.ପିମ୍ପିଲ ପରି ବ୍ରଣ ।
ଫୁସ୍‌ଫୁସ୍—ଗ୍ରା.ବ.ଫୁସ୍ଫୁସ ଦେଖ, (ଅବ୍ୟ) ଫୁସୁରୁଫୁସୁରୁ ଦେଖ ।
ଫୁସା—ପ୍ରା. (ବାଲେ)ବ. (ଅଶ୍ଳୀଳ) ମଳଦ୍ୱାର, ଝିଙ୍ଗକା ।
ଫୁସି—ଗ୍ରା. ଓ ପ୍ରା(ଗଞ୍ଜା)-ବି°. ନିର୍ଦ୍ଧନ, ଦରିଦ୍ର, ତୁଚ୍ଛ, ହେୟ, କୃପଣ, ଘୃଣାବ୍ୟଞ୍ଜକ ଶବ୍ଦ ।
ଫୁସୁକିଯିବା—ଗ୍ରା.କ୍ରି.(କୌଣସି କାର୍ଯ୍ୟ) ନିଷ୍ଫଳ ହେବା, ଫସକିଯିବା ।
ଫୁସୁରୁଫୁସୁରୁ—ଗ୍ରା. ଅବ୍ୟ. ଖୁବ୍ ଚୁପ୍‌ଚୁପ୍ କଥାବାର୍ତ୍ତା ହେବାର ଢଙ୍ଗ ।
ଫୁସୁଲା(ଲେ)ଇବା—ଗ୍ରା. କ୍ରି. (ଙ୍କ-ପ୍ର+ସରଣ)କୋମଳ କଥା ଦ୍ୱାରା ଭୁଲାଇବା, ଭଣ୍ଡାଇବା, ପ୍ରଲୋଭନ ଦେଖାଇବା ।
ଫୁସୁଲାଫୁସୁଲ—ଗ୍ରା. ବ. ଭଣ୍ଡିବା, କଥା ଦ୍ୱାରା ଭୁଲାଇବା, ପ୍ରଲୋଭନ ଦେଖାଇ ପ୍ରବର୍ତ୍ତାଇବାର ଚେଷ୍ଟା ।
ଫୁସ୍ଫୁସ—ବି. ଫୁସ୍‌ଫୁସ୍ ଯନ୍ତ୍ର, ହୃଦୟସ୍ଥ ମଧ୍ୟସ୍ଥ ବାୟୁ ପାତ୍ର ।
ଫୂର୍ତ୍ତି—ଗ୍ରା. ବ. ( ଙ୍କ-ସ୍ଫୂର୍ତ୍ତି ) ତେଜ, ଉଲ୍ଲାସ, ଆନନ୍ଦ, ଗୃଞ୍ଝଳା, ସ୍ଫୁରଣ, ଆମୋଦ, ମନର ଆନନ୍ଦ,(ବି°)ତେଜୀୟାନ୍, ଉଲ୍ଲସିତ, ଚଳାକ, ଚଞ୍ଚଳ, ତତ୍ପର, ତ୍ୱରନ୍ତ, (କ୍ରି. ବି°) ଶୀଘ୍ର, ବେଗରେ, ତତ୍‌କ୍ଷଣାତ୍ ।
ଫୂର୍ତ୍ତିକରିବା—ଗ୍ରା.କ୍ରି. ଆନନ୍ଦିତହେବା, ମଉଜ କରିବା,ତତ୍ପରତା ସହିତ କାର୍ଯ୍ୟ କରିବା, ଚଞ୍ଚଳିଆ ହେବା ।
ଫୂର୍ତ୍ତିଦେଖାଇବା—ଗ୍ରା. କ୍ରି. କାର୍ଯ୍ୟରେ ତତ୍ପରତା ପ୍ରକାଶ କରିବା ।
ଫୂର୍ତ୍ତିବାଜ୍—ଗ୍ରା. ପୁ°. ବି°. ପ୍ରଫୁଲ୍ଲମନା, ଚଞ୍ଚଳ । [ ହସ୍ତତା ।
ଫୂର୍ତ୍ତିବାଜି—ଗ୍ରା.ବ.କର୍ମକୁଶଳ ବା ସିଦ୍ଧ-
ଫେଇବା—ଗ୍ରା.କ୍ରି. (ଙ୍କ—ଫେଟନ ) ଖୋଲିବା, ଫେଡ଼ିବା, ଫିଟାଇବା, ମେଲିକରିବା, ପ୍ରକାଶିତ କରିବା ।
ଫେଉ—ଗ୍ରା.ବ.ଫାଉ, ଧପ୍ପାବାଜୀ,ପ୍ରତାରଣା, ଗୁଲୁସା, ଧୂର୍ତ୍ତତା, ଶଠତା, ଫୁସୁଲାଫୁସୁଲ, ବାହାନା ।
ଫେଏଫେଏ—ଗ୍ରା.ଅବ୍ୟ.ବିଲୁଅ ଭୁକିବା ଶବ୍ଦ, ହୁକେ ହୁକେ, ହୁକାହୁଆ ହୁକାହୁଆ । [ ଅକାରଣ ।
ଫେକଟ—ପ୍ରା. (ବସ୍ତର) ଅବ୍ୟ. ବୃଥା,
ଫେକାସି—ପ୍ରା.(ବାମଣ୍ଡା)ବ.(ଙ୍କ-ଫେରୁ) କୋକିଶିଆଳ ।
ଫେର୍‌କାମି—ଗ୍ରା.ବ.ଫିସାଦ, ଫାଜିଲମି ।

ଫେଟନ—ବି. (ଫେଟ୍ + ଭା.ଅନ) ଫିଟା-ଇବା ।

ଫୋଟା—ଗ୍ରା.ବି. (ସଂ-ସ୍ଫୁଟ) ଚଉଡ଼ା ପିନ୍ଧା ଲୁଗା, ଅଣ୍ଟାରେ ଲୁଗା ଉପରେ ଭିଡ଼ା-ହିବା ଲୁଗା, କମଳାଲେମ୍ବୁର କୋଲି, ଚିମ୍ବିରୁ ଗୋଟିଏ, ପାଟକୋଡ଼ ।

ଫେଡ଼—ଗ୍ରା. ବି. ମୋକ୍ଷଣ, ମୋଚନ. ଦୂରୀକରଣ, ଏକ ରାଶିରୁ ଅନ୍ୟ ରାଶିକୁ ବିୟୋଗ କରିବା ।

ଫେଡ଼ମିଶା—ଗ୍ରା. ବି. ଅଙ୍କ ଫେଡ଼ିବା ଓ ମିଶାଇବା ପ୍ରକ୍ରିୟା ।

ଫେଡ଼ା—ଗ୍ରା.ବିଂ, ବ୍ୟବକଳିତ, ବିୟୁକ୍ତ, (ବି) ଅଦା ହଳଦୀଆଦିର ଖଣ୍ଡ ।

ଫେଡ଼ିବା—ଗ୍ରା.କ୍ରି. ଦୂରକରିବା, ଫିଟା-ଇବା, ବିୟୋଗ କରିବା, ଏକ ରାଶିରୁ ଅନ୍ୟ ରାଶିକୁ ବାଦ ଦେବା, ଲାଘବ କରିବା, ମୋଚନ କରିବା, ମୁକ୍ତକରିବା ମୋକ୍ଷଣ କରିବା, ତ୍ୟାଗ କରିବା. (ହୃଦ୍‌ଗତ ଭାବକୁ) ସ୍ପଷ୍ଟ ରୂପେ ପ୍ରକାଶ କରିବା, ଅନ୍ତର୍ଦ୍ଦୃଷ୍ଟିର ପ୍ରୟୋଗରେ ଜାଣିବା ।

ଫେଡ଼ିକହିବା—ଗ୍ରା.କ୍ରି.ଖୋଲି କହିବା, ସ୍ପଷ୍ଟ ରୂପେ ବୁଝାଇ କହିବା ।

ଫେଣ୍—ପ୍ରା.(କଟକ)ଅ.ପୁଣି, ପୁନର୍ବାର

ଫେଣ—ଗ୍ରା.ବି.(ସଂ-ଫେନ) ଦ୍ରବ ପଦାର୍ଥ ଉପରେ ଭାସୁଥିବା ବୁଦ୍‌ବୁଦ, ପାଟିରୁ ବାହାରିବା ବାଳୁ, ହିଣ୍ଡୀର, ସମୁଦ୍ର-ଫେଣ, ଏକପ୍ରକାର ମାଛର କଙ୍କାଳ, ସ.ପର ଫଣା ।

ଫେଣା—ଗ୍ରା.ବି. ସର୍ପର ଫଣା, କଦଳୀ କାନ୍ଧରେ ଥିବା କଦଳୀ ଫଳର ପେଣ୍ଡା, ମଧୁଚକ୍ର, ମହୁମାଛି ତିଆରି କରିଥିବା ମହୁକୋଷ, ମିଷ୍ଟାନ୍ନବିଶେଷ, ମନ୍ଥନ-କ୍ରିୟା, (ବିଂ) ଫେନଯୁକ୍ତ ।

ଫେଣି—ଗ୍ରା.ବି.(ସଂ-ଫେନକ) ମିଷ୍ଟାନ୍ନ-ବିଶେଷ, ଏକପ୍ରକାର ଖଜା ।

ଫେଣିଆ—ଗ୍ରା.ବି.ଫେଣ ହୋଇ ଫେନ-ଯୁକ୍ତ କରିଯାଇଥିବା ।

ଫେଣିବା—ଗ୍ରା,କ୍ରି.ମନ୍ଥନ କରିବା, ବଟା ବରିଆଦିକୁ ଘାଣ୍ଟି ଉଶ୍ୱାସ କରିବା, ଫେଣ୍ଟିବା ।

ଫେଣ୍ଟ—ଗ୍ରା. ବି. ଦସ୍ତା ବା ତାମ୍ବଆଦି ଫେଣ୍ଟି ଏକତ୍ର ମିଶାଇବା କ୍ରିୟା ।

ଫେଣ୍ଟିବା—ଗ୍ରା. କ୍ରି. ତାମ୍ବଆଦିକୁ ତଳ ଉପରକରି ଏକତ୍ର ମିଶାଇବା, ଫେଣିବା ଦେଖ ।

ଫେତ୍‌କାର—ଗ୍ରା.ବି.ଅବ୍ୟକ୍ତ ବାଘ୍ରୁ ରବ ବା ପଶୁ ଧ୍ୱନି ।

ଫେତ୍‌କାରିଣୀତନ୍ତ୍ର—ବି.ତନ୍ତ୍ରଶାସ୍ତ୍ରବିଶେଷ ।

ଫେତ୍ରଗଳ—ଯା. ବି. ଜ୍ଞାନ ।

ଫେଦ—ପ୍ରା. (ପୁରୀ) ବି. ଦୂରକୁ ଟେକା ଫିଙ୍ଗିବା ପାଇଁ ବାଉଁଡ଼ରେ ନିର୍ମିତ ଫାଶ, ଗୁଲୁଣି ।

ଫେନ—ବି. ( ସ୍ଫାୟ୍ + କ.ଅନ ) ମନ୍ଥନ ଦ୍ୱାରା ଦ୍ରବପଦାର୍ଥରୁ ବାହାରିବା ବୁଦ୍‌ବୁଦ-ଚୟ. ଫେଣ ଦେଖ, (ପ୍ରା.କଳାହାଣ୍ଡି-ବି) ପେଜ ।

ଫେନକ—ବି. ( ଫେନ + କ ) ଫେଣା ନାମକ ମିଷ୍ଟାନ୍ନବିଶେଷ, ସମୁଦ୍ର ଫେଣ, ଫେଣ ଦେଖ ।

ଫେନକା—ବି. ଜଳପକ୍ୱତଣ୍ଡୁଳ ଚୂର୍ଣ୍ଣ. ଖଜା, ଫେଣା ନାମକ ମିଷ୍ଟାନ୍ନ, ରଠା-ଗଛ ଓ ଫଳ ।

ଫେନଗିରି—ବି. ସିନ୍ଧୁ ନଦୀର ମୁହାଣ-ବର୍ତ୍ତୀ ପର୍ବତ ।

ଫେନଦୁଗ୍ଧ—ବି. ଦୁଗ୍ଧଫେଣୀ ଗୁଳ୍ମ ।

ଫେନପ—ବି. ସ୍ୱୟଂ ପତିତ ଫଳ ଦ୍ୱାରା ଜୀବନ ଧାରଣକାରୀ ମୁନି, (ବିଂ) ଯେ ଫେନ ପାନ କରେ ।

ଫେନଲ—ବିଂ. ( ଫେନ+ଲା+ଅ ) ଫେନିଳ, ଫେନଯୁକ୍ତ ।

ଫେନବାହୀ—ବି. ବସ୍ତ୍ର ।

ଫେନାଗ୍ର—ବି. (ଜଳର) ବୁଦ୍‌ବୁଦ ।

ଫେନାୟମାନ—ବିଂ. ଫେନିଳ, ଫେନ-ପରି ଆଚରଣଯୁକ୍ତ, ଯହିଁରୁ ଫେନ ବାହାରୁଥାଏ ।

ଫେନାଶନ—ପୁଂ. ବି. ଇନ୍ଦ୍ର ।

ଫେନିକା—ବି.ମିଷ୍ଟାନ୍ନବିଶେଷ, ଫେଣି-ଖଜା ।

ଫେନିଳ—ବିଂ (ଫେନ+ଇଲ) ଫେନ-ଯୁକ୍ତ, (ବି) ଅରିଷ୍ଟ ବୃକ୍ଷ, ରଠାଫଳ, ବରକୋଳି, ମଦନଫଳ ।

ଫେମ୍ପର—ଗ୍ରା. ବି. ବାମ୍ଫ, ଫେଣ ।

ଫେମ୍ପଲ—ଗ୍ରା. ବି. ଫେଣ ଦେଖ ।

ଫେର୍—ଗ୍ରା. ଅବ୍ୟ. (ସଂ-ପୁନର୍) ପୁଣି, ପୁନର୍ବାର, ପୁନରପି, ଆହୁରି, (ବି) କୁଣ୍ଡଳୀକୃତ ଦଉଡ଼ିର ମୋଡ଼ା, (ଲ. ଅର୍ଥ) କପଟ, ଛନ୍ଦ ।

ଫେର୍‌ଘାଇ—ପ୍ରା. ସମ୍ବ. ବି. ବନ୍ଧ ବା ବିଲରୁ ଉଦ୍‌ବୃତ୍ତ ପାଣି ବାହାରି ଯିବାର ଗ୍ରେଟ ନାଳ ।

ଫେର୍‌ଫାର୍—ଗ୍ରା. ବି. ହେର୍‌ଫେର୍, ଓଲଟପାଲଟ, ଲେଉଟପାଉଟ, ପୁନଃ ପୁନଃ ପ୍ରତ୍ୟାବର୍ତ୍ତନ, ଗୁଲ୍‌ବୁଲ୍, ଆଦାନ-ପ୍ରଦାନ, ପରିବର୍ତ୍ତନକରାଇବା.ଅଦଳ-ବଦଳ, ବଦଳ, ବିନିମୟ.ମାୟା,ଛନ୍ଦ, କପଟ, ଟାଳଟୋଳ, (ବିଂ) ପୁନଃପୁନଃ ଯିବା ଆସିବା କରୁଥିବା ।

ଫେର—ପୁଂ. ବି. ( ଫେ+ରୁ+କ.ଅ ) ଶୃଗାଳ, ବିଲୁଆ, (ଗ୍ରା.ବି) ପିନ୍ଧାଲୁଗାର କୁଞ୍ଚିତ ଅଂଶ, କୁଞ୍ଚ, କଛା, ଦଉଡ଼ିର ମୋଡ଼ା, ବେଷ୍ଟନ.ପ୍ରତ୍ୟାବର୍ତ୍ତନ,ମାୟା, ଛଳ, ଫନ୍ଦ, କୌଶଳ,ବିଭ୍ରାଟ,ଆପଦ, ବିପନ୍ନ ଅବସ୍ଥା, ସଙ୍କଟ,ଦକା, ଧୋକା, ଭାଗ୍ୟବିପର୍ଯ୍ୟୟ. ଫାନ୍ଦ,ଜାଲ, ( ପ୍ରା. ବାଲେ, ବି) ପଟୁସ୍ତ, ଝଞ୍ଜା, ଅଗଣା, ପାଣିନାଳ, ( ପ୍ରା. ଖୋରଧା. ବି ) ପାଣି ବୋହି ଯାଇଥିବା ସ୍ଥାନରେ କରା-ହିବା ପଥର ଆଦି ଦ୍ୱାରା ଗଡ଼ାଣି ।

ଫେରକାନ—ଗ୍ରା. ବି. ଫେରର କମ୍ପ୍ରାନ୍ତ, କସ୍ତିର ଅଂଶ ।

ଫେରଣ୍ଡ—ପୁଂ. ବି. ( ଫେ+ରୁ+କ. ଅଣ୍ଡ) ବିଲୁଆ, ଶୃଗାଳ ।

ଫେରଣ୍ଡା—ଗ୍ରା. ବି. ଅଣ୍ଡିରା ବିଲୁଆ ।

ଫେରତା—ଗ୍ରା.ବି.କର୍ଣ୍ଣାଳଙ୍କାର ବିଶେଷ

ଫେରନ୍ତା—ଗ୍ରା. ବିଂ. (ସଂ-ପ୍ରତ୍ୟାବୃତ୍ତ) ପ୍ରତ୍ୟାଗତ,ଫେରିଆସୁଥିବା, ଭ୍ରମଣକାରୀ

**ଫେରଣ୍ଡ**—ପୁଂ. ବି.(ଫେ+ରୁ+କ.ଅ) ବିଲୁଆ, ଶୃଗାଳ, ଶିବା, ରାକ୍ଷସ, ବି°. (ଫେରୁ+ଅ)ଶଠ,ଧୂର୍ତ୍ତ,ପ୍ରବଞ୍ଚକ,ହିଂସ୍ର

**ଫେରନ୍ତ**—ଗ୍ରା. ବି. ( ସଂ-ପ୍ରତ୍ୟାବୃତ୍ତ ) ପ୍ରତ୍ୟାବର୍ତ୍ତନ,ଲେଉଟି ଆସିବା,ପ୍ରତ୍ୟର୍ପଣ. ଫେରାଇବା, (ବି°) ପ୍ରତ୍ୟର୍ପିତ, (ଯା.ଚ) ଡାଲକା ।

**ଫେରନ୍ତକରିବା**—ଗ୍ରା. କ୍ରି. ନେଇଥିବା ପଦାର୍ଥକୁ ଓ୍ୱାପସ୍ କରିବା, ଡାଲକା କରିବା ।

**ଫେର**—ଗ୍ରା. ବି. ପ୍ରତ୍ୟାବର୍ତ୍ତନ,ପୁନରାବୃତ୍ତି, ଫେରଆସିବା, ପ୍ରତ୍ୟର୍ପଣ, ଯିବା ଆସିବା, ଇତସ୍ତତଃ ଭ୍ରମଣ, ଚକ୍ର ସୁକିଆଦି ମାପ କରିବାର ଚତୁଷ୍କୋଣ ପାତ୍ର, ଦଉଡ଼ି ବା ସୂତାର ଏକଘେର, (ବି°) ଘରଆଡ଼େ ଗୁଡ଼ିଆ ବା ଘେରା ହୋଇଥିବା ।

**ଫେରାଇଆଣିବା**—ଗ୍ରା. କ୍ରି. ଦତ୍ତବସ୍ତୁକୁ ଘିନିଆସିବା, କୌଣସି ବସ୍ତୁକୁ ଲେଉଟାଇ ଆଣିବା ।

**ଫେରାଇନେବା**—ଗ୍ରା. କ୍ରି. ଦେଇଥିବା ପଦାର୍ଥକୁ ଓ୍ୱାପସ୍ ନେବା, ଯାଉଥିବା ବ୍ୟକ୍ତିକୁ ବାହୁଡ଼ାଇ ନେବା ।

**ଫେରା(ରୋ)ଇବା**—ଗ୍ରା.କ୍ରି.ପ୍ରତ୍ୟାବର୍ତ୍ତିତ କରାଇବା, ବାହୁଡ଼ାଇବା, ପରିବର୍ତ୍ତନ କରିବା, ବଦଳାଇବା,ପ୍ରତ୍ୟର୍ପଣକରିବା ଫେରସ୍ତଦେବା, ଇତସ୍ତତଃ ଗମନ କରିବା, ବୁଲାଇବା,ଓଲଟାଇବା,ବିପରୀତ ଦିଗକୁ ଗତିକରାଇବା ।

**ଫେରାଦ(ଦ୍)**—ଯା.ବି. କୌଣସି ବ୍ୟକ୍ତିର ବିରୁଦ୍ଧରେ ଅଦାଲତରେ ବା କୌଣସି ଉଚ୍ଚପଦସ୍ଥ ବ୍ୟକ୍ତିଙ୍କ ନିକଟରେ ଅଭିଯୋଗ, ଗୁହାରି, ମକଦ୍ଦମାରେ ବାଦୀ. (ବି°)ଗୁହାରିଆ,ଅଭିଯୋଗକାରୀ,ଯେଉଁ ବିଷୟରେ ଅଭିଯୋଗ କରାଯାଇଥାଏ ।

**ଫେରାଫେରି**—ଗ୍ରା. ବି. ବଦଳା ବଦଳି, ଅଦଲ ବଦଳ, ଲେଉଟା ଲେଉଟି, ପୁନଃପୁନଃ ପ୍ରତ୍ୟାବର୍ତ୍ତନ, ଇତସ୍ତତଃ ବୁଲାବୁଲି,ବାରମ୍ବାର ଫେରାଇବା କର୍ମ ।

**ଫେରାର**—ଯା. ବି. ପଳାୟନ, ଲୁଚିଲୁଚି ବୁଲିବା, (ବି°) ପଳାୟିତ, ପଳାତକ, ପଳାତକ (ପ୍ରଜା) । [ ସ୍ଥିତ ।

**ଫେରାସ୍ତି**—ଯା. ବି°. ପଳାତକ, ପଳା-

**ଫେରିଆସିବା**—ଗ୍ରା.କ୍ରି.ଲେଉଟିଆସିବା

**ଫେରିଗୃହିଁବା**—ଗ୍ରା. କ୍ରି. ମୁହଁ ବୁଲାଇ ଦେଖିବା, ପଛଆଡ଼କୁ ଗୃହିଁବା ।

**ଫେରିପାଇବା**—ଗ୍ରା. କ୍ରି. ହସ୍ତାନ୍ତରିତ ବସ୍ତୁ ଆପଣାର ହସ୍ତଗତ ହେବା ।

**ଫେରିବା**—ଗ୍ରା.କ୍ରି.ପ୍ରତ୍ୟାବର୍ତ୍ତନ କରିବା ପ୍ରତ୍ୟାଗମନ କରିବା, ଲେଉଟିବା, ବାହୁଡ଼ିବା, ଇତସ୍ତତଃ ବୁଲିବା,ଭ୍ରମିବା, ଘୂରିବା, ପରିବର୍ତ୍ତିତହେବା,ବଦଳିବା, ବିପରୀତ ଦିଗକୁ ଗତିକରିବା, (ମନ) ତ୍ୟାଗକରିବା ।

**ଫେରୁ**—ପୁଂ. ବି. ଶୃଗାଳ, ବିଲୁଆ ।

**ଫେରେ**—ଗ୍ରା. ଅବ୍ୟ. ପୁଣି, ଫେର ଆହୁରି । [ ମଣି ।

**ଫେରୋଜ**—ଯା.ବି. ମଣିବିଶେଷ,ତୁରସ୍କ-

**ଫେଲ୍**—ଯା. ବି. ପରୀକ୍ଷାରେ ଉତ୍ତୀର୍ଣ୍ଣ ନହେବା, ବ୍ୟବସାୟରେ ଦେବାଳିଆ ହେବା, ଅକୃତକାର୍ଯ୍ୟ ହେବା, (ବି°) ପରୀକ୍ଷାରେ ଅନୁତ୍ତୀର୍ଣ୍ଣ, ଅକୃତକାର୍ଯ୍ୟ, ବ୍ୟବସାୟରେ କ୍ଷତିଗ୍ରସ୍ତ ।

**ଫେଲ(ଲ)**—ବି. (ଫେଲ୍+ମଁ.ଅ) ପରିତ୍ୟକ୍ତ ଦ୍ରବ୍ୟ, ଉଚ୍ଛିଷ୍ଟ, ଭୁକ୍ତାବଶେଷ, ଅଇଁଠା । [ ଦେଖ

**ଫେଲକ**—ବି. (ଫେଲ+କ) ଫେଲ

**ଫେଲସ**—ଗ୍ରା. ବି°. ବସ୍ତୁନ, ଚଉଡ଼ା, ଓସାରିଆ, ବସ୍ତୁତଗର୍ଭ, ହୁଗୁଳା, ଢ଼ିଲ, ଶିଥିଳ ।

**ଫେଲା**—ବି. (ଫେଲ+ଆ) ତ୍ୟକ୍ତବସ୍ତୁ, ଉଚ୍ଛିଷ୍ଟ,(ଗ୍ରା.ବି°)ଚଉଡ଼ାମୁହାଁ (ବାସନ-ଆଦି) ।

**ଫେଲି**—ବି. ଉଚ୍ଛିଷ୍ଟ ।

**ଫେଲିକା**—ବି.ଉଚ୍ଛିଷ୍ଟବସ୍ତୁ.ତ୍ୟକ୍ତଦ୍ରବ୍ୟ ।

**ଫେଲୀ**—ବି. ଭୁକ୍ତାବଶେଷ, ଉଚ୍ଛିଷ୍ଟ, ଅଇଁଠା ।

**ଫେସନ୍**—ଯା. ବି. ସଭ୍ୟସମାଜାନୁମୋଦିତ ପଦ୍ଧତି, ସୌଖୀନ୍, ବେଶଭୂଷା,(ବି°)ଫେସନଦ୍ୱାରା ଅନୁମୋଦିତ ।

**ଫେସଲ**—ଗ୍ରା.ବି°. ହୁଗୁଳା,ଶିଥିଳ,ଢ଼ିଲ ।

**ଫୈଜତ୍**—ଯା. ବି. ଗାଳି,ଅବମାନନା ।

**ଫୈର**—ଗ୍ରା. ବି. ଗୋଡ଼ର ବଳା ।

**ଫୈସଲ(ଲ୍)**—ଯା. ବି ଓ ବି°. ଫଇସଲ ଦେଖ ।

**ଫୋକ୍ହା**—ପ୍ରା.(ବସ୍ତୁର)ବି°.ଅକର୍ମଣ୍ୟ ।

**ଫୋକଟ୍**—ଗ୍ରା. ବି°. ମୋଫତ୍,ମାଗଣା, (କ୍ରି .ବି°) ବିନାମୂଲ୍ୟରେ ।

**ଫୋଟକା**—ଗ୍ରା.ବି. (ସଂ-ସ୍ଫୋଟକ)ବିସ୍ଫୋଟକ, ଅଗ୍ନିଦାହ ଜନିତ ଜଳପୂର୍ଣ୍ଣ ବୁନ୍ଦ, ଜଳବୁଦ୍ବୁଦ ।

**ଫୋଡ଼**—ଗ୍ରା. ବି. ବିନ୍ଧ,ଛିଦ୍ର,କଣ,ରନ୍ଧ୍ର ।

**ଫୋଡ଼ଣୀ**—ଗ୍ରା. ବି. ( ସଂ-ସ୍ଫୋଟନୀ ) ଫୋଡ଼ିବା ଯନ୍ତ୍ର, ବେଧନୀ ।

**ଫୋଡ଼ା**—ଗ୍ରା. ବି. ଛିଦ୍ରକରିବା, ( ବି° ) ବିଦ୍ଧହୋଇଥିବା, ( ପ୍ରା. ମେଦି. ବି. ) ବ୍ରଣ, ବଥ ।

**ଫୋଡ଼ାଫୋଡ଼ି**—ଗ୍ରା. କ୍ରି. ବହୁବାର ଫୋଡ଼ିବା କ୍ରିୟା ।

**ଫୋଡ଼ି**—ଗ୍ରା.ବି°. ଫୋଡ଼ଯୁକ୍ତ,ଫୋଡ଼ାଯାଇଥିବା ।

**ଫୋଡ଼ିବା**—ଗ୍ରା.କ୍ରି.ଛିଦ୍ରକରିବା,ଭେଦକରିବା, ଫୁଟାଇବା, ଅନୁଚ୍ଚସ୍ୱରରେ ଜଣକର କାନରେ ଅନ୍ୟର ବିପକ୍ଷରେ ଚୁଗୁଲି କହିବା ।

**ଫୋଡ଼ା**—ଯା. ବି. ଅଣ୍ଡକୋଷ ।

**ଫୋପଡ଼ା**—ଗ୍ରା. ବି. (ସଂ-ପ୍ରକ୍ଷିପ୍ତ) ଲମ୍ବ-କାଷ୍ଠଖଣ୍ଡ, ଲଣ୍ଡିଆ, ଯାହା ଅସ୍ତ୍ରସ୍ୱରୂପ ନିକ୍ଷେପକରି ଉଚ୍ଚବୃକ୍ଷାଦିରୁ ଫଳ ଝଡ଼ାଇବାକୁ ହୁଏ,ଫିଙ୍ଗିବା,ପୁଆଖେଳ, (କ୍ରି°) ଫୋପଡ଼ା ଦେଖ ।

**ଫୋପଡ଼ା**—ଗ୍ରା.ବି°.(ସଂ-ପ୍ରକ୍ଷିପ୍ତ)ନିକ୍ଷିପ୍ତ, ଅନାଦରପୂର୍ଣ୍ଣ (କଥା),ନିଷ୍ଠୁର(ବାକ୍ୟ), (ବି) ଫୋପଡ଼ ଦେଖ ।

**ଫୋପଡ଼ାଫୋପଡ଼ି**—ଗ୍ରା.ବି. ଫିଙ୍ଗାଫିଙ୍ଗି, ଇତସ୍ତତଃ ଫିଙ୍ଗିବା,ପରସ୍ପରକୁ (ଢେଲା-ଆଦି) ଫିଙ୍ଗିବା,(ବି°)ଇତସ୍ତତଃ ବିକ୍ଷିପ୍ତ,

(ପରସ୍ପରକୁ ଟେକାଆଦି) ଫିଙ୍ଗୁଥିବା ।
ଫୋପର—ଗ୍ରା. ବି°. (ସଂ-ପୋଲ୍‌କ୍ଷୟ-ପ୍ରାପ୍ତ, କ୍ଷୀଣ, ଖଡ଼ର,ଶୂନ୍ୟଭେ,ଫମ୍ପା. ପୋଲ, ବହୁଛିଦ୍ରଯୁକ୍ତ ।
ଫୋପାଡ଼ିବା—ଗ୍ରା,କ୍ରି. ଦୂରକୁଫିଙ୍ଗିବା, କ୍ଷେପ କରିବା, ତଳକୁ ପକାଇବା ।
ଫୋଫା—ଗ୍ରା.ବି°. ଅନାଦରପୂର୍ଣ୍ଣ(କଥା), (କ୍ରି.ବି°) ଅନାଦର ସହକାରେ,ଅବାଧ୍ୟତା ସହକାରେ ।
ଫୋର୍—ପ୍ରା.(ହିନ୍ଦୀ)ବି°. ଫମ୍ପା,ପୋଲ ।
ଫୋର୍ଡ଼—ଯା. ବି. (ନାମ) ଅନ୍ଧମାନଙ୍କ ପାଇଁ ଯେ ବାଇବେଲ୍ ଲେଖିଥିଲେ, ଆମେରିକାର ସର୍ବଶ୍ରେଷ୍ଠ ମଟର ବ୍ୟବସାୟୀ ଓ ଧନୀବ୍ୟକ୍ତି ।
ଫୌଜ—ଯା. ବି. ଫଉଜ ଦେଖ ।
ଫୌତ୍(ତୁ)—ଯା. କ୍ରି. ମୃତ୍ୟୁ,(ବି°)ମୃତ ।
ଫୌରନ୍—ଯା. ଅବ୍ୟ. ତୁରନ୍ତ, ତତ୍କ୍ଷଣାତ୍ ।
ଫ୍ରାନ୍ସ—ଯା. ବି, ୟୁରୋପର ସାଧାରଣ ତନ୍ତ୍ରଶାସିତ ଦେଶବିଶେଷ,ଫରାସୀଦେଶ
ଫ୍ରି—ଯା.ବି°.ମୁକ୍ତ,ଛୁଡ଼ାଇଥିବା,ମାଗଣା
ଫ୍ରେଞ୍ଚ୍—ଯା.ବି°, ଫ୍ରାନ୍ସଦେଶୀୟ ଫରାସୀ।
ଫ୍ରେମ୍—ଯା. ବି. ଛବିର ଚତୁଃପାର୍ଶ୍ୱେ ବନ୍ଧାହେବା ଚଉକାଠ, ଫର୍ମା ।
ଫ୍ଲାନେଲ୍—ଯା. ବି. ପଶମନିର୍ମିତ ବସ୍ତ୍ର ।

# ବ

ବ—ବ୍ୟଞ୍ଜନ ବର୍ଣ୍ଣର ତେୟୋବିଂଶ ବର୍ଣ୍ଣ, ଏହାର ଉଚାରଣ ସ୍ଥାନ ଓଷ୍ଠ,ପ ବର୍ଗର ତୃତୀୟ ବର୍ଣ୍ଣ ।
ବ—ପୁଂ,ବି. (ବା + କ.ଅ) ବାୟୁ,ବକ୍ଷସ୍ଥଳ, ବରୁଣ, ଭଗ, ସେଚନ, କାନ୍ତ, ଗନ୍ଧ, ବପନ, ମାଟିଆ, କୁମ୍ଭ, (ବନ+କ.ଅ) ଜଳ,(ଣ.ଅ) ଅଧ୍ୟବସାୟ, (ଗ୍ଭ. ଗମନ, ଗଢ, (ବନ୍ଧ + ଡ଼,ଅ) ବନ୍ଧନ, (ବପ + ମି.ଅ) ବ୍ୟୂହ, ବେଣୁର ସନ୍ଧ-

ନିର୍ମିତ ଯେଉଁ ପାନିଆ ମଧ୍ୟଦେଇ ଟାଣୀ ସୂତା ଯାଇଥାଏ, ବଣିଆ ଶିଳେଇ, ବସ୍ତ୍ରମନ୍ଦବିଶେଷ,(ଗ୍ରା.ବ)ପାନ ଲଡ଼ାର ତେର.(ଯା.ଅବ୍ୟ) ମୁତାବକ, ଅନୁସାରେ, ଲେଖି ଜାଣୁ ନ ଥିବା ବ୍ୟକ୍ତିପାଇଁ କିମ୍ବା ଅନୁପସ୍ଥିତ ବ୍ୟକ୍ତିପାଇଁ ସ୍ୱାକ୍ଷର କରୁଥିବା ବ୍ୟକ୍ତିର ନାଦର୍ଶକ, ( ବନାମ ଶବ୍ଦର ସାଙ୍କେତିକ ) ଅପରପକ୍ଷ,ଅମୁକର ନାମରେ,(ଗ୍ରା.କ୍ରି.) (ଭୂ`ବଦ, ଏଠାରେ ଉପବେଶନ କର,
ବଅ—ଗ୍ରା.ବି.ଡନ୍ତର ସୂକ୍ଷନିର୍ମିତ ପାନିଆ ଯେଉଁ ସୂକ୍ଷ୍ମମୟ ଫାଶ ମଧ୍ୟରେ ଟାଣୀସୂତା ଗୋଟି ଗୋଟି ହୋଇ ଗଳି ଯାଇଥାଏ ।
ବଅଁର—ଗ୍ରା.ବି. ବରକୋଳି ।
ବଅପଡ଼ିଆ—ଗ୍ରା, ବି. ଲୁଗା ବୁଣିଲାବେଳେ ବଅ ପଡ଼ିଯାଇଥିବା ଯୋଗୁଁ ଯେଉଁଠାରେ ଏକାଧିକଥର ଟାଣୀସୂତାର ଏକପାଖରେ ଭରଣୀ ସୂତା ବୁଣାଯାଇଥାଏ ।
ବଇ—ଯା.ବି. ପୁସ୍ତକ,ବହି,ଖାତା,ବନା, ବ୍ୟତିରେକେ, (ଗ୍ରା.ବି) କୁନ୍ଦ, ଗଦା, ଘେର, ବାଡ଼ ।
ବଇଁ—ପ୍ରା, (ଗଞ୍ଜାମ)ବି. ପ୍ରାଚୀର,କାନ୍ଥ, (ପ୍ରା. ସମ୍ବ, ବି) ପ୍ରଦୀପ ।
ବଇଁଛି—ପ୍ରା.(ବାଲେଶ୍ୱର)ବି. ବଟଣି ।
ବଇଁଠି—ପ୍ରା. (ମେଦିନୀପୁର)ବି,ପଣିକ ।
ବଇଁଶୀ—ଗ୍ରା,(ପଦ୍ୟ)ବି. ମୁରଲୀ ।
ବଇଠକ—ଗ୍ରା.ବି. ବସିବା ଉପବେଶନ, ସଭା, ବନ୍ଧୁ ଲୋକଙ୍କ ସମାଗମ, ସଭାର ଅଧିବେଶନ, ବାସସ୍ଥାନ, ଚଉପାଢ଼ୀ, ସଭାଗୃହ ।
ବଇଠକଖାନା—ଗ୍ରା,ବି.ବସିବା କୋଠରୀ, ଉପବେଶନ ଗୃହ ।
ବଇଠକି—ଗ୍ରା.ବି. ଦୀପାଧାର,ଦୀପରୁଖା, ପିଲସଜ, ଏକପ୍ରକାର ବ୍ୟାୟାମ, (ଗ୍ରା. ବି°) କାର୍ଯ୍ୟ କରିବାରେ ଅକ୍ଷମ, ବୃଦ୍ଧ ।
ବଇଠା—ଗ୍ରା. ବି. ପ୍ରଦୀପ, ଦୀପରୁଖା, ଖୋର୍ଦ୍ଧା ସହରର ଦକ୍ଷିଣରେ ଏକ-

ମାଇଲ ଦୂରରେ ଥିବା ପର୍ବତବିଶେଷ
ବଇଠାର(ରୁ)—ପ୍ରା.(ଗଞ୍ଜାମ)ବି.ବଣିଆମାନଙ୍କ ବଂଶୋପାଧିବିଶେଷ [ବିଶେଷ ।
ବଇଠାଳ—ଗ୍ରା.ବି.ଶୂଦ୍ରଙ୍କ ବଂଶୋପାଧି-
ବଇଠି—ଗ୍ରା, ବି. (ସଂ-ବେଷ୍ଟକ) ଗୋଲ ବା ଢେଙ୍କା ପଦାର୍ଥ ବା ପାଦ ଭୂମିରେ ଯେପରି ଅଟଳ ହୋଇ ବସିପାରେ ଏଥି ନିମନ୍ତେ ତହିଁତଳେ ଲାଗିଥିବା ଆସନୀ, ପ୍ରଦୀପଆଦିର ତଳେ ଲାଗିଥିବା ଆସନ, ପୋଡ଼ୁଅମାଇ ସିଆଳଙ୍କୁ ପାଣିଆଦିରେ ଶୋଇବାପାଇଁ ଚଲୁଆର ଉଚ୍ଚାରଣ ଶବ୍ଦ ।
ବଇତମ—ଗ୍ରା. ବି°. ପୁରାତନ, ପୁରୁଣା, କ୍ଷୟପ୍ରାପ୍ତ, କ୍ଷୀଣ ।
ବଇତାଳୁ—ପ୍ରା.(ସିଂହଭୂମ ଓ ବାଲେଶ୍ୱର) ବୋଇତକଖାରୁ ।
ବଇଦ—ଗ୍ରା.ବି. ବୈଦ୍ୟ, ଚିକିତ୍ସକ ।
ବଇଦଗୁଡ଼ଲ ପଥିକରିବା—ଗ୍ରା.(ନ୍ୟାୟବାକ୍ୟ) ଚିକିତ୍ସକଙ୍କୁ ପାରିଶ୍ରମିକ ଦେବା ପରିବର୍ତ୍ତିରେ ତାଙ୍କର ଧନରେ ରୋଗୀ ଆପଣା ଖାଦ୍ୟଦ୍ରବ୍ୟର ବ୍ୟୟ ଚଳାଇବା ନ୍ୟାୟ, ଯେଉଁ ଲୋକକୁ ଧନ ଦେବା ନ୍ୟାୟସଙ୍ଗତ ତାଠାରୁ ଧନ ନେବା ସ୍ଥଳରେ ଏହି ନ୍ୟାୟ ବୋଲାଯାଏ ।
ବଇନା—ଯା,ବି, କିଣିବା ବସ୍ତୁ ନିମନ୍ତେ କ୍ରେତାର ବିକ୍ରେତାଙ୍କୁ ଆଗଉରା ଦେବା ମୂଲ୍ୟାଂଶ, ଅଗ୍ରିମ ମୂଲ୍ୟାଂଶ ।
ବଇନାହିବା—ଗ୍ରା.କ୍ରି. ଏକ ବସ୍ତୁ ଅନ୍ୟ ବସ୍ତୁର ସମ୍ପୂର୍ଣ୍ଣ ତୁଲ୍ୟହେବା ଦୂରେ ଥାଉ ତାହାର କୌଣସି ଅଂଶର ସହିତ ତୁଳନୀୟ ନହେବା ।
ବଇନି—ଗ୍ରା. ବି. ଦୋକାନରେ ଦିନ ମଧ୍ୟରେ ସର୍ବପ୍ରଥମେ ବିକ୍ରି ହେବା ପଣ୍ୟର ନଗଦ ମୂଲ୍ୟ ଗ୍ରହଣ ।
ବଇନିକରିବା—ଗ୍ରା. କ୍ରି, ଦିନମଧ୍ୟରେ ସର୍ବପ୍ରଥମେ ଦୋକାନରୁ ପଣ୍ୟ ବିକ୍ରିକରିବା ଓ ମୂଲ୍ୟ ଗ୍ରହଣ କରିବା ।
ବଇନ୍ତରିବା—ଗ୍ରା.କ୍ରି. ଉଦ୍ଧୃତହିବା,ବିର-

(ପରସ୍ପରଙ୍କୁ ଟେକାଆଦ) ଫିଙ୍ଗୁଥିବା ।
ଫୋପର—ଗ୍ରା. ବି. (ସଂ-ପୋଲ) କ୍ଷୟ-ପ୍ରାପ୍ତ, ଜୀର୍ଣ୍ଣ, ଖଡର,ଶୂନ୍ୟଗର୍ଭ,ଫମ୍ପା, ପୋଲ, ବହୁଛିଦ୍ରଯୁକ୍ତ ।
ଫୋପାଡ଼ିବା—ଗ୍ରା,କ୍ରି. ଦୂରକୁ ଫିଙ୍ଗିବା, ନିକ୍ଷେପ କରିବା, ତଳକୁ ପକାଇବା ।
ଫୋଫା—ଗ୍ରା.ବିଂ. ଅନାଦରପୂର୍ଣ୍ଣ(କଥା), (କ୍ରି.ବିଂ) ଅନାଦର ସହକାରେ,ଅବା-ଧ୍ୟତା ସହକାରେ ।
ଫୋର୍—ପ୍ରା.(ସିଂହ)ବିଂ. ଫମ୍ପା,ପୋଲ ।
ଫୋର୍ଡ଼—ଯା. ବି. (ନାମ) ଅଣ୍ଟମାନଙ୍କ ପାଇଁ ଯେ ବାଇବେଲ୍ ଲେଖିଥିଲେ, ଆମେରିକାର ସର୍ବଶ୍ରେଷ୍ଠ ମଟର ବ୍ୟବ-ସାୟୀ ଓ ଧନୀବ୍ୟକ୍ତି ।
ଫୌଜ—ଯା. ବି. ଫଉଜ ଦେଖ ।
ଫୌତ୍(ତୁ)—ଯା. ବି. ମୃତ୍ୟୁ,(ବିଂ)ମୃତ ।
ଫୌରନ୍—ଯା. ଅବ୍ୟ. ତୁରନ୍ତ, ତତ୍ କ୍ଷଣାତ୍ ।
ଫ୍ରାନ୍ସ—ଯା. ବି, ଇୟୁରୋପର ସାଧାରଣ ତନ୍ତ୍ରଶାସିତ ଦେଶବିଶେଷ,ଫରାସୀଦେଶ
ଫ୍ରି—ଯା.ବିଂ.ମୁକ୍ତ,ଛୁଡ଼ାଯାଇଥିବା,ମାଗଣା
ଫ୍ରେଞ୍ଚ୍—ଯା.ବିଂ, ଫ୍ରାନ୍ସଦେଶୀୟ ଫରାସୀ।
ଫ୍ରେମ୍—ଯା. ବି. ଛବିର ଚତୁଃପାର୍ଶ୍ୱେ ବନ୍ଧାହେବା ଚଉକାଠ, ଫର୍ମା ।
ଫ୍ଲାନେଲ୍—ଯା. ବି. ପଶମନିର୍ମିତ ବସ୍ତ୍ର ।

# ବ

ବ—ବ୍ୟଞ୍ଜନ ବର୍ଣ୍ଣର ତ୍ରୟୋବିଂଶ ବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ଓଷ୍ଠ,ପ ବର୍ଗର ତୃତୀୟ ବର୍ଣ୍ଣ ।
ବ—ପୁଂ,ବି. (ବା + କ.ଅ) ବାୟୁ,ବକ୍ଷ-ସ୍ଥଳ, ବରୁଣ, ଭଗ, ଯୋନି, କାନ୍ତ, ଗନ୍ଧ, ବପନ, ମାଠିଆ, କୁମ୍ଭ, (ବନ୍ + କ.ଅ) ଜଳ,(ଣ.ଅ) ଅଧ୍ୟବସାୟ, (ଖ. ଗମନ, ଗତି, (ବନ୍ଧ + ଖ,ଅ) ବନ୍ଧନ, (ବ୍ରଜ + ମି.ଅ) ବ୍ରଜ, ତନ୍ତ୍ରର ସୃଷ୍ଟି-ନିର୍ମିତ ଯେଉଁ ପାନିଆ ମଧ୍ୟଦେଇ ଟାଣୀ ସୂତା ଯାଇଥାଏ, ବଣିଆ ଖିଲେଇ, ବସ୍ତ୍ରମଣ୍ଡବିଶେଷ,(ଗ୍ରା.ବି)ପାନ ଲତାର ଚେର.(ଯା.ଅବ୍ୟ) ମୁତାବକ, ଅନୁସାରେ, ଲେଖି ଜାଣୁ ନ ଥିବା ବ୍ୟକ୍ତିପାଇଁ କିମ୍ବା ଅନୁପସ୍ଥିତ ବ୍ୟକ୍ତି-ପାଇଁ ସ୍ୱାକ୍ଷର କରୁଥିବା ବ୍ୟକ୍ତିର ନାମ ପୂର୍ବରେ ଏହା ଲେଖାଯାଏ, (ବେନାମ ଶବ୍ଦର ସାଙ୍କେତିକ) ଅପରପକ୍ଷ,ଅମୁକର ନାମରେ,(ଗ୍ରା.କ୍ରି.) (ଭୂ ବସ୍, ଏଠାରେ ଉପବେଶନ କର,
ବଅ—ଗ୍ରା.ବି.ତନ୍ତର ସୂକ୍ଷନିର୍ମିତ ପାନିଆ ଯେଉଁ ସୂକ୍ଷ୍ମମୟ ଫାଶ ମଧ୍ୟରେ ଟାଣୀ-ସୂତା ଗୋଟି ଗୋଟି ହୋଇ ଗଳି ଝୁଲୁଥାଏ ।
ବଅଁର—ଗ୍ରା.ବି. ବରକୋଳି ।
ବଅପଡ଼ିଆ—ଗ୍ରା, ବି. ଲୁଗା ବୁଣିଲା-ବେଳେ ବଅ ପଡ଼ିଯାଇଥିବା ଯୋଗୁଁ ଯେଉଁଠାରେ ଏକାଧିକଥର ଟାଣୀ-ସୂତାର ଏକପାଖରେ ଭରଣୀ ସୂତା ବୁଣାଯାଇଥାଏ ।
ବହି—ଯା.ବି. ପୁସ୍ତକ,ବହି,ଖାତା,ବନା, ବ୍ୟତିରେକେ, (ଗ୍ରା.ବି) କୁଣ୍ଢ, ଗଦା, ଘେର, ବାଡ଼ ।
ବଇଁ—ପ୍ରା, (ଗଞ୍ଜାମ)ବି. ପ୍ରାଚୀର,କାନ୍ଥ, (ପ୍ରା. ସମ୍ବ, ବି) ପ୍ରଦୀପ ।
ବଇଁଛ—ପ୍ରା.(ବାଲେଶ୍ୱର)ବି. ବନଶି ।
ବଇଁଠି—ପ୍ରା. (ମେଦନୀପୁର)ବି,ପଜନି ।
ବଇଁଶୀ—ଗ୍ରା,(ପଦ୍ୟ)ବି. ମୁରଲୀ ।
ବଇଠକ—ଗ୍ରା.ବି. ବସିବା ଉପବେଶନ, ସଭା, ବହୁ ଲୋକଙ୍କ ସମାଗମ, ସଭାର ଅଧିବେଶନ, ବାସସ୍ଥାନ, ଚଉପାଢ଼ୀ, ସଭାଗୃହ ।
ବଇଠକଖାନା—ଗ୍ରା,ବି.ବସିବା କୋଠରି. ଉପବେଶନ ଗୃହ ।
ବଇଠକି—ଗ୍ରା.ବି. ଦୀପାଧାର,ଦୀପରୁଖା, ପିଲିସଜ, ଏକପ୍ରକାର ବ୍ୟାୟାମ, (ଗ୍ରା. ବିଂ) କାର୍ଯ୍ୟ କରିବାରେ ଅକ୍ଷମ, ବୃଦ୍ଧ ।
ବଇଠା—ଗ୍ରା. ବି. ପ୍ରଦୀପ, ଦୀପରୁଖା, ଖୋର୍ଦ୍ଧା ସହରର ଦଃପଃରେ ଏକ-ମାଇଲ ଦୂରରେ ଥିବା ପର୍ବତବିଶେଷ
ବଇଠାର(ରୁ)—ପ୍ରା.(ଗଞ୍ଜାମ)ବି.ବଣିଆ-ମାନଙ୍କ ବଂଶୋପାଧିବିଶେଷ [ବିଶେଷ ।
ବଇଠାଳ—ଗ୍ରା.ବି.ଶୂଦ୍ରଙ୍କ ବଂଶୋପାଧି-
ବଇଠି—ଗ୍ରା, ବି. (ସଂ-ବେଷ୍ଟକ) ଗୋଲ ବା ଢେଙ୍ଗା ପଦାର୍ଥ ବା ପାଦ ଭୂମିରେ ଯେପରି ଅଟଳ ହୋଇ ବସିପାରିବ ଏଥି ନିମନ୍ତେ ତହିଁତଳେ ଲାଗିଥିବା ଆସନୀ, ପ୍ରତିମାଆଦିର ତଳେ ଲାଗି-ଥିବା ଆସନ, ପୋଢ଼ୁଅମାଇଁ ଶିଆଦଙ୍କୁ ପାଣିଆଦିରେ ଶୋଇବାପାଇଁ ଚରୁ-ଆର ଉଚ୍ଚାରଣ ଶବ୍ଦ ।
ବଇତମ—ଗ୍ରା. ବିଂ. ପୁରାତନ, ପୁରୁଣା, କ୍ଷୟପ୍ରାପ୍ତ, ଜୀର୍ଣ୍ଣ ।
ବଇତାଳୁ—ପ୍ରା.(ସିଂହଭୂମ ଓ ବାଲେ-ଶ୍ୱର) ବୋଇତିକିଆରୁ ।
ବଇଦ—ଗ୍ରା.ବି. ବୈଦ୍ୟ, ଚିକିତ୍ସକ ।
ବଇଦଗୃଢ଼ଳ ପଥିକରିବା—ଗ୍ରା.(ନ୍ୟାୟ-ବାକ୍ୟ) ଚିକିତ୍ସକଙ୍କୁ ପାରିଶ୍ରମିକ ଦେବା ପରିବର୍ତ୍ତରେ ତାଙ୍କର ଧନରେ ରୋଗୀ ଆପଣା ଖାଦ୍ୟଦ୍ରବ୍ୟର ବ୍ୟୟ ଚଳା-ଇବା ନ୍ୟାୟ, ଯେଉଁ ଲୋକକୁ ଧନ ଦେବା ନ୍ୟାୟସଙ୍ଗତ ତାଠାରୁ ଧନ ନେବା ସ୍ଥଳରେ ଏହି ନ୍ୟାୟ ବୋଲା-ଯାଏ ।
ବଇନା—ଯା,ବି, କିଣିବା ବସ୍ତୁ ନିମନ୍ତେ କ୍ରେତାର ବିକ୍ରେତାଙ୍କୁ ଆଗତୁରା ଦେବା ମୂଲ୍ୟାଂଶ, ଅଗ୍ରିମ ମୂଲ୍ୟାଂଶ ।
ବଇନାଗିବା—ଗ୍ରା.କ୍ରି. ଏକ ବସ୍ତୁ ଅନ୍ୟ ବସ୍ତୁର ସମ୍ପୂର୍ଣ୍ଣ ତୁଲ୍ୟହେବା ଦୂରେ ଥାଉ ତାହାର କୌଣସି ଅଂଶର ସହିତ ତୁଳନୀୟ ନହେବା ।
ବଇନି—ଗ୍ରା, ବି. ଦୋକାନରେ ଦିନ ମଧ୍ୟରେ ସର୍ବପ୍ରଥମେ ବିକ୍ରି ହେବା ପଣ୍ୟର ନଗଦ ମୂଲ୍ୟ ଗ୍ରହଣ ।
ବଇନିକରିବା—ଗ୍ରା. କ୍ରି. ଦିନମଧ୍ୟରେ ସର୍ବପ୍ରଥମେ ଦୋକାନରୁ ପଣ୍ୟ ବିକ୍ରି-କରିବା ଓ ମୂଲ୍ୟ ଗ୍ରହଣ କରିବା ।
ବଇନ୍ତରିବା—ଗ୍ରା.କ୍ରି. ଉଦ୍ଧୃତିଯିବା,ବର-

ହବା, ନସ୍ତାର ପାଇବା ।
ବଇଲ୍ଲ—ପ୍ରା. (ଗଞ୍ଜାମ) ବି. ଡେଙ୍ଗଡା, ପିଣ୍ଡା । [ ବାଡ ।
ବଇବାଡ଼—ପ୍ରା.(ଯାଜପୁର)ବି.ଝାଟିମାଟିର
ବଇରଖ—ଯା.ବି. ପତାକା, (ପ୍ରା. ସମ୍ବ. ବି) ତାସ ଖେଳର କଳାପାନ ରଙ୍ଗ ।
ବଇଶ—ଗ୍ରା.ବି. ବୈଶ୍ୟ ଦେଖ ।
ବଇରେଷ—ଗ୍ରା. ବି. ଦ୍ୱେଷ, ରାଗ, ବିଦ୍ୱେଷ, (ବିଂ) ରାଗୀ, ବିଦ୍ୱେଷୀ ।
ବଇଶାଖ(ଷ,ଖ୍ୟ)—ଗ୍ରା.ବି.ବୈଶାଖମାସ ।
ବଇସିଗ—ପ୍ରା.(ବଉଦ)ବି. ଅଭ୍ୟାସ ।
ବଇସୁଲତାନ୍(ନ)—ଯା.ବି. ଟଙ୍କସ୍ୱ ବାକି ଥିବାରୁ ସରକାରଙ୍କ ଦ୍ୱାରା ଜମିଦାରର ନିଲାମ ।
ବଉଁଶ—ଗ୍ରା.ବି. ବଂଶ ଦେଖ, କାଠ ।
ବଉ—ଗ୍ରା.ବି. ପତ୍ନୀ, ପୁତ୍ରବଧୂ ।
ବଉକଥାକହ—ଗ୍ରା.ବି. କୋକିଳଜାତୀୟ ପକ୍ଷୀବିଶେଷ ।
ବଉଦ(ଧ)—ଗ୍ରା.ବି. ଓଡ଼ିଶାର ଗୋଟିଏ ଗଡ଼ଜାତ ରାଜ୍ୟ, ମେଦଖଣ୍ଡ, ବିଷ୍ଣୁଙ୍କର ନବମ ବା ବୌଦ୍ଧାବତାର ।
ବଉରା—ପ୍ରା.(ସମ୍ବ)ବି. ଅନାର୍ଯ୍ୟ ଜାତିବିଶେଷ ।
ବଉଳ—ଗ୍ରା. ବି. (ସଂ-ମୁକୁଳ) ଆମ୍ବ ମୁକୁଳ, ବକୁଳବୃକ୍ଷ, ପରସ୍ପର ଆମ୍ବ ବଉଳ ଦିଆଦେଇ ହୋଇ ସ୍ଥାପନ କରିବା ବନ୍ଧୁତା । [ ଅମାବାସ୍ୟା ।
ବଉଳଅମାବାସ୍ୟା—ଗ୍ରା. ବି. ପୌଷ-
ବଉଳକୋଳି—ଗ୍ରା. ବି. ବଉଳ ଚଢ଼ର ଫଳ, (ବଣିଆଗଛ) ବଦର ଭୂମି ।
ବଉଳପାଟ—ଗ୍ରା. ବି. ବିବାହବେଳେ କନ୍ୟା ପିନ୍ଧିବା ପାଟ ।
ବଉଳା—ଗ୍ରା.ବି. ବକୁଳ ଫୁଲବର୍ଣ୍ଣବିଶିଷ୍ଟ ବଳଦ ଓ ଗାଈଙ୍କୁ ଦିଆଯିବା ନାମ, (ଆମ୍ବଗଛଆଦି) ମୁକୁଳିତ ହେବା,(ବିଂ) ବକୁଳପୁଷ୍ପପର ।
ବଉଳାଗାଇ—ଗ୍ରା. ବି. ପୁରାଣ ପ୍ରସିଦ୍ଧ କାମଧେନୁର ନାମ ।
ବଉଳିବା—ଗ୍ରା.କ୍ରି.(ଆମ୍ବଆଦି ଫଳବୃକ୍ଷ) ମୁକୁଳିତ ହେବା ।
ବଉଳୀ—ଗ୍ରା.ବିଂ. ବକୁଳ ପୁଷ୍ପପର, (ବି) ନଖ ମୂଳ ଓ ଚମ ମଧ୍ୟରେ ଥିବା ସରୁଆ ଧଳା ଚମ ।
ବଏ—ଗ୍ରା. ବି. ବ୍ୟୟ, ଖରଚ; ଖରଚ ଲେଖା ହୋଇଥିବା ଅଂଶ, ମହାଜନଠାରୁ ଋଣ ଓ ଦୋକାନୀଠାରୁ କାଳ ସଉଦା ନେବା ।
ବଂ—ଗ୍ରା.ଅବ୍ୟ. ବମ୍ ଦେଖ ।
ବଂବଂ—ଗ୍ରା.ଅବ୍ୟ. ମହାଦେବଙ୍କ ମନ୍ଦିରକୁ ପ୍ରବେଶ କରିବା ପୂର୍ବରୁ ଉଚ୍ଚାରିତ ଧ୍ୱନି ବା ଗଲ୍ଲ ବାଦ୍ୟ ।
ବଂକ୍ଷଣ—ବି. କୋଡ଼ଗାତ, ଜଙ୍ଘସନ୍ଧି, ତଳପେଟ ଓ ଜଙ୍ଘମଧ୍ୟସ୍ଥ ସନ୍ଧି ।
ବଂଶ—ବି. ( ବମ୍+ମଂ.ଶ ) ପରିବାର, କୁଳ, ଗୋତ୍ର, ଗୋଷ୍ଠୀ, ବର୍ଗ, ସନ୍ତାନ ସନ୍ତତି, କୁଳ ପରମ୍ପରା, କୁଳର ପୂର୍ବ ଓ ଉତ୍ତର ପୁରୁଷଗଣ, ସମୂହ, ଏକଜାତୀୟ ବହୁଜୀବ, ପୁତ୍ରପୌତ୍ରାଦି,ଗର୍ବ, ନାସାରନ୍ଧ୍ର, ଗୃହର ଊର୍ଦ୍ଧ୍ୱକାଷ୍ଠ, ଘରର ଗୃଳର ମଥାନ ଉପରେ ଦିଆଯାଇଥିବା ଶ୍ରେଣୀ, ପୃଷ୍ଠଦଣ୍ଡ, ମେରୁହାଡ଼, ଅନ୍ୱୟ, (ବମ୍+କ.ଶ) ବାଉଁଶ, ବଂଶୀ, ବିଷ୍ଣୁ, ବଂଶଲୋଚନ,ଶଲ୍ଲ ମଧୋଇଭଗ, ସ୍ୱରବିଶେଷ, ବାଦ୍ୟଭାଣ୍ଡବିଶେଷ ।
ବଂଶଉଚ୍ଛନ୍ନ—ଗ୍ରା. ବି. ମୃତ୍ୟୁଦ୍ୱାରା ବଂଶକ୍ଷୟ, ବଂଶନାଶ ।
ବଂଶଉଜ୍ଜ୍ୱଳ-ଗ୍ରା.ବି ପରିବାରର ଗୌରବବୃଦ୍ଧି, (ବିଂ) ବଂଶର ଗୌରବ ବର୍ଦ୍ଧକ ।
ବଂଶକ—ପୁଂ.ବି.( ବଂଶ+କ ) ବାଉଁଶ ପତର ମାଛ, କନ୍ଦାର ଆଖୁ, ବାଉଁଶପତର । [ ଲୁତାତନ୍ତୁ ।
ବଂଶକକ—କ୍ଲୀ. ବି. ବୁଢ଼ିଆଣୀ ସୂତା,
ବଂଶକଞ୍ଜ—କ୍ଲୀ.ବି. କୃଷ୍ଣାଗୁରୁ କାଷ୍ଠ ।
ବଂଶକଠିନ—ପୁଂ. ବି, ବାଉଁଶବନ ବା ଝାଡ଼ ।
ବଂଶକର—ପୁଂ.ବି. ବଂଶର କର୍ତ୍ତା, ଆଦିପୁରୁଷ, ପୂର୍ବପୁରୁଷ । [ କୋ ।
ବଂଶକରୀର—ପୁଂ. ବି. କରଡ଼, ବାଉଁଶ
ବଂଶକର୍ପୂର—ପୁଂ.ସ୍ତ୍ରୀ.ବି. ବଂଶଲୋଚନ, ବାଉଁଶ ଝୁଣା ।
ବଂଶକର୍ମକୃତ୍—ବି. ବିଂ. ବାଉଁଶରେ କୁଲା ଡାଲାଦି ପ୍ରସ୍ତୁତ କରିବା(ବ୍ୟକ୍ତି) ।
ବଂଶକର୍ମ—କ୍ଲୀ.ବି. ବାଉଁଶକାର୍ଯ୍ୟ, ବାଣ ଶିଳ୍ପପ୍ରଭୃତି ।
ବଂଶକାର—ପୁଂ.ବି. ଗନ୍ଧକ ।
ବଂଶକୃତ୍—ବି.ବିଂ. (ବଂଶ+କୃ+କ୍ୱିପ୍) ବଂଶକାରୀ, ବଂଶ ପ୍ରତିଷ୍ଠାତା ।
ବଂଶକ୍ରମ—ବି. (୬ତତ୍) ବଂଶ ପରମ୍ପରା, ପୁରୁଷାନୁକ୍ରମ, ଧାରାବାହିକ ବଂଶଧରଗଣ, ବଂଶଧରମାନଙ୍କ ଧାରାବାହିକ ଉଲ୍ଲେଖ, କୁରସିନାମା ।
ବଂଶକ୍ରମାଗତ—ବି.ବିଂ. ପୁରୁଷ ପରମ୍ପରା ପ୍ରାପ୍ତ, ବଂଶାଗତ, କୁଳପ୍ରଥା ପ୍ରସିଦ୍ଧ ।
ବଂଶକ୍ଷୟ—ପୁଂ. ବି. (୬ତତ୍) ବଂଶନାଶ, ବଂଶଲୋପ, କୌଣସି ପଦାର୍ଥର ସମୂଳ ବିନାଶ । [ ବଂଶଲୋଚନ ।
ବଂଶକ୍ଷୀରୀ—ସ୍ତ୍ରୀ.ବି. (ବଂଶ+କ୍ଷୀର+ଈ)
ବଂଶଗୌରବ—ବି. ( ୬ତତ୍ ) ଆପଣା କୁଳର ସମ୍ମାନ, (ନ.ଗ୍ରା) କୀର୍ତ୍ତିଦ୍ୱାରା ବଂଶ ଉଜ୍ଜ୍ୱଳକାରୀ ବ୍ୟକ୍ତି ।
ବଂଶଘଟିକା—ସ୍ତ୍ରୀ.ବି. କ୍ରୀଡ଼ାବିଶେଷ ।
ବଂଶଚରିତ—କ୍ଲୀ.ବି.(୬ତତ୍)ବଂଶାଖ୍ୟାନ, ପ୍ରସିଦ୍ଧ ବଂଶାଦିର ଇତିବୃତ୍ତ,(ବିଂ)ବଂଶର ବ୍ୟକ୍ତିମାନଙ୍କଦ୍ୱାରା ଆଚରିତ (ରୀତି) ।
ବଂଶଚରିତ—ବି. ( ୬ତତ୍ ) କୌଣସି ବଂଶଜାତ ବ୍ୟକ୍ତିଙ୍କର ଆଚରଣ, ବଂଶର ଧାରାବାହିକ ବିଶିଷ୍ଟତା ।
ବଂଶଚନ୍ଦ୍ରକ—ପୁଂ. ବିଂ. ବଂଶଧାରାଭଙ୍ଗ, ଯେ ନିଜବଂଶ ପରଚୟ ଦାନେ ଅଭିଜ୍ଞ ।
ବଂଶଚ୍ଛେତ୍ତା—ପୁଂ. ବିଂ. ବଂଶଚ୍ଛେଦକ, କୌଣସି ଅସତ୍ କର୍ମ କରିବାଦ୍ୱାରା ଯେ ବଂଶ ନାଶ କରିଅଛି ।
ବଂଶଜ—ବିଂ. ( ବଂଶ+ଜନ୍+କ.ଅ ) କୌଣସି ବଂଶରୁ ଜାତ, ସଦ୍‌ବଂଶଜ, ବଂଶୀୟ, କୁଳୀନ, ବାଉଁଶରୁ ଉତ୍ପନ୍ନ, ମୌକ୍ତିକ, (ବି) ବାଉଁଶଧାନ ।
ବଂଶଜା—ସ୍ତ୍ରୀ.ବି, ( ବଂଶଜ+ଆ ) ବଂଶ

ଲୋଚନା, କନ୍ୟା, ଜ୍ୟୋତିଷୋକ୍ତ ଭୂମି ବିଶେଷ । [ ପ୍ରସ୍ତୁତ ଚାଉଳ ।
ବଂଶତଣ୍ଡୁଳ—ବି.(ଷତତ୍)ବାଉଁଶ ଧାନରୁ
ବଂଶତୈଳ—କ୍ଲୀ. ବି. ବୈଦ୍ୟୋକ୍ତ ତୈଳ-ବିଶେଷ ।
ବଂଶଦଳା—ସ୍ତ୍ରୀ.ବି. ଯାବନୀ ନାମକ ତୃଣ-ବିଶେଷ, ବଂଶପତ୍ରୀ ଘାସ ।
ବଂଶଦୂର୍ବା—ସ୍ତ୍ରୀ. ବି. କଣ୍ଟୁକ୍ତା, ଶତପର୍ବା ଦୂର୍ବା, କାଂଶୁକ ।
ବଂଶଧର—ବି. ( ଷତତ୍ ) କୁଳରକ୍ଷକ, କୁଳବର୍ଦ୍ଧନ, କୁଳୋଦ୍ଭବ, ( ପୁଂ. ବି. ) ସନ୍ତାନ,ଉତ୍ତମ ପୁରୁଷ,ପୁତ୍ରପୌତ୍ରାଦି ।
ବଂଶଧାରା—ସ୍ତ୍ରୀ. ବି. ନଦୀବିଶେଷ, କୁଳ-ପଦ୍ଧତି, ବଂଶବଲ୍ଲୀ ।
ବଂଶଧାରୀ—ପୁଂ. ବିଂ. ବଂଶରକ୍ଷାକାରୀ, ବଂଶଧର ଦେଖ । [ମୁରଲୀ ।
ବଂଶନାଡ଼ିକା—ସ୍ତ୍ରୀ. ବି. ବଂଶନାଳୀ,ବଂଶୀ,
ବଂଶନାଥ—ପୁଂ. ବି. ବଂଶର ପ୍ରଧାନ ବା ପ୍ରସିଦ୍ଧ ବ୍ୟକ୍ତି ।
ବଂଶନାଳିକା—ସ୍ତ୍ରୀ.ବି. (ବଂଶ+ନାଳ+ଇକ+ଆ) ବାଉଁଶର ନଳ, ମୁରଲୀ ।
ବଂଶନାଶ—କ୍ଲୀ. ବି. (ବଂଶ+ନାଶ) ବଂଶ-ଲୋପ ଫଳକ ଜ୍ୟୋତିଷୋକ୍ତ ଯୋଗ-ବିଶେଷ ।
ବଂଶନିପାତ—ବି. (ଷତତ୍) ସମୂଳବିନାଶ, କୌଣସି ବଂଶର ସମସ୍ତ ପ୍ରାଣିଙ୍କର ମୃତ୍ୟୁ ବା ବିଲୋପ । [ ଅଖି ।
ବଂଶନେତ୍ର—କ୍ଲୀ.ବି. ଇକ୍ଷୁମୂଳ,ଆଖୁଗଛର
ବଂଶପତ୍ର—ବି. ବଂଶଦଳ, ବାଉଁଶପତ୍ର, ହରିତାଳବିଶେଷ, ଛନ୍ଦବିଶେଷ, ଏକ-ପ୍ରକାର ଘାସ, ନଳ ।
ବଂଶପତ୍ରକ—କ୍ଲୀ. ବି. ହରିତାଳ, (ପୁଂ କ୍ଷୁଦ୍ର ମତ୍ସ୍ୟବିଶେଷ,ନଳଗଛ,ଧଳାଆଖୁ।
ବଂଶପତ୍ରିକା—ସ୍ତ୍ରୀ.ବି. ବେଣୁଦଳ,ବାଉଁଶ ପତ୍ର, ବାଉଁଶପତ୍ରୀ ଘାସ ।
ବଂଶପତ୍ରୀ—ସ୍ତ୍ରୀ. ବି. ନାଡ଼ୀଆଖୁ, ତୃଣ-ବିଶେଷ, ବଂଶଦଳା, ଯାବକା, ଯାଷ୍ଟି-ପତ୍ରିକା ।
ବଂଶପରମ୍ପରା—ସ୍ତ୍ରୀ.ବି. ସନ୍ତାନସନ୍ତତିକ୍ରମ, ପୁତ୍ରପୌତ୍ରାଦିକ୍ରମ, ପୁରୁଷାନୁକ୍ରମ ।
ବଂଶପରମ୍ପରାକ୍ରମେ—ଗ୍ରା. କ୍ରି.ବିଂ.ବଂଶର ଏକପୁରୁଷରୁ ଅନ୍ୟ ପୁରୁଷକୁ ଏହିପରି ଧାରାରେ, ବଂଶାନୁକ୍ରମେ ।
ବଂଶପରମ୍ପରାଗତ—ବିଂ. (ଷତତ୍) ବଂଶ-ପରମ୍ପରାକ୍ରମେ ଚଳି ଆସୁଥିବା (ରୀତି) ।
ବଂଶପୀତ—ପୁଂ. ବି. ( ବଂଶ+ପୀତ ) ଗୁଗୁଳୁ ।
ବଂଶପୁଷ୍ପା—ସ୍ତ୍ରୀ. ବି. ସହଦେବୀ ଲତା ।
ବଂଶପୂରକ—କ୍ଲୀ. ବି. (ବଂଶ+ପୂରକ) ଇକ୍ଷୁମୂଳ ।
ବଂଶପ୍ରତିଷ୍ଠାନକର—ପୁଂ. ବି. ବଂଶଖ୍ୟାତି ବା ପ୍ରତିପତ୍ତି ବିସ୍ତାରକାରୀ, ବଂଶର ଆଦିପୁରୁଷ ।
ବଂଶଭର୍ତ୍ତା—ପୁଂ. ବି. ବଂଶର ଭରଣ ପୋଷଣକାରୀ, ବଂଶସ୍ଥ ପ୍ରଧାନ (ବ୍ୟକ୍ତି)
ବଂଶଭୋଜ୍ୟ—ତ୍ରି.ବିଂ. ବଂଶର ଉପଭୋଜ୍ୟ ବଂଶାନୁକ୍ରମ ପ୍ରାପ୍ତି, (ବି) ପୈତୃକରାଜ୍ୟ ।
ବଂଶମୟ—ବିଂ.(ବଂଶ+ମୟ)ବଂଶନିର୍ମିତ, ବାଉଁଶରେ ପ୍ରସ୍ତୁତ ।
ବଂଶମର୍ଯ୍ୟାଦା—ସ୍ତ୍ରୀ. ବି. (ଷତତ୍) ବଂଶ-ପରମ୍ପରା ପ୍ରାପ୍ତ ଗୌରବ, ଆଭିଜାତ୍ୟ, ରାଜଦତ୍ତ ଉପାଧି, ବଂଶର ମହତ୍ତ୍ୱ ।
ବଂଶମାରିବା—ଗ୍ରା. କ୍ରି. କୌଣସି ବଂଶର ସମସ୍ତ ବ୍ୟକ୍ତିଙ୍କୁ ବା ଜୀବଙ୍କୁ ନାଶକରିବା ।
ବଂଶମାହାତ୍ମ୍ୟ-ବି.(ଷତତ୍) ବଂଶର ମହତ୍ତ୍ୱ ।
ବଂଶଯବ—ପୁଂ. ବି. ବାଉଁଶର ଧାନ ବା ଚାଉଳ ।
ବଂଶରକ୍ଷା—ବି.(ଷତତ୍)କୌଣସି ବଂଶକୁ ଖାଦ୍ୟାଦିଦ୍ୱାରା ବଞ୍ଚାଇବା,ପୁତ୍ରୋତ୍ପାଦନ ଦ୍ୱାରା ବଂଶକୁ ଲୋପ ମୁଖରୁ ରକ୍ଷା-କରିବା ।
ବଂଶରାଜ—ପୁଂ. ବି. (ବଂଶ+ରାଜ)ବନ-ମଧ୍ୟସ୍ଥିତ ଉତ୍କୃଷ୍ଟ ବାଉଁଶ,ରାଜାବିଶେଷ
ବଂଶଲକ୍ଷ୍ମୀ—ସ୍ତ୍ରୀ. ବି. କୁଳଲକ୍ଷ୍ମୀ ।
ବଂଶଲତା—ବି. ବଂଶବଲ୍ଲୀ, କୁଟୁସିନାମା, ରକ୍ତସମ୍ପର୍କ ।
ବଂଶଲି—ପ୍ରା. (ସମ୍ବ.ଲଉଆ) ବି. ବଢ଼େ-ଇଙ୍କ ବାରସୀ ।
ବଂଶରୋ(ଲୋ)ଚନା—ସ୍ତ୍ରୀ. ବି. (ବଂଶ+ରୁଚ୍+ଅନ+ଆ) ବାଉଁଶର ମଧ୍ୟସ୍ଥ ଈଷତ୍ ନୀଳାଭ ଶ୍ୱେତ ସ୍ୱଚ୍ଛ କଠିନଦ୍ରବ୍ୟ ।
ବଂଶଲୋପ—ବି. (ଷତତ୍) ବଂଶକ୍ଷୟ,ଧ୍ୱଂସ, ବଂଶଧରଙ୍କ ଅଭାବରୁ କୁଳର ଲୋପ ।
ବଂଶବର୍ଦ୍ଧନ—ବି.(ଷତତ୍) ବଂଶସ୍ଥ ବ୍ୟକ୍ତି-ଙ୍କର ସଂଖ୍ୟାବୃଦ୍ଧି,ବଂଶର ଉନ୍ନତି,(ବିଂ) ବଂଶର ବୃଦ୍ଧି ବା ଉନ୍ନତିକାରୀ ।
ବଂଶବର୍ଦ୍ଧୀ—ପୁଂ. ବିଂ. (ବଂଶ+ବୃଧ୍+ଇନ୍) ବଂଶମର୍ଯ୍ୟାଦା ସ୍ଥାପନକାରୀ, (ବି) ବଂଶଲୋଚନା ।
ବଂଶବାଟୀ--ହୁଗୁଳିଜିଲ୍ଲାସ୍ଥ ନଗରବିଶେଷ ।
ବଂଶବିଶୁଦ୍ଧ—ତ୍ରି. ବିଂ. (ବଂଶ+ବିଶୁଦ୍ଧ) ପରିଷ୍କାର ବଂଶନିର୍ମିତ,ବିଶୁଦ୍ଧକୁଳାଗତ ।
ବଂଶବିସ୍ତର—ପୁଂ. ବି. (ବଂଶ+ବିସ୍ତର) ସମଗ୍ର ବଂଶଧାରା, ବଂଶପରମ୍ପରା ।
ବଂଶବୀଜ—ବି. (ଷତତ୍) ବାଉଁଶ ଗଛର ଧାନ ବା ଚାଉଳ,କୁଳର ହେତୁ,ବଂଶର ଆଦିପୁରୁଷ ।
ବଂଶବୃଦ୍ଧି—ସ୍ତ୍ରୀ. ବି. (ଷତତ୍)ବଂଶସମୃଦ୍ଧି, ବଂଶର ଉନ୍ନତି, ସନ୍ତାନ ସନ୍ତତିଙ୍କର ସଂଖ୍ୟାବୃଦ୍ଧି ।
ବଂଶଶର୍କରା—ସ୍ତ୍ରୀ. ବି. (କ.ଧା)ବାଉଁଶଗଛ ମଧ୍ୟରୁ ଜାତହେବା ଏକପ୍ରକାର ମିଷ୍ଟ-ନିର୍ଯ୍ୟାସ । [ କାଠି ।
ବଂଶଶଲାକା—ସ୍ତ୍ରୀ. ବି. (ଷତତ୍)ବାଉଁଶ-
ବଂଶସମାଚାର—ପୁଂ.ବି.(ବଂଶ+ସମାଚାର) ବଂଶାଖ୍ୟାନ, ବଂଶର ଇତିହାସ ।
ବଂଶସ୍ଥ—ତ୍ରି. ବିଂ. (ଷତତ୍) ବଂଶସ୍ଥିତ, ବଂଶରେ ଥିବା, (ବି) ସଂସ୍କୃତ ଛନ୍ଦୋ-ବିଶେଷ ।
ବଂଶସ୍ଥବିଲ—କ୍ଲୀ. ବି. ଦ୍ୱାଦଶାକ୍ଷର ପାଦ ସଂସ୍କୃତ ଛନ୍ଦୋବିଶେଷ ।
ବଂଶସ୍ଥିତି—ସ୍ତ୍ରୀ ବି. ( ଷତତ୍ ) ବଂଶ-ମର୍ଯ୍ୟାଦା, କୁଳସ୍ଥାୟିତ୍ୱ, ବଂଶରକ୍ଷା ।
ବଂଶହୀନ—ପୁଂ.ବିଂ. (ଷତତ୍) ପୁତ୍ରଶୂନ୍ୟ, ଆତ୍ମୀୟ ପରିଶୂନ୍ୟ, ନିର୍ବଂଶ ।
ବଂଶା—ପ୍ରା. (ବାମଣ୍ଡା) ବି. ଚାଳର ଗୁଥ ।
ବଂଶାଗତ—ତ୍ରି.ବିଂ. ପୁରୁଷ ପରମ୍ପରାପ୍ରାପ୍ତ,

ବଂଶକ୍ରମାଗତ ।
ବଂଶାଗ୍ର—କ୍ଲୀ. ବ. (ଷତତ୍ପୁ) ପ୍ରଥମଜାତ, ବଂଶାଙ୍କୁର ।
ବଂଶାଙ୍କୁର—ପୁଂ.ବ. (ଷତତ୍ପୁ)ବଂଶକରୀର ବାଉଁଶଗଜା, ବଂଶାଗ୍ର ।
ବଂଶାଗ୍ରର—ବ. (ଷତତ୍ପୁ) କୁଳାଗ୍ରର ।
ବଂଶାନୁକଥା—ବ. (ଷତତ୍ପୁ) ବଂଶଚରିତ ଦେଖ ।
ବଂଶାନୁକୀର୍ତ୍ତନ—କ୍ଲୀ. ବ. କୁସିନାମାର ଉଲ୍ଲେଖ, ବଂଶାବଳୀ କଥନ ।
ବଂଶାନୁକ୍ରମ—ପୁଂ. ବ. ବଂଶପରମ୍ପରା, ପୁରୁଷାନୁକ୍ରମ ।
ବଂଶାନୁକ୍ରମିକ—ବଂ. ପୁରୁଷାନୁକ୍ରମେ ଚଳି ଆସୁଥିବା ।
ବଂଶାନୁକ୍ରମେ—ଅବ୍ୟ. ପୁତ୍ରପୌତ୍ରାଦି ଅନୁସାରେ,ବଂଶ ପରମ୍ପରା ଅନୁସାରେ ।
ବଂଶାନୁଗ—ତ୍ରି.ବଂ. ବଂଶପର, ତରବାର ମଧ୍ୟସ୍ଥ ବଶାଂଶର ଅନୁଗତ, ଅନ୍ୟ ବଂଶର ଅନୁଗାମୀ ।
ବଂଶାନୁଚରିତ—କ୍ଲୀ. ବ. (ବଂଶ+ଅନୁଚରିତ) ବଂଶର ଚରିତ ଶ୍ରବଣ, ପୁରାଣର ପଞ୍ଚଲକ୍ଷଣ ମଧ୍ୟରୁ ଏକ ଲକ୍ଷଣ ।
ବଂଶାନୁବଂଶଚରିତ—କ୍ଲୀ.ବ. ପୁରାଣୋକ୍ତ ପ୍ରାଚୀନ ଓ ଆଧୁନିକ ବଂଶର ଆଖ୍ୟାନ
ବଂଶାବତଂସ—ବ ଓ ବଂ.(ଷତତ୍ପୁ)କୁଳଭୂଷଣ, ବଂଶର ଅଳଙ୍କାର ସ୍ୱରୂପ, କୁଳ ଉଜ୍ଜ୍ୱଳକାରୀ ।
ବଂଶାବଳୀ—ସ୍ତ୍ରୀ.ବ. (ଷତତ୍ପୁ) କୁସିନାମା, ବଂଶଧରମାନଙ୍କ କ୍ରମାଗତ ଉଲ୍ଲେଖ ହୋଇଥିବା ତାଲିକା । [ ଦେଖ ।
ବଂଶି—ଗ୍ରା.ବଂ. ( ସଂ-ବଂଶୀୟ ) ବଂଶୀୟ
ବଂଶିକ—ବ. (ବଂଶ+ଇକ)ଅଗୁରୁ କାଷ୍ଠ, କଳାଆଖୁ, (ବଂ) ବଂଶସମ୍ବନ୍ଧୀୟ, (ଗ୍ରା. ବଂ) କୁଳୀନ ।
ବଂଶିକା—ସ୍ତ୍ରୀ. ବ. ( ବଂଶ+କ+ଆ ) ଅଗୁରୁ, ବଂଶୀ, ମୁରଲୀ, ପିମ୍ପୁଲୀ ।
ବଂଶିନ—ଗ୍ରା.ସ୍ତ୍ରୀ ବ. ବଂଶୀ ।
ବଂଶୀ—ସ୍ତ୍ରୀ.ବ, ( ବଂଶ+ଈ ) ମୁରଲୀ, ବେଣୁ, ବଂଶଲୋଚନ, ୪କର୍ଷ ପରିମାଣ, (ବଂ) ବଂଶସମ୍ବନ୍ଧୀୟ, ବଂଶଜାତ ।
ବଂଶୀଧର—ପୁଂ.ବଂ. (ବଂଶୀ+ଧୃ+ଅ) ଯେ ବଂଶୀ ଧାରଣ କରିଥାଏ, (ବ) ଶ୍ରୀକୃଷ୍ଣ ।
ବଂଶୀଧାରୀ—ପୁଂ.ବ. (ବଂଶୀ+ଧୃ+ଇନ୍) ଶ୍ରୀକୃଷ୍ଣ, (ବଂ) ବଂଶୀବାଦକ ।
ବଂଶୀଧ୍ୱନି—ବ. (ଷତତ୍ପୁ) ବଂଶୀ ବାଜିବାର ଶବ୍ଦ ।
ବଂଶୀପତ୍ରୀ—ସ୍ତ୍ରୀ.ବ. ଯୋନିବିଶେଷ ।
ବଂଶୀୟ(ବଂଶ୍ୟ)—ତ୍ରି. ବଂ. (ବଂଶ+ଇୟ) ସନ୍ତାନ, ବଂଶୋଦ୍ଭବ, ସମ୍ଭ୍ରାନ୍ତ, ଛନ୍ଦବେଣୀ, ପାରିବାରିକ,ବଂଶସମ୍ବନ୍ଧୀୟ
ବଂଶୀବଜା(ଜେ)ଇବା—ଗ୍ରା. କ୍ରି. ମୁଖଦ୍ୱାରା ଫୁଙ୍କି ବଂଶୀବାଦନ କରିବା, (ଲ. ଅର୍ଥ) କୌଣସି ବିଷୟରେ ପରିଶ୍ରମ କରି ନିଷ୍ଫଳ ହେବା ।
ବଂଶୀବଟ—ବ.ବୃନ୍ଦାବନର ଯମୁନା କୂଳସ୍ଥ ପ୍ରସିଦ୍ଧ ବଟବୃକ୍ଷ, ଯେଉଁ ବଟବୃକ୍ଷ ମୂଳରେ ଶ୍ରୀକୃଷ୍ଣ ବଂଶୀ ବଜାଉଥିଲେ ।
ବଂଶୀବଦନ—ପୁଂ.ବଂ. ( ବ.ବ୍ରୀ ) ଯେ ସର୍ବଦା ବଂଶୀ ବଜାଏ, (ପୁଂ.ବ)ଶ୍ରୀକୃଷ୍ଣ
ବଂଶୀବାଦକ—ପୁଂ.ବ. ଯେ ଉତ୍ତମରୂପେ ବଂଶୀ ବଜାଇ ଜାଣେ ।
ବଂଶୀବାଦନ—ବ. (ଷତତ୍ପୁ) ବଂଶୀ ବଜାଇବା, ମୁରଲୀ ଫୁଙ୍କିବା ।
ବଂଶୋଦ୍ଭବ—ସ୍ତ୍ରୀ. ବ. ବଂଶ ରୋଚନା, ବାଉଁଶ ଖଣ୍ଡ ।
ବଂହିମା—ପୁଂ.ବଂ. ( ବହୁଳ+ଇମନ୍ ) ବାହୁଲ୍ୟ, ଆଧିକ୍ୟ ।
ବଂହିଷ୍ଠ—ତ୍ରି.ବଂ. (ବହୁଳ+ଇଷ୍ଠ) ଅତିଶୟ ଅଧିକ, ଅତି ବହୁଳ ।
ବଂହୀୟାନ୍—ପୁଂ.ବଂ. (ବହୁଳ+ଈୟସ୍) ଅତିଶୟ ବହୁଳ ।
ବଂକା—ପ୍ରା.(ସମ୍ବ)ବ. ଗୃହ କରିବାପାଇଁ ଅନ୍ୟ ବ୍ୟକ୍ତିକୁ ନିର୍ଦ୍ଦିଷ୍ଟ ପରିମାଣରେ ଧାନ ଦେଇ ତାଠାରୁ ବଳଦ ପୁଟରେ ଆଣିବା ରୀତି ।
ବଁଧ—ପ୍ରା.(ସମ୍ବ)ବ. ବନ୍ଧ, ପୋଖରୀ ।
ବଁଟେଯିବା—ପ୍ରା.(ସମ୍ବ)କ୍ରି. ପୋଟେଇପାଣି ଯିବା, ଝାଡ଼ାଫେରି ଯିବା ।
ବକ୍ତାଇବା—ପ୍ରା.(ସମ୍ବ)କ୍ରି. ବାଧ୍ୟକରି ଦୋଷ ସ୍ୱୀକାର କରାଇବା ।
ବକ୍ତିବା—ପ୍ରା.(ସମ୍ବ) କ୍ରି. ମାନିଯିବା, ସ୍ୱୀକାର କରିବା ।
ବକ୍‌ବକ୍—ଗ୍ରା.ଅବ୍ୟ. ଏଣୁତେଣୁ ଗୁଡ଼ାଏ ଗପିବା, ଅନର୍ଥକ ବାକ୍ୟ ପ୍ରୟୋଗ, କ୍ରମାଗତ ଗପିବା ।
ବକ୍‌ଲ—ପ୍ରା.(ସମ୍ବ)ବ. ବୃକ୍ଷାଦିର ବଲ୍କଳ, ଗଛ ଉପରର ଛାଲି ।
ବକ—ପୁଂ. ବ. ସ୍ୱନାମଖ୍ୟାତ ଜଳଚର ପକ୍ଷିବିଶେଷ, ବଗ,ବକାସୁର, କୁବେର, ଅଗସ୍ତି ବୃକ୍ଷ, ବଗହୁଲା ଗଛ, ବକଯନ୍ତ୍ର, ଲଣ୍ଡାବାଗୁଲି ଗୁଲ୍ମ,ଭୀମଙ୍କ ଦ୍ୱାରା ନିହତ ରାକ୍ଷସବିଶେଷ, ଯନ୍ତ୍ରବିଶେଷ, ଋଷିବିଶେଷ, ରଜାବିଶେଷ, ଜାତିବିଶେଷ ।
ବକଚନ୍ଦନ—ବ.ଏକପ୍ରକାର ବନ୍ୟ ବୃକ୍ଷ ।
ବକଚଞ୍ଚୁକା—ସ୍ତ୍ରୀ.ବ.ମତ୍ସ୍ୟବିଶେଷ,ଟୋଙ୍କମାଛ ।
ବକଜିତ୍—ପୁଂ. ବ. ( ବକ+ଜି+କ୍ୱିପ୍) ଭୀମସେନ,ଶ୍ରୀକୃଷ୍ଣ । [ସାମାନ୍ୟ ।
ବକଟେ—ଗ୍ରା. ବଂ, ଟିକିଏ ମାତ୍ର, ଅତି
ବକଡ଼ା—ଗ୍ରା.ବ.କପାର ଚତୁର୍ଦ୍ଦିଗ କୋଷ ବା ଖୋସା ।
ବକତ—ଯା.ବ. ସମୟ, ଉପଯୁକ୍ତ କାଳ, ଅବସର ବିଭିନ୍ନ ସମୟ, ଏକ ଥର ଭୋଜନକ୍ରିୟା,ସୁଯୋଗ, ଅଦୃଷ୍ଟ,ଭାଗ୍ୟ, ଥର ।
ବକତର—ଯା. ବ, ସାଞ୍ଜୁ ।
ବକତା—ଗ୍ରା.(ପଦ୍ୟ)ବଂ. ବକ୍ତା ଦେଖ ।
ବକଧାର୍ମିକ—ପୁଂ. ବଂ. (କ.ଧା) ଭଣ୍ଡ ଧାର୍ମିକ, ଭଣ୍ଡ ତପସ୍ୱୀ, ଧର୍ମଧ୍ୱଜ,କପଟାଚାରୀ । [ ବୃକ୍ ଧୂପ ।
ବକଧୂପ—ପୁଂ. ବ. ଗନ୍ଧଦ୍ରବ୍ୟବିଶେଷ,
ବକଧ୍ୟାନ—ବ.ବକ ମାଛକୁ ଗୁହିଁଲାପରି କୌଣସି ବିଷୟରେ ଏକନିଷ୍ଠତା ।
ବକନଖ—ପୁଂ.ବ.ବିଶ୍ୱାମିତ୍ର ପୁତ୍ରବିଶେଷ
ବକନା—ଯା. ବ. ମୁସଲମାନଙ୍କ ବ୍ୟବ-

ହୃତ ଏକପ୍ରକାର ଗଡ଼ୁ, ପିଣ୍ଡଳର ବଡ଼ କଂସା ।

ବକନସୂଦନ—ପୁଂ.ବ.ଭୀମସେନ,ଶ୍ରୀକୃଷ୍ଣ

ବକପଞ୍ଚକ—କ୍ଲୀ.ବ. କାର୍ତ୍ତିକ ଶୁକ୍ଳ ଏକାଦଶୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ପାଞ୍ଚଦିନ, ପଞ୍ଚକ ।

ବକପୁଷ୍ପ—ପୁଂ. ବ. ଅଗସ୍ତି ବୃକ୍ଷ, (କ୍ଲୀ) ବକଫୁଲ,(ଗ୍ରା.ବ)ଶିବମଲ୍ଲି, ଗଇଣଫୁଲ, ବଗଫୁଲା । [ ବିଶେଷ ।

ବକମ—ଗ୍ରା. ବ. ରକ୍ତବର୍ଣ୍ଣ କାଷ୍ଠ ବୃକ୍ଷ-

ବକଯନ୍ତ୍ର—କ୍ଲୀ. ବ. ଅରକ କାଢ଼ିବାର ବକାକାର ଯନ୍ତ୍ରବିଶେଷ ।

ବକୟା—ଗ୍ରା.ନଦୀବିଶେଷ, (ଯା.ବି.ବିଂ) ବାକି, ଅବଶିଷ୍ଟ, ବାକିଆ ଦେଖ ।

ବକରବକରହେବା—ଗ୍ରା.କ୍ରି. ବୃଥାରେ ଗୁଡାଏ ଗପିବା ।

ବକର(ରି)—ଯା. ବ. ଛେଳି ।

ବକରାକ୍ଷସ—ବ. ରାକ୍ଷସବିଶେଷ ।

ବକରୀଦ୍—ଯା. ବ. ମୁସଲମାନମାନଙ୍କ ପଶୁବଳି ଦାନ ପର୍ବ ।

ବକର୍ଣ୍ଣୀ(ନ୍ନା,ନା)—ଗ୍ରା.ସ୍ତ୍ରୀ. ବ. ବହୁକାଳ ପ୍ରସୂତା ଗୋ, ପଡ଼ିଆ ଗାଈ, ଛଡ଼ା, ମାଈ ବାଛୁରି, ସଦ୍ୟ ପ୍ରସୂତା ଗାଈ ।

ବକଲ(ଲା)—ଗ୍ରା.ବ.ବୃକ୍ଷ ତ୍ୱକ୍‌ର ପାତଳ ବକଲା, ଗଛ ଛାଲି, ବଲ୍କଳ, ଫଳଆଦିର ଚୋପା, ଘାଆଦିରୁ ଉଠିବା ପତଳା ଚମ, ଏକପ୍ରକାର ପାଗ ।

ବକଲମ୍—ଯା.ଅବ୍ୟ.ଅନୁପସ୍ଥିତ ବ୍ୟକ୍ତିର ଦସ୍ତଖତ୍ ଅନ୍ୟ ଜଣେ କରିବା ।

ବକଲସ—ଯା. ବ. ଧାତୁ ନିର୍ମିତ ବନ୍ଧନାଙ୍କୁଶ ।

ବକବୃକ୍ଷ—ପୁଂ.ବ.ବକଫୁଲ ଗଛ, ଅଗସ୍ତି ଗଛ, (ଗ୍ରା.ବ) ଗଇଣ ଗଛ ।

ବକବୃତ୍ତି—ବିଂ. (ବ.ବ୍ରୀ) ବକବ୍ରତୀ, ବକ ଧାର୍ମିକ, ଭଣ୍ଡ ତପସ୍ୱୀ, ଶଠ, (ପୁଂ.ବ) ଧର୍ମଧ୍ୱଜୀ ଭଣ୍ଡ ଓ ସ୍ୱାର୍ଥପର ବ୍ୟକ୍ତି, (ସ୍ତ୍ରୀ. ବ. ୬ତତ୍ପୁ) ବକ ଧାର୍ମିକତା, ଭଣ୍ଡାମି, କପଟ ସାଧୁତା ।

ବକବୈରି—ପୁଂ.ବ.ଭୀମସେନ, ଶ୍ରୀକୃଷ୍ଣ ।

ବକବ୍ରତ—କ୍ଲୀ.ବ.ବକପରି କପଟ ବିନୀତ ଆଚରଣ, ବକବୃତ୍ତି, ବକଧାର୍ମିକତା, (ବିଂ) ବକ ଧାର୍ମିକ ।

ବକବ୍ରତିକ(ବ୍ରତୀ)—ପୁଂ. ବିଂ. କପଟ ସନ୍ନ୍ୟାସୀ,ଯେଉଁ ବ୍ୟକ୍ତି ସ୍ୱାର୍ଥ ସାଧନୋଦ୍ଦେଶ୍ୟରେ କପଟ ଭାବେ ଧର୍ମାଚାର ପାଳନ କରେ, ଭଣ୍ଡ ତପସ୍ୱୀ ।

ବକସହବାସୀ—ପୁଂ. ବ. ପଦ୍ମ ।

ବକସୀ—ଯା. ବ. ମୁସଲମାନ ରାଜସରକାର ଦପ୍ତରର ପ୍ରଧାନ କର୍ମଚାରୀ, କାଲେକ୍ଟରଙ୍କ ନାଜରଙ୍କ ସହକାରୀ,ପ୍ରାଚୀନ ଓଡ଼ିଶା ରାଜାମାନଙ୍କ ପ୍ରଧାନ ସେନାପତିଙ୍କ ଉପାଧି ।

ବକା—ଗ୍ରା.ବ. ଗପିବା, ଗପିଣ୍ଡା, କହିବା, ଗାଳି, ବକାସୁର, ବୋକା ଦେଖ ।

ବକାଚୀ—ସ୍ତ୍ରୀ. ବ. ବକଚଞ୍ଚିକା ମତ୍ସ୍ୟ, ତୋଣ୍ଡିମାଛ ।

ବକାଣ୍ଡପ୍ରତ୍ୟାଶା—ସ୍ତ୍ରୀ.ବ.(୬ତତ୍ପୁ)ଦୁର୍ଲଭ ବସ୍ତୁ ଲାଭର ପ୍ରତ୍ୟାଶା ।

ବକାରି—ପୁଂ. ବ. (୬ତତ୍ପୁ) ଶ୍ରୀକୃଷ୍ଣ, ଭୀମସେନ । [ ସ୍ୱାର ।

ବକାବକି—ଗ୍ରା.ବ. ବାଦବିତଣ୍ଡା, ତର-

ବକାସୁର—ବ. ଶ୍ରୀକୃଷ୍ଣଙ୍କ ଦ୍ୱାରା ହତ ବକାକୃତି ଅସୁରବିଶେଷ ।

ବକିବା—ଗ୍ରା.କ୍ରି. ଗାଳିଦେବା, ଅନେକ ସମୟଯାଏ ଗପିବା, ପାଗଳପରି ପ୍ରଳାପ କରିବା ।

ବକିଆ—ଯା. ବିଂ. ପୂର୍ବରୁ ବାକିଥିବା, ଅବଶିଷ୍ଟ,(ବ) ବାକି ରହିଥିବା କାର୍ଯ୍ୟ ।

ବକୀ—ସ୍ତ୍ରୀ. ବ. (ବକ+ଈ) ସ୍ତ୍ରୀ ଜାତୀୟ ବକ, ମାଈବଗ, ବକାସୁରର ଭଉଣୀ ପୂତନା ।

ବକୁଆ—ଗ୍ରା. ବିଂ. ବାଚାଳ, ବାବଦୂକ, ଯେ ବହୁତ ଗପେ ।

ବକୁର—ବ. ଭାସ୍କର, ସୂର୍ଯ୍ୟ,ତୁରୀ,ବିଜୁଳୀ

ବକୁଳ—ପୁଂ. ବ.ସ୍ୱନାମ ପ୍ରସିଦ୍ଧ ପୁଷ୍ପବୃକ୍ଷ ବିଶେଷ, ବଉଳ ।

ବକୁଳଅମାବାସ୍ୟା—ବ. ପୌଷମାସର ଅମାବାସ୍ୟା ।

ବକୁଳପୁଷ୍ପ—କ୍ଲୀ. ବ. ବଉଳ ଫୁଲ ।

ବକୁଲା—ସ୍ତ୍ରୀ.ବ. (ବକୁଳ+ଆ) କଟୁକୀ ।

ବକୁଲି—ଗ୍ରା. ବ. ନାକ ଭିତରୁ ଗୁଳି ଗୁଳିଆ ଭଳି ମଳ ।

ବକୁଳିତ—କ୍ରି. ବିଂ. ବକୁଳ ପୁଷ୍ପପରି ଶୋଭିତ ।

ବକୁଳୀ—ସ୍ତ୍ରୀ.ବ.କାକୋଲି, କାକୋଳୀ ।

ବକେୟା—ଯା.ବିଂ. ପୂର୍ବବାକୀ, ସାବିକ ।

ବକେରୁକା—ସ୍ତ୍ରୀ. ବ. ବଳାକା,(କ)ବକପଂକ୍ତି ।

ବକେଶ—ପୁଂ. ବ. ବକ ପ୍ରତିଷ୍ଠିତ ଶିବଲିଙ୍ଗବିଶେଷ ।

ବକୋଟ—ପୁଂ. ବ. ବକପକ୍ଷୀ ।

ବକ୍ତ—ଯା. ବ. ବଖତ ଦେଖ ।

ବକ୍ତବ୍ୟ—କ୍ରି. ବିଂ. ( ବଚ+ର୍ମ.ତବ୍ୟ ) କୁତ୍ସିତ, ହୀନ, ବଚନୀୟ, କହିବାର ଯୋଗ୍ୟ, ବାଚ୍ୟ, (ବ) ବଚନ, ନିନ୍ଦାପ୍ରସ୍ତାବ ।

ବକ୍ତବ୍ୟତା—କ୍ଲୀ.ବ. କଥନଯୋଗ୍ୟତା, ନିନ୍ଦନୀୟତା । [ ଭୂତ ବସ୍ତୁ ।

ବକ୍ତବ୍ୟବିଷୟ—ବ. ବକ୍ତୃତାର ବିଷୟୀ-

ବକ୍ତା(କ୍ତୃ)—ପୁଂ. ବିଂ. ( ବଚ୍+କ.ତୃ ) ବକ୍ତୃତାକାରୀ,ବାଗ୍ମୀ,ଭାଷଣପଟୁ, ପଣ୍ଡିତ, ବଦାନ୍ୟ, ବହୁଭାଷୀ ।

ବକ୍ତି—ସ୍ତ୍ରୀ.ବ.ଉକ୍ତି, କଥା, ବାକ୍ୟ ।

ବକ୍ତିୟାରଖିଲିଜି—ଯା.ବ.ଖ୍ରୀଷ୍ଟ ତ୍ରୟୋଦଶ ଶତାବ୍ଦୀର ଶେଷଭାଗରେ ଉତ୍ତରରେ ରାଜତ୍ୱ କରୁଥିବା ଖିଲିଜିବଂଶୀୟ ମୁସଲମାନ ରାଜାମାନଙ୍କ ମଧ୍ୟରୁ ଏକତମ ।

ବକ୍ତୁ—ପୁଂ.ବିଂ.ମନ୍ଦବାକ୍ୟ ଭାଷୀ ।

ବକ୍ତୁକାମ—କ୍ରି. ବିଂ. ( ବକ୍ତୁ+କାମ ) ବୋଲିବାକୁ ଇଚ୍ଛୁକ ବା ଅଭିଳାଷୀ ।

ବକ୍ତୃକ—କ୍ରି.ବିଂ. (ବକ୍ତୃ+କ) କଥନପଟୁ, ସତ୍ୟବାଦୀ ।

ବକ୍ତୃତା—ସ୍ତ୍ରୀ.ବ. ( ବଚ୍+ତୃ+ତା ) ବାକ୍‌ପଟୁତା,କହିବାର କ୍ଷମତା,ବାଗ୍ମିତା

ବକ୍ତୃତାକରିବା—ଗ୍ରା. କ୍ରି. ସଭାରେ କୌଣସି ବିଷୟ କହିବା ।

ବକ୍ତୃତ୍ୱ--କ୍ଲୀ.ତ.ବକ୍ତାର କାର୍ଯ୍ୟ,ବାଗ୍ମିତା ।
ବକ୍ତ୍ର—କ୍ଲୀ.ଣ. ( ବଚ୍+ଣ.ତ୍ର ) ମୁଖ, ମୁହଁ, ତଗରମୂଳ, ବସ୍ତ୍ରବିଶେଷ, ଛନ୍ଦବିଶେଷ, କାର୍ଯ୍ୟ ଆରମ୍ଭ, ବୀଜଗଣିତୋକ୍ତ ପ୍ରଥମ ଗୃହୀତ ସଂଖ୍ୟା, ତଗରଫୁଲ ।
ବକ୍ତ୍ରଜ—ବି.ବି°. ମୁଖସମ୍ବନ୍ଧୀୟ ।
ବକ୍ତ୍ରଖୁର—ପୁଂ.ବି. ଦନ୍ତ ।
ବକ୍ତ୍ରଜ—ପୁଂ.ବି. (ବକ୍ତ୍ର+ଜନ୍+କ.ଅ) ବ୍ରାହ୍ମଣ, (ବି°) ମୁଖଜାତ । [ ବାଦ୍ୟ ।
ବକ୍ତ୍ରତାଳ—କ୍ଲୀ.ବି. (ବକ୍ତ୍ର+ତାଳ)ମୁଖ-
ବକ୍ତ୍ରତୁଣ୍ଡ—ପୁଂ.ବି. ଗଣେଶ ।
ବକ୍ତ୍ରଦଂଷ୍ଟ୍ର—ବି. ବି°. ଦୀର୍ଘ ଦନ୍ତବିଶିଷ୍ଟ, ବକ୍ରଦନ୍ତଧାରୀ ।
ବକ୍ତ୍ରଦଳ—କ୍ଲୀ.ବି. ତାଳୁଦେଶ ।
ବକ୍ତ୍ରଦ୍ୱାର—କ୍ଲୀ.ବି. ମୁଖବିବର ।
ବକ୍ତ୍ରପଟ—କ୍ଲୀ.ବି. (କ.ଧା) ମୁଖାବରଣ ବସ୍ତ୍ର ।
ବକ୍ତ୍ରପଟ୍ଟ—ପୁଂ.ବି. ଡମା, ଅଶ୍ୱମାନଙ୍କର ଚଣକ ଭୋଜନ ପାତ୍ର ।
ବକ୍ତ୍ରପରିସ୍ପନ୍ଦ—ପୁଂ. ବି. ବକ୍ତୃତାକାଳୀନ ମୁଖ କମ୍ପନ, କଥନ, ବଚନ ।
ବକ୍ତ୍ରମାଳୀ—ଗ୍ରା.ବି°. ବହୁ ମୁଖବିଶିଷ୍ଟ ।
ବକ୍ତ୍ରଯୋଧୀ—ପୁଂ. ବି. ଅସୁରବିଶେଷ, (ବି°) ମୁଖଦ୍ୱାରା ଯୁଦ୍ଧକାରୀ (ପକ୍ଷୀ-ପ୍ରଭୃତି) ।
ବକ୍ତ୍ରରନ୍ଧ୍ର—କ୍ଲୀ. ବି. ମୁଖବିବର ।
ବକ୍ତ୍ରରୁହ—ବି. ବି°. ମୁଖଦେଶେ ଯାହା ଉତ୍ପନ୍ନ ହୁଏ, ହସ୍ତୀଶୁଣ୍ଡ କେଶରାଶି, ନିଶଦାଢ଼ି ପ୍ରଭୃତି ।
ବକ୍ତ୍ରରୋଗ—ପୁଂ. ବି. ମୁଖରୋଗ ।
ବକ୍ତ୍ରଶଲ୍ୟା—ସ୍ତ୍ରୀ. ବି. ଶ୍ୱେତକାଇଁଆ, ଚକ୍ରକାଇଁଆ ।
ବକ୍ତ୍ରଶୋଧନ—କ୍ଲୀ.ବି. (ବକ୍ତ୍ର+ଶୋଧନ) ଲେମ୍ବୁ, ମୁଖଶୋଧନ ।
ବକ୍ତ୍ରଶୋଧୀ—ପୁଂ. ବି. (ବକ୍ତ୍ର+ଶୁଧ୍+ଇନ୍) ଲେମ୍ବୁ, ଜମ୍ବୀର, (ବି°) ମୁଖଶୋଧକ (ତାମ୍ବୁଲାଦି) ।
ବକ୍ତ୍ରାଧିବାସ—ପୁଂ.ବି ନାଗରଙ୍ଗ ବୃକ୍ଷ ।
ବକ୍ତ୍ରାବାଲୁ—ପୁଂ. ବି. ବାରାହୀକନ୍ଦ ।
ବକ୍ତ୍ରାସବ—ପୁଂ.ବି. (କ.ଧା) ଅଧରମଧୁ. ଲାଳ, ଥୁକ, ଛେପ ।
ବକ୍ତ୍ରୀ—ସ୍ତ୍ରୀ. ବି. ସ୍ତ୍ରୀବକ୍ତା ।
ବକ୍ର—ବି. (ବନ୍କ+କ.ର) ନଦୀବାଙ୍କ, ତଗରପାଦୁକା, ବାଙ୍କ, ମୋଡ଼, ଶନୈଶ୍ଚର, ମଙ୍ଗଳଗ୍ରହ, ରୁଦ୍ର, ତ୍ରିପୁରାସୁର ପର୍ପଟ, ବକ୍ରଗତିବିଶିଷ୍ଟ ଗ୍ରହ, ଅସ୍ଥି ଭଙ୍ଗ ବିଶେଷ, ରାକ୍ଷସବିଶେଷ, ଜାତି ବିଶେଷ, (ବି°) ବଙ୍କା, କୁଟିଳ, କ୍ରୂର, କୁଚକ୍ରୀ, ଶଠ, ପ୍ରତିକୂଳ, ତେରଚ୍ଛା ।
ବକ୍ରକଣ୍ଟ—ପୁଂ.ବି. (ବ.ବ୍ରୀ) ବଦରବୃକ୍ଷ, ବରକୋଳି ଗଛ, ( କ.ଧା ) କୁଟିଳ କଣ୍ଟକ । [ ବୃକ୍ଷ ।
ବକ୍ରକଣ୍ଟକ—ପୁଂ. ବି. (ବ.ବ୍ରୀ) ଖଦିର-
ବକ୍ରଖଡ୍ଗ—ପୁଂ. ବି. (ବକ୍ର+ଖଡ୍ଗ)କରବାଳ, ତରବାର ।
ବକ୍ରଗ--ପୁଂ.ବି. (ବକ୍ର+ଗମ୍+ଅ)ସର୍ପ ।
ବକ୍ରଗତି—ସ୍ତ୍ରୀ. ବି. (କ.ଧା) ସାପ ପରି ବଙ୍କେଇ ବଙ୍କେଇ ଚାଲିବା, (ବ.ବ୍ରୀ) ସର୍ପ, ଖଳବ୍ୟକ୍ତି, (ବି°)ବଙ୍କାରେ ଯାଉଥିବା, କୁଚକ୍ରୀ, ଶଠ ।
ବକ୍ରଗାମୀ—ବି. ବି°. ଅସରଳ ଗତି. ଅସତ୍ ବ୍ୟକ୍ତି, ଶଠ, ପ୍ରବଞ୍ଚକ, ଯେ ସଳଖେ ସଳଖେ ଚାଲିଯାଇ ପାରେ ନାହିଁ
ବକ୍ରଗୁଳ୍ଫ—ପୁଂ. ବି. ଉଷ୍ଟ୍ର ।
ବକ୍ରଗ୍ରୀବ—ପୁଂ.ବି. (ବ.ବ୍ରୀ) ଉଷ୍ଟ୍ର.(ପୁଂ. ବି°) ଯାହାର ଗଳା ବଙ୍କା ।
ବକ୍ରଚଞ୍ଚୁ—ପୁଂ. ବି. (ବ.ବ୍ରୀ) ଶୁକପକ୍ଷୀ, ଶୁଆ, (ବି°) ଯାହାର ଥଣ୍ଟ ବଙ୍କା ।
ବକ୍ରଡ଼ିଁଗ—ଗ୍ରା. ବି. ବାଙ୍କଡେଇଁରିଆ, ସ୍ତ୍ରୀ ବାହୁଭୂଷଣବିଶେଷ. ସ୍ତ୍ରୀମାନଙ୍କ କୋଡ଼ାରେ ପିନ୍ଧିବା ଧନୁରାକାର ଅଳଂକାରବିଶେଷ ।
ବକ୍ରଣ—କ୍ଲୀ. ବି. ( ବନ୍କ+ଭା.ଅନ୍ ) ବକ୍ରୀକରଣ, ବଙ୍କାଇବା,ବକ୍ରକରିବା ।
ବକ୍ରତା(ତ୍ୱ)—ବି.ବକ୍ରର ଭାବ, କ୍ରୂରତା, ଶଠତା ।
ବକ୍ରତାଳ—କ୍ଲୀ. ବି. ( ବକ୍ର+ତାଳ ) ବାଦ୍ୟବିଶେଷ, ମୁଖବାଦ୍ୟ ।
ବକ୍ରତାଳୀ—ସ୍ତ୍ରୀ. ବି. ମୁଖବାଦ୍ୟ ।
ବକ୍ରତୁଣ୍ଡ—ପୁଂ. ବି. (ବ.ବ୍ରୀ) ଶୁକପକ୍ଷୀ, ଗଣେଶ, ଶୁଆ, (ବି°) ଯାହାର ପାଟି ବଙ୍କା, ବଙ୍କାମୁହାଁ ।
ବକ୍ରଦଂଷ୍ଟ୍ର—ପୁଂ. ବି. (ବ.ବ୍ରୀ) ଶୂକର, ବରାହ, (କ.ଧା) ବଙ୍କାଦାନ୍ତ, ( ବି° ) ଯାହାର ଦାନ୍ତ ବଙ୍କା । [ ରାକ୍ଷସ ।
ବକ୍ରଦନ୍ତ—ପୁଂ. ବି. ଦନ୍ତବକ୍ର ନାମକ
ବକ୍ରଦଳ—କ୍ଲୀ. ବି. ତାଳୁ ।
ବକ୍ରଦୃଷ୍ଟି—ସ୍ତ୍ରୀ.ବି.(କ.ଧା) ବଙ୍କିମଚାହାଣି କ୍ରୋଧଦୃଷ୍ଟି, ମନ୍ଦଦୃଷ୍ଟି,(ବି°) ଟେରା ।
ବକ୍ରନକ—ପୁଂ.ବି°. (ବକ୍ର+ନକ)ଖଳ, ଚୁଗୁଲିଆ, (ବି) ଶୁକପକ୍ଷୀ,ଚୁଗୁଲିଖୋର ବ୍ୟକ୍ତି ।
ବକ୍ରନଖ—ବି.(କ.ଧା)ବଙ୍କାନଖ,(ବ.ବ୍ରୀ) ହିଂସ୍ରପଶୁ ଓ ପକ୍ଷୀ,(ବି°-ବ.ବ୍ରୀ)ଯାହାର ନଖ ବଙ୍କା ।
ବକ୍ରନାସ—ବି. ବି°. (ବ.ବ୍ରୀ)ବକ୍ରନାସା ବା ଚଞ୍ଚୁଯୁକ୍ତ ।
ବକ୍ରନାସିକ—ପୁଂ. ବି. (ବ.ବ୍ରୀ) ପେଚା, ପେଚକ, (ବି°) ଯାହାର ନାକ ବଙ୍କା ।
ବକ୍ରପାଦ—ବି. ବି°. (ବ.ବ୍ରୀ) ବଙ୍କାପାଦ ଯୁକ୍ତ, ଖଞ୍ଜ ।
ବକ୍ରପୁଚ୍ଛ—ବି. ( ବକ୍ର+ପୁଚ୍ଛ ) କୁକ୍କୁର, (କ.ଧା) ସଲୋମ କୁଟିଳ ଲାଙ୍ଗୁଳ,ବଙ୍କାଲାଞ୍ଜ ।
ବକ୍ରପୁଚ୍ଛିକ—ପୁଂ. ବି. କୁକ୍କୁର ।
ବକ୍ରପୁଷ୍ପ—ପୁଂ. ବି. (ବ.ବ୍ରୀ) ଅଗସ୍ତିଗଛ, ପଳାଶଗଛ, (କ.ଧା) ଅଗସ୍ତିଫୁଲ,ପଳାଶ, ଫୁଲ । [ଲାଙ୍ଗୁଳିଯୁକ୍ତା ।
ବକ୍ରପୁଚ୍ଛିକା—ସ୍ତ୍ରୀ. ବି. ଲାଙ୍ଗୁଳିକା, ବିଷ-
ବକ୍ରଭଣିତ—କ୍ଲୀ. ବି. (ବକ୍ର+ଭଣିତ) କୁଟିଳବାକ୍ୟ, ଶ୍ଳେଷବାକ୍ୟ ।
ବକ୍ରଭାବ—ପୁଂ. ବି. ବକ୍ରତା,ବଙ୍କାଭାବ, ଅସରଳତା, କୁଟିଳତା ।
ବକ୍ରମ—ପୁଂ. ବି. ପଳାୟନ ।
ବକ୍ରଯୂ—ପୁଂ.ବି.ମୂଲ୍ୟ,ଦାମ୍ । [ ରେଖା ।
ବକ୍ରରେଖା—ସ୍ତ୍ରୀ.ବି.ବଙ୍କାଗାର, ଅସରଳ

ବକ୍ରଲାଙ୍ଗୁଳ—ପୁଂ. ବି. (ବ.ବ୍ରୀ)କୁକ୍କୁର, (କ.ଧା) କୁଟିଳପୁଚ୍ଛ।

ବକ୍ରବକ୍ତ୍ର—ପୁଂ. ବି. ଶୂକର, (କ ଧା) ବଙ୍କାମୁଖ,(ବିଂ-ବ.ବ୍ରୀ) ବକ୍ରମୁଖ ବିଶିଷ୍ଟ, କୁଟିଳ ମୁଖଯୁକ୍ତ।

ବକ୍ରବାଲଧି—ପୁଂ. ବି. (ବ.ବ୍ରୀ)କୁକ୍କୁର, (କ.ଧା) କୁଟିଳପୁଚ୍ଛ।

ବକ୍ରଶଲ୍ୟା—ସ୍ତ୍ରୀ. ବି. କୁଟୁମ୍ବିନୀ କ୍ଷୁପ,କଟୁତୁମ୍ବୀ, ପିତାଲାଉ।

ବକ୍ରାଙ୍ଗ—କ୍ଲୀ. ବି. (ବ.ବ୍ରୀ)ହଂସ, ସର୍ପ, (କ.ଧା) କୁଟିଳ ଅବୟବ, (ବିଂ)ବଙ୍କାଦେହ ବିଶିଷ୍ଟ, ଅବନତାଙ୍ଗ।

ବକ୍ରି—ବି. ବିଂ. (ବଚ+କ୍ରି) ମିଥ୍ୟାବାଦୀ, ଅନୃତଭାଷୀ।

ବକ୍ରିତ—ବି. ବିଂ. (ବକ୍ର+ଇତ)ବକ୍ରତାପ୍ରାପ୍ତ, ବକ୍ର, ବକ୍ରଗତି ଅନୁସୃତ।

ବକ୍ରିମ—ବି. ବିଂ. (ବକ୍ର+ଇମ) ବକ୍ର, କୁଟିଳ, ଅସରଳ।

ବକ୍ରିମା—ପୁଂ. ବି. ( ବକ୍ର+ଇମନ୍ ) ବକ୍ରତା, କୌଟିଲ୍ୟ,ଶଠତା,କୁଟିଳତା।

ବକ୍ରୀ—ପୁଂ. ବିଂ. (ବକ୍ର+ଇନ୍) ବକ୍ରରୂପ ଅବସ୍ଥିତ,ବକ୍ରଗତି ବିଶିଷ୍ଟ,ବକ୍ରଗାମୀ, (ବି) ବୁଦ୍ଧ।

ବକ୍ରୀକରଣ—କ୍ଲୀ. ବି. ବଙ୍କାଇବା।

ବକ୍ରୀଗ୍ରହ—ପୁଂ. ବିଂ. ( ବକ୍ରିନ୍+ଗ୍ରହ ) ସୂର୍ଯ୍ୟଙ୍କଠାରୁ ୩୦ଅଂଶ ମଧ୍ୟରେ ଅବସ୍ଥିତ ଗ୍ରହ। [ପ୍ରବଞ୍ଚକତା।

ବକ୍ରୀଭାବ—ବି. ବିଂ. ବକ୍ରତା,କୁଟିଳତା,

ବକ୍ରୀଭୂ—ବି. ବିଂ. ବକ୍ରତାପ୍ରାପ୍ତ, ପ୍ରବଞ୍ଚନାଯୁକ୍ତ, ଅସରଳଚିତ୍ତ।

ବକ୍ରେତର—ବି. ବିଂ. ସରଳ, ଯାହା ବକ୍ର ନୁହେ।

ବକ୍ରୋକ୍ତି— ସ୍ତ୍ରୀ. ବି. (କ.ଧା) ଦୁଇଅର୍ଥ ବୋଧକ କଥା, ଶ୍ଳେଷବାକ୍ୟ, ବାକ୍ୟର ଅଳଂକାରବିଶେଷ।

ବକ୍ରୋଷ୍ଠିକା— ସ୍ତ୍ରୀ. ବି. (ବ.ବ୍ରୀ) ଅଦୃଷ୍ଟରଦହାସ୍ୟ, ଈଷତ୍ ହାସ୍ୟ।

ବକ୍ଷଃ—କ୍ଲୀ. ବି. (ବକ୍ଷ+ଅସ୍) ଅଙ୍ଗବିଶେଷ, ହୃଦୟୋପରସ୍ଥ ଦେହଭାଗ, ହୃଦୟ, ବୁକୁ, ଛାତି, ବଳଦ।

ବକ୍ଷଃପୀଡ଼ା—ବି. ଯକ୍ଷ୍ମାରୋଗ ଛାତି ଦରଜ।

ବକ୍ଷଣ—ବି.ବିଂ. ଶକ୍ତିଶାଳୀ,ବଳଦାୟୀ, (ବି) ବାହକ, ବକ୍ଷ, ଅଗ୍ନି।

ବକ୍ଷଃସମର୍ଦ୍ଦିନୀ—ସ୍ତ୍ରୀ.ବି. (ବକ୍ଷସ୍+ସଂ+ମୃଦ୍+ଇନ୍+ଈ) ସ୍ତ୍ରୀ, ପତ୍ନୀ।

ବକ୍ଷଃସ୍ଥଳ—କ୍ଲୀ. ବି. ( ୬ତତ୍ ) ବକ୍ଷ, ହୃଦୟ, ଛାତି, କାନ୍ଧ ଓ ବେକ ତଳଠାରୁ ପେଟ ପର୍ଯ୍ୟନ୍ତ ଦେହର ସାମନା ଅଂଶ।

ବକ୍ଷସ୍ତଟାଘାତ—ପୁଂ.ବି. (ବକ୍ଷ+ତଟ+ଆଘାତ) ବକ୍ଷ ସ୍ଥଳୋପରି ମୁଷ୍ଟ୍ୟାଘାତ

ବକ୍ଷସ୍ପନ୍ଦନ—କ୍ଲୀ.ବି. ବକ୍ଷ କମ୍ପନ, ଛାତିଥରିବା।

ବକ୍ଷୀ—ସ୍ତ୍ରୀ.ବି. (ବକ୍ଷ+ଈ) ଅଗ୍ନିଶିଖା।

ବକ୍ଷୋଗ୍ରୀବ—ପୁଂ.ବି. ବିଶ୍ୱାମିତ୍ର ପୁତ୍ରବିଶେଷ।

ବକ୍ଷୋଜ—କ୍ଲୀ. ବି. (ବକ୍ଷସ୍+ଜନ୍+କ.ଅ) ପୟୋଧର, କୁଚ, ସ୍ତ୍ରୀ ସ୍ତନ।

ବକ୍ଷୋରୁହ—ପୁଂ.ବି.(ବକ୍ଷ+ରୁହ)ସ୍ତନ, ପୟୋଧର, କୁଚ।

ବକ୍ଷ୍ୟମାଣ—ବି.ବିଂ.(ବଚ+ଆନ)ଭବିଷ୍ୟତ୍ କଥନୀୟ ବିଷୟ,ବାଚ୍ୟ,ବକ୍ତବ୍ୟ।

ବକ୍‌ସିସ—ଯା. ବି. ପୁରସ୍କାର, ପାରିତୋଷିକ।

ବଖଡ଼(ଡ଼ା)—ଗ୍ରା.ବି. ବଗଡ଼, ଗୋଳମାଳ, ଝଗଡ଼ା, କଳି, ବାଧା,ଆପତ୍ତି।

ବଖଡ଼ିଆ—ଗ୍ରା.ପୁଂ.ବିଂ. ହଇରାଣକାରୀ, ଯେ ବାଧାଦିଏ, କଳହପ୍ରିୟ, ବଗୁଲିଆ, ଖେଚଡ଼ା,ଆପତ୍ତିକାରୀ, ଗୋଳମାଳିଆ (ବିଷୟ)।

ବଖରା—ଗ୍ରା.ବି. ବାଣ୍ଟ, ଭାଗ, ଗୃହର ପ୍ରକୋଷ୍ଠ,ଅଂଶ, ଅଂଶୀଦାରୀ କାରବାର

ବଖରାକରିବା—ଗ୍ରା. କ୍ରି. ବଡ଼ ଘରକୁ ଗୋଟି ଗୋଟି କୋଠରିରେ ବିଭକ୍ତ କରିବା, ବାଣ୍ଟିବା।

ବଖରାଦାର୍—ଯା. ବି ଓ ବିଂ.ଅଂଶୀଦାର, ଭାଗଦାର।

ବଖରାଦାରି—ଯା.ବି. ଅଂଶୀଦାରୀ, ପରିଶ୍ରମ ଓ ଫଳକୁ ବାଣ୍ଟିନେବା ସର୍ତ୍ତ, ସହିକତି।

ବଖରାଧରିବା—ଗ୍ରା.କ୍ରି. କୌଣସି ଜମିକୁ ଭାଗରେ ବା ଧାନ୍ଦାରେ ଚାଷ କରିବା।

ବଖରାବସା(ସେ)ଇବା—ଗ୍ରା. କ୍ରି. ଭାଗ ବସାଇବା।

ବଖରିଆ—ଗ୍ରା. ବିଂ. ଏତେ ସଂଖ୍ୟକ ବଖରାର ପରିମାଣଯୁକ୍ତ, (ଗୃହ) ଏତେ ସଂଖ୍ୟକ କୋଠରିବିଶିଷ୍ଟ।

ବଖାଡ଼ୁ—ଗ୍ରା. ବିଂ. ଗୋଳମାଳିଆ, ଅଡ଼ୁଆପୂର୍ଣ୍ଣ।

ବଖାଣ—ଗ୍ରା.ବି. (ସଂ-ବକ୍ଷ୍ୟମାଣ)କଥନ, କହିବା, ବର୍ଣ୍ଣନ, (ବିଂ) ଉକ୍ତ, କଥିତ।

ବଖାଣକରିବା—ଗ୍ରା.କ୍ରି.କହିବା,ବିଶଦରୂପ ବର୍ଣ୍ଣନା କରିବା, ପ୍ରଚାର କରିବା

ବଖାଣିବା—ଗ୍ରା. କ୍ରି. କହିବା, ବର୍ଣ୍ଣନା କରିବା, ପ୍ରଚାର କରିବା।

ବଖାଣିହେବା—ଗ୍ରା.କ୍ରି. ପରସ୍ପର କଥାହେବା, କଥୋପକଥନ କରିବା।

ବଖାରି—ଗ୍ରା. ବି. ( ସଂ-ବଲ୍ଲୀ ) ବଂଶଶଳାକା, ବାଉଁଶକାଠି, ବାଉଁଶର ଫାଳ୍ ପଟି।

ବଖିଆ—ଗ୍ରା. ବି. ଏକପ୍ରକାର ମଜବୁତ୍ ସିଲେଇ।

ବଖିଲ୍—ଯା. ବିଂ. କୃପଣ, ବ୍ୟୟକୁଣ୍ଠ, ଅଭାବଗ୍ରସ୍ତ, ଲୋଭୀ।

ବଖୁରି-ଗ୍ରା.ବି.ଗୋଟିଏ ବଖରା ବା କୋଠରି।

ବଖୁରିଆ—ଗ୍ରା. ବିଂ. ବଖରିଆ ଦେଖ।

ବଗ୍‌ରାଇବା—ପ୍ରା. (ସମ୍ବ) କ୍ରି. ସ୍ତୂପୀକୃତ କୌଣସି ବସ୍ତୁକୁ ଖେଳେଇବା।

ବଗ୍‌ଲି—ପ୍ରା. (ବାଲେ)ବି. ଧଳା ରଙ୍ଗର ପାରା।

ବଗ—ଗ୍ରା. ବି. ବକ ଦେଖ।

ବଗଚର(ରା)—ଗ୍ରା.ବି.ପୋଖରୀର ଯେଉଁ ଅଂଶରେ ବଗ ଚରନ୍ତି, ସଡ଼କ ପାଖର ନୟନଜୋଡ଼ି, ପୋଖରୀ କୂଳର ଯେଉଁ ଅଂଶ ବର୍ଷାଦିନେ ପାଣିରେ ବୁଡ଼ିଯାଏ ଓ ଖରାଦିନେ ଶୁଖିଲା ରହେ।

ବଗଟା—ପ୍ରା.(ଗଞ୍ଜାମ)ବି. ଗଞ୍ଜାମ ଜିଲ୍ଲାର

ପାଟକ ଜାତିବିଶେଷ ।

ବଗଡ଼—ଗ୍ରା. ବି°, ଜାଳେଜ ଅଶ୍ଳୀଳଭାଷୀ, କ୍ରୂରମନ, ଖେଚଡ଼ା, ମୋଟା, (ବି) ଅଣ୍ଡତର, ଖେଚର, ଦୋମିଶା ଜାତ, ଅଶ୍ଳୀଳଭାଷା, ପର୍ବତର ଉପରଭାଗସ୍ଥ ଉଚ୍ଚଭୂମି ।

ବଗଡ଼ା—ଗ୍ରା. ବି°. ମୋଟା, କର୍କଶ ।

ବଗଡ଼ାଲ୍ଲ—ପା. (ଗଞ୍ଜାମ)ବି. ମଲକଡ଼ି, ଉପର କାନର ଅଳଙ୍କାର ।

ବଗଡ଼ିଆ—ଗ୍ରା, ବି°. ବଗୁଲିଆ, ଦୁଷ୍ଟ, କଳହପ୍ରିୟ, ଅଶ୍ଳୀଳ ଭାଷୀ ।

ବଗମେଲ(ଳ)—ଗ୍ରା. ବି. ବନ୍ଧୁଲୋକ ବା ଅଶ୍ୱାରୋହୀଙ୍କର ଧାଡ଼ି ବାନ୍ଧି ଗତିକରିବା

ବଗଲ—ଯା.ବି.କାଖ,ବାହୁ ମୂଳର ନିମ୍ନ-ଦେଶ, ପାର୍ଶ୍ୱଦେଶ, ପାଖ, (ପ୍ରା, ଆଳି ଓ କଟକା.ବି) ମଇର ଦୁଇମୁଣ୍ଡ ।

ବଗଳାମୁଖୀ—ଗ୍ରା.ସ୍ତ୍ରୀ.ବି. ତନ୍ତ୍ରୋକ୍ତ ଦଶ-ମହା ବିଦ୍ୟାରୁ ଏକତମା ଦେବୀବିଶେଷ

ବଗଲି—ଗ୍ରା.ପୁ°.ବି. ଅଣ୍ଡିରା ବଗ ।

ବଗଳି—ଗ୍ରା. ବି. ଟନାସି ଦେଖ ।

ବଗହୁଲା—ଗ୍ରା.ବି.ଅଗସ୍ତି ଗଛ ପରି ଆଉ ଏକପ୍ରକାର ଗଛ ।

ବଗା—ଗ୍ରା. ବି°. ଓଲୁ, ନିର୍ବୋଧ, ଅବାଟିଆ, (ପ୍ରା. ସମ୍ବ.ବି) ପାଗଳ ।

ବଗାତ—ଯା, ବି, ବଗିଚା, ଉଦ୍ୟାନ ।

ବଗାର—ପ୍ରା, (ସମ୍ବ)ବି. ଅଣ୍ଡିରା ମଇଁଷି ଛୁଆ, (ପ୍ରା. ବଉଧ.ବି) ଜନ୍ମ କରି ନ ଥିବା ମାଈ ମଇଁଷି ।

ବଗାଖି—ପ୍ରା, (ସମ୍ବ)ବି. ମଇଷି ଛଡ଼ା ।

ବଗାଲ—ପ୍ରା.(ସିଂହ)ବି,ମାଲିକର ଘରେ ରହି ଗ୍ରାସାଚ୍ଛାଦନ ପାଇଁ ବାର୍ଷିକ ଦର-ମାରେ ଯେଉଁ ଗୋରୁ ରଖୁଆଳ ଚାକିରି କରେ ।

ବଗି—ଯା.ବି.ଦୁଇ ଚକିଆ ଘୋଡ଼ାଗାଡ଼ି, ଚାରି ଚକିଆ ଗାଡ଼ି, ( ଗ୍ରା. ବି ) ବକ-ଜାତୀୟ ଏକପ୍ରକାର କୂଳେଚର ପକ୍ଷୀ ।

ବଗିଚା—ଯା. ବି. ଉଦ୍ୟାନ ।

ବଗୀ—ଯା.ବି.ତରବାରି,(ଗ୍ରା.ବି)ରେସମୀ ସୂତ୍ରବିଶେଷ, ଭୋଜ୍ୟ ପାତ୍ରବିଶେଷ, ଅଶ୍ୱପାଳବିଶେଷ ।

ବଗୁଲ—ଗ୍ରା. ପୁ°. ବି. ବକ ଜାତୀୟ କୂଳେଚର ପକ୍ଷୀବିଶେଷ ।

ବଗୁଲିଆ—ଗ୍ରା.ବି°.ଚପଳ,ଦୁଷ୍ଟ,ପାମର, ବର୍ବର. ବାବଦୂକ, ମିଛୁଆ, ଠକ ।

ବଗୁଲି—ଗ୍ରା. ବି. ମାଈ ବଗ ।

ବଘର—ଗ୍ରା,ବି. ବଘାରିବା କ୍ରିୟା, (ବି°) ଯାହା ବଘର ହୋଇଥାଏ, ଛୁଙ୍କ,ତର-କାରି ଫୁଟାଇବା । [ ଶାଖା ।

ବଘ(ଘେ)ଲ—ରାଜପୁତ ଜାତିର ଗୋଟିଏ

ବଘାରିବା—ଗ୍ରା. କ୍ରି. ଛୁଙ୍କିବା, ତେଲ ବା ଘିଅରେ ମସଲା ଫୁଟାଇ ତର-କାରିକୁ ପରଷିବା,(ଲ.ଅର୍ଥ)ପ୍ରକାଶ୍ୟରେ ଗାଳି ମନ୍ଦ କରିବା, ପରର ଗୁପ୍ତଦୋଷ ପ୍ରକାଶ କରିବା ।

ବଘିବା—ପ୍ରା. (ସମ୍ବ)କ୍ରି.ଚଢ଼ିବା, ଆରୋ-ହଣ କରିବା ।

ବଙ୍କ—ପୁ°,ବି. (ବନ୍କ+ଅ)କୌଟିଲ୍ୟ, (ବି°) ବଙ୍କା, ବକ୍ର ।

ବଙ୍କର—ପୁ°, ବି. ନଦୀର ବାଙ୍କ ।

ବଙ୍କବିହାରୀ—ପୁ°. ବି. ଶ୍ରୀକୃଷ୍ଣ ।

ବଙ୍କସେନ—ପୁ°.ବି.ଅଗସ୍ତିବୃକ୍ଷ,ବକବୃକ୍ଷ ।

ବଙ୍କା—ଗ୍ରା. ବି°. ବକ୍ର, ବଙ୍କା, କୁଟିଳ, ନତ, ଜଟିଳ ।

ବଙ୍କା(ଙ୍କେ)ଇବା—ଗ୍ରା.କ୍ରି. ବକ୍ରକରିବା, ବକ୍ରହେବା । [ ବକ୍ର ।

ବଙ୍କାଟଙ୍କା—ଗ୍ରା.ବି°. ଅନେକ ସ୍ଥାନରେ

ବଙ୍କାମୁହାଁ—ଗ୍ରା. ବି°. ବକ୍ରମୁଖବିଶିଷ୍ଟ ।

ବଙ୍କାଲୁ—ସ୍ତ୍ରୀ. ବି. ନଗରବିଶେଷ, ବଙ୍ଗ-ଳାର ପ୍ରାଚୀନ ରାଜଧାନୀ ।

ବଙ୍କାଲୀ—ଗ୍ରା. ବି. ଦେବୀବିଶେଷ ।

ବଙ୍କି—ଗ୍ରା. ବି. ଫୁଲର ନାଡ଼ ।

ବଙ୍କିଆ—ଗ୍ରା.ବି,ଗୋଡ଼ରେ ପିନ୍ଧିବା ଏକ-ପ୍ରକାର ବଳା, ବାଙ୍କି । [ ବାଙ୍କ ।

ବଙ୍କିମ—ବି°. (ବଙ୍କ + ଇମ)ବକ୍ର,ଈଷତ୍

ବଙ୍କିମଚନ୍ଦ୍ର—ଗ୍ରା. ବି. ବଙ୍ଗୀୟ ସୁପ୍ରସିଦ୍ଧ ସ୍ୱର୍ଗୀୟ ଉପନ୍ୟାସକାର ବଙ୍କିମଚନ୍ଦ୍ର ଚଟ୍ଟୋପାଧ୍ୟାୟ । [ ନୟନା ।

ବଙ୍କିମନୟନା—ଗ୍ରା.ବି°,ବାମାକ୍ଷୀ, ବକ୍ର-

ବଙ୍କିଲ—ପୁ°.ବି. (ବଙ୍କ+ଇଲ)କଣ୍ଟକ, କଣ୍ଟା, (ଗ୍ରା.ବି) କଦମ୍ବ ଗଛ ।

ବଙ୍କୁ—କ୍ରି. ବି°. (ବଙ୍କ + ଉ) ବକ୍ରଗାମୀ, ବକ୍ରଗମନଶୀଳ, ବକ୍ର, କୁଟିଳ, (ବି) ପ୍ରାଚୀନ ନଦୀବିଶେଷ । [ ଭେଦ) ।

ବଙ୍କୁନାଳ—ଗ୍ରା.ବି.ଭ୍ରୂମଧ୍ୟସ୍ଥ ବିନ୍ଦୁ (ଶରୀର-

ବଙ୍କର—ବି°. (ବଙ୍କ+ଉର) ବଙ୍କା ।

ବଙ୍କୁଲି—ଗ୍ରା.ବି°.ବଙ୍କା ଓ ଖ୍ରୋଟ(ବାଢ଼ୁ), ଈଷତ୍ ବକ୍ର ।

ବଙ୍କ୍ୟ—କ୍ରି.ବି°.(ବଙ୍କ+ଯ) ବକ୍ର, ବଙ୍କା, ଟେରା, (ସ୍ତ୍ରୀ) ବଙ୍କ୍ୟା ।

ବଙ୍କ୍ଷଣ—ପୁ°.ବି.(ବଙ୍କ୍ଷ+ଅନ) ଉରୁସନ୍ଧି, କୁଞ୍ଚକି ।

ବଙ୍କ୍ଷୁ—ସ୍ତ୍ରୀ. ବି. ଗଙ୍ଗାସ୍ରୋତବିଶେଷ ।

ବଙ୍ଗ—କ୍ଲୀ. ବି. (ବନ୍ଗ୍+ଅଧି.ଅ)ଧାତୁ-ବିଶେଷ, ଟିଣ, ରଙ୍ଗ, ସପୁ, ଉତ୍ତର ଭାରତର ପୂର୍ବଦେଶବିଶେଷ,(ବଂ+ଗମ୍ +କ,ଅ) କେଉଟ, ନୋଳିଆ, (ବି°) ବଙ୍ଗ ଦେଶୀୟ, ବଙ୍ଗୀୟ, ବଙ୍ଗାଳି, ବଙ୍ଗବାସୀ ।

ବଙ୍ଗଜ—ବି.ସିନ୍ଦୂର,ପିତ୍ତଳ, ବଙ୍ଗ ଦେଶ-ବାସୀ କାୟସ୍ଥ,(ବି°)ବଙ୍ଗଦେଶଜାତ ।

ବଙ୍ଗଜୀବନ—କ୍ଲୀ. ବି. ରୌପ୍ୟ ।

ବଙ୍ଗଦେଶ—ପୁ°.ବି,ସ୍ୱନାମ ପ୍ରସିଦ୍ଧ ଭାର-ତୀୟ ଦେଶଭାଗ ।

ବଙ୍ଗନ—ପୁ°. ବି. ( ବନ୍ଗ୍+ଅନ ) ବାଇଗଣ, ବାଇଗଣ ।

ବଙ୍ଗଭସ୍ମ—ବି.ଆୟୁର୍ବେଦକ ପ୍ରକ୍ରିୟାରେ ପ୍ରସ୍ତୁତ ରଙ୍ଗ ଧାତୁର ପାଉଁଶ ।

ବଙ୍ଗଭାଷା—ସ୍ତ୍ରୀ,ବି. ବଙ୍ଗଦେଶୀୟ କଥିତ ଓ ଲିଖିତ ଭାଷା ।

ବଙ୍ଗମଲ—ପୁ°.କ୍ଲୀ.ବି, ସୀସଧାତୁ,ସୀସା ।

ବଙ୍ଗଳା—ଗ୍ରା,ବି.(ସଂ-ବଙ୍ଗ) ବଙ୍ଗଦେଶ, ବଙ୍ଗୀୟ ଭାଷା, ମଉଡ଼ମରା ଘର, (ପ୍ରା, ସମ୍ବ.ବି)ମହାନଦୀ କୂଳର ପଟୁ ଜମିରେ ଚାଷ ହେଉଥିବା ଏକପ୍ରକାର ଫୁଟି ଫଳ ।

ବଙ୍ଗଳାପାନ—ଗ୍ରା. ବି, ବଙ୍ଗଦେଶରେ ମିଳୁଥିବା ସୁଗନ୍ଧଯୁକ୍ତ ଏକପ୍ରକାର ପାନ ।

ବଙ୍ଗାଳାଶ୍ରୀ—ସ୍ତ୍ରୀ.ବି. ରାଗବିଶେଷ ।
ବଙ୍ଗବ୍ୟବଚ୍ଛେଦ—ବି. ଲର୍ଡ଼ କର୍ଜନଙ୍କ କର୍ତ୍ତୃକ ଖ୍ରୀ: ୧୯୦୫ରେ ବଙ୍ଗଳାର ବିଭାଗକରଣ ।
ବଙ୍ଗଶୁଲ୍ବଜ—କ୍ଳୀ.ବି. କାଂସ୍ୟଧାତୁ, ପିତ୍ତଳ
ବଙ୍ଗସେନ—ପୁଂ.ବି. ବକବୃକ୍ଷ, ଅଗସ୍ତି ଗଛର ଫୁଲ । [ ଚନ ।
ବଙ୍ଗାଢ—ବି. ବଙ୍ଗଦେଶରେ ପ୍ରଚଳିତ
ବଙ୍ଗାର—ପୁଂ.ବି. (୬ତତ୍) ହରିତାଳ ।
ବଙ୍ଗାଲ—ପୁଂ.ବି. ଭୈରବ ରାଗର ପୁତ୍ର (ଗ୍ରା.ବି) ଧଳାରଙ୍ଗ ।
ବଙ୍ଗାଳିଆ—ଗ୍ରା. ବିଂ. ବଙ୍ଗାଳମାନଙ୍କ ମଧ୍ୟରେ ପ୍ରଚଳିତ । [ ରାଗିଣୀ ।
ବଙ୍ଗାଳିକା—ସ୍ତ୍ରୀ. ବି. ଭୈରବ ରାଗର
ବଙ୍ଗାଳୀ—ସ୍ତ୍ରୀ. ବି. ଭୈରବ ରାଗର ରାଗିଣୀ, ( ଗ୍ରା.ପୁଂ.ବି ) ବଙ୍ଗଦେଶୀୟ ବ୍ୟକ୍ତି, (ବିଂ) ବଙ୍ଗଦେଶୀୟ ।
ବଙ୍ଗାଳୀତନ୍ତ୍ରୀ—ଗ୍ରା. ବି. ଓଡ଼ିଶାରେ ଅଳ୍ପଦିନ ହେଲା ଉପନିବେଶ କରିଥିବା ବଙ୍ଗବାସୀ ତନ୍ତ୍ରୀ ।
ବଙ୍ଗୀୟ—ତ୍ରି.ବିଂ. (ବଙ୍ଗ+ଈୟ) ବଙ୍ଗଦେଶେ ଭବ, ବଙ୍ଗଦେଶ ସମ୍ବନ୍ଧୀୟ ।
ବଚ—ପୁଂ.ବି. (ବଚ୍+କ.ଅ) ଶୁଆପକ୍ଷୀ ସୂର୍ଯ୍ୟ, (ର୍ମି.ଅ) କାରଣ, (ଗ୍ରା.ବି) କଚୁ ଆଦି ବର୍ଗର ଶାକବିଶେଷ, ଏହାର ମୂଳ କଟୁ ଓ ଔଷଧରେ ବ୍ୟବହୃତ ହୁଏ ।
ବଚକାମି—ଯା.ବିଂ. ଶିଶୁମାନଙ୍କ ଯୋଗ୍ୟ ଶିଶୁ ଜନୋଚିତ, (ବି) ଶିଶୁଙ୍କ ପରିଧେୟ ବସ୍ତ୍ର ।
ବଚକ୍ନୁ—ପୁଂ.ବି. ବ୍ରାହ୍ମଣ, (ବିଂ) ବାଚାଳ ଦୂକ, ବହୁଭାଷୀ, ବାଗ୍ମଳ ।
ବଚଣ୍ଡୀ—ସ୍ତ୍ରୀ. ବି. ଶାରିକା, କର୍ତ୍ତ୍ରୀ, ଶସ୍ତ୍ରବିଶେଷ ।
ବଚନ—କ୍ଳୀ.ବି. (ବଚ୍+ଭା.ଅନ) ଉକ୍ତି, କଥନ, (ର୍ମି.ଅନ) ବାକ୍ୟ, କଥା, ଶାସ୍ତ୍ର, କଥିତ ବାକ୍ୟ, ସତ୍ୟ, ଅଙ୍ଗୀକାର, ପ୍ରତିଜ୍ଞା, ବ୍ୟାକରଣର ଏକତ୍ୱ ବା ଏକାଧିକତ୍ୱ ଜ୍ଞାପକ ବିଧାନବିଶେଷ, (ଗ୍ରା.ବି) ଆଜ୍ଞା, ଉପଦେଶ ।
ବଚନକର—ତ୍ରି.ବିଂ. ବଚସ୍କର, ବଚନେ ଅବସ୍ଥିତ ।
ବଚନକାରୀ—ପୁଂ.ବିଂ. (ବଚନ+କୃ+କ.ଇନ୍) ବାକ୍ୟାନୁସାରେ କାର୍ଯ୍ୟକାରୀ, ଆଜ୍ଞାନୁବର୍ତ୍ତୀ, ଆଜ୍ଞାକାରୀ ।
ବଚନଗୋଚର—ତ୍ରି. ବିଂ. (ବଚନ+ଗୋଚର) ବାକ୍ୟଦ୍ୱାରା ଗୋଚର, ପ୍ରତ୍ୟକ୍ଷୀଭୂତ ।
ବଚନଗ୍ରାହୀ—ପୁଂ. ବିଂ. (ବଚନ+ଗ୍ରହ+ଇନ୍) ବଚନାନୁସାରେ କାର୍ଯ୍ୟକାରୀ, ଯେ କଥାମାନେ । [ ବାକ୍‌କୁଶଳ ।
ବଚନପଟୁ—ତ୍ରି.ବିଂ. (୭ତତ୍) ବାକ୍‌ପଟୁ,
ବଚନବଦ୍ଧ—ବି. (୩ତତ୍) ସତ୍ୟବଦ୍ଧ, ପ୍ରତିଶ୍ରୁତ, ପ୍ରତିଜ୍ଞାବଦ୍ଧ ।
ବଚନବିଦଗ୍ଧା—ସ୍ତ୍ରୀ. ବିଂ. ( ୩ତତ୍ ) କାବ୍ୟୋକ୍ତ ନାୟିକାବିଶେଷ, ଯେଉଁ ପରକୀୟା ନାୟିକା ଆପଣାର ବଚନ ଗୁରୁତ୍ୱଦ୍ୱାରା ନାୟକର ପ୍ରୀତି ସାଧନ କରେ ।
ବଚନବିରୋଧ—ତ୍ରି. ବିଂ. ପ୍ରମାଣବିରୁଦ୍ଧ ଶାସ୍ତ୍ରବାକ୍ୟ ।
ବଚନବିରୁଦ୍ଧ—ତ୍ରି.ବିଂ. ଶାସ୍ତ୍ରବିରୁଦ୍ଧ ।
ବଚନମାତ୍ର—ତ୍ରି.ବିଂ. ଭିତ୍ତିହୀନ ବାକ୍ୟ, ଯେଉଁ କଥା ମୌଳିକତ୍ୱ ଘଟଣାଦ୍ୱାରା ପ୍ରମାଣିତ ନୁହେ ।
ବଚନଲକ୍ଷିତା—ସ୍ତ୍ରୀ, ବିଂ. ( ୩ତତ୍ ) କାବ୍ୟୋକ୍ତ ନାୟିକାବିଶେଷ, ଯେଉଁ ପରକୀୟା ନାୟିକାର କଥାବାର୍ତ୍ତାରୁ ଉପପତି ଠାରେ ପ୍ରେମ ପରିଲକ୍ଷିତ ହୁଏ
ବଚନଶତ—ତ୍ରି.ବିଂ. ବହୁବାକ୍ୟ ।
ବଚନଶୂର—ବିଂ. (୩ତତ୍) ଯେ କେବଳ ବାକ୍ୟରେ ବୀରତ୍ୱ ପ୍ରକାଶ କରେ, ବାକ୍ୟବୀର ।
ବଚନସର୍ବସ୍ୱ—ପୁଂ. ବିଂ. (ବ.ବ୍ରୀ) ଯାର କଥ ମାତ୍ର ସାର, କିନ୍ତୁ କାର୍ଯ୍ୟତଃ କିଛି କରେ ନାହିଁ ।
ବଚନାନୁଗ—ତ୍ରି. ବିଂ. (ବଚନ+ଅନୁ+ଗମ୍+ଅ) ବାକ୍ୟର ଅନୁଗାମୀ ।
ବଚନିକା—ଗ୍ରା.ବି. ଦୁଇଜଣଙ୍କ ମଧ୍ୟରେ କଥୋପକଥନ ।
ବଚନୀକୃତ—ତ୍ରି.ବିଂ. ତିରସ୍କୃତ, ଲାଞ୍ଛିତ ।
ବଚନୀୟ—ତ୍ରି. ବିଂ. (ବଚ୍+ର୍ମି.ଅନୀୟ) କଥନୀୟ, ନିନ୍ଦନୀୟ, ବାଚ୍ୟ, (ବି) ନିନ୍ଦା ।
ବଚନୀୟତା—ସ୍ତ୍ରୀ.ବି (ବଚନୀୟ+ତା) ଲୋକାପବାଦ, ନିନ୍ଦା, ନିନ୍ଦିତ ହେବାର ଅବସ୍ଥା ।
ବଚନୋପକ୍ରମ—ପୁଂ.ବି.(୬ତତ୍) ବାକ୍ୟାନ୍ତର, ଉପନ୍ୟାସ, ବାଙ୍ମୁଖ ।
ବଚର—ପୁଂ.ବି. (ବଚ୍+ଅର) କୁକ୍କୁଟ, (ବିଂ) ଶଠ, ଧୂର୍ତ୍ତ ।
ବଚକ୍ନୁ—ପୁଂ.ବି. (ବଚ୍+ଅକ୍ନୁ) ଶିକ୍ଷୁ ।
ବଚସ—କ୍ଳୀ. ବି. (ବଚ୍+ଅସ୍) ବାକ୍ୟ, ବଚନ ।
ବଚସା—ଗ୍ରା. ବି. ବାକ୍ୟ ବ୍ୟୟ, ବକାବକି, ବାଗ୍‌ଯୁଦ୍ଧ, ବିତଣ୍ଡା ।
ବଚସାଂପତି—ପୁଂ.ବି. (ବଚସାଂ+ପତି) ବୃହସ୍ପତି ।
ବଚସ୍କର—ତ୍ରି. ବିଂ. ( ବଚସ୍+କର ) ବଚନାନୁସାରେ କାର୍ଯ୍ୟକାରୀ, ଆଜ୍ଞାବହ, ଅଧୀନ ।
ବଚସ୍ୟ—ତ୍ରି.ବିଂ. ବଚନଯୋଗ୍ୟ, ପ୍ରଶଂସନୀୟ, ବିଖ୍ୟାତ ।
ବଚା—ସ୍ତ୍ରୀ. ବି. ( ବଚ+ଆ ) ଔଷଧିବିଶେଷ, ଶାରିକାପକ୍ଷୀ, ଭେଷଜମୂଳବିଶେଷ, ବଚ, (ଯା.ବି) ଶିଶୁ, ପୁତ୍ର, ବାଳକ, ଜୀବଜନ୍ତୁଙ୍କ ଛୁଆ, (ଗ୍ରା.ବି) ଏକପ୍ରକାର ମାଛ ।
ବଚୋଗ୍ରହ—ପୁଂ.ବି. ( ବଚସ୍+ଗ୍ରହ ) କର୍ଣ୍ଣ, ଶ୍ରୋତ୍ର ।
ବଛର—ଗ୍ରା.ପୁଂ.ବି. (ସଂ-ବତ୍ସତର) ପଶୁଶାବକ, ବାଛୁରି, ଘୋଡ଼ାଛୁଆ ।
ବଛରୁ—ପ୍ରା.(ଲଗ୍ଆ)ବି. ବାଛୁରି ।
ବଛସ—ଗ୍ରା.ବି. ବ୍ରାହ୍ମଣମାନଙ୍କର ଶାଖାବିଶେଷ ।
ବଚ୍ଛ—ଗ୍ରା.ବି. ନଙ୍ଗଳେ, ବାଛୁବା କର୍ମ, ଲୁଗାରେ ହୋଇଥିବା ଛିଦ୍ରରେ ଛୁଞ୍ଚି-

ଦ୍ୱାରା ସୂତା ଗୁଣିବା, ଅଣ୍ଡିର ବାଛୁରୀ (ବି°) ନବାଗତ, ଶ୍ରେଷ୍ଠ ।
ବଗୁ(ଛେ)ଇବା—ଗ୍ରା. କି. ଅନ୍ୟଦ୍ୱାରା ବାଛିବା କିୟା କରାଇବା ।
ବଗୁବଗୁ—ଗ୍ରା.ବି°. ନବାଗତ ଓ ଉତ୍କୃଷ୍ଟ (ବସ୍ତୁବ୍ୟକ୍ତି) ।
ବଗୁବଛ—ଗ୍ରା.ବି. ବାଛିବା କିୟା,ଧାନ ଲେନ୍ରୁ ଘାସ ବାଛିବା ।
ବଗୁମୁଦ—ଗ୍ରା. ବି. ନାମାଙ୍କିତ ମୁଦ୍ରିକା
ବଚ୍ଛ—ଗ୍ରା.ପୁଂ.ବି. (ଆଦରାର୍ଥକ) ପୁତ୍ର, ସନ୍ତାନ ।
ବଚ୍ଛୀ—ଗ୍ରା.ସ୍ତ୍ରୀ.ବି. ମାଈ, ସ୍ତ୍ରୀକାଉ ।
ବଜନ୍ଦଆ—ପ୍ରା.(ସମ୍ବ)କି.ବଜେନ୍ତ୍ରୀ,ବାଜାଦାର । [ କଲ ।
ବଜନ୍ଦଣ—ଯା. ବି. ଠିକ୍, ମୂଲ୍ୟ. ଅବ-
ବଜବଜ—ଗ୍ରା.ଅବ୍ୟ. ଗୁଡ଼ାଏ ଗପିବା, ପଚ୍‌ପଚ୍, ଯାହା ଗୋଡ଼ରେ ଦାବ ଦେଲେ ଦବଯାଏ, ପାଣିକଣ କୃମି-ସଙ୍କୁଳ (ଘାଆ, ପଚରା (ବସ୍ତୁଆଦି) ।
ବଜବଜ୍‌ହେବା—ଗ୍ରା. କି. ଗୁଡ଼ାଏ ବୃଥା ଗପିବା ।
ବଜବଜିଆ—ଗ୍ରା.ବି. ଗୋରୁଙ୍କ ଧରିବା ଏକପ୍ରକାର ରୋଗ, (ଗ୍ରା.ବି ) କୀଟ-ସଙ୍କୁଳ,ସଢ଼ା (ଘାଆ ଓ ଦ୍ରବ୍ୟ ନୀଳ ଓ ଫେନ ମିଶ୍ରିତ ଝାଡ଼ା) ।
ବଜ—ଗ୍ରା. ବି, ଧାନଆଦି ଶସ୍ୟର ବହୁ ପରିମାଣ । [ ବର୍ଦ୍ଧନା ।
ବଜନ୍ତ୍ର—ପ୍ରା, ( ଗଞ୍ଜାମ ) ବି. ଯଥାଯଥ
ବଜନ୍ତୁର—ପ୍ରା. (ଗଞ୍ଜାମ)ବି, ବାଦ୍ୟ ।
ବଜନ୍ତ୍ରୀ—ଗ୍ରା.ବି,ବାଜା ବଜାଇବାଲୋକ, ବାଜାବାଲା ।
ବଜା—ଗ୍ରା.ବି.(ସଂ-ବାଦ୍ୟ) ବଜାଇବା, ବାଦ୍ୟ ବାଦନ, ସ୍ପର୍ଶ କରିବା,ଆଘାତ, (ବି°) ଆହତ, ଯାହା ବାଜେ ।
ବଜା(ଜେ)ଇବା—ଗ୍ରା.କି. ଶବ୍ଦାୟମାନ କରାଇବା, ବାଦ୍ୟାଦି ବାଦନ କରିବା, ସ୍ପର୍ଶକରିବା,ଆଘାତ କରିବ , ମାରିବା ।
ବଜାବଜି—ଗ୍ରା. ବି. ଅନ୍ୟୋନ୍ୟରେ ଆଘାତ ବା ସ୍ପର୍ଶ କରିବା, ବାଦକ କରିବା ।
ବଜାଏ—ଯା.ବି°. ଅବିକଳ, ପୂର୍ବବତ୍, ରକ୍ଷିତ, ଅପରିବର୍ତ୍ତିତ ।
ବଜାର—ଯା. ବି. ପଣ୍ୟ ବୀଥିକା, ଦୋକାନ ଶ୍ରେଣୀ, ବିପଣୀ, ଶ୍ରେଣୀ-ବଦ୍ଧ ପଣ୍ୟାଦି ବିକ୍ରୟର ସ୍ଥାନସମୂହ ।
ବଜାରଦର—ଗ୍ରା. ବି. ପଣ୍ୟ ଦ୍ରବ୍ୟର ବଜାରରେ ପ୍ରଚଳିତ ମୂଲ୍ୟ ।
ବଜାରବୁଲା—ଗ୍ରା.ପୁଂ.ବି°. ଯେଉଁ ଲୋକ ବଜାରରେ ବୁଲି ଭିକ୍ଷାକରି ପେଟ ପୋଷେ ।
ବଜାରି—ଗ୍ରା.ପୁଂ.ବି°.ସହରବାସୀ(ଲୋକ) ମାତୃଭ୍ରଷ୍ଟ, ନୀଚ ଓ ଦୁଷ୍ଟ ( ଲୋକ ), ଇତର (ବ୍ୟକ୍ତି), ନିକୃଷ୍ଟ (ବସ୍ତୁ) ।
ବଜେଟ୍—ଯା.ବି. ଆଗାମୀ ବର୍ଷର ଆୟ ବ୍ୟୟର ଆନୁମାନିକ ତାଲିକା ।
ବଜ୍ଜାତ—ଯା.ବି°. ପୁଂ ଓ ସ୍ତ୍ରୀ. ଦୁର୍ବୃତ୍ତ, ଦୁଷ୍ଟ, ଖେଚଡ଼ା, ନୀଚ-କୁଳୋତ୍ପନ୍ନ ।
ବଜ୍ଜାତି—ଯା.ବି. ଦୁଷ୍ଟାମୀ,ଖେଚଡ଼ାମୀ, ପାଜିପଣ ।
ବଜ୍ର—ବି. ( ବଜ୍ + ର ) ଇନ୍ଦ୍ରାସ୍ତ୍ର-ବିଶେଷ, ଚିଡ଼ିକ, ହ୍ଲାଦିନୀ, କୁଳିଶ, ଅଶନି, ରତ୍ନବିଶେଷ, ହୀରକ, ହୀରା ବଜ୍ରର ଆଘାତପରି ଦାରୁଣ ଆଘାତ, ଦେବତାମାନଙ୍କର ଆଠପ୍ରକାର ଅସ୍ତ୍ର, ଅଷ୍ଟବଜ୍ର, ମର୍ମଭେଦୀ ତିରସ୍କାର, ମଣି-ଆଦି ଛିଦ୍ର କରାଯିବା ହୀରକର ସୂଚୀ, ମନୁଷ୍ୟର ଦେହରେ ଦେଖାଯିବା ବଜ୍ରା-କୃତଚିହ୍ନ (ସାମୁଦ୍ରିକ); ବିଷ୍କୁମ୍ଭାଦି୨୭ ଯୋଗ ମଧ୍ୟରୁ ଏକତମ, ଶ୍ରୀକୃଷ୍ଣଙ୍କ ପ୍ରପୌତ୍ର ଓ ଅନିରୁଦ୍ଧଙ୍କ ପୁତ୍ର; କୁଶ, ଶିଷ୍ଟ, ଗୁପ୍ତ, ଅମ୍ଳ, ଅଲମ୍ବୁ, ଆକସ୍ମିକ ଭୟଙ୍କର ବିପଦ, ବିଦ୍ୟୁତ୍, ବଜ୍ର-ଲୌହ, ବରଗ୍ଛ, (ବାସ୍ତୁବିଦ୍ୟା)ଯେଉଁ ସ୍ତମ୍ଭର ମଧ୍ୟଭାଗ ଅଷ୍ଟକୋଣ, ବିଷ୍ଣୁଙ୍କ ପାଦତଳେ ଥିବା ଚିହ୍ନବିଶେଷ,ଅଭ୍ରକ କୋଇଲେଖା ଗୁଳ୍ମ,ଶ୍ୱେତକୁଶ, କାଞ୍ଜି-ଧାନ୍ୟୀଗୁଳ୍ମ, ହିଜ୍ଜଳଗଛ, ବିଶ୍ୱାମିତ୍ରଙ୍କର ଏକପୁତ୍ର, ବଜ୍ରପୁଷ୍ପ, ( ବି° ) କଠିନ, ବଜ୍ରାକୃତ, ଦାରୁଣ, ଅସହ୍ୟ, ହୃଦୟ-ଭେଦୀ, (ଗ୍ରା.ବି) ଦୁର୍ଜୟ, ଦୃଢ଼ ଓ ଚିରସ୍ଥାୟୀ । [ ବିଶେଷ ।
ବଜ୍ରକ—କ୍ଲୀ. ବି. ବଜ୍ରକ୍ଷାର, ଉପଗ୍ରହ-
ବଜ୍ରକକ୍ଷାର—ପୁଂ.କ୍ଲୀ.ବି. ବଜ୍ରକ୍ଷାର ।
ବଜ୍ରକଙ୍କଟ—ପୁଂ.ବି. (ବଜ୍ର+କଙ୍କଟ) ହନୁମାନ ।
ବଜ୍ରକଣ୍ଟକ—ପୁଂ.ବି. ସ୍ନୁହୀବୃକ୍ଷ, କୋକିଳାକ୍ଷ ବୃକ୍ଷ, କୋଇଲେଖା ଗଛ ।
ବଜ୍ରକଣ୍ଟଶାଲ୍ମଳୀ—ସ୍ତ୍ରୀ.ବି. ନରକବିଶେଷ
ବଜ୍ରକନ୍ଦ—ପୁଂ.ବି. (ବଜ୍ର+କନ୍ଦ)ବଜ୍ରକର୍ଣ୍ଣି, ସାକର କନ୍ଦା, ବଣଓଲୁଅ,ତାଳ ଗଛର ଫଳ ।
ବଜ୍ରକପାଲୀ—ପୁଂ.ବି. ବୁଦ୍ଧବିଶେଷ ।
ବଜ୍ରକର୍ଣ୍ଣୀ—ପୁଂ. ବି. ବଜ୍ରକନ୍ଦ, ସାକର କନ୍ଦା, ବଣଓଲୁଅ ।
ବଜ୍ରକାପଡ଼ା—ଗ୍ରା.ବି. ନେଉଳ ଜାତୀୟ ଅଦନ୍ତ କଠିନ କାତ (ଶଲ୍କ)ଯୁକ୍ତ କୀଟ-ଭୁକ୍ ସରୀସୃପ । [ ଦ୍ରବ୍ୟ ।
ବଜ୍ରକାରକ—ପୁଂ.ବି. ନଖିନାମକ ଗନ୍ଧ-
ବଜ୍ରକାଳିକା—ସ୍ତ୍ରୀ. ବି. ମାୟାଦେବୀ, ଶାକ୍ୟମୁନିଙ୍କ ମାତା ।
ବଜ୍ରକିଲଣି—ଗ୍ରା.ବି. କବାଟର ଖୁବ୍ ଦୃଢ଼ କୀଳକ ।
ବଜ୍ରକୀଟ—ପୁଂ.ବି. ଏକପ୍ରକାର କୀଟ ।
ବଜ୍ରକୀଲ—ପୁଂ.ବି. ବଜ୍ର ।
ବଜ୍ରକୁକ୍ଷି—ପୁଂ.ବି. ପ୍ରାଦୃଷ୍ଟିଓବିଶେଷ ।
ବଜ୍ରକେତୁ—ପୁଂ. ବି. ଅସୁରବିଶେଷ, ନରକରାଜ ।
ବଜ୍ରକ୍ଷାର—କ୍ଲୀ.ବି. କ୍ଷାରବିଶେଷ;ପ୍ଲିହା-ରୋଗାଧିକାର ଔଷଧବିଶେଷ ।
ବଜ୍ରଗମ୍ଭୀର—ବି°. (କ.ଧା) ବଜ୍ରସଦୃଶ ଗମ୍ଭୀର ।
ବଜ୍ରଗୁପ୍ତି—ଗ୍ରା. ବି. ସାଞ୍ଜୁ ।
ବଜ୍ରଗୋପ—ପୁଂ. ବି. ଇନ୍ଦ୍ରଗୋପକୀଟ ବିଶେଷ, ସାଧବାଣୀ ପୋକ ।
ବଜ୍ରଚର୍ମା—ପୁଂ. ବି. ଗଣ୍ଡାର, ଗଣ୍ଡା, (ବି°) ଯାହାର ଚମଡ଼ା ଖୁବ୍ ଦୃଢ଼ ।
ବଜ୍ରଚଞ୍ଚୁ—ପୁଂ. ବି. ଗୃଧ୍ରପକ୍ଷୀ ।

ବଜ୍ରକନ୍ତ—ପୁଂ. ବ. (ବଜ୍ର+କ+କ. କ୍ୱିପ୍) ଗରୁଡ଼ ।

ବଜ୍ରଜ୍ୱଲନ—ପୁଂ. ବ. ବିଦ୍ୟୁତ୍,ସୌଦାମିନୀ, ବଜୁଳି ।

ବଜ୍ରଜ୍ୱାଳା—ସ୍ତ୍ରୀ. ବ. (୬ତତ୍) ବଜ୍ରାଗ୍ନି, ବୈଦ୍ୟୁତାନଳ, (ବ.ବ୍ରୀ) ବୈରୋଚନ ବଳିର ପୌତ୍ରୀ, କୁମ୍ଭକର୍ଣ୍ଣର ପତ୍ନୀ ।

ବଜ୍ରତୁଣ୍ଡ—ପୁଂ. ବ. (ବ.ବ୍ରୀ) ଗରୁଡ଼, ଗଣେଶ, ଗୃଧ୍ର, ମଶକ, ସ୍ନୁହୀବୃକ୍ଷ,ସିଜୁଗଛ, ମକ୍କୁଣ । [ କଠିନ ।

ବଜ୍ରତୁଲ୍ୟ—ବିଂ. ବଜ୍ରସଦୃଶ, ବଜ୍ରପରି

ବଜ୍ରଦଂଷ୍ଟ୍ର—ପୁଂ. ବ. (ବଜ୍ର+ଦଂଷ୍ଟ୍ରା) ଇନ୍ଦ୍ରଗୋପକୀଟ, ରାବଣର ସେନାପତି ଅସୁରବିଶେଷ, (ବିଂ) ବଜ୍ରପରି ଦଂଷ୍ଟ୍ରାଯୁକ୍ତ ।

ବଜ୍ରଦନ୍ତ—ପୁଂ. ବ. (ବ.ବ୍ରୀ) ବରାହ, ଶୂକର, ମୂଷିକ, ହସ୍ତୀ, (ବିଂ) ବଜ୍ରପରି କଠିନ ଦନ୍ତବିଶିଷ୍ଟ । [ ଦେଖ ।

ବଜ୍ରଦଶନ—ପୁଂ. ବ. (ବ.ବ୍ରୀ) ବଜ୍ରଦନ୍ତ

ବଜ୍ରଦେହ—ବିଂ. (ବ.ବ୍ରୀ) ବଜ୍ରସଦୃଶ କଠିନଦେହ; (ବି) ବଳରାମ ।

ବଜ୍ରଦ୍ରୁମ—ପୁଂ. ବ. ସ୍ନୁହୀବୃକ୍ଷ, କଣ୍ଟାସିଜୁ ଗଛ । [ ବିଶେଷ ।

ବଜ୍ରଧର—ପୁଂ. ବ. ଇନ୍ଦ୍ର, ବୌଦ୍ଧଯତି-

ବଜ୍ରନଖ—ବିଂ.(ବ.ବ୍ରୀ) ବଜ୍ରପରି କଠିନ ନଖଯୁକ୍ତ, (ବି) ନୃସିଂହ ।

ବଜ୍ରନାଦ—ବି. ଅଶନି ଶବ୍ଦ, ଘଡ଼ଘଡ଼ି, ଘଡ଼ଘଡ଼ି ପରି ଉଚ୍ଚ ଶବ୍ଦ ।

ବଜ୍ରନାଭ—ପୁଂ. ବ. ଜନୈକ ଅସୁର, କୃଷ୍ଣଙ୍କର ଜ୍ୟୋତିଃ ।

ବଜ୍ରନାରଚ—କ୍ଳୀ. ବ. ଅସ୍ତ୍ରବିଶେଷ ।

ବଜ୍ରନିର୍ଘୋଷ—ପୁଂ. ବ. (୬ତତ୍) ବଜ୍ରଜନିତ ଶବ୍ଦ, ବଜ୍ରଧ୍ୱନି ।

ବଜ୍ରନିଷ୍ପେଷ—ପୁଂ. ବ. ବଜ୍ରନିର୍ଘୋଷ ।

ବଜ୍ରପଞ୍ଜର—ପୁଂ.ବ. ଦୁର୍ଗାସ୍ତୋତ୍ରବିଶେଷ, କବଚବିଶେଷ ।

ବଜ୍ରପାଣି—ପୁଂ. ବ. (ବ.ବ୍ରୀ) ଇନ୍ଦ୍ର, ବ୍ରାହ୍ମଣ, ବୌଦ୍ଧମତେ ଦେବଯୋନିବିଶେଷ, (ବିଂ) ବଜ୍ରଧାରଣକାରୀ ।

ବଜ୍ରପାତ—ପୁଂ.ବ. (୬ତତ୍)ବଜ୍ରପତନ, ଚଡ଼କ ମାରିବା ।

ବଜ୍ରପାଷାଣ—କ୍ଳୀ.ବ.ଦୁଗ୍ଧପାଷାଣ,ଫୁଲକଡ଼ି ।

ବଜ୍ରପୁଷ୍ପ—କ୍ଳୀ. ବ. ତିଳପୁଷ୍ପ, ଶତପୁଷ୍ପା ଶଉପ ।

ବଜ୍ରପ୍ରାୟ—ତ୍ରି. ବିଂ. ବଜ୍ରବତ୍ କଠିନ ।

ବଜ୍ରବାହୁ—ପୁଂ. ବ. ଇନ୍ଦ୍ର, ରୁଦ୍ର, ଅଗ୍ନି, ଓଡ଼ିଶାର ଜଣେ ରାଜା ।

ବଜ୍ରବୀଜକ—ପୁଂ.ବ. ଲତାକରଞ୍ଜ,ଗିଲ ।

ବଜ୍ରବାରକ—ବି. ଛଜଣ ମହାତପା, ଯେଉଁମାନଙ୍କର ନାମ ସ୍ମରଣ କଲେ ମନୁଷ୍ୟଉପରେ ବଜ୍ରପଡ଼ିବାର ଭୟ ନ ଥାଏ, (ଯଥା—ଜୈମିନି, ସୁମନ୍ତ, ବୈଶମ୍ପାୟନ,ପୁଲସ୍ତ୍ୟ, ପୁଲହ,ଜିଷ୍ଣୁ) ।

ବଜ୍ରବାରଣ—ଗ୍ରା.ବି. ଘରକୋଠା ଆଦିକୁ ବଜ୍ରପାତରୁ ରକ୍ଷାକରିବାପାଇଁ ତହିଁ-ଉପରେ ଦିଆଯାଇଥିବା ବୈଦ୍ୟୁତିକ ଶକ୍ତିବିଶିଷ୍ଟ ଲୌହଶଲାକା ।

ବଜ୍ରଭୂମିରଜଃ—କ୍ଳୀ. ବ. ବୈକାନ୍ତମଣି ।

ବଜ୍ରଭୃତ୍—ପୁଂ. ବ. (ବଜ୍ର+ଭୃ+କ. କ୍ୱିପ୍) ଇନ୍ଦ୍ର ।

ବଜ୍ରମଣି—ପୁଂ.ବ. (କ.ଧା)ହୀରକ,ହୀରା ।

ବଜ୍ରମୟ—ତ୍ରି. ବିଂ. (ବଜ୍ର+ମୟ)ବଜ୍ରସ୍ୱରୂପ, ବଜ୍ରତୁଲ୍ୟ ।

ବଜ୍ରମାର—ଗ୍ରା. ବ. ବଜ୍ରମୂଳୀ ।

ବଜ୍ରମୁଷ୍ଟି—ବି. (ବ.ବ୍ରୀ) ଇନ୍ଦ୍ର, ରାକ୍ଷସବିଶେଷ, ବଣଓଲଅ ।

ବଜ୍ରମୂଳ—ବି.ଜବାଦି ବର୍ଗର କ୍ଷୁପବିଶେଷ ଔଷଧଗୁଳ୍ମବିଶେଷ ।

ବଜ୍ରମୂଳୀ—ସ୍ତ୍ରୀ. ବ. (ବଜ୍ର+ମୂଳ+ଈ) ମାଷପର୍ଣ୍ଣୀ । [ ବିଶେଷ ।

ବଜ୍ରଯାନ—ଗ୍ରା. ବ. ବୌଦ୍ଧଉପସମ୍ପ୍ରଦାୟ

ବଜ୍ରଯୋଗ—ଜ୍ୟୋ.ଉକ୍ତ ଯୋଗବିଶେଷ ।

ବଜ୍ରରଥ—ପୁଂ. ବ. କ୍ଷତ୍ରିୟ ।

ବଜ୍ରରଦ—ପୁଂ. ବ, (ବ.ବ୍ରୀ) ଶୂକର, (ବିଂ) ବଜ୍ରପରି ଦନ୍ତ ଯାହାର ।

ବଜ୍ରରୂପ—ବିଂ. (ବ.ବ୍ରୀ)ବଜ୍ରପରି ଆକୃତି ବିଶିଷ୍ଟ ।

ବଜ୍ରଲେପ—ପୁଂ.ବ. ଶଙ୍ଖ ଓ ମୂର୍ତ୍ତିଉପରେ ମଡ଼ାଯିବା ଚିରସ୍ଥାୟୀ ଲେପବିଶେଷ, ବାର୍ଣ୍ଣିସ, ମସଲାବିଶେଷ ।

ବଜ୍ରଲେପଘଟିତ—ତ୍ରି. ବିଂ. ବଜ୍ରଲେପଦ୍ୱାରା ସମ୍ବଦ୍ଧ ।

ବଜ୍ରଲେପମୟ—ବିଂ. ବଜ୍ରଲେପ ବିଶିଷ୍ଟ, ଅତି କଠିନ । [ ଚୁମ୍ବକ ।

ବଜ୍ରଲୌହକ—କ୍ଳୀ. ବ. କାନ୍ତଲୌହ,

ବଜ୍ରବଧ—ପୁଂ. ବ. ବଜ୍ରପତନ ଦ୍ୱାରା ମୃତ୍ୟୁ, ଗୁଣାଙ୍କବିଶେଷ । [ ବିଶେଷ ।

ବଜ୍ରବରଚନ୍ଦ୍ର—ପୁଂ.ବ. ଓଡ଼ିଶାର ରାଜା-

ବଜ୍ରବଲ୍ଲୀ—ସ୍ତ୍ରୀ.ବ. ଅସ୍ଥିସଂହାରକ ଲତା ।

ବଜ୍ରବାରାହୀ—ସ୍ତ୍ରୀ. ବ. ମାୟାଦେବୀ, ବୌଦ୍ଧମାନଙ୍କର ଉପାସ୍ୟ ଦେବୀବିଶେଷ

ବଜ୍ରବିଷ୍କମ୍ଭ—ପୁଂ. ବ. ଗରୁଡ଼ଙ୍କ ପୁତ୍ରବିଶେଷ । [ ବିଶେଷ ।

ବଜ୍ରବୀଜକ—ପୁଂ. ବ. କାଣ୍ଡୁକନାମ ଲତା-

ବଜ୍ରବୀର—ପୁଂ. ବ. ମହାକାଳ ନାମକ ମୂର୍ତ୍ତିବିଶେଷ ।

ବଜ୍ରବୃକ୍ଷ—ପୁଂ. ବ.ସିଜୁଗଛ,ମନସାସିଜୁ ।

ବଜ୍ରଶଲାକା—ବି.(କ.ଧା) ବଜ୍ରନିବାରକ ଶଲାକା, ବଜ୍ରବାରଣ ଦେଖ ।

ବଜ୍ରଶଲ୍ୟ—ପୁଂ.ବ. ଶଲ୍ୟକନାମା ଜନ୍ତୁ, ଏହାର ଦେହର ଲୋମ ବଜ୍ରପରି ଟାଣ ।

ବଜ୍ରଶାଖା—ସ୍ତ୍ରୀ. ବ. ଜୈନ ସମ୍ପ୍ରଦାୟବିଶେଷ ।

ବଜ୍ରଶୃଙ୍ଖଳିକା—ସ୍ତ୍ରୀ. ବ. ବଜ୍ରାସ୍ଥି, କୁଇଲେଖା ଗଛ ।

ବଜ୍ରସଂଘାତ—ପୁଂ. ବ. ବଜ୍ରପରି କଠିନ, ଭୀମ, ବଜ୍ରଲେପ ଦେଖ ।

ବଜ୍ରସାର—ତ୍ରି.ବିଂ. (ବ.ବ୍ରୀ) ବଜ୍ରସମାନ ସାର, (ବି) ହୀରକ, ହୀରା ।

ବଜ୍ରସାରମୟ—ତ୍ରି. ବିଂ. (ବଜ୍ରସାର+ମୟ) ହୀରକ ନିର୍ମିତ,ବଜ୍ରସାର ସଦୃଶ ।

ବଜ୍ରସୂଚ(ଚୀ)—ସ୍ତ୍ରୀ. ବ. ହୀରକ ନିର୍ମିତ ସୂଚୀ,ଶଙ୍କରାଚାର୍ଯ୍ୟ ବିରଚିତ ଉପନିଷଦ୍ ଭେଦ, ପୃଥ୍ୱୀରେ ପଡ଼ିବା ସମୟରେ ବଜ୍ରର ଯେଉଁ ଲୌହମୟ ଅଂଶ ବୃକ୍ଷ ଆଦିକୁ ଭେଦକରେ ।

ବଜ୍ରସୂର୍ଯ୍ୟ—ପୁଂ. ବ. ବୁଦ୍ଧବିଶେଷ ।
ବଜ୍ରସେଣ୍ଟା—ଗ୍ରା. ବ. ବୁଢ଼ିକବର ।
ବଜ୍ରହସ୍ତ—ଗ୍ରା. ବ. ଓଡ଼ିଶାର ପ୍ରାଚୀନ ଗଙ୍ଗବଂଶୀୟ ଖ୍ୟାତନାମା ଜନୈକ ରାଜା, (ସଂ ବ ଓ ବଂ) ବଜ୍ରପାଣି ଦେଖ ।
ବଜ୍ରହେବା—ଗ୍ରା. କ୍ରି. ବଜ୍ରପରି କଠିନ ହେବା, ଚିରସ୍ଥାୟୀ ହେବା ।
ବଜ୍ରା—ସ୍ତ୍ରୀ. ବ.(ବଜ୍‌+ର+ଆ)ତିକଣ୍ଟା ଓ ପଞ୍ଚସିଦ୍ଧିଗଛ, ସ୍ନୁହୀବୃକ୍ଷ, ଗୁଡ଼ୁଚୀ, ଦୁର୍ଗା
ବଜ୍ରାଂଶୁ—ପୁଂ.ବ.ଶ୍ରୀକୃଷ୍ଣଙ୍କ ପୁତ୍ରବିଶେଷ ।
ବଜ୍ରାକର—ପୁଂ.ବ.(୬ତତ୍ତ୍)ହୀରକଖଣି ।
ବଜ୍ରାକୃତ—ବି. ବଂ. (ବ.ଗ୍ରା) ବଜ୍ରପରି ଆକୃତି ବିଶିଷ୍ଟ ।
ବଜ୍ରାଖ୍ୟ—କ୍ଲୀ. ବ.(ବ.ଗ୍ରା) ବଜ୍ରପାଷାଣ, ଫୁଲଖଡ଼ି, ବଜ୍ରଶବ୍ଦାର୍ଥ ।
ବଜ୍ରାଗ୍ନି—ବ. (୬ତତ୍ତ୍) ବଜ୍ରର ଅଗ୍ନି, ବିଦ୍ୟୁତାଗ୍ନି, ଚଡ଼କ ନିଆଁ ।
ବଜ୍ରାଘାତ—ପୁଂ. ବ. (୬ତତ୍ତ୍)ବଜ୍ରପାତ, ଆକସ୍ମିକ ଦୁର୍ଘଟଣା, ଉପରେ ବଜ୍ର ପଡ଼ିବା ।
ବଜ୍ରାଙ୍କିତ—ବି. ବଂ. (ବଜ୍ର+ଅଙ୍କିତ) ବଜ୍ରଚିହ୍ନ ଯୁକ୍ତ ।
ବଜ୍ରାଙ୍ଗ—ପୁଂ. ବ. (ବ.ଗ୍ରା) ସର୍ପ, (ବଂ) ବଜ୍ରପରି କଠିନ ଅଙ୍ଗବିଶିଷ୍ଟ, (ସ୍ତ୍ରୀ) ବଜ୍ରାଙ୍ଗୀ ।
ବଜ୍ରାଚାର୍ଯ୍ୟ—ନେପାଳସ୍ଥ ବୌଦ୍ଧ ତାନ୍ତ୍ରିକ ଆଚାର୍ଯ୍ୟ ବିଶେଷ, ଯାହାଙ୍କୁ ତିବ୍ବତରେ ଲାମା କହନ୍ତି ।
ବଜ୍ରାଭ—ପୁଂ. ବ. (ବ.ଗ୍ରା)ଦୁଗ୍ଧପାଷାଣ, (ବଂ) ହୀରକ ତୁଲ୍ୟ ଦୀପ୍ତିବିଶିଷ୍ଟ ।
ବଜ୍ରାଭ୍ର—ବ. (ବଜ୍ର+ଅଭ୍ର) କୃଷ୍ଣାଭ୍ର ।
ବଜ୍ରାୟୁଧ—ବଂ.ବ.ଗ୍ରା; ଇନ୍ଦ୍ର, ଜନୈକ କବି ।
ବଜ୍ରାଶନ—ପୁଂ. (ବଜ୍ର+ଅଶନ) ବଜ୍ର
ବଜ୍ରାସନ—କ୍ଲୀ. ବ. ଚ.(ବଜ୍ର+ଆସନ) ହଠଯୋଗର ଆସନ ବିଶେଷ, ବୁଦ୍ଧଦେବଙ୍କ ଆସନ ବିଶେଷ ।
ବଜ୍ରାସ୍ତ୍ର—ବ.(ବଜ୍ର+ଅସ୍ତ୍ର)ଇନ୍ଦ୍ରଙ୍କର ଅସ୍ତ୍ର, ଅଶନି, ଆଗ୍ନେୟାସ୍ତ୍ର ।
ବଜ୍ରାସ୍ଥିଶୃଙ୍ଖଳା—ସ୍ତ୍ରୀ. ବ. କୋଙ୍କଲାକ୍ଷ ବୃକ୍ଷ, କୋଇଲେଖା ଗଛ ।
ବଜ୍ରାହତ—ବି. ବଂ. (ବଜ୍ର+ଆହତ) ବଜ୍ରାଘାତ ଦ୍ୱାରା ମୃତ, ବଜ୍ର ଦ୍ୱାରା ଆଘାତପ୍ରାପ୍ତ, ଯାହା ଉପରେ ବଜ୍ର ପଡ଼ିଅଛି ।
ବଜ୍ରାହତବତ୍—ଅବ୍ୟ. ବଜ୍ରାହତ ପରି କିଂକର୍ତ୍ତବ୍ୟ ବିମୂଢ଼ ।
ବଜ୍ରାହ୍ୱକା—ସ୍ତ୍ରୀ.ବ.କପିକଚ୍ଛୁ, ବାଇଡଙ୍ଗ
ବଜ୍ରାହ୍ୱ—କ୍ଲୀ. ବ. ତଗରପାଦୁକ ।
ବଜ୍ରିକେତୁ—ପୁଂ.ବ.ଇନ୍ଦ୍ରଧ୍ୱଜସ୍ଥାୟୀ, ଗରୁଡ଼
ବଜ୍ରୀ—ପୁଂ. ବ. (ବଜ୍ର+ଇନ୍) ଇନ୍ଦ୍ର, ତିକଣ୍ଟା ସିଦ୍ଧିଗଛ, ମହାଶ୍ୱ, ଜୈନମୁନି, (ବଂ) ବଜ୍ରବିଶିଷ୍ଟ, ଯାହାର ବଜ୍ର ଅଛି ।
ବଜ୍ରୋଲି—ବ. ହଠଯୋଗୋକ୍ତ ମୁଦ୍ରାବିଶେଷ ।
ବଞ୍ଚ—ଗ୍ରା.ବ.ଶକଟା ବା ଗଞ୍ଜପା ଖେଳରେ ଗୋଟିଏ ଦାନ ।
ବଞ୍ଚକ—ପୁଂ.ବ (ବନ୍‌ଚ+ଣିଚ୍+ଅକ) ଶୃଗାଳ, କୁକ୍କୁର, ଗୈର, ଗୃହବଭ୍ରୁ, (ବଂ) ଖଳ, ଧୂର୍ତ୍ତ, ଶଠ, ପ୍ରତାରକ ।
ବଞ୍ଚନ(ନା)—କ୍ଲୀ.ବ.(ବନ୍‌ଚ+ଭା.ଅନ) ପ୍ରତାରଣା, ଠକିବା, ଶଠତା, ଯାପନ, ଅତିବାହନ, କ୍ଷେପଣ । [ରଣୀୟ ।
ବଞ୍ଚନୀୟ—ବଂ. (ବଞ୍ଚ+ଅନୀୟ) ପ୍ରତା-
ବଞ୍ଚୟିତା—ପୁଂ. ବଂ. (ବଞ୍ଚ+ଣିଚ୍+କ.ତୃ) ବଞ୍ଚକ, ପ୍ରତାରକ, ଖଳ, ଧୂର୍ତ୍ତ, ଠକ ।
ବଞ୍ଚୟିତବ୍ୟ—ବଂ (ବଞ୍ଚ+ଣିଚ୍+ତବ୍ୟ) ବଞ୍ଚନାର ଯୋଗ୍ୟ, ପ୍ରତାରଣାର ଯୋଗ୍ୟ
ବଞ୍ଚା—ଗ୍ରା. ବ. ବଞ୍ଚିବା, ଜୀବନଧାରଣ ।
ବଞ୍ଚାଇକହିବା—ଗ୍ରା.କ୍ରି. (ଲ.ଅର୍ଥ)ପ୍ରତାରଣ କରିବା, ପରୋକ୍ଷ ଭାବରେ କୌଣସି ବିଷୟ କହିବା, କୌଣସି ବ୍ୟକ୍ତିକୁ ଦୋଷଭାଗୀ ନ କରି ପର କଥା କହିବା
ବଞ୍ଚାଇବା—ଗ୍ରା.କ୍ରି.ଆପଣାର ବା ଅନ୍ୟର ଜୀବନ ରକ୍ଷା କରିବା, ଜୀଆଁଇବା, ପୋଷିବା, ପାଳିବା, ବିପଦରୁ ରକ୍ଷା କରିବା, ସହିବା, ଛଳାଇବା, ଭଣ୍ଡିବା, ଏକାବେଳକେ ଖର୍ଚ୍ଚ ନ କରି ରଖି ରଖି ଖର୍ଚ୍ଚ କରିବା ।
ବଞ୍ଚିତ—ପୁଂ. ବଂ. (ବନ୍‌ଚ+ମିଂ.ତ) ବଞ୍ଚନାବିଶିଷ୍ଟ, ପ୍ରତାରିତ, ଖରହୃତ, ତ୍ୟକ୍ତ, ବର୍ଜିତ, ବଞ୍ଚନ ।
ବଞ୍ଚିବା—ଗ୍ରା.କ୍ରି.ଜୀଇଁବା, ଜୀବନ ଧାରଣ କରିବା, ବାସ କରିବା, ବଳି ପଡ଼ିବା, ଉଦ୍‌ବୃତ୍ତ ହେବା, କଷ୍ଟ ବା ବିପଦରୁ ରକ୍ଷା ପାଇବା, ଦିନ ବା କାଳ ଯାପନ କରିବା, ଅତିବାହିତ କରିବା ।
ବଞ୍ଚିରହିବା—ଗ୍ରା.କ୍ରି.ଜୀଇଁବା, ବଞ୍ଚିହିବା ଜୀଇଁବା ।
ବଞ୍ଚୁକ—ବି. ବଂ. (ବନ୍‌ଚ+କ.ଉକ) ପ୍ରତାରଣଶୀଳ, ଧୂର୍ତ୍ତ, ଠକ, ପ୍ରତାରକ ।
ବଞ୍ଚ୍ୟ—ବି. ବଂ. (ବନ୍‌ଚ୍+ମିଂ.ଯ) ଗମନୀୟ, ଗମନଯୋଗ୍ୟ, ପ୍ରତାରଣାର ଯୋଗ୍ୟ ।
ବଞ୍ଜର—ଗ୍ରା ବ. ଅନାବାଦୀ ବା ପଡ଼ିଆ ଜମି, ଢିପ ଜମି, ଯେଉଁ ଜମିରେ କୌଣସି ଫସଲ ହୁଏ ନାହିଁ ।
ବଞ୍ଜିର—ପ୍ରା. (ସମ୍ବଲ ଓ ଲରିଆ) ବ. ଆଡ଼(କି) ମାଛ ।
ବଞ୍ଜୁଲ—ପୁଂ.ବ. (ବନ୍‌ଚ+ଅଧି. ଉଲ) ତିନିଶ ବୃକ୍ଷ, ଅଶୋକ ବୃକ୍ଷ, ବେତସ ବୃକ୍ଷ, ସ୍ଥଳପଦ୍ମ ବୃକ୍ଷ, ପକ୍ଷିବିଶେଷ,(ବଂ) ବକ୍ର, ବଙ୍କା ।
ବଞ୍ଜୁଲଦ୍ରୁମ—ପୁଂ. ବ. (ବଞ୍ଜୁଲ+ଦ୍ରୁମ) ଅଶୋକ ବୃକ୍ଷ, ବଞ୍ଜୁଲ ଶବ୍ଦାର୍ଥ ।
ବଞ୍ଜୁଲପ୍ରିୟ—ପୁଂ. ବ. (ବଞ୍ଜୁଲ+ପ୍ରିୟ) ବେତସ ବୃକ୍ଷ ।
ବଞ୍ଜୁଲା—ସ୍ତ୍ରୀ. ବ. (ବଞ୍ଜୁଲ+ଆ) ଅତିଶୟ ଦୁଗ୍ଧବତୀ ଗାଈ, ନଦୀବିଶେଷ, (ବଂ) ବଙ୍କା, କୁଟିଳା ।
ବଞ୍ଜୁଳାବତୀ—ସ୍ତ୍ରୀ. ବ. ଦକ୍ଷିଣ ପର୍ବତରୁ ବାହାରିଥିବା ନଦୀବିଶେଷ ।
ବଟ୍‌କା—ପ୍ରା. (ବସ୍ତର)ବ. କଂସା ।
ବଟ୍‌ଗୀ—ପ୍ରା.(ବସ୍ତର)ବ.ଗିନା, ତାଟିଆ ।
ବଟ୍‌ବା—ପ୍ରା. (ସମ୍ବ)କ୍ରି. ବଳିବା ।
ବଟ୍‌ଲେହି—ପ୍ରା. (ସମ୍ବ)ବ. ବଟୁଲି ।
ବଟ—ପୁଂ.ବ. (ବଟ୍+କ.ଅ) ବେଷ୍ଟନ,

ବଟଗଛ, ନ୍ୟଗ୍ରୋଧ, କପର୍ଦ୍ଦକ, କଉଡ଼ି କଡ଼ା, ଏକକଡ଼ା କଉଡ଼ିର ଅଂଶରୁ ଏକଭାଗ, ଘୃତ ବା ତୈଳ ପକ୍ୱ ଗୋଲ-କାର ଚଟକା ପିଠା, ବରା(ଡ଼ା) ପିଠା, ବର୍ତ୍ତୁଳାକାର ବସ୍ତୁ ଗୁଳା, ଗୁଟିକା, ସାଦୃଶ୍ୟ, ମୂଲ୍ୟ, ଦାମ୍, ବଟକରା, ଦଉଡ଼ି ବଳାଯିବା, ପୁରାଣପ୍ରସିଦ୍ଧ କଳ୍ପବଟ ।

ବଟକ—ପୁଂ. ବି. (ବଟ + କ) ବରାଆଦିର ବରା(ଡ଼ା)ପିଠା, ବରଆଦିର ବଡ଼ି, ଆଠ-ମଣ ଓଜନର ପରିମାଣ ।

ବଟକରା—ସ୍ତ୍ରୀ. ବି. ତୌଲର ପରିମାଣ-ଜ୍ଞାପକ ପ୍ରସ୍ତରାଦି, (ପ୍ରା. ଯାଜ. ବି) ବଟା, କଳଙ୍କ, ଅପବାଦ ।

ବଟକି—ପ୍ରା. (ସମ୍ବ ବି. ଶ୍ରେଷ୍ଠ ବେଲ୍ଲ ।

ବଟକମା—ସ୍ତ୍ରୀ. ବି. ପୌର୍ଣ୍ଣମାସୀବିଶେଷ, ଏହି ପୂର୍ଣ୍ଣିମାରେ ବଟକ ଭକ୍ଷଣ କର-ବାକୁ ହୁଏ ।

ବଟକୃଷ୍ଣ—ବି. (କ. ଧା) ଭଗବାନଙ୍କ ନାମ ।

ବଟଗଛ—ବି. ଶ୍ୱେତାମ୍ବର ଜୈନସମ୍ପ୍ର-ଦାୟବିଶେଷ । [ ଗ୍ରୁପ୍ସା ।

ବଟଛାୟା—ସ୍ତ୍ରୀ. ବି. (ଷତତ୍ପୁ) ବଟବୃକ୍ଷର

ବଟଜଟା—ସ୍ତ୍ରୀ. ବି. (ବଟ + ଜଟା) ଓହଳ, ବର ଓହଳ ।

ବଟପତ୍ର—ପୁଂ. ବି. (ବଟ + ପତ୍ର) ସିତା-ର୍ଜ୍ଜକ, ଶ୍ୱେତପତ୍ର କ୍ଷୁଦ୍ର ତୁଳସୀ, (ଷତତ୍ପୁ) ବରଗଛର ପତ୍ର ।

ବଟପତ୍ରା—ସ୍ତ୍ରୀ. ବି. (ବଟ + ପତ୍ରା) ସିଦ୍ଧୁର-ମାଳ ପୁଷ୍ପ ବୃକ୍ଷ, ବୃତ୍ତ ମଲ୍ଲିକା ।

ବଟପତ୍ରୀ—ବି. ପାଷାଣଭେଦୀ ଜାତୀୟ ଏକପ୍ରକାର ଗୁଳ୍ମ ।

ବଟଫଳ—ବି. ବରଗଛର ଫଳ, (ଗ୍ରା. ବି) ବଟଫଳ ଆକୃତିବିଶିଷ୍ଟ ସ୍ୱର୍ଣ୍ଣ ରୌପ୍ୟାଦିର ଗୋଲକମାନଙ୍କ ଦ୍ୱାରା ଗୁନ୍ଥା ହୋଇଥିବା ହସ୍ତର ବଳୟ (ଅଳ-ଙ୍କାର) ବିଶେଷ ।

ବଟର—ପୁଂ. ବି. (ବଟ + ର + କ. ଅ) କୁକ୍କୁଟ, ବେଷ୍ଟ; ଶଠ, ଚୌର, (ବିଂ) ଚଞ୍ଚଳ ।

ବଟବାସୀ—ପୁଂ. ବି. ( ବଟ + ବାସ + ଇନ୍) ଯକ୍ଷ, ଉପଦେବତା ବିଶେଷ, (ବିଂ) ବର ଗଛରେ ବାସକାରୀ ।

ବଟା—ଗ୍ରା. ବି. ଟଙ୍କାଦି ଭଙ୍ଗାଇଲେ ଯାହା କମିଶନ ଦେବାକୁ ପଡ଼େ, ପାନଡ଼ବା, ବାଟିବା କ୍ରିୟା, ଶିଳରେ ପେଷିବା, କଳଙ୍କ, ଅପବାଦ, ବଦନାମୀ, ବଦ୍ନାମୀ, କ୍ଷତ, ପିତ୍ତଳାଦି ଧାତୁନିର୍ମିତ ଚଟକ ଥାଳିଆ, (ବିଂ) ପିଷ୍ଟ ହୋଇଥିବା ।

ବଟା(ଟେ)ଇବା—ଗ୍ରା. କ୍ରି. ଅନ୍ୟ ବ୍ୟକ୍ତି ଦ୍ୱାରା କୌଣସି ପଦାର୍ଥକୁ ଶିଳରେ ପେଷଣ କରାଇବା, ପଠାଇବା ।

ବଟାକର—ପୁଂ. ବି. ରଜ୍ଜୁ, ଦଉଡ଼ି ।

ବଟାଘଷା—ଗ୍ରା. ବି. ପିଠଉ ବେସରଆଦି ବାଟିବା କର୍ମ ।

ବଟାରକା—ସ୍ତ୍ରୀ. ବି. ରଜ୍ଜୁ, ଦଉଡ଼ି ।

ବଟାଳି—ଗ୍ରା. ବି. (ସଂ-ବର୍ତ୍ତିକା) ବଢ଼େଇଙ୍କ ବ୍ୟବହୃତ ପଟାଳିଆ ବେଣ୍ଟଲଗା ନିହଣ

ବଟାଳିବା—ଗ୍ରା. କ୍ରି. ନାଆର ତଳ ପଟା-ମାନଙ୍କ ସନ୍ଧି ମଧ୍ୟରେ ଗଛର ଛାଲ ବା ଖୋଟଆଦିକୁ ବଟାଳିର ଧାର ଦ୍ୱାରା ଭରତି କରି ଫାଟ ବନ୍ଦ କରିବା, ବଟାଳି ଦ୍ୱାରା କାଠ କାଟିବା ।

ବଟାବଟି—ଗ୍ରା. କ୍ରି. ଠକାଠକି, ଭଣ୍ଡାଭଣ୍ଡି କରିବା, ବାଟିବାକ୍ରିୟା ।

ବଟାଶୀକ—ପୁଂ. ବି. ଚୌର ବିଶେଷ ।

ବଟି—ସ୍ତ୍ରୀ. ବି. (ବଟ୍ + ଇ) ଉପଜିହ୍ୱିକା, ଘଣ୍ଟିକା, (ଗ୍ରା. ବି) ମୁଦ୍ରା ଭଙ୍ଗାଇବା ନିମନ୍ତେ ଦେୟ ଶୁଳ୍କ, ମାସୁଲ ।

ବଟିକା—ସ୍ତ୍ରୀ. ବି. ( ବଟ + ଇକ + ଆ ) ବଟୀ, ଗୁଳା, ଗୋଲାକାର ଶ୍ରେଷ୍ଠ ଗୁଳା, ଗୁଟିକା, ବଡ଼ି, ବଟା ବରଆଦିର ଶ୍ରେଷ୍ଠ ବଡ଼ି ।

ବଟିକି—ପ୍ରା. (ବସ୍ତର) ବି. ବାଟି, ଗିନା ।

ବଟୀ—ସ୍ତ୍ରୀ. ବି. ( ବଟ + ଇ ) ବଟିକା, ବଟ ଜାତୀୟ ବୃକ୍ଷ ବିଶେଷ, ବରା(ଡ଼ା) ପିଠା, ନଦୀବଟ ।

ବଟୁ—ପୁଂ. ବି. (ବଟ + ଉ) ବ୍ରହ୍ମଚାରୀ, ବାଳକ ବ୍ରହ୍ମଚାରୀ ଗ୍ରୁନ, ସୁନାର ଗଛ, ବ୍ରାହ୍ମଣ କୁମାର, (ଗ୍ରା. ବି) କୁଶନିର୍ମିତ ଅଙ୍ଗୁରୀୟକ, କୁଶବଟୁ ।

ବଟୁଆ—ଗ୍ରା. ବି. ବହୁ ପ୍ରସ୍ତଯୁକ୍ତ ବସ୍ତ୍ର-ନିର୍ମିତ ଥଳି, ପାନ ଖାଇବାର ଉପ-କରଣ ବା ଔଷଧାଦି ରଖିବାର ଥଳି ।

ବଟୁକ—ବି. (ବଟୁ + କ) ବଟୁ ଦେଖ, କାରଣପୀଠ ଦେବମୂର୍ତ୍ତି ବିଶେଷ, ଭୈରବ ବିଶେଷ ।

ବଟୁକଭୈରବ—ବି. ମାଳବ ପଣ୍ଡିତ ଶିବାନୁଚର ବିଶେଷ ।

ବଟୁକରଣ—କ୍ଲୀ. ବି ( ବଟୁ + କରଣ ) ଦ୍ୱିଜାତି ବାଳକର ଉପନୟନ ସଂସ୍କାର, ବଡ଼ୁ ।

ବଟୁଲି—ଗ୍ରା. ବି. ପାକପାତ୍ର ରୂପେ ବ୍ୟବ-ହୃତ ବର୍ତ୍ତୁଳାକାର ଚଉଡ଼ାମୁହାଁ ପିତ୍ତଳର ଘଟୀ ।

ବଟେ—ଗ୍ରା. କ୍ରି. ବିଂ. ବଟିଦେଇ, ଠକି-ଦେଇ, (ବି) ବଟମୂଳକୁ ।

ବଟେଶ୍ୱର—କ୍ଲୀ. ବି. କାଶ୍ମୀରସ୍ଥ ଲିଙ୍ଗତୀର୍ଥ ।

ବଟୋଦକା—ସ୍ତ୍ରୀ. ବି. ପୁଣ୍ୟତୋୟା ନଦୀ ବିଶେଷ । [ ମନ୍ଦ ।

ବଠର—ବିଂ. ମୂର୍ଖ, ଶବ୍ଦକାର, ବନ୍ଧ, ଶଠ,

ବଡ଼କା(ଖା)—ପ୍ରା. (ସମ୍ବ) ବିଂ. ଅତି ବଡ଼, ବୃଦ୍ଧତମ, ସମସ୍ତଙ୍କଠାରୁ ବୟୋଜ୍ୟେଷ୍ଠ

ବଡଉ—ପ୍ରା. (ବାଲେ) ବି. ବରୁଡ଼ି ।

ବଡଲ୍ଲା—ପ୍ରା. (କଳାହାଣ୍ଡି) ବି. ବଡ଼ଶାଗୁଆ ।

ବଡ଼—ଗ୍ରା. ବିଂ. ( ସଂ-ବର ) ବୃହତ୍, ଉଦାର, ମହତ୍, ବୟୋବୃଦ୍ଧ, ପ୍ରଧାନ, ଅତ୍ୟଧିକ, ଉଚ୍ଚ, ଧନୀ, ( ବିଂ. ର ବିଂ. (ଓ କ୍ରି. ବିଂ) ଅତ୍ୟନ୍ତ, ଅଧିକତର ରୂପେ, ଅପେକ୍ଷାକୃତ, (ଗ୍ରା. ବି) ବୟୋବୃଦ୍ଧ ବ୍ୟକ୍ତି, (ପ୍ରା. ବାଲେ. ବି.) ନିଆଁ ବଢ଼ଆ, (ପ୍ରା. ମେଦିନୀପୁର ବି.) ବରଗଛ, (ପ୍ରା. ସମ୍ବ) ବଡ଼ଦେଇ, ପିତାଙ୍କ ବଡ଼ଭାଇ ।

ବଡଅଦାଲତ—ଯା. ବି. ପ୍ରଧାନ ବିଚାରାଳୟ

ବଡ଼ଅଳେଇଚ—ଗ୍ରା. ବି. ଏକଜାତୀୟ ଦାନାଦାର ମସଲା, ଅଳେଇଚ ।

ବଡ଼ଆଖି—ଗ୍ରା. ବି. ବୃହଦାକାର ଚକ୍ଷୁ, ଯେଉଁ ଦୃଷ୍ଟିକୁ ଶ୍ରେଷ୍ଠ ବା ଆଗେ କଥା ଭଲ ଲାଗେ ନାହିଁ ।

ବଡ଼ଆଖିଆ—ଗ୍ରା.ବିଂ. ଯେ ଶ୍ରେଷ୍ଠ ନଜରିଆ ନୁହେଁ, ଉଚ୍ଚମନା, ଯାହାକୁ ଶ୍ରେଷ୍ଠ ବା ଅଳ୍ପ ଦେବା ନେବାର ବିଷୟ ଭଲ ଲାଗେ ନାହିଁ ।

ବଡ଼ଓଷା—ଗ୍ରା. ବି. କାର୍ତ୍ତିକମାସ ଶୁକ୍ଳ-ଚତୁର୍ଦ୍ଦଶୀରେ ହେବା (ଧବଳେଶ୍ୱର) ଶିବଙ୍କର ଉପାସନାବିଶେଷ ।

ବଡ଼ଙ୍କ—ଗ୍ରା.ବି.ବୁଦାଳିଆ ଘାସବିଶେଷ

ବଡ଼କଥା—ଗ୍ରା. ବି. ଲମ୍ବକଥା, ଦୀର୍ଘ କାହାଣୀ, ପ୍ରଧାନ ବିଷୟ, ଗର୍ବଯୁକ୍ତ କଥା ।

ବଡ଼କନ୍ୟା—ଗ୍ରା. ବି. ବଡ଼ିଲ କନ୍ୟା, ରଜୋବତୀ ବାଳିକା ।

ବଡ଼କରିବା—ଗ୍ରା. କ୍ରି. ଶ୍ରେଷ୍ଠ କରିବା, (ଲ.ଅର୍ଥ)ଆଦର କରିବା, ଶିଶୁକୁ ବଡ଼ ହେବା ପର୍ଯ୍ୟନ୍ତ ଲାଳନ ପାଳନ କରିବା ।

ବଡ଼କଷ୍ଟ—ଗ୍ରା. ବି. ବିଶେଷ ଦୁଃଖ, ଦାରୁଣ ଦୁଃଖ ।

ବଡ଼କାଠ—ଗ୍ରା.ବି. ଏକ ପ୍ରକାର ଲମ୍ବା ବଡ଼ ଢୋଲ ।

ବଡ଼କାମ—ଗ୍ରା.ବି.ବହୁ ଆଡ଼ମ୍ବର, ସମାରୋହ, ପ୍ରଧାନ କାର୍ଯ୍ୟ ।

ବଡ଼କୁ—ପ୍ରା.(ଝାଡ଼ଶପୁର) ଅବ୍ୟ. ପରେ, ତତ୍ପରେ । [ ବିଶେଷଙ୍କ ଉପାଧି ।

ବଡ଼କୁଆଁର—ଗ୍ରା. ବି. ରାଜକୁମାର-

ବଡ଼ଗଛ—ଗ୍ରା.ବି. ବୃହତ୍ତ୍ରବୃକ୍ଷ, ବଟବୃକ୍ଷ

ବଡ଼ଗଳ—ପ୍ରା.(ଗଞ୍ଜାମ) ବି. ରାମାନୁଜ ବୈଷ୍ଣବ ସମ୍ପ୍ରଦାୟର ଶାଖାବିଶେଷ ।

ବଡ଼ଗଳା—ଗ୍ରା.ବି. ଉଚ୍ଚୈସ୍ୱର ।

ବଡ଼ଗିଲ—ଗ୍ରା.ବି. ଏକଜାତୀୟ ଚେପ୍ଟା ବନ୍ୟ ଲତାଫଳ ।

ବଡ଼ଘର—ଗ୍ରା. ବି. ଧନୀ ଓ ପ୍ରତିଷ୍ଠିତ ପରିବାର, ବୃହଦାକୃତିବିଶିଷ୍ଟ ଘର ।

ବଡ଼ଘାଇ—ପ୍ରା.(ସମ୍ବ)ବି. ବଡ଼ନାଳ ।

ବଡ଼ଚଣା—ଗ୍ରା.ବି. ଚଣକବିଶେଷ,ମଟର ଜାତୀୟ ଏକପ୍ରକାର ଶସ୍ୟ ।

ବଡ଼ଛାଟ—ଗ୍ରା. ବି. ବିଦ୍ୟାଳୟରେ ବା ଶ୍ରେଣୀରେ ଅନ୍ୟ ଛାତ୍ରମାନଙ୍କ ତତ୍ତ୍ୱାବଧାନ କରିବା ନିମନ୍ତେ ଶିକ୍ଷକଙ୍କ ଦ୍ୱାରା ନିର୍ବାଚିତ ଛାତ୍ର, ପ୍ରଧାନ ଶିଷ୍ୟ ।

ବଡ଼ଜାଲ—ଗ୍ରା.ବି. ଯେଉଁ ଜାଲଦ୍ୱାରା ଗଭୀର ପାଣିରୁ ବଡ଼ମାଛ ଧରାଯାଏ ।

ବଡ଼ଜୀରା—ଗ୍ରା. ବି. ବନଜୀରକ, ଏକପ୍ରକାର ବଣଜୀରା ।

ବଡ଼ଜୁଆଣି—ଗ୍ରା.ବି.ଏକପ୍ରକାର ଜୁଆଣି, ଅଜମୋଦା ।

ବଡ଼ଜେନା—ଗ୍ରା. ବି. କ୍ଷତ୍ରିୟ ସନ୍ତାନଙ୍କ ଉପାଧିବିଶେଷ ।

ବଡ଼ଜୋର୍—ଗ୍ରା. ଅବ୍ୟ. ଅନ୍ୟୂନ ପରିମାଣରେ, ଊର୍ଦ୍ଧ୍ୱ ପରିମାଣରେ କହିବାକୁ ଗଲେ, ଅନୁମାନର ଶେଷସୀମା ଧରିବାକୁ ଗଲେ, ନିତାନ୍ତ ବେଶି ହେଲେ,କଡ଼ାକଡ଼ିରେ, (ବିଂ) ଅତ୍ୟନ୍ତ ବଳବାନ୍,ବିଶେଷ କଠିନ ।

ବଡ଼ଠାକୁର—ଗ୍ରା.ବି. ଜଗନ୍ନାଥଙ୍କ ବଡ଼ଭାଇ, ବଳଭଦ୍ର, ଜଗନ୍ନାଥଦେବ, ଈଶ୍ୱର ।

ବଡ଼ତାଠି—ପ୍ରା.(କଟକର)ବି. ଥାଳି ।

ବଡ଼ତାର୍—ପ୍ରା.(ସମ୍ବ)ବିଂ. ଅତି,ଅତ୍ୟନ୍ତ

ବଡ଼ତି—ଗ୍ରା. ବି. ( ସଂ-ବୃଦ୍ଧି ) ବୃଦ୍ଧି, ଭାଗ୍ୟୋଦୟ, ଶ୍ରୀବୃଦ୍ଧି ।

ବଡ଼ତୁଣ୍ଡ—ଗ୍ରା.ବି. ବଡ଼ଗଳା,ଉଚ୍ଚୈସ୍ୱର

ବଡ଼ଦାଣ୍ଡ—ଗ୍ରା.ବି. ପ୍ରଶସ୍ତ ରାସ୍ତା, ପୁରୀ-ଜଗନ୍ନାଥଙ୍କ ମନ୍ଦିରଠାରୁ ଗୁଣ୍ଡିଚାଘର-ପର୍ଯ୍ୟନ୍ତ ପଡ଼ିଥିବା ପ୍ରଶସ୍ତ ରାସ୍ତା ।

ବଡ଼ଦିନ—ଗ୍ରା.ବି. ଇଂରାଜୀ ଡିସେମ୍ବର ମାସର ତା୨୫ରିଖ,ଖ୍ରୀଷ୍ଟମସ୍,ଖ୍ରୀଷ୍ଟିୟାନମାନଙ୍କର ଡିସେମ୍ବର ମାସର ଶେଷ ସପ୍ତାହର ପର୍ବ ।

ବଡ଼ଦୁମା—ଗ୍ରା.ବି. ଯେଉଁ ହାତୀର ଲାଞ୍ଜ ଗୋଡ଼ପର୍ଯ୍ୟନ୍ତ ଲମ୍ବିଥାଏ ।

ବଡ଼ଦେଉଳ—ଗ୍ରା. ବି. ପୁରୀର ଜଗନ୍ନାଥଙ୍କ ମନ୍ଦିର, ଉଚ୍ଚତମ ଦେଉଳ ।

ବଡ଼ଧାନ—ଗ୍ରା.ବି. ଯେଉଁ ଧାନ ବେଶି ପାଣି ଜମାହେବା କ୍ଷେତରେ ବଢ଼ି ଲଘୁଧାନ କଟାହେବା ପରେ କଟାହୁଏ ଅଭଲ ବିଲରେ ହେବା ଧାନ ।

ବଡ଼ନାମ—ଗ୍ରା. ବି. ଖ୍ୟାତି, ପ୍ରଶଂସା, ପ୍ରସିଦ୍ଧି ।

ବଡ଼ପଣ—ଗ୍ରା. ବି. ଗର୍ବ, ବଡ଼ଲୋକୀ, ଧନୀହେବା ଅବସ୍ଥା,ଗୌରବ,ମହତ୍ତ୍ୱ ।

ବଡ଼ପଣ୍ଡା—ଗ୍ରା.ବି. ଦେବତାଙ୍କ ପ୍ରଧାନ ବ୍ରାହ୍ମଣ ପୂଜକ, ବ୍ରାହ୍ମଣମାନଙ୍କୁ ରାଜପ୍ରଦତ୍ତ ଉପାଧିବିଶେଷ । [ ବିଶେଷ ।

ବଡ଼ପାଟଳ—ଗ୍ରା.ବି.ପାଟଳିବୃକ୍ଷର ପ୍ରକାର-

ବଡ଼ପାଟି—ଗ୍ରା.ବି. ବଡ଼ଗଳା, ଉଚ୍ଚୈସ୍ୱର

ବଡ଼ପାଟିଆ—ଗ୍ରା. ବିଂ. ଯେ ଉଚ୍ଚୈଃସ୍ୱରରେ କଥା କହେ ।

ବଡ଼ପେଠିଆ—ଗ୍ରା.ବି. ସାପ ।

ବଡ଼ପୁଅ(ତ)—ଗ୍ରା.ବି. ଜ୍ୟେଷ୍ଠ ପୁତ୍ର ।

ବଡ଼ପୁନୀ—ଗ୍ରା.ବି.ପୁନେଇଁ ଦେଖ,ବଡ଼, ଟିଅ ।

ବଡ଼ପେଟା—ଗ୍ରା. ବିଂ. ଯେଉଁ ଲୋକର ପେଟ ବଡ଼, ପେଟୁ ।

ବଡ଼ଭାଇ—ଗ୍ରା.ପୁଂ.ବି. ଜ୍ୟେଷ୍ଠଭ୍ରାତା ।

ବଡ଼ଭାଗ—ପ୍ରା.(ସମ୍ବ) ବିଂ. ଅଧିକାଂଶ, ଅଧିକ ସଂଖ୍ୟକ ।

ବଡ଼ଭୀ—ସ୍ତ୍ରୀ.ବି. (ବଡ଼+ଅଭୀ)ଗୃହଚୂଡ଼ା, ଗୋପାନସୀ, ଚନ୍ଦ୍ରଶାଳିକା,କୂଟାଗାର, କୋଠାର ଛାତ ଉପରେ ରହିତ ଘରଟିଆ ବା ଘର ।

ବଡ଼ମଲ୍ଲି—ଗ୍ରା.ବି. ମାଧବୀ ।

ବଡ଼ମା—ଗ୍ରା.ସ୍ତ୍ରୀ.ବି. ପିତାମହୀ,ଜେଜେମା, ଜ୍ୟେଷ୍ଠବିମାତା ।

ବଡ଼ମୁଣ୍ଡ—ଗ୍ରା. ବି. ବଡ଼ ବା ପ୍ରଧାନ ବ୍ୟକ୍ତି, ଖୁବ୍ କ୍ଷମତାଶାଳୀ ବ୍ୟକ୍ତି ।

ବଡ଼ରାଣୀ—ଗ୍ରା. ସ୍ତ୍ରୀ. ବି. ରାଜାଙ୍କର ପାଟରାଣୀ ।

ବଡ଼ରୋଗ—ଗ୍ରା.ବି. କୁଷ୍ଠରୋଗ ।

ବଡ଼ଲାଟ୍—ଗ୍ରା. ବି. ଭାରତ ବର୍ଷର ଗଭର୍ଣ୍ଣର ଜେନେରାଲ ଏବଂ ଭାଇସ୍‌ରାୟ

ବଡ଼ଲୋକ—ଗ୍ରା. ବି. ଧନୀବ୍ୟକ୍ତି, ମହାଜନ, ମହାପୁରୁଷ ।

ବଡ଼ଲୋକୀ—ଗ୍ରା. ବି. ଧନୀପଣ, ଧନୀର ବ୍ୟବହାର ବା ଚାଲିଚଳନ, ଗର୍ବ ।

ବଡ଼ଲୋଭୀ—ଗ୍ରା.ପୁଂ.ବିଂ. ଅତି କୃପଣ,

ଯେ ଆପଣାର ଯଥାର୍ଥ ଖର୍ଚ୍ଚ ମଧ୍ୟ କଟେ ନାହିଁ ।

ବଡ଼ବା—ସ୍ତ୍ରୀ. ବ. (ବଡ଼+ବା+କ.ଅ+ଆ) ଅଶ୍ୱମୁଖୀ ସମୁଦ୍ର ଗର୍ଭସ୍ଥା ଦେବୀ ବିଶେଷ, ଘୋଟକୀ, ବଡ଼ବା ରୂପଧାରଣୀ ସୂର୍ଯ୍ୟପତ୍ନୀ, ଅଶ୍ୱିନୀନକ୍ଷତ୍ର, ନାରୀବିଶେଷ, ଦାସୀ, କୁଟ୍ଟନୀ, ବାସୁଦେବ ପତ୍ନିଗୃହଜା, ବଡ଼ବାଗ୍ନି, ନଦୀବିଶେଷ, ତୀର୍ଥବିଶେଷ, ଅଶ୍ୱିନୀକୁମାରଦ୍ୱୟଙ୍କ ମାତା, ଦ୍ୱିଜପତ୍ନୀ ।

ବଡ଼ବାକୃତ—ପୁଂ.ବ. (ବଡ଼ବା+କୃତ) ପଞ୍ଚ ଦଶବିଧ ଦାସଙ୍କ ଅନ୍ତର୍ଗତ ଦାସବିଶେଷ ।

ବଡ଼ବାଗ୍ନି—ପୁଂ.ବ. (ବଡ଼ବା+ଅଗ୍ନି) ବଡ଼ବାନଳ, ସମୁଦ୍ରସ୍ଥ ଅଗ୍ନି ।

ବଡ଼ବାନଳ—ପୁଂ.ବ. (ବଡ଼ବା+ଅନଳ) ବଡ଼ବାଗ୍ନି ଦେଖ, ଲଙ୍କାର ଦକ୍ଷିଣରେ ପୃଥିବୀର ଚତୁର୍ଥ ଭାଗରୂପ ସ୍ଥାନବିଶେଷ

ବଡ଼ବାପା—ଗ୍ରା.ବ. ପିତାମହ, ଜ୍ୟେଷ୍ଠତାତ, ଦଦେଇ, ଦେଢ଼ୁଆ ।

ବଡ଼ବାମୁଖ—ପୁଂ.ବ. (ବଡ଼ବା+ମୁଖ) ବଡ଼ବାନଳ, ମହାଦେବ ମୁଖ ।

ବଡ଼ବାବକ୍ତ୍ର—କ୍ଲୀ. ବ. ବଡ଼ବାମୁଖ, ବଡ଼ବାନଳ ।

ବଡ଼ବାବୁ—ଗ୍ରା.ବ. କୌଣସି କାର୍ଯ୍ୟାଳୟରେ ଥିବା କର୍ମଚାରୀଙ୍କ ମଧ୍ୟରେ ପ୍ରଧାନ କର୍ମଚାରୀ, ଜେଷ୍ଠପିତୃବ୍ୟ, ଦଦେଇ । [ କୁମାର ।

ବଡ଼ବାସୁତ—ପୁଂ.ବ. (୬ତତ୍) ଅଶ୍ୱିନୀ-

ବଡ଼ବାହୃତ—ପୁଂ.ବ. (୩ତତ୍) ୧୫ ପ୍ରକାର ଦାସ ମଧ୍ୟରୁ ଏକତମ ।

ବଡ଼ବୋଉ—ଗ୍ରା.ସ୍ତ୍ରୀ.ବ. ଭାଉଜ, ବଡ଼ଭାଇଙ୍କ ସ୍ତ୍ରୀ, ଜେଷ୍ଠା ବିମାତା ।

ବଡ଼ବୋଲ—ଗ୍ରା. ବିଂ. ଉଚ୍ଚ ସ୍ୱରରେ ନକହିଲେ ଯେଉଁ ଶ୍ରୋତା ଶୁଣିପାରେ ନାହିଁ ।

ବଡ଼ବୋହୂ—ଗ୍ରା.ସ୍ତ୍ରୀ.ବ. ଜ୍ୟେଷ୍ଠପୁତ୍ରର ସ୍ତ୍ରୀ, ପ୍ରାପ୍ତବୟସ୍କା ବୋହୂ ।

ବଡ଼ଶିଂଘାର—ଗ୍ରା. ବ. ଦେବତାଙ୍କର ରାତ୍ରି ପହଡ଼ ହେବା ପୂର୍ବର ବେଶ, ଭୋଗାଦି ନୀତି ।

ବଡ଼ଶିଂଘାରଧୂପ—ଗ୍ରା. ବ. ରାତ୍ରିରେ ଦେବତାଙ୍କର ପହଡ଼ହେବା ପୂର୍ବରୁ ଯେଉଁ ଭୋଗ ହୁଏ ।

ବଡ଼ଶିଂଘାରବେଶ—ଗ୍ରା. ବ. ଦେବତା ରାତ୍ରିରେ ପହୁଡ଼ିବା ପୂର୍ବରୁ ଯେଉଁ ବେଶରେ ସଜ୍ଜିତ ହୁଅନ୍ତି ।

ବଡ଼(ଡ଼ି)ଶୀ—ଗ୍ରା. ବ. ବନଶୀ, ମାଛ ଧରିବାପାଇଁ ଥୋପ ଲାଗିଥିବା କଣ୍ଟାଯୁକ୍ତ ଡୋରି ଓ ଦଣ୍ଡ ।

ବଡ଼ହେବା—ଗ୍ରା. କି. ବଢ଼ିବା, ବୃଦ୍ଧି ପାଇବା, ପରିଣତ ବୟସ୍କ ହେବା, ସାବାଳଗ ହେବା, (ବାଳିକା) ଜ୍ଞାନ ପାଇବା, ରଜସ୍ୱଳା ହେବା, ପରିମାଣରେ ବଳିପଡ଼ିବା ।

ବଡ଼ା—ଗ୍ରା.ବ. ପିଲମାନଙ୍କର ମସ୍ତକବ୍ରଣବିଶେଷ, (ପ୍ରା.ସମ୍ବ.ବିଂ) ବଡ଼ ।

ବଡ଼ାଇ—ଗ୍ରା.ବ. (ସଂ-ବୃଦ୍ଧି) ଗୌରବ, ପ୍ରଶଂସା, ଗର୍ବ, ମାହାତ୍ମ୍ୟ, ବଡ଼ପଣ, ବଡ଼ିମା, ପ୍ରାଧାନ୍ୟ, ମହିମା, ଆତ୍ମପ୍ରଶଂସା ।

ବଡ଼ାଇକରିବା—ଗ୍ରା.କି.ପ୍ରଶଂସାକରିବା. ଆତ୍ମପ୍ରଶଂସା କରିବା ।

ବଡ଼ାଗୋରେ—ପ୍ରା. (କଳାହାଣ୍ଡି) ବିଂ. ବେଶିଗୁଡ଼ିଏ ।

ବଡ଼ାତର—ପ୍ରା. ସମ୍ବ. ବିଂ. ଅନେକଗୁଡ଼ିଏ । [ ଜାତି ରାଜ୍ୟ ।

ବଡ଼ାମ୍ବା—ଗ୍ରା.ବ. ଓଡ଼ିଶାର ଏକ ଗଡ଼-

ବଡ଼ି—ଗ୍ରା.ବ. (ସଂ-ବଟୀ) ବଟା ବିରିଆଦିରେ ପ୍ରସ୍ତୁତ ଗୋଲାକୃତି ରୌଦ୍ରଶୁଷ୍କ ଗୋଲିବିଶେଷ, ଔଷଧ ବଟିକା ।

ବଡ଼ିଅଲ—ପ୍ରା.(ସମ୍ବ)ବି. ଆଟଫଳ ।

ବଡ଼ିଆ—ଗ୍ରା.ବ. (ସଂ-ବେଣୀ) ନିଆଁ ରଖିବାପାଇଁ ପାଳରେ ତିଆରି ବରିଆ

ବଡ଼ିଫୁଲ—ଗ୍ରା.ବ. ବଡ଼ିକୁ ଭିଜା ମସଲା ପାଣିରେ ସିଝାଇ କରାଯିବା ତିଅଣ ।

ବଡ଼ିମା—ଗ୍ରା. ବ. ବଡ଼ପଣ, ଗରିମା, ଗର୍ବ, ଆତ୍ମଗର୍ବ, ଟେକ ।

ବଡ଼ିଶ—କ୍ଲୀ.ବ. (ବଡ଼+ଇ+ଶୋ+ଅ) ମତ୍ସ୍ୟ ଧାରଣାର୍ଥ ବକ୍ର ଲୌହକଣ୍ଟକବିଶେଷ, ବଡ଼ିଶୀ, ଅସ୍ତ୍ରୁଙ୍ଗଦୋକ୍ତ ବେଧନଯନ୍ତ୍ରବିଶେଷ ।

ବଡ଼ୁ—ଗ୍ରା.ବ. (ସଂ-ବଟୁ) ବ୍ରତ ବା ଉପନୟନ ସଂସ୍କାର, ଭୁବନେଶ୍ୱରର ଲିଙ୍ଗରାଜ ମହାପ୍ରଭୁଙ୍କର ସେବକବିଶେଷ, ପରିଚାରକ, ଚାକର ।

ବଡ଼ୁମହାପାତ୍ର—ପ୍ରା.(ପୁରୀ)ବ.ପୁରୀ ଜଗନ୍ନାଥଙ୍କର ବ୍ରାହ୍ମଣ ସେବକ ।

ବଡ଼ୁସେବା—ପ୍ରା(ପୁରୀ)ବ. ଜଗନ୍ନାଥଙ୍କଠାରେ ଲାଗିହୋଇଥିବା ଫୁଲ ଆଣି ପୁରୀ ରଜାଙ୍କୁ ଦେବା ଓ ମୁହଁଧୋଇବା ବେଳେ ଓ ବଡ଼ଶିଂଘାର ବେଳେ ଗଡ଼ୁରେ ଜଗନ୍ନାଥଙ୍କୁ ପାଣି ଯୋଗାଇବା ସେବା.ଭୁବନେଶ୍ୱରରେ ଲିଙ୍ଗରାଜ ଠାକୁରଙ୍କୁ ପାଣି ଫୁଲ ଓ ବେଲପତ୍ରୀ ଲାଗିକରିବା ଓ ବେଶ କରିବା ସେବା ।

ବଡ଼େ—ଗ୍ରା.ବିଂ ଓ କ୍ରି.ବିଂ. ବଡ଼, ଭାରି, ଅତି, ଅତ୍ୟନ୍ତ ।

ବଡ୍ରୋ—କ୍ରି.ବିଂ.(ବଡ଼+ର) ବୃହତ୍, ବଡ଼ ।

ବଢ଼ଣୀ—ପ୍ରା.(ସମ୍ବ) ବ. (ସ-ବର୍ଦ୍ଧନୀ) ଝାଡ଼ୁ, ଗୁଞ୍ଚୁଣି । [ଦେଖ ।

ବଢ଼ତି—ଗ୍ରା.ବ. ମଙ୍ଗଳ, ସୁଖ ବଢ଼ନ୍ତି

ବଢ଼ିଲ—ପ୍ରା.(ସମ୍ବ)ବ. ପଣତ, ଆତ ।

ବଢ଼ା—ଗ୍ରା. ବ. ମୃତ୍ତିକା ପାତ୍ରବିଶେଷ, ଆଧିକ୍ୟ, ବୃଦ୍ଧି, ଅନ୍ନ ବ୍ୟଞ୍ଜନାଦି ଖାଇବାପାଇଁ ଖାଦ୍ୟପାତ୍ରରେ ବାଢ଼ିବା, ପୁରାଣପାଠର ସମାପ୍ତି କ୍ରିୟା, (ଗ୍ରା.ବିଂ) ଅଧିକ, ଅତିରିକ୍ତ ଖାଦ୍ୟପାତ୍ରରେ ଯାହା ପରିବେଷଣ କରାଯାଇଥାଏ, (ପ୍ରା. ବାଲେ.ବ) ଘୁଡ଼ିର ଅଧିକା ସୂତା ।

ବଢ଼ା(ଢ଼ୋ)ଇ—ଗ୍ରା. ବ. କାଠ କାମ କରିବା କାରିଗର, ଜାତିବିଶେଷ ।

ବଢ଼ାଇଦେବା—ଗ୍ରା.କି. କର ପ୍ରସାରିତ କରି କୌଣସି ପଦାର୍ଥକୁ ଅନ୍ୟ ବ୍ୟକ୍ତିର ହାତରେ ଅର୍ପଣ କରିବା, ବଢ଼ାଇବା ଦେଖ ।

ବଢ଼ାଇବା—ଗ୍ରା.କି.ବାଢ଼ିବା ଓ ବଢ଼ିବା କ୍ରିୟାର ଣିଜନ୍ତରୂପ, (କରଆଦି)

ପ୍ରସାରିତ କରିବା, ପୂରଣକରିବା, ହସ୍ତଦ୍ୱାରା କୌଣସି ବସ୍ତୁକୁ ଅନ୍ୟ ବ୍ୟକ୍ତିଠାରେ ଅର୍ପଣକରିବା (ଯଥା) ବଳାଇବା, ବିସ୍ତୃତ କରିବା, (ଶିଶୁଙ୍କୁ) ଲାଳନ ପାଳନ କରିବା ।

ବଢ଼ାବଢ଼ି—ଗ୍ରା. ବି. ରନ୍ଧନ ପାତ୍ରରୁ ଖାଦ୍ୟଦ୍ରବ୍ୟକୁ ଖାଦ୍ୟପାତ୍ରରେ ବାଢ଼ିବା କର୍ମ, ଅତିବୃଦ୍ଧି, ପରସ୍ପରର ଉପରକୁ ଉଠିବା, (ବିଂ) ଅତ୍ୟଧିକ, ଅତିରିକ୍ତ ପରିମାଣରେ, ବୃଦ୍ଧିପ୍ରାପ୍ତ ।

ବଢ଼ି—ଗ୍ରା.ବି. (ସଂ-ବୃଦ୍ଧି)(ନଦୀଆଦିର) ବୃଦ୍ଧି ।

ବଢ଼ିଅ(ଆ)ଲ—ଗ୍ରା. ବିଂ. ଶସ୍ୟାଳ, ଖୁବ୍ ପୁଷ୍ଟ, ବର୍ଦ୍ଧନଶୀଳ, (ଗ୍ରା.ବି) ଆଗ ।

ବଢ଼ିଆ—ଗ୍ରା.ବିଂ. ଉତ୍କୃଷ୍ଟ, ଉଚ୍ଚ, ବଡ଼, ଧନୀ ।

ବଢ଼ିଆବଢ଼ି—ଗ୍ରା.ବିଂ.ପରସ୍ପର ପରସ୍ପରର ହାତକୁ କୌଣସି ବସ୍ତୁ ବଢ଼ାଇଦେବା ।

ବଢ଼ିଆମାଲ୍—ଗ୍ରା. ବି. ଉତ୍କୃଷ୍ଟ ବସ୍ତୁ, ମୂଲ୍ୟବାନ୍ ଜିନିଷ ।

ବଢ଼ିବଢ଼ିକହିବା—ଗ୍ରା. କ୍ରି. ଧୃଷ୍ଟତା ସହିତ କଥା କହିବା, ଗର୍ବିତ ଭାବରେ କହିବା ।

ବଢ଼ିବା—ଗ୍ରା. କ୍ରି. ( ସଂ-ବୃଦ୍ଧି ) ବୃଦ୍ଧି ପ୍ରାପ୍ତହେବା, ବୟଃପ୍ରାପ୍ତ ହେବା, (ବାଳିକା) ପ୍ରଥମେ ରଜସ୍ୱଲା ହେବା, (କାର୍ଯ୍ୟ) ସମାପ୍ତ ହେବା ।

ବଢ଼ୁଆ—ଗ୍ରା. ବି. ବଡ଼ା, ଚଉଡ଼ାମୁହାଁ ଶ୍ରେଷ୍ଠ ଆଠିକା ।

ବଢ଼େ—ଗ୍ରା.କ୍ରି.ବିଂ.ବଢ଼ିଧାଏଁ,ବଢ଼ିହିନ୍ତି, ବିଶେଷରୂପ, ଅତ୍ୟନ୍ତ ଅଧିକ ଭାବରେ

ବଣ—ଗ୍ରା.ବି (ସଂ ବନ) ଜଙ୍ଗଲ,ଅରଣ୍ୟ, ବନ, ଏକଜାତୀୟ ଅନେକ ବୃକ୍ଷର ସମଷ୍ଟି, (ଲ.ଅର୍ଥ) ସମୂହ, ( ଗ୍ରା.ବିଂ-ଲ.ଅର୍ଥ) ଅବୋଧ, ଅଗମ୍ୟ ।

ବଣକଲରା—ଗ୍ରା.ବି.ଫୁଟିଫୁଟିକା ଦେଖ ।

ବଣକୁକୁଡ଼ା—ଗ୍ରା. ବି. ବନ୍ୟକୁକ୍କୁଟ, ବଣରେ ଥିବା କୁକ୍କୁଟଜାତୀୟ ପକ୍ଷୀ ।

ବଣକୁନ୍ଦୁର—ଗ୍ରା.ବି. (ସଂ-ବିମ୍ବ) କଇଁଚକାକୁଡ଼ି ।

ବଣଗହମ—ଗ୍ରା.ବି. ଗରଗଡ଼ ।

ବଣଗୁଆ—ଗ୍ରା. ବି. ଏକପ୍ରକାର ବନ୍ୟ ଗୁଳ୍ମ ଓ ତାହାଁର ଫଳ, ରାମଗୁଆ ।

ବଣଚଟିଆ—ଗ୍ରା.ବି. ବାୟାଚଢ଼େଇ ।

ବଣଜଙ୍ଗଲ—ଗ୍ରା.ବି. ଅରଣ୍ୟ ।

ବଣଜନ୍ତୁ—ଗ୍ରା ବି. ବନଂଜୀବ ।

ବଣତୁଳସୀ—ଗ୍ରା. ବି. ବନଜାତ ଏକପ୍ରକାର ସୁଗନ୍ଧ ପତ୍ରଯୁକ୍ତ ଗୁଳ୍ମ ।

ବଣପତି—ଗ୍ରା.ବି.ଉତ୍କଳର ପ୍ରାଚୀନ ରାଜ ଉପାଧିବିଶେଷ ।

ବଣପିପ୍ପଳି(ଳୀ)—ଗ୍ରା.ବି. ବିନା କୃଷିରେ ଜାତ ପିପ୍ପଳୀ ।

ବଣପୋଡ଼ା—ଗ୍ରା.ବି. ଜଙ୍ଗଲରେ ନିଆଁ ଲଗିବା ।

ବଣବରି—ଗ୍ରା.ବି. ମାଷପର୍ଣ୍ଣୀ ।

ବଣଭୁଆ—ଗ୍ରା.ବି. ବନମାର୍ଜାର, କଟାସ

ବଣଭୋଜି—ଗ୍ରା.ବି. ଏକାଧିକ ବ୍ୟକ୍ତିଙ୍କର ବଣରେ ରାନ୍ଧି କରିଥିବା ଭୋଜନ ଉତ୍ସବ ।

ବଣମନି(ଣି,ଣ)ଷ—ଗ୍ରା. ବି. ମନୁଷ୍ୟପରି ଏକପ୍ରକାର ମାଙ୍କଡ଼, ଓରାଂଓଟାଙ୍ଗ୍. ଜଙ୍ଗଲୀଲୋକ, ଭଦ୍ରସମାଜର ରୀତି ନଜାଣିଥିବା ଲୋକ ।

ବଣମଲ୍ଲିକା—ଗ୍ରା.ବି. ସୁନ୍ଦର ଓ ଶ୍ରେଷ୍ଠ ମଲ୍ଲୀପରି ସୁଗନ୍ଧଯୁକ୍ତ ଫୁଲ ଓ ତାହାର ଗଛ, କାମିନୀ ଗଛ ଓ ଫୁଲ ।

ବଣମଲ୍ଲୀ—ଗ୍ରା.ବି.ମଲ୍ଲୀଫୁଲଜାତୀୟ ଏକପାଖୁଡ଼ିଆ ବନ୍ୟଫୁଲ ।

ବଣମୁଗ—ଗ୍ରା.ବି. ମୁଦ୍ଗପର୍ଣ୍ଣୀ ଦେଖ ।

ବଣମୁଥା—ଗ୍ରା.ବି. ନାଗରମୁଥା ।

ବଣଜୁଆଣି—ଗ୍ରା.ବି. ଅଜମୋଦା ।

ବଣଯଇ—ଗ୍ରା.ବି. ଅରଣ୍ୟଯୂଥିକା ।

ବଣସାରୁ—ଗ୍ରା. ବି. ଏକପ୍ରକାର ସାରୁ, (ଲ.ଅର୍ଥ) ଦୁଷ୍ଟବ୍ୟକ୍ତି ବା ବାଳକ ।

ବଣସୋରିଷ—ଗ୍ରା.ବି. ଅଣସୋରିଷିଆ ।

ବଣହଳଦୀ—ଗ୍ରା.ବି. ଦାରୁହଳଦୀ ।

ବଣା—ଗ୍ରା.ବି. (ସଂ ଭରଣୀ) ଗୁଡ଼ ରଖିବାର ମୃତ୍ତିକାପାତ୍ରବିଶେଷ, (ସଂ-ଭ୍ରାନ୍ତ) ଭୁଲ, ଭ୍ରାନ୍ତି, (ଗ୍ରା.ବିଂ—ସଂ-ଭ୍ରାନ୍ତ) ପଥଭ୍ରଷ୍ଟ, ଭ୍ରାନ୍ତ, ପର୍ଯ୍ୟାପ୍ତ, କିଂକର୍ତ୍ତବ୍ୟବିମୂଢ଼ (ବ୍ୟକ୍ତି) ।

ବଣା(ଣେ)ଇ—ଗ୍ରା.ବି.ଓଡ଼ିଶା ଗଡ଼ଜାତ ରାଜ୍ୟବିଶେଷ ।

ବଣାହେବା—ଗ୍ରା. କ୍ରି. ଭ୍ରାନ୍ତହେବା, ବାଟଭୁଲିବା, ବୁଦ୍ଧିଭ୍ରଷ୍ଟହେବା ।

ବଣି—ଗ୍ରା.ବି. ପକ୍ଷିବିଶେଷ, ହେମନ୍ତାଳ, କ୍ଷୁଦ୍ର ବଣ ।

ବଣିଆ—ଗ୍ରା.ବି. ଏକଜାତୀୟ ବୃକ୍ଷମାନଙ୍କର ସମଷ୍ଟି ବା ତୋଟା, ସୁନାରୂପାର କାରିଗର, ଜାତିବିଶେଷ, ପୋଟଳିବଣିଆ, ଗନ୍ଧବଣିକ,ବେପାରୀ,ବୈଶ୍ୟ, କଳ୍କି, ପକ୍ଷଯୁକ୍ତ ଏକପ୍ରକାର ପତଙ୍ଗ ।

ବଣିଆତି—ଗ୍ରା.ବି. ବଣିଆ ବ୍ୟବସାୟ, ବଣିଆମାନେ ବିକ୍ରି କରିବା ମସଲା, (ବିଂ) ବଣିଆସମ୍ବନ୍ଧୀୟ ।

ବଣିକ—ବି. ( ପଣ୍ + କ.ଇକ୍ ) ପଣ୍ୟକ୍ରୟ ବିକ୍ରୟକାରୀ, ବେପାରୀ,ବଣିଆଁ, ବୈଶ୍ୟଜାତି.(ଅଧି.ଇନ୍)ଜ୍ୟୋତିଷୋକ୍ତ କରଣମାନଙ୍କ ମଧ୍ୟରୁ ଷଷ୍ଠକରଣ, (ଭା.ଇକ୍) ବାଣିଜ୍ୟ ।

ବଣିକପଥ—ବି. (୬ତତ୍ପୁ) ବଜାର,ହାଟ ବାଣିଜ୍ୟ । ( ବଣିଆ ।

ବଣିକ—ଗ୍ରା.ବି. ବଣିକ୍,ବଣିଆ, ସୁନାରି-

ବଣିକଜନ—ପୁଂ. ବି. ବଣିକ୍ଜାତି, ବେପାରୀ ।

ବଣିଗ୍‌ବନ୍ଧୁ—ବି. ( ୬ତତ୍ପୁ ) ନୀଳଗଛ ।

ବଣିଗ୍‌ବହ—ପୁଂ. ବି. (ବଣିକ+ବହ) ଉଷ୍ଟ୍ର, ଓଟ ।

ବଣିଗ୍‌ବୃତ୍ତି—ସ୍ତ୍ରୀ.ବି. ( ବଣିକ୍ + ବୃତ୍ତି ) ବଣିକମାନଙ୍କର ଜୀବିକା, ବାଣିଜ୍ୟ, ବେପାର ।

ବଣିଗ୍‌ଭାବ—ପୁଂ.ବି. ( ବଣିକ + ଭାବ ) ବାଣିଜ୍ୟ, ସତ୍ୟାନୃତ, ବଣିକ୍ପଥ ।

ବଣିଙ୍ମାର୍ଗ—ପୁଂ. ବି.( ବଣିକ୍ + ମାର୍ଗ ) ବାଣିଜ୍ୟ, ବିପଣି, ବଣିକପଥ, କ୍ରୟବିକ୍ରୟ କର୍ତ୍ତା, ବୈଦେହକ, ସାର୍ଥବାହ, ନୈଗମ,ପଣ୍ୟାଜୀବ,ଆପଣିକ,ବୈଦେହ,

ବିଦେହ, ବାଣିଜ ବାଣିଜିକ,ନୈଗମିକ, ବନ୍ଧକିକ, ବାଣିଜକ, ବାଣିଜ୍ୟକାର, ବୈଶ୍ୟ, କରଣବିଶେଷ ।

ବଣିଜ—ପୁଂ.ବି. (ବଣିକ୍+ଅ) ବଣିକ, ଜ୍ୟୋତିଷୋକ୍ତ ଷଷ୍ଠକରଣ, ( ଗ୍ରା.ବି ) ବାଣିଜ୍ୟ, ବେପାର, ପଣ୍ୟଦ୍ରବ୍ୟଚୟ ।

ବଣିଜକ—ପୁଂ.ବି. ବଣିକ୍,ବ୍ୟବସାୟୀ ।

ବଣିଜପଥ—ବି. (୬ତତ୍ପୁ)ହାଟ,ବଜାର, ଦୋକାନ, ଗଞ୍ଜ ।

ବଣିଜବେପାର—ଗ୍ରା. ବି. ବଣିକବୃତ୍ତି. ପଣ୍ୟ କ୍ରୟ ବିକ୍ରୟ ବ୍ୟବସାୟ ।

ବଣିଜା—ଗ୍ରା.ବି. ବଣିକ୍ ।

ବଣିଜାର(ରୁ)—ଗ୍ରା.ବି. ବଣିକ୍ ।

ବଣିଜ୍ୟ—କ୍ଲୀ. ବି. ( ବଣିଜ୍+ଭା.ଯ ) ବାଣିଜ୍ୟ, ବେପାର ।

ବଣୁଆ—ଗ୍ରା.ବିଂ. ବନବାସୀ, ବନଜାତ, ବନ୍ୟ, ଜଙ୍ଗଲି, ଅସଭ୍ୟ ।

ବଣ୍ଟ—ବି. (ବଣ୍ଟ+ଭା.ଅ) ଭାଗ, ଅଂଶ, ବଣ୍ଟନ, (ର୍ମ.ଅ) ବେଣ୍ଟ, ଦାଆ ପ୍ରଭୃତିର ମୁଠା, ଅବିବାହିତ ପୁରୁଷ,(ପୁଂ. ବିଂ)ଅବିବାହିତ ।

ବଣ୍ଟକ—ପୁଂ. ବିଂ. ( ବଣ୍ଟ+କ.ଅକ ) ବଣ୍ଟନକାରୀ, ବିଭାଗକର୍ତ୍ତା, ବିଭାଜକ, (ବି—ସ୍ୱାର୍ଥେ.କ) ବିଭାଗ, ଅଂଶ ।

ବଣ୍ଟନ—କ୍ଲୀ.ବି. (ବଣ୍ଟ+ଅନ) ବିଭାଗ, ଅଂଶକରଣ, ଭାଗକରିବା, ବାଣ୍ଟିବା, ପେଷଣ ।

ବଣ୍ଟନୀୟ—ବି. ବିଂ. ( ବଣ୍ଟ+ଅନୀୟ ) ବଣ୍ଟନଯୋଗ୍ୟ, ବିଭାଗଯୋଗ୍ୟ ।

ବଣ୍ଟରା—ଗ୍ରା.ବି. ବିଭାଗକରଣ, ବଣ୍ଟନ, ଅଂଶୀକରଣ ।

ବଣ୍ଟରାକୁଣ୍ଟରା—ଗ୍ରା.ବି. ବଣ୍ଟାକୁଣ୍ଟା ଦେଖ

ବଣ୍ଟା—ଗ୍ରା.ବି. ବଣ୍ଟନ, ବିତରଣ, ଭାଗ, ଅଂଶ ।

ବଣ୍ଟାକୁଣ୍ଟା—ଗ୍ରା.ବି. ବଣ୍ଟନ, ବହୁଲୋକଙ୍କ ମଧ୍ୟରେ ବଣ୍ଟନ ।

ବଣ୍ଟାବଣ୍ଟି—ଗ୍ରା ବି ଓ ବିଂ. ପରସ୍ପର ମଧ୍ୟରେ ବିଭାଗ କରିବା, ବହୁଲୋକଙ୍କୁ ବିତରଣ ।

ବଣ୍ଟାଳ—ପୁଂ,ବି. ଶୂରଯୁଦ୍ଧ, ନୌକା, ଖନିତ୍ର ।

ବଣ୍ଟିତ—ତ୍ରି. ବିଂ. ( ବଣ୍ଟ+ତ ) କୃତବିଭାଗ, ଯାହା ବଣ୍ଟନ ହୋଇଅଛି ।

ବଣ୍ଡ—ପୁଂ.ବିଂ. (ବଣ୍ଡ+କ.ଅ)ଅକୃତୋଦ୍‌ବାହ, ଅବିବାହିତ, ଖଞ୍ଜ, ବାଙ୍ଗର, ବିକଲାଙ୍ଗ, (ପୁଂ.ବି)ଅବିବାହିତ ପୁରୁଷ, ଭୃତ୍ୟ, କୁନ୍ତ ଅସ୍ତ୍ର ।

ବଣ୍ଡର—ପୁଂ. ବି. ( ବଣ୍ଡ+କ.ଅର ) ସ୍ତ୍ରୀଣିକାରକ୍ଷୁ, ପଘା, କୁକୁରଲାଞ୍ଜ,ମେଘ, ପୟୋଧର, କୁକୁର, କୁଚ, କଣ୍ଠୀର କୋଷ, ବାଉଁଶଗଜାର ଆବରକ ବକଳ, ତାଳ ପଲ୍ଲବ,ତାଳର ନୂଆପତ୍ର

ବଣ୍ଡାଳ—ପୁଂ, ବି. ବଣ୍ଟାଳ ଦେଖ ।

ବଣ୍ଡ୍ର—ପୁଂ. ବିଂ. (ବଣ୍ଡ୍ର+ର୍ମ.ଅ) ବିକଳାଙ୍ଗ,ଛିନ୍ନମୁଷ୍କ, ଲାଙ୍ଗୁଳ ବନ୍ଧନ, ଅବିବାହିତ, ଖାସୀ କରାଯାଇଥିବା, (ବି) ଅନାବୃତ ମେଢ୍ର, ଯେଉଁ ବ୍ୟକ୍ତିର ଲିଙ୍ଗାବରକ ଚର୍ମ ନଥାଏ ।

ବଣ୍ଡ୍ରର—ବି. ( ବଣ୍ଡ୍ର + କ.ଅର ) କୃପଣ ବ୍ୟକ୍ତି, ନପୁଂସକ ବ୍ୟକ୍ତି ।

ବଣ୍ଡ୍ରା—ଗ୍ରା. ସ୍ତ୍ରୀ. ବି. (ବଣ୍ଡ୍ର+ଅ+ଆ) ଅସତୀ ସ୍ତ୍ରୀ, ପୁଂଶ୍ଚଳୀ, (ଗ୍ରା.ବିଂ) ଓଲୁ, ନିର୍ବୋଧ, ବୋକା ।

ବଣ୍ଡ୍ରାଳ—ପୁଂ.ବି.(ବନ୍ଦ୍+ଆଳ)ଲମ୍ବବେଣିଆ କୋଡ଼ି,ବୀରମାନଙ୍କ ମଧ୍ୟରେ ଯୁଦ୍ଧ ।

ବଣ୍ଡି—ପ୍ରା, (ଗଞ୍ଜାମ) ବି. ଶଗଡ଼ଗାଡ଼ି, କେରେଞ୍ଚଗାଡ଼ି, ପ୍ରା.(ସମ୍ବ.)ବି.ଫତେଇ

ବଣ୍ଡିଇବା—ପ୍ରା. (ସମ୍ବ.)କ୍ରି. ଓଲାଇବା

ବତ୍—ଅବ୍ୟ,ସାମ୍ୟ, ସାଦୃଶ୍ୟ,ତୁଲ୍ୟତା, 'ଅଚ୍ଛି'ଅର୍ଥ ବୋଧକ ସଂସ୍କୃତ ପ୍ରତ୍ୟୟ ।

ବତ—ଅବ୍ୟ,ଖେଦ,ଅନୁକମ୍ପା,ସନ୍ତୋଷ, ବିସ୍ମୟ, ଆମନ୍ତ୍ରଣ, ସଦୃଶ,ତୁଲ୍ୟ ।

ବତଂସ—ପୁଂ. ବି. (ଅବ+ତନସ୍+ଣ.ଅ) କର୍ଣ୍ଣପୂର, କର୍ଣ୍ଣଭୂଷଣ, ଶିଖର, ଶିରୋଭୂଷଣ । [ ଦେଖ ।

ବତଂସକ—ବି. (ବତଂସ+କ) ବତଂସ

ବତକ—ଗ୍ରା. ବି. ହଂସୀ, କଳହଂସ, ପାତିହଂସ ।

ବତରକ(କୋ)ର—ପ୍ରା. ( ସମ୍ବ. ) ବି. ଝିଙ୍କିପୋକ, କଲେଇ ପୋକ ।

ବତର—ଗ୍ରା.ବି. ଜମିର ଚାଷୋପଯୋଗୀ ଆର୍ଦ୍ରତା, ଗୋରୁ ଆଦି ଚରୁମଣ୍ଡି ହେବା ଅବସ୍ଥା,(ଗ୍ରା,ବିଂ) ଆର୍ଦ୍ର,ଉତ୍ତମରୂପେ ଶୁଖି ନଥିବା (ଉଷୁନାଧାନ) ।

ବତରକରିବା—ଗ୍ରା.କ୍ରି. ଉଷୁନା ଧାନକୁ ଖରା ଆଦିରେ ଶୁଖାଇ ଉପଯୁକ୍ତ ଚାଉଳ ହେବାର ପାଗ କରିବା ।

ବତରପଡ଼ିବା—ଗ୍ରା, କ୍ରି. (ଗାଈ)ଚରୁମଣ୍ଡି ହେବା, (ଜମି) ଉପଯୁକ୍ତ ଆର୍ଦ୍ର ରହିବା ।

ବତଲ—ପ୍ରା. (ସମ୍ବ.) ବି, ଆତ ।

ବତା—ଗ୍ରା. ବି.(ସଂ-ବେତ୍ର)।ଚିରାବାଉଁଶ, ବାଉଁଶର ପାଳ, କବାଟର ପଟାର ଆଡ଼ବାଗରେ ଦିଆଯାଇଥିବା କାଠର ପଟି, ପତ୍ର ଭର୍ତ୍ତିହୋଇଥିବା ନଡ଼ିଆ ବାହୁଙ୍ଗା,ପାକସ୍ଥଳୀରେ ଥିବା କେଞ୍ଚୁଆ ।

ବତା(ତୋ)ଇବା—ଗ୍ରା . କ୍ରି, (ସଂ-ବାକ୍ୟ) ସୂଚନା କରିବା, ଶିକ୍ଷାଦେବା, ଶିଖାଇଦେବା, (ବାଟ) ଦେଖାଇବା,ପରାମର୍ଶ ଦେବା, ବୁଝାଇଦେବା, ( ଲ୍.ଅର୍ଥ ) କାର୍ଯ୍ୟକ ଭାବରେ ପ୍ରତ୍ୟୁତ୍ତର ଦେବା ।

ବତାଗୁଡ଼ିବା—ଗ୍ରା.ବି. ପେଟରୁ କେଞ୍ଚୁଆ ନିର୍ଗତ ହେବା ।

ବ(ବୋ)ତାଗିବା—ଗ୍ରା. କ୍ରି. ଚାଳଘରର ରୁଅ ଉପରେ ବତାମାନଙ୍କୁ ଶ୍ରେଣୀବଦ୍ଧ କରି ବାନ୍ଧିବା ।

ବତାଲି—ଗ୍ରା. ବି, ସାନବୋଟ ।

ବତାସ—ଗ୍ରା. ବି, ( ସଂ-ବାତ ) ପବନ, ପ୍ରବଳ ପବନ, ବାଆ, ତୋଫାନ ।

ବତାସିଆ—ଗ୍ରା.ବିଂ. (ସଂ-ବାତ) ବତାସଯୁକ୍ତ, ମିଥ୍ୟାବାଦୀ, ଆଡ଼ମ୍ବର ପ୍ରିୟ ।

ବତି—ଗ୍ରା. ବି. ( ସଂ-ବର୍ତ୍ତି ) ସଳିତା, ବଳିତା, ପ୍ରଦୀପ ।

ବତିପେଲା—ଗ୍ରା. ବିଂ, ଖୋସାମତିଆ, ଚାଟୁକାର, ଅନ୍ୟ ବ୍ୟକ୍ତିର ସବୁ କାର୍ଯ୍ୟର ଅନୁମୋଦକ ।

ବତିଶର୍—ଗ୍ରା. ବଂ. ନିର୍ଲ୍ଲଜ ।

ବତି(ତ୍ରି)ଶ(ଶି)—ଗ୍ରା. ବି ଓ ବିଂ. ୩୨ ସଂଖ୍ୟା, ୩୨ସଂଖ୍ୟକ ।

ବତିଶଲକ୍ଷଣ—ଗ୍ରା.ପୁଂ. ବିଂ. ଦେହରେ ୩୨ ସୁଲକ୍ଷଣଯୁକ୍ତ ।

ବତିଶସିଂହାସନ—ଗ୍ରା. ବି. ମହାକବି କାଳିଦାସ ପ୍ରଣୀତ ଉପାଖ୍ୟାନ ଗ୍ରନ୍ଥ ବିଶେଷର ଓଡ଼ିଆ ଅନୁବାଦ ଗ୍ରନ୍ଥ ।

ବତିଶା—ଗ୍ରା. ବିଂ. ବତିଶ ସମ୍ବନ୍ଧୀୟ, ବତିଶ ସଂଖ୍ୟକ, ବତିଶସଂଖ୍ୟାର ପୂରକ, (ଗ୍ରା. ବି) ଏକପ୍ରକାର ବତିଶ ଫେଣାଯୁକ୍ତ କାଠିଆକଦଳୀ, ମନୁଷ୍ୟର ଦୁଇ ପାଟିର ସମସ୍ତ ଦାନ୍ତ ।

ବତୀ—(ସଂ·ପ୍ରତ୍ୟୟ) ସ୍ତ୍ରୀ.ବତ୍ ପ୍ରତ୍ୟୟାନ୍ତ ଶବ୍ଦର ସ୍ତ୍ରୀଲିଙ୍ଗ ।

ବତୁ—ପ୍ରା. (ଗଞ୍ଜାମ) ବି. କନ୍ଦୁକ, ସମସଂଖ୍ୟା, (ପ୍ରା. ସମ୍ବ. ବି) ଅଣ୍ଡକୋଷ ।

ବତୁରା—ଗ୍ରା. ବି. ବତୁରାଇବା କାର୍ଯ୍ୟ, ଭିଜାଇବା, (ବିଂ) ଭିଜାହୋଇଥିବା, ଜଳସିକ୍ତ ।

ବତୁରା(ରେ)ଇବା—ଗ୍ରା. କ୍ରି. କୌଣସି ପଦାର୍ଥକୁ କିଛିକାଳ ଜଳରେ ବୁଡ଼ାଇ ରଖିବା ।

ବତୁରି—ଗ୍ରା. ବି. ବତୁରା ଦେଖ ।

ବତୁରିବା—ଗ୍ରା. ବି, ଜଳଦ୍ୱାରା ଭିଜିବା, ଜଳସିକ୍ତ ହେବା ।

ବତୁରିବୁଣା— ଗ୍ରା. ବି. ଭୂଇଁ ଓଦାଥିବା ଅବସ୍ଥାରେ ଧାନବୁଣିବା ପଦ୍ଧ ।

ବତ୍ମ—ପୁଂ. ବି.ଦେବ ନଦୀ, ସତ୍ୟବାକ୍, ପନ୍ଥା, ଆଖିରୋଗ ।

ବତୋକା—ସ୍ତ୍ରୀ. ବି,ଅବତୋକା,ଯେଉଁ ଗାଈର ଗର୍ଭସ୍ରାବ ହୋଇଅଛି ।

ବତ୍ସ—ପୁଂ, ବି. ( ବଦ୍+ସଂ,ସ )ଗୋଶିଶୁ, ବାଛୁରି, ଶିଶୁ, ଅର୍ଭକ, ସ୍ନେହ ସୂଚକ ଶବ୍ଦ,ସନ୍ତାନ,ଭାରତୀୟ ପ୍ରଦେଶ ବିଶେଷ (ଆଧୁନିକ ଦୋଆବ), ( ବସ +ଅଧି.ସ) ବତ୍ସର, ବର୍ଷ, ଗ୍ରୀବତ୍ସ, ପୌରାଣିକ ନରପତି ବିଶେଷ,ଜନୈକ ଭକ୍ତ ବ୍ରାହ୍ମଣ, ଶ୍ରୀବତ୍ସ, ବକ୍ଷ, ସ୍ଫୀତ, ବତ୍ସାସୁର ।

ବତ୍ସକ—ବି. (ବତ୍ସ+କ) ପୁଷ୍ପକାସୀସ, ବତ୍ସ ଶବ୍ଦାର୍ଥ, କୁଟଜ,ଇନ୍ଦ୍ରଯବ,ନିର୍ଗୁଣ୍ଡୀ ପୁତ୍ର, ସନ୍ତାନ; ବାଛୁରି । [ ପାପଡ଼ା ।

ବତ୍ସକଣ୍ଟକ—ପୁଂ. ବି. ପର୍ପଟକ, କ୍ଷେତ

ବତ୍ସକଫଳ—କ୍ଲୀ. ବି. ଇନ୍ଦ୍ରଯବ ।

ବତ୍ସକବୀଜ—କ୍ଲୀ. ବି. ଇନ୍ଦ୍ରଯବ ।

ବତ୍ସକାମ—ପୁଂ. ବିଂ. (ବି.ଗ୍ରା)ସନ୍ତାନାଭିଳାଷୀ, (ସ୍ତ୍ରୀ) ବତ୍ସକାମା ।

ବତ୍ସକାମା—ସ୍ତ୍ରୀ. ବି.ବତ୍ସାଭିଳାଷିଣୀଗାଭୀ, ବତ୍ସଳା, ପୁତ୍ରାଦିକାମା ସ୍ତ୍ରୀ ।

ବତ୍ସଜାତ—ଗ୍ରା. ବି. ସ୍ତନ ।

ବତ୍ସତନ୍ତ୍ରୀ—ସ୍ତ୍ରୀ.ବି.(ଭଟ୍ଟ) ବତ୍ସବନ୍ଧନ ରଜ୍ଜୁ, ବାଛୁରିବନ୍ଧା ଦଉଡ଼ି ।

ବତ୍ସତର—ପୁଂ. ବି. ପ୍ରାପ୍ତଦମନ କାଳ ଗୋଶିଶୁ, ଦାମୁଡ଼ି,ତିନିବର୍ଷର ବାଛୁରି, ଅଣ୍ଡିରାବାଛୁରି ।

ବତ୍ସତରୀ—ସ୍ତ୍ରୀ. ବି. ତିନିବର୍ଷ ବୟସ୍କା ମାଈବାଛୁରି ।

ବତ୍ସଦେଶ—ବି.ଦୋଆବର ପ୍ରାଚୀନନାମ

ବତ୍ସନାଭ—ବି, (ବତ୍ସନାଭ+ଅ)ସ୍ଥାବର ବିଷ ବିଶେଷ, ମହୁରା ।

ବତ୍ସପ—ପୁଂ. ବି. ( ବତ୍ସ+ପା+ଅ ) ବତ୍ସପାଳକ, ଶ୍ରୀକୃଷ୍ଣ, ଦାନବ ବିଶେଷ

ବତ୍ସପତି—ପୁଂ.ବି.ରାଜା ବିଶେଷ,ବତ୍ସରାଜ

ବତ୍ସପତ୍ତନ—କ୍ଲୀ. ବି. (ବତ୍ସ+ପତ୍ତନ) ଭାରତ ଉତ୍ତରସ୍ଥ ଦେଶ ବିଶେଷ, କୌଶାମ୍ବୀ ।

ବତ୍ସପାଳ—ପୁଂ. ବି. ଶ୍ରୀକୃଷ୍ଣ, ବଳରାମ, ଗୋପାଳ, (ବିଂ) ଯେ ବତ୍ସ ପାଳନ କରେ ।

ବତ୍ସପ୍ରୀତ—ପୁଂ. ବି. ବତ୍ସପ୍ରୀତ, ରାଜା ବିଶେଷ, (ସ୍ତ୍ରୀ. ବି. ଭଟ୍ଟ) ବତ୍ସପ୍ରତି ସ୍ନେହ କରିବା ।

ବତ୍ସବାଳକ—ପୁଂ. ବି. ବସୁଦେବ ଭ୍ରାତା

ବତ୍ସଭକ୍ଷକ—ପୁଂ. ବି.ଇନ୍ଦ୍ରାମୃତ,ହୁଣ୍ଡାଳ, ଗୋବାଘ ।

ବତ୍ସଭୂମି—ସ୍ତ୍ରୀ. ବି. ଜନପଦ ବିଶେଷ, ବତ୍ସମାନଙ୍କ ବାସଭୂମି,ବତ୍ସରାଜା ପୁତ୍ର ।

ବତ୍ସର—ପୁଂ. ବି. ବାରମାସ ଯୁକ୍ତ ସମୟ, ସନ,ସାଲ, ସଂବତ୍ସର, ଅବ୍ଦ ।

ବତ୍ସର—ପ୍ରା.(ସିଂହଭୂମ)ବି. ଚୈତ୍ରସଂକ୍ରାନ୍ତି, ସୌରମେଷ ବା ବୈଶାଖମାସର ପ୍ରଥମ ଦିନ । [ ମାସ ।

ବତ୍ସରାଦି—ପୁଂ. ବି. ମାର୍ଗଶୀର୍ଷ,ମାର୍ଗଶିର

ବତ୍ସରାନ୍ତକ—ପୁଂ. ବି. ( ବତ୍ସର + ଅନ୍ତ +କ) ଫାଲ୍‌ଗୁନମାସ ।

ବତ୍ସଳ—ପୁଂ.ବିଂ.(ବତ୍ସ+ଲ)ସ୍ନେହଯୁକ୍ତ, ସ୍ନିଗ୍ଧ, ବତ୍ସକାମୁକ, ଭକ୍ତ, ଅନୁରକ୍ତ, (ସ୍ତ୍ରୀ) ବତ୍ସଳା, (ବି) ବାତ୍ସଲ୍ୟ, ସ୍ନେହ, ଅନୁରାଗ, କାବ୍ୟର ରସବିଶେଷ ।

ବତ୍ସଳତା—ସ୍ତ୍ରୀ. ବି. ( ବତ୍ସଳ+ତା ) ବାତ୍ସଲ୍ୟ,ବତ୍ସଳର ଭାବ,ସ୍ନେହ,ଅନୁରାଗ

ବତ୍ସଳା—ସ୍ତ୍ରୀ. ବି. (ବତ୍ସଳ+ଆ) ବତ୍ସକାମା ଗୋ । [ ପ୍ରଣେତା ।

ବତ୍ସବରଦାଚାର୍ଯ୍ୟ——ପ୍ରଶନ୍ନପାରିଜାତ-

ବତ୍ସଶାଳା—ସ୍ତ୍ରୀ. ବି. ଗୁହାଳଘର ।

ବତ୍ସସ୍ମୃତି—ବି. ସ୍ମୃତିଗ୍ରନ୍ଥ ବିଶେଷ ।

ବତ୍ସା—ସ୍ତ୍ରୀ. ବି. (ବତ୍ସ+ଆ) ବାଛୁରି ।

ବତ୍ସାକ୍ଷୀ—ସ୍ତ୍ରୀ. ବି. ଗୋଡ଼ୁମ୍ବା ।

ବତ୍ସାଜୀବ—ବି. ବିଂ. ଗୋବତ୍ସ ପାଳନ ଦ୍ୱାରା ଜୀବିକା ନିର୍ବାହକାରୀ, ଜଙ୍ଗଲର ଋଷି ।

ବତ୍ସାଦନ—ପୁଂ. ବି. ( ବତ୍ସ + ଅଦ + କ.ଅନ) ନେକେଡ଼ା ବାଘ, ହୁଣ୍ଡାଳ ।

ବତ୍ସାଦନୀ—ସ୍ତ୍ରୀ. ବି. (ବତ୍ସ+ଅଦ୍+ସଂ. ଅନ+ଈ) ଗୁଳୁଚ ।

ବତ୍ସାସୁର—ପୁଂ. ବି. ( ବତ୍ସ+ଅସୁର ) ଅସୁର ବିଶେଷ ।

ବତ୍ସୀ—ପୁଂ. ବିଂ.(ବତ୍ସ+ଇନ୍)ବତ୍ସଯୁକ୍ତ, ପୁତ୍ର ସମନ୍ୱିତ, (ବି) ଶ୍ରୀକୃଷ୍ଣ ।

ବତ୍ସିମା—ବି. ବାଲ୍ୟାବସ୍ଥା, ଯୌବନ ।

ବତ୍ସ୍ୟ—ତ୍ରି.ବିଂ.(ବତ୍ସ+ଯ)ବତ୍ସସମ୍ବନ୍ଧୀୟ

ବଥ—ଗ୍ରା.ବି. ବ୍ରଣବିଶେଷ ।

ବଥା—ଗ୍ରା. ବି. (ସଂ-ବ୍ୟଥା) ବେଦନା, ବ୍ୟଥା, ବନ୍ଧା, ଶୂଳରୋଗ ।

ବଥା(ଏ)ଇବା—ଗ୍ରା.କ୍ରି. ( ଶରୀରର )

ଅଂଶ ବ୍ୟଥାଯୁକ୍ତ ହେବା ବ୍ୟଥିତ-
ହେବା । [ ବିଶେଷ ।
**ବଥୁଆ**—ଗ୍ରା.ବି. ( ସଂ-ବାସ୍ତୁକ ) ଶାକ-
ବଦ୍—ଯା. ବିଂ.ମନ୍ଦ, ଖରାପ,କ୍ରୁ, ଅସତ୍-
ଚରିତ୍ର, ଦୁଷ୍ଟ, ଅସୁନ୍ଦର ।
ବଦ୍‌ଖୋ—ଯା.ବି. ମନ୍ଦପ୍ରକୃତ, ବଦ୍-
ଅଭ୍ୟାସ ।
ବଦ୍‌ଜାତ—ଯା.ବିଂ. ବଜ୍ଜାତ୍, ଖଳ,ଦୁଷ୍ଟ
ନୀଚ, କୁଜାତ ।
ବଦ୍‌ଦୁଆ—ଯା.ବି. ଅଭିଶାପ ।
ବଦ୍‌ନଜର—ଯା. ବି. ଦ୍ୱେଷ, ନିଗ୍ରହ,
କୁଦୃଷ୍ଟି ।
ବଦ୍‌ନସୀବ୍—ଯା.ବି. ମନ୍ଦଭାଗ୍ୟ,ଦୁର୍ଭାଗ୍ୟ
ବଦ୍‌ନା——ଗ୍ରା. ବି. ମୁସଲମାନଙ୍କ
ବ୍ୟବହୃତ ଗଡ଼ୁ । [ କଳଙ୍କ ।
ବଦ୍‌ନାମ(ମି)—ଗ୍ରା.ବି.ଦୁର୍ନାମ, ଅପଯଶ,
ବଦ୍‌ଫାଇସିଆ—ପ୍ରା. (କେନ୍ଦ୍ରାପଡ଼ା) ବିଂ.
ମନ୍ଦପ୍ରକୃତକ (ବ୍ୟକ୍ତି) ।
ବଦ୍‌ବୁ(ବୋ)—ଯା. ବି. ଦୁର୍ଗନ୍ଧ, (ବିଂ)
ଦୁର୍ଗନ୍ଧଯୁକ୍ତ ।
ବଦ୍‌ମସ୍ତ—ଯା. ବିଂ. ନିଶାରେ ଚୁର୍,
କାମୋନ୍ମତ୍ତ, ଲମ୍ପଟ ।
ବଦ୍‌ମାସ—ଯା.ବିଂ.ଅନ୍ୟାଯ୍ୟ ଉପାୟରେ
ଜୀବିକା ନିର୍ବାହକାରୀ, ଦୁଷ୍ଟ, ଚରିତ୍ର-
ହୀନ, ନଷ୍ଟଚରିତ୍ର ।
ବଦ୍‌ମାସି—ଯା. ବି. ଦୁଷ୍ଟାମୀ, ଖେଚଡ଼-
ପଣିଆ, ଚରିତ୍ରହୀନତା,ଇନ୍ଦ୍ରିୟସେବା ।
ବଦ୍‌ରଙ୍ଗ—ଯା. ବି. ତାସ୍‌ଖେଳରେ
ରଙ୍ଗ ଛଡ଼ା ଅନ୍ୟ ରଙ୍ଗର ତାସ ।
ବଦ୍‌ସୁରତ୍—ଯା.ବିଂ. ଅସୁନ୍ଦର, କୁରୂପ
ବଦ୍‌ହବାସ୍—ଯା. ବିଂ. ବେହୋସ୍,
ଚେତନାରହିତ, ଅଚେତା, ବ୍ୟାକୁଳ,
କିଂକର୍ତ୍ତବ୍ୟବିମୂଢ଼ ।
ବଦ—ବିଂ. (ବଦ୍+କ.ଅ) ବକ୍ତା, ଯେ
କହେ, (କ୍ରି) କହିବା । [ ବକ୍ତା ।
ବଦକ—ବି.ବିଂ. ବାକ୍ୟ କଥନଶୀଳ,
ବଦତି—ଗ୍ରା.କ୍ରି. (ସେ) କହୁଛନ୍ତି ।
ବଦନ—କ୍ଲୀ.ବି. (ବଦ୍+ଣ.ଅନ) ମୁଖ,
ଆନନ, ଅଗ୍ରଭାଗ, ପାଟି, ( ଭା.ଅନ )
କଥନ, କହିବା ।
ବଦନଇନ୍ଦୁ—ଗ୍ରା.ବି. ଚନ୍ଦ୍ରସଙ୍ଗେତୁଳନା
ଯୋଗ୍ୟ ମୁଖ, ମୁଖଚନ୍ଦ୍ର ।
ବଦନକମଳ—ବି. ( କ.ଧା ) ମୁଖପଦ୍ମ,
ପଦ୍ମସଦୃଶ ସୁନ୍ଦର ମୁଖ ।
ବଦନମଣ୍ଡଳ—ବି.(ଷତତ୍)ମୁଖମଣ୍ଡଳ ।
ବଦନମଧୁ—ବି. (ଷତତ୍) ଅଧରମଧୁ,
ମୁଖାମୃତ । [ ରୋଗ ।
ବଦନମଯ୍ୟ—ପୁଂ.ବି. (ଷତତ୍) ବଦନ-
ବଦନଶ୍ୟାମିକା—ସ୍ତ୍ରୀ.ବି. (ଷତତ୍)ବଦନ
କାଳିମା ।
ବଦନାମୃତ—ବି. ( ବଦନ+ଅମୃତ )
ମୁଖାମୃତ, ଅଧରମଧୁ ।
ବଦନାସବ—ପୁଂ.ବି. (ବଦନ+ଆସବ)
ଅଧରମଧୁ , ମୁଖାମୃତ ।
ବଦନୀ—ଗ୍ରା.ସ୍ତ୍ରୀ.ବିଂ.ସୁନ୍ଦର ମୁଖବିଶିଷ୍ଟା ।
ବଦନ୍ତ(ନ୍ତୀ)—ସ୍ତ୍ରୀ. ବି. (ବଦ୍+ଅନ୍ତ+
ଇ) କଥା, ବାକ୍ୟ ।
ବଦନ୍ୟ—ବି.ବିଂ.ବଦାନ୍ୟ,ଦାତା,ଦାନ
ଶୀଳ, ସଦ୍‌ବକ୍ତା ।
ବଦର୍—ଯା. ବି. ଭୂସମ୍ପତ୍ତି ସମ୍ବନ୍ଧେ
ପ୍ରତିଦ୍ୱନ୍ଦ୍ୱୀମାନଙ୍କ ମଧ୍ୟରେ ବିବାଦ
ହେଲେ ସେଟଲମେଣ୍ଟ ହାକିମଙ୍କ ନିକ-
ଟରେ ପ୍ରଥମେ ଦାଏର୍ କରାଯିବା
ମକଦ୍ଦମା ।
ବଦର—ବି. ( ବଦ୍ + କ.ଅର ) ବର-
କୋଳି, କପାସଫଳ ।
ବଦରକ୍ତ—ଗ୍ରା.ବି. ଦୂଷିତରକ୍ତ ।
ବଦରା—ବି. (ବଦର+ଆ) କାର୍ପାସୀ,
ଏଲାପର୍ଣ୍ଣୀ, କଞ୍ଚା ଆମ୍ବୁଡ଼ା ।
ବଦରାମଳକ—ବି. ପାଣିଅଁଳା ।
ବଦରି(ରୀ)—ବି. ( ବଦ୍+ଅର + ଇ )
ବଦର ଦେଖ ।
ବଦରିକା—ବି. (ବଦ୍+ଅର+କ+ଆ)
ବଦର ଦେଖ, ବଦରିକାଶ୍ରମ ଦେଖ ।
ବଦରିକାଶ୍ରମ—ବି. ବଦ୍ରିକାଶ୍ରମ,ହିମାଳୟ
କୋଡ଼ରେ ଗଡ଼ବାଲ ପ୍ରଦେଶସ୍ଥ
ଅଳକାନନ୍ଦା ନଦୀର ପଶ୍ଚିମ ତୀରବର୍ତ୍ତୀ
ପ୍ରସିଦ୍ଧ ହିନ୍ଦୁତୀର୍ଥ ।
ବଦଳ—ଯା.ବି. ପରିବର୍ତ୍ତନ, ବିନିମୟ,
ପରିବର୍ତ୍ତନ, ପ୍ରତିଶୋଧ, ( ଗ୍ରା.ବି )
ଏକାଦିକ୍ରମେ ଅତି ବୃଷ୍ଟି ଯୋଗୁଁ
କ୍ଷେତ୍ରରେ ଜଳପୂର୍ଣ୍ଣ ହେବା ଅବସ୍ଥା ।
ବଦଳକରିବା—ଗ୍ରା.କ୍ରି. ଏକ ବସ୍ତୁ ପରି-
ବର୍ତ୍ତିରେ ଅନ୍ୟ ବସ୍ତୁକୁ ଦେବା ବା
ନେବା, ବିନିମୟ କରିବା ।
ବଦଳରେ—ଗ୍ରା.ଅବ୍ୟ. ଅମୁକର ପରି-
ବର୍ତ୍ତେ, ଅମୁକର ସ୍ଥାନରେ, ଅମୁକର
ବିନିମୟରେ ।
ବଦଳା—ଗ୍ରା.ବି.ବଦଳି କରିବା କ୍ରିୟା ।
ବଦଳା(ଳେ)ଇବା—ଗ୍ରା.କ୍ରି. ପାଲଟା-
ଇବା, ପରିବର୍ତ୍ତନ କରାଇବା, ପୁରୁଣା
ଜିନିସ ଦେଇ ନୂଆ ଜିନିସ ଆଣିବା ।
ବଦଳାବଦଳି—ଗ୍ରା. ବି. ଅଦଳବଦଳ,
ଅନ୍ୟୋନ୍ୟରେ ପରିବର୍ତ୍ତନ ।
ବଦଳି—ଗ୍ରା. ବି. ପରିବର୍ତ୍ତନ, ବିନିମୟ,
ସ୍ଥାନାନ୍ତରକରଣ, ପ୍ରତିନିଧି; (ବିଂ) ସ୍ଥାନା-
ନ୍ତରିତ, ପ୍ରତିଦତ୍ତ, ପରିବର୍ତ୍ତିତ ।
ବଦଳିଆ—ଯା.ବି. ଗୃହର ଛୁଟିନେବା
ସମୟପାଇଁ ଯାହାକୁ ତାହା ଗୃହରେ
ରଖାଏ, ପ୍ରତିନିଧି ।
ବଦଳିକରିବା—ଗ୍ରା.କ୍ରି. କୌଣସି କର୍ମ-
ଚାରୀଙ୍କୁ ସ୍ଥାନାନ୍ତରକୁ ଯିବାକୁ ଆଦେଶ
ଦେବା, ପରିବର୍ତ୍ତନ କରିବା ।
ବଦଳିବା—ଗ୍ରା.କ୍ରି.ପରିବର୍ତ୍ତିତ ହେବା;
ପିନ୍ଧିଥିବା ଲୁଗାକୁ ପାଲଟିବା ।
ବଦସ୍ତ—ଯା.ଅବ୍ୟ. ଦସ୍ତବଦସ୍ତ, ହାତେ
ହାତେ,ନଗଦ । [ ସ୍ୱତଃମତ ।
ବଦସ୍ତୁର୍ —ଯା.ଅବ୍ୟ. ରୀତି ଅନୁସାରେ,
ବଦାଇ—ଗ୍ରା.ବି. ବଧାଇ ଦେଖ, ଛଞ୍ଚା,
ସିଧାସାମଗ୍ରୀ । [ ବଦତ୍ର ।
ବଦାଉ—ଗ୍ରା.ବି. ଝଣ୍ଟା ଆଡ଼ିବାର ଢାଲ,
ବଦାଡ଼—ଯା.ବି. ଜଙ୍ଗଲ,ବଣବୁଦା ।
ବଦାଡ଼ି—ପ୍ରା.(ଯାଜପୁର)ବି. ଗଦା,ଧାନ
ବିଡ଼ାର ଗଦା ।
ବଦାଡ଼ିଆ—ଗ୍ରା.ବିଂ. ଅରଣ୍ୟମୟ ।
ବଦାନ୍ୟ—ପୁଂ.ବିଂ. (ବଦ୍+କ.ଆନ୍ୟ)
ଅର୍ଥଶାଳୀ ଦାତା, ମଧୁରଭାଷୀ, ଦାନ-

ଶୀଳ, ଉଦାର, (ବି) ଋଷିବିଶେଷ ।
ବଦାନ୍ୟତା(ତ୍ୱ)—ବି. (ବଦାନ୍ୟ+ଭା. ତା) ଦାତାଶୀଳତା, ଉଦାରତା ।
ବଦାଗିବା—ପ୍ରା.(ସମ୍ବ)କ୍ରି. ଗ୍ରାମଦେବତାଙ୍କୁ (ବୋଦାଆଦି) ଯଚାଗିବା ।
ବଦାମ—କ୍ଲୀ.ବି ଫଳବିଶେଷ, ବାଦାମ, ସୁଫଳ, ବାତ, ବୈଣ୍ଣି, ନେତ୍ରୋପମ ।
ବଦାଳ—ପୁଂ.ତ. (ବଦ+ଅଲ+ଅ) ବାଲଆମାଛ । [ପାଠୀନମତ୍ସ୍ୟ ।
ବଦାଳକ—ପୁଂ. ବି. ମତ୍ସ୍ୟବିଶେଷ,
ବଦାବଦ—ପୁଂ.ବିଂ. ବକ୍ତା, ବାଗ୍ମୀ ।
ବଦାବଦୀ—ପୁଂ.ବିଂ, ଅତ୍ୟନ୍ତ କଥନଶୀଳ, ବହୁଭାଷୀ ।
ବଦି—ଯା.ବି. ଦୁର୍ନାମ, ଦାୟିତ୍ୱ,ଅପକାର, ମନ୍ଦତା, କୃଷ୍ଣପକ୍ଷ ।
ବଦିତବ୍ୟ—ବି. ବିଂ. ( ବଦ+ତବ୍ୟ ) କଥନଯୋଗ୍ୟ, ବକ୍ତବ୍ୟ ।
ବଦିତା—ପୁଂ.ବିଂ. (ବଦ+ତୃ)ବକ୍ତା ।
ବଦିବା—ଗ୍ରା.(ପଦ୍ୟ)କ୍ରି. କହିବା, (ପ୍ରା. ସମ୍ବ. କ୍ରି) ମନାସିବା, ଯାଚିବା ।
ବଦ୍ଧ—ବିଂ. (ବଧ୍+ର୍ମ.ତ) ବନ୍ଧନକରାଯାଇଥିବା, ସଂଯତ, ବିନ୍ୟସ୍ତ, ଯାହା ବନ୍ଧାହୋଇଅଛି, ଦମିତ, ଅଟକାଯାଇଥିବା,ଏକାନ୍ତ ଅବରୁଦ୍ଧ, ଉତ୍ପାଦିତ, ନିର୍ଦ୍ଧାରିତ, ବହିତ, ଯୁକ୍ତ ।
ବଦ୍ଧକ—ବି. (ବଦ୍ଧ+କ) କଏଦୀ,ବନ୍ଦୀ
ବଦ୍ଧକୋଷ୍ଠ—ବି. (ବ.ବ୍ରୀ) ଦଙ୍ଗା ଝାଡ଼ା ନହେବା ରୋଗ ।
ବଦ୍ଧଗୁଦୋଦର—ବି. ଏକପ୍ରକାର କୃଷ୍ଟବଦ୍ଧ ରୋଗ ।
ବଦ୍ଧଦୃଷ୍ଟି—ବିଂ. (ବ.ବ୍ରୀ) ସ୍ଥିରଲକ୍ଷ୍ୟ, ନ୍ୟସ୍ତଦୃଷ୍ଟି, (ବି.-କ.ଧା) ସ୍ଥିରଦୃଷ୍ଟି ।
ବଦ୍ଧପରିକର—ବିଂ. (ବ.ବ୍ରୀ) ଯାହାର ଅଣ୍ଟାରେ କଟିବନ୍ଧ ଭିଡ଼ାହୋଇଅଛି, ଦୃଢ଼ୀକୃତକଟିବନ୍ଧ ।
ବଦ୍ଧପାଗଳ(ଳା)—ଗ୍ରା. ପୁଂ. ବିଂ. ଉଚ୍ଛା ବାୟା, ପୂର୍ଣ୍ଣରୂପେ ବାୟା, ଅତ୍ୟନ୍ତ ନିର୍ବୋଧ ।
ବଦ୍ଧମୁଖ—ବିଂ. (ବ.ବ୍ରୀ) ଯାହାର ମୁଖ ବନ୍ଦ ହୋଇଥାଏ ।
ବଦ୍ଧମୁଷ୍ଟି—ବିଂ.(ବ.ବ୍ରୀ) ଦୃଢ଼ ମୁଷ୍ଟି, ଯେ ହାତକୁ ମୁଠାକରିଅଛି,(ଲ.ଅର୍ଥ)କୃପଣ, ବ୍ୟୟକୁଣ୍ଠ, ଦୃଢ଼ପ୍ରତିଜ୍ଞ, କୃତନିଶ୍ଚୟ, (ବି) କୃପାଣ, ଖଡ୍ଗ ।
ବଦ୍ଧମୂଳ—ବିଂ. ( ବ.ବ୍ରୀ ) ଦୃଢ଼ମୂଳ, ଯାହାର ମୂଳ ସହଜରେ ଉପୁଡ଼େ ନାହିଁ
ବଦ୍ଧବୈର—ବି. (କ.ଧା) ଚିରଶତ୍ରୁତା, ଚିରସ୍ଥାୟୀ ବିରୋଧ ।
ବଦ୍ଧଶିଖ—ପୁଂ. ବିଂ. ( ବ.ବ୍ରୀ ) ଯେ ମୁଣ୍ଡର ଶିଖା ବନ୍ଧନ କରିଅଛି,(ପୁଂ.ବି) ଶିଶୁ ।
ବଦ୍ଧାଞ୍ଜଳି—ବିଂ.(ବ.ବ୍ରୀ) କୃତାଞ୍ଜଳି,ହାତ ଯୋଡ଼ିଥିବା । [ସ୍ଥିରପ୍ରତିଜ୍ଞ ।
ବଦ୍ଧାନୁଶୟ—ବିଂ.(ବ.ବ୍ରୀ) କୃତପ୍ରତିଜ୍ଞ,
ବଦ୍ୟ—ବିଂ. ( ବଦ୍+ର୍ମ.ଯ ) କଥିତ ହେବାର ଯୋଗ୍ୟ ।
ବଦ୍ରିନାଥ—ଗ୍ରା.ବି. ବଦ୍ରିନାରାୟଣ,ବଦ୍ରିକାଶ୍ରମର ଅଧିଷ୍ଠାତା ଦେବତା ।
ବଧ—ବି. ( ହନ୍ କିମ୍ବା ବଧ୍+ଭା.ଅ ) ହନନ, ନାଶ, ପ୍ରାଣସଂହାର, ବନ୍ଧନ, ନିନ୍ଦା,ମାଂସପେଶୀର ଆଧିକ୍ୟ,ଆଘାତ, ଗୁଣନ, ପକ୍ଷାଘାତ, ଅଦୃଶ୍ୟତା, ଲେପ, (ଗ୍ରା. ବି) ହତ୍ୟାଜନିତ ପାପ, ଦେହ ଉପରେ ଜମିବା ମଳର ଘନ ସ୍ତର ।
ବଧକ—ପୁଂ. ବି. (ବଧ୍+ଅକ) ଘାତକ, ହନନକର୍ତ୍ତା, ( ବି ) ବ୍ୟାଧ, ବ୍ୟାଧି, ମୃତ୍ୟୁ, ଏକପ୍ରକାର ଶରତୃଣ ।
ବଧକରିବା—ଗ୍ରା. କ୍ରି କୌଣସିପ୍ରାଣୀର ବିନାଶ କରିବା ।
ବଧକର୍ମ୍ମ—କ୍ଲୀ.ବି. ପ୍ରାଣବିୟୋଗ ଫଳକ ବ୍ୟାପାର । [ପରିପାଳକ ।
ବଧକର୍ମ୍ମାଧିକାରୀ—ପୁଂ.ବି. ପ୍ରାଣଦଣ୍ଡାଜ୍ଞା
ବଧକାମ୍ୟା—ସ୍ତ୍ରୀ. ବି, ବଧ କାମନା ।
ବଧଜୀବୀ—ପୁଂ. ବିଂ.(ବଧ୍+ଜୀବ୍+କ. ଇନ୍) ଯେ ପ୍ରାଣୀବଧ ଦ୍ୱାରା ଜୀବିକା ନିର୍ବାହ କରେ, ବ୍ୟାଧ, କଂସେଇ ।
ବଧତ୍ର—କ୍ଲୀ.ବି. (ବଧ୍+ଣ.ଅତ୍ର) ଅସ୍ତ୍ର, (ତ୍ରିଂ) ନାଶରୁ ତ୍ରାଣକାରୀ ।
ବଧଦଣ୍ଡ—ପୁଂ. ବି. (କ.ଧା) ପ୍ରାଣଦଣ୍ଡ, ଶାରୀରିକ ଦଣ୍ଡ ।
ବଧଦଣ୍ଡାଜ୍ଞା—ବି. ( ୬ତତ୍ପୁ ) ପ୍ରାଣଦଣ୍ଡ ଆଦେଶ, ଫାସି ହୁକୁମ ।
ବଧନିର୍ଣ୍ଣେକ—ପୁଂ.ବି. ନରହତ୍ୟାହେତୁ ପାପର ପ୍ରାୟଶ୍ଚିତ୍ତ । [ବଧ୍ୟ ।
ବଧନୀୟ—ବିଂ.(ବଧ୍+ର୍ମ.ଅନୀୟ)ବଧାର୍ହ,
ବଧଭୂମି—ସ୍ତ୍ରୀ. ବି. (୬ତତ୍ପୁ) ବଧ୍ୟସ୍ଥାନ, ଯେଉଁ ସ୍ଥାନରେ ଅପରାଧୀଙ୍କୁ ହତ୍ୟା କରାଯାଏ ।
ବଧସ୍ତମ୍ଭ—ବି ଫାସିଖୁଣ୍ଟ ।
ବଧସ୍ଥଳୀ—ସ୍ତ୍ରୀ. ବି. ବଧସ୍ଥାନ, ଆଘାତ, ପ୍ରଘାତ, ମଶାଣି, ଶ୍ମଶାନ ।
ବଧହେବା—ଗ୍ରା.କ୍ରି.ଅନ୍ୟ ବ୍ୟକ୍ତି ଦ୍ୱାରା ହତ ହେବା ।
ବଧା—ଗ୍ରା. ବି. ଧାନବିଡ଼ା ଆଦିର କାଟୁ ସମସ୍ତ ରହିବାର ଗଦା ।
ବଧା(ଧେ)ଇ—ଯା. ବି. ବକ୍‌ସିସ୍, ପାରିତୋଷିକ,କୌଣସି ସୁସମ୍ବାଦ ଆଣିବା ବ୍ୟକ୍ତିକୁ ଦିଆଯିବା ପାରିତୋଷିକ ।
ବଧାଙ୍ଗକ—କ୍ଲୀ. ବି. ( ବଧ୍+ଅଙ୍ଗକ ) କାରାଗାର, ବିଷ ।
ବଧାର୍ହ—ପୁଂ.ବିଂ.(୬ତତ୍ପୁ)ବଧ୍ୟ,ହନନଯୋଗ୍ୟ, ବଧ ହେବାର ଯୋଗ୍ୟ ।
ବଧି—ଗ୍ରା. ବି. ମୃଦଙ୍ଗ ଉପରେ ଭିଡ଼ାଯାଇଥିବା ଚମଦଉଡ଼ି, ଗୁଡ଼, ହୃଦୟ, ପ୍ରାଣ, ବଧୀ ଦେଖ, ( ପ୍ରା. ପୁରୀ. ବି ) ଲଣ୍ଡନର ଫଣ୍ଡା ବା ବଢ଼,(ପ୍ରା.ବାଲେ. ବି.) ବଡ଼ପୋଖରୀ ।
ବଧିଆ—ଗ୍ରା. ବିଂ. କାଲ,(କାନ)ବଧିର, (ବି) ଘନଭାବରେ ଲାଗିଥିବା ଦେହର ମଳ, (ପ୍ରା. ବାଲେ. ବିଂ) ସନ୍ତସନ୍ତିଆ (ମାଟି) । [ବଧକାରୀ ।
ବଧିକ—ଗ୍ରା. ବିଂ. (ପଦ୍ୟ) ହତ୍ୟାକାରୀ,
ବଧିତ୍ର—କ୍ଲୀ. ବି. (ବଧ୍+ଇତ୍ର)ମନ୍ମଥ ।
ବଧିବା—ଗ୍ରା. କ୍ରି. (ପଦ୍ୟ) ବଧକରିବା, ହତ୍ୟା କରିବା ।
ବଧିର—ବିଂ. ( ବନ୍ଧ୍+ଇର ) କାଲ, ଶ୍ରବଣ ଶକ୍ତି ହୀନ, (କର୍ଣ୍ଣ) ସ୍ତବ୍ଧ ।

**ବଧିର**—ଗ୍ରା. ବଂ. ପୁଂ ଓ ସ୍ତ୍ରୀ. ବଧିର ଦେଖ, ଅସମ୍ଭବ (ବିଷୟ) ।
**ବଧୀ**—ପୁଂ. ବଂ.(ବଧ୍+ଇନ୍)ବଧକର୍ତ୍ତା, ବଧକାରୀ, ଘାତକ, (ସ୍ତ୍ରୀ) ବଧିନୀ,(ଗ୍ରା. ବ) କୁକୁର ବେକରେ ବନ୍ଧାଯିବା ଚମଡ଼ାର ପଟି ।
**ବଧୁ**—ସ୍ତ୍ରୀ. ବ. ବଧୂ ଦେଖ ।
**ବଧୁକା**—ସ୍ତ୍ରୀ. ବ. ( ବଧୁ+କ+ଆ ) ପୁତ୍ରବଧୂ, ନବପରିଣୀତା ପତ୍ନୀ,ରମଣୀ ମାତ୍ର, ଭୂଆସୁଣୀ ।
**ବଧୂଲ**—ଗ୍ରା. ବ. (ସଂ-ବନ୍ଧୂକ) ବାର୍ଷିକ ପୁଷ୍ପ ଶାକବିଶେଷ, ରଙ୍ଗିଣୀଫୁଲ ।
**ବଧୂ**—ସ୍ତ୍ରୀ. ବ.(ବହ୍+ଊ) ନାରୀ,ସ୍ନୁଷା, ନବୋଢ଼ା,ଭାର୍ଯ୍ୟା, ଶ୍ୟାମାଲତା,ଅନନ୍ତମୂଳ, ଶାରିବୌଷଧି, ଶଟୀ, ଆମ୍ବଅଦା, ପିଡ଼ଙ୍ଗଶାଗ, ପୃକ୍କା, ବୋହୂ,ଭୂଆସୁଣୀ
**ବଧୂକାଳ**—ବ.ବାଳକାର ବିବାହଯୋଗ୍ୟ କାଳ ।
**ବଧୂଗୃହପ୍ରବେଶ**—ପୁଂ. ବ. କନ୍ୟା ସ୍ୱାମୀ ଗୃହକୁ ଆଗମନ କାଳୀନ ଶାସ୍ତ୍ରୀୟ ଅନୁଷ୍ଠାନ ବିଶେଷ ।
**ବଧୂଜନ**—ପୁଂ. ବ. ଯୋଷିତ, ଯୁବତୀ ସ୍ତ୍ରୀ ଲୋକ, ନାରୀଗଣ, ବୋହୂ ।
**ବଧୂଟଶୟନ**—କ୍ଲୀ.ବ. ଗବାକ୍ଷ, ଝରକା,
**ବଧୂଟୀ**—ସ୍ତ୍ରୀ.ବ. ପୁତ୍ରଭାର୍ଯ୍ୟା, ସୁବାସିନୀ, କନ୍ୟା, ନୂଆବୋହୂ, ଛୁଆବୋହୂ ।
**ବଧୂତ୍ସବ**—ବ. (ଦେଶଜ) ବଧୂର ପ୍ରଥମ ରଜୋଦର୍ଶନ ସମୟେ ଅନୁଷ୍ଠିତ ଉତ୍ସବ, ଆଶୀର୍ବାଦ ଘର ।
**ବଧୂପଥ**—ପୁଂ. ବ. ବଧୂର କର୍ତ୍ତବ୍ୟ ।
**ବଧୂପୁ**—ପୁଂ. ବଂ. ଯେ ପତ୍ନୀକି ଭଲ ପାଏ, ସ୍ତ୍ରୀ କାମୀ, ବିବାହେଚ୍ଛୁ ।
**ବଧୂବସ୍ତ୍ର**—କ୍ଲୀ.ବ.ବିବାହ କାଳୀନ କନ୍ୟା-ପରିଧେୟ ବସ୍ତ୍ର, ବଉଳପାଟ ।
**ବଧୈଷୀ**—ତ୍ରି. ବଂ. ହନନେଚ୍ଛୁ ।
**ବଧୋଦର୍କ**—ତ୍ରି.ବଂ.ମରଣକାରୀ,ବଧକର
**ବଧୋଦ୍ୟତ**—ପୁଂ. ବଂ. (ତତ୍ପୁ) ବଧ କରିବାକୁ ଉଦ୍ୟତ,ଆତତାୟୀ,ଘାତୁକ
**ବଧୋପାୟ**—ପୁଂ. ବ. (ତତ୍ପୁ) ବଧର ଉପାୟ, ମାରିବାର ଉପାୟ ।
**ବଧ୍ୟ**—ପୁଂ.ବଂ. (ବଧ୍+ମଁ.ଯ)ବଧାର୍ହ, ବଧଯୋଗ୍ୟ, ଶୀର୍ଷଚ୍ଛେଦ୍ୟ, ଯାହାକୁ ହତ୍ୟାଦଣ୍ଡ ଆଦେଶ ହୋଇଥାଏ ।
**ବଧ୍ୟଘ୍ନ**—ତ୍ରି. ବଂ. (ବଧ୍ୟ+ହନ୍+ଅ) ବଧ୍ୟଘାତକ,ଯେ ବଧ୍ୟ ବ୍ୟକ୍ତିଙ୍କୁ ହନନ କରେ ।
**ବଧ୍ୟପଟହ**—ପୁଂ. ବ. ବଧକାଳେ ଯେ ଢକ୍କା ନିନାଦିତ ହୁଏ ।
**ବଧ୍ୟପାଳ**—ପୁଂ. ବ. (ବଧ୍ୟ+ପାଳ+ଅ) କାରାଗୃହରକ୍ଷକ ।
**ବଧ୍ୟଭୂମି**—ସ୍ତ୍ରୀ. ବ.(ବଧ୍ୟ+ଭୂମି)ବଧ୍ୟ-ଭୂମି ଦେଖ ।
**ବଧ୍ୟମାଳା**—ସ୍ତ୍ରୀ. ବ. ବଧ୍ୟକାଳେ ଯେ ମାଳା ଦିଆଯାଏ ।
**ବଧ୍ୟଶିଳା**—ସ୍ତ୍ରୀ. ବ. ଯେ ପ୍ରସ୍ତରରେ ପ୍ରାଣୀହତ୍ୟା କରାଯାଏ ।
**ବଧ୍ୟସ୍ଥାନ**—କ୍ଲୀ. ବ. ( ବଧ୍ୟ+ସ୍ଥାନ ) ବଧଭୂମି ଦେଖ ।
**ବଧ୍ର**—କ୍ଲୀ.ବ.(ବଧ୍+ର)ସୀସକ,ସୀସାଧାତୁ
**ବଧ୍ରକ**—ପୁଂ. ବ. ସୀସକ, ସୀସାଧାତୁ ।
**ବଧ୍ରି**—ପୁଂ. ବଂ. ଛିନ୍ନମୁଷ୍କ, ଖାସୀ,(ବ) ଖାସୀ ବା ଆଣ୍ଡା ହୋଇଥିବା ଜୀବ ।
**ବଧ୍ରିକା**—ପୁଂ. ବ. ଛିନ୍ନ ମୁଷ୍କ ପୁରୁଷ, ନଷ୍ଟପୁଂସ୍ତ୍ୱ ପୁରୁଷ । [ ବ୍ୟର୍ଥ ।
**ବଧ୍ରିବାକ**—ତ୍ରି.ବଂ. ଜଳ୍ପକ,ବୃଥାବାକ୍ୟ-
**ବଧ୍ରୀ**—ସ୍ତ୍ରୀ. ବ. (ବନ୍ଧ+ର+ଈ)ଚର୍ମ-ରଜ୍ଜୁ, ଚମଡ଼ାର ଦଉଡ଼ି ।
**ବଧ୍ରୀଶ**—ପୁଂ. ବ. ଆଣ୍ଡାକରି ଯାଇଥିବା ଘୋଡ଼ା । ଓଲାଇବା ।
**ବନ୍‌ଡାଇବା**—ପ୍ରା. (ସମ୍ବ) କ୍ରି. ଖରକିବା.
**ବନ**—କ୍ଲୀ. ବ. (ବନ୍+କ.ଅ) ଅରଣ୍ୟ, କାନନ, ଜଙ୍ଗଲ, ଲତା, ବହୁ ବୃକ୍ଷ ସମନ୍ୱିତ ସ୍ଥାନ, ଜଳ,ପ୍ରସ୍ରବଣ,ଝରଣା, ନିବାସ, ଆଳୟ,ତୋଟା,ପୁଷ୍ପୋଦ୍ୟାନ, ଫୁଲବଗିଚ୍ଚ, କୁଞ୍ଜ, କାଠ, ଆଲୋକ, ରଶ୍ମି, ମେଘ ନାମକ ଯନ୍ତ୍ରପାତ, ପୁଷ୍ପ ଗଛ ସ୍ତବକ ।
**ବନ(ନା)ଇତ**—ଗ୍ରା.ବ. ବନତ ଦେଖ ।
**ବନକ**—ଗ୍ରା. ବ. ରଙ୍ଗବିଶେଷ, ପୀତ-ବର୍ଣ୍ଣ ମୃତ୍ତିକା ବିଶେଷ ।
**ବନକଣା**—ସ୍ତ୍ରୀ. ବ. ବନପିପ୍ପଳୀ ।
**ବନକନ୍ଦ**—ପୁଂ. ବ. ମଧୁରଶୂରଣ, ଉତ୍ତମ ଓଲୁଅ ।
**ବନକଦଳୀ**- ସ୍ତ୍ରୀ.ବ.ବନୋଦ୍ଭବା କଦଳୀ, କାଠ କଦଳୀ ।
**ବନକନ୍ଦ**—ପୁଂ.ବ.ବନଶୂରଣ,ବଣସାରୁ ।
**ବନକର**—ବ. ଜଙ୍ଗଲରୁ ଉତ୍ପନ୍ନ ଦ୍ରବ୍ୟ ବ୍ୟବହାର ପାଇଁ ବନର ଅଧିକାରୀ ବ୍ୟକ୍ତିଙ୍କୁ ଦେବା ଖଜଣା, ଜଙ୍ଗଲକର ।
**ବନକସ୍ତ**—ପୁଂ. ବ. ବନହାତୀ ।
**ବନକର୍କଟୀ**—ସ୍ତ୍ରୀ. ବ. ଅରଣ୍ୟକର୍କଟୀ, ବଣକାକୁଡ଼ି । [ କାଙ୍କଡ଼ ।
**ବନକର୍କୋଟ**—ପୁଂ.ବ.ଅରଣ୍ୟ କର୍କଟିକା,
**ବନକର୍ଣ୍ଣିକା**—ସ୍ତ୍ରୀ. ବ. ସଲ୍ଲକୀ ବୃକ୍ଷ ।
**ବନକଲମ**—ଗ୍ରା. ବ. ଲତା ବିଶେଷ ।
**ବନକାର୍ପାସୀ**—ସ୍ତ୍ରୀ.ବ.(କ.ଧା) ବନକପା, ତ୍ରିପର୍ଣ୍ଣୀ ।
**ବନକୁକ୍କୁଟ**—ପୁଂ. ବ. ବନ ତାମ୍ରଚୂଡ଼, ବଣକୁକୁଡ଼ା । ବଣହାଣ୍ଡୀ ।
**ବନକୁଞ୍ଜର**—ପୁଂ. ବ. ହସ୍ତୀ ବିଶେଷ,
**ବନକୁନ୍ତଳ**—ବ.ଉତ୍କୃଷ୍ଟ ଜାତୀୟ ଓଲୁଅ ।
**ବନକୁଣ୍ଡଳୀ**—ବ.ବନ ଶୂରଣ,ବଣଓଲୁଅ ।
**ବନକେନ୍ଦ୍ରାଣୀ**—ସ୍ତ୍ରୀ.ବ.ଶ୍ୱେତ ନଗୁଣ୍ଡୀ, ସାଦା ବେଗୁନିଆ ।
**ବନକୋଦ୍ରବ**—ପୁଂ. ବ.ବଣକୋଦୁଅ ।
**ବନକୋଳ**—ସ୍ତ୍ରୀ. ବ. ବଣୁଆ ବରକୋଳି
**ବନଗଜ**—ପୁଂ. ବ. (ତତ୍ପୁ) ବଣୁଆ-ହାତୀ, ବନ ହସ୍ତୀ ।
**ବନଗବ**—ପୁଂ.ବ. ଗବୟ, ବଣଗାଈ ।
**ବନଗହନ**—କ୍ଲୀ. ବ. (କ.ଧା) ଘୋର ଜଙ୍ଗଲ, ନିବିଡ଼ ବନ । [ ଗଭର୍ତ୍ତ ।
**ବନଗୋ**—ସ୍ତ୍ରୀ.ବ.ବଣୁଆ ଗାଈ,ଗୟଳ,
**ବନଗୋଚର**—ପୁଂ. ବ.(ବ.ବ୍ରୀ)ବ୍ୟାଧ, ନାରସିଂହ, ( ବଂ ) ଜଳଚର,କାନନ-ବିହାରୀ ।
**ବନଚଣ୍ଡାଳ**—ବ.ଶିମ୍ବାଦି ବର୍ଗର ବର୍ଷାୟୁ ବନ୍ୟ କ୍ଷୁପ ବିଶେଷ ।

ବନଚନ୍ଦନ—କ୍ଲୀ. ବ. (ବନ+ଚନ୍ଦନ) ଅଗୁରୁ, ଦେବଦାରୁ ।

ବନଚନ୍ଦ୍ରିକା—ସ୍ତ୍ରୀ. ବ. ମଲ୍ଲିକା ପୁଷ୍ପ ।

ବନଚମ୍ପକ—ପୁଂ. ବ. (ବନ+ଚମ୍ପକ) ବଣଚମ୍ପା ଗଛ ।

ବନଚର—ପୁଂ. ବିଂ. (ବନ+ଚର୍+ଅ) ବନଗୃହୀ, କାନନବାସୀ, ଅରଣ୍ୟବିହାରୀ, (ବି) ଶରଭ ନାମକ ଅଷ୍ଟପଦୀ ବନଜନ୍ତୁବିଶେଷ, ବ୍ୟାଧ, ମୁନି ।

ବନଚର୍ଯ୍ୟା—ବି. ବନରେ ବୁଲିବା ବା ବାସକରିବା କାର୍ଯ୍ୟ ।

ବନଚାରୀ—ବି.ବିଂ. (ବନ+ଚର୍+ଇନ୍) ବନଚର ଦେଖ ।

ବନଛାଗ—ପୁଂ.ବ.(ବନ+ଛାଗ)ଅରଣ୍ୟ-ଛାଗଲ ।

ବନଛିଦ୍—ତ୍ରି. ବିଂ. ବନ କର୍ତ୍ତନକାରୀ, (ପୁଂ.ବି) କାଠୁରିଆ ।

ବନଜ—ବିଂ. (ବନ+ଜନ୍+କ.ଅ) ଅରଣ୍ୟରେ ଜାତ, ବନରେ ଜାତ, (ବି)ପଦ୍ମ, ମୁଥା, ବନକୁଳତ୍ଥ, ତରଡ଼ା, ଜଙ୍ଗଲି ଟଭା, ବଣଓଲୁଅ, ଗଜ, ହାତୀ ।

ବନଜଙ୍ଗଲ—ଗ୍ରା. ବ. ଶ୍ରେଷ୍ଠ ଓ ବଡ଼ ବୃକ୍ଷଲତାଦିପୂର୍ଣ୍ଣ ସ୍ଥାନ ।

ବନଜଟାଙ୍ଗି—ଗ୍ରା.ବ. ଅଗ୍ନିଜାର ବୃକ୍ଷ ।

ବନଜତାମ୍ରଚୂଡ଼—ପୁଂ ବ. ବନ କୁକ୍କୁଟ, ବଣ କୁକୁଡ଼ା ।

ବନଜମୂର୍ଦ୍ଧଜା—ସ୍ତ୍ରୀ. ବ. କର୍କଟଶୃଙ୍ଗୀ, କକଡ଼ାଶୃଙ୍ଗୀ ।

ବନଜବୃତ୍ତିକା—ସ୍ତ୍ରୀ.ବ.ହ୍ରସ୍ୱ ମେଷଶୃଙ୍ଗୀ, କ୍ଷୁଦ୍ର ମେଣ୍ଢାଶିଙ୍ଘା ଗଛ ।

ବନଜା—ସ୍ତ୍ରୀ. ବ. (ବନଜ+ଆ) ମୁଦ୍ଗପର୍ଣ୍ଣୀ, ବଣମୁଗ, ଅରଣ୍ୟ କାର୍ପାସୀ, ଜର୍ଗ୍ଗୁଣୀ, ଶ୍ୱେତକଣ୍ଟକାରୀ, ବନତୁଳସୀ, ବଣପୂଇ, ଅଶ୍ୱଗନ୍ଧା, ଗନ୍ଧପତ୍ରା, ଐନ୍ଦ୍ରୀ, ମଧୁରୀ ।

ବନଜାକ୍ଷ—ପୁଂ. ବିଂ. (ବ.ବ୍ରୀ) ପଦ୍ମଲୋଚନ, ଯାହାର ପଦ୍ମପରି ସୁନ୍ଦର ଚକ୍ଷୁ ।

ବନଜାଗରଣବ୍ରତ—ଗ୍ରା.ବ.ଶ୍ରୀ ଜଗନ୍ନାଥଙ୍କର ଗୁଣ୍ଡିଚା ମନ୍ଦିରରେ ଅବସ୍ଥିତ ସମୟରେ ସପ୍ତଦିବସ ବ୍ୟାପୀ ପାଳନୀୟ ବ୍ରତବିଶେଷ ।

ବନଜାତ—ବିଂ.(୭ତତ୍)ବନରେ ଉତ୍ପନ୍ନ

ବନଜାସନା—ସ୍ତ୍ରୀ. ବ. ଲକ୍ଷ୍ମୀ ।

ବନଜିନୀ—ସ୍ତ୍ରୀ. ବ. (ବନଜ+ଇନ୍+ଈ) ପଦ୍ମିନୀ । [ ବଣଜୀର ।

ବନଜୀର—ପୁଂ. ବ. ବନଜାତ ଜୀର,

ବନଜୀବୀ—ପୁଂ. ବ. କାଠୁରିଆ ।

ବନତରୁ—ପୁଂ. ବ. ଅର୍ଜ୍ଜୁନ ବୃକ୍ଷ ।

ବନତିକ୍ତ—ବି. ହରୀତକୀ, ହରିଡ଼ା ।

ବନତିକ୍ତା—ସ୍ତ୍ରୀ. ବ. ଶ୍ୱେତବୃହ୍ମୀ ବା ଶ୍ରୀହ୍ମୀନାମକ ଲତାବିଶେଷ ।

ବନତିକ୍ତିକା—ସ୍ତ୍ରୀ.ବ.ଉତ୍ପଳ ଶାକ,ଅକାନବନ୍ଧି ଲତା, ହରିଡ଼ା ।

ବନଦପୁଷ୍ପା—ପୁଂ. ବ. ଅରଣ୍ୟଦପୁଷ୍ପ, ଇନ୍ଦ୍ରବାରୁଣୀ, ମହାକାଳ ।

ବନଦ—ପୁଂ. ବ. (ବନ+ଦା+ଅ) ମେଘ, ଜଳଦ ।

ବନଦମନ—ପୁଂ. ବ. (ବନ+ଦମନ) ଅରଣ୍ୟ ଦମନକ ବୃକ୍ଷ,ବଣଦଅଣା ଗଛ

ବନଦାହ—ପୁଂ.ବ. ଅଗ୍ନି ଯୋଗେ ବନ ପ୍ରଜ୍ୱଳନ, ବନପୋଡ଼ି । [ ଚମ୍ପକ ।

ବନଦୀପ—ପୁଂ.ବ. (ବନ+ଦୀପ) ବନ-

ବନଦୁର୍ଗା—ସ୍ତ୍ରୀ.ବ. ତନ୍ତ୍ରୋକ୍ତ ଦେବମୂର୍ତ୍ତି, ଉପନିଷଦ୍‌ବିଶେଷ । [ ଦେବତା ।

ବନଦେବତା—ସ୍ତ୍ରୀ.ବ.ବନର ଅଧିଷ୍ଠାତ୍ରୀ ଦେବତା ।

ବନଦେବୀ—ସ୍ତ୍ରୀ. ବ. (୬ତତ୍) ବନର ଅଧିଷ୍ଠାତ୍ରୀ ସ୍ତ୍ରୀ ଦେବତା । [ ଗଛ ।

ବନଦ୍ରୁ—ପୁଂ. ବ. ଗୁରବୃକ୍ଷ, ପିଆଶାଳ

ବନଦ୍ରୁମ—ପୁଂ.ବ ଅର୍ଜ୍ଜୁନବୃକ୍ଷ,କାଷ୍ଠାଗୁରୁ

ବନଦ୍ୱିପ—ପୁଂ. ବ. ବନହସ୍ତୀ, ବଣୁଆ ହାତୀ ।

ବନଧବ—ବି. (୬ତତ୍) ସିଂହ ।

ବନଧାତୁ—ବି. ଗେରୁ, ନାଲିଆ ମାଟି ।

ବନଧାରା—ସ୍ତ୍ରୀ.ବ. ବୃକ୍ଷଶ୍ରେଣୀ ମଧ୍ୟବର୍ତ୍ତୀ ପଥ ।

ବନଧି—ବି.(ବନ+ଧା+କ.ଇ)ସମୁଦ୍ର ।

ବନଧିତ—ସ୍ତ୍ରୀ. ବ. ମେଘମାଳା ।

ବନଧେନୁ—ପୁଂ.ବ. ଅରଣ୍ୟଜାତ ଗୋ, ଗବୟ, ଗୟଳ ।

ବନନ—କ୍ଲୀ.ବ. ଧନ, ଇଚ୍ଛା, ବାସନା ।

ବନମାୟୁ—ତ୍ରି. ବିଂ. ବାଞ୍ଛନୀୟ ।

ବନପ—ପୁଂ. ବ. ବନବାସୀ,କାଠୁରିଆ, ବନରକ୍ଷକ । [ ଅଂଶ ।

ବନପର୍ବ—କ୍ଲୀ.ବ. ମହାଭାରତର ତୃତୀୟ

ବନପଲାଣ୍ଡୁ—ପୁଂ.ବ.ବନଜାତ ପଲାଣ୍ଡୁ, ବଣ ପିଆଜ ।

ବନପଲ୍ଲବ—ପୁଂ.ବ.(ବ.ବ୍ରୀ) ଶୋଭାଞ୍ଜନ ବୃକ୍ଷ, ସଜନାଗଛ ।

ବନପାଂଶୁଲ—ପୁଂ. ବ. ବ୍ୟାଧ ।

ବନପାଦପ—ପୁଂ.ବ. ବନଜ ବୃକ୍ଷ,ଅରଣ୍ୟରେ ଜାତ ବୃକ୍ଷଲତାଦି ।

ବନପାଳ—ପୁଂ.ବ.ବନରକ୍ଷକ, ଜଙ୍ଗଲ ରକ୍ଷକ । [ ପିମ୍ପଳୀ ।

ବନପିପ୍ପଳୀ—ବି. ଶ୍ରେଷ୍ଠ ପିପଳୀ, ବଣ-

ବନପୀତ—ପୁଂ. ବ. ଭୂମିଜାତ ଗୁଗ୍ଗୁଳୁ, ବଣ ଗୁଗ୍ଗୁଳୁ । [ ଶଉପ ।

ବନପୁଷ୍ପା—ସ୍ତ୍ରୀ. ବ. ଶତପୁଷ୍ପା, ଶତାହ୍ୱା,

ବନପୁଷ୍ପୋତ୍ସବ—ପୁଂ. ବ. ଆମ୍ରବୃକ୍ଷ ।

ବନପୂତିକା—ସ୍ତ୍ରୀ. ବ. ଅରଣ୍ୟ ପୂତିକା, ବନ ପୂଇ ।

ବନପୂରକ—ପୁଂ. ବ. ବନ ବୀଜପୂରକ, ବଣ ଟଭାଲେମ୍ବୁ ।

ବନପ୍ରିୟ—ବିଂ. (ବ.ବ୍ରୀ) ଯେ ବନରେ ବିଚରଣ କରିବାକୁ ଭଲପାଏ, (ବି) କୋକିଳ, ସମ୍ବର, ହରିଣ, ଶଠୀ, ଆମ୍ବଅଦା, ବାହାଡ଼ାଗଛ । [ ଫଳ ।

ବନଫଳ—କ୍ଲୀ. ବ. ଅରଣ୍ୟଜାତ ବୃକ୍ଷ-

ବନଫୁଲ—କ୍ଲୀ. ବ. (କ.ଧା) ବନକୁସୁମ, ବନଜାତ ଫୁଲ ।

ବନବନା—ଗ୍ରା. ବ. ଏକପ୍ରକାର ଜଙ୍ଗଲି କଣ୍ଟାଳିଆ ଗୁଳ୍ମ,(ଏହା ଫୁଲ ଭେଦରେ ତିନିପ୍ରକାର—୧-ଶ୍ୱେତ ବନବନା-ଶଙ୍ଖପୁଷ୍ପୀ, ୨-ନୀଳ ବନବନା--ବିଷ୍ଣୁକ୍ରାନ୍ତା, ୩-ରକ୍ତପୁଷ୍ପୀ--ସର୍ପାକ୍ଷୀ । [ ବରାହ ।

ବନବରାହ--ଗ୍ରା.ବ. ଶୂକର ଜାତିବିଶେଷ,

ବନବର୍ବର—ପୁଂ. ବ. କୃଷ୍ଣାର୍ଜକ, କୃଷ୍ଣ-ତୁଳସୀ ।
ବନବର୍ବରିକା—ସ୍ତ୍ରୀ. ବ.ବନଜାତ ପତ୍ର-ଶାକବିଶେଷ, ବଣତୁଳସୀ ।
ବନବର୍ହିଣ—ପୁଂ. ବ. ବନ୍ୟମୟୂର ।
ବନବହ୍ନି—ବ.(୬ତତ୍ପୁ)ବନାଗ୍ନି,ଦାବାନଳ
ବନବାସ—ବ. ( ୭ତତ୍ପୁ ) ଅରଣ୍ୟରେ ରହିବା, ବନେ ନିର୍ବାସନ, ଅରଣ୍ୟରେ ଅବସ୍ଥିତି ।
ବନବାସୀ—ପୁଂ. ବ୍ରିଂ. ଯେ ଅରଣ୍ୟରେ ବାସକରେ,(ବି)ଋଷଭ ନାମକ ମହୌଷଧ, ଶାଲ୍ମଲୀକନ୍ଦ, ଦ୍ରୋଣକାକ, ଡାମରକୁଆ, ବାରାହୀକନ୍ଦ ।
ବନବିଡ଼ାଳ—ପୁଂ. ବ. ବିଡ଼ାଳ ଜାତି-ବିଶେଷ, ବନ୍ଭୁଆ, କଟାଶ ।
ବନବିହାର—ବ. (୭ତତ୍ପୁ) ଅରଣ୍ୟରେ କ୍ରୀଡ଼ାର୍ଥ ଭ୍ରମଣ ।
ବନବିହାରୀ—ପୁଂ.ବିଂ. (ବନ+ବି+ହୃ +କ.ଇନ୍) ବନରେ ବିଚରଣକାରୀ, (ପୁଂ.ବ) ଶ୍ରୀକୃଷ୍ଣ ।
ବନବୀଜ—ବ. (ବନ+ବୀଜ)ବନବୀଜ-ପୂରକ,ବଣଟାଭାଲେମ୍ବୁ ।
ବନବୀଜକ—ପୁଂ. ବ. (ବନବୀଜ+କ) ବନବୀଜପୂରକ, ବଣଟାଭାଲେମ୍ବୁ ।
ବନବୀଜପୂରକ—ପୁଂ. ବ. ଅରଣ୍ୟଜାତ ବୀଜପୂର, ବଣଟାଭାଲେମ୍ବୁ ।
ବନବ୍ରୀହି—ବ.(କ.ଧା)ନୀବାର, ବାଳୁଙ୍ଗା ଧାନ ।
ବନଭୁକ୍—ପୁଂ.ବ.(ବନ+ଭୁଜ୍+କ୍ୱିପ୍) ଋଷଭୌଷଧି । [ ଜାଗା ।
ବନଭୂ—ସ୍ତ୍ରୀ.ବ. ଜଙ୍ଗଲ ସ୍ଥାନ, ଜଙ୍ଗଲ
ବନଭୋଜନ—କ୍ଲୀ.ବ. (୭ତତ୍ପୁ)ଆମୋଦ ନିମିତ୍ତ ବଣରେ ସଙ୍ଗୀମାନଙ୍କସହ ରନ୍ଧି ଭୋଜନ କରିବା ।
ବନଭୋଜି—ଗ୍ରା.ବ.ବନଭୋଜନ ଦେଖ ।
ବନମକ୍ଷିକା—ସ୍ତ୍ରୀ. ବ. (ବନ+ମକ୍ଷିକା) ଡାଉଁଶ, ଦଂଶ ।
ବନମନୁଷ୍ୟ—ବିଂ ବଣମଣିଷ, ନରାକୃତି ବାନରବିଶେଷ ।

ବନମଲ୍ଲିକା—ସ୍ତ୍ରୀ.ବ.ସ୍ୱନାମଖ୍ୟାତ ଲତା-ଫୁଲବିଶେଷ,ବଣମଲ୍ଲୀ,ସେବତୀଫୁଲ ।
ବନମଲ୍ଲୀ—ସ୍ତ୍ରୀ. ବ. ବଣମଲ୍ଲୀ ଦେଖ, ସେବତୀ ଫୁଲ ।
ବନମାର୍ଜାର—ବ. ବଣଭୁଆ, କଟାଶ ।
ବନମାଲ—ବ.ବନମାଳା,(ପୁଂ.ବ)ଶ୍ରୀକୃଷ୍ଣ ।
ବନମାଲା—ସ୍ତ୍ରୀ. ବ. ବନୋଦ୍ଭବ ପୁଷ୍ପ-ରଚିତ ମାଳା, ଛନ୍ଦୋବିଶେଷ,ଅରଣ୍ୟ ଶ୍ରେଣୀ ।
ବନମାଲାଧର—ପୁଂ. ବ. ଶ୍ରୀକୃଷ୍ଣ ।
ବନମାଲିକା—ସ୍ତ୍ରୀ. ବ. ବନମଲ୍ଲିକା, ସେବତୀ, ବାରାହୀକନ୍ଦ, ହାପରମାଳୀ ।
ବନମାଲିନୀ—ସ୍ତ୍ରୀ.ବ. (ବନମାଲା+ଇନ୍ +ଈ) ଦ୍ୱାରକା ନଗରୀ, ବାରାହୀଲତା ।
ବନମାଲୀ—ପୁଂ.ବ. (ବନମାଲା+ଇନ୍) ଶ୍ରୀକୃଷ୍ଣ ।
ବନମାଲୀଦାସ—ଗ୍ରା.ବ. ଖ୍ରୀଷ୍ଟ ଷୋଡ଼ଶ ଶତାବ୍ଦୀର ଜଣେକ ଓଡ଼ିଆ କବି ।
ବନମାଲୀଣୀ—ସ୍ତ୍ରୀ. ବ. ରାଧା ।
ବନମାଲୀସିଂହ—ଗ୍ରା. ବ. ଜଣେ ଓଡ଼ିଆ ଲେଖକ(ଶକୁନ୍ତଳା ଉପାଖ୍ୟାନ ଏହାଙ୍କ ରଚିତ ଗଦ୍ୟ ପୁସ୍ତକ) ।
ବନମୁକ୍—ପୁଂ.ବ. (ବନ+ମୁଚ୍+କ୍ୱିପ୍) ମେଘ, ଜଳଦ, (ବିଂ)ଜଳବର୍ଷଣକାରୀ ।
ବନମୁଦ୍ଗ—ପୁଂ.ବ. ବଣମୁଗ, ମୁଦ୍ଗପର୍ଣ୍ଣୀ ।
ବନମୂତ—ପୁଂ. ବ. ମେଘ, ଜୀମୂତ ।
ବନମେଥିକା—ସ୍ତ୍ରୀ.ବ. ଅରଣ୍ୟମେଥିକା, ବଣମେଥି ।
ବନମୋଚ—ସ୍ତ୍ରୀ.ବ. କାଷ୍ଠାକଦଳୀ,ବନ-କଦଳୀଗଛ ।
ବନଯମାନୀ—ସ୍ତ୍ରୀ. ବ. ବଣଯୁଆଣୀ ।
ବନର—ପୁଂ. ବ. ବାନର ।
ବନରକ୍ଷକ—ତ୍ରି. ବିଂ. ଯେ ବନ ଉଦ୍ୟା-ନାଦି ରକ୍ଷା କରେ, ବଣଜଗୁଆଳ ।
ବନରମ୍ଭା—ସ୍ତ୍ରୀ. ବ. ବଣକଦଳୀ,କାଠ-କଦଳୀ ।
ବନରାଜ—ପୁଂ.ବ. ସିଂହ, ବନର ଅଧି-ପତି, ଅଶ୍ମନ୍ତକ, ମୃଗେନ୍ଦ୍ର, ପୁଷ୍ପ ବୃକ୍ଷ-ବିଶେଷ ।

ବନରାଜି(ଜୀ)—ସ୍ତ୍ରୀ. ବ. ଅରଣ୍ୟଶ୍ରେଣୀ, ବନମଧ୍ୟସ୍ଥ ପଥ, ବସୁଦେବଙ୍କ ଦାସୀ-ବିଶେଷ ।
ବନରୁହ୍—ପୁଂ.ବ. ବଟବୃକ୍ଷ ।
ବନରୂହ—କ୍ଲୀ.ବ. ପଦ୍ମ, ଉତ୍ପଳ ।
ବନର୍ଦ୍ଧି—ସ୍ତ୍ରୀ.ବ.(୬ତତ୍ପୁ) ବନର ସମୃଦ୍ଧି, ବନମର୍ଯ୍ୟାଦା ।
ବନଲକ୍ଷ୍ମୀ—ସ୍ତ୍ରୀ.ବ. (ବ.ବ୍ରୀ)କଦଳୀବୃକ୍ଷ, (୬ତତ୍ପୁ) ବନର ଶୋଭା । [ ବଲୀ ।
ବନଲତା—ସ୍ତ୍ରୀ. ବ. ବନଜାତ ଲତା,
ବନଲୀଳା—ବ. (୭ତତ୍ପୁ) (ଶ୍ରୀକୃଷ୍ଣଙ୍କର) ବନବିହାର ବା କାନନ କ୍ରୀଡ଼ା ।
ବନଲୋଣି—ଗ୍ରା.ବ.ବଡ଼ଶୀ, ଦୂମ୍ରକଣ୍ଟା ।
ବନବହ୍ନି—ପୁଂ.ବ. ଦାବାନଳ,ଦାବାଗ୍ନି
ବନବାତ—ପୁଂ. ବ. ବନବାୟୁ,ବନା-ନିଳ ।
ବନଶଙ୍କର—ବ. ବଣୁଆ ଘୁଷୁରି,ବରାହ ।
ବନଶୂକରୀ—ସ୍ତ୍ରୀ. ବ. କପିକଚ୍ଛୁ, ବାଇ-ଡଙ୍କ, ଅରଣ୍ୟ ବାରାହୀ, ମାଈ ବରାହ ।
ବନଶୂରଣ—ପୁଂ.ବ.(କ.ଧା)ବଣ ଓଲୁଅ
ବନଶୃଙ୍ଗାଟ—ପୁଂ.ବ.ଗୋକ୍ଷୁର,ଗୋଖୁରା
ବନଶୋଭନ—କ୍ଲୀ. ବ. (୬ତତ୍ପୁ) ପଦ୍ମ, (ବିଂ) ବନର ଶୋଭାକାରକ ।
ବନଶ୍ୱା—ପୁଂ.ବ. ଗନ୍ଧମାର୍ଜାର, ଶାଳଅ-ପତନୀ, ବଳାଆକୁକୁର, ଗଧିଆବାଘ ।
ବନସମୂହ—ପୁଂ. ବ. (୬ତତ୍ପୁ) ଅରଣ୍ୟ-ସଂହତି, ଜଙ୍ଗଲସମୂହ ।
ବନସପ୍ରବେଶ—ପୁଂ.ବ.ଦାରୁମୟ ଦେବ-ମୂର୍ତ୍ତି ନିର୍ମାଣାର୍ଥ କାଷ୍ଠସଂଗ୍ରହ ସକାଶେ ବନପ୍ରବେଶ ।
ବନସମ୍ଭୋଜିନୀ—ସ୍ତ୍ରୀ. ବ. କପାସିଆଗଛ, ବନକାର୍ପାସୀ ।
ବନସ୍ତ—ଗ୍ରା.ବ.ବନ, ଅରଣ୍ୟ, ଜଙ୍ଗଲ, ନିବଡ଼ ଅରଣ୍ୟ ।
ବନସ୍ଥ—ପୁଂ.ବ (ବନ+ସ୍ଥା+ଅ) ମୃଗ, ବାନପ୍ରସ୍ଥ,କନ୍ଦର,ମୃଗ,(ବିଂ)ବନବାସୀ, ବନରେ ସ୍ଥିତ,ବାନପ୍ରସ୍ଥ ଧର୍ମାବଲମ୍ବୀ, ଜଳସ୍ଥିତ । [ ଅରଣ୍ୟଦେଶ ।
ବନସ୍ଥଳୀ—ସ୍ତ୍ରୀ.ବ. (୬ତତ୍ପୁ) ବନଭୂମି,

ବନସ୍ଥା—ସ୍ତ୍ରୀ. ବି. ଅଶ୍ୱତ୍ଥବୃକ୍ଷ ।
ବନସ୍ପତି—ପୁଂ.ବି.(ବନ+ପତି) ୬ତତ୍ପୁ; ମହାଦ୍ରୁମ, ବଡ଼ଗଛ, ଯେଉଁ ବୃକ୍ଷର ଫୁଲ ପ୍ରକାଶିତ ନ ହୋଇ ଫଳ ଧରେ, ପୁଷ୍ପହୀନ ଫଳବାନ୍ ବୃକ୍ଷ,ବୃକ୍ଷ, ସୋମଲତା, ଗଛର ଗଣ୍ଡି, କଡ଼ି, ଖୁଣ୍ଟ, ସ୍ତମ୍ଭ, କାଠର ତେଲିଆ, ଯୋଗୀ,ସନ୍ନ୍ୟାସୀ
ବନସ୍ପତିକାୟ—ପୁଂ. ବି. (ବି.ଗ୍ରା) ଜାଙ୍ଗଳିକ ବୃକ୍ଷସଙ୍ଘ, ପୃଥିବୀର ବୃକ୍ଷ ନିଚୟ ।
ବନସ୍ରକ୍—ସ୍ତ୍ରୀ ବି. ବନମାଲା ।
ବନହଣ—ପୁଂ. ବି. ସିଂହ ।
ବନହରିଦ୍ରା—ସ୍ତ୍ରୀ. ବି. ବନହଳଦୀ ।
ବନହଳଦୀ—ଗ୍ରା.ବି.ଉତ୍କୃଷ୍ଟ ରଙ୍ଗବିଶିଷ୍ଟ ହଳଦୀ । [ ବୃକ୍ଷ ।
ବନହାସ—ପୁଂ.ବି. କାଶତୃଣ, କୁନ୍ଦପୁଷ୍ପ
ବନହାସକ—ପୁଂ. ବି. କାଶତୃଣ ।
ବନହୁତାଶନ—ପୁଂ. ବି, ବନାଗ୍ନି ।
ବନା—ଗ୍ରା. ବି. ( ଫ-ବର୍ଣ୍ଣଯୋଜନା ) ବ୍ୟଞ୍ଜନ ବର୍ଣ୍ଣରେ ସ୍ୱରବର୍ଣ୍ଣର ମାତ୍ରାଯୁକ୍ତ କରିବା ରୀତି, ବର୍ଣ୍ଣନା, ରଚନା କ୍ରଥନ,ପରିବାଆଦିକୁ କଣ୍ଟାବିଦ୍ଧକରିବା, (ବିଂ) ପ୍ରସ୍ତୁତ, ତିଆରି ।
ବନା(ନେ)ଇବା—ଗ୍ରା.କ୍ରି.ନିର୍ମାଣକରିବା, ତିଆରିକରିବା, ପରିଣତ କରାଇବା, ସଜାଇବା, ପରିବାଆଦିକୁ କଣ୍ଟାବିଦ୍ଧ କରିବା ।
ବନାଖୁ—ପୁଂ. ବି. (ବନ+ଆଖୁ)ଶଶକ, ଖରଗୋଷ, ଖରିଆ ।
ବନାଖୁକ—ପୁଂ. ବି. ମୁଦ୍ଗ, ମୁଗ ।
ବନାଗ୍ନି—ପୁଂ.ବି.ବନଜାତଅଗ୍ନି,ଦାବାନଳ ।
ବନାଜ—ପୁଂ. ବି. (ବନ+ଆଜ) ବନଛାଗ, ବନଛେଳି । [ ଭ୍ରମଣ ।
ବନାଟନ—କ୍ଳୀ.ବି (ବନ+ଅଟନ)ବନ-
ବନାଟି—ଗ୍ରା.ବି.ବନୋଟି, ମଲ୍ଲକ୍ରୀଡ଼ାରେ ବ୍ୟବହୃତ ୩/୪ ହାତ ଲମ୍ବ ବାଡ଼ି ।
ବନାଟୁ—ପୁଂ. ବି. ଦର୍ବଣା, ନୀଳମକ୍ଷିକା, ଭଣଭଣା ମାଛି ।
ବନାତ—ଗ୍ରା, ବି, କୋମଳ ଶୀତବସ୍ତ୍ରବିଶେଷ, ଏକପ୍ରକାର ପଶମ ନିର୍ମିତ ଶୀତବସ୍ତ୍ର ।
ବନାତି—ଗ୍ରା.ବିଂ. ବନାତରେ ନିର୍ମିତ ।
ବନାନ—ଗ୍ରା.ବି.ବ୍ୟଞ୍ଜନ ବର୍ଣ୍ଣରେ ସ୍ୱରବର୍ଣ୍ଣ ଯୁକ୍ତକରି ଉଚ୍ଚାରଣ, ଶବ୍ଦସ୍ଥ ବର୍ଣ୍ଣମାନଙ୍କର ଯୋଜନା ପ୍ରଣାଳୀର ବିଶ୍ଳେଷଣ ବା ବର୍ଣ୍ଣନା ।
ବନାନୀ—ବି. (ବନ+ଆନୀ) ଅରଣ୍ୟାନୀ, ମହାବନ ।
ବନାନ୍ତ—ପୁଂ. ବି. (୬ତତ୍ପୁ) ବନପ୍ରାନ୍ତ, ବନଭୂମି, ବନ ପ୍ରଦେଶ । [ ବନ ।
ବନାନ୍ତର—କ୍ଳୀ.ବି.ପୃଥକ୍ ଅରଣ୍ୟ,ଅନ୍ୟ
ବନାନ୍ତସ୍ଥଳ—କ୍ଳୀ.ବି.(୬ତତ୍ପୁ) ବନପାର୍ଶ୍ୱ, ବନ ଉହାଡ଼ ।
ବନାବନି—ଗ୍ରା. ବି. ଅନ୍ୟୋନ୍ୟରେ ଗାଳି ଦିଆଦେଇ, ପରିବାଆଦି କଣ୍ଟାବିଦ୍ଧ କରିବା କ୍ରିୟା, ବ୍ୟଞ୍ଜନ ବର୍ଣ୍ଣରେ ସ୍ୱରବର୍ଣ୍ଣର ମାତ୍ରା ଯୋଗ କରିବା, ଦୁଇ ଜଣଙ୍କ ମଧ୍ୟରେ ପଟାପଟି ।
ବନାଭିଳାନ—କ୍ରି.ବିଂ. ବନ ଧ୍ୱଂସକାରୀ ।
ବନାମ୍—ଯା.ଅ.ବିପରୀତ ପକ୍ଷରେ,ଅପର ପକ୍ଷରେ, ଓରଫ,ଅନ୍ୟନାମ,(ଅମୁକର) ନାମରେ ।
ବନାମଳ—ପୁଂ.ବି.(ବନ+ଆମଳ) କୃଷ୍ଣପାକ ଫଳ ।
ବନାମ୍ର—ପୁଂ,ବି.(ବନ+ଆମ୍ର)କୋଷାମ୍ର
ବନାୟୁ—ପୁଂ. ବି. (ବନ+ଆୟୁ+ଉ) ଦେଶବିଶେଷ, ପାରସ୍ୟଦେଶ, ଦାନବ ବିଶେଷ, ପ୍ରକୃତିର ପୁଦବିଶେଷ,ଜାତି ବିଶେଷ ।
ବନାୟୁଜ—ପୁଂ. ବି. ବନାୟୁ ଦେଶୋଦ୍ଭବ ଘୋଟକ, (ବିଂ) ବନାୟୁ ଦେଶଜାତ । [ ନଗର ।
ବନାରସ—ଗ୍ରା. ବି. କାଶୀ, ବାରଣସୀ
ବନାରସୀ—ଗ୍ରା. ବିଂ. କାଶୀରେ ନିର୍ମିତ, ବନାରସର ଅଧିବାସୀ,(ଗ୍ରା.ବି)କାଶୀରେ ପ୍ରସ୍ତୁତ ପାଟଲୁଗା । [ ହଳଦୀ ।
ବନାରିଷ୍ଟା—ସ୍ତ୍ରୀ. ବି. ବନହରିଦ୍ରା, ବନ
ବନାଳକ—ପୁଂ.ବି.ପୁଷ୍ପଜୀବୀ,ମାଳାକାର ।
ବନାର୍ଦ୍ରକ—ପୁଂ. ବି. ବଣ ଅଦା ।
ବନାର୍ଦ୍ରକା—ସ୍ତ୍ରୀ. ବି. ବଣଅଦା ।
ବନାଲକ୍ତକ—କ୍ଳୀ.ବି. ଗୈରକ, ଗେରୁମାଟି । [ ଗୃହ ।
ବନାଲୟ—ପୁଂ.ବି.ବନ ମଧ୍ୟସ୍ଥିତ ବାସ-
ବନାଲୟଜୀବୀ—ବିଂ. ବନଜାତ ଦ୍ରବ୍ୟ ଦ୍ୱାରା ଜୀବିକା ନିର୍ବାହକାରୀ ।
ବନାଳିକା—ସ୍ତ୍ରୀ.ବି. ହସ୍ତିଶୁଣ୍ଡିଲତା, ହାତୀଶୁଣ୍ଢୀ ।
ବନାଳୀ—ସ୍ତ୍ରୀ.ବି.ବନରାଜି, ବନଶ୍ରେଣୀ ।
ବନାଶାଢ଼ୀ—ଗ୍ରା.ବି. ରଙ୍ଗିନ୍‌ଲୁଗା, ଛିଟ ।
ବନାଶ୍ରମ—ପୁଂ. ବି. ( ବନ+ଆଶ୍ରମ ) ବନରୂପ ଆଶ୍ରମ, ବାନପ୍ରସ୍ଥାଶ୍ରମ ।
ବନାଶ୍ରମୀ—ପୁଂ.ବିଂ (ବନାଶ୍ରମ+ଇନ୍) ବାନପ୍ରସ୍ଥ ଧର୍ମାବଲମ୍ବୀ, ବନାଶ୍ରମକାରୀ
ବନାଶ୍ରୟ—ପୁଂ.ବି.(ବି.ଗ୍ରା)ଦ୍ରୋଣକାକ, ଡାମରାକୁଆ, (ପୁଂ.ବିଂ) ଅରଣ୍ୟାଶ୍ରୟୀ, ବାନପ୍ରସ୍ଥାବଲମ୍ବୀ ।
ବନାଶ୍ରିତ—ବିଂ. ବାନପ୍ରସ୍ଥାଶ୍ରୟୀ, ଯେ ବନରେ ଆଶ୍ରୟ କରିଅଛି । [ଶୂକର ।
ବନାହ୍ୱର—ପୁଂ. ବି. ( ବନ+ଅହ୍ୱର )
ବନି—ପୁଂ.ବି.(ବନ+ଇ) ଅଗ୍ନି, (ଗ୍ରା. ବି) ରକ୍ତ, ଲହୁ ।
ବନିଆଦ—ଯା.ବି. ଘରଆଦିର ଭିତ୍ତି, ମୂଳ; ନିଅଁ, ( ଲ.ଅର୍ଥ ) କୌଣସି ବଂଶର ମୂଳ ।
ବନିଆଦି—ଯା. ବିଂ. ଦୃଢ଼ ବା ପ୍ରଶସ୍ତ ଭିତ୍ତିଯୁକ୍ତ (ଗୃହ), (ଲ.ଅର୍ଥ) ବହୁକାଳସ୍ଥାୟୀ, ବହୁକାଳରୁ ସମାଜରେ ସମ୍ମାନିତ ଓ ପ୍ରସିଦ୍ଧ (ବଂଶ) ।
ବନିଆନ—ପ୍ରା.(ଗଞ୍ଜାମ)ବି. ଗେଞ୍ଜି ।
ବନିକା—ସ୍ତ୍ରୀ.ବି. କୁଞ୍ଜବନ, ଉଦ୍ୟାନ ।
ବନିକାବାସ—ପୁଂ. ବି. ଉପବନମଧ୍ୟସ୍ଥ କୁଞ୍ଜ ।
ବନିତ—କ୍ରି.ବିଂ.(ବନ୍+ର୍ମ.ତ)ଯାଚିତ, ସେବିତ, ପ୍ରାର୍ଥିତ, ଯାହା ପ୍ରାର୍ଥନା କରାଯାଏ ।
ବନିତା—ସ୍ତ୍ରୀ. ବି. ( ବନ୍+ତ+ଆ ) ପ୍ରିୟା, ନାରୀ, ଅନୁରକ୍ତା ଭାର୍ଯ୍ୟା, ସ୍ତ୍ରୀ-

ସାମାନ୍ୟ,ଷଡ଼କ୍ଷରାତ୍ମକ ଛନ୍ଦବିଶେଷ ।

ବନିତାଭୂଷଣ—କ୍ଲୀ.ବି.(୬ତତ୍ପୁ)ରମଣୀର ଅଳଙ୍କାର, (ପୁଂ.ବି)ଲଜ୍ଜା, ଭର୍ତ୍ତା ।

ବନିତାମୁଖ—ବି. ଜାତିବିଶେଷ,(୬ତତ୍ପୁ) ସ୍ତ୍ରୀ ମୁଖମଣ୍ଡଳ ।

ବନିତାବିଳାସ—ପୁଂ. ବି. ସ୍ତ୍ରୀଲୋକର ଖେଳେଚ୍ଛା, (ସ୍ତ୍ରୀ) ସମ୍ଭୋଗେଚ୍ଛା ।

ବନିନ—ବିଂ. ଜଳଦାତା, ବନବାସୀ, ବନୋଦ୍ଭବ, ଇଚ୍ଛାଶୀଳ, ପୂଜା ବା ସ୍ତୁତିକାରୀ ।

ବନିବା—ଗ୍ରା.କ୍ରି. ଶବ୍ଦସ୍ଥ ଅକ୍ଷରମାନଙ୍କର ବର୍ଣ୍ଣମାନଙ୍କୁ ବିଶ୍ଳେଷଣ କରିବା,ବନାନ କରିବା, ବ୍ୟଞ୍ଜନ ବର୍ଣ୍ଣରେ ସ୍ୱରବର୍ଣ୍ଣର ମାତ୍ରାଯୁକ୍ତ କରିବା, ଉତ୍ତମ ଖାଦ୍ୟ-ହେତୁ ହୃଷ୍ଟପୁଷ୍ଟ ହେବା, ନିର୍ମିତହେବା, ଦୁଇଜଣଙ୍କ ମଧ୍ୟରେ ସଦ୍ଭାବ ଥିବା, ପଟିବା, ବର୍ଣ୍ଣନାକରିବା, (ଫଳାଦି) ପୂର୍ଣ୍ଣାଙ୍ଗ ପ୍ରାପ୍ତହେବା ।

ବନି—ସ୍ତ୍ରୀ.ବି.(ବନ + ଇ)ବନ,ଅରଣ୍ୟ, ଯାଚ୍ଞା, ମିଳନ, ପ୍ରାର୍ଥନା, ( ପୁଂ.ବି ) (ବନ+ଇନ୍) ବାନପ୍ରସ୍ଥ ।

ବନୀକ—ପୁଂ.ବିଂ. ଯାଚକ ।

ବନୀୟକ—ପୁ..ବିଂ. (ବନୀ + ଯ+ଅକ) ଯାଚକ, ପ୍ରାର୍ଥୀ ।

ବନୀୟାନ୍—ତ୍ରି. ବିଂ. (ବନ+ଈୟସ୍) ଅତିଶୟ ଯାଚକ ।

ବନୀବାହନ—କ୍ଲୀ.ବି. ଏକସ୍ଥାନରୁ ଅନ୍ୟ ସ୍ଥାନକୁ ଆଣିବା, ଇତସ୍ତତଃ ସଞ୍ଚାଳନ ବା ସ୍ଥାନ ପରିବର୍ତ୍ତନ ।

ବନୁଠି—ଗ୍ରା.ବି. ବନେଠି ଦେଖ ।

ବନେ—ଗ୍ରା.ଅବ୍ୟ. ନିଶ୍ଚେ, ଦୃଢ଼ସଂକଳ୍ପ, (ଏହା) ଚଳିବ ।

ବନେକିଂଶୁକ—ପୁଂ,ବି. ଅଯାଚିତ ପ୍ରାପ୍ତ (ବସ୍ତୁ),ବିନା ପରିଶ୍ରମରେ ମିଳିବାଦ୍ରବ୍ୟ ।

ବନେଜ୍ୟୋତ୍ସ୍ନା—ସ୍ତ୍ରୀ.ବି. କରଞ୍ଜ ।

ବନେଚର—ବି ଓ ବିଂ. (ବନେ+ଚର୍ +କ.ଅ) ବନଚର ଦେଖ ।

ବନେଜା—ପୁଂ. ବି. (ବନେ + ଜନ୍+ ଡ+ଆ) ନୀଳକମଳ, ଆମ୍ରବୃକ୍ଷ,ପର୍ପ-ଟକ, ଖେତପାପଡ଼ା ।

ବନେ(ନୋ)ଟି—ଯା.ବି. ମଲ୍ଲକ୍ରୀଡ଼ାରେ ବ୍ୟବହୃତ ୩ । ୪ ହାତ ଲମ୍ବ ବାଡ଼ି ।

ବନେଶୟ୍ୟ—ତ୍ରି.ବିଂ. ବନବାସୀ ।

ବନେସର୍ଜ୍ଜ—ପୁଂ.ବି. ଅସନବୃକ୍ଷ ।

ବନୈକଦେଶ—ପୁଂ.ବି.ବନର ଏକାଂଶ ।

ବନୋତ୍ସର୍ଗ—ବି. (ବନ + ଉତ୍ସର୍ଗ)ଦେବ-ମନ୍ଦିର, ପୁଷ୍କରିଣୀ, ଉପବନାଦିର ସର୍ବ ସାଧାରଣଙ୍କର ବ୍ୟବହାରାର୍ଥ ଉତ୍ସର୍ଗ ବା ଦାନକର୍ମ ।

ବନୋତ୍ସବ—ପୁଂ.ବି. ଆମ୍ରବୃକ୍ଷ ।

ବନୋତ୍ସାହ—ପୁଂ.ବି. ଗଣ୍ଡାର ।

ବନୋଦ୍ଦେଶ—ପୁଂ,ବି. ବନସମୀପ,ବନ-ମଧ୍ୟସ୍ଥ ନିର୍ଦ୍ଦିଷ୍ଟ ସ୍ଥାନ ।

ବନୋଦ୍ଭବ—ବି. ବନ୍ୟଫଳ, ଟଙ୍ଗ, ଶୃଗାଳକୋଳି, ବନଶୂରଣ, ବନବୀଜ-ପୂରକ, ବନକାର୍ପାସ, କାଷ୍ଠମଲ୍ଲିକା, ମୁଦ୍ଗପର୍ଣ୍ଣୀ ।

ବନୋପପ୍ଲବ—କ୍ଲୀ. ବି. ବନଦହନ, ଦାବାନଳ ।

ବନୋର୍ବୀ—ସ୍ତ୍ରୀ.ବି. ବନସମୀପସ୍ଥ ସ୍ଥାନ ।

ବନୌଘ—ପୁଂ.ବି.ବନସମୂହ, ଭାରତର ପଶ୍ଚିମ ଦିଗସ୍ଥ ଗୋଟିଏ ପର୍ବତ ।

ବନୌଷଧ—ସ୍ତ୍ରୀ. ବି. (୬ତତ୍ପୁ) ଭେଷ-ଜାଦି,ବନଜାତ ଚେରମୂଳୀ,ଜଡ଼ିବୁଟୀ ।

ବନ୍ତ—ଗ୍ରା.(ପ୍ରତ୍ୟୟ).ଯୁକ୍ତ,ଯାହାର ଥାଏ (ଯଥା;-ଧନବନ୍ତ) (ପ୍ରା.ପୁସ୍ତି.ବି) ବାଲି କୁଦ ।

ବନ୍ତଲକଦଳୀ—ଗ୍ରା. ବି. ବ୍ୟଞ୍ଜନୋପ-ଯୋଗୀ କଦଳୀବିଶେଷ ।

ବନ୍ତି—ଯା.ବି. ବନାତ, ପଶମୀ, ଶୀତ-ବସ୍ତ୍ରବିଶେଷ ।

ବନ୍ଥ—ପ୍ରା.(ଗଞ୍ଜାମ) ବି. ସାଲୁଆ, ମାଛ-ଧରିବାପାଇଁ ବାଉଁଶ କାଠିରେ ବୁଣା-ହୋଇଥିବା ଜାଲବାଡ଼ ।

ବନ୍ଥଡ଼(ଡ଼ା)—ଗ୍ରା.ବି. ବ୍ୟାଘାତ, ବାଧା, (ବିଂ) ବୁଦ୍ଧିହୀନ, ବ୍ୟାଘାତକାରକ, ଦନ୍ତୁର, ଥୁନ୍ତା ।

ବନ୍ଦ—ଯା.ବି. ବନ୍ଧିଲ, ଗୋଛା, ବିଡ଼ା, (ଗ୍ରା.ବି) ବିଦ୍ୟାଳୟ ଓ କଚେରିଆଦିର କାର୍ଯ୍ୟ ସ୍ଥଗିତ ହେବାର ଅବସ୍ଥା,ଗଡ଼-ଖାଇ, ରହିତ୍ୟ, (ଗ୍ରା.ବିଂ) ସ୍ଥଗିତ,ବନ୍ଦ,ରୁଦ୍ଧ, ଦମିତ, କାର୍ଯ୍ୟରହିତ, ଗତିରହିତ, (ଯା.ଅବ୍ୟ) ତୁମ୍ଭର ଗତିର ହତକର ।

ବନ୍ଦ୍‌ନାଯିବା—ପ୍ରା.(ସମ୍ବ)କ୍ରି. (କନ୍ୟା) ପଦ୍ମକଳପାଳି ଯିବା ।

ବନ୍ଦ୍‌ବାନ୍ଦ୍—ଗ୍ରା.ବି. ରହିତ୍ୟ ।

ବନ୍ଦକ—ପୁଂ.ବିଂ. (ବନ୍ଦ+ଅକ)ବନ୍ଦନା-କାରୀ. ସ୍ତୁତିପାଠକ, ପ୍ରଣାମକାରୀ, ଯେ ବନ୍ଦନା କରେ ।

ବନ୍ଦକରିବା—ଗ୍ରା. କ୍ରି. ସ୍ଥଗିତକରିବା, ଆବଦ୍ଧକରିବା, ଅଟକାଇବା, କାର୍ଯ୍ୟ-ରହିତ କରିବା, ମନାକରିବା ।

ବନ୍ଦକା—ସ୍ତ୍ରୀ.ବି.( ବନ୍ଦକ+ଆ ) ବନ୍ଦା, ମଲ୍ଲଙ୍ଗ, ନିର୍ମୂଳୀ । [ ସ୍ତୁତ୍ୟ ।

ବନ୍ଦଥ—ପୁଂ.ବିଂ. (ବନ୍ଦ+ଅଥ)ସ୍ତୋତା,

ବନ୍ଦନ—କ୍ଲୀ.ବି.(ବନ୍ଦ୍+ଅନ)ବନ୍ଦନ,ପ୍ରଣାମ, ବିଷବିଶେଷ, ରାକ୍ଷସବିଶେଷ, ଅଭି-ବାଦନ,ସ୍ତୁତି,ପୂଜା,ଋଷିବିଶେଷ,ପ୍ରଶଂସା-କରଣ, ହୋମାନ୍ତେ ହୋମ ଭସ୍ମରେ ଅଙ୍କିତ ତିଳକ, ବନ୍ଦାକ, ନିର୍ମୂଳୀ, ଅନୁରୋଧ,ପ୍ରାର୍ଥନା, ବନ୍ଦାପନା ଦେଖ ।

ବନ୍ଦନମାଳା—ସ୍ତ୍ରୀ.ବି. ଉତ୍ସବ ସମୟରେ ବହିର୍ଦ୍ୱାରରେ ଟଣାଯିବା ମଙ୍ଗଳସୂଚକ ଆମ୍ବ ତୋରଣାଦି । [ ଦେଖ ।

ବନ୍ଦନମାଳିକା—ସ୍ତ୍ରୀ. ବି. ବନ୍ଦନମାଳା

ବନ୍ଦନା—ସ୍ତ୍ରୀ.ବି. ( ବନ୍ଦ୍+ଅନ+ଆ ) ବନ୍ଦନ ଦେଖ (ଗ୍ରା,ବି) ମଙ୍ଗଳାଚରଣ, ଗ୍ରନ୍ଥ ବା ନୃତ୍ୟଗୀତାଦି ଆରମ୍ଭ ପୂର୍ବରୁ ଦେବୋଦ୍ଦେଶ୍ୟରେ ବୋଲାଯିବା ମଙ୍ଗଳସୂଚକ ଗାନ ବା ସ୍ତବ ।

ବନ୍ଦନୀ—ସ୍ତ୍ରୀ.ବି. ( ବନ୍ଦନ+ଈ ) ନୁତି, ସ୍ତୁତି, ଜୀବାତୁ, ବଟୀ, ଯାଚନକର୍ମ, ଗୋରଚନା, ସ୍ତବ, ବଟିକା, ଶରୀରରେ ଧାରଣକରିବା ତିଳକ ଚିହ୍ନ ।

ବନ୍ଦନୀୟ—ତ୍ରି.ବିଂ. ( ବନ୍ଦ୍+ଅନୀୟ ) ସ୍ତବନୀୟ, ବନ୍ଦ୍ୟ, ବନ୍ଦିତବ୍ୟ, ନମସ୍ୟ, ଯାହାକୁ ବନ୍ଦନା ବା ପୂଜା କରାଯାଏ ।

ସ୍ତବଯୋଗ୍ୟ, (ପୁଂ.ବ) ପୀଡଭୁଙ୍କଙ୍କ ରାଜ
ବନ୍ଦନୀୟା—ସ୍ତ୍ରୀ.ବଂ. ( ବନ୍ଦନୀୟ+ଆ ) ବନ୍ଦନୀୟର ସ୍ତ୍ରୀଲିଙ୍ଗ, (ବ)ଗୋରଚନା
ବନ୍ଦର—ଯା.ବ. ସମୁଦ୍ରକୂଳେ ଜାହାଜ ରହିବାର ଓ ବାଣିଜ୍ୟର ସ୍ଥାନ,ବନ୍ଦରର ସଂଲଗ୍ନ ନଗର ।
ବନ୍ଦରଆ—ଯା. ବଂ. ବନ୍ଦରସମ୍ବନ୍ଧୀୟ, ବନ୍ଦରର ଅଧିବାସୀ, (ଗ୍ରା.ବ)ହାତରେ ପିନ୍ଧିବା ବଳୟବିଶେଷ ।
ବନ୍ଦା—ବ.(ବନ୍ଦ୍+କ.ଅ+ଆ)ବନ୍ଦନକାରିଣୀ ସ୍ତ୍ରୀ, ନିର୍ମୂଳୀ, ମଲାଙ୍ଗ, ଭିକ୍ଷୁକୀ ସ୍ତ୍ରୀ,( ଯା.ସଂ) ଅଧୀନ, ଆପଣଙ୍କର ଆଜ୍ଞାକାରୀ ଭୃତ୍ୟ, ମୁଁ ।
ବନ୍ଦା(ନ୍ଦେ)ଇବା—ଗ୍ରା.କ୍ରି.ବନ୍ଦନାକରିବା, ସ୍ତବକରିବା, ବନ୍ଦାପନାକରିବା,ଦେବତା ବା ବରକନ୍ୟା ବା ବନ୍ଦନୀୟ ବ୍ୟକ୍ତିଙ୍କ ସମ୍ମୁଖରେ ପ୍ରଦୀପାଦି ଦେଖାଇ ଅଭ୍ୟର୍ଥନା କରିବା ।
ବନ୍ଦାକ—ପୁଂ.ବ.ନିର୍ମୂଳୀ,ମଲାଙ୍ଗ, (ବଂ) ଯେ ବନ୍ଦନା କରେ, (ସ୍ତ୍ରୀ) ବନ୍ଦାକା ।
ବନ୍ଦାକା—ସ୍ତ୍ରୀ.ବ. ବନ୍ଦା,ନିର୍ମୂଳୀ,ମଲାଙ୍ଗ ।
ବନ୍ଦାକ୍ଷୀ—ସ୍ତ୍ରୀ.ବ. ବନ୍ଦା,ନିର୍ମୂଳୀ,ମଲାଙ୍ଗ ।
ବନ୍ଦାଣ—ଗ୍ରା. ବ, ବନ୍ଦନ, ବନ୍ଦାପନା, ଅର୍ଚ୍ଚନା,ପ୍ରଦୀପାଦି ଦେଖାଇ ଅଭ୍ୟର୍ଥନା, ବ୍ରତ ବା ବିବାହାଦିରେ ବ୍ରାହ୍ମଣଗଣ ବା ବରକୁ ବନ୍ଧୁଆଦିଙ୍କର ଦେବା ଭେଟି ।
ବନ୍ଦାଣଘର—ଗ୍ରା.ବ. ପୁନର୍ବିବାହ ଉତ୍ସବ, ବନ୍ଦାଣଘର, ଆଶୀର୍ବାଦଘର ।
ବନ୍ଦାପନା—ଗ୍ରା. ବ. ବନ୍ଦାଣ, ବନ୍ଦାଇବା କ୍ରିୟା, ଆଶୀର୍ବାଦଘର, ଦ୍ୱିରାଗମନ ।
ବନ୍ଦାରୁ—କ୍ରି.ବଂ. (ବନ୍ଦ୍+ଆରୁ) ବନ୍ଦନଶୀଳ, ଅଭିବାଦକ, ପଜନୀୟ, ( ବ ) ସ୍ତୁତିଗାନକାରୀ ବ୍ୟକ୍ତି, ସ୍ତାବକ,ସ୍ତୋତ୍ର, ସ୍ତବ, ବନ୍ଦାକ, ମଲାଙ୍ଗ, ନିର୍ମୂଳୀ ।
ବନ୍ଦି—ବ. (ବନ୍ଦ୍+ଇ) ଆକୃଷ୍ଟମନୁଷ୍ୟ ଗବାଦି, କୟେଦୀ, କାର, ଗ୍ରହ,କାରାରୁଦ୍ଧବ୍ୟକ୍ତି, ସ୍ତୁତିପାଠକ, ବନ୍ଦନ, ଶିଙ୍କ, ନିଶୁଣୀ, (ବଂ) କାରାରୁଦ୍ଧ, ( ଗ୍ରା.ବ ) ମନ୍ତ୍ରଯନ୍ତ୍ରାଦି ଦ୍ୱାରା ଭୂତପ୍ରେତାଦିଙ୍କୁ କୌଣସି ବ୍ୟକ୍ତିଠାରେ ବା କୌଣସି ସ୍ଥାନରେ ଅଟକାଇ ରଖିବା ।
ବନ୍ଦିଆ—ଯା.ବ. ମଥାମଣି,କଣ୍ଠାଳଂକାରବିଶେଷ, (ଗ୍ରା.ବ)ଫୁଲ ଲାଗିଥିବା ଫଳ କଣି ।
[ ଖାନା ।
ବନ୍ଦିଖାନା—ଯା. ବ. କାରାଗାର,ଜେଲ୍
ବନ୍ଦିଗାନ—ବ.(ତତ୍ତ୍ର)ବନ୍ଦିପାଠଦେଖ ।
ବନ୍ଦିଗୃହ—ବ.(ତତ୍ତ୍ର)ବନ୍ଦିଶାଳା ଦେଖ ।
ବନ୍ଦିଗ୍ରାହ—ପୁଂ.ବ. (ବନ୍ଦି+ଗ୍ରହ+କ.ଅ) ଡକାଇତ,ଯେ ସିନ୍ଧିକରି ଚୋରିକରେ, (ବଂ)ଯେ ହଠାତ୍ ଆକ୍ରମଣ କରି ବନ୍ଦି କରେ ।
ବନ୍ଦିଘର—ଗ୍ରା. ବ. ବନ୍ଦିଶାଳା ଦେଖ ।
ବନ୍ଦିଚୌର—ପୁଂ. ବ. ବନ୍ଦିଗ୍ରାହଦେଖ, କାରାରୁଦ୍ଧ ଚୋର ।
[ ପୂଜିତ ।
ବନ୍ଦିତ—ବଂ. ( ବନ୍ଦ୍+ମି.ତ ) ସ୍ତୁତ,
ବନ୍ଦିତବ୍ୟ—କ୍ରି. ବଂ. ( ବନ୍ଦ୍+ତବ୍ୟ ) ବନ୍ଦନାର୍ହ, ବନ୍ଦନାର ଉପଯୁକ୍ତ ।
ବନ୍ଦିତା—ପୁଂ. ବଂ. (ବନ୍ଦ୍+ତୃ)ବନ୍ଦକ, ବନ୍ଦନାକାରୀ ।
[ ନାମାନ୍ତର ।
ବନ୍ଦିନୀକା—ସ୍ତ୍ରୀ. ବ. ଦାକ୍ଷାୟଣୀଙ୍କର
ବନ୍ଦିପାଠ—ପୁଂ.ବ. (ତତ୍ତ୍ର) ଭଟମାନଙ୍କର ସ୍ତୁତି ବା ସ୍ତବ, ପ୍ରଶଂସାଗାନ, ସ୍ତବ ବୋଲିବା ।
ବନ୍ଦିପାଲ—ବ. (ବନ୍ଦି+ପାଲ+କ.ଅ) କାରାଧକ୍ଷ, ଜେଲର ।
ବନ୍ଦିବା—ଗ୍ରା. କ୍ରି. ବନ୍ଦନା କରିବା,ପୂଜା କରିବା, ସ୍ତବକରିବା, ମନ୍ତ୍ରଯନ୍ତ୍ର ଦ୍ୱାରା ଭୂତ ପ୍ରେତାଦିଙ୍କୁ କୌଣସି ବ୍ୟକ୍ତିଙ୍କ ଦେହରେ ବା କୌଣସି ସ୍ଥାନରେ ଅବରୁଦ୍ଧ କରି ରଖିବା, ମନ୍ତ୍ର ଯନ୍ତ୍ର ପ୍ରୟୋଗ ଦ୍ୱାରା ସର୍ପର ଗତିରୋଧ କରିବା ।
ବନ୍ଦିଶାଳା—ବ. (ତତ୍ତ୍ର) କାରାଗାର ।
ବନ୍ଦୀ—ପୁଂ. ବ. (ବନ୍ଦ+ଇନ୍) ସ୍ତୁତିପାଠକ, ମାଗଧ, ଭଟ, ମଗଧ, ଭୃତ୍ୟ, ବନ୍ଦନାକାରୀ, (ବନ୍ଦ+ଈ) କଏଦୀ ।
ବନ୍ଦୀକ—ପୁଂ, ବ, ଇନ୍ଦ୍ର ।
ବନ୍ଦୀକାର—ପୁଂ. ବ. ( ବନ୍ଦୀ+କୃ+ଅ) ବନ୍ଦିଗ୍ରାହ, ଡକାୟିତ ।
ବନ୍ଦୀକୃତ—କ୍ରି ବଂ. କାରାରୁଦ୍ଧ ।
ବନ୍ଦୀପାଲ—ପୁଂ.ବ. କାରାରକ୍ଷୀ,ଜେଲର
ବନ୍ଦୁକ—ଯା. ବ. ଆଗ୍ନେୟାସ୍ତ୍ର ବିଶେଷ, ବନ୍ଧୁକ ।
ବନ୍ଦୁରଆ—ଗ୍ରା. ବ. ସ୍ତ୍ରୀମାନଙ୍କର ମଣିବନ୍ଧରେ ପିନ୍ଧିବା ବଳୟ ବିଶେଷ ।
ବନ୍ଦେ—ଗ୍ରା. କ୍ରି. ମୁଁ ବନ୍ଦନା କରୁଅଛି, ବନ୍ଦଇଁ ।
ବନ୍ଦେଗି(କ)—ଯା.ଅବ୍ୟ.ସଲାମ,ପ୍ରଣାମ ।
ବନ୍ଦେଜ—ଯା. ବ. ବାନ୍ଧୁଣି, ବ୍ୟବସ୍ଥା, ଚିରସ୍ଥାୟୀ ବନ୍ଦୋବସ୍ତ,ମାମୁଲ,ଅପର, ବର୍ତ୍ତନୀୟ ଅଭ୍ୟାସ ।
ବନ୍ଦେମାତରମ୍(ବାକ୍ୟ)—ମୁଁ ମାତାଙ୍କୁ ବନ୍ଦନା କରୁଛି ।
ବନ୍ଦୋପାଧ୍ୟାୟ—ଗ୍ରା. ବ. ଏକ ଜାତୀୟ ବଙ୍ଗୀୟ ବ୍ରାହ୍ମଣଙ୍କର କୌଳିକ ଉପାଧି, ବାନୁର୍ଯ୍ୟା ।
ବନ୍ଦୋବସ୍ତ—ଯା. ବ. ବ୍ୟବସ୍ଥା, ଭୂସହ ସ୍ଥିରୀକରଣ, ସୁଶୃଙ୍ଖଳା, ଜରିବ, ମାପଦ୍ୱାରା ଭୂସମ୍ପତ୍ତିର ସ୍ୱତ୍ୱସ୍ଥାପନ ଓ ତହିଁର ଖଜଣା ଆଦି ସ୍ଥିରୀକରଣ ।
ବନ୍ଦୋବସ୍ତକରିବା—ଗ୍ରା. କ୍ରି. କୌଣସି ବିଷୟରେ ବ୍ୟବସ୍ଥା କରିବା, ସ୍ଥିର କରିବା, ଭୂମିର ରାଜସ୍ୱ ସ୍ଥିର କରିବା ।
ବନ୍ଦ୍ୟ—ପୁଂ. ବଂ. (ବନ୍ଦ୍+ମି.ଯ)ବନ୍ଦନୀୟ, ପୂଜ୍ୟ, ସ୍ତୁତ୍ୟ ।
ବନ୍ଦ୍ୟା—ସ୍ତ୍ରୀ.ବ.(ବନ୍ଦ୍ୟ+ଆ)ଗୋରଚନା
ବନ୍ଦ୍ର—କ୍ରି. ବଂ. (ବନ୍ଦ୍+ର)ପୂଜକ ।
ବନ୍ଦ୍ଲ—ଗ୍ରା.ବ. ଗାଡ଼ିଆ, ଗ୍ରୋଟପୋଖରୀ
ବନ୍ଧ—ବ. (ବନ୍ଧ୍+ମି.ଅ) ଗଚ୍ଛିତ ଧନ, (ଣ.ଅ) ବୃନ୍ତ, ଡେମ୍ଫ, ଶରୀର, ଗ୍ରନ୍ଥି, (ଘ.ଅ) ବନ୍ଧନ, ଉତ୍ପତ୍ତି, ବାନ୍ଧିବା ଦଉଡ଼ି, ଗୃହାଦିର ବେଷ୍ଟନ, ରୋଧ, ଧନ ବା ସମ୍ପତ୍ତି ଅନ୍ୟ ନିକଟରେ ବନ୍ଧକ ଦେବା, ନିର୍ମାଣ, ରଚନା, ସେତୁ, ବଡ଼ହୁଡ଼, ଜଳରୋଧକ ବାଡ଼, ରତିବନ୍ଧ, ଧାରା, ଯୋଗ, ବନ୍ଦୋବସ୍ତ, ଚିତ୍ର କାବ୍ୟର ରଚନା ବିଶେଷ,ଶୃଙ୍ଖଳା, ଶିକୁଳି, କାଠବନ୍ଧନ, ଯୋଗୀଙ୍କ ମୁଦ୍ରା

ବିଶେଷ, ଗଦ୍ୟ ବା ପଦ୍ୟ ରଚନା,ଶିଳ୍ପ ଶାସ୍ତ୍ର ଅନୁସାରେ ଗୃହର ଦୈର୍ଘ୍ୟ ଓ ପ୍ରସ୍ଥ ଭିନ୍ନ ପରିମାଣ,(ଗ୍ରା.ବି)ନାଟୁଆପିଲା-ମାନଙ୍କର ଅବୟବ ଚାଳନ ଜନିତ ନ୍ୟାସ, ପୋଷଣୀ ।

ବନ୍ଧକ—ବି. ( ବନ୍ଧ୍ + ସଂ.ଅକ )ଋଣ-ପରିଶୋଧର ଜାମିନ୍ ସ୍ୱରୂପ ଖାତକ ମହାଜନ ନିକଟରେ ଯେଉଁ ଦ୍ରବ୍ୟ ରଖାଏ, ଲମ୍ପଟବ୍ୟକ୍ତି, (ଖ୍ରି.ଅକ)ବନ୍ଧା. କୌଣସି ସମ୍ପତ୍ତି ଜାମିନ ରଖି ଋଣ-ନେବା, କାରାବନ୍ଧନ, ବଦଳ, ବନ୍ଧନ, (ବିଂ-କ.ଅକ)ବନ୍ଧନକାରୀ,ଯେ ବାନ୍ଧେ

ବନ୍ଧକଗ୍ରହୀତା—ପୁଂ. ବିଂ. (୬ତତ୍)ଯେ ଦ୍ରବ୍ୟାଦି ବନ୍ଧକ ରଖି ଋଣ ଦିଏ, ବନ୍ଧକୀ ମହାଜନ ।

ବନ୍ଧକୀ—ସ୍ତ୍ରୀ, ବି. (ବନ୍ଧକ+ଈ)ଅସତୀ ସ୍ତ୍ରୀ, ପୁଂଶ୍ଚଳୀ, କୁଲଟା, ବେଶ୍ୟା,ବନ୍ଧ୍ୟା ସ୍ତ୍ରୀ, ବନ୍ଧକ ଦେଇଥିବା ଜନସ୍ୱ.ହସ୍ତିନୀ

ବନ୍ଧତନ୍ତ୍ର--ବି.(ବନ୍ଧ+ତନ୍ତ୍ର)ବନ୍ଧରଚନାର କୌଶଳ ବିଶେଷ, ବ୍ୟୂହ ରଚନାର କୌଶଳ ବିଶେଷ, ବନ୍ଧ ଆକାରରେ ସଜ୍ଜିତ ଚତୁରଙ୍ଗ ସେନା ।

ବନ୍ଧନ—ବି. (ବନ୍ଧ୍+ଭା.ଅନ) ବାନ୍ଧିବା କ୍ରିୟା, ଅବରୋଧ,କାରାରୋଧ, ବାଧା, ସଂଯମନ, ସେତୁ ଆଦିର ନିର୍ମାଣ, (କ. ଅନ) ବୃନ୍ତ, ଡେମ୍ଫ, ବଧ, ହିଂସା, ବାଣର ପୁଙ୍ଖ, ପାଶ, ଗଣ୍ଠି, ବାନ୍ଧିବା ଦଉଡ଼ି, ବନ୍ଧାଯିବା ପଟି, (ଗ୍ରା. ବି) ବାନ୍ଧୁଣି କାଠ ।

ବନ୍ଧନଗ୍ରନ୍ଥି—ବି. ( ୬ତତ୍ ) ଦେହର ହାଡ଼ର ବା ଜୋଡ଼ର ହାଡ଼ ।

ବନ୍ଧନପାଲ—ପୁଂ, ବି. (୬ତତ୍) କାରା-ଗାର ରକ୍ଷକ ।

ବନ୍ଧନବେଶ୍ମ—ବି. କାରାଗାର ।

ବନ୍ଧନଭୟ—ବି. ( ୬ତତ୍ ) ବନ୍ଧା ହେବାର ବା କାରାରୁଦ୍ଧ ହେବାର ଆଶଙ୍କା ।

ବନ୍ଧନମୁକ୍ତ—ବିଂ. ( ୫ତତ୍ ) ବନ୍ଧନରୁ ମୁକ୍ତଥିବା ।

ବନ୍ଧନରଜ୍ଜୁ—ବି. (୪ତତ୍) ବନ୍ଧାଦଉଡ଼ି

ବନ୍ଧନଶାଳା—ସ୍ତ୍ରୀ.ବି.(୬ତତ୍)କାରାଗାର, ଜେଲ୍‌ଖାନା ।

ବନ୍ଧନସାଧନ—ବି.(୬ତତ୍)ଯାହା ଦ୍ୱାରା ବନ୍ଧାଯାଏ, ବାନ୍ଧିବାର ଉପକରଣ ।

ବନ୍ଧନସ୍ତମ୍ଭ—ବି. ( ୬ତତ୍ ) ପଶୁଆଦି ବାନ୍ଧିବାର ଖୁଣ୍ଟି ।

ବନ୍ଧନାଗାର—ପୁଂ.ବି.(୬ତତ୍)ବନ୍ଧଶାଳା

ବନ୍ଧନାଲୟ—ବି. (୬ତତ୍) ବନ୍ଧଶାଳା

ବନ୍ଧନାର୍ହ—ବିଂ. ବନ୍ଧାହେବାର ଉପଯୁକ୍ତ

ବନ୍ଧନୀ—ବି. ( ବନ୍ଧ୍+ଣ.ଅନ+ଈ ) ବାନ୍ଧିବା ଦଉଡ଼ି, ନିଗଡ଼, ଶୃଙ୍ଖଳା, କୌଣସି ବାକ୍ୟକୁ ବା ଅଙ୍କକୁ ସ୍ୱତନ୍ତ୍ର ରୂପେ ଚିହ୍ନାଇବାପାଇଁ ବ୍ୟବହୃତ ଦୁଇ ଫଳ ବିଶିଷ୍ଟ ଚିହ୍ନ () {} [] ।

ବନ୍ଧନୀୟ—ବିଂ. ( ବନ୍ଧ୍ + ସଂ.ଅନୀୟ ) ଯାହା ବନ୍ଧାଯିବାର ଉପଯୁକ୍ତ, (ବି) ସେତୁ, ପୋଲ ।

ବନ୍ଧବାନ୍ଧିବା—ଗ୍ରା.କ୍ରି.ଜଳକୁ ଅଟକାଇ ରଖିବାପାଇଁ ସେତୁ ନିର୍ମାଣ କରିବା, (ଲ.ଅର୍ଥ) ପୂର୍ବରୁ ଫାନ୍ଦ ଫାନ୍ଦିବା ।

ବନ୍ଧଭାଙ୍ଗିବା—ଗ୍ରା. କ୍ରି. ନାନାପ୍ରକାର ଶରୀରକୁ ଓଲଟାଇକରି ବ୍ୟାୟାମ କରିବା

ବନ୍ଧା—ଗ୍ରା.ବି.ବନ୍ଧନ କ୍ରିୟା, ଅନ୍ୟପାଇଁ ଜାମିନ୍, ପ୍ରତିଭୂ. ବନ୍ଧକ, ଋଣଶୋଧର ଜାମିନ୍ ସ୍ୱରୂପ ମହାଜନ ନିକଟରେ ନ୍ୟସ୍ତ ବସ୍ତୁ, ଗାର୍ହସ୍ଥ୍ୟମୂଳ, ବ୍ରହ୍ମଚର୍ଯ୍ୟ, (ଗ୍ରା.ବିଂ) ବନ୍ଧନ କରାଯାଇଥିବା, ବନ୍ଧକ ଦିଆଯାଇଥିବା, ବ୍ରହ୍ମଚର୍ଯ୍ୟାବଲମ୍ବୀ, ସଂଯତେନ୍ଦ୍ରିୟ, ଅବରୁଦ୍ଧ, ନିର୍ଦ୍ଦିଷ୍ଟ,ଅପରିବର୍ତ୍ତନୀୟ, ପ୍ରଥିତ ।

ବନ୍ଧା(ନ୍ଧେ)ଇବା—ଗ୍ରା.କ୍ରି.ବନ୍ଧପକାଇବା ବାନ୍ଧିବା କ୍ରିୟାର ଣିଜନ୍ତ ରୂପ ।

ବନ୍ଧାକୋବି—ଗ୍ରା.ବି.ଏକପ୍ରକାର ବିଦେଶୀୟ ପରିବା ଶାକ ବିଶେଷ ।

ବନ୍ଧାଛଡ଼ା—ଗ୍ରା. ବି. ବସ୍ତୁ ବା ସମ୍ପତ୍ତି ବନ୍ଧକ ରଖି ମହାଜନଠାରୁ ଋଣ ଆଣିବା,ବହୁ ପ୍ରକାର ବାନ୍ଧିବା କ୍ରିୟା ।

ବନ୍ଧାଦେବା—ଗ୍ରା. କ୍ରି. ଋଣ ଗ୍ରହଣକରି କୌଣସି ଦ୍ରବ୍ୟକୁ ଋଣ ଆଦାୟ ପର୍ଯ୍ୟନ୍ତ ବନ୍ଧକ ସ୍ୱରୂପ ମହାଜନ ନିକଟ ନ୍ୟସ୍ତ କରିବା ।

ବନ୍ଧାନିୟମ--ଗ୍ରା.ବି.ନିର୍ଦ୍ଧାରିତ ବା ଅପରି-ବର୍ତ୍ତନୀୟ ବିଧି ।

ବନ୍ଧାପଡ଼ିବା—ଗ୍ରା. କ୍ରି. ଅନ୍ୟବ୍ୟକ୍ତିପାଇଁ ଜାମିନ୍‌ହେବା, (କୌଣସି ବସ୍ତୁ) ଋଣ ନିମନ୍ତେ ମହାଜନ ନିକଟରେ ବନ୍ଧକ ରଖାଯିବା, ଆବଦ୍ଧ ରହିବା ।

ବନ୍ଧାବନ୍ଧ—ଗ୍ରା.ବି.ଅନେକ ବସ୍ତୁ ବାନ୍ଧିବା ପ୍ରକ୍ରିୟା, ଅନ୍ୟୋନ୍ୟରେ ବାନ୍ଧିବା, ଛନ୍ଦାଛନ୍ଦି ।

ବନ୍ଧିର—ବି. (ବନ୍ଧ୍+କ.ଇର)କାମଦେବ, ମଦନ, (ଣ.ଇର) ଅନୁରାଗ, ସ୍ନେହ, ପ୍ରୀତି, (ସଂ.ଇର) ଚର୍ମବ୍ୟଜନ ।

ବନ୍ଧୀ—ପୁଂ. ବିଂ. ( ବନ୍ଧ୍+ଇନ୍ ) ବନ୍ଧାହୋଇଥିବା ।

ବନ୍ଧୁ—ବି.(ବନ୍ଧ୍+କ.ଉ)ଆତ୍ମୀୟ,ବାନ୍ଧବ, ଜ୍ଞାତି, ସ୍ୱଜନ, ମିତ୍ର, ପ୍ରଣୟୀ, ବନ୍ଧୂଳି-ଗଛ, ସର୍ବଦା ସହାୟକ ବ୍ୟକ୍ତି, (ଫ) ଛନ୍ଦୋବିଶେଷ, ପିତା, ମାତା, ଭ୍ରାତା, କୁଟୁମ୍ବ, ପିତୃବ୍ୟପୁତ୍ର ।

ବନ୍ଧୁ(ନ୍ଧୂ)କ—ବି. (ବନ୍ଧ୍+ଉକ) ବନ୍ଧୂଳି ଦେଖ, (ଯା.ବି)ନାଳିକାଷ୍ଠ,ନଳି,ଆଗ୍ନେୟାସ୍ତ୍ର ।

ବନ୍ଧୁକବନ୍ଧୁ—ବି. (୬ତତ୍) ସୂର୍ଯ୍ୟ ।

ବନ୍ଧୁଜନ—ବି.(କ.ଧା)ସୁହୃଦ୍‌ବ୍ୟକ୍ତି, ମିତ୍ର, ବନ୍ଧୁବର୍ଗ ।

ବନ୍ଧୁ(ନ୍ଧୂ)ଜୀବ—ବି. (ବନ୍ଧ+ଉ+ଜୀବ୍+ଅ) ବନ୍ଧୂଳି ଦେଖ, (ବିଂ-ବ.ବ୍ରୀ) ବନ୍ଧୁ ଯାହାର ଜୀବନ ସ୍ୱରୂପ ।

ବନ୍ଧୁତା(ତ୍ୱ)—ବି. (ବନ୍ଧୁ+ଭା.ତା) ବନ୍ଧୁଭାବ, ପ୍ରଣୟ, ଘନିଷ୍ଠତା, ବାନ୍ଧବସମ୍ପର୍କ, (ବନ୍ଧୁ+ସମୂହାର୍ଥେ.ତା) ବନ୍ଧୁସମୂହ ।

ବନ୍ଧୁଦତ୍ତ—ବି. ସ୍ତ୍ରୀଧନବିଶେଷ, ବିବାହ ସମୟରେ ଆପଣା ପିତାମାତା ଓ ଭାଇ ଆଦିଙ୍କଠାରୁ କନ୍ୟାକୁ ମିଳିଥିବା ଧନ ।

ବନ୍ଧୁଦା—ବି.(ବନ୍ଧୁ+ଦା+କ.ଅ+ଆ) ଦୁଶ୍ଚାରିଣୀ ସ୍ତ୍ରୀ, ବେଶ୍ୟା ।

ବନ୍ଧୁପ—ପୁଂ.ବଂ. (ବନ୍ଧୁ+ପା+କ.ଅ) ବନ୍ଧୁପାଳକ, ସୁହୃଦ୍‌ରକ୍ଷକ।

ବନ୍ଧୁପରିମଳ—ଗ୍ରା.ବି. ବନ୍ଧୁର ପରିଚୟ, ଉତ୍କୃଷ୍ଟବନ୍ଧୁର ଲକ୍ଷଣ।

ବନ୍ଧୁବାନ୍ଧବ—ବି. (ଦ୍ୱନ୍ଦ୍ୱ) ଆତ୍ମୀୟସ୍ୱଜନ, ବନ୍ଧୁ ଓ କୁଟୁମ୍ବାଦି।

ବନ୍ଧୁବାନ୍ଧିବା—ଗ୍ରା. କ୍ରି. କୌଣସି ବ୍ୟକ୍ତି ବା ବଂଶସଙ୍ଗେ ବୈବାହିକବନ୍ଧନ ଦ୍ୱାରା ବନ୍ଧୁତା ସ୍ଥାପନ କରିବା।

ବନ୍ଧୁ(ନ୍ଧୂ)ର—ବଂ. (ବନ୍ଧ+କ.ଉର) ଉନ୍ନତାବନତ, ଉଚ୍ଚାବଚ, ଖାଲଢିପ, ଅମସୃଣ, ବନ୍ଧୁର, ରମ୍ୟ, ସୁନ୍ଦର, କ୍ଷତଜନକ, ନମ୍ର, (ବି) ପକ୍ଷୀ, ବଗ, ବକ, ହଂସ, ମୁକୁଟ, କକଡ଼ାଶୃଙ୍ଗୀ, ବନ୍ଧୁଲିଫୁଲ, ଗର୍ତ୍ତ, ରଥରେ ବା ଗାଡ଼ିରେ ସାରଥି ବସିବାର ସ୍ଥାନ, ିକ, ସ୍ତ୍ରୀଚିହ୍ନ।

ବନ୍ଧୁରତା—ବି. ଅସମତଲତ୍ୱ, ଅମସୃଣ, ବେସମାନ, ବନ୍ଧୁରତା।

ବନ୍ଧୁରା—ସ୍ତ୍ରୀ. ବି. (ବନ୍ଧୁର+ଆ)ଅସତୀ ସ୍ତ୍ରୀ, ବେଶ୍ୟା।

ବନ୍ଧୁଳ—ପୁଂ. ବି. ( ବନ୍ଧ+କ.ଉଳ ) ଅସତୀପୁତ୍ର, ଜାରଜ ସନ୍ତାନ, ( ବଂ ) ସୁନ୍ଦର, ନମ୍ର, ବନ୍ଧୁର।

ବନ୍ଧୁଲ—ବି. ବନ୍ଧୂଳ ଦେଖ।

ବନ୍ଧୁବଚ୍ଛେଦ—ପୁଂ. ବି. (୬ତତ୍) ବନ୍ଧୁବିୟୋଗ, ବନ୍ଧୁସହିତ ଛଡ଼ାଛଡ଼ି।

ବନ୍ଧୂଳ—ବଂ. ବନ୍ଧୁର, କୋମଳ, ଜାରଜ, ଅସତୀପୁତ୍ର, (ବି) ବନ୍ଧୁଲି ଦେଖ।

ବନ୍ଧୂଳି—ବି. ( ବନ୍ଧ+ଉଳି ) ବନ୍ଧୁଲି ଦେଖ।

ବନ୍ଧୋ—ବି. ( ବନ୍ଧୁପ୍ରତି ସମ୍ବୋଧନ ) ହେ ବନ୍ଧୁ!

ବନ୍ଧ୍ୟ—ବଂ. (ବନ୍ଧ+ମି.ଯ) ବନ୍ଧନଯୋଗ୍ୟ, ନିଷ୍ଫଳ, (ସ୍ତ୍ରୀ) ବନ୍ଧ୍ୟା, (ବି) ବନ୍ଧ, ପୋଲ।

ବନ୍ଧ୍ୟା—ସ୍ତ୍ରୀ. ବଂ. ( ବନ୍ଧ+ଯ+ଆ ) ନିଷ୍ଫଳା, ବନ୍ଧନଯୋଗ୍ୟା, (ବି) ଯେଉଁ ସ୍ତ୍ରୀର ସନ୍ତାନ ହୁଏ ନାହିଁ, ବାଞ୍ଝ, ସୁଗନ୍ଧ ଔଷଧ ଦ୍ରବ୍ୟବିଶେଷ, ଯୋନିରୋଗବିଶେଷ, ଅନୂଢ଼ା ଅବସ୍ଥାରେ ରଜସ୍ୱଳା ହୋଇଥିବା କନ୍ୟା।

ବନ୍ଧ୍ୟାକର୍କୋଟକୀ—ବି. ଡଙ୍କକର୍କୋଟକୀ, ପିତା କୁଆଁମଇତା, ହାଡ଼ଆକାଙ୍କଡ଼, ଅଖାଡ଼ୁଆ।

ବନ୍ଧ୍ୟାସୁତ—ବି. ବନ୍ଧ୍ୟାସ୍ତ୍ରୀର ପୁତ୍ରପରି ଅସମ୍ଭବ ବା ଅଳୀକ ବସ୍ତୁ। [ କୃଷି।

ବନ୍ଧ୍ର—ବି. (ବନ୍ଧ+ର) ପେଟ, ଉଦର,

ବନ୍ନେଇବା—ଗ୍ରା. (ସନ୍ନ)କ୍ରି. ଓଲାଇବା।

ବନ୍ୟ—କ୍ରି. ବଂ. (ବନ+ଯ)ବନଜାତ, ବଣୁଆ, ବନବାସୀ, (ବି) ହ୍ରିବ୍, କୁଟନ୍ନଟ, ବନଶୂରଣ, ଦେବନଳ, କ୍ଷୀରବିଦାରୀ, ଶଙ୍ଖ, ଲତାଶାଳ, ଭୁଇଁକଖାରୁ।

ବନ୍ୟଜନ୍ତୁ—ବି. (କ.ଧା) ବଣୁଆଜନ୍ତୁ।

ବନ୍ୟଜା—ସ୍ତ୍ରୀ.ବି.ବନୋପଦକୀ, ବଣପୂଇ।

ବନ୍ୟକାରକ—କ୍ଳୀ. ବି. କଟୁଙ୍କାରକ, ବଣକାଁସ।

ବନ୍ୟଦମନ—ପୁଂ. ବି. ବନଦଅଣା, ବଣରେ ହେବା ଏକପ୍ରକାର ଦଅଣା ଗଛ, ଲଣ୍ଡାବାଗୁଲି।

ବନ୍ୟଦ୍ୱୀପ—ପୁଂ.ବି. ବନ୍ୟହସ୍ତୀ, ବଣୁଆ ହାତୀ। [ ବାଳୁଙ୍ଗା।

ବନ୍ୟଧାନ୍ୟ—କ୍ଳୀ.ବି. ଶାବାର, ଝିରିଧାନ,

ବନ୍ୟବରାହ—ବି. (କ.ଧା) ବଣବରାହ।

ବନ୍ୟବୃକ୍ଷ—ପୁଂ.ବି. ଅଶ୍ୱତ୍ଥବୃକ୍ଷ, ବଣଗଛ

ବନ୍ୟବୃତ୍ତି—ସ୍ତ୍ରୀ. ବି. ବନ୍ୟୋପଜୀବିକା, ଅରଣ୍ୟବାସୀଙ୍କ ଜୀବନୋପାୟ।

ବନ୍ୟା—ସ୍ତ୍ରୀ. ବି. ( ବନ+ଯ+ଆ ) ବନସମୂହ, ଅରଣ୍ୟାନୀ, ମୁଦ୍ଗପର୍ଣ୍ଣୀ, ଗୁଞ୍ଜା, କାଇଞ୍ଚ, ଯଉପ, ଗୋପାଳ, କର୍କଟୀ, ମିଶ୍ରେୟା, ଭଦ୍ରମୁସ୍ତା, ଗନ୍ଧପତ୍ରା, ଅଶ୍ୱଗନ୍ଧା, ନଦୀବୃଦ୍ଧି, ଜଳପ୍ଲାବନ।

ବନ୍ୟାଶ୍ରମ—ପୁଂ. ବି. ବନାଶ୍ରମ।

ବନ୍ୟେତର—କ୍ରି. ବଂ. ଗୃହପାଳିତ, ଶିକ୍ଷିତ, ସଭ୍ୟ।

ବନ୍ୟୋପଦକୀ—ସ୍ତ୍ରୀ. ବି. ଲତାବିଶେଷ, ବନପୋଇ।

ବନ୍ର—ପୁଂ.ବି. (ବନ୍+ର)ଅଂଶୀ, ଭାଗୀ।

ବପ—ପୁଂ. ବି. (ବପ୍+ଭା.ଅ) ବପନ ଦେଖ।

ବପନ—କ୍ଳୀ. ବି. (ବପ୍+ଭା.ଅନ) କେଶମୁଣ୍ଡନ, ବୀଜ ରୋପଣ, ମକ୍ଷିବୁଣିବା, ଲୁଗାବୁଣିବା, ଅସ୍ଥି, ମଜ୍ଜା, ଶୁକ୍ର, କ୍ଷୌରକର୍ମ, ଗର୍ଭାଧାନ, ନିଷେକ କ୍ରିୟା।

ବପନୀ—ସ୍ତ୍ରୀ. ବି. (ବପନ+ଈ)ନାପିତଶାଳା, ଭଣ୍ଡାରଘର, ତନ୍ତଘର, ତନ୍ତୀ ଯେଉଁଠାରେ ଲୁଗା ବୁଣେ।

ବପନୀୟ—କ୍ରି.ବଂ. (ବପ୍+ଅନୀୟ)ବୀଜବପନର ଉପଯୁକ୍ତ, ନିଷେକ ଯୋଗ୍ୟ।

ବପରୁ—ପୁଂ. ବି. କେଶରାଜ।

ବପା—ବି. (ବପ୍+କ.ଅ+ଆ) ରନ୍ଧ୍ର, ଛିଦ୍ର, ମେଦ, ମାଂସ, ଚର୍ବି।

ବପାବହ—କ୍ଳୀ. ବି. ମେଦସ୍ଥାନଯୁକ୍ତ, କୋଷ୍ଠାଙ୍ଗ। [ ଜନକ।

ବପିଲ—ପୁଂ. ବି. (ବପ୍+ଇଲ) ପିତା,

ବପୁ—ଗ୍ରା. ବି. କାୟ, ଶରୀର, ଦେହ, ବହ୍ନପ, ଶାରୀରକ, ବଳ, ଶକ୍ତି, କ୍ଷମତା।

ବପୁଃ—ବି. (ବପ୍+କ.ଉସ୍) ଶରୀର, ଦେହ।

ବପୁନ—ପୁଂ.ବି.(ବପ୍+ଉନ)ଦେବତା।

ବପୁର୍ଧର—କ୍ରି. ବଂ. ଦେହଧାରୀ।

ବପୁଷ୍ଟମା—ସ୍ତ୍ରୀ.ବି.(ବପୁସ୍+ତମ+ଆ) ସର୍ବାଙ୍ଗଶୋଭନା ସ୍ତ୍ରୀ, ପରୀକ୍ଷିତଙ୍କ ପୁତ୍ର ଜନମେଜୟଙ୍କ ଭାର୍ଯ୍ୟା, ପଦ୍ମଗୁରୁଶୀଳତା, ସ୍ଥଳପଦ୍ମ ଗଛ।

ବପୁଷ୍ମାନ୍—ପୁଂ. ବଂ. (ବପୁସ୍+ମତ୍) ପ୍ରଶସ୍ତଶରୀର, ସୁନ୍ଦର ଓ ସ୍ଥୂଳକାୟ, (ବି) ଶାଲ୍ମଳୀଦ୍ୱୀପର ରାଜା। [ ହିତକର।

ବପୁଷ୍ୟ—କ୍ରି. ବଂ. (ବପୁଷ୍+ଯ) ଶରୀର-

ବପୁଃପ୍ରକର୍ଷ—କ୍ରି.ବଂ.ଶାରୀରିକ ସୌନ୍ଦର୍ଯ୍ୟ

ବପୁଃସ୍ରବ—ପୁଂ.ବି. ଶରୀରସ୍ଥ ରସଧାତୁ।

ବପ୍ତବ୍ୟ—କ୍ରି.ବଂ. (ବପ୍+ତବ୍ୟ)ବପନୀୟ, ବପନଯୋଗ୍ୟ।

ବପ୍ତା—ପୁଂ. ବି. (ବପ୍+ତୃ) ଜନକ, ପିତା, କବି, ଭଣ୍ଡାରି, କୃଷକ, (ବଂ) ବୀଜବପନକାରୀ।

ବପ୍ପ—ପୁଂ.ବି. ବାପ, ପୂଜ୍ୟଜନ, ମେବାର ରାଣାଙ୍କର ପୂର୍ବପୁରୁଷ।

ବପ୍ପୀହ—ପୁଂ. ବ. ଚାତକ ।
ବପ୍ର—ବି. (ବପ୍ + ଅଧି.ର) କେଆର,ଜମି, କ୍ଷେତ, ତୀର, ପର୍ବତର ସାନୁ, କାନ୍ଥ, (ସଂ.ର) ପ୍ରାଚୀର, ଦୁର୍ଗ ବା ନଗରର ପ୍ରାନ୍ତପରିଖାରୁ ଉଦ୍ଧୃତ ମୃତ୍ତିକାସ୍ତୂପ, କ୍ଷେତର ହିଡ଼, (କ.ର) ବାପ, ପିତା, ପ୍ରଜାପତି, ସୀସକ, ଧୂଳି, ମାଟିର ଢିପ, ନଦୀଆଦିର ଅତଡ଼ା, ପର୍ବତଶୃଙ୍ଗ ।
ବପ୍ରକ—ପୁଂ. ବ. ଗୋଲବୃତ୍ତର ପରିଧି ।
ବପ୍ରକ୍ରିୟା(କ୍ରୀଡ଼ା)—ସ୍ତ୍ରୀ. ବ. (୬ତତ୍) ତଟାଘାତ,ଶୃଙ୍ଗୀ ବା ଦନ୍ତୀଙ୍କର ମୃତ୍ତିକା ଘାତରୂପ କ୍ରୀଡ଼ା, ଉତ୍ଖାତ କେଳି ।
ବପ୍ରା—ସ୍ତ୍ରୀ. ବ. (ବପ୍ର + ଆ) ମଞ୍ଜିଷ୍ଠା ।
ବପ୍ରାନତ—ବି. ବଂ. କ୍ରୀଡ଼ାସ୍ଥ ଉଚ୍ଚଭୂମି ସମ୍ମୁଖେ ଅବନତ ମସ୍ତକ ।
ବପ୍ରାନ୍ତର—ଅବ୍ୟ. ତଟଦ୍ୱୟ ମଧ୍ୟବର୍ତ୍ତୀ ।
ବପ୍ରାଭିଘାତ—ପୁଂ. ବ. ବପ୍ରକ୍ରୀଡ଼ା ।
ବପ୍ରାମ୍ଭସ୍ରୁତ—ସ୍ତ୍ରୀ. ତ. ନଦୀକୂଳବାହୀ ସ୍ରୋତଜଳ, ଶାଖାନଦୀ ।
ବପ୍ରାମ୍ଭଃ—କ୍ଲୀ.ବ. ତୀରବାହୀ ସ୍ରୋତଜଳ ।
ବପ୍ରି—ପୁଂ. ବ. ( ବପ୍ର+ଇ ) କ୍ଷେତ୍ର, ଦୁର୍ଗତି, ସମୁଦ୍ର । [ଶୈଳ ।
ବପ୍ରୀ—ସ୍ତ୍ରୀ.ବ. ବଲ୍ମୀକ,ଉଇହୁଙ୍କା,ଗଣ୍ଡ-
ବଫାତ୍—ଯା. ବ. ମୃତ୍ୟୁ ।
ବବ—ପୁଂ.ବ. ଜ୍ୟୋତିଷୋକ୍ତ ଏକାଦଶ କରଣ ମଧ୍ୟରୁ ପ୍ରଥମ କରଣ ।
ବବ(ବୁ)ର୍ଚ୍ଚି—ଯା. ବ. ପାଚକ, ସାହେବ ଓ ମୁସଲମାନମାନଙ୍କ ପାଚକ ।
ବବା—ଗ୍ରା. ପୁଂ. ବ. ବାପର ବଡ଼ଭାଇ, ବଦେଇ ।
ବବୁର(ଲ)—ଗ୍ରା. ବ. କଣ୍ଟାକୁସୁମ ଗଛ, କଣ୍ଟକୀ କ୍ଷୁଦ୍ର ବୃକ୍ଷବିଶେଷ ।
ବବୁରିବାଳ—ଗ୍ରା. ବ. ବାଗୁଲି ବାଳ, କାକପକ୍ଷ ।
ବବ୍ରା—ପ୍ରା. (ସମ୍ବ) ବ. ବବ୍ର ଦେଖ ।
ବଭ୍ରୀ—ସ୍ତ୍ରୀ. ବ. (ବଭ୍ରୁ+ଈ) ଶିବ-ପତ୍ନୀ, ଦୁର୍ଗା ।
ବଭ୍ରି—ବି. (ବଭ୍ର+ଇ) ବଜ୍ର ।
ବଭ୍ରୀ—ବି. ଉଇ ।
ବଭ୍ରୀକୂଟ—ବି. (୬ତତ୍) ଉଇହୁଙ୍କା ।
ବଭ୍ରୁ—ବି. (ଭୃ+କ.ଉ) ଶିବ, ବିଷ୍ଣୁ, ମୁନିବିଶେଷ, ଦେଶବିଶେଷ, ବହ୍ନି, ଗେରୁମାଟି,ନେଉଳ,ମୁଷା,ଭାରତବର୍ଷୋକ୍ତ ଯଦୁବଂଶୀୟ ଜନୈକ ବୀର,ପିଙ୍ଗଳବର୍ଣ୍ଣ, ସୁଶ୍ରୁତୋକ୍ତ ଏକପ୍ରକାର ସର୍ପ, (ବଂ) ପାଳନକର୍ତ୍ତା, ପାଳକ, ବିଶାଳ, ପିଙ୍ଗଳ ରୋଗଯୋଗୁଁ ଟାଙ୍ଗରା ।
ବଭ୍ରୁଧାତୁ—ବି. ସୁବର୍ଣ୍ଣ ଗୈରିକ, ସୁନା ଗେରୁ, ହଳଦିଆ ଗେରୁମାଟି ।
ବଭ୍ରୁବାହନ—ପୁଂ. ବ. ଚିତ୍ରାଙ୍ଗଦା-ଗର୍ଭରେ ଅର୍ଜୁନଙ୍କ ଔରସରେ ଜାତ ପୁତ୍ର, ଆସାମଦେଶସ୍ଥ ମଣିପୁରର ରାଜା ।
ବମ୍—ଅବ୍ୟ. ଶିବପୂଜାଙ୍ଗ ଗଲ୍ଲବାଦ୍ୟ, ବରୁଣବୀଜ, (ଗ୍ରା.ବି) ମହାଦେବ ।
ବମ୍‌ତୋଡ଼—ପ୍ରା. ସମ୍ବ.ବ. ବମି ଦେଖ ।
ବମ୍‌ବନିବା—ଗ୍ରା.କ୍ରି. ହୃଷ୍ଟ ପୁଷ୍ଟହେବା, ସ୍ଥୂଳକାୟ ହେବା ।
ବମ୍‌ଭୋଳା—ଗ୍ରା. ବ. ମହାଦେବ, ଗଲ୍ଲ-ବାଦ୍ୟ ପୂର୍ବକ ମହାଦେବଙ୍କ ପ୍ରତି ଭକ୍ତର ରାବ ।
ବମ—ବି. (ବମ୍+ଅ) ବମନ, ବାନ୍ତି, ଉଦ୍ଗୀରଣ, ନିଃସାରଣ ।
ବମ(ମୁ-ମୋ)ଜିବ୍-ଯା. ଅବ୍ୟ.ମୁତାବକ ।
ବମଥୁ—ବି. (ବମ୍+ଅଥୁ)ବମନ ଦେଖ, ବାନ୍ତି, ଉଦ୍ଗୀରଣ, ନିଃସାରଣ ।
ବମନ—କ୍ଲୀ. ବ. (ବମ୍+ଅନ) ଛର୍ଦ୍ଦନ, ବମନଦ୍ରବ୍ୟ, ଯାହାଦ୍ୱାରା ବାନ୍ତି ହୁଏ, ଅର୍ଦ୍ଦନ, ଆହୁତ, ଆହାର, ନିଃସାରଣ, ଉଦ୍‌ଗୀରଣ, କଷ୍ଟ, ଯନ୍ତ୍ରଣା, ବାନ୍ତି ।
ବମନୀ—ସ୍ତ୍ରୀ. ବ.(ବମନ+ଈ)ଜଳୌକା, ଜୋକ ।
ବମନୀୟ—ବଂ.(ବମ୍+ସଂ.ଅନୀୟ)ବମନ କରାଯିବାର ଯୋଗ୍ୟ,(ବି)ମାଛି,ମକ୍ଷିକା ।
ବମନୀୟା—ସ୍ତ୍ରୀ. ବ. ( ବମନୀୟ+ଆ ) ମାଛି, ମକ୍ଷିକା ।
ବମନେଚ୍ଛା—ବି.(୬ତତ୍)ବାନ୍ତିମଡ଼ାଇବା
ବମନୋଦ୍ବେଗ—ବି. (୬ତତ୍) ବଳବତୀ ବମନେଚ୍ଛା ।
ବମା—ଗ୍ରା.ବି. ଧାନରୁ ବାହାରିବା ରକ୍ତ-ହୀନ ପକ୍ଷଯୁକ୍ତ ଏକପ୍ରକାର ଧଳାରଙ୍ଗର କ୍ଷୁଦ୍ର ପୋକ ।
ବମାଖିଆ—ଗ୍ରା. ବଂ. ବମାପୋକ ଖାଇ-ଯାଇଥିବା (ଧାନ୍ୟାଦି), କୀଟଦଷ୍ଟ ।
ବମାଲ୍—ଯା. ଅବ୍ୟ. ନଷ୍ଟଦ୍ରବ୍ୟ ସହିତ, ଚୋରମାଲ ସହିତ ।
ବମି—ବି. (ବମ୍+ଇ) ବମନ, ଛର୍ଦ୍ଦନ, ରୋଗ ବିଶେଷ, ବାନ୍ତିହେବା ରୋଗ, ବାନ୍ତି.(କ.ଇ)ଅଗ୍ନି,ଧୂର୍ତ୍ତ,ଠକ, (ଗ୍ରା:ବି) ସର୍ପାକୃତି ଅଣ୍ଡଯୁକ୍ତ ଏକପ୍ରକାର ମାଛ ।
ବମିତ—ବଂ. ( ବମ୍+ଣିଚ୍+କ.ତ ) ବାନ୍ତି, ବମନଯୁକ୍ତ, ପୀଡ଼ିତ, ଉଦ୍ଗୀର୍ଣ୍ଣ, ବମନକୃତ (ବସ୍ତୁ) ।
ବମିତବ୍ୟ—ବଂ.(ବମ୍+ତବ୍ୟ) ବମନର ଉପଯୁକ୍ତ, ବମନୋଦ୍ରେକକାରୀ ।
ବମୀ—ପୁଂ. ବଂ. (ବମ୍+ଇନ୍)ବମନ-କାରୀ, ପୀଡ଼ିତ । [ସମସ୍ତ ।
ବମେ—ଯା. ଅବ୍ୟ. ସକଳ ପ୍ରକାରର,
ବମ୍ପର—ଯା.ବ.ମଟରଗାଡ଼ିର ସାମନାରୁ ହାବୁଡ଼ ଯିବା ବସ୍ତୁର ଧକ୍କା ସମ୍ଭାଳିବା ପାଇଁ ମଟର ଆଗରେ ଲାଗିଥିବା ଅର୍ଗଳ ବିଶେଷ ।
ବମ୍ବା—ଯା. ବ. ନଳାକାର ଖୁଣ୍ଟ, ନାଳ, ସ୍ଥାୟୀକୀଲକ ।
ବମ୍ବାଜି—ଗ୍ରା. ବ. ଉଚ୍ଚଶବ୍ଦକାରୀ ବାଣ ବିଶେଷ, ତୋପବାଜିବାଣ ।
ବମ୍ବା(ମ୍ବେ)ଟିଆ—ଗ୍ରା. ବ. ଗୋଲନ୍ଦାଜ ସୈନ୍ୟ, ଜଳଦସ୍ୟୁ, ନଦୀ ଓ ସମୁଦ୍ରର ଡକାଇତ, (ଗ୍ରା. ବଂ) ଧପ୍ପାଦିଆ ।
ବମ୍ବୁ—ଯା. ବ. ବାଉଁଶ, ବାଉଁଶକାଠି ।
ବମ୍ବୁରୁ—ପ୍ରା. (କଳାହାଣ୍ଡି). ବ. ବନ୍ଧନ-କାଠପର ଏକପ୍ରକାର ଟାଣୁଆ କାଠ ।
ବମ୍ବେଇ—ଗ୍ରା. ବ. ଭାରତର ପଶ୍ଚିମ ଉପକୂଳସ୍ଥ ପ୍ରଦେଶ ଓ ରାଜଧାନୀ ।
ବମ୍ର—ବି. ବଂଶ, ବାଉଁଶ । [ମକ୍ଷିକା ।
ବମ୍ରର—ବି. (ବମ୍ର+ର+ଅ) ମଧୁ-
ବମ୍ରରାଳୀ(ଣୀ)—ବି. ମଧୁମକ୍ଷିକା ସମୂହ, ମକ୍ଷିକା, ମାଛି, ଭ୍ରମର ।

ବମ୍ଭାରବ-*ବି. ହମ୍ବାରବ, ଗୋରୁମାନଙ୍କ ହମ୍ବାରଡ଼ି ।
ବମ୍ରୀକୂଟ—କ୍ଲୀ. ବି. ବଲ୍ମୀକ. ଉଇହୁଙ୍କା ।
ବମ୍ରକ—ବି. ହ୍ରସ୍ୱକାୟସ୍ଥ ପିପୀଲିକା ।
ବୟ୍ନ—ପୁଂ.ବି.(ବେ + କ.ଅ)ତନ୍ତୁବାୟ ତନ୍ତ୍ରୀ. ଲୁଗାବୁଣିଲାବାଲା,ବାୟାଚଢ଼େଇ
ବୟଃ—ବି.(ବୟ୍ନ + ଅସ୍)ବୟସ,ଜୀବନ, ଆୟୁ. ଯୌବନ, ପକ୍ଷୀ ।
ବୟଃକ୍ରମ—ବି. (୬ତତ୍) ଆୟୁଷ୍କାଳ, ଜୀବିତକାଳ, ପରମାୟୁ ।
ବୟଃସନ୍ଧି—ବି. ( ୬ତତ୍ ) ବାଲ୍ୟ ଓ ଯୌବନର ସଂଯୋଗ ସ୍ଥଳ,ଯୌବନ-ଆରମ୍ଭ ।
ବୟଃସ୍ଥ—ପୁଂ. ବିଂ.(ବୟଃ + ସ୍ଥା + ଅ) ମଧ୍ୟବୟସ୍କ, ଯୁବା, ସାବାଳଗ, ପ୍ରାପ୍ତ-ବୟସ୍କ ।
ବୟଃସ୍ଥା—ସ୍ତ୍ରୀ. ବିଂ. ( ବୟଃସ୍ଥ + ଆ ) ଯୁବତୀ, ବିବାହର ଉପଯୁକ୍ତା, (ସ୍ତ୍ରୀ.ବି) ତ୍ରିଫଳା, ହରଡ଼ା-ବାହାଡ଼ା, ଅଁଳା, ଗୁଳୁଚି, ସୋମଲତା, କାକୋଲି, ଆମ୍ଳିତିଶାଗ, ଶ୍ରେଷ୍ଠ ଅଳେଇଚ, ଗୁଜୁ-ରାତି, ଶିମିଳି, ଯୁବତୀ ସ୍ତ୍ରୀ ।
ବୟଃସ୍ଥାନ—କ୍ଲୀ. ବି. ବୟସ୍ଥାନ ଦେଖ ।
ବୟନ—କ୍ଲୀ. ବି. ( ବେ + ଭା.ଅନ ) ବସ୍ତ୍ରନିର୍ମାଣ, ଲୁଗାବୁଣା ।
ବୟନବିଦ୍ୟା—ବି. ବସ୍ତ୍ରାଦିନିର୍ମାଣ ରୂପ ଶିଳ୍ପ ବିଶେଷ, ଲୁଗାବୁଣା ଶିକ୍ଷା ।
ବୟସ—ପୁଂ. ବି. ପକ୍ଷୀ, (କ୍ଲୀ.ବି)ଜୀବନ-କାଳ, ଯୌବନ, ଯୁବାବୟସ ।
ବୟସକାଳ—ଗ୍ରା.ବି. ଯୁବାବୟସ, ପଚ-ଶତ ବୟସ ।
ବୟସଛଉ—ଗ୍ରା. ବି.(ସଂ-ବୟସ୍ + ଶ୍ୱିନ୍ନ) ଯୌବନ ସମୟରେ ଦେହରେ ହେବ ଶ୍ୱିନ୍ନରୋଗ ।
ବୟସସନ୍ଧି—ଗ୍ରା. ବି. ବୟଃସନ୍ଧିଦେଖ
ବୟସି—ଗ୍ରା. ପୁଂ. ବିଂ. ( ସଂ-ବୟଃସ୍ଥ ) ବୟସବିଶିଷ୍ଟ, ବୟସ୍ଥ, ଯାହାକୁ ଏତେ ବୟସ ହୋଇଅଛି ।
ବୟସୀ—ଗ୍ରା. ବିଂ. ବୟସିର ସ୍ତ୍ରୀଲିଙ୍ଗ, ଯୁବତୀ, (ଗ୍ରା.ସ୍ତ୍ରୀ. ବି. ସଂ-ବୟସ୍ୟ)ସହ-ଚରୀ, ସମବୟସ୍କା ସଖୀ ।
ବୟସ୍କ—ପୁଂ. ବିଂ. ବୟସଯୁକ୍ତ, ବୟସ୍ଥ. ସାବାଳଗ, ପୂର୍ଣ୍ଣଯୌବନ,ଯେ ବୟ-ସରେ ବଡ଼ ।
ବୟସ୍କୃତ୍—ବିଂ. (ବୟଃ + କୃ + କ୍ୱିପ୍) ଆୟୁଷ୍ୟପ୍ରଦ, ପରମାୟୁ ବୃଦ୍ଧିକର ।
ବୟସ୍ଥ—ପୁଂ. ବିଂ. (ବୟ + ସ୍ଥା + ଅ) ବୟଃସ୍ଥ ଦେଖ ।
ବୟସ୍ଥା— ସ୍ତ୍ରୀ.ବି ଓ ବିଂ.ବୟଃସ୍ଥା ଦେଖ ।
ବୟସ୍ଥାନ—କ୍ଲୀ. ବି. ଯୌବନ ।
ବୟସ୍ଥାପନ—ବି. ଯୌବନରକ୍ଷା ।
ବୟସ୍ୟ—ପୁଂ. ବି. ( ବୟସ୍ + ଯ ) ସମାନବୟସ୍କ, ସଖା, ସଙ୍ଗୀ,ସହଚର, ସମବୟସ ମିତ୍ର ବା ବନ୍ଧୁ ।
ବୟସ୍ୟା—ସ୍ତ୍ରୀ. ବି.(ବୟସ୍ୟ + ଆ)ସଖୀ, ସହଚରୀ, ଇଷ୍ଟକା, ଇଟା ।
ବୟସ୍ୟକ—ପୁଂ. ବି. ବୟସ୍ୟ ଦେଖ ।
ବୟା—ସ୍ତ୍ରୀ. ବି. ଶାଖା, ବୟସ ।
ବୟାଅଶୀ—ଗ୍ରା. ବି. ୮୨ସଂଖ୍ୟା, (ବିଂ) ୮୨ସଂଖ୍ୟକ, ୮୨ସଂଖ୍ୟାର ପୂରକ ।
ବୟାନ—ଗ୍ରା. ବି. (ସଂ-ବର୍ଣ୍ଣନ) ବାକ୍ୟ, ବିବରଣ, ବ୍ୟାଖ୍ୟା, ବର୍ଣ୍ଣନ, ବୃତ୍ତାନ୍ତ, ବ୍ୟାଖ୍ୟାନ ।
ବୟାନବେ—ଗ୍ରା. ବି. ୯୨ସଂଖ୍ୟା, (ବିଂ) ୯୨ସଂଖ୍ୟକ, ୯୨ସଂଖ୍ୟାର ପୂରକ ।
ବୟାର—ଗ୍ରା. ବି. ବତାସ, ତୋଫାନ, ପ୍ରବଳବାୟୁ ।
ବୟାଳିଶ—ଗ୍ରା. ବି. ଦୁଇଅଧିକ ଚାଳିଶ, ୪୨ସଂଖ୍ୟା, (ବିଂ) ୪୨ସଂଖ୍ୟକ ।
ବୟୂନ—କ୍ଲୀ. ବି. ଜ୍ଞାନ, ଦେବତାଗାର, (ପୁଂ. ବି) କୃଶାଶ୍ୱଙ୍କ ପୁତ୍ର ।
ବୟେଦ—ଯା. ବି. ଶାସ୍ତ୍ରବାକ୍ୟ,ଶ୍ଳୋକର ଚରଣ ।
ବୟୋଗତ—କ୍ଲୀ. ବି. (ବୟସ୍ + ଗତ) ବୟୋହାନ, ବୃଦ୍ଧତ୍ୱ, (ବିଂ) ବୃଦ୍ଧ,(ସ୍ତ୍ରୀ) ବୟୋଗତା ।
ବୟୋଽତିଗ—ବିଂ ବୃଦ୍ଧାବସ୍ଥା ପ୍ରାପ୍ତ ।
ବୟୋଽତୀତ—ପୁଂ.ବିଂ. (ବୟଃ + ଅତୀତ) ବୃଦ୍ଧ, (ସ୍ତ୍ରୀ) ବୟୋଽତୀତା ।
ବୟୋଽଧିକ—ବିଂ. (୭ତତ୍) ବୟୋ-ଜ୍ୟେଷ୍ଠ, ବୃଦ୍ଧ, ବୟଃପ୍ରବୀଣ । [ ବଡ଼ ।
ବୟୋଜ୍ୟେଷ୍ଠ—ବିଂ.(୩ତତ୍)ବୟସରେ
ବୟୋଦୋଷ—ପୁଂ. ବିଂ. ( ୬ତତ୍ ) ବୟସର ଦୋଷ, ବୟସର ନୈସର୍ଗିକ ନୀଚଗୁଣ ।
ବୟୋଧର୍ମ—ପୁଂ. ବି. (୬ତତ୍)ବୟସର ଧର୍ମ, ବୟସର ଗୁଣ ।
ବୟୋବୟଃଶୟ—ବି. ଖାଦ୍ୟଦ୍ରବ୍ୟପୂର୍ଣ୍ଣ ସ୍ଥାନରେ ବାସ ।
ବୟୋଽବସ୍ଥା—ବି. ଜୀବନକାଳ, ବାଲ ତରୁଣ ଓ ବୃଦ୍ଧାଦି ଅବସ୍ଥା ।
ବୟୋବିଧ—ବିଂ. ପକ୍ଷୀପ୍ରକୃତି ସମ୍ବନ୍ଧୀୟ
ବୟୋବୃଦ୍ଧ—ପୁଂ. ବିଂ. ବାର୍ଦ୍ଧକ୍ୟପ୍ରାପ୍ତ, ବୟୋଜ୍ୟେଷ୍ଠ, ଯେ ବୟସରେ ବଡ଼ ।
ବୟୋବୃଦ୍ଧି—ବି. (୬ତତ୍) ବୟସର ବୃଦ୍ଧି, ବୟସର କ୍ରମରେ ବଢ଼ିବା ।
ବୟୋବୃଧ୍—ବିଂ. ( ବୟବୃଧ୍ + କ୍ୱିପ୍ ) ବଳବର୍ଦ୍ଧନକାରୀ, (ପ୍ରାତଃ ଓ ସାୟଂ-କାଳୀନ ବାୟୁ ।
ବୟୋହାନ—ବି. (୬ତତ୍) ଯୌବନ-ହ୍ରାସ, ବୃଦ୍ଧତ୍ୱ ।
ବୟୋବଙ୍ଗ—ବି. ( ବୟସ୍ + ବଙ୍ଗ ) ସୀସକ, ସୀସା ।
ବର୍‌କରାର୍—ଯା. ବିଂ. କାଏମ୍, ସୁସ୍ଥିର, ଉପସ୍ଥିତ, ମଉଜୁଦ୍ ।
ବର୍‌ଖିଲାପ୍—ଯା.ବିଂ. ପ୍ରତିକୂଳ, ବିରୁଦ୍ଧ, (ବି) ପ୍ରତିକୂଳତା, ତ୍ରୁଟି ।
ବର୍‌ଖୀ—ପ୍ରା.(ସମ୍ବ)ବି. ରେକେଇ ।
ବର୍‌ଗାଏ(ୟୁ)—ପ୍ରା. (ଲକ୍ଷିଆ)ବି. ଗଉଡ଼
ବର୍‌ତରଫ୍—ଯା. ବିଂ. ଅଲଗା, ପୃଥକ୍, ବରଖାସ୍ତ, କାର୍ଯ୍ୟରୁ ବହିଷ୍କୃତ ।
ବର୍‌ନା—ପ୍ରା.(ସମ୍ବ)ବି. ବଡ଼ିଶା,ଝାଡ଼ୁ ।
ବର୍‌ପାଲ୍—ପ୍ରା. (ସମ୍ବ) ବି. ବରଗଛର ଓହଳ । [ ଗୁଣ୍ଡ଼ ।
ବର୍‌ବଟି—ପ୍ରା.(ସମ୍ବ)ବି. ଧୂଡ଼ଙ୍ଗ, ବର-
ବର୍‌ବୃଢ଼—ପ୍ରା.(ସମ୍ବ)ବି. ବରଗଡ଼ାଞ୍ଚଳ

ବରହ୍ମା—ସ୍ତ୍ରୀ.(ସମ୍ବୋଧ.ବାର୍ଦ୍ଧା, ନ୍ୟ-ବସ୍ତ୍ର ।

ବର—କ୍ଲୀ.ବି. (ବୃ+ଅ।କୁଙ୍କୁମ.ଜାଫ୍ରାନ୍, ତ୍ୱକ୍, ଦାଲଚିନି, ଆର୍ଦ୍ରକ, ଅଦା. ସୈନ୍ଧବ ଲବଣ, ସୁଗନ୍ଧତୃଣ, (ପୁଂ.ବି)ବାଳକ, ବରଣ, ବୃତ୍ତି,ପ୍ରାର୍ଥନା, ନିଗ୍ରହ,ବକୁଳ, ଜଳଧୀ, ପର୍ବତବିଶେଷ, ପିଆଳବୃକ୍ଷ, ଭୂଇଁଅଗଛ, ନବବିବାହିତ ପୁରୁଷ, ଜାମାତା, ଭର୍ତ୍ତା, ସ୍ୱାମୀ, ବୋଧାର୍ଥ ସ୍ଥିରୀକୃତ ପାତ୍ର, ଆଶୀର୍ବାଦ, ଶିବ, ମହାଦେବ, ଦେବତା ଆଦିଙ୍କ ଆଶୀ-ର୍ବାଦରୁ ମନୋରଥ ସିଦ୍ଧି ଶିଳ୍ପ,ଲମ୍ପଟ ବ୍ୟକ୍ତି, ଜାର, ଅସୁରବିଶେଷ,ବେଷ୍ଟନ, ଶତାବରୀ, ଡାଲଚିନି, ବାସ୍ତୁଚଢ଼େଇ, (ବିଂ) ପ୍ରବର, ଶ୍ରେଷ୍ଠ, ପ୍ରଧାନ, ଉତ୍କୃଷ୍ଟ, ଅଭୀଷ୍ଟ,ଈପ୍ସିତ, ଅଳ୍ପ,(ଗ୍ରା.ବି)ବଟବୃକ୍ଷ, ଦେବତାଙ୍କ ନିକଟରେ ଯାଚିତ ବସ୍ତୁ ।

ବରଓହଳ—ଗ୍ରା.ବି. ବରଗଛର ଶାଖା-ମଧ୍ୟରୁ ତଳମୁଖା ହୋଇ ବାହାରିବା ଚେର ।

ବରଂ—ଅବ୍ୟ. (ବୃ+ଅମ୍) ଶ୍ରେୟସ୍କର, ଏକପକ୍ଷରେ, ଅଧିକନ୍ତୁ, ଅପେକ୍ଷାକୃତ ଉତ୍କୃଷ୍ଟ, ଇଚ୍ଛାର ବିଷୟୀଭୂତ ।

ବରଂବରା—ସ୍ତ୍ରୀ.ବି. ଦନ୍ତିପର୍ଣ୍ଣୀ,ସୂତ୍ରକଳା

ବରକ୍—ଯା. ବି. ପତ୍ର, ପର୍ଣ୍ଣ, ପୁସ୍ତକର ପତ୍ର, ସୁନାରୁପାର ପତଳାପତ୍ର,ତବକ (ଯାହା ମିଠାଇଆଦି ଉପରେ ଜଡ଼ା-ଯାଏ) ।

ବରକ—ବି. ( ବୃ+କ.ଅକ ) ପୋତା-ଚ୍ଛାଦନ, ଆଚ୍ଛାଦନ ବସ୍ତ୍ର, ବସ୍ତ୍ର, ବନ-ଧାନ୍ୟ, ପର୍ପଟକ, କ୍ଷେତପାପଡ଼ା,ବନ-ମୁଦ୍ଗ, ତ୍ରିପୁଙ୍ଖବିଶେଷ, ଶ୍ରେଷ୍ଠ ବର-କୋଳି, (ବର+କ) ବର, ଅଭୀପ୍ସିତ ଫଳ, କନ୍ୟାର ବିବାହପ୍ରାର୍ଥୀ ବ୍ୟକ୍ତି, (ବୃ+ଣ.ଅକ) ଗାମୁଛା, ( ମୁଁ.ଅକ ) ବନ୍ୟ ଶିମ୍ବବିଶେଷ, (ବିଂ)ବରଣକାରୀ, କନ୍ୟାର ବିବାହପ୍ରାର୍ଥୀ ।

ବରକତ—ଯା.ବି.ଆଶୀର୍ବାଦ,ସୌଭାଗ୍ୟ, ଦେବାନୁଗ୍ରହ,ମଙ୍ଗଳ,ପ୍ରାଚୁର୍ଯ୍ୟ,ବଢ଼ନ୍ତି, ଉନ୍ନତି ।

ବରକତି—ଯା.ବିଂ. ଭାଗ୍ୟବାନ୍, ଶ୍ରୀବୃଦ୍ଧି-ଶାଳୀ, ପ୍ରାଚୁର୍ଯ୍ୟପୂର୍ଣ୍ଣ ।

ବରକନ୍ଦାଜ--ଯା.ବି.ବନ୍ଧୁକଧାରୀ ସୈନ୍ୟ, ସିପାହୀ, ଯଷ୍ଟିଧାରୀ ପ୍ରହରୀ, ଚପରାଶୀ, ପିଅନ, କନଷ୍ଟେବଲ୍ ।

ବରକନ୍ୟା—ବି. (ଦ୍ୱନ୍ଦ୍ୱ) ବରପାତ୍ର ଓ କନ୍ୟାପାତ୍ର, ନବବିବାହିତ ପୁରୁଷ ଓ ବଧୂ, (କ.ଧା) ଉତ୍କୃଷ୍ଟ କନ୍ୟା ।

ବରକୀର୍ତ୍ତି—ସ୍ତ୍ରୀ.ବି. ପଞ୍ଚତନ୍ତ୍ରୋକ୍ତ ବ୍ୟକ୍ତି-ବିଶେଷ ।

ବରକୁଡ଼ା—ଗ୍ରା.ବି.ଚିଲିକାମଧ୍ୟସ୍ଥ ଗୋଟିଏ କ୍ଷୁଦ୍ର ଦ୍ୱୀପ ।

ବରକୋଳି—ଗ୍ରା. ବି. ବଦରବୃକ୍ଷ ଓ ତାହାର ଫଳ ।

ବରକୋଳିଆ—ଗ୍ରା.ବିଂ. ବରକୋଳି ପରି, ଆକାରରେ ବରକୋଳି ପରି ।

ବରକୋଳିଆଟୋପା--ଗ୍ରା.ବି.ବରକୋଳି ପରି ବଡ଼ ବର୍ଷା ବିନ୍ଦୁ ।

ବରକୋଳିଆବସନ୍ତ—ଗ୍ରା.ବି.ବରକୋଳି ପରି ବଡ଼ ବଡ଼ ବସନ୍ତ ରୋଗର ବିସ୍ଫୋ-ଟକ । [ ଇନ୍ଦ୍ର ।

ବରକ୍ରତୁ—ପୁଂ.ବି. (ବର+କ୍ରତୁ(ବ.ବ୍ରୀ)

ବରଖାସ୍ତ—ଯା.ବିଂ. ପଦଚ୍ୟୁତ,କାର୍ଯ୍ୟରୁ ଅନ୍ତର ହୋଇଥିବା, କାର୍ଯ୍ୟଶେଷ କରିଥିବା (କଚେରି),(ବି) ପଦଚ୍ୟୁତି, ଚାକିରିରୁ ଅନ୍ତର, କଚେରିର କାର୍ଯ୍ୟ ବନ୍ଦହେବା ।

ବରଖାସ୍ତକରିବା—ଗ୍ରା. କ୍ରି. (କୌଣସି ବ୍ୟକ୍ତିଙ୍କୁ) ପଦଚ୍ୟୁତ କରିବା, ଡିସ୍‌ମିସ୍ କରିବା, ମୁଲତବି କରିବା ।

ବରଖାସ୍ତି—ଯା.ବିଂ. ବରଖାସ୍ତସମ୍ବନ୍ଧୀୟ

ବରଖେ(ଖୋ)ଲ(ପ)ଫ୍—ଯା.ବିଂ.ବିପରୀତ ଭଳି, ଅମଙ୍ଗଳଜନକ, ଅସଙ୍ଗତ,(ବି) କାର୍ଯ୍ୟରେ ହେଳା, ଅମଙ୍ଗଳ, ଅସ-ଙ୍ଗତ ।

ବରଖେ(ଖୋ)ଲଫି—ଯା.ବି.ବିପରୀତ ଭାବ

ବରଗ—ଗ୍ରା.ବି. ବର୍ଗ ଦେଖ, ବ.ଗ,ଷଢ଼, ଶୃଙ୍ଖଳା, ବାଗବନ୍ଦ, ସୁଶୃଙ୍ଖଳା,ସମୂହ

ବରଗଡ଼ା—ଗ୍ରା.ବି. (ସଂ-ବର୍ଦ୍ଧିତା) ଏକ-ପ୍ରକାର ଛୁରି, ଧୁଡ଼ୁଙ୍ଗ ।

ବରଗଣ—ଗ୍ରା.ବି. ପେରଣ, ପଠାଇବା, ବରଗିବା,ଦୂତପ୍ରେରଣ, ବିଦେଶବାସ, ପ୍ରବାସ ।

ବରଗା—ଗ୍ରା.ବି. କୋଠା ଛାତର କଡ଼ି କାଠଉପରେ ପକାଯିବା ସରୁ କଡ଼ି ।

ବରଗା(ଗୋ)ଇବା—ଗ୍ରା.କ୍ରି. ବରଗିବା କ୍ରିୟାର ଣିଜନ୍ତ ରୂପ ।

ବରଗିଆ—ଗ୍ରା.ବିଂ. ସୁସମ୍ବନ୍ଧ ।

ବରଗିବା—ଗ୍ରା.କ୍ରି. ପେଷିବା,ପଠାଇବା, କୌଣସି କାର୍ଯ୍ୟରେ ନିଯୋଗ କରିବା

ବରଗୀ—ଯା.ବି. ମହାରାଷ୍ଟ୍ରୀୟ ଅଶ୍ୱା-ରୋହୀ ଦେଶ ଲୁଣ୍ଠନକାରୀ (ଦସ୍ୟୁ) ସେନା । [ ଗାଛ ।

ବରଗୁଡ଼ି--ଗ୍ରା.ବି. (ସଂ-ବର୍ତ୍ତୀ) ଏକପ୍ରକାର

ବରଗୁଡ଼ିଆ—ଗ୍ରା.ବିଂ. ବରଗୁଡ଼ି ଆକାର ତୁଲ୍ୟ ଶ୍ରେଷ୍ଠ ଓ ଗୋଲ ।

ବରଗୁଡ଼ିମୁହିଁ—ଗ୍ରା.ପୁଂ.ବିଂ. ଯାହାର ମୁହଁ ଶରୀରର ଆକାର ତୁଳନାରେ ଅପେକ୍ଷାକୃତ ଶ୍ରେଷ୍ଠ ।

ବରଚନ୍ଦନ—କ୍ଲୀ. ବି. (ବର+ଚନ୍ଦନ) କାଳୀୟଚନ୍ଦନ, ଦେବଦାରୁ ।

ବରଚୀନ—ଗ୍ରା. ବିଂ. ଅତି ସୂକ୍ଷ୍ମ, ଅତି ପତଳା(ଲୁଗା) ।

ବରଛା—ଗ୍ରା.ବି. କଲମ, ଭାଲାସ୍ତ,ଠେଣ୍ଟା

ବରଜ—ବିଂ.(ବର+ଜନ୍+ଅ) ଜ୍ୟେଷ୍ଠ, (ଗ୍ରା.ବି) ପାନବଗିଚା ।

ବରଜାତ—ଗ୍ରା.ବି. ବିବାହ ହେବାପାଇଁ କନ୍ୟାଘରକୁ ଯିବା ବରସଙ୍ଗେ ଯାଉ-ଥିବା ବନ୍ଧୁବାନ୍ଧବଗଣ ।

ବରଜି(ଜୀ)—ଗ୍ରା.ବି. ଯେଉଁମାନେ ପାନ ଚାଷ କରନ୍ତି, ପାନରୀ ।

ବରଜିବା—ଗ୍ରା.କ୍ରି. ତ୍ୟାଗକରିବା,ଛାଡ଼ିବା

ବରଜୀବୀ—ପୁଂ.ବି.ଶୂଦ୍ରାଗର୍ଭଜାତ ବ୍ରାହ୍ମ-ଣର ଔରସ ସନ୍ତାନ, ଗଉଡ଼ ଓ ତନ୍ତୀଙ୍କଠାରୁ ଉତ୍ପନ୍ନ ବର୍ଣ୍ଣସଙ୍କର ଜାତି-ବିଶେଷ ।

ବରଝାଞ୍ଜି—ଗ୍ରା. ବି. ( ସଂ-ବଳାଢ୍ୟା )

ପୋଖରୀଆଦିର ପାଣିଉପରେ ଭାସମାନ ଏକପ୍ରକାର ଦଳ ।

**ବରଞ୍ଚ**—ଅବ୍ୟ. ବରଂ ଦେଖ ।

**ବରଟ**—କ୍ଲୀ.ବି. (ବୃ+ଅଟନ୍) କୁନ୍ଦପୁଷ୍ପ, (ପୁଂ.ବି) ହଂସ, ବେଙ୍ଗ, କୀଟବିଶେଷ, ଭିରୁଡ଼ି, ଶସ୍ୟବିଶେଷ, ବରଗୁଡ଼ି ।

**ବରଟକ**—ପୁଂ. ବି. କୁସୁମ୍ଭବୀଜ, ବରଟ ଦେଖ ।

**ବରଟା**—ସ୍ତ୍ରୀ.ବି. (ବରଟ+ଆ) ରାଜହଂସୀ, କୁସୁମ୍ଭବୀଜ, ଭିରୁଡ଼ିପୋକ, ପାରୁଡ଼ାପୋକ, ବଙ୍ଗ ।

**ବରଟୀ**—ସ୍ତ୍ରୀ. ବି. (ବରଟ+ଈ) ରାଜହଂସୀ, ଭିରୁଡ଼ିପୋକ, ପାରୁଡ଼ାପୋକ ଗନ୍ଧୋଳୀ । [ ଦେଖ ।

**ବରଟିକା**—ସ୍ତ୍ରୀ.ବି. କୁସୁମ୍ଭବୀଜ, ବରଟା

**ବରଡ଼ା**—ଗ୍ରା.ବି. ନଡ଼ିଆ ଓ ତାଳଗଛର ବାହୁଙ୍ଗାରେ ସଂଲଗ୍ନପତ୍ର, ପଡ଼ୁଆଗାଈ; ଯେଉଁ ବୁହାଁଳୀ ଗାଈର ଦୁଧ ବନ୍ଦ ହୋଇଯାଇଥାଏ, ଏକପ୍ରକାର ବଡ଼ ଜଙ୍ଗଲୀ ଗଛ (ଏହାର କୋମଳ ପତ୍ର ଗୋରୁମାନେ ଖିଆନ୍ତି), କଆଁରଲୁ କାଦୁଅ କରି ମଇ ଦେଇ ତା ଉପରେ ଧାନ ବୁଣିବା ।

**ବରଡ଼ାପତ୍ର**—ଗ୍ରା. ବି. ନଡ଼ିଆ ଓ ତାଳ ଗଛର ବାହୁଙ୍ଗାର ଦୁଇ ପାଖରେ ସଂଲଗ୍ନ ପତ୍ର ।

**ବରଡ଼ୁଆ**—ଗ୍ରା.ସ୍ତ୍ରୀ. ବିଂ. (ସଂ-ବସ୍କୟଣୀ) ପଡ଼ୁଆଗାଈ, ଯେଉଁ ଗାଈର ବାଛୁରୀ ବଡ଼ ହୋଇଗଲାରୁ ଗାଈ ଦୁଧ ଦିଏ ନାହିଁ କିମ୍ବା ଅତି ସାମାନ୍ୟ ଦୁଧଦିଏ ।

**ବରଣ**—କ୍ଲୀ.ବି. (ବୃ+ଭା.ଅନ)ନିଯୁକ୍ତକରଣ, ଆଚ୍ଛାଦନ, ବେଷ୍ଟନ,ପ୍ରାଚୀର, ପେଷଣ, ଇଚ୍ଛା, ବୃକ୍ଷବିଶେଷ, ବରୁଣଗଛ,ସେତୁ,ପୋଲ,ଉଷ୍ଟ୍ର, ଓଟ,ପ୍ରାର୍ଥନା, ପୂଜା, ସ୍ୱୟମ୍ବର ସଭାରେ ଉପସ୍ଥିତ ବହୁବ୍ୟକ୍ତିଙ୍କ ମଧ୍ୟରୁ ଜଣକୁ ଆପଣାର ବରବୋଲି ବାଛିବା, ନିମନ୍ତ୍ରଣ, ବୃତ୍ତିବିଶେଷ, ନିର୍ବାଚନ, ପ୍ରଶଂସା ଅର୍ଚ୍ଚନା, ସତ୍କାର, ବାରଣ, ଯଜମାନ ଗୁବାକ ନାରିକେଳ, ବସ୍ତ୍ରାଳଙ୍କାରାଦି ସହିତ ବ୍ରାହ୍ମଣଙ୍କୁ ଦେଇ ଆପଣାର ପ୍ରତିନିଧି ଭାବରେ ଦୈବକାର୍ଯ୍ୟାଦି କରାଇବା ଖଡ଼ି, ଯୌବନକଣ୍ଟକ, ମୁଖଜାତ ବ୍ରଣ, ବରଣ୍ଡ ।

**ବରଣକ**—ବିଂ. (ବରଣ+କ) ବରଣକାରୀ, (ବି) ଆଚ୍ଛାଦନ ।

**ବରଣଡ଼(ଡ଼ା)ଲ**—ଗ୍ରା.ବି.ମାଙ୍ଗଳିକଦ୍ରବ୍ୟ ପୂର୍ଣ୍ଣ ଗୁଙ୍ଗୁଡ଼ା ବା ପାତ୍ର ।

**ବରଣମାଳା**—ବି. (କ.ଧା) ବରଣସ୍ରକ୍ ସ୍ୱୟମ୍ବରରେ କନ୍ୟା ମନୋମତ ବରଙ୍କ ବେକରେ ଦେବା ପୁଷ୍ପମାଳା ।

**ବରଣସୀ**—ବି. ବାରାଣସୀ, କାଶୀ ।

**ବରଣସ୍ରକ୍**—ବି. ବରଣମାଳା ଦେଖ ।

**ବରଣା**—ବି. କାଶୀନଗରରେ ବହୁଥିବା କ୍ଷୁଦ୍ରନଦୀ, ସିନ୍ଧୁନଦର ଉପନଦୀବିଶେଷ, ବରଡ଼ ।

**ବରଣି**—ଗ୍ରା. ବି. ନିମନ୍ତ୍ରଣ, ବରଣ ।

**ବରଣିଆ**—ଗ୍ରା.ପୁଂ.ବିଂ. (ସଂ-ବରଣୀୟ) ଲୋକବଳଆଦିକୁ ନିମନ୍ତ୍ରିତ, ଯେଉଁ ବ୍ରାହ୍ମଣଙ୍କୁ ଯଜମାନ ନିଜର ପ୍ରତିନିଧି ସ୍ୱରୂପ ଅଭୀଷ୍ଟ ପୂରଣାର୍ଥେ ଗୁଆ ଗୁଡ଼ିଲ ଦେଇ ଦୈବକାର୍ଯ୍ୟାଦିରେ ନିଯୁକ୍ତ କରନ୍ତି ।

**ବରଣୀୟ**—ପୁଂ. ବିଂ. (ବୃ+ମଁ.ଅନୀୟ) ବରଣଯୋଗ୍ୟ, ବରଣାର୍ହ, ପ୍ରାର୍ଥନୀୟ, ଶ୍ରେଷ୍ଠ, ପୂଜ୍ୟ, ସମ୍ମାନନୀୟ ।

**ବରଣ୍ଡ**—ପୁଂ. ବି. (ବୃ+ଅଣ୍ଡ) ବରଣ୍ଡା, ସମୂହ, ମୁଖଜାତବ୍ରଣ, ବନ୍ଧିଡ଼ୋର, ଘାସଗୋଛା ବା ଗଦା, କୁରୁଡାର ପକେଟ ।

**ବରଣ୍ଡକ**—ବି. (ବରଣ୍ଡ+କ) ହାତୀର ହାଉଦା, ପରସ୍ପର ଯୁଦ୍ଧ୍ୟମାନ ଗଜଦ୍ୱୟଙ୍କ ମଧ୍ୟବର୍ତ୍ତୀ ଭିତ୍ତି, ବରଣ୍ଡଦେଖ, ମାଟିର ଗଦା, (ବିଂ) ବର୍ତ୍ତୁଳ,ଗୋଲ, ଭୀତ,ବିଶାଳ,ଦୁଃଖୀ,ମ୍ଳାନ,ବଡ଼, କୃପଣ ।

**ବରଣ୍ଡା**—ବି. (ବରଣ୍ଡ+ଆ) ସାରିକା ପକ୍ଷୀ, ଛୁରି, ବଳତା, ଶସ୍ତ୍ରବିଶେଷ, କଞ୍ଚୁକୀ, ପାଗାଗ, ପିଣ୍ଡା, ଅଡ଼ଙ୍ଗ ।

**ବରଣ୍ଡାଳୁ**—ବି. (ବରଣ୍ଡ+ଆଳୁ) କନ୍ଦଶାକବିଶେଷ, ଗଡଗଛ ।

**ବରଣ୍ଡୀ**—ଗ୍ରା. ବି. (ସଂ-ବରଣ୍ଡ) ଦେନ୍ଦ୍ରାଇ କାନୁସ ବା ବନ୍ଧନର ଉପରେ ଓ ତଳେ ଥିବା କାଠର ଅଂଶଦ୍ୱୟ ।

**ବରତ**—ଗ୍ରା.ବି. ବ୍ରତ ଦେଖ,ଅନନ୍ତବ୍ରତ ପରି କୌଣସି (ଜୟନ୍ତୀଆଦି) ବିଶିଷ୍ଟ ବ୍ରତଉପଲକ୍ଷରେ ବ୍ରତୀର ହାତରେ ବାନ୍ଧିବା ଡୋର ।

**ବରତନ**—ଗ୍ରା. ବି. ବେତନ, ଧୋବା ଭଣ୍ଡାରୀଆଦି ବର୍ଷର ଥରେ ପାଇବା ପାରିଶ୍ରମିକ, ବାସନ, ତୈଜସପତ୍ର ।

**ବରତନୁ**—ସ୍ତ୍ରୀ.ବି. (ବର+ତନୁ) ବାଗ୍ରେ; ସୁନ୍ଦରୀ ସ୍ତ୍ରୀ, ଛନ୍ଦୋବିଶେଷ ।

**ବରତନ୍ତୁ**—ପୁଂ. ବି. ଜନୈକ ଋଷି ।

**ବରତରଫ୍**—ଯା.ବିଂ. କାର୍ଯ୍ୟରୁ ଜବାବ ପାଇଥିବା, ପଦଚ୍ୟୁତ, ବରଖାସ୍ତ ।

**ବରତରଫୀ**—ଯା.ବି. କର୍ମଚ୍ୟୁତ,କାର୍ଯ୍ୟରୁ ଅନ୍ତର ।

**ବରତିକ**—ଗ୍ରା. ବି. ବତରପକ୍ଷୀ ।

**ବରତିକ୍ତ**—ପୁଂ. ବି. କୁଟଜ,କୁଟରେହିଁଗଛ, ନିମ୍ବବୃକ୍ଷ, ପର୍ପଟକ, ପାମ୍ପଡ଼ା, ଭେହୁଟକ, ଫଣଫଣା ।

**ବରତିକ୍ତିକା**—ସ୍ତ୍ରୀ.ବି.ପାଠା,ଅକାନବିନ୍ଧ ।

**ବରତୁଆ**—ଗ୍ରା. ବିଂ. (ସଂ-ବ୍ରତ)ଯାହାର ବ୍ରତ(ଉପନୟନ,ସଂସ୍କାର ହୋଇଅଛି ।

**ବରତୁଳ**—ଗ୍ରା. (ପଦ୍ୟ) ବିଂ. (ସଂ—ବର୍ତ୍ତୁଳ) ବର୍ତ୍ତୁଳ ଦେଖ ।

**ବରତୋୟା**—ସ୍ତ୍ରୀ. ବି. ନଦୀବିଶେଷ ।

**ବରତ୍ୱକଶା**—ସ୍ତ୍ରୀ. ବି. ରେଣୁକା ନାମକ ଗନ୍ଧଦ୍ରବ୍ୟ ।

**ବରତ୍ରା**—ସ୍ତ୍ରୀ. ବି. (ବର+ତ୍ରୈ+କ. ଅ+ଆ) ହସ୍ତୀକକ୍ଷରଜ୍ଜୁ, ହାତୀର ପେଟି ବନ୍ଧନି, ଚମଡ଼ାପଟି, ଚମଦଉଡ଼ି,ଛାଣପଟର ମୋଟ ଦଉଡ଼ି । [ ବୃକ୍ଷ ।

**ବରତ୍ୱକ୍**—ପୁଂ. ବି. (ବର+ତ୍ୱକ୍)ନିମ୍ବ-

**ବରଦ**—ପୁଂ. ବିଂ. (ବର+ଦା+କ.ଅ) ଅଭୀଷ୍ଟଦାତା, ସମ୍ବର୍ଦ୍ଧକ, ପ୍ରସନ୍ନ, (ବି) ପ୍ରସନ୍ନତା,ଦ୍ୟୋତକ ହସ୍ତାଦି ବିନ୍ୟାସ-

ରୂପ ମୁଦ୍ରାବିଶେଷ, ଲେଉଟିଆ, (ସ୍ତ୍ରୀ) ବରଦା । (ପ୍ରଣେତା ।

ବରଦକବ—ପୁଂ. ବି. କାରକାଦର୍ପଣ

ବରଦକ୍ଷିଣା—ବି.(କ.ଧା) ବିବାହକାଳେ ବର ପ୍ରାପ୍ତ ଯୌତୁକାଦି ।

ବରଦଚତୁର୍ଥୀ—ସ୍ତ୍ରୀ. ବି. ବରଦାଚତୁର୍ଥୀ ମାଘଶୁକ୍ଳ ଚତୁର୍ଥୀ ।

ବରଦତ୍ତ—ବିଂ. (ବର+ଦତ୍ତ) ବର ବା ଅନୁଗ୍ରହରୂପ ପ୍ରାପ୍ତ ।

ବରଦର୍ଶିନୀ—ସ୍ତ୍ରୀ. ବିଂ. ଦେଖିବାକୁ ସୁଲକ୍ଷଣା ଓ ସୁନ୍ଦରୀ ।

ବରଦଣ୍ଡ—ଗ୍ରା.ବି.ଚନ୍ଦାକାର ଅସ୍ତ୍ରବିଶେଷ ।

ବରଦସ୍ୱାମୀ—ଗ୍ରା. ବି. ଦାକ୍ଷିଣାତ୍ୟ କାଞ୍ଚିନଗରସ୍ଥ ବିଷ୍ଣୁକାଞ୍ଚିରେ ପ୍ରତିଷ୍ଠିତ ବିଷ୍ଣୁମୂର୍ତ୍ତି ।

ବରଦା—ସ୍ତ୍ରୀ.ବି. (ବରଦ+ଆ) କନ୍ୟା, ଆଦିତ୍ୟଭକ୍ତା. ଅଣସୋଷିଆ ଗଛ. ଅଶ୍ୱଗନ୍ଧା,ମୁଦ୍ରାବିଶେଷ, ଭୂଇଁକଖାରୁ, ଦୁର୍ଗା, ସରସ୍ୱତୀ,(ବିଂ)ଅଭୀଷ୍ଟଫଳଦାୟିନୀ ।

ବରଦାଚତୁର୍ଥୀ—ସ୍ତ୍ରୀ.ବି.ମାଘଶୁକ୍ଳ ଚତୁର୍ଥୀ

ବରଦାତା—ପୁଂ. ବିଂ.(ବର+ଦା+ତୃ) ଅଭୀଷ୍ଟଫଳ ପ୍ରଦାନକାରୀ, ଯେ ବର ଦିଅନ୍ତି, (ସ୍ତ୍ରୀ) ବରଦାତ୍ରୀ ।

ବରଦାନ—କ୍ଳୀ.ବି. (୬ତତ୍) ଅଭିଲଷିତ ବିଷୟ ପ୍ରଦାନ, ତୀର୍ଥବିଶେଷ ।

ବରଦାନମୟ—ବିଂ.(ବରଦାନ+ମୟ) ବରଦାନସ୍ୱରୂପ ।

ବରଦାନିକ—ବିଂ. (ବରଦାନ+କ) ବରଦାନ ସମ୍ବନ୍ଧୀୟ ।

ବରଦାୟକ—ପୁଂ. ବିଂ. ବରଦ ଦେଖ ।

ବରଦାଯୋଗିନୀ—ଗ୍ରା. ବି. ବଙ୍ଗଳାର ପ୍ରାଚୀନ ରାଜଧାନୀ ।

ବରଦାର୍—ଯା. ବି. ବେହେରା, (ବିଂ) ଧାରଣକାରୀ, ବାହକ,ପାଳନକାରୀ ।

ବରଦାରୁ—ପୁଂ. ବି. ବୃକ୍ଷବିଶେଷ,ଶ୍ରେଷ୍ଠଦାରୁ, ଅଶ୍ୱତ୍ଥାଦି ବଡ଼ବୃକ୍ଷ ।

ବରଦାସ୍ତ—ଯା. ବିଂ. ସହ୍ୟ, (ବି) ସହିଷ୍ଣୁତା, ସହନ, ସହିବା ।

ବରଦୃପ୍ତ—ବିଂ. (୩ତତ୍) ବରଲାଭଦ୍ୱାରା ଗର୍ବିତ, ଦେବତାଙ୍କ ନିକଟରୁ ପ୍ରାର୍ଥିତ ବିଷୟ ଲାଭରେ ଅହଂକୃତ, (ସ୍ତ୍ରୀ)ବରଦୃପ୍ତା ।

ବରଦେବ—ଗ୍ରା.ବି.ରାଠୋର ରାଜବଂଶର ପ୍ରତିଷ୍ଠାତା ।

ବରଦ୍ରୁମ—ପୁଂ. ବି. ବୃହଦାକାର ବୃକ୍ଷବିଶେଷ, ଅଗୁରୁବିଶେଷ ।

ବରଧରା—ଗ୍ରା. ବି. ବିବାହ ପୂର୍ବରୁ ବିବାହପାଇଁ ବରକୁ କନ୍ୟା ପକ୍ଷରୁ ବସ୍ତ୍ରାଲଙ୍କାରାଦି ସମର୍ପଣ ପୂର୍ବକ ନିମନ୍ତ୍ରଣ, ବରାମନ୍ତ୍ରଣ ।

ବରଧର୍ମ—ବି. ଶ୍ରେଷ୍ଠକାର୍ଯ୍ୟ ।

ବରଧର୍ମକୃତ୍—ପୁଂ. ବିଂ. (ବରଧର୍ମ+କୃ+କ୍ୱିପ୍) ଅପରର ମଙ୍ଗଳଜନକ କାର୍ଯ୍ୟକାରୀ ।

ବରନାରୀ—ସ୍ତ୍ରୀ.ବି.ସୁନ୍ଦରୀ ଓ ସୁଲକ୍ଷଣା ସ୍ତ୍ରୀ

ବରନିଶ୍ଚୟ—ବି.(୬ତତ୍)ପତିନିର୍ବାଚନ, କନ୍ୟା ନିମନ୍ତେ ବରପାତ୍ରର ନିର୍ବାଚନ ।

ବରନୀୟ—ଗ୍ରା.ବିଂ, (ଘ-ବର୍ଣ୍ଣନୀୟ)ବର୍ଣ୍ଣନୀୟ, ବର୍ଣ୍ଣନାଯୋଗ୍ୟ ।

ବରପକ୍ଷ—ପୁଂ. ବି. (୬ତତ୍)ବରଯାତ୍ରୀ, ବିବାହରେ ବରର ଆତ୍ମୀୟଗଣ ।

ବରପାନ—ଗ୍ରା.ବି. ବର,କନ୍ୟାଙ୍କୁ ବିବାହ ଦେବା ନିମନ୍ତେ ସ୍ଥିରୀକୃତ ବର ।

ବରପକ୍ଷିଣୀ—ସ୍ତ୍ରୀ. ବି. ତନ୍ତ୍ରୋକ୍ତ ଦେବୀବିଶେଷ । [କୀୟ ।

ବରପକ୍ଷୀୟ—ବିଂ. ବରଯାତ୍ରୀ,ବରସମ୍ପ-

ବରପର୍ଣ୍ଣାଖ୍ୟ—ବି. (ବରପର୍ଣ୍ଣ+ଆଖ୍ୟା) ବି.ଗ୍ରା; କ୍ଷୀରକଞ୍ଚୁକୀ ବୃକ୍ଷ ।

ବରପୀତ(କ)—ବି. ହରିତାଳ ।

ବରପୁତ୍ର—ପୁଂ. ବି. ଦେବତାଙ୍କଠାରୁ ବରପ୍ରାପ୍ତ ବ୍ୟକ୍ତି, ଶ୍ରେଷ୍ଠପୁତ୍ର, (ଯଥା— କାଳିଦାସ ପ୍ରଭୃତି ସରସ୍ୱତୀଙ୍କର ବରପୁତ୍ର) ।

ବରପୂଜା(କନ୍ୟା)—ଗ୍ରା. ସ୍ତ୍ରୀ. ବିଂ.ବାକ୍ଦତ୍ତା ବା ମନୋଦତ୍ତା(କନ୍ୟା),କନ୍ୟାର ମହାପ୍ରସାଦ ନିର୍ବନ୍ଧ ହେଲାପରେ ଯେ ନିର୍ବନ୍ଧଭାଙ୍ଗିଯାଇ ଅବିବାହିତ ଅବସ୍ଥାରେ ରହିଥିବା (କନ୍ୟା) ।

ବରପ୍ରଦ—ବିଂ.(ବର+ପ୍ର+ଦା+କ.ଅ) ବରଦାତା, ଯେ ବରପ୍ରଦାନ କରେ, ଅଭୀଷ୍ଟଦାତା ।

ବରପ୍ରଦା—ସ୍ତ୍ରୀ. ବିଂ. (ବରପ୍ରଦ+ଆ) ବରଦା, ଅଭୀଷ୍ଟଦାୟିନୀ, (ବି) ଅଗସ୍ତ୍ୟପତ୍ନୀ ଲୋପାମୁଦ୍ରା ।

ବରପ୍ରଦାନ—କ୍ଳୀ. ବି. (ବର+ପ୍ରଦାନ) ବରଦାନ ।

ବରପ୍ରଦାୟକ—ପୁଂ. ବିଂ. (ବରପ୍ରଦା+କ.ଅକ୍) ଅଭୀଷ୍ଟଦାତା, ବରଦ ।

ବରପ୍ରସ୍ଥାନ—କ୍ଳୀ.ବି. ବରଯାତ୍ରା,ବିବାହ ନିମିତ୍ତ ବର ଆତ୍ମୀୟକୁଟୁମ୍ବ ବନ୍ଧୁବାନ୍ଧବ ସହ କନ୍ୟାଗୃହକୁ ଆଗମନ ।

ବରଫ୍—ଯା.ବିଂ. ତୁଷାର,ଘନୀଭୂତଜଳ, (ବିଂ) ବରଫ୍ପରି ଥଣ୍ଡା ।

ବରଫଳ—ବି. (ବର+ଫଳ) କ.ଧା; ନାରିକେଳ ଫଳ, ଶ୍ରେଷ୍ଠଫଳ,(ନ.ଗ୍ରା) ନାରିକେଳ ବୃକ୍ଷ, (ଗ୍ରା.ବି-୬ତତ୍) ବରଗଛର ଫଳ ।

ବରଫି—ଯା.ବିଂ.ଦୁଗ୍ଧ ଓ ଶର୍କରା ପ୍ରଭୃତି ଚତୁଷ୍କୋଣାକାର ମିଷ୍ଟାନ୍ନବିଶେଷ ।

ବରମ୍—ଅବ୍ୟ. ବରଂ ଦେଖ । [ସହିତ ।

ବରମ୍ପୁର—ଗ୍ରା. ବି. ଗଞ୍ଜାମର ବ୍ରହ୍ମପୁର

ବରମା—ଗ୍ରା. ବି. ବ୍ରହ୍ମଦେଶ ।

ବରମାଲ୍ୟ—ବି.(କ.ଧା)ସ୍ୱୟମ୍ବର ସଭାରେ ବର ଗଳାରେ କନ୍ୟା ପ୍ରଦତ୍ତ ମାଳା, ଉତ୍କୃଷ୍ଟମାଳା ।

ବରଯାତ୍ରା—ବି. (ବର+ଯାତ୍ରା) ବିବାହ ପାଇଁ ବରର ସ୍ୱଜନସହ ସାଡ଼ମ୍ବରେ କନ୍ୟା ଗୃହକୁ ଆଗମନ ।

ବରଯାତ୍ରୀ—ପୁଂ.ବି, (ବରଯାତ୍ରା+ଇନ୍) ବିବାହ ପାଇଁ କନ୍ୟା ଘରକୁ ବର ସଙ୍ଗେ ଯିବା କୁଟୁମ୍ବ ବନ୍ଧୁ ଆଦି ବ୍ୟକ୍ତିଗଣ, ବରର ଅନୁଗମନକାରୀ ବ୍ୟକ୍ତିଗଣ, ବରପକ୍ଷଲୋକ ।

ବରୟିତା—ପୁଂ.ବି.(ବର୍+ଣିଚ୍+କ.ତୃ)ଭର୍ତ୍ତା, ସ୍ୱାମୀ,ପ୍ରଣୟୀ (ବିଂ)ବରଣକାରୟିତା, ଯେ ବରଣ କରେ, ପ୍ରାର୍ଥ-

ନଧି ନର୍ବାଚନକାରୀ,କନ୍ୟାର ବିବାହ-ପ୍ରାର୍ଥୀ ।

ବରସ୍ତ୍ରିନୀ—ସ୍ତ୍ରୀ.ବି. ସ୍ୱୟମ୍ବର ପତ୍ନୀ, (ସ୍ତ୍ରୀ. ବିଂ) ବରସ୍ତ୍ରିତାର ସ୍ତ୍ରୀଲିଙ୍ଗ ।

ବରସ୍ପୁ—ପୁଂ.ବି. ଭାରତବର୍ଣ୍ଣିତ ବ୍ୟକ୍ତି-ବିଶେଷ ।

ବରଯୁବତୀ—ସ୍ତ୍ରୀ.ବି.ରୂପଯୌବନ ସମ୍ପନ୍ନା ସ୍ତ୍ରୀ, ଛନ୍ଦୋବିଶେଷ ।

ବରଯୋଗ୍ୟ—ବିଂ. (୬ତତ୍) ଆଶୀର୍ବାଦ ଉପହାର,ପାଇବାର ଯୋଗ୍ୟ,ବରଣୀୟ

ବରଯୋନକ—ବି. କେସର ।

ବରରୁଚି—ପୁଂ. ବି. (ବର+ରୁଚି)ଶିବ, ବିକ୍ରମାଦିତ୍ୟଙ୍କ ସଭାର ନବରତ୍ନ ପଣ୍ଡିତଙ୍କ ମଧ୍ୟରୁ ଏକତମ, ପାଣିନୀୟ ବ୍ୟାକରଣର ବାର୍ତ୍ତିକସୂତ୍ରକାରକ କାତ୍ୟାୟନ ମୁନି, (ବିଂ.ବ.ବ୍ରୀ) ଉଜ୍ଜ୍ୱଳ ଦୀପ୍ତିଶାଳୀ, ଉତ୍କୃଷ୍ଟ ରୁଚିଯୁକ୍ତ, ଉତ୍କୃଷ୍ଟ ସ୍ପୃହାଯୁକ୍ତ ।

ବରରୂପ—ବିଂ. (ବ.ବ୍ରୀ) ସୁନ୍ଦର ରୂପ-ବିଶିଷ୍ଟ. (ପୁଂ ବି) ବୁଦ୍ଧବିଶେଷ ।

ବରଲ—ବି.(ବୃ+ଅଲ)ବରଟ, ବରୁଡ଼, ରାଜହଂସ, (ବିଂ. ବର+ଲା+ଡ.ଅ) ବରଦ ।

ବରଲବ୍ଧ—ପୁଂ. ବି. ଚମ୍ପକବୃକ୍ଷ, ରକ୍ତ-କାଞ୍ଚନ, ନାଗକେଶର (ବିଂ.ବ.ବ୍ରୀ) ପ୍ରାପ୍ତବର, ବର ରୂପେ ଲବ୍ଧ ।

ବରଲା—ସ୍ତ୍ରୀ. ବି. (ବରଲ+ଆ)ହଂସୀ, ବରୁଡ଼, (ପ୍ରା.ମେଦ.ବି)କଦଳୀବାହୁଙ୍ଗା

ବରଲାଭ—ପୁଂ.ବି.(୬ତତ୍) ଦେବତାଙ୍କ ନିକଟରୁ ଅଭୀଷ୍ଟ ବସ୍ତୁର ପ୍ରାପ୍ତି ।

ବରଲୀ—ସ୍ତ୍ରୀ. ବି. (ବରଲ+ଇ)ବରଟା, ବରୁଡ଼, ହଂସୀ ।

ବରବତ୍ସଲା—ସ୍ତ୍ରୀ.ବି.(ବର+ବତ୍ସଲ+ଆ) ୭ତତ୍; ଶ୍ୱଶୁରର ଭାର୍ଯ୍ୟା, ଶାଶୁ, ସ୍ୱାମୀଙ୍କ ମାତା ।

ବରବଧୂ—ବି. (ଦ୍ୱନ୍ଦ୍ୱ) ବରକନ୍ୟା ।

ବରବଣ୍ଟା—ବି.(ବର+ବନ୍ଦତା) ଦ୍ୱନ୍ଦ୍ୱ; ପତି ଓ ପତ୍ନୀ, ସ୍ତ୍ରୀପୁରୁଷ, (କ.ଧା) ଉତ୍କୃଷ୍ଟ ସ୍ତ୍ରୀ ।

ବରବର—ଗ୍ରା.ଅବ୍ୟ. ଗରଗର, ଜର୍ଜର, ରାଗରେ ବା ବିରକ୍ତିରେ ଏଣୁ ତେଣୁ ଗୁଣ୍ଡାଏ କହିବା ।

ବରବର(ଣା)ନା—ଗ୍ରା.ସ୍ତ୍ରୀ.ବି. (ସଂ-ବର-ବର୍ଣ୍ଣିନୀ) ବରବର୍ଣ୍ଣିନୀ ଦେଖ ।

ବରବରାହ—ପୁଂ. ବି. ଅସଭ୍ୟ, ବର୍ବର ବା କୁଞ୍ଚିତ କେଶଯୁକ୍ତ ବଣ ମନୁଷ୍ୟ ।

ବରବର୍ଣ୍ଣ—ବି. ( ବର+ବର୍ଣ୍ଣ ) ସୁବର୍ଣ୍ଣ, ସୁନା, ଶ୍ରେଷ୍ଠବର୍ଣ୍ଣ ।

ବରବର୍ଣ୍ଣିନୀ—ସ୍ତ୍ରୀ. ବି. (ବରବର୍ଣ୍ଣିନ୍+ଇ) ଅତି ସୁନ୍ଦରୀ ସ୍ତ୍ରୀ, ବରାରୋହା, ଶ୍ୟାମା, ଲାକ୍ଷା, ହରିଦ୍ରା, ହଳଦୀ, ଗୋରୋଚନା, ପ୍ରିୟଙ୍ଗୁ, ସାଧ୍ୱୀ ସ୍ତ୍ରୀ, ଗୌରୀ, ଲକ୍ଷ୍ମୀ, ସରସ୍ୱତୀ, ପାର୍ବତୀ, ଦୁର୍ଗା ।

ବରବର୍ଣ୍ଣୀ—ପୁଂ. ବିଂ. (ବର+ବର୍ଣ୍ଣ+ଇନ୍) ସୁନ୍ଦରବର୍ଣ୍ଣ ବିଶିଷ୍ଟ ।

ବରବାଦ୍—ଯା.ବି.ଅପବ୍ୟୟ, ଅପଚୟ, (ବିଂ)ନଷ୍ଟ, ସତ୍ୟାନାଶ, ଉଚ୍ଛନ୍ନ, ଅପଚିତ, ବ୍ୟୟଯୁକ୍ତ ।

ବରବାରଣ—ପୁଂ. ବି. ଜାଙ୍ଗଳିକ ଜୀବ-ବିଶେଷ, ସୁନ୍ଦର ହସ୍ତୀ ।

ବରବାସୀ—ପୁଂ. ବି. ଜାତିବିଶେଷ ।

ବରବାହୁଡ଼ା—ଗ୍ରା. ବି. ବିବାହ ପରେ କନ୍ୟା ସଙ୍ଗେ ଶୋଭାଯାତ୍ରା ପୂର୍ବକ ଆପଣା ଘରକୁ ବରର ପ୍ରତ୍ୟାଗମନ ।

ବରବାହ୍ଲୀକ—କ୍ଲୀ. ବି. ଶ୍ରେଷ୍ଠ କୁଙ୍କୁମ, କୁଙ୍କୁମ । ପ୍ରାପ୍ତ ।

ବରବୃତ—ବିଂ.ବର ବା ଆଶୀର୍ବାଦରୂପେ

ବରବୃଦ୍ଧି—ବି.(ବର+ବୃଦ୍ଧି)କ.ଧା;ପୁରାତନ, ଶିବ ।

ବରଶୀତ—କ୍ଲୀ. ବି. ଦାରୁଚିନି ।

ବରଶ୍ରେଣୀ—ସ୍ତ୍ରୀ. ବି. ହ୍ରସ୍ୱ ମୂର୍ବା ।

ବରଷ—ଗ୍ରା. ବି, (ସଂ-ବର୍ଷ) ବର୍ଷ, ଆୟୁ-ଷ୍କାଳ, ପୃଥିବୀର ବିଭାଗ, ଦେଶ, ଜମ୍ବୁ-ଦ୍ୱୀପ ।

ବରଷକ—ବିଂ. ବର୍ଷଣକାରୀ, ବର୍ଷଣ କରୁଥିବା(ଗ୍ରା.ବିଂ)ବର୍ଷକମାତ୍ର, କେବଳ ବର୍ଷେ ।

ବରଷକା(କୁ)ବରଷ—ଗ୍ରା,କ୍ରି.ବିଂ. ପ୍ରତି-ବର୍ଷ । [ ବର୍ଷଯାକ ।

ବରଷକୁତା—ଗ୍ରା. ଅବ୍ୟ. ବର୍ଷତମାମ,

ବରଷକେତେ—ଗ୍ରା.ବି.କେତେକବର୍ଷ ।

ବରଷଣ—ଗ୍ରା. ବି. ( ସଂ-ବର୍ଷଣ ) ବର୍ଷଣ ଦେଖ ।

ବରଷପଣ୍ଡ—ଗ୍ରା. ବି. କୌଣସି ବ୍ୟକ୍ତିର ଭରଣ ପୋଷଣ ପାଇଁ ବର୍ଷକ ନିମନ୍ତେ ଖଞ୍ଜାଥିବା ବୃତ୍ତି, ପୁରୋହିତ ଯଜମାନ-ଠାରୁ ପାଇବା ସାଲିଆନା ।

ବରଷବିଆଣ—ଗ୍ରା.ବି. ପ୍ରତିବର୍ଷ ସନ୍ତାନ ପ୍ରସବ କରିବା ଅବସ୍ଥା ।

ବରଷବିଆଣୀ—ଗ୍ରା. ସ୍ତ୍ରୀ. ବିଂ. ପ୍ରତିବର୍ଷ ସନ୍ତାନ ପ୍ରସବ କରୁଥିବା (ଗବାଦି ପଶୁ ବା ସ୍ତ୍ରୀ) । [ ବର୍ଷିବା ।

ବରଷା—ଗ୍ରା.ବି. (ସଂ-ବର୍ଷା) ବୃଷ୍ଟି, ମେଘ-

ବରଷାକାଳ—ଗ୍ରା.ବି. ବର୍ଷାଋତୁ; ଚଉମାସ୍ୟା ।

ବରଷାତି—ଗ୍ରା. ବିଂ. (ସଂ-ବର୍ଷାରୁ)ବର୍ଷାଋତୁସମ୍ବନ୍ଧୀୟ, ଯାହା ବର୍ଷା ଋତୁରେ ଜାତହୁଏ,ଯାହା ବର୍ଷା ଋତୁରେ ବ୍ୟବହାର କରାଯାଏ, ବର୍ଷା ଋତୁରେ ବ୍ୟବହାର କରାଯିବା ବର୍ଷାପାଣିର ଦୁର୍ଭେଦ୍ୟ ପୋଷାକ, ବର୍ଷା ଋତୁରେ ଘୋଡ଼ାଙ୍କ ଦେହରେ ହେବା ଘାଆ ।

ବରଷିଆ—ଗ୍ରା. ବିଂ. (ସଂ-ବର୍ଷୀୟ) ବର୍ଷ-ସମ୍ବନ୍ଧୀୟ, ଏତେବର୍ଷ ବୟସ୍କ, ଏତେ ବର୍ଷରେ ଉତ୍ପନ୍ନ ହେବା ।

ବରଷିକିଆ—ଗ୍ରା.ବିଂ (ସଂ-ବାର୍ଷିକ)ଏକ-ବର୍ଷ ବୟସ୍କ, ଏକ ବର୍ଷରେ ଉତ୍ପନ୍ନ, ବାର୍ଷିକ, ସାଲିଆନା, (ଗ୍ରା.ବି) ମୃତ୍ୟୁର ପ୍ରଥମ ବର୍ଷ ପୂରିବା ଦିନରେ ଅନୁଷ୍ଠିତ ବାର୍ଷିକ (ସାମ୍ବତ୍ସରିକ) ଶ୍ରାଦ୍ଧ ।

ବରଷିବା—ଗ୍ରା କ୍ରି, ବୃଷ୍ଟିହେବା, ବୃଷ୍ଟି କଲାପରି ଢାଳିବା, ବରଷାଇବା ।

ବରଷେବରଷେ—ଗ୍ରା. ଅବ୍ୟ. ପ୍ରତିବର୍ଷ, କୌଣସି କୌଣସି ବର୍ଷରେ ।

ବରସୁନ୍ଦରୀ—ସ୍ତ୍ରୀ.ବି.(ବର+ସୁନ୍ଦରୀ)ଅତି ସୁନ୍ଦରୀ ସ୍ତ୍ରୀ, ଛନ୍ଦୋବିଶେଷ ।

ବରସୁରତ—ପୁଂ.ବିଂ.ସୁରତ କ୍ରିୟାଭିଜ୍ଞ,

ଉଚ୍ଛୃଙ୍ଖଳ, ଅତ୍ୟନ୍ତ କାମୁକ, ରତିଶାସ୍ତ୍ରରେ ସୁପଣ୍ଡିତ ।

ବରସ୍ତ୍ରୀ—ବି. (ବର+ସ୍ତ୍ରୀ) ସୁନ୍ଦରୀ ସ୍ତ୍ରୀ ।

ବରସ୍ରକ୍—ସ୍ତ୍ରୀ. ବି. ବରଣମାଳା, କନ୍ୟା ଯେଉଁ ମାଳା ବରର ଗଳାରେ ଦିଏ, ଶ୍ରେଷ୍ଠମାଳା ।

ବରହ—ଗ୍ରା.ପଦ୍ୟ. ବି.(ସଂ-ବର୍ହ)ମୟୂରପୁଚ୍ଛ, ଅଗ୍ନିଶିଖା ।

ବରହଣ୍ଡାଣ୍ଡ—ଗ୍ରା. ସମ୍ବ. ବି. ଖଡ଼ାଶାଗ

ବରା—ସ୍ତ୍ରୀ. ବି. (ବର+ଆ) ତ୍ରିଫଳା (ହରଡ଼ା ବାହାଡ଼ା ଅଁଳା), ରେଣୁକା ନାମକ ଗନ୍ଧଦ୍ରବ୍ୟ, ଗୁଡ଼ୁଚି, ମେଦା, ବ୍ରାହ୍ମୀଶାକ, ବଡ଼ଙ୍ଗ, ହରିଦ୍ରା, ହଳଦୀ, ଶଣପୁଷ୍ପ, ବାଇଗଣ, ବନ୍ଧ୍ୟାକର୍କୋଟକୀ, ଅଷାଢ଼ୁଆ, ଶ୍ୱେତାପରାଜିତା, ସୋମରାଜି, ଶତମୂଳୀ, ଅକାଳବନ୍ଧ, ମନ୍ଦାର, (ବିଂ) ଶ୍ରେଷ୍ଠା, ପ୍ରଧାନା, ଉତ୍କୃଷ୍ଟା, ( ଗ୍ରା. ବି. ବଟକ)ବିହାଘରରେ ତିଆର ଘୃତ ବା ତେଲ ପକ୍ୱ ପିଷ୍ଟକ ବିଶେଷ, କଡ଼ିକାଠ ମଧ୍ୟସ୍ଥ କୀଟ ଦଷ୍ଟ ଛିଦ୍ର ।

ବରାକ—ପୁଂ. ବି. (ବୃ+ଅକ)ଶିବ,ରୁଦ୍ର, ପାନସ, ଯାମ୍ପଡ଼ା, (ବିଂ) ଶୋଚନୀୟ, ଅବର, ଦୀନ, ଭୀଷ, ନିରପରାଧ, ହତଭାଗ୍ୟ, ନୀଚ, ଅଧମ, ପାପୀ, ବେଗୁଣ ।

ବରାକା—ଗ୍ରା. ସ୍ତ୍ରୀ. ବିଂ. ( ସଂ-ବରାକୀ ) ବରାକୀ ଦେଖ ।

ବରାକୀ—ସ୍ତ୍ରୀ. ବିଂ. (ବରାକ+ଈ)ଦୀନା, ଶୋଚନୀୟା, ନିରପରାଧିନୀ, ହତଭାଗା (ସ୍ତ୍ରୀ) ।

ବରାଙ୍ଗ—କ୍ଲୀ. ବି. (ବର+ଅଙ୍ଗ.କ.ଧା) ମସ୍ତକ, ଗୁହ୍ୟ, ଶ୍ରେଷ୍ଠଅବୟବ,ଯୋନି, ସୁନ୍ଦରରୂପ, ଉପସ୍ଥ, (ବି.ଗ୍ରା)ଗୁଡ଼ତ୍ୱକ୍, କାମଦେବ, ବିଷ୍ଣୁ, ହସ୍ତୀ, ହଳଦୀ, ମେଦା, ଅକାଳବନ୍ଧ, ( ବିଂ. ବି.ଗ୍ରା ) ସୁନ୍ଦର ଦେହ ବିଶିଷ୍ଟ,ସୁନ୍ଦରରୂପ ବିଶିଷ୍ଟ

ବରାଙ୍ଗକ—କ୍ଲୀ.ବି. ଗୁଡ଼ତ୍ୱକ୍, ଦାରୁଚିନି, (ବିଂ) ଶ୍ରେଷ୍ଠାବୟବଯୁକ୍ତ ।

ବରାଙ୍ଗଦଳ—କ୍ଲୀ. ବି. ପ୍ରିୟଙ୍ଗୁ ପତ୍ର ।

ବରାଙ୍ଗନା—ସ୍ତ୍ରୀ. ବି. (ବର+ଅଙ୍ଗନା) ସର୍ବାଙ୍ଗସୁନ୍ଦରୀ ସ୍ତ୍ରୀ,ସତୀ, ସାଧ୍ୱୀ,ଉତ୍ତମା (ସ୍ତ୍ରୀ) ।

ବରାଙ୍ଗରୂପୋପେତ—ବିଂ. ଶ୍ରେଷ୍ଠ ରୂପଯୁକ୍ତ ସୁନ୍ଦର ।

ବରାଙ୍ଗୀ—ପୁଂ. ବିଂ. (ବର+ଅଙ୍ଗ+ଇନ୍) ଶ୍ରେଷ୍ଠାଙ୍ଗଯୁକ୍ତ (ବି)ଅମ୍ଳବେତସ, ଗଜ, (ସ୍ତ୍ରୀ.ବି. ବରାଙ୍ଗ+ଈ) ହଳଦୀ, ନାଗଦନ୍ତୀ, ମଞ୍ଜିଷ୍ଠା, (ବିଂ) ବରାଙ୍ଗର ସ୍ତ୍ରୀଲିଙ୍ଗ ।

ବରାଙ୍ଗୀରୀ—ପୁଂ. ଜ୍ୟୋତିର୍ବିଦ୍,ଗଣକ ।

ବରାଜୋର(ରି)—ଗ୍ରା. ବି. ବଳାତ୍କାର, ଜୋରଜବରଦସ୍ତି, ବଳପ୍ରୟୋଗ, (ଗ୍ରା. ବିଂ) ଅନ୍ୟାୟ ବଳପ୍ରୟୋଗକାରୀ ଯେ ବଳତ୍କାର କରେ, ବଳବାନ୍, ଜବରଦସ୍ତ,(କ୍ରି.ବିଂ) ବଳପୂର୍ବକ ଜବରଦସ୍ତି କରି ।

ବରାଜ୍ୟ—କ୍ଲୀ.ବି. (ବର+ଆଜ୍ୟ)ଉତ୍କୃଷ୍ଟ ଘୃତ, ଭଲଘିଅ ।

ବରାଟ—ବି. (ବର+ଅଟ୍+ଅ)କପର୍ଦ୍ଦକ, କଉଡ଼ି, ରଜ୍ଜୁ, ଦଉଡ଼ି, ପଦ୍ମବୀଜ, ପୁଷ୍କର, ତୁଚ୍ଛବାକ୍ୟ, (ବିଂ) ଅକିଞ୍ଚିତ୍କର, ଅଳ୍ପ, କ୍ଷୁଦ୍ର, ଶ୍ରେଷ୍ଠ, ସ୍ଥିର, ହେୟ ।

ବରାଟକ—ପୁଂ ଓ ସ୍ତ୍ରୀ.ବି. (ବର+ଅଟ୍+ଅକ) କଉଡ଼ି, ଦଉଡ଼ି, ପଦ୍ମବୀଜକୋଷ, (ବିଂ)ବରାଟ ଦେଖ ।

ବରାଟକରଜଃ—ଗ.(ବି.ଗ୍ରା)ନାଗକେଶର ନାଗେଶ୍ୱର ଗଛ ।

ବରାଟକବିଷ—କ୍ଲୀ. ବି. ବରାଟକନାମକ ତ୍ୱକ୍‌ସାର ନିର୍ଯ୍ୟାସ ବିଷ ।

ବରାଟିକା—ସ୍ତ୍ରୀ. ବି. କପର୍ଦ୍ଦକ; କଉଡ଼ି, ତୁଚ୍ଛବାକ୍ୟ, ନାଗେଶ୍ୱର ଗଛ ।

ବରାଟୀ—ବିଂ. ବରାଟର ସ୍ତ୍ରୀଲିଙ୍ଗ, (ବି) କପର୍ଦ୍ଦକ, କଉଡ଼ି, ରଜ୍ଜୁ, ଦଉଡ଼ି, ରାଗିଣୀବିଶେଷ । [ କଡ଼ି ।

ବରାଡ଼ାଲୁ—ପ୍ରା.(ଗଞ୍ଜାମ)ବି. କାନର ମଳ-

ବରାଡ଼ୀ—ସ୍ତ୍ରୀ.ବି. ରାଗିଣୀବିଶେଷ ।

ବରାଣ—ପୁଂ.ବି. (ବୃ+ଅନ)ଇନ୍ଦ୍ର,ବରୁଣ ବୃକ୍ଷ ।

ବରାଣସ—ବି. ବାରାଣସୀ, କାଶୀ, (ବିଂ) ବରଣା ଓ ଅସିସମ୍ବନ୍ଧୀୟ ।

ବରାଣସୀ—ସ୍ତ୍ରୀ.ବି. କାଶୀ, ବାରାଣସୀ ।

ବରାଣ୍ଡି—ଗ୍ରା.ବି. ବ୍ରାଣ୍ଡିନାମକ ବିଦେଶୀୟ ମଦ୍ୟ ।

ବରାତ(ଦ୍)—ଯା.ବି. କୌଣସି ବ୍ୟକ୍ତି ଉପରେ କୌଣସି କାର୍ଯ୍ୟର ଭାର ନ୍ୟସ୍ତୀକରଣ, କାର୍ଯ୍ୟର ଭାରାର୍ପଣ, ନିୟୋଜନ, ଆଦେଶ, ବନ୍ଦୋବସ୍ତ, ଅବସ୍ଥା, ପ୍ରୟୋଜନ, କପାଳ, ଭାଗ୍ୟ, ଅଦୃଷ୍ଟ, ଫରମାଇଶ୍, କ୍ଷମତାନ୍ୟସ୍ତୀକରଣ, ଆଦେଶପତ୍ର, ହୁକୁମନାମା, ହୁଣ୍ଡି, ଚିଠି ।

ବରାତ—ଯା. ବି. ବନ୍ଧୁ ସମଭିବ୍ୟାହାରରେ ବିବାହାର୍ଥୀ ବରର ଶୋଭାଯାତ୍ରା, ପଟୁଆର, ବରଯାତ୍ରୀ ।

ବରାଦ(ଦ)—ଯା. ବିଂ. ଦରକାରୀ ଓ ପ୍ରୟୋଜନୀୟ, ଯାହା ବରାଦ କରାହୋଇଅଛି, ନିର୍ଦ୍ଧାରିତ ।

ବରାନନା—ସ୍ତ୍ରୀ.ବି. (ବର+ଆନନ+ଆ) ସୁନ୍ଦରୀ ସ୍ତ୍ରୀ, (ବିଂ.-ବି.ଗ୍ରା) ସୁନ୍ଦର ମୁଖବିଶିଷ୍ଟା (ସ୍ତ୍ରୀ) ।

ବରାନୁଗମନ—କ୍ଲୀ.ବି. (୬ତତ୍ପୁ) ବିବାହାର୍ଥୀ ବର ସଙ୍ଗେ ଯିବା ।

ବରାନୁଗାମୀ—ପୁଂ.ବିଂ. (ବର+ଅନୁ+ଗମ୍+ଇନ୍)ବିବାହାର୍ଥୀ ବରର ପଶ୍ଚାଦ୍‌ଗମନକାରୀ, (ପୁଂ.ବି)ବରଯାତ୍ରୀ ।

ବରାନ୍ଧ—ଗ୍ରା.ବି. (ଶିଳ୍ପଶାସ୍ତ୍ର)ଚୂଳଘରର ସ୍ତୁତର କାଠକାମ ।

ବରାଭୟ—ବି. (ଦ୍ୱନ୍ଦ୍ୱ) ଅଭୀଷ୍ଟ ଫଳ ଓ ଅଭୟ ବଚନ ।

ବରାଭୟଦାତା—ପୁଂ. ବିଂ. (ଯେ ପ୍ରଭୁ ବା ଦେବତା) ଆଶ୍ରିତ ବ୍ୟକ୍ତିକୁ ବର ଓ ଅଭୟ ପ୍ରଦାନ କରନ୍ତି ।

ବରାଭରଣ—ବି. ( ବର+ଆଭରଣ ) ବିବାହ ସମୟରେ କନ୍ୟାପକ୍ଷରୁ ବରକୁ ଦେବା ଯୌତୁକ ।

ବରାଭିଦ୍—ବି. ଅମ୍ଳବେତସ ।

ବରାମନ୍ତ୍ର(ଦ)—ଯା.ବି. କୌଣସି ଫୌଜ-

ଦ୍ୱାରା ଅପରାଧପଟିତ ବସ୍ତୁ ଅନୁସନ୍ଧାନ-ଦ୍ୱାରା ବାହାରବା, (ବିଂ) ଧୃତ, ପ୍ରାପ୍ତ, ନଷ୍ଟ (ବସ୍ତୁ) ।

ବରାମତ୍ର(ଦ)କରବା—ଗ୍ରା.କ୍ରି. କୌଣସି ଅପରାଧଘଟିତ ବସ୍ତୁକୁ ଖୋଜି ବାହାର କରିବା ।

ବରାମତ୍ର(ଦ)ହେବା—ଗ୍ରା.କ୍ରି.ଚୋରମାଲ ପ୍ରଭୃତ ତଲସରେ ବାହାରିବା ।

ବରାମଦ(ଦ)—ଯା.ବ ଓ ବିଂ. ବରାମତ୍ର ଦେଖ ।

ବରାରକ—କ୍ଲୀ.ବ. ହୀରକ, ହୀରା ।

ବରାରୋହ—ପୁଂ.ବିଂ.( ବ.ଗ୍ରା ) ଉତ୍କୃଷ୍ଟ ଯାନାରୋହୀ, ଉତ୍କୃଷ୍ଟ କଟିଯୁକ୍ତ, (ପୁଂ. ବ) ହସ୍ତିପକ, ମାହୁନ୍ତ, ହସ୍ତ୍ୟାରୋହୀ ବ୍ୟକ୍ତି, (କ.ଧା) ସୁନ୍ଦର କଟିଦେଶ, ବିଷ୍ଣୁ ।

ବରାରୋହା—ସ୍ତ୍ରୀ.ବିଂ. (ବର+ଆରୋହା) (କ.ଗ୍ରା) ସୁନ୍ଦରୀ, ନିତମ୍ବିନୀ,(ବ)ଉତ୍ତମା ସ୍ତ୍ରୀ. କଟି ।

ବରାର୍ଥୀ—ପୁଂ.ବିଂ. (ବର+ଅର୍ଥ+ଇନ୍) ଆଶୀର୍ବାଦାକାଙ୍କ୍ଷୀ, ଇଷ୍ଟବସ୍ତୁ ଲାଭେଚ୍ଛୁ ।

ବରାର୍ହ—ବିଂ.(ବର+ଅର୍ହ)ବରଦାନର ଉପଯୁକ୍ତ,ମହାମୂଲ୍ୟ, ଶ୍ରେଷ୍ଠ, ସମ୍ମାନାର୍ହ,

ବରାଲ—ପୁଂ. କ୍ଲୀ. ବ. ଲବଙ୍ଗ ।

ବରାଳ—ପୁଂ.ବ. ଚନ୍ଦ୍ର, (ସ୍ତ୍ରୀ.ବ)ବରାଳୀ, ରାଗିଣୀବଶେଷ ।

ବରାଳକା—ସ୍ତ୍ରୀ.ବ(ବରା+ଅଳକା)ଦୁର୍ଗା, (କ.ଧା) ପ୍ରଧାନସଖୀ ।

ବରାବର—ଯା. କ୍ରି. ବିଂ. ସମ୍ମୁଖରେ, ସମୀପରେ, ଏକଧାରାରେ, ପର, ତୁଲ୍ୟ, ସଦୃଶ, ଏକଦମ୍, ସମଭାବରେ, ସମ୍ପୂର୍ଣ୍ଣ ରୂପେ, ସିଧାସିଧା,ସଦାସର୍ବଦା, ମୂଳରୁ ଶେଷ ପର୍ଯ୍ୟନ୍ତ, ପାଖେପାଖେ, ସମାନ୍ତରାଲ ଭାବରେ, ନିକଟକୁ, ଚିରକାଳ ପାଇଁ, ଅତ୍ୟନ୍ତ,ଅତି,(ଯା.ବିଂ)ସମାନ, ସେହି ଏକା, ସମାନ୍ତର, ସମ୍ମୁଖରେ ଅବସ୍ଥିତ ।

ବରବାଦ୍(ଦୀ)—ଯା.ବ.ଲୋକସାନ୍,କ୍ଷତ, ଅପଚୟ, ଅପଚୟ, (ବିଂ) ବିନଷ୍ଟ, କ୍ଷତଗ୍ରସ୍ତ, ଅପବ୍ୟୟିତ, ଅପଚୟିତ ।

ବରାଶି—ବ(ବର+ଅଶ୍+ଇ)ସ୍ଥୂଳ ବସ୍ତ୍ର, ମୋଟା ଲୁଗା ।

ବରାସନ—କ୍ଲୀ.ବ. (ବର+ଆସ୍+ଅନ) ସମ୍ମାନିତ ପଦ, ଉତ୍ତମ ଆସନ,ସିଂହାସନ, (ପୁଂ.ବ) ଦ୍ୱାରପାଳ, ମନ୍ଦାରଫୁଲ, ନପୁଂସକ ବ୍ୟକ୍ତି, ଲମ୍ପଟ ବ୍ୟକ୍ତି, ପରସ୍ତ୍ରୀଗାମୀ,(ଷତତ୍ର)ବରର ଆସନ ।

ବରାସି—ବ.(ବର+ଅସି) ମୋଟା ଲୁଗା, ଖଣ୍ଡଧର ।

ବରାସୀ—ବ. ମ୍ଳାନବସ୍ତ୍ର, ମଳିନବାସ ।

ବରାହ—ପୁଂ. ବ. (ବର+ଆ+ହନ୍+କ.ଅ) ବାରହା, ବନ୍ୟଶୂକର, ଶୂକର, ବିଷ୍ଣୁଙ୍କର ବରାହ ରୂପ ତୃତୀୟ ଅବତାର, ପ୍ରାଚୀନ ଦେଶବଶେଷ; ପୁରାଣବଶେଷ, ବରାହମିହିର ଦେଖ, ମୁଥା, ଶିଶୁମାର, ବାରାହୀକନ୍ଦ, ଭୂଇଁକଖାରୁ, ପର୍ବତବଶେଷ, ଦ୍ୱୀପବଶେଷ ।

ବରାହକ—ବ. ( ବରାହ+କ ) ହୀରକ, ହୀରା, ଶିଶୁମାର, ଶୁଶୁକ ।

ବରାହକନ୍ଦ—ବ.(ବରାହ+କନ୍ଦ)ବରାହୀ, ବାରାହୀକନ୍ଦ. ଭୂଇଁକଖାରୁ ।

ବରାହକର୍ଣ୍ଣ—ପୁଂ.ବ. ଯକ୍ଷବଶେଷ,ବାଣବଶେଷ ।

ବରାହକର୍ଣ୍ଣିକା—ସ୍ତ୍ରୀ.ବ.ଯୁଦ୍ଧାସ୍ତ୍ରବଶେଷ ।

ବରାହକର୍ଣ୍ଣୀ—ସ୍ତ୍ରୀ. ବ. ଅଶ୍ୱଗନ୍ଧା ।

ବରାହକାଲୀ—ବ. ଆଦତ୍ୟଭକ୍ତା, ଅଣସୋରସିଆ, ସୂର୍ଯ୍ୟାବର୍ତ୍ତୀ, ସୂର୍ଯ୍ୟମଣିଫୁଲ ।

ବରାହକ୍ରାନ୍ତା—ସ୍ତ୍ରୀ.ବ.ବାରାହୀକନ୍ଦ,ଭୂଇଁକଖାରୁ, ଲଜ୍ଜାଳୁଲତା ।

ବରାହକ୍ଷେ—ଗ୍ରା. ବ. କଲ୍ଲି ଆଳର ପ୍ରସିଦ୍ଧ ବରାହରୂପୀ ବିଷ୍ଣୁବିଗ୍ରହ ।

ବରାହତୀର୍ଥ—କ୍ଲୀ.ବ. ହନୁମାନଙ୍କର ତୀର୍ଥବଶେଷ ।

ବରାହଦାଢ଼—ଗ୍ରା.ବ. ଏକପ୍ରକାର ବନ୍ୟ ବୃକ୍ଷ, ବାରହାଦାଢ଼ ଫୁଲ ।

ବରାହଦଂଷ୍ଟ୍ରା—ବ. କ୍ଷୁଦ୍ର ରୋଗବଶେଷ, ବାରହାଦାଢ଼ ।

ବରାହଦ୍ୱାଦଶୀ—ସ୍ତ୍ରୀ. ବ. ମାଘ ଶୁକ୍ଳ ଦ୍ୱାଦଶୀ ।

ବରାହଦ୍ୱୀପ—କ୍ଲୀ. ବ. ଦ୍ୱୀପବଶେଷ ।

ବରାହନାଥ—ଗ୍ରା.ବ.ଯାଜପୁରରେ ବିଷ୍ଣୁଙ୍କର ବରାହରୂପୀ ଦେବବିଗ୍ରହ ।

ବରାହନିର୍ଯ୍ୟୂହ—ପୁଂ.ବ.ବରାହମାଂସରସ ।

ବରାହପତ୍ରୀ—ସ୍ତ୍ରୀ. ବ. ଅଶ୍ୱଗନ୍ଧା ।

ବରାହପିତ୍ତ—ବ. ଶୂକର ପିତ୍ତ ।

ବରାହପୁରାଣ—କ୍ଲୀ.ବ.ଅଷ୍ଟାଦଶ ପୁରାଣାନ୍ତର୍ଗତ ପୁରାଣବଶେଷ ।

ବରାହମିହିର—ପୁଂ. ବ. ସର୍ବ ପ୍ରଧାନ ଜ୍ୟୋତର୍ବିଦ୍, ଉଜ୍ଜୟିନୀ ପତ ବିକ୍ରମାଦିତ୍ୟଙ୍କ ଦରବାରସ୍ଥ ନବରତ୍ନ ପଣ୍ଡିତଙ୍କ ମଧ୍ୟରୁ ଏକତମ ଜ୍ୟୋତର୍ବିଦ୍ ଓ ପଣ୍ଡିତ ।

ବରାହମୁକ୍ତା—ବ. ମୁକ୍ତାବଶେଷ ।

ବରାହଶର୍ମା—ପୁଂ.ବ. ଜ୍ୟୋତରଗ୍ରନ୍ଥପ୍ରଣେତା ।

ବରାହଶିଳା—ବ. ହମାଳୟ ଶିଖରସ୍ଥ ଗୋଟିଏ ପବିତ୍ର ସ୍ଥାନ ।

ବରାହଶୃଙ୍ଗ—ପୁଂ. ବ. ଶିବ ।

ବରାହଶୈଳ—ପୁଂ. ବ. ପର୍ବତବଶେଷ ।

ବରାହସଂହିତା—ସ୍ତ୍ରୀ.ବ.ବରାହମିହିର ବିରଚିତ ବୃହତ୍‌ସଂହିତା ନାମକ ଜ୍ୟୋତଗ୍ରନ୍ଥବଶେଷ ।

ବରାହାଙ୍ଗୀ—ସ୍ତ୍ରୀ. ବ. କ୍ଷୁଦ୍ରଦନ୍ତୀ ।

ବରାହାଦ୍ରି—ପୁଂ. ବ. ବରାହପର୍ବତ ।

ବରାହାବତାର—ପୁଂ. ବ. ବିଷ୍ଣୁଙ୍କର ତୃତୀୟ ଅବତାର ।

ବରାହିକା—ସ୍ତ୍ରୀ.ବ.କପିକଚ୍ଛୁ ,ବାଇଡଙ୍କ ।

ବରାହୀ—ସ୍ତ୍ରୀ. ବ. ଭଦ୍ରମୁସ୍ତା, ଅଶ୍ୱଗନ୍ଧା, ମାଇଘୁଷୁରୀ, ମାଇବାର୍‌ହା, କୃଷ୍ଣବର୍ଣ୍ଣ ଜଳପକ୍ଷିବଶେଷ, ବାରାହୀକନ୍ଦ, ଭୂଇଁକଖାରୁ ।

ବରଅା—ଗ୍ରା. ବ. ନିଆଁ ଅଟା,ନିଆଁ ରଖିବା ପାଇଁ ପାଲରେ ଛଆର ଲମ୍ବ ମୋଡ଼ା ବା ବିଣ୍ଡା ।

ବରତା—ପୁଂ. ବିଂ. ଆଚ୍ଛାଦନକାରୀ, ପରଦକାରୀ ।

ବରପୋଲୁଅ—ଗ୍ରା.ବ. (ସ-କଲକାତକ)

ଗିଲଜାତୀୟ ବୃହତ୍ ଲଟାଲିଆ ଏକପ୍ରକାର କଣ୍ଟାଳିଆ ଗଛ ।
ବର(ରୀ)ମା—ବି. (ବର+ଇମନ୍)ବିସ୍ତୃତ, ବ୍ୟାପ୍ତି, ଶ୍ରେଷ୍ଠତା, ପରିଧି ।
ବରିବସ୍—ବି. ଅନ୍ତରୀକ୍ଷ, ଧନ, ପୂଜା, ଶୁଶ୍ରୂଷା, ପରିଚର୍ଯ୍ୟା ।
ବରିବସ୍ୟା—ସ୍ତ୍ରୀ.ବି. (ବରିବସ୍+ଯ+ଆ) ଶୁଶ୍ରୂଷା, ପୂଜା, ସେବା, ଅର୍ଚ୍ଚନା ।
ବରିବସି(ସ୍ୟି)ତ—ବି°.(ବରିବସ୍ୟ+ଇତ) ଉପାସିତ, ପୂଜିତ, ସେବିତ ।
ବରିବସ୍ୟିତା—ପୁଂ. ବି°. (ବରିବସ୍+ଯ+ତୃ) ସେବକ, ପୂଜକ ।
ବରିବା—ଗ୍ରା.କ୍ରି. ବରଣ କରିବା,ମନୋନୀତ କରିବା, ମନ୍ତ୍ରଣ କରିବା ।
ବରିଶୀ—ସ୍ତ୍ରୀ. ବି. ବନିଶି, ବଡ଼ିଶ, ମାଛ ଧରିବା ସୂତାକଣ୍ଟା ।
ବରିଷ—କ୍ଲୀ. ବି. (ବୃ+ଇଷ) ବତ୍ସର, ବର୍ଷ, ପ୍ରାବୃଟ୍‌କାଲ, ବର୍ଷା ।
ବରିଷା—ସ୍ତ୍ରୀ. ବି. (ବୃ+ସ+ଆ)ବର୍ଷା ।
ବରିଷପ୍ରିୟ—ପୁଂ. ବି. ବର୍ଷାପ୍ରିୟ,ଚାତକପକ୍ଷୀ ।
ବରିଷ୍ଠ—କ୍ଲୀ. ବି. (ଉରୁ+ଇଷ୍ଠ) ତାମ୍ର, ତମ୍ବା, ମରିଚ, (ପୁଂ ବି) ତିତ୍ତିରପକ୍ଷୀ, ନାରଙ୍ଗଗଛ, ଦୈତ୍ୟବିଶେଷ (ବି°) ଉରୁତମ, ବିଶେଷ ପୂଜ୍ୟ, ପୂଜ୍ୟତମ, ସର୍ବଶ୍ରେଷ୍ଠ ।
ବରିଷ୍ଠା—ସ୍ତ୍ରୀ. ବି. ଆଦିତ୍ୟଭକ୍ତା, ଅଣସୋରିଷିଆ, ହରିଦ୍ରା, ହଳଦୀ, ଗୁଳ୍ମବିଶେଷ ।
ବରିହା—ଗ୍ରା.ବି. ବଂଶୋପାଧିବିଶେଷ।
ବରିହସ୍ତ—କ୍ଲୀ. ବି. ବାଳକ, ଉଶୀର ।
ବରୀ—ସ୍ତ୍ରୀ.ବି. (ବୃ+ର୍ମ.ଅ+ଈ)ଶତାବରୀ, ସୂର୍ଯ୍ୟପତ୍ନୀ,ଛାୟା,ମଧୁରତରଡ଼ା।
ବରୀମା—ବି. (ବର+ଇମନ୍) ପରିଧି, ବିସ୍ତୃତି ।
ବରୀୟାନ୍—ପୁଂ. ବି°.(ଉରୁ+ଇୟସ୍) ଶ୍ରେଷ୍ଠ, ବରିଷ୍ଠ, ପୂଜ୍ୟତମ,ଅତିଉତ୍ତମ, ଅତି ଯୁବା,(ବି) ଜ୍ୟୋତିଷୋକ୍ତ ଅଷ୍ଟାବିଂଶଯୋଗ, ପୁଲହପୁତ୍ର, (ସ୍ତ୍ରୀ) ବରୀୟସୀ । [ ବଳଦ ।
ବରୀ(ଲୀ)ବର୍ଦ୍ଦ—(ବଳୀ+ବୃଦ୍+କ.ଅ)
ବରୀବୃତ—ବି°. ପୁନଃପୁନଃ ଆବର୍ତ୍ତିତ ।
ବରୀଷୁ—ପୁଂ. ବି. କାମଦେବ, କନ୍ଦର୍ପ ।
ବରୁଟ—ପୁଂ. ବି. ମ୍ଳେଚ୍ଛଜାତିବିଶେଷ ।
ବରୁଡ଼—ପୁଂ.ବି. ଅନ୍ତ୍ୟଜ ଜାତିବିଶେଷ
ବରୁଣ—ପୁଂ. ବି. (ବୃ+ଅନ) ଜଳାଧିପତି ଦେବତାବିଶେଷ,ପଶ୍ଚିମଦିଗଧିପତି, ଜଳ, ସୂର୍ଯ୍ୟ, ସମୁଦ୍ର, ଦ୍ୱୀପବିଶେଷ, ବୃକ୍ଷବିଶେଷ,ବରୁଣଗଛ, କଶ୍ୟପପୁତ୍ରବିଶେଷ, ଋଷିବିଶେଷ ।
ବରୁଣକ—ପୁଂ. ବି. ବରୁଣବୃକ୍ଷ ।
ବରୁଣଗ୍ରସ୍ତ—ବି°.ବରୁଣପ୍ରାପ୍ତ,ଜଳନିମଗ୍ନ ।
ବରୁଣଗ୍ରହ—ପୁଂ. ବି. (ବରୁଣ+ଗ୍ରହ+ଅଧି.ଅ) ଘୋଡ଼ାଙ୍କ ରୋଗବିଶେଷ ।
ବରୁଣଦେବ—ବି°. ( ବି.ସ୍ତ୍ରୀ ) ବରୁଣ ଯାହାର ଦେବତା,(ବି)ଶତଭିଷା ନକ୍ଷତ୍ର ବରୁଣଦେବତା ।
ବରୁଣଦୈବତ—ବି. ଶତଭିଷାନକ୍ଷତ୍ର ।
ବରୁଣପାଶ—ବି.(ବି.ସ୍ତ୍ରୀ) ନକ୍ର, କୁମ୍ଭୀର, (ତନ୍ତ୍ର) ବରୁଣଦେବଙ୍କର ପାଶାସ୍ତ୍ର ।
ବରୁଣପ୍ରଘାସ—ପୁଂ. ବି. ଆଷାଢ଼ ବା ଶ୍ରାବଣ ପୂର୍ଣ୍ଣିମାଦିନ ଅନୁଷ୍ଠିତ ବ୍ରତବିଶେଷ । [ ବିଶେଷ ।
ବରୁଣପ୍ରସ୍ଥ—ବି. କୁରୁକ୍ଷେତ୍ରସ୍ଥ ନଗର-
ବରୁଣମଣ୍ଡଳ—ବି.(ଜ୍ୟୋତିଷ)ରେବତୀ, ପୂର୍ବାଷାଢ଼ା, ଆର୍ଦ୍ରା, ଅଶ୍ଳେଷା, ମୂଳା, ଉତ୍ତରଭାଦ୍ରପଦ ଓ ଶତଭିଷା ନକ୍ଷତ୍ର ସମନ୍ୱିତ ନକ୍ଷତ୍ର ମଣ୍ଡଳ ।
ବରୁଣଲୋକ—ପୁଂ. ବି. ଲୋକବିଶେଷ, ବରୁଣଅଧିକୃତ ସ୍ଥାନ ।
ବରୁଣବାଣ—ବି.(କ.ଧା) ଚତୁର୍ଦ୍ଦିଗରେ ଗ୍ରମୂଳଜଳବର୍ଷୀ ଶର ।
ବରୁଣାତ୍ମଜା—ସ୍ତ୍ରୀ.ବି. (ବରୁଣ+ଆତ୍ମଜା) ଲକ୍ଷ୍ମୀ, ବାରୁଣୀମଦ୍ୟ, ମଦିରା ।
ବରୁଣାନୀ—ସ୍ତ୍ରୀ. ବି. ( ବରୁଣ+ଆନୀ ) ବରୁଣଦେବତାଙ୍କ ପତ୍ନୀ । [ ସାଗର ।
ବରୁଣାଲୟ—ପୁଂ. ବି. (ତନ୍ତ୍ର) ସମୁଦ୍ର,
ବରୁଣାବାସ—ପୁଂ. ବି. ସମୁଦ୍ର ।
ବରୁଣାବି—ସ୍ତ୍ରୀ. ବି. ଲକ୍ଷ୍ମୀ ।
ବରୁଣୀ—ଗ୍ରା.ସ୍ତ୍ରୀ.ବି. ଗ୍ରାମଦେବୀବିଶେଷ, ଖୋର୍ଦ୍ଧା ଅଞ୍ଚଳରେ ଥିବା ପାହାଡ଼, ବରୁଣାଇ ପାହାଡ଼ ।
ବରୁଣେଶ—ବି.(ବି.ସ୍ତ୍ରୀ)ଶତଭିଷାନକ୍ଷତ୍ର ।
ବରୁଣୋଦ—କ୍ଲୀ. ବି. ସାଗର ।
ବରୁଣ୍ୟ—ବି°. (ବରୁଣ+ଯ) ବରୁଣସମ୍ବନ୍ଧ, ବରୁଣଠାରୁ ଉତ୍ପନ୍ନ ।
ବରୁତ୍ର—କ୍ଲୀ.ବି.(ବୃ+ଉତ୍ର) ଉତ୍ତରୀୟବସ୍ତ୍ର, ଓଢ଼ଣା ।
ବରୁଥ—କ୍ଲୀ. ବି. (ବୃ+ଉଥ) ତନୁତ୍ରାଣ, ସାଞ୍ଜୁ, ଚର୍ମ, ଗୃହ, ସୈନ୍ୟ, ଫୌଜ, ଢାଲ, ଶମ୍ଭୁଅସ୍ତ୍ର, ( ପୁଂ.ବି ) ରଥଗୁପ୍ତି, ରଥମଧ୍ୟରେ ଲୁଚିରହିବା ପାଇଁ ଥିବା ସ୍ଥାନବିଶେଷ, ଶତ୍ରୁର ବାଣଗୁଳାଆଦିର ଆକ୍ରମଣରୁ ରଥକୁ ରକ୍ଷାକରିବାପାଇଁ ରଥଉପରେ ପଡ଼ିବା ଲୁହାର ଆବରଣ, ସମୂହ, (ଭୃ.ଉଥ) ରକ୍ଷଣ, ପରିବାର, କୋକିଳ । [ ସେନାପତି ।
ବରୁଥାଧିପ—ପୁଂ. ବି. ସେନାଧିପତି,
ବରୁଥାଧିପତି—ପୁଂ.ବି.ସେନାନୀ,ସେନାନାୟକ । [ ସେନା ।
ବରୁଥିନୀ—ବି. (ବରୁଥ+ଇନ୍+ଈ )
ବରୁଥୀ—ପୁଂ. ବି°. ( ବରୁଥ+ଇନ୍ ) କବଚଦ୍ୱାରା ରକ୍ଷିତ, ସେନାପରିବୃତ ।
ବରେ—ଗ୍ରା. କ୍ରି. ବି°. ବଡ଼େ, ବଡ଼େ, ଉଚ୍ଚରେ ।
ବରେଣ୍ୟ—ପୁଂ.ବି.(ବୃ+ଏଣ୍ୟ)ପ୍ରଧାନ, ପୂଜ୍ୟ, ମାନ୍ୟ,ଉତ୍କୃଷ୍ଟ,ପ୍ରାର୍ଥନୀୟ,ଅଭୀଷ୍ଟ, (ବି) ପିତୃଗଣଙ୍କ ଅନ୍ୟତମ, ଭୃଗୁଙ୍କ ପୁତ୍ରବିଶେଷ, ମହାଦେବ, କୁଙ୍କୁମ ।
ବରେନ୍ଦ୍ର—ପୁଂ. ବି.(ବର+ଇନ୍ଦ୍ର)ପ୍ରଧାନ ରଜା, ସମ୍ରାଟ୍, ରାଜାଧିରାଜ,ପୁଣ୍ଡ୍ରଦେଶ, ଗୌଡ଼ଦେଶର ରାଜଧାନୀ,ବଙ୍ଗଦେଶର ପ୍ରାଚୀନ ବିଭାଗ ।
ବରେନ୍ଦ୍ରଗୋଷ୍ଠି—ଗ୍ରା.ବି.ବଙ୍ଗୀୟ ବ୍ରାହ୍ମଣଙ୍କର ଶାଖାବିଶେଷ। [ ଭୂମି ।
ବରେନ୍ଦ୍ରୀ—ସ୍ତ୍ରୀ.ବି.ଗୌଡ଼ଦେଶ,ବରେନ୍ଦ୍ର-
ବରେଣ୍ୟ—ପୁଂ. ବି. ସୂର୍ଯ୍ୟ ।

ବଷଟ୍କର୍ତ୍ତା—ପୁଂ. ବି. ବଷଟ୍ ମନ୍ତ୍ରୋଚ୍ଚାରକ ପୁରୋହିତାଦି ।

ବଷଟ୍କାର—ପୁଂ.ବି. ଦେବୋଦ୍ଦେଶ୍ୟକ ଯାଗ, ବେଦୋକ୍ତ ୩୩ ଦେବତାଙ୍କ ମଧ୍ୟରୁ ଏକତମ, ଦେବତାଙ୍କ ଉଦ୍ଦେଶ୍ୟରେ ଅଗ୍ନିରେ ଆହୁତିପ୍ରଦାନ,ହୋମ ।

ବଷଟ୍କାଷ୍ଠ—ନି ବିଂ.ହୋମକାଷ୍ଠ, ବଷଟ୍ ମନ୍ତ୍ରୋଚ୍ଚାରଣ ଦ୍ୱାରା ହୋମ କାଳେ ଅଗ୍ନିରେ ଉତ୍ସର୍ଗୀକୃତ ।

ବଷଟ୍କୃତ—ବିଂ.(ବଷଟ୍+କୃତ) ବଷଟ୍ ଏହି ମନ୍ତ୍ରଦ୍ୱାରା ଅଗ୍ନିରେ ହୁତ ।

ବଷଟ୍କୃତ୍ୟ—କ୍ଲୀ.ବି. ବଷଟ୍କାର ଯାଗ ବା ହୋମ ।

ବଷଟ୍କ୍ରିୟା—ସ୍ତ୍ରୀ. ବି. ହୋମ କାର୍ଯ୍ୟ ।

ବଷଟ୍ଫଲ—କ୍ଲୀ. ବି. କଙ୍କୋଲ ।

ବଷ୍କୟ—ପୁଂ.ବି. (ବଷ୍କ+ଅୟ)ବର୍ଷକିଆ ବାଛୁରି ।

ବଷ୍କୟ(ୟି)ଣୀ—ସ୍ତ୍ରୀ.ବି. ଚିରପ୍ରସୂତା ଗାଈ, ପଢ଼ିଆ ଗାଈ, ବହୁପ୍ରସବା ଗୌ ।

ବସ—ଯା.ଅ.ଏହି ପର୍ଯ୍ୟନ୍ତ,ଶେଷ, ଆଉ ନାହିଁ, ତୁନିହୁଅ ।

ବସ୍ବା—ପ୍ରା. (ସମ୍ବ) କ୍ରି. ବସିବା ।

ବସ—ଗ୍ରା. ବି. (ଫ-ବସା) ଅନ୍ତ, ପୃଷ୍ଠା, ଚକି, (ଗ୍ରା.କ୍ରି) (ତୁମ୍ଭେ) ଉପବେଶନ କର ।

ବସଢ଼ଠ—ଗ୍ରା.ବି.ଏକାଧି କ୍ରମେ ବସିବା ଓ ଠିଆହେବା କ୍ରିୟା ।

ବସଣି—ଗ୍ରା. ବି. ବଶଣି ଦେଖ ।

ବସତି(ତୀ)—(ବସ୍+ଅଧି+ଅତି+ଇ) ଅବସ୍ଥାନ, ନିବାସ, ବସ୍ତି, ଜନପଦ, ଉପନିବେଶ, ରାତ୍ରି,(ଭା.ତ)ବାସକରିବା ।

ବସତିକରିବା—ଗ୍ରା.କ୍ରି.ଘରକରି ରହିବା, ଚିରସ୍ଥାୟୀ ଭାବରେ ରହିବା ।

ବସତିବସା(ସେ)ଇବା—ଗ୍ରା କ୍ରି.କୌଣସି ସ୍ଥାନରେ ନୂତନ ଗ୍ରାମ ସ୍ଥାପନକରିବା ।

ବସନ—କ୍ଲୀ. ବି. ( ବସ୍+ଣ.ଅନ ) ପୋଷାକ, ବସ୍ତ୍ର,ଲୁଗା,(ଭା.ଅନ)ଆଚ୍ଛାଦନ, ନିବାସ,(ମଁ.ଅନ)ସ୍ତ୍ରୀ କଟିଭୂଷଣ,ତେଜପତ୍ର, ପୀତକାର୍ପାସ, ବାସସ୍ଥାନ ।

ବସନଭୂଷଣ—ବି.ଲୁଗା ଓ ଅଳଂକାର ।

ବସନବାନ୍—ପୁଂ.ବିଂ. (ବସନ+ବତ୍) ବସନଶାଳୀ, ବସ୍ତ୍ରଧାରୀ ।

ବସନା—ସ୍ତ୍ରୀ. ବି. (ବସ+ଅନ+ଆ) ସ୍ତ୍ରୀ କଟିଭୂଷଣ ।

ବସନାର୍ଣ୍ଣବା—ସ୍ତ୍ରୀ. ବି. ସମୁଦ୍ରବସନା, ସମୁଦ୍ର ପରିବୃତା ପୃଥିବୀ ।

ବସନାର୍ହ—ନି.ବିଂ.ବସନଯୋଗ୍ୟ, (ପୁଂ) ଗାର୍ହପତ୍ୟ ବା ବସନାଦି ଆଚ୍ଛାଦକ ଦୂଷନାଶକ ଅଗ୍ନି ।

ବସନ୍ତ—ବି. (ବସ୍+ଅଧି.ଅନ୍ତ) ବର୍ଷର ଛଅ ଋତୁମଧ୍ୟରୁ ନାତିଶୀତୋଷ୍ଣ ଋତୁବିଶେଷ,ଋତୁରାଜ.ସ୍ୱନାମପ୍ରସିଦ୍ଧ ବିସ୍ଫୋଟକ ରୋଗ, ରାଗବିଶେଷ,(କ.ଅ)ଅତିସାର ରୋଗ, ନାଟକରେ ବିଦୂଷକର ଉପାଧି, ତାଳବିଶେଷ, ଫଳପେଣା. (ଗ୍ରା.ବି) ଫିକା ହଳଦିଆ. ମଳୟାନିଳ, ରାମାୟଣ ବର୍ଣ୍ଣିତ ମର୍କଟ ଯୂଥପତି ।

ବସନ୍ତଆରସା—ଗ୍ରା. ବି. ଭୁବନେଶ୍ୱରର ଲିଙ୍ଗରାଜଙ୍କ ଭୋଗ ଲାଗିବା ଏକପ୍ରକାର ପତଳା ଆରସା ପିଠା ।

ବସନ୍ତକ—ପୁଂ. ବି. (ବସନ୍ତ+କ)ପୃଥିଶିମ୍ବ, ଶ୍ୟୋନାକ, ଫଣଫଣା ।

ବସନ୍ତକାଳ—ପୁଂ. ବି. ବସନ୍ତଋତୁ, ଫାଲ୍ଗୁନ ଓ ଚୈତ୍ରମାସ ।

ବସନ୍ତକୁସୁମ—ପୁଂ.ବି. (ବସନ୍ତ+କୁସୁମ) ବୃକ୍ଷବିଶେଷ, ବସନ୍ତ କାଳରେ ଫୁଟିବା ଫୁଲ ।

ବସନ୍ତକୁସୁମାକର—ପୁଂ.ବି. ବୃକ୍ଷବିଶେଷ, ଔଷଧବିଶେଷ ।

ବସନ୍ତକୁସୁମାକରରସ—ଔଷଧବିଶେଷ ।

ବସନ୍ତଗୁଣ୍ଡିଚା—ବି.ସ୍ୱର୍ଣ୍ଣାଦ୍ରି ମହୋଦୟରେ ବର୍ଣ୍ଣିତ ଚୈତ୍ର ଗୁଣ୍ଡିଚା; ଚୈତ୍ରମାସରେ ଅଶୋକାଷ୍ଟମୀରେ ହେବା ଭୁବନେଶ୍ୱରର ରଥଯାତ୍ରା । [ କୋକିଳ ।

ବସନ୍ତଘୋଷ—ବି.(ବ.ବ୍ରା) ବସନ୍ତଦୂତ,

ବସନ୍ତଘୋଷୀ—ବି.(ଚତନ୍ତ୍ର) କୋକିଳ ।

ବସନ୍ତଜ—ନି. ବିଂ. ବସନ୍ତକାଳୋତ୍ପନ୍ନ, ଯାହା ବସନ୍ତ କାଳରେ ହୁଏ ।

ବସନ୍ତଜା—ସ୍ତ୍ରୀ. ବି. ବାସନ୍ତୀଲତା,ଶୁକ୍ଲଯୂଥିକା, ବାସନ୍ତବୃକ୍ଷ, ବାସଙ୍ଗ ।

ବସନ୍ତତିଳକ—କ୍ଲୀ.ବି. (ବସନ୍ତ+ତିଳକ) ପୁଷ୍ପବିଶେଷ, ଛନ୍ଦବିଶେଷ, ଔଷଧବିଶେଷ ।

ବସନ୍ତଦୂତ—ପୁଂ.ବି. (ବସନ୍ତ+ଦୂତ) ଆମ୍ରବୃକ୍ଷ, କୋକିଳ, ପଞ୍ଚମସ୍ୱର,କାମଦେବ, ଚୈତ୍ରମାସ ।

ବସନ୍ତଦୂତୀ—ସ୍ତ୍ରୀ. ବି. ପାଟଳୀବୃକ୍ଷ,ପୁଷ୍ପବୃକ୍ଷବିଶେଷ, କୋକିଳା, ଅଗ୍ନିବନ୍ଧୁଗଛ, ମାଧବୀଲତା । [ ଗଛ ।

ବସନ୍ତଦ୍ରୁ(ମ)—ପୁଂ.ବି. ଆମ୍ରବୃକ୍ଷ,ଆମ୍ବ-

ବସନ୍ତପକ୍ଷୀ—ଗ୍ରା. ବି. ହଳଦୀବସନ୍ତ ଚଢ଼େଇ ।

ବସନ୍ତପଞ୍ଚମୀ—ସ୍ତ୍ରୀ. ବି. ଶ୍ରୀପଞ୍ଚମୀ, ମାଘଶୁକ୍ଲ ପଞ୍ଚମୀ ।

ବସନ୍ତପବନ—ବି. (ଚତନ୍ତ୍ର) ଦକ୍ଷିଣଦିଗରୁ ବୋହିବା ଆରାମପ୍ରଦ ସ୍ନିଗ୍ଧ ବାୟୁ,ମଳୟ ପବନ ।

ବସନ୍ତପୁଷ୍ପ—ପୁଂ. ବି. ଧୂଳିକଦମ୍ବ,(କ୍ଲୀ.ବି) ବସନ୍ତକାଳୋତ୍ପନ୍ନ ଫୁଲ ।

ବସନ୍ତବନ୍ଧୁ—ପୁଂ. ବି. (ଚତନ୍ତ୍ର) କାମଦେବ, ମଦନ ।

ବସନ୍ତମଣ୍ଡଳ—କ୍ଲୀ.ବି.ସିନ୍ଦୂର,ରକ୍ତପଦ୍ମ ।

ବସନ୍ତମହୋତ୍ସବ—ପୁଂ.ବି.ବସନ୍ତକାଳରେ ଆମୋଦ ପ୍ରମୋଦାର୍ଥ ଅନୁଷ୍ଠିତ ଲୌକିକ କ୍ରିୟାବିଶେଷ ।

ବସନ୍ତଯୋଧ—ପୁଂ. ବି. କାମଦେବ ।

ବସନ୍ତରା—ଗ୍ରା. ବି. ଶୂଦ୍ର ଓ ଭଣ୍ଡାରୀମାନଙ୍କର ରାଜଦତ୍ତ ଉପାଧିବିଶେଷ ।

ବସନ୍ତରାସ—ବି. (ଚତନ୍ତ୍ର) ଶ୍ରୀକୃଷ୍ଣଙ୍କର ବସନ୍ତକାଳୀନ ରାସଯାତ୍ରା ବା ଉତ୍ସବବିଶେଷ ।

ବସନ୍ତରୋଗ—ବି. ମସୂରିକା, ରୋଗବିଶେଷ, ବିସ୍ଫୋଟକ ରୋଗବିଶେଷ ।

ବସନ୍ତଲଳନା—ସ୍ତ୍ରୀ.ବି.ଶୁକ୍ଲଯୂଥୀ,ଶ୍ୱେତଯୂଇ । [ ବିଶେଷ ।

ବସନ୍ତଲେଖା—ସ୍ତ୍ରୀ. ବି. ରାଜକନ୍ୟା-

ବସନ୍ତବ୍ରତ—ପୁଂ.ବି.(ବ.ବ୍ରା)କୋକିଳ ।

ବସନ୍ତଶେଖର—ପୁଂ.ବି.କିନ୍ନରବିଶେଷ ।
ବସନ୍ତସଖ—ପୁଂ. ବି. (ବ.ବ୍ରୀ) କାମଦେବ, କନ୍ଦର୍ପ ।
ବସନ୍ତସମୟୋତ୍ସବ—ପୁଂ.ବି. ଶ୍ରୀକୃଷ୍ଣଙ୍କ ଦୋଳଯାତ୍ରା ।
ବସନ୍ତା(ନ୍ତେ)ଇ—ଗ୍ରା. ସ୍ତ୍ରୀ. ବି. ଗ୍ରାମଦେବତାବିଶେଷ, ଶୀତଳାଦେବୀ ।
ବସନ୍ତାଞ୍ଜି—ପୁଂ. ବି. ବର୍ଣ୍ଣିତଙ୍କ ବୃକ୍ଷ, ବାହାଡ଼ାଗଛ ।
ବସନ୍ତାବତାର—ବି. (୬ତତ୍) ପୃଥିବୀରେ ବସନ୍ତଋତୁର ଆରମ୍ଭ ।
ବସନ୍ତିକା—ସ୍ତ୍ରୀ. ବି. ଅପ୍ସରୋବିଶେଷ ।
ବସନ୍ତୀ—ବି.(ବସନ୍ତ+ଇନ୍) କୋକିଳ ।
ବସନ୍ତୋତ୍ସବ—କ୍ଲୀ.ବି.(କ.ଧା) ମଦନୋତ୍ସବ,ବସନ୍ତ କାଳୋତ୍ସବ, ଦୋଳଯାତ୍ରା, ହୋଲି ।
ବସନ୍ତୋତ୍ସବମଣ୍ଡଳ—କ୍ଲୀ.ବି.ହରିତାଳ ।
ବସ(ସୁ)ବାସ—ଗ୍ରା.ବି. ଚିରସ୍ଥାୟୀଭାବରେ ବାସକରିବା, ସ୍ଥାୟୀ ଆବାସ ସ୍ଥାନ ।
ବସ(ସୁ)ବାସକରିବା—ଗ୍ରା. କ୍ରି. କୌଣସି ସ୍ଥାନରେ ସ୍ଥାୟୀଭାବରେ ବାସ କରି ରହିବା ।
ବସା—ସ୍ତ୍ରୀ. ବି. ( ବସ୍+ମି.ଅ+ଆ ) ମାଂସରୋହିଣୀ, ମେଦୋଧାତୁ, ଚର୍ବି, ମଗଜ,ତୈଳମୟ ରସ, (ଗ୍ରା.ବି)ପକ୍ଷୀର ଖୋଲ଼,ବନ୍ୟପଶୁଙ୍କ ରହିବାସ୍ଥାନ,ଅସ୍ଥାୟୀ ବାସସ୍ଥାନ, ଆବାସ, ଉପବେଶନ,(ଗ୍ରା. ବିଂ) ଖଚିତ, ବସାଯାଇଥିବା, ସ୍ଥାପିତ, ଘନୀଭୂତ, (ଗ୍ରା.କ୍ରି) ବସାଇବା କ୍ରିୟାର ଅନୁଜ୍ଞା ଅନାଦରାର୍ଥକ ରୂପ ଏକବଚନ, (ତୁ) ବସାଇବା କର୍ମ କର ।
ବସ(ସେ)ଇବା—ଗ୍ରା. କ୍ରି. ଉପବେଶନ କରାଇବା, ନଗରାଦି ସ୍ଥାପନ କରିବା, ବସ୍ତୁକୁ ଦୃଢ଼ଭାବରେ ରଖିବା, ଅଳଙ୍କାରାଦିରେ ରତ୍ନାଦିଖଚିତ କରିବା,ଘନୀଭୂତ କରାଇବା,ସନ୍ନିବେଶିତ କରିବା,ରଖିବା, କରଆଦି ଧାର୍ଯ୍ୟ କରିବା,ନିକମାକରିବା, ଗ୍ରଥନ କରିବା, ସଜ୍ଜିତ କରିବା, (ସଭା ପଙ୍କ୍ତି ଆଦି) ବସିବାର ବ୍ୟବସ୍ଥା କରିବା, ନୂଆ ଉଠି ଆସୁଥିବା ବଥକୁ ଔଷଧାଦି ପ୍ରୟୋଗକରି ଦବାଇବା, ଦୁଧରେ ମଞ୍ଜାଦେଇ ଘନୀଭୂତକରିବା ।
ବସାଉଠା—ଗ୍ରା. ବି. ବସଉଠ ଦେଖ ।
ବସାଉଠି(ଠେ)ଇବା—ଗ୍ରା.କ୍ରି. ଏକସ୍ଥାନରୁ ଅନ୍ୟସ୍ଥାନକୁ ଯାଇ ବାସ କରିବା ।
ବସାକରିବା—ଗ୍ରା. କ୍ରି. (ପକ୍ଷୀ) ଖୋଳ ନିର୍ମାଣ କରିବା, ଅସ୍ଥାୟୀଭାବରେ ବାସ କରିବା, ସର୍ବଦା ଉପସ୍ଥିତ ରହିବା ।
ବସାକେତୁ—ପୁଂ.ବି. ଧୂମକେତୁବିଶେଷ ।
ବସାଘର—ଗ୍ରା. ବି. ଅସ୍ଥାୟୀ ବାସସ୍ଥାନ ।
ବସାଢ୍ୟ—ପୁଂ. ବି. ଶିଶୁମାର, ଶୁଶୁକ, (ବିଂ) ଚର୍ବିଳିଆ ମଜ୍ଜାମୟ ।
ବସାଢ୍ୟକ—ପୁଂ.ବି. ଶିଶୁମାର,ଶୁଶୁକ ।
ବସାଣ—ଗ୍ରା. ବି. ବସିବାକ୍ରିୟା, ବସାଇବାକ୍ରିୟା, କରଧାର୍ଯ୍ୟ କରଣ,ଖଞ୍ଜା, (ପ୍ରା. ପୁଷ୍ପ. ବି) ପିଠାଆଦି ଉପର୍ଯ୍ୟୁପରି ସଜାଇ ରଖିବାର ପଲମ, ଚାଙ୍ଗୁଡ଼ି ।
ବସାଦନୀ—ସ୍ତ୍ରୀ. ବି. ପୀତଶିଂଶପା ।
ବସାଦହି—ଗ୍ରା. ବି. ଆଉଟା ଦୁଧ ଅଣ୍ଡାହେଲେ ତହିଁରେ ମଞ୍ଜା ବା ଖଟାପକାଇ କିଛିକାଳ ରଖିଦେବାପରେ ପ୍ରସ୍ତୁତ ଘନୀଭୂତ ଦଧି, ( ପ୍ରା. ସମ୍ବଲ. ବି. ) ଦୋଳଦହି ।
ବସାନ—ବିଂ. (ବସ୍+କ.ଆନ) ପରିଧାନକର୍ତ୍ତା, (ସ୍ତ୍ରୀ) ବସାନା ।
ବସାପଡ଼ିବା—ଗ୍ରା. କ୍ରି. ହଠାତ୍ ଏକସ୍ଥାନରୁଆସି ଅନ୍ୟଏକସ୍ଥାନରେ ରହିବା
ବସାପାୟୀ—ପୁଂ. ବି.(ବସା+ପା+ଇନ୍) କୁକ୍କୁର ।
ବସାବାନ୍ଧିବା—ଗ୍ରା. କ୍ରି. ( ପକ୍ଷିମାନେ ) କାଠିକୁଟାଆଦି ସଂଗ୍ରହ କରି ତହିଁରେ ବସା ନିର୍ମାଣ କରିବା ।
ବସାବାସ—ଗ୍ରା. ବି. ବସାଘର ।
ବସାଭାଙ୍ଗିବା—ଗ୍ରା.ବି. କୌଣସି ବ୍ୟକ୍ତିର ଆଶ୍ରୟ ସ୍ଥାନର ଚ୍ୟୁତ, (କ୍ରି) ଅସ୍ଥାୟୀ ବସାଘରକୁ ଅନ୍ତରିତ କରିବା ।
ବସାମେହ—ପୁଂ.ବି.ବାତପ୍ରମେହରୋଗ ।
ବସାମେହୀ—ପୁଂ. ବିଂ. ବସାମେହବିଶିଷ୍ଟ (ବ୍ୟକ୍ତି) ।
ବସାର—କ୍ଲୀ. ବି. ଇଚ୍ଛା, ଅଭିପ୍ରାୟ ।
ବସାସଞ୍ଜା—ଗ୍ରା.ବି. ଆଗନ୍ତୁକ ବ୍ୟକ୍ତିଙ୍କର ରହିବା ନିମନ୍ତେ ବସାଘର ଓ ଖାଦ୍ୟସାମଗ୍ରୀ ।
ବସି—ବି. ( ବସ୍+ମି.ଇ ) ବସନ, ଲୁଗାପଟା, (ଅଧି.ଇ) ଆବାସ, ଗୃହ ।
ବସିକ—ବି. ବିଂ. ଶୂନ୍ୟ ।
ବସିଖାଇବା—ଗ୍ରା. କ୍ରି. କିଛି ରୋଜଗାର ପନ୍ଥା ନକରି ସଞ୍ଚିତ ଧନରେ ଜୀବିକା ନିର୍ବାହ କରିବା ।
ବସିତ—ବିଂ. (ବସ୍+ମି.ତ) ପରିହିତ, (କ.ତ) ବାସକରୁଥିବା,(ମି.ତ)ସଞ୍ଚିତ, (ବି-ଅଧି.ତ) ବାସସ୍ଥାନ ।
ବସିତବ୍ୟ—ବି. ବିଂ. ପରିଧାନଯୋଗ୍ୟ ।
ବସିତା—ପୁଂ. ବିଂ. ଆଚ୍ଛାଦୟିତା,ବସ୍ତ୍ରାବରଣକାରୀ ।
ବସିପଡ଼ିବା—ଗ୍ରା.କ୍ରି.ହଠାତ୍ ଉପବେଶନ କରିବା, ହତାଶ ଓ ନଷ୍ଟଚେଷ୍ଟ ହେବା ।
ବସିବା—ଗ୍ରା. କ୍ରି.ଉପବେଶନ କରିବା, ବିଶ୍ରାମ କରିବା,ଅପେକ୍ଷା କରିବା,ନିଷ୍କର୍ମା ହୋଇ ରହିବା, ଘନୀଭୂତ ହେବା, ଭୂମିରେ ଚୌରସ ହୋଇ ସଂଲଗ୍ନ ହେବା, ( ପେକ, ଅଶେଂଇ, ମାଛି, ) କାତହେବା, ବେଶଯିବା, ଦବିଯିବା, (କଣ୍ଠ ବା ସ୍ୱର) କ୍ଷୀଣହୋଇ ଅନ୍ୟପ୍ରକାର ହେବା, କାଳଯାପନ କରିବା, ଦଖଲ କରିବା, ଜାଗରହିବା, ମହାପ୍ରସାଦକୁ ସାକ୍ଷୀ ରଖି ଅନ୍ୟର ସଙ୍ଗେ ମିତ୍ରତାସୂତ୍ରରେ ଆବଦ୍ଧ ହେବା,(ଉଠୁଥିବା ବ୍ରଣଆଦି) ନ ପାଚି ଦେହରେ ଲୀନହେବା, କରଆଦି ଧାର୍ଯ୍ୟ ହେବା, ସ୍ଥାପିତ ହେବା,ପ୍ରତିଷ୍ଠିତ ହେବା,ଜୀବିତ ରହିବା,ଉଦ୍ୟତହେବା,ଆରମ୍ଭକରିବା, ଗର୍ହିତ ହେବା, ସାନ୍ଦ୍ରହେବା, ଉନ୍ନିଦ୍ର ହେବା, ଦୟାଦିର ଉଦ୍ରେକ ହେବା, ବାସକରିବା, (ପ୍ରା.ଉତ୍ତର ବାଲେଶ୍ୱର, କ୍ରି) ରଖାଯିବା, ଥୁଆହେବା ।
ବସିଯିବା—ଗ୍ରା. କ୍ରି. ଘନୀଭୂତ ହେବା, ବସିବା କର୍ମ ଶେଷ କରିବା ।

ବସିରହ୍ବା—ଗ୍ରା.କ୍ରି. ନିଷ୍କର୍ମା ହୋଇ ଅଳସ୍ୟରେ କାଳଯାପନ କରିବା ।

ବସିନ୍ଦା—ସା.ବିଂ. ଅଧିବାସୀ ।

ବସିର—କ୍ଲୀ ବି. (ବସ + ଇର) ସମୁଦ୍ର ଲବଣ, ଗଜପିପ୍ପଳୀ, (ପୁଂ) ରକ୍ତାପାମାର୍ଗ, ଡାଙ୍ଗୁକାମ୍ବ, ଜଳକାମ୍ବ ।

ବସିଷ୍ଠ—ବି. ବଶିଷ୍ଠ ଦେଖ ।

ବସିଷ୍ଠସଂହିତା—ସ୍ତ୍ରୀ.ବି. ଧର୍ମଶାସ୍ତ୍ରବିଶେଷ, ଯୋଗଶାସ୍ତ୍ରବିଶେଷ ।

ବସୁ—ବି. (ବସ୍+ଉ) ଧନରତ୍ନ, ଶ୍ୟାମ, ଜଳ, ଦୀପ୍ତି, ବକବୃକ୍ଷ, ଅନଳ, ରଶ୍ମି, ଗଣ ଦେବତାବିଶେଷ, ଅଠସଂଖ୍ୟା, ରାଜା, ଧନାଧିପ, କୁବେର, ସାଧୁ, ବୃକ୍ଷ, ଦୁଷ୍କରଣୀ, ଶିବ, ସୂର୍ଯ୍ୟ, ବିଷ୍ଣୁ, ଏକେକଡ଼ା କଉଡ଼ିର ଅଠଭାଗରୁ ଏକଭାଗ, ଅଗ୍ନି, ଧନିଷ୍ଠାନକ୍ଷତ୍ର, କିରଣ, ଘୋଡ଼ାର ବାଗ, ଦେବକ, ସ୍ୱର୍ଣ୍ଣଲବଣ, କାଳ, କଳାବଇଁଚି ମଞ୍ଜ, ଅତ୍ରେଣ୍ଟିରତ୍ନ, ଯୋଡ଼ ଦଉଡ଼ି, ସୁନାମୁଗ, ବକୁଳବୃକ୍ଷ, ସାଧୁପୁରୁଷ, ବୃଦ୍ଧିନାମକ ଔଷଧି, ଦକ୍ଷ ପ୍ରଜାପତିଙ୍କ କନ୍ୟା ଓ ଧର୍ମଙ୍କ ସ୍ତ୍ରୀ, (ବିଂ) ଯେ ଦବ୍ୟଥିରେ ବାସକରନ୍ତି, ଯାହାଁରେ ସମସ୍ତଙ୍କ ବାସ, ମଧୁର, ଶୁଷ୍କ, (ଗ୍ରା.ବି) ବଙ୍ଗୀୟ କାୟସ୍ଥଙ୍କର ଉପାଧିବିଶେଷ, କେତେକ ଶ୍ରୋତ୍ରିୟ ବ୍ରାହ୍ମଣଙ୍କର ବଂଶିଷ୍ଟତା ପରିଚାୟକ ସଙ୍ଗ୍ୟାବିଶେଷ, (ଗ୍ରା କ୍ରି) (ସେ) ଉପବେଶନ କରୁ ।

ବସୁକ—ବି. (ବସୁ+କ) ସମ୍ବର ଲବଣ, ପାଂଶୁଲବଣ, ବାନ୍ତିକ, କୃଷ୍ଣାଗୁରୁ, କ୍ଷାର ଲବଣ, ଅର୍କବୃକ୍ଷ, ହିମେଲ୍ଲୀ ବୃକ୍ଷବିଶେଷ, ରକ୍ତାର୍କ, ବକପୁଷ୍ପ ଦେଖ, ବକୁଳଗଛ, ଇନ୍ଦ୍ରଙ୍କ ଗୋଟିଏ ଓ ବଶିଷ୍ଠଙ୍କ ଗୋଟିଏ ପୁତ୍ର ଜଣ ଋଷି, ସୁନାମୁଗ ।

ବସୁକୀଟ—ପୁଂ. ବି. (୬ତତ୍) ଯାଚକ, ଧନଭିକ୍ଷୁକ, କୃପଣ ବ୍ୟକ୍ତି ।

ବସୁକୋଦର—କ୍ଲୀ.ବି. ତାଳୀଶପତ୍ର ।

ବସୁଗୁରୁକ—କ୍ଲୀ.ବି. ସ୍ୱର୍ଣ୍ଣ ।

ବସୁଚ୍ଛିଦ୍ରା—ସ୍ତ୍ରୀ.ବି. ମହାମେଦା ।

ବସୁଦ—ପୁଂ.ବିଂ. (ବସୁ+ଦା+କ.ଅ) ଧନଦାତା, (ବି) କୁବେର ବିଷ୍ଣୁ ।

ବସୁଦା—ସ୍ତ୍ରୀ.ବି. (ବସୁଦ+ଆ) ପୃଥିବୀ, କାର୍ତ୍ତିକେୟଙ୍କ ଛଅମାତା ମଧ୍ୟରୁ ଏକ, ନର୍ମଦାନାମ୍ନୀ ଗନ୍ଧର୍ବର କନ୍ୟା ଓ ମାଲୀ ରାକ୍ଷସର ପତ୍ନୀ ।

ବସୁଦେବ—ପୁଂ.ବି. (ବସୁ+ଦେବ) ଶ୍ରୀକୃଷ୍ଣଙ୍କ ପିତା, ଦେବକୀଙ୍କ ସ୍ୱାମୀ, କୁବେର, (ବି.ସ୍ତ୍ରୀ) ଧନିଷ୍ଠାନକ୍ଷତ୍ର, (ପୁଂ.ବିଂ) ଧନୀ, ଉଜ୍ଜ୍ୱଳ କାନ୍ତିବିଶିଷ୍ଟ ।

ବସୁଦେବତ—କ୍ଲୀ.ବି. (ବି.ସ୍ତ୍ରୀ) ଧନିଷ୍ଠାନକ୍ଷତ୍ର, (ପୁଂ.ବି) ବସୁଦେବ ଦେଖ ।

ବସୁଦେବତା—ସ୍ତ୍ରୀ. ବି. ଧନିଷ୍ଠାନକ୍ଷତ୍ର, (୬ତତ୍) କୁବେର ।

ବସୁଦେବଭୂ—ପୁଂ. ବି. (ଭୂ+କ୍ୱିପ୍) ଶ୍ରୀକୃଷ୍ଣ ।

ବସୁଦେବାତ୍ମଜ—ପୁଂ.ବି. (୬ତତ୍) ଶ୍ରୀକୃଷ୍ଣ

ବସୁଦେବ୍ୟା—ସ୍ତ୍ରୀ.ବି. ଧନିଷ୍ଠାନକ୍ଷତ୍ର ।

ବସୁଦୈବ—କ୍ଲୀ.ବି. ଧନିଷ୍ଠାନକ୍ଷତ୍ର ।

ବସୁଦୈବତ—କ୍ଲୀ.ବି. ଧନିଷ୍ଠାନକ୍ଷତ୍ର ।

ବସୁଦ୍ରୁମ—ପୁଂ.ବି. ଉଦୁମ୍ବର ବୃକ୍ଷ ।

ବସୁଧର୍ମିକା—ସ୍ତ୍ରୀ.ବି. ସ୍ଫଟିକ ।

ବସୁଧା—ସ୍ତ୍ରୀ.ବି. (ବସୁ+ଧା+କ,କ୍ୱିପ୍) ପୃଥିବୀ, (ବିଂ) ଧନଦାତା, ଧନଧାରଣୀ

ବସୁଧାଖର୍ଜ୍ଜୂରିକା—ସ୍ତ୍ରୀ.ବି. ଶ୍ରେଷ୍ଠ ଖଜୁରୀ ଗଛ, ବଣଖଜୁରୀ ।

ବସୁଧାଧର—ପୁଂ. ବି. (ବସୁଧା+ଧର) ପର୍ବତ, ବିଷ୍ଣୁନାମବିଶେଷ, ଅନନ୍ତ, ବାସୁକୀ ।

ବସୁଧାଧିପ—ପୁଂ.ବି. (୬ତତ୍) ରାଜା, ପୃଥ୍ୱୀପତି ।

ବସୁଧାଧିପତ୍ୟ—କ୍ଲୀ.ବି. (ବସୁଧା+ଆଧିପତ୍ୟ) ବସୁଧାର ଆଧିପତ୍ୟ, ରାଜତ୍ୱ ।

ବସୁଧାନ—ବି. ଧନରକ୍ଷା । [ ପତି ।

ବସୁଧାପତି—ପୁଂ.ବି. (୬ତତ୍) ପୃଥିବୀ

ବସୁଧାପରିପାଳକ—ପୁଂ. ବି. ବସୁଧା ପାଳନକାରୀ, ରଜା ।

ବସୁଧାପାଳ—ପୁଂ. ବି. ବସୁଧା ପାଳନକାରୀ, ରଜା ।

ବସୁଧାଭୃତ୍—ପୁଂ.ବି. (ବସୁଧା+ଭୃ+କ.କ୍ୱିପ୍) ପର୍ବତ, ରଜା ।

ବସୁଧାରା—ସ୍ତ୍ରୀ.ବି. (୬ତତ୍) ଧନପ୍ରବାହ, ଆଭ୍ୟୁଦୟିକ ଶ୍ରାଦ୍ଧ ସମୟରେ କାନ୍ଥରେ ଦେବା ୫ । ୭ ଘୃତଧାରା, ପଣାସଂକ୍ରାନ୍ତିଠାରୁ ଏକମାସ ପର୍ଯ୍ୟନ୍ତ ତୁଳସୀଗଛ ଉପରେ ସଚ୍ଛିଦ୍ର ଜଳପୂର୍ଣ୍ଣ କଳସ ଝୁଲାଇ ଦିଆଯିବା ଜଳଧାରା, ଜୈନଙ୍କ ଦେବୀବିଶେଷ, କୁବେରପୁରୀ, ତୀର୍ଥବିଶେଷ, ନଦୀବିଶେଷ ।

ବସୁଧାରାତୀର୍ଥ—ବି. ହିନ୍ଦୁମାନଙ୍କର ତୀର୍ଥବିଶେଷ । [ ସମ୍ପତ୍ତିଶାଳୀ ।

ବସୁଧାରୀ—ପୁଂ. ବିଂ. ବସୁଧାରାଯୁକ୍ତ,

ବସୁଧାର୍ମିକା—ବି. (ବସୁ+ଧର୍ମ+କ.ଆ) ସ୍ଫଟିକ, ଙ୍ଗୋଦର୍ମର । [ ସୁର ।

ବସୁଧାସୁତ—ପୁଂ.ବି. (୬ତତ୍) ନରକା-

ବସୁନନ୍ଦନ—ପୁଂ.ବି. ଖେଚକ ।

ବସୁମତ—ପୁଂ.ବି. ବ୍ରହ୍ମା ।

ବସୁନାଥ—ବି. ଅଗ୍ନି ।

ବସୁନ୍ଧର—ପୁଂ.ବି. (ବସୁଂ+ଧୃ+କ.ଅ) ପ୍ଳକ୍ଷଦ୍ୱୀପର ବର୍ଷ ପୁରୁଷବିଶେଷ, କୁବେରଙ୍କ ଅନୁଚରବିଶେଷ ।

ବସୁନ୍ଧରା—ସ୍ତ୍ରୀ. ବି. (ବସୁଂ+ଧୃ+କ.ଅ +ଆ) ବସୁଧା, ପୃଥିବୀ, ବସୁନ୍ଧରର ସ୍ତ୍ରୀ ଶ୍ୱଫଲକଙ୍କ କନ୍ୟା ଓ କୃଷ୍ଣତନୟ ଶାମ୍ବଙ୍କଭାର୍ଯ୍ୟା ।

ବସୁନ୍ଧରାଧର—ପୁଂ.ବି. ଭୂଧର, ପର୍ବତ ।

ବସୁନ୍ଧରାଧବ—ପୁଂ.ବି. ପୃଥିବୀପତି ।

ବସୁନ୍ଧରୀ—ଗ୍ରା.ସ୍ତ୍ରୀ.ବି. ପୃଥିବୀ ।

ବସୁନ୍ଧରେଶ—ବି. (ବସୁନ୍ଧରା+ଈଶ) ବସୁନ୍ଧରାପତି, ପୃଥିବୀପତି ।

ବସୁନ୍ଧରେଶା—ସ୍ତ୍ରୀ.ବି. ଶ୍ରୀରାଧା, ଲକ୍ଷ୍ମୀ ।

ବସୁପତି—ପୁଂ.ବି. (ବସୁ+ପତି) ଧନପାଳକ, ରଜା ।

ବସୁପତ୍ନୀ—ସ୍ତ୍ରୀ. ବିଂ. ବହୁବିଧ ଧନର ପାଳନକାରିଣୀ, (ବି) ବସୁମାନଙ୍କ ସ୍ତ୍ରୀ ।

ବସୁପାତା—ପୁଂ.ବି. (ବସୁ+ପା+କ, ତୃ) ଶ୍ରୀକୃଷ୍ଣ, କୁବେର ।

ବସୁପାଳ—ପୁଂ.ବି. ପୃଥିବୀପତି, ରଜା ।

ବସୁପ୍ରଦ—ପୁଂ.ବ°. (ବସୁ+ପ୍ର+ଦା + କ.ଅ) ବସୁଦ ଦେଖ, (ବ) ବସୁଦ ଦେଖ, ଶିବ, ସ୍କନ୍ଦଙ୍କ ଅନୁଚରବିଶେଷ ।

ବସୁପ୍ରଭା—ସ୍ତ୍ରୀ.ବ.ଅଗ୍ନିଙ୍କ ଜିହ୍ୱାବିଶେଷ ।

ବସୁପ୍ରାଣ—ପୁଂ.ବ. ଅଗ୍ନି ।

ବସୁଭ—କ୍ଲୀ.ବ. ଧନିଷ୍ଠା ନକ୍ଷତ୍ର ।

ବସୁଭରିତ—ତ୍ରି.ବ°. ଧନପୂର୍ଣ୍ଣ ।

ବସୁମତ୍—ତ୍ରି.ବ. ଧନଯୁକ୍ତ, ଅର୍ଥବାନ୍ ।

ବସୁମତୀ—ସ୍ତ୍ରୀ.ବ. ( ବସୁ+ମତ୍+ଈ ) ପୃଥିବୀ, (ସ୍ତ୍ରୀ.ବ°) ଧନଶାଳିନୀ ।

ବସୁମତୀଧର —ପୁଂ.ବ. ଭୂଧର,ପର୍ବତ ।

ବସୁମତୀପତି—ପୁଂ.ବ.ପୃଥିବୀପତି,ରାଜା ।

ବସୁମାତା—ଗ୍ରା.ସ୍ତ୍ରୀ.ବ. ପୃଥିବୀ ।

ବସୁମାନ୍—ପୁଂ.ବ°. (ବସୁ+ମତ୍)ଧନବାନ୍, (ବ) ରାଜା, ଉତ୍ତର ଦେଶୀୟ ପୌରାଣିକ ପର୍ବତବିଶେଷ, ନରପତିବିଶେଷ । [ ଦୁଷ୍ଟ, ନଷ୍ଟ

ବସୁର—ପୁଂ.ବ. ବସୁଲ, ଦେବ, (ବ°)

ବସୁରୂପ—ପୁଂ.ବ. ଶିବଙ୍କ ନାମାନ୍ତର ।

ବସୁରେତା—ପୁଂ ବ. (ବସୁ + ରେତସ୍) ଅଗ୍ନି, ଶିବ ।

ବସୁରୋଚିସ୍—କ୍ଲୀ. ବ. ଯଜ୍ଞ, (ପୁଂ.ବ) ଋଷିବିଶେଷ ।

ବସୁଲ—ପୁଂ.ବ.( ବସୁ + ଲା + କ.ଅ ) ଦେବତା, ଦେବ ।

ବସୁବୃଷ୍ଟି—ସ୍ତ୍ରୀ.ବ. ଧନବର୍ଷଣ ।

ବସୁଶ୍ରୀ—ସ୍ତ୍ରୀ. ବ. ସ୍କନ୍ଦାନୁଚର ମାତୃବିଶେଷ ।

ବସୁଶ୍ରୁତ—ବ°. ଧନହେତୁ ବିଖ୍ୟାତ, ମହାଧନୀ, (ବ) ଋଷିବିଶେଷ ।

ବସୁଶ୍ରେଷ୍ଠ—କ୍ଲୀ.ବ. (୭ତତ୍) ରୌପ୍ୟ, ରୂପା ।

ବସୁସାର—ସ୍ତ୍ରୀ.ବ. କୁବେରପୁରୀ ।

ବସୁସେନ—ବ. କର୍ଣ୍ଣରାଜା, ଅଙ୍ଗରାଜ ଭ୍ରାତା କର୍ଣ୍ଣ ।

ବସୁସ୍ଥଳୀ—ସ୍ତ୍ରୀ. ବ (୬ତତ୍) କୁବେରପୁରୀ, ଧନାଗାର ।

ବସୁଦଣ୍ଡ—ପୁଂ.ବ. ବକବୃକ୍ଷ ।

ବସୁହଟ୍ଟକ—ପୁଂ.ବ. ବକବୃକ୍ଷ ।

ବସୂକ—କ୍ଲୀ.ବ. ସାମ୍ବର ଲବଣ, ବକପୁଷ୍ପ ।

ବସୂତ୍ତମ—ପୁଂ.ବ°. ମହାଧନବାନ୍ ।

ବସୂମତୀ—ସ୍ତ୍ରୀ.ବ. ବସୁମତୀ, ପୃଥିବୀ ।

ବସୂରା—ବ. ( ବସୁ+ରା+ଅ+ଆ ) ବେଶ୍ୟା ।

ବସେଇବା—ଗ୍ରା.କ୍ରି. ବସାଇବା ଦେଖ, (ପ୍ରା. ଗଞ୍ଜାମ ) ବ. ବାଳିକା ପ୍ରଥମେ ରଜସ୍ୱଳା ହେବା ଉପଲକ୍ଷ୍ୟେ ଅନୁଷ୍ଠିତ ଉତ୍ସବ ବିଶେଷ ।

ବସ୍କ—ପୁଂ.ବ.(ବସ୍କ + ଘ.ଅ)ଅଧ୍ୟବସାୟ, ଉଦ୍ୟୋଗ ।

ବସ୍କୟଣୀ—ପୁଂ. ବ. ଏକବର୍ଷର ବାଛୁରୀ ।

ବସ୍କରାଟିକା—ସ୍ତ୍ରୀ. ବ. ବୃଶ୍ଚିକ, ବିଛା ।

ବସ୍ତ—ବ.(ବସ୍ତ + ର୍ମ.ଅ)ବକରା, ଛେଳି, (ବସ୍ + ଅଧି.ତ) ଆବାସ, ଗୃହ ।

ବସ୍ତକ—କ୍ଲୀ. ବ. କୃତ୍ରିମ ଲବଣ ।

ବସ୍ତକର୍ଣ୍ଣ—ପୁଂ. ବ. ଶାଳବୃକ୍ଷ ।

ବସ୍ତଗନ୍ଧା—ସ୍ତ୍ରୀ. ବ°. (ବସ୍ତଗନ୍ଧ+ଆ) ଛାଗପରି ଗନ୍ଧବିଶିଷ୍ଟା ।

ବସ୍ତମୋଦା—ସ୍ତ୍ରୀ.ବ.(ବସ୍ତ+ମୁଦ୍+ଆ) ଅଜମୋଦା ।

ବସ୍ତବ୍ୟ—ତ୍ରି. ବ°. (ବସ୍ + ର୍ମ.ତବ୍ୟ) ବାସାର୍ହ,ବାସଯୋଗ୍ୟ,ବାସୋପଯୋଗୀ

ବସ୍ତର୍—ଗ୍ରା. ବି. ଉତ୍କଳୀୟ ଗଡ଼ଜାତ ରାଜ୍ୟ ବିଶେଷ, ଲୁଗା,. ବସ୍ତ୍ର ।

ବସ୍ତା—ଯା.ବ.ଅଖାର ବଡ଼ଥଳୀ, ବୋରା

ବସ୍ତାନି—ଗ୍ରା.ବ.କାଗଜ ପତ୍ର ଆଦି ବନ୍ଧାଯାଇଥିବା କନାର ଗଣ୍ଠିଲି ।

ବସ୍ତାନ୍ତ୍ରୀ—ସ୍ତ୍ରୀ. ବ. (ବସ୍ତ + ଅନ୍ତ୍ର + ଈ) ଛାଗଲାଦି କ୍ଷୁପ, ବୃଷଗନ୍ଧାଖ୍ୟା ।

ବସ୍ତି(ସ୍ତୀ)—ବ. ( ବସ୍+ତି+ଈ ) ନାଭିର ଅଧୋଭାଗ, ତଳପେଟ, ମୂତ୍ରାଶୟ, ପିଚକାରୀ, ବସ୍ତ୍ରର ଦଶୀ, ବାସ, ବସତି, ନଗର, ଦରିଦ୍ରମାନଙ୍କର ବାସସ୍ଥାନ, ପଲ୍ଲୀଗ୍ରାମ, (ପ୍ରା.ସମ୍ବ.ବ) ଗୃହନା ଜମି, ଘରବାଡ଼ି ରହିତଜମି ।

ବସ୍ତିଆ—ଗ୍ରା.ବ. ଶୂଦ୍ରମାନଙ୍କର ବଂଶୋପାଧି ବିଶେଷ ।

ବସ୍ତିକର୍ମ—କ୍ଲୀ. ବ. ବସ୍ତିଦାନକାର୍ଯ୍ୟ, ଲିଙ୍ଗେନ୍ଦ୍ରିୟ ଓ ଗୁହ୍ୟଦେଶ୍ରିୟ ଆଦିର ମାର୍ଗ ପିଚକାରୀ ଦ୍ୱାରା ପରିଷ୍କାର କରିବା କର୍ମ ।

ବସ୍ତିକୁଣ୍ଡଳିକା—ସ୍ତ୍ରୀ. ବ. ମୂତ୍ରାଘାତ ରୋଗ ବିଶେଷ ।

ବସ୍ତିବିଲ—କ୍ଲୀ.ବ. ବସ୍ତି ଦ୍ୱାର, ମୂତ୍ରଦ୍ୱାର

ବସ୍ତିମଳ—କ୍ଲୀ. ବ. (୬ତତ୍) ମୂତ୍ର ।

ବସ୍ତିଶୀର୍ଷ—କ୍ଲୀ. ବ. ଧୃତାଙ୍ଗ ବିଶେଷ, ବସ୍ତିର ଉପରିଭାଗ ।

ବସ୍ତିଶୂଳ—କ୍ଲୀ.ବ. ବସ୍ତିବେଦନା, ତଳପେଟ ବଥାଇବା ।

ବସ୍ତିଶୋଧନ—କ୍ଲୀ. ବ. ମଦନ ଫଳ, ବସ୍ତିଶୋଧକ ଦ୍ରବ୍ୟ, ମଦନ ବୃକ୍ଷ ।

ବସ୍ତୁ—କ୍ଲୀ. ବ. (ବସ୍+ତୁ) ଦ୍ରବ୍ୟ,ପଦାର୍ଥ, କାର୍ଯ୍ୟ, ଅର୍ଥ, ଇତିବୃତ୍ତ, ବୃତ୍ତାନ୍ତ,ସତ୍ପଦାର୍ଥ, ସତ୍ୟ, ବ୍ରହ୍ମା, ଅସ୍ତିତ୍ୱବିଶିଷ୍ଟ ବସ୍ତୁ, ସାର, ଉପକରଣ, ଦ୍ରବ୍ୟର ପ୍ରାକୃତିକ ଗୁଣ,ନାଟକ ବର୍ଣ୍ଣିତ ବିଷୟ ବା ଗଳ୍ପ, ଧନ, ପ୍ରକୃତ ପଦାର୍ଥ, (ଗ୍ରା. ବ) (ସ୍ତ୍ରୀମାନଙ୍କର ବ୍ୟବହୃତ)ସ୍ତ୍ରୀ ଜନନେନ୍ଦ୍ରିୟ, ଯୋନି ।

ବସ୍ତୁକ—କ୍ଲୀ. ବ. ( ବସ୍ତୁ + କ ) ବାସ୍ତୁକ ଶାକ, ବଥୁଆଶାଗ ।

ବସ୍ତୁଗତ୍ୟା—କ୍ରି. ବ°.ବସ୍ତୁତଃ, ଫଳତଃ, କାର୍ଯ୍ୟତଃ, ପ୍ରକୃତରେ ।

ବସ୍ତୁତଃ—ଅବ୍ୟ.(ବସ୍ତୁ+ତସ୍)ବାସ୍ତବିକ, ଯଥାର୍ଥତଃ,ଫଳତଃ,ପ୍ରକୃତରେ,ନିଶ୍ଚେ ।

ବସ୍ତୁତତ୍ତ୍ୱ—ବି. ପଦାଥ ବିଜ୍ଞାନ, ‘ଈଶ୍ୱର ଏହି ଜଗତରେ ସାରବସ୍ତୁ’ ଏହିଜ୍ଞାନ ।

ବସ୍ତୁତତ୍ତ୍ୱଜ୍ଞ—ବ°.ପଦାର୍ଥର ସ୍ୱରୂପବେତ୍ତା, ଯେ ପଦାର୍ଥ ସମୂହର ଗୁଣାଦି ଜାଣେ ।

ବସ୍ତୁଧର୍ମ—ପୁଂ. ବ. ବସ୍ତୁର ଧର୍ମ, ପଦାର୍ଥର ଗୁଣାଦି ବିଷୟ ।

ବସ୍ତୁନିର୍ଦ୍ଦେଶ—ବ (୬ତତ୍)କାବ୍ୟ ନାଟକରେ ମଙ୍ଗଳାଚରଣର ଏକଭେଦ, ଯହିଁରେ କଥା ବସ୍ତୁ ଆଭାସ ଦିଆଯାଇ ଥାଏ ।

ବସ୍ତୁଭାବ—ପୁଂ.ବ.ବସ୍ତୁର ଧର୍ମ ବା ରୂପ ।

ବସ୍ତୁଭେଦ—ପୁଂ. ବ. ବସ୍ତୁର ପ୍ରକାର, ପଦାର୍ଥର ପ୍ରକାର ।

ବସ୍ତୁମାତ୍ର—ବ. କୌଣସି ବିଷୟର ସ୍ଥୂଳ ବର୍ଣ୍ଣନା (ଯହିଁର ସୂକ୍ଷ୍ମ ବର୍ଣ୍ଣନା ପରେ କରାଯିବ) ।

ବସ୍ତୁବାଦ—ବି. ଦାର୍ଶନିକ ସିଦ୍ଧାନ୍ତ ବିଶେଷ ଜଡ଼ବାଦ ।

ବସ୍ତୁବିଚାର—ପୁଂ.ବ.ବସ୍ତୁଗୁଣ ନିର୍ଦ୍ଧାରଣ ।

ବସ୍ତୁବିଜ୍ଞାନ—ବି. ବସ୍ତୁତତ୍ତ୍ୱ ଦେଖ ।

ବସ୍ତୁଶାସନ—କ୍ଲୀ. ବ.(୬ତତ୍)ବସ୍ତୁନିର୍ଣ୍ଣୟ

ବସ୍ତୁଶୂନ୍ୟ—ବି. ବଂ. ଦ୍ରବ୍ୟହୀନ ।

ବସ୍ତୁତ୍ୱାପନ(ନା)—ବି. (୬ତତ୍) ନାଟକରେ ଯାଦୁକରିବା ବା ମନ୍ତ୍ରଯନ୍ତ୍ର ଦ୍ୱାରା କୌଣସି ବିଷୟର ଅବତାରଣା, ବସ୍ତୁର ରୂପାନ୍ତର କରଣ ।

ବସ୍ତୂପମା—ସ୍ତ୍ରୀ.ବ. ଉପମାଲଙ୍କାରବିଶେଷ

ବସ୍ତ୍ୟ—କ୍ଲୀ. ବ. (ବସ୍+ଧି.ତ୍ୟ) ଗୃହ, ସଦନ, ଆବାସ ।

ବସ୍ତ୍ର—କ୍ଲୀ. ବ. (ବସ୍+ଣ.ତ୍ର) ଲୁଗା, ବସନ, ବାସ, ଚେଲ, ପୋଷାକ, ପରିଚ୍ଛଦ

ବସ୍ତ୍ରକ—କ୍ଲୀ. ବ. (ବସ୍ତ୍ର+କ) ବସ୍ତ୍ର, ପରିଧେୟ, ବସନ, ପରିଚ୍ଛଦ ।

ବସ୍ତ୍ରକୁଟ୍ଟିମ—କ୍ଲୀ. ବ. (ବସ୍ତ୍ର+କୁଟ୍ଟିମ) ଛତ୍ର, ବସ୍ତ୍ରନିର୍ମିତ ଗୃହ, ତମ୍ବୁ ।

ବସ୍ତ୍ରଗୃହ—କ୍ଲୀ.ବ.(୬ତତ୍)ତମ୍ବୁ ପଟ୍ଟବାସ

ବସ୍ତ୍ରଗ୍ରନ୍ଥି—ପୁଂ. ବ. (୬ତତ୍) ନୀବି, ପରିଧାନ ବସ୍ତ୍ରର ଗ୍ରନ୍ଥି, ଉତ୍ତରୀୟ, କଷ୍ଟିମୁଠି ।

ବସ୍ତ୍ରଘର୍ଘରୀ—ସ୍ତ୍ରୀ. ବ. ବାଦ୍ୟଯନ୍ତ୍ର ବିଶେଷ

ବସ୍ତ୍ରଦ—ପୁଂ. ବଂ. ବସ୍ତ୍ରଦାନକାରୀ ।

ବସ୍ତ୍ରନିର୍ଣ୍ଣେଜକ—ପୁଂ. ବ. (୬ତତ୍) ଧୋବା, ରଜକ ।

ବସ୍ତ୍ରପିଧାନ—କ୍ଲୀ. ବ. ବେଶସଜ୍ଜା, ଲୁଗାପିନ୍ଧା ଆଦି ।

ବସ୍ତ୍ରପୁତ୍ରିକା—ସ୍ତ୍ରୀ. ବ. ବସ୍ତ୍ର ନିର୍ମିତ ପୁତ୍ତଳିକା, କନାର କୁଣ୍ଢେଇ ।

ବସ୍ତ୍ରପୂତ—ବି. ବଂ. (୩ତତ୍) ବସ୍ତ୍ରଦ୍ୱାରା ପରିଷ୍କୃତ, କନାରେ ଛଣାଯାଇଥିବା ।

ବସ୍ତ୍ରବନ୍ଧ—ପୁଂ. ବ. ବସ୍ତ୍ରଗ୍ରନ୍ଥି, ନୀବି, କଷ୍ଟିମୁଠି ।

ବସ୍ତ୍ରଭୂଷଣ—ପୁଂ. ବ. ପଟ୍ଟବାସ, ଲୁଗା ଓ ଅଳଙ୍କାର ।

ବସ୍ତ୍ରଭୂଷଣା—ସ୍ତ୍ରୀ. ବ. ମଞ୍ଜିଷ୍ଠା ।

ବସ୍ତ୍ରମଥି—ବି. ବଂ. ତସ୍କର, ବଳପୂର୍ବକ ବସ୍ତ୍ର ଅପହର୍ତ୍ତା ।

ବସ୍ତ୍ରଯୁଗଳ—କ୍ଲୀ.ବ. ପରିଚ୍ଛଦଦ୍ୱୟ, ଧୋତି ଚଦର ଯୋଡ଼ ।

ବସ୍ତ୍ରଭେଦକ—ପୁଂ. ବ. (୬ତତ୍) ସୂଚୀକାରୀ, ଦରଜୀ ।

ବସ୍ତ୍ରଯୁଗୀ—ପୁଂ. ବଂ. ଯୁଗଳ ବସ୍ତ୍ରଶାଳୀ, ଯେ ଯୋଡ଼ଲୁଗା(ପିନ୍ଧାଗୁଡ଼ର)ପିନ୍ଧିଅଛି

ବସ୍ତ୍ରଯୁଗ୍ମ—କ୍ଲୀ. ବ. (ବସ୍ତ୍ର+ଯୁଗ୍ମ) ବସ୍ତ୍ରଦ୍ୱୟ, ଯୋଡ଼, ଯଥା ।

ବସ୍ତ୍ରଯୋନି—ସ୍ତ୍ରୀ. ବ. (୬ତତ୍)ବସନୋତ୍ପତ୍ତି କାରଣ, ବସ୍ତ୍ରର ଉପାଦାନ ସୂତା ଆଦି ।

ବସ୍ତ୍ରରଞ୍ଜକ—ପୁଂ.ବ. କୁସୁମ୍ଭବୃକ୍ଷ ଓ ଫୁଲ

ବସ୍ତ୍ରରଞ୍ଜନ—ପୁଂ ବ.କୁସୁମ୍ଭବୃକ୍ଷ ଓ ଫୁଲ

ବସ୍ତ୍ରରଞ୍ଜନୀ—ସ୍ତ୍ରୀ. ବ. ମଞ୍ଜିଷ୍ଠା ।

ବସ୍ତ୍ରରାଗଧୂର୍ତ୍ତ—ପୁଂ. ବ. ନୀଳକାଶୀଷ, ନୀଳସ୍ୱାର୍କକଷ ।

ବସ୍ତ୍ରବାନ୍—ପୁଂ.ବଂ. (ବସ୍ତ୍ର+ବତ୍)ବସ୍ତ୍ରବିଶିଷ୍ଟ, ଯାହାର ବସ୍ତ୍ର ଅଛି ।

ବସ୍ତ୍ରବିଲାସ—ପୁଂ. ବ. (୬ତତ୍) ପୋଷାକରେ ଆଡ଼ମ୍ବର, ବସ୍ତ୍ର ଦ୍ୱାରା ବିଳାସ ।

ବସ୍ତ୍ରବେଶ—ପୁଂ. ବ. ବସ୍ତ୍ରଗୃହ, ତମ୍ବୁ, ରାଉଟି ।

ବସ୍ତ୍ରବେଶ୍ମ—କ୍ଲୀ. ବ. ବସ୍ତ୍ରଗୃହ, ତମ୍ବୁ ।

ବସ୍ତ୍ରବେଷ୍ଟିତ—ବି.ବଂ. ବସ୍ତ୍ରଦ୍ୱାରାଆଚ୍ଛାଦିତ

ବସ୍ତ୍ରହରଣ—ବ. (୬ତତ୍)କପଡ଼ା କାଢ଼ି ନେବା, ଲଙ୍ଗଳା କରିବା ।

ବସ୍ତ୍ରହୀନ—ବଂ. (୩ତତ୍) ବସନଶୂନ୍ୟ, ବିବସନ, ଲଙ୍ଗଳା, ଦୀନତା ଯୋଗୁଁ ଯାହାର ପରିଧେୟ ବସ୍ତ୍ର ଅଭାବ ଅଛି ।

ବସ୍ତ୍ରାଗାର—ପୁଂ. ବ. (୬ତତ୍)ବସ୍ତ୍ରଗୃହ, ତମ୍ବୁ, ଲୁଗାପଟା ରଖିବାର ଘର ।

ବସ୍ତ୍ରାଞ୍ଚଳ—କ୍ଲୀ. ବ. ବସ୍ତ୍ରର ଅଗ୍ରଭାଗ, ଲୁଗାକାନି, କାନିପଣତ ।

ବସ୍ତ୍ରାନ୍ତ—ପୁଂ.ବ.ବସ୍ତ୍ରର ଗୁହ୍ୟକୋଣାଂଶ, ଲୁଗାକାନି ।

ବସ୍ତ୍ରାନ୍ତର—କ୍ଲୀ. ବ.(ଅନ୍ୟ+ବସ୍ତ୍ର)ଅପର ଲୁଗା, ଅନ୍ୟବସ୍ତ୍ର ।

ବସ୍ତ୍ରାପହାରକ—ପୁଂ. ବ. ଲୁଗାଚୋର ।

ବସ୍ତ୍ରାର୍ଦ୍ଧଦେୟମିତ୍ୟାହବୈଦ୍ୟାତ୍—(ବାକ୍ୟ) ଶାସ୍ତ୍ରରେ ଯେଉଁଠାରେ ଖଣ୍ଡିଏ ଲୁଗା ଦେବାର କଥାଅଛି-ଲୁଗାଖଣ୍ଡେଦେବାକୁ ଅକ୍ଷମ ବ୍ୟକ୍ତି ସେ ସ୍ଥଳରେ ଖଣ୍ଡିଏ ନୂଆ ସୂତାଦେଇ ଶାସ୍ତ୍ର ବିଧାନକୁ ରକ୍ଷା କରେ; ଏହିପରି ନ୍ୟାୟରେ ଏହି ବାକ୍ୟ ବ୍ୟବହୃତ ହୁଏ ।

ବସ୍ତ୍ରାର୍ଦ୍ଧ—କ୍ଲୀ.ବ.ବସ୍ତ୍ରର ଅର୍ଦ୍ଧାଂଶ, ଲୁଗାର ଅଧେ ।

ବସ୍ତ୍ରାର୍ଦ୍ଧପ୍ରାବୃତ—ବି.ବଂ. ଅର୍ଦ୍ଧବସ୍ତ୍ରାଚ୍ଛାଦିତ

ବସ୍ତ୍ରାବକର୍ତ୍ତି—ପୁଂ.ବ. ବସ୍ତ୍ର ଖଣ୍ଡ, କନା ।

ବସ୍ତ୍ରୀ—ବି. ବଂ. ବସ୍ତ୍ରଯୁକ୍ତ, ଯେ ବେଶ ପୋଷାକରେ ଉଜ୍ଜ୍ୱଳ ।

ବସ୍ତ୍ରୋତ୍କର୍ଷଣ—କ୍ଲୀ. ବ. ବସ୍ତ୍ରତ୍ୟାଗ ।

ବସ୍ଥା—ସ୍ତ୍ରୀ.ବ. (ଅବ+ସ୍ଥା+ଭା.ଅ+ଆ) ଅବସ୍ଥା, ଦଶା ।

ବସ୍ନ—ବ. (ବସ+ନ୍) ଗୃହ, ଭଡ଼ା, ମଜୁରି, ବାସକରିବା, ଲୁଗା, ମୂଲ୍ୟ, ଚମଡ଼ା, ବେତନ, ମୂଲ୍ୟ, ଦ୍ରବ୍ୟ, ଧନ ପ୍ରଭୃତି, ବଲ୍କଲ ।

ବସ୍ନନ—କ୍ଲୀ. ବ. (ବସ୍+ନନ୍) କଟୀଭୂଷଣ, କମରବନ୍ଧ ।

ବସ୍ନସା—ସ୍ତ୍ରୀ.ବ. (ବସ୍ନ+ସି+ଆ)ସ୍ନାୟୁ, ପେଶୀ ।

ବସ୍ନିକ—ବି. ବଂ. (ବସ୍ନ+ଇକ) ଭଡ଼ା ବା ବେତନ ଦ୍ୱାରା ଜୀବିକା ନିର୍ବାହକାରୀ ।

ବସ୍ନ୍ୟ—ବି. ବଂ. (ବସ୍ନ+ଯ)ମୂଲ୍ୟାର୍ହ ।

ବସ୍ୟ—ବି.ବଂ. (ବସ୍+ଯ) ଧନବାନ୍, ସୌନ୍ଦର୍ଯ୍ୟଶୀଳ, ମୂଲ୍ୟବାନ୍, ଯଶଃଶୀଳ ।

ବସ୍ୱୀ—ବି. ବଂ. ଅତିସୁନ୍ଦର, ପ୍ରଶଂସାଯୋଗ୍ୟ ।

ବସ୍ୱୌକସାରା—ସ୍ତ୍ରୀ. ବ. (ବସ୍ୱୌକ+ସାରା) ଇନ୍ଦ୍ରପୁରୀ, ଇନ୍ଦ୍ରନଦୀ, ଅଯୋଧ୍ୟା

ସ୍ୱର୍ଗ, ଟଙ୍କା, କୁବେରପୁଷ୍ପ ଓ ନଦୀ ।
ବହ—ପୁଂ. ବ.(ବହ୍ + କ.ଅ) ପ୍ରାପଣ, କ୍ଳାନ୍ତ, ବୃଷ ସ୍କନ୍ଧ ପ୍ରଦେଶ, ପକ୍ଷୀ, ନଦ, ଘୋଡ଼ା, ବାହୁ, ବାୟୁ, ଗୃହଦ୍ରୋଣ ପରିମାଣ,(ସ୍ତ୍ରୀ.ଅ)ବହନ,(ବିଂ) ବାହକ, ଯେ ବହନ କରେ । [ବୃଷ ।
ବହଂଲିହ—ପୁଂ,ବ.କକୁଦ ଲେହନକାରୀ
ବହକ—ଗ୍ରା. ବି, ଆଧିକ୍ୟ, ଅନ୍ୟାୟ ।
ବହକା—ଗ୍ରା, ବିଂ. ବଳକା, ଅତିରିକ୍ତ, ଅଧିକା, ଉଦ୍ଧୃତ ।
ବହକିବା—ଗ୍ରା. କ୍ରି, ବହିଯିବା, ବିଳ-ପଡ଼ିବା,ଅଧିକାହେବା,ଅତିକ୍ରମକରିବା, ଲକ୍ଷ୍ୟଭ୍ରଷ୍ଟ ହେବା, ଭ୍ରମ ପ୍ରମାଦକରିବା
ବହକିଯିବା—ଗ୍ରା. (ଯାଜ)ବି. ଭୁଲିଯିବା
ବହଙ୍ଗର—ଗ୍ରା. (ସମ୍ବ) ବିଂ. ବଳବାନ୍, ହୃଷ୍ଟପୁଷ୍ଟ ।
ବହତ—ପୁଂ.ବ. (ବହ୍ + ତ)ବୃଷ,ପାନ୍ଥ ।
ବହତ—ପୁଂ.ବ. (ବହ୍ + କ.ଅତ)ବାୟୁ, ଗାଈ, ସଢ଼ବ, ବଳଦ ।
ବହତା—ସ୍ତ୍ରୀ. ବ. (ବହତ + ଈ) ନଦୀ ।
ବହତୁ—ପୁଂ.ବ.(ବହ + ତ + ଉ)ଦୂତ, ପଥିକ,ବଳଦ, ବୃଷଭ, ବିବାହ,ବିବାହ ପରେ ବିବାହିତା ପତ୍ନୀର ପିତୃ ଗୃହରୁ ସ୍ୱାମୀ ଗୃହକୁ ଗତ ହେବା ବିବାହ କାଳେ କନ୍ୟାକୁ ଦେୟ ବସ୍ତୁ, (ବିଂ) ବହନକାରୀ ।
ବହନ—କ୍ଳୀ. ବ. ( ବହ + ଅନ ) ଭାର-ବୋହିବା,ଅଙ୍ଗରେ ଧାରଣ, ପରିଧାନ, ସହନ, ବୋହିବା, ଯାନ, ବାହନ, ନୌକା, (ବିଂ) ବାହକ, ଯେ ବହନ କରେ, (ଗ୍ରା.କ୍ରି.ବିଂ) ଶୀଘ୍ର, ଚଞ୍ଚଳ, ସତ୍ୱର ।
ବହନ—ଗ୍ରା. ବ. ପ୍ରଥମ ବୟସ୍କ, ବଇନ, ବହ୍ନି, ଅଗ୍ନି ।
ବହନୀୟ—କ୍ରି.ବିଂ. (ବହ୍ + ମି.ଅନୀୟ) ପ୍ରାପଣୀୟ, ବହନଯୋଗ୍ୟ ।
ବହନ୍ତ—ପୁଂ. ବ. ବାୟୁ, ବାଳକ ।
ବହନ୍ତ—ଗ୍ରା.ବିଂ.(ପଣି) ବହିଯାଉଥିବା ସ୍ରୋତସ୍ୱିନୀ (ନଦୀ ବା ଜଳ),(ଘବନ) ବହୁଥିବା ।
ବହନ୍ତ—ଗ୍ରା. ବ. ପିଣ୍ଡାର ସୀମାକୁ ବଳି ବାହାରକୁ ଥିବା ଗୃହର ଅଂଶବିଶେଷ, ପିଣ୍ଡା ।
ବହପ(ପା)—ଗ୍ରା. ବ. ହେମନ୍ତ, ସାହସ, ଶକ୍ତି, ବଳ ।
ବହପକରିବା—ଗ୍ରା.କ୍ରି. କୌଣସି କାର୍ଯ୍ୟ କରିବାକୁ ସାହସ ବାନ୍ଧିବା ।
ବହପପାଇବା—ଗ୍ରା.ବ. କୌଣସି କାର୍ଯ୍ୟ କରିବାକୁ ଅନ୍ୟଠାରୁ ବଳପାଇବା ।
ବହପିଆ—ଗ୍ରା.ପୁଂ.ବିଂ.ବଳୁଆ,ସାହସୀ ।
ବହମାନ—କ୍ରି. ବିଂ, (ବହ୍ + କ.ଆନ) ବୋହା ହୋଇଥିବା, ଚରନ୍ତନ,ବହନ-ଶୀଳ, ଦ୍ରବୋହିତ ହେଉଥିବା (ଜଳ), ବୋଝ ବୋହୁଥିବା, ବହୁଥିବା (ବାୟୁ)
ବହର—ଯା. ବ. ପୋତସଙ୍ଘ, ବ୍ୟାପ୍ତି, ଗଭୀରତା, ଜଳଯାନ ସମୂହ ।
ବହରେଇବା—ଗ୍ରା.(ସମ୍ବ) କ୍ରି. ବାହାରି-ବାର ନିଜନ୍ତରୂପ ।
ବହଲ—ପୁଂ. ବ. (ବହ୍ + ଅଲ) ପୋତ, ନୌକା, ଏକପ୍ରକାର ଆଖୁ, ଉଡ଼ୁପ, ଭେଲା, (ବିଂ) ବହୁ ଲୋମଶ,କଠୋର, ଗାଢ଼ା, ବହୁଳ,ଅନେକ, ମୋଟା,ସାନ୍ଦ୍ର, ଦୃଢ଼, ଟାଣ,(ଗ୍ରା.ବ) ଆଧିକ୍ୟ,ପ୍ରାଚୁର୍ଯ୍ୟ, ବାହୁଲ୍ୟ ବଚନ ।
ବହଲଗନ୍ଧ—କ୍ଳୀ. ବ. ଶମ୍ବର ଚନ୍ଦନ ।
ବହଲଚକ୍ଷୁ—ପୁଂ.ବ.ମେଷଶୃଙ୍ଗୀ,ମେଣ୍ଢା-ଶିଙ୍ଗାଗଛ ।
ବହଲତ୍ୱକ୍—ପୁଂ.ବ. ଶ୍ୱେତଲୋଧ୍ର ବୃକ୍ଷ ।
ବହଲା—ସ୍ତ୍ରୀ.ବ.(ବହଲ + ଆ)ଶତପୁଷ୍ପୀ, ଭେଲା, ବଡ଼ ଅଳେଇଚ ।
ବହଳିଆ—ଗ୍ରା. ବିଂ. ବହଲ ଦେଖ ।
ବହସ୍—ଯା. ବ. ତର୍କ ବିତର୍କ,ବାଦାନୁ-ବାଦ, ବାଜୀ ।
ବହା—ସ୍ତ୍ରୀ.ବ. (ବହ୍ + କ.ଅ + ଆ)ନଦୀ ସ୍ରୋତ ଗତ, ( ଗ୍ରା.ବ ) ଭାରବହନ, ସତର୍କ ଯାନ ସଞ୍ଚାଳନ ।
ବହି—ଯା.ବ. ପୁସ୍ତକ, ପୋଥି, କିତାବ, ଚିଠ୍ଠା, ଲେଖା ଖାତା, ହିସାବ ଖାତା ।
ବହିଃ—ଅ. ସୀମାର ଶେଷ, ବାହାରେ ।
ବହିଃକୁଟୀଚର—ପୁଂ.ବ.କୁଳୀର,କଙ୍କଡ଼ା
ବହିଃପ୍ରକୋଷ୍ଠ—ବ, ( କ.ଧା ) ବାହାର ଘର, ଦାଣ୍ଡଘର ।
ବହିଃପ୍ରାଣ—ବ. ଟଙ୍କା, ମୁଦ୍ରା, କୌଣସି ବ୍ୟକ୍ତିର ପ୍ରିୟତମ ବ୍ୟକ୍ତି ।
ବହିଃଶତ୍ରୁ—ବି, ଆପଣା ଦେଶର ଘରର ବା ଦଳର ବାହାରର ଶତ୍ରୁ ।
ବହିଃସଂସାର—ବ. (କ.ଧା) ବହିର୍ଜଗତ୍, ଦୃଶ୍ୟମାନ ସାଂସାରିକ ବିଷୟ ।
ବହିଃଶୀତ—କ୍ରି.ବିଂ.ବାହାରେ ଶୀତଳଥିବା
ବହିଃସ୍ଥିତ—କ୍ରି. ବିଂ.ବାହାରେ ଅବସ୍ଥିତ, ନଗର ବାହାରେ ଥିବା ।
ବହିଃସ୍ଥ—କ୍ରି. ବିଂ. (ବହିସ୍ + ସ୍ଥା + ଅ) ବାହାରସ୍ଥ, ବାହ୍ୟ, ବାହାରେ ଥିବା ।
ବହି(ଇ)ଣୀ—ଗ୍ରା.ସ୍ତ୍ରୀ. ବ. ଭଗିନୀ,ଭଉଣୀ
ବହିତ—କ୍ରି. ବିଂ. ଅବହିତ, ଖ୍ୟାତ, ପ୍ରସିଦ୍ଧ, ପ୍ରାପ୍ତ, କୃତବହନ ।
ବହିତ—କ୍ଳୀ.ବ (ବହ+ଣ.ଇତ)ପୋତ, ନୌକା, ଜଳଯାନ, କ୍ଷେପଣୀ, ରାମା-ୟଣ ବର୍ଣ୍ଣିତ ରାକ୍ଷସ ସେନାପତିବିଶେଷ
ବହିତକ—କ୍ଳୀ. ବ. (ବହିତ + କ)ଜଳ-ଯାନ ।
ବହିଦାର୍—ଗ୍ରା. (ସମ୍ବ) ବ. ସମ୍ବଲପୁର କରଣମାନଙ୍କ ଉପାଧିବିଶେଷ ।
ବହିବା—ଗ୍ରା.କ୍ରି.ବହନକରିବା (ସ୍ରୋତଃ) ପ୍ରବାହିତ ହେବା,(ପବନ)ଚଳିତହେବା, (ସମୟ)ଅତିବାହିତ ହେବା,ଦେହରେ ଧାରଣକରିବା,ମନରେ ଧାରଣକରିବା, (ନାମ)ଧାରଣ କରିବା, ପ୍ରବେଶକରିବା, କ୍ଷରିତ ହେବା ।
ବହିର—ଗ୍ରା.ବିଂ.ବଧିର,ବଧିର (କାନ), ବୋଧ ଶକ୍ତିହୀନ (ମେଡ଼ା) ।
ବହିରଙ୍ଗ—ପୁଂ. ବ. ଅନାତ୍ମୀୟ ବ୍ୟକ୍ତି, ଦେହର ବହିର୍ଭାଗ, ଦର୍ମତ, ଅଟେଳକ, ଶତ୍ରୁ, (ବିଂ.ବ.ବ୍ରୀ ) ବାହାରେ ଥିବା, ଅନାତ୍ମୀୟ ଦଳର ବହିର୍ଭୂତ ।
ବହିରନ୍ତେ—ଅବ୍ୟ. ବହିର୍ଭାଗ ।
ବହିର୍ଗଲ—ପୁଂ. ବ. ଦ୍ୱାରର ବହିର୍ଭାଗ ।

ବହିରର୍ଥ—ପୁଂ. ବି. ବାହ୍ୟଭାବ ।

ବହିରା—ଗ୍ରା. ବି. ମଫସଲିଆ ଲୋକ, ବଧିର ବ୍ୟକ୍ତି, ବାଳ ବା ଛୁଆ ।

ବହିରାଗମନ—ବି. ( ବହିଃ + ଆଗମନ ) ବାହାରକୁ ଆସିବା ।

ବହିରାବରଣ—ବି. (କ.ଧା) ବାହାରର ଆଚ୍ଛାଦନ, ବାହାରର ଢାଙ୍କଣି ।

ବହିରିନ୍ଦ୍ରିୟ—କ୍ଲୀ.ବି. (ବହିସ୍ + ଇନ୍ଦ୍ରିୟ) ବାହାର ଇନ୍ଦ୍ରିୟ, (ଚକ୍ଷୁ,କର୍ଣ୍ଣ,ନାସିକା, ଜିହ୍ୱା ଓ ତ୍ୱକ୍ ଏହି ପଞ୍ଚ ଇନ୍ଦ୍ରିୟ) ।

ବହିର୍ଗତ—ପୁଂ.ବିଂ (ବହିଃ + ଗତ)ବାହାରକୁ ଯାଇଥିବା ବା ଆସିଥିବା, ବାହାରେ ଥିବା, ପୃଥକ୍ ।

ବହିର୍ଗମନ—କ୍ଲୀ. ବି. (ବହିଃ + ଗମନ), କାର୍ଯ୍ୟ ହେତୁ ଗୃହରୁ ଅନ୍ୟତ୍ର ଗମନ, ବାହାରକୁ ଯିବା ।

ବହିର୍ଗାମୀ—ପୁଂ.ବିଂ. ବାହାରକୁ ଯାଇଥିବା ।

ବହିର୍ଜଗତ୍—କ୍ଲୀ.ବି(କ.ଧା)ବହିଃସଂସାର, ଦୃଶ୍ୟମାନ ଜଡ଼ଜଗତ ବ୍ୟାପାର ।

ବହିର୍ଦାସୀ—ସ୍ତ୍ରୀ. ବି. ( ବହିଃ + ଦାସୀ ) ପୋଇଲୀ, ବାହାର କାମ କରିବା ସ୍ତ୍ରୀ, ଚାକରାଣୀ ।

ବହିର୍ଦେଶ—ବି.(ବହିଃ + ଦେଶ)ବାହାର ପାଖ, ପଦାର୍ଥର ଉପରିଭାଗ, ଗ୍ରାମର ବାହାର ଅଂଶ, ଗ୍ରାମ ବା ନଗରର ଅନ୍ୟ-ସ୍ଥାନ ।

ବହିର୍ଦ୍ୱାର—କ୍ଲୀ. ବି. ( ବହିଃ + ଦ୍ୱାର ) ତୋରଣ, ବାହାରର ଫାଟକ ।

ବହିର୍ଧ୍ୱଜା—ସ୍ତ୍ରୀ. ବି. ଦୁର୍ଗା ।

ବହିର୍ନିଃସାରଣ—କ୍ଲୀ. ବି. ବହିର୍ଗମନ ।

ବହିର୍ଭବ—ବି. (ବହିଃ + ଭୂ + ଅ)ବାହ୍ୟ-ପ୍ରକୃତି, ମନୁଷ୍ୟ ଶରୀରର ବହିର୍ବର୍ତ୍ତୀ ହୋଇ ବାହାରେ ଯେଉଁ ଭାବରୂପ ଦେଖାଏ । [ ଅଂଶ ।

ବହିର୍ଭାଗ—ବି.(ବହିଃ + ଭାଗ) ବାହାରର

ବହିର୍ଭାବ—ତ୍ରି. ବିଂ. ବାହ୍ୟଭାବ ।

ବହିର୍ଭୂତ—ତ୍ରି.ବିଂ.(ବହିସ୍ + ଭୂ + ତ) ବହିର୍ଗତ, ନିଷ୍କ୍ରାନ୍ତ, ବର୍ଜିତ, ତାଡ଼ିତ, ଅତୀତ(ସମସ୍ତ), ବହିଷ୍କୃତ, ବାହାରେ ଥିବା, ଅମନୋଯୋଗୀ ।

ବହିର୍ମୁଖ—ତ୍ରି.ବିଂ(ବହିସ୍ + ମୁଖ)ବିମୁଖ, ଯାହାର ମୁହଁ ବାହାର ଆଡ଼କୁ ବୁଲି-ଅଛି, ବାହ୍ୟ ବିଷୟାଦିକୁ, ମୁହଁରୁ ବହି-ର୍ଗତ, (ବି) ଦେବତା ।

ବହିର୍ଯାତ୍ରା—କ୍ଲୀ.ବି. ତୀର୍ଥଗମନ,ବିଦେଶ ଯାତ୍ରା, ଯୁଦ୍ଧଯାତ୍ରା ।

ବହିର୍ଲମ୍ବ—ତ୍ରି.ବିଂ.(ବ.ବ୍ରୀ)ବିଷମକୋଣୀ ତ୍ରିଭୁଜସମ୍ବନ୍ଧୀୟ, (ସ୍ଥୂଳକୋଣୀ ତ୍ରିଭୁଜ)

ବହିର୍ଲାପିକା—ସ୍ତ୍ରୀ.ବି.ପ୍ରହେଳିକା,ଆଦ୍ର ବ କଠିନ ।

ବହିର୍ଲିପି—ବି. ( ବହିଃ + ଲିପି ) ଶବ୍ଦା-ଲଂକାର ବ ଚିତ୍ରରଚନା ବିଶେଷ ।

ବହିର୍ଲୋମ—ତ୍ରି. ବିଂ. ଉଦ୍‌ଗତଲୋମ, ବହିର୍ଭାଗ ଲୋମବିଶିଷ୍ଟ ।

ବହିର୍ବର୍ତ୍ତୀ—ପୁଂ.ବିଂ. ବାହାରେ ଅବସ୍ଥିତ

ବହିର୍ବଳି—ବି. ( ବହିଃ + ବଳି ) ଅର୍ଶ ରୋଗରେ ଗୁହ୍ୟ ଦ୍ୱାରର ବାହାରେ ବାହାରିବା ଅଙ୍ଗୁଳି ସ୍ତନବତ୍ ଚର୍ମ-ଗୁଟିକା ।

ବହିର୍ବାଣିଜ୍ୟ—ବି.ଭିନ୍ନ ଦେଶରେ ବସ୍ତୁ ବିକ୍ରୟ ପ୍ରଦାନ ।

ବହିର୍ବାସ—ବି.(କ.ଧା) ବୈଷ୍ଣବମାନଙ୍କର କୌପୀନ ଉପରେ ପରିହିତ କଚ୍ଛହୀନ ବସ୍ତ୍ର,ଉତ୍ତରୀୟ ବସ୍ତ୍ର, ବାହାରେ ଅବ-ସ୍ଥାନ ।

ବହିର୍ବାହ—ବି. ଯେଉଁ ପ୍ରବାହଦ୍ୱାରା କୌଣସି ପଦାର୍ଥର ଅଭ୍ୟନ୍ତରସ୍ଥ ଜଳ ବାହାରକୁ ବହିଯାଏ ।

ବହିର୍ବାହିନୀ—ଗ୍ରା. ବି. ଯେଉଁ ନାଡ଼ୀ-ମାନ ରକ୍ତକୁ ହୃତ୍‌ପିଣ୍ଡରୁ ଦେହର ଅନ୍ୟ ଅଂଶମାନଙ୍କୁ ବହନ୍ତି ।

ବହିର୍ବିକାର—ପୁଂ.ବି. (ବହିଃ + ବିକାର) ବାହ୍ୟଭାବର ବୈପରୀତ୍ୟ, ବିକୃତ ଅଙ୍ଗ, ଉପଦଂଶ, ଫିରଙ୍ଗରୋଗ, ଚର୍ମରୋଗ । [ ଆକୃଷ୍ଟି ।

ବହିର୍ବୃତ୍ତି—ସ୍ତ୍ରୀ.ବି. ବାହ୍ୟ ପଦାର୍ଥ ପ୍ରତି

ବହିର୍ବେଦ—ସ୍ତ୍ରୀ.ବି. ବେଦୀର ବହିର୍ଦେଶ

ବହିର୍ବେଦକ—ତ୍ରି. ବିଂ. ବେଦୀର ବହି-ର୍ଦେଶ ନିଷ୍ପନ୍ନ ।

ବହିର୍ବ୍ୟସନ—କ୍ଲୀ. ବି. ଲମ୍ପଟ୍ୟ, ଗୁରୁ-ଜନଙ୍କ ଅନ୍ତରାଳକୃତ କୁକର୍ମାଦି, ଇନ୍ଦ୍ରିୟ ବୃତ୍ତିର ଚରିତାର୍ଥତା ।

ବହିର୍ବ୍ୟସନୀ—ପୁଂ. ବିଂ. ଉଚ୍ଛୃଙ୍ଖଳ ଯୁବକ, ଲମ୍ପଟ ।

ବହିଶ୍ଚର—ପୁଂ. ବି. (ବହିସ୍ + ଚର୍ + କ.ଅ) କଙ୍କଡ଼ା, କର୍କଟ, (ବିଂ) ବହି-ଶ୍ଚରଣଶୀଳ, ଯେଉଁ ବ୍ୟକ୍ତି ବାହାରେ ବିଚରଣ କରେ, ବାହ୍ୟ ।

ବହିଷ୍କ—ତ୍ରି. ବିଂ. (ବହିଃ + କ) ବାହ୍ୟ, ବାହାରସମ୍ବନ୍ଧୀୟ ।

ବହିଷ୍କରଣ—କ୍ଲୀ. ବି. (ବହିସ୍ + କରଣ) ଆବିଷ୍କାର କରିବା, ନାଡ଼ିବ୍ୟୁତ, ବାହ୍ୟେନ୍ଦ୍ରିୟ ଦୂରୀକରଣ, ବର୍ଜନ ।

ବହିଷ୍କାର—ପୁଂ.ବି. (ବହିସ୍ + କୃ + ଅ) ବିତାଡ଼ନ ।

ବହିଷ୍କାର୍ଯ୍ୟ—ତ୍ରି.ବିଂ. ତ୍ୟାଗୋପଯୋଗୀ, ତାଡ଼ନୀୟ ।

ବହିଷ୍କୁଟୀଚର—ପୁଂ.ବି. କର୍କଟ,କଙ୍କଡ଼ା

ବହିଷ୍କୃତ—ତ୍ରି.ବିଂ. (ବହିସ୍ + କୃ + ତ) ବିତାଡ଼ିତ, ଦୂରୀକୃତ,ପରିତ୍ୟକ୍ତ,ସ୍ଥାନା-ନ୍ତରିତ, ବର୍ଜିତ ।

ବହିଷ୍କୃତି—ସ୍ତ୍ରୀ.ବି. ବହିଷ୍କାର ଦେଖ ।

ବହିଷ୍କ୍ରିୟ—ପୁଂ. ବିଂ. ପତିତ କୃତ୍ୟ-ବର୍ଜିତ,ବୈଦିକ ଧର୍ମକାର୍ଯ୍ୟ ଅଥବା ଯଜ୍ଞାଦି ସମ୍ପାଦନରେ ଯେ ଆପଣାର ସାମାଜିକଗଣ କର୍ତ୍ତୃକ ନିବନ୍ଧ ବା ସ୍ୱାଧି-କାର ଭ୍ରଷ୍ଟ ।

ବହିଷ୍କ୍ରିୟା—ସ୍ତ୍ରୀ.ବି. (ବହିଃ + କ୍ରିୟା)ବହି-ଷ୍କରଣ ଦେଖ ।

ବହିସ୍ଥାତ୍—ଅବ୍ୟ.ବାହାରସ୍ଥିତ,ବାହାରେ

ବହିଷ୍ପଟ—କ୍ଲୀ.ବି. ଗାତ୍ର, ବସ୍ତ୍ରବିଶେଷ ।

ବହିଷ୍ପ୍ରାକାର—ପୁଂ. ବି. ଦୁର୍ଗବାହାର ପ୍ରାଚୀର ।

ବହିଷ୍ପ୍ରାଣ—ପୁଂ.ବି. ଜୀବନ, ବାହ୍ୟଶ୍ୱାସ ବାୟୁ, ପ୍ରାଣତୁଲ୍ୟ ପ୍ରିୟବସ୍ତୁ, ଅର୍ଥ ।

ବହ୍ବାପ୍ତଃ—ତ୍ରି.ବି°. ବହୁ ସ୍ଥାନବ୍ୟାପ୍ତ, ଅତି, ବିପୁଳ । [ ଘେଣୀ ।

ବହ୍ବାଳୁ—ପୁଂ.ବି. ଶିରା, ସ୍ନାୟୁ, ମାଂସ-

ବହୁ—ବି°. (ବନ୍ହ+କ.ଉ) ଅନେକ, ବିପୁଳ, ବହୁତ, ଅସଂଖ୍ୟ, ବେଶି, ଅଧିକ, ବାରମ୍ବାରକୃତ, (କ୍ରି.ବି°) ଅତ୍ୟନ୍ତ, ଅତ୍ୟଧିକରୂପେ, (ଗ୍ରା.କ୍ରି) ସେ ବହନ କରୁ ।

ବହୁକ—ବି.(ବହୁ+କ) କର୍କଟ, କଙ୍କଡ଼ା, ଅରଖଗଛ, ଡାହୁକପକ୍ଷୀ, ସୂର୍ଯ୍ୟ, (ବି°) ମହାର୍ଘରେ କୀତ, ଜଳଖାତକ, ଯେ ପୋଖରୀ ଖୋଳେ ।

ବହୁକଣ୍ଟକ—ବି. (ବ.ବ୍ରୀ) ଏକପ୍ରକାର କଣ୍ଟକୀଗୁଳ୍ମ, ହିନ୍ତାଳ, କ୍ଷୁଦ୍ର ଗୋକ୍ଷୁରଗୁଳ୍ମ ।

ବହୁକଣ୍ଟକା—ବି. ( ବହୁକଣ୍ଟକ+ଆ ) ଅଗ୍ନିଦମନୀ ଗୁଳ୍ମ ।

ବହୁକଣ୍ଟା—ବି. କଣ୍ଟକାରୀ ଗଛ ।

ବହୁକନ୍ଦ—ବି. ଶୂରଣ, ଓଲୁଅ ।

ବହୁକନ୍ଦା—ବି. କର୍କଟୀ, କାକୁଡ଼ି ।

ବହୁକର—ବି. ଉଷ୍ଟ୍ର, ଓଟ, ପରିଶ୍ରମୀ ବ୍ୟକ୍ତି,ମାର୍ଜନକାରୀ,(ପୁଂ.ବି°)ପରିଶ୍ରମୀ, ଅନେକପ୍ରକାର ଉପକାରୀ ବା ବ୍ୟବହାରଯୋଗ୍ୟ ।

ବହୁକରୀ—ବି.ସମାର୍ଜନୀ, ଝାଡ଼ୁ,ଖ୍ରୁଞ୍ଚୁଣି ।

ବହୁକର୍ଣ୍ଣିକା—ବି. ମୂଷାକାନୀଗଛ ।

ବହୁକଳୀ—ବି°. ଯାହା ଅନେକ କଢ଼ ଧରେ ।

ବହୁକାଲ—ବି, (କ.ଧା) ଅନେକ ଦିନ, ବହୁସମୟ । [ ବୃଦ୍ଧ ।

ବହୁକାଳିଆ—ଗ୍ରା. ବି°, ଅନେକ ଦିନର

ବହୁକାଳୀନ—ବି°. (ବହୁକାଲ+ଈନ) ଅନେକ ଦିନରୁ ଥିବା, ପୁରାତନ ।

ବହୁକୂର୍ଚ୍ଚ—ବି, (ବ.ବ୍ରୀ) ମଧୁ ନାରିକେଳ, ଏକପ୍ରକାର ସୁସ୍ୱାଦୁ ନଡ଼ିଆ ।

ବହୁକେନ୍ଦ୍ରକ—ବି°.ଯାହାର ବହୁ କେନ୍ଦ୍ର ଅଛି । [ କୋଷ ଅଛି ।

ବହୁକୋଷ—ବି°. ଯାହା ମଧ୍ୟରେ ବହୁ

ବହୁକ୍ଷମ—ପୁଂ.ବି°. (ବହୁ+କ୍ଷମ+କ.ଅ) ଯେ ବହୁ କ୍ଲେଶ ସହିପାରେ, ସହିଷ୍ଣୁ, ବିଶେଷ କ୍ଷମାଶୀଳ, (ବି) ଜିନବିଶେଷ ।

ବହୁକ୍ଷୀର—ପୁଂ. ବି°. (ବ.ବ୍ରୀ) ଯାହାଠାରେ ବହୁତ ଦୁଗ୍ଧ ବା ଦୁଗ୍ଧପରି ରସ ଥାଏ, (ବି) ଗହମ ।

ବହୁଗନ୍ଧ—ବି°. (ବ.ବ୍ରୀ) ତୀବ୍ର ଗନ୍ଧବିଶିଷ୍ଟ, (ବି) କୁନ୍ଦୁରୁଖୋଟି, ସୁଗନ୍ଧ ଧୂପଦ୍ରବ୍ୟବିଶେଷ, ତେଜପତ୍ର, ଡାଲଚିନି ।

ବହୁଗନ୍ଧଦା—ସ୍ତ୍ରୀ.ବି. (ବହୁଗନ୍ଧ+ଦା+କ.ଅ+ଆ) କସ୍ତୁରୀ ।

ବହୁଗନ୍ଧା—ସ୍ତ୍ରୀ. ବି. ଚମ୍ପାକଢ଼ି, ଯୁଥିକା, କଳାଜୀରା ।

ବହୁଗୁଣ—ବି°. (ବ.ବ୍ରୀ)ବହୁଗୁଣବିଶିଷ୍ଟ, ବହୁ ସୂତବିଶିଷ୍ଟ ।

ବହୁଗ୍ରନ୍ଥି—ବି°. (ବ.ବ୍ରୀ) ବହୁତ ଗଣ୍ଠିଯୁକ୍ତ, ଗଣ୍ଠିଗଣ୍ଠିଆ, (ବି) ଝାଉଁଗଛ ।

ବହୁଗ୍ରହ—ବି°. (ବ.ବ୍ରୀ) ଯହିଁରେ ବହୁ ପଦାର୍ଥ ସମ୍ମାଏ । [ ବର୍ଷା ।

ବହୁଜଳବୃଷ୍ଟି—ବି. ପ୍ରଚୁର ବୃଷ୍ଟି, ଖୁବ୍

ବହୁଜଳ୍ପ—ପୁଂ.ବି°. (ବ.ବ୍ରୀ) ଗପଡ଼ି ।

ବହୁଜ୍ଞ—ପୁଂ. ବି°.(ବହୁ+ଜ୍ଞା+କ.ଅ) ଯେ ଅନେକ ବିଷୟ ଜାଣେ,ବହୁଦର୍ଶୀ ବିଦ୍ୱାନ୍ ।

ବହୁଡ଼—ଗ୍ରା.ବି. ଏକଜାତୀୟ ତୃଣ ।

ବହୁଡ଼ୀ—ଗ୍ରା. (ମେଦ)ବି. ବହୂ,ବଧୂ ।

ବହୁତ—ଗ୍ରା. ବି°. ବହୁ, ବହୁଳ,ପ୍ରଚୁର, ଅତ୍ୟନ୍ତ, ଅଧିକ, (ଗ୍ରା.କ୍ରି.ବି°) ଅନେକ ପରିମାଣରେ, ଅନେକ ପ୍ରକାରେ, ଅତ୍ୟନ୍ତ, (ଗ୍ରା.ବି) ଏକସଂଖ୍ୟା ।

ବହୁତଃ—କ୍ରି.ବି°. (ବହୁ+ତସ୍)ବହୁଧା, ବହୁ ପ୍ରକାରରେ, ଅନେକରୂପେ ।

ବହୁତନ୍ତ୍ରିକ—ବି°. (ବହୁ+ତନ୍ତ୍ରି+କ) ଅନେକ ତନ୍ତ୍ର ବା ତାରବିଶିଷ୍ଟ ।

ବହୁତର—ବି°. (ବହୁ+ତର)ଅଧିକତର, ଅପେକ୍ଷାକୃତ ବେଶି, ଅତି ଅଧିକ ।

ବହୁତା(ତ୍ୱ)—ବି. ( ବହୁ+ତା.ତ୍ୱ ) ଆଧିକ୍ୟ, ବାହୁଲ୍ୟ, ପ୍ରାଚୁର୍ଯ୍ୟ ।

ବହୁତିଥ—ବି°.(ବହୁ+ତିଥ)ଅନେକତମ, ଅନେକଙ୍କ ମଧ୍ୟରୁ ଗୋଟିଏ, ବହୁସଂଖ୍ୟକ, ଅତ୍ୟଧିକ, ପ୍ରଚୁର ।

ବହୁତୃଣ—ବି°. ତୃଣତୁଲ୍ୟ, ତୃଣସଦୃଶ, (ବ.ବ୍ରୀ) ଯେଉଁଠାରେ ବେଶି ଘାସ ଜନ୍ମିଥାଏ, ନିସ୍ୱ, ତୁଚ୍ଛ, (ବି) ପଡ଼ିଆ, ଘାସଥିବା ଭୂମି ।

ବହୁତ୍ୱକ୍—ବି. ଭୂର୍ଜବୃକ୍ଷ ।

ବହୁତ୍ର—କ୍ରି.ବି°. ବହୁ ସ୍ଥାନରେ,ଅନେକ ସ୍ଥଳରେ, ଅନେକ ପ୍ରକାରେ ।

ବହୁଦ—ପୁଂ.ବି°. (ବହୁ+ଦା+କ.ଅ) ବଦାନ୍ୟ, ଦାନଶୀଳ, ଦାତା ।

ବହୁଦଂଷ୍ଟ୍ର—ପୁଂ.ବି°. (ବ.ବ୍ରୀ) ଯାହାର ଅନେକ ଦାନ୍ତ ଥାଏ ।

ବହୁଦକ୍ଷିଣ—ପୁଂ. ବି°,ବଦାନ୍ୟ, ଅତ୍ୟୁଦାର, ଯେଉଁ ଯଜ୍ଞାଦିରେ ବହୁତ ଦକ୍ଷିଣା ଦିଆଯାଏ ।

ବହୁଦର୍ଶନ—କ୍ଲୀ.ବି. (କ.ଧା) ଅନେକ ବିଷୟ ଦର୍ଶନ, ଅଭିଜ୍ଞତା ।

ବହୁଦର୍ଶିତା—ସ୍ତ୍ରୀ. ବି. ଭୂୟୋଦର୍ଶନଜନିତ ଜ୍ଞାନ, ବହୁଜ୍ଞତା, ଅଭିଜ୍ଞତା ।

ବହୁଦର୍ଶୀ—ପୁଂ.ବି°. (ବହୁ+ଦୃଶ୍+ଇନ୍) ବହୁଜ୍ଞ, ଯେ ବହୁତ ବିଷୟ ଦେଖିଥାଏ, ଅନୁଭବୀ, କାର୍ଯ୍ୟାକାର୍ଯ୍ୟ ବିଚାରକ ।

ବହୁଦଳ—ବି°. (ବ.ବ୍ରୀ) ବହୁତ ପତ୍ର ବା ପାଖୁଡ଼ାବିଶିଷ୍ଟ ।

ବହୁଦୁଗ୍ଧ—ବି°. ( ବ.ବ୍ରୀ ) ବହୁକ୍ଷୀର ଦେଖ, (ବି) ଗହମ ।

ବହୁଦୁଗ୍ଧା—ସ୍ତ୍ରୀ.ବି°. (ବହୁଦୁଗ୍ଧ+ଆ) ବହୁକ୍ଷୀରା, ଯେଉଁ ଗାଈ ଅନେକ ପରିମାଣରେ ଦୁଗ୍ଧ ଦିଏ ।

ବହୁଦୁଗ୍ଧିକା—ସ୍ତ୍ରୀ. ବି. (ବହୁଦୁଗ୍ଧକ+ଆ) ସ୍ନୁହୀବୃକ୍ଷ, ସିଜୁଗଛ ।

ବହୁଦୂର—ବି. (କ.ଧା)ଅନେକ ଦୂର, ଅନେକ ବ୍ୟବଧାନ ।

ବହୁଦୂରବର୍ତ୍ତୀ—ପୁଂ. ବି°, (ବହୁ+ଦୂର+ବୃତ୍+କ.ଇନ୍) ଅନେକ ଦୂରରେ ଅବସ୍ଥିତ, (ସ୍ତ୍ରୀ) ବର୍ତ୍ତିନୀ ।

ବହୁଦୂରସ୍ଥ—ବି°.(ବହୁଦୂର+ସ୍ଥା+

କ.ଅ) ଅନେକ ଦୂରବର୍ତ୍ତୀ, ଅନେକ ଅନ୍ତରରେ ଅବସ୍ଥିତ ।

ବହୁଦୃଷ୍ଟ—ପୁଂ.ବିଂ. (ବ.ବ୍ରୀ) ଖୁବ୍ ଅନୁଭବୀ ।

ବହୁଧନ—ବି. (କ.ଧା) ପ୍ରଚୁର ଧନ, (ପୁଂ.ବିଂ-ବ.ବ୍ରୀ)ଖୁବ୍ ଧନୀ ।

ବହୁଧା—ଅବ୍ୟ. (ବହୁ+ଧା) ବହୁ ପ୍ରକାରରେ, ଅନେକଥର, ଅନେକ ଶାଖାରେ, ଉପର୍ଯ୍ୟୁପରି ।

ବହୁଧାକୃତ—ବିଂ. ଗୁଣିତ,ସାଧାରଣରେ ପ୍ରକାଶିତ ।

ବହୁଧାର—ବି. (ବ.ବ୍ରୀ) ବଜ୍ର,ଇନ୍ଦ୍ରାୟୁଧ

ବହୁନାଦ—ବି. (ବ.ବ୍ରୀ) ଶଙ୍ଖ ।

ବହୁପତ୍ନୀକ—ପୁଂ.ବିଂ. (ବହୁପତ୍ନୀ+କ) ଯାହାର ଅନେକ ଭାର୍ଯ୍ୟା ଥାଆନ୍ତି ।

ବହୁପତ୍ର—ବି. (ବ.ବ୍ରୀ) ପଲାଣ୍ଡୁ,ପିଆଜ ଅଭ୍ରକଧାତୁ, (ବିଂ) ବହୁପତ୍ର ବା ପାଖୁଡ଼ାବିଶିଷ୍ଟ ।

ବହୁପଦୀ—ବିଂ.(ବହୁପଦ+ଇନ୍)ବହୁ-ଚରଣବିଶିଷ୍ଟ, (ଗଣିତ)ବହୁଶ୍ରେଣି-ପୁଞ୍ଜଯୁକ୍ତ ।

ବହୁପର୍ଣ୍ଣ(ର୍ଣ୍ଣୀ)—ବିଂ. (ବ.ବ୍ରୀ) ଅନେକ ପତ୍ରବିଶିଷ୍ଟ, ବହୁପତ୍ର, ବହୁଦଳ,(ବି) ସପ୍ତଛଦବୃକ୍ଷ, ଛତିଆନାଗଛ ।

ବହୁପର୍ଣ୍ଣିକା—ସ୍ତ୍ରୀ.ବିଂ. ମୂଷାକାଣୀଗଛ ।

ବହୁପର୍ଣ୍ଣୀ—ସ୍ତ୍ରୀ.ବି. ମେଥିକା, ମେଥି ।

ବହୁପାଦ(ଦ)—ବି. (ବ.ବ୍ରୀ) ବଟବୃକ୍ଷ ।

ବହୁପୁଷ୍ପ—ବି. (ବ.ବ୍ରୀ) ନିମ୍ବଗଛ,ପାଲି-ଧୁଆଗଛ ।

ବହୁପୁଷ୍ପିକା—ସ୍ତ୍ରୀ.ବି. (ବ.ବ୍ରୀ) ଧାତକୀ, ଧାଇଫୁଲ ଗଛ ।

ବହୁପ୍ରଜ—ପୁଂ.ବିଂ (ବ.ବ୍ରୀ) ଅନେକ ସନ୍ତାନସନ୍ତତିବିଶିଷ୍ଟ, ବହୁ ପ୍ରଜା-ବିଶିଷ୍ଟ, ବହୁଫଳ, ଫଳବାନ୍, (ବି) ଶୂକର, ଘୁଷୁରି ।

ବହୁପ୍ରଦ—ପୁଂ. ବିଂ. (ବହୁ+ପ୍ରଦ) ବିଶେଷ ଦାନଶୀଳ, (ସ୍ତ୍ରୀ) ବହୁପ୍ରଦା ।

ବହୁପ୍ରସବିନୀ—ସ୍ତ୍ରୀ.ବିଂ.(ବ.ବ୍ରୀ)ଅନେକ ସନ୍ତାନ ପ୍ରସବକାରିଣୀ ।

ବହୁପ୍ରସୂ—ସ୍ତ୍ରୀ.ବିଂ. (ବହୁ+ପ୍ରସୂ)ବହୁ ସନ୍ତାନ ପ୍ରସବକାରିଣୀ (ସ୍ତ୍ରୀ) ।

ବହୁଫଳ—ପୁଂ. ବିଂ. (ବ.ବ୍ରୀ) ଯାହାର ବହୁତ ଫଳଥାଏ,ଉର୍ବର, (ବି) କଦମ୍ବ ଗଛ, ବକଇଞ୍ଚ, ଭୁଇଁଅଁକୋଳି ଗୁଳ୍ମ ।

ବହୁଫଳା(ଳୀ)—ସ୍ତ୍ରୀ.ବି.(ବ.ବ୍ରୀ)କ୍ଷୀରିକା, କ୍ଷୀରକୋଳି ଗଛ, ମାଷପର୍ଣ୍ଣୀ,ବଣବିରି, କାକାଡୁମ୍ବ ଗୁଳ୍ମ, କାକୁଡ଼ି, ଚୁଷିକଳସ, ଭୂମ୍ୟାମଲକୀ ।

ବହୁଭାଗ୍ୟ—ବି. (କ.ଧା) ଅତିଶୟ ସୌଭାଗ୍ୟ, (ବିଂ) ସୌଭାଗ୍ୟବାନ୍ ।

ବହୁଭାର୍ଯ୍ୟ—ପୁଂ. ବିଂ. (ବ.ବ୍ରୀ) ଯାହାର ଏକାଧିକ ସ୍ତ୍ରୀ ଅଛନ୍ତି ।

ବହୁଭାଷଣ—ବି. (କ.ଧା) ବହୁତଗୁଡ଼ାଏ [ଗପିବା ।

ବହୁଭାଷାବିତ୍—ବିଂ. (ବହୁଭାଷା+ବିଦ୍ +କ.କ୍ୱିପ୍) ଯେ ଅନେକ ଗୁଡ଼ାଏ ଭାଷାରେ ପଣ୍ଡିତ ।

ବହୁଭାଷୀ—ପୁଂ. ବିଂ. (ବହୁଭାଷ+କ. ଇନ୍) ଗପଡ଼ି, ବାଚାଳ, (ବହୁ+ଭାଷା +ଇନ୍) ଅନେକ ଭାଷାଭିଜ୍ଞ, ଯେଉଁ ଗ୍ରନ୍ଥରେ ଏକାଧିକ ଭାଷା ବ୍ୟବହୃତ ହୋଇଥାଏ ।

ବହୁଭୁକ୍—ପୁଂ. ବିଂ. (ବହୁ+ଭୁଜ୍+ କ.କ୍ୱିପ୍) ଉଦରମ୍ଭରି, ପେଟୁ, ଯେ ଗୁଡ଼ାଏ ଖାଏ ।

ବହୁମଞ୍ଜରୀ—ବିଂ. (ବ.ବ୍ରୀ) ଯେଉଁ ଗଛ ଅନେକ କଢ଼ ଧରେ,(ବିଂ) ତୁଳସୀ-ଗଛ ।

ବହୁମତ—ପୁଂ.ବିଂ.(ବହୁ+ମନ୍+ର୍ମ.ତ) ଅତି ସମାଦୃତ,ପ୍ରକୃତ,ବହୁ ଜ୍ଞାନଶାଳୀ, ଯାହାର ଅନେକ ମତଥାଏ, (ଗ୍ରା.ବିଂ) ବହୁପ୍ରକାରର ।

ବହୁମଳ—ବିଂ. (ବ.ବ୍ରୀ) ବିଶେଷ ମଳ-ଯୁକ୍ତ, (ବି) ସୀସକ, ସୀସା ।

ବହୁମାନ—ବି.(କ.ଧା)ସମ୍ମାନ,ସମାଦର, (ବିଂ-ବ.ବ୍ରୀ) ଅତିସମ୍ମାନିତ ।

ବହୁମାନାସ୍ପଦ—ବିଂ ବା ବି. (ଷତତ୍ପୁ) ଅତିଶୟ ସମ୍ମାନଭାଜନ, ଅତ୍ୟନ୍ତ ସମା-ଦରର ପାତ୍ର ।

ବହୁମାର୍ଗ—ବି. (କ.ଧା) ଅନେକବାଟ, (ବ.ବ୍ରୀ) ଅଙ୍ଗନ, ଅଗଣା, ଚୂକ ।

ବହୁମାର୍ଗଗା—ସ୍ତ୍ରୀ. ବି. (ବହୁମାର୍ଗ+ଗମ୍ +କ.ଅ+ଆ)ଗଙ୍ଗାନଦୀ,ଅସତୀ ସ୍ତ୍ରୀ ।

ବହୁମାର୍ଗୀ—ପୁଂ. ବିଂ. (ବହୁ+ମାର୍ଗ+ ଇନ୍) ନାନାପଥାବଲମ୍ବୀ, (ବି) ଛକ ।

ବହୁମୁଖ—ପୁଂ. ବିଂ. (ବ.ବ୍ରୀ) ଅତ୍ୟନ୍ତ, (ସ୍ତ୍ରୀ) ବହୁମୁଖୀ ।

ବହୁମୂତ୍ର—ବି.(ବ.ବ୍ରୀ)ମେହରୋଗବିଶେଷ

ବହୁମୂର୍ତ୍ତି—ବିଂ.(ବ.ବ୍ରୀ)ବହୁରୂପ,ଅନେକ ରୂପବିଶିଷ୍ଟ,(ବି)ବିଷ୍ଣୁ,ଶିବ,ବନକାର୍ପାସ ।

ବହୁମୂର୍ଦ୍ଧ—ବିଂ.(ବ.ବ୍ରୀ) ଯାହାର ଅନେକ ଗୁଡ଼ାଏ ମୁଣ୍ଡଥାଏ, (ବି) ବିଷ୍ଣୁ ।

ବହୁମୂଳ—ବିଂ. (ବ.ବ୍ରୀ) ବହୁଚେର-ବିଶିଷ୍ଟ, (ବି) ବଟବୃକ୍ଷ, ନାଗବିଶେଷ, ଏକପ୍ରକାର ଘାସ ।

ବହୁମୂଳକ—ବିଂ. (ବ.ବ୍ରୀ) ଅନେକ ମୂଳବିଶିଷ୍ଟ, (ବି) ବଟବୃକ୍ଷ ।

ବହୁମୂଳା—ସ୍ତ୍ରୀ. ବିଂ. (ବ.ବ୍ରୀ) ଅନେକ ମୂଳବିଶିଷ୍ଟ,(ସ୍ତ୍ରୀ.ବି)ଶତାବରୀ,ଛତୋରୀ ।

ବହୁମୂଳୀ—ବି. (ବହୁମୂଳ+ଈ) ଶତା-ବରୀ, ଛତୋରୀ ।

ବହୁମୂଲ୍ୟ—ବିଂ. (ବ.ବ୍ରୀ) ବିଶେଷ ମୂଲ୍ୟ-ବାନ୍, ଦାମୀ, ମହର୍ଘ,(ବି-କ.ଧା) ବହୁତ ଦାମ୍, ବହୁତ ଧନ ।

ବହୁରାଶିକ—ବି. (ବହୁ+ରାଶି+କ) ପାଟୀଗଣିତରେ ଦୁଇ ବା ତତୋଽଧିକ ତ୍ରୈରାଶିକ ଘଟିତ ଅଙ୍କ, (ବିଂ)ଯହିଁରେ ଅନେକ ରାଶିଥାଏ ।

ବହୁରୁଚ—ଗ୍ରା. ବି. ରାଜସାହୀରୁ ଆସୁ-ଥିବା ଏକପ୍ରକାର ପଟ୍ଟ ।

ବହୁରୂପ—ବିଂ. (ବ.ବ୍ରୀ) ବହୁମୂର୍ତ୍ତିଧାରୀ, ବହୁବେଶଧାରୀ,(ବି) ବିଷ୍ଣୁ,କାମଦେବ, ଶିବ, ଝୁଣା, ପୀନସରୋଗ, ଏଣ୍ଡୁଅ, ବ୍ରହ୍ମା, ଯେଉଁ ବ୍ୟକ୍ତି ଲୋକରଞ୍ଜନାର୍ଥ ନାନା ଛଦ୍ମବେଶ ଧାରଣ କରେ,କେଶ ।

ବହୁରୂପା—ସ୍ତ୍ରୀ. ବି. (ବ.ବ୍ରୀ) ଦୁର୍ଗା ।

ବହୁରୂପୀ—ପୁଂ. ବିଂ. (ବହୁରୂପ+ଇନ୍) ଅନେକ ପ୍ରକାର ରୂପଧାରୀ, (ବି) ଗିର-

ଗିଟି ଜାତୀୟ ଜୀବବିଶେଷ ।

ବହୁରେଖ—ବି°. ( ବ.ବ୍ରୀ ) ଅନେକ ରେଖାବିଶିଷ୍ଟ ।

ବହୁରେତାଃ—ପୁଂ. ବି. (ବ.ବ୍ରୀ)ବ୍ରହ୍ମା ।

ବହୁରୋମା—ବି°. (ବ.ବ୍ରୀ) ଅତିଲୋମଶ, (ବି) ମେଣ୍ଢା ।

ବହୁଳ—ବି°.(ବନହ୍ + କ.ଉଳ)ଅନେକ, ଅଧିକ, ଘନ,ଗପଡ଼,(ବହୁ+ଲା+କ.ଅ) କୃଷ୍ଣବର୍ଣ୍ଣବିଶିଷ୍ଟ, କୃତ୍ତିକା ନକ୍ଷତ୍ରରେ ଜନ୍ମଗ୍ରହଣ କରିଥିବା (ବ୍ୟକ୍ତି), ( ବି ) କୃଷ୍ଣପକ୍ଷ, କୃଷ୍ଣବର୍ଣ୍ଣ, ଧଳାମରିଚ,ଅଗ୍ନି, (କ୍ରି.ବି°) ସର୍ବଦା, ଅତ୍ୟନ୍ତ ।

ବହୁଳଗନ୍ଧା—ସ୍ତ୍ରୀ. ବି. (ବ.ବ୍ରୀ) ଅଳାଇଚ ।

ବହୁଳଚ୍ଛଦ—ବି°. ( ବ.ବ୍ରୀ ) ବହୁପତ୍ର ବିଶିଷ୍ଟ,ପତ୍ରବହୁଳ,ଘନପତ୍ରସନ୍ନିବିଷ୍ଟ ।

ବହୁଳତା(ତ୍ୱ)—ବି. (ବହୁଳ+ଭା.ତା) ବାହୁଲ୍ୟ, ଆଧିକ୍ୟ, ପ୍ରାଚୁର୍ଯ୍ୟ ।

ବହୁଳପକ୍ଷ—ବି.(ବହୁଳ+ପକ୍ଷ)କୃଷ୍ଣପକ୍ଷ ।

ବହୁଳା—ସ୍ତ୍ରୀ.ବି. (ବହୁଳ+ଆ) କୃଷ୍ଣପକ୍ଷ, ତାମସୀ ରାତ୍ରି, କୃତ୍ତିକା ନକ୍ଷତ୍ର, ଗାଈ, କଦଳୀବିଶେଷ, ଏଲାଲତା, ନୀଳଗୁଳ୍ମ, ଶୁକ୍ଳମରିଚ, ଆକାଶ,(ସ୍ତ୍ରୀ.ବି°)ଅନେକା, ଅଧିକା ।

ବହୁଳାଳାପ—ବି°. (ବ.ବ୍ରୀ) ଗପଡ଼ି ।

ବହୁଳାଶ୍ୱ—ପୁଂ. ବି°.(ବ.ବ୍ରୀ) ଯାହାର ଅନେକ ଘୋଡ଼ା ଅଛନ୍ତି, (ବି) ଜନକ ବଂଶୀୟ ଜନୈକ ରାଜା ।

ବହୁଳୀକରଣ—ବି. ବିସ୍ତାରିତ କରଣ, ବୃଦ୍ଧିକରଣ,ଧାନ୍ୟାଦିର ନିସ୍ତୁଷୀକରଣ, ସାଧାରଣରେ ପ୍ରକଟିତ କରିବା ।

ବହୁଳୀଭୂତ—ବି°. ବୃଦ୍ଧିପ୍ରାପ୍ତ, ସୁଦୂର ବିସ୍ତୃତ, ସୁପ୍ରକଟିତ, ସୁବିଖ୍ୟାତ ।

ବହୁଶଃ—କ୍ରି. ବି°. ( ବହୁ + ଶସ୍ ) ଅନେକବାର,ବାରମ୍ବାର, ବାହୁଲ୍ୟରୂପେ, ସାଧାରଣତଃ ।

ବହୁଶତ୍ରୁ—ବି°.(ବ.ବ୍ରୀ)ଯାହାର ଅନେକ ଶତ୍ରୁ ଅଛନ୍ତି,(ବି)ଚଟକ,ଘରଚଟିଆ ପକ୍ଷୀ

ବହୁଶାଖ—ବି°,(ବ.ବ୍ରୀ)ଅନେକ ଶାଖା-ବିଶିଷ୍ଟ ।

ବହୁଶିଖ(ଖା)—ବି°. (ବ.ବ୍ରୀ) ଅନେକ ଶିଖାଯୁକ୍ତ, (ବି) ଅଗ୍ନି ।

ବହୁଶିରାଃ—ବି°. ( ବ.ବ୍ରୀ ) ଯାହାର ମୁଣ୍ଡ ଥାଏ, (ବି) ବିଷ୍ଣୁ ।

ବହୁଶ୍ରୁତ—ପୁଂ. ବି°. ( ବହୁ+ଶ୍ରୁତ ) ସୁପଣ୍ଡିତ, ସୁଶିକ୍ଷିତ, ବେଦାଦି ଶାସ୍ତ୍ରଜ୍ଞ ।

ବହୁଶ୍ରେୟାନ୍—ପୁଂ. ବି°. (ବ.ବ୍ରୀ) ବହୁ ସୁଗୁଣଶାଳୀ, ଅନନ୍ତଉତ୍ତମ ।

ବହୁସଂଖ୍ୟକ—ବି°.(ବହୁ+ସଂଖ୍ୟା+କ) ସଂଖ୍ୟାରେ ଅନେକ ।

ବହୁସନ୍ତତି—ବି°. ( ବ.ବ୍ରୀ ) ଯାହାର ଅନେକ ପୁଅଝିଅ ଅଛନ୍ତି, (ବି) କଣ୍ଟା-ବାଉଁଶ ।

ବହୁସାର—ବି°.(ବ.ବ୍ରୀ) ଯହିଁରେ ଅନେକ ସାରାଂଶ ଅଛି, (ବି) ଖଜୁରିଗଛ, ଖଦିର ବୃକ୍ଷ ।

ବହୁସୁତା—ସ୍ତ୍ରୀ. ବି. ଶତାବରୀ,ଶତମୂଳୀ ।

ବହୁସୂ—ସ୍ତ୍ରୀ.ବି°. (ବ.ବ୍ରୀ) ଅନେକବାର ପ୍ରସବ କରିଥିବା (ସ୍ତ୍ରୀ), (ବି) ଶୂକରୀ, ଅନେକ ସନ୍ତାନର ମାତା ।

ବହୁସୂତି—ସ୍ତ୍ରୀ. ବି. ବହୁଅପତ୍ୟା ଗୋ ।

ବହୁସୂମୀ—ପୁଂ. ସ୍ତ୍ରୀ. ବି°. ବହୁପୁଷ୍ପବତୀ (ଲତା), ବହୁପୁଷ୍ପଧାରୀ(ବୃକ୍ଷ), (ସ୍ତ୍ରୀ.ବି) ଭୂଆଶୁଣୀ, ଯୁବତୀ, କୁଳବଧୂ ।

ବହୁସ୍ତ୍ରୀକ—ପୁଂ. ବି°. (ବହୁ+ସ୍ତ୍ରୀ+କ) ବହୁପତ୍ନୀକ, ଯାହାର ବହୁତ ପତ୍ନୀ ଅଛନ୍ତି ।

ବହୁସ୍ରବା—ବି°.(ବ.ବ୍ରୀ) ଯହିଁରୁ ଅନେକ ରସଆଦି କ୍ଷରିତ ହୁଏ, (ବି)ଶଲ୍ଲକୀବୃକ୍ଷ, କୁନ୍ଦୁରୁକୁନ୍ନୀ ଗଛ ।

ବହୁସ୍ୱନ—ପୁଂ.ବି.ପେଚକ,(ବି°-ବ.ବ୍ରୀ) ବହୁଶବ୍ଦଯୁକ୍ତ ।

ବହୁସ୍ୱାମିକ—ବି°.(ବହୁ+ସ୍ୱାମିନ୍+କ) ଯାହାର ଅନେକ ସ୍ୱାମୀ ବା ମାଲିକ ଅଛନ୍ତି ।

ବହୂ—ଗ୍ରା. ବି. (ସଂ-ବଧୂ) ବୋହୂ ।

ବହୂଦକ—ବି. ଚତୁର୍ବିଧ ସନ୍ନ୍ୟାସୀଙ୍କ ମଧ୍ୟରୁ ଏକତମ, (ବି°-ବ.ବ୍ରୀ) ପ୍ରଚୁର ଜଳବିଶିଷ୍ଟ ।

ବହୂପମା—ବି. (ବ.ବ୍ରୀ) ଉପମାଲାଙ୍କାର ବିଶେଷ, ଯେଉଁ ଅଳଙ୍କାରରେ ଗୋଟିଏ ଉପମେୟକୁ ଅନେକ ଉପମାନ ସଙ୍ଗେ ତୁଳନା କରାଯାଏ ।

ବହୂଭୂଆଶୁଣୀ—ଗ୍ରା. ବି. କୁଳବଧୂ ।

ବହେ—ଗ୍ରା. ବି° ଓ କ୍ରି. ବି°. ବୁହେ, ବୁହାକ, ବହୁତ ।

ବହେଡ—ଗ୍ରା.ବି. ଭିଡ଼, ଲୋକମାନଙ୍କର ଦୁର୍ଭେଦ୍ୟ ସଂହତି ।

ବହେଡୁକ—ପୁଂ. ବି. କଣ୍ଟକିକ ବୃକ୍ଷ, ବାଦାଡ଼ାଗଛ ।

ବହେଣୀ—ଗ୍ରା.(ପ୍ରାଚୀନ ପଦ୍ୟ)ଭଉଣୀ, ଭଗିନୀ ।

ବହ୍ଲା—ପ୍ରା.(ସମ୍ବ)ବି. ବଡ଼ିଶା, ଗ୍ରୁଞ୍ଜୁଣୀ ।

ବହ୍ନି—ପୁଂ. ବି. (ବହ୍+କ.ନି) ଚିତ୍ରକ, ଭଲ୍ଲିଆ, ନିମ୍ବୁକ,ଅଗ୍ନି, ଦୈତ୍ୟବିଶେଷ, (ତନ୍ତ୍ରଶାସ୍ତ୍ର) ରେଫ ବା ରବର୍ଣ୍ଣ,କୃଷ୍ଣଙ୍କ ପୁତ୍ରବିଶେଷ, ତୁର୍ବସୁଙ୍କ ପୁତ୍ର, କୁକୁର ବଂଶୀ ଏକ ଯାଦବ, ରାମଙ୍କ କପିସେନାର ଜଣେ ସେନାପତି, ତିନିସଂଖ୍ୟା ।

ବହ୍ନିକର—ବି. ( ବହ୍ନି+କୃ+କ.ଅ ) ବିଦ୍ୟୁତ୍, ବିଜୁଳି,ଚକମକି ପଥର,(ବି°) ଅଗ୍ନିଉତ୍ପାଦକ, ଜଠରାଗ୍ନିବର୍ଦ୍ଧକ ।

ବହ୍ନିକରୀ—ସ୍ତ୍ରୀ. ବି. ( ବହ୍ନିକର+ଈ ) ଧାତକୀବୃକ୍ଷ, ଧାଇଫୁଲ, ଧଅଗଛ ।

ବହ୍ନିକାଷ୍ଠ—କ୍ଲୀ. ବି. ( ବହ୍ନି + କାଷ୍ଠ ) ଦାହାଗୁରୁ, ଜାଳକାଠ, ସଂଘର୍ଷଣଦ୍ୱାରା ଅଗ୍ନି ଉତ୍ପାଦକ କାଠ, ଅଗ୍ନିମନ୍ଥ,ଅଗ-ବଥୁ କାଠ ।

ବହ୍ନିକୁଣ୍ଡ—ପୁଂ. ବି. ଅଗ୍ନିକୁଣ୍ଡ ।

ବହ୍ନିକୁମାର—ପୁଂ. ବି. ଅଗ୍ନିକୁମାର ।

ବହ୍ନିକୋଣ—ପୁଂ. ବି. ଅଗ୍ନିକୋଣ ।

ବହ୍ନିଗନ୍ଧ—ପୁଂ. ବି. ସନ୍ଧଧୂପ ।

ବହ୍ନିଗର୍ଭ—ପୁଂ. ବି. ( ବହ୍ନି + ଗର୍ଭ ) ବାଉଁଶ, ବଣ, ସମୁଦ୍ର, (ବି°-ବ.ବ୍ରୀ) ଯାହାର ଗର୍ଭ ବା ଅନ୍ତଃସ୍ଥଳରେ ଅଗ୍ନି ଥାଏ,ଯାହାକୁ ଘଷିଲେ ନିଆଁ ବାହାରେ

ବହ୍ନିଗର୍ଭା—ସ୍ତ୍ରୀ. ବ. ( ବହ୍ନିଗର୍ଭ+ଆ) ଶମୀବୃକ୍ଷ, ଶାଇଁଗଛ ।

ବହ୍ନିଚକ୍ରା—ସ୍ତ୍ରୀ. ବ. କଳଙ୍କାରୀ ବୃକ୍ଷ ।

ବହ୍ନିଚୂଡ଼—କ୍ଲୀ. ବ. ଅଗ୍ନିଶିଖ ।

ବହ୍ନିଜାୟା—ସ୍ତ୍ରୀ. ବ. (୬ତତ୍)ସ୍ୱାହା ।

ବହ୍ନିଜ୍ୱାଳା—ସ୍ତ୍ରୀ. ବ. ଧାତକୀ ବୃକ୍ଷ ।

ବହ୍ନିତମ—ବି. ବଂ. ଅଧିକତର ଉଜ୍ଜ୍ୱଳ, ବିଶିଷ୍ଟ ଦୀପ୍ତିଶାଳୀ ।

ବହ୍ନିଦ—ବି. ବଂ. (ବହ୍ନି+ଦା+ଅ) ଅଗ୍ନିଦାୟକ ।

ବହ୍ନିଦମନୀ—ସ୍ତ୍ରୀ. ବ. ଅଗ୍ନିଦମନୀକ୍ଷୁପ ।

ବହ୍ନିଦୀପକ—ପୁଂ. ବ. କୁସୁମ୍ଭ ବୃକ୍ଷ ।

ବହ୍ନିଦୀପିକା—ସ୍ତ୍ରୀ.ବ.ଅଜମୋଦା,ବଣକୁଆଁଣୀ ।

ବହ୍ନିନନ୍ଦନ—ବ.(୬ତତ୍)ଅଗ୍ନିଙ୍କ ପୁତ୍ର, ନୀଳ ନାମକ ବାନର ସେନାପତି ବିଶେଷ ।

ବହ୍ନିନାମ—ପୁଂ. ବ. (ବ.ବ୍ରୀ) ଚିତ୍ରକ ବୃକ୍ଷ, ଧଳାଚିତା,ଭଲ୍ଲାତକବୃକ୍ଷ, ଭଲିଆ

ବହ୍ନିନିର୍ମ୍ମଥନୀ—ସ୍ତ୍ରୀ.ବ. ଅଗ୍ନିମନ୍ଥ ବୃକ୍ଷ, ଅଗବଥୁଗଛ ।

ବହ୍ନିନୀ—ସ୍ତ୍ରୀ. ବ. ଜଟାମାଂସୀ ।

ବହ୍ନିପୁରାଣ—କ୍ଲୀ. ବ. ଅଗ୍ନିପୁରାଣ ।

ବହ୍ନିପୁଷ୍ପା—ସ୍ତ୍ରୀ. ବ. ଧାତକୀ ।

ବହ୍ନିପ୍ରିୟା—ସ୍ତ୍ରୀ. ବ. ସ୍ୱାହା ।

ବହ୍ନିଭୂତକ—କ୍ଲୀ. ବ. ରୌପ୍ୟ, ରୁପା, ଶୁଦ୍ଧ ।

ବହ୍ନିଭୋଗ୍ୟ—କ୍ଲୀ. ବ. ଘୃତ, ଘିଅ ।

ବହ୍ନିମଥନ(ନା)—ପୁଂ.ସ୍ତ୍ରୀ. ବ. ଅଗ୍ନିମନ୍ଥ ବୃକ୍ଷ ।

ବହ୍ନିମନ୍ଥ—ପୁଂ. ବ. ଗଣିକାରୀ ବୃକ୍ଷ, ଅଗ୍ନିମନ୍ଥ, ଅଗବଥୁ ଗଛ ।

ବହ୍ନିମାରକ—କ୍ଲୀ. ବ. ଜଳ ।

ବହ୍ନିମିତ୍ର—ପୁଂ. ବ. (୬ତତ୍) ବାୟୁ ।

ବହ୍ନିମୁଖ—ବ. (ବ.ବ୍ରୀ) ଦେବତା ।

ବହ୍ନିମୁଖୀ—ସ୍ତ୍ରୀ. ବ.ଲାଙ୍ଗଳିକା,ବିଷଲାଙ୍ଗଳିଆ ।

ବହ୍ନିରୁଚି—ସ୍ତ୍ରୀ.ବ.ମହାଜ୍ୟୋତିଷ୍ମତୀ ଲତା

ବହ୍ନିରେତାଃ—ପୁଂ. ବ. (ବ.ବ୍ରୀ) ଶିବ, ମହାଦେବ ।

ବହ୍ନିଲୋହ—କ୍ଲୀ. ବ. ତାମ୍ର ।

ବହ୍ନିଲୋହକ—କ୍ଲୀ. ବ. କାଂସ୍ୟ ।

ବହ୍ନିବଲ୍ଲା—ସ୍ତ୍ରୀ. ବ. ଲାଙ୍ଗଲୀ, ବିଷଲାଙ୍ଗଳିଆ ।

ବହ୍ନିବଧୂ—ସ୍ତ୍ରୀ. ବ. (୬ତତ୍) ଅଗ୍ନିଙ୍କ ସ୍ତ୍ରୀ ସ୍ୱାହାଦେବୀ ।

ବହ୍ନିବର୍ଣ୍ଣ—କ୍ଲୀ. ବ. ରକ୍ତୋତ୍ପଳ, ଅଗ୍ନିବର୍ଣ୍ଣ, ରକ୍ତବର୍ଣ୍ଣ ।

ବହ୍ନିବଲ୍ଲଭ—ପୁଂ. ବ.ସର୍ଜରସ, ଝୁଣା ।

ବହ୍ନିବିବକ୍ଷୁ—ବଂ. (ବହ୍ନି+ବିବକ୍ଷୁ)ଅଗ୍ନିରେ ପ୍ରବେଶାଭିଳାଷୀ ।

ବହ୍ନିବୀଜ—ପୁଂ. ବ. ଜମ୍ବୀର ବୃକ୍ଷ,ଲେମ୍ବୁଗଛ, (କ୍ଲୀ) ସ୍ୱର୍ଣ୍ଣ, ଜମ୍ବୀରଫଳ,(ତନ୍ତ୍ର) ରଂ ଏହି ବୀଜାକ୍ଷର ।

ବହ୍ନିଶାଳା—ସ୍ତ୍ରୀ. ବ. ଅଗ୍ନିଶାଳା,ଅଗ୍ନିଗୃହ, ହୋମଗୃହ ।

ବହ୍ନିଶିଖ—କ୍ଲୀ. ବ. କୁସୁମ୍ଭ, କୁସୁମଫୁଲ (ବଂ. ବ.ବ୍ରୀ) ଅଗ୍ନିଶିଖାଯୁକ୍ତ ।

ବହ୍ନିଶିଖର—ପୁଂ. ବ. ଲୋଚମସ୍ତକ ।

ବହ୍ନିଶିଖା—ସ୍ତ୍ରୀ. ବ. ଫଳନୀ, କଳିକାରୀ ବୃକ୍ଷ, ଧାତକୀ, ଲାଙ୍ଗୂଳିକା, ବିଷଲାଙ୍ଗଳିଆ, ପ୍ରିୟଙ୍ଗୁ, ଜଳପିପ୍ପଳୀ, ଗଜପିପ୍ପଳୀ ନାଆଁର ଶିଖା । [ କୃତ ।

ବହ୍ନିଶୁଦ୍ଧ—ବି.ବଂ.ଅଗ୍ନିଦ୍ୱାରା ବିଶୁଦ୍ଧୀ-

ବହ୍ନିସଂସ୍କାର—ପୁଂ. ବ.(୬ତତ୍) ଅଗ୍ନିସଂସ୍କାର, ନିଆଁରେ ପୋଡ଼ିବା,ଶବଦାହ

ବହ୍ନିସଂଜ୍ଞକ—ପୁଂ. ବ. ଚିତ୍ରକବୃକ୍ଷ ।

ବହ୍ନିସଖ—ପୁଂ.ବ.(୬ତତ୍)ଜୀରକ, ବାୟୁ

ବହ୍ନିସାକ୍ଷିକ—ଅବ୍ୟ. ଅଗ୍ନି ସାକ୍ଷାତରେ ଯେ କାର୍ଯ୍ୟ ନିଷ୍ପନ୍ନ ହୋଇଅଛି ।

ବହ୍ୟ—କ୍ଲୀ. ବ. (ବହ+ଯ) ବାହନ, ଶକଟ, ଯାନ,(ବଂ)ବହନୀୟ, ବହନଯୋଗ୍ୟ ।

ବହ୍ୟକ—କ୍ଲୀ. ବ. ବାହକ ।

ବହ୍ୟା—ସ୍ତ୍ରୀ. ବ. ମୁନିପତ୍ନୀ ।

ବହ୍ୱପତ୍ୟ—ବଂ.(ବ.ବ୍ରୀ)ଯାହାର ଅନେକ ସନ୍ତାନ ସନ୍ତତି ଅଛନ୍ତି ।

ବହ୍ୱପତ୍ୟା—ସ୍ତ୍ରୀ. ବଂ. ( ବହ୍ୱପତ୍ୟ+ଆ) ବହ୍ୱପତ୍ୟର ସ୍ତ୍ରୀଲିଙ୍ଗ, ( ସ୍ତ୍ରୀ. ବ ) ଶୂକରୀ,ମୂଷା ।

ବହ୍ୱର୍ଥ—ବଂ. (ବ.ବ୍ରୀ) ନାନାର୍ଥଯୁକ୍ତ, ଯାହାର ନାନାପ୍ରକାର ଅର୍ଥ ହୋଇପାରେ ।

ବହ୍ୱାଡ଼ମ୍ବର—ବ. (କ.ଧା)ମହାଆଡ଼ମ୍ବର, ବିଶେଷ ଜାକଜମକ, (ବଂ. ବ.ବ୍ରୀ) ଅତି ଆଡ଼ମ୍ବରପୂର୍ଣ୍ଣ ।

ବହ୍ୱାୟାସ—ପୁଂ.ବ.(କ.ଧା)ଖୁବ୍ପରିଶ୍ରମ

ବହ୍ୱାରମ୍ଭ—ବ. (କ.ଧା) ମହାଆଡ଼ମ୍ବର, (ବଂ. ବ.ବ୍ରୀ) ମହାଆଡ଼ମ୍ବରମୟ ।

ବହ୍ୱାଶୀ—ପୁଂ. ବଂ. (ବହୁ+ଅଶ୍+କ. ଇନ୍) ବହୁଭୋଜନଶୀଳ, ଯେ ଗୁଡ଼ାଏ ଖାଏ, (ବହୁ+ଆଶା+ଇନ୍)ବିଶେଷ ଆଶାଯୁକ୍ତ,(ବ)ଧୃତରାଷ୍ଟ୍ରଙ୍କପୁତ୍ର ବିଶେଷ

ବହ୍ୱୃଚ୍—ପୁଂ. ବଂ. ( ବହୁ+ଋଚ୍ ) ଋଗ୍ବେଦ ବା ମନ୍ତ୍ର ଜାଣିଥିବା (ବ୍ୟକ୍ତି), ବହୁମନ୍ତ୍ରଯୁକ୍ତ, (ସ୍ତ୍ରୀ. ବ) ଋଗ୍ବେଦ, ଋଗ୍ବେଦର ଚରଣ ।

ବା—ଅବ୍ୟ, ( ବା+ଭା.କ୍ୱିପ୍ ) ଅବା, ଅଥବା, କିମ୍ବା, ପରିବର୍ତ୍ତିରେ, ପକ୍ଷାନ୍ତରରେ, ଅପି, ମଧ୍ୟ, ବିକଳ୍ପ, (ଗ୍ରା.ବି) ପିତା, ବାପୁ ।

ବାଆ—ଗ୍ରା.ବ.(ସଂ-ବାତ)ବାୟୁ, ପବନ, (ଲ.ଅର୍ଥ)ସାମାନ୍ୟମାତ୍ର ସମ୍ପର୍କ ବା ସ୍ପର୍ଶ

ବାଆଁ—ଗ୍ରା. ବଂ.(ସଂ-ବାମ)ବାମପାଖର, ବାମଦିଗସ୍ଥ, (ବ)ବାମଭାଗ,ବାମପାର୍ଶ୍ୱ ।

ବାଆଁଖେଳଆ—ଗ୍ରା.ବ. କୌଣସିବ୍ୟକ୍ତିର ହାତୁଡ଼େ ନପଡ଼ିବା ପାଇଁ ଖେଳରେ ଇତସ୍ତତ ଗତି କରିବା ।

ବାଆଁର—ଗ୍ରା. ବ. ବାଛୁରୀ କ୍ଷୀରପିଇ ନପାରିବା ପାଇଁ ତା ମୁହଁରେ ଦିଆଯିବା ଏକପ୍ରକାର ଏକାଧିକ ମୁନଯୁକ୍ତ କୀଳକାବରଣ ।

ବାଆଁରାବାଆଁରି—ଗ୍ରା.ବ ଛଳନା ଭୁଲାଇବା, ପ୍ରବଞ୍ଚାଇବା,ଠକାଠକି ବାହାନା

ବାଆଁରି—ଗ୍ରା. ବ. ଭୋଡ଼ଗାଛ ।

ବାଆଁରେଇବା—ଗ୍ରା.କ୍ରି. ଛଳନାକରିବା, ବାହାନା କରିବା, କଥାଦ୍ୱାରା ଭୁଲାଇବା

ବାଆଁ(ହୁଁ)ଶପଢର—ଗ୍ରା. ବି. ଏକପ୍ରକାର ଗ୍ରେଟମାଛ ।

ବାଆଁହାତ—ଗ୍ରା. ବି. ବାମହସ୍ତ ।

ବାଆଁହାତଆ—ଗ୍ରା. ବିଂ. ବାମହସ୍ତ ସମ୍ବନ୍ଧୀୟ, ବାଆଁ (କ୍ରି.ବିଂ) ବାମହାତରେ, ବାମହସ୍ତ ଦ୍ୱାରା ।

ବାଆକୁବତା(ତେ)—ଗ୍ରା. (ପ୍ରବଚନ) ପବନକୁ ବତାବେଇ ଅଟକାଇ ରଖିବା ପରି ହାସ୍ୟାସ୍ପଦ ଚେଷ୍ଟା ।

ବାଅନ(ନେ)—ଗ୍ରା. ବି. ପଚାଶରୁ ଦୁଇ ଅଧିକ ସଂଖ୍ୟା ।

ବାଆନଫାନ୍ଦିଆ—ଗ୍ରା. ବିଂ. ପୁଂ. ମିଥ୍ୟାବାଦୀ,ଛଳକାଏ ଯେ ବୃଥାରେ ଗୁଡ଼ାଏ ମିଥ୍ୟାଗପ କରେ, (ସ୍ତ୍ରୀ) ବାଆନଫାନ୍ଦୀ

ବାଆପାଣି—ଗ୍ରା. ବି.ତୋଫାନ ଓ ବର୍ଷା, କୌଣସି ସ୍ଥାନର ଜଳବାୟୁ,ପାଣିପବନ

ବାଆବତା—ଗ୍ରା. ବି. ଘରର ଚୂଳ ପବନରେ ଉଡ଼ି ନଯିବ ବୋଲି ଚୂଳର ଉପର ପାଖରେ ଓ ମୁଣ୍ଡ ଅଂଶରେ ବନ୍ଧାଯିବା ଗ୍ରେଟ୍ ବତା ।

ବାଆଲ—ଯା. ବି. ଉପରେ ।

ବାଆଷଠାଶଏ(ହେ)—ଗ୍ରା. ବି ଓ ବିଂ. ଏକଶତ ବାଆଷଠି, ୧୬୨ ସଂଖ୍ୟା ବା ସଂଖ୍ୟକ ।

ବାଆଷଠି—ଗ୍ରା. ବି ଓ ବିଂ. ଷାଠିଏରୁ ଦୁଇ ଅଧିକ, ୬୨ସଂଖ୍ୟା ବା ସଂଖ୍ୟକ ।

ବାଆସ୍ତର—ଗ୍ରା. ବି ଓ ବିଂ. ସତୁରିରୁ ଦୁଇ ଅଧିକ, ୭୨ ।

ବାଆସ୍ତରଶହେ—ଗ୍ରା.ବି ଓ ବିଂ.ଏକଶତ ବାଆସ୍ତର, ୧୭୨ ସଂଖ୍ୟା ବା ସଂଖ୍ୟକ ।

ବାଇ—ଗ୍ରା. ବି. ବାୟୁରୋଗ, ଉନ୍ମାଦ, ବାତୁଳତା, ଆଗ୍ରହାତିଶଯ୍ୟ,ରାଜପୁତନା ଓ ମହାରାଷ୍ଟ୍ର ଅଞ୍ଚଳ ଓ ବମ୍ବେରେ କ୍ଷତ୍ରିୟ ଓ ବୈଶ୍ୟ ଭଦ୍ରମହିଳାମାନଙ୍କର ଉପାଧି ବିଶେଷ, ବେଶ୍ୟା ଓ ନର୍ତ୍ତକୀମାନଙ୍କର ଉପାଧି, ଭଉଣୀ, ନର୍ତ୍ତକୀ, (ଗ୍ରା. ବିଂ) ଉନ୍ମତ୍ତ, ବାତୁଳ,କୌଣସି ବିଷୟ ପ୍ରତି ଅତି ଆସକ୍ତ, ବିବେଚନା ଶୂନ୍ୟ, (ଗ୍ରା. ସମ୍ବୁ. ବି) ବଡ଼ଭଉଣୀ, ଘରଚଟିଆ ଚଢ଼େଇ । [(ବ୍ୟକ୍ତି) ।

ବାଇଆ—ଗ୍ରା. ବିଂ. ଉନ୍ମତ୍ତ ଓ ପାଗଳ

ବାଇଆଣୀ--ଗ୍ରା.ସ୍ତ୍ରୀ.ବିଂ.ବାଇଆର ସ୍ତ୍ରୀଲିଙ୍ଗ

ବାଇଗଣ—ଗ୍ରା.ବି. ବାର୍ତ୍ତାକୁ,ପ୍ରସିଦ୍ଧ କୃଷିଜାତ ଗୁଳ୍ମ ଓ ତାହାର ଫଳ ।

ବାଇଗଣପଲେଇ—ଗ୍ରା.ବି. ମାନ୍ଦ୍ରାଜବାଗାନାନ୍‌ପଲ୍ଲୀ ନାମକ ଉତ୍କୃଷ୍ଟ ଆମ୍ବ ବିଶେଷ

ବାଇଗ(ଗି)ଣିଆ—ଗ୍ରା. ବିଂ ବାଇଗଣର ରଙ୍ଗ ପରି ନୀଳରକ୍ତ ବର୍ଣ୍ଣ ମିଶ୍ରିତ,(ଗ୍ରା. ବି) ବାଲେଶ୍ୱରର ପର୍ବତ ବିଶେଷ ।

ବାଇଗଣୀ—ଗ୍ରା. ବି. ଏକପ୍ରକାର ଧୂଆଁପତ୍ର,ତେଲ ବା ଘିଅରେ ପୂଆ ହୋଇଥିବା ବାଇଗଣର ଖଣ୍ଡମାନ ।

ବାଇଗବା—ଗ୍ରା. ବି. ଶୁକ୍ଳଏରଣ୍ଡ, ଏକପ୍ରକାର କ୍ଷୀରବୃକ୍ଷ, ରକ୍ତ ଏରଣ୍ଡ.ବାଇଗବା ଜାତୀୟ ଗ୍ରେଟ ଓ ନାଲିଗଛ ।

ବାଇଜ—ଗ୍ରା. ବିଂ. ସମାଜରୁ ଚ୍ୟୁତ, ପତିତ୍ୟକ୍ତ । [ ଦେଖ ।

ବାଇଜଡ଼ା—ପ୍ରା.(ମେଦନୀ)ବି.ବାଇଗବା

ବାଇଜହାଣ୍ଡି—ଗ୍ରା. ବି. ଅଶୌଚଗୃହରେ ଯେଉଁ ପାକପାତ୍ରମାନ ବର୍ଜିତ ହୋଇ ଫୋପଡ଼ାଯାଏ ।

ବାଇଜାଲି—ଗ୍ରା. ବି. ଦଣ୍ଡକାରମାଛ ପରି ଏକପ୍ରକାର ଗ୍ରେଟମାଛ ।

ବାଇଜୀ--ଯା. ବି. ନର୍ତ୍ତକୀ ।

ବାଇଟା(ଟୁ)ଙ୍ଗୁର—ଗ୍ରା.ବିଂ.ଯେଉଁ ଲୋକ ବେଳେବେଳେ ବାତୁଳପରି ହୁଏ, ଆଡ଼ବାଇଆ, ଅବ୍ୟବସ୍ଥିତଚିତ୍ତ ।

ବାଇଡଙ୍କ-ଗ୍ରା.ବି.ଶିମ୍ବାଦି ବର୍ଗର ଅରଣ୍ୟ ଓ ଗ୍ରାମଜାତ ଲତା ଓ ତାହାର ଫଳ, (ଲ.ଅର୍ଥ) ଦୁଷ୍ଟ ବା ଖଳ ବ୍ୟକ୍ତି ।

ବାଇଦ—ଗ୍ରା. ବି. ବାଜା, ଢୋଲ ।

ବାଇଦକାରଆ—ଗ୍ରା. ବି. ବାଜାବାଲା, ଯେ ବାଜା ବଜାଏ ।

ବାଇଦବଡ଼କାଠ—ଗ୍ରା.ବି. ସାନଢୋଲ ଓ ବଡ଼ ଢୋଲ ।

ବାଇଦା—ପ୍ରା.(ଗଞ୍ଜାମ)ଯା.ବି. ମକଦ୍ଦମା ତାରିଖ, ମିଆଦ, ମହଲତ ।

ବାଇଧନ—ଗ୍ରା. ବି. ପ୍ରିୟତମ ଶିଶୁ ବା ବ୍ୟକ୍ତିକୁ ସ୍ନେହସୂଚକ ସମ୍ବୋଧନ ।

ବାଇବ(ବେ)ଲ—ଯା.ବି. ଖ୍ରୀଷ୍ଟାନମାନଙ୍କ ଧର୍ମପୁସ୍ତକ ।

ବାଇବା—ଗ୍ରା. କ୍ରି. ବାଦ୍ୟ ବଜାଇବା ।

ବାଇବାଉଳା—ଗ୍ରା. ବିଂ. ପାଗଳ, (ବି) ପାଗଳାମି ।

ବାଇବଛ—ଗ୍ରା.ବିଂ. ବାତୁଳପରି ଅସ୍ଥିର, ପ୍ରବଳ ବାୟୁ ପରି ଅସ୍ଥିର ।

ବାଇବଡ଼ଙ୍ଗ--ଗ୍ରା.ବି.ଔଷଧଗୁଳ୍ମବିଶେଷ, ବିଡ଼ଙ୍ଗ ।

ବାଇମୁଣ୍ଡ—ଗ୍ରା.ବି.ଶିଶୁମାନଙ୍କର ମନୋରଞ୍ଜକ ମାଆମାନଙ୍କର ଉକ୍ତି ।

ବାଇସ୍ତ୍ରା—ଗ୍ରା. ବିଂ. ପାଗଳ ।

ବାଇଲ—ଗ୍ରା.ବି. କାଠଶିମ୍ବ, ରାଜଭୃତ୍ୟ ବିଶେଷ ।

ବାଇଲଗିବା—ଗ୍ରା. ବି. ବେଳେବେଳେ ମନକୁ କୌଣସି ବଦ୍ଖିଆଲ ଆକ୍ରମଣ କରିବା, ସାମୟିକ ବାତୁଳହେବା ।

ବାଇଲୀ—ଗ୍ରା.ବି.ସ୍ତ୍ରୀଲୋକ, ମାଇକିନିଆ, ଭାର୍ଯ୍ୟା, ମାଇପ ।

ବାଇଶ(ଶି)—ଗ୍ରା.ବି.ବିଂ.କୋଡ଼ିଏରୁ ଦୁଇ ଅଧିକ ସଂଖ୍ୟା, ଦ୍ୱାବିଂଶତ,୨୨ସଂଖ୍ୟକ, (ଗ୍ରା.ବି) ନିୟମ, ସ୍ଥିରତା, ନିଶ୍ଚିନ୍ତତା, ସାମଞ୍ଜସ୍ୟ, ଅଶ୍ଳୀଳ ଗାଳିବିଶେଷ ।

ବାଇଶ(ଶି)ପାହାଚ—ଗ୍ରା. ବି. ପୁରୀର ଶ୍ରୀ ଜଗନ୍ନାଥଙ୍କ ସିଂହଦ୍ୱାରଠାରୁ ଭିତର ବେଢ଼ାକୁ ଯିବା ପର୍ଯ୍ୟନ୍ତ ଯେଉଁ ୨୨ ଗୋଟି ପାବଚ୍ଛ ଅତିକ୍ରମ କରି ଯିବାକୁ ହୁଏ ।

ବାଇଶା—ଗ୍ରା.ବିଂ.୨୨ ସଂଖ୍ୟକ, ବାଇଶି ସମ୍ବନ୍ଧୀୟ,୨୨ ଗୌଣୀ ପରିମିତ(ଶସ୍ୟ)

ବାଇଶାକୁଟା—ଗ୍ରା. ବି. ବାଇଶି ଗଉଣି ଧାନ କୁଟା ଦେଲେ ତାହା ବଦଳରେ ଦଶଗୌଣୀ ଚାଉଳ ପାଇବା ରୀତି ।

ବାଇଶିପଲଆ—ଗ୍ରା. ବିଂ. ଯେଉଁ କଂଶାର ପରିମାଣ ୨୨ ପଲ । [ବିଧାମତ ।

ବାଇଶିପଲିଆବଧା—ଗ୍ରା. ବି. ଝୁଙ୍କ୍ ଲ୍ଲୋ

ବାଇସାଇକଲ—ଯା. ବି. ଦୁଇଚକିଆ ପାଦଚାଳିତ ଗାଡ଼ି ।

ବାଇଶୋଠା(ଡ଼ା)—ଯା. ବ. ପାଶ୍ଚାତ୍ୟ ଲବଣ ଜାତୀୟ କ୍ଷାରୌଷଧବିଶେଷ ।

ବାଇସ୍କୋପ୍—ଯା ବ. ଆଲୋକ ଓ ଗ୍ରସ୍ଥ ପ୍ରତିଫଳନ ପୂର୍ବକ ଜୀବନ୍ତବତ୍ ଚଳଚ୍ଚିତ୍ର ଓ ତହିଁର ଯନ୍ତ୍ର ।

ବାଇହାଣ୍ଡି—ପ୍ରା. (ପୁରୀ) ବ. ପୁରୀ ଜଗନ୍ନାଥଙ୍କୁ ଯେଉଁ ବଡ଼ ହାଣ୍ଡିରେ ଅନ୍ନ ମହାପ୍ରସାଦ ଭୋଗ କରାଯାଏ ।

ବାଈ—ଗ୍ରା. ବ. ବେଶ୍ୟା, ନର୍ତ୍ତକୀ ସ୍ତ୍ରୀ ।

ବାଉ—ପ୍ରା.(ବାଲେ)ବ. ବାୟୁ ଦେଖ ।

ବାଉଁକ୍—ପ୍ରା.(ମେଦ)ବ.ବାହୁଙ୍ଗୀ,ଭାରଦଣ୍ଡ ।

ବାଉଁଶ—ଗ୍ରା.ବ.ଧାନ୍ୟାଦ ବର୍ଗଜ ପ୍ରସିଦ୍ଧ ଦୀର୍ଘ ବୃକ୍ଷବିଶେଷ, ବଂଶତରୁ ।

ବାଉଁଶକଣି—ଗ୍ରା. ବ, ବାଉଁଶର କ୍ଷୁଦ୍ର ଶାଖା ଓ ଉପଶାଖା ।

ବାଉଁଶକଣିଆ—ଗ୍ରା. ବିଂ. ପତଳା ଓ ଡେଙ୍ଗା (ବ୍ୟକ୍ତି) ।

ବାଉଁଶକଣ୍ଡ—ଗ୍ରା.ବ.ବାଉଁଶର କଅଁଳିଆ ଗଜା ।

ବାଉଁଶଧାନ—ଗ୍ରା. ବ. ବାଉଁଶ ଗଛରେ ଫଳିବା ଧାନବିଶେଷ ।

ବାଉଁଶପତ୍ରି—ଗ୍ରା. ବ. ଏକପ୍ରକାର ଧଳା ଛୋଟ ମାଛ, ଏକପ୍ରକାର ଘାସ ।

ବାଉଁଶପାଢଆ—ଗ୍ରା.ବ. ବାଉଁଶ ବହୁରୁ ତିଆରି ହୋଇଥିବା ପତଳା ଖଣ୍ଡ ।

ବାଉଁଫାଳିଆ—ଗ୍ରା. ବ. ଦୁଇଫାଳ ହୋଇ ତିଆରି ହୋଇଥିବା ବାଉଁଶ ।

ବାଉଁଶା—ପ୍ରା.(ସମ୍ବ)ବ.ଗୃହଘରର ରୁଅ

ବାଉଁଶିଆ—ଗ୍ରା.ବ.ବାଉଁଶ ପାଉଅାରେ ହଥିର ପାଚିଆ, ଏକପ୍ରକାର ଆମ୍ବ ।

ବାଉ(ହୁ)ଟା—ଯା ବ. ପତାକା ।

ବାଉ(ହୁ)ଟିଆ—ଗ୍ରା.ବ. କୃଷ୍ଣସାର, କଳା ବାହୁଟିଆ ମୃଗବିଶେଷ ।

ବାଉରା—ପ୍ରା.(ସମ୍ବ)ବିଂ. ବାଉଳ,ପାଗଳ, (ଗ୍ରା.ବ) ଅଡ଼ା, ରହଣି ଘରର ଦୁଇ ଖୁମ୍ବ ହାଣ୍ଡିକୁ ଠିକ୍ ଭାବରେ ରଖିବା ନିମନ୍ତେ ବ୍ୟବହୃତ ଆଡ଼ ଶ୍ରେଣୀଖଣ୍ଡ ।

ବାଉରି—ଗ୍ରା.ବ୍ଲୀ. (ସଂ-ବର୍ବର) ହିନ୍ଦୁ ନୀଚ ଜାତିବିଶେଷ, (ଗ୍ରା. ସମ୍ବ. ବ) ଓଲଟ ବେଙ୍ଗର ।

ବାଉଳା—ଗ୍ରା.ପୁଂ. ବିଂ. ବାତୁଳ, ଭ୍ରାନ୍ତ. ବାତୁଳ ବ୍ୟକ୍ତି ପରି ବାହ୍ୟଜ୍ଞାନଶୂନ୍ୟ, (ଗ୍ରା.ବ) ଭ୍ରାନ୍ତ, ବାତୁଳତା ।

ବାଉଳି—ଗ୍ରା.ବ. ବୈଷ୍ଣବ ଧର୍ମସମ୍ପ୍ରଦାୟବିଶେଷ, କାନର ଉପର କାନରେ ପିନ୍ଧାଯିବା ଅଳଙ୍କାରବିଶେଷ ।

ବାଉଳିଗଉଳି—ଗ୍ରା.ବ. ନିଦ୍ରା ବା ବାତୁଳତାଜନିତ ପ୍ରଳାପ କରୁଥିବା,ବ୍ୟାକୁଳ

ବାଉଳିଲକ୍ଷ୍ମୀ—ପ୍ରା.(ଯାଜ)ସ୍ତ୍ରୀ.ବ.ହୁଣ୍ଡୀସ୍ତ୍ରୀ

ବାଏ—ଗ୍ରା. କ୍ରି. ବିଂ. ବାଆ ବା ପବନ ଦ୍ୱାରା ।

ବାଏଁ—ଗ୍ରା. କ୍ରି. ବିଂ. ବାମପାଖରେ ।

ବାଏଁବାଏଁ—ଗ୍ରା.କ୍ରି.ବିଂ.ପବନ ଗତିରେ ପବନ ଦ୍ୱାରା ଗୃହୀତ ହୋଇ, କାହାର କର୍ଣ୍ଣରେ ପ୍ରବେଶ ନ କରି, ବାହାରେ ବାହାରେ, ବରାବର ବାମ ଦିଗରେ ।

ବାଏଁଗ୍ରା—ପ୍ରା. (ସିଂହଭୂମ)ବ. ବମିମାଛ. ତୋଡ଼ିମାଛ ।

ବାଏକା—ପ୍ରା. (କୋଶପୁର)ବ. ବଣଭୂଆ ।

ବାଏଲ—ପ୍ରା. (ସମ୍ବ)ବ. ବାଲି ।

ବାଂଶ—ବିଂ. (ବଂଶ+ଅ) ବାଉଁଶସମ୍ବନ୍ଧୀୟ, ବଂଶସମ୍ବନ୍ଧୀୟ(ବ)ବଂଶଲୋଚନା

ବାଂଶୀ—ଗ୍ରା. ବ. ବଂଶୀ । [ ବାଦକ ।

ବାଂଶିକ—ପୁଂ. ବ. (ବଂଶ+ଇକ)ବଂଶୀ-

ବାଃ—ଗ୍ରା. ଅବ୍ୟ. ସାବାସ,ଧନ୍ୟ,ଆହା ।

ବାଃକଟି—ପୁଂ. ବ. ଶିଶୁମାର ।

ବାଃପୁଷ୍ପ—ବ. ଲବଙ୍ଗ ।

ବାଃସଦନ—କ୍ଲୀ. ବ. ଜଳାଧାର ।

ବାଁଟଧୁରି—ପ୍ରା. (ବସ୍ତର)ବ. ଅଂଶୀଦାର

ବାଁଟ୍‌ବା—ପ୍ରା. (ସମ୍ବ. ବସ୍ତର)ବ.ବାଣ୍ଟିବା

ବାକ୍—ବ. (ବଚ୍+କ୍ୱିପ୍) ବାକ୍ୟ, କଥା, ଶବ୍ଦ, ଉକ୍ତି,ଉଚ୍ଚାରିତ ବିଷୟ, ବିଦ୍ୟା, ସରସ୍ୱତୀ,(ଣ.କ୍ୱିପ୍) ବାଗୀନ୍ଦ୍ରିୟ,ପାଟି ।

ବାକ୍‌ଗରୁଷ୍ଟ—ବ. ( ୭ତତ୍ ) କଥାରେ ତାଗିଦ୍ ଦେଖାଇବା, ବାଲିଙ୍ଗି, କଥା କହିବାରେ ବାହାଦୁର(ଗ୍ରା.ବ)ବକ୍ରୋକ୍ତି, ଦୁଇଅର୍ଥ ପ୍ରକାଶ କରୁଥିବା କଥା ।

ବାକ୍‌ଚପଳତା—ବ. (୭ତତ୍) କଥା କହିବା ବିଷୟରେ ଚଞ୍ଚଳତା ପ୍ରକାଶ,ବୃଥାଗପ

ବାକ୍‌ଛଳ—ବ. ( ୭ତତ୍ ) କଥା ଦ୍ୱାରା ପ୍ରତାରଣା ।

ବାକ୍‌ପଟୁ—ବିଂ. (୭ତତ୍) କଥା କହିବାରେ ପଟୁ ବା ଚତୁର, ବାଗ୍ମୀ ।

ବାକ୍‌ପତି—ବିଂ. (୭ତତ୍) ବାଗ୍ମୀ, (ବ) ବୃହସ୍ପତି, ବିଷ୍ଣୁ, ନିର୍ଦୋଷ ବାକ୍ୟ ।

ବାକ୍‌ପାରୁଷ୍ୟ—ବ. (୭ତତ୍) କଥାରେ କର୍କଶତା, ରୂଢ଼ ବଚନ ପ୍ରୟୋଗଶୀଳତା,କଠୋର ବଚନ,ଅପବାଦ ।

ବାକ୍‌ପ୍ରଣାଳୀ—ସ୍ତ୍ରୀ. ବ. (୭ତତ୍) କଥା କହିବାର ରୀତି, ବାକ୍ୟ ପ୍ରକାଶର ଧାରା

ବାକ୍‌ପ୍ରପଞ୍ଚ—ବ. (୭ତତ୍) ବାକ୍ୟସମୂହ, ବାକ୍ୟ ବିସ୍ତାର ।

ବାକ୍‌ବିତଣ୍ଡା—ଗ୍ରା.ବ.ବାଗ୍‌ଯୁଦ୍ଧ, ଅନୁପଯୁକ୍ତ ଯୁକ୍ତି । [ କ୍ଷମତା ।

ବାକ୍‌ଶକ୍ତି—ବ. (୭ତତ୍) କଥା କହିବାର

ବାକ୍‌ସଂଯମ—ବ. (୭ତତ୍) ବୃଥାରେ ନ ଗପିବା,ଅଳ୍ପବାକ୍ୟ କହିବା, ଅପ୍ରୟୋଜନ ବାକ୍ୟ ନ କହିବା ।

ବାକ୍‌ସିଦ୍ଧି—ବ. (୭ତତ୍) କଥିତ ବାକ୍ୟର କାର୍ଯ୍ୟରେ ଘଟିବା ରୂପ ଅଲୌକିକ ସାଧନରେ ସଫଳତା ।

ବାକ୍‌ସୂତ୍ର—ବ. (୭ତତ୍) କଥାର ସୂତ୍ରପାତ, ବାକ୍ୟାରମ୍ଭ, ସ୍ୱରୋତ୍ପାଦକ ଚର୍ମସୂତ୍ର ବା ତନ୍ତୁ ।

ବାକ—ବ.(ବଚ୍+ମି.ଅ) ବାକ୍ୟ, କଥା, ଉକ୍ତି, (ବିଂ.ବକ+ଅ) ବକସମ୍ବନ୍ଧୀୟ, (ବ) ବକସମୂହ ।

ବାକକଲ୍ୟାଣୀ—ଗ୍ରା. ବ. ବ୍ରାହ୍ମଣ ।

ବାକଟକୁଳିଆ—ଗ୍ରା. ବିଂ. ଜାତିଭ୍ରଷ୍ଟ ।

ବାକସ—ଗ୍ରା. ବ. କାଠର ଡାଲା ବିଶିଷ୍ଟ କ୍ଷୁଦ୍ର ଚତୁଷ୍କୋଣ ଆଧାର, କାଠପେଡ଼ି, ଛୋଟ ସିନ୍ଦୁକ, ଉଦ୍ୟାନରେ ରୋପିତ ବହୁ ଚକ୍ଷିତ ପତ୍ରଶାଳୀ ବିଦେଶାଗତ ଗୁଳ୍ମ, ଏକଜାତୀୟ ଦୃଢ଼ କାଷ୍ଠ, ଇଉରୋପୀୟ ବୃକ୍ଷ ।

ବାକି—ଗ୍ରା. ବିଂ. ଅବଶିଷ୍ଟ, ଉଦ୍ବୃତ୍ତ,

ଅସୁଲ୍‌ବାଦ ଅବଶିଷ୍ଟ ପ୍ରଦେୟ, ଅବଶିଷ୍ଟ ପ୍ରାପ୍ୟ,(ବ)ଅବଶିଷ୍ଟାଂଶ, ବୟୋଗଫଳ, (ଯା.ଅବ୍ୟ) କନ୍ତୁ,ଏଙ୍ଗ,ମଧ୍ୟ, ଅଧିକନ୍ତୁ ।

ବାକିଆ—ଗ୍ରା.ବଂ,ବକେୟା, ପୂର୍ବସନର ବାକିଥିବା ଦେୟ, ଅବଶିଷ୍ଟ ବାକି, (ଗ୍ରା.ବ)ଅବଶିଷ୍ଟ ଧନ, ବାକିଥିବା ଧନ

ବାକିଖଜଣା—ଗ୍ରା. ବ. ପ୍ରଜା ଉପରେ ବାକିଥିବା ଗତସନର ରାଜସ୍ୱ ।

ବାକିଖାତା—ଯା. ବ. ଯେଉଁ ଖାତା ବା ହିସାବ ବହିରେ ବାକିଦାର ମାନଙ୍କ-ଠାରୁ ପ୍ରାପ୍ୟ ଧନର ହିସାବ ଲେଖାଥାଏ

ବାକିପଡ଼ିବା—ଗ୍ରା.ବ. ହିସାବ ଖାତାରେ କୌଣସି ବ୍ୟକ୍ତିର ନାମରେ ଥିବା ବାକି-ଧନ ଧାରବାହିକ ରୂପେ ଦେଖାଯିବା ।

ବାକିକୁଟି—ପ୍ରା. ( ଗଞ୍ଜାମ ) ବ. ମାଛ ଧରିବା ମଞ୍ଚ ଜାତବଶେଷ ।

ବାକିତକ—ଗ୍ରା. ବ. ଅବଶିଷ୍ଟାଂଶ ।

ବାକିତାଲିକା—ଗ୍ରା.ବ.ବାକିଦାରମାନଙ୍କ ନାମ ଓ ଦେୟ ବାକିର ପରିମାଣ ଯେଉଁ ତାଲିକାରେ ଲେଖାଯାଏ ।

ବାକିଦାର୍—ଯା.ବ. ଯେଉଁ ବ୍ୟକ୍ତିଠାରେ ଅନ୍ୟର ପ୍ରାପ୍ୟ ବାକି ରହିଥାଏ ।

ବାକିବୁକର—ଗ୍ରା.ବ. ବାକିଥିବା ପ୍ରାପ୍ୟ ।

ବାକିରଖିବା—ଗ୍ରା.କ୍ରି. ଆପଣାର ଦେୟ ନଦେବା, କୌଣସି କାର୍ଯ୍ୟକୁ ଅକୃତ ବା ଅବଶିଷ୍ଟ ରଖିବା, ବ୍ୟୟପରେ ଧନ ବଳାଇ କରି ରଖିବା ।

ବାକିରହିବା—ଗ୍ରା. କ୍ରି. ଉଦ୍‌ବୃତ୍ତରହିବା, ଅବଶିଷ୍ଟ ରହିବା, ଦେୟଧନ ଆଦାୟ ନହେବା, ବଳିପଡ଼ିବା ।

ବାକୁଚକା—ସ୍ତ୍ରୀ, ବ. କାକୁଚୀ ଦେଖ ।

ବାକୁଚୀ—ସ୍ତ୍ରୀ.ବ. ବର୍ଷାୟୁ ଶାକବଶେଷର ବୀଜ ।

ବାକୁଟିଆଣୀ—ଗ୍ରା. ବ. ରଜାଙ୍କ ପାଟ-ରାଣୀ ଛଡ଼ା ଅନ୍ୟ ରାଣୀ ।

ବାକୁଲ—ବ. ଯୁଆଳି ଖିଲା, ଯୁଗାଗ୍ର-କୀଳକ, ( ପ୍ରା. ବାଲେ. ମେଦନା ) ବ. ପ୍ରାଚୀର ବା ଗୃହବେଷ୍ଟିତ ଚତ୍ୱର, ଅଗଣା ।

ବାକେଶ୍ୱରୀ—ଗ୍ରା. ସ୍ତ୍ରୀ. ବ. ଗ୍ରାମଦେବୀ ବିଶେଷ ।

ବାକୋପବାକ—କ୍ଲୀ. ବ. ଗଳ୍ପଗୁଜବ, କଥୋପକଥନ ।

ବାକୋବାକ୍ୟ—କ୍ଲୀ. ବ. ପରସ୍ପର କଥା-ବାର୍ତ୍ତା, କଥୋପକଥନ,ତର୍କବିତର୍କ ।

ବାକ୍‌କଲହ—ପୁଂ.ବ. ( ବାକ୍‌+ କଲହ ) ବାକ୍ୟଦ୍ୱାରା କଲହ ।

ବାକ୍କୀର—ପୁଂ, ବ. ( ବାକ୍‌+କୀର ) ଶ୍ୟାଳକ, ଶଳା ।

ବାକ୍ୟ—କ୍ଲୀ, ବ. ( ବାଚ୍‌+ଯ ) କଥା, ବଚନ, ଉଚ୍ଚାର୍ଯ୍ୟମାଣପଦ,ଅର୍ଥବୋଧକ ଶବ୍ଦ ସମଷ୍ଟି, ଶାସ୍ତ୍ରୀୟବଚନ, ପ୍ରତିଜ୍ଞା, ବିଭକ୍ତ୍ୟନ୍ତ ପଦ ସମୁଦାୟ, ( ଗ୍ରା.ବ ) ଧର୍ମକର୍ମାଦିର ସଂକଳ୍ପ କରିବା ସମୟରେ ବୋଲାଯିବା ସଂକଳ୍ପ ବଚନ ।

ବାକ୍ୟକର—ପୁଂ. ବ. (ବାକ୍ୟ+କୃ+କ.ଅ)ବାକ୍ୟରଚନା କରିବା ବ୍ୟକ୍ତି.ଦୂତ

ବାକ୍ୟକରିବା—ଗ୍ରା. କ୍ରି, ଦୃଢ଼ବଚନ ଦେବା, ପ୍ରତିଶ୍ରୁତ ହେବା,ଚୁକ୍ତି କରିବା, ବୈଦିକ ଧର୍ମକର୍ମାଦିର ପୂର୍ବରୁ ସଂକଳ୍ପ ବାକ୍ୟ ବୋଲିବା ।

ବାକ୍ୟଖଚିତ—ବଂ. ବାକ୍ୟପୂର୍ଣ୍ଣ, ସୁନ୍ଦର ପଦାଦ ଦ୍ୱାରା ବିରଚିତ ।

ବାକ୍ୟଗ୍ରହ—ପୁଂ. ବ. ଅର୍ଥଗ୍ରହଣ ।

ବାକ୍ୟଦାନ—ବ. (୬ତତ୍ପୁ) ଅଙ୍ଗୀକାର, ପ୍ରତିଶ୍ରୁତି ।

ବାକ୍ୟପ୍ରଗେ୍ନଦନ—ପୁଂ.ବ.ଅନୁଜ୍ଞାବାକ୍ୟ

ବାକ୍ୟପ୍ରଗେ୍ନଦନାତ୍—ଅବ୍ୟ.ଆଜ୍ଞାନୁସାରେ

ବାକ୍ୟପ୍ରତୋଦ—ପୁଂ. ବ. କଟୂକ୍ତି ।

ବାକ୍ୟପ୍ରଳାପ—ପୁଂ.ବ. ଅସମ୍ବନ୍ଧ ବାକ୍ୟ, ବାଗ୍ମିତା ।

ବାକ୍ୟପ୍ରସାରୀ—ପୁଂ,ବଂ. ବାଚାଳ,ବାଗ୍ମୀ ।

ବାକ୍ୟମାଳା—ସ୍ତ୍ରୀ. ବ. ବାକ୍ୟଲହରୀ, ବାକ୍ୟସମୂହ ।

ବାକ୍ୟବାଗୀଶ—ଗ୍ରା. ବଂ. ଯେ କେବଳ ଗୁଡ଼ିଏ କଥା କହିପାରେ (କାର୍ଯ୍ୟତଃ କିଛି କରେ ନାହିଁ) ।

ବାକ୍ୟବାଣ—ବ, ବାଣପରି କଠୋର ବାକ୍ୟ, ମର୍ମଭେଦୀ କଥା । [ କଥନ ।

ବାକ୍ୟବନ୍ଧମୟ—ବ. (୬ତତ୍ପୁ) କଥୋପ-

ବାକ୍ୟବିନ୍ୟାସ—ବ.(୬ତତ୍ପୁ) ରଚନାରେ ଉପଯୁକ୍ତ ବାକ୍ୟମାନଙ୍କର ଯଥାସ୍ଥାନରେ ସନ୍ନିବେଶ ।

ବାକ୍ୟବିଶାରଦ—ପୁଂ. ବଂ. ( ୭ତତ୍ପୁ ) ବାକ୍‌ପଟୁ, ବାଗ୍ମୀ । [ କହିବା ।

ବାକ୍ୟବ୍ୟୟ—ପୁଂ. ବ. (୬ତତ୍ପୁ) କଥା

ବାକ୍ୟଶେଷ—ପୁଂ. ବ. (୬ତତ୍ପୁ) କଥା-ବସାନ, ବାକ୍ୟର ଶେଷ ।

ବାକ୍ୟସଂଯମ—ପୁଂ. ବ. ବାକ୍‌ସଂଯମ, ବାଙ୍‌ନିରୋଧ ।

ବାକ୍ୟସଂଯୋଗ—ପୁଂ.ବ.ବାକ୍ୟର ମିଳନ, ବାକ୍ୟଯୋଜନା ।

ବାକ୍ୟସଂକୀର୍ଣ୍ଣ—ପୁଂ. ବ, ବାକ୍ୟାଳୁତା ।

ବାକ୍ୟସୁଧା—ବ. (କ.ଧା) ବଚନରୂପ ଅମୃତ, ଅତିମିଷ୍ଟ କଥା ।

ବାକ୍ୟସ୍ଖଳନ—ବ. ( ୬ତତ୍ପୁ ) ବାକ୍ୟର ଅସ୍ପଷ୍ଟ ଉଚ୍ଚାରଣ,ଅନୁଦ୍ଦିଷ୍ଟ ବାକ୍ୟକଥନ ।

ବାକ୍ୟସ୍ଥ—ବଂ. (ବାକ୍ୟ+ସ୍ଥା+କ.ଅ) ବାକ୍ୟରେ ସ୍ଥିତ, କଥାରେ ବାଧ୍ୟ ।

ବାକ୍ୟସ୍ଫୂର୍ତ୍ତି—ବ.(୬ତତ୍ପୁ)ବାକ୍ୟର ସ୍ଫୁରଣ, କଥା ବାହାରିବା, ପ୍ରଥମ ବାକ୍ୟୋ-ଚ୍ଚାରଣ ।

ବାକ୍ୟସ୍ୱର—ପୁଂ. ବ. କଥାର ଆବାଜ ।

ବାକ୍ୟାଡ଼ମ୍ବର—ବ (୬ତତ୍ପୁ) ବାଗ୍‌ଜାଲ, ବାଗାଡ଼ମ୍ବର । [ ତର୍କ ।

ବାକ୍ୟାଧାହାର—ପୁଂ.ବ.(୬ତତ୍ପୁ)କଥାରେ

ବାକ୍ୟାର୍ଥ —ପୁଂ. ବ. କଥାର ମର୍ମ ।

ବାକ୍ୟାଲଙ୍କାର—ପୁଂ.ବ.ବାକ୍ୟର ଶୋଭା, ବାକ୍ୟଛଟା, କଥାର ଛଟା ।

ବାକ୍ୟାଳାପ—ବ.(୬ତତ୍ପୁ)କଥୋପକଥନ

ବାକ୍ସ—ଗ୍ରା. ବ, ବାକସ ଦେଖ ।

ବାଖର—ଗ୍ରା. ବ. ମଦ୍ୟର ଉପାଦାନ-ବିଶେଷ, ଉଦ୍ଭିଦଜାତ ପଚା ପଦାର୍ଥ ବିଶେଷ,ଘୋଡ଼ା ପିଠିରେ ପକାଇବାର ଆସ୍ତରଣ ବା ପଲ୍ଲଣ । [ ଗଳ୍ପ ।

ବାଖୁଣୀ—ପ୍ରା. (ସିଂହଭୂମ) ବ. କାହାଣୀ,

ବାଗ୍—ଯା. ବ, ଉଦ୍ୟାନ, ବଗିଚା ।

ବାଗ୍ଗାଡ଼ୁ—ବି. ( କ.ଧା ) ବାଗାଡ଼ମ୍ବର, ମନମୁଗ୍ଧକର ବାଦ୍ୟଚୟ ।

ବାଗ୍‌ଡୁଡୁ—ଗ୍ରା.°ବି. ଡୁଡୁ ଦେଖ ।

ବାଗ୍‌ଦଣ୍ଡ—ବି. ( ୬ତତ୍ ) ତିରସ୍କାର, ବାକ୍‌ସଂଯମ ।

ବାଗ୍‌ଦତ୍ତ—ବିଂ.(୬ତତ୍) ଯାହାକୁ ଦାନ କରିବା ନିମନ୍ତେ ଦାତା ପ୍ରତିଶ୍ରୁତ ଅଛନ୍ତି

ବାଗ୍‌ଦତ୍ତା—ବିଂ.ସ୍ତ୍ରୀ.ପିତା ଯେଉଁ କନ୍ୟାକୁ ବରପାତ୍ରକୁ ପ୍ରଦାନ କରିବା ନିମନ୍ତେ ପ୍ରତିଶ୍ରୁତ ହୋଇଥାଆନ୍ତି ।

ବାଗ୍‌ଦରିଦ୍ର—ପୁଂ. ବିଂ. (୬ତତ୍) ଯେ ଅଳ୍ପକଥା କହେ ।

ବାଗ୍‌ଦଳ—ବି. (ବାକ୍+ଦଳ) ଓଠ ।

ବାଗ୍‌ଦାନ—ବି. ( ୬ତତ୍ ) ପ୍ରତିଶ୍ରୁତି, କନ୍ୟାକୁ ବରପାତ୍ର ସଙ୍ଗେ ବିବାହ ଦେବା ନିମନ୍ତେ କନ୍ୟାପିତାଙ୍କର ପ୍ରତିଜ୍ଞା, ମହାପ୍ରସାଦ ନିବନ୍ଧ ।

ବାଗ୍‌ଦୁଷ୍ଟ—ପୁଂ. ବିଂ. ( ବ.ବ୍ରୀ ) ଯେ ମୁହଁରେ ତିରସ୍କାରପୂର୍ଣ୍ଣ ବାକ୍ୟ ଧରେ, ଯେ ଅବ୍ୟାକରଣିକ ଭାଷା ବ୍ୟବହାର କରେ, ଅପବାଦକାରୀ, ଅଭିଶପ୍ତ, ପରୁଷଭାଷୀ, ଯେଉଁ ବ୍ରାହ୍ମଣ ଉପଯୁକ୍ତ ବୟସରେ ଉପନୟନ ହୋଇନାହିଁ ।

ବାଗ୍‌ଦେବତା—ବି. (କ.ଧା) ସରସ୍ୱତୀ ।

ବାଗ୍‌ଦୋଷ—ବି. (୬ତତ୍) କର୍କଶବାକ୍ୟ ଉଚ୍ଚାରଣ, ତିରସ୍କାର, ଅପବାଦ, ଅବ୍ୟାକରଣିକ ବାକ୍ୟ, ବାକ୍ୟରେ ଅପରାଧୀ ।

ବାଗ୍‌ଦୋଷୀ—ପୁଂ.ବିଂ. ବାକ୍‌ଦୋଷକାରୀ

ବାଗ୍‌ବଜ୍ର—ବି. (କ.ଧା)କଠୋରବାକ୍ୟ, ଅଶ୍ଳୀଳବାକ୍ୟ ।

ବାଗ୍‌ବାଦିନୀ—ସ୍ତ୍ରୀ. ବି. ସରସ୍ୱତୀ ।

ବାଗ୍‌ବିଦଗ୍ଧ—ବିଂ. (୬ତତ୍) ବାକ୍ୟନିପୁଣ, ବାକ୍ୟରସିକ ।

ବାଗ୍‌ବିଭବ—ବି.(୬ତତ୍)ବାକ୍ୟରେ ବ୍ୟବହୃତ ବାକ୍ୟମାନଙ୍କ ଭଣ୍ଡାର, ବାକ୍ୟରେ ବର୍ଣ୍ଣନା କରିବାରେ ପ୍ରଚୁର କ୍ଷମତା ।

ବାଗ୍‌ବିଳାସ—ବି. (୬ତତ୍) ମନୋହର ବାକ୍ୟ ।

ବାଗ୍‌ବ୍ୟବହାର—ବି.(୬ତତ୍) ବାଦାନୁବାଦ ।

ବାଗ୍‌ବୈଦଗ୍ଧ୍ୟ—ବି.ବାକ୍‌ଚତୁରୀ ଦେଖ, ସୁନ୍ଦର ଅଳଙ୍କାର ଓ ଚମତ୍କାର ପୂର୍ଣ୍ଣ ବାକ୍ୟପ୍ରୟୋଗରେ ନିପୁଣତା ।

ବାଗ୍‌ବ୍ୟୟ—ବି. (୬ତତ୍) ବାକ୍ୟବ୍ୟୟ, କଥାକହିବା ।

ବାଗ୍‌ବ୍ୟାପାର—ବି.(୬ତତ୍) କଥା କହିବାର ଢଙ୍ଗ, କହିବାର ଅଭ୍ୟାସ, ଅଭ୍ୟାସଗତ ବାକ୍ୟବିନ୍ୟାସ ।

ବାଗ୍‌ଯତ—ବିଂ. (୬ତତ୍) ଯେ ଗୁଡ଼ିଏ କଥା କହେ ନାହିଁ, ଯାହାର ବାକ୍ ସଂଯମ ଅଛି, ମୌନୀ ।

ବାଗ୍‌ଯମ—ବି. ( ୬ତତ୍ ) ବାକ୍‌ସଂଯମ ଦେଖ, (ବ.ବ୍ରୀ) ସଂଯତବାକ୍ ବ୍ୟକ୍ତି, ମୁନି, ଋଷି ।

ବାଗ୍‌ଯାମ—ପୁଂ. ବି. (ବାକ୍+ଯମ+ଅ) ଘୁଙ୍ଗାବ୍ୟକ୍ତି ।

ବାଗ୍‌ଯୁଦ୍ଧ—ବି. (୬ତତ୍) କଳିତକରାର, ଗାଳିଦିଆଦିଇ, ବାଦାନୁବାଦ, ତର୍କବିତର୍କ ।

ବାଗ—ଗ୍ରା.ବି. ନିର୍ଦ୍ଧାରିତ ଉପାୟ, ଧାରା, ଢାଞ୍ଚା, ପ୍ରଣାଳୀ, ପନ୍ଥା, ବାଟ, ଖଞ୍ଜ, ସୂତ୍ର, ବ୍ୟବସ୍ଥା, ନିୟମ, ପାଖ, ଦିଗ, ସୁବିଧା, ସୁଯୋଗ, ଘୋଡ଼ାର ଲଗାମ, ଶାସନ, ଆୟତ୍ତାଧୀନତା, (ଗ୍ରା. ବିଂ) ଅଧୀନ ।

ବାଗକୁଆଣିବା—ଗ୍ରା.କ୍ରି.ବଶୀଭୂତକରିବା, ଆପଣାର ଅଧୀନ କରି ବିଗିଡ଼ିଥିବା ବସ୍ତୁକୁ ସଜାଡ଼ିବା ।  [ ବାଘ୍ନ ।

ବାଗଡ଼—ଗ୍ରା.ବି. କଥାରେ ବାଧାଦେବା,

ବାଗଡ଼ୋର—ଗ୍ରା. ବି. ଘୋଡ଼ାର ମୁଖରଜ୍ଜୁ, ଲଗାମ ।

ବାଗଣ—ଗ୍ରା. ବି. ଏକପ୍ରକାର ଇନ୍ଦ୍ରଜାଲ ବା କୁହୁକ ବିଦ୍ୟା ।  [ ବିଶେଷ ।

ବାଗଦ—ଗ୍ରା.ବି. ମତ୍ସ୍ୟଜୀବୀ ଅସ୍ପୃଶ୍ୟଜାତି

ବାଗଧରିବା—ଗ୍ରା. କ୍ରି. ପକ୍ଷଅବଲମ୍ବନ କରିବା, କୌଣସି ବ୍ୟକ୍ତିକୁ ନିୟନ୍ତ୍ରିତ କରିବା, କୌଣସି କଥାରେ କ୍ରିଦ୍‌କରିବା, ସ୍ଥିରବୋଲି ଗ୍ରହଣ କରିବା, ଘୋଡ଼ାର ଲଗାମକୁ ଧରିବା ।

ବାଗପାଇବା—ଗ୍ରା. କ୍ରି. ସୁଯୋଗ ପ୍ରାପ୍ତହେବା, କୌଣସି ବ୍ୟକ୍ତିର ହୃଦୟର ଭାବ ଜାଣିପାରିବା, ମର୍ଜିପାଇବା, ସୂତ୍ରଜାଣି ପାରିବା ।

ବାଗବଗିଚ୍ଚ—ଯା.ବି. ପ୍ରମୋଦୋଦ୍ୟାନ, ଫୁଲ ଫଳ ବଗିଚ୍ଚ, ବଗାଡ଼ୁ ।

ବାଗବତା(ତେ)ଇବା—ଗ୍ରା.କ୍ରି.ଗୋଟିଏ ସୁବିଧାଜନକ ଉପାୟ ଶିକ୍ଷାଦେବା ।

ବାଗବରଗ—ଗ୍ରା. ବି. ନିର୍ଦ୍ଦିଷ୍ଟ ନିୟମ, ରୀତି, ଧାରା, ସୁବ୍ୟବସ୍ଥା, ଖଞ୍ଜ, ଯନ୍ତ୍ରାଦିର ରହସ୍ୟ ।

ବାଗମୋଡ଼ିବା—ଗ୍ରା. କ୍ରି. ବାଗ ଦ୍ୱାରା ଘୋଡ଼ାର ଗତିକୁ କୌଣସି ଦିଗକୁ ନିୟନ୍ତ୍ରିତ କରିବା, (ଲ.ଅର୍ଥ) ଆପେ ଇଚ୍ଛା ନ ଥିଲେ ପରଦ୍ୱାରା କୌଣସି ବ୍ୟକ୍ତିକୁ ନିୟନ୍ତ୍ରିତ କରିବା ।

ବାଗର—ପୁଂ. ବି. ମେଣ୍ଢା, ଶାଣ, ନିର୍ଣ୍ଣୟ, ବାଡ଼ବ, ବୃକ, ମୁମୁକ୍ଷୁ, ପଣ୍ଡିତ, (ବିଂ) ପରିତ୍ୟକ୍ତ ଭୟ, ଭୟରହିତ ।

ବାଗସି—ସ୍ତ୍ରୀ. ବି. ଅସିପରି ତୀକ୍ଷ୍ଣ ବାକ୍ୟ ।

ବାଗା—ସ୍ତ୍ରୀ.ବି. ବଲ୍ଗା, ଲଗାମ, ବାଗ ।

ବାଗାଡ଼ମ୍ବର—ପୁଂ.ବି.(୬ତତ୍)ଆଡ଼ମ୍ବରପୂର୍ଣ୍ଣ ବାକ୍ୟ, ବାକ୍ୟର ଆଡ଼ମ୍ବର ।

ବାଗାନ—ଯା.ବି. ଉଦ୍ୟାନ ।

ବାଗାରୁ—ପୁଂ. ବିଂ. ଆଶାଦେଇ ନିରାଶ କରିବା (ବ୍ୟକ୍ତି), ବିଶ୍ୱାସଘାତକ ।

ବାଗାଶନି—ପୁଂ.ବି. ବୁଦ୍ଧଦେବ ।

ବାଗି(ଘି)—ଗ୍ରା.ବି.ଉପଦଂଶଜନିତ ବ୍ରଣବିଶେଷ, ବାରହାଦାଢ଼, ପିଚ୍ଛୁଳି, ଉରୁସନ୍ଧିରେ ପଡ଼ିବା ଗିଲ୍ଟି, ( ଗ୍ରା.ବିଂ ) ଉତ୍ତମ, ନିକ, ସ୍ୱାଦୁ ।

ବାଗିଆ—ଗ୍ରା. ବି. ବାଇଗବା ଦେଖ, ଜୋକଆ କଣ୍ଟା ।

ବାଗିର—ପ୍ରା.(ସମ୍ପ୍ର)କ୍ରି.ବିଂ.ପରି, ସଦୃଶ, ଅନୁସାରେ ।  [ ତ୍ୱଚନା ।

ବାଗିନ୍ଦ୍ରିୟ—କ୍ଳୀ. ବି. ( କ.ଧା ) ମୁଖ,

ବାଗୀଶ—ପୁଂ.ବି.(୬ତତ୍)ଉତ୍କୃଷ୍ଟ ବକ୍ତା,

ବୃହସ୍ପତି, ବ୍ରହ୍ମା, (ବିଂ) ବାଗ୍ମୀ, ସୁବକ୍ତା

ବାଗୀଶା—ସ୍ତ୍ରୀ. ବି. ( ବାଗୀଶ+ଆ ) ସରସ୍ୱତୀ ।

ବାଗୀଶ୍ୱର—ବି ଓ ବିଂ.ବାଗୀଶ ଦେଖ ।

ବାଗୀଶ୍ୱରୀ—ସ୍ତ୍ରୀ.ବି. ସରସ୍ୱତୀ ।

ବାଗୁଚ(ଚା)—ସ୍ତ୍ରୀ.ବି. ସୋମରାଜୀ.ବାକୁଚ

ବାଗୁଡ଼(ଡ଼ୁ)—ଗ୍ରା.ବି.ଏକପ୍ରକାର ଖେଳ ଡୁଡୁ ଦେଖ ।

ବାଗୁଣ—ପୁଂ.ବି. କରମଙ୍ଗା, ବାଇଗଣ, କର୍ମରଙ୍ଗ ।

ବାଗୁରା—ସ୍ତ୍ରୀ.ବି.(ବା+ଉର+ଆ)ମୃଗ-ବନ୍ଧନୀ, ଜାଲ, ଫାନ୍ଦ, ଫାଶ ।

ବାଗୁରିକ—ପୁଂ.ବି, ( ବାଗୁରା+ଇକ ) ଶବର, ବ୍ୟାଧ, ଯେ ଫାଶ ବସାଇ ଜନ୍ତୁ ଧରେ । [ ବାଲ ।

ବାଗୁଲି—ପୁଂ.ବି, ପକ୍ଷି, (ଗ୍ରା.ବି) ବଜୁରି-

ବାଗୁଲି—ବି. ପାନଡ଼ବା, ପାନବଟା ।

ବାଗୁଲିକ—ବିଂ. ତାମ୍ବୂଲଦାତା, ରାଜାଙ୍କୁ ପାନଖିଲ ଯୋଗାଇବା ଚାକର ।

ବାଗୁଲୀ—ଗ୍ରା. ବି. ରାଜାଙ୍କର ତାମ୍ବୂଲ-ବାହକ ଭୃତ୍ୟବିଶେଷ ।

ବାଗୃଷଭ—ପୁଂ.ବିଂ. ପ୍ରକୃଷ୍ଟବକ୍ତା, ବକ୍ତା, ବାଗ୍ମୀ ।

ବାଗେ—ଗ୍ରା.କ୍ରି.ବିଂ.ସୁବିଧାରେ, ଢଗେ, ପାର୍ଶ୍ୱେ, ପ୍ରକାରେ, ରୂପେ, ଅନୁସାରେ, ସୁବିଧାକ୍ରମେ ।

ବାଗେଇବା—ଗ୍ରା. କ୍ରି. ଅଧୀନତାକୁ ଆଣିବା, ସୁଧାରିବା,ସୁପଥକୁ ଆଣିବା, ଗୋଟିଏ ପାଖକୁ ବା ପକ୍ଷକୁ ଟାଣିବା, ଅନ୍ୟଦିଗକୁ ମୁହଁ ବୁଲାଇବା ।

ବାଗ୍‌ଗୁଣ—ପୁଂ.ବି. ବାକାଫଳ. ଅର୍ଦ୍ଧଚନ୍ଦ୍ର-ବିଶେଷ ।

ବାଗ୍‌ଗୁଳି—ପୁଂ.ବି. ତାମ୍ବୂଳୀ, ରାଜାଙ୍କୁ ପାନ ଯୋଗାଇବା ବ୍ୟକ୍ତି ।

ବାଗ୍‌ଗୁଲିକ—ପୁଂ. ବି.ତାମ୍ବୂଲଦ,ତାମ୍ବୂଲ-ଦାତା ।

ବାଗ୍‌ଭଟ—ପୁଂ. ବି. (ନାମ) ଆୟୁର୍ବେଦୀୟ ବାଗ୍‌ଭଟ ସଂହିତା ରଚୟିତା, ଜନୈକ ଆଲଙ୍କାରିକ ।

ବାଗ୍‌ଭଟସଂହିତା—ବି. ସଂସ୍କୃତ ବୈଦ୍ୟଶାସ୍ତ୍ର ବିଶେଷ, ଅଷ୍ଟାଙ୍ଗହୃଦୟ ସଂହିତା ।

ବାଗ୍ମାୟନ—ପୁଂ.ବି. ବାଗ୍ମୀଙ୍କ ଗୋତ୍ରା-ପତ୍ୟ ।

ବାଗ୍ମିତା(ତ୍ୱ)—ସ୍ତ୍ରୀ.ବି. ବାଗ୍ମିତ୍ୱ, ବାଗ୍ମିର ଭାବ ବା ଧର୍ମ, ଉତ୍ତମରୂପେ କହିବାର ଶକ୍ତି ।

ବାଗ୍ମୀ—ବିଂ. ( ବାକ୍+ମିନ୍ ) ସୁବକ୍ତା, ବାକ୍‌ପଟୁ, ବିଦ୍ୱାନ୍, ବାଗୁଲ, (ପୁଂ.ବି) ବୃହସ୍ପତି, ସୁରଗୁରୁ, ଉତ୍କୃଷ୍ଟ ବକ୍ତା ।

ବାଗ୍ୟ—କ୍ରି.ବିଂ. ବାକ୍‌ଦରିଦ୍ର, ପରିମିତ ଭାଷୀ, କଳା, ନୈବେଦ, ବୈରାଗ୍ୟ ।

ବାଘ—ଗ୍ରା.ବି. ବ୍ୟାଘ୍ର, ଶାର୍ଦ୍ଦୂଳ, ହିଂସ୍ର-ପଶୁବିଶେଷ, କ୍ଷତ୍ରିୟଙ୍କ ବଂଶୋପାଧି-ବିଶେଷ ।

ବାଘଆଙ୍କୁଡ଼ି—ଗ୍ରା.ବି. ଅଙ୍କୋଟବୃକ୍ଷ ।

ବାଘଖୋଲ—ଗ୍ରା.ବି. ମଲା ବାଘର ଚମଡ଼ା

ବାଘଛେଳି ଏକା (ରୁ)ତୋଠରେ ପାଣି ପିଇବା—ଗ୍ରା.(ବାକ୍ୟ) ରାଜ୍ୟରେ ସୁଶା-ସନ ଯୋଗୁଁ ସବଂଶ ଶାନ୍ତି ବିରାଜିତ ହେବା ।

ବାଘ(ଘୁ)ଡି—ଗ୍ରା. ବି. ଅଳଙ୍କାରବିଶେଷ

ବାଘତ୍—ପୁଂ. ବି. ପୁରୋହିତ, ଋତ୍ୱିକ୍. ମେଧାବୀ,ବାହକ, ଅଶ୍ୱ ।

ବାଘନଖ—ଗ୍ରା. ବି. ବାଘର ନଖ, ବାଘ ନଖଯୁକ୍ତ କଣ୍ଠର ଅଳଙ୍କାରବିଶେଷ ।

ବାଘନଖିଆ—ଗ୍ରା. ବିଂ. ବାଘ ନଖପରି ଅଗ ବଙ୍କା ହୋଇଥିବା (କଣ୍ଟା),ବାଘ-ନଖି ଅସ୍ତ୍ରଦ୍ୱାରା ସଜ୍ଜିତ ।

ବାଘନଖୀ—ଗ୍ରା. ବି. ଲୋମଶ ବର୍ଷାୟୁ ଶାକ ଗୁଳ୍ମବିଶେଷ ଓ ତାହାର ଫଳ, ନଖୀନାମକ ଗନ୍ଧଦ୍ରବ୍ୟ, ବ୍ୟାଘ୍ର ନଖା-କୃତି ଅସ୍ତ୍ରବିଶେଷ ।

ବାଘନଲ(ଳି)—ଗ୍ରା. ବି. ଆଖୁ ବା ଶର-ଜାତୀୟ ତୃଣବିଶେଷ, କାଣ୍ଡଶର ।

ବାଘବନ୍ଦୀ-( ବଜାର )—ଗ୍ରା.ବି.ଭୂମିରେ ଗୋଟିଏ ଛକରେ ୨୫ଟି ଘର କାଟି ସେଥିରେ ଦୁଇଜଣ ଖେଳାଳିଙ୍କର ଖେଳିବା ଏକପ୍ରକାର ଖେଳ ।

ବାଘଭେଲକି—ଗ୍ରା. ବି. ମନୁଷ୍ୟଙ୍କୁ ଦେଖିଲେ ଭୟ ଉତ୍ପାଦନ କରିବା ନିମନ୍ତେ ବାଘ ଯେଉଁ ଛଳ ଦେଖାଏ, ସ୍ୱର ଓ ଅଙ୍ଗଭଙ୍ଗି ଆଦି ।

ବାଘମହୁ—ଗ୍ରା.ବି. ଏକପ୍ରକାର ବଡ଼ ମହୁ

ବାଘମାମୁଁ—ଗ୍ରା.ବି. (ଶିଶୁଭାଷା)ଶିଶୁମାନ-ଙ୍କର କଳ୍ପିତ ମାତୁଳ ସମ୍ପର୍କୀୟ ବାଘ

ବାଘମାଉସୀ—ଗ୍ରା.ବିଂ.(ଲ.ଅର୍ଥ)ଅତ୍ୟନ୍ତ ଦୁଷ୍ଟ, ବାଘପରି ହିଂସ୍ର, (ବିଂ) ବିରାଡ଼ି, ନିର୍ଭୀକ ବ୍ୟକ୍ତି ।

ବାଘମୁହାଁ—ଗ୍ରା. ପୁଂ. ବିଂ. ବାଘମୁହଁପରି ବିକଟ ମୁଖବିଶିଷ୍ଟ (ବ୍ୟକ୍ତି),ବି. ବିରାଡ଼ି, ନିର୍ଭୀକ ବ୍ୟକ୍ତି ।

ବାଘମୁହାଁ—ଗ୍ରା.ବି.ଘରର ବାଟ ଆଗରେ ବାହାରିଥିବା ଆଡ଼କାନ୍ଥ ।

ବାଘରଚରା—ଗ୍ରା. (ସମ୍ଭ.) ବି. ପୁରୁଷଙ୍କୁ ଦିଆଯିବା ଗାଳି, ବାଘଖିଆ ।

ବାଘର ଘରେ ମିରଗର ନାଟ--ଗ୍ରା.(ନ୍ୟାୟ ବାକ୍ୟ) ମାଲିକର ଅନୁପସ୍ଥିତିରେ ବା ମୁଖପରେ ଅପରମାନେ ଅଧିକାର ଜମାଇବା ।

ବାଘରି—ଗ୍ରା. ବିଂ. ବାଘସମ୍ବନ୍ଧୀୟ, ବାଘ ପରି ଆକୃତିବିଶିଷ୍ଟ ।

ବାଘରାମାଛ—ଗ୍ରା. ବି. ଏକପ୍ରକାର ବଡ଼ ମହୁମାଛି ।

ବାଘସିଂହ—ଗ୍ରା.ସି ବି.ଦୈହିକବଳଶାଳୀ ବ୍ୟକ୍ତିଙ୍କୁ ରାଜଦତ୍ତ ଉପାଧି ବିଶେଷ ।

ବାଘା—ଗ୍ରା. ବିଂ.ବାଘପରି ବିକଟ ମୁଖ-ବିଶିଷ୍ଟ, ବୃହତ୍, ବଡ଼ ।

ବାଘୁଆ—ଗ୍ରା. ବିଂ, ବାଘରା ଦେଖ ।

ବାଘୁଣୀ—ଗ୍ରା. ସ୍ତ୍ରୀ. ବି. ମାଈବାଘ,ବାଘ-ପରି ଦୁଷ୍ଟା ସ୍ତ୍ରୀ । [ ହେଟା ।

ବାଘେଟା—ଗ୍ରା. ବି. ଏକପ୍ରକାର ଗ୍ରେଟ

ବାଙ୍କ—ପୁଂ. ବି. ସମୁଦ୍ର, (ଗ୍ରା.ବିଂ) ବକ୍ର, ଟେଙ୍କା, (ଗ୍ରା.ବି)ନଦୀ ବା ରାସ୍ତାରମୋଡ଼, ସ୍ତ୍ରୀଲୋକମାନଙ୍କର ଗୋଡ଼ର ଅଳଙ୍କାର ବିଶେଷ । [ ଦୃଷ୍ଟି ।

ବାଙ୍କଚାହାଣି—ଗ୍ରା.ବି.ବକ୍ରଦୃଷ୍ଟି ,ଅପାଙ୍ଗ

ବାଙ୍କଚୁଲିଆ--ଗ୍ରା.ବି.ଶ୍ରୀକୃଷ୍ଣଙ୍କର ବିଶେଷଣ-

ଣାମ୍ବକ ନାମ ବିଶେଷ ।
ବାଙ୍କଡ଼(ଡୋ)ଉଁରିଆ—ଗ୍ରା. ବି. ସ୍ତ୍ରୀଲୋକଙ୍କ ବାହୁରେ ପିନ୍ଧିବା ଡୌଉଁରିଆଯୁକ୍ତ ଏକପ୍ରକାର ବାଜୁବନ୍ଧ ।
ବାଙ୍କଡ଼ା—ଗ୍ରା. ବିଂ. ଈଷତ୍ ବକ୍ର ।
ବାଙ୍କନିଧି—ଗ୍ରା.ବି.ଶ୍ରୀକୃଷ୍ଣଙ୍କର ବିଶେଷଣାତ୍ମକ ନାମ, ଓଡ଼ିଆ କବି ବିଶେଷ ।
ବାଙ୍କମଲ— ଗ୍ରା. ବି. ବଳାଗଣ୍ଠିରେ ପିନ୍ଧାଯିବା ଏକପ୍ରକାର ବକ୍ର ବଳୟ ।
ବାଙ୍କଶାଳ—ଗ୍ରା. ବି. ବନ୍ଦର ନିକଟବର୍ତ୍ତୀ ବାଣିଜ୍ୟ ଗୋଦାମ ।
ବାଙ୍କି—ଗ୍ରା. ବି. କଟକ ଜିଲ୍ଲାର ଖାସ ମାହାଲ ରାଜ୍ୟ ବିଶେଷ,ବଳୟ,ବକ୍ରବଳୟ ।
ବାଙ୍କିଆ—ଗ୍ରା. ବିଂ. ବକ୍ର, ବଙ୍କା, ଏକପ୍ରକାର ଶିବିକା ।
ବାଙ୍କିବା—ଗ୍ରା. କ୍ରି. ବକ୍ରହେବା ।
ବାଙ୍କିମୁହାଁଣ—ଗ୍ରା.ବି.ପୁରୀର ପୂର୍ବଦିଗରେ ଅବସ୍ଥିତ ସମୁଦ୍ର (ଏଠାରେ ସମୁଦ୍ରର ଉପକୂଳ ବଙ୍କାହୋଇ ଦକ୍ଷିଣ ଦିଗକୁ ଚାଲିଯାଇଅଛି) ।
ବାଙ୍କୁଲି—ଗ୍ରା. ବି. ଏକପ୍ରକାର ଚଙ୍କାରହିତାଭରଣ । [ ଖର୍ବକାୟ ।
ବାଙ୍ଗ(ଙ୍ଗୁ)ର(ରା)—ଗ୍ରା. ପୁଂ. ବିଂ.
ବାଙ୍ଗା—ପ୍ରା. (ବସ୍ତର) ବି. ବାଇଗଣ ।
ବାଙ୍ଗାଲ୍—ଗ୍ରା. ବିଂ. ପୂର୍ବବଙ୍ଗୀୟ, (ଗ୍ରା. ବି) ପୂର୍ବବଙ୍ଗ ଅଧିବାସୀ ।
ବାଙ୍ଗିଣ—ପ୍ରା. (ଗଞ୍ଜାମ) ବି. ବାଇଗଣ ।
ବାଙ୍ନିଷ୍ଠ—ବିଂ. ( ୭ତତ୍ ) ଯାହାର କଥାରେ ଠିକ୍ଅଛି, ସତ୍ୟପ୍ରତିଜ୍ଞ,ସତ୍ୟବାଦୀ ।
ବାଙ୍ନିଷ୍ଠା—ସ୍ତ୍ରୀ.ବିଂ.(ବ.ବ୍ରୀ)ସତ୍ୟପ୍ରତିଜ୍ଞା ସତ୍ୟବାଦିନୀ, (ସ୍ତ୍ରୀ. ବି) ବାକ୍ୟସଂଯମ, ଅଳ୍ପଭାଷିତା, ସତ୍ୟବାଦିତା ।
ବାଙ୍ମତୀ—ସ୍ତ୍ରୀ.ବି.ନେପାଳର ନଦୀ ବିଶେଷ
ବାଙ୍ମଧୁ—କ୍ଲୀ. ବି. ବାକ୍ୟ ରୂପ ମଧୁ ।
ବାଙ୍ମନ—କ୍ଲୀ. ବି. ବାକ୍ୟ ଓ ମନ ।
ବାଙ୍ମୟ—ତ୍ରି.ବିଂ.(ବାକ୍+ମୟ)ବାକ୍ୟସ୍ୱରୂପ, ବାଗ୍ମୀ, ବାକ୍ୟରେ ପ୍ରକାଶିତ, ବାକ୍ୟାତ୍ମକ, (ବି) ବକ୍ତୃତା, ସାହିତ୍ୟ, ବାକ୍ୟଜନିତ ପାପ, ଅଳଙ୍କାର ଶାସ୍ତ୍ର, କାବ୍ୟଶାସ୍ତ୍ର । [ ତପସ୍ୟା ।
ବାଙ୍ମୟତପଃ—ବି. ବାକ୍ୟ ଦ୍ୱାରା ସାଧିତ
ବାଙ୍ମୟୀ—ସ୍ତ୍ରୀ ବି. ସରସ୍ୱତୀ ।
ବାଙ୍ମାଧୁର୍ଯ୍ୟ—କ୍ଲୀ. ବି. ବାକ୍ୟର ମଧୁରତା
ବାଙ୍ମୁଖ—କ୍ଲୀ. ବି. (ବାକ୍+ମୁଖ)ଉପନ୍ୟାସ, ବାକ୍ୟାରମ୍ଭ,ମୁଖବନ୍ଧ,ଅବତରଣିକା, ଗଦ୍ୟକାବ୍ୟ ।
ବାଙ୍ମୂଳ—ଗ୍ରା.ବି.କୋର୍ଟରେ ସାକ୍ଷମାନଙ୍କ ଜବାନବନ୍ଦି ।
ବାଙ୍ଯମ—ପୁଂ. ବି. ( ବ.ବ୍ରୀ ) ମୁନି, ମୌନବ୍ରତୀ ବ୍ୟକ୍ତି ।
ବାଚବା—ପ୍ରା. (ଭତ୍ରିଭାଷା) କ୍ରି. ବଞ୍ଚିବା, ବଳିପଡ଼ିବା । [ ମାଛ ।
ବାଚା—ପୁଂ. ବି. ମତ୍ସ୍ୟ ବିଶେଷ, ବଚୁଆ
ବାଚଂଯମ—ପୁଂ. ବି. ମୁନି. ମୌନବ୍ରତୀ ମୁନି,(ବାଚଂ+ଯମ୍ +କ.ଅ)ବିଂ.ମିତଭାଷୀ, ମୌନୀ, ମୌନବ୍ରତୀ ।
ବାଚଃପତି—ବି. ବାଚସ୍ପତି ଦେଖ ।
ବାଚକ—ପୁଂ. ବି. ( ବଚ୍+କ.ଅକ ) ଶବ୍ଦ, ନାମ, ସଂଜ୍ଞା, (ବିଂ)କଥକ, ରବକାରକ, ପୁରାଣପାଠକ, ଦ୍ୟୋତକ, ବୋଧକ, ଅଭିଧା ଶକ୍ତି ଦ୍ୱାରା ଅର୍ଥ ପ୍ରକାଶକ (ଶବ୍ଦ) ।
ବାଚକଡ଼ି—ଗ୍ରା. ବି. ଯୁଦ୍ଧାସ୍ତ୍ର ବିଶେଷ ।
ବାଚକପଦ—କ୍ଲୀ. ବି.ଭାବବ୍ୟଞ୍ଜକ ବାକ୍ୟ
ବାଚନ—କ୍ଲୀ. ବି. (ବାଚ୍+ଣିଚ୍+ଅନ) କହିବା, ଆବୃତ୍ତି କରିବା, ଅନ୍ୟଦ୍ୱାରା ବୋଲାଇବା, ପଠନ, ପ୍ରତିପାଦନ, ଜଣାଇବା, ଉଚ୍ଚାରଣ ।
ବାଚନକ—କ୍ଲୀ. ବି. ( ବାଚନ+କ ) ପ୍ରହେଳିକା । [ ସଂବାଦ ।
ବାଚନି—ଗ୍ରା.ବି.ଉକ୍ତି ପ୍ରତ୍ୟୁକ୍ତି,ମୌଖିକ
ବାଚନିକ—ତ୍ରି. ବିଂ. (ବଚନ+ଇକ) ବାକ୍ୟଯୁକ୍ତ, ମୌଖିକ ।
ବାଚୟିତା—ପୁଂ. ବିଂ. (ବଚ୍+ଣିଚ୍+ତୃ) ବାଚକ, ଯେ କୁହାଏ ।
ବାଚସି—ପ୍ରା. (ଭତ୍ରିଭାଷା) ବି. ଆଧିକ୍ୟ
ବାଚସାଂପତି—ପୁଂ. ବି.(୬ତତ୍)ବୃହସ୍ପତି
ବାଚସ୍ପତ—ପୁଂ.ବି.ବାଚସ୍ପତିଙ୍କ ଗୋତ୍ରାପତ୍ୟ ।
ବାଚସ୍ପତି—ବିଂ. (ବାଚଃ + ପତି) ବାକ୍ପଟୁ, (ବି) କାବ୍ୟଶାସ୍ତ୍ର ବିଶାରଦ ପଣ୍ଡିତ, ବୃହସ୍ପତି, ବିଦ୍ୱାନ୍ ବ୍ୟକ୍ତି,ପୁଷ୍ୟାନକ୍ଷତ୍ର, ପଣ୍ଡିତମାନଙ୍କର ଉପାଧିବିଶେଷ ।
ବାଚସ୍ପତ୍ୟ—ତ୍ରି. ବିଂ. ( ବାଚସ୍ପତି+ଯ ) ବୃହସ୍ପତିମତ ସମ୍ବନ୍ଧୀୟ, (ବି) ବାଗ୍ମିତା, ଉତ୍ତମ ବକ୍ତୃତା ।
ବାଚା—ସ୍ତ୍ରୀ. ବି. ( ବାଚ+ଆ ) ବାକ୍ୟ, ବାକ, କଥା, ପ୍ରତିଶ୍ରୁତି, ବଚ୍ଛମାଛ ।
ବାଚାଟ(ଳ)—ପୁଂ. ବିଂ. (ବାଚ+ଆଟ ଳ) ବାଚାଳ, ବହୁଭାଷୀ, ପ୍ରଗଲ୍ଭ ।
ବାଚାପତ୍ର—ବି. (କ.ଧା) ପ୍ରତିଜ୍ଞାପତ୍ର ।
ବାଚାରମ୍ଭନ—କ୍ଲୀ. ବି. କଥା ଆରମ୍ଭ, ବାଗାଲମ୍ବନ ।
ବାଚାଳତା—ବି. (ବାଚାଳ+ତା)ଧୃଷ୍ଟତା
ବାଚାବନ୍ଧ—ବି. (୩ତତ୍) ପ୍ରତିଜ୍ଞାବନ୍ଧ ।
ବାଚାବିରୁଦ୍ଧ—ତ୍ରି. ବିଂ.ବାଙ୍ନିୟମନଶୀଳ
ବାଚିକ—ତ୍ରି.ବିଂ. (ବାଚ+ଇକ)ସଙ୍କେତରେ କଥିତ, ବାଚନିକ, ମୌଖିକ, ବାକ୍ୟ ଦ୍ୱାରା କୃତ,(ବି)ମୌଖିକସମ୍ବାଦ, ସଙ୍କେତୋକ୍ତି, ବାକ୍ୟାରମ୍ଭ ।
ବାଚିକପତ୍ର—କ୍ଲୀ. ବି. ( ବାଚିକ+ପତ୍ର) ଲିପି, ସମ୍ବାଦପତ୍ର, ସନ୍ଦେଶ, ବାକ୍ୟର ଖବର, ଚିଠିପତ୍ର ।
ବାଚିକହାରକ—ପୁଂ. ବି. (ବାଚିକ+ହୃ +ଅକ) ଲେଖକ, ଦୂତ, ଯେ ସମ୍ବାଦ ନେଇଯାଏ, ସନ୍ଦେଶବହ ।
ବାଚୀନ—ପୁଂ. ବିଂ. ବାଚକ ଦେଖ ।
ବାଚୁ—ଗ୍ରା. ବି. ଦାଢ଼ି, ଶ୍ମଶ୍ରୁ ।
ବାଚୋଯୁକ୍ତି—ପୁଂ. ବିଂ. ବାଗ୍ମୀ ।
ବାଚୋଯୁକ୍ତିପଟୁ—ପୁଂ. ବିଂ. ବାଗ୍ମୀ ।
ବାଚ୍ୟ—ତ୍ରି. ବିଂ. ( ବାଚ୍+ର୍ଣ.ଯ ) କୁତ୍ସିତ, ହୀନ, ବଚନାର୍ହ, ବକ୍ତବ୍ୟ,କଥନୀୟ, ତିରସ୍କରଣୀୟ, ଘୃଣିତ, ଜାତିଭ୍ରଷ୍ଟ, ଦୁଷ୍ଟ, ପ୍ରତିପାଦ୍ୟ, ନିନ୍ଦ୍ୟ, (ବି)

ନିନ୍ଦା, କଥା, ପ୍ରତିପାଦନ, ଅଭିଧେୟ ବସ୍ତୁ ବା ଅର୍ଥ ।

ବାଚ୍ୟତା—ସ୍ତ୍ରୀ.ବି.(ବାଚ୍ୟ+ତା)ବାଚ୍ୟତ୍ୱ ନିନ୍ଦା, ବଚନୀୟତା, କଥନୀୟତା ।

ବାଚ୍ୟମାନ—ବି°, ( ବଚ୍+ଣିଚ୍+ମି. ଆନ)ବକ୍ଷ୍ୟମାଣ, କଥ୍ୟମାନ, ପ୍ରକାଶ୍ୟମାନ, ନିନ୍ଦନୀୟ ।

ବାଚ୍ୟଲିଙ୍ଗ—ତ୍ରି. ବି°. ବିଶେଷ୍ୟ ପଦର ଅନୁଗତ, ବିଶେଷଣ ପଦ ।

ବାଚ୍ୟବର୍ଜିତ—କ୍ଲୀ. ବି. ଯେଉଁଠାରେ କୌଣସି କଥା କହିବା ଉଚିତ କିନ୍ତୁ କୁହା ହୋଇ ନାହିଁ । [ ପତ୍ୟ ।

ବାଚ୍ୟାୟନ—ପୁଂ.ବି.ବାଚ୍ୟଙ୍କ ଗୋତ୍ରା-

ବାଚ୍ୟାର୍ଥ—ବି. ( କ.ଧା ) ଶବ୍ଦର ନିୟତ ଅର୍ଥ ଦ୍ୱାରା ପ୍ରକଟିତ ଅଭିପ୍ରାୟ,ସଙ୍କେତ ରୂପେ ସ୍ୱୀକୃତ ଶବ୍ଦର ମୌଳିକ ଅର୍ଥ

ବାଚ୍ୟାବାଚ୍ୟ—ବି°.(ବାଚ୍ୟ+ଅବାଚ୍ୟ) କଥ୍ୟ ଓ ଅକଥ୍ୟ,(ବି)କଥ୍ୟ ଓ ଅକଥ୍ୟ ବିଷୟ । [ ବିଶେଷ ।

ବାଚ୍ୟୋତ୍ପ୍ରେକ୍ଷା—ବି. ଅର୍ଥାଲଂକାର-

ବାଛ—ଗ୍ରା,ବି. (ସଂ-ବାଚ୍ୟ) ନିନ୍ଦା, ଅପବାଦ, ସମାଲୋଚନା, (ସଂ-ନିର୍ବାଚନ) ବାଛିବା,ନିର୍ବାଚନ କରିବା,ଭଲ ମନ୍ଦର ବିଗୁରି ।

ବାଛବିଗୁର—ଗ୍ରା. ବି. ବିଗୁର ପୂର୍ବକ ନିର୍ବାଚନ, ନ୍ୟାୟାନ୍ୟାୟ ବିବେଚନା, ସମାଲୋଚନା ।

ବାଛବୁଛକରିବା—ଗ୍ରା. କ୍ରି. ବଗ୍ଛିବଛି କରିବା, ଉତ୍ତମ ରୂପେ ବାଛିବା ।

ବାଛରି—ଗ୍ରା. ବି. ବାଳରୋଗବିଶେଷ, ଘୋଟକ ଶିଶୁ, (ଗ୍ରା. ବି°) ଅଳ୍ପବୟସ୍କ (ପଶୁ) । [ ବା ବାମୁଣ୍ଡି ।

ବାଚ୍ଛା—ପ୍ରା.(ବସ୍ତର)ବି. ଅଣ୍ଡିରି ବାଛୁରି

ବାଛିବା—ଗ୍ରା.କ୍ରି. (ସଂ-ନିର୍ବାଚନ)ନିର୍ବାଚନ କରିବା, ଭଲ ଓ ମନ୍ଦକୁ ପୃଥକ୍ କରିବା, ଧାନ କିଆରୁ ଘାସଆଦି ଉପାଡ଼ିବା, ଚାଉଳ ବା ଶସ୍ୟଆଦିରୁ ଅସାର ଅଂଶଯାକ କାଢ଼ି ପକାଇବା, ମାଛ ଓ ଶାଗଆଦିରୁ ପାକର ଅଯୋଗ୍ୟ ବା ଅଖାଦ୍ୟ ଅଂଶମାନ ବାହାର କରିଦେବା, ( ସଂ-ବାଚ୍ୟ ) ଦୋଷଦେବା, ନିନ୍ଦାକରିବା, ସମାଲୋଚନା କରିବା, (ଦୁର୍ଗୁଣାଦି) ଖୋଜି ବାହାର କରିବା, ତରି ଲୁଗାର ଛିଦ୍ରରେ ଛୁଞ୍ଚି ସାହାଯ୍ୟରେ ସୂତା ବୁଣିବା ।

ବାଛୀ—ପ୍ରା. (ସମ୍ବ)ବି. ଛଡ଼ା ଗାଈ,ମାଈ ବାଛୁରି ।

ବାଛୁରି—ଗ୍ରା, ବି. ଗୋବତ୍ସ ।

ବାଛୁରିବ୍ରତ—ପ୍ରା.(ଆଳି)ବି. ବତ୍ସତରର ମୁଷ୍କଚ୍ଛେଦନ ।

ବାଜ୍—ଯା (ପ୍ରତ୍ୟୟ) ପଟୁ, ଅଭ୍ୟାସକ୍ତ ।

ବାଜ୍ଖଟ୍—ପ୍ରା. (ସମ୍ବ)ବି. ମୁର୍ଦ୍ଦାର ବୁହା ଖଟିଆ, ଚକାକେଇ, ସପ୍ତର୍ଷିମଣ୍ଡଳ (ତାରପୁଞ୍ଜ) ।

ବାଜ୍ବା—ପ୍ରା. (ସମ୍ବ)କ୍ରି. ବାଜିବା ।

ବାଜ—କ୍ଲୀ.ବି. ଶବ୍ଦ, ଅମ୍ଳ, ଘୃତ, ଯଜ୍ଞ, ଅନ୍ନ, ବାରି, ସଂଗ୍ରାମ, ବଳ,(ପୁ )ଶରପକ୍ଷ, ନିସ୍ୱନ, ପକ୍ଷ, ବେଗ, ମୁନି,(ଯା. ବି) ପ୍ରସନ୍ନବର୍ଗର ଦିବାଚର ଶିକାରୀ ପକ୍ଷିବିଶେଷ, ଛଞ୍ଚାଣ ।

ବାଜକର୍ମ—ତ୍ରି.ବି°.ଶକ୍ତିଯୁକ୍ତ କର୍ମକାରୀ ।

ବାଜକୃତ୍ୟ—କ୍ଲୀ.ବି. ଯେଉଁ କାର୍ଯ୍ୟରେ ବଳ ବା ଶକ୍ତି ଆବଶ୍ୟକ ହୁଏ ।

ବାଜଗନ୍ଧ୍ୟ—ତ୍ରି. ବି°.ଶକ୍ତିହୀନ । [ ଗର୍ଭ ।

ବାଜଜଠର—ତ୍ରି.ବି°.ଧୃଶର୍ଜଠର, ଧୃତ-

ବାଜଜିତ୍—ତ୍ରି. ବି°. ଶକ୍ତି ଜୟକାରୀ ।

ବାଜଜିତି—ସ୍ତ୍ରୀ. ବି. ଶକ୍ତି, କ୍ଷମତା ।

ବାଜଜିତ୍ୟା—ସ୍ତ୍ରୀ.ବି. ଅନ୍ନଜୟୀ, ଶକ୍ତିଶାଳିନୀ ।

ବାଜଣା—ଗ୍ରା. ବି. (ସଂ-ବାଦନ) ବାଦ୍ୟଧ୍ୱନି, ବାଦନ, ବାଦ୍ୟଯନ୍ତ୍ର, ବାଜା ।

ବାଜଣାଦାର୍—ଗ୍ରା. ବି. ବାଜାଦାର୍, ବାଦ୍ୟକାର ।

ବାଜ(ଜି,ଜେ)ଣୀ—ଗ୍ରା. ବି. (ସଂ-ବାଦ୍ୟ) ନୂପୁର, ଘୁଙ୍ଗୁର, ଘୁଙ୍ଗୁରେଲଗା ବଳା ବଜାଇବାର ବେଦ,(ଗ୍ରା.ବି°)ବେଦକାରୀ ।

ବାଜଦ—ତ୍ରି. ବି°. ଅନ୍ନଦାତା ।

ବାଜଦାବନ—ତ୍ରି. ବି°. ଅନ୍ନଦାତା ।

ବାଜଦାବର୍ଯ୍ୟସ—କ୍ଲୀ. ବି. ସାମଭେଦ ।

ବାଜଦ୍ରବିଣ—ତ୍ରି. ବି°.ଅନ୍ନ ଓ ଧନଯୁକ୍ତ ।

ବାଜପତି—ପୁଂ. ବି. ଅନ୍ନପତି, ଅଗ୍ନି ।

ବାଜପତ୍ନୀ—ସ୍ତ୍ରୀ.ବି.ଅନ୍ନରକ୍ଷୟିତ୍ରୀ,ଧେନୁ ।

ବାଜପସ୍ତ୍ୟ—ତ୍ରି. ବି°. ଅନ୍ନପୂର୍ଣ୍ଣ ।

ବାଜପାରି—ଗ୍ରା.ବି.(ଲ.ଅର୍ଥ) ଖାଦକ ଓ ଖାଦ୍ୟ ବସ୍ତୁ, ପରସ୍ପରର ଚିର ଶତ୍ରୁ ।

ବାଜପେୟ—ବି. (ବ.ବ୍ରୀ) ଯଜ୍ଞବିଶେଷ ।

ବାଜପେୟକ—ତ୍ରି.ବି°. ବାଜପେୟ ସମ୍ବନ୍ଧୀୟ ।

ବାଜପେୟିକ—ତ୍ରି. ବି°. ବାଜପେୟ ଯଜ୍ଞାର୍ଥ ପୁରୀଦି, ଆବଶ୍ୟକୀୟ ଦ୍ରବ୍ୟ ।

ବାଜପେୟୀ—ତ୍ରି. ବି°. (ବାଜପେୟ+ଇନ୍) ବାଜପେୟ ଯଜ୍ଞକର୍ତ୍ତା, ଯାଜ୍ଞିକ ବ୍ରାହ୍ମଣମାନଙ୍କର ଉପାଧିବିଶେଷ ।

ବାଜପେଶସ୍—ତ୍ରି. ବି°. ଅନ୍ନ କର୍ତ୍ତୃକ ଅଶ୍ଳିଷ୍ଟ ଅନ୍ନଯୁକ୍ତ ।

ବାଜପୋଇ—ଗ୍ରା.ବି. ବାଜଜାତୀୟ ପକ୍ଷିବିଶେଷ । [ ବିଶେଷ ।

ବାଜପ୍ୟ—ପୁଂ. ବି. ପାଣିନ୍ୟୁକ୍ତ ଋଷି-

ବାଜପ୍ୟାୟନ—ପୁଂ. ବି. ବାଜପ୍ୟଙ୍କ ଗୋତ୍ରାପତ୍ୟ, ବୈୟାକରଣବିଶେଷ ।

ବାଜପ୍ରମହସ୍—ତ୍ରି. ବି°. ଧନଦ୍ୱାରା ତେଜସ୍ୱୀ, ଅତିଶୟ ଧନବିଶିଷ୍ଟ, (ବି) ଇନ୍ଦ୍ର । [ ସମ୍ବନ୍ଧୀୟ ।

ବାଜପ୍ରସବୀୟ—ତ୍ରି.ବି°. ଅନ୍ନୋତ୍ପାଦନ-

ବାଜପ୍ରସବ୍ୟ—ତ୍ରି.ବି°.ଅନ୍ନୋତ୍ପାଦନୀୟ ।

ବାଜପ୍ରସୂତ—ତ୍ରି.ବି°. ଯଜ୍ଞପାଇଁ ପ୍ରେରିତାନ୍ନ ।

ବାଜବନ୍ଧୁ—ପୁଂ.ବି. ବଳପତି ।

ବାଜଭର୍ମନ୍—ବି°. ଯାହାଠାରୁ ଅନ୍ନ ବା ବଳର ଭରଣ ହୁଏ ।

ବାଜଭର୍ମୀୟ—କ୍ଲୀ.ବି. ସାମଭେଦ ।

ବାଜଭୃତ୍—କ୍ଲୀ.ବି. ସାମଭେଦ ।

ବାଜଭୋଜନ—ପୁଂ.ବି.ବାଜପେୟ ଯାଗ ।

ବାଜମ୍ଭର—ତ୍ରି. ବି°. ହବିଲକ୍ଷଣାନ୍ନର ଭର୍ତ୍ତା ।

ବାଜରତ୍ନ—ତ୍ରି.ବି°. ଉତ୍ତମ ଅନ୍ନଯୁକ୍ତ,ଋଭୁ ।

ବାଜରତ୍ନାୟନ—ପୁଂ. ବି. ସୋମଶୁଷ୍ମଙ୍କ ଅପତ୍ୟ ।
ବାଜରା—ଗ୍ରା. ବି. ମକ୍କାଜାତୀୟ କୃଷିଜାତ ଶସ୍ୟବିଶେଷ । [ ବିଶେଷ ।
ବାଜବନ୍ତ—ପୁଂ. ବି. ପାଣିନ୍ୟୁକ୍ତ ବ୍ୟକ୍ତି-
ବାଜବନ୍ତାୟନ—ପୁଂ. ବି. ବାଜବନ୍ତଙ୍କ ଗୋତ୍ରାପତ୍ୟ ।
ବାଜବତ୍—ତ୍ରି.ବିଂ. (ବାଜ+ବତ୍)ବଳକାରୀ, ଅନ୍ନଯୁକ୍ତ ।
ବାଜଶ୍ରବା—ପୁଂ.ବି. ଋଷିବିଶେଷ ।
ବାଜଶ୍ରବସ୍—ତ୍ରି.ବିଂ. ମନୁଷ୍ୟ ଲୋକରୁ ପ୍ରେରିତ ଅନ୍ନ, ଅଗ୍ନି ।
ବାଜଶ୍ରବସ—ପୁଂ.ବି. ବାଜଶ୍ରବ ଋଷିଙ୍କ ଗୋତ୍ରାପତ୍ୟ ।
ବାଜଶ୍ରୁତ—ତ୍ରି.ବିଂ.ଅନ୍ନ ସହିତ ବିଖ୍ୟାତ ମନୁଷ୍ୟ, ଧନଦ୍ୱାରା ବିଖ୍ୟାତ ମନୁଷ୍ୟ ।
ବାଜସ—କ୍ଲୀ.ବି. ସାମଭେଦ ।
ବାଜସନ—ପୁଂ.ବି.ଶିବ, ବିଷ୍ଣୁ, ବାଜସନଙ୍କ ଶାଖାଭୁକ୍ତ ।
ବାଜସନି—ପୁଂ.ବି. ଅନ୍ନଦାତା, ସୂର୍ଯ୍ୟ ।
ବାଜସନେୟ—ପୁଂ.ବି. ଜନମେଜୟକୃତ ବେଦାର୍ଥ ଗ୍ରନ୍ଥ, ଯାଜ୍ଞବଲ୍କ୍ୟ ।
ବାଜସନେୟକ—ତ୍ରି. ବିଂ. ବାଜସନେୟଙ୍କ ଶାଖାଧ୍ୟାୟୀ । [ ଯଜୁର୍ବେଦ ।
ବାଜସନେୟସଂହିତା—ସ୍ତ୍ରୀ. ବି. ଶୁକ୍ଳ
ବାଜସନେୟିନ୍—ପୁଂ. ବି. ଯଜୁର୍ବେଦୀ ।
ବାଜସ୍—ବି. ଅନ୍ନ । [ ଅନ୍ନଲାଭ ।
ବାଜସାତି—ସ୍ତ୍ରୀ. ବି. ସଂଗ୍ରାମ, ଯୁଦ୍ଧସ୍ଥଳ,
ବାଜସାମନ୍—କ୍ଲୀ. ବି. ସାମଭେଦ ।
ବାଜସୃତ୍—ତ୍ରି.ବିଂ. (ବାଜ+ସୃ+କ୍ୱିପ୍) ସଂଗ୍ରାମସରଣ,ଯୁଦ୍ଧକୁ ଯିବା ।
ବାଜସ୍ରଜାକ୍ଷ—ପୁଂ. ବି. ବେଣରାଜ ।
ବାଜସ୍ରବ—ପୁଂ ବି. ମନୁଷ୍ୟ ଲୋକରୁ ପ୍ରେରିତ ଅନ୍ନ ।
ବାଜା—ଗ୍ରା. ବି. (ସଂ-ବାଦ୍ୟ) ବାଦ୍ୟ ।
ବାଜା(ବା)ଆମ୍ବ(ମ୍ବା)—ଯା.ବି ଲଙ୍କାଆମ୍ବ ।
ବାଜାଦାର୍—ଗ୍ରା. ବି. ବାଦ୍ୟକର ।
ବାଜି—ଯା. ବି. କୁହୁକ, ଇନ୍ଦ୍ରଜାଲ, କ୍ରୀଡ଼ା, କୌତୁକ, ଖେଳର ଥର, ଖେଳରେ ଲଗାଯିବା ପଣ,ହୁଡ଼ୁ,ବାଣପୋଡ଼ା, ପାଳି, (ପ୍ରା. ବାଲେଶ୍ୱର. ବି) ମାଙ୍କଡ଼ନାଚ, ପଟନାଚ, ଡଙ୍ଗା,ଖେଳର ଦାନ,ତାସ୍‌ଖେଳରେ ତାସ୍ ବଣ୍ଟାହେବା ପରେ ହାତକୁ ଆସିଥିବା ତାସ,ପ୍ରତ୍ୟେକ ଖେଳାଳି ଖଣ୍ଡେ ଖଣ୍ଡେ ତାସ ଖେଳିବା ପରେ ଯେଉଁ ତାସ୍‌ମାନଙ୍କୁ ଜିଣିବା ବ୍ୟକ୍ତି ଉପରେ ନେଇ ଆପଣା ପାଖେ ରଖିଦିଏ, ଥର, କିସ୍ତି ।
ବାଜିଆଣ୍ଟିକା—ପ୍ରା. (ବାଲେ) ବି.ଅଶୌଚ ଆଦିରେ ଘରୁ ବାହାରକୁ ଫିଙ୍ଗି ଦିଆଯାଇଥିବା ହାଣ୍ଡି ।
ବାଜିଆପ(ଫ)ତ(ଢ)—ଯା. ବି ଓ ବିଂ. ବାଜ୍ୟାପ୍ତ ଦେଖ ।
ବାଜି(କି)ଗର—ପୁଂ. ବି. ଯେ କୁହୁକ ବିଦ୍ୟା ଜାଣେ, ଐନ୍ଦ୍ରଜାଲିକ ।
ବାଜି(କି)ଗରୀ—ଯା. ବି. ବାଜିକରର ପେଶା ବା କାର୍ଯ୍ୟ ।
ବାଜିକେଶ—ବି. ଜାତିବିଶେଷ ।
ବାଜିଗନ୍ଧା—ସ୍ତ୍ରୀ. ବି. ଅଶ୍ୱଗନ୍ଧା ।
ବାଜି—ଗ୍ରା.ବି.ପୁଂ.ବି. ରାଜପୁତବିଶେଷ
ବାଜିତ—ତ୍ରି. ବିଂ. ଶବ୍ଦିତ ।
ବାଜିଦନ୍ତ—ପୁଂ.ବି.ବାସକ, ବାଜିଦନ୍ତକ
ବାଜିଦୈତ୍ୟ—ପୁଂ. ବି. ଅସୁରବିଶେଷ, କେଶୀପୁତ୍ର ।
ବାଜିଦାର୍—ପ୍ରା. (ବାଲେ)ବି. ଯେ ବାଜି ବା କୁହୁକ ଦେଖାଏ ।
ବାଜିନ୍ଦ୍ର(ନ୍ଦ୍ରା)—ଗ୍ରା. ବିଂ. ଉତ୍କୃଷ୍ଟ,ଶୀରତାପୂର୍ଣ୍ଣ, ବାହାଦୁର, ଖର ଦୁଷ୍ଟ ।
ବାଜିନ—କ୍ଲୀ. ବି. ଛେନାପାଣି, ଦ୍ରବଃ, (ପୁଂ. ବି.) ଅର୍ଥ ।
ବାଜିନୀ—ସ୍ତ୍ରୀ. ବି. (ବାଜିନ୍+ଈ)ଅଶ୍ୱଗନ୍ଧା,ଘୋଟକୀ, (ସ୍ତ୍ରୀ.ବିଂ.)ବେଗବତୀ ।
ବାଜିନୀବତ୍—ତ୍ରି. ବିଂ. ଅନ୍ନ ବା ବଳବିଶିଷ୍ଟ ।
ବାଜିନୀବସୁ—ତ୍ରି. ବିଂ. ବାଜିନୀବତ୍, ଅନ୍ନ ବା ବଳବିଶିଷ୍ଟ, ବଳବର୍ଦ୍ଧନ ।
ବାଜିନେୟ—ପୁଂ.ବି. ବାଜିନୀପୁତ୍ର,ଭରଦ୍ୱାଜ ।
ବାଜିପୃଷ୍ଠ—ପୁଂ. ବି. ଅମ୍ଲାନବୃକ୍ଷ, ଅଶ୍ୱପୃଷ୍ଠ ।
ବାଜିଭ—କ୍ଲୀ.ବି. ଅଶ୍ୱିନୀ ନକ୍ଷତ୍ର ।
ବାଜିଭକ୍ଷ—ପୁଂ.ବି. ଚଣକ, ଚଣା ।
ବାଜିଭୋଜନ—ପୁଂ.ବି. ମୁଦ୍ଗ, ମୁଗ ।
ବାଜିମନ୍ତ୍ର—ପୁଂ.ବି. ପଟୋଳ ।
ବାଜିମାତ୍—ଯା.ବି. ଖେଳରେ ଜୟଲାଭ ।
ବାଜିମାରିବା—ଗ୍ରା.କ୍ରି.କୌଣସି ବିଷୟରେ ପଣ ରଖିବା, କୃତକାର୍ଯ୍ୟ ହେବା ।
ବାଜିମେଧ—ପୁଂ.ବି. ଅଶ୍ୱମେଧ ଯଜ୍ଞ ।
ବାଜିମେଷ—ପୁଂ.ବି. ଜାତିବିଶେଷ ।
ବାଜିରଖିବା—ଗ୍ରା. କ୍ରି. କୌଣସି ବିଷୟରେ ପଣ ରଖିବା ।
ବାଜିରାଜ—ପୁଂ. ବି. ବିଷ୍ଣୁ, ଅଶ୍ୱବର, ଉଚ୍ଚୈଃଶ୍ରବା ଅଶ୍ୱ ।
ବାଜିର—ପ୍ରା.(ଆଳି ଓ କଟକ)ବାଦୁଡ଼ି ।
ବାଜିବା—ଗ୍ରା.କ୍ରି. ବାଦିତହେବା,ଧ୍ୱନିତହେବା, ଶବ୍ଦାୟମାନ ହେବା, ଆଘାତ କରିବା, (ଶର) ପ୍ରବେଶ କରିବା,ଉଚ୍ଚସ୍ୱରରେ ପ୍ରକଟିତ ହେବା, ଘଡ଼ିରେ ସମୟ ଜ୍ଞାପକ ଘଣ୍ଟାର ସଂଖ୍ୟା ଜଣାଯିବା, ( ପ୍ରହାର ) ବସିବା, ଜୁଟିବା, (ବାଦ୍ୟଯନ୍ତ୍ର) ଗୁଳିତହେବା, ହେବାକୁ ପଡ଼ିବା, ସ୍ପର୍ଶକରିବା, ଲାଗିବା ।
ବାଜିବାହନ—କ୍ଲୀ.ବି. ଛନ୍ଦୋବିଶେଷ ।
ବାଜିବିଷ୍ଠା—ସ୍ତ୍ରୀ. ବି. ଅଶ୍ୱତ୍ଥ, ଘୋଡ଼ାର ବିଷ୍ଠା ।
ବାଜିଶତ୍ରୁ—ପୁଂ.ବି. (୬ତତ୍) ଅଶ୍ୱମାର ବୃକ୍ଷ, କଣଅର ଗଛ ।
ବାଜିଶାଳା—ସ୍ତ୍ରୀ.ବି. ଅଶ୍ୱଶାଳା ।
ବାଜିଶିରସ—ପୁଂ.ବି. ଦାନବବିଶେଷ ।
ବାଜିସନେୟକ—ବିଂ. ବାଜସନେୟକ
ବାଜୀ—ପୁଂ.ବି.(ବାଜ୍+କ.ଇନ୍)ଘୋଟକ, ପକ୍ଷୀ,ଗରୁଡ଼,ଶର, ବାଣ, ବାସକ (ଗଛ), ଛେନାପାଣି, ଦ୍ରବଃ, ଘୃତ,(ବିଂ)ଚଳନବିଶିଷ୍ଟ, ପକ୍ଷବିଶିଷ୍ଟ, ଅନ୍ନଯୁକ୍ତ ।
ବାଜୀକର—ତ୍ରି. ବିଂ. ବାଜୀକରଣରସାୟନ ପ୍ରସ୍ତୁତକାରୀ; ଭୌତିକ କିମ୍ବା ବା ବ୍ୟାୟାମାଦି କୌଶଳ ପ୍ରଦର୍ଶନକାରୀ ।

ବାଜୀକରଣ—କ୍ଳୀ.ବି, ବୀର୍ଯ୍ୟ ବୃଦ୍ଧିକର, ଆୟୁର୍ବେଦୋକ୍ତ ରତିଶକ୍ତି ବର୍ଦ୍ଧକ ଔଷଧ ଓ ପ୍ରକ୍ରିୟା, (ଗ୍ରା,ବି)ବାଜିଗର, ବାଜିଗରର କାର୍ଯ୍ୟ । [ କରଣ ।

ବାଜୀକାର୍ଯ୍ୟ—କ୍ଳୀ,ବି. ବାଜୀକ୍ରିୟା,ବାଜୀ

ବାଜୀଦଇବତ—ଗ୍ରା.(ପଦ୍ୟ) ବି. ଅଶ୍ୱିନୀ-କୁମାରଦ୍ୱୟ । [ ବୃଦ୍ଧି ବିଧି ।

ବାଜୀବିଧାନ—କ୍ଳୀ. ବି, ସୁରତଶକ୍ତିର

ବାଜୁ—ଗ୍ରା.ବି. ଅତିରିକ୍ତ ପରିଶ୍ରମ ବା କଥାବାର୍ତ୍ତା ବା ରୋଗଜନିତ କ୍ଳାନ୍ତି-ଯୋଗୁଁ ମୁହଁରୁ ବାହାରିବା ଫେନଯୁକ୍ତ ଲାଳ, ହସ୍ତାଲଙ୍କାରବିଶେଷ, ( ଯା.ବି ) ପାର୍ଶ୍ୱଦେଶ, ଚଉକାଠର ଦୁଇପାଖର ଦଣ୍ଡ, (ପ୍ରା. ହିନ୍ଦି) ଖଟର ଦଣ୍ଡା ।

ବାଜୁବନ୍ଦ(ନ୍ଧ)—ଯା.ବି.ବାହୁର ଅଲଙ୍କାର ବିଶେଷ, ଭୁଜବଳୟ ।

ବାଜେ—ଯା.ବିଂ. ଖୁଚୁରା,ଇତର, ଅନା-ବଶ୍ୟକ, ଅନିୟମିତ, ବାହ୍ୟ, ବିବିଧ, ଗୌଣ, ରଦ୍ଦି, ନିକୃଷ୍ଟ ।

ବାଜେକଥା—ଗ୍ରା. ବି. ଅନାବଶ୍ୟକ ବିଷୟ,ବୃଥାଗଳ୍ପ ।

ବାଜେକାଗଜ—ଯା. ବି. ଦେଦାରକାଗଜ ବା ରଦ୍ଦି କାଗଜ, ବିବିଧ ବିଷୟକ କାଗଜ ।

ବାଜେକାମ—ଗ୍ରା. ବି. ନିର୍ଦ୍ଦିଷ୍ଟ କାର୍ଯ୍ୟ ଛଡ଼ା ଅଧିକା କାର୍ଯ୍ୟ ।

ବାଜେଖରଚ—ଯା, ବି. ଅନାବଶ୍ୟକ ବା ସାମାନ୍ୟ ସାମାନ୍ୟ ବ୍ୟୟ,ଖୁଚୁରା ଖରଚ

ବାଜେଜମି—ଯା.ବି. ନିକୃଷ୍ଟ ଭୂମି ।

ବାଜେଜିନିସ – ଯା. ବି. ଅପ୍ରୟୋଜନୀୟ ଦ୍ରବ୍ୟ ।

ବାଜେମାର୍କା—ଯା.ବି. ନକଲି ବା ବିରସା ପଦାର୍ଥ, ( ଗ୍ରା,ବି-ଲ.ଅର୍ଥ ) ଇତର, ନଗଣ୍ୟ ।

ବାଜେୟାପ୍ତ(ପ୍ତି)--ଯା. ବି ଓ ବିଂ.ବାଜ୍ୟାପ୍ତ ଦେଖ ।

ବାଜେଲୋକ—ଗ୍ରା. ବି. ଇତର ଲୋକ, ସାଧାରଣ ଲୋକ, ଅଧିକା ବା ଅତିରିକ୍ତ ଲୋକ, ନିକମା ବ୍ୟକ୍ତି ,ଦଳ ବହିର୍ଭୂତ ବ୍ୟକ୍ତି , ଦେଶଣାହାସା ।

ବାଜ୍ୟାପ୍ତ(ପ୍ତି)--ଯା.ବିଂ. ରାଜାଙ୍କର ସ୍ୱାଧି-କାରକୁ ଆନୀତ , ପୁନଃପ୍ରାପ୍ତ, ଅଧି-କାରକୁ ଆନୀତ (ଭୂମିଆଦି) ।

ବାଜ୍ରେୟ—ବି. ବିଂ. ବଜ୍ରପାତନ ସ୍ଥାନ-ବାସୀ, ବଜ୍ର ଅଦୂରଭବ ।

ବାଞ୍ଛନ—ବି. (ବାଞ୍ଛ + ଭା.ଅନ)ବାସନା, ଇଚ୍ଛା, (ବିଂ. ମି.ଅନ) ଇପ୍ସିତ ।

ବାଞ୍ଛନୀୟ—ବିଂ. ( ବାଞ୍ଛ + ମି.ଅନୀୟ ) ପ୍ରାର୍ଥନୀୟ, ଅଭିଲଷିତ ।

ବାଞ୍ଛା—ସ୍ତ୍ରୀ.ବି, ( ବାଞ୍ଛ + ଭା.ଅ + ଆ ) ଇଚ୍ଛା, ସ୍ପୃହା, ଅଭିଳାଷ ।

ବାଞ୍ଛାକଳ୍ପତରୁ—ବି. ( ୬ତତ୍ପୁ ) ଭକ୍ତର ବାସନା ପୂରଣକାରୀ,ପୌରାଣିକ କଳ୍ପ-ବୃକ୍ଷ, ବିଷ୍ଣୁ ।

ବାଞ୍ଛାନିଧି—ପୁଂ, ବି, ଭଗବାନଙ୍କ ନାମ, ବାଞ୍ଛିତ ରତ୍ନ ।

ବାଞ୍ଛିତ—ନି.ବିଂ.(ବାଞ୍ଛା + ମି. ତ)ଅଭି-ଳଷିତ, କାଙ୍କ୍ଷିତ, ଇପ୍ସିତ,(ବି,-ଭା,ତ) ଇଚ୍ଛା ।

ବାଞ୍ଛିବା—ଗ୍ରା.କ୍ରି. ବାଞ୍ଛାକରିବା, ପାଇ-ବାକୁ ଇଚ୍ଛାକରିବା, ମନାସିବା ।

ବାଞ୍ଝ—ଗ୍ରା.ବିଂ. (ସଂ-ବନ୍ଧ୍ୟ ) ଅନୁର୍ବର, ଅଫଳପ୍ରସୂ, ଅଫଳନ୍ତୀ (ଗଛ), ବନ୍ଧ୍ୟା (ସ୍ତ୍ରୀ),ସନ୍ତାନୋତ୍ପାଦନାକ୍ଷମ (ପୁରୁଷ) ।

ବାଞ୍ଝକାକରି—ଗ୍ରା.ବି. ପୁରିଦିଆ ହୋଇ ନଥିବା କାକରି, ମାଳୁଦି କାକରିପିଠା

ବାଞ୍ଝକାଙ୍କଡ଼—ଗ୍ରା. ବି, ବନ୍ଧ୍ୟାକର୍କୋ-ଟକୀ ଦେଖ ।

ବାଞ୍ଝବରଡ଼ୀ—ଗ୍ରା.ସ୍ତ୍ରୀ,ବିଂ. ବନ୍ଧ୍ୟା, କାକ-ବନ୍ଧ୍ୟା,ଯାହାର ଗୋଟିଏ ମାତ୍ର ସନ୍ତାନ ହୋଇଅଛି, କଦଳୀ ବାଞ୍ଝ, ବନ୍ଧ୍ୟା ଓ ବସ୍କୟଣୀ (ଗାଈଗଣ) ।

ବାଞ୍ଝୀ—ଗ୍ରା,ବିଂ, ବନ୍ଧ୍ୟା ।

ବାଟ—ପୁଂ.ବି, (ବଟ + ମି.ଅ)ପଥ,ମାର୍ଗ ବେଷ୍ଟିତ ସ୍ଥାନ,ସ୍ଥାନ,ବାସ୍ତୁ,କୋଡ଼ଗାତ, ଶସ୍ୟବିଶେଷ,ବରଣ୍ଡା,ମଣ୍ଡପ ଗାତ୍ରଭେଦ (ବିଂ) ବଟସମ୍ବନ୍ଧୀୟ, (ଗ୍ରା.ବି,-ଲ,ଅର୍ଥ) ଉପାୟ, ପନ୍ଥା, ପ୍ରବେଶ ବା ନିର୍ଗମନର ଦ୍ୱାର,ଦୂରତ୍ୱସ୍ଥାନ ।

ବାଟଉଲାଇବା—ଗ୍ରା. କ୍ରି. ଓଲାଇକରି ବାଟ ସଫା କରିବା, (ଲ.ଅର୍ଥ) କୌଣସି କାର୍ଯ୍ୟପାଇଁ ଉପାୟ ସ୍ଥିରକରିବା ।

ବାଟକ—ପୁଂ.ବି. ଗୃହ ।

ବାଟକଢ଼ାଇବା—ଗ୍ରା. କ୍ରି. କୌଣସି ବ୍ୟକ୍ତିକୁ ପଥ ପ୍ରଦର୍ଶନ କରାଇବା,ଗନ୍ତବ୍ୟ ପଥ ଚହ୍ନାଇବା , ଆଗେ ଆଗେ ଯିବା

ବାଟଘ(ଘା)ଟ—ଗ୍ରା.ବି. ପଥ ଓ ନଈ ପାରହେବା ସ୍ଥାନ, ପଥଘାଟ ।

ବାଟଘର—ଗ୍ରା.ବି, ଯେଉଁ ଘର ଭିତର ଦେଇ ଅଗଣାରୁ ବାହାରକୁ ଓ ବାହାରୁ ଅଗଣାକୁ ଯିବାଆସିବା କରନ୍ତି, ଦାଣ୍ଡ-ଘର ।

ବାଟଘଷ—ଗ୍ରା. ବି. ବିବାହ ବା ବ୍ରତର ପୂର୍ବ ଦିନର ପୂର୍ବ ଦିବସ ।

ବାଟଛାଡ଼ିବା—ଗ୍ରା.କ୍ରି,ପ୍ରକୃତ ପଥ ତ୍ୟାଗ କରି ଅବାଟରେ ଯିବା, କୌଣସି ବ୍ୟକ୍ତି ଯିବା ସକାଶେ ଜମିରୁ କେତେ-କାଂଶ ବାଟରୂପେ ଛାଡ଼ିଦେବା ।

ବାଟଣ—ପ୍ରା,(ମେଦିନୀ)ବି.ବଟା ବେସର

ବାଟଦେବା—ଗ୍ରା.କ୍ରି. ବାଟ ଛାଡ଼ିଦେବା, (ଲ.ଅର୍ଥ) ଉପାୟ ବତାଇଦେବା ।

ବାଟଧରିବା—ଗ୍ରା, କ୍ରି. ପ୍ରକୃତ ରାସ୍ତାରେ ଚାଲିବା, ପ୍ରକୃତ ପନ୍ଥା ଅବଲମ୍ବନ କରିବା ।

ବାଟପଡ଼ା—ଗ୍ରା.ବି.ବାଟମାରଣା ଦେଖ ।

ବାଟପାରିଡ଼(ଡ଼ୁ)—ଗ୍ରା. ବି. ଡକାଇତି, ରାଜଦାଣ୍ଡରେ ଦସ୍ୟୁବୃତ୍ତି ।

ବାଟବରଣ—ଗ୍ରା. ବି. ବିବାହ ନିମିତ୍ତ କନ୍ୟା ପିତା ବରକୁ ଖଣ୍ଡେ ଦୂରରୁ ବରଣ କରି ଆଣିବା କର୍ମ ।

ବାଟଭାଙ୍ଗିବା—ଗ୍ରା, କ୍ରି. ବାଟରୁ ଏକ-ପାଖିଆ ହୋଇଯିବା ।

ବାଟଭୁଲିବା—ଗ୍ରା.କ୍ରି.ବାଟ ଛାଡ଼ି ଭ୍ରମରେ ଅବାଟିଆ ଯିବା ।

ବାଟମଙ୍ଗଳା—ଗ୍ରା.ବି,ଶ୍ରୀ ଜଗନ୍ନାଥମହା-ପ୍ରଭୁଙ୍କ ବେଢ଼ା ଭିତରେ ଉତ୍ତର ଦ୍ୱାର ପାଖେ ଥିବା ଦେବୀ ।

ବାଟମାରଣା—ଗ୍ରା.ବି.ପଥ ଦସ୍ୟୁ, ଲୋକମାନଙ୍କଠାରୁ ଜିନିଷପତ୍ର ଲୋଟି କରି ନେବା ଚୋର ।

ବାଟା—ପ୍ରା. (ବାଲେଶ୍ୱର) ବି. ପୋହଳାମାଛ

ବାଟି—ଗ୍ରା.ବି.ଏକପ୍ରକାର କଉଡ଼ି ଖେଳ. ଭୂମି ପରିମାଣବିଶେଷ, ୨୦ ଏକର ବା ମାଣ, ପିଲାମାନେ ଖେଳିବା ଗୁଲିଖେଳ, (ପ୍ରା. ସିଂହଭୂମ. ବି.) ପଇଲା ଦେଖ, ୮୪ ଠାରୁ ୧୦୦ ତୋଳା ଓଜନ ।

ବାଟିଆ—ଗ୍ରା.ବି.ଅଡୁଆ, ଦୁର୍ନାମ.କଳଙ୍କ, ବିଲରେ ହଳ କଲାବେଳେ ଲଙ୍ଗଳର ଦୁଇପାଖେ ଯେଉଁ କାଦୁଅ ମାଟି ଲାଗିଥାଏ, ବିହୁଡ଼ା ବେଳେ ଧାନଗଛ ସହିତ ହେବା ଟେଲା ଟେଲା କାଦୁଅମୁଣ୍ଡା ।

ବାଟିଆଖେଳା—ଗ୍ରା.ବି.ବେଉଷଣ ପରେ ଧାନ କିଆରିର ଘନସନ୍ନିବିଷ୍ଟ ଧାନ ଗୁଡ଼ାମାନଙ୍କୁ ଓପାଡ଼ି ପରସ୍ପର ସମାନ ଦୂରତାରେ ଖେଳାଇବା ।

ବାଟିଆଛଡ଼ା(ଡ଼େ)ଇବା—ଗ୍ରା.କ୍ରି.କଳଙ୍କ ଅପନୟନ କରିବା, ଦାୟିତ୍ୱରୁ ନିଷ୍କୃତି ପାଇବାର ଉପାୟ କରିବା ।

ବାଟିଆବୋଲିବା--ଗ୍ରା.କ୍ରି.ଦୁର୍ନାମ କରିବା, (ପରକୁ) ଦୋଷଦେବା ।

ବାଟିଅଲଗା (ଗେ) ଇବା—ଗ୍ରା. କ୍ରି. କୌଣସି ବ୍ୟକ୍ତିଠାରେ କଳଙ୍କ ବା ଦୋଷାରୋପକରିବା ।

ବାଟିକା—ସ୍ତ୍ରୀ. ବି. (ବଟ+ଇକ+ଆ) ବାସ୍ତୁ, ଶ୍ରେଷ୍ଠ ଘର, ବାଡ଼ି, ଶ୍ରେଷ୍ଠ ଫଳ ବଗିଚ୍ଚ, ଆବୃତ ସ୍ଥାନ, ବାଟ୍ୟାଳକ ବୃକ୍ଷପଂକ୍ତି ।

ବାଟିଖେଳ—ଗ୍ରା. ବି. ମାର୍ବଲ ଖେଳ, ଗୁଲିଖେଳ ।

ବାଟିବା—ଗ୍ରା. କ୍ରି. ଶିଳରେ ପେଷିବା ।

ବାଟୀ—ସ୍ତ୍ରୀ.ବି (ବାଟ+ଈ)ବାଟ୍ୟାଳକ, କୁଟୀ, ବାସ୍ତୁ, ଘର, ଆବୃତ ସ୍ଥାନ,ଘର-ବାଡ଼ି, ରାସ୍ତା, କୋଡ଼ଖାତ, (ଗ୍ରା.ବି) ୨୦ ମାଣଭୂମି ପରିମାଣ ।

ବାଟୁଆ—ଗ୍ରା. ବି. ବାଟୋଇ, ପଥିକ, (ପ୍ରା.ପୁରୀ.ବି) ଯେଉଁ ପଣ୍ଡାମାନେ ଯାତ୍ରୀ ସଂଗ୍ରହ ପାଇଁ ଦୂରଦେଶକୁ ଯାଆନ୍ତି ।

ବାଟୂକ—କ୍ଲୀ. ବି. ଭୃଷ୍ଟଯବ ।

ବାଟୁଲ—ଗ୍ରା. ବି. ବର୍ତ୍ତୁଳ ।

ବାଟୁଲା—ଗ୍ରା. ବି. ଗୋଲକ, ପେଣ୍ଡୁ, ଅନ୍ନାଦିର ଗୋଲାକାର ପେଣ୍ଡୁ ।

ବାଟୁଲାଭୋଗ—ଗ୍ରା.ବି. ସକାଳେ ରନ୍ଧା ହୋଇଥିବା ଅନ୍ନକୁ ସନ୍ଧ୍ୟାବେଳେ ଠାକୁରଙ୍କୁ ନୈବେଦ୍ୟ ରୂପେ ଭୋଗ ଦେବା ।

ବାଟୁଳି—ସ୍ତ୍ରୀ. ବି. ମୃତ୍ତିକା ବା ଲୌହ-ନିର୍ମିତ କ୍ଷୁଦ୍ରାକାର ଗୋଲାବିଶେଷ ।

ବାଟୁଳିଖଡ଼ା—ଗ୍ରା. ବି. ବାଟୁଳି ନିକ୍ଷେପ କରିବାରେ ବ୍ୟବହୃତ ଧନୁକାକୃତି ଅସ୍ତ୍ରବିଶେଷ ।

ବାଟେଇବା—ଗ୍ରା. କ୍ରି. ବାଟିଆଇବା, ଯାଉଥିବା ବ୍ୟକ୍ତି ସଙ୍ଗେ ଖଣ୍ଡେଦୂର ଯାଇ ତାକୁ ଛାଡ଼ି ଦେଇ ଆସିବା ।

ବାଟୋଇ—ଗ୍ରା. ବି. ପଥିକ ।

ବାଟେବାଟେ—ଗ୍ରା. କ୍ରି. ବି. ଗୋଟିଏ ବାଟକୁ ଧରି (ଗଳି ଗଳିଯିବା),ରାସ୍ତାକୁ ନ ଛାଡ଼ି (ଗଳିବା),ସିଧାସିଧା ବାଟରେ

ବାଟ୍ୟ—କ୍ଲୀ.ବି.(ବାଟ+ଯ) ବାଟ୍ୟାଳକ, ବାଡ଼ିଅଁଳା,(ବି°)ଉଦ୍ୟାନସମ୍ବନ୍ଧୀୟ ।

ବାଟ୍ୟକ—କ୍ଲୀ. ବି. ଭୃଷ୍ଟ ଯବ ।

ବାଟ୍ୟପୁଷ୍ପ—କ୍ଲୀ. ବି. ଚନ୍ଦନ, କୁଙ୍କୁମ ।

ବାଟ୍ୟପୁଷ୍ପିକା—ସ୍ତ୍ରୀ. ବି. ବାଡ଼ିଅଁଳା ।

ବାଟ୍ୟପୁଷ୍ପୀ—ସ୍ତ୍ରୀ. ବି. ବାଡ଼ିଅଁଳା ।

ବାଟ୍ୟମଣ୍ଡ—ପୁଂ. ବି. ଯବମଣ୍ଡବିଶେଷ, ନିସ୍ତୁଷ ଦରଦଳିତ ଯବରେ ଚତୁର୍ଗୁଣ ପାଣିଦେଇ ପ୍ରସ୍ତୁତ କରିବା ମଣ୍ଡ ।

ବାଟ୍ୟା—ସ୍ତ୍ରୀ.ବି.(ବାଟ+ଯା)ବାଟ୍ୟାଳକ, ବାଡ଼ିଅଁଳା ।

ବାଟ୍ୟାୟନୀ—ସ୍ତ୍ରୀ.ବି. ଶ୍ୱେତ ବାଟ୍ୟାଳକ, ଶ୍ୱେତ ବାଡ଼ିଅଁଳା ।

ବାଟ୍ୟାଲ—ପୁଂ.ବି.ବୃକ୍ଷବିଶେଷ,ଅତିବଳା

ବାଟ୍ୟାଳକ—ପୁଂ.ବି.(ବାଟୀ+ଅଲ+କ) ବାଡ଼ିଅଁଳା, ପୀତପୁଷ୍ପ, ବଳା ।

ବାଟ୍ୟାଳିକା—ସ୍ତ୍ରୀ.ବି. ଲଘୁ ବାଟ୍ୟାଳକ, ମହାବଳା, ବଡ଼ ବାଡ଼ିଅଁଳା ।

ବାଟ୍ୟାଳୀ—ସ୍ତ୍ରୀ. ବି. ବାଟ୍ୟାଳକ ।

ବାଡ଼(ଢ଼)ମୀ—ପ୍ରା.(ସମ୍ବ)ବି.ଝାଡ଼ୁ,ପହଁରା ମୁଠା, ବଢ଼ଣି ।

ବାଡ଼—ଗ୍ରା. ବି. କ୍ଷେତ ରକ୍ଷାର୍ଥ ଡାଳି-ଆଦିରେ କରାଯିବା ଘେରବନ୍ଧ, ଗୃହର କାନ୍ଥ, ନୌକାର ପାର୍ଶ୍ୱସ୍ଥ ବେଷ୍ଟନ, ଏକ ଗ୍ରାମ ସମାଜ ମଧ୍ୟରେ ହେବା ଭିନ୍ନ ଦଳ,କର ଆଦାୟ ଦୃଷ୍ଟିରେ ମୌଜାର ଭିନ୍ନ ଭିନ୍ନ ଅଂଶ ବା ବିଭାଗ, ପରିଧା, ଆଡ଼, ତରଫ ।

ବାଡ଼ପାଣି—ପ୍ରା.(ଗଞ୍ଜାମ)ବି.ଭଣ୍ଡାରିଆଦି ଜାତିରେ ବିବାହ ଯୋଗ୍ୟା କନ୍ୟା ପାଇଁ ଉପଯୁକ୍ତ ବରପାତ୍ର ନ ମିଳିଲେ ପ୍ରଥମେ ଉକ୍ତ କନ୍ୟାକୁ ତାହାର ଭଉଣୀପତି ବା ଅଜାଙ୍କ ସଙ୍ଗେ ନାମ-ମାତ୍ର ବିବାହ ଦେବାର ପ୍ରଥା ।

ବାଡ଼ମୋହନୀ—ଗ୍ରା. ବି. କିନ୍ନରୀ ।

ବାଡବ—ପୁଂ. ବି. (ବାଡ଼ବା+ଅ)ସମୁଦ୍ର ଗର୍ଭରୁ ଉପରକୁ ଉଠିବା ଅଗ୍ନି,ଘୋଟକ, ବ୍ରାହ୍ମଣ, ପାତାଳ, ଘୋଟକ ପଲ, (ଜ୍ୟୋତିଷ) କରଣବିଶେଷ,ବାଲବ-କରଣ, (ବି°) ବଡ଼ବାସମ୍ବନ୍ଧୀୟ ।

ବାଡ଼ବଜାତ—ଗ୍ରା.ବି. ଅଶ୍ୱିନୀକୁମାରଦ୍ୱୟ

ବାଡ଼ବତା—ଗ୍ରା. ବି. ବାଧା, ପ୍ରତିବନ୍ଧକ

ବାଡ଼ବାଗ୍ନି—ବି. ସମୁଦ୍ର ଗର୍ଭରୁ ଉପରକୁ ଉଠିବା ଅଗ୍ନି, ବଡ଼ବାନଳ ।

ବାଡ଼ବାଙ୍କୁ—ଗ୍ରା. ବି. ଡଙ୍ଗା ବାଡ଼ର ପଟାରେ ସମକୋଣ ଭାବରେ ସଂଲଗ୍ନ କାଠି ।

ବାଡ଼ବାନଳ—ପୁଂ. ବି. ବାଡ଼ବାଗ୍ନି ।

ବାଡ଼ବେୟ—ପୁଂ. ବି. (ବଡ଼ବା+ଏୟ) ବାଡ଼ବାଗ୍ନି, ଅଶ୍ୱିନୀକୁମାରଦ୍ୱୟ, ଷଣ୍ଢ, (ବି°) ବଡ଼ବାସମ୍ବନ୍ଧୀୟ ।

ବାଡ଼ବେୟସୁତ—ଗ୍ରା. ବି. ଅଶ୍ୱିନୀକୁମାର ଦ୍ୱୟ, ନଳନାମକ ବାନର ।

ବାଡ଼ବ୍ୟ—କ୍ଲୀ.ବି.(ବାଡବ+ଯ)ବାଡବ ସମୂହ, ବ୍ରାହ୍ମଣ ସମୂହ, ବି°. (ବଡ଼ବା +ଯ) ବଡ଼ବା ସମ୍ବନ୍ଧୀୟ ।

ବାଡ଼ା—ଗ୍ରା. ବି. ବାଡ଼, ପାର୍ଶ୍ୱସ୍ଥ କାନ୍ଥ,

(ପ୍ରା. ମେଦ୍‌ନୀପୁର, ବି.)ଯଷ୍ଟି, ବାଡ଼ି ।

ବାଡ଼ାବନ୍ଧ—ଗ୍ରା. ବି. କୌଣସି ସ୍ଥାନକୁ ବାଡ଼ଦ୍ୱାରା ବେଷ୍ଟନ କରିବା, ପାର୍ଶ୍ୱସ୍ଥ କାନ୍ଥ ।

ବାଡ଼ି—ଗ୍ରା. ବି. ଯଷ୍ଟି, କ୍ଷୁଦ୍ର ବଗିଚା,ଘର ନିକଟ ବା ସଂଲଗ୍ନ ଭୂମି,ହଇଜା,ଓଲା-ଉଠା, ଶୂଦ୍ରମାନଙ୍କ ବଂଶୋପାଧି ବିଶେଷ

ବାଡ଼ିଅଁଳା—ଗ୍ରା. ବି.(ସଂ-ବାଟ୍ୟାଳକା) ଜବାଦ ବର୍ଣ୍ଣର କ୍ଷୁପ ବିଶେଷ,ବଳିମୂଳୀ (ସଂ-ଅତିବଳା)ଏକପ୍ରକାର ନାଲି ବାଡ଼ି-ଅଁଳା,( ସଂ-ମହାବଳା ) ଏକପ୍ରକାର ଶ୍ୱେତ ବାଡ଼ିଅଁଳା,(ସଂ-ଗୋରକ୍ଷତଣ୍ଡୁଳା) ଗରଗଡ଼,ବର୍ଷାସ୍ଥ ଗୁଳ୍ମ ବିଶେଷ,ଗୋରକ୍ଷ ଗୁଲ ।

ବାଡ଼ିଆ—ଗ୍ରା. ବି. ଯଷ୍ଟିଦ୍ୱାରା ପ୍ରହାର ବା ମାଡ଼, (ଲ.ଅର୍ଥ) ମୈଥୁନ, ବଗିଚା ଜଗିବା ନାଲି.ମାଳ,(ଗ୍ରା.ବିଂ)ପ୍ରହାରେ, ଯେ ଖୁବ୍ ପ୍ରହାର ଖାଏ ବା ସହେ ।

ବାଡ଼ିଆଡ଼— ଗ୍ରା. ବି. ଘରର ପଛ ଦିଗ ।

ବାଡ଼ିଆବାଡ଼ି—ଗ୍ରା. ବି. ନିର୍ଦ୍ଦୟପ୍ରହାର, ଅନ୍ୟୋନ୍ୟ ର ଯଷ୍ଟ୍ୟାଘାତ, (ଗ୍ରା.ବିଂ) ପରସ୍ପର ପ୍ରହୃତ ।

ବାଡ଼ିକା—ଗ୍ରା. ବି. ବିଷ୍ଠା, ଝାଡ଼ା, ଝାଡ଼ା ଫେରିବା ।

ବାଡ଼ିଖାଇବା—ଗ୍ରା.କ୍ରି.ଯଷ୍ଟିଦ୍ୱାରା ମାଡ଼, ଖାଇବା, (ଗ୍ରା. ବି) ହଇଜା ରୋଗରେ ମରିବା ।

ବାଡ଼ିଗବ(ବା)—ଗ୍ରା.ବି. ବାଇଗବଦେଖ

ବାଡ଼ିଘର—ଗ୍ରା. ବି. ଗୃହ ସନ୍ନିକଟସ୍ଥ ଜମି ଓ ଘର, ଘରବାଡ଼ି ।

ବାଡ଼ିଙ୍ଗ(ଣ)ନ—ବି. ବାଇଗଣ ।

ବାଡ଼ିବାଲ୍ଲ—ଗ୍ରା. ବି. କଲେରା, ହଇଜା, ଝାଡ଼ାବାନ୍ତି ।

ବାଡ଼ୀର—ବି. ଭୃତ୍ୟ, ଚାକର, ଦାସ, ମୂଲିଆ ।

ବାଡ଼ୁଅ—ଗ୍ରା. ବିଂ. ଅବବାହିତ ।

ବାଡ଼ୁଅପାଣି—ଗ୍ରା. ବି. କୋଇଲବୁଡ଼, ବିବାହଦିନ ଭୋରରୁ କନ୍ୟା ଯେଉଁ ସ୍ଥାନକରେ ।

ବାଡ଼ୁଆ—ପ୍ରା. (ବାଲେ.) ବି. ଗ୍ରାମର ମୁଖ୍ୟ ବ୍ୟକ୍ତି, ପଧାନ ।

ବାଡ଼େଇଦେବା—ଗ୍ରା. କ୍ରି. ବାଡ଼ି ଆଦି ଦ୍ୱାରା ଅନ୍ୟ ପଦାର୍ଥରେ ଆଘାତ କରିବା, ବାଜଠିବା,କୋଡ଼ କରିଦେବା ।

ବାଡ଼େଇବା—ଗ୍ରା. କ୍ରି. ପ୍ରହାର କରିବା, ମାଡ଼ଦେବା ।

ବାଡ଼ୋର—ଗ୍ରା. ବି. ମଲ୍ଲଯୁଦ୍ଧ ବିଶେଷ ।

ବାଢ଼—ବି. (ବହ୍ + ଣିଚ୍ + ତ) ସତ୍ୟ, (ବିଂ) ଅଧିକ, ଦୃଢ଼, ଯଥାର୍ଥ,ଅତିଶୟ, (ଗ୍ରା. କ୍ରି. ଆଦେଶାର୍ଥକ) ଖାଦ୍ୟସାମଗ୍ରୀ ପାତ୍ରରେ ଦାଢ଼ ।

ବାଢ଼ମ୍—ଅବ୍ୟ.ଅଧିକରୂପ,ଅତିଶୟ,ପ୍ରଚୁର ପରିମାଣ, ଉତ୍ତମ ।

ବାଢ଼ିବା—ଗ୍ରା. କ୍ରି. ଅନ୍ନ ବ୍ୟଞ୍ଜନାଦି ପାତ୍ରରେ ଥୋଇବା, ପରଷିବା, ଦ୍ରବ୍ୟ ସମୂହକୁ ବିସ୍ତୃତ କରି ଥୋଇବା,ବିସ୍ତାର କରିବା,ବିଶଦ ଭାବରେ ପ୍ରକାଶ କରିବା

ବାଢ଼ବିକ୍ରମ—ବିଂ.ଅତିଶକ୍ତିସମ୍ପନ୍ନ, ବଳ-ବାନ୍ ।

ବାଣ—ପୁଂ.ବି.(ବଣ + କ.ଅ)ଅସ୍ତ୍ରବିଶେଷ. ଶର, ତୀର, ଶଙ୍କ, ଅଗ୍ନି,କବି ବିଶେଷ, ଗୋସ୍ତନ, ପାଞ୍ଚଅଙ୍କ ବା ସଂଖ୍ୟା, ବଳି ରାଜାଙ୍କ ଜ୍ୟେଷ୍ଠପୁତ୍ର, ବାଣାସୁର, ମାଲ-ଝିଣ୍ଟି, ଦାସକେରେଣ୍ଟା, ବାଣଭଟ୍ଟ, କାଦମ୍ବରୀ ପ୍ରଣେତା ପ୍ରସିଦ୍ଧ କବି, ଶରର ଅଗ୍ରଭାଗ, ଭଦ୍ରମୁଞ୍ଜ, ନିଶାଣ, ଲକ୍ଷ, ଇକ୍ଷ୍ୱାକୁବଂଶୀୟ ବିକୁକ୍ଷି ରାଜାଙ୍କ ପୁତ୍ର, (ଗ୍ରା.ବି)ଅଗ୍ନିଲଗାଇବା ନିମନ୍ତେପ୍ରସ୍ତୁତ ବାରୁଦ କାମ, ଆତସବାଜି, ଅଗ୍ନିବାଣ, ତାନ୍ତ୍ରିକ ମାରଣ କ୍ରିୟାର ଯନ୍ତ୍ର ପ୍ରୟୋଗ, ନଈବଢ଼ି, ଜୁଆର, ଗୋଡ଼ିବାଣଫୁଲ, ଲୁଗାବୁଣା ମଜୁରି, ମୂଲ୍ୟ ।

ବାଣଗଙ୍ଗା—ସ୍ତ୍ରୀ.ବି. ହିମାଳୟରୁ ବାହାରି ଥିବା ନଦୀ ବିଶେଷ ।

ବାଣଗୋଚର—ପୁଂ.ବି. ବାଣର ନିର୍ଦ୍ଦିଷ୍ଟ ଗତିସ୍ଥାନ ।

ବାଣଚାଳନା—ସ୍ତ୍ରୀ. ବି. ବାଣପ୍ରୟୋଗ, ଧନୁ ଓ ତୀର ଯୋଗେ ଲକ୍ଷ୍ୟବସ୍ତୁ ବିଦ୍ଧ କରିବାର କୌଶଳ ବା ପ୍ରଣାଳୀ ।

ବାଣଜାଲ—ପୁଂ. ବି. ବର୍ଷ୍ମ ।

ବାଣତୂଣ—ପୁଂ.ବି. ବାଣାଧାର,ତୂଣୀର ।

ବାଣଦଣ୍ଡ—ପୁଂ. ବି. ବସ୍ତ୍ରବୟନ ଯନ୍ତ୍ର-ବିଶେଷ ।

ବାଣଧୀ—ପୁଂ. ବି. (ବାଣ+ଧା + କ.ଇ) ତୂଣୀର, ଶରମୁଣା ।

ବାଣନିକୃତ—କ୍ରି.ବିଂ. (୩ତତ୍) ବାଣାସ୍ତ୍ର-ଦ୍ୱାରା ଭିନ୍ନ ।                    [ କ୍ଷିତ ।

ବାଣପାଣି—କ୍ରି.ବିଂ. ବାଣାସ୍ତ୍ରଦ୍ୱାରା ସୁସ-

ବାଣପାତ—ପୁଂ.ବି. ବାଣନିକ୍ଷେପ,ଦୂରତ୍ୱ ପରିମାପକ ।

ବାଣପୁର—କ୍ଲୀ. ବି. ବାଣାସୁରର ରାଜ-ଧାନୀ, (ଗ୍ରା.ବି) ଖୋରଧା ଅଞ୍ଚଳର ଗୋଟିଏ ରାଜସ୍ୱ ବିଭାଗ ଓ ଗୋଟିଏ ଗ୍ରାମ ।

ବାଣଭଟ୍ଟ—ପୁଂ. ବି. ସୁପ୍ରସିଦ୍ଧ କବି, କାଦମ୍ବରୀ ଗ୍ରନ୍ଥକାର ।

ବାଣମସ୍ତ—କ୍ରି.ବିଂ. ବାଣଦ୍ୱାରା ସମାଚ୍ଛିନ୍ନ ।

ବାଣମାରିବା—ଗ୍ରା.କ୍ରି. ଅଗ୍ନିକ୍ରୀଡ଼ାକରିବା, କୌଣସି ବ୍ୟକ୍ତିପ୍ରତି ତାନ୍ତ୍ରିକ ମାରଣ-ମନ୍ତ୍ର ପ୍ରୟୋଗ କରିବା ।

ବାଣମୁଦ୍ରା—ବି. ଶ୍ୟୁନଣିଂମ ତାନ୍ତ୍ରିକ ଅଙ୍ଗୁଳି ମୁଦ୍ରାବିଶେଷ ।

ବାଣୟୁଆର—ଗ୍ରା. ବି. ବଡ଼ବନ୍ୟା ।

ବାଣଯୋଜନ—କ୍ଲୀ. ବି. ତୂଣୀର, ଧନୁର ଜ୍ୟାମଧ୍ୟରେ ବାଣଯୋଖି ଲକ୍ଷ୍ୟ କରିବା ।

ବାଣରସୀ—ସ୍ତ୍ରୀ. ବି. ବାରାଣସୀ ।

ବାଣରାଜ—ପୁଂ. ବି. ବାଣାସୁର ।

ବାଣରେଖା—ସ୍ତ୍ରୀ. ବି. ବାଣଦ୍ୱାରା ଗାତ୍ରସ୍ଥ କ୍ଷତସ୍ଥାନ ।

ବାଣଲିଙ୍ଗ—କ୍ଲୀ. ବି. ( କ.ଧା ) ନର୍ମଦା ତୀରସ୍ଥ ଶିବଲିଙ୍ଗବିଶେଷ, ନର୍ମଦାନଦୀରୁ ପ୍ରାପ୍ତ କ୍ଷୁଦ୍ର, ସ୍ୱଚ୍ଛ ସ୍ଫଟିକ ଶିବଲିଙ୍ଗବିଶେଷ

ବାଣବର୍ଷଣ—କ୍ଲୀ. ବି. ବାଣବୃଷ୍ଟି ।

ବାଣବାର—ପୁଂ. ବି. (ବାଣ + ବୃ + ଣିଚ୍ + କ.ଅ) ସାଞ୍ଜୁ, କଞ୍ଚୁକ ।

ବାଣବିଦ୍ଧ—ବିଂ.(୩ତତ୍) ଶରଦ୍ୱାରା ବିଦ୍ଧ

ବାଣବନ୍ଧ୍ୟା—ବି. ଧନୁର୍ବିଦ୍ୟା ।
ବାଣଶାଳ—କ୍ଲୀ.ବି. ବାଣାଗାର,ଆୟୁଧ-ଶାଳା ।
ବାଣସନ୍ଧାନ—କ୍ଲୀ. ବି. ଲକ୍ଷ୍ୟକର ବାଣ ଯୋଜନା । [ ଭେଦ ।
ବାଣସିଦ୍ଧି—ସ୍ତ୍ରୀ.ବି. ବାଣଯୋଗେ ଲକ୍ଷ୍ୟ-
ବାଣସୂତା—ସ୍ତ୍ରୀ.ବି. ଉଷା,ଅନିରୁଦ୍ଧ ପତ୍ନୀ ।
ବାଣହା—ପୁଂ. ବି. (ବାଣ+ହନ୍+କ୍ୱିପ୍) ବିଷ୍ଣୁ ।
ବାଣା—ସ୍ତ୍ରୀ. ବି. (ବାଣ+ଆ) ବାଣମୂଳ, ନୀଳଝିଣ୍ଟି, ଧ୍ୱଜା, ପତାକା ।
ବାଣାଧାର—ବି. (୬ତତ୍) ତୂଣୀର ।
ବାଣାରସୀ—ଗ୍ରା. ବି. ଅତିସୂକ୍ଷ୍ମ ପଟ୍ଟବସ୍ତ୍ର ବିଶେଷ, ବନାରସୀ ପାଟ ।
ବାଣାର—ପୁଂ.ବି.(ବାଣ+ଅର)ଶ୍ରୀକୃଷ୍ଣ ।
ବାଣାବତୀ—ସ୍ତ୍ରୀ.ବି. ବାଣାସୁରର ପତ୍ନୀ ।
ବାଣାବଳୀ—ସ୍ତ୍ରୀ.ବି.ଏକପଦରେ ଯେଉଁ ପାଞ୍ଚଟି ଶ୍ଳୋକ ରଚିତ ହୁଏ ।
ବାଣାଶ୍ରୟ—କ୍ଲୀ. ବି. (ବାଣ+ଆଶ୍ରୟ) ତୂଣୀର, ଧନୁ ।
ବାଣାସନ—କ୍ଲୀ. ବି. (ବାଣ+ଅସ୍+ଣ.ଅନ) ଧନୁ, ଶରାସନ, ଧନୁକ ।
ବାଣାସୁର—ବି. ବଳିରାଜାଙ୍କ ଜ୍ୟେଷ୍ଠପୁତ୍ର ଅସୁରବିଶେଷ ।
ବାଣି—ବି.(ବଣ+ଘ,ଇ) ବୟନ,ଲୁଗା-ବୁଣା, (ଣ.ଇ) ବାକ୍ୟ, ସ୍ୱର, ତନ୍ତ୍ର ।
ବାଣିଜ—ପୁଂ.ବି. (ବଣିକ୍+ଅ) ବଣିକ, ବାଡ଼ବାଗ୍ନି, ବାଣିଜ୍ୟକାରୀ ।
ବାଣିଜକ—ପୁଂ. ବି. ( ବାଣିଜ+କ ) ବଣିକ, ବାଡ଼ବାଗ୍ନି ।
ବାଣିଜିକ—ବିଂ.(ବଣିକ୍+ଇକ)ବାଣିଜ୍ୟ ସମ୍ବନ୍ଧୀୟ, (ବି) ବଣିକ, ବାଡ଼ବାଗ୍ନି ।
ବାଣିଜ୍ୟ—କ୍ଲୀ.ବି. (ବଣିକ୍+ଯ)ବୈଶ୍ୟ-ବୃତ୍ତିବିଶେଷ, ବ୍ୟବସାୟ, କ୍ରୟବିକ୍ରୟ ।
ବାଣିଜ୍ୟପବନ—ଗ୍ରା. ବି. ଉତ୍ତରମେରୁ-ଆଡ଼ୁ ବିଷୁବରେଖା ଆଡ଼କୁ ବହି ଆସୁ-ଥିବା ପବନ ।
ବାଣିଜ୍ୟପୋତ—ବି. (କ.ଧା)ବ୍ୟବସାୟ ସମ୍ବନ୍ଧୀୟ ଜଳଯାନ, ସୌଦାଗରୀ ଜାହାଜ ।
ବାଣିଜ୍ୟବ୍ୟବସାୟ—ବି. ବାଣିଜ୍ୟ ।
ବାଣିଜ୍ୟା—ସ୍ତ୍ରୀ. ବି. ( ବାଣିଜ୍ୟ+ଆ ) ବାଣିଜ୍ୟ ।
ବାଣିଜ୍ୟାଶାଳା—ବି.(୬ତତ୍)ବାଣିଜ୍ୟର ଗୃହ, ଦୋକାନଘର ।
ବାଣିନୀ—ସ୍ତ୍ରୀ. ବି. (ବଣ+ଇନ୍+ଈ) ନର୍ତ୍ତକୀ, ନଟୀ,ଦୂତୀ,ମତ୍ତ ସ୍ତ୍ରୀ, ଛନ୍ଦୋ-ବିଶେଷ ।
ବାଣୀ—ସ୍ତ୍ରୀ.ବି.(ବଣ+ଇ+ଈ)ବଚନ, ବାକ୍ୟ, ସରସ୍ୱତୀ, (ଣ.ଇ)ଲୁଗାବୁଣିବା, (ଗ୍ରା.ବି) ହେଁସ ବା ମୁନ୍ଦୁରା ବୁଣିବାରେ ବ୍ୟବହୃତ ସରୁ ଶ୍ରେଷ୍ଠ ଦଉଡ଼ି,ଗୋରୁଙ୍କ ଦେହରେ ଦଆଯିବା ତାତଲା ଲୁହାର ଚିହ୍ନ,ଗୀତ ବୋଲିବାର ବୃତ୍ତ ବା ଘର, ପଟ୍ଟିଆ ଆଦିର ଦୁଇଣିଗାର ମଧ୍ୟବର୍ତ୍ତୀ ଅଂଶ ।
ବାଣୀଜା—ଗ୍ରା. ସ୍ତ୍ରୀ, ବି. ସତୀ ।
ବାଣୀଦଉଡ଼ି—ଗ୍ରା. ବି. ଖୋଟଆଦିରେ ବୁଣାଯିବା ସରୁ ଦଉଡ଼ି ।
ବାଣୀବାଦ—ବି. ତର୍କ ।
ବାଣୁଆ—ଗ୍ରା. ବି. ଯେ ବାଣ ମାରେ, ଯେ ଆତସବାଜି ତିଆରି କରେ, ବ୍ୟାଧ, ଶିକାରୀ,ବନ୍ଧୁକ ମାରିବାରେ ସିଦ୍ଧହସ୍ତ ।
ବାଣୁଆରାୟ—ପ୍ରା.(ଗଞ୍ଜାମ) ବି. ରାଜଦତ୍ତ ଉପାଧିବିଶେଷ । [ ବିଶେଷ ।
ବାଣୁଆସିଂହ—ଗ୍ରା. ବି. ରାଜଦତ୍ତ ଉପାଧି
ବାଣେଶ୍ୱର—ପୁଂ.ବି. ଶିବଲିଙ୍ଗବିଶେଷ ।
ବାଣ୍ଟ—ଗ୍ରା. ବି. ବିଭାଗକରଣ, ବଣ୍ଟନ, ବଣ୍ଟାଗ, ଅନେକ ଲୋକଙ୍କ ମଧ୍ୟରେ କୌଣସି ବସ୍ତୁର ବିତରଣ, ବିଭାଗ କରାଯାଇଥିବା ଅଂଶ ।
ବାଣ୍ଟକୁଣ୍ଟ—ଗ୍ରା. ବି. ବାଣ୍ଟ, ବଣ୍ଟନ ।
ବାଣ୍ଟଗ—ଗ୍ରା.ବି. ବହୁଲୋକଙ୍କୁ ବିତରଣ, ବଣ୍ଟାଗ ।
ବାଣ୍ଟିବା—ଗ୍ରା. କ୍ରି. ବିତରଣ କରିବା, ବିଭାଗ କରିବା, ଅଂଶ ପୃଥକ୍ କରିବା, ମନରେ ବିଚାର କରିବା ।
ବାଣ୍ଟିହେବା—ଗ୍ରା. କ୍ରି. ଆପଣାଭିତରେ ପୃଥକ୍‌ଦଳରେ ବିଭକ୍ତ ହେବା,ବାଣ୍ଟିବା କ୍ରିୟାର କର୍ମବାଚ୍ୟ ରୂପ ।
ବାଣ୍ଡିଆ—ପ୍ରା. (ବାଲେ) ବିଂ. ଖଙ୍ଗକାୟ, ବାଙ୍ଗରା ।
ବାଣ୍ଡ୍—ଯା. ବି. ବଲଙ୍ଗା ଯୁଦ୍ଧବାଦ୍ୟ ଯନ୍ତ୍ରଚୟ ବାଦନକାରୀ ଦଳ ।
ବାଣ୍ଡ—ଗ୍ରା. ବି. (ଅଶ୍ଳୀଳ) ଲିଙ୍ଗ,ଉପସ୍ଥ ।
ବାଣ୍ଡେଲ୍—ଯା. ବି. ଘାଆଆଦିର ଉପରେ ବାନ୍ଧିବା ପାଇଁ ଅଳ୍ପ ଚଉଡ଼ାର କନା-ପଟି ।
ବାଣ୍ଡୋରୀ—ଯା. ବି. ସେଟ୍‌ଲ୍‌ମେଣ୍ଟ ମାପରେ ନିର୍ଦ୍ଦିଷ୍ଟ ଭୂମିର ସୀମା ।
ବାତ୍—ଗ୍ରା. ବି. ବାକ୍ୟ, କଥା ।
ବାତ୍‌ଚିତ୍—ଗ୍ରା. ବି. କଥୋପକଥନ, ବାକ୍ୟାଳାପ, ପ୍ରଶ୍ନୋତ୍ତର ।
ବାତ—ବି. (ବା+କ୍ତ) ବାୟୁ ,ପବନ, ଆୟୁର୍ବେଦମତେ ଶରୀରସ୍ଥ ବାୟୁ, ମୂର୍ଚ୍ଛା-ରୋଗ,ବାୟୁରୋଗବିଶେଷ,ଜାରପୁରୁଷ, ଧ୍ୱଂସନାଶକ, (ବିଂ) ଗତ ।
ବାତକ—ପୁଂ. ବି. ଅଶନପର୍ଣ୍ଣୀ ।
ବାତକଣ୍ଟକ—ପୁଂ. ବି. ଗୁଲ୍ଫଦେଶରେ ହେବା ବାତରୋଗବିଶେଷ ।
ବାତକଫ—ବି. ବାୟୁ ଓ କଫଜନିତ ରୋଗବିଶେଷ ।
ବାତକର୍ମ—କ୍ଲୀ.ବି. ମରୁତକ୍ରିୟା,ପର୍ଦ୍ଦନ, ପାଦିବା, ଅଧୋବାୟୁ ତ୍ୟାଗ ।
ବାତକଲାକଲ—ବି. ବାୟୁର ହିଲ୍ଲୋଳ ।
ବାତକୀ—ବିଂ. (ବାତକ+ଇନ୍) ବାତ-ରୋଗଯୁକ୍ତ, ବାତରୋଗୀ, (ସ୍ତ୍ରୀ) ବାତ-କିନୀ, (ସ୍ତ୍ରୀ.ବି-ବାତକ+ଈ) ଶେଫା-ଳିକା ବୃକ୍ଷ । [ ବିଶେଷ ।
ବାତକୁଣ୍ଡଳିକା—ସ୍ତ୍ରୀ.ବି.ମୂତ୍ରାଘାତ ରୋଗ-
ବାତକୁମ୍ଭ—ପୁଂ. ବି. ( ବାତ+କୁମ୍ଭ ) ଗଜକୁମ୍ଭର ଅଧୋଭାଗ ।
ବାତକୁଷ୍ଠ—ବି. ରୋଗବିଶେଷ ।
ବାତକୃମି—ଗ୍ରା. ବି. ଶିଶୁମାନଙ୍କ କୃମିଜ ରୋଗ ବିଶେଷ । [ଧୂଳି ।
ବାତକେତୁ—ପୁଂ. ବି. (୬ତତ୍) ପାଂଶୁ,
ବାତକେଳି—ପୁଂ. ବି. (ବାତ+କେଳି)

ଉପପତିର ଦନ୍ତକ୍ଷତ, ମଧୁରାଳାପ ।
ବାତଗାମୀ—ପୁଂ. ବି. (ବାତ+ଗମ୍+ କ.ଇନ୍) ପକ୍ଷୀ ।
ବାତଗୁଲ୍ମ—ପୁଂ. ବି. ( ବାତ+ଗୁଲ୍ମ ) ବାତୁଳ, ବାତଯୋଗୁଁ ଉତ୍ପନ୍ନ ଗୁଲ୍ମ- ରୋଗ,ଝଞ୍ଜାବାତ,ପ୍ରବଳବାୟୁ,ତୋଫାନ
ବାତଘ୍ନ—ତ୍ରି.ବିଂ. (ବାତ+ହନ୍+କ.ଅ) ବାତନାଶକ, ଯାହା ବାତରୋଗ ନାଶ କରେ ।
ବାତଘ୍ନୀ—ସ୍ତ୍ରୀ.ବି. (ବାତଘ୍ନ+ଈ) ଶାଳ- ପର୍ଣ୍ଣୀ, ଅଶ୍ୱଗନ୍ଧା, ଶିମୂଳୀ କ୍ଷୁପ ।
ବାତଚକ୍ର—କ୍ଳୀ. ବି. (କ.ଧା) ଜ୍ୟୋତି- ଷୋକ୍ତ ଯୋଗବିଶେଷ ।
ବାତଙ୍ଗିନୀ—ସ୍ତ୍ରୀ.ବି. ବାତିଙ୍ଗୀ,ବାଇଗଣ ।
ବାତଚଟକ—ପୁଂ. ବି. ଚଡ଼ିଇପକ୍ଷୀ, ବାତ୍ୟାଚଢ଼େଇ,(ଲ.ଅର୍ଥ)ମନକୁ ଅସ୍ଥିର କରିବା, କୌଣସି ବିଶେଷ ଚକ୍ରା ।
ବାତପ୍ରେରିତ—ତ୍ରି.ବିଂ.ବାୟୁଦ୍ୱାରାପ୍ରେରିତ
ବାତଜ—ତ୍ରି. ବିଂ. (ବାତ+ଜନ୍+ଅ) ବାତଦ୍ୱାରା ଜାତ,ଶରୀରସ୍ଥ ବାୟୁପ୍ରକୋ- ପରୁ ଜାତ, (ବି) ବାୟୁପୁତ୍ର,ହନୁମାନ୍ ।
ବାତଜବ—ପୁଂ. ବି. (୬ତତ୍) ବାୟୁର ବେଗ ବା ଗତି ।
ବାତଜିତ୍—ତ୍ରି.ବିଂ.(ବାତ+ଜି+କ୍ୱିପ୍) ବାତଘ୍ନ, ବାତନାଶକ,ବାତଜୟକାରୀ ।
ବାତଜ୍ୱର—ପୁଂ. ବି. ବାତଧାତୁ ପ୍ରକୋ- ପରୁ ଉତ୍ପନ୍ନ ଜ୍ୱର,(ଗ୍ରା.ବି)ଶ୍ଳୀପଦରୋଗ, ଏକପ୍ରକାର ଜର ।
ବାତତୂଳ—ବି. (କ.ଧା) ଶୂନ୍ୟମାର୍ଗରେ ଉଡ଼ୁଥିବା ବାୟୁ ତାଡ଼ିତ ବୁଢ଼ିଆଣୀ ।
ବାତତ୍ରାଣ—କ୍ଳୀ.ବି. ବାୟୁରୁ ରକ୍ଷାକରଣ- ଯୋଗ୍ୟ ପଦାର୍ଥ ।
ବାତଦେହୀ—ଗ୍ରା.ବି. ଯାହା ଦେହରେ ବାତଧାତୁ ପ୍ରବଳ ।
ବାତଧରିବା—ଗ୍ରା.ବି. ଆମବାତ ରୋଗର ଆକ୍ରମଣ ।
ବାତଧ୍ୱଜ—ପୁଂ.ବି. (ବ.ବ୍ରୀ) ମେଘ,ଧୂଳି,
ବାତନାଶନ—ତ୍ରି. ବିଂ. ବାତନାଶକ, ବାତଘ୍ନ ।
ବାତନ୍ଧମ—ତ୍ରି.ବିଂ.ବାୟୁଦ୍ୱାରା ସନ୍ତାଡ଼ିତ
ବାତପଟ—ପୁଂ. ବି.(କ.ଧା) ମରୁତ୍ପଟ, ପତାକା ।
ବାତପତି—ପୁଂ. ବି. ଶତାଜିତ୍ ରାଜାଙ୍କ ପୁତ୍ର (ଭୃଗୁବଂଶ) ।
ବାତପତ୍ନୀ—ସ୍ତ୍ରୀ.ବି. (୬ତତ୍) ଦିଗ ।
ବାତପାଳିତ—ପୁଂ.ବିଂ. ଗୋପାଳିତ ।
ବାତପାଣ୍ଡୁ—ପୁଂ.ବି.ବାତହେତୁ ପାଣ୍ଡୁ- ରୋଗ ।
ବାତପିତ୍ତ—କ୍ଳୀ. ବି. ( ଦ୍ୱନ୍ଦ୍ୱ ) ବାୟୁ ଓ ପିତ୍ତ, ବାତପିତ୍ତ ବୃଦ୍ଧି ଜନିତ ରୋଗ ।
ବାତପିତ୍ତକ—ତ୍ରି.ବିଂ. ବାୟୁ ଓ ପିତ୍ତଜ ବିକାର ।
ବାତପିତ୍ତକଫ—ବି. ଆୟୁର୍ବେଦ ମତେ ଶରୀରସ୍ଥ ତ୍ରିଧାତୁ ।
ବାତପିତ୍ତଘ୍ନ—ତ୍ରି.ବିଂ. ବାତପିତ୍ତ ନାଶକ ଗୁରୁପାକ ଦ୍ରବ୍ୟମାନ । [ ଜାତ ।
ବାତପିତ୍ତଜ—ତ୍ରି. ବିଂ. ବାୟୁ ଓ ପିତ୍ତରୁ
ବାତପୁତ୍ର—ପୁଂ.ବି. (୬ତତ୍) ଠକ,ବଟ ହନୁମାନ୍, ଭୀମସେନ ।
ବାତପୋଥ—ପୁଂ.ବି. (ବାତ+ପୁଥ+ ଅ) ପଳାଶବୃକ୍ଷ ।
ବାତପ୍ରକୃତି—ତ୍ରି. ବିଂ. ( ବ.ବ୍ରୀ )ବାୟୁ- ପ୍ରକୃତି, ଯେଉଁ ଲୋକର ଦେହରେ ବାତ ଧାତୁର ଆଧିକ୍ୟ ବା ପ୍ରକୋପ ଦେଖାଯାଏ । [ ଆଧିକ୍ୟ ।
ବାତପ୍ରକୋପ—ପୁଂ.ବି. (୬ତତ୍)ବାୟୁର
ବାତପ୍ରବଳ—ବିଂ.ବାୟୁ ପ୍ରଧାନ,ଯହିଁରେ ବାୟୁ ଅଧିକ ପରିମାଣରେ ଅଛି ।
ବାତପ୍ରମୀ—ବି. (ବାତ+ପ୍ର+ମା+ଈ) ବାତମୃଗ, ନକୁଳ, ଅଶ୍ୱ (ବିଂ)ବାୟୁବତ୍ ବେଗଗାମୀ ।
ବାତପ୍ରଶମକ—ବିଂ. (ବାତ+ପ୍ରଶମକ) ଯାହା ଦ୍ୱାରା ଦେହରେ ବାତ ଧାତୁର ପ୍ରକୋପ ଉପଶମିତ ହୁଏ ।
ବାତପ୍ରଶମନୀ—ସ୍ତ୍ରୀ.ବି. (ବାତ+ପ୍ରଶମନୀ) ଅରୁକ
ବାତଫୁଟ—ଗ୍ରା.ବି. କୁଷ୍ଠରୋଗବିଶେଷ, ବାତରକ୍ତ ।
ବାତଫୁଲ୍ଲ—ତ୍ରି.ବିଂ. ବାୟୁଦ୍ୱାରା ସ୍ଫୀତ ବା ପ୍ରଫୁଲ୍ଲିତ ।
ବାତଫୁଲ୍ଲାନ୍ତ୍ର—କ୍ଳୀ. ବି. ଫୁସ୍ଫୁସ୍, ବାତ- ରୋଗ, ଉଦରାଧ୍ମାନ । [ ଫୁଲା ।
ବାତଫୁଲ୍ଲାଭ—ବି. ବାୟୁ ଜନିତ ପେଟ-
ବାତମଜ—ପୁଂ.ବି. ବାତମୃଗ ଦେଖ ।
ବାତମଣ୍ଡଳୀ—ସ୍ତ୍ରୀ.ବି. (ବାତ+ମଣ୍ଡଳ+ ଈ) ବାତ୍ୟା, ଘୂର୍ଣ୍ଣିବାୟୁ, ବାତାବର୍ତ୍ତ, ଘୂର୍ଣ୍ଣିଆଭୂତ ।
ବାତମୃଗ—ପୁଂ.ବି.(କ.ଧା)ବାତାଭିମୁଖ- ଗାମୀ ମୃଗ, ବାତପ୍ରମୀ,ବାଉଟିଆ, ଏକ- ପ୍ରକାର ମୃଗ । [ ବିଶେଷ ।
ବାତଯନ୍ତ୍ର—କ୍ଳୀ. ବି. ବାୟୁଚାଳିତ ଯନ୍ତ୍ର-
ବାତଯାନ—ବି. (ବ.ବ୍ରୀ) ମୃଗ ।
ବାତର—ତ୍ରି.ବିଂ. (ବାତ+ର)ବାୟୁଯୁକ୍ତ ବାୟୁମୟ, ଶୀଘ୍ରଗତି । [ ଗାମୀ ।
ବାତରଂହସ୍—ତ୍ରି.ବିଂ. ବାୟୁପରି ବେଗ-
ବାତରକ୍ତ—କ୍ଳୀ.ବି.(ବାତ+ରକ୍ତ)କୁପିତ ବାୟୁଦ୍ୱାରା ଦୂଷିତ ହେବା ରକ୍ତଜନିତ ରୋଗବିଶେଷ । [ ଶୁଙ୍ଘା ।
ବାତରକ୍ତଘ୍ନ—ପୁଂ.ବି.କୁଳୁରଦ୍ରୁ,ପୋକ-
ବାତରକ୍ତାରି—ପୁଂ. ବି. ପିତ୍ତଘ୍ନୀଲତା, ଗୁଳୁଚୀ, (ବିଂ) ବାତରକ୍ତନାଶକ ।
ବାତରଙ୍ଗ—ପୁଂ.ବି.ଅଶ୍ୱତ୍ଥବୃକ୍ଷ,.ପିପ୍ପଳ, ଚଳଦଳ ।
ବାତରଥ—ପୁଂ. ବି. (୬ତତ୍) ମେଘ ।
ବାତରାୟଣ—ପୁଂ. ବି. ନିଷ୍ପ୍ରୟୋଜନ ପୁରୁଷ, କରତ, ଅଳସୁଆ ବ୍ୟକ୍ତି, କାଣ୍ଡଶର, କରପାତ୍ର, ଲୋଟା, କୂଟ, ପର୍ବତାଦିର ଚୂଡ଼ା,ପର ଫନ୍ଦନ,ସରଳ- ଦ୍ରୁମ, ସିଧାଗଛ, ଉନ୍ମତ୍ତ ପୁରୁଷ ।
ବାତରୂଷ—ବି(ବାତ+ରୂଷ)ତୋଫାନ, ଇନ୍ଦ୍ରଧନୁ, ଲାଞ୍ଚ, ଉତ୍କୋଚ ।
ବାତରେତାଃ—ପୁଂ.ବିଂ. ବାତାଧିକ୍ୟ ଶୁକ୍ର ବିଶିଷ୍ଟ, ଯାହାର ଶୁକ୍ରରେ ବାୟୁରୋଗ ଅଧିକ ପରିମାଣରେ ଅଛି ।
ବାତରୋଗ—ପୁଂ.ବି.ବାୟୁ ହେତୁ ରୋଗ, ବାତବ୍ୟାଧି ।
ବାତରୋଗୀ—ପୁଂ.ବିଂ.ବାତରୋଗ ଦ୍ୱାରା

ଆକ୍ରାନ୍ତ (ବ୍ୟକ୍ତି) ।
ବାତରେହ୍ଣୀ—ସ୍ତ୍ରୀ.ବି.ଗଳରୋଗବିଶେଷ
ବାତର୍ଦ୍ଧି—ପୁଂ.ବି. କାଷ୍ଠ ଓ ଲୌହ ଏହି ଉଭୟରେ ନିର୍ମିତ ପାତ୍ର ।
ବାତଳ—ପୁଂ. ବି. (ବାତ+ଲା+ଅ) ଚଣକ, ଚଣା, ପବନ, ବୁଟ, (ବିଂ) ବାୟୁକାରକ, ବାୟୁବର୍ଦ୍ଧକ ।
ବାତଳମଣ୍ଡଳୀ—ସ୍ତ୍ରୀ. ବି. ବାତ୍ୟା ।
ବାତଳା—ସ୍ତ୍ରୀ.ବି.ଯୋନିରୋଗବିଶେଷ ।
ବାତବର୍ଷ—ପୁଂ. ବି. ବାତବୃଷ୍ଟି, ବାୟୁ ଓ ବୃଷ୍ଟି ।
ବାତବସ୍ତି—ପୁଂ. ବି ମୂତ୍ରାଘାତ ରୋଗବିଶେଷ, ମୂତ୍ରରୋଧ ।
ବାତବାନ୍—ପୁଂ. ବିଂ. (ବାତ+ବତ୍) ବାୟୁଯୁକ୍ତ ।
ବାତବିକାର—ପୁଂ.ବି. (ବାତ+ବିକାର) ବାତରୋଗର ବିକାର ।
ବାତବିକାରୀ—ତ୍ରି.ବିଂ.ବାତବିକାରଯୁକ୍ତ ।
ବାତବିଘୂର୍ଣ୍ଣ—ବିଂ. (୩ତତ୍) ବାୟୁ ଦ୍ୱାରା ଆନ୍ଦୋଳିତ ।
ବାତବୃଦ୍ଧି—ବି.(୬ତତ୍)ଶରୀରରେ ବାତ ଧାତୁର ପ୍ରାବଲ୍ୟ, କୋଷବୃଦ୍ଧି ।
ବାତବେଗ—ପୁଂ. ବି. (୬ତତ୍)ବାୟୁବେଗ, ଧୃତରାଷ୍ଟ୍ରଙ୍କର ଏକ ପୁତ୍ର ।
ବାତବୈରୀ—ପୁଂ.ବି.ବାଦାମଗଛ, ଏରଣ୍ଡ ବୃକ୍ଷ, ବାୟୁର ଶତ୍ରୁ ।
ବାତବ୍ୟାଧି—ପୁଂ. ବି. ବାତରୋଗ ।
ବାତଶୀର୍ଷ—କ୍ଲୀ. ବି. (ବାତ+ଶୀର୍ଷ) ନାଭିର ଅଧୋଭାଗ, ତଳପେଟ, ବସ୍ତି ।
ବାତଶୂଳ—କ୍ଲୀ. ବି. (କ.ଧା) ବାତହେତୁ ଶୂଳରୋଗ, ପେଟମର ସହିତ ପେଟ-ଫମ୍ପା ।
ବାତଶୋଣିତ—କ୍ଲୀ.ବି(ବାତ+ଶୋଣିତ) ବାତରକ୍ତ ରୋଗ ।
ବାତଶ୍ଳେଷ୍ମଜ୍ୱର—ପୁଂ.ବି ଜ୍ୱରରୋଗବିଶେଷ
ବାତଶ୍ଳେଷ୍ମା—ବି. ବାତ ଓ କଫଜନିତ ରୋଗ, ବାତକଫ ।
ବାତସଖ—ପୁଂ.ବି (ବାତ+ସଖା)ବାୟୁ-ସଖା, ଅଗ୍ନି ।

ବାତସଙ୍ଗ—ପୁଂ. ବି. ବାତରୋଗ ।
ବାତସହ—ତ୍ରି.ବିଂ. (ବାତ+ସହ୍+କ. ଅ) ବାୟୁ ରୋଗଗ୍ରସ୍ତ, ଅତ୍ୟନ୍ତ ବାୟୁ-ଯୁକ୍ତ, ବାୟୁବେଗ ସହନଶୀଳ, ବାତ-ରୋଗୀ ।
ବାତସା—ଗ୍ରା. ବି. ଫେଣୀ ।
ବାତସାର—ପୁଂ. ବି. ବିଲ୍ୱବୃକ୍ଷ ।
ବାତସାରଥି—ପୁଂ. ବି. (ବ.ବ୍ରୀ)ଅଗ୍ନି ।
ବାତସ୍କନ୍ଧ—ପୁଂ. ବି. ଆକାଶର ଅଂଶ-ବିଶେଷ, ଯେଉଁ ସ୍ଥାନରେ ବାୟୁ ବହେ ।
ବାତସ୍ତମ୍ଭନିକା—ସ୍ତ୍ରୀ.ବି.ଚିଞ୍ଚ,ତେନ୍ତୁଳି ।
ବାତହତ—ତ୍ରି. ବିଂ. ବାୟୁ ଦ୍ୱାରା ହତ, ବାତୁଳ ।
ବାତହା—ତ୍ରି.ବିଂ. (ବାତ+ହନ୍+ଆ) ବାତଘ୍ନ, ବାତ ନାଶକଔଷଧ ।
ବାତହୁଡ଼ା—ସ୍ତ୍ରୀ. ବି. ଦାତ୍ୟାପିଚ୍ଛିଲ ଶ୍ଳୋଟିକା, ବାମା, ଯୋଷିତ୍ ।
ବାତା—ସ୍ତ୍ରୀ. ବିଂ. (ବାତ+ଆ)ଗତା ।
ବାତାଖ୍ୟ—କ୍ଲୀ. ବି. (ବାତ+ଆଖ୍ୟା) ବାସ୍ତୁବିଶେଷ, ପୂର୍ବ ଦକ୍ଷିଣଦିଗସ୍ଥ ଗୃହ, (ବିଂ) ବାତ ଆଖ୍ୟାଯୁକ୍ତ, ବାତ ନାମ-ବିଶିଷ୍ଟ ।
ବାତାଜୀର୍ଣ୍ଣ—ବି. (କ.ଧା) ବାତଜନିତ ଅଜୀର୍ଣ୍ଣ ରୋଗ ।
ବାତାଟ—ପୁଂ. ବି. (ବାତ+ଅଟ୍+କ. ଅ) ସୂର୍ଯ୍ୟାଶ୍ୱ, ବାତମୃଗ, ବାଉଁଶିଆ ।
ବାତାଣ୍ଡ—ପୁଂ. ବି. (ବାତ+ଅଣ୍ଡ)ମୁଷ୍କ ରୋଗବିଶେଷ, ଅଣ୍ଡକୋଷ ରୋଗ ।
ବାତାତିସାର—ପୁଂ. ବି. (ବାତ+ଅତି-ସାର) ବାୟୁହେତୁ ଅତିସାର ରୋଗ ।
ବାତାତ୍ମକ—ପୁଂ, ବିଂ. (ବାତ+ଆତ୍ମକ) ବାତପ୍ରକୃତିକ ।
ବାତାତ୍ମଜ—ପୁଂ. ବି. (ବାତ+ଆତ୍ମଜ) ହନୁମାନ୍, ଭୀମସେନ ।
ବାତାଦ—ପୁଂ. ବି. (ବାତ+ଅଦ୍+ଅ) ଫଳ ବୃକ୍ଷବିଶେଷ, ବାଦାମଗଛ ।
ବାତାଧିକ୍ୟ—ବି. (୬ତତ୍) ଶରୀରରେ କୁପିତ ବାୟୁର ଆଧିକ୍ୟ ବା ପ୍ରକୋପ ।
ବାତାଧିପ—ପୁଂ, ବି. (ବାତ+ଅଧିପ) ବାୟୁର ଅଧିପତି ।

ବାତାଧ୍ୱା—ପୁଂ.ବି. ବାତାୟନ,ଝରକା ।
ବାତାପହ—ତ୍ରି.ବିଂ. (ବାତ+ହନ୍+ଅ) ବାତଘ୍ନ, ବାତନାଶକ ।
ବାତାପି—ପୁଂ.ବି(ବାତ+ଅପ୍+କ.ଇ) ଅସୁରବିଶେଷ, ସ୍ଥୂଳ ଶରୀର, (ଗ୍ରା.ବି) ଅମ୍ଳ ଫଳବିଶେଷ, ଏକପ୍ରକାର ବଡ଼ ଲେମ୍ବୁ । [ ଛୁଙ୍ଗ ।
ବାତାପିଚ୍ଛିର—ଗ୍ରା.ବି.ପତଳା ଫଳାଯୁକ୍ତ
ବାତାପିଦ୍ୱିଟ୍—ପୁଂ. ବି. ଅଗସ୍ତ୍ୟ ମୁନି ।
ବାତାପିସୂଦନ—ପୁଂ.ବି. ଅଗସ୍ତ୍ୟ ମୁନି ।
ବାତାପିହା—ପୁଂ. ବି. ଅଗସ୍ତ୍ୟ ମୁନି ।
ବାତାପ୍ୟ—ବି. ଜଳ, ସୋମ ।
ବାତାବର୍ତ୍ତ—ପୁଂ. ବି. (୬ତତ୍) ଆବର୍ତ୍ତ-ଯୁକ୍ତ ବାୟୁ, ଘୂର୍ଣ୍ଣିବାୟୁ ।
ବାତାଭିଷ୍ୟନ୍ଦ—ପୁଂ.ବି, ବାୟୁହେତୁ ଆଖି ରୋଗବିଶେଷ ।
ବାତାଭ୍ର—କ୍ଲୀ.ବି.ବାୟୁ ସଞ୍ଚାଳିତ ମେଘ-ମାଳା ।
ବାତାମ—ପୁଂ.ବି. ବାଦାମ ।
ବାତାମୋଦା—ସ୍ତ୍ରୀ.ବି. (ବ.ବ୍ରୀ)କସ୍ତୁରୀ ।
ବାତାୟୁ—କ୍ଲୀ.ବି. ପତ୍ର, ଗଛର ପତ୍ର ।
ବାତାୟନ—କ୍ଲୀ.ବି. (ବାତ+ଅୟନ) ଗବାକ୍ଷ, ଝରକା, (ପୁଂ) ଘୋଟକ, ଅନିଳଙ୍କର ଗୋତ୍ରାପତ୍ୟ ।
ବାତାୟନୀୟ—ପୁଂ.ବି. ବାତାୟନ ପ୍ରବ-ର୍ତ୍ତିତ ବେଦର ଶାଖାବିଶେଷ ।
ବାତାୟୁ—ପୁଂ.ବି. (ବାତ+ଅୟ୍+କ. ଉ) ହରିଣ, ମୃଗ ।
ବାତାରି—ପୁଂ.ବି. (ବାତ+ଅରି)ଜଡ଼ା-ଗଛ, ଶତମୂଳୀ, ପୁନର୍ନବା, ଶେଫା-ଳିକା, ଯବାନୀ, ଭାର୍ଗୀ, ସ୍ନୁହୀ, ବିଡ଼ଙ୍ଗ, ଶୂରଣ ଭଲ୍ଲାତକ, ଶତାବରୀ, ଶ୍ୱେତ-ନିର୍ଗୁଣ୍ଡୀ, ପୀତ ଲୋଧ୍ର, ଟୁଙ୍କୁରସୁଣ, ତିଳକବୃକ୍ଷ, ପୃଥ୍ୱୀଶିମ୍ବ, ଶ୍ୟୋଣାକ ଶ୍ୱେତଏରଣ୍ଡ, ନୀଳବୃକ୍ଷ, ଔଷଧବିଶେଷ, କଦଳୀଗଛ, କଉଞ୍ଚ, ବାଦୁଡ଼ି,ଚେମେଣି, ଚଢ଼େଇ, କରୁକାଳତା ।
ବାତାଶ୍ଚଣ୍ଡୁଳା—ସ୍ତ୍ରୀ.ବି. ବିଡ଼ଙ୍ଗ ।

ବାତାଳୀ—ସ୍ତ୍ରୀ. ବି. ( ବାତ+ଆଳୀ ) ବାତ୍ୟା, ବାୟୁ, ଘୂର୍ଣ୍ଣିବାୟୁ ।
ବାତାଶ—ପୁଂ.ବି. (ବାତ+ଅଶ୍+ଅ) ପବନାଶ, ସର୍ପ ।
ବାତାଶୀ—ବିଂ. (ବାତ+ଅଶ୍+ଇନ୍) ପବନାଶୀ, ସର୍ପ ।
ବାତାଶ୍ୱ—ପୁଂ.ବି. (ବାତ+ଅଶ୍ୱ) ଦ୍ରୁତଗାମୀ ଅଶ୍ୱ ।
ବାତାଷ୍ଠୀଳା—ସ୍ତ୍ରୀ.ବି. (ବାତ+ଅଷ୍ଠୀଳା) ବାତବ୍ୟାଧି ରୋଗବିଶେଷ । [ ମୃଗ ।
ବାତାସନ—ବି. (କ.ଧା) ମେଘ,(ଗ୍ରା.ବି)
ବାତାସହ—ତ୍ରି.ବିଂ. (ବାତ+ଆ+ସହ୍+ଅ) ବାତୁଳ ।
ବାତାସ୍ର—କ୍ଲୀ.ବି. (ବାତ+ଅସ୍ର) ବାତରକ୍ତ, ବାତରକ୍ତ ରୋଗ ।
ବାତାହତ—ତ୍ରି.ବିଂ.(୬ତତ୍) ବାୟୁତାଡ଼ିତ
ବାତି—ପୁଂ.ବି.(ବା+ଅତି) ସୂର୍ଯ୍ୟ, ଚନ୍ଦ୍ର, ବାୟୁ ।
ବାତିକ—ପୁଂ.ବି. (ବାତ+ଇକ) ବାୟୁଜ ବ୍ୟାଧି, ବାୟୁ ଶମନ ଓ କୋପନ ଦ୍ରବ୍ୟ (ବିଂ) ବାତିକ ରୋଗାକ୍ରାନ୍ତ, ବାତୁଳ ।
ବାତିକଖଣ୍ଡ—ପୁଂ.ବି. ବାତିକଷଣ୍ଡ ଦେଖ
ବାତିକପ୍ରିୟ—ପୁଂ.ବି. ଅମ୍ଳବେତସ ।
ବାତିକଷଣ୍ଡ—ପୁଂ.ବି. ଯାହାର ବାୟୁ ଓ ଅଗ୍ନିର ଦୋଷହେତୁ ବୃଷଦ୍ୱୟ ନଷ୍ଟ ହୋଇଅଛି ।
ବାତିଗ—ପୁଂ.ବି. ( ବାତି+ଗମ୍+ଅ ) ଭଣ୍ଟାକୀ, ବାଇଗଣ (ବିଂ) ଧାତୁବାଦୀ ।
ବାତିଗମ—ପୁଂ.ବି. ବାର୍ତ୍ତାକୁ, ବାଇଗଣ ।
ବାତିଙ୍ଗନ—ପୁଂ.ବି. ବାର୍ତ୍ତାକୁ, ବାଇଗଣ ।
ବାତିଲ୍(ଲ)—ଯା. ବିଂ. ଗ୍ରହଣର ଅଯୋଗ୍ୟ, ଅଗ୍ରାହ୍ୟ, ଅସାର, ମିଥ୍ୟା, ଅସିଦ୍ଧ, ଅକର୍ମଣ୍ୟ ଓ ନିଷ୍ଫଳ, ନାମଞ୍ଜୁର କରାଯିବା ।
ବାତୀସୃ—କ୍ଲୀ.ବି. କାଞ୍ଜିକ, କାଞ୍ଜି ।
ବାତୁଆ—ଗ୍ରା.ପୁଂ. ବିଂ. ବାତରୋଗଗ୍ରସ୍ତ, ଯାହାକୁ ବାତ ମାରେ ।
ବାତୁ(ତୂ)ଳ—ପୁଂ.ବି. ( ବାତ+ଉଲ ) ବାତ୍ୟା, ( ପୁଂ.ବିଂ ) ବାତରୋଗଗ୍ରସ୍ତ, ଉନ୍ମତ୍ତ, ପାଗଳ ।
ବାତୁଳା—ଗ୍ରା.ପୁଂ.ବିଂ. ପାଗଳ, ବାୟା ।
ବାତୁଳି—ବି. ତରୁତୂଳିକା, ବାଦୁଡ଼ି ।
ବାତୂକ—ପୁଂ.ବି. ମତ୍ସ୍ୟବିଶେଷ ।
ବାତୋର୍ମି—ତ୍ରି.ବିଂ. ବାତଜ ।
ବାତୋଦର—କ୍ଲୀ.ବି. (ବାତ+ଉଦର) ବାତଜନିତ ଉଦର ରୋଗବିଶେଷ ।
ବାତୋନ—ତ୍ରି.ବିଂ. ବାୟୁସ୍ଥାନ ।
ବାତୋନା—ସ୍ତ୍ରୀ.ବି. ଗୋଜିହ୍ୱା ଦେଖ ।
ବାତୋଲ୍ବଣ—ତ୍ରି.ବିଂ. ବାତାଧିକ, (ପୁଂବି) ସାନ୍ନିପାତିକ ଜ୍ୱରବିଶେଷ ।
ବାତ୍ୟ—ତ୍ରି.ବିଂ. ବାୟୁସମ୍ବନ୍ଧୀୟ, ବାୟୁଭବ ।
ବାତ୍ୟା—ସ୍ତ୍ରୀ.ବି. (ବାତ+ଯ+ଆ) ବାତସମୂହ, ପ୍ରବଳବାୟୁ, ଝଡ଼, ଘୂର୍ଣ୍ଣିବାୟୁ ।
ବାତ୍ୟାକୁଳ—ବିଂ.(୩ତତ୍) ଝଟିକାକୁଳ, ଝଟିକାଦ୍ୱାରା ପୀଡ଼ିତ ।
ବାତ୍ୟାବିଚଳିତ—ବିଂ. (୩ତତ୍) ପ୍ରବଳ ବାୟୁଦ୍ୱାରା ସ୍ଥାନଚ୍ୟୁତ ।
ବାତ୍ସ—ପୁଂ. ବି. ( ବତ୍ସ+ଅ ) ଗୋତ୍ର ପ୍ରବର୍ତ୍ତକ ଋଷି ।
ବାତ୍ସକ—କ୍ଲୀ.ବି.(ବତ୍ସ+କ) ବତ୍ସସମୂହ, କୁଟଜସମ୍ବନ୍ଧୀୟ ।
ବାତ୍ସଲ୍ୟ—ବି. (ବତ୍ସଲ+ଯ) ବତ୍ସଲତା, ପୁତ୍ରାଦିଙ୍କ ପ୍ରତି ଗୁରୁଜନଙ୍କ ପ୍ରେମ, ସ୍ନେହ, ବତ୍ସଲରସ ।
ବାତ୍ସଲ୍ୟଭକ୍ତି—ଗ୍ରା.ବି. ଶ୍ରୀକୃଷ୍ଣଙ୍କ ପ୍ରତି ନନ୍ଦ ଓ ଯଶୋଦାଙ୍କର ପୁତ୍ରସ୍ନେହ ମିଶ୍ରିତ ଭକ୍ତି ।
ବାତ୍ସଲ୍ୟରସ—ବି. ଅଳଙ୍କାର ଶାସ୍ତ୍ରୋକ୍ତ ନବରସାତିରିକ୍ତ ରସବିଶେଷ ।
ବାତ୍ସୀ—ସ୍ତ୍ରୀ.ବି. ବାତ୍ସ୍ୟଶାଖା ସମ୍ଭୂତା ସ୍ତ୍ରୀ
ବାତ୍ସୀପୁତ୍ର—ପୁଂ. ବି. ଆଚାର୍ଯ୍ୟବିଶେଷ, ନାପିତ ।
ବାତ୍ସ୍ୟ—ପୁଂ.ବି. ( ବତ୍ସ+ଯ ) ବତ୍ସ, ମୁନିଙ୍କ ପୁତ୍ର, ଗୋତ୍ରବିଶେଷ, ଜନୈକ ଜ୍ୟୋତିର୍ବିଦ୍ ।
ବାତ୍ସ୍ୟାୟନ—ପୁଂ.ବି. (ବାତ୍ସ୍ୟ+ଆୟନ) ବାତ୍ସମୁନିଙ୍କ ପୁତ୍ର, କାମସୂତ୍ର ରଚୟିତା
ବାତ୍ସ୍ୟାୟନୀୟ—ତ୍ରି.ବିଂ. ବାତ୍ସ୍ୟାୟନକୃତ କାମସୂତ୍ର ।
ବାଥୁଡ଼ି—ପ୍ରା.(ମୟୂରଭଞ୍ଜ)ବି. ମୟୂରଭଞ୍ଜ ଓ କେନ୍ଦୁଝରର ଆଦିମ ଜାତିବିଶେଷ
ବାଦ୍—ଯା.ଅବ୍ୟ. ଉତ୍ତାରୁ, ପରେ, ଅନନ୍ତର, ପୂର୍ବବର୍ତ୍ତୀ ସମୟରେ, ସୀମାରୁ ବାହାରେ, ବାକି, ଅବଶିଷ୍ଟ, ବହିର୍ଭୂତ, ବିୟୋଗ । [ ଣିବା ।
ବାଦ୍‌ଦେବା—ଗ୍ରା. କ୍ରି. ଫେଡ଼ିବା, ନଗ-
ବାଦ୍‌ନୁମା—ଯା.ବି. ପବନ ବହୁଥିବା ଦିଗ ଜଣାଇବାପାଇଁ ବ୍ୟବହୃତ ଯୁକ୍ତିଯନ୍ତ୍ର ।
ବାଦ୍‌ଲ—ପ୍ରା. (ସମ୍ବ)ବି. ବାଦୁଡ଼ି, ଚେମେଣ୍ଟି
ବାଦ୍‌ସା—ଯା. ବି. ବାଦ୍‌ଶାହା, ସମ୍ରାଟ୍, ରାଜା ।
ବାଦ—ପୁଂ. ବି. (ବଦ୍+ଭା.ଅ) ଯଥାର୍ଥ ବୋଧେଚ୍ଛୁ ବାକ୍ୟ, ଉକ୍ତି, କଥନ, ବିତର୍କ, ପ୍ରବାଦ, ଯୁକ୍ତିଯୁକ୍ତ ବିଚାର, (ମୀ.ଯ) ବାଦ୍ୟ ପ୍ରମାଣିତ ପ୍ରତିଜ୍ଞା, ବର୍ଣ୍ଣନା, ବାଦାନୁବାଦ, ଉତ୍ତର, ବ୍ୟାଖ୍ୟା, ଶବ୍ଦ, ଧ୍ୱନି, ଜନଶ୍ରୁତି, (ଗ୍ରା.ବି) ବିବାଦ, କଳି, ଝଗଡ଼ା ।
ବାଦକ—ପୁଂ.ବିଂ. ( ବାଦ+କ.ଅକ ) ବାଦ୍ୟକର, ଯେ ବଜାଏ, (ବି) ବକ୍ତା ।
ବାଦଚଞ୍ଚୁ—ବିଂ. (ବାଦ+ଚଞ୍ଚୁ) ସରସ ଉତ୍ତର ଦେବାରେ ପଟୁ ।
ବାଦନ—କ୍ଲୀ.ବି.(ବାଦ+ମି.ଅନ) ବାଦ୍ୟ, ବୀଣାଦି ବାଦ୍ୟଯନ୍ତ୍ର, (ଭା.ଅନ) ବାଦ୍ୟ ବଜାଇବା ।
ବାଦନକ—କ୍ଲୀ.ବି. (ବାଦନ+କ) ବାଦ୍ୟ
ବାଦନଦଣ୍ଡ—ପୁଂ. ବି. ବେହେଲାଦି ବଜାଇବାର ଛଡ଼, ସାରଙ୍ଗୀ ।
ବାଦନଯନ୍ତ୍ର—ବି. ବାଦ୍ୟଯନ୍ତ୍ର, ବାଜା ।
ବାଦନା—ପ୍ରା.(ଗଞ୍ଜାମ) ବି. କଚେରିରେ ପକ୍ଷମାନଙ୍କ ଜବାବ ସୁଆଲ ।
ବାଦପ୍ରତିବାଦ—ବି. (ଦ୍ୱନ୍ଦ୍ୱ) ଉତ୍ତର ଓ ପ୍ରତ୍ୟୁତ୍ତର, ତର୍କବିତର୍କ ।
ବାଦଭୂମି—ସ୍ତ୍ରୀ.ବି. ଯେଉଁଠାରେ ବାଦାନୁବାଦ ହୁଏ ।
ବାଦମେଣ୍ଟା(ଣ୍ଟେ)ଇବା—ଗ୍ରା.କ୍ରି. ବିବାଦ

ମୀମାଂସା କରିବା ।
ବାଦମେଣ୍ଟିବା—ଗ୍ରା. କ୍ରି. ବିବାଦର ମୀମାଂସା ।
ବାଦର—ତ୍ରି.ବଂ. (ବଦର + ଅ)କାର୍ପାସ-ନିର୍ମିତ (ବସ୍ତ୍ରାଦି), (ପୁଂ.ବି) ସୂତାଲୁଗା, କପାଗଛ, ବଦରୀବୃକ୍ଷ, ବରକୋଳି ଓ ତାହାର ଗଛ, ବଦରିକାଶ୍ରମ, ଦକ୍ଷିଣାବର୍ତ୍ତି ଶଙ୍ଖ, ରେଶମ, ଜଳ ।
ବାଦରଙ୍ଗ—ପୁଂ.ବି. (ବ.ଶ୍ରୀ) ଅଶ୍ୱତ୍ଥବୃକ୍ଷ
ବାଦରତ—ତ୍ରି.ବଂ.ତର୍କ ବା ମୀମାଂସାରେ ନିଯୁକ୍ତ ।
ବାଦରା—ସ୍ତ୍ରୀ.ବି. (ବାଦର + ଆ)କାର୍ପାସ-ବୃକ୍ଷ, କପା । [ ଦେବ ।
ବାଦରାୟଣ—ପୁଂ. ବି. (ବ.ଶ୍ରୀ)ବ୍ୟାସ-
ବାଦରାୟଣି—ପୁଂ.ବି. (ବାଦର + ଅୟନ + ଇ) ବ୍ୟାସପୁତ୍ର ଶୁକଦେବ, ବ୍ୟାସଦେବ ।
ବାଦରିକ—ତ୍ରି.ବଂ. ( ବଦର + ଇକ ) ବରକୋଳିସମ୍ବନ୍ଧୀୟ, (ପୁଂ.ବି) ବରକୋଳି ସଂଗ୍ରାହକ ବ୍ୟକ୍ତି, ବରକୋଳି ବିକେତା ।
ବାଦଲ—କ୍ଳୀ.ବି. ମଧୁଯଷ୍ଟିକା,ଯଷ୍ଟିମଧୁ , (ଗ୍ରା.ବି) ମେଘ, ମେଘଆପାଗ ।
ବାଦବତୀ—ସ୍ତ୍ରୀ.ବି. ନଦୀବିଶେଷ ।
ବାଦବାଦ—ବି. ତର୍କ ।
ବାଦବିବାଦ—ବି. ବାଦାନୁବାଦ, ଉକ୍ତି-ପ୍ରତ୍ୟୁକ୍ତି, କଳିକଜିଆ, ବାଗ୍‌ଯୁଦ୍ଧ ।
ବାଦବୁଦିଆ—ଗ୍ରା.ବଂ.(ଦୁଇଜଣ) ପରସ୍ପର ମଧ୍ୟରେ ବିବାଦ କରୁଥିବା, ପ୍ରତିଦ୍ୱନ୍ଦ୍ୱୀ, ପ୍ରତିଯୋଗିତା କ୍ଷେତ୍ରରେ ଛିଡ଼ା ହୋଇଥିବା, ଈର୍ଷାନ୍ୱିତ ।
ବାଦସାଧନ—କ୍ଳୀ.ବି. ଅପକାରକରଣ, ତର୍କକରଣ ।
ବାଦସାଧିବା—ଗ୍ରା. କ୍ରି. ଦାଉ ସାଧିବା, ପୂର୍ବର ଅବୈଧ ସୁଝିବା, ଅନିଷ୍ଟ ନେବା ।
ବାଦାନୁବାଦ—କ୍ଳୀ. ବି. (ବାଦ + ଅନୁବାଦ) ତର୍କବିତର୍କ, କଳହ, ବାଦପ୍ରତିବାଦ, ବାକ୍‌ଯୁଦ୍ଧ ।
ବାଦାନ୍ୟ—ତ୍ରି. ବଂ. ( ବଦାନ + ଯ ) ବହୁପ୍ରଦ । [ ବାଦାମ ।
ବାଦାମ—କ୍ଳୀ.ବି. ସ୍ୱନାମଖ୍ୟାତ ଫଳ,
ବାଦାମି—ଗ୍ରା.ବି. କାବୁଲି ବାଦାମି ଫଳପରି ଫଳା ହଳଦିଆ ମିଶା ନାଲିରଙ୍ଗବିଶିଷ୍ଟରଙ୍ଗ ।
ବାଦାଲ—ପୁଂ.ବି. ବାଳଆମାଛ, ସହସ୍ରଦଂଷ୍ଟ୍ରା, (ପ୍ରା. ହି.ବି) ବାଡ଼ ।
ବାଦି—ବଂ. (ବଦ୍ + ଇ)ପଣ୍ଡିତ,ବିଦ୍ୱାନ୍, (ବି) ମୃଦଙ୍ଗର ଝାଣି ଚମଢ଼ଉଣ୍ଡ, (ପ୍ରା. ହି.ବି) ସମତଳ ଶସ୍ୟକ୍ଷେତ୍ର ।
ବାଦିକ—ପୁଂ.ବଂ. (ବାଦ+ଇକ)ତାର୍କିକ
ବାଦିତ—ତ୍ରି.ବଂ. (ବାଦ + ର୍ମ.ତ)ଶବ୍ଦିତ, ନିନାଦିତ, ବଜାଯାଉଥିବା,ଅନ୍ୟଦ୍ୱାରା ଉଚ୍ଚାରିତ ।
ବାଦିତବ୍ୟ—କ୍ଳୀ.ବି. ବାଦନ, ବାଦ୍ୟ ।
ବାଦିତ୍ର—କ୍ଳୀ.ବି. ବାଦ୍ୟଯନ୍ତ୍ର, ବାଜଣା ।
ବାଦିନକ—ଗ୍ରା.ବଂ. ବାଦ୍ୟକର ।
ବାଦିର—କ୍ଳୀ.ବି.ବଦରୀସଦୃଶ ସୂକ୍ଷ୍ମ ଫଳବୃକ୍ଷ ।
ବାଦିରାଟ୍—ପୁଂ. ବି. ମଞ୍ଜୁଘୋଷ ।
ବାଦିଶ—ତ୍ରି. ବଂ. ସାଧୁବାଦୀ ।
ବାଦୀ—ପୁଂ. ବଂ. (ବଦ୍ + ଇନ୍) ବକ୍ତା, ଅର୍ଥୀ, ବିବାଦକର୍ତ୍ତା, ପ୍ରତିକୂଳ, ଅନିଷ୍ଟକାରୀ, ( ବି ) ସଙ୍ଗୀତର ପ୍ରଧାନ ସ୍ୱର, ମୁଦ୍ଦେଇ,ବିପକ୍ଷ,ଶତ୍ରୁ ।
ବାଦୀଜମି—ପ୍ରା. (ସିଂହଭୂମ)ବି.ସମତଳସ୍ଥ ଧାନଜମି ।
ବାଦୀପାଲି—ଗ୍ରା. ବି. ଯେଉଁ ପାଲିରେ ଏକାଧିକ ପାଲାବାଲା ଦଳ ଆପଣା ଆପଣାର ଯୋଗ୍ୟତା ଦେଖାନ୍ତି, ଲଢେଇ ପାଲି ।
ବାଦୀପ୍ରତିବାଦୀ—ବି. ମକଦ୍ଦମାର ପ୍ରଥମ ଓ ଦ୍ୱିତୀୟ ପକ୍ଷ ।
ବାଦୀଭଗାରୀ—ଗ୍ରା. ବି. ଶତ୍ରୁ ।
ବାଦୀଶ୍ୱର—ପୁଂ.ବି. ବାଦୀରାଜ,ସଙ୍ଗୀତର ପ୍ରଧାନସ୍ୱର ।
ବାଦୁଆ—ଗ୍ରା.ପୁଂ.ବଂ. ଦ୍ୱେଷୀ,ବିରୋଧୀ, କଳହପ୍ରିୟ, ବିବାଦପ୍ରିୟ ।
ବାଦୁଡ଼—ଗ୍ରା. ବି. ଚେମେଣିଠାରୁ ବଡ଼ ଚମଡ଼ା ଡେଣାଯୁକ୍ତ ସ୍ତନ୍ୟପାୟୀ ଜନ୍ତୁ ବିଶେଷ, ଘଣ୍ଟିଆବାଦୁଡ଼ ।
ବାଦୁଲି—ପୁଂ. ବି.ବୃକ୍ଷ ମିଶ୍ର ପୁଷ୍ପ ବିଶେଷ, (ପ୍ରା. ସମ୍ବ ଓ ବାମଣ୍ଡା. ବି) ବାଦୁଡ଼ ।
ବାଦ୍ୟ—କ୍ଳୀ. ବି. (ବାଦ + ର୍ମ.ଯ) ଯନ୍ତ୍ରବାଦନ, ବାଦନ, ବାଜା,ବାଜଣା,(ବଂ) ବାଦନୀୟ, ବାଦନଯୋଗ୍ୟ ।
ବାଦ୍ୟକ—ପୁଂ. ବି. (ବାଦ୍ୟ + କ) ବାଜା ବଜାଇବା ଲୋକ ।
ବାଦ୍ୟକର—ପୁଂ. ବଂ(ବାଦ୍ୟ + କୃ + କ. ଅ)ଯେ ବାଜା ବଜାଏ, ବାଦକ, ଯେ ବାଦ୍ୟଯନ୍ତ୍ର ନିର୍ମାଣ କରେ ।
ବାଦ୍ୟଧ୍ୱନି—ବି.(୬ତତ୍ପୁ)ବାଜାର ଶବ୍ଦ ।
ବାଦ୍ୟଭାଣ୍ଡ—କ୍ଳୀ. ବି. (୬ତତ୍ପୁ)ବାଦନୀୟ ପାତ୍ର,ବାଦ୍ୟଯନ୍ତ୍ର ସମୂହ ।
ବାଦ୍ୟଯନ୍ତ୍ର—କ୍ଳୀ.ବି. ମୃଦଙ୍ଗାଦି ବାଦ୍ୟ ।
ବାଧ—ବି. (ବାଧ୍ + ଭା.ଅ) ବାଧା, ପ୍ରତିବନ୍ଧକ, ବ୍ୟାଘାତ, ଉପଦ୍ରବ, (ଗ୍ରା.ବି) ବିନାଶ, ଶୋଷଣ ।
ବାଧକ—ତ୍ରି. ବଂ. ( ବାଧ୍ + କ.ଅକ ) ବାଧାଜନକ, ଯେ ବାଧାଦିଏ, ( ବଂ ) ସ୍ତ୍ରୀରୋଗ ବିଶେଷ, ବନ୍ଧ୍ୟାତ୍ୱରୋଗ, ଋତୁସ୍ରାବ ସମୟର ବେଦନା ।
ବାଧକତା(ତ୍ୱ)—ବି.ବାଧ କରିବାର ଶକ୍ତି, ବାଧା ଦେବାର ପ୍ରଭାବ । [ ଗ୍ରସ୍ତ ।
ବାଧକା—ଗ୍ରା. ବଂ. ରୋଗାକ୍ରାନ୍ତ, ରୋଗ-
ବାଧନ—କ୍ଳୀ. ବି. (ବାଧ୍ + ଅନ)ପୀଡ଼ା, ପ୍ରତିବନ୍ଧକ,କଷ୍ଟଦେବା,ଉପଦ୍ରବ,କ୍ଳାନ୍ତି, କ୍ଳେଶ ।
ବାଧା—ସ୍ତ୍ରୀ. ବି. ( ବାଧ୍ + ଭା.ଅ + ଆ ) ନିଷେଧ, ପ୍ରତିବନ୍ଧକ, ବିଘ୍ନ, ଉପଦ୍ରବ, (କ.ଅ) କାଷ୍ଠପଦୁକା, କଠଉ, ପୀଡ଼ା, ବ୍ୟଥା, ଦୁଃଖ, ଭୟ ।
ବାଧାଜନକ—ବଂ. ଯାହା ବାଧାଦିଏ ।
ବାଧାଦେବା—ଗ୍ରା.କ୍ରି.କୌଣସିକାର୍ଯ୍ୟରେ ବିଘ୍ନ ଜାତ କରାଇବା,ବନ୍ଦ କରିବା ।
ବାଧାପାଇବା—ଗ୍ରା. କ୍ରି. କୌଣସି

କାର୍ଯ୍ୟରେ ବାଧାପ୍ରାପ୍ତ ହେବା, ସ୍ଥଗିତ ହେବା ।
ବାଧାବନ୍ଧ—କ୍ରି. (ଦ୍ୱନ୍ଦ୍ୱ) ପ୍ରତିବନ୍ଧକ ଓ ବ୍ୟାଘାତ ।
ବାଧିତ—ବିଂ.(ବାଧ୍+ମ୍.କ୍ତ) ବ୍ୟାହୃତ, ବ୍ୟାଘାତପ୍ରାପ୍ତ, ପୀଡ଼ିତ, ବଶୀଭୂତ, କୃତଜ୍ଞ
ବାଧିର୍ଯ୍ୟ—କ୍ଳୀ. ବ. (ବଧିର + ଯ) ବଧିରତା, ଶ୍ରବଣଶକ୍ତି ହୀନତା ।
ବାଧିବା—ଗ୍ରା. କ୍ରି. କାଟିବା, କଷ୍ଟପ୍ରଦ ହେବା, କ୍ଳାନ୍ତ ଲାଗିବା, ବ୍ୟଥାଦେବା, ବାଧାଦେବା ।
ବାଧୂକ୍ୟ—କ୍ଳୀ. ବ. ବିବାହ ।
ବାଧୁ—ପୁଂ.ବ.ବନ୍ଧନ, ନୌକା, ନୌକାବନ୍ଧ ।
ବାଧ୍ୟ—ବିଂ.(ବାଧ୍+ମ୍.ଯ)ବାଧାଯୋଗ୍ୟ, ନିବାରଣ ଯୋଗ୍ୟ, ବଶୀଭୂତ, ଅନୁଗତ, ଉପକୃତ, (ଗ୍ରା, ବିଂ) କୌଣସି କାର୍ଯ୍ୟ କରିବା ନିମନ୍ତେ ଆବଦ୍ଧ, ଚୁକ୍ତି ଦ୍ୱାରା ଆବଦ୍ଧ । [ କବ୍ୱେ ।
ବାଧ୍ୟକରିବା—ଗ୍ରା. କ୍ରି. ଜବରଦସ୍ତି
ବାଧ୍ୟତା(ତ୍ୱ)—ବି.ବଶ୍ୟତା, ଆଦେଶାନୁବର୍ତ୍ତିତା, ଜବରଦସ୍ତି, ବାରଣ ଯୋଗ୍ୟତା, ବଶିଭୂତା ।
ବାଧ୍ୟତାମୂଳକ—ବିଂ. ଯାହା ଜବରଦସ୍ତି ବା ଅବଶ୍ୟ କରିବାକୁ ହେବ ।
ବାଧ୍ୟବାଧକ—ଗ୍ରା. ବିଂ, ଅନୁଗତ ବ୍ୟକ୍ତି ଓ ଉପକାରୀ ବ୍ୟକ୍ତି ।
ବାଧ୍ୟବାଧକତା—ଗ୍ରା. ବି. ଦୁଇ ଜଣଙ୍କ ମଧ୍ୟରୁ ଜଣେ ଅନ୍ୟ ଜଣକଠାରେ ବାଧ୍ୟ ହେବା ସମ୍ବନ୍ଧ । [ ପଶୁ ।
ବାଧ୍ରୀଣ(ନ)ସ—ପୁଂ. ବ. ଖଡ୍ଗୀ, ଗଣ୍ଡାର
ବାନ୍—(ସଂପ୍ରତ୍ୟୟ) ବତ୍ ପ୍ରତ୍ୟୟାନ୍ତ ଶବ୍ଦର ପ୍ରଥମା ବିଭକ୍ତି ଏକ ବଚନାନ୍ତ ।
ବାନ—କ୍ଳୀ, ବ, (ବନ+କ.ଅ) ଶୁଷ୍କଫଳ, (ବା ଧା.ଅନ) ଗମନ, ଗନ୍ଧ, ସୌରଭ, ଭିତ୍ତିବନ୍ତି, ଜାଆଁ, (ବନ + ଅ) ବନସମୂହ, ଜଳପ୍ରବାହ, ବନ୍ୟା, ତରଙ୍ଗ, ସୁଡ଼ଙ୍ଗ, ବାୟୁ ଓ ଜଳଆଦର ନିର୍ଗମ, ମୃଦୁସ୍ପନ୍ଦନ, ଘର କାନ୍ଥର କଣା, (ବିଂ) ଶୁଷ୍କ, ଶୀତ୍ରତ, ଜଙ୍ଗମ, ବନ୍ୟ, (ଗ୍ରା.କ୍ରି) ତେଜଃ, କାନ୍ତ ।
ବାନଦଣ୍ଡ—ପୁଂ. କ୍ରି. ବସ୍ତ୍ରବୟନ ଯନ୍ତ୍ର, ତନ୍ତ ।
ବାନପ୍ରସ୍ଥ—ପୁଂ. ବ. ମହୁଲଗଛ, ପଳାଶ ବୃକ୍ଷ, ହିନ୍ଦୁଙ୍କର ଗୃହ ଆଶ୍ରମରୁ ତୃତୀୟ ଆଶ୍ରମ ।
ବାନପ୍ରସ୍ଥାଶ୍ରମ—ବ.ହିନ୍ଦୁର ତୃତୀୟ ଆଶ୍ରମ ରୂପ ବନବାସ ।
ବାନପ୍ରସ୍ଥାଶ୍ରମୀ—ପୁଂ.ବିଂ. ଯେ ବାନପ୍ରସ୍ଥ ଆଶ୍ରମ ଗ୍ରହଣ କରେ ।
ବାନର—ପୁଂ.ବ.(ବନ୍+ରମ୍+କ.ଅ) ପ୍ଲବଙ୍ଗ, ମର୍କଟ, ଶାଖାମୃଗ, କପି, ମାକଡ଼ ।
ବାନରକେତନ—ପୁଂ.ବ(ବ.ବ୍ରୀ)ଅର୍ଜ୍ଜୁନ
ବାନରକେତୁ—ପୁଂ,ବ.(ବ.ବ୍ରୀ) ଅର୍ଜ୍ଜୁନ, ବାନରରାଜ ।
ବାନରପ୍ରିୟ—ପୁଂ, ବ. କ୍ଷୀରବୃକ୍ଷ ।
ବାନରରାଜ—ବ. (ତତ୍ପୁ) କପିଶ୍ରେଷ୍ଠ, କପିରାଜ ବାଲି ଓ ସୁଗ୍ରୀବ, ହନୁମାନ୍ ।
ବାନରାକ୍ଷ—ପୁଂ. ବ. (ବ.ବ୍ରୀ) ବନଚ୍ଛାଗ, ଆରଣ୍ୟ ଅଶ୍ୱବିଶେଷ ।
ବାନରାଘାତ—ପୁଂ.ବ(ବାନର+ଆଘାତ) ଲୋଧ୍ରବୃକ୍ଷ, ଲୋଧଗଛ ।
ବାନରୀ—ସ୍ତ୍ରୀ. ବ. (ବାନର+ଈ) ମାଈ ମାକଡ଼, ମର୍କଟୀ, ଶୁକଶିମ୍ବୀ, ବାଇଡଙ୍ଗ
ବାନରୀବୀଜ—ବ. କପିକଚ୍ଛୁ, ବାଇଡଙ୍ଗ ।
ବାନରେନ୍ଦ୍ର—ପୁଂ. ବ. (ବାନର+ଇନ୍ଦ୍ର) ସୁଗ୍ରୀବ, ହନୁମାନ୍, (ବିଂ)ବାନରଶ୍ରେଷ୍ଠ
ବାନଲ—ପୁଂ. ବ. ତୁଳସୀବିଶେଷ ।
ବାନସି—ପୁଂ. ବ. ମେଘ ।
ବାନସ୍ଥ—ଗ୍ରା. ଶ. ବାନପ୍ରସ୍ଥ ଦେଖ ।
ବାନସ୍ପତ୍ୟ—ପୁଂ.ବ(ବାନସ୍ପତି+ଯ)ପୁଷ୍ପଜାତ ଫଳବୃକ୍ଷ, ବନସ୍ପତି ସମୂହ, (ବିଂ) ବନସ୍ପତିଜାତ ।
ବାନା—ସ୍ତ୍ରୀ, ବ, ବତର ପକ୍ଷୀ, (ଗ୍ରା.ବ) ପତାକା, ଧ୍ୱଜ, ପ୍ରସିଦ୍ଧ ଗୁଣ, ଶ୍ରେଷ୍ଠ ବ୍ୟକ୍ତି ବା ବସ୍ତୁ, ପ୍ରସିଦ୍ଧି ।
ବାନାଉଡ଼ା(ଡ଼ୋ)ଇବା—ଗ୍ରା, କ୍ରି. ଜୟଲାଭସୂଚକ ଯାତ୍ରା କରିବା ।
ବାନାଉଡ଼ିବା—ଗ୍ରା.କ୍ରି.ପତାକା ପବନରେ ଫର୍‌ଫର୍ ହେବା, (ଲ.ଅର୍ଥ) ଯଶସ୍ୱୀ ହେବା ।
ବାନାଧରିବା—ଗ୍ରା.କ୍ରି (ଲ.ଅର୍ଥ) କୌଣସି ମହତ୍ତ୍ୱ ବ୍ୟକ୍ତି ବା ଦେବତାଙ୍କ ଆଶ୍ରୟ ନେବା ।
ବାନାବନ୍ଧା—ଗ୍ରା. (କେନ୍ଦୁ'ବି. କେନ୍ଦୁଝର ରାଜ୍ୟର ଇନ୍ଦ୍ରଛତ୍ର ପର୍ବତର ଅନ୍ୟ ନାମ
ବାନାବାନ୍ଧିବା—ଗ୍ରା. କ୍ରି. ମନସ୍କାମନାର ସିଦ୍ଧି ପାଇଁ ଦେବତାଙ୍କ ମନ୍ଦିର ଉପରେ ପତାକା ବନ୍ଧାଇବା, ମାନସିକକରିବା ।
ବାନାନାଇରଙ୍ଗ—ଗ୍ରା. ବ. ପତାକା ।
ବାନାୟୁ—ପୁଂ, ବ. ବନାୟୁ ଦେଶବାସୀ. କାଠବିଶେଷ ।
ବାନାୟୁଜ—ପୁଂ.ବ. ବାନାୟୁ ଦେଶୋତ୍ପନ୍ନ ଘୋଟକ ।
ବାନିକ—ବିଂ. ବନସମ୍ବନ୍ଧୀୟ ।
ବାନୀୟ—ପୁଂ. ବ. କୈବର୍ତ୍ତ ମୁସ୍ତକ, କେଉଟିଆ ମୁଥା ।
ବାନୀର—ପୁଂ.ବ. (ବନ+ଈର) ଜଳବେତସ, ବେତଗଛ ।
ବାନୀରକ—କ୍ଳୀ.ବ. (ବାନୀର+କ)ମୁଞ୍ଜତୃଣ, ଶରତୃଣ ।
ବାନୀରଜ—କ୍ଳୀ. ବ. କୁଷ୍ଠୌଷଧି, କୁଡ଼, (ପୁଂ) ମୁଞ୍ଜ, ମୁଞ୍ଜତୃଣ ।
ବାନେୟ—କ୍ଳୀ. ବ. କୈବର୍ତ୍ତମୁସ୍ତକ, କେଉଟିଆ ମୁଥା ।
ବାନ୍ତ—ବିଂ. ବିଂ. (ବମ୍+ମ୍.କ୍ତ) ବମିତ ବସ୍ତୁ, ଉଦ୍‌ଗୀର୍ଣ୍ଣ ।
ବାନ୍ତାଦ—ପୁଂ.ବ. (ବାନ୍ତ+ଅଦ୍+କ.ଅ) କୁକ୍କୁର ।
ବାନ୍ତାଶୀ—ପୁଂ. ବିଂ. ବାନ୍ତାଦ, ବମନଭୋଜୀ, (ବ) କୁକ୍କୁର ।
ବାନ୍ତି—ସ୍ତ୍ରୀ. ବ. (ବମ୍+ତି) ବମନ, ବମନ କରାଯିବା ବସ୍ତୁ ।
ବାନ୍ତିକରିବା—ଗ୍ରା. କ୍ରି. ବମନକରିବା ।
ବାନ୍ତିକା—ସ୍ତ୍ରୀ. ବ. କଟୁକୀ ।
ବାନ୍ତକୃତ୍—ପୁଂ, ବ (ବାନ୍ତ+କୃ+କ୍ୱିପ୍) ମଦନ ବୃକ୍ଷ, (ବିଂ) ବମନକାରୀ, ଯାହା

ବାନ୍ତ କରାଏ ।

ବାନ୍ତ୍ରଦ—ବି. ବଂ. (ବାନ୍ତ + ଦା + ଅ) ବମନକାରକ ।

ବାନ୍ତମାଡ଼ିବା—ଗ୍ରା. ବି. ଅଇ ଉଠିବା, ବମନୋଦ୍ବେଗ ହେବା, (ଲ୍ର.ଅର୍ଥ) ଘୃଣା ବୋଧହେବା ।

ବାନ୍ତ୍ରଶୋଧନୀ—ସ୍ତ୍ରୀ. ବ. କ୍ଷାରକ, କ୍ଷାର ।

ବାନ୍ତ୍ରହୃତ୍—ପୁଂ. ବ. ଲୌହକଣ୍ଟକ ବୃକ୍ଷ, ମଦନବୃକ୍ଷ ।

ବାନ୍ଦର—ଗ୍ରା. ବ. ମାଙ୍କଡ଼, ପାଣ୍ଡମାକଡ଼ ।

ବାନ୍ଦା—ଯା. ବ. କ୍ରୀତଦାସ, ଚୋଲ୍ଲମ, ଶୂକର ।

ବାନ୍ଧ—ଗ୍ରା. ବ. ବନ୍ଧନ, ଗଣ୍ଠି, ଲୁଗାବୁଣିବା ନିମନ୍ତେ କଣ୍ଡାରେ ଗୁଡ଼ିଆ ହୋଇଥିବା ସୂତା ।

ବାନ୍ଧକିନେୟ—ପୁଂ. ବ. (ବନ୍ଧକୀ + ଏୟ) ଅସତୀ ପୁତ୍ର ।

ବାନ୍ଧଣି—ଗ୍ରା. ବ. ବନ୍ଧନ, ବାନ୍ଧିବା ଦଉଡ଼ି

ବାନ୍ଧବ—ବ. (ବନ୍ଧୁ + ଅ) ବନ୍ଧୁ, ମିତ୍ର, ଜ୍ଞାତି, ସ୍ୱଜନ, ଭ୍ରାତା ।

ବାନ୍ଧବୀ—ଗ୍ରା. ସ୍ତ୍ରୀ. ବ. ସ୍ତ୍ରୀ, ପ୍ରାଣସଙ୍ଗିନୀ, ପ୍ରିୟତମା ସ୍ତ୍ରୀ ।

ବାନ୍ଧିବା—ଗ୍ରା. କ୍ରି. ରଜ୍ଜୁଦ୍ୱାରା ବନ୍ଧନ କରିବା, ଶୃଙ୍ଖଳିତ କରିବା, ଲୁଗାପଟା ଆଦିକୁ ଗଣ୍ଠିରେ ଏକତ୍ର କରିବା, କେଶଗୁଚ୍ଛକୁ ଫିତାଆଦି ଦ୍ୱାରା ବନ୍ଧନ କରିବା, ଗୋରୁଆଦି ପଶୁଙ୍କୁ ପଘାଆଦିରେ ଅଟକାଇବା, ଗୀତଆଦି ରଚନା କରିବା, ବନ୍ଧପକାଇ ଜଳରୋଧ କରିବା. (ଲ.ଅର୍ଥ) ରଜ୍ଜୁରେ ବାନ୍ଧିଲପରି ବଶୀଭୂତ କରିବା, ମୋହିବା, ଅବରୋଧ କରିବା, ଜମାହେବା, ହାତୀ ଘୋଡ଼ା ଆଦି ପଶୁଙ୍କୁ ପୋଷିବା, (ଦାମ୍, ଆଣ୍ଟ, ମୁସୁଧା) ମନରେ ସ୍ଥିର କରିବା, (ପ୍ରା. ଗଞ୍ଜାମ. ବ) ଟଙ୍କା ଦାଖଲ କରିବା ।

ବାନ୍ଧିବୁଝି—ଗ୍ରା. କ୍ରିଂ. ବହୁବସ୍ତୁ ଏକତ୍ର ବନ୍ଧାହୋଇ କରି, ବନ୍ଧନକାର୍ଯ୍ୟ ସମାପ୍ତ କରି ।

ବାନ୍ଧିମାରିବା—ଗ୍ରା. କ୍ରି. କୌଣସି ପ୍ରାଣୀକୁ ବନ୍ଧନ ପୂର୍ବକ ପ୍ରହାର କରିବା ।

ବାନ୍ଧିରଖିବା—ଗ୍ରା. କ୍ରି. କୌଣସି ବ୍ୟକ୍ତି ବା ବସ୍ତୁକୁ ଆବଦ୍ଧ କରିବା, (ଲ.ଅର୍ଥ) ଆପଣାର ସମ୍ପୂର୍ଣ୍ଣ ଅଧିକାରରେ ରଖିବା

ବାନ୍ଧିହେବା—ଗ୍ରା. କ୍ରି. ଶୃଙ୍ଖଳିତହେବା, (ତରଳବସ୍ତୁ) କଠିନୀଭୂତ ହେବା, ଅନ୍ତରକ୍ତ ରୂପେ ତୃପ୍ତହୋଇ ବିରକ୍ତିବୋଧହେବା, ଅନ୍ୟର ବଶୀଭୂତ ହେବା ।

ବାନ୍ଧୁ(ନ୍ଧେ)ଣି—ଗ୍ରା. ବ. ( ସଂ ବନ୍ଧନୀ ) ବନ୍ଧନ, ବନ୍ଧାହେବା ଅବସ୍ଥା, ଗ୍ରନ୍ଥି, କାରାବନ୍ଧନ, ବନ୍ଧନରଜ୍ଜୁ, ଗୋଟଦଉଡ଼ି ଛନ୍ଦଦଉଡ଼ି ।

ବାନ୍ଧି—ପ୍ରା. (ସମ୍ବ) ବ. ଗୁଞ୍ଜୁଣି. ଟହିଁରମୁଠା

ବାନ୍ୟା—ସ୍ତ୍ରୀ. ବ. ( ବନ + ଯ + ଆ ) ବନସମୂହ ।

ବାପ୍ତା—ଯା. ବ. ଏକପ୍ରକାର ରେଶମ ମିଶା କାର୍ପାସ ବସ୍ତ୍ର ।

ବାପ୍‌ରେ—ଗ୍ରା. ଅବ୍ୟ. ବିସ୍ମୟ, ଭୟ, ମନସ୍ତାପ, ଯନ୍ତ୍ରଣା ପ୍ରଭୃତି ସୂଚକ ଚିତ୍କାର ।

ବାପ—ପୁଂ. ବ. (ବପ୍ + ଭା.ଅ) ମଞ୍ଜିବୁଣିବା, ଲୁଗାବୁଣିବା, ନିଷେକ, ଗର୍ଭାଧାନ, ମୁଣ୍ଡନ, କ୍ଷୌର, ( ଅଧି. ଅ ) କ୍ଷେତ୍ର, ( କ.ଅ ) ବୀଜବୁଣିବା ବ୍ୟକ୍ତି, ( ଗ୍ରା.ବ ) ପିତା, ବାପା, ପିତୃସ୍ଥାନୀୟ ଗୁରୁଜନ, (ଗ୍ରା.ଅ) ହେ ବତ୍ସ (ପୁତ୍ରସ୍ଥାନୀୟ ବ୍ୟକ୍ତିପ୍ରତି ସ୍ନେହ ସମ୍ବୋଧନ), (ବିଂ) ଶ୍ରେଷ୍ଠ, ଗରିଷ୍ଠ ।

ବାପଅଜା—ଗ୍ରା. ବ. ପିତୃପିତାମହ, ପୂର୍ବପୁରୁଷଗଣ ।

ବାପଅଜାଙ୍କନାଆଁପକାଇବା—ଗ୍ରା. କ୍ରି. ମନ୍ଦ ବା ନିନ୍ଦିତ କାର୍ଯ୍ୟଦ୍ୱାରା ପିତୃପିତାମହଙ୍କ ସୁନାମରେ କଳଙ୍କ ଲଗାଇବା ।

ବାପଅଜାଙ୍କନାଆଁବୁଡ଼େଇବା—ଗ୍ରା. କ୍ରି. ଆପଣାର ଅଯୋଗ୍ୟତା ଦ୍ୱାରା ବଂଶର ଗୌରବ ଲୋପ କରିବା ।

ବାପଅଜାଙ୍କନାଆଁରଖିବା—ଗ୍ରା. କ୍ରି. ଆପଣାର ଯୋଗ୍ୟତା ବା ଭଲକାର୍ଯ୍ୟ ଦ୍ୱାରା ବଂଶମର୍ଯ୍ୟାଦାକୁ ଅକ୍ଷୁର୍ଣ୍ଣ ରଖିବା ।

ବାପଅଜାଚଉଦପୁରୁଷ—ଗ୍ରା. ବ. ଆପଣାର ପିତୃପିତାମହଆଦି ସମସ୍ତ ପୂର୍ବପୁରୁଷ ।

ବାପଅମଳ—ଗ୍ରା. ବ. ଆପଣା ପିତାଙ୍କ ଜୀବତକାଳ ।

ବାପକ—ପୁଂ. ବଂ. ( ବପ୍ + ଣିଚ୍ + କ.ଅକ) ଯେ ଅନ୍ୟଦ୍ୱାରା ଲୁଗା ବା ମଞ୍ଜି ବୁଣାଏ, ବପନକାରୟିତା ।

ବାପକାଳେ—ଗ୍ରା. ଅ. ପିତାଙ୍କ ଅମଳରେ, ମରହଟ୍ଟୀ । [ ପିତୃଗୃହ ।

ବାପଘର—ଗ୍ରା. ବ. ପିତୃଗୃହ, ବଧୂର

ବାପଦଣ୍ଡ—ପୁଂ. ବ. ବୟନ ଦଣ୍ଡ, ଯେଉଁ ଦଣ୍ଡଦ୍ୱାରା ଲୁଗା ବୁଣାଯାଏ, ନରାଜ ।

ବାପଧନ—ଗ୍ରା. ବ. ପିତୃଧନ, ପୈତୃକ ସମ୍ପତ୍ତି, ଯାହା ସ୍ୱୋପାର୍ଜିତ ଧନ ନୁହେଁ, (ଅବ୍ୟ) ହେ ବତ୍ସ, ବାତ୍ସଲ୍ୟ ସମ୍ବୋଧନ

ବାପନ—କ୍ଲୀ. ବ. (ବପ୍ + ଣିଚ୍ + ଭା.ଅନ) ଅନ୍ୟଦ୍ୱାରା ଲୁଗା ବୁଣାଇବା, ଅନ୍ୟଦ୍ୱାରା କ୍ଷିଅର କରାଇବା, ଅନ୍ୟଦ୍ୱାରା କ୍ଷେତ୍ରରେ ମଞ୍ଜି ବୁଣାଇବା ।

ବାପନାଆଁପଚାରିଲେଆସିବନାହିଁ-(ବାକ୍ୟ) ଜାରଜ ବ୍ୟକ୍ତିପ୍ରତି ବା ଘୃଣାର୍ଥରେ ବ୍ୟବହୃତ (ବାକ୍ୟ), ଜାରଜ, ମୂର୍ଖ, ମୂଢ଼

ବାପପୁଅ—ଗ୍ରା. ବ. ପିତା ଓ ପୁତ୍ର ।

ବାପମା—ଗ୍ରା. ବ. ପିତା ଓ ମାତା ।

ବାପମୋର—ଗ୍ରା. ଅବ୍ୟ. ବାପଧନଦେଖ ।

ବାପର ପୁଅ—ଗ୍ରା. ବ. ପିତାର ସୁସନ୍ତାନ, ଯୋଗ୍ୟ ପିତାଙ୍କର ଯୋଗ୍ୟ ସନ୍ତାନ, ଯେ ଜାରଜ ସନ୍ତାନ ନୁହେଁ, ପିତାର ଔରସ ସନ୍ତାନ ।

ବାପର ଶ୍ରାଦ୍ଧ—ଗ୍ରା. ବ. ପିତୃଶ୍ରାଦ୍ଧ, ବାପ ଶ୍ରାଦ୍ଧପରି କୌଣସି ଅପରିହାର୍ଯ୍ୟ କର୍ତ୍ତବ୍ୟ

ବାପର ସାଧ—ଗ୍ରା. (ବାକ୍ୟ) ନିଜର କ୍ଷମତାର ବହିର୍ଭୂତ କର୍ମ ।

ବାପସୁଆଗିଆ—ଗ୍ରା. ପୁଂ. ବିଂ. ଅତିରିକ୍ତ ପିତୃସ୍ନେହୀ ।

ବାପା—ଗ୍ରା. ବ. (ସଂ ବାପ୍ତା) ବାପଦେଖ ।

ବାପା(ପ୍ପା)ରାଓ—ମେବାରର ରାଜପୁତ ରାଣାମାନଙ୍କ ଆଦିପୁରୁଷ ।

ବାପି—ସ୍ତ୍ରୀ. ବ. (ବପ୍ + ଅଧି. ଇ) ଦୀର୍ଘିକା, ବଡ଼ପୋଖରୀ, ଜଳାଶୟ, ବାପୀ ।

ବାପିକା—ସ୍ତ୍ରୀ. ବ. ବାପୀ ଦେଖ ।
ବାପିତ—ତ୍ରି. ବଂ. (ବାପି+ତ)ମୁଣ୍ଡିତ. ପ୍ରେରିତ, (ମଞ୍ଜି)ବୁଣାଯାଇଥିବା,(ଲୁଗା) ବୁଣାଯାଇଥିବା,(କ୍ଳୀ.ବ)ଧାନ୍ୟବିଶେଷ ।
ବାପୀ—ସ୍ତ୍ରୀ.ବ. (ବପ୍+ଅଧି.ଇ)ଦୀର୍ଘିକା, ବଡ଼ପୋଖରୀ ।
ବାପୀହ—ପୁଂ.ବ.(ବାପି+ହା+କ.ଅ) ଚାତକପକ୍ଷୀ ।
ବାପୁ—ଗ୍ରା. ବ. ସ୍ନେହ ବା ଆଦରସୂଚକ ଶବ୍ଦ, ବତ୍ସ, ତାତ, ପିତା, ବାବୁ ।
ବାପୁଡ଼ା—ଗ୍ରା. ପୁଂ. ବ. ଅନନ୍ୟୋପାୟ ବ୍ୟକ୍ତି, ବେଗୁରା,ମୂର୍ଖ,ନିର୍ବୋଧ ବ୍ୟକ୍ତି, ଉଦ୍ଧମ ବ୍ୟକ୍ତି, (ସ୍ତ୍ରୀ) ବାପୁଡ଼ୀ ।
ବାସୁଦେବଶାସ୍ତ୍ରୀ—ଗ୍ରା.ବ. ପ୍ରସିଦ୍ଧ ମହା-ରାଷ୍ଟ୍ରୀୟ ବ୍ରାହ୍ମଣ ପଣ୍ଡିତ ।
ବାପ୍ୟ—ବ. (ବାପୀ+ଯ)ବାମ୍ପିର ଜଳ, (ବପ୍+ଣିଚ୍+କ.ଯ) ଯେଉଁ ଧାନ ବହନ ବୁଣାଯାଇ ଉଠିଥାଏ, କୁଷ୍ଠୌ-ଷଧି, କୁଡ଼ନାମକ ଔଷଧି, (ବଂ) ବପ-ନୀୟ, ବପନଯୋଗ୍ୟ,ବାମ୍ପୀଭବ(ଜଳ)।
ବାପ୍ୟକ୍ଷୀର—କ୍ଳୀ. ବ. ସାମୁଦ୍ର ଲବଣ ।
ବାଫୀ—ଗ୍ରା. ବ. ବାମ୍ପୀ, ଜଳାଶୟ ।
ବାଭଟ—ପୁଂ. ବ. ଶାସ୍ତ୍ରାଦର୍ପଣ ନିଘଣ୍ଟୁ-କାର, ବୈଦ୍ୟସଂହିତା ପ୍ରଣେତା ।
ବାଭୁ—ଗ୍ରା. ବ. ପୁଅ, ବତ୍ସ ।
ବାଭୁଏ—ଗ୍ରା.ଅବ୍ୟ, ଶୂଦ୍ର ଜାମାତାମାନ-ଙ୍କର ଶ୍ୱଶୁର ପ୍ରତି ଓ ଶ୍ୱଶୁରଙ୍କର ଜାମାତାଙ୍କ ପ୍ରତି ପ୍ରୟୋଗ କରିବା ସମ୍ମାନସୂଚକ ସମ୍ବୋଧନ ।
ବାଭ୍ରବୀ—ସ୍ତ୍ରୀ. ବ. ( ବଭ୍ରୁ+ଅ+ଈ ) ଦୁର୍ଗା ।
ବାମ୍—ପୁଂ. ବ. ଗଣ୍ଡା, ସୋତା,(ଗ୍ରା.ବ) ଜାହାଜରେ ବ୍ୟବହୃତ ଜଳର ଗଭୀର-ତାର ମାପବିଶେଷ, ପ୍ରାୟ ଛଅଫୁଟ ଦୈର୍ଘ୍ୟ, ବେଁ ।
ବାମ୍ଣୀ(ନୀ)—ଗ୍ରା. (ସମ୍ବ) ବ. ନିର୍ବିଷ ସର୍ପବିଶେଷ ।
ବାମ୍ନା—ଗ୍ରା. (ସମ୍ବ) ବ. ବ୍ରାହ୍ମଣ ।
ବାମ—ବଂ. (ବା+ମ) ବାଆଁ (ପାର୍ଶ୍ୱ), ଅପସବ୍ୟ, ଦକ୍ଷିଣେତର, ବିପରୀତ, ବିପକ୍ଷ,ବକ୍ର, ବାମଦିଗରେ ସ୍ଥିତ,ସୁନ୍ଦର ଅଧମ, ପ୍ରତିକୂଳ, ଶ୍ରେଷ୍ଠ, ମନ୍ଦ, ( ବ ) ବାଆଁପାର୍ଶ୍ୱ, ମହାଦେବ, କାମଦେବ, ବକ୍ଷଃ, ଜୀବ, ଧନ, କୁଚ, ଏକରୁଦ୍ରଙ୍କ ନାମ, ବରୁଣ, ଶ୍ରୀକୃଷ୍ଣଙ୍କର ଏକପୁତ୍ର, ବଥୁଆଶାଗ, ୧୪ ଅକ୍ଷରର ଏକବର୍ଣ୍ଣ-ବୃତ୍ତି, (ଗ୍ରା.ବ) ପ୍ରତିକୂଳତା ।
ବାମକ—ତ୍ରି. ବଂ. ବାମସମ୍ବନ୍ଧୀୟ, (ବ) ଅଙ୍ଗଭଙ୍ଗୀବିଶେଷ,ଚକ୍ରବର୍ତ୍ତୀବିଶେଷ।
ବାମଦୃକ୍—ସ୍ତ୍ରୀ.ବ. ସୁନ୍ଦରନୟନା ବା ସ୍ତ୍ରୀ ।
ବାମଦେବ—ପୁଂ. ବ. (ବାମ+ଦେବ) ଶିବ, ଗୌତମ ଗୋତ୍ର ସମ୍ଭୂତ ଋଷି-ବିଶେଷ । [ ସାବର୍ଣ୍ଣୀ ।
ବାମଦେବୀ—ବ. (ବାମ+ଦେବୀ) ଦୁର୍ଗା,
ବାମଧ୍ୱଜ—ନ୍ୟାୟକୁସୁମାଞ୍ଜଳି ଟୀକା ପ୍ରଣେତା ।
ବାମନ—ପୁଂ. ବଂ. (ବ+ମ+ଣିଚ+ମଁ.ଅନ) ଖର୍ବ, ଗେଡ଼ା, ବାଙ୍ଗର,ହ୍ରସ୍ୱ. କ୍ଷୁଦ୍ର, ନୀଚ, (ବ) ଖର୍ବକାୟ ବ୍ୟକ୍ତି, (ବାମ+ନ) ବିଷ୍ଣୁଙ୍କର ୫ମ ଅବତାର, ଦକ୍ଷିଣଦିଗ୍ଗଜ, ବିଷ୍ଣୁ, ଶିବ, ଏକପ୍ରକାର ଗ୍ରେଟ (ଟଙ୍କୁ) ଘୋଡ଼ା, ହନୁମାନଙ୍କ ଏକପୁତ୍ର, ଏକ ନାଗର ନାମ, ଗରୁଡ଼ ବଂଶୀୟ ଏକ ପକ୍ଷୀ,କ୍ରୌଞ୍ଚଦ୍ୱୀପର ଏକ ପର୍ବତ, ଅଷ୍ଟାଦଶ ପୁରାଣ ମଧ୍ୟରୁ ଏକ, ଅତି କ୍ଷୁଦ୍ର ମାନବ । [ ବିଶେଷ ।
ବାମନକ୍ଷେତ୍ର—ଭୋଜ ଅନ୍ତର୍ଗତ ତୀର୍ଥସ୍ଥାନ
ବାମନଜନ୍ମ—ବ. ଭାଦ୍ରଶୁକ୍ଳ ଦ୍ୱାଦଶୀରେ ଅନୁଷ୍ଠିତ ପର୍ବ । [ ଦେଖ ।
ବାମନଦ୍ୱାଦଶୀ—ସ୍ତ୍ରୀ. ବ. ବାମନଜନ୍ମ
ବାମନଭଟ୍ଟ-ନିମ୍ବାର୍କ ସମ୍ପ୍ରଦାୟର ଜନୈକ ଗୁରୁ ।
ବାମନଭଟ୍ଟ-ଜନୈକ ଅଭିଧାନ ପ୍ରଣେତା ।
ବାମନ(ନା)ଭୂତ—ଗ୍ରା, ବ, ବାବନାଭୂତ ଦେଖ ।
ବାମନୟନା—ସ୍ତ୍ରୀ.ବଂ. (ବ.ବ୍ରୀ) ସୁନ୍ଦର ନେତ୍ରବିଶିଷ୍ଟା, (ସ୍ତ୍ରୀ), ରୂଢ଼ନେତ୍ରା ।
ବାମନସୂକ୍ତ—କ୍ଳୀ. ବ. ବୈଦିକ ସ୍ତୋତ୍ର ବିଶେଷ ।
ବାମନା—ସ୍ତ୍ରୀ. ବ. ଅପ୍ସରାବିଶେଷ ।
ବାମନିକା—ସ୍ତ୍ରୀ. ବ. ଖର୍ବାକାର ସ୍ତ୍ରୀ, ସ୍କନ୍ଦାନୁଚର ମାତୃବିଶେଷ ।
ବାମନୀ—ସ୍ତ୍ରୀ. ବ. ଖର୍ବା ସ୍ତ୍ରୀ, ଘୋଟକୀ, ଯୋନିରୋଗ ବିଶେଷ, (ଗ୍ରା.ବ) ବାହ୍ମ-ମନୀ ରାଜ୍ୟ,ପଠାଣ ସାମ୍ରାଜ୍ୟର ପତନ ସମୟରେ ଦକ୍ଷିଣ ଭାରତରେ ପ୍ରତିଷ୍ଠିତ ହୋଇଥିବା ମୁସଲମାନ ରାଜ୍ୟବିଶେଷ।
ବାମନୀକୃତ—ବଂ.ମର୍ଦ୍ଦନ ଦ୍ୱାରା ସଙ୍କୋ-ଚିତ ।
ବାମନୀୟ—ବଂ. ବକ୍ର । [ ଆଖି ।
ବାମନେତ୍ର—କ୍ଳୀ.ବ. ଦୀର୍ଘଈକାର,ବାଆଁ
ବାମନେତ୍ରା—ବ ଓ ବଂ.ସ୍ତ୍ରୀ.ବାମନୟନା ଦେଖ ।
ବାମମାର୍ଗ—ପୁଂ.ବ. (କ.ଧା) ବାମାଚାର, ବେଦବହିର୍ଭୂତ,(ଦକ୍ଷିଣ)ମାର୍ଗର ପ୍ରତିକୂଳ ନାସ୍ତିକବିଧି, ପଞ୍ଚମକାରାଦି ।
ବାମଲୂର—ପୁଂ. ବ. ବଲ୍ମୀକ,ଉଇହୁଙ୍କା ।
ବାମଲୋଚନ—କ୍ଳୀ.ବ.ବାମନେତ୍ର ଦେଖ।
ବାମଲୋଚନା—ବ ଓ ବଂ. ସ୍ତ୍ରୀ. ବାମ-ନୟନା ଦେଖ ।
ବାମବେଧଶୁଦ୍ଧି—ସ୍ତ୍ରୀ.ବ. ଜ୍ୟୋତିଷୋକ୍ତ ଚନ୍ଦ୍ରଶୁଦ୍ଧି ବିଶେଷ ।
ବାମହସ୍ତ—ବ. ବାଆଁହାତ ।
ବାମା—ସ୍ତ୍ରୀ, ବ. (ବାମ+ଆ) ସ୍ତ୍ରୀ, ଦୁର୍ଗା, ଲକ୍ଷ୍ମୀ, ୧୦ ଅକ୍ଷର ବିଶିଷ୍ଟ ବର୍ଣ୍ଣବୃତ୍ତି ବିଶେଷ, (ବାମୀ) ଘୋଟକୀ, ସରସ୍ୱତୀ, (ସ୍ତ୍ରୀ.ବଂ) ପ୍ରତିକୂଳା, ପ୍ରତିକୂଳାଚରଣୀ ସୁନ୍ଦରୀ । [ କଣ୍ଠସ୍ୱର ।
ବାମାକଣ୍ଠ—ବ. (ଷତତ୍) ସ୍ତ୍ରୀକଣ୍ଠ, ସ୍ତ୍ରୀର
ବାମାକ୍ଷି—କ୍ଳୀ.ବ.ବାମ ଚକ୍ଷୁ,ଦୀର୍ଘଈକାର, (ବଂ-ବ.ବ୍ରୀ) ସୁନ୍ଦର ଚକ୍ଷୁ ବିଶିଷ୍ଟ ।
ବାମାକ୍ଷୀ—ସ୍ତ୍ରୀ. ବ. (ବାମ+ଅକ୍ଷ+ଈ) ବାମଲୋଚନା ସ୍ତ୍ରୀ, ସୁନ୍ଦରୀ ସ୍ତ୍ରୀ, ଦୀର୍ଘ-ଈକାର, ( ସ୍ତ୍ରୀ, ବଂ ) ବାମନୟନା, ସୁନୟନା (ସ୍ତ୍ରୀ) ।
ବାମାଙ୍ଗୁର—ପୁଂ, ବ. (ବାମ+ଆଙ୍ଗୁର)

ତନ୍ତ୍ରୋକ୍ତ ପଞ୍ଚମକାର ଶୋଧନସଂଯୁକ୍ତ, ବାମମାର୍ଗ।
ବାମାଗ୍ରସ୍ଥ—ପୁଂ. ବିଂ. ବାମାଗ୍ରଯୁକ୍ତ, ତନ୍ତ୍ରୋକ୍ତ ବାମାଗ୍ରର ପ୍ରକ୍ରିୟାର ସାଧକ
ବାମାପୀଡ଼ନ—ପୁଂ ବ. ପୀଲୁବୃକ୍ଷ।
ବାମାବର୍ତ୍ତି—ପୁଂ.ବିଂ.(ବ୍ର.ସ୍ତ୍ରୀ)ବାମଦିଗରୁ ଆବର୍ତ୍ତିନଯୁକ୍ତ, (ବ) ବାମାବର୍ତ୍ତି ଶଙ୍ଖ।
ବାମାବର୍ତ୍ତିଫଳା—ସ୍ତ୍ରୀ. ବ. ବୃଦ୍ଧିନାମକ ଔଷଧ।
ବାମାବର୍ତ୍ତା—ସ୍ତ୍ରୀ.ବ. ଆବର୍ତ୍ତକୀ ଲତା।
ବାମାସ୍ୱର—ବ. (ତତ୍ତ୍ୱ) ସ୍ତ୍ରୀର କଣ୍ଠଧ୍ୱନି
ବାମିକା—ସ୍ତ୍ରୀ. ବ. ( ବାମ+କ+ଆ ) ଚଣ୍ଡିକା।
ବାମୀ—ବି.ବିଂ.(ବାମ+ଇନ୍)ବମନଶୀଳ, ଉଦ୍‌ଗୀରଣଶୀଳ, ବାମାଗ୍ରସ୍ଥ, (ସ୍ତ୍ରୀ.ବ) (ବାମ+ଈ) ଶୃଗାଳୀ, ଘୋଡ଼ୀ, ମାଇଗଧ, ହାତୁଣୀ।
ବାମୁନହଟା—ଗ୍ରା.( ସମ୍ପ ) ବ. ବ୍ରାହ୍ମଣଯଷ୍ଟିକା, ବ୍ରାହ୍ମଣହାଟିଆ ଗୁଳ୍ମ।
ବାମେତର—ବିଂ, ( ତତ୍ତ୍ୱ ) ଦକ୍ଷିଣ, ବାମଠାରୁ ଭିନ୍ନ, ଡାହାଣ।
ବାମୋରୁ—ବିଂ. (ବ.ସ୍ତ୍ରୀ) ସୁନ୍ଦର ଉରୁବିଶିଷ୍ଟା, ସୁନ୍ଦରୀ (ସ୍ତ୍ରୀ)।
ବାମ୍ଫ—ଗ୍ରା.ବ. ବାଷ୍ପ, ଉତ୍ତପ୍ତଜଳୀୟ ବାଷ୍ପ।
ବାମ୍ଫୀ—ଗ୍ରା.ବ. ବଡ଼କୂଅ, ଖୁବ୍ ବଡ଼ ଆୟତନବିଶିଷ୍ଟ କୂଅ।
ବାମ୍ଫଆଣି—ଗ୍ରା. ବ. ଫୁଟିବା ଜଳରୁ ବା ଔଷଧ ମିଶ୍ରିତ ଜଳରୁ ଉତ୍ଥିତ ବାଷ୍ପଦ୍ୱାରା ଶରୀରର ସେକ କ୍ରିୟା।
ବାମ୍ୟ—ବି.ବିଂ. ବମନୀୟ,ବମନଯୋଗ୍ୟ. ବାମସମ୍ବନ୍ଧୀୟ।
ବାୟ—ପୁଂ.ବ. (ବେ+ଘ.ଅ) ବୟନସାଧନ, ଲୁଗା ବୁଣିବା।
ବାୟକ—ପୁଂ. ବ. ସମୂହ, ତନ୍ତୁବାୟ, ତନ୍ତ୍ରୀ, (ବିଂ) (ବେ+ନ.ଅକ) ବୟନକାରୀ, ଗାନବଦନକାରୀ, ( ଗ୍ରା. ବ ) ବାଦକ, ବାଦ୍ୟକର, ଚିଆପଲ୍ଲରେ ଯେ ମୃଦଙ୍ଗ ବଜାଏ।
ବାୟଣ—ଗ୍ରା. (ସମ୍ପ)ବ. ବାଇଗଣ।
ବାୟଦଣ୍ଡ—ପୁଂ.ବ. ବାପଦଣ୍ଡ,ତନ୍ତୁକାଠ
ବାୟନ—କ୍ଲୀ ବ.ଭେଟ, ଉପହାର,ଉତ୍ସବାଦ ଉପଲକ୍ଷ୍ୟେ ବନ୍ଧୁମାନଙ୍କଠାରୁ ପ୍ରେରିତ ମିଷ୍ଟାନ୍ନ ପିଷ୍ଟକବିଶେଷ।
ବାୟରଜ୍ଜୁ—କ୍ଲୀ. ବ. ତନ୍ତ ବାନ୍ଧିବାର ଦଉଡ଼ିବିଶେଷ।
ବାୟଲି—ଗ୍ରା.ବ. ( ବସ୍ତ୍ରର ) ସ୍ତ୍ରୀ, ନାଲି, ମାଇକିନିଆ।
ବାୟବ—ବି. ବିଂ. (ବାୟୁ+ଅ) ବାୟୁସମ୍ବନ୍ଧୀୟ, ବାୟୁକୋଣସମ୍ବନ୍ଧୀୟ, ବାୟୁଗୃହୀତ, ବାୟୁଦୈବତ, (ବ) ଉତ୍ତରପଶ୍ଚିମଦିଗ, ବାୟୁପୁରାଣ, ପ୍ରାଚୀନ ଯୁଦ୍ଧାସ୍ତ୍ରବିଶେଷ, (ଗ୍ରା.ବ)ବାବଲଶର।
ବାୟବୀ—ସ୍ତ୍ରୀ. ବ. ( ବାୟୁ+ଅ+ଈ ) ଉତ୍ତରପଶ୍ଚିମଦିକ୍, ବାୟୁକୋଣ।
ବାୟବୀୟ—ତ୍ରି. ବିଂ. ବାୟୁସମ୍ବନ୍ଧୀୟ, ବାୟୁତୁଲ୍ୟ, (କ୍ଲୀ.ବ) ଗୋରଜଃ ସ୍ନାନ।
ବାୟବ୍ୟ—ବି ଓ ବିଂ. ( ବାୟୁ+ଯ ) ବାୟବୀୟ ଦେଖ, (କ୍ଲୀ) ପୁରାଣବିଶେଷ
ବାୟବ୍ୟକୋଣ—ବ. ଉତ୍ତରପଶ୍ଚିମ କୋଣ, ବାୟୁକୋଣ।
ବାୟବ୍ୟବାୟୁ—ପୁଂ.ବ. (କ.ଧା) ଯେଉଁ ବାୟୁ ଛଅମାସ ନୈର୍ଋତ କୋଣ ଓ ଛଅମାସ ଈଶାନ କୋଣରୁ ଭାରତ ସମୁଦ୍ରରେ ବହମାନ ହୁଏ, ମୌସୁମୀବାୟୁ। [ ଓ ଅସ୍ତ୍ର।
ବାୟବ୍ୟାସ୍ତ୍ର—ବ. ବାୟୁ ଗୃହୀତ ବନ୍ଧୁକ
ବାୟସ—ପୁଂ. ବ. ( ବୟ୍+କ. ଅସ୍ ) ଅଗୁରୁ ବୃକ୍ଷ, ଶ୍ରୀବାସ, କାକ, କୁଆ, (ବିଂ) ବାୟସ ସମ୍ବନ୍ଧୀୟ। [ ମୂଳ।
ବାୟସଜଙ୍ଘା—ସ୍ତ୍ରୀ ବ. କାକଜଙ୍ଘା,ଗୁଞ୍ଜା-
ବାୟସତୁଣ୍ଡ—ପୁଂ.ବ. ତନ୍ନାମକ ହନୁର ଉଭୟସନ୍ଧି, କାକତୁଣ୍ଡିକା।
ବାୟସବିଦ୍ୟା—ସ୍ତ୍ରୀ.ବ. ବାୟସ ସମ୍ବନ୍ଧୀୟ ବିଦ୍ୟା, କାକଚରିତ।
ବାୟସାଦନୀ—ସ୍ତ୍ରୀ. ବ. (ବାୟସ+ଅଦ୍+ଅନ+ଈ)ମହାଜ୍ୟୋତିଷ୍ମତୀ,କାକତୁଣ୍ଡି, କୁଆମଇତା।
ବାୟସାନ୍ତକ—ପୁଂ.ବ. ପେଚକ,ପେଚା।
ବାୟସାରାତି—ପୁଂ.ବ. ପେଚକ,ପେଚା।
ବାୟସାରି—ବ.(ତତ୍ତ୍ୱ)ପେଚକ,ପେଚା।
ବାୟସାହ୍ୱା—ସ୍ତ୍ରୀ. ବ. କାକନାସା,କାକମାଚୀ।
ବାୟସୀ—ବ. ( ବାୟସ+ଈ ) କାକୀ, କୁଆମଇତା ଲତା, କାକମାଚୀ ଗୁଳ୍ମ, ମହାଜ୍ୟୋତିଷ୍ମତୀ ଲତା, ଶ୍ୱେତଗୁଞ୍ଜା, କାକଜଙ୍ଘା, ମହାକରଞ୍ଜ।
ବାୟସୀବଲ୍ଲୀ—ସ୍ତ୍ରୀ. ବ. କରଞ୍ଜବଲ୍ଲୀ, ଲତାକରଞ୍ଜ, ଗିଲ।
ବାୟସେକ୍ଷୁ—ପୁଂ. ବ. କାଶତୃଣ।
ବାୟସୋଲିକା—ସ୍ତ୍ରୀ. ବ. କାକୋଲୀ, ମଧୁରା, ମହାଜ୍ୟୋତିଷ୍ମତୀ ଲତା, ପତ୍ରଶାକବିଶେଷ।
ବାୟସୋଲୀ—ସ୍ତ୍ରୀ.ବ.କାକୋଲୀ,କାଙ୍କୁଲି
ବାୟସ୍କୋପ—ଯା. ବ. ଆଧୁନିକ ଗ୍ରସ୍ତାଚିତ୍ର ପ୍ରଦର୍ଶନୀ, ଚଳଚ୍ଚିତ୍ର।
ବାୟା—ଗ୍ରା. ପୁଂ. ବିଂ. ବାତୁଳ,ପାଗଳ, (ବ) ପାଗଳବ୍ୟକ୍ତି,ସ୍ନେହସୂଚକ ସମ୍ବୋଧନ, ବାୟାଚଢ଼େଇ,(ଯା.ବ)ବାଙ୍କହେତା।
ବାୟାଁ—ଗ୍ରା. ବିଂ, ବାମପାର୍ଶ୍ୱସ୍ଥ, ବାମସମ୍ବନ୍ଧୀୟ।
ବାୟାଚଢ଼େଇ—ଗ୍ରା.ବ.ଶାଖାଶ୍ରୟୀ ବର୍ଗର ୬।୭ ଆଙ୍ଗୁଳ ଲମ୍ବ ଏକପ୍ରକାର ଗ୍ଲେଟ ପକ୍ଷୀ। [ହେତା।
ବାୟାମୁସ୍ତରୀ—ଯା. ବ. ବାଙ୍କହେତା ଓ
ବାୟୁ—ପୁଂ. ବ. (ବା+କ.ଉ)ପଞ୍ଚଭୂତ ଅନ୍ତର୍ଗତ ଭୂତବିଶେଷ, ପବନ, ପ୍ରାଣବାୟୁ, ଶରୀରସ୍ଥ କୁପିତ ବାୟୁ, ଅଧୋବାୟୁ, ଉତ୍ତର ପଶ୍ଚିମ କୋଣ, ବାୟୁକୋଣର ରକ୍ଷକ ପବନ ଦେବ।
ବାୟୁକେତୁ—ସ୍ତ୍ରୀ. ବ. (ତତ୍ତ୍ୱ) ଧୂଳି।
ବାୟୁକୋଣ—ପୁଂ. ବ. ଉତ୍ତର ପଶ୍ଚିମ କୋଣ।
ବାୟୁକୋଷ—ଶରୀରାନ୍ତର୍ଗତ ଯେ ଚର୍ମମୟ କୋଷରେ ବାୟୁ ଥାଏ, ଫୁସ୍‌ଫୁସ୍, ଅନ୍ତକୋଷ,ବାୟୁଜନିତ କୋଷବୃଦ୍ଧି।
ବାୟୁଗଣ୍ଡ—ପୁଂ. ବ. (କ.ଧା) ଅଜୀର୍ଣ୍ଣଜନିତ ପେଟଫମ୍ପା।

ବାୟୁଗତ—ବଂ. ( ବ.ଗ୍ରୀ ) ବାୟୁର ଗତିପରି ଶୀଘ୍ରଗତି ବିଶିଷ୍ଟ,ବେଗଗାମୀ ।

ବାୟୁଗୁଲ୍ମ—ପୁଂ.ବ. (୬ତତ୍ପୁ)ଜଳଭ୍ରମୀ, ମଳମଳ, ପେଟର ଏକରୋଗ, ଝଡ଼, ତୋଫାନ ।

ବାୟୁଗୋପ—ବଂ. ବାୟୁରକ୍ଷକ ।

ବାୟୁଗ୍ରସ୍ତ—ପୁଂ. ବଂ. (୩ତତ୍ପୁ) ବାୟୁରୋଗାକ୍ରାନ୍ତ,ବାତରୋଗଗ୍ରସ୍ତ,ବାଉଳ ।

ବାୟୁଚକ୍ର—ଗ୍ରା. ବ. ବାୟୁଦ୍ୱାରା ଚାଳିତ ଯନ୍ତ୍ର ।

ବାୟୁଜ—ବଂ. ( ବାୟୁ+ଜନ୍+ଅ ) ବାୟୁଠାରୁ ଜାତ ।

ବାୟୁଜ୍ୱାଳ—ପୁଂ.ବ.ସପ୍ତର୍ଷିମଧ୍ୟରୁ ଜଣେ ।

ବାୟୁତାଡ଼ିତ—ବଂ.(୩ତତ୍ପୁ)ବାୟୁଦ୍ୱାରା ଆହତ, ପବନରେ ସଞ୍ଚାଳିତ ।

ବାୟୁଦାରୁ—ପୁଂ. ବ. (ବାୟୁ+ଦୃ+ଉ) ମେଘ ।

ବାୟୁଦିକ୍—ସ୍ତ୍ରୀ.ବ.ବାୟୁକୋଣ,ଉତ୍ତର ପଶ୍ଚିମ କୋଣ ।    [ ଦ୍ୱୀପ୍ସ ।

ବାୟୁଦେବ—ବଂ.ବାୟୁଦେବତା ସମ୍ବ-

ବାୟୁଦୈବତ—ତ୍ରି. ବଂ. ବାୟୁଦେବତାକ, ଯାହାର ଅଧିଷ୍ଠାତ୍ରୀ ଦେବତା, ବାୟୁ ।    [ ଦେଖ ।

ବାୟୁଦୈବତ୍ୟ—ତ୍ରି. ବଂ. ବାୟୁଦୈବତ

ବାୟୁଧାରଣ—କ୍ଲୀ. ବ. ବାୟୁର ବେଗଧାରଣ ।

ବାୟୁନା—ଗ୍ରା. ବ. ବାଦକ, ବାଦ୍ୟବଜାଇବା ଲୋକ ।

ବାୟୁନିର୍ଯ୍ୟାଣ(ନିଷ୍କାସନ)ଯନ୍ତ୍ର—ବ.ଯେଉଁ ଯନ୍ତ୍ରଦ୍ୱାରା କୌଣସି ବସ୍ତୁର ଅଭ୍ୟନ୍ତରରୁ ବାୟୁ ବାହାର କରାଯାଏ ।

ବାୟୁନିଘ୍ନ—ବଂ. (୩ତତ୍ପୁ) ବାୟୁଗ୍ରସ୍ତ ।

ବାୟୁପଥ—ପୁଂ. ବ. ବାୟୁର ଗମନାଗମନପଥ, ବାତାୟନ, ଗବାକ୍ଷ ।

ବାୟୁପରିବର୍ତ୍ତନ—କ୍ଲୀ. ବ. ( ୬ତତ୍ପୁ ) ଭିନ୍ନସ୍ଥାନର ଭିନ୍ନପ୍ରକାର ପବନସେବନ, ହାଉଆ ବଦଳାଇବା ।

ବାୟୁପୁତ୍ର—ପୁଂ. ବ. ( ୬ତତ୍ପୁ ) ଭୀମ, ହନୁମାନ୍ ।

ବାୟୁପୁର—କ୍ଲୀ. ବ. ବାୟୁଲୋକ ।

ବାୟୁପୁରାଣ—କ୍ଲୀ. ବ. ପୁରାଣବିଶେଷ ।

ବାୟୁପ୍ରବାହ—ପୁଂ.ବ. (୬ତତ୍ପୁ)ବାୟୁସ୍ରୋତଃ, ପବନର ବେଗ ।

ବାୟୁଫଳ—କ୍ଲୀ. ବ. (ବାୟୁ+ଫଳ) ଶକ୍ରଧନୁ, କରକା, କୁଆପଥର ।

ବାୟୁଭକ୍ଷ—ତ୍ରି. ବଂ. ( ବାୟୁ+ଭକ୍ଷ+ଅ) ବାୟୁଭକ୍ଷକ, ଯେ ପବନଖାଇ ବଞ୍ଚେ, (ବ) ସର୍ପ, ପବନାଶନ ।

ବାୟୁଭକ୍ଷ୍ୟ—ପୁଂ.ବ. ସର୍ପ, (ବଂ)ବାତଭକ୍ଷକ ।

ବାୟୁଭୁକ୍—ବ ଓ ବଂ. (ବାୟୁ+ଭୁଜ୍+କ୍ୱିପ୍) ବାୟୁଭକ୍ଷ ଦେଖ ।

ବାୟୁମଣ୍ଡଳ—ପୁଂ. ବ.(୬ତତ୍ପୁ) ଆକାଶମଣ୍ଡଳ ।    [ ବାୟୁଯୁକ୍ତ ।

ବାୟୁମନ୍—ପୁଂ. ବଂ. ବାୟୁବିଶିଷ୍ଟ,

ବାୟୁମାନଯନ୍ତ୍ର—ବ. ଯେଉଁ ଯନ୍ତ୍ରଦ୍ୱାରା ବାୟୁର ପରିମାଣ ନିରୂପିତ ହୁଏ ।

ବାୟୁମୟ—ବଂ. ବାୟୁସ୍ୱରୂପ ।

ବାୟୁରୁଜା—ସ୍ତ୍ରୀ. ବ. (୬ତତ୍ପୁ) ବାୟୁହେତୁ ପୀଡ଼ା ।

ବାୟୁରୋଗ—ବ.ବାଉଳତା,ବାତରୋଗ ।

ବାୟୁରୋଷା—ସ୍ତ୍ରୀ. ବ. ରାତ୍ରି ।

ବାୟୁଲୋକ—ପୁଂ. ବ. ବାୟୁସମ୍ବନ୍ଧୀୟ ଲୋକ, ଆକାଶ, ବାୟୁଙ୍କର ଲୋକ ।

ବାୟୁବର୍ତ୍ମ—କ୍ଲୀ. ବ. (୬ତତ୍ପୁ) ଆକାଶ, ଗଗନ, ଶୂନ୍ୟ, ପବନ ଯିବାଆସିବାର ରାସ୍ତା ।    [ ଧୂମ, ବାଷ୍ପ ।

ବାୟୁବାହ—ପୁଂ. ବ. (୬ତତ୍ପୁ) ମେଘ,

ବାୟୁବାହନ—ପୁଂ. ବ. (ବ.ଗ୍ରୀ) ଧୂମ, (୬ତତ୍ପୁ) ମୃଗ ।

ବାୟୁବାହକ—ବ. ଶରୀରରେ ବାୟୁ ସଞ୍ଚାଳନ କରିବା ଶିରା ।

ବାୟୁବାହିନୀ—ସ୍ତ୍ରୀ. ବ. ବାୟୁ ସଞ୍ଚାରିଣୀ ଶିରା ।    [ ଜ୍ଞାନ ।

ବାୟୁବିଜ୍ଞାନ—ବ.ବାୟୁ ସମ୍ବନ୍ଧେ ବିଶେଷ

ବାୟୁବେଗ—ପୁଂ. ବ. (୬ତତ୍ପୁ) ବାୟୁର ବେଗ, ବାୟୁର ଗତି, ( ବଂ.ବ.ଗ୍ରୀ ) ବାୟୁପରି ଚଳନ ଗତିବିଶିଷ୍ଟ ।

ବାୟୁଶୂଳ—ବ. ବାୟୁଜନିତ ପେଟମରା ରୋଗ ।

ବାୟୁଷ—ପୁଂ.ବ. କଳାବଇଁଷି ମାଛ ।

ବାୟୁସଖ—ପୁଂ.ବ. (ବ.ଗ୍ରୀ) ଅଗ୍ନି ।

ବାୟୁସଖା—ପୁଂ. ବ. (ବ.ଗ୍ରୀ) ଅଗ୍ନି ।

ବାୟୁସଖି—ପୁଂ. ବ. (ବ.ଗ୍ରୀ) ଅଗ୍ନି ।

ବାୟୁସଞ୍ଚାଳନ—ବ. ( ୬ତତ୍ପୁ ) ସ୍ୱଚ୍ଛନ୍ଦରୂପେ ପବନ ଯିବାଆସିବା କରିବା ।

ବାୟୁସମ୍ଭବ—ପୁଂ.ବ.(ବ.ଗ୍ରୀ) ହନୁମାନ୍, ଭୀମ ।    [ ଭୀମ ।

ବାୟୁସୂନୁ—ପୁଂ.ବ. (୬ତତ୍ପୁ) ହନୁମାନ୍,

ବାୟୁସେବନ—କ୍ଲୀ.ବ. (୬ତତ୍ପୁ) ବାୟୁସେବା କରିବା, ପବନ ଦେହରେ ଲଗିବା ।

ବାୟୁସ୍କନ୍ଧ—ପୁଂ. ବ. ବାୟୁଦେଶ, ବାୟୁସ୍ଥାନ, ଯେଉଁ ସ୍ଥାନରେ ବାୟୁ ବହେ ।

ବାୟୁସ୍ତର—ପୁଂ.ବ. (୬ତତ୍ପୁ) ବତାସର ଥାକ ।

ବାୟ୍ୱଭିଭୂତ—ତ୍ରି.ବଂ.ବାୟୁଗ୍ରସ୍ତ, ବାୟୁରୋଗୀ, ବାୟୁଦ୍ୱାରା ଅଭିଭୂତ ।

ବାୟ୍ୱାସ୍ପଦ—କ୍ଲୀ. ବ. ଆକାଶ ।

ବାର—କ୍ଲୀ. ବ. ( ବୃ+ଣିଚ୍+କ.କ୍ୱିପ୍ ) ଜଳ, ସୁସଜ୍ଜିତ ଭାବେ ଅବସ୍ଥାନ ।

ବାରବରଦାର—ଯା. ବ. ଭାରବାହକ, ବୋଝିଆ ।

ବାରବରଦାରି—ଯା.ବଂ. ବାରବରଦାର ସମ୍ବନ୍ଧୀୟ, (ବ) ବୋଝିଆବୃତ୍ତି ।

ବାର—ବ. (ବୃ+ମି.ଅ) ବାସର,ସପ୍ତାହର ଦିବସ, ଥର, ପର୍ଯ୍ୟା, ପାଳି, ଅବସର, ବହୁସଂଖ୍ୟା, ନିବହ,ସମୂହ, ବହୁଲୋକ,ଜଳ, ଦୁଆର, ମଦ୍ୟପାତ୍ର, (ଭା.ଅ) ନିବାରଣ, ବାରଣ, ଅବରୋଧ, ଅଟକ, ନଦୀ ବା ସମୁଦ୍ରର କିନାରା, (ଣ.ଅ) ଆବରଣ, ଘୋଡ଼ଣି, (କ.ଅ) କ୍ଷଣ, ବାଣ, ଖର, ଶିବ, ବାଳ, (ବଂ) ନିନ୍ଦାର୍ହ୍ୟ,ଅମଙ୍ଗଳଜନକ,ନିବାରଣୀୟ, ନିଷିଦ୍ଧ ।

ବାରଂବାର—ଗ୍ରା.ଅବ୍ୟ. ବହୁଥର, ଥରକୁଥର, ଉପର୍ଯ୍ୟୁପରି ।

ବାରଅଡ଼ା—ଗ୍ରା.(ସମ୍ଭ)ବି. ନିଶୁଣି, ଅଧି-
ରୋହଣୀ ।
ବାରଅନା—ଗ୍ରା.ଅବ୍ୟ.ଅନେକ ପ୍ରକାରେ,
ବହୁତ ରୂପେ ।
ବାରଆଡ଼ର କୁଆ—ଗ୍ରା.ବି.ଜାରଜସନ୍ତାନ,
ବର୍ଣ୍ଣସଙ୍କର । [ ପ୍ରକାରେ ।
ବାରଆଡ଼ୁ—ଗ୍ରା.ଅ.ନାନା ଦିଗରୁ,ଅନେକ
ବାରଆଡ଼େ—ଗ୍ରା.କ୍ରି.ବିଂ. ବହୁ ଦିଗରେ,
ବହୁ ସ୍ଥାନରେ ।
ବାରକ—ପୁଂ.ବିଂ (ବୃ+ଇ+ଣ.ଅକ)
ନିବାରକ, ନିଷେଧକ, ପ୍ରତିବନ୍ଧକ,
(ବି) କଷ୍ଟସ୍ଥାନ,ବାଳା,ସ୍ରୋତର, ଅଶ୍ୱ-
ବିଶେଷ, ଅଶ୍ୱଗତି, କଦମ୍ବ ଗୁଳ, (ଗ୍ରା.
ଅବ୍ୟ.) ଥରେ,ଏକବାର ମାତ୍ର ।
ବାରକଥା—ଗ୍ରା. ବି. ନାନା କଥା ବା
ବିଷୟ, ବହୁ ବିଷୟ ।
ବାରକନା—ଗ୍ରା ବି.ଅନେକ ଗୁଡ଼ିଏ ମୁନ-
ଥିବା ଶସ୍ତ୍ରବିଶେଷ ।
ବାରକନ୍ୟା(ନ୍ୟା)କା—ସ୍ତ୍ରୀ.ବି.ବାରନାରୀ,
ବେଶ୍ୟା ।
ବାରକାଉଡ଼ିଆ—ଗ୍ରା.ବିଂ.ନାନାବସ୍ତୁମିଶ୍ରିତ
ବାରକାନ୍ତା—ଗ୍ରା. ବି. ବେଶ୍ୟା ।
ବାରକୀ—ପୁଂ.ବି.(ବାରକ+ଇନ୍)ପ୍ରତି-
ବାଦୀ, ପ୍ରତିବୋଧକ, ଶତ୍ରୁ, ସମୁଦ୍ର.
ଋଷି, ଉତ୍କୃଷ୍ଟ ଘୋଟକ, ତାମ୍ବୁଲ-
ବିକ୍ରୟୀ, ବରଜୀ, ପର୍ଣ୍ଣାଶୀ ଯତି ।
ବାରକୀର—ପୁଂ.ବି.ଶ୍ୟାଳକ, ବାରଗ୍ରାହୀ,
ଖଡ଼ବାହ, ଦ୍ୱାରୀ,ବାଡ଼ବାଗ୍ନି, ପାନଆଁ,
ଯୁଦ୍ଧାଶ୍ୱ, ଯୋକ, ଉକୁଣି, ନିର୍ଜଜିତ
ବା ପୂଜିତ ଅଶ୍ୱ, ବୋହିଆ ।
ବାରକୋଲ—ଗ୍ରା.ବି.ଖୁବ୍ ବଡ଼ କଇଁଚ ।
ବାରକୋଣ—ଗ୍ରା.ବି.କାଠର ଉଚ୍ଚ ଫନ୍ଦ-
ଥିବା ଡ଼ଲ ।
ବାରଖଡ଼ି—ବି. ବର୍ଣ୍ଣ ଶିକ୍ଷା କରୁଥିବା
ପିଲାଙ୍କର ବ୍ୟଞ୍ଜନବର୍ଣ୍ଣରେ ଯୁକ୍ତ ହେବା
ସ୍ୱରବର୍ଣ୍ଣର ମାତ୍ରାମାନଙ୍କ ଶିକ୍ଷା ।
ବାରଖିଆ—ଗ୍ରା. ବି. ଚିଲିକା ହ୍ରଦରେ
ମିଳୁଥିବା ଏକପ୍ରକାର ଲୁଣୀମାଛ ।
ବାରଗଣ୍ଡାଦକଡ଼ା—ଗ୍ରା. ବି. (ଲକ୍ଷଣାର୍ଥ)
ଅତ୍ୟନ୍ତ ଅଭାବ ଓ ଦୁର୍ଦ୍ଦଶାଗ୍ରସ୍ତ ଅବସ୍ଥା
ବାରଗୋଡ଼ିଆ—ଗ୍ରା.ବିଂ.ଯେଉଁନାହାରେ
ବାରଗୋଟି କାନ୍ଧ ବା ବଖରା ଥାଏ ।
ବାରଗୋପାଳ—ଗ୍ରା.ବି.ବାରସୁତ ଦେଖ
ବାରଘର—ଗ୍ରା.ବି. ବହୁ ଲୋକଙ୍କ ଗୃହ,
କୌଣସି ବ୍ୟକ୍ତିର ମୃତ୍ୟୁର ଦ୍ୱାଦଶ
ଦିବସ । [ ପୁରୁଷ ।
ବାରଘରପଣା—ଗ୍ରା.ବିଂ. ଲମ୍ପଟ, ବିଟ-
ବାରଘରବୁଲା-ଗ୍ରା.ବିଂ.ବାରଦୁଆରି ଦେଖ
ବାରଘରିଆ—ଗ୍ରା.ବିଂ.ବାରଗୋଟି ଗୃହ-
ସମନ୍ୱିତ, ବାରଦୁଆରି ଦେଖ ।
ବାରଙ୍କ—ପୁଂ. ବି. ପକ୍ଷୀ ।
ବାରଙ୍ଗ—ପୁଂ. ବି. (ବୃ+ଣି.ଅଙ୍ଗ)ଖଡ଼୍ଗ,
ଲୌହ,ଅସ୍ତ୍ରଶସ୍ତ୍ରର ମୂଳର ଯେଉଁ ଅଂଶ
କାଠବେଣ୍ଟ ମଧ୍ୟରେ ପଶିଥାଏ, ଖଡ଼୍ଗ-
ାଦିର ବେଣ୍ଟ, (ଗ୍ରା.ବି) କଣ୍ଟକ ଜାତୀର
ଗୁଳ୍ମବିଶେଷ ।
ବାରଙ୍ଗନା—ଗ୍ରା.ବି.ବାରାଙ୍ଗନା ଦେଖ ।
ବାରଗୁଡ଼ିକିଆ—ଗ୍ରା. ବିଂ. ଯେଉଁ ବ୍ୟକ୍ତି
କୌଣସି କାର୍ଯ୍ୟପାଇଁ ଗୋଟିଏ ନିର୍ଦ୍ଦିଷ୍ଟ
ପନ୍ଥା ନ ଧରି ନାନା ପନ୍ଥା ଧରେ,
ଅସ୍ଥିରପ୍ରକୃତିକ, ବହୁ ପ୍ରକାରର ।
ବାରଜ—ଗ୍ରା.ବିଂ. ବର୍ଜିତ, ପୃଥକ୍ ରୂପେ
ରକ୍ଷିତ, ସମାଜଚ୍ୟୁତ, (ବି) ବାରଣ,
ପ୍ରଭେଦ, ବାଧା ।
ବାରଜାତି—ଗ୍ରା.ବି. ବହୁଜାତି, ଅନେକ
ଜାତୀୟ ବ୍ୟକ୍ତି ।
ବାରଜାତିଆ—ଗ୍ରା.ବିଂ. ଅନେକ ପ୍ରକା-
ରର, ବହୁଜାତୀୟ ।
ବାରଜାତିତେରଗୋଲ—ଗ୍ରା. ବି. ଭିନ୍ନ
ଭିନ୍ନ ଜାତି ଓ ଉପଜାତି ।
ବାରଜାତିରେ ମିଶିବା—ଗ୍ରା. କ୍ରି.ଜାତି-
ଭେଦ ନ ରଖିବା ।
ବାରଜାନ୍ତା—ଗ୍ରା. ବି. ସନ୍ତାନ ଜନ୍ମର
ଦ୍ୱାଦଶ ଦିନ ଓ ସେ ଦିନର କର୍ତ୍ତବ୍ୟ
କର୍ମ ।
ବାରଟ—କ୍ଳୀ. ବି. (ବାର+ଅଟ୍+ଅଧି.
ଅ) କ୍ଷେତ୍ର, କ୍ଷେତ୍ରସମୂହ ।
ବାରଟା—ସ୍ତ୍ରୀ.ବି.(ବାରଟ୍+ଆ)ବରଟା,
ରାଜହଂସୀ ।
ବାରଟିଆ—ଗ୍ରା. ବିଂ. ଦ୍ୱାଦଶ ସଂଖ୍ୟକ,
ଦ୍ୱାଦଶ ସଂଖ୍ୟାର ସମାହାରବିଶିଷ୍ଟ ।
ବାରଣ—ବି.(ବୃ+ଇ+ଅନ)ପ୍ରତିଷେଧ,
ନିବାରଣ, ନିଷେଧ, ନିବୃତ୍ତି, ହସ୍ତୀ,
ଅଙ୍କୁଶ, ହରତାଳ, କୃଷ୍ଣଶିଂଶପା, ପାରି-
ଭଦ୍ର, ଶ୍ୱେତ କୁଟଜ ବୃକ୍ଷ, ରୋଧ,
ସେତୁବନ୍ଧ, ପ୍ରଭେଦ, ସାଞ୍ଜୁ. (ବିଂ.ବାର
+ରଣ୍+ଅ)ଜଳଜାତ, ସମୁଦ୍ରୋଦ୍ଭବ,
ପ୍ରତିବନ୍ଧକ, ନିଷେଧ, (ଗ୍ରା.ବି) ବାଡ,
ଭେଦଜ୍ଞାନ, ବାଧା, ବିଘ୍ନ, ଅମଙ୍ଗଳ ।
ବାରଣକଣା—ବି. ଗଜପିପ୍ପଳୀ ।
ବାରଣକରିବା—ଗ୍ରା. କ୍ରି. ମନାକରିବା,
ବାଧାଦେବା, ଦୁଇସ୍ଥାନ ମଧ୍ୟରେ ବାଡ଼
ଦେବା, ଭେଦାଭେଦ କରିବା ।
ବାରଣକେଶର—ପୁଂ ବି. ନାଗକେଶର
ବାରଣପିପ୍ପଳୀ—ସ୍ତ୍ରୀ.ବି. ଗଜପିପ୍ପଳୀ ।
ବାରଣବଲ୍ଲଭା—ସ୍ତ୍ରୀ. ବି. କଦଳୀବୃକ୍ଷ ।
ବାରଣବୁଷା—ସ୍ତ୍ରୀ. ବି. କଦଳୀଗଛ ଓ
ଫଳ ।
ବାରଣରଖିବା—ଗ୍ରା. କ୍ରି. କାର୍ଯ୍ୟ ଦ୍ୱାରା
ଭେଦ ରଖିବା । [ ଶାଳା ।
ବାରଣଶାଳା—ସ୍ତ୍ରୀ.ବି. (୬ତତ୍ପୁ) ହସ୍ତୀ-
ବାରଣଶିର—ଗ୍ରା. ବି. ଗଣେଶ ।
ବାରଣସାହ୍ୱୟ—କ୍ଳୀ. ବି. ଗଜସାହ୍ୱୟ,
ହସ୍ତିନାପୁର ।
ବାରଣସୀ—ସ୍ତ୍ରୀ.ବି. ବାରାଣସୀ, କାଶୀ ।
ବାରଣସ୍ଥଳ—କ୍ଳୀ. ବି. 'ରାମାୟଣୋକ୍ତ
ଜନପଦବିଶେଷ ।
ବାରଣହାରମୋତି—ଗ୍ରା.ବି. ଗଜମୁକ୍ତା ।
ବାରଣହେବା—ଗ୍ରା. କ୍ରି. ବାରହେବା,
ପ୍ରଭେଦ ଜଣାପଡ଼ିବା, ପତିତହେବା,
ସମାଜଚ୍ୟୁତ ହେବା ।
ବାରଣା—ସ୍ତ୍ରୀ.ବି. (ବାରଣ+ଆ)କଦଳୀ-
ଗଛ ଓ ଫଳ ।
ବାରଣାନନ—ପୁଂ.ବି. ଗଣେଶ ।
ବାରଣାବତ—କ୍ଳୀ. ବି. ପାଣ୍ଡବମାନଙ୍କ
ରାଜଧାନୀ, ହସ୍ତିନାପୁର, ପ୍ରୟାଗତୀର୍ଥ,
ଜନପଦବିଶେଷ ।

ବାରଣାହ୍ୱୟ—ବି. ବାରଣସହ୍ୱୟ ଦେଖ
ବାର(ଣ, ରେ)ଣି—ଗ୍ରା.ବି. ବ୍ୟାଘ୍ର,ଭୂତ, ପ୍ରେତାଦି ଓ ଶତ୍ରୁଙ୍କ ଆକ୍ରମଣକୁ ପ୍ରତି-ହତ କରିବାପାଇଁ ମନ୍ତ୍ରଦ୍ୱାରା ସ୍ଥାନକୁ ବା ଦେହକୁ ବାନ୍ଧିବା,ବାରଣ କରିବାର ଉପାୟ, ବାରୁଣୀ, ଗଙ୍ଗାଆଦି ତୀର୍ଥ ଜଳରେ ସ୍ନାନ କରିବାର ଶୁଭଯୋଗ, ବାଡ଼, ବାଧା ।
ବାରଣୀୟ—ବିଂ. ପ୍ରତିଷେଧ, ନିଷେଧ-ଯୋଗ୍ୟ, ହସ୍ତୀଯୋଗ୍ୟ, ଯାହା ବନ୍ଦ କରାଯାଇପାରେ ।
ବାରଣେନ୍ଦ୍ର—ପୁଂ.ବି. ଉତ୍କୃଷ୍ଟ ହସ୍ତୀ ।
ବାରଣ୍ଡ—ବି. କ୍ଷେତ୍ର, କ୍ଷେତ୍ରସମୂହ ।
ବାରଣ୍ଡା—ସ୍ତ୍ରୀ.ବି. ହଂସୀ ।    [ ପିଣ୍ଡା ।
ବାରଣ୍ଡା—ଗ୍ରା.ବି. ତୃଣବିଶେଷ, ବରଣ୍ଡା,
ବାରତା—ଗ୍ରା.(ପଦ୍ୟ)ବି.ବାର୍ତ୍ତା,ସମ୍ବାଦ ।
ବାରଦ—କ୍ଲୀ.ବି. ଚମଦଉଡ଼ି ।
ବାରଦାଣ୍ଡି—ଗ୍ରା.ବି.ଏକପ୍ରକାର ବ୍ୟାୟାମ କ୍ରୀଡ଼ା ।
ବାରଦାଣ୍ଡିଆ—ଗ୍ରା.ବିଂ.ବାରବୁଲା ଦେଖ
ବାରଦୁଆର—ଗ୍ରା.ବି. ଅନେକ ଲୋକଙ୍କ ଘରର ପ୍ରବେଶ ଦ୍ୱାରମାନ ।
ବାରଦୁଆର ବୁଲିବା—ଗ୍ରା.କି. ଏ ଦୁଆର ସେ ଦୁଆର ବୁଲିବା,ଭିକ୍ଷାର୍ଥ ବା ସାହା-ଯ୍ୟାର୍ଥ ବା ଆଶ୍ରୟାର୍ଥ ଅନେକ ବ୍ୟକ୍ତିଙ୍କ ଦ୍ୱାରସ୍ଥ ହେବା ।
ବାରଦୁଆରି—ଗ୍ରା.ବିଂ. ବାରଘର ବୁଲା, ଯେ ଆଶ୍ରୟ ବା ଭିକ୍ଷା ଲାଭାର୍ଥ ବହୁ-ଲୋକଙ୍କ ଦ୍ୱାରରେ ଉପସ୍ଥିତ ହୁଏ ।
ବାରଦୁଆରି—ଗ୍ରା.ସ୍ତ୍ରୀ.ବିଂ. ବାରଘରବୁଲୀ. ବହୁରୂପୀ, କୁଳଟା ।
ବାରନାରୀ—ସ୍ତ୍ରୀ. ବି. ( ବାର+ନାରୀ ) ବାରାଙ୍ଗନା, ବେଶ୍ୟା ।    [ ବେଶ୍ୟା ।
ବାରନିତମ୍ବିନୀ—ସ୍ତ୍ରୀ. ବି. ବାରନାରୀ,
ବାରନ୍ଦା—ଗ୍ରା.ବି.ଘର ଗୁଳର କାଠକାମ ପିଣ୍ଡା, ବାରଣ୍ଡା ।
ବାରପଣ—ଗ୍ରା. ବି. କୌଣସି ବସ୍ତୁର ଷୋଳପଣ ମଧ୍ୟରୁ ବାର ପଣ ।
ବାରପଣି—ଗ୍ରା. ବି. ବାର୍ଷିକ ଖଜଣାର ଷୋଳଭାଗରୁ ବାରଭାଗ ।
ବାରପଣିଆ—ଗ୍ରା.ବିଂ. କୌଣସି ପଦାର୍ଥ ବା ବିଷୟାଦିରୁ ୩/୪ ସମ୍ବନ୍ଧୀୟ ।
ବାରପତି—ବି. (ବାର+ପତି) ସମୁଦ୍ର, ବରୁଣ ।
ବାରପର୍ବ—ଗ୍ରା. ବି. ମୃତାହର ଦ୍ୱାଦଶ ଦିବସର ଶ୍ରାଦ୍ଧାଦି କ୍ରିୟା ।
ବାରଫଳ—କ୍ଲୀ.ବି.ରବିଆଦି ସାତବାରର ଶୁଭାଶୁଭ ନିର୍ଦ୍ଦେଶରୂପ ଫଳ ।
ବାରଭାଇଆ—ଗ୍ରା. ବିଂ. ଭିନ୍ନଅଣ୍ଡିଆ, ବାରଜଣ ଭାଇ ବା ମାଲିକଙ୍କ ଅଧିକୃତ (ସମ୍ପତ୍ତି), ଯେଉଁ କାର୍ଯ୍ୟରେ ଅନେକ ଲୋକଙ୍କର ସମ୍ପର୍କ ଥିବାରୁ କାହା ଉପରେ ନିର୍ଦ୍ଦିଷ୍ଟ ଦାୟିତ୍ୱ ନ ଥାଏ ।
ବାରଭାଇଆଆଖଡ଼ା—ଗ୍ରା. ବି. ଯେଉଁ କାର୍ଯ୍ୟରେ ବା ସ୍ଥାନରେ ଅନେକ ଲୋକଙ୍କର ସମ୍ପର୍କ ଥାଏ, ବହୁସ୍ୱାମିକ କାର୍ଯ୍ୟ ।    [ ବିଷୟ ।
ବାରଭାଇଆକାମ—ଗ୍ରା. ବି. ବହୁ ସ୍ୱାମିକ
ବାରଭାତ—ଗ୍ରା.ବି. ମୃତ୍ୟୁର ଦ୍ୱାଦଶ ଦିନ ଭାଇ କୁଟୁମ୍ବାଦିଙ୍କୁ ଦିଆଯିବା ଅନ୍ନ-ଭୋଜନ ।
ବାରଭୂଇଁଆ—ଗ୍ରା. ବି. ପଞ୍ଚଦଶ ଓ ଷୋଡ଼ଶ ଶତାବ୍ଦୀରେ ରାଜତ୍ୱ କରୁ-ଥିବା ବଙ୍ଗଦେଶର ରାଜୋପାଧିବିଶିଷ୍ଟ ବାରଜଣ ଭୂମ୍ୟଧିକାରୀ ।    [ ଲୋକ ।
ବାରଭୂତ—ଗ୍ରା.ବି. ବହୁ ନିଃସମ୍ପର୍କୀୟ
ବାରମାଡ଼ି—ଗ୍ରା.ବିଂ. ଉତ୍କୃଷ୍ଟ (ସ୍ୱର୍ଣ୍ଣ) ।
ବାରମାସ—ଗ୍ରା.ବି.ବର୍ଷର ଦ୍ୱାଦଶ ମାସ ।
ବାରମାସିଆ—ଗ୍ରା.ବିଂ. ବାରମାସୀ ଦେଖ, ଯାହା ଜନ୍ମିବାକୁ ବାରମାସ ଲାଗେ,ବର୍ଷ-ତମାମ ବୃକ୍ଷରେ ଲାଗି ରହିଥିବା(କୃଷକ
ବାରମାସୀ—ଗ୍ରା.ବିଂ. ବର୍ଷର ବାରମାସ-ସମ୍ବନ୍ଧୀୟ, ବର୍ଷର ବାରମାସଯାକ ଫଳୁ-ଥିବା, (ବି) ଏକପ୍ରକାର ସଜନାଗଛ, ଏକପ୍ରକାର କ୍ଷୁଦ୍ର ଚଢ଼େଇ ।
ବାରମାସୀଫଳ—ଗ୍ରା. ବି. ଯେଉଁ ଫଳ ବରଷକଯାକ ଗଛରେ ଫଳୁଥାଏ ।
ବାରମାସୀୟ—ବି.ବାରମାସର ଅନୁଷ୍ଠେୟ କାର୍ଯ୍ୟ, ବାରମାସର ଅବସ୍ଥା ।
ବାରମାସୀଯାତ୍ରା—ଗ୍ରା.ବି. ବର୍ଷକର ବାର-ମାସ ମଧ୍ୟରେ ବିଷ୍ଣୁଙ୍କର ୧୨ ଗୋଟି ଓ ଶିବଙ୍କର ୧୮ ଗୋଟି ଉତ୍ସବ ।
ବାରମିଶା—ଗ୍ରା.ବିଂ.ଯହିଁରେ ବହୁପ୍ରକାର ବସ୍ତୁ ବା ପଦାର୍ଥ ମିଶିଥାଏ ।
ବାରମୁଖ୍ୟା—ସ୍ତ୍ରୀ.ବି. ଶ୍ରେଷ୍ଠ ବାରାଙ୍ଗନା, ବେଶ୍ୟା ।
ବାରମୁଣ୍ଡିଆ—ଗ୍ରା. ବି. କ୍ଷେତ୍ରର ସୀମା, ସରହଦ୍, କ୍ଷେତ୍ରର ବା ଗ୍ରାମର ସୀମା ନିରୂପକ ପ୍ରସ୍ତରଖଣ୍ଡ ।    [ଦେଖ ।
ବାରମ୍ବାର—ଅ. ପୁନଃ ପୁନଃ, ବାରଂବାର
ବାରୟିତବ୍ୟ—ନି. ବିଂ. ପ୍ରତିଷେଧର ଯୋଗ୍ୟ ।
ବାରୟିତା—ପୁଂ.ବି. (ବୃ+ଇ+କ.ତୃ) ପତି, (ବିଂ) ନିବାରକ, ବାରଣକାରୀ, ନିଷେଧକ ।    [ ବାରନାରୀ ।
ବାରଯୁବତି(ତୀ)—ସ୍ତ୍ରୀ. ବି. ବେଶ୍ୟା,
ବାରଯୋଷିତ୍—ସ୍ତ୍ରୀ. ବି. ବାରନାରୀ, ବେଶ୍ୟା ।
ବାରରାତ—ଗ୍ରା.ବି.ସନ୍ତାନ ଜନ୍ମ ହେବାର ଦ୍ୱାଦଶ ଦିବସରେ ପ୍ରସୂତିର ସ୍ନାନାଦି କ୍ରିୟା, ତଦୁପଲକ୍ଷେ କରାଯିବା ଉତ୍ସବ
ବାରଲା—ସ୍ତ୍ରୀ. ବି. (ବାର+ଅଲ+ଆ) ବରଟା ବରୁଡ଼ି, ରାଜହଂସୀ, କଦଳୀ ।
ବାରଲୀକ—ପୁଂ.ବି. ବଲ୍ୱଜ ତୃଣ ।
ବାରବକଳିଆ—ଗ୍ରା. ବି. ଏକପ୍ରକାର ବଡ଼ ଗଛ ।
ବାରବଧୂ—ସ୍ତ୍ରୀ.ବି. ବେଶ୍ୟା ।
ବାରବର୍ଷୀ(ର୍ଷା,ର୍ଷୀ)—ଗ୍ରା. ପୁଂ ଓ ସ୍ତ୍ରୀ.ବିଂ. ଦ୍ୱାଦଶବର୍ଷବୟସ୍କ ।
ବାରବରଷିଆ—ଗ୍ରା.ବିଂ.ବାରବର୍ଷ ବୟସ୍କ, ଯାହା ବାରବର୍ଷରେ ଥରେ ଘଟେ, ବାରବର୍ଷ ପୂର୍ବେ ଘଟିଥିବା,ଗ୍ରା.ବି.ଏକ-ପ୍ରକାର ସପୁଷ୍ପଜାତୀୟ ଗଛ, ମୁଗ ।
ବାରବାଟ—ଗ୍ରା. ବି. ବିହୁତ ଉପାୟ, ନାନାପନ୍ଥା ।
ବାରବାଟୀ—ଗ୍ରା. ବି. ଓଡ଼ିଶାର କଟକ

କଲ୍ଲାରେ ଥିବା ପ୍ରାଚୀନ ଉତ୍କଳର ସ୍ୱାଧୀନ ନରପତିଙ୍କ ଦୁର୍ଗ ।
ବାରବାଣ—ବି. (ବାର+ବାଣ) ବାଣବାରକ, ସାଞ୍ଜୁ, ବର୍ମ ।
ବାରବାଣି—ପୁଂ.ବି. ବଂଶୀବାଦକ,ଉତ୍ତମ ଗାୟକ, ବଗୁରପତି, ଫବଷ୍ଟର ।
ବାରବାଣୀ—ସ୍ତ୍ରୀ. ବି. ପ୍ରଧାନା ବେଶ୍ୟା, (ବି) ଉତ୍କୃଷ୍ଟ ସୁନା ।
ବାରବାନ—ଗ୍ରା.ବି. ଉତ୍କୃଷ୍ଟ ସୁନା ।
ବାରବାୟୁ—ବି. ପ୍ରଚଣ୍ଡ ପବନ,ବତାସ ।
ବାରବାର—ଗ୍ରା.କ୍ରି. ବିଂ. ଥରକୁ ଥର, ଅନେକଥର, ଉପର୍ଯ୍ୟୁପରି ।
ବାରବାରଣ—ବି. ବାରବାଣ, କଞ୍ଚୁକ, ସାଞ୍ଜୁ ।
ବାରବାଳ—ପୁଂ.ବି. କାର୍ଣ୍ଣାଟସ୍ଥ ଗୋଟିଏ ଅଗ୍ରହାର ।
ବାରବାସି(ଷେୟ)—ପୁଂ.ବି. ମହାଭାରତୋକ୍ତ ଜନପଦବିଶେଷ ।
ବାରବିଳାସିନୀ—ସ୍ତ୍ରୀ.ବି. ବେଶ୍ୟା ।
ବାରବାଳା—ଗ୍ରା.ବିଂ. ଜାରଜ ସନ୍ତାନ ।
ବାରବୁଲ—ଗ୍ରା.ପୁଂ.ବିଂ. ବାସ୍ତୁରିଆ,ଯେ ବାରଆଡ଼େ ବୁଲେ ।
ବାରବେଳ—ଗ୍ରା.(ପଦ୍ୟ)ବିଂ. ଚଉଦ,୧୪,
ବାରବ୍ରତ—କ୍ଲୀ.ବି.ଦୈନନ୍ଦିନ ବ୍ରତକର୍ମ ।
ବାରଶିଙ୍ଗା—ଗ୍ରା.ବି. ଏକପ୍ରକାର ହରିଣ, ଯେଉଁ ହରିଣର ଶିଙ୍ଗରୁ ବାରଗୋଟି ବା ବହୁ ଶିଙ୍ଗ ବାହାରିଥାଏ ।
ବାରସି—ଗ୍ରା.ବି.ବଢ଼େଇର କାଠ ଗୁଞ୍ଜିବା ଅସ୍ତ୍ରବିଶେଷ ।
ବାରସୁତ—ଗ୍ରା.ବି. ଶ୍ରୀକୃଷ୍ଣଙ୍କର ସହଚର ୧୨ ଜଣ ଗୋପାଳ ବାଳକ ।
ବାରସୁତା—ଗ୍ରା.(ପଦ୍ୟ)ସ୍ତ୍ରୀ.ବି. ଇନ୍ଦ୍ରାଣୀ, ଶଚୀ ।
ବାରସୁନ୍ଦରୀ—ସ୍ତ୍ରୀ.ବି. ବେଶ୍ୟା ।
ବାରସେବା—ସ୍ତ୍ରୀ. ବି. ବେଶ୍ୟାବୃତ୍ତି, ବେଶ୍ୟାସମୂହ ।
ବାରସ୍ତ୍ରୀ—ସ୍ତ୍ରୀ.ବି. ବେଶ୍ୟା, ବାରାଙ୍ଗନା ।
ବାରଂଷ୍ଟାଢ଼—ଗ୍ରା. ବି. ବ୍ରହ୍ମାଙ୍କ ପୁର, ସ୍ୱର୍ଗ, ଇନ୍ଦ୍ରପୁରୀ, ଅମରାବତୀ ।

ବାରସ୍ୱଢ—ବି. ଇନ୍ଦ୍ର, ଇନ୍ଦ୍ରାଣୀ ।
ବାରହାଣ୍ଡିଆ—ଗ୍ରା, ବିଂ. ଯେ ଏକ ସ୍ଥାନରେ ସ୍ଥିରହୋଇ ନ ରହି ବାର ଜାଗାରେ ଅର୍ଥାତ୍ ବହୁ ସ୍ଥାନରେ ହାଣ୍ଡି କରି ଘୋଷେଇ କରିଥାଏ, (ବି)ବନ୍ଦୋବସ୍ତ ସମ୍ପର୍କରେ ହାଉଣ୍ଡର ମାପକରିବା ଅମିନ ।
ବାରହାତ—ଗ୍ରା.ବି. ବାରହାତ ଦୈର୍ଘ୍ୟ, ବହୁବ୍ୟକ୍ତିଙ୍କ ହାତ, (ବିଂ) ବହୁଲୋକଙ୍କ ହାତରେ ପଡ଼ିବା ।
ବାରହାଢ଼—ଗ୍ରା.ବିଂ. ବାରହାତିଆ ଦେଖ ।
ବାରହାତିଆ—ଗ୍ରା.ବିଂ. ବାରହାତ ଦୀର୍ଘ, ବାରହାତ ଲମ୍ବର (ଲୁଗା) ।
ବାରାଂନିଧି—ପୁଂ.ବି. ସମୁଦ୍ର ।
ବାରାଙ୍ଗ—ବି. (ବାର+ଅଙ୍ଗ)ଅସ୍ତ୍ର ପ୍ରଭୃତିର ଯେଉଁ ଅଂଶକୁ କାଠବେଣ୍ଟ ମଧ୍ୟରେ ଭରତି କରାଯାଇଥାଏ ।
ବାରାଙ୍ଗନା—ସ୍ତ୍ରୀ ବି. (ତଚ୍ଛ) ବେଶ୍ୟା ।
ବାରାଣସୀ—ସ୍ତ୍ରୀ.ବି. (ବାର=ଯେ ବାରଣ କରେ+ଅନସ=ଜନ୍ମ ଅର୍ଥାତ୍ ଯେଉଁଠାରେ ମଲେ ଆଉ ଜନ୍ମ ନାହିଁ (ବରଣା+ଅସି)ବରଣା ଓ ଅସି ନାମ୍ନୀ ନଦୀ ଦ୍ୱୟମଧ୍ୟରେ ଅବସ୍ଥିତ ହେତୁ କିମ୍ବା ବର ଶ୍ରେଷ୍ଠ=ଅନସ=ଜଳ+ଈ) ବନାରସ, କାଶୀ ।
ବାରାଣସେୟ—ତ୍ରି.ବିଂ.(ବାରାଣସୀ+ଏୟ) ବାରାଣସୀ ଜାତ, ବାରାଣସୀସମ୍ବନ୍ଧୀୟ, ବାନାରସି, କାଶୀରେ ନିର୍ମିତ ।
ବାରାନିଧି—ଗ୍ରା.ପୁଂ.ବି. ବାରିଧି ସମୁଦ୍ର ।
ବାରାନ୍ତର—ବି. (କ.ଧା) ଅନ୍ୟ ସମୟ, ସମୟାନ୍ତର, ଅନ୍ୟଥର ବା ବାର ।
ବାରାନ୍ତରେ—ଗ୍ରା. କ୍ରି. ବିଂ, ପୁନର୍ବାର, ଅନ୍ୟଥରେ, ଭବିଷ୍ୟତରେ ।
ବାରାଲିକା—ସ୍ତ୍ରୀ.ବି. (ବାର+ଅ+ଲୀ+କ.ଆ) ଦୁର୍ଗା ।
ବାରାବସ୍କନ୍ଦୀ—ପୁଂ.ବି. (ବାର+ଅବସ୍କନ୍ଦ+ଇନ୍) ଅଗ୍ନି ।
ବାରାସନ—କ୍ଲୀ.ବି. ବରାସନ,ଜଳାଧାର, ଦ୍ୱାରପାଳ ।

ବାରାହ—ବିଂ. (ବରାହ+ଅ ବରାହଠାରୁ ପ୍ରାପ୍ତ, ବରାହମିହିର ମତସମ୍ବନ୍ଧୀୟ, ବରାହସମ୍ବନ୍ଧୀୟ, (ବି) ଶୂକର, କଳେବେତସ, ବାରାହୀକନ୍ଦ, ପୁରାଣବିଶେଷ, ବରାହପୁରାଣ ।
ବାରାହକର୍ଣ୍ଣୀ—ସ୍ତ୍ରୀ.ବି.ଅଶ୍ୱଗନ୍ଧା ।
ବାରାହକ୍ଷେତ୍ର—ହିମାଳୟସ୍ଥ ଦେବସ୍ଥାନବିଶେଷ । [ ଗନ୍ଧା ।
ବାରାହପତ୍ରୀ—ସ୍ତ୍ରୀ.ବି.ବରାହକର୍ଣ୍ଣୀ, ଅଶ୍ୱ
ବାରାହପୁରାଣ—କ୍ଲୀ.ବି.ଅଷ୍ଟାଦଶ ପୁରାଣାନ୍ତର୍ଗତ ପୁରାଣବିଶେଷ ।
ବାରାହାଙ୍ଗୀ—ସ୍ତ୍ରୀ.ବି. ଦନ୍ତୀବୃକ୍ଷ ।
ବାରାହୀ—ସ୍ତ୍ରୀ.ବି.(ବାରାହ+ଈ)ମାତୃକାବିଶେଷ, ଯୋଗିନୀବିଶେଷ, ମହାକନ୍ଦଶାକବିଶେଷ, ଶୂକରୀ ।
ବାରାହୀକନ୍ଦ—ବି. ହାତୀଖୋଜିଆ ଆଳୁ, ହାଣ୍ଡିଆ ଆଳୁ, ଭୂଇଁକଖାରୁ ।
ବାରାହୀତନ୍ତ୍ର—ବି.ତନ୍ତ୍ର ଶାସ୍ତ୍ରବିଶେଷ ।
ବାରି—ବି.(ବୃ+ଣିଚ୍+ଇ)ଜଳ,ତରଳ ପଦାର୍ଥ, ତାରଲ୍ୟ,ହ୍ରୀବେର,କୁରୁବେଣ୍ଟ, ବନ୍ଦୀ, ସରସ୍ୱତୀ, କଳସୀ, ଗଜବନ୍ଧନ ରଜ୍ଜୁ, ଗଜବନ୍ଧନ ସ୍ଥାନ, ବାକ୍ୟ, ପଥିକ, ସମୂହ, (ଗ୍ରା.ବି) ଲୋତକ, କୌଣସି କାର୍ଯ୍ୟ କରିବାର ପାଳି, ଘରବାଡ଼ି, କୌଣସି ନିର୍ଦ୍ଦିଷ୍ଟ ଦିବସରେ ପଡ଼ିବା ।
ବାରିଆ—ଗ୍ରା.(ଗଞ୍ଜାମ)ବି.ବାରହା,ବାରୁହା
ବାରିକ—ଗ୍ରା.ବିଂ. ସୂକ୍ଷ୍ମ, ଖୁବ୍ ପତଳା (ଲୁଗା ଆଦି),ତାଉସ, ଉତ୍କୃଷ୍ଟ ।
ବାରିକମିସ୍ତ୍ରୀ—ଗ୍ରା. ବି. ସୂକ୍ଷ୍ମ ଶିଳ୍ପରେ ନିପୁଣ ବ୍ୟକ୍ତି, ଗଭର୍ଣ୍ଣମେଣ୍ଟଙ୍କର ପୂର୍ତ୍ତ ବିଭାଗ ।
ବାରିକ—ଗ୍ରା.ପୁଂ. ବି. ନାପିତ, ଭଣ୍ଡାରି, ଶୂଦ୍ରମାନଙ୍କ ବଂଶୋପାଧିବିଶେଷ, (ପ୍ରା. ଗଞ୍ଜାମ.ବି) ଚୌକିଦାର ।
ବାରିକଣ୍ଟକ—ବି. ଶୃଙ୍ଗାଟକ, ଶିଙ୍ଗଡ଼ା ।
ବାରିକଫ—ବି.(ବି.ସ୍ତ୍ରୀ)ସମୁଦ୍ର ଫେନ ।
ବାରିକର୍ଣ୍ଣିକା—ସ୍ତ୍ରୀ.ବି.ବୋରଝାଞ୍ଜି,ଝାମ୍ପୁଲ
ବାରିକର୍ପୂର—ବି. ଇଲିଶିମାଛ ।

ବାରିକା—ସା. ବି. ଚିତ୍ରକାରମାନଙ୍କର ରେଖା ଟାଣିବାର ସରୁ ତୂଳୀ ।
ବାରିକୁଣ୍ଡ—ଗ୍ରା. ବି. କ୍ଷୁଦ୍ର ସରୋବର, ଜଳାଧାର ।
ବାରିକୁବ୍ଜ(କ)—ପୁଂ. ବି. ଶୃଙ୍ଗାଟକ, ଶିଙ୍ଗଡ଼ା ।
ବାରିକୃମି—ପୁଂ. ବି. ଜଳୌକା, ଜୋକ ।
ବାରିକୋଳ—ଗ୍ରା. ବି. କଚ୍ଛପ, କଇଁଛ ।
ବାରିଗର୍ଭୋଦର—ବି. ମେଘ ।
ବାରିଚତ୍ୱର—ପୁଂ. ବି. କୁମ୍ଭିକା, ବୋଇଝାଞ୍ଜି ।
ବାରିଚର—ପୁଂ. ବି. (ବାରି+ଚର୍+କ. ଅ) ଜଳଚର ଜୀବ, ମତ୍ସ୍ୟ, ଶଙ୍ଖ, ଶଙ୍ଖନାଭି, (ବିଂ) ଯେ ଜଳରେ ବିଚରଣ କରେ ।
ବାରିଜ଼ମର—ବି (ବାରି+ଜ଼ମର) ଶୈବାଳ, ଶିଉଳି ।
ବାରିଜ—ବିଂ. (ବାରି+ଜନ୍+ଅ) ଜଳଜମାତ୍ର, (ବି) ଦ୍ରୋଣୀ ଲବଣ, ପଦ୍ମ, ଲବଙ୍ଗ, ମତ୍ସ୍ୟ, ଶଙ୍ଖ, ଖାଣ୍ଡିସୁନା, କଉଡ଼ି, ଗେଣ୍ଡା, ଶାମୁକା ।
ବାରିଜବନ୍ଧୁ—ପୁଂ. ବି. (ଷତତ୍ପୁ) ସୂର୍ଯ୍ୟ, ପଦ୍ମବନ୍ଧୁ ।
ବାରିଜାକ୍ଷ—ବିଂ. (ବ. ବ୍ରୀ) ଯାହାର ଚକ୍ଷୁ ପଦ୍ମପରି ବିଶାଳ ଓ ସୁନ୍ଦର, (ବି) ବିଷ୍ଣୁଙ୍କ ଅବତାରବିଶେଷ ।
ବାରିଜାତ—ବିଂ. ଜଳରେ ଯାହା ଜନ୍ମେ, ବାରିଜ, (ପୁଂ. ବି) ଶଙ୍ଖନାଭି ।
ବାରିଜୀବକ—ବିଂ. ଜଳଚର, ଜଳରେ ଯେ ଜୀବନ ଧାରଣ କରେ ।
ବାରିଜୌକା—ବି. ଜଳୌକା, ଜୋକ ।
ବାରିଝର—ଗ୍ରା. ବି. ଝରଣା, ଜଳପୂର୍ଣ୍ଣ କଳସୀ ।
ବାରିତ—ବିଂ. (ବୃ+ଣିଚ୍+ମ. ତ) ନିବାରିତ, ଯାହାକୁ ଅଟକ କରାଯାଇଅଛି ।
ବାରିତର—କ୍ଲୀ. ବି. ଉଶୀର, ବେଣାମୂଳ ।
ବାରିତସ୍କର—ପୁଂ. ବି. (ଷତତ୍ପୁ) ମେଘ, ସୂର୍ଯ୍ୟ, (ବିଂ) ବାରିଶୋଷଣକର୍ତ୍ତା ।
ବାରିଡ—ତ୍ରି. ବିଂ. ଜଳଜାତ ଔଷଧି ।
ବାରିତ୍ରା—ସ୍ତ୍ରୀ. ବି. (ବାରି+ତ୍ରୈ+କ. ଅ+ଆ) ଆତପତ୍ର, ଛତା ।
ବାରିଦ—ବିଂ. (ବାରି+ଦା+ଅ) ଜଳଦାତା, (ପୁଂ. ବି) ମେଘ, ମୁଥା ।
ବାରିଦ୍ରୁ—ପୁଂ. ବି. ଚାତକପକ୍ଷୀ ।
ବାରିଧର—ପୁଂ. ବି. (ବାରି+ଧୃ+ଅ) ମେଘ, ଭଦ୍ରମୁସ୍ତା ।
ବାରିଧାନୀ—ସ୍ତ୍ରୀ. ବି. ଜଳପାତ୍ର ।
ବାରିଧାର—ପୁଂ. ବି. ମେଘ ।
ବାରିଧାରା—ସ୍ତ୍ରୀ. ବି. ଜଳଧାରା ।
ବାରିଧି—ପୁଂ. ବି (ବାରି+ଧା+ଅଧି. ଇ) ସମୁଦ୍ର ।
ବାରିଧିଚୁଳୁକ—ପୁଂ. ବି. (ବ. ବ୍ରୀ) ଅଗସ୍ତ୍ୟ ଋଷି । [ ଚନ୍ଦ୍ର ।
ବାରିଧିଜ—ବି. (ବାରିଧି+ଜନ୍+କ. ଅ)
ବାରିନାଥ—ପୁଂ. ବି. (ଷତତ୍ପୁ) ବରୁଣ, ସମୁଦ୍ର, ମେଘ ।
ବାରିନିଧି—ପୁଂ. ବି. (ଷତତ୍ପୁ) ସମୁଦ୍ର ।
ବାରିପ—ବିଂ. (ବାରି+ପା+ଅ) ଜଳପାୟୀ ମାତ୍ର ।
ବାରିପଥ—ପୁଂ. ବି. ଜଳପଥ ।
ବାରିପର୍ଣ୍ଣୀ—ସ୍ତ୍ରୀ. ବି. (ବାରିପର୍ଣ୍ଣ+ଈ) କୁମ୍ଭିକା, ବୋଇଝାଞ୍ଜି ।
ବାରିପାତ୍ର—କ୍ଲୀ. ବି. (ଷତତ୍ପୁ) କଳସୀ ।
ବାରିପାଳିକା—ସ୍ତ୍ରୀ. ବି. ଆକାଶମୂଳିକା, ବୋଇଝାଞ୍ଜି, ଶମ୍ଭୁଳିକା ।
ବାରିପୃଷ୍ଠୀ—ସ୍ତ୍ରୀ. ବି. କୁମ୍ଭିକା, ବୋଇଝାଞ୍ଜି ।
ବାରିପୁଷ୍ପୀ—ସ୍ତ୍ରୀ. ବି. ବାରିପର୍ଣ୍ଣୀ ।
ବାରିପ୍ରବାହ—ପୁଂ. ବି. (ଷତତ୍ପୁ) ନିର୍ଝର, ଜଳପ୍ରପାତ, ଜଳସ୍ରୋତ ।
ବାରିପ୍ରସାଦନ—କ୍ଲୀ. ବି. କତକଫଳ, ନିର୍ମାଳି, ନିର୍ମଳା ଫଳ ।
ବାରିବଦର—ବି. ବି. ପାଣିଅଁଳା ।
ବାରିଭବ—କ୍ଲୀ. ବି. ସ୍ରୋତାଞ୍ଜନ, ଶୁର୍ମା, (ବିଂ) ଜଳଜାତ ମାତ୍ର ।
ବାରିମସି—ପୁଂ. ବି. ମେଘ ।
ବାରିମୁକ୍—ପୁଂ. ବି. (ବାରି+ମୁଚ୍+କ. କ୍ୱିପ୍) ମେଘ ।
ବାରିମୂଳୀ—ସ୍ତ୍ରୀ. ବି. (ବ. ବ୍ରୀ) ବାରିପର୍ଣ୍ଣୀ, ବୋଇଝାଞ୍ଜି ।
ବାରିଯନ୍ତ୍ର—କ୍ଲୀ. ବି. ଜଳଯନ୍ତ୍ର, ଜଳର ଉତ୍ସ ବା ଫୁଆରା ।
ବାରିରଥ—ପୁଂ. ବି. (ଷତତ୍ପୁ) ଭେଳା, ପ୍ଲବ
ବାରିରାଶି—ପୁଂ. ବି. (ଷତତ୍ପୁ) ସମୁଦ୍ର, ଜଳରାଶି ।
ବାରିରୁହ—କ୍ଲୀ. ବି. (ବାରି+ରୁହ+କ. ଅ) କମଳ, ପଦ୍ମ, (ବିଂ) ଜଳଜାତ (ଉଦ୍ଭିଜ୍ଜ) ।
ବାରିଲୋମା—ପୁଂ. ବି. (ବାରି+ଲୋମନ୍) ବରୁଣ ।
ବାରିବଦନ—କ୍ଲୀ. ବି. ପାଣିଅଁଳା ।
ବାରିବର—କ୍ଲୀ. ବି. କରମର୍ଦ୍ଦକ ।
ବାରିବଲ୍ଲଭା—ସ୍ତ୍ରୀ. ବି. ବିଦାରୀ ।
ବାରିବହ—ବିଂ. ଜଳ ବହନକାରୀ ।
ବାରିବା—ଗ୍ରା. (ପଦ୍ୟ) କ୍ରି. ଅଟକାଇବା, ବାରଣକରିବା, ନିଷେଧ କରିବା, ମନା କରିବା, ପ୍ରଭେଦ ଦେଖିବା, ଆଗରୁ ସାବଧାନ ହେବା, ଜାଣିବା, ପୃଥକ୍ କରିବା, ମାନିବା, ହେଜିବା, ବିଗ୍ରହ ପୂର୍ବକ ସ୍ଥିର କରିବା, ଶାନ୍ତ କରିବା, ବାଛିବା ।
ବାରିବାଳକ—କ୍ଲୀ. ବି. ହ୍ରୀବେର, ବାଳା, କୁରୁବେଲି ।
ବାରିବାସ—ପୁଂ. ବି. (ବାରି+ବାସି+କ. ଅ) ଶୌଣ୍ଡିକ, ଶୁଣ୍ଡି, ମଦ ତିଆରି କରିବା ବ୍ୟକ୍ତି ।
ବାରିବାହ—ପୁଂ. ବି. (ବାରି+ବହ୍+କ. ଅ) ମେଘ, ମୁସ୍ତା ।
ବାରିବାହକ—ପୁଂ. ବିଂ. ଜଳବହନକାରୀ ।
ବାରିବାହନ—ପୁଂ. ବି. ମେଘ ।
ବାରିବାହୀ—ବିଂ. ଜଳବହନକାରୀ ।
ବାରିବିହାର—ପୁଂ. ବି. ଜଳବିହାର, ଜଳକ୍ରୀଡ଼ା ।
ବାରିବ୍ୟାଳ—ଗ୍ରା. ବି. ପାଣି ଧଣ୍ଡସାପ ।
ବାରିଶ—ପୁଂ. ବି. (ବାରି+ଶୀ+କ. ଅ) ବିଷ୍ଣୁ ।
ବାରିଶାସ୍ତ୍ର—କ୍ଲୀ. ବି. ଶାସ୍ତ୍ରବିଶେଷ, (ଜ୍ୟୋତିଷ) କେଉଁ ସ୍ଥାନରେ କେତେ ପରିମାଣରେ ଓ କେଉଁ ସମୟରେ ବର୍ଷା ହେବାର ଯେଉଁ ଗ୍ରନ୍ଥରୁ ଗଣନା

କରଯାଇ ପାରେ ।
ବାରସମ୍ଭବ—ବି.ଲବଙ୍ଗ, ସୌବର୍ଚ୍ଚଳ, ଉଶୀର,ଯାବନାଳଶର, ଜନର ଡ଼ାଙ୍ଗ, (ବିଂ) ଜଳଜାତ ମାତ୍ର ।
ବାରସାର—ପୁଂ.ବି ଚନ୍ଦ୍ରଗୁପ୍ତପୁତ୍ରବିଶେଷ
ବାରହ୍ମା—ଗ୍ରା. ବି. ବାରହ୍ମା ।
ବାରହେବା—ଗ୍ରା. କ୍ରି. ଜାଣିହେବା, ବାରଣ ପଡ଼ିବା,ପ୍ରଭେଦ ଜଣାପଡ଼ିବା ।
ବାରି—ସ୍ତ୍ରୀ.ବି.(ବାର + ଇ) ଗଜବନ୍ଧନୀ ରଜ୍ଜୁ, ଗଜଶାଳା, କଳସୀ, ଜଳ, କୁମ୍ଭ
ବାରିଟ—ପୁଂ.ବି. ହସ୍ତୀ, ହାତୀ ।
ବାରିନ୍ଦ୍ର—ପୁଂ.ବି. (ତତ୍ପୁ) ସମୁଦ୍ର ।
ବାରିଶ—ପୁଂ.ବି. (ତତ୍ପୁ) ସମୁଦ୍ର ।
ବାରୁ—ପୁଂ.ବି. ବିଜୟ ହସ୍ତୀ,ଯୁଦ୍ଧହସ୍ତୀ, (ଗ୍ରା.ବି) ଘୋଟକ ।
ବାରୁଅର—ପ୍ରା. (ମେଦ.ବାଲେଶ୍ୱର) ବି. ଗ୍ରାମରେ ସାଧାରଣଙ୍କ ଗୃହାଦ୍ୱାରା ହେବା ଯାହା । [ ବାଦ, ଶାଳ ।
ବାରୁଆଳ—ଗ୍ରା.ବି.କଳହ,କଳି,ବାଦାନୁ-
ବାରୁଠ—ପୁଂ.ବି. (ବୃ+ଶିର୍+ମି.ଉଠ) ମୃତ୍ୟୁଶଯ୍ୟା, କୋକେଇ, ଅନ୍ତଶଯ୍ୟା ।
ବାରୁଣ—କ୍ଳୀ.ବି. (ବରୁଣ+ଅ) ବରୁଣଗଛ, ଜଳଦ୍ୱାରା ସ୍ନାନ,ପଶ୍ଚିମଦିଗ,ଜଳ ଶତଭିଷା ନକ୍ଷତ୍ର, ଉପପୁରାଣବିଶେଷ, ଭାରତବର୍ଷର ଖଣ୍ଡବିଶେଷ, ହରତାଳ, (ବିଂ) ବରୁଣସମ୍ବନ୍ଧୀୟ ।
ବାରୁଣକର୍ମ—କ୍ଳୀ. ବି. ଜଳାଶୟ ଖନନାଦି, ଖାତ ଖନନ ।
ବାରୁଣି—ପୁଂ.ବି. (ବରୁଣ + ଇ)ଅଗସ୍ତ୍ୟମୁନି, ବଶିଷ୍ଠ, ବିନତାପୁତ୍ରବିଶେଷ, ଭୃଗୁ, ଦନ୍ତାହାନ୍ତି, ବରୁଣଗଛ, ରଜାବିଶେଷ ।
ବାରୁଣୀ—ସ୍ତ୍ରୀ.ବି. ( ବରୁଣ + ଅ + ଈ ) ସୁରା, ମଦିରା,ମଦିରା ଅଧିଷ୍ଠାତ୍ରୀ ଦେବୀ, ବରୁଣପତ୍ନୀ, ନଦୀବିଶେଷ, ପଶ୍ଚିମଦିଗ, ବିଦ୍ୟାବିଶେଷ, ଅଶ୍ୱଗନ୍ଧାବିଶେଷ,ଶତଭିଷା ନକ୍ଷତ୍ର, ଗଣ୍ଡଦୁର୍ବା, ସ୍ୱନାମଖ୍ୟାତ ବୃକ୍ଷ, ହସ୍ତିନୀ, ଇନ୍ଦ୍ରବାରୁଣୀଲତା, ଭୂମ୍ୟାମଲକୀ, ଶତଭିଷା ନକ୍ଷତ୍ରଯୁକ୍ତ ଚୈତ୍ର କୃଷ୍ଣତ୍ରୟୋଦଶୀ, ଗଙ୍ଗାସ୍ନାନଯୋଗ, ବରୁଣ କନ୍ୟା, ଅଶ୍ୱର ଗତିବିଶେଷ ।
ବାରୁଣୀଗଙ୍ଗାସ୍ନାନ—ବି. ଗଙ୍ଗାନଦୀରେ ଚୈତ୍ର କୃଷ୍ଣତ୍ରୟୋଦଶୀଦିନ ଘଟିବା ପ୍ରଶସ୍ତ ସ୍ନାନଯୋଗ ।
ବାରୁଣୀବଲ୍ଲଭ—ପୁଂ. ବି. ବରୁଣ ।
ବାରୁଣୀଶ—ପୁଂ. ବି. (ବାରୁଣୀ+ଈଶ) ବାରୁଣୀପତି, ବରୁଣ ।
ବାରୁଣୀସନ୍ଧ୍ୟା—ଗ୍ରା. ବି. ସନ୍ଧ୍ୟାକାଳୀନ ପଶ୍ଚିମାକାଶ ।
ବାରୁଣୀସ୍ନାନ—ବି.ଚୈତ୍ର କୃଷ୍ଣତ୍ରୟୋଦଶୀ ଦିନ ଗଙ୍ଗାରେ ଓ ସମୁଦ୍ରରେ ଘଟିବା ସ୍ନାନଯୋଗ ।
ବାରୁଣ୍ଡ—ବି.(ବୃ+କ.ଉଣ୍ଡ)ଫଣୀରାଜା, ଅନନ୍ତ, କର୍ଣ୍ଣମଳ,ନେତ୍ରମଳ,ନୌକାର ଜଳସେକ ପାତ୍ର ।
ବାରୁଣ୍ଡୀ—ସ୍ତ୍ରୀ. ବି.(ବାରୁଣ୍ଡ + ଈ)ଦ୍ୱାରପିଣ୍ଡି, ବାରଣ୍ଡା ।
ବାରୁଦ—ଯା. ବି. ଗନ୍ଧକାଦି ମିଶ୍ରିତ ଚୂର୍ଣ୍ଣବିଶେଷ, ଅଗ୍ନିଚୂର୍ଣ୍ଣ, ଦାରୁ ।
ବାରୁଦଖାନା—ଯା. ବି. ବାରୁଦ ରଖିବାର ଓ ପ୍ରସ୍ତୁତ କରିବାର ସ୍ଥାନ ।
ବାରୁଣ୍ୟ—ତ୍ରି. ବିଂ. ବାରୁଣୀ ବା ବରୁଣ ସମ୍ବନ୍ଧୀୟ ।
ବାରୁହ—ପୁଂ. ବି. ଅଗ୍ନି । [ ବାର ।
ବାରେକ—ଗ୍ରା. କ୍ରି. ବିଂ. ଥରେ, ଏକ-
ବାରେଣୀ—ପ୍ରା.(ବାମଣ୍ଡା)ବି. ପହଁରା,ଝିଙ୍କ୍
ବାରେନ୍ଦ୍ର—ପୁଂ. ବି. (ବରେନ୍ଦ୍ର+ଅ) ବରେନ୍ଦ୍ର ଦେଶର ଅଧିବାସୀ,ବରେନ୍ଦ୍ର ଦେଶୀୟ ବ୍ରାହ୍ମଣ ।
ବାରେନ୍ଦ୍ରଗୋଷ୍ଠୀ—ଗ୍ରା. ବି. ରାଜସାହି ବିଭାଗରେ ଉପନିବେଶ ସ୍ଥାପନ କରିଥିବା ବଙ୍ଗାଳୀବ୍ରାହ୍ମଣ ଓ କ୍ଷତ୍ରିୟମାନଙ୍କ ଦଳ ।
ବାରେବାରେ—ଗ୍ରା.ଅ.ବାରବାର ଦେଖ, କେବେକେବେ ।
ବାର୍କ୍ଷ—ବିଂ. (ବୃକ୍ଷ+ଅ) ବୃକ୍ଷସମ୍ବନ୍ଧୀୟ, (ବି)ଗଛର ଛାଲରେ ନିର୍ମିତ ବସ୍ତ୍ରବିନା ।
ବାର୍କ୍ଷୀ—ସ୍ତ୍ରୀ. ବି. (ବାର୍କ୍ଷ+ଈ) ପ୍ରମ୍ଳୋଚା ନାମ୍ନୀ ଅପ୍ସରାର କନ୍ୟା,ପ୍ରଚେତାଗଣଙ୍କ ପତ୍ନୀ ଓ ଦକ୍ଷପ୍ରଜାପତିଙ୍କ ମାତା,ମାରିଷା ।
ବାର୍କ୍ଷ୍ୟ—ତ୍ରି. ବିଂ. ବୃକ୍ଷସମ୍ବନ୍ଧୀୟ, (କ୍ଳୀ) ବୃକ୍ଷ ।
ବାର୍ଗ—ପୁଂ. ବି. ହଂସ ।
ବାର୍ଣ୍ଣକ—ପୁଂ.ବି. (ବର୍ଣ୍ଣ+ଅକ)ଲେଖକ ।
ବାର୍ଣ୍ଣିକ—ପୁଂ.ବି. (ବର୍ଣ୍ଣ+ଇକ)ଲେଖକ, ଚିତ୍ରକର, (ବିଂ) ବର୍ଣ୍ଣସମ୍ବନ୍ଧୀୟ ।
ବାର୍ଣ୍ଣିଶ—ଯା. ବି. କାଷ୍ଠାଦି ଚକ୍‌ଚକ୍ କରିବା ପ୍ରଲେପବିଶେଷ ।
ବାର୍ତ୍ତ—ବି. ( ବୃତ୍ତି+ଅ ) ଆରୋଗ୍ୟ, ସ୍ୱାସ୍ଥ୍ୟ, କୁଶଳ,ପଟୁତା, (ବିଂ)ନୀରୋଗ, ସୁସ୍ଥ, ମନୋହର, ପଟୁ, ବୃତ୍ତିଶାଳୀ, ବୃତ୍ତିସମ୍ବନ୍ଧୀୟ ।
ବାର୍ତ୍ତିକ—ପୁଂ. ବି. ବାର୍ତ୍ତାକୁ, ବାଇଗଣ, ବାର୍ତ୍ତିକପକ୍ଷୀ ।
ବାର୍ତ୍ତାକିନ୍—ପୁଂ. ବି. ବାର୍ତ୍ତାକୁ ।
ବାର୍ତ୍ତାକୀ—ସ୍ତ୍ରୀ. ବି. ବୃହତୀ, ବାର୍ତ୍ତାକୁ ।
ବାର୍ତ୍ତାକୁ—ସ୍ତ୍ରୀ. ବି. ବାଇଗଣ ।
ବାର୍ତ୍ତାନୀତ—ସ୍ତ୍ରୀ. ବି.(ତତ୍ପୁ)ଅର୍ଥଶାସ୍ତ୍ର ।
ବାର୍ତ୍ତାପତି—ପୁଂ. ବି. ସମ୍ବାଦଦାତା ।
ବାର୍ତ୍ତାସୂଚନ—ପୁଂ. ବି. (ବ.ବ୍ରୀ) ସମ୍ବାଦ ବାହକ, ଦୂତ, ଚର, ଗୁପ୍ତପୁରୁଷ, ସମ୍ବାଦଦାତା ।
ବାର୍ତ୍ତାରମ୍ଭ—ପୁଂ. ବି.(ବାର୍ତ୍ତା+ଆରମ୍ଭ) କୃଷିକାର୍ଯ୍ୟ ଓ ପଶୁପାଳନାଦିର ଆରମ୍ଭ ।
ବାର୍ତ୍ତାବହ—ପୁଂ. ବିଂ. (ବାର୍ତ୍ତା +ବହ୍+ କ.ଅ) ସମ୍ବାଦବାହକ.(ବି) ଦୂତ,ଚର, ଆୟ ବ୍ୟୟବିଷୟ ପ୍ରଦର୍ଶକ ନୀତଶାସ୍ତ୍ର, ସମ୍ବାଦବାହକ ଯନ୍ତ୍ର ।
ବାର୍ତ୍ତାଶିନ୍—ତ୍ରି.ବିଂ. ଯେ ଭୋଜନପାଇଁ ନିଜେ ଗୋତ୍ରାଦି ବୋଲିଥାଏ ।
ବାର୍ତ୍ତାହର—ପୁଂ. ବି. ବାର୍ତ୍ତାହାରକ, ସମ୍ବାଦବାହକ ।
ବାର୍ତ୍ତାହର୍ତ୍ତୃ—ପୁଂ. ବି. ବାର୍ତ୍ତାହର,ଦୂତ ।
ବାର୍ତ୍ତିକ—ବି. ( ବାର୍ତ୍ତା+ଇକ ) ଦୂତ, ଚର, ( ବୃତ୍ତି+ଇକ ) ବୈଶ୍ୟକାର୍ଯ୍ୟ,

ବ୍ୟାଖ୍ୟାଗ୍ରନ୍ଥ, ଟୀକା, ବଉରଚଢ଼େଇ, ବାଇଗଣ । [ ପ୍ରଣେତା ।
ବାର୍ତ୍ତିକକାର—ପୁଂ. ବ. ବାର୍ତ୍ତିକଗ୍ରନ୍ଥ
ବାର୍ତ୍ତିକକୃତ୍—ପୁଂ. ବ. ବାର୍ତ୍ତିକକାର ।
ବାର୍ତ୍ତିକା—ସ୍ତ୍ରୀ. ବ. (ବାର୍ତ୍ତିକ+ଆ) ପକ୍ଷିବିଶେଷ, ବଷ୍ଟୁଲଙ୍ଗୀ, ବତରପକ୍ଷୀ ।
ବାର୍ତ୍ତିକାହ୍ୱ—କ୍ଲୀ. ବ. ସାମଭେଦ ।
ବାର୍ତ୍ତିକେନ୍ଦ୍ର—ପୁଂ. ବ. କର୍ମିଷ୍ଠବିଦ୍ୟା, ବିଚ ।
ବାର୍ତ୍ରଘ୍ନ—ପୁଂ. ବ. ଅର୍ଜ୍ଜୁନ, ଜୟନ୍ତ, (ବିଂ) ବୃତ୍ରଘ୍ନ ସମ୍ବନ୍ଧୀୟ ।
ବାର୍ତ୍ରତୁଳ—କ୍ଲୀ. ବ. ସାମଭେଦ ।
ବାର୍ତ୍ତିହର୍ତ୍ତ୍ୟ—ତ୍ରି. ବିଂ. ବୃତ୍ରହନନ ନିମିତ୍ତ ।
ବାର୍ଦ୍ଦ—ପୁଂ. ବ. (ବାର୍+ଦା+କ.ଅ) ମେଘ, (ବିଂ) ଜଳଦାତା ।
ବାର୍ଦ୍ଦର—କ୍ଲୀ.ବ. (ବାର୍+ଦର) କୃଷ୍ଣଲାବୀଜ, ଦକ୍ଷିଣାବର୍ତ୍ତି ଶଙ୍ଖ, କାକଚଞ୍ଚା, ଭାରତୀ, କୃମିଜ, ଜଳ, ଆମ୍ରବୀଜ, ରେଶମ ।
ବାର୍ଦ୍ଦଳ—ବି. ଦୁର୍ଦ୍ଦିନ, ମେଘଆଚ୍ଛନ, ମସ୍ୟାଧାର, ଦୁଆଡ ।
ବାର୍ଦ୍ଧକ—କ୍ଲୀ. ବ. (ବୃଦ୍ଧ+କ) ବୃଦ୍ଧାବସ୍ଥା, ବୃଦ୍ଧସମୂହ, ବୃଦ୍ଧର କର୍ମ, (ବିଂ) ବୃଦ୍ଧ ।
ବାର୍ଦ୍ଧକୀ—ସ୍ତ୍ରୀ. ବ. ବୃଦ୍ଧାବସ୍ଥା ।
ବାର୍ଦ୍ଧକ୍ୟ—କ୍ଲୀ. ବ. ( ବାର୍ଦ୍ଧକ+ଯ ) ବୃଦ୍ଧାବସ୍ଥା, ଜରା ।
ବାର୍ଦ୍ଧକ୍ଷତ୍ରି—ପୁଂ.ବ.ବୃଦ୍ଧକ୍ଷତ୍ରଙ୍କ ଗୋତ୍ରାପତ୍ୟ, ଜୟଦ୍ରଥ ।
ବାର୍ଦ୍ଧି—ପୁଂ.ବ. (ବାର୍+ଧା+ଅଧି.ଇ) ସମୁଦ୍ର, ବାରିଧି ।
ବାର୍ଦ୍ଧିଜା—ସ୍ତ୍ରୀ. ବ. (ବାର୍ଦ୍ଧି+ଜନ୍+ଡ.ଅ+ଆ) ଲକ୍ଷ୍ମୀ ।
ବାର୍ଦ୍ଧିଭବ—କ୍ଲୀ.ବ.ଦ୍ରୋଣୀଲବଣ, ସାମୁଦ୍ର ଲବଣ ।
ବାର୍ଦ୍ଧୁଷି(ଷୀ)—ପୁଂ.ବିଂ.ବାର୍ଦ୍ଧୁଷିକ, ବୃଦ୍ଧିଜୀବୀ, (ବ) ସୁଦ୍‌ଖୋର, ମହାଜନ ।
ବାର୍ଦ୍ଧୁଷିକ—ପୁଂ. ବିଂ. ବୃଦ୍ଧିଜୀବୀ, ( ବ ) ସୁଦ୍‌ଖୋର, ମହାଜନ ।
ବାର୍ଦ୍ଧୁଷ୍ୟ—କ୍ଲୀ. ବ. ( ବାର୍ଦ୍ଧୁଷି+ଯ ) ସୁଧପାଇଁ ଟଙ୍କା ଧନ କରଜଦେବା ।
ବାର୍ଦ୍ଧେୟ—ବ. ଦ୍ରୋଣୀଲବଣ, ସାମୁଦ୍ର ଲବଣ ।
ବାର୍ଦ୍ଧ୍ର(ର୍ଦ୍ଧ୍ରୀ)—କ୍ଲୀ. ବ.(ବୃଦ୍ଧ+ର+ଈ) ଚର୍ମରଜ୍ଜୁ, ଚମଦଉଡି ।
ବାର୍ଦ୍ଧ୍ରୀଣ(ନ)ସ—ପୁଂ. ବ. ଗଣ୍ଡାପଶୁ, ନାସିକାପ୍ରୋଥରକ୍ତପଶୁ, ନାକଫୋଡ଼ା ଜନ୍ତୁ, ଲମ୍ବକର୍ଣ୍ଣବିଶିଷ୍ଟ ଶ୍ୱେତବର୍ଣ୍ଣ ଛାଗ, ପକ୍ଷିବିଶେଷ । [ କୁମ୍ଭୀର ।
ବାର୍ଭଟ—ପୁଂ.ବ.(ବାର୍+ଭଟ୍+କ.ଅ)
ବାର୍ମ୍ମଣ—କ୍ଲୀ. ବ. (ବର୍ମନ୍+ଅ) ବର୍ମସମୂହ । [ ସମୂହ ।
ବାର୍ମ୍ମିଣ—କ୍ଲୀ. ବ. (ବର୍ମିନ୍+ଅ) ବର୍ମି-
ବାର୍ମ୍ମୁକ୍—ପୁଂ. ବ. (ବାର୍+ମୁଚ୍+କ. କ୍ୱିପ୍) ମେଘ, ମୁସ୍ତକ ।
ବାର୍ଯ୍ୟ—ତ୍ରି. ବିଂ. (ବାର+ଯ) ବାରସମ୍ବନ୍ଧୀୟ, ବାରଣୀୟ, ନିବାରଣୀୟ, ନିଷେଧ ଯୋଗ୍ୟ, (ବ) ବର, ଦେବତାଆଦିଙ୍କ ପ୍ରଦତ୍ତ ଅନୁଗ୍ରହ ବା ଆଶୀର୍ବାଦ, ସମ୍ପତ୍ତି ।
ବାର୍ଯ୍ୟମାଣ—ବିଂ. ( ବାର+ମି. ଆନ ) ନିବାରିତ, ନିଷିଦ୍ଧ, ଯାହା ନିବାରଣ କରାଯାଉଅଛି ।
ବାର୍ଯ୍ୟୟନ—କ୍ଲୀ. ବ. ଜଳାଶୟ ।
ବାର୍ଯ୍ୟାମଳକ—ପୁଂ. ବ. ପାଣିଅଁଳା ।
ବାର୍ଯ୍ୟୁଦ୍ଭବ—କ୍ଲୀ. ବ. ପଦ୍ମ, (ବିଂ) ଜଳଜାତ ମାତ୍ର, (ସ୍ତ୍ରୀ) ବାର୍ଯ୍ୟୁଦ୍ଭବା ।
ବାର୍ଯ୍ୟୁପଜୀବୀ—ତ୍ରି. ବିଂ. ଜଳଜୀବୀ ।
ବାର୍ଯ୍ୟୈକା—ବ. ଜଳୌକା, ଜୋକ ।
ବାର୍ଲୀ—ଯା. ବ. ଯବଚୂର୍ଣ୍ଣ, ଯବ ।
ବାର୍ବଟ—ପୁଂ.ବ. (ବାର୍+ବଟ୍+ମି.ଅ) ବହିତ୍ର, ନୌକାପ୍ରଭୃତି ଜଳଯାନ, ଆହୁଲ
ବାର୍ବଟୀର—ବ. (ବାର୍ବଟୀ+ର) ଅସନ୍ତାପୁତ୍ର, ଜାରଜ, ଆମ୍ରପଲ୍ଲବ ।
ବାର୍ବଣା—ସ୍ତ୍ରୀ. ବ. ନୀଳୀ ମକ୍ଷିକା, ଭଣଭଣା ମାଛି ।
ବାର୍ବର—ତ୍ରି. ବିଂ. ବର୍ବର ସମ୍ବନ୍ଧୀୟ ।
ବାର୍ବରକ—ତ୍ରି. ବିଂ. ବର୍ବର ସମ୍ବନ୍ଧୀ ।
ବାର୍ବାହ—ପୁଂ. ବ. (ବାର୍+ବହ୍+କ.ଅ) ଜଳଦ, ମେଘ ।
ବାର୍ଶିଲା—ସ୍ତ୍ରୀ. ବ. କରକା, କୁଆପଥର ।
ବାର୍ଷ—ତ୍ରି. ବିଂ. (ବର୍ଷା+ଅ) ବର୍ଷାସମ୍ବନ୍ଧୀୟ, ବର୍ଷସମ୍ବନ୍ଧୀୟ ।
ବାର୍ଷକ—ବ.(ବର୍ଷ+ଅ+କ) ସୁଦ୍ୟୁମ୍ନକୃତ ପୃଥିବୀର ଦଶଭାଗ ମଧ୍ୟରୁ ଏକ ।
ବାର୍ଷଦ—ତ୍ରି. ବିଂ. (ବୃଷଦ୍+ଅ) ଅଂଶ ସମ୍ବନ୍ଧୀୟ, ଅଂଶ ।
ବାର୍ଷଭ—ତ୍ରି. ବିଂ.(ବୃଷଭ+ଅ)ବୃଷଭସମ୍ବନ୍ଧୀୟ ।
ବାର୍ଷଭାନବୀ—ସ୍ତ୍ରୀ. ବ. (ବୃଷଭାନୁ+ଅ+ଈ) ଶ୍ରୀରାଧା, ବୃଷଭାନୁନନ୍ଦିନୀ ।
ବାର୍ଷଲ—ବ. (ବୃଷଲ+ଅ) ବୃଷଲଭାବ, ଶୂଦ୍ରର ଭାବ ବା କର୍ମ ।
ବାର୍ଷଲି—ସ୍ତ୍ରୀ.ବ. (ବୃଷଲୀ+ଇ) ବୃଷଲୀର ଅପତ୍ୟ ।
ବାର୍ଷଶତିକ—ତ୍ରି.ବିଂ.ବର୍ଷଶତ ସମ୍ବନ୍ଧୀୟ
ବାର୍ଷସହସ୍ରିକ—ତ୍ରି. ବିଂ. ସହସ୍ରବର୍ଷ ସମ୍ବନ୍ଧୀୟ ।
ବାର୍ଷିକ—ବିଂ.(ବର୍ଷ+ଇକ) ସାମ୍ବତ୍ସରିକ, ପ୍ରତିବର୍ଷ ଘଟିବା ବା କରାଯିବା, ପ୍ରତିବର୍ଷ ପାଇଁ ନିର୍ଦ୍ଦିଷ୍ଟ, ବତ୍ସର ସମ୍ବନ୍ଧୀୟ, ପ୍ରତିବର୍ଷ ଦେୟ, ପ୍ରତିବର୍ଷପ୍ରାପ୍ୟ, ବର୍ଷଜୀବୀ (ଗୁଳ୍ମ), (ବର୍ଷା+ଇକ) ବର୍ଷା କାଳୀନ, ବର୍ଷାଋତୁ ସମ୍ବନ୍ଧୀୟ, (ବ) ବାତ୍ସରିକ ବେତନ, ବାତ୍ସରିକ କର, ପ୍ରତିବର୍ଷ କର୍ତ୍ତବ୍ୟ ପୂଜାଦି, ବର୍ଷରେ ଥରେ ଦେୟ ବା ପ୍ରାପ୍ୟବସ୍ତୁ, ତ୍ରାୟମାଣା ଲତା, ଧୂନା, ଝୁଣା ।
ବାର୍ଷିକପରୀକ୍ଷା—ଗ୍ରା. ବ. ବର୍ଷଶେଷରେ ନିମ୍ନଶ୍ରେଣୀରୁ ଉଚ୍ଚଶ୍ରେଣୀକୁ ଉଠିବାପାଇଁ ଛାତ୍ରମାନଙ୍କ ଯୋଗ୍ୟତା ବାଛିବା ନିମନ୍ତେ ହେବା ପରୀକ୍ଷା ।
ବାର୍ଷିକୀ—ଗ୍ରା. ବ. ବାର୍ଷିକ ପ୍ରାପ୍ୟ ବା ଖଞ୍ଜା, ସାଲିଆନା ।
ବାର୍ଷିକୀ—ସ୍ତ୍ରୀ. ବ. (ବର୍ଷା+ଇକ+ଈ) ତ୍ରାୟମାଣା ଲତା, ମୁଗୁରାମଲ୍ଲୀ, ବର୍ଷାଭବ ମଲ୍ଲିକାବିଶେଷ, କାଶବାଜ, (ବିଂ) ବର୍ଷ-

କର୍ତ୍ତବ୍ୟ (ପ୍ରଜାଦ) ।
ବାର୍ଷିକ୍ୟ—ହି. ବଂ. ବାର୍ଷିକକୃତ୍ୟ ।
ବାର୍ଷିଲା—ସ୍ତ୍ରୀ. ବ. (ବର୍ଷା+ଇଲ+ଆ) କରକା, କୁଆପଥର ।
ବାର୍ଷୁକ—ହି. ବଂ. ( ବୃଷ୍+କ.ଉକ ) ବର୍ଷଣଶୀଳ ।
ବାର୍ଷ୍ଣ୍ୟ—ହି. ବଂ. ବୃଷ୍ଟିଯୋଗ୍ୟ ।
ବାର୍ଷ୍ଣ—ପୁଂ. ବ. (ବୃଷ୍ଣି+ଅ) ଶ୍ରୀକୃଷ୍ଣ, (ବଂ) ବାର୍ଷ୍ଣେୟ ଦେଖ ।
ବାର୍ଷ୍ଣି—ପୁଂ. ବ. ବୃଷ୍ଣିବଂଶ ।
ବାର୍ଷ୍ଣେୟ—ପୁଂ. ବଂ. ( ବୃଷ୍ଣି+ଏୟ ) ବୃଷ୍ଣିବଂଶ ସମ୍ଭୂତ, ଯଦୁବଂଶୀୟ, ( ବ ) ନଳରାଜାଙ୍କ ସାରଥି, ଶ୍ରୀକୃଷ୍ଣ ।
ବାର୍ଷ୍ଣ୍ୟ—ପୁଂ. ବ. ଶ୍ରୀକୃଷ୍ଣ ।
ବାର୍ହତ—କ୍ଲୀ. ବ. (ବୃହତୀ+ଅ) ବୃହତୀ ଫଳ ।
ବାର୍ହଦ୍ରଥ(ଥି)—ପୁଂ. ବ. (ବୃହଦ୍ରଥ+ଅ +ଇ) ଜରାସନ୍ଧ, (ବଂ) ଜରାସନ୍ଧ ସମ୍ବନ୍ଧୀୟ ।
ବାର୍ହସ୍ପତ—ବଂ. (ବୃହସ୍ପତି+ଅ) ବୃହସ୍ପତି ସମ୍ବନ୍ଧୀୟ, (ବ)ଜୈବବତ୍ସର,ବୃହସ୍ପତି ସୂର୍ଯ୍ୟଙ୍କ ଗୃହପାଖରେ ଥରେ ପରିକ୍ରମା କରିବାକୁ ଯେତେ ସମୟ ଲାଗେ, ସୌର ୧୨ ବର୍ଷ ।
ବାର୍ହସ୍ପତ୍ୟ—ବଂ. (ବୃହସ୍ପତି+ଯ) ବୃହସ୍ପତି ସମ୍ବନ୍ଧୀୟ, (ବ) ବୃହସ୍ପତି ପ୍ରଣୀତ ନୀତିଶାସ୍ତ୍ର, ଚାର୍ବାକ୍‌ମତ,ବୌଦ୍ଧଦର୍ଶନ ।
ବାଲ୍—ପ୍ରା.(ସମ୍ବ)ବ. ବାଳଆମାଛ,ବାଳ ।
ବାଳ—ପୁଂ. ବ. (ବଲ୍+କ.ଅ) କେଶ, ଅସ୍ଥାନର କେଶ,୫ ବର୍ଷ ବୟସ୍କ ହାତୀ, ଘୋଡ଼ାଛୁଆ, ଚମର, ବାଳକ, ୧୬ ବର୍ଷ ଅପେକ୍ଷା ନ୍ୟୂନ ବୟସ୍କ ପୁରୁଷପିଲା, ବାଳଆମାଛ, ନଡ଼ିଆଗଛ,ବାଲା,କୁରୁବେଲ, ନବବୁଦ୍ଧିଆ ବା ଅବୁଝା ବ୍ୟକ୍ତି, (ବଂ) ନୂତନ, ନବଜାତ, ଅଳ୍ପବୁଦ୍ଧ, ଅଜ୍ଞାନ, ନବୋଧ, (ଗ୍ରା.ବଂ) ନଗଣ୍ୟ, ହେୟ, ଅଳ୍ପବୟସ୍କ ।
ବାଳକ—ପୁଂ.ବ.(ବାଳ+କ)ଅଙ୍ଗୁଳୀୟକ, ବଳୟ, ଜଟାମାଂସୀ, ଶିଶୁ, ଅପ୍ରାପ୍ତବୟସ୍କ ବା ବାରବର୍ଷରୁ ନ୍ୟୂନ ପୁରୁଷପିଲା, ହାତୀଛୁଆ, ଘୋଡ଼ାଛୁଆ, କୁରୁବେଲ, ଗନ୍ଧଦ୍ରବ୍ୟବିଶେଷ, ଲାଙ୍ଗୁଡ଼, ମୂର୍ଖ ବ୍ୟକ୍ତି, (ବଂ)ବାଳକ ପରି ନବୋଧ ବା ଅଜ୍ଞାନ ।
ବାଳକତା(ତ୍ୱ)—ବ.ବାଲ୍ୟାବସ୍ଥା,ପିଲାବୁଦ୍ଧି ।
ବାଳକଥା—ଗ୍ରା.ବ.ବାଲ୍ୟକାଳର ଦରେଇ କଥା, ଘୃଣ୍ୟ ବିଷୟ, ମଳସ୍ଥାନ ବିଷୟ ।
ବାଳକପ୍ରିୟା—ବ. (୬ତତ୍ତ) କଦଳୀ, ଇନ୍ଦ୍ରବାରୁଣୀ, ମହାକାଳ ।
ବାଳକାଟି—ଗ୍ରା.ବ.ପୁରୀଜିଲା ଭୁବନେଶ୍ୱର ନିକଟସ୍ଥ ଗ୍ରାମ ।
ବାଳକାଟିବା—ଗ୍ରା.ହି. କେଶକୁ କତୁରୀ ଦ୍ୱାରା କାଟିବା ।
ବାଳକାଣ୍ଡ—ବ. ରାମାୟଣର ଆଦିକାଣ୍ଡ ।
ବାଳକାମୀ—ପୁଂ. ବଂ. ( ବାଳ+କାମ +ଇନ୍) ସନ୍ତାନକାମୀ, ପୁତ୍ରକାମୀ ।
ବାଳକାଳ—ବ. ବାଲ୍ୟାବସ୍ଥା ।
ବାଳକି—ଗ୍ରା. ବ. ଲଞ୍ଜା । [ କରଣ ।
ବାଳକରଣ—ଗ୍ରା. ବ. ନବୋଦିତ ସୂର୍ଯ୍ୟ
ବାଳକୀ—ଗ୍ରା. ବ. ବାଳକର ସ୍ତ୍ରୀଲିଙ୍ଗ ।
ବାଳକୃମି—ବ.(୬ତତ୍ତ)କେଶକୃମି,ଉକୁଣି
ବାଳକୃଷ୍ଣ—ବ. ଶିଶୁ,ଶ୍ରୀକୃଷ୍ଣ ।
ବାଳକ୍ରୀଡ଼ା—ବ. (୬ତତ୍ତ) ପିଲା ଖେଳ ।
ବାଳକ୍ରୀଡ଼ନକ—ପୁଂ.ବ.କପର୍ଦ୍ଦକ,କଉଡ଼ି
ବାଳଖାଇବା—ଗ୍ରା.ହି.(ଅଶିଷ୍ଟ)କୌଣସି କାର୍ଯ୍ୟରେ ଅକୃତକାର୍ଯ୍ୟ ହେବା ।
ବାଳଖିଲ୍ୟ—ବ. ( ବାଳ+ଖିଲ+ଯ ) ବ୍ରହ୍ମାଙ୍କ ଶରୀରସମ୍ଭୂତ ବୃଦ୍ଧାଙ୍ଗୁଷ୍ଠ ପରିମିତ ଷାଠିଏ ହଜାର ମୁନି ।
ବାଳଗର୍ଭବତୀ—ସ୍ତ୍ରୀ. ବ. (କ.ଧା) ପ୍ରଥମ ଗର୍ଭବତୀ ଗାଈ ।
ବାଳଗର୍ଭିଣୀ—ସ୍ତ୍ରୀ. ବ. (କ.ଧା) ପ୍ରଥମ ଗର୍ଭବତୀ ଗାଈ । [ ଶିଶୁ ।
ବାଳଗୋପାଳ—ପୁଂ.ବ.(କ.ଧା)ଶ୍ରୀକୃଷ୍ଣ,
ବାଳଗୋବିନ୍ଦ—ବ. ଶିଶୁ, ଶ୍ରୀକୃଷ୍ଣ ।
ବାଳଗ୍ରହ—ବ. (ବାଳ+ଗ୍ରହ+କ.ଅ) ଅକାଳରେ ଶିଶୁ ପ୍ରାଣନାଶକ ରୋଗାଦି, ଶିଶୁମାନଙ୍କ ପ୍ରାଣନାଶକ ନଅଟି ଉପଦେବତା ।
ବାଳଚର—ବି. ବିଏସ୍କାଉଟ୍ ଦେଖ ।
ବାଳଚର୍ଯ୍ୟ—ବ.(ବ.ଗ୍ରା)କୁମାର,କାର୍ତ୍ତିକେୟ. (୬ତତ୍ତ) ବାଳକର ଚରିତ ।
ବାଳଚର୍ଯ୍ୟା—ବି.(୬ତତ୍ତ) ଶିଶୁପାଳନ ।
ବାଳଜ୍ଞାନନକରିବା—ଗ୍ରା. ହି. ସାମାନ୍ୟମାତ୍ର ସମ୍ମାନ ବା ଖାତିର ନ ଦେଖାଇବା
ବାଳଟି(ଡି)—ଗ୍ରା. ବ. ଲୌହାଦି ନିର୍ମିତ ବର୍ତ୍ତୁଳମୁଖ ଏକପ୍ରକାର ପାତ୍ର ।
ବାଳତନୟ—ବି. ଖଇର ଗଛ, (ଗ୍ରା.ବ) ପିଲାପୁଅ । [ ତାଳସନ୍ଧି
ବାଳତାଲି—ଗ୍ରା. ବ. ତାଳସ୍ଥି ମଞ୍ଜା,
ବାଳତୃଣ—ବ.କଅଁଳିଆ ଘାସ,ନୂଆ ଘାସ
ବାଳଧନ—ବ.(୬ତତ୍ତ) ନାବାଳକର ଧନ
ବାଳଧରାଧରି—ଗ୍ରା. ହି. ବଂ. ପରସ୍ପର ଚୁଟି ଧରାଧରି ହେବା, ଭୟାନକ କଳି କଜିଆ ।
ବାଳଧି—ପୁଂ.ବ.(ବାଳ+ଧା+କ.ଇ) କେଶଯୁକ୍ତ ଲାଙ୍ଗୁଳ, ଚାମର ।
ବାଳଧିପ୍ରିୟ—ପୁଂ. ବ. ଚମରୀ ମୃଗ ।
ବାଳଧୀ—ବ. ଚାମର, ବାଳକର ବୁଦ୍ଧି ।
ବାଳଧୂପ—ଗ୍ରା. ବ. ଠାକୁରଙ୍କୁ ସକାଳେ ଭୋଗ କରାଯିବା ମିଷ୍ଟାନ୍ନାଦି ।
ବାଳପକା(କେ)ଇବା—ଗ୍ରା. ହି. ଦେବତାଙ୍କ ଉଦ୍ଦେଶ୍ୟରେ ମାନସିକ କରି ଛାଡ଼ିଥିବା କେଶକୁ କ୍ଷୌରାଦି ଦ୍ୱାରା ମୁଣ୍ଡିତ ହେବା ।
ବାଳପାଚିବା—ଗ୍ରା. ବ.କେଶର ପକ୍ୱତା, ବୃଦ୍ଧାବସ୍ଥା ।
ବାଳପାଶ୍ୟା—ସ୍ତ୍ରୀ. ବ. ( ବାଳ+ପାଶ+ଯ+ଆ)ଲଲାଟଭୂଷଣ,ସୀମନ୍ତ,ଅଳକାଫାଟି, ବାଳପ ଶ୍ରେଷ୍ଠ ମଣି ।
ବାଳପୁଅ—ଗ୍ରା.ପୁଂ.ବ.ଶିଶୁପୁତ୍ର,ପିଲାପୁଅ
ବାଳପୁଷ୍ପୀ—ବ. (ବାଳ+ପୁଷ୍ପ+ଇନ୍) ଯୂଥିକା, ଯୂଈ ।
ବାଳପ୍ରମାଣ—ଗ୍ରା. ହି. ବଂ. କେଶପରି ଅତି ସୂକ୍ଷ୍ମଭାବରେ,କେଶର ବ୍ୟବଧାନ ମାତ୍ର ରହି ।
ବାଳଭାନୁ—ବ. (କ.ଧା) ନବୋଦିତ

ସୂର୍ଯ୍ୟ, ବୈଦୁର୍ଯ୍ୟମଣି ।
ବାଲଖିବ—ବି.(୬ତତ୍ପୁ)ବାଲକନ୍ତୁ, ବାଲ୍ୟ ଚପଳତା ।
ବାଲଭାଷଣ—ବି.(୬ତତ୍ପୁ)ଶିଶୁର ଅପରିସ୍ଫୁଟ କଥା, ଶିଶୁର ଭାଷା ।
ବାଲଭାଷିତ—କ୍ଲୀ. ବି. (୬ତତ୍ପୁ) ଶିଶୁର ଅପରିସ୍ଫୁଟ କଥା ।
ବାଲଭୋଗ—ବି, ଦେବତାଙ୍କୁ ସମର୍ପଣ କରିବା ପ୍ରାତଃକାଳିକ ଭୋଗ ।
ବାଲଭୋଜ୍ୟ—ବି.(୬ତତ୍ପୁ) ଶିଶୁର ପଥ୍ୟ (ବି) ଚଣକ, ଚେଣା ।
ବାଲମାଧବ—ପୁଂ, ବି. ଶିଶୁ,ଶ୍ରୀକୃଷ୍ଣ ।
ବାଲମନ୍ଦା—ଗ୍ରା. ବି. ଦେହରେ ଚକା ଚକା ହୋଇ ସ୍ଥାନେ ସ୍ଥାନେ ଉଠିବା ବଡ଼ ଲୋମଚମ୍ପୁ ।
ବାଲମିକ—ଗ୍ରା. ବି. ବାଲ୍ମୀକ ଦେଖ ।
ବାଲମୁକୁନ୍ଦ— ବି. ବାଲମାଧବ ଦେଖ ।
ବାଲମୂଳକ—ବି. ( କ.ଧା ) ଶ୍ରେଷ୍ଠ ଓ କଅଁଳିଆ ମୂଳା ।
ବାଲମୂଳିଆ—ଗ୍ରା. ବି. ଲୋମ ମୂଳରେ ଉତ୍ପନ୍ନ ବ୍ରଣ ।
ବାଲମୂଳିକା—ବି. (ବି.ସ୍ତ୍ରୀ) ଆମ୍ବଡ଼ାଗଛ
ବାଲମୂଷିକ—ବି,(କ.ଧା) ଚୁଟିଆ ମୂଷା ।
ବାଲରାଜ—ବି.(କ.ଧା)ଶିଶୁରାଜ,(୬ତତ୍ପୁ) ବାଲକଶ୍ରେଷ୍ଠ,(ବାଲ+ରାଜ+କ.ଥ) ବୈଦୁର୍ଯ୍ୟମଣି ।
ବାଲରୋଗ—ବି. (୬ତତ୍ପୁ) ଶିଶୁମାନଙ୍କୁ ଆକ୍ରମଣ କରିବା ରୋଗମାନ ।
ବାଲଲୀଳା—ବି.(୬ତତ୍ପୁ)ବାଲକମାନଙ୍କର କ୍ରୀଡ଼ା, (ଗ୍ରା. ବି) ବୈଶାଖପୂର୍ଣ୍ଣିମାରେ ହେବା ମହୋତ୍ସବ ବିଶେଷ ।
ବାଲବ—ପୁଂ,ବି.ଜ୍ୟୋତିଷୋକ୍ତ ଏକାଦଶ କରଣ ମଧ୍ୟରୁ ଦ୍ୱିତୀୟ କରଣ ।
ବାଲବଚ୍ଚା—ଗ୍ରା. ବି. ପିଲାପିଲି, ସନ୍ତାନ-ସନ୍ତତି ।
ବାଲବଢ଼ାଣି—ଗ୍ରା. ବି. ଶତାବରୀ ଗଛ ।
ବାଲବତ୍ସ—ବି. (ବି.ସ୍ତ୍ରୀ) କପୋତ,ପାରା
ବାଲବାନ୍ଧିବା—ଗ୍ରା,କ୍ରି.କୌଣସି ବ୍ୟକ୍ତିର ସାମାନ୍ୟମାତ୍ର ଅନିଷ୍ଟ କରି ନ ପାରିବା ।
ବାଲବାନ୍ଧିବା—ଗ୍ରା,କ୍ରି,କେଶକୁ ଏକତ୍ର କରି ଗଣ୍ଠି ପକାଇବା ।
ବାଲବାୟୁ—କ୍ଲୀ. ବି. ବୈଦୁର୍ଯ୍ୟମଣି ।
ବାଲବାଜକ—କ୍ଲୀ. ବି. ବୈଦୁର୍ଯ୍ୟମଣି ।
ବାଲବାସଃ—କ୍ଲୀ.ବି. (୬ତତ୍ପୁ)ବାଲକର ବସ୍ତ୍ର, (କ.ଧା) କେଶ ନିର୍ମିତ ବସ୍ତ୍ର, ପଶମି କପଡ଼ା ।
ବାଲବାହ୍ୟ—ବିଂ.(ବାଲ+ବହ୍+ମି.ଯ) ଶିଶୁଦ୍ୱାରା ବହନୀୟ, (ବି)ବନ୍ୟଛାଗଳ ।
ବାଲବିଧବା—ବି.ବାଲ୍ୟବିଧବା ଦେଖ
ବାଲବିଧୁ—ବି. (କ.ଧା)ଶୁକ୍ଳପକ୍ଷ ଦ୍ୱିତୀୟାର ଚନ୍ଦ୍ର, ନବଚନ୍ଦ୍ରମା ।
ବାଲବିର—ବି. ବିଏସ୍କାଉଟ୍ ଦେଖ ।
ବାଲବୁଦ୍ଧି—ବି. ବାଲକର ବୁଦ୍ଧିପରି ସାମାନ୍ୟ ବୁଦ୍ଧି, (ବିଂ) ମନ୍ଦବୁଦ୍ଧି(ବ୍ୟକ୍ତି)
ବାଲବୋଧ—ବି. ଦେବନାଗର ଲିପି, (ବିଂ) ବାଲକର ବୋଧଗମ୍ୟ ।
ବାଲବ୍ୟଜନ—କ୍ଲୀ. ବି. (୬ତତ୍ପୁ)ଚାମର, ଲୋମପୁଚ୍ଛ ।
ବାଲବ୍ରତ—ବି. ମଞ୍ଜୁଘୋଷ ନାମକ ଜନୈକ ଜୈନଧର୍ମ ପ୍ରଚାରକ, ( ବିଂ ) ବାଲକ ଆଚରଣବିଶିଷ୍ଟ ।
ବାଲବ୍ରହ୍ମଚାରୀ—ପୁଂ. ବି. ଯେଉଁ ବ୍ୟକ୍ତି ବାଲ୍ୟାବସ୍ଥାରୁ ବ୍ରହ୍ମଚର୍ଯ୍ୟ ଅବଲମ୍ବନ କରିଅଛି, କୁମାର ବ୍ରତଧାରୀ । [ଚନ୍ଦ୍ର ।
ବାଲଶଶୀ—ପୁଂ.ବି.(କ.ଧା)ଶୁକ୍ଳଦ୍ୱିତୀୟା-
ବାଲଶିଷ(ଷି)—ଗ୍ରା. ବି, ଶ୍ରେଷ୍ଠବାଲକ, ବାଲକସଙ୍ଗୀ ।
ବାଲହସ୍ତ—ପୁଂ. ବି. (କ.ଧା)କେଶଗୁଚ୍ଛ, ଲାଙ୍ଗୁଳ, (ବିଂ) କେଶସମୂହ ।
ବାଲା—ସ୍ତ୍ରୀ, ବି. (ବାଲ+ଆ) ବାଳିକା, ଅଳ୍ପବୟସ୍କା କନ୍ୟା, ଯୁବତୀ, ଷୋଳବର୍ଷୀ ସ୍ତ୍ରୀ,ତରୁଣୀ, ନବଯୁବତୀ, ପୂର୍ଣ୍ଣ ଯୁବତୀ, କନ୍ୟା, ଝିଅ, ସ୍ତ୍ରୀ, ଭାର୍ଯ୍ୟା, କୁରୁବେଲି, ସ୍ତ୍ରୀବେର, ନାରିକେଳ (ବୃକ୍ଷ ଓ ଫଳ),ହଳଦୀ,ଏକବର୍ଷ ବୟସ୍କା ମାଈବାଛୁରି,ମାଈଘୋଡାଛୁଆ, ପଞ୍ଚବର୍ଷୀୟ, ମାଈ ହାତୀଛୁଆ, ବାଲଧି, ପୁଚ୍ଛ, ଗ୍ରୋହମାଛ, ହାତଖଡ଼ୁ, ଶ୍ରେଷ୍ଠ-ଅଳାଇଚ, ଦ୍ୱାଦଶକେଶରଣ୍ଡା ଗୁଳ୍ମ,ଘୃତକୁମାରୀ,ମଲ୍ଲିଫୁଲ ବିଶେଷ ଖଇରଗଛ, ଦଶ ମହାବିଦ୍ୟା ମଧ୍ୟରୁ ଏକ ଦେବୀ, ତକାର ଗଣ ଓ ଏକ ଗୁରୁବର୍ଣ୍ଣ ଥିବା ବର୍ଣ୍ଣବୃତ୍ତବିଶେଷ ।
ବାଲା—ଗ୍ରା, (ପ୍ରା ବାଲେ, ମେଦିନୀପୁର) ବି, ବଳୟ, (ଯା. ବିଂ.-ଅମୃକଭ)ଅଧିକାରୀ, ମାଲିକ୍, ସ୍ୱାମୀ, (ପ୍ରା. ସମ୍ବ. ବି) ବଡ଼ କାନଫାଶିଆ ।
ବାଲାକ୍ଷୀ—ସ୍ତ୍ରୀ. ବି, କେଶପୁଷ୍ପା ବୃକ୍ଷ ।
ବାଲାଖାନା—ଯା. ବି. ଉପରମହଲା, ଏକମହଲା କୋଠା ଉପରେ ଥିବା ଘର
ବାଲାଗ୍ର—କ୍ଲୀ. ବି. କେଶାଗ୍ର ।
ବାଲାଗ୍ରପୋତିକା—ସ୍ତ୍ରୀ.ବି. ଲତାବିଶେଷ
ବାଲାଞ୍ଚବାଲା— ଗ୍ରା.ବିଂ. ବାସ୍ତବ ଦେଖ ।
ବାଲାତପ—ବି. (ବାଲ+ଆତପ)ଉଦୟମାନ ସୂର୍ଯ୍ୟଙ୍କ କିରଣ କଅଁଳିଆ ଖରା ।
ବାଲାଦସ୍ତି—ଯା. ବି. ଜବରଦସ୍ତି, ବଳପ୍ରୟୋଗ । [ଶିଷ୍ୟ ।
ବାଲାଦାସ—ଗ୍ରା,ବି.ବାବାଜୀଙ୍କର ବାଳକ
ବାଲାପୋଷ—ଯା.ବି.ତୁଳାଦିଆ ହାଲୁକା ଗାତ୍ରବସ୍ତ୍ର ।
ବାଲାବର—ଯା. ବି. ଏକପ୍ରକାର ଜେଟ୍-କନ୍ (କୁରୁତା) ।
ବାଲାବାଲା—ପ୍ରା. (ଆଠମଲ୍ଲିକ) ଅବ୍ୟ, ସିଧାଭାବରେ, ସିଧାଏ ସିଧାଏ ।
ବାଲାମଣି—ବି. (୬ତତ୍ପୁ) ଶ୍ରେଷ୍ଠା ସ୍ତ୍ରୀ ।
ବାଲାରୁଣ—ବି. ( କ.ଧା ) ଉଦୟମାନ ସୂର୍ଯ୍ୟ, ନବୋଦିତ ସୂର୍ଯ୍ୟ, କନ୍ୟା ରାଶିରେ ଅବସ୍ଥିତ ସୂର୍ଯ୍ୟ ।
ବାଲାଶତର—ଯା.ବି.ଦଲିଲ୍ ଆଦି ଲେଖାଯିବା ସମୟରେ ଭୁଲକ୍ରମେ ଛାଡ଼ିଯାଇଥିବା ଶବ୍ଦକୁ ୨ ଧାଡ଼ି ମଧ୍ୟରେ ଚିହ୍ନ ଦେଇ ଉକ୍ତ ଚିହ୍ନସ୍ଥାନର ଧାଡ଼ି ଉପରେ ଲେଖାଯିବା ଅଂଶ ।
ବାଲାସ୍ଥିବିକୃତରୋଗ—ବି, ଶିଶୁମାନଙ୍କର ଅସ୍ଥି ଦୁର୍ବଳତା ଜନିତ ରୋଗବିଶେଷ
ବାଲି—ପୁଂ.ବି. (ବାଲ+ଇ)କିଷ୍କିନ୍ଧ୍ୟାର ମର୍କଟ ରାଜା ଇନ୍ଦ୍ର ପୁତ୍ର, ଋକ୍ଷରାଜଙ୍କ

ପୁତ୍ର ସୁଗ୍ରୀବଙ୍କ ଜ୍ୟେଷ୍ଠ ଭ୍ରାତା, (ପ୍ର. ଗଞ୍ଜାମ.ବି) ଏକପ୍ରକାର ସାନ କାଉଡ଼ି ।
ବାଲି—ଗ୍ରା.ବି. (ସଂ-ବାଲୁକା)ନଦୀଗର୍ଭସ୍ଥ ବା ସମୁଦ୍ରକୂଳସ୍ଥ କ୍ଷୁଦ୍ର ପ୍ରସ୍ତର ଓ ମୃତ୍ତିକାଚୂର୍ଣ୍ଣ, ବାଲି ଦେଖ, ଭାରତ ମହାସାଗରରେ ଭାରତବର୍ଷର ଦକ୍ଷିଣ ପଶ୍ଚିମରେ ଅବସ୍ଥିତ ଦ୍ୱୀପବିଶେଷ. ଯବ ଦ୍ୱୀପ, ଯାଭଦ୍ୱୀପ,(ପା.ସମ୍ବ.ବି)ବେଣ୍ଟଲ
ବାଲିଅନ୍ତା—ଗ୍ରା.ବି.ପୁରୀଜିଲାର ଭୁବନେଶ୍ୱର ନିକଟସ୍ଥ ଗ୍ରାମବିଶେଷ ।
ବାଲିଆ—ଗ୍ରା. ବି. (ସଂ-ବାଲମତ୍ସ୍ୟ)ଏକ-ପ୍ରକାର କାଣ୍ଟ ନ ଥିବା ବଡ଼ମାଛ ।
ବାଲିଆ—ଗ୍ରା.ବିଂ. ବାଲୁକାମୟ,ବାଲୁକା-ବହୁଳ । [ ପଥର ।
ବାଲିଆକନ୍ଦା—ଗ୍ରା.ବି.ବାଲି ମିଶ୍ରିତ ଧଳା
ବାଲିଆଗୁଡ଼—ଗ୍ରା.ବି. ଯେଉଁ ଗୁଡ଼ ବାଲି-ପରି ଚୁଆ ଧରିଥାଏ ।
ବାଲିକଖାରୁ—ଗ୍ରା.ବି. ନଦୀବାଲି ଉପରେ ବଢ଼ି ଦ୍ୱାରା ପଡ଼ିଯାଇଥିବା ପଟୁ ମାଟିରେ ଯେଉଁ କଖାରୁ ଫସଲ କରାଯାଏ ।
ବାଳିକା—ସ୍ତ୍ରୀ.ବି. (ବାଳକ+ଆ)ବାଳା, କନ୍ୟା, ବାଳୁକା, କର୍ଣ୍ଣଭୂଷଣ, ଏଳା, ସ୍ତ୍ରୀ ଶିଶୁ ।
ବାଲିକାଗଜ—ଗ୍ରା.ବି.ଏକପ୍ରକାର ମାଟିଆ କାଗଜ ।
ବାଳିକାବଧୂ—ସ୍ତ୍ରୀ. ବି. ଛୁଆବୋହୂ, ଅପ୍ରାପ୍ତବୟସ୍କା ବିବାହିତା କନ୍ୟା ।
ବାଲିକୁଦ—ଗ୍ରା. ବି. ବାଲି ଏକାଠି ଜମା ହୋଇ ଉଚ୍ଚ ହୋଇଥିବା ସ୍ଥାନ ।
ବାଲିଖିଆ—ପ୍ରା. (ଯାଜ)ବି. ବାଲିଜନ୍ଦା-ରୋଗ ।
ବାଲିଖିଲ୍ଲ—ପୁଂ. ବି. ବାଲଖିଲ୍ୟ ଦେଖ ।
ବାଲିଗଡ଼—ପ୍ରା(ମେଦିନୀ)ବି.ବଡ଼ କଇଁଛ
ବାଲିଗରଡ଼ା—ବାଲିରେ ମିଳୁଥିବା ସାନ ସାନ ମସୃଣ ପଥର ଗୋଟାଲି, ଏକ-ପ୍ରକାର କାଣ୍ଟଯୁକ୍ତ ଈଷତ୍ ହଳଦିଆ ମାଛ ।
ବାଲିଘୁମୁରା—ଗ୍ରା.ବି.ଏକପ୍ରକାର ପୋକ
ବାଲିଘୁରୁଣି—ଗ୍ରା. ବି. ବାଲିରେ କଣା କରି ପଡ଼ିବା ଏକପ୍ରକାର କୀଟ,ଗୁଣ୍ଡୁରି ।
ବାଲିଙ୍ଗି—ଯା. ବି. ଗର୍ବ, ବାଗାଡ଼ମ୍ବର, ପୌରି ।
ବାଲିଚୂନ—ଗ୍ରା.ବି. ପକ୍କା ଗାନ୍ଥିବା ପାଇଁ ବ୍ୟବହୃତ ବାଲିମିଶ୍ରିତ ଚୂନ ।
ବାଲିଛତୁ—ଗ୍ରା.ବି.ବାଲିଆ ମାଟି ଉପରେ ଉଠିବା ଏକପ୍ରକାର ଶ୍ରେଷ୍ଠ ଛତୁ ।
ବାଲିଜନ୍ଦା—ଗ୍ରା. ବି. ଏକପ୍ରକାର ଶ୍ରେଷ୍ଠ ଜନ୍ଦା, ବର୍ଷାକାଳରେ ଆଙ୍ଗୁଳି ସନ୍ଧି-ମାନଙ୍କରେ ହେବା ରୋଗ ।
ବାଳତୃତୀୟା—ଗ୍ରା.ବି.ଭାଦ୍ର ଶୁକ୍ଳତୃତୀୟା ।
ବାଳିନୀ—ସ୍ତ୍ରୀ. ବି. (ବାଲ+ଇନ୍+ଈ) ଅଶ୍ୱିନୀ ନକ୍ଷତ୍ର ।
ବାଳିମା—ବି.(ବାଲ+ଇମନ)ବାଲ୍ୟାବସ୍ଥା
ବାଲିମାଟି—ଗ୍ରା.ବି. ବାଲିମିଶ୍ରିତ ମୃତ୍ତିକା ବା ମାଟିମିଶ୍ରିତ ବାଲି ।
ବାଲିଲୋକନାଥ—ଗ୍ରା. ବି. ପୁରୀରେ ପ୍ରତିଷ୍ଠିତ ସୁବିଖ୍ୟାତ ଶିବଲିଙ୍ଗ ।
ବାଳିଶ—ଯା. ବି. ଆଉଜିବା ନିମନ୍ତେ ବସ୍ତ୍ରାବୃତ ତୁଳାରାଶି,ଉପାଧାନ, ତକିଆ
ବାଲିଶ—ପୁଂ.ବିଂ. (ବଳ+ଶ+କ.ଅ) ଅଜ୍ଞାନ, ଅଳ୍ପବୟସ୍କ.ମୂର୍ଖ, ଅସାବଧାନ. ଶିଶୁପ୍ରକୃତିକ,( ବି.ବଳନ୍+ଶୀ+ଅଧି. ଅ) ଉପଧାନ, ତକିଆ,(ବାଲ+ଈଶ) ଶିଶୁ, ବାଳକ, ନିର୍ବୋଧ ବ୍ୟକ୍ତି ।
ବାଲିଶଯ୍ୟା—ଗ୍ରା. ବି. ମୃତ୍ୟୁ ଆସନ୍ନ ହେଲେ ମୁମୂର୍ଷୁ ବ୍ୟକ୍ତିକୁ ଗଙ୍ଗା ବାଲି ମିଶା ଯେଉଁ ସିକତାମୟ ଶଯ୍ୟାରେ ଶୁଆନ୍ତି । [ (ସ୍ତ୍ରୀ) ।
ବାଳିଶା—ଗ୍ରା.ସ୍ତ୍ରୀ.ବିଂ.ମୂର୍ଖା(ସ୍ତ୍ରୀ),ବାଉଳା
ବାଲିସାହି—ଗ୍ରା. ବି. ମିଷ୍ଟାନ୍ନବିଶେଷ ।
ବାଲିସେକ—ଗ୍ରା. ବି. ତପ୍ତ ବାଲୁକାମୟ ପୁଡ଼ା ଦ୍ୱାରା ଶରୀରର ବ୍ୟଥାଯୁକ୍ତ ଅଙ୍ଗର ତାପନ । [ ହଂସ ।
ବାଲିହଂସ—ଗ୍ରା. ବି. ଏକପ୍ରକାର ଶ୍ରେଷ୍ଠ
ବାଲିହନ୍ତା—ପୁଂ. ବି. ଶ୍ରୀରାମଚନ୍ଦ୍ର ।
ବାଲିହରଣ—ଗ୍ରା.ବି. ଏକଜାତୀୟ ଶ୍ରେଷ୍ଠ ହରିଣ, ବାଉଟିଆ ।
ବାଲିହା—ପୁଂ. ବି. ଶ୍ରୀରାମଚନ୍ଦ୍ର ।
ବାଳୀ—ସ୍ତ୍ରୀ.ବି.(ବାଳ+ଈ) ବାଳା, ସ୍ତ୍ରୀ, ଯୁବତୀ, (ପୁଂ.ବି.ବାଲ+ଇନ୍) ବାନର ରାଜା, ସୁଗ୍ରୀବଙ୍କ ବଡ଼ଭାଇ, ଅଙ୍ଗଦର ପିତା, କର୍ଣ୍ଣାଳଂକାରବିଶେଷ, ବଳୟ-ଭୂଷଣ ।
ବାଲୀଶ—ପୁଂ.ବି.ମୂତ୍ରକୃଚ୍ଛ୍ର ରୋଗ, (ଗ୍ରା. ସ୍ତ୍ରୀ.ବି)ଶ୍ରେଷ୍ଠା ସ୍ତ୍ରୀ; ବାଳୀ ନାମକ ମର୍କଟ ରାଜା, (ବିଂ) କ୍ଷୁଦ୍ର, ମୂର୍ଖ ।
ବାଲୁ—ବି.(ବଲ+କ.ଉ)ବାଲି,ସିକତା ।
ବାଲୁଅ—ଗ୍ରା. ବି. ଯନ୍ତ୍ର ବା ତେଣ୍ଟାର ବାହାଲ ମୁଣ୍ଡକୁ ଭାରୀ କରାଇବା ଲାଗି ଦିଆଯାଇଥିବା ମାଟି ପିଣ୍ଡୁଳା ।
ବାଲୁଆ—ଗ୍ରା.ପୁଂ.ବିଂ.ଯାହା ଦେହରେ ବହୁତ କେଶ ଉଠିଥାଏ, ଲୋମଶ ।
ବାଲୁଆ—ଗ୍ରା.ପୁଂ.ବିଂ.ଓଲୁ, ତାହାଣା ।
ବାଲୁକ—କ୍ଲୀ. ବି. ଏଲବାଲୁକ ନାମକ ଗନ୍ଧଦ୍ରବ୍ୟ, (ପୁଂ) ପାଣିଅଁଳା ।
ବାଲୁକା—ସ୍ତ୍ରୀ.ବି. (ବାଲୁକ+ଆ)ବେଣୁ-ବିଶେଷ, ଶାଖା,ହସ୍ତପଦାଦି, କାକୁଡ଼ି, କର୍କଟୀ, କର୍ପୂର, ବାଲିସେକ, ବାଲୁକା ଯନ୍ତ୍ର ।
ବାଲୁକାଖେଳ—ଗ୍ରା. ବି. ଧୂଳିଖେଳ ।
ବାଲୁକାଗଡ଼—ପୁଂ.ବି.ବାଲିଗରଡ଼ା ମାଛ
ବାଲୁକାତ୍ମିକା—ସ୍ତ୍ରୀ. ବି. ଶର୍କରା, ଚିନି, (ବିଂ.ବ.ସ୍ତ୍ରୀ) ବାଲୁକାମୟୀ ।
ବାଲୁକାପ୍ରଭା—ସ୍ତ୍ରୀ. ବି. ନରକବିଶେଷ ।
ବାଲୁକାମୟ—ବିଂ. ( ବାଲୁକା+ମୟ ) ବାଲୁକାପୂର୍ଣ୍ଣ ।
ବାଲୁକାଯନ୍ତ୍ର—ବି. ସମସ୍ତ ନିରୂପଣାର୍ଥ ବ୍ୟବହୃତ ଛିଦ୍ରଯୁକ୍ତ ବାଲୁକାପୂର୍ଣ୍ଣ କ୍ଷୀଣ-କଟି ପାତ୍ର, ନିଆଁ ଉପରେ ବସାଯିବା ହାଣ୍ଡିରେ ବାଲି ପୂରାଇ ସେହି ବାଲି ମଧ୍ୟରେ ଔଷଧାଦି ପୋତି ପାକକରିବା ନିମନ୍ତେ ବ୍ୟବହୃତ ବାଲୁକାପୂର୍ଣ୍ଣ ପାତ୍ର ।
ବାଲୁକାଶଙ୍କର—ବି. ପୂଜାର୍ଥ ନିର୍ମିତ ବାଲୁକାର ଶିବଲିଙ୍ଗ ।
ବାଲୁକାସ୍ୱେଦ—ବି.(ବୈଦ୍ୟ) ବାଲିସେକ ଦେଖ ।

ବାଲୁଙ୍କୀ—ସ୍ତ୍ରୀ.ବି.କର୍କଟୀ, ଫୁଟି କାକୁଡ଼ି ।
ବାଲୁକେଶ—ବି.ବାଲୁକାଶଙ୍କର ଦେଖ ।
ବାଲୁକେଶଜଗଦେବ—ଗ୍ରା. ବି. ଗଞ୍ଜାମ-
ଜିଲ୍ଲାର ଆଠଗଡ଼ର ବନ୍ଦ୍ୟୋପାଧ୍ୟାୟ
ଜନୈକ ରାଜା ।
ବାଲୁକେଶ୍ୱରତୀର୍ଥ—କ୍ଳୀ.ବି. ତୀର୍ଥବିଶେଷ
ବାଲୁଙ୍କା—ଗ୍ରା.ବି. ବାଲି. ବାଲୁକାଶଙ୍କର
ବାଲୁଙ୍କାଦାସ—ଗ୍ରା.ବି.ଓଡ଼ିଆ କବିବିଶେଷ
ବାଲୁଙ୍କାପୂଜା—ଗ୍ରା. ବି. ବାଳିତ୍ରିତୀୟା
ଦିନ ସ୍ତ୍ରୀମାନେ ଜଳାଶୟ କୂଳରେ ଓଦା
ବାଲିରେ ଶିବଲିଙ୍ଗ ନିର୍ମାଣ କରି
କରିବା ପୂଜା । [ କାକୁଡ଼ି ।
ବାଲୁଙ୍କୀ—ବି. କର୍କଟୀବିଶେଷ, ଫଟି-
ବାଲୁଙ୍କେଶ—ବି.ବାଲୁକାଶଙ୍କର ଦେଖ.
ପୁରୀଜିଲ୍ଲା ବରାଳ ଗ୍ରାମରେ ବିରାଜିତ
ଶିବଲିଙ୍ଗ ।
ବାଲୁଙ୍ଗା—ଗ୍ରା.ବି.ନିବାର, ଅଯତ୍ନ ସମ୍ଭୂତ
ଧାନ୍ୟ, ଅଯୋଗ୍ୟ ଓ ଦୁଷ୍ଟ ବ୍ୟକ୍ତି ।
ବାଳୁତ—ଗ୍ରା.ପୁଂ. ବି. ବାଳକ, ପୁଂ-
ସନ୍ତାନ, ଶିଶୁ, (ସ୍ତ୍ରୀ) ବାଳୁତି, (ବିଂ)
ଅଳ୍ପବୟସ୍କ, ବାଲ୍ୟ ।
ବାଳୁତକନ୍ୟା—ଗ୍ରା. ବି. ଶିଶୁ ବାଳିକା,
ଅପ୍ରାପ୍ତବୟସ୍କା ବାଳିକା ।
ବାଳୁତକାଳ—ଗ୍ରା. ବି. ବାଲ୍ୟକାଳ ।
ବାଳୁତବିଧବା—ଗ୍ରା.ସ୍ତ୍ରୀ.ବି.ଯେଉଁ ବାଳିକା
ରଜସ୍ୱଳା ହେବା ପୂର୍ବରୁ ବା ସ୍ୱାମୀ
ସହବାସ ପୂର୍ବରୁ ସ୍ୱାମୀକୁ ହରାଇଥାଏ ।
ବାଲୁବାଲୁଆ—ଗ୍ରା.ବିଂ.ଅନେକ ସ୍ଥାନରେ
କଦର୍ଯ୍ୟ ଭାବରେ ବୋଲା ହୋଇଥିବା,
ଅଠାଳିଆ, କଦର୍ଯ୍ୟ ରୂପେ ଲିଖିତ ।
ବାଲୂକ—ପୁଂ.ବି. (ବାଲ+ଊକ)ବିଷ-
ବିଶେଷ ।
ବାଳେକାଳେ—ଗ୍ରା.ଅ.ଶିଶୁ ଅବସ୍ଥାରେ ।
ବାଲେନ୍ଦୁ—ପୁଂ.ବି.(କ.ଧା) ଦ୍ୱିତୀୟା ବା
ତୃତୀୟାର କ୍ଷୀଣ ଚନ୍ଦ୍ର ।
ବାଲେୟ—ବିଂ(ବାଲ + ଏୟ) ବାଳକର
ଉପଯୁକ୍ତ, ଶିଶୁର ହିତକର, କୋମଳ,
କରମ, (ବାଳ + ଏୟ)ପୂଜୋପଯୋଗୀ,
(ବି) ଗର୍ଦ୍ଦଭ, ଗଧ, ଦୈତ୍ୟବିଶେଷ,
ବ୍ରାହ୍ମଣ ଷ୍ଠାଃଆ.ମୂନି, ଗୃଉଳ,ତଣ୍ଡୁଳ ।
ବାଲେଶ୍ୱର—ଗ୍ରା. ବି. ଉତ୍କଳ ମୋଗଲ-
ବନ୍ଦିର ଗୋଟିଏ ଜିଲ୍ଲା ଓ ସଦର ।
ବାଲେଶ୍ୱରୀ—ଗ୍ରା.ବି. ମେଦିନୀପୁର ଅଞ୍ଚ-
ଳରୁ ଆସୁଥିବା ଏକପ୍ରକାର ଧୂଆଁପତ୍ର,
(ବିଂ) ବାଲେଶ୍ୱରବାସୀ, ବାଲେଶ୍ୱ-
ରରେ ନିର୍ମିତ (ବାସନାଦି) ।
ବାଲେଶ୍ୱରୀସେର—ଗ୍ରା. ବି. ୮୦ ଟଙ୍କା
ଓଜନର ସେର ।
ବାଲେଷ୍ଟ—ବି(ବାଲ+ଇଷ୍ଟ)ବଦରୀକୋଳି
ବାଲ୍ମ—ବିଂ. (ବଲ୍ମ+ଅ) ବଲ୍ମନନିର୍ମିତ,
(ବି) ବସ୍ତ୍ରରୂପେ ବ୍ୟବହୃତ ବଲ୍କଳ,
ଦୈତ୍ୟବିଶେଷ ।
ବାଲ୍ମଳ—ବି ଓ ବିଂ. ବାଲ୍ମ ଦେଖ ।
ବାଲ୍ମଳୀ—ସ୍ତ୍ରୀ.ବି. ମଦିରା, ଗୌଡ଼ୀମଦ୍ୟ,
ତାଡ଼ି, ଖଜୁରି ମଦ ।
ବାଲ୍ତି—ଯା. ବି. ବାଲଟି ଦେଖ ।
ବାଲ୍ମୀକ—ବି ବଲ୍ମୀକ ଦେଖ ।
ବାଲ୍ମୀକି—ପୁଂ. ବି. (ବଲ୍ମୀକ+ଇ)
ଆଦିକବି, ରାମାୟଣ ରଚୟିତା, ମୁନି
ବିଶେଷ ।
ବାଲ୍ମୀକୀୟ—ତ୍ରି.ବିଂ.ବାଲ୍ମୀକିସମ୍ବନ୍ଧୀୟ ।
ବାଲ୍ୟ—ବି. (ବାଲ+ଷ୍ଣ.ଯ) ବାଳକା-
ବସ୍ଥା, ଶୈଶବ, (ବିଂ.ବାଲ+ଯ) ବାଲ
ବା କେଶ ସମ୍ବନ୍ଧୀୟ, ବାଳକସମ୍ବନ୍ଧୀୟ
ବାଳକସୁଲଭ ।
ବାଲ୍ୟକାଳ—ବି. ଶୈଶବ, ପିଲାଦିନ ।
ବାଲ୍ୟଚପଳତା—ବି. (୬ତତ୍) ବାଲ୍ୟ-
କାଳର ବା ବାଳକର ସ୍ୱଭାବସୁଲଭ
ଚଞ୍ଚଳତା ।
ବାଲ୍ୟବିଧବା—ସ୍ତ୍ରୀ. ବି. ବାଳୁତବିଧବା
ଦେଖ ।
ବାଲ୍ୟବିବାହ—ବି. ବାଳବିବାହ ଦେଖ ।
ବାଲ୍ୟଲୀଳା—ବି. ମଧ୍ୱମାଧର୍ମୀ ମାନଙ୍କର
ଶୁକ୍ଳ ଚତୁର୍ଦ୍ଦଶୀ ଦିନ ବା ଅନ୍ୟ ସମ-
ୟରେ ବ୍ରାହ୍ମଣପ୍ରୀତି ମିଷ୍ଟାନ୍ନନୈବେଦ୍ୟ ।
ବାଲ୍ଲଭ୍ୟ—କ୍ଳୀ.ବି. (ବଲ୍ଲଭ + ଯ) ବଲ୍ଲ-
ଭତା, ଭଲପାଇବା । [ ପ୍ଳୀହା ।
ବାଲ୍ଲା—ପ୍ରା.(ଗଞ୍ଜାମ)ବି.ପ୍ଳୀହାବୃଦ୍ଧିରୋଗ,
ବାବ—ଅ. ଯଥାଅର୍ଥେ, ବସ୍ତୁତଃ,(ଗ୍ରା.ବି)
ବାବୁର ଦେଖ ।
ବାବତ୍(ତି)—ଯା.ବିଂ. ସମ୍ବନ୍ଧୀୟ. ଯଥା-
ଜମା, ଜମିକ. (ବି) ସମ୍ପର୍କ. ସମ୍ବନ୍ଧ,
କୌଣସି ବିଷୟ ଦଫାବ, (ଅ)ଅମୁକ
ବିଷୟରେ, ସମ୍ପର୍କରେ ।
ବାବତ୍ବାବତ୍କର—ଗ୍ରା.କ୍ରି.ବିଂ. ଯଥା-
କ୍ରମରେ, ଭିନ୍ନଭିନ୍ନ କରି, ଭିନ୍ନଭିନ୍ନ
ହୋଇ ।
ବାବନ—ଗ୍ରା. ବି. ବାଉନ ଦେଖ, ୫୦
ଅପେକ୍ଷା ଦୁଇ ଅଧିକ ସଂଖ୍ୟା ।
ବାବନାଭୂତ—ଗ୍ରା. ବି. ଭୂତ, ଭୂତପରି
ବୁଲୁଥିବା ବ୍ୟକ୍ତି, ଅନେକାଷ୍ଟ ପେଟପରି
ଅଥୟ ଲୋକ, ରଥଯାତ୍ରାବେଳେ
ଗୁଣ୍ଡିଚାଘରକୁ ଜଗନ୍ନାଥ, ବଳଭଦ୍ର ଓ
ସୁଭଦ୍ରା ଗଲେ ସେହି ମନ୍ଦିରକୁ ଜଗି-
ରହିବା କଳ୍ପିତ ଭୂତ, ମହାସ୍ୱରତୋକ୍ତ
ଭୂତବିଶେଷ ।
ବାବର୍ଯ୍ୟ—ପୁଂ.ବି. ତୁଳସୀବିଶେଷ ।
ବାବର୍—ଯା. ବି. ଭାରତର ପ୍ରଥମ
ମୋଗଲ ସମ୍ରାଟ ।
ବାବରା—ଗ୍ରା.ବିଂ. ବାସ୍ତୁରା, ଯାଯାବର,
ସ୍ଥିରତାବର୍ଜ୍ଜିତ, ବାତୁଳ ।
ବାବଲ୍ ମାଣ୍ଡେବ—ଯା. ବି. ଆରବ ଉପ-
ସାଗର ଓ ଲୋହିତସାଗର ମଧ୍ୟରେ
ଥିବା ପ୍ରଣାଳୀ ।
ବାବଲ—ଗ୍ରା.ବି. ଶରବିଶେଷ ।
ବାବା—ଗ୍ରା. ବି. ପିତା, ଜନକ, ତାତ,
ପୁତ୍ର, ବତ୍ସ, ସମ୍ମାନାର୍ହ ବ୍ୟକ୍ତି,ଗୁରୁଜନ,
ଦେବତା ( ମହାଦେବ ) , ସନ୍ନ୍ୟାସୀ,
ସାଧୁ ଭୟ,ବିସ୍ମୟ, କଷ୍ଟଇତ୍ୟାଦି ସୂଚକ
ଶବ୍ଦ ।
ବାବାଜୀ—ଗ୍ରା.ବି.ସାଧୁ ସନ୍ନ୍ୟାସୀ,ବୈଷ୍ଣବ,
ବୈରାଗୀ, ପୁତ୍ରସ୍ଥାନୀୟ ଉପାଧି ।
ବାବାରେ—ଗ୍ରା.ଅ. ବାତ୍ସଲ୍ୟାର୍ଥ ସମ୍ବୋ-
ଧନ, ଆର୍ତ୍ତିନାଦ ।
ବାବାଳୀ—ଗ୍ରା.ସ୍ତ୍ରୀ.ବିଂ.ବାସୁଣୀ ଦେଖ ।
ବାବବା—ଗ୍ରା. (ପଦ୍ୟ) କ୍ରି. ବାଇବା,
ବଜାଇବା ।

ବାବୁ—ଯା.ବ. ଧନୀ ବା ବିଳାସୀ ବ୍ୟକ୍ତି, ଭଦ୍ରଲୋକମାନଙ୍କ ନାମପୂର୍ବରେ ଲଗିବା ସମ୍ମାନସୂଚକ ଉପାଧି, ପ୍ରଭୁ, କର୍ତ୍ତା, ରାଜାଙ୍କର ବରାଦର, କର୍ମଚାରୀ, ପିତା, ବାପ, ବାତ୍ସଲ୍ୟାର୍ଥ ସମ୍ବୋଧନ ।

ବାବୁଆଣୀ—ଗ୍ରା.ସ୍ତ୍ରୀ.ବ. ବାବୁର ସ୍ତ୍ରୀଲିଙ୍ଗ

ବାବୁଆନା—ଗ୍ରା.ବ. ବିଳାସିତା, ସଉକ, ସୁଖାସକ୍ତ, ଆଳସ୍ୟ,ଭୋଗ ବିଳାସିତା, ବଡ଼ଲୋକୀ ।

ବାବୁଘର—ଗ୍ରା. ବି. ବଧୂର ବାପଘର, ପିତୃଗୃହ, ବଡ଼ ଧନୀ ଲୋକର ଘର ।

ବାବୁକୀ—ଗ୍ରା.ଅ. ବାବୁମାନଙ୍କୁ କରାଯିବା ସମ୍ବୋଧନ, ବାତ୍ସଲ୍ୟାର୍ଥକ ସମ୍ବୋଧନ

ବାବୁଟ—ପୁଂ.ବ. ବନ୍ଧନ । [ ମାନେ ।

ବାବୁଭାୟା—ଗ୍ରା.ବ. ଭଦ୍ର ଓ ଧନୀ ବ୍ୟକ୍ତି-

ବାବୁରବୁଆ—ପ୍ରା. (ସମ୍ବ)ପୁଂ.ବ. ପୁରୁଷ ପିଲାର ବାପ, ପୁଅର ବାପ ।

ବାବୁର୍ ମା—ପ୍ରା.(ସମ୍ବ) ସ୍ତ୍ରୀ. ବ. ପୁଅର ମା, ଆପଣାର ସନ୍ତାନବତୀ ସ୍ତ୍ରୀ ପ୍ରତି ସମ୍ବୋଧନ । [ ଦେଖ ।

ବାବୁର(ଲା)—ଗ୍ରା. ବି. ବବୁର ( ବାଲ )

ବାବୁସାହେବ—ଗ୍ରା. ଅ. ବାତ୍ସଲ୍ୟାର୍ଥ ସମ୍ବୋଧନ, ଭଦ୍ରଲୋକଙ୍କ ପ୍ରତି ଦୁଃଖୀର ସମ୍ବୋଧନ ।

ବାବୃତ—ବି.ବଂ. ( ବା + ବୃତ୍ + ତ ) କୃତବରଣ ।

ବାବୃତଂମାନ—ବଂ. (ବାବୃତ + ଆନ) ଅଭିଳାଷୀ, ବରଣକାଙ୍କ୍ଷୀ ।

ବାବେ—ପ୍ରା.(ସମ୍ବ)ବ. ପନାସିଦାସ ।

ବାଶ—ବ. ( ବାଶ୍ + କ.ଅ ) ବାସଙ୍ଗ ଦେଖ । [ ରୋଦନକାରୀ ।

ବାଶକ—ବି.ବଂ.ନନାଦକାରୀ,ପାନକାରୀ

ବାଶନ—ପୁଂ.ବଂ. ( ବାଶ + କ.ଅନ ) ବୋବାଉଥିବା (ପକ୍ଷୀ), ଗୁଣୁଗୁଣୁ ଶବ୍ଦ କରୁଥିବା (ମାଛି)ନାଦକାରୀ,ଗାନକାରୀ, (କ୍ଲୀ.ବ-ଭା.ଅନ) ପକ୍ଷୀର ରବ, ମଧୁମକ୍ଷିକାର ଗୁଣୁଗୁଣୁ ଶବ୍ଦ ।

ବାଶା—ସ୍ତ୍ରୀ.ବ. ବାସକ, ବାସଙ୍ଗ ।

ବାଶି—ପୁଂ.ବ. (ବାଶ୍ + କ.ଇ)ଅଗ୍ନି ।

ବାଶିକା—ସ୍ତ୍ରୀ.ବ. ବାସକ, ବାସଙ୍ଗ ।

ବାଶିତ—କ୍ଲୀ.ବ. (ବାଶ୍ + ଭା.ତ) ପଶୁପକ୍ଷ୍ୟାଦର ଶବ୍ଦ, ଆହ୍ୱାନ ।

ବାଶିତା—ସ୍ତ୍ରୀ. ବ. ( ବାଶ୍ + ତ + ଆ ) ସ୍ତ୍ରୀମାତ୍ର, ହାତୁଣୀ ।

ବାଶି(ଶୋ)ଲୀ—ଗ୍ରା. ବ. ଦେବୀବିଶେଷ, ଚଣ୍ଡୀଙ୍କର ମୂର୍ତ୍ତିଭେଦ ।

ବାଶିଷ୍ଠ—ବି.ବଂ. (ବଶିଷ୍ଠ + ଅ) ବଶିଷ୍ଠସମ୍ବନ୍ଧୀୟ, (ବ) ଉପପୁରାଣବିଶେଷ, ତୀର୍ଥବିଶେଷ ।

ବାଶିଷ୍ଠୀ—ସ୍ତ୍ରୀ.ବ. ଗୋମତୀନଦୀ ।

ବାଶୀ—ପୁଂ.ବଂ.(ବାଶ + ଇନ୍)ଶବ୍ଦଯୁକ୍ତ, ବାକ୍ୟୁକ୍ତ ।

ବାଶୁରା—ସ୍ତ୍ରୀ.ବ. ରାତ୍ରି ।

ବାଶ୍ର—କ୍ଲୀ.ବ.(ବାଶ୍ + ର)ମନ୍ଦର,ଚତୁଷ୍ପଥ, ଗୃହ, ଚଉରାସ୍ତା,(ପୁଂ.ବ)ଦିବସ ।

ବାଷ୍ପ—ପୁଂ.ବ. ( ବା + ସୁକ୍ + କ.ପ ) ଜଳର ବାୟବୀୟ ଅବସ୍ଥା, ବାମ୍ଫ, କଣ୍ଠକାରୀ, ଲୋହ, ଅଶ୍ରୁ, କଣ୍ଟକାରି, ଉଷ୍ଣତାପଦ୍ୱାରା ଜଳର ପରିବର୍ତ୍ତିତ ସୂକ୍ଷ୍ମ ଆକାର ।

ବାଷ୍ପକ—ପୁଂ. ବ. ମାରିଷ, ଏକପ୍ରକାର ଖଡ଼ା ଶାଗ । [ (କଣ୍ଠ) ।

ବାଷ୍ପଗଦ୍ଗଦ—ବଂ. ରାଗ ବା ଶୋକପୂର୍ଣ୍ଣ

ବାଷ୍ପଚାଳିତ—ବଂ. ( ୩ତତ୍ର ) ବାଷ୍ପର ବେଗଦ୍ୱାରା ଚାଳିତ ।

ବାଷ୍ପପ୍ଲୁତ—ବଂ. (୩ତତ୍) ଲୋତକପୂର୍ଣ୍ଣ ଚକ୍ଷୁ ।

ବାଷ୍ପପୋତ—ବ. ( କ.ଧା ) ବାଷ୍ପଦ୍ୱାରା ଚଳିତ ଜଳଯାନ, ଜାହାଜ ।

ବାଷ୍ପମାନଯନ୍ତ୍ର—ବ. ଯେଉଁ ଯନ୍ତ୍ରଦ୍ୱାରା ବାୟୁରେ ବା ଅନ୍ୟ ଯନ୍ତ୍ରରେ ଥିବା ବାଷ୍ପ ରାଶିର ପରିମାଣ ମାପ କରାଯାଏ ।

ବାଷ୍ପସ୍ୱେଦ—ଗ୍ରା.ବ. ଏକପ୍ରକାର ସେକ, ବାମ୍ଫ ଆଣି । [ (ତତ୍ର) ।

ବାଷ୍ପାକୁଳିତ—ବଂ.ଲୋତକଦ୍ୱାରା ଅସ୍ଥିର

ବାଷ୍ପାୟନ—ଗ୍ରା.ବ. ତରଳ ପଦାର୍ଥର ବାୟବୀୟ ପଦାର୍ଥରେ ପରିଣତି ।

ବାଷ୍ପାୟମାନ—ବଂ.ବାମ୍ଫ ବାହାରୁଥିବା ।

ବାଷ୍ପିକା—ସ୍ତ୍ରୀ.ବ. ହିଙ୍ଗୁପତ୍ରୀ ।

ବାଷ୍ପୀ—ସ୍ତ୍ରୀ. ବ. ହିଙ୍ଗୁପତ୍ରୀ ।

ବାଷ୍ପୀଭୂତ—ବଂ. (ଜଳଆଦି) ବାଷ୍ପରେ ପରିଣତ । [ ଦୀପ୍ତ ।

ବାଷ୍ପୀୟ—ବଂ.(ବାଷ୍ପ + ଈୟ)ବାଷ୍ପ ସମ୍ବ-

ବାଷ୍ପୀୟପୋତ—ବ.(କ.ଧା)-ବାଷ୍ପପୋତ, ବାଷ୍ପର ବେଗଦ୍ୱାରା ଚାଳିତ ଜାହାଜ ।

ବାଷ୍ପୀୟଯନ୍ତ୍ର—ବ. ବାଷ୍ପଚାଳିତ ଯନ୍ତ୍ର ।

ବାଷ୍ପୀୟଯାନ—ବ. ବାଷ୍ପର ଗତିଦ୍ୱାରା ଚାଳିତ ଗାଡ଼ି ।

ବାଷ୍ପୀୟରଥ(ଶକଟ)—ବ.(କ.ଧା) ବାଷ୍ପରଥ, ମଟର, ରେଲ୍ଆଦି ।

ବାଷ୍ପୋଦ୍ଗତ—ବ. (୬ତତ୍) ବାମ୍ଫ ଉପରକୁ ଉଠିବା, ଅଖିରୁ ଲୁହବୋହିବା ।

ବାଷ୍ପୋଦ୍ଗୀରଣ—ବ. (୬ତତ୍) ମୁହଁବାଟେ ବାମ୍ଫ ବାହାର କରିବା ।

ବାସ୍—ଗ୍ରା. ଅବ୍ୟ. ବସ୍ ଦେଖ ।

ବାସ—ପୁଂ. ବ. (ବସ୍ + ଅଧି.ଅ) ଘର, ଗୃହ, ଆବାସ, ଆଧାର, (ଭା.ଅ) ସ୍ଥିତି, ଅବସ୍ଥାନ, (କ.ଅ) ବସ୍ତ୍ର, ଲୁଗା, (ବାସ୍ + କ.ଅ) ଖୁମବୋ, ସୁଗନ୍ଧ, ଗନ୍ଧ, ବାସଙ୍ଗ, (ଗ୍ରା.ବ)ସୁବାସିତ,ସୁଗନ୍ଧଯୁକ୍ତ ।

ବାସଃ—ବ. (ବସ୍ + ଣିଚ୍ + ଣ + ଅସ୍) ବସ୍ତ୍ର, ଲୁଗା ।

ବାସଅଙ୍ଗୀ—ଗ୍ରା. ସ୍ତ୍ରୀ. ବଂ.ସୌରଭାଙ୍ଗୀ, ବସ୍ତ୍ରପରିହିତାଙ୍ଗୀ ।

ବାସକ—ବଂ. (ବାସ + କ.ଅକ) ସୁଗନ୍ଧପ୍ରଦ, ବାସକରୁଥିବା, ସୁଗନ୍ଧକାରକ, (ବ) ବସତିସ୍ଥାନ, ଆବାସ, ଗୃହ, ବାସଙ୍ଗ ଦେଖ, ଗାନର ଅଙ୍ଗ ବିଶେଷ, ବାସରଘର ।

ବାସକରିବା—ଗ୍ରା. କି. ଘରକରିରହିବା, ବାହନା କରିବା, ବାସିବା ।

ବାସକର୍ତ୍ତ୍ରୀ—ବ. (ବାସକର୍ତ୍ତୃ + ଈ)ସଙ୍ଗୀତଶାଳା ।

ବାସକସଜ୍ଜା—ଗ୍ରା.ସ୍ତ୍ରୀ.ବ.ନାୟକାକାଙ୍କ୍ଷିଣୀ ସଜ୍ଜିତା ରମଣୀ ।

ବାସକସଜ୍ଜିକା—ସ୍ତ୍ରୀ.ବ. ବାସକସଜ୍ଜା ଦେଖ ।

**ବାସକା**—ସ୍ତ୍ରୀ.ତ. (ବାସକ+ଆ) ବାସକ ବୃକ୍ଷ, ବାସଙ୍ଗ ଗଛ ।

**ବାସକାରୀ**—ଗ୍ରା. ବିଂ. ଅଧିବାସୀ ।

**ବାସଗୃହ**—କ୍ଲୀ. ବ. ଗର୍ଭାଗାର, ଶୟନାଗାର, ସୁବାସିତ ଗୃହ ।

**ବାସଗେହ**—କ୍ଲୀ. ବ. ବାସଗୃହ ।

**ବାସଙ୍ଗ**—ଗ୍ରା. ବ. ଔଷଧ ବୃକ୍ଷବିଶେଷ ।

**ବାସଚନ୍ଦନ**—ଗ୍ରା.ବ.ସୁବାସଯୁକ୍ତ ଚନ୍ଦନକାଠ ।

**ବାସଚହଟା(ଟେ)ଇବା**-ଗ୍ରା.କ୍ରି.(କୌଣସି ବସ୍ତୁ ନିଜର ସୁବାସ ଚାରଆଡ଼େ ବିଞ୍ଚିବା

**ବାସଚହଟିବା**--ଗ୍ରା.ବ.ସୁବାସର ପ୍ରସରଣ ।

**ବାସଜଳ**—ଗ୍ରା. ବ. ସୁବାସିତ ଜଳ, ସୁଗନ୍ଧୀକୃତ ପାନୀୟ ।

**ବାସତ**—ପୁଂ.ବ.(ବାସ+ତନ୍+କ.ଅ ରାସଭ, ଗଧ ।

**ବାସତେୟ**—ବିଂ.(ବସିତ+ଏୟ)ରାତ୍ରିବାସ ଉପଯୋଗୀ, ବାସଯୋଗ୍ୟ ।

**ବାସତେୟୀ**—ସ୍ତ୍ରୀ.ବ.(ବାସତେୟ+ଈ) ରାତ୍ରି, ଯାମିନୀ ।

**ବାସଦେବା**—ଗ୍ରା. କ୍ରି. ବାସିବା, ସୁଗନ୍ଧ ଦେବା, ରହିବାକୁ ସ୍ଥାନଦେବା ।

**ବାସନ**—ବି.(ବାସ+ଭା.ଅନ) ସୁଗନ୍ଧୀକରଣ, ଧୂପନ,(ଅଧି.ଅନ) ବାସସ୍ଥାନ, (ବାସି+ନି.ଅନ) ବସ୍ତ୍ର, ଆଧାର,ପାତ୍ର, ଜଳପାତ୍ର, ପୁଡ଼ା, ପୋଟଳା,ଭୋଜନପାତ୍ର ।

**ବାସନକୁସନ**—ଗ୍ରା. ବ. ଛୋଟ ବଡ଼ ସମସ୍ତ ବାସନ ।

**ବାସନମଜା**—ଗ୍ରା. ବ. ଜଳ ଓ ପାଉଁଶ ଆଦି ଦ୍ୱାରା ଘଷି ପରିଷ୍କାର କରିବା ।

**ବାସନା**—ସ୍ତ୍ରୀ. ବ. (ବାସ+ଭା.ଅନ+ଆ) ପ୍ରତ୍ୟାଶା, ଲାଳସା, ଅଭିଲାଷ ଜ୍ଞାନ, ସ୍ମୃତିହେତୁ ସଂସ୍କାର, ଭାବନା, ଦୁର୍ଗା, ଅର୍କଭାର୍ଯ୍ୟା,ପୂର୍ବଜନ୍ମର ସଂସ୍କାର, ଯୁକ୍ତି, ଗ୍ରହଣସ୍ୱୀକରଣୋପଯୋଗୀ ସଂସ୍କାରବିଶେଷ, କଳ୍ପନା, (ଗ୍ରା.ବ) ବାସ,ଗନ୍ଧ, ସୁଗନ୍ଧ, (ଲ.ଅର୍ଥ)କୌଣସି ବିଷୟର ସାମାନ୍ୟମାତ୍ର ଗନ୍ଧ, ଶବ୍ଦସମ୍ବନ୍ଧ, (ବିଂ) ସୁବାସିତ, (ଲ.ଅର୍ଥ) ଶ୍ରେଷ୍ଠସ୍ଥାନୀୟ (ବ୍ୟକ୍ତି) ।

**ବାସନାକରିବା**—ଗ୍ରା.କ୍ରି.କାମନାକରିବା, ବାସିବା, ଗନ୍ଧାଇବା ।

**ବାସନାଛୁଟିବା**—ଗ୍ରା.କ୍ରି. ବାସିବା,ଗନ୍ଧାଇବା । [ ଅନ୍ତର ।

**ବାସନାତେଲ**—ଗ୍ରା. ବ. ସୁବାସିତତେଲ.

**ବାସନାପାଇବା**—ଗ୍ରା. କ୍ରି. ସୁବାସ ଗ୍ରହଣ କରିବା, (ଲ.ଅର୍ଥ) କୌଣସି ବିଷୟର ଗନ୍ଧମାତ୍ର ଜାଣିବା ।

**ବାସନାବାଜିବା**—ଗ୍ରା. ବ. କୌଣସି ପଦାର୍ଥର ଗନ୍ଧ ନାକରେ ବାଜିବା ।

**ବାସନାବାରିବା**—ଗ୍ରା. କ୍ରି. ନାକଦ୍ୱାରା ବିଶିଷ୍ଟ ଗନ୍ଧ ଗ୍ରହଣ କରିବା, (ଲ.ଅର୍ଥ) କୌଣସି ବିଷୟରେ ଟେରପାଇବା ।

**ବାସନୀ**—ଗ୍ରା. ବ. ଭୋଜନପାତ୍ର,ତୈଜସ ପାତ୍ର ।

**ବାସନ୍ତ**—ପୁଂ. ବ. (ବସନ୍ତ+ଅ) ଉଷ୍ଟ୍ର, କୋକିଳ, ମଳୟବାୟୁ, ମୁଦ୍ଗ,କୃଷ୍ଣମୁଦ୍ଗ, ମଦନବୃକ୍ଷ, (ବିଂ) ବସନ୍ତ ସମ୍ବନ୍ଧୀୟ, ବସନ୍ତକାଳୀନ ।

**ବାସନ୍ତକ**—ବିଂ. ବସନ୍ତସମ୍ବନ୍ଧୀ, ବସନ୍ତୋତ୍ପନ୍ନ ।

**ବାସନ୍ତ**—ଗ୍ରା. ବିଂ. ମନୋମତ, ଭଲପାଉଥିବା ।

**ବାସନ୍ତିକ**—ବିଂ.(ବସନ୍ତ+ଇକ)ବସନ୍ତକାଳୀନ, ବସନ୍ତସମୟୋତ୍ପନ୍ନ, (ବ) ବିଦୂଷକ, ନଟ, ନର୍ତ୍ତକ ।

**ବାସନ୍ତିକଦୁର୍ଗୋତ୍ସବ**—ବ. ଚୈତ୍ରଶୁକ୍ଳ ପ୍ରତିପଦଠାରୁଆରମ୍ଭକରି ନବମୀପର୍ଯ୍ୟନ୍ତ କରାଯିବା ଦୁର୍ଗାପୂଜା ଉତ୍ସବ ।

**ବାସନ୍ତୀ**—ସ୍ତ୍ରୀ. ବିଂ. (ବାସନ୍ତ+ଈ) ବସନ୍ତକାଳୀନ, (ବ) ନୂଆଳୀଫୁଲ, ନବମାଳିକା, ମାଧବୀଲତା, ଯୂଇଫୁଲ, ମଦନୋତ୍ସବ, ଦୁର୍ଗା, କୃଷ୍ଣ ମୁଦ୍ଗ, ନାରଙ୍ଗୀରଙ୍ଗ, ଚତୁର୍ଦ୍ଦଶାକ୍ଷର ଛନ୍ଦୋବିଶେଷ, ପାଟଳା,ଗଣିକାରି,ପୁଷ୍ପଲତାବିଶେଷ ।

**ବାସନ୍ତୀପଞ୍ଚମୀ**—ବ.ବସନ୍ତପଞ୍ଚମୀ ଦେଖ ।

**ବାସନ୍ତୀପୂଜା**—ବ.(ଷତତ୍ପୁ) ଚୈତ୍ରମାସର ଦୁର୍ଗାପୂଜା ।

**ବାସନ୍ଦ**—ଗ୍ରା.ବି.ମନା, ନିଷେଧ,ସମାଜଚ୍ୟୁତ; ପ୍ରଭେଦ,ବାରଣ, (ବିଂ) ଜାତିଚ୍ୟୁତ ।

**ବାସନ୍ଦକରିବା**—ଗ୍ରା.କ୍ରି. ଜାତିରୁ ଅଟକ କରିବା, କୌଣସି ସ୍ଥାନକୁ ଆସିବାକୁ ମନାକରିବା ।

**ବାସପଖାଳ**—ଗ୍ରା. ବ. ଲେମ୍ବୁ ବା ଟଭାପତ୍ର ଆଦି ଦିଆଯାଇ କରାଯାଇଥିବା ସୁବାସିତପଖାଳ ।

**ବାସପର୍ଯ୍ୟୟ**—ପୁଂ. ବ. (ଷତତ୍ପୁ) ବାସପରିବର୍ତ୍ତନ, ଅନ୍ୟସ୍ଥାନରେ ଘରକରି ରହିବା ।

**ବାସପ୍ରସାଦ**—ପୁଂ. ବ. ବାସଯୋଗ୍ୟ ରାଜଭବନ,ବାସୋପଯୁକ୍ତ କୋଠାଘର ।

**ବାସଭବନ**—କ୍ଲୀ. ବ. (ବାସ+ଭବନ) ବାସଗୃହ, ବାସଘର, ରହିବାଘର ।

**ବାସଭୂମି**—ସ୍ତ୍ରୀ.ବ.(ବାସ+ଭୂମି)ବାସସ୍ଥାନ

**ବାସଯୋଗ**—ପୁଂ. ବ.(ବାସ+ଯୁଜ୍+ଅ) ଚୂର୍ଣ୍ଣ,ସୁଗନ୍ଧଚୂର୍ଣ୍ଣ, ପଟ୍ଟବାସ,ଅବିର, ଫଗୁ, ବାସ କରିବାର ଅବଶ୍ୟମ୍ଭାବୀ ଘଟନା ।

**ବାସଯୋଗ୍ୟ**—ବିଂ. (ଷତତ୍ପୁ) ବାସୋପଯୋଗୀ, ବାସ କରିବାପାଇଁ ଉପଯୁକ୍ତ (ସ୍ଥାନ) ।

**ବାସର**—ପୁଂ.କ୍ଲୀ.ବ.(ବସ୍+ଅର)ଦିବସ, ଦିନ, ନାଗ ବିଶେଷ, ବିବାହ ରାତ୍ରିର ଶୟନ ଗୃହ, ମଧୁଶଯ୍ୟା ଗୃହ ।

**ବାସରକନ୍ୟକା**—ସ୍ତ୍ରୀ.ବ. ରାତ୍ରି, ରଜନୀ ।

**ବାସରକୃତ୍**—ପୁଂ. ବ. ଦିନକୃତ୍,ସୂର୍ଯ୍ୟ

**ବାସରକୃତ୍ୟ**—କ୍ଲୀ. ବ. ଦିନକୃତ୍ୟ, ନିତ୍ୟକ୍ରିୟା ।

**ବାସରମଣି**--ପୁଂ. ବ. ଦିନମଣି,ସୂର୍ଯ୍ୟ ।

**ବାସରମୁଖ**—ବ.(ଷତତ୍ପୁ)ପ୍ରଭାତ,ସକାଳ

**ବାସରଶଯ୍ୟା**--ସ୍ତ୍ରୀ.ବ.(ଷତତ୍ପୁ)ବରକନ୍ୟାଙ୍କର ଶୟନୀୟ ବନ୍ଧଣା ।

**ବାସରସଙ୍ଗ**—ପୁଂ.ବ.ପ୍ରାତଃକାଳ,ସକାଳ, ପ୍ରଭାତ ।

ବାସରସଜ୍ଜା—ବି. (ଷତତ୍ପୁ) ବିବାହଦିନ ରାତ୍ରିରେ ବରକନ୍ୟାଙ୍କ ଶୟନର ସଜ୍ଜା. ମିଳନ ସଜ୍ଜା. ନାୟକାକାଙ୍କ୍ଷିଣୀ ରମଣୀର ବେଶଭୂଷା ।

ବାସରହିତ—ବିଂ. (ଷତତ୍ପୁ) ଗୃହହୀନ, ବାସହୀନ, ବସ୍ତ୍ରହୀନ, ଲଙ୍ଗଳା ।

ବାସରାଧୀଶ—ପୁଂ. ବି. (ବାସର+ଅଧି+ଈଶ) ସୂର୍ଯ୍ୟ, ଦିନମଣି ।

ବାସରାନ୍ତ—ବି. (ଷତତ୍ପୁ) ସନ୍ଧ୍ୟା, (ବିଂ) ସନ୍ଧ୍ୟାକାଳୀନ ।

ବାସରେଶ—ପୁଂ. ବି. (ବାସର+ଈଶ) ଦିନପତି, ସୂର୍ଯ୍ୟ ।

ବାସବ—ପୁଂ. ବି. (ବସୁ+ଅ) ଇନ୍ଦ୍ର, ଦେବରାଜ, ଧନସ୍ଥାନଯକ୍ଷ ।

ବାସବଆୟୁଧ—ବି. ଇନ୍ଦ୍ରଙ୍କ ଅସ୍ତ୍ର, ବଜ୍ର ।

ବାସବଜ—ପୁଂ. ବି. (ବାସବ+ଜନ୍+ଅ) ବାସବପୁତ୍ର, ଅର୍ଜୁନ, ଜୟନ୍ତ ।

ବାସବଦତ୍ତା—ସ୍ତ୍ରୀ.ବି.କଥା ଗ୍ରନ୍ଥ ବିଶେଷ କବିସୁବନ୍ଧୁରଚିତ ସଂସ୍କୃତ ଗଦ୍ୟ କାବ୍ୟର ନାୟିକା,ସଂସ୍କୃତଗଦ୍ୟ କାବ୍ୟ ବିଶେଷ ।

ବାସବଦତ୍ତିକ—ବିଂ.ବାସବଦତ୍ତାସମ୍ବନ୍ଧୀୟ ।

ବାସବଦିକ୍—ସ୍ତ୍ରୀ.ବି. ବାସବ ସମ୍ବନ୍ଧୀୟ ଦିକ୍, ପୂର୍ବଦିକ୍, ପୂର୍ବଦିଗ ।

ବାସବାବରଜ—ପୁଂ. ବି. (ବାସବ+ଅବରଜ) ଇନ୍ଦ୍ରଙ୍କ ପାଶ୍ଚାତ୍‌ଜାତ, ଉପେନ୍ଦ୍ର, ବିଷ୍ଣୁ ।

ବାସବାବାସ—ପୁଂ.ବି(ବାସବ+ଆବାସ), ବାସବଙ୍କ ଆବାସ, ଇନ୍ଦ୍ରାଳୟ,ଅଳକାଭବନ । [ସ୍ଥାନ ।

ବାସବାସ—ଗ୍ରା.ବି.ତମ୍ବୁ, ବହୁଟି, ସ୍ଥବାସ

ବାସବି—ପୁଂ. ବି. (ବାସବ+ଇ)ବାସବଙ୍କ ପୁତ୍ର, ଜୟନ୍ତ, ଅର୍ଜୁନ ।

ବାସବୀ—ସ୍ତ୍ରୀ.ବି.(ବସୁ+ଅ+ଈ) ବ୍ୟାସମାତା, ସତ୍ୟବତୀ,ମତ୍ସ୍ୟଗନ୍ଧା,ଇନ୍ଦ୍ରାଣୀ, ଶଚୀ ।

ବାସବେୟ—ପୁଂ.ବି.ବ୍ୟାସ,ବାସବୀଅପତ୍ୟ

ବାସବେଶ୍ମ—କ୍ଲୀ.ବି. (ଷତତ୍ପୁ)ବାସଗୃହ, ବାସଘର, (କ.ଧା) ସୁବାସିତ ଘର ।

ବାସଃ—କ୍ଲୀ.ବି.(ବସ୍+ଣି+ଅସ୍)ବସ୍ତ୍ର, ଲୁଗା ।

ବାସସନ୍ନିଧାନ—କ୍ଲୀ. ବି. (ଷତତ୍ପୁ)ବସ୍ତ୍ରନିର୍ମାଣ, ଲୁଗା ବୁଣିବା, ଗୃହ ବେଷ୍ଟନ ।

ବାସା—ସ୍ତ୍ରୀ.ବି.(ବସ୍+ଣି+ଆ)ବାସକ, ବାସଙ୍ଗଛେଳ, ବାସନ୍ତୀ ।

ବାସାଗାର—ପୁଂ. ବି. (ବାସ+ଆଗାର) ବାସଗୃହ, ବାସସ୍ଥାନ, ଶୟନଗୃହ. ଭୋଗଗୃହ ।

ବାସାନୁଚ—କ୍ଲୀ ବି.ପୁଷ୍ପୌଷଧବିଶେଷ

ବାସାଙ୍ଗ—ଗ୍ରା. ବି. ବାସ ହୋଇଲେ ।

ବାସାଞ୍ଜଳ—ବି. (ଷତତ୍ପୁ) ପିନ୍ଧାଲୁଗାର କାନି, କରପୃଷ୍ଠ, ଅଞ୍ଚଳ ।

ବାସାଦୃତା—ସ୍ତ୍ରୀ. ବି. ମାତୃସ୍ୱସ୍ରୂକା, ଶ୍ରେଷ୍ଠ ମୃଗା ।

ବାସାର୍ହ—ବିଂ.(ଷତତ୍ପୁ)ବାସୋପଯୋଗୀ. ବାସ କରିବାର ଉପଯୁକ୍ତ ।

ବାସି—ପୁଂ. ବି. (ବସ୍+ଇ) କୁଠାରବିଶେଷ, ବାଟିଣି ଅସ୍ତ୍ର,(ଗ୍ରା.ବିଂ)ପର୍ଯ୍ୟୁଷିତ, ଯାହା ତକ୍ଷଣ ନୁହେଁ, ପୂର୍ବଦିନର ପଡ଼ିଥିବା,ପୁରାତନ, ଗତକାଲିଠୁ ଅବଶିଷ୍ଟ, ପରବର୍ତ୍ତୀ(ଦିବସ),ଧୋବା ଦ୍ୱାରା ପରିଷ୍କୃତ(ବସ୍ତ୍ର), (ବି) ପରବର୍ତ୍ତୀ ଦିବସ

ବାସିଆଡ଼ତ—ଗ୍ରା. ବି. ସକାଳୁ ଉଠି ଯେଉଁଥିରୁ ଶୁଦ୍ଧକର୍ମ କରାଯାଏ ।

ବାସିକ—ପୁଂ. ବି. (ବସ୍+ଇକ)ବର୍ଦ୍ଧି ।

ବାସିକା—ସ୍ତ୍ରୀ. ବି. (ବସ୍+ଇକ+ଆ) ବାସକ, ବାସଙ୍ଗଛେଳ, (ବିଂ) ସୁଗନ୍ଧିକାରିକା ।

ବାସିଚନ୍ଦନ—ଗ୍ରା. ବି. ସୁବାସିତ ଚନ୍ଦନ, ଉତ୍କୃଷ୍ଟ ଚନ୍ଦନ ।

ବାସିତ—କ୍ଲୀ.ବି. (ବାସ+ତ)ରୁତ,ପକ୍ଷୀ ଶବ୍ଦ, ଜ୍ଞାନ, ଖେଚର,(ବିଂ.ବସ୍+ଣିଚ୍+ର୍ମି.ତ) ସୁରଭୀକୃତ, ବିଖ୍ୟାତ, ଧୂପିତ, (ବସ୍+ର୍ମି.ତ) ବସ୍ତ୍ର ବେଷ୍ଟିତ, ଆର୍ଦ୍ରୀକୃତ, ପର୍ଯ୍ୟୁଷିତ, ସ୍ଥାପିତ, ପୁରୁଣା, ଅଧିବାସିତ ।

ବାସିତା—ସ୍ତ୍ରୀ.ବି. (ବାସ+ତ+ଆ)ସ୍ତ୍ରୀ. କରିଣୀ, ହସ୍ତିନୀ, (ଗ୍ରା.ସ୍ତ୍ରୀ.ବି)ସୀମନ୍ତୋନ୍ନୀତା, କଞ୍ଚାନ୍ଦଦତା,(ଗ୍ରା.ସ୍ତ୍ରୀ.ବି)ଗୃହିଣୀ

ବାସିଥିବା—ଗ୍ରା. ବି. ସ୍ଥାନାନ୍ତରକୁ ଯାଇ ସେଠାରେ ଏକଦିନରୁ ଅଧିକ ରହିଥିବା, ବାସିଆଡ଼ତ, ବାସିଯାଇଛି ।

ବାସିଧୋବ—ଗ୍ରା.ବିଂ. ଧୋବାମାନଙ୍କର ଏକ ଦିନରୁ ବେଶି ସମୟରେ ଲୁଗା ପରିଷ୍କାର କରିବା ବିଧିରେ ପରିଷ୍କୃତ(ଲୁଗା)

ବାସିନ୍—ପୁଂ.ବିଂ.(ବାସ+ଇନ୍) ବାସକାରୀ

ବାସିନୀ—ସ୍ତ୍ରୀ. ବି. (ବାସ+ଇନ୍+ଈ) ଶ୍ୱେତଝିଣ୍ଟୀ, ଧଳାବାସକେରଣ୍ଡା, (ବିଂ) ସୁଗନ୍ଧଯୁକ୍ତ ।

ବାସିନ୍ଦା—ଗ୍ରା. ବି. ଅଧିବାସୀ, ନିବାସୀ, କୌଣସି ସ୍ଥାନର ସ୍ଥାୟୀ ଅଧିବାସୀ ।

ବାସିପଖାଳ—ଗ୍ରା. ବି. ଏକଦିନ ଏକାଧିକ ଦିନ ପୂର୍ବରୁ ରନ୍ଧାହୋଇ ପଖାଳ ହୋଇଥିବା ଭାତ ।

ବାସିପାଣି—ଗ୍ରା. ବି.ଗତଦିବସରୁ ରଖାହୋଇଥିବା ପାଣି, ମଦ ।

ବାସିବ—ଗ୍ରା. କ୍ରି. ସୁବାସିତ ହେବା, (ଉଦ୍‌ଭବାଚକ) ହୋଇବା ।

ବାସିଭାତ—ଗ୍ରା.ବି ପୂର୍ବଦିନରୁ ରନ୍ଧାଯାଇଥିବା ଭାତ, ପର୍ଯ୍ୟୁଷିତ ଅନ୍ନ ।

ବାସିମଡ଼ା—ଗ୍ରା. ବି. ଯେଉଁ ଶବ ମୃତ୍ୟୁଦିବସ ଶ୍ମଶାନକୁ ନିଆଯାଇ ନଥାଏ ।

ବାସିମୁହଁ—ଗ୍ରା. ବି. ସକାଳୁ ଧୂଆହୋଇ ନଥିବା ମୁହଁ, ଅଧୁଆମୁହଁ ।

ବାସିମୁହଁରେପାଣିଦେବା—ଗ୍ରା. କ୍ରି. ସକାଳୁ ଉଠି ମୁହଁ ଧୋଇବା ।

ବାସିଯିବା—ଗ୍ରା. କ୍ରି. ବାସିହୋଇଯିବା, ମଳିନ ହେବା,ବାସିହେବାରୁ ଗନ୍ଧାଇବା

ବାସିହେବା—ଗ୍ରା. କ୍ରି. (କୌଣସି ପଦାର୍ଥ ବା ଖାଦ୍ୟ) ପରଦିନ ପର୍ଯ୍ୟନ୍ତ ବଳିପଡ଼ିବା ।

ବାସିଷ୍ଠ—କ୍ଲୀ. ବି. ରୁଧିର, ରକ୍ତ ।

ବାସିଷ୍ଠ—ବିଂ. (ବସିଷ୍ଠ+ଅ) ବଶିଷ୍ଠଋଷିସମ୍ବନ୍ଧୀୟ,ବଶିଷ୍ଠଗୋତ୍ରୀୟ, ବଶିଷ୍ଠ ପ୍ରଣୀତ, (ବି)ବଶିଷ୍ଠପ୍ରଣୀତ ଯୋଗଶାସ୍ତ୍ର, ବଶିଷ୍ଠଙ୍କ ପୁତ୍ର, ରକ୍ତ,ରୁଧିର ।

ବାଶିଷ୍ଠରାମାୟଣ—କ୍ଲୀ. ବି. ଯୋଗବାଶିଷ୍ଠ ରାମାୟଣ ଗ୍ରନ୍ଥବିଶେଷ ।

ବିଦ୍ୟାଧିପକ—ପୁଂ.ବି. ସୁପଣ୍ଡିତ ।
ବିଦ୍ୟାଧୀଶବଡ଼େରୁ—ପୁଂ.ବି. ପଣ୍ଡିତ ।
ବିଦ୍ୟାଧ୍ର—ପୁଂ.ବି. ବିଦ୍ୟାଧର ଦେଖ ।
ବିଦ୍ୟାନଗର( ସ୍ଥା )—ବି. ଦାକ୍ଷିଣାତ୍ୟ ତୁଙ୍ଗଭଦ୍ରା ନଦୀର ଦକ୍ଷିଣ ତୀରବର୍ତ୍ତୀ ଗୋଟିଏ ପ୍ରଧାନ ନଗର, ଆଧୁନିକ ବିଜୟ ନଗର ।
ବିଦ୍ୟାନିଧି—ବି, (ବିଦ୍ୟା+ନିଧି-୬ତତ୍) ବିଦ୍ୟାର୍ଣ୍ଣବ, ବିଦ୍ୟାସାଗର, ସଂ-ପଣ୍ଡିତଙ୍କ ଉପାଧିବିଶେଷ । [ ପ୍ରଣେତା ।
ବିଦ୍ୟାନିବାସ—ବି. ମୁଗ୍ଧବୋଧ ଟୀକା-
ବିଦ୍ୟାନୁରାଗ—ବି. (୬ତତ୍) ବିଦ୍ୟାପ୍ରତି ସ୍ନେହ ବା ଆସକ୍ତି ।
ବିଦ୍ୟାନୁରାଗୀ—ପୁଂ.ବିଂ.(୬ତତ୍) ଯାହାର ବିଦ୍ୟାପ୍ରତି ପ୍ରଗାଢ଼ ଆସକ୍ତି ଥାଏ ।
ବିଦ୍ୟାଭରଣ—ବି, ବିଦ୍ୟାରୂପ ଆଭରଣ, (ପୁଂ.ବିଂ-ବ.ବ୍ରୀ) ବିଦ୍ୟାବିଭୂଷିତ ।
ବିଦ୍ୟାଭୂଷଣ—ପୁଂ.ବି, (ବ.ବ୍ରୀ) ବିଦ୍ୟାଲଙ୍କାର, ସଂ-ପଣ୍ଡିତମାନଙ୍କ ଉପାଧିବିଶେଷ ।
ବିଦ୍ୟାଭୃତ୍—ପୁଂ. ବି. (ବିଦ୍ୟା+ଭୃ+କ.କ୍ୱିପ୍) ବିଦ୍ୱାନ୍, ବିଦ୍ୟାଧର ।
ବିଦ୍ୟାଭ୍ୟାସ—ବି.(୬ତତ୍) ପାଠକୁ ଅନୁଶୀଳନ କରିବା, ବିଦ୍ୟାଚର୍ଚ୍ଚା ।
ବିଦ୍ୟାମଣି—ପୁଂ. ବି. (ବିଦ୍ୟା+ମଣି) ବିଦ୍ୟାରୂପ ରତ୍ନ, ବିଦ୍ୟା, ବିଦ୍ୟାଧନ ।
ବିଦ୍ୟାମନ୍ଦିର—ବି. (୬ତତ୍) ବିଦ୍ୟାଳୟ, ପାଠଶାଳା ।
ବିଦ୍ୟାମୟ—ବିଂ,(ବିଦ୍ୟା+ମୟ)ବିଦ୍ୟାସ୍ୱରୂପ, ବିଦ୍ୟାପ୍ରଧାନ ।
ବିଦ୍ୟାରତ୍ନ—ପୁଂ.ବି.(କ.ଧା) ବିଦ୍ୟାରୂପ ରତ୍ନ, ବିଦ୍ୟା, ସଂ- ପଣ୍ଡିତଙ୍କ ଉପାଧିବିଶେଷ ।
ବିଦ୍ୟାରମ୍ଭ—ପୁଂ, ବି. (୬ତତ୍) ବିଦ୍ୟା ଶିକ୍ଷାର ଆରମ୍ଭ, ଖଡ଼ିଛୁଆଁ ।
ବିଦ୍ୟାରାଶି—ପୁଂ ବି, ଶିବ ।
ବିଦ୍ୟାର୍ଜ୍ଜନ—ବି. (୬ତତ୍) ବିଦ୍ୟାଲାଭ, ପାଠ ପଢ଼ିବା ।
ବିଦ୍ୟାର୍ଣ୍ଣବ—ବି. ( କ.ଧା ) ବିଦ୍ୟାରୂପ ମହାସମୁଦ୍ର, ବିଦ୍ୟାନିଧି ।
ବିଦ୍ୟାର୍ଥୀ—ବିଂ. (ବିଦ୍ୟା+ଅର୍ଥ+ଇନ୍) ବିଦ୍ୟା ପଢ଼ିବାକୁ ଗୁରୁଙ୍କ ନିକଟରେ ଉପସ୍ଥିତ, ବିଦ୍ୟା ଶିକ୍ଷା କରିବାକୁ ଇଚ୍ଛୁକ ।
ବିଦ୍ୟାଲଙ୍କାର—ପୁଂ,ବି. (ବ.ବ୍ରୀ)ବିଦ୍ୟାଭୂଷଣ ।
ବିଦ୍ୟାଲଙ୍କାରଭଟ୍ଟାଚାର୍ଯ୍ୟ—ପୁଂ.ବି.ସଂକ୍ଷିପ୍ତସାରର ପ୍ରସିଦ୍ଧ ଟୀକାକାର ।
ବିଦ୍ୟାଳୟ—ପୁଂ.ବି. (ବିଦ୍ୟା+ଆଲୟ) (୬ତତ୍) ପାଠଶାଳା, ଶିକ୍ଷାଗୃହ, ସ୍କୁଲ
ବିଦ୍ୟାଳାପ—ପୁଂ.ବି. (କ.ଧା) ବିଦ୍ୟାବିଷୟକ କଥୋପକଥନ ।
ବିଦ୍ୟାଲାଭ—ବି.(୬ତତ୍)ବିଦ୍ୟା ଉପାର୍ଜ୍ଜନ
ବିଦ୍ୟାବତ୍ତ୍ୱ—ବି. (ବିଦ୍ୟା+ବତ୍+ଭା.ତ୍ୱ) ପାଣ୍ଡିତ୍ୟ ।
ବିଦ୍ୟାବନ୍ତ—ଗ୍ରା. ବିଂ. ବିଦ୍ୱାନ୍ ।
ବିଦ୍ୟାବାନ୍—ପୁଂ.ବିଂ. (ବିଦ୍ୟା+ବତ୍) ବିଦ୍ୱାନ୍, ପଣ୍ଡିତ, (ସ୍ତ୍ରୀ) ବିଦ୍ୟାବତୀ ।
ବିଦ୍ୟାବିଦ୍—ବିଂ. (ବିଦ୍ୟା+ବିଦ+କ୍ୱିପ୍) ବିଦ୍ୱାନ୍, ପଣ୍ଡିତ ।
ବିଦ୍ୟାବିନୋଦ—ପୁଂ.ବି.(୩ତତ୍)ବିଦ୍ୟା ଦ୍ୱାରା ଚିତ୍ତବିନୋଦ; (ପୁଂ.ବି.-ବ.ବ୍ରୀ) ପଣ୍ଡିତମାନଙ୍କୁ ଦିଆଯିବା ଉପାଧି, (ପୁଂ, ବିଂ.ବ.ବ୍ରୀ ) ବିଦ୍ୟା ଚର୍ଚ୍ଚା କରିବାକୁ ଯାହାକୁ ଭଲ ଲାଗେ ।
ବିଦ୍ୟାବିରୁଦ୍ଧ—ବିଂ. ଜ୍ଞାନର ବିପରୀତ, ବୁଦ୍ଧିର ଅଗମ୍ୟ ।
ବିଦ୍ୟାବିରୁଦ୍ଧତା—ବି.ଅର୍ଥଦୋଷବିଶେଷ
ବିଦ୍ୟାବିବାଦ—ବି. (୬ତତ୍) ଏକାଧିକ ବ୍ୟକ୍ତିଙ୍କ ମଧ୍ୟରେ ବିଦ୍ୟାବିଷୟକ ବାଦାନୁବାଦ ।
ବିଦ୍ୟାବିଶାରଦ—ପୁଂ,ବି.(୭ତତ୍)ବିଦ୍ୟାନିପୁଣ, ସୁପଣ୍ଡିତ, (ସ୍ତ୍ରୀ) ବିଶାରଦା ।
ବିଦ୍ୟାବିସ୍ତାର—ଗ୍ରା.ବି. (୬ତତ୍)ଶିକ୍ଷାର ପ୍ରଚାର ।
ବିଦ୍ୟାବିହୀନ—ପୁଂ.ବିଂ.(୩ତତ୍) ମୂର୍ଖ, ଅଶିକ୍ଷିତ । [ ଶାଳା ।
ବିଦ୍ୟାବେଶ୍ମ—କ୍ଲୀ.ବି. ବିଦ୍ୟାଳୟ, ପାଠ-
ବିଦ୍ୟାବ୍ରତ—ପୁଂ. ବି. ଗୁରୁ ଗୃହରେ ଅଧ୍ୟୟନ ଅବସ୍ଥାରେ କାଳଯାପନ ।
ବିଦ୍ୟାଶିକ୍ଷା—ବି.(୬ତତ୍)ପାଠ ପଢ଼ିବା ।
ବିଦ୍ୟାସାଗର—ବିଂ. ସର୍ବଶାସ୍ତ୍ରବିତ୍,ବିଦ୍ୟାର୍ଣ୍ଣବ ଦେଖ, (ଗ୍ରା.ବି) ବଙ୍ଗର ସୁନାମଧନ୍ୟ ମହାପଣ୍ଡିତ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର । [ ମୂର୍ଖ ।
ବିଦ୍ୟାହୀନ—ବିଂ.(୩ତତ୍) ବିଦ୍ୟାଶୂନ୍ୟ,
ବିଦ୍ୟୁ—ଗ୍ରା. (ପଦ୍ୟ)ବି. ବିଦ୍ୟୁତ୍,ବିଜୁଳି
ବିଦ୍ୟୁଚ୍ଚାଳକ—ବି ଓ ବିଂ.ଯେଉଁ ଦ୍ରବ୍ୟର ମଧ୍ୟ ଦେଇ ବିଦ୍ୟୁତ୍ ଅବ୍ୟାହତ ରୂପେ ଗତି କରିପାରେ ।
ବିଦ୍ୟୁଚ୍ଚିକିତ୍ସା—ବି.(୩ତତ୍) ତଡ଼ିତ୍ ଶକ୍ତି ପ୍ରୟୋଗ ଦ୍ୱାରା ନାନାରୋଗର ଚିକିତ୍ସା
ବିଦ୍ୟୁଚ୍ଛତ୍ରୁ—ପୁଂ. ବି. ରାକ୍ଷସ ।
ବିଦ୍ୟୁଚ୍ଛିଖା—ସ୍ତ୍ରୀ. ବି. ରାକ୍ଷସୀବିଶେଷ, ସ୍ଥାବର ବିଷର ଅନ୍ତର୍ଗତ ମୂଳବିଶେଷ
ବିଦ୍ୟୁଜ୍ଜିହ୍ୱ—ପୁଂ. ବି. ରାମାୟଣୋକ୍ତ ମାୟାବୀ ରାକ୍ଷସବିଶେଷ, ସୂର୍ପଣଖାର ସ୍ୱାମୀ ।
ବିଦ୍ୟୁଜ୍ଜିହ୍ୱା—ସ୍ତ୍ରୀ. ବି. ମାତୃଗଣବିଶେଷ ।
ବିଦ୍ୟୁଜ୍ଜ୍ୱାଳ—ପୁଂ. ବି. ରାକ୍ଷସବିଶେଷ ।
ବିଦ୍ୟୁଜ୍ଜ୍ୱାଳା—ସ୍ତ୍ରୀ. ବି. କଳିକାରୀ ବୃକ୍ଷ, ବିଷ ଲାଙ୍ଗଳିଆ ।
ବିଦ୍ୟୁତ୍—ସ୍ତ୍ରୀ. ବି. ( ବି+ଦ୍ୟୁତ୍+କ. କ୍ୱିପ୍)ସନ୍ଧ୍ୟା,ତଡ଼ିତ୍ ବିଜୁଳି, ସୌଦାମିନୀ, (ଭା.କ୍ୱିପ୍) କାନ୍ତି, (ବିଂ.-ବି+ଦ୍ୟୁତ୍. ବ.ବ୍ରୀ) ନିଷ୍ପ୍ରଭ, ଆଲୋକହୀନ, ଅତ୍ୟନ୍ତ ଦୀପ୍ତିମାନ୍ ।
ବିଦ୍ୟୁତ୍‌କମ୍ପନ—ବି. ତଡ଼ିତ୍ ପ୍ରବାହଜନିତ ବସ୍ତୁର କମ୍ପନ ।
ବିଦ୍ୟୁତ୍‌କେଶ—ପୁଂ.ବି, ରାମାୟଣୋକ୍ତ ରାକ୍ଷସବିଶେଷ ।
ବିଦ୍ୟୁତ୍‌କେଶୀ—ପୁଂ.ବି,ରାକ୍ଷସବିଶେଷ ।
ବିଦ୍ୟୁତ୍‌କୋଷମାଳା—ବି.ଯେଉଁ ବୈଜ୍ଞାନିକ ଯନ୍ତ୍ରରେ ତଡ଼ିତ୍ ଉତ୍ପାଦକ ବସ୍ତୁମାନ ରକ୍ଷିତ ହୋଇଥାଏ, ବ୍ୟାଟେରୀ ।
ବିଦ୍ୟୁତ୍‌ପାତ—ବି ୭ତତ୍ ବିଜୁଳି ମାରିବା, କୌଣସି ଦ୍ରବ୍ୟ ଉପରେ ବିଦ୍ୟୁତ୍ ପ୍ରହାର

ସଂଘର୍ଷ, ଉଲ୍କାପାତ ।
ବିଦ୍ୟୁତ୍ପ୍ରବାହ—ବି. ତଡ଼ିତ୍ ଶକ୍ତିର ସ୍ରୋତ ବା ତରଙ୍ଗ ।
ବିଦ୍ୟୁତ୍ପ୍ରଦୀପ—ବି. ବିଜୁଳିବତୀ ।
ବିଦ୍ୟୁତ୍ପ୍ରଭ—ବିଂ.(ବ.ବ୍ରୀ) ବିଜୁଳିପରି ଉଜ୍ଜ୍ୱଳ, (ସ୍ତ୍ରୀ) ବିଦ୍ୟୁତ୍ପ୍ରଭା ।
ବିଦ୍ୟୁତ୍ପ୍ରଭା—ସ୍ତ୍ରୀ.ବି.(୬ତତ୍) ବିଜୁଳିର ତେଜ,ତେଜଃ,ତଡ଼ିତ୍ ଶକ୍ତି । [ପ୍ରାଚୀ ।
ବିଦ୍ୟୁତ୍ପ୍ରିୟ—ବି.କାଂସ୍ୟଧାତୁ,କାଂସ୍ୟ-
ବିଦ୍ୟୁତ୍ସ୍ପନ୍ଦନ—ବି. ବିଜୁଳି ମାରିବା, (ବିଜ୍ଞାନ) ତଡ଼ିତ୍ ପ୍ରବାହର କ୍ଷଣିକ ପ୍ରକାଶ ।
ବିଦ୍ୟୁତ୍ସ୍ଫୁଲିଙ୍ଗ—ପ୍ରା. ବି. ତଡ଼ିତର ଆଲୋକକଣା ।
ବିଦ୍ୟୁତା—ବି.(ବି+ଦ୍ୟୁତ୍+କ.ଅ+ଆ) ବିଜୁଳି, ସୌଦାମିନୀ ।
ବିଦ୍ୟୁତାକ୍ଷ—ବିଂ. (ବ.ବ୍ରୀ) ବିଜୁଳିପରି ଉଜ୍ଜ୍ୱଳ ଚକ୍ଷୁବିଶିଷ୍ଟ, (ବି) ସ୍କନ୍ଦାନୁଚର ବିଶେଷ ।
ବିଦ୍ୟୁତ୍ତରଙ୍ଗ—ବି. ତଡ଼ିତ୍ ପ୍ରବାହର ପ୍ରବଳ ସ୍ଫୁରଣ ।
ବିଦ୍ୟୁତ୍ୟ—ବିଂ. (ବିଦ୍ୟୁତ୍ + ଯ) ବିଦ୍ୟୁତରୁ ଉତ୍ପନ୍ନ ।
ବିଦ୍ୟୁତ୍ବାନ୍—ପୁଂ. ବିଂ. (ବିଦ୍ୟୁତ୍+ବତ୍) ବିଦ୍ୟୁତଶକ୍ତି ବିଶିଷ୍ଟ,(ବି) ପର୍ବତବିଶେଷ ମେଘ, (ସ୍ତ୍ରୀ) ତଡ଼ିତ୍ବତୀ ।
ବିଦ୍ୟୁଦାବେଶ—ବି. (୬ତତ୍) କୌଣସି ବସ୍ତୁରେ ତଡ଼ିତ୍ଶକ୍ତିର ପ୍ରବେଶ ।
ବିଦ୍ୟୁଦାବେଶନ—ବି. କୌଣସି ବସ୍ତୁରେ ତଡ଼ିତ୍ଶକ୍ତି ପୂରାଇବା ।
ବିଦ୍ୟୁଦୁତ୍କୀର୍ତ୍ତନ—ବି. (୩ତତ୍) ତଡ଼ିତ୍ ଶକ୍ତି ଦ୍ୱାରା ଧାତୁଆଦି ଉପରେ ଅକ୍ଷରାଦି ଖୋଳିବା କର୍ମ ।
ବିଦ୍ୟୁଦ୍ଦୀପ୍ତ—ବିଂ. (୩ତତ୍)ବିଦ୍ୟୁତ୍ଦ୍ୱାରା ଆଲୋକିତ, ବିଦ୍ୟୁତ୍ପରି ଜ୍ୟୋତିର୍ବିଶିଷ୍ଟ ।
ବିଦ୍ୟୁଦ୍ଦ୍ୱାର—ବି. (୬ତତ୍) ଯେଉଁ ଦ୍ୱାର ବାଟେ ତଡ଼ିତ୍ପ୍ରବାହ ବସ୍ତ୍ୱନ୍ତରକୁ ଯାଏ
ବିଦ୍ୟୁଦ୍ଗର୍ଭ—ବିଂ. (ବ.ବ୍ରୀ) ଯାହାର ଗର୍ଭରେ ବିଦ୍ୟୁତ୍ ଅଛି, (ବି) ମେଘ, (ସ୍ତ୍ରୀ) ବିଦ୍ୟୁଦ୍ଗର୍ଭା ।
ବିଦ୍ୟୁଦ୍ଗୌରୀ—ସ୍ତ୍ରୀ.ବି. ଶକ୍ତିମୂର୍ତ୍ତିବିଶେଷ ।
ବିଦ୍ୟୁଦ୍ବାର୍ତ୍ତା—ପ୍ରା. ବି. ତାରଖବର ।
ବିଦ୍ୟୁଦ୍ବାର୍ତ୍ତାବହ—ବି.ତଡ଼ିତ୍ ଶକ୍ତି ଦ୍ୱାରା ସମ୍ବାଦପ୍ରେରଣକାରୀ ଯନ୍ତ୍ର ।
ବିଦ୍ୟୁଦ୍ବିକାଶ—ବି. (୬ତତ୍) ବିଦ୍ୟୁତ୍ସ୍ଫୁରଣ, ବିଜୁଳିର ଚମକ ।
ବିଦ୍ୟୁଦ୍ବିଚ୍ଛେଦ—ବି. (୬ତତ୍) ତଡ଼ିତ୍ ଶକ୍ତି ଦ୍ୱାରା ବସ୍ତୁର ଉପାଦାନମାନଙ୍କର ରାସାୟନିକ ବିଶ୍ଳେଷଣ ।
ବିଦ୍ୟୁଦ୍ବିଜ୍ଞାନ—ବି. (କ.ଧା) ତଡ଼ିତ୍ଶକ୍ତି ସମ୍ବନ୍ଧେ ବିଶେଷ ଜ୍ଞାନ ସମ୍ବଳିତ ଶାସ୍ତ୍ର ।
ବିଦ୍ୟୁଦ୍ବିଦ୍—ବିଂ.ତଡ଼ିତ୍ ସମ୍ବନ୍ଧେ ବିଶେଷଜ୍ଞ ।
ବିଦ୍ୟୁଦ୍ବୀକ୍ଷଣ—ବି. ବିଦ୍ୟୁତ୍ ଶକ୍ତିର ଅବସ୍ଥିତି ଗତି ଓ ବେଗ ଆଦି ପ୍ରଦର୍ଶନ କରିବା ଯନ୍ତ୍ରବିଶେଷ ।
ବିଦ୍ୟୁଦ୍ବେଗ—ବି. (୬ତତ୍) ତଡ଼ିତର ଗତି, (କ.ଧା) ତଡ଼ିତର ଗତିପରି ଦ୍ରୁତଗତି, (ବିଂ-ବ.ବ୍ରୀ) ବିଦ୍ୟୁତ୍ପରି ଗତିବିଶିଷ୍ଟ ।
ବିଦ୍ୟୁଦ୍ବ୍ୟଞ୍ଜନ—ପ୍ରା. ବି. ବିଦ୍ୟୁତ୍ ଶକ୍ତି-ପରିଚାଳିତ ପଙ୍ଖା ।
ବିଦ୍ୟୁନ୍ମାପକ—ବିଂ. ଯଦ୍ଦ୍ୱାରା ବିଦ୍ୟୁତ୍ ପ୍ରବାହର ପରିମାଣ ସ୍ଥିର କରାଯାଏ,(ବି) ନିୟୋଜିତ ତଡ଼ିତ୍ ଶକ୍ତିର ଓ ପ୍ରବାହର ପରିମାଣ ସ୍ଥିର କରିବା ଯନ୍ତ୍ର ।
ବିଦ୍ୟୁନ୍ମାଳା—ବି. (୬ତତ୍) ବିଦ୍ୟୁତ୍ସମୂହ, ବାନରବିଶେଷ, ସଂସ୍କୃତ ଛନ୍ଦୋବିଶେଷ
ବିଦ୍ୟୁନ୍ମାଳୀ—ପୁଂ.ବି. ପୌରାଣିକ ରାକ୍ଷସ ବିଶେଷ, ପର୍ଜ୍ଜନ୍ୟ,ମେଘ,ଛନ୍ଦୋବିଶେଷ
ବିଦ୍ୟୁନ୍ମୁଖ—ବିଂ. (ବ.ବ୍ରୀ) ବିଦ୍ୟୁତ୍ପରି ମୁଖବିଶିଷ୍ଟ, (ବି) ଉପଗ୍ରହ ବିଶେଷ ।
ବିଦ୍ୟୁଲ୍ଲତା—ସ୍ତ୍ରୀ. ବି. ମେଘଜ୍ୟୋତିଃ, ତଡ଼ିତ୍ଶକ୍ତି,ବିଜୁଳିର ରେଖା,ବଜ୍ରାଗ୍ନି
ବିଦ୍ୟୁଲ୍ଲେଖ—ବି. (୩ତତ୍) ଯେଉଁ ଯନ୍ତ୍ରଦ୍ୱାରା ତଡ଼ିତ୍ ପ୍ରବାହାଦିର ପରିମାଣ ସ୍ୱୟଂ ସ୍ୱୟଂ ଲିପିବଦ୍ଧ ହୋଇଯାଏ ।
ବିଦ୍ୟୁଲ୍ଲେଖା—ସ୍ତ୍ରୀ. ବି. ତଡ଼ିତ୍, ବଣିକ ପତ୍ନୀବିଶେଷ ।
ବିଦ୍ୟୁଲ୍ଲେପ—ବି. (୩ତତ୍) ତଡ଼ିତ୍ଶକ୍ତି ସାହାଯ୍ୟରେ କୌଣସି ବସ୍ତୁ ଉପରେ ସୁନାରୁପା ଆଦିର ଲେପ ବା ସ୍ତର ପକାଇବା କ୍ରିୟା ।
ବିଦ୍ୟେନ୍ଦ୍ରସରସ୍ୱତୀ—ପୁଂ. ବି. ବେଦାନ୍ତତତ୍ତ୍ୱସାର ପ୍ରଣେତା ।
ବିଦ୍ୟେଶ—ବି. ଶିବମୂର୍ତ୍ତିବିଶେଷ ।
ବିଦ୍ୟୋତ୍—ସ୍ତ୍ରୀ.ବି. (ବି+ଦ୍ୟୁତ୍+କ୍ୱିପ୍) ବିଦ୍ୟୁତ୍, ଦୀପ୍ତି, ପ୍ରଭା, କାନ୍ତି,ଅପ୍ସରୋବିଶେଷ ।
ବିଦ୍ୟୋତ—ବି. (ବି+ଦ୍ୟୁତ୍+ଘ.ଅ) ପ୍ରଭା, ଦୀପ୍ତି, ନୃପତିବିଶେଷ,ଅପ୍ସରୋବିଶେଷ । [ପ୍ରଭାବିଶିଷ୍ଟ ।
ବିଦ୍ୟୋତକ—ବିଂ. (ବିଦ୍ୟୋତ+କ)
ବିଦ୍ୟୋତନ—ବିଂ. ଦୀପ୍ତିଶୀଳ ।
ବିଦ୍ୟୋତମାନ—ପୁଂ. ବିଂ. (ବି+ଦ୍ୟୁତ୍ +କ.ଆନ) ଦ୍ୟୁତିମାନ୍, ଉଜ୍ଜ୍ୱଳ, (ସ୍ତ୍ରୀ) ବିଦ୍ୟୋତମାନା ।
ବିଦ୍ୟୋତୟିତବ୍ୟ—ବିଂ.ବିଦ୍ୟୁତାଲୋକେ ଆଲୋକିତ କରାଇବା ଯୋଗ୍ୟ,ବିଶେଷଭାବେ ପ୍ରକାଶନ ବା ବ୍ୟକ୍ତ କରାଇବା ଯୋଗ୍ୟ ।
ବିଦ୍ୟୋତୀ—ପୁଂ.ବିଂ. (ବିଦ୍ୟୋତ+ଇନ୍) ପ୍ରଭାଶୀଳ ।
ବିଦ୍ୟୋପାସୀ—ପୁଂ.ବିଂ. (୬ତତ୍)ବିଦ୍ୟା ବିଷୟରେ ଉନ୍ନତିଦାତା ।
ବିଦ୍ୟୋପାର୍ଜନ—ବି. (୬ତତ୍) ବିଦ୍ୟାଲାଭ, ଶିକ୍ଷାଲାଭ ।
ବିଦ୍ରଧ—ପୁଂ. ବିଂ. (ବିଧ୍+କ.ରଧ) ସ୍ଥୂଳ, ହୃଷ୍ଟପୁଷ୍ଟ, ଦୃଢ଼, ସୁସନ୍ନଦ୍ଧ, କୌଣସି କାର୍ଯ୍ୟପାଇଁ ଉତ୍ତମରୂପେ ପ୍ରସ୍ତୁତ, (ବି) ବିଦରଣଶୀଳ ବ୍ରଣବିଶେଷ ।
ବିଦ୍ରଧି(ଧୀ)—ପୁଂ. ସ୍ତ୍ରୀ. ବି. (ବିଦ୍ର+ଧା +ଇ.ଇ) ଶୁକଦୋଷବିଶେଷ, ଅନ୍ତର୍ବ୍ରଣବିଶେଷ, ହୃଦ୍ଗ୍ରନ୍ଥି,ହୃଦ୍ବ୍ରଣ ।
ବିଦ୍ରଧିକା—ସ୍ତ୍ରୀ.ବି. (ବିଦ୍ରଧି+କ.ଆ)

ପ୍ରମେହ ପୀଡ଼କାବିଶେଷ ।
ବିଦ୍ରଧିଘ୍ନ(ନାଶନ)—ବି. (ବିଦ୍ରଧି+ହନ୍ +ଡ.ନାଶନ) ଶୋଭାଞ୍ଜନବୃକ୍ଷ,ସଜନାଗଛ ।
ବିଦ୍ରବ—ପୁଂ. ବି. ( ବି+ଦ୍ରୁ+ଅ ) ପଳାୟନ, ବୁଦ୍ଧି, ନିନ୍ଦା, କ୍ଷରଣ,ବିନାଶ ଭୟ, ଦ୍ରବୀଭାବ, ଯୁଦ୍ଧ, ଥଟ୍ଟା,ପରିହାସ, (ଗ୍ରା.ବିଂ) ଗଳିପଡ଼ୁଥିବା ।
ବିଦ୍ରାବ—ପୁଂ. ବି. ( ବି+ଦ୍ରୁ+ଅ ) ବିଦ୍ରବ ଦେଖ ।
ବିଦ୍ରାବକ—ପୁଂ.ବିଂ. (ବି+ଦ୍ରୁ.ଣିଚ୍ +କ.ଅକ) ଯେ ଥଟ୍ଟା କରେ, ଦ୍ରବକାରୀ, ଯାହା ତରଳାଏ ।
ବିଦ୍ରାବଣ—ବି. (ବି+ଦ୍ରୁ.ଣିଚ୍+ଭା. ଅନ) ତରଳାଇବା, ପାଡ଼ିଦେବା, ତାଡ଼ନ, ତଡ଼ିଦେବା, ପଳାୟନ, (ପୁଂ.ବି) ଦାନବବିଶେଷ, ଉଡ଼ାଯିବା, ପ୍ରହାର ଦେବା, (ବିଂ-କ.ଅନ) ନଷ୍ଟକାରୀ, ପଳାଇଯାଉଥିବା ।
ବିଦ୍ରାବିତ—ବିଂ. (ବି+ଦ୍ରାବି+ମଂ.ତ) ପଳାୟିତ, ବିତାଡ଼ିତ, ଦ୍ରବୀକୃତ, ତରଳିତ, ତାଡ଼ନାର୍ଥ ପଶ୍ଚାଦ୍ଧାବିତ ।
ବିଦ୍ରାବିଣୀ—ସ୍ତ୍ରୀ.ବି. କାକମାଚୀ ।
ବିଦ୍ରାବୀ—ପୁଂ.ବିଂ. (ବି+ଦ୍ରବ+ଇନ୍) ପଳାୟନକାରୀ, ତରଳୁଥିବା, (ଦ୍ରବ. ଣିଚ୍+ଇନ୍) ତରଳାଉଥିବା, ବିଦ୍ରବକାରୀ ।
ବିଦ୍ରାବ୍ୟ—ବିଂ. ( ବି+ଦ୍ରବ+ଯ ) ବିତାଡ଼ିତ । [ କୋମଳ ।
ବିଦ୍ରୀୟ—ବିଂ. ଛିଦ୍ରଯୁକ୍ତ, ଭେଦ୍ୟ,
ବିଦ୍ରୁତ—ବିଂ. ( ବି+ଦ୍ରୁ+କ.ତ ) ଦ୍ରବୀଭାବପ୍ରାପ୍ତ, ପଳାୟିତ,ପୀଡ଼ିତ,ଭୀତ, ସନ୍ତ୍ରସ୍ତ, ଗଳିତ ।
ବିଦ୍ରୁତି—ସ୍ତ୍ରୀ. ବି. ( ବି+ଦ୍ରୁ+ତି ) ବିଦ୍ରବ ଦେଖ ।
ବିଦ୍ରଧି—ବି. ବିଦ୍ରଧି ।
ବିଦ୍ରୁମ—ପୁଂ.ବି. (ବି+ଦ୍ରୁମ)ପ୍ରବାଳ, ମୁକ୍ତାଫଳବୃକ୍ଷ, ପ୍ରବାଳବୃକ୍ଷ,ପୋହଳା, ରକ୍ତରାଗମଣି, କଶଳୟ, ନବପଲ୍ଲବ, ନୂତନ ପତ୍ର ।
ବିଦ୍ରୁମଛାୟ—ବିଂ. ଛାୟାସ୍ଥାନ, ମରୁ (ମାର୍ଗ), (ବ.ବ୍ରୀ) ପ୍ରବାଳପରି କାନ୍ତିବିଶିଷ୍ଟ ।
ବିଦ୍ରୁମଦଣ୍ଡ—ପୁଂ. ବି. ପ୍ରବାଳଦଣ୍ଡ, ପ୍ରବାଳ ନିର୍ମିତ ଯଷ୍ଟି ।
ବିଦ୍ରୁମଫଳ(ଳା)—ବି. ମଧୁର କୁନ୍ଦୁରୁ, କୁନ୍ଦୁରୁଖଟିନାମକ ଗନ୍ଧଦ୍ରବ୍ୟବିଶେଷ
ବିଦ୍ରୁମଲତା—ସ୍ତ୍ରୀ.ବି. ପ୍ରବାଳ, ନଳୀନାମକ ଗନ୍ଧଦ୍ରବ୍ୟବିଶେଷ ।
ବିଦ୍ରୁମଲତିକା—ସ୍ତ୍ରୀ.ବି. (ବିଦ୍ରୁମଲତା +କ+ଆ) ବିଦ୍ରୁମଲତାଦେଖ ।
ବିଦ୍ରୁଲ—ପୁଂ.ବି.ବେତସବୃକ୍ଷ,ବେତଗଛ
ବିଦ୍ରୂପ—ଗ୍ରା. ବି. ବ୍ୟଙ୍ଗ, ପରିହାସ, ଥଟ୍ଟା, ତାମସା ।
ବିଦ୍ରୂପାତ୍ମକ—ଗ୍ରା.ବି. ବ୍ୟଙ୍ଗପୂର୍ଣ୍ଣ, ପରିହାସ ପୂର୍ଣ୍ଣ ।
ବିଦ୍ରୂପୋକ୍ତି—ବି.ବ୍ୟଙ୍ଗୋକ୍ତି,ଥଟ୍ଟାକଥା ।
ବିଦ୍ରୋହ—ବି.(ବି+ଦ୍ରୁହ+ଅ)ଅନିଷ୍ଟାଚରଣ, ବିଦ୍ୱେଷ,ହିଂସା,ଯୁଦ୍ଧ,କଳହ, ମେଳି, ପ୍ରତିକୂଳତା, ବିରୁଦ୍ଧତା ।
ବିଦ୍ରୋହାଚରଣ—ବି.(୬ତତ୍)ବିରୋଧାଚରଣ, ରାଜସମ୍ମାନ ପ୍ରତି ଅସମ୍ମାନ ପ୍ରଦର୍ଶନ ।
ବିଦ୍ରୋହାନଳ—ବି.ଅଗ୍ନିପରି ଗୁରୁଆଡ଼େ ଘୋଟିଯିବା ମେଳି ।
ବିଦ୍ରୋହୀ—ପୁଂ.ବିଂ. (ବି+ଦ୍ରୋହ+ ଇନ୍) ଅନିଷ୍ଟକାରୀ, ବିଦ୍ୱେଷକାରୀ, ହିଂସାକାରୀ, ମେଳିଆ, ରାଜାଙ୍କ ପ୍ରତି ଅସମ୍ମାନ ପ୍ରଦର୍ଶକ,(ସ୍ତ୍ରୀ) ବିଦ୍ରୋହିଣୀ ।
ବିଦ୍ୱଜ୍ଜନ—ପୁଂ. ବି. (ବିଦ୍ୱତ୍+ଜନ) ବିଦ୍ୱାନ୍‌ବ୍ୟକ୍ତି, ପଣ୍ଡିତଲୋକ ।
ବିଦ୍ୱଜ୍ଜନମଣ୍ଡଳୀ—ବି. (୬ତତ୍) ପଣ୍ଡିତ ସମୂହ ।
ବିଦ୍ୱତ୍—ପୁଂ. ବି. ଶିବ ।
ବିଦ୍ୱତ୍କଳ୍ପ—ବିଂ. ( ବିଦ୍ୱସ୍+କଳ୍ପ ) ପଣ୍ଡିତ ସଦୃଶ, ଅଳ୍ପବିଦ୍ୱାନ୍ ।
ବିଦ୍ୱତ୍କୁଳ—ବି. (୬ତତ୍)ପଣ୍ଡିତସମୂହ, ଜ୍ଞାନୀଗଣ ।
ବିଦ୍ୱତ୍କୁଳତିଳକ—ବିଂ.(୬ତତ୍)ପଣ୍ଡିତ ସମୂହର ଅଗ୍ରଗଣ୍ୟ, ଜ୍ଞାନଶ୍ରେଷ୍ଠ ।
ବିଦ୍ୱତ୍ତମ—ବିଂ. (ବିଦ୍ୱସ୍+ତମ)ବହୁତ ମଧ୍ୟରେ ଯେ ଅତି ବିଦ୍ୱାନ୍, ଅଦ୍ୱିତୀୟପଣ୍ଡିତ, ଜ୍ଞାନଶ୍ରେଷ୍ଠ, (ସ୍ତ୍ରୀ) ବିଦ୍ୱତ୍ତମା ।
ବିଦ୍ୱତ୍ତର—ବିଂ. (ବିଦ୍ୱତ୍+ତର)ଦୁଇଜଣ ମଧ୍ୟରେ ଯେ ଅଧିକ ବିଦ୍ୱାନ୍, (ସ୍ତ୍ରୀ) ବିଦ୍ୱତ୍ତରା ।
ବିଦ୍ୱତ୍ତା(ତ୍ୱ)—ବି. ବିଦ୍ୟାବତ୍ତା, ପଣ୍ଡିତ୍ୟ ।
ବିଦ୍ୱଦ୍ଦେଶୀୟ—ବିଂ.(ବିଦ୍ୱସ୍+ଦେଶୀୟ) ବିଦ୍ୱତ୍କଳ୍ପ,ପଣ୍ଡିତସଦୃଶ,ଅଳ୍ପବିଦ୍ୱାନ୍
ବିଦ୍ୱଦ୍ଦେଶ୍ୟ—ବିଂ. (ବିଦ୍ୱସ୍+ଦେଶ୍ୟ) ବିଦ୍ୱତ୍କଳ୍ପ, ଅଳ୍ପବିଦ୍ୱାନ୍ ।
ବିଦ୍ୱାନ୍—ବିଂ. (ବିଦ୍+ବସ୍)ପଣ୍ଡିତ, ବିଦ୍ୟାବାନ୍, ଶାସ୍ତ୍ରବେତ୍ତା ।
ବିଦ୍ୱିଟ୍—ପୁଂ. ବି. (ବି+ଦ୍ୱିଷ୍+କ. କ୍ୱିପ୍) ଶତ୍ରୁ, ବୈରୀ, ପ୍ରତିଦ୍ୱନ୍ଦ୍ୱୀଦ୍ୱେଷ୍ଟା, (ଭା.କ୍ୱିପ୍) ଚେଷ୍ଟା ।
ବିଦ୍ୱିଷ—ପୁଂ. ବି. (ବି+ଦ୍ୱିଷ୍+କ. ଅ) ଶତ୍ରୁ, ଦ୍ୱେଷକାରୀ, ପ୍ରତିଦ୍ୱନ୍ଦ୍ୱୀ ।
ବିଦ୍ୱିଷ୍ଟ—ବିଂ. (ବି+ଦ୍ୱିଷ୍+ମଂ.ତ) ବିଦ୍ୱେଷଭାଜନ, ଯାହାକୁ ବିଦ୍ୱେଷ କରାଯାଏ, ଦ୍ୱେଷ ଭାବରେ ଘୃଣିତ ।
ବିଦ୍ୱେଷ୍ଟପୂର୍ବ—ବିଂ. ପୂର୍ବେ ଯାହାକୁ ବିଦ୍ୱେଷ କରାଯାଇଅଛି ।
ବିଦ୍ୱିଷ୍ଟି—ସ୍ତ୍ରୀ. ବି. (ବି+ଦ୍ୱିଷ୍+ତି) ବିଦ୍ୱେଷ, ଦ୍ୱେଷକରିବା,ହିଂସାକରିବା
ବିଦ୍ୱେଷ—ପୁଂ.ବି. (ବି+ଦ୍ୱିଷ୍+ଭା.ଅ ବୈରିତା, ଶତ୍ରୁତା, ଦ୍ୱେଷ, ଈର୍ଷା ।
ବିଦ୍ୱେଷକ—ପୁଂ. ବିଂ. (ବି+ଦ୍ୱିଷ୍+ କ.ଅକ) ବୈରୀ,ଶତ୍ରୁ,ବିରୋଧୀ,ଈର୍ଷା ।
ବିଦ୍ୱେଷଜନକ—ବିଂ.(ବିଦ୍ୱେଷ+ଜନ +ଅକ ) ଈର୍ଷାଯୁକ୍ତ, ଯେଉଁକାର୍ଯ୍ୟ ଦ୍ୱାରା ଈର୍ଷା ଜାତ ହୁଏ ବା ବଢ଼େ ।
ବିଦ୍ୱେଷଣ—କ୍ଳୀ. ବି. (ବି+ଦ୍ୱିଷ୍+ ଭା.ଅନ)ଈର୍ଷା ,ଅଭିଚାର କର୍ମବିଶେଷ, ଅସୌଜନ୍ୟ, ଦୁଷ୍ଟତା,(କ.ଅନ)ବୈରୀ, ଶତ୍ରୁ । [ ବିଶେଷ ।
ବିଦ୍ୱେଷ(ଷି)ଣୀ—ସ୍ତ୍ରୀ. ବି. ଯକ୍ଷକନ୍ୟା-

ବିଦ୍ୱେଷଣୀୟ—ପୁଂ. ବିଂ. (ବି+ଦ୍ୱିଷ୍ +ର୍ମ.ଅନୀୟ) ଘୃଣାର୍ହ, ଯାହା ସହିତ ବିଦ୍ୱେଷ କରାଯିବା ଉଚିତ, (ସ୍ତ୍ରୀ) ବିଦ୍ୱେଷଣୀୟା ।

ବିଦ୍ୱେଷପରାୟଣ—ବିଂ. (ବ.ବ୍ରୀ)ଅତି-ଶୟ ଦ୍ୱେଷଶୀଳ, ଅତ୍ୟନ୍ତ ଶତ୍ରୁଭାବା-ପନ୍ନ, ଅତି ହିଂସକ । [ ପାଦ୍ମ ।

ବିଦ୍ୱେଷଭଞ୍ଜନ—ବି. (୬ତତ୍) ଈର୍ଷାର

ବିଦ୍ୱେଷଭାବ—ବି. କୌଣସି ବ୍ୟକ୍ତି ପ୍ରତି ମନରେ ଜାତହେବା ଈର୍ଷାଭାବ ।

ବିଦ୍ୱେଷୀ—ପୁଂ.ବି ଓ ବିଂ. (ବି+ଦ୍ୱିଷ୍ +ଇନ୍) ଶତ୍ରୁ, ଦ୍ୱେଷକାରୀ, ଈର୍ଷୀ, ବୈରୀ, (ସ୍ତ୍ରୀ) ବିଦ୍ୱେଷିଣୀ ।

ବିଦ୍ୱେଷ୍ଟା—ପୁଂ. ବିଂ.(ବି+ଦ୍ୱିଷ୍+କ. ତୃ) ଶତ୍ରୁଭାବାପନ୍ନ, ହିଂସାକାରୀ,ଈର୍ଷୀ, (ସ୍ତ୍ରୀ) ବିଦ୍ୱେଷ୍ଟ୍ରୀ ।

ବିଦ୍ୱେଷ୍ୟ—କ୍ଲୀ. ବି. କଙ୍କୋଲ,କାଙ୍କୋଲ, (ବିଂ) ବିଦ୍ୱେଷଣୀୟ ଦେଖ ।

ବିଧ(ଧା)—ବି.(ବି+ଧା+ର୍ମ.ଅ)ବିମାନ, ଗଜଭକ୍ଷ୍ୟ ଅନ୍ନ, ବେଧନ, ଫୋଡ଼ିବା, ଛିଦ୍ରକରଣ, ସମୃଦ୍ଧି, ବେତନ, ମୂଲ, ପ୍ରକାର, କର୍ମ, ବିଧାନ, ନିୟମ,ବିଧି, ଧାରା, ଢଙ୍ଗ, (ପୁଂ. ବିଂ) ପ୍ରକାର, ଜାତୀୟ, ଆକାରର, (ଗ୍ରା. ସମ୍ବ. ବି) ଗୋଇଠା, (ଗ୍ରା. ବି) ବିବାଦ, କଳି, ବାଧା, ପ୍ରତିବନ୍ଧକ ।

ବିଧନୁଷ୍କ—ବିଂ. ଧନୁର୍ହୀନ ।

ବିଧନୁଃ—ବିଂ. (ବି+ଧନୁସ୍) ବ.ବ୍ରୀ; ଚ୍ୟୁତଧନୁ, ଧନୁର୍ହୀନ ।

ବିଧନ୍ୱା—ପୁଂ. ବିଂ. ଯାହାର ଧନୁ ନଷ୍ଟ ହୋଇଅଛି, ଛିନ୍ନଧନୁ ।

ବିଧମଚୂଡ଼ା—ସ୍ତ୍ରୀ. ବି. ଯାହାର ଅଗ୍ର ବା ଚୂଡ଼ାଦେଶ ଧୂମ ବା ଅଗ୍ନି ସଂଯୁକ୍ତ ।

ବିଧମନ—ବି. ନଳଦ୍ୱାରା ମୁଖବାୟୁ ପ୍ରଦାନ, ଅଗ୍ନିକୁ ବାୟୁବେଗେ ଉଦ୍ଦୀପ୍ତ କରିବା, ତାଉକରିବା,କ୍ଷୀରଯନ୍ତ୍ରାଦିରେ ଫୁତ୍କାର ବା ମୁଖ ବାୟୁ ପ୍ରଦାନ ।

ବିଧର୍ମ—ବି. ପାଞ୍ଚପ୍ରକାର ଅଧର୍ମର ଶାଖା ବିଶେଷ,ଆପଣାର ଧର୍ମ ଛଡ଼ା ଅନ୍ୟ ଧର୍ମ, ଧର୍ମାନ୍ତର, ଭିନ୍ନ ଧର୍ମ, ନିର୍ଗୁଣ ।

ବିଧର୍ମକ—ପୁଂ. ବିଂ. ବିଶିଷ୍ଟ ଧର୍ମଶୀଳ, ଅଧର୍ମଶୀଳ ।

ବିଧର୍ମା—ପୁଂ.ବିଂ. ସୁଧର୍ମା,ଉତ୍ତମ ଧର୍ମ-ଯୁକ୍ତ, ବିଶିଷ୍ଟ ଧର୍ମଶୀଳ, ବିଧାରକ, (ବି) ବିଧାରଣ,(ବି+ଧର୍ମନ୍)ବ.ବ୍ରୀ; ଭିନ୍ନଧର୍ମାବଲମ୍ବୀ ।

ବିଧର୍ମିକ—ବିଂ.ଅଧାର୍ମିକ,ଭିନ୍ନଧର୍ମାବଲମ୍ବୀ

ବିଧର୍ମୀ—ପୁଂ. ବିଂ. ସ୍ୱଧର୍ମଚ୍ୟୁତ, ପର-ଧର୍ମାବଲମ୍ବୀ (ବ୍ୟକ୍ତି),ଯେ ଆପଣା ଧର୍ମ ଛାଡ଼ି ଧର୍ମାନ୍ତର ଗ୍ରହଣ କରେ ।

ବିଧବତା—ସ୍ତ୍ରୀ.ବି.ବୈଧବ୍ୟ,ପତିରାହିତ୍ୟ

ବିଧବନ—କ୍ଲୀ. ବି.(ବି+ଧୂ+ଭା.ଅନ) କମ୍ପନ, ଥର, ( ଧୂ.ଣିଚ୍+ଭା.ଅନ ) କମ୍ପାଇବା ।

ବିଧବଯୋଗ—ବି. (ବିଧବ+ଯୋଗ) ବୈଧବ୍ୟ ଯୋଗ,ସ୍ତ୍ରୀର ବିଧବାହେବାର ଦୈବ ନିର୍ଦ୍ଦିଷ୍ଟ ଘଟଣା ।

ବିଧବଯୋଷିତ୍—ସ୍ତ୍ରୀ. ବି. ବିଧବା ସ୍ତ୍ରୀ, ପତିହୀନା ସ୍ତ୍ରୀ ।

ବିଧବା—ସ୍ତ୍ରୀ.ବି. (ବି+ଧବ+ଅ+ଆ) ବ.ବ୍ରୀ; ମୃତଭର୍ତ୍ତୃକା ସ୍ତ୍ରୀ, ରାଣ୍ଡ଼ି, (ବିଂ) ବିବସ୍ତ୍ରା, ମୃତଭର୍ତ୍ତୃକା (ସ୍ତ୍ରୀ) ।

ବିଧବାଗାମୀ—ପୁଂ. ବିଂ. ( ବିଧବା+ ଗମ୍+କ.ଇନ୍) ବିଧବା ସଙ୍ଗମକାରୀ (ପୁରୁଷ) ।

ବିଧବାବିବାହ—ବି.(୬ତତ୍) ମୃତଭର୍ତ୍ତୃକା ନାରୀର ପୁନର୍ବିବାହ, ଦ୍ୱିତୀୟ ହେବା ।

ବିଧବାବେଦନ—କ୍ଲୀ.ବି.(୬ତତ୍) ବିଧବା ବିବାହ ଦେଖ ।

ବିଧସ—ବି. (ବି+ଧା+ଅସ୍) ମଧୂଚ୍ଛିଷ୍ଟ, ମହଣ । [ ଆମ୍ରଭୂ ।

ବିଧାଃ—ପୁଂ. ବି. (ବି+ଧା+ଅସ୍)ବ୍ରହ୍ମା,

ବିଧା—ସ୍ତ୍ରୀ. ବି. (ବି+ଧା+କ.ଅ+ଆ) ଜଳ, ଆପ, ବିଧ ଦେଖ, ଭତ୍ତା, ମୂଲ, କର୍ମ, କାର୍ଯ୍ୟ, ( ଗ୍ରା.ବି ) ମୁଷ୍ଟିପ୍ରହାର, ହାତକୁ ମୁଠାକରି କନିଷ୍ଠାଙ୍ଗୁଳି ପାର୍ଶ୍ୱ-ଦ୍ୱାରା କରାଯିବା ଆଘାତ ।

ବିଧାତଃ—ଅବ୍ୟ. ହେ ବିଧାତା !

ବିଧାତବ୍ୟ—ବିଂ. (ବି+ଧା+ର୍ମ.ତବ୍ୟ) ବିଧେୟ, ବ୍ୟବସ୍ଥେୟ, ବିଧାନଯୋଗ୍ୟ, କର୍ତ୍ତବ୍ୟ ।

ବିଧାତା—ପୁଂ. ବି. ( ବି+ଧା+ତୃ ) ବ୍ରହ୍ମା, ପ୍ରଜାପତି, ବିଷ୍ଣୁ, କନ୍ଦର୍ପ, ଭଗ-ବାନ୍, ବିଧି, ଭାଗ୍ୟ, କର୍ମ, କପାଳ, ନିର୍ମାଣକାରୀ ବ୍ୟକ୍ତି, ବିଶ୍ୱକର୍ମା, ସୁରା, ଭୃଗୁମୁନିଙ୍କ ପୁତ୍ରବିଶେଷ,(ବିଂ)ନିର୍ମାତା, ସୃଷ୍ଟିକର୍ତ୍ତା, ଦାତା, ମେଧାବୀ, ବିହିତ-କର୍ମାନୁଷ୍ଠାତା, (ସ୍ତ୍ରୀ) ବିଧାତ୍ରୀ ।

ବିଧାତାଦ୍ରି—ଗ୍ରା. ବି. ଗନ୍ଧମାଦନ ପର୍ବତ ।

ବିଧାତାପୁରୁଷ—ଗ୍ରା. ବି. ପୃଥିବୀର ଏକ-ମାତ୍ର ନିୟାମକ ଭଗବାନ୍ ।

ବିଧାତାଲିଖନ—ଗ୍ରା.ବି.ଜୀବନରେ ଘଟିବା ଶୁଭାଶୁଭ ଘଟନାବଳୀ (ଯାହା ବିଧାତା କପାଳରେ ଲେଖି ଥାଆନ୍ତି ବୋଲି ବିଶ୍ୱାସ) ।

ବିଧାତାଭୂ—ପୁଂ. ବି. (ବ.ବ୍ରୀ) ନାରଦ-ମୁନି, ମରିଚ୍ୟାଦି ଋଷିମାନେ, ବିଧା-ତାଙ୍କଠାରୁ ଉତ୍ପତ୍ତି ଯାହାଙ୍କର ।

ବିଧାତାୟୁ—ପୁଂ. ବି. ସୂର୍ଯ୍ୟ, ବ୍ରହ୍ମାଙ୍କର ଆୟୁଃ ।

ବିଧାତ୍ରୀ—ସ୍ତ୍ରୀ.ବି. (ବି+ଧା+ତୃ+ଈ) ପିପ୍ପଳୀ, ବିଧାନକର୍ତ୍ତ୍ରୀ ।

ବିଧାନ—କ୍ଲୀ.ବି. (ବି+ଧା+ଆନ)ବିଧି, ନିୟମ, ବ୍ୟବସ୍ଥା, କରଣ, ଗଜଗ୍ରାସ, ବେଦାଦିଶାସ୍ତ୍ର, ଜନନ, ନାଟକାଙ୍ଗ ବିଶେଷ, ଉତ୍ପତ୍ତି,ପ୍ରେରଣ, ଆଜ୍ଞାକରଣ, ଧନ, ପୂଜା, ଶତ୍ରୁତାଚରଣ, ଗ୍ରହଣ, ଉପାର୍ଜନ, ବିଷମ, ଅନୁଭବ, ଉପାୟ, ବିନ୍ୟାସ, ନିର୍ମାଣ,ସର୍ଜନ, ଶାସ୍ତ୍ରବିହିତ କର୍ମକରଣ,ଶାସ୍ତ୍ରବିହିତ ଅନୁଷ୍ଠାନ,ପ୍ରାପ୍ତି, (ଗ୍ରା.ଅବ୍ୟ) ପରି, ଅନୁରୂପ ।

ବିଧାନଜ୍ଞ—ବିଂ. (ବିଧାନ+ଜ୍ଞା+କ.ଅ) ବିଧାୟକ, ସଂଘଟନକାରୀ, ବ୍ୟବସ୍ଥାଜ୍ଞ, ବି (ବିଧାନ+କ) ଦୁଃଖ,କ୍ଲେଶ,ବ୍ୟଥା, ବିଧି । [ ପଣ୍ଡିତ ।

ବିଧାନଗ—ପୁଂ.ବି. (ବିଧାନ+ଗୈ+ଅ)

ବିଧାନଶାସ୍ତ୍ର—କ୍ଲୀ. ବି. ବ୍ୟବସ୍ଥାଶାସ୍ତ୍ର,

ବ୍ୟବହାରଶାସ୍ତ୍ର, ନୀତିଶାସ୍ତ୍ର, ଆଇନ୍ ।

ବିଧାନସଂହିତା—ସ୍ତ୍ରୀ. ବି. ବିଧାନଶାସ୍ତ୍ର ।

ବିଧାନସପ୍ତମୀବ୍ରତ—କ୍ଲୀ. ବି. ମାଘ ଶୁକ୍ଳ ସପ୍ତମୀରୁ ଆରମ୍ଭକରି ଏକବର୍ଷ ପୌଷ ଶୁକ୍ଳ ସପ୍ତମୀ ପର୍ଯ୍ୟନ୍ତ କର୍ତ୍ତବ୍ୟ ବ୍ରତ (ଏଥିରେ ସୂର୍ଯ୍ୟଦେବଙ୍କୁ ପୂଜା ଓ ଉପାସନା କରାଯାଏ) ।

ବିଧାନକ—ଗ୍ରା. ବି°. ଯେ ବିଧାନ କରେ, ବିଧାୟକ ।

ବିଧାୟକ—ପୁଂ, ବି°. ( ବି+ଧା+କ. ଅକ ) ବିଧାନକର୍ତ୍ତା, ବ୍ୟବସ୍ଥାପକ, ନିର୍ମାତା, ଉତ୍ପାଦକ, ଅର୍ପଣକାରୀ, ବିଧିବିଜ୍ଞାପକ, ଜନକ, କାରକ, (ସ୍ତ୍ରୀ) ବିଧାୟିକା ।

ବିଧାୟୀ—ପୁଂ. ବି°. (ବି+ଧା+ଇନ୍) ବିଧାୟକ ଦେଖ, (ସ୍ତ୍ରୀ) ବିଧାୟିନୀ ।

ବିଧାରୟିତବ୍ୟ—ବି°. ବିଶେଷ ରୂପେ ଧାରଣ କରିବାର ଯୋଗ୍ୟ ।

ବିଧାରି—ଗ୍ରା. ବି. ଅନିୟମ, ଅସଦାଚରଣ, (ବି°) ଅନିୟମିତ, ବେଆଡ଼ା, ଦୁର୍ନୀତିକ ।

ବିଧାରୀ—ପୁଂ. ବି°. (ବିଧାର+ଇନ୍) ବିଧାରଣଶୀଳ, ବିଶେଷରୂପେ ଧାରଣକାରୀ ।

ବିଧି—ପୁଂ. ବି. (ବି+ଧା+କ.ଇ) ବିଧାତା, ବ୍ରହ୍ମା, ପ୍ରଜାପତି, ଦୈବ, ଭାଗ୍ୟ, କାଳ, ବିଷ୍ଣୁ, ବୈଦ୍ୟ, ଗଜଗ୍ରାସ, (ଭା.ଇ) ପଦ୍ଧତି, ନିୟମ, ପ୍ରଥା, ପ୍ରକାର, ନିୟୋଗ, ବିଧାନ, ଆଇନ, ବିଧିବାକ୍ୟ, ଅପ୍ରାପ୍ତ ବିଷୟର ପ୍ରାପକ ବାକ୍ୟବିଶେଷ, କଳ୍ପନା, ଅନୁଷ୍ଠାନ, ଆଗ୍ରହ, ବାକ୍ୟ, ମହିମା, ଅର୍ଥାଳଙ୍କାରବିଶେଷ, (ଣ.ଇ) ଶାସ୍ତ୍ରବିଧାନ, ଆଚରଣ, ଉପାୟ, ଯଜ୍ଞ, ଲକ୍ଷଣ, ସୂତ୍ର, ସ୍ୱତଃସିଦ୍ଧ ବଚନ, (ମି. ଇ) ଅବସ୍ଥା, ବ୍ୟାପାର, ସମୟ, (ଗ୍ରା.ବି) ଶପଥ, ନିୟମ ଅନୁସାରେ କରାଯିବା ବ୍ରତଆଦି, ରାଜା ଓ ଦେବତାଙ୍କର ବିଭିନ୍ନ ଦୈନିକ ନୀତି ବା କ୍ରିୟାକଳାପ

ବିଧିକର—ବି°. (ବିଧି+କୃ+ଅ) ବିଧିକାରକ, ବିଧାନକର୍ତ୍ତା ।

ବିଧିକର୍ମ—ଗ୍ରା. ବି. ବିଧିମତ କାର୍ଯ୍ୟ, ଆଇନ ସଙ୍ଗତ କାର୍ଯ୍ୟ ।

ବିଧିକୃତ୍—ବି°. ( ବିଧି+କୃ+କ୍ୱିପ୍ ) ବିଧାନକର୍ତ୍ତା, ବିଧିକାରକ ।

ବିଧିଜ୍ଞ—ପୁଂ. ବି°. (ବିଧି+ଜ୍ଞା+କ.ଅ) ବିଧିଦର୍ଶୀ, ବିଧାନ ଶାସ୍ତ୍ରଜ୍ଞ, ବ୍ୟବହାର ଶାସ୍ତ୍ରଜ୍ଞ, ଯେ ବିଧାନମାନ ଜାଣେ, ସଦସ୍ୟ, (ସ୍ତ୍ରୀ) ବିଧିଜ୍ଞା ।

ବିଧିତ୍ସା—ସ୍ତ୍ରୀ. ବି (ବି+ଧା+ସନ୍+ଭା. ଅ+ଆ) ବିଧାନ କରିବାର ଇଚ୍ଛା, କରଣେଚ୍ଛା, ଚିକୀର୍ଷା ।

ବିଧିତ୍ସିତ—ବି°. (ବି+ଧା+ସନ୍+ମି. ତ) ଯାହା କରିବାକୁ କେହି ଇଚ୍ଛା କରଥାଏ, (ବି) ଉଦ୍ଦେଶ୍ୟ ।

ବିଧିତ୍ସୁ—ପୁଂ. ବି°. (ବି+ଧା+ସନ୍+ମି.ଉ) ବିଧାନ କରିବାକୁ ଇଚ୍ଛୁକ ।

ବିଧିଦର୍ଶୀ—ପୁଂ. ବି°. (ବିଧି+ଦର୍ଶିନ୍) ସଦସ୍ୟ, ଶାସ୍ତ୍ରଜ୍ଞ, ଆଇନଜ୍ଞ, ବିଧିଜ୍ଞ ।

ବିଧିଦୃଷ୍ଟ—ବି°. (୩ତତ୍) ଶାସ୍ତ୍ରବିହିତ, ଶାସ୍ତ୍ରରେ ଯେଉଁ ମନ୍ତ୍ର ଓ ଦ୍ରବ୍ୟାଦିର ବିଧାନ ଅଛି ।

ବିଧିଦେଶକ—ପୁଂ. ବି. ( ବିଧି+ଦିଶ୍ କ.ଅକ) ବିଧିଦର୍ଶୀ, ସଦସ୍ୟ, ଶାସ୍ତ୍ରଜ୍ଞ, ଉପଦେଶକ ।

ବିଧିଦ୍ୱୈଧ—ବି. (ଷତତ୍) ନିୟମ ବା ବିଧାନମାନଙ୍କ ମଧ୍ୟରେ ବିଭିନ୍ନତା ।

ବିଧିଦ୍ରଷ୍ଟା—ପୁଂ. ବି°. (ଷତତ୍) ଯେଉଁ ବ୍ୟକ୍ତି ନିୟମ ଦେଖାଏ, (ବି) ପୁରୋହିତ, ଗୁରୁ, (ସ୍ତ୍ରୀ) ବିଧିଦ୍ରଷ୍ଟ୍ରୀ ।

ବିଧିନିର୍ଦ୍ଦିଷ୍ଟ—ବି°. (୩ତତ୍) ବିଧିବିହିତ ଦେଖ ।

ବିଧିନିର୍ଦ୍ଦେଶକ—ପୁଂ. ବି°. ବ୍ୟବସ୍ଥାପକ, ବିଧାନୋପଦେଶକ, (ସ୍ତ୍ରୀ) ବିଧିନିର୍ଦ୍ଦେଶିକା ।

ବିଧିନିଷେଧ—ବି. କୌଣସି କାର୍ଯ୍ୟ କରିବା ପାଇଁ ନିୟମ ଓ ନ କରିବା ପାଇଁ ନିୟମ ।

ବିଧିପୁତ୍ର—ପୁଂ. ବି. (ଷତତ୍) ବ୍ରହ୍ମାଙ୍କପୁତ୍ର, [ ନାରଦ ପ୍ରଭୃତି ।

ବିଧିପୂର୍ବ—କ୍ରି. ବି°. (ବିଧି+ପୂର୍ବ) ବିଧାନାନୁସାରେ, ଯଥାବିଧିରେ, ନିୟମପୂର୍ବକ ।

ବିଧିପୂର୍ବକ—ବି°. ନିୟମାନୁଯାୟୀ, (କ୍ରି. ବି°) ନିୟମାନୁସାରେ ।

ବିଧିପ୍ରବର୍ତ୍ତକ—ପୁଂ. ବି° (ବିଧି+ପ୍ରବର୍ତ୍ତକ) ଯେ କୌଣସି ବିଧିକୁ ପ୍ରଥମେ ଚଳାଏ

ବିଧିପ୍ରୟୋଗ—ବି. (ଷତତ୍) ନିୟମକୁ କାର୍ଯ୍ୟରେ ଖଟାଇବା ।

ବିଧିମତ(ତେ)—ଗ୍ରା. କ୍ରି. ବି°. ଧାରାମତେ, ନିୟମିତ ରୂପେ, ଆଇନାନୁସାରେ ।

ବିଧିଯଜ୍ଞ—ବି. ବିଧିବୋଧିତ ଯଜ୍ଞ, ଦର୍ଶ-ପୌର୍ଣ୍ଣମାସାଦି ଯଜ୍ଞ ।

ବିଧିଯୋଗ—ବି. ବିଧାନାନୁରୂପ ପ୍ରୟୋଗ, ବିଧିଅନୁସାରେ ଅନୁଷ୍ଠାନ ।

ବିଧିରେ—ଗ୍ରା. ଅବ୍ୟ. ଫଳତଃ, କାର୍ଯ୍ୟତଃ

ବିଧିବତ୍—ଅବ୍ୟ. (ବିଧି+ବତ୍) ଯଥାବିଧି, ଯଥାଶାସ୍ତ୍ର, ବିଧିଅନୁସାରେ ।

ବିଧିବଦ୍ଧ—ବି°. (୩ତତ୍) ବ୍ୟବସ୍ଥାପିତ, ନିୟମବଦ୍ଧ, ଶାସ୍ତ୍ର ଦ୍ୱାରା ନିୟମିତ ।

ବିଧିବଧୂ—ସ୍ତ୍ରୀ. ବି. (ଷତତ୍) ବ୍ରହ୍ମାଙ୍କଭାର୍ଯ୍ୟା, ସରସ୍ୱତୀ ।

ବିଧିବନ୍ଧନ—ବି. (ଷତତ୍) ବିଧାନମାନଙ୍କର ରଚନା, (୩ତତ୍) ନିୟମ ଦ୍ୱାରା ନିୟନ୍ତ୍ରଣ ।

ବିଧିବାମହେବା—ଗ୍ରା. ବି. ( କୌଣସି ବ୍ୟକ୍ତିର) ଭାଗ୍ୟ ମନ୍ଦହେବା, ଦୁର୍ଭାଗ୍ୟ ଘଟିବା ।

ବିଧିବିଡ଼ମ୍ବନା—ବି. (ଷତତ୍) ଅଦୃଷ୍ଟର ବଞ୍ଚନା ବା ପ୍ରତାରଣା, ବିଧାତାର ଛଳନା, ଦୁର୍ଭାଗ୍ୟ ।

ବିଧିବିଡ଼ମ୍ବିତ—ବି°. (୩ତତ୍) ଅଦୃଷ୍ଟ ଦ୍ୱାରା ପ୍ରତାରିତ, ଦୁର୍ଦ୍ଦଶାଗ୍ରସ୍ତ ।

ବିଧିବିଦ୍—ବି°. (ବିଧି+ବିଦ୍+କ.କ୍ୱିପ୍) ବିଧିଜ୍ଞ ଦେଖ ।

ବିଧିବିଧାନ—ବି. (ଷତତ୍) ବିଧିର ଲିଖନ, ଈଶ୍ୱରାଦେଶ, ନିୟତି, ଭାଗ୍ୟ, ବିଧିନିୟମ, ବିଧିବନ୍ଧନ ଦେଖ ।

ବିଧିବିରୁଦ୍ଧ—ବି°. ନିୟମର ବିରୁଦ୍ଧ ବା ପ୍ରତିକୂଳ ।

**ବିଧିବିହିତ**—ବିଂ. (୭ତତ୍) ଯଥାଶାସ୍ତ୍ର, ଯଥାନିୟମ, ନିୟମାନୁସାରୀ, ଅଦୃଷ୍ଟଲକ୍ଷିତ ।
**ବିଧିବୋଧିତ**—ବିଂ(୭ତତ୍)ବିଧାନୋକ୍ତ, ଶାସ୍ତ୍ରସଙ୍ଗତ,ଆଇନସଙ୍ଗତ,ବିଧାନାନୁଯାୟୀ ।
**ବିଧିଶାସ୍ତ୍ର**—କ୍ଲୀ. ବି. (୬ତତ୍) ବ୍ୟବହାର ଶାସ୍ତ୍ର, ସ୍ମୃତିଶାସ୍ତ୍ର, ଧର୍ମଶାସ୍ତ୍ର, ଆଇନ ।
**ବିଧିସଙ୍କଳନ**—ବି. (୬ତତ୍) ଅନେକ ନିୟମର ସଂଗ୍ରହକରଣ । [ ନିଷେଧ ।
**ବିଧିସେଧ**—ବି. (ବିଧି+ସେଧ) ବିଧି ଓ
**ବିଧିହୀନ**—ବିଂ. (୫ତତ୍) ଶୃଙ୍ଖଳାବିହୀନ, ଅନିୟନ୍ତ୍ରିତ, ଅନିୟମିତ, ଅଶାସ୍ତ୍ରୀୟ ।
**ବିଧୀର**—ଗ୍ରା. ବି. ମୂର୍ଖଲୋକ, ନିର୍ବୋଧ ବ୍ୟକ୍ତି ।
**ବିଧୀରେ**—ଗ୍ରା. କ୍ରି. ବିଂ. ମୂର୍ଖତାବଶତଃ
**ବିଧୁ**—ପୁଂ.ବି.(ବି+ଧେ+କ.ଉ) ବାୟୁ, ଚନ୍ଦ୍ର, ବିଷ୍ଣୁ, କର୍ପୂର, ଜଳ, ବ୍ରହ୍ମା, (ଣ.ଉ) ଯୁଦ୍ଧ, ଆୟୁଧ, ଜଳସ୍ନାନ, (ବ୍ୟଧ+କ.ଉ) ରାହୁ, କେତୁ, ରାକ୍ଷସ, ବାଣ, (ବିଂ) କର୍ତ୍ତା ।
**ବିଧୁକାନ୍ତ**—ବି. ସଙ୍ଗୀତର ତାଳବିଶେଷ
**ବିଧୁକ୍ଷୟ**—ବି. (୬ତତ୍) କୃଷ୍ଣ ପକ୍ଷରେ ଚନ୍ଦ୍ରଙ୍କର ହ୍ରାସ, ଦିନରେ ବା ଗ୍ରହଣ ସମୟରେ ବା ଅମାବାସ୍ୟାରେ ଚନ୍ଦ୍ରଙ୍କର ଅଦର୍ଶନ ବା ଲୋପ ।
**ବିଧୁଚୂଡ଼**—ବି. (ବ.ବ୍ରୀ) ଚନ୍ଦ୍ରଶେଖର, ମହାଦେବ, ଶିବ ।
**ବିଧୁ(ଧୂ)ତ**—ବିଂ. (ବିଧୂ+ମଂ.ତ)ତ୍ୟକ୍ତ, କମ୍ପିତ, ଦୂରୀକୃତ,କ୍ଷାଳିତ, ନିଷ୍କାଶିତ, ଅସ୍ଥିର ।
**ବିଧୁ(ଧୂ)ତକଲ୍ମଷ**—ପୁଂ. ବିଂ. (ବ.ବ୍ରୀ) ପାପରୁ ମୁକ୍ତ ହୋଇଥିବା, (ସ୍ତ୍ରୀ)କଲ୍ମଷା
**ବିଧୁ(ଧୂ)ତି**—ସ୍ତ୍ରୀ. ବି. (ବି+ଧୂ+ତି) କମ୍ପନ, ନିରାକୃତ, ନିରାକରଣ, ଦୂରୀକରଣ । [ ସୋମବାର ।
**ବିଧୁ(ଧୂ)ଦିନ**—କ୍ଲୀ. ବି. ଚନ୍ଦ୍ରଙ୍କ ଦିନ,
**ବିଧୁ(ଧୂ)ନକ**—ବି. ( ବି+ଧୂ+ଣ.ଅ. ଣପାତ ପ୍ରସିଦ୍ଧ)କମ୍ପନ, ବିସର୍ଜନ,ପରିତ୍ୟାଗ, ନିଷ୍କାସନ, କମ୍ପନ ଦ୍ୱାରା ଫିଙ୍ଗିଦେବା ।
**ବିଧୁ(ଧୂ)ନନ**—କ୍ଲୀ. ବି. (ବି+ଧୂ+ଭ. ଅନ) କମ୍ପନ, ତ୍ୟାଗ ।
**ବିଧୂନିତ**—ବିଂ. (ବି+ଧୂ+ମଂ.ତ)ତ୍ୟକ୍ତ, କମ୍ପିତ, ବିହ୍ୱଳ, ଗ୍ଲାନ, ଅଭିଭୂତ,ଦୂରୀକୃତ, ଅପସାରିତ, ନିଃସାରିତ, ନିଷ୍କାଷିତ, ଝଡ଼ା ହୋଇ ଫିଙ୍ଗା ଯାଇଥିବା ।
**ବିଧୁନ୍ତୁଦ**—ପୁଂ. ବି.(ବିଧୁ+ତୁଦ୍+କ.ଅ) ରାହୁ ।
**ବିଧୁପଞ୍ଜର**—ପୁଂ. ବି. ଖଡ୍ଗ, ଖଣ୍ଡା ।
**ବିଧୁପ୍ରିୟା**—ସ୍ତ୍ରୀ.ବି. ଚନ୍ଦ୍ରପତ୍ନୀ, ଚନ୍ଦ୍ରଙ୍କସ୍ତ୍ରୀ
**ବିଧୁର**—କ୍ଲୀ. ବି. ( ବି+ଧୁର୍+ଅ ) ବୈକଲ୍ୟ, ପ୍ରତ୍ୟବାୟ, କଷ୍ଟ,ବିୟୋଗ, ବିଚ୍ଛେଦ, ପୀଡ଼ା, (ପୁଂ.ବି)ଶତ୍ରୁ, ମୃତଦାର ବ୍ୟକ୍ତି, ତ୍ରାସ, ଉତ୍ପୀଡ଼କ ବ୍ୟକ୍ତି ଉତ୍କଣ୍ଠା, କୈବଲ୍ୟ, (ବିଂ) କାତର, ଦୁଃଖିତ, ଗ୍ଲାନ, ତ୍ରସ୍ତ, ପୀଡ଼ାଦାୟକ, ଶତ୍ରୁତାପନ୍ନ, ପ୍ରତିକୂଳ, ମୁକ୍ତ,ପୀଡ଼ିତ, ବିକଳ, ଅସମର୍ଥ, ବିଯୁକ୍ତ, ବିମୂଢ଼, (ଗ୍ରା. ବିଂ) ତ୍ୟକ୍ତ, ବିଦୂରିତ, ଦୂରକୁ ନୀତ ।
**ବିଧୁରତା(ତ୍ୱ)**—ବି. (ବିଧୁର+ଭା.ତା.ତ୍ୱ) କ୍ଲେଶ, ବୈକଲ୍ୟାଦି ।
**ବିଧୁରା**—ସ୍ତ୍ରୀ.ବି. (ବିଧୁର+ଆ)ରସାଳା, ମିଠା ଓ ମସଲାମିଶ୍ରିତ ଦଧି, (ବିଂ) କାତରା, ବିଧୁରର ସ୍ତ୍ରୀଲିଙ୍ଗ ।
**ବିଧୁରିତା**—ସ୍ତ୍ରୀ. ବିଂ. ବିରହବିହ୍ୱଳା, ବିରହକାତରା (ସ୍ତ୍ରୀ) ।
**ବିଧୁରୀକୃତ**—ବିଂ. ନିଷ୍ପିଷ୍ଟ ।
**ବିଧୁବଦନ**—ପୁଂ.ବିଂ. (ବ.ବ୍ରୀ) ଯାହାର ମୁଖ ଚନ୍ଦ୍ର ପରି କାନ୍ତିଯୁକ୍ତ ବା ସୁନ୍ଦର, ଚନ୍ଦ୍ରାନନ । [ସ୍ତ୍ରୀଲିଙ୍ଗ,ବିଧୁମୁଖୀ ।
**ବିଧୁବଦନୀ**—ସ୍ତ୍ରୀ. ବିଂ. ବିଧୁବଦନର
**ବିଧୂପଳ**—ଗ୍ରାବି. ଚନ୍ଦ୍ରକାନ୍ତମଣି ।
**ବିଧୂନନରଥ**—ଗ୍ରା.ବି. ବିପରୀତ ରଥ ।
**ବିଧୂପ**—ବିଂ. (ବି+ଧୂପ)ଧୂପରହିତ ।
**ବିଧୂମ**—ବିଂ. (ବି+ଧୂମ) ଧୂମରହିତ, ଧୂମଶୂନ୍ୟ ।
**ବିଧୂମିତ**—ଗ୍ରା.ବିଂ. ଧୂମଯୁକ୍ତ, ଧୂମବର୍ଣ୍ଣ ।
**ବିଧୂମ୍ର**—ବିଂ. (ବି+ଧୂମ୍ର)ଧୂସରବର୍ଣ୍ଣ ।
**ବିଧୂୟମାନ**—ବିଂ. (ବି+ଧୂ+କ.ଆନ) କମ୍ପମାନ । [ କମ୍ପନ ।
**ବିଧୂବନ**—ବି. ( ବି+ଧୂ+ଭା.ଅନ )
**ବିଧୃତ**—ବିଂ. (ବି+ଧୃ+ମଂ.ତ)ଧୃତ, ଅବଲମ୍ବିତ, ଗୃହୀତ,ଆକ୍ରାନ୍ତ,ଅଧିକୃତ, ପୃଥକ୍‌କୃତ,ନିୟନ୍ତ୍ରିତ, ବ୍ୟାହତ,ବାହିତ, ଯାହାକୁ ଟେକି ରଖାଯାଇଥାଏ,ରକ୍ଷିତ, ବି. (ଭା.ତ) ଆଦେଶର ଅବମାନନ, ଅସନ୍ତୋଷ ।
**ବିଧୃତି**—ସ୍ତ୍ରୀ.ବି. (ବି+ଧୃ+ତି)ବିଧାରଣ, ଦେବତା, ସୂର୍ଯ୍ୟବଂଶୀୟ ରାଜାବିଶେଷ, ଜ୍ୟୋତିଃଶାସ୍ତ୍ରୋକ୍ତ ୨୭ଗୋଷ୍ଠି ଯୋଗ ମଧ୍ୟରୁ ଏକତମ,ଅଶୁଭ ଯୋଗ, ବ୍ୟବସ୍ଥା, ( ଗ୍ରା.ବି ) ବିବାଦ, କଳି, ମନୋମାଳିନ୍ୟ । [ ନିୟମାଦି ।
**ବିଧୃଷ୍ଟି**—ସ୍ତ୍ରୀ.ବି. ପ୍ରଣାଳୀ, ବ୍ୟବସ୍ଥିତ
**ବିଧେ**—ବି. ( ବିଧିଶବ୍ଦର ସମ୍ବୋଧନ ) ହେ ବିଧାତଃ !,( ଗ୍ରା.ବି) ଏକବିଧାମାନ ।
**ବିଧେୟ**—ବିଂ. ( ବି+ଧା+ମଂ.ଯ ) ବିଧାନଯୋଗ୍ୟ, ବାକ୍ୟସ୍ଥ, ବଚନସ୍ଥ, ବିନୟୀ, ବିନୟଗ୍ରାହୀ, ଆଶ୍ରବ, ବିଧିହେତୁବୋଧକବିଷୟ,କର୍ତ୍ତବ୍ୟ, ଅଧୀନ, ବିଧିସମ୍ମତ, (ବ୍ୟାକରଣ)କ୍ରିୟାବାଚକ, ବାଧ୍ୟ, ଉଚିତ, ବିଧିସିଦ୍ଧ, ସୁବିଧାଜନକ, (ବି-ବାକ୍ୟାଲଙ୍କାର) ଅପରିଜ୍ଞାତ ବିଷୟ ବା ବସ୍ତୁ, (ବ୍ୟାକରଣ) କୌଣସି ବାକ୍ୟର କ୍ରିୟାଂଶ ।
**ବିଧେୟପଦ**—ବି. (ବ୍ୟାକରଣ)କୌଣସି ବାକ୍ୟଦ୍ୱାରା ବୁଝାଯାଉଥିବା କାର୍ଯ୍ୟ ଯେଉଁ ପଦଦ୍ୱାରା ପ୍ରକାଶିତ ହୁଏ, ସମ୍ପାଦ୍ୟ ପଦ ।
**ବିଧେୟବିଶେଷ୍ୟ**—ବି. ( ବ୍ୟାକରଣ ) ଯେଉଁ ବିଶେଷ୍ୟବାଚକ ପଦ ଉଦ୍ଦେଶ୍ୟ ପଦର ଗୁଣ ବା ଅବସ୍ଥା ପ୍ରକାଶ କରେ
**ବିଧେୟମାର୍ଗ**—ବି.ଉଚିତ ମାର୍ଗ,କର୍ତ୍ତବ୍ୟପଥ, ବିଧିସିଦ୍ଧ ପଥ ।
**ବିଧେୟାତ୍ମା**—ପୁଂ.ବି. ବିଷ୍ଣୁ ।
**ବିଧେୟାବିମର୍ଷ**—ବି. କାବ୍ୟର ଦୋଷ-

ବିଶେଷ ।
ବିଧ୍ୟ—ବିଂ. ( ବିଧ୍ + ର୍ମ.ଯ ) ବେଧନଯୋଗ୍ୟ, ଛିଦ୍ୟ, ଯାହାକୁ ଭେଦ କରିବା ଉଚିତ ।
ବିଧ୍ୟପାଶ୍ରୟ—ପୁଂ.ବିଂ. ପରିଷ୍କାରରୂପେ ଯେ ଲିଖିତ ବିଧିର ଅନୁସରଣ କରିଅଛି, ବିଧିର ଆଶ୍ରୟକାରୀ ।
ବିଧ୍ୟମାନ—ବି. (ବ.ଗ୍ରା) ବିଧିପୂର୍ବକ, ବିଧିସଙ୍ଗତ ।
ବିଧାଭାସ—ପୁଂ.ବି. ଅର୍ଥାଲଙ୍କାରବିଶେଷ
ବିଧ୍ୱଂସ—ପୁଂ.ବି. (ବି+ଧ୍ୱନ୍ସ+ଭା.ଅ) ବିନାଶ, ଅପକାର, କ୍ଷୟ, ବିଲୋପ, ଅନାଦର, ବୈମନସ୍ୟ ।
ବିଧ୍ୱଂସକ—ବିଂ. ଅପକାରକ, ଅପମାନକାରୀ, ଧ୍ୱଂସକାରୀ ।
ବିଧ୍ୱଂସନ—ବି. (ବି+ଧ୍ୱନ୍ସ୍+ଭା.ଅନ) ବିନାଶକରଣ, ଧ୍ୱଂସ, ନାଶ, (ବିଂ-କ.ଅନ) ଧ୍ୱଂସକାରୀ, ନାଶକାରୀ ।
ବିଧ୍ୱଂସିତ—ବିଂ. (ବି+ଧ୍ୱନ୍ସ୍+ର୍ମ.ତ) ବିନାଶିତ, ଅପକାରିତ ।
ବିଧ୍ୱଂସିବା—ଗ୍ରା.ପଦ୍ୟ.କ୍ରି. ବିନାଶ କରିବା
ବିଧ୍ୱଂସୀ—ପୁଂ. ବିଂ. ( ବିଧ୍ୱଂସ+ଇନ୍ ) ଧ୍ୱଂସକାରୀ, ନାଶକାରୀ, ଅପକାରକ, ପତନୋନ୍ମୁଖ, ଆତତାୟୀ, ଶତ୍ରୁତାପନ୍ନ, ଧ୍ୱଂସଶୀଳ, (ସ୍ତ୍ରୀ)ବିଧ୍ୱଂସିନୀ ।
ବିଧ୍ୱସ୍ତ—ବିଂ. ( ବି+ଧ୍ୱନ୍ସ୍+ର୍ମ.ତ ) ଯାହାକୁ ବିଶେଷରୂପେ ଧ୍ୱଂସ କରାଯାଇଅଛି, ଅପକୃତ, ବିନଷ୍ଟ, ବିଲୁପ୍ତ ।
ବିନ୍—ପ୍ରା. (ସମ୍ବ) ଅବ୍ୟ. ବିନା ।
ବିନ୍ତି—ଯା. ବି. ଏକପ୍ରକାର ତାସଖେଳ
ବିନ୍ପାଣି(ନି)ଆ—ପ୍ରା. (ବାମଣ୍ଡା) ବିଂ. ମିଷ୍ଟାନ୍ନବିଶେଷ ।
ବିନ୍ବାପିଆ—ପ୍ରା.(ସମ୍ବ)ବିଂ.ଅଜ୍ଞାତପିତୃକ. ଅଣବାପୁଆ, ମୃତପିତୃକ । [ ରହିତ ।
ବିନ୍ବେଶୀ—ପ୍ରା. (ବସ୍ତର) ବିଂ. ଶତ୍ରୁ-
ବିନ୍ନମାଗେ(ଙ୍ଗେ)—ପ୍ରା. (ସମ୍ବ) କ୍ରି. ବିଂ. ଅଯାଚିତ ଭାବରେ ।
ବିନତ—ବିଂ.(ବି+ନମ୍+କ.ତ)ପ୍ରଣତ. ଅବନତ, ତଳକୁ ନଇଁଥିବା, ଭଗ୍ନ, ନମିତ, ବକ୍ର, ଶିକ୍ଷିତ, ସଙ୍କୁଚିତ,କୁବ୍ଜ, ନମ୍ର, ବିନୟୀ,ଶିଷ୍ଟ, ବିନୟମଦ୍ଵାରା ସୁସନ୍ଧିତ, ( ପୁଂ.ବି ) ବାନରବିଶେଷ. ମହାଦେବ ।
ବିନତା—ସ୍ତ୍ରୀ. ବି. (ବି+ନମ୍+ତ+ଆ) ଅରୁଣ ଓ ଗରୁଡ଼ମାତା,ଦକ୍ଷପ୍ରଜାପତିଙ୍କ କନ୍ୟା, କଶ୍ୟପମୁନିଙ୍କ ପତ୍ନୀ, ଅଶୋକ ବନରେ ସୀତାଙ୍କୁ ଜଗିବା ରାକ୍ଷସୀବିଶେଷ, ପ୍ରମେହପୀଡ଼କା, ( ସ୍ତ୍ରୀ ବିଂ ) ବିନତର ସ୍ତ୍ରୀଲିଙ୍ଗ ।
ବିନତାତ୍ମଜ—ବିନତାନନ୍ଦନ,ବିନତାସୂନୁ, (ପୁଂ.ବି-୬ତତ୍ପୁ) ଅରୁଣ ଓ ଗରୁଡ଼, ବୈନତେୟ ।
ବିନତାଶ୍ୱ—ପୁଂ. ବି. ସୁଦ୍ୟୁମ୍ନଙ୍କ ପୁତ୍ର ।
ବିନତି—ସ୍ତ୍ରୀ. ବି. ( ବି+ନମ୍+ଭା.ତି ) ବିନୟ, ନମ୍ରତା, ଶିଷ୍ଟତା, ସୁଶୀଳତା, ନିବାରଣ, ଦମନ, ଶାସନ,ଦଣ୍ଡ,ଶିକ୍ଷା, ପରିଶୋଧ, ଅନୁନୟ, ବିନିଯୋଗ, ନଇଁପଡ଼ିବା ।
ବିନଦ—ପୁଂ.ବି. (ବି+ନଦ୍+ଅ)ବିନ୍ୟାକ ବୃକ୍ଷ, ଛତିଆନା ଗଛ ।
ବିନଦୀ—ପୁଂ. ବିଂ. (ବି+ନଦ୍+ଇନ୍) ଶବ୍ଦକାରୀ, ବଜ୍ରଶବ୍ଦ ପରି ଶବ୍ଦବିଶିଷ୍ଟ ।
ବିନମନ—ବି. ( ବି+ନମ୍+ଭା.ଅନ ) ଅତିଶୟ ନମ୍ରତା, ନୁଆଁଇବା ।
ବିନମିତ—ବିଂ. (ବି+ନମ୍+ଣିଚ୍+ର୍ମ.ତ) ଅତିଶୟ ନମିତ,ବହୁତ ତଳକୁ ନଇଁଥିବା ।
ବିନମ୍ର—ବିଂ. (ବି+ନମ୍+କ.ର) ଅତି ନମ୍ର, ବିନୟୀ, ପ୍ରଣତ, ମୃଦୁ, ଅତ୍ୟନ୍ତ ନଇଁ ପଡ଼ିଥିବା ।
ବିନମ୍ରକ—ବି. ତଗରପୁଷ୍ପ ।
ବିନୟ—ପୁଂ. ବି. ( ବି+ନୀ+ଅ ) ବିନତି ଦେଖ, କୋମଳତା ।
ବିନୟକ—ପୁଂ. ବି. ବିନାୟକ ।
ବିନୟକର୍ମ—କ୍ଲୀ. ବି. ବିନୟ ବିଦ୍ୟା, ଶିକ୍ଷା, ଜ୍ଞାନ ।
ବିନୟଗ୍ରାହୀ—ପୁଂ. ବିଂ. (ବିନୟ+ଗ୍ରହ୍+ଇନ୍) ବିଧେୟ, ବିନୀତ, କଥାରେ ବାଧ୍ୟ, ବଚନେସ୍ଥିତ ।
ବିନୟଧର—ପୁଂ. ବି. ପୁରୋହିତ ।
ବିନୟନ—ବି. (ବି+ନୀ+ଭା.ଅନ) ଶିକ୍ଷା, ଅପନୋଦନ, ମୋଚନ, ବିନୟ, ଫେରାଇ ଆଣିବା ।
ବିନୟନମ୍ର—ପୁଂ. ବିଂ. (୫ତତ୍ପୁ) ବିନୟ ଯୋଗୁଁ ନତ, (ସ୍ତ୍ରୀ) ବିନୟନମ୍ରା ।
ବିନୟପତ୍ର—କ୍ଲୀ. ବି. (କ.ଧା) ପ୍ରାର୍ଥନାପତ୍ର । [ ବିଶେଷ ।
ବିନୟପିଟକ—ବି. ଆଦିବୌଦ୍ଧ ଧର୍ମଶାସ୍ତ୍ର
ବିନୟନମ୍ର—ବିଂ. ( ବ.ଗ୍ରା ) ସବିନୟ, (ଗ୍ରା. କ୍ରି. ବିଂ.) ବିନୀତଭାବରେ ।
ବିନୟବଚନ—କ୍ଲୀ. ବି. କୋମଳକଥା, ବିନୟବାକ୍ୟ ।
ବିନୟବାନ୍—ପୁଂ.ବିଂ.(ବିନୟ+ବତ୍) ବିନୟବିଶିଷ୍ଟ, ବିନୀତ, (ସ୍ତ୍ରୀ) ବିନୟବତୀ ।
ବିନୟସୁନ୍ଦର—ପୁଂ. ବି.କିରାତାର୍ଜୁନୀୟପ୍ରଦୀପିକା ରଚୟିତା ।
ବିନୟସୂତ୍ର—କ୍ଲୀ. ବି. ବୌଦ୍ଧମାନଙ୍କର ବିନୟ ଓ ସୂତ୍ରବିଧି ।
ବିନୟସ୍ଥ—ବିଂ. (ବିନୟ+ସ୍ଥା+ଅ) ଆଜ୍ଞାକାରୀ, ବିଧେୟ, ବଚନସ୍ଥିତ, ପ୍ରଣେୟ ।
ବିନୟାକାଙ୍କ୍ଷୀ—ପୁଂ. ବିଂ. (ବିନୟ—ଆକାଙ୍କ୍ଷା+ଇନ୍)ବିନୟ ହେବା ନିମିତ୍ତ ଇଚ୍ଛୁକ, (ସ୍ତ୍ରୀ) କାଙ୍କ୍ଷିଣୀ ।
ବିନୟାଦିତ୍ୟ—ପୁଂ. ବି. କାଶ୍ମୀରରାଜ ଜୟାପୀଡ଼ଙ୍କ ନାମାନ୍ତର ।
ବିନୟାବନତ—ପୁଂ.ବିଂ. (୩ୟା ୫ତତ୍) ବିନୟନମ୍ର, ଅନୁନୟ ଦ୍ୱାରା ପ୍ରଣତ, ସୁଶୀଳତା ହେତୁ ନମ୍ର ।
ବିନୟିତା—ପୁଂ. ବି. ବିଷ୍ଣୁ ।
ବିନୟୀ—ପୁଂ. ବିଂ. ( ବିନୟ+ଇନ୍ ) ବିନୀତ, ଶିଷ୍ଟ, ନମ୍ର,ଶାନ୍ତ, ବିନୟଯୁକ୍ତ ।
ବିନ(ନି)ଙ୍ଏ(ୟ)—ଗ୍ରା. ବି. ଅପବ୍ୟୟ, (ବିଂ) ଅପବ୍ୟୟିତ ।
ବିନଶନ—କ୍ଲୀ.ବି. (ବି+ନଶ୍+ଭା.ଅନ) ବିନାଶ, ଧ୍ୱଂସ, କ୍ଷୟ, (ଅଧି.ଅ)କୁରୁକ୍ଷେତ୍ରସ୍ଥ ତୀର୍ଥବିଶେଷ, ସରସ୍ୱତୀ ନଦୀ

ଯେଉଁଠାରେ ଅନ୍ତର୍ହିତ ହୋଇଅଛି ।
ବିନଶ୍ୱର—ବିଂ. ( ବି + ନଶ୍ + ବର )
ଅନିତ୍ୟ, ଧ୍ୱଂସଶୀଳ, ଅଚିରସ୍ଥାୟୀ,(ସ୍ତ୍ରୀ)
ବିନଶ୍ୱରୀ ।
ବିନଶ୍ୟନ୍ତ—ଗ୍ରା.ବି,ବିନାଶ,(ବିଂ)ବିନଷ୍ଟ ।
ବିନଷ୍ଟ—ବିଂ.(ବି + ନଶ୍+କ.ତ)ନାଶ-
ପ୍ରାପ୍ତ,ଧ୍ୱଂସବିଶିଷ୍ଟ, ପତିତ,ମୃତ,(ସମସ୍ତ)
ଇଷ୍ଟାତ, ଅପବ୍ୟୟିତ, ଯାହାର ଆଚ-
ରଣ ମନ୍ଦ, ଗତ, କ୍ଷୟିତ ।
ବିନଷ୍ଟତେଜାଃ—ବିଂ.(ବିନଷ୍ଟ+ତେଜସ୍)
ବ.ବ୍ରୀ; ତେଜୋହୀନ ।
ବିନଷ୍ଟି—ସ୍ତ୍ରୀ.ବି.(ବି + ନଶ୍+ ତି)ବିନାଶ
ବିନସ—ପୁଂ. ବିଂ.(ବି+ନାସିକା)ବ.ବ୍ରୀ;
ବିଗତନାସିକ, ନାସିକାହୀନ ।
ବିନା—ଅବ୍ୟ. (ବି + ନା)ବ୍ୟତିରେକେ,
ଅଭାବରେ, ବ୍ୟତୀତ, ଭିନ୍ନ.ଛଡ଼ା,(ଗ୍ରା.
ବି) ଗଞ୍ଜପାସାରେ ଏକଠାରୁ ଦଶ
ପର୍ଯ୍ୟନ୍ତ ଟିପଚିହ୍ନଯୁକ୍ତ ଅପ୍ରଧାନ ସାର ।
ବିନାକୃତ—ବିଂ. (ବିନା + କୃତ)ତ୍ୟକ୍ତ,
ରହିତ, ବିଯୋଜିତ, ବିଶ୍ଳିଷ୍ଟ ।
ବିନାକୃତି—ସ୍ତ୍ରୀ. ବି,ତ୍ୟାଗ,ବ୍ୟତିରେକ ।
ବିନାଚଳିତ—ଗ୍ରା. ବିଂ. ଅଚଳ ।
ବିନାଟ—ବି, ଚର୍ମନାଳୀ, ମଦ୍ୟପ ।
ବିନାଡ଼ିକା—ସ୍ତ୍ରୀ. ବି. ଏକପଲ ବା ଲଡା
ସମସ୍ତ, ଦଣ୍ଡର ୬୦ଭାଗରୁ ଏକଭାଗ ।
ବିନାଡ଼ୀ—ସ୍ତ୍ରୀ. ବି, ବିନାଡ଼ିକା ଦେଖ ।
ବିନାଥ—ବିଂ. (ବ.ବ୍ରୀ) ବିଗତନାଥ,ପ୍ରଭୁ-
ରହିତ, ସ୍ୱାମୀରହିତ ।
ବିନାଦୀ—ବିଂ.(ବି + ନଦ୍+ ଇନ୍)ଶବ୍ଦକାରୀ
ବିନାପଇସାରେ—ଗ୍ରା.କ୍ରି.ବିଂ,ମାଗଣାରେ
ବିନାପୂଜା—ଗ୍ରା.ବିଂ. ଅପୂଜିତ,ଯାହାଙ୍କର
ପୂଜା କରାଯାଉନାହିଁ ।
ବିନାଭବ—ପୁଂ. ବି. (ବିନା + ଭୂ + ଅ)
ବିନାଶ, ବିରହ । [ ବିହୀନ ।
ବିନାଭାବ--ପୁଂ.ବି.ପୃଥକ୍‌ସ୍ଥାନ,ବିୟୋଗ
ବିନାଭାବୀ—ବିଂ. ଅବିମୁକ୍ତ, ବ୍ୟତିରେକ-
ଭାବନାକାରୀ ।
ବିନାଭାବ୍ୟ—ବିଂ. (ବିନାଭାବ+ଯ)ବିନା-
ଭାବ ଯୁକ୍ତ, ପୃଥକ୍‌ତ୍ୱ ବିଶିଷ୍ଟ ।

ବିନାମ—ପୁଂ. ବି, (ବି + ନମ୍ + ଘ.ଅ)
ନତ,ନମନ,ବ୍ୟାଧିଦ୍ୱାରା ଶରୀର ନମନ,
ନଇଁବା, (ବ୍ୟାକରଣ) ଦନ୍ତ୍ୟବର୍ଣ୍ଣର
ମୂର୍ଦ୍ଧନ୍ୟ ବର୍ଣ୍ଣକୁ ପରିବର୍ତ୍ତନ, 'ସ'ର
ବିଧାନ ଓ 'ଣ' ର ବିଧାନ ।
ବିନାମା—ଗ୍ରା.ବି. ଉପାନହ,ଚର୍ମପାଦୁକା
(ସଂ-ବିଂ. ବ.ବ୍ରୀ) ନାମହୀନ,ଅଯଥାନାମ-
ବିଶିଷ୍ଟ, କଳ୍ପିତ ନାମଯୁକ୍ତ ।
ବିନାୟକ—ପୁଂ. ବି.(ବି+ନୀ+କ.ଅକ)
ବୁଦ୍ଧ, ଗରୁଡ଼, ଗଣେଶ, ଗୁରୁ, ଶିକ୍ଷକ,
ବିଘ୍ନ, ପୀଠସ୍ଥାନ ବିଶେଷ ।
ବିନାୟକଚତୁର୍ଥୀ—ବି. ମାଘଶୁକ୍ଳଚତୁର୍ଥୀ,
(ଏହି ତିଥିରେ ଅଭୀଷ୍ଟ କରି ଗଣେଶଙ୍କୁ
ପୂଜା କରାଯାଏ ।
ବିନାୟକପୂଜନ—ଗ୍ରା, ବି. ଗରୁଡ଼ଦ୍ୱାରା
ପୂଜିତ ନାରାୟଣ, ବିଷ୍ଣୁ ।
ବିନାୟକବ୍ରତ—ବି. ଗଣେଶଚତୁର୍ଥୀ,ଭାଦ୍ର
ଶୁକ୍ଳଚତୁର୍ଥୀ ।
ବିନାୟକରାଓବାହାଦୂର—ଗ୍ରା.ବି.ଜନୈକ
ମହାରାଷ୍ଟ୍ରୀ ଜ୍ୟୋତିଷୀ ।
ବିନାୟକା—ସ୍ତ୍ରୀ. ବି. (ବିନାୟକ + ଆ)
ଗରୁଡ଼ପତ୍ନୀ । [ ଗରୁଡ଼ପତ୍ନୀ ।
ବିନାୟିକା—ସ୍ତ୍ରୀ. ବି.( ବିନାୟକ+ଆ )
ବିନାୟୀ—ପୁଂ, ବିଂ. (ବି+ନୀ+ଇନ୍)
ବିନୟଶୀଳ, ବିନୟୀ ।
ବିନାରୁହା—ସ୍ତ୍ରୀ. ବି. ( ବିନା + ରୁହ୍ +
ଅ + ଆ) ତ୍ରିପର୍ଣ୍ଣିକା କନ୍ଦ ।
ବିନାଳ—ପୁଂ. ବିଂ. ନାଳବିଯୁକ୍ତ ।
ବିନାଶ୍‌କାରଣେ—ଗ୍ରା. କ୍ରି. ବିଂ. ବିନା-
କାରଣରେ, ବୃଥା, ଅକାରଣ ।
ବିନାଶ—ପୁଂ.ବି,(ବି + ନଶ୍ + ଅ)ନାଶ,
ଧ୍ୱଂସ, ଉଚ୍ଛେଦ, ଅଭାବ, ଲୋପ, ଅଦ-
ର୍ଶନ, ମୃତ୍ୟୁ, କ୍ଷୟ, ଅପଚୟ, ସଙ୍ଗୀ-
ତର ଶେଷ ସ୍ୱର ବିଶେଷ ।
ବିନାଶକ—ପୁଂ. ବିଂ. (ବି + ନଶ୍+କ.
ଅକ) ବିନାଶକର୍ତ୍ତା, ସଂହାରକ,ଘାତକ,
ଅପକାରକ ।
ବିନାଶନ—ବି.(ବି+ନଶ୍+ଣିଚ୍+ଅ.
ଅନ) ବିନାଶକରଣ, (ବିଂ—ଅନ୍ୟଶବ୍ଦ

ସଙ୍ଗେ ଯୁକ୍ତ ହେଲେ, ଯଥା—ପାପ-
ବିନାଶନ) ବିନାଶକ, ବିଲୋପକାରୀ,
(ଗ୍ରା. ବି) ଅନାହାର,(ବିଂ) ମୃତ,ନଷ୍ଟ ।
ବିନାଶନବ୍ରତ—ଗ୍ରା. ବି. ମରିବାପାଇଁ
ଅନାହାରରେ ରହିବା, ଅନଶନବ୍ରତ ।
ବିନାଶନୀ—ଗ୍ରା. ସ୍ତ୍ରୀ. ବିଂ. ନାଶକାରିଣୀ
ବିନାଶନୀୟ—ବିଂ.(ବି + ନଶ୍ + ଣିଚ୍ +
ର୍ମ.ଅନୀୟ) ଧ୍ୱଂସର ଯୋଗ୍ୟ ।
ବିନାଶପ୍ରାପ୍ତ—ବିଂ. (୨ତତ୍) ବିନଷ୍ଟ ।
ବିନାଶରହିତ—ବିଂ. (୩ତତ୍)ଅବିନାଶୀ ।
ବିନାଶୀଳ--ବିଂ.(ବ.ବ୍ରୀ)ଧ୍ୱଂସଶୀଳ,ନଶ୍ୱର
ବିନାଶାନ୍ତ—ବି, (ବିନାଶ+ଅନ୍ତ)ଶେଷ,
ମୃତ୍ୟୁ ।
ବିନାଶିତ—ବିଂ. (ବି+ନଶ୍+ଣିଚ୍+
ର୍ମ.ତ)ନଷ୍ଟ, ମୃତ,ନିହତ,ବିନାଶପ୍ରାପ୍ତ ।
ବିନାଶିବା—ଗ୍ରା. କ୍ରି. ବିନାଶ କରିବା,
ବିନଷ୍ଟ ହେବା ।
ବିନାଶୀ—ପୁଂ.ବିଂ,(ବି+ନଶ୍+ଣିଚ୍+
ଇନ୍) ବିନାଶକରଣଶୀଳ, ବିନାଶକ,
ଧ୍ୱଂସକାରକ, ଘାତକ, ଅପକାରକ,
(ବିନାଶ + ଇନ୍) ଧ୍ୱଂସଶୀଳ, ନଶ୍ୱର,
(ସ୍ତ୍ରୀ) ବିନାଶିନୀ ।
ବିନାଶୋନ୍ମୁଖ—ବିଂ. (ବିନାଶ+ଉନ୍ମୁଖ)
୭ତତ୍; ପକ୍ୱ,ନାଶୋଦ୍ୟତ,ମୃତକଳ୍ପ,
ମ୍ରିୟମାଣ, ପତନୋନ୍ମୁଖ ।
ବିନାଶ୍ୟ—ବିଂ.(ବି + ନାଶି + ଯ)ବିନାଶ-
ଯୋଗ୍ୟ, ବିନାଶାର୍ହ, ଧ୍ୱଂସନୀୟ ।
ବିନାସ(ସି)କ—ପୁଂ.ବିଂ.(ବ.ବ୍ରୀ) ଗତ-
ନାସିକ, ନାସିକାହୀନ, (ସ୍ତ୍ରୀ)ବିନାସିକା
ବିନାସିକା—ସ୍ତ୍ରୀ. ବି.ନାସିକାର ଅଭାବ ।
ବିନାସିତ—ବିଂ. ନାସାରହିତ ।
ବି(ବୀ)ନାହ—ପୁଂ. ବି. (ବି + ନହ୍ +
ଣ.ଅ) କୂପ ମୁଖର ଆଚ୍ଛାଦନ ।
ବିନାହକ୍—ଗ୍ରା.କ୍ରି.ବିଂ.ଅକାରଣରେ,ବୃଥା
ବିନଃସରଣ—ବି. (ବି+ନିର୍+ସୃ+
ଅନ) ବହିର୍ଗମନ ।
ବିନଃସୃତ—ବିଂ, (ବି + ନିର୍ + ସୃ +
କ.ତ) ବିନିର୍ଗତ, ବହିର୍ଗତ, ନିଷ୍କ୍ରାନ୍ତ ।

ବିନିକର୍ତ୍ତବ୍ୟ—ବିଂ. କାଟି ନଷ୍ଟ କରିବାର ଯୋଗ୍ୟ ।

ବିନିକାର—ପୁଂ. ବି. ଦୋଷ, କ୍ଷତ, ଅପରାଧ, ଅତ୍ୟାଚାର, ବିରକ୍ତି, ବେଦନା ।

ବିନିକୃନ୍ତନ—ବି. କାଟି ନଷ୍ଟ କରିବା, ବିଶେଷ ରୂପେ ଛେଦନ ।

ବିନିକ୍ଷିପ୍ତ—ବିଂ. (ବି+ନି+କ୍ଷିପ୍+ମଁ. ତ) ପରିତ୍ୟକ୍ତ, ଯାହା ଏଣେ ତେଣେ ଫୋପଡ଼ା ଯାଇଥାଏ, ବହିଃକ୍ଷିପ୍ତ ।

ବିନିକ୍ଷେପ୍ୟ—ବିଂ. (ବି+ନି+କ୍ଷିପ୍+ଯ) ବିଶେଷ ଭାବେ ନିକ୍ଷେପ କରିବା ଯୋଗ୍ୟ

ବିନିଗଡ଼—ବି. (ବି+ନିଗଡ଼) ଶୃଙ୍ଖଳବିରହିତ, ଅନିୟନ୍ତ୍ରିତ, ସ୍ୱାଧୀନ ।

ବିନିଗଡ଼ୀକୃତ—ବିଂ. ନିଗଡ଼ ବିଯୋଜିତ

ବିନିଗମକ—ବିଂ. (ବି+ନି+ଗମ୍. ଣିଚ୍+କ. ଅକ) ବ୍ୟବଚ୍ଛେଦକ, ସଂଶୟ ନିବାରକ, ପ୍ରତିପାଦକ, ନିର୍ଣ୍ଣାୟକ, ଦୁଇପକ୍ଷ ମଧ୍ୟରୁ ଏକପକ୍ଷର ସିଦ୍ଧି ଘଟାଇବା ବ୍ୟକ୍ତି ।

ବିନିଗମନା—ସ୍ତ୍ରୀ.ବି. ଏକତର ପକ୍ଷପାତିନୀ ବୁଦ୍ଧି, ସିଦ୍ଧାନ୍ତ, ମୀମାଂସା, ବ୍ୟବଚ୍ଛେଦନ, ନିଶ୍ଚୟୋପାୟ ।

ବିନିଗୂହିତା—ପୁଂ. ବିଂ. ଗୋପକ, ଗୋପନକର୍ତ୍ତା ।

ବିନିଗ୍ରହ—ପୁଂ. ବି. (ବି+ନିଗ୍ରହ) ନିୟମନ, ସଂଯମନ, ଅବରୋଧ, ବ୍ୟାଘାତ, ବାଧା, ପରସ୍ପର ବିରୋଧ ।

ବିନିଗ୍ରାହ୍ୟ—ବିଂ. ନିପୀଡ଼ନଯୋଗ୍ୟ, ଅବଲୀଳାକ୍ରମେ ନିଗ୍ରହ କରିବାର ଯୋଗ୍ୟ ।

ବିନିଘ୍ନ—ବିଂ. (ବି+ନି+ହନ୍+ମଁ.ଅ) ନଷ୍ଟ, ଗୁଣିତ ।

ବିନିଦ୍ର—ବିଂ. (ବି+ନିଦ୍ରା-ବ.ବ୍ରୀ) ଉନ୍ମୀଳିତ, ନିଦ୍ରାରହିତ, ଜାଗରିତ, ବିକଶିତ, ସାବଧାନ, (ବି) ଅସ୍ତ୍ର ପ୍ରୟୋଗରେ ନିଦ୍ରିତ ବା ମୂର୍ଚ୍ଛିତ ବ୍ୟକ୍ତିର ନିଦ୍ରାଭଙ୍ଗ ବା ମୂର୍ଚ୍ଛାଭଙ୍ଗ କରାଇବା ଅସ୍ତ୍ରର ସଂହାରବିଶେଷ ।

ବିନିଦ୍ରକ—ବିଂ. ନିଦ୍ରାରହିତ, ଜାଗରିତ ।

ବିନିଦ୍ରତ୍ୱ—ବି. ପ୍ରବୋଧ, ଜାଗରଣ ।

ବିନିଧ୍ୱସ୍ତ—ବିଂ. ଧ୍ୱଂସପ୍ରାପ୍ତ, ଭଗ୍ନ ଓ ପତିତ ।

ବିନିନୀଷୁ—ବିଂ. (ବି+ନୀ+ସନ୍+ଉ) ବିନୟ କରିବାକୁ ଅଭିଳାଷୀ ।

ବିନିନ୍ଦ—ବି. (ବି+ନିନ୍ଦ୍+ଅ) ବିଶେଷ ରୂପେ ନିନ୍ଦା । [ କାରକ ।

ବିନିନ୍ଦକ—ବିଂ. ବିଶେଷରୂପେ ନିନ୍ଦା-

ବିନିନ୍ଦିତ—ବିଂ. ( ବି+ନିନ୍ଦ୍+ମଁ.ତ ) ଲାଞ୍ଛିତ, ନିନ୍ଦାଯୁକ୍ତ, (ସ୍ତ୍ରୀ) ବିନିନ୍ଦିତା ।

ବିନିନ୍ଦୀ—ବି. (ବି+ନିନ୍ଦ୍+ଇନ୍) ନିନ୍ଦାକାରକ, ନିନ୍ଦାଜନକ ।

ବିନିନ୍ଦ୍ୟ—ବିଂ. ( ବି+ନିନ୍ଦ୍+ମଁ.ଯ ) ଅନିନ୍ଦ୍ୟ, ପ୍ରଶଂସନୀୟ ।

ବିନିପତିତ—ବିଂ. ଅଧଃକ୍ଷିପ୍ତ ।

ବିନିପାତ—ବି. (ବି+ନି+ପତ୍+ଭା. ଅ) ବିନାଶ, ଧ୍ୱଂସ, ବଂଶକ୍ଷୟ, ଘଟନା, ଦୈବାଦ୍ ବ୍ୟସନ, ଅପମାନ, ଅଧଃପତନ, କ୍ଲେଶ, ମୃତ୍ୟୁ, ଦୈବଦୁଃଖ ।

ବିନିପାତକ—ବିଂ. (ବି+ନି+ପତ୍+ଣିଚ୍.ଅକ) ବିନାଶକାରୀ, ଅପମାନକାରୀ

ବିନିପାତିତ—ବିଂ. (ବି+ନି+ପତ୍+ଣିଚ୍+ମଁ.ତ) ଅଧଃପାତିତ, ବିନାଶିତ, ଅବମାନିତ ।

ବିନିପାତୀ—ପୁଂ.ବିଂ. (ବି+ନି+ପତ୍+ଇନ୍) ବିନିପାତଶୀଳ, ବିନାଶକାରୀ ।

ବିନିମୟ—ବି. (ବି+ନି+ମୀ+ଭା.ଅ) ପରିବର୍ତ୍ତନ, ବଦଳ, ଏକ ବସ୍ତୁକୁ ଦେଇ ତତ୍ ପରିବର୍ତ୍ତେ ଅନ୍ୟବସ୍ତୁର ଗ୍ରହଣ, ପ୍ରତିଦାନ, ବନ୍ଧକ, ଗଚ୍ଛିତ ଧନ, ଅକ୍ଷରମାନଙ୍କର ପରସ୍ପର ପରିବର୍ତ୍ତନ ।

ବିନିମିଷ—ଗ୍ରା.ବିଂ. ନିର୍ନିମେଷ, ପକ୍ଷ୍ମପାତଶୂନ୍ୟ ।

ବିନିମୀତ—ବିଂ. (ବି+ନି+ମୀ+ମଁ.ତ) କୃତବିନିମୟ, ବଦଳାଯାଇଥିବା, ବନ୍ଧକ ଥିବା, ପ୍ରତିଦତ୍ତ । [ ଆଖିପିଛୁଡ଼ା ।

ବିନିମେଷ—ପୁଂ. ବି. ନିମେଷରାହିତ୍ୟ,

ବିନିୟତ—ବିଂ. (ବି+ନି+ଯମ୍+ମଁ. ତ) ନିବାରିତ, ନିରୁଦ୍ଧ, ସଂଯତ, ବଦ୍ଧ, ଶାସିତ, ଅଟକିଥିବା ।

ବିନିୟମ—ବି. (ବି+ନି+ଯମ୍+ଭା.ଅ) ନିବାରଣ, ନିରୋଧ, ନିଷେଧ ।

ବିନିଯୁକ୍ତ—ବିଂ. (ବି+ନି+ଯୁଜ୍+ମଁ.ତ) ଅର୍ପିତ, ନିଯୁକ୍ତ, ପ୍ରେରିତ, ପ୍ରବର୍ତ୍ତ ।

ବିନିଯୋଗ—ବି. (ବି+ନି+ଯୁଜ୍+ଭା.ଅ) ପ୍ରୟୋଗ, ନିଯୋଜନ, ପ୍ରେଷଣ, ପ୍ରେରଣ, ପ୍ରବେଶନ, ପ୍ରତିଦାନର ଭବିଷ୍ୟତ୍ ଆଶାରେ ପ୍ରଦାନ ବା ଅର୍ପଣ, ଆଦେଶ, ଅନୁମତି ।

ବିନିଯୋଜିତ—ବିଂ. (ବି+ନି+ଯୁଜ୍+ଣିଚ୍+ତ) ବିନିଯୁକ୍ତ, ଅର୍ପିତ, ସ୍ଥାପିତ, ନିଯୁକ୍ତ, ପ୍ରେରିତ, ପ୍ରବର୍ତ୍ତିତ, ଭବିଷ୍ୟତ୍ ଆଶାରେ ଅର୍ପିତ ।

ବିନିଯୋଜ୍ୟ—ବିଂ. (ବି+ନି+ଯୁଜ୍+ଣିଚ୍+ଯ) ବିନିଯୋଗାର୍ହ ।

ବିନିର୍ଗତ—ବିଂ. (ବି+ନି+ଗମ୍+କ. ତ) ନିଃସୃତ, ବହିର୍ଗତ, ଅପସୃତ, ନିଷ୍କ୍ରାନ୍ତ, ଚ୍ୟୁତ, ଅତୀତ ।

ବିନିର୍ଗମ(ନ)—ବି. (ବି+ନିର୍+ଗମ୍+ଭା.ଅ.ଅନ) ନିର୍ଗମନ, ବହିର୍ଗମନ, ପ୍ରସ୍ଥାନ ।

ବିନିର୍ଘୋଷ—ପୁଂ.ବି. (ବି+ନିର୍+ଘୁଷ୍+ଅ) ବିଶେଷରୂପେ ନିର୍ଘୋଷ, ବିଶିଷ୍ଟ ଶବ୍ଦ ।

ବିନିର୍ଜୟ—ପୁଂ.ବି. (ବି+ନିର୍+ଜି+ଅ) ବିଶେଷରୂପେ ଜୟ ।

ବିନିର୍ଜିତ—ବିଂ. (ବି+ନିର୍+ଜି+ମଁ.ତ) ବିଶେଷରୂପେ ନିର୍ଜିତ, ପରାଜିତ, ପରାଭୂତ ।

ବିନିର୍ଣ୍ଣୟ—ପୁଂ.ବି. (ବି+ନିର୍+ନୀ+ଭା.ଅ) ନିଶ୍ଚୟ, ନିରୂପଣ, ଅବଧାରଣ, ନିଷ୍ପତ୍ତି ।

ବିନିର୍ଣ୍ଣୀତ—ବିଂ. (ବି+ନିର୍+ନୀ+ମଁ.ତ) ନିଶ୍ଚିତ, ନିରୂପିତ, ଅବଧାରିତ ।

ବିନିର୍ଦ୍ଦହନୀ—ସ୍ତ୍ରୀ.ବି. (ବି+ନିର୍+ଦହ୍+ଇନ୍+ଈ) ଦହନ କର୍ମଦ୍ୱାରା ଚିକିତ୍ସା, ଔଷଧ, ଆରୋଗ୍ୟ ଉପାୟ ।

ବିନିର୍ଦ୍ଦେଶ୍ୟ—ବିଂ. (ବି+ନିର୍+ଦିଶ୍+ଯ) ବିନିର୍ଦ୍ଦିଷ୍ଟ, ବିଶେଷରୂପେ ନିର୍ଣ୍ଣୀତ

ବିନିର୍ଧୂତ—ବିଂ. (ବି+ନିର୍+ଧୂ+ତ)

ବିତାଡ଼ିତ, ବିକମ୍ପିତ ହୋଇ ପାତିତ, ଝଡ଼ାଯାଇ ଖସିପଡ଼ିଥିବା, ଅସ୍ଥିର, ଅବମାନିତ, କମ୍ପିତ, ଚଞ୍ଚଳ ।

ବିନିର୍ଭୟ—ବିଂ. (ବ.ବ୍ରୀ) ଭୟରହିତ, ଭୟଶୂନ୍ୟ, (ପୁଂ.ବି) ସାଧ୍ୟଗଣବିଶେଷ, ଦେବଯୋନିବିଶେଷ ।

ବିନିର୍ଭୋଗ—ପୁଂ.ବି. କଳ୍ପବିଶେଷ ।

ବିନିର୍ମଳ—ବିଂ. ବିଶେଷରୂପେ ନିର୍ମଳ, ମଳରହିତ ।

ବିନିର୍ମାଣ—ବି.(ବି+ନିର୍+ମା+ଅନ) ବିଶେଷରୂପେ ନିର୍ମାଣ, ଉତ୍ତମରୂପେ ପ୍ରସ୍ତୁତ ।

ବିନିର୍ମିତି—ସ୍ତ୍ରୀ. ବ. (ବି+ନିର୍+ମା+ତି) ବିଶେଷ ଭାବରେ ନିର୍ମାଣ ।

ବିନିର୍ମୁକ୍ତ—ବିଂ. (ବି+ନିର୍+ମୁଚ୍+ତ) ବିଶେଷରୂପେ ମୁକ୍ତ, ବହିର୍ଗତ, ଉଦ୍ଧାରପ୍ରାପ୍ତ, ଅନାଚ୍ଛନ୍ନ, ଉଦ୍ଘାଟିତ ।

ବିନିର୍ମୁକ୍ତି—ସ୍ତ୍ରୀ.ବି. ଉଦ୍ଧାର, ମୋକ୍ଷ ।

ବିନିର୍ମୋକ—ବି. ବ୍ୟତିରେକ, (ବିଂ-ବ.ବ୍ରୀ) ମୁକ୍ତକଞ୍ଚୁକ, ଚାଲି ଛଡ଼ାଇଥିବା (ସାପ), ପରିଧାନଶୂନ୍ୟ ।

ବିନିର୍ମୋକ୍ଷ—ବି. ନିର୍ବାଣ,ମୁକ୍ତି, ଉଦ୍ଧାର ।

ବିନିର୍ଯାନ—କ୍ଳୀ.ବି. (ବି+ନିର୍+ଯା+ଅନ) ଗମନ ।

ବିନିର୍ହ୍ୱଣ—ବି. ଧ୍ୱଂସ ।

ବିନିବର୍ତ୍ତନ—କ୍ଳୀ.ବି. (ବି+ନି+ବୃତ୍+ଭା.ଅନ) ପ୍ରତ୍ୟାବର୍ତ୍ତନ, ଫେରିଆସିବା ।

ବିନିବର୍ତ୍ତିତ—ବିଂ. (ବି+ନି+ବର୍ତ୍ତି+ମୀ.ତ) ପ୍ରତ୍ୟାବର୍ତ୍ତିତ, ଫେରି ଆସିଥିବା, ନିବର୍ତ୍ତିତ, ଯାହାକୁ ନିବୃତ୍ତ କରାହୋଇଅଛି ।

ବିନିବର୍ତ୍ତୀ—ପୁଂ. ବିଂ. (ବି+ନି+ବର୍ତ୍ତି+ଇନ୍) ପ୍ରତ୍ୟାବର୍ତ୍ତନକାରକ, ବିନିବର୍ତ୍ତନକାରକ ।

ବିନିବୃତ୍ତ—ବିଂ. (ବି+ନିର୍+ବୃତ୍+ତ) ସମ୍ପନ୍ନ, ନିଷ୍ପନ୍ନ, ସମାପ୍ତ, ଯାହା ଶେଷ ହୋଇଅଛି ।

ବିନିବାରଣ—ବି. (ବି+ନି+ବୃ.ଣିଚ୍+ଅନ) ବିଶେଷରୂପେ ନିବାରଣ, ବିଶେଷ ନିଷେଧ ।

ବିନିବାରିତ—ବିଂ. (ବି+ନି+ବୃ.ଣିଚ୍+ମୀ.ତ) ସମ୍ୟକ୍ ବାରିତ ।

ବିନିବାର୍ଯ୍ୟ—ବିଂ. (ବି+ନି+ବୃ+ଯ) ନିବାରଣାର୍ହ, ନିବାରଣଯୋଗ୍ୟ ।

ବିନିବୃତ୍ତ—ବିଂ. (ବି+ନି+ବୃତ୍+କ.ତ) ପ୍ରତ୍ୟାଗତ, ପ୍ରତ୍ୟାବୃତ୍ତ,କ୍ଷାନ୍ତ, ନିରସ୍ତ ।

ବିନିବୃତ୍ତି—ସ୍ତ୍ରୀ.ବି. (ବି+ନି+ବୃ+ତି) ବିଶେଷରୂପେ ନିବୃତ୍ତି, ନିବାରଣ ।

ବିନିବେଦନ—କ୍ଳୀ. ବି, (ବି+ନି+ବିଦ୍+ଣିଚ୍+ଅନ) ବିଶେଷରୂପେ ନିବେଦନ, କଥନ ।

ବିନିବେଶ—ପୁଂ.ବି.(ବି+ନି+ବିଶ୍+ଭା.ଅ) ପ୍ରବେଶ, ପଶିବା ।

ବିନିବେଶନ—କ୍ଳୀ.ବି. ପ୍ରତିଷ୍ଠା,ସ୍ଥାପନ, ଅଧିଷ୍ଠାନ ।

ବିନିବେଶିତ—ବିଂ. (ବି+ନି+ବେଶି+ମୀ.ତ) ପ୍ରବେଶିତ, ଅଧିଷ୍ଠିତ,ସନ୍ନିବେଶିତ, ପ୍ରତିଷ୍ଠାପିତ ।

ବିନିବେଶୀ—ପୁଂ. ବିଂ. ବାସକାରୀ, ପ୍ରବେଶକାରୀ ।

ବିନିଶ୍ଚୟ—ପୁଂ.ବି. (ବି+ନିର୍+ଚି+ଭା.ଅ)କୃତନିଶ୍ଚୟ,ଅସନ୍ଦିଗ୍ଧ ସିଦ୍ଧାନ୍ତ, ଠିକ୍ ଧାରଣା । [ସ୍ଥିର ।

ବିନିଶ୍ଚଳ—ବିଂ. ବିଶେଷରୂପେ ନିଶ୍ଚଳ,

ବିନିଶ୍ଚାୟୀ—ପୁଂ.ବିଂ. ନିଶ୍ଚାୟକ,ଯାହା ମୀମାଂସିତ ହୋଇଅଛି ।

ବିନିଶ୍ୱସନ୍—ପୁଂ. ବିଂ. (ବି+ନି+ଶ୍ୱସ୍+କ,ଅତ୍) ଦୀର୍ଘନିଃଶ୍ୱାସ ପରିତ୍ୟାଗକାରୀ, (ସ୍ତ୍ରୀ) ବିନିଶ୍ୱସନ୍ତୀ ।

ବିନିଷ୍କର୍ମ—ବିଂ. କର୍ମରହିତ, ଅତି ସ୍ଥିର ।

ବିନିଷ୍ପାତ—ପୁଂ.ବି. (ବି+ନିର୍+ପତ୍+ଅ) ବିଶେଷ ପ୍ରକାରେ ପତନ, ଆଘାତ ।

ବିନିଷ୍ପାଦ୍ୟ—ବିଂ. (ବି+ନିର୍+ପଦ୍+ଣିଚ୍+ଯ) ନିଷ୍ପାଦନର ଯୋଗ୍ୟ ।

ବିନିଷ୍ପେଷ—ବି. (ବି+ନିର୍+ପିଷ୍+ଭା.ଅ) ପେଷଣ, ଚୂର୍ଣ୍ଣନ, ବିନାଶ, ନିପୀଡ଼ନ, ଦୃଢରୂପେ ମର୍ଦ୍ଦନ,ଅତିଶୟ ଘର୍ଷଣ ।

ବିନିହତ—ବିଂ, (ବି+ନି+ହନ୍+ତ) ବିନଷ୍ଟ, ବିଧ୍ୱସ୍ତ, ମୂଳୋତ୍ପାଟିତ, ମୃତ, ଆହତ, ଦୁରୋହିତ ।

ବିନୀତ—ପୁଂ.ବିଂ. (ବି+ନୀ+କ.ତ) ବିନମ୍ର, ବିନୟୀ, ଶିଷ୍ଟ, ଅନୁଦ୍ଧତ, ଶାନ୍ତ, ଜିତେନ୍ଦ୍ରିୟ, ଧାର୍ମିକ, ଶିକ୍ଷିତ, ଶାସିତ, ସ୍ଥାନାନ୍ତରକୁ ନୀତ, ନିକ୍ଷିପ୍ତ, ନିଭୃତ, ଗୃହୀତ, ଉପଭୁକ୍ତ, ସୁନ୍ଦର, (ବି) ବଣିକ୍, ଶିକ୍ଷିତାଶ୍ୱ, ଯୁକ୍ତାଶ୍ୱ, ଶିକ୍ଷିତ ଜୀବ, ଦମନକଗୁଳ୍ମ, ପୁଲସ୍ତ୍ୟଙ୍କର ଏକପୁତ୍ର ।

ବିନୀତକ—ବି, ( ବି+ନୀ+ଣ.ତକ ) ଯାନ,(ବିଂ-କ,ଅକ) ବାହକ,ବିନୀତସମ୍ବନ୍ଧୀୟ, ବୈନତକ ।

ବିନୀତବେଶ—ପୁଂ.ବିଂ. (ବ.ବ୍ରୀ) ଭଦ୍ର ବେଶଧାରୀ ।

ବିନୀତାତ୍ମା—ବିଂ. (ବ.ବ୍ରୀ) ନମ୍ର ପ୍ରକୃତିବିଶିଷ୍ଟ, ଧର୍ମାତ୍ମା, ଜିତାତ୍ମା ।

ବିନୀତି—ସ୍ତ୍ରୀ.ବି. ବିନୟ, ସମ୍ମାନ,ସଦ୍ବ୍ୟବହାର ।

ବିନୀୟ—ପୁଂ.ବି. ( ବି+ନୀ+ମୀ.ଯ ) କଳ୍କ, ପିଢ଼ିଆ, କାଣ୍ଡି, ପାପ, ଅପରାଧ, ଛଳ, କପଟ ।

ବିନୀୟମାନ—ପୁଂ.ବିଂ. (ବି+ନୀ+ମୀ.ଆନ) ଶିକ୍ଷ୍ୟମାଣ, ଯାହାକୁ ଶିକ୍ଷା ଦିଆଯାଉଅଛି, (ସ୍ତ୍ରୀ) ବିନୀୟମାନା ।

ବିନୁ(ନେ)—ଗ୍ରା.ଅବ୍ୟ. ବିନା ଦେଖ ।

ବିନୁକ୍ତି—ସ୍ତ୍ରୀ.ବି, (ବି+ନିଜ୍+ଭା.ତି) ପ୍ରଶଂସା ।

ବିନେତା—ପୁଂ.ବି. ( ବି+ନୀ+ତୃ ) ପରିଚାଳକ, ଉପଦେଷ୍ଟା, ଶିକ୍ଷକ,ରାଜା, ଶାସନକର୍ତ୍ତା, ଦଳର ନେତା, (ସ୍ତ୍ରୀ) ବିନେତ୍ରୀ ।

ବିନେୟ—ବିଂ. ( ବି+ନୀ+ଯ ) ନେତବ୍ୟ, ଦଣ୍ଡନୀୟ, ଶିଷ୍ୟ, ଅନ୍ତେବାସୀ, ଦମ୍ୟ, ଗ୍ରାହ୍ୟ, ଶିକ୍ଷଣୀୟ ।

ବିନେୟକାର୍ଯ୍ୟ—ବି. ଦଣ୍ଡକାର୍ଯ୍ୟ ।

**ବିନୋଇ**—ଗ୍ରା. କ୍ରି.ବିଂ. ବିନୀତହୋଇ, ନମ୍ରଭାବରେ ।

**ବିନୋକ୍ତି**—ସ୍ତ୍ରୀ. ବି. ( ବିନା+ଉକ୍ତି ) ବିନା ଶବ୍ଦ ପ୍ରୟୋଗ କରାଯାଇଥିବା ଅର୍ଥାଲଙ୍କାରବିଶେଷ ।

**ବିନୋଦ**—ପୁଂ. ବି. (ବି+ନୁଦ୍+ଅ) କୌତୁହଳ, କ୍ରୀଡ଼ା, ପ୍ରମୋଦ,ଆନନ୍ଦ, ପ୍ରବୋଧନ, ସମୟ ଯାପନୋପାୟ, ଆଲିଙ୍ଗନବିଶେଷ, ରାଜଗୃହବିଶେଷ, ଅପନୟନ, (ବିଂ) ସୁନ୍ଦର ।

**ବିନୋଦଗୃହ**—ବି. (୬ତତ୍) ବିଳାସ-ଭବନ, ବୈଠକ୍‌ଖାନା ।

**ବିନୋଦନ**—ବି.(ବି+ନୁଦ୍+ଭା.ଅନ) ବିନୋଦ ଦେଖ, ମନସନ୍ତୋଷ, କ୍ରୀଡ଼ାକରଣ ।

**ବିନୋଦବିହାରୀ**—ପୁଂ.ବିଂ. କ୍ରୀଡ଼ାକାରୀ, (ବି) ଶ୍ରୀକୃଷ୍ଣ ।

**ବିନୋଦିଆ**—ଗ୍ରା. ବିଂ. ଆମୋଦପ୍ରିୟ, କ୍ରୀଡ଼ାପ୍ରିୟ, ସୁନ୍ଦର, ରସିକ ।

**ବିନୋଦୀ**—ପୁଂ.ବିଂ(ବିନୋଦ+ଇନ୍) କ୍ରୀଡ଼ାଶୀଳ, କୁତୂହଳୀ, ପରିହାସପ୍ରିୟ, ରସିକ, ଆମୋଦପ୍ରିୟ ।

**ବିନ୍ଦ**—ପୁଂ. ବି. ଜୟସେନ, ଧୃତରାଷ୍ଟ୍ରଙ୍କ ପୁତ୍ରବିଶେଷ, ପଶ୍ଚିମ ବଙ୍ଗବାସୀ ଜାତି-ବିଶେଷ, (ବିଂ) ପ୍ରାପକ, ଦର୍ଶକ, ଲାଭ-ବାନ୍ ।

**ବିନ୍ଦମାନ**—ବିଂ. ପ୍ରାପଣୀୟ, ଗ୍ରାହ୍ୟ ।

**ବିନ୍ଦୁ**—ବି. ( ବିନ୍ଦ୍+କ.ଉ ) ଭ୍ରୂଦ୍ୱୟର ମଧ୍ୟ, ଟୋପା, ବୁନ୍ଦା, ଦ୍ରବ ଦ୍ରବ୍ୟର କଣା, କଣିକାମାତ୍ର, ବୀର୍ଯ୍ୟ, ଶୁକ୍ର, ଦୈର୍ଘ୍ୟ ବିସ୍ତାର ଓ ବେଧରହିତ ଅବ-ସ୍ଥିତି ଜ୍ଞାପକ ଚିହ୍ନ, ହସ୍ତୀ ମୁଣ୍ଡରେ ବିରଚିତ ରଙ୍ଗର ଟୋପା, ଚନ୍ଦନ ଟୋପା, ଅନୁସ୍ୱାର, ପରିମାଣବିଶେଷ, ଦନ୍ତକ୍ଷତବିଶେଷ, ନାଟକରେ ଗୁଣୀ-ଭୂତ ପରସ୍ପର ଘଟଣା, (ବିଂ.କ.ଉ) ବେତ୍ତା, ଜ୍ଞାତା,ଜ୍ଞାନୀ, ଦାତା,ଦାନଶୀଳ ।

**ବିନ୍ଦୁକ**—ବି. ଛୋଟ ବିନ୍ଦୁ ।

**ବିନ୍ଦୁଚିତ୍ରକ**—ପୁଂ.ବି. (ବିନ୍ଦୁ+ଚିତ୍ରକ) ମୃଗବିଶେଷ, ଚିତ୍ରମୃଗ, ଚିତ୍ରକର ।

**ବିନ୍ଦୁଜାଲ(କ)**—ବି. ହସ୍ତି ଶୁଣ୍ଡୋପରି ରଚିତ ବିଚିତ୍ର ବିନ୍ଦୁ ସମୂହ, ପଦ୍ମକ, ବିନ୍ଦୁସମୂହ ।

**ବିନ୍ଦୁଧାରଣ**—ବି. (୬ତତ୍) ବ୍ରହ୍ମଚର୍ଯ୍ୟ ଅବଲମ୍ବନ ପୂର୍ବକ ବୀର୍ଯ୍ୟରକ୍ଷଣ ।

**ବିନ୍ଦୁଧାରୀ**—ବି. ବୈଷ୍ଣବସମ୍ପ୍ରଦାୟବିଶେଷ

**ବିନ୍ଦୁପତନ**—ବି.(୬ତତ୍) ଜଳୀୟ ବସ୍ତୁର ଟୋପାମାନ ପଡ଼ିବା, ଛୋଟ ଛୋଟ ଟୋପାରେ ବର୍ଷା ହେବା, ଶୁକ୍ରକ୍ଷରଣ ।

**ବିନ୍ଦୁପତ୍ର**—ବି. (ବ.ବ୍ରୀ) ଭୂର୍ଜବୃକ୍ଷ ।

**ବିନ୍ଦୁପାତନ**—ବି. (୬ତତ୍) ବୀର୍ଯ୍ୟପାତନ

**ବିନ୍ଦୁପ୍ରତିଷ୍ଠାନମୟ**—ବିଂ, ଅନୁସ୍ୱାରବିଶିଷ୍ଟ (ତନ୍ତ୍ର) ।

**ବିନ୍ଦୁଲ**—ପୁଂ.ବି.ଅଗ୍ନି ପ୍ରକୃତି କୀଟ ବିଶେଷ

**ବିନ୍ଦୁବାସର**—ପୁଂ. ବି. ସନ୍ତାନୋତ୍ପତ୍ତି-କାରକ ଶୁକ୍ରପାତ ଦିନ ।

**ବିନ୍ଦୁବିନ୍ଦୁ**—ଗ୍ରା. କ୍ରି. ବିଂ. ଟୋପାଟୋପା ହୋଇ, ଅଳ୍ପ ଅଳ୍ପ, ଗୋଲ ଟୋପି ମାନଙ୍କରେ ।

**ବିନ୍ଦୁବିସର୍ଗ**—ଗ୍ରା. ବି. କୌଣସି ଘଟନାର କିଞ୍ଚିନ୍ମାତ୍ର ସମ୍ବାଦ, (ସଂ-ବି) ଲେଖାରେ ଅକ୍ଷରମାନଙ୍କରେ ଥିବା ବିନ୍ଦୁ=ଅନୁସ୍ୱାର ଓ ବିସର୍ଗ ଚିହ୍ନମାନ ।

**ବିନ୍ଦୁସରଃ**—କ୍ଲୀ. ବି. ଉତ୍କଳ ଦେଶାନ୍ତ-ର୍ଗତ ପ୍ରସିଦ୍ଧ ଜଳାଶୟ, ପୁରାଣୋକ୍ତ ସରୋବରବିଶେଷ ।

**ବିନ୍ଦୁସରୋବର**—ଗ୍ରା. ବି. ଓଡ଼ିଶାର ଭୁବନେଶ୍ୱର କ୍ଷେତ୍ରସ୍ଥ ଗୋଟିଏ ପ୍ରାଚୀନ ବିଶାଳ ସରୋବର ।

**ବିନ୍ଦୁସାର**—ପୁଂ. ବି. ମଗଧର ନରପତି ଅଶୋକଙ୍କର ପିତା ଓ ଚନ୍ଦ୍ରଗୁପ୍ତଙ୍କର ପୁତ୍ର ।

**ବିନ୍ଦ୍ନ**—ପ୍ରା.(ସମ୍ବ)ବି. ଲହଣ, ନିହାଣ ।

**ବିନ୍ଧ**—ଗ୍ରା.ବି.ଛିଦ୍ର, କଣା, ରନ୍ଧ୍ର,ଫୋଡ଼ ।

**ବିନ୍ଧଣ**—ଗ୍ରା. ବି. ରତି ସମୟରେ ପୁରୁଷ ଓ ସ୍ତ୍ରୀ ମଧ୍ୟରେ ପରସ୍ପର ଆକର୍ଷଣ ।

**ବିନ୍ଧଣା**—ଗ୍ରା.ବିଂ. ମାରଣା, ଯେଉଁ ଶୃଙ୍ଗ-ଯୁକ୍ତ ପଶୁ ଶୃଙ୍ଗ ଦ୍ୱାରା ମନୁଷ୍ୟଙ୍କୁ ଭୁସେ, (ଲ.ଅର୍ଥ)ଯେଉଁ ଲୋକ ନିଷ୍ଠୁର ବାକ୍ୟ କହେ, କଟୁଭାଷୀ, (ପ୍ରା. କଳା. ବି) ବଟାଳି, ନିହଣ ।

**ବିନ୍ଧଣୀ**—ଗ୍ରା.ବି. ତାଡଲି ଲୁହାରେ ଛିଦ୍ର କରିବାର ସୂଚୀବିଶେଷ ।

**ବିନ୍ଧପତ୍ର(ତ୍ରୀ)**—ସ୍ତ୍ରୀ. ବି. ବେଲଶୁଣ୍ଠା, କ୍ଷୀରପତ୍ରୀ ।

**ବିନ୍ଧସ**—ପୁଂ. ବି. (ବ୍ୟଧ୍+ମି.ଅସ୍)ଚନ୍ଦ୍ର

**ବିନ୍ଧା**—ଗ୍ରା. ବି. ବିନ୍ଧିବା, ଶୃଙ୍ଗ ଦ୍ୱାରା ଭେଦକରଣ, ବ୍ରଣାଦିର ବ୍ୟଥା, ଶର-ନିକ୍ଷେପ, ଚକ୍ଷୁ ଓ ଶିର ରୋଗବିଶେଷ, (ଗ୍ରା.ବିଂ) ବିଦ୍ଧ ହୋଇଥିବା ।

**ବିନ୍ଧାଛିଟିକା**—ଗ୍ରା.ବି. ଦେହ ବଥାଇବା ବା ବିନ୍ଧିବା ।

**ବିନ୍ଧାଣ**—ଗ୍ରା.ବି.(ସଂ-ବେଧନ)ମଲ୍ଲଯୁଦ୍ଧ ।

**ବିନ୍ଧାଣି**—ଗ୍ରା. ବି. କାରିଗର, ବିନ୍ଧକାରୀ ବ୍ୟକ୍ତି ।

**ବିନ୍ଧାବିନ୍ଧି**—ଗ୍ରା. ବି. ପରସ୍ପରକୁ ବିନ୍ଧିବା, ଶରୀରର ଅନେକ ସ୍ଥାନ ବଥାଇବା ।

**ବିନ୍ଧଣି**—ଗ୍ରା. ବି. (ବଣିଆଶବ୍ଦ)ଅଳଙ୍କାର ଉପରେ ପଥର ବସାଇବା କାମ ।

**ବିନ୍ଧିବା**—ଗ୍ରା. କ୍ରି. (ଅକର୍ମକ) ବ୍ରଣାଦି ବ୍ୟଥା କରିବା,(ସକର୍ମକ)କାଠଆଦିରେ ଫୋଡ଼ କରିବା, ଶର ପ୍ରୟୋଗ କରିବା

**ବିନ୍ଧ୍ୟ**—ପୁଂ. ବି. ( ବି+ଧ୍ୟୈ+ଅ ) ଭାରତର ମଧ୍ୟ ଦେଶରେ ଅବସ୍ଥିତ ଗିରିମାଳା, (ବ୍ୟଧ୍+କ.ଅ) ବ୍ୟାଧ ।

**ବିନ୍ଧ୍ୟକୂଟ**—ପୁଂ. ବି. (ବିନ୍ଧ୍ୟ+କୂଟ୍+କ.ଅ) ଅଗସ୍ତ୍ୟ ମୁନି, ବିନ୍ଧ୍ୟ ପର୍ବତ ।

**ବିନ୍ଧ୍ୟଗିରି**—ଗ୍ରା. ବି. ବିନ୍ଧ୍ୟ ଦେଖ ।

**ବିନ୍ଧ୍ୟନିଳୟା**—ସ୍ତ୍ରୀ.ବି.ବିନ୍ଧ୍ୟବାସିନୀ ଦୁର୍ଗା

**ବିନ୍ଧ୍ୟପର୍ବତ**—ପୁଂ. ବି. ବିନ୍ଧ୍ୟ ଦେଖ ।

**ବିନ୍ଧ୍ୟଭୂଲୋକ**—ଗ୍ରା. ବି. ଅଗସ୍ତ୍ୟ ।

**ବିନ୍ଧ୍ୟବାସିନୀ**—ସ୍ତ୍ରୀ. ବି. ବିନ୍ଧ୍ୟାଚଳସ୍ଥ ଦେବୀ ମୂର୍ତ୍ତିବିଶେଷ, ଦୁର୍ଗା ।

**ବିନ୍ଧ୍ୟବାସୀ**—ପୁଂ.ବିଂ.ବିନ୍ଧ୍ୟ ପର୍ବତରେ ବାସ କରୁଥିବା, (ବି) ମୁନିବିଶେଷ, ବ୍ୟାଡ଼ିମୁନି । [ ମୁନି ।

**ବିନ୍ଧ୍ୟବିରୋଧୀ**—ପୁଂ.ବି.(୬ତତ୍)ଅଗସ୍ତ୍ୟ

ବିନ୍ଧ୍ୟଶକ୍ତି—ସ୍ତ୍ରୀ. ବି. ଯବନରାଜବିଶେଷ
ବିନ୍ଧ୍ୟସେନ—ପୁଂ. ବି. ରାଜାବିଶେଷ, ବିନ୍ଦୁସାରଙ୍କ ନାମାନ୍ତର ।
ବିନ୍ଧ୍ୟସ୍ଥ—ପୁଂ. ବି. (ବିନ୍ଧ୍ୟ+ସ୍ଥା+ଅ) ବ୍ୟାଡ଼ିମୁନି, ବିଂ. ବିନ୍ଧ୍ୟ ପର୍ବତସ୍ଥିତ-ମାତ୍ର ।
ବିନ୍ଧ୍ୟା—ସ୍ତ୍ରୀ. ବି. ନଦୀବିଶେଷ, ଲବଙ୍ଗୀ, ନଅରକୋଳି ଗଛ, ଗ୍ରେଟ୍ ଅଲେଇଚ
ବିନ୍ଧ୍ୟାଚଳ—ପୁଂ. ବି. ବିନ୍ଧ୍ୟପର୍ବତ ।
ବିନ୍ଧ୍ୟାଟବୀ—ସ୍ତ୍ରୀ. ବି. (୬ତତ୍) ବିନ୍ଧ୍ୟ-ପର୍ବତସ୍ଥ ଅରଣ୍ୟ ।
ବିନ୍ଧ୍ୟାଦ୍ରି—ପୁଂ. ବି. ବିନ୍ଧ୍ୟପର୍ବତ ।
ବିନ୍ଧ୍ୟାଧିବାସିନୀ—ସ୍ତ୍ରୀ.ବି. ବିନ୍ଧ୍ୟ ପର୍ବତର ଅଧିଷ୍ଠାତ୍ରୀ ଦେବୀ, ଦୁର୍ଗା ।
ବିନ୍ଧ୍ୟାବଳୀ—ସ୍ତ୍ରୀ.ବି. ଦୈତ୍ୟରାଜ ବଳିର ସ୍ତ୍ରୀ ଓ ବାଣ ରାଜାଙ୍କ ମାତା, ବିନ୍ଧ୍ୟଗିରିମାଳା ।
ବିନ୍ଧ୍ୟାବଳୀପୁତ୍ର—ପୁଂ. ବି. ବାଣରାଜ ।
ବିନ୍ଧ୍ୟାବଳୀସୁତ—ପୁଂ.ବି.(୬ତତ୍)ବାଣ-ରାଜ ।
ବିନ୍ନ—ବିଂ. ( ବିଦ୍+ର୍ମି.ତ ) ବିଗୃହୀତ, ପ୍ରାପ୍ତ, ଜ୍ଞାତ, ସ୍ଥିତ, ବିବାହିତ, ପରି-ଚିତ, ଆଲୋଚିତ ।
ବିନ୍ୟୟ—ପୁଂ.ବି. (ବି+ନି+ଇ+ଅ) ବିନିଗମ, ବହିର୍ଗମ ।
ବିନ୍ୟସ୍ତ—ବିଂ (ବି + ନି + ଅସ୍ + ର୍ମି.ତ) ସ୍ଥାପିତ, ସଜ୍ଜିତ, ଅର୍ପିତ,ନ୍ୟସ୍ତ,ରଚିତ ।
ବିନ୍ୟସ୍ୟ—ବିଂ.(ବି+ ନସ୍ + ଯ) ବିନ୍ୟା-ସର ଯୋଗ୍ୟ, (ଅବ୍ୟ) ସ୍ଥାପନ କରି, ନ୍ୟାସକରି ।
ବିନ୍ୟାକ—ପୁଂ.ବି. (ବି+ନି+ଅକ+ଅ) ବିଲଙ୍କ ବୃକ୍ଷ, ଛତିଆନାଗଛ ।
ବିନ୍ୟାସ—ପୁଂ. ବି. (ବି+ନି+ଅସ୍+ଅ) ସ୍ଥାପନ, ରକ୍ଷଣ, ରଚନ, ସଜ୍ଜା, ସ୍ଥାନ, ମନ୍ତ୍ରୋଚ୍ଚାରଣପୂର୍ବକ ହୃଦୟସ୍ଥାନରେ ଅଙ୍ଗୁଳି ଅର୍ପଣ, (ର୍ମି.ଅ) ନ୍ୟସ୍ତ-ବସ୍ତୁ, ସମୂହ, (ଅଧି.ଅ) ଯହିଁରେ ବସ୍ତୁ ରହେ, ଆଧାର ।
ବିପକ୍ତ୍ରିମ—ବିଂ.(ବି+ପଚ୍+ତ୍ରିମ)ଅତି-ଶୟ ପରିପକ୍ୱ, ସୁଜୀର୍ଣ୍ଣ, ବିପାକ ଦ୍ୱାରା ନିର୍ବୃତ୍ତ ।
ବିପକ୍ୱ—ବିଂ. (ବି+ପଚ୍+କ.ବ) ଅତି-ଶୟ ପକ୍ୱ, ପାକସ୍ଥାନ, ଅପରିପକ୍ୱ,କଞ୍ଚା, ସୁପକ୍ୱ, ବଳାଯାଇଥିବା, ବଦ୍ଧ, ପୂର୍ଣ୍ଣା-ବସ୍ଥା ପ୍ରାପ୍ତ ।
ବିପକ୍ଷ—ପୁଂ.ବି. (ବି+ପକ୍ଷ) ଭିନ୍ନ ପକ୍ଷା-ଶ୍ରିତ ବ୍ୟକ୍ତି, ଶତ୍ରୁ, ଶତ୍ରୁର ଦଳ, ପ୍ରତି-ବାଦୀ, ବିରୁଦ୍ଧ ଯୁକ୍ତି, (ବିଂ) ପକ୍ଷହୀନ, ଶତ୍ରୁପକ୍ଷୀୟ ।
ବିପକ୍ଷତା—ସ୍ତ୍ରୀ.ବି(ବିପକ୍ଷ+ତା)ଶତ୍ରୁତା, ବୈର, ଶତ୍ରୁର କାର୍ଯ୍ୟ ।
ବିପକ୍ଷତାଚରଣ—ବି. ଶତ୍ରୁତା କରିବା, ପ୍ରତିଦ୍ୱନ୍ଦ୍ୱିତା କରିବା ।
ବିପକ୍ଷତାଗ୍ରହୀ—ପୁଂ. ବିଂ. ଯେ ଶତ୍ରୁତା-ଚରଣ କରେ, (ସ୍ତ୍ରୀ) ଗ୍ରହଣୀ ।
ବିପକ୍ଷଦଳ—ସ୍ତ୍ରୀ. ବି. ଅପର ପକ୍ଷୀୟ ବ୍ୟକ୍ତିସମୂହ, ବିରୁଦ୍ଧପକ୍ଷ ।
ବିପକ୍ଷପାତ—ବିଂ.(ବି+ପକ୍ଷପାତ)ଅପକ୍ଷ-ପାତ, ନିଷ୍ପକ୍ଷପାତ । [ ଘୃଣା ।
ବିପକ୍ଷଭାବ—ପୁଂ.ବି. ବିପକ୍ଷତା, ଶତ୍ରୁତା,
ବିପକ୍ଷଶୂଳ—ପୁଂ.ବି.ସାମ୍ପ୍ରଦାୟିକନେତା, ଦଳର କର୍ତ୍ତା । [ ଦ୍ୱନ୍ଦ୍ୱୀ ।
ବିପକ୍ଷୀ—ପୁଂ. ବିଂ, ଅପରପକ୍ଷୀୟ, ପ୍ରତି-
ବିପକ୍ଷୀୟ—ବିଂ. (ବିପକ୍ଷ+ଈୟ) ଶତ୍ରୁ-ବିଷୟକ,ଶତ୍ରୁପକ୍ଷୀୟ, ବିପକ୍ଷସମ୍ବନ୍ଧୀୟ
ବିପଜ୍ଜନକ—ବିଂ. ଯାହା ବିପଦ ଆଣେ
ବିପଜ୍ଜନିତ—ବିଂ. ଆପଦରୁ ଉତ୍ପନ୍ନ, ବିପଦର ଫଳରୂପେ ଘଟିବା ।
ବିପଞ୍ଚକ—ପୁଂ. ବି. ଦୈବଜ୍ଞ ।
ବିପଞ୍ଚିକା—ସ୍ତ୍ରୀ. ବି. (ବି+ପଞ୍ଚ+ଇକ+ଆ) ବୀଣା ।
ବିପଞ୍ଚୀ—ସ୍ତ୍ରୀ. ବି. (ବି+ପଚ୍+ଣିଚ୍+କ.ଅ+ଈ) ବୀଣା, ବଂଶୀ,(ଭା.ଅ+ଈ) ଆମୋଦପ୍ରମୋଦ, କେଳି ।
ବିପଣ—ପୁଂ. ବି. ( ବି+ପଣ୍+ଭା.ଅ ) ବିକ୍ରୟ, ବିପଣି, ବିକା,ବିକ୍ରୟର ଚୁକ୍ତି
ବିପଣନ—ବି. ( ବି + ପଣ+ଭା.ଅନ ) ବିକ୍ରୟ, ବିକିବା, ବିକା ।
ବିପଣି—ବି. ( ବି + ପଣ୍ + ଅଧି.ଇ ) ପଣ୍ୟ ବିକ୍ରୟଶାଳା, ବିକ୍ରୟସ୍ଥାନ, ହାଟ, ଦୋକାନ, ବଜାର ।
ବିପଣୀ—ସ୍ତ୍ରୀ. ବି. (ବିପଣି+ଈ) ବିପଣି ଦେଖ, ( ପୁଂ. ବି. ବିପଣ+ଇନ୍ ) ବଣିକ୍, ଦୋକାନୀ ।
ବିପତ୍(ଦ୍)—ସ୍ତ୍ରୀ. ବି. (ବି + ପଦ୍+ଭା. କ୍ୱିପ୍) ଆପଦ, ବିପତ୍ତି, ମରଣ ।
ବିପତ୍କାରକ—ବିଂ.(ବିପଦ+କାରକ) ଆପଦଜନକ,ଯାହା ବିପଦ ଘଟାଏ ।
ବିପତ୍କାଳ—ବି. (୬ତତ୍)ଆପତ୍କାଳ, ଆପଦ ଘଟାଇବା ସମୟ,ଦୁର୍ଦ୍ଦଶାଘଟିବା ଦିନ ।
ବିପତ୍ପାତ—ବି. (୬ତତ୍)ଆପଦଘଟିବା
ବିପତ୍ପ୍ରତୀକାର—ବି. (୬ତତ୍) ବିପଦରୁ ଉଦ୍ଧାର ପାଇବାର ଉପାୟ ।
ବିପତାକ—ବିଂ. (ବି+ପତାକା)ବ.ବ୍ରୀ; ପତାକାଶୂନ୍ୟ, ପତାକାରହିତ ।
ବିପତିତ—ଗ୍ରା. ବିଂ. ଶୂନ୍ୟରୁ ଆସି ଉପ-ସ୍ଥିତ ।
ବିପତ୍ତରଣ—ବି. ( ୬ତତ୍ ) ବିପଦକୁ ଅତିକ୍ରମ କରିବା, ବିପଦରୁ ଉତୁରିବା
ବିପତ୍ତାରକ—ପୁଂ.ବିଂ. (ବିପତ୍+ତୃ+କ.ଅକ)ଯେ ବିପଦରୁ ଉଦ୍ଧାର କରେ ।
ବିପତ୍ତାରଣ—ବି. (ବିପଦ୍+ତାରଣ ) ଅନ୍ୟକୁ ବିପଦରୁ ଉଦ୍ଧାର କରିବା, ଅନ୍ୟଦ୍ୱାରା ବିପଦରୁ ଉତୁରିବା, (ବିଂ) ବିପତ୍ତାରକ ଦେଖ ।
ବିପତ୍ତି—ସ୍ତ୍ରୀ. ବି. (ବି + ପଦ୍+ଭା.ତି ) ବିପଦ୍, ଆପଦ୍, ଦୁର୍ଭାଗ୍ୟ, ଦୁର୍ଦ୍ଦଶା; ସମ୍ପତ୍ତିନାଶ, ଯାତନା, ବିନାଶ ।
ବିପତ୍ତିକର—ବିଂ. (ବିପତ୍ତି + କୃ + କ. ଅ) ଯାହା ବିପତ୍ତି ଘଟାଏ ।
ବିପତ୍ତିକାଳ—ବି. (୬ତତ୍)ଆପଦ୍ଘଟିବା ସମୟ ।
ବିପତ୍ତିଭଞ୍ଜନ—ବି. (୬ତତ୍) ବିପତ୍ତିର ବିନାଶ କରଣ, ପରମେଶ୍ୱର ।
ବିପତ୍ତିଗ୍ରସ୍ତ—ବିଂ.(୩ତତ୍)ବିପତ୍ତି ଦ୍ୱାରା କବଳିତ ।

ବିପତ୍ତିଧ୍ୱଂସ—ବି. (୬ତତ୍) ବିପତ୍ତିର ବିନାଶ ବା ଖଣ୍ଡନ ।

ବିପତ୍ତିଧ୍ୱଂସକ—ପୁଂ. ବିଂ. ଯେ ବିପତ୍ତି ଖଣ୍ଡନକରେ, (ବି) ପରମେଶ୍ୱର ।

ବିପତ୍ତିନାଶନ—ବି. (୬ତତ୍) ବିପଦକୁ ଖଣ୍ଡନକରିବା,(ପୁଂ.ବିଂ)ବିପତ୍ତି ଧ୍ୱଂସକ

ବିପତ୍ତିପଡ଼ିବା—ଗ୍ରା. ବି. ବିପଦ ଉପସ୍ଥିତ ହେବା ।

ବିପତ୍ତିବାରଣ—ବିଂ.ଯେ ଅନ୍ୟ ଉପରେ ପଡ଼ିବା ବିପତ୍ତିକୁ ପୂର୍ବରୁ ବନ୍ଦ କରେ

ବିପତ୍ତିବେଳ(ଳା)—ଗ୍ରା.ବି.ବିପଦ ସମୟ

ବିପତ୍ତିମୋଚନ—ବି. ବିପଦରୁ ଉଦ୍ଧାର ପାଇବା, ବିପଦରୁ ଉଦ୍ଧାର କରିବା, (ବିଂ) ଯେ ବିପଦରୁ ଉଦ୍ଧାର କରନ୍ତି

ବିପତ୍ତିହେତୁକ—ବିଂ. (ବ.ବ୍ରୀ)ବିପତ୍ତିରୁ ଜାତ ।

ବିପତ୍ନୀକ—ପୁଂ. ବି ଓ ବିଂ. (ବ.ବ୍ରୀ) ବିଗତପତ୍ନୀକ,ଯାହାର ପତ୍ନୀର ବିୟୋଗ ଘଟିଅଛି, ମୃତଦାର, ଯାହାର ଭାର୍ଯ୍ୟା ନାହିଁ, ପତ୍ନୀହୀନ ।

ବିପଥ—ବି. (ବି+ପଥ) ନିନ୍ଦିତପଥ, ଅସତ୍ପଥ,କୁତ୍ସିତମାର୍ଗ,ଅବାଟ,କୁମାର୍ଗ, ଅମଡ଼ା, (ଲ.ଅର୍ଥ) ନିନ୍ଦିତ କର୍ମମାନ, ନିନ୍ଦିତ ଆଚରଣ, (ବି + ପନ୍ଥା)ଆକାଶ

ବିପଥଗ—ପୁଂ. ବିଂ. (ବି + ପଥ + ଗମ୍ କ.ଅ) ଯେ ପ୍ରକୃତ ରାସ୍ତା ଛାଡ଼ି ଅବାଟରେ ଯାଏ,କୁମାର୍ଗାବଲମ୍ବୀ,(ସ୍ତ୍ରୀ)ବିପଥଗା ।

ବିପଥଗାମୀ—ପୁଂ.ବିଂ.(ବିପଥ + ଗମ୍ + ଇନ୍)କୁମାର୍ଗଗାମୀ, ଅସତ୍ପଥାବଲମ୍ବୀ, ଅନ୍ୟାୟ ଆଚରଣକାରୀ, (ସ୍ତ୍ରୀ) ବିପଥଗାମିନୀ ।

ବିପଦ୍(ଦା)—ସ୍ତ୍ରୀ. ବି. ( ବି + ପଦ + କ୍ୱିପ୍.ଆ) ବିପତ୍ତି, ସଙ୍କଟ, ଦୁର୍ଘଟଣା, ବିନାଶ, ମରଣ, ଅମଙ୍ଗଳ ।

ବିପଦ୍ଗର୍ଭ—ବିଂ, (ବ.ବ୍ରୀ) ବିପଦାତ୍ମକ, ବିପଜ୍ଜନକ ।

ବିପଦ୍ଗ୍ରସ୍ତ—ପୁଂ. ବିଂ. (୩ତତ୍) ବିପନ୍ନ, ଯେ ବିପଦରେ ପଡ଼ିଥାଏ ।

ବିପଦ୍ବିନାଶକ—ପୁଂ.ବିଂ.ଯେ ବିପଦକୁ ନାଶକରନ୍ତି ଅର୍ଥାତ୍ ବିପନ୍ନକୁ ଉଦ୍ଧାର କରନ୍ତି ।

ବିପଦ୍ବିଶିଷ୍ଟ—ବିଂ.(୩ତତ୍)ବିପତ୍ସଙ୍କୁଳ

ବିପଦ୍ବିହୀନ—ବିଂ. (୩ତତ୍) ବିପତ୍ଶୂନ୍ୟ

ବିପଦ୍ବେଷ୍ଟିତ—ବିଂ. (୩ତତ୍)ଯାହାକୁ ସର୍ବତୋଭାବେ ବିପଦ ଘୋଟିଅଛି ।

ବିପଦ୍ସଙ୍କୁଳ—ବିଂ. (୩ତତ୍) ଯାହାର ଚତୁର୍ଦ୍ଦିଗରେ ବିପଦ ବେଢ଼ି ରହିଥାଏ ।

ବିପଦ୍ସମୁଦ୍ର—ବି. ( ରୂପକ. କ.ଧା ) ସମୁଦ୍ରପରି ମହାବିପଦ ।

ବିପଦ୍ସରିତ୍—ବି. (ରୂପକ. କ.ଧା)ନଦୀ ପରି ମହାବିପଦ୍ ।

ବିପଦ—ଗ୍ରା. ବି. ବିପଦ୍ ଦେଖ ।

ବିପଦାକୁଳ—ପୁଂ. ବିଂ. (୩ତତ୍)ଆପଦ ଦ୍ୱାରା ଜର୍ଜରିତ ।

ବିପଦାକ୍ରାନ୍ତ—ବିଂ. (୩ତତ୍)ବିପଦଗ୍ରସ୍ତ ।

ବିପଦାପନ୍ନ—ବିଂ. (୨ତତ୍) ବିପଦରେ ପତିତ,ବିପଦ୍ଗ୍ରସ୍ତ, ବିପନ୍ନ,(ସ୍ତ୍ରୀ)ବିପଦାପନ୍ନା । [ ବିପଦ ।

ବିପଦାର୍ଣ୍ଣବ—ବି. ସମୁଦ୍ର ପରି ଦୁର୍ଲଙ୍ଘ୍ୟ

ବିପଦାର୍ତ୍ତି—ପୁଂ. ବିଂ. (୩ତତ୍) ବିପଦ ଦ୍ୱାରା ବ୍ୟାକୁଳ ବା ଜର୍ଜରିତ ।

ବିପଦୁତ୍ତରଣ—ବି. (୫ତତ୍) ବିପଦରୁ ନିସ୍ତାର ପାଇବା ।

ବିପଦୁତ୍ତୀର୍ଣ୍ଣ—ବିଂ. ( ୫ତତ୍ )ବିପଦରୁ ନିସ୍ତାର ପାଇଥିବା ।

ବିପଦୁତ୍ପନ୍ନ—ବିଂ.(୫ତତ୍)ବିପଦରୁ ଜାତ

ବିପଦୁତ୍ପାଦକ—ପୁଂ. ବିଂ. ବିପଜ୍ଜନକ, (ସ୍ତ୍ରୀ) ବିପଦୁତ୍ପାଦିକା ।

ବିପଦୁଦ୍ଧରଣ—ବି. ( ୫ତତ୍ ) ଆପଦରୁ ଉଦ୍ଧାର କରିବା ।

ବିପଦୁଦ୍ଧରଣକ୍ଷମ—ପୁଂ.ବିଂ.ଯେ ଅନ୍ୟକୁ ବିପଦରୁ ଉଦ୍ଧାର କରିପାରେ, (ସ୍ତ୍ରୀ) ବିପଦୁଦ୍ଧରଣକ୍ଷମା । [ ଲାଭ ।

ବିପଦୁଦ୍ଧାର—ବି.(୫ତତ୍)ବିପଦରୁ ନିଷ୍କୃତି-

ବିପଦୁଦ୍ଧାରକ—ପୁଂ.ବିଂ. ଯେ ବିପଦରୁ ଉଦ୍ଧାର କରେ ।

ବିପଦ୍ଧୀନ—ବିଂ. (୩ତତ୍) ବିପଦଶୂନ୍ୟ ।

ବିପଦ୍ଧେତୁକ—ବିଂ. (ବ.ବ୍ରୀ)ବିପଜ୍ଜନିତ

ବିପଦ୍ଭଞ୍ଜନ—ବି. ଯେ ବିପଦ ନାଶକରେ, ପରମେଶ୍ୱର, ବିପଦ୍ରକ୍ଷାକରଣ

ବିପଦ୍ରହିତ—ବିଂ. (୩ତତ୍) ବିପଦ୍ହୀନ ।

ବିପନ—ଗ୍ରା. ବି. କ୍ଷୌରକର୍ମ ।

ବିପନ୍ଥା—ଗ୍ରା. ବି. ବିପଥ ଦେଖ ।

ବିପନ୍ନ—ପୁଂ. ବିଂ, (ବି+ପଦ୍+ମ.ତ) ବିପଦ୍ଗ୍ରସ୍ତ,ବିନଷ୍ଟ,(ପୁଂ.ବି.କ.ତ)ସର୍ପ ।

ବିପନ୍ନତା—ସ୍ତ୍ରୀ. ବି. ବିପନ୍ନର ଭାବ, ବିପଦ୍, ବିପତ୍ତି ।

ବିପନ୍ନତାରକ—ପୁଂ.ବିଂ. ବିପନ୍ନ ବ୍ୟକ୍ତିର ଉଦ୍ଧାରକର୍ତ୍ତା ।

ବିପନ୍ନତାରଣ—ବି. ବିପଦ୍ଗ୍ରସ୍ତ ବ୍ୟକ୍ତିକୁ ରକ୍ଷା କରିବା, (ବିଂ) ବିପନ୍ନ ବ୍ୟକ୍ତିର ରକ୍ଷାକାରୀ ।

ବିପନ୍ନବତ୍ସଳ—ପୁଂ. ବିଂ. (୬ତତ୍) ଯେ ବିପନ୍ନ ବ୍ୟକ୍ତିକୁ ସ୍ନେହ କରେ ଏବଂ ତାକୁ ବିପଦରୁ ରକ୍ଷାକରେ ।

ବିପନ୍ନଶରଣ—ବି. ବିପଦ୍ଗ୍ରସ୍ତ ବ୍ୟକ୍ତିର ଆଶ୍ରୟ ସ୍ଥଳ ।

ବିପନ୍ନାର୍ତ୍ତିହର—ପୁଂ. ବିଂ. ଯେ ବିପନ୍ନ ବ୍ୟକ୍ତିର ଦୁଃଖ ଦୂରକରେ ।

ବିପନ୍ନାଶ୍ରୟ—ବି. ବିପନ୍ନ ବ୍ୟକ୍ତିର ଏକମାତ୍ର ସହାୟ ।

ବିପନ୍ନିବର୍ତ୍ତିକ—ପୁଂ. ବିଂ. ବିପଦ୍ଭଞ୍ଜନ, ବିପନ୍ନିବାରକ ଦେଖ ।

ବିପନ୍ନିବାରକ—ପୁଂ.ବିଂ. ଯେ ବିପଦକୁ ନିବାରଣ କରେ ।

ବିପନ୍ନିବାରଣ—ବି. ବିପଦ ଘଟାଇ ନ ଦେବା, ( ପୁଂ. ବିଂ ) ବିପନ୍ନିବାରକ ଦେଖ ।

ବିପନ୍ନିବୃତ୍ତି—ବି. ବିପଦର ଶାନ୍ତି ।

ବିପନ୍ନିଷ୍କୃତି—ବି.ବିପଦରୁ ଉଦ୍ଧାର ଲାଭ

ବିପରାକ୍ରମ—ବିଂ. ବିଗତ ପରାକ୍ରମ, ପରାକ୍ରମରହିତ ।

ବିପର୍ଯ୍ୟସ୍ତ—ବିଂ.(ବି+ପରି+ଅସ୍+କ.ତ) ବିପର୍ଯ୍ୟସ୍ତ, ବ୍ୟସ୍ତବ୍ୟସ୍ତ, ପରିବର୍ତ୍ତିତ, ବିନଷ୍ଟ, ମୃତ, ବିପରୀତ,ବିକୃତ

ବିପର୍ଯ୍ୟସ୍ତ—ବିଂ. (ବି+ପରି+ଅସ୍+

ଭା.ତ) ବିପର୍ଯ୍ୟାସ, ବୈପରୀତ୍ୟ, ପରିବର୍ତ୍ତନ, ମୃତ୍ୟୁ, ବିନାଶ, ବିକୃତ ।
ବିପରିଣାମ—ପୁଂ. ବି. (ବି+ପରି+ନମ୍+ଭା.ଅ) ବିପର୍ଯ୍ୟାସ, ପରିବର୍ତ୍ତନ ।
ବିପରିଣାମୀ—ପୁଂ.ବିଂ (ବି+ପରି+ନମ୍+ଇନ୍) ପରିବର୍ତ୍ତନଶୀଳ,ବୈପରୀତ୍ୟବିଶିଷ୍ଟ, ପରିଣାମବିଶିଷ୍ଟ,(ସ୍ତ୍ରୀ)ବିପରିଣାମିନୀ ।
ବିପରିଧାନ—କ୍ଲୀ. ବି. ବିଶେଷରୂପେ ପରିଧାନ, ପରିଧାନର ଅଭାବ ।
ବିପରିଭ୍ରଂଶ—ପୁଂ. ବି. ବିପରିଣାମ, ବିନାଶ ।
ବିପରିଲୋପ—ପୁଂ.ବି. ବିଲୋପ,ଧ୍ୱଂସ ।
ବିପରିବର୍ତ୍ତନ—କ୍ଲୀ. ବି. (ବି+ପରି+ବୃତ୍+ଭା.ଅନ) ବିପର୍ଯ୍ୟାସ, ଓଲଟାଇବା, ବଦଳାଇବା, ସମ୍ପୂର୍ଣ୍ଣରୂପେ ପରିବର୍ତ୍ତନ ।
ବିପରୀତ—ବିଂ. (ବି+ପରି+ଇ+କ.ତ) ବିପର୍ଯ୍ୟସ୍ତ, ଓଲଟା, ବିରୁଦ୍ଧ, ପ୍ରତିକୂଳ, ଅପସବ୍ୟ, ବିଲୋମକ, ଅସ୍ୱାଭାବିକ, ଅନଷ୍ଟାଚରଣରେ ତତ୍ପର,(ବି) ରତିବନ୍ଧବିଶେଷ,ଓଲଟା ରତି,ପୁରୁଷାୟିତ ରତି,(ଗ୍ରା.ବି) ଓଲଟା ପାଶ,ଆଶାତୀତ ଘଟଣା ।
ବିପରୀତଗତି—ବି. (କ.ଧା) ବିରୁଦ୍ଧଦିଗରେ ଗମନ, (ବିଂ ବ.ବ୍ରୀ) ଯେ ବିପରୀତ ଦିଗରେ ଗତି କରୁଥାଏ ।
ବିପରୀତବନ୍ଧ—ବି. ପୁରୁଷାୟିତ ରତିବନ୍ଧ ବିଶେଷ, ଓଲଟ ରତି ।
ବିପରୀତତା—ସ୍ତ୍ରୀ.ବି. ବୈପରୀତ୍ୟ,ଓଲଟ ।
ବିପରୀତପଥ୍ୟା—ସ୍ତ୍ରୀ.ବି. ଛନ୍ଦୋବିଶେଷ ।
ବିପରୀତା—ସ୍ତ୍ରୀ.ବି.(ବିପରୀତ+ଆ)କାମୁକୀ ସ୍ତ୍ରୀ, ଦୁଷ୍ଟଚରିତ୍ରା ସ୍ତ୍ରୀ, (ବିଂ) ବିପରୀତର ସ୍ତ୍ରୀଲିଙ୍ଗ ।
ବିପରୀତାର୍ଥ—ବି. (କ.ଧା) ଓଲଟା ଅର୍ଥ ବା ମର୍ମ, (ବିଂ) ବିପରୀତାର୍ଥକ ଦେଖ ।
ବିପରୀତାର୍ଥକ—ବିଂ.( ବିପରୀତାର୍ଥ+କ) ଯେ କୌଣସି କଥାର ବିପରୀତ ଅର୍ଥ କରେ, ଯହିଁରୁ ବିପରୀତାର୍ଥ ବୁଝାଯାଏ ।
ବିପରୀତୋତ୍ତର—ବିଂ. ବିପରୀତ ଉତ୍ତରବିଶିଷ୍ଟ, ପ୍ରତିକୂଳ ଉତ୍ତର ।
ବିପର୍ଣ୍ଣକ—ପୁଂ. ବି. (ବି+ପର୍ଣ୍ଣ+କ) ପଲାଶ ବୃକ୍ଷ, (ବିଂ). ପର୍ଣ୍ଣରହିତ ।
ବିପର୍ଯ୍ୟୟ—ବିଂ. (ବି+ପରି+ଅଞ୍ଚ୍+କିପ୍) ବିପରୀତ, ଓଲଟା, ପ୍ରତିଫଳ ।
ବିପର୍ଯ୍ୟ(ର୍ଯ୍ୟା)ୟ—ବି. (ବି+ପରି+ଇ+ଭା.ଅ) ବ୍ୟତିକ୍ରମ, ବୈପରୀତ୍ୟ, ବିପର୍ଯ୍ୟାସ,ବ୍ୟତ୍ୟୟ,ଚିତ୍ତବୃତ୍ତିବିଶେଷ, ବିନାଶ, ଓଲଟା, ଓଲଟପାଲଟ,ଦୁଇବସ୍ତୁର ଅନ୍ୟୋନ୍ୟରେ ସ୍ଥାନ ପରିବର୍ତ୍ତନ ।
ବିପର୍ଯ୍ୟସ୍ତ—ବିଂ. ( ବି+ପରି+ଅସ୍+କ.ତ) ବିପର୍ଯ୍ୟୟପ୍ରାପ୍ତ, ଓଲଟପାଲଟ ହୋଇଥିବା, ଛନ୍ଦୋଭଙ୍ଗ, ଛିନ୍ନଭିନ୍ନ, ସମ୍ପୂର୍ଣ୍ଣରୂପେ ପରାଭୂତ ହୋଇ ଏଣେ ତେଣେ ଚାଲିଥିବା, ବ୍ୟତିକ୍ରମପ୍ରାପ୍ତ, ପରାବୃତ୍ତ ।
ବିପର୍ଯ୍ୟାଣ—ବି. ବିପର୍ଯ୍ୟୟ,ବ୍ୟତିକ୍ରମ ।
ବିପର୍ଯ୍ୟାସ—ବି. (ବି+ପରି+ଅସ୍+ଭା.ଅ) ବିପର୍ଯ୍ୟୟ, ବୈପରୀତ୍ୟ, ଏମ-ପରିବର୍ତ୍ତନ, ବ୍ୟତିକ୍ରମ, ଅପ୍ରମାତ୍ମକ ବୁଦ୍ଧିବିଶେଷ, ଛନ୍ଦୋଭଙ୍ଗ, କାଳ୍ପନିକ ବିଷୟର ଅସ୍ତିତ୍ୱ ସ୍ୱୀକାର, ପରସ୍ପର ସ୍ଥାନପରିବର୍ତ୍ତନ ।
ବିପଳ—କ୍ଲୀ. ବି. (ବି+ପଳ) ଏକପଳ (ଲିତା)ର ୬୦ଭାଗରୁ ଏକଭାଗ,କାଳର ସୂକ୍ଷ୍ମାଂଶବିଶେଷ ।
ବିପଳାୟୀ—ପୁଂ. ବିଂ. ପଳାୟନକାରୀ ।
ବିପଳାଶ—ବିଂ. (ବ.ବ୍ରୀ) ପତ୍ରହୀନ ।
ବିପବନ—ବିଂ.(ବି+ପୂ+ଅନ)ଅତ୍ୟନ୍ତ ପବିତ୍ରକାରୀ, (ବି) ବିଶୁଦ୍ଧ ପବନ,ସ୍ୱଚ୍ଛବାୟୁ । [ ପଶୁଶୂନ୍ୟ ।
ବିପଶୁ—ବିଂ. ( ବ.ବ୍ରୀ ) ପଶୁରହିତ,
ବିପଶ୍ଚି—ବିଂ, ବିପଶ୍ଚିତ୍, ପଣ୍ଡିତ ।
ବିପଶ୍ଚିକ—ପୁଂ. ବିଂ. ପଣ୍ଡିତ ।
ବିପଶ୍ଚିତ୍—ବିଂ. (ବି+ପ୍ର+ଚିତ୍+କ. କିପ୍)ସୂକ୍ଷ୍ମଦର୍ଶୀ,ଦୂରଦର୍ଶୀ,ପଣ୍ଡିତ,ବିଜ୍ଞ ।
ବିପଶ୍ଚିତ—ବିଂ. ବିପଶ୍ଚିତ୍ ଦେଖ ।
ବିପସ୍—କ୍ଲୀ. ବି. ମେଧା, ଜ୍ଞାନ ।
ବିପାଂସୁଲ—ବିଂ. ପାଂଶୁଳରହିତ ।
ବିପାକ—ବି. (ବି+ପଚ୍+ଭା.ଅ)ପଚନ, ଉତ୍ତମରୂପେ ରନ୍ଧନ,ପରିପକ୍ୱତା,ପୂର୍ଣ୍ଣଦଶାପ୍ରାପ୍ତି, ବିଡ଼ମ୍ବନା, କର୍ମଫଳ,ଫଳମାତ୍ର, କର୍ମଫଳର ପରିମାଣ, ବିପଦ, ଦୁର୍ଗତି, ଦୁର୍ଭାଗ୍ୟ, ପରିପାକ, ଖାଦ୍ୟଦ୍ରବ୍ୟ ଜୀର୍ଣ୍ଣହେବା,.ଭୋଗ, ଅବସ୍ଥାନ୍ତର ପରିବର୍ତ୍ତନ, ଦୁର୍ଘଟଣା, ଆୟୁଃ, କର୍ମର ବୈଦୃଶ ଫଳ, (ଗ୍ରା.ବି) ଅଙ୍ଗାର୍ଣ୍ଣ ।
ବିପାକକର୍ମ—ସ୍ତ୍ରୀ. ବି. ଦୁର୍ଭାଗ୍ୟ, ମନ୍ଦଭାଗ୍ୟ, କର୍ମଦଶା ।
ବିପାକୀ—ବିଂ. କର୍ମଫଳବାହୀ,ଆବର୍ତ୍ତନଶୀଳ (ଫଳ) । [ ବାଣ ।
ବିପାଟ—ପୁଂ. ବି. (ବି+ପଟ୍+ଅ)ଶର,
ବିପାଟକ—ବିଂ. ପ୍ରକାଶକ, ଅଭିବ୍ୟକ୍ତିକାରକ ।
ବିପାଟନ—କ୍ଲୀ.ବି.(ବି+ପଟ୍+ଭା.ଅନ) ବିଦାରଣ,ଉତ୍ପାଟନ,ଖୋଳିବା,ଭେଦନ
ବିପାଟଲ—ବିଂ. ବିଶେଷଭାବେ ପାଟଳବର୍ଣ୍ଣ ବିଶିଷ୍ଟ ।
ବିପାଟିତ—ବିଂ. (ବି+ପଟ୍+ଣିଚ୍+କ.ତ) ବିଦାରିତ, ଉତ୍ପାଟିତ ।
ବିପାଠ—ପୁଂ. ବି. ( ବି+ପଠ୍+ଅ ) ଇଷୁ, ବାଣ, ଶର ।
ବିପାଣ୍ଡବ—ବିଂ.(ବ.ବ୍ରୀ) ପାଣ୍ଡବ ବିରହିତ
ବିପାଣ୍ଡୁ—ବି.ବନକର୍କଟୀ, ବନକାକୁଡ଼ି, ବିଶେଷ ପାଣ୍ଡୁରବର୍ଣ୍ଣ ।
ବିପାଣ୍ଡୁକ(କା)—ବିଂ. ଅପାଣ୍ଡୁକ, ବୁଦ୍ଧିହୀନ, ନିର୍ବୋଧ, ଅସଭ୍ୟ, ଅଯୋଗ୍ୟ ।
ବିପାଣ୍ଡୁତା—ସ୍ତ୍ରୀ. ବି. ପାଣ୍ଡୁବର୍ଣ୍ଣପ୍ରାପ୍ତି ।
ବିପାଣ୍ଡୁର—ବିଂ. (ବି+ପାଣ୍ଡୁର) ଅତିଶୟ ପାଣ୍ଡୁରବର୍ଣ୍ଣ, ଆରକ୍ତଶ୍ୱେତ,(ବି) ମହାମେଦା ।
ବିପାତକ—ବିଂ. (ବି+ପାତକ)ନାଶକ ।
ବିପାଦକ—ପୁଂ.ବିଂ. (ବି+ପଦ୍+ଣିଚ୍+କ ଟକ) ଘାତକ,(ପୁଂ.ବି)ହତ୍ୟାକାରୀ ବ୍ୟକ୍ତି ।

ବିପାଦନ—ବି. (ବି+ପଦ୍+ଣିଚ୍+ଭା.ଅନ) ବ୍ୟାପାଦନ, ହତ୍ୟା, ବଧ ।

ବିପାଦିକା—ସ୍ତ୍ରୀ. ବି. (ବି+ପଦ୍+ଣ.ଅକ+ଆ) ଗୋଡ଼ଫାଟ ରୋଗ,ପ୍ରହେଳିକା, (ସ୍ତ୍ରୀ. ବି ଓ ବିଂ) ବିପାଦକର ସ୍ତ୍ରୀଲିଙ୍ଗ ।

ବିପାଦିତ—ପୁଂ, ବିଂ. (ବି+ପଦ୍+ଣିଚ୍+ର୍ମ.କ୍ତ)ବ୍ୟାପାଦିତ,ବିନାଶିତ,ହତ ।

ବିପାପ—ବିଂ.ପାପରହିତ,ବିଧୌତ ପାପ, (ସ୍ତ୍ରୀ) ବିପାପା ।

ବିପାର୍ଶ୍ୱ—ବି. ପାର୍ଶ୍ୱଦେଶ ।

ବିପାଳ—ବିଂ. ( ବି+ପାଳ ) ଯେଉଁ ପଶୁର କେହି ପାଳକ ବା ମାଲିକ ନାହିଁ ।

ବିପାଶ୍—ସ୍ତ୍ରୀ. ବି. ବିପାଶା ନଦୀ ।

ବିପାଶ—ପୁଂ.ବିଂ. (ବ.ବ୍ରୀ) ପାଶରହିତ, ପାଶବିମୁକ୍ତ, (ବି) ବରୁଣ,(ସ୍ତ୍ରୀ)ବିପାଶା ।

ବିପାଶା—ବି. ପଞ୍ଜାବର ପଞ୍ଚନଦ ମଧ୍ୟରୁ ଏକତମ ।

ବିପାଶୀ—ପୁଂ. ବିଂ. ( ବିପାଶ+ଇନ୍ ) ପାଶବିଯୁକ୍ତ, ପାଶବିମୁକ୍ତ ।

ବିପିନ—କ୍ଲୀ. ବି. ( ବେପ୍+ଅଧି.ଇନ ) ବନ, ଅରଣ୍ୟ,କାନନ, (ବିଂ)ଗୀତପ୍ରଦ ।

ବିପିନବିହାରୀ—ଗ୍ରା. ପୁଂ. ବିଂ. କାନନବିହାରୀ, (ବି) ଶ୍ରୀକୃଷ୍ଣଙ୍କ ନାମ ।

ବିପୁଂସକ—ପୁଂ.ବିଂ. (ବି+ପୁମ୍ସ୍+ଅକ) ପୁଂସ୍ତ୍ୱରହିତ, ଅମାନୁଷିକ ।

ବିପୁଂସୀ—ସ୍ତ୍ରୀ. ବିଂ. ପୁରୁଷପରି ପ୍ରକୃତି ବିଶିଷ୍ଟା(ରମଣୀ), ଅଣ୍ଡିରଚଣ୍ଡୀ ।

ବିପୁତ୍ର—ପୁଂ. ବିଂ. (ବ.ବ୍ରୀ)ପୁତ୍ରରହିତ, ପୁତ୍ରହୀନ, (ସ୍ତ୍ରୀ) ବିପୁତ୍ରା ।

ବିପୁରୀଷ—ବିଂ. ମଳମୂତ୍ର ବିବର୍ଜିତ ।

ବିପୁରୁଷ—ବିଂ. ପୁରୁଷରହିତ,ପୁରୁଷଶୂନ୍ୟ

ବିପୁଳ—ପୁଂ. ବିଂ. (ବି+ପୁଲ୍+କ.ଅ) ବୃହତ୍, ବଡ଼, ଅଗାଧ, ମହତ୍, ପ୍ରଶସ୍ତ, ବିଶାଳ, ନିମ୍ନ, ଶାନ୍ତ,ଯାହାର ରୋମାଞ୍ଚ ହୋଇଅଛି, (ବି) ଉତ୍ତରମେରୁ, ଭଦ୍ର ଲୋକ, ମହାମାନ୍ୟ ବ୍ୟକ୍ତି, ରୋହିଣୀ ଗର୍ଭଜାତ ବସୁଦେବଙ୍କ ଏକପୁତ୍ର,(ସ୍ତ୍ରୀ) ବିପୁଳା ।

ବିପୁଲକ—ବିଂ. (ବ.ବ୍ରୀ) ପୁଲକହୀନ ।

ବିପୁଲକାୟ—ପୁଂ. ବି, (କ,ଧା) ବୃହତ୍ ଶରୀର, (ପୁଂ.ବିଂ-ବ.ବ୍ରୀ)ବିଶାଳଶରୀର ବିଶିଷ୍ଟ (ବ୍ୟକ୍ତି), ବୃହଦାକାର, ( ସ୍ତ୍ରୀ ) ବିପୁଲକାୟା ।

ବିପୁଲଘରଦାନ—ଗ୍ରା. ବି. କୌଣସି ବ୍ରାହ୍ମଣଙ୍କୁ ଜମି, ଘର, ଲୁଗା, ଅଳଂକାର,ଧନ,ଧାନ୍ୟ, ଭୋଜ୍ୟବସ୍ତୁ,ଶଯ୍ୟାଦି ଓ ତାହାର ପରିବାରର ଯାବଜ୍ଜୀବ ଆବଶ୍ୟକୀୟ ଦ୍ରବ୍ୟର ଦାନ ।

ବିପୁଲଜଘନା—ସ୍ତ୍ରୀ. ବିଂ. (ବ.ବ୍ରୀ)ସ୍ଥୂଳନିତମ୍ବଯୁକ୍ତା (ସ୍ତ୍ରୀ) ।

ବିପୁଲଧନ—ବି. (କ.ଧା)ବହୁଧନ,ବିଭବ (ବିଂ.ବ.ବ୍ରୀ );ବହୁଧନୀ, (ସ୍ତ୍ରୀ)ବିପୁଲଧନା

ବିପୁଲଭୋଗ—ଗ୍ରା.ବି.ଅଏସ୍‌ଭୋଗ,ମଉଜ, ଅଏସ୍‌ରେ ରହିବା ନିମନ୍ତେ ମନୁଷ୍ୟର ଦରକାରୀ ସମସ୍ତ ବସ୍ତୁ ।

ବିପୁଲମତି—ପୁଂ.ବି, ବୋଧିସତ୍ତ୍ୱ ବିଶେଷ, (ବିଂ, ବ.ବ୍ରୀ) ଅତିବୁଦ୍ଧିମାନ୍ ।

ବିପୁଲରସ—ବି, (ବ,ବ୍ରୀ) ଇକ୍ଷୁ, ଆଖୁ, (ବିଂ) ବହୁରସ ବିଶିଷ୍ଟ ।

ବିପୁଲସ୍କନ୍ଧ—ବି.(ବ.ବ୍ରୀ)ଅର୍ଜୁନଙ୍କ ନାମାନ୍ତର, (ବିଂ) ବିସ୍ତୃତାୟତ ସ୍କନ୍ଧବିଶିଷ୍ଟ ।

ବିପୁଲା—ସ୍ତ୍ରୀ. ବି. (ବିପୁଲ+ଆ)ପୃଥିବୀ, ଆର୍ଯ୍ୟାଛନ୍ଦୋବିଶେଷ, ବିପୁଲ ପର୍ବତସ୍ଥା ଦେବୀ, ନଦୀ ବିଶେଷ ।

ବିପୁଲାସ୍ରବା—ସ୍ତ୍ରୀ. ବି. (ବିପୁଲ+ଆ+ସ୍ରୁ+ଅ+ଆ) ଗୃହକନ୍ୟା,ଘୃତକୁମାରୀ ।

ବିପୁଲନାମ୍ବୁରୁହ—ବି. ବାଲୁକାମୟ ତଟ ଓ ପଦ୍ମଶୋଭିତ ସରିତ୍ ।

ବିପୁଲୋରସ୍କ—ପୁଂ.ବିଂ.(ବ.ବ୍ରୀ)ବିଶାଳବକ୍ଷବିଶିଷ୍ଟ, ଯାହାର ଛାତି ବଡ଼ ବା ଚଉଡ଼ା ।

ବିପୁଷ୍ଟ—ବିଂ.(ବି+ପୁଷ୍ଟ)ବିଶେଷ ରୂପେ [ପୁଷ୍ଟ ବା ବର୍ଦ୍ଧିତ ।

ବିପୁଷ୍ପ—ବିଂ. ( ବ.ବ୍ରୀ ) ପୁଷ୍ପହୀନ, ପୁଷ୍ପରହିତ (ବୃକ୍ଷ) ।

ବିପୁଷ୍ପିତ—ବିଂ.ପ୍ରଫୁଲ୍ଲିତ,ହର୍ଷିତ,ସ୍ମିତ ।

ବିପୂୟ—ବି.(ବି+ପୂ+ର୍ମ.ଯ)ମୁଞ୍ଜତୃଣ, ଶର,(ବିଂ) ବିଶେଷ ପବିତ୍ର ।

ବିପୂୟକ—ବିଂ. ପୂୟହୀନ ।

ବିପୃଷ୍—ବି. ( ବି+ପୃଷ୍ ) ଦ୍ରବବସ୍ତୁର ବିନ୍ଦୁ, ଜଳାଦି ତରଳବସ୍ତୁର କଣା ବା ବୁନ୍ଦା ।

ବିପ୍ର—ପୁଂ. ବି. (ବି+ପ୍ରା+କ.ଆଦ୍ରିକ, ବେଦଜ୍ଞ ବ୍ରାହ୍ମଣ, ବ୍ରାହ୍ମଣ, ମୁନି,ଋଷି, ପୁରୋହିତ, ଜ୍ଞାନୀବ୍ୟକ୍ତି, ଅଶ୍ୱତ୍ଥ,ଶିରୀଷବୃକ୍ଷ,ଦେଶୁକବୃକ୍ଷ,(ବିଂ)ମେଧାବୀ,ସ୍ତୋତା, ବୁଦ୍ଧିମାନ୍, ଶୁଭକର୍ତ୍ତା ।

ବିପ୍ରକଣ୍ଠଦାସ—ଗ୍ରା. ବି. ଜନୈକପ୍ରାଚୀନ ଓଡ଼ିଆ କବି,(ନଅପୋଇ ଓ ଛଅପୋଇ ଏହାଙ୍କ ରଚିତ ପୁସ୍ତକ) ।

ବିପ୍ରକର୍ଷ—ପୁଂ. ବି. (ବି+ପ୍ର+କୃଷ୍+ଅ)ବିଶେଷ ରୂପେ ଆକର୍ଷଣ,ଦୂରବର୍ତ୍ତୀ ହେବା, ଦୂରତ୍ୱ ।

ବିପ୍ରକର୍ଷଣ—କ୍ଲୀ. ବି. ( ବିପ୍ରକର୍ଷ+ଭା. ଅନ) ଆକର୍ଷଣର ବିପରୀତ, ବିପରୀତ ଦିଗକୁ ଆକର୍ଷଣ ।

ବିପ୍ରକର୍ଷଣଶକ୍ତି—ବି, ଯେଉଁ ଶକ୍ତି ଦ୍ୱାରା ପଦାର୍ଥର ପରମାଣୁ ସକଳ ପରସ୍ପରକୁ ପରସ୍ପରଠାରୁ ପୃଥକ୍ କରି ରଖନ୍ତି ।

ବିପ୍ରକାର—ପୁଂ. ବି, (ବି+ପ୍ର+କୃ+ଭା.ଅ) ଅପକାର, ତିରସ୍କାର, ଅନିଷ୍ଟ, ଉପଦ୍ରବ, ଅନାଦର, ବିବିଧପ୍ରକାର ।

ବିପ୍ରକାଶ—ପୁଂ.ବି (ବି+ପ୍ର+କାଶ୍+ଅ) ପ୍ରକାଶ, ଅଭିବ୍ୟକ୍ତି ।

ବିପ୍ରକାଷ୍ଠ—କ୍ଲୀ. ବି. ତୂଳବୃକ୍ଷ ।

ବିପ୍ରକୀର୍ଣ୍ଣ—ବିଂ. ( ବି+ପ୍ର+କୃ+ର୍ମ. କ୍ତ) ଇତସ୍ତତଃ ବିକ୍ଷିପ୍ତ, ଛତ୍ରଭଙ୍ଗ, ବିପର୍ଯ୍ୟସ୍ତ, ଆଲୁଳାୟିତ, ଅସ୍ତବ୍ୟସ୍ତ ।

ବିପ୍ରକୃତ୍—ପୁଂ.ବିଂ, (ବି+ପ୍ର+କୃ+କ୍ୱିପ୍) ଅନିଷ୍ଟକାରୀ ।

ବିପ୍ରକୃତ—ବିଂ.(ବି+ପ୍ର+କୃ+ର୍ମ.କ୍ତ) ଅପକୃତ, ତିରସ୍କୃତ, ନିଗୃହୀତ, ଉତ୍ପୀଡ଼ିତ, ଉପଦ୍ରୁତ, ଅବମାନିତ ।

ବିପ୍ରକୃତି—ସ୍ତ୍ରୀ ବି. (ବି+ପ୍ର+କୃ+ଭା. କ୍ତି) ବିପ୍ରକାରାର୍ଥ, ଅପମାନ, ଗାଳି, ଭର୍ତ୍ସନା ।

ବିପ୍ରକୃଷ୍ଟ—ବିଂ (ବି+ପ୍ର+କୃଷ୍+ର୍ମ.କ୍ତ

ତ) ଦୂରବର୍ତ୍ତୀ, ଦୂରସ୍ଥ, ଆନ୍ତରିତ, ଟେଲି କରି ଦୂରୀକୃତ, ବର୍ଜିତ ।

ବିପ୍ରକୃଷ୍ଟକ—ବିଂ. ଦୂରବର୍ତ୍ତୀ ।

ବିପ୍ରକୃଷ୍ଟତ୍ୱ—ବି. ଦୂରତ୍ୱ ।

ବିପ୍ରକୃତି—କ୍ଲୀ. ବି. ବିଶେଷ ସଙ୍କଳ୍ପ, ଅଦ୍ଭୁତ ପ୍ରକୃତି ।

ବିପ୍ରଚରଣ—ବି.(୬ତତ୍) ବ୍ରାହ୍ମଣର ପାଦ, ବିଷ୍ଣୁଙ୍କର ହୃଦୟରେ ଅଙ୍କିତ ଭୃଗୁମୁନିଙ୍କର ଗୋଇଠାର ଚିହ୍ନ ।

ବିପ୍ରଚିତ୍(ତ)ଇ.ତ୍ତି)—ପୁଂ. ବି. ଦନୁର ପୁତ୍ର ଓ ରାହୁର ପିତା ଦାନବବିଶେଷ

ବିପ୍ରଜନ—ପୁଂ.ବି.ବ୍ରାହ୍ମଣ ଜନ, ପୁରୋହିତ,ଋଷିବିଶେଷ,(ବି.୬ତତ୍)ଉତ୍ପତ୍ତି ।

ବିପ୍ରଣାଶ—ବି. ( ବିପ୍ର+ନାଶ ) ୬ତତ୍; ବ୍ରାହ୍ମଣନାଶ, (ବି+ପ୍ରଣାଶ, ବିଶେଷ ରୂପେ ଧ୍ୱଂସ ।

ବିପ୍ରତା—ବି. ( ବିପ୍ର+ଭା.ତ+ଆ ) ବ୍ରାହ୍ମଣତ୍ୱ, ବ୍ରାହ୍ମଣତା ।

ବିପ୍ରତାରକ—ପୁଂ.ବିଂ. (ବି+ପ୍ରତାରକ) ଅତିଶୟ ପ୍ରତାରକ, ଅତ୍ୟନ୍ତ ବଞ୍ଚକ ।

ବିପ୍ରତାରିତ—ବିଂ. ( ବି +ପ୍ରତାରିତ ) ବଞ୍ଚିତ ।

ବିପ୍ରତି(ତୀ)କାର—ବି.(ବି+ପ୍ରତିକାର) ବିରୋଧ, ପ୍ରତିରୋଧ ।

ବିପ୍ରତିକୂଳ—ବିଂ. ବିରୁଦ୍ଧାଚାରୀ ।

ବିପ୍ରତିପତ୍ତି—ସ୍ତ୍ରୀ. ବି. (ବି+ପ୍ର+ପଦ୍+ତି) ବିରୋଧ, ଅସ୍ୱୀକାର, ସଂଶୟଜନକ ବାକ୍ୟ, ସନ୍ଦେହ, ପାର୍ଥକ୍ୟ, ଭେଦ, ବିକୃତି, (ନ୍ୟାୟ) ପରସ୍ପର ବିରୁଦ୍ଧ ଭାବଦ୍ୟୋତକ ବାକ୍ୟ, ପରସ୍ପର ବିରୋଧ ।

ବିପ୍ରତିପଦ୍ୟମାନ—ବିଂ. ପାପକାରୀ, ପାପାତ୍ମା ।

ବିପ୍ରତିପନ୍ନ—ବି (ବି+ପ୍ରତି+ପଦ୍+ତ)ଅସ୍ୱୀକୃତ, ସନ୍ଦିଗ୍ଧ, ବିରୁଦ୍ଧ,ବିରୋଧୀ, କିଂକର୍ତ୍ତବ୍ୟବିମୂଢ଼ ।

ବିପ୍ରତିଷିଦ୍ଧ—ବିଂ.(ବି + ପ୍ରତି+ଷିଧ୍+ତ) ନିଷିଦ୍ଧ, ବିରୁଦ୍ଧ, ନିବାରିତ ।

ବିପ୍ରତିଷେଧ—ବି. ( ବି + ପ୍ରତି + ଷିଧ୍ ଅ) ତୁଲ୍ୟବଳବିଶିଷ୍ଟ ବ୍ୟକ୍ତିଦ୍ୱୟ ବା ସ୍ୱାର୍ଥଦ୍ୱୟ ମଧ୍ୟରେ ବିରୋଧ, ନିଷେଧ, (ନ୍ୟାୟ) ତୁଲ୍ୟବଳବିରୋଧ, ନିଯନ୍ତ୍ରଣ, (ବ୍ୟାକରଣ) ଦୁଇଟି ପରସ୍ପର ବିରୋଧୀ ନିୟମ ବା ବିଧି ମଧ୍ୟରେ ପରସ୍ପର ବିରୋଧ ।

ବିପ୍ରତି(ତୀ)ସାର—ବି. (ବି+ପ୍ରତି+ସୃ+ଭା.ଅ)ଅନୁତାପ, ରୋଷ, ରାଗ, କ୍ରୋଧ, ଖଳତା, ଅମଙ୍ଗଳ । [ ବିପରୀତ ।

ବିପ୍ରତୀପ—ବିଂ. (ବି+ପ୍ରତୀପ) ପ୍ରତିକୂଳ,

ବିପ୍ରତ୍ୟୟ—ବି.କାର୍ଯ୍ୟ ଅକାର୍ଯ୍ୟାଦି ବିଷୟରେ ବିପରୀତ ଅଭିନିବେଶ ।

ବିପ୍ରଥିତ—ବିଂ. (ବି + ପ୍ରଥିତ) ବିଖ୍ୟାତ ।

ବିପ୍ରଦଗ୍ଧ—ପୁଂ.ବି.ଫଳମୂଳାଦି ଶୁଷ୍କ ଦ୍ରବ୍ୟ

ବିପ୍ରଦାସ—ବି. (୬ତତ୍) ବ୍ରାହ୍ମଣମାନଙ୍କର ଦାସ ବା ସେବକ ।

ବିପ୍ରଦୁଷ୍ଟ—ବିଂ. (ବି+ପ୍ରଦୁଷ୍ଟ)ପାପିଷ୍ଠ, ଅଧାର୍ମିକ, କାମୁକ, ବିନଷ୍ଟ, ମନ୍ଦ ।

ବିପ୍ରଦେବ—ପୁଂ.ବି.ଭୂଦେବ, ବ୍ରାହ୍ମଣ

ବିପ୍ରଧାବନ—ବିଂ. ଇତସ୍ତତଃ ବିକ୍ଷିପ୍ତ ଭାବେ ଦ୍ରୁତଗମନ ।

ବିପ୍ରଧୁକ୍—ବିଂ. (ବି+ପ୍ର+ଦୁହ୍+କ୍ୱିପ୍) ଲୋଭକାରୀ ।

ବିପ୍ରନଷ୍ଟ—ବିଂ. ବିଶେଷରୂପେ ନଷ୍ଟ ।

ବିପ୍ରପାତ—ବି. ବିଶେଷରୂପେ ପତନ, ନିମ୍ନପାତ ।

ବିପ୍ରପ୍ରିୟ—ପୁଂ.ବି. ପଲାଶବୃକ୍ଷ, ବ୍ରାହ୍ମଣର ଭଲ ପାଇବାର ପାତ୍ର ।

ବିପ୍ରମଠ—ବି. ବ୍ରାହ୍ମଣମାନଙ୍କର ମଠ ବା ଗୁରୁବାସ ।

ବିପ୍ରମତ୍ତ—ବିଂ. ଅତିଶୟ ପ୍ରମତ୍ତ ।

ବିପ୍ରମନାଃ—ବିଂ. (ବି+ପ୍ର+ମନସ୍) ଅନ୍ୟମନସ୍କ । [ କାରୀ ।

ବିପ୍ରମାର୍ଥୀ—ପୁଂ.ବିଂ. ଚୂର୍ଣ୍ଣକାରୀ, ମଥନ-

ବିପ୍ରମାଦୀ—ପୁଂ.ବିଂ. ବିପ୍ରମତ୍ତ,ବିଶେଷ ନିଶାଖୋର, ଅମନୋଯୋଗୀ ।

ବିପ୍ରମୁକ୍ତ—ବିଂ. (ବି +ପ୍ରମୁକ୍ତ) ବନ୍ଧନମୁକ୍ତ, ଉନ୍ମୁକ୍ତ, (ବାଣଆଦି)ନିକ୍ଷିପ୍ତ ।

ବିପ୍ରମୋକ୍ଷ—ବି. ବିମୁକ୍ତି, ବିମୋଚନ ।

ବିପ୍ରମୋକ୍ଷଣ—କ୍ଲୀ. ବି. ବିମୋଚନ, ବିମୁକ୍ତି ।

ବିପ୍ରମୋହ—ବି.(ବି+ପ୍ରମୋହ) ବିଶେଷ ଭାବରେ ମୁଗ୍ଧହେବା, ଚମତ୍କାର ।

ବିପ୍ରମୋହିତ—ବିଂ. ( ବି+ପ୍ରମୋହିତ ) ବିଶେଷରୂପେ ମୁଗ୍ଧ, ଚମତ୍କୃତ ।

ବିପ୍ରୟାଣ—କ୍ଲୀ.ବି. (ବି+ପ୍ର+ଯା + ଭା. ଅନ୍) ପଳାୟନ, ପ୍ରସ୍ଥାନ ।

ବିପ୍ରଯୁକ୍ତ—ବିଂ. (ବି + ପ୍ରଯୁକ୍ତ) ବିଶ୍ଳିଷ୍ଟ, ବିରହିତ,ବିଯୁକ୍ତ, ପୃଥକୀକୃତ, ବିଚ୍ଛେଦପ୍ରାପ୍ତ ।

ବିପ୍ରୟୋଗ—ବି. (ବି+ପ୍ରୟୋଗ) ବିପ୍ରଲମ୍ଭ, ବିରହ, ବିରୋଧ, ବିୟୋଗ, ବିସମ୍ବାଦ, ବିଚ୍ଛେଦ, ସଂଯୋଗାଭାବ ।

ବିପ୍ରରାଜ୍ୟ—କ୍ଲୀ. ବି. (୬ତତ୍) ବ୍ରାହ୍ମଣ ରାଜ୍ୟ, ବିଶେଷ ରୂପେ ରାଜତ୍ୱ ।

ବିପ୍ରଗ୍ରାମ—ବି. (ବିପ୍ର + ଗ୍ରାମ) ପଣ୍ଡିତଗ୍ରାମ ।

ବିପ୍ରର୍ଷି—ପୁଂ. ବି. ବ୍ରହ୍ମର୍ଷି ।

ବିପ୍ରଲପିତ—ବି. ଆଲୋଚିତ, ବିପ୍ରଳାପଯୁକ୍ତ ।

ବିପ୍ରଲପ୍ତ—କ୍ଲୀ. ବି. କଥୋପକଥନ, ପରସ୍ପର ବିତଣ୍ଡା ।

ବିପ୍ରଲବ୍ଧ—ପୁଂ.ବିଂ. (ବି+ପ୍ର+ଲଭ୍+କର୍ମି.ତ) ବଞ୍ଚିତ, ବିରହିତ, ବିଚ୍ଛିନ୍ନ, ପ୍ରତାରିତ,(ବି)ନାୟକବିଶେଷ, ଯେଉଁ ନାୟକ ଶୋଧନରେ ନାୟିକା ସହିତ ମିଳିତ ହେବା ଆଶାରେ ସଙ୍କେତ ସ୍ଥାନକୁ ଯାଇ ବ୍ୟର୍ଥ ମନୋରଥରେ ଫେରେ ।

ବିପ୍ରଲବ୍ଧା—ସ୍ତ୍ରୀ. ବି. (ବିପ୍ରଲବ୍ଧ + ଆ) ନାୟିକାବିଶେଷ, ଯେଉଁ ନାୟିକା ସଙ୍କେତ ସ୍ଥାନରେ ନାୟକକୁ ନ ଦେଖି ହତାଶରେ ଫେରେ ।

ବିପ୍ରଲମ୍ଭ—ବି. (ବି+ପ୍ର+ଲଭ୍+ଅ ) ବିରହ, ବିଚ୍ଛେଦ, ଛଳନା, ବିପ୍ରୟୋଗ, ବିରୁଦ୍ଧକର୍ମ, କଳହ, ଅମିଳନ,ଶୃଙ୍ଗାରବିଶେଷ, ପ୍ରତାରଣା, ବିସମ୍ବାଦ ।

ବିପ୍ରଲମ୍ଭକ—ବିଂ. ପ୍ରତାରକ, ବିସମ୍ବାଦୀ, (ସ୍ତ୍ରୀ) ବିପ୍ରଲମ୍ଭିକା ।

ବିପ୍ରଲମ୍ଭନ—କ୍ଳୀ. ବି. ଅଙ୍ଗୁଳି ଆଚରଣ, ବିରୁଦ୍ଧ କର୍ମ, ପ୍ରତାରଣା ।

ବିପ୍ରଲମ୍ଭଶୃଙ୍ଗାର—ବି.ନାୟକନାୟିକାର ପରସ୍ପର ବିଚ୍ଛେଦକାଳୀନ ଚିତ୍ତପ୍ରସାଦ-ବିଶେଷ ।

ବିପ୍ରଲମ୍ଭୀ—ପୁଂ.ବିଂ. (ବିପ୍ରଲମ୍ଭ+ଇନ୍) ଶଠ, ବଞ୍ଚକ ।

ବିପ୍ରଲୟ—ବି. (ବି+ପ୍ରଳୟ)ସର୍ବନାଶ, ସର୍ବଧ୍ୱଂସ, ବିଶେଷଭାବେ ପ୍ରଳୟ ।

ବିପ୍ରଲାପ—ବି. (ବି+ପ୍ର+ଲପ୍+ଅ) ପ୍ରଳାପବାକ୍ୟ, ମିଥ୍ୟାବାକ୍ୟ, କଳହ, ବିବାଦ, ବଞ୍ଚନା, ନିରର୍ଥକ କଥନ, ବିରୁଦ୍ଧପ୍ରଳାପ,ପରସ୍ପର ବିରୋଧ ଉକ୍ତି ।

ବିପ୍ରଲବ୍ଧା—ବି. ( ବି+ପ୍ରଲବ୍ଧା ) ବିରୋଧୋକ୍ତି, ଯେଉଁ କଥାରୁ ଉଦ୍ଦିଷ୍ଟାର୍ଥ ସୂଚିତ ହୁଏ ନାହିଁ ।

ବିପ୍ରଲୀନ—ବିଂ. (ବି+ପ୍ର+ଲୀନ)ଇତସ୍ତତଃ ବିକ୍ଷିପ୍ତ ।

ବିପ୍ରଲୁ—ବିଂ. ଲୁଣ୍ଠିତ, ଅପହୃତ, କାଢ଼ି ନେଇଥିବା, ଦାଧା ଦିଆହୋଇଥିବା ।

ବିପ୍ରଲୁମ୍ପକ—ବିଂ. (ବି+ପ୍ର+ଲୁମ୍ପ୍+ଅକ) ଅତିଲୋଭୀ, ଉତ୍ପୀଡ଼କ, ଅଧିକ ନେବାବାଲା ।

ବିପ୍ରଲୋକ—ବି. ( କ.ଧା ) ବ୍ୟାଧ, ଚଢ଼େଇଧରିବା ବାଲା ।

ବିପ୍ରଲୋଭୀ—ବିଂ. ଅତିଲୋଭୀ, ବଞ୍ଚକ, ପ୍ରତାରକ, (ବି) କଙ୍କିରାତବୃକ୍ଷ ।

ବିପ୍ରବର—ବି. ( ୬ତତ୍ ) ଦ୍ୱିଜୋତ୍ତମ, ବ୍ରାହ୍ମଣଶ୍ରେଷ୍ଠ । [ ସ୍ଥିତ ।

ବିପ୍ରବସିତ—ବିଂ. ବିଦେଶଗତ,ପ୍ରବାସ

ବିପ୍ରବାଦ—ବି. ବିବାଦ, କଳହ, ବିରୋଧୋକ୍ତି ।

ବିପ୍ରବାସ—ବି. ବିଦେଶବାସ, ଦେଶାନ୍ତର ବାସ, ପ୍ରବାସ, ସନ୍ନ୍ୟାସ ଆଶ୍ରମରେ ଥାଇ ଆପଣା ଲୁଗାକୁ ଅନ୍ୟକୁ ପିନ୍ଧିବାକୁ ଦେବା ରୂପ ଅପରାଧ ।

ବିପ୍ରବାସନ—କ୍ଳୀ. ବି. (ବି+ପ୍ର+ବସ୍+ଣିଚ୍+ଭା.ଅନ) ବିଦେଶରେ ବାସ କରିବା, ନିର୍ବାସନ ।

ବିପ୍ରବାହନ—ବି. ବିଶେଷ ବାହନ, ଖରସ୍ରୋତଃ ।

ବିପ୍ରବିଦ୍ଧ—ବିଂ. (ବି+ପ୍ର+ବ୍ୟଧ୍+ମଁ.ତ) ଅଭିହତ ।

ବିପ୍ରବୀର—ବିଂ. ବିଶେଷ ବୀର୍ଯ୍ୟଶାଳୀ ।

ବିପ୍ରବୁଦ୍ଧ—ବିଂ. (ବି+ପ୍ର+ବୁଧ୍+ମଁ.ତ) ବିନିଦ୍ର, ଜାଗରିତ ।

ବିପ୍ରବୋଧିତ—ବିଂ. (ବି+ପ୍ରବୋଧିତ) ବିନିଦ୍ର, ଜାଗରିତ, ବିଶେଷରୂପ ବିଜ୍ଞାପିତ ।

ବିପ୍ରବ୍ରଜମା—ସ୍ତ୍ରୀ.ବି. ଦୁଇ ପୁରୁଷଙ୍କ ସଙ୍ଗେ ସମ୍ବନ୍ଧ ରଖିଥିବା ସ୍ତ୍ରୀ ।

ବିପ୍ରବ୍ରାଜୀ—ପୁଂ. ବିଂ. ବିଶେଷରୂପେ ଗମନଶୀଳ, ପର୍ଯ୍ୟାପ୍ତ ପର୍ଯ୍ୟଟନକାରୀ ।

ବିପ୍ରଶସ୍ତକ—ବି. ଜନପଦବିଶେଷ, ତଦ୍ଦେଶବାସୀ ବ୍ୟକ୍ତି ।

ବିପ୍ରଶ୍ନ—ବି.ଜ୍ୟୋତିଷୋକ୍ତ ପ୍ରଶ୍ନାଧିକାର

ବିପ୍ରଶ୍ନିକ—ପୁଂ. ବି. ( ବି+ପ୍ରଶ୍ନିକ ) ଦୈବଜ୍ଞ,ଜ୍ୟୋତିଷୀ,(ସ୍ତ୍ରୀ) ବିପ୍ରଶ୍ନିକା ।

ବିପ୍ରଶ୍ନିକା—ସ୍ତ୍ରୀ. ବି. (ବି+ପ୍ରଶ୍ନ+କ+ଆ) ଗଣକପତ୍ନୀ, ଦୈବଜ୍ଞା, ଜିଜ୍ଞାସା ।

ବିପ୍ରସାତ୍—ଅବ୍ୟ. ବ୍ରାହ୍ମଣର ଆୟତ୍ତ. (ବିଂ) ବ୍ରାହ୍ମଣଙ୍କୁ ଦେୟ, ବ୍ରାହ୍ମଣାଧୀନ ।

ବିପ୍ରସାରଣ—କ୍ଳୀ. ବି. (ବି+ପ୍ରସାରଣ) ବିସ୍ତାର କରିବା ।

ବିପ୍ରସିଂହା—ଶ୍ରୀ.ବି. ଏକ ପ୍ରାଚୀନ ଓଡ଼ିଆ ଚଉତିଶାର ବାଣୀ ବା ରାଗ ଓ ଏକ କବିଙ୍କ ନାମ । [ ମୁକ୍ତି ।

ବିପ୍ରହରଣ—ବି.(ବି+ପ୍ରହରଣ)ତ୍ୟାଗ,

ବିପ୍ରହାଣ—କ୍ଳୀ. ବି. ତ୍ୟାଗ, ମୁକ୍ତି ।

ବିପ୍ରାପଣ--କ୍ଳୀ ବି.ପ୍ରାପ୍ତି,ଆତ୍ମସାତ୍କରଣ

ବିପ୍ରାଶିକ—ପୁଂ.ବିଂ. ଭକ୍ଷକ ।

ବିପ୍ରିୟ—ବିଂ. (ବି+ପ୍ରିୟ)ଅବହେଳିତ. ଅବଜ୍ଞାତ, ଅପକାରକ,ଘୃଣିତ, ବିରକ୍ତିପାତ୍ର, ବିରକ୍ତିକର, ଅପ୍ରିୟ, ଅତିଶୟ ପ୍ରିୟ, କଡ଼ା ସ୍ୱାଦବିଶିଷ୍ଟ, ରାଗ, (ବି) ଅନିଷ୍ଟ, ବିୟୋଗ ।

ବିପ୍ରୁଟ୍—ବି. (ବି+ପୃଷ୍+କ୍ୱିପ୍) ବିନ୍ଦୁ, ମୁଖନିର୍ଗତ ଲାଳ ବିନ୍ଦୁ, ଜଳକଣା ।

ବିପ୍ରୁଷ୍ମନ୍—ବିଂ. ବିନ୍ଦୁବିଶିଷ୍ଟ ।

ବିପ୍ରେକ୍ଷିତ—ବିଂ ଦୃଷ୍ଟ, ଯାହା ଦେଖାଯାଇଅଛି ।

ବିପ୍ରେମା—ପୁଂ.ବିଂ. ଅତି ପ୍ରେମାସକ୍ତ ।

ବିପ୍ରୋଷିତ—ବିଂ. ( ବି+ପ୍ର+ବସ୍+କ.ତ) ପ୍ରବାସିତ, ବିଦେଶସ୍ଥ, ଅନୁପସ୍ଥିତ ।

ବିପ୍ଳବ—ବି.(ବି+ପ୍ଳୁ+ଭା.ଅ) ପରଚକ୍ରାଦିର ଭୟ,ଭୟ ପ୍ରଦର୍ଶନ,ଲୁଣ୍ଠନ, ବିଦ୍ରୋହ, ଅରାଜକତା, ଭୟପ୍ରାପ୍ତି, ଗୋଳମାଳ, ପ୍ରଜାମେଳି, ବିପଦ, ଅପରାଧ, ଦୁଷ୍ଟତା, ହଠଯୁଦ୍ଧ, ପରରାଷ୍ଟ୍ର ଦ୍ୱାରା ରାଜ୍ୟରେ ଘଟିବା ଅଶାନ୍ତି, ନୌକାଡ଼ୁବି, ବନ୍ୟା, ଘୋଡ଼ାର ବେଗଦୌଡ଼, ଶାନ୍ତିଭଙ୍ଗ, ବିବାଦ, ବିନାଶ, କଷ୍ଟ ।

ବିପ୍ଳବବାଦ—ବି. ସମାଜ ବା ରାଜତନ୍ତ୍ରର ସଂସ୍କାରପାଇଁ ବିପ୍ଳବର ପ୍ରୟୋଜନ ଏହିରୂପ ମତ ।

ବିପ୍ଳବୀ—ପୁଂ.ବିଂ. ( ବି+ପ୍ଳୁ+ଇନ୍ ) ଯେ ରାଷ୍ଟ୍ରବିପ୍ଳବ କରିବାକୁ ଚେଷ୍ଟା କରେ, ଜଳପ୍ଳାବୀ, (ସ୍ତ୍ରୀ) ବିପ୍ଳବିନୀ ।

ବିପ୍ଳାବ—ବି. (ବି+ପ୍ଳୁ+ଭା.ଅ) ଜଳପ୍ଳାବନ, ଅଶ୍ୱର ପ୍ଳୁତଗତି, ବନ୍ୟା, ଉଚ୍ଛେଦ, ଶାନ୍ତିଭଙ୍ଗ, ଦେଶଧ୍ୱଂସ ।

ବିପ୍ଳାବକ—ପୁଂ. ବିଂ. (ବି+ପ୍ଳୁ+କ.ଅକ) ଜଳପ୍ଳାବନକାରୀ, ରାଷ୍ଟ୍ରୋପଦ୍ରବକାରୀ, ମେଳିଆ ।

ବିପ୍ଳାବନ—ବି. (ବି+ପ୍ଳୁ+ଣିଚ୍+ଭା.ଅନ) ବିଘ୍ନ, ବ୍ୟାଘାତ, ଧ୍ୱଂସ, ସ୍ନାନ, ଜଳପ୍ଳାବନ, ଓଲଟପାଲଟ,ବିପର୍ଯ୍ୟାସ ।

ବିପ୍ଳାବିତ—ବିଂ. ( ବି+ପ୍ଳୁ+କ.ତ ) ବିପର୍ଯ୍ୟସ୍ତ, ପ୍ଳାବିତ, ବନ୍ୟାଚ୍ଛନ୍ନ,ବିପନ୍ନ, ବିନଷ୍ଟ. ଉପଦ୍ରୁତ, ବ୍ୟାହତ ।

ବିପ୍ଳାବୀ—ପୁଂ.ବିଂ. ( ବିପ୍ଳାବ+ଇନ୍ ) ବିପର୍ଯ୍ୟୟକାରୀ, ଜଳପ୍ଳାବନଜନକ ।

ବିପ୍ଳୁତ—ବିଂ. (ବି+ପ୍ଳୁ+ତ) ବ୍ୟସନାର୍ତ୍ତ, ଦୂଷିତ, ବିଗତ, ବିହ୍ୱଳ,ବିପ-

ଗତ, ବିପର୍ଯ୍ୟସ୍ତ, ପ୍ରତିକୂଳ, ଉପଦ୍ରୁତ, ଭ୍ରାନ୍ତ, ଅପରାଧୀ, ଇତସ୍ତତଃ ବିକ୍ଷିପ୍ତ, ନଷ୍ଟ, କ୍ଷୁବ୍ଧ, (ବି) ଧ୍ୱଂସ, ହାନି, ଜଳପ୍ଲାବନ ।

ବିପ୍ଳୁତା—ସ୍ତ୍ରୀ.ବି.ଯୋନିରୋଗବିଶେଷ, (ବିଂ) ବିପ୍ଳୁତର ସ୍ତ୍ରୀଲିଙ୍ଗ ।

ବିପ୍ଳୁତ—ବି. (ବି+ପ୍ଳୁ+ତ) ବିପ୍ଳବ ।

ବିଫ—ବିଂ. (ବି+ଫ) ବ.ବ୍ରୀ, 'ଫ' ବର୍ଣ୍ଣରହିତ (ଶ୍ଳୋକ) ।

ବିଫଳ—ବିଂ. (ବି+ଫଳ) ନିରର୍ଥକ, ବ୍ୟର୍ଥ, ମୋଘ, ନିଷ୍ଫଳ, (ବି) ବନ୍ଧ୍ୟା କର୍କୋଟକୀ, ଅଷାଢୁଆ ।

ବିଫଳତା—ସ୍ତ୍ରୀ.ବି. ନିଷ୍ଫଳତା, ନୈରାଶ୍ୟ, ବ୍ୟର୍ଥତା, ନିରର୍ଥକତ୍ୱ ।

ବିଫଳମନୋରଥ—ପୁଂ. ବିଂ. (ବ.ବ୍ରୀ) ଯାହାର ମନୋରଥ ସିଦ୍ଧ ହୋଇନାହିଁ

ବିଫଳା—ସ୍ତ୍ରୀ. ବି. ( ବିଫଳ+ଆ ) କେତକୀଗଛ, (ବିଂ) ବିଫଳର ସ୍ତ୍ରୀଲିଙ୍ଗ ।

ବିଫଳୀକୃତ—ବିଂ. (ବିଫଳ+ଚ୍ୱି+କୃତ) ବିଫଳ କରାଯାଇଥିବା ।

ବିଫଳୀଭୂତ— ବିଂ. ନିଷ୍ଫଳୀଭୂତ, ବୃଥା ହୋଇଥିବା ।

ବିଭକ୍ତ—ବିଂ. ( ବି+ଭଜ୍+ର୍ମ.ତ ) ବିଭିନ୍ନ, ପୃଥକ୍‌କୃତ, ସୁଶ୍ଲିଷ୍ଟ, ସଂଯମିତ, (ବି+ଭା.ତ) ବିଭାଗ, ( ପୁଂ.ବି ) କାର୍ତ୍ତିକେୟ ।

ବିଭକ୍ତଜ—ପୁଂ.ବି. (ବିଭକ୍ତ+ଜନ୍+କ.ଅ) ପୈତୃକଧନ ବିଭାଗ ପରେ ଜାତ ସନ୍ତାନ । [ପାର୍ଥକ୍ୟ ।

ବିଭକ୍ତତା—ସ୍ତ୍ରୀ.ବି. (ବିଭକ୍ତ+ତ+ଆ)

ବିଭକ୍ତି—ସ୍ତ୍ରୀ.ବି. (ବି+ଭଜ୍+ଭା.ତି) ବିଭାଗ, ବଣ୍ଟନ, ରଚନା, ଭଙ୍ଗୀ, (ବ୍ୟାକରଣ) ଶବ୍ଦରେ ଓ ଧାତୁରେ କାରକ ବଚନ ଓ ପୁରୁଷ ବିଜ୍ଞାପକ ପ୍ରତ୍ୟୟ । [ଇଚ୍ଛା ।

ବିଭକ୍ଷଣ—ଗ୍ରା.ବି.(ସଂ-ବୁଭୁକ୍ଷା) ଖାଇବା-

ବିଭଗ୍ନ—ବିଂ. ( ବି+ଭଗ୍ନ ) ବିଭିନ୍ନ, ଖଣ୍ଡ ଖଣ୍ଡ ହୋଇଥିବା ।

ବିଭଙ୍ଗ—ବି. ( ବି+ଭନ୍‌ଜ+ଭା.ଅ ) ବିନ୍ୟାସ, ଭାଙ୍ଗିଯିବା, ବିଭାଗ, ବାଧା, ଭ୍ରୂଭଙ୍ଗୀ, ମୁଖଭଙ୍ଗୀ, ରଚନା, ସଙ୍କୋଚ. (ର୍ମ.ଅ) ଖଣ୍ଡ, ଛେଦ, ବଳିପଳିତ ଚର୍ମ, (ଗ୍ରା.ବି) ରୋଗାଦି ହେତୁ ମୁଖର ବିବର୍ଣ୍ଣତା, ଦେହର ବିରୂପତା, (ଗ୍ରା.ବିଂ) ରୋଗାଦି ହେତୁ ବିବର୍ଣ୍ଣ, ବିରୂପ, ବେଢଙ୍ଗ, କୁରୂପ ।

ବିଭଙ୍ଗରସ—ଗ୍ରା.ବି.ରସଭଙ୍ଗ, (କାବ୍ୟରେ) କରୁଣରସ ।

ବିଭଙ୍ଗୀ—ପୁଂ. ବିଂ. (ବି+ଭନ୍‌ଜ+ଇ) ତରଙ୍ଗାୟିତ, ଢେଉ ଖେଳାଉଥିବା, (ବି) ଭଙ୍ଗୀଭାବଭାବ ।

ବିଭଜନ—ବି. (ବି+ଭଜ୍+ଭା.ଅନ) ବିଭାଗକରଣ, ଖଣ୍ଡ ଖଣ୍ଡ କରିବା ।

ବିଭଜନୀୟ—ବିଂ. (ବି+ଭଜ୍+ର୍ମ. ଅନୀୟ) ବିଭାଜ୍ୟ, ବିଭାଗଯୋଗ୍ୟ ।

ବିଭଜ୍ୟ—ବିଂ. ( ବି+ଭଜ୍+ର୍ମ.ଯ ) ବିଭାଗଯୋଗ୍ୟ, ଭଜନାର୍ହ ।

ବିଭଜ୍ୟବାଦୀ—ବି. ବୌଦ୍ଧ ସମ୍ପ୍ରଦାୟବିଶେଷ ।

ବିଭାଜ୍ୟମାନ—ବିଂ. (ବି+ଭଜ୍+ର୍ମ. ଆନ) ଯାହା ବିଭକ୍ତ ହେଉଅଛି ।

ବିଭଞ୍ଜନ—ଗ୍ରା. ବିଂ-ଭଗ୍ନ ।

ବିଭଞ୍ଜନୁ—ବିଂ.ଭଙ୍ଗପ୍ରବଣ, ଭଞ୍ଜନଶୀଳ ।

ବିଭଞ୍ଜିବା—ଗ୍ରା.କ୍ରି. ଭାଙ୍ଗିବା, ଜୋରରେ ବା ବଳପୂର୍ବକ ଆଣିବା, ଗୋଟିଗୋଟି କରିବା ।

ବିଭଣ୍ଡକ—ପୁଂ. ବି. ଋଷି ବିଶେଷ, ବିଭାଣ୍ଡକ ଋଷି ।

ବିଭୟ—କ୍ଳୀ. ବି. ନିର୍ଭୟ, ବିଶେଷ ଭୟ

ବିଭରଣ—ଗ୍ରା. ବି. ପରିଧାନ, (ବିଂ) ପରିହିତ, ପିନ୍ଧାହୋଇଥିବା ।

ବିଭର୍ତ୍ତି—କ୍ରି. ଧାରଣ କରୁଅଛି, ପୋଷଣ କରୁଅଛି, ଶୋଭାପାଉଅଛି ।

ବିଭବ—ପୁଂ. ବି.(ବି+ଭୂ+ଭା.ଅ) ଧନ, ଐଶ୍ୱର୍ଯ୍ୟ, ଦ୍ରବ୍ୟ, ମୋକ୍ଷ, ପ୍ରଭୁତ୍ୱ, ମହତ୍ତ୍ୱ, ପଦମର୍ଯ୍ୟାଦା, ଔଦାର୍ଯ୍ୟ, ବିଷୟ, ବତ୍ସର ବିଶେଷ, ଶକ୍ତି, (ପ୍ରା. କଟକ. ବି) ଅପମାନ, ଦୁଃଖ, ଗାଳିମନ୍ଦ ।

ବିଭବବାନ୍—ପୁଂ. ବିଂ. (ବିଭବ+ବତ୍) ଐଶ୍ୱର୍ଯ୍ୟ ଶାଳୀ ।

ବିଭବବୃଦ୍ଧି—ବି. (୬ତତ୍) ଐଶ୍ୱର୍ଯ୍ୟବୃଦ୍ଧି

ବିଭବମଦ—ବି. ଧନମଦ, ଧନଗର୍ବ ।

ବିଭବରହିତ—ପୁଂ. ବିଂ. (୩ତତ୍) ଧନହୀନ, ନିର୍ଦ୍ଧନ । [ଧନୀ ।

ବିଭବଶାଳୀ—ପୁଂ. ବିଂ. ଐଶ୍ୱର୍ଯ୍ୟାନ୍ୱିତ,

ବିଭା—ସ୍ତ୍ରୀ. ବି.(ବି+ଭା+ଅ+ଆ) କିରଣ, ସୌନ୍ଦର୍ଯ୍ୟ, ଆଲୋକ, ଶୋଭା, ଦୀପ୍ତି, ପ୍ରକାଶ, (ଗ୍ରା. ବି) ବିବାହ ।

ବିଭାଇ—ଗ୍ରା. ସ୍ତ୍ରୀ. ବିଂ. ବିବାହିତା, ବେଶ୍ୟା, ଯାହାକୁ ବିବାହ କରାଯାଇ ଥାଏ, (ବି) ନିଜର ବିବାହିତା ସ୍ତ୍ରୀ ।

ବିଭାକର—ପୁଂ. ବି.(ବିଭା+କୃ+ଅ) ସୂର୍ଯ୍ୟ, ଅର୍କବୃକ୍ଷ, ଚିତ୍ରକ ବୃକ୍ଷ, ଅଗ୍ନି, ରାଜା, (ବିଂ) ପ୍ରକାଶଶୀଳ, ଦୀପ୍ତିଜନକ ।

ବିଭାକରିବା—ଗ୍ରା.କ୍ରି.ବରକୁ ବା କନ୍ୟାକୁ ନିଜେ ବିବାହିତ ହେବା, ବିଭାକରାଇବା

ବିଭାଗ—ବି. (ବି+ଭଜ୍+ଭା.ଅ) ଭାଗ, ଅଂଶ, ବଣ୍ଟନ, ଖଣ୍ଡ, ପୈତୃକ ସମ୍ପତ୍ତିର ଅଂଶ, (ଗଣିତ) ଭଗ୍ନାଂଶର ଭାଜ୍ୟସଂଖ୍ୟା, ଭଗ୍ନାଂଶ, (ଗ୍ରା.ବି) ସରକାରୀ ବା ସାଧାରଣ କର୍ମର ଓ କର୍ମଚାରୀଙ୍କର ବିଭାଗ, ଜିଲ୍ଲା, ପ୍ରଗଣା, ରାଜ୍ୟଶାସନାର୍ଥ କୃତ ପ୍ରଦେଶର ସ୍ୱତନ୍ତ୍ର ଅଂଶ ।

ବିଭାଗକ—ବିଂ. ବିଭାଗକର୍ତ୍ତା ।

ବିଭାଗପତ୍ର—ବି ବଣ୍ଟନ ପତ୍ର, ଗୋସୁଆରା

ବିଭାଗଭିନ୍ନ—କ୍ଳୀ. ବି. ତକ୍ର, ଘୋଳଦହି ।

ବିଭାଗଯୋଗ୍ୟ—ବିଂ. ବଣ୍ଟନ କରାଯିବାର ଉପଯୁକ୍ତ ।

ବିଭାଗଶଃ—ଅବ୍ୟ.ଭାଗେ ଭାଗେ, ଅଂଶେ-ଅଂଶେ, ପ୍ରତ୍ୟେକ ବିଭାଗରେ ।

ବିଭାଗିକ—ବିଂ.ଆଂଶିକ, ବିଭାଗକର୍ତ୍ତା ।

ବିଭାଗୀ—ପୁଂ.ବିଂ.(ବିଭାଗ+ଇନ୍) ବିଭାଗକାରୀ, ଅଂଶୀ, (ଗ୍ରା. ବି) ଅଂଶୀଦାର ।

ବିଭାଗୀୟ—ଗ୍ରା.ବିଂ.ସାଧାରଣ ବା ସରକାରୀ କର୍ମବିଭାଗ ସମ୍ପର୍କୀୟ, ଯେଉଁ ସମ୍ପତ୍ତି ବଣ୍ଟନ କରାଯିବ ।

ବିଭାଗ୍ୟ—ବିଂ. ବିଭାଜ୍ୟ, ବିଭାଗଯୋଗ୍ୟ ।

ବିଭବପର—ଗ୍ରା. ବି. ବିବାହ ଉତ୍ସବ ।
ବିଭବପରିଆ—ଗ୍ରା.ବି.ଯେଉଁମାନେ ବିବାହ ଉତ୍ସବରେ ଯୋଗ ଦେବାକୁ ଯାଇ ଆଅନ୍ତି,(ବିଂ)ବିବାହ ଉତ୍ସବ ସମ୍ବନ୍ଧୀୟ।
ବିଭବଚୁଡ଼ା—ଗ୍ରା. ବି. ବିବାହ, ବିବାହ ଓ ତତ୍ସମ୍ପର୍କୀୟ ସମସ୍ତ କର୍ମମାନ ।
ବିଭାଜକ—ପୁଂ. ବିଂ. (ବି+ଭଜ୍+କ. ଅକ) ବିଭାଗକର୍ତ୍ତା, ବଣ୍ଟନକାରୀ, (ବି) ଭଗ୍ନାଂଶର ନିମ୍ନସଂଖ୍ୟା, ଯେଉଁ ସଂଖ୍ୟା ଦ୍ୱାରା ଅନ୍ୟସଂଖ୍ୟା ହରଣ କରାଯାଏ, (ସ୍ତ୍ରୀ) ବିଭାଜିକା ।
ବିଭାଜନ—କ୍ଲୀ. ବି.ବିଭାଗକରଣ,ପାତ୍ର ।
ବିଭାଜ୍ୟ—ବିଂ. (ବି+ଭଜ୍+ମି.ଯ)ବିଭାଜନୀୟ, ଯାହା ଭିନ୍ନ ଭିନ୍ନ ଅଂଶରେ ପୃଥକ୍ କରାଯିବା ଉଚିତ, ଖଣ୍ଡନୀୟ, ବି. (ଗଣିତ) ଭଗ୍ନାଂଶର ଲବ ।
ବିଭାଜ୍ୟତା(ତ୍ୱ)—ବି. (ବିଭାଜ୍ୟ+ତା.ତ୍ୱ) ବିଭକ୍ତ କରାଯିବାର ଯୋଗ୍ୟତା, ଜଡ଼ ପଦାର୍ଥ ପ୍ରତି କୌଣସି ବଳ ପ୍ରୟୋଗ କଲେ ଯେଉଁ ଗୁଣ ଦ୍ୱାରା ଉକ୍ତପଦାର୍ଥ ନାନାଖଣ୍ଡରେ ବିଭକ୍ତ ହୁଏ । [ ଋଷି ।
ବିଭାଣ୍ଡ—ପୁଂ.ବି. ଋଷି ବିଶେଷ, ବିଭାଣ୍ଡକ
ବିଭାଣ୍ଡକ—ପୁଂ. ବି.ଋଷି ବିଶେଷ, ଋଷ୍ୟଶୃଙ୍ଗମୁନିଙ୍କ ପିତା । [ ଲତା ।
ବିଭାଣ୍ଡୀ—ବି. ଆବର୍ତ୍ତକୀ ଲତା, ମାଳାପତ୍ର-
ବିଭାତ--କ୍ଲୀ.ବି.(ବି+ଭା.ଅଧି.ତ)ପ୍ରତ୍ୟୂଷ, ପ୍ରଭାତ, ସକାଳ ।
ବିଭାତି—ବି. ସୌନ୍ଦର୍ଯ୍ୟ, କିରଣ,ତେଜଃ
ବିଭାତିଥି—ଗ୍ରା. ବି. ବିବାହ ପାଇଁ ନିର୍ଦ୍ଧାରିତ ଦିବସ,ଜ୍ୟୋତିଷମତରେ ବିବାହ ପାଇଁ ପ୍ରଶସ୍ତ ଦିବସମାନ ।
ବିଭାତିବା—ଗ୍ରା,ପଦ୍ୟ,କ୍ରି.ଶୋଭାପାଇବା, ଉଜ୍ଜ୍ୱଳତା ସହ ପ୍ରକାଶିତ ହେବା ।
ବିଭାପାଣ୍ଟ—ଗ୍ରା.ବି.ବର ଓ କନ୍ୟା ବିବାହ ବେଦିରେ ପିନ୍ଧିବା ଲୁଗା ।
ବିଭାବ—ବି. (ବି+ଭୂ+ଭା.ଅ) ଅନ୍ତର ପରିଚୟ ଦାନ, ବିବିଧପ୍ରକାର ପ୍ରକାଶନ,ରସର ଉଦ୍ଦୀପନାଦି,କାବ୍ୟନାଟକାଦିରେ ବର୍ଣ୍ଣିତ ରସ, ରସର ଆଲମ୍ବନ ଉଦ୍ଦୀପନାଦି, ସ୍ଥାୟୀଭାବର କାରଣ, (ଗ୍ରା. ବି) ବିଶେଷ ଭାବନା, ଚିନ୍ତା ।
ବିଭାବକ—ବିଂ.(ବି+ଭୂ+ଅକ)ଚିନ୍ତକ ।
ବିଭାବନ(ନା)—ବି. (ବି+ଭାବ+ଅନ. ଆ)ପ୍ରକାଶନ,ଆବିଷ୍କରଣ,ମିଳନ,ଚିନ୍ତା, ବିବେଚନା, ଅନୁଭବ କରଣ,ପାଳନ, ଚିନ୍ତନ, ଅବଧାରଣ ।
ବିଭାବନୀୟ—ବିଂ. (ବି+ଭାବ+ମି. ଅନୀୟ) ଚିନ୍ତନୀୟ, ଦର୍ଶନୀୟ, ବିବେଚନୀୟ, ସୁନ୍ଦର, (ସ୍ତ୍ରୀ) ବିଭାବନୀୟା ।
ବିଭାବରୀ—ସ୍ତ୍ରୀ. ବି.ରାତ୍ରି, ହରିଦ୍ରା,ହଳଦୀ. ଦୂତୀ, ଦୁଇଜଣଙ୍କର ବିବାଦ ବା ଧରାଧରି ସମୟରେ ଚିରିଯାଇଥିବା ବସ୍ତ୍ରର ଖଣ୍ଡ ବା ଟୁକୁରା, ମୁଖରତା,ମୁଖରା ସ୍ତ୍ରୀ, ବେଶ୍ୟା, ମେଦାଲତା ।
ବିଭାବରୀଯୁଗ—କ୍ଲୀ.ବି. ହରିଦ୍ରା ଓ ଦାରୁହରିଦ୍ରା ।
ବିଭାବରୀଶ—ପୁଂ. ବି. (୬ତତ୍ପୁ) ଚନ୍ଦ୍ର ।
ବିଭାବସୁ—ପୁଂ.ବି. (ବ.ବ୍ରୀ) ସୂର୍ଯ୍ୟ,ଅର୍କବୃକ୍ଷ, ଅଗ୍ନି, ଚନ୍ଦନବୃକ୍ଷ, ଚନ୍ଦ୍ର,ହାରବିଶେଷ, ବସୁପୁତ୍ରବିଶେଷ । [ ନଦୀ ।
ବିଭାବସୁଜା—ସ୍ତ୍ରୀ.ବି.ସୂର୍ଯ୍ୟକନ୍ୟା,ଯମୁନା-
ବିଭାବାସି—ଗ୍ରା. ବି. ବିବାହ ଦିବସର ପରଦିନ । [ ବ୍ୟକ୍ତି ।
ବିଭାବିକ—ଗ୍ରା. ବି. ଅତ୍ୟନ୍ତ ଚିନ୍ତାଶୀଳ
ବିଭାବିତ—ବିଂ. (ବି+ଭାବି+ମି.ତ) ଦୃଷ୍ଟ, ଅନୁଭୂତ, ବିବେଚିତ,ବିଚିନ୍ତିତ, ଅବଧାରିତ, ପ୍ରସିଦ୍ଧ, ପ୍ରତିଷ୍ଠିତ ।
ବିଭାବୀ—ପୁଂ.ବିଂ. ଚିନ୍ତକ, ଅନୁଭବକାରୀ, ବିବେଚକ ।
ବିଭାବ୍ୟ—ବିଂ. (ବି+ଭୂ+ଣିଚ୍+ମି.ଯ) ବିଚିନ୍ତ୍ୟ, ବିବେଚ୍ୟ,କଳ୍ପନୀୟ,ଗମ୍ଭୀର, ବିଚାରଣୀୟ, ଦର୍ଶନୀୟ ।
ବିଭାବ୍ରତ—ଗ୍ରା.ବି.ବିବାହ ଓ ଉପନୟନ ।
ବିଭାର୍ଯ୍ୟ—ପୁଂ. ବିଂ. (ବି+ଭାର୍ଯ୍ୟା;ବ.ବ୍ରୀ) ଯାହାର ଭାର୍ଯ୍ୟା ମରିଯାଇଅଛି,ବିପତ୍ନୀକ
ବିଭାଷା—ସ୍ତ୍ରୀ. ବି. (ବି+ଭାଷା) ବିକଳ୍ପ, ଇଚ୍ଛାନୁଯାୟୀ କଳ୍ପନା, ଦ୍ୱୈଧଭାବ, ବୌଦ୍ଧଶାସ୍ତ୍ରବିଶେଷ,ସଙ୍ଗୀତର ରାଗିଣୀ ବିଶେଷ, ପ୍ରାଦେଶିକ ଭାଷା, ଅପଭ୍ରଷ୍ଟ ଭାଷା, ଯାହା କୌଣସି ବ୍ୟାକରଣଗତ ନିୟମାନୁବର୍ତ୍ତୀ ନୁହେ, ଇତର ବ୍ୟବହୃତ ଭାଷା ।
ବିଭାସ—ବି. (ବି+ଭାସ୍+ମି.ଅ) ସପ୍ତର୍ଷି ମଧ୍ୟରୁ ଏକତମ, ଦେବଯୋନିବିଶେଷ, ସଙ୍ଗୀତର ରାଗିଣୀବିଶେଷ ।
ବିଭାସକେଦାର—ଗ୍ରା. ବି ରାଗବିଶେଷ ।
ବିଭାସଗୁର୍ଜରୀ—ବି. ବିଭାସ ଓ ଗୁର୍ଜରୀ ନାମକ ରାଗଦ୍ୱୟର ମିଶ୍ରଣରେ ଗୀତ ହେବା ରାଗିଣୀବିଶେଷ ।
ବିଭାସା—ବି. ( ବି+ଭାସ୍+ଭା.ଅ+ଆ ) ପ୍ରକାଶ, ଦୀପ୍ତି ।
ବିଭାସିତ—ବିଂ. (ବି+ଭାସ୍+ଣିଚ୍+କ. ତ) ପ୍ରକାଶିତ, ଆଲୋକିତ, ପରିଶୋଭିତ, ପ୍ରତିଷ୍ଠିତ ।
ବିଭାସ୍କର—ବିଂ. (ବି+ଭାସ୍କର) ବ.ବ୍ରୀ ସୂର୍ଯ୍ୟାଲୋକରହିତ, ଦୀପ୍ତିହୀନ ।
ବିଭାସ୍ୱନ୍—ବିଂ. ଅତ୍ୟୁଜ୍ଜ୍ୱଳ ।
ବିଭିତ୍ତି—ସ୍ତ୍ରୀ. ବି. (ବି+ଭିଦ୍+ଭା.ତି) ବିଭେଦ, ବିବାଦ ।
ବିଭିନ୍ନ—ବିଂ. ( ବି+ଭିଦ୍+ମି.ତ ) ଅଲଗା ଅଲଗା, ପୃଥକ୍ଭୂତ, ଖଣ୍ଡିତ, ବିଭକ୍ତ, ବିଘଟିତ, ଘଣ୍ଟାହୋଇଥିବା, ବିଦଳିତ, ମିଶ୍ରିତ. ବିଦ୍ଧ, ( କ.ତ ) ପୃଥକ୍‌ବିଧ, ନାନାବିଧ, ହତବୁଦ୍ଧି, ବିକସିତ, ନିଃଶେଷିତ,ହତାଶ,(ଗ୍ରା.ବି) ପ୍ରଭେଦ, (ବିଂ) ପୃଥଗନ୍ନ ହୋଇଥିବା, ଭିନ୍ନେ ହୋଇଥିବା ।
ବିଭିନ୍ନତା(ତ୍ୱ)—ବି. ପୃଥକ୍‌ଭାବ,ପ୍ରଭେଦ ।
ବିଭିନ୍ନଦେଶୀୟ—ବିଂ. ବିଦେଶୀୟ,ଅନ୍ୟଦେଶୀୟ, ଭିନ୍ନଭିନ୍ନ ଦେଶୀୟ ।
ବିଭିନ୍ନଧର୍ମୀ—ପୁଂ. ବିଂ. (ବ.ବ୍ରୀ) ଭିନ୍ନଧର୍ମାବଲମ୍ବୀ,ପୃଥକ୍ ଧର୍ମବିଶିଷ୍ଟ ।
ବିଭିନ୍ନଧର୍ମାବଲମ୍ବୀ—ପୁଂ. ବିଂ. ବିଭିନ୍ନଧର୍ମୀ ଦେଖ ।
ବିଭୀ—ବିଂ. (ବ.ବ୍ରୀ) ଭୟରହିତ, ଭୟଶୂନ୍ୟ, ନିର୍ଭୀକ ।
ବିଭୀତ—ବି.(ବି+ଭୀ+କ.ତ)ବିଭୀତକ,

ବାହାଡ଼ା, (ବି°) ନିଃଶଙ୍କ, ( ଗ୍ରା.ବ. ) ବିଶେଷଭୟ ।
ବିଘାତକ—ବି.(ବି+ଘାତ+କ)ବାହାଡ଼ା ଗଛ ଓ ଫଳ,(ଗ୍ରା ବି°)ନିର୍ଭୀକ, ନିଃଶଙ୍କ
ବିଘାତକା—ସ୍ତ୍ରୀ. ବି. ( ବିଘାତକ+ଆ ) ବାହାଡା ।
ବିଘାଦକ—ବି. ବିଘାତକ, ବାହାଡା ।
ବିଘାଷଣ—ପୁ°. (ବି+ଘାଷ୍+ଅନ)କାଣ୍ଡଶର ଗଛ, ନଳତୃଣ, ପୁ°.ବି. (ବି+ ଘା+ଶିର୍+କ.ଅନ) ରାବଣର ଭାଇ, ଭୃତ୍ୟ, ମୃତ୍ୟୁ, ଆତ୍ମା, କାଳ, ( ବି° ) ଭୟାନକ, ଭୟଙ୍କର, ଦୃଢ଼, ଘନ ।
ବିଘାଷଣପୁଷ୍ପ—ଗ୍ରା. ବି. କାଣ୍ଡଶର ଗଛର ଫୁଲ, କ୍ଷଣପଷ୍ଟ ଗଛର ଫୁଲ ।
ବିଘାଷା—ସ୍ତ୍ରୀ. ବି. (ବି+ଘା+ସନ୍+ଅ +ଆ) ଭୟପାଇବାର ଇଚ୍ଛା ।
ବିଘାଷିକା—ସ୍ତ୍ରୀ. ବି. (ବି+ଘାଷ୍+ଣ. ଅକ+ଆ)ଭୟପ୍ରଦର୍ଶନ,ଭୟ ଦେଖାଇବା, ଅତ୍ୟନ୍ତ ଭୟ ।
ବିଭୁ—ପୁ°. ବି. (ବି+ଭୂ+କ.ଉ)ପ୍ରଭୁ, ବ୍ୟାପକ, ଈଶ୍ୱର, ଶିବ,ବ୍ରହ୍ମା,ଦେବତା ଭୃତ୍ୟ, ବିଷ୍ଣୁ, ଜୀବାତ୍ମା, ନିତ୍ୟ, (ବି°) ସର୍ବମୂର୍ତ୍ତି ସଂଯୋଗୀ, ବ୍ୟାପ୍ତ, ମହାନ୍, ନିତ୍ୟ, ଶାଶ୍ୱତ,ସର୍ବବ୍ୟାପୀ ।
ବିଭୁକ୍ତ—ଗ୍ରା.ବି°. ସନ୍ତୋଷରେ ଭୋଜନ କରିଥିବା (ବି°କ୍ତି), (ବି) ସନ୍ତୋଷ ବା ପୂର୍ତ୍ତିଭୋଜନ । [ ଭଗ୍ନ ।
ବିଭୁଗ୍ନ—ବି°. (ବି+ଭୁଜ୍+ତ)ଈଷତ୍ବକ୍ର
ବିଭୁଜ—ବି°. ବିବାହୁ, ବନ୍ଧ ।
ବିଭୁତଙ୍ଗମା—ସ୍ତ୍ରୀ. ବି°. ବିହୁସଂଖ୍ୟକ, ପ୍ରଭୂତ ।
ବିଭୂତି—ସ୍ତ୍ରୀ. ବି. ( ବି+ଭୂ+ଣ.ତି ) ଐଶ୍ୱର୍ଯ୍ୟ, ସମ୍ପତ୍ତି, ସମୃଦ୍ଧି, ଲକ୍ଷ୍ମୀ,ମହତ୍ତ୍ୱ, ଭସ୍ମ, ପାଉଁଶ, ଈଶ୍ୱରଙ୍କର ଅମାନୁଷିକ ଗୁଣମାନ, ପ୍ରାଚୁର୍ଯ୍ୟ,ପ୍ରଭୂତତା, ବିବିଧ ସୃଷ୍ଟି, (ଗ୍ରା.ବି) ଶ୍ରୀମଦ୍ଭଗବଦ୍ ଗୀତାର ଏକାଦଶ ଅଧ୍ୟାୟ--ଯହିଁରେ ଭଗବାନଙ୍କର ବିଭୂତି ବର୍ଣ୍ଣିତ ଅଛି ।
ବିଭୂତଦ୍ୱାଦଶୀ—ବି. ବ୍ରତବିଶେଷ, (କାର୍ତ୍ତିକ,ମାର୍ଗଶିର,ଫାଲ୍ଗୁନ,ବୈଶାଖ, ଆଷାଢ ମାସର ଶୁକ୍ଳ ଏକାଦଶୀରେ ବିଷ୍ଣୁ ଉପାସନାରୂପ ବ୍ରତ(ମତ୍ସ୍ୟପୁରାଣ) ।
ବିଭୂତଭୂଷଣ—ବି°. ( ବ.ବ୍ରୀ ) ଯାହା ଦେହରେ ପାଉଁଶ ବୋଳାହୋଇଥାଏ, (ବି) ଶିବ, ମହାଦେବ ।
ବିଭୂତମାନ୍—ପୁ°.ବି°. (ବିଭୂତି+ମତ୍) ଐଶ୍ୱର୍ଯ୍ୟଶାଳୀ । [ ବୋଲିବା ।
ବିଭୂତଲେପନ—ବି. (୬ତତ୍) ପାଉଁଶ
ବିଭୂମା—ପୁ°.ବି°. ଶକ୍ତିଶାଳୀ,ଐଶ୍ୱର୍ଯ୍ୟଶାଳୀ, (ପୁ°.ବି) ଶ୍ରୀକୃଷ୍ଣ ।
ବିଭୂଷଣ—କ୍ଳୀ. ବି. (ବି+ଭୂଷ୍+ଣ. ଅନ) ଆଭରଣ, ଅଳଂକାର, ଶୋଭା, (ଭା.ଅନ) ଅଳଂକରଣ, (ବି°-ବ.ବ୍ରୀ) ଭୂଷଣହୀନ, ଆଭରଣଶୂନ୍ୟ, (ଗ୍ରା.ବି°) ମନୋହର, ସୁନ୍ଦର । [ ଶୋଭା ।
ବିଭୂଷଣା—ସ୍ତ୍ରୀ. ବି. ଭୂଷା, ଅଳଙ୍କାର,
ବିଭୂଷା—ବି, (ବି+ଭୂଷ୍+ଅ+ଆ) ଶୋଭା, ଆଭରଣ, ଅଳଙ୍କାର ।
ବିଭୂଷିତ—ବି°. (ବି+ଭୂଷ୍+ର୍ମ.ତ) ଅଳଙ୍କୃତ,ଶୋଭିତ, (ସ୍ତ୍ରୀ) ବିଭୂଷିତା ।
ବିଭୂଷିବା—ଗ୍ରା.କ୍ରି. ବିଶିଷ୍ଟରୂପେ ମଣ୍ଡନ କରିବା, ଅଳଙ୍କାର ପ୍ରବିଷ୍ଟ କରାଇବା ।
ବିଭୂଷୀ—ପୁ°. ବି°. (ବି+ଭୂଷ୍+ଇନ୍) ବିଭୂଷଣକାରୀ, ଅଳଂକୃତ, ଶୋଭିତ, (ସ୍ତ୍ରୀ) ବିଭୂଷିଣୀ ।
ବିଭୂଷ୍ଟ—ବି°.ବିଭୂତିଯୁକ୍ତ, (ପୁ°.ବି)ଶିବ
ବିଭୂଷ୍ୟ—ବି°. ( ବି+ଭୂଷ୍+ର୍ମ.ଯ ) ବିଭୂଷଣଯୋଗ୍ୟ ।
ବିଭୃତ—ବି°.(ବି+ଭୃ+ର୍ମ.ତ) ଧୃତ, ଦୃଷ୍ଟ, ପ୍ରତିପାଳିତ ।
ବିଭେତବ୍ୟ—ବି°. ( ବି+ଭୀ+ତବ୍ୟ ) ଭୀତର ଯୋଗ୍ୟ ।
ବିଭେତ୍ତା—ପୁ°.ବି°.(ବି+ଭିଦ୍+କ.ତୃ) ବିଭେଦକର୍ତ୍ତା, ଧ୍ୱଂସକର୍ତ୍ତା, (ସ୍ତ୍ରୀ) ବିଭେତ୍ରୀ ।
ବିଭେଦ—ବି.(ବି+ଭିଦ୍+ଅ)ପ୍ରଭେଦ, ବୈଲକ୍ଷଣ୍ୟ, ଅପଗମ, ବିନାଶ, ମିଶ୍ରଣ, ବିକାଶ, ବିଦଳନ, ବିଦାରଣ, ଦ୍ୱିଧାକରଣ ।
ବିଭେଦକ—ପୁ°.ବି°. (ବି+ଭିଦ୍+କ. ଅକ)ଭେଦକାରୀ, ଭେଦଜନକ, ପୃଥକ୍କାରୀ, ବିଦାରକ, ବିଭାଗକାରୀ, (ପୁ°. ବି) ବିଘାତକ,ବାହାଡ଼ା, (ସ୍ତ୍ରୀ) ବିଭେଦିକା ।
ବିଭେଦନ—ବି(ବି+ଭିଦ୍+ଭା.ଅନ) ବିଦାରଣ, ଫଟାଇବା, ନିପାତନ, ମିଶ୍ରଣ, ବିଦଳନ, ପୃଥକ୍କରଣ ।
ବିଭେଦୀ—ପୁ°.ବି°. (ବିଭେଦ+ଇନ୍) ବିଭେଦକ, ବିଚ୍ଛେଦକାରୀ, ପୃଥକ୍କାରୀ, (ସ୍ତ୍ରୀ) ବିଭେଦିନୀ ।
ବିଭେଦ୍ୟ—ବି°. ( ବି+ଭିଦ୍+ର୍ମ.ଯ ) ଭେଦଯୋଗ୍ୟ । [ ପ୍ରଭୋ !
ବିଭୋ—ବିଭୁଶବ୍ଦର ସମ୍ବୋଧନ, ହେ
ବିଭୋଗ—ଗ୍ରା.ବି.ସମ୍ଭୋଗ, ସୁଖଭୋଗ, ବିଷୟ ଭୋଗ ।
ବିଭୋଗୀ—ଗ୍ରା. ବି°. ଉପଭୋଗୀ ।
ବିଭୋଜନ—ଗ୍ରା.ବି.ଅନାହାର,ଉପବାସ
ବିଭୋର—ଗ୍ରା. ବି°. ଅତି ଉଜ୍ଜ୍ୱଳ, ଆନନ୍ଦରେ ଉନ୍ମତ୍ତ ।
ବିଭୋଳ—ଗ୍ରା. ବି°. ବିହ୍ୱଳ, ବ୍ୟାକୁଳ, ଉନ୍ମତ୍ତ, ବାତୁଳ, ଯେ ଗଡ଼କଥା ପାଶୋର ପକାଏ ।
ବିଭ୍ରଂଶ—ବି. ବିନାଶ, ଧ୍ୱଂସ, ପତନ, ପର୍ବତର ଭୃଗୁ । [ ବିଲୁପ୍ତ ।
ବିଭ୍ରଂଶିତ—ବି°.ବିଭ୍ରଷ୍ଟ, ପତିତ, ବିଚ୍ଛିନ୍ନ,
ବିଭ୍ରଂଶିତଜ୍ଞାନ—ବି°.(ବ.ବ୍ରୀ)ଜ୍ଞାନଶୂନ୍ୟ, ଯାହାର ବୁଦ୍ଧି ଭ୍ରଂଶ ହୋଇଅଛି ।
ବିଭ୍ରଂଶୀ—ପୁ°. ବି°. (ବିଭ୍ରଂଶ+ଇନ୍) ପତନଶୀଳ,ନିଃକ୍ଷେପ,ନିକ୍ଷିପ୍ତ,ଯାହାର ଅଧଃପତନ ଘଟିଅଛି, (ସ୍ତ୍ରୀ)ବିଭ୍ରଂଶିନୀ ।
ବିଭ୍ରକ୍ଷା—ବି. (ବି+ଭ୍ରସଜ୍+ସନ୍+ଭା, ଅ+ଆ) ପୋଡ଼ିଦେବାର ଇଚ୍ଛା ।
ବିଭ୍ରକ୍ଷୁ—ପୁ°.ବି°.(ବି+ଭ୍ରସଜ୍+ସନ୍+କ,ଉ) ପୋଡ଼ିବା ପାଇଁ ଇଚ୍ଛୁକ, ଦହନେଚ୍ଛୁ,(ବି) ଅଗ୍ନି ।
ବିଭ୍ରକ୍ଷି—ବି°, ( ଭ୍ରସଜ୍+ସନ୍+କ୍ରି ) ପୋଡ଼ିଦେବାପାଇଁ ଇଚ୍ଛୁକ ।

ବିଭୁକ୍ଷିଷୁ—ପୁଂ. ବି. (ବି + ଭୁଜ୍ + କ. ଇଷୁ) ଅଗ୍ନି. ନିଆଁ ।

ବିଭୃତ୍—ପୁଂ. ତ୍ରିଂ. (ବି + ଭୃ + କ.ଅତ୍) ଧାରଣ ଓ ପୋଷଣକର୍ତ୍ତା, ପରିଧାନକାରୀ, (ସ୍ତ୍ରୀ) ବିଭୃତା ।

ବିଭ୍ରମ—ବି. (ବି + ଭ୍ରମ୍ + ଭା.ଅ) ହାବବିଶେଷ, ପ୍ରିୟ ସମାଗମରେ ସ୍ତ୍ରୀମାନଙ୍କର ପ୍ରଥମ ହାବଭାବ, ହର୍ଷବଶତଃ ଭୂଷଣାଦିର ସ୍ଥାନାନ୍ତର ବିନ୍ୟାସ, ସ୍ତ୍ରୀଲୋକମାନଙ୍କର ଶୃଙ୍ଗାର ଭାବ ଜାତ କ୍ରିୟାବିଶେଷ, ଲୀଳା, ପ୍ରମାଦ, ଭ୍ରମ, ବିଳାସ, ଖିଅଲ, ସଂଶୟ, ଘୂର୍ଣ୍ଣନ, ପରିଭ୍ରମଣ, ଗୋଳମାଳ, ବିଗିଡ଼ିବା, ବିଜୃମ୍ଭଣ, ହାଇମାରିବା, ସାଦୃଶ୍ୟ, ଶୋଭା, ସ୍ମୃତିଶକ୍ତିର ହ୍ରାସ, ବିଷୟାନ୍ତରରେ ମନଥିବା ଅବସ୍ଥା, ବିପଦ, ମସ୍ତିଷ୍କବିକୃତି ।

ବିଭ୍ରମା—ସ୍ତ୍ରୀ.ବି.(ବିଭ୍ରମ + ଆ) ବାର୍ଦ୍ଧକ୍ୟ, (ଗ୍ରା.ସ୍ତ୍ରୀ.ବିଂ) ଉନ୍ମାଦନା ।

ବିଭ୍ରମିବା—ଗ୍ରା. (ପଦ୍ୟ) କ୍ରି. ଭ୍ରମଯୁକ୍ତ ହେବା, ଇତସ୍ତତଃ ଭ୍ରମଣକରିବା ।

ବିଭ୍ରମୀ—ପୁଂ. ତ୍ରିଂ. ( ବିଭ୍ରମ + ଇନ୍ ) ବିଭ୍ରମଯୁକ୍ତ, ବିଳାସୀ, (ସ୍ତ୍ରୀ) ବିଭ୍ରମିଣୀ ।

ବିଭ୍ରଷ୍ଟ—ପୁଂ.ବିଂ. (ବି + ଭ୍ରନ୍ସ୍ + ର୍ମ.ତ) ଇତସ୍ତତଃ କ୍ଷିପ୍ତ, ସ୍ଥାନାନ୍ତର ପରିଭ୍ରଷ୍ଟ, ବିନଷ୍ଟ ।

ବିଭ୍ରାଜ—ବିଂ. ( ବି + ଭ୍ରାଜ୍ + କ.ଅ ) ଭ୍ରାଜିଷ୍ଣୁ, ଦୀପ୍ତିମାନ୍, ଶୋଭାଯୁକ୍ତ, (ବି) ଆପଦ, ବିପଦ, ସଙ୍କଟ, (ସ୍ତ୍ରୀ) ବିଭ୍ରାଜା ।

ବିଭ୍ରାଜମାନ—ପୁଂ. ବିଂ. (ବି + ଭ୍ରାଜ୍ + କ.ଅନ) ଶୋଭମାନ, (ସ୍ତ୍ରୀ) ବିଭ୍ରାଜମାନା ।

ବିଭ୍ରାଜିତ—ତ୍ରିଂ (ବି + ଭ୍ରାଜ + ଣିଚ୍ + ର୍ମ.ତ) ଉଜ୍ଜ୍ୱଳୀକୃତ, ଶୋଭିତ, ଦୀପ୍ତ, ଆଲୋକିତ ।

ବିଭ୍ରାଟ୍—ବିଂ. ( ବି + ଭ୍ରାଜ୍ + କ.କ୍ୱିପ୍ ) ଅଳଙ୍କାରାଦି ଦ୍ୱାରା ଦୀପ୍ତିଶୀଳ, ସୁନ୍ଦର, ଶୋଭାମାନ, (କ୍ରି) ଆପଦ, ସଙ୍କଟ, (ଗ୍ରା. ବିଂ) ବିନଷ୍ଟ, ପ୍ରକ୍ଷିପ୍ତ, ଗୋଳମାଳଥିବା, ଜୁର୍ମାଜିକ, ପ୍ରପଞ୍ଚ, କୁଚିନ୍ତ୍ୟାରତ, ଅବ୍ୟବସ୍ଥିତ, (ଗ୍ରା,ବି) ବିପ୍ଳବ, ଗୋଲମାଲ, ଅପବାଦ, ଶତ୍ରୁମର୍ଦ୍ଦନ ।

ବିଭ୍ରାତୃବ୍ୟ—କ୍ଳୀ. ବିଂ. ଭ୍ରାତାର କନିଷ୍ଠ, ବୈମାତ୍ରେୟ ।

ବିଭ୍ରାନ୍ତ—ବିଂ. ( ବି + ଭ୍ରମ୍ + କ.ତ ) ବିଭ୍ରମଯୁକ୍ତ, ଭୁଲ୍, ହର୍ଷାନ୍ୱିତ, ଚଞ୍ଚଳ, ବ୍ୟାକୁଳ, କ୍ଷତଚିତ୍ତ, ବିକଳ ।

ବିଭ୍ରାନ୍ତି—ସ୍ତ୍ରୀ. ବି. (ବି + ଭ୍ରମ୍ + ଭା.ତି) ବିଭ୍ରମ, ଭୁଲ୍, ହର୍ଷ ।

ବିଭ୍ରାଷ୍ଟି—ବି.ଦୀପ୍ତି, ଶୋଭା, ପ୍ରଭା, କାନ୍ତି ।

ବିମଙ୍କାନ୍ତ—ବିଂ.ଶରୀର(ଭାରତ ବନପର୍ବ) ।

ବିମଣ୍ଡଳ—ବିଂ.ମଣ୍ଡଳରହିତ, ପରିବେଶଶୂନ୍ୟ ।

ବିମତ୍ସର—ବିଂ.(ବ.ଗ୍ରା) ମାତ୍ସର୍ଯ୍ୟରହିତ, ଅହଂକାରଶୂନ୍ୟ, ଈର୍ଷାଶୂନ୍ୟ, ପ୍ରତିଦ୍ୱନ୍ଦ୍ୱଭାବରହିତ, (ସ୍ତ୍ରୀ) ବିମତ୍ସରା ।

ବିମତ—ବିଂ.(ବି + ମନ୍ + ର୍ମ.ତ) ବିରୁଦ୍ଧମତବିଶିଷ୍ଟ, ଅମତ, ଅନଭିମତ, ଅଗ୍ରାହ୍ୟ, ଅପ୍ରିୟ, ଅନିଷ୍ଟ, (ସ୍ତ୍ରୀ) ବିମତା. (ବି) ଗୋମନ୍ତାନଦୀତୀରସ୍ଥିତ ନଗରବିଶେଷ ।

ବିମତି—ବି. (ବି + ମନ୍ + ଭା.ତି) ବିରୁଦ୍ଧମତ, ବିରୁଦ୍ଧବୁଦ୍ଧି, ଅନିଚ୍ଛା, ସଂଶୟ, ଅସମ୍ମତ, (ବିଂ) ପାଗଳ ।

ବିମତିବିକାରଣ—ବି. ଅସମ୍ମତ ପ୍ରକାଶ, ଗଣ୍ଡି, ସମାଧି କଟିଲ ଗଣ୍ଡିଗନନ ।

ବିମଥିତ—ବିଂ. ( ବି + ମଥ୍ + ର୍ମ.ତ ) ବିନାଶିତ, ବିଦଳିତ, ବିଧ୍ୱସ୍ତ, ଧ୍ୱଂସପ୍ରାପ୍ତ, ଉତ୍ତମରୂପେ ମନ୍ଥା ଯାଇଥିବା ।

ବିମଥିତା—ପୁଂ. ବିଂ. (ବି + ମଥ୍ + ତୃ) ବିଶେଷ ରୂପେ ମଥନକାରକ, (ସ୍ତ୍ରୀ) ବିମଥିତ୍ରୀ ।

ବିମଦ—ବିଂ. (ବି + ମଦ) ମଦରହିତ, ବିମତ୍ସର, ମାତ୍ସର୍ଯ୍ୟହୀନ ।

ବିମନାଃ—ବିଂ. (ବି + ମନସ୍) ଚଞ୍ଚଳ, ବ୍ୟାକୁଳଚିତ୍ତ, ଦୁର୍ମନାଃ, ଦୁଃଖିତମାନସ, ଅନ୍ୟମନାଃ ।

ବିମନ—ଗ୍ରା.ବିଂ. (ସଂ-ବିମନାଃ) ବିମନସ୍କ ଦେଖ, ଖିନ୍ନ, ବିରକ୍ତ, ଅପ୍ରସନ୍ନ, ଦୁଃଖିତ, (ଗ୍ରା, ବି) ବିରକ୍ତି, ମନୋଦୁଃଖ, ବୈରାଗ୍ୟ ।

ବିମନସ୍କ—ବିଂ.(ବ.ଗ୍ରା) ବିମନାଃ, ବିହ୍ୱଳ, ଅପ୍ରସନ୍ନ, ବିଶେଷ ଚିନ୍ତାନ୍ୱିତ, ବିଷଣ୍ଣ, ଦୁଃଖିତ, ବ୍ୟାକୁଳ, ଅନ୍ୟମନସ୍କ ।

ବିମନାୟମାନ—ପୁଂ. ବିଂ.(ବି + ମନସ୍ + କ୍ୟ + ଆନ) ଉଦ୍ବିଗ୍ନମନାଃ, ଦୁଃଖିତ, ଚିନ୍ତାଗ୍ରସ୍ତ, ବିଷଣ୍ଣ, ଅପ୍ରସନ୍ନ, (ସ୍ତ୍ରୀ) ବିମନାୟମାନା ।

ବିମନୀକୃତ—ପୁଂ. ବିଂ. ( ବିମନସ୍ + ଚ୍ୱି + କୃତ) ଯାହାର ମନ ବର୍ତ୍ତମାନ ଉଦ୍ବିଗ୍ନ ହୋଇଅଛି, (ସ୍ତ୍ରୀ) ବିମନୀକୃତା ।

ବିମନ୍ୟୁ—ବିଂ. ( ବି + ମନ୍ୟୁ ) ବ.ଗ୍ରା, କ୍ରୋଧରହିତ, ରାଗଶୂନ୍ୟ ।

ବିମୟ—ବି. (ବି + ମି + ଭା.ଅ) ବିନିମୟ, ପ୍ରତିଶୋଧ ।

ବିମର୍ଦ୍ଦ—ବି.(ବି + ମୃଦ୍ + ଭା.ଅ) ବିମର୍ଦ୍ଦନ, ଚୂର୍ଣ୍ଣନ, ପେଷଣ, ମନ୍ଥନ, ଘାତନ, ମଲମ, ସମ୍ପର୍କ, ଯୁଦ୍ଧ, କଳହ, ପରିମଳ, ବିନାଶ, ସମ୍ବାଧ, ସଙ୍କଟ, ଦାଢିବା, କାଶମର୍ଦ୍ଦ ।

ବିମର୍ଦ୍ଦକ—ବି. ( ବିମର୍ଦ୍ଦ + କ.ଅକ ) ଚକ୍ରମର୍ଦ୍ଦ, ଗୁଳୁଣ୍ଡା, (ପୁଂ. ବିଂ) ବିମର୍ଦ୍ଦନକାରୀ, ଯେ ପେଷଣକରେ, ବିନାଶକ, (ସ୍ତ୍ରୀ) ବିମର୍ଦ୍ଦିକା ।

ବିମର୍ଦ୍ଦନ—କ୍ଳୀ. ବି.(ବି + ମୃଦ୍ + ଭା.ଅନ) ବିମର୍ଦ୍ଦ ଦେଖ, (ବିଂ.କ.ଅନ) ବିନାଶକ ।

ବିମର୍ଦ୍ଦିତ—ବିଂ. ( ବି + ମୃଦ୍ + ର୍ମ.ତ ) ଘୃଷ୍ଟ, ପିଷ୍ଟ, ଦଳିତ, ମଥିତ, ବିଲୋଡ଼ିତ, ଚୂର୍ଣ୍ଣିତ, ସଙ୍ଘଟିତ ।

ବିମର୍ଦ୍ଦୀ—ପୁଂ. ବିଂ. (ବିମର୍ଦ୍ଦ + ଇନ୍) ବିମର୍ଦ୍ଦନକାରକ, ମଥନକାରକ, ( ସ୍ତ୍ରୀ ) ବିମର୍ଦ୍ଦିନୀ ।

ବିମର୍ଦ୍ଦୋତ୍ଥ—ବି. (ବିମର୍ଦ୍ଦ + ଉତ୍ଥ) ବିମର୍ଦ୍ଦନ ବା ସଂଘର୍ଷଣରୁ ଉତ୍ପନ୍ନ, ମନୋହର ଗନ୍ଧ ।

ବିମର୍ଶ—ବି.(ବି + ମୃଶ୍ + ଭା.ଅ) ବିତର୍କ, ବିଚାରଣା, ତଥ୍ୟାନୁସନ୍ଧାନ, ବିବେଚନା, ଅସନ୍ତୋଷ, ଅଧୈର୍ଯ୍ୟ, ମନୋଦୁଃଖ, (ଗ୍ରା. ବିଂ) ଦୁଃଖିତ, ବିଷଣ୍ଣ ।

ବିମର୍ଶନ—କ୍ଳୀ. ବି. ( ବି + ମୃଶ୍ + ଭା. ଅନ) ବିମର୍ଶ ଦେଖ, ଅସନ୍ତୋଷ ବା ମନୋଦୁଃଖର ଉତ୍ପାଦନ ।

ବିମର୍ଶୀ—ପୁଂ. ବିଂ. (ବି + ମୃଶ୍ + ଇନ୍) ବିଷଣ୍ଣ, ବିମର୍ଶକାରକ, (ସ୍ତ୍ରୀ) ବିମର୍ଶିଣୀ ।

ବିମର୍ଷ(ଶ)—ବି. (ବି + ମୃଷ୍ + ଘି. ଅ,ଅନ) ବିଚାର, ବିମର୍ଶ, ଅସହନ, ଅସନ୍ତୋଷ, ଅଧୈର୍ଯ୍ୟ, ଅକ୍ଷମା, ନାଟ୍ୟାଙ୍ଗ-ଭେଦ, (ଗ୍ରା. ବିଂ) ଦୁଃଖିତ, ବିଷଣ୍ଣ ।

ବିମର୍ଷୀ—ପୁଂ. ବଂ. ( ବିମର୍ଷ + ଇନ୍ ) ଅତିଦୁଃଖିତ, (ସ୍ତ୍ରୀ) ବିମର୍ଷିଣୀ ।

ବିମଳ—ବଂ. (ବି + ମଳ)ବ.ବ୍ରୀ;ନିର୍ମଳ, ସ୍ୱଚ୍ଛ, ଶୁଭ୍ର, ସୁନ୍ଦର, ଶୁଭ୍ର, ନିଷ୍କଳଙ୍କ, ପବିତ୍ର, ନିଷ୍ପାପ, (କ୍ଳୀ. ବି) ପଦ୍ମକାଷ୍ଠ, ରୌପ୍ୟ, ସୈନ୍ଧବଲବଣ, ଉପଧାତୁ ବିଶେଷ,(ପୁଂ) ପର୍ବତବିଶେଷ,ଜୈନ-ମୁନି, ଜୈନତୀର୍ଥଙ୍କର ବିଶେଷ ।

ବିମଳକ—ପୁଂ. ବି. ମୂଲ୍ୟବାନ୍ ପ୍ରସ୍ତର ବିଶେଷ,ବ୍ରଜଅନ୍ତର୍ଗତ ତୀର୍ଥବିଶେଷ ।

ବିମଳକୀର୍ତ୍ତି—ପୁଂ. ବି. ଜନୈକ ବୌଦ୍ଧା-ଚାର୍ଯ୍ୟ ।

ବିମଳଚନ୍ଦ୍ର—ପୁଂ.ବି.(କ.ଧା)ନିର୍ମଳଚନ୍ଦ୍ର

ବିମଳଚିତ୍ତ—ବି. (କ.ଧା) ପବିତ୍ରମନ, (ପୁଂ. ବିଂ. ବ.ବ୍ରୀ) ପବିତ୍ରହୃଦୟବିଶିଷ୍ଟ

ବିମଳଚେତାଃ—ବିଂ. (ବିମଳ + ଚେତସ୍) ପବିତ୍ର ହୃଦୟଯୁକ୍ତ ।

ବିମଳତା(ତ୍ୱ)—ବି.ପବିତ୍ରତା, ସ୍ୱଚ୍ଛତା, ବିମଳର ଭାବ । [ ବିଶେଷ ।

ବିମଳତୀର୍ଥ—ବି. ହିନ୍ଦୁମାନଙ୍କର ତୀର୍ଥ-

ବିମଳଦାନ—କ୍ଳୀ. ବି. ନିତ୍ୟନୈମିତ୍ତିକ ଓ କାମ୍ୟ ବ୍ୟତୀତ ଯେଉଁ ଦାନ କେବଳ ଭଗବତ୍ ପ୍ରୀତ୍ୟର୍ଥ ଦିଆଯାଏ ।

ବିମଳମଣି—ପୁଂ. ବି. ସ୍ଫଟିକମଣି ।

ବିମଳସ୍ୱଭାବ—ପୁଂ. ବି. ନିର୍ମଳସ୍ୱଭାବ, (ବଂ.ବ.ବ୍ରୀ) ନିର୍ମଳ ସ୍ୱଭାବବିଶିଷ୍ଟ ।

ବିମଳା—ସ୍ତ୍ରୀ.ବି. (ବିମଳ + ଆ)ସପ୍ତଳା, ନିଆଳ, ଚମଗାଗାଛର ଲଙ୍କୁଡ଼, ଗ୍ରମର-କଷା, ଭୂମିବିଶେଷ, ପୁରୀର ଶ୍ରୀଜଗନ୍ନାଥ ବେଢ଼ା ଭିତରେ ପ୍ରତିଷ୍ଠିତା ଦେବୀମୂର୍ତ୍ତି, ରୁପାର ଗିଲ୍ଟି,ନଦୀବିଶେଷ, ସରସ୍ୱତୀ, (ସ୍ତ୍ରୀ.ବଂ) ବିମଳର ସ୍ତ୍ରୀଲିଙ୍ଗ । [ ଗୁଣୀ ।

ବିମଳା(ଳେ)ଇ—ଗ୍ରା.ସ୍ତ୍ରୀ.ବି.ବିମଳାଠାକୁ-

ବିମଳାତ୍ମକ—ପୁଂ. ବଂ.(ବିମଳ + ଆତ୍ମନ୍ + କ) ନିର୍ମଳସ୍ୱଭାବ, (ସ୍ତ୍ରୀ) ବିମଳାତ୍ମିକା

ବିମଳାତ୍ମା—ପୁଂ. ବଂ. (ବିମଳ + ଆତ୍ମନ୍) ବି.ବ୍ରୀ; ବିମଳସ୍ୱଭାବ, ଶୁଦ୍ଧହୃଦୟ, ନିର୍ମଳ,(ବି) ଚନ୍ଦ୍ରମା ।

ବିମଳାଦିତ୍ୟ—ପୁଂ. ବି. ସୂର୍ଯ୍ୟ ।

ବିମଳାଦ୍ରି—ପୁଂ. ବି. ( ବିମଳ + ଅଦ୍ରି ) ଶତ୍ରୁଞ୍ଜୟ ପର୍ବତ ।

ବିମଳାନନ୍ଦ—ପୁଂ. ବି. (କ.ଧା) ନିର୍ମଳ-ଆନନ୍ଦ,ଦୁଃଖସମ୍ପର୍କଶୂନ୍ୟ,ଆନନ୍ଦ,ବ୍ରହ୍ମା-ନନ୍ଦ, (ବଂ.ବ.ବ୍ରୀ) ନିର୍ମଳ ଆନନ୍ଦଯୁକ୍ତ ।

ବିମଳାର୍ଥକ—ବଂ. ନିର୍ମଳ ।

ବିମଲିନ—ଗ୍ରା.ପଦ୍ୟ.ବଂ. ଶ୍ୱେତ,ଧଳା ।

ବିମସ୍ତକିତ—ବଂ.ଦ୍ୱିଖଣ୍ଡିତ ମସ୍ତକ,ମସ୍ତକ-ହୀନ ।

ବିମହତ୍ତ୍ୱ—ବଂ. ସୁମହତ୍ତ୍ୱ, ଅତି ମହତ୍ତ୍ୱ ।

ବିମହାଃ—ପୁଂ. ବଂ. ଅତି ତେଜସ୍ୱୀ ।

ବିମା—ଗ୍ରା.ବି.ବନ୍ଧକ,ଭବିଷ୍ୟରେ ଘଟିବା ଆପଦ ବା କ୍ଷତିପାଇଁ କ୍ଷତିପୂରଣ ପାଇବା ଲାଗି ଭାବ ସହାୟକ ବ୍ୟକ୍ତି ସଙ୍ଗେ ଆଗରୁ କରିଥିବା ବନ୍ଦୋବସ୍ତ, ଭବି-ହାନିରୁ ରକ୍ଷଣକଳେକ୍ଷ ଚୁକ୍ତି ।

ବିମାଂସ—କ୍ଳୀ. ବି. (ବି + ମାଂସ) ଅଶୁଦ୍ଧ ମାଂସ,ଅପବିତ୍ର ବା ଅଖାଦ୍ୟ ବା ନିଷିଦ୍ଧ ମାଂସ ।

ବିମାତା—ସ୍ତ୍ରୀ. ବି. (ବି + ମାତୃ)ମାତୃ-ସପତ୍ନୀ, ସାବତ ମା । [ ଗର୍ଭଜାତ ।

ବିମାତୃକ—ଗ୍ରା.ବଂ.ବୈମାତ୍ରେୟ,ବିମାତାଙ୍କ

ବିମାତୃଜ—ପୁଂ. ବଂ. ( ବିମାତୃ + ଜନ୍ ଅ) ବୈମାତ୍ରେୟଭାଇ, ସାବତଭାଇ, (ବଂ) ବିମାତାଙ୍କ ଠାରୁ ଜାତ ,( ସ୍ତ୍ରୀ ) ବିମାତୃଜା ।

ବିମାନ—ବି. (ବି + ମା + ଣ.ଅନ) ଦେବ-ରଥ,ବ୍ୟୋମଯାନ, ଇନ୍ଦ୍ରଙ୍କ ରଥ,ସିଂହା-ସନ, ମଣ୍ଡପ, ସାତମହଲା କୋଠା, ରାଜପ୍ରାସାଦ, ଘୋଟକ,ଯାନମାତ୍ର, ପରି-ଚ୍ଛେଦନ, ସାଧନ, ପରିମାଣ, ଅସମ୍ମାନ, (ବି + ମାନ) ଦେଉଳର କାନ୍ଥଉପରେ ଥିବା ତ୍ରିକୋଣ ବା ବିମସ୍ତୂପ ଗୁମ୍ବଜ,(ଗ୍ରା.

ବି) ଯେଉଁ ମଣ୍ଡପାକୃତି କାଷ୍ଠସାଜରେ ଦେବମୂର୍ତ୍ତିମାନଙ୍କୁ ବସାଇ ସ୍ଥାନାନ୍ତରକୁ ନିଆଯାଏ ଯାଏ,(ଗ୍ରା.ବିଂ) ଅନୁକ-ମ୍ପୀ । [ ଦେଖ ।

ବିମାନକ—ବି. (ବିମାନ + କ) ବିମାନ

ବିମାନଗୁରୁ—ପୁଂ. ବିଂ. (ବିମାନ + ଚର୍ + କ.ଇନ୍) ଯେ ବିମାନଦ୍ୱାରା ଆକାଶ ମାର୍ଗରେ ବିଚରଣ କରେ,(ସ୍ତ୍ରୀ)ବିମାନ-ଚାରିଣୀ ।

ବିମାନନ(ନା)—କ୍ଳୀ. ବି. (ବି + ମାନ + ଅନ.ଆ) ଅପମାନ,ଅସମ୍ମାନ,ତିରସ୍କାର ।

ବିମାନପାଳ—ବି. ଅନ୍ତରୀକ୍ଷର ପାଳୟିତା ଦେବବୃନ୍ଦ ।

ବିମାନୟିତବ୍ୟ—ବିଂ. (ବି + ମାନି + ତବ୍ୟ) ବିମାନନାର ଯୋଗ୍ୟ । [ ବହନ୍ତି ।

ବିମାନବାହକ—ପୁଂ.ବିଂ. ଯେ ବିମାନକୁ

ବିମାନିତ—ପୁଂ.ବିଂ.(ବି + ମାନି + ର୍ମ.ତ) ଅବମାନିତ, (ସ୍ତ୍ରୀ) ବିମାନିତା ।

ବିମାନୁଷ—ବି. (ବି + ମାନୁଷ) ବିକୃତ-ମନୁଷ୍ୟ । [ ନନାର ଯୋଗ୍ୟ ।

ବିମାନ୍ୟ—ବିଂ. (ବି + ମାନ + ଯ) ବିମା-

ବିମାୟ—ବିଂ. ( ବ.ବ୍ରୀ ) ମାୟାହୀନ, ମାୟାଶୂନ୍ୟ ।

ବିମାର୍ଗ—ପୁଂ. ବି. ( ବି + ମୃଜ୍ + ଅ ) କୁପଥ, କଦାଚାର, ଅସଦାଚରଣ, ନିଷିଦ୍ଧକର୍ମ, ଅବାଟ, (ଣ + ଅ) ସମ୍ମା-ର୍ଜନୀ, ଗୁଞ୍ଚୁଣୀ, ପହଁରା, ଝାଡ଼ୁ ।

ବିମାର୍ଗଗାମୀ—ପୁଂ. ବିଂ. (ବିମାର୍ଗ + ଗମିନ୍) କୁପଥଗାମୀ, (ସ୍ତ୍ରୀ) ବିମାର୍ଗ-ଗାମିନୀ ।

ବିମିତ—ବିଂ. (ବି + ମା + ର୍ମ.ତ) ପରି-ମିତ, (ବି) ଗୃହସ୍ତମ୍ଭ ଉପରେ ନିର୍ମିତ ଗୃହ, ବଡକୋଠରି ।

ବିମିଶ୍ର—ବିଂ.(ବି + ମିଶ୍ର + ର୍ମ.ଅ)ମିଶ୍ରିତ, ମିଶାଣ, ଗୋଳା ହୋଇଥିବା ।

ବିମିଶ୍ରକ—ବିଂ. ମିଶ୍ରଣକାରୀ ।

ବିମିଶ୍ରିତ—ବିଂ(ବି + ମିଶ୍ରିତ)ଯୁକ୍ତ, ଏକତ୍ର

ବିମୁକ୍ତ—ବଂ. (ବି + ମୁଚ୍ + ର୍ମ.ତ)ମୋକ୍ଷ-ପ୍ରାପ୍ତ, ପୁନର୍ଜନ୍ମରହିତ, କାରାମୁକ୍ତ,

ପରିତ୍ରାଣପ୍ରାପ୍ତ, ପରିତ୍ୟକ୍ତ, ମୁକୁଳା ଛାଡ଼ିଥିବା, ଫିଙ୍ଗାଯାଇଥିବା ।

ବିମୁକ୍ତତା—ସ୍ତ୍ରୀ.ବି. (ବିମୁକ୍ତ+ତ+ଆ) ବିମୁକ୍ତର ଭାବ, ବିମୋଚନ ।

ବିମୁକ୍ତସଙ୍ଗ—ପୁଂ. ବିଂ. (ବ.ବ୍ରୀ) ସାଂସାରିକ ବିଷୟବାସନାରୁ ମୁକ୍ତିପ୍ରାପ୍ତ, ନିଃସଙ୍ଗ, ନିର୍ଲିପ୍ତ, (ସ୍ତ୍ରୀ) ବିମୁକ୍ତସଙ୍ଗା ।

ବିମୁକ୍ତି—ସ୍ତ୍ରୀ. ବି. ( ବି+ମୁଚ୍+ଭା.କ୍ତି ) ବିମୋଚନ,ମୁକ୍ତି, ମୋକ୍ଷ, ଦୁଃଖନିବୃତ୍ତି, କାରାବନ୍ଧନ ମୋଚନ ।

ବିମୁଖ—ପୁଂ. ବିଂ. (ବି+ମୁଖ) ବ.ବ୍ରୀ; ପରାଙ୍ମୁଖ, ବିରକ୍ତ, ନିବୃତ୍ତ, ଅପ୍ରସନ୍ନ, ନିସ୍ପୃହ, ନିରସ୍ତ, ମୁଖଶୂନ୍ୟ, ଉଦାସୀନ, ପ୍ରତିକୂଳ, ଅପ୍ରାପ୍ତମନୋରଥ, (ଗ୍ରା. ବି) ଅପ୍ରସନ୍ନତା, (ବିଂ)ଦୁଃଖିତ,ନିରାଶ-ଜର୍ଜରିତ ।

ବିମୁଖତା—ସ୍ତ୍ରୀ. ବି. (ବିମୁଖ+ତ+ଆ) ବିରାଗ, ପରାଙ୍ମୁଖତା ।

ବିମୁଗ୍ଧ—ବିଂ(ବି+ମୁହ୍+କ.କ୍ତ)ମୋହପ୍ରାପ୍ତ, ଚମତ୍କୃତ, ସାଧାରଣ ଜ୍ଞାନଶୂନ୍ୟ, ଅତ୍ୟନ୍ତ ମୋହିତ, ଭ୍ରାନ୍ତ ।

ବିମୁଗ୍ଧଚିତ୍ତ—ବି. (କ.ଧା) ମୋହପ୍ରାପ୍ତ-ଅନ୍ତଃକରଣ,(ବିଂ.ବ.ବ୍ରୀ)ମୁଗ୍ଧହୃଦୟ, ବିମୁଗ୍ଧ,ମୁଗ୍ଧମନାଃ,(ସ୍ତ୍ରୀ) ବିମୁଗ୍ଧଚିତ୍ତା ।

ବିମୁଗ୍ଧଚେତାଃ—ପୁଂ. ବିଂ. (ବ.ବ୍ରୀ) ଯାହାର ହୃଦୟ ମୋହଗ୍ରସ୍ତ ହୋଇ ଯାଇଥାଏ ।

ବିମୁଚ୍—ବିଂ. (ବି+ମୁଚ୍+କ୍ୱିପ୍)ବିମୋଚନକାରୀ, ବିମୋକ୍ତା ।

ବିମୁଚ୍ୟମାନ—ପୁଂ. ବିଂ. (ବି+ମୁଚ୍+ମଁ.ଆନ) ଯାହାକୁ ମୁକ୍ତ କରାଯାଇଅଛି, (ସ୍ତ୍ରୀ) ବିମୁଚ୍ୟମାନା ।

ବିମୁଦ୍ର—ବିଂ.(ବି+ମୁଦ୍ରା)ବ.ବ୍ରୀ;ଯହିଁରେ ମୁଦ୍ରା ବା ମୋହର ଚିହ୍ନ ନ ଥାଏ, ପ୍ରଫୁଲ୍ଲ, ବିକଶିତ ।

ବିମୂଢ଼—ପୁଂ.ବିଂ. (ବି+ମୁହ୍+କ.କ୍ତ) ବିମୁଗ୍ଧ, ଇତିକର୍ତ୍ତବ୍ୟଜ୍ଞାନଶୂନ୍ୟ,ମୂର୍ଖ, ହିତାହିତ ବୋଧରହିତ, ଅଚେତ, ମୋହପ୍ରାପ୍ତ,(ବି)ସଙ୍ଗୀତ କଳାବିଶେଷ

ବିମୂଢ଼ଗର୍ଭ—ବି. ଯେଉଁ ଗର୍ଭରେ ଶିଶୁ ମୃତ ବା ସଙ୍କୀର୍ଣ୍ଣ ହୋଇଥାଏ ଓ ଯହିଁର ପ୍ରସବରେ କଷ୍ଟହୁଏ । [ ଅଜ୍ଞ ।

ବିମୂଢ଼ମତି—ବିଂ. (ବ.ବ୍ରୀ) ଜଡ଼ବୁଦ୍ଧି,

ବିମୂଢ଼ସଂଜ୍ଞ—ପୁଂ. ବିଂ. (ବ.ବ୍ରୀ) ଅଜ୍ଞ, ମୋହପ୍ରାପ୍ତ, ଅଚେତ, (ସ୍ତ୍ରୀ)ବିମୂଢ଼ସଂଜ୍ଞା

ବିମୂର୍ଚ୍ଛନ—କ୍ଲୀ.ବି. (ବି+ମୂର୍ଚ୍ଛ+ଅନ) ମୂର୍ଚ୍ଛନ, ମୂର୍ଚ୍ଛା, ସପ୍ତସ୍ୱରର ମୂର୍ଚ୍ଛନ ।

ବିମୂର୍ଚ୍ଛିତ—ବିଂ. ମୂର୍ଚ୍ଛାପ୍ରାପ୍ତ ।

ବିମୂର୍ତ୍ତି—ବିଂ. ବିକୃତ ମୂର୍ତ୍ତିବିଶିଷ୍ଟ, ମୂର୍ତ୍ତି-ରହିତ । [କେଶହୀନ ।

ବିମୂର୍ଦ୍ଧଜ—ବିଂ. (ବି+ମୂର୍ଦ୍ଧଜ) ବ.ବ୍ରୀ;

ବିମୂଳ—ବିଂ. (ବି+ମୂଳ) ମୂଳରହିତ, ନିର୍ମୂଳ, ଉନ୍ମୂଳିତ, ବିନଷ୍ଟ ।

ବିମୂଳନ—ବି. ( ବି+ମୂଳ+ଅନ ) ଉନ୍ମୂଳନ, ଉତ୍ପାଟନ । [ ଣୀୟ ।

ବିମୃଗ୍ୟ—ବିଂ. ଅନୁସରଣୀୟ, ଅନ୍ୱେଷ-

ବିମୃତ୍ୟୁ—ବିଂ. ( ବ.ବ୍ରୀ ) ମୃତ୍ୟୁରହିତ, ଅମର, ମରଣରୁ ବଞ୍ଚିତ ।

ବିମୃଧ୍—ବିଂ. ସଂଗ୍ରାମକାରୀ,ଯୋଦ୍ଧା,ଶତ୍ରୁ ।

ବିମୃଧତନୁ—ବି. ଇନ୍ଦ୍ର ।

ବିମୃଶ—ବି. (ବି+ମୃଶ୍+ଅ) ବିମର୍ଶ ।

ବିମୃଶ୍ୟ—ବିଂ. (ବିମୃଶ+ଯ) ବିମର୍ଶନ-ଯୋଗ୍ୟ ।

ବିମୃଷ୍ଟ—ବିଂ. (ବି+ମୃଜ୍+ମଁ.କ୍ତ)ପରିଚ୍ଛନ୍ନ, ବିବେଚିତ,ବିଚାରିତ,ଆଲୋଚିତ ।

ବିମୃଷ୍ଟରାଗ—ବିଂ.(ବ.ବ୍ରୀ) ଯାହାର ରଙ୍ଗ ପରିଷ୍କାର କରାଯାଇଅଛି ।

ବିମୃଶ୍ୟ(ଷ୍ୟ)କାରୀ—ବିଂ. (ବିମୃଶ୍ୟ+କାରିନ୍) ଯେଉଁଲୋକ ବିବେଚନା କରି କାର୍ଯ୍ୟ କରେ,(ସ୍ତ୍ରୀ)ବିମୃଶ୍ୟକାରିଣୀ ।

ବିମୃଶ୍ୟ(ଷ୍ୟ)ବାଦୀ—ପୁଂ.ବିଂ. ଯେ ବିବେଚନା ପୂର୍ବକ କଥା କହେ ।

ବିମୋକ—ପୁଂ. ବି. ବିମୋଚନ,ବିମୁକ୍ତି ।

ବିମୋକ୍ତବ୍ୟ—ବି .(ବି+ମୁଚ୍+ତବ୍ୟ) ଛାଡ଼ିହେବାର ଯୋଗ୍ୟ, ମୋଚନାର୍ହ ।

ବିମୋକ୍ତା—ପୁଂ. ବିଂ. (ବି+ମୁଚ୍+କ.ତୃ) ବିମୋଚନକାରୀ, ବିମୋଚକ,(ସ୍ତ୍ରୀ) ବିମୋକ୍ତ୍ରୀ ।

ବିମୋକ୍ଷ—ବି, (ବି+ମୋକ୍ଷ+ଅ) ବିମୁକ୍ତି, ନିର୍ବାଣ, ପରିତ୍ୟାଗ, ହାତରୁ ଫିଙ୍ଗିବା, ଉଦ୍ଧାର ।

ବିମୋକ୍ଷକ—ବି . (ବି+ମୋକ୍ଷ+ଅକ) ବିମୋଚକ, ବିମୁକ୍ତିଦାତା ।

ବିମୋକ୍ଷଣ—କ୍ଲୀ. ବି. (ବି+ମୋକ୍ଷ+ଭା.ଅନ) ବିମୋଚନ, ମୁକ୍ତି,ପରିତ୍ୟାଗ, ଖୋଲିଦେବା, ଫିଙ୍ଗିବା ।

ବିମୋକ୍ଷୀ—ପୁଂ. ବିଂ. (ବି+ମୋକ୍ଷ+ଇନ୍) ମୁକ୍ତିଦାତା, ମୋଚନକାରୀ ।

ବିମୋଘ—ବିଂ. ( ବି+ମୁହ୍+ଅ ) ଅମୋଘ, ଅବ୍ୟର୍ଥ ।

ବିମୋଚକ—ବିଂ. (ବି+ମୁଚ୍+ଅକ) ମୋଚନକାରୀ, ମୁକ୍ତିଦାତା, (ସ୍ତ୍ରୀ) ବିମୋଚିକା ।

ବିମୋଚନ—କ୍ଲୀ. ବି. (ବି+ମୁଚ୍+ଭା.ଅନ) ବନ୍ଧନରୁ ମୁକ୍ତକରଣ,ଉଦ୍ଧାର, ବିମୁକ୍ତି, ତ୍ୟାଗ, (ବାଣ) ଫିଙ୍ଗିବା, (ପୁଂ.ବି) ମହାଦେବ ।

ବିମୋଚନୀୟ—ବିଂ. (ବି+ମୁଚ୍+ମଁ.ଅନୀୟ) ବିମୋଚନାର୍ହ,ବିମୋଚନର ଯୋଗ୍ୟ, (ସ୍ତ୍ରୀ) ବିମୋଚନୀୟା ।

ବିମୋଚ୍ୟ—ବିଂ, (ବି+ମୁଚ୍+ମଁ.ଯ) ବିମୋଚନୀୟ ଦେଖ ।

ବିମୋଦିତ—ବିଂ, ସୁବାସିତ, ଅତ୍ୟନ୍ତ ଆନନ୍ଦିତ ।

ବିମୋହ—ପୁଂ. ବି, (ବି+ମୁହ୍+ଭା. ଅ) ଜଡ଼ତା, ମୋହ,ଭ୍ରାନ୍ତି,ଭ୍ରମ,ମୂର୍ଚ୍ଛା ।

ବିମୋହନ—ବି, (ବି+ମୋହ+ଅନ) ମୁଗ୍ଧକରଣ, ମୋହ ଜନ୍ମାଇବା, (ବିଂ) ବିମୋହନ, ବିମୋହନକାରୀ ।

ବିମୋହିତ—ବିଂ.(ବି+ମୋହ+ଇତ) ମୋହପ୍ରାପ୍ତ,ମୁଗ୍ଧ,ମୂର୍ଚ୍ଛିତ,(ବି+ମୁଗ୍ଧ । ମୁହ୍+ଣିଚ୍ ମଁ.କ୍ତ) ମୋହପ୍ରାପିତ,

ବିମୋହୀ—ପୁଂ. ବିଂ. (ବି+ମୁହ୍+ଇନ୍) ବିମୋହନକାରୀ, ଯେ ମୁଗ୍ଧ କରାଏ, ନିଷ୍ଠୁର, ବିମୁଗ୍ଧକାରୀ, (ସ୍ତ୍ରୀ) ବିମୋହିନୀ ।

ବିମୌଳି—ବିଂ, (ବି+ମୌଳି)ବ.ବ୍ରୀ,

ଶିରୋଭୂଷାରହିତ ।
ବିମ୍ଳାପନ—ବି. ସମ୍ଲାହନ,ଶିଥିଳକରଣ ।
ବିମ୍ଳାନ—ବି°. ( ବି+ମ୍ଳୈ+କ.ତ ) ନିର୍ମଳ, ଆମଳିନ, ଟାଟକା ।
ବିମ୍ବ—ବି. (ଗ୍ଲା+ବ) ସୂର୍ଯ୍ୟ ଓ ଚନ୍ଦ୍ର-ମଣ୍ଡଳ, ମୂର୍ତ୍ତି, ପ୍ରତିବିମ୍ବ, ଛାୟା, ଜଳ-ବୁଦ୍‌ବୁଦ, ପ୍ରତିଫଳ,ସୂର୍ଯ୍ୟ, ଉଜ୍ଜ୍ୱଳତା, କମଣ୍ଡଳୁ, ବିମ୍ବିକାଫଳ,କଇଁଚକାକୁଡ଼, କୃକଳାସ, ଏଣ୍ଡୁଅ, (ଗ୍ରା.ବି) ଦର୍ପଣ ।
ବିମ୍ବକ—ବି. (ବିମ୍ବ+କ) ଚନ୍ଦ୍ର ବା ସୂର୍ଯ୍ୟମଣ୍ଡଳ, କଇଁଚକାକୁଡ଼,ଚର୍ମାନଦ୍ଧ ପ୍ରାଚୀନ ବାଦ୍ୟବିଶେଷ ।
ବିମ୍ବଜା—ସ୍ତ୍ରୀ. ବି. (ବିମ୍ବ+ଜନ୍+ଅ +ଆ) ବିମ୍ବିକା, କଇଁଚକାକୁଡ଼ ।
ବିମ୍ବଟ—ବି. ( ବିମ୍ବ+ଅଟ୍+କ.ଅ )
ବିମ୍ବଫଳ—ବି. କଇଁଚକାକୁଡ଼ ।
ବିମ୍ବର—ଗ୍ରା. ବି. ବିବର, ଗହ୍ୱର ।
ବିମ୍ବା—ବି. (ବିମ୍ବ+ଅ+ଆ) ଜଳ-ବୁଦ୍‌ବୁଦ,ଚନ୍ଦ୍ର ବା ସୂର୍ଯ୍ୟମଣ୍ଡଳ,ବିମ୍ବିକା, କଇଁଚକାକୁଡ଼ ।
ବିମ୍ବାକାର—ବି°. (ବ.ବ୍ରୀ)ଗୋଲାକାର, ବର୍ତ୍ତୁଳ ।
ବିମ୍ବାଗତ—ବି°. (ବିମ୍ବ+ଆଗତ)ପ୍ରତି-ବିମ୍ବିତ, ପ୍ରତିଫଳିତ ।
ବିମ୍ବାଧର—ପୁଂ. ବି°. (ବ.ବ୍ରୀ) ପକ୍ୱବିମ୍ବ ପରି ରକ୍ତବର୍ଣ୍ଣ ଓଷ୍ଠବିଶିଷ୍ଟ,(ସ୍ତ୍ରୀ) ବିମ୍ବା-ଧରା ।
ବିମ୍ବିକା—ସ୍ତ୍ରୀ. ବି. ବିମ୍ବା ଦେଖ ।
ବିମ୍ବିତ—ବି°. (ବିମ୍ବ+ଇତ)ପ୍ରତିବିମ୍ବିତ, ପ୍ରତିଫଳିତ, ଆଭାସିତ ।
ବିମ୍ବିସାର—ଗ୍ରା. ବି. ବୌଦ୍ଧ ନରପତି ବିଶେଷ ।
ବିମ୍ବୀ—ସ୍ତ୍ରୀ.ବି. (ବିମ୍ବ+ଈ) ବିମ୍ବାଦେଖ ।
ବିମ୍ବୁ—ବି. (ବି+କ.ବୁ) ସୁପାରି,ଗୁଆ ।
ବିମ୍ବୋ(ମ୍ବୌ)ଷ୍ଠ—ବି°. (ବିମ୍ବ+ଓଷ୍ଠ) ବ.ବ୍ରୀ; ଯାହାର ଓଷ୍ଠଦ୍ୱୟ ବିମ୍ବଫଳପରି ରକ୍ତବର୍ଣ୍ଣ, ବିମ୍ବାଧର ଦେଖ ।
ବିୟଚ୍ଚାରୀ—ପୁଂ.ବି°. (ବିୟତ୍+ଚର+ଣିନ୍) ଆକାଶଚର, ଉଡ଼ୁଥିବା,ଖେଚର, (ସ୍ତ୍ରୀ) ବିୟଚ୍ଚାରିଣୀ, (ବି) ଚିଲପକ୍ଷୀ ।
ବିୟତ୍—କ୍ଲୀ. ବି. ( ବି+ଯମ୍+କ୍ୱିପ୍ ) ଆକାଶ, (ବି°) ଗମନଶୀଳ ।
ବିୟତ୍‌ପତାକା—ବି. (ଷତତ୍) ବିଦ୍ୟୁତ୍ ।
ବିୟତି—ପୁଂ. ବି. ନହୁଷଙ୍କର ପୁତ୍ର-ବିଶେଷ ।
ବିୟଦ୍ଗ—ବି°. ଆକାଶଗାମୀ ।
ବିୟଦ୍ଗଙ୍ଗା—ସ୍ତ୍ରୀ. ବି. (ବିୟତ୍+ଗଙ୍ଗା) ଷତତ୍; ସ୍ୱର୍ଗଗଙ୍ଗା, ମନ୍ଦାକିନୀ ।
ବିୟଦ୍ଭୂତି—ବି. (ବିୟତ୍+ଭୂତି) ଅନ୍ଧ-କାର ।
ବିୟନ୍ମଣି—ପୁଂ.ବି.(ବିୟତ୍+ମଣି)ସୂର୍ଯ୍ୟ
ବିଯମ—ବି. (ବି+ଯମ୍+ଅ) ସଂଯମ, ଇନ୍ଦ୍ରିୟଦମନ, ନିବୃତ୍ତି, (ମି.ଅ) ଦୁଃଖ, ଯାତନା, କ୍ଲେଶ ।
ବିଯାତ—ପୁଂ. ବି°. (ବି+ଯାତ)ନିର୍ଲଜ, ନିଧନ, ଧୃଷ୍ଟ,ପଥଭ୍ରଷ୍ଟ, ପ୍ରଗଲ୍ଭ,ଅଭଦ୍ର, ଅଶିଷ୍ଟ ।
ବିଯାମ—ପୁଂ.ବି. (ବି+ଯମ୍+ଅ)ସଂଯମ
ବିଯୁକ୍ତ—ପୁଂ.ବି°. (ବି+ଯୁଜ୍+ମି.ତ) ବିରହିତ, ତ୍ୟକ୍ତ, ବିଚ୍ଛିନ୍ନ, ବିଶ୍ଳିଷ୍ଟ ।
ବିଯୁକ୍ତଚିହ୍ନ—ଗ୍ରା. ବି. '—' ଏହିଚିହ୍ନ , ଫେଡ଼ାଣଚିହ୍ନ ।
ବିଯୁତ—ବି°. ବିଯୁକ୍ତ ଦେଖ ।
ବିଯୁତାର୍ଥକ—ବି°. ସଂଜ୍ଞାହୀନ,ଜ୍ଞାନଶୂନ୍ୟ ।
ବିଯୂଥ—ବି°. ଯୂଥଭ୍ରଷ୍ଟ, ଦଳଭ୍ରଷ୍ଟ ।
ବିଯୋଗ—ପୁଂ.ବି. (ବି+ଯୁଜ୍+ଭା.ଅ) ବିଚ୍ଛେଦ, ବିପ୍ରଲମ୍ଭ, ବିରହ, ଅଭାବ, (ଗଣିତ) ବ୍ୟବକଳନ, ଫେଡ଼ାଣ ।
ବିଯୋଗଫଳ—ବି.ଗୋଟିଏ ରାଶିରୁ ଅନ୍ୟ ରାଶିକୁ ଫେଡ଼ିଲେ ଯାହା ବାକି ରହେ ।
ବିୟୋଗଭାକ୍—ପୁଂ.ବି°. (ବିୟୋଗ+ଭଜ୍+କ୍ୱିପ୍) ବିଚ୍ଛେଦଯୁକ୍ତ, ବିରହୀ, ବିଯୁକ୍ତ ।
ବିୟୋଗବାନ୍—ପୁଂ.ବି°. (ବିୟୋଗ+ବତ୍) ବିୟୋଗବିଶିଷ୍ଟ, ବିଯୁକ୍ତ ।
ବିୟୋଗବିଧୁର (କାତର)—ପୁଂ. ବି°. (ଷତତ୍) ପ୍ରିୟ ବିଚ୍ଛେଦରେ କାତର ।
ବିୟୋଗଶୃଙ୍ଗାର—ବି. (କ.ଧା) ଯେଉଁ ଶୃଙ୍ଗାରରସ ନାୟକ ନାୟିକାର ବିଚ୍ଛେଦକୁ ଅବଲମ୍ବନ କରେ ।
ବିୟୋଗାତ୍ମକ—ବି°.(ବିୟୋଗ+ଆତ୍ମନ୍+କ) ଯହିଁର ଆତ୍ମା ବା ପ୍ରକୃତି ବିୟୋଗ ଅଟେ,(ସ୍ତ୍ରୀ)ବିୟୋଗାତ୍ମିକା ।
ବିୟୋଗାନ୍ତ—ବି°. (ବ.ବ୍ରୀ) ଯାହାର ଶେଷରେ ମୃତ୍ୟୁ ବା ବିଚ୍ଛେଦ ଘଟେ ବା ବର୍ଣ୍ଣିତ ହୁଏ ।
ବିୟୋଗିତା—ସ୍ତ୍ରୀ.ବି. (ବିୟୋଗିନ୍+ଭା.ତ+ଆ) ବିୟୋଗୀର ଭାବ, ବିଚ୍ଛେଦ ।
ବିୟୋଗିନୀ—ସ୍ତ୍ରୀ.ବି. (ବିୟୋଗିନ୍+ଈ) ବିରହିଣୀ ସ୍ତ୍ରୀ, ଛନ୍ଦୋବିଶେଷ,(ବି°) ବିୟୋଗୀର ସ୍ତ୍ରୀଲିଙ୍ଗ ।
ବିୟୋଗୀ—ପୁଂ.ବି°.(ବିୟୋଗ+ଇନ୍) ପୃଥକ୍‌ଭୂତ, ବିରହୀ, ବିଯୁକ୍ତ, (ବି) ଚକ୍ରବାକ ପକ୍ଷୀ, (ସ୍ତ୍ରୀ) ବିୟୋଗିନୀ ।
ବିଯୋଜନ—ବି. (ବି+ଯୁଜ୍+ଣିଚ୍+ଭା.ଅନ) ବିୟୋଗ, ବିଚ୍ଛେଦ ।
ବିଯୋଜନୀୟ—ବି°. (ବି+ଯୁଜ୍+ଣିଚ୍+ଅନୀୟ) ବିଯୋଜନଯୋଗ୍ୟ, ବିୟୋଗାର୍ହ ।
ବିଯୋଜିତ—ବି°. (ବି+ଯୁଜ୍+ଣିଚ୍+ମି.ତ) ବିରହିତ, ପୃଥକ୍‌ଭୂତ, ପୃଥକ୍‌କୃତ, ବିଚ୍ଛେଦପ୍ରାପିତ, ବିଶ୍ଳିଷ୍ଟ ଶୂନ୍ୟୀକୃତ ।
ବିଯୋଜ୍ୟ—ବି°. (ବି+ଯୁଜ୍+ମି.ଯ) ପୃଥକ୍‌କରଣଯୋଗ୍ୟ ।
ବିଯୋଡ଼—ଗ୍ରା.ବି. ଅମିଳନ, ଅଯୁଗଳ, (ବି°) ଅଯୁକ୍ତ ।
ବିଯୋନି—ସ୍ତ୍ରୀ. ବି. ଅପଯୋନି, ନୀଚ-ଜନ୍ମ, (ବି°) ଅଜ୍ଞାତକୁଳା, ହୀନକୁଳା ।
ବିର୍‌କା—ପ୍ରା.(ସମ୍ବ) ବି°. ଚଡ଼ିଲା, ଯେ ସାମାନ୍ୟ କଥାରେ ଚଡ଼ିଯାଏ ।
ବିର୍‌ଝିବା—ଗ୍ରା. କ୍ରି. ବିରକ୍ତ ହେବା, ଚଡ଼ିବା ।
ବିର୍‌ନ—ପ୍ରା.(ସମ୍ବ)ବି. ଆଖିର ଉପର ପତାର ବାଳ, ବେଣା ।
ବିରକତ—ବି.ଛତ୍ତ୍ରକଳର ବୈଷ୍ଣବ ସମ୍ପ୍ର-

ବାଦ୍ୟବିଶେଷ, ( ଗ୍ରା.ବିଂ ) ଉଦାସୀନ,
ବିମୁଖ, ବିରକ୍ତ ।
ବିରକ୍ତ—ପୁଂ.ବିଂ. (ବି+ରନ୍ଜ୍+କ.ତ)
ବୈରାଗ୍ୟଯୁକ୍ତ, ଉଦାସୀନ, ନିସ୍ପୃହ,
ଅନନୁରକ୍ତ, ବିରତ, ବିମୁଖ, କ୍ଲିଷ୍ଟ,
(ମିଂ.ତ) ପରିତ୍ୟକ୍ତ, ପ୍ରକ୍ଷାଣ, (ଗ୍ରା.ବିଂ)
ଚଞ୍ଚଳ, ବିହ୍ୱଳଗଣ୍ଡ ।
ବିରକ୍ତଭାବ—ପୁଂ.ବି. ( ବିରକ୍ତ + ଭାବ )
ବିରାଗ, ବୈରାଗ୍ୟ, ଅନିଚ୍ଛା, ଔଦାସୀନ୍ୟ,
ଅସନ୍ତୋଷ ।
ବିରକ୍ତା—ସ୍ତ୍ରୀ.ବିଂ.(ବିରକ୍ତ+ଆ) ଦୁର୍ଭଗା,
ଅନନୁକୂଳା (ସ୍ତ୍ରୀ) ।
ବିରକ୍ତି—ସ୍ତ୍ରୀ. ବି.(ବି+ରନ୍ଜ୍+ଭା.ତି)
ବିରାଗ,ଔଦାସ୍ୟ,ଅନନୁରାଗ,ଅସନ୍ତୋଷ,
ମନୋବେଦନା,ବିରତି,(ଗ୍ରା.ବି)ଘୃଣା ।
ବିରକ୍ତିକର—ବିଂ. ( ବିରକ୍ତି+ କୃ.ଅ )
ବୈରାଗ୍ୟଜନକ, ( ଗ୍ରା. ବିଂ ) ମନୋ-
ବେଦନାଦାୟକ ।
ବିରକ୍ତିଜନକ—ବିଂ.(୬ତତ୍ପୁ)ଅସନ୍ତୋଷ
ଉତ୍ପାଦକ,ଅପ୍ରୀତିକର, (ସ୍ତ୍ରୀ) ଜନକା ।
ବିରକ୍ତିମାନ୍—ପୁଂ. ବିଂ. (ବିରକ୍ତି + ମତ୍)
ବିରକ୍ତି ବିଶିଷ୍ଟ,ବିରକ୍ତ, ବୈରାଗ୍ୟଯୁକ୍ତ ।
ବିରଙ୍ଗ—ବି. (ବି+ ରଞ୍ଜ୍+ ଅ ) ବିରାଗ,
କଙ୍କୁଷ୍ଠ, କୁଙ୍କୁମ,(ବିଂ) ବହୁବର୍ଣ୍ଣବିଶିଷ୍ଟ,
ଚିତ୍ରିତ, ବିବର୍ଣ୍ଣ, ମନ୍ଦବର୍ଣ୍ଣବିଶିଷ୍ଟ ।
ବିରଚକ—ପୁଂ. ବି.ବିଂ. (ବି+ ରଚ୍+
କ.ଅକ) ବିରଚୟିତା ଦେଖ, (ସ୍ତ୍ରୀ)
ବିରଚିକା ।
ବିରଚନ—କ୍ଲୀ.ବି (ବି+ରଚ୍+ ଭା.ଅନ)
ପ୍ରଣୟନ, ନିର୍ମାଣ, ଗ୍ରନ୍ଥନ, ରଚନ,
ଗଢ଼ା, ସୁସଜ୍ଜାପନ ।
ବିରଚନା—ବି. (ବି+ ରଚ୍+ ଭା.ଅନ
+ ଆ) ବିରଚନ ଦେଖ ।
ବିରଚନୀୟ—ବିଂ. ( ବି+ରଚ୍+ ମିଂ.
ଅନୀୟ) ବିରଚିତ ହେବାର ଯୋଗ୍ୟ,
ଯାହା ରଚିତ ହେବ ।
ବିରଚୟିତା—ପୁଂ. ବିଂ. (ବି+ରଚ୍+
କ.ତୃ) ନିର୍ମାତା, ପ୍ରଣେତା, ରଚକ,
କାର୍ତ୍ତିକାକାରୀ, (ସ୍ତ୍ରୀ) ବିରଚୟିତ୍ରୀ ।

ବିରଚିତ—ବିଂ. ( ବି+ ରଚ୍ + ମିଂ.ତ )
ନିର୍ମିତ,ପ୍ରଣୀତ,ଗ୍ରଥିତ, ରଚିତ,ବର୍ଣ୍ଣିତ,
ଭୂଷିତ, (ବି.ଭା.ତ) ରଚନା ।
ବିରଚିବା—ଗ୍ରା. କ୍ରି. ନିର୍ମାଣ କରିବା,
ରଚନାକରିବା, ଗ୍ରଥନକରିବା,ବର୍ଣ୍ଣିବା,
ସମ୍ପାଦିବା, ରଚଣ କରିବା, କହିବା ।
ବିରଜ—ବିଂ. (ବି+ରଜଃ) ଧୂଳିଶୂନ୍ୟ,
କ୍ରୋଧାଦିରିପୁର ଅବଶୀଭୂତ,ନିର୍ଦ୍ଦୋଷ,
ରଜୋଗୁଣରହିତ,(ପୁଂ.ବି) ବିଷ୍ଣୁ, ଶିବ,
ଐଶ୍ୱର୍ଯ୍ୟବିଶେଷ, ସାବର୍ଣ୍ଣି ମନ୍ୱନ୍ତରର
ଦେବଗଣବିଶେଷ ।
ବିରଜମଣ୍ଡଳ—କ୍ଲୀ. ବି. ବିରଜା କ୍ଷେତ୍ର
ବା ଯାଜପୁର ଅଞ୍ଚଳ ।
ବିରଜସ୍କ—ପୁଂ.ବିଂ (ବି+ରଜସ୍+ଅକ)
ଧୂଳିଶୂନ୍ୟ,କାମକ୍ରୋଧାଦିହୀନ, ରଜୋ-
ରହିତ,(ବି)ସାବର୍ଣ୍ଣିମନୁଙ୍କ ପୁତ୍ରବିଶେଷ.
(ସ୍ତ୍ରୀ) ବିରଜସ୍କା ।
ବିରଜସ୍କା—ସ୍ତ୍ରୀ. ବିଂ. ( ବିରଜସ୍କ+ଆ )
ବିରଜସ୍କର ସ୍ତ୍ରୀଲିଙ୍ଗ, ଯେଉଁ ସ୍ତ୍ରୀର
ଋତୁସ୍ରାବ ରହିତ ହୋଇଅଛି, (ସ୍ତ୍ରୀ.ବି)
ଋତୁସ୍ରାବ ବାହିତ ହେଉଥିବା ବର୍ଷୀ-
ୟସୀ ସ୍ତ୍ରୀ ।
ବିରଜସ୍ତମାଃ—ପୁଂ.ବିଂ.ରଜଃ ଓ ତମୋ-
ଗୁଣରହିତ, ସତ୍ତ୍ୱଗୁଣବିଶିଷ୍ଟ ।
ବିରଜା—ସ୍ତ୍ରୀ.ବି.(ବି+ରନ୍ଜ୍+ଅ+ଆ)
ଦୂର୍ବା, ଯଯାତି ରାଜାଙ୍କ ମାତା, ରାଧି-
କାଙ୍କ ସଖୀବିଶେଷ,ଉତ୍କଳରେ ଶ୍ରୀକ୍ଷେତ୍ରସ୍ଥ
ବିମଳା ଠାକୁରାଣୀ, ଶ୍ରୀକ୍ଷେତ୍ର, ପୁରୀ,
(ମତାନ୍ତରେ)ଯାଜପୁର, ଯାଜପୁରରେ
ପ୍ରକଟିତା ଦୁର୍ଗାଦେବୀ, ନଦୀବିଶେଷ,
କପିତ୍ଥବୃକ୍ଷ ।
ବିରଜାଃ—ସ୍ତ୍ରୀ. ବି. (ବ.ବ୍ରୀ) ନିବୃତ୍ତ-
ରଜସ୍କା ସ୍ତ୍ରୀ, ( ପୁଂ. ବିଂ. ବି+ ରଜଃ )
ରଜୋଗୁଣରହିତ, ଧୂଳିଶୂନ୍ୟ, ବ୍ରହ୍ମାଙ୍କ
ମାନସପୁତ୍ରବିଶେଷ ।
ବିରଜାକ୍ଷ—ପୁଂ. ବି. ପର୍ବତବିଶେଷ ।
ବିରଜାକ୍ଷେତ୍ର—ବି. ଉତ୍କଳର ଶ୍ରୀ ଜଗ-
ନ୍ନାଥ କ୍ଷେତ୍ର, (ମତାନ୍ତରେ)ଯାଜପୁର ।
ବିରଜାଦେଶ—ଗ୍ରା. ବି. ବିରଜାପୀଠ,

ଯାଜପୁର ।
ବିରଜାନଦୀ—ଗ୍ରା. ବି. ଦାକ୍ଷିଣାତ୍ୟ ମହୀ-
ସୁର ରାଜ୍ୟର ଗୋଟିଏ କୃତ୍ରିମ ନଦୀ ।
ବିରଜାମଣ୍ଡଳ—ବି. ପୁରୀଠାରୁ ପୁରୀ-
ଠାରୁ ଯାଜପୁର ପର୍ଯ୍ୟନ୍ତ ଅଞ୍ଚଳ,
ଯାଜପୁର ଅଞ୍ଚଳ ।
ବିରଜୀକୃତ—ବିଂ(ବିରଜ+ଚ୍ୱି+କୃତ)
ରଜୋଗୁଣରହିତ, ନିର୍ଧୂଳୀକୃତ ।
ବିରଞ୍ଚ—ପୁଂ. ବି. (ବି+ରଚ୍+କ.ଅ)
ବ୍ରହ୍ମା ।
ବିରଞ୍ଚନ—ପୁଂ. ବି. ବ୍ରହ୍ମା ।
ବିରଞ୍ଚି—ପୁଂ. ବି. (ବି+ରଚ୍+କ.ଇ)
ବ୍ରହ୍ମା, (ଗ୍ରା.ବି) ସୂର୍ଯ୍ୟଦେବ ।
ବିରଞ୍ଚିନାରାୟଣ—ବି. ବ୍ରହ୍ମା ଓ ବିଷ୍ଣୁ,
(ଗ୍ରା.ବି) ସୂର୍ଯ୍ୟଦେବ । [ କହିବା ।
ବିରଞ୍ଚିବା—ଗ୍ରା. କ୍ରି. ବିରଚିବା, ରଚନା
ବିରତ—ବିଂ.(ବି+ରମ୍+କ.ତ)ନିବୃତ୍ତ,
କ୍ଷାନ୍ତ, ଉପରତ, ବିଭ୍ରାନ୍ତ, ବିମୁଖ ।
ବିରତି—ସ୍ତ୍ରୀ. ବି. (ବି+ରମ୍+ଭା.ତି)
ନିବୃତ୍ତି, ଉପରାମ, ବିରାମ, ଶାନ୍ତି,ବିରାଗ,
ବିଶ୍ରାମ, ଅଭାବ ।
ବିରତିବ୍ୟଞ୍ଜକପ୍ରତିକ୍ରିୟା—ବି. ଯେଉଁ
ପ୍ରତିକ୍ରିୟା ନିବୃତ୍ତିମୂଳକ ଅଟେ ।
ବିରଥ—ପୁଂ. ବିଂ. (ବି+ରଥ) ବ.ବ୍ରୀ;
ରଥଶୂନ୍ୟ, ରଥହୀନ, (ସ୍ତ୍ରୀ) ବିରଥା ।
ବିରଥୀ—ପୁଂ.ବିଂ. ରଥଚ୍ୟୁତ, ସାରଥି-
ହୀନ ।
ବିରଥ୍ୟ—ବିଂ. ( ବି+ ରଥ୍ୟା ) ବ.ବ୍ରୀ;
ରଥ୍ୟା ବା ପଥହୀନ ।
ବିରଥ୍ୟା—ସ୍ତ୍ରୀ. ବି.ବିଶିଷ୍ଟରଥ୍ୟା, କୁପଥ ।
ବିରମ—ପୁଂ. ବି. (ବି+ରମ୍+ଅ)ନାଶ,
ଅପଗମ ।
ବିରମଣ—କ୍ଲୀ. ବି. (ବି+ରମ୍+ଅନ)
ବିରାମ,ସମ୍ଭୋଗ, ଅବସରଗ୍ରହଣ ।
ବିରମିବା—ଗ୍ରା. କ୍ରି. ବିରତହେବା,
ବିଶ୍ରାମକରିବା ।
ବିରଲ—ବିଂ. (ବି+ରା+କ.ଅଲ)ସାବ-
କାଶ, ତନୁ, ଅନିବିଡ଼, ଛଡ଼ା ଛଡ଼ା,
ଶିଥିଳ, ଦୁର୍ଲଭ, ବ୍ୟବହିତ, ( ବି)

ନିର୍ଜନ ସ୍ଥାନ, ଦଧି, (ଗ୍ରା.ବି°) ସୁନ୍ଦର, ସ୍ପଷ୍ଟ, (ସ୍ତ୍ରୀ) ବିରଳା ।

ବିରଳଜାନୁକ—ପୁ°.ବି°. (ବ.ବ୍ରୀ) ବିରଳ-ଜାନୁବିଶିଷ୍ଟ, ଲମ୍ବା ଜାନୁବିଶିଷ୍ଟ, (ସ୍ତ୍ରୀ) ବିରଳଜାନୁକା ।

ବିରଳିକା—ସ୍ତ୍ରୀ. ବି. ବସ୍ତ୍ରବିଶେଷ ।

ବିରଳିତ—ବି°. ବିରଳଯୁକ୍ତ, ଅବକାଶ-ବିଶିଷ୍ଟ ।

ବିରଳୀକୃତ—ବି°. ପୂର୍ବରୁ ବିରଳ ନ ଥିବା ସ୍ଥାନାଦିକୁ ବିରଳ କରିବା ।

ବିରଳେତର—ବି°. (ବିରଳ+ଇତର) ୬ତତ୍; ଅବିରଳ, ବିରଳରୁ ଭିନ୍ନ ।

ବିରବ—ବି. ବିବିଧ ଶବ୍ଦ, ଗର୍ଜନ, (ବି°. ବ.ବ୍ରୀ) ବିଗତଶବ୍ଦ, ଶବ୍ଦଶୂନ୍ୟ ।

ବିରଶ୍ମି—ବି°.(ବି+ରଶ୍ମି)ବ.ବ୍ରୀ, ରଶ୍ମି ବା କିରଣରହିତ, ଦୀପ୍ତିରହିତ ।

ବିରସ—ବି°.(ବି+ରସ)ବ.ବ୍ରୀ; ନୀରସ, ଶୁଷ୍କ, ଅରସିକ, ରସହୀନ, ଅସ୍ୱାଦୁ, ବିରକ୍ତିଜନକ, ବିଷଣ୍ଣ, ଅତୃପ୍ତିକର,(ବି) ଅଶ୍ରଦ୍ଧା, ଅଭକ୍ତି, ବିଷାଦ, (ଗ୍ରା. ବି°) ହର୍ଷଶୂନ୍ୟ, ହାସ୍ୟଶୂନ୍ୟ ।

ବିରସମୁଖ—ପୁ°. ବି°. (ବ.ବ୍ରୀ)ଯାହାର ମୁହଁ ବିଷଣ୍ଣ ବା ଶୁଖିଲା ଦେଖାଯାଏ, (ବି.କ.ଧା) ବିଷଣ୍ଣବଦନ, ଶୁଖିଲାମୁହଁ, (ସ୍ତ୍ରୀ) ବିରସମୁଖୀ ।

ବିରସାନନତ୍ୱ—କ୍ଳୀ.ବି.ମୁଖର ବୈରସ୍ୟ ।

ବିରସାସ୍ୟତ୍ୱ—କ୍ଳୀ.ବି.ମୁଖର ବୈରସ୍ୟ ।

ବିରସିତ(ତା)—ଗ୍ରା.ପୁ°.ବି°. ବିଷାଦିତ, ଦୁଃଖିତ ।

ବିରହ—ବି(ବି+ରହ୍+ଭା.ଅ)ବିଚ୍ଛେଦ-ଘଟିବା ଅବସ୍ଥା, ବିପ୍ରଲମ୍ଭ, ବିୟୋଗ, ଅଭାବ, ତ୍ୟାଗ, ଶୃଙ୍ଗାର ରସର ବିପ୍ର-ଲମ୍ଭାଖ୍ୟ ଅବସ୍ଥାବିଶେଷ ।

ବିରହକାତର—ପୁ°. ବି°. (୭ତତ୍) ପ୍ରିୟଜନ ବିଚ୍ଛେଦରେ ଅତି ଦୁଃଖିତ, (ସ୍ତ୍ରୀ) ବିରହକାତରା ।

ବିରହଜ୍ୱାଳା—ବି. (୬ତତ୍) ପ୍ରିୟଜନ ବିଚ୍ଛେଦଜନିତ କଷ୍ଟ ।

ବିରହଦଶା—ବି.ବିଚ୍ଛେଦ ଘଟିବା ଯୋଗୁ ପ୍ରେମିକପ୍ରେମିକାଙ୍କଠାରେ ଲକ୍ଷିତ ବିଭିନ୍ନ ଅବସ୍ଥା ।

ବିରହବ୍ୟଥା ବି.(କ.ଧା)ବିଚ୍ଛେଦ ଯାତନା, ବିୟୋଗ ଜନିତ କ୍ଳେଶ ।

ବିରହାଗ୍ନି—ବି. (କ.ଧା) ବିଚ୍ଛେଦରୂପ ଅଗ୍ନି,ଅଗ୍ନିବତ୍ ଶରୀରକୁ ପୀଡ଼ା ଦେଉ-ଥିବା ବିରହ ଦୁଃଖ ।

ବିରହିତ—ବି°.(ବିରହ+ଇତ)ବିହୀନ, ରହିତ, ବିଚ୍ଛେଦପ୍ରାପ୍ତ, ପରିତ୍ୟକ୍ତ,(ସ୍ତ୍ରୀ) ବିରହିତା ।

ବିରହୀ—ପୁ°. ବି°.(ବିରହ+ଇନ୍)ପ୍ରିୟ ଜନଠାରୁ ବିଚ୍ଛେଦଯୁକ୍ତ, ବିୟୋଗୀ, (ସ୍ତ୍ରୀ) ବିରହିଣୀ ।

ବିରହୋତ୍କଣ୍ଠା—ବି. (୭ତତ୍) ପ୍ରିୟଜନ-ବିରହ ଜନିତ ବ୍ୟାକୁଳତା ।

ବିରହୋତ୍କଣ୍ଠିତା—ସ୍ତ୍ରୀ.ବି.ନାୟିକାବିଶେଷ, ସ୍ୱାମୀ ବିରହରେ କାତର ସ୍ତ୍ରୀ, ( ବି° ) ପ୍ରିୟବିରହଯୋଗୁଁ ଉତ୍କଣ୍ଠା ଜର୍ଜରିତା ।

ବିରା—ଗ୍ରା. ବି. ବ୍ରଣ, ଦେହରେ ହେବା ବ୍ରଣ ।

ବିରାଗ—ପୁ°. ବି. ( ବି+ରଞ୍ଜ୍+ଭା. ଅ) ଅନନୁରାଗ, ଔଦାସ୍ୟ, ନିଷ୍ପୃହତା, ଅସନ୍ତୋଷ, ବିରକ୍ତି,ବୈରାଗ୍ୟ,ବର୍ଣ୍ଣର ପରିବର୍ତ୍ତନ, (ବି°) ବିବିଧବର୍ଣ୍ଣବିଶିଷ୍ଟ, ବୀତରାଗ, ରାଗହୀନ, (ସ୍ତ୍ରୀ) ବିରାଗା,(ଗ୍ରା. ବି) କ୍ରୋଧ, (ବି°) କ୍ରୁଦ୍ଧ ।

ବିରାଗତା—ବି. (ବି+ରାଗ+ତା+ଆ) ବିରାଗର ଭାବ, ବୈରାଗ୍ୟ ।

ବିରାଗଭାଜନ—ପୁ° ଓ ସ୍ତ୍ରୀ. ବି°.(୬ତତ୍) ଅସନ୍ତୋଷର ପାତ୍ର ।

ବିରାଗିତ—ବି°. ବିରାଗଯୁକ୍ତ, ବିରାଗବିଶିଷ୍ଟ

ବିରାଗୀ—ପୁ°. ବି°. ( ବିରାଗ+ଇନ୍ ) ବୈରାଗ୍ୟଯୁକ୍ତ, ଉଦାସୀନ,(ସ୍ତ୍ରୀ)ବିରାଗିଣୀ

ବିରାଜ୍(ଜ)—ବି. (ବି+ରାଜ୍+ଭା.କ୍ୱିପ୍ ଅ) ପ୍ରକାଶ, ଶୋଭା, ସୌନ୍ଦର୍ଯ୍ୟ,ଦୀପ୍ତି ଦର୍ଶନଯୋଗ୍ୟ ବସ୍ତୁ, ( କ.କ୍ୱିପ୍.ଅ) କ୍ଷତ୍ରିୟ, ବ୍ରହ୍ମାଙ୍କ ପ୍ରଥମ ପୁତ୍ର, ଶରୀର, ସର୍ବବ୍ୟାପୀ ପରମେଶ୍ୱର,ସ୍ୱାୟମ୍ଭୁବମନୁ, (ନ୍ୟାୟଦର୍ଶନ) ଦେହ ଉପରେ ଅଧି-କାରଣୀ ବୁଦ୍ଧି, (ବି°ବିଶେଷଣ, ଗ୍ରା. ବି°) ପ୍ରକାଶ, ବିରାଟ, ବିରାଜିତ, ଶୋଭିତ, ବିରାଜମାନ ଦୃଶ୍ୟ ।

ବିରାଜନ—କ୍ଳୀ. ବି.(ବି+ରାଜ୍+ଭା.ଅନ) ଶୋଭନ, ପ୍ରକାଶନ ।

ବିରାଜମାନ—ପୁ°. ବି°. (ବି+ରାଜ୍+କ. ଆନ) ଶୋଭମାନ, ପ୍ରକାଶମାନ,ଦୀପ୍ତି-ବିଶିଷ୍ଟ, ବିରାଜିତ, ବିଦ୍ୟମାନ, ଜାଜ୍ଜ-ଳ୍ୟମାନଯୁକ୍ତ, (ସ୍ତ୍ରୀ) ବିରାଜମାନା ।

ବିରାଜମାନହେବା—ଗ୍ରା. କ୍ରି. (ଦେବତା) ରାଜା ମାନ୍ୟ ବ୍ୟକ୍ତିମାନଙ୍କ ପକ୍ଷ ପ୍ରଯୁଜ୍ୟ) ବିଜେ କରିବା, ଉପସ୍ଥିତ ହେବା,ଉପ-ବେଶନ କରିବା, ଯିବା ଆସିବା ।

ବିରାଜି—ବି. ( ବି+ରାଜି ) ପକ୍ଷୀସମୂହ, ପକ୍ଷୀମାନେ,(ଗ୍ରା.ବି) ବିରାଜିତ, ସମୂହ ।

ବିରାଜିତ—ପୁ°. ବି° (ବି+ରାଜ+ର୍ମି.ତ) ପ୍ରକାଶିତ, ପ୍ରତିଷ୍ଠିତ, (କ.ତ)ଉପସ୍ଥିତ, ଶୋଭିତ, (ସ୍ତ୍ରୀ) ବିରାଜିତା ।

ବିରାଜିବା—ଗ୍ରା.କ୍ରି.ଆସିବା,ବିଜେକରିବା, ବିରାଜିତ ହେବା, ଝଟକିବା, ଶୋଭା-ପାଇବା, ଉପସ୍ଥିତ ହେବା, ବସିବା, ଅବସ୍ଥିତ ହେବା ।

ବିରାଜୀ—ପୁ°. ବି°. (ବି.+ରାଜ୍+ଇନ୍) ଦୀପ୍ତିବିଶିଷ୍ଟ, ପ୍ରକାଶଶୀଳ, ବିରାଜମାନ, (ସ୍ତ୍ରୀ) ବିରାଜିନୀ ।

ବିରାଜ୍ୟ—ବି. ଦୀପ୍ତି, ସମୃଦ୍ଧି, ସାମ୍ରାଜ୍ୟ ।

ବିରାଟ—ଗ୍ରା.ବି° ସୁବୃହତ୍,ବିଶାଳ, ମହତ୍, (ସଂ-ବି.ବି+ରଟ୍+ର୍ମି.ଅ)ଦେଶବିଶେଷ, ବିରାଟ ଦେଶର ରାଜା, ପଞ୍ଚପାଣ୍ଡବଙ୍କର ଅଜ୍ଞାତ ବନବାସ ସମୟରେ ଆଶ୍ରୟ-ଦାତା, ବିରାଟ ବା ମତ୍ସ୍ୟଦେଶର ରାଜା, (ଦର୍ଶନଶାସ୍ତ୍ର) ସମସ୍ତ ବ୍ରହ୍ମାଣ୍ଡରେ ସମଷ୍ଟି ଭାବରେ ବିରାଜିତ ସର୍ବବ୍ୟାପୀ ଭଗ-ବାନଙ୍କ ସତ୍ତା, ପରମେଶ୍ୱର, କ୍ଷତ୍ରିୟ, ସ୍ୱାୟମ୍ଭୁବମନୁ, କାନ୍ତି, ଦୀପ୍ତି, ଛନ୍ଦୋ-ବିଶେଷ, ଏକପ୍ରକାର ନାଗସାପ, (ଗ୍ରା. ବି.)ଗରୁଡ଼ ।

ବିରାଟକ—ବି. (ବିରାଟ+କୈ+କ.ଅ) ଚୁମ୍ବକ, ମଣି ବିଶେଷ, ବିରାଟଜ ।

**ବିରାଟକାୟ**—ପୁ ଓ ସ୍ତ୍ରୀ. ବିଂ. ବିଶାଳକାୟ, ଯାହାର ଶରୀର ଅତି ବୃହତ୍. (ଗ୍ରା.ବି) ବିଶାଳ ଦେହ ।

**ବିରାଟକ**—ପୁ . ବି. (ବିରାଟ+କନ୍+କ.ଅ)ବିରାଟ ଦେଶୀୟ ହୀରକ,ରାଜପଟ୍ଟ, ଚୁମ୍ବକ, (ବିଂ) ବିରାଟଜାତ ।

**ବିରାଟତନୟ**—ପୁଂ. ବି. (ଷତତ୍)ବିରାଟରାଜାଙ୍କ ପୁତ୍ର. ଉତ୍ତର ।

**ବିରାଟତନୟା**—ସ୍ତ୍ରୀ. ବି. (ଷତତ୍) ବିରାଟ ରାଜକନ୍ୟା, ଉତ୍ତରା ।

**ବିରାଟଦେଶ**—ବି.ମହାଭାରତୋକ୍ତ ମତ୍ସ୍ୟଦେଶ (ଯେଉଁଠାରେ ପାଣ୍ଡବମାନେ ପ୍ରଚ୍ଛନ୍ନ ଭାବରେ ଆଶ୍ରୟ ନେଇଥିଲେ). ଆଧୁନିକ ଉତ୍ତରବଙ୍ଗର ବଗୁଡ଼ା ସନ୍ନିହିତ ପ୍ରାଚୀନ ଦେଶବିଶେଷ ।

**ବିରାଟନଗର**—ବି. ପ୍ରାଚୀନ ବିରାଟ ଦେଶର ରାଜଧାନୀ ।

**ବିରାଟପର୍ବ**—ବି. ମହାଭାରତର ୧୮ଶ ପର୍ବମଧ୍ୟରୁ ୪ର୍ଥପର୍ବ, (ଗ୍ରା.ବୀଭତ୍ସ୍ନିକ କାଣ୍ଡ, ମହାଆଡ଼ମ୍ବର ପୂର୍ଣ୍ଣ ବିଷୟ ।

**ବିରାଟମୂର୍ତ୍ତି**—ଗ୍ରା. ବି. ଭୟଙ୍କର ରୂପ, ବିଶାଳ ଶରୀର । [ ନୃପତି ।

**ବିରାଟରାଜା**—ଗ୍ରା. ବି. ବିରାଟ ଦେଶର

**ବିରାଟରୂପ**—କ୍ଲୀ.ବି ଭଗବାନଙ୍କର ବିରାଟ ମୂର୍ତ୍ତି, ଭୟାନକ ରୂପ,(ଗ୍ରା. ବି)ବିଶାଳ ଶରୀର ।

**ବିରାଟି**—ଗ୍ରା. ପୁଂ. ବି. ( ସଂ-ବୈରାଟି= ବିରାଟତନୟ) ବିରାଟରାଜପୁତ୍ର ଉତ୍ତର ।

**ବିରାଡ଼**—ଗ୍ରା. ବି. (ସଂ-ବିରାଳ ବିଡ଼ାଲ, ଗୃହପାଳିତ ଚତୁଷ୍ପଦ ଜନ୍ତୁ ବିଶେଷ, ମାର୍ଜାର ।

**ବିରାଡ଼ିଆ**—ଗ୍ରା. ବିଂ. ବିରାଡ଼ ସମ୍ବନ୍ଧୀୟ, (ବି) ମଟିବିରାଡ଼ସାପ, ଗୋରୁମାନଙ୍କର ରୋଗ ବିଶେଷ ।

**ବିରାଡ଼ଆଖି**—ଗ୍ରା.ବି. ବିରାଡ଼ର ଦୃଷ୍ଟି ପରି ତୀକ୍ଷ୍ଣଦୃଷ୍ଟି, (ଗ୍ରା. ବିଂ) ବିରାଡ଼ଆଖିଆ ଦେଖ ।

**ବିରାଡ଼ଆଖିଆ**—ଗ୍ରା.ପୁଂ. ବିଂ. ବିରାଡ଼ର ଚକ୍ଷୁପରି ଚକ୍ଷୁବିଶିଷ୍ଟ, ଚଲ୍ଲଆଖିଆ, ବିରାଡ଼ର ଦୃଷ୍ଟି ପରି ତୀକ୍ଷ୍ଣ ଦୃଷ୍ଟିଶକ୍ତି ବିଶିଷ୍ଟ ।

ବିରାଣୀ—ପୁଂ. ବି. (ବି+ରଣ+ଇନ୍) ହସ୍ତୀ, (ସ୍ତ୍ରୀ) ବିରାଣିନୀ ।

ବିରାତକ—ପୁଂ. ବି. ଅର୍ଜୁନ ବୃକ୍ଷ ।

ବିରାଦ—ପୁଂ. ବି. ଗନ୍ଧିର ଶେଷ ।

ବିରାଦର—ପା, ବି. ଭାଇ,କୁଟୁମ୍ବୀବ୍ୟକ୍ତି. ରାଜବଂଶୀୟ ବ୍ୟକ୍ତି,ଏକଜାତି ବା ଏକ ଗ୍ରାମୀୟ ବ୍ୟକ୍ତିମାନେ ।

ବିରାଦରାନ୍—ପା. ବି. ବିରାଦରମାନେ ।

ବିରାଦରୀ—ପା. ବି. କୁଟୁମ୍ବିତା

ବିରାଦରିଆ—ପା. ବି. କୁଟୁମ୍ବୀ, (ବିଂ) ବିରାଦର ସମ୍ବନ୍ଧୀୟ, କୁଟୁମ୍ବୀ ।

ବିରାଦ୍ଧ—ପୁଂ.ବିଂ. (ବି+ରାଧ୍+ର୍ମ.ତ) ଅପକୃତ,ଉତ୍ପୀଡ଼ିତ,ଅତ୍ୟାଗୃହୀତ,ଅବମାନିତ, କୋପାନ୍ୱିତ, କ୍ରୁଦ୍ଧ, (ସ୍ତ୍ରୀ) ବିରାଦ୍ଧା ।

ବିରାଦ୍ଧା—ପୁଂ.ବିଂ.(ବି+ରାଧ୍+କ.ତୃ) ଅପମାନକାରକ,ଉତ୍ପୀଡ଼କ,ଅପକାରକ, (ସ୍ତ୍ରୀ) ବିରାଦ୍ଧ୍ରୀ ।

ବିରାଧ—ପୁଂ. ବି. (ବି+ରାଧ୍+କ.ଅ) ଦଣ୍ଡକାରଣ୍ୟବାସୀ ରାକ୍ଷସ ବିଶେଷ, (ଭା.ଅ) ଅପକାର, ପୀଡ଼ା,ବ୍ୟଥା,ଅତ୍ୟାଚାର, ଅପରାଧ, ଦୋଷ,ବିରକ୍ତି,ରୋଷ

ବିରାଧନ—କ୍ଲୀ. ବି. (ବି+ରାଧ୍+ଭା. ଅନ) ଅପକାର, ପୀଡ଼ା, ବ୍ୟଥା,ଅତ୍ୟାଚାରକରଣ ।

ବିରାମ—ବି.(ବି+ରମ୍+ଭା.ଅ)ବିନାଶ, ପତନ, ଶେଷ, ନିବୃତ୍ତି, ଅବନତି, ବୈରାଗ୍ୟ, ଅବସାନ,ବିରତି, ବିଶ୍ରାମ, ଉପରମ,(ବ୍ୟାକରଣମତେ)ପରବର୍ଣ୍ଣର ଅଭାବ ।

ବିରାମକାଳ—ବି.(ଷତତ୍) ବିଶ୍ରାମକାଳ, ଅବସର, ଛୁଟି ।

ବିରାମତା—ବି. ( ବିରାମ+ତ+ଆ ) ବିରତି, ବିରାମର ଭାବ ।

ବିରାଳ—ବି. (ବିଡ଼୍+କ.ଆଳ) ବିଡ଼ାଳ, ମାର୍ଜାର, ବିରାଡ଼, (ସ୍ତ୍ରୀ) ବିରାଳୀ ।

ବିରାଳାକ୍ଷ—ପୁଂ. ବିଂ. (ବ.ବ୍ରୀ) ବିରାଡ଼ ପରି ଚଲ୍ଲ ଆଖି ବିଶିଷ୍ଟ, (ସ୍ତ୍ରୀ) ବିରାଳାକ୍ଷୀ, (ପୁଂ. ବି ) ଶ୍ରୀପୁରାଣୋକ୍ତ ରାକ୍ଷସ ବିଶେଷ ।

ବିରାବ—ବି. (ବି+ରୁ+ଭା.ଅ) ଶବ୍ଦ, ଧ୍ୱନି, କୋଳାହଳ, (ବିଂ) ରବଯୁକ୍ତ, ନାଦଶବ୍ଦ ।

ବିରାବୀ—ପୁଂ. ବିଂ. (ବିରାବ+ଇନ୍) କୋଳାହଳକାରୀ, କୋଳାହଳମୟ, ରୋଦନକାରୀ, (ସ୍ତ୍ରୀ) ବିରାବିଣୀ, (ପୁଂ.ବି) ଧୃତରାଷ୍ଟ୍ରଙ୍କ ପୁତ୍ର ବିଶେଷ, ।

ବିରାଷାହ୍(ହ)—ପୁଂ. ବି. ଯମଲୋକ ।

ବିରି—ଗ୍ରା. ବି. (ସଂ-ବ୍ରୀହି) ମାଷ, ମୁଗ-ଜାତୀୟ ଶସ୍ୟବିଶେଷ, (ଗ୍ରା. ଅବ୍ୟ) ହାତୀକୁ ମହୁନ୍ତର ନିଷେଧାତ୍ମକ ଡାକ ।

ବିରିକୋ(ଠ)କି—ଗ୍ରା. ବିଂ. ବିରକ୍ତ କର ।

ବିରିକ୍ତ—ବିଂ.(ବି+ରିଚ୍+କ.ତ)ବିରେଚନବିଶିଷ୍ଟ, ଯାହାର ଅନେକ ଝାଡ଼ା ହୋଇଅଛି ।

ବିରିଙ୍ଗା- ଗ୍ରା.ବି.ବୃଷିପାଇ ବଣପୋଡ଼ିବା, ଛୁଡ଼ା ବଣ ବୁଦା ।

ବିରିଆଇବା—ଗ୍ରା.କି. ଚଢ଼ିବା, ଚଢ଼ଚଢ଼ି ହେବା, ଉନ୍ମତ୍ତତା ପ୍ରକାଶ କରିବା, ରାଗରେ ଅସ୍ଥିର ହେବା, କାମାତୁର ହେବାର ଚିହ୍ନ ପ୍ରକାଶ କରିବା, ବିରିଟିବା କ୍ରିୟାର ଣିଜନ୍ତରୂପ ।

ବିରିଟିବା—ଗ୍ରା. କି .ବିରିଆଇବା ଦେଖ

ବିରିଞ୍ଚ—ପୁଂ.ବି.(ବି+ରିଚ୍+ଅ)ବ୍ରହ୍ମା, ବିଷ୍ଣୁ, ଶିବ ।

ବିରିଞ୍ଚନ—ପୁ. ବି. ବ୍ରହ୍ମା ।

ବିରିଞ୍ଚି—ପୁଂ. ବି. (ବି+ରିଚ୍+ଇ ) ବ୍ରହ୍ମା, ବିଷ୍ଣୁ, ଶିବ । [ ବିଶେଷ ।

ବିରିଞ୍ଚିଚକ୍ର—ବି . ଜ୍ୟୋତିଷୋକ୍ତ ଚକ୍ର-

ବିରିଞ୍ଚ୍ୟ—ବିଂ.(ବିରିଞ୍ଚି+ଯ)ବ୍ରହ୍ମସମ୍ବନ୍ଧୀୟ, (ବି) ବ୍ରହ୍ମାଭୋଗ, ବ୍ରହ୍ମଲୋକ ।

ବିରିଡ଼ି—ଗ୍ରା. ବି. ଦଂଶକ କୀଟବିଶେଷ, ଭିରୁଡ଼ି, ପୀତଭ୍ରମର ।

ବିରିପଠ—ଗ୍ରା. ବି. ବଡାବିରିରେ କରାଯିବା ପଷ୍ଟକ ବା ପିଠା ।

ବିରିବଡ଼ା(ରା)—ଗ୍ରା.ବି. ବିରି ପିଠଉରେ ପ୍ରସ୍ତୁତ ଘୃତ ବା ତୈଳପକ୍ୱ ବଟିକା

ଶ୍ରେଷ୍ଠ ମୋଟ ପିଠା ।
ବିରବଡ଼—ଗ୍ରା. ବି. ବିଭିନ୍ନ ଆକୃତିବିଶିଷ୍ଟ ବଟା ବିରିରୁ ଆତପ୍ରସ୍ତୁତ ବଡ଼ି ଲ ପିଣ୍ଡ ।
ବିରବିର—ଗ୍ରା.ବି. ଦେହରେ ହେବା ବ୍ରଣଶ୍ରେଣୀ. ବିରକ୍ତିସୂଚକ ଶବ୍ଦ ।
ବିରିମାଡ଼ଦେଖି କୋଳଥ ଟେପା—ଗ୍ରା. (ନ୍ୟାୟ) କୋଳଥ ଠୁଇଁ ବିରିଠୁଇଁ ଅପେକ୍ଷା ସାମାନ୍ୟ ଆଘାତରେ ଫାଟିଯିବାରୁ ବିରିବାଡ଼ଆ ଦେଖି କୋଳଥ ବିରିଠୁଇଁ ପଣ ପ୍ରହାର ଖାଇବା ଭୟରେ ଆଗରୁ ଚାଏଁ ଫାଟିଯାଏ, ସେପରି ଜଣେ ଅପରାଧୀକୁ ମାଡ଼ଦେଲେ ତାହାର ସଙ୍ଗୀମାନେ ପ୍ରହାର ଖାଇବାର ଭୟରେ ଦୋଷସ୍ୱୀକାର କରିବା ନ୍ୟାୟ ।
ବିରିମୁଠିଆଦୋଷା—ଗ୍ରା. ବି. ପାଠ ମନେ ରଖିବାପାଇଁ ପାଠକୁ ବାରମ୍ବାର ଘୋଷିବାର ପ୍ରଣାଳୀବିଶେଷ ।
ବିରିଲଡ଼ୁ—ଗ୍ରା.ବି.ବଟା ବିରିକୁ ଲଡ଼ୁ ଆକାରରେ ଘିଅ ବା ତେଲରେ ଛଣାଯିବା ପିଷ୍ଟକବିଶେଷ ।
ବିରମ୍ଭ—ପୁଂ.ବି. (ବି + ରମ୍ଭ୍ + ଭା.ଅ) କଣ୍ଠସ୍ୱର ।
ବିରସ—ଗ୍ରା.ବି. ରାଜସ୍ଥାନରେ ପ୍ରବାହିତ ନଦୀବିଶେଷ ।
ବିରୁଚି—ଗ୍ରା. ବିଂ. ଅତି ମନୋହର, (ଗ୍ରା,ବି) ଅରୁଚି ।
ବିରୁଜ—ବିଂ. ରୋଗଶୂନ୍ୟ, ରୋଗୀ ।
ବିରୁଡ଼ି(ଲି)—ଗ୍ରା,ବି, ବିରଡ଼ି,ପୀତଭୃଙ୍ଗ, ଦଂଶକ କୀଟବିଶେଷ ।
ବିରୁତ—ବିଂ. (ବି+ରୁ+ତ)କୂଜିତ, ଅବ୍ୟକ୍ତ ଶବ୍ଦଯୁକ୍ତ,(ବି-ଭା.ତ)କଳରବ, ସ୍ୱର, ପକ୍ଷୀର କୂଜନ,ଅବ୍ୟକ୍ତ ଧ୍ୱନି ।
ବିରୁଦ—ବି. ( ବି+ରୁଦ୍ + ଭା.ଅ ) ପ୍ରଶସ୍ତି, ଗୁଣୋତ୍କର୍ଷବର୍ଣ୍ଣନ, ଗଦ୍ୟ-ପଦ୍ୟମୟୀ ରାଜସ୍ତୁତି ବା ଦେବସ୍ତୁତି ।
ବିରୁଦାବଳୀ—ବି. ବିରୁଦଶ୍ରେଣୀ, ସ୍ତବମାଳା ।
ବିରୁଦ୍ଧ—ବିଂ, ( ବି+ରୁଧ୍+ର୍ମ.ତ ) ପ୍ରତିକୂଳ, ବିପରୀତ,ଆବଦ୍ଧ,ବିରୋଧୀ, ଓଲଟା ।
ବିରୁଦ୍ଧମତିକୃତ୍—ବିଂ.କାବ୍ୟଗତ ଦୋଷବିଶେଷ,ବିରୁଦ୍ଧମତିକାରିତା ଦୋଷ ।
ବିରୁଦ୍ଧମତିକାରିତା—ସ୍ତ୍ରୀ.ବି. କାବ୍ୟଗତ ଦୋଷବିଶେଷ, ଶବ୍ଦଦୋଷବିଶେଷ ।
ବିରୁଦ୍ଧରସାଙ୍ଗବର୍ଣ୍ଣନ—ବି, ରସଦୋଷବିଶେଷ ।
ବିରୁଦ୍ଧରେ—ଗ୍ରା.କ୍ରି.ବିଂ. ବିପକ୍ଷରେ ।
ବିରୁଦ୍ଧାଚରଣ—ବି. (କ,ଧା) ବିପରୀତ ବ୍ୟବହାର, ପ୍ରତିକୂଳାଚରଣ,ଶତ୍ରୁତା ।
ବିରୁଦ୍ଧାଚାରୀ—ପୁଂ.ବିଂ. (ବିରୁଦ୍ଧାଚାର +ଇନ୍) ଶତ୍ରୁତା ଆଚରଣକାରୀ, ବିପରୀତ ଆଚରଣକାରୀ,(ସ୍ତ୍ରୀ)ବିରୁଦ୍ଧାଚାରିଣୀ ।
ବିରୁଦ୍ଧାଶନ—ବି, ( ବିରୁଦ୍ଧ+ଅଶନ ) ବିରୁଦ୍ଧ ଭୋଜନ,ମତ୍ସ୍ୟକ୍ଷୀରାଦି ଭୋଜନ ।
ବିରୁଧିର—ବିଂ. (ବି + ରୁଧିର) ରକ୍ତବିଶିଷ୍ଟ, ରକ୍ତହୀନ ।
ବିରୂକ୍ଷ—ବିଂ. (ବି+ରୂକ୍ଷ) ଅତି ରୂକ୍ଷ, ରୂକ୍ଷତାହୀନ ।
ବିରୂକ୍ଷଣ—ବି, ସ୍ନେହ ବର୍ଜିତକରଣ, ରୂକ୍ଷତାପ୍ରାପଣ, ରସରକ୍ଷଣ ।
ବିରୂଢ଼—ବିଂ. ( ବି+ରୁହ୍+କ.ତ ) ଜାତ, ଉତ୍ପନ୍ନ, ଅଙ୍କୁରିତ, ବଦ୍ଧମୂଳ, ଆରୋହଣ କରିଥିବା, ଗମ୍ଭୀରରୂପେ ନିମଗ୍ନ, (ସ୍ତ୍ରୀ) ବିରୂଢ଼ା ।
ବିରୂପ—ବିଂ.(ବି+ରୂପ)ବ.ବ୍ରୀ,କୁତ୍ସିତ, କୁରୂପ, ନାନାପ୍ରକାର ରୂପ, ପ୍ରତିକୂଳ, ବିରୋଧୀ, (ସ୍ତ୍ରୀ) ବିରୂପା, (କ୍ଲୀ.ବି) ପିପ୍ପଳୀମୂଳ, (ପୁଂ.ବି) ସ୍ୱମନୋରାଜପୁଷ୍ପ, ସୁଗନ୍ଧରାଜ ଗୁଳ୍ମ ।
ବିରୂପଣ—କ୍ଲୀ.ବି. (ବି+ରୂପ୍+ଭା. ଅନ) ବିକୃତକରଣ, ବିରୂପତାପ୍ରାପଣ ।
ବିରୂପତା—ସ୍ତ୍ରୀ.ବି. (ବିରୂପ+ତ+ଆ) ବିରୂପର ଭାବ, କୁତ୍ସିତରୂପ ।
ବିରୂପଶକ୍ତି—ପୁଂ.ବି. (ବ.ବ୍ରୀ) ବିଦ୍ୟାଧରବିଶେଷ,(ଲକ୍ଷଣ)ପ୍ରତିଦ୍ୱନ୍ଦ୍ୱୀଶକ୍ତି ।
ବିରୂପା—ସ୍ତ୍ରୀ.ବିଂ. (ବିରୂପ+ଆ)ବିରୂପର ସ୍ତ୍ରୀଲିଙ୍ଗ, (ବି) ଦୁରାଲଭା, ଅତିବିଷା, (ଗ୍ରା,ବି) ମହାନଦୀର ଶାଖାନଦୀବିଶେଷ ।
ବିରୂପାକ୍ଷ—ପୁଂ.ବି. (ବିରୂପ+ଅକ୍ଷି+ବ.ବ୍ରୀ) ଶିବ, ବ୍ରହ୍ମାଙ୍କ ମସ୍ତକରୁ ଜାତ ରୁଦ୍ରବିଶେଷ, ରାକ୍ଷସବିଶେଷ, (ବିଂ) ବିକୃତ ଚକ୍ଷୁବିଶିଷ୍ଟ ।
ବିରୂପିକା—ସ୍ତ୍ରୀ.ବିଂ. (ବିରୂପ+କ+ଆ) କୁରୂପା, କୁତ୍ସିତରୂପା (ସ୍ତ୍ରୀ) ।
ବିରୂପୀ—ପୁଂ.ବିଂ. ( ବିରୂପ+ଇନ୍ ) କୁତ୍ସିତ ରୂପଯୁକ୍ତ, କୁରୂପବିଶିଷ୍ଟ, (ସ୍ତ୍ରୀ) ବିରୂପିଣୀ, (ବି) ଜାହକ ଜନ୍ତୁ ।
ବିରେକ—ବି. ( ବି+ରିଚ୍+ଘ.ଅ ) ମଳନିଃସରଣ, ଅନେକଥର ଝାଡ଼ାହେବା.(ବିଂ,କ.ଅ)ଯାହା ଖୁବ୍ ଝାଡ଼ା କରାଏ, ବିରେଚକ ।
ବିରେଚକ—ବିଂ. (ବି+ରିଚ୍+ଣିଚ୍ +ଅକ)ଭେଦକାରକ,ମଳନିଃସାରକ, ଯାହା ଖାଇଲେ ଝାଡ଼ାହୁଏ, ଜୁଲାପ, (ସ୍ତ୍ରୀ) ବିରେଚିକା ।
ବିରେଚନ—କ୍ଲୀ.ବି. (ବି+ରିଚ୍+ଭା, ଅନ) ବିରେକ, ମଳନିଃସରଣ, ଝାଡ଼ାହେବା,ବିଂ. (କ.ଅନ) ମଳନିଃସାରକ, ବିରେଚକ, (ସ୍ତ୍ରୀ) ବିରେଚନା ।
ବିରେଚ୍ୟ—ବିଂ. ( ବି+ରିଚ୍+ଯ ) ବିରେଚନର ଯୋଗ୍ୟ, ଯାହାକୁ ବିରେଚନ ବା ଜୁଲାପ ଦିଆଯାଇପାରେ ।
ବିରେଫ—ବିଂ, (ବି + ରେଫ-ବ.ବ୍ରୀ) ରେଫଶୂନ୍ୟ, (ପୁଂ,ବି)ନଦମାନ ।
ବିରେଭିତ—ବିଂ. (ବି+ରିଭ୍+ତ) ଶବ୍ଦିତ ।
ବିରୋକ—ବି. ( ବି+ରୁଚ୍+କ.ଅ ) ରଶ୍ମି, ଛିଦ୍ର, ବିବର, ସୂର୍ଯ୍ୟକିରଣ, ଅଗ୍ନି, ସୂର୍ଯ୍ୟ, ଚନ୍ଦ୍ର, ବିଷ୍ଣୁ ।
ବିରୋକୀ—ବିଂ. ( ବିରୋକ+ଇନ୍ ) କିରଣବିଶିଷ୍ଟ ।
ବିରୋଚନ—ପୁଂ.ବି. (ବି+ରୁଚ୍+କ, ଅନ) ସୂର୍ଯ୍ୟ, ଅର୍କବୃକ୍ଷ, କାଷ୍ଠାଗ୍ନି,

ଅଗ୍ନି, ଚନ୍ଦ୍ର, ବିଷ୍ଣୁ, ମେହ୍ନଡକବୃକ୍ଷ, ଫଣଫଣା ଗଛ, ଧୂନ୍ତକରଞ୍ଜ, ସୂର୍ଯ୍ୟକିରଣ, ବଳି ଦୈତ୍ୟର ପିତା ଓ ପ୍ରହ୍ଲାଦର ପୁତ୍ର ।

ବିରୋଚନନାରୀ—ସ୍ତ୍ରୀ. ବି. ବିରୋଚନର ସ୍ତ୍ରୀ ମାଳତୀ କନ୍ୟା ।

ବିରୋଚନସୁତ—ପୁଂ. ବି. ବଳିରାଜା ।

ବିରୋଦ୍ଧବ୍ୟ—ବିଂ. ବିରୋଧଯୋଗ୍ୟ ।

ବିରୋଦ୍ଧା—ପୁଂ. ବିଂ. ବିରୁଦ୍ଧକାର୍ଯ୍ୟକାରୀ, (ବି) କର୍ପୂର ।

ବିରୋଧ—ବି. ( ବି + ରୁଧ୍ + ଘ.ଅ ) ଶତ୍ରୁତା, ବୈର, ବିପ୍ରତିପତ୍ତି, ବ୍ୟାଘାତ, ଯୁଦ୍ଧବିଗ୍ରହ, ବ୍ୟସନ, ନାଶ, ପ୍ରତିକୂଳତା ବୈପରୀତ୍ୟ, ବିବାଦ, ଅବରୋଧ, ଅମେଳ, ଅନୈକ୍ୟ, ବିପଦ, କଳି, ନାଟକୋକ୍ତ ପ୍ରତିମୁଖାଙ୍ଗର ଅନ୍ୟତମ, ଅଳଙ୍କାରବିଶେଷ, ବିରୋଧାଭାସ, (ଗ୍ରା.ବିଂ) ନିଷିଦ୍ଧ, (ଗ୍ରା.ବି) ନିଷେଧ ।

ବିରୋଧକ—ପୁଂ.ବିଂ. (ବି+ରୁଧ୍+କ. ଅକ) ବିରୋଧକାରୀ, ଶତ୍ରୁ, କଳିହା, (ସ୍ତ୍ରୀ) ବିରୋଧିକା ।

ବିରୋଧକରିବା—ଗ୍ରା.କ୍ରି. ବିବାଦ କରିବା ନିଷେଧ କରିବା, ଅଟକ କରିବା, ବାଧାଦେବା, କଳି ଲଗାଇବା ।

ବିରୋଧକୃତ୍—ବିଂ. (ବିରୋଧ+କୃ+କ.କ୍ୱିପ୍) ବିରୋଧକାରୀ, (ବି) ଷଷ୍ଟି ସମ୍ବତ୍ସରାନ୍ତର୍ଗତ ୪୫ଶ ବର୍ଷ ।

ବିରୋଧକ୍ରିୟା—ସ୍ତ୍ରୀ.ବି. ଶତ୍ରୁତା ।

ବିରୋଧନ—କ୍ଲୀ. ବି. (ବି+ରୁଧ୍+ଭା. ଅନ) ବିରୋଧ ଦେଖ, (ବିଂ—କ.ଅନ) ବିରୋଧକାରକ, କଳହକାରୀ, ବିବାଦକାରୀ ।

ବିରୋଧପରିହାର—ବି. (୬ତତ୍) ବିବାଦ ତ୍ୟାଗକରଣ, ବୈପରୀତ୍ୟର ପରିତ୍ୟାଗ

ବିରୋଧଭଙ୍ଗ—ବି. (୬ତତ୍) ବିବାଦ ମେଣ୍ଟିଯିବା ।

ବିରୋଧଭଞ୍ଜନ—ବି. (୬ତତ୍) ବିବାଦ ମେଣ୍ଟିବା, ବିବାଦ ମେଣ୍ଟାଇଦେବା ।

ବିରୋଧଭାକ୍—ବିଂ. ବିରୋଧୀ ।

ବିରୋଧାଗ୍ନି—ବି. (ରୂପକ-କ.ଧା) ଅଗ୍ନି ପରି ଭୟାନକ ବିରୋଧ ବା ବିବାଦ ।

ବିରୋଧାଚରଣ—କ୍ଲୀ. ବି. ଶତ୍ରୁତାଚରଣ, ପ୍ରତିକୂଳାଚରଣ । [ ବିଶେଷ ।

ବିରୋଧାଭାସ—ପୁଂ.ବି. (୬ତତ୍) ଅଳଙ୍କାର

ବିରୋଧି—ଗ୍ରା.ବିଂ. ବିରୋଧୀୟ, ବିବାଦୀୟ

ବିରୋଧିତ—ବିଂ. ( ବିରୋଧ + ଇତ ) ବିରୋଧଯୁକ୍ତ, (ସ୍ତ୍ରୀ) ବିରୋଧିତା ।

ବିରୋଧିତା(ତ୍ୱ)—ବି. ଶତ୍ରୁତା, ବିରୋଧଭାବ, ନକ୍ଷତ୍ରର ପ୍ରତିକୂଳଦୃଷ୍ଟି ।

ବିରୋଧିନୀ—ସ୍ତ୍ରୀ.ବିଂ. (ବି+ରୁଧ୍+ଇନ୍ +ଈ) ବିରୋଧକାରିକା, (ବି) ଦୁଃସହର କନ୍ୟା ।

ବିରୋଧିବା—ଗ୍ରା.କ୍ରି. ବିରୋଧ କରିବା, ନିଷେଧ କରିବା, ମନାକରିବା ।

ବିରୋଧୀ—ପୁଂ. ବିଂ. (ବିରୋଧ+ଇନ୍) ବିରୋଧକାରୀ, ବିରୁଦ୍ଧ, ପ୍ରତିକୂଳ, ବିପକ୍ଷ, ଶତ୍ରୁତାପନ୍ନ, ବିନାଶକ,(ସ୍ତ୍ରୀ) ବିରୋଧିନୀ (ବି) ସମ୍ବତ୍ସରବିଶେଷ ।

ବିରୋଧୀୟ—ବିଂ. (ବିରୋଧ + ଈୟ) ବିବାଦୀୟ, ବିବାଦସମ୍ବନ୍ଧୀୟ ।

ବିରୋଧୋକ୍ତି—ସ୍ତ୍ରୀ.ବି. (ବିରୋଧ+ଉକ୍ତି) (ମଧ୍ୟ-କ.ଧା) ଅନର୍ଥକ ବିବାଦ, ବିପ୍ରଳାପ, କ୍ରୋଧୋକ୍ତି, କଟୁକଥା, ବିରୋଧାଭାସ ଅଳଙ୍କାର । [ ବିଶେଷ ।

ବିରୋଧୋପମା—ବି. ଉପମାଅଳଙ୍କାର-

ବିରୋଧ୍ୟ—ବିଂ. (ବିରୋଧ୍+ଯ) ବିରୋଧର ଯୋଗ୍ୟ ।

ବିରୋପଣ—ବି. ( ବି + ରୋପଣ ) ଆରୋପଣ, ଲେପନ ।

ବିରୋବାଏ—ଗ୍ରା. (ସମ୍ବ) ବି. ଭୂତ, ତାନ୍ତ୍ରିକ ପ୍ରୟୋଗଦ୍ୱାରା କୌଣସି ବ୍ୟକ୍ତିର ଗୃହକୁ ପ୍ରେରିତ ଅତ୍ୟାଚାରିତ ଭୂତ ।

ବିରୋଷ—ବିଂ. ରୋଷବିଶିଷ୍ଟ,(ବ,ସ୍ତ୍ରୀ) ରୋଷଶୂନ୍ୟ, କ୍ରୋଧରହିତ ।

ବିରୋହ—ବି. ବୃକ୍ଷଲତାଦିର ପ୍ରରୋହ, ଏକସ୍ଥାନରୁ ନେଇ ଅନ୍ୟ ସ୍ଥାନରେ ରୋଇବା ।

ବିରୋହଣ—କ୍ଲୀ. ବି. ବିରୋପଣ, ବିରୋହ ଦେଖ । [ ଶୀଳ ।

ବିରୋହୀ—ପୁଂ. ବିଂ. ରୋପଣକାରୀ, ରୋପଣ-

ବିଲ୍—ଯ. ବି. ପ୍ରାପ୍ୟ ଟଙ୍କାର ଦାବୀ ତାଲିକା, ପ୍ରାପ୍ୟ ଧନ ପାଇବା ନିମନ୍ତେ ଦାବୀଦାର ଯେଉଁ ହିସାବ ତାଲିକା ଦାଖଲ କରେ, ବ୍ୟବସ୍ଥାପକ ସଭାରେ ପ୍ରସ୍ତାବ କରାଯିବା ଆଇନର ପାଣ୍ଡୁଲିପି ।

ବିଲ୍‌କୁଲ୍—ଯା. କ୍ରି. ବିଂ ଓ ବିଂ ର ବିଂ. ସମ୍ପୂର୍ଣ୍ଣରୂପେ, ନିବାକ, ସମସ୍ତ ।

ବିଲ—କ୍ଲୀ. ବି. (ବିଲ୍+କ.ଅ) ଗର୍ତ୍ତ, ଛିଦ୍ର, ଗୁହା, ବିବର, ନଦୀର ଗତି ପରିବର୍ତ୍ତନ ଯୋଗୁଁ ଉତ୍ପନ୍ନ ଜଳାଶୟ,(ପୁଂ ବି) ଉଚ୍ଚୈଃଶ୍ରବା ଅଶ୍ୱ, ବେତସ ଲତା ।

ବିଲ—ଗ୍ରା. ବି. ଶସ୍ୟକ୍ଷେତ୍ର, କିଆରି, ଜଳାଭୂମି ।

ବିଲକାରୀ—ପୁଂ.ବି.(ବିଲ+କୃ+ଇନ୍) ମୂଷିକ, (ବିଂ) ଗର୍ତ୍ତକାରୀ ।

ବିଲକ୍ଷ—ବିଂ. ( ବି+ଲକ୍ଷ୍+କ.ଅ ) ଚମତ୍କୃତ, ଅପ୍ରତିଭ, ଲଜ୍ଜିତ, ଅନୁଦ୍ଦିଷ୍ଟ, ଗୁଣହୀନ, ବିସ୍ମିତ, ଅନିର୍ଦ୍ଦିଷ୍ଟ, ବିରୁଦ୍ଧ, ଅନୁପମ, ଅସାଧାରଣ, ଅସଂଖ୍ୟ ।

ବିଲକ୍ଷଣ—କ୍ଲୀ. ବି. (ବି+ଲକ୍ଷ୍+ଅନ) ହେତୁଶୂନ୍ୟ ଅବସ୍ଥା, ନିଷ୍ପ୍ରୟୋଜନସ୍ଥିତି, (ବିଂ) ଭିନ୍ନ, ବିଶେଷ ଲକ୍ଷଣଯୁକ୍ତ, ଅସାଧାରଣ, ଅସାମାନ୍ୟ, ବିଶିଷ୍ଟ, ସମଧିକ, ପରୀକ୍ଷକ, ଦର୍ଶକ, ସ୍ପଷ୍ଟ, ଉତ୍କୃଷ୍ଟ, ଅତିସୁନ୍ଦର, (ଗ୍ରା. କ୍ରି. ବିଂ.) ଉତ୍ତମରୂପେ, ସୁନ୍ଦରରୂପେ, ସ୍ପଷ୍ଟଭାବରେ ।

ବିଲକ୍ଷଣତା(ତ୍ୱ)—ବି. ବିଶେଷତ୍ୱ ।

ବିଲକ୍ଷବତୀ—ଗ୍ରା. ସ୍ତ୍ରୀ. ବିଂ. ନିରୁପମା, ସୁନ୍ଦରୀ (ସ୍ତ୍ରୀ) ।

ବିଲକ୍ଷିତ—ଗ୍ରା.ବିଂ. ଉପମାର ଅଯୋଗ୍ୟ, ସମାନ, ଯୋଗ୍ୟ, ତୁଳନୀୟ ।

ବିଲକ୍ଷିବା—ଗ୍ରା. କ୍ରି. ତୁଳନାରେ ହେୟ ଜ୍ଞାନ କରିବା, ଦେଖିବା, ପରୀକ୍ଷାକରିବା ।

ବିଲକ୍ଷ୍ୟ—ବିଂ. (ବି + ଲକ୍ଷ୍+ଯ) ବିଲକ୍ଷ ଦେଖ ।

ବିଲଗ—ଗ୍ରା. ବିଂ. ଅଲଗା, ଅସଂଲଗ୍ନ,

ବତାହତ, (ବି) ଅଙ୍ଗ ଯାଗ ।

ବଲଗେ—ଗ୍ରା.ବିଂ.ବଟେଷରୁ ପ ସଂଯୁକ୍ତ ବୃଚ୍ଛିନ୍ନ, ଅସଂଯୁକ୍ତ ।

ବଲଗା(ଗୋ)ଇବା—ଗ୍ରା. କ୍ରି. ପୃଥକ୍ କରିବା, ହୁଗୁଳା କରିବା, ଅଲଗା କରିବା ।

ବଲଗିବା—ଗ୍ରା. କ୍ରି. ପୃଥକ୍ ହେବା, ଅଲଗା ହେବା, ହୁଗୁଳା ହେବା ।

ବଲଗ୍ନ—ବିଂ. ( ବି + ଲଗ୍ + ର୍ମି.କ୍ତ ) ସଂଯୁକ୍ତ, ହୁଗୁଳା, ସଂଲଗ୍ନ କୃଶ, କ୍ଷୀଣ, କଦ୍ଧ, (ବି) କଟିଦେଶ, ମଧ୍ୟଭାଗ, ଜନ୍ମ-ଲଗ୍ନ, ମେଷାଦି ଦ୍ୱାଦଶ ଲଗ୍ନ ବା ରାଶି ।

ବଲଙ୍କା—ଗ୍ରା.ବି.ଉତ୍କଳୀୟ କବି ସାରଳା-ଦାସଙ୍କର କାଳ୍ପନିକ ହସ୍ତପୂତ ପୌରାଣିକ ସହସ୍ରରାବଣର ରାଜଧାନୀ, ବଲଙ୍କାନଗର ବା ପୁରୀ ।

ବଲଙ୍କାରବଣ—ଗ୍ରା. ବି. ସହସ୍ରରାବଣ, ଉତ୍କଳୀୟ କବିଙ୍କ କଳ୍ପିତ ସହସ୍ରଶିରସ୍କ ଅସୁରବିଶେଷ ।

ବଲଙ୍କାରାମାୟଣ—ଗ୍ରା.ବି. ସାରଳାଦାସ କବିଙ୍କ ପ୍ରଣୀତ ବଲଙ୍କା ରାବଣର ବଧ-ବର୍ଣ୍ଣନାତ୍ମକ ପଦ୍ୟଗ୍ରନ୍ଥବିଶେଷ ।

ବଲଙ୍ଘକ—ପୁଂ. ବିଂ. (ବି+ଲଙ୍ଘ୍+କ.ଅକ) ଲଙ୍ଘନକାରୀ, ଅବାଧ, (ସ୍ତ୍ରୀ) ବଲଙ୍ଘିକା ।

ବଲଙ୍ଘନ—କ୍ଲୀ.ବି. (ବି+ଲଙ୍ଘ୍+ଭା. ଅନ) ଉଲ୍ଲଙ୍ଘନ, ଅତିକ୍ରମ, ପାରହେବା, ଉପବାସ, ଅବଜ୍ଞା କରିବା ।

ବଲଙ୍ଘନା—ବି. ଖଣ୍ଡନ, ବାଧା ଦୂରୀ-କରଣ, ଲଙ୍ଘନ ।

ବଲଙ୍ଘନୀୟ—ବିଂ. (ବି + ଲଙ୍ଘ୍ + ର୍ମି. ଅନୀୟ) ଉଲ୍ଲଙ୍ଘନୀୟ, ଅତିକ୍ରମଣୀୟ ।

ବଲଙ୍ଘିତ—ବିଂ. (ବି+ଲଙ୍ଘ୍+ର୍ମି.କ୍ତ) ଅତିକ୍ରାନ୍ତ, ଉଲ୍ଲଙ୍ଘିତ, ଅବଜ୍ଞାତ ।

ବଲଙ୍ଘିବା—ଗ୍ରା. କ୍ରି. (ପଦ୍ୟ) ଉଲ୍ଲଙ୍ଘନ କରିବା, ଉପରେ ଡେଇଁବା ।

ବଲଙ୍ଘୀ—ପୁଂ.ବିଂ.ଉଲ୍ଲଙ୍ଘନକାରୀ, ନସୁମ-ଲଙ୍ଘନକାରୀ ।

ବଲଙ୍ଘ୍ୟ—ବିଂ. ( ବି + ଲଙ୍ଘ୍ + ଯ ) ଉଲଙ୍ଘ୍ୟ, ଯାହା ଲଙ୍ଘନ କରାଯାଇ ନ ପାରେ, ଲଙ୍ଘନ ଯୋଗ୍ୟ, ଲଙ୍ଘନ କରି-ବାର ଉପଯୁକ୍ତ ।

ବଲକ୍ଷ—ବିଂ. (ବି + ଲକ୍ଷ + ଅ) ବ.ବ୍ରୀ; ବିଲକ୍ଷ, ବେହୁଆ, (ସ୍ତ୍ରୀ) ବଲକ୍ଷା ।

ବଲପ —ଗ୍ରା. ବି. ବିଳାପ ।

ବଲପନ—କ୍ଲୀ. ବି. (ବି+ଲପ୍+ଭା ଅନ) ବିଳାପ, କଥାବାର୍ତ୍ତା, ପରିତାପ, ଶୋକ-ବାକ୍ୟ, ମଉଳା, ଭାଷଣ ।

ବଲପମାନ—ପୁଂ. ବିଂ. (ବି+ଲପ୍+କ.ଆନ) ବିଳାପକାରୀ, ଯେ ବିଳାପ କରୁଅଛି, (ସ୍ତ୍ରୀ) ବଲପମାନା ।

ବଲପିତ—ବି. ( ବି+ଲପ୍+ଭା.କ୍ତ ) ବଲପନ ଦେଖ, (ବି-କ.କ୍ତ) କାନ୍ଦୁଥିବା, ଯାହା ନିମନ୍ତେ ବିଳାପ କରାଯାଉଥାଏ ।

ବଲପିବା—ଗ୍ରା. କ୍ରି. ବିଳାପ କରିବା, ବାହୁନିବା, ବାହୁନି କାନ୍ଦିବା, ଶୋକ କରିବା ।

ବଲମ୍—ପ୍ରା. (ସମ୍ପୃ)ବି. ବିଳମ୍ବ ।

ବଲମୃଗ—ଗ୍ରା. ବି. କୁଳୀନକ, ଯୁବମୃଗ, ଚଇତାମୃଗ ।

ବଲମ୍ବ—ବି. (ବି+ଲମ୍ବ+ଭା.ଅ)ଅଶୀ-ଘ୍ରତା, ଡେରି, ଗୌଣ, ମଧ୍ୟମ ନୃତ୍ୟ, ତ୍ରଭଦାଦଷଷ୍ଟିସମ୍ବତ୍ସରାନ୍ତର୍ଗତ ୩୨ଶ ବର୍ଷ

ବଲମ୍ବ—ବି. (ବି+ଲମ୍ବ+ଭା.ଅ) ଡଳକ୍ତ ଲମ୍ବିବା, ଝୁଲିବା, ଓହଳିବା, (କ.ଅ) ଲୁଲୁକ, ଝୁଲ ।

ବଲମ୍ବକରିବା—ଗ୍ରା.କ୍ରି. ଡେରିକରିବା ।

ବଲମ୍ବଘଟିବା—ଗ୍ରା. ବି. ଡେରିହେବା ।

ବଲମ୍ବନ—ବି. (ବି + ଲମ୍ବ + ଭା.ଅନ) ବିଳମ୍ବକରଣ, ଅଶୀଘ୍ରତା, ଗୌଣ ।

ବଲମ୍ବନ—କ୍ଲୀ. ବି. (ବି+ଲମ୍ବ+ଭା. ଅନ) ବିଳମ୍ବ ଦେଖ ।

ବଲମ୍ବିକା—ବି. ବିସୂଚିକା ରୋଗବିଶେଷ

ବଲମ୍ବିତ—ବିଂ. (ବିଳମ୍ବ+ଇତ)ବିଳମ୍ବ ଦେଖ ।

ବଲମ୍ବିତ—ବିଂ.(ବି+ଲମ୍ବ+କ.ଇତ) ଲମ୍ବିତ, ଲମ୍ବମାନ; ଝୁଲୁଥିବା ।

ବଲମ୍ବୀ—ପୁଂ. ବିଂ. ( ବିଳମ୍ବ+ଇନ୍ ) ଅଶୀଘ୍ର, ଅଳସୁଆ, ବିଳମ୍ବବିଶିଷ୍ଟ, ଧୂର୍ତ୍ତ, ବିଳମ୍ବକାରୀ, (ସ୍ତ୍ରୀ) ବିଳମ୍ବିନୀ, (ବି) ଷଷ୍ଟିସମ୍ବତ୍ସରାନ୍ତର୍ଗତ ୩୨ଶ ସମ୍ବତ୍ସର

ବଲମ୍ବୀ—ବିଂ. (ବି+ଲମ୍ବ+କ.ଇନ୍) ଲମ୍ବମାନ, ସଂଯୁକ୍ତ, (ସ୍ତ୍ରୀ) ବଲମ୍ବିନୀ ।

ବଲମ୍ଭ—ବି. (ବି + ଲଭ୍ + ଭା.ଅ) ଅତି-ସର୍ଜନ, ଦାନ, ବିତରଣ ।

ବଲୟ—ବି.(ବି+ଲୀ+ଭା.ଅ) ପ୍ରଳୟ, ବିନାଶ, ବିମ୍ଲାପନ, ଧ୍ୱଂସ, ଅନ୍ତର୍ଦ୍ଧାନ, (ବିଂ)ଲୟ ବା ତାଳଶୂନ୍ୟ, ଲୟବର୍ଦ୍ଧିଭୂତ, (ଗ୍ରା.ବି) ବିମ୍ନୃତି ।

ବଲୟନ—ବି.(ବି+ଲୀ+ଭା.ଅନ)ଦ୍ରବୀ-କରଣ, ବିଲୋପ ସାଧନ, ବିନାଶକ, ବିଲୟକରଣ, (ବିଂ.କ.ଅନ)ଲୀନ ।

ବଲଲା—ସ୍ତ୍ରୀ. ବି. ଶ୍ୱେତ ବଲା ।

ବଲବାଡ଼—ଗ୍ରା.ବି. ଭୂସମ୍ପତ୍ତି, ଗୃହଜମି, ଗୃହଜମି ଓ ଘରବାଡ଼ି ଜମି ।

ବଲବାସ-ବି. ଜାହକଜନ୍ତୁ, ଯେ ବଲରେ ବାସକରେ ।

ବଲବାସୀ—ପୁଂ. ବିଂ. (ବିଲ+ବସ୍+ଇନ୍) ଗର୍ତ୍ତବାସୀ,(ବି) ସର୍ପ, (ସ୍ତ୍ରୀ)ବିଲ-ବାସିନୀ ।

ବଲଶୟ—ପୁଂ. ବି. (ବିଲ+ଶୀ+କ. ଅ)ସର୍ପ, ଗାତକର ରହିବା ଜନ୍ତୁ,(ବିଂ) ବିଲବାସୀ ।

ବଲଯୋନୀ—ଗ୍ରା. ବି. ସର୍ପ, ବିଲଶୟ ।

ବଲସନ୍—ବିଂ. (ବି+ଲସ୍+କ.ଅତ୍) ବିଲସୀ, କ୍ରୀଡ଼ାଶୀଳ, ଶୋଭମାନ, ସ୍ଫୂର୍ତ୍ତିମାନ୍, (ସ୍ତ୍ରୀ) ବିଲସନ୍ତୀ ।

ବଲସନ—ବି. ( ବି + ଲସ୍ + ଭା.ଅନ ) ଶୋଭା, କ୍ରୀଡ଼ା, ଦୀପ୍ତି, ପ୍ରଭା, ପ୍ରକାଶ, ସ୍ଫୁରଣ, ବାକ୍ୟସ୍ଫୂର୍ତ୍ତି, ବାକ୍ପଟୁତା ।

ବଲସିତ—ବି. ( ବି+ଲସ୍+ଭା.କ୍ତ ) ବିଲସନ ଦେଖ, (ବିଂ.କ.କ୍ତ) କ୍ରୀଡ଼ିତ, ଶୋଭିତ ।

ବଲସିବା—ଗ୍ରା.(ପଦ୍ୟ)କ୍ରି. କ୍ରୀଡ଼ାକରିବା, ଦୀପ୍ତିପାଇବା, ବିରାଜିବା, ପ୍ରକାଶିବା, ବ୍ୟାପିବା, ଘୋଟିବା, ସ୍ଫୂର୍ତ୍ତିହେବା, ନିଜ ଇଚ୍ଛାରେ ଚଳିବା, ବ୍ୟବହାରକରିବା,

ବିଶେଷକରିବା, ଗୁଳିବା, ବୁଲିବା ।
ବିଲା—ପ୍ରା. (ବାଲେ) ବି. ବିଲ, କଣା, ଫୁଙ୍କା, (ପ୍ରା. ଚଞ୍ଚୋ.ବି) ବାଡ଼ି ।
ବିଲା(ଲେ)ଇବା—ଗ୍ରା.କ୍ରି. ବନ୍ଧୁଲୋକଙ୍କ ମଧ୍ୟରେ ବାଣ୍ଟିଦେବା, ଦାନକରିବା, ଅପବ୍ୟୟିତ କରିବା ।
ବିଲଙ୍କି(ଙ୍ଖି)—ଗ୍ରା. ବିଂ. ଯେ ସୁସଜ୍ଜିତ ପଦାର୍ଥକୁ ଅଲଗା କରି ଦିଏ ।
ବିଲଙ୍କି(ଙ୍ଖି)ବା—ଗ୍ରା.କ୍ରି. ସୁସଜ୍ଜିତ ପଦାର୍ଥକୁ ଘାଣ୍ଟିବା, ନାରଖାର କରିବା, ଗୁରଖାରକରିବା, ନଷ୍ଟକରିବା ।
ବିଲତ୍—ଯା.ବି. ଇଂଲଣ୍ଡ, ଲଣ୍ଡନସହର, ୟୁରୋପ ।
ବିଲତି—ଯା.ବିଂ. ବିଲାତବାସୀ, ଇଂଲଣ୍ଡୀୟ, ୟୁରୋପୀୟ, ସାହାବାମୀ, ବିଲାତରେ ଉତ୍ପନ୍ନ, ବିଲାତରେ ପ୍ରସ୍ତୁତ, ବିଲାତରୁ ଆନୀତ, ବିଦେଶୀ ।
ବିଲାତିଆଳୁ—ଗ୍ରା.ବିଂ. ବଙ୍ଗନାଦ ବର୍ଗର ଗୁଳ୍ମ ଓ ତାହାର ଚେରରେ ଜାତ ଫଳ, ଗୋଲଆଳୁ ।
ବିଲାତିକପଡ଼ା—ଗ୍ରା.ବି. ବିଲାତରେ ବୁଣା ହୋଇଥିବା କପଡ଼ା ।
ବିଲାତିବାଇଗଣ—ଗ୍ରା. ବି. ଏକପ୍ରକାର ବାଇଗଣ ଜାତୀୟ ବିଦେଶାଗତ ଲତା ଗଛ ଓ ତାହାର ଫଳ, ଟମାଟୋ ।
ବିଲତି—ପ୍ରା.(ସମ୍ବ)ବି. ବନ୍ୟବୃକ୍ଷବିଶେଷ, ଏହାର ମଞ୍ଜିର ରଙ୍ଗରେ ଗାମୁଛା କଷା ଯାଏ ।
ବିଲାପ—ବି. (ବି + ଲପ୍ + ଘ.ଅ) ଅନୁଶୋଚନ, ପରିଦେବନ, ଖେଦୋକ୍ତିପୂର୍ବକ କ୍ରନ୍ଦନ, ବାହୁନା କାନ୍ଦ, ଖେଦୋକ୍ତି, ଆକ୍ଷେପ ।
ବିଲାପକ—ପୁଂ. ବିଂ. (ବି+ଲପ୍+କ. ଅକ)ଯେ ବିଲାପ କରେ, ଖେଦଜନକ, ବିଲାପଜନକ, (ସ୍ତ୍ରୀ) ବିଲାପିକା ।
ବିଲାପନ—କ୍ଳୀ. ବି (ବି+ଲପ୍+ଅନ) ବିଲାପ, ଆର୍ତ୍ତନାଦ । [କରିବା ।
ବିଲାପିବା—ଗ୍ରା.କ୍ରି. ବାହୁନିବା କ୍ରନ୍ଦନ
ବିଲାପୀ—ପୁଂ. ବିଂ. (ବି+ଲପ୍+କ. ଇନ୍) ବିଲାପକାରୀ, ଆର୍ତ୍ତନାଦକାରୀ, ଆକ୍ଷେପକାରୀ ବିଲାପ+ଇନ୍) ଖେଦାନ୍ୱିତ, ବିଲାପଯୁକ୍ତ, (ସ୍ତ୍ରୀ) ବିଲାପିନୀ ।
ବିଲବିଲି—ଗ୍ରା.ବି. ଘଗଣୀବିଶେଷ ।
ବିଲାୟକ—ବିଂ. ( ବି+ଲୀ+ଣିଚ୍+ଅକ)ଦ୍ରବକାରକ, ଆର୍ଦ୍ରକାରକ, ଲୟକାରକ, ମ୍ଳାନତାପାଦକ ।
ବିଲାୟନ—କ୍ଳୀ. ବି. ଗଳି ।
ବିଲାଲ—ପୁଂ. ବି. (ବି + ଲଲ୍ + କ.ଅ) ଯନ୍ତ୍ର, ଜଳ, ବିଡ଼ାଲ, ମାର୍ଜାର ।
ବିଲ୍କୁଲ୍—ପା. (ସମ୍ପୂର୍ଣ୍ଣ ଅବ୍ୟ. ଆଦୌ, ବେଲିକୁଲ୍, ମୋଟେ, ନିଶ୍ଚୟ, ଅଲବତ୍
ବିଲାଣ—ଗ୍ରା.ବି. ଚାଲୁଙ୍ଗୁର, ଠଣା, ଡାଖ, କାନର ବାହାରକୁ ବାହାରିଥିବା ଲମ୍ବ କାନୁସ, କଟାଳର ଗଡ଼ାଣିଆ ଧାର ।
ବିଲାସ—ବି.(ବି+ଲସ୍+ଘ.ଅ)ଆମୋଦ ଉପଭୋଗ, କୌତୁକ, ମଉଜ, କ୍ରୀଡ଼ା, ଶୋଭା, ସୁଖଭୋଗ, ସ୍ଫୁରଣ, ପ୍ରାଦୁର୍ଭାବ, ନାୟକ ନାୟିକାଙ୍କର ଶୃଙ୍ଗାର ଚେଷ୍ଟାବିଶେଷ, ସ୍ତ୍ରୀଲୋକମାନଙ୍କର ଶୃଙ୍ଗାର ରସ ଉଦ୍ଦୀପକ ଅଙ୍ଗଭଙ୍ଗୀ ବା ହାବଭାବ, ଛଇ, ଦୁଷ୍ଟକର ରସିକତା, ସୌଖୀନତା, ବ୍ୟସନ, ବିକାଶ, ଛବି ।
ବିଲାସକ—ପୁଂ.ବିଂ. (ବି + ଲସ୍+କ. ଅକ, ଆମୋଦପରାୟଣ,(ସ୍ତ୍ରୀ)ବିଲାସିକା
ବିଲାସକାନନ—କ୍ଳୀ. ବି. ବିଲାସୋଦ୍ୟାନ, କେଳିକାନନ, ପ୍ରମୋଦଉଦ୍ୟାନ
ବିଲାସଚାଞ୍ଚଲ୍ୟ—କ୍ଳୀ.ବି.(କ.ଧା)କ୍ରୀଡ଼ାଜନିତ ଚପଳତା, ଅଙ୍ଗଭଙ୍ଗୀ ଜନ୍ୟ ଚାଞ୍ଚଲ୍ୟ, ଆମୋଦପ୍ରମୋଦର ଅଧୀରତା ।
ବିଲାସତୃଷ୍ଣା—ବି. ( ବିଲାସ+ତୃଷ୍ଣା ) ମଉଜ କରିବାର ଇଚ୍ଛା ।
ବିଲାସଦୋଳା—ବି. କ୍ରୀଡ଼ାର୍ଥ ଦୋଳି ।
ବିଲାସନ—କ୍ଳୀ. ବି. ବିଲାସପଦାର୍ଥ ।
ବିଲାସ(ପର)ପରାୟଣ—ପୁଂ.ବିଂ.(୭ତତ୍) ସୌଖୀନ, ସର୍ବଦା ଆମୋଦ ପ୍ରମୋଦରତ, ମଉଜୀ, (ସ୍ତ୍ରୀ) ଗା.ଣା ।
ବିଲାସପୁର—ଗ୍ରା. ବି. ମଧ୍ୟପ୍ରଦେଶସ୍ଥ ଜିଲ୍ଲାବିଶେଷ ।
ବିଲାସପ୍ରିୟ—ପୁଂ. ବିଂ. (ବ.ବ୍ରୀ) ଯେ ବିଲାସ କରିବାକୁ ସୁଖପାଏ, ମଉଜିଆ, (ସ୍ତ୍ରୀ) ବିଲାସପ୍ରିୟା ।
ବିଲାସଭବନ—କ୍ଳୀ.ବି. (୬ତତ୍)କ୍ରୀଡ଼ାଗୃହ, ନୃତ୍ୟଶାଳା, ବୈଠକଖାନା ।
ବିଲାସମନ୍ଦିର—କ୍ଳୀ.ବି. (୬ତତ୍)ବିଲାସଭବନ ଦେଖ ।
ବିଲାସମେଖଳା—ସ୍ତ୍ରୀ. ବି. ଅଳଙ୍କାରବିଶେଷ ।
ବିଲାସବତୀ—ସ୍ତ୍ରୀ. ବି. ରାଜାନ୍ତଃପୁରର ଲଳନାବିଶେଷ ।
ବିଲାସବାନ୍—ପୁଂ.ବିଂ (ବିଲାସ+ବତ୍) ବିଲାସୀ ଦେଖ, (ସ୍ତ୍ରୀ) ବିଲାସବତୀ ।
ବିଲାସବସତି—ବି. (୬ତତ୍) ବିଲାସଭବନ ଦେଖ ।
ବିଲାସବିପିନ—କ୍ଳୀ.ବି(ବିଲାସ + ବିପିନ) କ୍ରୀଡ଼ାବନ, ପ୍ରମୋଦ ଉଦ୍ୟାନ ।
ବିଲାସବିଭ୍ରାନ୍ତ—ବିଂ. ଲୁବ୍ଧ ।
ବିଲାସବେଶ୍ମ—କ୍ଳୀ.ବି ବିଲାସଭବନ ଦେଖ
ବିଲାସଶଯ୍ୟା—ସ୍ତ୍ରୀ.ବି. ସୁଖଶଯ୍ୟା ।
ବିଲାସଶୀଳ—ବିଂ. ବିଲାସୀ,(ପୁଂ.ବି) ରାଜପୁତ୍ରବିଶେଷ ।
ବିଲାସିଆ—ଗ୍ରା.ପୁଂ.ବିଂ. ବିଲାସ ପରାୟଣ, ରସିକ ପୁରୁଷ । [ବିଶେଷ ।
ବିଲାସିକା—ସ୍ତ୍ରୀ.ବି. ରୂପକ ନାଟକ-
ବିଲାସିତା(ତ୍ୱ)—ବି. ସୁଖଭୋଗ ମଉଜ, ଆମୋଦପ୍ରମୋଦ ପ୍ରବଣତା, ବିଲାସବୃତ୍ତି ।
ବିଲାସିନିକା—ସ୍ତ୍ରୀ.ବି. ବିଲାସିନୀ ।
ବିଲାସିନୀ—ସ୍ତ୍ରୀ.ବିଂ. (ବିଲାସିନ୍ + ଈ) ବିଲାସଶାଳିନୀ, ଭୋଗବତୀ. (ସ୍ତ୍ରୀ.ବି) ସ୍ତ୍ରୀ, ନାରୀ, ବେଶ୍ୟା, ଛଇଳା, ରସିକା, ମନୋହର ଅଙ୍ଗଭଙ୍ଗୀ ଓ ହାବଭାବରେ ପ୍ରବୀଣା ସ୍ତ୍ରୀ, ଛଇଳୀ, ଦୁଷ୍ଟା ସ୍ତ୍ରୀ, (ବିଲ+ଆସ୍+କ.ଇନ୍+ଈ) ସଖୀ ।
ବିଲାସୀ—ପୁଂ. ବିଂ. (ବିଲାସ+ଇନ୍) ଭୋଗୀ, ସୁଖଭୋଗେଚ୍ଛୁ, ବିଲାସପରାୟଣ, ଇନ୍ଦ୍ରିୟବୃତ୍ତି ଚରିତାର୍ଥ କରିବାରେ ରତ, ଅଟେଳି, ରସିକ, ମଉଜୀ, ଛଇଳ, (ବି) ଅଗ୍ନି; ଚନ୍ଦ୍ର,

ସ୍ତୁର, କୃଷ୍ଣ, ବଳଦ୍ରା, ଶଙ୍ଖପୁଷ୍ପୀ, ଭୃଷ-
ବିଳେଶୟ, (ବିଳ+ଆସ୍+କ.ଇନ୍) ସର୍ପ, ଶିବ, (ସ୍ତ୍ରୀ) ବିଲାସିନୀ, (ଗ୍ରା.ବିଂ) ଆଗତ୍ତ । [ ବ୍ୟବସ୍ଥାପନ ।
ବିଲ—ଗ୍ରା. ବି. ବନ୍ଧନ, ବନ୍ଦୋବସ୍ତ,
ବିଲଖନ—କ୍ଲୀ.ବି. (ବି+ଲଖ୍+ଭା. ଅନ) ଲେଖା, ଲେଖିବା, ଖନନ, ଖୋଳିବା,ଆମ୍ପୁଡ଼ିବା,ଚିରିବା,ବିଦାରିବା, ବିଭାଗକରଣ, କର୍ଷଣ, ମୂଳୋତ୍ପାଟନ,
ବିଲଖା—ବି. ମତ୍ସ୍ୟବିଶେଷ, ଇଲିଶି-ମାଛ ।
ବିଲକ୍ଷିତ—ବିଂ. (ବି+ଲକ୍ଷିତ)ବିଶେଷ ଭାବରେ ଲକ୍ଷିତ ।
ବିଲତା—ଗ୍ରା.ବି. (ସଂ-ବିଲିପ୍ତା) ଏକ ଲିତାର ୭୦ ଭାଗରୁ ଏକଭାଗ ।
ବିଲପ୍ତ—ବିଂ. (ବି+ଲପ+ମଁ.ତ) ବିଶେଷରୂପେ ଲପ୍ତ, ବିଳଜିତ, ଲପା ହୋଇଥିବା, ବୋଲାହୋଇଥିବା ।
ବିଲପ୍ତା—ସ୍ତ୍ରୀ.ବି. ବିଲତା, ଲିତାର ୭୦ ଭାଗରୁ ଏକଭାଗ ।
ବିଲପ୍ତିକା—ସ୍ତ୍ରୀ. ବି. କାଳବିଶେଷ, ବିଲପ୍ତା ।
ବିଲବିଲା—ଗ୍ରା. ବି. ଅନର୍ଥକ ବାକ୍ୟ ଗପିବା, ବାତୁଳ ପ୍ରଲାପ, ନଦବାଡ଼-ଲାରେ ବକିବା ।
ବିଲବିଲ—ଗ୍ରା.ବିଂ. କୁତ୍ସିତ, ଅସୁନ୍ଦର । ଅସୁନ୍ଦରଭାବେ ଚିତ୍ରିତ ବା ଲକ୍ଷିତ ।
ବିଲବିଲା(ଲେ)ଇବା—ଗ୍ରା.କ୍ରି. ବାତୁଳ-ପରି ପ୍ରଲାପ କରିବା, ନଦବାଡ଼ିଲାରେ ବକିବା ।
ବିଲମିବା—ଗ୍ରା.କ୍ରି. ମିଳେଇଯିବା ।
ବିଲୀଢ଼—ବିଂ.(ବି+ଲିହ+ତ)ଲୁଡ଼ିନ୍ୟସ୍ତ ।
ବିଲୀନ—ବିଂ. (ବି+ଲୀ+କ.ତ)ଦ୍ରବୀଭାବପ୍ରାପ୍ତ, (ଘୃତାଦି) ମିଶ୍ରିତ, ଦ୍ରୁତ, ସଂଶ୍ଳିଷ୍ଟ, ଲୟପ୍ରାପ୍ତ, ବିନଷ୍ଟ, ଅନ୍ତର୍ହିତ, ଉଭେଇଯାଇଥିବା, ନିବିଷ୍ଟ, ଗଳିତ, ତରଳିଯାଇଥିବା, କ୍ଷରିତ, ମଗ୍ନ, (ଗ୍ରା.ବି) ବିନାଶ ।
ବିଲୀୟନ—କ୍ଲୀ.ବି. ଗଳନ,ଦ୍ରବୀକରଣ ।

ବିଲୀୟମାନ—ବିଂ. (ବି+ଲୀ+କ.ଆନ) ଲୟପ୍ରାପିତ, ଅନ୍ତର୍ହିୟମାଣ ।
ବିଲୁଆଁ—ଗ୍ରା.(ସମ୍ବ)ବି. ଉଇହୁଙ୍କା ।
ବିଲୁଆ—ଗ୍ରା.ବି. ଶୃଗାଳ, ଶିଆଳ ।
ବିଲୁଆବସ୍ତୁର—ଗ୍ରା.ବି. ବହୁଲୋକ ଏକତ୍ର ହୋଇ ପରାମର୍ଶ କରି ଶେଷରେ କାର୍ଯ୍ୟରେ କିଛି ନ କରିବା, ନିଷ୍ଫଳ ବାଗ୍‌ର ।
ବିଲୁଆବୁଦ୍ଧି—ଗ୍ରା.ବି. ଖଣ୍ଡବୁଦ୍ଧି,ଧୂର୍ତ୍ତତା
ବିଲୁଣ୍ଠନ—କ୍ଲୀ. ବି. (ବି+ଲୁଣ୍ଠ୍+ଭା. ଅନ) ବିଶେଷରୂପେ ଲୁଣ୍ଠନ, ଭୂମିରେ ଗଡ଼ିବା, ଲୋଟିବା ।
ବିଲୁଣ୍ଠିତ—ବିଂ.(ବି+ଲୁଣ୍ଠ୍+ତ) ଅବଲୁଣ୍ଠିତ, ଭୂମିରେ ଗଡ଼ୁଥିବା, (ସ୍ତ୍ରୀ) ବିଲୁଣ୍ଠିତା ।
ବିଲୁପ୍ତ—ବିଂ. (ବି+ଲୁପ୍+ମଁ.ତ) ଅପହୃତ, ଲୋପପ୍ରାପ୍ତ, ନଷ୍ଟ,ଲୁଣ୍ଠିତ, ଛିନ୍ନ, ଆହାନ୍ନ, ଗୃହୀତ ।
ବିଲୁ(ଲୋ)ପ୍ୟ—ବିଂ.ବିଲୋପର ଯୋଗ୍ୟ
ବିଲୁଭିତ—ବିଂ. ( ବି+ଲୁଭ୍+ତ ) ଚଞ୍ଚଳ, ଅସ୍ଥିର, ଅବ୍ୟବସ୍ଥିତ ।
ବିଲୁମ୍ପକ—ପୁଂ.ବି. (ବି+ଲୁମ୍ପ୍+ଅକ) ଚୌର, ଚୋର ।
ବିଲୁଳିତ—ବିଂ. (ବି+ଲୁଲ୍+କ.ତ) ଚଞ୍ଚଳ, କମ୍ପିତ, ଦୋଦୁଲ୍ୟମାନ,ଝୁଲୁଥିବା, ସ୍ଖଳିତ,ବିଦୂରିତ,(ସ୍ତ୍ରୀ)ଲୁଳିତା ।
ବିଲେଖ—ବି.(ବି+ଲିଖ୍+ଅ)ଅଙ୍କନ, ଚିତ୍ରଣ ।
ବିଲେଖନ—ବି. କ୍ଲୀ. ବି. (ବି+ଲିଖ୍ +ଭା.ଅନ) ବିଲିଖନ ଦେଖ ।
ବିଲେଖୀ—ପୁଂ. ବିଂ. (ବିଲେଖ+ଇନ୍) ବିଲେଖନକାରୀ, ଭେଦକାରୀ ।
ବିଲେତା—ପୁଂ. ବିଂ. (ବି+ଲୀ+ତୃ) ବିଲୟକାରୀ, ଦ୍ରବକାରୀ,ବିନାଶକାରୀ, (ସ୍ତ୍ରୀ) ବିଲେତ୍ରୀ ।
ବିଲେପ—ବି. ( ବି+ଲିପ୍+ଣ.ଅ ) ଲେପନ, କୁଙ୍କୁମାଦି ଲେପନ ଦ୍ରବ୍ୟ, ମଲମ, (ଭା.ଅ) ବୋଲିବା, ଘୃଷ୍ଟଚନ୍ଦନ, (ମଁ.ଅ) ଭାତମଣ୍ଡ, ପେଜ ।

ବିଲେପନ—କ୍ଲୀ. ବି. (ବି+ଲିପ୍+ଣ. ଅନ) ଗାତ୍ରାନୁଲେପନୀ, ଲେପନଯୋଗ୍ୟ ସୁଗନ୍ଧ ଦ୍ରବ୍ୟ, ବର୍ତ୍ତି, ବର୍ତ୍ତିକ,(ଭା.ଅନ) ଲେପିବା,ଦେହରେ କୁଙ୍କୁମାଦି ଲେପନ
ବିଲେପନୀ—ବି.(ବି+ଲିପ୍+ଅନ+ଈ) ଯବାଗୂ, ଭାତର ପେଜ, ଅନ୍ନମଣ୍ଡ, ସୁବେଶା ସ୍ତ୍ରୀ ।
ବିଲେପୀ—ପୁଂ. ବିଂ. (ବି+ଲିପ୍+ଇନ୍) ଲେପନକର୍ତ୍ତା, (ସ୍ତ୍ରୀ) ବିଲେପିନୀ, (ସ୍ତ୍ରୀ.ବି.ବି+ଲିପ୍+ଅ+ଈ) ଯବାଗୂ, ତଣ୍ଡୁଳର ଚତୁର୍ଗୁଣ ଜଳରେ ତଣ୍ଡୁଳ ସିଦ୍ଧକରି ଯେଉଁ ଯବାଗୂ ପ୍ରସ୍ତୁତ କରଯାଏ,ଦ୍ରବବିଶେଷ, ଭାତର ପେଜ, (ବିଲେପିକା ଅନ୍ୟରୂପ) ।
ବିଲେପ୍ୟ—ବିଂ. ( ବି+ଲିପ୍+ଯ ) ଲେପନ ଯୋଗ୍ୟ,(ବି)ଯବାଗୂ,ଜାଉ, ଭାତର ପେଜ ।
ବିଲେବାସୀ—ପୁଂ. ବିଂ. (ବିଳେ+ବସ୍ +ଇନ୍) ଗର୍ତ୍ତମଧ୍ୟେ ବାସକାରୀ, (ସ୍ତ୍ରୀ) ବିଲେବାସିନୀ,(ବି) ସର୍ପ, ସରୀସୃପାଦି ।
ବିଲେଶୟ—ପୁଂ. ବି. (ବିଲେ+ଶୀ+କ.ଅ) ସର୍ପ, ମୂଷିକ, ଗୋଧିସାପ,ଶଶକାଦି,(ବିଂ)ଯେ ବିଲରେ ବାସକରେ, (ସ୍ତ୍ରୀ) ବିଲେଶୟା ।
ବିଲୋଇବା—ଗ୍ରା. କ୍ରି. ସମ୍ମାନକରିବା, ସ୍ୱାଗତକରିବା, ବାଣ୍ଟ ବିଲେଇବା ।
ବିଲୋକ—ପୁଂ.ବି.(ବି+ଲୋକ୍+ମଁ.ଅ) ଦୃଷ୍ଟି, ବିଲୋକନ, ଦର୍ଶନ, ଈକ୍ଷଣ, (ବିଂ. ବି+ଲୋକ) ଗୁପ୍ତ, ବାସ କରବାର ଅଯୋଗ୍ୟ, (ଗ୍ରା.ବିଂ) ପ୍ରକାଶିତ, ଦୃଷ୍ଟ ।
ବିଲୋକନ—ବି. (ବି+ଲୋକ୍+ଭା.ଅନ) ଅବଲୋକନ, ଦର୍ଶନ,(ଣ.ଅନ)ନେତ୍ର, ଚକ୍ଷୁ ।
ବିଲୋକନୀୟ—ବିଂ. ( ବି+ଲୋକ୍+ମଁ. ଅନୀୟ)ଦର୍ଶନୀୟ, ଦେଖିବାର ଯୋଗ୍ୟ, ସୁଦୃଶ୍ୟ, (ସ୍ତ୍ରୀ) ବିଲୋକନୀୟା ।
ବିଲୋକିତ—ବିଂ. (ବି+ଲୋକ୍+ମଁ.ତ) ଅବଲୋକିତ, ଦୃଷ୍ଟ,(ବି. ଭା.ତ) ଦର୍ଶନ,

ଦୃଷ୍ଟି. (ସ୍ତ୍ରୀ) ବିଲୋକିତା ।
**ବିଲୋକିତା**—ଗ୍ରା. ବିଂ. ଅବଲୋକିତ ।
**ବିଲୋକିବା**—ଗ୍ରା. (ପଦ୍ୟ) କ୍ରି. ଦେଖିବା ।
**ବିଲୋକୀ**—ପୁଂ.ବିଂ. (ବି+ଲୋକ୍+ଇନ୍) ଅବଲୋକନକାରୀ, ଦ୍ରଷ୍ଟା, (ସ୍ତ୍ରୀ)ବିଲୋକିନୀ ।
**ବିଲୋକ୍ୟ**—ବିଂ. (ବି+ଲୋକ୍+ଯ)ଅବଲୋକନ ଯୋଗ୍ୟ, ଦର୍ଶନୀୟ, ସୁଦୃଶ୍ୟ ।
**ବିଲୋଚନ**—ବି(ବି+ଲୋଚ+ଣ.ଅନ) ନେତ୍ର, ଚକ୍ଷୁ, (ଭା.ଅନ) ଦର୍ଶନ, (ପୁଂ. ବିଂ.ବ.ବ୍ରୀ). କୁଞ୍ଚିତ ଚକ୍ଷୁବିଶିଷ୍ଟ, ଚକ୍ଷୁବିରହିତ, (ସ୍ତ୍ରୀ)ବିଲୋଚନା ।
**ବିଲୋଚନପଥ**—ବି. ନେତ୍ରପଥ, ଚକ୍ଷୁଗୋଚର ।
**ବିଲୋଟ(ଠ)କ**—ବି. (ବି+ଲୁଠ୍+ଅକ) ନଳମୀନ, ବାଲିଗରଡ଼ା ମାଛ ।
**ବିଲୋଠନ**—କ୍ଲୀ.ବି. (ବି+ଲୁଠ୍+ଭା. ଅନ) ବିଲୁଣ୍ଠନ, ଭୂମିରେ ଲୋଟିବା, ଗଡ଼ିବା ।
**ବିଲୋଡ଼**—ବି. ଆଲୋଡ଼ନ ।
**ବିଲୋଡ଼କ**—ପୁଂ. ବିଂ. (ବି+ଲୁଡ଼୍+କ.ଅକ)ମନ୍ଥନକାରୀ, ଆନ୍ଦୋଳନକାରୀ, ଯେ ଘାଣ୍ଟେ,ଯେ ବାଟେ,(ସ୍ତ୍ରୀ) ବିଲୋଡ଼ିକା ।
**ବିଲୋଡ଼ନ**—କ୍ଲୀ. ବି. (ବି+ଲୁଡ଼୍+ଭା. ଅନ) ମନ୍ଥନ, ମୋହିଁବା, ଦଳିବା, ଗୋଳାଇବା, ଆଲୋଡ଼ନ, ଘାଣ୍ଟିବା ।
**ବିଲୋଡ଼ୟିତା**—ପୁଂ. ବିଂ. ଆଲୋଡ଼ନକାରୀ,ମନ୍ଥନକାରୀ,(ସ୍ତ୍ରୀ) ବିଲୋଡ଼ୟିତ୍ରୀ ।
**ବିଲୋଡ଼ିତ**—ବିଂ. (ବି+ଲୁଡ଼୍+ଣିଚ୍+ର୍ମି.କ୍ତ)ଆଲୋଡ଼ିତ, ମଥିତ, ଘେଣ୍ଟା ଯାଇଥିବା, (ବି) ତକ୍ର, ଘୋଳଦହି ।
**ବିଲୋପ**—ବି.(ବି+ଲୋପି+ଭା.ଅ)ଲୋପ, ବିନାଶ, ତିରୋଭାବ, ମୃତ୍ୟୁ, ଧ୍ୱଂସ, ଉଚ୍ଛେଦ,(ଗ୍ରା. ବିଂ) ଲୁକ୍କାୟିତ ।
**ବିଲୋପକ**—ପୁଂ. ବିଂ. ( ବି+ଲୁପ୍+ଣିଚ୍+କ.ଅକ)ଲୋପକାରୀ, ବିନାଶକ, ନେଇକରି ଯେ ପଳାଏ, (ସ୍ତ୍ରୀ) ବିଲୋପିକା ।

**ବିଲୋପନ**—କ୍ଲୀ. ବି. ( ବି+ଲୋପି+ଭା.ଅନ)ବିନାଶକରଣ,ଉଚ୍ଛେଦସାଧନ, ମୃତ୍ୟୁ, ଧ୍ୱଂସ ।
**ବିଲୋପସାଧନ**—ବି. (ଷତତ୍ତ୍ୱ) ବିନାଶ ସାଧନ, ଉଚ୍ଛେଦ ସାଧନ ।
**ବିଲୋପିବା**—ଗ୍ରା. ପଦ୍ୟ. କ୍ରି. ବିଲୋପ-ସାଧନ କରିବା ।
**ବିଲୋପୀ**—ପୁଂ. ବିଂ. (ବି+ଲୁପ୍+ଇନ୍) ବିଲୋପକାରୀ ।
**ବିଲୋପ୍ତା**—ପୁଂ. ବିଂ. (ବି+ଲୁପ୍+କ. ତୃ) ବିଲୋପକର୍ତ୍ତା, ଧ୍ୱଂସକର୍ତ୍ତା ।
**ବିଲୋପ୍ୟ**—ବିଂ.(ବି+ଲୋପ+ଯ) ଲୋପ ଯୋଗ୍ୟ ।
**ବିଲୋଭ**—ପୁଂ. ବି. (ବି+ଲୁଭ୍+ଅ) ବିଲୋଭନ ବିଶେଷ ।
**ବିଲୋଭନ**—ବି.(ବି+ଲୋଭ+ଭା.ଅନ) ଲୋଭ ଦେଖାଇବା, ମନ ଭୁଲାଇବା, (ଣ.ଅନ) ଲୋଭନୀୟ ବସ୍ତୁ ।
**ବିଲୋମ**—ବିଂ. (ବ.ବ୍ରୀ) ବିପରୀତ,ବ୍ୟତିକ୍ରାନ୍ତ,ଓଲ୍‌ଟା, ପ୍ରତିକୂଳ, ଅପସବ୍ୟ,ଭିନ୍ନ. ବିଲୋମକ, ଲୋମରହିତ,(ସ୍ତ୍ରୀ)ବିଲୋମା, (ବି)ବ୍ୟତିକ୍ରମ, ବରୁଣଦେବତା,ବରୁଣ ଗଛ, କୁକ୍କୁର, ତ୍ରୈରାଶିକ ଫଳଜ୍ଞାପକ କ୍ରିୟାବିଶେଷ, ପାଣିକାଢ଼ା କଳ,ସଙ୍ଗୀତର ସାତସ୍ୱରର କ୍ରମାନ୍ୱୟରେ ନିମ୍ନଗତି. (ଗ୍ରା. ବି) କଥାରେ ବେଠିକଣା, ମାତୃକୁଳଠାରୁ ପିତୃକୁଳ ନୀଚ ହେବା ଅବସ୍ଥା. (ଗ୍ରା. ବିଂ) ଅଫବନ୍ଧ ।
**ବିଲୋମକ**—ବିଂ. (ବିଲୋମ+ସ୍ୱାର୍ଥେ.କ) ବିପରୀତ ।
**ବିଲୋମକରିବା**—ଗ୍ରା. କ୍ରି. କୌଣସି କଥା କହିବା ସମୟରେ ବକ୍ତବ୍ୟ ବିଷୟ ଗୁଡ଼ିଯିବା ।
**ବିଲୋମଜ**—ପୁଂ. ବିଂ. (ବିଲୋମ+ଜନ୍+କ.ଅ)ଉଚ୍ଚଜାତୀୟା ମାତା ଓ ନୀଚଜାତୀୟ ପିତାଙ୍କ ଔରସରେ ଜାତ (ସନ୍ତାନ), (ସ୍ତ୍ରୀ) ବିଲୋମଜା ।
**ବିଲୋମଜାତ**—ପୁଂ.ବିଂ ବିଲୋମଜ ଦେଖ, ବିପରୀତଭାବରେ ଜାତ ।

**ବିଲୋମଜିହ୍ୱ**—ପୁଂ. ବି. (ବିଲୋମ+ଜିହ୍ୱା) ବ.ବ୍ରୀ; ହସ୍ତୀ ।
**ବିଲୋମତ୍ରୈରାଶିକ**—ବି. ବିପରୀତଭାବରେ ଯେ ତ୍ରୈରାଶିକ କଷାଯାଏ ।
**ବିଲୋମପାଠ**—ପୁଂ. ବି. ବିପରୀତଭାବେ ବେଦ ପଢ଼ିବା, ବ୍ୟତିକ୍ରମ ପାଠ ।
**ବିଲୋମବର୍ଣ୍ଣ**—ବିଂ.ବିଲୋମଜାତ, ଅଜାତିଆ, (ବି) ବର୍ଣ୍ଣସଙ୍କର ।
**ବିଲୋମବିଧି**—ବି. (କ.ଧା)ବିପରୀତନିୟମ, ଓଲଟା ନିୟମ ।
**ବିଲୋମବିବାହ**—ବି.(ବିଲୋମ+ବିବାହ) ଉଚ୍ଚବର୍ଣ୍ଣ ସ୍ତ୍ରୀସଙ୍ଗେ ନୀଚବର୍ଣ୍ଣ ପୁରୁଷର ବିବାହ ।
**ବିଲୋମଲୋମ**—ଗ୍ରା. ବି.ଓଲଟାପାଲଟା, ଘୋଷରାଘୋଷରି, ଛନ୍ଦୋବିଶେଷ ।
**ବିଲୋମିତ**—ବିଂ. ବିପରୀତ, ବିଶେଷଭାବେ ଲୋମ ଯୁକ୍ତ ।
**ବିଲୋମୀ**—ସ୍ତ୍ରୀ. ବି. ଆମଳକୀ, ଅଁଳା ।
**ବିଲୋର**—ଗ୍ରା. ବି. କାଚ, ସ୍ଫଟିକ, ବହୁକୋଣବିଶିଷ୍ଟ କାଚ, (ବିଂ) କାଚରେ ନିର୍ମିତ, ସ୍ଫଟିକମୟ ।
**ବିଲୋଲ**—ପୁଂ. ବିଂ. (ବି+ଲୁଲ୍+ଅ) ଚଞ୍ଚଳ, ଚପଳ, କମ୍ପମାନ,ଅତିଲୋଲୁପ, (ସ୍ତ୍ରୀ) ବିଲୋଳା ।
**ବିଲୋଲକଟାକ୍ଷ**—ବି. ( କ.ଧା ) ଚଞ୍ଚଳ ଅପାଙ୍ଗଦୃଷ୍ଟି, ଭ୍ରୂଭଙ୍ଗୀଯୁକ୍ତ କଟାକ୍ଷ ।
**ବିଲୋଲନ**—କ୍ଲୀ. ବି. (ବି+ଲୋଲ+ଭା. ଅନ) ହଲାଇବା, କମ୍ପାଇବା ।
**ବିଲୋଲିତ**—ବିଂ. (ବି+ଲୁଲ୍+କ.କ୍ତ) ଲମ୍ବିତ, ଆଲୁଳାୟିତ ।
**ବିଲୋହିତ**—ବିଂ. ଅତିଶୟ ଲୋହିତ, ଗାଢ଼ ଲାଲ, (ପୁଂ.ବି)ସର୍ପବିଶେଷ ।
**ବିଲୋହିବା**—ଗ୍ରା. କ୍ରି. ଲୋଭ ଦେଖାଇବା, ଆଦର କରିବା, ଚର୍ଚ୍ଚାକରିବା, ସମ୍ମାନ କରିବା, ମନକୁ ମୁଗ୍ଧ କରାଇବା, ଗ୍ରହଣ କରିବା, ବରଣ କରିବା, ଦେବା, ମନ୍ଥିବା, ଗୋଳାଇବା, ଅସ୍ତବ୍ୟସ୍ତ କରିବା ।
**ବଲ୍ଲ**—କ୍ଲୀ. ବି. (ବିଲ୍+ଲ) ହିଙ୍ଗୁ, ଆଲବାଳ, ଗଛମୂଳର ମନ୍ଦା, ଭେଳୁଗଛ,

ଜଳଶୂନ୍ୟ, ଜଳମଗ୍ନ ଭୂମି । [ ବଖାରୁ ।
ବିଲ୍ୱମୂଳା—ସ୍ତ୍ରୀ. ବି. ବାରାହୀକନ୍ଦ, ଭୂଇଁ-
ବିଲ୍ୱସୂ—ସ୍ତ୍ରୀ. ବି. ଦଶପୁତ୍ରଙ୍କର ମାତା, ଯେଉଁ ସ୍ତ୍ରୀ ଦଶଗୋଟି ସନ୍ତାନ ଜନ୍ମ କରିସାରିଅଛି ।
ବିଲ୍ୱ—ବି. (ବିଲ୍+ବ) ଶ୍ରୀଫଳ, ବେଲଗଛ ଓ ତାହାର ଫଳ, ଏକପଲ ପରିମାଣ ।
ବିଲ୍ୱଜା—ସ୍ତ୍ରୀ. ବି. ଶାକଧାନ୍ୟବିଶେଷ ।
ବିଲ୍ୱପତ୍ର—କ୍ଲୀ. ବି. ବେଲଗଛର ପତ୍ର, ବେଲପତ୍ରୀ । [ ବିଶେଷ ।
ବିଲ୍ୱପର୍ଣ୍ଣୀ—ସ୍ତ୍ରୀ. ବି. ବାତଘ୍ନ ପତ୍ରଶାକ-
ବିଲ୍ୱପେଷି(ଶି)କା—ସ୍ତ୍ରୀ. ବି. ଶୁଷ୍କବିଲ୍ୱଖଣ୍ଡ, ବେଲଶୁଣ୍ଠା, ବିଲ୍ୱଗଲାଟୁ (ଅନ୍ୟରୂପ) ।
ବିଲ୍ୱା—ସ୍ତ୍ରୀ. ବି. ହିଙ୍ଗୁପତ୍ରୀ ।
ବିଲ୍ୱାନ୍ତର—ବି. କଣ୍ଟକୀ ବୃକ୍ଷବିଶେଷ, ଉଶୀର ନାମକ ବୀରତରୁ, ଜାଙ୍ଗଲଦେଶ, ନର୍ମଦାତଟ, ନର୍ମଦାନଦୀର ସମୀପ ।
ବିବଂଶ—ବି. ବିଶିଷ୍ଟବଂଶ, (ବିଂ) ବଂଶରହିତ ।
ବିବକ୍ତୃତ୍ୱ—ବି. ବିଶିଷ୍ଟ ବକ୍ତାର ଭାବ ବା ଧର୍ମ ।
ବିବକ୍ତା—ପୁଂ. ବିଂ. ବିଶିଷ୍ଟ ବକ୍ତା ।
ବିବକ୍ଷଣ—ବିଂ. (ବି+ବଚ୍+ସନ୍+ଅନ) ଜ୍ଞାପନୀୟ, କଥନୀୟ, ସ୍ତୁତ୍ୟ, ପ୍ରାପ୍ତବ୍ୟ, ପାଇବା ଉପଯୁକ୍ତ, ହବନଶୀଳ, ଅଭୀଷ୍ଟ ପ୍ରଦାତା ।
ବିବକ୍ଷା—ସ୍ତ୍ରୀ. ବି. (ବି+ବଚ୍+ସନ୍+ଭା.ଅ+ଆ) କହିବାର ଇଚ୍ଛା, ବାସନା, ଅଭିଳାଷ, ଅର୍ଥ, ମନେ, ଉଦ୍ଦେଶ୍ୟ ।
ବିବକ୍ଷିତ—ବିଂ. (ବି+ବଚ୍+ସନ୍+ର୍ମ. ତ) କହିବାକୁ ଇଚ୍ଛୁକ, ଇପ୍ସିତ, ପ୍ରେପ୍ସୁ, (ବି—ଭା.ତ) ଉଦ୍ଦେଶ୍ୟ, ଅର୍ଥ ।
ବିବକ୍ଷୁ—ପୁଂ. ବିଂ. (ବଚ୍+ସନ୍+କ. ଉ) କହିବାକୁ ଇଚ୍ଛୁକ ।
ବିବଚନ—କ୍ଲୀ. ବି. (ବି+ବଚ୍+ଅନ) ପ୍ରବଚନ, କଥନ ।
ବିବଞ୍ଚିଷା—ବି. (ବଞ୍ଚ୍+ସନ୍+ଅ+ଆ) ଠକିବାର ଇଚ୍ଛା ।
ବିବଞ୍ଚିଷୁ—ପୁଂ. ବିଂ. (ବଞ୍ଚ+ସନ୍+କ. ଉ) ବଞ୍ଚନାକରିବାକୁ ଇଚ୍ଛୁକ ।
ବିବତ୍ସ—ପୁଂ. ବି. ଗୋବତ୍ସ, ଶିଶୁ, (ବିଂ ବ.ବ୍ରୀ) ବତ୍ସହୀନ ।
ବିବତ୍ସା—ବି. ବାସକରିବାର ଇଚ୍ଛା, (ସ୍ତ୍ରୀ. ବିଂ—ବ.ବ୍ରୀ) ବତ୍ସହୀନ, ଯେଉଁ ଗାଈର ବାଛୁରି ମରିଅଛି ।
ବିବତ୍ସୁ—ବିଂ. (ବସ୍+ସନ୍+କ.ଉ) ବାସକରିବାକୁ ଇଚ୍ଛୁକ ।
ବିବଦନ—କ୍ଲୀ. ବି. (ବି+ବଦ୍+ଅନ) ବିବାଦ, କଳହ, ବୃଦ୍ଧଙ୍କ ଉପଦେଶ ।
ବିବଦମାନ—ପୁଂ. ବିଂ. (ବି+ବଦ୍+କ. ଆନ) ବିବାଦକାରୀ, ବିରୋଧୀ, କଳହକାରୀ ।
ବିବଦିତବ୍ୟ—ବିଂ. ବିବାଦର ଯୋଗ୍ୟ ।
ବିବଦିଷୁ—ପୁଂ. ବିଂ. ବିବାଦ କରିବାରେ ଇଚ୍ଛୁକ ।
ବିବଦ୍ଧ—ବିଂ. (ବି+ବଧ୍+ର୍ମ.ତ) ଆବଦ୍ଧ, ନିବଦ୍ଧ, ବ୍ୟାହତ ।
ବିବଧ—ବି. (ବି+ବଧ୍+ଭା.ଅ) ବୀବଧ, ଧାନ୍ୟାଦିପ୍ରାପ୍ତି, ଶସ୍ୟାଦିର ସଞ୍ଚୟ, ବାର୍ତ୍ତା, ବୋଝ, କୁମ୍ଭ, (କ.ଅ) ଦୁଧଭାର, (ର୍ମ. ଅ) ମାର୍ଗ ।
ବିବଧିକ—ପୁଂ. ବି. (ବିବଧ+ଇକ) ବୈବଧିକ, ବୋଝିଆ, ଭାରୁଆ, ଫେରିବାଲା ।
ବିବନ୍ଦିଷୁ—ବିଂ. (ବନ୍ଦ+ସନ୍+ଉ) ବନ୍ଦନା କରିବାକୁ ଇଚ୍ଛୁକ, ଅଭିବାଦନେଚ୍ଛୁ ।
ବିବନ୍ଧ—ବିଂ. (ବି+ବନ୍ଧ୍+ଣ.ଅ) ଅବକଳନ, କୋଷ୍ଠୀକରଣ, ଆନାହରୋଗ, କୋଷ୍ଠବଦ୍ଧ ରୋଗ, ବ୍ୟାଧି, ବାଧା, (ଗ୍ରା. ବି) ବନ୍ଧନ, (ଗ୍ରା. ବିଂ) ମୁକୁଳା (କେଶ) ।
ବିବନ୍ଧନ—କ୍ଲୀ. ବି. ବିଶେଷରୂପେ ବନ୍ଧନ ଅଟକାଇବା [ ବନ୍ଧୁରହିତ ।
ବିବନ୍ଧୁ—ପୁଂ. ବିଂ. (ବ.ବ୍ରୀ) ବନ୍ଧୁହୀନ,
ବିବମିଷା—ବି. (ବମ୍+ସନ୍+ଭା.ଅ+ଆ) ବମନ କରିବାର ଇଚ୍ଛା, ବାନ୍ତିମାଡ଼ିବା
ବିବମିଷୁ—ବିଂ. (ବମ୍+ସନ୍+କ.ଉ) ଯାହାକୁ ବାନ୍ତିମାଡ଼ୁଥାଏ, ବାନ୍ତିକରିବାକୁ ଇଚ୍ଛୁକ ।
ବିବର—କ୍ଲୀ. ବି. (ବି+ବୃ+କ.ଅ) ରନ୍ଧ୍ର, ଛିଦ୍ର, କଣା, ଗର୍ତ୍ତ, ପର୍ବତଗୁମ୍ଫା, ବ୍ୟବଧାନ, ବିଚ୍ଛେଦ, ଅବକାଶ, ଦୋଷ, ପୃଥକ୍, ନିର୍ଜନସ୍ଥାନ, ନଅସଂଖ୍ୟା, ବିସ୍ତାର, ପକ୍ଷୀରାଜ ଗରୁଡ଼ ।
ବିବରଣ—କ୍ଲୀ. ବି. (ବି+ବୃ+ଭା.ଅନ) ବ୍ୟାଖ୍ୟା, ଅର୍ଥପ୍ରକାଶ, ବର୍ଣ୍ଣନ, ଟୀକା, ପ୍ରକାଶ, ବିସ୍ତାର, କୌଣସି ଘଟନାର ସମସ୍ତ ଅବସ୍ଥା । [ ଦେଖ ।
ବିବରଣୀ—ବି. (ବିବରଣ+ଈ) ବିବରଣ
ବିବରଣୀୟ—ବିଂ. (ବି+ବୃ+ର୍ମ. ଅନୀୟ) ପ୍ରକଟନୀୟ ।
ବିବରନାଳିକା—ସ୍ତ୍ରୀ. ବି. ବେଣୁ, ବଂଶୀ ।
ବିବରା—ବି. ବିଂ. (ବ.ବ୍ରୀ) ଅକ୍ଷତଯୋନି ବିଧବା ।
ବିବରାବରାହ—ବି. ଅକ୍ଷତଯୋନି ବିଧବାର ଦ୍ୱିତୀୟବାର ସ୍ୱାମୀ ପରିଗ୍ରହ ।
ବିବରିଷୁ—ବିଂ. ପ୍ରକାଶ କରିବାରେ ଇଚ୍ଛୁକ ।
ବିବର୍ଚ୍ଚସ୍—ବିଂ. ଦୀପ୍ତିହୀନ ।
ବିବର୍ଜକ—ପୁଂ. ବିଂ. (ବି+ବୃଜ୍+କ. ଅକ) ପରିତ୍ୟାଗକାରୀ ।
ବିବର୍ଜନ—କ୍ଲୀ. ବି. (ବି+ବୃଜ୍+ଭା.ଅନ) ପରିତ୍ୟାଗ, ବିସର୍ଜନ, ଦୂରୀକରଣ ।
ବିବର୍ଜନୀୟ—ବିଂ. (ବି+ବୃଜ୍+ର୍ମ. ଅନୀୟ) ତ୍ୟାଜ୍ୟ, ତ୍ୟାଗାର୍ହ, (ସ୍ତ୍ରୀ) ବିବର୍ଜନୀୟା ।
ବିବର୍ଜିତ—ବିଂ. (ବି+ବୃଜ୍+ର୍ମ.ତ) ପରିତ୍ୟକ୍ତ, (ସମାସରେ) ଶୂନ୍ୟ, ରହିତ, ପ୍ରଦତ୍ତ, ହୀନ ।
ବିବର୍ଣ୍ଣ—ବି. (ବି+ବର୍ଣ୍ଣ) ନୀଚଜାତି, ହୀନବର୍ଣ୍ଣ, (ବିଂ. ବ.ବ୍ରୀ) ମଳିନ, ବର୍ଣ୍ଣହୀନ, ଇତର ଜାତୀୟ, ବିକୃତବର୍ଣ୍ଣ, ନୀଚ ।
ବିବର୍ଣ୍ଣତା(ତ୍ୱ)—ବି. ମାଳିନ୍ୟ, ଦୀପ୍ତିହୀନତା, ନଷ୍ଟଭତା, ବର୍ଣ୍ଣର ବିକୃତି, କାନ୍ତିହୀନତା ।
ବିବର୍ତ୍ତ—ପୁଂ. ବି. (ବି+ବୃତ୍+ଭା.ଅ) ସମୁଦାୟ, ରାଶି, ପରିବର୍ତ୍ତନ, ନୃତ୍ୟ, ପ୍ରତିପକ୍ଷ, ପରିମାଣ, ଭ୍ରାନ୍ତି, ଭ୍ରମଣ, ଆବର୍ତ୍ତ, ଘୂର୍ଣ୍ଣନ, ବିଶେଷ ରୂପେ ସ୍ଥିତ,

ଭ୍ରମ, (ବେଦାନ୍ତ) ଅବିଦ୍ୟା ବା ମାୟାଜନିତ ଭ୍ରାନ୍ତରୂପ ।

ବିବର୍ତ୍ତନ—କ୍ଲୀ. ବି. ( ବି+ବୃତ୍+ଭା. ଅନ ) ପରିଭ୍ରମଣ, ପ୍ରଦକ୍ଷିଣୀକରଣ, ପାର୍ଶ୍ୱପରିବର୍ତ୍ତନ, ପ୍ରତ୍ୟାବର୍ତ୍ତନ, କର୍ଣ୍ଣପରିଷ୍କାରକ ଯନ୍ତ୍ରବିଶେଷ, ଘୂର୍ଣ୍ଣନ, ନୃତ୍ୟ, ନାନା ଅବସ୍ଥାର ମଧ୍ୟ ଦେଇ ଗମନ, ନମସ୍କାର, ପରିବର୍ତ୍ତିତ ଅବସ୍ଥା, ଅପନୟନ ଅପସାରଣ ।

ବିବର୍ତ୍ତନଶୀଳ—ବିଂ(ବ.ବ୍ରୀ)ପରିବର୍ତ୍ତନଶୀଳ, ଘୂର୍ଣ୍ଣନଶୀଳ, ଯେ ନିୟତ ଘୂରେ ।

ବିବର୍ତ୍ତବାଦ—ବି. ଜୀବ ଜଗତର କ୍ରମବିକାଶ ବା ଅଭିବ୍ୟକ୍ତିରୂପକ ମତବାଦ (ବେଦାନ୍ତ ଶାସ୍ତ୍ର ବା ଦର୍ଶନ) ।

ବିବର୍ତ୍ତିତ—ବିଂ. ( ବି+ବୃତ୍+ର୍ମ.ତ ) ପରିବର୍ତ୍ତିତ, ପ୍ରତ୍ୟାବର୍ତ୍ତିତ, ଘୂର୍ଣ୍ଣିତ, ଭ୍ରମିତ, ଅପନୀତ, ଖଣ୍ଡ ଖଣ୍ଡ ହୋଇ କଟା ହୋଇଥିବା, ନମିତ, ବିକୃତ ।

ବିବର୍ତ୍ତିତସନ୍ଧିଭଙ୍ଗ—ବି. ଅସ୍ଥିସନ୍ଧିଚ୍ୟୁତ, ଅସ୍ଥିସନ୍ଧିଭଗ୍ନ ରୋଗ ।

ବିବର୍ତ୍ତୀ—ପୁଂ. ବିଂ. ବିବର୍ତ୍ତନଶୀଳ, ଭ୍ରମଣଶୀଳ, ଘୂର୍ଣ୍ଣାୟମାନ, ପରିବର୍ତ୍ତନଶୀଳ ।

ବିବର୍ତ୍ମ—କ୍ଲୀ. ବି. କୁପଥ, ବିଶେଷପଥ ।

ବିବର୍ଦ୍ଧକ—ପୁଂ. ବିଂ. (ବି+ବୃଧ୍+କ. ଅକ) ଯେ ବଢ଼ାଏ, (ସ୍ତ୍ରୀ) ବିବର୍ଦ୍ଧିକା ।

ବିବର୍ଦ୍ଧନ—କ୍ଲୀ. ବି. (ବି+ବର୍ଦ୍ଧି+ଅନ) ସମ୍ୟକ୍ ବୃଦ୍ଧି କରଣ, ଖଣ୍ଡନ, ଛେଦନ, (ବିଂ) ବୃଦ୍ଧିକାରକ ।

ବିବର୍ଦ୍ଧନୀୟ—ବିଂ. (ବି+ବୃଧ୍+ଅନୀୟ) ବର୍ଦ୍ଧନଯୋଗ୍ୟ, ବୃଦ୍ଧି ପାଇବାର ଉପଯୁକ୍ତ, ବଢ଼ାଇବାର ଯୋଗ୍ୟ, (ସ୍ତ୍ରୀ) ଯା ।

ବିବର୍ଦ୍ଧୟିଷୁ—ବିଂ. (ବି+ବୃଧ୍+ଣିଚ୍+ସନ୍.ଉ) ବିବର୍ଦ୍ଧନେଚ୍ଛୁ, ଯେ ବଢ଼ିବାକୁ ଇଚ୍ଛା କରେ । [ ଶୀଳ ।

ବିବର୍ଦ୍ଧୀ—ପୁଂ. ବିଂ. ବର୍ଦ୍ଧନଶୀଳ, ବୃଦ୍ଧି-

ବିବର୍ଷଣ—କ୍ଲୀ. ବି. ବିଶେଷ ରୂପେ ବର୍ଷଣ, ବୃଷ୍ଟି ନ ହେବା ।

ବିବର୍ଷିଷୁ—ବିଂ. (ବି+ବର୍ଷ+ସନ୍+ଉ) ବର୍ଷଣ କରିବାକୁ ଇଚ୍ଛୁକ ।

ବିବଳ—ବିଂ. (ବି+ବଳ) ଦୁର୍ବଳ, ବଳହୀନ, ବିଶେଷ ବଳଯୁକ୍ତ ।

ବିବଶ—ପୁଂ. ବିଂ. (ବି+ବଶ+ଭା.ଅ) ଅବଶୀଭୂତାତ୍ମା, ମୃତ୍ୟୁ ଲକ୍ଷଣରେ ଭ୍ରଷ୍ଟବୁଦ୍ଧି, ଅବାଧ, ଅବଶ, ନଷ୍ଟଚେଷ୍ଟ ଆର୍ତ୍ତ, ବ୍ୟାକୁଳ, ଅସହାୟ, ଅଚେତନ, ବିହ୍ୱଳ, ସ୍ୱାଧୀନ, ପ୍ରଶସ୍ତଚେତାଃ ।

ବିବଶୀକୃତ—ବିଂ. ଯାହାକୁ ବିବଶ କରାଯାଇଅଛି, ଅବଶୀଭୂତ ।

ବିବସନ—ପୁଂ. ବିଂ. ( ବ.ବ୍ରୀ ) ବସନରହିତ, ବିବସ୍ତ୍ର, ଲଙ୍ଗଳା, ନଗ୍ନ, (ସ୍ତ୍ରୀ) ବିବସନା ।

ବିବସ୍ତ୍ର—ପୁଂ. ବିଂ. ( ବ.ବ୍ରୀ ) ବିବସନ ଦେଖ, (ସ୍ତ୍ରୀ) ବିବସ୍ତ୍ରା ।

ବିବସ୍ୱତା—ସ୍ତ୍ରୀ. ବି. ସୂର୍ଯ୍ୟନଗରୀ ।

ବିବସ୍ୱାନ୍—ପୁଂ. ବି. (ବି+ବସ+କ୍ୱିପ୍) ସୂର୍ଯ୍ୟ, ଚନ୍ଦ୍ର, ଅର୍କବୃକ୍ଷ, ଦେବତା, ଅରୁଣ, ବୈବସ୍ୱତମନୁ, ମନୁଷ୍ୟ, (ବିଂ) ପରିଚରଣଶୀଳ ।

ବିବହ—ପୁଂ. ବିଂ. ସପ୍ତ ବାୟୁ ମଧ୍ୟରୁ ଏକତମ, ଅଗ୍ନିଙ୍କ ସପ୍ତ ଅର୍ଚ୍ଚିମଧ୍ୟରୁ ଏକ ।

ବିବାକ୍—ଯା. ଅବ୍ୟ. ସମୁଦାୟ, ତମାମ୍. ସମ୍ପୂର୍ଣ୍ଣରୂପେ, ବାକି ନ ରଖି, ସମସ୍ତେ

ବିବାକ—ବିଂ. ( ବି+ବଚ୍+କ.ଅକ ) ବିଚାରକ, ବିବେଚକ ।

ବିବାକ୍ୟ—ବିଂ. ବିଚାର୍ଯ୍ୟ, ବାକ୍ୟହୀନ, (କ୍ଲୀ.ବି) ବାକ୍ୟ । [ ବିବାଦ ।

ବିବାଚନ—କ୍ଲୀ. ବି. ବିବିଧ ଆଳାପ,

ବିବାଚ୍ୟ—ବିଂ. ବିବାଦଯୋଗ୍ୟ, ବିଚାରଯୋଗ୍ୟ, କଥ୍ୟ ।

ବିବାଦ—ବି(ବି+ବାଦ୍+ଭା.ଅ)କଳହ, ବିତର୍କ, ଝଗଡ଼ା, ମତଭେଦ, ମକଦ୍ଦମା, ବ୍ୟବହାର, ଋଣାଦି ନ୍ୟାୟ, ଧନବିଭାଗାଦିର ନ୍ୟାୟ ।

ବିବାଦକ—ବିଂ. (ବିବାଦ+କ.ଅକ) ଯେ ବିବାଦ କରେ, (ସ୍ତ୍ରୀ) ବିବାଦିକା ।

ବିବାଦପଦ—ବି. (ଷତତ୍ପୁ) ମକଦ୍ଦମାର ବିଷୟ, ( ହିନ୍ଦୁ-ଆଇନ ) ମକଦ୍ଦମାର ମୁଖ୍ୟକାରଣ ।

ବିବାଦପ୍ରିୟ—ପୁଂ. ବିଂ. (ବ.ବ୍ରୀ) କଳହପ୍ରିୟ, ମକଦ୍ଦମାବାଜ୍ ।

ବିବାଦବିଷୟ—ବି. (ଷତତ୍ପୁ) ଯେଉଁ ବିଷୟ ପାଇଁ କଳହ ହୁଏ, କଳହର ବସ୍ତୁ ।

ବିବାଦବିସମ୍ବାଦ—ବି. କଳିକଜିଆ, ମାମଲାମକଦ୍ଦମା, ବିରୋଧ ।

ବିବାଦବିହୀନ—ବିଂ. (୩ତତ୍ପୁ) କଳହଶୂନ୍ୟ

ବିବାଦବୃଦ୍ଧି—ବି. (ଷତତ୍ପୁ) କଳିବଢ଼ିବା ।

ବିବାଦଭଞ୍ଜକ—ପୁଂ. ବିଂ. ଯେ ବିବାଦ ବା କଳିଗୋଳ ମୀମାଂସା କରେ ।

ବିବାଦଭଞ୍ଜନ—ବି. (ଷତତ୍ପୁ) ଦୁଇଜଣ ମଧ୍ୟରେ ଜାତ ବିବାଦର ମୀମାଂସା ।

ବିବାଦମେଣ୍ଟିବା—ଗ୍ରା. ବି. ଆପୋଷରେ ବିବାଦର ମୀମାଂସା ।

ବିବାଦାର୍ଥୀ—ପୁଂ. ବିଂ. କଳିହୁଡ଼ା, କଳି ଲାଗିବାକୁ ପ୍ରସ୍ତୁତ, କଳହପ୍ରିୟ ।

ବିବାଦୀ—ପୁଂ. ବିଂ. (ବି+ବଦ୍+ଇନ୍) କଳହକାରୀ, ( ଗ୍ରା.ବି ) ମକଦ୍ଦମାରେ ପ୍ରତିବାଦୀ ।

ବିବାଦୀୟ—ବିଂ. ( ବିବାଦ+ଈୟ ) ବିବାଦସମ୍ବନ୍ଧୀୟ, ମକଦ୍ଦମା ସମ୍ପର୍କୀୟ, ବିବାଦର ବିଷୟୀଭୂତ (ବିଷୟ) ।

ବିବାଦୀୟସମ୍ପତ୍ତି—ବି. ଯେଉଁ ସମ୍ପତ୍ତି ପାଇଁ ମକଦ୍ଦମା ଲାଗେ ।

ବିବାନ—ବି. ଚିହ୍ନ, ଛେଦନକାର୍ଯ୍ୟ, ସୂଚୀକାର୍ଯ୍ୟ, (ଗ୍ରା.ବି) ବିମାନ ଦେଖ ।

ବିବାର—ବି. ସ୍ୱରବିଶେଷ, ନିବାରଣ ।

ବିବାରୟିଷୁ—ପୁଂ. ବିଂ. ନିବାରଣେଚ୍ଛୁ, ବାଧାଦେବାରେ ଇଚ୍ଛୁକ ।

ବିବାସ—ବି. (ବି+ବସ୍+ଣିଚ୍+ଭା. ଅ) ନିର୍ବାସନ, ପ୍ରବାସ, ବାସ, (ବିଂ. ବ.ବ୍ରୀ) ନଗ୍ନ, ଲଙ୍ଗଳା ।

ବିବାସନ—କ୍ଲୀ. ବି. ନିର୍ବାସନ, ବାସକରଣ ।

ବିବାସୟିତା—ପୁଂ. ବିଂ, ନିର୍ବାସନକାରୟିତା, ଯେ ନିର୍ବାସନ କରାଇଅଛି, (ସ୍ତ୍ରୀ) ବିବାସୟିତ୍ରୀ ।

ବିବାସାଃ—ବିଂ. ବିବସନ, ବିବସ୍ତ୍ର, ବସ୍ତ୍ରହୀନ, ଉଲଙ୍ଗ, ଲଙ୍ଗଳା ।

ବବାସିତ—ପୁଂ. ବିଂ. (ବି + ବସ୍ + ଣିଚ୍ + ମଁ.ତ) ନିର୍ବାସିତ, ଯାହାକୁ ଦୂରିଭୂତ କରାଯାଇଅଛି ।

ବବାସ୍ୟ—ବିଂ. ବିବାସନଯୋଗ୍ୟ ।

ବବାହ—ବି. (ବି + ବହ + ଅ)ଉଦ୍‌ବାହ, ଦାରପରିଗ୍ରହ, ବଂଶରକ୍ଷା ଓ ସମାଜ ରକ୍ଷା ସକାଶେ ପୁରୁଷ ଓ ସ୍ତ୍ରୀର ମିଳନ, ପରିଣୟ । [ ବାହନ ହ୍ୱ

ବବାହନୀୟ—ତ୍ରି.ବିଂ. ବିବାହଯୋଗ୍ୟ

ବବାହପଟହ—ପୁଂ.ବି.ବିବାହବାଦ୍ୟ ।

ବବାହପଦ୍ଧତି—ପୁଂ. ବି. ଗ୍ରନ୍ଥବିଶେଷ, ଯେଉଁ ଗ୍ରନ୍ଥରେ ବିବାହ ସଂସ୍କାରର ଅନୁଷ୍ଠାନାଦି ବିଶେଷରୂପେ ଲେଖା ହୋଇଥାଏ ।

ବବାହଯୋଗ୍ୟ—ପୁଂ.ବିଂ.ବିବାହକରିବା ନିମନ୍ତେ ଉପଯୁକ୍ତ ବୟସ୍କ,(ସ୍ତ୍ରୀ)ଯୋଗ୍ୟା

ବବାହଯୋଗ୍ୟବୟସ—ବି. ବାଳକର ବା ବାଳିକାର ବିବାହକରିବା ନିମନ୍ତେ ଉପଯୁକ୍ତ ବୟସ ।

ବବାହବୟଃ—କ୍ଲୀ.ବି. (୬ତତ୍ପୁ)ବିବାହର ଉପଯୁକ୍ତ ବୟସ ।

ବବାହବେଶ—ପୁଂ.ବି.ବିବାହକାଳୀନ ବେଶଭୂଷା ।

ବବାହାଙ୍ଗ—ବି. ( ୬ତତ୍ପୁ ) ବିବାହ କର୍ମରେ ବରକନ୍ୟାଙ୍କର କର୍ତ୍ତବ୍ୟ ଭିନ୍ନ ଭିନ୍ନ ଅନୁଷ୍ଠାନ ।

ବବାହାର୍ଥୀ—ପୁଂ.ବିଂ. (ବିବାହ + ଅର୍ଥ + ଇନ୍) ବିବାହିତ ହେବା ନିମନ୍ତେ ଇଚ୍ଛୁକ, (ସ୍ତ୍ରୀ) ବିବାହାର୍ଥିନୀ ।

ବବାହିତ—ପୁଂ. ବିଂ. (ବି + ବହ + ଣିଚ୍ + ମଁ.ତ) କୃତବିବାହ,ପରିଣୀତ, ଯେ ବିବାହ କରିଅଛି, ( ସ୍ତ୍ରୀ ) ବିବାହିତା, (ବି) ବିବାହକର୍ତ୍ତା, ପରିଣେତା ।

ବବାହୀ—ବିଂ.ବିବାହକାରୀ,ବିଶେଷରୂପେ ବହନକାରୀ, ଭାରୀ ।

ବବାହ୍ୟ—ତ୍ରି. ବିଂ.(ବି + ବହ + ମଁ.ଯ) ବହନୀୟ, ବିବାହ କରିବାର ଉପଯୁକ୍ତ, (ସ୍ତ୍ରୀ) ବିବାହ୍ୟା, (ବି) ଜାମାତା,ବର ।

ବବି(ବୃ)—ଯା. ସ୍ତ୍ରୀ.ବି.ମୁସଲମାନ ଭଦ୍ର ନାରୀ, ମହିଳା, ପତ୍ନୀ, ସାହାବାଣୀ, ତାସର ବିଶୀରନି ଚିହ୍ନିତ ତାସ ।

ବବିକ୍ତ—ତ୍ରି. ବିଂ. (ବି + ବିଚ୍ + କ.ତ) ପବିତ୍ର, ନିର୍ଜନ, ନିର୍ଜନ, ଅସମ୍ପୃକ୍ତ, ବିବେକୀ, ବିବେଚକ, ଶୁଦ୍ଧ, ଏକାଗ୍ର, ପୃଥକ୍‌କୃତ, (ବି) ବିଷ୍ଣୁ ।

ବବିକ୍ତତା (ତ୍ୱ) — ବି. ବିବିକ୍ତରଭାବ, ବିବେକିତା, ବୈରାଗ୍ୟ ।

ବବିକ୍ତା—ସ୍ତ୍ରୀ.ବିଂ.(ବି + ବିଚ୍ + ତ + ଆ) ଦୁର୍ଭଗା, ଭାଗ୍ୟହୀନା, ସ୍ୱାମୀ ସୁଖବର୍ଜିତା (ସ୍ତ୍ରୀ) ।

ବବିକ୍ତି—ସ୍ତ୍ରୀ.ବି. (ବି + ବିଚ୍ + ତି)ବିଭାଗ ବିଚ୍ଛେଦ, ଉପଯୁକ୍ତ ସମ୍ମାନ, ପାର୍ଥକ୍ୟ-ନିର୍ଣ୍ଣୟ ।

ବବିକ୍ଷା—ବି. (ବିଶ୍ + ସନ୍ + ଅ + ଆ) ପ୍ରବେଶ କରିବାର ଇଚ୍ଛା ।

ବବିକ୍ଷୁ—ତ୍ରି.ବିଂ. (ବିଶ୍ + ସନ୍ + କ.ଉ) ଶରଣେଚ୍ଛୁ, ଆଶ୍ରୟେଚ୍ଛୁ, ପ୍ରବେଶ କରିବାକୁ ଇଚ୍ଛୁକ ।

ବବିଗ୍ନ—ବିଂ.(ବି + ବିଜ୍ + କ.ତ) ଶଙ୍କିତ ଭୀତ, ଉଦ୍ୱିଗ୍ନ ।

ବବିଚ—ତ୍ରି. ବିଂ. ପୃଥକ୍‌କୃତ,ବିଭକ୍ତ ।

ବବିଜାନ୍—ଯା.ଅ. ମୁସଲମାନଙ୍କର ସ୍ତ୍ରୀ-ପତ୍ନୀ ସ୍ନେହ ସମ୍ଭାଷଣ ।

ବବିଜୀ—ଯା. ବି. ମୁସଲମାନ ଭଦ୍ରମହିଳାଙ୍କ ପ୍ରତି ସମ୍ମାନାର୍ଥ ପ୍ରୟୋଗ ।

ବବିତ୍ତି—ସ୍ତ୍ରୀ. ବି. ବିଶେଷଲାଭ ।

ବବିତ୍ସା—ସ୍ତ୍ରୀ. ବି. ଅମୃତତ୍ତ୍ୱ ଜାଣିବାର ଇଚ୍ଛା, ଆତ୍ମବିଷୟର ଜାଣିବା ଇଚ୍ଛା ।

ବବିତ୍ସୁ—ତ୍ରି.ବିଂ. ଜାଣିବାକୁ ଇଚ୍ଛୁକ, (ପୁଂ.ବି.) ଧୃତରାଷ୍ଟ୍ରଙ୍କ ପୁତ୍ର ।

ବବିଦିଷା—ସ୍ତ୍ରୀ. ବି. ବିବିତ୍ସା, ଜାଣିବାର ଇଚ୍ଛା ।

ବବିଦିଷୁ—ତ୍ରି. ବିଂ. ବିବିତ୍ସୁ, ଜାଣିବାକୁ ଇଚ୍ଛୁକ । [ ବିଶିଷ୍ଟ ।

ବବିଦ୍ୟୁତ—ତ୍ରି.ବିଂ.ବିଦ୍ୟୁତ୍‌ହୀନ,ବିଦ୍ୟୁତ୍-

ବବିଦ୍ୱାନ୍—ପୁଂ. ବିଂ. (ବି + ବିଦ୍ + କ୍ୱସୁ) ଜ୍ଞାତା, ଯେ ଜାଣିଅଛି, (ସ୍ତ୍ରୀ) ବିବିଦ୍ୱଷୀ ।

ବବିଧ—ତ୍ରି. ବିଂ. (ବ.ବ୍ରୀ) ନାନାପ୍ରକାରର, ବହୁପ୍ରକାର, ଅନେକ, (ଗ୍ରା.ବି) ଗମାୟୁଣୋକ୍ତ କପିବିଶେଷ ।

ବବୀତ—ବି. (ବି + ବୀ + କ.ତ)ପ୍ରଚୁର ତୃଣାଦି ବିଶିଷ୍ଟ ପରିରକ୍ଷିତ ଗୋଚରଭୂମି, ପ୍ରଚୁରତୃଣ,କାଷ୍ଠପୂର୍ଣ୍ଣ ରାଜରକ୍ଷିତ ଭୂପ୍ରଦେଶ, (ବିଂ) ପରିରକ୍ଷିତ ।

ବବୀତଭର୍ତ୍ତା—ପୁଂ. ବି. ବିବୀତଭୂମିର ସ୍ୱାମୀ ।

ବବୁଧ—ବି. ( ବି + ବୁଧ୍ + କ.ଅ ) ଦେବତା, ପଣ୍ଡିତ, ଚନ୍ଦ୍ର ।

ବବୁଧବନିତା—ସ୍ତ୍ରୀ. ବି. (୬ତତ୍ପୁ)ଦେବରମଣୀ, ଅପ୍ସରା ।

ବବୁଧାଦ୍ରି—ବି.(୬ତତ୍ପୁ)ସୁମେରୁ ପର୍ବତ ।

ବବୁଧାନ—ବି.(ବି + ବୁଧ୍ + କ.ଆନ) ପଣ୍ଡିତ, ଆଚାର୍ଯ୍ୟ, ଦେବ, (ସ୍ତ୍ରୀ) ବିବୁଧାନା ।

ବବୃତ—ତ୍ରି. ବିଂ. (ବି + ବୃ + ମଁ.ତ) ବର୍ଣ୍ଣିତ, ସ୍ପଷ୍ଟ, ପ୍ରକଟିତ, ବ୍ୟାଖ୍ୟାତ, ପ୍ରକାଶିତ, ମହତ, ଉନ୍ମୁକ୍ତ, ( ବି ) ବିବରଣ, ପ୍ରକଟନ, ବିସ୍ତାର, ହାଇମାଣ୍ଡା, ବାତାଗଗବିଶେଷ,ବ୍ୟାଖ୍ୟା, ବର୍ଣ୍ଣୋଚ୍ଚାରଣେ ପ୍ରଯତ୍ନ, (ଗ୍ରା. ବିଂ.) ବେଷ୍ଟିତ ।

ବବୃତଦ୍ୱାର—ବିଂ. ( ବ.ବ୍ରୀ ) ଯେଉଁ ଗୃହର ଦ୍ୱାର ଖୋଲାଯାଇଥାଏ ।

ବବୃତାକ୍ଷ—ପୁଂ. ବି. (ବ.ବ୍ରୀ) କୁକ୍କୁଟ, (ବିଂ) ବିସ୍ତାରିତ ଚକ୍ଷୁବିଶିଷ୍ଟ ।

ବବୃତାସ୍ୟ—ପୁଂ. ବିଂ. ( ବ.ବ୍ରୀ ) ଯେ ମୁଖବ୍ୟାଦାନ କରିଥାଏ ।

ବବୃତି—ସ୍ତ୍ରୀ. ବି. ( ବି + ବୃ + ଭା.ତି ) ପୁନରାବୃତ୍ତି, ବ୍ୟାଖ୍ୟା, ବର୍ଣ୍ଣନା ।

ବବୃତ୍ତ—ତ୍ରି. ବିଂ. (ବି + ବୃତ୍ + କ.ତ) ଚଳିତ, ଘୂର୍ଣ୍ଣିତ, ଭୂଲୁଣ୍ଠିତ, ତିର୍ଯ୍ୟକ୍ ଚଳିତ ।

ବବୃତ୍ତି—ସ୍ତ୍ରୀ. ବି. (ବି + ବୃତ୍ + ତି)ଚକ୍ରବତ୍ ଭ୍ରମଣ, ଘୂର୍ଣ୍ଣନ, ବିବିଧ ବୃତ୍ତିଲାଭ, ବିବର୍ତ୍ତନ ।

ବିବୃଦ୍ଧ—ବିଂ. ( ବି+ବୃଧ୍+କ.ତ ) ବୃଦ୍ଧିପ୍ରାପ୍ତ, ପ୍ରବୃଦ୍ଧ ।

ବିବୃଦ୍ଧି—ସ୍ତ୍ରୀ. ବି. (ବି+ବୃଧ୍+ଭା.ତି) ବିଶେଷରୂପେ ବୃଦ୍ଧି, ସମ୍ୟକ୍‌ବୃଦ୍ଧି ।

ବିବୃନ୍ତ—ବି. ସ୍ୱଇଚ୍ଛାରେ ଖୋଲିଯିବା ।

ବିବେକ—ପୁଂ. ବି. (ବି+ବିଚ୍+ଭା. ଅ) ବାଦବିଚାର ଦ୍ୱାରା ବସ୍ତୁର ସ୍ୱରୂପ ନିଶ୍ଚୟ, ପ୍ରକୃତି ଓ ପୁରୁଷ ସମ୍ବନ୍ଧେ ଭେଦଜ୍ଞାନ, ଜଳଦ୍ରୋଣୀ, ବିଚାର, ବିବେଚନା, ବୈରାଗ୍ୟ, ତତ୍ତ୍ୱଜ୍ଞାନ, ସ୍ନାନାଗାର, ପରିଭେଦ,ହିତାହିତ ବିବେଚନା, ଔଦାସ୍ୟ, (ବିଂ)ବିବେକୀ,ହିତାହିତ ଜ୍ଞାନବିଶିଷ୍ଟ ।

ବିବେକଖ୍ୟାତି—ବି.ଯେଉଁ ବିଚାରଶକ୍ତି ଦ୍ୱାରା ମନୁଷ୍ୟ ଆତ୍ମା ଓ ପ୍ରକୃତିର ସ୍ୱାତନ୍ତ୍ର୍ୟ ବୁଝିବାକୁ ସମର୍ଥ ହୁଏ ।

ବିବେକଜ୍ଞ—ପୁଂ.ବିଂ.(ବିବେକ+ଜ୍ଞା+ଅ) ଯାହାର ବିବେକସମ୍ବନ୍ଧୀୟ ଜ୍ଞାନ ଅଛି, (ସ୍ତ୍ରୀ) ବିବେକଜ୍ଞା ।

ବିବେକଜ୍ଞାନ—କ୍ଳୀ.ବି.(ବିବେକ+ଜ୍ଞାନ) ତତ୍ତ୍ୱଜ୍ଞାନ, ବିବେକଜ ଜ୍ଞାନ ।

ବିବେକଦୃଶ୍ୱାନ୍—ପୁଂ. ବିଂ. (ବିବେକ+ଦୃଶ୍+କ.ବନ୍) ବିବେକଦର୍ଶୀ, ତତ୍ତ୍ୱଜ୍ଞାନୀ, ବିବେକୀ ।

ବିବେକବାନ୍—ପୁଂ. ବିଂ. ( ବିବେକ + ବତ୍) ବିବେକବିଶିଷ୍ଟ, ବୈରାଗ୍ୟଯୁକ୍ତ, ବିବେକୀ ।

ବିବେକବିରୁଦ୍ଧ—ବିଂ, ଯାହା ଆପଣାର ବିବେକ ଶକ୍ତି ଦ୍ୱାରା ଅନୁମୋଦିତ ନୁହେଁ ।

ବିବେକବିହୀନ—ପୁଂ.ବିଂ,(ଷତତ୍)ହିତାହିତ ବିବେଚନାଶୂନ୍ୟ ।

ବିବେକବୁଦ୍ଧି—ବି. ହିତାହିତ ଜ୍ଞାନଶକ୍ତି ।

ବିବେକଶାସ୍ତ୍ର—ବି. ବିଚାରଶାସ୍ତ୍ର, ନ୍ୟାୟଶାସ୍ତ୍ର ।

ବିବେକସମ୍ମତ—ବି. (ଷତତ୍) ଯେଉଁ କାର୍ଯ୍ୟକୁ ଆପଣାର ବିବେକ ବୁଦ୍ଧି ସମର୍ଥନ କରିଅଛି ।

ବିବେକାନନ୍ଦ—ଗ୍ରା. ପୁଂ. ବି. ରାମକୃଷ୍ଣ ପରମହଂସଙ୍କର ଭୁବନପ୍ରସିଦ୍ଧ ଶିଷ୍ୟ ।

ବିବେକିତା—ସ୍ତ୍ରୀ. ବି. (ବିବେକିନ୍+ତା) ସମ୍ୟକ୍ ବିବେଚନା ।

ବିବେକୀ—ପୁଂ. ବିଂ. (ବିବେକ+ଇନ୍) ବୈରାଗ୍ୟବିଶିଷ୍ଟ,ବିରାଗୀ, (ସ୍ତ୍ରୀ) ବିବେକିନୀ,(ବି)ଦେବସେନ ରାଜାଙ୍କ ପୁତ୍ର ।

ବିବେକ୍ତବ୍ୟ—ତ୍ରି. ବିଂ. ( ବି+ବିଚ୍+ତବ୍ୟ) ବିବେଚନାଯୋଗ୍ୟ ।

ବିବେକ୍ତା—ପୁଂ. ବିଂ. (ବି+ବିଚ୍+ତୃ) ବିବେଚକ, ବିଚାରକ ।

ବିବେକ୍ତୃତ୍ୱ—କ୍ଳୀ.ବି. ବିଚାରକ, ବିବେଚକର ଭାବ ।

ବିବେକ୍ୟ—ତ୍ରି. ବିଂ. (ବି+ବିଚ୍+ଯ) ବିବେଚ୍ୟ, ବିବେଚନାର ଯୋଗ୍ୟ ।

ବିବେଚକ—ତ୍ରି. ବିଂ. (ବି+ବିଚ୍+କ. ଅକ) ବିବେଚନକାରୀ, ବିଚାରକ,ବିଚକ୍ଷଣ, ଜ୍ଞାନୀ, (ସ୍ତ୍ରୀ) ବିବେଚିକା ।

ବିବେଚନ(ନା)—ବି. (ବି+ବିଚ୍+ଭା. ଅନ+ଆ)ବିଶେଷ ବିବେଚନା,ବିତର୍କ, ଅନୁସନ୍ଧାନକରଣ, ବିବେକ ନିର୍ଣ୍ଣୟ ।

ବିବେଚନାରହିତ—ବିଂ. ବିଚାରଶୂନ୍ୟ ।

ବିବେଚନୀୟ—ବିଂ. ( ବି+ବିଚ୍+ମଁ. ଅନୀୟ)ବିବେଚନାର ଯୋଗ୍ୟ,ବିବେଚ୍ୟ, ବିଚାର୍ଯ୍ୟ ।

ବିବେଚୟିତା—ପୁଂ.ବିଂ. (ବି+ବିଚ୍+ଣିଚ୍+କ.ତୃ)ବିବେଚନାକାରୀ, ବିବେଚକ, (ସ୍ତ୍ରୀ) ବିବେଚୟିତ୍ରୀ ।

ବିବେଚିତ—ତ୍ରି.ବିଂ. (ବି+ବିଚ୍+ଣିଚ୍ ତ)ବିଚାରିତ, ତର୍କିତ, ନିରୂପିତ,ସିଦ୍ଧ ।

ବିବେଚ୍ୟ—ତ୍ରି. ବିଂ. ( ବି+ବିଚ୍+ଯ ) ବିବେଚନାଯୋଗ୍ୟ, ବିବେଚନୀୟ ।

ବିବେଦୟିଷୁ—ପୁଂ. ବିଂ. (ବି+ବିଦ୍+ଣିଚ୍+ସନ୍+ଉ) ବିଶେଷ ପ୍ରକାରେ ଜାଣିବାକୁ ଇଚ୍ଛୁକ ।

ବିବୋଧ—ବି(ବି+ବୁଧ୍+ଭା.ଅ)ଜାଗରଣ, ସମ୍ୟକ୍‌ବୋଧ, ବିକାଶ, ଜ୍ଞାନ, (ଗ୍ରା.ବିଂ) ଅଧୀର, ଧୈର୍ଯ୍ୟହୀନ ।

ବିବୋଧନ—ବି. (ବି+ବୁଧ୍+ଣିଚ୍+ଭା.ଅନ)ଜାଗରଣ, ନିଦ୍ରାରୁ ଉଠାଇବା, ବୁଝାଇବା, ଜ୍ଞାପନ, ବିକାଶକରଣ, ସ୍ମରଣ କରାଇବା ।

ବିବୋଧିତ—ପୁଂ.ବିଂ. (ବି+ବୁଧ୍+ଣିଚ୍ ମଁ.ତ) ଜ୍ଞାପିତ, ଜାଗରିତ, ବିକଶିତ, ଯାହାକୁ ଚେତାଇ ଦିଆଯାଇଥାଏ ।

ବିବ୍ୟାଧୀ—ପୁଂ.ବିଂ(ବି+ବ୍ୟାଧ୍+ଇନ୍) ଉତ୍ତେଜନକାରୀ,ତାଡ଼ନାକାରୀ,ବ୍ୟଧନଶୀଳ ।

ବିବ୍ରତ—ପୁଂ.ବିଂ.(ବି+ବ୍ରତ)ଅନିଚ୍ଛୁକ, ଆଦେଶ ଲଙ୍ଘନକାରୀ, ବହୁ କର୍ମ ବା ବ୍ରତ ଅନୁଷ୍ଠାନକାରୀ, ଅନ୍ୟ କାର୍ଯ୍ୟରେ ବ୍ୟସ୍ତ,(ଗ୍ରା.ବିଂ)ଉଦ୍ଦେଶ୍ୟରୁ ବା ଶୃଙ୍ଖଳାରୁ ବିଚ୍ୟୁତ, ବ୍ୟତିବ୍ୟସ୍ତ, ବିପନ୍ନ ।

ବିବ୍ରୁବନ୍ତ—ତ୍ରି.ବିଂ. (ବି+ବ୍ରୂ+କ.ଅନ୍ତ) ବିରୁଦ୍ଧ ବକ୍ତା, ମୌନୀ,(ସ୍ତ୍ରୀ)ବିବ୍ରୁବନ୍ତୀ ।

ବିବ୍ବୋକ—ପୁଂ.ବିଂ.ସ୍ତ୍ରୀମାନଙ୍କର ଶୃଙ୍ଗାରଭାବଜ କ୍ରିୟାବିଶେଷ, ଗର୍ବଯୁକ୍ତ ଅନାଦର, ସ୍ତ୍ରୀମାନଙ୍କର ଅଭିମତବସ୍ତୁ ପ୍ରାପ୍ତିରେ ଗର୍ବ ହେତୁକ ଅନାଦର ।

ବିଶ୍—ବି. ( ବିଶ୍+କ.କ୍ୱିପ୍ ) ପ୍ରଜା, ଜାତକ, ଯେ ଜନ୍ମିଅଛି,କନ୍ୟା,କୁମାରୀ, ବୈଶ୍ୟ, ମନୁଷ୍ୟ, ବଣିକ୍‌ଜାତି, (ବିଂ) ବ୍ୟାପକ ।

ବିଶ—ବି. ( ବିଶ୍+କ.ଅ ) ପଦ୍ମନାଡ଼, କନ୍ୟା, ବୈଶ୍ୟଜାତି କୁମାରୀ, ମନୁଷ୍ୟ, (ବିଂ) ପ୍ରବେଶକାରୀ, ବ୍ୟାପକ,(ଗ୍ରା.ବି) ପ୍ରଗନ୍ନା, ଗ୍ରାମପୁଞ୍ଜ ।

ବିଶ(ଷ,ସ)କଣ୍ଠୀ—ସ୍ତ୍ରୀ.ବି.(ବିଶ୍+କଣ୍ଠ ଆ) ବଳାକା, ବକ ।

ବିଶଙ୍କ—ପୁଂ.ବିଂ.(ବ.ବ୍ରୀ) ଶଙ୍କାରହିତ, ନିଃଶଙ୍କ, ନିର୍ଭୟ,ନିରାପଦ,(ସ୍ତ୍ରୀ)ବିଶଙ୍କା

ବିଶ(ସ)ଙ୍କଟ—ତ୍ରି. ବିଂ. (ବି+ଶଙ୍କଟ) ବିଶାଳ, ବିସ୍ତୃତ, ଭୟାନକ ।

ବିଶଙ୍କନୀୟ—ତ୍ରି. ବିଂ. ନିର୍ଭୟଯୋଗ୍ୟ, ଅବିଶ୍ୱାସ୍ୟ ।

ବିଶଙ୍କମାନ—ପୁଂ. ବିଂ. (ବି+ଶଙ୍କ+କ,ଆନ) ଆଶଙ୍କାକାରୀ, ଅନିଷ୍ଟଆଦିର ଆଶଙ୍କା କରୁଥିବା, (ସ୍ତ୍ରୀ) ମାନା ।

ବିଶଙ୍କା—ସ୍ତ୍ରୀ.ବି. ଆଶଙ୍କା, ଭୟ,ଶଙ୍କାର

ଅଭାବ, ନିର୍ଭୟ, ଅବିଶ୍ୱାସ ।
ବଶଙ୍କିତ—ପୁଂ.ବିଂ. (ବି+ଶଙ୍କ+କ. ତ)ବିଶେଷ ଶଙ୍କାପ୍ରାପ୍ତ, ଭୟ ଶଙ୍କାମୁକ୍ତ, (ସ୍ତ୍ରୀ) ବିଶଙ୍କିତା । [ ଭୀତ ।
ବଶଙ୍କୀ—ପୁଂ.ବିଂ. ଆଶଙ୍କାକାରୀ, ଭୀତ-
ବଶଙ୍କ୍ୟ—ତ୍ରି.ବିଂ. ଆଶଙ୍କାଯୋଗ୍ୟ,ଅବିଶ୍ୱାସ୍ୟ, ନିର୍ଭୟ ଯୋଗ୍ୟ ।
ବଶଦ—ବିଂ.(ବି+ଶଦ୍+କ ଅ ବିମଳ, ପରିଷ୍କୃତ, ସ୍ପଷ୍ଟ, ସ୍ଫୁଟ, ବ୍ୟକ୍ତ, ଶୁଭ୍ର, ଯାହା, ବିବିକ୍ତାବସ୍ଥିତ, ପ୍ରସନ୍ନ,ଅନୁକୂଳ ସୁନ୍ଦର, ମନୋହର, ଶୁଦ୍ଧ ଶରୀରଯୁକ୍ତ, ଉଜ୍ଜ୍ୱଳ, (ବି) ଶ୍ୱେତବର୍ଣ୍ଣ ।
ବଶଦକର—ବି. (ବ.ଗ୍ରୀ) ଚନ୍ଦ୍ର ।
ବଶଦଭାନୁ—ବି. ଚନ୍ଦ୍ର ।
ବଶନ—କ୍ଲୀ.ବି. ପ୍ରବେଶନ, ଆଗମନ ।
ବଶଫ—ତ୍ରି.ବିଂ. (ବ.ଗ୍ରୀ) ଶଫରହିତ, ଯାହାର ପାଦରେ ଖୁରା ନାହିଁ ।
ବଶବ୍ଦ—ତ୍ରି.ବିଂ. ନିଃଶବ୍ଦ, ଶବ୍ଦରହିତ, ଶବ୍ଦବିଶିଷ୍ଟ ।
ବଶମ୍ପ—ତ୍ରି.ବିଂ. ଲୋକଠାରୁ ରକ୍ଷିତ; (ବି) ଲୋକବିଶେଷ ।
ବଶୟ—ପୁଂ. ବି. ( ବି+ଶୀ+ଭା.ଅ ) ସଂଶୟ, ସନ୍ଦେହ, ଆଶ୍ରୟ ।
ବଶୟବାନ୍—ପୁଂ. ବି. ସଂଶୟଯୁକ୍ତ, ଆଶ୍ରୟବିଶିଷ୍ଟ, ସନ୍ଦେହୀ ।
ବଶୟୀ—ପୁଂ. ବିଂ. ( ବିଶୟ+ଇନ୍ ) ସଂଶୟୀ, ସଂଶୟଯୁକ୍ତ,(ସ୍ତ୍ରୀ) ବିଶୟିନୀ ।
ବଶର—ପୁଂ.ବି, (ବି+ଶୃ+ଭା.ଅ)ବଧ, ହତ୍ୟା, ଶରୀର ବିଦାରଣ, (ବିଂ) ଶରରହିତ, ଶରଯୁକ୍ତ, ବିଶୀର୍ଣ୍ଣ ।
ବଶରଣ—କ୍ଲୀ.ବି. ମାରଣ; ପାତନ ।
ବଶରାରୁ—ତ୍ରି ବିଂ. ବିଘ୍ନମନା ।
ବଶରାତ—ତ୍ରି.ବିଂ. ପାତନଶୀଳ ।
ବଶର୍ଦ୍ଧନ—ବି. ଗୁହ୍ୟଦେଶର କୁତ୍ସିତ ଶବ୍ଦ, ବାୟୁତ୍ୟାଗ, ପାଦ ।
ବଶଳା—ଗ୍ରା.ବି. ଲବଣଜ ପିଠା, ବୃକ୍ଷବିଶେଷ ।
ବଶର୍ମୀ—ଯା.ବିଂ, ନିର୍ଲଜ୍ଜ ।
ବଶଳପାତ—ଗ୍ରା.ବିଂ. ଅତ ବୃଷ୍ଟ, ଶୀର୍ଣ୍ଣ ହେଲ, ଅସ୍ଥିର ।
ବଶଲ୍ୟ—ପୁଂ.ବିଂ. (ବ.ଗ୍ରୀ) ଶଲ୍ୟରହିତ, ଶଙ୍କୁଶୂନ୍ୟ, ଯାହା ଦେହରୁ ବିଦ୍ଧଶର କଢ଼ା ହୋଇଅଛି, ଚନ୍ତାଶୂନ୍ୟ, (ସ୍ତ୍ରୀ) ବିଶଲ୍ୟା, (ବି) ବିବାହର ଔଷଧ, (ଗ୍ରା. ଭ ) ବିଷହାରୀ ।
ବଶଲ୍ୟକରଣୀ—ବି.ଦେହରେ ବିଦ୍ଧହୋଇ ଥିବା ବାଣଆଦିକୁ କାଢ଼ିଦେବା ପ୍ରକ୍ରିୟା
ବଶଲ୍ୟକରଣୀ—ସ୍ତ୍ରୀ.ବି. (ବିଶଲ୍ୟ+କୃ+ଣ. ଅନ+ଈ) ଶଲ୍ୟ ବ୍ୟଥାନାଶିନୀ ଔଷଧିବିଶେଷ, ଅମର ମହୌଷଧି ଲତା, (ଗ୍ରା.ବି) ଅବ୍ୟର୍ଥ ମହୌଷଧ, ବଣସେବତୀ ଗୁଳ୍ମ, ତଗରାଦି ବଗର ଲଟାକିଆ ଗୁଳ୍ମ ।
ବଶଲ୍ୟକୃତ୍—ବିଂ. (ବିଶଲ୍ୟ+କୃ+କ୍ୱିପ୍) ଯାତନା ମୁକ୍ତ, ଯାତନାନାଶକ, ଯାହା ଦେହରେ ପ୍ରବିଷ୍ଟ ଶରକୁ କାଢ଼ିପାରେ, (ବି) କ୍ଷତ ଓ ବେଦନାନାଶକ ଲତାବିଶେଷ ।
ବଶଲ୍ୟା—ସ୍ତ୍ରୀ.ବି. ଗୁଡ଼ୁଚୀ, ଅଗ୍ନିଶିଖା ବୃକ୍ଷ, ଦନ୍ତୀବୃକ୍ଷ, ରାମଦନ୍ତୀ ବୃକ୍ଷ,ନାଗଦନ୍ତୀ, ବିଷଲାଙ୍ଗଲା, ଅଜମୋଦା, ବିକଙ୍କତ, ତ୍ରିବୃତ୍ତୀ, ତ୍ରିପୁଟା, ନଦୀବିଶେଷ, ଲକ୍ଷ୍ମଣପତ୍ନୀ, (ସ୍ତ୍ରୀ.ବିଂ-ବ.ଗ୍ରୀ) ଶଲ୍ୟରହିତା, ଶଙ୍କୁଶୂନ୍ୟା, ପ୍ରସବବେଦନାରହିତା ।
ବଶସ—ପୁଂ. ବି, ( ବି+ଶସ୍+ଭା.ଅ ) ବଧ, ହତ୍ୟା, ମାରଣ, (ଣ.ଅ) ଖଡ୍ଗ ।
ବଶସନ—ବି. (ବିଶସ+ଅନ) ମାରଣ, ବିନାଶନ, ବଧ, ଖଡ୍ଗ, (ବିଂ)ବିନାଶକାରୀ । [ ମାରିତ ।
ବଶସିତ—ତ୍ରି. ବିଂ. (ବି+ଶସ୍+ତ)
ବଶସିତା—ପୁଂ.ବିଂ. (ବି+ଶସ୍+ତୃ) ମାରକ, ବିନାଶକ, ହନ୍ତା, ହତ୍ୟାକାରକ ।
ବଶସ୍ତ—ତ୍ରି.ବିଂ.(ବି+ଶସ୍+ମି.ତ) ଅବିନୀତ, ଧୃଷ୍ଟ, କଥିତ,ଛିନ୍ନ,ସୁସଭ୍ୟ, ହତ, ବିନାଶିତ, ଅଖାତ ।
ବଶସ୍ତା—ପୁଂ.ବିଂ. (ବି+ଶସ୍+ତୃ) ହିଂସାକାରକ, ଚଣ୍ଡାଳ ।
ବଶସ୍ତି—ସ୍ତ୍ରୀ.ବି. (ବି+ଶସ୍+ତି)ବଧ, ହତ୍ୟା, ବିନାଶ ।
ବଶସ୍ତ୍ର—ତ୍ରି.ବିଂ. ( ବ.ଗ୍ରୀ ) ଶସ୍ତ୍ରରହିତ, ଅସ୍ତ୍ରଶୂନ୍ୟ ।
ବଶମ୍ପତି—ପୁଂ.ବି. ରାଜା ।
ବଶାଂପତି—ପୁଂ.ବି. (ଷତତ୍ପୁ) ରାଜା ।
ବଶା—ସ୍ତ୍ରୀ. ବି. ( ବିଶ+କ.ଅ+ଆ ) କନ୍ୟା, (ଗ୍ରା.ବି) ୧୬୦ ତୋଲା ପରିମାଣ, ୨୦ ପଲ ପରିମିତ ମାପ ଯନ୍ତ୍ର ।
ବଶାକଗ୍ରଜ—ପୁଂ.ବ . (ବିଶାକ+ଗ୍ରଜ) ଭଦ୍ରଚଡ, ଲଙ୍କାକଡ଼ା, ହ୍ରସ୍ୱଦନ୍ତୀ, ହାତୀଶୁଣ୍ଢ଼ା ।
ବଶାକାଠି—ଗ୍ରା.ବି. ବିଶାଯନ୍ତ୍ରର ଦଣ୍ଡ ।
ବଶାଖ—ପୁଂ.ବି. (ବିଶାଖା+ଅ)କାର୍ତ୍ତିକେୟ, ଯାଚକ, ପୁନର୍ନବା, ଧନୁର୍ଦ୍ଧାରୀମାନଙ୍କର ବିଶିଷ୍ଟ୍ୟନ୍ତର ପାଦସ୍ଥାନ, ସ୍କନ୍ଦାପସ୍ମାର, ସ୍କନ୍ଦାଂଶଜାତ ଦେବବିଶେଷ, ସ୍କନ୍ଦାନୁଜ, ଶିବ, (ବିଂ)ଶାଖାବିହୀନ, (ସ୍ତ୍ରୀ) ବିଶାଖା । [ ଗଛ ।
ବଶାଖଗନ୍ଧ—ପୁଂ.ବି. ବିଲ୍ୱବୃକ୍ଷ,ବେଲ
ବଶାଖଜ—ପୁଂ. ବି. ନାଗରଙ୍ଗ ବୃକ୍ଷ, ଟଭା ଲେମ୍ବୁର ଗଛ, (ବିଂ) ବିଶାଖଜାତ, ଯେ ବିଶାଖା ନକ୍ଷତ୍ରରେ ଜନ୍ମିଅଛି ।
ବଶାଖଦତ୍ତ—ପୁଂ. ବି. ପୃଥୁ ରାଜାର ପୁତ୍ର, ସଂସ୍କୃତ ମୁଦ୍ରାରାକ୍ଷସର ପ୍ରଣେତା
ବଶାଖଦେବ—ପୁଂ.ବି. ଜନୈକ ପ୍ରାଚୀନ ସଂସ୍କୃତ କବି ।
ବଶାଖପଦ—ପୁଂ.ବି. ବାଲରୋଗବିଶେଷ
ବଶାଖଯୂପ—ପୁଂ.ବି. ପୌରାଣିକ ବନବିଶେଷ, ନୃସିଂହ ପୁରାଣୋକ୍ତ ପ୍ରାଚୀନ ଜନପଦ ।
ବଶାଖଳ—ପୁଂ. ବି. ଯୁଦ୍ଧକାଳେ ଅତ୍ୟନ୍ତ ବ୍ୟବଧାନରେ ପଦଦ୍ୱୟର ବିନ୍ୟାସ ।
ବଶାଖା—ସ୍ତ୍ରୀ.ବି. (ବି+ଶାଖ+ଅ+ଆ) କଠିଲ୍ଲକ, ଷୋଡ଼ଶ ନକ୍ଷତ୍ର, ଶ୍ୱେତ ରକ୍ତ ପୁନର୍ନବା, କୁମ୍ଭୀପରାଜତା, କଠିଲ୍ଲକବୃକ୍ଷ, ରାଧିକାଙ୍କର ଅଷ୍ଟସଖୀ ମଧ୍ୟରୁ

ଜଣେ ସଖୀ, (ସ୍ତ୍ରୀ.ବିଂ) ଶାଖାଶୂନ୍ୟା ।
ବିଶାଖାପଥ—ବି. (ଷଷ୍ଠ) ଚନ୍ଦ୍ର ।
ବିଶାଖାପଟ୍ଟଣା—ଗ୍ରା. ବି. ମାନ୍ଦ୍ରାଜ ପ୍ରଦେଶସ୍ଥ ଗଞ୍ଜାମ ଜିଲାର ଦକ୍ଷିଣରେ ଥିବା ଗୋଟିଏ ଜିଲ୍ଲା ଓ ନଗର ।
ବିଶାଖିକା—ସ୍ତ୍ରୀ.ବି. ବିଶାଖା ଦେଖ ।
ବିଶାତନ—ବିଂ. ( ବି+ଶତ+ଆନ ) ମୋଚନକର୍ତ୍ତା, (ବି) ପାତନ ।
ବିଶାପ—ତ୍ରି.ବିଂ. ଶାପାନ୍ତ, ଶାପରହିତ, (ବି) ମୁନିବିଶେଷ ।
ବିଶାମ୍ପତି—ପୁଂ.ବି. ରାଜା ।
ବିଶାୟ—ପୁଂ. ବି. (ବି+ଶୀ+ଭା.ଅ) ପ୍ରହରୀମାନଙ୍କର ପର୍ଯ୍ୟାୟକ୍ରମେ ଶୟନ
ବିଶାୟୀ—ବିଂ. ( ବି+ଶୀ+ଇନ୍ ) ଶୟନକାରୀ । [ ମାଛ ।
ବିଶାର—ବି. ମତ୍ସ୍ୟବିଶେଷ, ସେଉଳ-
ବିଶାରଣ—କ୍ଳୀ.ବି. ମାରଣ, ହତ୍ୟା, ବଧ
ବିଶାରଦ—ପୁଂ.ବିଂ. (ବିଶାଳ+ଦା+କ.ଅ) ବିଦ୍ୱାନ୍, ପଗଲ୍ଭ, ପ୍ରସିଦ୍ଧ, ଶ୍ରେଷ୍ଠ, ଦକ୍ଷ, ନିପୁଣ, ନିଜ କ୍ଷମତା ଉପରେ ଆସ୍ଥାବାନ୍, ବିସ୍ତୃତ, ଗର୍ବିତ, (ବି) ବକୁଳବୃକ୍ଷ, (ଗ୍ରା.ବିଂ) ବିଶାଳକାୟ, ପ୍ରକାଣ୍ଡ ।
ବିଶାରଦା—ସ୍ତ୍ରୀ.ବି. କ୍ଷୁଦ୍ର, ଦୁରାଲଭା, (ସ୍ତ୍ରୀ.ବିଂ) ବିଶାରଦର ସ୍ତ୍ରୀଲିଙ୍ଗ ।
ବିଶାରଦିମା—ପୁଂ. ବି. ବୈଶାରଦ୍ୟ, ନୈପୁଣ୍ୟ ।
ବିଶାଳ—ତ୍ରି.ବିଂ. (ବି+ଶାଳଚ୍) ଅତି ଉଦାର, ବୃହତ୍ ସମୃଦ୍ଧିଯୁକ୍ତ, ବିସ୍ତୃତ, ଚୌଡ଼ା, ବିଖ୍ୟାତ, ଅଦ୍ଭୁତକର୍ମା, ବିସ୍ତୀର୍ଣ୍ଣ, (ସ୍ତ୍ରୀ) ବିଶାଳା, (ବି) ମୃଗବିଶେଷ, ପକ୍ଷିବିଶେଷ, ବୃକ୍ଷବିଶେଷ, ପର୍ବତବିଶେଷ, ନୃପବିଶେଷ ।
ବିଶାଳକ—ପୁଂ. ବି. କପିତ୍ଥ, ଗରୁଡ଼, ଯକ୍ଷବିଶେଷ ।
ବିଶାଳକାୟ—ପୁଂ.ବିଂ.(ବ.ବ୍ରୀ) ବୃହତ୍ ଶରୀରବିଶିଷ୍ଟ, (ସ୍ତ୍ରୀ) ବିଶାଳକାୟା ।
ବିଶାଳତା(ତ୍ୱ)—ସ୍ତ୍ରୀ.ବି. (ବିଶାଳ+ତା) ବିସ୍ତାର, ବୃହତ୍ତ୍ୱ, ପ୍ରକାଣ୍ଡତା, ପାର୍ଶ୍ୱ ବିସ୍ତାର, ଓସାର । [ ବୃକ୍ଷ ।
ବିଶାଳତିଳକଗର୍ଭ—ପୁଂ.ବି. ଅଙ୍କୋଠ-
ବିଶାଳତ୍ୱକ୍—ପୁଂ. ବି. ସପ୍ତପର୍ଣ୍ଣବୃକ୍ଷ, ଛତିନାଗଛ ।
ବିଶାଳନେତ୍ର—ପୁଂ.ବିଂ. (ବ.ବ୍ରୀ) ବୃହତ୍ ଚକ୍ଷୁବିଶିଷ୍ଟ, (ବି) ବୌଦ୍ଧସ୍ତୂପବିଶେଷ
ବିଶାଳପତ୍ର—ପୁଂ.ବି. (ବ.ବ୍ରୀ) କାସାଲୁ, ଶ୍ରୀତାଳବୃକ୍ଷ, ମାଣସାରୁ ଗଛ ।
ବିଶାଳଫଳିକା—ସ୍ତ୍ରୀ. ବି. (ବିଶାଳ+ଫଳ+ଇକ+ଆ) ନିଷ୍ପାବୀ ।
ବିଶାଳହୃଦୟ—ପୁଂ. ବିଂ. ବ.ବ୍ରୀ, ଉଚ୍ଚମନାଃ, ଉଦାର ହୃଦୟ ।
ବିଶାଳା—ସ୍ତ୍ରୀ.ବି. (ବିଶାଳ+ଆ) ଇନ୍ଦ୍ରବାରୁଣୀ, ମହେନ୍ଦ୍ରବାରୁଣୀ, ତୀର୍ଥବିଶେଷ, ଦକ୍ଷକନ୍ୟା, ଅବନ୍ତୀ, ଉଜ୍ଜୟିନୀ ନଗରୀ, ସତୀ, ନଦୀବିଶେଷ, ସରସ୍ୱତୀ ନଦୀ, (ବିଂ) ବିଶାଳର ସ୍ତ୍ରୀଲିଙ୍ଗ ।
ବିଶାଳାକ୍ଷ—ପୁଂ.ବିଂ. (ବ.ବ୍ରୀ) ବିଶାଳ ଚକ୍ଷୁବିଶିଷ୍ଟ, ଆକର୍ଣ୍ଣ ବିସ୍ତୃତଲୋଚନ, ସୁଲୋଚନା, (ସ୍ତ୍ରୀ) ବିଶାଳାକ୍ଷୀ, (ବି) ମହାଦେବ, ଗରୁଡ଼, ବିଷ୍ଣୁ, ଧୃତରାଷ୍ଟ୍ର ପୁତ୍ର ।
ବିଶାଳାକ୍ଷୀ—ସ୍ତ୍ରୀ.ବି. (ବିଶାଳାକ୍ଷ+ଈ) ଉତ୍ତମା ନାରୀ, ନାଗଦନ୍ତୀ, ପାର୍ବତୀ, ଦୁର୍ଗାଦେବୀ, ଯୋଗିନୀବିଶେଷ ।
ବିଶାଳୀ—ସ୍ତ୍ରୀ.ବି. (ବିଶାଳ+ଈ) ଅଜମୋଦା । [ କୋଡ଼ିଏ ।
ବିଶାଶତ୍ରେ—ଗ୍ରା.ବି ଓ ବିଂ. ଏକଶତ
ବିଶିଆଙ୍କୁଳି—ଗ୍ରା ବି. ତର୍ଜନୀ । [ ପୁତ୍ର ।
ବିଶିକେଶନ—ଗ୍ରା. ବି. ଦାତାକର୍ଣ୍ଣଙ୍କର
ବିଶିଖ—ପୁଂ. ବି. ( ବ.ବ୍ରୀ ) ଶରତୃଣ, ଅରଟର ତାକୁଡ଼, ବାଣ, ତୋମରାସ୍ତ୍ର, ଆତୁରାଗାର, ହାସପାତାଲ, (ପୁଂ.ବିଂ) ଶିଖାବିହୀନ, ମୁଣ୍ଡିତ ।
ବିଶିଖପୁଙ୍ଖା—ସ୍ତ୍ରୀ.ବି. ଶରପୁଙ୍ଖା ।
ବିଶିଖା—ସ୍ତ୍ରୀ.ବି. (ବିଶିଖ+ଆ) ଖନିତ୍ର, ଖଣତି, ରଥ୍ୟା, ନାଳିକା, ଅପତ୍ୟମାର୍ଗ, କମ୍ମମାର୍ଗ, ଭଣ୍ଡାରୁଣୀ, ଅରଟର ତାକୁଡ଼, ହାସପାତାଲ, ରୋଗୀରହିବା ଘର । [ ଶୟନକାରୀ ।
ବିଶିଙ୍ଖାନ—ବିଂ. (ବି+ଶିଙ୍ଘ+କ.ଆନ)
ବିଶିପ—କ୍ଳୀ.ବି. (ବି+ଶି+ମ.ପ) ମନ୍ଦିର ।
ବିଶିପ୍ରିୟ—ବି. ବିଂ ହନୁ ବା ନାସିକା ରହିତ ବିଶ୍ୱାସହୀନ କର୍ମ ।
ବିଶିରାଃ—ପୁଂ.ବିଂ. (ବ.ବ୍ରୀ) ମସ୍ତକହୀନ, ଚୂଡ଼ାବିହୀନ, ମୂର୍ଖ, ବିଦ୍ୟାବୁଦ୍ଧିଶୂନ୍ୟ ।
ବିଶିରସ୍କ—ପୁଂ. ବିଂ. (ବ.ବ୍ରୀ) ଶିରୋହୀନ, ମସ୍ତକରହିତ, (ବି) ମେରୁନିକଟବର୍ତ୍ତୀ ପର୍ବତ ବିଶେଷ ।
ବିଶିଶ୍ରମିଃ—ତ୍ରି. ବିଂ. କୌଣସି ପଦାର୍ଥ ଉପରେ ବିଶେଷ ରୂପେ ଲକ୍ଷ୍ୟ ରଖିବା ବିଶ୍ରାମ କରିବାକୁ ଇଚ୍ଛୁକ ।
ବିଶିରାମାୟଣ—ଗ୍ରା. ବି. କବି ବିଶ୍ୱନାଥ ଖୁଣ୍ଟିଆଙ୍କ ରଚିତ ଓଡ଼ିଆ ବିଚିତ୍ରରାମାୟଣ
ବିଶିଷ୍ଟ—ତ୍ରି. ବିଂ. (ବି+ଶିଷ୍+କ.ତ) ଯୁକ୍ତ, ମିଳିତ, ବିଚକ୍ଷଣ, ଭିନ୍ନ, ଅତିଶିଷ୍ଟ, ଶ୍ରେଷ୍ଠ, ଖ୍ୟାତ, ଯଶସ୍ୱୀ, ସିଦ୍ଧ, ପବିତ୍ର, ସ୍ମରଣୀୟ, (ବି) ବିଷ୍ଣୁ ।
ବିଶିଷ୍ଟଜ୍ଞ—ପୁଂ.ବିଂ. କୌଣସି ବିଷୟରେ ବିଶେଷ ରୂପେ ପାରଦର୍ଶୀ, ବିଜ୍ଞ, (ସ୍ତ୍ରୀ) ବିଶିଷ୍ଟଜ୍ଞା ।
ବିଶିଷ୍ଟପ୍ରଣାମ—ବି. (କ.ଧା) ସିଦ୍ଧପ୍ରଣାମ ।
ବିଶିଷ୍ଟବନ୍ଧୁ—ବି. (କ.ଧା) ଅତିଘନିଷ୍ଠ ବା ଅନ୍ତରଙ୍ଗ ବନ୍ଧୁ ।
ବିଶିଷ୍ଟବୟସ—ତ୍ରି. ବିଂ. ପୂର୍ଣ୍ଣବୟସ୍କ ।
ବିଶିଷ୍ଟବ୍ୟକ୍ତି—ବି. ଅତ୍ୟନ୍ତ ସମ୍ଭ୍ରାନ୍ତ ବା ପ୍ରସିଦ୍ଧ ବ୍ୟକ୍ତି ।
ବିଶିଷ୍ଟାଦ୍ୱୈତବାଦ—ପୁଂ. ବି. (କ.ଧା) ବେଦାନ୍ତ ଦର୍ଶନର ମତବିଶେଷ, ଯେଉଁ ଶାସ୍ତ୍ରମତ ଅନୁସାରେ ଏକମାତ୍ର ବ୍ରହ୍ମ ପ୍ରକୃତି ଓ ପୁରୁଷ ଏହି ଦ୍ୱୈତଗୁଣବିଶିଷ୍ଟ ବୋଲି ସ୍ୱୀକୃତ ହୁଅନ୍ତି ।
ବିଶିଷ୍ଟାଦ୍ୱୈତବାଦୀ—ପୁଂ.ବିଂ. ଯେଉଁମାନେ ବିଶିଷ୍ଟାଦ୍ୱୈତବାଦ ସ୍ୱୀକାର କରନ୍ତି ।
ବିଶିଷ୍ଟାଦ୍ୱୈତସମ୍ପ୍ରଦାୟ—ବି. ( କ.ଧା ) ରାମାନୁଜ ବୈଷ୍ଣବ ସମ୍ପ୍ରଦାୟ ।
ବିଶିଷ୍ଟାର୍ଥ—ବି. (କ.ଧା) ବାକ୍ୟର ଓ ଶବ୍ଦ ସମୂହର ଆକ୍ଷରିକ ସାଧାରଣ ଅର୍ଥ ଛଡ଼ା

ତହିଁରୁ ପ୍ରକାଶିତ ହେବା ଶବ୍ଦ ସଂହତ ବା ଶବ୍ଦଯୋଜନା ଜନିତ ଅସାଧାରଣ ଅର୍ଥ ।

**ବିଶିଷ୍ଟାର୍ଥକ**—ବିଂ. (ବିଶିଷ୍ଟାର୍ଥ+କ) ଯେଉଁ ବାକ୍ୟରେ ବା ଶବ୍ଦପୁଞ୍ଜରେ ବିଶିଷ୍ଟାର୍ଥ ଥାଏ ।

**ବିଶିଷ୍ଟାର୍ଥକବାକ୍ୟ**—ବି. (କ.ଧା) ବିଶିଷ୍ଟାର୍ଥ ବୋଧକ ବାକ୍ୟ ।

**ବିଶୀର୍ଷ୍ଣୀ**—ସ୍ତ୍ରୀ.ବି. ଶଙ୍କରାଚାର୍ଯ୍ୟଙ୍କ ମାତା ।

**ବିଶୀର୍ଣ୍ଣ**—ବିଂ. (ବି+ଶୃ+ର୍ଣ.ତ) ଶୁଷ୍କ, କୃଶ, ଜୀର୍ଣ୍ଣ, ବିଘଟିତ, ତ୍ରୁଟିତ, ବିଶ୍ଳିଷ୍ଟ, ପତିତ, ମଉଳି ଯାଇଥିବା, (ସ୍ତ୍ରୀ) ବିଶୀର୍ଣ୍ଣା ।

**ବିଶୀର୍ଣ୍ଣପର୍ଣ୍ଣ**—ପୁଂ.ବି. (ବ.ବ୍ରୀ) ନିମ୍ବବୃକ୍ଷ ।

**ବିଶୀର୍ଯ୍ୟମାଣ**—ବି. ବିଂ. (ବି+ଶୃ+କ. ଆନ) ଯାହା ବିଶୀର୍ଣ୍ଣ ହୋଇଅଛି, ମଉଳି ଯାଉଥିବା (ସ୍ତ୍ରୀ) ବିଶୀର୍ଯ୍ୟମାଣା ।

**ବିଶୀଳ**—ବି. ବିଂ. କୁଚରିତ୍ର, ଦୁଃଶୀଳ ।

**ବିଶୁକ**—ପୁଂ. ବି. ସଫେଦ ଅରଖଗଛ ।

**ବିଶୁଦ୍ଧ**—ବି. ବିଂ. (ବି+ଶୁଦ୍ଧ) ଶୁଚି, ପବିତ୍ର, ନିର୍ମଳ, ନିର୍ଦ୍ଦୋଷ, ନିଖୁତ, ସତ୍ୟ, ଅମିଶ୍ରିତ, ପାପରହିତ, ଖାଣ୍ଟି, ଭ୍ରମ, ପ୍ରମାଦ ଶୂନ୍ୟ ।

**ବିଶୁଦ୍ଧଗଣିତ**—ବି.ଅମିଶ୍ର ଗଣିତ, ଗଣନା ମାତ୍ରାରେ ଅବସ୍ଥିତ ଗଣିତଶାସ୍ତ୍ର ।

**ବିଶୁଦ୍ଧଚରିତ୍ର**—ପୁଂ. ବିଂ. (ବିଶୁଦ୍ଧ+ଚର+ଇନ୍) ବିଶୁଦ୍ଧ ଭାବେ ବିଚରଣକାରୀ, ଶୁଦ୍ଧାଚାରୀ (ସ୍ତ୍ରୀ) ବିଶୁଦ୍ଧଚାରିଣୀ ।

**ବିଶୁଦ୍ଧତା (ତ୍ୱ)**—ସ୍ତ୍ରୀ.ବି. (ବିଶୁଦ୍ଧ+ତା,ତ୍ୱ) ପବିତ୍ରତା, ବିଶୁଦ୍ଧି, ଉଜ୍ଜ୍ୱଳତା ।

**ବିଶୁଦ୍ଧପ୍ରେମ**—ବି. (କ.ଧା) ଯେଉଁ ପ୍ରେମରେ ପାପବିକାରର ସମ୍ପର୍କ ନାହିଁ, ନିଃସ୍ୱାର୍ଥ ପ୍ରେମ ।

**ବିଶୁଦ୍ଧସୁବର୍ଣ୍ଣ**—ବି. ଖାଣ୍ଟି ସୁନା ।

**ବିଶୁଦ୍ଧାତ୍ମା**—ପୁଂ. ବିଂ. (ବ.ବ୍ରୀ) ପବିତ୍ର ଚେତାଃ ନିର୍ମଳଚିତ୍ତ, ଅକପଟ ହୃଦୟ ।

**ବିଶୁଦ୍ଧି**—ସ୍ତ୍ରୀ. ବି. (ବି+ଶୁଦ୍ଧି) ପବିତ୍ରତା, ଶୋଧନ ନିର୍ଦ୍ଦୋଷତା, ନିର୍ମଳତା, ପ୍ରାୟଶ୍ଚିତ୍ତାଦି ଦ୍ୱାରା ଶୁଦ୍ଧି ।

**ବିଶୂଳ (ଲି) ପାତ**—ଗ୍ରା.ବିଂ. ଆଦେଶଲଙ୍ଘନକାରୀ, ବିଶ୍ୱାସଘାତକ, ବିଷପ୍ରୟୋଗ ଦ୍ୱାରା ହତ୍ୟାକାରୀ ।

**ବିଶୁଷ୍କ**—ବି. ବିଂ. (ବି+ଶୁଷ୍+କ.ତ) ବିଶେଷ ରୂପେ ଶୁଷ୍କ, ନୀରସ, ମ୍ଳାନ ।

**ବିଶୂନ୍ୟ**—ବିଂ. ବିଶେଷ ରୂପେ ଶୂନ୍ୟ ।

**ବିଶୃଙ୍ଖଳ**—ବି. ବିଂ. (ବ.ବ୍ରୀ) ଶୃଙ୍ଖଳା ରହିତ, ଗୋଳମାଳ, ନିୟମ ବହିର୍ଭୂତ, ଓଲଟାପାଲଟା, ଅନିୟମିତ, ଦୁର୍ଦ୍ଦାନ୍ତ ।

**ବିଶୃଙ୍ଖଳତା**—ସ୍ତ୍ରୀ. ବି. (ବିଶୃଙ୍ଖଳ+ତା) ବିଶୃଙ୍ଖଳର ଭାବ, ଶୃଙ୍ଖଳାରାହିତ୍ୟ, ଅବ୍ୟବସ୍ଥା ।

**ବିଶୃଙ୍ଖଳା**—ବି. (ବି+ଶୃଙ୍ଖଳା) ଅନିୟମ ନିୟମାଭାବ, ଗଣ୍ଡଗୋଳ । [ ଶୂନ୍ୟ ।

**ବିଶୃଙ୍ଗ**—ବିଂ. (ବ.ବ୍ରୀ) ଶୃଙ୍ଗହୀନ, ଶୃଙ୍ଗ

**ବିଶେଇତ୍ରେଣ୍ଟିକ**—ପ୍ରା. (ଦେଶଜ) ବି. ଝଟିପିଟି

**ବିଶେଷ**—ପୁଂ. ବି. ( ବି+ଶିଷ୍+ଭା. ଅ) ଉଲ୍ଲେଖ ଯୋଗ୍ୟ ବସ୍ତୁ ବା ବିଷୟ, ପ୍ରଭେଦ, ବୈଲକ୍ଷଣ୍ୟ, ସ୍ମରଣୀୟ ବିଷୟ, ବିଶିଷ୍ଟତା, ପ୍ରକାର, ନିୟମ, ରକମ, ବୈଚିତ୍ର୍ୟ, ବ୍ୟକ୍ତି, ସାର, ତାରତମ୍ୟ, ଆଧିକ୍ୟ, ଅବୟବ, ଦ୍ରଷ୍ଟବ୍ୟ ଦ୍ରବ୍ୟ, ତିଳକ, କଣାଦୋକ୍ତ ସପ୍ତ ପଦାର୍ଥର ଅନ୍ତର୍ଗତ ପଦାର୍ଥବିଶେଷ, ଅର୍ଥାଲଂକାରବିଶେଷ, ପୃଥକ୍‌ତା, (ଗ୍ରା. ବିଂ) ବିଶିଷ୍ଟ, ଉତ୍କୃଷ୍ଟ, ଭିନ୍ନ, ଅତ୍ୟନ୍ତ ବିଶେଷଜ୍ଞ ।

**ବିଶେଷକ**—ବି. (ବିଶେଷ+କ) କପାଳର ତିଳକ, ଏକକ୍ରିୟାନ୍ୱିତ ଶ୍ଳୋକତ୍ରୟ, ତିଳକ ବୃକ୍ଷ, ତମାଳପତ୍ର, ଚନ୍ଦନ, ପଦ୍ମ-ବିଶେଷ, ( ବିଂ-ବି+ଶିଷ୍+ଣିଚ୍+କ. ଅକ) ବିଶେଷଯୁକ୍ତ ପ୍ରଭେଦକାରକ ।

**ବିଶେଷକଚ୍ଛେଦ୍ୟ**—କ୍ଳୀ. ବି. ତିଳକରେ ନାନାପ୍ରକାର ବିଚ୍ଛେଦ ରଚନା, ଚତୁଃଷଷ୍ଟି କଳାନ୍ତର୍ଗତ ଷଷ୍ଠକଳା ।

**ବିଶେଷକାମ**—ଗ୍ରା. ବି. ବିଶିଷ୍ଟକାର୍ଯ୍ୟ, ଜରୁରକାମ ।

**ବିଶେଷଗୁଣ**—ପୁଂ. ବି. (ବିଶେଷ+ଗୁଣ) ବୁଦ୍ଧ୍ୟାଦି ଛଅଟିଗୁଣ, ଅନନ୍ୟ ସାଧାରଣ ଗୁଣ ।

**ବିଶେଷଜ୍ଞ**—ପୁଂ. ବିଂ. (ବିଶେଷ+ଜ୍ଞା+କ.ଅ) ଜ୍ଞାନୀ, ଅଭିଜ୍ଞ, ପଣ୍ଡିତ, (ସ୍ତ୍ରୀ) ବିଶେଷଜ୍ଞା ।

**ବିଶେଷଜ୍ଞାନ**—ଗ୍ରା. ବି. କୌଣସି ବିଦ୍ୟା ବା କଳା ସମ୍ବନ୍ଧେ ବିଶିଷ୍ଟ ବା ଉଚ୍ଚତର ଜ୍ଞାନ ।

**ବିଶେଷଣ**—କ୍ଳୀ. ବି. ( ବି+ଶିଷ୍+ଣ. ଅନ) ଅବଶ୍ୟ କାରଣ, ପ୍ରଭେଦକାରକ ଗୁଣ, ବିଶିଷ୍ଟ ଚିହ୍ନ, ଉପାଧି, ବିଶେଷ୍ୟର ଗୁଣ ବା ଅବସ୍ଥା ପ୍ରକାଶକ ଗୁଣ ।

**ବିଶେଷତଃ**—ଅବ୍ୟ. (ବିଶେଷ+ତସ୍) ବିଶିଷ୍ଟରୂପେ ।

**ବିଶେଷତା (ତ୍ୱ)**—ବି. (ବିଶେଷ+ତା, ତ୍ୱ) ବିଶିଷ୍ଟତା, ବ୍ୟକ୍ତିତ୍ୱ ।

**ବିଶେଷଭାବେ**—କ୍ରି.ବିଂ. (ବ.ବ୍ରୀ) ବିଶିଷ୍ଟ ପ୍ରକାରେ, ସବିଶେଷରୂପେ ।

**ବିଶେଷସ୍ମିତା**—ପୁଂ.ବିଂ. ବିଶେଷକାରୀ, ଯେ ପୃଥକ୍ କରେ ।

**ବିଶେଷବିଧି**—ପୁଂ. ବି. ( ବିଶେଷ+ବିଧି) କୌଣସି ନିର୍ଦ୍ଦିଷ୍ଟ ବିଷୟ ନିମନ୍ତେ ରଚିତ ସ୍ୱତନ୍ତ୍ର ବିଧି ।

**ବିଶେଷବୁଦ୍ଧି**—ଗ୍ରା. ବି. ପ୍ରଭେଦ ବୁଦ୍ଧି, ଏକାଧିକଙ୍କ ମଧ୍ୟରେ ଜଣକୁ ଭିନ୍ନରୂପେ ଦେଖିବାର ବିଗୃହ ।

**ବିଶେଷବ୍ୟାପ୍ତି**—ସ୍ତ୍ରୀ. ବି. (ବିଶେଷ+ବ୍ୟାପ୍ତି) ବ୍ୟାପ୍ତିବିଶେଷ ।

**ବିଶେଷାଧିଗମ**—ପୁଂ. ବି. ବିଶିଷ୍ଟଜ୍ଞାନ ।

**ବିଶେଷାବିଶେଷି**—ଗ୍ରା. କ୍ରି. ବିଂ. ବିସ୍ତୃତ ଭାବରେ ।

**ବିଶେଷି**—ଗ୍ରା. କ୍ରି. ବିଂ. ବିଶିଷ୍ଟଭାବରେ

**ବିଶେଷିତ**—ବିଂ. ( ବିଶେଷ+ଇତ ) ବ୍ୟବଚ୍ଛିନ୍ନ, ପୃଥକ୍‌କୃତ, ପ୍ରଭେଦଯୁକ୍ତ, ବିଶେଷଣ ଦ୍ୱାରା ନିର୍ଦ୍ଦିଷ୍ଟ, ଚିହ୍ନିତ ।

**ବିଶେଷୀ**—ପୁଂ. ବିଂ. ବିଶେଷଯୁକ୍ତ, ବିଶେଷ ଗୁଣବିଶିଷ୍ଟ, ଅନ୍ୟଦୂଷିତ, ପରିଣାମାଦି ଅନେକ ଭେଦଯୁକ୍ତ ।

**ବିଶେଷେ**—ଗ୍ରା. ଅବ୍ୟ. ବିଶେଷତଃ ।

**ବିଶେଷୋକ୍ତି**—ସ୍ତ୍ରୀ. ବି. (କ.ଧା) କାବ୍ୟର ଅର୍ଥାଲଂକାର ବିଶେଷ ।

**ବିଶେଷ୍ୟ**—ବି. ବିଂ. (ବି+ଶିଷ୍+ର୍ମ. ଯ) ବିଶିଷ୍ଟ ଗୁଣାଦି ଦ୍ୱାରା ପ୍ରଭେଦନୀୟ,

ଅବିଚ୍ଛେଦ୍ୟ, ଆଦ୍ୟ, ଶ୍ରେଷ୍ଠ,ଧର୍ମୀ,ଯେଉଁ ପଦ ଦ୍ୱାରା କୌଣସି ବ୍ୟକ୍ତିର ବା ବସ୍ତୁର ବା ସ୍ଥାନର ବୋଧ ଜନ୍ମେ, (ବି)ଆଦ୍ୟ-କାରଣ, ପଦାର୍ଥର ନାମମାତ୍ର,ବିଶେଷ୍ୟ ପଦ, (ସ୍ତ୍ରୀ) ବିଶେଷ୍ୟା ।

ବିଶୋଇ—ଗ୍ରା. ବି. ମୁସଲମାନଙ୍କ ଅମଳରେ ବିଷୟରୁ ଖଜଣା ଆଦାୟକାରୀ ଓ ଶାସନ କାର୍ଯ୍ୟରେ ଶାନ୍ତିରକ୍ଷକ କର୍ମଚାରୀ,ଦଳର ପ୍ରଧାନ ବ୍ୟକ୍ତି,ଉପାଧି ବି ସଂଜ୍ଞା ବିଶେଷ ।

ବିଶୋଇବା—ଗ୍ରା. କ୍ରି. ବିଶ୍ରାମ କରିବା, ସ୍ପର୍ଶକରିବା, ଆଘାତ କରିବା, ପ୍ରବେଶ କରିବା, ସହିତ କରିବା, ପହଞ୍ଚିବା, ଗୋଡ଼ତଳେ ପଡ଼ିବା, ପାଶୋରିବା ।

ବିଶୋକ—ପୁଂ. ବି.(ବି+ଶୋକ)ଅଶୋକ ବୃକ୍ଷ, ଶୋକାଭାବ, ଯୁଧିଷ୍ଠିର ଅନୁଚର ବିଶେଷ,ବ୍ରହ୍ମାଙ୍କମାନସ ପୁତ୍ର ବିଶେଷ, (ବିଂ) ଶୋକରହିତ, (ସ୍ତ୍ରୀ) ବିଶୋକା ।

ବିଶୋକଷଷ୍ଠୀ—(ବିଶୋକ+ଷଷ୍ଠୀ)ଷଷ୍ଠୀ ତିଥିଭେଦ,ଅଶୋକଷଷ୍ଠୀ, ଚଇତ୍ରମାସର ଶୁକ୍ଳଷଷ୍ଠୀ ।

ବିଶୋକସପ୍ତମୀ—ସ୍ତ୍ରୀ. ବି. (ବିଶୋକା+ସପ୍ତମୀ) ସପ୍ତମୀ ତିଥିବିଶେଷ ।

ବିଶୋକା—ବି. (ବିଶୋକ+ଆ) (ଯୋଗଶାସ୍ତ୍ର) ଚିତ୍ତବୃତ୍ତିବିଶେଷ ।

ବିଶୋଧକ—ପୁଂ. ବିଂ. ( ବି+ଶୁଧ୍+ଣିଚ୍+କ.ଅକ) ବିଶୁଦ୍ଧିକାରୀ, (ସ୍ତ୍ରୀ) ବିଶୋଧିକା ।

ବିଶୋଧନ—ବି.(ବି+ଶୁଧ୍+ଅନ)ସଂଶୋଧନ, ପବିତ୍ରୀକରଣ, ବିଷ୍ଠା, ( ଗ୍ରା. ବି ) କୌଣସି ହିସାବର ଅଡ଼ୁଆ ନିଷ୍ପତ୍ତି, ଋଣର ପୂର୍ଣ୍ଣ ପରିଶୋଧ, ଋଣପରିଶୋଧର ରସିଦ୍, ବାର୍ଷିକ ଖଜଣା ନେବାର ହିସାବ ନିକାଶି ରସିଦ୍ ।

ବିଶୋଧନୀ—ସ୍ତ୍ରୀ. ବି. ( ବି+ଶୁଧ୍+ଅନ+ଈ) ଦନ୍ତୀବୃକ୍ଷ,ବ୍ରହ୍ମାଙ୍କ ପୁରୀ ।

ବିଶୋଧନୀୟ—ବିଂ. ( ବି+ଶୁଧ୍+ର୍ମ. ଅନୀୟ)ପବିତ୍ରୀକରଣୀୟ,ସଂଶୋଧନୀୟ ।

ବିଶୋଧିତ—ବିଂ. ( ବି+ଶୋଧିତ ) ପବିତ୍ରୀକୃତ, ସଂଶୋଧିତ, (ସ୍ତ୍ରୀ)ବିଶୋଧିତା ।

ବିଶୋଧିନୀ—ସ୍ତ୍ରୀ. ବି. ନାଗଦନ୍ତୀଲତା, ନୀଳୀବୃକ୍ଷ, ଦ୍ରାକ୍ଷାଶୃଙ୍ଗୀଗଛ, ଜୟପାଳ ।

ବିଶୋଧିନୀବୀଜ—କ୍ଲୀ. ବି. କନକାମଞ୍ଜି ।

ବିଶୋଧୀ—ପୁଂ. ବିଂ. (ବି+ଶୁଧ୍+ଣିଚ୍+କ. ଇନ୍) ଶୋଧନକାରକ, (ସ୍ତ୍ରୀ) ବିଶୋଧିନୀ ।

ବିଶୋଧ୍ୟ—କ୍ରି. ବିଂ. ( ବି+ଶୁଧ୍+ଯ ) ବିଶୋଧନୀୟ, ବିଶୋଧନଯୋଗ୍ୟ ।

ବିଶୋଭିବା—ଗ୍ରା. କ୍ରି. ବିଶିଷ୍ଟ ରୂପେ ଶୋଭାପାଇବା ।

ବିଶୋଷ--ପୁଂ.ବି.(ବି+ଶୁଷ୍+ଅ)ଶୁଷ୍କତା, ନୀରସତା, ଶୋଷ ।

ବିଶୋଷଣ—ବି.(ବି+ଶୁଷ୍+ଭା. ଅନ) ଶୁଷ୍କ କରିବା, ନୀରସକରଣ, (ବିଂ—କ. ଅନ)ବିଶେଷରୂପେ ଶୋଷଣକାରକ ।

ବିଶୋଷୀ—ପୁଂ. ବିଂ.(ବି+ଶୁଷ୍+ଇନ୍) ବିଶୋଷଣକାରକ ।

ବିଷ୍କନ୍ଦ୍ରାକର୍ଷ—ପୁଂ. ବିଂ. କୁକୁରଶାସ୍ତା, କୁକୁରରକ୍ଷକ ।

ବିଶ୍ନ—ପୁଂ. ବି. (ବିଛ୍+ଭା.ନ) ସ୍ଫୂର୍ତ୍ତି, ଦୀପ୍ତି, ଗତି ।

ବିଶ୍ରଣନ—ବି. ( ବି+ଶ୍ରଣ+ଭା.ଅନ ) ବିତରଣ, ଦାନ, ଭିକ୍ଷାଦାନ, ଦତ୍ତଭିକ୍ଷା ପାତ୍ରସାତ୍କରଣ ।

ବିଶ୍ରବ୍ଧ—ବିଂ(ବି+ଶ୍ରମ୍ଭ୍+କ.ତ)ଅନୁଭଟ ଶାନ୍ତ, ନୀଚମନାଃ,ବିଶ୍ୱସ୍ତ,ଆସନ୍ନ, ଗାଢ଼, ନିଃଶଙ୍କ, ଧୀର, ଦୃଢ଼,ଅଧିକ ।

ବିଶ୍ରବ୍ଧନବୋଢ଼ା—ସ୍ତ୍ରୀ.ବି.ନାୟିକାବିଶେଷ

ବିଶ୍ରବ୍ଧବନ୍ଧୁ—ବି. (କ.ଧା)ବିଶ୍ୱସ୍ତ ମିତ୍ର ।

ବିଶ୍ରବ୍ଧାଳାପ—ପୁଂ.ବି. (କ.ଧା) ବିଶ୍ୱାସପୂର୍ଣ୍ଣ କଥା, ବନ୍ଧୁଜନଙ୍କ ମଧ୍ୟରେ ଗୋପନୀୟ କଥାବାର୍ତ୍ତା ।

ବିଶ୍ରମ—ପୁଂ. ବି. ( ବି+ଶ୍ରମ+ଭା.ଅ ) ବିଶ୍ରାମ, ବିରାମ ।

ବିଶ୍ରମ୍ଭ—ପୁଂ. ବି. (ବି+ଶ୍ରମ୍ଭ୍+ଭା. ଅ) ବିଶ୍ୱାସ, ପ୍ରତ୍ୟୟ,କେଳି, କଳହ, ପ୍ରଣୟ, ସ୍ୱଚ୍ଛନ୍ଦ ବିହାର ।

ବିଶ୍ରମ୍ଭଣୀୟ—ବିଂ. ବିଶ୍ୱାସର ପାତ୍ର, ବିଶ୍ୱସନୀୟ ।

ବିଶ୍ରମ୍ଭତା(ତ୍ୱ)—ବି. ବିଶ୍ୱାସତ୍ୱ, ପ୍ରତ୍ୟୟତ୍ୱ, ପ୍ରଣୟତ୍ୱାଦି ।

ବିଶ୍ରମ୍ଭାଳାପ—ବି. ଦୁଇବନ୍ଧୁଙ୍କ ମଧ୍ୟରେ ଗୁପ୍ତ କଥାଭାଷା, ପ୍ରଣୟାଳାପ ।

ବିଶ୍ରମ୍ଭୀ—ବିଂ.(ବିଶ୍ରମ୍ଭ+ଇନ୍)ବିଶ୍ୱାସୀ, ପ୍ରତ୍ୟୟୀ, ବିଶ୍ୱସ୍ତ,ପ୍ରିୟ, ସୁପରିଚିତ ।

ବିଶ୍ରୟୀ—ପୁଂ. ବିଂ. (ବି+ଶ୍ରି+ଇନ୍) ସେବାଶୀଳ, ଆଶ୍ରୟବାନ୍ ।

ବିଶ୍ରବଣ—ପୁଂ.ବି.ଋଷିବିଶେଷ, ବୈଶ୍ରବଣ

ବିଶ୍ରବାଃ—ବି. ( ବି+ଶ୍ରବସ୍ ) ପୁଲସ୍ତ୍ୟ ମୁନିଙ୍କ ପୁତ୍ର ରାବଣର ପିତା,ବିଶ୍ରବା ।

ବିଶ୍ରାଣନ—କ୍ଲୀ. ବି. (ବି+ଶ୍ରାଣି+ଭା. ଅନ) ଦାନ, ବିତରଣ, ଅନ୍ୟଦ୍ୱାରା ଦିଆଇବା ।

ବିଶ୍ରାଣିତ—କ୍ରି.ବିଂ. (ବି+ଶ୍ରାଣି+ର୍ମ.ତ) ପ୍ରଦତ୍ତ,ଯାହା ବିତରଣ କରାଯାଇଅଛି, ବିତରିତ ।

ବିଶ୍ରାନ୍ତ—ଭୂ.ବିଂ. (ବି+ଶ୍ରମ୍+କ.ତ) ଶ୍ରାନ୍ତିଯୁକ୍ତ, ବିଗତଶ୍ରମ,ଅବସନ୍ନ,ବିରତ, କ୍ଷାନ୍ତ, ନିବୃତ୍ତ ।

ବିଶ୍ରାନ୍ତି—ସ୍ତ୍ରୀ.ବି. ( ବି+ଶ୍ରମ୍+ଭା.ତି ) ବିଶ୍ରାମ, ବିରାମ, ନିବୃତ୍ତି, କ୍ଷାନ୍ତି,ଖେଦାପନୟନ, ଶ୍ରମାପନୟନ, ( ଅଧି.ତି ) ତୀର୍ଥବିଶେଷ ।

ବିଶ୍ରାମ—ପୁଂ.ବି. ( ବି+ଶ୍ରମ୍+ଭା.ଅ ) ବିଶ୍ରାନ୍ତି, ବିରାମ, ଆରାମ,ଶ୍ରମରୁ ବିରତି, ସୁସ୍ଥସେତ, ନିବୃତ୍ତି ।

ବିଶ୍ରାମକାରକ-ବିଂ.ଯେ ବିଶ୍ରାମ କରୁଥାଏ ।

ବିଶ୍ରାମକାଳ—ବି. (ଷତତ୍ପୁ) ବିଶ୍ରାମ କରିବାର ସମୟ, ଛୁଟି ସମୟ ।

ବିଶ୍ରାମକୁଟୀର—ବି. ଯେଉଁ ଗୃହରେ ପ୍ରାଣିମାନେ ଆରାମ କରନ୍ତି ।

ବିଶ୍ରାମଗ୍ରହଣ—ବି. କାର୍ଯ୍ୟରୁ ସାମୟିକ ଛୁଟି ନେବା,କାର୍ଯ୍ୟରୁ ଅବସର ନେବା ।

ବିଶ୍ରାମଘାଟ—ବି.କାଶୀ ନିକଟସ୍ଥ ଗଙ୍ଗାକୂଳର ତୀର୍ଥବିଶେଷ ।

ବିଶ୍ରାମଦନ—ବି. ଯେଉଁଦିନ କାର୍ଯ୍ୟରୁ

ବିଶ୍ରାମ ନେବାକୁ ହୁଏ ।

ବିଶ୍ରାମଦେବା—ଗ୍ରା.କ୍ରି. କାର୍ଯ୍ୟରୁ ଛୁଟି ଦେବା, ଆଶ୍ରୟ ଦେବା ।

ବିଶ୍ରାମନେବା—ଗ୍ରା. କ୍ରି. ଅଳସ ମେଣ୍ଟାଇବା, ଛୁଟି ଗ୍ରହଣ କରିବା, ଆଶ୍ରୟ ନେବା ।

ବିଶ୍ରାମପାଇବା—ଗ୍ରା.କ୍ରି. କାର୍ଯ୍ୟରୁ ଫୁରୁସତ୍ ପାଇବା, ଛୁଟି ପାଇବା, ଆଶ୍ରୟ ପାଇବା ।

ବିଶ୍ରାମପ୍ରାପ୍ତି—ବି.(୬ତତ୍)ବିଶ୍ରାମନେବା, ବିଶ୍ରାମ ପାଇବା, ଆଶ୍ରୟ ପ୍ରାପ୍ତି,କାର୍ଯ୍ୟରୁ ବିଦାୟ ମିଳିବା ।

ବିଶ୍ରାମପ୍ରାର୍ଥନ(ନା)—ବି.(କ.ଧା)କାର୍ଯ୍ୟରୁ ଛୁଟି ପାଇବା ପାଇଁ ଅନୁନୟ, ଆଶ୍ରୟ ପ୍ରାର୍ଥନା ।

ବିଶ୍ରାମପ୍ରାର୍ଥୀ—ପୁଂ. ବିଂ. ଯେ ବିଶ୍ରାମ ପାଇଁ ପ୍ରାର୍ଥନା କରେ,(ସ୍ତ୍ରୀ) ପ୍ରାର୍ଥିନୀ ।

ବିଶ୍ରାମାର୍ଥୀ—ପୁଂ.ବିଂ. ବିଶ୍ରାମ ଲାଭ କରିବାକୁ ଇଚ୍ଛୁକ, ବିଶ୍ରାମପ୍ରାର୍ଥୀ, (ସ୍ତ୍ରୀ) ବିଶ୍ରାମ ପ୍ରାର୍ଥିନୀ ।

ବିଶ୍ରାମିବା—ଗ୍ରା. କ୍ରି. ବିଶ୍ରାମ କରିବା, ଆଳସ୍ୟ ମେଣ୍ଟାଇବା ।

ବିଶ୍ରାବ—ପୁଂ.ବି. (ବି+ଶ୍ରୁ+ର୍ମ.ଅ)ଅତି ପ୍ରସିଦ୍ଧି, ଧ୍ୱନି, କ୍ଷରଣ, ସ୍ରୋତଃ ।

ବିଶ୍ରି—ପୁଂ. ବି. ମୃତ୍ୟୁ ।

ବିଶ୍ରିଗନ୍ଧ—ଗ୍ରା. ବିଂ. ଅତି ଦୁର୍ଗନ୍ଧ ।

ବିଶ୍ରୀ— ବିଂ. (ବ.ବ୍ରୀ) ଶ୍ରୀହୀନ, ଶ୍ରୀଭ୍ରଷ୍ଟ, କଦାକାର,କୁତ୍ସିତ, କୁରୂପ,ହତଭାଗ୍ୟ ।

ବିଶ୍ରୁତ—ପୁଂ. ବିଂ. (ବି+ଶ୍ରୁ+ର୍ମ.ତ) ବିଖ୍ୟାତ, ପ୍ରସିଦ୍ଧ, ଜ୍ଞାତ, ହୃଷ୍ଟ, ସମ୍ୟକ୍ ଆହ୍ଲାଦିତ, ଧ୍ୱନିତ ।

ବିଶ୍ରୁତକୀର୍ତ୍ତି—ବିଂ. (ବ.ବ୍ରୀ) ଯାହାର କୀର୍ତ୍ତି ସର୍ବତ୍ର ଶୁଣାଯାଏ ।

ବିଶ୍ରୁତି—ସ୍ତ୍ରୀ.ବି(ବି+ଶ୍ରୁ+ଭା.ତି)ବିଖ୍ୟାତି, ପ୍ରସିଦ୍ଧି, କ୍ଷରଣ, ସ୍ରୋତ, ସ୍ରବ ।

ବିଶ୍ରୁତାତ୍ମା—ପୁଂ. ବି. (ବ.ବ୍ରୀ) ବିଷ୍ଣୁ ।

ବିଶ୍ଲଥ—କ୍ରି. ବିଂ. (ବି+ଶ୍ଲଥ୍+କ.ଅ) ଶିଥିଳ, ଅଲଗା, ହୁଗୁଳା,ଢିଲା, ଲୁଳିତ (ମେଁ) ।

ବିଶ୍ଳିଷ୍ଟ—କ୍ରି. ବିଂ. (ବି+ଶ୍ଳିଷ୍+କ.ତ) ବିଚ୍ଛିନ୍ନ, ଅସଂଯୁକ୍ତ, ବିକସିତ,ପ୍ରସ୍ଫୁଟିତ, ପ୍ରକାଶିତ, ବିଯୁକ୍ତ, ଶିଥିଳ, ବିମୁକ୍ତ ।

ବିଶ୍ଳିଷ୍ଟସନ୍ଧି—ପୁଂ.ବି. ଅସ୍ଥିଭଙ୍ଗବିଶେଷ, ସନ୍ଧିଚ୍ୟୁତି ଭଗ୍ନରୋଗବିଶେଷ ।

ବିଶ୍ଳେଷ—ପୁଂ.ବି. (ବି+ଶ୍ଳିଷ୍+ଭା.ଅ) ବିଧୁର, ଅଯୋଗ, ବିୟୋଗ, ଶୈଥିଲ୍ୟ, ବିରାଗ, ବିକାଶ, ପ୍ରକାଶ ।

ବିଶ୍ଳେଷଣ—କ୍ଲୀ.ବି(ବି+ଶ୍ଳିଷ୍+ଭା.ଅନ) କୌଣସି ଯୌଗିକ ପଦାର୍ଥର ଭିନ୍ନଭିନ୍ନ ଉପାଦାନର ପୃଥକ୍କରଣ, ବାୟୁହେତୁ ବ୍ରଣବେଦନାବିଶେଷ ।

ବିଶ୍ଳେଷଣକ୍ରିୟା—ବି.ଯୌଗିକ ପଦାର୍ଥର ବିଭିନ୍ନ ଉପାଦାନମାନଙ୍କର ପୃଥକ୍ କରଣପ୍ରଣାଳୀ ।

ବିଶ୍ଳେଷିତ—ବିଂ.(ବି+ଣିଚ୍+ଶ୍ଳିଷ୍+ର୍ମ.ତ)ପୃଥକ୍ କୃତ, ବିକୋଜିତ,ବିକାଶିତ ।

ବିଶ୍ଳେଷୀ—ପୁଂ. ବିଂ. (ବିଶ୍ଳେଷ+ଇନ୍) ବିଚ୍ଛେଦବାନ୍, ବିୟୋଗୀ ।

ବିଶ୍ଳୋକ—ବି. ଛନ୍ଦୋବିଶେଷ, (ବିଂ) ବିୟୋଗୀ, ବିଚ୍ଛେଦବାନ୍ ।

ବିଶ୍ୱ—ବି.(ବିଶ୍+ବ) ଜଗତ୍, ସଂସାର, ଚରାଚର, ସୃଷ୍ଟି, ନିଶାଦଳ, ଅତିବିଷା, ଶତାବରୀ, ଦକ୍ଷ କନ୍ୟାବିଶେଷ, ଗଣଦେବଙ୍କ ମାତା, ବିଷ୍ଣୁ, ଦେହ, ଶିବ, ସହାଦି ଦଶବିଶ୍ୱେଦେବା, ସମସ୍ତ ଜଡ଼ ଶରୀରରେ ବିରାଜିତ ଚୈତନ୍ୟ, ପରିମାଣବିଶେଷ, ଏକ ବିଶ୍ୱା ବା ଛଟାଙ୍କି, ଆତ୍ମା,(ବିଂ) ସମସ୍ତ, ବିଶେଷଣୀୟ ସର୍ବନାମ ।

ବିଶ୍ୱକ୍—ବିଂ.(ବିଶ୍ୱ+ଅନ୍ଚ୍+କ.କ୍ୱିପ୍) ସର୍ବବ୍ୟାପୀ, (ଅ) ସମନ୍ତାତ୍, ସର୍ବତଃ ।

ବିଶ୍ୱକ୍ସେନ—ବି(ବ.ବ୍ରୀ)ବିଷ୍ଣୁ, ତ୍ରୟୋଦଶ ମନୁ, ବିଷ୍ଣୁଙ୍କର ନିର୍ମାଲ୍ୟ ବଳିଗ୍ରାହୀ ଦେବ ।

ବିଶ୍ୱକ୍ସେନା—ସ୍ତ୍ରୀ. ବି. (ବିଶ୍ୱକ୍ସେନ+ଆ) ପ୍ରିୟଙ୍ଗୁଲତା ।

ବିଶ୍ୱକ—ବିଂ(ବିଶ୍ୱ+କ)ନିଖିଳ, ସମସ୍ତ ।

ବିଶ୍ୱକଥା—ସ୍ତ୍ରୀ.ବି.ଜଗତ୍ସମ୍ବନ୍ଧୀୟ କଥା, ସମସ୍ତ କଥା ।

ବିଶ୍ୱକଦ୍ରୁ—ପୁଂ.ବି. (ବିଶ୍ୱ+କ+ଦ୍ରୁ+କ.କ୍ୱିପ୍) ମୃଗୟା କୁଶଳ କୁକ୍କୁର,ଶବ୍ଦ, ଧ୍ୱନି, (ବିଂ) ଖଳ, କ୍ରୂର, ଦୁଷ୍ଟ ।

ବିଶ୍ୱକର୍ତ୍ତା—ପୁଂ. ବିଂ. ଜଗତ୍ ସ୍ରଷ୍ଟା, ଜଗତ୍ପତି, ଜଗଦୀଶ୍ୱର, ବୈଧାସୃଜନ ସୃଷ୍ଟାନୁଯାୟୀ ପଦ୍ଧତିପ୍ରଣେତା ।

ବିଶ୍ୱକର୍ମଜା—ସ୍ତ୍ରୀ.ବି. (ବିଶ୍ୱକର୍ମନ୍+ଜନ୍+କ.ଅ+ଆ)ସୂର୍ଯ୍ୟପତ୍ନୀ,ସଂଜ୍ଞାଦେବୀ, ଛାୟା ।

ବିଶ୍ୱକର୍ମସୁତା—ସ୍ତ୍ରୀ. ବି. ( ବିଶ୍ୱକର୍ମ+ସୁତା) ସଂଜ୍ଞା, ଛାୟାଦେବୀ ।

ବିଶ୍ୱକର୍ମା—ପୁଂ. ବି. ( ବିଶ୍ୱ+କର୍ମନ୍ ) ବ୍ରହ୍ମାଙ୍କର ପୁତ୍ର, ଦେବଶିଳ୍ପୀ, ସୂର୍ଯ୍ୟଦେବ. ମୁନିବିଶେଷ,ପରମେଶ୍ୱର, (ଗ୍ରା. ବି) ବଢ଼େଇ । [ ବ ନର ।

ବିଶ୍ୱକର୍ମସୁତ—ଗ୍ରା. ବି. ନଳ ନାମକ

ବିଶ୍ୱକା—ସ୍ତ୍ରୀ.ବି.(ବିଶ୍ୱ+କ+ଆ)ଗଙ୍ଗାଚିଲି, ଚିଲପକ୍ଷିବିଶେଷ ।

ବିଶ୍ୱକାୟ—ପୁଂ.ବି.ବିଷ୍ଣୁ,(ସ୍ତ୍ରୀ)ବିଶ୍ୱକାୟା ।

ବିଶ୍ୱକାରକ—ପୁଂ.ବି.ବିଶ୍ୱର କର୍ତ୍ତା,ଶିବ ।

ବିଶ୍ୱକାରୁ—ପୁଂ. ବି. ବିଶ୍ୱକର୍ମା ।

ବିଶ୍ୱକାର୍ଯ୍ୟ—ପୁଂ. ବି. ସୂର୍ଯ୍ୟଙ୍କର ସପ୍ତ ପ୍ରଧାନ ଜ୍ୟୋତିଃବିଶେଷ ।

ବିଶ୍ୱକୂଟ—ବି. ହିମାଳୟସ୍ଥ ଶୃଙ୍ଗବିଶେଷ ।

ବିଶ୍ୱକୃତ—ପୁଂ.ବି. (ବିଶ୍ୱ+କୃତ)ବିଶ୍ୱକର୍ମା, ବିଷ୍ଣୁ, ପରମେଶ୍ୱର ।

ବିଶ୍ୱକେତୁ—ପୁଂ. ବି. (ବିଶ୍ୱ+କେତୁ) ଅନିରୁଦ୍ଧ, ପର୍ବତବିଶେଷ ।

ବିଶ୍ୱକୋଶ(ଷ)—ପୁଂ. ବି. ବିଶ୍ୱଭଣ୍ଡାର, ଅଭିଧାନବିଶେଷ, ଜଗତର ସମସ୍ତ ବୃତ୍ତାନ୍ତ ସମ୍ବଳିତ ଅଭିଧାନ ଗ୍ରନ୍ଥ ।

ବିଶ୍ୱକ୍ଷୟ—ପୁଂ. ବି. ପ୍ରଳୟରେ ବ୍ରହ୍ମାଣ୍ଡର ଧ୍ୱଂସ ।

ବିଶ୍ୱଖଣ୍ଡକ—ପୁଂ.ବିଂ. (ବିଶ୍ୱ+ଖଣ୍ଡ+କ.ଅକ) ଯେ ସମସ୍ତ ବିଷୟରେ ଅନ୍ଧନୁଷ୍ଟ, (ସ୍ତ୍ରୀ) ବିଶ୍ୱଖଣ୍ଡିକା ।

ବିଶ୍ୱଗ୍ରବାସ୍ତୁ—ବି. ଯୁଗଆଡ଼ୁ ଏକ ସମ-

ଯହିରେ ପ୍ରବାହିତ, ବହୁଥିବା ବାୟୁ ।

**ବିଶ୍ୱଗ**—ପୁଂ. ବି. (ବିଶ୍ୱ+ଗ) ବ୍ରହ୍ମା, ମରୀଚି ପୁତ୍ର, ପୃଶ୍ନିମଙ୍କ ପୁତ୍ର ।

**ବିଶ୍ୱଗଙ୍ଗା**—ବି. ବେରାର ରାଜ୍ୟପ୍ରବାହିତ ନଦୀବିଶେଷ ।

**ବିଶ୍ୱଗତ**—ତ୍ରି. ବି. (୭ତତ୍) ବିଶ୍ୱଗାମୀ, ବିଶ୍ୱବ୍ୟାପ୍ତ ।

**ବିଶ୍ୱଗନ୍ଧ**—ବ. (ବ.ବ୍ରୀ) ନଶାଦଲ, ପିଆଜ

**ବିଶ୍ୱଗନ୍ଧା**—ସ୍ତ୍ରୀ. ବି. (ବିଶ୍ୱଗନ୍ଧ+ଆ) ପୃଥିବୀ । [ ବୈଦିକ ପୁତ୍ର ।

**ବିଶ୍ୱଗର୍ଭ**—ବି. (ବ.ବ୍ରୀ) ବିଷ୍ଣୁ, ଶିବ,

**ବିଶ୍ୱଗୁରୁ**—ପୁଂ. ବି. (୬ତତ୍) ହରି, ବିଷ୍ଣୁ

**ବିଶ୍ୱଗୂର୍ତ୍ତି**—ତ୍ରି. ବିଂ. ସମସ୍ତ କାର୍ଯ୍ୟେ ସମର୍ଥ, ଉଦ୍ୟତ୍ତସର୍ବାୟୁଧ ।

**ବିଶ୍ୱଗୂର୍ତ୍ତି**—ତ୍ରି. ବିଂ. ସମସ୍ତଙ୍କର ସ୍ତୁତ୍ୟ ।

**ବିଶ୍ୱଗୋପ୍ତା**—ପୁଂ. ବି. ବିଷ୍ଣୁ, ଇନ୍ଦ୍ର, (ବିଂ) ବିଶ୍ୱପାଳକ ।

**ବିଶ୍ୱଗ୍ରନ୍ଥି**—ସ୍ତ୍ରୀ. ବ. ହଂସପାଦୀ ଲତା, ରକ୍ତଲଜ୍ଜାଳୁକା ।

**ବିଶ୍ୱଙ୍କର**—ପୁଂ. ବି. ଚକ୍ଷୁ ।

**ବିଶ୍ୱଚକ୍ର**—କ୍ଳୀ. ବି. ମହାଦାନବିଶେଷ, ଜଗତ୍‌ରୂପ ଚକ୍ର ।

**ବିଶ୍ୱଚକ୍ରାତ୍ମା**—ପୁଂ. ବି. (ବ.ବ୍ରୀ) ବିଷ୍ଣୁ, ନାରାୟଣ । [ ଈଶ୍ୱର ।

**ବିଶ୍ୱଚକ୍ଷୁଃ**—ତ୍ରି. ବିଂ. ସର୍ବଦର୍ଶୀ, (ବି)

**ବିଶ୍ୱଚରାଚର**—ବି. (ବିଶ୍ୱ+ଚରାଚର) ଜଗତର ସ୍ଥାବର ଓ ଜଙ୍ଗମ ସମୁଦାୟ ଜଡ଼ ଓ ଜୀବଜଗତ୍ ।

**ବିଶ୍ୱଜନ**—ପୁଂ. ବି. ପୃଥିବୀର ସମସ୍ତ ଲୋକ, ସର୍ବଜନ ।

**ବିଶ୍ୱଜନନୀ**—ସ୍ତ୍ରୀ. ବି. (୬ତତ୍) ଜଗତ୍‌ପ୍ରସବିନୀ, ଆଦ୍ୟାଶକ୍ତି, ଭଗବତୀ ।

**ବିଶ୍ୱଜନୀନ**—ତ୍ରି. ବିଂ. ବିଶ୍ୱଜନର ହିତକର, ସମସ୍ତଙ୍କର ହିତକର, (ସ୍ତ୍ରୀ) ବିଶ୍ୱଜନୀନା ।

**ବିଶ୍ୱଜନୀନଭ୍ରାତୃଭାବ**—ବି. ଜାତିଧର୍ମ ନିର୍ବିଶେଷରେ ପୃଥିବୀର ସମସ୍ତ ବ୍ୟକ୍ତିଙ୍କ ସଙ୍ଗେ ଆତ୍ମୀୟତା ।

**ବିଶ୍ୱଜନୀନମୈତ୍ରୀବ୍ରତ**—ବି. ସର୍ବଲୋକର ମଙ୍ଗଳସାଧନରୂପ ବ୍ରତ ।

**ବିଶ୍ୱଜନୀୟ**—ତ୍ରି. ବିଂ. (ବିଶ୍ୱଜନ+ଈୟ) ବିଶ୍ୱଜନଙ୍କ ହିତକର, ସାର୍ବଜନୀନ, ବିଶ୍ୱଜନ ସମ୍ବନ୍ଧୀୟ ।

**ବିଶ୍ୱଜନ୍ୟ**—ବିଂ. ବିଶ୍ୱଜନକ, ହିତଜନକ ।

**ବିଶ୍ୱଜୟ**—ବି. (୬ତତ୍) ତ୍ରୈଲୋକଜୟ, ସମଗ୍ର ପୃଥିବୀକୁ ପରାଭୂତ କରିବା ।

**ବିଶ୍ୱଜୟୀ**—ପୁଂ. ବିଂ. (ବିଶ୍ୱ+ଜି+କ.ଇନ୍) ତ୍ରୈଲୋକ୍ୟବିଜୟୀ, ଯେ ସମଗ୍ର ପୃଥିବୀକୁ ଜୟ କରିଅଛି ।

**ବିଶ୍ୱଜିତ୍**—ବି. (ବିଶ୍ୱ+ଜି+କ.କ୍ୱିପ୍) ସର୍ବସ୍ୱ ଦକ୍ଷିଣକ ଯଜ୍ଞବିଶେଷ, ଯେଉଁ ଯଜ୍ଞରେ ସର୍ବସ୍ୱ ଦକ୍ଷିଣା ଦିଆଯାଏ, ବରୁଣ ଦେବତାଙ୍କ ପାଶାସ୍ତ୍ର, ନ୍ୟାୟବିଶେଷ, ଅଗ୍ନିବିଶେଷ, (ବିଂ) ବିଶ୍ୱଜୟୀ ଦେଖ ।

**ବିଶ୍ୱଜୀବ**—ତ୍ରି. ବିଂ. ସର୍ବାନ୍ତର୍ଯ୍ୟାମୀ, ବିଶ୍ୱସ୍ଥିତ ଜୀବମାତ୍ର ।

**ବିଶ୍ୱତଃପାଣି**—ବି. ପରମେଶ୍ୱର, ସର୍ବତ୍ର ପାଣିଯୁକ୍ତ ଅର୍ଥାତ୍ ସବୁଆଡ଼େ ଯାହାଙ୍କର ହାତ ।

**ବିଶ୍ୱତନୁ**—ବି. (ବିଶ୍ୱ+ତନୁ) ଭଗବାନ୍, ବିଷ୍ଣୁ ।

**ବିଶ୍ୱତଃପାଦ**—ବିଂ. ସର୍ବଦିଗରେ ପାଦଯୁକ୍ତ, (ବି) ପରମେଶ୍ୱର ।

**ବିଶ୍ୱତୁଳସୀ**—ସ୍ତ୍ରୀ. ବି. ତୁଳସୀ ବୃକ୍ଷବିଶେଷ, ଲଣ୍ଡାବଗୁଲି ।

**ବିଶ୍ୱତୃପ୍ତ**—ବି. ବିଷ୍ଣୁ, ପରମେଶ୍ୱର ।

**ବିଶ୍ୱତୋବାହୁ**—ବି. (ବ.ବ୍ରୀ) ପରମେଶ୍ୱର

**ବିଶ୍ୱତୋମୁଖ**—ବି. (ବ.ବ୍ରୀ) ପରମେଶ୍ୱର

**ବିଶ୍ୱତୋୟ**—ତ୍ରି. ବିଂ. ବିଶ୍ୱବ୍ୟାପ୍ତ ଜଳରାଶି ।

**ବିଶ୍ୱତୋୟା**—ସ୍ତ୍ରୀ. ବି. ଗଙ୍ଗା । [ କ୍ଷମ ।

**ବିଶ୍ୱତୋକାର୍ଯ୍ୟ**—ତ୍ରି. ବିଂ. ସର୍ବ କର୍ମ-

**ବିଶ୍ୱତ୍ର**—ତ୍ରି. ବିଂ. (ବିଶ୍ୱ+ତ୍ର) ସର୍ବତ୍ର ।

**ବିଶ୍ୱତ୍ରାସୀ**—ପୁଂ. ବିଂ. (ବିଶ୍ୱ+ତ୍ରସ୍+କ.ଇନ୍) ଯାହା ସମଗ୍ର ବିଶ୍ୱବାସୀଙ୍କର ହୃଦୟରେ ଆତଙ୍କ ଉପସ୍ଥିତ କରାଏ, (ସ୍ତ୍ରୀ) ବିଶ୍ୱତ୍ରାସିନୀ ।

**ବିଶ୍ୱଥା**—ଅବ୍ୟ. ସର୍ବଥା, ସର୍ବପ୍ରକାରେ ।

**ବିଶ୍ୱଦଂଷ୍ଟ୍ର**—ପୁଂ. ବି. ଅସୁରବିଶେଷ ।

**ବିଶ୍ୱଦକ୍ଷିଣ**—ବି. (ବ.ବ୍ରୀ) ବିଶ୍ୱଜିତ୍ ନାମକ ଯଜ୍ଞବିଶେଷ ।

**ବିଶ୍ୱଦୂତ**—ପୁଂ. ବି. ଯେ ସମଗ୍ର ବିଶ୍ୱର ଦୂତ ବା ବାର୍ତ୍ତାବହରୂପେ କାର୍ଯ୍ୟକରେ

**ବିଶ୍ୱଦୃକ୍**—ପୁଂ. ବିଂ. ବିଶ୍ୱଦ୍ରଷ୍ଟା, ଯେ ସମଗ୍ର ବିଶ୍ୱକୁ ଦେଖନ୍ତି ।

**ବିଶ୍ୱଦୃଷ୍ଟ**—ତ୍ରି. ବିଂ. ଯେ ସମଗ୍ର ବିଶ୍ୱ ଦେଖିଅଛି ।

**ବିଶ୍ୱଦେବ**—ବି. (ବିଶ୍ୱ+ଦିବ୍+କ.ଅ) ଅଗ୍ନିଦେବତା, ଗଣଦେବତା ଓ ବିଶ୍ୱଦେବବିଶେଷ

**ବିଶ୍ୱଦେବା**—ସ୍ତ୍ରୀ. ବି. ହ୍ରସ୍ୱଗବେଧୁକା, ନାଗବଲା, ଅରୁଣୋପୁଷ୍ପ ଦଣ୍ଡୋତ୍ପଳ, ଗୋରକ୍ଷ ଗୁଞ୍ଜଲ, ଗରଗଡ଼ ।

**ବିଶ୍ୱଦୈବ**—ଅବ୍ୟ. ବିଶ୍ୱଦେବା ସଦୃଶ, (ବି) ନକ୍ଷତ୍ର ବିଶେଷ, ଉତ୍ତରାଷାଢ଼ା ନକ୍ଷତ୍ର । [ ନକ୍ଷତ୍ର ।

**ବିଶ୍ୱଦୈବତ**—ବି. (ବ.ବ୍ରୀ) ଉତ୍ତରାଷାଢ଼ା

**ବିଶ୍ୱଧ**—ଅବ୍ୟ. ସର୍ବତ୍ର, ସର୍ବତଃ ସବୁଆଡ଼େ ।

**ବିଶ୍ୱଧାତା**—ପୁଂ. ବିଂ. (ବିଶ୍ୱ+ଧାତୃ) ପରମେଶ୍ୱର, ବ୍ରହ୍ମା ।

**ବିଶ୍ୱଧାତ୍ରୀ**—ସ୍ତ୍ରୀ. ବି. (୬ତତ୍) ପୃଥିବୀ, ଜଗନ୍ମାତା, ଜଗଦ୍ଧାତ୍ରୀ ।

**ବିଶ୍ୱଧାମ**—କ୍ଳୀ. ବି. ବିଶ୍ୱର ଆଶ୍ରୟ ସ୍ଥାନ, ଈଶ୍ୱର, ସ୍ୱଦେଶ । [ ନଦୀବିଶେଷ ।

**ବିଶ୍ୱଧାରା**—ବି. ହିମାଳୟ ପାଦନିଃସୃତ

**ବିଶ୍ୱଧାରଣୀ**—ସ୍ତ୍ରୀ. ବି. (ବିଶ୍ୱ+ଧୃ+କ.ଇନ୍) ପୃଥିବୀ, ଧରଣୀ ।

**ବିଶ୍ୱଧାବୀର୍ଯ୍ୟ**—ତ୍ରି. ବିଂ. ସର୍ବଶକ୍ତିଶାଳୀ, ଜଗଦ୍ଧାରଣୋପଯୋଗୀ ବୀର୍ଯ୍ୟଶାଳୀ ।

**ବିଶ୍ୱଧୃକ୍**—ତ୍ରି. ବିଂ. ଜଗଦ୍ଧାରଣକାରୀ ।

**ବିଶ୍ୱଧୃତ୍**—ତ୍ରି. ବିଂ. (ବିଶ୍ୱ+ଧୃ+କ୍ୱିପ୍) ବିଶ୍ୱଧର୍ତ୍ତା, ବିଶ୍ୱଧାରଣକାରୀ ।

**ବିଶ୍ୱନାଶ**—ପୁଂ. ବି. (୬ତତ୍) ଶିବ, ମହାଦେବ, ଜଗଦୀଶ୍ୱର, କାଶୀସ୍ଥ ଶିବଲିଙ୍ଗ ।

ବିଶ୍ୱନାଥକର—ଗ୍ରା.ବି. ଉତ୍କଳର ପ୍ରସିଦ୍ଧ ସାହିତ୍ୟିକ ଓ ସାହିତ୍ୟ ପତ୍ରିକାର ସମ୍ପାଦକ।

ବିଶ୍ୱନାଥଖୁଣ୍ଟିଆ—ଗ୍ରା. ବି. ଓଡ଼ିଆ ବିଚିତ୍ର ରାମାୟଣ ପଦ୍ୟଗ୍ରନ୍ଥ ରଚୟିତା କବି।

ବିଶ୍ୱନାଥପାଟଯୋଷୀ—ଗ୍ରା. ବି. ଉଷାପରିଣୟ ନାଟକର ରଚୟିତା ଓଡ଼ିଆ କବି।

ବିଶ୍ୱନାଥମହାପାତ୍ର—ଗ୍ରା. ବି. ଓଡ଼ିଶାର ରାଜା ପୁରୁଷୋତ୍ତମ ଦେବଙ୍କ ରାଜସଭାର ପଣ୍ଡିତ, ସଂସ୍କୃତ ସାହିତ୍ୟଦର୍ପଣ ନାମକ ଅଳଙ୍କାର ଗ୍ରନ୍ଥର ରଚୟିତା।

ବିଶ୍ୱନାଭ—ପୁଂ. ବି. (ବ.ବ୍ରୀ) ବିଷ୍ଣୁ, ପରମେଶ୍ୱର।

ବିଶ୍ୱନାଭି—ସ୍ତ୍ରୀ. ବି. ( ବିଶ୍ୱ+ନାଭି ) ବିଶ୍ୱର ନାଭିସ୍ୱରୂପ ସୂର୍ଯ୍ୟାଦିଙ୍କର ଆଶ୍ରୟୀଭୂତ ବିଷ୍ଣୁଚକ୍ର।

ବିଶ୍ୱନାମ—ବି. ଈଶ୍ୱର, ଜଗତ୍।

ବିଶ୍ୱନିନ୍ଦକ—ପୁଂ. ବିଂ. (ବିଶ୍ୱ+ନିନ୍ଦ୍ +କ.ଅକ)ଯେ ପୃଥିବୀର ସମସ୍ତ ବିଷୟକୁ ନିନ୍ଦା କରେ, (ସ୍ତ୍ରୀ) ବିଶ୍ୱନିନ୍ଦକା।

ବିଶ୍ୱନିୟନ୍ତା—ବି. ଓ ବିଂ. ପୁଂ.(ବିଶ୍ୱ +ନିୟନ୍ତୃ)ବ୍ରହ୍ମାଣ୍ଡର ନିୟାମକ,(ସ୍ତ୍ରୀ) ବିଶ୍ୱନିୟନ୍ତ୍ରୀ।

ବିଶ୍ୱପତି—ପୁଂ. ବି. ( ୬ତତ୍ ) ବିଶ୍ୱପାଳକ ବିଷ୍ଣୁ।          [ ଅଁଳା।

ବିଶ୍ୱପର୍ଣ୍ଣୀ—ସ୍ତ୍ରୀ. ବି. ଭୂମ୍ୟାମଳକୀ,ଭୂଇଁ

ବିଶ୍ୱପା—ପୁଂ. ବି. (ବିଶ୍ୱ+ପା+କ. କ୍ୱିପ୍) ପରମେଶ୍ୱର, ସୂର୍ଯ୍ୟ,ଚନ୍ଦ୍ର,ଅଗ୍ନି।

ବିଶ୍ୱପାଚକ—ପୁଂ. ବି. (ବିଶ୍ୱ+ପଚ୍ + ଣିଚ୍+କ) ଭଗବାନ୍, ବିଷ୍ଣୁ,ପରମେଶ୍ୱର।

ବିଶ୍ୱପାତା—ପୁଂ. ବିଂ. (ବିଶ୍ୱ+ପାତୃ) ବିଶ୍ୱପାଳନକର୍ତ୍ତା, (ସ୍ତ୍ରୀ) ବିଶ୍ୱପାତ୍ରୀ, (ବି)ପରମେଶ୍ୱର, ପିତୃଗଣବିଶେଷ।

ବିଶ୍ୱପାଦଶିରୋଗ୍ରୀବ—ବି. ଭଗବାନ୍, ବିଷ୍ଣୁ, ପରମେଶ୍ୱର।

ବିଶ୍ୱପାଳ—ପୁଂ. ବି. (ବିଶ୍ୱ+ପାଲ+ ଣିଚ୍+ଅ) ପରମେଶ୍ୱର।

ବିଶ୍ୱପାବନ—ତ୍ରି. ବିଂ. (ବିଶ୍ୱ+ପୂ+ ଣିଚ୍+ଅନ) ବିଶ୍ୱପବିତ୍ରତା ସମ୍ପାଦକ, (ବି) ତୁଳସୀ।

ବିଶ୍ୱପୂଜିତ—ତ୍ରି. ବିଂ. (୩ତତ୍)ଜଗତ୍ପୂଜିତ, (ବି) ତୁଳସୀ।

ବିଶ୍ୱପୂଜ୍ୟ—ପୁଂ. ବିଂ. (୩ତତ୍) ଜଗତରେ ସର୍ବତ୍ର ପୂଜ୍ୟ।

ବିଶ୍ୱପ୍ରକାଶକ—ପୁଂ.ବି. ସୂର୍ଯ୍ୟ,ଆଲୋକ

ବିଶ୍ୱପ୍ରକାଶୀ—ପୁଂ. ବିଂ. (ବିଶ୍ୱ+ପ୍ର +କାଶ୍+ଇନ୍)ବିଶ୍ୱପ୍ରକାଶକ,(ବି) ସୂର୍ଯ୍ୟ।

ବିଶ୍ୱପ୍ରପଞ୍ଚ—ବି.(୬ତତ୍)ସମଗ୍ର ସଂସାର।

ବିଶ୍ୱପ୍ରଯତ୍ନ—ବି.ମହତ୍ତ୍ୱ ଚେଷ୍ଟା,ଅତ୍ୟନ୍ତ ଯତ୍ନ।

ବିଶ୍ୱପ୍ରବୋଧ—ବି. ଭଗବାନ୍, ବିଷ୍ଣୁ।

ବିଶ୍ୱପ୍ରୀତି—ବି. ପୃଥିବୀର ସମସ୍ତ ଜୀବଙ୍କ ପ୍ରତି ସ୍ନେହ, ବିଶ୍ୱଜନୀନ ମୈତ୍ରୀ।

ବିଶ୍ୱପ୍ରେମ—ବି. (୬ତତ୍) ସର୍ବବ୍ୟାପୀ ପ୍ରେମ, ଜଗତରେ ମନୁଷ୍ୟଠାରୁ ଆରମ୍ଭ କରି କୀଟପତଙ୍ଗାଦି ପର୍ଯ୍ୟନ୍ତ ଭଲ ପାଇବା।

ବିଶ୍ୱପ୍ରେମିକ—ପୁଂ. ବିଂ. ଯେ ସମଗ୍ର ବିଶ୍ୱକୁ ସ୍ନେହକରେ,(ସ୍ତ୍ରୀ)ବିଶ୍ୱପ୍ରେମିକା

ବିଶ୍ୱପ୍ସା—ପୁଂ. ବି. (ବିଶ୍ୱ+ପ୍ସା+ ଅନ) ଅଗ୍ନି, ଚନ୍ଦ୍ର, ଦେବତା, ବିଶ୍ୱକର୍ମା, ସୂର୍ଯ୍ୟ।

ବିଶ୍ୱବଞ୍ଚକ—ପୁଂ. ବିଂ. (୬ତତ୍)ସାତିଶୟ ପ୍ରତାରକ, ଯେ ସମସ୍ତଙ୍କୁ ଠକେ।

ବିଶ୍ୱବନ୍ଧୁ—ପୁଂ.ବି. (୬ତତ୍) ମହାଦେବ, ଶିବ।

ବିଶ୍ୱଭର୍ତ୍ତା—ପୁଂ. ବି. ( ବିଶ୍ୱ+ଭର୍ତ୍ତୃ ) ବିଶ୍ୱର ଭରଣକାରୀ, ବିଶ୍ୱପାଳକ, (ସ୍ତ୍ରୀ) ବିଶ୍ୱଭର୍ତ୍ତ୍ରୀ।

ବିଶ୍ୱଭବ—ବିଂ. ( ବିଶ୍ୱ+ଭୂ+ଅ ) ଯାହାଠାରୁ ବିଶ୍ୱର ଉତ୍ପତ୍ତି ହୋଇଅଛି, (ବି) ବ୍ରହ୍ମ।          [ ଶ୍ୱର।

ବିଶ୍ୱଭାବ—ପୁଂ.ବି.ବିଶ୍ୱଭାବନ,ପରମେ-

ବିଶ୍ୱଭାବନ—ପୁଂ. ବି. ପରମେଶ୍ୱର, (ବିଂ) ସଂସାର ବିଷୟ ଯେ ଭାବେ।

ବିଶ୍ୱଭୁକ୍—ପୁଂ. ବିଂ. (ବିଶ୍ୱ+ଭୁଜ୍) ବିଶ୍ୱଭୋଜନକାରୀ, (ପୁଂ.ବି) ମହାପୁରୁଷ, ଇନ୍ଦ୍ର।

ବିଶ୍ୱଭୁଜା—ସ୍ତ୍ରୀ. ବି. ଦେବୀବିଶେଷ।

ବିଶ୍ୱଭୂ—ପୁଂ. ବି. ବୁଦ୍ଧବିଶେଷ।

ବିଶ୍ୱଭୂତ—ପୁଂ. ବି. ପରମେଶ୍ୱର।

ବିଶ୍ୱଭୃତ୍—ପୁଂ. ବିଂ. (ବିଶ୍ୱ+ଭୃ+କ, କ୍ୱିପ୍) ଅନ୍ନପ୍ରଦାନ ଦ୍ୱାରା ପାଳନକର୍ତ୍ତା।

ବିଶ୍ୱଭେଷଜ—କ୍ଳୀ.ବି. (ବିଶ୍ୱ+ଭେଷଜ) ଶୁଣ୍ଠି।

ବିଶ୍ୱମଦା—ସ୍ତ୍ରୀ. ବି. ଅଗ୍ନିଜିହ୍ୱା, ଅଗ୍ନିଙ୍କର ସପ୍ତଜିହ୍ୱା ମଧ୍ୟରୁ ଜିହ୍ୱାବିଶେଷ।

ବିଶ୍ୱମୟ—ତ୍ରି. ବିଂ, ( ବିଶ୍ୱ+ମୟ ) ବିଶ୍ୱସ୍ୱରୂପ, ସର୍ବସ୍ୱରୂପ, ସର୍ବମୟ।

ବିଶ୍ୱମହେଶ୍ୱର—ପୁଂ. ବି. ଶିବ।

ବିଶ୍ୱମାତା—ସ୍ତ୍ରୀ. ବି. ଈଶ୍ୱର ପ୍ରସବିତ୍ରୀ ଶକ୍ତି।

ବିଶ୍ୱମିତ—ପୁଂ. ବି. ମାଣବକ।

ବିଶ୍ୱମୁଖୀ—ସ୍ତ୍ରୀ. ବି. ଦାକ୍ଷାୟଣୀ।

ବିଶ୍ୱମୂର୍ତ୍ତି—ବି. ଭଗବାନ୍ ବିଷ୍ଣୁ,ବିଶ୍ୱରୂପ

ବିଶ୍ୱମୋହନ—ତ୍ରି. ବିଂ. (ବିଶ୍ୱ+ମୁହ୍ +ଅନ) ବିଶ୍ୱମୋହନକାରୀ, ( ସ୍ତ୍ରୀ ) ବିଶ୍ୱମୋହନୀ, (ବି) ବିଷ୍ଣୁ।

ବିଶ୍ୱମୋହିନୀ—ସ୍ତ୍ରୀ. ବିଂ. ଜଗନ୍ମୁଗ୍ଧକାରିଣୀ, ଜଗତର ମନୋହାରିଣୀ।

ବିଶ୍ୱମ୍ଭର—ପୁଂ. ବିଂ. (ବିଶ୍ୱ+ଭୃ+ କ.ଅ) ବିଶ୍ୱପାଳକ, ବିଶ୍ୱର ଧାରଣକର୍ତ୍ତା, (ସ୍ତ୍ରୀ) ବିଶ୍ୱମ୍ଭରୀ,(ପୁଂ.ବି) ବିଷ୍ଣୁ, ଇନ୍ଦ୍ର।

ବିଶ୍ୱମ୍ଭରଦାସ—ଗ୍ରା.ବି. ବିଚିତ୍ରମହାଭାରତ ରଚୟିତା ଜନୈକ ଉତ୍କଳୀୟ କବି।

ବିଶ୍ୱମ୍ଭରମିଶ୍ର—ଗ୍ରା. ବି. ବିଚିତ୍ରଭାରତ ରଚୟିତା ଉତ୍କଳୀୟ କବିବିଶେଷ।

ବିଶ୍ୱମ୍ଭରା—ସ୍ତ୍ରୀ. ବି. ( ବିଶ୍ୱମ୍ଭର+ଆ ) ପୃଥିବୀ।

ବିଶ୍ୱମ୍ଭରାଭୁକ୍—ପୁଂ.ବି.(ବିଶ୍ୱମ୍ଭରା+ଭୁଜ୍ କ୍ୱିପ୍) ପୃଥିବୀ ଭୋଗକାରୀ ରାଜା।

ବିଶ୍ୱମ୍ଭରେଶ୍ୱର—ବି. ହିମାଳୟସ୍ଥ ଶିବଙ୍କ

ଲଙ୍ଗବିଶେଷ ।

ବିଶ୍ୱଯଶାଃ—ପୁଂ.ବି. ଋଷିବିଶେଷ ।

ବିଶ୍ୱଯୁ(ୟୁ)—ପୁଂ.ବି. ବାୟୁ ।

ବିଶ୍ୱଯୋନି—ପୁଂ.ବି. (୬ତତ୍ପୁ) ବିଶ୍ୱର କାରଣ, ବ୍ରହ୍ମା, ବିଷ୍ଣୁ, ମହାଦେବ ।

ବିଶ୍ୱରଥ—ପୁଂ.ବି. ଗାଧିରାଜପୁତ୍ର ।

ବିଶ୍ୱରାଜ—ପୁଂ.ବି.(୬ତତ୍ପୁ)ସର୍ବାଧିପତି, ପରମେଶ୍ୱର ।

ବିଶ୍ୱରୁଚୀ—ସ୍ତ୍ରୀ.ବି. ଅଗ୍ନି ଜିହ୍ୱାବିଶେଷ ।

ବିଶ୍ୱରୂପ—ପୁଂ.ବି.(ବ.ବ୍ରୀ) ପରମେଶ୍ୱର, (କ୍ଲୀ.ବି-କ.ଧା) ଈଶ୍ୱରଙ୍କର ବିରାଟ ବା ଅନନ୍ତରୂପ, (ବିଂ-ବ.ବ୍ରୀ) ସର୍ବତ୍ର ବିଦ୍ୟମାନ ।

ବିଶ୍ୱରୂପକ—କ୍ଲୀ.ବି. କୃଷ୍ଣାଗୁରୁ ।

ବିଶ୍ୱରୂପୀ—ପୁଂ.ବିଂ. (ବିଶ୍ୱରୂପ+ଇନ୍) ବିଶ୍ୱରୂପବିଶିଷ୍ଟ, (ବି) ବିଷ୍ଣୁ ।

ବିଶ୍ୱରେତାଃ—ପୁଂ. ବି. (ବିଶ୍ୱ+ରେତସ୍) ବ୍ରହ୍ମା, ବିଷ୍ଣୁ ।

ବିଶ୍ୱରୋଚନ—ପୁଂ.ବି. (ବିଶ୍ୱ+ରୁଚ୍+ଅନ) କଚୁ, ସାରୁ ।

ବିଶ୍ୱଲୋଚନ—କ୍ଲୀ.ବି. (ବିଶ୍ୱ+ଲୋଚନ) ବିଶ୍ୱଚକ୍ଷୁ, ବିଶ୍ୱପ୍ରକାଶ ।

ବିଶ୍ୱବତ୍—ତ୍ରି.ବିଂ. ବିଷ୍ଣୁତୁଲ୍ୟ, ବିଷ୍ଣୁ ଯାହାଠାରେ ଅଛନ୍ତି, ପରମେଶ୍ୱର ।

ବିଶ୍ୱବନ୍ଧୁ—ପୁଂ.ବି. (୬ତତ୍ପୁ) ଜଗତର ବନ୍ଧୁ, ମହାଦେବ, ଶିବ ।

ବିଶ୍ୱବର୍ଣ୍ଣା—ସ୍ତ୍ରୀ.ବି. ଭୂଇଁଅଁଳା ।

ବିଶ୍ୱବଲୀ—ପୁଂ.ବିଂ. ସର୍ବପ୍ରକାର ବିଷୟ ବୋଧ ବିଷୟରେ ସମର୍ଥ ।

ବିଶ୍ୱବାକ୍—ପୁଂ.ବି. ଈଶ୍ୱର ।

ବିଶ୍ୱବାଜୀ—ପୁଂ.ବି. ଯଜ୍ଞାଶ୍ୱ ।

ବିଶ୍ୱବାର—ତ୍ରି.ବିଂ.ବିଶ୍ୱବାରକ,ସଂସାର ନିବର୍ତ୍ତକ, ସମସ୍ତଙ୍କର ପୂଜନୀୟ, (ବି) ଯଜ୍ଞୀୟ ସୋମର ସଂସ୍କାରବିଶେଷ ।

ବିଶ୍ୱବାସ—ପୁଂ.ବି. ସମସ୍ତଙ୍କର ଆବାସ ଭୂମି, ଜଗତ୍ ।

ବିଶ୍ୱବାହୁ—ପୁଂ.ବି. ମହାଦେବ, ବିଷ୍ଣୁ ।

ବିଶ୍ୱବିଖ୍ୟାତ—ତ୍ରି.ବିଂ.ଜଗଦ୍ବିଖ୍ୟାତ, ଜଗଦ୍ ପ୍ରସିଦ୍ଧ ।

ବିଶ୍ୱବିଜୟୀ—ପୁଂ.ବିଂ. ସର୍ବତ୍ର ଜୟଶୀଳ ।

ବିଶ୍ୱବିଦ୍—ପୁଂ.ବିଂ.ସର୍ବଜ୍ଞାତା, ସବୁରେ ସମର୍ଥ, ସର୍ବଜ୍ଞ ।

ବିଶ୍ୱବିଦ୍ୟାଳୟ—ବି. ଜଗତର ସମସ୍ତ ବିଦ୍ୟା ଶିକ୍ଷିବାର ସ୍ଥାନ, ଉଚ୍ଚଶିକ୍ଷାର କେନ୍ଦ୍ରସ୍ଥଳ ।

ବିଶ୍ୱବିଦ୍ୱାନ୍—ପୁଂ.ବିଂ. ସର୍ବଜ୍ଞ ।

ବିଶ୍ୱବିଧାତା—ପୁଂ.ବି. (୬ତତ୍ପୁ)ସୃଷ୍ଟିକର୍ତ୍ତା, ପରମେଶ୍ୱର ।

ବିଶ୍ୱବିଧାୟୀ—ପୁଂ. ବି. ବିଶ୍ୱବିଧାତା, ପରମେଶ୍ୱର ।

ବିଶ୍ୱବିଭାବନ—ବି. (ବିଶ୍ୱ+ବି+ଭୂ+ଣିଚ୍+ଭା.ଅନ) ବିଶ୍ୱପାଳନ,ସଂସାର ପ୍ରତିପାଳନ, (କ.ଅନ) ବିଶ୍ୱପାଳକ, ଜଗତ୍ପିତା, ବ୍ରହ୍ମାଙ୍କର ମାନସପୁତ୍ରବିଶେଷ ।

ବିଶ୍ୱବିମୋହନ—ପୁଂ.ବିଂ. (ବ.ବ୍ରୀ) ଜଗନ୍ମୋହନକାରୀ, (ସ୍ତ୍ରୀ) ମୋହନୀ ।

ବିଶ୍ୱବିମୋହ—ପୁଂ ବିଂ. (୬ତତ୍ପୁ) ଜଗନ୍ମୁଗ୍ଧକାରୀ, (ସ୍ତ୍ରୀ) ବିଶ୍ୱବିମୋହନୀ ।

ବିଶ୍ୱବିଶ୍ରୁତ—ବିଂ. (୭ତତ୍ପୁ) ଜଗଦ୍ବିଖ୍ୟାତ, ଭୁବନବିଖ୍ୟାତ ।

ବିଶ୍ୱବିଶ୍ରୁତକୀର୍ତ୍ତି—ପୁଂ.ବିଂ. (ବ.ବ୍ରୀ) ଯାହାର କୀର୍ତ୍ତି ଜଗତ ରହିଅଛି ।

ବିଶ୍ୱବିସାରୀ—ବିଂ.ବିଶ୍ୱବ୍ୟାପ୍ତ,ଜଗତ୍ପ୍ରସାରୀ ।

ବିଶ୍ୱବୀଜ—ବି. (୬ତତ୍ପୁ) ବ୍ରହ୍ମାଣ୍ଡର ଆଦିକାରଣ, ମୂଳପ୍ରକୃତି, ମାୟା ।

ବିଶ୍ୱବୀଶ୍ୱ—କ୍ଲୀ. ବି. ବିଶ୍ୱର ଅଙ୍କୁର ସ୍ୱରୂପ, ଈଶ୍ୱର । [ ନ୍ତର ।

ବିଶ୍ୱବୃକ୍ଷ—ପୁଂ.ବି. ବିଷ୍ଣୁଙ୍କର ନାମାବିଶ୍ୱବୁଦ୍ଧି—ସ୍ତ୍ରୀ. ବି. ସାଧାରଣ ଜ୍ଞାନ, ବୈଷୟିକ ଜ୍ଞାନ ।

ବିଶ୍ୱବେଦାଃ—ପୁଂ.ବିଂ. (ବିଶ୍ୱ+ବିଦ୍+କ.ଅସ୍) ସର୍ବଜ୍ଞ, (ବି) ଇନ୍ଦ୍ରାଦି ଦେବତା, ଋଷି, ସର୍ବଧନ ।

ବିଶ୍ୱବେଦୀ—ପୁଂ.ବିଂ. (ବିଶ୍ୱ+ବିଦ୍+ଇନ୍) ସର୍ବଜ୍ଞ, (ସ୍ତ୍ରୀ) ବିଶ୍ୱବେଦିନୀ ।

ବିଶ୍ୱବୋଧ—ପୁଂ.ବି. ବୁଦ୍ଧଦେବ ।

ବିଶ୍ୱବ୍ୟାପକ—ପୁଂ.ବିଂ. ସମଗ୍ର ପୃଥିବୀକୁ ଘୋଟିଥିବା, (ସ୍ତ୍ରୀ) ବିଶ୍ୱବ୍ୟାପିକା ।

ବିଶ୍ୱବ୍ୟାପୀ—ପୁଂ, ବିଂ. (ବିଶ୍ୱ+ବ୍ୟାପିନ୍) ସର୍ବତ୍ରଗାମୀ, ସର୍ବତ୍ର ବିଦ୍ୟମାନ, (ସ୍ତ୍ରୀ) ବିଶ୍ୱବ୍ୟାପିନୀ ।

ବିଶ୍ୱବ୍ରହ୍ମାଣ୍ଡ—ପୁଂ. ବି. (କ.ଧା) ସମଗ୍ର ଭୁବନ, ନିଖିଳ ଜଗତ ।

ବିଶ୍ୱଶର୍ମା—ପ୍ରା, ବି, ପ୍ରବୋଧଚନ୍ଦ୍ରିକା ନାମକ ବ୍ୟାକରଣ ପ୍ରଣେତା ।

ବିଶ୍ୱଶାରଦ—ତ୍ରି.ବିଂ. ପ୍ରତି ଶରତ୍କାଳ ବିହିତ ।

ବିଶ୍ୱସଂବନନ—କ୍ଲୀ.ବି. ଐନ୍ଦ୍ରଜାଲ ଶକ୍ତି ବଳରେ ମୋହାଭିଭୂତ କରିବା ।

ବିଶ୍ୱସଂସାର—ବି,(କ.ଧା)ସମଗ୍ର ସଂସାର, ସକଳ ଜଗତ ।

ବିଶ୍ୱସଂହାରକ—ପୁଂ.ବି. (୬ତତ୍ପୁ)ଜଗତର ନାଶକାରୀ ଶିବ ।

ବିଶ୍ୱସଖ—ପୁଂ.ବିଂ.(ବ.ବ୍ରୀ) (ବିଶ୍ୱ+ସଖା) ଜଗଦ୍ବନ୍ଧୁ, ବିଶ୍ୱହିତକାରୀ ।

ବିଶ୍ୱସତ୍ତମ—ପୁଂ.ବିଂ. (ବିଶ୍ୱ+ସତ୍+ତମ)ସଂସାର ମଧ୍ୟେ ଅତିଶୟ ସାଧୁ, (ବି)ଶ୍ରୀକୃଷ୍ଣ ।

ବିଶ୍ୱସନ—କ୍ଲୀ.ବିଂ. (ବି+ଶ୍ୱସ୍+ଭା, ଅନ) ବିଶ୍ୱାସ, ପ୍ରତ୍ୟୟ, ମୁନିମାନଙ୍କର ବିଶ୍ରାମ ଭୂମି ।

ବିଶ୍ୱସନୀୟ—ବିଂ. ( ବିଶ୍ୱସ୍+ମ. ଅନୀୟ) ବିଶ୍ୱାସ୍ୟ, ବିଶ୍ୱାସଯୋଗ୍ୟ, ଯେ ବା ଯାହା ଅନ୍ୟର ମନରେ ବିଶ୍ୱାସ ଜନ୍ମାଇପାରେ,(ସ୍ତ୍ରୀ)ବିଶ୍ୱାସନୀୟା

ବିଶ୍ୱସମ୍ଭବ— ବି. ( ବିଶ୍ୱ+ସମ୍ଭବ ) ଈଶ୍ୱର, ମହାପୁରୁଷ ।

ବିଶ୍ୱସହା—ସ୍ତ୍ରୀ.ବି. (ବିଶ୍ୱ + ସହ + କ, ଅ+ଆ) ପୃଥିବୀ, ଅଗ୍ନିଙ୍କର ସପ୍ତଜିହ୍ୱା ମଧ୍ୟରୁ ଏକ ।

ବିଶ୍ୱସହାୟ—ତ୍ରି.ବି. ବିଶ୍ୱଦେବା ।

ବିଶ୍ୱସାକ୍ଷୀ—ପୁଂ.ବି. (୬ତତ୍ପୁ) ସର୍ବଦର୍ଶୀ ଈଶ୍ୱର ।

ବିଶ୍ୱସାର—ବି. (୬ତତ୍ପୁ) ସଂସାରର

ସାରକପ୍ଷ୍ଟ, ତନ୍ତ୍ରବିଶେଷ, ଷଡ୍‌ଯୋଜକଙ୍କ ପୁତ୍ରବିଶେଷ ।

**ବିଶ୍ୱସାରକ**—କ୍ଲୀ.ବ.ବ ଦରବୃକ୍ଷ,ଫଣି-ମନସା, ତ୍ରିକଣ୍ଟିହିଞ୍ଜୁ ।

**ବିଶ୍ୱସିତ**—ପୁଂ. ବିଂ.(ବି+ଶ୍ୱସ୍+ମି.ତ) ବିଶ୍ୱସ୍ତ, ବିଶ୍ୱାସଭାଜନ,ବିଶ୍ୱାସଯୋଗ୍ୟ, ବିଶ୍ୱାସୀ, ବିଶ୍ୱାସ ଜାଗ୍ରା (ସ୍ତ୍ରୀ) ବିଶ୍ୱସିତା

**ବିଶ୍ୱସିତବ୍ୟ**—କ୍ଲୀ.ବି. ବିଶ୍ୱାସନୀୟ,ବିଶ୍ୱାସର ଯୋଗ୍ୟ ।

**ବିଶ୍ୱସୁ**—ବି. ବିଶ୍ୱପ୍ରଭୁ, ଈଶ୍ୱର ।

**ବିଶ୍ୱସୂତ୍ରଧୃକ୍**—ପୁଂ.ବି. ବିଷ୍ଣୁ ।

**ବିଶ୍ୱସୃକ୍**—ପୁଂ. ବି. (ବିଶ୍ୱ+ସୃଜ୍+କ. କ୍ୱିପ୍) ବ୍ରହ୍ମା,ବିଧି, ବିଧାତା, ବିଶ୍ୱସ୍ରଷ୍ଟା ଜଗଦୀଶ୍ୱର ।

**ବିଶ୍ୱସୃଷ୍ଟି**—ସ୍ତ୍ରୀ.ବି. ଜଗଦୁତ୍ପତ୍ତି, ସଂସାର-ସୃଷ୍ଟି, ବ୍ରହ୍ମାଣ୍ଡର ଉଦ୍ଭବ ।

**ବିଶ୍ୱସ୍ତ**—ପୁଂ.ବିଂ. (ବି+ଶ୍ୱସ୍+ମି.ତ) ଜାତବିଶ୍ୱାସ, ବିଶ୍ୱାସଭାଜନ, ଯାହାଠାରେ ବିଶ୍ୱାସ କରାଯାଇଥାଏ,(କ.ତ) ବିଶ୍ୱାସୀ, ନିର୍ଭୟ, ନିଶଙ୍କ, (ସ୍ତ୍ରୀ) ବିଶ୍ୱସ୍ତା ।

**ବିଶ୍ୱସ୍ତସୂତ୍ରରେ**—ଗ୍ରା.କ୍ରି.ବିଂ. ବିଶ୍ୱାସଯୋଗ୍ୟ ଭାବରେ, ଗୁପ୍ତଭାବରେ ।

**ବିଶ୍ୱସ୍ତା**—ସ୍ତ୍ରୀ. ବି. (ବି+ଶ୍ୱସ୍+ଭା.ତ +ଅ) ବିଧବା ସ୍ତ୍ରୀ, (ବିଂ). ବିଶ୍ୱାସର ପାତ୍ରୀଭୂତା,ବିଶ୍ୱାସିନୀ,ବିଶ୍ୱାସକାରିଣୀ ।

**ବିଶ୍ୱସ୍ୱତ୍**—ବି. ଈଶ୍ୱର, ମହାପୁରୁଷ ।

**ବିଶ୍ୱସ୍ରଷ୍ଟା**—ବି. (୬ତତ୍) ସୃଷ୍ଟିକର୍ତ୍ତା. ପରମେଶ୍ୱର । [ ଶିବ ।

**ବିଶ୍ୱହର୍ତ୍ତା**—ପୁଂ. ବି. ସର୍ବସଂହାରକାରୀ

**ବିଶ୍ୱହେତୁ**—ପୁଂ. ବି, ଜଗତ୍‌କାରଣ, ସକଳ ବିଷୟର ନିମିତ୍ତ ବା ହେତୁ ।

**ବିଶ୍ୱା**—ସ୍ତ୍ରୀ.ବି.(ବିଶ୍ୱ+ଅ+ଆ)ଅତିବିଷା, ଶତାବରୀ, ପିପ୍ପଳୀ, ଶୁଣ୍ଠି, ଶଙ୍ଖିନୀ, ଦକ୍ଷ କନ୍ୟାବିଶେଷ,(ଗ୍ରା.ବି) ଗୁଣ୍ଠର ୧୬ ଭାଗରୁ ଏକଭାଗ, ସେରର ୧୬ ଭାଗରୁ ଏକଭାଗ, ମାଣ,ଗୌଣୀ-ଆଦିର ୧୬ ଭାଗରୁ ଏକଭାଗ, ପାହୁଲାର ୧୬ ଭାଗରୁ ଏକଭାଗ, ଏକ-କଡ଼ା କଉଡ଼ିର ଚତୁର୍ଥାଂଶ, ଏକରତିର ୨୦ ଭାଗରୁ ଏକଭାଗ ।

**ବିଶ୍ୱାଏ**—ଗ୍ରା.କ୍ରି. ବିଂ. ଏକବିଶ୍ୱାମାତ୍ର ପରିମାଣରେ, ଟିକିଏମାତ୍ର ।

**ବିଶ୍ୱାକ୍ଷ**—ତ୍ରି.ବି. ମହାପୁରୁଷ,ଈଶ୍ୱର ।

**ବିଶ୍ୱାଚୀ**—ସ୍ତ୍ରୀ. ବି. (ବିଶ୍ୱ+ଅନ୍ଚ୍+କ୍ୱିପ୍+ଈ) ଅପ୍ସରାବିଶେଷ, ବାତ-ରୋଗବିଶେଷ ।

**ବିଶ୍ୱାତୀତ**—ବି. ବିଶ୍ୱ ଅତୀତ ଈଶ୍ୱର ।

**ବିଶ୍ୱାତ୍ମକ**—ତ୍ରି.ବିଂ. ବିଶ୍ୱସ୍ୱରୂପ,ବିଶ୍ୱମୟ ।

**ବିଶ୍ୱାତ୍ମା**—ପୁଂ. ବି. (୬ତତ୍) ବିଷ୍ଣୁ, ଶିବ, ବ୍ରହ୍ମା ।

**ବିଶ୍ୱାଧାର**—ପୁଂ. ବି. ଜଗଦାଧାର, ବ୍ରହ୍ମାଣ୍ଡ ଖଣ୍ଡ, ବିଧାତା, ସ୍ରଷ୍ଟା ।

**ବିଶ୍ୱାଧିପ**—ପୁଂ.ବି. ଜଗତ୍‌ପତି, ପରମେଶ୍ୱର ।

**ବିଶ୍ୱାମିତ୍ର**—ପୁଂ.ବି. (ବ.ବ୍ରୀ) ବ୍ରହ୍ମର୍ଷି-ବିଶେଷ, ଗାଧି ରାଜାଙ୍କ ପୁତ୍ର,(ଗ୍ରା.ବିଂ) ଜଗଦ୍ବୈରୀ । [ ଖୋଲପା ।

**ବିଶ୍ୱାମିତ୍ରକପାଳ**—କ୍ଲୀ. ବି. ନଡ଼ିଆ-

**ବିଶ୍ୱାମିତ୍ରଜାମାତ୍ର**—ଗ୍ରା.ବି, କୁକ୍କୁଡ଼ ।

**ବିଶ୍ୱାମିତ୍ରପ୍ରିୟ**—ପୁଂ.ବି. (୬ତତ୍)ନାରିକେଳ, କାର୍ତ୍ତିକ ।

**ବିଶ୍ୱାମିତ୍ରବ୍ରାହ୍ମଣ**—ପ୍ରା. ( ଗଞ୍ଜାମ ) ବି. ମାସ୍ତାନ ବ୍ରାହ୍ମଣଜାତୀୟ ନୀଚ ବ୍ରାହ୍ମଣ-ବିଶେଷ ।

**ବିଶ୍ୱାମିତ୍ରସର୍ଜନ(ନା)**—ଗ୍ରା.ବି. ବିଧାତାଙ୍କ ସୃଷ୍ଟିର ନିୟମ ବହିର୍ଭୂତ କାର୍ଯ୍ୟ

**ବିଶ୍ୱାୟନ**—ପୁଂ.ବିଂ. ସର୍ବଜ୍ଞ, ସର୍ବତ୍ର-ଗାମୀ, ବିଶ୍ୱାତ୍ମକ ବ୍ରହ୍ମ ।

**ବିଶ୍ୱାଳ**—ଗ୍ରା.ବି. ମରହଟ୍ଟା ଓ ହିନ୍ଦୁ ରାଜାଙ୍କ ଅମଳର ଗ୍ରାମରକ୍ଷକ କର୍ମଚାରୀ-ବିଶେଷ, କ୍ଷତ୍ରିୟ ଓ ଚଷାଙ୍କ ଘର ବଂଶୋପାଧିବିଶେଷ ।

**ବିଶ୍ୱାବସୁ**—ବି. ( ବ.ବ୍ରୀ ) ଅମରାବତୀ ବାସୀ ଗନ୍ଧର୍ବବିଶେଷ, ବିଷ୍ଣୁ ,ବତ୍ସର-ବିଶେଷ, ରାତ୍ରି, (ଗ୍ରା)ବଙ୍କଚଙ୍ଗ ।

**ବିଶ୍ୱାବାସ**—ପୁଂ. ବି, ସମସ୍ତଙ୍କର ଆବାସ ଭୂମି ଓ ଆଶ୍ରୟସ୍ଥାନ ।

**ବିଶ୍ୱାସ**—ପୁଂ.ବି. (ବି+ଶ୍ୱସ୍+ଭା.ଅ) ଶ୍ରଦ୍ଧା, ପ୍ରତ୍ୟୟ, ଆଶ୍ୱାସ, ଆସ୍ଥା,ନିର୍ଭର, ଧାରଣା, ଆଶା ।

**ବିଶ୍ୱାସଘାତକ**—ପୁଂ.ବିଂ. (ବିଶ୍ୱାସ+ହନ+ଅ) ଅପ୍ରତ୍ୟୟକାରୀ,ଅବିଶ୍ୱାସୀ, ପ୍ରତାରକ, ବଞ୍ଚକ, (ସ୍ତ୍ରୀ) ଘାତକା ।

**ବିଶ୍ୱାସକରିବା**—ଗ୍ରା.କ୍ରି. କୌଣସି ବିଷୟକୁ ମନମଧ୍ୟରେ ସତବୋଲି ଜାଣିବା, କୌଣସି ବ୍ୟକ୍ତିର ସାଧୁତାଦି ସମ୍ବନ୍ଧରେ ନିର୍ଭର କରିବା, କୌଣସି ଧର୍ମ ସମ୍ବନ୍ଧରେ ଆସ୍ଥା ସ୍ଥାପନ କରିବା ।

**ବିଶ୍ୱାସଘର**—ଗ୍ରା.ବି. ଅଣ୍ଡକୋଷ, ଲିଙ୍ଗ, ବିଶ୍ୱାସପାତ୍ର ।

**ବିଶ୍ୱାସଘାତ**—ବି. ( ବିଶ୍ୱାସ+ଘାତ ) ବିଶ୍ୱାସୀ ପ୍ରତି ପ୍ରତାରଣା କାର୍ଯ୍ୟ ।

**ବିଶ୍ୱାସଘାତକତା**—ସ୍ତ୍ରୀ. ବି. ବିଶ୍ୱାସୀ ପ୍ରତି ବିଶ୍ୱାସ ଘାତକତାର କାର୍ଯ୍ୟ ।

**ବିଶ୍ୱାସଘାତୀ**—ପୁଂ. ବିଂ.(ବିଶ୍ୱାସ+ହନ୍ +କ.ଇନ୍) ଯେ ବିଶ୍ୱାସଭାଜନ ହୋଇ ଠକେ, ବେଇମାନ୍, (ସ୍ତ୍ରୀ) ଘାତିନୀ ।

**ବିଶ୍ୱାସଜନକ**—ବିଂ.ଯାହା ମନରେ ବିଶ୍ୱାସ ଜନ୍ମାଏ ।

**ବିଶ୍ୱାସନ**—କ୍ଲୀ. ବି. (ବି+ଶ୍ୱସ୍+ଣି, ଅନ) ବିଶ୍ୱାସ ଦେବା ।

**ବିଶ୍ୱାସନାଶ**—ବି. (୬ତତ୍) କୌଣସି ବ୍ୟକ୍ତିଠାରେ ପୂର୍ବରୁ କରାଯାଇଥିବା ପ୍ରତ୍ୟୟର ବିନାଶ ଘଟିବା,ଆଶାଭଙ୍ଗ ।

**ବିଶ୍ୱାସପାତ୍ର**—ବିଂ, (୬ତତ୍) ବିଶ୍ୱାସ-ଯୋଗ୍ୟ,ଯାହାକୁ ବିଶ୍ୱାସ କରାଯାଇଥାଏ

**ବିଶ୍ୱାସପ୍ରଦ**—ବିଂ.ଯାହା ବିଶ୍ୱାସ ଜନ୍ମାଏ ।

**ବିଶ୍ୱାସଭାଗୀ**—ପୁଂ. ବିଂ. (ବିଶ୍ୱାସ+ଭଜ୍ କ.ଇନ୍) ପ୍ରତ୍ୟୟଭାଜନ,ବିଶ୍ୱାସର ପାତ୍ର, (ସ୍ତ୍ରୀ) ବିଶ୍ୱାସଭାଗିନୀ ।

**ବିଶ୍ୱାସଭାଜନ**—ବି. ( ୬ତତ୍ ) ପ୍ରତ୍ୟୟ-ଭାଜନ, ବିଶ୍ୱାସର ପାତ୍ର ।

**ବିଶ୍ୱାସଯୋଗ୍ୟ**—ବିଂ. ଯେଉଁ ବ୍ୟକ୍ତିକୁ ଓ କଥାକୁ ବିଶ୍ୱାସ କରାଯାଇପାରେ ।

**ବିଶ୍ୱାସଗ୍ର**—ଗ୍ରା.ବି.ରାଜାଙ୍କ ଖାଦ୍ୟପାନାଦ୍ଧ

ତତ୍ତ୍ୱାବଧାନ କରିବା କର୍ମଗୁଣ ।
ବିଶ୍ୱାସରେ ବିଷଦେବା—ଗ୍ରା.କ୍ରି. ବିଶ୍ୱାସ-ଘାତକତା କରିବା, ବିଶ୍ୱାସୀ ବ୍ୟକ୍ତି ପ୍ରତି ଅବିଶ୍ୱାସର କାର୍ଯ୍ୟ କରିବା ।
ବିଶ୍ୱାସସ୍ଥାନ—ତ୍ରି°. ପ୍ରତ୍ୟୟର ପାତ୍ର, ଯାହାକୁ ବିଶ୍ୱାସ କରାଯାଏ ।
ବିଶ୍ୱାସହନ୍ତା—ପୁଂ. ବିଂ. ବିଶ୍ୱାସଘାତକ, (ସ୍ତ୍ରୀ) ବିଶ୍ୱାସହନ୍ତ୍ରୀ ।
ବିଶ୍ୱାସିକ—ପୁଂ. ବିଂ. ବିଶ୍ୱାସର ପାତ୍ର ।
ବିଶ୍ୱାସିବା—ଗ୍ରା.(ପଦ୍ୟ)କ୍ରି.ବିଶ୍ୱାସକରିବା
ବିଶ୍ୱାସୀ—ପୁଂ. ବିଂ. ( ବିଶ୍ୱାସ + ଇନ୍ ) ବିଶ୍ୱାସକାରୀ, ପ୍ରତ୍ୟୟଶୀଳ, ବିଶ୍ୱସ୍ତ, ଆସ୍ଥାବାନ୍, (ସ୍ତ୍ରୀ) ବିଶ୍ୱାସିନୀ ।
ବିଶ୍ୱାସରେ—ଗ୍ରା. କ୍ରି. ବିଂ. ନିଶ୍ଚୟ, ମୁଁ ବିଶ୍ୱାସ କରୁଛି ।
ବିଶ୍ୱାସ୍ୟ—ତ୍ରି. ବିଂ. (ବି+ଶ୍ୱସ୍+ର୍ମ.ଯ) ବିଶ୍ୱାସଯୋଗ୍ୟ, ବିଶ୍ୱାସନୀୟ ।
ବିଶ୍ୱାହ୍ୱା—ସ୍ତ୍ରୀ. ବି. ଶୁଣ୍ଠି ।
ବିଶ୍ୱେଦେବ—ପୁଂ. ବି. (୬ତତ୍ରୁ) ଅଗ୍ନି, ଶ୍ରାଦ୍ଧ ଦେବ, ଗଣଦେବତାବିଶେଷ, ଅସୁର ବିଶେଷ ।
ବିଶ୍ୱେଭୋଜସ୍—ପୁଂ. ବି. (ବିଶ୍ୱେ + ଭୁଜ୍ + ଅସ୍) ଇନ୍ଦ୍ର । [ +ଅସ୍) ଅଗ୍ନି ।
ବିଶ୍ୱେବେଦାଃ—ପୁଂ. ବି. (ବିଶ୍ୱେ+ବିଦ୍
ବିଶ୍ୱେଶ—ପୁଂ. ବି. (୬ତତ୍ରୁ)ଶିବ,ବିଷ୍ଣୁ, ଉତ୍ତରଷାଢ଼ାନକ୍ଷତ୍ର, ବାରାଣସୀସ୍ଥ ଶିବ-ଲିଙ୍ଗ ।
ବିଶ୍ୱେଶିତା—ପୁଂ.ବି. ବିଶ୍ୱର ଈଶ୍ୱର, ସର୍ବୈଶ୍ୱର୍ଯ୍ୟର କର୍ତ୍ତା ।
ବିଶ୍ୱେଶ୍ୱର—ପୁଂ.ବି. (ବିଶ୍ୱ+ଈଶ୍ୱର) କାଶୀସ୍ଥ ମହାଦେବ, ଶିବ, ବିଷ୍ଣୁ ।
ବିଶ୍ୱୈକସାର—କ୍ଳୀ. ବି. କାଶ୍ମୀରସ୍ଥ ପବିତ୍ର ତୀର୍ଥ କ୍ଷେତ୍ର ବିଶେଷ ।
ବିଶ୍ୱୌଷଧ—କ୍ଳୀ. ବି. (ବିଶ୍ୱ + ଔଷଧ) ଶୁଣ୍ଠି ।
ବିଷ୍—ବି.(ବିଷ୍+କ.କ୍ୱିପ୍)ବିଷ୍ଠା,ମଳ ।
ବିଷ—ବି. ବିଷ୍+ଅ)କାଳକୂଟ, ଗରଳ, ଯାହା ଦେହ ମଧ୍ୟେ ପ୍ରବିଷ୍ଟ ହେଲେ ସ୍ୱାସ୍ଥ୍ୟ ହାନି ଅଥବା ମୃତ୍ୟୁ ଘଟାଏ, ଜଳ, ମୃଣାଳ, ପଦ୍ମନାଡ଼, ବତ୍ସନାଭ, ମେଷଶୃଙ୍ଗୀ, (ଗ୍ରା.ବି) ବିଷୟ, ବିଷୟ ହେତୁ ବିଷଦୃଷ୍ଟି, ଭୟ, ଗରଳ, ଗ୍ରାମ-ପୁଞ୍ଜ, ପ୍ରଗନ୍ନା ।
ବିଷକଣ୍ଡ—ପୁଂ. ବି. ଇଙ୍ଗୁଦୀ ବୃକ୍ଷ ।
ବିଷକଣ୍ଟକ—ପୁଂ. ବି. ଦୁରାଳଭା ।
ବିଷକଣ୍ଟକା(କିନୀ,କୀ)—ବନ୍ଧ୍ୟାକର୍କୋଟକୀ ଅଖାଡ଼ୁଆ ।
ବିଷକଣ୍ଠ—ପୁଂ. ବି. (ବ.ବ୍ରୀ) ଶିବ,ମହାଦେବ, ସର୍ପ, ବଗ, ମୟୂର ।
ବିଷକଣ୍ଠି(ଣ୍ଠୀ)କା—ସ୍ତ୍ରୀ. ବି. ବଳାକା, ବଗପକ୍ଷୀ ।
ବିଷକନ୍ଦ—ପୁଂ.ବି.ମହୂଷ କନ୍ଦ,ନୀଳକଣ୍ଠ, ଇଙ୍ଗୁଦୀ ବୃକ୍ଷ ।
ବିଷକନ୍ୟା—ସ୍ତ୍ରୀ.ବି. ପ୍ରତିଦିନ ବିଷପାନ ଦ୍ୱାରା ପ୍ରସ୍ତୁତୀକୃତ ରାଜରକ୍ଷିତା ଲଳନା ବିଶେଷ ।
ବିଷକୁମ୍ଭ—ବି. (କ.ଧା) ଗରଳ ଥିବା ମାଠିଆ, ହିଂସାପୂର୍ଣ୍ଣ ହୃଦୟ ।
ବିଷକୁମ୍ଭପୟୋମୁଖ—ବି. ଯେଉଁ ପାତ୍ରର ଭିତରେ ଗରଳ ଓ ମୁହଁରେ ଅମୃତ ଥାଏ,(ଲ.ଅର୍ଥ)ଯେଉଁ ଲୋକ ବାହାରେ ମିତ୍ରତା ଦେଖାଇ ଅନ୍ତରରେ ଶତ୍ରୁତା ରଖିଥାଏ ।
ବିଷକୃତ—ତ୍ରି. ବିଂ. ବିଷ ସଂଯୋଗେ ପ୍ରସ୍ତୁତ, ବିଷମିଶ୍ରିତ, ବିଷସଂସୃଷ୍ଟ ।
ବିଷକୃମି—ପୁଂ. ବି. (କ.ଧା) ବିଷଜାତ କୃମି, କାଠ ବିଷ ପ୍ରଭୃତିର ମଧ୍ୟେ ଯେ କୀଟଜନ୍ମେ ।
ବିଷକ୍ତ—ତ୍ରି. ବିଂ. (ବି+ସନ୍ଜ୍+କ.ତ) ଆସକ୍ତ, ସଂଲଗ୍ନ ।
ବିଷକୋଷ—ବି.(କ.ଧା) ବିଷପୂର୍ଣ୍ଣ ଅଙ୍ଗ, ଗରଳର ଆଧାର ।
ବିଷକ୍ତ—ତ୍ରି. ବିଂ. (ବି+ସନ୍ଜ୍+କ.ତ) ଆସକ୍ତ, ସଂଲଗ୍ନ ।
ବିଷକ୍ରିୟା—ବି.(୬ତତ୍ରୁ) ଜୀବ ବା ବୃକ୍ଷାଦିର ଦେହରେ ବିଷର କାର୍ଯ୍ୟ, ସ୍ୱାସ୍ଥ୍ୟ ହାନିକର ବ୍ୟାପାର ।
ବିଷଖାଇବା—ଗ୍ରା. କ୍ରି. ଆପଣାର ପ୍ରାଣ ନାଶପାଇଁ ବିଷ ସେବନ କରିବା ।
ବିଷଗନ୍ଧା—ସ୍ତ୍ରୀ. ବି. କୁଷ୍ମଗୋକର୍ଣ୍ଣୀ,କଳା ଅପରାଜିତା ।
ବିଷଗ୍ରନ୍ଥି—ପୁଂ. ବି. ମୃଣାଳ ପର୍ବ, ପଦ୍ମ-ନାଡ଼ର ଗଣ୍ଠି ।
ବିଷଘ—ତ୍ରି. ବିଂ. ବିଷନାଶକ ।
ବିଷଘଟିତ—ତ୍ରି°. (୬ତତ୍ରୁ) ବିଷମିଶ୍ରିତ, ଯହିଁରେ ବିଷ ମିଶିଥାଏ ।
ବିଷଘା—ସ୍ତ୍ରୀ. ବି. ଗୁଳୁଚି ।
ବିଷଘାତ—ପୁଂ. ବିଂ. ( ବିଷ+ହନ୍ +ଅ) ବିଷନାଶକ ।
ବିଷଘାତକ—ତ୍ରି.ବିଂ.ବିଷନାଶକ,ବିଷଘ୍ନ
ବିଷଘାତୀ—ପୁଂ. ବିଂ. (ବିଷ+ହନ୍+କ.ଇନ୍) ବିଷନାଶକ, (ବି)ଶିରିଷବୃକ୍ଷ, ଭୂକଦମ୍ବ, ଗନ୍ଧତୁଳସୀ, ଚମ୍ପକବୃକ୍ଷ, ଭାଲିଆ ।
ବିଷଘ୍ନ—ପୁଂ. ବି. ( ବିଷ+ହନ୍+କ. ଅ) ଶିରିଷ ବୃକ୍ଷ,ଦୁର୍ଲଭା,ଭାଲିଆ,ଚମ୍ପକ ବୃକ୍ଷ, ଭୂକଦମ୍ବ, ଗନ୍ଧତୁଳସୀ,ତଣ୍ଡୁଳୀୟ ଶାଗ, (ବିଂ) ବିଷନାଶକ ।
ବିଷଘ୍ନା—ସ୍ତ୍ରୀ. ବି. ଅତିବିଷା ।
ବିଷଘ୍ନିକା—ସ୍ତ୍ରୀ. ବି. ଶ୍ୱେତାପାମାର୍ଗ, ଶ୍ୱେତକଣିକା ବୃକ୍ଷ ।
ବିଷଘ୍ନୀ—ସ୍ତ୍ରୀ. ବି. ହଳମେଚକା,ଦେବ-ଦାଳି, ରାସ୍ନା,ଇନ୍ଦ୍ରବାରୁଣୀ,କାଷ୍ଠକଦଳୀ, ବନତୁଳସୀ, ଶେତାପାମାର୍ଗ, କଙ୍କୋଳ, ହବୁଷାବିଶେଷ, ଭୂମ୍ୟାମଳକୀ, ରକ୍ତ-ପୁନର୍ନବା, ହରିଦ୍ରା, ବୃଶ୍ଚିକାଳିଲତା, ମହାକରଞ୍ଜ, ପୀତଘୋଷଲତା ।
ବିଷଙ୍ଗ—ପୁଂ. ବିଂ. (ବିଷ+ସନ୍ଜ୍+କ.ଅ) ସଂଲିପ୍ତ, ଯୋଜିତ ।
ବିଷଙ୍ଗୀ—ପୁଂ. ବିଂ. ସଂଲିପ୍ତ ।
ବିଷଚନ୍ଦ୍ର—ପୁଂ. ବି. ଚକୋରପକ୍ଷୀ ।
ବିଷଚନ୍ଦ୍ରକ—ପୁଂ. ବି. ଚକୋରପକ୍ଷୀ ।
ବିଷଚକଷ୍ଯା—ବି. ବିଷର ମନ୍ଦ ଫଳର ପ୍ରତିକାର ।
ବିଷଜଳ—ବି. ବିଷମୟ ଜଳ ।
ବିଷଜିହ୍ୱ—ପୁଂ. ବି. ଦେବତାଡ଼ ବୃକ୍ଷ ।
ବିଷଜୁଷ୍ଟ—ତ୍ରି. ବିଂ.(୬ତତ୍ରୁ)ବିଷ ମିଶ୍ରିତ,

ବିଷ ସଂସୃଷ୍ଟ,ବିଷମୟ ।
ବିଷଜ୍ୱର—ପୁଂ. ବି. ଜ୍ୱରବିଶେଷ,(ବ.ବ୍ରୀ) ମହିଷ ।
ବିଷଜ୍ୱାଳା—ବି. ଶରୀରରେ ବିଷ ଜନିତ ଦାହ ।
ବିଷଜର୍ଜରିତ—ବିଂ. (୩ତତ୍) ବିଷଜ୍ୱାଳାରେ ଅସ୍ଥିର, (ସ୍ତ୍ରୀ) ବିଷଜର୍ଜରିତା
ବିଷଣି—ପୁଂ. ବି. ସର୍ପ ବିଶେଷ, ହଳାହଳ, ଗହଳ ।
ବିଷଣ୍ଡ—କ୍ଲୀ. ବି. ମୃଣାଳ, ପଦ୍ମନାଡ଼ ।
ବିଷଣ୍ଣ—ତ୍ରି. ବିଂ. (ବି+ସଦ୍+କ.ତ) ବିଷାଦପ୍ରାପ୍ତ,ମ୍ଳାନ,ଖିନ୍ନ,(ସ୍ତ୍ରୀ) ବିଷଣ୍ଣା
ବିଷଣ୍ଣତା—ସ୍ତ୍ରୀ. ବି. (ବିଷଣ୍ଣ+ତା) ଜଡ଼ତା, ଜାଡ୍ୟ, ବିଷାଦ, ଅବସାଦ, ସ୍ଫୂର୍ତ୍ତିହୀନତା ।
ବିଷଣ୍ଣଚିତ୍ତ—ପୁଂ. ବିଂ. (ବ.ବ୍ରୀ) ଯାହାର ମନ ଦୁଃଖପୂର୍ଣ୍ଣ, (ବି. କ.ଧା) ଦୁଃଖପୂର୍ଣ୍ଣ ମନ ।
ବିଷଣ୍ଣବଦନ—ପୁଂ.ବିଂ.(ବ.ବ୍ରୀ)ଯାହାର ମନ ଦୁଃଖରେ ପୂର୍ଣ୍ଣ ହୋଇଥାଏ, (ବି. କ.ଧା) ମଳିନମୁଖ ।
ବିଷଣ୍ଣାଙ୍ଗ—ପୁଂ. ବି. ଶିବ ।
ବିଷତନ୍ତ୍ର—କ୍ଲୀ. ବି. ସର୍ପାଦିର ବିଷୋପଶମନ କରିବା ପ୍ରକ୍ରିୟା ।
ବିଷତରୁ—ପୁଂ. ବି. କୁଚିଳାଗଛ ।
ବିଷତିନ୍ଦୁ(କ)—ପୁଂ.ବି. ବିଷଦ୍ରୁମ,କୁଚିଳା ଗଛ, କୁପୀଲୁ ।
ବିଷତିନ୍ଦୁକଜ—କ୍ଲୀ. ବି. ମଧୁରତିନ୍ଦୁକଫଳ, କୁଚିଳା ଫଳ ।
ବିଷଦ—ପୁଂ. ବିଂ. (ବିଷ+ଦା+କ. ଅ) ବିଷଦାନକାରୀ, ଯେ ବିଷ ଦିଏ, (ସ୍ତ୍ରୀ) ବିଷଦା, (ବି) ମେଘ, ବିଷଦ ଦେଖ, ହୀରାକସ ।
ବିଷଦଂଶ—ପୁଂ. ବି. ବିରାଡ଼ି ।
ବିଷଦଂଷ୍ଟ୍ରା—ସ୍ତ୍ରୀ. ବି. ସର୍ପଦଂଷ୍ଟ୍ରା,ସାପର ଦାନ୍ତ, ସର୍ପକଙ୍କାଳିକା ଲତା, ନାଗଦମନୀ ।
ବିଷଦନ୍ତ—ପୁଂ. ବି. (ବ.ବ୍ରୀ) ବିଡ଼ାଳ ସାପ, (କ.ଧା) ଯେଉଁ ଦାନ୍ତରେ ବିଷ ଥାଏ ।
ବିଷଦନ୍ତକ—ପୁଂ. ବି. ସର୍ପ ।
ବିଷଦମାର୍ଗ—ଗ୍ରା. ବି. ଆକାଶପଥ ।
ବିଷଦମୂଳୀ—ସ୍ତ୍ରୀ. ବି. ପଦ୍ମଶାକ ବୃକ୍ଷବିଶେଷ ।
ବିଷଦର୍ଶନମୃତ୍ୟୁକ—ପୁଂ. ବି. ଚକୋର ପକ୍ଷୀ ।
ବିଷଦା—ସ୍ତ୍ରୀ. ବି. ଅତିବିଷା ।
ବିଷଦାତା—ପୁଂ. ବିଂ. ବିଷପ୍ରଯୋକ୍ତା, ଯେ ଅସଦଭିପ୍ରାୟରେ ବିଷ ପ୍ରୟୋଗ କରେ, (ସ୍ତ୍ରୀ) ବିଷଦାତ୍ରୀ ।
ବିଷଦାନ—ବି. (୬ତତ୍) ପ୍ରାଣନାଶକ ଦ୍ରବ୍ୟ ଖାଇବାକୁ ଦେବା ।
ବିଷଦାନ୍ତ—ଗ୍ରା. ବି. ଯେଉଁ ଦାନ୍ତରେ ବିଷ ଥାଏ, ସର୍ପର ଦାନ୍ତ ।
ବିଷଦାୟକ—ପୁଂ. ବିଂ. ବିଷଦାତା ।
ବିଷଦିଗ୍ଧ—ପୁଂ.ବିଂ. (୩ତତ୍)ବିଷ ଜର୍ଜରିତ, ବିଷଲିପ୍ତ ।
ବିଷଦୁଷ୍ଟ—ତ୍ରି. ବିଂ.(୩ତତ୍)ବିଷମିଶ୍ରିତ, ବିଷଦ୍ୱାରା ଦୂଷିତ, ବିଷାକ୍ତ ।
ବିଷଦୂଷଣ—ତ୍ରି. ବିଂ. ବିଷ ନିବାରକ, ବିଷଦୃଷ୍ଟ, ବିଷଦୂରକାରୀ ।
ବିଷଦୃଷ୍ଟି—ବି.(କ.ଧା)ବିଷନୟନ ଦେଖ ।
ବିଷଦୋଷ—ବି.ବିଷପ୍ରବେଶଜନିତ ଉପଦ୍ରବ ।
ବିଷଦ୍ରୁମ—ପୁଂ. ବି. କୁଚିଳା ଗଛ ।
ବିଷଧର—ପୁଂ.ବି. (ବିଷ+ଧୃ+କ.ଅ) ସର୍ପ, ଫଣୀ, (ପୁଂ.ବିଂ) ଯାହାର ବିଷ ଥାଏ, (ସ୍ତ୍ରୀ) ବିଷଧରା ।
ବିଷଧର୍ମା—ସ୍ତ୍ରୀ.ବି.ଶୁକଶିମ୍ବୀ, ବାଇଡଙ୍କ ।
ବିଷଧାତ୍ରୀ—ସ୍ତ୍ରୀ. ବି. ମନସାଦେବୀ ।
ବିଷଧାନ—ପୁଂ. ବି. ବିଷସ୍ଥାନ ।
ବିଷଧାରଣ—ବି. (ବିଷ+ଧୃ+କ.ଅନ) ସର୍ପ ।
ବିଷଧ୍ୱଂସୀ—ପୁଂ. ବି. ନାଗରମୁଥା ।
ବିଷନୟନ—ବି.(କ.ଧା)ବିଷଦୃଷ୍ଟି; ପ୍ରଜ୍ୱଳିତଦୃଷ୍ଟି, ହିଂସାପୂର୍ଣ୍ଣ ଦୃଷ୍ଟି ।
ବିଷନାଡ଼ୀ—ସ୍ତ୍ରୀ.ବି. ବିଷତୁଲ୍ୟ କ୍ଷତିକର ସମୟ ।
ବିଷନାଶ—ବି (୬ତତ୍) ବିଷ କ୍ରିୟାର ଲୋପ ବା ନିଷ୍ଫଳୀକରଣ ।
ବିଷନାଶନ—ପୁଂ.ବି. ଶିରୀଷବୃକ୍ଷ, ମାଣସାରୁ,(ବିଂ) ବିଷଦୋଷନାଶକ,ବିଷଘ୍ନ ।
ବିଷନାଶିନୀ—ସ୍ତ୍ରୀ. ବି. (ବିଷ+ନଶ୍+ଇନ୍+ଈ) ସର୍ପକଙ୍କାଳୀ, ବନ୍ଧ୍ୟାକର୍କୋଟକୀ, ଗନ୍ଧନାକୁଳୀ ।
ବିଷନୁଦ୍—ତ୍ରି.ବିଂ.(ବିଷ+ନୁଦ+କ୍ୱିପ୍) ଶ୍ୟୋନାକ ବୃକ୍ଷ, ଫଂଗଫଣା ଗଛ ।
ବିଷପତ୍ରିକା—ସ୍ତ୍ରୀ.ବି.ପତ୍ର ବୃକ୍ଷବିଶେଷ ।
ବିଷପନ୍ନଗ—ପୁଂ.ବି.(କ.ଧା)ବିଷଧର ସର୍ପ ।
ବିଷପାଦପ—ପୁଂ.ବି.ବିଷବୃକ୍ଷ,ବିଷଦ୍ରୁମ ।
ବିଷପାନ—ବି.(୬ତତ୍) ମୃତ୍ୟୁ ଘଟାଇବା ପାଇଁ ବିଷ ପିଇବା ।
ବିଷପାୟୀ—ପୁଂ. ବିଂ. (ବିଷ+ପା+କ. ଇନ୍) ବିଷପାନକାରୀ, (ସ୍ତ୍ରୀ) ପାୟିନୀ ।
ବିଷପିତା—ଗ୍ରା. ବିଂ. ବିଷପରି କଟୁ, ଅତ୍ୟନ୍ତ ପିତା,(ଲ.ଅର୍ଥ) ଅତି ଅପ୍ରିୟ ।
ବିଷପୁଚ୍ଛ—ପୁଂ. ବିଂ. (ବ.ବ୍ରୀ) ଯାହା ଲାଙ୍ଗୁଡ଼ରେ ବିଷଥାଏ,(ବି)ବିଚ୍ଛା ପ୍ରଭୃତି ।
ବିଷପୁଷ୍ପ—କ୍ଲୀ. ବି. (ବ.ବ୍ରୀ) ନୀଳପଦ୍ମ, ଅତସୀ ଗୁଳ୍ମ, ମଦନବୃକ୍ଷ, (କ.ଧା) ବିଷାକ୍ତ ପୁଷ୍ପ ।
ବିଷପୁଷ୍ପକ—ପୁଂ. ବି. ମଦନବୃକ୍ଷ, ବିଷପୁଷ୍ପକ ଭକ୍ଷଣଜନିତ ରୋଗ ।
ବିଷପ୍ରୟୋଗ—ବି. (୬ତତ୍) ହତ୍ୟା ବା ଔଷଧ ଅର୍ଥ ବିଷଦାନ ।
ବିଷପ୍ରଶମନୀ—ସ୍ତ୍ରୀ.ବି.ବନ୍ଧ୍ୟା କର୍କୋଟକୀ, ଅଖାଡୁଆ ।
ବିଷପ୍ରସ୍ଥ—ପୁଂ. ବି. ପର୍ବତବିଶେଷ ।
ବିଷପ୍ରସୂନ—ବି. (କ.ଧା) ପଦ୍ମ ।
ବିଷବଲ୍ଲିକା—ସ୍ତ୍ରୀ. ବି. ବିଛୁଆତି ଲତା ।
ବିଷଭକ୍ଷଣ—ବି.(୬ତତ୍) ବିଷ ଖାଇବା ।
ବିଷଭଦ୍ରା—ସ୍ତ୍ରୀ.ବି. ବୃହଦ୍ଦନ୍ତୀ, ବଡ଼ଦନ୍ତୀ ଗଛ ।
ବିଷଭଦ୍ରିକା—ସ୍ତ୍ରୀ. ବି. ଲଘୁଦନ୍ତୀ ।
ବିଷଭିଷକ୍—ପୁଂ. ବି. ବିଷବୈଦ୍ୟ,ବିଷଚିକିତ୍ସକ, ସାପୁଆକେଳା ।
ବିଷଭୁଜଙ୍ଗ—ପୁଂ. ବି. ବିଷଧର ସର୍ପ, ସବିଷ ସର୍ପ ।

ବିଷଭୃତ୍—ବି. (ବିଷ୍+ଭୃ+କ.କ୍ୱିପ୍) ସର୍ପ, ବିଷଧର ସର୍ପ ।

ବିଷମ—ବିଂ. ( ବି+ସମ ) ଅସମାନ, ଉନ୍ନତାବନତ, ଉଚ୍ଚନୀଚ, ଅଯୁଗ୍ମ, ବିଷତୁଲ୍ୟ, ଦୁର୍ଗମ, ଦୁର୍ବୋଧ, ଦୁଃସହ, ଦୁର୍ଗ୍ରାହ୍ୟ, ଦାରୁଣ, ବିପଜ୍ଜନକ, ସଙ୍କଟ, ଜଟିଳ, (ବି) ଉନ୍ନତାବନତ ଭୂମି, ଅଯୁଗ୍ମ ରାଶି, ଶ୍ୱାସ ନାଳୀରେ ଖାଦ୍ୟଦ୍ରବ୍ୟ ଅଟକିଯାଇ ସାମୟିକ ନିଶ୍ୱାସ ପ୍ରଶ୍ୱାସ ବନ୍ଦ ହେବା, ଗିରସଙ୍କଟ, ଅର୍ଥାଲଂକାରବିଶେଷ, ପଦ୍ୟବିଶେଷ, ତାଳବିଶେଷ, ବାୟୁର ପ୍ରକୋପରୁ ଉତ୍ପନ୍ନ ଜଠରାଗ୍ନି, (ସ୍ତ୍ରୀ) ବିଷମା ।

ବିଷମକର୍ଣ୍ଣ—ବି. (କ.ଧା) ବିଷମ ଚତୁର୍ଭୁଜର କର୍ଣ୍ଣରେଖା ।

ବିଷମକର୍ମ—କ୍ଳୀ. ବି. ବୀଜଗଣିତୋକ୍ତ ଅଙ୍କପ୍ରଣାଳୀବିଶେଷ, ଅସମାନ ପ୍ରକ୍ରିୟା ଦ୍ୱାରା ରାଶି ନିରୂପଣର ନାମ ।

ବିଷମକୋଣ—କ୍ଳୀ. ବି. (କ.ଧା) ସମକୋଣର ବିପରୀତ, ଯେଉଁ କୋଣ ସମକୋଣଠାରୁ ଊଣା ବା ଅଧିକ ।

ବିଷମକୋଣୀ—ବିଂ. ( ବିଷମକୋଣ+ଇନ୍) ଯେଉଁ କ୍ଷେତ୍ରର କୌଣସି କୋଣ ସମକୋଣ ନୁହେ ।

ବିଷମଖାତ—କ୍ଳୀ.ବି. (କ.ଧା) ଅସମାନ ବାହୁବିଶିଷ୍ଟ ଗର୍ତ୍ତ, ବୀଜଗଣିତୋକ୍ତ ଅଙ୍କବିଶେଷ ।

ବିଷମଚକ୍ରବାଳ—କ୍ଳୀ. ବି. ବୃତ୍ତାଭାସ ।

ବିଷମଚତୁରସ୍ର—ପୁଂ.ବି. ଅସମାନ ବାହୁ ବା କୋଣବିଶିଷ୍ଟ ଚତୁଷ୍କୋଣ କ୍ଷେତ୍ର ।

ବିଷମଚତୁଷ୍କୋଣ—ତ୍ରି.ବିଂ. ବିଷମକୋଣୀ ଚତୁର୍ଭୁଜ କ୍ଷେତ୍ର ।

ବିଷମଚ୍ଛଦ—ପୁଂ.ବି. (ବ.ବ୍ରୀ) ସପ୍ତଚ୍ଛଦ ବୃକ୍ଷ, ସତକାଠିଆ ।

ବିଷମଜ୍ୱର—ପୁଂ. ବି. (କ.ଧା) କଠିନ ଅବିରାମ ଜ୍ୱର, ବହୁଦିନସ୍ଥାୟୀ ଜ୍ୱରବିଶେଷ ।

ବିଷମଜ୍ୱରାଙ୍କୁଶଲୌହ—କ୍ଳୀ. ବି. ବିଷମ ଜ୍ୱରର ଔଷଧବିଶେଷ ।

ବିଷମତ୍ରିଭୁଜ—ପୁଂ. ବି. ଯେଉଁ ତ୍ରିଭୁଜର ତିନିବାହୁ ପରସ୍ପର ଅସମାନ ।

ବିଷମନୟନ—ପୁଂ.ବି. (ବ.ବ୍ରୀ) ତ୍ରିନେତ୍ରବିଶିଷ୍ଟ, ଶିବ ।

ବିଷମନେତ୍ର—ପୁଂ. ବି. (ବ.ବ୍ରୀ) ଶିବ ।

ବିଷମନ୍ତ୍ର—ପୁଂ.ବି. ସର୍ପଧାରକ, ଜାଙ୍ଗଲୀ, ଯେଉଁ ମନ୍ତ୍ର ପାଠକରି ଫୁଙ୍କିଲେ ସାପବିଷ ଛଡ଼େ । [ଯୁକ୍ତ ।

ବିଷମପାଦ—ବିଂ (ବ.ବ୍ରୀ) ଅସମାନଚରଣ-

ବିଷମମୟ—ତ୍ରି. ବିଂ. (ବିଷମ+ମୟ) ଯାହା ବିଷମ ହୋଇ ଆସେ ।

ବିଷମୟ—ତ୍ରି. ବିଂ. (ବିଷ+ମୟ) ବିଷଯୁକ୍ତ, ବିଷପୂର୍ଣ୍ଣ, ଗରଳଭରା, (ସ୍ତ୍ରୀ) ମୟୀ

ବିଷମରାଶି—ପୁଂ.ବି. (କ.ଧା) ଅଯୁଗ୍ମରାଶି

ବିଷମରୂପ୍ୟ—ତ୍ରି. ବିଂ ଯାହା ବିଷମରୁ ଆଗତ ହୁଏ ।

ବିଷମର୍ଦ୍ଦନିକା—ସ୍ତ୍ରୀ. ବି. ଗନ୍ଧନାକୁଳୀ ।

ବିଷମର୍ଦ୍ଦିନୀ—ସ୍ତ୍ରୀ.ବି. ଗନ୍ଧନାକୁଳୀ, ଗନ୍ଧରାସ୍ନା ।

ବିଷମଲାଗିବା—ଗ୍ରା. କ୍ରି. ଖାଦ୍ୟଦ୍ରବ୍ୟାଂଶ ହଠାତ୍ ତଣ୍ଟିରେ ଲାଗିଯିବା ।

ବିଷମବାଣ—ପୁଂ.ବି. (ବ.ବ୍ରୀ) ପଞ୍ଚବାଣ, କାମଦେବ ।

ବିଷମବିଶିଖ—ପୁଂ.ବି. (ବ.ବ୍ରୀ) ପଞ୍ଚବାଣ, କାମଦେବ, (କ.ଧା) ସୁତୀକ୍ଷ୍ଣ ଶର ।

ବିଷମବୃତ୍ତ—କ୍ଳୀ. ବି. ଅସମାନ ପାଦବିଶିଷ୍ଟ ଛନ୍ଦ ।

ବିଷମବେଗ—ପୁଂ.ବି. ନ୍ୟୂନାଧିକବେଗ, ବେଗର କମି ବେଶି ।

ବିଷମଶର—ପୁଂ. ବି. (ବ.ବ୍ରୀ) କନ୍ଦର୍ପ, (କ.ଧା) ଦାରୁଣ ବାଣ ।

ବିଷମଶିଷ୍ଟ—ବି. (କ.ଧା) ଅନୁଚିତାନୁଶାସନ, ଅନ୍ୟାୟ ବିଭାଗ ।

ବିଷମଶୀଳ—ତ୍ରି. ବିଂ. (ବ.ବ୍ରୀ) ଅସରଳ ପ୍ରକୃତିକ, ଉଦ୍ଧତ ।

ବିଷମସଙ୍କଟ—ବି.(କ.ଧା) ମହାବିପଦ ।

ବିଷମସପ୍ତମ—ବି. ବିବାହରେ ନିଷିଦ୍ଧ ଯୋଗ ବିଶେଷ ।

ବିଷମସମୟ—ବି. ବିପଦ କାଳ, ଦୁଃସମୟ ।

ବିଷମସମସ୍ୟା—ବି. (କ.ଧ) ଉତ୍କଟ ବା ଅସାଧ୍ୟ ପ୍ରଶ୍ନ ବା ବିଷୟ, ଶବ୍ଦାଲଙ୍କାର ବିଶେଷ ।

ବିଷମସାହସ—ବି. (କ.ଧା) ଅସମସାହସ, ଅନୁଚିତ ସାହସ ।

ବିଷମସାହସିକ—ପୁଂ. ବିଂ. ଅସମ ସାହସିକ, (ସ୍ତ୍ରୀ) ବିଷମ ସାହସିକା ।

ବିଷମସ୍ଥ—ପୁଂ. ବିଂ. ( ବିଷମ+ସ୍ଥା+କ.ଅ) ଉନ୍ନତାବନତ ପ୍ରଦେଶସ୍ଥ, ବିପଦଗ୍ରସ୍ତ, (ସ୍ତ୍ରୀ) ବିଷମସ୍ଥା ।

ବିଷମା—ସ୍ତ୍ରୀ.ବି. ମହୁରୀ, ବଣବରକୋଳି, (ବିଂ) ବିଷମର ସ୍ତ୍ରୀଲିଙ୍ଗ । [ଶିବ ।

ବିଷମାକ୍ଷ—ପୁଂ.ବି. (ବ.ବ୍ରୀ) ବିଷମନୟନ,

ବିଷମାଗ୍ନି—ପୁଂ.ବି. ଜଠରାଗ୍ନି ବିଶେଷ ।

ବିଷମାଧୁର—କ୍ଳୀ. ବି. ଶୃଙ୍ଗିବିଷ, ମେଣ୍ଢାଶିଙ୍ଘା, ମହୁରୀ । [କାମଦେବ ।

ବିଷମାୟୁଧ—ପୁଂ. ବି. (ବ.ବ୍ରୀ) ପଞ୍ଚଶର,

ବିଷମାରଣ—ବି. (ତନ୍ତ୍ର) ବିଷଶୋଧନ ଦେଖ ।

ବିଷମାଳଂକାର—ବି. ଅର୍ଥାଳଂକାରବିଶେଷ

ବିଷମାଶନ—କ୍ଳୀ. ବି. ଅନିୟମିତ ସମୟରେ ଭୋଜନ । [ଗଣ୍ଡୁଅନା ।

ବିଷମାଙ୍କୁର—ପୁଂ. ବି. ଗ୍ରନ୍ଥିପର୍ଣ୍ଣ ମୂଳ,

ବିଷମିତ—ତ୍ରି. ବିଂ. ପ୍ରତିକୂଳତା ପ୍ରାପ୍ତ, କୁଟିଳୀକୃତ । [ହେବା ।

ବିଷମିବା—ଗ୍ରା.କ୍ରି. ବିଷମରୂପେ ପରିଣତ

ବିଷମିଶ୍ରିତ—ବିଂ.(ତଦ୍ଭବ) ବିଷମିଶିଥିବା

ବିଷମୀୟ—ତ୍ରି. ବିଂ. ସଙ୍କଟାପନ୍ନ ।

ବିଷମୁକ୍—ତ୍ରି. ବିଂ. ( ବିଷ+ମୁଚ୍+କ୍ୱିପ୍) ବିଷୋଦ୍ଗୀରଣଶୀଳ ।

ବିଷମୁଖ—ବି. (ବ.ବ୍ରୀ) ବିଷଧର ସର୍ପ, (ବିଂ) ଯାହାର ମୁଖରେ ବିଷ ଅଛି, ରୁକ୍ଷଭାଷୀ, (ସ୍ତ୍ରୀ) ବିଷମୁଖୀ ।

ବିଷମୁଷ୍କକ—ପୁଂ. ବି. ମଦନବୃକ୍ଷ ।

ବିଷମୁଷ୍ଟି—ବି. କୋଚିଲା ଗଛ ଓ ତାହାର ଫଳ, ଜୀବନ୍ତୀ, ଅଗସ୍ତିଗଛ, ମାହାଲ, ଏକପ୍ରକାର କ୍ଷୁଦ୍ର ଗୁଳ୍ମ, ମହାଲିମ୍ବ, ଲଙ୍କଳୀ ।

ବିଷମୁଷ୍ଟିକ(କା)—ବି. ବିଷମୁଷ୍ଟି, ବୃହତ୍ତୁ

ଅଲମ୍ବୁଷା, କର୍କୋଟୀ ।
ବିଷମୂଳା—ସ୍ତ୍ରୀ.ବି. ଶିରମଲକ ।
ବିଷମୃତ୍ୟୁ—ପୁଂ. ବି. ଜୀବଞ୍ଜୀବପକ୍ଷୀ, ଚକୋର ।
ବିଷମେକ୍ଷଣ—ପୁଂ. ବି. (ବ.ବ୍ରୀ) ବିଷମନୟନ ଶିବ । [ କାମଦେବ ।
ବିଷମେଷୁ—ପୁଂ.ବି. (ବ.ବ୍ରୀ) ପଞ୍ଚବାଣ,
ବିଷମୋନ୍ନତ—ତ୍ରି. ବିଂ. କ୍ରମୋଚ୍ଚନିମ୍ନ, ବନ୍ଧୁର, ସ୍ଥପୁଟ ।
ବିଷମୋଭୟକଣ୍ଟକ—ପୁଂ. ବି. ଘଣ୍ଟାବଦର, ଶ୍ରେଷ୍ଠ ବରକୋଳି ।
ବିଷୟ—ବି. (ବି+ସି+କ.ଅ) ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁ, ଧନ, ସମ୍ପତ୍ତି, ବିଭବ, ଭୋଗ, ଭୋଗ୍ୟବସ୍ତୁ, ପଦାର୍ଥ, ଦେଶ, ସ୍ଥାନ, ପାତ୍ର, ଭୃତ୍ୟ, ଗୃହ, ସ୍ୱାମୀ, ପ୍ରେମିକ ବ୍ୟକ୍ତି, ନେତା, ଶୁକ୍ର, ରାଜ୍ୟର ଗ୍ରାମପୁଞ୍ଜ, ବିଷୟୀଭୂତ ବସ୍ତୁ, ଘଟଣା, ସମ୍ବନ୍ଧ, ବର୍ଣ୍ଣନୀୟ ବସ୍ତୁ ।
ବିଷୟଆଶ୍ରୟ—ଗ୍ରା. ବି. ଧନସମ୍ପତ୍ତି ।
ବିଷୟକ—ବି. (ବିଷୟ+କ) ବିଷୟଶବ୍ଦାର୍ଥ, (ବିଂ) ସମ୍ବନ୍ଧୀୟ ।
ବିଷୟକର୍ମ—ବି. ସାଂସାରିକ କାର୍ଯ୍ୟ, ଜୀବିକା, ପେଶା, ଚାକିରି । [ ଗର୍ବ ।
ବିଷୟଗର୍ବ—ବି. (କ.ଧା) ଧନଜନିତ
ବିଷୟଗ୍ରାମ—ପୁଂ.ବି. ବିଷୟସମୂହ ।
ବିଷୟଚିନ୍ତା—ବି. (୭ତତ୍) ସାଂସାରିକ ବିଷୟରେ ଭାବନା ।
ବିଷୟତୃଷ୍ଣା—ବି. ସାଂସାରିକ ସୁଖଭୋଗର ଅଭିଳାଷ, ଧନଲୋଭ ।
ବିଷୟତ୍ୟାଗ—ବି. ସାଂସାରିକ ଭୋଗ୍ୟ ବସ୍ତୁକୁ ଛାଡ଼ିଦେବା ।
ବିଷୟନିରୂପଣ—ବି. (୬ତତ୍) କୌଣସି ଜ୍ଞାତବ୍ୟ ବା ବକ୍ତବ୍ୟ ବିଷୟର ସ୍ଥିରୀକରଣ ।
ବିଷୟପତି—ପୁଂ.ବି. (୬ତତ୍) ଜନପଦାଧିପ, ଗ୍ରାମମଣ୍ଡଳର ଅଧିପତି, ବିଷୟୀ ଦେଖ ।
ବିଷୟପରାୟଣ—ପୁଂ. ବିଂ. (ବ.ବ୍ରୀ) ସାଂସାରିକ ବିଷୟ ପ୍ରତି ଆସକ୍ତ, (ସ୍ତ୍ରୀ) ବିଷୟପରାୟଣା ।
ବିଷୟପ୍ରସଙ୍ଗ—ବି. (୬ତତ୍) ସାଂସାରିକ ବିଷୟ ସମ୍ବନ୍ଧେ କଥାଭାଷା, ବିଶିଷ୍ଟ ବିଷୟ ସଙ୍ଗେ ଥିବା ସମ୍ପର୍କ ।
ବିଷୟଭେଦ ଉଲ୍ଲେଖାଲଂକାର—ବି. ଅର୍ଥାଲଂକାର ବିଶେଷ ।
ବିଷୟଭୋଗ—ବି. (୬ତତ୍) ଶବ୍ଦାଦି ଭୋଗ୍ୟ ବସ୍ତୁର ଉପଭୋଗ, ଧନ ସମ୍ପତ୍ତିର ଉପଭୋଗ ।
ବିଷୟମଗ୍ନ—ପୁଂ. ବିଂ. (୭ତତ୍) ସାଂସାରିକ ବିଷୟରେ ଆସକ୍ତ, (ସ୍ତ୍ରୀ) ମଗ୍ନା ।
ବିଷୟମତ୍ତ—ପୁଂ.ବିଂ. (୭ତତ୍) ଧନଗର୍ବୀ, (ସ୍ତ୍ରୀ) ବିଷୟମତ୍ତା ।
ବିଷୟମଦ—ବି. (କ.ଧା) ସଂସାର ସୁଖଭୋଗଜାତ ମତ୍ତତା, ବିଷୟଭୋଗରୂପ ଗର୍ବ ।
ବିଷୟଲଭ—ବି. (୬ତତ୍) ସମ୍ପତ୍ତିଲାଭ ।
ବିଷୟଲୁବ୍ଧ—ପୁଂ. ବିଂ. (୭ତତ୍) ବିଷୟପ୍ରତି ଲୋଭଗ୍ରସ୍ତ, (ସ୍ତ୍ରୀ) ବିଷୟଲୁବ୍ଧା ।
ବିଷୟବର୍ତ୍ତୀ—ତ୍ରି.ବିଂ. ବିଷୟାନ୍ତର୍ଭୂତ ।
ବିଷୟବାଡ଼ି—ଗ୍ରା. ବି. ସ୍ଥାବର ଓ ଅସ୍ଥାବର ସମ୍ପତ୍ତି । [ ବିଷୟୀ ।
ବିଷୟବାନ୍—ପୁଂ.ବିଂ. ବିଷୟବିଶିଷ୍ଟ,
ବିଷୟବାସନା—ସ୍ତ୍ରୀ.ବି. (୬ତତ୍) ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁର ଭୋଗାଭିଳାଷ ।
ବିଷୟବାସୀ—ତ୍ରି. ବିଂ. ଜନପଦବାସୀ ।
ବିଷୟବିରକ୍ତି—ବି. (୭ତତ୍) ସଂସାରପ୍ରତି ଅନାସକ୍ତି ।
ବିଷୟବୁଦ୍ଧି—ବି. (୬ତତ୍) ବୈଷୟିକ ଜ୍ଞାନ, ସାଂସାରିକ ଅଭିଜ୍ଞତା ।
ବିଷୟସପ୍ତମୀ—ସ୍ତ୍ରୀ. ବି. ବିଷୟାଧିକରଣ ଯେ ସପ୍ତମୀ ବିଭକ୍ତି ହୁଏ ।
ବିଷୟସୁଖ—ବି. (୬ତତ୍) ସାଂସାରିକ ବସ୍ତୁମାନଙ୍କ ଭୋଗଜନିତ ସୁଖ ।
ବିଷୟହୀନ—ବିଂ. (୩ତତ୍) ଦୁଃଖୀ, ଗରିବ
ବିଷୟା—ଗ୍ରା. ବି. ସାଂସାରିକ ଭୋଗ ଓ ସୁଖ ।
ବିଷୟାକାଙ୍କ୍ଷା—ବି. (୬ତତ୍) ସମ୍ପତ୍ତି ବା ଧନାକାଙ୍କ୍ଷା, ସାଂସାରିକ ବିଷୟଭୋଗ କରିବାର ଇଚ୍ଛା । [ ତନ୍ଦ୍ରା ।
ବିଷୟାଜ୍ଞାନ—ବି. (ବିଷୟ+ଅଜ୍ଞାନ)
ବିଷୟାତ୍ମକ—ତ୍ରି.ବିଂ. ଅତ୍ୟନ୍ତ ବିଷୟାସକ୍ତ, ବିଷୟାସ୍ୱରୂପ, ବିଷୟାଧିଗତ ପ୍ରାଣ । [ ଶାସନକର୍ତ୍ତା ।
ବିଷୟାଧିକୃତ—ପୁଂ. ବି. ଜନପଦର
ବିଷୟାଧିପ—ପୁଂ.ବି. ଭୂମ୍ୟଧିକାରୀ, ରାଜା
ବିଷୟାନନ୍ତର—ବିଂ. ଏକପ୍ରସ୍ତାବର ଅବ୍ୟବହିତ ପର (ବିଷୟ) ।
ବିଷୟାନୁରକ୍ତ—ପୁଂ. ବିଂ. (୭ତତ୍) ସାଂସାରିକ ବିଷୟରେ ମଗ୍ନ ।
ବିଷୟାନ୍ତ—ପୁଂ.ବି. (୬ତତ୍) ରାଜ୍ୟପ୍ରାନ୍ତ ବା ସୀମା ।
ବିଷୟାନ୍ତର—ବି. (କ.ଧା) ଅନ୍ୟବିଷୟ ।
ବିଷୟାଭିମୁଖୀକୃତ—ସ୍ତ୍ରୀ. ବି. ବିଷୟପ୍ରସକ୍ତି, ଚକ୍ଷୁଃଶ୍ରୋତାଦି ଇନ୍ଦ୍ରିୟଗଣର ସ୍ୱ ସ୍ୱ ବିଷୟର ପ୍ରତି ଅଭିଗମନ ।
ବିଷୟାୟୀ—ପୁଂ.ବି. (ବିଷୟ+ଆୟ+ଇନ୍) ରାଜା, ବୈଷୟିକ ଜନ, ଇନ୍ଦ୍ରିୟ, କାମଦେବ, ବିଷୟାସକ୍ତ ପୁରୁଷ ।
ବିଷୟାର୍ଥୀ—ପୁଂ. ବି. ବିଷୟାଭିଳାଷୀ, ଧନାଭିଳାଷୀ । [ ରୂପ ବିଷ ।
ବିଷୟାବିଷ—ଗ୍ରା. ବି. ସାଂସାରିକ ବିଷୟା-
ବିଷୟାସକ୍ତ—ପୁଂ. ବିଂ. (୭ତତ୍) ବିଷୟଭୋଗରେ ଅନୁରକ୍ତ, ଶବ୍ଦ ସ୍ପର୍ଶାଦି ଭୋଗ୍ୟବସ୍ତୁର ପ୍ରତି ଏକାନ୍ତ ରତ, (ସ୍ତ୍ରୀ) ବିଷୟାସକ୍ତା ।
ବିଷୟାସକ୍ତି—ବି. (୭ତତ୍) ବିଷୟାନୁରାଗ, ଶବ୍ଦାଦି ଭୋଗ୍ୟ ବସ୍ତୁର ଉପଭୋଗରେ ସ୍ପୃହା ।
ବିଷୟି—ବି. (ବିଷୟ+ଇ) ଇନ୍ଦ୍ରିୟ ।
ବିଷୟୀ—ବି. (ବିଷୟ+ଇନ୍) ଜ୍ଞାନବିଶେଷ, ଇନ୍ଦ୍ରିୟ, କାମଦେବ, ବୈଷୟିକ, ଧନୀ, ଧନୀ ବ୍ୟକ୍ତି, ନୃପତି, (ବିଂ) ବିଷୟଯୁକ୍ତ, ଐଶ୍ୱର୍ଯ୍ୟଶାଳୀ, ସମ୍ପନ୍ନ, ସାଂସାରିକ ବ୍ୟାପାରରେ ରତ, ବିଷୟାସକ୍ତ, (ସ୍ତ୍ରୀ) ବିଷୟିଣୀ ।
ବିଷୟୀକରଣ—କ୍ଲୀ.ବି. ଗୋଚରୀକରଣ
ବିଷୟୀଭାବ—ପୁଂ. ବି. ଗୋଚରୀଭାବ ।

ବିଷସ୍ତ୍ରୀଭୂତ--ବିଂ.(ବିଷୟ୍+ଚ୍ଵି+ଭୂତ) ପ୍ରତ୍ୟକ୍ଷୀଭୂତ,କୌଣସି ବିଷୟର ଅନ୍ତର୍ଭୁକ୍ତ ।
ବିଷୟେଚ୍ଛା—ବି.(୬ତତ୍) ବିଷୟତୃଷ୍ଣା ।
ବିଷୟେନ୍ଦ୍ରିୟ—କ୍ଲୀ. ବି. ଶବ୍ଦାଦ ଗ୍ରାହକ ଇନ୍ଦ୍ରିୟ ।
ବିଷଯୋଗ—ବି. ନକ୍ଷତ୍ରାମୃତ ଯୋଗ ଓ ସିଦ୍ଧିଯୋଗର ଏକତ୍ର ମିଳନରେ ଘଟିବା ଅଶୁଭକର ଯୋଗବିଶେଷ ।
ବିଷରସ—ପୁଂ. ବି. ବିଷାସ୍ୱାଦନ ।
ବିଷରୂପା—ସ୍ତ୍ରୀ. ବି. (ବିଷ+ରୂପ+ଆ) ଅତିବିଷା, ମହାକାମୃକ, ଅଳମ୍ବୁଷା, କର୍କୋଟୀ, ମହୁରା, ମାହାଲ ।
ବିଷଲ—କ୍ଲୀ.ବି.(ବିଷ୍+ଲ)ବିଷ,ଗରଳ ।
ବିଷଲଡ଼ୁ—ଗ୍ରା. ବି. ବିଷମିଶ୍ରିତ ଲଡ଼ୁ ।
ବିଷଲତା—ସ୍ତ୍ରୀ.ବି. ଇନ୍ଦ୍ରବାରୁଣୀ, ମହାକାଳ ଲତାଦ,ବିଷପ୍ରଧାନ ଲତାସମୂହ ।
ବିଷଲାଙ୍ଗଲ—କ୍ଲୀ.ବି. କ୍ଷୁପବିଶେଷ, ବିଷଲାଙ୍ଗଲୀୟା, ଲହଲଙ୍ଗଲୀୟା ।
ବିଷବର୍ଣ୍ଣିକା—ବି. ବିଛୁଆତି ।
ବିଷବତ୍—ଅ. (ବିଷ୍+ବତ୍) ବିଷତୁଲ୍ୟ ମାରାତ୍ମକ ।
ବିଷବଲ୍ଲରୀ—ସ୍ତ୍ରୀ. ବି. ବିଷଲତା ।
ବିଷବଲ୍ଲୀ(ଲ୍ଲୀ)—ସ୍ତ୍ରୀ. ବି. ବିଷଲତା,ଇନ୍ଦ୍ରବାରୁଣୀ ଲତା ।
ବିଷବିଟପୀ—ପୁଂ. ବି. ବିଷବୃକ୍ଷ ।
ବିଷବିଦ୍ୟା—ସ୍ତ୍ରୀ. ବି. (କ. ଧା) ବିଷଘ୍ନ ମନ୍ତ୍ରାଦ, ବିଷଚକିତ୍ସା ଶାସ୍ତ୍ର ।
ବିଷବୀଜ—କ୍ଲୀ.ବି.(୬ତତ୍) ବିଷର ମୂଳ, ବିଷର ମଞ୍ଜି ।
ବିଷବୃକ୍ଷ—ପୁଂ. ବି. (କ. ଧା) ବିଷପ୍ରଦ ବୃକ୍ଷବିଶେଷ, ଉଦୁମ୍ବର ବୃକ୍ଷ, ଯଜ୍ଞଡୁମିରଗଛ, (ଲ.ଅର୍ଥ) ମନ୍ଦବ୍ୟକ୍ତି ।
ବିଷବୈଦ୍ୟ—ପୁଂ. ବି. ବିଷ ମନ୍ତ୍ରାଭଜ୍ଞ କୈଷକ, ଗାରୁଡ଼ିକ, ସାପୁଆକେଳା ।
ବିଷବୈରିଣୀ—ସ୍ତ୍ରୀ. ବି. ନିର୍ବିଷୀ ଘାସ, ନିର୍ବିଷା ।
ବିଷଶାଲୁକ—ପୁଂ. ବି. ପଦ୍ମକନ୍ଦ ।
ବିଷଶୃଙ୍କ—ପୁଂ.ବି. (ବ.ଗ୍ରା) ଭୃଙ୍ଗରେଳ, ଭରୁଡ଼ ।
ବିଷଶୃଙ୍ଗୀ—ପୁଂ. ବି. (ବିଷ+ଶୃଙ୍ଗ+ଇନ୍) ଭୃଙ୍ଗରେଳ, ଭରୁଡ଼, ଭ୍ରମର ।
ବିଷଶୋଧନ—ବି. (୬ତତ୍) ଆୟୁର୍ବେଦୋକ୍ତ ବିଧିରେ ବିଷଘଟିତ ବସ୍ତୁକୁ ଗୋମୂତ୍ରାଦ ଦ୍ୱାରା ସିଦ୍ଧ କରିବା ପ୍ରକ୍ରିୟା
ବିଷସଂଯୋଗ—ପୁଂ. ବି. ସିନ୍ଦୂର ।
ବିଷସୂଚକ—ପୁଂ. ବି. (ବିଷସୂଚ+କ) ଚକୋରପକ୍ଷୀ (ଏହି ପକ୍ଷୀ ବିଷ ମିଶ୍ରିତ ଖାଦ୍ୟଦ୍ରବ୍ୟ ଦେଖିବା ମାତ୍ରେ ମରିଯାଆନ୍ତି) ।
ବିଷସ୍କନ୍ଦ—ପୁଂ.ବି. ଭୃଙ୍ଗରେଳ,ଭରୁଡ଼ ।
ବିଷହ—ତ୍ରି. ବିଂ. (ବିଷ+ହନ୍+ଅ) ବିଷଘ୍ନ, ବିଷନାଶନ, (ସ୍ତ୍ରୀ) ବିଷହା ।
ବିଷହନ୍ତା—ପୁଂ.ବି. ବିଷନାଶକ ଶିରୀଷ ବୃକ୍ଷ ।
ବିଷହନ୍ତ୍ରୀ—ସ୍ତ୍ରୀ ବି ଅପରାଜିତା, ନିର୍ବିଷା. ଶ୍ୱେତାପରାଜିତା ।
ବିଷହର—ତ୍ରି. ବିଂ. (ବିଷ+ହୃ+କ. ଅ) ବିଷନାଶକ, ଗରଳନାଶକ, (ସ୍ତ୍ରୀ) ବିଷହର,(ପୁଂ.ବି) ଗ୍ରନ୍ଥିପର୍ଣ୍ଣବିଶେଷ, ଧୃତରାଷ୍ଟ୍ରଙ୍କ ପୁତ୍ରବିଶେଷ ।
ବିଷହରି—ସ୍ତ୍ରୀ.ବି. ଦେବଦାଲୀ ଲତା, ନିର୍ବିଷା, ମନସାଦେବୀ ।
ବିଷହା—ସ୍ତ୍ରୀ. ବି. (ବିଷ+ହନ୍+ଆ) ଦେବଦାଲୀ ଲତା,ନିର୍ବିଷା ।
ବିଷହାରକ—ପୁଂ. ବି. ଭୂକଦମ୍ବ ।
ବିଷହାରିଣୀ—ସ୍ତ୍ରୀ. ବି. ନିର୍ବିଷା, ଏକପ୍ରକାର ତୃଣ ।
ବିଷହୃଦୟ—ତ୍ରି. ବିଂ. ଯାହାର ଅନ୍ତଃକରଣ ବିଷମୟ ।
ବିଷହ୍ୟ—ବିଂ. (ବି+ସହ୍+ମ୍.ଯ) ସହମାୟ, ନିଷ୍କେତବ୍ୟ, ନିର୍ଣ୍ଣେୟ,ସମ୍ଭବପର ।
ବିଷା—ସ୍ତ୍ରୀ. ବି. ଅତିବିଷା, ଲହଲଙ୍ଗଳିଆ, ପିତାଡରଡ଼ା, କୁଆମଇତା, କାକୋଲୀ, ବୁଦ୍ଧି ।
ବିଷା(ଷେ)ଇବା—ଗ୍ରା. କି ବିଷଯୁକ୍ତ କରିବା, ବିଷ ବୋଳିବା, ବିଷମୟ ହେବା ।
ବିଷାକ୍ତ—ତ୍ରି ବିଂ.(୩ତତ୍) ବିଷମିଶ୍ରିତ, ଗରଳପୂର୍ଣ୍ଣ, ବିଷଦଗ୍ଧ ।
ବିଷାଖ୍ୟା—ସ୍ତ୍ରୀ. ବି. ଶୁକ୍ଳକନ୍ଦାତବିଷା, ଶ୍ୱେତ ଆତାଇଚ ।
ବିଷାଗ୍ରଜ—ପୁଂ. ବି. ତରବାରୀ ।
ବିଷାଙ୍କୁର—ପୁଂ. ବି. ଶଲ୍ୟାସ୍ତ୍ର, ଶଲ୍ୟରୂପ ଅସ୍ତ୍ର । [ କନ୍ୟା ।
ବିଷାଙ୍ଗନା—ସ୍ତ୍ରୀ. ବି. ବିଷନାରୀ, ବିଷ-
ବିଷାଣ(ଣୀ)—ବି. (ବିଷ+କ.ଆନ+ଈ) ପଶୁର ଶୃଙ୍ଗ, ହସ୍ତୀ, ବରାହ ଆଦିଙ୍କ ଦାନ୍ତ,ମେଣ୍ଢାଶିଙ୍ଗା,ମହୁରାଗଛ, ଶିଙ୍ଗାବାଦ୍ୟ, କୁଡ଼, ବାରାହୀକନ୍ଦ, ଋଷଭକ, ତେନ୍ତୁଳି, ବିଛୁଆତି, କ୍ଷୀରକାକୋଲୀ ।
ବିଷାଣକ—ପୁଂ. ବି. (ବିଷାଣ+କ) ବିଷାଣ ଶବ୍ଦାର୍ଥ ।
ବିଷାଣାନ୍ତ—ପୁଂ. ବି. ଗଣେଶଦାନ୍ତ ।
ବିଷାଣିକା—ସ୍ତ୍ରୀ. ବି. (ବିଷାଣ+କ+ଆ)ମେଷଶୃଙ୍ଗୀ,କର୍କଟଶୃଙ୍ଗୀ, ଆବର୍ତ୍ତକୀ ଲତା, ଋଷଭକ, ଶିଂଘଡ଼ା, କାକୋଲୀ, ସପ୍ତ ଫଣିଆ,ଭରୁରୁଢ଼,କ୍ଷୀରକାକୋଲୀ, ତେନ୍ତୁଳି, ବିଛୁଆତି, ଅଜଶୃଙ୍ଗୀ ଚର୍ମକଷା, କଦଳୀବୃକ୍ଷ, ବିଷ, କହର, (ପୁଂ. ବି) ହସ୍ତୀ, ଶୂକର, ବୃଷ, ଷଣ୍ଢ, (ପୁଂ. ବିଂ. ବିଷାଣ+ଇନ୍) ଶୃଙ୍ଗୀ, ଶୃଙ୍ଗବିଶିଷ୍ଟ ।
ବିଷାଦ୍—ପୁଂ. ବି. (ବିଷ+ଅଦ୍+କ. କ୍ୱିପ୍) ବିଷଭକ୍ଷକ ଶିବ ।
ବିଷାଦ—ପୁଂ. ବି.(ବି+ସଦ୍+ଭା.ଅ) ଖେଦ,ଦୁଃଖ, ଜଡ଼ତା,କାର୍ଯ୍ୟେଅନିଚ୍ଛା, ମୂର୍ଖତା, ମନୋବେଦନା, (ଗ୍ରା. ବିଂ) ବିଷକ୍ତ, ଦୁଃଖପୂର୍ଣ୍ଣ ।
ବିଷାଦଗ୍ରସ୍ତ—ପୁଂ. ବିଂ.(୩ତତ୍) ବିଷଣ୍ଣ, (ସ୍ତ୍ରୀ) ବିଷାଦଗ୍ରସ୍ତା ।
ବିଷାଦଜନକ—ବିଂ. ଯାହା ବିଷାଦ ଜନ୍ମାଏ
ବିଷାଦନ—କ୍ଲୀ. ବି. ବିଷାଦ, ଖେଦ, ଦୁଃଖ, ମନୋବେଦନା ।
ବିଷାଦମା—ସ୍ତ୍ରୀ.ବି.ଲୋଣୀ ଲତା,ଦ୍ୱାପର-

ମାଳୀ, ଇନ୍ଦ୍ରବାରୁଣୀ, ମହାକାଳ ।
ବିଷାଦବାନ୍—ପୁଂ. ବିଂ. ବିଷାଦଯୁକ୍ତ, ବିଷଣ୍ଣ, (ସ୍ତ୍ରୀ) ବିଷାଦବତୀ ।
ବିଷାଦମୟ—ବିଂ. ( ବିଷାଦ+ମୟ ) ଖେଦପୂର୍ଣ୍ଣ, (ସ୍ତ୍ରୀ) ବିଷାଦମୟୀ ।
ବିଷାଦମୂଳକ—ବିଂ. ( ବ.ବ୍ରୀ ) ଯେଉଁ ଘଟଣାର ମୂଳରେ ବିଷାଦ ଥାଏ ।
ବିଷାଦରହିତ—ବିଂ. (୩ତତ୍) ଖେଦବିହୀନ ।
ବିଷାଦାନ୍ତକ—ବିଂ. ( ବିଷାଦ+ଅନ୍ତ +କ) ଯାହା ବିଷାଦରେ ସମାପ୍ତ ହୁଏ ।
ବିଷାଦିତ—ପୁଂ. ବିଂ. (ବିଷାଦ+ଇତ) ଦୁଃଖିତ, ଖେଦଯୁକ୍ତ, (ସ୍ତ୍ରୀ)ବିଷାଦିତା ।
ବିଷାଦୀ—ପୁଂ. ବିଂ. (ବିଷାଦ+ଇନ୍) ବିଷଣ୍ଣ, ବିଷାଦଯୁକ୍ତ, ଅପ୍ରଫୁଲ୍ଲ, ଯେ ବିଷାଦ କରୁଥାଏ, (ସ୍ତ୍ରୀ) ବିଷାଦିନୀ ।
ବିଷାନନ—ପୁଂ. ବି. (ବ.ବ୍ରୀ) ସର୍ପ ।
ବିଷାନ୍ତକ—ପୁଂ. ବି. ( ବିଷ+ଅନ୍ତକ ) ଶିବ, (ବିଂ) ବିଷହର ।
ବିଷାପବାଦୀ—ପୁଂ. ବିଂ. ବିଷତୁଲ୍ୟ ନିନ୍ଦାବାକ୍ୟ ପ୍ରୟୋଗକାରୀ ।
ବିଷପହ—ପୁଂ. ବିଂ. (ବିଷ+ଅପ+ହନ୍+କ.ଅ) ଯାହା ବିଷ ନାଶକରେ, (ସ୍ତ୍ରୀ) ବିଷାପହା ।
ବିଷପହରଣ—କ୍ଲୀ.ବି.ବିଷନାଶକ,ବିଷାପନୋଦନ, ନିର୍ବିଷୀକରଣ ।
ବିଷାପହା—ପୁଂ. ବି. (ବିଷ+ଅପ+ହନ୍+କ.ଅ+ଆ) କୃଷ୍ଣମୁଷ୍କକ ବୃକ୍ଷ, ଇନ୍ଦ୍ରବାରୁଣୀ, ନିର୍ବିଷା,ନାଗଦମନୀ,ଅର୍କପର୍ଣୀ, ହିପର୍ଣ୍ଣୀ ମହାକନ୍ଦ, ଶାଳପର୍ଣ୍ଣୀ, ବନ୍ଧୁଆଦି ।
ବିଷାମୃତ—ବି. ଗରଳ ଓ ଅମୃତ ।
ବିଷାମୃତମୟ—ବିଂ.ଗରଳ ଓ ଅମୃତଯୁକ୍ତ
ବିଷାୟୁଧ—ବି. ବିଷଘଟିତ ଔଷଧଦ୍ରବ୍ୟ ।
ବିଷାସୀ—ବି. ବିଂ. (ବି+ସୋ+ଇନ୍) ତୀକ୍ଷ୍ଣ ଧାର, ଦାଢୁଆ ।
ବିଷାୟୁଧୀୟ—ତ୍ରି. ବିଂ. ସର୍ପସମ୍ବନ୍ଧୀୟ, ବିଷାକ୍ତାସ୍ତ୍ରସମ୍ବନ୍ଧୀୟ,ବିଷଦାତାସମ୍ବନ୍ଧୀୟ
ବିଷାର—ପୁଂ. ବି. ( ବିଷ+ଋ+ଅ ) ସର୍ପ ।
ବିଷାରଣ—ପୁଂ.ବି.(୬ତତ୍)କୃଷ୍ଣ ଧୁତୁରା, କଳା ବା କନକ ଦୁଦୁରା ।
ବିଷାର୍ଣ୍ଣ—ପୁଂ.ବି. (ବିଷ+ଅର୍ଣ୍ଣ)ମହାଚଞ୍ଚୁ ଶାକ, ପୂତିକରଞ୍ଜ, (ବିଂ) ବିଷନାଶକ
ବିଷାଲା—ସ୍ତ୍ରୀ.ବି. ମତ୍ସ୍ୟବିଶେଷ ।
ବିଷାଳୁ—ତ୍ରି.ବିଂ. (ବିଷ+ଆଳୁ) ବିଷଯୁକ୍ତ, ବିଷାକ୍ତ ।
ବିଷାମହ—ତ୍ରି.ବିଂ. ବିଶେଷରୂପେ ଅଭିଭବକାରୀ ।
ବିଷାସ୍ୟ—ପୁଂ.ବି. (ବ.ବ୍ରୀ) ସର୍ପ, (ବିଂ) ବିଷଯୁକ୍ତ ମୁଖ ।
ବିଷାସ୍ୟା—ସ୍ତ୍ରୀ.ବି. ଭଲ୍ଲାତକ, ଭାଲିଆ ।
ବିଷାସ୍ତ୍ର—ପୁଂ.ବି. ( ବିଷ+ଅସ୍ତ୍ର ) ସର୍ପ, (କ୍ଲୀ) ବିଷଯୁକ୍ତ ଅସ୍ତ୍ର, (ବିଂ) ଗରଳ, ବିଷବାଣ ।
ବିଷିଆଙ୍ଗଠି—ଗ୍ରା.ବି. ତର୍ଜନୀ ।
ବିଷିକପୁଷ୍ପ—ଗ୍ରା.ବି. ( ବୈଦ୍ୟକ ) ବୃକ୍ଷବିଶେଷ ।
ବିଷିତ—ବିଂ. ପ୍ରକୃଷ୍ଟ, ବିଶିଷ୍ଟ, ବିବଦ୍ଧ, କ୍ଷିପ୍ତ, ବିକ୍ଷିପ୍ତ ।
ବିଷିତସ୍ତୁକ—ବି. ବିଶିଷ୍ଟ କେଶସମୂହ, ପ୍ରକୀର୍ଣ୍ଣ କେଶସମୂହ, ବିକ୍ଷିପ୍ତ କେଶକଳାପ ।
ବିଷିତସ୍ତୁପ—ତ୍ରି. ବିଂ. ସ୍ୱଚ୍ଛନ୍ଦଭାବେ ଇଚ୍ଛାସ୍ତୁଯୁକ୍ତ ।
ବିଷୀ—ପୁଂ.ବିଂ. ( ବିଷ+ଇନ୍ ) ବିଷବିଶିଷ୍ଟ, ବିଷମୟ, ବିଷଧର, (ବି)ବିଷମୟ ସର୍ପ, ବିଷମୟ ପଦାର୍ଥ ।
ବିଷୀଦନ୍—ତ୍ରିଂ. (ବି+ସଦ୍+କ.ଅତ୍) ବିଷାଦଗ୍ରସ୍ତ, ବିଷଣ୍ଣ । [ ରୂପ ।
ବିଷୁ—ଅବ୍ୟ.(ବିଷ+ଉ)ସାମ୍ୟ,ନାନା
ବିଷୁପ(ବ)—କ୍ଲୀ. ବି. (ବିଷୁ+ପା+କ.ଅ) ସମଗ୍ରହ ଦିବକାଳ, ଖଗୋଳର ମେଷ ଓ ତୁଳରାଶିରେ ଯେଉଁ କଳ୍ପିତ ବିନ୍ଦୁଦ୍ୱୟରେ ସୂର୍ଯ୍ୟ ସମଗ୍ରହ ଦିବକାଳ ପରେ ପ୍ରବେଶନ୍ତି,ମେଷ ସଂକ୍ରାନ୍ତି, ମହାବିଷୁବ ସଂକ୍ରାନ୍ତି,ପଣାସଂକ୍ରାନ୍ତି,ତୁଳ ବା କାର୍ତ୍ତିକ ସଂକ୍ରାନ୍ତି ।
ବିଷୁବ—କ୍ଲୀ.ବି. ବିଷୁପ ଦେଖ ।
ବିଷୁବଚ୍ଛାୟା—ବି.ଠିକ୍ ଦ୍ୱିପ୍ରହର ବେଳେ ସୂର୍ଯ୍ୟ ଘଡ଼ିର ଦଣ୍ଡର ଯେଉଁ ଛାୟା ତଳେ ପଡ଼େ । [ ଦେଖ ।
ବିଷୁବତ୍—ବି, ବିଷୁପାତ ଦେଖ,ବିଷୁବତ୍
ବିଷୁବନ୍ତୀ—ଗ୍ରା.ବି ସୁଷୁମ୍ନା ନାଡ଼ିବିଶେଷ
ବିଷୁବରେଖା—ସ୍ତ୍ରୀ.ବି. ନିରକ୍ଷ ରେଖା, ଉତ୍ତର ଓ ଦକ୍ଷିଣ ମେରୁଠାରୁ ଉଭୟ ଦିଗରେ ସମ ଦୂରବର୍ତ୍ତୀ ପୃଥିବୀଗୋଳର ଚତୁର୍ଦ୍ଦିଗରେ ଦେଖାଥିବା ମଣ୍ଡଳାକାର କଳ୍ପିତ ରେଖା ।
ବିଷୁବସଂକ୍ରାନ୍ତି—ବି. ସୂର୍ଯ୍ୟ ବର୍ଷକରେ ଯେଉଁ ଦିନଦ୍ୱୟ ବିଷୁବ ରେଖା ଉପରେ ଗମନ କରନ୍ତି ତହିଁର ପରବର୍ତ୍ତୀ ସଂକ୍ରାନ୍ତିଦ୍ୱୟ, ଜଳ ବିଷୁବ ସଂକ୍ରାନ୍ତି ଓ ମହା ବିଷୁବ ସଂକ୍ରାନ୍ତି, ମେଷ ଓ ତୁଳସଂକ୍ରାନ୍ତି ।
ବିଷୁଚକ୍ର—ପୁ.ବି. ବିଷୁଚକା ଦେଖ ।
ବିଷୂଚିକା—ସ୍ତ୍ରୀ.ବି.ବିସୂଚିକା, ହଇଜା ।
ବିଷ୍ଟେ—ଗ୍ରା.ବି. ବିଷ୍ଟି, (ବିଂ) ଏକବିଷା ପରିମିତ ମାପ ।
ବିଷ୍ଟୋଇ—ଗ୍ରା.ବି. ବିଷ୍ଣୋଇ ଦେଖ, ହିସାବପତ୍ର ଲେଖିବା କର୍ମଗୃହସ୍ଥ, ଜଣୋପାଧିବିଶେଷ, (ଗ୍ରା.ବିଂ) ସଂସାରବିଷୟାସକ୍ତ ।
ବିଷୋଇବା—ଗ୍ରା.କ୍ରି. ଆଲିଙ୍ଗନକରିବା
ବିଷୋଢ଼—ବିଂ. ( ବି+ସହ୍+ତ ) ଅସହିଷ୍ଣୁ, ଅସହନକାରୀ ।
ବିଷୌଷଧୀ—ସ୍ତ୍ରୀ.ବି. (ବିଷ+ଔଷଧୀ) ନାଗଦନ୍ତୀ ।
ବିଷ୍କ—ପୁଂ.ବି. ବିଂଶତି ବର୍ଷୀୟ ହସ୍ତୀ
ବିଷ୍କନ୍ଦ—ବି. (ବି+ସ୍କନ୍ଦ୍+ଘ.ଅ)ଇତସ୍ତତଃ ଖେଳେଇ ଦେବା, ଦୁଃସ୍ଥାନ ।
ବିଷ୍କ(ଷ୍କୁ)ମ୍ଭ—ବି. (ବି+ସ୍କମ୍ଭ୍+ଣ.ଅ) ଜ୍ୟୋତିଃଶାସ୍ତ୍ରୋକ୍ତ ୨୭ ଯୋଗ ମଧ୍ୟରୁ ପ୍ରଥମ ଯୋଗ, ବ୍ୟାଘାତ, ନାଟକର ଅଙ୍ଗବିଶେଷ, ବିଷ୍କମ୍ଭକ ଦେଖ, ଗୋଲକର ମଧ୍ୟରେଖା,ବୃତ୍ତର ବ୍ୟାସ, ଅର୍ଗଳ, ବୃକ୍ଷସ୍ତମ୍ଭ, ମନକୁ ସ୍ଥିର କରିବା-

ପାଇଁ ଯୋଗୀମାନଙ୍କର ଆସନବିଶେଷ, ବିସ୍ତାର, ଦୈର୍ଘ୍ୟ ।
ବିଷ୍କମ୍ଭକ—ବି. ନାଟ୍ୟାଙ୍ଗବିଶେଷ,ନାଟ୍ୟାଙ୍କସ୍ଥ ଇତିବୃତ୍ତର ନୀରସ ଅଂଶ, ଏହା ସଂକ୍ଷେପରେ ଅପ୍ରଧାନ ବ୍ୟକ୍ତିର ମୁଖରେ କଥିତ ହୋଇଥାଏ ।
ବିଷ୍କମ୍ଭୀ—ବି. (ବି+ସ୍କମ୍ଭ+ଇନ୍)ଅର୍ଗଳ, କିଳଣି, ଶିକୁଳି ।
ବିଷ୍କର—ପୁଂ.ବି. (ବି+କୃ+ଅ)ଅର୍ଗଳ, କିଳଣି, ଖିଲ, ଦାନବବିଶେଷ ।
ବିଷ୍କଳ—ପୁଂ. ବି. ( ବିଷ+କଳ+ଅ ) ଗ୍ରାମ୍ୟ ଶୂକର, ଘୁଷୁରି ।
ବିଷ୍କିର—ପୁଂ. ବି. ( ବି+କୃ+କ.ଅ ) ବିକୀର୍ଣ୍ଣକରଜାତୀୟ ସର୍ପବିଶେଷ,କୁକୁଡ଼ାଜାତୀୟ ପକ୍ଷୀ, (ଗ୍ରା.ଅ) ଖେଳାଇବା, ଚଣପକାଇବା ।
ବିଷ୍କିବା—ଗ୍ରା.କ୍ରି. (ବାଛୁରୀ ବଡ଼ ହୋଇଯାଇଥିବା ଗାଈ) ଦୁଗ୍ଧସ୍ରାବନହେବା ।
ବିଷ୍କୁମ୍ଭ—ବି. ବିଷ୍କମ୍ଭ ଦେଖ ।
ବିଷ୍କୁମ୍ଭୀ—ବି.(ବିଷ୍କୁମ୍ଭ+ଇନ୍)କବାଟର ଅର୍ଗଳ, କିଳଣି ।
ବିଷ୍ଟ—ତ୍ରି.ବିଂ. (ବିଶ୍+କ.ତ) ପ୍ରବିଷ୍ଟ, ଆବିଷ୍ଟ, ଆଶ୍ରିତ ।
ବିଷ୍ଟପ୍—ସ୍ତ୍ରୀ.ବି. ସ୍ୱର୍ଗଲୋକ ।
ବିଷ୍ଟପ—କ୍ଲୀ.ବି.(ବିଷ+ଅଧି.ଟପ୍)ଜଗତ ଭୁବନ, ଲୋକ, ଜୀବ, ଜଗତ୍ପାଳ ।
ବିଷ୍ଟବ୍ଧ—ତ୍ରି.ବିଂ. (ବି+ସ୍ତମ୍ଭ+ମି.ତ) ଦୃଢବଦ୍ଧ, ବାଧାଯୁକ୍ତ, ରୁଦ୍ଧ, ଅବରୁଦ୍ଧ, ଦୃଢରୂପେ ବସାଯାଇଥିବା, ଉତ୍ତୋଳିତ
ବିଷ୍ଟବ୍ଧି—ସ୍ତ୍ରୀ.ବି. (ବି+ସ୍ତମ୍ଭ+ତି)ବିଷ୍ଟମ୍ଭ
ବିଷ୍ଟମ୍ଭ—ପୁଂ.ବି. ( ବି+ସ୍ତମ୍ଭ+ଭା.ଅ ) ପ୍ରତିବନ୍ଧ, ଆକ୍ରମଣ, ବାଧା, ଅଟକ, ମୂତ୍ରକୃଚ୍ଛ୍ରରୋଗ, ଦୃଢତା, ସ୍ଥିରଭାବ, ମଳରୋଧ, ପରର ସମ୍ପତ୍ତିକୁ ଆକ୍ରମଣ ବା ଅଟକ କରିବା,ପହଞ୍ଚ ପକାଇବା ।
ବିଷ୍ଟମ୍ଭକର—ତ୍ରି.ବିଂ. (ବିଷ୍ଟମ୍ଭ+କୃ+ଅ) ଆଧ୍ମାନକାରକ ।
ବିଷ୍ଟମ୍ଭୟିଷୁ—ତ.ବିଂ. ସ୍ତମ୍ଭନ କରିବାକୁ ଇଚ୍ଛୁକ ।
ବିଷ୍ଟମ୍ଭୀ—ପୁଂ. ବିଂ. ( ବି+ସ୍ତମ୍ଭ୍+ଇନ୍) ବିଷ୍ଟମ୍ଭ ରୋଗଜନକ, ଅବରୋଧକାରୀ, ମଳରୋଧଜନକ, ପ୍ରତିରୋଧକାରୀ ।
ବିଷ୍ଟର—ବି. (ବି+ସ୍ତୃ+ଅ)ବୃକ୍ଷ, ପୀଠାଦି ଆସନ, କୁଶାସନ, ଦର୍ଭମୁଷ୍ଟି, ଦୈବ ପୈତ୍ର କର୍ମରେ ବ୍ରାହ୍ମଣ ସ୍ଥାନରେ କଳ୍ପିତ କୁଶର ମୋଡ଼ା,(ଗ୍ରା.ବି.ଲ.ଅର୍ଥ) ଶ୍ରେଷ୍ଠ ମନୁଷ୍ୟ ।
ବିଷ୍ଟରଭାକ୍—ତ୍ରି.ବିଂ. ପ୍ରାପ୍ତାସନ ।
ବିଷ୍ଟରଶ୍ରବାଃ—ପୁଂ. ବି. ଭଗବାନ୍,କୃଷ୍ଣ, ନାରାୟଣ ।
ବିଷ୍ଟରସ୍ଥ—ତ୍ରି.ବିଂ. ଆସନେ ଉପବିଷ୍ଟ ବା ଶୟନ କରିଥିବା ।
ବିଷ୍ଟରା—ସ୍ତ୍ରୀ.ବି. ଗୁଣ୍ଡ୍ରାସିମୀବୃକ୍ଷ ।
ବିଷ୍ଟରାଟ୍—ପୁଂ.ବି. ରୌପ୍ୟ ।
ବିଷ୍ଟରୁହା—ସ୍ତ୍ରୀ.ବି.ସ୍ୱର୍ଣ୍ଣକେତକୀ,କେତକୀଗଛ ।
ବିଷ୍ଟରୋତ୍ତର—ତ୍ରି, ବିଂ. କୁଶାଚ୍ଛାଦିତ, କୁଶମଣ୍ଡିତ ।
ବିଷ୍ଟା—ବି. ବିଷ୍ଠା ଦେଖ ।
ବିଷ୍ଟାର—ପୁଂ.ବି. (ବି+ସ୍ତୃ+ଣିଚ୍+ଅ) ଛନ୍ଦୋବିଶେଷ, ପଙ୍କ୍ତି ଛନ୍ଦ ।
ବିଷ୍ଟାରୁହା—ସ୍ତ୍ରୀ. ବି. ବିଷ୍ଟରୁହା, ସ୍ୱର୍ଣ୍ଣକେତକୀ ।
ବିଷ୍ଟି—ସ୍ତ୍ରୀ. ବି. ( ବିଷ୍+ତି ) ବେଠି, ବିନା ବେତନରେ କାର୍ଯ୍ୟ କରିବା, ବେତନ, କ୍ଷେପକରଣ, ବିଷ୍ଟିଦେବା, ଯନ୍ତ୍ରଣାଦେବା, ପାପର ଫଳସ୍ୱରୂପ ନରକରେ ବାସ, ( ଲ.ଅର୍ଥ ) ଅଶୁଭ ଘଟଣା, ବିଘ୍ନ, ବାଧା, ଏକାଦଶକରଣ ମଧ୍ୟରୁ ୭ମ କରଣ, ବ୍ୟାପିବା, (ବିଂ) କର୍ମକର ।
ବିଷ୍ଟିକର—ପୁଂ.ତ୍ରି. ପୀଡ଼ନକାରୀ,ଅତ୍ୟାଚାରୀ ।  [ କର ।
ବିଷ୍ଟିକୃତ୍—ପୁଂ.ବିଂ.ଅନିଷ୍ଟକାରକ,ବିଷ୍ଟି-
ବିଷ୍ଟିଭଦ୍ର—ବି. ଅଶୁଭ ଯୋଗଯୁକ୍ତ ତିଥିବିଶେଷ ।
ବିଷ୍ଟୀମୀ—ବିଂ.କ୍ଲେଦଯୁକ୍ତ,କ୍ଲେଦବିଶିଷ୍ଟ ।
ବିଷ୍ଟୁତ—ସ୍ତ୍ରୀ.ବି. ବିବିଧପ୍ରକାର ସ୍ତୁତି, ନାନାପ୍ରକାର ସ୍ତବ ।
ବିଷ୍ଠ—ଗ୍ରା.ବି. ବିଷ୍ଠା ଦେଖ ।
ବିଷ୍ଠବନ୍ଧ—ଗ୍ରା.ବି. ମଳରୋଧ ।
ବିଷ୍ଠଳ—କ୍ଲୀ.ବି. ବିଦୂରସ୍ଥଳ, ଦୂରବର୍ତ୍ତୀ ସ୍ଥାନ ।
ବିଷ୍ଠା—ସ୍ତ୍ରୀ.ବି. (ବି+ସ୍ଥା+ଅ) ପୁରୀଷ, ମଳ, ଉଦର ।
ବିଷ୍ଠାକୀଟ—ବି. (ବିଷ୍ଠା+କୀଟ) ବିଷ୍ଠାରେ ଜନ୍ମିବା କ୍ଷୁଦ୍ର କୃମି, ବିଷ୍ଠାଖାଦକ ଏକପ୍ରକାର ଦୃଢ଼ପକ୍ଷୀ ଷଟ୍ପଦୀ କୀଟ, ଗୋବରପୋକ ।
ବିଷ୍ଠାକୁଣ୍ଡ—ବି. ବିଷ୍ଠାପୂର୍ଣ୍ଣ ପାତ୍ର,ନରକର ଅଂଶବିଶେଷ, (ଲ.ଅର୍ଥ) ଅତି ଘୃଣ୍ୟ ସ୍ଥାନ ।
ବିଷ୍ଠାକୃମି—ବି. (କ.ଧା) ବିଷ୍ଠାରେ ଜନ୍ମିବା କୀଟ,ଉଦରାଭ୍ୟନ୍ତର ବିଷ୍ଠାରେ ହେବା କୀଟ ।
ବିଷ୍ଠାଖାଇବା—ଗ୍ରା.କ୍ରି. (ଗାଳି) ଅଖାଦ୍ୟ ଭୋଜନ କରିବା, ଗୁହ ଖାଇବା, (ଲ. ଅର୍ଥ)କୌଣସି ଘୃଣିତ କାର୍ଯ୍ୟ କରିବା ।
ବିଷ୍ଠାବଣ—ଗ୍ରା.ବି. ବିଷ୍ଠାପୂର୍ଣ୍ଣ ସ୍ଥାନ,ଗୁହବଣ ।
ବିଷ୍ଠାଭକ୍ଷକ—ପୁଂ. ବିଂ. ବିଷ୍ଠାଭୋଜନକାରୀ, (ଲ.ଅର୍ଥ) ଘୁଷୁଖୋର, ସୁଧଖୋର ।
ବିଷ୍ଠାଭୂ—ପୁଂ.ବି. (ବିଷ୍ଠା+ଭୂ+କ୍ୱିପ୍) ବିଷ୍ଠାଜାତ କୃମି ।
ବିଷ୍ଠାମୟ—ବିଂ. ବିଷ୍ଠାରେ ପୂର୍ଣ୍ଣ,ବିଷ୍ଠାପରି ଦୁର୍ଗନ୍ଧମୟ ।
ବିଷ୍ଠାବ୍ରାଜୀ—ପୁଂ. ବିଂ. (ବିଷ୍ଠା+ବ୍ରଜ୍+ଇନ୍) ବିଷ୍ଠାରେ ଭ୍ରମଣକାରୀ ।
ବିଷ୍ଣୁ—ପୁଂ.ବି.( ବିଷ୍+କ.ନୁକ) ଅଗ୍ନି, ଶୁଦ୍ଧତା, ବସୁଦେବତା, ଦ୍ୱାଦଶ ଆଦିତ୍ୟଙ୍କ ଅନ୍ୟତମ, ଧର୍ମଶାସ୍ତ୍ର ପ୍ରଣେତା ମୁନିବିଶେଷ, ବ୍ରହ୍ମାଙ୍କ ରୂପବିଶେଷ, ଧାମିକ ବ୍ୟକ୍ତି, ନାରାୟଣ, ହରି,ପରମେଶ୍ୱର, ଶ୍ରବଣାନକ୍ଷତ୍ର ।
ବିଷ୍ଣୁଅସ୍ତ୍ର—ଗ୍ରା.ବି. ସୁଦର୍ଶନ ଚକ୍ର

ବିଷ୍ଣୁଋକ୍ଷ—କ୍ଲୀ.ବି. (କ.ଧା)ଶ୍ରବଣାନକ୍ଷତ୍ର
ବିଷ୍ଣୁକନ୍ଦ—ବି. କୋଙ୍କଣ ଦେଶଜାତ ଔଷଧ ଗୁଳ୍ମବିଶେଷ ।
ବିଷ୍ଣୁକରବା—ଗ୍ରା.କ୍ରି. ସଙ୍କଳ୍ପାଦରେ ଓ କୌଣସି ପାପାଦ ଅଶୁଭ କର୍ମ କରିବାର ଶୁଣିବା ପରେ ବିଷ୍ଣୁନାମୋଚ୍ଚାରଣ କରିବା ।
ବିଷ୍ଣୁକାଞ୍ଚୀ—ସ୍ତ୍ରୀ. ବି. ଦାକ୍ଷିଣାତ୍ୟର ଗୋଟିଏ ପ୍ରାଚୀନ ନଗରୀ ଓ ତୀର୍ଥ ।
ବିଷ୍ଣୁକାନ୍ତା—ବି. ନୀଳ ଅପରାଜିତା ।
ବିଷ୍ଣୁକୁଣ୍ଡ—ଲୋହିତ ନଦୀତୀରସ୍ଥ ପ୍ରାଚୀନ ନଗରବିଶେଷ ।
ବିଷ୍ଣୁକ୍ରାନ୍ତ—ପୁଂ. ବି. ସଙ୍ଗୀତର ତାଳବିଶେଷ ।
ବିଷ୍ଣୁକ୍ରାନ୍ତା—ସ୍ତ୍ରୀ.ବି. (ବିଷ୍ଣୁ + କ୍ରାନ୍ତ + ଆ) ନୀଳ ଓ ଶ୍ୱେତ ଅପରାଜିତା, ବାରାହୀକନ୍ଦ, ନୀଳଫୁଲଯୁକ୍ତ ବନବନା ଗୁଳ୍ମ, ଜ୍ୟୋତିଷୋକ୍ତ ସଙ୍କ୍ରାନ୍ତିବିଶେଷ, ତନ୍ତ୍ରୋକ୍ତ ପୃଥିବୀର ଦେଶବିଶେଷ ।
ବିଷ୍ଣୁକ୍ଷେତ୍ର—କ୍ଲୀ. ବି. (ଷତତ୍ପୁ) ଯେଉଁ କ୍ଷେତ୍ର ବା ତୀର୍ଥସ୍ଥାନର ବିଷ୍ଣୁ ରକ୍ଷକ ଅଟନ୍ତି ।
ବିଷ୍ଣୁଗଙ୍ଗା—ସ୍ତ୍ରୀ. ବି. ନଦୀ ବିଶେଷ ।
ବିଷ୍ଣୁଗଣକ—ଜଣେ ପ୍ରସିଦ୍ଧ ଜ୍ୟୋତିର୍ବିଦ୍ ।
ବିଷ୍ଣୁଗାଥା—ସ୍ତ୍ରୀ. ବି. ବିଷ୍ଣୁକଥା, ବିଷ୍ଣୁ ସମ୍ବନ୍ଧୀୟ ଆଳାପ ବା ଆଲୋଚନା, (ପୁଂ) ବେଦାଦ ।
ବିଷ୍ଣୁଗୁପ୍ତ—ପୁଂ.ବି.(ଷତତ୍ପୁ)ନନ୍ଦବଂଶୀୟ ରାଜା ଚନ୍ଦ୍ରଗୁପ୍ତଙ୍କ ସଭା ପଣ୍ଡିତ,ଚାଣକ୍ୟ, କୌଟିଲ୍ୟ ମୁନି, ବିଷ୍ଣୁକନ୍ଦ,କନ୍ଦମୂଳ ।
ବିଷ୍ଣୁଗୃହ—କ୍ଲୀ.ବି. ବିଷ୍ଣୁମନ୍ଦିର, ତାମ୍ରଲିପ୍ତ ନଗର, ସ୍କନ୍ଦପୁର ନାମକ ନଗର
ବିଷ୍ଣୁଚକ୍ର—କ୍ଲୀ. ବି. (ଷତତ୍ପୁ) ହସ୍ତସ୍ଥ ରେଖାମୟ ଚକ୍ରବିଶେଷ, ସୁଦର୍ଶନ ଚକ୍ର, ବିଷ୍ଣୁଙ୍କ ଅସ୍ତ୍ର ।
ବିଷ୍ଣୁତତ୍ତ୍ୱ—କ୍ଲୀ.ବି.(ଷତତ୍ପୁ)ବିଷ୍ଣୁମାହାତ୍ମ୍ୟ
ବିଷ୍ଣୁତିଥି—ବି. ହରିବାସର, ଏକାଦଶୀ ଓ ଦ୍ୱାଦଶୀତିଥି ।
ବିଷ୍ଣୁତୈଳ—କ୍ଲୀ. ବି. ବାତରୋଗର ତୈଳୌଷଧ ବିଶେଷ ।
ବିଷ୍ଣୁଦୂତ—ବି. (ଷତତ୍ପୁ)ମୃତ୍ୟୁ ସମୟରେ ବିଷ୍ଣୁଭକ୍ତ ବ୍ୟକ୍ତିଙ୍କୁ ବୈକୁଣ୍ଠକୁ ନେଇଯିବା ପାଇଁ ବିଷ୍ଣୁଙ୍କ ପ୍ରେରିତ ଦୂତ ।
ବିଷ୍ଣୁଦୈବତ(ତ୍ୟ)—ବିଷ୍ଣୁ ଦେବତାଙ୍କ ଦ୍ୱାରା ଅଧିଷ୍ଠିତ, ବିଷ୍ଣୁ ଯାହାର ଇଷ୍ଟଦେବ, ବୈଷ୍ଣବ, (ବି) ଶ୍ରବଣାନକ୍ଷତ୍ର, ବୈଷ୍ଣବ ।
ବିଷ୍ଣୁଦୈବତ୍ୟା—ସ୍ତ୍ରୀ. ବି. ଏକାଦଶୀ ଓ ଦ୍ୱାଦଶୀତିଥି ।
ବିଷ୍ଣୁଦ୍ୱିଟ୍—ପୁଂ.ବି.ଅସୁର, ଜଣେ ଜୈନ
ବିଷ୍ଣୁଦ୍ୱୀପ—କ୍ଲୀ. ବି. ଦ୍ୱୀପବିଶେଷ ।
ବିଷ୍ଣୁଧର୍ମ—ପୁଂ. ବି. ଭକ୍ତିଗ୍ରନ୍ଥ ବିଶେଷ, ବୈଷ୍ଣବଧର୍ମ, ବିଦ୍ୟାବିଶେଷ ।
ବିଷ୍ଣୁଧର୍ମୋତ୍ତର—କ୍ଲୀ. ବି.ପୁରାଣ ସଂହିତା ବିଶେଷ ।
ବିଷ୍ଣୁଧାରା—ସ୍ତ୍ରୀ. ବି. ତୀର୍ଥ ବିଶେଷ, ହିମବତ୍ପାଦ ନିମ୍ନଗା ନଦୀ ବିଶେଷ
ବିଷ୍ଣୁନଦୀ—ସ୍ତ୍ରୀ.ବି. ନଦୀ ବିଶେଷ, ବିଷ୍ଣୁପାଦୋଦ୍ଭବା ନଦୀ ।
ବିଷ୍ଣୁପଞ୍ଜର—କ୍ଲୀ. ବି. (ଷତତ୍ପୁ) ବିଷ୍ଣୁକବଚ ବିଶେଷ, ପୁରୀରେ ବିରାଜିତ ଦାରୁମୟ ବିଷ୍ଣୁ ବିଗ୍ରହ, ମନୁଷ୍ୟର କଙ୍କାଳ ।
ବିଷ୍ଣୁପତ୍ନୀ—ସ୍ତ୍ରୀ.ବି.(ଷତତ୍ପୁ) ଲକ୍ଷ୍ମୀ,ଅଦିତି
ବିଷ୍ଣୁପଦ—କ୍ଲୀ. ବି. (ବ. ବ୍ରୀ) ଆକାଶ, ଶୂନ୍ୟ, (ଷତତ୍ପୁ) କ୍ଷୀରସମୁଦ୍ର, ପଦ୍ମ, ତୀର୍ଥ ବିଶେଷ, କୈଳାସପର୍ବତର ସ୍ଥାନ ବିଶେଷ, ପର୍ବତ ବିଶେଷ, ବିଷ୍ଣୁଙ୍କ ସ୍ଥାନ, ଭୂମଧ୍ୟ, ବିଷ୍ଣୁଙ୍କ ପଦ, ଗୟାରେ ଥିବା ପ୍ରସ୍ତରରେ ଅଙ୍କିତ ବିଷ୍ଣୁଙ୍କ ପାଦ ।
ବିଷ୍ଣୁପଦା—ସ୍ତ୍ରୀ. ବି. ( ବିଷ୍ଣୁପଦ + ଆ ) ଗଙ୍ଗାନଦୀ, ବିଷ୍ଣୁପଦୀ ସଙ୍କ୍ରାନ୍ତି, ବିଷୁବ ରେଖା ସହିତ ସୂର୍ଯ୍ୟମଣ୍ଡଳର ସଂଯୋଗ ସ୍ଥାନ ।
ବିଷ୍ଣୁପଦୀ—ସ୍ତ୍ରୀ. ବି. ( ବିଷ୍ଣୁପଦ + ଈ ) ଗଙ୍ଗାନଦୀ, ବୃଷ, ସିଂହ, ବିଛା ଓ କୁମ୍ଭ ମାସର ରବି ସଙ୍କ୍ରମଣ ଦିବସ, ବିଷୁବରେଖା ସଙ୍ଗେ ଅୟନମଣ୍ଡଳର ସଂଯୋଗ ସ୍ଥଳ ।
ବିଷ୍ଣୁପଦୀଚକ୍ର—କ୍ଲୀ. ବି. ଜ୍ୟେଷ୍ଠ, ମାର୍ଗଶିର, ଭାଦ୍ର ଓ ଫାଲ୍ଗୁନମାସର ସଙ୍କ୍ରାନ୍ତି, ଶୁଭାଶୁଭଜ୍ଞାପକ ଚକ୍ର ।
ବିଷ୍ଣୁପରାୟଣ—ପୁଂ. ବିଂ.(ବ.ବ୍ରୀ)ବିଷ୍ଣୁଭକ୍ତ, ବୈଷ୍ଣବ, ହରିଭକ୍ତି-ପରାୟଣ ।
ବିଷ୍ଣୁପର୍ଣ୍ଣିକା—ସ୍ତ୍ରୀ.ବି. ପୃଶ୍ନିପର୍ଣ୍ଣୀ, ଗୁଡ଼ଲଥା । [ ଅଁଳା ।
ବିଷ୍ଣୁପର୍ଣ୍ଣୀ—ସ୍ତ୍ରୀ.ବି. ଭୂମ୍ୟାମଲକୀ, ଭୂଇଁ
ବିଷ୍ଣୁପାଦ—କ୍ଲୀ. ବି. ବିଷ୍ଣୁପଦଚିହ୍ନ, ପ୍ରଧାନ ଶୈଳବିଶେଷ ।
ବିଷ୍ଣୁପାଦୁକା—ଭାଗଲପୁର ଅନ୍ତର୍ଗତ କଦୀରପୁରସ୍ଥ ଗୋଟିଏ ଜୈନମନ୍ଦିର ।
ବିଷ୍ଣୁପୀଠ—ଯୋଗିନୀତନ୍ତ୍ରୋକ୍ତ ପୀଠବିଶେଷ
ବିଷ୍ଣୁପୁତ୍ର—ପୁଂ.ବି(ଷତତ୍ପୁ)ବିଷ୍ଣୁଙ୍କ ତନୟ
ବିଷ୍ଣୁପୁର—ଗ୍ରା.ବି.ଉତ୍ତର ବଙ୍ଗର ନଗର ବିଶେଷ ।
ବିଷ୍ଣୁପୁରାଣ—କ୍ଲୀ. ବି. (କ.ଧା) ବ୍ୟାସପ୍ରଣୀତ ମହାପୁରାଣବିଶେଷ, ଅଷ୍ଟାଦଶ ପୁରାଣ ମଧ୍ୟରୁ ଏକତମ ।
ବିଷ୍ଣୁପୁରୀ—ସ୍ତ୍ରୀ. ବି. (ଷତତ୍ପୁ) ବୈକୁଣ୍ଠ ଧାମ, (ଗ୍ରା.ବିଂ)ବିଷ୍ଣୁପୁରରେ ଉତ୍ପାଦିତ ।
ବିଷ୍ଣୁପ୍ରୟାଗ—ବି. ତୀର୍ଥବିଶେଷ ।
ବିଷ୍ଣୁପ୍ରତିଷ୍ଠା—ସ୍ତ୍ରୀ.ବି. ବିଷ୍ଣୁମୂର୍ତ୍ତି ସ୍ଥାପନ ।
ବିଷ୍ଣୁପ୍ରିୟା—ସ୍ତ୍ରୀ. ବି. (ଷତତ୍ପୁ) ଲକ୍ଷ୍ମୀ, ତୁଳସୀବୃକ୍ଷ, ଚୈତନ୍ୟଦେବଙ୍କ ସ୍ତ୍ରୀ ।
ବିଷ୍ଣୁଭକ୍ତ—ପୁଂ. ବିଂ. (ଷତତ୍ପୁ) ବିଷ୍ଣୁପରାୟଣ, (ବି) ବୈଷ୍ଣବ, ବିଷ୍ଣୁପୂଜକ ବ୍ୟକ୍ତି । [ ଭକ୍ତି ।
ବିଷ୍ଣୁଭକ୍ତି—ବି.(ଷତତ୍ପୁ) ବିଷ୍ଣୁଙ୍କ ଠାରେ
ବିଷ୍ଣୁମନ୍ଦିର—ବି. (ଷତତ୍ପୁ) ବିଷ୍ଣୁଗୃହ ।
ବିଷ୍ଣୁମୟ—ବିଂ. ବିଷ୍ଣୁସ୍ୱରୂପ ।
ବିଷ୍ଣୁମାୟା—ସ୍ତ୍ରୀ. ବି. (ବିଷ୍ଣୁ + ମାୟା) ପରମେଶ୍ୱରଙ୍କର ଅଘଟଘଟନ ପଟୀୟସୀ, ଦୁର୍ଗା, ଭଗବତୀ ।
ବିଷ୍ଣୁଯଶାଃ—ପୁଂ. ବି. (ବିଷ୍ଣୁ + ଯଶସ୍) ବ୍ରହ୍ମଯଶାଙ୍କ ପୁତ୍ର, କଳ୍କିଅବତାରଧାରୀ ବିଷ୍ଣୁଙ୍କ ପିତା ।

ବିଷ୍ଣୁଯାମଳ—ବି.ରୁଦ୍ରଯାମଳୋକ୍ତ ଖଣ୍ଡିଏ ତନ୍ତ୍ରଗ୍ରନ୍ଥ ।
ବିଷ୍ଣୁରଥ—ପୁଂ. ବି. ( ୬ତତ୍ର ) ବିଷ୍ଣୁଙ୍କ ସ୍ୟନ୍ଦନ, ବିଷ୍ଣୁବାହନ, ଗରୁଡ଼ ।
ବିଷ୍ଣୁରାତ—ପୁଂ. ବି. (୩ତତ୍ର) ପରୀକ୍ଷିତ ରାଜା, ଜନମେଜୟଙ୍କ ପିତା,(ପୁଂ.ବି°) ବିଷ୍ଣୁଙ୍କ ଅନୁଗ୍ରହ ପ୍ରଦତ୍ତ ।
ବିଷ୍ଣୁଲିଙ୍ଗୀ—ବି. ବତର ଚଢ଼େଇ, ପକ୍ଷୀ ବିଶେଷ ।
ବିଷ୍ଣୁଲୋକ—ପୁଂ.ବି. (୬ତତ୍ର)ବିଷ୍ଣୁପୁର, ବୈକୁଣ୍ଠପୁରୀ, ଗୋଲୋକଧାମ ।
ବିଷ୍ଣୁବଲ୍ଲଭା—ସ୍ତ୍ରୀ. ବି. (୬ତତ୍ର) ତୁଳସୀ, ଅଗ୍ନିଶିଖା ବୃକ୍ଷ, ବିଷଲାଙ୍ଗଳିଆ, ଲକ୍ଷ୍ମୀ ।
ବିଷ୍ଣୁବାଜପେୟୀ—ପୁଂ.ବି.ତନ୍ନାମକ ଯଜ୍ଞ ବିଷୟକ ଗ୍ରନ୍ଥ ।
ବିଷ୍ଣୁବାହନ—ବି. (୬ତତ୍ର) ଗରୁଡ଼ ।
ବିଷ୍ଣୁବାହ୍ୟ—ପୁଂ.ବି. (ବିଷ୍ଣୁ + ବହ୍ + ଯ) ଗରୁଡ଼, ବିଷ୍ଣୁବାହନ ।
ବିଷ୍ଣୁବାହ୍ୟ—ପୁଂ.ବି. (ବିଷ୍ଣୁ + ବହ୍ + ଯ) ଗରୁଡ଼, ବିଷ୍ଣୁବାହନ ।
ବିଷ୍ଣୁବୃଦ୍ଧ—ପୁଂ. ବି. ଗୋତ୍ର ପ୍ରବର୍ତ୍ତକ ପ୍ରାଚୀନ ଋଷିବିଶେଷ ।
ବିଷ୍ଣୁଶକ୍ତି—ବି. ଲକ୍ଷ୍ମୀ, ରାଜପୁତ୍ରବିଶେଷ
ବିଷ୍ଣୁଶର୍ମା—ପୁଂ. ବି. ସଂସ୍କୃତ ପଞ୍ଚତନ୍ତ୍ର ଓ ହିତୋପଦେଶ ନାମକ ନୀତି ଉପଦେଶପୂର୍ଣ୍ଣ ଗ୍ରନ୍ଥଦ୍ୱୟର ରଚୟିତା ।
ବିଷ୍ଣୁଶିଳା—ସ୍ତ୍ରୀ. ବି. ଶାଳଗ୍ରାମ ଶିଳା, ଗଣ୍ଡକୀ ନଦୀର ଗର୍ଭରୁ ପ୍ରାପ୍ତ ବିଷ୍ଣୁରୂପେ ପୂଜିତ ଶାଳଗ୍ରାମ ।
ବିଷ୍ଣୁଶୃଙ୍ଖଳ—ପୁଂ. ବି. ଯୋଗବିଶେଷ, ଶ୍ରବଣା ନକ୍ଷତ୍ରଯୁକ୍ତ ଦ୍ୱାଦଶୀ ତିଥି ।
ବିଷ୍ଣୁସଂହିତା—ବି.ଖଣ୍ଡିଏ ପ୍ରସିଦ୍ଧ ସ୍ମୃତିସଂହିତା (ଏହା ବିଷ୍ଣୁ ଋଷି ରଚନା କରିଥିଲେ) ।
ବିଷ୍ଣୁସରଃ—କ୍ଲୀ. ବି. ତୀର୍ଥବିଶେଷ ।
ବିଷ୍ଣୁସହସ୍ରନାମ—କ୍ଲୀ.ବି. ମହାଭାରତର ଆନୁଶାସନିକ ପର୍ବରେ ଥିବା ଭୀଷ୍ମଯୁଧିଷ୍ଠିର ସମ୍ବାଦରେ ବିଷ୍ଣୁଙ୍କର ଏକସହସ୍ର ନାମ ଉଲ୍ଲେଖ ହୋଇଥିବା ସ୍ତୋତ୍ର ।

ବିଷ୍ଣୁସୂକ୍ତ—କ୍ଲୀ. ବି. ଋକ୍‌ବେଦୀୟ ସୂକ୍ତ ଗ୍ରନ୍ଥବିଶେଷ ।
ବିଷ୍ଣୁସ୍ୱାମୀ—ପୁଂ.ବି. ବୈଷ୍ଣବ ଧର୍ମପ୍ରବର୍ତ୍ତକ ଆଚାର୍ଯ୍ୟବିଶେଷ, କାଞ୍ଚୀରସ୍ଥ ବିଷ୍ଣୁମୂର୍ତ୍ତିବିଶେଷ ।
ବିଷ୍ଣୁହିତା—ସ୍ତ୍ରୀ.ବି.ତୁଳସୀବୃକ୍ଷ,ମରୁବକ ବା ମରୁଆ ଗୁଳ୍ମ । [ ଉତ୍ସବ ।
ବିଷ୍ଣୁସ୍ରବ—ପୁଂ.ବି. (୬ତତ୍ର) ବିଷ୍ଣୁଙ୍କ
ବିଷ୍ପରୀ—ବି. ପକ୍ଷୀ । [ ଝୁଣ୍ଟିବା ।
ବିଷ୍ପନ୍ଦ—ବି. (ବି + ସ୍ପନ୍ଦ୍ + ଭା.ଅ) କ୍ଷରଣ.
ବିସ୍ପର୍ଦ୍ଧା—ତ୍ରି. ବି°. ମାତ୍ସର୍ଯ୍ୟହୀନ, ବିବଧସ୍ପର୍ଦ୍ଧା, ପ୍ରଗଲ୍‌ଭ ବିରହିତ, (ବି)ସ୍ପର୍ଦ୍ଧା ।
ବିଷ୍ଟାର—ପୁଂ. ବି. ( ବି + ସ୍ତାର + ଅ ) ଧନୁର ଟଙ୍କାର, କମ୍ପନ ।
ବିଷ୍ଫୁଲିଙ୍ଗ—ପୁଂ. ବି.ସ୍ଫୁଲିଙ୍ଗ, ଅଗ୍ନିକଣା,
ବିଶ୍ୟ—ତ୍ରି.ବି°. (ବିଷ + ଯ) ବିଷ ଦ୍ୱାରା ବଧୋପଯୁକ୍ତ, ବିଷଦ୍ୱାରା ହୀତ,ବିଷପ୍ରୟୋଗାର୍ହ, ବିଷାକ୍ତ ।
ବିଷ୍ୟନ୍ଦ—ପୁଂ. ବି. କ୍ଷରଣ ।
ବିଷ୍ୟନ୍ଦକ—ପୁଂ. ବି°. ବିଷ୍ୟନ୍ଦନକାରୀ, କ୍ଷରଣକାରକ ।
ବିଷ୍ୟନ୍ଦନ—କ୍ଲୀ. ବି. କ୍ଷରଣ, ଚ୍ୟୁତ ।
ବିଷ୍ୟନ୍ଦୀ—ବି°. କ୍ଷରଣଶୀଳ ।
ବିଷ୍ୱ—ତ୍ରି.ବି°. (ବିଷ୍ + ବ)ଅନିଷ୍ଟକର, ହିଂସ୍ର ।
ବିଷ୍ୱନ୍—ପୁଂ.ବି°. ଇତସ୍ତତଃ ବିଚରଣଶୀଳ, ସର୍ବତ୍ର ବ୍ୟାପକ, (କ୍ଲୀ) ବିଷୁବ, (ଅବ୍ୟ) ସର୍ବତ୍ର ।
ବିଷ୍ୱକ୍‌ସେନ—ପୁଂ. ବି. ବିଷ୍ଣୁ, ବିଷ୍ଣୁନିର୍ମାଲ୍ୟଧାରୀ ତ୍ରୟୋଦଶ ମନୁ, ମହାଦେବ, ଋଷିବିଶେଷ ।
ବିଷ୍ୱକ୍‌ସେନକାନ୍ତା—ସ୍ତ୍ରୀ. ବି. ଲକ୍ଷ୍ମୀ, ବାରାହୀକନ୍ଦ,ତ୍ରାୟମାଣା ଲତା, ବଳା ।
ବିଷ୍ୱକ୍‌ସେନା—ସ୍ତ୍ରୀ.ବି.ପ୍ରିୟଙ୍ଗୁ,ଫଳିନୀ ।
ବିଷ୍ୱଣ—କ୍ଲୀ. ବି. (ବି + ଷ୍ୱନ୍ + ଭା.ଅ ଅ) ଭୋଜନ, ସଶବ୍ଦ ଭୋଜନ, (କ.ଅ) ଦାକ୍ଷିଣାତ୍ୟର ଧର୍ମସମ୍ପ୍ରଦାୟବିଶେଷ ।
ବିଷ୍ୱଣନ—କ୍ଲୀ. ବି. ବିଷ୍ୱଣ ଦେଖ ।
ବିଷାଣ—ବି. ଭକ୍ଷଣ, ସଶବ୍ଦ ଭୋଜନ ।

ବିସ୍—ଗ୍ରା ବି.ବି°.୨୦ସଂଖ୍ୟା ବା ସଂଖ୍ୟକ
ବିସ୍‌ଖପର—ଗ୍ରା. ବି°. ଅତି ନୀଚ.ଅଗ୍ନିଶର୍ମା, ଅତି ବିରକ୍ତ, (ଗ୍ରା.ବି)ଗୋହିରିଆ ଗୋଧି ।
ବିସ୍‌ପଥର—ଗ୍ରା.ବି. ଜହରମହୁରା ।
ବିସନ୍—ଗ୍ରା.ବି.ବି°. ବିସିନ ଦେଖ ।
ବିସ୍‌ମିଲ୍—ଯା. ବି. ଆଲ୍ଲା ବା ଈଶ୍ୱରଙ୍କ ନାମ ସ୍ମରଣ,କୌଣସି କର୍ମର ଆରମ୍ଭ, (ଯା.ଅବ୍ୟ) ହେ ଈଶ୍ୱର ।
ବିସ୍‌ମିଲ୍‌ଲେଗଲତ(ଡ)—ଯା.ବି.କୌଣସି କାର୍ଯ୍ୟରେ ପ୍ରଥମରୁ ବା ଆରମ୍ଭରୁ ଭୁଲ୍
ବିସ—କ୍ଲୀ. ବି. (ବିସ୍ + କ.ଅ)ମୃଣାଳ, ପଦ୍ମର ସୂକ୍ଷ୍ମତନ୍ତୁ ।
ବିସଂଜ୍ଞ—ପୁଂ.ବି. (ବି + ସଂଜ୍ଞା)ସଂଜ୍ଞାହୀନ, ଚେତନାରହିତ ।
ବିସଂଜ୍ଞାଗତ—ସ୍ତ୍ରୀ. ବି. ଅଜ୍ଞାତ ଗତି, ଅପରିମେୟ ଗତି ।
ବିସଂଜ୍ଞିତ—ବି°. ସଂଜ୍ଞାରହିତ,ଜ୍ଞାନହୀନ
ବିସଂବାଦ—ପୁଂ ବି.(ବି + ସମ + ବଦ୍ + ଭା ଅ)ବିପ୍ରଲମ୍ଭ, ବିରୋଧ,ବୈଲକ୍ଷଣ୍ୟ, ବିବାଦ, ପ୍ରତାରଣା, ଅମେଳ, କଳି, ପ୍ରତିଜ୍ଞାଭଙ୍ଗ, ଆଶା କରିଥିବା ଅବସ୍ଥାରେ ନିରାଶ ହେବା ।
ବିସଂବାଦକ—ତ୍ରି.ବି°. ପ୍ରତିବନ୍ଧକ,ପ୍ରତାରକ, ବିରୋଧକ ।
ବିସଂବାଦନ—କ୍ଲୀ. ବି. ବିସମ୍ବାଦ ।
ବିସମ୍ବାଦତା—ସ୍ତ୍ରୀ.ବି.ବିସମ୍ବାଦକାରୀର ଭାବ ବା ଧର୍ମ ।
ବିସମ୍ବାଦୀ—ପୁଂ. ବି. ( ବିସମ୍ବାଦ + ଇନ୍)ଯେ ଆଶା ଦେଇ ନିରାଶ କରେ, ପରସ୍ପର ବିରୋଧୀ, ବିବାଦକାରୀ, ମିଥ୍ୟା ।
ବିସଂଯୋଗ—ବି°. ( ବି + ସଂଯୋଗ ) ଅସଂଲଗ୍ନ, (ବି) ଅସୁବିଧା, ମିଳନର ଅଭାବ, ବିଚ୍ଛେଦ ।
ବିସଂଶୟ—ତ୍ରି. ବି°. ସଂଶୟରହିତ, ନିଃସଂଶୟ ।
ବିସଂଷ୍ଟୁଳ—ତ୍ରି.ବି°. ବିଶୃଙ୍ଖଳ, ଅବ୍ୟବସ୍ଥିତ, ଅସମତଳ, ଅସ୍ଥିର ।

ବିସଂସର୍ପୀ—ତ୍ରି. ବିଂ. ସମ୍ୟକ୍ ବିସ୍ତୃତ, ଚାରିଆଡ଼େ ଗମନଶୀଳ ।
ବିସଂସ୍ଥିତ—ତ୍ରି. ବିଂ. ଅସମାପ୍ତ ।
ବିସଂଷ୍ଠୁଳ—ତ୍ରି. ବିଂ. ବିସଂଷ୍ଠୁଳ ।
ବିସକଣ୍ଠିକା—ସ୍ତ୍ରୀ. ବି. (ବ.ବ୍ରୀ)ବଲାକା, କ୍ଷୁଦ୍ରକାୟ ବକପକ୍ଷୀ ।
ବିସକୁସୁମ—କ୍ଲୀ. ବି. (କ.ଧା) କମଳ, ପଦ୍ମ (ଫୁଲ) ।
ବିସଗ୍ରନ୍ଥି—ପୁଂ. ବି. (ଷତତ୍) ପଦ୍ମମୂଳ, ପଦ୍ମ ନାଡ଼ରେ ଥିବା ଗଣ୍ଠି ।
ବିସଙ୍କଟ—ପୁଂ.ବି. (ବି+ସମ+କଟ୍ କ.ଅ)ସିଂହ.ଇଙ୍ଗୁଦୀ ବୃକ୍ଷ,(ବିଂ. ବି + ସଙ୍କଟ) ବିଶାଳ, ବିକଟ, ଭୟଙ୍କର ।
ବିସଙ୍କୁଳ—ତ୍ରି.ବିଂ.(ବି+ସଙ୍କୁଳ)ଜଟିଳ, ଗୋଳମାଳିଆ ।
ବିସଙ୍ଗତ—ବିଂ. (ବି+ସଙ୍ଗତ)ପରସ୍ପର ସଙ୍ଗେ ଅମେଳ । [ ପଦ୍ମ ।
ବିସଜ—କ୍ଲୀ.ବି. (ବିସ+ଜନ୍+କ.ଅ)
ବିସଞ୍ଚାରୀ—ତ୍ରି.ବିଂ.ବିଷୟ ସଞ୍ଚରଣଶୀଳ, ବିଷୟଭୋଗୀ । [ ରୀତ ।
ବିସଦୃଶ୍—ତ୍ରି.ବିଂ.ବିପାକ, କର୍ମର ବିପ-
ବିସଦୃଶ—ତ୍ରି. ବିଂ. ବିପରୀତ, ବିରୁଦ୍ଧ, ବିଲକ୍ଷଣ, ନାନାରୂପ, ଅଦ୍ଭୁତ ।
ବିସନାଭି—ସ୍ତ୍ରୀ.ବି.(ବିସ + ନାଭି)ପଦ୍ମିନୀ, ପଦ୍ମଗୁଳ୍ମ, ପଦ୍ମସମୂହ ।
ବିସନାଳ—ବି. (ବିସ + ନାଳ) ମୃଣାଳ ।
ବିସନ—ଗ୍ରା.ବିଂ. ବ୍ୟସନାସକ୍ତ, ବେଶଭୂଷାପ୍ରିୟ, (ଗ୍ରା.ବି) ଜାର, ଉପପତି, ବ୍ୟସନାସକ୍ତ ବ୍ୟକ୍ତି ।
ବିସନ୍ଧି—ପୁଂ.ବି. ଦୁଇ ବା ବହୁପଦର ମିଳନାଭାବ, ସନ୍ଧିରହିତ, ବିଶ୍ଳିଷ୍ଟସନ୍ଧି, ଶରୀର ସନ୍ଧିସ୍ଥାନର ବିଶ୍ଳେଷ ।
ବିସନ୍ଧିକ—ବି. ଯେଉଁ ପଦର ସନ୍ଧି ସାଧିତ ହୋଇ ନପାରେ ।
ବିସନ୍ନାହ—ତ୍ରି.ବିଂ. ସନ୍ନାହନଶୂନ୍ୟ,ବର୍ମପ୍ରଭୃତି ଯୁଦ୍ଧବେଶରହିତ ।
ବିସପ୍ରସୂନ—କ୍ଲୀ.ବି. ପଦ୍ମ ।
ବିସମ—ତ୍ରି.ବିଂ. ଅସମାନ ।
ବିସମକଟକ—ସ୍ତ୍ରୀ. ବି. ବିଶାଖାପାଟଣା ମାଳ ଅଞ୍ଚଳରେ ଥିବା ଜୟପୁର ରାଜ୍ୟର ଗୋଟିଏ ଜମିଦାରୀ ।
ବିସମନ୍ତା—ସ୍ତ୍ରୀ.ବି. ଅସମତ୍ୱ ।
ବିସମାପ୍ତି—ସ୍ତ୍ରୀ.ବି. (ବି + ସମ୍+ଆପ୍+ତି) ଅସମାପ୍ତି, ଅସମ୍ପୂର୍ଣ୍ଣ ।
ବିସମ୍ମତ—ଗ୍ରା.ବି. ଅସମ୍ମତ ।
ବିସର୍—ପା.(ସମ୍)ବି. ଆଇଁଷ ।
ବିସର—ପୁଂ.ବି. (ବି+ସୃ+ଅ)ସମୂହ, ପ୍ରସାର, ବିସ୍ତାର, ଦଳ, ଗଦା, ରାଶି, ସଞ୍ଚାର ।
ବିସରଣ—କ୍ଲୀ.ବି. (ବି+ସୃ+ଭା.ଅନ) ବିସ୍ତାର, ସୋର, ପ୍ରବାହ, ଘଟନାର ସ୍ରୋତ, ଉତ୍ପତ୍ତି ।
ବିସରିବା—ଗ୍ରା.କ୍ରି.ପାଶୋରି ପକାଇବା, ବିସ୍ମୃତ ହେବା, ବିନଷ୍ଟହେବା,ନିଃଶେଷ ହେବା ।
ବିସର୍ଗ—ବି. (ବି + ସୃଜ୍+ଅ) ବିସର୍ଜନ, ତ୍ୟାଗ, ମଳୋତ୍ସର୍ଗ, ବିୟୋଗ,ମୋକ୍ଷ, ଦାନ, ଦୀପ୍ତି.ପ୍ରେରଣ,ଦେହରୁ ଛାଡ଼ିବା, ଅଳାଡ଼ିବା, ପ୍ରସ୍ଥାନ, ଦକ୍ଷିଣାୟନ,ତ୍ୟକ୍ତ ବସ୍ତୁ, ଦତ୍ତବସ୍ତୁ, ଦ୍ୱିବିନ୍ଦୁ ବର୍ଣ୍ଣବିଶେଷ, ଲିଙ୍ଗ, ମେଢ୍ର, ସୃଷ୍ଟି,ସର୍ଜନ, ସୃଷ୍ଟ ବସ୍ତୁଚୟ, ପ୍ରୟୋଗ, ପ୍ରଳୟ, ବର୍ଣ୍ଣଭେଦ, କାଳଭେଦ ।
ବିସର୍ଗଚୁମ୍ବନ—କ୍ଲୀ.ବି. ନିଶାଶେଷେ ପ୍ରିୟ ଠାରୁ ବିଦାୟକାଳୀନ ଚୁମ୍ବନ ।
ବିସର୍ଗିକ—ତ୍ରି.ବିଂ. ଆକର୍ଷଣକାରୀ ।
ବିସର୍ଗୀ—ତ୍ରି.ବିଂ.ଉତ୍ସର୍ଗକାରୀ,ଦାନକାରୀ, ଆକର୍ଷଣକାରୀ ।
ବିସର୍ଜକ—ପୁଂ. ବିଂ. (ବି+ସୃଜ୍+କ. ଅକ) ତ୍ୟାଗକାରୀ, ସୃଷ୍ଟିକାରୀ, ଦାନକାରୀ, ଉତ୍ସର୍ଗକାରୀ, ପ୍ରେରକ ।
ବିସର୍ଜନ—କ୍ଲୀ.ବି. ( ବି + ସୃଜ୍+ଅନ ) ଦାନ, ପରିତ୍ୟାଗ, ସଂପ୍ରେଷଣ, ନିକ୍ଷେପଣ, ପ୍ରେରଣ, ପ୍ରସ୍ଥାନ, ସମାପ୍ତି,ଅନ୍ତ, ବରଖାସ୍ତି, କାର୍ଯ୍ୟଚ୍ୟୁତ, ପୂଜା ଶେଷରେ ପ୍ରତିମାଦିଙ୍କୁ ଜଳସାତ୍‌କରିବା,(ବିଂ) ଉତ୍ପାଦିତ ।
ବିସର୍ଜନକରିବା—ଗ୍ରା.କ୍ରି. ତ୍ୟାଗକରିବା, ଫୋପାଡ଼ିବା, ଦାନଦେବା, ପୂଜାନ୍ତେ ପ୍ରତିମାକୁ ଜଳରେ ନିକ୍ଷେପ କରିବା ।
ବିସର୍ଜନଶ୍ରାଦ୍ଧ—ବି. ମୃତାହର ଏକାଦଶ ଦିନ ପ୍ରେତ ଉଦ୍ଦେଶ୍ୟରେ କରଣୀୟ ଶେଷ ଶ୍ରାଦ୍ଧ ।
ବିସର୍ଜନୀୟ—ତ୍ରି. ବିଂ. (ବି + ସୃଜ୍+ ଅନୀୟ) ଦାନୀୟ,ତ୍ୟାଜ୍ୟ, (ବି)ମାତ୍ରାବିଶେଷ, ବିସର୍ଗବର୍ଣ୍ଣ, ଃ ।
ବିସର୍ଜୟିତବ୍ୟ—ତ୍ରି. ବିଂ. ବିସର୍ଜନ କରିବା ଯୋଗ୍ୟ, ତ୍ୟାଗର ଉପଯୁକ୍ତ ।
ବିସର୍ଜିତ—ବିଂ. ତ୍ୟକ୍ତ, ମୁକ୍ତ, ପ୍ରଦତ୍ତ, ପ୍ରେରିତ ।
ବିସର୍ଜିବା—ଗ୍ରା. (ପଦ୍ୟ) କ୍ରି. ବିସର୍ଜନ କରିବା, ତ୍ୟାଗ କରିବା ।
ବିସର୍ଜ୍ୟ—ତ୍ରି. ବିଂ. (ବି+ସୃଜ୍+ଯ) ବିସର୍ଜନୀୟ ।
ବିସର୍ପ—ବି. (ବି + ସୃପ୍+ ଭା.ଅ) ଗମନ, ବ୍ୟାପ୍ତି, (କ.ଅ) ଜ୍ୱରସହିତ ଦେହସାରା ଫଳିବା ରୋଗ, ଘାଆ ଓ ବ୍ରଣାଦି ବିସ୍ତୃତ ହୋଇ ଫୁଲିବା ଓ ପାଚିବା, ଶୁଖିଲା କୁଣ୍ଡିଆ, କୌଣସି କାର୍ଯ୍ୟର ଅପ୍ରତ୍ୟାଶିତ ଫଳ, ସାପକଙ୍କାଳ ।
ବିସର୍ପଜ୍ୱର—ପୁଂ.ବି. ବିସର୍ପ ରୋଗହେତୁ ଜ୍ୱର ।
ବିସର୍ପଣ—କ୍ଲୀ. ବି. (ବି + ସୃପ୍+ ଅନ) ପ୍ରସରଣ, ବ୍ୟାପନ, ସ୍ଫୋଟକାଦିର ଉତ୍ସେକ, ନିକ୍ଷେପ, ଗମନ, ବ୍ୟାପ୍ତି ।
ବିସର୍ପି—ପୁଂ. ବି. ବିସର୍ପ,ବିସର୍ପରୋଗ ।
ବିସର୍ପିକା—ସ୍ତ୍ରୀ. ବି. ରୋଗବିଶେଷ, ବିସର୍ପ ।
ବିସର୍ପିଣୀ—ସ୍ତ୍ରୀ. ବି. ଶ୍ୱେତବୃହ୍ମା ଲତା, ଯବତିକ୍ତା ଲତା ।
ବିସର୍ପିତ—ବିଂ. ଚାରିଆଡ଼େ ବିସ୍ତାରିତ ।
ବିସର୍ପିବା—ଗ୍ରା.କ୍ରି. (ଘାଆଆଦି)ଦେହରେ ବିସ୍ତୃତ ହୋଇ ପାଚି ଫୁଲିବା ।
ବିସର୍ପୀ—ତ୍ରି. ବିଂ. (ବି+ସୃପ୍+ଇନ୍) ବିସରଣଶୀଳ, ବିସର୍ପ ରୋଗଯୁକ୍ତ ।
ବିସର୍ମନ୍—ତ୍ରି. ବିଂ. ବିସରଣଶୀଳ ।
ବିସଲ—କ୍ଲୀ.ବି.(ବିସ୍+ଲା+ଅ)ନବ-

ପଲ୍ଲବ, କଢ଼ି,କଳିକା ।

ବିସ(ଲ୍ପ)କ—ପୁଂ.ବି.ବିସର୍ପକ ରୋଗ ।

ବିସାର—ପୁଂ. ବି. (ବି+ସୃ+ଭା.ଅ) ନିର୍ଗମ, ବିସ୍ତାର, ପ୍ରବାହ, ଉତ୍ପତ୍ତି, (କ.ଅ) ମତ୍ସ୍ୟ, କାଠ ।

ବିସାରଥି—ପୁଂ. ବିଂ. (ବ.ବ୍ରୀ) ସାରଥି-ଶୂନ୍ୟ, ଯେଉଁ ରଥର ସାରଥି ନାହିଁ ।

ବିସାରିତ—ବିଂ.(ବି+ସୃ+ଣିଚ୍+ତ) ପ୍ରସାରିତ, ବିସ୍ତୃତ, ବିସ୍ତାରିତ, ପ୍ରବାହିତ ।

ବିସାରିଣୀ—ସ୍ତ୍ରୀ. ବି. (ବିସାରିନ୍+ଈ) ମାଷମର୍ଣ୍ଣୀ, (ବିଂ) ପ୍ରସରଣଶୀଳା ।

ବିସାରୀ—ପୁଂ. ବିଂ. (ବି+ସୃ+ଇନ୍) ପ୍ରସାରଣଶୀଳ,ଗମନଶୀଳ, (ବି) ମତ୍ସ୍ୟ, (ସ୍ତ୍ରୀ) ବିସାରିଣୀ ।

ବିସିଦ୍ଧ—ଗ୍ରା.ବିଂ.ବ୍ୟାଘାତଯୁକ୍ତ,ବ୍ୟାହତ, ବାଧାପ୍ରାପ୍ତ ।

ବିସିନୀ—ସ୍ତ୍ରୀ. ବି. (ବିସ+ଇନ୍+ଈ) ପଦ୍ମିନୀ, ମୃଣାଳିନୀ, ସୁନ୍ଦରୀ କ୍ଷୀଣଦେହା ସ୍ତ୍ରୀ. ମୃଣାଳ ।

ବିସିସ୍ମାପୟିଷୁ—ତ୍ରି. ବିଂ. (ବି+ସ୍ମି+ଣିଚ୍+ସନ୍+ଉ) ବିସ୍ମୟ ଜନ୍ମାଇବାକୁ ଇଚ୍ଛୁକ ।

ବିସୁକୃତ—ତ୍ରି. ବିଂ. ଅଧର୍ମ, ପାପ ।

ବିସୁଖ—ତ୍ରି. ବିଂ. (ବ.ବ୍ରୀ) ସୁଖରହିତ, (ଗ୍ରା.ବି) ଦୁଃଖ, ଅସୁସ୍ଥତା, ରୋଗ, ସୁଖର ଅଭାବ ।

ବିସୁତ—ପୁଂ. ବିଂ. (ବ.ବ୍ରୀ) ବିଗତପୁତ୍ର, ସୁତରହିତ ।

ବିସୁଳପାତକ—ଗ୍ରା. ବି. ପାପବିଶେଷ, ବିଷ ଦାନଦ୍ୱାରା ହତ୍ୟାଜନିତ ପାପ ।

ବିସୁହୃଦ୍—ବିଂ. (ବ.ବ୍ରୀ) ସୁହୃଦ୍ବିହୀନ, ବନ୍ଧୁରହିତ ।

ବିସୂଚୀ(ଚୀ)—ସ୍ତ୍ରୀ. ବି. (ବି+ସୂଚ୍+ଅ+ଈ) ବିସୂଚିକା ଦେଖ ।

ବିସୂଚିକା—ସ୍ତ୍ରୀ. ବି. (ବି+ସୂଚ୍+ଅ+ଇ+କ+ଆ) ଅଜୀର୍ଣ୍ଣରୋଗ, ଓଲଉଠା ରୋଗ, ଝାଡ଼ାବାନ୍ତି ରୋଗ, ହଇଜା ।

ବିସୂତ୍ର—ତ୍ରି. ବିଂ. ବିଶୃଙ୍ଖଳ ।

ବିସୂନଣ—କ୍ଲୀ. ବି. ଛନ୍ଦଭଙ୍ଗ ।

ବିସୂତ୍ରିତ—ତ୍ରି. ବିଂ. ବିଶୃଙ୍ଖଳଯୁକ୍ତ, ଶୃଙ୍ଖଳାରହିତ ।

ବିସୂରଣ—କ୍ଲୀ. ବି. ଶୋକ, ଦୁଃଖ ଚିନ୍ତା, ବିରକ୍ତି ।

ବିସୂରିତ—କ୍ଲୀ. ବି. (ବି+ସୂର+କ.ତ) ଅନୁତାପ, ଦୁଃଖ ।

ବିସୂରିକା—ବି. ଜ୍ୱର ।

ବିସୃତ—କ୍ଲୀ. ବି. (ବି+ସୃ+ତ) ବିସ୍ତୃତ, ନିର୍ଗତ, କଥିତ, ସ୍ଥାନାନ୍ତରିତ, ପ୍ରସାରିତ ।

ବିସୃତ୍ୱର—ତ୍ରି. ବିଂ. (ବି+ସୃ+କ.ବର) ପ୍ରସରଣଶୀଳ, ବ୍ୟାପନଶୀଳ,ବିସ୍ତାରୀ ।

ବିସୃପ୍—ତ୍ରି. ବିଂ. (ବି+ସୃ+କ୍ୱିପ୍) ବିସର୍ପଣଶୀଳ ।

ବିସୃପ୍ତି—କ୍ଲୀ.ବି. (ବି+ସୃପ୍+ତି) ବିସରଣ, ପ୍ରସରଣ, ଗତିବିଶେଷ ।

ବିସୃମର—ତ୍ରି. ବିଂ. (ବି+ସୃ+ଅର) ପ୍ରସରଣଶୀଳ, ବ୍ୟାପନଶୀଳ,ବିସ୍ତାରୀ ।

ବିସୃଷ୍ଟ—ତ୍ରି. ବିଂ. (ବି+ସୃଜ୍+ତ) ନିକ୍ଷିପ୍ତ, ପରିତ୍ୟକ୍ତ, ଦତ୍ତ, ଛାଡ଼ିଯିବା, ଅପସାରିତ, ପ୍ରେଷିତ, ପ୍ରେରିତ ।

ବିସୃଷ୍ଟବାକ୍—ତ୍ରି.ବିଂ. (ବ.ବ୍ରୀ)ମୌନାବଲମ୍ବୀ ।

ବିସୃଷ୍ଟି—ସ୍ତ୍ରୀ. ବି. (ବି+ସୃଜ୍+ଭା.ତି) ବିବିଧ ପ୍ରକାର ସୃଷ୍ଟି, ବିସର୍ଜନ,ତ୍ୟାଗ, ଦାନ, ନିକ୍ଷେପ, ପ୍ରେରଣ ।

ବିସୋର—ଗ୍ରା. ବି. ବିସ୍ମରଣ, (ବିଂ) ବିସ୍ମୃତ ।

ବିସୋରିବା—ଗ୍ରା. କ୍ରି. ପାଶୋରିବା ।

ବିସ୍କା—ଗ୍ରା. ବି. ଦୁଧ ଦେଉଥିବା ଗାଈ ଠାରୁ କାଳକ୍ରମେ ଦୁଧର ପରିମାଣ କମିଯିବା ।

ବିସ୍କା(ସ୍କେ)ଇବା—ଗ୍ରା. କ୍ରି. ମନ୍ତ୍ରଔଷଧାଦି ପ୍ରୟୋଗ ଦ୍ୱାରା ଦୁଗ୍ଧବତୀ ଗାଭୀର ଦୁଗ୍ଧ କମାଇବା ।

ବିସ୍କିବା—ଗ୍ରା.କ୍ରି. (ଦୁଧ ଦେଉଥିବା ଗାଈ) ଊଣାକରି ଦୁଧଦେବା ।

ବିସ୍କିର—ବି. (ବି+କୃ+କ.ଅ) ପକ୍ଷୀ, କୁକୁଡ଼ା ଜାତୀୟ ପକ୍ଷୀ ।

ବିସ୍ତ—ବି. (ବିସ୍+ର୍ମ.ତ) ସ୍ୱର୍ଣ୍ଣମୁଦ୍ରା, ମୋହର, ଏକଭରି ସୁନା ।

ବିସ୍ତର—ପୁଂ.ବି. (ବି+ସ୍ତୃ+ଅ)ଶବ୍ଦର ବିସ୍ତାର, ବାକ୍ପ୍ରପଞ୍ଚ,ବେଦାଙ୍ଗ,ବିସ୍ତାର, ପ୍ରଣୟ, ପୀଠ, ସମୂହ, ଆଧାର, ଶିବ, ଶଯ୍ୟା, ପ୍ରାଚୁର୍ଯ୍ୟ,ଆସନ,ବିଶେଷବର୍ଣ୍ଣନ, ସଂଖ୍ୟା, (ଗ୍ରା.କ୍ରି.ବିଂ)ବହୁତ,ଅନେକ, (ଗ୍ରା.ବିଂ) ବେଶି, ଅତ୍ୟଧିକ, ପ୍ରଚୁର, (ବି) ଆଧିକ୍ୟ ।

ବିସ୍ତରଣ—ବି. (ବି.+ସ୍ତୃ+ଭା.ଅନ) ବିସ୍ତାରକରଣ ।

ବିସ୍ତରଣୀ—ସ୍ତ୍ରୀ.ବି. ବ୍ରାହ୍ମଣପତ୍ନୀବିଶେଷ, (ମାର୍କଣ୍ଡେୟ ପୁରାଣ) ।

ବିସ୍ତରତା—ସ୍ତ୍ରୀ. ବି. ବିସ୍ତରତ୍ୱ, ବହୁତ୍ୱ, ଅନେକତ୍ୱ ।

ବିସ୍ତରଶଃ—ଅବ୍ୟ. (ବିସ୍ତର+ଶସ୍) ଅନେକାନେକ, ବହୁବହୁ, (କ୍ରି.ବିଂ) ବିସ୍ତାରିତ ରୂପେ,ବିସ୍ତୃତ ରୂପେ ।

ବିସ୍ତରି—ଗ୍ରା. ବି. ବିଛଣା, ଶଯ୍ୟା ।

ବିସ୍ତାର—ପୁଂ.ବି.(ବି+ସ୍ତୃ+ଅ)ବିଟପ, ଶାଖା, ବିସ୍ତୀର୍ଣ୍ଣତା, ପ୍ରସାର, ବିଗ୍ରହ, ସ୍କନ୍ଧ, ପୁଚ୍ଛ, ସମାସବାକ୍ୟ, ବିଶାଳତା, ପଦ ସମୂହ, ଶିବ,ବିଷ୍ଣୁ, ବ୍ୟାପ୍ତି ବିସ୍ତୃତ ବିବରଣ, ବୃତ୍ତର ବ୍ୟାସ, (ଗ୍ରା.ବିଂ) ବିସ୍ତୃତ, ବିଶାଳ, ବଡ଼, ଖ୍ୟାତ ।

ବିସ୍ତାରକ—ପୁଂ. ବିଂ. (ବି+ସ୍ତୃ+କ.ଅକ) ଯେ ବିସ୍ତାର କରେ, ବିଶେଷ ରୂପେ ପ୍ରକାଶକ, (ଗ୍ରା.ବି) ବୃନ୍ଦାବାରକ ଦେଖ, (ବିଂ) ବିସ୍ତୃତ ।

ବିସ୍ତାରକରିବା—ଗ୍ରା. କ୍ରି. ମେଲାଇବା, ବିଞ୍ଛିଦେବା, ଖୋଲିଦେବା, ଚଉଡ଼ା କରିବା, ବଢ଼ାଇବା, ବୃଦ୍ଧି ପାଇବା, ଅଗ୍ରସରହେବା ।

ବିସ୍ତାରିତ—ବିଂ. (ବିସ୍ତାର+ଇତ) ପ୍ରସାରିତ, ବର୍ଦ୍ଧିତ, ବିସ୍ତୃତ ବିବରଣ ଯୁକ୍ତ, ବିଞ୍ଛି ହୋଇ ଯାଇଥିବା ।

ବିସ୍ତାରିବା—ଗ୍ରା. କ୍ରି. ବିସ୍ତୃତ କରିବା, ପ୍ରସାରିବା, ମେଲାଇବା, ବଢ଼ାଇବା,

ବିସ୍ତାରିବା, ବିଶେଷ ବିବରଣ ଦେବା ।

**ବିସ୍ତାରୀ**—ପୁଂ. ତ୍ରି. (ବିସ୍ତାର+ଇନ୍) ଯେ ବିସ୍ତାର କରେ, ବଡ଼, ସୁବିସ୍ତୃତ, ପ୍ରସାରିତ, (ବି) ବଟବୃକ୍ଷ ।

**ବିସ୍ତାର୍ଯ୍ୟ**—ବିଂ. (ବି+ସ୍ତୃ+ଣିଚ୍+ର୍ମ.ଯ) ବିସ୍ତୃତଯୋଗ୍ୟ, ବିସ୍ତାରିତ ଭାବରେ ପ୍ରକାଶଯୋଗ୍ୟ ।

**ବିସ୍ତାର୍ଯ୍ୟତା**—ବି. ଜଡ଼ପଦାର୍ଥର ଗୁଣ ବିଶେଷ, ଯେଉଁ ଗୁଣଦ୍ୱାରା ଜଡ଼ପଦାର୍ଥ ପୂର୍ବାପେକ୍ଷା ଅଧିକ ସ୍ଥାନରେ ବିସ୍ତୃତ ହୁଏ ।

**ବିସ୍ତୀର୍ଣ୍ଣ**—ବିଂ.(ବି+ସ୍ତୃ+ତ) ବିପୁଳ, ବ୍ୟାପ୍ତ, ବିଶାଳ, ବିସ୍ତୃତ, ପ୍ରଶସ୍ତ, ଗୃହଆଡ଼େ ଖୋଲଆ ହୋଇଥିବା ।

**ବିସ୍ତୀର୍ଣ୍ଣକର୍ଣ୍ଣ**—ବି. (ବ.ବ୍ରୀ) ହସ୍ତୀ ।

**ବିସ୍ତୀର୍ଣ୍ଣପର୍ଣ୍ଣ**—ବି. (ବ.ବ୍ରୀ) ମାଣକ,ମାଣସାରୁଗଛ, କଦଳୀଗଛ ।

**ବିସ୍ତୃତ**—ବିଂ. (ବି+ସ୍ତୃ+ତ)ବିସ୍ତାରଯୁକ୍ତ, ବ୍ୟାପ୍ତ, ବିଶାଳ, ଲମ୍ବା,ଚୌଡ଼ା, ପ୍ରସାରିତ, ବିସ୍ତୀର୍ଣ୍ଣ ।

**ବିସ୍ତୃତମୁଖ**—ପୁଂ. ବିଂ. (ବ.ବ୍ରୀ)ଚଉଡ଼ାମୁହାଁ, ପାଟି ଆଁ କରିଥିବା ।

**ବିସ୍ତୃତି**—ସ୍ତ୍ରୀ.ବି.(ବି+ସ୍ତୃ+କ୍ତି)ବିସ୍ତାର. ବ୍ୟାପ୍ତି, ଦୈର୍ଘ୍ୟ,ବୃତ୍ତର ବ୍ୟାସ, ବିସ୍ତୃତ ବର୍ଣ୍ଣନା,ଦୈର୍ଘ୍ୟପ୍ରସ୍ଥ ଓ ବେଧପରିମାଣ ।

**ବିସ୍ଥାନ**—ତ୍ରି. ବିଂ. ସ୍ଥାନଚ୍ୟୁତ ।

**ବିସ୍ପଷ୍ଟ**—ତ୍ରି. ବିଂ. (ବି+ସ୍ପଷ୍ଟ) ବ୍ୟକ୍ତ, ସ୍ଫୁଟ, ପ୍ରକାଶିତ, ସୁସ୍ପଷ୍ଟ ।

**ବିସ୍ଫକ୍କ**—ନି. ବିଂ. ଆସ୍ୱାଦ ।

**ବିସ୍ଫାର**—ପୁଂ. ବି. (ବି+ସ୍ଫୁର+ଭା.ଅ)ଧନୁଟଙ୍କାର ଧ୍ୱନି, ସ୍ଫୂର୍ତ୍ତି,ଜ୍ୟା, ଧନୁର୍ଗୁଣ, କମ୍ପ, ବିସ୍ତାର,ବିକାଶ, ସ୍ପନ୍ଦନ ।

**ବିସ୍ଫାରକ**—ପୁଂ.ବି. ବାତ ପ୍ରଧାନ ସନ୍ନିପାତ ଜ୍ୱରର ପ୍ରକାରବିଶେଷ ।

**ବିସ୍ଫାରିତ**—ତ୍ରି. ବିଂ. (ବି+ସ୍ଫାର+ର୍ମ.ତ) କମ୍ପିତ, ଚଳିତ, ସ୍ଫୂର୍ତ୍ତିଯୁକ୍ତ, ବିସ୍ତାରିତ, ପ୍ରକାଶିତ, ଧ୍ୱନିତ, ନିର୍ଘୋଷିତ ।

**ବିସ୍ଫାଳ**—ପୁଂ. ବି. (ବି+ସ୍ଫୁଲ+ଅ) ବିସ୍ଫାର ଦେଖ ।

**ବିସ୍ଫୁଟ**—ନି. ବିଂ. ବିଶେଷ ପ୍ରକାରେ ବ୍ୟକ୍ତ, ପ୍ରସ୍ଫୁଟ ।

**ବିସ୍ଫୁରଣୀ**—ବି.ତିନ୍ଦୁକ ବୃକ୍ଷ,କେନ୍ଦୁଗଛ ।

**ବିସ୍ଫୁରିତ**—ନି. ବିଂ. (ବି+ସ୍ଫୁର+କ.ତ) ସ୍ଫୂର୍ତ୍ତିବିଶିଷ୍ଟ, ଚଞ୍ଚଳ, ଧ୍ୱନିତ, ସ୍ଫୀତ, ବିସ୍ତାରିତ, କମ୍ପିତ,(ବି. ଭା.ତ) ସ୍ଫୁରଣ, (ଣି.ତ) ଧ୍ୱନି ।

**ବିସ୍ଫୁଲିଙ୍ଗ**—ପୁଂ. ବି.(ବି+ସ୍ଫୁ+ଲିନ୍ଚ୍+ଅ) ଅଗ୍ନିକଣା, ବିଷ ବିଶେଷ ।

**ବିସ୍ଫୂର୍ଜ**—ପୁଂ. ବି. ବିସ୍ଫୂର୍ଜଥୁ ଦେଖ ।

**ବିସ୍ଫୂର୍ଜଥୁ**—ପୁଂ.ବି. ବଜ୍ରନିର୍ଘୋଷ,ବଜ୍ରର ଶବ୍ଦ, ଉଦ୍ରେକ ।

**ବିସ୍ଫୂର୍ଜନ**—କ୍ଲୀ. ବି.ବିକାଶ । [ ଗଛ ।

**ବିସ୍ଫୂର୍ଜୀ**—ସ୍ତ୍ରୀ. ବି. ତିନ୍ଦୁକବୃକ୍ଷ, କେନ୍ଦୁ-

**ବିସ୍ଫୂର୍ଜିତ**—ବି. (ବି+ସ୍ଫୂର୍ଜ+ତ) ଗର୍ଜନ, ଫଳ, ପରିଣାମ,ବଜ୍ରନିନାଦିତ, ନାଗବିଶେଷ ।

**ବିସ୍ଫୋଟ**—ପୁଂ. ବି. (ବି+ସ୍ଫୁଟ+ଅ) ବିରୁଡ଼ି, ସ୍ଫୋଟକ,ଦେହରେ ବାହାରିବା ବ୍ରଣ, ଫୋଟକା, ବସନ୍ତବ୍ରଣ ।

**ବିସ୍ଫୋଟକ**—ପୁଂ. ବି. ବିସ୍ଫୋଟ ଦେଖ ।

**ବିସ୍ଫୋଟନ**—କ୍ଲୀ. ବି. ନାଦ, ଉଚ୍ଚ ଶବ୍ଦ, ଗମ୍ଭୀର ଧ୍ୱନି ।

**ବିସ୍ଫୋରକ**—ବିଂ. ଯେଉଁ ଦ୍ରବ୍ୟ ହଠାତ୍ ଜଳି ଉଠେ ।

**ବିସ୍ଫୋରଣ**—ବି. (ବି+ସ୍ଫୁର+ଭା.ଅନ) ସଶବ୍ଦେ ଫାଟିବା ବା ଜଳିଉଠିବା, ବିଦାରଣ । [ ଜଳିଉଠିବା ।

**ବିସ୍ଫୋରିତହେବା**—ଗ୍ରା. କ୍ରି. ହଠାତ୍

**ବିସ୍ମୟ**—ପୁଂ.ବି.(ବି+ସ୍ମି+ଅ)ଆଶ୍ଚର୍ଯ୍ୟ, ଅଦ୍ଭୁତ, ଅଦ୍ଭୁତ ରସର ସ୍ଥାୟୀଭାବ ବିଶେଷ,ଦର୍ପ,ଗର୍ବ, ସନ୍ଦେହ,ଈଷତ୍ହାସ୍ୟ, (ଗ୍ରା. ବିଂ) ବିସ୍ମିତ, ଆଶ୍ଚର୍ଯ୍ୟାନ୍ୱିତ, କ୍ଷଣକାଳ ସ୍ତବ୍ଧ, ଦୁଃଖିତ,(ବିଂ) ନଷ୍ଟଗର୍ବ ।

**ବିସ୍ମୟକର**—ନି. ବିଂ. (ବିସ୍ମୟ+କୃ+ଅ) ବିସ୍ମୟକାରୀ, ଆଶ୍ଚର୍ଯ୍ୟାନ୍ୱିତ, ଯାହା ବିସ୍ମୟ ଜନ୍ମାଏ ।

**ବିସ୍ମୟଙ୍ଗମ**—ନି. ବିଂ. (ବିସ୍ମୟ+ଗମ୍+ଅ) ବିସ୍ମୟଗାମୀ, ବିସ୍ମୟପ୍ରାପ୍ତ ।

**ବିସ୍ମୟଚିହ୍ନ**—ବି. ଯେଉଁ ଚିହ୍ନ ଦ୍ୱାରା ଲେଖାରେ ବିସ୍ମୟ ସୂଚିତ ହୁଏ '!', ବିସ୍ମୟଜାତ ବ୍ୟକ୍ତିର ମୁଖାଦିରେ ପ୍ରକାଶିତ ବିସ୍ମୟ ଲକ୍ଷଣ ।

**ବିସ୍ମୟଜନକ**—ବିଂ. (୬ତତ୍) ବିସ୍ମୟକର, ଚମତ୍କାରୋତ୍ପାଦକ, ଆଶ୍ଚର୍ଯ୍ୟ, ଅଦ୍ଭୁତ ।

**ବିସ୍ମୟନ**—କ୍ଲୀ. ବି. (ବି+ସ୍ମି+ଅନ) ବିସ୍ମୟ ଦେଖ ।

**ବିସ୍ମୟନୀୟ**—ନି.ବିଂ.(ବି+ସ୍ମି+ଅନୀୟ) ବିସ୍ମୟଯୋଗ୍ୟ, ଆଶ୍ଚର୍ଯ୍ୟର ବିଷୟ ।

**ବିସ୍ମୟବିଷାଦବାନ୍**—ପୁଂ. ବିଂ. ବିସ୍ମୟ ଏବଂ ବିଷାଦଯୁକ୍ତ ।

**ବିସ୍ମୟବିସ୍ତାରିତ**—ବିଂ.(୩ତତ୍) ଆଶ୍ଚର୍ଯ୍ୟ ହେତୁ ପ୍ରସାରିତ । [ ନ୍ୱିତ ।

**ବିସ୍ମୟବିହ୍ୱଳ**—ପୁଂ.ବିଂ.(୩ତତ୍)ଆଶ୍ଚର୍ଯ୍ୟା-

**ବିସ୍ମୟଲାଗିବା**—ଗ୍ରା. କ୍ରି. ବିସ୍ମୟର ଅନୁଭୂତ ।

**ବିସ୍ମୟହେବା**—ଗ୍ରା. କ୍ରି. ଆଶ୍ଚର୍ଯ୍ୟାନ୍ୱିତ ହେବା,କ୍ଷଣକାଳ ସ୍ତବ୍ଧହେବା, ଦୁଃଖିତ ହେବା । [ ବିସ୍ମିତ ।

**ବିସ୍ମୟାପନ୍ନ**—ବିଂ.(୩ତତ୍)ଆଶ୍ଚର୍ଯ୍ୟାନ୍ୱିତ,

**ବିସ୍ମୟାବହ**—ବିଂ. (ବିସ୍ମୟ+ଆବହ) ଆଶ୍ଚର୍ଯ୍ୟଜନକ ।

**ବିସ୍ମୟାବିଷ୍ଟ**—ବିଂ.(୩ତତ୍)ଆଶ୍ଚର୍ଯ୍ୟାନ୍ୱିତ, ବିସ୍ମୟାଭିଭୂତ ।

**ବିସ୍ମୟୋତ୍ପାଦନ**—ବି. (୬ତତ୍)ମନରେ ବିସ୍ମରଣ ଉଦ୍ରେକକରଣ ।

**ବିସ୍ମର**—ଗ୍ରା. ବି. ବିସ୍ମୃତ ।

**ବିସ୍ମରଣ**—କ୍ଲୀ. ବି. (ବି+ସ୍ମୃ+ଭା.ଅନ) ବିସ୍ମୃତି, ଭୁଲିଯିବା ।

**ବିସ୍ମରଣଶୀଳ**—ପୁଂ. ବିଂ. (ବ.ବ୍ରୀ) ଯେ ଚଞ୍ଚଳ ପାଶୋରି ପକାଏ, ଭୋଳା ।

**ବିସ୍ମରଣହେବା**—ଗ୍ରା. କ୍ରି. ପାଶୋରି ପକାଇବା, ପାଶୋରିଯିବା ।

**ବିସ୍ମରଣୀୟ**—ବିଂ.(ବି+ସ୍ମୃ+ର୍ମ.ଅନୀୟ) ପାଶୋରିବାର ଯୋଗ୍ୟ ।

ବିସ୍ମରିବା—ଗ୍ରା. କ୍ରି. ପାଶୋରିବା ।

ବିସ୍ମର୍ତ୍ତବ୍ୟ—ତ୍ରି, ବିଂ. (ବି+ସ୍ମୃ+ତବ୍ୟ) ବିସ୍ମରଣଯୋଗ୍ୟ,ଭୁଲିଯିବାର ଉପଯୁକ୍ତ ।

ବିସ୍ମାପକ—ତ୍ରି. ବିଂ. ବିସ୍ମୟକାରକ ।

ବିସ୍ମାପନ—ତ୍ରି.ବିଂ.(ବି+ସ୍ମି+ଣିଚ୍+ଅନ) ବିସ୍ମୟଜନକ, (ବି) ମାୟାକୁହୁକ, ଭେଲକି, ଗନ୍ଧର୍ବନଗର, କାମଦେବ, ବିସ୍ମୟ ଉତ୍ପାଦନ । [କାର. ଯୋଗ୍ୟ ।

ବିସ୍ମାପନୀୟ—ତ୍ରି. ବିଂ. ବିସ୍ମୟ ଜନ୍ମାଇ-

ବିସ୍ମାପ୍ୟନ—କ୍ଳୀ. ବି. ବିସ୍ମାପନ ଦେଖ ।

ବିସ୍ମାରକ—ପୁଂ. ବିଂ. ବିସ୍ମୃତିଜନକ, ଯେ ଭୁଲାଇଦିଏ ।

ବିସ୍ମାରଣ—ତ୍ରି. ବିଂ. ମ୍ଳାନ ପାଇବା, ମ୍ଳାନ-ହେବା, ନଷ୍ଟହେବା ।

ବିସ୍ମିତ—ତ୍ରି. ବିଂ. ( ବି+ସ୍ମି+ତ ) ବିସ୍ମୟାପନ୍ନ, ଆଶ୍ଚର୍ଯ୍ୟାନ୍ୱିତ, ପ୍ରାକୃତ ଛନ୍ଦୋବିଶେଷ,(ଗ୍ରା.ବି)ଅଦ୍ଭୁତ ମନୋ-ଦୁଃଖ ।

ବିସ୍ମିତି—ସ୍ତ୍ରୀ.ବି.(ବି+ସ୍ମି+ତି)ବିସ୍ମରଣ

ବିସ୍ମୃତ—ତ୍ରି. ବିଂ. (ବି+ସ୍ମୃ+ମଂ.ତ) ସ୍ମରଣାତୀତ, ଯାହା ମନରୁ ପାଶୋର ଯାଏ,(କ,ତ) ଯେ ପାଶୋର ପକାଏ ।

ବିସ୍ମୃତହେବା—ଗ୍ରା.କ୍ରି. ପାଶୋରିଯିବା, ପାଶୋରିବା ।

ବିସ୍ମୃତି—ସ୍ତ୍ରୀ.ବି. (ବି+ସ୍ମୃ+ତି) ବିସ୍ମରଣ, ଭୁଲ୍, ପାଶୋର, ଭୁଲିଯିବା ।

ବିସ୍ମେର—ତ୍ରି.ବିଂ.ବିସ୍ମୟକର, ଆଶ୍ଚର୍ଯ୍ୟ-ଜନକ ।

ବିସ୍ର—କ୍ଳୀ. ବି. (ବିସ୍+ର) ଆମଗନ୍ଧ, ଚିତା ଧୂମର ଗନ୍ଧ, କଞ୍ଚାମାଂସର ଗନ୍ଧ, ବଡ଼ମୂଳା, (ବିଂ) କଞ୍ଚାମାଂସର ଗନ୍ଧ-ବିଶିଷ୍ଟ ।

ବିସ୍ରଂସ—ପୁଂ. ବି. (ବି+ସ୍ରନ୍ସ୍+ଅ) ପତନ, କ୍ଷରଣ, ଢୁଗୁଲା ହୋଇ ଝସି-ଯିବା, ମେଘ ବରଷିବା ।

ବିସ୍ରଂସନ—କ୍ଳୀ.ବି.(ବି+ସ୍ରନ୍ସ+ଅନ) ବିସ୍ରଂସ ଦେଖ ।

ବିସ୍ରଂସା—ସ୍ତ୍ରୀ. ବି. (ବି+ସ୍ରନ୍ସ୍+ଅଧି. ଅ+ଆ) ଜରା, ବାର୍ଦ୍ଧକ୍ୟ ।

ବିସ୍ରଂସୀ—ବିଂ (ବି+ସ୍ରନ୍ସ+କ.ଇନ୍) ପତନଶୀଳ, କ୍ଷରଣ ଶୀଳ । [ଦେଖ ।

ବିସ୍ରକ—ନ ଓ ବିଂ. (ବିସ୍ର+କ) ବିସ୍ରକ

ବିସ୍ରଗନ୍ଧ—ତ୍ରି, ବିଂ. (ବ,ଗ୍ରୀ)କଞ୍ଚାମାଂସର ଗନ୍ଧଯୁକ୍ତ, (ବି) ପଲଣ୍ଡୁ, ଗୋଦନ୍ତୀ ହରିତାଳ ।

ବିସ୍ରଗନ୍ଧା—ସ୍ତ୍ରୀ. ବି. (ବ.ଗ୍ରୀ) ହବୁଷାଫଳ, ପିଆଜ, ଗୋଦନ୍ତୀ ହରିତାଳ ।

ବିସ୍ରଗନ୍ଧି—ପୁଂ. ବି. (ବିସ୍ର+ଗନ୍ଧ+ଇ) ଗୋଦନ୍ତୀ ହରିତାଳ ।

ବିସ୍ରମ୍ଭ—ପୁଂ.ବି. (ବି+ସ୍ରନ୍ଭ୍+ଅ) ବିଶ୍ରମ୍ଭ (ଦେଖ),ବଧ, ହତ୍ୟା ।

ବିସ୍ରମ୍ଭୀ—ତ୍ରି. ବିଂ. (ବି+ସ୍ରନ୍ଭ୍+ଇନ୍) ବିଶ୍ୱାସୀ, ପ୍ରଣୟୀ ।

ବିସ୍ରବ—ପୁଂ.ବି. (ବି+ସ୍ରୁ+ଅ)କ୍ଷରଣ, ପତନ ।

ବିସ୍ରବଣ—କ୍ଳୀ.ବି. (ବି+ସ୍ରୁ+ଭା.ଅନ) କ୍ଷରଣ, ଝରିବା, ବହିବା ।

ବିସ୍ରବିବା—ଗ୍ରା. କ୍ରି. ସ୍ରବିବା, ଦ୍ରବିବା, ଝରିବା ।

ବିସ୍ରବ୍ଧ—ବିଂ. ( ବି+ସ୍ରନ୍ଭ୍+ତ ) ବିଶ୍ୱସ୍ତ, ବିଶ୍ରବ୍ଧ ଦେଖ ।

ବିସ୍ରସ୍—ସ୍ତ୍ରୀ.ବି. (ବି+ସ୍ରନ୍ସ୍+କ୍ୱିପ୍) ନଷ୍ଟକାନ୍ତି, ଧ୍ୱଂସକାନ୍ତି ।

ବିସ୍ରସା—ସ୍ତ୍ରୀ.ବି. ଜରା, ବାର୍ଦ୍ଧକ୍ୟ ।

ବିସ୍ରସ୍ତ—ତ୍ରି.ବିଂ. (ବି+ସ୍ରନ୍ସ୍+କ. ତ) ପତିତ, ଚ୍ୟୁତ, ଭ୍ରଷ୍ଟ. କ୍ଷରିତ, ସ୍ଖଳିତ, କାର୍ଯ୍ୟରୁ ଅନ୍ତରିତ ।

ବିସ୍ରା—ସ୍ତ୍ରୀ. ବି. ହବୁଷା, ଚରବି ।

ବିସ୍ରାବ—ପୁଂ. ବି. (ବି+ସ୍ରୁ+ଣିଚ୍+ଣ.ଅ) ଅନ୍ନମଣ୍ଡ, ପେଜ ।

ବିସ୍ରାବଣ—କ୍ଳୀ. ବି.(ବି+ସ୍ରୁ+ଣିଚ୍+ଅନ) କ୍ଷାରଣ, ପାତନ ।

ବିସ୍ରାବ୍ୟ—ତ୍ରି.ବିଂ. (ବି+ସ୍ରୁ+ଣିଚ୍+ଯ) ବିସ୍ରାବଣଯୋଗ୍ୟ, କ୍ଷାରଣର ଉପ-ଯୁକ୍ତ, ପାତନଯୋଗ୍ୟ ।

ବିସ୍ରୁତ—ତ୍ରି. ବିଂ. (ବି+ସ୍ରୁ+କ୍ତ.ତ) ବିସ୍ମୃତ, ପ୍ରଧାବିତ, କ୍ଷରିତ, ଚ୍ୟୁତ ।

ବିସ୍ରୁତି—ସ୍ତ୍ରୀ. ବି. ( ବି+ସ୍ରୁ+ଭା.ତି ) କ୍ଷରଣ, ପତନ, ପତନଭ୍ରଂଶ, ପ୍ରବାହ ।

ବିସ୍ୱନ—ପୁଂ. ବି. ( ବି+ସ୍ୱନ+ଭା.ଅ ) ଶବ୍ଦ, ଧ୍ୱନି ।

ବିସ୍ୱର—ପୁଂ. ବି. ବିକୃତ ସ୍ୱର, (ବିଂ) ବିକୃତ ସ୍ୱରବିଶିଷ୍ଟ, (ଗ୍ରା.ବିଂ) ନୀରବ, ନିଃଶବ୍ଦ ।

ବିସ୍ୱାଦ—ବି.(ବି+ସ୍ୱାଦ)ମନ୍ଦସ୍ୱାଦ,ଅସ୍ୱାଦ ।

ବିସ୍ୱାଦୁ—ବିଂ. (ବି+ସ୍ୱାଦୁ) ଆସ୍ୱାଦହୀନ, ବିକୃତ ସ୍ୱାଦବିଶିଷ୍ଟ ।

ବିହକ୍—ଯା, ବିଂ. ବେହକ୍, ଅନ୍ୟାୟ୍ୟ ।

ବିହକ—ଗ୍ରା. ବି. ବିଧାନକର୍ତ୍ତା ।

ବିହଗ—ପୁଂ. ବି. (ବିହାୟସ୍+ଗମ୍+କ.ଅ)ପକ୍ଷୀ, ବାଣ, ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ମେଘ, ମହାଭାରତୋକ୍ତ ନାଗବିଶେଷ ।

ବିହଗାଳୟ—ପୁଂ.ବି(୬ତତ୍)ପକ୍ଷୀବସା ।

ବିହଗୀ—ସ୍ତ୍ରୀ. ବି. ପକ୍ଷିଣୀ ।

ବିହଙ୍ଗ—ପୁଂ. ବି. (ବିହାୟସ୍+ଗମ୍+କ.ଅ) ବିହଗ ଦେଖ ।

ବିହଙ୍ଗକ—ପୁଂ.ବି.(ବିହଙ୍ଗ+କ)ପକ୍ଷୀ ।

ବିହଙ୍ଗମ—ପୁଂ. ବି. ବିହଗପକ୍ଷୀ, ସୂର୍ଯ୍ୟ ।

ବିହଙ୍ଗମା—ସ୍ତ୍ରୀ.ବି. ପକ୍ଷିଣୀ, ସୂର୍ଯ୍ୟରଶ୍ମି-ବିଶେଷ, ଏକାଦଶ ମନ୍ୱନ୍ତରର ଦେବ-ଗଣବିଶେଷ, ଭାରଯଷ୍ଟି, ବାହୁଙ୍ଗି ।

ବିହଙ୍ଗମିକା—ସ୍ତ୍ରୀ,ବି.ଭାରଯଷ୍ଟି,ବାହାଙ୍ଗି ।

ବିହଙ୍ଗରାଜ—ପୁଂ.ବି. (୬ତତ୍) ଗରୁଡ଼, ପକ୍ଷି-ଶ୍ରେଷ୍ଠ । [ଦେଖ ।

ବିହଙ୍ଗବର—ବି. (୬ତତ୍) ବିହଙ୍ଗରାଜ

ବିହଙ୍ଗହା—ପୁଂ. ବି. (ବିହଙ୍ଗ+ହନ୍+କ୍ୱିପ୍) ବ୍ୟାଧ ।

ବିହଙ୍ଗାରାତି—ପୁଂ.ବି. ବ୍ୟାଧ, ପକ୍ଷୀରୂପ ଶତ୍ରୁ, ଗରୁଡ଼ାଦି ।

ବିହଙ୍ଗିକା—ସ୍ତ୍ରୀ.ବି. ଭାରଯଷ୍ଟି, ବାହୁଙ୍ଗି ।

ବିହତ୍ନ—ସ୍ତ୍ରୀ.ବି,ଗର୍ଭୋପଘାତିନୀ ଗାଈ ।

ବିହତ—ତ୍ରି, ବିଂ, (ବି+ହନ୍+ମଂ.ତ) ବିନଷ୍ଟ, ବ୍ୟାହତ, ନିହତ,ବିଫଳ,ଭଗ୍ନ ।

ବିହତି—ସ୍ତ୍ରୀ, ବି. ( ବି+ହନ୍+ଭା.ତି ) ବିନାଶ, ଭଙ୍ଗ, ବିଘ୍ନ, ହତ୍ୟା, ହିଂସା, (ଣ,ତ) ଗୁଳାଭଣିବା ଧନୁ, ବ୍ୟାହତି ।

ବିହନ—ଗ୍ରା, ବି. ଆଗାମୀ ବର୍ଷ ନିମନ୍ତେ

ଦଣ୍ଡିତ ସେ୍ୟାଗ୍ଜ,ମାଛ ପେଟରେ ଥିବା ମଞ୍ଜି, ସାର୍ଯ୍ୟ, ବଂଶର ଆଦିପୁରୁଷ, (ଲ. ଅର୍ଥ) ମୂଳ, ଉତ୍ପତ୍ତି ।

ବିହନନ—କ୍ଲୀ. ବ. ( ବି+ହନ୍+ଅନ ) ବିଘ୍ନ, ବ୍ୟାଘାତ, ଭଙ୍ଗ, ହତ୍ୟା, ହିଂସା, ତୂଳପିଞ୍ଜଳ, ତୂଳା ଭଣିବା ଧନୁ, ବ୍ୟାହତ ।

ବିହନ୍ତା—ପୁଂ. ବଂ. ( ବି+ହନ୍+ତୃ ) ବିହନନକାରୀ, ନାଶକାରୀ, କ୍ଷୟକାରୀ, (ଗ୍ରା.ବ) ବିଧାତା, (ଗ୍ରା.ବଂ) କାର୍ଯ୍ୟ-ବିଧାନକାରୀ ।

ବିହନ୍ତବ୍ୟ—ବି.ବଂ. (ବି+ହନ୍+ତବ୍ୟ) ବିହନନ ଯୋଗ୍ୟ, ବଧଯୋଗ୍ୟ ।

ବିହର—ପୁଂ. ବ. ( ବି+ହୃ+ଭା.ଅ ) ବିୟୋଗ, ବିଚ୍ଛେଦ, ବିହାର, କ୍ରୀଡ଼ା ।

ବିହରଣ—କ୍ଲୀ. ବ. (ବି + ହୃ + ଭା.ଅନ) ବିହାର, କ୍ରୀଡ଼ା, ଭ୍ରମଣ, ବିୟୋଗ, ବିଚ୍ଛେଦ, ପ୍ରସାରଣ, ଆହରଣ ।

ବିହରନ୍ତ—ଗ୍ରା. ବଂ. ଇତସ୍ତତଃ ଗମନ୍ତ, ବିହାର କରୁଥିବା, ତ୍ୟକ୍ତ, (ଗ୍ରା.ବ) ବିନାଶ, ଚତୁର୍ଦ୍ଦିଗ ।

ବିହରିବା—ଗ୍ରା.କ୍ରି.ବିହାରକରିବା, ବିଚ-ରଣକରିବା, ଛେଦନକରିବା, ହରଣ-କରିବା, ଶୋଷକରିବା ।

ବିହର୍ତ୍ତା—ପୁଂ. ବଂ. (ବି + ହୃ+ତୃ) ବିହ-ରଣକାରୀ, ବିନାଶକ ।

ବିହର୍ଷ—ବି.ବଂ. ହର୍ଷବିହୀନ, ଆନନ୍ଦହୀନ ।

ବିହବ—ପୁଂ. ବ. (ବି + ହୃ + ଅଧି.ଅ) ଯଜ୍ଞ, ସଂଗ୍ରାମ, ଯୁଦ୍ଧ ।

ବିହସନ—ବ. ( ବି+ହସ୍+ଭା.ଅନ ) ମନ୍ଦହାସ୍ୟ କରିବା ।

ବିହସନୀୟ—ବଂ(ବି + ହସ୍+ ମଁ.ଅନୀୟ) ହାସ୍ୟୋଦ୍ଦୀପକ ।

ବିହସିତ—କ୍ଲୀ. ବ. (ବି+ହସ୍+ଭା.ତ) ମଧ୍ୟମ ହାସ୍ୟ,ମଧୁର ହାସ୍ୟ ।

ବିହସ୍ତ—ବି. ବଂ. (ବି+ହସ୍ତ)ବ୍ୟାକୁଳ, ଉଦ୍‌ଭ୍ରାନ୍ତ ମତି, ଅତି ବ୍ୟାପୃତ, ପଣ୍ଡ, ବିକଳ, ହସ୍ତହୀନ, କିଂକର୍ତ୍ତବ୍ୟବିମୂଢ଼, (ପୁଂ.ବ) ପଣ୍ଡିତ, ବିଦ୍ୱାନ୍ ବ୍ୟକ୍ତି, (ଯୀ. ବ) ସ୍ୱର୍ଗ । [ ଲତ ।

ବିହସ୍ତିତ—ବି.ବଂ.(ବିହସ୍ତ+ଇତ)ବ୍ୟାକୁ-

ବିହା—ଅ. ସ୍ୱର୍ଗ, (ଗ୍ରା.ବ) ବିବାହ ।

ବିହାଇବା—ଗ୍ରା. କ୍ରି. ବିଧାନ କରାଇବା, କରାଇବା ।

ବିହାନ—ପ୍ରା. (ଉତ୍ତର ବାଲେଶ୍ୱର)ବି. ଧାନଗଛର ତଳ ।

ବିହାପିତ—କ୍ଲୀ.ବ.(ବି+ହା+ଣିଚ୍+ତ) ଦାନ, ତ୍ୟାଗ ।

ବିହାୟସ୍(ସ)—ବ. ( ବି + ହା + ଅସ୍ ) ଆକାଶ, ଦାନ, ପକ୍ଷୀ ।

ବିହାର—ବ. (ବି+ହୃ+ଭା.ଅ) କ୍ରୀଡ଼ା, ସାନନ୍ଦେ ଭ୍ରମଣ, କ୍ରୀଡ଼ା ହେତୁ ପଦ ଦ୍ୱାରା ଭ୍ରମଣ, ବିକ୍ଷେପ, ଉପଭୋଗ, କୌତୁକ, ରତିକ୍ରୀଡ଼ା, (ଅଧି.ଅ)କ୍ରୀଡ଼ା ସ୍ଥାନ, ବୌଦ୍ଧମଠ, କ୍ରୀଡ଼ୋଦ୍ୟାନ, ପଦବିକ୍ଷେପଣ, ଦେବମନ୍ଦିର, ହସ୍ତପଦା-ଦିର ଗ୍ଲାନ, ଇନ୍ଦ୍ରଭବନ,(କ.ଅ)ବନ୍ଧ, ରେଖକ ପକ୍ଷୀ, ପକ୍ଷିବିଶେଷ, (ଭା.ଅ) ପ୍ରସ୍ଫୁଟନ, ବିସ୍ତାର,(ଣ.ଅ)ସ୍କନ୍ଧ,(ମଁ.ଅ) ଗଛର ଗଣ୍ଠି, ଇନ୍ଦ୍ରଙ୍କ ପତାକା,(ଗ୍ରା.ବ) ମିଥିଳାପ୍ରଦେଶ, ବିହାର ପ୍ରଦେଶର ଏକ ଜିଲ୍ଲା ଓ ନଗର ।

ବିହାର-ଓଡ଼ିଶା—ଗ୍ରା. ବ. ବିହାର ଛୋଟ ନାଗପୁର ଓ ଓଡ଼ିଶା ଏହି ତିନିବିଭାଗ ଦ୍ୱାରା ଗଠିତ ଏକ ଗଭର୍ଣ୍ଣରଙ୍କ ଅଧୀନ ପ୍ରଦେଶ ।

ବିହାରକ—ବଂ. ବିହାରକାରୀ ।

ବିହାରକରିବା—ଗ୍ରା. କ୍ରି. କ୍ରୀଡ଼ାକରିବା, କେଳିକରିବା, ଆନନ୍ଦରେ ବୁଲିବା ।

ବିହାରଣ—କ୍ଲୀ. ବ. ବିହାର, କ୍ରୀଡ଼ା ।

ବିହାରଭୂମି—ସ୍ତ୍ରୀ. ବ. (ବିହାର + ଭୂମି) ବିହାରସ୍ଥାନ, କ୍ରୀଡ଼ାସ୍ଥାନ ।

ବିହାରଯାତ୍ରା—ସ୍ତ୍ରୀ. ବ. ଭ୍ରମଣୋଦ୍ଦେଶେ ଦଳବଦ୍ଧ ହୋଇ ବହିର୍ଗମନ ।

ବିହାରବାରି—କ୍ଲୀଡ଼ାସରଃ ।

ବିହାରଶୈଳ—ପୁଂ.ବ. କ୍ରୀଡ଼ାପର୍ବତ ।

ବିହାରସ୍ଥାନ—କ୍ଲୀ. ବ. କ୍ରୀଡ଼ାଭୂମି ।

ବିହାରସ୍ୱାମୀ—ପୁଂ. ବ.ମଠ ପରିଦର୍ଶକ ।

ବିହାରାଜିର—କ୍ଲୀ.ବ. (ବିହାର+ଅଜିର) ବିହାର ସ୍ଥାନ, କ୍ରୀଡ଼ାଭୂମି ।

ବିହାରାବସଥ—ପୁଂ. ବ. କ୍ରୀଡ଼ାଗୃହ ।

ବିହାରିକା—ବ.(ବିହାର+କ+ଆ)ମଠ ।

ବିହାରିକାୟସ୍ଥ—ଗ୍ରା. ବ. ବିହାର ପ୍ରଦେଶରୁ ଓଡ଼ିଶାକୁ ଆସି ବହୁ ପୁରୁଷାବଧି ଉପନିବେଶ ସ୍ଥାପନ କରିଥିବା 'ଲାଲ' ଉପାଧିଧାରୀ କାୟସ୍ଥ ଜାତି ।

ବିହାରୀ—ବି. ବଂ. ( ବି+ହୃ+ଇନ୍ ) ପରିକ୍ରମୀ, ଭ୍ରମଣକାରୀ, ବିହାରକାରୀ, କ୍ରୀଡ଼ାକାରୀ, ବିହାର ପ୍ରଦେଶୀୟ,ମେଳି ହେଉଥିବା, ସୁନ୍ଦର, (ଗ୍ରା.ବ) ବିହାର ପ୍ରଦେଶବାସୀବ୍ୟକ୍ତି ଓ ତଦ୍ଦେଶୀୟଭାଷା

ବିହାରୀଲାଲପଣ୍ଡିତ—ଗ୍ରା.ବ. ଜଙ୍ଗଲବାସୀ କାଶ୍ମୀରୀ ବ୍ରାହ୍ମଣ ସ୍ୱର୍ଗୀୟ ଜମିଦାର ।

ବିହାଲ୍—ଯା.ବ.ବେହାଲ ଦେଖ,ବିହ୍ୱଳ

ବିହାବା—ପ୍ରା. (ଭଦ୍ରୀଭାଷା) ବିବାହ ।

ବିହାସ—ପୁଂ. ବ. (ବି+ହାସ) ଈଷତ୍ ହାସ୍ୟ । [ ହାସ୍ୟାସ୍ପଦ ।

ବିହାସ୍ୟ—ବଂ. (ବି+ହାସ୍ୟ) ହସନୀୟ,

ବିହି—ଗ୍ରା. ବ. (ସଂ-ବିଧି) ବିଧାତା ।

ବିହିଂସକ—ବି.ବଂ.(ବି+ହିନସ୍+ଅକ) ବିଶେଷ ରୂପେ ହିଂସାକାରୀ, ନାଶକ ।

ବିହିଂସତା—ସ୍ତ୍ରୀ. ବ. ବିହିଂସର ଭାବ, ଅନିଷ୍ଟଚନ୍ତା ।

ବିହିଂସନ—କ୍ଲୀ.ବ (ବି+ହିନସ୍+ଅନ) ବିହିଂସା, ହିଂସା, ଅନିଷ୍ଟଚେଷ୍ଟା ।

ବିହିଂସା—ସ୍ତ୍ରୀ. ବ. (ବି + ହିନସ୍ + ଆ) ହିଂସା ।

ବିହିତ—ବି. ବଂ. ( ବି+ଧା+ମଁ.ତ ) ବିଧେୟ, ଅନୁଷ୍ଠିତ, କୃତ, ଦତ୍ତ,କଥିତ, ବିଧିସଙ୍ଗତ, ସମ୍ପାଦିତ, ଉଚିତ, ଆବ-ଶ୍ୟକ, (ବି. ଭା.ତ) ବିଧାନ, (ଗ୍ରା.ବଂ) ଅମଙ୍ଗଳକର, ଅନିଷ୍ଟକାରକ ।

ବିହିତସମାନ—ବ.(କ.ଧା) ଯଥାଯୋଗ୍ୟ ମର୍ଯ୍ୟାଦା ।

ବିହିତି—ସ୍ତ୍ରୀ.ବ.(ବି+ଧା+ତି)ବିଧାନ ।

ବିହିଦ୍ଧିମ—ବି. ବଂ. ( ବି+ଧା+ଢିମ ) ବିଧାନ ଦ୍ୱାରା ସମ୍ପନ୍ନ, ବିଧିପୂର୍ବକ

ସମାପ୍ତ (କାର୍ଯ୍ୟ) ।

ବିହିଦାନା—ଗ୍ରା.ବି. ପଶ୍ଚିମ ହିମାଳୟରେ ଓ ପଞ୍ଜାବରେ ଜନ୍ମିବା ବୃକ୍ଷବିଶେଷ, ପରଗାଳ । [ ବିନା ।

ବିହିନେ—ଗ୍ରା. (ପଦ୍ୟ) ଅ. (ସଂ-ବିହୀନ)

ବିହିବା—ଗ୍ରା. କ୍ରି. ବିଧାନକରିବା, ସମ୍ପାଦନକରିବା, ସୃଷ୍ଟିକରିବା, ଘଟାଇବା, ନ୍ୟସ୍ତକରିବା,ଆଚରଣକରିବା,କହିବା, ଘଟିବା ।

ବିହିବିଧାତା—ଗ୍ରା.ବି.ବିଧାତା, ସୃଷ୍ଟିକର୍ତ୍ତା

ବିହିସ୍ତ—ଯା. ବି. ସ୍ୱର୍ଗ ।

ବିହୀନ—ତ୍ରି. ବିଂ. ( ବି+ହା+ର୍ମ.ତ ) ବିଶେଷ ରୂପେ ହୀନ, ତ୍ୟକ୍ତ, ବର୍ଜିତ, ବିରହିତ, ଅଭାବଗ୍ରସ୍ତ, ( ଗ୍ରା. ତ୍ରି. ବିଂ ) ବ୍ୟତୀତ, ଅଭାବରେ, ବିନା ।

ବିହୁଡ଼ା—ଗ୍ରା.ବି.ଶାରଦ ବୁଆ ଧାନଗଛକୁ ହଳ ବୁଲାଇ ବା ଗଛକୁ ଉପାଡ଼ିବା ପ୍ରକ୍ରିୟା, ବେଉଷଣ ।

ବିହୁଡ଼ିବା—ଗ୍ରା. କ୍ରି. ବେଉଷଣକରିବା, ବେଉଷଣ ସମୟ ଉପସ୍ଥିତ ହେଲେ କିଆରିରେ ହଳବୁଲାଇ ଧାନଗଛକୁ ଚଷି ସମଭାବରେ ରଖିବା ।

ବିହୁ(ହି)ନେ—ଗ୍ରା. ଅବ୍ୟ. ବ୍ୟତୀତ, ଛଡ଼ା, ବିନା ।

ବିହୁଲିବା—ଗ୍ରା.କ୍ରି. (ବିହୁସଂଖ୍ୟକ ଗାଈ) ଚରିବାବେଳେ ଏଣେତେଣେ ଖେଳେଇ ହୋଇ ବୁଲିବା,ପ୍ରକାଶକରିବା,ବାଣ୍ଟିବା, ମିଳେଇଯିବା, ଖେଳେଇ ହୋଇଯିବା ।

ବିହୃତ—କ୍ଲୀ. ବି. ( ବି+ହୃ+ଭା.ତ ) ସ୍ତ୍ରୀମାନଙ୍କର କ୍ରୀଡ଼ା ବା ବିହାରବିଶେଷ ।

ବିହୃତି—ସ୍ତ୍ରୀ. ବି. ( ବି+ହୃ+ଭା.ତି ) ବିହାର, କ୍ରୀଡ଼ା, ଉଦ୍ଘାଟନ, ବିସ୍ତୃତ, ବୈର, ଅପନୟନ ।

ବିହୁଦ—ଗ୍ରା. ବି. ଶତ୍ରୁ ।

ବିହେଠ—ପୁଂ. ବି. (ବି+ହେଠ୍+ଅ) ବିହେଠନ, ହିଂସା ।

ବିହେଠକ—ତ୍ରି. ବିଂ. (ବି+ହେଠ୍+ଅକ) ହିଂସକ, ମର୍ଦ୍ଦକ ।

ବିହେଠନ—କ୍ଲୀ. ବି. (ବି+ହେଠ୍+ଭା.ଅନ) ହିଂସା, ମର୍ଦ୍ଦନ, ବିଡ଼ମ୍ବନ, ଯାତନା, ପ୍ରତାରଣା, ଦୁଃଖ, (ଗ୍ରା.ବି) ଆନତ । [ ହାନି ।

ବିହେଠା—ସ୍ତ୍ରୀ. ବି. କ୍ଷତ, ଦୋଷ,ମାନ-

ବିହ୍ଲ—ପ୍ରା. (ସମ୍ବଲ) ବି. ବଢ଼ିଣାମୁଠା ତିଆରି କରିବାରେ ବ୍ୟବହୃତ ତୃଣବିଶେଷ ।

ବିହ୍ୱଳ—ପୁଂ. ବିଂ. (ବି+ହ୍ୱଲ୍+କ.ଅ) ଭୟାଦିଦ୍ୱାରା ଅଭିଭୂତ, ଅଚେତନ, ଶୋକାଦି ଦ୍ୱାରା ଆର୍ତ୍ତ, ଦ୍ରବୀଭୂତ ।

ବିହ୍ୱଳତା—ସ୍ତ୍ରୀ. ବି. ( ବିହ୍ୱଳ+ତା ) ବିହ୍ୱଳତ୍ୱ, ଅବଶତା, ଜଡ଼ତା, ଅବସନ୍ନତା ।

ବିହ୍ୱଳାଇବା—ଗ୍ରା. କ୍ରି. (ପଦ୍ୟ)ବିଚଳିତ କରାଇବା, ବିମୋହିତ କରାଇବା ।

ବିହ୍ୱଳିତ—ଗ୍ରା. ବିଂ. ବିହ୍ୱଳ ଦେଖ ।

ବୀ—ସ୍ତ୍ରୀ. ବି. (ବି+ଇ) ଗମନ, ମାଈ ଚଢ଼େଇ, ପକ୍ଷିଣୀ । [ ମନ ।

ବୀକ—ପୁଂ. ବି. (ଅଜ୍+କ) ବାୟୁ,ପକ୍ଷୀ,

ବୀକାଶ—ପୁଂ. ବି. (ବୀ+କାଶ୍+ଭା.ଅ) ଗୋପନ, ନିଭୃତ, ପ୍ରକାଶ ।

ବୀକ୍ଷ—ବି. (ବି+ଈକ୍ଷ୍+ଅ) ଦୃଷ୍ଟି ।

ବୀକ୍ଷକ—ପୁଂ. ବିଂ. (ବି+ଈକ୍ଷ୍+କ.ଅକ) ନିରୀକ୍ଷଣକାରୀ, ପରିଦର୍ଶନକାରୀ, (ବି) ପରିଦର୍ଶକ ବ୍ୟକ୍ତି ।

ବୀକ୍ଷଣ—କ୍ଲୀ. ବି. (ବି+ଈକ୍ଷ୍+ଭା.ଅନ) ନିରୀକ୍ଷଣ, ଦର୍ଶନ, ବିଶେଷରୂପେ ଦେଖିବା ବା ପରୀକ୍ଷା କରିବା ।

ବୀକ୍ଷଣପ୍ରେକ୍ଷଣ—ବି. ଭୋଗ ଦିଆଯିବା ପୂର୍ବରୁ ଭୋଗ ଦିଆଯିବା ବସ୍ତୁକୁ ମନୋଯୋଗ ପୂର୍ବକ ଦେଖି ପରୀକ୍ଷା କରି ବା ତତ୍ପରେ ତହିଁ ଉପରେ ପାଣିସିଞ୍ଚିବା ।

ବୀକ୍ଷଣୀୟ—ବିଂ. (ବି+ଈକ୍ଷ୍+ଅନୀୟ) ବୀକ୍ଷଣଯୋଗ୍ୟ, ଦର୍ଶନୀୟ, ସୁନ୍ଦର ।

ବୀକ୍ଷା—ସ୍ତ୍ରୀ. ବି. (ବି+ଈକ୍ଷ୍+ଆ)ଦର୍ଶନ, ବୀକ୍ଷଣ ।

ବୀକ୍ଷାପନ୍ନ—ବିଂ. ବିସ୍ମୟାପନ୍ନ ।

ବୀକ୍ଷିତ—ବିଂ. (ବି+ଈକ୍ଷ୍+ତ)ବିଶେଷରୂପେ ଈକ୍ଷିତ, ଦୃଷ୍ଟ, ଅବଲୋକିତ, ନିରୀକ୍ଷିତ, (ବି-ଭା.ତ) ଦର୍ଶନ ।

ବୀକ୍ଷିତବ୍ୟ—ବିଂ. (ବି+ଈକ୍ଷ୍+ତବ୍ୟ) ଦର୍ଶନୀୟ, ଦେଖିବାର ଯୋଗ୍ୟ ।

ବୀକ୍ଷିତୃ—ବିଂ. (ବି+ଈକ୍ଷ୍+ତୃ) ବୀକ୍ଷଣକାରୀ, ଦ୍ରଷ୍ଟା ।

ବୀକ୍ଷ୍ୟ—କ୍ଲୀ. ବି.(ବି+ଈକ୍ଷ୍+ଯ) ବିସ୍ମୟ, ଦୃଶ୍ୟ, ନୃତ୍ୟକାରକ, ଘୋଟକ,ନୃତ୍ୟ, (ବିଂ) ଦର୍ଶନୀୟ, ସୁନ୍ଦର ।

ବୀଖା—ସ୍ତ୍ରୀ. ବି. ବୀଙ୍ଖାଶବ୍ଦାର୍ଥ ।

ବୀଙ୍ଖା—ସ୍ତ୍ରୀ. ବି. ଶୂକଶିମ୍ବୀ, ଗତିବିଶେଷ, ନର୍ତ୍ତନ, ଅଶ୍ୱଗତିବିଶେଷ, ସନ୍ଧି ।

ବୀଗୁଳ(ଳୀ)—ବି. ଧାନ୍ୟାଦିର ଶୁଷ୍କତୃଣ ସମୂହ, ନଡ଼ା ।

ବୀଚି—ବି. (ବେ+ଇଚି) ତରଙ୍ଗ,ଢେଉ, ସ୍ୱଳ୍ପତରଙ୍ଗ, ଅବକାଶ, ସୁଖ, ଅଳ୍ପ, କିରଣ, ପ୍ରାପ୍ତି ।

ବୀଚିବିକ୍ଷୁବ୍ଧ—ବିଂ.(୩ତତ୍)ତରଙ୍ଗାକୁଳିତ ।

ବୀଚିମାଳା—ବି. (୬ତତ୍) ତରଙ୍ଗମାଳା, ତରଙ୍ଗ ଉପରେ ବା ପରେ ଉଠିବା ତରଙ୍ଗମାନ ।

ବୀଚିମାଳୀ—ପୁଂ.ବି. (ବିଚିମାଳା+ଇନ୍) ସୂର୍ଯ୍ୟ, ସମୁଦ୍ର ।

ବୀଚୀ—ସ୍ତ୍ରୀ.ବି. (ବୀଚି+ଈ)ବୀଚି ଦେଖ

ବୀଚୀକାକ—ପୁଂ.ବି. ଜଳକାକ, ପାଣିକୁଆ ।

ବୀଚୀତରଙ୍ଗନ୍ୟାୟ—ଯେଉଁପରି ଗୋଟିଏ ତରଙ୍ଗ ଅନ୍ୟ ତରଙ୍ଗ ଉତ୍ପାଦନ କରେ ଓ ତହିଁରୁ ପୁଣି ଅନ୍ୟ ତରଙ୍ଗ ଉତ୍ପନ୍ନ ହୁଏ,ସେହିପରି କୌଣସି ଗୋଟିଏ କଥାରୁ ଅନେକ କଥା ବାହାରିଲେ ସେହି ସ୍ଥାନରେ ଏହା ନ୍ୟାୟ ପ୍ରଯୁକ୍ତ ହୁଏ ।

ବୀଚୀତରଙ୍ଗବାଦ—ବି. ଆଲୋକ ଓ ଧ୍ୱନିଆଦି ତରଙ୍ଗରୂପେ ଚାଳିତ ହୋଇ ଦୂରକୁ ଗମନ କରେ ଏହି ବୈଜ୍ଞାନିକ ମତ ।

ବୀଜ—କ୍ଲୀ.ବି. ( ବୀ+ଜନ୍+କ.ଅ ) ବୀର୍ଯ୍ୟ, ମୂଳମନ୍ତ୍ର, ଯନ୍ତ୍ର, ବିହନ, ପେଉ, ଭେଦ, ଟଙ୍କାଗଛ,କାରଣ,ଶୁକ୍ର,ତେଜଃ,

ଶସ୍ୟବୀଜ, ମଞ୍ଜି, ଅଙ୍କୁର, ଶସ୍ୟାଦିର ଫଳ, ଆଧାର, ବନ୍ଧ, ତତ୍ତ୍ୱ, ମୂଳ, ତତ୍ତ୍ୱାଧାନ, ମଜ୍ଜା, ମନ୍ତ୍ର, ବୀଜଗଣିତ, ଅବ୍ୟକ୍ତ ରାଶି ।

ବୀଜକ—ପୁଂ.ବି. କ୍ରେତା, କ୍ରେତାଙ୍କ ନିକଟକୁ ପଠାଇବା ଦାମ ଓ ମାଲର ବିବରଣ ଥିବା ତାଲିକା, ସୂଚୀ, ତାଲିକା ଟଭା, ବୀଜପୁର, ମଞ୍ଜି, ସନ୍ତାନ ଜନନ ସମୟରେ ଶିଶୁର ଦୁଇହାତ ମଧ୍ୟରେ ମୁଣ୍ଡ ରହିଯାଇ ପ୍ରସବ ଦ୍ୱାରରେ ବାହାରିବା ଅବସ୍ଥା ।

ବୀଜକର୍କଟିକା—ସ୍ତ୍ରୀ.ବି. ଦୀର୍ଘ କର୍କଟିକା, ଲମ୍ବା କାକୁଡ଼ି ।

ବୀଜକସାର—ପୁଂ. ବି. ପିୟାଳବୀଜ, ମାଉଳକଙ୍କ ସାର ।

ବୀଜକା—ସ୍ତ୍ରୀ.ବି. କପିଳଦ୍ରାକ୍ଷା ।

ବୀଜକାୟ—ବି. ବିଂ. ବୀଜ ଶବ୍ଦର ଆଦି ଦେଖ ।

ବୀଜକୃତ୍—କ୍ଲୀ.ବି. (ବୀଜ+କୃ+କ୍ୱିପ୍) ବାଜୀକରଣ ଔଷଧ, ବୀର୍ଯ୍ୟକାରକ ।

ବୀଜକୋଶ(ଷ)—ବି. (୬ତତ୍) ବୀଜର ଆଧାର, ପୁଷ୍ପାଦିର ଯେଉଁ ଅଂଶରେ ମଞ୍ଜି ଥାଏ, ପଣସଆଦି ଫଳର ଖୋଷା, ଶିବର ଅଣ୍ଡକୋଷ, ବରାଟକ ।

ବୀଜକୋଶକ—କ୍ଲୀ.ବି. ବୃଷଣ, ଅଣ୍ଡ ।

ବୀଜଗଣିତ—କ୍ଲୀ.ବି. ଅବ୍ୟକ୍ତ ରାଶିସମ୍ବନ୍ଧୀୟ ସମସ୍ୟା ସାଧନରୂପ ଗଣିତଶାସ୍ତ୍ର ।

ବୀଜଗର୍ଭ—ପୁଂ.ବି. (ବ.ବ୍ରୀ) ପଟୋଳ ।

ବୀଜତାଡ଼କ—ଗ୍ରା.ବି. ବୃଦ୍ଧଦାରକ ଦେଖ

ବୀଜଦାତା—ପୁଂ.ବି. ଜନକ, ପିତା ।

ବୀଜଦ୍ରୁମ—ପୁଂ.ବି. ଅସୁରବୃକ୍ଷ, ପିଆଶାଳ

ବୀଜଧାନ୍ୟ—କ୍ଲୀ. ବି. (କ.ଧା) ବିହନ ଧାନ, ଧାନଗଛର ତଳି ।

ବୀଜନ—ବି. ( ବି+ଅଜ୍+ଭା.ଅନ ) ବ୍ୟଜନ, ବିଞ୍ଚିବା, ( କ.ଅନ ) ପଙ୍ଖା, ଚାମର, (କ.ଅନ) ଚକ୍ରବାକ, ଚକୁଆ ଚଢ଼େଇ ।

ବୀଜପାଦପ—ପୁଂ.ବି. ଅସନବୃକ୍ଷ, ପିଆଶାଳ, ଭଲ୍ଲାତକ ବୃକ୍ଷ ।

ବୀଜପୁରୁଷ—ପୁଂ.ବି. ଆଦିପୁରୁଷ, ବଂଶର ପ୍ରଥମ ବା ପ୍ରଧାନ ପୁରୁଷ, ଗୋତ୍ର ପ୍ରବର୍ତ୍ତକ ବ୍ୟକ୍ତି ।

ବୀଜପୁଷ୍ପ—ବି. (ବ.ବ୍ରୀ) ମରୁବକବୃକ୍ଷ, ମରୁଆଗଛ, ମଦନବୃକ୍ଷ, ମହଣଗଛ, ଜନସ୍ରଗନ୍ଧ ।

ବୀଜପୂର—ପୁଂ.ବି. ଫଳପୂର, ଟଭଲେମ୍ବୁ, ମଧୁକର୍କଟୀ ।

ବୀଜପେଶିକା—ସ୍ତ୍ରୀ.ବି. ଅଣ୍ଡକୋଶ ।

ବୀଜଫଳକ—ପୁଂ.ବି. ବୀଜପୂର ଦେଖ

ବୀଜମନ୍ତ୍ର—ବି.(ବୀଜ+ମନ୍ତ୍ର)ଇଷ୍ଟଦେବତା ଆଦିଙ୍କର ପ୍ରତୀକସ୍ୱରୂପ ମନ୍ତ୍ର, ଇଷ୍ଟମନ୍ତ୍ର, ମୂଳମନ୍ତ୍ର ।

ବୀଜମାତୃକା—ସ୍ତ୍ରୀ.ବି. ପଦ୍ମବୀଜ ।

ବୀଜରକ୍ଷଣ—ବି. (୬ତତ୍) ବିହନ ସାଇତିବା ।

ବୀଜରତ୍ନ—ପୁଂ.ବି. ବର, ମାଷ ।

ବୀଜରୁହ—ପୁଂ.ବି. ଧାନ୍ୟାଦି ଶସ୍ୟ ।

ବୀଜରେଚକ(ନ)—କ୍ଲୀ. ବି. (ବ.ବ୍ରୀ) ଜୟପାଳ, କନକା ।

ବୀଜରୋପଣ—ବି.(୬ତତ୍)ତଳି ରୋଇବା

ବୀଜଲ—ବିଂ.(ବୀଜ+ଲ)ବୀଜବହୁଳ, ମଞ୍ଜିଆ ।

ବୀଜବପନ—ବି. ( ୬ତତ୍ ) ଧାନ୍ୟାଦି ବୁଣିବା, ମଞ୍ଜି ରୋଇବା ବା ବୁଣିବା ।

ବୀଜବାପୀ—ବି ଓ ବିଂ. (ବୀଜ+ବପ୍ +କ.ଇନ୍) ଯେ ମଞ୍ଜି ବୁଣେ ।

ବୀଜବାହନ—ପୁଂ.ବି. ମହାଦେବ ।

ବୀଜବୃକ୍ଷ—ପୁଂ.ବି. ବୀଜପ୍ରଧାନ ବୃକ୍ଷ, ଅଶନ, ପିଆଶାଳ, ଭଲିଆ ।

ବୀଜସଞ୍ଚୟ—ପୁଂ.ବି. (ବୀଜ+ସମ+ଚି+ଅ) ବପନଯୋଗ୍ୟ ଧାନ୍ୟାଦିର ସଂଗ୍ରହ ।

ବୀଜସାର—ବି. ବାଇବିଡ଼ଙ୍ଗ ।

ବୀଜସାଲ—ବି. ପିଆଶାଳ ।

ବୀଜସୂ—ସ୍ତ୍ରୀ.ବି. ( ବୀଜ+ସୂ+କ୍ୱିପ୍ ) ପୃଥିବୀ ।

ବୀଜସ୍ଥାପନ—କ୍ଲୀ.ବି.ବୀଜସଞ୍ଚୟ ଦେଖ ।

ବୀଜସ୍ନେହ—ପୁଂ.ବି. ପଳାଶବୃକ୍ଷ ।

ବୀଜା—ଗ୍ରା.ବି. ପିଆଶାଳ ।

ବୀଜାକୃତ—ବିଂ. (୩ତତ୍) ବୀଜ ବପନାନ୍ତର କର୍ଷିତ ।

ବୀଜାଖ୍ୟ—ବି. ଜୟପାଳ ବୃକ୍ଷ ଓ ମଞ୍ଜି ।

ବୀଜାଙ୍କୁର—ବି. (ବୀଜ+ଅଙ୍କୁର)ମଞ୍ଜିରୁ ବାହାରିବା ଗଜା ।

ବୀଜାଙ୍କୁରନ୍ୟାୟ—ବି. ସୃଷ୍ଟିରେ ଆଗ ବୀଜ କି ଆଗ ଅଙ୍କୁର ଜାତହେଲା ଏହା ନିରୂପଣ କରିବା ଅସମ୍ଭବ, ସୁତରାଂ ଏହିପରି ସନ୍ଦେହ ସ୍ଥଳେ ଏହି ନ୍ୟାୟ ହୁଏ ।

ବୀଜାଧାର—ବି. (୬ତତ୍) ବୀଜକୋଷ

ବୀଜାନୟନ—ଫଳିତ ଜ୍ୟୋତିଷୋକ୍ତ ଗ୍ରହଭୁକ୍ତି କାଳ ନିର୍ଣ୍ଣୟର ପ୍ରକ୍ରିୟାବିଶେଷ ।

ବୀଜାପୁର—ଦାକ୍ଷିଣାତ୍ୟର ମୁସଲମାନଶାସିତ ଗୋଟିଏ ଜନପଦ, ପ୍ରାଚୀନ ନାମ ବିଜୟପୁର ।

ବୀଜାମ୍ଳ—କ୍ଲୀ.ବି. (ବ.ବ୍ରୀ) ବୃକ୍ଷାମ୍ଳ ।

ବୀଜିତ—ବିଂ. ( ବି+ଅଜ୍+ର୍ମ.ତ ) ଯାହାକୁ ବିଞ୍ଚାଯାଇଥାଏ, କୃତବ୍ୟଜନ ।

ବୀଜୀ—ପୁଂ.ବି. ( ବୀଜ+ଇନ୍ ) ପିତା, ଲେଉଟିଆ ଶାଗ, (ବିଂ) ବୀଜବିଶିଷ୍ଟ, ଔରସଜାତ ।

ବୀଜୋଦକ—କ୍ଲୀ.ବି. (ବ.ବ୍ରୀ) କରକା, କୁଆପଥର ।

ବୀଜୋପ୍ତିଚକ୍ର—ସ୍ତ୍ରୀ.ବି. ( ଜ୍ୟୋତିଷ ) ବୀଜ ବପନପାଇଁ ଶୁଭାଶୁଭ ଜ୍ଞାନାର୍ଥ ସର୍ପାକାର ଚକ୍ର ।

ବୀଜ୍ୟ—ବିଂ. ( ବୀଜ+ଜାତାର୍ଥେ.ଯ ) ବଂଶସମ୍ଭୂତ, ବୀଜସମ୍ଭୂତ, (ବୀଜ+ର୍ମ.ଯ) ବ୍ୟଜନଯୋଗ୍ୟ, ଯାହାକୁ ବିଞ୍ଚାଯିବା ଉଚିତ ।

ବୀଜ୍ୟମାନ—ପୁଂ.ବିଂ.(ବୀଜ+ର୍ମ.ଆନ) ଯାହାକୁ ଅନ୍ୟଲୋକ ବିଞ୍ଚୁଥାଏ, (ସ୍ତ୍ରୀ) ବୀଜ୍ୟମାନା । [ ଆଦି ।

ବୀଟ—କ୍ଲୀ.ବି. ଖଣ୍ଡା, (ବୈଦ୍ୟକ)ବଟୁ-

ବୀଟିକା—ସ୍ତ୍ରୀ.ବି. (ବି+ଇଟ+କ.ଅକ

+ଆ) ବଡ଼ିଆ, ପାନଖିଲ, ଗୁଆ,ମସଲା ଆଦିରେ ସଜ୍ଜିତ ପାନ, ଗୁଡ଼ାଏ ପାନ-ପତ୍ର ବଡ଼ା,(ଭ୍ର.+ଅକ+ଆ)ବନ୍ଧନ ।

**ବୀଟୀ**—ସ୍ତ୍ରୀ.ବି. ବୀଟିକା ଦେଖ ।

**ବୀଡ଼**—ବି. ବିଚୁଆଡ ।

**ବୀଡ଼ୁ**—ତ୍ରି.ବିଂ. ଦୃଢ଼ ।

**ବୀଡ଼ୁଜମ୍ଭ**—ତ୍ରି.ବିଂ. ହବିର୍ଭକ୍ଷଣାର୍ଥ ।

**ବୀଡ଼ୁଦ୍ୱେଷସ୍**—ତ୍ରି.ବିଂ. ପ୍ରବଳ ରାକ୍ଷସା-ଦିର ଦ୍ୱେଷକାରୀ ।

**ବୀଡ଼ୁପତ୍ମନ୍**—ତ୍ରି.ବିଂ. ବଳବଦୁତ୍ପତନ

**ବୀଡ଼ୁପବି**—ତ୍ରି.ବିଂ. ଦୃଢ଼ ରଥନେମି ।

**ବୀଡ଼ୁପାଣି**—ତ୍ରି.ବିଂ. ଦୃଢ଼ପାଣି ।

**ବୀଡ଼ୁହରସ୍**—ତ୍ରି.ବିଂ.ପ୍ରଭୂତ ତେଜସ୍କ ।

**ବୀଡ଼ୁବଙ୍ଗ**—ତ୍ରି.ବିଂ. ଦୃଢ଼ାଙ୍ଗ ।

**ବୀଣା**—ସ୍ତ୍ରୀ.ବି.(ବୀ+ନ+ଆ)ବିଦ୍ୟୁତ୍, ସପ୍ତ ତନ୍ତ୍ରବିଶିଷ୍ଟ ବାଦ୍ୟଯନ୍ତ୍ରବିଶେଷ ।

**ବୀଣାକ**—ବି. (ବୀଣା+କ)ବୀଣା ।

**ବୀଣାକର**—ପୁଂ.ବିଂ. ( ବୀଣା+କର ) ବୀଣା ଧରିଥିବା (ବ୍ୟକ୍ତି),ଯେଉଁ ବ୍ୟକ୍ତି ବୀଣା ତିଆରି କରେ ।

**ବୀଣାକଣ୍ଠି**—ପୁଂ. ବି. ହିତୋପଦେଶ ବର୍ଣ୍ଣିତ ବ୍ୟକ୍ତିବିଶେଷ ।

**ବୀଣାକାର**—ବିଂ. (ବ.ବ୍ରୀ) ବୀଣାପରି ଆକାରବିଶିଷ୍ଟ, (ଗ୍ରା.ବି) ଯେ ବୀଣା ବଜାଏ । [ ବୀଣାକାର ।

**ବୀଣାଗଣଗୀ**—ପୁଂ. ବି. ବୀଣାବାଦକ,

**ବୀଣାଗାଥୀ**—ପୁଂ.ବିଂ. ବୀଣାବାଦକ ।

**ବୀଣାତନ୍ତ୍ର**—କ୍ଲୀ. ବି. ତନ୍ତ୍ରଗ୍ରନ୍ଥବିଶେଷ ।

**ବୀଣାଦଣ୍ଡ**—ପୁଂ.ବି. ( ୬ତତ୍ ) ବୀଣାର ଦୁଇମୁଣ୍ଡରେ ଥିବା ଦୁଇ ତୁମ୍ବୀକୁ ସଂଯୁକ୍ତ କରିଥିବା ଦଣ୍ଡ ।

**ବୀଣାଦତ୍ତ**—ପୁଂ.ବି. ଗନ୍ଧର୍ବବିଶେଷ ।

**ବୀଣାଧ୍ୱନି**—ବି. (୬ତତ୍) ବୀଣା ବାଦନର ଶବ୍ଦ,ବୀଣାଧ୍ୱନି ପରି ମଧୁର ଶବ୍ଦ, (ବିଂ-ବ.ବ୍ରୀ) ଯାହାର କଣ୍ଠସ୍ୱର ବୀଣାର ଧ୍ୱନିପରି ମଧୁର ।

**ବୀଣାନିନ୍ଦିତ**—ବିଂ. (ବ.ବ୍ରୀ) ବୀଣାଧ୍ୱନି-ଠାରୁ ଉତ୍କୃଷ୍ଟତର ବା ମଧୁରତର(ସ୍ୱର) ।

**ବୀଣାପାଣି**—ସ୍ତ୍ରୀ.ବି. ସରସ୍ୱତୀ, (ପୁଂ.ବି) ନାରଦମୁନି,(ବିଂ-ବ.ବ୍ରୀ)ଯେ ହାତରେ ବୀଣା ଧରିଥାଏ ।

**ବୀଣାପୁସ୍ତକ**—ବି. (ଦ୍ୱନ୍ଦ୍ୱ) ସରସ୍ୱତୀଙ୍କର ଏକ ହାତରେ ଥିବା ବୀଣା ଓ ଅନ୍ୟ ହାତରେ ଥିବା ବେଦପୁସ୍ତକ ।

**ବୀଣାପ୍ରସେବ**—ପୁଂ. ବି. ବୀଣାଚ୍ଛାଦନ-ପୂର୍ବକ ରକ୍ଷାକାରୀ, ବୀଣା ବାଦ୍ୟ ବନ୍ଧକାରୀ । [ ବୀଣାଶବ୍ଦ ।

**ବୀଣାରବ**—ପୁଂ.ବି.(୬ତତ୍)ବୀଣାବାଦ୍ୟ,

**ବୀଣାଳ**—ତ୍ରି.ବିଂ. କ୍ଷୁଦ୍ର ବୀଣାବିଶିଷ୍ଟ ।

**ବୀଣାବତୀ**—ସ୍ତ୍ରୀ. ବି. ସରସ୍ୱତୀ, ଅପ୍ସରା-ବିଶେଷ ।

**ବୀଣାବାଦ**—ପୁଂ.ବିଂ. (ବୀଣା+ବଦ୍+ଅ) ବୀଣାବାଦକ ।

**ବୀଣାବାଦକ**—ପୁଂ. ବିଂ. ବୀଣାବାଦ୍ୟ-କର୍ତ୍ତା, ବୀଣାବାଦନକାରୀ, ଯେ ବୀଣା ବଜାଏ ।

**ବୀଣାବାଦନ**—କ୍ଲୀ.ବି. ବୀଣାର ବାଦ୍ୟ, ବୀଣା ବଜାଇବା ।

**ବୀଣାବାନ୍**—ପୁଂ. ବିଂ. (ବୀଣା+ବତ୍) ଯାହାର ବୀଣା ଅଛି, ବୀଣାଯୁକ୍ତ,(ସ୍ତ୍ରୀ) ବୀଣାବତୀ ।

**ବୀଣାଶିଳ୍ପ**—କ୍ଲୀ.ବି. ବୀଣାବାଦନ ବିଷ-ୟକ କଳାବିଜ୍ଞାନ ।

**ବୀଣାସ୍ୟ**—ପୁଂ.ବି. ନାରଦମୁନି ।

**ବୀଣାହସ୍ତ**—ପୁଂ.ବିଂ. ( ବ.ବ୍ରୀ ) ବୀଣା-ଧାରୀ, (ବି) ଶିବ ।

**ବୀତ**—ବି. (ବି+ଇ+ତ) ଅସାର ଓ ଅକର୍ମଣ୍ୟ ହସ୍ତୀ, ଅଶ୍ୱ ଓ ସୈନ୍ୟ, (ହସ୍ତୀକୁ)ପାଦ ଓ ଅଙ୍କୁଶଦ୍ୱାରା ଆଘାତ କରିବା, ଗୋଗ୍ରହଣ ସ୍ଥାନ,ଗୋଦଣ୍ଡା, (ବିଂ) ପରିତ୍ୟକ୍ତ, ସମସ୍ତ,ମୁକ୍ତ,ବିଗତ, ଶାନ୍ତ,ନିବୃତ୍ତ, ବନ୍ଧନମୁକ୍ତ, କମନୀୟ ।

**ବୀତଂସ**—ପୁଂ.ବି. ( ବି+ତନ୍ସ୍+ଅ ) ମୃଗ, ପକ୍ଷୀପ୍ରଭୃତି ଧରିବାର ଜାଲ, ମୃଗ ଓ ପକ୍ଷୀମାନଙ୍କର ବିଶ୍ୱାସ ଜନ୍ମା-ଇବା ପାଇଁ ପ୍ରାକରଣ, ପଞ୍ଜୁରୀ,ଅଳ-ଙ୍କାରବିଶେଷ ।

**ବୀତକ**—ପୁଂ.ବି. ବୀତ ଶବ୍ଦାର୍ଥ ।

**ବୀତକାମ**—ତ୍ରି.ବିଂ (ବ.ବ୍ରୀ) କାମନା-ହୀନ, ଯାହାର କାମନା ଦୂର ହୋଇ-ଅଛି । [ ନିରହଙ୍କାର ।

**ବୀତଦମ୍ଭ**—ତ୍ରି.ବିଂ.ତ୍ୟକ୍ତଦମ୍ଭ,ଅପ୍ରଗଲ୍ଭ,

**ବୀତନ**—ପୁଂ.ବି.ଗଳଦେଶର ପାର୍ଶ୍ୱଦ୍ୱୟ, ବେକର ବଗଲ । [ ଜାଗରୁକ ।

**ବୀତନିଦ୍ର**—ତ୍ରି.ବିଂ. (ବ.ବ୍ରୀ)ନିଦ୍ରାରହିତ,

**ବୀତପୃଷ୍ଠ**—ପୁଂ. ବିଂ.ଯାହାର ପୃଷ୍ଠ ବା ପଶ୍ଚାଦ୍‌ଭାଗ ଦେଖିବାକୁ ସୁନ୍ଦର, ବିସ୍ତୀର୍ଣ୍ଣ ପରଭାଗ ।

**ବୀତଭୟ**—ପୁଂ.ବି. ବିଷ୍ଣୁ, (ବିଂ)ଭୟ-ରହିତ, ନିର୍ଭୟ । [ ବିଶେଷ ।

**ବୀତଭୀତି**—ସ୍ତ୍ରୀ.ବି. ଭୟମୁକ୍ତ, ଅସୁର-

**ବୀତମଳ**—ତ୍ରି. ବିଂ. ( ବ.ବ୍ରୀ ) ନିଷ୍ପାପ, ନିଷ୍କଳଙ୍କ, ନିର୍ମଳ ।

**ବୀତରାଗ**—ତ୍ରି.ବିଂ, (ବ.ବ୍ରୀ) ବିଗତ-ରାଗ, ଆସକ୍ତିଶୂନ୍ୟ, ନିସ୍ପୃହ, (ପୁଂ.ବି) ବୁଦ୍ଧ, ଜ୍ଞାନ ।

**ବୀତବାନ୍**—ପୁଂ.ବିଂ.ମୂଳଯୁକ୍ତ । [ ବଳ ।

**ବୀତବାରସ୍**—ତ୍ରି.ବିଂ. କାନ୍ତବଳ,ପ୍ରାପ୍ତ

**ବୀତଶୋକ**—ତ୍ରି. ବିଂ. ବିଗତଶୋକ, ଯାହାର କୌଣସି ଦୁଃଖ ନାହିଁ, (ବି) ଅଶୋକବୃକ୍ଷ ।

**ବୀତଶ୍ରଦ୍ଧ**—ପୁଂ.ବିଂ.(ବ.ବ୍ରୀ)ଶ୍ରଦ୍ଧାହୀନ ।

**ବୀତସୂତ୍ର**—କ୍ଲୀ.ବି.ଉପବୀତ, ଯଜ୍ଞୋପ-ବୀତ ।

**ବୀତସ୍ନେହ**—ପୁଂ. ବିଂ. (ବ.ବ୍ରୀ) ଯାହା ହୃଦୟରୁ ସ୍ନେହ ଦୂର ହୋଇଅଛି ।

**ବୀତସ୍ପୃହ**—ପୁଂ.ବିଂ. (ବ.ବ୍ରୀ) ନିସ୍ପୃହ, ସ୍ପୃହାଶୂନ୍ୟ, ବିରାଗଯୁକ୍ତ,ନିରସ୍ତ ।

**ବୀତହବ୍ୟ**—ପୁଂ. ବି. ଅଙ୍ଗିରସ ବଂଶୋ-ଦ୍ଭବ ଋଷିବିଶେଷ ।

**ବୀତାଶୋକ**—ପୁଂ. ବି. ଅଶୋକବୃକ୍ଷ-ବିଶେଷ, ବିଗତା ଶୋକ ।

**ବୀତି**—ବି.(ବି+ଇ+ତି)ନିବୃତ୍ତି, ମୁକ୍ତି, ଗର୍ଭଧାରଣ, କାଳର ଗତି, ଭୋଜନ, ଧାରଣ, ଆଲୋକ, ଗତି, ଦୀପ୍ତି,ପ୍ରଜନ, ଅଶନ, ଧାବନ, ପାନ, ପ୍ରାପ୍ତି, ଯଜ୍ଞ, ଘୋଟକ, ଉତ୍ପାଦନ,(ଯଜ୍ଞସ୍ଥାନକୁ)ପଶୁ

ପ୍ରେରଣ, ପରିଷ୍କରଣ ।
ବୀଟିକା—ସ୍ତ୍ରୀ, ବି. ଯଷ୍ଟିମଧୁ, ମାଳିକା ।
ବୀତିହୋତ୍ର—ପୁଂ. ବି. (ବୀତି+ହୁ+ତ୍ର) ଅଗ୍ନି, ସୂର୍ଯ୍ୟ, ରାଜା ପ୍ରିୟବ୍ରତଙ୍କ ପୁତ୍ର, ରାଜାବିଶେଷ. ଯଜ୍ଞକାରୀ ବ୍ୟକ୍ତି, (ବିଂ) ପ୍ରାପ୍ତଯଜ୍ଞ, କାନ୍ତଯଜ୍ଞ ।
ବୀତୋଚ୍ଚୟବନ୍ଧ—ବି. ଉନ୍ମୁକ୍ତ ଗ୍ରନ୍ଥି ।
ବୀତୋତ୍ତର—ବି. ବିଂ. ଉତ୍ତର ଦେବାକୁ ଅନିଚ୍ଛୁକ ।                [ ଦେଖ ।
ବୀତ୍ତ—ବି. ବିଂ. (ବି+ଦା+ତ) ଦତ୍ତ
ବୀଥି—ସ୍ତ୍ରୀ. ବି. (ବିଥ+ଇ) ପଂକ୍ତି, ଶ୍ରେଣୀ, ଗୃହାଙ୍ଗ, ପଥ ଶବ୍ଦାର୍ଥ, ଉଭୟ ପାର୍ଶ୍ୱରେ ବୃକ୍ଷ ଥିବା ପଥ, ଶ୍ରେଣୀବଦ୍ଧ ଦୋକାନ, ଦୃଶ୍ୟକାବ୍ୟବିଶେଷ,ଆକାଶରେ ରବିମାର୍ଗ, ଆକାଶରେ ନକ୍ଷତ୍ରମାନଙ୍କ ଅବସ୍ଥିତିର ବିଶିଷ୍ଟ ଅଂଶମାନ, ଯାହା ସଡ଼କ ପରି କଳ୍ପିତ ହୋଇଅଛି, (ଗ୍ରା.ବି) ଯୂଥ, ଦଳ ।
ବୀଥିକା—ସ୍ତ୍ରୀ. ବି. ବୀଥି ଦେଖ ।
ବୀଥିରେ—ଗ୍ରା.କ୍ରି. ବିଂ. ଅଧୀରେ, ଅସ୍ଥିର ହୋଇ ।
ବୀଥୀ—ସ୍ତ୍ରୀ.ବି. (ବୀଥି+ଈ) ବୀଥିଦେଖ ।
ବୀଥ୍ୟଙ୍ଗ—କ୍ରି. ବିଂ. ନାଟକବିଶେଷ ।
ବୀଧ୍ର—କ୍ଲୀ.ବି. (ବି+ଇନ୍ଧ୍+ର)ନଭ, ଆକାଶ, ବାୟୁ, ଅଗ୍ନି, (ବିଂ) ବିମଳ, ନିର୍ମଳ ।
ବୀଧ୍ର୍ୟ—କ୍ରି. ବିଂ. (ବୀଧ୍ର+ଯ) ଶରତ୍ କାଳରେ ନିର୍ମଳ ମେଘଭବ ।
ବୀନାହ—ପୁଂ. ବି. (ବି+ନହ୍+ଅ) କୂପର ମୁଖବନ୍ଧନ, କୂପର ଆଚ୍ଛାଦନ, କୂଅର ଘୋଡ଼ାଣିଦ ।
ବୀନାସ୍ଥ—ପୁଂ. ବି. କୂପ ।
ବୀନ୍ଦର୍କ—କ୍ରି.ବିଂ. ସୂର୍ଯ୍ୟ ଓ ଚନ୍ଦ୍ରଯୁକ୍ତ ।
ବୀପା—ସ୍ତ୍ରୀ.ବି. (ବି+ଆପ୍+କ.ଅ+ଆ) ବିଦ୍ୟୁତ୍ ।
ବୀପ୍ସା—ସ୍ତ୍ରୀ. ବି. (ବି+ଆପି+ସନ୍+ଅ+ଆ) ଯୁଗପତ୍ ବ୍ୟାପିବାର ଇଚ୍ଛା, (ବ୍ୟାକରଣ) ଶବ୍ଦର ପୁନଃପୁନଃ କଥନ
ବୀପ୍ସାପ୍ରୟୋଗ—ବି.ବାକ୍ୟର ବା ଶବ୍ଦର ବୀପ୍ସା ବା ଯୁଗପତ୍ ବ୍ୟବହାର କରିବାର ସ୍ଥଳ ।
ବୀର—ଶୌର୍ଯ୍ୟ ।                [ ଦେଖ ।
ବୀବଧ—ବି. (ବି+ବଧ୍+ଭା.ଅ) ବିବଧ
ବୀଭ—ଶୌର୍ଯ୍ୟହେତୁକ ଉଦ୍ୟମ,ବିକତ୍ଥନ
ବୀର—ବିଂ(ବୀର୍+କ.ଅ)ଶ୍ରେଷ୍ଠ, ପ୍ରଧାନ, କର୍ମଠ, ବୀର୍ଯ୍ୟବାନ୍, ଶୂର, ସାହସୀ, ଯୁଦ୍ଧକାରୀ,(ବି) ସାହସୀ ବ୍ୟକ୍ତି,ଯୋଦ୍ଧା, ମାଙ୍କଡ଼ ଦଳର ନେତା, ଗେଧ, ସାହିତ୍ୟର ରସବିଶେଷ, ଯେଉଁ ରସ ବିଷୟ ପାଠ କଲେ ମନରେ ସାହସ ଉଦ୍ରେକ ହୁଏ, ବିଷ୍ଣୁ, ହନୂମାନ୍, ନଟ, କାବ୍ୟ ନାଟକାଦିରେ ବର୍ଣ୍ଣିତ,ବିକ୍ରମୀ ନାୟକ, ଅନ୍ନର ମଣ୍ଡ ବା ପେଜ,ତାନ୍ତ୍ରିକ ଆଚାର ବିଶେଷ, ମରିଚ, ପୁଷ୍କର ମୂଳ, (ଅଜ୍+କ.ର) ଉଶୀର, ବେଣା, ବ୍ରାହ୍ମଣ ଗୃହର ପବିତ୍ର ଯଜ୍ଞାଗ୍ନି ଦାନ,ଧର୍ମ,ଦୟା ବା ଯୁଦ୍ଧରେ କୁଶଳ ବ୍ୟକ୍ତି, ଶୃଙ୍ଗୀ, ନଡ଼ କାଞ୍ଜିକ,ସିନ୍ଦୂର,ଲୌହ, ଶାଳପର୍ଣ୍ଣୀ, ବରାହ କନ୍ଦ, ଗିଲ, କରବୀର, ଅର୍ଜୁନବୃକ୍ଷ,ଭଲ୍ଲାତକ ବୃକ୍ଷ, ଶୁକ୍ଳଦର୍ଭ, ପୀତଝିଣ୍ଟୀ, ଋଷଭକ, (ଗ୍ରା. ବି) ତନ୍ତ୍ର ମତରେ କୌଣସି ବ୍ୟକ୍ତି ବା ସ୍ଥାନଦ୍ୱାରା ପ୍ରେରିତ ହେବା ଉତ୍ପାତକାରୀ ଭୂତ ।
ବୀରକ—ପୁଂ. ବି. କରବୀର, ବିକ୍ରାନ୍ତ, ସମର୍ଥ,ଋକ୍ଷୁସ ମନ୍ୱନ୍ତରୀୟ ମୁନି ବିଶେଷ, ବୀର ଶବ୍ଦାର୍ଥ ।                [ ପୁତ୍ରକାମୀ ।
ବୀରକାମ—କ୍ରି. ବିଂ. ପୁତ୍ର ପ୍ରାପ୍ତି ଇଚ୍ଛା,
ବୀରକାହାଳୀ—ଗ୍ରା.ବି.ଯୁଦ୍ଧ ତୂରୀ ବିଶେଷ, ଦେବାର୍ଚ୍ଚନ ସମୟରେ ବାଜିବା ତୂରୀ ।
ବୀରକୁକ୍ଷି—କ୍ରି. ବିଂ.(ବ.ବ୍ରୀ)ବୀରପ୍ରସବ କାରିଣୀ (ସ୍ତ୍ରୀ) ।                [ ଶ୍ରେଷ୍ଠ ଶୂର ।
ବୀରକୁଞ୍ଜର—ବି. (୭ତତ୍) ବୀରଶ୍ରେଷ୍ଠ,
ବୀରକୁଳ—ବି. (୬ତତ୍) ବୀରସମୂହ, (ଗ୍ରା. ବି) ବାଲେଶ୍ୱର ଉତ୍ତର ପୂର୍ବ କୋଣରେ ଥିବା ସମୁଦ୍ର ସନ୍ନିହିତ ସ୍ଥାନ ବିଶେଷ ।                [ ବିଶେଷ ।
ବୀରକେତୁ—ପୁଂ. ବି. ପଞ୍ଚାଳ ରାଜପୁତ୍ର
ବୀରକେଶ—ଗ୍ରା. ବି. ମୁଛ, ଗାଲମୁଛ ।
ବୀରକେଶରୀ—ପୁଂ. ବିଂ. (୭ତତ୍)ବୀରଶ୍ରେଷ୍ଠ, ବୀରସିଂହ, (ଗ୍ରା.ବି) ଓଡ଼ିଶାର ପ୍ରାଚୀନ ନରପତି ବିଶେଷ ।
ବୀରଚ୍ଛୁରିକା—ସ୍ତ୍ରୀ.ବି. ଛୁରିକାବିଶେଷ ।
ବୀରଗତି—ସ୍ତ୍ରୀ.ବି. (ବ.ବ୍ରୀ)ସ୍ୱର୍ଗ,ବୀରମାନଙ୍କର ଗମନ ।
ବୀରଗୋତ୍ର—କ୍ଲୀ.ବି. (ବୀର+ଗୋତ୍ର) ବୀରର ଗୋତ୍ର, ବୀରର ବଂଶ ।
ବୀରଚକ୍ରେଶ୍ୱର—ପୁଂ. ବି. ବିଷ୍ଣୁ ।
ବୀରଚକ୍ଷୁଷ୍ମାନ୍—ବି. ବିଷ୍ଣୁ ।
ବୀରଚର୍ଯ୍ୟା—ସ୍ତ୍ରୀ. ବି. ବୀରର କାର୍ଯ୍ୟ ।
ବୀରଜନନୀ—ବି.ଯେଉଁ ସ୍ତ୍ରୀ ବୀରସନ୍ତାନ ଜନ୍ମ କରେ ।
ବୀରଜୟନ୍ତିକା—ସ୍ତ୍ରୀ. ବି. ଯୁଦ୍ଧସ୍ଥଳେ ବୀରମାନଙ୍କର ନୃତ୍ୟ, ବୀରଙ୍କ ସ୍ମରଣାର୍ଥେ ଅନୁଷ୍ଠିତ ଉତ୍ସବ ।
ବୀରଜାୟା—ସ୍ତ୍ରୀ. ବି. (୬ତତ୍) ବୀରର ଭାର୍ଯ୍ୟା, (କ.ଧା) ବୀର୍ଯ୍ୟବତୀ ରମଣୀ ।
ବୀରଣ—କ୍ଲୀ. ବି. ଉଶୀର ତୃଣ, ବେଣା ଘାସ, ତୃଣ ।
ବୀରଣକ—ପୁଂ. ବି. ନାଗବିଶେଷ ।
ବୀରଣମୂଳ—ବି.(୬ତତ୍)ବେଣା ଚେର ।
ବୀରଣା—ସ୍ତ୍ରୀ. ବି. (ବୀରଣ+ଆ) ବନ୍ଧଦୃଷ୍ଟି, ଗଭୀର ସ୍ଥାନ ।
ବୀରତନ୍ତ୍ର—କ୍ଲୀ. ବି. ତନ୍ତ୍ରବିଶେଷ ।
ବୀରତମ—କ୍ରି. ବିଂ. ଅତିଶୟ ବୀର ।
ବୀରତର—ବି. କାରଣ, ଶର, (ବିଂ) ସାମର୍ଥ୍ୟବିଶିଷ୍ଟ,ଦୁଇଜଣଙ୍କ ମଧ୍ୟରେ ଯେ ଶ୍ରେଷ୍ଠ ବୀର ।
ବୀରତରାସନ—କ୍ଲୀ. ବି. ଆସନବିଶେଷ, ବୀରଶ୍ରେଷ୍ଠମାନଙ୍କ ଆସନବିଶେଷ ।
ବୀରତରୁ—ପୁଂ. ବି. ଅର୍ଜୁନ ବୃକ୍ଷ, କୋକିଳାକ୍ଷ ବୃକ୍ଷ, ବିଲ୍ୱାନ୍ତର ବୃକ୍ଷ, ଭଲ୍ଲାତକ ବୃକ୍ଷ, ଶର, ତୃଣ, ପିଆଶାଳ ବୃକ୍ଷ ।
ବୀରତା—ସ୍ତ୍ରୀ.ବି. (ବୀର+ତା)ବୀରତ୍ୱ, ବୀରର ଭାବ ବା ଧର୍ମ,ବୀର୍ଯ୍ୟ,ତେଜ ।
ବୀରତୂର(ରୀ)—ବି. ରଣତୂରୀ ।

ବୀରଦ୍ରୁ—ପୁଂ. ବି. ଅର୍ଜୁନ ବୃକ୍ଷ, ଭଲ୍ଲାତକ ବୃକ୍ଷ।

ବୀରଧଟୀ—ବି. ଯୁଦ୍ଧସମୟରେ ଯୋଦ୍ଧାର ପରିହିତ ପୋଷାକ।

ବୀରଧନ୍ୱା—ପୁଂ. ବି. କାମଦେବ।

ବୀରଧୂ—ଗ୍ରା. ବି. ବୀରତ୍ୱ।

ବୀରନାରୀ—ବି. (କ.ଧା) ବୀରାଙ୍ଗନା, ବୀରପତ୍ନୀ।

ବୀରନ୍ଧର—ପୁଂ. ବି. ମୟୂର, ବନ୍ୟପଶୁ-ସହ ଯୁଦ୍ଧ, ଚର୍ମ, ବର୍ମ, ନଦୀବିଶେଷ।

ବୀରପଞ୍ଚମୀବ୍ରତ—ବି. ବୀରପୁତ୍ର ଲାଭ କାମନାରେ ସ୍ତ୍ରୀମାନଙ୍କର ଅନୁଷ୍ଠିତ ବ୍ରତ-ବିଶେଷ।

ବୀରପଟ୍ଟ—ପୁଂ. ବି. ଯୁଦ୍ଧକାଳର ପରି-ଚ୍ଛଦବିଶେଷ।

ବୀରପଣ—ଗ୍ରା. ବି. ବୀରତ୍ୱ, ବୀରୋଚିତ ଆଚରଣ। [ଭାର୍ଯ୍ୟା।

ବୀରପତ୍ନୀ—ସ୍ତ୍ରୀ. ବି. (ଷତତ୍) ବୀରର

ବୀରପତ୍ରା—ସ୍ତ୍ରୀ. ବି. ବିଜୟା, ସିଦ୍ଧି, ଧାରଣୀ ନାମକ ମହାକନ୍ଦ।

ବୀରପଥ—ବି. (ବୀର + ପଥିନ୍) ଯୁଦ୍ଧରେ ପ୍ରାଣତ୍ୟାଗ।

ବୀରପର୍ଣ୍ଣ—କ୍ଲୀ. ବି. ସୁରପର୍ଣ୍ଣନାମକ ସୁଗନ୍ଧ ପତ୍ର।

ବୀରପାନ—ପୁଂ. ବି. (ବୀର + ପାନ) ବୀରମାନଙ୍କର ଶ୍ରମ ନାଶପାଇଁ ପୀତ ପାନୀୟ।

ବୀରପୁତ୍ର—ବି. (କ.ଧା) ବୀର୍ଯ୍ୟବାନ୍ କୁମାର, (ଷତତ୍) ବୀରର ପୁତ୍ର।

ବୀରପୁର—କ୍ଲୀ. ବି. କାନ୍ୟକୁବ୍ଜ ରାଜ-ଧାନୀ, ହିମାଳୟ ଶିଖରସ୍ଥ ନଗରବିଶେଷ

ବୀରପୁରୁଷ—ପୁଂ. ବି. (ବୀର + ପୁରୁଷ) ବୀର୍ଯ୍ୟବିଶିଷ୍ଟ ପୁରୁଷ, ଶୂର।

ବୀରପୁଷ୍ପୀ—ସ୍ତ୍ରୀ. ବି. ବାଣ୍ଟ୍ୟାଳକବିଶେଷ ସିନ୍ଦୂରପୁଷ୍ପୀ ବୃକ୍ଷ।

ବୀରପେଷିବା—ଗ୍ରା. କ୍ରି. ମନ୍ତ୍ର ତନ୍ତ୍ର ପ୍ରୟୋଗ ଦ୍ୱାରା କୌଣସି ବ୍ୟକ୍ତି ବା ସ୍ଥାନପ୍ରତି ଉପଦ୍ରବକାରୀ ଭୂତକୁ ପ୍ରେରଣକରିବା।

ବୀରପ୍ରଜାୟିନୀ—ସ୍ତ୍ରୀ. ବି. ବୀରପ୍ରସବିନୀ, ବୀରମାତା।

ବୀରପ୍ରଜାବତୀ—ସ୍ତ୍ରୀ. ବି°. (ବୀର + ପ୍ରଜା + ବତ୍ + ଈ) ଯାହାର ପୁତ୍ର ବୀର।

ବୀରପ୍ରସବା—ସ୍ତ୍ରୀ. ବି°. ବୀରପୁତ୍ର ପ୍ରସବ-କାରିଣୀ (ସ୍ତ୍ରୀ)।

ବୀରପ୍ରସୂ—ସ୍ତ୍ରୀ. ବି°. (ବୀର + ପ୍ର + ସୂ + କ୍ୱିପ୍) ବୀରପ୍ରସବିନୀ (ସ୍ତ୍ରୀ), ବୀର-ଜନନୀ।

ବୀରବଳ(ବାଉଳ)—ଗ୍ରା. ବି. କର୍ଣ୍ଣାଳ-କାର ବିଶେଷ, ମକରକୁଣ୍ଡଳ।

ବୀରଭଦ୍ର—ପୁଂ. ବି. (ବୀର + ଭଦ୍ର) ଅଶ୍ୱମେଧଯଜ୍ଞର ଅଶ୍ୱ, ମହାବୀର ଶିବ-ଗଣ ବିଶେଷ।

ବୀରଭା—ଗ୍ରା. ବି. ବୀରତ୍ୱ।

ବୀରଭାର୍ଯ୍ୟା—ସ୍ତ୍ରୀ. ବି. ବୀରର ଭାର୍ଯ୍ୟା, ବୀରପତ୍ନୀ।

ବୀରଭୁକ୍ତି—ବି. ଜନପଦ ବିଶେଷ, ଆଧୁ-ନିକ ବୀରଭୂମର ପ୍ରାଚୀନ ନାମ।

ବୀରଭୂମ—ବଙ୍ଗ ବର୍ଦ୍ଧମାନ ବିଭାଗର ଗୋଟିଏ ଜିଲ୍ଲା।

ବୀରମର୍ଦ୍ଦନ—ପୁଂ. ବି. ଦାନବବିଶେଷ।

ବୀରମର୍ଦ୍ଦଳ—ବି. ଯୁଦ୍ଧକାଳୀନ ଢକ୍କା-ବିଶେଷ, ଯୁଦ୍ଧଢକ୍କା।

ବୀରମାତା—ସ୍ତ୍ରୀ. ବି. (ବୀର + ମାତା) ବୀରଜନନୀ, ବୀରପ୍ରସବିନୀ ସ୍ତ୍ରୀ।

ବୀରମାର୍ଗ—ପୁଂ. ବି. (ବୀର + ମାର୍ଗ) ବୀରର ମାର୍ଗ, ସ୍ୱର୍ଗ।

ବୀରମ୍ମୁ—ବି. ବି°. ଯୁଦ୍ଧେଚ୍ଛୁ।

ବୀରରଜଃ—କ୍ଲୀ. ବି. ସିନ୍ଦୂର।

ବୀରରସ—ବି. କାବ୍ୟଶାସ୍ତ୍ରର ନଅଗୋଟି ରସମଧ୍ୟରୁ ଗୋଟିଏ ପ୍ରଧାନ ରସ।

ବୀରରାଘବ—ପୁଂ. ବି. ଶ୍ରୀରାମଚନ୍ଦ୍ର।

ବୀରରାହୁ—ବି. (ଷତତ୍) କ୍ଷତ୍ରିୟ ବୀର-ମାନଙ୍କର ବିନାଶକ, ପର୍ଶୁରାମ।

ବୀରରେଣୁ—ପୁଂ. ବି. (ବ.ବ୍ରୀ) ଭୀମସେନ ଯେ ବୀରମାନଙ୍କୁ ଧୂଳିପରି ମନେକରନ୍ତି

ବୀରଲୋକ—ପୁଂ. ବି. ଇନ୍ଦ୍ରଲୋକ, ସ୍ୱର୍ଗ-ଲୋକ।

ବୀରବତୀ—ସ୍ତ୍ରୀ. ବି. (ବୀରବତ୍ + ଈ) ମାଂସରୋହିଣୀ, (ବି°) ବୀରବିଶିଷ୍ଟ, ବୀରଯୁକ୍ତ।

ବୀରବସ୍ତା—ସ୍ତ୍ରୀ. ବି°. (ବ.ବ୍ରୀ) ବୀର-ଜନନୀ, ବୀରମାତା।

ବୀରବର—ପୁଂ. ବି°. (ବୀର + ବର) ବୀରଶ୍ରେଷ୍ଠ, ଅତିଶୟ ବୀର, ମହାବୀର, (ଗ୍ରା.ବି) କ୍ଷତ୍ରିୟମାନଙ୍କ ଉପାଧିବିଶେଷ।

ବୀରବଲ୍(ଳ)—ଗ୍ରା. ବି. ମୋଗଲ ସମ୍ରାଟ୍ ଆକବରଙ୍କ ସଭାର ଜନୈକ ବିଦ୍ୱାନ୍ ପଣ୍ଡିତ ଓ ସେନାପତି। [ବଳ।

ବୀରବଳ—ବି. ବୀରୋଚିତ ବଳ, ବାହୁ-

ବୀରବଲ୍ଲୀ—ସ୍ତ୍ରୀ. ବି. ଦେବଦାଲୀ, ଦେବ-ତାଡ଼ ବୃକ୍ଷ।

ବୀରବହ—ବି. ବି°. (ବୀର + ବହ୍) ସ୍ତୋତ୍ରଦ୍ୱାରା ବହନୀୟ, ଅଶ୍ୱଦ୍ୱାରା ବହ-ନୀୟ, (ବି) ରଥ, ଘୋଡ଼ାଗାଡ଼ି।

ବୀରବାକ୍ୟ—କ୍ଲୀ. ବି. (ବୀର + ବାକ୍ୟ) ବୀରର ବାକ୍ୟ, ବୀରର ଉକ୍ତି।

ବୀରବାଜା—ଗ୍ରା. ବି. ରଣବାଦ୍ୟ, ବୀର-ବାଦ୍ୟ।

ବୀରବାହୁ—ବି. ରାବଣର ପୁତ୍ର, ବିଷ୍ଣୁ, ଧୃତରାଷ୍ଟ୍ରଙ୍କ ପୁତ୍ରବିଶେଷ, ବାନର-ବିଶେଷ, (ବି°) ଶୂରଶ୍ରେଷ୍ଠ।

ବୀରବିକ୍ରମ—ପୁଂ. ବି. ରାଜପୁତ୍ରବିଶେଷ, (ଷତତ୍) ବୀରଦର୍ପ।

ବୀରବିକ୍ରମଦେବ—ଗ୍ରା. ବି. ଖଡ଼ିଆଳର ସ୍ୱର୍ଗୀୟ ରାଜା।

ବୀରବିଦ୍—ବି. ବି°. ଶକ୍ତିଶାଳୀ, କର୍ମଠ।

ବୀରବିପ୍ଲାବକ—ପୁଂ. ବି. ଯେଉଁ ବ୍ରାହ୍ମଣ ଶୂଦ୍ରଠାରୁ ଧନ ଗ୍ରହଣ କରି ହୋମ କରେ।

ବୀରବୃକ୍ଷ—ପୁଂ. ବି. ଭଲ୍ଲାତକ ବୃକ୍ଷ, ଅର୍ଜୁନ ବୃକ୍ଷ, ବଲ୍ଲାନ୍ତର ବୃକ୍ଷ, ମୋଟା-ଧାନ।

ବୀରବେତସ—ପୁଂ. ବି. ଅମ୍ଳବେତସ।

ବୀରବ୍ୟୂହ—ପୁଂ. ବି. ବୀରମାନଙ୍କର ରଚିତ ବ୍ୟୂହ।

ବୀରବ୍ରତ—ବି. ବି°. ଦୃଢ଼ସଂକଳ୍ପ, ନୈଷ୍ଠିକ ବ୍ରହ୍ମଚାରୀ, (ବି) ମଧୁର ଓ ରସେ ସୁମ-

ନାର ଗର୍ଭଜାତ ପୁତ୍ରବିଶେଷ ।
ବୀରଣସ୍ଥ—ପୁଂ. ବି. (ବୀର+ଶୀ+ ଅଧି,ଅ) ରଣାଙ୍ଗନ,ଯୁଦ୍ଧରେ ମୃତ୍ୟୁ ।
ବୀରଶୟନ—କ୍ଲୀ. ବି. (୬ତତ୍) ବୀରମାନଙ୍କର ଶଯ୍ୟା, ରଣଭୂମି, ଯୁଦ୍ଧରେ ମୃତ୍ୟୁ ।
ବୀରଶଯ୍ୟା—ସ୍ତ୍ରୀ. ବି. (ବୀର+ଶଯ୍ୟା) ବୀରଶୟନ ଦେଖ । [ ଶାଗ ।
ବୀରଶାକ—ପୁଂ.ବି. ବାସ୍ତୁକ ଶାକ,ବଥୁଆ
ବୀରଶାର୍ଦ୍ଦୂଳ—ବି. (୬ତତ୍) ବୀରଶ୍ରେଷ୍ଠ, ପରାକ୍ରମୀ ବ୍ୟାଘ୍ର ।
ବୀରଶିଖ—ଗ୍ରା. ବି. ଶ୍ରେଷ୍ଠ ବୀର ।
ବୀରଶୂନ୍ୟ—ବି°.(୩ତତ୍) ଯେଉଁ ସ୍ଥାନରୁ ବୀରମାନଙ୍କ ଲୋପ ହୋଇଅଛି ।
ବୀରଶୈବ—ପୁଂ. ବି. ଶିବୋପାସକ ବିଶେଷ । [ ବିଶେଷ ।
ବୀରସର୍ବସ୍ୱ—ବି. ସଂସ୍କୃତ ସ୍ମୃତିଗ୍ରନ୍ଥ-
ବୀରସାଧନ—ବି. ବୀରପେକ୍ଷଣରୂପ ତାନ୍ତ୍ରିକ ଆଭିଚାରିକ କର୍ମବିଶେଷ ।
ବୀରସିଂହ—ପୁଂ.ବି. (୬ତତ୍)ବୀରଶ୍ରେଷ୍ଠ।
ବୀରସିଂହକର୍ମବିପାକ—ବି.ବୀରସିଂହକୃତ ଆୟୁର୍ବେଦୀୟ କର୍ମବିପାକ ଗ୍ରନ୍ଥବିଶେଷ।
ବୀରସିଂହାବଲୋକନ—କ୍ଲୀ. ବି. ବୀରସିଂହ କର୍ମବିପାକ ଦେଖ ।
ବୀରସୂ—ସ୍ତ୍ରୀ. ବି. (ବୀର+ସୂ+କ.କ୍ୱିପ୍) ବୀରମାତା, ଶୂରପ୍ରସବିନୀ ।
ବୀରସେନ—ପୁଂ. ବି. ନଳରାଜାଙ୍କ ପିତା, ଆରୁକ ବୃକ୍ଷ,ଆଲୁବଖରା ନାମକ କାବୁଲି ଫଳ ଓ ବୃକ୍ଷ ।
ବୀରସେନଜ—ପୁଂ. ବି. (ବୀରସେନ+ ଜ) ବୀରସେନ ରାଜାଙ୍କ ପୁତ୍ର, ନଳରାଜା ।
ବୀରସ୍ଥ—ତ୍ରି.ବି°. ବୀରକାର୍ଯ୍ୟେ ପ୍ରବୃତ୍ତ, ଯଜ୍ଞେ ଉପସ୍ଥିତ (ପଶୁ), ଯଜ୍ଞରେ ବଳି ଦିଆଯିବା (ପଶୁ) ।
ବୀରସ୍ଥାନ—କ୍ଲୀ. ବି. (୬ତତ୍) ବଳବତ୍ ସ୍ଥାନ, ବୀରାସନ, ସ୍ୱର୍ଗଲୋକ ।
ବୀରସ୍ୱାମୀଭଟ୍ଟ—ମନୁସଂହିତା ଭାଷ୍ୟକାର ମେଧାତିଥିଙ୍କ ପିତା ।

ବୀରହା—ପୁଂ.ବି. (ବୀର+ହନ୍+କ୍ୱିପ୍) ନଷ୍ଟାଗ୍ନି ବ୍ରାହ୍ମଣ, ବିଷ୍ଣୁ, (ବି°) ବୀରନାଶକ ।
ବୀରହୋତ୍ର—ପୁଂ. ବି.ଜନପଦବିଶେଷ ।
ବୀରା—ସ୍ତ୍ରୀ. ବି. ( ବୀର୍ + କ.ଅ+ଆ ) ପତି ପୁତ୍ରବତୀ ନାରୀ, ମଦିରା, ମୁରା ନାମକ ଗନ୍ଧଦ୍ରବ୍ୟ, ମୁରାମାଂସୀ, କ୍ଷୀରକାକୋଲା, ଅଁଳା, କଦଳୀ, ଭୂଇଁକଖାରୁ, ମହୁରି, ଶିଶୁଗଛ, ଏଳାବାଳୁକ, ଛତୁଆସ୍ତ, ବ୍ରାହ୍ମୀଶାକ, ଚମ୍ପାଗଛ, ପୃଶ୍ନିପର୍ଣ୍ଣୀ, କଟୁ ରୋହିଣୀ,ଜଟାମାଂସୀ, ଭୂଇଁଅଁଳା, ଘିକୁଆଁରି,(ଗ୍ରା.ବି)ବ୍ରଣ, ବ୍ରଥ ।
ବୀରାଙ୍ଗନା—ବି. (କ.ଧା)ଶୌର୍ଯ୍ୟବତୀ ସ୍ତ୍ରୀ, ବୀରନାରୀ, (୬ତତ୍) ବୀରର ସ୍ତ୍ରୀ ।
ବୀରାଚାର—ବି.( ବୀର+ଆଚାର ) ବୀରଜନୋଚିତ ଆଚରଣ,ତାନ୍ତ୍ରିକ କ୍ରିୟାବିଶେଷ । [ ବିଶେଷ ।
ବୀରାଚାରୀ—ତନ୍ତ୍ରୋକ୍ତ ଶାକ୍ତ ସମ୍ପ୍ରଦାୟ
ବୀରାଧିକାରୀ—ଗ୍ରା. ବି. ବୀରଶ୍ରେଷ୍ଠ ।
ବୀରାଧିବୀରବର—ଗ୍ରା. ବି. ମହାବୀର, ପ୍ରାଚୀନ ଓଡ଼ିଶା ରାଜାଙ୍କ ଉପାଧି ବିଶେଷ
ବୀରାନ୍ତକ—ପୁଂ. ବି. ଅର୍ଜୁନବୃକ୍ଷ, (ବି°) ବୀରନାଶକ, ଯେ ବୀରମାନଙ୍କୁ ନାଶ କରେ ।
ବୀରାମ୍ଳ—ପୁଂ. ବି. ଅମ୍ଳବେତସ ।
ବୀରାସୃତଚ୍ଛଦା—ସ୍ତ୍ରୀ. ବି. କଦଳୀ ବୃକ୍ଷ ।
ବୀରାଶଂସନ—କ୍ଲୀ. ବି. (ବୀର+ଆ+ ଶନ୍ସ୍+ଅଧି.ଅନ ) ଅତି ଭୟଙ୍କର ଯୁଦ୍ଧଭୂମି ।
ବୀରାଷ୍ଟକ—ତ୍ରି.ବି.ସ୍କନ୍ଦାନୁଚର ବିଶେଷ ।
ବୀରାସନ—କ୍ଲୀ. ବି. ( ବୀର+ଆସନ ) ଏକଜାନୁ ଭୂମିରେ ପକାଇ ଆଉ ଏକଜାନୁ ଡେର କରି ବସିବା, ଯୋଗ ସାଧନର ଆସନ ବିଶେଷ, ଦକ୍ଷିଣ ପାଦକୁ ବାମ ଜଙ୍ଘ ଉପରେ ଓ ବାମ ପାଦକୁ ଦକ୍ଷିଣ ଜଙ୍ଘ ଉପରେ ପକାଇ ବସିବା ପଦ୍ମାସନ ।
ବୀରାହି—ଗ୍ରା. ବି. ମହାବୀର ବ୍ୟକ୍ତି ।

ବୀରୁ—ଗ୍ରା. ବି. ଲତା ।
ବୀରୁଧ୍(ଧ,ଧା)—ବି.ବିସ୍ତୃତ ଲତା,ଔଷଧି, ବିଟପୀ, ଗୁଳ୍ମ ବୃକ୍ଷ ଓ ଲତାଆଦି ।
ବୀରେଣ୍ୟ—ବି°. ଅତିଶୟ ବୀର ।
ବୀରେଶ—ପୁଂ. ବି°. ( ୬ତତ୍ ) ଶିବ, ବୀରଶ୍ରେଷ୍ଠ, ମହାବୀର, ମହାଦେବଙ୍କ ଅନୁଚର, ବୀରଭଦ୍ର ।
ବୀରେଶ୍ୱର—ପୁଂ. ବି.(ବୀର+ଈଶ୍ୱର) ମହାଦେବ,ମୈଥିଲମାନଙ୍କର ଦଣ୍ଡକର୍ମପଦ୍ଧତି କର୍ତ୍ତା, ଶିବାନୁଚର,ବୀରଭଦ୍ର ।
ବୀରୋପଜୀବକ—ପୁଂ.ବି°. ଯାହାର ଉପଜୀବକା ଅଗ୍ନିହୋତ୍ର, ଯେ ଅଗ୍ନିହୋତ୍ର ଦ୍ୱାରା ଜୀବିକା ନିର୍ବାହ କରେ ।
ବୀର୍ଯ୍ୟ—ବି. ( ବୀର + ଭା.ଯ ) ବୀରତ୍ୱ, ଶୌର୍ଯ୍ୟ, ତେଜଃ,ପ୍ରତାପ,ଶୁକ୍ର,ରେତଃ, କ୍ଷମତା,ଶକ୍ତି, ସାର,ବୀଜ,ମୂଲକାରଣ ।
ବୀର୍ଯ୍ୟକର—ବି. (ବୀର୍ଯ୍ୟ+କର) ବଳକାରକ ।
ବୀର୍ଯ୍ୟକୃତ୍—ତ୍ରି. ବି°. ( ବୀର୍ଯ୍ୟ + କୃ + କ୍ୱିପ୍) ବୀର୍ଯ୍ୟକାରୀ, ବଳକାରୀ ।
ବୀର୍ଯ୍ୟକୃତ—ତ୍ରି.ବି°. ପ୍ରାପ୍ତବୀର୍ଯ୍ୟ,ବଳବନ୍ତ, ବଳବାନ୍ । [ କ୍ଷୟ ।
ବୀର୍ଯ୍ୟକ୍ଷୟ—ବି. (୬ତତ୍)ବଳକ୍ଷୟ,ଶୁକ୍ର-
ବୀର୍ଯ୍ୟଜ—ପୁଂ. ବି. (ବୀର୍ଯ୍ୟ+ଜନ୍+ କ.ଅ) ପୁତ୍ର, (ସ୍ତ୍ରୀ) ବୀର୍ଯ୍ୟଜା ।
ବୀର୍ଯ୍ୟତମ—ତ୍ରି.ବି°.ଶ୍ରେଷ୍ଠ ବୀର୍ଯ୍ୟଶାଳୀ, ବୀର୍ଯ୍ୟବତ୍ତମ ।
ବୀର୍ଯ୍ୟପାତ—ବି. (୬ତତ୍) ଶୁକ୍ରପାତ ।
ବୀର୍ଯ୍ୟମତ୍ତ—ତ୍ରି.ବି°.ବଳଦୃପ୍ତ, ତେଜୋନ୍ମତ୍ତ ।
ବୀର୍ଯ୍ୟଯୁକ୍ତ—ପୁଂ. ବି°.(୩ତତ୍)ବଳବାନ୍
ବୀର୍ଯ୍ୟବତ୍ତ୍ୱ(ତ୍ତ୍ୱ)—ବି.(ବୀର୍ଯ୍ୟବତ୍+ତା, ତ୍ୱ) ବୀର୍ଯ୍ୟବାନ୍‌ର ଭାବ,ବୀରତ୍ୱ, ବଳବତ୍ତ୍ୱ ।
ବୀର୍ଯ୍ୟବର୍ଦ୍ଧକ—ବି°.(ବୀର୍ଯ୍ୟ+ବର୍ଦ୍ଧକ) ସାମର୍ଥ୍ୟର ବୃଦ୍ଧିକାରକ, ରତିଶକ୍ତିର ବୃଦ୍ଧିକାରକ, ରସାୟନ, ବାଜୀକରଣ ।
ବୀର୍ଯ୍ୟବର୍ଦ୍ଧନ—ବି. (୬ତତ୍) ତେଜୋ-

ବୃଦ୍ଧି, ବଳ ବୃଦ୍ଧି, (ବି°) ବୀର୍ଯ୍ୟବର୍ଦ୍ଧକ ଦେଖ ।

ବୀର୍ଯ୍ୟବାନ୍—ପୁଂ. ବି°.(ବୀର୍ଯ୍ୟ+ବତ୍) ବଳବାନ୍, ଶୂର, ବୀର୍ଯ୍ୟଶାଳୀ, ମାଂସଳ, ହୃଷ୍ଟପୁଷ୍ଟ ।

ବୀର୍ଯ୍ୟବର୍ଦ୍ଧନ—ବି°. (ଷତତ୍) ବଳଧାନ, ନବୀର୍ଯ୍ୟ, ପୁରୁଷତ୍ୱବର୍ଦ୍ଧନ, ଶୌର୍ଯ୍ୟ-ଦାନଯୁକ୍ତ ।

ବୀର୍ଯ୍ୟବୃଦ୍ଧିକର—ବି°. ଶୁକ୍ରବର୍ଦ୍ଧକ (ଔଷଧାଦି), ବୃଷ୍ୟ, ବୀଜକରଣ, ବୀଜକୃତ ।

ବୀର୍ଯ୍ୟଶାଳୀ—ପୁଂ.ବି°.(ବୀର୍ଯ୍ୟ+ଶାଳିନ୍) ବୀର୍ଯ୍ୟବାନ୍, ବୀର.(ସ୍ତ୍ରୀ) ବୀର୍ଯ୍ୟଶାଳିନୀ ।

ବୀର୍ଯ୍ୟଶୁଳ୍କ—କ୍ଲୀ.ବି. (ବ.ବ୍ରୀ)ବୀର୍ଯ୍ୟପଣ, କୌଣସି ସ୍ତ୍ରୀ ବା କୌଣସି ପୁରୁଷ ଅମୁକ ବଳସାଧ୍ୟ କର୍ମ ସମ୍ପାଦନ କଲେ ତାଙ୍କ ସହିତ ଅମୁକ ପୁରୁଷର ବା ସ୍ତ୍ରୀର ବିବାହ ହେବ ଏବଂଭୂତ ପଣ୍ଡକ୍ଷା ।

ବୀର୍ଯ୍ୟସତ୍ତ୍ୱବାନ୍—ବି.ବି°. ବୀରତ୍ୱଯୁକ୍ତ, ମନୁଷ୍ୟତ୍ୱବିଶିଷ୍ଟ ।

ବୀର୍ଯ୍ୟସହ—ପୁଂ. ବି. ରାଜା ସୌଦାସଙ୍କ ପୁତ୍ର ବିଶେଷ ।

ବୀର୍ଯ୍ୟହାସ—ପୁଂ. ବି. ଯକ୍ଷବିଶେଷ ।

ବୀ(ବି)ବଧ—ପୁଂ. ବି. ଧାନ୍ୟ ତଣ୍ଡୁଳାଦି, ପଥ, କ୍ଷୀରାଦିର ଭାର, ବାର୍ତ୍ତା ।

ବୀବଧିକ—ବି. ବି°. ( ବୀବଧ+ଇକ ) ଭାରବାହକ, ଭାରି, ଭାରିଆ ।

ବୀବର—ବି.ସ୍ୱନାମ ପ୍ରସିଦ୍ଧ ଜନ୍ତୁବିଶେଷ

ବୀଶ—ବି. (ବି+ଈଶ) ଗରୁଡ଼ ।

ବୀଶପ୍ରଭୁ—ବି. (୬ତତ୍) ଶ୍ରୀରାମ, ଶ୍ରୀକୃଷ୍ଣ, ବିଷ୍ଣୁ ।

ବୀହା—ସ୍ତ୍ରୀ. ବି. ବନକୁଳଥ ।

ବୀହାର—ପୁଂ. ବି. ( ବି+ହୃ+ଅ ) ବିହାର ଦେଖ । [ ଗନ୍ଧ ।

ବୁ—ପ୍ରା. (ସମ୍ବ) ବି. ମାତୃସ୍ତନ, (ଯା.ବି)

ବୁଅ(ଆ)ର୍—ଯା. ବି. ବୁର୍,ଦକ୍ଷିଣଆଫ୍ରିକାରେ ଉପନିବେଶ ସ୍ଥାପନ କରିଥିବା ଡେନ୍ମାର୍କରୁ ଆଗତ ଖ୍ରୀଷ୍ଟିୟାନ୍ ଜାତିବିଶେଷ ।

ବୁଆ—ଗ୍ରା. ବି. ବେଉଷଣ, ବୁଣାଧାନର ଗଛ, ୪ଆଙ୍ଗୁଳଠାରୁ ୧୨ଆଙ୍ଗୁଳ ଉଚ୍ଚ ହେବା ଅବସ୍ଥା,(ଲ.ଅର୍ଥ)ଅନ୍ୟ ବ୍ୟକ୍ତିଙ୍କ ଘରେ ମିଳିବା ପର୍ଯ୍ୟାପ୍ତ ଭୋଜନ, ନିଜର ପିତାଙ୍କୁ ସମ୍ବୋଧନ, ସାନ ପିଲଙ୍କୁ ସମ୍ବୋଧନ, ( ପ୍ରା. ସମ୍ବ. ବି ) ପିତା, ବାଳକ, ସନ୍ତାନ ।

ବୁଆଳ—ଗ୍ରା. ବି. ଧାନକଟାଳି, ।ବେସ୍ୟାଦିର ଗଣ୍ଡ, ବଢ଼ିଥିବା ଧାନଗଛ ।

ବୁଇ—ପ୍ରା. (ସମ୍ବ) ସ୍ତ୍ରୀ. ବି. ବାଳିକା, ଟୋକୀ, ଯୁବତୀ ।

ବୁଇତ—ପ୍ରା.(ମେଦିନୀପୁର, ବାଲେଶ୍ୱର) ବି. ଜାହାଜ ।

ବୁଇତାଳୁ—ଗ୍ରା. ବି. ବୋଇତକଖାରୁ ।

ବୁଇଲ—ପ୍ରା. (ବଉଦ) ବି. ବଳଦ ।

ବୁଁଆଳ—ପ୍ରା. (ଚିଲିକାଅଞ୍ଚଳ)ବି.ଲୁଣର ଗୋଲା ।

ବୁକ(କ୍କ)—ଗ୍ରା. ବି. ବକ୍ଷସ୍ଥଳ, ସାହସ, ବୋକ, ଚୁମ୍ବନ, ହୃଦୟ, ଛାତି, ସ୍ତ୍ରୀ-ସ୍ତନ ।

ବୁକଦେବା—ଗ୍ରା. ବି. ଚୁମ୍ବନ ଦେବା ।

ବୁକା—ପ୍ରା. (ସମ୍ବ) ବି. ବୋଦା, ବଳି ଦିଆଯିବା ମେଣ୍ଢା ବା ଛେଳି ।

ବୁକୁ—ଗ୍ରା. ବି. (ସଂ-ବକ୍ଷଃ) ଛାତି, ବକ୍ଷଃସ୍ଥଳ,ହୃଦୟ,ଅନ୍ତଃକରଣ,ଦମ୍ଭ, ଧୈର୍ଯ୍ୟ, ସାହସ ।

ବୁକୁକୁଟେଣ୍ଟେମୋଟହେବା—ଗ୍ରା. ବି. ଆନନ୍ଦରେ ହୃଦୟ ସ୍ଫୀତ ହେବା ।

ବୁକୁକୁମାରିବା—ଗ୍ରା. ବି. ବୁକୁରେ ଶୂଳ ବେଦନା ଅନୁଭୂତ ହେବା, ( ବି ) ଶୋକରେ ଅଧୀର ହୋଇ ଛାତିରେ କରବାଡ଼େଇବା ।

ବୁକୁଗୁ—ଗ୍ରା. ବି. ବୋକଗୁ ଦେଖ ।

ବୁକୁନ—ଗ୍ରା. ବି. ଚୂର୍ଣ୍ଣ, ଗୁଣ୍ଡା ।

ବୁକୁପଡା(ଡେ)ଇବା—ଗ୍ରା. ବି. ଆଘାତ ଆଦି ସମ୍ଭାଳିବାପାଇଁ ଛାତିକୁ ଦେଖାଇବା,କୌଣସି ବିପଦକୁ ସହିବାପାଇଁ ଧୈର୍ଯ୍ୟ ସହକାରେ ଅପେକ୍ଷା କରିବା, ମନରେ ସାହସ ବାନ୍ଧିବା ।

ବୁକୁଫଟା—ଗ୍ରା. ବି°. ହୃଦୟ ବିଦାରକ, ଅସହ୍ୟ । [ ବିଦୀର୍ଣ୍ଣ ହେବା ।

ବୁକୁଫାଟିବା—ଗ୍ରା. ବି.ଦୁଃଖରେ ହୃଦୟ

ବୁକୁଫୁଲ—ଗ୍ରା. ବି. ଗର୍ବାଧିକ୍ୟ, ଆନନ୍ଦାଧିକ୍ୟ, ହର୍ଷାଧିକ୍ୟ ।

ବୁକୁଫୁଲାଇଚାଲିବା—ଗ୍ରା. କ୍ରି. ଗର୍ବସ୍ଫୀତ ଭାବ ଦେଖାଇ ଚାଲିବା ।

ବୁକୁଫୁଲା(ଲେ)ଇବା—ଗ୍ରା. କ୍ରି. ଗର୍ବସ୍ଫୀତ ହେବା, ଆନନ୍ଦୋତ୍ଫୁଲ୍ଲ ହେବା ।

ବୁକୁରେପଥରଲଦାହେବା-ଗ୍ରା.ବି.ବିଶେଷ ଚିନ୍ତାନ୍ୱିତ ଅବସ୍ଥା ଘଟିବା ।

ବୁକୁରେମୁଣ୍ଡରେହେବା—ଗ୍ରା. ସ୍ତ୍ରୀ. ବି. ବାଳିକାର ଯୌବନ ଅଙ୍ଗରେ ବିକସିତ ହେବା ।

ବୁକେପାଣି—ଗ୍ରା.ବି.ଛାତିପର୍ଯ୍ୟନ୍ତ ଗଭୀର ଜଳ ।

ବୁକ୍କ—ବି. (ବୁକ୍+କ.ଅ) ଛାତି, ବକ୍ଷଃସ୍ଥଳ, ଅନ୍ତଃକରଣ, ହୃତ୍‌ପିଣ୍ଡ, ଛାଗ, ରକ୍ତ, ଲହୁ, କଳିଜା, ସମୟ, ପ୍ରାଚୀନ କାଳରେ ମୁହଁରେ ଫୁଙ୍କାଯାଇ ବଜାଯାଉଥିବା ବାଦ୍ୟବିଶେଷ ।

ବୁକ୍କନ—ବି. (ବୁକ୍+ଭା.ଅନ) କୁକୁରର ଭୋ ଭୋ ରଡ଼ି,ସିଂହର ଗର୍ଜନ,ବିଲୁଆ-ଆଦି ଭୁକିବା, ପଶୁମାନଙ୍କର ରଡ଼ି ।

ବୁକ୍କଫଳକ—ବି. ବକ୍ଷ, ମଧ୍ୟସ୍ଥ ଅସ୍ଥି ।

ବୁକ୍କସ—ପୁଂ.ବି.(ବୁକ୍+କ.ଅସ)ଚଣ୍ଡାଳ

ବୁକ୍କା—ସ୍ତ୍ରୀ. ବି. (ବୁକ୍କ+ଆ) ଶୋଣିତ, ରକ୍ତ ।

ବୁକ୍କାଗ୍ରମାଂସ—ବି.(କ.ଧା) ହୃଦୟ, ବକ୍ଷ, କଳିଜା । [ ଦେଖ ।

ବୁକ୍କାର—ବି. (ବୁକ୍+ଭା.ଅର) ବୁକ୍କନ

ବୁଗ୍‌ଧା—ଯା. ବି. କଂସେଇର କ୍ଷୁର ।

ବୁଙ୍ଗୀ—ପ୍ରା. (ବାଲେ)ବି.ଡେଙ୍ଗା, ବୃନ୍ତ ।

ବୁଙ୍ଗରା—ପ୍ରା. (ସମ୍ବ) ବି. ବଡ଼ ଗଛର ଗଣ୍ଡିର ଖଣ୍ଡ ।

ବୁଙ୍ଗା—ଗ୍ରା. ବି. କବଳ, ଥରକେ ପାଟି ଭର୍ତ୍ତିହେବା ପରିମିତ ଖାଦ୍ୟଦ୍ରବ୍ୟ ।

ବୁଚ୍‌କା—ପ୍ରା. (ସମ୍ବ)ବି.ବୁକୁଗୁ,ଗଣ୍ଠିରି ।

ବୁଚ୍‌କି—ପ୍ରା. (ସମ୍ବ)ବି. ଛୋଟ ବୁକୁଗୁ ।

ବୁଚ୍‌କିବା—ପ୍ରା. (ସମ୍ବ) କ୍ରି. ଲକ୍ଷ୍ୟଭ୍ରଷ୍ଟ

ହେବା, ଲକ୍ଷ୍ୟସ୍ଥାନରୁ ଖସିଯିବା ।

ବୁଚ—ପ୍ରା.(ବସ୍ତର)ବି. ମାଟିରେ ତିଆରି ଘଡ଼, କ୍ଷୁଦ୍ର ମୃଦ୍‌ଘଟ ।

ବୁଜ୍‌(ଜୁ)କାଣି—ପ୍ରା.(ବାଲେ) ବି. ଜଳବୁଦ୍‌ବୁଦ, ପାଣି ଫୋଟକା ।

ବୁଜ୍‌(ଜୁ)ରୁକ୍‌(ଗ୍)—ଯା. ବିଂ. ମହତ୍ (ବ୍ୟକ୍ତି),ଚେଉର,ବୃଦ୍ଧ,ଫାଜିଲ,ଯୋଗ୍ୟ. (ଯା.ବି) ବାଜ୍ଞାଗର ।

ବୁଜା—ଗ୍ରା. ବି. ବନ୍ଦକରିବା ବା ବୁଜିବା କ୍ରିୟା, (ଗ୍ରା.ବିଂ) ମୁଦ୍ରିତ ।

ବୁଜାବୁଜି—ଗ୍ରା. ବି. ବୁଜିବା କ୍ରିୟା ।

ବୁଜାଯି(ହେ)ବା—ଗ୍ରା.କ୍ରି. ଗର୍ତ୍ତ ବା ଛିଦ୍ର କ୍ରମଶଃ ମୁଦ୍ର ହୋଇଯିବା ।

ବୁଜୁଲା(ଳି)—ଗ୍ରା. ବି. ଗଣ୍ଠିରି, ବଡ଼-ପୋଟଲା ।

ବୁଜୁଲାବାନ୍ଧିବା—ଗ୍ରା.କ୍ରି. ଲୁଗାପଟାଆଦି ବସ୍ତୁକୁ ଗୋଟିଏ ଗଣ୍ଠିରି କରି ବାନ୍ଧିବା

ବୁଝ—ଗ୍ରା. ବି. ବୋଧଶକ୍ତି, ତଦନ୍ତ ।

ବୁଝକ—ଗ୍ରା. ବିଂ. ବୋଧଶକ୍ତିସମ୍ପନ୍ନ, ବୁଝି ପାରୁଥିବା, ଯୁକ୍ତିସମ୍ପନ୍ନ ।

ବୁଝା—ଗ୍ରା. ବି. ବୁଝିବା, ବିବେଚନା ।

ବୁଝାଇବା—ଗ୍ରା. କ୍ରି. ମନାଇବା, ସମଝାଇବା, ବୋଧଗମ୍ୟ କରାଇବା, ଅନ୍ୟ ବ୍ୟକ୍ତି ଯେପରି ବୁଝିପାରିବ ସେହିପରି କରିବା, ପ୍ରବୋଧଦେବା ।

ବୁଝାପଡ଼ିବା—ଗ୍ରା.କ୍ରି. ଅନୁମିତ ହେବା, ସ୍ଥିରରୂପେ ଜଣାହେବା, ସ୍ଥିରୀକୃତ ହେବା,ଅବସ୍ଥାନୁସାରେ କର୍ମ କରାଯିବା

ବୁଝାବୁଝିକରିବା—ଗ୍ରା. କ୍ରି. ଉତ୍ତମରୂପେ ବୁଝିବା,କୌଣସି ବିଷୟର ତତ୍ତ୍ୱନେବା

ବୁଝାବୁଝିହେବା—ଗ୍ରା. କ୍ରି. କାର୍ଯ୍ୟକ୍ଷେତ୍ରରେ ବା ଭବିଷ୍ୟତରେ ଫଳ କଷିବା, ଦାଉସାଧିବା ।

ବୁଝାମଣା—ଗ୍ରା. ବି. ବିଚାରଣା, ତଦନ୍ତ, ସୁବିଚାର, ନିଷାପ, (ଗ୍ରା.ବିଂ) ନ୍ୟାୟ ବିଚାରକ, ସୁବିବେଚକ ।

ବୁଝାରତ୍(ତି)—ଗ୍ରା.ବି. ହିସାବ ବୁଝିବା କ୍ରିୟା,ସେଟଲମେଣ୍ଟର ଅଫିସରଙ୍କ କାର୍ଯ୍ୟ • ଉପରିସ୍ଥ କର୍ମଚାରୀଙ୍କ ଦ୍ୱାରା ଚେକ୍ ହେବା ।

ବୁଝାସମଝା—ଗ୍ରା. ବି. ବୋଧସୋଧ, ଉତ୍ତମ ରୂପେ ଅନୁସନ୍ଧାନ, ତନ୍ନତନ୍ନ ବିଚାର, ପ୍ରବୋଧ ଦାନ ।

ବୁଝି—ଗ୍ରା.ଅବ୍ୟ. ସାବଧାନ, ହୁସିଆର୍ ।

ବୁଝିବା—ଗ୍ରା. କ୍ରି. ଅର୍ଥବୋଧ କରିବା, ହୃଦୟଙ୍ଗମକରିବା, ଉପଲବ୍ଧି କରିବା, ଅନୁଭବ କରିବା, ଅନୁମାନ କରିବା, ଜାଣିବା, ପରୀକ୍ଷାକରିବା,ଦେଖିନେବା, ବିବେଚନାକରିବା, ବିଚାରକରିବା, ପ୍ରବୋଧ ପାଇବା, ସିଦ୍ଧାନ୍ତରେ ଉପନୀତହେବା, ଭଲମନ୍ଦ ବାଛିବା, କର୍ମର ତତ୍ତ୍ୱ ନେବା, (ଜ୍ୟୋତିଷ) ପାଞ୍ଜିରୁ ଓ ଜାତକଆଦିରୁ ଗଣନା କରି ଦଶା ଓ ବିବାହ ତିଥିଆଦି ସ୍ଥିରକରିବା, ଶାନ୍ତହେବା, ଠିକଣାକରିବା ।

ବୁଝିବା(ଲା)ସୁଝିବା(ଲା)—ଗ୍ରା.ବିଂ.ବୋଧ ଶକ୍ତିବାନ୍ (ବ୍ୟକ୍ତି) ।

ବୁଝିବୁଝି—ଗ୍ରା. କ୍ରି. ବିଂ. ସମସ୍ତ ବିଷୟ ଉତ୍ତମରୂପେ ବୁଝିବାରେ, ଅନୁସନ୍ଧାନ କରିବାରେ ଜଣାଗଲା ଯେ ।

ବୁଝେଇବାଝେଇ—ଗ୍ରା. କ୍ରି.ବିଂ. ବୋଧଶୋଧ କରାଇ, ଉତ୍ତମରୂପେ ବୋଧଗମ୍ୟ କରାଇ ।

ବୁଟ୍—ଯା. ବି. ଗୋଡ଼ ଭଣ୍ଡା ପର୍ଯ୍ୟନ୍ତ ଉଚ୍ଚ ଜୋତା । [ ପ୍ରସ୍ତୁତ ଚୂନା ।

ବୁଟଛରୁ—ଗ୍ରା. ବି. ଭଜାବୁଟ ଚୂରିଯାଇ

ବୁଟବେସନ—ଗ୍ରା.ବି.କଞ୍ଚାବୁଟର ଚୂନା ।

ବୁଟା—ଗ୍ରା.ପୁଂ.ବିଂ.ବାଙ୍ଗରା, ଖର୍ବ, (ଯା. ବି) ଲୁଗାରେ ଜରିଆଦି ଦ୍ୱାରା ତିଆରି ହୋଇଥିବା ଗ୍ରେଟ ଫୁଲ ବା ଗୋଲଟିପଚିହ୍ନ ।

ବୁଟାଛିଦ୍—ପ୍ରା. (ବସ୍ତର)ବି. ଭୂଇଁଖଜୁରି

ବୁଟି—ଗ୍ରା.ବି.(ସଂ·ବଟୀ) ଔଷଧ ବଟିକା, ଗୁଟୁକା ଔଷଧ ।

ବୁଟିଆ—ପ୍ରା. (ସମ୍ବ)ପୁଂ.ବିଂ. ଖର୍ବକାୟ, ବାମନ ।

ବୁଟୀ—ପ୍ରା. (ସମ୍ବ)ବି. ବୁଠି ଦେଖ ।

ବୁଠି—ପ୍ରା. (ସମ୍ବ)ବି. କ୍ଷୁଦ୍ରକାୟ ଲୋକ

ବୁଡ଼୍‌ବକ୍—ଗ୍ରା.ବି.ବିଂ. ଓଲୁ, ନିର୍ବୋଧ, ଗଜମୂର୍ଖ ।

ବୁଡ଼୍‌ବା—ପ୍ରା. (ସମ୍ବ)କ୍ରି. ବୁଡ଼ିବା ।

ବୁଡ଼—ଗ୍ରା.ବି. ପାଣିରେ ନିମଜ୍ଜନପୂର୍ବକ ସ୍ନାନ, ନିର୍ଦ୍ଦିଷ୍ଟ ତିଥିଆଦିରେ ଘଟିବା ସ୍ନାନଯୋଗ, ଖ୍ରୀଷ୍ଟିୟାନ୍‌ମାନଙ୍କର ଦୀକ୍ଷାଗ୍ରହଣାର୍ଥ ଡୁବନ ।

ବୁଡ଼ଣା—ଗ୍ରା.ବି.ବୁଡ଼ିବା, ଜଳରେ ଡୁବିଯିବା ଅବସ୍ଥା, ବଢ଼ି, ବନ୍ୟା,(ଗ୍ରା.ବିଂ) ବୁଡ଼ିଯିବା ଭଳି ଗଭୀରତାଯୁକ୍ତ (ଜଳ)

ବୁଡ଼ନ୍ତରି—ଗ୍ରା. ବି. ବୈଦ୍ୟକ ଜ୍ୱରନାଶକ ବଟିକା । [ ଥିବା ।

ବୁଡ଼ନ୍ତା—ଗ୍ରା.ବିଂ.ବୁଡ଼ିଯାଇଥିବା, ବୁଡ଼ି-

ବୁଡ଼ପାଡ଼ିବା-ଗ୍ରା.ବିଂ.ଗଙ୍ଗାଆଦି ନଦୀରେ ବା ସମୁଦ୍ରରେ ବାରୁଣୀ ସ୍ନାନଯୋଗ ଘଟିବା ।

ବୁଡ଼ପଡ଼ିବା—ଗ୍ରା କ୍ରି. କାର୍ତ୍ତିକାଦି ଧର୍ମ ମାସରେ ସଂକଳ୍ପପୂର୍ବକ ନିୟମିତରୂପେ ପ୍ରାତଃସ୍ନାନ କରିବା, ଗାଧୋଇବା, ବାରୁଣୀ ଯୋଗରେ ତୀର୍ଥସ୍ନାନକରିବା ।

ବୁଡ଼ା—ଗ୍ରା. ବି. ଜଳରେ ବୁଡ଼ିବାକ୍ରିୟା, ନିମଜ୍ଜନ, ବୃଦ୍ଧତ୍ତ ସର୍ପବିଶେଷ. ବୁଡ଼ାସାପ, (ଗ୍ରା.ବିଂ)ନିମଜ୍ଜିତ, (ପ୍ରା.ଗଞ୍ଜା.ବି) ପରିମାଣ ମାଣ, (ଗ୍ରା.ବିଂ) ଯେ ନାଶ ଘଟାଏ, ନାଶକାରୀ, (ଯଥା:—କୁଳବୁଡ଼ା ଇତ୍ୟାଦି) ଲୁକ୍କାୟିତ, ଗୁପ୍ତ,ଅପ୍ରକାଶିତ ।

ବୁଡ଼ାଇପକା(କେ)ଇବା—ଗ୍ରା.କ୍ରି. ଉପରି ଆଚ୍ଛାଦନ କରିବା, ଘୋଡ଼ାଇ ପକାଇବା, ଜଳପ୍ଲାବିତ କରିବା ।

ବୁଡ଼ା(ଡେ଼)ଇବା—ଗ୍ରା. କ୍ରି. ଡୁବାଇବା, ଅନ୍ୟ ବ୍ୟକ୍ତିର ବା ବସ୍ତୁର ଡୁବିବାର ଉପାୟକରିବା,ଜଳମଗ୍ନକରିବା, ଉଧାର ବା କରଜ ନେଇଥିବା ଧନକୁ ନ ଦେବା, ପରର ପ୍ରାପ୍ୟ ତମାଦି କରାଇବା, ବିନାଶକରିବା, କୌଣସି ବଂଶଗତ ବା ଦେଶ ପ୍ରଚଳିତପ୍ରଥାକୁ ପାଳନ ନ କରିବା, କୁକ୍ରିୟା ଦ୍ୱାରା ନିଜର କୁଳକୁ କଳଙ୍କିତ କରିବା, ଅନ୍ୟକୁ

କଳଙ୍କମଗ୍ନ କରାଇବା, ବନ୍ଧ୍ୟତ୍ୱ ଦୋଷରୁ ବା ଆପଣାର ସନ୍ତାନ ନଷ୍ଟ ହେବାର ସ୍ୱୟଂକାରଣ ହେବାରୁ ବଂଶଲୋପ ଘଟାଇବା, ବନ୍ଧା ଦିଆଯାଇଥିବା ଜିନିସକୁ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଧନ ପରିଶୋଧ ନ କରିବାରୁ ବନ୍ଧାଦ୍ରବ୍ୟ ଆପଣା ଦଖଲରେ ନ ଆସିବା, ଏକ ଦ୍ୱାରା ଅନ୍ୟ ଆଚ୍ଛାଦିତ ହେବା, ଘୋଡ଼ାଇବା, ଆଚ୍ଛାଦିତ କରିବା, ବିନାଶ ସାଧନ କରିବା, ବିଗାଡ଼ିଦେବା, ନଷ୍ଟ କରିଦେବା, ଲୋପ କରିବା, (କୂଳଆଦି) ଲଙ୍ଘନ କରିବା, ଖବର ନ କହିବା, (ବେଳକୁ) ଅତୀତ କରାଇବା ।

ବୁଡ଼ାଇମାରିବା—ଗ୍ରା. କ୍ରି. ଜଳରେ ନିମଜ୍ଜିତ କରି ପ୍ରାଣନାଶକରିବା, (ଲ.ଅର୍ଥ) କୌଣସି ବ୍ୟକ୍ତିର ବିନାଶ ସାଧନ କରିବା ।

ବୁଡ଼ାଇରଖିବା—ଗ୍ରା. କ୍ରି. କିଛିକାଳ ପର୍ଯ୍ୟନ୍ତ ଜଳରେ ନିମଜ୍ଜିତ କରି ରଖିବା, ବତୁରାଇବା ।

ବୁଡ଼ାଏପାଣି—ଗ୍ରା.ବି.ପ୍ରାଣୀର ବୁଡ଼ିଯିବା ପର୍ଯ୍ୟନ୍ତ ଗଭୀର ଜଳ ।

ବୁଡ଼ାଜାହାଜ—ଗ୍ରା. ବି. ଯେଉଁ ଜାହାଜ ପାଣି ଭିତରେ ବୁଡ଼ିକରି ଗତିକରେ ।

ବୁଡ଼ାଣିଆକଥା—ଗ୍ରା. ବି. ପରର ଅନିଷ୍ଟ ସାଧନ ବା କଳଙ୍କ ରଚନା ।

ବୁଡ଼ାପାଣି—ଗ୍ରା. ବି., ଦୁମୁକା ବର୍ଷା, ଯେଉଁ ବର୍ଷା ଜଳ ଦ୍ୱାରା ବିଲ ପୋଖରୀ ଭର୍ତ୍ତି ହୋଇଯାଏ ।

ବୁଡ଼ାବୁଡ଼ି—ଗ୍ରା.ବି. ଅତ୍ୟନ୍ତ ବା ବାରଂବାର ବୁଡ଼ିବା କ୍ରିୟା ।

ବୁଡ଼ାଳି—ଗ୍ରା. ବି. ଡୁବିବାବାଲା ।

ବୁଡ଼ାଲିଙ୍ଗ—ଗ୍ରା.ବି.ଯେଉଁ ମହାଦେବଙ୍କ ଲିଙ୍ଗବିଗ୍ରହ ଶକ୍ତି ମଧ୍ୟରେ ବୁଡ଼ିକରି ଥାଆନ୍ତି ଅର୍ଥାତ୍ ବାହାରକୁ ଦେଖାଯାନ୍ତି ନାହିଁ ।

ବୁଡ଼ି—ପ୍ରା. (ବାଲେ)ବି. ୫ଗଣ୍ଡା ବା ୨୦ କଉଡ଼ା କୁଡ଼ି, ପଣର ଚତୁର୍ଥାଂଶ, ୪ ।

ବୁଡ଼ିଆ—ଗ୍ରା.ବି.ଶ୍ରେଷ୍ଠ କୁରଢ଼ି, ଟାଙ୍ଗିଆ, ଫାରସା ।

ବୁଡ଼ିଆସିବା—ଗ୍ରା.କ୍ରି(ସୂର୍ଯ୍ୟଚନ୍ଦ୍ର)ଅସ୍ତୋନ୍ମୁଖ ହେବା ।

ବୁଡ଼ିକପା—ଗ୍ରା.ବି. ଏକପ୍ରକାର କପା ।

ବୁଡ଼ିକରିପାଣିପିଇବା—ଗ୍ରା.କ୍ରି.ଜଳରେ ନିମଜ୍ଜିତ ହୋଇଥିବା ଅବସ୍ଥାରେ ଜଳ ପିଇବା, (ଲ.ଅର୍ଥ) ଲୋକ ଚକ୍ଷୁର ଅଗୋଚରରେ କୌଣସି କାର୍ଯ୍ୟକରିବା ।

ବୁଡ଼ିବା—ଗ୍ରା. କ୍ରି. ଜଳରେ ଡୁବିବା, ନିମଜ୍ଜିତହେବା, ମୁଣ୍ଡ ବୁଡ଼ାଇ ଗାଧୋଇବା, (ଲ.ଅ) ଲୋପ ପାଇବା, ଅନ୍ୟ ବସ୍ତୁ ମଧ୍ୟରେ ଅନ୍ତର୍ହିତ ହେବା, ବିନଷ୍ଟ ହେବା, ଉଚ୍ଛନ୍ନହେବା, (ସୂର୍ଯ୍ୟଚନ୍ଦ୍ରାଦି) ଅସ୍ତହେବା, ନିଷ୍ଫଳହେବା, ମଜ୍ଜିବା, ବୃହତ୍ତର ପଦାର୍ଥ ଦ୍ୱାରା ଆବୃତ୍ତ ହୋଇ ଅଦୃଶ୍ୟ ହେବା, ଆଚ୍ଛନ୍ନହେବା, (ବଂଶ) ଲୁପ୍ତହେବା, ଉଧାର ବା ଋଣ ଦେଇଥିବା ଧନ ଆଦାୟ ନ ହେବା, କୁକ୍ରିୟା ଦ୍ୱାରା ବଂଶର ଗୌରବ ନଷ୍ଟ ହେବା, ପ୍ରଶ୍ୱାସ-ପ୍ରଶ୍ୱାସ ସ୍ଥଗିତ ହେବା, ଆଶା—ନିଶ୍ୱାସ) ଲୁପ୍ତହେବା, ବାହାରେ ଜଣା ନ ପଡ଼ିବା, ଗୁପ୍ତ ଭାବରେ ରହିବା, (ନିଶାଆଦି ଦ୍ୱାରା) ଅଭିଭୂତ ହେବା, ବିପନ୍ନହେବା, ଜଳାଦି ଦ୍ୱାରା ପ୍ଲାବିତ ହେବା, ଡିଙ୍ଗିଯିବା, ବନ୍ଧକ ଜିନିସ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ମୁକୁଳା ନ ହେବା, ତୀର୍ଥସ୍ନାନ କରିବା ।

ବୁଡ଼ିମରିବା—ଗ୍ରା. କ୍ରି. ଜଳରେ ମଗ୍ନ ହୋଇ ପ୍ରାଣ ହାରିବା, (ମନୁଷ୍ୟ) ଉଚ୍ଛନ୍ନ ହେବା ।

ବୁଡ଼ିଯିବା—ଗ୍ରା. କ୍ରି. ବୁଡ଼ିବା ଦେଖ ।

ବୁଡ଼ିରହିବା—ଗ୍ରା. କ୍ରି. ଦାଗ ବା ଚିହ୍ନ ଦେହରେ ବସିଯିବା, ଜଳ ମଧ୍ୟରେ ବୁଡ଼ିକରି କିଛି ସମୟ ଅବସ୍ଥାନକରିବା, ପ୍ରୀତିରେ ନିମଜ୍ଜିତ ହେବା ।

ବୁଡ଼ୁଙ୍ଗା—ପ୍ରା, (ଗଞ୍ଜାମ)ବି, ମାଛ ବା ଶୁଖୁଆର ପୁଡ଼ା ।

ବୁଢ଼—ଗ୍ରା. ବି. (ସଂ-ବୃଦ୍ଧ) ବୁଢ଼ିଗାଈ ।

ବୁଢ଼ା—ଗ୍ରା.ପୁଂ.ବି. ବୃଦ୍ଧ ବ୍ୟକ୍ତି, ପ୍ରବୀଣ ବ୍ୟକ୍ତି, (ପୁଂ. ବିଂ.) ବୃଦ୍ଧ, ଜରାଗ୍ରସ୍ତ, ପ୍ରାଚୀନ, ବୟୋବୃଦ୍ଧ, ବଡ଼, ପୋଖତ, (ପ୍ରା. ସମ୍ବ. ବି) କାର୍ଯ୍ୟ ।

ବୁଢ଼ାଆଙ୍ଗୁଳି—ଗ୍ରା.ବି.ବୃଦ୍ଧାଙ୍ଗୁଷ୍ଠ, ହାତର ଓ ଗୋଡ଼ର ସର୍ବାପେକ୍ଷା ସ୍ଥୂଳ ଅଙ୍ଗୁଷ୍ଠ ।

ବୁଢ଼ାକାଳ—ଗ୍ରା. ବି. ( ପୁରୁଷଙ୍କ ପ୍ରତି ) ବୃଦ୍ଧକାଳ, ବୃଦ୍ଧାବସ୍ଥା ।

ବୁଢ଼ାତାଳସଜ—ଗ୍ରା.ବି.କଠିନ ହୋଇଯାଇଥିବା ସଜ ।

ବୁଢ଼ାବର—ଗ୍ରା.ବି.ଯେଉଁ ବରର ବୟସ କନ୍ୟାର ବୟସଠାରୁ ଅତ୍ୟନ୍ତ ଅଧିକ ।

ବୁଢ଼ାବଲଙ୍ଗ—ଗ୍ରା.ବି.ମୟୂରଭଞ୍ଜ ସିମିଳିପାଳ ପାହାଡ଼ରୁ ବାହାରି ବାଲେଶ୍ୱର ଦେଇ ବଙ୍ଗୋପସାଗରରେ ପଡ଼ିଥିବା ନଦୀ ।

ବୁଢ଼ାବୁଢ଼ୀ—ଗ୍ରା.ବି.ବୃଦ୍ଧ ପୁରୁଷ ଓ ବୃଦ୍ଧା ସ୍ତ୍ରୀ, ବୃଦ୍ଧା ଓ ବୃଦ୍ଧ ହୋଇଯାଇଥିବା ଦମ୍ପତି ।

ବୁଢ଼ାବୁଢ଼ୀଘାଟି—ଗ୍ରା.ବି. ନରସିଂହପୁର ରାଜ୍ୟର ପ୍ରଧାନ ଗିରିସଙ୍କଟ ଓ ଘାଟି ।

ବୁଢ଼ାମାଙ୍କଡ଼—ଗ୍ରା. ବି. ଗେଧ, ବାନର ଯୂଥର ଦଳପତି, ଅତିବୃଦ୍ଧ, ଅକର୍ମଣ୍ୟ ବ୍ୟକ୍ତି ।

ବୁଢ଼ାଳିଆ—ଗ୍ରା.ବିଂ.ବୃଦ୍ଧ ବ୍ୟକ୍ତିର ଉପଯୋଗୀ, ପ୍ରାୟ ସୁପରିପକ୍ୱ(ଫଳ), ପ୍ରାୟ ବୃଦ୍ଧ ।

ବୁଢ଼ାଶୁଆ—ଗ୍ରା.ବି. ଅଧିକ ବୟସ୍କ ଶୁକପକ୍ଷୀ, ( ଲ.ଅର୍ଥ ) ବାଲ୍ୟାବସ୍ଥା ଗତହେବା ପରେ ଯେ ବିଦ୍ୟାଶିକ୍ଷା କରେ ।

ବୁଢ଼ାହଡ଼ା—ଗ୍ରା. ବି. ବୃଦ୍ଧ ଓ ଦୁର୍ବଳ ବ୍ୟକ୍ତିଗଣ, ବୃଦ୍ଧ ଓ ଶୀର୍ଣ୍ଣ ବଳଦ ।

ବୁଢ଼ାହେବା—ଗ୍ରା. କ୍ରି. ବାର୍ଦ୍ଧକ୍ୟପ୍ରାପ୍ତ ହେବା, ଫଳଆଦି ବେଶି ପକ୍ୱହେବା ।

ବୁଢ଼ିଆଣୀ—ଗ୍ରା.ବି, ମାକଡ଼ସା, ଅଷ୍ଟପଦୀ ପକ୍ଷହୀନ କୀଟବିଶେଷ ।

ବୁଢ଼ିଆଣୀଜାଲ—ଗ୍ରା. ବି. 'ମାକଡ଼ସା ଶୂନ୍ୟରେ ବୁଣିଥିବା ଜାଲ ।

ବୁଢ଼ିଆଣୀସୂତା—ଗ୍ରା.ବି.ମାକଡ଼ସା କାଟି

ଥିବା, ସୂକ୍ଷ୍ମ ସୂତା ।
ବୁଢ଼ିଖୋଲ—ଗ୍ରା. ବି. ଗଞ୍ଜାମ ଜିଲ୍ଲାର ବୁଗୁଡ଼ାରୁ ଧୁଁଇମାଇଲ ଦୂରରେ ଅବସ୍ଥିତ ଘୁମୁସରର ପର୍ବତ । [ସ୍ତ୍ରୀ ।
ବୁଢ଼ୀ—ଗ୍ରା. ବି. ବୁଢ଼ାର ସ୍ତ୍ରୀଲିଙ୍ଗ, ବୃଦ୍ଧା
ବୁଢ଼ୀଗାଈ—ଗ୍ରା.ସ୍ତ୍ରୀ. ବି. ବୃଦ୍ଧା ଗାଈ, ବୁଢ଼ୀ ।
ବୁଢ଼ୀଗାଈଦାନ—ଗ୍ରା.ବି. (ଲ.ଅର୍ଥ)ଅକର୍ମଣ୍ୟ ପଦାର୍ଥର ଦାନ ।
ବୁଢ଼ୀମା—ଗ୍ରା.ବି. ପିତାମହୀ, ଯେଜେମା, ବୃଦ୍ଧାମାତା । [କପୋତ ।
ବୁଢ଼େଲ—ପ୍ରା.(ସମ୍ବ)ବି. ପାରାପର ବଡ଼
ବୁଣା—ଗ୍ରା.ବି. କ୍ଷେତ୍ରରେ ଧାନଆଦିର ମଞ୍ଜି ବୁଣିବା କ୍ରିୟା, ଲୁଗାଆଦି ବୁଣିବା କ୍ରିୟା, ବିଞ୍ଚିଦେବା, ବିକ୍ଷେପଣ, (ବିଂ) ସୂତା ବା ତନ୍ତୁଦ୍ୱାରା ବୟନ କରାଯାଇଥିବା, (ବୀଜ) ବପନକରାଯାଇଥିବା, ବିଞ୍ଚାହୋଇଥିବା ।
ବୁଣା(ଣେ)ଇବା—ଗ୍ରା.କ୍ରି.ବୁଣିବା କ୍ରିୟାର ଣିଜନ୍ତରୂପ ।
ବୁଣାବୁଣି—ଗ୍ରା.ବି.ବିଶେଷ ପରିମାଣରେ ବୁଣିବା କ୍ରିୟା ।
ବୁଣିବା—ଗ୍ରା. କ୍ରି. ଲୁଗାଆଦି ବୟନ କରିବା, କ୍ଷେତ୍ରରେ ମଞ୍ଜି ବୁଣିବା,ଇତସ୍ତତଃ ବିକ୍ଷିପ୍ତ କରିବା, ସୂତା ବେତ ଲଇଆଦିକୁ ପରସ୍ପର ଛନ୍ଦିବା,(ଲ.ଅର୍ଥ) ପ୍ରଚୁର କରିବା,(ଟଙ୍କା) ବହୁତ ବ୍ୟୟ କରିବା ବା ଲଗାଣ କରିବା ।
ବୁଣ୍ଟକ—ପ୍ରା.(ସମ୍ବ)ବି. ନାଭିଗଣ୍ଠି ।
ବୁତଲ—ଗ୍ରା. ବି. ବୋତଲ, କାଚର ବଡ଼ପାତ୍ର ।
ବୁତା—ପ୍ରା.(ସମ୍ବ)ବି.କାର୍ଯ୍ୟ, କର୍ମ,ଆବଶ୍ୟକ କାର୍ଯ୍ୟ, (ଗ୍ରା.ବି) ପଣସଆଦିର ଚେପା, ଖାଦ୍ୟଫଳାଦିର ନୀରସାଂଶ ।
ବୁଦ—ପ୍ରା.(ସମ୍ବ)ବି. ଶୂକର, (ଗ୍ରା.ବି) ଚଣା ମୁଗଆଦି ଫଳର ଚେପା ।
ବୁଦିବା—ପ୍ରା.(ସମ୍ବ)କ୍ରି. ପାଣିରେ ବୁଡ଼ିବା
ବୁଦ୍‌ବୁଦ—ବି.( ବୁଦ୍‌+ବୁଦ୍‌+ମି.ଅ ) ଜଳବିମ୍ବ,ପାଣିଫୋଟକା,ଗର୍ଭସ୍ଥ ଭ୍ରୂଣ, କ୍ଷୁଦ୍ରବୁଦ୍‌ବୁଦପର କ୍ଷଣସ୍ଥାୟୀ ପଦାର୍ଥ ।
ବୁଦା—ଗ୍ରା.ବି. ଗୁଳ୍ମମାନଙ୍କର ସମଷ୍ଟି, କ୍ଷୁପ, ଘୋର ଜଙ୍ଗଲ, ବାଡ଼ାମଧ୍ୟରେ ଲଗାଯାଇଥିବା ନୂତନ ଗଛ, (ପୁଂ) ଗୁଚ୍ଛ, ବକରା, ବୋଦା ।
ବୁଦ—ଗ୍ରା.ବି. ଘୋର ବୁଦା ।
ବୁଦବୁଦକିଆ—ଗ୍ରା. ବିଂ. ଏଠାରେ ସେଠାରେ ଗୋଟିଏ ଗୋଟିଏ ମାଣ୍ଡହୋଇ ଉଠିଥିବା ।
ବୁଦୁକା—ଗ୍ରା.ବିଂ. ଖର୍ବ, ସ୍ଥୂଳକାୟ ।
ବୁଦ୍ଧ—ପୁଂ.ବି. ( ବୁଧ୍‌+କ୍ତ ) ଜ୍ଞାନୀ, ବୌଦ୍ଧମତର ପ୍ରବର୍ତ୍ତକ ମହାପୁରୁଷ, ଶାକ୍ୟସିଂହ, ଗୌତମ, ବୁଦ୍ଧ,ବିଷ୍ଣୁଙ୍କର କଳିଯୁଗରେ ଅବତୀର୍ଣ୍ଣ ଦାରୁରୂପ, ବୌଦ୍ଧାବତାର, ( ବିଂ-ମି.ତ ) ଜ୍ଞାତ, ବିଦିତ, ଅନୁଭୂତ, ଜାଗରିତ, ବୋଧଗମ୍ୟ ହୋଇଥିବା ।
ବୁଦ୍ଧଗୟା—ବି. ଗୟାର ଆଠମାଇଲ ଦୂରବର୍ତ୍ତୀ ବୌଦ୍ଧମାନଙ୍କର ତୀର୍ଥବିଶେଷ ।
ବୁଦ୍ଧଗୁରୁ—ପୁଂ.ବି. ମଧ୍ୱମାଧର୍ମ ସମ୍ପ୍ରଦାୟର ପ୍ରତିଷ୍ଠାତା ମଧ୍ୱମା ଗୋସାଇଁଙ୍କର ନାମାନ୍ତର ।
ବୁଦ୍ଧଦେବ—ଗ୍ରା.ବି. ବୌଦ୍ଧମତ ପ୍ରବର୍ତ୍ତିକ ମହାପୁରୁଷ, ଶାକ୍ୟସିଂହ ।
ବୁଦ୍ଧି—ବି.(ବୁଧ୍‌+ମି.ତି)ଜ୍ଞାନ, ବୋଧଶକ୍ତି, ମତ, ମନର ନିଶ୍ଚୟାତ୍ମିକା ଜ୍ଞାନ, ମନୋବୃତ୍ତିବିଶେଷ, (ଶ.ତ) ଚିତ୍ତବୃତ୍ତି, ଅନ୍ତଃକରଣ, (ମି.ତ) ମହତ୍ତତ୍ତ୍ୱ,(ଗ୍ରା.ବି) ମନର ବିଚକ୍ଷଣତା, ମନର ଗତି, ପରାମର୍ଶ, ଉପଦେଶ, ବିବେଚନାଶକ୍ତି, ଉପସ୍ଥିତ ବୁଦ୍ଧି ।
ବୁଦ୍ଧିଆ—ଗ୍ରା.ବିଂ. ଜ୍ଞାନବାନ୍, ବୁଦ୍ଧିମାନ୍
ବୁଦ୍ଧିଗମ୍ୟ—ବିଂ. (ତତ୍ପୁ) ବୋଧଗମ୍ୟ, ବୋଧଶକ୍ତିର ଗୋଚର ।
ବୁଦ୍ଧିଚକ୍ଷୁ—ବି. (ବ.ବ୍ରୀ) ପ୍ରଜ୍ଞା ଚକ୍ଷୁ, (ଜନ୍ମାନ୍ଧ) ଧୃତରାଷ୍ଟ୍ର ।
ବୁଦ୍ଧିଚାତୁର୍ଯ୍ୟ—କ୍ଳୀ.ବି. (ଷତତ୍ପୁ) ବୁଦ୍ଧି କୌଶଳ ।
ବୁଦ୍ଧିଜୀବୀ—ପୁଂ.ବିଂ. (ବୁଦ୍ଧି+ଜୀବ+କ.ଇନ୍) ଯେ ନିଜର ବୁଦ୍ଧିବଳରେ ଜୀବିକା ନିର୍ବାହ କରେ, ଅତ୍ୟନ୍ତ ବୁଦ୍ଧିମାନ୍ ।
ବୁଦ୍ଧିଦର୍ଶିବା—ଗ୍ରା.କ୍ରି. ବୁଦ୍ଧିର ଉଦୟହେବା, ଉପାୟ ମନରେ ପଡ଼ିଥିବା ।
ବୁଦ୍ଧିଦେବା—ଗ୍ରା.କ୍ରି. ପରାମର୍ଶ ଦେବା, ଉପାୟ ବତାଇଦେବା ।
ବୁଦ୍ଧିଆସିବା—ଗ୍ରା.କ୍ରି. କୌଣସି ଘଟଣାର ପ୍ରତିକାର ପାଇଁ ଉପାୟ ମନରେ ଆସିବା । [ଲୋପ ।
ବୁଦ୍ଧିନାଶ—ବି. (ଷତତ୍ପୁ) ବୋଧଶକ୍ତିର
ବୁଦ୍ଧିପର—ବି. (ଷତତ୍ପୁ) ବୁଦ୍ଧିର ଅଗମ୍ୟ ।
ବୁଦ୍ଧିବତା(ତେ)ଇବା—ଗ୍ରା. କ୍ରି. ଅନ୍ୟ ବ୍ୟକ୍ତିକୁ ଉପସ୍ଥିତ ବିପଦରୁ ବା ଘଟଣାର ପ୍ରତିକାର ବତାଇବା ।
ବୁଦ୍ଧିବନ୍ତ—ଗ୍ରା. ପୁଂ. ବିଂ. ବୁଦ୍ଧିମାନ୍ ଦେଖ ।
ବୁଦ୍ଧିବାଟ—ଗ୍ରା.ବି. ଉପାୟ ।
ବୁଦ୍ଧିବିକାଶ—ବି. (ଷତତ୍ପୁ)ବୋଧଶକ୍ତିର ପ୍ରକାଶ ।
ବୁଦ୍ଧିବିବେକ—ଗ୍ରା.ବି. ବୁଦ୍ଧି ।
ବୁଦ୍ଧିବିହୀନ—ପୁଂ.ବି.(ତତ୍ପୁ)ନିର୍ବୁଦ୍ଧିଆ, ଯାହାର ବୁଦ୍ଧି ନାହିଁ ।
ବୁଦ୍ଧିବୃତ୍ତି—ବି. (ଷତତ୍ପୁ) ବୋଧ କରିବାର ଶକ୍ତି,ବୁଝିବାର ଶକ୍ତି,ନିଶ୍ଚୟାତ୍ମିକା ମନୋବୃତ୍ତି । [ଜ୍ଞାନଲୋପ ।
ବୁଦ୍ଧିଭ୍ରଂଶ—ବି. (ଷତତ୍ପୁ) ବୁଦ୍ଧିନାଶ,
ବୁଦ୍ଧିଭ୍ରମ—ବି. (ଷତତ୍ପୁ) ବୁଦ୍ଧିର ଭ୍ରାନ୍ତି, ବୁଝିବାର ଭୁଲ ।
ବୁଦ୍ଧିମତ୍ତା—ବି. (ବୁଦ୍ଧିମତ୍‌+ତା)ବୁଦ୍ଧିମାନ୍ ହେବା ଅବସ୍ଥା ।
ବୁଦ୍ଧିମନ୍ତ—ଗ୍ରା.ପୁଂ.ବିଂ.ବୁଦ୍ଧିମାନ୍ ଦେଖ
ବୁଦ୍ଧିମାନ୍—ପୁଂ. ବିଂ. ( ବୁଦ୍ଧି+ମତୁ ) ବୁଦ୍ଧିବିଶିଷ୍ଟ ।
ବୁଦ୍ଧିଶାଳୀ—ପୁଂ.ବିଂ. (ବୁଦ୍ଧି+ଶାଳିନ୍) ବୁଦ୍ଧିମାନ୍ ।
ବୁଦ୍ଧିସନ୍ଧ—ବି. (ଷତତ୍ପୁ) ଚିତ୍ତ,ହୃଦୟ ।

ବୁଦ୍ଧିସହାୟ—ବି. (୬ତତ୍ର) ମନ୍ତ୍ରୀ,ପରାମର୍ଶଦାତା ।

ବୁଦ୍ଧିହତ—ପୁଂ.ବିଂ.(ବ.ସ୍ତ୍ରୀ) ବୁଦ୍ଧିହୀନ, କିଂକର୍ତ୍ତବ୍ୟବିମୂଢ଼ ।

ବୁଦ୍ଧିହା—ବିଂ. (ବୁଦ୍ଧି+ହନ୍+କ.କ୍ୱିପ୍) ଯାହା ମନୁଷ୍ୟର ବୁଦ୍ଧିକୁ ନଷ୍ଟ କରେ ।

ବୁଦ୍ଧିହେବା—ଗ୍ରା.ବି. ଶିଶୁର ମାନସିକ ଶକ୍ତିର ବିକାଶହେବା ।

ବୁଦ୍ଧୀନ୍ଦ୍ରିୟ—ବି. (କ.ଧା) ଜ୍ଞାନେନ୍ଦ୍ରିୟ, ଯେଉଁ ଇନ୍ଦ୍ରିୟମାନଙ୍କ ସାହାଯ୍ୟରେ ବାହ୍ୟବସ୍ତୁ ସମ୍ବନ୍ଧେ ଜ୍ଞାନ ଜନ୍ମେ, ଚକ୍ଷୁ କର୍ଣ୍ଣ, ନାସିକା, ଜିହ୍ୱା, ତ୍ୱକ୍ ଓ ମନ ।

ବୁଧ—ବି. (ବୁଧ୍+କ.ଅ)ଜ୍ୟୋତିଷୋକ୍ତ, ନବଗ୍ରହ ମଧ୍ୟରୁ ଚତୁର୍ଥ ଗ୍ରହ,ଜ୍ଞାନୀବ୍ୟକ୍ତି, ପଣ୍ଡିତ, ସୂର୍ଯ୍ୟବଂଶୀୟ ଜଣେ ରାଜା, (ଅଗ୍ନିପୁରାଣ) ବୁଧବାର, ବେଗବାନ୍ ରାଜାଙ୍କ ପୁତ୍ର ଓ ତୃଣବିନ୍ଦୁ ରାଜାଙ୍କ ପିତା, କୁକ୍କୁର ।

ବୁଧଚକ୍ର—ବି.ବୁଧଗ୍ରହ ଭିନ୍ନ ଭିନ୍ନ ରାଶିକୁ ସଞ୍ଚାର କରିବା ସମୟରେ ଶୁଭାଶୁଭ ଜ୍ଞାପକ ଜ୍ୟୋତିଷ ଚକ୍ର ।

ବୁଧଚଳନ—ବି. (୬ତତ୍ର) ବୁଧ ଗ୍ରହର ଏକ ରାଶିରୁ ଅନ୍ୟ ରାଶିକୁ ଗମନ ।

ବୁଧଜନ—ବି. ପଣ୍ଡିତ ବ୍ୟକ୍ତି, ଜ୍ଞାନୀବ୍ୟକ୍ତି

ବୁଧବାର—ବି. ମଙ୍ଗଳବାରର ପରବର୍ତ୍ତୀ ବାର ।

ବୁଧରତ୍ନ—ବି. ବୁଧଗ୍ରହଙ୍କ ପ୍ରୀତିଜନକ ମଣି, ମରକତ ମଣି ।

ବୁଧାନ—ବି.(ବୁଧ୍+କ.ଆନ) ଜ୍ଞାନୀବ୍ୟକ୍ତି, ଗୁରୁ, କବି, ବ୍ରହ୍ମବାଦୀ, ବ୍ରହ୍ମଉପାସକ, ପ୍ରିୟବାଦୀ ବ୍ୟକ୍ତି ।

ବୁଧାଷ୍ଟମୀ—ବି. ମାର୍ଗଶିର, ମାଘ,ଫଗୁଣ, ବୈଶାଖ ଓ ଜ୍ୟେଷ୍ଠ ଏହି ପାଞ୍ଚ ମାସରେ ଶୁକ୍ଳ ଅଷ୍ଟମୀ ତିଥିରେ ପଡ଼ିବା ବୁଧବାର

ବୁଧିତ—ପୁଂ.ବିଂ. (ବୁଧ୍+ମ.ତ)ଜ୍ଞାତ ।

ବୁଧିଲ—ପୁଂ.ବିଂ. (ବୁଧ୍+ଇଲ) ଜ୍ଞାନୀ, ବିଦ୍ୱାନ୍, (ସ୍ତ୍ରୀ) ବୁଧିଲା ।

ବୁଧଇଓସା—ଗ୍ରା.ବି. ଭାଦ୍ରବ ମାସ ବୁଧବାରରେ ସ୍ତ୍ରୀମାନେ କରିବା ଉପବାସ

ବୁଧ୍ନ—ବି. (ବୁଧ୍+କ.ନ) ବୃକ୍ଷମୂଳ,ଶିବ

ବୁଧ୍ନଆଢ(ଢ଼)—ଯା.ବି.ଗୃହର ମୂଳଦୁଆ, ମୂଳଭିତ୍ତି, ନିଅଁ, କୌଣସି ବିଷୟର ମୂଳ, ବଂଶର ପୂର୍ବ ଅବସ୍ଥା, ମହତ୍ତ୍ୱ ।

ବୁଧ୍ନଆଢ଼—ଯା.ବିଂ. ଉତ୍ତମ ଓ ସୁଦୃଢ଼ ମୂଳଦୁଆ ଥିବା (କୋଠା),ଧନୀ,ପ୍ରାଚୀନ ଓ ସମ୍ମାନିତ (ବ୍ୟକ୍ତି ବା ପରିବାର) ।

ବୁନ୍ଦୋସ୍—ଗ୍ରା. ବି. ରାଜସ୍ଥାନସ୍ଥ ନଦୀବିଶେଷ ।

ବୁନ୍—ପ୍ରା.(ସମ୍ବ)ବି. ବୃକ୍ଷାଦିର ମୂଳ ।

ବୁନ୍ଦ—ଗ୍ରା,ବି. ବିନ୍ଦୁ, ଟୋପା ।

ବୁନ୍ଦା—ଗ୍ରା.ବି. ବିନ୍ଦୁ, ଟୋପା ।

ବୁନ୍ଦାଦେବା—ଗ୍ରା,ବି. କଲମଦ୍ୱାରା କାଗଜ ଉପରେ ଗୋଟିଏ ବିନ୍ଦୁ ଲେଖିବା. (ଲ.ଅର୍ଥ) କୌଣସି କାର୍ଯ୍ୟର ପ୍ରଥମ ଆରମ୍ଭ କରିବା ।

ବୁନ୍ଦିଆ—ଗ୍ରା.ବି. ମିଠେଇର ଦାନା ।

ବୁନ୍ଦେଲଖଣ୍ଡ—ଗ୍ରା. ବି. ସଂଯୁକ୍ତ ପ୍ରଦେଶର ଗୋଟିଏ ଅଂଶ ।

ବୁନ୍ଦେଲଖୁଲ—ପ୍ରା.(ସମ୍ବ)ବି. ଉଚ୍ଚ ଜମିମାନଙ୍କରୁ ପାଣି ଗଡ଼ିଆସି ଯେଉଁ ଖାଲୁଆ ଜମିରେ ଜମାହୁଏ ।

ବୁନ୍ଦେଲା—ଗ୍ରା.ବି. ଉତ୍ତର ଓ ମଧ୍ୟଭାରତବାସୀ, କ୍ଷତ୍ରିୟ ରାଜବଂଶବିଶେଷ ।

ବୁପ୍‌ରା—ପ୍ରା.(ସମ୍ବ)ବି. ବାପୁଡ଼ା,ବରୁଗା ।

ବୁବା—ପ୍ରା.ବି. (ଭଦ୍ରକଖୋ) ବି. ବାପ ।

ବୁବୁଧାନ—ପୁଂ.ବି. ( ବୁଧ୍+କ.ଆନ ) ପଣ୍ଡିତ, ଆଚାର୍ଯ୍ୟ, ଦେବତା, (ପୁଂ.ବିଂ) ବିଦ୍ୱାନ୍ ।

ବୁଭୁକ୍ଷା—ବି. (ଭୁଜ୍+ସନ୍+ଅ+ଆ) ଭୋଜନ କରିବା ଇଚ୍ଛା, କ୍ଷୁଧା, ଭୋକ ।

ବୁଭୁକ୍ଷିତ—ପୁଂ.ବିଂ, (ବୁଭୁକ୍ଷା+ଇତ) କ୍ଷୁଧାର୍ତ୍ତ, କ୍ଷୁଧିତ, ଭୋକିଲା ।

ବୁଭୁକ୍ଷୁ—ବିଂ. ( ଭୁଜ୍+ସନ୍+କ.ଉ ) ଭୋଜନେଚ୍ଛୁ, କ୍ଷୁଧିତ ।

ବୁଭୁତ୍ସା—ବି. (ବୁଧ୍+ସନ୍+ଅ+ଆ) ଜାଣିବାକୁ ଇଚ୍ଛା, ବୁଝିବାର ଇଚ୍ଛା ।

ବୁଭୁତ୍ସୁ—ବିଂ. (ବୁଧ୍+ସନ୍+କ.ଉ) ଜାଣିବାକୁ ଇଚ୍ଛୁକ ।

ବୁଭୂଷା—ବି. ( ଭୂ+ସନ୍+ଅ+ଆ ) ସମ୍ଭବେଚ୍ଛା, ହେବାର ଇଚ୍ଛା, ସତ୍ତାଲାଭ ପାଇଁ ଇଚ୍ଛା

ବୁଭୂଷୁ—ବିଂ, ( ଭୂ+ସନ୍+କ.ଉ ) ହେବାପାଇଁ ଇଚ୍ଛୁକ, ଜନ୍ମଲାଭ କରିବାକୁ ଇଚ୍ଛୁକ,ସତ୍ତାଲାଭପାଇଁ ଇଚ୍ଛୁକ ।

ବୁମ୍ବଲ୍—ପ୍ରା.(ଭଦ୍ରକଖୋ) ବଳଦ ।

ବୁର(ରୁ)କା—ଯା.ବି.ମୁସଲମାନ ସ୍ତ୍ରୀମାନଙ୍କର ଆପାଦମସ୍ତକ ଆଚ୍ଛାଦନ ବସ୍ତ୍ର, ଘୋଡ଼ଣି ।

ବୁର—ଗ୍ରା.ବି. ସ୍ୱମିଲଗଛ, ବନ୍ଦୁକରେ ଦିଆଯିବା ଯୋଗ, ( ପ୍ରା.ବଉଦ.ବ ) ବରକୋଳି ।

ବୁରବୁଡ଼ାଇବା—ପ୍ରା.(ସମ୍ବ)କ୍ରି.ଲୁଗାଇବା, ପୂର୍ଣ୍ଣଥିବା ଜଳପାତ୍ରରେ ହାତ ବୁଡ଼ାଇ ଦେବା ।

ବୁରବୁ(ଗୁ)ଡ଼ିବା—ଗ୍ରା. କ୍ରି. ବାଡ଼ ଡିଙ୍ଗି ପଶିବା, ଯେଙ୍କିବା ।

ବୁରା—ଯା.ବି. ବୋରା, ବସ୍ତା, (ବିଂ)ମନ୍ଦ, ନିକୃଷ୍ଟ, ଅନୁଚିତ । [ ମନ୍ଦତା ।

ବୁରାଇ—ପ୍ରା.(ସମ୍ବ)ବି. ଚୋଟା, (ଯା.ବି)

ବୁରାଦା—ଯା.ବି. କରତ ଗୁଣ୍ଡ ।

ବୁରି—ଗ୍ରା.ବି. ଆମ୍ବଆଦି ଗଛର ଚୋଟା, ଚୋଟା । [ ଲିପିବା ।

ବୁରିଦେବା—ପ୍ରା. ( ବାଲେଶ୍ୱର ) କ୍ରି.

ବୁରୁଗି—ଗ୍ରା. ବି. ରାଜଗୃହକୁ ସମାଗତ ବ୍ୟକ୍ତିଙ୍କ ତତ୍ତ୍ୱାବଧାରକ କର୍ମଚାରୀ ।

ବୁରୁଞ୍ଜ—ଗ୍ରା.ବି. ବୃକ୍ଷ ।

ବୁରୁଜ—ଯା.ବି.ଦୁର୍ଗର ପ୍ରାଚୀର ଦେହକୁ ଲାଗି ମଝେ ମଝେ ତିଆରକରାଯାଇଥିବା ସୁଦୃଢ଼ ମାଟିର ବା ପଥରର ସ୍ତୂପ ବା ଗୃହ ।

ବୁରୁଝାଞ୍ଜି—ଗ୍ରା.ବି.ବୋରଝାଞ୍ଜି ଦେଖ ।

ବୁରୁଧ୍—ଯା. ବି. ପାନେଲ କବାଟର ଗୁରପାଖରେ ଲାଗିବା ପଟା ।

ବୁରୁବୁରା—ଗ୍ରା.ବି.ବୁଦ୍‌ବୁଦ,ପାଣିଫୋଟକା, ଭର୍ତ୍ସନା, ଅପମାନ, ଗାଳି ।

ବୁରୁଲ—ଗ୍ରା.ବି. ପ୍ରାୟ ଏକଇଞ୍ଚ ।

ବୁରୁଣ୍—ଗ୍ରା.ବି, ଚାଉଁଶା ଲୋମହର୍ମିତ

ପାନଆଁ ବା ମାର୍ଜନୀ ।
ବୁଟେଇ—ପ୍ରା.(ସମ୍ବ.ବାଲେ)ବି.ଛୋଟା
ବୁଟେନ୍—ଗ୍ରା.ସ୍ତ୍ରୀ.ବି. ଦେଶୀବିଶେଷ ।
ବୁଟେ—ପ୍ରା.(ସମ୍ବ)ବି. ବରକୋଳି,(ଯା. ବି) ଦରଜା ଲଗା ଆଲମାରି ।
[illegible]ଡଗ୍—ଯା.ବି. ଏକପ୍ରକାର ବିଦେଶୀ କୁକ୍କୁର ।
ବୁଲ୍ ବୁଲ୍—ଯା.ବି. ଗୋଦରା ଚଢ଼େଇ
ବୁଲଣା—ଗ୍ରା. ବି. ଭ୍ରମ, ଭ୍ରାନ୍ତମତ, ବୋଲଣା ଦେଖ ।
ବୁଲା—ଗ୍ରା. ବି. ବୁଲିବାକ୍ରିୟା, ଭ୍ରମଣ, ଘୁରାଇବାକ୍ରିୟା, (ଗ୍ରା.ବିଂ) ଯେ ବୁଲେ, ଭ୍ରମଣକାରୀ ।
ବୁଲା(ଲେ)ଇବା—ଗ୍ରା. କ୍ରି.ଗଡକରାଇବା, ଗୁଳାଗ କରିବା, ଘୂର୍ଣ୍ଣିତ କରାଇବା, କୌଣସି ବ୍ୟକ୍ତିକୁ ଅକାରଣରେ ବହୁପଥ ଭ୍ରମଣ କରାଇବା, ହଇରାଣ କରିବା, ବାଡ଼ିଆଦି ଘୂର୍ଣ୍ଣିତ କରଇବା, ଚତୁର୍ଦ୍ଦିଗରେ ପ୍ରଚାରିତ କରିବା, ଦୃଷ୍ଟିକୁ ଏଣେତେଣେ ସଞ୍ଚାଳିତ କରିବା ।
ବୁଲା(ଲେ)ଇ(ହୋ)(ଦୋ)ବା—ଗ୍ରା. କ୍ରି. (ମୁଣ୍ଡ)ଘୂର୍ଣ୍ଣିତ ହେବାର ଅନୁଭୂତ ହେବ
ବୁଲାକ—ଗ୍ରା. ବି. ବୁଲିବା, (ଯା.ବି) ବୋଲାକ୍, ନାସାର ଦଣ୍ଡ, ଝୁଲିଲ ।
ବୁଲାଚଲା—ଗ୍ରା. ବି. ଭ୍ରମଣ କରିବା ।
ବୁଲାଣୀ—ଗ୍ରା. ବିଂ. ଯେଉଁ ବାଟଦେଇ କୌଣସି ସ୍ଥାନକୁ ଗଲେ ବହୁଦୂରପଥ ଭ୍ରମିବାକୁ ହୁଏ ।
ବୁଲାନ୍ତ—ପ୍ରା. (ଗଞ୍ଜାମ)ବି. ବ୍ରାହ୍ମଣବଳଦ
ବୁଲାବାହୁଟିଆ—ଗ୍ରା. ବିଂ. ଯେଉଁ ବ୍ୟକ୍ତି ଏଣେତେଣେ ବୃଥାରେ ବୁଲିବାରେ ଅଭ୍ୟସ୍ତ ।
ବୁଲାବିକା—ଗ୍ରା. ବି. ଯେଉଁ ବ୍ୟକ୍ତି ଘର ଘର ବୁଲି ପଣ୍ୟଦ୍ରବ୍ୟ ବିକେ ।
ବୁଲାବୁଲି—ଗ୍ରା. ବି. ଇତସ୍ତତଃ ବୁଲିବା ବା ବୁଲାଇବା କ୍ରିୟା, ଭ୍ରମଣ, ପରିଭ୍ରମଣ ।
ବୁଲି—ବି. (ବୁଲ + ଅଧି.ଇ)ଭଟ,ଯୋନି, (ଗ୍ରା.ବି) ବୋଲି, ପଦ, ଉକ୍ତି, ଭାଷା, ଭାଷାର ଶବ୍ଦ, ବାକ୍ୟନିର୍ଦ୍ଦିଷ୍ଟ ଭାଷା ।
ବୁଲିପଡ଼ିବା—ଗ୍ରା.କ୍ରି. ଶୀଘ୍ର ପ୍ରତ୍ୟାବୃତ୍ତ ହେବା, ପଛକୁ ବା କଡ଼କୁ ମୁହଁ ବୁଲାଇବା ।
ବୁଲିବା—ଗ୍ରା. କ୍ରି. ଭ୍ରମଣ କରିବା, ଇତସ୍ତତଃ ଗଡକରିବା, ବେଢ଼ି,ଘୂର୍ଣ୍ଣାୟମାନ ହେବା, ବିପରୀତ ଦିଗକୁ ଯିବା,ପ୍ରତ୍ୟାବର୍ତ୍ତନ କରିବା,ବୃତ୍ତାକାରରେ ଭ୍ରମିବା, ଦେଶ ଭ୍ରମଣ କରିବା ।
ବୁଲିଯିବା—ଗ୍ରା. ବି. ଭ୍ରମଣ କରିବାକୁ ବାହାରିବା, ଅନ୍ୟଆଡ଼କୁ ବା ବିପରୀତ ଦିଗକୁ ଯିବା, ବିକୃତ ହେବା ।
ବୁଷ(ସ)—ବି. ( ବୁଷ୍ + ମି.ଅ ) ଭୁଷି, କୁଣ୍ଡା, ଶସ୍ୟର ଚୋପା, ଅଁଗାଡ଼,ତୁଚ୍ଛଧାନ୍ୟ ।
ବୁସା—ସ୍ତ୍ରୀ. ବି. ( ବୁସ୍ + ଅ + ଆ ) ନାଟ୍ୟୋକ୍ତିରେ କନିଷ୍ଠା ଭଗିନୀ ।
ବୁସ୍ତ(ସ୍ତ)—ବି. (ବୁସ୍ + ଣ.ତ.ନ) ପଣସ ଆଦି ଫଳର ଅସାର ଅଂଶ, ବୋଡା, ହାଣ୍ଡିରେ ଭଜାହୋଇଥିବା ମାଂସ ।
ବୁହନ୍ତା(ନ୍ତି)—ଗ୍ରା.ବିଂ. ପ୍ରବାହିତ,ବହନକାରୀ ।
ବୁହା—ଗ୍ରା.ବି. ବୁହାଇବା କ୍ରିୟା,କାର୍ଯ୍ୟରେ ଏକହିସ୍ସା, ବହନ, ଜଳାଶୟରୁ ପାଣିଆଦିକୁ ଉପରକୁ ଉଠାଇବା କର୍ମ, ବାହକ ବ୍ୟକ୍ତି, ବହିନେବା, (ଗ୍ରା.ବିଂ) ବହନକାରୀ, ଯାହା ପ୍ରବାହିତ କରେ, ପ୍ରବାହ ଉତ୍ପାଦିତ ହେବାର ଫଳରୂପେ ପ୍ରାପ୍ତ ବା ଉତ୍ପନ୍ନ, ପ୍ରବାହିତ,ବାହିତ ।
ବୁହାଇ(ହେ)ବା—ଗ୍ରା. କ୍ରି. ବହାଇବା, ବହନ କରାଇବା,(ରଥ-ଉଙ୍କା)ବାହିବା ଗୁଳାଗ କରାଇବା,ପ୍ରବାହିତ କରାଇବା, ନିମ୍ନରୁ ପାଣି ବାହି କ୍ଷେତରେ ମଡ଼ାଇବା ।
ବୁହାଏ(କ)—ଗ୍ରା. ଅ. ବହେ, ଅନେକ, ବହୁତ, ଥରେ, ପର୍ଯ୍ୟାପ୍ତରୂପେ, ପ୍ରଚଣ୍ଡତା ସହକାରେ ।
ବୁହାଏବାଟ—ଗ୍ରା. ବି. ବହୁଦୂର ରାସ୍ତା ।
ବୁହାଣ—ଗ୍ରା. ବି. ବୁହାଇବା କ୍ରିୟା ।
ବୃହିବା—ପ୍ରା. (ସମ୍ବ) କ୍ରି. ବହିବା,ବର୍ଦ୍ଧନ କରିବା, ସ୍ରୋତରୂପେ ବହିଯିବା ।
ବୃଂହଣ—ବି. (ବୃଂହ୍ + ଭା.ଅନ) ହାତୀର ଗର୍ଜ୍ଜନ ବା ରାବ,(କ.ଅନ) ବଳବର୍ଦ୍ଧକ ବା ପୁଷ୍ଟିକାରକ ଦ୍ରବ୍ୟ, ଭାବପ୍ରକାଶ ମତରେ ଏକପ୍ରକାର ଧୂମପାନ,କପିଳଦ୍ରାକ୍ଷା, ଭୂକୁଷ୍ମାଣ୍ଡ, ଅଶ୍ୱଗନ୍ଧା, ମକଳା, ଶୂକରମାଂସରେ ପକ୍ୱ ଯବର ଛତୁଆ, (ବିଂ-କ.ଅକ) ପୁଷ୍ଟିଜନକ,ବଳକର ।
ବୃଂହଣବସ୍ତି—ସ୍ତ୍ରୀ. ବି. ନିରୁହବସ୍ତିବିଶେଷ
ବୃଂହଣୀୟବର୍ଗ—ପୁଂ. ବି. ବୃଂହଣହେତୁ ହିତକର କଷାୟ ବର୍ଗ, ଦ୍ରବ୍ୟଗଣ ବିଶେଷ ।
ବୃଂହିତ—କ୍ଲୀ. ବି. ( ବୃଂହ୍ + ଭା.ତ ) ହସ୍ତିଗର୍ଜ୍ଜନ, (ବିଂ.-କ.ତ) ବୃଦ୍ଧିପ୍ରାପ୍ତ, ପୁଷ୍ଟ ।
ବୃକ—ପୁଂ. ବି. (ବୃକ + କ.ଅ) ହେଣ୍ଟା, ବାଘ, ଗଧିଆ, ବକବୃକ୍ଷ, ଅଗସ୍ତିଗଛ, ଶୃଗାଳ, କ୍ଷତ୍ରିୟ, କୁଆ, ଜଠରାନଳ, ବଣିଆ କୁକୁର, ବଜ୍ର, ଶେର, ବୃକାସୁର, ପୋତକ, ଅନେକ ଧୂପ, ସାଳଗଛର କ୍ଷୀର, ଝୁଣା ।
ବୃକଦଂଶ—ପୁଂ. ବି. (ବୃକ + ଦନ୍ଶ୍ + କ.ଅ) କୁକ୍କୁର, ହେଣ୍ଟାବାଘ ।
ବୃକଦୀପ୍ତି—ପୁଂ. ବି. କୃଷ୍ଣଙ୍କର ପୁତ୍ରବିଶେଷ । [ ପୁତ୍ରବିଶେଷ
ବୃକଦେବ—ପୁଂ. ବି. ବସୁଦେବଙ୍କର
ବୃକଧୂପ—ପୁଂ. ବି. ଝୁଣା,ନାନା ସୁଗନ୍ଧ ଦ୍ରବ୍ୟରେ ପ୍ରସ୍ତୁତ ଧୂପ ।
ବୃକଧୂର୍ତ୍ତ—ପୁଂ. ବି. ଶୃଗାଳ, ଜମ୍ବୁକ ।
ବୃକା—ସ୍ତ୍ରୀ. ବି. (ବୃକ + ଆ) ଅମ୍ବଷ୍ଠା, ଅକାକବନ୍ଧ ଲତା,ସର୍ପଦ୍ରବ୍ୟ ପରିମାଣ ।
ବୃକାକ୍ଷୀ—ବି. ଭିନ୍ଦୁଡ଼ି, ଢନ୍ଦୁଡ଼ି ।
ବୃକାସ୍ୟ—ବି. ବଣିଆ କୁକୁର, ଚୌର ।
ବୃକାରାତି—ପୁଂ. ବି. ( ବୃକ + ଅରାତି ) କୁକ୍କୁର ।
ବୃକାରି—ପୁଂ. ବି.(ବୃକ + ଅରି) କୁକୁର ।
ବୃକାସୁର—ବି. ବୃକ ନାମକ ଦୈତ୍ୟ, ଭସ୍ମାସୁର ।

ବୃକୋଦର—ପୁଂ. ବ. (ବ.ଗ୍ରୀ) ଭୀମସେନ, ବରୁଣ, ଯମ, (ପୁଂ.ବ) ପେଟୁ, (ସ୍ତ୍ରୀ) ବୃକୋଦରୀ ।
ବୃକ୍କ—ପୁଂ.ବ. (ବୃକ୍+କ.କ) ମୂତ୍ରାଶୟ ।
ବୃକ୍କକ—ପୁଂ. ବ. ମୂତ୍ରାଶୟ ।
ବୃକ୍କା—ସ୍ତ୍ରୀ. ବ. ( ବୃକ+କ.ଅ+ଆ ) ହୃଦୟ ।
ବୃକ୍ଣ—ବି. ବଂ. ( ବ୍ରଶ୍ଚ+ର୍ମ.ତ ) ଛିନ୍ନ, କର୍ତ୍ତିତ, ଖଣ୍ଡିତ ।
ବୃକ୍ଷ—ପୁଂ. ବ. (ବୃକ୍ଷ୍+କ.ଅ) ଗଛ, ପାଦପ, ସ୍ଥାବର ଯୋନିବିଶେଷ ।
ବୃକ୍ଷକ—ପୁଂ. ବ. (ବୃକ୍ଷ+କ) ଛୋଟଗଛ, ବୃକ୍ଷମାତ୍ର, ଗୁଳ୍ମ, କୁଟଜ ବୃକ୍ଷ, କ୍ଷୁପ, ବୁଦା । [କଖାରୁ ।
ବୃକ୍ଷକନ୍ଦ—ପୁଂ. ବ. ବିଦାରୀକନ୍ଦ, ଭୂଇଁ-
ବୃକ୍ଷଖଣ୍ଡ—ପୁଂ. ବ. କୁଞ୍ଜ ।
ବୃକ୍ଷଚର—ପୁଂ. ବ. (ବୃକ୍ଷ+ଚର୍+ଅ) ବାନର, କପି ।
ବୃକ୍ଷଗ୍ରନ୍ଥି—କ୍ଲୀ. ବ. ( ବୃକ୍ଷ+ଗ୍ରନ୍ଥି ) ଶ୍ରେଣୀବଦ୍ଧ ବୃକ୍ଷର ବହୁଳ ଗ୍ରନ୍ଥି, ବହୁବୃକ୍ଷର ଗ୍ରନ୍ଥି ।
ବୃକ୍ଷତକ୍ଷକ—ପୁଂ.ବ. ଏଣ୍ଡୁଅ,କାଷ୍ଠଶୟା
ବୃକ୍ଷତଳ—କ୍ଲୀ. ବ. (୬ତତ୍) ଗଛତଳ, ବୃକ୍ଷର ନିମ୍ନଦେଶସ୍ଥ ଭୂମି ।
ବୃକ୍ଷଦଳ—କ୍ଲୀ. ବ. ବୃକ୍ଷଶାଖା ।
ବୃକ୍ଷଧୂପ—ପୁଂ.ବ. ସରଳଦ୍ରୁମ,ଶ୍ରୀବେଷ୍ଟ ।
ବୃକ୍ଷନାଥ—ପୁଂ ବ. (୬ତତ୍) ବଟବୃକ୍ଷ ।
ବୃକ୍ଷନିର୍ଯାସ—ପୁଂ. ବ. ଗଛର ଅଠା, ବୃକ୍ଷର ରସ ।
ବୃକ୍ଷପର୍ଣ୍ଣ—କ୍ଲୀ.ବ. (୬ତତ୍) ବୃକ୍ଷର ପତ୍ର ।
ବୃକ୍ଷପାକ—ପୁଂ. ବ. ବଟବୃକ୍ଷ ।
ବୃକ୍ଷପ୍ରତିଷ୍ଠା—ସ୍ତ୍ରୀ. ବ. (୬ତତ୍)ଶାସ୍ତ୍ରୋକ୍ତ ପୁଣ୍ୟଫଳ ଆଶାରେ ଅଶ୍ୱତ୍ଥାଦି ବୃକ୍ଷର ରୋପଣ ।
ବୃକ୍ଷଭକ୍ଷା—ସ୍ତ୍ରୀ. ବ. (ବୃକ୍ଷ+ଭକ୍ଷ+କ. ଅ+ଆ) ନିର୍ମୁଳିଲତା, ମଲଙ୍ଗ ।
ବୃକ୍ଷଭବନ—କ୍ଲୀ. ବ. ( ବୃକ୍ଷ+ଭବନ ) ବୃକ୍ଷ କୋଟର ।
ବୃକ୍ଷଭିଦ୍—ସ୍ତ୍ରୀ. ବ. (ବୃକ୍ଷ+ଭିଦ୍+କ. କ୍ୱିପ୍) ଟାଙ୍ଗିଆ, ବାରସୀ, ବଟାଳି ।
ବୃକ୍ଷଭେଦୀ—ପୁଂ. ବ. ( ବୃକ୍ଷ+ଭିଦ୍+ଇନ୍)ବୃକ୍ଷାଦନ,ଅସ୍ତ୍ରବିଶେଷ,ଟାଙ୍ଗିଆ ।
ବୃକ୍ଷମର୍କଟିକା—ସ୍ତ୍ରୀ.ବ.(ବୃକ୍ଷ+ମର୍କଟିକା) ଗୁଣ୍ଡୁଚିମୂଷା, କାଠବିରାଡ଼ି ।
ବୃକ୍ଷମୂଳ—କ୍ଲୀ.ବ. (୬ତତ୍)ବୃକ୍ଷର ମୂଳ, ଗଛର ଚେର, ଗଛର ନିମ୍ନଦେଶସ୍ଥ ଭୂମି ।
ବୃକ୍ଷମୃଦଭୂ—ପୁଂ.ବ. (ବୃକ୍ଷ+ମୃଦ୍+ଭୂ +କ୍ୱିପ୍) ଜଳବେତସ ।
ବୃକ୍ଷରାଟ୍—ପୁଂ.ବ.ବୃକ୍ଷାଧିପ,ପିପ୍ପଳୀବୃକ୍ଷ ।
ବୃକ୍ଷରାଜ—ବ. ଅଶ୍ୱତ୍ଥବୃକ୍ଷ, ବୋଧିଦ୍ରୁମ, ପାରିଜାତ ବୃକ୍ଷ ।
ବୃକ୍ଷରୁହା—ସ୍ତ୍ରୀ. ବ. (ବୃକ୍ଷ+ରୁହ୍+ଆ) ମଲଙ୍ଗ, ନିର୍ମୁଳିଲତା ।
ବୃକ୍ଷବାଟିକା—ସ୍ତ୍ରୀ. ବ. (ବୃକ୍ଷ+ବାଟିକା) ନିକୁଞ୍ଜ, ଉପବନ, ବିହାରୋଦ୍ୟାନ ।
ବୃକ୍ଷବାଟୀ—ସ୍ତ୍ରୀ. ବ. ଅମାତ୍ୟ ଗଣିକାର ଉପବନ ବେଷ୍ଟିତ ଗୃହ ।
ବୃକ୍ଷଦାର୍ଢ୍ୟନିକେତ—ପୁଂ.ବ. ଯକ୍ଷ ବିଶେଷ ।
ବୃକ୍ଷଶାୟିନ୍—ପୁଂ. ବ. ଗୋଲାଙ୍ଗୁଳ ବାନର, କଳାମୁହାଁ ମାଙ୍କଡ଼ ।
ବୃକ୍ଷଶାୟିକା—ସ୍ତ୍ରୀ. ବ. କାଠ ବିରାଡ଼ି, ଗୁଣ୍ଡୁଚିମୂଷା ।
ବୃକ୍ଷସଙ୍କଟ—କ୍ଲୀ.ବ. ଦୁଇପାଖରେ ଗଛ ଥିବା ରାସ୍ତା, ବୃକ୍ଷରାଜି ବେଷ୍ଟିତ ସରୁ ପଥ ।
ବୃକ୍ଷସାର—ବ. (୬ତତ୍) ବଡଗଛ ।
ବୃକ୍ଷସାରକ—ପୁଂ. ବ. ଗଇଟଫୁଲ ଗଛ, ଦ୍ରୋଣପୁଷ୍ପୀ । [ ଗଛର ଅଠା ।
ବୃକ୍ଷସ୍ନେହ—ପୁଂ. ବ. ବୃକ୍ଷନିର୍ଗତ ରସ,
ବୃକ୍ଷାଗ୍ର—କ୍ଲୀ. ବ. (୬ତତ୍) ଗଛର ଅଗ୍ରଭାଗ ଓ ଶିଖର ।
ବୃକ୍ଷାଦନ—ପୁଂ. ବ.(ବୃକ୍ଷ+ଅଦ୍+ଅନ) ବୃକ୍ଷଭେଦୀ, ଅଶ୍ୱତ୍ଥବୃକ୍ଷ, ପିଆଲଗଛ, କୁଠାର, ବାଟିହି, ମଧୁଫେଣା ।
ବୃକ୍ଷାଦନୀ—ସ୍ତ୍ରୀ. ବ. ( ବୃକ୍ଷାଦନ+ଈ ) ବିଦାରୀକନ୍ଦ, ଭୂଇଁକଖାରୁ ।
ବୃକ୍ଷାଦରୁହକ(ରୁହକ)—କ୍ଲୀ.ବ.ଆଲିଙ୍ଗନ
ବୃକ୍ଷାମୟ—ବ. (୬ତତ୍) ଲାକ୍ଷା, ଲାଖ ।
ବୃକ୍ଷାମ୍ଳ—ବ. (ବୃକ୍ଷ+ଅମ୍ଳ) ତେନ୍ତୁଳି, ଓଉ, ଆମ୍ବୁଡ଼ା, ଖଟାପାଳଙ୍ଗ, ଅମ୍ଳବେତସ, ଆମ୍ଳାତଣୀ ଗ ।
ବୃକ୍ଷାର୍ଦ୍ଧା—ସ୍ତ୍ରୀ.ବ.(ବୃକ୍ଷ+ଅର୍ଦ୍ଧ+ଅ+ଆ) ମହାମେଦା ।
ବୃକ୍ଷାଳୟ—ପୁଂ. ବ. (ବ.ଗ୍ରୀ) ପକ୍ଷୀ ।
ବୃକ୍ଷାବାସ—ପୁଂ. ବ. (ବୃକ୍ଷ+ଆବାସ) କାଠବିରାଡ଼ି, ଗୁଣ୍ଡିଚିମୂଷା ପ୍ରଭୃତି ।
ବୃକ୍ଷୋତ୍ପଳ—କ୍ଲୀ.ବ.କର୍ଣ୍ଣିକାର,କନିଅର ।
ବୃକ୍ଷ୍ୟ—ବ. (ବୃକ୍ଷ+ଯ) ଗଛର ଫଳ ।
ବୃଜନ—ବ. ( ବୃଜ୍+ଅନ ) ଅପରାଧ, ରଙ୍ଗ, ଚମଡ଼ା, ମୁଣ୍ଡର କେଶ, ଅନ୍ତରୀକ୍ଷ, ଆକାଶ, ପାପ, ନିରାକରଣ,ବଳ, ସଂଗ୍ରାମ, କ୍ଳେଶ, ବହିଷ୍କରଣ, ଡାକାତ, ଶକ୍ତି,ଶତ୍ରୁ,(ବଂ)କୁଟିଳ,ବକ୍ର,ଅସରଳ ।
ବୃଜନ୍ୟ—ପୁଂ. ବ. (ବୃଜ୍+କ.ଅନ୍ୟ) ଅତି ସରଳ ଲୋକ, ସାଧୁପୁରୁଷ ।
ବୃଜି—ସ୍ତ୍ରୀ.ବ.ବ୍ରଜଭୂମି,ମିଥିଳା ପ୍ରଦେଶ, ତିହୁତ ।
ବୃଜିକ—କ୍ଲୀ.ବଂ. (ବୃଜି+କ)ବ୍ରଜଭୂମିଜାତ, ବ୍ରଜପ୍ରେମ ।
ବୃଜିନ—ବ.(ବୃଜ+ର୍ମ.ଇନ)ପାପ,ଦୁଃଖ, ରକ୍ତ,ଚର୍ମ,ଶୋଣିତ,କେଶ,(ବଂ)କୁଟିଳ, ପାପବିଶିଷ୍ଟ ।
ବୃଣ୍ୱନ—ପୁଂ.ବଂ.(ବୃ+କ.ଅନ)ବିଚରଣଶୀଳ, ଗମନଶୀଳ, ବ୍ୟାପନଶୀଳ,(ସ୍ତ୍ରୀ) ବୃଣ୍ୱତୀ ।
ବୃତ—ବଂ. (ବୃ+ର୍ମ.ତ)କର୍ମ କରଣାର୍ଥ ନିଯୁକ୍ତ,ଯାହାକୁ ବରଣ କରାହୋଇଅଛି, ଆବୃତ, ପ୍ରାର୍ଥିତ,ସ୍ୱୀକୃତ,ଗୋଲ,ପରିବେଷ୍ଟିତ, (ଗ୍ରା. ବ) ପେଶା, ଜୀବିକା, ଅଭ୍ୟାସ, ଗୀତ ବୋଲିବାର ରାଗିଣୀ ।
ବୃତପତ୍ରା—ସ୍ତ୍ରୀ. ବ. (ବୃତ+ପତ୍ରା)ପୁତ୍ରଦାତ୍ରୀ ଲତାବିଶେଷ,ଶ୍ୱେତକଣ୍ଟକାରୀ ।
ବୃତାକ୍ଷ—ପୁଂ. ବ. କୁକୁଡ଼ା ।
ବୃତାର୍ଚ୍ଚି—ସ୍ତ୍ରୀ. ବ. ରାତ୍ରି ।
ବୃତି—ସ୍ତ୍ରୀ. ବ. (ବୃ+ତି) ବେଷ୍ଟନ, ବର, ପ୍ରାର୍ଥନା, ବରଣ, ଗୋପନ,

ନିୟୋଗ, ଆବରଣ, ଭିତ୍ତି, ବାଡ଼ ।

**ବୃତଙ୍କର**—ପୁଂ.ବି.ବିକଙ୍କତ ବୃକ୍ଷ,ଭୂଇଁଅଁଳା ଗଛ ।

**ବୃତ୍ତ**—ବିଂ. ( ବୃତ୍+କ.ତ ) ବର୍ତ୍ତୁଳ, ଗୋଲାକାର, ଜାତ, ଗତ, ଅତୀତ, ଦୃଢ଼, ମୃତ, (ସଂ.ଭ)ନିଯୁକ୍ତ, ଆଚ୍ଛାଦିତ ଅଧୀତ, ଅପଚ୍ଛାଦିତ, ନିଷ୍ପନ୍ନ, ସିଦ୍ଧ,(ବି) କଚ୍ଛପ, ଆଚରଣ,ଛନ୍ଦଃ,(ଭାଂ.ଭ)ବର୍ତ୍ତନ, ଅନୁଷ୍ଠାନ, ବୃତ୍ତାନ୍ତ, ଗୋଲାକାରକ୍ଷେତ୍ର, ମଣ୍ଡଳ, ଧନ ସମ୍ବନ୍ଧେ ଚତୁର୍ବିଧ କର୍ମ (ଯଥା—ନ୍ୟାୟପୂର୍ବକ ଅର୍ଥ ଉପାର୍ଜନ, ଅର୍ଥପାଳନ,ଅର୍ଥ ବର୍ଦ୍ଧନ ଓ ସତ୍ପାତ୍ରରେ ଦାନ),ଆଚାର, ଜୀବିକା, ଶାସ୍ତ୍ର ବିହିତ ଆଚାର ପାଳନ, ସପ୍ତପର୍ଣ୍ଣ,ସଚନାଗଛ, ସ୍ତନର ଅଗ୍ରଭାଗ, ଧଳା ଜବକୁସୁମ,ଅସ୍ଥିର ବୃକ୍ଷ, ଗୁରୁଜନଙ୍କପ୍ରତି ସମ୍ମାନ, ଶୌଚ, ସତ୍ୟ, ଘୃଣା, ଇନ୍ଦ୍ରିୟ ନିଗ୍ରହ କରିବା ପ୍ରବୃତ୍ତି ।

**ବୃତ୍ତକ**—ବି.(ବୃତ୍ତ+କ) ଅକଠୋର ଓ ମଧୁରାକ୍ଷରରେ ଶ୍ରେଷ୍ଠ ଶ୍ରେଷ୍ଠ ସମାସଯୁକ୍ତ ଗଦ୍ୟ ରଚନା, ଛନ୍ଦ ।

**ବୃତ୍ତକର୍କଟୀ**—ସ୍ତ୍ରୀ. ବି. (ବୃତ୍ତ+କର୍କଟୀ) ଷଡ଼ଭୁଜା ଦେଖାବିଶେଷ, ଷଡ଼ଭୁଜ କ୍ଷେତ୍ର, ତରଭୁଜ ଫଳ ।

**ବୃତ୍ତଖଣ୍ଡ**—ବି. (ଷଷ୍ଠୀ ତତ୍) ବୃତ୍ତାଂଶ, ଅର୍ଦ୍ଧ ବୃତ୍ତର କ୍ଷୁଦ୍ରତର ବୃତ୍ତଭାଗ,ମେହେରାବ, ଖିଲାଣ ।

**ବୃତ୍ତଗନ୍ଧି**—କ୍ଲୀ. ବି. ଯେଉଁ ଗଦ୍ୟ ରଚନାର ସ୍ଥଳ ବିଶେଷରେ ପରିମିତ ଅକ୍ଷର ବନ୍ଧ ପଦ୍ୟାଂଶ ପରି ଶୁଣାଯାଏ, ଅନୁପ୍ରାସ ଓ ସମାସ ବହୁଳତା ଯୋଗୁଁ ଯେଉଁ ଗଦ୍ୟ ପଦ୍ୟପରି ଆନନ୍ଦ ପ୍ରଦିଏ ।

**ବୃତ୍ତଚଣ୍ଡ**—ବି. ଗୋଟିଏ ବୃତ୍ତର ଯେଉଁ ଅଂଶ ଏକ ସରଳରେଖା ଦ୍ୱାରା ବଣ୍ଡିତ ହୋଇ ଥାଏ ।

**ବୃତ୍ତଚେଷ୍ଟା**—କ୍ଲୀ. ବି. ସ୍ୱଭାବ,ଆଚରଣ ।

**ବୃତ୍ତତଣ୍ଡୁଳ**—ପୁଂ. ବି.ଯାବନାଳ,ଜନର, ବାଜରା ।

**ବୃତ୍ତତଃ**—ଅବ୍ୟ. (ବୃତ୍ତ+ତସ୍)ବୃତ୍ତଦ୍ୱାରା

**ବୃତ୍ତନିଷ୍ପାଦକା**—ସ୍ତ୍ରୀ.ବି. ହ୍ରସ୍ୱଶିମ୍ବୀ, ମଟରୁ ଛୁଇଁ ।

**ବୃତ୍ତପତ୍ର**—ବି. ଲେଉଟିଆ ଶାଗ ।

**ବୃତ୍ତପତ୍ରା**—ସ୍ତ୍ରୀ. ବି. ପୁତ୍ରଦାତ୍ରୀ ଲତା ।

**ବୃତ୍ତପର୍ଣ୍ଣୀ**—ସ୍ତ୍ରୀ. ବି. ମହାଶଣପୁଷ୍ପିକା, ଅଜ୍ଞାନବନ୍ଧୁ ଲତା ।

**ବୃତ୍ତପୁଷ୍ପ**—ବି. କଦମ୍ବଫୁଲ ଓ ଗଛ, ଶିରୀଷ, ଦାମିର, ଜଳବେତସ, କୁବ୍ଜକ ଗୁଳ୍ମ, ଭୂକଦମ୍ବ, ସେବତୀ, ମଲ୍ଲୀଫୁଲ, ମୃଗୁରାମଲ୍ଲୀ ।

**ବୃତ୍ତଫଳ**—ବି.ମରିଚ,ଗୋଲାକାର ଫଳ, ଦାଡ଼ିମ୍ବ,କପିତ୍ଥ ବୃକ୍ଷ, ରକ୍ତ ଅପାମାର୍ଗ, କରଞ୍ଜ ବୃକ୍ଷ, ତରଭୁଜ ।

**ବୃତ୍ତଫଳା**—ସ୍ତ୍ରୀ.ବି.ବାଇଗଣ,ଏକପ୍ରକାର ପିତା କାକୁଡ଼ି, ଆମଳକୀ ।

**ବୃତ୍ତବନ୍ଧ**—ପୁଂ. ବି. ( ବୃତ୍ତ+ବନ୍ଧ ) ବୃତ୍ତଦ୍ୱାରା ଗ୍ରଥିତ, ଛନ୍ଦୋବଦ୍ଧ ।

**ବୃତ୍ତମଲ୍ଲିକା**—ସ୍ତ୍ରୀ. ବି.ଶ୍ୱେତାର୍କ, ତ୍ରିପୁର ମଲ୍ଲିକା ।

**ବୃତ୍ତବାନ୍**—ପୁଂ.ବିଂ.(ବୃତ୍ତ+ବତ୍)ବୃତ୍ତଯୁକ୍ତ, ସଦାଚାରୀ ।

**ବୃତ୍ତବୀଜ**—ପୁଂ. ବି. (ବ.ବ୍ରୀ) ଭଣ୍ଡାକ୍ଷୁପ, ରାଜମାଷ ହରଡ଼ ।

**ବୃତ୍ତବୀଜକା**—ସ୍ତ୍ରୀ. ବି. ପାଣ୍ଡୁର, ପଳୀ, ଆଢ଼କୀ, ହରଡ଼ । [ ହରଡ଼ ।

**ବୃତ୍ତବୀଜା**—ସ୍ତ୍ରୀ.ବି.(ବୃତ୍ତ+ବୀଜା)ଆଢ଼କୀ,

**ବୃତ୍ତଶାଳୀ**—ପୁଂ. ବିଂ. (ବୃତ୍ତ+ଶାଳ+ଇନ୍)ବୃତ୍ତଯୁକ୍ତ,ସଦାଚାରୀ,ପରୋପକାରୀ

**ବୃତ୍ତସାଦୀ**—ପୁଂ. ବିଂ. (ବୃତ୍ତ+ସଦ୍+ଇନ୍) ଚରିତ୍ରନାଶୀ, କୁଳନାଶକାରୀ ।

**ବୃତ୍ତସୂଚୀ**—ବି. ଅସମାନ, ଉପର୍ଯ୍ୟୁପରି ସ୍ଥାପିତ ବୃତ୍ତ ସମୂହ, ଉପର୍ଯ୍ୟୁପରି ସ୍ଥାପିତ କ୍ରମଶଃ ସରୁହୋଇ ମୁନିଆଁ ହୋଇଥିବା ବର୍ତ୍ତୁଳ ବିଶେଷ ।

**ବୃତ୍ତସ୍ଥ**—ତ୍ରି. ବିଂ. (ବୃତ୍ତ+ସ୍ଥା+କ.ଅ) ଯେ ବୃତ୍ତରେ ଥାଏ, ସଚ୍ଚରିତ୍ର, ସଦାଚାରୀ, ସୁଶୀଳ ।

**ବୃତ୍ତା**—ସ୍ତ୍ରୀ. ବି. (ବୃତ୍ତ+ଆ)ମାଂସହାରିଣୀ, ପ୍ରିୟଙ୍ଗୁଲତା,ଶ୍ୱେତନିଷ୍ପାବ,ନାଗଦମନୀ, ରେଣୁକା,ହସ୍ତିକୋଷାତକୀ ।

**ବୃତ୍ତାକ୍ଷେପ**—ପୁଂ.ବି.ଅଳଂକାର ବିଶେଷ ।

**ବୃତ୍ତାଧ୍ୟୟନର୍ଦ୍ଧି**—ସ୍ତ୍ରୀ. ବି. ବ୍ରହ୍ମତେଜ, ବ୍ରହ୍ମବର୍ଚ୍ଚଃ ।

**ବୃତ୍ତାନୁବର୍ତ୍ତୀ**—ପୁଂ.ବିଂ.( ବୃତ୍ତ+ଅନୁ+ବୃତ୍+ଇନ୍) ବୃତ୍ତସ୍ଥ, ବୃତ୍ତାଚାରୀ,ସଦ୍ବୃତ୍ତ, ସୁଶୀଳ ।

**ବୃତ୍ତାନ୍ତ**—ପୁଂ. ବି.(ବ.ବ୍ରୀ)ସମ୍ବାଦ,ବାର୍ତ୍ତା, ପ୍ରବୃତ୍ତି,କିଂବଦନ୍ତୀ,ଶ୍ରୁତି,ଉଦନ୍ତକ,ପ୍ରସ୍ତାବ, ଇତିହାସାଖ୍ୟାନ, ଅବସର, ଭାବ, ଏକାନ୍ତ, ବାଚକ, ଘଟଣାର ବିବରଣ, ପ୍ରକାର, ବ୍ୟାପାର, ବିଷୟ,ସମ୍ପୂର୍ଣ୍ଣତା ।

**ବୃତ୍ତାଭାସ**—ବି.(ବୃତ୍ତପରି ଆଭାସ ଯାହାର) ପଦ୍ୟର ଆଭାସଯୁକ୍ତ ଗଦ୍ୟରଚନା, ବୃତ୍ତଗନ୍ଧି, ଅଣ୍ଡାକୃତି କ୍ଷେତ୍ର, (ବିଂ) ସମ୍ପୂର୍ଣ୍ଣ ବୃତ୍ତନୁହେଁ କିନ୍ତୁ ବୃତ୍ତପରି ଗୋଲ, ଅଣ୍ଡାକୃତି ।

**ବୃତ୍ତି**—ବି.(ବୃତ୍+କ୍ତି.ଭ)ଜୀବିକା,ପେଷା, ଖାଦ୍ୟ, ଜୀବନ, ( ଭା.ଭ ) ଖାଇବା, ଖୋରାକ ପୋଷାକ, ଜୀବନ ଧାରଣ ବ୍ୟବସାୟ, ବ୍ୟାପାର, କାର୍ଯ୍ୟ,ମାନସିକ ଧର୍ମ, ପ୍ରବୃତ୍ତି, ଇଚ୍ଛା, ସ୍ଥିତି, ପ୍ରକୃତି, ସ୍ୱଭାବ, ଆଚରଣ, ବ୍ୟବହାର, ସୂତ୍ରର ବ୍ୟାଖ୍ୟା, ନାଟକର ରଚନାପ୍ରଣାଳୀ, ଶୈଳୀ,ବ୍ୟାପ୍ତି,ବର୍ଣ୍ଣରଚନା, (କାବ୍ୟାଳଙ୍କାର) ଶବ୍ଦର ଶକ୍ତି, ଯଦ୍ଦ୍ୱାରା ଅର୍ଥ ପ୍ରକାଶିତ ହୁଏ, ନିର୍ଦ୍ଦିଷ୍ଟ ସମୟାନ୍ତରେ ନିୟମିତ ଭାବେ ପ୍ରଦେୟ ଅର୍ଥସାହାଯ୍ୟ, ଅକ୍ଷର ସଂଖ୍ୟାତ ଛନ୍ଦଃ, ଆକାରାନ୍ତର ପ୍ରାପ୍ତି,ପୁରାଣର ଦଶ ଲକ୍ଷଣ ମଧ୍ୟରୁ ଏକତମ, ଜମିବାଡ଼ି, ଜାଗିର, ଛାତ୍ରଙ୍କୁ ନିର୍ଦ୍ଦିଷ୍ଟ ସମୟ ପାଇଁ ଦିଆଯିବା ମାସିକ ନିର୍ଦ୍ଧାରିତ ଧନ ।

**ବୃତ୍ତିକ**—ପୁଂ.ବି.(ବୃତ୍ତି+କ) ବୃତ୍ତି ଦେଖ ।

**ବୃତ୍ତିକର**—ପୁଂ. ବିଂ. (ବୃତ୍ତି+କୃ+କ.ଅ) ଯାହା ଜୀବିକା ପ୍ରଦାନ କରେ,ପରିପୋଷଣକାରୀ ।

**ବୃତ୍ତିକାର**—ପୁଂ. ବି. ( ବୃତ୍ତି+କୃ+ଅ) ବୃତ୍ତିକାରକ, ବୃତ୍ତିଗ୍ରନ୍ଥ ପ୍ରଣେତା ।

ବୃତ୍ତିଚ୍ଛେଦ—ବି. (୬ତତ୍ପୁ) ଜୀବିକା ନିର୍ବାହର ଉପାୟ ବନ୍ଦ କରିବା ।

ବୃତ୍ତିଦ—ବି. ବିଂ. ( ବୃତ୍ତି+ଦା+ଅ ) ବୃତ୍ତିଦାନକାରୀ ।

ବୃତ୍ତିଦାତା—ପୁଂ. ବିଂ. ବୃତ୍ତି ଦାନକାରୀ

ବୃତ୍ତିଧ୍ୱଂସ—ବି. (୬ତତ୍ପୁ) ସମ୍ପତ୍ତିର ବା ଜୀବିକା ନିର୍ବାହୋପାୟର ବିନାଶ ।

ବୃତ୍ତିବାଡ଼ି—ଗ୍ରା.ବି. ଜମିବାଡ଼ି,ଭୂସମ୍ପତ୍ତି, ବୃଷଜମି । [ କରୁଥାଏ ।

ବୃତ୍ତିଭୋଗୀ—ପୁଂ.ବିଂ. ଯେ ବୃତ୍ତି ଭୋଗ

ବୃତ୍ତିମାନ୍—ପୁଂ. ବିଂ(ବୃତ୍ତି+ମତ୍)ବୃତ୍ତିବିଶିଷ୍ଟ, ବୃତ୍ତିଯୁକ୍ତ । [ ବେକାର ।

ବୃତ୍ତିଶୂନ୍ୟ—ବି. (୩ତତ୍ପୁ) ଜୀବିକାବିହୀନ,

ବୃତ୍ତିସ୍ଥ—ପୁଂ. ବି. ( ବୃତ୍ତି+ସ୍ଥା+ଅ ) ସରଟ, କୃକଳାସ.(ବିଂ) ବୃତ୍ତିସ୍ଥିତ, ଯେ ନିଜ ବୃତ୍ତିରେ ଅବସ୍ଥିତ ଥାଏ ।

ବୃତ୍ତିହନ୍ତା—ବି.ବିଂ.ବୃତ୍ତିନାଶକ, ବୃତ୍ତିହା

ବୃତ୍ତିହା—ବିଂ. ( ବୃତ୍ତି+ହନ୍+କ୍ୱିପ୍ ) ଯେ ବୃତ୍ତି ନାଶକରେ, ବୃତ୍ତିଚ୍ଛେଦକ ।

ବୃତ୍ତେର୍ବାରୁ—ପୁଂ. ବି. ଖର୍ଜୁରୀଗଛ ।

ବୃତ୍ତ୍ୟନୁପ୍ରାସ—ପୁଂ.ବି.କାବ୍ୟୋକ୍ତ ଶବ୍ଦାଳଂକାରବିଶେଷ ।

ବୃତ୍ତ୍ୟପାୟ—ପୁଂ. ବି. ନିଜ ଶରୀର ଓ କୁଟୁମ୍ବମାନଙ୍କର ଭରଣୋପାୟ ।

ବୃତ୍ୟ—ବି. ବିଂ. (ବୃତ୍+ଯ)ବରଣୀୟ, ନିଯୋଜନୀୟ ।

ବୃତ୍ର(ତ୍ରା)—ପୁଂ. ବି. (ବୃତ୍+ର)ଅନ୍ଧକାର, ମନ୍ତ୍ର, ଶତ୍ରୁ, ମେଘ, ପର୍ବତବିଶେଷ, ଇନ୍ଦ୍ର, ଶବ୍ଦ, କଶ୍ୟପ ପୁତ୍ର ଧର୍ମଶୀଳ ଦାନବବିଶେଷ ।

ବୃତ୍ରଘ୍ନ—ପୁଂ. ବିଂ. ଇନ୍ଦ୍ର, ଗଙ୍ଗାତୀରସ୍ଥ ଦେଶବିଶେଷ ।

ବୃତ୍ରଘ୍ନୀ—ବି. ପାରିପାତ୍ର ଗାତ୍ର ନିଃସୃତ ନଦୀବିଶେଷ (ମାର୍କଣ୍ଡପୁରାଣ) ।

ବୃତ୍ରତା(ତ୍ୱ)—ବି. ଶତ୍ରୁତା ।

ବୃତ୍ରଦ୍ୱିଟ୍—ପୁଂ.ବି. ( ବୃତ୍ର+ଦ୍ୱିଷ୍+କ୍ୱିପ୍)ଇନ୍ଦ୍ର ।

ବୃତ୍ରବଧ—ପୁଂ. ବି.ବୃତ୍ରାସୁରର ସଂହାର, ବୃତ୍ରହତ୍ୟା ।

ବୃତ୍ରବୈରୀ—ପୁଂ. ବି. ବୃତ୍ରଶତ୍ରୁ ଇନ୍ଦ୍ର ।

ବୃତ୍ରଶତ୍ରୁ—ପୁଂ. ବି. (୬ତତ୍ପୁ)ଇନ୍ଦ୍ର ।

ବୃତ୍ରହା—ପୁଂ. ବି. ( ବୃତ୍ର+ହନ୍+କ. କ୍ୱିପ୍) ଇନ୍ଦ୍ର ।

ବୃତ୍ରହନ୍ତା—ପୁଂ.ବି.(ବୃତ୍ର+ହନ୍ତା)ଇନ୍ଦ୍ର ।

ବୃତ୍ରାରି—ପୁଂ. ବି. (୬ତତ୍ପୁ) ଇନ୍ଦ୍ର ।

ବୃଥା—ଅବ୍ୟ. (ବୃ+ମି.ଥା) ନିରର୍ଥକ, ନିଷ୍ଫଳ, ଅବିଧି, ଅକାରଣ, ଉଦ୍ଦେଶ୍ୟବିହୀନ । [ କରିବା ।

ବୃଥାକରିବା—ଗ୍ରା.କ୍ରି.ବ୍ୟର୍ଥକରିବା, ପଣ୍ଡ

ବୃଥାରେ—ଗ୍ରା.କ୍ରି.ବିଂ. ଅକାରଣରେ

ବୃଥାତ୍ୱ—କ୍ଲୀ. ବି. ମିଥ୍ୟାତ୍ୱ, ଅପକୃତତ୍ୱ ।

ବୃଥାଦାନ—କ୍ଲୀ. ବି. ନିଷ୍ଫଳ ଦାନ ।

ବୃଥାପରିଶ୍ରମ—ବି(କ.ଧା)ନିଷ୍ଫଳ ପରିଶ୍ରମ

ବୃଥାପର୍ଯ୍ୟଟନ—ବି(କ.ଧା)ନିଷ୍ଫଳଭ୍ରମଣ, ଉଦ୍ଦେଶ୍ୟବିହୀନ ଭ୍ରମଣ ।

ବୃଥାଭାବନା—ବି.(କ.ଧା) ନିଷ୍ଫଳ ଚିନ୍ତା ।

ବୃଥାମାଂସ—କ୍ଲୀ. ବି. କୌଣସି ଦେବଦେବୀ ଉଦ୍ଦେଶ୍ୟରେ ବଳି ଦିଆଯାଇ ନ ଥିବା ମାଂସ ।

ବୃଥାଯିବା—ଗ୍ରା. କ୍ରି. ବ୍ୟର୍ଥହେବା ।

ବୃଥାଳାପ—ଗ୍ରା.ବି.ବାଜେକଥା ବ୍ୟର୍ଥକଥା

ବୃଥାଳାପୀ—ପୁଂ. ବିଂ. ଯେ ବୃଥା କଥା ଗପେ ।

ବୃଥାବାସନା—ବି.(କ.ଧା)ନିଷ୍ଫଳ ଇଚ୍ଛା ।

ବୃଥାବ୍ୟୟ—ବି. (କ.ଧା) ଅପବ୍ୟୟ ।

ବୃଦ୍ଧ—ପୁଂ. ବିଂ. (ବୃଧ୍+କ.ତ)ବିଗତଯୌବନ,ବୁଢ଼ା, ପ୍ରବର, ସ୍ଥବିର,ଜ୍ୟେଷ୍ଠ, ବୃଦ୍ଧିପ୍ରାପ୍ତ, ପ୍ରାଚୀନ, ବୟୋଜ୍ୟେଷ୍ଠ,ବୃଦ୍ଧିଯୁକ୍ତ,(ବି)ବୁଢ଼ାଲୋକ, ଗୋତ୍ର, ପର୍ବତ, ପଣ୍ଡିତ, ବୃଦ୍ଧଦାରକ, ବୁଢ଼ା ଆଙ୍ଗୁଠି, ଡାମରକୁଆ, ବୃଦ୍ଧାବସ୍ଥା, ଶୈଳଜ ନାମକ ଗନ୍ଧଦ୍ରବ୍ୟ(ଗ୍ରା.ବିଂ.ବିଂ)ଅତ୍ୟନ୍ତ

ବୃଦ୍ଧକ—ବି.ବିଂ.(ବୃଦ୍ଧ+କ)ବୃଦ୍ଧ ଦେଖ

ବୃଦ୍ଧକଣ୍ଟ(କ)—ପୁଂ. ବି. ଇଙ୍ଗୁଦ ବୃକ୍ଷ ।

ବୃଦ୍ଧକାକ—ପୁଂ.ବି.ଦ୍ରୋଣକାକ,ଡାମରକୁଆ ।

ବୃଦ୍ଧକାଣ୍ଡ—ପ୍ରା.(ବାଲେ)ବି.ବୁଢ଼ା ଆଙ୍ଗୁଳରେ ହେବା ଯନ୍ତ୍ରଣାଦାୟକ ବ୍ରଣ, କଣ୍ଟକାଣ୍ଡ ।

ବୃଦ୍ଧକାଳ—ପୁଂ.ବି.ବୃଦ୍ଧାବସ୍ଥା,ପ୍ରାଚୀନାବସ୍ଥା, ବାର୍ଦ୍ଧକ୍ୟ ।

ବୃଦ୍ଧକାବେରୀ—ସ୍ତ୍ରୀ. ବି. ନଦୀବିଶେଷ ।

ବୃଦ୍ଧକେଶବ—ପୁଂ.ବି.ସୂର୍ଯ୍ୟ ମୂର୍ତ୍ତିବିଶେଷ

ବୃଦ୍ଧକ୍ରମ—ପୁଂ. ବି. ପୂର୍ବତନ ପିତୃମାନଙ୍କର ପରମ୍ପରା ।

ବୃଦ୍ଧଗଙ୍ଗା—ସ୍ତ୍ରୀ.ବି.ବୁଢ଼ୀଗଙ୍ଗା, ଗଙ୍ଗାର ଶାଖାବିଶେଷ ।

ବୃଦ୍ଧଗଣ୍ଡକୀ—ଗ୍ରା. ବି. ଲଙ୍କାରେ ପ୍ରବାହିତ ନଦୀବିଶେଷ ।

ବୃଦ୍ଧଗାର୍ଗ୍ୟ—ପୁଂ.ବି.ଋଷିବିଶେଷ,ସଂହିତାବିଶେଷ ।

ବୃଦ୍ଧଚାଲୁ—ଗ୍ରା.ବି. ଓ ବିଂ.ଅତି ମିଥ୍ୟାବାଦୀ, ଅତି ମିଛୁଆ ।

ବୃଦ୍ଧଗୋନସ—ପୁଂ. ବି. ମଣ୍ଡଳୀ ସର୍ପବିଶେଷ ।

ବୃଦ୍ଧଗୌତମ—ପୁଂ.ବି.ଧର୍ମଶାସ୍ତ୍ରବିଶେଷ, ଓ ତତ୍ଶାସ୍ତ୍ରପ୍ରଣେତା ।

ବୃଦ୍ଧଚାଣକ୍ୟ—ପୁଂ.ବି.ଜଣେ ନୀତି ସଂଗ୍ରହକାର, ଗ୍ରନ୍ଥବିଶେଷ ।

ବୃଦ୍ଧତା(ତ୍ୱ)—ବି(ବୃଦ୍ଧ+ତା.ତ୍ୱ) ପାଣ୍ଡିତ୍ୟ, ପ୍ରାଚୀନତା, ବୃଦ୍ଧାବସ୍ଥା ।

ବୃଦ୍ଧତ୍ରକ୍ତା—ସ୍ତ୍ରୀ. ବି. ଅକାନବନ୍ଧ ।

ବୃଦ୍ଧଦାରକ—ପୁଂ.ବି. ବୀଜତାଡ଼କ ବୃକ୍ଷ, ମଖମଲଗଛ, ସ୍ୱନାମଖ୍ୟାତ ଲତାବିଶେଷ ।

ବୃଦ୍ଧଦାରୁ—କ୍ଲୀ. ବି. ବୃଦ୍ଧଦାରକ ବୃକ୍ଷ ।

ବୃଦ୍ଧଧୂପ—ପୁଂ. ବି. ଶିଗ୍ରୁଷବୃକ୍ଷ, ଶ୍ରୀବାସ ବୃକ୍ଷ ।

ବୃଦ୍ଧଧୂମା—ସ୍ତ୍ରୀ. ବି. ଶ୍ଳେଷ୍ମାତକ ବୃକ୍ଷ ।

ବୃଦ୍ଧନଗର—କ୍ଲୀ. ବି. ବଡ଼ ନଗର ।

ବୃଦ୍ଧନାଭି—ପୁଂ. ବିଂ. (ବ.ବ୍ରୀ) ଉନ୍ନତନାଭିଯୁକ୍ତ, ତୁନ୍ଦିଳ, ପେଟୁଆ ।

ବୃଦ୍ଧପରାଶର—ପୁଂ.ବି. ହିନ୍ଦୁ ସ୍ମୃତିକାରବିଶେଷ ।

ବୃଦ୍ଧପ୍ରପିତାମହ—ପୁଂ.ବି. ପ୍ରପିତାମହଙ୍କ ପିତା, ପିତାମହଙ୍କ ପିତାମହ, ପିତାଙ୍କ ପ୍ରପିତାମହ, (ସ୍ତ୍ରୀ) ବୃଦ୍ଧପ୍ରପିତାମହୀ ।

ବୃଦ୍ଧପ୍ରମାତାମହ—ପୁଂ. ବ. ମାତାମହଙ୍କ ପିତାମହ, ପ୍ରମାତାମହଙ୍କ ପିତା, (ସ୍ତ୍ରୀ) ବୃଦ୍ଧପ୍ରମାତାମହୀ ।
ବୃଦ୍ଧବଲା—ସ୍ତ୍ରୀ. ବ. ମହାସମଙ୍ଗା, ବଡ଼ ଲଜ୍ଜାଳୁକା, ମହାବଲା ।
ବୃଦ୍ଧବୃହସ୍ପତି—ପୁଂ. ବ. ପ୍ରାଚୀନ ଧର୍ମଶାସ୍ତ୍ରକାର, ଗ୍ରନ୍ଥବିଶେଷ । [ ଦେଖ ।
ବୃଦ୍ଧଭାବ—ପୁଂ ବ. (ବୃଦ୍ଧ+ଭାବ)ବୃଦ୍ଧା-
ବୃଦ୍ଧଭୋଜ—ପୁଂ. ବ. ଜନୈକ ଧର୍ମଶାସ୍ତ୍ର ସଂଗ୍ରହକାର ।
ବୃଦ୍ଧମନୁ—ପୁଂ. ବ. ଜନୈକ ଧର୍ମଶାସ୍ତ୍ରକାର, ଗ୍ରନ୍ଥବିଶେଷ । [ ଯୁକ୍ତ ।
ବୃଦ୍ଧମହାଃ—ତ୍ରି.ବିଂ.ଅତିଶୟ ତେଜୋ-
ବୃଦ୍ଧଯବନାଚାର୍ଯ୍ୟ—ପୁଂ. ବ. ଜନୈକ ଜ୍ୟୋତିର୍ବିଦ୍ ।
ବୃଦ୍ଧଯାତେଶ୍ୱର—ହିମାଳୟ ଶିଖରସ୍ଥ ତୀର୍ଥକ୍ଷେତ୍ରବିଶେଷ ।
ବୃଦ୍ଧଯାଜ୍ଞବଲ୍କ୍ୟ—ପୁଂ. ବ.ଜନୈକ ଧର୍ମଶାସ୍ତ୍ରକାର । [ ଧାତ୍ରୀ ।
ବୃଦ୍ଧଯୁବତୀ—ସ୍ତ୍ରୀ.ବ.କୁଟ୍ଟିନୀ, ଧାତ୍ରୀ,ଦୂତୀ,
ବୃଦ୍ଧରାଜ—ପୁଂ. ବ. ଅମ୍ଳବେତସ ।
ବୃଦ୍ଧବଦରୀ—ହିମାଳୟ ଶିଖରସ୍ଥ ତୀର୍ଥବିଶେଷ ।
ବୃଦ୍ଧବୟଃ—କ୍ଲୀ. ବ. ( ବୃଦ୍ଧ+ବୟଃ ) ପ୍ରାଚୀନ ବୟସ, (ବିଂ) ବୃଦ୍ଧ ।
ବୃଦ୍ଧବଶିଷ୍ଠ—ପୁଂ.ବ. ଜନୈକ ଧର୍ମଶାସ୍ତ୍ରକାର, ବଶିଷ୍ଠସିଦ୍ଧାନ୍ତ ଗ୍ରନ୍ଥପ୍ରଣେତା ।
ବୃଦ୍ଧବାଗ୍ଭଟ—ପୁଂ.ବ.ଜଣେ ବୈଦ୍ୟକ ଗ୍ରନ୍ଥ ରଚୟିତା, ଗ୍ରନ୍ଥବିଶେଷ ।
ବୃଦ୍ଧବାଦସୂରି—ପୁଂ.ବ.ଜନୈକ ଜୈନାଚାର୍ଯ୍ୟ ।
ବୃଦ୍ଧବାଦୀ—ପୁଂ.ବ.ଜନୈକ ଜୈନାଚାର୍ଯ୍ୟ
ବୃଦ୍ଧବାସିନୀ—ସ୍ତ୍ରୀ. ବ. କୋକିଶିଆଳି ।
ବୃଦ୍ଧବାହନ—ପୁଂ. ବ. ଆମ୍ବଗଛ ।
ବୃଦ୍ଧବିଭୀତକ—ପୁଂ.ବ.ଆମ୍ରାତକ, ଆମ୍ବଡ଼ା
ବୃଦ୍ଧବିଷ୍ଣୁ—ପୁଂ.ବ. ଜନୈକ ଧର୍ମଶାସ୍ତ୍ରକାର ।
ବୃଦ୍ଧଶ୍ରବାଃ—ପୁଂ.ବ.(ବୃଦ୍ଧ+ଶ୍ରବସ୍)ଇନ୍ଦ୍ର ।
ବୃଦ୍ଧଶ୍ରାବକ—ପୁଂ. ବ. କାପାଳିକ ।

ବୃଦ୍ଧସଂଘ—ପୁଂ. ବ. ବୃଦ୍ଧସମୂହ, ବୃଦ୍ଧସକଳ ।
ବୃଦ୍ଧସୁଶ୍ରୁତ—ପୁଂ.ବ. ଆଦ୍ୟସୁଶ୍ରୁତସଂହିତା ରଚୟିତା, ତନ୍ନାମକ ଗ୍ରନ୍ଥ ।
ବୃଦ୍ଧସୂତ୍ରକ—କ୍ଲୀ. ବ ଇନ୍ଦ୍ରତୂଳ, ଆକାଶରେ ଉଡ଼ୁଥିବା ବୁଢିଆଣୀ ସୂତା ।
ବୃଦ୍ଧହାରୀତ—ପୁଂ.ବ.ପ୍ରାଚୀନ ଧର୍ମଶାସ୍ତ୍ରବିଶେଷ, ତନ୍ନାମକ ଧର୍ମଶାସ୍ତ୍ରପ୍ରଣେତା ।
ବୃଦ୍ଧା—ସ୍ତ୍ରୀ. ବିଂ.(ବୃଧ୍+ତ+ଆ) ଗତଯୌବନା, ବୁଢ଼ୀ,(ବ) ମହାଶ୍ରାବଣିକା, ବୁଢ଼ାଆଙ୍ଗୁଳି ।
ବୃଦ୍ଧାଙ୍ଗୁଳି—ସ୍ତ୍ରୀ. ବ. ହସ୍ତ ଓ ପାଦର ସ୍ଥୂଳାଙ୍ଗୁଳି, ଅଙ୍ଗୁଷ୍ଠ, ବୃଦ୍ଧା ।
ବୃଦ୍ଧାତ୍ରେୟ—ପୁଂ. ବ. ଆତ୍ରେୟ ଋଷି ।
ବୃଦ୍ଧାନ୍ତ—ପୁଂ. ବ. ସମ୍ମାନର ପାତ୍ର ବା ସ୍ଥାନ, ଜ୍ଞାନବୃଦ୍ଧର ଚରମ ଦଶା ।
ବୃଦ୍ଧାର୍ଯ୍ୟଭଟ—ପୁଂ.ବ.ଜଣେ ଜ୍ୟୋତିଃଶାସ୍ତ୍ରକାର ।
ବୃଦ୍ଧି—ବ.(ବୃଧ୍+ଭା.ତି) ବ୍ୟାପ୍ତି,ବିସ୍ତାର, ଆଧିକ୍ୟ, ସମୃଦ୍ଧି, ଉନ୍ନତି,ଅଭ୍ୟୁଦୟ, ବଢ଼ିବା, ସମ୍ପତ୍ତି, ସୁଧ, କୁଶୀଦ, (ଜ୍ୟୋତିଷ) ବିଷ୍କୁମ୍ଭାଦି ୨୭ ଯୋଗ ମଧ୍ୟରୁ ଏକାଦଶ ଯୋଗ, (ଆୟୁର୍ବେଦ) ଚନ୍ଦ୍ରକାଖ୍ୟ ଲତାକନ୍ଦ, ଅଷ୍ଟବର୍ଗର ଅନ୍ତର୍ଗତ ଔଷଧିବିଶେଷ, (ବ୍ୟାକରଣ) ସ୍ୱରବର୍ଣ୍ଣର ପ୍ରସାରିତ ଅବସ୍ଥାବିଶେଷ, ଅ ସ୍ଥାନରେ ଆ, ଇ ଈ ସ୍ଥାନରେ ଐ ଉ ଓ ଊ ସ୍ଥାନରେ ଔ, ଋ ୠ ସ୍ଥାନରେ ଆର୍, ଌ ସ୍ଥାନରେ ଆଲ୍ ଆଦେଶକୁ ବୃଦ୍ଧି କହନ୍ତି, ଅର୍ଥଦଣ୍ଡ, ସ୍ଫୀତ, ସୂତକାଶୌଚ, ରାଜ୍ୟର କୃଷ୍ୟାଦି ଅଷ୍ଟବର୍ଗର ଉପଚୟ ।
ବୃଦ୍ଧିକର—ବିଂ. ( ବୃଦ୍ଧି + କୃ+ଅ ) ଉନ୍ନତିକାରକ ।
ବୃଦ୍ଧିକା—ସ୍ତ୍ରୀ.ବ. ( ବୃଦ୍ଧି + କ + ଆ ) ବୃଦ୍ଧିନାମକ ଔଷଧି, ଶଙ୍ଖପୁଷ୍ପୀ,ଶ୍ୱେତ ଅପରାଜିତା, ଅର୍କପୁଷ୍ପୀ ।
ବୃଦ୍ଧିଜୀବନ—କ୍ଲୀ.ବ.(ବ.ବ୍ରୀ)ସୁଧ ନେଇ ଯେ ଜୀବନଯାପନ କରେ ।

ବୃଦ୍ଧିଜୀବିକା—ସ୍ତ୍ରୀ.ବ. ଋଣଦାନ ଜୀବିକା, ସୁଧ ବ୍ୟବସାୟ ।
ବୃଦ୍ଧିଦ—ପୁଂ.ବ. ( ବୃଦ୍ଧି+ଦା+ଅ ) ଜୀବକ ନାମକ ହ୍ରସ୍ୱ କ୍ଷୁପ,ଶୂକର କନ୍ଦ, (ବିଂ) ବୃଦ୍ଧି ଦାତା, ଉନ୍ନତି ବିଧାୟକ, ଯାହା ବର୍ଦ୍ଧିତ କରେ ବା ବଢ଼ାଏ ।
ବୃଦ୍ଧିପତ୍ର—କ୍ଲୀ.ବ.ସପ୍ତାଙ୍ଗୁଳ ଅସ୍ତ୍ରବିଶେଷ (ସୁଶ୍ରୁତ) ।
ବୃଦ୍ଧିପାଇବା—ଗ୍ରା.କ୍ରି. ବଢ଼ିବା ।
ବୃଦ୍ଧିପ୍ରାପ୍ତ—ବିଂ. ବର୍ଦ୍ଧିତ ।
ବୃଦ୍ଧିଭୂତ—ବିଂ. ( ବୃଦ୍ଧି + ଭୂ+ତ ) ବୃଦ୍ଧିପ୍ରାପ୍ତ ।
ବୃଦ୍ଧିମାନ୍—ବିଂ. ଉନ୍ନତ, ବର୍ଦ୍ଧିତ,ଅଙ୍କୁରିତ, ବର୍ଦ୍ଧନଶୀଳ ।
ବୃଦ୍ଧିଶ୍ରାଦ୍ଧ—କ୍ଲୀ. ବ. ଆଭ୍ୟୁଦୟିକ ଓ ନାନ୍ଦୀମୁଖ ଶ୍ରାଦ୍ଧ । [ ବଳଦ ।
ବୃଦ୍ଧୋକ୍ଷ—ପୁଂ.ବ. ବୁଢ଼ା ଷଣ୍ଢ, ବୁଢ଼ା
ବୃଦ୍ଧ୍ୟାଜୀବ—ପୁଂ.ବ.(ବ.ବ୍ରୀ)ବାର୍ଦ୍ଧୁଷିକ, କୁଶୀଦଜୀବୀ, ସୁଧଖୋର ।
ବୃଦ୍ଧ୍ୟୁପଜୀବୀ—ପୁଂ.ବିଂ.ବୃଦ୍ଧ୍ୟାଜୀବ ଦେଖ
ବୃଧସାନୁ—ପୁଂ.ବ. ପୁରୁଷ, ପତ୍ର,କୃତ ।
ବୃଧ୍ୟ—ତ୍ରି.ବିଂ. (ବୃଧ୍+ଯ)ବର୍ଦ୍ଧନୀୟ ।
ବୃନ୍ତ—ବ. ( ବୃ+ମ୍ପ.ତ) ଫଳ ଫୁଲ ଓ ପତ୍ରର ଡେମ୍ଫ, କୁଚାଗ୍ର, ଚୁଚୁକ,ମାଠିଆ ଆଦି ରଖିବାର ମଳା ।
ବୃନ୍ତକ—ପୁଂ.ବ. ବୃନ୍ତ ଶବ୍ଦାର୍ଥ ।
ବୃନ୍ତଚ୍ୟୁତ—ବିଂ.(ପଞ୍ଚତତ୍)ଯାହା ଡେମ୍ଫରୁ ଖସି ପଡ଼ିଥାଏ ।
ବୃନ୍ତାକ—ବ. ବାଇଗଣ, ପୋଇଶାଗ ।
ବୃନ୍ତାକୀ—ବ. (ବୃନ୍ତ+ଅକ+ଅ+ଈ) ବାଇଗଣ, ପୋଇଶାଗ ।
ବୃନ୍ତିତା—ସ୍ତ୍ରୀ.ବ. କଟୁକା ।
ବୃନ୍ଦ—ବ. (ବୃଣ+କ.ଦ) ସମୂହ, ଦଶ ଅର୍ବୁଦ, ୧୦୦ କୋଟି ସଂଖ୍ୟା ।
ବୃନ୍ଦବୃନ୍ଦ—ଗ୍ରା.ବ ଓ ବିଂ. ଅସଂଖ୍ୟ,ବହୁବୃନ୍ଦ ସଂଖ୍ୟା ।
ବୃନ୍ଦଶଃ—ଅବ୍ୟ. ଦଳେ ଦଳେ ।
ବୃନ୍ଦା—ସ୍ତ୍ରୀ.ବ. (ବୃଣ+ଦ+ଆ)ତୁଳସୀ, ଜଳନ୍ଧର ପତ୍ନୀ, କେଦାର ରାଜକନ୍ୟା

ରାଧାଙ୍କ ନାମାନ୍ତର, ନିର୍ମୂଳୀ, ରାଧିକାଙ୍କ ସଖୀବିଶେଷ ।

ବୃନ୍ଦାକ—କ୍ଲୀ.ବି. ( ବୃଣ + ଦ + ଆକ ) ନିର୍ମୂଳୀ, ମଲାଙ୍ଗ ।

ବୃନ୍ଦାର—ବିଂ. (ବୃଣ + ଦାର) ମନୋଜ୍ଞ, ସୁନ୍ଦର, ପ୍ରୀତିକର, ଯଶସ୍ୱୀ, ବିଖ୍ୟାତ ।

ବୃନ୍ଦାରକ—ପୁଂ.ବି. (ବୃନ୍ଦ + ଆର + କ) ଦେବତା, ଦଳପତି, (ବିଂ) ମନୋଜ୍ଞ, ସୁନ୍ଦର, ପ୍ରଧାନ, ବୃହତ୍, ବିଖ୍ୟାତ ।

ବୃନ୍ଦାରଣ୍ୟ—କ୍ଲୀ.ବି. ବୃନ୍ଦାବନ ଦେଖ ।

ବୃନ୍ଦାବତୀ—ସ୍ତ୍ରୀ.ବି. ତୁଳସୀଗଛ ।

ବୃନ୍ଦାବନ—କ୍ଲୀ.ବି. ମଥୁରା ସମୀପସ୍ଥ ବନବିଶେଷ ଓ କ୍ଷୁଦ୍ର ନଗର ।

ବୃନ୍ଦାବନଗୋସ୍ୱାମୀ—ଭାଗବତ ରହସ୍ୟ ରଚୟିତା ।

ବୃନ୍ଦାବନଚନ୍ଦ୍ର—ଗ୍ରା.ବି. ଶ୍ରୀକୃଷ୍ଣଙ୍କ ନାମ ।

ବୃନ୍ଦାବନଦେବ—ନିମ୍ବାର୍କ ସମ୍ପ୍ରଦାୟର ଜଣେ ଗୁରୁ ।

ବୃନ୍ଦାବନନାୟକ—ଗ୍ରା. ବି. ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ସେବକବିଶେଷଙ୍କର ଉପାଧି ।

ବୃନ୍ଦାବନେଶ୍ୱର—ପୁଂ.ବି. (୬ତତ୍) ଶ୍ରୀକୃଷ୍ଣ

ବୃନ୍ଦାବନେଶ୍ୱରୀ—ସ୍ତ୍ରୀ.ବି. (୬ତତ୍) ଶ୍ରୀରାଧା

ବୃନ୍ଦାହୁଳ—ଗ୍ରା. ବି. ଏକପ୍ରକାର ବହୁଶାଖାଯୁକ୍ତ ମସାଲ ।

ବୃନ୍ଦିଷ୍ଠ—ବିଂ. ଅତି ଶ୍ରେଷ୍ଠ, ଅତି ସୁନ୍ଦର, ଅତି ଯଶସ୍ୱୀ ।

ବୃନ୍ଦୀୟାନ୍—ପୁଂ.ବିଂ. ବୃନ୍ଦିଷ୍ଠ, ଦୁଇ ବା ବହୁ ମଧ୍ୟେ ଶ୍ରେଷ୍ଠ । [ ମୂଷିକ ।

ବୃଶ—ବି. ( ବୃ + ଶ ) ବାସଙ୍ଗଗଛ, ଅଦା,

ବୃଶା—ସ୍ତ୍ରୀ.ବି. ଔଷଧିବିଶେଷ ।

ବୃଶାଲ—ଗ୍ରା. ବିଂ. ବିଶାଳ ।

ବୃଶ୍ଚନ—ପୁଂ. ବି. ବୃଶ୍ଚିକ ।

ବୃଶ୍ଚି—ପୁଂ.ବି. ରକ୍ତ ପୁନର୍ନବା ।

ବୃଶ୍ଚିକ—ବି. ( ବୃଶ୍ଚ + କ.ଇକ ) ବିଛା, ବିଛାରାଶି, ମାର୍ଗଶିର ମାସ, ସମ୍ଭାଳୁଆ ପୋକ, କଙ୍କଡ଼ା, ଗୋବରପୋକ ।

ବୃଶ୍ଚିକଦଂଶନ—ବି.(୬ତତ୍) ବିଛୁକାମୁଡ଼ା

ବୃଶ୍ଚିକପତ୍ରିକା—ସ୍ତ୍ରୀ.ବି. ପୂତିକା ।

ବୃଶ୍ଚିକପ୍ରିୟା—ସ୍ତ୍ରୀ.ବି. (ବୃଶ୍ଚିକ + ପ୍ରିୟା) ପୂତିକା । [ ମୂଷାକାଣ୍ଡୀ ଲତା ।

ବୃଶ୍ଚିକର୍ଣ୍ଣୀ—ସ୍ତ୍ରୀ. ବି. ଆଖୁକର୍ଣ୍ଣୀ ଲତା,

ବୃଶ୍ଚିକା—ସ୍ତ୍ରୀ.ବି. କ୍ଷୁଦ୍ର ବୃକ୍ଷବିଶେଷ ।

ବୃଶ୍ଚିକାଳୀ—ସ୍ତ୍ରୀ. ବି. ବୃଶ୍ଚିକସମୂହ, ବିଛୁଆତି । [ ନାକୁଲୀ ।

ବୃଶ୍ଚିକ ହିଂସାପଦ୍ମା—ସ୍ତ୍ରୀ.ବି. ଗନ୍ଧରାସ୍ନା,

ବୃଶ୍ଚିକେଶ—ପୁଂ. ବି. ବୃଶ୍ଚିକ ରାଶିର ଅଧିଷ୍ଠାତ୍ରୀ ଦେବତା ।

ବୃଶ୍ଚିପତ୍ରୀ—ସ୍ତ୍ରୀ.ବି. ବୃଶ୍ଚିକାଳୀ, ବିଛୁଆତି

ବୃଶ୍ଚୀର—ବି. ଶ୍ୱେତ ପୁନର୍ନବା, ଧଳା ପୁରୁଣି ।

ବୃଷ—ବି.(ବୃଷ୍ + କ.ଅ) ଷଣ୍ଢ, ରାଶି ଚକ୍ରର ଦ୍ୱିତୀୟ ରାଶି, ଶୁକ୍ରଳ ଓ କାମୁକବ୍ୟକ୍ତି, ବଳବାନ୍‌ବ୍ୟକ୍ତି, ଇନ୍ଦ୍ର, ମୂଷିକ, ବିଷ୍ଣୁ, ରାଜା କର୍ଣ୍ଣ, ଧର୍ମ, ମଲ୍ଲ, ବାସଙ୍ଗଗଛ, ଶ୍ରୀକୃଷ୍ଣ, ମୟୂରପୁଚ୍ଛ, ଗୃହ ନିର୍ମାଣୋପଯୁକ୍ତ ନିର୍ଦ୍ଦିଷ୍ଟ ଭୂମିଖଣ୍ଡ, ଜଳ, ଋଷଭନାମକ ଔଷଧି, କାମଦେବ, (ଣ.ଅ) ଶୁକ୍ର, ଶୁକ୍ରଗ୍ରହ, ପତି, ଶତ୍ରୁ, (ଖ୍ର.ଅ) ନ୍ୟାୟବିଚାର, ସଦାଚରଣ, ପୁଣ୍ୟକର୍ମ, ଅନ୍ୟ ଶବ୍ଦର ପରବର୍ତ୍ତୀ ହେଲେ ଶ୍ରେଷ୍ଠାର୍ଥ ବୁଝାଏ, ଗୋଧୂମ, (ଗ୍ରା.ବି) ଷଣ୍ଢାସୁର ।

ବୃଷକ—ପୁଂ. ବି. ବୃଷ, ଗାନ୍ଧାର ରାଜପୁତ୍ରବିଶେଷ, ସାମବିଶେଷ ।

ବୃଷକର୍ଣ୍ଣିକା (କର୍ଣ୍ଣୀ)—ସ୍ତ୍ରୀ. ବି. ସୁଦର୍ଶନା ଲତା, ଛାଗଲାଣ୍ଡୀ, ଗୁଳ୍ମବିଶେଷ ।

ବୃଷକର୍ମ—ବି. ଧର୍ମକର୍ମ ।

ବୃଷକାମ—ତ୍ରି.ବି. ଧର୍ମକାମ, ଯେ ବୃଷ କାମନା କରେ ।

ବୃଷକେତନ—ପୁଂ.ବି. ବୃଷଧ୍ୱଜ, ଶିବ ।

ବୃଷକେତୁ—ବି. (ବ.ବ୍ରୀ) ଶିବ, କର୍ଣ୍ଣଙ୍କ ପୁତ୍ରବିଶେଷ ।

ବୃଷଗନ୍ଧା (ଗନ୍ଧିକା)—ସ୍ତ୍ରୀ. ବି. ଛାଗଲାଣ୍ଡୀ, ଅତିବଳା, ଇତୁରୁଡ଼ୀ ଲତା ।

ବୃଷଚକ୍ର—କ୍ଲୀ. ବି. କୃଷିକର୍ମୋକ୍ତ ବୃଷାକାର ଚକ୍ର ବିଶେଷ ।

ବୃଷଣ—ପୁଂ. ବି. (ବୃଷ + କ.ଅନ) ଅଣ୍ଡକୋଷ, ମୁଷ୍କ, (ଖ୍ର.ଅନ) ବୀର୍ଯ୍ୟପ୍ରାବନ ଦ୍ୱାରା ଗର୍ଭ ଉତ୍ପାଦନ, ଛିଞ୍ଚିବା, (ବିଂ) ସବଳ, ପୁଷ୍ଟ ।

ବୃଷଣକଚ୍ଛୁ—ସ୍ତ୍ରୀ.ବି. ଅଣ୍ଡକୋଷଉପରେ ହେବା କୁଣ୍ଡିଆ ରୋଗ, ଚମଦ୍ୱଲା ।

ବୃଷଦଂଶ(କ)—ପୁଂ.ବି. (ବୃଷ + ଦଂଶ୍ + କ.ଅ) ମାର୍ଜାର, ବିରାଡ଼ି ।

ବୃଷଦନ୍ତ—ବିଂ. (ବ.ବ୍ରୀ) ଯାହାର ଦାନ୍ତ ମୂଷାଦାନ୍ତ ପରି ।

ବୃଷଦର୍ଭ—ପୁଂ. ବି. କାଶୀ ରାଜପୁତ୍ରବିଶେଷ, ଶିବଙ୍କ ପୁତ୍ର, କୃଷ୍ଣଙ୍କ ନାମାନ୍ତର । [ ବିଶେଷ ।

ବୃଷଦେବା—ସ୍ତ୍ରୀ. ବି. ବସୁଦେବ ପତ୍ନୀ-

ବୃଷଧ୍ୱଜ—ପୁଂ.ବି.(ବ.ବ୍ରୀ) ଶିବ, ଗଣେଶ, ପୁଣ୍ୟବାନ୍ ବ୍ୟକ୍ତି, ରାଜପୁତ୍ରବିଶେଷ, ପର୍ବତବିଶେଷ, ତାନ୍ତ୍ରିକ ମନ୍ତ୍ର ରଚୟିତାବିଶେଷ, (ସ୍ତ୍ରୀ) ବୃଷଧ୍ୱଜା ।

ବୃଷଧ୍ୱାଙ୍କ୍ଷ (ଙ୍କ୍ଷୀ)—ସ୍ତ୍ରୀ.ବି. ନାଗରମୁଥା ।

ବୃଷନ—ପୁଂ.ବି. (ବୃଷ + ଅନ) ଇନ୍ଦ୍ର, କର୍ଣ୍ଣ, ବେଦନାଜ୍ଞାନ ବା ତତ୍ ହେତୁକ ଅଚୈତନ୍ୟ, ବୃଷ, ଅଶ୍ୱ, ବିଷ୍ଣୁ ।

ବୃଷନାଶନ—ପୁଂ.ବି. ବିଡ଼ଙ୍ଗ, ଶ୍ରୀକୃଷ୍ଣ ।

ବୃଷପତି—ପୁଂ.ବି. (ବୃଷ + ପତି) ଷଣ୍ଢ, ନପୁଂସକ, ଶିବ, ମହାଦେବଙ୍କ ଉତ୍କୃଷ୍ଟ ବୃଷ । [ ଇତୁରୁଡ଼ୀ ଲତା ।

ବୃଷପତ୍ରିକା—ସ୍ତ୍ରୀ.ବି. ବନ୍ଧ୍ୟାର୍କୀ, ଛାଗଲାଣ୍ଡୀ,

ବୃଷପର୍ଣ୍ଣିକା—ସ୍ତ୍ରୀ.ବି. ବ୍ରାହ୍ମଣଯଷ୍ଟିକା, ବାମନହାଟୀ । [ ସୁଦର୍ଶନା ଲତା, ଦନ୍ତୀ ।

ବୃଷପର୍ଣ୍ଣୀ—ସ୍ତ୍ରୀ.ବି. ଆଖୁପର୍ଣ୍ଣୀ, ମୂଷାକାନି

ବୃଷପର୍ବା—ପୁଂ. ବି. ( ବୃଷ + ପର୍ବନ୍ ) ଶିବ, ଦୈତ୍ୟବିଶେଷ, କେଶୁର ତୃଣ, ବିରୁଡ଼ି, ଶର୍ମିଷ୍ଠାଙ୍କ ପିତା ।

ବୃଷପ୍ରିୟ—ପୁଂ.ବି. ବିଷ୍ଣୁ ।

ବୃଷଭ—ବି. ( ବୃଷ୍ + କ.ଅଭ ) ବୃଷ, ଷଣ୍ଢ, ବଳଦ, ଋଷଭକନାମକ ଔଷଧି, ବୈଦର୍ଭୀ ନାମକ ରଚନା, ରାଜା, ଜନବିଶେଷ, କର୍ଣ୍ଣଛିଦ୍ର, (ରତିଶାସ୍ତ୍ରମତେ) ଚାରିଜାତି ପୁରୁଷ ମଧ୍ୟରୁ ଏକଜାତୀୟ ପୁରୁଷ, ଶ୍ରୀକୃଷ୍ଣଙ୍କର ଏକସଖା, ବାନରସେନାପତିବିଶେଷ, ଶ୍ରେଷ୍ଠବ୍ୟକ୍ତି

ବୃଷଭକେତୁ—ପୁଂ.ବି. ଶିବ ।
ବୃଷଭଗତି—ପୁଂ. ବି. (ବ.ବ୍ରୀ) ଶିବ, ବୃଷବାହ୍ୟ ଯାନ ।
ବୃଷଭଧ୍ୱଜ—ପୁଂ.ବି. (ବ.ବ୍ରୀ)ଶିବ,(ସ୍ତ୍ରୀ) ବୃଷଭଧ୍ୱଜା, ବୃହଦ୍‌ଦନ୍ତୀବୃକ୍ଷ, ପର୍ବତ-ବିଶେଷ, ଶିବଙ୍କ ବାହନବିଶେଷ ।
ବୃଷଭପଛଆଡ଼ ପାଇବା—ଗ୍ରା.କ୍ରି.(ନ୍ୟାୟ) କରିଥିବା ଆଶା ପୂରଣ ନହେବା ।
ବୃଷଭପଲ୍ଲବ—ପୁଂ.ବି. ବାସକବୃକ୍ଷ ।
ବୃଷଭବୀଥି—ସ୍ତ୍ରୀ.ଗ୍ରା. ସୂର୍ଯ୍ୟ ଗମନ ପଥ-ବିଶେଷ ।
ବୃଷଭସ୍ୱାମୀ—ପୁଂ. ବି. ଇକ୍ଷ୍ୱାକୁବଂଶୀୟ ରାଜପୁତ୍ରବିଶେଷ ।
ବୃଷଭାକ୍ଷ—ପୁଂ.ବି. ବିଷ୍ଣୁ ।
ବୃଷଭାକ୍ଷୀ—ସ୍ତ୍ରୀ. ବି. ଇନ୍ଦ୍ରବାରୁଣୀ ଲତା, ମହାକାଳ ଲତା ।
ବୃଷଭାଙ୍କ—ପୁଂ. ବି. ଶିବ ।
ବୃଷଭାଣ(ନୁ)—ପୁଂ.ବି.ଶୁରଭାନୁଙ୍କ ପୁତ୍ର, ଶ୍ରୀରାଧାଙ୍କ ପିତା ।
ବୃଷଭାନୁଜେମା—ଗ୍ରା. ବି. ରାଧିକା ।
ବୃଷଭାନୁନନ୍ଦିନୀ(ସୁତା)—ସ୍ତ୍ରୀ.ବି.ରାଧିକା ।
ବୃଷଭାଷା—ଗ୍ରା. ବି. ମନୋହର ଭକ୍ତି ।
ବୃଷଭାସା—ସ୍ତ୍ରୀ. ବି. (ବୃଷ + ଭାସ୍ + ଅଧି. ଅ + ଆ) ଅମରାବତୀ, ଇନ୍ଦ୍ରପୁରୀ ।
ବୃଷଭୀ—ସ୍ତ୍ରୀ. ବି. (ବୃଷଭ + ଈ) ବାଇ-ଡଙ୍କ, ବିଧବା ସ୍ତ୍ରୀ,ହାତୀର କାନ,କାନ-ଗୁହ୍ର । [ ମୂଳ ।
ବୃଷମୂଳ—କ୍ଲୀ. ବି. ବାସକମୂଳ, ବାସଙ୍ଗ
ବୃଷୟ—ପୁଂ.ବି. (ବୃଷ + ଅୟ୍‌ନ୍)ଆଶ୍ରୟ, ଆଶ୍ରୟସ୍ଥାନ, ଆଶ୍ରମ ।
ବୃଷରାଜକେତନ—ପୁଂ. ବି. ଶିବ ।
ବୃଷଲ—ପୁଂ.ବି. (ବୃଷ + କ.ଅଲ) ଶୂଦ୍ର, ଗାଜର, ରସୋନ, ଘୋଟକ,ଚନ୍ଦ୍ରଗୁପ୍ତ ରାଜା, ଜାତିଚ୍ୟୁତ ବ୍ୟକ୍ତି, (ବୃଷ + ଲ + କ.ଅ) ପାପୀ, ଦୁରାଚାରୀ, ସନ୍ଧ୍ୟୋ-ପାସନା ବର୍ଜିତ, ଅଗ୍ନି କାର୍ଯ୍ୟାଦିରୁ ପରିଭ୍ରଷ୍ଟ,ବେଦପାଠପରିତ୍ୟକ୍ତ(ବ୍ରାହ୍ମଣ), ଅଧାର୍ମିକ, ଦୁଷ୍ଟାତ୍ମା ।
ବୃଷଲକ—ପୁଂ.ବି. (ବୃଷଲ + କ)ବୃଷଲ ଦେଖ । [ ଶିବ ।
ବୃଷଲକ୍ଷ୍ମା—ପୁଂ. ବି. (ବ.ବ୍ରୀ)ବୃଷଲାଞ୍ଛନ,
ବୃଷଲାତ୍ମଜ—ପୁଂ. ବିଂ. ଶୂଦ୍ରୋଦ୍ଭବ,ଶୂଦ୍ର-ଜାତ, ପାପିଷ୍ଠଜ ।
ବୃଷଲୀ—ସ୍ତ୍ରୀ.ବି. ଅବିବାହିତା ରଜସ୍ୱଳା କନ୍ୟା, ଯେ ନିଜପତି ପରିତ୍ୟାଗକରି ପରପତିରତା ହୁଏ, ନୀଚଜାତୀୟା ସ୍ତ୍ରୀ, ଚତୁର୍ଥମାସ ସ୍ତ୍ରୀ,ମୃତସନ୍ତାନ ପ୍ରସବକାରିଣୀ ସ୍ତ୍ରୀ, ବନ୍ଧ୍ୟା ସ୍ତ୍ରୀ,ଶୂଦ୍ରା ସ୍ତ୍ରୀ,ଦ୍ୟୁତକ୍ରୀଡ଼ାଦି ନିନ୍ଦିତ କର୍ମରତା ସ୍ତ୍ରୀ ।
ବୃଷଲୀପତି—ପୁଂ.ବି. ଶୂଦ୍ରାବିବାହକାରୀ ବ୍ରାହ୍ମଣ, ରଜସ୍ୱଳାକନ୍ୟା ବିବାହକାରୀ ପୁରୁଷ,ଶୂଦ୍ରା ସ୍ତ୍ରୀ ସମ୍ଭୋଗକାରୀ ଦ୍ୱିଜାତି
ବୃଷଲୀସେବନ—ବି. ବ୍ରାହ୍ମଣ ପକ୍ଷରେ ଶୂଦ୍ରାଦି ସଙ୍ଗମ,ରଜସ୍ୱଳା ସ୍ତ୍ରୀସଙ୍ଗମ ।
ବୃଷଲୋଚନ—ପୁଂ.ବି.(ବୃଷ + ଲୋଚନ) ମୂଷିକ, ବିଲୁଆ, (କ୍ଲୀ) ବୃଷର ଚକ୍ଷୁ ।
ବୃଷବାହ—କ୍ରି. ବିଂ. ବୃଷାରୋହୀ ।
ବୃଷବାହନ—ବି. (ବ.ବ୍ରୀ) ଶିବ, ବୃଷ-ରୂପ ବାହନ ଯାହାଙ୍କର ।
ବୃଷବୋଧ—ବି. (ବ.ବ୍ରୀ) ବୃଷୋତ୍ସର୍ଗ ।
ବୃଷଭଭଷ୍ମ—ପୁଂ. ବି. କପିକଚ୍ଛୁ, ବାଇ-ଡଙ୍କ ।
ବୃଷଶତ୍ରୁ—ପୁଂ. ବି. ବିଷ୍ଣୁ, ବୃଷର ଶତ୍ରୁ ।
ବୃଷଶ୍ରେଷ୍ଠ—ଗ୍ରା. ବିଂ. ମଙ୍ଗଳପ୍ରଦ ।
ବୃଷସାର—ପୁଂ.ବି. ଶୁକ୍ଳବର୍ଣ୍ଣ,ଦେବକୁମ୍ଭ ।
ବୃଷସୃକ୍କ(କୀ)—ପୁଂ. ବି. ଭୃଙ୍ଗରୋଳ, ବିରୁଡ଼ି, ବୃଷଶୃଙ୍ଗୀ, ଭ୍ରମର ।
ବୃଷସ୍କନ୍ଧ—ପୁଂ. ବି (ବ.ବ୍ରୀ) ଶିବ,ସ୍ଥୂଳ-କନ୍ଧର, (ବିଶେଷ୍ୟ) ଷଣ୍ଢର ଚୂଳ, ବୃଷ-ଭର କାନ୍ଧ ।
ବୃଷସ୍ୟନ୍ତୀ—ସ୍ତ୍ରୀ.ବି.(ବୃଷ୍ + ଯ + ଇଚ୍ଛାର୍ଥେ ସ + ଅତ୍ + ଈ)ଅତିଶୟ କାମୁକୀ ସ୍ତ୍ରୀ, ଶୁକଶିମ୍ବୀ, ବୃଷାର୍ଥିନୀ ଗାଈ ।
ବୃଷା—ବି. (ବୃଷ + କ.ଅନ୍) ରାଜାକର୍ଣ୍ଣ, କେଳୁଆର ଦୁଃଖ, ବୃଷ,ଘୋଡ଼ା,ମହା-ନ୍ୟେଇଷ୍ଟନ୍ତି ଲତା, ଯାତନାଜନ୍ୟ ଅଚୈତନ୍ୟ, ବୃଷରାଶି, ବଳପତି, ଦୁଃଖ ଅନୁଭୂତରାହୃତ୍ୟ, ଅଗ୍ନିଙ୍କ ନାମ, ମୂଷାକାଣୀ ପତ୍ର, ବୃହଦ୍‌ଦନ୍ତୀଗଛ, ଲଘୁ-ଦନ୍ତୀବୃକ୍ଷ, ବାଇଡଙ୍କ, ଅଶ୍ୱଗନ୍ଧା.(ବିଂ. ବୃଷ + ଆ) ବୃହତ୍, ଉଚ୍ଚୈଃସ୍ୱରଯୁକ୍ତ ।
ବୃଷାକପାୟୀ—ସ୍ତ୍ରୀ. ବି. (ବୃଷକପି + ଈ) ଲକ୍ଷ୍ମୀ, ଗୌରୀ, ସ୍ୱାହା, ଶଚୀ, ଜୀବନ୍ତୀ, ଶତାବରୀ, କୃମାରୀ ।
ବୃଷାକପି—ପୁଂ. ବି. (ବୃଷ + ଅ + କମ୍ପ + କ.ଇ) ବିଷ୍ଣୁ, ଶିବ, ଅଗ୍ନି, ଇନ୍ଦ୍ର, ସୂର୍ଯ୍ୟ ।
ବୃଷାକର—ପୁଂ.ବି. ମାଷକଳାଇ, ବିର ।
ବୃଷାକୃତି—ପୁଂ. ବି. ବିଷ୍ଣୁ ।
ବୃଷାକ୍ଷ—ପୁଂ. ବି. ବିଷ୍ଣୁ ।
ବୃଷାଙ୍କ—ପୁଂ. ବି. (ବ.ବ୍ରୀ)ଶିବ, ସାଧୁ, ପାମୀୟ,ଭଲ୍ଲାତକ, ଧାର୍ମିକ ବ୍ୟକ୍ତି,ମୟୂର, ଅନ୍ତଃପୁରରକ୍ଷକ କ୍ଳୀବ ।
ବୃଷାଙ୍କଜ—ପୁଂ. ବି. ଡମରୁ ।
ବୃଷାଞ୍ଜନ—ପୁଂ.ବି.(ବୃଷ + ଅଞ୍ଜନ)ଶିବ ।
ବୃଷାଣ—ଗ୍ରା. ବି. ବିଶାଳ, ପ୍ରକାଣ୍ଡ ।
ବୃଷାଣକ—ପୁଂ. ବି. ଶିବ, ଶିବାନୁଚର-ବିଶେଷ ।
ବୃଷାଣ୍ଡ—ପୁଂ. ବି. ଅସୁରବିଶେଷ ।
ବୃଷାଦନୀ—ସ୍ତ୍ରୀ.ବି.ଇନ୍ଦ୍ରବାରୁଣୀ,ମହାକାଳ
ବୃଷାଦ୍ରି—ପୁଂ.ବି. ବୃଷଭ ଗିରି, କେରଳ ଦେଶର ଗୋଟିଏ ପର୍ବତ ।
ବୃଷାଦ୍ୱେଷୀ—ଗ୍ରା. ବି. ଇନ୍ଦ୍ରଜିତ୍ ।
ବୃଷାନ୍ତକ—ପୁଂ.ବି.(ବୃଷ + ଅନ୍ତକ)ବିଷ୍ଣୁ
ବୃଷାମୋଦନୀ—ସ୍ତ୍ରୀ.ବିଂ.ପତି ଅନୁରାଗିଣୀ (ସ୍ତ୍ରୀ) । [ ଶିବ ।
ବୃଷାୟୁଧ—ପୁଂ.ବି.ଘରଚଟିଆ ଚଢ଼େଇ,
ବୃଷାରଣୀ—ସ୍ତ୍ରୀ. ବି. ଗଙ୍ଗା ।
ବୃଷାରବ—ପୁଂ. ବି. (ବ.ବ୍ରୀ) କର୍କଶ ଶବ୍ଦକାରୀ ଜନ୍ତୁ ।
ବୃଷାରି—ବି. (ବୃଷ + ଅରି) ଇନ୍ଦ୍ରଜିତ୍ ।
ବୃଷାଲ—ଗ୍ରା. ବି. ବିଶାଳ, ପ୍ରକାଣ୍ଡ ।
ବୃଷାଶନ—ବି. (ବ.ବ୍ରୀ) ବିଲୁଆ ।
ବୃଷାଶ୍ରିତା—ସ୍ତ୍ରୀ. ବି. ଗଙ୍ଗା ।
ବୃଷାସନ—ବି. (ବ.ବ୍ରୀ) ଶିବ ।
ବୃଷାସୁତ—ବି. କାକ ।
ବୃଷାସୁର—ବି.ଭସ୍ମାସୁର,ଦୈତ୍ୟ, ବୃକା-

ସୁର, ଷଣ୍ଢାସୁର ।
ବୃଷାହାର—ପୁଂ. ବ. ବଗଡ଼ ।
ବୃଷି—ବ. (ବୃଷ+ଇ) ବ୍ରତଧାରୀ ବ୍ୟକ୍ତି-ମାନଙ୍କ ଉପବେଶନାର୍ଥ କୁଶାସନ ।
ବୃଷୀ—ପୁଂ. ବ. (ବୃଷ+ଇନ୍) ମୟୂର, (ସ୍ତ୍ରୀ.ବ. ବୃଷ+ଈ) ବୃଷି ଦେଖ ।
ବୃଷେନ୍ଦ୍ର—ପୁଂ.ବ.ବଳୀବର୍ଦ୍ଦ,ଷଣ୍ଢ,ନନ୍ଦୀ ।
ବୃଷୋତ୍ସର୍ଗ—ବ. ମୃତ ବ୍ୟକ୍ତିର ଉଦ୍ଦେଶ୍ୟରେ ତତ୍ପୁତ୍ରାଦି କର୍ତ୍ତୃକ ଶାସ୍ତ୍ରୋକ୍ତ ବିଧିପୂର୍ବକ ବୃଷତ୍ୟାଗ, ମୃତ ବ୍ୟକ୍ତିର ଅଶୌଚାନ୍ତ ଦ୍ୱିତୀୟ ଦିନ (ଅର୍ଥାତ୍ ଦ୍ୱାଦଶାହ) ଗୃହଗୋଷ୍ଠି ଅଣ୍ଡିରା ଅଧିରା ବାଛୁରିଙ୍କୁ ତ୍ରିଶୂଳ ଚିହ୍ନିତ କରି ସେମାନଙ୍କୁ ଛାଡ଼ିଦେବା ରୂପ ଶ୍ରାଦ୍ଧ ଓ ଯଜ୍ଞକ୍ରିୟା ।
ବୃଷସ୍ରାହ—ପୁଂ. ବ. ବୃଷଙ୍କ ନାମାନ୍ତର ।
ବୃଷୋଦର—ପୁଂ.ବ.ବିଷ୍ଣୁଙ୍କ ନାମାନ୍ତର ।
ବୃଷ୍ଟ—ବିଂ. (ବୃଷ୍+କ.ତ) କୃତବର୍ଷଣ, ବର୍ଷୁଥିବା, (ମି.ତ) ସିକ୍ତ ।
ବୃଷ୍ଟି—ସ୍ତ୍ରୀ.ବ. (ବୃଷ୍+ତି) ମେଘରୁ ଜଳ ବିନ୍ଦୁ ପତନ, ବର୍ଷା, ବୃଷ୍ଟି ଧାର ପରି ଅବିରତ ଘଟିବା କର୍ମ, ବର୍ଷାଜଳ, ଆକାଶରୁ ଧାରାକାରରେ ପଡ଼ିବା କୌଣସି ବସ୍ତୁ ।
ବୃଷ୍ଟିକରିବା—ଗ୍ରା.କ୍ରି. ଜଳ ବରଷାଇବା, ବୃଷ୍ଟି ଜଳପରି ଢ଼ାଳିବା, ଅବିରତ ଭାବରେ କୌଣସି କାର୍ଯ୍ୟ କରିବା ।
ବୃଷ୍ଟିକା—ସ୍ତ୍ରୀ. ବ. ଆରଣ୍ୟ ଶଣପୁଷ୍ପ ।
ବୃଷ୍ଟିକାଳ—ବ. (୬ତତ୍ପୁ) ବର୍ଷାଋତୁ ।
ବୃଷ୍ଟିଘ୍ନ—କ୍ରି.ବିଂ(ବୃଷ୍ଟି+ହନ୍+ଅ)ବୃଷ୍ଟି-ନାଶକ ।
ବୃଷ୍ଟିଘ୍ନୀ—ସ୍ତ୍ରୀ.ବ.ଭୃଙ୍ଗପର୍ଣ୍ଣିକା,ସୂକ୍ଷ୍ମୈଳା ଗୁଜରାତ, ଅଳାଇଚ ।
ବୃଷ୍ଟିଜୀବନ—ବ. (ବ.ବ୍ରୀ) ଚାତକପକ୍ଷୀ, ଦେବମାତୃକ ଦେଶ ।
ବୃଷ୍ଟିପତନ—ବ. (୬ତତ୍ପୁ) ମେଘରୁ ଜଳ ବର୍ଷଣ ।
ବୃଷ୍ଟିପାତ—ପୁଂ. ବ. (୬ତତ୍ପୁ) ମେଘରୁ ଜଳ ପଡ଼ିବା, ବୃଷ୍ଟିପତନ ।
ବୃଷ୍ଟିଭବ—ବ. (ବୃଷ୍ଟି+ଭୂ+କ.ଅ) ବୃଷ୍ଟିପାତ ଯୋଗୁଁ ଉତ୍ପନ୍ନ ।
ବୃଷ୍ଟିଭୂ—ପୁଂ. ବ. (ବୃଷ୍ଟି+ଭୂ+କ. କ୍ୱିପ୍) ମଣ୍ଡୁକ, ବେଙ୍ଗ, (ବିଂ)ବୃଷ୍ଟିଭବ ଦେଖ ।
ବୃଷ୍ଟିମାନ୍—ବିଂ. (ବୃଷ୍ଟି+ମତ୍) ବର୍ଷଣଶୀଳ, ବର୍ଷାମୟ, ଅଜାଡ଼ୁଥିବା, (ବି) ମେଘ ।
ବୃଷ୍ଟିମାନଯନ୍ତ୍ର—ବ. ଯେଉଁ ଯନ୍ତ୍ର ଦ୍ୱାରା ବୃଷ୍ଟିର ପରିମାଣ ନିରୂପିତ ହୁଏ ।
ବୃଷ୍ଟିମାରୁତ—ପୁଂ. ବ. ଝଡ଼, ବର୍ଷା ।
ବୃଷ୍ଟିବାତ—ପୁଂ.ବ.ବୃଷ୍ଟିମାରୁତ ଦେଖ ।
ବୃଷ୍ଟିବିନ୍ଦୁ—ବ. (୬ତତ୍ପୁ) ବର୍ଷା ଜଳର ଟୋପା ।
ବୃଷ୍ଟିବୈକୃତ—ବ.ଉପଦ୍ରବସୂଚକ ବୃଷ୍ଟିବିକାର, ଅତି ବୃଷ୍ଟ୍ୟାଦି ।
ବୃଷ୍ଣି—ବ.(ବୃଷ୍+କ.ନି)ମେଣ୍ଢା,ଯାଦବ, ଶ୍ରୀକୃଷ୍ଣ, ଇନ୍ଦ୍ର, ଅଗ୍ନି, ବାୟୁ, ମେଘ, ଜ୍ୟୋତିଃ, ଗୌ, ଚନ୍ଦ୍ରବଂଶର ଶାଖାବିଶେଷ,ଶ୍ରୀକୃଷ୍ଣଙ୍କ ଜନୈକ ପୂର୍ବପୁରୁଷ, ଆଲୋକରଶ୍ମି, ଧର୍ମ ବିରୋଧୀ ବ୍ୟକ୍ତି. (ବିଂ) ପାମର, ପ୍ରଚଣ୍ଡ, ଉଗ୍ର, ଦୁରାଚାର, ବିଧର୍ମାବଲମ୍ବୀ, ପାଷଣ୍ଡ ।
ବୃଷ୍ଣିଗର୍ଭ—ପୁଂ.ବ. ଶ୍ରୀକୃଷ୍ଣ ।
ବୃଷ୍ୟ—ବ.(ବୃଷ+ଯ)ବାଜୀକରଣ ଦ୍ରବ୍ୟ, ଶୁକ୍ରଜନକ ପଦାର୍ଥ, ଓଜସ୍କର ଦ୍ରବ୍ୟ,ଇକ୍ଷୁଦଣ୍ଡ, ଋଷଭନାମକ ଔଷଧ, ମାଷ, ଗ୍ରାହ, ହରଡ଼ଡ଼ାଲି, ଅଁଳା.ପଦ୍ମନାଡ଼. (ବିଂ) ବୀର୍ଯ୍ୟକର, ବୀର୍ଯ୍ୟସ୍ତମ୍ଭନକାରକ, କାମସନ୍ଦୀପକ, ଯାହା ବର୍ଷାପରି ଧାରାରେ ପତିତ ହେବ ।
ବୃଷ୍ୟକନ୍ଦା—ସ୍ତ୍ରୀ.ବ. ବିଦାରୀ, ଭୂକୁଷ୍ମାଣ୍ଡ, ମୂଳା, ମୂଳକ ।
ବୃଷ୍ୟଗନ୍ଧା—ସ୍ତ୍ରୀ.ବ. ବୃଦ୍ଧଦାରକ, ବଜ୍ରମୂଳୀ, ଅତିବଳା ।
ବୃଷ୍ୟଗନ୍ଧିକା—ସ୍ତ୍ରୀ.ବ. (ବ.ବ୍ରୀ)ଅତିବଳା, ବଜ୍ରମୂଳୀ ।
ବୃଷ୍ୟଚଣ୍ଡୀ—ସ୍ତ୍ରୀ.ବ. ମହା ମୂଷିକକର୍ଣ୍ଣୀ, ବଡ଼ ମୂଷାକାନୀ ।
ବୃଷ୍ୟପର୍ଣ୍ଣୀ—ସ୍ତ୍ରୀ.ବ. ଭୂମିକୁଷ୍ମାଣ୍ଡ,ଭୂଇଁକଖାରୁ, ଝୁମ୍ପିଆଳୁ ।
ବୃଷ୍ୟଫଳା—ସ୍ତ୍ରୀ. ବ. ଆମଳକୀ ବୃକ୍ଷ, ଅଁଳା । [ ବିଦାରୀ ।
ବୃଷ୍ୟବଲ୍ଲିକା—ସ୍ତ୍ରୀ. ବ. ଭୂମିକୁଷ୍ମାଣ୍ଡ,
ବୃଷ୍ୟା—ସ୍ତ୍ରୀ. ବ. ଋଦ୍ଧି ନାମକ ଔଷଧ, ଶତାବରୀ, ଆମଳକୀ, ଭୂମିକୁଷ୍ମାଣ୍ଡ, ବୃଦ୍ଧଦନ୍ତୀ.ବାଇଡ଼ଙ୍ଗ, ଭୂଇଁ ଅଁଳା, ବଜ୍ରମୂଳୀ ।
ବୃହଚ୍ଛନ୍ଦମେଦ—ବ. ଜୟନ୍ତୀ, ଅଗସ୍ତି ।
ବୃହଚ୍ଚଞ୍ଚୁ—ପୁଂ.ବ. ଶାକବିଶେଷ, ମହାଚଞ୍ଚୁଶାକ,(ବିଂ-ବ.ବ୍ରୀ) ଦୀର୍ଘ ଚଞ୍ଚୁ ବା ଥଣ୍ଟଯୁକ୍ତ ।
ବୃହଚ୍ଚିତ୍ର—ପୁଂ.ବ. ଫଳପୁର, ଟାବାଲେମ୍ବୁ ।
ବୃହଚ୍ଛଦ—ପୁଂ.ବ. ଅକ୍ଷୋଟ ବୃକ୍ଷ,ଆଖରୋଟ୍ ।
ବୃହଚ୍ଛଫରୀ—ସ୍ତ୍ରୀ. ବ. ମହାପ୍ରୋଷ୍ଠୀ ମତ୍ସ୍ୟବିଶେଷ, ଶେରେଣା ମାଛ ।
ବୃହଚ୍ଛରୀର—ପୁଂ.ବିଂ. (ବ.ବ୍ରୀ)ସ୍ଥୂଳକାୟ, ବୃହତ୍କାୟ ।
ବୃହଚ୍ଛଲ୍କ—ପୁଂ.ବ. ଚିଙ୍ଗୁଡ଼ିମାଛ, (ବିଂ-ବ.ବ୍ରୀ)ବଡ଼ କାତିଯୁକ୍ତ (ମାଛ) ।
ବୃହଚ୍ଛାଲପର୍ଣ୍ଣୀ—ସ୍ତ୍ରୀ.ବ ମହାଶାଲପର୍ଣ୍ଣୀ ।
ବୃହଚ୍ଛମ୍ବୀ—ସ୍ତ୍ରୀ.ବ. ମହାଶମ୍ବୀ, ବଡ଼ଶିମ୍ବ ।
ବୃହଜ୍ଜୀରକ—କ୍ଲୀ.ବ. ସ୍ଥୂଳଜୀରକ,ମୋଟା ଜୀରା, ବଡ଼ କଳ ଜୀରା ।
ବୃହଜ୍ଜୀବନ୍ତୀ—ସ୍ତ୍ରୀ. ବ. ସ୍ୱନାମଖ୍ୟାତ ଔଷଧିବିଶେଷ ।
ବୃହଜ୍ଜୀବା—ସ୍ତ୍ରୀ.ବ. ବୃହଜ୍ଜୀବନ୍ତୀ ।
ବୃହତ୍—ବିଂ. (ବୃହ+କ.ଅତ୍) ପ୍ରକାଣ୍ଡ, ବଡ଼, ବିସ୍ତୃତ, (ସ୍ତ୍ରୀ) ବୃହତୀ ।
ବୃହତ୍କାୟ—ବିଂ. (ବ.ବ୍ରୀ) ପ୍ରକାଣ୍ଡ ଶରୀରବିଶିଷ୍ଟ ।
ବୃହତ୍କୁକ୍ଷି—ବିଂ. (ବ.ବ୍ରୀ) ବଡ଼ପେଟୁଆ
ବୃହତ୍ତୃଣ—ବ. ବାଉଁଶ ।
ବୃହତ୍ତ୍ୱକ୍—ବିଂ. (ବ.ବ୍ରୀ) ଯାହାର ଚମଡ଼ା ବା ଛାଲ ମୋଟା, (ବି) ସପ୍ତପର୍ଣ୍ଣୀ ବୃକ୍ଷ ।
ବୃହତ୍ପଞ୍ଚମୂଳ—ବ.ବେଲ, ଫଣଫଣା

ପାଟଲୀ, ଗମ୍ଭାରୀ ଓ ଅଗବଥୁ ଏହି ପାଞ୍ଚଗୋଟି ।

ବୃହତ୍ପତ୍ର—ପୁଂ.ବି. (ବ.ଗ୍ରା) ହସ୍ତିକନ୍ଦ, ଶ୍ୱେତ ଲୋଧ୍ର, ଦ୍ୱିପର୍ଣ୍ଣିକା, କାଶମର୍ଦ୍ଦ କ୍ଷୁପ ।

ବୃହତ୍ପର୍ଣ୍ଣ—ପୁଂ.ବି. ଶ୍ୱେତଲୋଧ ।

ବୃହତ୍ପର୍ଣ୍ଣୀ—ସ୍ତ୍ରୀ. ବି. ମହାଶଣପୁଷ୍ପୀ-ବିଶେଷ ।

ବୃହତ୍ପାଟଲୀ—ବି. ଧୁସ୍ତୁରବୃକ୍ଷ ।

ବୃହତ୍ପାଦ—ପୁଂ.ବି.(ବ.ଗ୍ରା) ବଟବୃକ୍ଷ ।

ବୃହତ୍ପାଲୀ—ବି. ବନଜୀରକ କ୍ଷୁପ,ବନ-ଜୀର ।

ବୃହତ୍ପୀଲୁ—ପୁଂ. ବି. ମହାପୀଲୁ ବୃକ୍ଷ, ପାହାଡ଼ିଆ ଆଖରୋଟ ।

ବୃହତ୍ପୁଷ୍ପ—ବି. ମହା କୁଷ୍ମାଣ୍ଡ,ବଡ଼ ଫୁଲ

ବୃହତ୍ପୁଷ୍ପୀ—ସ୍ତ୍ରୀ.ବି. ଘଣ୍ଟାରବା, ଶଣ-ବୃକ୍ଷ, କଦଳୀଗଛ ।

ବୃହତ୍ଫଳ—ବି. ଚଟେଣ୍ଡା, କୁଷ୍ମାଣ୍ଡ, ପଣସ ଫଳ, ଜମ୍ବୁଫଳ ।

ବୃହତ୍ଫଳା—ସ୍ତ୍ରୀ. ବି. ଅଲାବୁ, ଲାଉ, କଟୁତୁମ୍ବୀ, ବଡ଼ଜାମୁ, ବୋଇତକଖାରୁ, ମହାକାଳ ।

ବୃହତିକା—ସ୍ତ୍ରୀ.ବି. (ବୃହତ+କ+ଆ) ବୃହତି, ବାକ୍ୟ, ଉତ୍ତରୀୟ ବସ୍ତ୍ର ।

ବୃହତୀ—ସ୍ତ୍ରୀ. ବି. (ବୃହତ୍+ଈ) ଭେଜି-ବାଇଗଣ, ବିହାଙ୍କୁଡ଼ି,ଅଙ୍କରାନ୍ତ, କ୍ଷୁଦ୍ର ବାର୍ତ୍ତାକୀ, ବାଇଗଣ, ଭେଙ୍ଗାଭେଜୀ, ଲଟା ବେଁକୋଳି,ବାକ୍ୟ, ଉତ୍ତରୀୟବସ୍ତ୍ର, ଛନ୍ଦୋବିଶେଷ, ବିଶ୍ୱାବସୁଙ୍କ ବୀଣା ।

ବୃହତୀକଳ୍ପ—ପୁଂ.ବି. ଚିକିତ୍ସାର କଳ୍ପ-ବିଶେଷ ।

ବୃହତୀଦ୍ୱୟ—ବି. ବୃହତୀ ଓ କଣ୍ଟକାରୀ, (ସୂକ୍ଷ୍ମ ଓ ସ୍ଥୂଳ ଫଳ ଭେଦରେ ଦୁଇ-ପ୍ରକାର ବୃହତୀ) ।

ବୃହତୀପତି—ପୁଂ. ବି. (ବୃହତୀ+ପତି) ବୃହସ୍ପତି, ଦେବଗୁରୁ ।

ବୃହତ୍ତାଳ—ବି. ହିନ୍ତାଳ ବୃକ୍ଷ ।

ବୃହତ୍ତିକ୍ତା—ବି. ଅକାନବନ୍ଧି ଲତା ।

ବୃହଦଙ୍ଗ—ପୁଂ. ବି. (ବ.ଗ୍ରା) ମତଙ୍ଗଜ, ମତ୍ତହସ୍ତୀ ।

ବୃହଦମ୍ଳ—ପୁଂ. ବି. ( ବୃହତ୍+ଅମ୍ଳ ) ରୁଜାକର, କରମଙ୍ଗା ଗଛ ।

ବୃହଦାରଣ୍ୟକ—ବି. ଉପନିଷଦ୍‌ବିଶେଷ ।

ବୃହଦଶ୍ୱ—ବି. ଋଷିବିଶେଷ ।

ବୃହଦେଲା—ସ୍ତ୍ରୀ. ବି. (ବୃହତ୍+ଏଲା) ବଡ଼ ଅଳାଇଚ, ସ୍ଥୂଳୈଳା ।

ବୃହଦ୍ଗୋଳ—କ୍ଲୀ. ବି. (ବୃହତ୍+ଗୋଳ) ଶୀର୍ଣ୍ଣବୃନ୍ତ, ତରଭୁଜ ।

ବୃହଦ୍ଦନ୍ତୀ—ସ୍ତ୍ରୀ. ବି. ଏରଣ୍ଡ ପତ୍ର ଓ ଶାଖା ସଦୃଶ ପତ୍ରଶାଖା ବିଶିଷ୍ଟ ଦନ୍ତୀ ବିଶେଷ ।

ବୃହଦ୍ଦଳ—ପୁଂ. ବି. ପଟ୍ଟିକାଲୋଧ୍ର, ଶୁକ୍ଲ-ଲୋଧ୍ର, ସପ୍ତବର୍ଣ୍ଣ ବୃକ୍ଷ, ହିନ୍ତାଳ ଗଛ, ଉଲ, ( ସ୍ତ୍ରୀ ) ବୃହଦ୍ଦଳା, ଲଜ୍ଜାଳୁକା, କ୍ଷୁଦ୍ର ଲଜ୍ଜବନ୍ତୀ । [ ଲାଙ୍ଗଳ ।

ବୃହଦ୍ଧଳ—କ୍ଲୀ.ବି. (ବୃହତ୍+ହଳ) ମହା-

ବୃହଦ୍ଧାନ୍ୟ—ପୁଂ.ବି. ଷେଟେଣ୍ଡୁ,ଜନରା-ଗଛ ।

ବୃହଦ୍ବଦର—କ୍ଲୀ.ବି. ବଡ଼ ବରକୋଳି ।

ବୃହଦ୍ବଳା—ସ୍ତ୍ରୀ. ବି. ମହାବଳା, ଶୁକ୍ଲ-ଲୋଧ୍ର, ଲଜ୍ଜାଳୁକା, ପୀତପୁଷ୍ପ, ବାଡ଼ି-ଅଁଳା ।

ବୃହଦ୍ବାମନ—ବି. ପୁରାଣବିଶେଷ ।

ବୃହଦ୍ବୀଜ—ପୁଂ. ବି. (ବୃହତ୍+ବୀଜ) ଆମ୍ରାତକ, ଆମଡ଼ାଗଛ ।

ବୃହଦ୍ବର୍ଣ୍ଣ—ପୁଂ.ବି. ମାକ୍ଷିକ ନାମକ ଉପ-ଧାତୁ, ସ୍ୱର୍ଣ୍ଣମାକ୍ଷିକ ।

ବୃହଦ୍ବଲ୍କ(ଲ)—ପୁଂ.ବି. ପୋଟ୍ଟିକାଲୋଧ୍ର, ସପ୍ତପର୍ଣ୍ଣ ବୃକ୍ଷ ।

ବୃହଦ୍ବଲ୍ଲୀ—ସ୍ତ୍ରୀ.ବି. କାରବେଲ୍ଲୀ,କଳରା ।

ବୃହଦ୍ବାରୁଣୀ—ସ୍ତ୍ରୀ. ବି. ମହେନ୍ଦ୍ରବାରୁଣୀ ଲତା, ମହାକାଳ ।

ବୃହଦ୍ବ୍ରତ—ଗ୍ରା. ବି. ବଡ଼ଓଷା ।

ବୃହଦ୍ଭଟାରିକା—ସ୍ତ୍ରୀ. ବି. ଦୁର୍ଗା ।

ବୃହଦ୍ଭଣ୍ଡୀ—ସ୍ତ୍ରୀ. ବି. ତ୍ରାୟମାଣା ଲତା ।

ବୃହଦ୍ଭାନୁ—ପୁଂ. ବି. ( ବୃହତ୍+ଭାନୁ ) ଅଗ୍ନି, ସୂର୍ଯ୍ୟ, ଚିତ୍ରକବୃକ୍ଷ, ସତ୍ୟଭାମାଙ୍କ ପୁତ୍ରବିଶେଷ ।

ବୃହଦ୍ରଥ—ବି. (ବୃହତ୍+ରଥ) ଇନ୍ଦ୍ର, ଜରାସନ୍ଧର ପିତା, ଯଜ୍ଞପାତ୍ର, ବୈଦିକ ମନ୍ତ୍ରବିଶେଷ, ସାମବେଦର ଅଂଶ,(ବିଂ) ବୃହତ୍ ରଥବିଶିଷ୍ଟ ।

ବୃହଦ୍ରାବ(ଣୀ)—ବି. କ୍ଷୁଦ୍ର ପେଚକ ।

ବୃହନ୍ନ—ବି. ବହିର୍ଦ୍ୱାର, ଅଗଣା ।

ବୃହନ୍ନଳ—ପୁଂ. ବି. ( ବୃହତ୍+ନଳ ) ମହାପୋଟଗଳ,ବଡ଼ନଳଗଛ,ଅର୍ଜୁନ, ବାହୁ,ପରିମାପକ ଦଣ୍ଡ, ପଦ୍ଧକା ।

ବୃହନ୍ନଳା—ବି. ବନବାସ ସମୟରେ ବିରାଟ ରାଜଗୃହରେ ଥିବା ଅବସ୍ଥାରେ ଅର୍ଜୁନଙ୍କ ନାମ ।

ବୃହନ୍ନିମ୍ବ—ପୁଂ. ବି.ମହାନିମ୍ବ, ଘୋଡ଼ା-ନିମ୍ବ । [ ମରିଚ ।

ବୃହନ୍ମରି(ରୀ)ଚ—ପୁଂ.ବି. ମରିଚ,ଗୋଲ-

ବୃହସ୍ପତି—ପୁଂ. ବି. ଅଙ୍ଗିରାପୁତ୍ର, ଦେବ-ଗୁରୁ, ସୁରାଚାର୍ଯ୍ୟ, ଧର୍ମଶାସ୍ତ୍ର ପ୍ରଣେତା ଋଷିବିଶେଷ, ଗୀର୍ବାଣୀଶ, ନବଗ୍ରହଙ୍କ ମଧ୍ୟରୁ ୫ମ ଗ୍ରହ ।

ବୃହସ୍ପତିଗୋଚରଫଳ—ବି. ଜ୍ୟୋତିଷ ଗଣନାନୁସାରେ ବୃହସ୍ପତି ଗ୍ରହଙ୍କର ଭିନ୍ନ ଭିନ୍ନ ଅବସ୍ଥିତି ଜନିତ ଭିନ୍ନ ଭିନ୍ନ ଫଳ ଘଟିବା ଅବସ୍ଥା ।

ବୃହସ୍ପତିଚକ୍ର—ବି. ଶୁଭାଶୁଭ ଜ୍ଞାପକ ବୃହ-ସ୍ପତି ସଞ୍ଚାର, ନକ୍ଷତ୍ରର ଚକ୍ରବିଶେଷ, ଷାଠିଏବର୍ଷ ବ୍ୟାପୀ କାଳଚକ୍ର ।

ବୃହସ୍ପତିଚାର—ପୁଂ. ବି. ବୃହସ୍ପତି ଗ୍ରହର ସଞ୍ଚାର ।

ବୃହସ୍ପତିପଞ୍ଚମ—ଗ୍ରା. ବି. ମନୁଷ୍ୟର ସୌଭାଗ୍ୟଯୁକ୍ତ ଅବସ୍ଥା ଘଟିବା ।

ବୃହସ୍ପତିବାର—ବି. ଗୁରୁବାର ।

ବୃହସ୍ପତିସୂତ୍ର—କ୍ଲୀ. ବି. ଚାର୍ବାକମାନଙ୍କର ମୂଳସୂତ୍ରବିଶେଷ ।

ବୃହାମ୍—ଯା. ବି. ଏକପ୍ରକାର ଚାରି-ଚକିଆ ଗାଡ଼ି ।

ବେ—ଯା. ଅବ୍ୟ. ଅବଜ୍ଞା ବା ତୁଚ୍ଛାର୍ଥକ ସମ୍ବୋଧନ । [ ସ୍ଥାନ ।

ବେଅକଲ୍—ଯା. ବିଂ. ନିର୍ବୁଦ୍ଧିଆ,ବୁଦ୍ଧି-

ବେଅକ୍ତିଆର୍—ଯା. ବି. ଅଧିକାର ବହି-

ଭୂତ, ଅବଶ, ଅକ୍ଷମ ।
**ବେଅକୁଫ୍(ବ୍)**—ଯା. ବ. ବେକୁଫ୍‌ଦେଖ ।
**ବେଅନ୍ଦାଜ୍**— ଯା. ବଂ. ଅପରିମିତ,ଅଣ-ଅଟକଳ, ଅନୁମାନେ ବିଶ୍ୱାନ, ଅଜ୍ଞାନ ।
**ବେଆଇନ୍**—ଗ୍ରା. ବ. ଆଇନ୍ ବିରୁଦ୍ଧ, ଅନ୍ୟାଯ୍ୟ, ଅବିଚାର ।
**ବେଆଇନ୍‌ଜନତା**—ଗ୍ରା. ବ. ଅବୈଧ ଜନସଙ୍ଘ, ଅସାଧୁ ଉଦ୍ଦେଶ୍ୟରେ ୫ ଜଣରୁ ଅଧିକ ଲୋକ ଏକଜ ହେବା ।
**ବେଆଇନ୍‌ତୋଷରଫ୍**—ଯା. ବଂ.ଯେଉଁ ଧନାପହରଣ ରାଜକୀୟ ବିଧିଦ୍ୱାରା ଅନନୁମୋଦିତ ଓ ଦୋଷାବହ ।
**ବେଆଡ଼ା**—ଯା. ବଂ. କୁତ୍ସିତ, ବିକୃତ, ବେଢଙ୍ଗ, ବେନିୟମ, ଅବାଧ୍ୟ, ବିଶ୍ରୀ ।
**ବେଆଦବ୍**—ଯା. ବଂ. ଅଶିଷ୍ଟ, ଧୃଷ୍ଟ, ଦୁଷ୍ଟ, ଅବାଧ୍ୟ । [ ଦର ।
**ବେଆଦର**—ଗ୍ରା. ବଂ. ରୁକ୍ଷଜ୍ଞାନ,ଅନା-
**ବେଆବରୁ(ରୁ)**—ଯା.ବଂ. ମର୍ଯ୍ୟାଦାହୀନ, ନିର୍ଲଜ୍ଜ, ଖୋଲା, ମେଲା, ପରଦା ବା ଅବରୋଧ ପ୍ରଥା ପାଳୁ ନ ଥିବା (ସ୍ତ୍ରୀ), (ଗ୍ରା.ବଂ) ଅନାଚ୍ଛାଦିତ ।
**ବେଆଯୁତ୍ତ**—ଗ୍ରା. ବଂ. ଅନାୟତ୍ତ,ଶକ୍ତି-ବହିର୍ଭୂତ, ଅବଶ, ନିଃସହାୟ ।
**ବେଆରାମ୍**—ଯା. ବ. ବେରାମି, ରୋଗ, ଦୁଃଖ, ଅଶାନ୍ତ, (ବଂ) ରୁଗ୍ଣ, ଅସୁସ୍ଥ ।
**ବେଇଆଦ୍(ଦ)**—ଯା. ବ. ବିସ୍ମରଣ,(ବଂ) ବିସ୍ମୃତ ।
**ବେଇଜ୍ଜତ୍(ତ)**—ଯା. ବଂ. ସମ୍ଭ୍ରମଶୂନ୍ୟ, ଅଶ୍ଳୀଳ, ଅପଦସ୍ଥ, ଲାଞ୍ଛିତ,(ବ)ଲାଞ୍ଛନା, ଅପମାନ, ସ୍ତ୍ରୀଲୋକଙ୍କ ମାନନଷ୍ଟ କରିବା ।
**ବେଇନ୍‌ଶାଫ୍**—ଯା. ବ. ଅନ୍ୟାୟ, ଅବି-ଚାର, (ବଂ)ନ୍ୟାୟ ବହିର୍ଭୂତ,ଅନ୍ୟାୟ ।
**ବେଇବା**—ଗ୍ରା.କ୍ରି.ଜନ୍ମକରିବା, ସନ୍ତାନ ପ୍ରସବ କରିବା ।
**ବେଇମାନ୍**—ଯା.ବଂ.ଅଧାର୍ମିକ, ବିଧର୍ମୀ, ଅବିବେକ, କୃତଘ୍ନ ।
**ବେଇମାନି**—ଯା. ବ. ବିଶ୍ୱାସଘାତକତା, କୃତଘ୍ନତା ।
**ବେଇଲାକା**—ଯା. ବ. ନିଜର ସମ୍ପର୍କ-ବହିର୍ଭୂତ ସ୍ଥାନ ବା ବିଷୟ ।
**ବେଈ(ଇ)**—ଗ୍ରା.ସ୍ତ୍ରୀ.ବଂ. ବିବାହିତା ସ୍ତ୍ରୀ ।
**ବେଈ(ଇ)ମାଇପ**—ଗ୍ରା.ସ୍ତ୍ରୀ.ବ.ବିବାହିତା ପତ୍ନୀ ।
**ବେଉଆ**—ଯା.ସ୍ତ୍ରୀ.ବ.ଅନାଥା ସ୍ତ୍ରୀ, ପତି-ପୁତ୍ରହୀନା ନାରୀ, ବିଧବା ।
**ବେଉଆରସ୍(ସି)**—ଯା.ବଂ.ଉତ୍ତରାଧିକାରୀ ନ ଥିବା, ନିର୍ବଂଶ, ଯେଉଁ ସମ୍ପତ୍ତିର କେହି ଦାବିଦାର ନାହିଁ, ଅସ୍ୱାମିକ ।
**ବେଉଚ**—ପ୍ରା. (ବସ୍ତର)ବ. ବଇଞ୍ଚି ।
**ବେଉନ୍ତ**—ଗ୍ରା. ବ. ବିଭାଗ, ବଣ୍ଟନ, କାର୍ଯ୍ୟର ବ୍ୟବସ୍ଥା ବିଭାଗକରଣ ।
**ବେଉନ୍ତିବା**—ଗ୍ରା. କ୍ରି. ବାଣ୍ଟିବା, ବିଭାଗ କରିବା ।
**ବେଉର**—ଗ୍ରା. ବ. ନିମନ୍ତ୍ରଣ ।
**ବେଉରା**—ଗ୍ରା.ବ. ବାର୍ତ୍ତା, ସମ୍ବାଦ, ବିବ-ରଣ, ପତ୍ରାଦିର ଉତ୍ତର, (ଗ୍ରା. ବଂ) ଫେରନ୍ତ, ଲେଉଟ (ସମ୍ବାଦ) ।
**ବେଉ(ହୁ)ରି**—ଗ୍ରା.ବ.ଉହୁଣିଆଁ, ଉପର ମୁହାଁ ଗ୍ଲେଟହାଣ୍ଡି,ଦୁଧର ଗ୍ଲେଟ ମାଠିଆ
**ବେଉଷଣ**—ଗ୍ରା.ବ.ବିହୁଡ଼ା,, ଧାନଗଛର କମଣ ।
**ବେଉଷିବା**—ଗ୍ରା.କ୍ରି.ବୁଝାବୁଝି କରିବା, ଆଶ୍ୱାସନା କରିବା ।
**ବେଉସା**—ଗ୍ରା. ବ. ବ୍ୟବସାୟ, ଜୀବିକା, ତେଲରାଜ, ଫନ୍ଦା, ଫସଲ, ଶସ୍ୟ ।
**ବେଏକରାର(ର୍)**—ଯା. ବ. ଅସ୍ୱୀକାର, ସନ୍ଧିହୀନତା । [ ଥିବା ।
**ବେଏକରାରି**—ଯା.ବଂ. ଅସ୍ୱୀକାର କରୁ-
**ବେଏବକ(ଖ)ତ୍ତ**—ଯା. ବ. ଅସମୟ, ଅନୁପଯୁକ୍ତ ସମୟ, ଅଶୁଭ ସମୟ ।
**ବେଓଜର**—ଯା. ବଂ. ବେହିସାବ, ବେଅନ୍ଦାଜ, ଯାହା ଓଜନ ହୋଇ ନ ଥାଏ, କ୍ଷମତା ବହିର୍ଭୂତ, ସୀମା ବହି-ର୍ଭୂତ, ବିଶେଷ ଭାର, ଅତିରିକ୍ତ ।
**ବେଓଜର(ର)**—ଯା.ବଂ. ଆପତ୍ତିବିହୀନ, (କ୍ରି.ବଂ) ବିନା ଆପତ୍ତିରେ ।
**ବେଁ**—ଗ୍ରା. ବ. (ଫ-ବ୍ୟାମ) ଗ୍ରୁନ୍ଧ ସହିତ ପ୍ରସାରିତ ଦୁଇ ବାହୁର ଦୂରତ୍ୱ, ଗୃହଦ୍ୱାର ଲମ୍ବା ହେଁସ ବୁଣିବାରେ ବ୍ୟବହୃତ ଦଣ୍ଡ ।
**ବେଁଟା**—ପ୍ରା. (ଗଞ୍ଜାମ) ବ. ଏକପ୍ରକାର ଔଷଧି ଗଛ ।
**ବେଁଶିରା**—ଗ୍ରା. ବ. ପ୍ରାଣୀର ମେରୁଦଣ୍ଡ ତଳେ ଯାଇଥିବା ଶିରା ।
**ବେକ**—ଗ୍ରା.ବ. ଗଳାର ପଶ୍ଚାତ୍‌ପ୍ରଦେଶ, ଗ୍ରୀବା, ମସ୍ତକ ଓ କାନ୍ଧମଧ୍ୟସ୍ଥ ଶରୀରାଂଶ
**ବେକଟ**--ପୁଂ.ବ.ମତ୍ସ୍ୟବିଶେଷ, ଭେଜଟା ମାଛ, ଯୁବା, ନାଚକ, ବହୁରୂପକ, ମଣି-କାର, ମଣିବିକ୍ରେତା ।
**ବେକଡ଼ା**—ପ୍ରା(ମେଦନୀ)ବ.ଚଡ଼କପୂଜା, ଚୈତ୍ର ସଂକ୍ରାନ୍ତି ଦିନ ସେହି ଉପ-ଲକ୍ଷରେ ଦେବତା ଯାହାଠାରେ ଅବ-ତୀର୍ଣ୍ଣ ଆଆନ୍ତ, କାଳିସୀ ।
**ବେକଣ୍ଡା**—ଗ୍ରା. ବଂ. ଅମାପ, ଅତମେଲ, ଅସଦୃଶ ।
**ବେକତ**—ଗ୍ରା. ବଂ. ବ୍ୟକ୍ତ ଦେଖ ।
**ବେକତଳିଆ**—ଗ୍ରା. ବଂ. ବେକ ତଳକୁ ଯାହାଥାଏ ।
**ବେକବୁଲ୍**—ଯା. ବଂ. ଅସ୍ୱୀକାରକାରୀ, ଅସ୍ୱୀକୃତ, (ଗ୍ରା.ବ) ଅସ୍ୱୀକାର ।
**ବେକମୁଣ୍ଡା**—ଗ୍ରା.ବ.ବେକର ପଛପାଖ ।
**ବେକଦର(ତ)**--ଯା. ବଂ.ଅକ୍ଷମ,କ୍ଷମତା-ହୀନ, (ବ) ଅକ୍ଷମତା ।
**ବେକସର(ର)**—ଯା ବଂ. ଚୁକ୍ତି ଦ୍ୱାରା ସ୍ଥିରୀକୃତ ହୋଇ ନ ଥିବା,ଚୁକ୍ତିବିହୀନ ।
**ବେକରେ ବନ୍ଧା**—ଗ୍ରା.ବଂ(ଅମୁକ)ଉପରେ ନିର୍ଭର କରୁଥିବା (ବ୍ୟକ୍ତି), ଆଶ୍ରିତ ।
**ବେକଲ୍‌ନ**- ପ୍ରା(ବସ୍ତର)ବଂ. ବେକଲନ୍ତା ଅଗଣ୍ୟ ।
**ବେକଲନା**—ଗ୍ରା.ବଂ. ଅକଳିତ, ଅଗଣ୍ୟ
**ବେକସ**--ଗ୍ରା. ବଂ. ଢିଲା, ହୁଗୁଳା ।
**ବେକସୁ(ସୋ)ର**—ଯା. ବଂ. ନିର୍ଦ୍ଦୋଷ, ନିରପରାଧ ।
**ବେକା(କ୍କା)**—ଗ୍ରା. ବ. ଖାବଲା, ଦୁଇ ହାତର ପ୍ରସାରିତ ଆଙ୍ଗୁଳି ମଧ୍ୟରେ ରହିବା ଘାସ ବା ନଡ଼ାର ପରମାଣ ।
**ବେକାଇ(ଏ)ଦା**—ଯା. ବଂ. ବିଶୃଙ୍ଖଳ,

ଅନିର୍ଯ୍ୟମିତ, ଅନାସ୍ଥତ, ବେଇଜତ, ବେଆଇନୀ ।

ବେକାଇଲ(ଲ)—ଯା.ବିଂ. ଯେଉଁ ବ୍ୟକ୍ତି ଆପଣାର ଦୋଷ ସ୍ୱୀକାର କରେନାହିଁ

ବେକାଏମ—ଯା. ବିଂ. ନିଷ୍ଫଳ, ଯାହା କାର୍ଯ୍ୟରେ ପରିଣତ ହୋଇ ନ ଥାଏ ।

ବେକାନୁନ୍(ନ)—ଯା. ବିଂ. ବେଆଇନ୍ ଦେଖ ।

ବେକାବୁ—ଯା. ବିଂ. ଅବଶ, ଅନାୟତ୍ତ, ଅକ୍ଷମ, ଉପାୟାନ୍ତରବିହୀନ ।

ବେକାମିକା—ଗ୍ରା.ବିଂ.କର୍ମର ଅଯୋଗ୍ୟ, ଅକାମିକା, ନିଷ୍କର୍ମା, ଅଳସୁଆ ।

ବେକାର—ଯା.ବିଂ, ନିଷ୍କର୍ମା, ନିରୁପାୟ, କର୍ମରହିତ, ଅଳସୁଆ, ଜୀବିକାବିହୀନ ।

ବେକାରବାର(ରି)—ଯା. ବିଂ. ଯେଉଁ ସମୟରେ ବ୍ୟବସାୟ ମାନ୍ଦାଥାଏ,ବ୍ୟବସାୟରହିତ (ବ୍ୟକ୍ତି) ।

ବେକୀ—ଗ୍ରା. ବି. ଶ୍ରେଷ୍ଠ ମାଟିଘଡ଼ି ।

ବେକୁଫ୍—ଯା. ବିଂ. ନିର୍ବୋଧ ।

ବେକୁଫି(ବି)—ଯା. ବି. ନିର୍ବୋଧତା ।

ବେକୁଳ—ଗ୍ରା.ବି.ନୀଚକୁଳ, ଅନ୍ୟଜାତି

ବେକୁଳା—ଗ୍ରା. ପୁଂ. ବିଂ. ନୀଚ କୁଳୋତ୍ପନ୍ନ, ଜାତିଭ୍ରଷ୍ଟ ।

ବେକେ—ଗ୍ରା.କ୍ରି.ବିଂ. ବେକ ପର୍ଯ୍ୟନ୍ତ ।

ବେକେପାଣି—ଗ୍ରା. ବି. ମନୁଷ୍ୟ ବେକ ପର୍ଯ୍ୟନ୍ତ ଗଭୀରତାଯୁକ୍ତ ଜଳ ।

ବେକ୍ଷଣ—କ୍ଲୀ.ବି. (ଅବ + ଈକ୍ଷ୍ + ଅନ) ଅବେକ୍ଷଣ ।

ବେଖଞ୍ଜ—ଯା. ବି. ଅସୁବିଧା, ଅଶାନ୍ତି, (ବିଂ) ଅସୁବିଧାଜନକ ।

ବେଖଡ଼—ଗ୍ରା. ବି. ବଗଡ଼ ଦେଖ ।

ବେଖରଚ(ର୍ଚ୍ଚା)—ଯା. ବିଂ. ଯାହାପାଇଁ ମୂଲ୍ୟ ଦେବାକୁ ପଡ଼େନାହିଁ ।

ବେଖରଚୀ—ଗ୍ରା.ପୁଂ. ବିଂ. ଯେ ବହୁତ ବଢ ଖରଚ କରେ, ସାହାଖରଚୀ ।

ବେଖାତ(ତି)ର—ଯା. ବି. ଅସମାନ, ବେପରୁଆ, ବେପରୁଆ ଅବସ୍ଥା ।

ବେଖାତ(ତି)ରେ—ଯା. ବିଂ. ବେପରୁଆ, ଅବମାନକାରକ, ଅପମାନସୂଚକ ।

ବେଖାନ୍ଦାନ୍—ଯା. ବିଂ. ଅଘରୁଆ, ଯେ ସମ୍ଭ୍ରାନ୍ତବଂଶୀୟ ନୁହେଁ ।

ବେଖାପ୍—ଯା. ବିଂ. ଯାହା ଅନ୍ୟ ବସ୍ତୁ ସଙ୍ଗେ ଠିକ୍ ରୂପେ ଖାପ ଖାଏ ନାହିଁ, ଅସମାନ ।

ବେଖୁସ୍(ସି)—ଯା.ବିଂ.ଦୁଃଖିତ, ବିରକ୍ତ. (ସ୍ତ୍ରୀ) ବିରକ୍ତି ।

ବେଖୋରାକ—ଯା. ବିଂ. ଖାଦ୍ୟବିହୀନ ।

ବେଗ—ବି. ( ବିଜ୍+ଘ.ଅ ) ଶୀଘ୍ରତା. ଗତି, ଗତିର ପରିମାଣ, ମୂତ୍ର ବିଷ୍ଠାଦିର ନିର୍ଗମ ପ୍ରବୃତ୍ତି, ପ୍ରବାହ, ଆନନ୍ଦ, ଦୃଢ଼ପ୍ରତିଜ୍ଞା, ସ୍ପୃହା, ପ୍ରଣୟ, ରେତଃ, ଆମ୍ରବିଶେଷ, ବାଣପତି ରାଜା, ମନର ଗତି, ମହାକାଳ ଫଳ, ମୂର୍ତ୍ତି ପଦାର୍ଥରେ ଉତ୍ପନ୍ନ ଶୀଘ୍ରତା ରୂପ ସଂସ୍କାରବିଶେଷ, ( ଗ୍ରା.ବିଂ ) ଦ୍ରୁତଗାମୀ, ବେଗବାନ୍, (କ୍ରି. ବିଂ) ବେଗେ, ଶୀଘ୍ର ।

ବେଗକର—ଗ୍ରା. କ୍ରି. ବିଂ. ଶୀଘ୍ର ।

ବେଗଗ—କ୍ରି.ବିଂ. (ବେଗ+ଗମ୍+ଅ) ବେଗେ ଗମନକାରୀ, ( ସ୍ତ୍ରୀ ) ବେଗଗା =ନଦୀ ।

ବେଗଗାମୀ—ପୁଂ. ବିଂ. ଦ୍ରୁତଗତିବିଶିଷ୍ଟ

ବେଗଚର(ରୀ)—ଗ୍ରା. ପୁଂ. ବିଂ. ଯେଉଁ ଛାତ୍ର ଅଧୀତ ବିଷୟ ଶୀଘ୍ର ମନେ ରଖେ ଓ ବିଳମ୍ବରେ ପାଶୋରେ ।

ବେଗଡ଼(ଡ଼ା)—ଗ୍ରା.ବିଂ.ବିକୃତ, ବିଗିଡ଼ା, ନଷ୍ଟ, ଦୁଷ୍ଟ ।

ବେଗତିକ—ଗ୍ରା.ବିଂ, ଉପାୟହୀନ, ନିରୁପାୟ. ସଙ୍କଟାପନ୍ନ, ନିରାଶ୍ରୟ ।

ବେଗଦର୍ଶିନ୍—ପୁଂ. ବି. ବାନରବିଶେଷ (ରାମାୟଣ) ।

ବେଗଧାରଣ—କ୍ଲୀ. ବି. (୬ତତ୍) ମଳମୂତ୍ର ଓ କାମ କ୍ରୋଧାଦିର ବେଗକୁ ଆୟତ୍ତ କରିବା ବା ସମ୍ଭାଳିବା ।

ବେଗନାଶକ—ପୁଂ. ବି. (୬ତତ୍)ଶ୍ଳେଷ୍ମା

ବେଗନାଶନ—ପୁଂ.ବି.(ବ.ବ୍ରୀ)ଶ୍ଳେଷ୍ମା ।

ବେଗନିରୋଧ—ପୁଂ. ବି. ବେଗଧାରଣ ଦେଖ ।

ବେଗଫଇ୍ଲ—ଯା.ବି.ହେଳାନ୍ଦୂନ୍ୟତା ।

ବେଗଫୁଲ—ଯା. ବି. ଅନ୍ୟାୟ କାର୍ଯ୍ୟ, ଦୋଷ, ଅସାବଧାନତା, ହେଳା, ବେକୁବ ।

ବେଗମ୍—ଯା.ସ୍ତ୍ରୀ.ବିଂ. ଉଚ୍ଚ କୁଳୋଦ୍ଭବ ମୁସଲମାନ ରମଣୀମାନଙ୍କର ଉପାଧି, (ମୁସଲମାନ)ରାଜ୍ଞୀ, ରାଣୀ ।

ବେଗମାର୍—ଗ୍ରା. ବିଂ. ଅଗମ୍ଭୀର ।

ବେଗର—ଯା.ଅ. ବିଗର, ବିନା,ବ୍ୟତିରେକେ, (ବିଂ) ବାଜେ ।

ବେଗରଆସାମୀ—ଯା.ବି. ବାଜେଲୋକ, ବାହାରର ଲୋକ ।

ବେଗରଭାଡଆ—ପ୍ରା. (ସିଂହ)ବିଂ. ଭାତଅନ୍ତର, ରାଜାଙ୍କ ଅନ୍ତର, ରାଜାଙ୍କ ରକ୍ଷିତା ସ୍ତ୍ରୀର ଗର୍ଭୋତ୍ପନ୍ନ ।

ବେଗଲ୍—ପ୍ରା.(ସମ୍ବ)ବିଂ.ଅନ୍ୟ,ଦୋଷରୁ

ବେଗଲ—ଯା. ବିଂ. ଭିନ୍ନ, ପୃଥକ୍ ।

ବେଗରୋଧ—ପୁଂ. ବି. ବେଗନିଧୃତ, ବେଗଧାରଣ ।

ବେଗବତୀ—ଦାକ୍ଷିଣାତ୍ୟର କାଞ୍ଚୀପୁର ଜନପଦରେ ପ୍ରବାହିତ ଗୋଟିଏ ନଦୀ ।

ବେଗବନ୍ତ—ଗ୍ରା. ବିଂ. ବେଗବାନ୍ ।

ବେଗବାନ୍—ପୁଂ. ବିଂ. (ବେଗ+ବତୁ) ବେଗବିଶିଷ୍ଟ, ତ୍ୱରାନ୍ୱିତ, ଦ୍ରୁତଗତିବିଶିଷ୍ଟ, (ବି) ବସ୍ତୁ ।

ବେଗବିଘାତ—ପୁଂ. ବି.ସହସା ମଳାଦିର ବେଗରୋଧ ।

ବେଗବୃଷ୍ଟି—ସ୍ତ୍ରୀ. ବି. ତୀବ୍ରବେଗବର୍ଷଣ ।

ବେଗବେଗ—ଗ୍ରା.ପୁଂ. ବିଂ. ଯେଉଁ ଛାତ୍ର ଅଧୀତ ବିଷୟକୁ ଶୀଘ୍ର ପଢ଼ିପାଏ ଓ ଶୀଘ୍ର ପାଶୋରି ପକାଏ, (ଗ୍ରା.କ୍ରି.ବିଂ) ମୁହୁର୍ମୁହୁ, ପୁନଃପୁନଃ, ଚଞ୍ଚଳ ।

ବେଗଶାଳୀ—ପୁଂ.ବିଂ.(ବେଗ+ଶାଳିନ୍) ବେଗବାନ୍, ତ୍ୱରାନ୍ୱିତ ।

ବେଗସର—ପୁଂ. ବି. (ବେଗ+ସୃ+କ.ଅ) ବେଗଗାମୀ ଅଶ୍ୱ, ଅଶ୍ୱତର ଖଚର, (ବିଂ) ବେଗଗାମୀ ।

ବେଗାଡ଼(ର)—ଗ୍ରା. ବି. ବେଠି, ବିନା ଦରମାରେ ବାଧ୍ୟତାମୂଳକ ପରିଶ୍ରମ, ବେଠିଆ, ନିଷ୍ଫଳଶ୍ରମ ।

ବେଗାନିଳ—ପୁଂ. ବି. ବେଗ ବିଶିଷ୍ଟ ବାୟୁ, ପ୍ରବଳ ବାୟୁ, ଝଡ଼ ।

ବେଗାର—ଗ୍ରା. ବି. ବିନା ବେତନରେ କାର୍ଯ୍ୟ କରିବା,ଅନର୍ଥକ ପରିଶ୍ରମକରିବା

ବେଗାବେଗି—ଗ୍ରା. କ୍ରି. ବିଂ. ଚଞ୍ଚଳ, ଶୀଘ୍ର, ସତ୍ୱର ।

ବେଗି—ଗ୍ରା. କ୍ରି. ବିଂ. ଚଞ୍ଚଳ, ଶୀଘ୍ର, ସତ୍ୱର, ଜଲ୍ଦି ।

ବେଗିତ—ବି. ବିଂ. ( ବେଗ୍ + ଇତ ) ବେଗବିଶିଷ୍ଟ, ତ୍ୱରିତ, ତ୍ୱରାନ୍ୱିତ; (ବି) ଶ୍ୟେନପକ୍ଷୀ ।

ବେଗୀ—ପୁଂ. ବିଂ. ( ବେଗ + ଇନ୍ ) ବେଗବାନ୍,ଦ୍ରୁତଗାମୀ, (ସ୍ତ୍ରୀ)ବେଗିନୀ ।

ବେଗିମ—ଗ୍ରା.ବି. ପ୍ରାଚୀନ ଅର୍ଣ୍ଣବପୋତ ବିଶେଷ ।

ବେଗୁଆଁର—ଯା.ବିଂ. ବୁଦ୍ଧିମାନ୍,ଚତୁର

ବେଗୁଆର—ଗ୍ରା. ବିଂ. ବେଗବାନ୍ ।

ବେଗୁଣିଆ—ଗ୍ରା. ବିଂ. ବଗୁଣିଆଁ ଦେଖ ।

ବେଗୁନିଆଁ—ଗ୍ରା. ବି. ନିର୍ଗୁଣ୍ଡି, ବନ୍ୟକ୍ଷୁପବିଶେଷ ।

ବେଗେ—ଗ୍ରା. କ୍ରି. ବିଂ. ବେଗି ଦେଖ ।

ବେଘରୁଆ—ଗ୍ରା.ବିଂ. ବେଖାନ୍ଦାନ୍ ଦେଖ ।

ବେଙ୍ଗ—ଗ୍ରା. ବି. (ହି-ବ୍ୟାଙ୍ଗ)ଉଭୟଚର ପ୍ରାଣିବିଶେଷ, ଭେକ ।

ବେଙ୍ଗଗୁଙ୍ଗୁଡ଼ିଆ—ଗ୍ରା. ବିଂ. ଇତସ୍ତତଃ ବିକ୍ଷିପ୍ତ, ଅଡଗ୍ରେଟ ।

ବେଙ୍ଗପହଣା—ପ୍ରା.(ଯାଜପୁର) ବେଙ୍ଗଫୁଲ,ଲଙ୍ଗୁଡ଼ିଲଗା ଗ୍ରେଟ ବେଙ୍ଗ,ବେଙ୍ଗ ପୁଟି ।

ବେଙ୍ଗପାଟିଆ—ଗ୍ରା.ବି. ବେଙ୍ଗର ପାଟିପରି ଆକାର ବିଶିଷ୍ଟ ଝରକାଠିଆଦିରେ ଲଗିଥିବା ଝିଞ୍ଜିର୍ ଲଗା ଘୁଙ୍ଗୁର ।

ବେଙ୍ଗପୁଟି—ଗ୍ରା. ବି. ବେଙ୍ଗଫୁଲ ।

ବେଙ୍ଗଲ୍—ଯା.ବି. ବଙ୍ଗଳା ଦେଶ,ବଙ୍ଗଦେଶ ।

ବେଙ୍ଗଲନାଗପୁରରେଲଓ୍ୱେ—ଯା. ବି. କଲିକତାଠାରୁ ବଙ୍ଗୋପସାଗର ଉପକୂଳରେ ଓଡ଼ିଶା ଗଞ୍ଜାମ ମାନ୍ଦ୍ରାଜ ପ୍ରଦେଶର କିୟଦଂଶ ଦେଇ ଓ୍ୱାଲଟେୟାର ପର୍ଯ୍ୟନ୍ତ ଓ ଗ୍ରେଟନାଗପୁର ଭିତରଦେଇ ମଧ୍ୟପ୍ରଦେଶ ନାଗପୁର ପର୍ଯ୍ୟନ୍ତ ବିସ୍ତୃତ ରେଲପଥ ।

ବେଙ୍ଗଲା—ଗ୍ରା. ବି. ଏକାଧିକ ବଳଦ ଦାଉଣୀରେ ଯୋଚି ମେଢ଼ିର ଚତୁର୍ପାଖେ ଖେଳିଆ ହୋଇଥିବା ଧାନ ବିଡ଼ା ଉପରେ ବୁଲାଇ ଧାନ ଝଡ଼ାଇବା କର୍ମ, ବେଙ୍ଗୁଲା ଦେଖ ।

ବେଙ୍ଗଲି—ଯା.ବି.ବଙ୍ଗୀୟବ୍ୟକ୍ତି,ବଙ୍ଗାଳୀ, (ବିଂ) ବଙ୍ଗୀୟ ।

ବେଙ୍ଗବ୍ରଣ—ପ୍ରା. (ବସ୍ତର) ବି. ପିଲାମାନଙ୍କ ମୁଣ୍ଡରେ ଉଠିବା ବଥ ।

ବେଙ୍ଗା—ଗ୍ରା.ବି. ଗୋରୁମାନଙ୍କର ରୋଗବିଶେଷ, ଆଶଙ୍କା ।

ବେଙ୍ଗାବାଇଦ—ଗ୍ରା. ବି. ପିଲାମାନଙ୍କର ଏକପ୍ରକାର ଖେଳନା ବା ଆନନ୍ଦବାଦ୍ୟ

ବେଙ୍ଗିକଉଡ଼ି—ଗ୍ରା. ବି. ବଡ଼ କଉଡ଼ି ।

ବେଙ୍ଗିପିଉଳ—ଗ୍ରା.ବି.ଏକପ୍ରକାର ହଳଦିଆ ପିଉଳ ।

ବେଙ୍ଗିବଥ—ଗ୍ରା.ବି.ପିଲାମାନଙ୍କ ମୁଣ୍ଡରେ ଓ ବେକରେ ଉଠିବା ବଥ ।

ବେଙ୍ଗୁଲା—ଗ୍ରା. ବି. ଫଡ଼ା, କୌଣସି ପଦାର୍ଥ ଫାଟିଯାଇ ତହିଁରୁ ଛରିଯିବା ଖଣ୍ଡମାନ, ନୋଳା, ବେତ ମାଡ଼ର ଲମ୍ବା ଦାଗ ।

ବେଙ୍ଗୁଲି—ଗ୍ରା.ବି. ମାଈବେଙ୍ଗ ।

ବେଚବା—ପ୍ରା.(ସମ୍ବ)କ୍ରି. ବିକିବା ।

ବେଚଇନ୍(ନ)—ଯା.ବି. ଅସ୍ଥିର,ଚଞ୍ଚଳ, (ବି) ଅସ୍ଥିରତା ।

ବେଚାରା(ରି)—ଗ୍ରା. ବି. ବିଚାରା, ନିଃସହାୟ ବ୍ୟକ୍ତି, (ବିଂ) ନିଃସହାୟ, ନିରୁପାୟ ।

ବେଚାଲ(ଲି)—ଯା.ବିଂ. ଅସଚ୍ଚରିତ, ମନ୍ଦ ଅଭ୍ୟାସଯୁକ୍ତ, (ବି) ଅସଦାଚରଣ, ମନ୍ଦ ଅଭ୍ୟାସ ।

ବେଚା—ସ୍ତ୍ରୀ.ବି. (ବିଚ୍+ଅ+ଆ)ମୂଲ୍ୟ, ବେତନ, ବିକ୍ରୟ କରିବା ।

ବେଚିବା—ପ୍ରା.(ସମ୍ବ)କ୍ରି. ବିକ୍ରୟ ।

ବେଛପର(ୱ)—ଯା.ବିଂ. ଗୃହଶୂନ୍ୟ ।

ବେଛପରମଉଜା—ଗ୍ରା.ବି. ଯେଉଁ ମଉଜାରେ କୃଷୀମାନେ ଘର ନ କରି ଅନ୍ୟ ମଉଜାରୁ ଆସି କେବଳ କୃଷି କରନ୍ତି ।

ବେଗ୍ରୁଡ଼—ଗ୍ରା.ବିଂ. ଅବିରାମ, ବିଶ୍ରାନ୍ତ ।

ବେଜକୁ—ଗ୍ରା.ବି. ଭଣ୍ଡାରୀମାନଙ୍କ ବଂଶୋପାଧିବିଶେଷ ।

ବେଜବାଡ଼ା—ଗ୍ରା.ବି.ମାନ୍ଦ୍ରାଜପ୍ରଦେଶାନ୍ତର୍ଗତ ଗୋଟିଏ ସହର ।

ବେଜଡ଼ା—ପ୍ରା. (ବାଲେ) ବିଂ. ଅବାଧ୍ୟ, ଚରିତ୍ରହୀନ, ବଜୋଡ଼, ନିର୍ଲଜ୍ଜ ।

ବେଜଡ଼(ତ)—ପ୍ରା. (ଖୋରଧା) ବେଇଜତ୍, ବେଜାୟ, ଅଶ୍ଳୀଳ, ଅତ୍ୟଧିକ ।

ବେଜନମା—ଗ୍ରା.ବି. ଜାରଜ, ନୀଚକୁଳଜାତ ।

ବେଜବତ୍(ଢ)—ଯା. ବିଂ. ଯାହା ଅଧିକୃତ ବା କୋରଖ କରାଯାଇନାହିଁ, ଅଶାସିତ ।

ବେଜବା(ମା)ନ୍(ନ)—ଯା.ବି.ବଦ୍‌ଜବାନ୍, ଅଶ୍ଳୀଳ ଭାଷାରେ ଗାଳି,ଅଶ୍ଳୀଳ ଭାଷା ।

ବେଜବାବ(ବ)—ଯା. ବିଂ. ନିରୁତ୍ତର, ଅବାକ୍, ଯେ ନିଜର ସତ୍ୟ ପାଳନ ନ କରେ ।

ବେଜାଏ(ୟ)—ଯା.ବିଂ. ଅନୁଚିତ,ଅସଙ୍ଗତ, ଅନ୍ୟାୟ, ମନ୍ଦ ।

ବେଜାୟଜବରଦସ୍ତି—ଯା.ବି. ଅନ୍ୟାୟ ବଳପ୍ରୟୋଗ, ବଳପୂର୍ବକ ଅଧିକାର ।

ବେଜାତ—ଗ୍ରା.ବିଂ. ଅଜାତିଆ, ବିଜାତୀୟ, ନୀଚଜାତୀୟ ।

ବେଜାବତା—ଯା.ବିଂ. ଅଶାସିତ,ସମ୍ଭ୍ରମହୀନ, ଅନିୟମିତ, ବେଆଇନ୍ ।

ବେଜାର—ଯା. ବିଂ. ବିରକ୍ତ ହୋଇ ଗାଳି ଦେଉଥିବା,ଭର୍ତ୍ସନାକାରୀ,ବିରକ୍ତ, କୁପିତ, (ବି) ବିରକ୍ତି ।

ବେଜାରଲାଗିବା—ଗ୍ରା.ବି. ବିରକ୍ତି ଲାଗିବା

ବେଜାରହେବା—ଗ୍ରା.କ୍ରି.ବିରକ୍ତ ହୋଇ ଗାଳିଦେବା ।

ବେଜି—ପ୍ରା.(ସମ୍ବ)ବି. ପ୍ରବୀଣ ଗୁଣିଆ ।

ବେଜଡ଼—ପ୍ରା.(ଗଞ୍ଜା)ବି.ହେଞ୍ଜେଡ଼ୀ ସ୍ତ୍ରୀ, ଅରଜସ୍କା ନାରୀ ।

ବେଙ୍କତ୍ର(ଢ)--ଯା.ବିଂ.ବେଇଜତ୍ର ଦେଖ, (ବି) ବେଇଜଢ ଦେଖ ।

ବେଙ୍କଟ—ତ୍ରି. ବିଂ. (ବିକ୍+ଣିଚ୍+କ. ଇତ) ଖିତ, ପ୍ରପୀଡ଼ିତ, ଭୟକମ୍ପିତ ।

ବେଙ୍କା—ଗ୍ରା.ବି. ନକୁଳ, ନେଉଳ,ବେଙ୍କୋ

ବେକୁଡ଼—ପ୍ରା.(ଚଙ୍ଗ୍ରା)ବି.ଭିନ୍ନଜାତ କାଠର ଗୋଟିଏ ଶାଖା, (ବିଂ) ନପୁଂସକ ।

ବେକୋଡ଼—ଗ୍ରା.ବିଂ. ବକୋଡ଼ ଦେଖ

ବେକୋର୍—ଯା.ବି. ଦୁର୍ବଳ ।

ବେଞ୍ଚ—ଯା.ବି.ବହୁ ଲୋକଙ୍କର ବସିବା ଉପଯୋଗୀ ଗୋଡ଼ଲଗା ଲମ୍ବା କାଷ୍ଠାସନ ।

ବେଞ୍ଚାଢ—ଗ୍ରା.ବି. ମେହେନ୍ଦି ଗୁଳ୍ମ ।

ବେଟା—ଗ୍ରା. ବି. ପୁତ୍ର, ସୁତ, ବାଳକ, ପ୍ରାପ୍ତବୟସ୍କ ପୁରୁଷ । [ଇବା ।

ବେଟିବା—ପ୍ରା.(କଳାହାଣ୍ଡି)କ୍ରି. ଗୋଟେ-

ବେଟୀଚେଟ୍—ଗ୍ରା.ପୁଂ.ବି. ନୀଚ ବ୍ୟକ୍ତି ।

ବେଟୀଚେଟୀ—ଗ୍ରା.ସ୍ତ୍ରୀ.ବି. ନୀଚଗୃହସ୍ଥ ସ୍ତ୍ରୀ

ବେଟୀଗେଡ଼(ଦ୍)—ଗ୍ରା.ବି. ଅଶ୍ଳୀଳ ଗାଳି ବିଶେଷ ।

ବେଟଚନ୍ଦନ—କ୍ଲୀ. ବି. ଶ୍ରୀଖଣ୍ଡ ଚନ୍ଦନ ଭିନ୍ନ ଅନ୍ୟ ଚନ୍ଦନ ।

ବେଠା—ଗ୍ରା. ବି. ରଜ୍ଜୁ, ରସି, ପାଟ-ଡୋର । [ଅଦ୍ଭୁତ ।

ବେଠଉର—ଗ୍ରା.ବିଂ. ଅନିଶ୍ଚିତ, ଅସ୍ଥିର,

ବେଠାଣି—ଗ୍ରା. ବିଂ. ଅସୁନ୍ଦରଗଠନ, ସୌଷ୍ଠବହୀନ, ବିଶ୍ରୀ ।

ବେଠି—ଗ୍ରା.ବି. ବିନା ମୂଲ୍ୟରେ ବାଧ୍ୟତାମୂଳକ କାର୍ଯ୍ୟ, ମାଗଣା ।

ବେଠିଆ—ଗ୍ରା.ପୁଂ.ବି. ଯେ ପାରିଶ୍ରମିକ ନପାଇ କାର୍ଯ୍ୟକରେ, ବେଗାଡ଼ ।

ବେଠିକ୍—ଯା.ବିଂ. ଅନିଶ୍ଚିତ, ଅପ୍ରକୃତ, ଅସତ୍ୟ, ଭ୍ରମଯୁକ୍ତ ।

ବେଠିକଣା—ଗ୍ରା.ବିଂ.ଆଶ୍ରୟରହିତ,ଅସ୍ଥିର, ଚଞ୍ଚଳ, ମୁମୂର୍ଷୁ, ଅସ୍ଥାୟୀ, ଧାରାବହିନ (ବି) ଅସ୍ଥିରତା, ଆଶ୍ରୟରହିତ ଅବସ୍ଥା, ମୁମୂର୍ଷୁ ଅବସ୍ଥା ।

ବେଠିକିରବୋଲଣା—ଗ୍ରା. ବି. (ନ୍ୟାୟ) ବେଠି ଧରିହୋଇ ଆସି କାମ କରିବା ଲୋକ ଠିକ୍‌ରୂପେ କାମ ନ କଲେ ବେଗୁଠାରୁ ଗାଳି ପାଇବା ନ୍ୟାୟ ।

ବେଠିକାଠ—ଗ୍ରା.ବି. ବେଠି ।

ବେଠିଗୁଲ୍(ଲୋ)ଇବା—ଗ୍ରା. କ୍ରି. ନିଜ ଉପରେ ନ୍ୟସ୍ତ କର୍ମକୁ ଯେ କୌଣସି ପ୍ରକାରେ ସମାଧା କରି ନିଜ ମୁଣ୍ଡରୁ ଦାୟିତ୍ୱ ଖସାଇବା ।

ବେଠିବେଗାଡ଼—ଗ୍ରା.ବି.ବେଠି, ବେଠିଆ

ବେଡ଼—ପ୍ରା.(ଯାଜପୁର)ବି. ବେଲ ।

ବେଡ଼—କ୍ଲୀ.ବି. ସାର୍ଦ୍ର ବିଚ୍ଛିନ୍ନ ଚନ୍ଦନ, ଶ୍ୱେତଚନ୍ଦନ, ବେଷ୍ଟନ, ବୃତ, ଘେର, ବୃତିର ପରିଧି, ବଗିଚାର ବାଡ଼ ।

ବେଡ଼ଉଲ୍—ଯା.ବିଂ.ବେଠାଣି ଦେଖ ।

ବେଡ଼ା—ଗ୍ରା.ବି. ଗଛର ଶୁଖିଲା ଡାଳଆ, (ବିଂ)ଅବିବେକୀ. ଯେ କୌଣସି ଯୁକ୍ତି-ତର୍କ ବୁଝେନାହିଁ,(ପ୍ରା. ବାଣପୁର)ଝାଟି-ମାଟି ବାଡ଼, (ସିଂହଭୂମି) ଝାଲୁଆ ବା ଗଛର ଜମି, ଝାଲ, (ପ୍ରା. ଉଦିଭିଙ୍ଗା) ପଡ଼ିଆ ।

ବେଡ଼ି—ଗ୍ରା.ବି. ଦୋଷୀଙ୍କ ଗୋଡ଼ହାତରେ ଦିଆଯିବା ଲୌହ ବଳୟ,(ପ୍ରା. ବସ୍ତର ?) କବାଟର କଳଣୀ ।

ବେଡ଼ିଉପରେ କୋରଡ଼ା—(ନ୍ୟାୟ) ଦଣ୍ଡିତ ବ୍ୟକ୍ତିକୁ ପୁଣି ଦଣ୍ଡଦେବା ନ୍ୟାୟ ।

ବେଡ଼ୀ—ଗ୍ରା.ସ୍ତ୍ରୀ.ବି. ବେଡ଼ାର ସ୍ତ୍ରୀଲିଙ୍ଗ ।

ବେଢ଼—ଗ୍ରା.ବି. ପରିଧି, ଘେର, କୌଣସି ବସ୍ତୁର ଚାରିପାଖର ମାପ, ବେଷ୍ଟନ, ବେଢ଼ିବା କର୍ମ,ହାତ ଖେଦା,(ଗ୍ରା.ବିଂ) ବେଷ୍ଟିତ ହୋଇଥିବା ।

ବେଢ଼ଙ୍ଗ—ଯା.ବିଂ. ବେଠାଣି ଦେଖ ।

ବେଢ଼ଣ(ଣି)—ଗ୍ରା.ବି. ପରିଧି, ସ୍ତ୍ରୀଲୋକ-ମାନେ ବେଢ଼େଇହୋଇ ପିନ୍ଧିବା ଲୁଗା, ବେଷ୍ଟନୀ ।

ବେଢ଼ଦେବା—ଗ୍ରା.କ୍ରି. ବେଢ଼ିବା, ଚାରି-ଆଡ଼େ ଘେରିବା ।

ବେଢ଼ମିକା—ବି. ଡାଲପୁରି, ମଇଦା ମଧ୍ୟରେ ବଟା ବିରି ପୂରଦେଇ ତିଆରି କରାଯିବା ରୁଟୀ ।

ବେଢ଼ା—ଗ୍ରା.ବି. ଦେଉଳର ଚାରିପାଖେ ଘେରା ହୋଇଥିବା ପ୍ରାଚୀର ଓ ତନ୍ମଧ୍ୟସ୍ଥ ସ୍ଥାନ, ବେଷ୍ଟନ, ଘେରା, (ଗ୍ରା.ବିଂ) ବେଷ୍ଟିତ, (ପ୍ରା. ଉତ୍ତର ବାଲେଶ୍ୱର) ବି. ବାଡ଼, (ଗଞ୍ଜାମ.ବି) ଦୁଇଅଣା ।

ବେଢ଼ାଏ—ଗ୍ରା.କ୍ରି.ବିଂ. ଏକବେଢ଼ାମାତ୍ର, ଭେଡ଼ାଏ ଦେଖ ।

ବେଢ଼ାଣ—ଗ୍ରା.ବି. ଗୁଦର ।

ବେଢ଼ାପରିକ୍ରମା—ଗ୍ରା. ବି. ଦେବତାଙ୍କୁ ଦର୍ଶନ କରିସାରି ଦେଉଳର ଚାରି-ପାଖରେ ବୁଲିବା କର୍ମ ।

ବେଢ଼ି—ପ୍ରା.(ବାଣପୁର)ବି. ଶଗଡ଼ଦଉଡ଼ା ଓ ଯୋତ ।

ବେଢ଼ିବା—ଗ୍ରା.କ୍ରି. ଚାରିଆଡ଼େ ବେଷ୍ଟନ କରିବା, ଘେରିବା ।

ବେଣ(ନ)—ପୁଂ.ବି. (ବେଣ+କ.ଅ) ବର୍ଣ୍ଣସଙ୍କର ଜାତିବିଶେଷ, ବୈଦ୍ୟ, ପୃଥୁରାଜାଙ୍କ ପିତା, ସୂର୍ଯ୍ୟବଂଶୀୟ ୪ର୍ଥ ନୃପ ।

ବେଣା—ଗ୍ରା.ବି. (ସଂ-ବୀରଣ) ସୁନାମ-ପ୍ରସିଦ୍ଧ ତୃଣବିଶେଷ, ଉଶୀର ।

ବେଣାଚେର—ଗ୍ରା. ବି. ବେଣା ଘାସର ତନ୍ତୁମୟ ସୂକ୍ଷ୍ମ ଚେର ।

ବେଣାଝୋଥାଡ଼ଷ୍ଟା—ଗ୍ରା. ବି. ଚୋଙ୍କର ଶାଖାବିଶେଷ ।

ବେଣାପାଟ—ଗ୍ରା.ବି. ଯେଉଁ ସ୍ଥାନରେ ବେଣାଗଛ ଘନଭାବରେ ଥାଏ ।

ବେଣି(ଣୀ)--ସ୍ତ୍ରୀ.ବି.(ବେଣ+ଇ)ବିନ୍ୟସ୍ତ କେଶପାଶ, କେଶରଚନା ବିଶେଷ, ଜଳପ୍ରବାହ,ବନ୍ଧନ,ବୁଣିବା,ଦେବତାଡ଼ ଗୁଳ୍ମ, ନଦୀବିଶେଷ, ମେଣ୍ଢୀ, ଶ୍ରେଣୀ, କବରୀ ।

ବେଣିଆ--ପ୍ରା.(ବାଲେଶ୍ୱର)ନଆଁ ବନ୍ଧୁଆ ।

ବେଣିଆଟିଯା—ଗ୍ରା.ବିଂ. ଯେଉଁ ବଳଦ ଆଦରେ ଚିଯା ବେଣିପର ମୋଡ଼ମୋଡ଼ ହୋଇଥାଏ ।

ବେଣିକା—ସ୍ତ୍ରୀ.ବି. କେଶବନ୍ଧନ ବିଶେଷ

ବେଣି(ଣୀ)ବନ୍ଧନ—ବି. (ତନ୍ତ୍ର)ମୁକୁଳା ବାଳକୁ ବେଣୀରେ ପରିଣତ କରିବା ।

ବେଣିବେଧମା—ସ୍ତ୍ରୀ. ବ. ଜଳୌକା, ଜୋକ ।
ବେଣିମାଧବ—ପୁଂ.ବ.ପ୍ରୟାଗସ୍ଥ ପାଷାଣମୟ ଚତୁର୍ଭୁଜ ଦେବମୂର୍ତ୍ତିବିଶେଷ ।
ବେଣୀଗ—କ୍ଲୀ.ବ.ଉଶୀର ତୃଣ, ବେଣା ।
ବେଣିଫଳ—କ୍ଲୀ.ବ. ଦେବଦାଲି ଗୁଳ୍ମର ଫଳ । [ ନିମ୍ବବୃକ୍ଷ ।
ବେଣିର—ପୁଂ.ବ. ଓଠାଫଳ ଓ ଗଛ,
ବେଣିସଂବରଣ—କ୍ଲୀ.ବ.ବେଣୀସଂହାର ।
ବେଣିସଂହାର—ପୁଂ.ବ. ଭଟ୍ଟନାରାୟଣକୃତ ସପ୍ତାଙ୍କଯୁକ୍ତ ନାଟକବିଶେଷ, ବେଣୀବନ୍ଧନ ।
ବେଣିସ୍କନ୍ଧ—ପୁଂ.ବ. ନାଗବିଶେଷ ।
ବେଣୁ—ପୁଂ.ବ. (ବେନ୍+କ.ଉ) ବଂଶ, ବାଉଁଶ,ବଂଶୀ,ମୁରଲୀ, ନୃପବିଶେଷ ।
ବେଣୁକ—ବ. ( ବେଣୁ+କ ) ଗବାଦି ତାଡ଼ନ ଦଣ୍ଡ, ପାଞ୍ଚଣ ବାଡ଼ି, ଅଙ୍କୁଶ, କ୍ଷୁଦ୍ର ବେଣୁ, ଅଳାଇଚ ।
ବେଣୁକର୍କର—ପୁଂ.ବ.ବାଉଁଶ ଗଛ ।
ବେଣୁକାର—ପୁଂ. ବ. ବଂଶୀ ନିର୍ମାଣକାରକ ।
ବେଣୁକୀୟ—ବିଂ. ବେଣୁରୁ ଉତ୍ପନ୍ନ,ବାଉଁଶରୁ ଜାତ ବା ସମ୍ବନ୍ଧୀୟ ।
ବେଣୁକୁଞ୍ଜ—ବ. (କ.ଧା) ବାଉଁଶ ବଗିଚା
ବେଣୁଜ—ବ. (ବେଣୁ+ଜନ୍+କ.ଅ) ବେଣୁଯବ, ବାଉଁଶ ଗୁଉଳ, ମରିଚ, (ବିଂ) ବଂଶଜାତ ।
ବେଣୁଧର—ବିଂ. ଯେ ବେଣୁ ବା ବଂଶୀ ଧରିଥାଏ, (ବି) ଶ୍ରୀକୃଷ୍ଣ ।
ବେଣୁଧ୍ମା—ପୁଂ.ବିଂ.(ବେଣୁ+ଧ୍ମା+ଅନ୍) ବେଣୁବାଦକ ।
ବେଣୁଧ୍ୱନି—ବ. (୬ତତ୍) ବଂଶୀର ଶବ୍ଦ ।
ବେଣୁନ—କ୍ଲୀ.ବ. ମରିଚ ।
ବେଣୁନିଃସୃତ—ପୁଂ.ବ. ଇକ୍ଷୁ,ଆଖୁ ।
ବେଣୁପତ୍ରକ—ପୁଂ. ବ. ମଣ୍ଡଳୀ ସର୍ପବିଶେଷ ।
ବେଣୁପତ୍ରି(ତ୍ରୀ)କା—ସ୍ତ୍ରୀ. ବ. ବଂଶପତ୍ରୀ ବୃକ୍ଷ, ହିଙ୍ଗୁପତ୍ରୀ, ନାଡ଼ୀ, ହିଙ୍ଗୁଶିରାଶ୍ଚିକା ।

ବେଣୁମୟ—ତ୍ରି. ବିଂ. ( ବେଣୁ+ମୟ ) ବେଣୁସ୍ୱରୂପ, ବାଉଁଶ ନିର୍ମିତ ।
ବେଣୁଯବ—ପୁଂ. ବ. ( ବେଣୁ+ଯବ ) ବଂଶଫଳ ବା ଧାନ । [ ବିଶେଷ ।
ବେଣୁବଂଶ—କ୍ଲୀ.ବ.ବଂଶୀର ବାଂଶ,ରାଜା-
ବେଣୁବନ—କ୍ଲୀ. ବ. ଅରଣ୍ୟବିଶେଷ, ବାଉଁଶବନ ।
ବେଣୁବାଦ—ପୁଂ.ବ. (ବେଣୁ+ବଦ୍+ଅ) ବୈଣୁକ, ବେଣୁବାଦକ,ଯେ ବଂଶୀ ବଜାଏ ।
ବେଣୁବାଦକ—ପୁଂ.ବିଂ. (ବେଣୁ+ବାଦ+କ.ଅକ) ଯେ ବଂଶୀ ବଜାଏ ।
ବେଣୁବାଦନ—ବି. ( ୬ତତ୍ ) ବେଣୁ ବଜାଇବା ।
ବେଣୁବୀଜ—ବି. (୬ତତ୍) ବାଉଁଶଧାନ ବା ଗୁଉଳ ।
ବେଣୁବୀଣାଧରା—ସ୍ତ୍ରୀ. ବ. ସ୍କନ୍ଦାନୁଚର ମାତୃବିଶେଷ ।
ବେଣ୍ଟଲି—ପ୍ରା.(ସମ୍ବ)ବ. ସ୍ତ୍ରୀଲୋକମାନଙ୍କର କର୍ଣ୍ଣଭୂଷଣବିଶେଷ ।
ବେଣ୍ଟ—ଗ୍ରା.ବ. ଅସ୍ତ୍ରାଦିର ମୁଠା, ଛତ୍ରର ଦଣ୍ଡ, ଶିକାର, ମୃଗୟା, ଟାଙ୍ଗିଆଆଦିରେ ଲାଗିବା କାଷ୍ଠମୟ ଖିଲକ, ସ୍ତନାଗ୍ର,(ପ୍ରା.କଳାହାଣ୍ଡି.ବି)ବଡ଼ ଦଉଡ଼ି, (ସମ୍ବଲ.ବି) ନୂଆଁ ବଣ୍ଡଆ ।
ବେଣ୍ଟକାର—ଗ୍ରା.ବ. କଇଁଫୁଲର ବୀଜକୋଷ, ବ୍ୟାଧ ।
ବେଣ୍ଟପୋଖରୀ—ଗ୍ରା.ବ. ଯେଉଁ ପୋଖରୀକୁ ବନ୍ୟ ଜନ୍ତୁମାନେ ପାଣି ଖାଇବାକୁ ଆସିଲାବେଳେ ଶିକାର କରଯାଏ
ବେଣ୍ଠି—ଗ୍ରା. ବ. ପାଳନିର୍ମିତ ଦଉଡ଼ା, ବର, କରଆ, ମୁଣ୍ଡର ଶିଖା ।
ବେଣ୍ଡ—ଯା.ବ.ଡୁମ୍ବୁରୁବାଜା, ଏକତାନକ ବାଦ୍ୟ ସମଷ୍ଟି, ପାଶ୍ଚାତ୍ୟ ବାଜାମାନଙ୍କର ସମାହାର ।
ବେତ—ପୁଂ.ବ. ବେତ୍ର, ବେତସ ଲତା
ବେତଇ(ଏ)ନ୍—ଗ୍ରା. ବିଂ. ଅନିଶ୍ଚିତ, ବେଠିକ୍, ଅନିର୍ଦ୍ଦିଷ୍ଟ ।
ବେତଇ(ଏ)ନାତ୍—ଯା,ବିଂ. ଅନିଯୁକ୍ତ, (ଯା. ବ. )ନିଯୋଗଶୂନ୍ୟତା, ଚାକିରିର ଅଭାବ । [ ନିର୍ଦ୍ଦୋଷ ।
ବେତକସିର୍—( ଯା.ବିଂ ) ନିରପରାଧ,
ବେତକଣ୍ଟା—ଗ୍ରା. ବ. ବେତ ଗଛର ପାଖୁଡ଼ାରେ ଓ ନାସିରେ ଥିବା କଣ୍ଟା ।
ବେତକନ୍ଦା—ଗ୍ରା. ବ. ବେତ ଲତାର ଅଗ୍ରଭାଗରେ ଗ୍ଲେପା ଭିତରେ ଥିବା କୋମଳାଂଶ ।
ବେତକୋଳି—ଗ୍ରା.ବ. ବେତଫଳ ।
ବେତଖାଇବା—ଗ୍ରା. କ୍ରି. ବେତ ଦ୍ୱାରା ପ୍ରହୃତ ହେବା ।
ବେତଜ୍‌ବିଜ୍—ଯା.କ୍ରି. ବିଂ. ବିବେଚନା ନ କରି, ପରୀକ୍ଷା ବ୍ୟତୀତ, ପରୀକ୍ଷା ନକରି ।
ବେତଣ୍ଡ—ପୁଂ. ବ. (ବେ+ତଣ୍ଡ+ର୍ମି. ଅ)ହସ୍ତୀ, ଗଜ, ତାଡ଼ନାର ପାତ୍ର,ଉଚ୍ଛୃଙ୍ଖଳ ବ୍ୟକ୍ତି ।
ବେତଥ୍ୟ—ଗ୍ରା.ବିଂ. ଅନିଶ୍ଚିତ, ଅସତ୍ୟ ।
ବେତନ—କ୍ଲୀ.ବ. (ବୀ+ର୍ମି.ତନ)କର୍ମର ଦକ୍ଷିଣା, ମୂଲ,ମଜୁରି, ଭଡ଼ା, ଦରମା ।
ବେତନଗ୍ରାହୀ—ବିଂ. ଯେ ଦରମା ନେଇ କାମ କରେ । [ ଲୋକ ।
ବେତନପାଣି—ଗ୍ରା.ବ. ବର୍ତ୍ତନ ପାଇବା
ବେତନବୃଦ୍ଧି—ବି. ଦରମା ବଢ଼ିବା ।
ବେତନଭୁକ୍—ପୁଂ. ବିଂ. ( ବେତନ+ଭୁଜ୍+କ.କ୍ୱିପ୍ ) ଯେ ଦରମା ଖାଇ ଚାକିରି କରେ ।
ବେତନଭୋଗୀ—ପୁଂ. ବିଂ. ବେତନଗ୍ରହଣକାରୀ, ଯେ ଦରମା ନିଏ ।
ବେତନାଧ୍ୟକ୍ଷ—ବି. (୬ତତ୍) ଚାକରଙ୍କୁ ଦରମା ଦେବାର ମାଲିକ ।
ବେତନୀ—ପୁଂ. ବିଂ. (ବେତନ+ଇନ୍) ବେତନଗ୍ରାହୀ ।
ବେତନୋଳା—ଗ୍ରା. ବ. ଦେହରେ ବେତାଘାତର ଚିହ୍ନ ।
ବେତବାଡ଼ି—ଗ୍ରା. ବ, ବେତଯଷ୍ଟି, ବେତାଘାତ ।
ବେତର—ଗ୍ରା. ବ. ଅବସରର ଅଭାବ ।
ବେତରଫ—ଯା.ବିଂ.ସ୍ଥଗିତ, କିଛିକାଳ-

ଯାଇଁ କାର୍ଯ୍ୟରୁ ରହିତ ।
ବେତର୍ଗ୍ଗ—ଗ୍ରା.ବି.ଘରଗୃହ ରୁଅ ଉପରେ ବତା ଦ୍ୱାରା ସମାଚ୍ଛନ୍ନ କରିବା ।
ବେତର୍କ—ଗ୍ରା.ବିଂ. ଅସାବଧାନ,ସରଳ, ଅକପଟ ।
ବେତସ—ପୁଂ.ବି. (ବେ+ଅସ) ସ୍ୱନାମ-ଖ୍ୟାତ ବେତଶାକଲତା, ବାଣୀର, ବେତଗଛ, (ସ୍ତ୍ରୀ) ବେତସୀ ।
ବେତସକୁଞ୍ଜ—ବି. ବେତ ବୁଦା ବେଷ୍ଟିତ ଉପବନ ।
ବେତସାମ୍ଳ—ପୁଂ. ବି. (ବେତସ+ଅମ୍ଳ) ଅମ୍ଳବେତସ ।
ବେତସୀ—ସ୍ତ୍ରୀ. ବି. ବେତସ ।
ବେତସ୍ୱାନ୍—ତ୍ରି.ବିଂ. (ବେତସ+ବତୁ) ବେତସ ଲତାବହୁଳ (ଦେଶ) ।
ବେତା—ସ୍ତ୍ରୀ.ବି.ବେତନ, (ଗ୍ରା.ବି)ବେତ ବା ବାଉଁଶରେ ବୁଣାଯାଇଥିବା ବଡ଼ ଟୋକେଇ ।
ବେତାଏ—ଗ୍ରା.ବିଂ. ଏକବେତା ପରିମିତ, ବାହୁ ପରିମିତ ।
ବେତାକ—ଗ୍ରା. ବିଂ. ଲକ୍ଷ୍ୟଭ୍ରଷ୍ଟ, ଅପ୍ରାସଙ୍ଗିକ, ଅସମ୍ବନ୍ଧ, ଅସୁସଙ୍ଗତ ।
ବେତାକଡ଼(ଡ)—ଗ୍ରା. ବିଂ. ଦୁର୍ବଳ, ଅକ୍ଷମ, (ବି) ଅକ୍ଷମତା ।
ବେତାଟକା(ଙ୍କା)—ଗ୍ରା. ବିଂ. ନିର୍ଭୟ ।
ବେତାର(ର—ଗ୍ରା.ବିଂ.ଖିଣାଆଦି ଯନ୍ତ୍ରର ତାର ବିଗିଡ଼ି ଯାଇଥିବା, ସ୍ୱାଦହୀନ, ବିସ୍ୱାଦ ।
ବେତାରଯନ୍ତ୍ର—ଗ୍ରା. ବି. ତାରର ବିନା ସାହାଯ୍ୟରେ ତଡ଼ିତ୍ ଶକ୍ତି ବଳରେ ଦୂରଦେଶକୁ ସମ୍ବାଦ ପ୍ରେରଣ କରାଯିବା ଯନ୍ତ୍ର ।
ବେତାରଫ୍—ଗ୍ରା. ବିଂ. ନିକୃଷ୍ଟ ।
ବେତାରିବା—ଗ୍ରା. କ୍ରି. ଘରର ରୁଅ ଉପରେ ବତା ପକାଇ ବାନ୍ଧିବା ।
ବେତାଳ—ପୁଂ.ବି.(ବେ+ତଳ+କ.ଅ) ଶିବାନୁଚରବିଶେଷ, ଭୂତାବିଷ୍ଟ ଶବ, ଭୂତ, ପିଶାଚ, ଦ୍ୱାରପାଳ,ମନ୍ତ୍ରୀ, ମଲ୍ଲବିଶେଷ, (ଗ୍ରା.ବି)ଗୀତର ଅନୁପଯୋଗୀ ତାଳ, ଯୁଦ୍ଧାସ୍ତ୍ରବିଶେଷ ।
ବେତାଳସାଧନା—ବି. ତାନ୍ତ୍ରିକ ପ୍ରୟୋଗ ଓ ଅନୁଷ୍ଠାନ ଦ୍ୱାରା ବେତାଳକୁ ଆଜ୍ଞାବହ କରାଇବାରୂପ ପ୍ରକ୍ରିୟା ।
ବେତାଳସାଧିବା—ଗ୍ରା. କ୍ରି. ବେତାଳ ସାଧନାପୂର୍ବକ ଆଜ୍ଞାଧୀନ କରିବା ।
ବେତାଳସିଦ୍ଧ—ବିଂ. (ବ.ବ୍ରୀ) ତାନ୍ତ୍ରିକ ଉପାୟଦ୍ୱାରା ଯେଉଁ ବ୍ୟକ୍ତି ବେତାଳଙ୍କ ଆଜ୍ଞାଧୀନ କରିଥାଏ ।
ବେତାଳସିଦ୍ଧି—ବି. ତାନ୍ତ୍ରିକ ପ୍ରୟୋଗଦ୍ୱାରା ବେତାଳଙ୍କ ଉପରେ ପ୍ରଭୁତ୍ୱ ସ୍ଥାପନରେ ସମର୍ଥ ହେବା ।
ବେତାଲି—ଗ୍ରା.ବି.ବେତ ଟୋକେଇ ।
ବେତାଳିଆ—ଗ୍ରା. ବିଂ. କର୍ଣ୍ଣକଟୁ,ନୃତ୍ୟଗୀତାଦିର ଲୟହୀନ,ତାଳହୀନ,ବେଠିକ୍, ଅସମ୍ବଦ୍ଧ, ଅବଗ୍ରହକ ।
ବେତ୍ତା—ପୁଂ.ବିଂ. (ବିଦ୍+କ.ତୃ)ଜ୍ଞାତା, ଯେ ଜାଣେ, ଲାଭକର୍ତ୍ତା, ପରିଣେତା ।
ବେତ୍ର—ପୁଂ. ବି. (ଗ୍ର+ଣ.ତ୍ର) ସ୍ୱନାମପ୍ରସିଦ୍ଧ ବୃକ୍ଷ, ବେତ,ବେତବାଡ଼ି,ଅସୁରବିଶେଷ ।
ବେତ୍ରକ—ପୁଂ. ବି. ରାମଶର, (ଗ୍ରା. ବି) ଦ୍ୱାରପାଳ, ବେତ୍ରହସ୍ତ ପାଇକ ।
ବେତ୍ରକର—ବି. (ବ.ବ୍ରୀ) ପଡ଼ିଆରୀ ।
ବେତ୍ରକାର—ପୁଂ. ବି. ବେତ୍ରଦ୍ୱାରା ଦ୍ରବ୍ୟ ପ୍ରସ୍ତୁତକାରୀ । [ ଦେଶାଦି ।
ବେତ୍ରକୀୟ—ତ୍ରି. ବିଂ. ବେତ୍ରସମୂହଯୁକ୍ତ
ବେତ୍ରକୂଟ-ହିମାଳୟ ପର୍ବତ ଶୃଙ୍ଗବିଶେଷ
ବେତ୍ରଗଙ୍ଗା—ହିମଗିରି ପାଦରୁ ନିସୃତ ନଦୀ ବିଶେଷ । [ ବିନା ।
ବେତ୍ରକେ—ଗ୍ରା.ତ୍ରି.ବିଂ. ବ୍ୟତୀତ,ଛଡ଼ା,
ବେତ୍ରଗ୍ରହଣ—କ୍ଲୀ. ବି. ଦଣ୍ଡଧାରଣ, ଦୌବାରିକତ୍ୱ ।
ବେତ୍ରଦଣ୍ଡ—ବି. ବେତବାଡ଼ି, ବେତ୍ରପ୍ରହାର ରୂପ ଦଣ୍ଡ ।
ବେତ୍ରଧର—ପୁଂ. ବି. (ବେତ୍ର+ଧର) ଦ୍ୱାରପାଳ, (ବିଂ) ଯଷ୍ଟିଧାରକ ।
ବେତ୍ରଧାରିକ—ପୁଂ.ବି.(ବେତ୍ର+ଧାରକ) ଦ୍ୱାରପାଳ ।
ବେତ୍ରବଣ—ସ୍ତ୍ରୀ.ବି. (ବେତ୍ର+ବତୁ+ଈ) ମାଳବ ଦେଶୀୟ ନଦୀବିଶେଷ,ଆଧୁନିକ ବେତ୍ରୁୟା ନଦୀ ।
ବେତ୍ରହା—ପୁଂ. ବି. (ବେତ୍ର+ହନ୍+କ୍ୱିପ୍) ଇନ୍ଦ୍ର । [ ପ୍ରହାର ।
ବେତ୍ରାଘାତ—ବି. (୬ତତ୍) ବେତ୍ରଦ୍ୱାରା
ବେତ୍ରାବତୀ—ସ୍ତ୍ରୀ.ବି. (ବେତ୍ର+ବତୁ+ଈ) ବେତ୍ରବତୀ ନଦୀ ।
ବେତ୍ରାସନ—କ୍ଲୀ. ବି. (ବେତ୍ର+ଆସନ) ବେତ୍ର ନିର୍ମିତ ଆସନ,ମୋଡ଼ା ପ୍ରଭୃତି ।
ବେତ୍ରାସୁର—ପୁଂ. ବି. (ବେତ୍ର+ଅସୁର) ଅସୁରବିଶେଷ,ଏ ଇନ୍ଦ୍ରଙ୍କ ଦ୍ୱାରା ନିହତ ହୋଇଥିଲେ ।
ବେତ୍ରାହତ—ବିଂ. (୩ତତ୍) ବେତ୍ରଦ୍ୱାରା ପ୍ରହୃତ,ଯାହାକୁ ବେତରେ ପିଟା ଯାଇଅଛି ।
ବେତ୍ରୀ—ପୁଂ.ବି. (ବେତ୍ର+ଇନ୍)ଦ୍ୱାରପାଳ, (ପୁଂ.ବିଂ) ବେତ୍ରଧାରୀ ।
ବେଥୟ—ଗ୍ରା. ବିଂ. ଅଥୟ, ଅସ୍ଥିର ।
ବେଥଲ—ଗ୍ରା. ବିଂ. ସୁଗଭୀର, ଯାହାର ଗଭୀରତା ମାପ କରାଯାଇ ନ ପାରେ, ଅସ୍ଥାନ ।
ବେଥାଇ—ଗ୍ରା. ବିଂ. ଅସ୍ଥାୟୀ, ଅସ୍ଥିର ।
ବେଥାନ—ଗ୍ରା. ବି. ଅଥାନ, ଅସ୍ଥାନ ।
ବେଦ—ପୁଂ. ବି. (ବିଦ୍+ମ.ଅ)ବ୍ରହ୍ମାଙ୍କ ମୁଖନିସୃତ ହିନ୍ଦୁମାନଙ୍କ ଧର୍ମଶାସ୍ତ୍ର,ଶ୍ରୁତି, ଧର୍ମ ଓ ବ୍ରହ୍ମପ୍ରତିପାଦକ ଶାସ୍ତ୍ର,ଲୌକିକ ଓ ପାରମାର୍ଥିକ କର୍ତ୍ତବ୍ୟାକର୍ତ୍ତବ୍ୟ କର୍ମର ଶାସନରୂପ ଶାସ୍ତ୍ର, ଶାସ୍ତ୍ରଜ୍ଞାନ, ବ୍ରହ୍ମ, ନିଗମ, ଜ୍ଞାନ, ୪ସଂଖ୍ୟା, ଛନ୍ଦ,ଟିପ୍ପଣୀ, ଆଖ୍ୟା,ଯଜ୍ଞାଙ୍ଗ,ବିଷ୍ଣୁ,ଶାସ୍ତ୍ରୋକ୍ତ ଚରିତ, (ଗ୍ରା.ବି) ଏକକଡ଼ା କଉଡ଼ିର ଚୌଷଠିରୁ ଏକଭାଗ ।
ବେଦଃ—ବି. (ବିଦ୍+କ.ଅସ୍) ବେଦସମୂହ, ସୁନା. (ବି) ବେତ୍ତା ।
ବେଦକ୍—ଗ୍ରା. ବିଂ. ନିର୍ଭୟ, ନିଶ୍ଚିନ୍ତ ।
ବେଦକ—ତ୍ରି. ବିଂ. ଜ୍ଞାପକ ।
ବେଦକର୍ତ୍ତା—ପୁଂ. ବି. ବେଦରଚୟିତା, ସୂର୍ଯ୍ୟ, ଶିବ, ବିଷ୍ଣୁ ।

ବେଦକାର—ପୁଂ. ବ. ବେଦକର୍ତ୍ତ ଦେଖ
ବେଦକାରଣ(କାରଣ)—ପୁଂ.ବ.ଶ୍ରୀକୃଷ୍ଣ
ବେଦକୁମ୍ଭ—ପୁଂ. ବ. ବୈଦିକ ଆଚାର୍ଯ୍ୟ ବିଶେଷ ।
ବେଦକୁଶଳ—ପୁଂ. ବି. (୭ତତ୍) ଯେ ବେଦଶାସ୍ତ୍ରକୁ ଉତ୍ତମରୂପେ ଜାଣେ ।
ବେଦକୌଲେୟକ—ପୁଂ. ବ. ଶିବଙ୍କ ନାମାନ୍ତର ।
ବେଦଖଲ୍(ଲ)—ଗ୍ରା.ବି. କୌଣସି ବସ୍ତୁ ବା ସମ୍ପତ୍ତିର ଅଧିକାରରୁ ବଞ୍ଚିତ(ବ୍ୟକ୍ତି), ଅନଧିକୃତ, (ବି) କୌଣସି ସମ୍ପତ୍ତିର ଅଧିକାରରୁ ଚ୍ୟୁତ ହେବା ।
ବେଦଖଲକରିବା—ଗ୍ରା. କ୍ରି. କୌଣସି ବ୍ୟକ୍ତିକୁ କୌଣସି ସମ୍ପତ୍ତିର ଭୋଗାଧିକାରରୁ ଚ୍ୟୁତ କରିବା ।
ବେଦଖଲହେବା—ଗ୍ରା. କ୍ରି. ସମ୍ପତ୍ତିରୁ ଭୋଗାଧିକାର ଚ୍ୟୁତହେବା, ଦଖଲ ଛାଡ଼ିଯିବା ।
ବେଦଗର୍ଭ—ପୁଂ. ବ. (ବ.ବ୍ରୀ) ବ୍ରହ୍ମା, ବ୍ରାହ୍ମଣ ।
ବେଦଗର୍ଭା—ସ୍ତ୍ରୀ. ବ. ସରସ୍ୱତୀ ନଦୀ, ରେବାନଦୀ ।
ବେଦଗାଥ—ପୁଂ. ବ. ଋଷିବିଶେଷ ।
ବେଦଗାର—ଗ୍ରା. ବି. ବେଦବଚନପରି ଅଖଣ୍ଡନୀୟ କଥା, ବେଦବାକ୍ୟ,ଅଟଳ ବାକ୍ୟ, ସତ୍ୟ ।
ବେଦଗୁପ୍ତ—ବ. ଶ୍ରୀକୃଷ୍ଣ, ପରାଶରଙ୍କ ପୁତ୍ର
ବେଦଗୁପ୍ତି—ସ୍ତ୍ରୀ.ବ. (୬ତତ୍) ବ୍ରାହ୍ମଣାଦି କର୍ତ୍ତୃକ ବେଦରକ୍ଷା ।
ବେଦଗୁହ୍ୟ—ବ. ବିଷ୍ଣୁ ।
ବେଦଘୋଷ—ପୁଂ. ବ. ବ୍ରହ୍ମଘୋଷ, ବେଦଧ୍ୱନି ।
ବେଦଚକ୍ଷୁ—କ୍ଲୀ. ବ. ଜ୍ଞାନଚକ୍ଷୁ ।
ବେଦଜନନୀ—ସ୍ତ୍ରୀ. ବ. (ବେଦ+ଜନନୀ) ବେଦମାତା ସାବିତ୍ରୀ ।
ବେଦଜ୍ଞ—ତ୍ରି. ବି. (ବେଦ+ଜ୍ଞା+ଅ) ବେଦବିଦ୍, ବ୍ରହ୍ମଜ୍ଞ, ଯେ ବେଦବିହିତ କର୍ମ ଜାଣେ ।
ବେଦତତ୍ତ୍ୱ—କ୍ଲୀ. ବ. (ବେଦ+ତତ୍ତ୍ୱ) ବେଦରେ ଯେ ସମସ୍ତତତ୍ତ୍ୱ ନିହିତ ଅଛି ।
ବେଦତତ୍ତ୍ୱାର୍ଥ—ପୁଂ. ବ. ବେଦନିହିତ ବିଷୟ ସମୂହର ତାତ୍ପର୍ଯ୍ୟ ଜ୍ଞାନ ।
ବେଦଦାନ—କ୍ଲୀ. ବ. ବେଦ ବିଷୟକ ଉପଦେଶ ଦାନ ।
ବେଦଦୀପ—ପୁଂ. ବ. ଶୁକ୍ଳ ଯଜୁର୍ବେଦର ମହୀଧରକୃତ ଭାଷ୍ୟ ।
ବେଦଧର୍ମ୍ମ—ପୁଂ. ବ. ବେଦୋକ୍ତ ଧର୍ମ, ପୈଲଙ୍କ ପୁତ୍ର ।
ବେଦଧ୍ୱନି—ପୁଂ.ବ. ବେଦଘୋଷ,ବେଦପାଠର ଶବ୍ଦ ।
ବେଦନ—ବ. (ବିଦ୍+ଅନ) ଜ୍ଞାନ,ସୁଖଦୁଃଖାଦି ଅନୁଭବ, ବ୍ୟଥା, ସମ୍ବେଦ, ଅନୁଭବ, ଜ୍ଞାନ, ଦୁଃଖ,ବିବାହ,ବୌଦ୍ଧମତେ ସ୍କନ୍ଧବିଶେଷ, ଶୂଦ୍ର କାମିନୀ ଉତ୍କୃଷ୍ଟ ବର୍ଣ୍ଣର ବରଙ୍କୁ ବିବାହ କଲେ ସ୍ୱୀୟ ସ୍ୱାମୀଙ୍କର ଉତ୍ତରୀୟ ବସ୍ତ୍ରର ପ୍ରାନ୍ତଧାରଣ ରୂପ ଆଚାର ।
ବେଦନା—ସ୍ତ୍ରୀ. ବ. (ବିଦ୍+ଣି.ଅନ+ଆ) ବେଦନ ଦେଖ. (ଗ୍ରା.ବି) ଦରଜ, ଯନ୍ତ୍ରଣା, ବିନ୍ଧା ଛିଙ୍କା ।
ବେଦନିନ୍ଦକ—ପୁଂ. ବି. (ବେଦ+ନିନ୍ଦ୍+ଅକ) ବେଦନିନ୍ଦାକାରୀ, ନାସ୍ତିକ, (ବି) ବୁଦ୍ଧ ।
ବେଦନିନ୍ଦା—ବ. (୬ତତ୍) ବେଦପ୍ରତି ଘୃଣାର୍ଥକ ବାକ୍ୟପ୍ରୟୋଗ,ନାସ୍ତିକତା ।
ବେଦନିରତ—ପୁଂ. ବି. (୭ତତ୍) ବେଦାନୁରକ୍ତ,ବେଦବିହିତ ଅନୁଷ୍ଠାନକାରୀ ।
ବେଦନିର୍ଘୋଷ—ପୁଂ. ବ. (୬ତତ୍) ବେଦଘୋଷ, ବେଦପାଠର ଧ୍ୱନି ।
ବେଦନୀୟ—ତ୍ରି.ବି. (ବିଦ୍+ଣି.ଅନୀୟ) ଜ୍ଞାତବ୍ୟ, ବେଦନା ଯୋଗ୍ୟ, ଅନୁଭବନୀୟ, ଜ୍ଞେୟ ।
ବେଦପଥ—ପୁଂ. ବ. (ବେଦ+ପଥ) ବେଦବିହିତ ମାର୍ଗ, ବେଦନିର୍ଦ୍ଦିଷ୍ଟ ପଥ ।
ବେଦପାଠ—ପୁଂ. ବ. (ବେଦ+ପାଠ) ବେଦାଧ୍ୟୟନ, ବେଦକୁ ପଢ଼ିବା ।
ବେଦପାରଗ—ପୁଂ.ବି.(ବେଦ+ପାରଗ) ବେଦବେତ୍ତା, ବ୍ରହ୍ମଜ୍ଞାନୀ, ବେଦଜ୍ଞ ।
ବେଦପୁଣ୍ୟ—ବ. ବେଦାଧ୍ୟୟନ ଜାତ ପୁଣ୍ୟ ।
ବେଦପୁରୁଷ—ପୁଂ.ବ. ବେଦରୂପ ପୁରୁଷ, ମୂର୍ତ୍ତିମାନ୍ ବେଦ ।
ବେଦପ୍ରଦାନ—କ୍ଲୀ.ବ. (ବେଦ+ପ୍ରଦାନ) ବେଦଦାନ ।
ବେଦପ୍ରଦାନ—କ୍ଲୀ. ବ. ବେଦାଧ୍ୟାପନ ।
ବେଦପ୍ରପଦ—ସ୍ତ୍ରୀ. ବ. ବେଦବଚନ ।
ବେଦଫଳ—କ୍ଲୀ.ବ. ବେଦବିହିତ କର୍ମାନୁଷ୍ଠାନଜନିତ ଫଳ ।
ବେଦବାହୁ—ପୁଂ. ବ. ପୁଲସ୍ତ୍ୟ ପୁତ୍ରବିଶେଷ, ଶ୍ରୀକୃଷ୍ଣ, ରୈବତ ମନ୍ୱନ୍ତରୋକ୍ତ ସପ୍ତଲୋକ ବିଶେଷ ।
ବେଦବୀଜ—କ୍ଲୀ. ବ. ଶ୍ରୀକୃଷ୍ଣ ।
ବେଦବ୍ରହ୍ମଚର୍ଯ୍ୟ—ପୁଂ. ବ. ବେଦୋପଦେଶ ଲାଭାର୍ଥ ମାଣବକର ବ୍ରହ୍ମଚର୍ଯ୍ୟ ।
ବେଦବ୍ରାହ୍ମଣ—ପୁଂ.ବ. ବେଦଜ୍ଞବ୍ରାହ୍ମଣ, ବେଦାନ୍ତର୍ଗତ ବ୍ରାହ୍ମଣଭାଗ ।
ବେଦଭୂ—ପୁଂ. ବ. ଦେବଗଣବିଶେଷ ।
ବେଦମ୍—ଗ୍ରା. ବି. ଶ୍ୱାସରୁଦ୍ଧ,ରୁଦ୍ଧଶ୍ୱାସ, ଅତ୍ୟନ୍ତ, ବେଜାୟ ।
ବେଦମତ—ବି. ବେଦସମ୍ମତ, (ବି) ବେଦର ନିୟମ ।
ବେଦମତୀ—ଗ୍ରା.ସ୍ତ୍ରୀ.ବ. ବେଦବତୀ ଦେଖ
ବେଦମୟ—ବି. (ବେଦ+ମୟ) ବେଦ ସ୍ୱରୂପ ଜ୍ଞାନମୟ ।
ବେଦମାତା—ସ୍ତ୍ରୀ. ବ. ଗାୟତ୍ରୀ,ସାବିତ୍ରୀ, ଦୁର୍ଗା, ସରସ୍ୱତୀ, (ଗ୍ରା.ବି)ସରସ୍ୱତୀ ନଦୀ, ବିରଜା ।
ବେଦମାତୃକା—ସ୍ତ୍ରୀ. ବ. (ବେଦ+ମାତୃକା) ସାବିତ୍ରୀ ।
ବେଦମାର୍ଗ—ବ.ବେଦବିହିତ ଆଚରଣ ।
ବେଦମୁଣ୍ଡ—ପୁଂ.ବ. ଅସୁରବିଶେଷ ।
ବେଦମୂର୍ତ୍ତି—ପୁଂ.ବ.ସୂର୍ଯ୍ୟଦେବ,ବେଦଜ୍ଞ ବ୍ରାହ୍ମଣମାନଙ୍କର ସମ୍ମାନସୂଚକ ଉପାଧି ।
ବେଦମ୍ମ—ଗ୍ରା.ବି. ଅଦମ୍ମ, ଦୁର୍ବଳ ।
ବେଦଯଜ୍ଞ—ପୁଂ.ବ. ବେଦାଧ୍ୟୟନସ୍ୱରୂପ ଯଜ୍ଞ, ବେଦପାଠ ।

ବେଦସ୍ମିତା—ପୁଂ.ବିଂ. ( ବିଦ୍+ତୃଚ୍ )
ଜ୍ଞାପୟିତା, ଯେ ଜଣାଏ ।
ବେଦରକାର—ଯା.ବିଂ. ଅନାବଶ୍ୟକୀୟ
ବେଦରକ୍ଷଣ—କ୍ଲୀ.ବି. ବେଦରକ୍ଷା ।
ବେଦରଙ୍କା—ଗ୍ରା.ବିଂ. ବେଦ ପଢ଼ିବା-
ପାଇଁ ଇଚ୍ଛୁକ ।
ବେଦରଜ୍—ଯା.ବିଂ. ନିର୍ଦ୍ଦୟ, ବିବେ-
ଚନାଶୂନ୍ୟ, ଧର୍ମ୍ମଜ୍ଞାନଶୂନ୍ୟ, ଯନ୍ତ୍ରଣା
ମୁକ୍ତ ।
ବେଦରହସ୍ୟ—କ୍ଲୀ.ବି.(ବେଦ+ରହସ୍ୟ)
ଉପନିଷଦ୍ । [ ବେଦସମ୍ବନ୍ଧ ।
ବେଦରାଶି—ପୁଂ.ବି. ( ବେଦ+ରାଶି )
ବେଦବଂଶ—ଗ୍ରା.ବି. ବିଶ୍ୱାମିତ୍ର ।
ବେଦବଚନ—ବି. ବେଦଲିଖିତ ଉପ-
ଦେଶ, ବୈଦିକ ମନ୍ତ୍ର, ସତ୍ୟ,ସନାତନ
ସତ୍ୟ, ଅଭ୍ରାନ୍ତ ସତ୍ୟ ।
ବେଦବତୀ—ସ୍ତ୍ରୀ.ବି. (ବେଦ+ବତ୍+
ଈ) କୁଶଧ୍ୱଜ ରାଜାଙ୍କ କନ୍ୟା,ପାରିପାତ୍ର
ପର୍ବତସ୍ଥ ନଦୀବିଶେଷ, ଅପ୍ସରୋ-
ବିଶେଷ ।
ବେଦବଦନ—ସ୍ତ୍ରୀ.ବି. (ବେଦ+ବଦନ)
ବ୍ୟାକରଣ, (ପୁଂ.ବି) ବ୍ରହ୍ମା ।
ବେଦବାକ୍ୟ—କ୍ଲୀ.ବି. (ବେଦ+ବାକ୍ୟ)
ବେଦର ବାକ୍ୟ, ବେଦୋକ୍ତି,ଅମୋଘ
ବାକ୍ୟ ।
ବେଦବାଦ—ପୁଂ. ବି. (ବେଦ+ବାଦ)
ବେଦବାକ୍ୟ ।
ବେଦବାଦୀ—ପୁଂ.ବିଂ.(ବେଦ+ବଦ୍+)
ଇନ୍) ବେଦବିଦ୍, ବେଦଜ୍ଞ ।
ବେଦବାନ୍—ପୁଂ,ବିଂ. (ବେଦ+ବତ୍)
ଜ୍ଞାନବିଶିଷ୍ଟ, ବେଦବିଶିଷ୍ଟ ।
ବେଦବାସ—ପୁଂ.ବି. (ବି.ଗ୍ରା)ବ୍ରାହ୍ମଣ ।
ବେଦବାହ—ତ୍ରି.ବିଂ. ବେଦପାଠକ ।
ବେଦବାହନ—ପୁଂ.ବି. (ବି.ଗ୍ରା) ସୂର୍ଯ୍ୟ-
ଦେବ ।
ବେଦବିତ୍ତ୍ୱ—କ୍ଲୀ.ବି. (ବେଦବିଦ୍+ତ୍ୱ)
ବେଦବିଦ୍‌ର ଭାବ ।
ବେଦବିତ୍(ଦ୍)—ପୁଂ.ବି. (ବେଦ+ବିଦ୍
ବିଷ୍ଣୁଙ୍କ ନାମବିଶେଷ, (ବିଂ)ବେଦଜ୍ଞ ।

ବେଦବିଦ୍ୟ—ପୁଂ.ବିଂ. (ବି.ଗ୍ରା)ବେଦଜ୍ଞ,
ବେଦପାରଗ ।
ବେଦବିଦ୍ୟା—ସ୍ତ୍ରୀ.ବି. (ବେଦ+ବିଦ୍ୟା)
ବେଦରୂପ ବିଦ୍ୟା, ବେଦଜ୍ଞାନ ।
ବେଦବିଦ୍ୱାନ୍—ପୁଂ. ବିଂ. (ବେଦ+
ବିଦ୍ୱସ୍) ବେଦବିଦ୍, ବେଦଜ୍ଞ ।
ବେଦବିଧି—ବି. ( ୬ତତ୍ ) ବେଦୋକ୍ତ
ବିଧି ।
ବେଦବିପରୀତ—ବିଂ. ବେଦରେ ନିର୍ଦ୍ଦିଷ୍ଟ
ଥିବା ଉପଦେଶର ବହିର୍ଭୂତ ।
ବେଦବିହିତ—ତ୍ରି. ବିଂ. ବେଦସିଦ୍ଧ,
ବେଦରେ ନିର୍ଦ୍ଦିଷ୍ଟ, ବେଦୋକ୍ତ ।
ବେଦବୃତ୍ତି—କ୍ଲୀ. ବି. ବେଦଧର୍ମ,
ବେଦୋକ୍ତ ଆଚରଣ ।
ବେଦବେଦାଙ୍ଗ—କ୍ଲୀ.ବି. (ଦ୍ୱନ୍ଦ୍ୱ)ସାମାଦି
ଚାରିବେଦ ଓ ଛଅ ବେଦାଙ୍ଗ ।
ବେଦବ୍ୟାସ—ପୁଂ. ବି. (ବେଦ+ବି+
ଅସ୍+କ.ଅ) କୃଷ୍ଣଦ୍ୱୈପାୟନନାମକ
ବେଦବିଭାଗ କର୍ତ୍ତା ମୁନି, ପରାଶର ଓ
ସତ୍ୟବତୀଙ୍କ ପୁତ୍ର ।
ବେଦବ୍ରତ—ବିଂ. (ବି.ଗ୍ରା) ବେଦାଧ୍ୟୟ-
ନରୁକ୍ତ । [ ବେଦଧ୍ୱନି ।
ବେଦଶବ୍ଦ—ପୁଂ.ବି. ବେଦୋକ୍ତ ଶବ୍ଦ,
ବେଦଶାଖା—ସ୍ତ୍ରୀ. ବି. (ବେଦ+ଶାଖା)
ବେଦର ଶାଖା ।
ବେଦଶାସ୍ତ୍ର—କ୍ଲୀ. ବି. ( ବେଦ+ଶାସ୍ତ୍ର )
ବେଦରୂପ ଶାସ୍ତ୍ର ।
ବେଦଶିରଃ—ପୁଂ. ବି. ମାର୍କଣ୍ଡେୟ ଓ
ମୂର୍ଦ୍ଧଣ୍ୟାର ଗର୍ଭଜାତ ପୁତ୍ର,ପ୍ରାଣଙ୍କ ପୁତ୍ର,
ଅସ୍ତ୍ରବିଶେଷ ।
ବେଦଶିରା—ପଞ୍ଚଦଶ ଦ୍ୱାପରରେ ଭଗ-
ବାନ୍ ରୁଦ୍ର ବ୍ରାହ୍ମଣ କୁମାର ବେଦ-
ଶିରରୂପେ ଅବତୀର୍ଣ୍ଣ ହୋଇଥିଲେ ।
ବେଦଶୀର୍ଷ—ପୁଂ. ବି. ପର୍ବତବିଶେଷ ।
ବେଦଶ୍ରବାଃ—ପୁଂ. ବି. ଋଷିବିଶେଷ ।
ବେଦଶ୍ରୁତ—ପୁଂ. ବି. ବଶିଷ୍ଠଙ୍କ ପୁତ୍ର ।
ବେଦଶ୍ରୁତି—ସ୍ତ୍ରୀ.ବି. ବେଦମନ୍ତ୍ରର ଶ୍ରବଣ,
ବେଦଧ୍ୱନି, ନଦୀବିଶେଷ ।
ବେଦସ୍—ପୁଂ. ବି.ଯଜ୍ଞଭାଗ ପ୍ରାପକ କର୍ମ

ବିଷୟକ ଜ୍ଞାନ ।
ବେଦସ—କ୍ଲୀ. ବି. ଧନ ।
ବେଦସଂଶ୍ଲିତ—ବିଂ. ବେଦଯୁକ୍ତ ।
ବେଦସଂହିତା—ସ୍ତ୍ରୀ.ବି. ବେଦର ସଂହିତା,
ମନ୍ତ୍ର ବ୍ରାହ୍ମଣ ।
ବେଦସନ୍ନ୍ୟାସିକ—ବିଂ. ବେଦବିହିତାଗ୍ନି
ହୋମାଦି କର୍ମତ୍ୟାଗୀ । [ ଶେଷ ।
ବେଦସମାପ୍ତି—ସ୍ତ୍ରୀ. ବି. ବେଦାଧ୍ୟୟନ
ବେଦସମ୍ମତ—ତ୍ରି. ବିଂ. ବେଦୋକ୍ତ
ମତାନୁରୂପ, ବେଦବିହିତ ।
ବେଦସମ୍ମିତ—ତ୍ରି. ବିଂ. ବେଦାନୁରୂପ
ପରିମାଣ ବିଶିଷ୍ଟ ।
ବେଦସାର—ପୁଂ. ବି. ବିଷ୍ଣୁ ।
ବେଦସିନୀ—ସ୍ତ୍ରୀ. ବି. ନଦୀବିଶେଷ ।
ବେଦସୂତ୍ର--କ୍ଲୀ.ବି.ବେଦମନ୍ତ୍ରାନୁରୂପ ସୂତ୍ର ।
ବେଦସ୍ତୁତି—ସ୍ତ୍ରୀ. ବି. ବ୍ରହ୍ମସ୍ତୁତି ।
ବେଦସ୍ତର(ର)—ଯା. ବିଂ. ପ୍ରଚଳିତ
ପ୍ରଥାର ବିପରୀତ ବା ଅନ୍ୟଥାଭୂତ ॥
ବେଦସ୍ଥାନ—ତ୍ରି ବିଂ. ବେଦରହିତ ।
ବେଦାଗ୍—ଯା. ବିଂ. ଯହିଁରେ ଦାଗ ବା
କଳଙ୍କ ନ ଥାଏ, ନିଷ୍କଳଙ୍କ,ଅଚିହ୍ନିତ ।
ବେଦାଗି—ପ୍ରା. (ବସ୍ତ୍ର)ବିଂ. ଅକଳଙ୍କ ।
ବେଦାଗ୍ରଣୀ—ସ୍ତ୍ରୀ. ବି. (ବେଦ+ଅଗ୍ରଣୀ)
ସରସ୍ୱତୀ ।
ବେଦାଙ୍ଗ—କ୍ଲୀ. ବି. ( ୬ତତ୍ ) ଶିକ୍ଷା,
କଳ୍ପ, ବ୍ୟାକରଣ, ନିରୁକ୍ତ, ଛନ୍ଦ ଓ
ଜ୍ୟୋତିଷ, ଏହି ଛଅଗୋଟି ବେଦର
ଅଂଶ, ସୂର୍ଯ୍ୟଦେବ, ଦ୍ୱାଦଶ ଆଦିତ୍ୟ-
ବିଶେଷ ।
ବେଦାଢ଼—ଗ୍ରା. ବି. ଦକ୍ଷିଣ, ଅଶିକ୍ଷିତ ।
ବେଦାନ୍ତି—ଗ୍ରା. ବିଂ. ଲୋକାଚାର ବିରୁଦ୍ଧ,
ଅନ୍ୟାୟ, ଅନୁପଯୁକ୍ତ ।
ବେଦାତ୍ମା—ପୁଂ. ବି. ବିଷ୍ଣୁ,ସୂର୍ଯ୍ୟଦେବ ।
ବେଦାଦି—କ୍ଲୀ. ବି. (୬ତତ୍) ପ୍ରଣବ,
ଓଁକାର, ବେଦର ଆଦି,ବେଦର ପୂର୍ବ ।
ବେଦାଦିବୀଜ—କ୍ଲୀ. ବି. (୬ତତ୍)ପ୍ରଣବ ।
ବେଦାଧିଗମ--ପୁଂ. ବି. ବେଦସ୍ୱୀକରଣ,
ବେଦବିଦ୍ୟାଲାଭ ।
ବେଦାଧିଦେବ—ପୁଂ. ବି. ବ୍ରାହ୍ମଣ ।

ବେଦାଧିପ—ପୁଂ. ବି. (୬ତତ୍) ଚତୁର୍ବେଦର ଅଧିପତି ଗ୍ରହ ।

ବେଦାଧ୍ୟକ୍ଷ—ପୁଂ. ବି. ଶ୍ରୀକୃଷ୍ଣ ।

ବେଦାଧ୍ୟୟନ—କ୍ଲୀ. ବି. ବେଦପାଠ, ବେଦର ଅଧ୍ୟୟନ ।

ବେଦାଧ୍ୟାପକ—ପୁଂ. ବିଂ. (୬ତତ୍) ଯେ ବେଦ ପଢ଼ାନ୍ତି ।

ବେଦାଧ୍ୟାପନ(ନା)—ବି. (୬ତତ୍) ବେଦ ପଢ଼ାଇବା ।

ବେଦାଧ୍ୟାୟ—ପୁଂ. ବି. ବେଦୋପଦେଶ

ବେଦାଧ୍ୟାୟୀ—ପୁଂ. ବିଂ. (ବେଦ+ଅଧି+ଇ+ଇନ୍) ବେଦପାଠ କରୁଥିବା (ବ୍ରାହ୍ମଣ) ।

ବେଦାନୁବଚନ—କ୍ଲୀ. ବି. ବେଦବାକ୍ୟ ।

ବେଦାନା—ବିଂ. ମଞ୍ଜିବିହୀନ, (ବି) କାବୁଲ ଡାଳିମ୍ବ ।

ବେଦାନ୍ତ—କ୍ଲୀ. ବି. (୬ତତ୍) ବେଦର ଶେଷଭାଗ, ବ୍ରହ୍ମର ସ୍ୱରୂପାଦି ନିରୂପକ ଶାସ୍ତ୍ର ।

ବେଦାନ୍ତବାଦ—ବି. ବେଦାନ୍ତ ଦର୍ଶନର ମତ, ବ୍ରହ୍ମବାଦ ।

ବେଦାନ୍ତବାଦୀ—ପୁଂ. ବିଂ. ବେଦାନ୍ତମତାବଲମ୍ବୀ, ବ୍ରହ୍ମବାଦୀ ।

ବେଦାନ୍ତୀ—ପୁଂ.ବିଂ. (ବେଦାନ୍ତ+ଇନ୍) ବେଦାନ୍ତଶାସ୍ତ୍ରବେତ୍ତା, ବ୍ରହ୍ମବାଦୀ ।

ବେଦାବ—ଯା. ବି. ଦାବୀର ଅଭାବ ।

ବେଦାଭ୍ୟାସ—ପୁଂ.ବି. (୬ତତ୍) ବେଦପାଠ, ବେଦାନୁଶୀଳନ, ବେଦଚର୍ଚ୍ଚା ।

ବେଦାମି—ଗ୍ରା. ବିଂ. ମୂଲ୍ୟହୀନ,ଅମୂଲ୍ୟ ।

ବେଦାର—ପୁଂ. ବି. କୃକଳାସ ।

ବେଦାର୍ଥ—ପୁଂ. ବି. (୬ତତ୍) ବେଦବୋଧିତ ଶବ୍ଦ,ବେଦପ୍ରତିପାଦ୍ୟ ବିଷୟ, ବେଦପ୍ରୟୋଜନ ।

ବେଦି—ସ୍ତ୍ରୀ. ବି. ( ବିଦ୍+ଇ ) ଯଜ୍ଞାଦି ସାଧନ ନିମନ୍ତେ ଚତୁଷ୍କୋଣ ବା ଡମ୍ବରୁତୁଲ୍ୟାକୃତି ପରିଷ୍କୃତା ଭୂମି, ଅଙ୍ଗୁଳି ମୁଦ୍ରାବିଶେଷ, ଗୃହୋପକରଣବିଶେଷ, ଅମ୍ବଷ୍ଠା, ନାମାଙ୍କିତ ମୁଦ୍ରିକା, ମଞ୍ଚ, ମତ୍ସ୍ୟବିଶେଷ, ପଣ୍ଡିତ, ବିରୁଡ଼ି ।

ବେଦିକା—ସ୍ତ୍ରୀ. ବି. (ବେଦି+କ+ଆ) ଯଜ୍ଞାଦି ସାଧନ ନିମନ୍ତେ ଚତୁଷ୍କୋଣ ବା ଡମ୍ବରୁତୁଲ୍ୟାକୃତି ପରିଷ୍କୃତା ଭୂମି,ମଞ୍ଚ, ସ୍ତୂପାକୃତି, ଭିତ୍ତି, ଅଙ୍ଗୁଳିୟ ।

ବେଦିଜା—ସ୍ତ୍ରୀ. ବି. (ବେଦି+ଜନ୍+କ.ଅ+ଆ) ଦ୍ରୌପଦୀ ।

ବେଦିତ—ତ୍ରି. ବିଂ. ( ବେଦି+ମି.ତ ) ଜ୍ଞାପିତ, ସାକ୍ଷାତ୍କୃତ, ଦର୍ଶିତ, ନିବେଦିତ, (ସ୍ତ୍ରୀ) ବେଦିତା ।

ବେଦିତବ୍ୟ—ତ୍ରି.ବିଂ. ( ବିଦ୍+ତବ୍ୟ ) ବେଦ୍ୟ, ଜ୍ଞାତବ୍ୟ, ଜ୍ଞେୟ ।

ବେଦିତା—ପୁଂ. ବିଂ. ( ବିଦ୍+କ.ତୃ ) ଜ୍ଞାତା, ବେତ୍ତା, (ସ୍ତ୍ରୀ) ବେଦିତ୍ରୀ ।

ବେଦିନ—ଯା.ବିଂ. ଧର୍ମହୀନ, ବିଧର୍ମୀ, ପାପୀ ।

ବେଦୀ—ବି. (ବିଦ୍+କ.ଇନ୍) ପଣ୍ଡିତ, ବ୍ରହ୍ମା, ବିବାହକାରୀ ସ୍ୱାମୀ,ବେଦିଦେଖ, (ବିଂ) ବେତ୍ତା, ଜ୍ଞାତା, (ସ୍ତ୍ରୀ) ବେଦିନୀ ।

ବେଦୀଶ—ପୁଂ.ବି. (ବେଦ+ଈଶ)ବ୍ରହ୍ମା

ବେଦୁଲ୍—ପ୍ରା.(ଯାଜପୁର)ବିଂ. ନିର୍ଭୟ, ନିଶ୍ଚିନ୍ତ ।

ବେଦେଶ—ବି. (ବେଦ+ଈଶ)ବେଦଧର, ବ୍ରହ୍ମା ।

ବେଦେଶଭିକ୍ଷୁ—ପୁଂ. ବି. ବ୍ୟାସଦେବ ତୀର୍ଥଙ୍କ ଶିଷ୍ୟ ।

ବେଦେଶ୍ୱର—ପୁଂ.ବି. (୬ତତ୍) ବ୍ରହ୍ମା ।

ବେଦୋକ୍ତ—ତ୍ରି. ବିଂ. (୭ତତ୍) ଶ୍ରୁତିକଥିତ ବେଦବାକ୍ୟ, ବେଦରେ ଲେଖା ଯାଇଥିବା ।

ବେଦୋକ୍ତି—ସ୍ତ୍ରୀ.ବି.(୬ତତ୍)ବେଦବାକ୍ୟ, ବେଦର କଥା । [ ସୂର୍ଯ୍ୟ ।

ବେଦୋଦୟ—ପୁଂ.ବି.(ବେଦ+ଉଦୟ)

ବେଦୋଦିତ—ତ୍ରି. ବିଂ. (୭ତତ୍) ବେଦୋକ୍ତ ଦେଖ ।

ବେଦୋପକରଣ—ପୁଂ. ବି. ( ୬ତତ୍ ) ବେଦାଙ୍ଗ । [ ଶିକ୍ଷା ।

ବେଦୋପଗ୍ରହଣ—କ୍ଲୀ. ବି. ବେଦ ପରି-

ବେଦୋପସ୍ଥାନିକା—ସ୍ତ୍ରୀ.ବି.ବେଦ ରକ୍ଷାର ସ୍ଥାନ ।

ବେଧବ୍ୟ—ତ୍ରି. ବିଂ. ବେଧନଯୋଗ୍ୟ, ବେଧ୍ୟ ।

ବେଦ୍ଧା—ପୁଂ.ବିଂ. ବେଧକାରୀ ।

ବେଦ୍ୟ—ବିଂ. ( ବିଦ୍+ମି.ଯ ) ଯାହା ଜାଣିବା ଉଚିତ, ଜ୍ଞେୟ, ବୋଧ୍ୟ, ସାକ୍ଷାତ୍ କାର୍ଯ୍ୟ, (ଗ୍ରା.ବି) ପରଂବ୍ରହ୍ମ ।

ବେଧ—ପୁଂ.ବି. ( ବିଧ୍+ଅ ) ବସ୍ତୁର ସ୍ଥୂଳତାର ପରିମାଣ, ଫୋଡ଼ିବା, ଜ୍ୟୋତିଷୋକ୍ତ ଗ୍ରହସଂସ୍ଥାନବିଶେଷ, ଛିଦ୍ରକରଣ,(ଗ୍ରା.ବି) ସ୍ତ୍ରୀର ପର ପୁରୁଷ ସଙ୍ଗମ, ଜାରଜ ସନ୍ତାନ ।

ବେଧକ—ବି. ( ବିଧ୍+ଅକ ) ଧନିଆଁ, ଗର୍ଭିତ ଧାନ୍ୟ, କର୍ପୂର, ଅମ୍ଳବେତସ, (ପୁଂ.ବି) ବିଦ୍ଧକାରକ, ଯେ ଫୋଡ଼େ କରେ ।

ବେଧଛୁଆ—ଗ୍ରା.ବି. ଜାରଜ ସନ୍ତାନ ।

ବେଧଡ଼କ—ଗ୍ରା. ବିଂ. ନିର୍ଭୟ, ନିଶ୍ଚିନ୍ତ, ଅପରିମିତ ।

ବେଧନ୍—ପ୍ରା.(ବାମଣ୍ଡା) ବି. ନିହଣ ।

ବେଧନ—ବି. (ବିଧ୍+ଅନ) ଭେଦନ, ବିଦ୍ଧକରଣ ।

ବେଧନିକା—ସ୍ତ୍ରୀ.ବି. ମଣିଶଙ୍ଖାଦି ବେଧନୋପକରଣ, ବେଧନୀ ଦେଖ ।

ବେଧନୀ—ସ୍ତ୍ରୀ.ବି. ( ବିଧ୍+ଅନ+ଈ ) ମଣିଆଦି ଫୋଡ଼ିବାର ଛୁଞ୍ଚି,ଫୋଡ଼ଣୀ, ଭଅଁର । [ଭେଦ୍ୟ ।

ବେଧନୀୟ—ବିଂ. ( ବିଧ୍+ମି.ଅନୀୟ )

ବେଧପକା(କେ)ଇବା—ଗ୍ରା. କ୍ରି. (ସ୍ତ୍ରୀ ପକ୍ଷରେ) ପର ପୁରୁଷ ସଙ୍ଗମ କରିବା ।

ବେଧପିଲା—ଗ୍ରା.ବି. ଜାରଜ ସନ୍ତାନ ।

ବେଧବୁଜୁଲା(ଲି)—ଗ୍ରା.ବି. ପ୍ରସବାନ୍ତେ ଅବୈଧ ପ୍ରଣୟୋତ୍ପନ୍ନ ଭ୍ରୂଣ ବା ସନ୍ତାନାଦିକୁ ଗୋପନ କରିବା ନିମନ୍ତେ ବେଧୋଇ ସ୍ତ୍ରୀ ବାନ୍ଧିଥିବା ପୁଡ଼ା, (ଲ. ଅର୍ଥ) କୌଣସି ଗୋପନୀୟ ବସ୍ତୁ ।

ବେଧମୟ—ତ୍ରି.ବିଂ. ଛିଦ୍ରଯୁକ୍ତ ।

ବେଧମୁଖ୍ୟକ—ପୁଂ. ବି. (ବେଧମୁଖ୍ୟ+କ) ହରିଦ୍ରାବୃକ୍ଷ, କଞ୍ଚାହଳଦୀ ।

ବେଧମୁଖ୍ୟା—ସ୍ତ୍ରୀ.ବି. କସ୍ତୁରୀ ।

ବେଧଶାଳା—ଗ୍ରହ ନକ୍ଷତ୍ରାଦିର ଗତି-ବିଧି ପର୍ଯ୍ୟବେକ୍ଷଣାଦି ହେତୁ ନିର୍ମିତ ମାନମନ୍ଦିର ।

ବେଧସ—କ୍ଳୀ.ବି. (ବେଧସ୍+ଅ) ବ୍ରହ୍ମ-ତୀର୍ଥ, ଅଙ୍ଗୁଷ୍ଠମୂଳ, ବୁଢ଼ା ଆଙ୍ଗୁଠିର ମୂଳ ।

ବେଧାଃ—ପୁଂ.ବି.(ବିଧ୍+କ.ଅସ୍)ବିଷ୍ଣୁ, ବିଧାତା, ସୂର୍ଯ୍ୟ, ପଣ୍ଡିତ, ଦକ୍ଷପ୍ରଭୃତି ସ୍ରଷ୍ଟା, ଶ୍ୱେତାର୍କବୃକ୍ଷ, ଅନଙ୍ଗଙ୍କ ପୁତ୍ର ।

ବେଧାଡ଼ି—ଗ୍ରା.ବି°.ଏକ ସରଳ ରେଖାରେ ନଥିବା, ବେଧାଗ ।

ବେଧାଗ—ଗ୍ରା.ବି. ବେନିୟମ, ଗୋଳ-ମାଳ,(ଗ୍ରା.ବି°) ଅନିୟମିତ, ରୀତିବିରୁଦ୍ଧ

ବେଧିତ—ପୁଂ. ବି°.(ବିଧ୍+ମି.ତ) ବିଦ୍ଧ କରାଯାଇଥିବା, ଛିଦ୍ରିତ ।

ବେଧିନୀ—ସ୍ତ୍ରୀ.ବି.(ବେଧିନ୍+ଈ)ରକ୍ତପା, ଜୋକ,ମେଥିକା, ବେଧକର୍ତ୍ତ୍ରୀ ।

ବେଧୀ—ପୁଂ.ବି°. (ବିଧ୍+ଇନ୍)ବେଧକ ଦେଖ ।

ବେଧୂଆ—ଗ୍ରା.ପୁଂ.ବି°.ଜାରଜ, ପର ସ୍ତ୍ରୀ-ରତ, (ସ୍ତ୍ରୀ) ବେଧୁଇ ।

ବେଧୁଣୀ—ପ୍ରା.(ହିନ୍ଦି)ବି. ନହୁଣ ।

ବେଧୂମ୍—ଯା.ବି°. ବେକାୟୁ, ଅତିରକ୍ତ, ଅତ୍ୟନ୍ତ ।

ବେଧ୍ୟ—କ୍ଳୀ. ବି. (ବିଧ୍+ମି.ଯ) ଲକ୍ଷ୍ୟ, ଶରବ୍ୟ, (ବି°) ବେଧମୟ ।

ବେନ—ପୁଂ. ବି.ପ୍ରଜାପତି, ପୃଥୁରାଜାଙ୍କ ପିତା ।

ବେନଜର୍—ଯା. ବି. ତତ୍ତ୍ୱାବଧାରଣର ଅଭାବ, ବେଅନୁଗ୍ରହ ଦୃଷ୍ଟି । [ ସ୍ଥାନ ।

ବେନଜିର—ଯା.ବି°. ବେଅନ୍ଦାଜ, ଅନୁ-

ବେନ(ଲ)ବଜ୍—ଯା.ବି°. ଅଶୁଦ୍ଧ ।

ବେନସିବ୍—ଯା. ବି°. ହତଭାଗା, (ବି) ମନ୍ଦଭାଗ୍ୟ ।

ବେନାବା—ମୁସଲମାନ୍ ଫକୀର ସମ୍ପ୍ର-ଦାୟବିଶେଷ । [ ନାମ ।

ବେନାମ—ଯା. ବି. ଅନ୍ୟ ନାମ, କଳ୍ପିତ

ବେନାମି—ଯା. ବି°. ଅନ୍ୟ ନାମରେ ପ୍ରକାଶିତ ବା କ୍ରୀତ ହୋଇଥିବା,ନାମ-ବିହୀନ ।

ବେନାରସ୍—ଗ୍ରା.ବି. ବନାରସ୍,କାଶୀ ।

ବେନି—ଗ୍ରା. ବି°. ଦୁଇସଂଖ୍ୟକ, ଉଭୟ

ବେନିଅ(ହୋ)ଳ୍—ଗ୍ରା.ବି. ବସ୍ତ୍ରରଣ ।

ବେନିଏ(ଏଁ)—ଗ୍ରା.ସର୍ବ. ଦୁହେଁ ଉଭୟେ, ଦୁଇଜଣଯାକ ।

ବେନିକୁଳ—ଗ୍ରା.ବି. ସ୍ତ୍ରୀମାନଙ୍କର ବାପ-ଘର ଓ ଶାଶୁଘର ।

ବେନିମୁ(ହ)ତ(ଡ)—ଗ୍ରା. ବି°. କୃତଘ୍ନ, ଅଣବିଶ୍ୱାସୀ, ( ଗ୍ରା.ବି ) କୃତଘ୍ନତା, ନିମକହାରାମି, ଦୁର୍ଭାଗ୍ୟ ।

ବେନିୟାନ୍—ଗ୍ରା.ବି.ଅଣ୍ଟା ପର୍ଯ୍ୟନ୍ତ ଲମ୍ବ ଜାଲବୁଣା କୁରୁତା, ଗେଞ୍ଜି ।

ବେନିୟମ୍—ଗ୍ରା.ବି. ଅନିୟମ, ଅଶୃଙ୍ଖଳ ।

ବେନିଶାପ(ଫ)—ଯା.ବି ଓ ବି°.ବେଇନ୍-ଶାପ୍ ଦେଖ ।

ବେନୁ—ଗ୍ରା.ବି. ବେଣୁ, ବଂଶୀ ।

ବେନୁପାଣି—ଗ୍ରା.ବି. ଶ୍ରୀକୃଷ୍ଣ ।

ବେନ୍ଦରା—ପ୍ରା.(ବସ୍ତର)ବି.ପାତମାଙ୍କଡ଼ ।

ବେନ୍ଦା—ଗ୍ରା. ବି. ମାଛ ଧରିବାପାଇଁ ବ୍ୟବହୃତ ଏକପ୍ରକାର ବାଉଁଶ କାଠିର ଫାନ୍ଦ ।

ବେନ୍ଦାଳ—ଗ୍ରା.ବି. ଜଗର, ଏକଜିଦ୍ ।

ବେନ୍ଦ୍ରୀ—ପ୍ରା.(ସମ୍ବ)ସ୍ତ୍ରୀ.ବି. କୁତ୍ସିତା ସ୍ତ୍ରୀ ।

ବେପଥୁ—ପୁଂ. ବି. ( ବେପ୍+ଭା.ଅଥୁ ) କମ୍ପ, କମ୍ପନ ।

ବେପଥୁମାନ୍—ପୁଂ. ବି°. (ବେପଥୁ+ମତ୍) କମ୍ପଯୁକ୍ତ, (ସ୍ତ୍ରୀ) ବେପଥୁମତୀ ।

ବେପନ—କ୍ଳୀ.ବି. (ବେପ+ଅନ)କମ୍ପନ, ବାତ ବ୍ୟାଧି ।

ବେପମାନ—ତ୍ରି.ବି°. (ବେପ+କ.ଆନ) କମ୍ପମାନ,ଯେ କମ୍ପୁଅଛି, (ସ୍ତ୍ରୀ) ବେପ-ମାନା ।

ବେପରଦା—ଯା.ବି°. ଉନ୍ମୁକ୍ତ ଆବରଣ-ହୀନ, ଖୋଲା, ନିର୍ଲଜ୍ଜ, ବେଇଜ୍ଜତ ।

ବେପରବା—ଯା.ବି°. ନିର୍ଭୟ, ନିଶ୍ଚିନ୍ତ ।

ବେପସନ୍ଦ—ଯା.ବି°. ଅମନୋମତ,ଗର-ପସନ୍ଦ, ବିଶ୍ୱାସର ଅଯୋଗ୍ୟ ।

ବେପାଞ୍ଚ—ଗ୍ରା.ବି.ଗଣନାରେ ଭୁଲ,(ଗ୍ରା.ବି) ଅସୁବିଧାଜନକ ।

ବେପାର୍—ଗ୍ରା.ବି°. ଅକୂଳ (ସମୁଦ୍ର) ।

ବେପାର—ଗ୍ରା. ବି. ବ୍ୟବସାୟ, ପେଶା, ଘଟଣା, ପାଇଟି, କାମ, ଜୀବନୋପାୟ

ବେପାରବଣିଜ—ଗ୍ରା.ବି. ବ୍ୟବସାୟ ।

ବେପାରୀ—ଗ୍ରା.ବି°. ବ୍ୟବସାୟୀ, ବଣିକ, ଖୋଚରା ବେପାରୀ ବା ଦୋକାନୀ,(ପ୍ରା. ଗଞ୍ଜା.ବି) ଗଞ୍ଜାମର ପାଟକବିଶେଷ ।

ବେପୀର—ଯା. ବି°. ଗୁରୁହୀନ, କୃତଘ୍ନ, ନାସ୍ତିକ ।

ବେଫରକତ(ଡ)—ଯା. ବି°. ଅପ୍ରଶସ୍ତ, ସଂକୀର୍ଣ୍ଣ ।

ବେଫାଇ(ଏ)ଦା—ଯା.ବି°. ଲାଭବିହୀନ, ବୃଥା, ଅନର୍ଥକ, ଅକାମିକା ।

ବେଫାସ—ଯା.ବି°. ଅକଥ୍ୟ, ଅପ୍ରକାଶ୍ୟ, ଅସଂବଦ୍ଧ, ବନ୍ଧନହୀନ, (ଯା.ବି)ବିପଦ, ଅଖାଡ଼ିଆ ଅବସ୍ଥା ।

ବେଫାଙ୍କ—ଯା. ବି°. ବ୍ୟବଧାନରହିତ

ବେଫିକି(କ)ର—ଯା. ବି°. ଆଶ୍ରୟହୀନ, ନିରୁପାୟ, କାର୍ଯ୍ୟ କର୍ମରହିତ, ନିଶ୍ଚିନ୍ତ

ବେଭାର--ଗ୍ରା.ବି.(ସଂ-ବ୍ୟବହାର)ଆଚରଣ, ରୀତି, ସାମାଜିକ ପ୍ରଥାନୁସାରେ ବନ୍ଧୁ-ଘରକୁ ଦିଆଯିବା ଉପଢୌକନ, ଉପ-ଭୋଗ, ବାଣିଜ୍ୟ, ସାଂସାରିକ ବିଷୟ କର୍ମ, କୁଳ ମର୍ଯ୍ୟାଦାକାରଣ, କ୍ଷମତା ।

ବେଭାରଆ—ଗ୍ରା. ବି°. ବେଭାରି ଦେଖ, ସାଧାରଣ, ବିଶେଷତ୍ୱଶୂନ୍ୟ ।

ବେଭାରି—ଗ୍ରା.ବି°. ବ୍ୟବସାୟୀ, ବିଷୟ-ବୁଦ୍ଧିସମ୍ପନ୍ନ, ( ଗ୍ରା. ବି ) ବେପାରୀ, ଘରର ମାମଲତକାର ।

ବେଭାରେ—ଗ୍ରା. କ୍ରି. ବି°. ପ୍ରକୃତ ପକ୍ଷେ, ପରା ।

ବେମ—ବି. (ବେ+ଣ.ମନ୍) ମାକୁ,ତନ୍ତ

ବେମଉକା—ଯା. ବି. ଅଖାଡ଼ୁ, ଅସୁବିଧା, ଅସଙ୍ଗତ, ଅଯୋଗ୍ୟତା, (ବି°) ଅଖା-ଡ଼ିଆ,ଅସାମୟିକ,ସମୟବିରୁଦ୍ଧ,ଅଯୋଗ୍ୟ, ସ୍ଥାନଭ୍ରଷ୍ଟ ।

ବେମକ୍ଦୁର—ଯା. ବି°. ଅକ୍ଷମ, ଅପା-ରଗ, କ୍ଷମତାରହିତ ।

ବେମକ୍ଦୁର—ଯା. ବି. ଅକ୍ଷମତା, ଋଣ ପରିଶୋଧ କରିବାରେ ଅସମର୍ଥତା ।

ବେମଜା—ଯା. ବିଂ. ବିସ୍ବାଦ, ପାଣିଚଆ

ବେମତ୍ଲବ୍—ଯା. ବିଂ. ଉଦ୍ଦେଶ୍ୟହୀନ, ନିଃସ୍ବାର୍ଥ, ଅର୍ଥହୀନ ।

ବେମନ—ପୁଂ.ବି.(ବେ + ମନ)ବାପଦଣ୍ଡ, ମାଜୁ,ତନ୍ତ୍ର,(ଗ୍ରା.ବି)ମତଭେଦ,ବିବାଦ ।

ବେମନାସଙ୍ଗ(ବ୍)—ଯା. ବିଂ. ଅପସନ୍ଦ, ଅଯଥା, ଅଯୋଗ୍ୟ ।

ବେମରଜ୍ଜି—ଯା.ବିଂ. ଅସନ୍ତୁଷ୍ଟ, ଯାହାର ମନୋଗତ ଭାବ ବୁଝାଯାଏ ନାହିଁ ।

ବେମରମତ୍(ତ)—ଯା. ବିଂ. ଯାହା ମରାମତ ହୋଇ ନାହିଁ, ଜୀର୍ଣ୍ଣ, ଅସଂସ୍କୃତ ।

ବେମର୍ଦ୍ଦା—ଯା.ବିଂ. ଅମନୁଷ୍ୟ,କାପୁରୁଷ, ଭୀରୁ ।

ବେମର୍ଦ୍ଦାନା—ଯା. ବି. କାପୁରୁଷତା ।

ବେମର୍ଯ୍ୟାଦା—ଗ୍ରା. ବି. ଅପମାନ, ଅସମ୍ମାନ,ଗ୍ରା.ବିଂ,ଅପମାନିତ,ଅସମ୍ମାନିତ ।

ବେମହତ(ବ)—ଗ୍ରା. ବି. ଅସମ୍ମାନ,ଅସଂଭ୍ରମ, ଅଭଦ୍ରତା ।

ବେମହତ—ଗ୍ରା. ବିଂ. ବେଇଜ୍ଜତ, ଅସମ୍ମାନିତ, ଅଭଦ୍ର ।

ବେମାର—ଯା. ବି. ରୋଗ, ପୀଡ଼ା ।

ବେମାରିଆ—ଗ୍ରା.ବିଂ. ରୁଗ୍ଣ, ରୋଗଗ୍ରସ୍ତ ।

ବେମାଲୁମ୍—ଯା. ବି. ଅଗୋଚର, ଅବିଦିତ, ଅଜ୍ଞାତ, ଅବୋଧ ।

ବେମିଆଦ(ଦ)—ଯା.ବିଂ. ଅସୀମ,ଯେଉଁ ବିଷୟରେ ମିଆଦ ବା ସମୟର ସୀମା ନିର୍ଦ୍ଧାରିତ ନ ଥାଏ, ସ୍ଥାୟୀ ।

ବେମିହନତ୍(ତ)—ଯା. ବିଂ. ସୁସ୍ତି, ଯେ ପରିଶ୍ରମ କରେ ନାହିଁ, ଅଲସୁଆ ।

ବେମୁକାବିଲ—ଯା. ବିଂ. ଯାହା ମୁକାବିଲ ବା ପରୀକ୍ଷା ହୋଇ ନ ଥାଏ ।

ବେମୁକାମ୍—ଯା. ବିଂ. ଗୃହଶୂନ୍ୟ ।

ବେମୁରବି—ଯା. ବି. ରକ୍ଷକ ବା ଅଭିଭାବକବିହୀନ, (ଲ.ଅର୍ଥ) ଉଚ୍ଛୃଙ୍ଖଳ ।

ବେମୁରୱତ(ବ)—ଯା. ବିଂ. ନିର୍ଲଜ୍ଜ, ମର୍ଯ୍ୟାଦାହୀନ, ଅପମାନକାରକ ।

ବେମୁଲାକତ୍(ତ)—ଯା.କ୍ରି. ବିଂ.ଦେଖାସାକ୍ଷାତ୍ ନ ହୋଇ, (ବି) ସାକ୍ଷାତର ଅଭାବ ।

ବେମୁଲାଜ୍ୟା—ଯା. ବି ଓ ବିଂ.ବେମୋହବତ୍ ଦେଖ ।

ବେମୂଲ—ଗ୍ରା. ବି. ଅତି ବେଶୀଦାମ୍ ଦାମ, ଚଢ଼ାଦାମ୍ ।

ବେମୋହବତ୍—ଯା. ବି. ଚକ୍ଷୁଲଜ୍ଜାର ଅଭାବ, ଉପରୋଧାଦି ରକ୍ଷା ନକରିବା, ନିର୍ମମତା, (ବିଂ) ଯାହାର ଚକ୍ଷୁଲଜ୍ଜା ନାହିଁ, ନିର୍ଦ୍ଦୟ, ନିର୍ମମ ।

ବେମୋହବତିଆ—ଗ୍ରା. ବିଂ. ବେମୋହବତ୍ ଦେଖ ।

ବେର୍—ପ୍ରା. (ବସ୍ତର) ବି. ବେଳ ।

ବେରଜ(ଜ)—ଯା. ବି. ଯେଉଁ ହିସାବର ନିର୍ଦ୍ଦିଷ୍ଟ ସଂଖ୍ୟାସବୁ କେବଳ ଗୋଟିଏ ଭାଗରେ ମିଶାଣ କରାଯାଏ । [ ଜମି ।

ବେର୍ନା—ପ୍ରା. (ସମ୍ବ) ବି. ଅଲ୍ପଗନ୍ଧର

ବେର୍ପେଲ—ଗ୍ରା. ବିଂ. ଓ କ୍ରି. ବିଂ. ବଳପଣ ବା ଜବରଦସ୍ତି ବା ଅନାହୂତ ରୂପେ ।

ବେର—ବି.(ଵୀ ବା ଅଜ୍ + କ.ର)ଶରୀର, ଦେହ, କୁଙ୍କୁମ, ବାଇଗଣ ।

ବେରକ—ବି. (ବେର + କ) କର୍ପୂର ।

ବେରଙ୍ଗ—ଯା.ବି. ଅନ୍ୟରଙ୍ଗ,ବର୍ଣ୍ଣାନ୍ତର, ପ୍ରେରକ ଡାକଟିକଟ ନ ମାରି ପଠାଇବା ଚିଠି, (ଯା.ବିଂ) ଅନ୍ୟବର୍ଣ୍ଣଯୁକ୍ତ, ବିବର୍ଣ୍ଣ, ପ୍ରଭାହୀନ ।

ବେରଟ—ବିଂ. ମିଶ୍ରୀକୃତ, ନୀଚ, ( ବି ) ବଦରୀଫଳ ।

ବେରଣା—ଗ୍ରା. ବି. ପାଟଜମି,ବେଣାପାଟ, ଗନ୍ଧରାଜମି ।

ବେରଣ୍ଡ—ଗ୍ରା. ବି. ମୁଖବ୍ରଣ ।

ବେରସିକ—ଗ୍ରା. ବିଂ,ଅରସିକ,ରସଜ୍ଞାନହୀନ, କବିତ୍ବବିହୀନ ।

ବେରସିଦ୍—ଗ୍ରା. ବିଂ. ରସିଦ୍ ବା ପ୍ରାପ୍ତିସ୍ବୀକାର ପତ୍ର ନିଆ ନ ଯାଇ ଦିଆଯାଇଥିବା (ବସ୍ତୁଆଦି) ।

ବେରା—ପ୍ରା. (ମେଦନୀପୁର) ବି. ମାହିଷ୍ୟ କୈବର୍ତ୍ତମାନଙ୍କର ବଂଶ ପାଧିବିଶେଷ ।

ବେରାଜ୍(ଜ)—ଗ୍ରା. ବି. ଅସନ୍ତୋଷ,ଅସମ୍ମତି, ଅସ୍ବୀକାର ।

ବେରାମ୍(ମି)—ଯା. ବି. ବେମାର,ରୋଗ ।

ବେରାର—ମଧ୍ୟ ଭାରତର ଅନ୍ତର୍ଗତ ଗୋଟିଏ ସ୍ବତନ୍ତ୍ରପ୍ରଦେଶ ।

ବେରାହା—ଯା. ବି. ବିପଥ, କୁମାର୍ଗ, ଅନିୟମ, ଭ୍ରାନ୍ତ ।

ବେରିବେରି—ଯା. ବି. ଭୟଙ୍କର ଫୁଲାରୋଗ ବିଶେଷ ।

ବେରୁଆଁ—ଗ୍ରା. ବି. ଜଳଜ ଦୀର୍ଘତୃଣ ବିଶେଷ (ଏଥିରେ ହେଁସ ମନ୍ଦୁରୀଆଦି ହୁଏ) ।

ବେରୂପ—ଗ୍ରା. ବିଂ. କୁତ୍ସିତରୂପ ।

ବେରୂପା—ଗ୍ରା. ବିଂ. ବିଶ୍ରୀ, ଶ୍ରୀହୀନ, ଅସୁନ୍ଦର, ବିବର୍ଣ୍ଣ । [ ଅବସ୍ଥା ।

ବେରୋଜଗାର—ଯା. ବି. ଆୟବିହୀନ

ବେରୋଜଗାର—ଯା.ବିଂ. ଅର୍ଜନରହିତ, ଆୟହୀନ ।

ବେଲ୍—ପ୍ରା. (ସମ୍ବ) ବି. ବେଳ, କାଳ, ଅବସର ଓଳ, ସୂର୍ଯ୍ୟ, (ଯା.ବି) ପିଟାଘଣ୍ଟା, ଲୁଗାର ଗାଣ୍ଠି,ଯାମିନ୍, (ଯା.ବି.) ମଲ୍ଲୀଫୁଲ, ଲତା, ସୂତାଦ୍ବାରା ଲତା ଆକାରରେ ବୁଣାହୋଇଥିବା ଲୁଗାର ଧଡ଼ି ।

ବେଲ୍ଉଦବା—ପ୍ରା. (ସମ୍ବଲ) କ୍ରି. ବି. ସୂର୍ଯ୍ୟୋଦୟ, ସୂର୍ଯ୍ୟ ଉଦିତ ହେବା ।

ବେଲ୍ଟିନ୍(ଙ୍ଗ)—ଯା.ବି. କାଗଜରୁ କାଳି ଶୋଷିବାର କାଗଜ ।

ବେଲ୍ଦାର୍—ଯା. ବିଂ. କାରୁକାର୍ଯ୍ୟଯୁକ୍ତ ଧଡ଼ି ବା ଫିତା ବସାଯାଇଥିବା (ଲୁଗା) ।

ବେଲ୍ପହର—ପ୍ରା. ( ମେଦନୀପୁର ) ବି. ଓପର ଓଳ ।

ବେଲ୍ବୁଟା—ଯା.ବି. ଲୁଗାରେ ଓ ଲୁଗା ଧଡ଼ିରେ ଛୁଞ୍ଚିଦ୍ବାରା କରାଯାଇଥିବା ଫୁଲ ଲତା ଓ ବିନ୍ଦୁମାନ ।

ବେଲ୍ବୁଡ଼ା—ପ୍ରା. (ସମ୍ବଲ) ବି. ସନ୍ଧ୍ୟା, ସୂର୍ଯ୍ୟାସ୍ତ ।

ବେଲ—ବି. (ବିଲ + ଅ) ଉଦ୍ୟାନ, (ଗ୍ରା.ବି) ବେଳା, ସମୟ, ଅବସର,

ଉପଯୁକ୍ତ ସମୟ, ଥର, ବାର, ବସ୍ତୁ, ପାଳି ।
ବେଲ—ଗ୍ରା. ବି. ସୁନାମପ୍ରସିଦ୍ଧ ଫଳବିଶେଷ, ଶ୍ରୀଫଳ ।
ବେଲଉଣ୍ଡିବା—ଗ୍ରା. କ୍ରି. ସୁବିଧା ଜନକ ସମୟ ବା ସୁଯୋଗ ଅନ୍ୱେଷଣକରିବା ।
ବେଲଓ(ଡ଼)ଡା—ପ୍ରା. (ବାଲେଶ୍ୱର) ବି. ଉପରଓଳି, ଅପରାହ୍ଣ ।
ବେଲକାଲ—ଗ୍ରା. ବି. ସମୟ, ଉପଯୁକ୍ତ ସମୟ ।
ବେଲକୁ—ଗ୍ରା. ଅବ୍ୟ. ଏକ ନିର୍ଦ୍ଦିଷ୍ଟ ସମୟରେ, ଭବିଷ୍ୟତ୍ତରେ ।
ବେଲକୁବେଲ—ଗ୍ରା. କ୍ରି. ବିଂ. ସମୟାନୁକ୍ରମେ, କ୍ରମେ କ୍ରମେ ।
ବେଲକ୍ଷ—ପ୍ରା. (ଗଞ୍ଜାମ) ବିଂ. ମୂଲ୍ୟହୀନ ।
ବେଲଗ୍—ଗ୍ରା.ବିଂ. ଅଫଳଗ୍ନ, ପୃଥକୀକୃତ
ବେଲଗଡ଼ା(ଡ଼େ)ଇବା—ଗ୍ରା. କ୍ରି. ନିର୍ଦ୍ଧାରିତ ସମୟ ଅତିବାହିତ କରାଇବା, ସମୟ ବୃଥା ବ୍ୟୟ କରିବା ।
ବେଲଗଡ଼ିବା—ଗ୍ରା.ବି. ନିର୍ଦ୍ଧାରିତ ସମୟ ଅତିକ୍ରାନ୍ତ ହେବା, ଖରା ଲେଉଟିବା, ଦ୍ୱିପ୍ରହରବେଳ ଟପିଯିବା ।
ବେଲଙ୍କ(ଙ୍ଗ)—ଗ୍ରା.ବି. ଯୁଦ୍ଧାସ୍ତ୍ରବିଶେଷ ।
ବେଲଜନ୍ତ୍ର—ଯା. ବିଂ. ସ୍ୱାଦହୀନ ।
ବେଲଜୟମ୍—ୟୁରୋପାନ୍ତର୍ଗତ ଗୋଟିଏ କ୍ଷୁଦ୍ର ରାଜ୍ୟ ।
ବେଲଣ—ଗ୍ରା.ବି. ରୁଟିକୁ ବେଲିବା କ୍ରିୟା
ବେଲଣା—ଗ୍ରା. ବି. ରୁଟି ବେଲିବା ନିମନ୍ତେ ଶିଳପୁଆପରି କାଷ୍ଠଖଣ୍ଡ ।
ବେଲଣାକାଠି—ଗ୍ରା. ବି. ଯେଉଁ କାଠର ଶିଳପୁଆ ଦ୍ୱାରା ରୁଟି ବେଲାଯାଏ ।
ବେଲଣାପିଢ଼ା—ଗ୍ରା. ବି. ଯେଉଁ କାଷ୍ଠଫଳକ ବା ପୀଠ ଉପରେ ମଇଦାର ଗୁଳାରଖି ବେଲଣା କାଠିଦ୍ୱାରା ରୁଟି ବେଲିବାକୁ ହୁଏ ।
ବେଲନ—କ୍ଲୀ. ବି. ହିଙ୍ଗୁ । [ ପତ୍ର ।
ବେଲପତ୍ର(ତ୍ରୀ)—ଗ୍ରା. ବି. ବେଲଗଛର
ବେଲପତ୍ରୀଚଢ଼ାଇବା—ଗ୍ରା.କ୍ରି. ଶିବମୂର୍ତ୍ତି ଉପରେ ବେଲପତ୍ରୀ ଅର୍ପଣ କରିବା, (ଲ.ଅର୍ଥ) କୌଣସି ବ୍ୟକ୍ତିଙ୍କୁ ଧନ ବା ଉପହାର ଦ୍ୱାରା ସନ୍ତୁଷ୍ଟ କରିବା ।
ବେଲବୁଡ଼—ଗ୍ରା. ବି. ସୂର୍ଯ୍ୟାସ୍ତ, ସନ୍ଧ୍ୟା ।
ବେଲବୁଡ଼ା(ଡ଼େ)ଇବା—ଗ୍ରା.କ୍ରି.କୌଣସି କାର୍ଯ୍ୟ କରିବା ପୂର୍ବରୁ ସନ୍ଧ୍ୟାହେବାର ଅବସ୍ଥା ଘଟାଇବା ।
ବେଲବୁଡ଼ିବା—ଗ୍ରା. ବି. ସୂର୍ଯ୍ୟାସ୍ତହେବା, ସନ୍ଧ୍ୟାହେବା ।
ବେଲବୁଝା—ଗ୍ରା.ବିଂ. ସମୟଜ୍ଞ,କାଳଜ୍ଞ ।
ବେଲମା—ପ୍ରା. (ଗଞ୍ଜାମ)ବି. ମାଚତନ୍ତ୍ରନାଡ଼ବିଶେଷ ।
ବେଲମୁରୁଦା—ଗ୍ରା. ବି. ପାଚିଲାବେଲର ଶଣକୁ ଚେକାଚେକା କରି କାଟି ଚିନିପାଗରେ ସିଝିକରି ତିଆରି କରାଯାଇଥିବା ମିଷ୍ଟାନ୍ନବିଶେଷ ।
ବେଲମ୍ବୁସ୍ତ—ଯା. ବିଂ. ଯେଉଁ କ୍ଷେତ୍ରର ବା ବସ୍ତୁର ନମ୍ବର ନ ଥାଏ ।
ବେଲଯିବା—ଗ୍ରା. ବି. ଦିବସର ଅବସାନ, ନିରୂପିତ ସମୟ ଟପିଯିବା ।
ବେଲରତରତ—ଗ୍ରା. ବି. ସୂର୍ଯ୍ୟାସ୍ତ, ମୁହୁଁସନ୍ଧ୍ୟା ।
ବେଲସୁଣ୍ଠା—ଗ୍ରା. ବି. କଞ୍ଚାବେଲକୁ କାଟି ତାହାକୁ ଔଷଧାର୍ଥ ବ୍ୟବହାର କରିବା ପାଇଁ ଶୁଖାଇ ରଖିଥିବା ଖଣ୍ଡମାନ ।
ବେଲସୁଁ(ହୁଁ)—ଗ୍ରା. ଅ.ଆଗରୁ, ପୂର୍ବରୁ, ସମୟ ଥାଉଁ ଥାଉଁ ।
ବେଲହେବା—ଗ୍ରା.ବି. କୌଣସି କାର୍ଯ୍ୟପାଇଁ ନିର୍ଦ୍ଧାରିତ ସମୟ ଉପସ୍ଥିତହେବା, କୌଣସି କାର୍ଯ୍ୟପାଇଁ ଅବସର ମିଳିବା ।
ବେଲା—ବି. (ବେଲ+କ.ଅ+ଆ)ବେଲ ସମୟ,କାଳ, ଦିବସ, ଦିବାଭାଗ,କାଳବିଭାଗ, ଇଂରେଜ ଏକଘଣ୍ଟା ପରିମିତ କାଳ, ହେଳା, ସୁବିଧା, ସୀମା, ସମୁଦ୍ର, ରାଗ, ରସ, ନଦୀର ବା ସମୁଦ୍ରର ତୀର, ଜଳ, ଜୁଆର, ଭଟ୍ଟା, ମର୍ଯ୍ୟାଦା, ବାକ୍, ପୀଡ଼ା, ହଠାତ୍ ମୃତ୍ୟୁ, ବୁଦ୍‌ବୁଦ୍, ରକ୍ତଫଳବିଶେଷ,ବୁଧଗ୍ରହଙ୍କ ଭାର୍ଯ୍ୟା, ଦିନର ଆଠଭାଗରୁ ଏକଭାଗ, ପ୍ରାୟ ୩ ଘଣ୍ଟା, ରୋଗ, ଈଶ୍ୱରଙ୍କର ଭୋଜନ, ଦନ୍ତମାଂସ, ଭୋଜନ ।
ବେଲ୍ଲ—ଗ୍ରା. ବି. କଂସା, ବଡ଼ କାଂସ୍ୟପାତ୍ର, ରୁଟିବେଲିବା କର୍ମ, ( ଯା.ବି ) ମଲ୍ଲୀଫୁଲ । [ ଓଳ ।
ବେଲାଓଡା—ପ୍ରା.(କନିକା) ବି. ଉପର-
ବେଲାକୂଳ—କ୍ଲୀ. ବି. ସମୁଦ୍ରକୂଳ, ତାମ୍ରଲିପ୍ତ ଦେଶ ।
ବେଲାଜ୍ୱର—ପୁଂ. ବି. ମରିବାବେଳେ ମୁମୂର୍ଷୁକୁ ଆକ୍ରମଣ କରିବା ଜ୍ୱର ।
ବେଲ୍ଲାଢ—ପ୍ରା. (ବସ୍ତର) ବି. ପିତୁଳଙ୍କ, ଗୃହଲଥା । [ ବିଶେଷ ।
ବେଲ୍ଲଦାନ—ଗ୍ରା. ବି. ଯୁଦ୍ଧୋପକରଣ
ବେଲାଧିପ—ପୁଂ. ବି. (ଜ୍ୟୋତିଷ) ଦିନମାନର ଏକାଦି କ୍ରମେ ଆଠଭାଗରୁ ପ୍ରତ୍ୟେକ ଭାଗର ଅଧିପତି ଗ୍ରହ ।
ବେଲାବ(ବା)ଲ—ଗ୍ରା. ବି. ମହାଭାରତୋକ୍ତ ଅସୁର ବିଶେଷ, ସଙ୍ଗୀତର ରାଗବିଶେଷ, ହିନ୍ଦୋଳରାଗର ସ୍ତ୍ରୀ ।
ବେଲାବେଲି—ଗ୍ରା.କ୍ରି. ବିଂ. ଶୀଘ୍ର,ଚଞ୍ଚଳ
ବେଲାଭୂମି—ବି. ସମୁଦ୍ରକୂଳ ।
ବେଲାମୃନ—ପୁଂ. ବି. ଗୋତ୍ରପ୍ରବର୍ତ୍ତକ ଋଷିବିଶେଷ ।
ବେଲାର—ପ୍ରା. (କୁଜଙ୍ଗ ଆଦି ତଳମାଳ) ଗୃହ ଆଡ଼େ ବାଲିକୁଦ ବେଷ୍ଟିତ ସମୁଦ୍ର ଉପକୂଳବର୍ତ୍ତୀ ଗ୍ରାମଜମି ।
ବେଲାଲ—ବି. ମହାଭାରତୋକ୍ତ ଅସୁର ବିଶେଷ । [ ବିଶେଷ ।
ବେଲ୍ଲିବଉ—ପୁଂ. ବି. ରାଜକର୍ମଗୃଷ୍ଟ
ବେଲ୍ଲି—ଗ୍ରା. ବି. ପରିହାସ, ଥଟ୍ଟା,ଭଙ୍ଗୀ, ଛଳ, କୌତୁକ, ଢଙ୍ଗ, ଛଟାଗାଲିବା, ରସିକତା, ମିଥ୍ୟାକଥା ।
ବେଲ୍ଲିଆ(ହା)—ଗ୍ରା. ପୁଂ.ବିଂ.ବେହେଲ୍, ଥଟ୍ଟେଲ, ଯେ ଥଟ୍ଟାଗାଲେ, ରସିକ ।
ବେଲ୍ଲିକରିବା—ଗ୍ରା.କ୍ରି. ବୁଟା ଗାଲିବା ।
ବେଲ୍ଲିକା—ସ୍ତ୍ରୀ.ବି. ବେଲାଭୂମି, ଉପକୂଳ, ଦେଶ, ତାମ୍ରଲିପ୍ତି ।
ବେଲ୍ଲିବା—ଗ୍ରା. କ୍ରି. ମଇଦାର ଗୁଳିକୁ ବେଲଣା ଦ୍ୱାରା ବଳିବା ।
ବେଲ୍ଲହାକ୍(କି)—ଗ୍ରା.ବି.ବସ୍ତୁରଣ, ଅନାଡ଼ୀ,

(ଗ୍ରା.ବଂ)ଯେ ପାଶୋର ପକାଏ, ଯାହାର ଅଟକଳର ଜ୍ଞାନ ନାହିଁ ।

ବେଲୁ(ଲୁଁ)—ଗ୍ରା. କ୍ରି. ବଂ. ଆଦ୍ୟରୁ, ପ୍ରଥମରୁ, ପୂର୍ବରୁ ।

ବେଲୁନ୍—ଯା. ବି. ବ୍ୟୋମଯାନ ।

ବେଲୁଚ—ଯା.ବଂ.ବେଲୁଚସ୍ଥାନ ସମ୍ବନ୍ଧୀୟ, (ବି) ବେଲୁଚସ୍ଥାନବାସୀ ।

ବେଲୁଚସ୍ଥାନ—ଯା.ବି. ଆଫଗାନ ସ୍ଥାନର ଦକ୍ଷିଣରେ ଥିବା ଇଂରାଜ ଅଧିକୃତଦେଶ

ବେଲୁର—ଗ୍ରା. ବି. ଖଟରେ ବୁଣାଯିବା ଫିତା, ଲେବାର୍, (ପ୍ରା. ଭଦ୍ରଖ) ବି. ଲଣ୍ଠନ ।

ବେଲେ—ଗ୍ରା. ଅବ୍ୟ. ଦିନକେ ଥରେ, ଓଳିଏ, (ଗ୍ରା. କ୍ରି. ବଂ.) ଥରେ ।

ବେଲେକ—ଗ୍ରା. କ୍ରି.ବଂ. ଥରେ ମାତ୍ର ।

ବେଲେକେ—ଗ୍ରା. କ୍ରି. ବଂ. ଥରକେ ।

ବେଲେବେଲେ—ଗ୍ରା. ଅବ୍ୟ. ସମୟ ସମୟରେ ।

ବେଲେଶ୍ୱର—ଗ୍ରା. ବି. ପୁରୀଠାରୁ ଗୃରି ପାଞ୍ଚ କୋଶ ଦୂରବର୍ତ୍ତୀ ସମୁଦ୍ର କୂଳରେ ଥିବା ବାଲେଶ୍ୱର ନାମକ ଗ୍ରାମ ଓ ତହିଁରେ ପ୍ରତିଷ୍ଠିତ ଶିବଲିଙ୍ଗ ।

ବେଲ୍ଲ—ବି. (ବେଲ୍ଲ+ଭା.ଅ) ବଡ଼ଙ୍ଗ, କମ୍ପନ, ଗମନ ।

ବେଲ୍ଲକ—ବି. ବଡ଼ଙ୍ଗ ।

ବେଲ୍ଲଜ—ବି. (ବେଲ୍ଲ+ଜନ୍+କ.ଅ) ଗୋଲମରିଚ ।

ବେଲ୍ଲନ(ଣ)—ବି. (ବେଲ୍ଲ+ଭା.ଅନ) ଲୁଣ୍ଠନ, ଭୂଇଁରେ ଗଡ଼ିବା, ଚଳନ, ସଞ୍ଚାଳନ, କମ୍ପନ, ବେଲଣା ।

ବେଲ୍ଲନୀ—ସ୍ତ୍ରୀ. ବି. (ବେଲ୍ଲ+ଅନ+ଈ) ମାଳାଦୂବା, ବଲ୍ଲୀଦୂବା ।

ବେଲ୍ଲନ୍ତର—ପୁଂ.ବି.ଖାରତରୁ,ବରବେଲ

ବେଲ୍ଲଭବ—କ୍ଲୀ. ବି. ମରଚ ।

ବେଲ୍ଲହଲ—ପୁଂ. ବି. କେଳନାଗର, ଲମ୍ପଟ, କାମୁକ ।

ବେଲ୍ଲି—ସ୍ତ୍ରୀ. ବି. (ବେଲ+ଇ) ଲତା, ବଲ୍ଲୀ, ମଲ୍ଲୀଫୁଲ ।

ବେଲ୍ଲିକା—ସ୍ତ୍ରୀ.ବି.ପୋଇଶାଗ,ଉପୋଦକା

ବେଲ୍ଲିକାଖ୍ୟା—ସ୍ତ୍ରୀ. ବି. ବୃକ୍ଷ ବିଶେଷ, ବେଲଶୁଣ୍ଠା ।

ବେଲ୍ଲିତ—ବି. ବଂ. କମ୍ପିତ, ଦୋଳିତ, ଲୁଣ୍ଠିତ, ବକ୍ର, କୁଟିଳ, (ବି) ଚଳନ, ଦୋଳନ, ଲୁଣ୍ଠନ । [ ବିଶେଷ

ବେଲ୍ଲିତକ—ପୁଂ. ବି. ବୈକରଞ୍ଜ ସର୍ପ-

ବେବର୍ତ୍ତି—ଗ୍ରା.ବି.ଅଧ୍ୟକ୍ଷ,ଉପାଧି ବିଶେଷ

ବେଶ୍—ଯା. ବଂ. ଆଚ୍ଛା, ଭଲ, ଉତ୍ତମ, ଶ୍ରେଷ୍ଠ, ଉତ୍କୃଷ୍ଟ, ପ୍ରଶଂସନୀୟ, ଖୁବ୍, ବହୁତ, ସୁନ୍ଦର । [ କଥା ।

ବେଶ୍‌କଥା—ଗ୍ରା. ବି. ଭଲ କଥା, ଆଚ୍ଛା

ବେଶ—ବି. (ବିଶ୍+ଅ)ସଜ୍ଜା,ପୋଷାକ, ବସ୍ତ୍ରଅଳଙ୍କାରାଦି ଦ୍ୱାରା ସଜବାଜହେବା, ବେଶ୍ୟାପଲ୍ଲୀ.ବେଶ୍ୟାଳୟ, ଗୃହ,ବସ୍ତ୍ର-ଗୃହ, ହର୍ମ୍ୟ, ପ୍ରବେଶ ପଣ୍ୟ ସ୍ତ୍ରୀ ।

ବେଶକ୍—ଯା.ବଂ. ନିଶ୍ଚୟ.ନିଃସନ୍ଦେହ, (କ୍ରି. ବଂ) ନିଶ୍ଚିତଭାବରେ, ନିଶ୍ଚିନ୍ତ-ଭାବରେ ଅଲବତ୍ତ ।

ବେଶକ—ପୁଂ.ବଂ.(ବିଶ୍+ଅକ)ପ୍ରବେଶ-କାରକ, ପ୍ରବେଶକାରୀ,(ବି) ଗୃହ ।

ବେଶକରିବା—ଗ୍ରା. କ୍ରି. ଅନ୍ୟବ୍ୟକ୍ତିକୁ ସଜ୍ଜିତ କରିବା ।

ବେଶକାରକ—ବି ଓ ବଂ. ପୁ. ଯେ କୌଣସି ବ୍ୟକ୍ତିର ବେଶବିନ୍ୟାସ କରେ

ବେଶକୁଳ—ସ୍ତ୍ରୀ.ବି.ବେଶ୍ୟା, କୁଳଟା ସ୍ତ୍ରୀ

ବେଶତ୍ୱ—ବି.(ବେଶ+ତ୍ୱ)ବେଶର ଭାବ ବା ଧର୍ମ ।

ବେଶଦାନ—ପୁଂ. ବି. ସୂର୍ଯ୍ୟଶୋଭା ।

ବେଶଧର—ପୁଂ. ବଂ. ଛଦ୍ମବେଶ, (ବି) ଜୈନ ସମ୍ପ୍ରଦାୟ ବିଶେଷ, ସଙ୍କରଜାତି ବିଶେଷ ।

ବେଶଧରିବା—ଗ୍ରା. କ୍ରି. ବେଶ ପରିଧାନ କରିବା, କୌଣସି ବେଶରେ ସଜ୍ଜିତ ହେବା ।

ବେଶଧାରକ—ପୁଂ.ବଂ. ଯେ ବେଶରେ ସଜ୍ଜିତ ହୋଇଥାଏ କୌଣସି ବେଶରେ ସଜ୍ଜିତ, (ବି) ଭଣ୍ଡତପସ୍ୱୀ, ବହୁରୂପୀ ।

ବେଶଧାରୀ—ପୁ. ବି. (ବେଶ+ଧୃ+ଇନ୍) କପଟତପସ୍ୱୀ, ସଙ୍କର ଜାତି-ବିଶେଷ ।

ବେଶନ—କ୍ଲୀ. ବି. (ବିଶ୍+ଅନ)ପ୍ରବେଶ, କ୍ଷୁଦ୍ର ସରୋବର, ଅଗ୍ନି ।

ବେଶନଦ—ପୁଂ. ବି. ନଦୀ ବିଶେଷ ।

ବେଶନ୍ତ—ପୁଂ. ବି. (ବିଶ୍+ଅନ୍ତ)କ୍ଷୁଦ୍ର ସରୋବର,ପଲ୍ୱଲ, କର୍ଦ୍ଦମ ।

ବେଶବନ୍ତ—ବି. ବଂ. (ବେଶ+ମନ୍ତ) ଯେ ବେଶ୍ୟାର୍ଥେ ଜୀବିକା ନିର୍ବାହ କରେ, ବେଶବିଶିଷ୍ଟ ।

ବେଶବଧୂ—ସ୍ତ୍ରୀ. ବି. ବେଶଯୋଷିତ୍, ବେଶ୍ୟା ।

ବେଶବନିତା—ସ୍ତ୍ରୀ.ବି. ବେଶ ସ୍ତ୍ରୀ,ବେଶ-ଯୋଷିତ୍ ।

ବେଶକବ—ଯା. ବଂ. ଅକାରଣ, ବୃଥା, ନିଷ୍ଫଳ,(କ୍ରି.ବଂ)ଅକାରଣରେ,ବୃଥାରେ

ବେଶବାର—ପୁଂ. ବି. ଧନିଆଁ ସୋରିଷ ଆଦିର ବଟା, ଗୋଲା, ଏକପ୍ରକାର ଛଅଣ ।

ବେଶବାସ—ପୁଂ.ବି.(୬ତତ୍)ବେଶ୍ୟାଗୃହ

ବେଶଭୂର୍—ଯା. ବଂ. ଅଧୀର, ଅସ୍ଥିର ।

ବେଶଭଙ୍ଗିବା—ପ୍ରା. (ପୁରୀ) ବି. ବେଶ-ରଚନା କରିବା, ବେଶ ହେବା ।

ବେଶଭାବ—ପୁଂ.ବି.ବେଶ ସଜ୍ଜାର ପରି-ପାଟୀ, ବେଶ୍ୟାର କାର୍ଯ୍ୟ ।

ବେଶଭୂଷା—ବି. ସାଜସଜ୍ଜା, ପୋଷାକ ଓ ଅଳଙ୍କାର ।

ବେଶଯୁବତୀ—ସ୍ତ୍ରୀ. ବି. ବେଶ୍ୟାରମଣୀ ।

ବେଶଯୋଷିତ୍—ସ୍ତ୍ରୀ. ବି. ବେଶ୍ୟା ।

ବେଶର—ପୁ. ବି. (ବେଶ+ର+ଅ) ଅଶ୍ୱତର, ଖଚର, (ଗ୍ରା. ବି) ବଟା ସୋରିଷ,ସୋରିଷ,ବାମ ନାକର ଗୁଣା

ବେଶରକା—ଯା. ବଂ. ସମ୍ପର୍କଶୂନ୍ୟ ।

ବେଶରଚନ(ନା)—ବି.(୬ତତ୍)ପୋଷାକ ଅଳଙ୍କାର ଚନ୍ଦନ ସୁଗନ୍ଧାଦି ଦ୍ୱାରା ସଜ୍ଜା

ବେଶରପାଣି—ଗ୍ରା. ବି. ବେଶରବଟା ମିଶିଥିବା ଜଳ,ବେଶରପ୍ରସ୍ତୁତ ତରକାରୀ

ବେଶରବଟା—ଗ୍ରା.ବି.ସୋରିଷକୁ ବାଟିବା

ବେଶରମ(ମା)—ଯା. ପୁଂ. ବଂ. ନିର୍ଲଜ୍ଜ

ବେଶମ୍—ପୁଂ. ବି. (ବେଶ+ଅମୁନ୍)

ବେଶ, ବଳ ।

ବେଶସ୍ତ୍ରୀ—ସ୍ତ୍ରୀ. ବି.ବେଶଯୋଷିତ୍,ବେଶ-କୁଳ ସ୍ତ୍ରୀ ।

ବେଶାଦ୍ଦ(ଦ)—ଗ୍ରା. ବି. ଶକ୍ତି, କ୍ଷମତା, ବଳ,ବ୍ୟବସାୟର ମୂଳପାଣ୍ଠି,ଦୋକା-ନର ଜିନସପତ୍ର ।

ବେଶାବୁତ୍(ତୁ)—ଯା, ବିଂ. ଅପ୍ରମାଣିତ ।

ବେଶି—କ୍ଲୀ.ବି. ସୂର୍ଯ୍ୟର ଅବସ୍ଥାନ ଗୃହ, (ଗ୍ରା.ବି) ବୃହତ୍, ଅଧିକ, ବିଶେଷ,(ଗ୍ରା. ବିଂ) ଅତ୍ୟଧିକ ପରିମାଣରେ ।

ବେଶିକ—କ୍ଲୀ. ବି. ଶିଳ୍ପବିଦ୍ୟା ।

ବେଶିକମ୍—ଯା, ବି. ଅଳ୍ପାଧିକ୍ୟ, କମି-ବେଶି, (ଗ୍ରା. ବିଂ) ଅଳ୍ପ ବା ଅଧିକ ।

ବେଶିଭାଗ—ଗ୍ରା. ବି. ଅଧିକାଂଶ ।

ବେଶୀ—ପୁଂ. ବି. ( ବେଶ+ଇନ୍ ) ବେଶଧାରୀ, ଆବେଶକାରୀ, ପରିଚ୍ଛଦ-ଯୁକ୍ତ, (ସ୍ତ୍ରୀ) ବେଶିନୀ ।

ବେଶୀକାନ୍ତା—ସ୍ତ୍ରୀ. ବି. ପୁତ୍ରଦାତ୍ରୀ ଲତା

ବେଶୁମାର୍(ର)—ଯା. ବିଂ. ଅସୁମାର, ଅଗଣ୍ୟ, ଅସଂଖ୍ୟ । [ ସ୍ଥାନ ।

ବେଶୁର—ଯା.ବିଂ,ବେହୋସ,ଚୈତନ୍ୟ-

ବେଶୋଭଗୀନ—ତ୍ରି, ବିଂ, ବଳବାନ୍ ।

ବେଶ୍ବର—ବି. ଅଶ୍ବତର ।

ବେଶ୍ମ—ବି. (ବିଶ୍+ମନ୍) ଗୃହ ।

ବେଶ୍ମକ—ବିଂ. ଗୃହ ସମ୍ବନ୍ଧୀୟ ।

ବେଶ୍ମକଳଙ୍ଗ—ପୁଂ. ବି. ଘରଚଟିଆ ଚଢ଼େଇ ।

ବେଶ୍ମକୂଳ—ପୁଂ. ବି. (ବେଶ୍ମ+କୂଳ+ଅ) ଗନ୍ଧମୂଷିକ, ଚୁଚୁନ୍ଦୁରୀ ।

ବେଶ୍ମନ୍—କ୍ଲୀ. ବି. (ବିଶ୍+ମନିନ୍) ଗୃହ

ବେଶ୍ମଭୂ—ସ୍ତ୍ରୀ.ବି. (ବେଶ୍ମନ୍+ଭୂ)ଗୃହ-କରଣ ଯୋଗ୍ୟ ଭୂମି, ଘର ।

ବେଶ୍ମବାସ—ପୁଂ. ବି. ବାସବେଶ୍ମ,ବାସ-ଗୃହ ।

ବେଶ୍ମସ୍ତ୍ରୀ—ସ୍ତ୍ରୀ, ବି. ବେଶ ସ୍ତ୍ରୀ, ବେଶ୍ୟା ।

ବେଶ୍ମାନ୍ତ—ବିଂ. ଗୃହାନ୍ତଃପୁର ।

ବେଶ୍ୟ—କ୍ଲୀ. ବି.(ବିଶ୍+ର୍ମି.ଯ)ବେଶ୍ୟା-ଳୟ, (ବିଂ) ପ୍ରବେଶାର୍ହ ।

ବେଶ୍ୟା—ସ୍ତ୍ରୀ. ବି. (ବେଶ୍+ଯ+ଆ) ସ୍ବନାମଖ୍ୟାତ ନାରୀ, ସ୍ବୈରସ୍ତ୍ରୀ, ଗଣିକା, ଖାନକୀ, କୁଳଟା ।

ବେଶ୍ୟାଙ୍ଗନା—ସ୍ତ୍ରୀ. ବି. କୁଳଟା ସ୍ତ୍ରୀ ।

ବେଶ୍ୟାଚାର୍ଯ୍ୟ—ପୁଂ. ବି. ( ବେଶ୍ୟା+ଆଚାର୍ଯ୍ୟ) ପୀଠମର୍ଦ୍ଦ, ଭଡ଼ୁଆ, ବେଶ୍ୟା-ଙ୍କର ନୃତ୍ୟଗୁରୁ ।

ବେଶ୍ୟାଜନସମାଶ୍ରୟ—ପୁଂ.ବି. ବେଶ୍ୟା-ଳୟ ।

ବେଶ୍ୟାପଣ—ଗ୍ରା.ବି.ବେଶ୍ୟାବୃତ୍ତି ଦେଖ

ବେଶ୍ୟାବାର—ସ୍ତ୍ରୀ.ବି. (ବେଶ୍ୟା+ବାର) ବେଶ୍ୟାସମୂହ ।

ବେଶ୍ୟାବୃତ୍ତି—ଗ୍ରା.ବି.ଦ୍ବାର ବଣିତାରୂପେ ରୋଜଗାର କରି ଜୀବିକା ନିର୍ବାହ, ଖାନକୀପଣିଆ ।

ବେଶ୍ୟାଳୟ—ବି. (ବେଶ୍ୟା+ଆଳୟ) ବେଶ୍ୟାର ଘର । [ ଗର୍ଦ୍ଦଭ ।

ବେଶ୍ବର—ପୁଂ.ବି. ଅଶ୍ବତର, ଖଚ୍ଚର,

ବେଷ—ପୁଂ.ବି. (ବେଷ+ଅ)ନେପଥ୍ୟ, ବେଶ ରଚନା ସ୍ଥାନ, ବେଶ୍ୟାଗୃହ, ସଂସ୍ଥାନବିଶେଷ,କର୍ମ, ବ୍ୟାପ୍ତି, କାର୍ଯ୍ୟ-ପରିଚାଳନ ।

ବେଷଣ—ପୁଂ.(ବିଷ+ଅନ) କାଶମର୍ଦ୍ଦ, ପ୍ରବେଷଣ, ପରିଚର୍ଯ୍ୟା ।

ବେଷଣା—ସ୍ତ୍ରୀ.ବି. (ବେଷ+ଅନ+ଆ) ବିତୁନ୍ନକ ବୃକ୍ଷ, ଧନ୍ୟା ।

ବେଷଦାନ—ପୁଂ.ବି. ସୂର୍ଯ୍ୟ ଶୋଷ ।

ବେଷଧାରୀ—ପୁଂ. ବିଂ. (ବେଷ+ଧୃ+ଇନ୍ ) କପଟତପସ୍ବୀ, ବେଷଧାରକ, (ବି) ଜାତିବିଶେଷ ।

ବେଷାଦ୍—ଯା.ବିଂ. ଶକ୍ତିଶାଳୀ, (ବି)ଶକ୍ତି, ବଳ, ସାମର୍ଥ୍ୟ ।

ବେଷ୍ଟ—ପୁଂ.ବି. (ବେଷ୍ଟ+ଭା.ଅ)ପରିଧି, ବାଡ଼, ପ୍ରାଚୀର, ଡାର୍ପିନ୍, ବେଷ୍ଟନ, ଶ୍ରୀବେଷ୍ଟନାମକ ସୁଗନ୍ଧ କାଷ୍ଠ, ସରଳ କାଷ୍ଠ, ନିର୍ଯ୍ୟାସ, ଅଠା, ମୁଖରୋଗ-ବିଶେଷ ।

ବେଷ୍ଟକ—ବିଂ. (ବେଷ୍ଟ+କ.ଅକ)ଘେରି-ଆଡ଼େ ବେଢ଼ିଥିବା,ଯେ ବେଷ୍ଟନ କରେ, (ବି) ଉଷ୍ଣୀଷ, ପଗଡ଼ି, ନିର୍ଯ୍ୟାସ, ଅଠା, ଡାର୍ପିନ, କୁଷ୍ମାଣ୍ଡ, ପ୍ରାଚୀର ।

ବେଷ୍ଟନ—କ୍ଲୀ.ବି. (ବେଷ୍ଟ+ଅନ)ବାଡ଼, ବେଢ଼ିବା, ପ୍ରଦକ୍ଷିଣ, କର୍ଣ୍ଣକୁହର, ଉଷ୍ଣୀଷ, ମୁକୁଟ, ବୃତ, ଗୁଗ୍ଗୁଳ, ବଳୟନ, ପରିଧି, ବେଢ଼, ନୃତ୍ୟକାଳୀନ ହସ୍ତ ଚାଳନ, ବର୍ତ୍ତି, ରଙ୍ଗ, ଅକ୍ଷର, ଚକୁଳି ପିଠା ।

ବେଷ୍ଟନବେଷ୍ଟକ—ପୁଂ. ବି. ରତିବନ୍ଧ-ବିଶେଷ ।

ବେଷ୍ଟପାଳ—ପୁଂ.ବି. ବୌଦ୍ଧବିଶେଷ ।

ବେଷ୍ଟନିକା—ବି. (ବେଷ୍ଟନ+ଇକ+ଆ) ଢାଲପୁରି, ବେଢ଼ମିକା ଦେଖ ।

ବେଷ୍ଟବଂଶ—ପୁଂ. ବି. ( ବେଷ୍ଟ+ବଂଶ ) କଣ୍ଟାବାଉଁଶ ।

ବେଷ୍ଟବ୍ୟ—ତ୍ରି.ବିଂ. ବେଷ୍ଟନଯୋଗ୍ୟ ।

ବେଷ୍ଟସାର—ପୁଂ.ବି. ଶ୍ରୀବେଷ୍ଟ ।

ବେଷ୍ଟା—ସ୍ତ୍ରୀ.ବି. ହରୀତକୀ, ହରଡ଼ା ।

ବେଷ୍ଟିତ—ବିଂ. (ବେଷ୍ଟ+ର୍ମି.ତ) ଘେରି-ଆଡ଼େ ଆବୃତ, (ବି.-ଭା.ତ) ବେଷ୍ଟନ, ଘେରିଆଡ଼େ ଘେରିହେବା ।

ବେଷ୍ମ—ପୁଂ.ବି. ପାନୀୟ ।

ବେଷ୍ୟ—ବି. (ବିଷ+ଯ) ପାନୀୟ ଜଳ

ବେସନ—କ୍ଲୀ.ବି. (ବେସ୍+ଅନ)ଦ୍ବିଦଳ ଚୂର୍ଣ୍ଣ,ଗମନ, କଞ୍ଚା ବୁଟଆଦିର ଚୂନା ।

ବେସମୟ—ଗ୍ରା.ବି. ଅସମୟ, ଅନୁପଯୁକ୍ତ କାଳ ।

ବେସମାନ—ଗ୍ରା.ବିଂ. ଅସମାନ ।

ବେସରକାରୀ—ଯା.ବିଂ. ଯାହା ଗଭର୍ଣ୍ଣ-ମେଣ୍ଟଙ୍କର ନୁହେଁ ।

ବେସରପୁଣିଆ ବସୁ—ଗ୍ରା. ବି. ବୈଦିକ ବ୍ରାହ୍ମଣଙ୍କର ଗୋଷ୍ଠୀବିଶେଷ ।

ବେସବାର—ପୁଂ.ବି. ଧନ୍ୟାକ ସର୍ଷପାଦି ପିଷ୍ଟ, ପକ୍ବ ମାଂସବିଶେଷ, ବଟା ଧନିଆଁ ସୋରିଷଆଦି, ବ୍ୟଞ୍ଜନବିଶେଷ ।

ବେସୁଖ—ଗ୍ରା.ବି.ବେମାର, ଅସୁଖ, ଘୃଣା

ବେସେବେସ୍—ପ୍ରା.(ଯାଜପୁର)ବିଂ. ଛନ୍ଦ-ପଦ ଓ ସ୍ବଚ୍ଛନ୍ଦ ।

ବେଦ୍ବକ୍—ଯା. ବି. ଅନ୍ୟାୟ, ସ୍ବଚ୍ଛର ଅଖ୍ୟବ, (ଯା.ବିଂ) ଅନ୍ୟାୟ, ବେଠିକ୍,

(କ୍ରି.ବିଂ) ଅନ୍ୟାୟ କ୍ରମେ, ବୃଥା, ବିନା ଦୋଷରେ । [ ନାହିଁ ।
ବେହକ୍‌ଦାର—ଯା. ବିଂ. ଯାହାର ସ୍ୱତ୍ୱ
ବେହତ୍‌—ସ୍ତ୍ରୀ.ବି. (ବି+ହନ୍+କ.ଅତ୍) ଗର୍ଭଘାତକୀ ଗୌ, ଯେଉଁ ଗୋରୁ ଋତୁଭିନ୍ନ ବୃଷ ସଙ୍ଗମ କରି ଗର୍ଭ ନଷ୍ଟ କରେ, ବିତସ୍ତା ନଦୀ ।
ବେହଦ(ଢ)—ଯା.ବିଂ. ଅସୀମ,ଅଶେଷ, ତାନୁବ୍, ନିର୍ବେଦ ।
ବେହରଣ—ଗ୍ରା. ବି. ସଭାମଣ୍ଡପ, ବଇଠକ ସଭା, ବିହାର ସ୍ଥାନ, ବିହାର ଉପବେଶନ ବା ଶୟନ । [ ସ୍ଥାନ ।
ବେହଲ୍‌କ—ଯା.ବିଂ. ଦମ୍ଭହୀନ,ଧୈର୍ଯ୍ୟ-
ବେହାଇ—ବୈବାହିକ,କନ୍ୟା ବା ପୁତ୍ରର ଶ୍ୱଶୁର,(ଗ୍ରା.ବିଂ) ବାହା ହୋଇଥିବା ।
ବେହାଗ—ଗ୍ରା.ବି. ମିଶ୍ରରାଗବିଶେଷ ।
ବେହାୟା—ଯା.ବିଂ. ନିର୍ଲଜ୍ଜ, ଲଜ୍ଜାହୀନ, ବେହିଆ ।
ବେହାର—ବି. ସ୍ୱନାମଖ୍ୟାତ ଦେଶବିଶେଷ, ବିହାର ଦେଖ ।
ବେହାଲ୍—ଯା. ବି. ଦୁର୍ଦ୍ଦଶା, ଦୁର୍ବଳ ଅବସ୍ଥା, (ବିଂ) ଦୁର୍ବଳ, ବିପନ୍ନ,କାତର
ବେହିଆ—ଗ୍ରା.ବିଂ. ନିର୍ଲଜ୍ଜ, ଅଲଜୁକ
ବେହିସାବୀ—ଯା. ବିଂ. ଅବିବେଚକ, ଯେ ବୁଝିସୁଝି କାମ ନକରେ, ଯେ ଆୟ ବ୍ୟୟ ପ୍ରତି ଦୃଷ୍ଟି ନରଖେ, (ବି) ଶୃଙ୍ଖଳାହୀନତା, ଅପବ୍ୟୟିତା ।
ବେହୀ—ଗ୍ରା.ସ୍ତ୍ରୀ.ବିଂ. ବିବାହିତା (ସ୍ତ୍ରୀ) ।
ବେହୁକୁମ୍—ଯା.ବିଂ.ଆଦେଶ ବ୍ୟତିରିକ୍ତ, ଆଦେଶ ବିରୁଦ୍ଧ ।
ବେହୁ(ହୋ)ଦା—ଯା. ବିଂ. ଅନ୍ୟାୟ, ଅନୁଚିତ, ଅନିୟମିତ ।
ବେହୁର—ଗ୍ରା.ବି. ତେଲଉଣୀ,ଉହୁଣିଆ, ଚଉଡାମୁହାଁ ମୋଟ ଓ ଗ୍ଲେଟ ହାଣ୍ଡି ।
ବେହୁ(ହୋ)ସ୍—ଯା.ବିଂ. ଚୈତନ୍ୟହୀନ, ଅଚେତନ, ନିର୍ବୋଧ, ମତ୍ତ, ଉନ୍ମତ୍ତ ।
ବେହୁସିଆର୍—ଯା. ବିଂ. ଅସାବଧାନ, ଗର୍‌ହୁସିଆର, ଯତ୍ନହୀନ ।
ବେହେରା—ଗ୍ରା. ପୁଂ.ବି. ଯାନବାହକ, ସବାରିବୁହା ଗଉଡ଼, କେତେକ ଉତ୍କଳୀୟ ଶୂଦ୍ର ଓ ବୈଶ୍ୟଙ୍କ ବଂଶୋପାଧି, ହାଟୁଆ ଜାତିର ଦଳପତି, ଭୃତ୍ୟ, ମାଳିକ,(ପ୍ରା. ଜୟପୁର.ବି)ଖାମାରେଇ, ଖମାରୁ ।
ବେହେରାଣିଆ ପୁଅ—ଗ୍ରା.ବି. ରାଜାଙ୍କ ରକ୍ଷିତା ସ୍ତ୍ରୀଠାରୁ ଜାତ ସନ୍ତାନ, ଅନ୍ତର ପୁଅ ।
ବେହେରାଣୀ—ଗ୍ରା. ସ୍ତ୍ରୀ. ବି. ବେହେରା ଜାତିର ସ୍ତ୍ରୀ, ରକ୍ଷିତା ସ୍ତ୍ରୀ ।
ବେହେରାପଧାନ—ଗ୍ରା.ବି. କୃଷକ ଦଳର ନେତା ବା ଦଳପତି ।
ବେହେଲ୍—ଗ୍ରା.ବିଂ. ବେଲିଆ ଦେଖ ।
ବେହେଲା—ଯା. ବି. ଗୁରଗୋଟି ତନ୍ତ୍ରଯୁକ୍ତ ବାଦ୍ୟଯନ୍ତ୍ର ବିଶେଷ ।
ବୈ—ଅବ୍ୟ. ଏହି ଅବ୍ୟୟ ପାଦପୂରଣ, ସମ୍ବୋଧନ ଅନୁନୟ ଓ ନ୍ୟାୟାର୍ଥ ବୋଧକ । [ ନୀତ ।
ବୈଂଶତିକ—କ୍ରି. ବିଂ. ବିଂଶତି ଦ୍ୱାରା
ବୈକକ୍ଷ(କ)—କ୍ଳୀ. ବି. (ବି+କକ୍ଷ+ଅ କ) ତିର୍ଯ୍ୟକ୍‌ଭାବେ କକ୍ଷାବଲମ୍ବୀ ହାର ବା ମାଳ ବିଶେଷ, ଉତ୍ତରୀୟ ।
ବୈକଙ୍କତ—ବି. (ବିକଙ୍କତ+ଅ)ଭୂଇଁଅଁ ଗଛ, (ବିଂ) ଭୂଇଅଁଗଛ ସମ୍ବନ୍ଧୀୟ ।
ବୈକଟିକ—ପୁଂ. ବି. ବିକଟ ସମ୍ବନ୍ଧୀୟ, ବିଖ୍ୟାପିକା ସମ୍ବନ୍ଧୀୟ, (ବି)ଜହୁରୀ,ମଣିକାର ।
ବୈକଟ୍ୟ—କ୍ଳୀ. ବି. (ବିକଟ+ଯ)ବିକଟର ଭାବ, ବିକଟତା ।
ବୈକତିକ—ପୁଂ. ବି. ମଣିକାର, ଜହୁରି
ବୈକରଞ୍ଜ—ପୁଂ. ବି. ସଙ୍କର ଜାତୀୟ ସର୍ପ ବିଶେଷ ।
ବୈକର୍ତ୍ତ—ପୁଂ. ବି. (ବିକର୍ତ୍ତ+ଅ)ବାସ୍ତ୍ୟମୂନ, ଜନପଦ ବିଶେଷ, ଅକ୍ଷଚକ୍ର ।
ବୈକର୍ତ୍ତନ—ବିଂ. (ବିକର୍ତ୍ତନ+ଅ) ସୂର୍ଯ୍ୟବଂଶୀୟ, ସୂର୍ଯ୍ୟସମ୍ବନ୍ଧୀୟ, ସୌର, (ବି) ସୂର୍ଯ୍ୟ ପୁତ୍ର ଶନିଗ୍ରହ, ଅଙ୍ଗରାଜ କର୍ଣ୍ଣ, ସୁଗ୍ରୀବଙ୍କ ପୂର୍ବପୁରୁଷ ।
ବୈକଳ୍ପିକ—କ୍ରି. ବିଂ. (ବିକଳ୍ପ+ଇକ) ବିକଳ୍ପରେ ଯାହା ସିଦ୍ଧ ହୁଏ,ପକ୍ଷପ୍ରାପ୍ତ, ସନ୍ଦେହଯୋଗ୍ୟ ।
ବୈକଲ୍ୟ—କ୍ଳୀ.ବି. (ବିକଳ+ଯ) ବିକଳତା, କାତରତା, ବିକୃତଭାବ,ଖଞ୍ଜତା, ଅଙ୍ଗହୀନତା, ନ୍ୟୂନତା, ଅଭାବ, ଅସମ୍ପୂର୍ଣ୍ଣତା ।
ବୈକାର—ବି. (ବିକାର+ଷ୍ଣ.ଅ)ବିକୃତି, (ବିଂ) ବିକାର ସମ୍ବନ୍ଧୀୟ ।
ବୈକାରିକ—କ୍ରି.ବିଂ. (ବିକାର+ଇକ) ବିକାରପ୍ରାପ୍ତ, ରୂପାନ୍ତରିତ, ଅନ୍ୟଥା ଭାବପ୍ରାପ୍ତ ।
ବୈକାଳ-ପୁଂ.ବି. (ବିକାଳ+ଅ)ବିକାଳ, ଅପରାହ୍ଣ, ଦିବସର ଶେଷ ବେଳା ।
ବୈକାଳିକ—କ୍ରି.ବିଂ. (ବିକାଳ+ଇକ) ବିକାଳେ ଜାତ, ଅପରାହ୍ଣ କାଳୀନ ।
ବୈକୁଣ୍ଠ—ବି. (ବିକୁଣ୍ଠ+ଅ) ବିଷ୍ଣୁ, ଶ୍ରୀକୃଷ୍ଣ, ଇନ୍ଦ୍ର, ଶ୍ୱେତପତ୍ର ତୁଳସୀ, (ବି+କୁଣ୍ଠ) ଗୋଲକଧାମ, ବିଷ୍ଣୁପୁରୀ, ବୈଷ୍ଣବମାନଙ୍କ ସ୍ୱର୍ଗ ।
ବୈକୁଣ୍ଠଏକାଦଶୀ—ପ୍ରା. (ଗଞ୍ଜାମ) ବି. ଶ୍ରୀରଙ୍ଗନାଥଙ୍କ ମନ୍ଦିରର ଉତ୍ସବବିଶେଷ
ବୈକୁଣ୍ଠନାଥ—ବି. ବିଷ୍ଣୁ ।
ବୈକୁଣ୍ଠଧାମ—ବି.ଗୋଲକଧାମ,ବିଷ୍ଣୁପୁରୀ
ବୈକୁଣ୍ଠବାସୀ—ପୁଂ.ବି. ବିଷ୍ଣୁ, ଦେହତ୍ୟାଗ ପରେ ଯେଉଁ ବିଷ୍ଣୁଭକ୍ତମାନେ ବୈକୁଣ୍ଠରେ ବାସ କରୁଅଛନ୍ତି ।
ବୈକୃତ—କ୍ଳୀ.ବି. (ବିକୃତ+ଅ)ବିକାର, ଦୁର୍ଲକ୍ଷଣ, ବୀଭତ୍ସରସ, (ବିଂ) ବୀଭତ୍ସରସାବଲମ୍ବନେ ମାଂସ ଶୋଣିତାଦି, ବିକାରଜାତ,ବିକୃତ,ସମ୍ପନ୍ନ,ଦୁଃସାଧ ।
ବୈକୃତଜ୍ୱର—ପୁଂ.ବି. ଅପ୍ରାକୃତ କାଳଜାତ ବାତଜ୍ୱର ।
ବୈକୃତିକ—କ୍ରି.ବିଂ. ନୈମିତ୍ତିକ ।
ବୈକ୍ରାନ୍ତ—କ୍ଳୀ.ବି. (ବିକ୍ରାନ୍ତ+ଅ) ସ୍ପର୍ଶମଣି, ଚୁମ୍ବକ ପଥର ।
ବୈକ୍ରାନ୍ତକ—କ୍ଳୀ.ବି. ବୈକ୍ରାନ୍ତ ଦେଖ ।
ବୈକ୍ରିୟ—କ୍ରି.ବିଂ. ବିକ୍ରିୟାସମ୍ବନ୍ଧୀୟ ।
ବୈକ୍ଳବ୍ୟ—କ୍ଳୀ.ବି. (ବିକ୍ଳବ+ଯ) ବିକ୍ଳ

ବତା, ଜଡ଼ତା, କାତରତା, ବିହ୍ୱଳତା, ଅଧୀରତା ।

ବୈଖରୀ—ସ୍ତ୍ରୀ, ବ. କଣ୍ଠ ମଧ୍ୟରୁ ଶବ୍ଦୋତ୍ପତ୍ତିର ବ୍ୟାପାରବିଶେଷ ।

ବୈଖାନସ—ବ. ( ବି+ଖନ୍+କ. ଅ, ଅନ୍+କ.ଅସ୍) ବାନପ୍ରସ୍ଥ, ବନବାସୀ ବ୍ରହ୍ମଚାରୀବିଶେଷ, (ବିଂ) ବାନପ୍ରସ୍ଥସମ୍ବନ୍ଧୀୟ ।

ବୈଗନ୍ଧିକ—ପୁଂ.ବ. ଗନ୍ଧକ ।

ବୈଗୁଣ୍ୟ—କ୍ଲୀ. ବ. ( ବିଗୁଣ+ଭା.ଯ ) ବିଗୁଣତ୍ୱ, ବିକୃତତା, ଅପରାଧ, ଦୋଷ, ନୀଚତା, (ଗ୍ରା.ବ) ବିରକ୍ତି, ତ୍ରୁଟି, ଦୁଃଖ ।

ବୈଗ୍ରହିକ—ବି. ବିଂ. ( ବିଗ୍ରହ+ଇକ ) ଶରୀରସମ୍ବନ୍ଧୀୟ । [ ବ୍ୟାଧ ।

ବୈଘସ—ପୁଂ.ବ. ହରିବଂଶବର୍ଣ୍ଣିତ ଜଣେ

ବୈଘାତ୍ୟ—ବିଂ. ବିଘାତର ଯୋଗ୍ୟ, ଯାହାକୁ ହନନ କରାଯାଇପାରେ ।

ବୈଚକ୍ଷଣ୍ୟ—ବ. (ବିଚକ୍ଷଣ+ଯ) ବିଚକ୍ଷଣତା, ନୈପୁଣ୍ୟ, ଦକ୍ଷତା ।

ବୈଚିତ୍ତ୍ୟ—ବ.(ବିଚିତ୍ତ+ଯ)ଚିତ୍ତଭ୍ରାନ୍ତ, ମତିଭ୍ରମ ।

ବୈଚିତ୍ର—କ୍ଲୀ.ବ.(ବିଚିତ୍ର+ଅ)ବିଚିତ୍ରତା, ବିଭିନ୍ନତା, ସୌନ୍ଦର୍ଯ୍ୟ, ନାନାରୂପତା ।

ବୈଚିତ୍ରବୀର୍ଯ୍ୟ—ପୁଂ. ବ. ବିଚିତ୍ରବୀର୍ଯ୍ୟଙ୍କ ଅପତ୍ୟ, ଧୃତରାଷ୍ଟ୍ରାଦି ।

ବୈଚିତ୍ର୍ୟ—ବ. (ବିଚିତ୍ର+ଯ)ବିଚିତ୍ରତା, ଚମତ୍କାରତ୍ୱ, ବିଭିନ୍ନତା, ନାନାରୂପତା, ସୌନ୍ଦର୍ଯ୍ୟ ।

ବୈଚ୍ୟୁତ—ସ୍ତ୍ରୀ. ବ. ସ୍ଖଳନ, ଭ୍ରଂଶନ, ପତନ ।

ବୈଜନନ—ବ.(ବିଜନନ+ଅ)ଜନ୍ମମାସ, ଯେଉଁ ମାସରେ ସନ୍ତାନ ଜନ୍ମିଥାଏ ।

ବୈଜନନ—ପୁଂ. ବ. ବୈଜନନ ଦେଖ ।

ବୈଜୟନ୍ତ—ପୁଂ. ବ. (ବି+ଜି+ଅନ୍ତ) ଇନ୍ଦ୍ରପ୍ରାସାଦ, ଇନ୍ଦ୍ରପୁରୀ, ଇନ୍ଦ୍ରଧ୍ୱଜ, ଇନ୍ଦ୍ର, ଗୃହ, ଅଗ୍ନିମନ୍ଥନ ବୃକ୍ଷ, କାର୍ତ୍ତିକେୟ ।

ବୈଜୟନ୍ତକ—ପୁଂ.ବିଂ. ପତାକାଧାରୀ ।

ବୈଜୟନ୍ତିକା—ସ୍ତ୍ରୀ.ବ. (ବୈଜୟନ୍ତୀ+କା)ଜୟନ୍ତୀବୃକ୍ଷ, ପତାକା, ଅଗ୍ନିମନ୍ଥ ।

ବୈଜୟନ୍ତୀ—ସ୍ତ୍ରୀ.ବ.(ବୈଜୟନ୍ତ+ଈ) ପତାକା, ଜୟନ୍ତୀବୃକ୍ଷ, ଆଜାନୁଲମ୍ବିତ ପଞ୍ଚ ବର୍ଣ୍ଣମୟ ମାଳା, ବିଷ୍ଣୁଙ୍କ କଣ୍ଠରେ ଥିବା ମାଳା, ଜୟନ୍ତୀ ।

ବୈଜୟି—ପୁଂ. ବ. ମଘବା, ଜିନ ଚକ୍ରବର୍ତ୍ତୀବିଶେଷ ।

ବୈଜୟିକ—ପୁଂ. ବିଂ. ( ବିଜୟ+ଇକ) ବିଜୟସମ୍ବନ୍ଧୀୟ, ବିଜୟସୂଚକ, ବିଜୟପ୍ରଦ ।

ବୈଜୟିକୀବିଦ୍ୟା—ବ. ଯେଉଁ ବିଦ୍ୟା ଶିକ୍ଷା କଲେ ବିଜୟଲାଭ ହୁଏ ।

ବୈଜୟିନ—ପୁଂ. ବିଂ. ବିଜୟୀ ।

ବୈଜାତ୍ୟ—କ୍ଲୀ. ବ. ( ବିଜାତ+ଯ ) ବିଜାତୀୟତା, ବୈଲକ୍ଷଣ୍ୟ, ସ୍ୱଭାବରେ ପ୍ରଭେଦ, ଲମ୍ପଟ୍ୟ, ଅସାମଞ୍ଜସ୍ୟ ।

ବୈଜିକ—କ୍ଲୀ. ବ. (ବୀଜ+ଇକ)ଶିଗ୍ରୁତୈଳ, ହେତୁ, ପରମାତ୍ମା, ସଦ୍ୟୋଜାତ ଅଙ୍କୁର, (ବିଂ) ବୀଜ ବା ବୀର୍ଯ୍ୟସମ୍ବନ୍ଧୀୟ । [ ଦେଖ ।

ବୈଜୁ—ଭାରତରେ ଜଣେ ପ୍ରସିଦ୍ଧ ସଙ୍ଗୀତ

ବୈଜୁଳିକ—ଗ୍ରା.ବ. ଜୁଳୁଜୁଳିଆ ପୋକ ।

ବୈଜ୍ଞାନିକ—ବି. ବିଂ. (ବିଜ୍ଞାନ+ଇକ) ନିପୁଣ, ଦକ୍ଷ, ବିଜ୍ଞାନସମ୍ବନ୍ଧୀୟ, ବିଜ୍ଞାନବିଦ୍ ।

ବୈଠକ—ଗ୍ରା. ବ. ସଭା, ସମାଜ, ଅଧିବେଶନ, ମଜଲିସ ।

ବୈଠକୀ—ବିଂ. ସଭା ବା ମଜଲିସର ଉପଯୁକ୍ତ, ମଜଲିସୀ ।

ବୈଠା—ଗ୍ରା. ବ. ପୋତ ।

ବୈଠିକ—ଗ୍ରା. ବ. ଦୀପରୁଖା, ଆଧାରବିଶେଷ । [ ଭଣ୍ଡ ।

ବୈଡ଼—ପ୍ରା. (କଟକ)ଗ୍ରା. ଲୋକଗହଳି,

ବୈଡ଼ାଲବ୍ରତ—କ୍ଲୀ.ବ. ଦୁଷ୍ଟାଚାରବିଶେଷ, କପଟାଚାରୀ, ଭଣ୍ଡ ତପସ୍ୱୀ ।

ବୈଡ଼ାଲବ୍ରତିକ—ପୁଂ.ବିଂ. (ବିଡ଼ାଲବ୍ରତ+ଇକ) ଭଣ୍ଡତପସ୍ୱୀ ।

ବୈଡ଼ାଲବ୍ରତୀ—ପୁଂ. ବ. (ବୈଡ଼ାଲବ୍ରତ+ଇନ୍) ଭଣ୍ଡ ତାପସ, ଅଙ୍ଗନାଦି ଅଭାବ ହେତୁ କୃତ ବ୍ରହ୍ମଚର୍ଯ୍ୟ ।

ବୈଡୂର୍ଯ୍ୟ—କ୍ଲୀ.ବ. ବୈଦୁର୍ଯ୍ୟମଣି, ବିଡ଼ାଳାକ୍ଷି । [ ବିଶେଷ ।

ବୈଡୂର୍ଯ୍ୟଶିଖର—ପୁଂ.ବ(ବ.ବ୍ରୀ)ପର୍ବତ-

ବୈଣ—ପୁଂ. ବ. (ବେଣୁ+ଅ) ବେଣୁସମ୍ବନ୍ଧୀୟ, ବାଉଁଶ ବ୍ୟବସାୟୀ, ବେଣୁଜୀବୀ, (ବ) ଡମଜାତି ।

ବୈଣବ—ବିଂ. ( ବେଣୁ+ଅ ) ବେଣୁସମ୍ବନ୍ଧୀୟ, ବେଣୁ ନିର୍ମିତ, (ସ୍ତ୍ରୀ)ବୈଣବୀ, (ବ) ବାଉଁଶ ଧାନ, ବାଉଁଶ ଦଣ୍ଡ, ବେଣୁଜୀବୀ ବ୍ୟକ୍ତି ।

ବୈଣବିକ—ବି. ବିଂ. ( ବେଣୁ+ଇକ ) ବେଣୁବାଦକ, (ସ୍ତ୍ରୀ) ବୈଣବିକୀ ।

ବୈଣବୀ—ବି, ବିଂ. ବେଣୁବାଦକ, (ବ) ଶିବ, ବଂଶଲୋଚନ ।

ବୈଣବ୍ୟ—ବ (ବେଣୁ+ଯ)ବଂଶଲୋଚନ

ବୈଣହୋମନ୍ତବାୟୁ—କ୍ଲୀ.ବ.ସାମଭେଦ

ବୈଣହୋତ୍ର—ପୁଂ. ବ. ବେଣୁ ହୋତ୍ରବଂଶ, ଧୃଷ୍ଟକେତୁର ସନ୍ତତି ପରମ୍ପରା ।

ବୈଣାବନତ—ବି.ବିଂ.ଧନୁକପର ବକ୍ରତା ବିଶିଷ୍ଟ ।

ବୈଣିକ—ପୁଂ.ବିଂ.(ବୀଣା+ଇକ) ବୀଣାସମ୍ବନ୍ଧୀୟ, (ପୁଂ. ବ) ବୀଣାବାଦକ, ନାରଦ ମୁନି ।

ବୈଣୁକ—ବ. ବେଣୁବାଦକ, ଅଙ୍କୁଶ ।

ବୈଣୁକୀୟ—ବି. ବିଂ. ବେଣୁସମ୍ବନ୍ଧୀୟ ।

ବୈଣୁକେୟ—ପୁଂ.ବିଂ. ବେଣୁବଂଶ ସମ୍ବନ୍ଧୀୟ ।

ବୈଣ୍ୟ—ପୁଂ. ବ. (ବେଣ+ଯ) ପୃଥୁ, ବେଣ ରାଜାଙ୍କ ପୁତ୍ର ।

ବୈତଂସିକ—ପୁଂ.ବିଂ (ବିତଂସ+ଇକ) ମାଂସବିକ୍ରେତା, ଯେ ଜାଲ ଦ୍ୱାରା ଜୀବକୁ ନିବାନ୍ଧ କରେ ।

ବୈତଣ୍ଡିକ—ପୁଂ.ବିଂ. (ବିତଣ୍ଡା+ଇକ) ବିତଣ୍ଡା ବିଷୟେ ସାଧୁ, ଅତି ବିତଣ୍ଡାବାଦୀ ।

ବୈତଥ୍ୟ—କ୍ଲୀ.ବ(ବିତଥ+ଯ)ବିଫଳତ୍ୱ, ବୈଫଲ୍ୟ, ଉପନିଷଦ୍‌ବିଶେଷ, ବୈତଥ୍ୟୋପନିଷଦ୍ ।

ବୈତନିକ—ପୁଂ.ବିଂ.(ବେତନ+ଇକ)

ବେତନଭୋଗୀ, କର୍ମକର, ବେତନସାଧ୍ୟ, (ସ୍ତ୍ରୀ) ବୈତନିକା, (ବି) ଭୃତ୍ୟ ।

ବୈତମ—ଗ୍ରା. ବିଂ. ପୁରୁଣା, ପ୍ରାଚୀନ ।

ବୈତରଣା—ଦାକ୍ଷିଣାତ୍ୟର କୋଙ୍କଣ ପ୍ରଦେଶ ପ୍ରବାହିତ ଗୋଟିଏ ନଦୀ ।

ବୈତରଣୀ—ସ୍ତ୍ରୀ. ବି. (ବିତରଣ+ଈ) ପ୍ରେତନଦୀ, ଯମପୁରସ୍ଥ ନଦୀ, ଉତ୍କଳର ନଦୀବିଶେଷ ।

ବୈତସ—ବିଂ.(ବେତସ+ଅ)ବେତଗଛ-ସମ୍ବନ୍ଧୀୟ, (ବି) ଅମ୍ଳବେତସ ଗୁଳ୍ମ ।

ବୈତସ୍ତିକ—ତ୍ରି. ବିଂ. ବିତସ୍ତି ପରିମାଣ ସମ୍ବନ୍ଧୀୟ ।

ବୈତାନ—ପୁଂ. ବିଂ. (ବିତାନ+ଅ) ଯଜ୍ଞୀୟ, ଯଜ୍ଞ ସଂକ୍ରାନ୍ତ, ବିତାନସମ୍ବନ୍ଧୀୟ, ବୈତାନିକ, (ବି) ହୋମାର୍ଥ ନୈବେଦ୍ୟ, ହୋମ, ଯଜ୍ଞୀୟ ଅଗ୍ନି ।

ବୈତାନିକ—ବି. ଓ ବିଂ. (ବିତାନ+ଇକ) ବୈତାନ ଦେଖ ।

ବୈତାଳ—ତ୍ରି ବିଂ. ( ବେତାଳ+ଅ ) ବେତାଳସାଧନ, କୁହୁକୀ, ବାଜିକର, ବି. ସ୍ତୁତିପାଠକ, ବୋଧକ, ଭାଟ ।

ବୈତାଳିକ—ପୁଂବି. (ବି+ତାଳ+ଇକ) ବୈତାଳ ଦେଖ ।

ବୈତାଳୀୟ—ପୁଂ.ବି.ମାତ୍ରାବୃତ୍ତବିଶେଷ ।

ବୈତୃଷ୍ଣ୍ୟ—କ୍ଲୀ.ବି. (ବିତୃଷ୍ଣା+ଯ)ତୃଷ୍ଣାରାହିତ୍ୟ, ଲୋଭରାହିତ୍ୟ, ଅନିଚ୍ଛା, ଅପ୍ରବୃତ୍ତି ।

ବୈତ୍ତପାଲ୍ୟ—ତ୍ରି. ବିଂ. (ବିତ୍ତପାଲ+ଯ) ବିତ୍ତପାଳ ବା କୁବେର ସମ୍ବନ୍ଧୀୟ ।

ବୈତ୍ରକ—ବିଂ. ( ବେତ୍ର+କ ) ବେତ୍ର-ସମ୍ବନ୍ଧୀ ।

ବୈତ୍ରକୀୟବନ—କ୍ଲୀ. ବି. ଏକଚକ୍ରା (ଭାରତ—ବନପର୍ବ) ।

ବୈତ୍ରାସୁର—ପୁଂ.ବି.ବୃତ୍ରାସୁରର ଅପତ୍ୟ ଅସୁର ବିଶେଷ ।

ବୈଦଗ୍ଧ(ଗ୍ଧ୍ୟ)—କ୍ଲୀ. ବି.(ବିଦଗ୍ଧ+ଅ.ଯ) ବିଦଗ୍ଧତା, ପାଣ୍ଡିତ୍ୟ, ପଟୁତା, ଚତୁରତା, ରସିକତା, ଶୋଭା, ଭଙ୍ଗୀ, ଛଇ ।

ବୈଦଗ୍ଧକ—ତ୍ରି. ବିଂ. (ବୈଦଗ୍ଧ+କ) ବିଦଗ୍ଧ ସମ୍ବନ୍ଧୀୟ ।

ବୈଦଗ୍ଧକଳା—ବି. (ତନ୍ତ୍ର) ରସିକତା ସୂଚକ ହାବଭାବ । [ପ୍ରକାଶ ।

ବୈଦଗ୍ଧବିଳାସ—ବି.(ତନ୍ତ୍ର) ଗୁରୁଶ୍ରୀ-

ବୈଦଗ୍ଧୀ—ସ୍ତ୍ରୀ. ବି. (ବିଦଗ୍ଧ+ଈ) ଭଙ୍ଗୀ, ଚତୁରତା, ରସିକତା ।

ବୈଦମ୍ଭ—ପୁଂ. ବି. ଶିବଙ୍କ ନାମାନ୍ତର ।

ବୈଦର୍ଭ—ପୁଂ.ବି.(ବିଦର୍ଭ+ଅ)ବିଦର୍ଭ-ଦେଶୀୟ ରାଜା, ଦମୟନ୍ତୀଙ୍କ ପିତା, ଭୀମସେନ, ବାକ୍‌ଚାତୁର୍ଯ୍ୟ, (ବିଂ)ବିଦର୍ଭ ଦେଶସମ୍ବନ୍ଧୀୟ, ବିଦର୍ଭ ଦେଶଜାତ, (ସ୍ତ୍ରୀ) ବୈଦର୍ଭୀ ।

ବୈଦର୍ଭକ—ପୁଂ.ବି.ବିଦର୍ଭ ଦେଶବାସୀ ।

ବୈଦର୍ଭୀ—ସ୍ତ୍ରୀ. ବି. ( ବୈଦର୍ଭ+ଈ ) କାବ୍ୟରୀତିବିଶେଷ, ବାକ୍ୟର ରୀତି-ବିଶେଷ, ଅଗସ୍ତ୍ୟ ପତ୍ନୀ, ଦମୟନ୍ତୀ, ରୁକ୍ମିଣୀ ।

ବୈଦଳ—କ୍ଲୀ. ବି. (ବିଦଳ+ଅ) ଭିକ୍ଷୁକର ମୃଣ୍ମୟ ପାତ୍ର, ମୁଗ ବିରିଆଦି ଚୂନାର ପିଠା ।

ବୈଦଲାନ୍ନ—କ୍ଲୀ. ବି. ଖେଚେଡ଼ି, ଡାଲି ଚାଉଳ ଏକତ୍ର ମିଶି ରନ୍ଧା ହୋଇଥିବା ଅନ୍ନ ।

ବୈଦଳିକଶିମ୍ବ—ପୁଂ.ବି. ମଟର ଓ ବରଗୁଡ଼ି ପ୍ରଭୃତି ଶିମ୍ବୀଧାନ୍ୟର ଛୁଇଁ ।

ବୈଦାନ୍ତିକ—ପୁଂ.ବିଂ (ବେଦାନ୍ତ+ଇକ) ବେଦାନ୍ତ ଶାସ୍ତ୍ରଜ୍ଞ, ବେଦାନ୍ତବାଦୀ, (ବିଂ) ବେଦାନ୍ତସମ୍ବନ୍ଧୀୟ ।

ବୈଦିକକାଳ—ବି. ଯେଉଁ ଯୁଗରେ ବେଦ ବିଶେଷ ଭାବରେ ପ୍ରଚଳିତ ଥିଲା

ବୈଦିକଧର୍ମ—ବି. ସନାତନ ହିନ୍ଦୁଧର୍ମ ।

ବୈଦିକପନ୍ଥା—ଗ୍ରା.ବି. ବୈଦିକ ବ୍ରାହ୍ମଣ-ସାମାଜିକ ଦଳ ।

ବୈଦିକବିଧି—ବି. ବେଦ ବିହିତ ବିଧି ।

ବୈଦିକବ୍ରାହ୍ମଣ—ବି. ଶ୍ରୋତ୍ରୀୟ ବ୍ରାହ୍ମଣ-ମାନଙ୍କର ଶ୍ରେଣୀବିଶେଷ ।

ବୈଦିକା—ସ୍ତ୍ରୀ. ବି. ଭୂମିଜାମ୍ବୁବୃକ୍ଷ, ବନ-ଜାମ୍ବୁ ।

ବୈଦୁଲ—କ୍ଲୀ. ବି. ବେତସ ମୂଳ ।

ବୈଦୁଷ—ତ୍ରି. ବିଂ.(ବିଦ୍ୱସ୍+ଅ)ବିଦ୍ୱାନ୍, ପଣ୍ଡିତ ।

ବୈଦୁଷ୍ୟ—କ୍ଲୀ.ବି.(ବିଦ୍ୱସ୍+ଯ)ପାଣ୍ଡିତ୍ୟ

ବୈଦୂର୍ଯ୍ୟ—କ୍ଲୀ. ବି.(ବିଦୂର+ଅ)କୃଷ୍ଣ-ପୀତବର୍ଣ୍ଣ ମଣି ବିଶେଷ, ନୀଳକାନ୍ତ ମଣି, ନୀଳା ।

ବୈଦେଶିକ—ତ୍ରି.ବିଂ.(ବିଦେଶ+ଇକ) ବିଦେଶରୁ ଆଗତ, ଅନ୍ୟ ଦେଶୀୟ, ବିଦେଶୋତ୍ପନ୍ନ,(ବି) ବିଦେଶୀୟ ବ୍ୟକ୍ତି ।

ବୈଦେଶ୍ୟ—ତ୍ରି. ବିଂ. ବିଦେଶଜାତ ।

ବୈଦେହ—ପୁଂ. ବି. ( ବିଦେହ+ଅ ) ନିମିରାଜପୁତ୍ର, ଜନକରାଜା, ବଣିକ, ଶୂଦ୍ର ପିତୃକ ଓ ବୈଶ୍ୟମାତୃକ ସଙ୍କର ଜାତିବିଶେଷ, (ବିଂ) ମିଥିଳାବାସୀ, ମୈଥିଳ, ବିଦେହଜାତ ।

ବୈଦେହକ—ପୁଂ. ବି. (ବୈଦେହ+କ)ବଣିକ, ବର୍ଣ୍ଣସଙ୍କର ଜାତି ବିଶେଷ ।

ବୈଦେହିକ—ପୁଂ. ବି.(ବିଦେହ+ଇକ) ବଣିକ,ବର୍ଣ୍ଣସଙ୍କର ଜାତି ବିଶେଷ,(ବିଂ) ମିଥିଳାବାସୀ, ମିଥିଳସମ୍ବନ୍ଧୀୟ ।

ବୈଦେହୀ—ସ୍ତ୍ରୀ. ବି. ( ବିଦେହ+ଅ +ଈ ଗୋରୋଚନା,ସୀତା,ବଣିକ ପତ୍ନୀ, ହଳଦୀ, ପିପ୍ପଳୀ,( ସ୍ତ୍ରୀ.ବିଂ ) ବିଦେହ-ଦେଶୀୟ, ବିଦେହଜାତା ।

ବୈଦେହୀବିଳାସ—ଗ୍ରା. ବି. ଉପେନ୍ଦ୍ର-ଭଞ୍ଜଙ୍କ କୃତ ଶ୍ରୀରାମଚନ୍ଦ୍ରଙ୍କର ଜୀବନ ଚରିତମୂଳକ ଓଡ଼ିଆ ପଦ୍ୟ କାବ୍ୟ-ବିଶେଷ ।

ବୈଦ୍ୟ—ପୁଂ.ବି. (ବିଦ୍ୟା+ଅ)ପଣ୍ଡିତ, ବାସକବୃକ୍ଷ, ଆୟୁର୍ବେଦବେତ୍ତା, ଚିକିତ୍ସକ, କବିରାଜ, (ବିଂ) (ବେଦ+ଯ) ବେଦସମ୍ବନ୍ଧୀୟ ।

ବୈଦ୍ୟକ—କ୍ଲୀ. ବି. (ବୈଦ୍ୟ+କ)ଆୟୁର୍ବେଦ ଚିକିତ୍ସାଶାସ୍ତ୍ର, (ବିଂ) ଆୟୁର୍ବେଦୋକ୍ତ ଚିକିତ୍ସା ସମ୍ବନ୍ଧୀୟ ।

ବୈଦ୍ୟଜାତି—ଚିକିତ୍ସା ବ୍ୟବସାୟୀ ଜାତି ବିଶେଷ ।

ବୈଦ୍ୟନାଥ—ବି. ( ବୈଦ୍ୟ+ନାଥ )

ମହାଦେବ, ପ୍ରସିଦ୍ଧ ଶୈବତୀର୍ଥ,ଭୈରବ ବିଶେଷ, ଦେଶବିଶେଷ ।

ବୈଦ୍ୟବନ୍ଧୁ—ପୁଂ. ବି. (ବୈଦ୍ୟ + ବନ୍ଧୁ) ଆରଗ୍ବଧବୃକ୍ଷ, ସୁନାରିଗଛ, (୬ତତ୍ପୁ) ବୈଦ୍ୟମାନଙ୍କ ବନ୍ଧୁ ।

ବୈଦ୍ୟମାତା—ସ୍ତ୍ରୀ.ବି.(ବୈଦ୍ୟ + ମାତା) ବାସକ, ବାସଙ୍ଗ, ଭିଷଗ୍‌ଜନନୀ ।

ବୈଦ୍ୟରାଜ—ପୁଂ. ବି. ରସକଷାୟ, (୬ତତ୍ପୁ) ଶ୍ରେଷ୍ଠ ବୈଦ୍ୟ ।

ବୈଦ୍ୟଶାସ୍ତ୍ର—କ୍ଲୀ.ବି. (୬ତତ୍ପୁ) ଚିକିତ୍ସାଶାସ୍ତ୍ର, ଆୟୁର୍ବେଦ, କବିରାଜି ଶାସ୍ତ୍ର ।

ବୈଦ୍ୟସଙ୍କର—ବିଂ.ଏକକାଳରେ ପରସ୍ପର ପରାମର୍ଶ ବିନା ଭିନ୍ନ ଭିନ୍ନ ଚିକିତ୍ସକଙ୍କ ଦ୍ୱାରା ଚିକିତ୍ସିତ ହେବା(ରୋଗ) ।

ବୈଦ୍ୟସଙ୍କଟ—ପୁଂ.ବି.(କ.ଧା) ଅନେକ ବୈଦ୍ୟଙ୍କ ଚିକିତ୍ସା ଦ୍ୱାରା ରୋଗ ବୃଦ୍ଧି ।

ବୈଦ୍ୟସିଂହୀ—ସ୍ତ୍ରୀ.ବି ବାସକବୃକ୍ଷ,ବାସଙ୍ଗ ଗଛ ।

ବୈଦ୍ୟା—ସ୍ତ୍ରୀ.ବି. (ବୈଦ୍ୟ+ଆ)କାଙ୍କୁଲି ନାମକ ଔଷଧି, କାକଳି, ମଧୁରାସ୍ଫୋଟଧ୍ୱନି, ବୈଦ୍ୟର ସ୍ତ୍ରୀଲିଙ୍ଗ ।

ବୈଦ୍ୟୁତ—ତ୍ରି. ବିଂ. ( ବିଦ୍ୟୁତ୍‌+ଅ ) ବିଦ୍ୟୁତ୍‌ସମ୍ବନ୍ଧୀୟ, ବିଦ୍ୟୁନ୍ମୟ ।

ବୈଦ୍ୟୁତାଲୋକ—ବି. (କ.ଧା)ବିଜୁଳିର ଆଲୁଅ, ବିଜୁଳିବତୀ ।

ବୈଦ୍ୟୁତିକ—ବିଂ. ବୈଦ୍ୟୁତ ଦେଖ ।

ବୈଦ୍ୟୁତ୍‌ଶକ୍ତି—ସ୍ତ୍ରୀ. ନ. ବିଦ୍ୟୁତ୍‌ପର ଶକ୍ତି ବା ପ୍ରଭାବବିଶିଷ୍ଟ ।

ବୈଦ୍ୟୁତ୍‌ବାର୍ତ୍ତାବହ—ପୁଂ. ବି. (କ.ଧା) ବିଦ୍ୟୁତ୍‌ଚାଳିତ ସମ୍ବାଦବାହକ ଯନ୍ତ୍ର, ଟେଲିଗ୍ରାଫ୍ ।

ବୈଦ୍ୟୁଦ୍‌ଯାନ—ବି, (କ.ଧା) ବିଦ୍ୟୁତ୍‌ବଳରେ ଚାଳିତ ଶକଟାଦି ।

ବୈଦ୍ରୁମ—ତ୍ରି.ବିଂ.(ବିଦ୍ରୁମ+ଅ)ପ୍ରବାଳବିଶିଷ୍ଟ, ପ୍ରବାଳନିର୍ମିତ ।

ବୈଧ—ତ୍ରି. ବିଂ. ( ବିଧି+ଅ ) ବିଧିବୋଧିତ, ବିଧିନିର୍ଦ୍ଦିଷ୍ଟ, ବିଧିସମ୍ମତ, ଶାସ୍ତ୍ରସମ୍ମତ । [ ସିଦ୍ଧତା ।

ବୈଧତା(ତ୍ୱ)—ବି. (ବୈଧ + ତା) ବିଧି-

ବୈଧର୍ମ୍ମ୍ୟ—କ୍ଲୀ.ବି.(ବିଧର୍ମ୍ମ+ଯ) ବିରୁଦ୍ଧଧର୍ମିତ୍ୱ, ଅସାମଞ୍ଜସ୍ୟ, ବୈପରୀତ୍ୟ ।

ବୈଧବ—ପୁଂ.ବି.ବିଧୁର ଅପତ୍ୟ, ଚନ୍ଦ୍ରପୁତ୍ର ବୁଧ, (ଗ୍ରା.ବି) ବିଧବା ।

ବୈଧବେୟ—ପୁଂ.ବି.ବିଧବାର ଅପତ୍ୟ ।

ବୈଧବ୍ୟ—କ୍ଲୀ. ବି (ବିଧବା+ଯ) ସ୍ତ୍ରୀର ବିଧବା ଅବସ୍ଥା, ପତିହୀନତା ।

ବୈଧବ୍ୟକଷ୍ଟ—ବି. ବିଧବା ହେବାରୁ ସ୍ତ୍ରୀ ଯେଉଁ ଦୁଃଖ ଭୋଗ କରେ ।

ବୈଧବ୍ୟକାତରା—ସ୍ତ୍ରୀ.ବିଂ (୬ତତ୍ପୁ)ବିଧବା ହେବା ଯୋଗୁଁ ଅତ୍ୟନ୍ତ ଶୋକବିହ୍ୱଳା

ବୈଧବ୍ୟଘଟଣା(ନା)—ଗ୍ରା. ବି. ସ୍ତ୍ରୀର ସ୍ୱାମୀ ନାଶରୂପ ଅବସ୍ଥା ।

ବୈଧସ—ତ୍ରି.ବିଂ.ବିଧିସମ୍ବନ୍ଧୀୟ, ଅଦୃଷ୍ଟଜାତ, ବ୍ରହ୍ମସମ୍ବନ୍ଧୀୟ, (ବି) ହରିଶ୍ଚନ୍ଦ୍ର, ବେଧସ ନୃପତିଙ୍କ ପୁତ୍ର ।

ବୈଧହିଂସା—ସ୍ତ୍ରୀ.ବି.ବିଧିବୋଧିତ ହିଂସା

ବୈଧାତକ—ପୁଂ.ବି.ବୈଧାତ୍ର,ବିଧାତାଙ୍କ ପୁତ୍ର ।

ବୈଧାତ୍ର—ପୁଂ.ବି.(ବିଧାତୃ+ଅ)ସନତ୍କୁମାର ପ୍ରଭୃତି ବିଧାତାଙ୍କ ପୁତ୍ର ।

ବୈଧାତ୍ରୀ—ସ୍ତ୍ରୀ. ବି. (ବିଧାତୃ+ଅ+ଈ) ବ୍ରାହ୍ମୀଶାକ ବ୍ରାହ୍ମଣଖଡ଼ିଆ, ( ବିଂ ) ବିଧାତୃସମ୍ବନ୍ଧୀୟ । [ ସ୍ତ୍ରୀଲିଙ୍ଗ ।

ବୈଧୀ—ସ୍ତ୍ରୀ. ବିଂ. (ବୈଧ + ଈ)ବୈଧର

ବୈଧୀଭକ୍ତି—ବି.ବିଧି ଅନୁଷ୍ଠାନ କରି ଯେ ଭକ୍ତି ଜନ୍ମେ ।

ବୈଧୁର୍ଯ୍ୟ—କ୍ଲୀ.ବି. (ବିଧୁର+ଯ)କାତରତା, ଅସ୍ଥିର, ଭ୍ରମ, ହତାଶଭାବ, କମ୍ପମାନତା ।

ବୈଧୃତ—ପୁଂ. ବି. ବିଧୃତ ପୁତ୍ର, ଏକାଦଶ ମନ୍ୱନ୍ତରର ଇନ୍ଦ୍ରବିଶେଷ, (ଗ୍ରା.ବି) ବିବାଦ, କଳି ।

ବୈଧୃତି—ପୁଂ.ବି.(ବି+ଧୃତି) ବିଷ୍କୁମ୍ଭାଦି ୨୭ ଯୋଗ ମଧ୍ୟରୁ ଶେଷ ଯୋଗ, ଦେବତାବିଶେଷ ।

ବୈଧେୟ—ବିଂ. (ବିଧି + ଏୟ) ବୈଧ, ବିଧିସମ୍ବନ୍ଧୀୟ, ( ବିଧେୟ+ଅ ) ମୂର୍ଖ, ଅଜ୍ଞାନ ।

ବୈଧ୍ୟତ—ପୁଂ. ବି. ଯମପ୍ରତିହାର ।

ବୈନତକ—କ୍ଲୀ. ଯଜ୍ଞରେ ବ୍ୟବହୃତ ଘୃତପାତ୍ରବିଶେଷ ।

ବୈନତାୟ—ତ୍ରି. ବିଂ. ବିନତସମ୍ବନ୍ଧୀୟ, ବିନତାଙ୍କଠାରୁ ସମ୍ପାଦିତ ବା ଜାତ ।

ବୈନତେୟ—ପୁଂ.ବି.(ବିନତା+ଏୟ) ଗରୁଡ଼, ଅରୁଣ, ବିନତାନନ୍ଦନ ।

ବୈନତ୍ୟ—କ୍ଲୀ. ବି. ବିନୀତସ୍ୱଭାବ, ନମ୍ରପ୍ରକୃତି ।

ବୈନାୟକ—ପୁଂ.ବି.ବିନାୟକସମ୍ବନ୍ଧୀୟ, ଗଣେଶସମ୍ବନ୍ଧୀୟ,(ବି)ଭୂତଗଣବିଶେଷ ।

ବୈନାସ୍ତିକ—ବିଂ.(ବିନସ୍ତ +ଇକ)ବିନସ୍ତସମ୍ବନ୍ଧୀୟ, (ପୁଂ.ବି.ବିନାୟକ + ଇକ) ବୌଦ୍ଧ, ଯୁଦ୍ଧରଥ ।

ବୈନାଶିକ—ବିଂ.(ବିନାଶ + ଇକ)କ୍ଷଣସ୍ଥାୟୀ, କ୍ଷଣଭଙ୍ଗୁର.(ବି) ନାସ୍ତିକମତବିଶେଷ, ଦାସୀବୃତ୍ତିଆଣୀ, ଜ୍ୟୋତିଷୀ ।

ବୈମାତକ—ବି. (ବିମାତ+କ) ପରମାସ୍ପଦବାହନ, ଶିବିକାଦି, ଡାକ, ଘୋଡ଼ାଗାଡ଼ି ପ୍ରଭୃତି ।

ବୈନ୍ଧ୍ୟ—ତ୍ରି. ବିଂ. (ବିନ୍ଧ୍ୟ+ଯ) ବିନ୍ଧ୍ୟପ୍ରାନ୍ତଭବ, ବିନ୍ଧ୍ୟ ପର୍ବତସମ୍ବନ୍ଧୀୟ ।

ବୈପଞ୍ଚିକ—ପୁଂ. ବି. ଗଣକ ।

ବୈପରୀତ୍ୟ—କ୍ଲୀ. ବି. (ବିପରୀତ + ଯ) ବିପର୍ଯ୍ୟୟ ଓଲଟା,ବିରୁଦ୍ଧତା,ବ୍ୟତ୍ୟୟ ।

ବୈପଶ୍ଚିତ—ପୁଂ. ବି. ବିପଶ୍ଚିତ ନାମକ ଋଷିଙ୍କ ବଂଶଧର, ତାର୍କ୍ଷ୍ୟ ଋଷି ।

ବୈପିତୃେୟ—ବିଂ(ବିପିତୃ+ଏୟ)ବୈପିତ୍ର ଦେଖ ।

ବୈପିତ୍ର—ପୁଂ. ବିଂ. (ବିପିତୃ+ଅ) ଏକ ମାତାଙ୍କ ଗର୍ଭଜାତ କିନ୍ତୁ ଭିନ୍ନ ଭିନ୍ନ ପିତାଙ୍କ ଔରସେ (ସନ୍ତାନ) ।

ବୈପୁଲ୍ୟ—କ୍ଲୀ.ବି(ବିପୁଳ+ଯ)ବିପୁଳତା, ଆଧିକ୍ୟ, ବୃଦ୍ଧି ।

ବୈପ୍ରକର୍ଷିକ—ତ୍ରି. ବିଂ. (ବିପ୍ରକର୍ଷ+ଅ) ନିତ୍ୟ ବିପ୍ରକର୍ଷର ଯୋଗ୍ୟ ।

ବୈପ୍ରଯୋଗିକ—ତ୍ରି. ବିଂ. ନିତ୍ୟବିପ୍ରଯୋଗାର୍ହ ।

ବୈପ୍ରଶ୍ନିକ—ତ୍ରି. ବିଂ. (ବିପ୍ରଶ୍ନ + ଇକ)

ଜନତ୍ୱ ବିପ୍ରଶ୍ନ ହି ।

ବୈଫଲ୍ୟ—କ୍ଲୀ.ବି. (ବିଫଳ+ଯ)ବିଫଳତା, ଫଳଶୂନ୍ୟତା ।

ବୈଭବ—କ୍ଲୀ,ବି. (ବିଭବ+ଅ)ବିଭବ, ସମ୍ପତ୍ତି, ଐଶ୍ୱର୍ଯ୍ୟ, ସାମର୍ଥ୍ୟ, ମହିମା, ବାହୁଲ୍ୟ, ଅମାନୁଷିକ ଶକ୍ତି, ବିଭୂତି, ମହତ୍ତ୍ୱ, ସମ୍ମାନ ।

ବୈଭାଷିକ—ବି. ବିଂ. (ବିଭାଷା+ଇକ) ବୈକଳ୍ପିକ, ବୈକଳ୍ପସିଦ୍ଧ, ବିଭାଷାସମ୍ବନ୍ଧୀୟ ।.

ବୈଭୂତିକ—ବି. ବିଂ. ବିଭୂତିସମ୍ବନ୍ଧୀୟ ।

ବୈଭୋଗ—ଗ୍ରା. ବି. ଭୋଗ ।

ବୈଭ୍ରାଜ—ବି. ( ବି+ଭ୍ରାଜ୍+କ.ଅ ) କୁବେରଙ୍କ ଉଦ୍ୟାନ, ଦେବୋଦ୍ୟାନ ।

ବୈଭ୍ରାଜଲୋକ—ପୁଂ. ବି. ସ୍ୱର୍ଗସ୍ଥ ଲୋକବିଶେଷ ।

ବୈମଲ୍ୟ—କ୍ଲୀ. ବି. (ବିମଳ+ଯ) ବିମଳତା, ମଳଶୂନ୍ୟତା ।

ବୈମାତ୍ର—ବିଂ. (ବିମାତୃ+ଅ) ବିମାତାଙ୍କ ଗର୍ଭଜାତ,ବୈମାତ୍ରେୟ, (ସ୍ତ୍ରୀ)ବୈମାତ୍ରୀ

ବୈମାତ୍ରଭ୍ରାତା—ପୁଂ. ବି. ସାବତ୍ତ ଭାଇ ।

ବୈମାତ୍ରା—ସ୍ତ୍ରୀ. ବି. ବିମାତୃକନ୍ୟା, ବିମାତାଙ୍କ ଗର୍ଭଜାତ କନ୍ୟା ।

ବୈମାତ୍ରାସ୍ୱା—ସ୍ତ୍ରୀ.ବି. ବୈମାତ୍ରୀଭଉଣୀ ।

ବୈମାତ୍ରୀଭଗିନୀ—ସ୍ତ୍ରୀ.ବି. ସାବତ୍ତଭଉଣୀ

ବୈମାତ୍ରେୟ—ପୁଂ. ବିଂ. ବୈମାତ୍ର ଦେଖ

ବୈମାତ୍ରେୟୀ—ସ୍ତ୍ରୀ. ବି. (ବୈମାତ୍ରେୟ+ଈ) ବିମାତୃ କନ୍ୟା ।

ବୈମାନ୍—ଯା.ବିଂ.ବେଇମାନ୍, କୃତଘ୍ନ ।

ବୈମାନି—ଯା. ବି. କୃତଘ୍ନତା ।

ବୈମାନିକ—ପୁଂ. ବିଂ. (ବିମାନ+ଇକ) ବିମାନଗାମୀ, ଅନ୍ତରୀକ୍ଷଚର, ଆକାଶବିହାରୀ, (ବି) ଦେବଯୋନି ବିଶେଷ, ଖେଚର, ବିମାନଚାଳକ ବ୍ୟକ୍ତି ।

ବୈମୁଖ୍ୟ—କ୍ଲୀ. ବି. ( ବିମୁଖ+ଭା.ଯ ) ବିମୁଖତା, ଅପ୍ରସନ୍ନତା, ନିରନୁକୂଳତା, ପଳାୟନ, ପଛକୁ ହଟିବା । ମୂଲ୍ୟ ।

ବୈମୂଲ୍ୟ—କ୍ଲୀ.ବି. ବିସଦୃଶ ମୂଲ୍ୟ,ଅନ୍ୟାୟ

ବୈମେୟ—ପୁଂ. ବି. ବିନିମୟ,ବଦଳ ।

ବୈୟର୍ଥ—ବି. (ବ୍ୟର୍ଥ+ଯ) ବ୍ୟର୍ଥତା ।

ବୈୟର୍ଥ୍ୟ—କ୍ଲୀ. ବି. (ବ୍ୟର୍ଥ+ଅ) ଅର୍ଥଶୂନ୍ୟତା, ବୃଥାତ୍ୱ,ନିଷ୍ପ୍ରୟୋଜନୀୟତା ।

ବୈୟାକରଣ—ପୁଂ. ବିଂ. (ବ୍ୟାକରଣ+ଅ) ବ୍ୟାକରଣବେତ୍ତା, ବ୍ୟାକରଣାଧ୍ୟେତା, ବ୍ୟାକରଣ ସମ୍ବନ୍ଧୀୟ, (ସ୍ତ୍ରୀ) ବୈୟାକରଣୀ ।

ବୈୟାକରଣପାଶ—ପୁଂ. ବି. କୁତ୍ସିତ ଅର୍ଥାତ୍ ଅଜ୍ଞ ବୈୟାକରଣ ।

ବୈୟାକରଣଭାର୍ଯ୍ୟା—ପୁଂ. ବି. (ବ.ବ୍ରୀ) ଯାହାର ସ୍ତ୍ରୀ ବ୍ୟାକରଣ ଶାସ୍ତ୍ରେ ଅଭିଜ୍ଞା ବା ତଦଧ୍ୟୟନକାରିଣୀ ।

ବୈୟାଖ୍ୟ—ବି. ବିଂ. ବ୍ୟାଖ୍ୟା ।

ବୈୟାଘ୍ର—ବିଂ. (ବ୍ୟାଘ୍ର+ଅ) ବ୍ୟାଘ୍ରଚର୍ମାଚ୍ଛାଦିତ (ରଥ) ।

ବୈୟାଘ୍ରପଦୀ—ସ୍ତ୍ରୀ. ବି. ବ୍ୟାଘ୍ରପଦଋଷିଙ୍କ ଅପତ୍ୟପତ୍ନୀ ।

ବୈୟାଘ୍ରପଦୀପୁତ୍ର—ବି. ବି. ବ୍ୟାଘ୍ରପଦ ମୁନିଙ୍କ ଦୌହିତ୍ର ।

ବୈୟାଘ୍ରପଦ୍ୟ—ପୁଂ. ବି. (ବ୍ୟାଘ୍ରପଦ+ଯ) ଗୋତ୍ରପ୍ରବର୍ତ୍ତିକ ମୁନିବିଶେଷ ।

ବୈୟାଘ୍ରପରିଚ୍ଛଦ—ବି. ବିଂ. ଦ୍ୱୀପିଚର୍ମାଚ୍ଛାଦିତ ।

ବୈୟାଘ୍ରପାଦ—ପୁଂ. ବି. ବୈୟାଘ୍ରପଦ୍ୟ ଗୋତ୍ରକାରକ ମୁନି ।

ବୈୟାଘ୍ରରଥ—ବି. ବ୍ୟାଘ୍ରଚର୍ମାବୃତ ରଥ

ବୈୟାତ୍ୟ—କ୍ଲୀ. ବି. ( ବିୟାତ+ଯ ) ଧୃଷ୍ଟତା, ଅବିନୀତଭାବ, ପ୍ରାଗଲ୍ଭ୍ୟ, ନିର୍ଲଜ୍ଜତା, ଔଦ୍ଧତ୍ୟ ।

ବୈୟାସ—ବି. ବିଂ.(ବ୍ୟାସ+ଅ) ବ୍ୟାସସମ୍ବନ୍ଧୀୟ ।

ବୈୟାସକି—ପୁଂ. ବି. (ବ୍ୟାସ+ଅକ+ଇ) ବ୍ୟାସଙ୍କ ତନୟ, ଶୁକଦେବ ।

ବୈୟାସି—ପୁଂ. ବି. ( ବ୍ୟାସ+ଇ ) ବ୍ୟାସଙ୍କ ଅପତ୍ୟ, ଶୁକମୁନି ।

ବୈୟାସିକ—ବି. ବିଂ. (ବ୍ୟାସ+ଇକ) ବ୍ୟାସଦେବ ପ୍ରଣୀତ, ବ୍ୟାସଦେବ ସମ୍ବନ୍ଧୀୟ, (ସ୍ତ୍ରୀ) ବୈୟାସିକୀ ।

ବୈୟାସିକୀ—ସ୍ତ୍ରୀ.ବିଂ.(ବୈୟାସିକ+ଈ) ବ୍ୟାସ ସମ୍ବନ୍ଧୀୟା, ବ୍ୟାସରଚିତା, (ସ୍ତ୍ରୀ ବି) ବ୍ୟାସପ୍ରଣୀତ ସଂହିତା ।

ବୈୟୁଷ୍ଟ—ବି. ବିଂ. ପ୍ରାତିଭବି, ଯାହା ପ୍ରାତଃକାଳେ ହୁଏ ।

ବୈର—ସ୍ତ୍ରୀ. ବି. (ବୀର+ଅ) ବିରୋଧ, ଦ୍ୱେଷ, ଶତ୍ରୁତା, ଶୌର୍ଯ୍ୟ ।

ବୈରକର—ବି. ବିଂ. ବିରୋଧକାରକ ।

ବୈରକାର—ବି.ବିଂ.(ବୈର+କୃ+ଅ) ଅନିଷ୍ଟକାରୀ,ବିରୋଧକାରୀ,ଶତ୍ରୁତାଚରଣ ।

ବୈରକୃତ୍—ବି. ବିଂ. (ବୈର+କୃ+କ୍ୱିପ୍) ଶତ୍ରୁତାକାରୀ, ବିରୋଧକାରୀ, ଅନିଷ୍ଟକାରୀ ।

ବୈରକ୍ତ(କ୍ତ୍ୟ)—କ୍ଲୀ. ବି. (ବିରକ୍ତ+ଅ) ବୈରାଗ୍ୟ, ବିରକ୍ତି, ଘୃଣା ।

ବୈରଖ—ଯା. ବି. ପତାକା ।

ବୈରଙ୍କର—ବି. ବିଂ. ଶତ୍ରୁତାକାରୀ ।

ବୈରଙ୍ଗିକ—ବି.ବିଂ.(ବି+ରଙ୍ଗ+ଇକ) ବିବେକୀ, ଜିତେନ୍ଦ୍ରିୟ, ସନ୍ନ୍ୟାସୀ, (ପୁଂ. ବି) ମୁନି, ତପସ୍ୱୀ ।

ବୈରତା—ସ୍ତ୍ରୀ. ବି. ଶତ୍ରୁତା ।

ବୈରନିର୍ଯ୍ୟାତନ—ବି. (୬ତତ୍) ଶତ୍ରୁର ପ୍ରତ୍ୟପକାର ସାଧନ, ଶତ୍ରୁତାର ପ୍ରତିଶୋଧ । [ ଦେଖ ।

ବୈରପ୍ରତିକ୍ରିୟା—ବି. ବୈରନିର୍ଯ୍ୟାତନ

ବୈରଭାବ—ବି. (୬ତତ୍) ଶତ୍ରୁତା ।

ବୈରଯାତନ—କ୍ଲୀ.ବି.(ବୈର+ଯାତନ ବୈରନିର୍ଯ୍ୟାତନ ଦେଖ ।

ବୈରଲ୍ୟ—କ୍ଲୀ. ବି. ( ବିରଳ+ଯ ) ନିର୍ଜ୍ଜନତା, ବିରଳତା ।

ବୈରବିଶୁଦ୍ଧି—ସ୍ତ୍ରୀ.ବି. (ବୈର+ବିଶୁଦ୍ଧି ବୈରନିର୍ଯ୍ୟାତନ ଦେଖ ।

ବୈରଶୋଧ—ବି. ( ୬ତତ୍ ) ଶତ୍ରୁର ପ୍ରତ୍ୟପକାରସାଧନ, ବୈରଶୁଦ୍ଧି ।

ବୈରସ—କ୍ଲୀ.ବି. (ବିରସ+ଅ)ବୈରସ୍ୟ, ବିରସତା, ( ଗ୍ରା.ବି ) ମନୋମାଳିନ୍ୟ, ଶତ୍ରୁତା ।

ବୈରସାଧନ—ବି. (୬ତତ୍) ଶତ୍ରୁତାସାଧନ, ବିପକ୍ଷତାଚରଣ ।

ବୈରସେନ—ପୁଂ. ବି. (ବୀରସେନ+

ଅ) ବୀରସେନ ରାଜାଙ୍କ ପୁତ୍ର,ନଳରାଜା ।

ବୈରସ୍ୟ—କ୍ଲୀ. ବି. (ବିରସ+ଯ) ବିରସତା, ରସଶୂନ୍ୟତା, ଅନିଚ୍ଛା, ଅନନୁରାଗ ।

ବୈରି—ବି ଓ ବିଂ. ବାହାର ଦେଶ,ଖିଲାଣ ଓ ଆର ବେଳେ ଖିଲାଣର ଖାଲସ୍ଥାନରେ ଭରିବା ଇଟା ପଥରାଦି ।

ବୈରାଗ—କ୍ଲୀ.ବି. (ବିରାଗ+ଅ)ସଂସାର ପ୍ରତି ଅନାସକ୍ତି,ସଂସାର ବାସନାରାହିତ୍ୟ, ବିବେକ ।

ବୈରାଗୀ—ପୁଂ. ବି. ( ବିରାଗ+ଇନ୍ ) ବିଷୟେଚ୍ଛାରହିତ, ବୈରାଗ୍ୟଯୁକ୍ତ, ବିବେକୀ, (ସ୍ତ୍ରୀ) ବୈରାଗିଣୀ ।

ବୈରାଗ୍ୟ—କ୍ଲୀ. ବି. ( ବିରାଗ+ଯ ) ବୈରାଗ ଦେଖ ।

ବୈରାଜ୍ୟ—କ୍ଲୀ. ବି. (ବି+ରାଜନ୍+ଯ) ଅଣିମାଦି ସିଦ୍ଧି ରାଜନତ୍ୱ, ଏକଦେଶରେ ଦୁଇଜଣ ରାଜାଙ୍କର ସମ୍ମିଳିତ ଭାବରେ ରାଜ୍ୟଶାସନ ପ୍ରଣାଳୀ, ଦ୍ୱୈତଶାସନ, ଦ୍ୱୈତଶାସିତ ରାଜ୍ୟ ।

ବୈରାଟ୍—ତ୍ରି.ବିଂ. (ବିରାଟ୍+ଅ) ବିରାଟସମ୍ବନ୍ଧୀୟ, (ପୁଂ.ବି) ଇନ୍ଦ୍ରଗୋପ କୀଟ, ବିରାଟ ରାଜପୁତ୍ର, ବିରାଟପର୍ବ ।

ବୈରାଟୀ—ସ୍ତ୍ରୀ. ବି. ବିରାଟ କନ୍ୟା ।

ବୈରାଟ୍ୟା—ସ୍ତ୍ରୀ.ବି.ଜୈନମାନଙ୍କ ଷୋଡ଼ଶ ବିଦ୍ୟା ଦେବୀର ଅନ୍ତର୍ଗତ ଦେବୀବିଶେଷ ।

ବୈରାତଙ୍କ—ପୁଂ. ବି. ଅର୍ଜୁନ ବୃକ୍ଷ ।

ବୈରାନୁବନ୍ଧ—ପୁଂ. ବି. ବୈରସଂସ୍ରବ, ବୈରସମ୍ବନ୍ଧ ।

ବୈରାନୁବନ୍ଧୀ—ତ୍ରି. ବିଂ. ବୈରସଂସ୍ରବବିଶିଷ୍ଟ ।

ବୈରାୟମାଣ—ପୁଂ.ବିଂ. ଶତ୍ରୁତାଚରଣକାରୀ ।

ବୈରି—ପୁଂ. ବି. ଶତ୍ରୁ, ବୈରୀ ।

ବୈରିଞ୍ଚ—ତ୍ରି. ବିଂ.(ବିରିଞ୍ଚି+ଅ) ବିରିଞ୍ଚିସମ୍ବନ୍ଧୀୟ, ବ୍ରହ୍ମାସମ୍ବନ୍ଧୀୟ,(ସ୍ତ୍ରୀ)ବୈରିଞ୍ଚୀ ।

ବୈରିଞ୍ଚ୍ୟ—ପୁଂ.ବି. (ବିରିଞ୍ଚି+ଯ)ବ୍ରହ୍ମାପୁତ୍ର ସନକାଦି ।

ବୈରିଣ—କ୍ଲୀ. ବି. ଶତ୍ରୁ ।

ବୈରିତା(ତ୍ୱ)—ବି. ଶତ୍ରୁତା ।

ବୈରିବନିତା—ସ୍ତ୍ରୀ. ବି. (୬ତତ୍ପୁ) ଶତ୍ରୁରମଣୀ, ବିପକ୍ଷପତ୍ନୀ ।

ବୈରୀ—ପୁଂ. ବି. ( ବୈର+ଇନ୍ ) ଶତ୍ରୁ, ବୃହଦାକାର ଶ୍ୟେନପକ୍ଷୀ, (ବିଂ) ଶତ୍ରୁତାପନ୍ନ,ବୈରଯୁକ୍ତ,(ସ୍ତ୍ରୀ)ବୈରିଣୀ ।

ବୈରୂପ୍ୟ—କ୍ଲୀ. ବି. (ବିରୂପ+ଯ)ବିରୂପତା, କଦର୍ଯ୍ୟତା, ଅସାଧାରଣତ୍ୱ, ବିସଦୃଶତ୍ୱ, ବିକୃତଭାବ, ଅଯଥାଭାବ ।

ବୈରେକୀୟ—ତ୍ରି. ବିଂ. ବିରେକ ସମ୍ବନ୍ଧୀୟ, ବିରେଚକ ସମ୍ବନ୍ଧୀୟ ।

ବୈରେଚନ—ତ୍ରି. ବିଂ.ବିରେଚନ ସମ୍ବନ୍ଧୀୟ ।

ବୈରେୟ—ବିଂ. ବୀରସମ୍ବନ୍ଧୀୟ ।

ବୈରୋଚନ(ନି)—ପୁଂ. ବି. (ବିରୋଚନ+ଅ) ବିରୋଚନ ପୁତ୍ର, ଦୈତ୍ୟରାଜ ବଳି, ବୁଦ୍ଧଦେବ, ଅଗ୍ନିପୁତ୍ର, ସୂର୍ଯ୍ୟପୁତ୍ର, ସିଦ୍ଧଗଣ ।

ବୈରୋଚନନିକେତନ—କ୍ଲୀ. ବି. ପାତାଳ

ବୈରୋଚି—ପୁଂ. ବି. ବାଣବୈଦ୍ୟ,ବଳିପୁତ୍ର ।

ବୈରୋତ୍ପତ୍ତି—ବି. (୬ତତ୍ପୁ) ଶତ୍ରୁତାର ସୂତ୍ରପାତ ।

ବୈରୋଦ୍ଧାର—ପୁଂ.ବି. (ବୈର+ଉଦ୍ଧାର) କୃତାପକାରର ପ୍ରତ୍ୟପକାର, ବୈରନିର୍ଯ୍ୟାତନ ।

ବୈରୋଧକ—ପୁଂ. ବି. ମୁଦ୍ରାରାକ୍ଷସ ବର୍ଣ୍ଣିତ ବ୍ୟକ୍ତିବିଶେଷ ।

ବୈଲ—ତ୍ରି.ବିଂ. (ବିଲ+ଅ) ବିଲେଶୟ. ଯେ ଗର୍ତ୍ତରେ ବାସକରେ ।

ବୈଲକ୍ଷଣ୍ୟ—କ୍ଲୀ. ବି. (ବିଲକ୍ଷଣ+ଯ) ବିଶେଷତ୍ୱ, ବିଭିନ୍ନତା, ଭାବାନ୍ତର, ପ୍ରଭେଦ ।

ବୈଲକ୍ଷ୍ୟ—କ୍ଲୀ. ବି. (ବିଲକ୍ଷ+ଯ)ଲଜ୍ଜା, ବିସ୍ମୟ, ସ୍ୱଭାବର ବୈଲକ୍ଷଣ୍ୟ, ଲଜ୍ଜାଶୀଳତା ।

ବୈଲସ୍ଥାନ—କ୍ଲୀ. ବି. ଶ୍ମଶାନ ।

ବୈଲାନକାଳ—ବି. କେଶଦାମ, ଚୂଡ଼ାବନ୍ଧନ,ବେଣୀ ।

ବୈଲ୍ୱ(ଲ୍ୟ)—କ୍ଲୀ. ବି. ( ବିଲ୍ୱ+ଅ.ଯ ) ବିଲ୍ୱଫଳ, ବେଲ, (ବିଂ) ବିଲ୍ୱ ସମ୍ବନ୍ଧୀୟ ।

ବୈବକ୍ଷିକ—ତ୍ରି. ବିଂ. ବିବକ୍ଷା ସମ୍ବନ୍ଧୀୟ

ବୈବଧିକ—( ବିବଧ+ଇକ ) ଧାନ୍ୟତଣ୍ଡୁଳାଦି ବ୍ୟବସାୟୀ,ବାର୍ତ୍ତାବହଦୂତ, ଭାରବାହୀ, ନୈଗମିକ, (ସ୍ତ୍ରୀ) ବୈବଧିକୀ

ବୈବର୍ଣ୍ଣ୍ୟ—କ୍ଲୀ. ବି. ( ବିବର୍ଣ୍ଣ+ଯ ) ବିବର୍ଣ୍ଣତା, ମାଳିନ୍ୟ, ଲାବଣ୍ୟହୀନତା, ଉତ୍କଣ୍ଠିତ ପ୍ରେମିକ ପ୍ରେମିକାଙ୍କଠାରେ ପରିଲକ୍ଷିତ ଅଷ୍ଟଦଶା ମଧ୍ୟରୁ ଏକତମ ।

ବୈବର୍ତ୍ତ—କ୍ଲୀ.ବି. ଚନ୍ଦ୍ରବତ୍ ପରିବର୍ତ୍ତନ

ବୈବଶ୍ୟ—କ୍ଲୀ. ବି. ଅବଶତ୍ୱ,ଦୌର୍ବଲ୍ୟ, ବିବଶର ଭାବ, ଅଙ୍ଗଶୈଥିଲ୍ୟ ।

ବୈବସ୍ୱତ—ପୁଂ. ବି. (ବିବସ୍ୱତ୍+ଅ) ସୂର୍ଯ୍ୟପୁତ୍ର, ରୁଦ୍ରବିଶେଷ, ଶନି, ଯମ, ସପ୍ତମ ମନୁ,ଅଙ୍ଗରାଜ କର୍ଣ୍ଣ ।

ବୈବସ୍ୱତମନୁ—ପୁଂ.ବି. ମନୁଙ୍କର ସପ୍ତମ ବଂଶଧର ।

ବୈବସ୍ୱତୀ—ସ୍ତ୍ରୀ. ବି. (ବୈବସ୍ୱତ+ଈ) ଦକ୍ଷିଣଦିଗ ।

ବୈବସ୍ୱତୀପ୍ରଭା—ସ୍ତ୍ରୀ. ବି. ଦକ୍ଷିଣମେରୁ ପ୍ରଦେଶରେ ରାତ୍ରି ଅବିରତ ଛଅମାସ ମଧ୍ୟରେ ବେଳେ ବେଳେ ଦେଖାଯିବା ନୈସର୍ଗିକ ଆଲୋକ ରାଶି ।

ବୈବସ୍ୱତୀୟ—ତ୍ରି. ବିଂ. ବୈବସ୍ୱତମନୁ ସମ୍ବନ୍ଧୀୟ ।

ବୈବାହ—ତ୍ରି. ବିଂ. ( ବିବାହ+ଅ ) ବିବାହ ସମ୍ବନ୍ଧୀୟ ।

ବୈବାହନ—କ୍ଲୀ. ବି. ବିବାହ କାର୍ଯ୍ୟ ନିଷ୍ପାଦନ ।

ବୈବାହିକ—ପୁଂ. ବି. (ବିବାହ+ଇକ) କନ୍ୟା ବା ପୁତ୍ରର ଶ୍ୱଶୁର, ( ବିଂ ) ବିବାହ ସମ୍ବନ୍ଧୀୟ, ବିବାହଯୋଗ୍ୟ, (ସ୍ତ୍ରୀ) ବୈବାହିକୀ ।

ବୈବାହ୍ୟ—ତ୍ରି. ବିଂ. ବିବାହ ସମ୍ବନ୍ଧୀୟ, ବିବାହଯୋଗ୍ୟ, ବିବାହ୍ୟ, ( ବି ) ବିବାହକାଳୀନ ସମାରୋହ ।

ବୈବିକ୍ତ—କ୍ଲୀ.ବି. ବିବିକ୍ତର ଭାବ,ପୃଥକ୍‌କୃତ ପଦାର୍ଥର ଭାବ ।

ବୈବୋଧିକ—ପୁଂ. ବି. (ବିବୋଧ+ଇକ) ବୈତାଳିକ, ବନ୍ଦୀ ।

ବୈବୋଧିତ—ପୁଂ.ବି.(ବିବୋଧ+ଇତ) ବୈତାଳିକ, ଭାଟ, ବାଜାଗର,କୁହୁକା ।

ବୈଶଦ୍ୟ—କ୍ଲୀ. ବି. (ବିଶଦ+ଯ)ବିଶଦତା, ନିର୍ମଳତା, ନୈର୍ମଲ୍ୟ ।

ବୈଶମ୍ପାୟନ—କ୍ଲୀ.ବି. (ବିଶମ୍ପାୟନ+ଅ) ବ୍ୟାସଶିଷ୍ୟ ମୁନିବିଶେଷ ।

ବୈଶଲୀ--ପାଟଳୀପୁତ୍ରର ଉତ୍ତରସ୍ଥ ନଗର ବିଶେଷ ।

ବୈଶସ—କ୍ଲୀ. ବି. (ବିଶସ+ଅ) ପ୍ରତିରୋଧ, କଳହ, ହତ୍ୟା, ବିପଦ,ଅନିଷ୍ଟପାତ ।

ବୈଶସ୍ତ—କ୍ଲୀ.ବି.(ବିଶସ୍ତ+ଅ)ଅଧିକାର, ଶସ୍ତ୍ରବହତ୍ୱ, ଶାସନ, କ୍ଷମତା,ପ୍ରଭାବ ।

ବୈଶାଖ—ବି. (ବୈଶାଖୀ+ଅ) ଶାଳିବାହନ ଶକାବ୍ଦର ପ୍ରଥମ ମାସ,(ବିଶାଖା+ଅ) ଦଧିମନ୍ଥନ ଦଣ୍ଡ,ରକ୍ତପୁନର୍ନବା, ଘୋଡ଼ାଙ୍କୁ ଆକ୍ରମଣ କରିବା ଗ୍ରହବିଶେଷ, ଧନୁର୍ଦ୍ଧିମାନଙ୍କର ସଂସ୍ଥାନବିଶେଷ ।

ବୈଶାଖବ୍ରତ—ବି. ବୈଶାଖ ମାସର ହିନ୍ଦୁମାନଙ୍କର ବ୍ରତବିଶେଷ ।

ବୈଶାଖୀ—ସ୍ତ୍ରୀ.ବି.(ବୈଶାଖ+ଅ+ଈ) ବିଶାଖା ନକ୍ଷତ୍ରଯୁକ୍ତ ପୂର୍ଣ୍ଣିମା, ରକ୍ତପୁନର୍ନବା, ବସୁଦେବ ସ୍ତ୍ରୀବିଶେଷ ।

ବୈଶାଖ୍ୟ—ପୁଂ.ବି.ମୁନିବିଶେଷ,ପାଣ୍ଡିତ୍ୟ, ନିର୍ମଳତା, ସ୍ୱଚ୍ଛତା, (ଗ୍ରା.ବି) ବୈଶାଖ ମାସ ।

ବୈଶାରଦ—ପୁଂ.ବିଂ. (ବିଶାରଦ+ଅ) ବିଶାରଦ, ପଣ୍ଡିତ, ବିଶେଷଜ୍ଞ ।

ବୈଶାରଦ୍ୟ—କ୍ଲୀ. ବି. (ବିଶାରଦ+ଯ) ବିଶାରଦତା, ନୈର୍ମଲ୍ୟ, ନୈପୁଣ୍ୟ ।

ବୈଶାଲ—ଗ୍ରା. ବି. ବ୍ରତ ଓ ବିବାହରେ ବେଦୀ ନିକଟରେ ଯୋଡାଯିବା ବାଉଁଶ ଦଣ୍ଡ । [ ସୁବର୍ଣ୍ଣା ।

ବୈଶାଲ—ପୁଂ. ବି. ବିଶାଳଙ୍କ ଅପତ୍ୟ,

ବୈଶାଳିକ—ବିଂ.ବିଶାଳା ବା ବୈଶାଳୀଜନପଦ ସମ୍ବନ୍ଧୀୟ ।

ବୈଶାଳିନୀ—ସ୍ତ୍ରୀ.ବି. ବିଦିଶାରାଜକୁମାରୀ ।

ବୈଶାଳୀ—ବି.ପ୍ରାଚୀନ ଜନପଦବିଶେଷ

ବୈଶିକ—ପୁଂ. ବି. ( ବେଶ୍ୟା+ଇକ ) ବାରାଙ୍ଗନା ବିଳାସୀପୁର, ବେଶ୍ୟାର ଛଳ, (ବିଂ) ବେଶ୍ୟାସମ୍ବନ୍ଧୀୟ, ବେଶସମ୍ବନ୍ଧୀୟ ।

ବୈଶିଷ୍ଟ—କ୍ଲୀ. ବି. (ବିଶିଷ୍ଟ+ଅ) ବିଶିଷ୍ଟତ୍ୱ, ବିଶିଷ୍ଟତା, ଅସାଧାରଣତ୍ୱ ।

ବୈଶିଷ୍ଟ୍ୟ—କ୍ଲୀ. ବି. ( ବିଶିଷ୍ଟ+ଯ ) ପ୍ରଭେଦ, ବୈଲକ୍ଷଣ୍ୟ, ଅସାଧାରଣତ୍ୱ, ବୈଶିଷ୍ଟ ।

ବୈଶୀପୁତ୍ର—ପୁଂ. ବି. ବେଶ୍ୟାପୁତ୍ର ।

ବୈଶେଷିକ—ପୁଂ.ବିଂ.(ବିଶେଷ+ଇକ) କଣାଦମୁନିକୃତ ଦର୍ଶନଶାସ୍ତ୍ରବେତ୍ତା, ଅସାଧାରଣ, (ବି)କଣାଦପ୍ରଣୀତ ଦର୍ଶନ ଶାସ୍ତ୍ର, (ସ୍ତ୍ରୀ) ବୈଶେଷିକୀ ।

ବୈଶେଷିକଦର୍ଶନ—କ୍ଲୀ. ବି. ଷଡ଼୍‌ଦର୍ଶନାନ୍ତର୍ଗତ ଦର୍ଶନଶାସ୍ତ୍ରବିଶେଷ ।

ବୈଶେଷ୍ୟ--ବି.(ବିଶେଷ+ଯ)ବିଶେଷତା

ବୈଶ୍ମୀୟ—ତ୍ରି.ବିଂ. (ବେଶ୍ମ+ଈୟ)ବେଶ୍ମସମ୍ବନ୍ଧୀୟ, ଗୃହସମ୍ବନ୍ଧୀୟ ।

ବୈଶ୍ୟ—ପୁଂ.ବି. (ବିଶ+କ୍ୟପ୍.ଯ)ତୃତୀୟ ବର୍ଣ୍ଣ,ହିନ୍ଦୁ ଦ୍ୱିଜାତିମାନଙ୍କର ଶେଷବର୍ଣ୍ଣ ।

ବୈଶ୍ୟକରଣ—ଗ୍ରା.ବି. ଜାତିବିଶେଷ ।

ବୈଶ୍ୟତା(ତ୍ୱ)—କ୍ଲୀ.ବି. (ବୈଶ୍ୟ+ତା) ବୈଶ୍ୟର ଧର୍ମ, ବୈଶ୍ୟବୃତ୍ତି ।

ବୈଶ୍ୟଭାବ—ପୁଂ. ବି. (ବୈଶ୍ୟ+ଭାବ) ବୈଶ୍ୟତା ।

ବୈଶ୍ୟବଣିକ—ଗ୍ରା.ବି. ବୈଶ୍ୟମାନଙ୍କର ଶାଖାବିଶେଷ, ବଣିକ ଜାତିବିଶେଷ ।

ବୈଶ୍ୟା—ସ୍ତ୍ରୀ.ବି.(ବୈଶ୍ୟ+ଆ)ବୈଶ୍ୟଜାତୀୟା ସ୍ତ୍ରୀ । [ ପତ୍ନୀ ।

ବୈଶ୍ୟୀ—ସ୍ତ୍ରୀ.ବି. (ବୈଶ୍ୟ+ଈ)ବୈଶ୍ୟ-

ବୈଶ୍ରବଣ—ପୁଂ. ବି. ( ବିଶ୍ରବସ୍+ଅ ) କୁବେର, ଶିବ, ରାବଣ, କୁମ୍ଭକର୍ଣ୍ଣ ଓ ବିଭୀଷଣ ।

ବୈଶ୍ରବଣାଳୟ—ପୁଂ.ବି. (ବୈଶ୍ରବଣ+ଆଳୟ) ବଟବୃକ୍ଷ, କୁବେରପୁରୀ ।

ବୈଶ୍ରବଣାବାସ—ପୁଂ.ବି. (ବୈଶ୍ରବଣ+ଆବାସ) ବଟବୃକ୍ଷ, କୁବେରପୁରୀ ।

ବୈଶ୍ରବଣୋଦୟ—ପୁଂ. ବି. (ବ.ବ୍ରୀ) ବଟବୃକ୍ଷ,ବୈଶ୍ରବଣର ଉଦୟ ଯହିଁରେ ।

ବୈଶ୍ଳେଷିକ—ତ୍ରି.ବିଂ. ବିଶ୍ଳେଷସମ୍ବନ୍ଧୀୟ, ବିଶ୍ଳେଷଯୋଗ୍ୟ ।

ବୈଶ୍ୱ—ତ୍ରି. ବିଂ. ବିଶ୍ୱଦେବସମ୍ବନ୍ଧୀୟ, (ବି) ଉତ୍ତରଷାଢ଼ା ନକ୍ଷତ୍ର ।

ବୈଶ୍ୱକଥିତ—ପୁଂ. ବିଂ. ବିଶ୍ୱକଥା ବିଷୟରେ ନିପୁଣ ।

ବୈଶ୍ୱକର୍ମ୍ମଣ—ତ୍ରି.ବିଂ. (ବିଶ୍ୱକର୍ମ୍ମନ୍+ଅ) ବିଶ୍ୱକର୍ମ୍ମାସମ୍ବନ୍ଧୀୟ ।

ବୈଶ୍ୱଜନ(ନୀ)ନ—ପୁଂ. ବିଂ. ବିଶ୍ୱଜନ ବିଷୟରେ ସାଧୁ, ଯେ ବିଶ୍ୱଜନହିତକାରୀ,

ବୈଶ୍ୱଦେବ—ପୁଂ.ବି. (ବିଶ୍ୱଦେବ+ଅ) ବିଶ୍ୱଦେବଙ୍କ ଉଦ୍ଦେଶ୍ୟରେ ଦ୍ୱିଜାତିଙ୍କର ପ୍ରତ୍ୟହ କର୍ତ୍ତବ୍ୟ ଅନ୍ନ ବଳିଦାନ ବିଧି ।

ବୈଶ୍ୱଦେବକର୍ମ୍ମ—କ୍ଲୀ. ବି. ବିଶ୍ୱଦେବଙ୍କର ପୂଜାଦି ।

ବୈଶ୍ୱଦେବତ—କ୍ଲୀ. ବି. ଉତ୍ତରଷାଢ଼ା ନକ୍ଷତ୍ର, ଏହି ନକ୍ଷତ୍ରର ବିଶ୍ୱଦେବତା ଅଧିଷ୍ଠାତ୍ରୀ ଦେବତା ।

ବୈଶ୍ୱଦେବ୍ୟ—ତ୍ରି. ବିଂ, ବିଶ୍ୱଦେବର ପ୍ରୀତ୍ୟର୍ଥେ ଯାହା ଉତ୍ସର୍ଗୀକୃତ ହୋଇଅଛି । [ ଦେଖ ।

ବୈଶ୍ୱଦୈବତ—କ୍ଲୀ. ବି. ବୈଶ୍ୱଦେବତ

ବୈଶ୍ୱରୂପ—ତ୍ରି.ବିଂ, ( ବିଶ୍ୱରୂପ+ଅ ) ବିଶ୍ୱରୂପସମ୍ବନ୍ଧୀୟ, (ବି) ବିଶ୍ୱରୂପ ।

ବୈଶ୍ୱାନର—ପୁଂ.ବି. (ବିଶ୍ୱନର+ଅ) ଅଗ୍ନି , ଜଠରାଗ୍ନି , ଚିତ୍ରକବୃକ୍ଷ,ପରମାତ୍ମା, ଚେତନ, ପିତ୍ତ, ବେଦାଂଶବିଶେଷ ।

ବୈଶ୍ୱାନରଜ୍ୟୋତିଷ—ବି. ପରଂବ୍ରହ୍ମ ।

ବୈଶ୍ୱାନରମାର୍ଗ—ପୁଂ. ବି. ଆକାଶର ପୂର୍ବ ଦକ୍ଷିଣ ମାର୍ଗ, ଅଗ୍ନିକୋଣ ।

ବୈଶ୍ୱାମିତ୍ର—ପୁଂ.ବି. ବିଶ୍ୱାମିତ୍ର ଗୋତ୍ରାପତ୍ୟ, ବିଭିନ୍ନ ଋଷି ।

ବୈଶ୍ୱାବସବ—କ୍ଲୀ.ବି. ବସୁସମୂହ,(ବିଂ) ବିଶ୍ୱାବସୁସମ୍ବନ୍ଧୀୟ ।

ବୈଶ୍ୱାସିକ—ପୁଂ.ବିଂ. (ବିଶ୍ୱାସ+ଇକ)

ବିଶ୍ୱାସୀ (ବ୍ୟକ୍ତି) ।

ବୈଶ୍ୱୀ—ସ୍ତ୍ରୀ.ବି. ( ବିଶ୍ୱ + ଈ ) ଉତ୍ତରାଷାଢ଼ା ନକ୍ଷତ୍ର । [ ବୈଷମ୍ୟ ।

ବୈଷମ— କ୍ଲୀ.ବି.(ବିଷମ+ଅ)ବିଷମତା,

ବୈଷମ୍ୟ—କ୍ଲୀ. ବି. ( ବିଷମ + ଯ ) ବୈସାଦୃଶ୍ୟ, ବିରୁଦ୍ଧଭାବ, ଅମେଳ ବିଷମତା, ସାମ୍ୟତାର ଅଭାବ ।

ବୈଷୟ—କ୍ଲୀ.ବି. (ବିଷୟ + ଅ)ବିଷୟସମୂହ ।

ବୈଷୟିକ—ବି.ବିଂ. ( ବିଷୟ+ଇକ ) ବିଷୟସମ୍ବନ୍ଧୀୟ, ଗାର୍ହସ୍ଥ୍ୟ, ବ୍ୟବସାୟସମ୍ବନ୍ଧୀୟ, ଧନୀ, ଇନ୍ଦ୍ରିୟସେବା ନିରତ ସାଂସାରିକ କାର୍ଯ୍ୟରେ ଆସକ୍ତ, (ବି) ବିଷୟୀ ବ୍ୟକ୍ତି, ଧନୀ ବ୍ୟକ୍ତି ।

ବୈଷୟିକବିଜ୍ଞାନ—ବି. ଯେଉଁ ବିଜ୍ଞାନଶାସ୍ତ୍ର ଦ୍ୱାରା ମନୁଷ୍ୟର ସାଂସାରିକ ବିଷୟ ପରିଚାଳନାରେ ଜ୍ଞାନଲାଭ ହୁଏ ।

ବୈଷୟିକବ୍ୟବସ୍ଥା—ବି. (କ.ଧା) ସାଂସାରିକ ବିଷୟର ବନ୍ଦୋବସ୍ତ ।

ବୈଷୟିକବ୍ୟାପାର—ବି.ସାଂସାରିକକାର୍ଯ୍ୟ ବିଷୟ ସମ୍ପତ୍ତି ।

ବୈଷୁବତ—ବି. ବିଂ. ( ବିଷୁବତ୍ + ଅ ) ବିଷୁବ ସଂକ୍ରାନ୍ତି ଦେଖ ।

ବୈଷ୍କିର—ବି. ବିଂ. କୁକୁଟାଦି, ଯେ ଆହାର ଦ୍ରବ୍ୟ ନଖରେ ଇଞ୍ଚାଡ଼ି ଖାଆନ୍ତି

ବୈଷ୍ଟିକ—ପୁଂ. ବି. ଦୁର୍ବୃତ୍ତ, ଦୁରାଚାର, ବେଠିଆ ।

ବୈଷ୍ଟୁତ—ବି(ବି+ସ୍ତୁ+ଣ.ତ)ହୋମଭସ୍ମ, ବିଭୂତି ।

ବୈଷ୍ଣବ—ପୁଂ. ବିଂ. (ବିଷ୍ଣୁ+ଅ) ବିଷ୍ଣୁସମ୍ବନ୍ଧୀୟ, ବିଷ୍ଣୁଭକ୍ତ, (ବି) ଅଷ୍ଟାଦଶ ମହାପୁରାଣାନ୍ତର୍ଗତ ପୁରାଣବିଶେଷ, ବିଷ୍ଣୁପୁରାଣ, ହୋମଭସ୍ମ, ପ୍ରାଚୀନ କାଳର ଯୁଦ୍ଧାସ୍ତ୍ରବିଶେଷ, ସୁଦର୍ଶନଚକ୍ର, (ଗ୍ରା.ବି) ବିଷ୍ଣୁଭକ୍ତ ସନ୍ନ୍ୟାସୀ, ବୈରାଗୀ,

ବୈଷ୍ଣବତା—ବି. ବିଷ୍ଣୁ ଭକ୍ତି, ବୈଷ୍ଣବର ଆଚରଣ ।

ବୈଷ୍ଣବତୀର୍ଥ—କ୍ଲୀ. ବି. ତୀର୍ଥବିଶେଷ, ବିଷ୍ଣୁସମ୍ବନ୍ଧୀୟ ତୀର୍ଥ ।

ବୈଷ୍ଣବସମ୍ପ୍ରଦାୟ—ବି. ବୈଷ୍ଣବମାନଙ୍କର ଭିନ୍ନ ଭିନ୍ନ ଶ୍ରେଣୀ ବା ଆଖଡ଼ା ।

ବୈଷ୍ଣବୀ—ସ୍ତ୍ରୀ. ବି. ( ବିଷ୍ଣୁ+ଅ+ଈ ) ବିଷ୍ଣୁଙ୍କର ଆଦ୍ୟା ଶକ୍ତି, ବିଷ୍ଣୁଶକ୍ତି, ଦୁର୍ଗା, ଗଙ୍ଗାନଦୀ, ଅପରାଜିତା, ଶତାବରୀ, ତୁଳସୀ, ମନସା, ପୃଥିବୀ,ଶ୍ରବଣାନକ୍ଷତ୍ର, ସାମବିଶେଷ, ମାତୃବିଶେଷ, (ବୈଷ୍ଣବ + ଈ) ବୈଷ୍ଣବର ସ୍ତ୍ରୀ, ବିଷ୍ଣୁଭକ୍ତା ସ୍ତ୍ରୀ, (ବିଂ) ବିଷ୍ଣୁଙ୍କ ସମ୍ବନ୍ଧୀୟା, ବିଷ୍ଣୁଭକ୍ତା (ନାରୀ) ।

ବୈଷ୍ଣବ୍ୟ—ବି. ବିଂ. (ବିଷ୍ଣୁ+ଯ)ଯଜ୍ଞସମ୍ବନ୍ଧୀୟ, ବିଷ୍ଣୁସମ୍ବନ୍ଧୀୟ ।

ବୈସର୍ଗିକ—ବି. ବିଂ. (ବିସର୍ଗ+ଇକ) ବୈସର୍ଜନୀୟ, ତ୍ୟାଜ୍ୟ ।

ବୈସର୍ଜନ—ବି. (ବିସର୍ଜନ + ଅ)ବିସର୍ଜନ କର୍ମ, ବିସର୍ଜିତ ବା ଉତ୍ସୃଷ୍ଟ ବସ୍ତୁ,ଯଜ୍ଞର ବଳି ।

ବୈସର୍ଜନୀୟ—ବିଂ. ଉତ୍ସର୍ଗର ଯୋଗ୍ୟ ।

ବୈସର୍ପ—ବି. ବିଂ. (ବିସର୍ପ + ଅ)ବିସର୍ପରୋଗ, ବିସର୍ପ ରୋଗସମ୍ବନ୍ଧୀୟ ।

ବୈସାଦୃଶ୍ୟ—କ୍ଲୀ. ବି. (ବିସଦୃଶ+ଯ) ବିସଦୃଶତା, ବୈଷମ୍ୟ, ଅସାମଞ୍ଜସ୍ୟ, ଅସମାନତା ।

ବୈସାରଣ—ପୁଂ. ବି. (ବିସାରନ୍+ଅ) ମତ୍ସ୍ୟ, ମାଛ ।

ବୈସୂଚନ—କ୍ଲୀ. ବି. (ବି+ସୂଚ୍+ଣିଚ୍ +ଅନ+ଅ) ନାଟ୍ୟରେ ପୁରୁଷର ସ୍ତ୍ରୀବେଶ ଧାରଣ ।

ବୈସ୍ତାରିକ—ବି.ବିଂ. ବିସ୍ତାରସମ୍ବନ୍ଧୀୟ ।

ବୈସ୍ପଷ୍ଟ୍ୟ- କ୍ଲୀ.ବି.ପରିଷ୍କାର, ପରିଚ୍ଛନ୍ନତା, ବିଶେଷ ରୂପେ ସ୍ପଷ୍ଟତା ।

ବୈସ୍ୱର୍ଯ୍ୟ—ବି. (ବିସ୍ୱର+ଭା.ଯ) ଗଳା ବସିଯିବା ଅବସ୍ଥା । [ ସମ୍ବନ୍ଧୀୟ

ବୈହଗ—ବି. ବିଂ. (ବିହଗ+ଅ)ବିହଗ

ବୈହଙ୍ଗ—ବି.ବିଂ.(ବିହଙ୍ଗ+ଅ)ବିହଙ୍ଗ ସମ୍ବନ୍ଧୀୟ ।

ବୈହାୟସ—ବି. ବିଂ. (ବିହାୟସ+ଅ) ବିହାୟସସମ୍ବନ୍ଧୀୟ, ଆକାଶସମ୍ବନ୍ଧୀୟ, (ବି) ଅସୁରରାଜ ବଳର ରଥ ।

ବୈହାର—ପୁଂ.ବି. ମଗଧର ଅନ୍ତର୍ଗତ ଗୋଟିଏ ପର୍ବତ ।

ବୈହାର୍ଯ୍ୟ—ବି. ଓ ବିଂ.( ବିହାର + ଯ ) ଆପଣାର ପରିହାସ ବ୍ୟକ୍ତି, ପରିହାସଯୋଗ୍ୟ ବ୍ୟକ୍ତି, ଶ୍ୟାଳକାଦି ।

ବୈହାସିକ—ପୁଂ.ବି. ( ବିହାସ+ଇକ ) ଯେ ହସାଏ, ଭଣ୍ଡ, ବିଦୂଷକ ।

ବୈହ୍ୱଲ୍ୟ—କ୍ଲୀ.ବି. (ବିହ୍ୱଳ+ଯ) ବିହ୍ୱଳତା ।

ବୋ—ଯା.ବି. ଦୁର୍ଗନ୍ଧ, ଗନ୍ଧ, (ପ୍ରା.ସମ୍ବ. ଅବ୍ୟ—ସମ୍ବୋଧନ)ରେ, ହେ,(ବି.ବିଂ) ମ ।

ବୋଅଳ—ପ୍ରା.(ବାଲେ)ବି. ବାଳଆମାଛ

ବୋଆଳୁ—ଗ୍ରା.ବି. (ସଂ-ବହୁବାର)ଗର୍ଭିଣୀ ଗରୁ ।

ବୋଇ—ଯା.ବି. ବୋ ଦେଖ ।

ବୋଇତ—ଗ୍ରା. ବି. ନୌକା, ସମୁଦ୍ରଗାମୀ ଜାହାଜ,ବାଣିଜ୍ୟପୋତ,ମୋଟାଲୁଗା ।

ବୋଇତବୁଡ଼ିବା—ଗ୍ରା. ବି. ଜାହାଜ ବୁଡ଼ିଯିବା, (ଲ.ଅର୍ଥ) ଜୀବନର ନଷ୍ଟାହାର ଆଶା ଭାଙ୍ଗିଯିବା ।

ବୋଇତାଳ—ଗ୍ରା. ବି. (ସଂ-ବହିତ୍ରପାଳ) ଜାହାଜ ବା ନୌକାର ସ୍ୱାମୀ,ନାବିକ, ପୋତବଣିକ ।

ବୋଇତାଳଦେଉଳ—ଗ୍ରା.ବି. ଭୁବନେଶ୍ୱରରେ କପାଳୀ ଠାକୁରାଣୀଙ୍କ ଦେଉଳ । [ କଖାରୁ ।

ବୋଇତାଳୁ—ଗ୍ରା.ବି. ଏକପ୍ରକାର ମିଠା

ବୋଇଲା—ଗ୍ରା.ବି. କଥିତ ବଚନ ।

ବୋଇଲେ—ଗ୍ରା. ଅବ୍ୟ. ପରବର୍ତ୍ତୀରେ, ଏବଂ, ଓ, ବୋଲି ।

ବୋଉ—ଗ୍ରା.ସ୍ତ୍ରୀ.ବି. (ସଂ-ବଧୂ) ବୋହୂ ଦେଖ, ମା ।

ବୋକ—ଗ୍ରା.ବି. ଚୁକ, ଚୁମ୍ବନ ।

ବୋକଗୃ—ଯା. ବି. ଲୁଗାପଟାଆଦିର ବଡ଼ ପୁଡ଼ା ବା ଗଣ୍ଠିରି ।

ବୋକଗୃବୁଦ୍ଧା—ଗ୍ରା. ବିଂ. ଯେ ଅନ୍ୟର ବୋକଗୃ ବୁହେ ।

ବୋକା—ଗ୍ରା. ପୁଂ. ବି°. ( ସଂ-ବର୍କର ) ବଗା, ମୂଢ଼, ନିର୍ବୋଧ, ମୂକ, ଅର୍ଦ୍ଧପାଗଳ ।

ବୋକାମି—ଗ୍ରା. ବି. ନିର୍ବୁଦ୍ଧିତା ।

ବୋକାରାମ୍—ଗ୍ରା. ବି ଓ ବି°. ନିର୍ବୋଧଙ୍କ ମଧ୍ୟରେ ପ୍ରଥମସ୍ଥାନୀୟ, ଅତିନିର୍ବୋଧ ।

ବୋଝ—ଗ୍ରା. ବି. ଭାର, ମନୁଷ୍ୟ ମୁଣ୍ଡରେ ବୋହିବା ବସ୍ତୁଚୟ, ଯାନବାହାନାଦିଙ୍କ ଉପରେ ବାହିତ ହେବା ଭାର, ଗୁରୁଦାୟିତ୍ୱ, ବଡ଼ ଝୋଟକେଇ ।

ବୋଝବୋଝ—ଗ୍ରା. ବି°. ବହୁସଂଖ୍ୟକ ବୋଝବିଶିଷ୍ଟ ।

ବୋଝା(ଝେ)ଇ—ଗ୍ରା. ବି. ଭାର ସ୍ଥାପନ, ପ୍ରାଣୀ ବା ଯାନାଦିରେ ଭାର ଲଦିବା ।

ବୋଝିଆ—ଗ୍ରା. ପୁଂ. ବି°, ଯେ ମୁଣ୍ଡରେ ବୋଝ ବୁହେ ।

ବୋଝେ—ଗ୍ରା. ବି ଓ କ୍ରି.ବି°. ଏକବୋଝପରିମିତ, ଏକବୋଝମାତ୍ର, ବହୁତ, ବିଶେଷ ।

ବୋଟ୍—ଯା.ବି. ଆଧୁନିକ ପ୍ରଣାଳୀରେ ନିର୍ମିତ ନୌକା, (ପ୍ରା.ଗଞ୍ଜାମ,ଚ)ଗୋବ

ବୋଟା—ସ୍ତ୍ରୀ.ବି, ଦାସୀ, ପରିଚାରିକା, ମୂଲିଆଣୀ, ଧାଇ ।

ବୋଡ଼—ପୁଂ.ବି. ଗୁବାକ, ସୁପାରି ।

ବୋଡ଼ା—ଗ୍ରା.ବି. ଗୋନସ ସର୍ପ, ବୃହତ୍ ସର୍ପବିଶେଷ, (ପ୍ରା.ଗଞ୍ଜାମ.ବି) ଧାନ୍ୟାଦି ମାପିବାର ପରିମାଣ ପାତ୍ରବିଶେଷ, ବେଲୁଆ ।

ବୋଡ଼ି—ଗ୍ରା. ବି. ୫ଗଣ୍ଡା ବା ୨୦କଉଡ଼ା କଉଡ଼ି, ପଣର ଏକ ଚତୁର୍ଥାଂଶ ।

ବୋଡ଼ିଙ୍ଗ—ଯା.ବି. ଛାତ୍ରାବାସ ।

ବୋଡ଼ୁ—ପୁଂ.ବି. ଗୋନାସସର୍ପ, ବୋଡ଼ାସାପ, ମତ୍ସ୍ୟବିଶେଷ ।

ବୋଡ଼ୀ—ସ୍ତ୍ରୀ.ବି. ବୋଡ଼ି ଦେଖ ।

ବୋଢ଼ବ୍ୟ—କ୍ରି. ବି°. (ବହ୍ + ର୍ମ.ତବ୍ୟ) ବହନୀୟ, ବାହ୍ୟ, ବିବାହଯୋଗ୍ୟ ।

ବୋଢ଼ା—ପୁଂ. ତ୍ରି. ( ବୋହ+କ.ତୃ ) ବିବାହକାରୀ ବ୍ୟକ୍ତି, ଭାରବାହକ, ସାରଥି, ବଳଦ, ଦାମୁଡ଼ି, ପଥପ୍ରଦର୍ଶକ, ବହନକାରୀ, ଋଷଭ ନାମକ ଔଷଧି ।

ବୋଢ଼ୁ—ବି. ମତ୍ସ୍ୟବିଶେଷ ।

ବୋଣ୍ଟ—ପୁଂ. ବି. (ବା + କ.ଉଣ୍ଟ) ଫୁଲ ଆଦିର ଡେମ୍ଫ, ବୃନ୍ତ, ଲଙ୍ଗଳର ବେଣ୍ଟ, କଣ୍ଟି ।

ବୋତଡ଼ା—ପ୍ରା. (ଗଞ୍ଜାମ) ବି. ଗଞ୍ଜାମ ଜିଲ୍ଲାର ପାଟକବିଶେଷ ।

ବୋତଲ—ଯା.ବି.କାଚ ଆଦିର ଗୋଲାକାର ଲମ୍ବ ସରୁମୁହାଁ ପାତ୍ର ।

ବୋଥା—ଗ୍ରା. ବି. ( ସଂ-ବୃନ୍ତ ) ପଣସ ଫଳର ଅସାର ଅଂଶ ବା ଛୋପା ।

ବୋତାମ୍—ଯା. ବି. କୁରୁତା ପ୍ରଭୃତିର ବିଭିନ୍ନ ଖୋଲା ଅଂଶକୁ ଏକତ୍ର ସଂଲଗ୍ନ କରିବାର ଗଣ୍ଠି ବା ଚକ୍ତି ।

ବୋଦ୍ଧ—ଗ୍ରା. ବି. (ସଂ-ବୃକ୍ଷ) ମୁଗବିରି ଆଦିର ଛୋପା ଓ ଶୁଖିଲା ପତ୍ରର ଗୁଣ୍ଡ ।

ବୋଦ—ପୁଂ. ବି. ଆର୍ଦ୍ର, ଓଦା ।

ବୋଦା—ଗ୍ରା. ବି. ବକରା, ଅଣ୍ଡିରାଛେଳି ।

ବୋଦାଲ—ପୁଂ. ବି. (ବୋଦ୍+ଅଲ) ବାଲିଆ ମାଛ ।

ବୋଦ୍ଧା—ବି°. (ବୋଧ୍+କ.ତୃ) ଜ୍ଞାତା, ଯେ ଜାଣେ, ଜ୍ଞାନୀ ।

ବୋଧ—ବି. (ବୁଧ୍ + ଭା.ଅ)ବୁଦ୍ଧି, ହୃଦୟଙ୍ଗମ, ଜ୍ଞାନ, ଅଭିପ୍ରାୟ, ଜାଗରଣ, ମନରେ ଉଦିତ ହେବା ଭାବ, ଅନୁଭୂତି, ପ୍ରବୋଧ, (ବୋଧି+ଭା.ଅ) ବୋଧିତ କରିବା, ବୁଝାଇବା, (ଗ୍ରା.ବି)ସନ୍ତୋଷ, ସମ୍ଭାବନା, ଉତ୍ସାହଦାନ, (ବି°) ସନ୍ତୁଷ୍ଟ, ଉତ୍ସାହିତ, ଆଶ୍ୱସ୍ତ, ଜ୍ଞାତ, ଅନୁଭୂତ ।

ବୋଧକ—ପୁଂ. ବି°. (ବୁଧ୍+ଣିଚ୍+କ.ଅକ) ଜ୍ଞାପକ, ସୂଚକ, ଯେ ଦୀପ୍ତି କରେ, ନିଦ୍ରାଭଙ୍ଗକାରୀ, ଯାହା ହୃଦୟଙ୍ଗମ କରାଏ, (ପୁଂ.ବି) ଦୂତ, ଚର, ଗୁଇନ୍ଦା, ଶିକ୍ଷକ ।

ବୋଧକର—ପୁଂ.ବି. (୬ତତ୍) ବୈତାଳିକ, ଭାଟ, (ପୁଂ.ବି°) ଜାଗରିତକାରୀ, ଜ୍ଞାପକ ।

ବୋଧକରିବା—ଗ୍ରା.କ୍ରି. ବିଚାର କରିବା, ଅନୁମାନ କରିବା, ବିଶ୍ୱାସ କରିବା, ବୁଝିପାରିବା, ସନ୍ତୁଷ୍ଟ କରିବା, ଅନୁଭବ କରିବା, ସାନ୍ତ୍ୱନା ଦେବା, (ଲ.ଅର୍ଥ) ଶ୍ରଦ୍ଧାକରିଦେବା ।

ବୋଧଗମ୍ୟ—ବି°. ( ବୋଧ+ଗମ୍ୟ ) ବୁଝିବାର ଯୋଗ୍ୟ, ଯାହା ବୁଝିହୁଏ ।

ବୋଧଗୋଚର—ବି.(୬ତତ୍) ଅନୁମିତ, ବୁଝାଯାଇଥିବା । [ ସ୍ୱାଦକ ।

ବୋଧଜନକ—ବି°. (୬ତତ୍) ଜ୍ଞାନୋତ୍

ବୋଧଜ୍ଞ—ପୁଂ. ବି°. (ବୋଧ୍+ଜ୍ଞା+କ.ଅ) ଅନ୍ୟ ବ୍ୟକ୍ତିର ଅଭିପ୍ରାୟଜ୍ଞ, (ବି) ଶ୍ରୀକୃଷ୍ଣ ।

ବୋଧଦେବା—ଗ୍ରା.କ୍ରି, ସାନ୍ତ୍ୱନାଦେବା, ଆଶାଦେବା ।

ବୋଧନ—ବି. (ବୁଧ୍+ଣିଚ୍+ଭା.ଅନ) ବୋଧ, ଜଣାଇବା, ସୁବାସ ଧୂଆଁ ଦେବା, ନିଦ୍ରାଭଙ୍ଗକରଣ, ଉଦ୍ଦୀପନ, ଇନ୍ଦ୍ରିୟଜ୍ଞାନ, (କ,ଅନ) ବୁଧଗ୍ରହ, (ଭା.ଅନ) ଦୀପ ବା ନିଆଁ ଲଗାଇବା ।

ବୋଧନୀ—ବି. (ବୋଧନ+ଈ) ଜ୍ଞାନ, ଅଧ୍ୟାପନା, ଜ୍ଞାପନ, ନିଦରୁ ଉଠାଇବା, (ବୁଧ୍+ଣିଚ୍+ଅଧି.ଅନ+ଈ)ଆଶ୍ୱିନ ଶୁକ୍ଳଷଷ୍ଠୀ, କାର୍ତ୍ତିକ ଶୁକ୍ଳଏକାଦଶୀ, ପିପ୍ପଳୀ ।

ବୋଧନୀୟ—ବି°. (ବୁଧ୍+ର୍ମ.ଅନୀୟ) ଜ୍ଞାପନୀୟ ।

ବୋଧପ୍ରବାହ—ବି. ( ୬ତତ୍ ) ମନର ଯେଉଁ ଶକ୍ତିଦ୍ୱାରା ଚିନ୍ତା ଦର୍ଶନ ଶ୍ରବଣ ଅନୁଭବ ଆଦି କାର୍ଯ୍ୟ କରାଯାଏ, ଇନ୍ଦ୍ରିୟଦ୍ୱାରା ଜ୍ଞାନଶକ୍ତି ।

ବୋଧବା(ସୋ)ଧ—ଗ୍ରା. ବି. ଆଶ୍ୱାସନା, ବୁଝିବାର କ୍ଷମତା, (ବି°)ଆଶ୍ୱସ୍ତ, ସନ୍ତୁଷ୍ଟ

ବୋଧବାସର—ବି. କାର୍ତ୍ତିକ ଶୁକ୍ଳଏକାଦଶୀ ।

ବୋଧଲାଗିବା—ଗ୍ରା.ବି.ମନରେ ସନ୍ତୋଷ ଜଣାଯିବା ।

ବୋଧଶକ୍ତି—ଗ୍ରା. ବି. ବୁଝିପାରିବାର କ୍ଷମତା, ଚୈତନ୍ୟ ।

ବୋଧହୁଏ—ଗ୍ରା. ଅ. ମୁଁ ବିଚାରୁଛି, ଅନୁମାନ, ସମ୍ଭବତଃ ।

ବୋଧହେବା—ଗ୍ରା.କ୍ରି. (କୌଣସି ବିଷୟ)

ଅନୁମିତ ହେବା, ଅନୁଭୂତ ହେବା, ସନ୍ତୁଷ୍ଟ ହେବା ।
ବୋଧା—ଗ୍ରା. ବି°. ଜ୍ଞାନୀ, ଅନୁଭବୀ, ସାଂସାରିକ କାର୍ଯ୍ୟାକାର୍ଯ୍ୟ ବିଷୟରେ ବିଚକ୍ଷଣ ।
ବୋଧାବୋଧ—ଗ୍ରା. ବି. ଜ୍ଞାନାଜ୍ଞାନ, ଭଲ ମନ୍ଦ ବିଚାର କରିବାର ଶକ୍ତି ।
ବୋଧାତୀତ—ବି°. (ବୋଧ + ଅତୀତ) ଜ୍ଞାନାତୀତ, ଦୁର୍ଜ୍ଞେୟ,(ସ୍ତ୍ରୀ)ବୋଧାତୀତା ।
ବୋଧି—ବି°. ( ବୁଧ୍ + କ.ଇ ) ଜ୍ଞାତା, ଜ୍ଞାନୀ, ବିଦ୍ୱାନ୍,(ବି-ସ୍ତ୍ରୀ.ଇ)ସମାଧିବିଶେଷ. ଜ୍ଞାନ, ଅଶ୍ୱତ୍ଥ ଗଛ ।
ବୋଧିତ—ବି°. (ବୁଧ୍+ଣିଚ୍+ର୍ମ.ତ) ଜ୍ଞାପିତ, ଜାଗରିତ ।
ବୋଧିତବ୍ୟ—ବି°. ଜ୍ଞାପିତବ୍ୟ ।
ବୋଧିତରୁ—ପୁଂ. ବି. ଅଶ୍ୱତ୍ଥ ବୃକ୍ଷ ।
ବୋଧିଦ୍ରୁମ—ପୁଂ. ବି. ଅଶ୍ୱତ୍ଥ ଗଛ ।
ବୋଧିବା—ଗ୍ରା. କ୍ରି. ବୁଝାଇବା, ମନକୁ ବୁଝାଇବା, ସାନ୍ତ୍ୱନାଦେବା, ସନ୍ତୁଷ୍ଟ କରିବା ।
ବୋଧିସତ୍ତ୍ୱ—ବି. ବୌଦ୍ଧରଷି, ବୌଦ୍ଧ, ବୁଦ୍ଧବିଶେଷ ।
ବୋଧ୍ୟ—ବି°. (ବୁଧ୍ + ର୍ମ.ଯ) ଜ୍ଞାତବ୍ୟ, ଯାହା ବୁଝିହୁଏ ।
ବୋନ(ନା)ସ—ଯା. ବି. ପାରିଶ୍ରମିକଛଡ଼ା କର୍ମୀକୁ ଦିଆଯିବା ପାରିତୋଷିକ
ବୋପଦେବ—ଗ୍ରା.ବି. ଜନୈକ ସଂସ୍କୃତ (ମୁଗ୍ଧବୋଧ) ବ୍ୟାକରଣ ପ୍ରଣେତା ।
ବୋପା—ଗ୍ରା. ବି. ବାପ, ବାତ୍ସଲ୍ୟାର୍ଥକ ସମ୍ବୋଧନ, ହେ ବତ୍ସ !
ବୋପା ଲୋ—ଗ୍ରା. ଅ. ଆଶ୍ଚର୍ଯ୍ୟାର୍ଥକ ଓ ଭୟାର୍ଥକ ଅବ୍ୟୟ,ବାପ ରେ,ଶାରୀରିକ ଯନ୍ତ୍ରଣା ବା ହଠାତ୍ ଉପସ୍ଥିତ ବିପଦରେ ମନୁଷ୍ୟର ଡାକ ।
ବୋପେଇ—ଗ୍ରା.ବି. (ଇତର ବ୍ୟବହୃତ) ଶ୍ୱଶୁର ଙ୍କାଙ୍କୁ ସମ୍ବୋଧନ ।
ବୋବା—ଗ୍ରା. ପୁଂ. ବି°. ଜଡ଼ା, ମୂକ, ଖନା ।
ବୋବା(ବୋ)ଇବା—ଗ୍ରା.କ୍ରି. ରଡ଼ିଛାଡ଼ିବା, ଉଚ୍ଚୈଃସ୍ୱରରେ କାନ୍ଦିବା,ରାବକରିବା ।
ବୋବାଳି—ଗ୍ରା.ବି.ଭୟରେ ବା ଦୁଃଖରେ ଆର୍ତ୍ତିନାଦ, ବିକଳ ଚିତ୍କାର,ନାଦ,ରାବ, କଣ୍ଠଧ୍ୱନି ।
ବୋର—ବି.(ବା + ଉଲ)ଡାଳୁଅ ଧାନ ।
ବୋରକ—ପୁଂ.ବି. ଡାଳୁଅଧାନ,ବୋଲକ ଦେଖ ।
ବୋରଖାଞ୍ଜି—ଗ୍ରା. ବି. ଏକପ୍ରକାର ଖାସ-ମାନ ଦଳ ।
ବୋରଟ—ପୁଂ. ବି. କୁନ୍ଦପୁଷ୍ପ ।
ବୋରଠ—ପ୍ରା. (ବସ୍ତର) ବି. ମୂରମ୍ ।
ବୋରବ—ପୁଂ. ବି. (ବୋର୍ + ବା+ କ.ଅ) ଡାଳୁଅ ଧାନ ।
ବୋରା—ଗ୍ରା. ବି. ଖୋଟ ବା ଛଣପଟର ଦଉଡ଼ିରେ ବୁଣା ବଡ଼ ଅଖା ବା ବସ୍ତା, (ଯା.ବି°) ବୁରା, ମନ୍ଦ । [ ମାଛ ।
ବୋରିଆ—ପ୍ରା. (ଗଞ୍ଜାମ) ବି. ପୋହଲା
ବୋରୁଖାନ—ପୁଂ.ବି. ପାଟଳବର୍ଣ୍ଣ ଅଶ୍ୱ ।
ବୋର୍ଣ୍ଣିଓ—ଭାରତମହାସାଗରସ୍ଥ ଭାର-ତୀୟ ଦ୍ୱୀପପୁଞ୍ଜ ଅନ୍ତର୍ଗତ ଗୋଟିଏ ସୁବୃହତ୍ ଦ୍ୱୀପ ।
ବୋଲ—କ୍ଳୀ.ବି. (ବା + କ.ଉଲ)ସ୍ୱନାମ-ଖ୍ୟାତ ବଣିକ ଦ୍ରବ୍ୟ, ଗୁଗ୍ଗୁଲପରି ଏକପ୍ରକାର ସୁଗନ୍ଧି ଧୂମୋତ୍ପାଦକ ନିର୍ଯ୍ୟାସ, ଲୋବାନ୍, କ୍ଷାରଜଳ, (ଗ୍ରା.ବି) ମଳ, ମଇଳା, ଗୋଳିଆ ପାଣି ଅଟକି-ଗଲେ ତା ତଳେ ବସିରହିଥିବା ପଙ୍କ, ଦାନ୍ତ ଓ ଓଠ ଉପରେ ବସିଥିବା ପାନ ଆଦିର ସ୍ତର,ଅଳତାଆଦି ରଙ୍ଗର ସ୍ତର
ବୋଲକ—ପୁଂ. ବି. (ବା + କ.ଉଲ୍+କ) ଲେଖକ, ଲିପିକର, ଚିତ୍ରକର ।
ବୋଲବସିବା—ଗ୍ରା. ବି. ଦେହଆଦିରେ ମଇଳାର ବା ରଙ୍ଗର ସ୍ତର ବସିଯିବା ।
ବୋଲ—ଗ୍ରା. ବି. ବଚନ, କଥା,ବାକ୍ୟ, ବାଦ୍ୟରୁ ଉଠିବା ଶବ୍ଦ,ଆଦେଶ,ବୋଲି, ଉପଦେଶ, ଅନୁରୋଧ, ଡାକ,ପ୍ରତିଜ୍ଞା ।
ବୋଲକରା—ଗ୍ରା. ବି°. ଆଦେଶ ପ୍ରତି-ପାଳନକାରୀ, ଆଜ୍ଞାପାଳକ ।
ବୋଲକରିବା—ଗ୍ରା.କ୍ରି. ଉପଦେଶ ଅନୁ-ସାରେ କାର୍ଯ୍ୟକରିବା,ଆଦେଶମାନିବା, ଅନୁରୋଧ ରକ୍ଷା କରିବା ।
ବୋଲଙ୍ଗା—ଗ୍ରା. ବି. ଚଳଙ୍କାର ଏକ-ପ୍ରକାର ମାଛ ।
ବୋଲଣା—ଗ୍ରା. ବି. ଅପବାଦ, ନିନ୍ଦା-ରଟନା, ଗାଳିଭର୍ତ୍ସନା, ଗାଳିଖାଇବାର କାର୍ଯ୍ୟ ।
ବୋଲହାକ—ଗ୍ରା. ବି. ଆଦେଶ ଓ ଉପଦେଶ, ଗୃହସ୍ଥର ଭୃତ୍ୟକୁ ଦେବା ଆଦେଶ । [ କ୍ରିୟା ।
ବୋଲା—ଗ୍ରା.ବି. ବୋଲିବା ବା ଲେପିବା
ବୋଲି—ଗ୍ରା. ବି. ବୋଲିବା କ୍ରିୟା ।
ବୋଲାଇବା—ଗ୍ରା. କ୍ରି. ଅନ୍ୟବ୍ୟକ୍ତିଦ୍ୱାରା ବୋଲିବା କ୍ରିୟା କରାଇବା, ଖ୍ୟାତ-ହେବା,କଥିତ ହେବା, କହି ପଠାଇବା
ବୋଲାବନ୍ତ—ଗ୍ରା. କ୍ରି. କଥିତ ହୁଅନ୍ତି ।
ବୋଲାବୋଲି—ଗ୍ରା. ବି. କଥୋପକଥନ
ବୋଲି—ଗ୍ରା. ବି. ଭାଷା, କଥା, ବାକ୍ୟ, ପ୍ରବଚନ, ପାରିଭାଷିକ ଶବ୍ଦ, ବାକ୍ୟର ଉକ୍ତି, ପାଠ,(ଅବ୍ୟ) ପର୍ଯ୍ୟନ୍ତ,ଅବଧି, ଲୋକରେ କଥିତ ହୁଏ, ହେଲେସୁଦ୍ଧା, ଯେ ହେତୁ, କାରଣରୁ,ବୁଝିଲାବେଳକୁ, ହୋଇଥିବାରୁ କେବଳ, ହେବାର, ଭାବ ଉଦ୍ଦେଶ୍ୟରେ, ନାମକ, ଯଥା, ରୂପେ, ଏହି,ମର୍ମରେ ।
ବୋଲିକରି—ଗ୍ରା.ଅବ୍ୟ. ବୋଲି ଦେଖ ।
ବୋଲିବା—ଗ୍ରା. କ୍ରି. ଲେପନ କରିବା, ମାଖିବା, ଲେସିବା ।
ବୋଲିବା—ଗ୍ରା. କ୍ରି. କହିବା, ଗାନ-କରିବା, ଆବୃତ୍ତି କରିବା, ଗାଳିଦେବା, ବର୍ଣ୍ଣନା କରିବା, (ଗ୍ରା.ବି) କୁହାଯିବା, କଥା, ବାକ୍ୟ ।
ବୋଲିବାଲି—ଗ୍ରା. କ୍ରି. ବିଶେଷ ପରି-ମାଣରେ ଲେପନ କରି ।
ବୋଲିହେବା—ଗ୍ରା. କ୍ରି. ନିଜଦେହରେ ଲେପନ କରିବା । [ ଟେଲା ।
ବୋଲୁଅ—ଗ୍ରା. ବି. ବୃହଦାକାର ଲୋଷ୍ଟ୍ର,
ବୋହୁଆଣିବା—ଗ୍ରା.କ୍ରି.(କୌଣସି ଦ୍ରବ୍ୟ) ଅନ୍ୟ ସ୍ଥାନରୁ ଏଠାକୁ ଆଣିବା ।

ବୋହୂଆସିବା—ଗ୍ରା. କ୍ରି. ଉପରୁ ତଳକୁ (ଜଳାଦି) ସ୍ରୋତଦ୍ୱାରା ମାଡ଼ିଆସିବା ।

ବୋହିତ—ଗ୍ରା. ବି. ବୋଇତ ଦେଖ ।

ବୋହିତ୍ର—ବି. (ବହ + ସଂ.ଇତ୍ର) ଅର୍ଣ୍ଣବ-ପୋତ, ନୌକା, ଜାହାଜ ।

ବୋହିପଡ଼ିବା—ଗ୍ରା. କ୍ରି. (ତରଳପଦାର୍ଥ) ପାତ୍ରରୁ ଉଚ୍ଛୁଳି ପଡ଼ିବା ।

ବୋହିବା—ଗ୍ରା. କ୍ରି. ଭାରଆଦି ବହନ କରିବା, (ଜଳାଦି) ସ୍ରୋତରୂପେ ତଳ ଆଡ଼କୁ ଗତି କରିବା, (ବାୟୁ)ବେଗରେ ଗତି କରିବା, (ଝାଳ ବା ରକ୍ତ)ସ୍ରବିବା, ବୋହି ଆସିବା ।

ବୋହିଯିବା—ଗ୍ରା. କ୍ରି. (ଜଳାଦି)ଉଚ୍ଚରୁ ନିମ୍ନକୁ ଗତି କରିବା ।

ବୋହିତ୍ର—ଗ୍ରା. ବି. ବହିତ୍ର ।

ବୋହୂ—ଗ୍ରା. ସ୍ତ୍ରୀ. ବି. ମାତା, ପୁତ୍ରବଧୂ, (ସ୍ତ୍ରୀ) ନବବିବାହିତା କନ୍ୟା, ଭୂଆସୁଣୀ, ସାନଭାଇର ସ୍ତ୍ରୀ ।

ବୋହୂକଣ୍ଟକୀ—ଗ୍ରା. ସ୍ତ୍ରୀ. ବିଂ. ଯେଉଁ ଶାଶୁ ବା ନଣନ୍ଦ ବଧୂ ଉପରେ ସର୍ବଦା ଅପ୍ରସନ୍ନା ଓ ଅତ୍ୟାଚାରିଣୀ ।

ବୋହୂଟି—ଗ୍ରା. ବି. ବଧୂଗଣଙ୍କର ସ୍ନେହ-ସୂଚକ ଆକାର ।

ବୋହୂଭୂଆସୁଣୀ—ଗ୍ରା. ବି. ଶାଶୁଘର ଆସିଥିବା ନବ ବଧୂ,ପରିବାରର ଯୁବତୀ ବଧୂଗଣ, କୂଳବଧୂ ।

ବୌଦ୍ଧ—ବି. (ବୁଦ୍ଧ + ଅ) ବୁଦ୍ଧଦେବଙ୍କ ମତାବଲମ୍ବୀ ବ୍ୟକ୍ତି, ବୁଦ୍ଧଦେବ ପ୍ରବ-ର୍ତ୍ତିତ ଧର୍ମ, ବୁଦ୍ଧଦେବକୃତ ନାସ୍ତିକ୍ୟର ଶାସ୍ତ୍ର, (ବିଂ) ବୁଦ୍ଧଦେବଙ୍କ ସମ୍ବନ୍ଧୀୟ, ବୌଦ୍ଧଧର୍ମ ସମ୍ବନ୍ଧୀୟ, ବୁଦ୍ଧଦେବଙ୍କ ପ୍ରଗୃହୀତ, (ଗ୍ରା.ବି) ଓଡ଼ିଆ ଗଡ଼ଜାତର ରାଜ୍ୟବିଶେଷ,ବଉଦ ରାଜ୍ୟ । [ ଧର୍ମ ।

ବୌଦ୍ଧଧର୍ମ—ବି. ବୁଦ୍ଧଦେବ ପ୍ରବର୍ତ୍ତିତ

ବୌଦ୍ଧାବତାର—ବି.କଳିଯୁଗରେ ବିଷ୍ଣୁଙ୍କ ନବମ ଅବତାର ।

ବୌଧ—ବି. (ବୁଧ + ଅ) ବୁଧ ଗ୍ରହଙ୍କ ପୁତ୍ର, ପୁରୁରବା ।

ବୌଧାୟନ—ବି (ବୁଧ + ଆୟନ) ହିନ୍ଦୁ ସୂତ୍ରକାର ଋଷିବିଶେଷ ।

ବୌଷଟ୍—ବି. (ବହ + କ.ଔଷଟ୍) ଘୃତା-ଦିକୁ ଦେବତାଙ୍କୁ ନିବେଦିତ କରିବା ମନ୍ତ୍ରାଗ୍ର ।

ବ୍ୟଂଶକ—ବି. (ବି + ଅଂଶ + କ) ପର୍ବତ

ବ୍ୟଂସକ—ପୁଂ.ବିଂ. (ବି + ଅନ୍ସ + କ. ଅକ) ଧୂର୍ତ୍ତ, ପ୍ରତାରକ, (ବି + ଅଂସ + କ) ସ୍କନ୍ଧଶୂନ୍ୟ । [ ପ୍ରତାରଣା ।

ବ୍ୟଂସନ—ବି. (ବି + ଅନ୍ସ + ଭା.ଅନ)

ବ୍ୟଂସିତ—ବିଂ. (ବି + ଅନ୍ସ + ସଂ.ତ) ପ୍ରତାରିତ ।

ବ୍ୟକ୍ତ—ବିଂ. (ବି + ଅନ୍ଜ + ସଂ.ତ) ପ୍ରକାଶିତ, ସ୍ପଷ୍ଟୀକୃତ, ସ୍ଫୁଟ, ପ୍ରକଟିତ, ସ୍ଥୂଳ, ଦୃଷ୍ଟ, ଅନୁମିତ ଦୃଶ୍ୟ, (କ.ତ) ବିଜ୍ଞ, (ବି) ବିଷ୍ଣୁ ।

ବ୍ୟକ୍ତକରିବା—ଗ୍ରା.କ୍ରି.ଫିଟାଇକରି କହିବା ସ୍ପଷ୍ଟରୂପେ ପ୍ରକାଶିତ କରିବା, ଦେଖା-ଇବା ।

ବ୍ୟକ୍ତଗଣିତ—ବି. ପାଟୀଗଣିତ ।

ବ୍ୟକ୍ତଦୃଷ୍ଟାର୍ଥ—ବିଂ. (ବି.ସ୍ତ୍ର) ଯେ ନିଜେ ବର୍ଣ୍ଣନୀୟ ବିଷୟ ଆଖିରେ ଦେଖିଅଛି, ପ୍ରତ୍ୟକ୍ଷଦର୍ଶୀ, (ବି)ସାକ୍ଷୀ, ସ୍ୱୟଂ ଦେଖି-ଥିବା ବ୍ୟକ୍ତି ।

ବ୍ୟକ୍ତରୂପ—ପୁଂ.ବିଂ. (ବ.ସ୍ତ୍ର) ଯାହାର ରୂପ ଦୃଶ୍ୟ ହୋଇଅଛି, ସ୍ଥୂଳରୂପ, (ବି) (କ.ଧା) ଦୃଶ୍ୟରୂପ, ସ୍ଥୂଳମୂର୍ତ୍ତି, (ବ.ସ୍ତ୍ର) ବିଷ୍ଣୁ ।

ବ୍ୟକ୍ତି—ବି.(ବି + ଅନ୍ଜ + ସଂ.ତି) ମନୁଷ୍ୟ, ଲୋକ, ଜଣ, ଏକଶ୍ରେଣୀର ଅନେକଙ୍କ ମଧ୍ୟରୁ ଜଣେ, ଶରୀରୀ, ପ୍ରାଣୀ, ଜୀବ, ଦ୍ରବ୍ୟ, (ଭା.ତି) ଅଭିବ୍ୟକ୍ତି, ପ୍ରକାଶ ।

ବ୍ୟକ୍ତିଗତ—ବିଂ. ଜଣକ ସମ୍ବନ୍ଧୀୟ, ଏକ ବ୍ୟକ୍ତି ସମ୍ବନ୍ଧୀୟ, ନିଜ ସମ୍ବନ୍ଧୀୟ,ସ୍ୱାର୍ଥ-ପର ।

ବ୍ୟକ୍ତିଗତଈର୍ଷା—ବି. ଅହଙ୍କାର, ଅହଂକାରିତ

ବ୍ୟକ୍ତିଗତଉନ୍ନତି—ବି.ଜଣକର ଉନ୍ନତି ।

ବ୍ୟକ୍ତିଗତପାର୍ଥକ୍ୟ—ଗ୍ରା.ବି.ଅନ୍ୟମାନଙ୍କ-ଠାରୁ ଜଣକର ବିଶିଷ୍ଟ ପାର୍ଥକ୍ୟ ।

ବ୍ୟକ୍ତିଗତବିଶେଷତା(ତ୍ୱ)—ଗ୍ରା.ବି.ଜଣକର ଅନନ୍ୟସାଧାରଣ ଅବସ୍ଥା ବା ଗୁଣ ।

ବ୍ୟକ୍ତିଗତଭାବ—ବି.ନିଜ ମନରେ ଉଦିତ ଭାବ ।

ବ୍ୟକ୍ତିଗତସ୍ୱାର୍ଥ—ଗ୍ରା.ବି. ଜଣକର,ନିଜର ଉପକାର ।

ବ୍ୟକ୍ତିଗ୍ରହ—ବି. (ବ୍ୟକ୍ତି + ଗ୍ରହ୍ + ଭା.ଅ) ଗୋଟିଏ ଗୋଟିଏ ପଦାର୍ଥର ସମ୍ବନ୍ଧର ଉପଲବ୍ଧିକାରକ ମନୋବୃତ୍ତି ।

ବ୍ୟକ୍ତିତା(ତ୍ୱ)—ବି. (ବ୍ୟକ୍ତି + ଭା.ତା,ତ୍ୱ) ସ୍ୱପ୍ରାଧାନ୍ୟ, ବ୍ୟକ୍ତିବିଶେଷର ସ୍ୱାତନ୍ତ୍ର୍ୟ, ବିଶେଷତ୍ୱ, ବିଶିଷ୍ଟତା ।

ବ୍ୟକ୍ତିବିଶେଷ—ବି. ଅନେକଙ୍କ ମଧ୍ୟରୁ ଜଣେ ବ୍ୟକ୍ତି, ଜଣେ କୌଣସି ନିର୍ଦ୍ଦିଷ୍ଟ ବ୍ୟକ୍ତି ।

ବ୍ୟକ୍ତିଭେଦ—ବି.ସାଧାରଣଙ୍କଠାରୁ ବ୍ୟକ୍ତି-ବିଶେଷର ପ୍ରଭେଦ,ସାଧାରଣଙ୍କ ମଧ୍ୟରୁ ବିଶିଷ୍ଟଗୁଣଯୁକ୍ତ ଜଣେ ।

ବ୍ୟକ୍ତୀକରଣ—ବି. ସ୍ପଷ୍ଟୀକରଣ, ଯାହା ପୂର୍ବେ ବ୍ୟକ୍ତ ନ ଥିଲା ବର୍ତ୍ତମାନ ତାକୁ ବ୍ୟକ୍ତ କରିବା କର୍ମ ।

ବ୍ୟକ୍ତୀକୃତ—ବିଂ. ପ୍ରକଟିତ, ଯାହାକୁ ବ୍ୟକ୍ତ କରାଯାଇଅଛି ।

ବ୍ୟକ୍ତୀଭୂତ—ବିଂ ଯାହା ପୂର୍ବେ ଅବ୍ୟକ୍ତ ଥିଲା ବର୍ତ୍ତମାନ ବ୍ୟକ୍ତ ହୋଇଅଛି ।

ବ୍ୟଗ୍ର—ପୁଂ.ବିଂ.(ବି + ଅଗ୍ର)ଆଗ୍ରହାନ୍ୱିତ, ବ୍ୟସ୍ତ, ଚଞ୍ଚଳ, ଅଧୀର, ବ୍ୟାକୁଳ, ତ୍ରସ୍ତ, ଉଦ୍ୟମଶୀଳ, ଆସକ୍ତ, (ବି) ବିଷ୍ଣୁ ।

ବ୍ୟଗ୍ରଚିତ୍ତ—ପୁଂ. ବିଂ. (ବ.ସ୍ତ୍ର) ଆକୁଳ, ବ୍ୟସ୍ତ, ଉଦ୍ବିଗ୍ନ, ଆଗ୍ରହାନ୍ୱିତ ।

ବ୍ୟଗ୍ରତା(ତ୍ୱ)—ବି. (ବ୍ୟଗ୍ର + ଭା.ତ୍ୱ) ବ୍ୟସ୍ତତା, ଆଗ୍ରହ, ବ୍ୟାକୁଳତା,ଅତ୍ୟନ୍ତ ଭୟ ।

ବ୍ୟଙ୍ଗ—ବିଂ. (ବି + ଅଙ୍ଗ) ବିକଳାଙ୍ଗ, ଅଙ୍ଗହୀନ, ବ୍ୟର୍ଥ, (ବି) ଭେକ, ବେଙ୍ଗ, ମୁଖରୋଗବିଶେଷ, ଭଙ୍ଗରୋଗ, (ଗ୍ରା) ବିଦ୍ରୂପ, ବାଧା ।

ବ୍ୟଙ୍ଗକ—ବି. (ବ୍ୟଙ୍ଗ + କ) ପର୍ବତ ।

ବ୍ୟଙ୍ଗକର—ବିଂ. ଯେ ବିକଳାଙ୍ଗ କରେ

ବ୍ୟଙ୍ଗକରିବା—ଗ୍ରା. କ୍ରି. ଥଟ୍ଟାକରିବା ।

ବ୍ୟଙ୍ଗବଦ୍ରୂପ—ଗ୍ରା. ବି. ଶ୍ଳେଷବଚନ, ଘୃଣାବ୍ୟଞ୍ଜକ ଉପହାସ ।

ବ୍ୟଙ୍ଗାତ୍ମକ—ଗ୍ରା.ବି°.ବ୍ୟଙ୍ଗ୍ୟାତ୍ମକ ଦେଖ

ବ୍ୟଙ୍ଗାର୍ଥ—ବି. ବିକଳୀକୃତ ଅର୍ଥ ।

ବ୍ୟଙ୍ଗିତ—ବି°. (ବି+ଅନ୍ଜ୍+ମି.ତ) ବିକଳୀକୃତ, ବ୍ୟାକୁଳୀକୃତ ।

ବ୍ୟଙ୍ଗୋକ୍ତି—ବି. ବିକଳୀକୃତ ଉକ୍ତି,(ଗ୍ରା. ବି) ବ୍ୟଙ୍ଗ୍ୟୋକ୍ତି ଦେଖ ।

ବ୍ୟଙ୍ଗ୍ୟ—ବି. ( ବି+ଅନ୍ଜ୍+ମି.ଯ ) ଗୂଢ଼ାର୍ଥ, ତାତ୍ପର୍ଯ୍ୟାର୍ଥ, ସୂଚିତାର୍ଥ, ପରିହାସ, ଶ୍ଳେଷ, ଘୃଣାସୂଚକାର୍ଥ ବାକ୍ୟ

ବ୍ୟଙ୍ଗ୍ୟାତ୍ମକ—ବି°. ଯହିଁରେ ବ୍ୟଙ୍ଗ୍ୟାର୍ଥ ନିହିତ ଥାଏ ।

ବ୍ୟଙ୍ଗ୍ୟାର୍ଥ—ବି. ଗୂଢ଼ାର୍ଥ, ଶ୍ଳେଷାର୍ଥ ।

ବ୍ୟଙ୍ଗ୍ୟୋକ୍ତି—ବି.ବକ୍ରୋକ୍ତି, ଦୁଇ ଅର୍ଥ ପ୍ରକାଶକ ଉକ୍ତି, ବଦ୍ରୂପ ବାକ୍ୟ, ଗୂଢ଼ାର୍ଥକ ବଦ୍ରୂପ ।

ବ୍ୟଜ—ବି. (ବି+ଅଜ୍+ଭା.ଅ) ବାୟୁସଞ୍ଚାଳନ, ବିଞ୍ଚିବା ।

ବ୍ୟଜନ—ବି. ( ବି+ଅଜ୍+ଭା.ଅନ ) ବ୍ୟଜ ଦେଖ, (ଣ.ଅନ)ବ୍ୟଜନୀ ଦେଖ

ବ୍ୟଜନୀ—ବି. (ବି+ଅଜ୍+ଣ.ଅନ+ଈ) ତାଳବୃନ୍ତ, ପଙ୍ଖା, ବିଞ୍ଚଣା ।

ବ୍ୟଜ୍ୟ—ବି°. ( ବି+ଅନ୍ଜ୍+ମି.ଯ ) ଶବ୍ଦର ବ୍ୟଞ୍ଜନାଶକ୍ତି ଦ୍ୱାରା ଯାହା ବୁଝାଯାଏ ।

ବ୍ୟଞ୍ଜକ—ବି°. (ବି+ଅନ୍ଜ୍+କ.ଅକ) ପ୍ରକାଶକ, ବୋଧକ, ଦ୍ୟୋତକ,ବିକାଶକ, (ସ୍ତ୍ରୀ) ବ୍ୟଞ୍ଜିକା,(ପୁଂ.ବି)ଅଭିନୟ, ବ୍ୟଞ୍ଜନା ଦ୍ୱାରା ବୋଧିତ ଶବ୍ଦ ।

ବ୍ୟଞ୍ଜକଶ୍ଳେଷ—ଗ୍ରା. ବି. ଅନୁପ୍ରାସ ଓ ବ୍ୟଞ୍ଜନାଯୁକ୍ତ ବାକ୍ୟାଲଙ୍କାରବିଶେଷ ।

ବ୍ୟଞ୍ଜନ—କ୍ଲୀ.ବି(ବି+ଅନ୍ଜ୍+ଣ.ଅନ) ବୈଶିଷ୍ଟ୍ୟବୋଧକ ଲକ୍ଷଣ, ଚିହ୍ନ, ପୁରୁଷ ଓ ସ୍ତ୍ରୀମାନଙ୍କର ପ୍ରଭେଦ ମାନକ ଚିହ୍ନ, କ ଠାରୁ ହ ପର୍ଯ୍ୟନ୍ତ ଏହି ତେତିଶଟି ବର୍ଣ୍ଣ, ତରକାରି, ଅବୟବ, ଅଙ୍ଗ, ଉପସ୍ଥ, ସିଦ୍ଧ ଭୋଜ୍ୟ ସାମଗ୍ରୀ, (ଭା.ଅନ) ବ୍ୟକ୍ତ ହେବାର ବା କରିବାର କ୍ରିୟା ।

ବ୍ୟଞ୍ଜନବର୍ଣ୍ଣ—ବି. (କ.ଧା) ସ୍ୱରବର୍ଣ୍ଣ, କ ଠାରୁ ହ ପର୍ଯ୍ୟନ୍ତ ଅକ୍ଷର ।

ବ୍ୟଞ୍ଜନସନ୍ଧି—ବି. ପଦାନ୍ତ ବ୍ୟଞ୍ଜନ ବର୍ଣ୍ଣ ସହିତ ଅନ୍ୟ ପଦାଦ୍ୟ ବ୍ୟଞ୍ଜନ ବର୍ଣ୍ଣର ବା ସ୍ୱରବର୍ଣ୍ଣର ଯୋଗ ।

ବ୍ୟଞ୍ଜନା—ବି. (ବ୍ୟଞ୍ଜନ+ଆ) ବାକ୍ୟର ବ୍ୟଙ୍ଗ୍ୟାର୍ଥବୋଧକ ଶକ୍ତି, ଯେଉଁ ଶକ୍ତି-ଦ୍ୱାରା ବାକ୍ୟର ତାତ୍ପର୍ଯ୍ୟାର୍ଥର ବା ଗୂଢ଼ାର୍ଥର ବା ଅଭିପ୍ରେତାର୍ଥର ବା ସୂଚିତାର୍ଥର ବୋଧହୁଏ, ବ୍ୟଙ୍ଗ୍ୟୋକ୍ତି, ପ୍ରକଟୀକରଣ ।

ବ୍ୟଞ୍ଜନାବୃତ୍ତି—ବି. ଶବ୍ଦର ଯେଉଁ ବୃତ୍ତି ବା ଶକ୍ତି ଦ୍ୱାରା ଶବ୍ଦର ବା ବାକ୍ୟର ବାଚ୍ୟାର୍ଥ ଓ ଲକ୍ଷଣାର୍ଥଠାରୁ ପୃଥକ୍ ବକ୍ତାଙ୍କ ଅଭିପ୍ରେତ ଗୂଢ଼ାର୍ଥର ବୋଧ ଜନ୍ମେ ।

ବ୍ୟଞ୍ଜିତ—ବି°. (ବି+ଅନ୍ଜ୍+ମି.ତ) ପ୍ରକାଶିତ, ସୂଚିତ, ବ୍ୟଞ୍ଜନା ଦ୍ୱାରା ବୋଧିତ ।

ବ୍ୟଡ଼ମ୍ବକ—ବି. (ବି+ଅଡ଼୍+କ.ଅକ) ଏରଣ୍ଡଗଛ, ଗବଗଛ ।

ବ୍ୟତ—ବି. ଘୋଡ଼ା ।

ବ୍ୟତିକ(କା)ର—ବି. ( ବି+ଅତି+କୃ ଭା.ଅ)ବ୍ୟସନ, ବିପଦ, ବ୍ୟାପ୍ତି,ସମ୍ପର୍କ, ମିଶ୍ରଣ, ପରସ୍ପର କର୍ମକରଣ, ପରସ୍ପର ସମ୍ବନ୍ଧ, ବିନାଶ, (ମି.ଅ) ସମ୍ବନ୍ଧ, (ବି°. କ.ଅ) ସମ୍ପର୍କଯୁକ୍ତ ।

ବ୍ୟତିକ୍ରମ—ବି. (ବି+ଅତିକ୍ରମ) କ୍ରମର ବିପର୍ଯ୍ୟୟ, ବୈପରୀତ୍ୟ, ଓଲଟାଇବା, ଅନ୍ୟଥାଭାବ, ତ୍ରୁଟି, ବାଧା ।

ବ୍ୟତିକ୍ରମଣ—ବି(ବି+ଅତିକ୍ରମଣ)କର୍ମର ବିପର୍ଯ୍ୟୟ କରିବା, ନିୟମ ଲଙ୍ଘନ ।

ବ୍ୟତିକ୍ରାନ୍ତ—ବି°. ( ବି+ଅତିକ୍ରାନ୍ତ ) ବିପର୍ଯ୍ୟୟପ୍ରାପ୍ତ, ଉଲ୍ଲଙ୍ଘିତ ।

ବ୍ୟତିଚାର—ବି. (ବି+ଅତିଚାର) ପାପାଚରଣ, ଦୋଷ ।

ବ୍ୟତିପାତ—ବି.(ବି+ଅତି+ପତ୍+କ. ଅ)ଅତ୍ୟନ୍ତ ଉତ୍ପାତ, ଘୋର ଉପଦ୍ରବ, ବ୍ୟତୀପାତ ଦେଖ ।

ବ୍ୟତିବ୍ୟସ୍ତ—ବି°. ଅତ୍ୟନ୍ତ ବ୍ୟସ୍ତ, କାର୍ଯ୍ୟରେ ଅତିବ୍ୟସ୍ତ ।

ବ୍ୟତିରିକ୍ତ—ବି°.(ବି+ଅତି+ରିଚ୍+ମି.ତ) ଅତିରିକ୍ତ, ବ୍ୟତୀତ, ଭିନ୍ନ, ବର୍ଜିତ ।

ବ୍ୟତିରେକ—ବି. ( ବି+ଅତିରେକ ) ପ୍ରଭେଦ, ଅଭାବ, ବୃଦ୍ଧି, ଅତିକ୍ରମ, କାବ୍ୟାଲଙ୍କାର ବିଶେଷ, ଉପମାନ ଅପେକ୍ଷା ଉପମେୟର ଆଧିକ୍ୟ ବା ବିଶେଷତା ବୁଝାଯିବା ଅଳଂକାର ।

ବ୍ୟତିରେକୀ—ବି. (ବ୍ୟତିରେକ+ଇନ୍) ପ୍ରଭେଦକ, ଅଭାବବିଶିଷ୍ଟ,ପ୍ରତିଷେଧକ, ଅତିକ୍ରମଣକାରୀ, ବିଭିନ୍ନତା ଉତ୍ପାଦନକାରୀ ।

ବ୍ୟତିରେକେ—ଗ୍ରା. କ୍ରି. ବି°. ବ୍ୟତୀତ, ବିନା, ଛଡ଼ା ।

ବ୍ୟତିଷକ୍ତ—ବି°. (ବି+ଅତି+ସନ୍ଜ୍+କ.ତ) ଆସକ୍ତ, ପରସ୍ପର ମିଳିତ, ଗ୍ରଥିତ ।

ବ୍ୟତିଷଙ୍ଗ—ବି. (ବି+ଅତି+ସନ୍ଜ୍+ଭା.ଅ) ପରସ୍ପର ମିଳନ, ଆସକ୍ତି, କୋଧ ବନ୍ଧନ, ବଦଳ ।

ବ୍ୟତି(ତୀ)ହାର—ବି. (ବି+ଅତି+ହୃ+ଭା.ଅ)ପରସ୍ପର ଏକରୂପ କ୍ରିୟାକରଣ, ପର୍ଯ୍ୟାୟକରଣ, ଗାଳି ବଦଳ, ମାରପିଟ୍ ।

ବ୍ୟତୀକାର—ବି. ବ୍ୟତିକର ଦେଖ ।

ବ୍ୟତୀତ—ବି°. ( ବି+ଅତୀତ ) ବିଗତ, ଅତୀତ, ଅତିବାହିତ, ତ୍ୟକ୍ତ, ମୃତ, ବିଲୁପ୍ତ, ସମ୍ପନ୍ନ, ( ଗ୍ରା.କ୍ରି.ବି° ) ଛଡ଼ା, ବିନା, ବ୍ୟତିରେକେ ।

ବ୍ୟତୀପାତ—ପୁଂ.ବି. (ବି+ଅତି+ପାତ) ବିପତ୍ପାତ, ଉଲ୍କାପାତ, ଧୂମକେତୁ, ଭୂମିକମ୍ପାଦି ଅମଙ୍ଗଳଜନକ ଉତ୍ପାତ, (ଜ୍ୟୋତିଷ) ୨୭ ଯୋଗ ମଧ୍ୟରୁ ୧୭ଶ ଅଶୁଭକର ଯୋଗ, ଅମାବାସ୍ୟାରେ ଶ୍ରବଣା, ଧନିଷ୍ଠା, ଆର୍ଦ୍ରା ଓ ଅଶ୍ଳେଷା ବା ମୃଗଶିରା ନକ୍ଷତ୍ର ପଡ଼ିବା ଯୋଗ, ଅଶ୍ରଦ୍ଧା, ଅସମ୍ମାନ ।

ବ୍ୟତ୍ୟୟ—ବି. (ବି+ଅତି+ଇ+ଭା. ଅ) ବ୍ୟତିକ୍ରମ, ବୈପରୀତ୍ୟ, କ୍ରମବିପର୍ଯ୍ୟୟ ।

ବ୍ୟତ୍ୟସ୍ତ—ବିଂ. ( ବି+ଅତି+ଅସ୍ତ ) ବ୍ୟତିକ୍ରାନ୍ତ, ବିପରୀତ ଭାବରେ ଅବସ୍ଥିତ, ଓଲଟପାଲଟ, ଗୋଳମାଳ ହୋଇଥିବା ।

ବ୍ୟତ୍ୟାସ—ବି. (ବି+ଅତି+ଅସ୍+ଭା. ଅ) ଲେଉଟପାଲଟ ହେବା, ଲେଉଟପାଲଟ, ଗୋଳମାଳ ।

ବ୍ୟଥକ—ବିଂ. (ବ୍ୟଥ୍+କ.ଅକ) ପୀଡ଼ାଦାୟକ, (ସ୍ତ୍ରୀ) ବ୍ୟଥିକା ।

ବ୍ୟଥନ—ବି. (ବ୍ୟଥ୍+ଭା.ଅନ) ପୀଡ଼ା, ପୀଡ଼ାଦେବା, (ଗ୍ରା.ବିଂ. କ.ଅନ) ପୀଡ଼ାଦାୟକ ।

ବ୍ୟଥା—ବି. (ବ୍ୟଥ୍+ଭା.ଅ+ଆ) ପୀଡ଼ା, କ୍ଳେଶ, ବେଦନା, ଦୁଃଖ, ବିନ୍ଧା, ବଥା, ଶୋକ, ଭୟ ।

ବ୍ୟଥାକରିବା—ଗ୍ରା.କ୍ରି. ବଥାଇବା ।

ବ୍ୟଥାକାରକ—ପୁଂ.ବିଂ. ଯେ ବେଦନା ଦିଏ, ଦୁଃଖଜନକ ।

ବ୍ୟଥାକୁଳ—ବିଂ. ( ୩ତତ୍) ବେଦନାକାତର, ଦୁଃଖକ୍ଳିଷ୍ଟ ।

ବ୍ୟଥାତୁର—ପୁଂ. ବିଂ. ( ୩ତତ୍ ) ବ୍ୟଥାକୁଳ, (ସ୍ତ୍ରୀ) ବ୍ୟଥାତୁରା ।

ବ୍ୟଥାଦେବା—ଗ୍ରା. କ୍ରି. ପୀଡ଼ାଦେବା, କଷ୍ଟଦେବା ।

ବ୍ୟଥାବିହୀନ—ବିଂ.(୩ତତ୍)ଯନ୍ତ୍ରଣାଶୂନ୍ୟ ।

ବ୍ୟଥିତ—ପୁଂ. ବିଂ. ( ବ୍ୟଥ୍+କ,ତ ) ଦୁଃଖିତ, ପୀଡ଼ିତ, ସନ୍ତପ୍ତ, ଭୀତ, ଶୋକାକୁଳ,(ବି-ଭା.ତ) ବ୍ୟଥା, ଯନ୍ତ୍ରଣା, (ସ୍ତ୍ରୀ) ବ୍ୟଥିତା ।

ବ୍ୟଥିତଚିତ୍ତ—ବିଂ. ବ୍ୟଥାଜାତକାରୀ ।

ବ୍ୟଥିତହୃଦୟ—ବିଂ. (କ.ଧା) ବ୍ୟଥାପ୍ରାପ୍ତ ମନ, ମାନସିକ ଦୁଃଖ,(ପୁଂ.ବିଂ--ବ.ବ୍ରୀ) ଯାହା ମନରେ ବିଶେଷ ବ୍ୟଥା ଜାତ ହୋଇଅଛି ।

ବ୍ୟଥୀ—ପୁଂ. ବିଂ. ( ବ୍ୟଥା+ଇନ୍ ) ବେଦନାଯୁକ୍ତ, ବ୍ୟଥାଗ୍ରସ୍ତ,(ସ୍ତ୍ରୀ)ବ୍ୟଥିନୀ ।

ବ୍ୟଥ୍ୟ—ବିଂ. (ବ୍ୟଥ୍+ର୍ମ.ଯ) ବ୍ୟଥାଦେବାର ଯୋଗ୍ୟ, ( କ.ଯ ) ଭୟୋତ୍ପାଦକ, ଭୟାନକ ।

ବ୍ୟଧ—ବି. (ବ୍ୟଧ୍+ଭା.ଅ) ବିନ୍ଧିବା, ଫୋଡ଼ିବା, ପୀଡ଼ା, ବ୍ୟଥା, ବାଧା ପ୍ରହାର କରିବା, ପ୍ରହାର, ମାଡ଼ । [ କର୍ମ ।

ବ୍ୟଧନ—ବି.(ବ୍ୟଧ୍+ଭା.ଅନ)ଫୋଡ଼ିବ

ବ୍ୟଧିକ୍ଷେପ—ବି. (ବି+ଅଧିକ୍ଷେପ)ନିନ୍ଦା ।

ବ୍ୟଧିଜନ—ବି. (ବି+ଅଧିଜନ)ବନ୍ଧୁଜନ

ବ୍ୟଧ୍ୱ—ବି. (ବି+ଅଧ୍ୱ)ବିପଥ, କୁମାର୍ଗ ।

ବ୍ୟଧ୍ୟ—ବିଂ. (ବିଧ୍+ର୍ମ.ଯ) ବେଧନାର୍ହ, (ବି) ଧନୁର୍ଗୁଣ ।

ବ୍ୟପଦେଶ—ବି. (ବି+ଅପ୍+ଦିଶ୍+ଭା.ଅ) ଛଳ, ବ୍ୟାଜ, ପ୍ରତାରଣା, ଇଙ୍ଗିତ, ଆପଣାର ମନୋଭାବକୁ ବକ୍ରଭାବରେ ପ୍ରକାଶ କରିବା, ନାମ, ଉପାଧି, ବଂଶ, କୁଳ, (ଭା.ଅ) ନାମୋଲ୍ଲେଖ, କଥନ, ନିନ୍ଦା ।

ବ୍ୟପଦେଷ୍ଟା—ପୁଂ. ବିଂ. (ବି+ଅପ୍+ଦିଶ୍+କ.ତୃ) କପଟୀ, ଛଳନାକାରକ, ନାମୋଲ୍ଲେଖକ, ନିନ୍ଦାକାରୀ, ( ସ୍ତ୍ରୀ ) ବ୍ୟପଦେଷ୍ଟ୍ରୀ ।

ବ୍ୟପନେୟ—ବି. (ବି+ଅପ୍+ନୀ+ଭା.ଅ) ବିନାଶ, ତ୍ୟାଗ ।

ବ୍ୟପନୟନ—ବି.(ବି+ଅପ୍+ନୀ+ଭା. ଅନ) ଅସ୍ୱୀକାର, ପ୍ରତ୍ୟାଖ୍ୟାନ, ବର୍ଜନ ।

ବ୍ୟପନୀତ—ବିଂ.(ବି+ଅପ୍+ନୀ+ର୍ମ.ତ) ପ୍ରତ୍ୟାଖ୍ୟାତ, ଅପସାରିତ, ତାଡ଼ିତ ।

ବ୍ୟପରୋପଣ—ବି. (ବି+ଅପ୍+ଣିଚ୍+ରୁହ୍+ଭା.ଅନ)ଛେଦନ, ମୂଳୋଚ୍ଛେଦ, ଅପସାରଣ, ଅବତାରଣ, ଦୂରୀକରଣ ।

ବ୍ୟପବର୍ଜନ—ବି. (ବି+ଅପ୍+ବୃଜ୍+ଭା.ଅନ) ନିଷେଧ, ତ୍ୟାଗ, ଦାନ ।

ବ୍ୟପବର୍ଜିତ—ବିଂ.(ବି+ଅପ୍+ବୃଜ୍+ର୍ମ.ତ)ନିବାରିତ, ନିଷିଦ୍ଧ, ତ୍ୟକ୍ତ, ଦତ୍ତ ।

ବ୍ୟପବର୍ତ୍ତିତ—ବିଂ. (ବି+ଅପ୍+ଣିଚ୍+ବୃତ୍+ର୍ମ.ତ)ପ୍ରତ୍ୟାବର୍ତ୍ତିତ, ଯାହାକୁ ଫେରି ହୋଇଅଛି, ନିବର୍ତ୍ତିତ ।

ବ୍ୟପାକୃତ—ବିଂ.(ବି+ଅପ୍+ଆ+କୃ+ର୍ମ.ତ) ଦୂରୀକୃତ, ଅପନୀତ, ଅପସାରିତ, ଅସ୍ୱୀକୃତ, ନିରସ୍ତ, ନିବୃତ୍ତ, ନିଷ୍କୃତ ।

ବ୍ୟପାକୃତି—ସ୍ତ୍ରୀ. ବି. (ବି+ଅପ୍+ଆ+କୃ+ଭା.ତି) ଅସ୍ୱୀକାର, ନିଷେଧ, ନିରାକରଣ, ନିହ୍ନବ ।

ବ୍ୟପାୟ—ବି. (ବି+ଅପ୍+ଇ+ଭା.ଅ) ଅପନୟନ, ବିନାଶ, ସମକାଳୀୟ ଧର୍ମ ।

ବ୍ୟପାଶ୍ରୟ—ବି. ( ବି+ଅପ୍+ଆ+ଶ୍ରି+ଅ) ଆଶ୍ରୟ, ଅବଲମ୍ବନ, ପରଉପରେ ନିର୍ଭରତା ।

ବ୍ୟପେକ୍ଷା—ବି. (ବି+ଅପ୍+ଈକ୍ଷ୍+ଅ+ଆ) ଆକାଙ୍କ୍ଷା, ସ୍ପୃହା, ଅପେକ୍ଷା, ଆଶା, ବିଶେଷ ଅନୁରୋଧ, ଆଗ୍ରହ ।

ବ୍ୟପେତ—ବିଂ (ବି+ଅପ୍+ଇ+କ.ତ) ପ୍ରତିରୁଦ୍ଧ, ବିରୁଦ୍ଧ, ଅପଗତ, ଦୂରୀକୃତ

ବ୍ୟପୋଢ—ବିଂ. (ବି+ଅପ୍+ବହ୍+ର୍ମ.ତ) ପ୍ରକ୍ଷିପ୍ତ, ବିତାଡ଼ିତ, ବିପରୀତ ।

ବ୍ୟପୋହ—ବି. (ବି+ଅପ୍+ବହ+ଭା. ଅ) ବିନାଶ ।

ବ୍ୟବକଳନ(ନା)—ବି(ବି+ଅବ+କଳ୍+ଭା.ଅନ—ଗଣିତ ) ବିୟୋଗ, ଏକ ରାଶିରୁ ଅନ୍ୟ ରାଶିକୁ ଫେଡ଼ିବା, ଜମାରୁ ଖରଚ ବାଦ ଦେଇ ବାକି କାଢିବା ।

ବ୍ୟବକଳିତ—ବିଂ. ( ବି+ଅବ+କଳ୍ ର୍ମ.ତ) ବିୟୋଜିତ, ଯାହା ବାକି କଟାହୋଇଅଛି ।

ବ୍ୟବକୀର୍ଣ୍ଣ—ବିଂ. (ବି+ଅବ+କୃ+ର୍ମ.ତ) ପୃଥକ୍ କରାଯାଇଥିବା ।

ବ୍ୟବଚ୍ଛିନ୍ନ—ବିଂ. ( ବି+ଅବ+ଛିଦ୍+ର୍ମ.ତ) ବିଶ୍ଳେଷିତ, କର୍ତ୍ତିତ, ପରୀକ୍ଷାର୍ଥ ଖଣ୍ଡଶଃ ବିଭକ୍ତ, ମୋଚିତ, ନିର୍ଦ୍ଧାରିତ, ବିଭକ୍ତ ।

ବ୍ୟବଚ୍ଛେଦ—ବି. (ବି+ଅବ+ଛିଦ୍+ଭା.ଅ) ବିଶ୍ଳେଷଣ, ବିଭାଗ, ବିଭେଦ, ମୋଚନ, ଶରବୃଷ୍ଟି, ନିର୍ଦ୍ଧାରଣ, ଖଣ୍ଡ, ପରୀକ୍ଷାର୍ଥ କୌଣସି ପଦାର୍ଥକୁ ଖଣ୍ଡଖଣ୍ଡ କରି କାଟିବା, ବିରାମ ।

ବ୍ୟବଦାନ—ବି(ବି+ଅବଦାନ) କୌଣସି ପଦାର୍ଥକୁ ଶୁଦ୍ଧ ଓ ସଫାକରିବା କର୍ମ ।

ବ୍ୟବଧା—ବି (ବି+ଅବ+ଧା+ଅ+ଆ) ବ୍ୟବଧାନ ଦେଖ ।

ବ୍ୟବଧାନ—ବି. (ବି+ଅବ+ଧା+ଭା. ଅନ) ଫାଙ୍କ, ଅନ୍ତର, ଦୁଇ ପଦାର୍ଥର ମଧ୍ୟର ଦୂରତ୍ୱ, ତିରୋଧାନ, ଆଚ୍ଛାଦନ, ( କ.ଅନ ) ପରଦା, (ର୍ମ.ଅନ) ବିଭାଗ, ଖଣ୍ଡ ।

ବ୍ୟବଧାୟକ—ବିଂ.( ବି+ଅବ+ଧା+କୃ.ଅକ) ବ୍ୟବଧାନକାରକ, ଆବରକ, ଆଚ୍ଛାଦକ, (ସ୍ତ୍ରୀ) ବ୍ୟବଧାୟିକା ।

ବ୍ୟବସାୟ—ବି.(ବି+ଅବ+ସୋ+ଭା. ଅ) ଯତ୍ନ, ଉଦ୍ୟମ, ଚେଷ୍ଟା, ଇଚ୍ଛା, କଳ୍ପନା, ଅଭିପ୍ରାୟ,କାର୍ଯ୍ୟ, ଅନୁଷ୍ଠାନ, ନିଶ୍ଚୟ, (ଣ.ଅ) ଜୀବିକା, ବୃତ୍ତି,ପେଶା, କାରବାର,ବାଣିଜ୍ୟ,(କ.ଅ)ଶିବ,ବିଷ୍ଣୁ ।

ବ୍ୟବସାୟକେନ୍ଦ୍ର—ଗ୍ରା. ବି. ବେପାରର ଗଞ୍ଜ ।

ବ୍ୟବସାୟାତ୍ମକ—ବିଂ. (ବ.ବ୍ରୀ)ନିଶ୍ଚୟାତ୍ମକ, କୃତନିଶ୍ଚୟ, ସ୍ଥିର ।

ବ୍ୟବସାୟାବଲମ୍ବନ—ବି(ଷତତ୍ପୁ)ଗୋଟିଏ ଜୀବିକାକୁ ଧରିବା ।

ବ୍ୟବସାୟୀ—ପୁଂ. ବିଂ. (ବ୍ୟବସାୟ+ଇନ୍) କୃତୋଦ୍ୟମ, ଅନୁଷ୍ଠାନକାରୀ, କୃତନିଶ୍ଚୟ, ବାଣିଜ୍ୟକାରୀ, କର୍ମବିଶେଷ ଅଭିଜ୍ଞ ବା ଯତ୍ନଶୀଳ, (ସ୍ତ୍ରୀ) ବ୍ୟବସାୟିନୀ ।

ବ୍ୟବସିତ—ବିଂ. (ବି+ଅବ+ସୋ+କ.ତ) ଚେଷ୍ଟିତ, ଉଦ୍ୟତ, ପ୍ରତାରିତ, ସ୍ଥିରୀକୃତ, ନିଶ୍ଚିତ, (ର୍ମ.ତ) ଅଭିପ୍ରେତ, ଅନୁଷ୍ଠିତ,(ବି.ଭା.ତ)ନିଶ୍ଚୟ,ଅବଧାରଣ ।

ବ୍ୟବସ୍ଥା—ବି. ( ବି+ଅବ+ସ୍ଥା+ଭା.ଅ +ଆ) ବନ୍ଦୋବସ୍ତ, ପଦ୍ଧତି, ପୃଥକ୍ ପୃଥକ୍ ସ୍ଥାପନ, ବିଧି, ଆଇନକାନୁନ, ଶାସ୍ତ୍ରୀୟବିଧି,ସାମାଜିକନିୟମ,ଆଦେଶ, ସ୍ଥିତି, ଅବସ୍ଥା, ସ୍ଥିରତା,(ଗ୍ରା.ବି)ବିଚାର, ଆଚରଣ, ବ୍ୟବସ୍ଥାପତ୍ର ।

ବ୍ୟବସ୍ଥାଜାଲ—ବି. (ଷତତ୍ପୁ) ବ୍ୟବସ୍ଥାସମୂହ, ବିଧାନ ସକଳ, କୂଟବ୍ୟବସ୍ଥା, ଜଟିଳ ନିୟମ ।

ବ୍ୟବସ୍ଥାତା—ପୁଂ. ବିଂ. (ବ୍ୟବସ୍ଥା+କ. ତୃ) ବନ୍ଦୋବସ୍ତକାରୀ, ବ୍ୟବସ୍ଥାଦାତା, (ସ୍ତ୍ରୀ) ବ୍ୟବସ୍ଥାତ୍ରୀ ।

ବ୍ୟବସ୍ଥାତିକ୍ରମ—ବି, (ଷତତ୍ପୁ) ନିୟମ ଭଙ୍ଗକରଣ ।

ବ୍ୟବସ୍ଥାଦର୍ପଣ—ବି, ଯେଉଁ ପୁସ୍ତକରେ ଶାସ୍ତ୍ରୀୟ ବ୍ୟବସ୍ଥାମାନ ଲିପିବଦ୍ଧ ହୋଇ ଅଛି ।

ବ୍ୟବସ୍ଥାଦାତା—ପୁଂ. ବିଂ. ( ଷତତ୍ପୁ ) ବ୍ୟବସ୍ଥାପକ, ଯେ ବ୍ୟବସ୍ଥା ବା ବିଧି ଦିଏ, (ସ୍ତ୍ରୀ) ବ୍ୟବସ୍ଥାଦାତ୍ରୀ ।

ବ୍ୟବସ୍ଥାଦେବା—ଗ୍ରା. କ୍ରି. ଶାସ୍ତ୍ରବିଧି ଉଲ୍ଲେଖ କରିବା, ଉପସ୍ଥିତ କୌଣସି ବିଷୟ ସମ୍ବନ୍ଧେ ପ୍ରଯୋଜ୍ୟ ଶାସ୍ତ୍ରୀୟବିଧିର ଉଲ୍ଲେଖ କରିବା ।

ବ୍ୟବସ୍ଥାନ—ବି. (ବି+ଅବ+ସ୍ଥା+ଭା. ଅନ) ଅବସ୍ଥିତି, ପ୍ରତିଷ୍ଠା, (କ.ଅନ) ବିଷ୍ଣୁ, (ଅଧି.ଅନ) ବିଚାରାଳୟ ।

ବ୍ୟବସ୍ଥାନୁମୋଦିତ—ବିଂ. (ୟତତ୍ପୁ)ବିଧିସିଦ୍ଧ, ବୈଧ, ବିଧିବଦ୍ଧ ।

ବ୍ୟବସ୍ଥାପକ—ବିଂ. ( ବି+ଅବ+ସ୍ଥାପି +କ.ଅକ) ଯେ ବ୍ୟବସ୍ଥା ଦିଏ,ବିଧାନକର୍ତ୍ତା, ନିୟାମକ, ସଂସ୍ଥାପକ, (ସ୍ତ୍ରୀ) ସ୍ଥାପିକା ।

ବ୍ୟବସ୍ଥାପକସଭା—ଗ୍ରା. ବି. ଯେଉଁ ସଭା ଦ୍ୱାରା ଆଇନମାନ ପ୍ରଣୀତ ବା ଲିପିବଦ୍ଧ ହୁଏ ।

ବ୍ୟବସ୍ଥାପତ୍ର—ବି. (କ.ଧା) ବିଧାନଲିପି, ରୋଗ ନିର୍ଣ୍ଣାୟକ ଔଷଧନିର୍ଦ୍ଦେଶକ,ପତ୍ର, ଉପସ୍ଥିତ ସମସ୍ୟାର ପଣ୍ଡିତମାନେ ଦେଇଥିବା ଶାସ୍ତ୍ରବାକ୍ୟର ଲେଖା,ଆଇନ୍ ସମ୍ବନ୍ଧୀୟ ବିଧି ଲେଖାଥିବା ପତ୍ର, ନକ୍ସାର ।

ବ୍ୟବସ୍ଥାପଦ୍ଧତି—ଗ୍ରା. ବି. ବ୍ୟବସ୍ଥାର ବା ନିୟମର ପ୍ରଣାଳୀ ।

ବ୍ୟବସ୍ଥାପନ—ବି.(ବି+ଅବ+ସ୍ଥାପି+ଭା.ଅନ) ନିୟମ ପ୍ରଣୟନ, ନିର୍ଦ୍ଧାରଣ, ପ୍ରତିଷ୍ଠାକରଣ, ବନ୍ଦୋବସ୍ତ, ଶାସ୍ତ୍ରର ବ୍ୟବସ୍ଥା ଦେବା ।

ବ୍ୟବସ୍ଥାପନୀୟ—ବିଂ. ନିର୍ଦ୍ଧାରଣୀୟ, ବିଧିବଦ୍ଧ କରାଯିବା ଯୋଗ୍ୟ ।

ବ୍ୟବସ୍ଥାପୟିତା—ପୁଂ.ବିଂ. (ବି+ଅବ+ସ୍ଥାପି+କ.ତୃ) ଆଇନ୍‌କର୍ତ୍ତା, ବିଧାନକର୍ତ୍ତା ।

ବ୍ୟବସ୍ଥାପରିଷଦ୍—ବି. ଆଇନ୍ ପ୍ରଣୟନକାରୀ ସମିତି ।

ବ୍ୟବସ୍ଥାପିତ—ବିଂ. ( ବି+ଅବ+ସ୍ଥାପି +ର୍ମ.ତ) ବିଧିବଦ୍ଧ,ନିରୂପିତ,ପ୍ରତିଷ୍ଠିତ ।

ବ୍ୟବସ୍ଥାବିରୁଦ୍ଧ—ବି.ବ୍ୟବସ୍ଥାର ବା ଆଇନର ବିପରୀତ ।

ବ୍ୟବସ୍ଥାଶାସ୍ତ୍ର—ବି. ସ୍ମୃତିଶାସ୍ତ୍ର, ମନ୍ୱାଦି ଧର୍ମଶାସ୍ତ୍ର, ବିଧିବଦ୍ଧ ଆଇନ୍, ଯେଉଁ ଶାସ୍ତ୍ରରେ ମୌଳିକ ଆଇନର ବିଧି ଓ ଉଦ୍ଦେଶ୍ୟମାନ ବର୍ଣ୍ଣିତ ଅଛି ।

ବ୍ୟବସ୍ଥିତ—ବିଂ.(ବି+ଅବ+ସ୍ଥା+ର୍ମ.ତ) ନିଶ୍ଚିତ, ବିଧିବଦ୍ଧ. ନିୟମିତ. ନିଯୁକ୍ତ, ପ୍ରଚରିତ, ପ୍ରତିଷ୍ଠିତ, ପୃଥକ୍‌କୃତ, ଦୃଢ଼ବଦ୍ଧ, (କ.ତ) ସମ୍ୟକ୍ ଅବସ୍ଥିତ ।

ବ୍ୟବସ୍ଥିତି—ବି. (ବି+ଅବ+ସ୍ଥା+ଭା. ତି)ବ୍ୟବସ୍ଥା, ନିରୂପଣ,ସମ୍ୟକ୍‌ଅବସ୍ଥିତି ।

ବ୍ୟବସ୍ଥେୟ—ବିଂ. (ବି+ଅବ+ସ୍ଥା+ର୍ମ.ଯ) ବ୍ୟବସ୍ଥା କରାଯିବାର ଯୋଗ୍ୟ ।

ବ୍ୟବହରଣ—ବି. (ବି+ଅବ+ହୃ+ଭା. ଅନ) ଅଭିଯୋଗଆଦିର ନିୟମାନୁସାରେ ବିଚାର ।

ବ୍ୟବହରଣୀୟ—ବିଂ. (ବ୍ୟବହରଣ+ଅନୀୟ)ରୀତିସମ୍ମତ,ବ୍ୟବହାରଯୋଗ୍ୟ ।

ବ୍ୟବହର୍ତ୍ତା—ବି.(ବି+ଅବ+ହୃ+କ. ତୃ) ବ୍ୟବହାରକର୍ତ୍ତା, ବିଚାରକ, ରାଜକାର୍ଯ୍ୟ ପରିଦର୍ଶକ,(ସ୍ତ୍ରୀ) ବ୍ୟବହର୍ତ୍ତ୍ରୀ ।

ବ୍ୟବହାର—ବି. (ବି+ଅବ+ହୃ+ଭା. ଅ) ଋଣଦାନାଦି ଅଷ୍ଟାଦଶ ବିବାଦ, ପଣ, ସର୍ତ୍ତ, ମାମଲା, ମୋକଦ୍ଦମା, ଆଇନ୍, ବାଣିଜ୍ୟ ଆଚରଣ, ପ୍ରୟୋଗ, କାର୍ଯ୍ୟରେ ଲଗିବା, ଆଚାର, ପ୍ରଥା, ଚୁକ୍ତି କାର୍ଯ୍ୟ, ବେଭାର, ଉପଯୋଗ ।

ବ୍ୟବହାରକ—ପୁଂ. ବି°. ପ୍ରଥା ବା ରୀତି ଅନୁସାରେ କାର୍ଯ୍ୟକାରକ, ସାବାଳକ, ପୂର୍ଣ୍ଣବୟସ୍କ, ଆଇନବ୍ୟବସାୟୀ ।
ବ୍ୟବହାରକରିବା—କ୍ରି. ବି. କୌଣସି ବସ୍ତୁକୁ କାର୍ଯ୍ୟରେ ଲଗାଇବା, ଉପଭୋଗ କରିବା ।
ବ୍ୟବହାରଜୀବୀ—ପୁଂ. ବି°. (ବ୍ୟବହାରଜୀବ+କ. ଇନ୍) ଆଇନ୍‌ବ୍ୟବସାୟୀ, ବ୍ୟବହାରଜୀବ,(ସ୍ତ୍ରୀ)ବ୍ୟବହାରଜୀବିନୀ ।
ବ୍ୟବହାରଜ୍ଞ—ପୁଂ. ବି°. (ବ୍ୟବହାର+ଜ୍ଞା+କ.ଅ) ପ୍ରାପ୍ତବୟସ୍କ, ସାବାଳକ, ଆଇନଜ୍ଞ, ବିଧିଜ୍ଞ ।
ବ୍ୟବହାରଦର୍ଶନ—ବି. ଅଭିଯୋଗର ପ୍ରାମାଣିକ ନିର୍ଣ୍ଣୟ ।
ବ୍ୟବହାରଦର୍ଶୀ—ପୁଂ. ବି°. (ବ୍ୟବହାର+ଦୃଶ୍+କ.ଇନ୍) ବିଚାରକର୍ତ୍ତା,(ସ୍ତ୍ରୀ) ବ୍ୟବହାରଦର୍ଶିନୀ ।
ବ୍ୟବହାରପାଦ—ବି. ମୋକଦ୍ଦମାର ଭିନ୍ନ ଭିନ୍ନ ଅଙ୍ଗ ।
ବ୍ୟବହାରବିଧି—ପୁଂ.ବି. (୬ତତ୍) ମକଦ୍ଦମା ସମ୍ବନ୍ଧୀୟ, ନିୟମାବଳୀ, ଆଇନ୍ ।
ବ୍ୟବହାରମାତୃକା—ବି. ବିଚାର ବା ମୋକଦ୍ଦମାସମ୍ବନ୍ଧୀୟ ସମୁଦାୟ କ୍ରିୟା ।
ବ୍ୟବହାରମାର୍ଗ—ବି.(୬ତତ୍—ହିନ୍ଦୁସ୍ମୃତି) ଗ୍ରନ୍ଥମାନଙ୍କରେ ଲେଖାଥିବା ଋଣଦାନାଦି ଅଷ୍ଟାଦଶ ବିଧ ମୋକଦ୍ଦମାର କାରଣ ।
ବ୍ୟବହାରରସ—ବି. ସଂସାରାସକ୍ତି ।
ବ୍ୟବହାରରେ ଲଗିବା—କ୍ରି. ବି.ବ୍ୟବହୃତ ବା ଉପଯୁକ୍ତ ହେବା, କାର୍ଯ୍ୟରେ ଲଗିବା ।
ବ୍ୟବହାରଶାସ୍ତ୍ର—ବି. ବ୍ୟବସ୍ଥା, ଆଇନ୍, ଧର୍ମଶାସ୍ତ୍ର ।
ବ୍ୟବହାରସିଦ୍ଧ—ବି. (୭ତତ୍)ରୀତିସମ୍ମତ
ବ୍ୟବହାରାଜୀବ—ପୁଂ.ବି.(ବ.ବ୍ରୀ)ଆଇନ୍ ବ୍ୟବସାୟୀ, ଓକିଲ୍, ମୁକ୍ତାର,ବାରିଷ୍ଟର ।
ବ୍ୟବହାରାସନ—ବି.ବିଚାରାସନ,ଇଜଲାସ
ବ୍ୟବହାରିକ—ବି°. (ବ୍ୟବହାର+ଇକ) ବ୍ୟବହାରସିଦ୍ଧ, ବାଣିଜ୍ୟସମ୍ବନ୍ଧୀୟ, ବ୍ୟବହାର୍ଯ୍ୟ, ଯାହା କାର୍ଯ୍ୟରେ ଆସେ, (ବି) ଇଙ୍ଗୁଦୀ ଦେଖ ।
ବ୍ୟବହାରିକା—ସ୍ତ୍ରୀ. ବି. ଇଙ୍ଗୁଦୀ, ଝାଡୁ ।
ବ୍ୟବହାରୀ—କ୍ରି.ବି°. ବ୍ୟବହାର୍ଯ୍ୟ,ଯାହା ପ୍ରଚଳନ ବ୍ୟବହୃତ ହୁଏ, ଯାହା କାର୍ଯ୍ୟରେ ଆସେ ।
ବ୍ୟବହାର୍ଯ୍ୟ—ବି°. (ବି+ଅବ+ହୃ+ର୍ମ.ଯ) ବ୍ୟବହାରଯୋଗ୍ୟ,ଉପଭୋଗ୍ୟ ।
ବ୍ୟବହିତ—ବି°. (ବି+ଅବ+ଧା+ତ) ଅବସ୍ଥିତ, ଅନ୍ତରିତ, ଆଚ୍ଛାଦିତ,ଅଧଃକୃତ, ବିକୃତ, ଅନ୍ତର୍ହିତ ।
ବ୍ୟବହୃତ—ବି°. (ବି+ଅବ+ହୃ+ର୍ମ.ତ) ଉପଯୁକ୍ତ, ଆଚରିତ କାର୍ଯ୍ୟରେ ଲଗିଥିବା, ବିଚାରିତ, ସ୍ଥିରୀକୃତ ।
ବ୍ୟବହୃତି—ବି. (ବି+ଅବ+ହୃ+ଭା.ତି) ବ୍ୟବସାୟରେ ମିଳିବା ଲଭ, ବାଣିଜ୍ୟ, କୁଶଳତା ।
ବ୍ୟବାୟ—ବି. (ବି+ଅବ+ଇ+ଭା.ଅ) ମୈଥୁନ, ସମ୍ଭୋଗ, ସ୍ତ୍ରୀସଙ୍ଗ,ଆଚ୍ଛାଦନ, ମଝିରେ ରହିବା, ଅନ୍ତର୍ଦ୍ଧାନ, ପଦ୍ଧତି, ତେଜଃ, ପରିଣାମ, ଫଳ, ବିଘ୍ନ, ପରଦା ।
ବ୍ୟବାୟଶୀଳ—ପୁଂ.ବି°. ବ୍ୟବାୟୀ ଦେଖ
ବ୍ୟବାୟଶୋଷ—ବି. ଅତ୍ୟଧିକ ସ୍ତ୍ରୀସଂସର୍ଗ ଯୋଗୁଁ ଜନ୍ମିବା ଏକପ୍ରକାର ରାଜଯକ୍ଷ୍ମା ରୋଗ ।
ବ୍ୟବାୟୀ—ପୁଂ. ବି°. ସ୍ତ୍ରୀସଙ୍ଗପ୍ରିୟ, କାମୁକ, ଶରୀରରେ ପ୍ରବେଶ କରି ହଠାତ୍ ଦେହରେ ବ୍ୟାପିଯାଉଥିବା ଔଷଧ ।
ବ୍ୟଭିଚାର—ବି. (ବି+ଅଭି+ଚର୍+ଭା.ଅ) କଦାଚାର, କୁକ୍ରିୟା, ସ୍ତ୍ରୀପୁରୁଷର ଅବୈଧ ସଂସର୍ଗ,ଅନ୍ୟାଚରଣ,ସ୍ଖଳନ, ଅବ୍ୟାପ୍ତି, ଅତିବ୍ୟାପ୍ତି, ନିପାତନ, (ନ୍ୟାୟ) ହେତୁଦୋଷବିଶେଷ,ଯୁକ୍ତିରେ ଏକ ହେତୁକୁ ଭିନ୍ନ ଭିନ୍ନ ଅର୍ଥରେ ବ୍ୟବହାର କରିବା ଦୋଷ ।
ବ୍ୟଭିଚାରଦୋଷ—ବି. ପର ସ୍ତ୍ରୀ ବା ପର ପୁରୁଷ ସଙ୍ଗମ ଦୋଷ,(ନ୍ୟାୟ)ଶାସ୍ତ୍ରରେ ହେତୁଦୋଷବିଶେଷ, ବିବାଦୀୟ ବିଷୟ ଛାଡ଼ି ବିଷୟାନ୍ତର ବିଚାର ।
ବ୍ୟଭିଚାରଣୀ—ସ୍ତ୍ରୀ.ବି ଓ ବି°.ଦୋଶ୍ଚାରିଣୀ, କୁଳଟା ସ୍ତ୍ରୀ, ପରପୁରୁଷଗାମିନୀ (ସ୍ତ୍ରୀ) ।
ବ୍ୟଭିଚାରିତା—ବି. (ବ୍ୟଭିଚାରିନ୍+ତା) କଦାଚାରିତା, କୁକ୍ରିୟାସକ୍ତି, ଅବ୍ୟାପ୍ତି, ସଞ୍ଚାରୀଭାବ ଦେଖ ।
ବ୍ୟଭିଚାରୀ—ପୁଂ.ବି°.(ବ୍ୟଭିଚାର+ଇନ୍) କଦାଚାରୀ, କୁକ୍ରିୟାସକ୍ତ, ପରସ୍ତ୍ରୀଗାମୀ, ଭ୍ରଷ୍ଟ, ଅନ୍ୟଥାଚାରୀ, ଅବ୍ୟାପ୍ତ, ଅତିବ୍ୟାପ୍ତ, (ସ୍ତ୍ରୀ) ବ୍ୟଭିଚାରିଣୀ, (ପୁଂ.ବି) ସଞ୍ଚାରୀଭାବ ।
ବ୍ୟଭିଚାରୀଭାବ—ବି. ଶୃଙ୍ଗାରାଦି ରସର ଭାବବିଶେଷ, ସଞ୍ଚାରୀଭାବ ।
ବ୍ୟଭିହାସ—ବି. (ବି+ଅଭି+ହସ୍+ଭା.ଅ) ଉପହାସ, ଥଟ୍ଟା ।
ବ୍ୟୟ—ବି. (ବି+ଇ+ଭା.ଅ)ଅପଚୟ, କ୍ଷୟ, ଅଭାବ, ଅପଗମ, ଦାନ, ପରିତ୍ୟାଗ, (ଜ୍ୟୋତିଷ) ଲଗ୍ନଠାରୁ ଦ୍ୱାଦଶ ସ୍ଥାନ,(ଗ୍ରା.ବି)ଟଙ୍କାଆଦି କରଜ ନେବା
ବ୍ୟୟକ—ପୁଂ.ବି°. (ବି+ଇ+କ.ଅକ) ଯେ ବ୍ୟୟ କରେ,(ସ୍ତ୍ରୀ)ବ୍ୟୟିକା ।
ବ୍ୟୟକରିଦେବା—କ୍ରି.ବି. ସମସ୍ତ ତୁଲ୍ୟମୂଲ୍ୟ ବସ୍ତୁକୁ କୌଣସି ବସ୍ତୁ ସଙ୍ଗେ ତୁଳନା କରିବା, ଖରଚ କରିବା ।
ବ୍ୟୟକରିବା—କ୍ରି.ବି. ଖରଚ କରିବା, କରଜ କରିବା ।
ବ୍ୟୟକାତର—ପୁଂ.ବି°.(୭ତତ୍)କୃପଣ, (ସ୍ତ୍ରୀ) ବ୍ୟୟକାତରା ।
ବ୍ୟୟକାତରତା—ବି. କୃପଣତା ।
ବ୍ୟୟକୁଣ୍ଠ—ପୁଂ.ବି°. (ବ.ବ୍ରୀ)କୃପଣ ।
ବ୍ୟୟବହୁଳ—ବି°. (ବ.ବ୍ରୀ) ଅଧିକ ବ୍ୟୟସାଧ୍ୟ, ଯହିଁରେ ଅନେକ ଖରଚ ହୁଏ । [ ବ୍ୟୟ ।
ବ୍ୟୟବାହୁଲ୍ୟ—ବି. (୬ତତ୍) ଅତିରିକ୍ତ
ବ୍ୟୟବୃଦ୍ଧି—ବି.(୬ତତ୍)ଖରଚ ବଢ଼ିବା
ବ୍ୟୟଶୀଳ—ପୁଂ.ବି°. (ବ.ବ୍ରୀ) ବ୍ୟୟୀ, ଖରଚୀ ।

ବ୍ୟୟଶୀଳତା—ବି. ଖପଡ଼ପଣିଆ, ସାହା ଖରଚ ।

ବ୍ୟୟସାଧ—ବିଂ. (୩ତତ୍) ଯାହା ଧନ-ବ୍ୟୟଦ୍ୱାରା ସମ୍ପନ୍ନ କରାଯାଇପାରେ, ବ୍ୟୟଦ୍ୱାରା ନିଷ୍ପାଦ୍ୟ ।

ବ୍ୟୟସାପେକ୍ଷ—ବିଂ. (୬ତତ୍)ବ୍ୟୟସାଧ୍ୟ

ବ୍ୟୟସ୍ଥାନ—ବି. ଲଗ୍ନର ଦ୍ୱାଦଶ ସ୍ଥାନ ।

ବ୍ୟୟାଧିକ୍ୟ—କ୍ଲୀ.ବି. (୬ତତ୍) ବ୍ୟୟ-ବାହୁଲ୍ୟ, ଖୁବ୍ ବେଶି ଖରଚ ।

ବ୍ୟୟାଧିପ—ବି. ଜନ୍ମ ଲଗ୍ନଠାରୁ ଦ୍ୱାଦଶ ସ୍ଥାନର ଅଧିପତି ଗ୍ରହ ।

ବ୍ୟୟିତ—ବିଂ. (ବ୍ୟୟ+ମିଂ.ତ) ଯାହା ଖରଚ କରାହୋଇଅଛି, ଅପଚିତ, ବିଗତ, ବିନଷ୍ଟ ।

ବ୍ୟୟୀ—ପୁଂ. ବିଂ. ( ବ୍ୟୟ+ଇନ୍ ) ବ୍ୟୟଶୀଳ, (ସ୍ତ୍ରୀ) ବ୍ୟୟିନୀ ।

ବ୍ୟର୍ଦ୍ଧିତ—ବିଂ.(ବି+ଅର୍ଦ୍ଦ+ମିଂ.ତ)ପୀଡ଼ିତ, ବ୍ୟଥିତ ।

ବ୍ୟର୍ଥ—ବିଂ. (ବ.ବ୍ରୀ) ନିରର୍ଥକ, ନିଷ୍ପ୍ରୟୋଜନ, ନିଷ୍ଫଳ, (ସ୍ତ୍ରୀ) ବ୍ୟର୍ଥା ।

ବ୍ୟର୍ଥକରିବା—ଗ୍ରା.କ୍ରି. କୌଣସି କାର୍ଯ୍ୟକୁ ପଣ୍ଡ ବା ନିଷ୍ଫଳ କରିବା ।

ବ୍ୟର୍ଥଚେଷ୍ଟ—ପୁଂ. ବିଂ. (ବ.ବ୍ରୀ)ଯାହାର ଚେଷ୍ଟା ବିଫଳ ହୋଇଅଛି ।

ବ୍ୟର୍ଥଚେଷ୍ଟା—ବି. (କ.ଧା) ବିଫଳପ୍ରଯତ୍ନ

ବ୍ୟର୍ଥତା—ବି.(ବ୍ୟର୍ଥ+ଭା.ତା)ନିଷ୍ଫଳତା

ବ୍ୟର୍ଥପରିଶ୍ରମ—ବି. (କ.ଧା) ବୃଥାଶ୍ରମ, (ପୁଂ. ବିଂ.-ବ.ବ୍ରୀ) ଯାହାର ପରିଶ୍ରମ ବୃଥା ହୋଇଅଛି, (ସ୍ତ୍ରୀ) ଶ୍ରମା ।

ବ୍ୟର୍ଥମନୋରଥ—ପୁଂ. ବିଂ. ( ବ.ବ୍ରୀ ) ଯାହାର ମନୋରଥ ସିଦ୍ଧ ହୋଇନାହିଁ, (ସ୍ତ୍ରୀ) ମନୋରଥା ।

ବ୍ୟଳୀକ—ବି. ( ବି+ଅଲ୍+ମିଂ.ଈକ ) ପୀଡ଼ା, ମନୋଦୁଃଖ, ଲଜ୍ଜା, ଦୁଃଖ, ଅପରାଧ, ପ୍ରତାରଣା, ପୀଠମର୍ଦ୍ଦ, ବିଟ, ବିଲକ୍ଷଣତା, ଅଭୂତତା,(ବିଂ)ଲମ୍ପଟ, ଅପ୍ରିୟ, ମିଥ୍ୟା, ଅକର୍ତ୍ତବ୍ୟ, କଷ୍ଟ-ଦାୟକ, ଅପରିଚିତ, ଅଦ୍ଭୁତ ।

ବ୍ୟଳୀକତା(ତ୍ୱ)—ବି. ବ୍ୟଳୀକ ଦେଖ ।

ବ୍ୟଶ୍ନୁବାନ୍—ବିଂ.(ବି+ଅଶ୍+କ.ଆନ୍) ବ୍ୟାପନଶୀଳ, ବ୍ୟାପକ ।

ବ୍ୟଷ୍ଟକା—ବି. (ବି+ଅଷ୍ଟକ୍+ଆ) କୃଷ୍ଣ-ପକ୍ଷର ପ୍ରତିପଦ୍ ତିଥି ।

ବ୍ୟଷ୍ଟି—ସ୍ତ୍ରୀ. ବି. ( ବି+ଅଶ୍+ଭା.ତି ) ଅସାମଗ୍ର୍ୟ,ପୃଥକ୍ ପୃଥକ୍ ଭାବ,ଗୋଟିଏ ଗୋଟିଏ ହେବା, ବିଶ୍ଳେଷଣ ।

ବ୍ୟଷ୍ଟିଭାବ—ଗ୍ରା. ବି.ପୃଥକ୍ଭାବ,ବିଶ୍ଳିଷ୍ଟ-ଭାବ ।

ବ୍ୟସନ—ବି. ( ବି+ଅସ୍+ମିଂ.ଅନ ) କାମଜ ଓ କ୍ରୋଧଜ ଦୋଷ, ଦୁର୍ଭାଗ୍ୟ, ବିପଦ, ବିଷୟାନୁରକ୍ତି, ଅଶୁଭ, ଦୁଃଖ, ପତନ, ପାପ, ଅପରାଧ, ବୃଥାଚେଷ୍ଟା, ଅଯୋଗ୍ୟତା, ଦୋଷ, ଅଶୁଭ ଲକ୍ଷଣ, ଅସାମର୍ଥ୍ୟ, ଅତ୍ୟଧିକ ପ୍ରବୃତ୍ତି, ପଶା-ଖେଳ, ମୃଗୟା, ଦିବାନିଦ୍ରା, ପରିବାଦ, ପରସ୍ତ୍ରୀସଙ୍ଗ, ମଦ୍ୟ, କ୍ରୀଡ଼ା, ନୃତ୍ୟ, ଗୀତ,ବାଦ୍ୟ ଓ ବୃଥାଭ୍ରମଣ ଏହି ଦଶ-ପ୍ରକାର କାମଜ ଦୋଷ, ଦୁଷ୍ଟତା, ଦୌରାତ୍ମ୍ୟ, କ୍ଷତି, ଦ୍ୱେଷ, ଈର୍ଷା,ପ୍ରତା-ରଣା, କଟୂକ୍ତି ଓ ନିଷ୍ଠୁରତା, କ୍ରୋଧଜ ଦୋଷ । [ (ସ୍ତ୍ରୀ)ଆର୍ତ୍ତ ।

ବ୍ୟସନାର୍ତ୍ତ—ପୁଂ. ବିଂ. (୩ତତ୍) ବିପନ୍ନ,

ବ୍ୟସନାସକ୍ତ—ପୁଂ. ବିଂ. (୭ତତ୍)କୁକ୍ରି-ୟାରତ, କୌଣସି କାର୍ଯ୍ୟପ୍ରତି ଅତି-ଶକ୍ତ ରୂପେ ଆସକ୍ତ, (ସ୍ତ୍ରୀ) ସକ୍ତା ।

ବ୍ୟସନୀ—ପୁଂ. ବିଂ. ( ବ୍ୟସନ+ଇନ୍ ) ବ୍ୟସନଯୁକ୍ତ, କୁକ୍ରିୟାରତ, ( ସ୍ତ୍ରୀ ) ବ୍ୟସନିନୀ । [ ଉତ୍ପନ୍ନ ।

ବ୍ୟସନୋଦ୍ଭବ—ବିଂ. (୫ତତ୍)ବ୍ୟସନରୁ

ବ୍ୟସୁ—ବିଂ. (ବ.ବ୍ରୀ) ମୃତ, ଗତପ୍ରାଣ ।

ବ୍ୟସ୍ତ—ବିଂ. (ବି+ଅସ୍+ମିଂ.ତ)ବିକ୍ଷିପ୍ତ, ବିସ୍ତୃତ, ବିଭକ୍ତ, ବ୍ୟାକୁଳ, ଅସମସ୍ତ, ବିପରୀତ,କାର୍ଯ୍ୟରେ ବ୍ୟାପୃତ,ଗୋଳ-ମାଳିଆ, ଅବ୍ୟବସ୍ଥିତ, (ଗ୍ରା.ବି) ବ୍ୟାକୁ-ଳତା, ବ୍ୟସ୍ତତା, ଦୁଃଖ ।

ବ୍ୟସ୍ତତା—ବି. (ବ୍ୟସ୍ତ+ତା) ବ୍ୟାକୁ-ଳତା, ବ୍ୟଗ୍ରତା, ବିରାଗ ।

ବ୍ୟସ୍ତପଦ—ବି. ସମାସହୀନ ପଦ, (ହିନ୍ଦୁ ଆଇନାନୁସାରେ) ଟଙ୍କାପାଇଁ ଯେଉଁ ଖାତକ ନାମରେ ନାଲିସ ହୋଇଥାଏ ସେ ଋଣ ନ ସୁଝି ଓଜର କରିବା ।

ବ୍ୟସ୍ତବିଧି—ଗ୍ରା.ବି. ଗଣିତରେ ବିଲୋମ ବିଧି ।

ବ୍ୟସ୍ତରେ ପଡ଼ିବା—ଗ୍ରା.କ୍ରି.ବିପନ୍ନହେବା

ବ୍ୟସ୍ତସମସ୍ତ— ବିଂ. କେତେବେଳେ ଏକତ୍ରୀଭୂତ ଓ କେତେବେଳେ ପୃଥକ୍-ଭୂତ, ଅତ୍ୟନ୍ତ ବ୍ୟଗ୍ର, ଅତିବ୍ୟସ୍ତ ।

ବ୍ୟସ୍ତହେବା—ଗ୍ରା. କ୍ରି. ବ୍ୟାକୁଳହେବା, ଦୁଃଖପାଇବା, ମନୋଦୁଃଖ ପ୍ରକାଶ କରିବା । [ ବିଶେଷ ।

ବ୍ୟସ୍ତାଲଂକାର—ବି.କାବ୍ୟର ଅଳଂକାର

ବ୍ୟସ୍ତିତ—ଗ୍ରା. ବିଂ. ବ୍ୟସ୍ତତାଯୁକ୍ତ, ଦୁଃଖିତ, ବ୍ୟଥିତ ।

ବ୍ୟହ୍ନ—ବି. (ବି+ଅହନ୍) ଗତକାଲି ।

ବ୍ୟା—ଗ୍ରା. (ମେଦିନୀପୁର) ବି. ବିବାହ ।

ବ୍ୟାକରଣ—ବି. (ବି+ଆ+କୃ+ଣ ବା ଅଧି.ଅନ) ଶବ୍ଦବ୍ୟୁତ୍ପାଦକ ଓ ଭାଷା-ନିୟାମକ ଶାସ୍ତ୍ର, ଶବ୍ଦଶାସ୍ତ୍ର,ଯେଉଁଶାସ୍ତ୍ରର ଜ୍ଞାନଥିଲେ କୌଣସି ଭାଷାରେ ଶୁଦ୍ଧ-ରୂପେ କଥା କହିହୁଏ ଓ ଲେଖି-ହୁଏ,(ଭା.ଅନ) ବିଶ୍ଳେଷଣ, ବ୍ୟାଖ୍ୟାନ, ବିବାସନ, ଶିଳ୍ପନୈପୁଣ୍ୟ, କାରିଗରି ।

ବ୍ୟାକରଣଜ୍ଞ—ପୁଂ. ବି. (ବ୍ୟାକରଣ+ଜ୍ଞା+କ.ଅ) ବ୍ୟାକରଣ ଶାସ୍ତ୍ର ଜାଣି-ଥିବା ବ୍ୟକ୍ତି, (ବିଂ)ବ୍ୟାକରଣ ଶାସ୍ତ୍ରରେ ବିଜ୍ଞ । [ ଅଭିଜ୍ଞତା ।

ବ୍ୟାକରଣଜ୍ଞାନ—ବି.ବ୍ୟାକରଣ ଶାସ୍ତ୍ରରେ

ବ୍ୟାକରଣଦୋଷ—ଗ୍ରା. ବି. ବ୍ୟାକରଣ ବିରୁଦ୍ଧ ପ୍ରୟୋଗ, ବ୍ୟାକରଣ ଦୃଷ୍ଟିରେ ଅଶୁଦ୍ଧ ପ୍ରୟୋଗ ।

ବ୍ୟାକରଣବହିର୍ଭୂତ—ବିଂ. ବ୍ୟାକରଣ ଶାସ୍ତ୍ରର ନିୟମବିରୁଦ୍ଧ ।

ବ୍ୟାକରଣବିହିତ—ବିଂ. ବ୍ୟାକରଣର ବିଧି ଅନୁସାରେ ଶୁଦ୍ଧ ।

ବ୍ୟାକରଣଶାସ୍ତ୍ର—ବି.ବ୍ୟାକରଣ ଦେଖ ।

ବ୍ୟାକର୍ତ୍ତ୍ର—ପୁଂ.ବି. (ବି+ଆ+କୃ+ତୃ) ସୃଷ୍ଟିକର୍ତ୍ତା, ପରମେଶ୍ୱର ।

ବ୍ୟାକାର—ବି. (ବି + ଆକାର) ବିକଟ ରୂପ, ଆକାରର ପରିବର୍ତ୍ତନ, (ବି + ଆ + କୃ + ଘ.ଅ) ବ୍ୟାଖ୍ୟା ।

ବ୍ୟାକୀର୍ଣ୍ଣ—ବିଂ. (ବି + ଆ + କୃ + ର୍ମ.ତ) ବ୍ୟାପ୍ତ, ବିକ୍ଷିପ୍ତ, ଏଣେ ତେଣେ ବିଞ୍ଚି ହୋଇ ପଡ଼ିଥିବା ।

ବ୍ୟାକୁଳ—ବିଂ. (ବି+ଆକୁଳ) ଉଦ୍ବିଗ୍ନ, ବ୍ୟସ୍ତ, ଉତ୍କଣ୍ଠିତ, କାତର, ଶୋକ-ଭୟାଦି ଦ୍ୱାରା କିଂକର୍ତ୍ତବ୍ୟବିମୂଢ଼, ବିକଳ, ଅସ୍ଥିର, (ସ୍ତ୍ରୀ) ବ୍ୟାକୁଳା, (ଗ୍ରା. ବି.) ବ୍ୟାକୁଳତା ।

ବ୍ୟାକୁଳଚିତ୍ତ—ପୁଂ.ବିଂ.(ବ.ବ୍ରୀ) ଅସ୍ଥିର-ମନାଃ, (ସ୍ତ୍ରୀ) ଚିତ୍ତା ।

ବ୍ୟାକୁଳତା—ବି. ଉତ୍କଣ୍ଠା, କାତରତା, ମନର ଅସ୍ଥିରତା ।

ବ୍ୟାକୁଳହେବା—ଗ୍ରା. କ୍ରି. ବିକଳ ବା ବ୍ୟସ୍ତ ହେବା, ଉଦ୍ବିଗ୍ନ ହେବା ।

ବ୍ୟାକୁଳିତ—ବିଂ.(ବ୍ୟାକୁଳ + ଣିଚ୍ + ର୍ମ. ତ) ବ୍ୟାକୁଳୀକୃତ, ଯାହାକୁ ବ୍ୟାକୁଳ କରାହୋଇଅଛି, ( ବ୍ୟାକୁଳ+ଇତ ) ବ୍ୟାକୁଳ ଦେଖ, (ସ୍ତ୍ରୀ) ବ୍ୟାକୁଳିତା ।

ବ୍ୟାକୂତ—ବି. (ବି+ଆ+କୂ+ଘ.ତି) ଛଳ, ପ୍ରତାରଣା, ଛଦ୍ମବେଶ, ଭଙ୍ଗି ।

ବ୍ୟାକୃତ—ବିଂ. ( ବି+ଆ+କୃ+ର୍ମ. ତ) ବ୍ୟାଖ୍ୟାତ, ପ୍ରକାଶିତ, ରୂପାନ୍ତରିତ, ବିକୃତ, ପୃଥକ୍‌କୃତ ।

ବ୍ୟାକୃତି—ବି (ବି+ଆକୃତି)ବ୍ୟାଖ୍ୟାନ, ବିକୃତ ଆକାର, ରୂପାନ୍ତର, ଛଦ୍ମରୂପ, ବିକୃତି, ଭଙ୍ଗି, ବ୍ୟାକରଣ ।

ବ୍ୟାକୋଶ(ଷ)--ବି. (ବି+ଆ+କୋଶ) ବିକଶିତ, ପ୍ରସ୍ଫୁଟିତ ।

ବ୍ୟାକ୍ରୋଶ—ବି(ବି+ଆକ୍ରୋଶ)ଦୁର୍ବାକ୍ୟ, ତିରସ୍କାର, ଅପମାନ, ଉଚ୍ଚୈଃସ୍ୱର କରିବା, କଟୂକ୍ତି ।

ବ୍ୟାକ୍ରୋଶୀ—ସ୍ତ୍ରୀ.ବି. (ବ୍ୟାକ୍ରୋଶ+ଈ) ଆକ୍ରୋଶ ବାକ୍ୟ, ପରସ୍ପର କଟୂକ୍ତି ।

ବ୍ୟାକ୍ଷେପ—ବି.(ବି+ଆକ୍ଷେପ) ବିଳମ୍ବ, କାଳକ୍ଷେପ, ଅନ୍ୟାସକ୍ତ, କିଂକର୍ତ୍ତବ୍ୟ-ବିମୂଢ଼ତା ।

ବ୍ୟାଖ୍ୟା—ବି. (ବି + ଆ + ଖ୍ୟା + ଘ.ଅ + ଆ)ବିବରଣ, ବର୍ଣ୍ଣନା, ଟୀକା, ଅର୍ଥ-ପ୍ରକାଶ ।

ବ୍ୟାଖ୍ୟାକରିବା—ସ୍ତା. କ୍ରି. ଉତ୍ତମ ରୂପେ ବୁଝାଇବା, ଟୀକା କରିବା ।

ବ୍ୟାଖ୍ୟାକର୍ତ୍ତା--ପୁଂ.ବି ଓ ବିଂ. ଟୀକାକାର

ବ୍ୟାଖ୍ୟାଗମ୍ୟ—-ବିଂ. (୩ତତ୍) ଯାହା ବ୍ୟାଖ୍ୟାସାହାଯ୍ୟରେ ବୁଝାଯାଏ,(ହିନ୍ଦୁ ଆଇନ୍) ବାଦୀର ଅଭିଯୋଗର ଯଥା-ଯୋଗ୍ୟ ଉତ୍ତର ନ ଦେଇ ଏଣୁ ତେଣୁ ବୁଲାଇକରି ଜବାବ ଦେବା ।

ବ୍ୟାଖ୍ୟାଗ୍ରନ୍ଥ—ବି. ଟୀକାଗ୍ରନ୍ଥ ।

ବ୍ୟାଖ୍ୟାତ—ବିଂ. ( ବି+ଆ+ଖ୍ୟା+ +କ.ତ)ବିବୃତ, ଯାହା ବ୍ୟାଖ୍ୟା କରା-ଯାଇଅଛି ।

ବ୍ୟାଖ୍ୟାତା—ପୁଂ. ବି. ବିଂ. (ବି + ଆ + ଖ୍ୟା + ତୃ)ଅର୍ଥକର୍ତ୍ତା, (ସ୍ତ୍ରୀ) ବ୍ୟାଖ୍ୟାତ୍ରୀ

ବ୍ୟାଖ୍ୟାନ—ବି. (ବି + ଆ + ଖ୍ୟା + ଘ. ଅନ) ବ୍ୟାଖ୍ୟା ଦେଖ ।

ବ୍ୟାଖ୍ୟେୟ—ବିଂ. (ବି + ଆ + ଖ୍ୟା + ର୍ମ ଯ) ବର୍ଣ୍ଣନୀୟ, ଯାହାର ବ୍ୟାଖ୍ୟା କରାଯାଇ ପାରିବ ।

ବ୍ୟାଘଟ୍ଟନ—ବି. (ବି+ଆ+ଘଟ୍ଟ+ଘ. ଅନ) ଆଲୋଡ଼ନ, ମନ୍ଥନ, ଘୋଟା, ମର୍ଦ୍ଦନ, ବଟା ।

ବ୍ୟାଘାତ—ବି. (ବି+ଆ+ହନ୍+ଘ. ଅ) ବିଘ୍ନ, ଅନ୍ତରାୟ, ପ୍ରହାର୍ଯ୍ୟ, ଆଘାତ, ( ଜ୍ୟୋତିଷ ) ବିଷ୍କୁମ୍ଭାଦି ୨୭ ଯୋଗ ମଧ୍ୟରୁ ଅଶୁଭସୂଚକ ୧୩ଶ ଯୋଗ, କାବ୍ୟର ଅଳଂକାରବିଶେଷ ।

ବ୍ୟାଘାତକ—ବିଂ. (ବି+ଆ+ହନ୍+ କ.ଅକ) ବିଘ୍ନକାରୀ, ପ୍ରତିବନ୍ଧକ, (ସ୍ତ୍ରୀ) ବ୍ୟାଘାତିକା ।

ବ୍ୟାଘ୍ର—ପୁଂ. ବି. (ବି + ଆ + ଘ୍ରା + କ. ଅ)ସ୍ୱନାମ ପ୍ରସିଦ୍ଧ ଜନ୍ତୁ, ବାଘ, ଶାର୍ଦ୍ଦୂଳ, ନାଲି ଗବଗଛ, କରଞ୍ଜ, (ସ୍ତ୍ରୀ)ବ୍ୟାଘ୍ରୀ ।

ବ୍ୟାଘ୍ରଗତି—ବି. ଚିତ୍ର ରଚନାବିଶେଷ, ଯେଉଁ ରଚନାରେ ପ୍ରତିପଦର ଉପାନ୍ତ ଦୁଇ ଅକ୍ଷର ଦ୍ୱାରା ପରବର୍ତ୍ତୀ ପଦ ଆରମ୍ଭ କରାଯାଇଥାଏ ।

ବ୍ୟାଘ୍ରଚର୍ମ—ବି.(୬ତତ୍) ବାଘର ଚମଡ଼ା ବା ଛାଲ ।

ବ୍ୟାଘ୍ରନଖ—ବି. (୬ତତ୍) ବାଘର ନଖ, (ବ.ବ୍ରୀ) ହିଙ୍ଗୁଗଛ, ନଖୀ ନାମକ ଗନ୍ଧ-ଦ୍ରବ୍ୟ, ବ୍ୟାଘ୍ରନଖଯୁକ୍ତ ଅଲଙ୍କାର-ବିଶେଷ ।

ବ୍ୟାଘ୍ରନଖକ—ବି.ନଖ ଚିହ୍ନମୁଦ୍ରା, ନଖକ୍ଷତ

ବ୍ୟାଘ୍ରନଖୀ—ବି.ନଖୀ ନାମକ ଗନ୍ଧଦ୍ରବ୍ୟ ।

ବ୍ୟାଘ୍ରନାୟକ—ବି. (ବ.ବ୍ରୀ) ଶୃଗାଳ, (କାରଣ ବାଘ ପଛେ ପଛେ ଶୃଗାଳ ରାବକରି ଯାଉଥିବାରୁ) ।

ବ୍ୟାଘ୍ରପାଦ(ତ୍,ଦ୍)--ବି.ସ୍ମୃତିଶାସ୍ତ୍ରପ୍ରଣେତା ମୁନିବିଶେଷ, ଭୁଇଁଅଁଗଛ, (ବିଂ.ବ.ବ୍ରୀ) ବାଘପାଦ ପରି ପାଦବିଶିଷ୍ଟ ।

ବ୍ୟାଘ୍ରପୁଚ୍ଛ—ବି. (ବ.ବ୍ରୀ) ଏରଣ୍ଡ ଗଛ, ବାଇଗବାଗଛ(୬ତତ୍)ବାଘର ଲାଙ୍ଗୁଡ଼

ବ୍ୟାଘ୍ରବର—ଗ୍ରା. ବି. ମହାବଳ ବାଘ ।

ବ୍ୟାଘ୍ରଭୀତି—-ବି. (୫ତତ୍) ବ୍ୟାଘ୍ରଠାରୁ ଭୟ, ବାଘଭୟ ।

ବ୍ୟାଘ୍ରମେରୁ—ଗ୍ରା.ବି.ରାଜସ୍ଥାନର ପର୍ବତ ବିଶେଷ ।

ବ୍ୟାଘ୍ରଲୋମ—ବି.(୬ତତ୍)ବାଘ ଦେହର ଲୋମ, (ବ.ବ୍ରୀ) ମୁଞ୍ଜ ।

ବ୍ୟାଘ୍ରଶାବକ—ବି. (୬ତତ୍)ବାଘଛୁଆ ।

ବ୍ୟାଘ୍ରହସ୍ତ—ବି. (ବ.ବ୍ରୀ) ନାଲିଗବଗଛ

ବ୍ୟାଘ୍ରାଟ—-ବି. ଭରଦ୍ୱାଜ ପକ୍ଷୀ ।

ବ୍ୟାଘ୍ରାନଘ୍ରା—ବି. ଦ୍ରିବୃତା, ତିହୁଡ଼ି ।

ବ୍ୟାଘ୍ରାସ୍ୟ—ପୁଂ. ବି. (ବ.ବ୍ରୀ) ମାର୍ଜାର, ବିରାଡ଼ି, (ବିଂ) ବ୍ୟାଘ୍ରପରି ମୁଖବିଶିଷ୍ଟ ।

ବ୍ୟାଘ୍ରୀ—ସ୍ତ୍ରୀ. ବି. (ବ୍ୟାଘ୍ର+ଈ) ମାଈ-ବାଘ, ବାଘୁଣୀ, ଅଙ୍କରାନ୍ତ, ନଖୀ ନାମକ ଗନ୍ଧଦ୍ରବ୍ୟ ।

ବ୍ୟାଜ—ବି.(ବି+ଅଜ୍+ର୍ମ.ଅ)ବାହାନା, କପଟ, ଛଳ, କାଳବିଳମ୍ବ, ବାଧା, ବିଆଜ, ସୁଧ, ବିଘ୍ନ ।

ବ୍ୟାଜନିନ୍ଦା—ବି.କପଟ, କୁତ୍ସା, କାବ୍ୟା-ଲଂକାରବିଶେଷ ।

ବ୍ୟାଜସ୍ତୁତି—ବି. କପଟସ୍ତୁତି, କପଟ-

ପ୍ରଶଂସା, ନେସାମଦ୍, କାବ୍ୟର ଅଳଙ୍କାରବିଶେଷ ।

ବ୍ୟାଜୋକ୍ତି—ବି. ବ୍ୟଙ୍ଗୋକ୍ତି, କଥାଚ୍ଛଳ, କାବ୍ୟର ଅଳଙ୍କାରବିଶେଷ, ବ୍ୟାଜସ୍ତୁତି ।

ବ୍ୟାଡ଼—ବି. (ବି+ଆ+ଅଡ୍+କ.ଅ) ସର୍ପ, ଶ୍ୱାପଦ, ଇନ୍ଦ୍ର, ବାଘ, (ପୁଂ. ବିଂ) ପ୍ରବଞ୍ଚକ, ପ୍ରତାରକ ।

ବ୍ୟାଡ଼ି—ବି. (ବ୍ୟାଡ୍+ଇ) ସଂସ୍କୃତ ଶବ୍ଦକୋଷ ଓ ବ୍ୟାକରଣକାର ମୁନିବିଶେଷ ।

ବ୍ୟାତ୍ତ—ବିଂ. (ବି+ଆ+ଅତ୍+ର୍ମ.ତ) ବିସ୍ତାରିତ, ବିସ୍ତୃତ, ମେଲା, (ବି) ମେଲ କରିଥିବା ପାଟି ।

ବ୍ୟାତ୍ତମୁଖ—ପୁଂ.ବିଂ. (ବ.ବ୍ରୀ) ଯାହାର ପାଟି ମେଲା ହୋଇଥାଏ, (ସ୍ତ୍ରୀ)ବ୍ୟାତ୍ତମୁଖୀ ।

ବ୍ୟାତ୍ୟୁକ୍ଷୀ—ସ୍ତ୍ରୀ.ବି. (ବି+ଅତି+ଉକ୍ଷ+ଅ+ଈ) ଜଳକ୍ରୀଡ଼ାବିଶେଷ,ପରସ୍ପର ଜଳ ଫିଙ୍ଗାଫିଙ୍ଗିହୋଇ ଖେଳିବା ।

ବ୍ୟାଦାନ—ବି. (ବି+ଆ+ଦା+ଭ.ଅନ) ଉଦ୍ଘାଟନ, ପ୍ରସାରଣ, ବିସ୍ତାର ।

ବ୍ୟାଦତ୍ତ—ବିଂ. (ବି+ଆ+ଦା+ର୍ମ.ତ) ଉଦ୍ଘାଟିତ, ପ୍ରସାରିତ, ବିସ୍ତୃତି ।

ବ୍ୟାଦଶ—ପୁଂ.ବି. ବିଷ୍ଣୁ ।

ବ୍ୟାଧ—ପୁଂ.ବି. (ବ୍ୟଧ୍+କ.ଅ)ମୃଗୟାଜୀବୀ ଜାତି,ଲୁବ୍ଧକ, ଦୁଷ୍ଟ ବ୍ୟକ୍ତି ।

ବ୍ୟାଧଭୀତ—ବି. (ବ.ବ୍ରୀ) ମୃଗ, ହରିଣ (ବିଂ—୫ତତ୍)ବ୍ୟାଧଠାରୁ ଭୟପ୍ରାପ୍ତ ।

ବ୍ୟାଧବୃତ୍ତି—ବି. (୬ତତ୍) ବ୍ୟାଧର ବ୍ୟବସାୟ, ପଶୁହନନ, ମୃଗୟା,(ବିଂ. ବ.ବ୍ରୀ) ବ୍ୟାଧର ବ୍ୟବସାୟାବଲମ୍ବୀ, ମୃଗୟାକାରୀ ।

ବ୍ୟାଧା—ବି. (ବି+ଆ+ଧା+ଅ+ଆ) ଅଶନ, ବଜ୍ର । [ବଜ୍ର ।

ବ୍ୟାଧାମ—ବି. (ବି+ଆ+ଧା+ମ)

ବ୍ୟାଧି—ବି. (ବି+ଆ+ଧା+ର୍ମ.ଇ) ପୀଡ଼ା, ରୋଗ, କାମବ୍ୟଥା, ସନ୍ତାପଜନିତ ଦଶା (କୃଶତାଦି) ।

ବ୍ୟାଧିକ—ଗ୍ରା.ବିଂ. ରୋଗୀ, ପୀଡ଼ିତ ।

ବ୍ୟାଧିକର—ବିଂ. ଯାହା ଦେହରେ ପୀଡ଼ା ଦିଏ, (ସ୍ତ୍ରୀ) ବ୍ୟାଧିକାରୀ ।

ବ୍ୟାଧିଗ୍ରସ୍ତ—ପୁଂ.ବିଂ. (୩ତତ୍) ପୀଡ଼ିତ, ପୀଡ଼ାଗ୍ରସ୍ତ ।

ବ୍ୟାଧିଘାତ—ବି. (ବ୍ୟାଧି+ହନ୍+କ.ଅ) ସୁନାରିଗଛ ।

ବ୍ୟାଧିତ—ବିଂ. (ବ୍ୟାଧି+ଇତ)ପୀଡ଼ିତ, (ସ୍ତ୍ରୀ) ବ୍ୟାଧିତା ।

ବ୍ୟାଧିମନ୍ଦିର—ବି. (୬ତତ୍) ରୋଗର ଆଧାର, ବ୍ୟାଧିରଘର ।

ବ୍ୟାଧିମୁକ୍ତ—ପୁଂ.ବିଂ. (୫ତତ୍)ଆରୋଗ୍ୟ ଲାଭ କରିଥିବା, (ସ୍ତ୍ରୀ)ବ୍ୟାଧିମୁକ୍ତା ।

ବ୍ୟାଧିଶୂନ୍ୟ—ବିଂ. (୩ତତ୍)ରୋଗଶୂନ୍ୟ, ସୁସ୍ଥ ।

ବ୍ୟାଧିହନ୍ତା—ବି. ବାରାହୀ କନ୍ଦ ।

ବ୍ୟାଧୁ(ଧୂ)ତ—ବିଂ. (ବି+ଆ+ଧୁ+ର୍ମ.ତ) କମ୍ପିତ, ଚାଳିତ, ଆନ୍ଦୋଳିତ ।

ବ୍ୟାଧୂତି—ବି. (ବି+ଆ+ଧୂ+ଭା.ତି) କମ୍ପନ ।

ବ୍ୟାଧୂନନ—ବି. (ବି+ଆ+ଧୂ+ଣିଚ୍+ଭା.ଅନ) କମ୍ପାଇବା, କମ୍ପିବା, କମ୍ପନ ।

ବ୍ୟାନ—ବି. (ବି+ଅନ୍+ଣ.ଅ)ଶରୀରସ୍ଥ ୫ଗୋଟି ବାୟୁ ମଧ୍ୟରୁ ଏକତମ ।

ବ୍ୟାପକ—ବିଂ. (ବି+ଆପ୍+କ.ଅକ) ବ୍ୟାପ୍ତିଶୀଳ, ଆଚ୍ଛାଦକ, ବିସ୍ତୀର୍ଣ୍ଣ, କାଳବ୍ୟାପୀ, ସ୍ଥାନବ୍ୟାପୀ, ଦୀର୍ଘ, (ସ୍ତ୍ରୀ) ବ୍ୟାପିକା, (ବି.ନ୍ୟାୟଦର୍ଶନ)ସାଧିକରଣ ବସ୍ତୁର ଅପରିହାର୍ଯ୍ୟ ସ୍ୱୀୟ ଧର୍ମବୃତ୍ତି ।

ବ୍ୟାପକତା(ତ୍ୱ)—ବି. ବ୍ୟାପିଯିବା ଅବସ୍ଥା, ଗଭୀରପଣ ।

ବ୍ୟାପକନ୍ୟାସ—ବି. ତନ୍ତ୍ରଶାସ୍ତ୍ରୋକ୍ତ ସର୍ବାଙ୍ଗ ବ୍ୟାପକ ନ୍ୟାସବିଶେଷ ।

ବ୍ୟାପତ୍ତି—ବି. (ବି+ଆ+ପଦ୍+ଭା.ତି) ବିପଦ, ବିପତ୍ତି, ମୃତ୍ୟୁ ।

ବ୍ୟାପନ—ବି. (ବି+ଆପ+ଭା.ଅନ) ବ୍ୟାପ୍ତି, ବିସ୍ତାର, ବ୍ୟାପିବା, ଆଚ୍ଛାଦନ ସର୍ବତ୍ର ସ୍ଥିତି ।

ବ୍ୟାପନ୍ନ—ବିଂ. (ବି+ଆ+ପଦ୍+ତ) ବିପନ୍ନ, ମୃତ, କ୍ଷତିଗ୍ରସ୍ତ, ସଂସାରସକ୍ତ ।

ବ୍ୟାପାଦ୍—ବି. (ବି+ଆ+ପଦ୍+ଣିଚ୍+ଭା.କ୍ୱିପ୍) ବଧ,ବିନାଶ,ପରର ଅନିଷ୍ଟଚିନ୍ତା, ବ୍ୟାପତ୍ତି ଦେଖ ।

ବ୍ୟାପାଦକ—ପୁଂ.ବିଂ. (ବି+ଆ+ପଦ୍+ଣିଚ୍+କ.ଅକ)ମାରାତ୍ମକ,ପ୍ରାଣନାଶକ, ହତ୍ୟାକାରୀ, ବିନାଶକ, (ସ୍ତ୍ରୀ)ଦିକା ।

ବ୍ୟାପାଦନ—ବି. (ବି+ଆ+ପଦ୍+ଣିଚ୍+ଭା.ଅନ) ମାରଣ, ବଧ,ବିନାଶ, ପରର ଅନିଷ୍ଟ ଚିନ୍ତନ ।

ବ୍ୟାପାଦିତ—ବିଂ. (ବି+ଆ+ପଦ୍+ଣିଚ୍+ର୍ମ.ତ)ନିହତ,ବିନାଶିତ,ଆହତ ।

ବ୍ୟାପାର—ପୁଂ. ବି. (ବି+ଆ+ପୃ+ଭା.ଅ) କ୍ରିୟା, କର୍ମ, କାଣ୍ଡ, ଘଟନା, ବାଣିଜ୍ୟ, ପେଷା, ନିୟୋଗ, ଅନୁଶୀଳନ, ଅଭ୍ୟାସ ।

ବ୍ୟାପାରିତ—ବିଂ. (ବ୍ୟାପାର+ଇତ) ବ୍ୟାପୃତ ଦେଖ ।

ବ୍ୟାପାରୀ—ପୁଂ. ବିଂ. (ବ୍ୟାପାର+ଇନ୍) ବ୍ୟବସାୟୀ,କ୍ରିୟାସକ୍ତ,(ସ୍ତ୍ରୀ)ବ୍ୟାପାରିଣୀ, (ବି) ବଣିକ, ବେପାରୀ ।

ବ୍ୟାପିକା—ସ୍ତ୍ରୀ. ବି. ଅଣ୍ଡିରଚଣ୍ଡୀ,କଳହକାରୀ ସ୍ତ୍ରୀ, ସ୍ୱୈରିଣୀ ।

ବ୍ୟାପିତ—ଗ୍ରା. (ପଦ୍ୟ) ବିଂ. ବ୍ୟାପ୍ତ, ପରିପୂରିତ, (ସଂ-ବି. ବି+ଆପ୍+ଣିଚ୍+ର୍ମ.ତ) ଯାହାକୁ ବ୍ୟାପ୍ତକରି ଦିଆଯାଇଅଛି ।

ବ୍ୟାପିବା—ଗ୍ରା. କ୍ରି.ଘୋଟିବା,ଚାରିଆଡ଼େ ବିସ୍ତୃତ ହେବା,ସର୍ବତ୍ର ପ୍ରକଟିତ ହେବା, ଘୋଡ଼ାଇବା, ନିର୍ଦ୍ଦିଷ୍ଟ ସ୍ଥାନ ଅଧିକାର କରିବା ।

ବ୍ୟାପୀ—ପୁଂ. ବିଂ. (ବ୍ୟାପ+ଇନ୍) ଆଚ୍ଛାଦକ, ବ୍ୟାପକ, ବିସରଣଶୀଳ, (ସ୍ତ୍ରୀ) ବ୍ୟାପିନୀ, (ବି) ବିଷ୍ଣୁ ।

ବ୍ୟାପୃତ—ବିଂ.(ବି+ଆ+ପୃ+କ.ତ) କାର୍ଯ୍ୟରେ ନିଯୁକ୍ତ, ନିୟୋଜିତ, (ସ୍ତ୍ରୀ) ବ୍ୟାପୃତା, (ବି) ମନ୍ତ୍ରୀ, ରାଜକର୍ମଚାରୀ ।

ବ୍ୟାପ୍ତ—ବିଂ. (ବି+ଆପ୍+ର୍ମ.ତ)

ବିସ୍ତାରିତ, ବେଷ୍ଟିତ, ପରିମୂରିତ,ଆଚ୍ଛାଦିତ, ପ୍ରସିଦ୍ଧ, ଏକତ୍ରାବସ୍ଥିତ, (କ.ତ) ବ୍ୟାପିଯୁକ୍ତ, ସର୍ବତ୍ର ସ୍ଥିତ ।

ବ୍ୟାପ୍ତି—ବି. (ବି+ଆପ୍+ଭା.ତି)ସର୍ବତ୍ରାବସ୍ଥାନ, ବିସ୍ତୃତି, ଐଶ୍ୱର୍ଯ୍ୟବିଶେଷ, ସ୍ୱାଭାବିକ ଗୁଣ ବା ଧର୍ମ, ଲାଭ,ପ୍ରସାର, ଆବରଣ ।

ବ୍ୟାପ୍ତିଗ୍ରହ—ବି.ବ୍ୟାପ୍ତିସମ୍ବନ୍ଧେ ବୋଧ ।

ବ୍ୟାପ୍ତିଜ୍ଞାନ—ବି. ସାଧାରଣ ଗୁଣର ବା ଧର୍ମର ଅବସ୍ଥାନରୁ ବସ୍ତୁର ଅସ୍ତିତ୍ୱ ସମ୍ବନ୍ଧେ ଜ୍ଞାନ ।

ବ୍ୟାପ୍ତିଶୀଳ—ବିଂ. ( ବି.ଗ୍ରା ) ବ୍ୟାପନସ୍ୱଭାବ, ଯାହା ସ୍ୱଭାବତଃ ବଢ଼ିଆଡ଼େ ଖେଳିଯାଏ ।

ବ୍ୟାପ୍ୟ—ବିଂ. ( ବି+ଆପ୍+ର୍ମ.ଯ ) ବ୍ୟାପନୀୟ, ବ୍ୟାପ୍ତିଯୋଗ୍ୟ, ଅନୁମେୟ. (ବି) ଅଳ୍ପଦେଶ ବୃତ୍ତି, ସାଧନ,ହେତୁ, କୁଡ଼ଔଷଧି ।

ବ୍ୟାପ୍ୟତା(ତ୍ୱ)—ବି. ବ୍ୟାପନୀୟତା,ଅନ୍ୟ ପଦାର୍ଥ ଦ୍ୱାରା ବ୍ୟାପ୍ତହେବା ଅବସ୍ଥା ।

ବ୍ୟାପ୍ୟବୃତ୍ତି—ବିଂ. (ବି.ଗ୍ରା) ଅଳ୍ପଦେଶ ବୃତ୍ତି ପଦାର୍ଥରେ ବିଦ୍ୟମାନ ।

ବ୍ୟାପ୍ରିୟମାଣ—ବିଂ. (ବି+ଆ+ପୃ+କ.ଆନ) ନିଯୁକ୍ତ, ବ୍ୟାପୃତ ।

ବ୍ୟାମ—ବି. ( ବି + ଆ + ମା + ଣ.ଅ ) ବାଁ, ଦୁଇବାହୁକୁ ବିପରୀତ ଦିଗକୁ ପ୍ରସାରିତ କଲେ ଏକବାହୁର ମଧ୍ୟମା-ଅଙ୍ଗୁଳିର ଅଗ୍ରରୁ ଅନ୍ୟବାହୁର ମଧ୍ୟମା ଅଙ୍ଗୁଳିର ଅଗ୍ରଭାଗ ପର୍ଯ୍ୟନ୍ତ ଦୀର୍ଘତାର ପରିମାଣ ।

ବ୍ୟାମର୍ଷ—ବି.(ବି+ଆ+ମୃଷ୍+ଭା.ଅ) ଉତ୍ପାଟନ, ଅଧୀରତା, ବ୍ୟାକୁଳତା, ଟେକିବା, ଉଠାଇବା ।

ବ୍ୟାମିଶ୍ର—ବିଂ. (ବି+ଆ+ମିଶ୍ର+କ.ଅ) ସମ୍ମିଳିତ, ଏକୀକୃତ, (ବି) ଦୁଇ ପଦାର୍ଥକୁ ବା କାର୍ଯ୍ୟକୁ ଏକତ୍ର ମିଳାଇବା କର୍ମ ।

ବ୍ୟାମୋହ—ବି. (ବି+ଆ+ମୁହ୍+ଭା.ଅ) ଅଜ୍ଞାନ, ମୋହ, ଆମୟ, ରୋଗ, ଚିତ୍ତବିକଳ୍ପ ।

ବ୍ୟାୟତ—ବିଂ. (ବି+ଆ+ଯମ୍+କ.ତ) ଦୀର୍ଘ, ଡେଙ୍ଗା, ଉଚ୍ଚ, ବିସ୍ତୃତ, ବ୍ୟାପୃତ, ଦୂର, ଦୃଢ଼, (ବି) ଦୈର୍ଘ୍ୟ, ପ୍ରସାର, ଡେଙ୍ଗା, ଉଚ୍ଚତା, ଆୟାସ ।

ବ୍ୟାୟାମ—ବି.(ବି+ଆ+ଯମ୍+ଭା.ଅ) ଶ୍ରମ, ଶ୍ରମସାଧ୍ୟ କର୍ମ, ବିଷମ, ବଳାଧାନ ସକାଶେ ଅଙ୍ଗ ସଞ୍ଚାଳନ ରୂପ ଶ୍ରମସାଧନ, ଦୁର୍ଗମ ସ୍ଥାନରେ ଭ୍ରମଣ, ପୌରୁଷ, ବ୍ୟାପାର, ବୃତ୍ତି, ଦୈର୍ଘ୍ୟ, ବ୍ୟାମ, ପରିଶ୍ରମ ।

ବ୍ୟାୟୋଗ—ବି.(ବି+ଆ+ଯୁଜ୍+ଭା.ଅ) ଦୃଶ୍ୟକାବ୍ୟବିଶେଷ ।

ବ୍ୟାରମ—ବି. ରୋଗ, ପୀଡ଼ା, ଅସୁଖ ।

ବ୍ୟାଳ—ବି. (ବି+ଆ+ଅଲ୍+କ.ଅ) ସର୍ପ, ହିଂସ୍ରଜନ୍ତୁ, ଚିତାବାଘ, ଦୁର୍ଦ୍ଦାନ୍ତ ହସ୍ତୀ, ରାଜା, ଛନ୍ଦୋବିଶେଷ, ଧଳାଚିତା, (ବିଂ) କ୍ରୂର, ଦୁଷ୍ଟ, ହିଂସ୍ର, ଶଠ, (ସ୍ତ୍ରୀ) ବ୍ୟାଳୀ ।

ବ୍ୟାଳକ—ପୁଂ. ବି. ଦୁଷ୍ଟ ଗଜ ।

ବ୍ୟାଳଦନ୍ତ—ବି.ବ୍ୟାଳନଖ,ହିଂସ୍ରଜନ୍ତୁର ନଖ । [ ଲଙ୍କାଳିଆ ।

ବ୍ୟାଳଗନ୍ଧା—ସ୍ତ୍ରୀ.ବି.ବିଷଲାଙ୍ଗଳୀ, ଲଙ୍କା-

ବ୍ୟାଳଗ୍ରସ୍ତ—ବିଂ. (ତତ୍ପୁ) ହିଂସ୍ର ଜନ୍ତୁ ପ୍ରପୀଡ଼ିତ ।

ବ୍ୟାଳଗ୍ରାହ—ବି.(ବ୍ୟାଳ + ଗ୍ରହ୍ + କ.ଅ) ଅହିତୁଣ୍ଡିକ,ସାପୁଆକେଳା । [କେଳା ।

ବ୍ୟାଳଗ୍ରାହୀ—ବି. ଆହିତୁଣ୍ଡିକ, ସାପୁଆ-

ବ୍ୟାଳଦଂଷ୍ଟ୍ର—ବି. ଗୋଖୁରା ।

ବ୍ୟାଳନଖ—ବି.ଗୋଖୁରା ନାମକ କଣ୍ଟକୀଫଳ, ନଖୀ ନାମକ ଗନ୍ଧଦ୍ରବ୍ୟ ।

ବ୍ୟାଳମୃଗ—ବି. ଚିତାବାଘ ।

ବ୍ୟାଳ(ଲ)ସ୍କନ୍ଧ—ବି. ରକ୍ତ ଏରଣ୍ଡ ।

ବ୍ୟାଲୋଲ—ବିଂ.ବ୍ୟାକୁଳ, ଅସ୍ଥିର, ଅତି ଚଞ୍ଚଳ, (ସ୍ତ୍ରୀ) ବ୍ୟାଲୋଲା ।

ବ୍ୟାବକ୍ରୋଶୀ—ସ୍ତ୍ରୀ. ବି. ( ବି+ଅବ+କ୍ରୁଶ୍+ଭା.ଅ+ଈ)ପରସ୍ପର ଆକ୍ରୋଶ, ପରସ୍ପର କ୍ରୋଧ ପ୍ରକାଶକରଣ ।

ବ୍ୟାବର୍ତ୍ତ—ବି. ନାଭିକଣ୍ଟକ, ନାଭିଚକ୍ର, ଗାଣ୍ଡୁ ।

ବ୍ୟାବର୍ତ୍ତନ—ବି.(ବି+ଆ+ବୃତ୍+ଭା.ଅନ) କେନ୍ଦ୍ରର ଚାରିପାଖେ ପରିଭ୍ରମଣ, ଘୂରିବା, ପର୍ଯ୍ୟସ୍ତ ହେବା, ଫେରିବା, ( ବୃତ୍+ଣିଚ୍+ଭା.ଅନ ) ପର୍ଯ୍ୟସ୍ତୀକରଣ ।

ବ୍ୟାବର୍ତ୍ତିତ—ବିଂ. ( ବି+ଆ+ବୃତ୍+ଣିଚ୍+ର୍ମ.ତ) ପର୍ଯ୍ୟସ୍ତୀକୃତ ।

ବ୍ୟାବହାରିକ—ବିଂ. (ବ୍ୟବହାର + ଇକ) ବ୍ୟବହାରସମ୍ବନ୍ଧୀୟ ବା ବିଷୟୁକ୍ତ, ଧର୍ମାଧିକରଣସମ୍ବନ୍ଧୀୟ, (ବି) ମନ୍ତ୍ରୀ, ବିଚାରପତି ।

ବ୍ୟାବହାରୀ—ସ୍ତ୍ରୀ. ବି. (ବି + ଆ+ହୃ + ଭା.ଅ + ଈ ) ପରସ୍ପର ବ୍ୟବହାର, ପରସ୍ପରହରଣ ।

ବ୍ୟାବହାସୀ—ସ୍ତ୍ରୀ.ବି. (ବି+ଅବ+ହସ୍+ଭା.ଅ+ଈ) ପରସ୍ପର ହାସ୍ୟକରଣ, ପରସ୍ପର ବିଦ୍ରୂପଣ ।

ବ୍ୟାବୃତ—ବିଂ. (ବି+ଆ+ବୃ+କ.ତ) ଯେ ଘେରିଅଛି, ନିବୃତ୍ତ, ଖଣ୍ଡିତ, ନିଷିଦ୍ଧ, (ର୍ମ.ତ)ନିବାରିତ, ଆଚ୍ଛାଦିତ, ସ୍ତୁତ, ନିରାକୃତ ।

ବ୍ୟାବୃତ୍ତି—ବି.(ବି + ଆ + ବୃତ୍ + ଭା.ତି), ବିଭଜନ, ପୃଥକ୍‌କରଣ,ମନୋନୟନ, ବେଷ୍ଟନ, ସ୍ତୁତି, ନିରାକରଣ, ନିବୃତ୍ତି, ବାଧା, ନିଷେଧ, ବିପର୍ଯ୍ୟାସ ।

ବ୍ୟାସ—ବି. (ବି+ଆ+ଅସ୍+ଣ.ଅ) ବୃତ୍ତର ବା ଗୋଲକର ମଧ୍ୟରେଖା, ଯେଉଁ ସରଳ ରେଖା ବୃତ୍ତର କେନ୍ଦ୍ର ମଧ୍ୟ ଦେଇ ଦୁଇ ବିପରୀତ ଦିଗରେ ପରିଧିକୁ ସ୍ପର୍ଶ କରିଥାଏ, ବିସ୍ତାର, ପରିମାଣବିଶେଷ, ସମାସ ବାକ୍ୟ.(କ.ଅ) ପୁରାଣ ପାଠକ, ବେଦ ବିଭାଗକାରୀ ଓ ଭାରତାଦି ପୁରାଣ ରଚୟିତା ମୁନିବିଶେଷ, (ଭା.ଅ) ବିଭାଗ ।

ବ୍ୟାସକୂଟ —ବି.ବ୍ୟାସଦେବଙ୍କ ରଚନାର ଦୁର୍ବୋଧ ଅଂଶ ।

ବ୍ୟାସକ୍ତ—ବିଂ. ( ବି + ଆ + ସଞ୍ଜ୍ + କ.ତ) ସଂଲଗ୍ନ, ଅଭିଭୂତ, ଅତ୍ୟାସକ୍ତ,

ଉଦ୍ଭ୍ରାନ୍ତ (ସ୍ତ୍ରୀ) ବ୍ୟାସକ୍ତା ।

ବ୍ୟାସଙ୍ଗ—ପୁଂ. ବ. (ବି + ଆ + ସନ୍ଜ + ଘ.ଅ) ଅତ୍ୟାସକ୍ତି, ଅତିଶୟ ଅନୁରାଗ, ବିଶେଷ ମନୋଯୋଗ ।

ବ୍ୟାସଦେବ—ପୁଂ. ବ. ବ୍ୟାସମୁନି ।

ବ୍ୟାସପୀଠ—ବ. ପୁରାଣପାଠକଙ୍କର ବସିବାର ଆସନ ଓ ପୁରାଣ ରଖିବାର ଉଚ୍ଚାସନ ।

ବ୍ୟାସସରୋବର—ବ. ହିନ୍ଦୁମାନଙ୍କର ତୀର୍ଥବିଶେଷ ।

ବ୍ୟାସାର୍ଦ୍ଧ—ବ. (ଗଣିତ) ବ୍ୟାସର ଅର୍ଦ୍ଧାଂଶ, କେନ୍ଦ୍ରଠାରୁ ପରିଧି ପର୍ଯ୍ୟନ୍ତ ସରଳରେଖା ।

ବ୍ୟାସାସନ—ବ. ବ୍ୟାସପୀଠ ଦେଖ ।

ବ୍ୟାସିଦ୍ଧ—ବିଂ. (ବି + ଆ + ସିଧ୍ + ମି. ତ) ନିଷିଦ୍ଧ, ନିବାରିତ, ଅବରୁଦ୍ଧ ।

ବ୍ୟାସୀୟ—ବିଂ. (ବ୍ୟାସ + ଈୟ) ବ୍ୟାସସମ୍ବନ୍ଧୀୟ ।

ବ୍ୟାହତ—ବିଂ. (ବି + ଆହତ) ନିଷିଦ୍ଧ, ବିଫଳୀକୃତ, ଖିନ୍ନ, ଦୂରୀକୃତ, ହତାଶ, ବାଧାପ୍ରାପ୍ତ ।

ବ୍ୟାହତତ୍ତ୍ୱ—ବ. ଅଳଂକାର ଶାସ୍ତ୍ରୋକ୍ତ ଅର୍ଥଦୋଷବିଶେଷ ।

ବ୍ୟାହନ୍ୟମାନ—ବିଂ. (ବି + ଆ + ହନ୍ + ମି. ଆନ) ପ୍ରତିଷିଧ୍ୟମାନ, (ସ୍ତ୍ରୀ) ମାନା ।

ବ୍ୟାହାର—ବ. (ବି + ଆ + ହୃ + ଘ.ଅ) କଥନ, ଉକ୍ତି, ସ୍ପଷ୍ଟଧ୍ୱନି ।

ବ୍ୟାହୃତ—ବିଂ. (ବି + ଆ + ହୃ + ମି. ତ) କଥିତ, ଉଚ୍ଚାରିତ ।

ବ୍ୟାହୃତି—ବ. (ବି + ଆ + ହୃ + ଭା.ତି) ଉକ୍ତି, କଥନ, (ମି.ତି) ଭୂଃ, ଭୁବଃ, ସ୍ୱଃ ଗାୟତ୍ରୀ ମନ୍ତ୍ରର ଏହି ଅଙ୍ଗ ।

ବ୍ୟୁଚ୍ଛିତ୍ତି—ବ. (ବି + ଉତ୍ + ଛିଦ୍ + ଭା. ତି) ବିନାଶ, ଉଚ୍ଛେଦ ।

ବ୍ୟୁଚ୍ଛେତ୍ତୃ—ପୁଂ. ବିଂ (ବି + ଉତ୍ + ଛିଦ୍ + କ.ତୃ) ବିନାଶକ, (ସ୍ତ୍ରୀ) ବ୍ୟୁଚ୍ଛେତ୍ତ୍ରୀ ।

ବ୍ୟୁତ୍କ୍ରମ—ବ. (ବି + ଉତ୍କ୍ରମ) ବ୍ୟତିକ୍ରମ, ଅନିୟମ, ଗୋଳମାଳ ।

ବ୍ୟୁତ୍କ୍ରାନ୍ତା—ସ୍ତ୍ରୀ. ବ. (ବି + ଉତ୍କ୍ରାନ୍ତ + ଆ) ପ୍ରହେଳିକା ।

ବ୍ୟୁତ୍ଥାନ—ବ. (ବି + ଉତ୍ଥାନ) ସ୍ୱାଧୀନ ହୋଇ କାମ କରିବା, ବିରୁଦ୍ଧାଚରଣ, ବାଧାଦେବା, ନୃତ୍ୟବିଶେଷ, ଚିତ୍ତର କ୍ଷିପ୍ତ ଅବସ୍ଥା, ଉଦୟ, ସମାଧି ଭଙ୍ଗର କାଳ ।

ବ୍ୟୁତ୍ପତ୍ତି—ବ. (ବି + ଉତ୍ + ପଦ୍ + ଭା.ତି) ଶାସ୍ତ୍ର ସମ୍ବନ୍ଧେ ଉତ୍ତମ ଜ୍ଞାନ ବା ବୋଧ, ବିଶିଷ୍ଟ ଜ୍ଞାନ, ଦକ୍ଷତା, ଶବ୍ଦର ପ୍ରକୃତି ପ୍ରତ୍ୟୟାଦିର ବିଭଜନ କୌଶଳ, ଶବ୍ଦର ମୂଳ ରୂପ, ଶବ୍ଦର ଗଠନ, ଉତ୍ପତ୍ତି, ଜନ୍ମ ।

ବ୍ୟୁତ୍ପତ୍ତିକରିବା—କ୍ରି.ବି. ବିଶ୍ଳେଷଣ କରିବା ।

ବ୍ୟୁତ୍ପନ୍ନ—ପୁଂ. ବିଂ. (ବି + ଉତ୍ + ପଦ୍ + କ.ତ) ଶାସ୍ତ୍ରଜ୍ଞାନସମ୍ପନ୍ନ, ପାରଙ୍ଗମ, ପଣ୍ଡିତ, ପ୍ରକୃତିପ୍ରତ୍ୟୟ ସାହାଯ୍ୟରେ ଉତ୍ପନ୍ନ (ଶବ୍ଦ), ବ୍ୟୁତ୍ପତ୍ତିଯୁକ୍ତ, ସଂସ୍କୃତ, (ସ୍ତ୍ରୀ) ବ୍ୟୁତ୍ପନ୍ନା ।

ବ୍ୟୁତ୍ପାଦକ—ପୁଂ. ବିଂ. ( ବି + ଉତ୍ + ପାଦି + କ.ଅକ) ବ୍ୟୁତ୍ପତ୍ତିଜନକ, ସଂସ୍କାରଜନକ, (ସ୍ତ୍ରୀ) ବ୍ୟୁତ୍ପାଦିକା ।

ବ୍ୟୁତ୍ପାଦିତ—ବିଂ. (ବି + ଉତ୍ + ପାଦି + ମି. ତ) ପ୍ରକୃତି ପ୍ରତ୍ୟୟାଦି ଦ୍ୱାରା ଉତ୍ପାଦିତ ।

ବ୍ୟୁତ୍ପାଦ୍ୟ—ବିଂ. ( ବି + ଉତ୍ + ପାଦି + ମି.ଯ) ବ୍ୟୁତ୍ପତ୍ତି ଲଭ୍ୟ ।

ବ୍ୟୁତ—ବିଂ. (ବେ + ମି.ତ) ସ୍ୟୂତ, ବୁଣା ହୋଇଥିବା । [ ସମୂହ ।

ବ୍ୟୁଦ—ସ୍ତ୍ରୀ, ବ. ତନ୍ତୁ ସନ୍ତତି, ସ୍ତୂପ-

ବ୍ୟୁଦସ୍ତ—ବିଂ. (ବି + ଉତ୍ + ଅସ୍ + ମି.ତ) ନିରାକୃତ, ନିରସ୍ତ, ମର୍ଦ୍ଦିତ, ଅବନତ ।

ବ୍ୟୁଦାସ—ବ. (ବି + ଉତ୍ + ଅସ୍ + ଘ. ଅ) ନିରାକରଣ, ଦୂରୀକରଣ, ଔଦାସ୍ୟ ।

ବ୍ୟୁଷ—ବ (ବି + ଉଷ୍ + କ.ଅ) ସୂର୍ଯ୍ୟୋଦୟ ସମୟ, ପ୍ରାତଃକାଳ ।

ବ୍ୟୁଷ୍ଟ—ବିଂ. (ବି + ବସ୍ + ମି.ତ) ବାସି, ପର୍ଯ୍ୟୁଷିତ, (ବି + ଉଷ୍ + ମି.ତ) ଦଗ୍ଧ, (କ.ତ) ପ୍ରଭାତ, ଦିନ, (ମି.ତ) ଫଳ ।

ବ୍ୟୁଷ୍ଟି—ବ. (ବି + ବସ୍ + ଅଧି.ତି) ଫଳ, ସମୃଦ୍ଧି ସ୍ତୁତି. (ବି + ଉଷ୍ + ଭା.ତି) ଦାହ, ଜ୍ୱଳନ, (କ.ତି) ପ୍ରଭାତ, (ବି + ବସ୍ + ଭା.ତି) ଇଚ୍ଛା ।

ବ୍ୟୂଢ଼—ବିଂ. (ବି + ବହ୍ + ମି. ତ) ବିପୁଳ, ପ୍ରଶସ୍ତ, ସ୍ଥୂଳ, ସଂହତ, ସ୍ଥାପିତ, ବିନ୍ୟସ୍ତ, ଦୃଢ଼, ଉତ୍ତମ, ବିବାହିତ, ପରିହିତ, ବୃତ, ବାଧିତ, ସୁସନ୍ନଦ୍ଧ, ଯେ ବ୍ୟୂହ ରଚନା କରି ଠିଆ ହୋଇଅଛି ।

ବ୍ୟୂଢ଼କଙ୍କଟ—ପୁଂ. ବିଂ. ବ.ବ୍ରୀ; ଉତ୍ତମ ରୂପେ ସାଞ୍ଜୁ ଦ୍ୱାରା ଆବୃତ ।

ବ୍ୟୂଢ଼ି—ବ. (ବି + ବହ୍ + ଭା.ତି) ବିନ୍ୟାସ, ସ୍ଥୂଳତା ।

ବ୍ୟୂଢ଼ୋରସ୍କ—ପୁଂ. ବିଂ. (ବ.ବ୍ରୀ) ଯାହାର ଛାତି ଚଉଡ଼ା ।

ବ୍ୟୂତ—ବିଂ. (ବି + ବେ + ମି.ତ) ସୂତା ଦ୍ୱାରା ବୁଣାଯାଇଥିବା, ସିଲେଇ କରାଯାଇଥିବା ।

ବ୍ୟୂତି—ବ (ବି + ବେ + ଭା.ତି) ଲୁଗାବୁଣା, ବୟନ, ସିଲେଇ, (ମି.ତି) ତାଗା ।

ବ୍ୟୂହ—ବ. (ବି + ଉହ୍ + ଘ.ଅ) ସୈନ୍ୟ ସମାବେଶ, ସୈନ୍ୟ ସଜ୍ଜା, (ମି.ଅ) ସଜ୍ଜିତ ସୈନ୍ୟଦଳ, ସମୂହ, (ଘ.ଅ) ନିର୍ମାଣ, ବିତାନ, ଗଠନ, (ମି.ଅ) ଦେହ, ଶରୀର, ତର୍କ, ପରିଣାମ, ଆପଦ ବା ଆକ୍ରମଣରୁ ରକ୍ଷା ପାଇବା ପାଇଁ ରଚିତ ଯୋଜନା ।

ବ୍ୟୂହପାର୍ଷ୍ଣି—ବ. (ଷଷ୍ଠୀ) ସୈନ୍ୟପୃଷ୍ଠ, ସୈନ୍ୟ ଦଳର ପଶ୍ଚାଦ୍ଭାଗ ।

ବ୍ୟୂହଭେଦ—ବ. (ଷଷ୍ଠୀ) ଶତ୍ରୁପକ୍ଷର ସୁସଜ୍ଜିତ ସୈନ୍ୟଦଳଙ୍କ ମଧ୍ୟରେ ପ୍ରବେଶ କରିବା ।

ବ୍ୟୂହରଚନ(ନା)—ବ. (ଷଷ୍ଠୀ) ସୈନ୍ୟମାନଙ୍କୁ ନିର୍ଦ୍ଦିଷ୍ଟ ପ୍ରଣାଳୀରେ ସଜ୍ଜିତ କରିବା ।

ବ୍ୟୂହିତ—ବିଂ. ( ବ୍ୟୂହ + ଇତ) ବ୍ୟୂହାକାରରେ ସଜ୍ଜିତ ସୈନ୍ୟ ।

ବ୍ୟୋମ—ବ. (ବ୍ୟେ + କ.ମନ୍) ଆକାଶ, ଶୂନ୍ୟ, ନଭୋମଣ୍ଡଳ, ଜଳ, ସୂର୍ଯ୍ୟୋପାସନାର୍ଥ ମନ୍ଦିର, ମେଘ, ସମାସ୍ୟୁଶୋକ୍ତ ରାକ୍ଷସବିଶେଷ, ବ୍ୟୋମାସୁର, ଭଗବ-

ତୋକ୍ତ ଜ୍ୱରସ୍ୱବିଶେଷ ।

ବ୍ୟୋମକେଶ(ଶୀ)—ବି.(ବ୍ୟୋମ+କେଶ +ଇନ୍) ମହାଦେବ,(ଗ୍ରା.ବି) ପର୍ବତ ।

ବ୍ୟୋମଗଙ୍ଗା—ବି. (୬ତତ୍ପୁ) ଆକାଶ ଗଙ୍ଗା, ମନ୍ଦାକିନୀ ।

ବ୍ୟୋମଗମନୀ—ବି. ଯେଉଁ ବିଦ୍ୟା ସାହାଯ୍ୟରେ ମନୁଷ୍ୟ ଆକାଶରେ ଉଡ଼ିବାକୁ ସମର୍ଥ ହୁଏ, ବିଦ୍ୟାବିଶେଷ ।

ବ୍ୟୋମଚର—ପୁଂ.ବିଂ. (ବ୍ୟୋମ+ଚର୍ କ.ଅ) ଗଗନବିହାରୀ, (ବି) ଦେବତା, ଗ୍ରହନକ୍ଷତ୍ରାଦି, ପକ୍ଷୀ ।

ବ୍ୟୋମଚାରୀ—ପୁଂ.ବି. ବିଂ. (ବ୍ୟୋମ+ଚର୍+କ.ଇନ୍) ବ୍ୟୋମଚର ଦେଖ, (ସ୍ତ୍ରୀ) ବ୍ୟୋମଚାରିଣୀ ।

ବ୍ୟୋମଦୋଳା—ଗ୍ରା.ବି. ଶୂନ୍ୟରେ ଝୁଲୁଥିବା ଦୋଳି ।

ବ୍ୟୋମଧୂମ—ବି. (କ.ଧା) ମେଘ ।

ବ୍ୟୋମନାସିକା—ଗ୍ରା. ବି. ବ୍ୟୋମଳାସିକା ଦେଖ ।

ବ୍ୟୋମପାଦ—ବି. (ବ.ବ୍ରୀ)ବିଷ୍ଣୁ ।

ବ୍ୟୋମମଞ୍ଜର—ବି. ଧ୍ୱଜ, ପତାକା ।

ବ୍ୟୋମମଣ୍ଡଳ—ବି. (ବ.ବ୍ରୀ) ପତାକା, (୬ତତ୍ପୁ) ଆକାଶମଣ୍ଡଳ ।

ବ୍ୟୋମମୁଦ୍ଗର—ବି. ବାୟୁର ନିର୍ଘାତ ବା ଶବ୍ଦ, ଘଡ଼ଘଡ଼ି ଶବ୍ଦ ।

ବ୍ୟୋମଯାନ—ବି. ଦେବଯାନ, ବିମାନ ।

ବ୍ୟୋମଲାସିକା— ବି. ଶୂନ୍ୟନର୍ତ୍ତକୀ, ଭରଦ୍ୱାଜପକ୍ଷୀ ।

ବ୍ୟୋମୋଦକ— ବି. (୬ତତ୍ପୁ)ବର୍ଷାଜଳ ।

ବ୍ୟୋମ୍ନିକ—ବିଂ. (ବ୍ୟୋମନ୍+ଇକ) ଆକାଶସମ୍ବନ୍ଧୀୟ ।

ବ୍ୟୋଷ—ବି. ଶୁଣ୍ଠି ପିପ୍ପଳି ଓ ମରିଚର ସମାହାର, ତ୍ରିକଟୁ ।

ବ୍ରଜ—ବି. (ବ୍ରଜ୍+ଭା.ଅ) ଗମନ,(ଅଧି. ଅ) ପଥ, ଗୋଷ୍ଠ, (କର୍ମ.ଅ) ସମୂହ, ପୌରାଣିକ ଶୂରସେନ ଦେଶର ଏକ ଅଂଶ, ଆଧୁନିକ ମଥୁରାର ଅନ୍ତର୍ଗତ ପ୍ରାଚୀନ ଗୋକୁଳ ଗ୍ରାମ, ବୃନ୍ଦାବନ, (ଗ୍ରା.ବି) ଗୋପାଳ, ଗଉଡ଼ ।

ବ୍ରଜକ—( ବ୍ରଜ୍+କ.ଅକ ) ତପସ୍ୱୀ, ସନ୍ନ୍ୟାସୀ, ପର୍ଯ୍ୟଟକ । [ ନାସ୍ତି ।

ବ୍ରଜକାମିନୀ—ସ୍ତ୍ରୀ.ବି. ଗୋପନାରୀ,ବ୍ରଜ-

ବ୍ରଜକିଶୋର—ପୁଂ.ବି.ଶ୍ରୀକୃଷ୍ଣଙ୍କର ନାମ

ବ୍ରଜକିଶୋରୀ—ସ୍ତ୍ରୀ.ବି. ରାଧିକାଙ୍କ ନାମ ।

ବ୍ରଜଗୋପୀ—ବି. (କ.ଧା) ବ୍ରଜବାସିନୀ ଗୋପରମଣୀ ।

ବ୍ରଜଦୁଲାଳ—ପୁଂ.ବି. (୬ତତ୍ପୁ) ଶ୍ରୀକୃଷ୍ଣ ।

ବ୍ରଜଧାମ—ବି. (ବ୍ରଜ୍+ଧାମନ୍)ବୃନ୍ଦାବନ ଧାମ ।

ବ୍ରଜଧୂଳି—ବି. ବୈଷ୍ଣବମାନଙ୍କର ଅତି ପ୍ରିୟ ଓ ପବିତ୍ର ବସ୍ତୁ, ବ୍ରଜ ମଣ୍ଡଳର ଧୂଳି । [ ପର୍ଯ୍ୟଟନ ।

ବ୍ରଜନ—ବି. ( ବ୍ରଜ୍+ଭା.ଅନ ) ଭ୍ରମଣ,

ବ୍ରଜନଗର—ଗ୍ରା.ବି. ବୃନ୍ଦାବନ ଧାମ ।

ବ୍ରଜନାଥ—ପୁଂ.ବି. (୬ତତ୍ପୁ)ଶ୍ରୀକୃଷ୍ଣ ।

ବ୍ରଜନାଥବଡ଼ଜେନା—ଗ୍ରା. ବି. ଅଷ୍ଟାଦଶ ଶତାବ୍ଦୀର ପରାର୍ଦ୍ଧରେ ଜନ୍ମିଥିବା ଢେଙ୍କାନାଳବାସୀ ଜନୈକ କବି ।

ବ୍ରଜବଲ୍ଲଭ—ପୁଂ.ବି. (୬ତତ୍ପୁ) ଶ୍ରୀକୃଷ୍ଣ ।

ବ୍ରଜବାଳକ—ବି.ଶ୍ରୀକୃଷ୍ଣଙ୍କ ସହଚର ବ୍ରଜନଗରର ଶିଶୁ । [ ଙ୍ଗନା ।

ବ୍ରଜବାଳା—ବି. ଗୋପକନ୍ୟା, ଗୋପା-

ବ୍ରଜବିହାରୀ—ପୁଂ.ବି. ଶ୍ରୀକୃଷ୍ଣ ।

ବ୍ରଜବୋଲି—ବି. (୬ତତ୍ପୁ) ବ୍ରଜ ଧାମରେ ଓ ତାହାର ଚତୁଃପାର୍ଶ୍ୱସ୍ଥ ପ୍ରଦେଶରେ ପ୍ରଚଳିତ ଭାଷା, ମୈଥିଳୀ ଓ ବଙ୍ଗୀୟ ଭାଷା ମିଶ୍ରଣରେ ଉତ୍ପନ୍ନ ଏକପ୍ରକାର ପ୍ରାଚ୍ୟଭାଷା ।

ବ୍ରଜଭାଷା—ବି. ବ୍ରଜବୋଲି ଦେଖ ।

ବ୍ରଜମଣ୍ଡଳ—ଗ୍ରା.ବି. ମଥୁରାମଣ୍ଡଳ ।

ବ୍ରଜମଲ୍ଲୀ— ଗ୍ରା.ବି.ଏକପ୍ରକାର ପୁଷ୍ପଗୁଳ୍ମ ।

ବ୍ରଜମୋହନ—ପୁଂ.ବି.(୬ତତ୍ପୁ)ଶ୍ରୀକୃଷ୍ଣ ।

ବ୍ରଜରାଜ—ବି.(୬ତତ୍ପୁ) ବ୍ରଜରାଜ, ନନ୍ଦ, ଶ୍ରୀକୃଷ୍ଣ ।

ବ୍ରଜଲାଲ—ପୁଂ ବି. ଶ୍ରୀକୃଷ୍ଣ ।

ବ୍ରଜଲୀଳା—ବି. ( ୬ତତ୍ପୁ ) ଶ୍ରୀକୃଷ୍ଣଙ୍କର ଗୋକୁଳରେ କୃତ କାର୍ଯ୍ୟସମୂହ,ଗୋପଲୀଳା ।

ବ୍ରଜାଙ୍ଗନା—ସ୍ତ୍ରୀ.ବି. (୬ତତ୍ପୁ)ବ୍ରଜବାସିନୀ ରମଣୀ ।

ବ୍ରଜିବା—ଗ୍ରା.(ପଦ୍ୟ)କ୍ରି. ଗମନକରିବା ।

ବ୍ରଜେ—ଗ୍ରା.କ୍ରି. ବିଂ. କ୍ଷଣମାତ୍ର, ଅଳ୍ପ ସମୟ, ଲବେ ।

ବ୍ରଜେନ୍ଦ୍ର—ପୁଂ. ବି. ( ୬ତତ୍ପୁ ) ଶ୍ରୀକୃଷ୍ଣ, ନନ୍ଦରାଜା ।

ବ୍ରଜେଶ୍ୱର—ପୁଂ.ବି. (୬ତତ୍ପୁ) ଶ୍ରୀକୃଷ୍ଣ ।

ବ୍ରଜେଶ୍ୱରୀ—ସ୍ତ୍ରୀ.ବି. (୬ତତ୍ପୁ) ଶ୍ରୀରାଧା ।

ବ୍ରଜ୍ୟା—ବି. (ବ୍ରଜ୍+ଭା.ଯ+ଆ)ପର୍ଯ୍ୟଟନ, ଦେଶଭ୍ରମଣ, ଯାତ୍ରା, ଗମନ, ଶ୍ରେଣୀ, ବର୍ଗ, ବର୍ଗସଂଖ୍ୟା, ଢଙ୍ଗ, ତାମସା, ଯୁଦ୍ଧଯାତ୍ରା, ଦେଶାକ୍ରମଣ, (ଅଧି.ଅ+ଆ) ରଙ୍ଗଭୂମି, ନାଟ୍ୟଶାଳା

ବ୍ରଣ—ବି. (ବ୍ରଣ୍+କ.ଅ) କ୍ଷତ,ଘା,ବଥ, ବିଦ୍ରଧି,ବାଗୀ, ବାଳସୁଆ ।

ବ୍ରଣଗ୍ରନ୍ଥି—ବି. (୬ତତ୍ପୁ) କ୍ଷତ, ଘା ।

ବ୍ରଣରହିତ—ବିଂ. ଅକ୍ଷତ, ବେଦନାରହିତ, ଯହିଁରେ କୌଣସି କ୍ଷତର ଦାଗ ନାହିଁ । [ ବଥ ।

ବ୍ରଣଶୋଥ—ବି. ବିଦ୍ରଧି, ବ୍ରଣସ୍ଫୋଟକ,

ବ୍ରଣିତ—ବିଂ. (ବ୍ରଣ୍+ଇତ) ବ୍ରଣଯୁକ୍ତ, କ୍ଷତ । [ (ସ୍ତ୍ରୀ) ବ୍ରଣିନୀ ।

ବ୍ରଣୀ—ପୁଂ.ବିଂ.(ବ୍ରଣ+ଇନ୍) ବ୍ରଣଯୁକ୍ତ,

ବ୍ରତ—ବି. (ବୃ+କର୍ମ.ଅତ)ନିୟମ,ସଂଯମ, ତପସ୍ୟା, ପୁଣ୍ୟଜନକ ଓ ପାପକ୍ଷୟକର କର୍ମ, ପ୍ରାୟଶ୍ଚିତ୍ତ, ଶୁଦ୍ଧାଚରଣାଦି କର୍ମ, କର୍ମ, ଶାସନ, ସଂକଳ୍ପ, ଭକ୍ଷଣ, (ଗ୍ରା.ବି) ଦ୍ୱିଜାତିର ଉପନୟନ, ପୁଣ୍ୟପର୍ବ, ଧର୍ମସମ୍ବନ୍ଧୀୟ ଉପବାସ, ବ୍ରତଧାରୀମାନେ ଯେଉଁ ସୂତ୍ର ଧାରଣ କରନ୍ତି ।

ବ୍ରତଉଦ୍ଯାପନ(ନା)—ବି.ସଂକଳ୍ପିତ ବ୍ରତକୁ ବିଧି ଅନୁସାରେ ପାଳନପୂର୍ବକ ତହିଁର ସମାପନ ରୂପ କର୍ମ ।

ବ୍ରତକରିବା—ଗ୍ରା.କ୍ରି. କୌଣସିକୋଠର ବ୍ରତ ପାଳନ କରିବା ନିମନ୍ତେ ସଂକଳ୍ପ କରିବା,ପୁଣ୍ୟକାର୍ଯ୍ୟ କରିବା, ସଂକଳ୍ପକୁ କାର୍ଯ୍ୟରେ ପରିଣତ କରିବା, ଦ୍ୱିଜାତିର

ଉପନୟନ ସଂସ୍କାର କରିବା, ବାଳୁଙ୍ଗ ଧରିବା । [ ବଡ଼ୁଘର ।

ବ୍ରତଘର—ଗ୍ରା.ବି. ଉପନୟନ ଉତ୍ସବ,

ବ୍ରତଘ୍ନ—ବିଂ. (ବ୍ରତ+ହନ୍+କ.ଅ) ଯାହା ବ୍ରତାଚରଣରେ ବାଧା ଘଟାଏ, (ସ୍ତ୍ରୀ) ବ୍ରତଘ୍ନୀ ।

ବ୍ରତତ(ତି)—ବି. ( ବୃତ୍+କ.ଅତ.ଇ ) ବଲ୍ଲୀ, ଲତା, (ଭା.ଅତ) ବିସ୍ତାର ବିସ୍ତୃତ

ବ୍ରତତିଥି—ଗ୍ରା.ବି. ଜ୍ୟୋତିଷ ଗଣନାଦ୍ୱାରା ଉପନୟନର ନିର୍ଦ୍ଦିଷ୍ଟ ଶୁଭ ଦିବସ

ବ୍ରତଦାସ—ବି. ଇଷ୍ଟ ଦେବତାଙ୍କ ନିକଟରେ ବ୍ରତବିଧିକୁ ପାଳନ କରିବା ନିମନ୍ତେ ସଂକଳ୍ପ କରିଥିବା ବ୍ୟକ୍ତି ।

ବ୍ରତଧରିବା—ଗ୍ରା.କ୍ରି. ବ୍ରତ ଗ୍ରହଣ କରିବ

ବ୍ରତଧାରଣ—ବି. ( ୬ତତ୍ ) କୌଣସି ବ୍ରତକୁ ଅବଲମ୍ବନ କରିବା ।

ବ୍ରତଧାରୀ—ପୁଂ. ବିଂ. (ବ୍ରତ+ଧୃ+କ. ଇନ୍) ବ୍ରତୀ, ନିୟମସ୍ଥ, ନିୟମ ପାଳନକାରୀ, ଗୃହୀତବ୍ରତ, (ସ୍ତ୍ରୀ) ଧାରିଣୀ ।

ବ୍ରତନାଶ—ବି. (୬ତତ୍) ବ୍ରତ ପାଳନର ଧାରାବାହିକତାର ବିନାଶ ।

ବ୍ରତନାଶନ—ବି. ପରର ଅନୁଷ୍ଠିତ ବ୍ରତ ସାଧନାରେ ବାଧା ଦେବା,(ବିଂ)ବ୍ରତଘ୍ନ ଦେଖ ।

ବ୍ରତନିୟମ—ବି. ( ୬ତତ୍ ) କୌଣସି ବ୍ରତାନୁଷ୍ଠାନପାଇଁ ନିର୍ଦ୍ଦିଷ୍ଟ ଥିବା ବିଧାନ ।

ବ୍ରତପାରଣା—ବି. ବ୍ରତର ବା ବ୍ରତାର୍ଥ ଉପବାସର ଶେଷରେ ଭୋଜନ ।

ବ୍ରତପାଳନ—ବି. ( ୬ତତ୍ ) ସଙ୍କଳ୍ପିତ ବ୍ରତକୁ କାର୍ଯ୍ୟରେ ପରିଣତ କରିବା ।

ବ୍ରତପାଳିବା—ଗ୍ରା.କ୍ରି. ସଙ୍କଳ୍ପିତ ବ୍ରତକୁ ବିଧି ଅନୁସାରେ କରିବା ।

ବ୍ରତପ୍ରତିଷ୍ଠା—ବି.(୬ତତ୍) ବ୍ରତାନୁଷ୍ଠାନ କର୍ମକୁ ନିୟମାନୁସାରେ ଶେଷକରିବା ।

ବ୍ରତବିଘ୍ନ—ବି. ପୁଣ୍ୟଜନକ କାର୍ଯ୍ୟ ସମ୍ପାଦନ ବା ବ୍ରତପାଳନ ସମ୍ବନ୍ଧେ ଅନୁଷ୍ଠେୟ, ବ୍ରତ ସମ୍ପୂର୍ଣ୍ଣ ନ ହେଉଣୁ ମଧ୍ୟରେ ଘଟିବା ବାଧା ।

ବ୍ରତବିବାହ—ବି.ଉପନୟନ ଓ ବିବାହ ।

ବ୍ରତବେଦୀ—ବି. ଯେଉଁ ବେଦୀ ଉପରେ ଉପନୟନ କର୍ମ ସମାହିତ ହୁଏ ।

ବ୍ରତଭଙ୍ଗ—ବି. (୬ତତ୍) ବ୍ରତ ସମାଧାନ କରିବାରେ ବାଧା ।

ବ୍ରତଭଞ୍ଜନ—ବି. ( ୬ତତ୍ ) ଅନ୍ୟର ଆଚରିତ ବ୍ରତରେ ବାଧାଦେବା ।

ବ୍ରତଭିକ୍ଷା—ଗ୍ରା.ବି. ଉପନୟନକାଳୀନ ଭିକ୍ଷା ।

ବ୍ରତରକ୍ଷା—ବି. (୬ତତ୍) ବ୍ରତ ସମ୍ବନ୍ଧେ ପ୍ରତିଜ୍ଞା ପାଳନ ।

ବ୍ରତସଙ୍କଳ୍ପ—ବି. ( ୬ତତ୍ ) କୌଣସି ବ୍ରତ କରିବାପାଇଁ ମନରେ ସଂକଳ୍ପ ।

ବ୍ରତସଂପୂର୍ଣ୍ଣ—ଗ୍ରା.ବି. ନିର୍ଦ୍ଦିଷ୍ଟ କାଳ ଓ ନିୟମାନୁସାରେ ଅନୁଷ୍ଠିତ ବ୍ରତର ପୂର୍ଣ୍ଣତା ବିଧାନ ।

ବ୍ରତାଗ୍ରହୀ—ପୁଂ.ବି ଓ ବିଂ. ବ୍ରତୀ, ବ୍ରତପାଳନକାରୀ, (ସ୍ତ୍ରୀ) ଗ୍ରହଣୀ ।

ବ୍ରତାଦେଶ—ବି. ଉପନୟନ ସଂସ୍କାର ।

ବ୍ରତାନୁଷ୍ଠାନ—ବି. (୬ତତ୍) ବ୍ରତ ପାଳନ ରୂପ କାର୍ଯ୍ୟ, ବ୍ରତପାଳନ ।

ବ୍ରତାନ୍ତଭୋଜନ—ବି.ବ୍ରତୀ ବା ଉପବାସୀ ବ୍ୟକ୍ତିର ବ୍ରତ ସମାପନାନ୍ତେ ପ୍ରଥମ ଭୋଜନ, ପାରଣା ।

ବ୍ରତାମୃତ—ବି. ଚମ୍ପା କଦଳୀ,କଦଳୀ ।

ବ୍ରତୀ—ପୁଂ.ବିଂ. (ବ୍ରତ+ଇନ୍)ନିୟମସ୍ଥ, ନିୟମ ପାଳନକାରୀ,ତପସ୍ୱୀ, ଯଜମାନ, ନିଯୁକ୍ତ, ରକ୍ତ, (ସ୍ତ୍ରୀ)ବ୍ରତିନୀ,(ବି) ବ୍ରହ୍ମଚାରୀ ।

ବ୍ରତୁଆ—ଗ୍ରା. ବିଂ. ଯାହାର ଉପନୟନ ସଂସ୍କାର ହୋଇଅଛି, ବ୍ରତୀ ଦେଖ ।

ବ୍ରଦଳି—ଗ୍ରା.ବି. ପ୍ରାଚୀନକାଳୀନ ଯୁଦ୍ଧାସ୍ତ୍ରବିଶେଷ ।

ବ୍ରଧ୍ନ—ବି. (ବନ୍ଧ+କ.ନ) ଶିବ, ସୂର୍ଯ୍ୟ ବୃକ୍ଷର ଚେର ଓ ମୂଳ,ବ୍ରହ୍ମା,ଅର୍କଗଛ, ଶଙ୍କର, ପୁନ, ରୋଗବିଶେଷ, ଦିନ, ଘୋଡ଼ା, ଚତୁର୍ଦ୍ଦଶ ମନୁ ଭୌତିଙ୍କ ପୁତ୍ର, ସୀସା, ଶରମୁନ ।

ବ୍ରଧ୍ନପାଦ—ବି. ଏକପ୍ରକାର ଜଳଚର ଜୀବ ।

ବ୍ରଧ୍ରୁ—ବି. ସୀସାଧାତୁ ।

ବ୍ରଶ୍ଚନ—ବି. ( ବ୍ରଶ୍ଚ୍+ଭା.ଅନ) କର୍ତ୍ତନ, ଛେଦନ, (ଣ.ଅନ) ସ୍ୱର୍ଣ୍ଣାଦି ଧାତୁ କାଟିବାର ଅସ୍ତ୍ର,ଛେଣୀ, ବୃକ୍ଷ ଛେଦନଜାତ ନିର୍ଯ୍ୟାସ, କରତ ଗୁଣ୍ଡ, (ବିଂ. କ.ଅନ) ଛେଦକ ।

ବ୍ରହ୍ମ—ବି. ( ବୃନ୍ହ+ଣ.ମନ୍ ) ବିରାଟ ପୁରୁଷ, ପରମେଶ୍ୱର, ବ୍ରହ୍ମା, ବିଧାତା, ବ୍ରାହ୍ମଣ, ପୁରୋହିତ, ଧର୍ମଶାସ୍ତ୍ରପ୍ରଣେତା ଋଷିବିଶେଷ,ଜ୍ୟୋତିଷୋକ୍ତ ୨୭ଯୋଗ ମଧ୍ୟରୁ ପଞ୍ଚବିଂଶତି ଯୋଗ, ବେଦ, ଓଁକାର,ପ୍ରଣବ,ବେଦମନ୍ତ୍ର, ବ୍ରହ୍ମତେଜଃ, ତତ୍ତ୍ୱସତ୍, ତତ୍ତ୍ୱ,ସତ୍, ଚିତ୍ ଓ ଆନନ୍ଦ, ଏକସଂଖ୍ୟା,ତପସ୍ୟା,ବ୍ରହ୍ମଚର୍ଯ୍ୟ,ଜୈନମାନଙ୍କର ପ୍ରଧାନ ସେବକବିଶେଷ, ( ଗ୍ରା.ବି ) ମନୁଷ୍ୟର ଆତ୍ମା ଓ ମନ, ପେଟ,କାୟସ୍ଥମାନଙ୍କର ଉପାଧିବିଶେଷ, ଭାରତ ପୂର୍ବବର୍ତ୍ତୀ ଦେଶବିଶେଷ, ବ୍ରହ୍ମରାକ୍ଷସ, ବୀର୍ଯ୍ୟ ।

ବ୍ରହ୍ମକନ୍ୟକା—ସ୍ତ୍ରୀ.ବି. (୬ତତ୍)ସରସ୍ୱତୀ, ବ୍ରାହ୍ମୀଶାକ,ସୋମଲତା,ବ୍ରାହ୍ମଣଘାଟିଆ ।

ବ୍ରହ୍ମକର୍ମ—ବି. (ବ୍ରହ୍ମନ୍+କର୍ମନ୍)ଯୋଗ ସାଧନ, ବେଦବିହିତ କର୍ମ, ବ୍ରାହ୍ମଣର କର୍ତ୍ତବ୍ୟ କର୍ମ ।

ବ୍ରହ୍ମକାଣ୍ଡ—ବି.ବେଦର ଯେଉଁ ଅଂଶରେ ବ୍ରହ୍ମର ମୀମାଂସା କରାଯାଇଅଛି, ଜ୍ଞାନକାଣ୍ଡ ।

ବ୍ରହ୍ମକୁଣ୍ଡ—ବି. ବ୍ରହ୍ମାଙ୍କ ଦ୍ୱାରା ଖୋଳିତ ସରୋବରବିଶେଷ ।

ବ୍ରହ୍ମକୁ(କୋ)ଶା—ବି. ଅଜମୋଦା, ବଣଜୁଆଣୀ ।

ବ୍ରହ୍ମକୂର୍ଚ୍ଚ—ବି. ବ୍ରତବିଶେଷ, ଏକ ଦିବାରାତ୍ର ଉପବାସ ହୋଇ ତତ୍ପରେ ପଞ୍ଚଗବ୍ୟ ପାନରୂପ ପ୍ରାୟଶ୍ଚିତ୍ତ ।

ବ୍ରହ୍ମଗଣ୍ଠି—ଗ୍ରା. ବି. ବ୍ରହ୍ମଗ୍ରନ୍ଥି ଦେଖ ।

ବ୍ରହ୍ମଗିରି—ବି. ପର୍ବତବିଶେଷ, (ଗ୍ରା.ବି) ପୁରୀଜିଲ୍ଲାର ଥାନାବିଶେଷ ।

ବ୍ରହ୍ମଗୁପ୍ତ—ବି. ପ୍ରାଚୀନ ଜ୍ୟୋତିର୍ବିଦ୍ ପଣ୍ଡିତବିଶେଷ ।

ବ୍ରହ୍ମଗ୍ରନ୍ଥି—ବି. ଯଜ୍ଞୋପବୀତର ଗ୍ରନ୍ଥି ।
ବ୍ରହ୍ମଗୋଳ—ବି. (୬ତତ୍) ବ୍ରହ୍ମାଣ୍ଡ ।
ବ୍ରହ୍ମଗ୍ରହ—ବି. ବ୍ରହ୍ମରାକ୍ଷସ ।
ବ୍ରହ୍ମଘାତକ—ବି ଓ ବିଂ. ପୁଂ. ଯେ ବ୍ରାହ୍ମଣକୁ ବଧ କରେ ।
ବ୍ରହ୍ମଘାତୀ—ପୁଂ.ବିଂ.ବ୍ରାହ୍ମଣହତ୍ୟାକାରୀ, ବ୍ରାହ୍ମଣର ପ୍ରାଣନାଶକ, (ସ୍ତ୍ରୀ) ବ୍ରହ୍ମଘାତିନୀ ।
ବ୍ରହ୍ମଘୋଷ—ବି. (୬ତତ୍) ବେଦପାଠ ଓ ବେଦଧ୍ୱନି ।
ବ୍ରହ୍ମଘ୍ନ—ବିଂ. (ବ୍ରହ୍ମନ୍+ହନ୍+କ.ଅ) ବ୍ରହ୍ମହତ୍ୟାକାରୀ, (ସ୍ତ୍ରୀ) ବ୍ରହ୍ମଘ୍ନୀ ।
ବ୍ରହ୍ମଘ୍ନୀ—ସ୍ତ୍ରୀ. ବି. ଗୃହକନ୍ୟା, ଘୃତକୁମାରୀ ।
ବ୍ରହ୍ମଚର୍ଯ୍ୟ—ବି. (ବ୍ରହ୍ମନ୍+ଚର୍+ଭା.ଯ) ବ୍ରହ୍ମଚାରୀର ଧର୍ମ ବା କରଣୀୟ ବ୍ରତ, ସ୍ତ୍ରୀର ବା ପୁରୁଷର ସ୍ମରଣ,ଦର୍ଶନ,ସ୍ପର୍ଶ, ବିଶ୍ରମ୍ଭାଳାପ ମୈଥୁନ ଆଦି ଶାସ୍ତ୍ରୋକ୍ତ ଅଷ୍ଟବିଧ ମୈଥୁନର ବିରତିରୂପ ବ୍ରତ ।
ବ୍ରହ୍ମଚର୍ଯ୍ୟାଶ୍ରମ—ବି.ଦ୍ୱିଜାତିର ଉପନୟନ ଠାରୁ ବିବାହ ପର୍ଯ୍ୟନ୍ତ ଅବଲମ୍ବନୀୟ ଗୁରୁ ଗୃହରେ ବାସ ଓ ବେଦାଧ୍ୟୟନ ରୂପ ଆଶ୍ରମ, (ବୀର୍ଯ୍ୟରକ୍ଷାରୂପବ୍ରତ)
ବ୍ରହ୍ମଚାରୀପୁଡ଼ା—ଗ୍ରା. ବି. ନିର୍ଘାତ ଶୃପୁଡ଼ା ।
ବ୍ରହ୍ମଚାରିଣୀ—ସ୍ତ୍ରୀ. ବି. ବ୍ରାହ୍ମଣଖାଇଆ, ଗୌରୀ, ଦୁର୍ଗା, ବ୍ରାହ୍ମୀଶାକ, ବରୁଣବୃକ୍ଷ, ବ୍ରହ୍ମଚର୍ଯ୍ୟବ୍ରତଧାରିଣୀ ସ୍ତ୍ରୀ, ସରସ୍ୱତୀ ।
ବ୍ରହ୍ମଚାରୀ—ପୁଂ. ବି. (ବ୍ରହ୍ମନ୍+ଚର୍+କ.ଇନ୍) ପ୍ରଥମାଶ୍ରମୀ, ଉପନୟନପରେ ଗୁରୁଗୃହେ ବାସପୂର୍ବକ ବେଦାଧ୍ୟୟନ କାରୀ (ଦ୍ୱିଜ),ଆଜୀବନ ସନ୍ନ୍ୟାସବ୍ରତାବଲମ୍ବୀ ସନ୍ନ୍ୟାସୀ, (ସ୍ତ୍ରୀ)ବ୍ରହ୍ମଚାରିଣୀ।
ବ୍ରହ୍ମଚେତା—ଗ୍ରା. ବିଂ. ଭଗବାନଙ୍କଠାରେ ଯେ ଚିତ୍ତ ନିବିଷ୍ଟ କରିଥାଏ ।
ବ୍ରହ୍ମଜଟ(ଟା)—ବି.ଦମନକ,ଦଅଣାଗୁଳ୍ମ
ବ୍ରହ୍ମଜାତସାର—ବି. ଉତ୍କୃଷ୍ଟ ସାର ।
ବ୍ରହ୍ମଜାର—ବି.ବ୍ରାହ୍ମଣୀର ଉପପତି,ଇନ୍ଦ୍ର
ବ୍ରହ୍ମଜୀବୀ—ବି.(ବ୍ରହ୍ମନ୍+ଜୀବ୍+କ.ଇନ୍) ବୈଦିକ କ୍ରିୟାକର୍ମ କରି ଯେ ପେଟ ପୋଷେ, ପୁରୋହିତ, ବେତନ ଗ୍ରହଣ ପୂର୍ବକ ବେଦାଧ୍ୟାପକ ଦ୍ୱିଜ,ହୀନବ୍ରାହ୍ମଣ
ବ୍ରହ୍ମଜ୍ଞ—ପୁଂ. ବିଂ. (ବ୍ରହ୍ମନ୍+ଜ୍ଞା+କ. ଅ) ପରମାତ୍ମତତ୍ତ୍ୱଜ୍ଞ,ବେଦଜ୍ଞ,ଅଦ୍ୱୈତବାଦୀ, (ବି) ଋଷି,ଯୋଗସାଧକ ବ୍ୟକ୍ତି, (ସ୍ତ୍ରୀ) ବ୍ରହ୍ମଜ୍ଞା ।
ବ୍ରହ୍ମଜ୍ଞାନ—ବି. ବ୍ରହ୍ମବିଷୟକ ଜ୍ଞାନ,ଆତ୍ମତତ୍ତ୍ୱବୋଧ, ଆଧ୍ୟାତ୍ମିକ ଜ୍ଞାନ, ପ୍ରକୃତି ପୁରୁଷ ବିବେକ ବିଷୟକ ଜ୍ଞାନ ।
ବ୍ରହ୍ମଜ୍ଞାନୀ—ପୁଂ. ବିଂ. ବ୍ରହ୍ମଜ୍ଞ ଦେଖ, (ଗ୍ରା.ବି) ବ୍ରାହ୍ମଧର୍ମାବଲମ୍ବୀ ।
ବ୍ରହ୍ମଠକ—ଗ୍ରା. ବି. ପ୍ରତାରକ ବ୍ରାହ୍ମଣ ।
ବ୍ରହ୍ମଡିମ୍ବ—ବି. ବ୍ରହ୍ମାଣ୍ଡ ।
ବ୍ରହ୍ମଣ୍ୟ—ବିଂ. (ବ୍ରହ୍ମନ୍+ଯ) ବ୍ରହ୍ମସମ୍ବନ୍ଧୀୟ, ବ୍ରାହ୍ମଣ ସମ୍ବନ୍ଧୀୟ, ବ୍ରାହ୍ମଣନିଷ୍ଠ, (ବି) ନାରାୟଣ,ବିଷ୍ଣୁ, ବ୍ରହ୍ମତେଜଃ,ଶନି ଗ୍ରହ, ବ୍ରହ୍ମଦାରୁ ଗଛ, ମୁଞ୍ଜତୃଣ,(ଭା.ଯ) ବ୍ରହ୍ମତ୍ୱ ।
ବ୍ରହ୍ମଣ୍ୟଦେବ—ପୁଂ. ବି. (କ.ଧା) ବିଷ୍ଣୁ ।
ବ୍ରହ୍ମତତ୍ତ୍ୱ—ବି. (୬ତତ୍) ବ୍ରହ୍ମଜ୍ଞାନଦେଖ
ବ୍ରହ୍ମତାଳ—ବି. ବାଦ୍ୟର ତାଳବିଶେଷ
ବ୍ରହ୍ମତାଳୁ—ବି. ମସ୍ତକର ରନ୍ଧ୍ର, କପାଳ ଉପରେ ଥିବା ଅତି କୋମଳ ସ୍ଥାନ ।
ବ୍ରହ୍ମତୀର୍ଥ—କ୍ଲୀ. ବି. (କ.ଧା) ପୁଷ୍କରତୀର୍ଥ, ଅଙ୍ଗୁଷ୍ଠର ମୂଳଦେଶ, ପୁଷ୍କରମୂଳ
ବ୍ରହ୍ମତେଜଃ—ବି.ପ୍ରକୃତ ବ୍ରାହ୍ମଣର ତେଜଃ. ବ୍ରହ୍ମଜ୍ଞାନଜନିତ ପ୍ରଭା, ବ୍ରହ୍ମଣ୍ୟ ।
ବ୍ରହ୍ମତ୍ୱ—କ୍ଲୀ. ବି. (ବ୍ରହ୍ମନ୍+ତ୍ୱ) ବ୍ରହ୍ମପଦ, ବ୍ରହ୍ମଭାବ, ବ୍ରହ୍ମସାଯୁଜ୍ୟ, ମୋକ୍ଷ, (ଗ୍ରା.ବି)ବ୍ରାହ୍ମଣର ବିଦ୍ୟା,ବ୍ରାହ୍ମଣପଣିଆ ।
ବ୍ରହ୍ମତ୍ର—ବି. ବ୍ରାହ୍ମଣଙ୍କୁ ପ୍ରଦତ୍ତ ନିଷ୍କର ଭୂମି ।
ବ୍ରହ୍ମଦ—ବି. (ବ୍ରହ୍ମ+ଦା+କ.ଅ) ବେଦଗୁରୁ, ଦୀକ୍ଷାଗୁରୁ ।
ବ୍ରହ୍ମଦଣ୍ଡ—ବି. (୬ତତ୍) ବ୍ରାହ୍ମଣଖାଇଆ ଗୁଳ୍ମ,ବ୍ରାହ୍ମଣଶାପ ଜନିତ ଦଣ୍ଡ,ବ୍ରାହ୍ମଣର ଯଷ୍ଟି ।
ବ୍ରହ୍ମଦଣ୍ଡି—ବି. ଏକପ୍ରକାର କ୍ଷୁଦ୍ର ଗୁଳ୍ମ, ଭୂଣ୍ଡିପୋଡ଼ା ।
ବ୍ରହ୍ମଦତ୍ତ—ପୁଂ. ବି. (୬ତତ୍) ଇକ୍ଷ୍ୱାକୁ ବଂଶୀୟ ନରପତି, ଚନ୍ଦ୍ରବଂଶୀୟ ରାଜାବିଶେଷ । [ଯୁଆଣି ।
ବ୍ରହ୍ମଦର୍ଭ—ସ୍ତ୍ରୀ. ବି. (କ.ଧା) ଯମାନିକା,
ବ୍ରହ୍ମଦାତା—ପୁଂ. ବି. ବେଦାଧ୍ୟାପକ ଗୁରୁ ।
ବ୍ରହ୍ମଦାନ—ବି. ବେଦାଧ୍ୟାପନ ।
ବ୍ରହ୍ମଦାରୁ—ବି.ଅଶ୍ୱତ୍ଥାକାର ବୃକ୍ଷବିଶେଷ
ବ୍ରହ୍ମଦିବସ—ବି. (୬ତତ୍) ବ୍ରହ୍ମାଙ୍କର ଗୋଟିଏ ଦିନ (ଯାହା ଦେବତାଙ୍କର ବି ୨୪୦୦୦ ବର୍ଷ ଓ ମନୁଷ୍ୟଙ୍କର ବି ୧୦୯୧୦୬୦୦୦୦୦ ବର୍ଷ, ଏହା ୧୦୦ ଚତୁର୍ଯୁଗୀ ସଙ୍ଗେ ସମାନ ।
ବ୍ରହ୍ମଦେଶ—ଗ୍ରା. ବି. ଭାରତ ସାଗରର ପୂର୍ବକୂଳସ୍ଥ ଦେଶବିଶେଷ ।
ବ୍ରହ୍ମଦୈତ୍ୟ—ବି. ପ୍ରେତଯୋନି ପ୍ରାପ୍ତ ଅବିବାହିତ ବ୍ରାହ୍ମଣ ।
ବ୍ରହ୍ମଦୋଷ—ବି. (କ.ଧା) ବ୍ରହ୍ମହତ୍ୟାରୂପ ଅପରାଧ ।
ବ୍ରହ୍ମଦୋଷୀ—ପୁଂ. ବିଂ ଓ ବି. ବ୍ରହ୍ମହତ୍ୟା ଅପରାଧୀ ।
ବ୍ରହ୍ମଦ୍ରବ—ବି. ଗଙ୍ଗାଜଳ ।
ବ୍ରହ୍ମଦ୍ରୁମ—ବି. ପଳାଶ ଗଛ ।
ବ୍ରହ୍ମଦ୍ରୋହୀ—ପୁଂ. ବିଂ. ବ୍ରାହ୍ମଣଠାରେ ବୈର ରଖିବା (ବ୍ୟକ୍ତି) ।
ବ୍ରହ୍ମଦ୍ୱାର—ବି. ବ୍ରହ୍ମରନ୍ଧ୍ର ଦେଖ ।
ବ୍ରହ୍ମନାଭ—ବି. (ବ.ବ୍ରୀ) ବିଷ୍ଣୁ ।
ବ୍ରହ୍ମନାଳ—ବି. ଚକ୍ରତୀର୍ଥର ପୂର୍ବଭାଗରେ ଥିବା କାଶୀସ୍ଥ ତୀର୍ଥବିଶେଷ ।
ବ୍ରହ୍ମନିରୂପଣ—ବି.(୬ତତ୍) ପରମାତ୍ମାସମ୍ବନ୍ଧୀୟ ତତ୍ତ୍ୱର ସ୍ଥିରୀକରଣ ।
ବ୍ରହ୍ମନିରୂପଣଗୀତା—ଗ୍ରା.ବି.ଭୀମାଭୋଇଙ୍କ କୃତ ଓଡ଼ିଆ ଗ୍ରନ୍ଥବିଶେଷ ।
ବ୍ରହ୍ମନିର୍ବାଣ—ବି. ପରମମୁକ୍ତି, ମୃତ୍ୟୁପରେ ଜୀବର ଆତ୍ମାର ପରମାତ୍ମାଙ୍କ ଠାରେ ଲୀନହେବା ।
ବ୍ରହ୍ମନିଷ୍ଠ—ପୁଂ. ବିଂ. ବ୍ରାହ୍ମଣଭକ୍ତ, ବ୍ରହ୍ମଜ୍ଞାନସମ୍ପନ୍ନ, (ବି) ପରସାକୋଳି ଗଛ ।

ବ୍ରହ୍ମନଖୀ—ଗ୍ରା. ବି. କଳଶ, ବ୍ରହ୍ମାଙ୍କର ଗୋଟିଏ ଗଣ୍ଠି ।

ବ୍ରହ୍ମପତ୍ର—ବି. ପଳାଶ ପତ୍ର ।

ବ୍ରହ୍ମପଦ—ବି. ବ୍ରାହ୍ମଣତ୍ୱ, ବ୍ରହ୍ମଜ୍ଞାନତ୍ୱ, ମୋକ୍ଷ. ମୁକ୍ତି ।

ବ୍ରହ୍ମପବିତ୍ର—ବି. (ତନ୍ତ୍ର) କୁଶ ।

ବ୍ରହ୍ମପାଦପ—ବି. (କ.ଧା) ପଳାଶ ବୃକ୍ଷ ।

ବ୍ରହ୍ମପିଶାଚ—ବି. (କ.ଧା) ବ୍ରହ୍ମରାକ୍ଷସ. ବ୍ରହ୍ମଦୈତ୍ୟ ।

ବ୍ରହ୍ମପୁତ୍ର—ବି. ବଙ୍ଗଦେଶର ପୂର୍ବାଞ୍ଚଳ କାମ୍ଯ ନଦବିଶେଷ,ତୀର୍ଥବିଶେଷ,ମଳୟା-ଚଳରେ ଜାତ କପିଳବର୍ଣ୍ଣ ସ୍ଥାବର ବିଷବିଶେଷ, ବଶିଷ୍ଠଋଷି, କପିଳମୁନି, ନାରଦମୁନି, ମନୁ, ମରୀଚ ଋଷି, ସନ-କାଦି ଋଷି ।

ବ୍ରହ୍ମପୁତ୍ରୀ—ବି. ସରସ୍ୱତୀ ନଦୀ,ବାରାହୀ-କନ୍ଦ, ସରସ୍ୱତୀ ଦେଖ ।

ବ୍ରହ୍ମପୁର—ବି. ବ୍ରହ୍ମଲୋକ ଦେଖ. ହୃଦୟ, (ଗ୍ରା.ବି) ଦେଉଳ; ଗଞ୍ଜାମ-ଜିଲ୍ଲାର ନଗରବିଶେଷ ।

ବ୍ରହ୍ମପୁରାଣ—ବି. ଅଷ୍ଟାଦଶ ପୁରାଣାନ୍ତ-ର୍ଗତ ପ୍ରଥମ ପୁରାଣ ।

ବ୍ରହ୍ମପୁରୀ—ବି.(ତନ୍ତ୍ର) ବ୍ରହ୍ମାଙ୍କ ଆବାସ, ବ୍ରହ୍ମଲୋକ ।

ବ୍ରହ୍ମପୁରୁଷ—ବି.ପରମାତ୍ମା, ପରମେଶ୍ୱର, (ଗ୍ରା.ବି) ଜୀବାତ୍ମା ।

ବ୍ରହ୍ମବାଦ୍ୟ—ବି. (ବ୍ରହ୍ମ+ବଦ୍+ଭା.ଯ) ବ୍ରହ୍ମଜ୍ଞାନ, ବ୍ରହ୍ମବାକ୍ୟ, ବ୍ରହ୍ମାଙ୍କ ମୁଖ-ନିର୍ଗତ ବାକ୍ୟ,ବୈଦାନ୍ତିକ ମତବିଶେଷ (ଈଶ୍ୱର ସର୍ବବ୍ୟାପୀ ଓ ସର୍ବଜ୍ଞ ବିରା-ଜିତ),(ବି°.ମି.ଯ) ବ୍ରହ୍ମୋକ୍ତ ।

ବ୍ରହ୍ମବାଦ୍ୟା—ସ୍ତ୍ରୀ. ବି. କଥା, ପ୍ରବଚନ ।

ବ୍ରହ୍ମବଧ—ବି. ବ୍ରାହ୍ମଣର ହତ୍ୟା ।

ବ୍ରହ୍ମବନ୍ଧୁ—ବି. ନିନ୍ଦିତ ବ୍ରାହ୍ମଣ, ହୀନ-ବ୍ରାହ୍ମଣ ।

ବ୍ରହ୍ମବର୍ଚ୍ଚଃ—ବି. ବ୍ରହ୍ମତେଜଃ ଦେଖ ।

ବ୍ରହ୍ମବର୍ଚ୍ଚସ୍ୱୀ—ପୁଂ. ବି°. ବ୍ରହ୍ମତେଜୋ-ବିଶିଷ୍ଟ ।

ବ୍ରହ୍ମବର୍ତ୍ତ—ବି. ବ୍ରହ୍ମାବର୍ତ୍ତ ଦେଖ ।

ବ୍ରହ୍ମବର୍ଦ୍ଧନ—ବି. ତାମ୍ର, ତମ୍ବା ।

ବ୍ରହ୍ମବାଦ—ପୁଂ.ବି.(ତନ୍ତ୍ର) ବେଦପାଠ, ବେଦ, ବେଦାନ୍ତ, ଦର୍ଶନ, ଅଦ୍ୱୈତ-ବାଦ ।

ବ୍ରହ୍ମବାଦିନୀ—ସ୍ତ୍ରୀ. ବି°. (ବ୍ରହ୍ମ+ବାଦିନ୍ +ଈ) ବେଦବକ୍ତ୍ରୀ, (ସ୍ତ୍ରୀ.ବି)ଗାୟତ୍ରୀ ।

ବ୍ରହ୍ମବାଦୀ—ପୁଂ.ବି. ବି°. (ବ୍ରହ୍ମ+ବଦ୍+ କ.ଇନ୍) ବେଦାନ୍ତବାଦୀ, ବେଦଜ୍ଞ, (ସ୍ତ୍ରୀ) ବାଦିନୀ ।

ବ୍ରହ୍ମବାଲୁକ—ବି. ହିନ୍ଦୁମାନଙ୍କର ତୀର୍ଥ-ବିଶେଷ ।

ବ୍ରହ୍ମବିଦ୍—ବି°. ( ବ୍ରହ୍ମନ୍+ବିଦ୍+କ. କ୍ୱିପ୍)ବ୍ରହ୍ମଜ୍ଞ ଦେଖ,(ବି)ବିଷ୍ଣୁ, ବ୍ରାହ୍ମଣ ।

ବ୍ରହ୍ମବିଦେଶ—ବି. କୁରୁକ୍ଷେତ୍ର, ପାଞ୍ଚାଳ, ମତ୍ସ୍ୟ ଓ ଶୂରସେନ ନାମକ ଦେଶ ଚତୁଷ୍ଟୟ ।

ବ୍ରହ୍ମବିଦ୍ୟା—ବି. ବ୍ରହ୍ମଜ୍ଞାନ ପ୍ରତିପାଦକ ଶାସ୍ତ୍ର, ବେଦାନ୍ତ,ଦର୍ଶନ ଶାସ୍ତ୍ର,ତତ୍ତ୍ୱଜ୍ଞାନ

ବ୍ରହ୍ମବିନ୍ଦୁ—ବି.ବେଦ ପାଠ କାଳେ ମୁଖ-ନିର୍ଗତ ନିଷ୍ଠୀବନ ବିନ୍ଦୁ, ବ୍ରହ୍ମାଙ୍କ ରେତଃ

ବ୍ରହ୍ମବୀର୍ଯ୍ୟ—ବି. ବ୍ରହ୍ମତେଜଃ ଦେଖ, ବ୍ରହ୍ମାଙ୍କ ରେତଃ ।

ବ୍ରହ୍ମବୃକ୍ଷ—ବି. ପଳାଶ ବୃକ୍ଷ, ଉଡୁମ୍ବର ।

ବ୍ରହ୍ମବୃତ୍ତି—ବି.ବ୍ରହ୍ମସ୍ୱ, ବ୍ରାହ୍ମଣର ଜୀବିକା

ବ୍ରହ୍ମବୃନ୍ଦା—ବି. ବ୍ରହ୍ମାଙ୍କ ରାଜଧାନୀ ।

ବ୍ରହ୍ମବେଦ—ବି. (କ.ଧା) ବ୍ରହ୍ମବିଦ୍ୟା, ବେଦଜ୍ଞାନ ।

ବ୍ରହ୍ମବେଦି—ବି. କୁରୁକ୍ଷେତ୍ର ନିକଟସ୍ଥ ଦେଶବିଶେଷ ।

ବ୍ରହ୍ମବେଦୀ—ପୁଂ. ବି°. (ବ୍ରହ୍ମ+ବିଦ୍+ କ.ଇନ୍) ବ୍ରହ୍ମଜ୍ଞ ଦେଖ ।

ବ୍ରହ୍ମବୈବର୍ତ୍ତ—ବି. ଅଷ୍ଟାଦଶ ପୁରାଣାନ୍ତ-ର୍ଗତ ଦଶମ ପୁରାଣ ।

ବ୍ରହ୍ମଭୂତ—ବି°. (ବ୍ରହ୍ମନ୍+ଭୂ+କ.ତ) ବ୍ରହ୍ମପ୍ରାପ୍ତ, ବ୍ରହ୍ମଜ୍ଞାନସମ୍ପନ୍ନ ।

ବ୍ରହ୍ମଭୂତି—ବି. (ବ.ବ୍ରୀ) ସନ୍ଧ୍ୟା ।

ବ୍ରହ୍ମଭୂୟ—କ୍ଳୀ. ବି. (ବ୍ରହ୍ମନ୍+ଭୂ+ ଭା.ଯ) ବ୍ରହ୍ମସାୟୁଜ୍ୟ, ବ୍ରହ୍ମତ୍ୱ ।

ବ୍ରହ୍ମଭୋଜ—ବି. ବ୍ରାହ୍ମଣଭୋଜନ ।

ବ୍ରହ୍ମମଣ୍ଡଳ—ବି. ଉତ୍ତର ଆକାଶରେ କାତରଇ ବା କଟାହ ଆକୃତିବିଶିଷ୍ଟ ନକ୍ଷତ୍ରପୁଞ୍ଜ ।

ବ୍ରହ୍ମମଣ୍ଡୂକୀ—ବି. ମଞ୍ଜିଷ୍ଠା,ମଣ୍ଡୂକପର୍ଣ୍ଣୀ, ବ୍ରାହ୍ମଣଘାଣ୍ଟିଆ ।

ବ୍ରହ୍ମମୟ—ବି°. ବ୍ରହ୍ମାଙ୍କ ସତ୍ତାଦ୍ୱାରା ପୂର୍ଣ୍ଣ (ଜଗତ୍), ବ୍ରାହ୍ମଣ ସମ୍ବନ୍ଧୀୟ,ବ୍ରାହ୍ମଣ-ମାନଙ୍କ ଦ୍ୱାରା ପୂର୍ଣ୍ଣ, (ସ୍ତ୍ରୀ) ବ୍ରହ୍ମମୟୀ ।

ବ୍ରହ୍ମମୀମାଂସା—ବି. ବ୍ରହ୍ମଙ୍କର ପ୍ରକୃତି ଓ ଗୁଣବର୍ଣ୍ଣନାତ୍ମକ • ବେଦାନ୍ତ ଗ୍ରନ୍ଥ-ବିଶେଷ ।

ବ୍ରହ୍ମମୂର୍ଦ୍ଧଭୃତ୍—ବି. (ବ୍ରହ୍ମନ୍+ମୂର୍ଦ୍ଧନ୍ +ଭୃ+କ.କ୍ୱିପ୍) ଶିବ, ମହାଦେବ ।

ବ୍ରହ୍ମମୁହୂର୍ତ୍ତ—ବି. ବଡ଼ଭୋର, ପ୍ରତ୍ୟୂଷ ।

ବ୍ରହ୍ମମେଖଳ—ବି. ମୁଞ୍ଜତୃଣ ।

ବ୍ରହ୍ମଯଜ୍ଞ—ବି. ବ୍ରାହ୍ମଣର ନିତ୍ୟକର୍ତ୍ତବ୍ୟ, ବେଦର ଅଧ୍ୟୟନ ଓ ଅଧ୍ୟାପନ ।

ବ୍ରହ୍ମଯଷ୍ଟି—ବି. ବ୍ରାହ୍ମଣଘାଣ୍ଟିଆ ଗୁଳ୍ମ ।

ବ୍ରହ୍ମଯୋଗ—ବି. ବ୍ରହ୍ମଜ୍ଞାନର ଚର୍ଚ୍ଚା ବା ସାଧନା ।

ବ୍ରହ୍ମଯୋନି—ବି. ବ୍ରହ୍ମଗିରି, ଗୟାର ପର୍ବତବିଶେଷ,ବ୍ରହ୍ମପ୍ରାପ୍ତିପାଇଁ ବ୍ରହ୍ମଙ୍କ ଧ୍ୟାନ ।

ବ୍ରହ୍ମଯୋନୀ—ବି. କୁରୁକ୍ଷେତ୍ରସ୍ଥ ତୀର୍ଥ-ବିଶେଷ, ସରସ୍ୱତୀ ନଦୀତୀରରେ ପୃଥୂ-ଦକ ନିକଟସ୍ଥ ତୀର୍ଥ ।

ବ୍ରହ୍ମରନ୍ଧ୍ର—ବି.କ.ଧା; ବ୍ରହ୍ମତାଳୁ, ଶିରୋ-ଦେଶସ୍ଥିତ ବ୍ରହ୍ମସ୍ଥିତିସ୍ଥାନରୂପ ଛିଦ୍ର ।

ବ୍ରହ୍ମରାକ୍ଷସ—ପୁଂ. ବି. (କ.ଧା) ବ୍ରହ୍ମ-ଦୈତ୍ୟ, ଶିବାନୁଚରବିଶେଷ ।

ବ୍ରହ୍ମରାତ—ବି. ଶୁକଦେବ, ଯାଜ୍ଞବଲ୍କ୍ୟ ମୁନି । [ ଶେଷ ଅଂଶ ।

ବ୍ରହ୍ମରାତ୍ର—ବି. ବ୍ରାହ୍ମମୁହୂର୍ତ୍ତ, ରାତ୍ରିର

ବ୍ରହ୍ମରାତ୍ରି—ବି. (ବ୍ରହ୍ମନ୍+ରା+କ.ତି) ଯାଜ୍ଞବଲ୍କ୍ୟ ମୁନି, (ତନ୍ତ୍ର) ଦେବତା-ଙ୍କର ୨୪୦୦୦ ବର୍ଷ ପରିମିତ ବ୍ରହ୍ମା-ଙ୍କର ଏକରାତ୍ରି ।

ବ୍ରହ୍ମରାଶି—ବି. ବିଷ୍ଣୁ, ପରଶୁରାମ, ବୃହ-ସ୍ପତିଙ୍କ ଆକ୍ରାନ୍ତ ଶ୍ରବଣାନକ୍ଷତ୍ର,(ଗ୍ରା.ବି°) ବ୍ରହ୍ମଜ୍ଞାନୀ ।

ବ୍ରହ୍ମଗଣ୍ଡ—ବି. ପିତ୍ତଳବିଶେଷ, ପିଙ୍ଗଳା ।

ବ୍ରହ୍ମଚେ(ଲେ)ଖ—ବି. (୬ତତ୍) କପାଳ-ଲେଖନ ।

ବ୍ରହ୍ମର୍ଷି—ବି. (ବ୍ରହ୍ମନ୍+ଋଷି) ବଶିଷ୍ଠାଦି ମୁନିଗଣ, ବ୍ରାହ୍ମଣେ ଋଷି, ବଶିଷ୍ଠ, କଶ୍ୟପ, ଅଙ୍ଗିରା, ଅତ୍ରି, ଓ ଭୃଗୁ ଏହି ପଞ୍ଚ ପ୍ରଜାପତିଙ୍କ ବଂଶଧର ମୁନିଗଣ ।

ବ୍ରହ୍ମର୍ଷିଦେଶ—ବି. (୬ତତ୍) କୁରୁକ୍ଷେତ୍ର, ମତ୍ସ୍ୟ, ପାଞ୍ଚାଳ, ଶୂରସେନ ଏହି ଗୁରି ଦେଶ ।

ବ୍ରହ୍ମଲୋକ—ପୁଂ. ବି. (୬ତତ୍) ସପ୍ତ-ଲୋକର ସର୍ବୋପରିସ୍ଥ ଲୋକ, ବ୍ରହ୍ମାଙ୍କ ଭୁବନ ।

ବ୍ରହ୍ମଶର—ଗ୍ରା. ବି. ବ୍ରହ୍ମଶିରଃ ଦେଖ ।

ବ୍ରହ୍ମଶଲ୍ୟ—ବି. ସୋମବଲ୍କ, ବବୁଲଗଛ ।

ବ୍ରହ୍ମଶାପ—ପୁଂ. ବି. (କ.ଧା) ବ୍ରାହ୍ମଣ ପ୍ରଦତ୍ତ ଅଭିସମ୍ପାତ ।

ବ୍ରହ୍ମଶାସନ—ବି. (୬ତତ୍) ବେଦର ବା ସ୍ମୃତିର ଆଦେଶ, ବ୍ରହ୍ମାଙ୍କର ଆଜ୍ଞା, ରାଜାଙ୍କ କର୍ତ୍ତୃକ ବ୍ରାହ୍ମଣଙ୍କୁ ପ୍ରଦତ୍ତ ଗ୍ରାମ

ବ୍ରହ୍ମଶିରଃ—ବି. ବ୍ରହ୍ମଶର, ବ୍ରହ୍ମାସ୍ତ୍ର, ମନ୍ତ୍ର ପ୍ରଭାମୟ ଯୁଦ୍ଧାସ୍ତ୍ରବିଶେଷ ।

ବ୍ରହ୍ମସଂହିତା—ବି. ଭଗବତ୍ ସିଦ୍ଧାନ୍ତ ସମ୍ବନ୍ଧ ଗ୍ରନ୍ଥବିଶେଷ, ବ୍ରହ୍ମବିଧାୟିନୀ ବେଦଶାଖା, ମନ୍ୱାଦି ପ୍ରଣୀତ ସ୍ମୃତିଶାସ୍ତ୍ର

ବ୍ରହ୍ମସଙ୍ଗୀତ—ଗ୍ରା. ବି. ବ୍ରହ୍ମୋପାସନା-ମୂଳକ ସଙ୍ଗୀତ, ନିରାକାର ବ୍ରହ୍ମଙ୍କ ସ୍ତବଗୀତିକା ।

ବ୍ରହ୍ମସତୀ—ସ୍ତ୍ରୀ. ବି. ସରସ୍ୱତୀ ।

ବ୍ରହ୍ମସତ୍ର—ବି. ବ୍ରହ୍ମଯଜ୍ଞ ଦେଖ ।

ବ୍ରହ୍ମସଭା—ବି. (୬ତତ୍) ବ୍ରହ୍ମାଙ୍କ ସଭା, ବ୍ରାହ୍ମଣମାନଙ୍କ ସଭା ।

ବ୍ରହ୍ମସମାଜ—ଗ୍ରା. ବି. ବ୍ରାହ୍ମଣ ସମୂହ, ବ୍ରହ୍ମଜ୍ଞଗଣର ବା ବ୍ରାହ୍ମଣମାନଙ୍କର ସମିତି । [ ଠାକୁ ଜାତ ।

ବ୍ରହ୍ମସମ୍ଭବ—ପୁଂ. ବିଂ. (ବ.ବ୍ରୀ) ବ୍ରହ୍ମାଙ୍କ-

ବ୍ରହ୍ମସରଃ—ବି. ଉତ୍ତର ଦେଶୀୟ ମାନ-ସରୋବର ନାମକ ପାର୍ବତ୍ୟ ହ୍ରଦ, ତୀର୍ଥବିଶେଷ ।

ବ୍ରହ୍ମସାଯୁଜ୍ୟ—ବି. (୬ତତ୍) ବ୍ରହ୍ମସହ-ଯୋଗ, ଈଶ୍ୱର ସ୍ୱରୂପ ।

ବ୍ରହ୍ମସାବର୍ଣ୍ଣି—ବି. ଦ୍ୱାଦଶମନୁ ।

ବ୍ରହ୍ମସିଦ୍ଧାନ୍ତ—ବି. ଜ୍ୟୋତିଷ ଗ୍ରନ୍ଥବିଶେଷ

ବ୍ରହ୍ମସୁବର୍ଚ୍ଚଳା— ବି. ଆଦିତ୍ୟଭକ୍ତାର ପ୍ରକାରଭେଦ, ଅଣସୋରିଷିଆ ।

ବ୍ରହ୍ମସୂ—ବି. ( ବ୍ରହ୍ମ+ସୂ+କ.କ୍ୱିପ୍ ) କନ୍ଦର୍ପ, ଅନିରୁଦ୍ଧ, ବିଷ୍ଣୁଙ୍କର ମୂର୍ତ୍ତି-ବିଶେଷ ।

ବ୍ରହ୍ମସୂତ୍ର—କ୍ଲୀ. ବି. (୬ତତ୍) ବ୍ରାହ୍ମଣର ଯଜ୍ଞସୂତ୍ର, ପଇତା, ବେଦାନ୍ତ ସୂତ୍ର ।

ବ୍ରହ୍ମସୂନୁ—ପୁଂ. ବି. (୬ତତ୍) ଇକ୍ଷ୍ୱାକୁ ବଂଶୀୟ ରାଜା ବ୍ରହ୍ମଦତ୍ତ, ବ୍ରହ୍ମାଙ୍କ ପୁତ୍ର । [ ଶିବ ।

ବ୍ରହ୍ମସୃଜ—ବି. (ବ୍ରହ୍ମ+ସୃଜ୍+କ.ଅ)

ବ୍ରହ୍ମସ୍ତେୟ—ବି. ଗୁରୁଙ୍କ ବିନାନୁମତିରେ ସେ ଅନ୍ୟକୁ ପଢ଼ାଉ ଥିବା ପାଠକୁ ଶୁଣିକରି ପଢ଼ିବା । [ ସମ୍ପତ୍ତି ।

ବ୍ରହ୍ମସ୍ୱ—ବି. (ବ୍ରହ୍ମ+ସ୍ୱ) ବ୍ରାହ୍ମଣର

ବ୍ରହ୍ମସ୍ୱୀ—ଗ୍ରା. ପୁଂ. ବିଂ. ଋଣୀ, ପିତା-ମହଙ୍କର ସହାୟକ ।

ବ୍ରହ୍ମହତ୍ୟା—ସ୍ତ୍ରୀ. ବି. (୬ତତ୍) ବ୍ରାହ୍ମଣବଧ

ବ୍ରହ୍ମହବିଃ—ବି. ବ୍ରହ୍ମଙ୍କ ଉଦ୍ଦେଶ୍ୟରେ ଅଗ୍ନିରେ ପ୍ରଦତ୍ତ ଆହୁତି ।

ବ୍ରହ୍ମହା—ବି ଓ ବିଂ. ପୁଂ. (ବ୍ରହ୍ମ+ହନ୍ +କ.କ୍ୱିପ୍) ବ୍ରହ୍ମଘାତୀ, (ବି) ଶୂଦ୍ରା-ପତି ବ୍ରାହ୍ମଣ ।

ବ୍ରହ୍ମହୁତ—ବି. (ବ୍ରହ୍ମନ୍+ହୁତ) ଅତିଥି ସେବା, ନୃଯଜ୍ଞ ।

ବ୍ରହ୍ମହୃଦୟ—ବି. ନକ୍ଷତ୍ରବିଶେଷ ।

ବ୍ରହ୍ମା—ପୁଂ. ବି. (ବୃନ୍ହ+କ.ମନ୍) ସ୍ତୁତି, ସ୍ତୋତା, କବି, ବ୍ରାହ୍ମଣ, ପୁରୋହିତ, ବୈଦିକ କର୍ମର ଅବେକ୍ଷକ, ବ୍ରହ୍ମ-ହୃଦୟ, ଉତ୍ତରକାଶସ୍ଥ ନକ୍ଷତ୍ରବିଶେଷ, ସୃଷ୍ଟିକର୍ତ୍ତା, ବିଧାତା, ପ୍ରଜାପତି, ବେଦ-ବକ୍ତା, ଜୈନଉପାସକ ବିଶେଷ, ଧର୍ମ-ଶାସ୍ତ୍ର ପ୍ରୟୋଜକ ଋଷିବିଶେଷ, ଯୋଗ-ବିଶେଷ, (ଗ୍ରା.ବି) ବ୍ରାହ୍ମଣମାନଙ୍କର ଉପାଧିବିଶେଷ, ( ଲ.ଅର୍ଥ ) କୌଣସି ବିଷୟରେ ସର୍ବୋଚ୍ଚ ବ୍ୟକ୍ତି ବା କର୍ତ୍ତା ।

ବ୍ରହ୍ମାକୁଣ୍ଡ—ଗ୍ରା. ବି. ଯାଜପୁରରେ ଥିବା ଯଜ୍ଞକୁଣ୍ଡ ।

ବ୍ରହ୍ମାକ୍ଷର—ବି. ଓଁକାର ।

ବ୍ରହ୍ମାଗ୍ରଭୂ—ବି. (ବ୍ରହ୍ମାଗ୍ର+ଭୂ+କ. କ୍ୱିପ୍) ଘୋଟକ, ଘୋଡ଼ା ।

ବ୍ରହ୍ମାଞ୍ଜଳି—ବି. (କ.ଧା) ବେଦାଧ୍ୟୟନର ଆରମ୍ଭରେ ଓ ଶେଷରେ ପ୍ରଣବୋ-ଚ୍ଚାରଣ ପୂର୍ବକ ଗୁରୁଙ୍କ ଉଦ୍ଦେଶ୍ୟରେ କୃତାଞ୍ଜଳି ହେବା, ସାମବେଦ ପାଠ-ସମୟରେ ସ୍ୱର ବିଭାଗ ନିମିତ୍ତ ଅଞ୍ଜଳି କରଣ ।

ବ୍ରହ୍ମାଣୀ—ସ୍ତ୍ରୀ. ବି. ( ବ୍ରହ୍ମନ୍+ଈ ) ବ୍ରହ୍ମାଙ୍କ ପତ୍ନୀ, ବ୍ରହ୍ମାଙ୍କର ସୃଷ୍ଟିଶକ୍ତି ଦେବୀବିଶେଷ, ବ୍ରାହ୍ମଣୀ, ରେଣୁକା ନାମକ ଗନ୍ଧଦ୍ରବ୍ୟ, ଏକପ୍ରକାର କଂସା, ସରସ୍ୱତୀ ।

ବ୍ରହ୍ମାଣ୍ଡ—ବି. (୬ତତ୍) ବ୍ରହ୍ମାଙ୍କସୃଷ୍ଟ ବିଶ୍ୱ, ଗୋଲକ, ଜଗତ, ନରକପାଳ, ଖପୁରି

ବ୍ରହ୍ମାଣ୍ଡପୁରାଣ—ବି. ପୁରାଣବିଶେଷ ।

ବ୍ରହ୍ମାତ୍ମଭୂ—ବି. ଅଶ୍ୱ, ଘୋଟକ ।

ବ୍ରହ୍ମାଧିଗମନ—ବି. ବେଦପାଠ ।

ବ୍ରହ୍ମାନନ୍ଦ—ବି. ବ୍ରହ୍ମଜ୍ଞାନ ଲାଭକରିବା ବ୍ୟକ୍ତିର ଅନୁଭୂତ ପରମାନନ୍ଦ ।

ବ୍ରହ୍ମାପୁତ୍ର—ଗ୍ରା. ବି. ବ୍ରହ୍ମାଙ୍କ ପୁତ୍ର, ଜାମ୍ବବାନ୍ ।

ବ୍ରହ୍ମାବରଣ—ଗ୍ରା. ବି. ବୈଦିକ କର୍ମରେ ପ୍ରଧାନ ପୁରୋହିତଙ୍କର ନିର୍ବାଚନ ।

ବ୍ରହ୍ମାବର୍ତ୍ତ—ବି. କୁରୁକ୍ଷେତ୍ର ନିକଟସ୍ଥ ଦୃଷଦ୍ୱତୀ ଓ ସରସ୍ୱତୀ ନଦୀର ମଧ୍ୟବର୍ତ୍ତୀ ପ୍ରାଚୀନ ଦେଶ ।

ବ୍ରହ୍ମାମ୍ଭଃ—ବି. ଗୋମୂତ୍ର, ଚନ୍ଦ୍ରି ।

ବ୍ରହ୍ମାୟଣୀ—ଗ୍ରା. ବି. ସାବିତ୍ରୀ, ବ୍ରହ୍ମାଙ୍କ ଶକ୍ତି, ଅଷ୍ଟାଦଶ ଯୋଗିନୀଙ୍କ ମଧ୍ୟରେ ଜଣେ ।

ବ୍ରହ୍ମାୟୁଷ—ଗ୍ରା. ବି. ବ୍ରହ୍ମାଙ୍କର ପର-ମାୟୁ, ଅନନ୍ତକାଳ ।

ବ୍ରହ୍ମାରଣ୍ୟ—ବି. ବେଦ ପାଠର ସ୍ଥାନ ।

ବ୍ରହ୍ମାର୍ପଣ—ବି. ନିଜର କୃତ କାର୍ଯ୍ୟକୁ

ବ୍ରହ୍ମାଙ୍କଠାରେ ଅର୍ପଣ ।
ବ୍ରହ୍ମାସନ—ବି. ଯୋଗାସନ, ଯେଉଁ ଆସନରେ ବସି ପରମାର୍ଥ ବା ନିରାକାର ବ୍ରହ୍ମଙ୍କ ଚିନ୍ତାକରାଯାଏ ।
ବ୍ରହ୍ମାସ୍ତ୍ର—କ୍ଳୀ.ବି. (୬ତତ୍) ବ୍ରହ୍ମବାଣ, ବ୍ରହ୍ମତେଜୋମୟ ଅମୋଘଶର, ବ୍ରହ୍ମଶାପ, (ଲ.ଅର୍ଥ) ବ୍ରହ୍ମାସ୍ତ୍ରପରି ଅମୋଘ ଉପାୟ ବା ଔଷଧ ।
ବ୍ରହ୍ମିଷ୍ଠ—ପୁଂ. ବିଂ. (ବ୍ରହ୍ମ+ଷ୍ଠା+କ.ଅ) ବ୍ରହ୍ମଜ୍ଞାନୀ, ବ୍ରହ୍ମନିଷ୍ଠ, (ସ୍ତ୍ରୀ) ବ୍ରହ୍ମିଷ୍ଠା ।
ବ୍ରହ୍ମିଷ୍ଠା—ସ୍ତ୍ରୀ. ବି. ଦୁର୍ଗା ।
ବ୍ରହ୍ମୀ—ବି. ( ବନ୍ଧ୍+କ.ମନ୍+ଈ ) ବମ୍ମୀମାଛ, ବ୍ରାହ୍ମଯଷ୍ଟି, ବ୍ରାହ୍ମୀଶାକ ।
ବ୍ରହ୍ମୋତ୍ତର—ଗ୍ରା.ବି. ବ୍ରାହ୍ମଣଙ୍କୁ ପ୍ରଦତ୍ତ ନିଷ୍କର ଭୂସମ୍ପତ୍ତି, ବ୍ରହ୍ମତ୍ର ।
ବ୍ରହ୍ମୋପଦେଶ—ବି. ବେଦ ସମ୍ବନ୍ଧେ ଉପଦେଶ, ନିରାକାର ବ୍ରହ୍ମସମ୍ବନ୍ଧେ ଉପଦେଶ ।
ବ୍ରହ୍ମୋପାସକ—ପୁଂ.ବିଂ. ବ୍ରହ୍ମଙ୍କ ଉପାସକ, ନିରାକାର ବ୍ରହ୍ମଙ୍କର ଉପାସନାକାରୀ, (ଗ୍ରା.ପୁଂ.ବିଂ.) ବ୍ରହ୍ମଧର୍ମାବଲମ୍ବୀ
ବ୍ରହ୍ମୋପାସନା—ବି. ନିରାକାର ବ୍ରହ୍ମଙ୍କ ଉପାସନା ।
ବ୍ରହ୍ମୌଦନ—ବି. (ବ୍ରହ୍ମ+ଓଦନ) ଯଜ୍ଞକାଳରେ ପୁରୋହିତମାନଙ୍କୁ ପ୍ରଦତ୍ତ ଅନ୍ନ
ବ୍ରାଜ—ବି. (ବ୍ରଜ୍+କ.ଅ) କୁକ୍କୁରଦଳ, ସମୂହ, (ଭା.ଅ) ଗମନ ।
ବ୍ରାଜି—ବି.(ବ୍ରଜ୍+କ.ଇ) ପବନ, ବାୟୁ
ବ୍ରାଣ୍ଡି—ଯା. ବି. ବିଲାତମଦ, ଉଗ୍ରସୁରା, ବରାଣ୍ଡି ।
ବ୍ରାତ—ବି. (ବୃ+କ.ଅତ୍) ସମୂହ, ଦଳ, ପତିତ ବ୍ରାହ୍ମଣର ସନ୍ତାନ, ବରଯାତ୍ରୀ ବା କନ୍ୟାଯାତ୍ରୀ, ଶାରୀରିକ ପରିଶ୍ରମ, ମଜୁରି ଖଟିବା, ଶ୍ରମଜୀବୀ, ମୂଲିଆ ।
ବ୍ରାତୀ—ପୁଂ.ବି. (ବ୍ରାତ+ଇନ୍) ମୂଲିଆ, କୁଲି, (ବିଂ) ବ୍ରତନିଷ୍ଠ, (ସ୍ତ୍ରୀ) ବ୍ରାତିନୀ
ବ୍ରାତୀନ—ବିଂ. (ବ୍ରାତ+ଈନ) ଶ୍ରମୀ, ଶ୍ରମଜୀବୀ, ମଜୁରିଦାର, (ସ୍ତ୍ରୀ) ବ୍ରାତୀନା ।
ବ୍ରାତ୍ୟ—ବିଂ.(ବ୍ରତ+ଯ) ସଂସ୍କାରବିହୀନ, ସାବିତ୍ରୀଭ୍ରଷ୍ଟ, ପତିତ, ଅସଂଯୋଗ୍ୟକାଳେ ଉପନୀତ, ବର୍ଣ୍ଣସଙ୍କର ।
ବ୍ରାତ୍ୟସ୍ତୋମ—ବି. ଯଜ୍ଞବିଶେଷ, ସଂସ୍କାରବିହୀନ ଯଜ୍ଞ ।
ବ୍ରାହ୍ମ—ବିଂ. (ବ୍ରହ୍ମନ୍+ଅ) ବ୍ରାହ୍ମଣସମ୍ବନ୍ଧୀୟ, ତପଃସମ୍ଭୂତ, ବ୍ରହ୍ମଜ୍ଞ, ବ୍ରହ୍ମାଙ୍କ ସମ୍ବନ୍ଧୀୟ, (ସ୍ତ୍ରୀ) ବ୍ରାହ୍ମୀ, (ବି) ହସ୍ତର ଅଙ୍ଗୁଷ୍ଠ ମୂଳଦେଶ, ବିବାହବିଶେଷ, ବରକୁ ଆହ୍ୱାନ ପୂର୍ବକ ଅଲଂକୃତା କନ୍ୟାଦାନ, ବ୍ରହ୍ମାଙ୍କ ପୁତ୍ର ନାରଦ, ରାଜଧର୍ମବିଶେଷ, ଅଧୁନା ପ୍ରଚଳିତ ଧର୍ମବିଶେଷ, ବ୍ରାହ୍ମଧର୍ମ ଦେଖ ।
ବ୍ରାହ୍ମଣ—ପୁଂ.ବିଂ.(ବ୍ରହ୍ମନ୍+ଅ) ବ୍ରହ୍ମଜ୍ଞ, (ବି) ବ୍ରହ୍ମଜ୍ଞବ୍ୟକ୍ତି, ଦ୍ୱିଜଶ୍ରେଷ୍ଠ, ହିନ୍ଦୁଙ୍କ ଚାରିବର୍ଣ୍ଣ ମଧ୍ୟରେ ଆଦି ଓ ପ୍ରଧାନବର୍ଣ୍ଣ, ବେଦର ଉପସଂହାର ଭାଗ, ବ୍ରାହ୍ମଣସମୂହ ।
ବ୍ରାହ୍ମଣକ—ବି. (ବ୍ରାହ୍ମଣ+କ) ନିନ୍ଦିତ କର୍ମକାରୀ ବ୍ରାହ୍ମଣ, ଆୟୁଧଜୀବୀ ବ୍ରାହ୍ମଣମାନଙ୍କ ଅଧ୍ୟୁଷିତ ଦେଶ ।
ବ୍ରାହ୍ମଣଗୋସାଇଁ—ଗ୍ରା. ବି. ଦେବତାରୂପୀ ବ୍ରାହ୍ମଣ, ଦେବତା ଓ ବ୍ରାହ୍ମଣ ।
ବ୍ରାହ୍ମଣଚଣ୍ଡାଳ—ବି. ଶାସ୍ତ୍ର ନିଷିଦ୍ଧ କର୍ମକାରୀ ବ୍ରାହ୍ମଣ, ପତିତ ବ୍ରାହ୍ମଣ, ବ୍ରାହ୍ମଣ ଔରସରେ ଶୂଦ୍ରା ଗର୍ଭଜାତ ବ୍ରାହ୍ମଣ ।
ବ୍ରାହ୍ମଣଘାଣ୍ଟି—ଗ୍ରା. ବି. ଘଣ୍ଟାକର୍ଣ୍ଣାଦି ବର୍ଗର ଦୀର୍ଘାୟୁ ଦୀର୍ଘଯଷ୍ଟିସଦୃଶ କ୍ଷୁପବିଶେଷ ।
ବ୍ରାହ୍ମଣତା(ତ୍ୱ)—ବି. ବ୍ରାହ୍ମଣତ୍ୱ, ବ୍ରାହ୍ମଣର ଶାସ୍ତ୍ରବିହିତ କ୍ରିୟା ପାଳନ କରିବାର ଅବସ୍ଥା । [ ଦେବତା ।
ବ୍ରାହ୍ମଣଦେବତା—ଗ୍ରା. ବି. ବ୍ରାହ୍ମଣ ଓ
ବ୍ରାହ୍ମଣପଣ—ଗ୍ରା.ବି. ବ୍ରାହ୍ମଣତା ଦେଖ, ପୌରୋହିତ୍ୟ, ଭିକ୍ଷାବୃତ୍ତି ।
ବ୍ରାହ୍ମଣପଣ୍ଡିତ—ବି. ( କ.ଧା ) ବିଦ୍ୱାନ୍ ବ୍ରାହ୍ମଣ, ଶାସ୍ତ୍ରଜ୍ଞ ବ୍ରାହ୍ମଣ ।
ବ୍ରାହ୍ମଣପ୍ରିୟ—ବିଂ. ଯେ ବ୍ରାହ୍ମଣମାନଙ୍କୁ ସ୍ନେହକରେ, ବ୍ରାହ୍ମଣଭକ୍ତ, ବ୍ରାହ୍ମଣଙ୍କ ହିତକର, (ବି) ବିଷ୍ଣୁ ।
ବ୍ରାହ୍ମଣବୈଷ୍ଣବ—ଗ୍ରା.ବି. ବ୍ରାହ୍ମଣଗଣ ଓ ବୈଷ୍ଣବଗଣ ।
ବ୍ରାହ୍ମଣବୈଷ୍ଣବ କରିବା—ଗ୍ରା.କ୍ରି. ବ୍ରାହ୍ମଣଙ୍କ ଓ ବୈଷ୍ଣବଙ୍କୁ ଦାନ ଭୋଜନାଦି ଦ୍ୱାରା ସତ୍କାର କରିବା ।
ବ୍ରାହ୍ମଣବ୍ରୁବ—ପୁଂ.ବି. (ବ୍ରାହ୍ମଣ+ବ୍ରୂ+କ.ଅ) ନୀଚ କାର୍ଯ୍ୟରତ ବ୍ରାହ୍ମଣ, ଅପକୃଷ୍ଟ ବିପ୍ର, ମହାବ୍ରାହ୍ମଣ, ଯେ ଆପଣାକୁ ବ୍ରାହ୍ମଣବୋଲି କହନ୍ତି ଏ ।
ବ୍ରାହ୍ମଣଭୋଜନ—ବି. ପ୍ରାୟଶ୍ଚିତ୍ତ, ମୃତାହ, ଶ୍ରାଦ୍ଧାଦିରେ କର୍ତ୍ତବ୍ୟ ବ୍ରାହ୍ମଣମାନଙ୍କୁ ଯେଉଁ ଭୋଜନ ଦିଅନ୍ତି । [ ଗୁଳ୍ମ ।
ବ୍ରାହ୍ମଣଯଷ୍ଟିକା—ବି. ବ୍ରାହ୍ମଣଘାଣ୍ଟିଆ
ବ୍ରାହ୍ମଣାୟନ—ବି. (ବ୍ରାହ୍ମଣ+ଆୟନ) ବିଶୁଦ୍ଧ ବା ଉଚ୍ଚବଂଶୋଦ୍ଭବ ବ୍ରାହ୍ମଣ ।
ବ୍ରାହ୍ମଣପଣିଆଁ—ଗ୍ରା.ବିଂ. ବ୍ରାହ୍ମଣୋପଯୁକ୍ତ, ବ୍ରାହ୍ମଣ ସମ୍ବନ୍ଧୀୟ, (ବି) ବୃକ୍ଷବିଶେଷ, ବ୍ରାହ୍ମଣର କାର୍ଯ୍ୟ ।
ବ୍ରାହ୍ମଣିଅଙ୍କ—ଗ୍ରା. ବି. ଦେବନାଗର ଅଙ୍କର ସଦୃଶ ଓଡ଼ିଆ ଅଙ୍କ ।
ବ୍ରାହ୍ମଣୀ—ସ୍ତ୍ରୀ.ବି.(ବ୍ରାହ୍ମଣ+ଈ) ବ୍ରାହ୍ମଣ ଜାତୀୟା ସ୍ତ୍ରୀ, ବ୍ରାହ୍ମଣ ପତ୍ନୀ, ଭାର୍ଗୀ, ପୃକ୍କା, ପିତ୍ତଳଶାଗ, ବ୍ରାହ୍ମୀଶାକ, ବିରୁଡ଼ି, ଜାଇ, ପିପୀଲିକାବିଶେଷ, (ଗ୍ରା.ବି) ନଦୀବିଶେଷ ।
ବ୍ରାହ୍ମଣ୍ୟ—ବି. (ବ୍ରାହ୍ମଣ+ଯ) ବ୍ରାହ୍ମଣସମୂହ, ବ୍ରାହ୍ମଣତ୍ୱ, ଶନିଗ୍ରହ ।
ବ୍ରାହ୍ମଣ୍ୟଶ୍ରୀ—ସ୍ତ୍ରୀ. ବି. ( ୬ତତ୍ ) ବ୍ରହ୍ମତେଜୋଜନିତ ସୌନ୍ଦର୍ଯ୍ୟ, ବ୍ରାହ୍ମଣର ସ୍ୱାଭାବିକ ସୁଶ୍ରୀକତା ।
ବ୍ରାହ୍ମତୀର୍ଥ—ବି. ବ୍ରହ୍ମତୀର୍ଥ, ଅଙ୍ଗୁଷ୍ଠର ମୂଳଦେଶ ।
ବ୍ରାହ୍ମଦିବସ—ବି. ବ୍ରହ୍ମାଙ୍କର ଏକଦିନ ଓ ଏକରାତି, ମନୁଷ୍ୟଙ୍କ ଗଣନାରେ ୧୦୯୧୦୬୦୦୦୦୦ ବର୍ଷ ବ୍ୟାପୀ ଦିବସ ଓ ଏତିକ ବର୍ଷବ୍ୟାପୀ ରାତ୍ରି ।
ବ୍ରାହ୍ମଧର୍ମ—ବି. ବେଦପାଠ ସମାପନପୂର୍ବକ ଗୁରୁଗୃହରୁ ସମାଗତ ବିପ୍ରଙ୍କର

ଅଭ୍ୟର୍ଥନାରୂପ ରାଜଧର୍ମ ।

ବ୍ରାହ୍ମପିଙ୍ଗା—ବି. ରୌପ୍ୟ, ରୁପା ।

ବ୍ରାହ୍ମପୁରାଣ—ବି. ବ୍ରହ୍ମପୁରାଣ, ପୁରାଣବିଶେଷ ।

ବ୍ରାହ୍ମବିବାହ—ବି. ପ୍ରାଚୀନ କାଳରେ ହିନ୍ଦୁମାନଙ୍କର ବିବାହ ପ୍ରଥାବିଶେଷ (ଏଥିରେ ବରକୁ ଆହ୍ୱାନପୂର୍ବକ ତାଙ୍କ ହସ୍ତରେ ଯଥାଶକ୍ତି ସାଳଙ୍କୃତା କନ୍ୟାକୁ ବେଦୋକ୍ତ ବିଧିରେ ପ୍ରଦାନ) ।

ବ୍ରାହ୍ମମନ୍ଦିର—ସ୍ତ୍ରୀ.ବି.ବ୍ରାହ୍ମ ଧର୍ମାବଲମ୍ବୀମାନେ ଯେଉଁଠାରେ ସମବେତ ହୋଇ ଉପାସନା କରନ୍ତି ।

ବ୍ରାହ୍ମମୁହୂର୍ତ୍ତ—ବି. ରାତ୍ରିର ଶେଷ ଦୁଇଦଣ୍ଡ ସମୟ, ସୂର୍ଯ୍ୟୋଦୟର ଅବ୍ୟବହିତ ଦୁଇଦଣ୍ଡ କାଳ, ମତାନ୍ତରେ ଚାରିଦଣ୍ଡକାଳ ।

ବ୍ରାହ୍ମସଂହିତା—ବି. ପ୍ରାଚୀନ ହିନ୍ଦୁ ଜ୍ୟୋତିଷ ଗ୍ରନ୍ଥବିଶେଷ ।

ବ୍ରାହ୍ମସମାଜ—ସ୍ତ୍ରୀ.ବି. ରାଜା ରାମମୋହନ ରାଓଙ୍କ ପ୍ରବର୍ତ୍ତିତ ଓ କେଶବଚନ୍ଦ୍ରସେନଙ୍କଦ୍ୱାରା ପରିବର୍ତ୍ତିତ ନିରାକାରେଶ୍ୱରବାଦୀ ଧର୍ମସମାଜବିଶେଷ ।

ବ୍ରାହ୍ମସମାଜୀ—ସ୍ତ୍ରୀ. ବିଂ. ବ୍ରାହ୍ମସମାଜ ସମ୍ବନ୍ଧୀୟ,(ବି)ବ୍ରାହ୍ମଣ ସମାଜ ବିଧିରେ ଉପାସନା କରିବା ବ୍ୟକ୍ତି ।

ବ୍ରାହ୍ମହୁତ—ବି. (ବ୍ରାହ୍ମ + ହୁତ) ଅତିଥି ସେବା, ଆତିଥେୟତା ।

ବ୍ରାହ୍ମିକା—ବି. ବ୍ରାହ୍ମଣଷ୍ଟିଆ ଗୁଳ୍ମ, (ସ୍ତ୍ରୀ.ବି) ବ୍ରାହ୍ମ ଧର୍ମାବଲମ୍ବିନୀ ସ୍ତ୍ରୀ ।

ବ୍ରାହ୍ମୀ—ସ୍ତ୍ରୀ. ବି. (ବ୍ରହ୍ମନ୍ + ଈ) ଦୁର୍ଗା, ବ୍ରହ୍ମାଙ୍କର ବିଶ୍ୱସର୍ଜନ ଶକ୍ତି,ଶିବଙ୍କର ଅଷ୍ଟମାତୃକାନ୍ତର୍ଗତ ମାତୃକାବିଶେଷ, ସରସ୍ୱତୀ, ବ୍ରାହ୍ମଣପତ୍ନୀ, ରୋହିଣୀ ନକ୍ଷତ୍ର,ପ୍ରାଚୀନ ବ୍ରାହ୍ମ ବିବାହାନୁସାରେ ପ୍ରଦତ୍ତା କନ୍ୟା, ମାଇବେଙ୍ଗ, କାଇ, ଭାର୍ଗୀ, ହିଡ଼ିମିଚୁଶାଗ, ବାରାହୀକନ୍ଦ, ସୋମଲତା, ତୋଡ଼ିମାଛ, ମହାଜ୍ୟୋତିଷ୍ମତୀ ଲତା,ଅଣ୍ଡଶପର୍ଣ୍ଣୀ, ଏକପ୍ରକାର ଶାଗ, ବ୍ରାହ୍ମଣୀ ନଦୀ ।

ବ୍ରାହ୍ମୀକନ୍ଦ—ବି. ବାରାହୀକନ୍ଦ ।

ବ୍ରାହ୍ମୀଗାୟତ୍ରୀ—ବି, ୩୬ ବର୍ଣ୍ଣବିଶିଷ୍ଟ ବୈଦିକ ଛନ୍ଦୋବିଶେଷ ।

ବ୍ରାହ୍ମୀଲିପି—ବି. ପ୍ରାଚୀନ ବର୍ଣ୍ଣ ଯହିଁରୁ ଉତ୍ପନ୍ନ ଭାରତର ପ୍ରାଚୀନ ବର୍ଣ୍ଣମାଳା ।

ବ୍ରାହ୍ମୀଶାକ—ବି. ଜଳାଭୂମିରେ ଜନ୍ମିବା ଏକପ୍ରକାର ଶ୍ରେଷ୍ଠ ଲତାଶାଗ ।

ବ୍ରାହ୍ମ୍ୟ—ବିଂ.( ବ୍ରହ୍ମ+ଯ)ବ୍ରହ୍ମ ସମ୍ବନ୍ଧୀୟ (ବି) ବିସ୍ମୟ, ଅଲୌକିକ ।

ବ୍ରିଟନ୍—ଯା.ବି. ବ୍ରିଟେନବାସୀ ବ୍ୟକ୍ତି ।

ବ୍ରିଟିଶ୍—ଯା. ବିଂ. ଇଂଲଣ୍ଡ ସମ୍ବନ୍ଧୀୟ, ଇଂରାଜ,ଇଂଲଣ୍ଡ ଓ ସ୍କଟଲଣ୍ଡ ସମ୍ବନ୍ଧୀୟ

ବ୍ରିଟିଶକେଶରୀ—ସ୍ତ୍ରୀ.ବି. ଇଂରାଜ ଜାତି

ବ୍ରିଟିଶଗଭର୍ଣ୍ଣମେଣ୍ଟ—ଯା. ବି. ବିଲାତି ସରକାର ।

ବ୍ରିଟିଶସାମ୍ରାଜ୍ୟ—ସ୍ତ୍ରୀ.ବି. ଇଂରାଜ ଜାତିଙ୍କ ଶାସିତ ପୃଥିବୀବ୍ୟାପୀ ରାଜ୍ୟ ।

ବ୍ରୀଡ଼(ଡ଼ା)—ବି. (ବ୍ରୀଡ୍+ଭା.ଅ+ଆ) ଲଜ୍ଜା, ଲାଜ, ଶରମ ।

ବ୍ରୀଡ଼ନ—ବି. (ବ୍ରୀଡ୍ + ଭା.ଅନ)ଲଜ୍ଜା ।

ବ୍ରୀଡ଼ାକର—ବିଂ. (ବ୍ରୀଡ଼ା + କୃ+କ.ଅ) ଲଜ୍ଜାଜନକ, ଯାହା ମନୁଷ୍ୟକୁ ଲଜ୍ଜିତ କରାଏ ।

ବ୍ରୀଡ଼ାବନତ—ବିଂ. (୭ତତ୍) ଲାଜନମ୍ର, ଲଜ୍ଜାରେ ଅବନତ, ଲାଜରେ ମୁହଁ ଟେକି ନପାରିବା ।

ବ୍ରୀଡ଼ାବିହୀନ—ବିଂ. (୩ତତ୍)ନିର୍ଲ୍ଲଜ ।

ବ୍ରୀଡ଼ିତ—ବିଂ. (ବ୍ରୀଡ୍ + କ.ତ) ଲଜ୍ଜିତ, (ବି) ଲଜ୍ଜା ।

ବ୍ରୀହି—ବି. (ବ୍ରୂ + ମୈ.ହି) ଧାନ୍ୟ, ଧାନ, ଚାଉଳଧାନ, ଯେଉଁ ଶସ୍ୟରୁ ଡାଲି ହୁଏ, ରବିଶସ୍ୟ, ମାଷ, ବିରିନାମକ ଶସ୍ୟ ।

ବ୍ରୀହିକ—ବିଂ.(ବ୍ରୀହି+କ)ଧାନ୍ୟବିଶିଷ୍ଟ, ଶସ୍ୟଯୁକ୍ତ ।

ବ୍ରୀହିକାଞ୍ଚନ—ବି. ମସୂର ।

ବ୍ରୀହିଧାନ୍ୟ—ବି. ଶାଳିଧାନ୍ୟ ।

ବ୍ରୀହିଭେଦ—ବି. ଶସ୍ୟବିଶେଷ, ଏକପ୍ରକାର ଶସ୍ୟ ।

ବ୍ରୀହ୍ୟ—ବି. ( ବ୍ରୀହି+ଈ ) ବ୍ରୀହିଯୁକ୍ତ କ୍ଷେତ୍ର ।

ବ୍ରୁବତ୍—ପୁଂ.ବିଂ. ( ବ୍ରୂ+କ.ଅତ୍ ) କହୁଥିବା, (ସ୍ତ୍ରୀ) ବ୍ରୁବନ୍ତୀ ।

ବ୍ରୁବାଣ—ବିଂ. ( ବ୍ରୂ+କ.ଆନ ) ଯେ କହୁଅଛି, ବକ୍ତା, (ସ୍ତ୍ରୀ) ବ୍ରୁବାଣା ।

ବ୍ରୈହ—ବିଂ. ( ବ୍ରୀହି+ଅ )ବ୍ରୀହିରୁ ପ୍ରସ୍ତୁତ ।

ବ୍ରୈହେୟ—ବି. (ବ୍ରୀହି+ଏୟ)ଧାନ୍ୟାଦି ଜନ୍ମିବାର ଉପଯୁକ୍ତ କ୍ଷେତ୍ର ।

ବ୍ରୋଚ—ସ୍ତ୍ରୀ ବି. ସୁରଟଠାରୁ ୩୬ମାଇଲ ଦୂରବର୍ତ୍ତୀ ସହର ।

ବ୍ଲକ—ଯା.ବି. ବଡ଼ଖଣ୍ଡ, ଭୂମିର ଚତୁଷ୍କୋଣ ଖଣ୍ଡ ।



ଭ—ବ୍ୟଞ୍ଜନ ବର୍ଣ୍ଣମାଳାର ଚତୁର୍ବିଂଶତିତମ ବର୍ଣ୍ଣ, 'ପ' ବର୍ଗର ଚତୁର୍ଥ ବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ଓଷ୍ଠ,ଦୁଇ ଓଷ୍ଠ ମିଶାଇ ଶ୍ୱାସବାୟୁ ସବେଗରେ ବାହାରିଗଲେ ଏହା ଉଚ୍ଚାରିତ ହୁଏ, ( ଭା+କ.ଅ ) ନକ୍ଷତ୍ର, ଗ୍ରହ, ରାଶି, ଶୁକ୍ରାଚାର୍ଯ୍ୟ, ( ଭ୍ରମ+ଭା.ଅ ) ଭ୍ରାନ୍ତି, (ଭଣ୍+କ.ଅ) ଭ୍ରମର, ଛନ୍ଦଶାସ୍ତ୍ରୋକ୍ତ ଆଦି ଗୁରୁ ଅନ୍ତ ଲଘୁଦ୍ୱୟ ବର୍ଣ୍ଣତ୍ରୟ ।

ଭଅଁ—ସ୍ତ୍ରୀ. ଅବ୍ୟ. ଭ୍ରମରାଦିଙ୍କର ଶବ୍ଦ ।

ଭଅଁର—ସ୍ତ୍ରୀ.ବି.(ଭ୍ରମର ଶବ୍ଦଜ) ଭ୍ରମର, ଭଙ୍ଗ, କାଠଆଦିରେ ରନ୍ଧ୍ର କରିବାର ଯନ୍ତ୍ରବିଶେଷ ।

ଭଅଁରମାରି—ସ୍ତ୍ରୀ.ବି. ଭ୍ରମରମାରୀ, ଭ୍ରମରାରି ବୃକ୍ଷ, ଏ କୁଷ୍ଠ ରୋଗରେ ଔଷଧ ରୂପେ ବ୍ୟବହୃତ ହୁଏ ।

ଭଇଁଅନ୍ତ୍ର—ପ୍ରା. (ପୁରୀ) ବି. ଭୋଗମଣ୍ଡପ, ଶ୍ରୀ ଜଗନ୍ନାଥ ଓ ଲିଙ୍ଗରାଜ ମହାପ୍ରଭୁଙ୍କର ନିକଟ ଭୋଗ ସଙ୍ଗେ ସାଧାରଣଙ୍କର ଭୋଗ ଯେଉଁ ସ୍ଥାନରେ ସ୍ଥାପିତ ହୋଇ ଦେବତାଙ୍କୁ ଭୋଗ ଲଗାଯାଏ ।

ଭଇଁଚ—ସ୍ତ୍ରୀ. ବି. କଣ୍ଟକ ଗୁଳ୍ମବିଶେଷ ।

ଅଭ୍ୟର୍ଥନାରୂପ ରାଜଧର୍ମ ।
ବ୍ରାହ୍ମପିଙ୍ଗା—ବି. ରୌପ୍ୟ, ରୂପା ।
ବ୍ରାହ୍ମପୁରାଣ—ବି. ବ୍ରହ୍ମପୁରାଣ, ପୁରାଣବିଶେଷ ।
ବ୍ରାହ୍ମବିବାହ—ବି. ପ୍ରାଚୀନ କାଳରେ ହିନ୍ଦୁମାନଙ୍କର ବିବାହ ପ୍ରଥାବିଶେଷ (ଏଥିରେ ବରକୁ ଆହ୍ୱାନପୂର୍ବକ ତାଙ୍କ ହସ୍ତରେ ଯଥାଶକ୍ତି ସାଳଙ୍କୃତା କନ୍ୟାକୁ ବେଦୋକ୍ତ ବିଧିରେ ପ୍ରଦାନ) ।
ବ୍ରାହ୍ମମନ୍ଦିର—ଗ୍ରା.ବି.ବ୍ରାହ୍ମ ଧର୍ମାବଲମ୍ବୀମାନେ ଯେଉଁଠାରେ ସମବେତ ହୋଇ ଉପାସନା କରନ୍ତି ।
ବ୍ରାହ୍ମମୁହୂର୍ତ୍ତ—ବି. ରାତ୍ରିର ଶେଷ ଦୁଇଦଣ୍ଡ ସମୟ, ସୂର୍ଯ୍ୟୋଦୟର ଅବ୍ୟବହିତ ଦୁଇଦଣ୍ଡ କାଳ, ମତାନ୍ତରେ ଚାରିଦଣ୍ଡକାଳ ।
ବ୍ରାହ୍ମସଂହିତା—ବି. ପ୍ରାଚୀନ ହିନ୍ଦୁ ଜ୍ୟୋତିଷ ଗ୍ରନ୍ଥବିଶେଷ ।
ବ୍ରାହ୍ମସମାଜ—ଗ୍ରା.ବି. ରାଜା ରାମମୋହନ ରାଓଙ୍କ ପ୍ରବର୍ତ୍ତିତ ଓ କେଶବଚନ୍ଦ୍ରସେନଙ୍କଦ୍ୱାରା ପରିବର୍ତ୍ତିତ ନିରାକାରେଶ୍ୱରବାଦୀ ଧର୍ମସମାଜବିଶେଷ ।
ବ୍ରାହ୍ମସମାଜୀ—ଗ୍ରା. ବିଂ. ବ୍ରାହ୍ମସମାଜ ସମ୍ବନ୍ଧୀୟ,(ବି)ବ୍ରାହ୍ମଣ ସମାଜ ବିଧିରେ ଉପାସନା କରିବା ବ୍ୟକ୍ତି ।
ବ୍ରାହ୍ମହୁତ—ବି. (ବ୍ରାହ୍ମ + ହୁତ) ଅତିଥି ସେବା, ଆତିଥେୟତା ।
ବ୍ରାହ୍ମିକା—ବି. ବ୍ରାହ୍ମଣଖାଡ଼ିଆ ଗୁଳ୍ମ, (ଗ୍ରା.ବି) ବ୍ରାହ୍ମ ଧର୍ମାବଲମ୍ବିନୀ ସ୍ତ୍ରୀ ।
ବ୍ରାହ୍ମୀ—ସ୍ତ୍ରୀ. ବି. (ବ୍ରହ୍ମନ୍ + ଈ) ଦୁର୍ଗା, ବ୍ରହ୍ମାଙ୍କର ବିଶ୍ୱସର୍ଜନ ଶକ୍ତି,ଶିବଙ୍କର ଅଷ୍ଟମାତୃକାନ୍ତର୍ଗତ ମାତୃକାବିଶେଷ, ସରସ୍ୱତୀ, ବ୍ରାହ୍ମଣପତ୍ନୀ, ରୋହିଣୀ ନକ୍ଷତ୍ର,ପ୍ରାଚୀନ ବ୍ରାହ୍ମ ବିବାହାନୁସାରେ ପ୍ରଦତ୍ତା କନ୍ୟା, ମାଇବେଙ୍ଗ, କାଇ, ଭାର୍ଗୀ, ହିଡ଼ିମିରିଶାଗ, ବାରାହୀକନ୍ଦ, ସୋମଲତା, ତୋଡ଼ିମାଛ, ମହାଜ୍ୟୋତିଷ୍ମତୀ ଲତା,ଅଣ୍ଡଶପର୍ଣ୍ଣୀ, ଏକପ୍ରକାର ଶାଗ, ବ୍ରାହ୍ମଣୀ ନଦୀ ।
ବ୍ରାହ୍ମୀକନ୍ଦ—ବି. ବାରାହୀକନ୍ଦ ।
ବ୍ରାହ୍ମୀଗାୟତ୍ରୀ—ବି, ୩୬ ବର୍ଣ୍ଣବିଶିଷ୍ଟ ବୈଦିକ ଛନ୍ଦୋବିଶେଷ ।
ବ୍ରାହ୍ମୀଲିପି—ବି. ପ୍ରାଚୀନ ବର୍ଣ୍ଣ ଯହିଁରୁ ଉତ୍ପନ୍ନ ଭାରତର ପ୍ରାଚୀନ ବର୍ଣ୍ଣମାଳା ।
ବ୍ରାହ୍ମୀଶାକ—ବି. ଜଳାଭୂମିରେ ଜନ୍ମିବା ଏକପ୍ରକାର ଶ୍ରେଷ୍ଠ ଲତାଶାଗ ।
ବ୍ରାହ୍ମ୍ୟ—ବିଂ.( ବ୍ରହ୍ମ + ଯ)ବ୍ରହ୍ମ ସମ୍ବନ୍ଧୀୟ (ବି) ବିସ୍ମୟ, ଅଲୌକିକ ।
ବ୍ରିଟନ୍—ଯା.ବି. ବ୍ରିଟେନବାସୀ ବ୍ୟକ୍ତି ।
ବ୍ରିଟିଶ୍—ଯା. ବିଂ. ଇଂଲଣ୍ଡ ସମ୍ବନ୍ଧୀୟ, ଇଂରାଜୀ,ଇଂଲଣ୍ଡ ଓ ସ୍କଟଲଣ୍ଡ ସମ୍ବନ୍ଧୀୟ
ବ୍ରିଟିଶକେଶରୀ—ଯା.ବି. ଇଂରାଜ ଜାତି
ବ୍ରିଟିଶଗଭର୍ଣ୍ଣମେଣ୍ଟ—ଯା. ବି. ବିଲାତି ସରକାର ।
ବ୍ରିଟିଶସାମ୍ରାଜ୍ୟ—ଗ୍ରା.ବି. ଇଂରାଜ ଜାତିଙ୍କ ଶାସିତ ପୃଥିବୀବ୍ୟାପୀ ରାଜ୍ୟ ।
ବ୍ରୀଡ଼(ଡ଼ା)—ବି. (ବ୍ରୀଡ଼୍ + ଭା.ଅ + ଆ) ଲଜ୍ଜା, ଲାଜ, ଶରମ ।
ବ୍ରୀଡ଼ନ—ବି. (ବ୍ରୀଡ଼୍ + ଭା.ଅନ)ଲଜ୍ଜା ।
ବ୍ରୀଡ଼ାକର—ବିଂ. (ବ୍ରୀଡ଼ା + କୃ + କ.ଅ) ଲଜ୍ଜାଜନକ, ଯାହା ମନୁଷ୍ୟକୁ ଲଜ୍ଜିତ କରାଏ ।
ବ୍ରୀଡ଼ାବନତ—ବିଂ. (୭ତତ୍) ଲାଜନମ୍ର, ଲଜ୍ଜାରେ ଅବନତ, ଲାଜରେ ମୁହଁ ଟେକି ନପାରିବା ।
ବ୍ରୀଡ଼ାବିହୀନ—ବିଂ. (୩ତତ୍)ନିର୍ଲ୍ଲଜ ।
ବ୍ରୀଡ଼ିତ—ବିଂ.(ବ୍ରୀଡ଼୍ + କ.ତ) ଲଜ୍ଜିତ, (ବି) ଲଜ୍ଜା ।
ବ୍ରୀହି—ବି. (ବ୍ରୀ + ର୍ମ.ହି) ଧାନ୍ୟ, ଧାନ, ବଉଳଧାନ, ଯେଉଁ ଶସ୍ୟରୁ ଡାଲି ହୁଏ, ରବିଶସ୍ୟ, ମାଷ, ବିରିନାମକ ଶସ୍ୟ । [ ଶସ୍ୟଯୁକ୍ତ ।
ବ୍ରୀହିକ—ବିଂ.(ବ୍ରୀହି + କ)ଧାନ୍ୟବିଶିଷ୍ଟ,
ବ୍ରୀହିକାଞ୍ଚନ—ବି. ମସୂର ।
ବ୍ରୀହିଧାନ୍ୟ—ବି. ଶାଳିଧାନ୍ୟ ।
ବ୍ରୀହିଭେଦ—ବି. ଶସ୍ୟବିଶେଷ, ଏକପ୍ରକାର ଶସ୍ୟ । [ କ୍ଷେତ୍ର ।
ବ୍ରୀହ୍ୟ—ବି. ( ବ୍ରୀହି + ଈ ) ବ୍ରୀହିଯୁକ୍ତ
ବ୍ରୁବତ୍—ପୁଂ.ବିଂ. ( ବ୍ରୂ + କ.ଅତ୍ ) କହୁଥିବା, (ସ୍ତ୍ରୀ) ବ୍ରୁବତୀ ।
ବ୍ରୁବାଣ—ବିଂ. ( ବ୍ରୂ + କ.ଆନ ) ଯେ କହୁଅଛି, ବକ୍ତା, (ସ୍ତ୍ରୀ) ବ୍ରୁବାଣା ।
ବ୍ରୈହ—ବିଂ. ( ବ୍ରୀହି + ଅ )ବ୍ରୀହିରୁ ପ୍ରସ୍ତୁତ ।
ବ୍ରୈହେୟ—ବି. (ବ୍ରୀହି + ଏୟ)ଧାନ୍ୟାଦି ଜନ୍ମିବାର ଉପଯୁକ୍ତ କ୍ଷେତ୍ର ।
ବ୍ରୋଚ—ଗ୍ରା ବି. ସୁରଟଠାରୁ ୩୬ମାଇଲ ଦୂରବର୍ତ୍ତୀ ସହର ।
ବ୍ଲକ—ଯା.ବି. ବଡ଼ଖଣ୍ଡ, ଭୂମିର ଚତୁଷ୍କୋଣ ଖଣ୍ଡ ।



ଭ—ବ୍ୟଞ୍ଜନ ବର୍ଣ୍ଣମାଳାର ଚତୁର୍ବିଂଶତିତମ ବର୍ଣ୍ଣ, 'ପ' ବର୍ଗର ଚତୁର୍ଥ ବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ଓଷ୍ଠ,ଦୁଇ ଓଷ୍ଠ ମଧ୍ୟରେ ଶ୍ୱାସବାୟୁ ସବେଗରେ ବାହାରିଗଲେ ଏହା ଉଚ୍ଚାରିତ ହୁଏ, ( ଭା.ଭା + କ.ଅ ) ନକ୍ଷତ୍ର, ଗ୍ରହ, ରାଶି, ଶୁକ୍ରାଚାର୍ଯ୍ୟ, ( ଭ୍ରମ + ଭା.ଅ ) ଭ୍ରାନ୍ତି, (ଭଣ୍ + କ.ଅ) ଭ୍ରମର, ଛନ୍ଦଶାସ୍ତ୍ରୋକ୍ତ ଆଦି ଗୁରୁ ଅନ୍ତ ଲଘୁଦ୍ୱୟ ବର୍ଣ୍ଣତ୍ରୟ ।
ଭଅଁ—ଗ୍ରା. ଅବ୍ୟ. ଭ୍ରମରାଦିଙ୍କର ଶବ୍ଦ ।
ଭଅଁର—ଗ୍ରା.ବି.(ଭ୍ରମର ଶବ୍ଦଜ) ଭ୍ରମର, ଭୃଙ୍ଗ, କାଠଆଦିରେ ରନ୍ଧ୍ର କରିବାର ଯନ୍ତ୍ରବିଶେଷ ।
ଭଅଁରମାରି—ଗ୍ରା.ବି. ଭ୍ରମରମାରି, ଭ୍ରମରାରି ବୃକ୍ଷ, ଏ କୁଷ୍ଠ ରୋଗରେ ଔଷଧ ରୂପେ ବ୍ୟବହୃତ ହୁଏ ।
ଭଆଣ୍ଡ—ପ୍ରା. (ପୁରୀ) ବି. ଭୋଗମଣ୍ଡପ, ଶ୍ରୀ ଜଗନ୍ନାଥ ଓ ଲିଙ୍ଗରାଜ ମହାପ୍ରଭୁଙ୍କର କୋଠ ଭୋଗ ସଙ୍ଗେ ସାଧାରଣଙ୍କର ଭୋଗ ଯେଉଁ ସ୍ଥାନରେ ସ୍ଥାପିତ ହୋଇ ଦେବତାଙ୍କୁ ଭୋଗ ଲଗାଯାଏ ।
ଭଇଁଚ—ଗ୍ରା. ବି. କଣ୍ଟକ ଗୁଳ୍ମବିଶେଷ ।

ଭଇଁ(ଭଁ)ର—ପ୍ରା.(ସମ୍ବ)ବି. ନଷ୍ଟ, (ବିଂ) କାଳ, (ସ୍ତ୍ରୀ) ଭଉଁରି ।

ଭଇଁଷ(ଷା)—ଗ୍ରା. ବି. ମହିଷ, ମଇଁଷି ।

ଭଇଡ଼—ଗ୍ରା. ବି. ପରିମାଣବିଶେଷ ।

ଭଇମୀ—ଗ୍ରା.ସ୍ତ୍ରୀ.ବି.ଭୈମୀ, ଭୀମରାଜାଙ୍କ କନ୍ୟା, ଦମୟନ୍ତୀ ।

ଭଉଁର—ଗ୍ରା. ବି. କୁନ୍ଦଯନ୍ତ୍ର ।

ଭଉଁରି(ରୀ)—ଗ୍ରା. ବି. (ସଂ-ଭ୍ରମି) ଜଳ-ଭଉଁରି, ମଲମଲି, ଲୋମାବର୍ତ୍ତ, ଡଙ୍ଗାକୁ ପାଣିରେ ଚକ୍ରାକାର ଘେରି କରାଇବା-ରୂପ କ୍ରୀଡ଼ା, କୁନ୍ଦନଚକ୍ର, ପେଟଖିଲ, ମୁଣ୍ଡର ଗୋଲାକାର ଚିହ୍ନ, ଘୋଡ଼ାର ଦେହରେ ଥିବା ଲୋମାବର୍ତ୍ତ, କେଶର ବା ଲୋମର ଭ୍ରମରକ ।

ଭଉଁରିଆ—ଗ୍ରା.ବି. ଭୂସଂକ୍ରାନ୍ତ କାଗଜ-ବିଶେଷ, (ଯେଉଁ କାଗଜରେ ଜମିର ମାପର ବିବରଣ, ଅର୍ଥାତ୍ ଜମିର ଦାଗ, ନମ୍ବର, ଦୀର୍ଘ, ପ୍ରସ୍ଥ, ପରିମାଣ, କିସମ କ୍ଷେତ୍ରଫଳ ଚତୁଃସୀମା ଆଦି ଜମିର ଅବସ୍ଥା ଲେଖାଥାଏ ।

ଭଉଁରିଜାଲ—ଗ୍ରା. ବି. ଖେପିଜାଲ ।

ଭଉଁରିବା—ଗ୍ରା.କ୍ରି. ଭଅଁର ଦ୍ୱାରା ଛିଦ୍ର କରିବା, କୌଣସି ବସ୍ତୁକୁ କୁନ୍ଦରେ ବସାଇ କୁନ୍ଦିବା ।

ଭଂସଃ—ବି. ପାୟୁଃ ।

ଭଁଇସରୋଗଡ଼—ବି. ରାଜପୁତାନାର ଉଦୟପୁର ରାଜ୍ୟର ଅନ୍ତର୍ଗତ ଗୋଟିଏ ନଗର ଓ ଗିରିଦୁର୍ଗ ।

ଭଉଣୀ—ଗ୍ରା. ବି. ଭଗିନୀ, ସ୍ୱସା, ପିଉସୀ, ମାଉସୀ, ମାମୁଆଦିଙ୍କ ଝିଅ ।

ଭଉଣୁ—ଗ୍ରା. ବିଂ. ବନ୍ଧୁ, ବନ୍ଧିତ ।

ଭଏ—ଗ୍ରା. ବି. ଭୟ ।

ଭକ୍‌ଭକ୍—ଗ୍ରା. ଅବ୍ୟ. ଶବ୍ଦବିଶେଷ, ମଦ୍ୟପାୟୀର ମୁଖରୁ ନିର୍ଗତ ତୀବ୍ର ଗନ୍ଧ, ବମନୋଦ୍ଗାର, ବେଙ୍ଗର ରବ, ବକ-ବକ, ନିମ୍ବୁଡ଼ିଆ ବ୍ୟକ୍ତି ପରି ଗୁନ୍ଥୁଁ-ରହିବା । [ ବନ୍ଧା ହରିବା ।

ଭକ୍‌ଭକ୍‌ହେବା—ପ୍ରା.(ଯୋଜ)କ୍ରି.ଘୋଳା-

ଭକକ୍ଷା—ସ୍ତ୍ରୀ. ବି. ନକ୍ଷତ୍ରକକ୍ଷା ।

ଭକତ—ଗ୍ରା. ପୁଂ. ବିଂ. ( ଭକ୍ତଶବ୍ଦଜ ) ଭକ୍ତ, (ବି) ଉତ୍ତର ପଶ୍ଚିମ ପ୍ରଦେଶର ମଧ୍ୟ ଓ ନିମ୍ନଶ୍ରେଣୀର ଶାକ୍ତ ଉପାସକ-ବିଶେଷ, ବିହାରବାସୀ ଯେସୁଆସ୍ତି ବୈଶ୍ୟମାନଙ୍କ ବଂଶୋପାଧିବିଶେଷ, ରାଜପୁତାନାର ଏକ ଜାତି, ଆଗ୍ରା ଜିଲ୍ଲା-ବାସୀ ନର୍ତ୍ତକୀ ସମ୍ପ୍ରଦାୟବିଶେଷ ।

ଭକତି—ଗ୍ରା.ବି. (ସଂ-ଭକ୍ତି)ଭକ୍ତି ଦେଖ ।

ଭକାର—ବି. (ଭ + କାର) 'ଭ' ସ୍ୱରୂପ ବର୍ଣ୍ଣ ବା ଅକ୍ଷର, 'ଭ'ମାତ୍ରା, 'ଭ'ସଂଜ୍ଞା, କୁମ୍ଭାର ଚକ, (ଗ୍ରା.ବି) ଗମନ ।

ଭକଆ—ପ୍ରା. (ସମ୍ବ)ବି. ଆଳୁଅ ।

ଭକୁ—ଯା. ବିଂ. ଢିଲା, ବୁଦ୍ଧିହୀନ, କିଂ-କର୍ତ୍ତବ୍ୟବିମୂଢ଼ ।

ଭକୂଟ—କ୍ଲୀ. ବି. ( ଜ୍ୟୋତିଷ ) ବିବାହ ଗଣନାରେ ଦମ୍ପତୀଙ୍କର ଶୁଭାଶୁଭସୂଚକ ରାଶିସମୂହ । [ ପୋକ ।

ଭକ୍କା—ସ୍ତ୍ରୀ. ବି. ଝିଲ୍ଲୀକୀଟ, ଝିଙ୍କାରି-

ଭକ୍କୁ(ଡ଼)ର—ବି. ଖାକୁର ମାଛ ।

ଭକ୍ତ—ବି. ( ଭଜ୍ + ତ ) ଭକ୍ତିଯୁକ୍ତ ବ୍ୟକ୍ତି, ସେବକ, ପୂଜକ, ଶିଷ୍ୟ, ଅନ୍ନ. ଭାତ, ଓଦନ, ଧନ, (ବିଂ-କ.ତ)ଭକ୍ତି-ଯୁକ୍ତ, ଅନୁରାଗୀ, ଅନୁରକ୍ତ, (ମି.ତ) ବିଭକ୍ତ, ଭଙ୍ଗାହୋଇଥିବା,(ସ୍ତ୍ରୀ)ଭକ୍ତା ।

ଭକ୍ତକଂସ—କ୍ଲୀ.ବି.ଭକ୍ତାହରଣାର୍ଥ ପାତ୍ର, ଭୋଜନ ପାତ୍ର, ଖାଇବା କଂସା ।

ଭକ୍ତକର—ପୁଂ.ବି (ଭକ୍ତ + କୃ + କ.ଅ) କୃତ୍ରିମ ଧୂପ,(ବିଂ)ଭକ୍ତି କାରକ,ପାଚକ, ଯେ ଭାତ ରାନ୍ଧେ ।

ଭକ୍ତକାର—ପୁଂ.ବି(ଭକ୍ତ+କାର)ପାଚକ. ସୁଆର, ସୂପକାର, ରୋଷେଇଆ, ଯେ ଭାତ ରାନ୍ଧେ ।

ଭକ୍ତକୃତ୍ୟ—କ୍ଲୀ.ବି.ଭୋଜନର ଆୟୋଜନ ।

ଭକ୍ତଚରଣଦାସ—ଗ୍ରା. ବି. ମଥୁରାମଙ୍ଗଳ ଓଡ଼ିଆ କାବ୍ୟର ରଚୟିତା ।

ଭକ୍ତଛନ୍ଦ—ବି.କ୍ଷୁଧା, ଆକାଙ୍‌କ୍ଷା ।

ଭକ୍ତଜା—ସ୍ତ୍ରୀ. ବି. ଅମୃତ ।

ଭକ୍ତଡ଼ାକ—ଗ୍ରା.ବି.(୬ତତ୍) ପ୍ରଭୁଙ୍କ ପ୍ରତି ଭକ୍ତର ଆହ୍ୱାନ ।

ଭକ୍ତତାରକ—ବିଂ. (ଭକ୍ତ+ତୃ+କ. ଅକ) ଭକ୍ତୋଦ୍ଧାରକାରୀ ।

ଭକ୍ତତୂର୍ଯ୍ୟ—କ୍ଲୀ.ବି (ଭକ୍ତ+ତୂର୍ଯ୍ୟ) ରାଜା ଓ ଦେବତାଙ୍କର ଭୋଜନ ସମୟରେ ବଜାଇବା ତୂରୀ ବାଦ୍ୟବିଶେଷ ।

ଭକ୍ତଦାସ—ପୁଂ. ବିଂ. (୬ତତ୍) ପରାନ୍ନ ପ୍ରତିପାଳିତ, ଯେ ମୁଠାଏ ଖାଇବା ଆଶାରେ ଭକ୍ତି ଦେଖାଇଥାଏ, ଅନ୍ନ-ଦାସ,ପରାଧୀନ,ଭକ୍ତର ଭକ୍ତ, ଦାସାନୁ-ଦାସ, ଅତି ବିନୀତ ଭକ୍ତ ।

ଭକ୍ତଦ୍ୱେଷ—ବି.(୬ତତ୍)ଅନ୍ନରେ ଅରୁଚି, ଭଗବଦ୍ଭକ୍ତ ପ୍ରତି ଦ୍ୱେଷ ।

ଭକ୍ତଦ୍ୱେଷୀ—ପୁଂ.ବିଂ.(ଭକ୍ତ+ଦ୍ୱିଷ୍+ ଇନ୍) ଭକ୍ତଦ୍ୱେଷଯୁକ୍ତ ।

ଭକ୍ତନିଷ୍ଠ—ବିଂ.ନିଷ୍ଠାବାନ୍ ଭକ୍ତ, ଯାହାର ଭକ୍ତ ସେବାରେ ବିଶେଷ ମନୋଯୋଗ ଥାଏ ।

ଭକ୍ତପୁଲାକ—ପୁଂ. ବି. ସିକ୍ଥ, ଅନ୍ନମଣ୍ଡ, ପେଜ,ଗ୍ରାସାଚ୍ଛାଦନ ଯୋଗ୍ୟ ଅନ୍ନପିଣ୍ଡ ।

ଭକ୍ତପ୍ରାଣ—ପୁଂ. ବିଂ. (ବ.ବ୍ରୀ) ଭକ୍ତପ୍ରତି ଅନୁରକ୍ତ, ଭକ୍ତବତ୍ସଳ, (ସ୍ତ୍ରୀ) ପ୍ରାଣା, (ବିଂ-୬ତତ୍) ଭକ୍ତର ଭକ୍ତିଯୁକ୍ତ ପ୍ରାଣ ।

ଭକ୍ତମଣ୍ଡ—ବି. (୬ତତ୍) ଭାତର ପେଜ ।

ଭକ୍ତମାଳ—ଗ୍ରା. ବି. ଖଣ୍ଡିଏ ପ୍ରାଚୀନ ଧର୍ମ-ଗ୍ରନ୍ଥ । [ କୃଶ ଭକ୍ତ ।

ଭକ୍ତରଙ୍କ—ଗ୍ରା. ବି. ଉପବାସ ଯୋଗୁଁ

ଭକ୍ତରକ୍ଷକ—ବିଂ.ଯେ ଭକ୍ତକୁ ରକ୍ଷାକରେ

ଭକ୍ତରାଜ—ପୁଂ.ବିଂ. (ଭକ୍ତ+ରାଜ)ଭକ୍ତ-ଶ୍ରେଷ୍ଠ ।

ଭକ୍ତରୁଚି—ବି. କ୍ଷୁଧା, ଭୋଜନରେ ବଳ-ବତୀ ଇଚ୍ଛା ।

ଭକ୍ତରୋଚନ—ବି. କ୍ଷୁଧାର ଉଦ୍ରେକ ।

ଭକ୍ତବତ୍ସଳ—ପୁଂ. ବି. (୭ତତ୍)ଭକ୍ତପ୍ରତି ଅନୁରକ୍ତ, (ବି) ଭଗବାନ୍, (ସ୍ତ୍ରୀ)ଭକ୍ତ-ବତ୍ସଳା । [ ସ୍ନେହ ।

ଭକ୍ତବତ୍ସଳତା—ବି. ଅନୁରକ୍ତ ବ୍ୟକ୍ତିପ୍ରତି

ଭକ୍ତବିପାକବଟୀ—ବି. ହଜମି ଔଷଧ ବଟିକାବିଶେଷ ।

ଭକ୍ତଶାଳା—ସ୍ତ୍ରୀ. ବି. ପାକଶାଳା, ରୋଷା-

ଘର; ରୋଷେଇ ଘର, ଭକ୍ତମାନଙ୍କର ଧର୍ମୋପଦେଶ ଶୁଣିବାର ସ୍ଥାନ, ଆବେଦନକାରୀମାନଙ୍କର ସମ୍ବର୍ଦ୍ଧନା ଗୃହ ।

**ଭକ୍ତସିକ୍ଥ**—ବି. ଅନ୍ନମଣ୍ଡ, ଭାତର ପେଜ ।

**ଭକ୍ତାଦାୟ**—ପୁଂ. ବି. ଧାନ୍ୟାଦିମାନଙ୍କ ଦ୍ୱାରା ସଂଗୃହୀତ କର ।

**ଭକ୍ତାଧୀନ**—ପୁଂ.ବିଂ.ଭକ୍ତର ବଶୀଭୂତ, (ସ୍ତ୍ରୀ) ଭକ୍ତାଧୀନା ।

**ଭକ୍ତାନୁରକ୍ତ**—ପୁଂ. ବିଂ. ଭକ୍ତବତ୍ସଳ, (ସ୍ତ୍ରୀ) ଭକ୍ତାନୁରକ୍ତା ।

**ଭକ୍ତାଭିଳାଷ**—ବି.ଅନ୍ନ ପ୍ରତି ଇଚ୍ଛା, ଭଗବଦ୍‌ଭକ୍ତ ଇଚ୍ଛା ।

**ଭକ୍ତାଶ୍ରୟ**—ବିଂ.ଯେ ଭକ୍ତର ଆଶ୍ରୟ ସ୍ଥଳ, (ବି) ଭକ୍ତର ଆଶ୍ରୟ ସ୍ଥଳ ।

**ଭକ୍ତି**—ବି. (ଭଜ୍+ତି) ଅଂଶ, ବିଭାଗ, ସେବା, ଗୌଣୀବୃତ୍ତି, ଭଙ୍ଗୀ,ଉପଚାର, ପୂଜ୍ୟ ପ୍ରତି ଅନୁରାଗ ବା ଶ୍ରଦ୍ଧା,କୀର୍ତ୍ତନ, ରାଜାଙ୍କ ପ୍ରତି ଅନୁରାଗ, ଅଳଂକାର, ରଚନା, ଅଙ୍ଗ, ଅବୟବ, ଅନୁରାଗ, ସ୍ନେହ, ସ୍ମରଣ, ପୂଜା, ସ୍ତବ, ଆତ୍ମସମର୍ପଣ, ସମ୍ୟ ଭାବରେ ସମ୍ଭାଷଣ ।

**ଭକ୍ତିକର**—ବିଂ. ( ଭକ୍ତି+କୃ+କ.ଅ ) ଭକ୍ତର ଉଦ୍ରେକକାରୀ, ଭକ୍ତିଯୋଗ୍ୟ, ଯାହାକୁ ଦେଖିଲେ ଭକ୍ତି ଉଦୟ ହୁଏ ।

**ଭକ୍ତିକରିବା**—ଗ୍ରା. କ୍ରି. ହୃଦୟରେ ଶ୍ରଦ୍ଧା କରିବା ।

**ଭକ୍ତିଗ୍ରନ୍ଥ**—ବି. (କ.ଧା) ଯେଉଁ ଗ୍ରନ୍ଥରେ ଭକ୍ତି ବିଷୟକ ଆଲୋଚନା କରାଯାଇଅଛି, ଶ୍ରୀମଦ୍‌ଭାଗବତାଦି ଗ୍ରନ୍ଥ ।

**ଭକ୍ତିଚିହ୍ନ**—କ୍ଲୀ. ବି. (୬ତତ୍) ଭକ୍ତିର ଲକ୍ଷଣ, ବନ୍ଦନ, ଅନୁରାଗାଦି ।

**ଭକ୍ତିଚ୍ଛେଦ**—ପୁଂ.ବି. ବିଷ୍ଣୁଭକ୍ତର ବିଶିଷ୍ଟ ଚିହ୍ନ,ତିଳକାଦି ରଚନା ଭଙ୍ଗୀବିଶେଷ ।

**ଭକ୍ତିତତ୍ତ୍ୱ**—ବି. (୬ତତ୍) ଭକ୍ତି ସମ୍ବନ୍ଧେ ନାନା ତଥ୍ୟ ।

**ଭକ୍ତିଦାତା**—ପୁଂ. ବିଂ. ଯାହା ମନରେ ଭକ୍ତି ରସ ଉତ୍ପାଦନ କରାଏ ।

**ଭକ୍ତିପଥ**—ବି.(୬ତତ୍) ହିନ୍ଦୁଶାସ୍ତ୍ର ନିର୍ଦ୍ଦିଷ୍ଟ ଭକ୍ତିର ନବଧା ସୋପାନ ।

**ଭକ୍ତିପର**—ପୁଂ. ବିଂ. ଏକାନ୍ତ ଭକ୍ତ, (ସ୍ତ୍ରୀ) ଭକ୍ତିପରା ।

**ଭକ୍ତିପୂତ**—ପୁଂ.ବିଂ(୩ତତ୍) ଭକ୍ତିଯୋଗୁଁ ନିର୍ମଳୀକୃତ (ହୃଦୟ), (ସ୍ତ୍ରୀ)ଭକ୍ତିପୂତା ।

**ଭକ୍ତିପୂର୍ଣ୍ଣ**—ବିଂ. (୬ତତ୍) ଭକ୍ତିରସରେ ପୂର୍ଣ୍ଣ ।

**ଭକ୍ତିପୂର୍ବକ**—କ୍ରି. ବିଂ. ଭକ୍ତିସହିତ, ଭକ୍ତିଯୁକ୍ତ ଭାବରେ, ଭକ୍ତିପୁରଃସର ।

**ଭକ୍ତିପ୍ରବଣ**—ବିଂ.(ଭକ୍ତି + ପ୍ରବଣ)ଭକ୍ତିଦ୍ୱାରା ବିନୀତ, ଭକ୍ତିରସଦ୍ୱାରା ଦ୍ରବୀଭୂତ (ହୃଦୟ) ।

**ଭକ୍ତିପ୍ଲୁତ**—ବିଂ. (୩ତତ୍) ଭକ୍ତି ଦ୍ୱାରା ପୂର୍ଣ୍ଣ, ଭକ୍ତିଦ୍ୱାରା ବ୍ୟାପ୍ତ ।

**ଭକ୍ତିଭରେ**—କ୍ରି. ବିଂ. ଅତ୍ୟନ୍ତ ଭକ୍ତିର ସହିତ, ଶ୍ରଦ୍ଧାତିଶଯ୍ୟ ସହକାରେ,ଅତିଶୟ ଭକ୍ତିଯୁକ୍ତ ହୋଇ ।

**ଭକ୍ତିଭାକ୍**—ପୁଂ. ବିଂ. (ଭକ୍ତି+ଭଜ୍+କ୍ୱିପ୍) ଭକ୍ତିର ପାତ୍ର ।

**ଭକ୍ତିଭାଜନ**—ପୁଂ. ବିଂ. (୬ତତ୍) ଭକ୍ତିର ପାତ୍ର, ଯାହାକୁ ଭକ୍ତି କରିବା କର୍ତ୍ତବ୍ୟ ।

**ଭକ୍ତିଭାବ**—ବି.ଦେବତା ବିଷୟିଣୀ ରତି, ଗୁରୁଜନଙ୍କ ପ୍ରତି ଅନୁରାଗ ।

**ଭକ୍ତିଭାବେ**—କ୍ରି. ବିଂ. (ବ.ବ୍ରୀ) ଭକ୍ତିସହକାରେ, ଭକ୍ତିଯୁକ୍ତ ହୋଇ ।

**ଭକ୍ତିମାନ୍**—ପୁଂ. ବିଂ. ( ଭକ୍ତି+ମତ୍ ) ଭକ୍ତିଯୁକ୍ତ, ଭକ୍ତ, ଭକ୍ତିଶୀଳ, ( ସ୍ତ୍ରୀ ) ଭକ୍ତିମତୀ ।

**ଭକ୍ତିମୂଳକ**—ବିଂ. ( ବ.ବ୍ରୀ ) ଯାହା ଭକ୍ତି ରସରେ ପୂର୍ଣ୍ଣ, ଭକ୍ତିରସ ଦ୍ୱାରା ପ୍ରଣୋଦିତ ।

**ଭକ୍ତିଯୋଗ**—ବି. କେବଳ ଭକ୍ତିମାର୍ଗ ଅବଲମ୍ବନ ପୂର୍ବକ ଭଗବତ୍ ପ୍ରାପ୍ତିରୂପ ସାଧନା, ଭକ୍ତିମାର୍ଗ ଦ୍ୱାରା ଭଗବାନଙ୍କ ଆରାଧନା ।

**ଭକ୍ତିଯୋଗେ**—କ୍ରି. ବିଂ. ଭକ୍ତିସହିତ, ଶ୍ରଦ୍ଧାସହକାରେ ।

**ଭକ୍ତିରସ**—ପୁଂ. ବି. ଭକ୍ତିରୂପ ଆନ୍ତରିକ ଭାବ, ଯେଉଁ ରସର ସ୍ଥାୟିଭାବ ଭକ୍ତି ।

**ଭକ୍ତିରସାମୃତସିନ୍ଧୁ**—ବି. ଶ୍ରୀରୂପଗୋସ୍ୱାମିକୃତ ଗ୍ରନ୍ଥବିଶେଷ ।

**ଭକ୍ତିରସାୟନ**—କ୍ଲୀ. ବି. ବୈଷ୍ଣବଗ୍ରନ୍ଥ, ମଧୁସୂଦନ ସରସ୍ୱତୀ ପ୍ରଣୀତ ଭକ୍ତିଗ୍ରନ୍ଥ ।

**ଭକ୍ତିରାଗ**—ବି. ଭକ୍ତିର ପୂର୍ବାନୁରାଗ ।

**ଭକ୍ତିଲ**—ପୁଂ. ବି. (ଭକ୍ତି+ଲ) ଉତ୍ତମ ଘୋଡ଼ା, (ବିଂ) ଭକ୍ତିଦାତା, ( ସ୍ତ୍ରୀ ) ଭକ୍ତିଲା ।

**ଭକ୍ତିବାଦ**—ପୁଂ. ବି. (୬ତତ୍) ଜ୍ଞାନମାର୍ଗ ଓ କର୍ମମାର୍ଗ ଅପେକ୍ଷା ଭକ୍ତିମାର୍ଗ ଉତ୍କୃଷ୍ଟ ଏହା ପ୍ରତିପାଦନ, ଭକ୍ତିକୀର୍ତ୍ତନ ।

**ଭକ୍ତିବିଭେଦ**—ଗ୍ରା. ବିଂ. ଯାହା ଭକ୍ତିବିଷୟକୁ ବିଭେଦ କରିଅଛି, ଅର୍ଥାତ୍ ବିଶଦ ଭାବରେ ବ୍ୟାଖ୍ୟାକରି ବୁଝାଇ ଦିଆହୋଇଅଛି ।

**ଭକ୍ତିବିହ୍ୱଳ**—ବିଂ. ( ୬ତତ୍ ) ଭକ୍ତିର ପ୍ରାବଲ୍ୟରେ ବିବଶ,ଭକ୍ତିରେ ଅଭିଭୂତ ।

**ଭକ୍ତିଶୂନ୍ୟ**—ବିଂ. (୩ତତ୍) ଯାହାର ଭକ୍ତି ନ ଥାଏ, ଅଭକ୍ତ ।

**ଭକ୍ତିସଞ୍ଚାର**—ବି. (୬ତତ୍) ହୃଦୟରେ ଭକ୍ତିଭାବର ଉଦୟ ।

**ଭକ୍ତିସୂଚକ**—ବିଂ. ଯାହାଦ୍ୱାରା ଆନ୍ତରିକ ଭକ୍ତି ସୂଚିତ ହୁଏ ।

**ଭକ୍ତିସୂତ୍ର**—କ୍ଲୀ.ବି. ଶାଣ୍ଡିଲ୍ୟ ମୁନି ପ୍ରଣୀତ ଗ୍ରନ୍ଥବିଶେଷ ।

**ଭକ୍ତିସ୍ରୋତ**—କ୍ଲୀ. ବି. (୬ତତ୍) ସ୍ରୋତ ଆକାରରେ ପ୍ରବାହିତ ଭକ୍ତି ।

**ଭକ୍ତୋଦ୍ଦେଶକ**—ପୁଂ.ବି. ବୌଦ୍ଧ ସଂଘାରାମାଦିମାନଙ୍କରେ ନିଯୁକ୍ତ କର୍ମଚାରୀ ।

**ଭକ୍ତୋପସାଧକ**—ପୁଂ. ବି. ( ୬ତତ୍ ) ପାଚକ, ରୋଷେଇଆ, ପରିବେଷକ, ପରଷୁଣି ।

**ଭକ୍ଷ**—ବିଂ. (ଭକ୍ଷ୍+ର୍ମ.ଅ) ଆହାର୍ଯ୍ୟ, ଭକ୍ଷଣୀୟ(ପଦାର୍ଥ),ଖାଇବାର ଯୋଗ୍ୟ, (ବି) ଖାଦ୍ୟଦ୍ରବ୍ୟ,ଉଚିତ ଖାଦ୍ୟ,(ଭା.ଅ) ଭୋଜନ ।

**ଭକ୍ଷକ**—ପୁଂ. ବିଂ. ( ଭକ୍ଷ୍+କ.ଅକ ) ଖାଦକ, ଭୋଜନକାରୀ, ଭୋକ୍ତା, (ସ୍ତ୍ରୀ) ଭକ୍ଷିକା ।

ଭକ୍ଷ(କ୍ଷ୍ୟ)କାର—ପୁଂ.ବ. (ଭକ୍ଷ୍+କୃ+କ.ଅ) ଆପୂପିକ, ଯେ ଖାଦ୍ୟଦ୍ରବ୍ୟ ବିକିକରେ, ଗୁଡ଼ିଆ, ହୋଟେଲବାଲା।
ଭକ୍ଷଟକ—ବ. (ଭକ୍ଷ୍+ଅଟ୍+କ) କ୍ଷୁଦ୍ର ଗୋକ୍ଷୁରକ। [ ଖାଇବା।
ଭକ୍ଷଣ—କ୍ଲୀ.ବ.(ଭକ୍ଷ୍+ଭା.ଅନ) ଭୋଜନ,
ଭକ୍ଷଣୀୟ—ବିଂ. ( ଭକ୍ଷ୍+ମି.ଅନୀୟ ) ଖାଇବାଯୋଗ୍ୟ, ଭକ୍ଷ୍ୟ, (ବି) ଭକ୍ଷ୍ୟଦ୍ରବ୍ୟ, ଖାଦ୍ୟଦ୍ରବ୍ୟ।
ଭକ୍ଷ(କ୍ଷ୍ୟ)ପତ୍ରା(ତ୍ରୀ)—ବ. (ବ,ସ୍ତ୍ରୀ)ନାଗବଲ୍ଲୀ, ପାନଗଛ।
ଭକ୍ଷପାନ—ଗ୍ରା. ବ. ଆହାର, ଭୋଜନ, ଭୋଜନ ଓ ପାନ, ଖାଦ୍ୟଦ୍ରବ୍ୟ ଓ ପାନୀୟ ଦ୍ରବ୍ୟ।
ଭକ୍ଷ(କ୍ଷ୍ୟ)ଭୋଜନ—କ୍ଲୀ. ବ. ଭକ୍ଷଦ୍ରବ୍ୟ, ଖାଇବା, ଉପବାସାଦିରେ ନିଜର କୁଟୁମ୍ବ ଓ ବନ୍ଧୁମାନଙ୍କୁ ଖାଇବାକୁ ଦେବା, ଜାତିଗତ, ସାମାଜିକ ଅନୁଷ୍ଠାନରେ ପରସ୍ପରଙ୍କ ଘରେ ଅନ୍ନଭୋଜନ ରୂପ ସମ୍ପର୍କ।
ଭକ୍ଷ(କ୍ଷ୍ୟ)ଭୋକ୍ତା—ଗ୍ରା. ବ. ଯେଉଁ ବ୍ୟକ୍ତିମାନେ କୌଣସି ବ୍ୟକ୍ତିର ଘରେ ଉତ୍ସବାଦି ସମୟରେ ନିମନ୍ତ୍ରିତ ହୋଇ ଅନ୍ନ ଭୋଜନ କରନ୍ତି, ଜାତିଭାଇ।
ଭକ୍ଷୟିତା—ପୁଂ.ବିଂ. (ଭକ୍ଷ୍+ଣିଚ୍+ତୃ) ଭକ୍ଷଣକାରୀ, ଭକ୍ଷିତା, ଯେ ଖୁଆଏ, (ସ୍ତ୍ରୀ) ଭକ୍ଷୟିତ୍ରୀ।
ଭକ୍ଷୟିତବ୍ୟ—ବିଂ.(ଭକ୍ଷ୍+ଣିଚ୍+ତବ୍ୟ) ଭକ୍ଷଣୀୟ, ଭକ୍ଷ୍ୟ, ଖାଦ୍ୟୋପଯୋଗୀ, ଯାହା ଖିଆଯାଏ।
ଭକ୍ଷା(କ୍ଷ୍ୟା)ଭକ୍ଷ୍ୟ—ବ. ଖାଦ୍ୟାଖାଦ୍ୟ ଦ୍ରବ୍ୟ, ଖାଦ୍ୟ ଓ ଅଖାଦ୍ୟ ଦ୍ରବ୍ୟ।
ଭକ୍ଷା(କ୍ଷ୍ୟା)ଶୀ—ଗ୍ରା. ବିଂ. ଭୋଜନପ୍ରିୟ, ଭୋଜନାର୍ଥୀ।
ଭକ୍ଷିତ—ବିଂ. ( ଭକ୍ଷ୍+ମି.ତ ) ଭୁକ୍ତ, ଖାଦିତ, ଯାହା ଖିଆଯାଇଅଛି।
ଭକ୍ଷିତବ୍ୟ—କ୍ଲୀ. ବ. ( ଭକ୍ଷ୍+ତବ୍ୟ ) ଭକ୍ଷ୍ୟ, ଭକ୍ଷଣୀୟ ବସ୍ତୁ, (ବିଂ) ଭକ୍ଷୟିତବ୍ୟ ଦେଖ।
ଭକ୍ଷିତା—ପୁଂ.ବିଂ.(ଭକ୍ଷି+କ.ତୃ)ଭକ୍ଷକ
ଭକ୍ଷିବା—ଗ୍ରା. କ୍ରି. ଖାଇବା।
ଭକ୍ଷୀ—ପୁଂ.ବିଂ.(ଭକ୍ଷ୍+କ.ଇନ୍)ଭକ୍ଷଣକାରୀ, (ସ୍ତ୍ରୀ) ଭକ୍ଷିଣୀ।
ଭକ୍ଷ୍ୟ—ବିଂ. (ଭକ୍ଷ୍+ମି.ଯ) ଭକ୍ଷିତବ୍ୟ, ଭକ୍ଷଣଯୋଗ୍ୟ, ଭକ୍ଷଣୀୟ, ଖାଦ୍ୟ,(ବି) ଖାଦ୍ୟଦ୍ରବ୍ୟ, ଅନିଷିଦ୍ଧ ଖାଦ୍ୟ।
ଭକ୍ଷ୍ୟଦ୍ରବ୍ୟ—ବ. (କ.ଧା) ଖାଦ୍ୟଦ୍ରବ୍ୟ, ଭୋଜନସାମଗ୍ରୀ।
ଭକ୍ଷ୍ୟାବଶିଷ୍ଟ—ବିଂ.(୬ତତ୍ପୁ)ଭୁକ୍ତାବଶିଷ୍ଟ, ଉଚ୍ଛିଷ୍ଟ, ଅଇଣ୍ଠା।
ଭକ୍ଷ୍ୟାବଶେଷ—ବ. (ଭକ୍ଷ୍ୟ+ଅବଶେଷ) ଭୁକ୍ତାବଶିଷ୍ଟ ଦ୍ରବ୍ୟ।
ଭକ୍ଷ୍ୟାଭକ୍ଷ୍ୟବିଚାର—ବ. ଖାଦ୍ୟଦ୍ରବ୍ୟ ଓ ଅଖାଦ୍ୟଦ୍ରବ୍ୟ ସମ୍ବନ୍ଧେ ବିବେଚନା।
ଭକ୍ଷ୍ୟାଲାବୁ—ବ. ରାଜାଲାବୁ, ଲାଉ,ଯେଉଁ ଲାଉ ଖିଆଯାଏ।
ଭଖେଣ୍ଡ୍—ପ୍ରା. (ସମ୍ବଲ)ବ. ଢଗ,ପ୍ରହେଳିକା।
ଭଗ—ପୁଂ. ବ. (ଭଜ୍+ମି.ଅ) ଯୋନି, ସ୍ତ୍ରୀଚିହ୍ନ, ସୂର୍ଯ୍ୟ,ଇଚ୍ଛା,ମାହାତ୍ମ୍ୟ,ଚେଷ୍ଟା, ଯତ୍ନ, ଶକ୍ତି, ଧର୍ମ, ମୋକ୍ଷ, ଗୁହ୍ୟଦେଶ, ଚନ୍ଦ୍ର, ପୂର୍ବାଫାଲ୍‌ଗୁନୀ ନକ୍ଷତ୍ର, ଷଡ଼ୈଶ୍ୱର୍ଯ୍ୟ (ଯଥା—ଜ୍ଞାନ, ବୈରାଗ୍ୟ, ଶ୍ରୀ, ଯଶଃ, ସୌନ୍ଦର୍ଯ୍ୟ, ସୌଭାଗ୍ୟ)।
ଭଗଘ୍ନ—ପୁଂ. ବ. ( ଭଗ+ହନ୍+ଅ ) ମହାଦେବ।
ଭଗଣ—ପୁଂ. ବ. (ଭ+ଗଣ) ନକ୍ଷତ୍ରସମୂହ, ଖଗୋଳରେ କୌଣସି ଗ୍ରହ ଥରେ ବୁଲିବା, (ଛନ୍ଦଃଶାସ୍ତ୍ର) ଆଦ୍ୟବର୍ଣ୍ଣ ଗୁରୁ ଓ ଅନ୍ତ୍ୟ ଦୁଇବର୍ଣ୍ଣ ଲଘୁ ଥିବା ଗଣ।
ଭଗଦତ୍ତ—ପୁଂ. ବ. ପ୍ରାଗ୍‌ଜ୍ୟୋତିଷପୁରର ଅଧିପତି ନରକାସୁର ରାଜାର ଜ୍ୟେଷ୍ଠ ପୁତ୍ର।
ଭଗଦୈବତ—କ୍ଲୀ. ବ. (ବ.ସ୍ତ୍ରୀ) ପୂର୍ବାଫାଲ୍‌ଗୁନୀ ନକ୍ଷତ୍ର।
ଭଗନେତ୍ରଘ୍ନ—ପୁଂ. ବ. ଶିବ।
ଭଗନ୍ଦର—ବ. (ଭଗ+ଦୃ+ଅ) ଗୁହ୍ୟଦେଶରେ ବ୍ରଣରୋଗବିଶେଷ।
ଭଗଭକ୍ତ—ପୁଂ, ବିଂ. ଧନରତ, (ସ୍ତ୍ରୀ) ଭଗଭକ୍ତା।
ଭଗଭକ୍ଷକ—ପୁଂ. ବ. (୬ତତ୍ପୁ) ନାୟକ ଓ ନାୟିକାର ଯୋଟକ, ମଧ୍ୟସ୍ଥ ଭାବେ ନାୟକ ଓ ନାୟିକାଠାରୁ କିଛି ପାଇ ଯେ ଯୁଟାଏ, କୁଣ୍ଡାଣୀ, କୁଟଣୀ।
ଭଗଲ—ବିଂ. ଭଗବ୍ୟାପାର ଗ୍ରାହକ।
ଭଗଲ୍—ପ୍ରା. (ଯାଜ)ବ. ବେଲ, ଥଟା, ଛଳ, କପଟ, ବାହାନା।
ଭଗବନ୍ତ—ପୁଂ. ବ. ବିଷ୍ଣୁପାସକ ବଣିଆଁ ସମ୍ପ୍ରଦାୟବିଶେଷ। [ ଭକ୍ତି।
ଭଗବତ୍‌ପ୍ରେମ—ବ. (୬ତତ୍ପୁ) ଭଗବଦ୍‌
ଭଗବତ୍‌ପ୍ରେମିକ—ପୁଂ. ବିଂ. ଭଗବଦ୍‌ଭକ୍ତ, ଭଗବାନଙ୍କଠାରେ ପ୍ରେମଯୁକ୍ତ, (ସ୍ତ୍ରୀ) ପ୍ରେମିକା। [ ଦେଖ।
ଭଗବତ—ଗ୍ରା. ବ. ଭଗବାନ୍, ଭାଗବତ
ଭଗବତୀ—ସ୍ତ୍ରୀ. ବ. ( ଭଗବତ+ଈ ) ଗୌରୀ, ସରସ୍ୱତୀ, ଗଙ୍ଗା, ଦୁର୍ଗା, (ଗ୍ରା. ବି) ପୁରୁଷୋତ୍ତମର ବାଣପୁରରେ ବିରାଜିତା ଦେବୀ ମୂର୍ତ୍ତି, (ବିଂ) ମାନ୍ୟା, ଷଡ଼ୈଶ୍ୱର୍ଯ୍ୟସମ୍ପନ୍ନା, ଭଗଯୁକ୍ତା।
ଭଗବ(ଦ୍)ଦ୍‌ପୁରାଣ—ବ. ଅଷ୍ଟାଦଶ ସହସ୍ର ଶ୍ଳୋକାତ୍ମକ ଖଣ୍ଡିଏ ମହାପୁରାଣ।
ଭଗବଦୀୟ—ପୁଂ.ବ.ବିଷ୍ଣୁଙ୍କର ଉପାସକ
ଭଗବଦ୍‌ଗୀତା—ସ୍ତ୍ରୀ. ବ. (କ.ଧା) ମହାଭାରତ ଯୁଦ୍ଧରେ ଅର୍ଜୁନ ଓ ଶ୍ରୀକୃଷ୍ଣଙ୍କ ମଧ୍ୟରେ ଅଷ୍ଟାଦଶାଧ୍ୟାୟାତ୍ମକ କର୍ମଯୋଗ, ଜ୍ଞାନଯୋଗ ଓ ଭକ୍ତିଯୋଗସୂଚକ ତତ୍ତ୍ୱ ଉପଦେଶ ଗ୍ରନ୍ଥ।
ଭଗବଦ୍ଦାସ—ବ. ସେକନ୍ଦମ୍ବ କଲ୍ଲୋଳନାମକ ଗୀତଗୋବିନ୍ଦ ଟୀକା ପ୍ରଣେତା।
ଭଗବଦ୍ଦ୍ରୁମ—ପୁଂ.ବ. ମହାବୋଧି ଦ୍ରୁମ, ଅଶ୍ୱତ୍ଥବୃକ୍ଷ।
ଭଗବଦ୍‌ଭକ୍ତ—ପୁଂ. ବ. ଶ୍ରୀକୃଷ୍ଣ, (ବିଂ) ଈଶ୍ୱରପ୍ରେମିକ,ବୈଷ୍ଣବ,(ବି)ଦାକ୍ଷିଣାତ୍ୟବାସୀ ବୈଷ୍ଣବସମ୍ପ୍ରଦାୟ।
ଭଗବଦ୍‌ଭକ୍ତି—ବ. (୬ତତ୍ପୁ) ଈଶ୍ୱରଙ୍କଠାରେ ଭକ୍ତି।

ଭଗବଦ୍ଵିଗ୍ରହ—ବି. (୬ତତ୍ପୁ) ବିଷ୍ଣୁଙ୍କ ମୂର୍ତ୍ତି ।
ଭଗବଦାରାଧନ(ନା)—ବି. (୬ତତ୍ପୁ) ଈଶ୍ଵରୋପାସନା ।
ଭଗବଦାଶ୍ରୟ—ବି. (୬ତତ୍ପୁ)ଭଗବାନଙ୍କଠାରେ ଆସ୍ଥା ।
ଭଗବଦାଶ୍ରିତ—ପୁଂ.ବିଂ. (୬ତତ୍ପୁ)ଭଗବାନଙ୍କୁ ଆଶ୍ରୟ କରିଥିବା, (ସ୍ତ୍ରୀ)ଶ୍ରିତା ।
ଭଗବନ୍—ହେ ଈଶ୍ଵର, ପ୍ରଭୋ, ଭଗବାନ୍ ଶବ୍ଦର ସମ୍ବୋଧନରୂପ ।
ଭଗବନ୍ତ—ଗ୍ରା.ବିଂ.ପୂଜ୍ୟ,(ବି)ଭଗବାନ୍, ଈଶ୍ଵର, ବିଷ୍ଣୁ ।
ଭଗବନ୍ମୟ—ବିଂ. କୃଷ୍ଣାର୍ପିତ ଚିତ୍ତ ।
ଭଗବାନ୍—ପୁଂ.ବିଂ. (ଭଗ+ବତୁ) ଭଗଯୁକ୍ତ, ଐଶ୍ଵର୍ଯ୍ୟାଦି ଷଡ଼୍ଗୁଣଯୁକ୍ତ, ପୂଜ୍ୟ, ମାନ୍ୟ, ଦେବତୁଲ୍ୟ, (ପୁଂ.ବି) ପରମେଶ୍ଵର,ବିଷ୍ଣୁ,ଶ୍ରୀକୃଷ୍ଣ,ବୁଦ୍ଧଦେବ ।
ଭଗବେଦନ—ବିଂ. ଐଶ୍ଵର୍ଯ୍ୟଜ୍ଞାପକ ।
ଭଗଶାସ୍ତ୍ର—କ୍ଲୀ.ବି. କାମଶାସ୍ତ୍ର,ରତିଶାସ୍ତ୍ର ।
ଭଗଃ—କ୍ଲୀ.ବି. ଭଗ ଦେଖ ।
ଭଗହା—ପୁଂ.ବି. ବିଷ୍ଣୁ ।
ଭଗହାରୀ—ପୁଂ. ବି. (ଭଗ+ହୃ+କ. ଇନ୍) ଶିବ ।
ଭଗା—ଗ୍ରା.ବିଂ. ଭଙ୍ଗା, ଭଗ୍ନ ।
ଭଗାକ୍ଷିହା—ପୁଂ.ବି. ଶିବ ।
ଭଗାଙ୍କୁର—ପୁଂ.ବି. (ଭଗ+ଅଙ୍କୁର) ଅର୍ଶରୋଗ, ଯୋନି ଦ୍ଵାରୋପରସ୍ଥ କ୍ଷୁଦ୍ର ମାଂସପିଣ୍ଡ ।
ଭଗାଧାନ—କ୍ଲୀ.ବି. ସୌଭାଗ୍ୟ ।
ଭଗାରି(ରୀ)—ଗ୍ରା. ବି. (ସଂ-ଭାଗହାରୀ) ଶତ୍ରୁ, ବୈରୀ, ବିପକ୍ଷ, ଜ୍ଞାତି, କୁଟୁମ୍ବ, ଦାୟାଦ, ପ୍ରତିବେଶୀ, ଦ୍ଵେଷୀ, ଆପଣାର ଲଭରୁ ଅଂଶ ନେବା ବ୍ୟକ୍ତି, (ସ୍ତ୍ରୀ) ଭଗାରୁଣୀ ।
ଭଗାରିଆ—ଗ୍ରା. ବି. ଭଗାରି (ଦେଖ), ପ୍ରତିଦ୍ଵନ୍ଦ୍ଵୀ ବ୍ୟକ୍ତି, (ଗ୍ରା.ବିଂ) ଶତ୍ରୁତାପନ୍ନ ।
ଭଗାରିହସା—ଗ୍ରା.ବି.ପ୍ରତିବେଶୀମାନଙ୍କର ଉପହାସ, (ଗ୍ରା.ବିଂ) ପ୍ରତିବେଶୀମାନଙ୍କର ଉପହାସାସ୍ପଦ, ଲୋକହସା ।
ଭଗାଲ—ବି. (ଭଗ୍+ଅଲ୍+ଅ)ନରକପାଳ, ମନୁଷ୍ୟର ଖପୁରି ।
ଭଗାଲୀ—ପୁଂ. ବିଂ. (ଭଗାଲ+ଇନ୍) ନରକପାଳଧାରୀ, (ବି) ଶିବ ।
ଭଗିନୀ—ସ୍ତ୍ରୀ.ବି. (ଭଗ୍+ଇନ୍+ଈ) ସୋଦରା, ଭଉଣୀ, ସମବୟସ୍କା ସ୍ତ୍ରୀପ୍ରତି ସମ୍ବୋଧନ, ସ୍ତ୍ରୀମାତ୍ର ।
ଭଗିନୀପତି—ପୁଂ.ବି. (୬ତତ୍ପୁ) ଭଉଣୀର ସ୍ଵାମୀ, ଭିଣୋଇ ।
ଭଗିନେୟ—ପୁଂ. ବି. (ଭଗିନୀ+ଏୟ) ଭଗିନେୟ, ଭଣଜା, (ସ୍ତ୍ରୀ)ଭଗିନେୟୀ ।
ଭଗୀରଥ—ପୁଂ.ବି. ସୂର୍ଯ୍ୟବଂଶୀୟ ନୃପଭେଦ, ସଗରରାଜାଙ୍କ ନାତି ।
ଭଗୁଡ଼(ଲ)—ଗ୍ରା. ବି. ଅନ୍ତ, ପ୍ରୋପଗ୍ର, ଛଇ, ବେଳ, ପଳାୟନ ।
ଭଗେଶ—ବି. (ଭଗ+ଈଶ) ଐଶ୍ଵର୍ଯ୍ୟାଦିମାନଙ୍କର ଈଶ୍ଵର ।
ଭଗୋସ୍—ଅବ୍ୟ. ସମ୍ଭ୍ରମ ସୂଚକ ସମ୍ବୋଧନ ।
ଭଗୋଳ—ବି. ଭଚକ୍ରବୃତ୍ତ, ନକ୍ଷତ୍ରଚକ୍ର, ମେଷାଦି ଦ୍ଵାଦଶ ରାଶିଙ୍କର ମଣ୍ଡଳ ।
ଭଗ୍ନ—ବିଂ. (ଭନ୍ଜ୍+ମ୍ପ.କ) ଖଣ୍ଡିତ, ଛିନ୍ନ, ଫାଟିଯାଇଥିବା, ନିବୃତ୍ତ, କ୍ଷାନ୍ତ, ପରାଜିତ, ଚୂର୍ଣ୍ଣିତ, ଭଙ୍ଗା, ବିନଷ୍ଟ, ନିରସ୍ତ, କୁବ୍ଜ, ଦୁଃଖରେ ଅବସନ୍ନ, ଯୁଦ୍ଧକ୍ଷେତ୍ରରୁ ପଳାୟିତ, ରୋଗଜୀର୍ଣ୍ଣ, (ଗ୍ରା.ବି) ପରାଜୟ, ଯୁଦ୍ଧକ୍ଷେତ୍ରରୁ ପଳାୟନ ।
ଭଗ୍ନକଣ୍ଠ—ବି. (କ.ଧା) ବିକୃତ ସ୍ଵର, (ପୁଂ.ବିଂ.-ବ.ବ୍ରୀ) ଯାହାର ଗଳାର ସ୍ଵର ବିକୃତ ହୋଇଅଛି, (ସ୍ତ୍ରୀ) କଣ୍ଠା ।
ଭଗ୍ନଗୃହ—ବି. (କ.ଧା) ଭଙ୍ଗାଘର ।
ଭଗ୍ନଚଣ୍ଡ—ପୁଂ.ବିଂ. (ବ.ବ୍ରୀ) ନିର୍ବଣ, ହତାଶ, (ସ୍ତ୍ରୀ) ଭଗ୍ନଚଣ୍ଡା ।
ଭଗ୍ନଚେଷ୍ଟ—ପୁଂ.ବିଂ. (ବ.ବ୍ରୀ)ଭଗ୍ନୋଦ୍ୟମ, ଯାହାର ଚେଷ୍ଟା ବିଫଳ ହୋଇଅଛି, ଚେଷ୍ଟାରୁ ନିବୃତ୍ତ (ସ୍ତ୍ରୀ) ଭଗ୍ନଚେଷ୍ଟା ।
ଭଗ୍ନଦର୍ପ—ପୁଂ.ବିଂ. (ବ.ବ୍ରୀ) ହୃତଗର୍ବ, ଯାହାର ଗର୍ବ ଚୂର୍ଣ୍ଣ ହୋଇଅଛି, (ସ୍ତ୍ରୀ) ଭଗ୍ନଦର୍ପା ।
ଭଗ୍ନଦଶା—ବି. (କ.ଧା) ଭଙ୍ଗା ଅବସ୍ଥା ।
ଭଗ୍ନଦୂତ—ପୁଂ.ବି. (କ.ଧା) ରଣ ପରାଜୟ ପରେ ଛତ୍ରଭଙ୍ଗ ସେନାମାନଙ୍କ ମଧ୍ୟରୁ ପ୍ରାଣଭୟରେ ଯେ ପଳାଇ ଦୂତରୂପେ ରାଜାଙ୍କୁ ଯୁଦ୍ଧବାର୍ତ୍ତା ପ୍ରଦାନ କରେ ।
ଭଗ୍ନଦେହ—ପୁଂ.ବିଂ. (ବ.ବ୍ରୀ) ଯାହାର ସ୍ଵାସ୍ଥ୍ୟ ନଷ୍ଟ ହୋଇଅଛି, ରୁଗ୍ଣଶରୀର, (ସ୍ତ୍ରୀ) ଭଗ୍ନଦେହା ।
ଭଗ୍ନପାଦ—ବି. ଯେଉଁ ନକ୍ଷତ୍ରର ପ୍ରଥମ ବା ତୃତୀୟପାଦ ରାଶ୍ୟନ୍ତରରେ ସଂଯୁକ୍ତ, ଅନ୍ୟରାଶି ସହିତ ସଂଯୁକ୍ତ ନକ୍ଷତ୍ର,ଭଗ୍ନପାଦର୍କ୍ଷ ଦେଖ, (ବିଂ.-ବ.ବ୍ରୀ) ଯାହାର ଗୋଡ଼ ଭାଙ୍ଗିଅଛି, ପଙ୍ଗୁ ।
ଭଗ୍ନପାଦର୍କ୍ଷ—ବି. ପୁଷ୍କରସଂଜ୍ଞ ଛଅଗୋଟି ନକ୍ଷତ୍ର, (ପୁନର୍ବସୁ, ଉତ୍ତରାଷାଢ଼ା, କୃତ୍ତିକା, ଉତ୍ତରଫାଲ୍‌ଗୁନୀ ପୂର୍ବଭାଦ୍ର, ବିଶାଖା ଏହି ଛଅଗୋଟି) ।
ଭଗ୍ନପୃଷ୍ଠ—ପୁଂ.ବି. (ଭଗ୍ନ+ପୃଷ୍ଠ)ସମ୍ମୁଖ, ଭଙ୍ଗା ମେରୁଦଣ୍ଡ, (ବିଂ) ଯାହାର ମେରୁହାଡ଼ ଭାଙ୍ଗିଅଛି, କୁବ୍ଜ, କୁଜା ।
ଭଗ୍ନପ୍ରକ୍ରମ—ବି. (ବ.ବ୍ରୀ) କାବ୍ୟଗତ ବାକ୍ୟଦୋଷବିଶେଷ, ରଚନାର କ୍ରମଭଙ୍ଗ ।
ଭଗ୍ନପ୍ରକ୍ରମତା—ବି. ଭଗ୍ନପ୍ରକ୍ରମ ଦେଖ ।
ଭଗ୍ନପ୍ରାୟ—ବିଂ. ଧ୍ଵଂସୋନ୍ମୁଖ ।
ଭଗ୍ନମନୋରଥ—ବିଂ. (ବ.ବ୍ରୀ) ଯାହାର ମନୋବାଞ୍ଛା ବିଫଳ ହୋଇଅଛି ।
ଭଗ୍ନଶ୍ରୀ—ବିଂ. (ବ.ବ୍ରୀ) ନଷ୍ଟଶ୍ରୀ, ହୃତସୌନ୍ଦର୍ଯ୍ୟ ।
ଭଗ୍ନସନ୍ଧି—ବି. (କ.ଧା) ସନ୍ଧିସ୍ଥାନଭଙ୍ଗ ରୋଗବିଶେଷ, ଗଣ୍ଠିପାଖ ହାଡ଼ ଭାଙ୍ଗିଯିବା, (ବିଂ) ଯାହାର ଦେହର ଗଣ୍ଠି ଭାଙ୍ଗିଯାଇଅଛି ।
ଭଗ୍ନସନ୍ଧିକ—କ୍ଲୀ.ବି. ତକ୍ର, ଘୋଲଦହି ।
ଭଗ୍ନସାହସ—ପୁଂ.ବିଂ. (ବ.ବ୍ରୀ)ଯାହାର ସାହସ ଦବିଯାଇଅଛି, (ସ୍ତ୍ରୀ)ସାହସା ।

ଭଗ୍ନସ୍ତୂପ—ବି. (୬ତତ୍) ଚୂର୍ଣ୍ଣୀକୃତ ଧ୍ୱଂସାବଶେଷ ।

ଭଗ୍ନହୃଦୟ—ପୁଂ.ବିଂ. (ବ.ବ୍ରୀ) ହତାଶ, ହତାଶ, (ସ୍ତ୍ରୀ) ଭଗ୍ନହୃଦୟା ।

ଭଗ୍ନାଂଶ—ବି. ( ଭଗ୍ନ+ଅଂଶ ) ମୂଳ-ଦ୍ରବ୍ୟର ବିଭାଗ ବା ଖଣ୍ଡ, ଗଣିତ-ଶାସ୍ତ୍ରୋକ୍ତ ଅଙ୍କବିଶେଷ, ଏକ ସଂଖ୍ୟାର ଅଂଶଘଟିତ ଅଂଶ । [ ଚନ୍ଦ୍ର ।

ଭଗ୍ନାତ୍ମା—ପୁଂ.ବି.(ଭଗ୍ନ+ଆତ୍ମନ୍)ବ.ବ୍ରୀ;

ଭଗ୍ନାବଶେଷ—ବି. (କ.ଧା)ଭଗ୍ନ ପଦାର୍ଥ ବା ଗୃହାଦିର ବାକି ରହିଯାଇଥିବା ଅଂଶ । [ ପ୍ରାପ୍ତ ।

ଭଗ୍ନାବସ୍ଥ—ବିଂ. ( ବ.ବ୍ରୀ ) ଭଗ୍ନଦଶା-

ଭଗ୍ନାବସ୍ଥା—ବି. (କ.ଧା) ଭାଙ୍ଗିଯାଇଥିବା ଅବସ୍ଥା ।

ଭଗ୍ନାଶ—ପୁଂ. ବିଂ. (ଭଗ୍ନ+ଆଶା) ବ.ବ୍ରୀ; ହତାଶ,ଦୀର୍ଘତୃଷ୍ଣା ଭଙ୍ଗଯୁକ୍ତ, (ସ୍ତ୍ରୀ) ଭଗ୍ନାଶା ।

ଭଗ୍ନୀ—ସ୍ତ୍ରୀ.ବି. ଭଗିନୀ, ଭଉଣୀ,ସ୍ୱସା ।

ଭଗ୍ନୀଜ—ପୁଂ.ବି. (ଭଗ୍ନୀ+ଜନ୍+ଅ) ଭଣଜା, (ସ୍ତ୍ରୀ)ଭଗ୍ନୀଜା,ଭାଣିଜୀ ।

ଭଗ୍ନୀପତି—ପୁଂ.ବି.(୬ତତ୍)ଭଗିନୀପତି, ଭିଣୋଇ ।

ଭଗ୍ନୋତ୍ସାହ—ବିଂ.(ବ.ବ୍ରୀ)ଭଗ୍ନୋଦ୍ୟମ, ହତୋତ୍ସାହ, ଯାହାର ଉତ୍ସାହ କମି-ଯାଇଅଛି । [ ଦେଖ ।

ଭଗ୍ନୋଦ୍ୟମ—ବିଂ. (ବ.ବ୍ରୀ)ଭଗ୍ନୋତ୍ସାହ

ଭଙ୍କାରି—ବି. ( ଭଂ+କୃ+ଅ+ଇ ) ଦଂଶ, ବିରୁଡ଼ି ।

ଭଙ୍କ୍ତା—ପୁଂ.ବିଂ. (ଭଞ୍ଜ୍+ତୃ) ଭଙ୍ଗ-କର୍ତ୍ତା, ଯେ ଭଙ୍ଗାଏ ଓ ଭାଙ୍ଗେ, ବିଭା-ଜକ, ବିଚ୍ଛେଦକ ।

ଭଙ୍ଗ—ବି. (ଭନ୍ଜ୍+ଭା.ଅ) ତରଙ୍ଗ, ପରାଜୟ, ଖଣ୍ଡ, ଭେଦ, ବିଦାରଣ, କୌଟିଲ୍ୟ, ଭୟ, ନୈରାଶ୍ୟ,ନାଶ,ହାନି, ପ୍ରତିବନ୍ଧ, ନିବୃତ୍ତି, ରଚନା, ଶଠତା, ବ୍ୟତିକ୍ରମ, ଲଙ୍ଘନ, ବ୍ୟସନ, ଭଙ୍ଗୀ, (କ.ଅ) ରୋଗବିଶେଷ, ନାଗବିଶେଷ, ଗଞ୍ଜେଇ,ଭାଙ୍ଗ,ଅନ୍ତ,ଗମନ,ଜଳନିର୍ଗମ, ଭାଙ୍ଗିଯିବା ।

ଭଙ୍ଗକୁଳୀନ—ବି. ରାଢ଼ୀୟ ଶ୍ରେଣୀର କୁଳୀନ ବ୍ରାହ୍ମଣମାନେ ବଂଶଜ କନ୍ୟା ଗ୍ରହଣ କଲେ ଭଙ୍ଗକୁଳୀନ ଆଖ୍ୟା ପାଆନ୍ତି ।

ଭଙ୍ଗପ୍ରବଣ—ବିଂ. (୭ତତ୍) ଯାହା ସହ-ଜରେ ଭାଙ୍ଗିଯାଏ, ମଚକା ।

ଭଙ୍ଗପ୍ରବଣତା(ତ୍ୱ)—ବି. ସହଜରେ ଭାଙ୍ଗିଯିବା ଅବସ୍ଥା ।

ଭଙ୍ଗବାସା—ସ୍ତ୍ରୀ.ବି. ହରିଦ୍ରା, ହଳଦୀ ।

ଭଙ୍ଗସାର୍ଥ—ବିଂ. କୁଟିଳ ।

ଭଙ୍ଗା—ସ୍ତ୍ରୀ. ବି. (ଭନ୍ଜ୍+ଆ) ବୃକ୍ଷ-ବିଶେଷ, ଶଣ, ସିଦ୍ଧି, ଭାଙ୍ଗ, ଗଞ୍ଜେଇ ଗଛ, (ଗ୍ରା.ବି) ଭାଙ୍ଗିବା କର୍ମ, ଭଙ୍ଗା-ଇବା କର୍ମ, (ବିଂ) ଭଗ୍ନ, ନଷ୍ଟ, ଦଦରା, ଫଟା, ଯେ ଭାଙ୍ଗେ, ଯେ ଭଙ୍ଗାଏ ।

ଭଙ୍ଗା(ଙ୍ଗେ)ଇବା—ଗ୍ରା. କ୍ରି. ଭାଙ୍ଗିବା କ୍ରିୟାର ଣିଜନ୍ତ ରୂପ, ଅନ୍ୟ ଦ୍ୱାରା ଭାଙ୍ଗିବା କର୍ମ କରାଇବା, ନଷ୍ଟ କରା-ଇବା, ଟଙ୍କା ନୋଟ୍ଆଦି ବଦଳରେ ସ୍ୱୋଚ୍ଚ ମୁଦ୍ରା ନେବା,ବିରତ କରାଇବା, ମଣ୍ଡଳଆଦି ଅଙ୍କିତ କରାଇବା, ଚୁଗୁଲି-ଆଦି ଦ୍ୱାରା କୌଣସି ବ୍ୟକ୍ତିର ମନକୁ କୌଣସି ବ୍ୟକ୍ତି ଉପରେ ବିରାଗଯୁକ୍ତ କରାଇବା, ଦଉଡ଼ି ବଳାଇବା, ଲୁଗା-ଆଦି ଭଙ୍ଗାଇବା,ପାନଖିଲ ଅନ୍ୟ ଦ୍ୱାରା ସଜାଇବା, କୃଷିକ୍ଷା ଦେଇ ଏକାନ୍ନ-ପରିବାରକୁ ପୃଥକ୍ ଅନ୍ନ କରାଇବା, କୁକ୍ରିୟା ଦ୍ୱାରା ଗର୍ଭସ୍ଥ ଭ୍ରୂଣକୁ ଖସା-ଇବା, ଢୁଆ ଭଙ୍ଗାଇବା ।

ଭଙ୍ଗାକଟ—ବି. ଭଙ୍ଗୌଷଧ ।

ଭଙ୍ଗାଫୁଟା—ଗ୍ରା. ବିଂ. ଭଙ୍ଗା ଓ ଫୁଟା ।

ଭଙ୍ଗାନ—ପୁଂ. ବି. ( ଭଙ୍ଗ+ଅନ୍+କ. ଅ) ମତ୍ସ୍ୟବିଶେଷ, ଭାକୁରମାଛ ।

ଭଙ୍ଗାଭଙ୍ଗଶ୍ଳେଷ—ବି. କାବ୍ୟର ଅଳଂ-କାରବିଶେଷ ।

ଭଙ୍ଗାଶ—ବି. ଦଂଶ, ଡାଉଁଶମାଛି,ମଶା

ଭଙ୍ଗି(ଙ୍ଗୀ)—ବି(ଭନ୍ଜ୍+ଭା.ଇ)ବିଚ୍ଛେଦ, କୌଟିଲ୍ୟ, ବିନ୍ୟାସ, ଢେଉ, ଶୋଭା, ସୌନ୍ଦର୍ଯ୍ୟ, ଭଙ୍ଗ, ଛଳ, ଚେଷ୍ଟା, ଛଟକ, ଭାବ, ରୂପ, ଛବି, ଅଙ୍ଗ, କୌତୁକ,କ୍ରୀଡ଼ାଜନକ ଭାବ, ରଚନା, ରସିକତା, ରଙ୍ଗ, ପ୍ରକାର, ବ୍ୟଙ୍ଗ, ମନୋଭାବ ପ୍ରକାଶକ ଅଙ୍ଗ ଚାଳନା, ବିକୃତ ଅଙ୍ଗ ବା ଭାବର ଅନୁକରଣ ରୂପ କାର୍ଯ୍ୟ ।

ଭଙ୍ଗିଭାବ—ବି. ବଙ୍କଭାବ ।

ଭଙ୍ଗିମା—ବି. (ଭଙ୍ଗ+ଇମନ୍) ଭଙ୍ଗି, ଛଇ, ଶୋଭା, ତରଙ୍ଗ, ଛଟକ, ଢଙ୍ଗ ।

ଭଙ୍ଗିମାନ୍—ପୁଂ. ବିଂ. ( ଭଙ୍ଗି+ମତୁ ) ତରଙ୍ଗିତ, ଛଇଲ, କୌତୁକୀ, (ସ୍ତ୍ରୀ) ଭଙ୍ଗିମତୀ ।

ଭଙ୍ଗି(ଙ୍ଗୀ)ଷ୍ୟାନ୍—ପୁଂ. ବିଂ. ( ଭଙ୍ଗ+ଇୟସ୍) ଭଙ୍ଗିମାନ୍, ଯେ ରଣରେ ଭଙ୍ଗ ଦେଇ ପଳାଏ, (ସ୍ତ୍ରୀ) ଭଙ୍ଗିୟସୀ ।

ଭଙ୍ଗୀ—ବିଂ.(ଭଙ୍ଗ+ଇନ୍) ଭଙ୍ଗପ୍ରବଣ, ଭଙ୍ଗଶୀଳ, (ସ୍ତ୍ରୀ) ଭଙ୍ଗିନୀ ।

ଭଙ୍ଗୀର—ଗ୍ରା. ବିଂ. ଗୁରୁତ୍ୱପୂର୍ଣ୍ଣ ।

ଭଙ୍ଗୀଲ—କ୍ଳୀ.ବି.ଜ୍ଞାନେନ୍ଦ୍ରିୟର ବୈକଲ୍ୟ ।

ଭଙ୍ଗୁର—ବିଂ. ( ଭନ୍ଜ୍+ଉର ) ବକ୍ର, ମଚକା, ଯାହା ସାମାନ୍ୟ ଆଘାତରେ ଭାଙ୍ଗିଯାଏ, ବିନଶ୍ୱର, ଭଙ୍ଗପ୍ରବଣ,କୂଟ-ବୁଦ୍ଧି ପ୍ରବୃତ୍ତି, (ସ୍ତ୍ରୀ) ଭଙ୍ଗୁରା, (ବି) ନଦୀର ବାଙ୍କ ।

ଭଙ୍ଗୁରତା(ତ୍ୱ)—ବି. ଭଙ୍ଗୁରର ଭାବ, ବିନାଶଶୀଳତା, ଭଙ୍ଗପ୍ରବଣତା ।

ଭଙ୍ଗୁରା—ସ୍ତ୍ରୀ. ବି. ଅତିବିଷା, ପ୍ରିୟଙ୍ଗୁ ।

ଭଙ୍ଗ୍ୟ—କ୍ଳୀ. ବି. ଭଙ୍ଗାକ୍ଷେତ୍ର, ଯେଉଁ କ୍ଷେତ୍ରରେ ଭଙ୍ଗାହୁଏ, (ବିଂ) ଭାଙ୍ଗିବାର ଉପଯୁକ୍ତ, ଭଙ୍ଗାର୍ହ ।

ଭଚକ୍ର—କ୍ଳୀ.ବି. ରାଶିଚକ୍ର, ନକ୍ଷତ୍ରଚକ୍ର, ଗ୍ରହମାନଙ୍କର ସ୍ୱ ସ୍ୱ ସଂସ୍ଥାନବିଶେଷ ଦ୍ୱାରା ବିରଚିତ ଗୋଲାକାର ଚକ୍ର ।

ଭଜ—କ୍ରି. ଭଜନ କର ।

ଭଜକ—ପୁଂ. ବିଂ. ( ଭଜ୍+କ.ଅକ ) ଭଜନକାରୀ, ବିଭାଜକ, (ସ୍ତ୍ରୀ) ଭଜିକା ।

ଭଜକଟ—ଗ୍ରା. ବି. ବ୍ୟାଘାତ, ବିଘ୍ନ, ବିଷମ ସମସ୍ୟା,କଷ୍ଟଦାୟକ ଉଦ୍ବେଗ,

କଷ୍ଟଜନକ କର୍ତ୍ତବ୍ୟ କାର୍ଯ୍ୟ, ଗୋଳମାଳଆ କାର୍ଯ୍ୟ, ହଟହଟା ଉପାୟ ।

ଭଜନ୍—ପୁଂ. ବିଂ. ( ଭଜ୍ + କ.ଅନ୍ତ ) ଆରାଧକ, ସେବକ, ଭଜନକାରୀ ।

ଭଜନ(ନା)—(ଭଜ୍ + ଅନ + ଆ) ଆତ୍ମସମର୍ପଣ, ଭାଗ, ସେବା, ଭାଗକରିବା, ସ୍ତୁତି, ସ୍ତୋତ୍ର, ଦେବଦେବୀଙ୍କର ସ୍ତବଗାନ ବା ନାମ କୀର୍ତ୍ତନ, ଆଶ୍ରୟ,ଅର୍ଚ୍ଚନ

ଭଜନକରିବା—ଗ୍ରା. କ୍ରି. ଦେବତାଙ୍କ ନାମ ସ୍ମରଣ କରିବା, ସର୍ବଦା କୌଣସି ବ୍ୟକ୍ତିକୁ ସ୍ନେହ ବା ଭକ୍ତି ସହିତ ସ୍ମରଣ କରିବା, ସୁମରିବା,ଝୁରିବା, ସ୍ତବକରିବା ଆଶ୍ରୟ ନେବା, ଲଭିବା, ଭଜିବା, ସେବାକରିବା ।

ଭଜନଗୃହ—ବି. (୬ତତ୍) ଉପାସନା ମନ୍ଦିର, ଦେବମନ୍ଦିର, ଗିର୍ଜା, ମସଜିଦ୍ ।

ଭଜନଭାଜନ—ଗ୍ରା. ବି. ସ୍ତୁତିପାଠାଦି, ସନ୍ଧ୍ୟାହ୍ନିକ, ଗୁପ୍ତମନ୍ତ୍ରଣା ।

ଭଜନମାଳା—ବି. (୬ତତ୍) ଜପମାଳା, ସ୍ତବସଂଗ୍ରହ ।

ଭଜନସାଧନ—ବି. ସ୍ତବ ଓ ପୂଜା, ପୂଜା ଓ ଜପ ସେବା ଆରାଧନା,ଦେବାର୍ଚ୍ଚନ, ସନ୍ଧ୍ୟାହ୍ନିକ, ସାଧସାଧନ, ଅନୁନୟବିନୟ ।

ଭଜନସ୍ମରଣ—ବି. ସ୍ତୁତିପାଠାଦି, ସ୍ତୁତିପାଠ ଓ ମାଳାଜପ, ବୈଦିକ ଦେବାର୍ଚ୍ଚନ, ସନ୍ଧ୍ୟାହ୍ନିକ ।

ଭଜନା—ବି. ( ଭଜ୍ + ଭା.ଅନ + ଆ ) ଭଜନ, ଆରାଧନା, ସେବା, (ଗ୍ରା.ବିଂ) ଭଜୁଥିବା ।

ଭଜନାନନ୍ଦ—ବି(କ.ଧା)ଈଶ୍ୱର ଭଜନକାରୀ ବ୍ୟକ୍ତିର ଅନୁଭୂତ ଆନନ୍ଦ, (ବିଂ) ଯେ ଈଶ୍ୱର ଭଜନରେ ଆନନ୍ଦ ଲାଭ କରେ ।

ଭଜନାନନ୍ଦୀ—ଗ୍ରା. ବିଂ. ଈଶ୍ୱର ଭଜନ କରି ଯେ ସୁଖରେ ମଗ୍ନ ହୋଇଥାଏ ।

ଭଜନୀୟ—ବିଂ. ( ଭଜ୍ + ମ୍ପ.ଅନୀୟ ) ଭଜନଯୋଗ୍ୟ, ପୂଜନୀୟ, ସେବନୀୟ, ଆରାଧନାର ଉପଯୁକ୍ତ, (ସ୍ତ୍ରୀ) ଭଜନୀୟା ।

ଭଜମନ—ଗ୍ରା. ଅବ୍ୟ. ହେ ମନ ! ତୁ ଭଜନ କର ।

ଭଜମାନ—ପୁଂ. ବିଂ. (ଭଜ୍ + କ.ଆନ) ବିଭାଜକ, ଉପାସନାରତ, ପୂଜାକାରୀ, ଉପଯୁକ୍ତ, ସେବମାନ, ସେବାରତ, ନ୍ୟାଯ୍ୟ, ନ୍ୟାୟସଙ୍ଗତ ଦ୍ରବ୍ୟାଦି, ସେବକ, (ସ୍ତ୍ରୀ) ଭଜମାନା ।

ଭଜା—ଗ୍ରା. ବିଂ. ଭୃଷ୍ଟ, ଭର୍ଜିତ, ଯାହା ଭଜା ହୋଇଥାଏ, ଯଦ୍ୱାରା ଭାଜିବା କ୍ରିୟା ସାଧିତ ହୁଏ, (ଗ୍ରା.ବି) ଭୃଷ୍ଟବ୍ୟଞ୍ଜନ, ଭର୍ଜନ, ଭାଜିବା କର୍ମ, ଭଜା ହୋଇଥିବା ଖାଦ୍ୟ ।

ଭଜା(ଜେ)ଇବା—ଗ୍ରା.କ୍ରି.ଅନ୍ୟକୁ ପ୍ରାର୍ଥନା କରାଇବା,ଭର୍ଜାଇବା,କୌଣସି ବ୍ୟକ୍ତିକୁ ଭକ୍ତି ଦ୍ୱାରା ସନ୍ତୁଷ୍ଟ କରିବା, ଭାଜିବାର ଣିଜନ୍ତରୂପ, ଅନ୍ୟ ଦ୍ୱାରା ଭାଜିବା କ୍ରିୟା କରାଇବା, ପ୍ରବର୍ତ୍ତାଇବା, ମଜାଇବା, ରାଜିକରାଇବା, ମୁଆଜା, ମୁକାବିଲା କରାଇବା ।

ଭଜାଭଜି—ଗ୍ରା.ବି. (ସଂ-ଭର୍ଜନ) ଭାଜିବା ପ୍ରକ୍ରିୟା, ଭଜାଆଦି ତରକାରୀ, (ବିଂ) ଯାହା ଦ୍ୱାରା ଭାଜିବା କ୍ରିୟା ସମ୍ପାଦିତ ହୁଏ ।

ଭଜିଆ—ଗ୍ରା.ବି.ଅନାର୍ଯ୍ୟ ଜାତିବିଶେଷ ।

ଭଜିବା—ଗ୍ରା. କ୍ରି. ପୂଜାକରିବା, ଭଜନ କରିବା, ସ୍ତବକରିବା, ମାଳାଜପିବା, ନାମ ସ୍ମରଣ କରିବା, ରଟିବା, ଏକାନ୍ତ ଆସକ୍ତ ହେବା, ଦିନରାତି ଝୁରିବା, ସୁଖ ଦୁଃଖ ଭୋଗ କରିବା, ଗୁଣ ଗାନ କରିବା, ପତି ରୂପେ ବରଣ କରିବା, ସାଧନକରିବା, ସେବା କରିବା, ଭକ୍ତି ସହିତ ଅନୁଗମନ କରିବା, ପର ମନ ଜାଣି କାର୍ଯ୍ୟ କରିବା, ଶରଣାପନ୍ନ ହେବା, ଆଶ୍ରୟ ନେବା ।

ଭଜୀ—ବିଂ. (ଭଜ୍ + ଇନ୍) ଭଜନକାରୀ, ଯେ ଭଜେ, (ସ୍ତ୍ରୀ) ଭଜିନୀ ।

ଭଜୁସି—ଗ୍ରା. ବିଂ. ଭକ୍ତ, ପ୍ରେମ ମନ କରି କାର୍ଯ୍ୟ କରେ, ନିୟତ କାର୍ଯ୍ୟକାରୀ, ଶରଣାପନ୍ନ, (ବି) ଭକ୍ତି, ଆସକ୍ତି,ଭଜାଇବା, ରସାଇବା (କର୍ମ) ।

ଭଜେନ୍ୟ—ବିଂ.(ଭଜ୍ + ଏନ୍ୟ ଭଜନୀୟ

ଭଜ୍ୟ—ବିଂ. (ଭଜ୍ + ଯ)ବିଭାଗଯୋଗ୍ୟ, ସେବନୀୟ, ପୂଜାର୍ହ ।

ଭଜ୍ୟମାନ—ପୁଂ.ବିଂ. (ଭଜ୍ + ମ୍ପ.ଆନ) ବିଭଜ୍ୟମାନ, ଯାହା ଭାଗ କରାଯାଏ, ସେବ୍ୟମାନ, ଙ୍ଖଣ୍ଡମାନ, (ସ୍ତ୍ରୀ) ମାନା ।

ଭଞ୍ଜ—ଗ୍ରା.ବି.ଓଡ଼ିଶାପ୍ରଦେଶର କେତେକ ରାଜବଂଶଗତ ଉପାଧି, ଭଞ୍ଜକବି ଦେଖ, (ପ୍ରା.ସମ୍ବ,ବି) ପୋଲୁହ ।

ଭଞ୍ଜକ—ବିଂ(ଭଞ୍ଜ + କ.ଅକ)ନିବାରକ, ଭଞ୍ଜନକର୍ତ୍ତା, ନାଶକ, ଭଙ୍ଗକାରକ, (ସ୍ତ୍ରୀ) ଭଞ୍ଜିକା ।

ଭଞ୍ଜକବି—ଗ୍ରା. ବି. ଉପେନ୍ଦ୍ର ଭଞ୍ଜ ।

ଭଞ୍ଜବଂଶବଦନ୍ତୀ—ଗ୍ରା.ବି. ଉତ୍କଳର ଭଞ୍ଜ ବଂଶର ଉତ୍ପତ୍ତି ସମ୍ବନ୍ଧେ ପ୍ରାଚୀନ ଉପାଖ୍ୟାନ ।

ଭଞ୍ଜନ—କ୍ଲୀ.ବି. (ଭଞ୍ଜ + ଅନ)ନିରସନ, ଭଙ୍ଗକରଣ,ମୋଚଣ,ମୀମାଂସାକରିବା, ଭାଙ୍ଗିବା, ଦୂରୀକରଣ, (ପୁଂ.ବି) ଅରିଷ୍ଟ ଗଛ, ବାୟୁଜନ୍ୟ ବ୍ରଣରୋଗବିଶେଷ, ମୁଣ୍ଡ କାନ ଟଣକିବା, (ବିଂ) ଭଞ୍ଜକ, ଭଙ୍ଗକାରକ ।

ଭଞ୍ଜନକ—ପୁଂ. ବି. ମୁଖରୋଗବିଶେଷ

ଭଞ୍ଜରୁ—ପୁଂ.ବି.ଦେବକୁଳେ ଭୂତ ତରୁ ।

ଭଞ୍ଜା—ସ୍ତ୍ରୀ. ବି. ଅନ୍ନପୂର୍ଣ୍ଣା, (ଗ୍ରା. ବିଂ) ଯେ—ଭାଙ୍ଗେ ଯଥା—ଯାମଲାଭଞ୍ଜା ଇତ୍ୟାଦି ।

ଭଞ୍ଜିବା—ଗ୍ରା. କ୍ରି. ଭାଙ୍ଗିବା ।

ଭଞ୍ଜୀ—ପୁଂ ବିଂ. (ଭଞ୍ଜ + ଇନ୍) ଭଞ୍ଜକ, (ସ୍ତ୍ରୀ) ଭଞ୍ଜିନୀ ।

ଭଟ୍‌ଭଟ୍—ଗ୍ରା.ବି. ଗୋଳମାଳ, କଳହ, (ଅବ୍ୟ)ବକ୍‌ବକ୍,ଗପ୍‌ସପ୍, କୋଳାହଳ, ଅଯଥା ବାକ୍ୟ ବ୍ୟୟ,ମିଥ୍ୟାବକାବକି ।

ଭଟ୍‌ଭାଟ୍—ଗ୍ରା. ଅବ୍ୟ. ଧଡ୍‌ଧାଡ୍, ଭଟ୍‌ଭଟ୍ ଦେଖ ।

ଭଟ୍(ଟା)କା—ଗ୍ରା.ବି. ଭୁଲ୍, କ୍ଷତି, ଭାଉ, ପଣ୍ୟଦ୍ରବ୍ୟର ଦାମ୍, କଷାକଷି ।

ଭଟ—ପୁଂ. ବି (ଭଟ୍ + ଅ) ଯୋଦ୍ଧା,

ମ୍ଳେଚ୍ଛଜାତିବିଶେଷ, ବର୍ଣ୍ଣସଙ୍କର ଜାତି-ବିଶେଷ, ରଜନୀଚର, ଶୂର, ଖଳ, ଜାତିଚ୍ୟୁତ ବ୍ୟକ୍ତି, (ବଂ) ନୀଚ, ହୀନ, ପାମର, ପତିତ, ଜାତିଚ୍ୟୁତ, (ଗ୍ରା.ବି) ବ୍ରାହ୍ମଣମାନଙ୍କର ଗୋତ୍ରୋପାଧିବିଶେଷ, ଭଟ୍ଟ ।

ଭଟ୍ଟଅମଲ—ଗ୍ରା. ବି. ମରହଟ୍ଟି ଅମଲ, ପ୍ରାଚୀନ କାଳ ।

ଭଟକା(କେ)ଇବା—ଗ୍ରା. କ୍ରି. କ୍ଷତବିକ୍ଷତ କରିବା, ଘାତ କରାଇବା, ହୁରୁଡ଼ାଇ-ଦେବା, ଠକାଇବା, ଭ୍ରମରେ ପକାଇବା

ଭଟକିବା—ଗ୍ରା.କ୍ରି. ଭୁଲ୍‌କରିବା, ହୁରୁଡ଼ି କରି ପଳାଇବା, ପଥଭ୍ରଷ୍ଟ ହେବା, ଠକାମିରେ ପଡ଼ିବା, କ୍ଷତରେ ପଡ଼ିବା ।

ଭଟା—ସ୍ତ୍ରୀ.ବି. (ଭଟ୍+ଆ) ଇନ୍ଦ୍ରବାରୁଣୀ, ମହାକାଳ, ଗୋରଖ ଗୃଲ, ସମୁଦ୍ର-ଜଳସ୍ଥିତିର ଦୈନିକ ହ୍ରାସ, ଜୁଆର ଗ୍ରୁଡ଼ିବା,ଶୁଖିଲ,ନଦୀର ଅଦେଖିର ଅଂଶ, ଯେଉଁ ଅଂଶରେ ଡଙ୍ଗାଆଦି ଯାଇ ନ ପାରି ଲାଗି ରହେ, କ୍ଷୟ, ଅବନତି, ହାନି, ପ୍ରତାରଣା, ଠକାମି, ପିଆଦା, ( ପ୍ରା. ବାମଣ୍ଡା.ବି ) ବାହାର, ଘରର ବହିର୍ଦେଶ,(ଯା.ବି) ନଦୀର ଜଳସ୍ରୋତ ନିକଟସ୍ଥ ଶୁଷ୍କ ସ୍ଥାନ, ( ପ୍ରା.ବଉଦ. ବି) ନଦୀର ଦୁଇ କୂଳରେ ଥିବା ଶୁଖିଲା ସ୍ଥଳ-ଭାଗ ।

ଭଟାରୀ—ଗ୍ରା. ସ୍ତ୍ରୀ. ବି. ବଡ଼ମ୍ବା ରାଜ୍ୟର ମହାନଦୀ କୂଳରେ ପ୍ରତିଷ୍ଠିତା ଦେବୀ-ବିଶେଷ ।

ଭଟାର୍କ—ପୁଂ. ବି. ବଲ୍ଲଭୀ ରାଜବଂଶର ପ୍ରତିଷ୍ଠାତା ।

ଭଟିତ୍ର—କ୍ଲୀ. ବି. (ଭଟ୍+ଇତ୍ର) ଶଲାକା ଦ୍ୱାରା ବିଦ୍ଧହୋଇ ପକ୍ୱହୋଇଥିବା ମାଂସ, କବାବ ।

ଭଟେଶ୍ୱରୀ—ସ୍ତ୍ରୀ.ବି.ରାଜପୁତାନାର ଆବୁ ପର୍ବତସ୍ଥ ଦେବୀମୂର୍ତ୍ତିବିଶେଷ ।

ଭଟୋତ୍ପଳ—ବି. ବରାହମିହିରଙ୍କ ବୃହତ୍ ସଂହିତା ଗ୍ରନ୍ଥର ଟୀକାକାର ।

ଭଟ୍ଟ—ପୁଂ. ବି. (ଭଟ୍+କ.ତ) ଜାତି-ବିଶେଷ, ଭାଟ, ଯୋଦ୍ଧା, ସ୍ୱାମିତ୍ୱ,ସ୍ୱାମୀ. ଶତ୍ରୁ, ସ୍ତୁତିପାଠକ,ବେଦାଭିଜ୍ଞ ବ୍ରାହ୍ମଣ, ପଣ୍ଡିତ, ଦର୍ଶନଶାସ୍ତ୍ର ବେତ୍ତା, ଅଧ୍ୟାପକ, ବିଦ୍ୱାନ୍ ବ୍ରାହ୍ମଣଙ୍କର ଉପାଧିବିଶେଷ, (ଗ୍ରା.ବି) ବଙ୍ଗୀୟ ଓ ମରହଟ୍ଟି ବ୍ରାହ୍ମଣ-ଙ୍କର ବଂଶୋପାଧି ।

ଭଟ୍ଟନାରାୟଣ—ମହାରାଜ ଆଦିଶୂରଙ୍କ ଦ୍ୱାରା ବଙ୍ଗକୁ ଆନୀତ ପଞ୍ଚକନୌଜୀ ବ୍ରାହ୍ମଣମାନଙ୍କ ମଧ୍ୟରୁ ଏକତମ,କ୍ଷିତୀ-ଶ୍ୱରଙ୍କର ପୁତ୍ର ।

ଭଟ୍ଟପ୍ରୟାଗ—ପୁଂ. ବି. ଗଙ୍ଗା ଓ ଯମୁନା ନଦୀର ସଙ୍ଗମ ସ୍ଥାନ ।

ଭଟ୍ଟମିଶ୍ର—ଗ୍ରା. ବି. ଉତ୍କଳୀୟ କୁଳୀନ ବ୍ରାହ୍ମଣବିଶେଷ ।

ଭଟ୍ଟା—ଗ୍ରା. ବି. ଭଟା ଦେଖ, ବାରଣ୍ଡା ।

ଭଟ୍ଟାଚାର୍ଯ୍ୟ—ପୁଂ.ବି. (ଭଟ୍ଟ + ଆଚାର୍ଯ୍ୟ) ଦର୍ଶନଶାସ୍ତ୍ରଜ୍ଞ,ଅଧ୍ୟାପକ,(ଗ୍ରା.ବି)ବଙ୍ଗୀୟ ବ୍ରାହ୍ମଣଙ୍କ ବଂଶୋପାଧିବିଶେଷ ।

ଭଟ୍ଟାର—ପୁଂ. ବି. (ଭଟ୍ଟ୍+ଋ+ଅ) ପୂଜ୍ୟ, ମାନ୍ୟ,ମାନନୀୟ, (ବି)ଉଦାର-ମନା ବା ଉଚ୍ଚମନା ପ୍ରଭୁ ।

ଭଟ୍ଟାରକ—ବି. (ଭଟ୍ଟ୍ + ଋ + ଅ + କ) ନାଟ୍ୟୋକ୍ତିରେ ରାଜା, ତପୋଧନ, ଦେବତା, ସୂର୍ଯ୍ୟ, ଗ୍ରହ, ପଣ୍ଡିତ, ଦାର୍ଶନିକ, ଋଷି, ମୁନି, (ବଂ) ମାନ-ନୀୟ, ପୂଜନୀୟ, (ସ୍ତ୍ରୀ) ଭଟ୍ଟାରିକା ।

ଭଟ୍ଟାରକବା(ସ)ର—ବି. ରବିବାର ।

ଭଟ୍ଟାରିକା—ସ୍ତ୍ରୀ. ବି. କୌଣସି ସ୍ଥାନର ଅଧିଷ୍ଠାତ୍ରୀ ଦେବୀ,ମାନନୀୟା ସ୍ତ୍ରୀ,ଉଦାର-ହୃଦୟା ସ୍ତ୍ରୀ, ଉଚ୍ଚବଂଶୀୟା ସ୍ତ୍ରୀ, ନଦୀ-ବିଶେଷ, ( ବି ଓ ବଂ. ) ଭଟ୍ଟାରକର ସ୍ତ୍ରୀଲିଙ୍ଗ, (ଗ୍ରା.ବି) ଓଡ଼ିଶା ଗଡ଼ଜାତ ବଡ଼ମ୍ବା ରାଜ୍ୟସ୍ଥ ମହାନଦୀ କୂଳରେ ପ୍ରତିଷ୍ଠିତା ଦେବୀମୂର୍ତ୍ତି ।

ଭଟ୍ଟି—ବି.ପଞ୍ଜାବବାସୀ ରାଜପୁତ ଜାତିର ଗୋଟିଏ ଶାଖା, ଶ୍ରୀଧରସ୍ୱାମୀଙ୍କ ପୁତ୍ର, ସଂସ୍କୃତ ଭଟ୍ଟିକାବ୍ୟର ରଚୟିତା, ରାମ-ଚରିତାତ୍ମକ ସଂସ୍କୃତ ମହାକାବ୍ୟ, ଭଟ୍ଟିକାବ୍ୟ ପ୍ରଣେତା ଭର୍ତ୍ତୃହରିଙ୍କ ନାମା-ନ୍ତର । [ ବିଶେଷ ।

ଭଟ୍ଟିକ—ପୁଂ. ବି. ଚନ୍ଦ୍ରଗୁପ୍ତଙ୍କର ପୁତ୍ର-

ଭଟ୍ଟିନୀ—ସ୍ତ୍ରୀ. ବି. (ଭଟ୍ଟ୍+ଇନ୍+ଈ) ନାଟ୍ୟୋକ୍ତିରେ ଅକୃତାଭିଷେକା ମହିଷୀ, ରାଜପତ୍ନୀ, ବ୍ରାହ୍ମଣୀ ।

ଭଟ୍ଟୀୟ—ବଂ. (ଭଟ୍ଟ୍+ଈୟ) ଭଟ୍ଟସମ୍ବ-ନ୍ଧୀୟ, ଆର୍ଯ୍ୟଭଟ୍ଟ ସମ୍ବନ୍ଧୀୟ ।

ଭଟ୍ଟୋତ୍ପଳ—ବି. ଜଣେ ଜ୍ୟୋତିର୍ବିତ୍, ବୃହଜ୍ଜାତକର ଟୀକାକାର ।

ଭଡ଼—ଗ୍ରା. ବି. ନାକରେ ଘନୀଭୂତ ଶିଙ୍ଘାଣି ପୂର୍ଣ୍ଣଥିବାରୁ ନିଶ୍ୱାସ ଯୋଗେ ଉତ୍ପନ୍ନ ଶବ୍ଦ, ଶବ୍ଦବିଶେଷ, ଗ୍ରେନ୍‌ବନ୍ଧୁ ଫାଟିଯିବାର ଶବ୍ଦ ।

ଭଡ଼୍‌ଭଡ଼୍—ଗ୍ରା. ଅବ୍ୟ. ଉପର୍ଯ୍ୟୁପରି ହେଉଥିବାର ଶବ୍ଦ, ଏକାଧିକ ଦଉଡ଼ି ହଠାତ୍ ଛିଣ୍ଡିବାର ଶବ୍ଦ, କୌଣସି ପଦାର୍ଥ ଭୂମିରେ ପତିତ ହେବାର ଶବ୍ଦ

ଭଡ଼୍‌କିନା—ଗ୍ରା. କ୍ରି. ବଂ. ଠକ୍‌ଠାକ୍, ଠୋକରି ହଠାତ୍ ଦଉଡ଼ି ଛିଣ୍ଡିଯିବାର ଶବ୍ଦ ।

ଭଡ଼—ଗ୍ରା. ବଂ. (ଫ-ବୃହତ୍) ବଡ଼,(ଫ-ବି) ପ୍ରାଚୀନ କାଳର ବର୍ଣ୍ଣସଙ୍କର ଜାତି (ଗ୍ରା.ବି) ଶୂଦ୍ରଜାତିର ଉପାଧିବିଶେଷ, ଏକପ୍ରକାର ଧୂଆଁପତ୍ର, ବଡ଼ପାନ,ବଡ଼-ନୌକା ।

ଭଡ଼କ—ଗ୍ରା.ବି. ହଠାତ୍ ଉପସ୍ଥିତ ଭୟ, ଛନକା, ଘାତ, ଆଡ଼ମ୍ବର, ଚାକଚକ୍ୟ, ଜାକଜମକ, ଦଗା, ଧପା ।

ଭଡ଼କା—ଗ୍ରା. ବି. ବୁଦ୍‌ବୁଦ, ଗୁଡ଼ାଖୁ ଖାଇବାର ହୁକାର ଯେଉଁ ଯାଗାରେ ପାଣିଥାଏ, ଶିଂଘାଣିମେଞ୍ଚା ।

ଭଡ଼କା(କେ)ଇବା—ଗ୍ରା. କ୍ରି. ଭଟକା-ଇବା, ହୁରୁଡ଼ାଇବା, ଭୟଦେଖାଇବା, ଧମକାଇବା ।

ଭଡ଼କଆ—ଗ୍ରା. ବଂ. ଆଡ଼ମ୍ବରମୟ,ଚକ-ଚକିଆ, ଭୟଶୀଳ ।

ଭଡ଼କିବା—ଗ୍ରା. କ୍ରି. ଭଟକିବା ଦେଖ, ଚମକିବା, ଭୟକରି ପଳାଇବା ।

ଭଡ଼କେଇତା—ଗ୍ରା. ବି. ନୀଚ ଶୂଦ୍ରଜାତି ବିଶେଷ ।

ଭଡ଼ଙ୍ଗ—ଗ୍ରା. ବି. ଏକପ୍ରକାର ଶୁଷିର ଯନ୍ତ୍ର, ଆଡ଼ମ୍ବର, ଗୃହକଚକ୍ୟ, ବାଗାଡ଼ମ୍ବର, ଧାନଗଛର ରୋଗବିଶେଷ ।

ଭଡ଼ଙ୍ଗିଆ—ଗ୍ରା. ବିଂ. ବାହ୍ୟଡ଼ମ୍ବର ବିଶିଷ୍ଟ , ଚକଚକିଆ,ବାଗାଡ଼ମ୍ବରଯୁକ୍ତ

ଭଡ଼ଙ୍ଗିବା—ଗ୍ରା. କ୍ରି. ରୋଗହେତୁ ଧାନଗଛ ଧାନକେଣ୍ଡା ନ ବାହାରିବା ଓ ବଢ଼ିବାରେ ବାଧା ଘଟିବା ।

ଭଡ଼ା—ଗ୍ରା. ବି. ଗୃହଗାଡ଼ି ଆଦିର କେରାୟା, ଆପଣାର ଦ୍ରବ୍ୟାଦିକୁ ଅନ୍ୟ ବ୍ୟକ୍ତି ବ୍ୟବହାର କରିବାର ମୂଲ୍ୟ ସ୍ୱରୂପ ଦ୍ରବ୍ୟସ୍ୱାମୀକୁ ଧନଦେବା ରୀତି, ଷ୍ଟେସନ ଗାଡ଼ିରେ ବୋହାଇ ହେବା ପରିମିତ ବସ୍ତ୍ର, ପାହୁଣ୍ଡ, ରେଲ୍‌ଆଦିରେ ଯିବା ବ୍ୟକ୍ତିର ଦେୟ ମାସୁଲ,(ଗ୍ରା.ବିଂ) ବହୁପରିମିତ, ଗାଡ଼ିପରିମିତ, ଭଡ଼ା ଲାଗିବାରେ ବ୍ୟବହୃତ,(ପ୍ରା.ବାଲେ.ବି) ପାଦଚକ୍ର ।

ଭଡ଼ାଏ—ଗ୍ରା. ବି ଓ ବିଂ. କିଛିବାଟ, ଥୋଡ଼ାଏ ବାଟ, ଅରେ ଶଗଡ଼ଆଦିରେ ବୋହାଇ ହେବା ପରିମିତ,ଏକପାହୁଣ୍ଡ ।

ଭଡ଼ାକଉଡ଼ି—ଗ୍ରା. ବି. ଶକଟ ବା ଗୃହାଦିର ବ୍ୟବହାରାର୍ଥ ଦେୟ ଧନ, ବେଟପୀର ଅର୍ଜିତ ଧନ ।

ଭଡ଼ାଘର—ଗ୍ରା. ବି. ଗୃହସ୍ୱାମୀ ଯେଉଁ ଗୃହକୁ ଅନ୍ୟର ବ୍ୟବହାର ସକାଶେ ଭଡ଼ାରେ ଲଗାନ୍ତି ।

ଭଡ଼ାଟିଆ—ଗ୍ରା. ବିଂ. ଯେ ଭଡ଼ାଦେଇ ଘରେ ରହେ ।

ଭଡ଼ାଦେବା—ଗ୍ରା. କ୍ରି. ଭଡ଼ା ପାଇବା ପାଇଁ ନିଜର ଗୃହାଦିକୁ ଅନ୍ୟଙ୍କୁ ବ୍ୟବହାର କରିବାକୁ ଦେବା,ମାସୁଲଦେବା, (ଅଶିଷ୍ଟାର୍ଥ) ଆପଣାର ଅଧିକାରଭୁକ୍ତା କୌଣସି ସ୍ତ୍ରୀକୁ ବେଶ୍ୟାବୃତ୍ତି ଦ୍ୱାରା ଧନ ଅର୍ଜନ କରିବା ପାଇଁ ଅନ୍ୟ ପୁରୁଷର ଉପଭୋଗ ନିମିତ୍ତ ଦେବା ।

ଭଡ଼ିଲ—ପୁଂ.ବି.(ଭଡ଼୍+ଇଲ)ସେବକ, ଶୂର, ବୀର, ଭୃତ୍ୟ, ଯୋଦ୍ଧା ।

ଭଡ଼ୁଆ—ଗ୍ରା. ବି. ଭଡ଼ୁଆ,ଜାତିବିଶେଷ, ସ୍ତ୍ରୈକାର, ଭାରଦା, ବେଶ୍ୟାର ପୋଷ୍ୟ ବ୍ୟକ୍ତି, ବେଶ୍ୟାପୁତ୍ର, ଅତି ନିର୍ଲଜ୍ଜ ବ୍ୟକ୍ତି, (ପୁଂ.ବିଂ) ନିର୍ଲଜ୍ଜ, ନୀଚ,ରଣ୍ଡୀବାଜ୍, ବେଶ୍ୟାସକ୍ତ,ଯେ ଜାରକୁ ପରସ୍ତ୍ରୀ ଯୋଗାଏ, ଯୋଟକ ।

ଭଣ—ଗ୍ରା.ବି. ଗ୍ରା.ଅବ୍ୟ, (ସଂ--ବହନ) ବହନ, ଶୀଘ୍ର, ଝଟତି, ହଠାତ୍ ।

ଭଣଭଣ—ଗ୍ରା. ଅବ୍ୟ. ବହୁମାଛି ଏକସ୍ଥାନରେ ଡେଣାଦ୍ୱାରା କରିବାର ଶବ୍ଦ, ପଚୁପଦାର୍ଥର ତୀବ୍ରଗନ୍ଧ, ଅତ୍ୟନ୍ତ ଦୁର୍ଗନ୍ଧଯୁକ୍ତ ହୋଇ ।

ଭଣଭଣା—ଗ୍ରା.ବିଂ. ଭଣ୍‌ଭଣ ଶବ୍ଦକାରୀ, (ବି) ଏକପ୍ରକାର ମାଛି ।

ଭଣଜା—ଗ୍ରା. ପୁଂ. ବି. (ସଂ-ଭଗିନୀଜ) ଭଉଣୀର ପୁତ୍ର, ଭଗିନେୟ ।

ଭଣଜାବୋହୂ—ଗ୍ରା. ସ୍ତ୍ରୀ. ବି. ଭଣଜାର ଭାର୍ଯ୍ୟା ।

ଭଣତି—ଗ୍ରା ବି. କଥନ, ସମାପ୍ତି ।

ଭଣୟିତା—ପୁଂ.ବିଂ.(ଭଣ୍+ତୃ)କଥକ, ଯେ କହେ,ଯେ ଅନ୍ୟବ୍ୟକ୍ତିର ମୁହଁରେ କୁହାଏ, (ସ୍ତ୍ରୀ) ଭଣୟିତ୍ରୀ ।

ଭଣା—ପ୍ରା. (ପୁରୀ) ପୁଂ. ବି. ଭଗିନୀର ସତୀତ୍ୱ ଧର୍ମନାଶକାରୀ ବ୍ୟକ୍ତି, ଅଶ୍ଳୀଳ ଗାଳି ।

ଭଣା(ଣେ)ଇବା—ଗ୍ରା.କ୍ରି.ଅନ୍ୟର ରଚିତ ଗୀତାଦିର ଆପଣା ନାମରେ ଭଣିତା କରାଇବା ।

ଭଣିତ—ବିଂ. (ଭଣ୍+ର୍ମ.ତ) ଶବ୍ଦିତ, ଭାଷିତ, କଥିତ, ରଚିତ (ଗୀତ), (ଭ-ଭା.ତ)କଥନ,କହିବା,(ସ୍ତ୍ରୀ)ଭଣିତା ।

ଭଣିତା(ତ)—ଗ୍ରା. ବି. ଗଦ୍ୟ ବା ପଦ୍ୟ ଶେଷରେ ରଚୟିତାଙ୍କ ନାମ ଉଲ୍ଲେଖ କରାଯିବା ଓ ସେହି ପଦ ।

ଭଣିତି—ବି. ( ଭଣ୍+ଭା.ତି ) ବାକ୍ୟ, କଥା, କଥନ, ଉଚ୍ଚାରଣ ।

ଭଣିବା—ଗ୍ରା. କ୍ରି. ବୋଲିବା, କହିବା, ଗୀତ ରଚନା କରି ସମାପ୍ତ କରିବା, ଉଚ୍ଚାରଣ କରିବା, ( କବି ) ଗୀତ ଶେଷରେ ନିଜର କିମ୍ବା ଅନ୍ୟବ୍ୟକ୍ତିର ନାମ ରଚକରୂପ ପ୍ରକାଶ କରିବା ।

ଭଣ୍ଡା—ବି. ବାଇଗଣ, ବାର୍ତ୍ତାକୀ ।

ଭଣ୍ଡାକ—ବି. ମାଷପର୍ଣ୍ଣୀ, ଖଡ଼ାଶାଗ ।

ଭଣ୍ଡାକୀ—ବି. ( ଭଟ୍+ଅକ+ଈ ) ବାର୍ତ୍ତାକୀ, ବାଇଗଣ, ବୃହତୀ, ବୃନ୍ତାକ ।

ଭଣ୍ଡୁକ—ବି. ଶ୍ୟୋନାକ ବୃକ୍ଷ,ଫଣଫଣା ଗଛ ।

ଭଣ୍ଡ—ପୁଂ. ବିଂ. (ଭନ୍ଡ୍+ଅ) ଅଶ୍ଳୀଳ ଭାଷୀ, ଧୂର୍ତ୍ତ, ଶଠ, କୃତ୍ରିମ,ଭଣ୍ଡ,ପୁଅଙ୍ଗିଆ, ମସ୍କରା, ବେଲିଆ, ବୃଥାଧର୍ମାଭିମାନୀ, (ବି) ଧପାବାଜ୍ ବ୍ୟକ୍ତି, ନଟ, ଅଟିଲ ଲୋକ,ଧୂର୍ତ୍ତବ୍ୟକ୍ତି,ନିର୍ଲଜ୍ଜବ୍ୟକ୍ତି ।

ଭଣ୍ଡକ—ପୁଂ.ବି.(ଭଣ୍ଡ+କ)ଖଞ୍ଜନପକ୍ଷୀ, କଜ୍ଜଳପାତି ଚଢ଼େଇ । [ କହିବା ।

ଭଣ୍ଡଖୋଳିବା—ଗ୍ରା. କ୍ରି. ଅଶ୍ଳୀଳ କଥା

ଭଣ୍ଡଗଣେଶ—ଗ୍ରା.ବି. ରାଜା ପୁରୁଷୋତ୍ତମ ଦେବଙ୍କଦ୍ୱାରା କାଞ୍ଚିରୁ ଆନୀତ ଓ ପୁରୀ ମନ୍ଦିର ବେଢ଼ାମଧ୍ୟରେ ସ୍ଥାପିତ ଗଣେଶମୂର୍ତ୍ତି ।

ଭଣ୍ଡଗୀତ—ବି. ଅଶ୍ଳୀଳ ସଙ୍ଗୀତ ।

ଭଣ୍ଡତପସ୍ୱୀ—ପୁଂ.ବି. (ଭଣ୍ଡ+ତପସ୍ୱୀ) (କ.ଧା) କପଟ ବୈରାଗୀ, ବକଧର୍ମୀ, ଧୂର୍ତ୍ତ, ତାପସବେଶଧାରୀ ଶଠ, କୃତ୍ରିମଧାର୍ମିକ, (ସ୍ତ୍ରୀ) ଭଣ୍ଡତପସ୍ୱିନୀ ।

ଭଣ୍ଡତପସ୍ୱୀତା—ବି. (ଭଣ୍ଡତପସ୍ୱିନ୍+ତା)କପଟବୈରାଗ୍ୟ, କପଟଧାର୍ମିକତା ।

ଭଣ୍ଡତା(ତ୍ୱ)—ବି.ଭଣ୍ଡପଣିଆ, କୃତ୍ରିମତା ଶଠତା ।

ଭଣ୍ଡନ—କ୍ଲୀ.ବି. (ଭନ୍ଡ୍+ଅନ)ପ୍ରତାରଣା, ଠକାଇବା, ଠକିବା, କବଚ, ସାଞ୍ଜୁ, ଯୁଦ୍ଧ, ହାନି ।

ଭଣ୍ଡର(ରା)—ଗ୍ରା. ବିଂ. ଲଜ୍ଜିତ, ପଣ୍ଡ, ନଷ୍ଟ, ବିଫଳ, ହାସ୍ୟାସ୍ପଦ, ପ୍ରତାରକ, ପ୍ରତାରିତ ।

ଭଣ୍ଡରା—ପ୍ରା.(ସମ୍ବ)ବି.ଭୋଜି,ମହୋତ୍ସବ ।

ଭଣ୍ଡଲ—ଗ୍ରା. ବିଂ. ( ସଂ-ଭଣ୍ଡ ) ଭଣ୍ଡ, ପ୍ରତାରକ, ଠକ, ( ଗ୍ରା.ବି ) ପ୍ରତାରକ ବ୍ୟକ୍ତି ।

ଭଣ୍ଡହାସିନୀ—ସ୍ତ୍ରୀ.ବ. ଗଣିକା,ବେଶ୍ୟା ।
ଭଣ୍ଡା—ଗ୍ରା.ବ. କଦଳୀର ଫଳକୋଷ, ପଣସ ଫଳର ମଧ୍ୟସ୍ଥ କାଷ୍ଠମୟ ଅସାରାଂଶ, ଅଣ୍ଡ ଓ ଗୋଇଠିମଧ୍ୟସ୍ଥ ଗୋଡ଼ର ପଛପାଖ ମାଂସର ଅଂଶ. ଭଣ୍ଡିବା କାର୍ଯ୍ୟ, ( ଗ୍ରା. କଳାହାଣ୍ଡି.ବ ) ହାଣ୍ଡି ।
ଭଣ୍ଡାଇବା—ଗ୍ରା.କ୍ରି. ଠକାଇବା, ଧପାଇବା, ଠକିବା, ଟାଳଟୁଳ୍‌ପୂର୍ବକ କାଳ କ୍ଷେପଣ କରିବା ।
ଭଣ୍ଡାଣ—ଗ୍ରା.ବ. (ସଂ-ଭଣ୍ଡନ)ଭଣ୍ଡାଇବା, ଠକିବା, ଭୁଲାଇବା ।
ଭଣ୍ଡାମି—ଗ୍ରା.ବ. ଗୁରୁଗିରି,ଛଳ,ଭଣ୍ଡତା ।
ଭଣ୍ଡାର—ଗ୍ରା. ବ. ଧନାଗାର, ସରଘର, ପୁଞ୍ଜି, ସଞ୍ଚିତ ଧନ, ବଡ଼ଓସାରେ କରାଯିବା ଭୋଗଦ୍ରବ୍ୟ, ସିନ୍ଦୂର ।
ଭଣ୍ଡାରକୋଣ—ପ୍ରା. (ସମ୍ବ) ବ. ବାୟୁକୋଣ ।
ଭଣ୍ଡାରଘର—ଗ୍ରା.ବ. ଯେଉଁଘରେ ଧନ ରକ୍ଷିତ ରହେ, ସରଘର, ଧନାଗାର ।
ଭଣ୍ଡାରଘର(ରୁ)ଆ—ଗ୍ରା.ପୁଂ. ବ. (ସଂ-ଭାଣ୍ଡାଗାରିକ) ଧନାଗାରର ଭାରପ୍ରାପ୍ତ ବ୍ୟକ୍ତି କୋଷାଧ୍ୟକ୍ଷ ।
ଭଣ୍ଡାରି(ରୀ)—ଗ୍ରା.ବ.ନାପିତ, କ୍ଷୌରକାର. କୋଷାଧ୍ୟକ୍ଷ,ଭଣ୍ଡାରଘରିଆ,ନରସୁନ୍ଦର, (ସ୍ତ୍ରୀ) ଭଣ୍ଡାରୁଣୀ ।
ଭଣ୍ଡାରିଆ—ଗ୍ରା.ବ. ଭଣ୍ଡାରର ଭାରପ୍ରାପ୍ତ ବ୍ୟକ୍ତି, ଭଣ୍ଡାରି, ପକ୍ଷିବିଶେଷ, (ବାଂ) ଭଣ୍ଡାରସମ୍ବନ୍ଧୀୟ ।
ଭଣ୍ଡାଖେଉର—ଗ୍ରା.ବ. ଚିଲିକାର ଏକପ୍ରକାର ମାଛ ।
ଭଣ୍ଡାଖେଉରିଆ—ପ୍ରା. (ବାଲେ)ବ. ଏକଜାତୀୟ ଶ୍ୱେତବର୍ଣ୍ଣ କ୍ଷୁଦ୍ରାକୃତି ମତ୍ସ୍ୟ ।
ଭଣ୍ଡାରୁଣୀ—ଗ୍ରା.ସ୍ତ୍ରୀ.ବ. ଭଣ୍ଡାରର ସ୍ତ୍ରୀ, ନାପିତୁଣୀ ।
ଭଣ୍ଡି—ସ୍ତ୍ରୀ.ବ. ( ଭଣ୍ଡ+ଇ ) ଖଚ, ଲହଙ୍ଗ, (ଗ୍ରା.ବ) ଭୁଣ୍ଡି, ମକାର ମଞ୍ଜି ବାଦ୍ ଥିବା ଅସାରାଂଶ, କାଛୁଆଦିରେ କରାଯାଇଥିବା କଣା, କଦଳୀଭଣ୍ଡା, ଅଶ୍ରିର ତାଳଗଛର ପୁଷ୍ପମଞ୍ଜରୀ, ତାଳକଡ଼ା,ପଣସର ଡେମ୍ଫକୁ ଲାଗିଥିବା ଲମ୍ବ ଅସାର ଅଂଶ, ଠେଙ୍ଗି ।
ଭଣ୍ଡିକା—ସ୍ତ୍ରୀ.ବ. ମଞ୍ଜିଷ୍ଠା ଲତା,ମଞ୍ଜୁଆଡ ।
ଭଣ୍ଡିବା—ଗ୍ରା.କ୍ରି. ଭଣ୍ଡାଇବା ଦେଖ ।
ଭଣ୍ଡିର(ଲ)—ବ.(ଭନ୍ଡ୍ + ଇର) ଶିରୀଷବୃକ୍ଷ, ଦୂତ, ଶିଳ୍ପୀ. ଶୁଭ ।
ଭଣ୍ଡୀ—ସ୍ତ୍ରୀ. ବ. ମଞ୍ଜିଷ୍ଠା, ଶିରୀଷବୃକ୍ଷ, ଶ୍ୱେତତ୍ରିବୃତ୍ତି ।
ଭଣ୍ଡୀତକୀ—ସ୍ତ୍ରୀ.ବ. ମଞ୍ଜିଷ୍ଠା ।
ଭଣ୍ଡୀର--ବ. ସମଷ୍ଠିଲଗୁଳ୍ମ,ଗୃହୃଲିଆଶାଟ, ଶିରୀଷଗଛ, ବଟଗଛ ।
ଭଣ୍ଡୀରଲତିକା—ସ୍ତ୍ରୀ.ବ. ମଞ୍ଜିଷ୍ଠା ।
ଭଣ୍ଡୀରୀ—ସ୍ତ୍ରୀ.ବ. ମଞ୍ଜିଷ୍ଠା ।
ଭଣ୍ଡୀଲ—ବ. ମଞ୍ଜିଷ୍ଠା ।
ଭଣ୍ଡୁଆ—ଗ୍ରା.ପୁଂ.ବଂ.ପ୍ରତାରକ, ମିଛୁଆ, ଜାଲୁଆ, ଠକ, ଯେ ଭଣ୍ଡାଉଥାଏ ।
ଭଣ୍ଡୁର—ଗ୍ରା.ବ. ଫତୁର, ଫେରେପ, ମିଛ, (ବଂ) ପ୍ରତାରକ, ବୃଥା ଗୋଲମାଲକାରୀ ।
ଭଣ୍ଡୂକ—ପୁଂ.ବ. ( ଭନ୍ଡ୍ +କ.ଊକ) ଏକପ୍ରକାର ମାଛ, ଶ୍ୟୋନାକ, ଫଣଫଣା ।
ଭତରି(ଡ଼ି)—ଗ୍ରା.ବ. ବସ୍ତ୍ରର ଅଞ୍ଚଳର ଏକ କୃଷକଜାତି ।
ଭତରି(ଡ଼ି)—ପ୍ରା. (ବସ୍ତର) ବ. ଓଡ଼ିଆ ଭାଷାର ଗୋଟିଏ ପ୍ରାଦେଶିକ ରୂପ ।
ଭତା(ତ୍ତା)—ଗ୍ରା. ବ. (ସଂ-ଭୃତି) ବଟା, କମିସନ, ପାଉସେର, ଭୃତ୍ୟକୁ ଦିଆଯିବା ଅତିରିକ୍ତ ଧନ, ବକ୍‌ସିସ୍, କର୍ମଚାରୀମାନଙ୍କୁ ଦରମା ବାଦ୍ ଅଧିକା ଦିଆଯିବା ଖାଇବା ଖର୍ଚ୍ଚ ।
ଭଦନ୍ତ—ପୁଂ. ବ. ବୌଦ୍ଧବିଶେଷ, ସୌଗତାଦି ବୁଦ୍ଧ,ସୁତେଜ,(ବଂ.-ଭଦ୍ +କ.ଅନ୍ତ) ପଣ୍ଡିତ,ପ୍ରବ୍ରଜିତ, ସମ୍ଭ୍ରାନ୍ତ, ମାନ୍ୟ, (ସ୍ତ୍ରୀ) ଭଦନ୍ତା ।
ଭଦଭଦଳିଆ—ଗ୍ରା. ବ. (ସଂ-ଭରଦ୍ୱାଜ) ଭରଦ୍ୱାଜପକ୍ଷୀ, କପୃପକ୍ଷୀ ।
ଭଦର—ଗ୍ରା.ବ. କ୍ଷୌରକର୍ମ; ମୁଣ୍ଡନ, ଷ୍ଟେଲିପର, ବୈଠକସ୍ଥାନ ।
ଭଦାକ—ପୁଂ.କ୍ଲୀ.ବ. ( ଭଦ୍+ଆକ ) ମଙ୍ଗଳ, ଶୁଭ ।
ଭଦ୍ର—କ୍ଲୀ.ବ. ଭଦ୍+ର) ସୌଭାଗ୍ୟ, କୁଶଳ, ଉତ୍ତମତା, ଉତ୍ତର ଦିଗର ଦିଗ୍ଗଜ, (ଜ୍ୟୋତିଷ) ବବାଦି ୧୧ଶ କରଣ ମଧ୍ୟରୁ ୭ମ କରଣ, ବଳଭଦ୍ର, ମହାଦେବ, ଖଞ୍ଜରୀଟ, ବୃଷଭ, କଦମ୍ବ, ଭଦ୍ରସନ୍ତାନ, ଲୌହ, ନୀଳପଦ୍ମ,ଚନ୍ଦନ, ସୁବର୍ଣ୍ଣ, ଗଜଜାତିବିଶେଷ, ଶ୍ରୀରାମଚନ୍ଦ୍ରଙ୍କର ଦୂତବିଶେଷ, ସୁମେରୁ, ସିଟ୍‌ଗଛ, ମୁଥା,ନାଗରମୁଥା,ଇନ୍ଦ୍ରଯବ, ଜନବିଶେଷ, ଦେବଦାରୁ, ଶ୍ରୀକୃଷ୍ଣଙ୍କର ଲୀଳାକାନନବିଶେଷ; ବିଷ୍ଣୁଙ୍କର ଦକ୍ଷିଣପାର୍ଶ୍ୱସ୍ଥ ଦ୍ୱାରପାଳ,ସ୍ୱରସାଧନର ପ୍ରଣାଳୀବିଶେଷ, ବଳରାମଙ୍କର ଏକ ସହୋଦର, ( ବଂ ) ଉତ୍ତମ, ଶ୍ରେଷ୍ଠ, ସାଧୁ, ଭାଗ୍ୟବାନ୍, ମଙ୍ଗଳସୂଚକ, ହିତକର, ସଦ୍‌ବଂଶଜାତ, ନମ୍ର, ଶାନ୍ତ, ସୁନ୍ଦର, (ସ୍ତ୍ରୀ) ଭଦ୍ରା, (ଗ୍ରା.ବ) ବଂଶୋପାଧିବିଶେଷ, ଶିରୋମୁଣ୍ଡନ, (ଅବ୍ୟ) ହେ ! ମହାଶୟ, ସମ୍ବୋଧନରେ ବ୍ୟବହୃତ ।
ଭଦ୍ରକ—ବ. ( ଭଦ୍ର+କ ) ଭଦ୍ରମୁଥା, ନାଗରମୁଥା, ଦେବଦାରୁ, ମୁଗ,ଚଣାଆଦି ଶସ୍ୟ, ବାଇଶଅକ୍ଷର ପାଦବିଶିଷ୍ଟ ଛନ୍ଦୋଭେଦ, (ବଂ) ମନୋଜ୍ଞ,ସୁନ୍ଦର ।
ଭଦ୍ରକ(ଖ)—ଗ୍ରା.ବ.ବାଲେଶ୍ୱର ଜିଲ୍ଲାର ଗୋଟିଏ ଉପବିଭାଗ ।
ଭଦ୍ରକଣ୍ଟ—ପୁଂ.ବ. ଗୋକ୍ଷୁର,ଗୋଖୁରା ।
ଭଦ୍ରକନ୍ୟା—ସ୍ତ୍ରୀ.ବ. ମୌଦ୍ଗଲ୍ୟାୟନଙ୍କର ମାତା ।
ଭଦ୍ରକପିଳ—ପୁଂ.ବ. ଶିବ, ମହାଦେବ ।
ଭଦ୍ରକର୍ଣ୍ଣ—ବ. ଗୋକର୍ଣ୍ଣରୂପ ତୀର୍ଥବିଶେଷ ।
ଭଦ୍ରକର୍ଣ୍ଣିକା—ସ୍ତ୍ରୀ.ବ. ଗୋକର୍ଣ୍ଣ ତୀର୍ଥରେ ଥିବା ଦେବୀମୂର୍ତ୍ତିବିଶେଷ ।
ଭଦ୍ରକର୍ଣ୍ଣେଶ୍ୱର—ପୁଂ.ବ. ଗୋକର୍ଣ୍ଣ ତୀର୍ଥସ୍ଥିତ ଶିବଲିଙ୍ଗଭେଦ ।

ଭଦ୍ରକାମ—ବି. ମଣିକୂଟ ପର୍ବତର ପୂର୍ବଦିଗସ୍ଥ ତୀର୍ଥବିଶେଷ ।

ଭଦ୍ରକାୟ—ପୁଂ.ବି. ଶ୍ରୀକୃଷ୍ଣଙ୍କର ପୁତ୍ରବିଶେଷ ।

ଭଦ୍ରକାର—ବିଂ. ( ଭଦ୍ର+କୃ+ଅ ) ମଙ୍ଗଳକାରକ, ହିତକର, ( ପୁଂ.ବି ) ଦେଶବିଶେଷ ।

ଭଦ୍ରକାରକ—ବିଂ. ମଙ୍ଗଳକାରକ ।

ଭଦ୍ରକାଳୀ—ସ୍ତ୍ରୀ.ବି. (ଭଦ୍ର+କଲ+ଅ +ଈ) ଗନ୍ଧୋଲୀ, କାତ୍ୟାୟନୀ, ପ୍ରସାରଣୀ, ନାଗରମୁଥା, ଦୁର୍ଗା ।

ଭଦ୍ରକାଶୀ—ବି. ଭଦ୍ରମୁଥା ।

ଭଦ୍ରକୁମ୍ଭ—ପୁଂ.ବି. ମଙ୍ଗଳାର୍ଥ ସ୍ଥାପିତ ପୂର୍ଣ୍ଣକୁମ୍ଭ ।

ଭଦ୍ରକୃତ—ବିଂ. ମଙ୍ଗଳକର, ମଙ୍ଗଳବିଧାୟକ, ଜୈନମାନଙ୍କର ଉତ୍ସର୍ପିଣୀର ଚତୁର୍ବିଂଶ ଅର୍ହତବିଶେଷ ।

ଭଦ୍ରଗଣିତ—ବି. ବୀଜଗଣିତୋକ୍ତ ଚକ୍ରବିନ୍ୟାସ ଦ୍ୱାରା ନିର୍ଣ୍ଣୀତ ଅଙ୍କ ପ୍ରକରଣବିଶେଷ ।

ଭଦ୍ରଗନ୍ଧିକା—ସ୍ତ୍ରୀ. ବି. (ଭଦ୍ର+ଗନ୍ଧ+କ+ଆ) ମୁଥା, ମୁସ୍ତକ ।

ଭଦ୍ରଘଟ—ବି. (ପ୍ରାଚୀନଶିଳ୍ପ) ଗୋଟିଏ କୁମ୍ଭ,ଯହିଁର ମୁହଁର ଦୁଇପାଖକୁ ଫୁଲମାଳା ବାହାରି ତଳକୁ ଓହଳି ପଡ଼ିଥିବାର ଚିହ୍ନ ହୋଇଥାଏ ।

ଭଦ୍ରଘନ—ବି. ଭଦ୍ରମୁଥା, ପିପାସା ।

ଭଦ୍ରଙ୍କର—ବିଂ. ( ଭଦ୍ରଂ+କୃ+ଅ ) ମଙ୍ଗଳକାରକ,ଶୁଭଜନକ,କ୍ଷେମଙ୍କର, (ସ୍ତ୍ରୀ) ଭଦ୍ରଙ୍କରୀ ।

ଭଦ୍ରଙ୍କରଣ—ବି. (ଭଦ୍ରଂ+କୃ+ଅନ) ମଙ୍ଗଳସାଧନ ।

ଭଦ୍ରଚନ୍ଦନସାରିବା—ବି. କୃଷ୍ଣସାରିବା ।

ଭଦ୍ରଚାରୁ—ବି. ଶ୍ରୀକୃଷ୍ଣଙ୍କର ପୁତ୍ରଭେଦ ।

ଭଦ୍ରଚୂଡ଼—ପୁଂ.ବି. (ବ.ଗ୍ରା) ଲଙ୍କାସିଝୁଗଛ । [ ଇନ୍ଦ୍ରଯବ ।

ଭଦ୍ରଜ—ପୁଂ.ବି. ( ଭଦ୍ର+ଜନ୍+ଅ )

ଭଦ୍ରଜନ—ବିଂ. (କ.ଧା) ସୁଜନ, ସାଧୁଲୋକ, ଉଚ୍ଚକୁଳୋଦ୍ଭବ ବ୍ୟକ୍ତି ।

ଭଦ୍ରଜନୋଚିତ—ବିଂ. (୬ତତ୍) ଭଦ୍ରଜନର କର୍ତ୍ତବ୍ୟ ।

ଭଦ୍ରକାନ୍ତ—ବିଂ. ସର୍ବାଙ୍ଗସୁନ୍ଦରୀ ସ୍ତ୍ରୀଯୁକ୍ତ. (ବି) ରୁଦ୍ର ପୁତ୍ରଗଣ ।

ଭଦ୍ରତରୁଣୀ—ସ୍ତ୍ରୀ.ବି. କୁବ୍ଜକବୃକ୍ଷ, ଏକପ୍ରକାର ଗୋଲାପ ।

ଭଦ୍ରତା—ସ୍ତ୍ରୀ.ବି. ଶିଷ୍ଟାଚାର, ସାଧୁତା, କଲ୍ୟାଣ, ଉତ୍ତମ ବ୍ୟବହାର,ସୌଜନ୍ୟ, ଶିଷ୍ଟତା । [ ପ୍ରଦର୍ଶନ ।

ଭଦ୍ରତାଚରଣ—ବି. (୬ତତ୍) ସାଧୁତା-

ଭଦ୍ରତାବିରୁଦ୍ଧ—ବିଂ. (୬ତତ୍)ସୌଜନ୍ୟବିରୁଦ୍ଧ, ଶିଷ୍ଟତା ବହିର୍ଭୂତ ।

ଭଦ୍ରତାମୂଳକ—ବିଂ. ଭଦ୍ରପ୍ରକୃତି ଜାତ ।

ଭଦ୍ରତିକ୍ତା—ବି. ମହାତିକ୍ତା, ଚିରେଇତାଜାତୀୟ ଏକପ୍ରକାର ଔଷଧି ଗୁଳ୍ମ, ଯବତିକ୍ତା । [ ବିଶେଷ ।

ଭଦ୍ରତୁଙ୍ଗ—ବି. ହନୁମାନଙ୍କର ତୀର୍ଥ-

ଭଦ୍ରତୁରଗ—କ୍ଳୀ.ବି. ଜମ୍ବୁଦ୍ୱୀପର ନବବର୍ଷର ଅନ୍ତର୍ଗତ ବର୍ଷବିଶେଷ ।

ଭଦ୍ରଦନ୍ତ—ପୁଂ.ବି. (ବ.ଗ୍ରା) ହସ୍ତୀ ।

ଭଦ୍ରଦନ୍ତିକା—ସ୍ତ୍ରୀ. ବି. ଦନ୍ତୀବୃକ୍ଷ, ଭଦ୍ରଦନ୍ତୀ ॥

ଭଦ୍ରଦାରୁ—ବି. (ଭଦ୍ର+ଦାରୁ) ଦେବଦାରୁ ବୃକ୍ଷ, ସରଳ କାଷ୍ଠ ।

ଭଦ୍ରଦେହ—ପୁଂ. ବି. ଶ୍ରୀକୃଷ୍ଣଙ୍କର ପୁତ୍ରବିଶେଷ । [ ବିଶେଷ ।

ଭଦ୍ରଦ୍ୱୀପ—ବି. କୁରୁଦେଶାନ୍ତର୍ଗତ ଦ୍ୱୀପ

ଭଦ୍ରଧନ—ବି. ନାଗରମୁଥା ।

ଭଦ୍ରନାମା—ପୁଂ.ବି କାଠକଟାଚଢ଼େଇ, (ବିଂ) ଉତ୍ତମ ନାମଯୁକ୍ତ ।

ଭଦ୍ରନାମିକା—ସ୍ତ୍ରୀ. ବି. ତ୍ରାୟନ୍ତୀବୃକ୍ଷ, ବଳାଲତା ।

ଭଦ୍ରନିଧି—ସ୍ତ୍ରୀ. ବି. ମହାଦାନବିଶେଷ, ଉତ୍କୃଷ୍ଟ ରତ୍ନ ।

ଭଦ୍ରପଣିଆ—ଗ୍ରା.ବି.ସୌଜନ୍ୟ, ଶିଷ୍ଟତା, ଉତ୍ତମତା ।

ଭଦ୍ରପଦା—ବି. ଭାଦ୍ରପଦା, ପୂର୍ବଭାଦ୍ର ଓ ଉତ୍ତର ଭାଦ୍ରପଦ ନକ୍ଷତ୍ର ।

ଭଦ୍ରପରିବାର—ବି. ଭଦ୍ରବଂଶ ଦେଖ ।

ଭଦ୍ରପର୍ଣ୍ଣା—ବି. କଟମ୍ଭରା ବୃକ୍ଷ, ଗମ୍ଭାରୀଗଛ, ପ୍ରସାରଣୀ ଲତା ।

ଭଦ୍ରପର୍ଣ୍ଣୀ—ବି.ଗମ୍ଭାରୀ, ପ୍ରସାରଣୀଲତା ।

ଭଦ୍ରପାଦ—ବିଂ. ପୂର୍ବଭାଦ୍ର ଓ ଉତ୍ତରଭାଦ୍ରପଦ ନକ୍ଷତ୍ରଜାତ ।

ଭଦ୍ରପୀଠ—ବି.ରାଜା ଓ ଦେବତାଆଦିଙ୍କର ଅଭିଷେକ ନିମିତ୍ତ ବସିବାର ଆସନ, ସିଂହାସନ ।

ଭଦ୍ରପ୍ରକୃତି—ବି. ଉତ୍ତମ ସ୍ୱଭାବ, (ବିଂ. ବ.ଗ୍ରା) ଉତ୍ତମ ସ୍ୱଭାବବିଶିଷ୍ଟ ।

ଭଦ୍ରଭୁଜ—ବି. କଲ୍ୟାଣ ବିଧାୟକ ବାହୁ ବା ହାତ, (ବିଂ) ମଙ୍ଗଳଜନକ ଭୁଜବିଶିଷ୍ଟ, ପ୍ରଶସ୍ତ ବାହୁଯୁକ୍ତ ।

ଭଦ୍ରଭୂଷଣା—ସ୍ତ୍ରୀ.ବି.ଦେବୀମୂର୍ତ୍ତିବିଶେଷ ।

ଭଦ୍ରମନା—ବି.ଐରାବତ ହାତୀର ମାତା, ( ପୁଂ.ବିଂ. ବ.ଗ୍ରା ) ମନସ୍ୱୀ, ପ୍ରଶସ୍ତଚେତାଃ ।

ଭଦ୍ରମନ୍ଦ—ପୁଂ. ବି. ଏକଜାତୀୟ ହସ୍ତୀ ।

ଭଦ୍ରମନ୍ଦ୍ରମୃଗ—ପୁଂ.ବି.ହସ୍ତିଜାତିବିଶେଷ ।

ଭଦ୍ରମଲ୍ଲିକା—ସ୍ତ୍ରୀ. ବି. ଗବାକ୍ଷୀ, ମଲ୍ଲୀ, ନିଆଳି, ନବମଲ୍ଲିକା ।

ଭଦ୍ରମାତା—ସ୍ତ୍ରୀ. ବି. ସ୍ନେହମୟୀ ମାତା ।

ଭଦ୍ରମୁଖ—ବିଂ.(ବ.ଗ୍ରା)ସୁବକ୍ତା, ସୁନ୍ଦର ମୁଖବିଶିଷ୍ଟ, ସୌମ୍ୟଦର୍ଶନ, ପ୍ରସନ୍ନମୂର୍ତ୍ତି, (ବି) ଶ୍ରୀରାମଙ୍କର ଜନୈକ ଗୁପ୍ତଚର, ନାଗବିଶେଷ ।

ଭଦ୍ରମୁସ୍ତକ—ବି. (କ.ଧା)ନାଗରମୁଥା ।

ଭଦ୍ରମୁସ୍ତା—ସ୍ତ୍ରୀ.ବି.(ଭଦ୍ର+ମୁସ୍ତା)କ.ଧା; ନାଗରମୁଥା ।

ଭଦ୍ରମୃଗ—ବି. ହସ୍ତିଜାତିବିଶେଷ ।

ଭଦ୍ରଯବ—ପୁଂ.ବି. (ଭଦ୍ର+ଯବ)ଇନ୍ଦ୍ରଯବ ।

ଭଦ୍ରଯାନ—କ୍ଳୀ.ବି. ଉତ୍ତମ ଯାନ, ଗାଡ଼ି, ଜନୈକ ବୌଦ୍ଧାଚାର୍ଯ୍ୟ ।

ଭଦ୍ରଯୋଗ—ବି. ମାହେନ୍ଦ୍ର ଯୋଗ ବା ସମୟ,ପୁରାଣ ସର୍ବସ୍ୱର ଗୋଟିଏ ଅଙ୍ଗ ।

ଭଦ୍ରରୁଚ—ବିଂ(ବ.ଗ୍ରା)ସତ୍ପ୍ରବୃତ୍ତିଶାଳୀ, (ବି) ପଶ୍ଚିମ ଭାରତବାସୀ ଜଣେ ବୌଦ୍ଧ ଭିକ୍ଷୁ ।

ଭଦ୍ରରୂପା—ସ୍ତ୍ରୀ. ବଂ. (ବ.ଗ୍ରା) ସୁନ୍ଦରୀ (ରମଣୀ), (ବ) ସୁରୂପା ସ୍ତ୍ରୀ ।
ଭଦ୍ରରେଣୁ—ପୁଂ. ବ. ଐରାବତ ହସ୍ତୀ ।
ଭଦ୍ରରୋହିଣୀ—ସ୍ତ୍ରୀ. ବ. କଟୁରୋହିଣୀ, କଟୁକୀ ।
ଭଦ୍ରଲୋକ—ଗ୍ରା.ବ.ସଦ୍‌ବଂଶଜାତ ବ୍ୟକ୍ତି, ସୁଜନ, ସାଧୁଲୋକ, ଭଲଲୋକ, ପଞ୍ଚାଏତ ।
ଭଦ୍ରବଂଶ—ବ. ସଦ୍‌ବଂଶ, ଉଚ୍ଚକୁଳ ।
ଭଦ୍ରବଂଶୀୟ—ପୁଂ.ବଂ. ସଦ୍‌ବଂଶଜାତ ।
ଭଦ୍ରବଙ୍ଗ—ବ. କଣ୍ଟଫଳ, କାଫଡ଼ ।
ଭଦ୍ରବନ—କ୍ଲୀ. ବ. ବୃନ୍ଦାବନସ୍ଥ ଶ୍ରୀକୃଷ୍ଣଙ୍କର କେଳିକାନନବିଶେଷ ।
ଭଦ୍ରବର୍ମା—ପୁଂ. ବ. ( ଭଦ୍ର+ବର୍ମନ୍ ) ନବମଲ୍ଲିକା, ନଆଳୀ ।
ଭଦ୍ରବଲନ—ପୁଂ.ବ. (ଭଦ୍ର+ବଲ୍+କ. ଅନ) ବଳ ଦେଖ, ବଳରାମ ।
ଭଦ୍ରବଲା—ସ୍ତ୍ରୀ. ବ. ପ୍ରସାରଣୀ ଲତା, ମାଧବୀଲତା ।
ଭଦ୍ରବଲ୍ଲଭ—ପୁଂ. ବ. ବଳରାମ ।
ଭଦ୍ରବଲ୍ଲିକା—ସ୍ତ୍ରୀ.ବ.ଗୋପବଲ୍ଲୀ,ଅନନ୍ତମୂଳ, ଚେରମାରୁ ।
ଭଦ୍ରବଲ୍ଲୀ—ସ୍ତ୍ରୀ.ବ.ମଲ୍ଲିକା, ମାଧବୀଲତା ।
ଭଦ୍ରବସନ—କ୍ଲୀ. ବ. ଉତ୍କୃଷ୍ଟ ପରିଚ୍ଛଦ ।
ଭଦ୍ରବାକ୍—ପୁଂ.ବଂ.(ବ.ଗ୍ରା) ସାଧୁବକ୍ତା, (ବି.କ.ଧା) ସାଧୁକଥା ବା ପ୍ରସଙ୍ଗ ।
ଭଦ୍ରବାଚ୍ୟ—କ୍ଲୀ. ବ. କହିବାର ଯୋଗ୍ୟ ଶୁଭ ଖବର ବା କଥା ।
ଭଦ୍ରବାଦୀ—ପୁଂ. ବଂ. (ଭଦ୍ର+ବାଦିନ୍) ସୁବକ୍ତା, ସୁଷ୍ଠୁଭାଷୀ, ମିଷ୍ଟାଲାପୀ ।
ଭଦ୍ରବ୍ୟକ୍ତି—ବ.(ଭଦ୍ର+ବ୍ୟକ୍ତି)ଭଦ୍ରଜନ ଦେଖ ।
ଭଦ୍ରବ୍ୟବହାର—ବ. ସଦାଚରଣ, ଭଦ୍ରଜନୋଚିତ ବ୍ୟବହାର, ଶିଷ୍ଟାଚରଣ ।
ଭଦ୍ରଶାଖ—ପୁଂ. ବ. ( ଭଦ୍ର+ଶାଖା ) କାର୍ତ୍ତିକେୟ ।
ଭଦ୍ରଶୀଳ—ପୁଂ. ବଂ. (ବ.ଗ୍ରା)ସଚ୍ଚରିତ୍ର, ସାଧୁସ୍ୱଭାବବିଶିଷ୍ଟ, (ସ୍ତ୍ରୀ) ଭଦ୍ରଶୀଳା ।
ଭଦ୍ରଶୋଣା—ଗ୍ରା. ବ. ନାଉରମାନଙ୍କର ରେଷାଇ କରିବା ପାଇଁ ନୌକାର ପଛ ମଙ୍ଗର ନିକଟତମ ଦୋଗୁଣାରେ ଥିବା କୋଠରି ।
ଭଦ୍ରଶୋଚି—ବ. କଲ୍ୟାଣପ୍ରାପ୍ତି, ମଙ୍ଗଳ ବିଧାୟକ କାନ୍ତି, ଅଗ୍ନି । [ ତୁଳସୀ ।
ଭଦ୍ରଶ୍ରୟ—ବ. (ଭଦ୍ର+ଶ୍ରୟ) ଚନ୍ଦନ,
ଭଦ୍ରଶ୍ରବ—ପୁଂ.ବ.ଧର୍ମଙ୍କର ପୁତ୍ରବିଶେଷ
ଭଦ୍ରଶ୍ରୀ—ବ. (ଭଦ୍ର+ଶ୍ରୀ) ସାଧୁସମୃଦ୍ଧି, ଚନ୍ଦନ, (ବଂ.ବ.ଗ୍ରା) ସୁଶ୍ରୀକ ।
ଭଦ୍ରଶ୍ରୁତି—ବଂ. ମଧୁର ବେଦଶ୍ରୋତା, ସମ୍ୟକ୍ ଶ୍ରବଣକାଙ୍କ୍ଷୀ ।
ଭଦ୍ରଶ୍ରେଣ୍ୟ—ପୁଂ. ବ. ଦିବୋଦାସଙ୍କର ପୂର୍ବବର୍ତ୍ତୀ କାଶୀର ରାଜା ।
ଭଦ୍ରଷଷ୍ଠୀ—ବ. ଦୁର୍ଗାଦେବୀ ।
ଭଦ୍ରସରଃ—କ୍ଲୀ.ବ.ସୁପାର୍ଶ୍ୱପର୍ବତ ସ୍ଥିତ ସରୋବରବିଶେଷ, ଉତ୍ତମ ସରୋବର ।
ଭଦ୍ରସନ୍ତାନ—ବ. ସଦ୍‌ବଂଶଜାତ ବ୍ୟକ୍ତି ।
ଭଦ୍ରସମାଜ—ବ. ସଭ୍ୟସମାଜ, ସଦ୍‌ବଂଶୀୟ ବ୍ୟକ୍ତିମାନଙ୍କ ସମାଜ ।
ଭଦ୍ରସୋମା—ସ୍ତ୍ରୀ.ବ (ଭଦ୍ର+ସ+ଉମା) ୬ତତ୍;ଗଙ୍ଗା,କୁରୁବର୍ଷସ୍ଥ ନଦୀବିଶେଷ ।
ଭଦ୍ରା—ସ୍ତ୍ରୀ.ବ (ଭଦ୍ର+ଆ)ରାସ୍ନା, କୃଷ୍ଣା, ପ୍ରସାରଣୀଲତା, କଣ୍ଟଫଳ, ଗମ୍ଭାରି, ଅନନ୍ତା,ଜୀବନ୍ତୀ, ଡମ୍ବିରି, ଅପରାଜିତା, ଗୋରୋଚନା, ନାଲୀ, ବାଡ଼ଅଁଳା, ଶମୀ, ବଚ, ଦନ୍ତୀ; ହରିଦ୍ରା, ଶ୍ୱେତଦୁବ, କୁଙ୍କୁମ, ଚନ୍ଦ୍ରଶୂର, ସାରବାଦ୍ୟବିଶେଷ, ଗାଈ, କାକୋଦୁମ୍ବର, ମହାକାଳ, ସୁଭଦ୍ରାଙ୍କର ନାମାନ୍ତର,ଶ୍ରୀକୃଷ୍ଣଙ୍କର ଏକ ପତ୍ନୀ, ବସ୍ତିଭଦ୍ରା, ବସ୍ତିର ଶେଷ ଉନ୍ନଦଣ୍ଡ, ସୂର୍ଯ୍ୟକନ୍ୟା, ଉତ୍ତର କୁରୁଦେଶରେ ପ୍ରବାହିତ ଗଙ୍ଗାସ୍ରୋତ, ଆକାଶଗଙ୍ଗା,ମନ୍ଦାକିନୀ,ପକ୍ଷର ଦ୍ୱିତୀୟା ସପ୍ତମୀ ଓ ଦ୍ୱାଦଶୀ ତିଥି, (ବଂ) ଶୁଭ, ଶ୍ରେଷ୍ଠା, ସାଧୁଶୀଳା, (ଗ୍ରା.ବ) ଚନ୍ଦ୍ରାବଳୀଙ୍କର ଏକସଖୀ, ପୁଲସ୍ତୁତା ।
ଭଦ୍ରାକରଣ—କ୍ଲୀ. ବ. (ଭଦ୍ରା+କୃ+ଅନ) ମୁଣ୍ଡନ, ମସ୍ତକମୁଣ୍ଡନ, କ୍ଷୌରକରଣ ।
ଭଦ୍ରାକପିଲାନୀ—ସ୍ତ୍ରୀ. ବ. ବୌଦ୍ଧଧର୍ମାବଲମ୍ବୀ ଜଣେ ଭିକ୍ଷୁରମଣୀ ।
ଭଦ୍ରାକୃତ—ବଂ. (ଭଦ୍ର+ଆ+କୃ+ମି. ତ) ମଙ୍ଗଳସୂଚକ, ମୁଣ୍ଡିତମସ୍ତକ ।
ଭଦ୍ରାକ୍ଷ—ପୁଂ.ବ. ରୁଦ୍ରାକ୍ଷପରି ଏକପ୍ରକାର ମଞ୍ଜି ।
ଭଦ୍ରାଙ୍ଗ—ପୁଂ. ବ. (ଚ.ଗ୍ରା) ବଳରାମ ।
ଭଦ୍ରାଣୀ—ସ୍ତ୍ରୀ.ବ.(ଭଦ୍ର+ଆନୀ) ଶିବାନୀ, ଦୁର୍ଗା, ପାର୍ବତୀ ।
ଭଦ୍ରାତ୍ମଜ—ପୁଂ. ବ. ( ଭଦ୍ର+ଆତ୍ମଜ ) ଖଡ୍ଗ, ଖଣ୍ଡା, ଅସି ।
ଭଦ୍ରାନନ୍ଦ—ପୁଂ.ବ. ଶିବାର୍ଚ୍ଚନମହୋଦଧି ପ୍ରଣେତା ।
ଭଦ୍ରାଭଦ୍ର—ଗ୍ରା. ବଂ. ଭଦ୍ର ଓ ଅଭଦ୍ର, ଶିଷ୍ଟ ଓ ଅଶିଷ୍ଟ, ଭଲ ଓ ମନ୍ଦ,(ଗ୍ରା.ବ) ମଙ୍ଗଳ ଓ ଅମଙ୍ଗଳ ।
ଭଦ୍ରାମି—ଗ୍ରା. ବ. ଭଦ୍ରତା ।
ଭଦ୍ରାୟୁଧ—ପୁଂ. ବ. ରାକ୍ଷସବିଶେଷ, ଉତ୍କୃଷ୍ଟ ଅସ୍ତ୍ରବିଶେଷ ।
ଭଦ୍ରାରକ—ପୁଂ.ବ. (ଭଦ୍ର+ଋ+ଅକ) ଅଷ୍ଟାଦଶ କ୍ଷୁଦ୍ରଦ୍ୱୀପାନ୍ତର୍ଗତ ଦ୍ୱୀପବିଶେଷ ।
ଭଦ୍ରାବତୀ—ସ୍ତ୍ରୀ.ବ.କଣ୍ଟଫଳ ଗଛ,କଟୁକୀ
ଭଦ୍ରାଶ୍ରମ—ପୁଂ. ବ. ଆଶ୍ରମଭେଦ ।
ଭଦ୍ରାଶ୍ରୟ—ପୁଂ. ବ. (ଭଦ୍ର+ଆଶ୍ରୟ) ବ.ଗ୍ରା; ଚନ୍ଦନ, ଚନ୍ଦନ ବୃକ୍ଷ ।
ଭଦ୍ରାଶ୍ୱ—କ୍ଲୀ. ବ. (ଭଦ୍ର+ଅଶ୍ୱ)ବ.ଗ୍ରା; ଜମ୍ବୁଦ୍ୱୀପର ନବବର୍ଷାନ୍ତର୍ଗତ ବର୍ଷ ବା ଦେଶ ।
ଭଦ୍ରାସନ—କ୍ଲୀ. ବ. ( ଭଦ୍ର+ଆସନ ) କ.ଧା, ତନ୍ତ୍ରଶାସ୍ତ୍ରୋକ୍ତ ଆସନବିଶେଷ, ରହିବାଘର, ନୃପାସନ, ରାଜାସନ, ସିଂହାସନ, ବସତିଗୃହ,ପୈତୃକ ଘରବାଡ଼ି ।
ଭଦ୍ରାହ—କ୍ଲୀ. ବ. ପୁଣ୍ୟ ଦିବସ ।
ଭଦ୍ରି—ପ୍ରା. (ଗଞ୍ଜାମ)ବ.ବ୍ରାହ୍ମଣମାନଙ୍କର ଶ୍ରେଣୀ ବା ଗୋଷ୍ଠୀବିଶେଷ ।
ଭଦ୍ରିକା—ସ୍ତ୍ରୀ. ବ. ଭଦ୍ରା ତିଥି, ଦ୍ୱିତୀୟା, ସପ୍ତମୀ,ଦ୍ୱାଦଶୀ ତିଥି, ଯୋଗିନୀ ଦଶା-

ମଧ୍ୟ ପଞ୍ଚମୀ ଦଶା, ନବାକ୍ଷରପାଦକ ଛନ୍ଦୋବିଶେଷ ।

ଭଦ୍ରେଶ୍ୱର—ପୁଂ. ବ. (କ.ଧା) ମହାଦେବଙ୍କୁ ଲାଭ କରିବା ନିମିତ୍ତ ପାର୍ବତୀଙ୍କ କର୍ତ୍ତୃକ ଆରାଧିତ ହିମାଳୟସ୍ଥିତ ପାର୍ଥିବ ଶିବଲିଙ୍ଗ,ମହାର୍ଥମଞ୍ଜରୀ ଟୀକାପ୍ରଣେତା, ଗ୍ରାମବିଶେଷ, କଳଗ୍ରାମସ୍ଥ ଶିବ ।

ଭଦ୍ରୈଳା—ସ୍ତ୍ରୀ.ବ.(ଭଦ୍ର+ଏଳା)କ.ଧା, ବଡ଼ଅଳାଇଚ ।

ଭଦ୍ରୋଚିତ—ବିଂ.(୬ତତ୍ପୁ) ଶିଷ୍ଟତାସମ୍ମତ, ସାଧୁଜନୋଚିତ ।

ଭଦ୍ରୋଦନୀ—ସ୍ତ୍ରୀ.ବ.ବଳା,ବାଡ଼ିଅଁଳା, ନାଗବଳା ।

ଭଦ୍ରୋଦୟ—କ୍ଲୀ.ବ. ସୁଶ୍ରୁତୋକ୍ତ ଔଷଧ ଭେଦ । [ ଶୀଘ୍ର ।

ଭନ୍—ଗ୍ରା. କ୍ରି.ବିଂ. (ଫ-ଚାଳନ)ର ଧ୍ୱନ,

ଭନ୍ଦଡ଼—ଗ୍ରା. ବ. (ସଂ-ଭନ୍ଦ୍ର) ପ୍ରାଣୀବିଶେଷ, ଓଧ, ଓଲୁଅ, (ଗ୍ରା.ବିଂ)ଓଲୁ ।

ଭନ୍ଦନ—ବିଂ. କଲ୍ୟାଣକାରୀ ।

ଭନ୍ଦିଳ—କ୍ଲୀ. ବ. (ଭନ୍ଦ୍+ଇଳ) ଶୁଭ, କର୍ମ, ଦୂତ, ମଙ୍ଗଳ ।

ଭନ୍ଦିଷ୍ଠ—ପୁଂ. ବିଂ. ଅତିଶୟ ସ୍ତୋତା, ଅତ୍ୟନ୍ତ ସ୍ତବକାରୀ ।

ଭପଞ୍ଜର—କ୍ଲୀ.ବ. (ଭ+ପଞ୍ଜର)୬ତତ୍ପୁ, ନକ୍ଷତ୍ରଚକ୍ର, ରାଶିଚକ୍ର ।

ଭପତି—ପୁଂ. ବ. (ଭ+ପତି) ୬ତତ୍ପୁ; ନକ୍ଷତ୍ରନାଥ, ଚନ୍ଦ୍ର ।

ଭପା—ଗ୍ରା. ବିଂ. ଦାମ୍ଭିକ, ଧପ୍ପାବାଜ ।

ଭମକିବା—ପ୍ରା.(ସମ୍ବ)କ୍ରି.ନିଦ୍ରାବସ୍ଥାରେ ବଳିବଳେଇବା ।

ଭମଣ୍ଡଳ—କ୍ଲୀ.ବ. (୬ତତ୍ପୁ) ନକ୍ଷତ୍ରଚକ୍ର, ରାଶିଚକ୍ର, ଗ୍ରହମଣ୍ଡଳ, ଆକାଶମଣ୍ଡଳ ।

ଭମ୍ବ—ପୁଂ. ବ. ( ଭମ୍+ଭ୍ର+କ.ଅ ) ମକ୍ଷିକା, ମାଛି,ଧୂମ, ଧୂଆଁ ।

ଭମ୍ବରାଳିକା—ସ୍ତ୍ରୀ. ବ. (ଭମ୍+ଭ୍ର+ରାଳ+କ+ଆ) ଭଙ୍ଗାରୀ, ଡାଉଁଶ, ଦଂଶ, ଭଣଭଣା ମାଛି ।

ଭମ୍ବରାଳୀ—ସ୍ତ୍ରୀ.ବ. (ଭମ୍+ଭ୍ର+ଲ+ଈ) ମକ୍ଷିକାଭେଦ, ଗିଣିଗିଣା ମାଛି, ଭଣଭଣା ମାଛି ।

ଭମ୍ଭାସାର—ପୁଂ. ବ. ମଗଧ ଦେଶର ନୃପବିଶେଷ ।

ଭୟ—କ୍ଲୀ. ବ. (ଭୀ+ଅ) ତ୍ରାସ, ଭୀତି, ଶଙ୍କା, ଡର,ଅନିଷ୍ଟର ଆଶଙ୍କା,ବିପଦ, ଭୟାନକ ରସର ସ୍ଥାୟୀଭାବ, କୁବ୍ଜକପୁଷ୍ପ, (ବିଂ) ଘୋର ।

ଭୟଙ୍କର—ବିଂ.(ଭୟ+କୃ+ଅ) ଭୟକାରକ, ଭୀତିଜନକ, (ସ୍ତ୍ରୀ) ଭୟଙ୍କରୀ ।

ଭୟକରିବା—ଗ୍ରା. କ୍ରି. ଭୀତହେବା, ଆଶଙ୍କା କରିବା ।

ଭୟକାତର—ପୁଂ.ବିଂ.(୩ତତ୍ପୁ) ଭୟାର୍ତ୍ତ, ଅତ୍ୟନ୍ତ ଭୟଯୋଗୁଁ ବିହ୍ୱଳ ।

ଭୟକୃତ୍—ପୁଂ.ବିଂ. (ଭୟ+କୃ+କ୍ୱିପ୍) ଭୀତିଜନକ, ଭୟକାରକ, (ବ) ପରମେଶ୍ୱର ।

ଭୟଙ୍କର—ବିଂ. (ଭୟ+କୃ+କ.ଅ) ଭୟଜନକ,ଭୀତିପ୍ରଦ,ଘୋର,ବେକାଏ, (କ୍ରି.ବିଂ) ଅତ୍ୟନ୍ତ, ଭାରି ।

ଭୟଚକିତ—ପୁଂ. ବିଂ. (୩ତତ୍ପୁ) ଭୟଦ୍ୱାରା ଚମକି ପଡ଼ିଥିବା ।

ଭୟଛାଡ଼ିବା—ଗ୍ରା. କ୍ରି. ମନରୁ ଭୟ ତ୍ୟାଗ କରିବା ।

ଭୟଜନକ—ବିଂ. ଯାହା ଭୟ ଜନ୍ମାଏ ।

ଭୟଜାତ—ବିଂ.(୫ତତ୍ପୁ)ଭୟରୁ ଉତ୍ପନ୍ନ, ଭୟହେତୁ ଜନ୍ମିଥିବା ।

ଭୟଡିଣ୍ଡିମ—ପୁଂ. ବ. ସଂଗ୍ରାମପଟହ, ରଣବାଦ୍ୟ ।

ଭୟତମ—ଗ୍ରା. ବିଂ. (ପଦ୍ୟ) ଭୟଙ୍କର ।

ଭୟତ୍ରାତା—ପୁଂ. ବିଂ. (ଭୟ+ତ୍ରୈ+କ.ତୃ) ଭୟରୁ ରକ୍ଷାକାରୀ, (ସ୍ତ୍ରୀ) ଭୟତ୍ରାତ୍ରୀ ।

ଭୟଦ—ବିଂ. ( ଭୟ+ଦା+କ.ଅ ) ଭୟଦାନକାରୀ, ଯେ ଭୟ ଜନ୍ମାଏ, ଭୀଷଣ, (ସ୍ତ୍ରୀ) ଭୟଦା, (ପୁଂ.ବ) ଗଣ୍ଡା, ବ୍ୟାଘ୍ର ।

ଭୟଦାୟୀ—ପୁଂ. ବିଂ. (ଭୟ+ଦା+ଇନ୍) ଭୟଦାତା, (ସ୍ତ୍ରୀ) ଭୟଦାୟିନୀ ।

ଭୟଦ୍ରୁତ—ବିଂ. ( ଭୟ+ଦ୍ରୁ+ତ ) ଭୀତିହେତୁ ପଳାୟିତ ।

ଭୟନାଶନ—ବିଂ. (ଭୟ+ନଶ୍+ଣି+କ.ଅନ) ଭୟନିବାରକ,ଭୀତିନିବାରକ, (ସ୍ତ୍ରୀ) ଭୟନାଶିନୀ,(ପୁଂ.ବ)ବିଷ୍ଣୁ, (ଭା.ଅନ—କ୍ଲୀ. ବ) ଭୟଦୂରୀକରଣ, ଭୀତିନାଶ ।

ଭୟପାଇବା—ଗ୍ରା.କ୍ରି.ଭୀତହେବା,ଡରିବା

ଭୟପ୍ରଦ—ବିଂ. (ଭୟ+ପ୍ର+ଦା+ଅ) ଭୟଦ, ଭୟଦାତା, (ସ୍ତ୍ରୀ) ଭୟପ୍ରଦା ।

ଭୟପ୍ରଦର୍ଶନ—କ୍ଲୀ. ବ. (୬ତତ୍ପୁ)ଅନ୍ୟକୁ ଭୟ ଦେଖାଇବା ।

ଭୟପ୍ରାପ୍ତ—ବିଂ. (୨ତତ୍ପୁ) ଭୀତ ।

ଭୟବିକ(ହ୍ୱ)ଳ—ପୁଂ. ବିଂ. ( ୩ତତ୍ପୁ ) ଭୟଦ୍ୱାରା ଆର୍ତ୍ତ, ଭୟପୀଡ଼ିତ, (ସ୍ତ୍ରୀ) ଭୟବିକଳା ।

ଭୟବ୍ରାହ୍ମଣ—ପୁଂ. ବ. ଭୟରେ ଆପଣାକୁ ବ୍ରାହ୍ମଣ ବୋଲି କହିବା ଲୋକ ।

ଭୟଭାଗ—ଗ୍ରା. ବ. ଭୟଭୀତ, ଭୀତ ।

ଭୟଭୀତ—ପୁଂ. ବିଂ. (୩ତତ୍ପୁ) ଭୟଦ୍ୱାରା ଭୀତ, ଭୀତତ୍ରସ୍ତ,(ସ୍ତ୍ରୀ)ଭୟଭୀତା ।

ଭୟଭ୍ରଷ୍ଟ—ବିଂ. ଭୟଦ୍ରୁତ, ଭୟରେ ପଳାୟିତ ।

ଭୟମାଡ଼ିବା—ଗ୍ରା. ବ. ଡରିବା, ଭୀତହେବା ।

ଭୟରହିତ—ବିଂ. ନିର୍ଭୟ, ଶଙ୍କାରହିତ, ଯେଉଁଠାରେ କୌଣସି ଭୟଘଟିବାର ଶଙ୍କା ନାହିଁ ।

ଭୟବ୍ୟୂହ—ପୁଂ. ବ. ରାଜାମାନଙ୍କର ବ୍ୟୂହଭେଦ ।

ଭୟଶୀଳ—ପୁଂ. ବିଂ. (ବ.ବ୍ରୀ) ଭୟାଳୁ, ଭୀରୁ, (ସ୍ତ୍ରୀ) ଭୟଶୀଳା ।

ଭୟା—ଗ୍ରା.ବ.ପ୍ରାଚୀନ ଜଳଯାନବିଶେଷ, କୌଣସି ଠାରେ ବାଘ ମାଡ଼ ମନୁଷ୍ୟାଦି ପ୍ରାଣୀ ନାଶ କରୁଥିବା ହେତୁ ତଜ୍ଜନିତ ଆଶଙ୍କା, (ଯା,ଅବ୍ୟ) ହେ ଭାଇ !

ଭୟାକୁଳ—ପୁଂ. ବିଂ. (୩ତତ୍ପୁ) ଭୟବିହ୍ୱଳ, (ସ୍ତ୍ରୀ) ଭୟାକୁଳା ।

ଭୟାକୃତ—ଗ୍ରା. ବିଂ. ଭୟଙ୍କର,ଭୀଷଣ ।

ଭୟାତୁର—ବିଂ. (୩ତତ୍ପୁ) ଭୟକାତର,

ଭୟାର୍ତ୍ତି ।

ଭୟାନକ—ପୁଂ. ବିଂ. ( ଭୀ + ଆନକ ) ଯାହାଠାରୁ ଭୟପାଇବାକୁ ହୁଏ, ଭୀଷଣ, ଭୟଙ୍କର, (ବି) ବ୍ୟାଘ୍ର, ରାହୁ, କାବ୍ୟର ରସବିଶେଷ, (ଗ୍ରା. କ୍ରି. ବି) ଅତ୍ୟନ୍ତ ଭୟଙ୍କର ଭାବରେ ।

ଭୟାପହ—ପୁଂ, ବିଂ. ( ଭୟ+ଅପ+ +ହା+ଅ) ଭୟନାଶକ, ଭୟତ୍ରାତା, ଭୟଙ୍କର, (ସ୍ତ୍ରୀ) ଭୟାପହା, (ପୁଂ.ବି) ରାଜା, ବିଷ୍ଣୁ ।

ଭୟାର୍ତ୍ତି—ପୁଂ. ବିଂ. (୩ତତ୍) ଭୟଦ୍ୱାରା ବିହ୍ୱଳ, ଭୟକାତର, (ସ୍ତ୍ରୀ) ଭୟାର୍ତ୍ତା ।

ଭୟାଳୁ—ପୁଂ.ବିଂ. (ଭୟ+ଆଳୁ) ଭୀରୁ, ସାନସାହସୀ ।

ଭୟାବହ—ବିଂ. (ଭୟ+ଆ+ବହ୍ +କ.ଅ) ଭୟଜନକ, ବିପଦପୂର୍ଣ୍ଣ, ବିପଦର ଆଶଙ୍କାଜନକ, (ସ୍ତ୍ରୀ) ଭୟାବହା

ଭୟେଣୀ—ଗ୍ରା. ପ୍ରା. (ପଦ୍ୟ) ସ୍ତ୍ରୀ. ବି. ଭଉଣୀ, ଭଗ୍ନୀ ।

ଭୟ୍ୟ—କ୍ଲୀ. ବି. (ଭୀ + ଯ) ଭୟ ।

ଭର୍—ଗ୍ରା. ଅବ୍ୟ. ତମାମ, ଜାକ, ସମସ୍ତ ।

ଭରଦର—ପ୍ରା. (ସମ୍ଭ) କ୍ରି. ବିଂ. କ୍ଷିପ୍ରଗତିରେ ।

ଭର୍ପୂର୍—ଗ୍ରା. ବିଂ. ପରିପୂର୍ଣ୍ଣ ।

ଭର୍ଭଙ୍ଗ୍—ପ୍ରା. (ସମ୍ଭ) ବିଂ. ଅନାବୃତ, ମେଲା ।

ଭର୍ଭର୍—ଗ୍ରା. ଅବ୍ୟ. ବୁଦ୍ବୁଦ ଉଠିବାର ଶବ୍ଦ, ଶାଢ଼ଫେଣଯୁକ୍ତ ତରଳ ପଦାର୍ଥରେ ପୂର୍ଣ୍ଣ ।

ଭୁର୍ର୍—ଗ୍ରା. ଅବ୍ୟ. ଫର୍ର୍, ଲୁଗାଆଦି ଚିରିବାର ଶବ୍ଦ ।

ଭର—ପୁଂ. ବି. (ଭୃ + ଭା.ଅ) ଆଧିକ୍ୟ, ଅତିଶୟ, ଭରଣପୋଷଣ, ନିର୍ଭର, ଭାର, ଆବର୍ଜ୍ଜବ, ଗୌରବ, ପୂରଣ, ଆସ୍ଥା, ବିଶ୍ୱାସ, ଆଗ୍ରହ, ଆଶା, ସମୂହ, (ପୁଂ.ବିଂ) ଯେ ଭରଣପୋଷଣ କରେ, ଭରଣକର୍ତ୍ତା, (ଗ୍ରା.ବିଂ—ଅମୁକ) ଦିଗକୁ ଅଗ୍ରସର ହୋଇଥିବା, (ଅମୁକରେ) ପୂର୍ଣ୍ଣ, ( ପେଟକୁ ) ପୂର୍ଣ୍ଣକରିବାକୁ ସଦିଥିବା (ଖାଦ୍ୟ), ସାମର୍ଥ୍ୟକୁ ଗୃହୀଁ (ପିଠିର) ।

ଭରତ—ଗ୍ରା. ବି. କ୍ଷତିପୂରଣ, ପୂର୍ତ୍ତି, ପୂର୍ତ୍ତିକରିବା, ( ଗ୍ରା.ବିଂ ) ପରିପୂରିତ, ବୋଝାଇରେ ପୂର୍ଣ୍ଣ ।

ଭରଜା—ଗ୍ରା. ବି. ମୁଥାଜା, ମୁକାବିଲା, ମନକୁ ନେବା ବା ମୋହିବା ।

ଭରଜା(ଜେ)ଇବା—ଗ୍ରା. କ୍ରି. ମୁଥାଜା କରାଇବା, ସନ୍ତୁଷ୍ଟ କରିବା ।

ଭରଜିବା—ଗ୍ରା. କ୍ରି. ଭଜିବା ଦେଖ ।

ଭରଟ—ପୁଂ. ବି. (ଭୃ + କ.ଅଟ) କୁମ୍ଭକାର, କୁମ୍ଭାର, ଭୃତ୍ୟ, (ଗ୍ରା. ବି ଓ ବିଂ) ଭରାଟ ।

ଭରଟକ—ପୁଂ. ବି. ସନ୍ନ୍ୟାସୀ ସମ୍ପ୍ରଦାୟ ବିଶେଷ ।

ଭରଣ—କ୍ଲୀ. ବି. (ଭୃ + ଭା.ଅନ) ପୂରଣ କରିବା, ପୋଷଣ, ପ୍ରତିପାଳନ, ଧାରଣ, (ଣ+ଅନ) ବେତନ, ମିଶ୍ରଧାତୁବିଶେଷ, ଟଉ, (ଗ୍ରା.ବି) ଶସ୍ୟର ପରିମାଣବିଶେଷ, ୪ ୪୦ ଶ୍ରିବା ଆଠପୌଟି, ଏକଟଣ୍ଡ ଗାଡ଼ିରେ ବୋଝାଇ ହେବା ପରିମାଣ, ଅଳତା ଆଦି ଲଗାଇବା, (ପ୍ରା.ଗଞ୍ଜାମ. ବିଂ) ଏକ ଏକର ଭୂମିର ଏକପଞ୍ଚମାଂଶ, ୨୦ ଡେଃ ଜମି ।

ଭରଣପୋଷଣ—ଗ୍ରା.ବି. ଲାଳନପାଳନ, ଖୋରାକପୋଷାକ ଦେବା, ପ୍ରତିପାଳନ ।

ଭରଣଭରଣ—ଗ୍ରା.ବିଂ. ବହୁଭରଣ ପରିମିତ ।

ଭର(ର)ଣା-ଗ୍ରା. ବି.ପୂର୍ତ୍ତି, ପୂର୍ଣ୍ଣତା, କୌଣସି ପାତ୍ର ପୂର୍ଣ୍ଣହେବା ନିମନ୍ତେ ଆବଶ୍ୟକ ପଦାର୍ଥର ପରିମାଣ, କ୍ଷତିପୂରଣ ।

ଭରଣି—ଗ୍ରା. କ୍ରି. ପୂର୍ଣ୍ଣକରିବା କ୍ରିୟା, ଲୁଗାର ଆଡ଼ବାଗର ସୂତା ।

ଭରଣିଆ—ଗ୍ରା.ବି. ଭୃତ, ବେତନ ।

ଭରଣୀ—ସ୍ତ୍ରୀ.ବି. ଦ୍ୱିତୀୟନକ୍ଷତ୍ର, ପୋଷକ ଲତା ।

ଭରଣୀଭୂ—ପୁଂ.ବି. ରାହୁଗ୍ରହ ।

ଭରଣୀୟ—ବିଂ. ( ଭୃ+ର୍ମ.ଅନୀୟ ) ଭରଣଯୋଗ୍ୟ, ପୋଷ୍ୟ, ପୋଷଣୀୟ ।

ଭରଣ୍ୟ—ବିଂ. (ଭରଣ + ଯ) ଭରଣୀୟ ପ୍ରତିପାଳ୍ୟ, (ବି) ବେତନ, ଦରମା, ମୂଲ୍ୟ ।

ଭରଣ୍ୟଭୁକ୍—ବିଂ. ( ଭରଣ + ଭୁଜ୍ + କ.କ୍ୱିପ୍) ବେତନଭୋଗୀ (କର୍ମଚାରୀ), ମୂଲିଆ । [ବେତନ ।

ଭରଣ୍ୟା—ସ୍ତ୍ରୀ.ବି.(ଭରଣ୍ୟ+ଆ) ଭରଣ୍ୟ,

ଭରଣ୍ୟୁ—ପୁଂ,ବି. ଶରଣ୍ୟ, ମିତ୍ର, ଅଗ୍ନି, ଚନ୍ଦ୍ର, ଈଶ୍ୱର ।

ଭରଣ୍ଡ—ପୁଂ.ବି. (ଭୃ+କ.ଅଣ୍ଡ) ସ୍ୱାମୀ, ଭର୍ତ୍ତା, ଭୂପାଳ, ବୃଷ, କୃମି, ପୃଥିବୀ ।

ଭରତ—ପୁଂ.ବି. (ଭୃ+ଅତ) ନାଟ୍ୟଶାସ୍ତ୍ର ପ୍ରବର୍ତ୍ତକ ମୁନିବିଶେଷ, ନଟ, ଶବର, ତନ୍ତୁବାୟ, ତନ୍ତ୍ରୀ, କ୍ଷେତ୍ର, ବହ୍ନି ପୁତ୍ର ଭେଦ, କୈକେୟୀ ଗର୍ଭସମ୍ଭୂତ ଦଶରଥଙ୍କ ପୁତ୍ର, ଋଷଭଦେବଙ୍କର ପୁତ୍ର, ଶକୁନ୍ତଳା ଗର୍ଭସମ୍ଭୂତ ଦୁଷ୍ମନ୍ତଙ୍କ ପୁତ୍ର, ବ୍ରାହ୍ମଣକୁମାରବିଶେଷ, ; ଜଡ଼ଭରତ, ଭରତ ରାଜାଙ୍କ ବଂଶ, (ଗ୍ରା.ବି) ଭରଦ୍ୱାଜ ବା ଭରଢଆ ପକ୍ଷୀ ।

ଭରତଖଣ୍ଡ—କ୍ଲୀ.ବି. ଭାରତବର୍ଷ ।

ଭରତପକ୍ଷୀ—ପୁଂ.ବି. ସ୍ୱନାମପ୍ରସିଦ୍ଧ ପକ୍ଷିଜାତିବିଶେଷ, ଭରଢଆପକ୍ଷୀ ।

ଭରତପୁତ୍ରକ—ପୁଂ.ବି. (ଭରତ + ପୁତ୍ର +କ) ନଟ, ଅଭିନୟକାରୀ ।

ଭରତପ୍ରସୂ—ସ୍ତ୍ରୀ. ବି. ଭରତଙ୍କର ମାତା କୈକେୟୀ ।

ଭରତର୍ଷଭ—ବି ଓ ବିଂ. ଭରତ ବଂଶୀୟ ରାଜାମାନଙ୍କ ମଧ୍ୟରେ ଶ୍ରେଷ୍ଠ ।

ଭରତସେଣ—ପୁଂ.ବି. ଜନୈକ ଓଡ଼ିଆ କବି, ଏହାଙ୍କର ଜନ୍ମସ୍ଥାନ ଗଞ୍ଜାମଜିଲ୍ଲା ଧରାକୋଟ ଦୁର୍ଗରେ ।

ଭରତସେନ—ପ୍ରସିଦ୍ଧ ବୈଦ୍ୟକବି ଭରତ ମଲ୍ଲିକଙ୍କର ନାମାନ୍ତର ।

ଭରତାଗ୍ରଜ—ପୁଂ.ବି.(୬ତତ୍) ଦାଶରଥି, ଶ୍ରୀରାମ ।

ଭରଢ—ଗ୍ରା.ବିଂ. ପରିପୂର୍ଣ୍ଣ, (ଗ୍ରା.ବି) ପୂର୍ତ୍ତି, ପୂର୍ଣ୍ଣତା, ପ୍ରବେଶକରଣ ।

ଭରଢଆ—ଗ୍ରା.ବି. ପକ୍ଷୀବିଶେଷ ।

ଭରଢକରିବା—ଗ୍ରା.କ୍ରି. ପୂରାଇବା, ପୂର୍ଣ୍ଣ-,

କରିବା, ପ୍ରବେଶ କରାଇବା ।
ଭରଥ—ପୁଂ.ବି. ଲୋକପାଳ, (ଗ୍ରା.ବି) ଧାତୁବିଶେଷ ।
ଭରଥା—ଗ୍ରା.ବି. ଅଳୁ ବାଇଗଣଆଦିକୁ ନିଆଁରେ ପୋଡ଼ି ତାକୁ ଚକଟି ମସଲା ଘିଅ ତେଲଆଦି ଗୋଳାଇ କରାଯିବା ବ୍ୟଞ୍ଜନ ।
ଭରଦ୍ୱାଜ—ପୁଂ. ବି. ( ଭର + ଦ୍ୱାଜ ) ଗୋତ୍ରପ୍ରବର୍ତ୍ତକ ମୁନିବିଶେଷ, ପକ୍ଷିବିଶେଷ, ଭଦଭଦଳିଆ ଚଢ଼େଇ ।
ଭରଦ୍ୱାଜକ—ପୁଂ. ବି. ବ୍ୟାଘ୍ରାଟପକ୍ଷୀ, ଭଦଭଦଳିଆପକ୍ଷୀ ।
ଭରମ—ବିଂ. ( ଭୃ + କ.ଅମ ) ଭର୍ତ୍ତା, ଭରଣ ପୋଷଣକର୍ତ୍ତା ।
ଭରମ୍ଭର—ବି.(ଭରଂ + ଭର)ପୂର୍ଣ୍ଣଆସ୍ଥା, ସମ୍ପୂର୍ଣ୍ଣ ନିର୍ଭର ।
ଭରସା—ଗ୍ରା.ସ୍ତ୍ରୀ. ବି. ଆଶା, ପ୍ରତ୍ୟୟ, ସାହସ, ନିର୍ଭରତା, ବିଶ୍ୱାସ, ଆସ୍ଥା, ଆଶ୍ରୟ, ଆଶାର ସ୍ଥଳ ।
ଭରସାକରିବା—ଗ୍ରା.କ୍ରି. ଆଶାକରିବା, ବିଶ୍ୱାସ କରିବା, ଆଶ୍ରାକରିବା ।
ଭରସାଦେବା—ଗ୍ରା.କ୍ରି. ଆଶାନ୍ୱିତ କରାଇବା, ସାହସଦେବା,ଆଶ୍ରୟଦେବା ।
ଭରସିବା—ଗ୍ରା. କ୍ରି. ସାହସୀ ହେବା, କୃତସଂକଳ୍ପ ହେବା ।
ଭରା—ଗ୍ରା.ବିଂ. (ଭୃଧାତୁଜ) ପୂର୍ଣ୍ଣ, (ବି) ବୋଝ, ଠେସ, ଛିଦ, ଆଶ୍ରା, ଭରିବା, ପୂର୍ଣ୍ଣକରଣ ।
ଭରା(ରେ)ଇବା—ଗ୍ରା.କ୍ରି.ପୂର୍ଣ୍ଣକରାଇବା, ପୂର୍ଣ୍ଣହେବା, ପିନ୍ଧାଇବା, ସମ୍ଭାଇବା, ଝୁଡ଼ାଆଦି ଖାଇବାଯୋଗୁଁ ଘା ପାଚ ପୂଜଆଦିରେ ପୂର୍ଣ୍ଣହେବା ।
ଭରାଣ୍ଡି—ଗ୍ରା.ବି.ଧାନ୍ୟାଦି କୁଟିବାର ଗର୍ତ୍ତ, (ଯାହା ମଧ୍ୟରେ ଢିଙ୍କିର ମୂଷଳ ପଡ଼େ)
ଭରାଭର—ଗ୍ରା.ବିଂ. ପରିପୂର୍ଣ୍ଣ, (ଗ୍ରା.ବି) ପରିପୂର୍ଣ୍ଣ ଅବସ୍ଥା, ଭିଡ଼, ଜନତା, (କ୍ରି. ବିଂ) ପରିପୂର୍ଣ୍ଣରୂପେ ।
ଭରି--ଗ୍ରା.ବି.(ଭୃଧାତୁଜ)ଦଶମସା ଓଜନ, ତୋଲା, ଏକଟଙ୍କାର ଓଜନ,(ଗ୍ରା.ବିଂ) ପୂର୍ଣ୍ଣ, (କ୍ରି.ବିଂ) ଯାକ, ତମାମ, ପୂର୍ଣ୍ଣରୂପେ, ପୂର୍ଣ୍ଣକରି ।
ଭରିଣୀ(ଭରଣି)—ସ୍ତ୍ରୀ.ବି. (ଭରତ + ଈ) ହରିଦ୍ବର୍ଣ୍ଣ, ସବୁଜ ରଙ୍ଗ ।
ଭରିତ—ବିଂ. ( ଭୃ + ଇତ ) ହରିଦ୍ବର୍ଣ୍ଣ, ପୁଷ୍ଟ, ପାଳିତ, ପୂରିତ, (ଭର୍ + ଇତ) ଭରବିଶିଷ୍ଟ ।
ଭରିବା—ଗ୍ରା.କ୍ରି.ବି. (ଭରଶବ୍ଦଜ)ପୂର୍ଣ୍ଣକରିବା, ପିନ୍ଧିବା, ପ୍ରବେଶ କରାଇବା, ପୂରିବା,ସଂଯୁକ୍ତ କରିବା, ଧାରଣକରିବା. ରଖିବା, ବୋଝାଇ କରିବା,ବ୍ୟାପିବା ।
ଭରିଭୋଜନ—ଗ୍ରା.ବି. (ସଂ-ଭୂରିଭୋଜନ) ପୂର୍ଣ୍ଣଭୋଜନ ।
ଭରିମା—ପୁଂ.ବି. (ଭୃ + ଇମନ୍)ଭରଣ, ପ୍ରତିପାଳନ, କୁଟୁମ୍ବ ।
ଭରିଯିବା—ଗ୍ରା.କ୍ରି. ପୂର୍ଣ୍ଣହୋଇଯିବା ।
ଭରୁ—ପୁଂ.ବି. (ଭୃ + ଉ) ବିଷ୍ଣୁ,ସମୁଦ୍ର, ସ୍ୱାମୀ, ସ୍ୱର୍ଣ୍ଣ, ଶିବ ।
ଭରୁକ—ପୁଂ.ବି. ଦକ୍ଷିଣ ଦେଶଭେଦ ।
ଭରୁଜ—ପୁଂ. ବି. ( ଭ + ରୁଜ୍ + ଅ ) କ୍ଷୁଦ୍ର ଶୃଗାଳ ।
ଭରୁଟକ—କ୍ଲୀ.ବି. ( ଭୃ + ଉଟ + କ ) ଭୃଷ୍ଟାମିଷ, ଭଜା ମାଛ ମାଂସ ଆଦି ।
ଭରେ—ଅବ୍ୟ. (ଭୃ + ଏ) ସଂଗ୍ରାମ ।
ଭର୍ଗ—ପୁଂ ବି. (ଭ୍ରଜ୍ + ଅ)ବ୍ରହ୍ମା, ଶିବ, ସୂର୍ଯ୍ୟସ୍ଥ ଈଶତେଜ, ଭର୍ଜନ, ଭାଜିବା, ଦୀପ୍ତି, ଜ୍ୟୋତି, ଦେଶଭେଦ ।
ଭର୍ଗଃ—କ୍ଲୀ.ବି. (ଭ୍ରଜ୍ + ଅସ୍) ତେଜଃ, ଜ୍ୟୋତିଃ ।
ଭର୍ଜ୍ଜନ—କ୍ଲୀ. ବି. ( ଭ୍ରଜ୍ + ଭା.ଅନ ) ଭାଜିବା, (ମଂ.ଅନ) ଭଜା ।
ଭର୍ଜିତ—ବିଂ. (ଭ୍ରଜ୍ + ଣି.ତ) ଭଜା, ଭୃଷ୍ଟ ।
ଭର୍ତ୍ତବ୍ୟ--ବିଂ.(ଭୃ + ମଂ.ତବ୍ୟ)ଭରଣୀୟ, ପୋଷଣୀୟ, ପ୍ରତିପାଳନୀୟ ।
ଭର୍ତ୍ତା—ପୁଂ.ବି. ( ଭୃ + କ.ତୃ ) ସ୍ୱାମୀ, ବିଷ୍ଣୁ, ପ୍ରଭୁ, ରାଜା, (ବିଂ) ଧାରଣକର୍ତ୍ତା, ପୋଷଣକର୍ତ୍ତା, ଟେକିଧରିଥିବା, (ସ୍ତ୍ରୀ) ଭର୍ତ୍ତ୍ରୀ ।
ଭର୍ତ୍ତି—ଗ୍ରା.ବି. (ଭୃଧାତୁଜ) ପ୍ରବିଷ୍ଟ ପୂର୍ଣ୍ଣ, ପ୍ରବେଶ ।
ଭର୍ତ୍ତୃକୃତ୍ୟ—କ୍ଲୀ. ବି. ସ୍ତ୍ରୀପ୍ରତି ସ୍ୱାମୀର [ କର୍ତ୍ତବ୍ୟ ।
ଭର୍ତ୍ତୃଘ୍ନୀ—ସ୍ତ୍ରୀ.ବିଂ. ପତିଘାତିନୀ ।
ଭର୍ତ୍ତୃବ୍ରତ—କ୍ଲୀ.ବି.ପତିବ୍ରତ, ପତିର ସେବା ବା ଧର୍ମ ।
ଭର୍ତ୍ତୃଦାରକ—ପୁଂ. ବି. ନାଟ୍ୟୋକ୍ତିରେ ରାଜପୁତ୍ର, ଯୁବରାଜ (ସ୍ତ୍ରୀ)ଭର୍ତ୍ତୃଦାରିକା ।
ଭର୍ତ୍ତୃଦାରିକା—ସ୍ତ୍ରୀ. ବି. ନାଟ୍ୟୋକ୍ତିରେ ରାଜକନ୍ୟା ।
ଭର୍ତ୍ତୃମତୀ—ସ୍ତ୍ରୀ.ବି. ସ୍ୱାମୀଯୁକ୍ତା ସ୍ତ୍ରୀ, ସଧବା [ ସ୍ତ୍ରୀ ।
ଭର୍ତ୍ତୃସାତ୍—ଅବ୍ୟ. ଭର୍ତ୍ତାର ଅଧୀନ ।
ଭର୍ତ୍ତୃହରି—ପୁଂ.ବି. ସ୍ୱନାମଖ୍ୟାତ ଜଣେ ବୈୟାକରଣ ଓ କବିବିଶେଷ, ବିକ୍ରମାଦିତ୍ୟଙ୍କର ବୈମାତ୍ରେୟ, ଜ୍ୟେଷ୍ଠଭ୍ରାତା
ଭର୍ତ୍ତୃହରିଯୋଗୀ— ସାଧୁ ସମ୍ପ୍ରଦାୟବିଶେଷ ।
ଭର୍ତ୍ସକ—ବିଂ. ( ଭର୍ତ୍ସ + କ.ଅକ ) ତିରସ୍କାରକ, ଯେ ଗାଳିଦିଏ, ନିନ୍ଦକ, (ସ୍ତ୍ରୀ) ଭର୍ତ୍ସିକା ।
ଭର୍ତ୍ସନ(ନା)—କ୍ଲୀ.ସ୍ତ୍ରୀ. ବି. ( ଭର୍ତ୍ସ + ଭା. ଅନ + ଆ) ଅପକାରବଚନ, ଅଧିକ୍ଷେପ, ଗାଳିଦେବା,ଆକ୍ଷେପ,କୁତ୍ସା, ତିରସ୍କାର, ଧମକ ।
ଭର୍ତ୍ସପତ୍ରିକା—ସ୍ତ୍ରୀ.ବି. ମନ୍ଦାମାଳୀ ।
ଭର୍ତ୍ସିତ--ବିଂ. (ଭର୍ତ୍ସ + ମଂ.ତ) ନିନ୍ଦିତ, ତିରସ୍କୃତ, (ସ୍ତ୍ରୀ) ଭର୍ତ୍ସିତା ।
ଭର୍ମ(ନ୍)—କ୍ଲୀ. ବି. (ଭୃ + ମ ବା ମନ୍) ସ୍ୱର୍ଣ୍ଣ, ଭୃତି; ନାଭି, ବେତନ, ଭରଣ, ପୋଷଣ, ଭଡ଼ା, ମୂଲିଆର ମୂଲ, ବୋଝ, ଗୃହ ।
ଭର୍ମଣ୍ୟା—ସ୍ତ୍ରୀ. ବି. ( ଭର୍ମନ୍ + ଯ + ଆ) ବେତନ, ଭୃତି ।
ଭଲ—ଗ୍ରା.ବିଂ. (ସଂ-ଭଦ୍ର) ଆଚ୍ଛା, ବେସ୍, ଉତ୍ତମ, ମଙ୍ଗଳସୂଚକ, ହିତକର, ଶ୍ରେଷ୍ଠ, ସୁସ୍ଥ, ନିର୍ଦ୍ଦୋଷ,ସୁଖୀ, ନିର୍ମଳ, ପବିତ୍ର, ନୀରୋଗ, ଭଦ୍ର, ଆନନ୍ଦିତ,ସାଧୁ, ସୁନ୍ଦର, ଶାନ୍ତିମୟ, ( ଗ୍ରା.ବି ) କ୍ଷେମ, ମଙ୍ଗଳ, ସ୍ୱାସ୍ଥ୍ୟ,ଉପକାର, ଇଷ୍ଟ, ସୁଖ,

ଶାନ୍ତ. (ଗ୍ରା.କ୍ରି.ବି°) ଉତ୍ତମରୂପେ ।
ଭଲକରିବା—ଗ୍ରା. କ୍ରି. ଚିକିତ୍ସାଦ୍ୱାରା ରୋଗୀକୁ ଆରୋଗ୍ୟ କରିବା, ଉପକାର କରିବା, ଉତ୍ତମ ଫଳ ଦେଖାଇବା ।
ଭଲତା—ସ୍ତ୍ରୀ.ବି. ଗଜଦନ୍ତ ।
ଭଲଭାଇଆ—ଗ୍ରା.ବି. ତେଲ ଗୁଡ଼ଆଆଦି ହାଣ୍ଡୁଆ ଜାତିର ମୁଣିଆ ଲୋକ ।
ଭଲମନ୍ଦ—ଗ୍ରା.ବି°. ଭଲ ଓ ମନ୍ଦ,ଶୁଭା-ଶୁଭ (ଗ୍ରା.ବି) ସୁଖ ଦୁଃଖ, ଶୁଭାଶୁଭ ସମ୍ବାଦ ।
ଭଲଲାଗିବା—ଗ୍ରା.କ୍ରି. ତୃପ୍ତିକର ବୋଧ-ହେବା, ମନକୁ ପାଇବା, (ଶରୀର) ସୁସ୍ଥବୋଧ ହେବା, ( ଗ୍ରା.ବି ) ତୃପ୍ତି, ସୁସ୍ଥତାବୋଧ ।
ଭଲଲୋକ—ଗ୍ରା. ବି. ଭଦ୍ରଲୋକ, ସତ୍-ଲୋକ, ପଞ୍ଚାଏତ୍, ବିବାଦରେ ମଧ୍ୟସ୍ଥ ବ୍ୟକ୍ତି ।
ଭଲଲୋକି—ଗ୍ରା.ବି. ଭଦ୍ରତା, ବିବାଦରେ ମଧ୍ୟସ୍ଥତା, ବିବାଦରେ ମଧ୍ୟସ୍ଥତା, ମଧ୍ୟସ୍ଥତାର ପୁରସ୍କାର ।
ଭଲହେବା—ଗ୍ରା. କ୍ରି. ସୁସ୍ଥହେବା, ଫଳରେ ଉତ୍ତମ ହେବା, ମନୋମତ ହେବା ।
ଭଲା—ଗ୍ରା.ବି°. ଅଚ୍ଛା, ଉତ୍ତମ, ଧନ୍ୟ, ସୁନ୍ଦର, ଆଶ୍ଚର୍ଯ୍ୟଜନକ, ( କ୍ରି. ବି° ) ଉତ୍କୃଷ୍ଟରୂପେ, ସୁନ୍ଦରରୂପେ, (ଗ୍ରା. ଅବ୍ୟ) କେଶ୍, ଆଚ୍ଛା, ଆହା, ନିଶ୍ଚେ, ହଁ, ପରା, ପୁନଶ୍ଚ, ଆହା ।
ଭଲା(ଲେ)ଇହେବା—ଗ୍ରା. କ୍ରି. ଆପେ ଦୋଷୀ ବା ମନ୍ଦହୋଇ ସୁଦ୍ଧା ଭଲ ବା ନିର୍ଦ୍ଦୋଷ ବୋଲି ଲୋକଙ୍କୁ ଦେଖାଇ-ହେବା ।
ଭଲି—ଗ୍ରା.ବି. ପ୍ରକାର, (ଅବ୍ୟ) ସଦୃଶ, ତୁଲ୍ୟ, ପରି, ପ୍ରାୟ ।
ଭଲିବା—ଗ୍ରା.କ୍ରି. (ସଂ-ବିହ୍ୱଳ) ତରଳ-ଯିବା, କଥାରେ ମୁଗ୍ଧହେବା, ଭ୍ରମଯୁକ୍ତ ହେବା, କିଂକର୍ତ୍ତବ୍ୟବିମୂଢ଼ ହେବା ।
ଭଲିଭଲି—ଗ୍ରା. ବି°. ନାନାପ୍ରକାରର, ନାନାଜାତୀୟ, ବିଭିନ୍ନ, ( ଗ୍ରା.ଅବ୍ୟ ) ବିଭିନ୍ନ ପ୍ରକାରେ ।
ଭଲେ—ଗ୍ରା. କ୍ରି. ବି°. ସହଜେ, ଭଲ ଭାବରେ, ଅନାୟାସରେ, ଯଥାନିୟ-ମରେ, ସାଧାରଣତଃ, ଯଥାଯୋଗ୍ୟ ରୂପେ ।
ଭଲ୍ଲ—ପୁଂ. ବି. ( ଭଲ୍ଲ+ଅ ) ଭଲ୍ଲୁକ, ଭାଲୁ, ବେଧନାସ୍ତ୍ରବିଶେଷ,ଭାଲା, ବର୍ଚ୍ଛା, ଅର୍ଦ୍ଧଚନ୍ଦ୍ର ଫଳାଯୁକ୍ତ ବାଣବିଶେଷ,ଭାଲ
ଭଲ୍ଲକ—ପୁଂ.ବି.(ଭଲ୍ଲ+କ) ଭାଲୁ, ଋକ୍ଷ, ପକ୍ଷିବିଶେଷ, ଇଙ୍ଗୁଦୀବୃକ୍ଷ, ଭାଲିଆଗଛ, ସନ୍ନିପାତ ରୋଗ ।
ଭଲ୍ଲକୀମତ୍ସ୍ୟ—ପୁଂ. ବି. ମତ୍ସ୍ୟବିଶେଷ ।
ଭଲ୍ଲାକ୍ଷ—ପୁଂ.ବି.ମନ୍ଦଦୃଷ୍ଟି, ହଂସଭେଦ
ଭଲ୍ଲାତ—ପୁଂ. ବି. (ଭଲ + ଅତ୍ + ଅ) ଭଲ୍ଲାତକ ବୃକ୍ଷ, ଭାଲିଆଗଛ, ଭେଲା ।
ଭଲ୍ଲାତକ—ପୁଂ.ବି.(ଭଲ୍ଲାତ+କ)ଭାଲିଆ
ଭଲ୍ଲାତକାସ୍ଥି—କ୍ଲୀ. ବି. ଭାଲିଆମଞ୍ଜି ।
ଭଲ୍ଲାତକୀ—ସ୍ତ୍ରୀ.ବି.ଭଲ୍ଲାତକ ବୃକ୍ଷ,ଭାଲିଆ ଗଛ ।
ଭଲ୍ଲିକା—ସ୍ତ୍ରୀ. ବି. ( ଭଲ୍ଲୀ+କ+ଆ ) ଭାଲିଆ ଗଛ ।
ଭଲ୍ଲୀ—ସ୍ତ୍ରୀ. ବି. ଭାଲିଆ ଗଛ ।
ଭଲ୍ଲୁ—ପୁଂ.ବି.ସନ୍ନିପାତ ଜ୍ୱରବିଶେଷ ।
ଭଲ୍ଲୁକ—ପୁଂ. ବି. ଭାଲୁ ।
ଭଲ୍ଲୁକଶୋର—ପୁଂ.ବି. ଚତୁଷ୍ପଦ ପ୍ରାଣୀ-ବିଶେଷ ।
ଭଲ୍ଲୂକ—ପୁଂ. ବି. ଜନ୍ତୁବିଶେଷ, ଭାଲୁ, କୋଷସ୍ଥ ପ୍ରାଣିବିଶେଷ, ଶ୍ୟୋନାକ-ବୃକ୍ଷ, କୁକ୍କୁର ।
ଭଲ୍କାଗୁଡ଼ିବା—ପ୍ରା. (ବାଲେ)କ୍ରି. ଘୁଡ଼ି ଉଡ଼ୁଥିବା ବେଳେ ଦରକାରହେଲେ ଏଠାରୁ ବହୁତ ସୂତା ଗୁଡ଼ିଦେବା ।
ଭବ—ପୁଂ. ବି. (ଭୂ+ଭା.ଅ) ଜନ୍ମ, ଉତ୍ପତ୍ତି, ଶିବ, ସତ୍ତା, ପ୍ରାପ୍ତି, ପ୍ରାଧାନ୍ୟ, ମଙ୍ଗଳ, ଲାଭ, କାରଣ,(କ.ଅ)ସଂସାର, ଇହଲୋକ, ଭଗବାନ୍, ଶିବ, ଶିବଙ୍କର ଜଳମୂର୍ତ୍ତି, ଭବ୍ୟ, ଓଉଫଳ, (ଗ୍ରା.ବି) ଯୋନି, (ବି°) ଉତ୍ପନ୍ନ, ସମ୍ଭୂତ, (ସ୍ତ୍ରୀ) ଭବା ।
ଭବକ—ପୁଂ. ବି. (ଭବ+କ) ଉତ୍ପନ୍ନ, ଆଶୀର୍ବାଚକ ।
ଭବକା—ଗ୍ରା.ବି.ହାଁବୁକା, ଜଳ ବୁଦ୍‌ବୁଦ, ଜଳର ତରଙ୍ଗ, ବଡ଼ ଗର୍ତ୍ତ ବା ଛିଦ୍ର ଆଦିରୁ ଜୋରରେ ଉପର୍ଯ୍ୟୁପରି ଜଳ-ଆଦିର ନିର୍ଗମନ ।
ଭବକାନ୍ତାର—କ୍ଲୀ.ବି.ଭବାଟବୀ, ସଂସାର ରୂପ ଅରଣ୍ୟ ।
ଭବକାର—ସ୍ତ୍ରୀ.ବି.(କ.ଧା)ସଂସାର ରୂପ-କାରାଗାର । [ କୂପ ।
ଭବକୂପ—କ୍ଲୀ.ବି. (କ.ଧା) ସଂସାର ରୂପ
ଭବକେତୁ—ପୁଂ.ବି. କେତୁଭେଦ, ଧୂମ-କେତୁ, ନକ୍ଷତ୍ରଲଣ୍ଠା ।
ଭବକ୍ଷିତି—ସ୍ତ୍ରୀ. ବି. ଜନ୍ମଭୂମି ।
ଭବଘସ୍ମର—ପୁଂ. ବି. (ଭବ+ଘସ୍ମର) ଦାବାନଳ ।
ଭବଚକ୍ର—କ୍ଲୀ. ବି. ବୌଦ୍ଧମତରେ ଜୀବା-ତ୍ମାର ଜନ୍ମାନ୍ତରପରମ୍ପରା ରୂପ ।
ଭବଚ୍ଛେଦ—ପୁଂ. ବି. ସଂସାର ବନ୍ଧନ ଉନ୍ମୋଚନ,ଜଗତର ଧ୍ୱଂସ,ଗ୍ରାମଭେଦ ।
ଭବଜଳଧି—ପୁଂ. ବି. (କ.ଧା) ସଂସାର ରୂପ ସମୁଦ୍ର ।
ଭବତ୍—ସର୍ବ. (ଭା + ଅତୁ) ଯୁଷ୍ମଦର୍ଥ, ଆପଣ, ତୁମ୍ଭେ, ଏହି ଶବ୍ଦ ତିନି ଲିଙ୍ଗରେ (ପୁଂ) ଭବାନ୍, (ସ୍ତ୍ରୀ) ଭବତୀ, (କ୍ଲୀ) ଭବତ୍ ହୁଏ ।
ଭବତ୍ପ୍ରସାଦ—ପୁଂ.ବି. (୬ତତ୍) ଆପଣ-ଙ୍କର ଅନୁଗ୍ରହ ।
ଭବତ୍ପ୍ରେରିତ—ବି°.(୩ତତ୍) ଆପଣଙ୍କ ଦ୍ୱାରା ପ୍ରେରିତ ।
ଭବତ୍ସନ୍ନିଧି—ବି. (୬ତତ୍) ଆପଣଙ୍କର ନୈକଟ୍ୟ । [ ଠାରୁ ।
ଭବତ୍ସକାଶାତ୍—କ୍ରି. ବି°. ଆପଣଙ୍କ
ଭବତରଣ—ବି. ସଂସାରରୂପ ନଦୀ ବା ସମୁଦ୍ରକୁ ପାର ହେବା ।
ଭବତାରଣ—ବି°. ( ଭବ+ଣିଚ୍+ତୃ +କ.ଅନ) ଯେ ସଂସାରରୁ ମନୁଷ୍ୟକୁ ଉଦ୍ଧାର କରନ୍ତି, ସଂସାର ସନ୍ତରଣ ନିବା-ରକ, (ବି)ଶିବ,ବିଷ୍ଣୁ,(ସ୍ତ୍ରୀ)ଭବତାରିଣୀ ।

ଭବତାରଣୀ—ସ୍ତ୍ରୀ. ବ. ଦୁର୍ଗା ।
ଭବତି—ସ୍ତ୍ରୀ. ବ. ( ଭୂ+ଅତ୍+ଇ ) ବୈଷ୍ଣବୀ ବାଣଭେଦ,(ସ୍ତ୍ରୀ.ବି°) ଶ୍ରୀମତୀ, ମାନ୍ୟା, ପୂଜ୍ୟା ।
ଭବତ୍ରାତା—ପୁଂ. ବ. ଧର୍ମୋପଦେଶକ, ଗୁରୁ. ସଂସାର ଯନ୍ତ୍ରଣାରୁ ତ୍ରାଣକର୍ତ୍ତା ।
ଭବଦା—ସ୍ତ୍ରୀ.ବ.ସ୍କନ୍ଦାନୁଚର ମାତୃଭେଦ ।
ଭବଦାରୁ—ପୁଂ.କ୍ଲୀ.ବ.ଦେବଦାରୁବୃକ୍ଷ ।
ଭବଦୀୟ—ବି°.(ଭବତ୍+ଈୟ) ତୁମ୍ଭର, ଆପଣଙ୍କର, ତୁମ୍ଭସମ୍ବନ୍ଧୀୟ, ଯୁଷ୍ମତ୍-ସମ୍ବନ୍ଧୀୟ ।
ଭବଦ୍ୱାର—ବି. (କ.ଧା) ସଂସାରରୂପ-ଦ୍ୱାର, (ଗ୍ରା.ବ୍ୟ) ଯୋନି ।
ଭବଦ୍‌ବିଧ—ବି°.ଯୁଷ୍ମତ୍ ସଦୃଶ,ତୁମ୍ଭପରି, ଆପଣଙ୍କ ପରି ।
ଭବଧର୍ମିର—ପୁଂ. ବ. ଦାବାଗ୍ନି ।
ଭବନ୍—ପୁଂ.ବି°.(ଭୂ+କ.ଅତ୍) ଯାହା ହେଉଅଛି, ଯାହା ହୋଇଅଛି, ବର୍ତ୍ତି-ମାନ,ଉତ୍ପଦ୍ୟମାନ,(ସ୍ତ୍ରୀ) ଭବନ୍ତୀ ।
ଭବନ—କ୍ଲୀ. ବ. (ଭୂ+ଅଧି+ଅନ) ଗୃହ, ପ୍ରାସାଦ, (ଭା.ଅନ) ଭବ, ଜନ୍ମ, ସତ୍ତା, ସ୍ଥିତି ।
ଭବନଦ—ପୁଂ. ବ. ଭବସାଗର ।
ଭବନପତି—ପୁଂ.ବ. ଗୃହସ୍ୱାମୀ, ଗଣ୍ୟ-ଧିପ,ରାଶି ଚକ୍ରର ପ୍ରତି ଘରର ଅଧିପତି ।
ଭବନାଧୀଶ—ପୁଂ.ବ. ଭବନପତି,ଗୃହ-ସ୍ୱାମୀ ।
ଭବନାଶିନୀ—ସ୍ତ୍ରୀ ବ(ଷତତ୍ପୁ)ସରଯୂ ନଦୀ (ସ୍ତ୍ରୀ.ବି°) ଜନ୍ମନିବାରିଣୀ ।
ଭବନୀୟ—ବି° (ଭୂ+ଅନୀୟ)ଭବିତବ୍ୟ, ଉତ୍ପତ୍ତିର ଅର୍ହ, ଯାହା ଅବଶ୍ୟ ଘଟିବ ।
ଭବନ୍ତ—ପୁଂ.ବ.(ଭୂ+ଅନ୍ତ) ବର୍ତ୍ତମାନ କାଳ, ସମୟ ।
ଭବନ୍ତ—ପୁଂ. ବ, ବର୍ତ୍ତମାନ କାଳ ।
ଭବନ୍ତୀ—ସ୍ତ୍ରୀ. ବ. ( ଭବତ୍+ଇ ) ପତିବ୍ରତା ସ୍ତ୍ରୀ, (ବି° ) ଉତ୍ପଦ୍ୟମାନା, ବର୍ତ୍ତିମାନା ।
ଭବପାର—ବ.(ଷତତ୍ପୁ)ପୁନଃ ପୁନଃ ଜନ୍ମ ମରଣରୁ ଅବ୍ୟାହତି, ସଂସାର ବନ୍ଧନରୁ ମୁକ୍ତି ।
ଭବପାରାବାର—ବ.(ରୂ,କ.ଧା) ସଂସାର ରୂପ ସମୁଦ୍ର । [ ଭେଦ ।
ଭବପୀଠ—ବ. ଶିବଲିଙ୍ଗାଧିଷ୍ଠିତ ପୀଠ-
ଭବବନ୍ଧନ—କ୍ଲୀ.ବ.(ରୂ-କ.ଧା)ସଂସାର-ଶକ୍ତି. ବାରମ୍ବାର ଜନ୍ମଗ୍ରହଣ ।
ଭବଜ୍ୱର—ବ(ଷତତ୍ପୁ)ସାଂସାରିକ ଦୁଃଖ ।
ଭବଭଞ୍ଜନ—ପୁଂ. ବ. ବିଷ୍ଣୁ ।
ଭବଭୂତ—ପୁଂ. ବ. (ଭବ+ଭୂ+କ. ତ)ବିଶ୍ୱରୂପୀ ଅଦ୍ୱିତୀୟ ସ୍ୱରୂପ ପରମେ-ଶ୍ୱର ।
ଭବଭୂତି—ପୁଂ. ବ. ମାଲତୀମାଧବାଦି ନାଟକକର୍ତ୍ତା ଜଣେ ପ୍ରଧାନ କବି,ଅପର ନାମ ଶ୍ରୀକଣ୍ଠ,(ବି)ଶିବଙ୍କର ଐଶ୍ୱର୍ଯ୍ୟ ।
ଭବମୟ—ବି°. (ଭବ+ମୟ)ଭବସ୍ୱରୂପ. ସଂସାର ସ୍ୱରୂପ ।
ଭବରନ୍ଧ୍ର—କ୍ଲୀ.ବ. (ରୂ,କ.ଧା) ସଂସାର ରୂପ ରନ୍ଧ୍ର, (ଗ୍ରା.ବ୍ୟ) ଭଗରନ୍ଧ୍ର ।
ଭବରୁଚ(ଦ୍)—ସ୍ତ୍ରୀ.ବ. (ଭବ୍+ରୁଦ୍+ +କ୍ୱିପ୍) ପ୍ରେତପଟହ, ଅନ୍ତ୍ୟେଷ୍ଟିକ୍ରିୟା ସମୟେ ବାଦନୀୟ ବାଦ୍ୟବିଶେଷ ।
ଭବର୍ଗ—ପୁଂ.ବ.ନକ୍ଷତ୍ରବର୍ଗ, ତାରାଗଣ ।
ଭବଲୀଳା—ସ୍ତ୍ରୀ. ବ. (ଷତତ୍ପୁ) ସଂସାର ଲୀଳା, ସଂସାର କାର୍ଯ୍ୟ, ଜୀବଦ୍ଦଶା ।
ଭବସନ୍ଧି—ଗ୍ରା. ବି. ବିଷମସମସ୍ୟା ।
ଭବସମୁଦ୍ର ( ସାଗର, ସିନ୍ଧୁ )—ପୁଂ. ବ. ( ରୂ,କ. ଧା ) ସଂସାରରୂପକ ସାଗର. ( ସମୁଦ୍ରପରି ଦୁରୁତ୍ତରଣୀୟ ବୋଲି ସଂସାରକୁ ସାଗର ବୋଲାଯାଏ) ।
ଭବସୃକ୍—ପୁଂ. ବ. ବ୍ରହ୍ମାଣ୍ଡର ସୃଷ୍ଟି ।
ଭବା—ବ. ଭବ୍ୟ, ଉଡ଼ୁଫଳ ।
ଭବାଚଳ—ପୁଂ. ବ. ମନ୍ଦର ପର୍ବତର ପୂର୍ବବର୍ତ୍ତୀ ଶୈଳଭେଦ ।
ଭବାତ୍ମଜ—ପୁଂ. ବ. (ଷତତ୍ପୁ) ଗଣେଶ. କାର୍ତ୍ତିକେୟ ।
ଭବାତ୍ମଜା—ସ୍ତ୍ରୀ. ବ. (ଷତତ୍ପୁ) ମନସା-ଦେବୀ ।
ଭବାଦୃକ୍—ବି°. ( ଭବା+ଦୃଶ୍+ମି. କ୍ୱିପ୍) ଭବତ୍‌ସଦୃଶ, ଆପଣଙ୍କପର, ଆପଣଙ୍କ ସଦୃଶ, (ସ୍ତ୍ରୀ) ଭବାଦୃଶୀ ।
ଭବାଦୃକ୍ଷ—ପୁଂ.ବି°. ଆପଣଙ୍କ ପରି ସେ ଦେଖାଯାଏ ।
ଭବାଦୃଶ—ପୁଂ. ବି°. ( ଭବ+ଦୃଶ୍+ ଅ)ଆପଣଙ୍କ ପରି, ଆପଣ,ସଦୃଶ, (ସ୍ତ୍ରୀ) ଭବାଦୃଶୀ ।
ଭବାନ୍—ପୁଂ. ବି°. ( ଭା+କ+ଅତୁ ) ମାନ୍ୟ, ପୂଜ୍ୟ, ଆପଣ, ତୁମ୍ଭେ, (ସ୍ତ୍ରୀ) ଭବତୀ ।
ଭବାନୀ—ସ୍ତ୍ରୀ.ବ. (ଭବ+ଆନୀ)ପାର୍ବତୀ, ଦୁର୍ଗା, ଭବପତ୍ନୀ ।
ଭବାନୀକବଚ—କ୍ଲୀ. ବ. ପାପଗ୍ରହାଦି-ମାନଙ୍କର ନିବାରଣାର୍ଥ ଦେବୀ କବଚ-ବିଶେଷ । [ ପର୍ବତ ।
ଭବାନୀଗୁରୁ—ପୁଂ. ବ. (ଷତତ୍ପୁ)ହିମାଳୟ
ଭବାନୀପଣ୍ଡିତ—ପୁଂ. ବ. ଓଡ଼ିଶାର ଜଣେକ ମରହଟ୍ଟା ଶାସକ ।
ଭବାନୀପତି—ପୁଂ. ବ. (ଷତତ୍ପୁ) ଶିବ, ମହାଦେବ ।
ଭବାନୀପାଟଣା—ଗ୍ରା. ବି. ମଧ୍ୟପ୍ରଦେଶ ସମ୍ବଲପୁରଜିଲ୍ଲାସ୍ଥ କଳାହାଣ୍ଡି ସାମନ୍ତ ରାଜାଙ୍କ ରାଜଧାନୀ ।
ଭବାନୀପୁର-ଗ୍ରା.ବି. କଲିକତାର ଦକ୍ଷିଣ-ବର୍ତ୍ତୀ ଗୋଟିଏ ସହର ।
ଭବାନୀବଲ୍ଲଭ—ପୁଂ. ବ. (ଷତତ୍ପୁ) ଶିବ, ମହାଦେବ ।
ଭବାନୀଭ୍ରୁକୁଟୀଭଙ୍ଗୀ—ବ. ପାର୍ବତୀଙ୍କର ଭ୍ରୂଭଙ୍ଗୀ ।
ଭବାନ୍ତକୃତ୍—ପୁଂ.ବ (ଭବ+ଅନ୍ତ+ କୃ+କ୍ୱିପ୍) ବ୍ରହ୍ମା,ସଂସାରନାଶକ ଜ୍ଞାନ ।
ଭବାଭୀଷ୍ଟ—ପୁଂ. ବ. ଗୁଗ୍ଗୁଳୁ ।
ଭବାୟନା—ସ୍ତ୍ରୀ.ବ. (ଭବ+ଅୟନ+ ଆ) ଗଙ୍ଗା, ଭାଗୀରଥୀ (ବି°) ଶୈବ, ଶିବତତ୍ପର । [ ସମୁଦ୍ର ।
ଭବାର୍ଣ୍ଣବ—ପୁଂ.ବ.(କ.ଧା) ସଂସାରରୂପ
ଭବାରାଧ୍ୟ—ବି°. ( ଭବ+ଆରାଧ୍ୟ ) ସଂସାରପୂଜ୍ୟ, (ବି) ଭଗବାନ୍ ।
ଭବାବ୍ଧି—ପୁଂ. ବ. (ରୂ,କ.ଧା) ସଂସାର ରୂପ ସାଗର ।

ଭବ—ଗ୍ରା. ବ. (ସ-ଭବ୍ୟ'ଭବ୍ୟ, ସାଧୁ।

ଭବିକ—କ୍ଲୀ. ବ. (ଭବ+ଇକ) ଧର୍ମ. ମଙ୍ଗଳ, (ବିଂ) ମଙ୍ଗଳଯୁକ୍ତ, କୁଶଳୀ, (ସ୍ତ୍ରୀ) ଭବିକା।

ଭବଗୃହ—ପୁଂ. ବିଂ. ଆକାଶଗୃହ।

ଭବିତ—ବିଂ. ଭବ + ଇତ) ଅଷ୍ଟାଟୋପୃତ୍ତିକ, ଭୂତ, ଅଷ୍ଟାତ।

ଭବିତବ୍ୟ—ବିଂ(ଭୂ + ମି.ତବ୍ୟ)ଅବଶ୍ୟମ୍ଭାବୀ, ଅନିବାର୍ଯ୍ୟ,ଭବିଷ୍ୟତରେ ଯାହା ଅବଶ୍ୟ ଘଟିବ।

ଭବିତବ୍ୟତା—ସ୍ତ୍ରୀ. ବ. ( ଭବିତବ୍ୟ+ତା) ଭାଗ୍ୟ, ଅଦୃଷ୍ଟ, ଅବଶ୍ୟମ୍ଭାବୀତା, ନିୟତି, ଦୈବ।

ଭବିତା—ପୁଂ.ବିଂ. (ଭୂ+କ.ତୃ)ଭବନଶୀଳ, ଭୂଷ୍ଣୁ, ଭବିଷ୍ଣୁ, ଭାବି, ଉତ୍ପତ୍ତି, (ସ୍ତ୍ରୀ) ଭବିତ୍ରୀ।

ଭବିସ—ବି.ଭୁବନ, ଅନ୍ତରୀକ୍ଷ, ଉଦକ।

ଭବିନ—ପୁଂ.ବି. (ଭବ+ଇନ)କାବ୍ୟକାର, କବି।

ଭବିଲ—ପୁଂ. ବ. (ଭୂ + କ.ଇଲ) ବିଟ, ଜାର,ଲମ୍ପଟ,ଷିଡ୍ଗ, (ବିଂ) ଭବ୍ୟ,ଭବିଷ୍ୟତ୍।

ଭବିଷ—ଗ୍ରା. ବ. ( ସଂ ଭବିଷ୍ୟ ) ଭବିଷ୍ୟତ୍ ଘଟନା, ଅଖାଡୁଆ ବିଷୟ, ଆଡ଼ମ୍ବର, ଅଭିନବ ଘଟନା, ନୂତନ ପ୍ରସ୍ତାବ, (ଗ୍ରା.ବିଂ)ଯାହା ପରେ ଘଟିବ, ଅଖାଡୁଆ, କୁତ୍ସିତ।

ଭବିଷ୍ଣୁ—ବିଂ. (ଭୂ + କ.ଇଷ୍ଣୁ) ଭବନଶୀଳ, ଭବିତା,ଘଟୁଥିବା,ଉତ୍ପତ୍ତିକାରକ

ଭବିଷ୍ୟ—ବି. (ଭୂ+ଷ୍ୟ)ଭବିଷ୍ୟତ୍‌କାଳ, ପୁରାଣବିଶେଷ, ଭବିଷ୍ୟପୁରାଣ, ଫଳବିଶେଷ, ( ବିଂ ) ଭାବି, ଯାହା ଭବିଷ୍ୟତରେ ଘଟିବ।

ଭବିଷ୍ୟଗଙ୍ଗା—ସ୍ତ୍ରୀ. ବି. ଶମ୍ଭୁଲେଶ୍ୱର ତୀର୍ଥରେ ଅବସ୍ଥିତ ଗୋଟିଏ ପୁଣ୍ୟତୋୟା ନଦୀ।

ଭବିଷ୍ୟଜ୍ଞ—ପୁଂ. ବିଂ. (ଭବିଷ୍ୟ+ଜ୍ଞା+କ.ଅ) ଯେ ଭବିଷ୍ୟତ୍ କଥା ଜାଣିପାରେ, (ସ୍ତ୍ରୀ) ଭବିଷ୍ୟଜ୍ଞା।

ଭବିଷ୍ୟତ—ବି. (ଭୂ+ଷ୍ୟତ) କାଳବିଶେଷ, ବର୍ତ୍ତମାନ୍ କାଳର ଉତ୍ତରକାଳୀନ ଯେ କାଳ, ଭବିଷ୍ୟତ୍‌କାଳ, ପୁରାଣବିଶେଷ, ( ବିଂ ) ଭାବି, ଯାହା ଘଟିବ, ଭବିତବ୍ୟ।

ଭବିଷ୍ୟତ୍‌କାଳ—ବି. ବର୍ତ୍ତମାନ୍ କାଳ କ୍ରିୟାର ପରବର୍ତ୍ତୀ କାଳ।

ଭବିଷ୍ୟଦ୍‌ଗର୍ଭ—ବି. (୬ତତ୍) ଭବିଷ୍ୟତ୍ କାଳର ଗର୍ଭ।

ଭବିଷ୍ୟଦ୍‌ଜ୍ଞାନ—ବି.ଭବିଷ୍ୟତ୍ ସମ୍ବନ୍ଧରେ ବୋଧ ବା ବୁଦ୍ଧି।

ଭବିଷ୍ୟଦ୍‌ବକ୍ତା—ପୁଂ. ବ ଓ ବିଂ. ଯେ ଆଗାମୀ ଘଟିବା କଥା କହିପାରେ, ଗଣକ, (ସ୍ତ୍ରୀ) ଭବିଷ୍ୟଦ୍‌ବକ୍ତ୍ରୀ।

ଭବିଷ୍ୟଦ୍‌ବାକ୍ୟ--ବି.ଭବିଷ୍ୟତ୍ କାଳରେ ଘଟିବା ବିଷୟକୁ ପୂର୍ବରୁ କହିବା,ଭବିଷ୍ୟତ୍ କଥା ବର୍ତ୍ତମାନ୍ କହିବା।

ଭବିଷ୍ୟଦ୍‌ବାଣୀ—ସ୍ତ୍ରୀ. ବି. ଭାବି ବିଷୟର ପ୍ରସ୍ତାବ, ଉତ୍ତରକାଳରେ ଯାହା ଘଟିବ ତାହା ଆଗରୁ କହିବା।

ଭବିଷ୍ୟଦ୍‌ବାର୍ତ୍ତା—ସ୍ତ୍ରୀ. ବି. ଆଗାମୀକାଳ ସମ୍ବନ୍ଧେ ସମ୍ବାଦ।

ଭବିଷ୍ୟଦାପେକ୍ଷ—ପୁଂ.ବି. ଅବଶ୍ୟମ୍ଭାବୀ କୌଣସି ଭବିଷ୍ୟତ୍ ଘଟନାର ସୂଚନା ରୂପ ଅଳଂକାର ଭେଦ।

ଭବିଷ୍ୟନ୍—ପୁଂ. ବିଂ. ( ଭୂ+କ.ଅତ୍ ) ଭବିଷ୍ୟ ଦେଖ, (ସ୍ତ୍ରୀ) ଭବିଷ୍ୟନ୍ତୀ।

ଭବିଷ୍ୟପୁରାଣ—କ୍ଲୀ.ବି. ଅଷ୍ଟାଦଶ ମହାପୁରାଣାନ୍ତର୍ଗତ ପୁରାଣବିଶେଷ।

ଭବିଷ୍ୟସୂଚନା—ସ୍ତ୍ରୀ. ବି. ପରେ ଯାହା ଘଟିବ ଆଗରୁ ତାହା ପ୍ରସ୍ତାବ କରିବା।

ଭବିଷ୍ୟୋତ୍ତର—କ୍ଲୀ. ବି. ପୁରାଣଭେଦ, ଭବିଷ୍ୟୋତ୍ତର ପୁରାଣ।

ଭବୀ—ସ୍ତ୍ରୀ. ବ. (ଭବ+ଈ) ଭବାନୀ, ପାର୍ବତୀ।

ଭବୀୟସ୍—ବିଂ. ଭବୀଦୃଃ, ବହୁତର।

ଭବେଶ—ପୁଂ. ବି. (ଭବ+ଈଶ) ଶିବଙ୍କର ନାମାନ୍ତର।

ଭବ୍ୟ—କ୍ଲୀ. ବ. (ଭୂ+ଯ) ଓଉଗଛ ଓ ଫଳ, ଅବସ୍ଥିତ, ଭବିଷ୍ୟତ୍‌କାଳ,ଫଳ, ଅସ୍ଥି, ଶୁଭ, ସତ୍ୟ, ସୌଭାଗ୍ୟ, କରମଙ୍ଗା ଗଛ, ରସଭେଦ, କାରବେଲ୍ଲ, କଲରା, ନମ୍ବବୃକ୍ଷ, (ବିଂ)ମଙ୍ଗଳଜନକ, ପ୍ରସନ୍ନ, ଶୁଭଯୁକ୍ତ, ସଭ୍ୟ, ଶିଷ୍ଟ, ଭଦ୍ର, ଶାନ୍ତପ୍ରକୃତିକ, ସାଧୁ, ମାର୍ଜିତ ରୁଚିବିଶିଷ୍ଟ, ଭାଗ୍ୟବାନ୍, ଭବିଷ୍ୟତ୍, ଭାବି, ଶ୍ରେଷ୍ଠ, ଉତ୍ତମ, ରମ୍ୟ, ଉପସ୍ଥିତ,ଉପଯୁକ୍ତ, (ଗ୍ରା.ବି) ସମୀଚୀନ,(ସ୍ତ୍ରୀ) ଭବ୍ୟା।

ଭବ୍ୟତା—ସ୍ତ୍ରୀ.ବ. (ଭବ୍ୟ+ତା)ଭବ୍ୟର ଭାବ ବା ଧର୍ମ, ଭଦ୍ରତା।

ଭବ୍ୟଦାୟକ—ବିଂ. (ଭବ୍ୟ+ଦା+କ.ଅକ) ସୁଖଦ, ସୁଖପ୍ରଦ।

ଭବ୍ୟସଭ୍ୟ—ଗ୍ରା. ବିଂ. ଭଦ୍ର।

ଭବ୍ୟା—ସ୍ତ୍ରୀ. ବ. ( ଭବ୍ୟ+ଆ ) ଦୁର୍ଗା, ଉମା, ଗଜପିପ୍ପଳୀ, (ବିଂ) ଶୁଭଯୁକ୍ତା, ଶୁଭକାଂକ୍ଷୀ। [ ଶ୍ୱାନ।

ଭଷ—ପୁଂ.ବି. (ଭଷ୍+କ.ଅ) କୁକ୍କୁର,

ଭଷକ—ପୁଂ. ବି. କୁକ୍କୁର।

ଭଷଣ—କ୍ଲୀ. ବ. ( ଭଷ୍ + ଭା.ଅନ ) ଭୁକିବା, କୁକ୍କୁର ଶବ୍ଦ।

ଭଷା—ସ୍ତ୍ରୀ. ବି. ସ୍ୱର୍ଣ୍ଣକ୍ଷୀରୀ।

ଭଷୀ—ସ୍ତ୍ରୀ. ବ. ( ଭଷ୍+ଈ ) ଶୁନୀ, କୁକ୍କୁରୀ, ମାଈକୁକ୍କୁର।

ଭସ୍କା—ଗ୍ରା. ବ. ଭସଭସିଆ ଦେହ, (ସ୍ତ୍ରୀ) ଭସକୀ, (ବିଂ) ମୋଟା,ସ୍ଥୂଳକାୟ।

ଭସ୍‌ଭସ୍—ଗ୍ରା. ଅବ୍ୟ. ପାଣିପବନ ଆଦି ବାହାରିବାର ଶବ୍ଦ।

ଭସ୍‌ଭସିଆ—ଗ୍ରା.ବିଂ.ଫମ୍‌ଫମିଆ,ଅସୁଆଦିଆ, ପାଣିଚିଆ,ଦଲ୍‌ଦଲିଆ,ସାରହୀନ

ଭସତ୍(ଦ୍)—ସ୍ତ୍ରୀ.ବ. (ଭସ୍+ଅଦ୍)ପ୍ଲବ, କାଳ, ହୃତ୍‌ପିଣ୍ଡ, ଅଶ୍ୱମାଂସ, ଜଘନ, ଭାସ୍କର,ଯୋନି,ମାଂସ,କାରଣ୍ଡବ ପକ୍ଷୀ।

ଭସନ—ପୁଂ.ବ. (ଭସ୍+ଅନ) ଭ୍ରମର।

ଭସନ୍ତ—ପୁଂ. ବି. କାଳ।

ଭସନ୍ଧି—ପୁଂ.ବ.ନକ୍ଷତ୍ରମାନଙ୍କର ସନ୍ଧ୍ୟାତ୍ମକ କାଳବିଶେଷ। [ ସମୂହ।

ଭସମୂହ—ପୁଂ. ବ. (ଭ+ସମୂହ)ନକ୍ଷତ୍ର-

ଭସା—ଗ୍ରା. ବି. ଜଳରେ ଭାସମାନ

କରିବା, ଭାସମାନ ।

ଭସା(ସେ)ଇବା —ଗ୍ରା.କ୍ରି. ଭାସମାନ ପଦାର୍ଥକୁ ଜଳରେ ଭାସମାନ କରିବା, (ଲ. ଅର୍ଥ) କୌଣସି ବ୍ୟକ୍ତିର ସର୍ବନାଶ ଘଟାଇବା, ପ୍ଲାବିତ କରିବା,ଜଳପ୍ଲାବନ ଦ୍ୱାରା ଜଳସ୍ରୋତରେ ଦୂରକୁ ନେଇଯିବା ।

ଭସାଣି—ଗ୍ରା.ବି. ଭାସିଆସୁଥିବା,ଭାସିବା ଯାହାର ସ୍ୱଭାବ ।

ଭସାଲୀ—ଗ୍ରା.ବି. ଭାସିଆସିଥିବା,ନଗ୍ରାଶ୍ରୟ, କାହୁଁ ଅଇଲା ( ବ୍ୟକ୍ତି ), ଯେ ଭସାଏ ।

ଭସିତ—କ୍ଲୀ. ବି. ( ଭସ୍+ତ ) ଭସ୍ମ, ପାଉଁଶ । [ ଜ୍ୟୋତିଷ ।

ଭସୂଚକ—ପୁଂ.ବି.(ଭ+ସୂଚକ)ଦୈବଜ୍ଞ

ଭସ୍କିବା—ଗ୍ରା. କ୍ରି. କାବୁଅରେ ଗୋଡ଼ ଭଜି ଗଲେ ଯାହାର ଗୃଧୋରରେ (କାବୁଅମାଟି) ଉପରକୁ ଉଠିବା ।

ଭସ୍ତକା—ସ୍ତ୍ରୀ. ବି. ଚର୍ମପ୍ରସେବିକା,ଭସ୍ତ୍ରା, ଚମଡ଼ାର ତିଆରି ଭାତି,କୁଆଁ ତତାଇବାର ଯନ୍ତ୍ର, ଭସ୍ତି ।

ଭସ୍ତ୍ରା—ସ୍ତ୍ରୀ. ବି. ଅଗ୍ନିଦୀପକ ଚର୍ମନିର୍ମିତ ଯନ୍ତ୍ରବିଶେଷ, ଭାତି, ଯନ୍ତ୍ର, ଚର୍ମସ୍ଥାଳୀ, ମଶକ । [ ଚର୍ମସ୍ଥଳୀ ।

ଭସ୍ତ୍ରାକା—ସ୍ତ୍ରୀ. ବି. ଭସ୍ତ୍ରା, ଭାତି, ଯନ୍ତ୍ର,

ଭସ୍ତ୍ରିକ୍କ—ବି. ଭାତିଦ୍ୱାରା ହରଣକାରୀ, ଚର୍ମସ୍ଥଳୀ । [ ଚର୍ମସ୍ଥଳୀ ।

ଭସ୍ତ୍ରୀ—ସ୍ତ୍ରୀ.ବି. ଭସ୍ତ୍ରା, ଭାତି, ଯନ୍ତ୍ର,ଭସ୍ତ୍ରୀ,

ଭସ୍ମ—କ୍ଲୀ. ବି. (ଭସ୍ + କ.ମନ୍)ପାଉଁଶ, ଅମ୍ଳବେଦକ ପ୍ରକ୍ରିୟାରେ ଚୂନାଆଦି ପୋଡ଼ି କରାଯିବା ପାଉଁଶ, ହୋମରେ ଜଳିଯିବା କାଠଆଦିର ପାଉଁଶ, କ୍ଷାର, ବିଭୂତି, ମୃଦାର ପୋଡ଼ା ପାଉଁଶ, ଟୋଭସ୍ମ (ଗ୍ରା.ବି)ଅଜୀର୍ଣ୍ଣ ଖାଦ୍ୟବସ୍ତୁର ପରିଣତି, (ଗ୍ରା.ବି) ଭସ୍ମୀଭୂତ, ଜୀର୍ଣ୍ଣ (ଖାଦ୍ୟ) ।

ଭସ୍ମକ—କ୍ଲୀ. ବି. (ଭସ୍ମ+କ) ରୋଗଭେଦ, ବହୁ ଭୋଜନକାରକ ରୋଗ, ଭସ୍ମକୀଟ ରୋଗ, ଅତିଶୟ ଭୋଜନ ଇଚ୍ଛା, ସ୍ୱର୍ଣ୍ଣ, ରୁପା, ବଙ୍ଗ, ବ୍ରାହ୍ମଣଝିଟା ।

ଭସ୍ମକରିବା—ଗ୍ରା.କ୍ରି.କୌଣସି ପଦାର୍ଥକୁ ପୋଡ଼ି ପାଉଁଶ କରିବା, କୌଣସି ବ୍ୟକ୍ତି ବା ବସ୍ତୁର ସର୍ବନାଶ ଘଟାଇବା, ଖାଦ୍ୟଦ୍ରବ୍ୟକୁ ଜୀର୍ଣ୍ଣ କରିବା ।

ଭସ୍ମକାର—ପୁଂ. ବି. (ଭସ୍ମ+କୃ+ଅ) ରଜକ, ଧୋବା ।

ଭସ୍ମକୀଟ—ବି.(କ.ଧା) ଉଦର ମଧ୍ୟରେଥିବା ପୋକବିଶେଷ, ଯେଉଁ କୀଟ ଭୁକ୍ତ ବସ୍ତୁକୁ ଭସ୍ମ କରେ ।

ଭସ୍ମକୂଟ—ପୁଂ.ବି. କାମରୂପସ୍ଥିତ ପର୍ବତ ଭେଦ, (୬ତତ୍) ପାଉଁଶଗଦା ।

ଭସ୍ମଗତ—ଗ୍ରା. ବି. ଭସ୍ମସାତ୍ ।

ଭସ୍ମଗନ୍ଧା—ସ୍ତ୍ରୀ. ବି. ରେଣୁକା ।

ଭସ୍ମଗନ୍ଧିକା—ସ୍ତ୍ରୀ.ବି. ରେଣୁକାଖ୍ୟ ଗନ୍ଧଦ୍ରବ୍ୟ ଭେଦ । [ ଦ୍ରବ୍ୟ ।

ଭସ୍ମଗନ୍ଧିନୀ—ସ୍ତ୍ରୀ.ବି. ରେଣୁକାଖ୍ୟ ଗନ୍ଧ-

ଭସ୍ମଗର୍ଭ—ପୁଂ. ବି. ତିନିଶବୃକ୍ଷ ।

ଭସ୍ମଗର୍ଭା—ସ୍ତ୍ରୀ. ବି. କପିଳ ଶିଂଶପା, ଶିଶୁଗଛ, ରେଣୁକା ନାମକ ଗନ୍ଧଦ୍ରବ୍ୟ ।

ଭସ୍ମଗୁଣ୍ଠନ—ବି.ବିଭୂତିଲେପନ,ଦେହରେ ପାଉଁଶ ବୋଳିହେବା ।

ଭସ୍ମତୂଳ—କ୍ଲୀ. ବି. ଗ୍ରାମକୂଟ, ପାଂଶୁବର୍ଷଣ, ହିମ ।

ଭସ୍ମପ୍ରିୟ—ପୁଂ. ବି. (ବ.ବ୍ରୀ) ଶିବ ।

ଭସ୍ମମେହ—ପୁଂ. ବି. ମେହଜନିତ ଅଶ୍ମରୀ ରୋଗଭେଦ ।

ଭସ୍ମରୋହା—ସ୍ତ୍ରୀ. ବି. (ଭସ୍ମ+ରୁହ୍ +ଅ +ଆ) ଦଗ୍ଧବୃକ୍ଷ ।

ଭସ୍ମବେଧକ—ପୁଂ. ବି. କର୍ପୂର ।

ଭସ୍ମସାତ୍—ଅବ୍ୟ.(ଭସ୍ମ+ସାତ୍ )ଭସ୍ମରେ ପରିଣତ, ଭସ୍ମୀଭୂତ, ସମସ୍ତ ପୋଡ଼ି ଭସ୍ମ ହୋଇଯିବା ।

ଭସ୍ମା—ଗ୍ରା.ବି.ପୁରୁଷଙ୍କୁ ଦିଆଯିବା ଗାଳି ।

ଭସ୍ମାଗ୍ନି—ପୁଂ.ବି.ଉଦରାଗ୍ନିଜାତ ରୋଗବିଶେଷ, ଏହି ରୋଗରେ ଯାହା ଖାଇଲେ ହଠାତ୍ ହଜମ ହୋଇଯାଏ ।

ଭସ୍ମାଚଳ—ପୁଂ.ବି.କାମରୂପସ୍ଥିତ ପର୍ବତ ଭେଦ । [ ଅବୃତ ।

ଭସ୍ମଚ୍ଛନ୍ନ—ବି. (୩ତତ୍) ପାଉଁଶ ଦ୍ୱାରା

ଭସ୍ମଚ୍ଛାଦିତ—ବି. (୩ତତ୍) ଭସ୍ମବୃତ ।

ଭସ୍ମାଧାର—ବି. (୬ତତ୍) ପାଉଁଶ ରଖିବାର ପାତ୍ର ।

ଭସ୍ମାବଶିଷ୍ଟ—ବି. ପୋଡ଼ି ଯାଇ ପାଉଁଶ ମାତ୍ର ରହିଥିବା (ବସ୍ତୁ) ।

ଭସ୍ମାବଶେଷ—ବି. (୬ତତ୍) ପୋଡ଼ା ପଦାର୍ଥର ଅବଶିଷ୍ଟ ରହିଥିବା ଭସ୍ମରୂପ ଅଂଶ, ଭସ୍ମୀଭୂତ ଦେହ ।

ଭସ୍ମାସୁର—ପୁଂ. ବି. ଅସୁରବିଶେଷ ।

ଭସ୍ମାହ୍ୱୟ—ପୁଂ. ବି. କର୍ପୂର ।

ଭସ୍ମିତ—ବି. (ଭସ୍ମ+ଇତ) ପୋଡ଼ି ଯାଇ ପାଉଁଶ ହୋଇଥିବା, ବିନଷ୍ଟ ।

ଭସ୍ମୀକୃତ—ବି (ଭସ୍ମନ୍+ଚ୍ୱି+କୃ+କ୍ତ) ଯାହା ଭସ୍ମରେ ପରିଣତ କରାହୋଇଅଛି ।

ଭସ୍ମୀଭୂତ—ବି. (ଭସ୍ମ+ଚ୍ୱି+ଭୂ+କ୍ତ) ପୋଡ଼ିଯାଇ ପାଉଁଶ ହୋଇ ଯାଇଥିବା, ଭସ୍ମିତ, ଭସ୍ମପ୍ରାପ୍ତ, ବିନାଶିତ, ସୁଜୀର୍ଣ୍ଣ, (ସ୍ତ୍ରୀ) ଭସ୍ମୀଭୂତା ।

ଭା—ସ୍ତ୍ରୀ.ବି.(ଭା+ଅ+ଆ) ପ୍ରଭା, ଦୀପ୍ତି, ଆଲୋକ, କାନ୍ତି, କିରଣ, ଶୋଭା, (ପୁଂ) ସୂର୍ଯ୍ୟ ।

ଭାଇ—ଗ୍ରା. ବି. ( ସଂ-ଭ୍ରାତା ) ଭ୍ରାତା, ସହୋଦର, ଖୁଡ଼ୁତା ବା ଦେଢ଼ୁତାଙ୍କ ପୁଅ, ମାମୁଁ ମଉସା ପିଉସାଙ୍କ ପୁଅ, କୁଟୁମ୍ବ, ଏକ ଜନ୍ମଭୂମିର ସନ୍ତାନ,ସଙ୍ଗୀ, ଧର୍ମଭାଇ, ଏକ ସମାଜ ବା ଜାତିର ଅନ୍ତର୍ଗତ ବ୍ୟକ୍ତି, ଏକ ସ୍ଥାନରେ କାର୍ଯ୍ୟ କରୁଥିବା ବ୍ୟକ୍ତିଗଣ, ଏକ ସମ୍ପତ୍ତିର ଅଂଶୀଦାର, (ଗ୍ରା.ଅବ୍ୟ) ସମବୟସ୍କ, ସମସ୍କନ୍ଧ ବା ସମଅବସ୍ଥାପନ୍ନ ବ୍ୟକ୍ତିଙ୍କ ସମ୍ବୋଧନ । [ କନ୍ୟା ।

ଭାଇଝିଅ—ଗ୍ରା.ବି. ଝିଆରୀ, ଭ୍ରାତାର

ଭାଇଦ୍ୱିତୀୟା—ଗ୍ରା. ବି. ଯମଦ୍ୱିତୀୟା, ଭ୍ରାତୃଦ୍ୱିତୀୟା,କାର୍ତ୍ତିକ ଶୁକ୍ଳ ଦ୍ୱିତୀୟା ।

ଭାଇଧନ—ଗ୍ରା.ଅବ୍ୟ. ଭାଇ ବା ମିତ୍ରପ୍ରତି ସ୍ନେହ ସମ୍ବୋଧନ, ( ୬ତତ୍ କ୍ଲୀ.ବି )

ଭାଇର ଧନ ।
ଭାଇନା—ଗ୍ରା.ପୁଂ.ବି. (ବ୍ରାହ୍ମଣଙ୍କ ଘରେ ପ୍ରଚଳିତ) ବଡ଼ଭାଇ, ଜ୍ୟେଷ୍ଠଭ୍ରାତା ।
ଭାଇପଣ ( ପଣିଆଁ )—ଗ୍ରା.ବି. ଭାଇର ଉଚିତ ବ୍ୟବହାର, ଏକ ସମାଜଭୁକ୍ତ ବ୍ୟକ୍ତିମାନଙ୍କ ମଧ୍ୟରେ ପରସ୍ପର ପ୍ରତି କର୍ତ୍ତବ୍ୟ, ସାମାଜିକ କର୍ମମାନଙ୍କର ନିୟମିତ ସମ୍ପାଦନ ।
ଭାଇପୁଅ—ଗ୍ରା. ବି. କ୍ଷତ୍ରିୟ ରାଜବଂଶଧର ବା କୁଟୁମ୍ବ. ପୁରୁଷ, ଭାଇର ପୁଅ,(ପ୍ରା. ଗଞ୍ଜାମ.ବି) ଗଞ୍ଜାମ ଜିଲାର ପାଇକ-ବିଶେଷ ।
ଭାଇବରାଦର—ଗ୍ରା.ବି. ସହୋଦର ଭାଇ ଓ କୁଟୁମ୍ବୀ ଭାଇମାନେ ।
ଭାଇବୋହୂ—ଗ୍ରା.ସ୍ତ୍ରୀ.ବି.ସାନଭାଇର ସ୍ତ୍ରୀ, ଭ୍ରାତୃବଧୂ ।
ଭାଇଭଉଣୀ—ଗ୍ରା.ବି.ଭ୍ରାତା ଓ ଭଗିନୀ ।
ଭାଇଭଗାର—ଗ୍ରା.ବି. ଦାୟାଦ, ପୈତୃକ ସମ୍ପତ୍ତିରେ ଅଂଶୀଦାର, ଜ୍ଞାତିବନ୍ଧୁ ।
ଭାଇଭଗାରିଆ—ଗ୍ରା. ବିଂ. ଦାୟାଦ ବା ପୈତୃକ ସମ୍ପତ୍ତିରେ ଅଂଶୀଦାରମାନଙ୍କ ସମ୍ବନ୍ଧୀୟ, ଯେଉଁ ବ୍ୟକ୍ତିର ପ୍ରତିବେଶୀ-ରୂପେ ଭାଇ ଓ ଭଗାରମାନେ ବାସ କରନ୍ତି ।
ଭାଇଭାଗ—ଗ୍ରା.ବି. ଭାଇମାନଙ୍କ ମଧ୍ୟରେ ପୈତୃକ ସମ୍ପତ୍ତିର ବିଭାଗ, ଜଣେ ଭାଇର ଅଂଶ ।
ଭାଇସ୍ରାଏ—ଗ୍ରା.ବି. ସମ୍ରାଟଙ୍କ ପ୍ରତିନିଧି, ଭାରତର ବଡ଼ଲାଟ । [ ଦର ।
ଭାଉ—ଗ୍ରା.ବି. ବଜାରର ଦର,ମୂଲ୍ୟାଦି,
ଭାଉଜ—ଗ୍ରା.ସ୍ତ୍ରୀ. ବି.( ସଂ-ଭ୍ରାତୃଜାୟା ) ବଡ଼ଭାଇର ସ୍ତ୍ରୀ ।
ଭାଁ ଭାଁ—ଗ୍ରା.ଅବ୍ୟ. କାନମଧ୍ୟରେ ଅନୁଭୂତ ଶବ୍ଦବିଶେଷ ।
ଭାକ୍—ପୁଂ.ବିଂ. ( ଭଜ୍+କ୍ୱିପ୍ ) ଅଂଶୀ, ଭାଗୀ, (ସ୍ତ୍ରୀ) ଭାଜୀ, ( ଗ୍ରା.ଅବ୍ୟ ) ଭାଗ୍ ଦେଖ ।
ଭାକ-ଗ୍ରା.ବି.କଥାର ଠିକଣା ବା ସ୍ଥିରତା ।
ଭାକୁର(ଟ,ଡ଼)—ପୁଂ.ବି.(ଭା+କୁଟ+ଅ) ମତ୍ସ୍ୟବିଶେଷ, ଭାକୁରମାଛ ।
ଭାକୁଡ଼ା—ଗ୍ରା.ବି. ବେଶ୍ୟାପୁତ୍ର ।
ଭାକୁର—ପୁଂ.ବି. ଦୀପ୍ତିକାରକ ।
ଭାକୂଟ—ପୁଂ.ବି. ପର୍ବତଭେଦ, ମତ୍ସ୍ୟ-ବିଶେଷ, ଭାକୁରମାଛ ।
ଭାକେଶୃଙ୍ଗ—ଗ୍ରା.ସ୍ତ୍ରୀ.ବି. (ସଂ-ବାକ୍ୟେଶ୍ୱରୀ) ଦେବୀବିଶେଷ ।
ଭାକୋଷ—ପୁଂ.ବି. (ଭା+କୋଷ)ସୂର୍ଯ୍ୟ ।
ଭାକ୍ତ—ବିଂ.(ଭକ୍ତି+ଅ) ଲାକ୍ଷଣିକ (ଅର୍ଥ) ଔପଚାରିକ, ଗୌଣବୃତ୍ତିବୋଧିତ, ଗୌଣ, ପାରିଭାଷିକ, ( ଭକ୍ତ+ଅ ) ଓଦନସମ୍ବନ୍ଧୀୟ, ଅନ୍ନସଂକ୍ରାନ୍ତ, ଅନ୍ନଦ୍ୱାର ପୋଷ୍ୟ, (ସ୍ତ୍ରୀ) ଭାକ୍ତି ।
ଭାକ୍ତଦିନ—ବି. ଦିନର ପ୍ରଥମ ଓ ଶେଷ-ଭାଗ, ଉଷା ଓ ଗୋଧୂଳି, ସୂର୍ଯ୍ୟୋଦୟ ପରେ ଓ ସୂର୍ଯ୍ୟାସ୍ତ ପୂର୍ବରୁ ଦୁଇଘଡ଼ି ସମୟ ।
ଭାକ୍ତିକ—ବିଂ. ( ଭକ୍ତ+ଇକ ) ଭାଡ଼ୁଆ, ପରାନ୍ନପାଳିତ, ପରପ୍ରେପକ୍ଷୀ, (ସ୍ତ୍ରୀ) ଭାକ୍ତିକୀ ।
ଭାଖା(ଷା)—ଗ୍ରା.ବି.କଥା, ଭାଷା,ବୋଲି, ବାକ୍ୟ, ପ୍ରାଦେଶିକ ଭାଷା, ସ୍ଥାନୀୟ ବୋଲି ।
ଭାଖି(ଷି)ବା—ଗ୍ରା. କ୍ରି. ଭଣିବା, କହିବା ।
ଭାକ୍ଷ—ପୁଂ.ବିଂ. ଭକ୍ଷଣଶୀଳ ।
ଭାଗ୍—ଗ୍ରା. ଅବ୍ୟ. କୌଣସି ବ୍ୟକ୍ତିକୁ କୌଣସି ସ୍ଥାନରୁ ଚାଲିଯିବାପାଇଁ ଘୃଣାର୍ଥକ (ଆଦେଶବଚନ ), ଚାଲିଯା, ପଳା ।
ଭାଗ୍‌ବା—ପ୍ରା.(ସମ୍ବ) କ୍ରି. ପଳାଇଯିବା, ସ୍ଥାନାନ୍ତରକୁ ଚାଲିଯିବା ।
ଭାଗ—ପୁଂ.ବି. (ଭଜ୍+ଅ)ବିଭାଗ,ଅଂଶ, ହିସା, ଖଣ୍ଡ, ଟୁକୁରା,ପରିମାଣ,କାଳାଂଶ, ଅନୁପାତ, ଦେଶାଂଶ, ପ୍ରଦେଶ, ଅଞ୍ଚଳ, ହରଣକ୍ରିୟା (ଗଣିତ), ଭାଗ୍ୟ, ଅଦୃଷ୍ଟ, ବିଭାଗକରଣ, ଅର୍ଦ୍ଧାଂଶ, ରାଶିର ତ୍ରିଂଶ-ଭାଗରୁ ଏକଭାଗ, ଔଷଧାଦିରେ ମିଶାଯିବା ଉପକରଣମାନଙ୍କର ପରିମାଣ, ( ଗ୍ରା.ବି ) କ୍ଷେତ୍ରସ୍ୱାମୀ ଓ କୃଷୀଙ୍କ ମଧ୍ୟରେ ବଣ୍ଟାରା କରାଯିବା ଉତ୍ପନ୍ନ ଦ୍ରବ୍ୟର ଅର୍ଦ୍ଧାଂଶ, ପ୍ରକାର ।
ଭାଗକ—ବିଂ. ଅଂଶ ବା ଭାଗସମ୍ବନ୍ଧୀୟ, (ପୁଂ.ବିଂ) ଭାଜକ ।
ଭାଗକର—ପୁଂ.ବି. ଶିବ, (ବିଂ) ଭାଗ-କାରକ, ବିଭାଗକାରୀ ।
ଭାଗକରିବା—ଗ୍ରା.କ୍ରି. କୌଣସି ପଦାର୍ଥକୁ ଭିନ୍ନ ଭିନ୍ନ ଅଂଶରେ ପୃଥକ୍ କରିବା, ବଣ୍ଟନକରିବା,(ଗଣିତ)ହରଣ କରିବା ।
ଭାଗଣ—ପୁଂ. ବି. ସୂର୍ଯ୍ୟାଦିମାନଙ୍କର ଭୋଗସମୂହ ।
ଭାଗଚାଷ—ଗ୍ରା. ବି. ଜମିଦାରକୁ ଚାଷ ଜମିର ଉତ୍ପନ୍ନ ଦ୍ରବ୍ୟର ଅଧେ ଦେବା ଚୁକ୍ତିରେ ଜମି ଚାଷ କରିବା ପ୍ରଥା ।
ଭାଗଚାଷୀ—ଗ୍ରା.ବି.ଯେଉଁ ରଇତ ଚାଷ ଜମିର ଉତ୍ପନ୍ନ ଦ୍ରବ୍ୟରୁ ଅଧେ ଜମିଦାରକୁ ଦେବାର ଚୁକ୍ତି କରି ଚାଷ କରେ ।
ଭାଗଡ଼—ଗ୍ରା.ବି. ଦୌଡ଼, ପଳାୟନ ।
ଭାଗଦାର—ଗ୍ରା.ବି. କୌଣସି ସମ୍ପତ୍ତିରେ ଯେଉଁ ବ୍ୟକ୍ତିର ଅଂଶ ଥାଏ,ଅଂଶୀଦାର
ଭାଗଦୁଘ—ବିଂ. ବିଭାଗପ୍ରଦ ।
ଭାଗଧ—ବି. ପ୍ରାପ୍ୟ ପଦାର୍ଥର ଅଂଶ-ପ୍ରଦାନ ।
ଭାଗଧେୟ—କ୍ଲୀ.ବି. ( ଭାଗ+ଧେୟ ) ରାଜସ୍ୱ, ଜମିର କର, ଉତ୍ତରାଧିକାରୀ, ଦାୟାଦ, ଭାଗ୍ୟ, ଅଦୃଷ୍ଟ, ଅଂଶ,ଭାଗ ।
ଭାଗଫଳ—କ୍ଲୀ.ବି. (ଗଣିତ)ହରଣଫଳ, ବଡ଼ସଂଖ୍ୟାକୁ ଛୋଟସଂଖ୍ୟାଦ୍ୱାରା ହରଣକଲେ ଯେଉଁ ଫଳ ପଡ଼େ ।
ଭାଗଭାକ୍—ପୁଂ.ବି. ( ଭାଗ+ଭଜ୍+କ୍ୱିପ୍) ବିଭାଗକର୍ତ୍ତା ।
ଭାଗଭୁକ୍—ପୁଂ. ବି. (ଭାଗ+ଭୁଜ୍+କ୍ୱିପ୍) ରାଜା ।
ଭାଗମାନ—ଗ୍ରା. ବି. ଅଂଶ ଅନୁସାରେ ପ୍ରାପ୍ୟ ଭାଗଆଦି ।
ଭାଗମାପ--ଗ୍ରା.ବି.କୌଣସି ବସ୍ତୁରେ ଉପକରଣ ମାନଙ୍କର ମିଶ୍ରଣାର୍ଥ ଉପଯୁକ୍ତ ଭାଗ, କୌଣସି ବସ୍ତୁର ଅବଶ୍ୟକୀୟ

ଉପକରଣମାନଙ୍କୁ ମାପ ଅନୁସାରେ ମିଶାଇବା ।

ଭାଗଲକ୍ଷଣା—ସ୍ତ୍ରୀ. ବି. ଲକ୍ଷଣାଭେଦ. ଜହତ୍ ଓ ଅଜହତ୍‌ସ୍ୱାର୍ଥଲକ୍ଷଣା, ଯେଉଁ ସ୍ଥଳରେ ଭାବାଥର କୌଣସି ଅଂଶକୁ ଗ୍ରହଣ କରାଯାଏ ।

ଭାଗଲପୁର—ଗ୍ରା.ବି.ବଙ୍ଗପ୍ରେସିଡେନ୍ସିର ବିହାର ପ୍ରଦେଶାନ୍ତର୍ଗତ ଗୋଟିଏ ବିଭାଗ ଜିଲ୍ଲା ଓ ସହର ।

ଭାଗବଣ୍ଟନ—ଗ୍ରା. ବି. କୌଣସି ବସ୍ତୁକୁ ଅଂଶୀଦାରମାନଙ୍କ ମଧ୍ୟରେ ଭାଗକରିଦେବା ।

ଭାଗବତ—କ୍ଲୀ. ବି. ଅଷ୍ଟାଦଶପୁରାଣାନ୍ତର୍ଗତ ମହାପୁରାଣ ବିଶେଷ, ବିଷ୍ଣୁଭକ୍ତ, ଈଶ୍ୱର ପ୍ରେମିକ, (ବିଂ) ଭଗବାନଙ୍କଠାରେ ଭକ୍ତିଯୁକ୍ତ, ଧାର୍ମିକ, ( ସ୍ତ୍ରୀ ) ଭାଗବତୀ ।

ଭାଗବତଗାଦି—ଗ୍ରା. ବି. ସ୍ତୂପାକାରରେ ରକ୍ଷିତ ସମଗ୍ର ଭାଗବତ ଗ୍ରନ୍ଥ ।

ଭାଗବତଗୋସାଇଁ—ଗ୍ରା. ବି. ଦେବତାରୂପେ ପୂଜ୍ୟ ଭାଗବତ ଗାଦି ।

ଭାଗବତଘର—ଗ୍ରା. ବି. କୌଣସି ଗ୍ରାମର ଯେଉଁ ସାଧାରଣ ଗୃହରେ ଭାଗବତ ଗାଦି ରଖାଯାଇଥାଏ ।

ଭାଗବତବଢ଼ା—ଗ୍ରା. ବି. ସପ୍ତାହବ୍ୟାପୀ ଅହୋରାତ୍ର ଭାଗବତ ପାଠ ସମାପ୍ତ ହୋଇ ସନ୍ଥଙ୍କ ସଙ୍ଗେ ନୈବେଦ୍ୟ ଦେବା ପଦାର୍ଥର ବଣ୍ଟନ ଉତ୍ସବବିଶେଷ

ଭାଗବତଲକ୍ଷଣ—ବି. ଭାଗବତ ଗ୍ରନ୍ଥରେ ବର୍ଣ୍ଣିତ ବିଷୟମାନଙ୍କର ବିଶିଷ୍ଟଗୁଣ, (ଯଥା:—ସର୍ଗ, ବିସର୍ଗ, ସ୍ଥାନ, ପୋଷଣ ପ୍ରଭୃତି) ।

ଭାଗବୃତ୍ତି—ସ୍ତ୍ରୀ.ବି. ଉଣାଦି ବୃତ୍ତିଭେଦ ।

ଭାଗଶଃ—ଅବ୍ୟ. ଭାଗେ ଭାଗେ, ପ୍ରତିଭାଗେ ।

ଭାଗଶେଷ—ବି.(ଗଣିତ)ଗୋଟିଏ ରାଶିକୁ ଅନ୍ୟରାଶି ଦ୍ୱାରା ହରିଲେ ଯାହା ବାକି ରହିଯାଏ ।

ଭାଗହର—ପୁଂ. ବିଂ. (ଭାଗ+ହୃ+କ.ଅ) ଅଂଶହାରୀ, (ବି-ଭା.ଅ) ଅଂଶଗ୍ରହଣ ।

ଭାଗହାର—ବି. (ଭାଗ+ହୃ+ଭା.ଅ) ଯେଉଁ ଉପାୟରେ କୌଣସି ନିର୍ଦ୍ଦିଷ୍ଟ ରାଶିକୁ କୌଣସି ନିର୍ଦ୍ଦିଷ୍ଟସଂଖ୍ୟକ ସମାନ ଅଂଶରେ ବିଭକ୍ତ କରାଯାଏ, ବିଭାଗ ପ୍ରଦାନ, କୌଣସି ନିର୍ଦ୍ଦିଷ୍ଟ ରାଶିକୁ ଅନ୍ୟ ରାଶିଦ୍ୱାରା ଭାଗକରିବା ପ୍ରଣାଳୀ ।

ଭାଗହାରୀ—ପୁଂ. ବିଂ. (ଭାଗ+ହୃ+ଇନ୍) ଅଂଶଗ୍ରାହୀ ।

ଭାଗା—ଗ୍ରା. ବି. ପଳାୟନ, (ବିଂ) ପଳାୟିତ ।

ଭାଗାପହାରକ୍ରୀଡ଼ା—ସ୍ତ୍ରୀ. ବି. ଭଗ୍ନାଂଶ ଅଙ୍କ ପ୍ରକରଣବିଶେଷ । [ ଦାର ।

ଭାଗାରି—ଗ୍ରା. ବି. ଯେ ଭାଗନିଏ, ଅଂଶୀ-

ଭାଗାର୍ଥୀ—ପୁଂ. ବିଂ. (ଭାଗ+ଅର୍ଥ+ଇନ୍) ଭାଗପ୍ରାର୍ଥୀ ।

ଭାଗାର୍ହ—ପୁଂ.ବିଂ.(୬ତତ୍)ଭାଗଯୋଗ୍ୟ ।

ଭାଗିକ—ବି. (ଭାଗ+ଇକ) ବୃଦ୍ଧିନିମିତ୍ତ ଦତ୍ତମୁଦ୍ରାଦି, ଅସଲ ଓ ସୁଧଟଙ୍କା ।

ଭାଗିନୀ—ସ୍ତ୍ରୀ. ବିଂ. (ଭାଗ+ଇନ୍+ଈ) ଅଂଶିନୀ, ଗ୍ରହଣକାରିଣୀ ।

ଭାଗିନେୟ—ପୁଂ. ବି. (ଭଗିନୀ+ଏୟ) ଭଗିନୀପୁତ୍ର, ଭଣଜା ।

ଭାଗିନେୟୀ—ସ୍ତ୍ରୀ. ବି. (ଭାଗିନେୟ+ଈ) ଭଉଣୀର ଝିଅ, ଭାଣିଜୀ ।

ଭାଗିବା—ଗ୍ରା. କ୍ରି. ପଳାଇବା, ଭାଙ୍ଗିବା ।

ଭାଗୀ—ପୁଂ. ବିଂ. (ଭାଗ+ଇନ୍)ଅଂଶୀ, ଭାଗଦାର, ଉତ୍ତରାଧିକାରୀ, (ଭଜ୍+କ.ଇନ୍) ଭାଗଗ୍ରହଣକାରୀ ।

ଭାଗୀରଥ—ପୁଂ.ବି.ସଗରରାଜାଙ୍କ ନାତି, ଜଣେ ପରିବ୍ରାଜକ ପରମହଂସ ।

ଭାଗୀରଥୀ—ସ୍ତ୍ରୀ.ବି. (ଭଗୀରଥ+ଅ+ଈ) ଗଙ୍ଗା, ଜାହ୍ନବୀ ।

ଭାଗୁଆ—ଗ୍ରା. ବି. (ସଂ-ଭାଗହର)ଅଂଶୀଦାର, ଭାଗଦାର, ଯେ ଭାଗ ନିଏ, (ବିଂ) ଭାଗଦାରଙ୍କ ଅଧିକୃତ (ଜମି ବ୍ୟବସାୟାଦି) ।

ଭାଗୁଡ଼ା—ଗ୍ରା. ବିଂ. ପଳାତକ ।

ଭାଗୁଡ଼(ଳି)—ଗ୍ରା. ବି. ଯନ୍ତ୍ରହୋଇ ଧାଇଁ ପଳାଇବା, ଛତ୍ରଭଙ୍ଗ, ମପାହୋଇ ରଖାଯାଇଥିବା ଶସ୍ୟାଦିର ପୁନର୍ବାର ମାପ ସମୟରେ କମତି ହେବା ।

ଭାଗୁରି—ପୁଂ. ବି. ଭାଗୁରିସ୍ମୃତି ପ୍ରଣେତା ମୁନିବିଶେଷ, ବ୍ୟାକରଣକର୍ତ୍ତା ଜନୈକ ମୁନି, ଜଣେ ଜ୍ୟୋତିର୍ବିଦ୍ ।

ଭାଗେ—ଗ୍ରା. ଅବ୍ୟ. (ଅମୁକର) ଆୟତ୍ତରେ, ହାବୁଡ଼ରେ, ସମ୍ମୁଖେ, ଏକଭାଗ ମାତ୍ର ।

ଭାଗ୍ୟ—କ୍ଲୀ. ବି. ( ଭଜ୍+ଯ ) ନିୟତି, କପାଳ, ପ୍ରାକ୍ତନ, ଶୁଭାଶୁଭକର୍ମ, ଦୈବ, ଦିଷ୍ଟ, ଅସଲ ସୁଧଟଙ୍କା, ଉତ୍ତରଫାଲ୍ଗୁନୀ ନକ୍ଷତ୍ର, ( ବିଂ ) ବିଭାଜ୍ୟ, ଖଣ୍ଡନୀୟ, ବଣ୍ଟନୀୟ ।

ଭାଗ୍ୟକ୍ରମେ—ଗ୍ରା. ଅବ୍ୟ. ଦୈବଯୋଗେ, ଅଦୃଷ୍ଟ ଅନୁସାରେ, ସୁଯୋଗକ୍ରମେ ।

ଭାଗ୍ୟଗଣନା—ବି. ( ୬ତତ୍ ) ଅଦୃଷ୍ଟର ଫଳାଫଳ ଜ୍ୟୋତିଷିକ ଗଣନାଆଦି ଦ୍ୱାରା ଆଗରୁ ବୁଝିବା ।

ଭାଗ୍ୟଗୁଣ—ବି. ( ୬ତତ୍ ) ଅଦୃଷ୍ଟର ଉତ୍କର୍ଷ, ଶୁଭାଦୃଷ୍ଟ ।

ଭାଗ୍ୟଚକ୍ର—ବି. (ରୂ.କ.ଧା) ଅଦୃଷ୍ଟରୂପ ଚକ୍ର, ଶୁଭାଶୁଭ ଘଟିବାରୂପ ଭାଗ୍ୟ ।

ଭାଗ୍ୟଦେଖାଇବା—ଗ୍ରା. କ୍ରି. ଆପଣା ସୌଭାଗ୍ୟର ବିଷୟ ଅନ୍ୟବ୍ୟକ୍ତିଆଗରେ ପ୍ରକାଶ କରିବା ।

ଭାଗ୍ୟଦେବୀ—ବି. ଲକ୍ଷ୍ମୀ ।

ଭାଗ୍ୟଧର—ବିଂ. ( ଭାଗ୍ୟ+ଧୃ+ଅ ) ଭାଗ୍ୟବନ୍ତ, କପାଳିଆ ।

ଭାଗ୍ୟପୁରୁଷ—ବି. ( କ.ଧା ) ଅଦୃଷ୍ଟର ଅଧିଷ୍ଠାତା ପୁରୁଷ ।

ଭାଗ୍ୟଫଳ—ବି. ଅଦୃଷ୍ଟର ପରିଣାମ, ପୂର୍ବଜନ୍ମାର୍ଜିତ କର୍ମର ସୁଖଦୁଃଖାଦି ଫଳ

ଭାଗ୍ୟଭାବ—ପୁଂ. ବି. ଭାଗ୍ୟବିଷୟକ ଶୁଭାଶୁଭ ବିଷୟ ।

ଭାଗ୍ୟଲିପି—ବି. ଅଦୃଷ୍ଟଲିଖନ, ଯାହା ମନୁଷ୍ୟର କପାଳରେ ଲେଖା ଥାଏ ।

ଭାଗ୍ୟବନ୍ତ—ଗ୍ରା. ପୁଂ.ବିଂ. ଭାଗ୍ୟବାନ୍,

କପାଳିଆ ।
ଭାଗ୍ୟବଳ—ବି.(୬ତତ୍ପୁ)କପାଳର ଜୋର
ଭାଗ୍ୟବାଦୀ—ପୁଂ.ବିଂ. (ଭାଗ୍ୟ+ବାଦିନ୍) ଅଦୃଷ୍ଟବାଦୀ,ଯେ ଅଦୃଷ୍ଟ ଉପରେ ସୁଖ-ଦୁଃଖ ନିର୍ଭର କରେ, (ସ୍ତ୍ରୀ) ଭାଗ୍ୟ-ବାଦିନୀ ।
ଭାଗ୍ୟବାନ୍—ପୁଂ. ବିଂ. ( ଭାଗ୍ୟ+ବତ୍ ) କପାଳିଆ,ଭାଗ୍ୟଯୁକ୍ତ,ସୌଭାଗ୍ୟଶାଳୀ, (ସ୍ତ୍ରୀ) ଭାଗ୍ୟବତୀ ।
ଭାଗ୍ୟବିଧାତା—ପୁଂ.ବିଂ(ଭାଗ୍ୟ+ବିଧାତୃ) ଯାହା ଉପରେ ମନୁଷ୍ୟର ସୁଖ ଦୁଃଖାଦି ନିର୍ଭର କରେ, ଅଦୃଷ୍ଟର ନିୟନ୍ତା, ବିଧି, ବିଧାତା, (ସ୍ତ୍ରୀ) ବିଧାତ୍ରୀ ।
ଭାଗ୍ୟବିପର୍ଯ୍ୟୟ—ପୁଂ. ବିଂ. ଭାଗ୍ୟର ବୈପରୀତ୍ୟ, ଦୁର୍ଭାଗ୍ୟ, ଦୁରଦୃଷ୍ଟ ।
ଭାଗ୍ୟହୀନ—ପୁଂ. ବିଂ. (୩ତତ୍ପୁ) ହୀନ-କପାଳିଆ, ହତଭାଗ୍ୟ, (ସ୍ତ୍ରୀ)ଭାଗ୍ୟହୀନା
ଭାଗ୍ୟୋଦୟ—ବି.(୬ତତ୍ପୁ) ସୌଭାଗ୍ୟର ଆବିର୍ଭାବ । [ ଧ୍ୱନି ।
ଭାଙ୍କାର—ବି.(ଭାଂ+କାର)ଭେରୀଆଦିର
ଭାଙ୍ଗ୍—ଗ୍ରା.ବି.ଭାଙ୍ଗ, ବନ୍ଦକର, ପାନରେ ଖିଅ ଯିବା,ପାଣିରେ ପକା ଯିବା,ତମାଖୁ-ଗୁଣ୍ଡା ।
ଭାଙ୍ଗ୍ଠ—ଗ୍ରା. ବି. କୌଣସି ସଙ୍କଳିତ କାର୍ଯ୍ୟକୁ ଭାଙ୍ଗିବା ପାଇଁ ଦେବା କୁମନ୍ତ୍ରଣା ।
ଭାଙ୍ଗ—ଗ୍ରା,ବି.ମାଦକତା ଉତ୍ପାଦକ ଶଣ ଜାତୀୟ କ୍ଷୁଦ୍ର ବୃକ୍ଷବିଶେଷ, ସିଦ୍ଧି, ବିଜୟା, ଗଞ୍ଜେଇ ଘୋଟା, ବସ୍ତ୍ରାଦିର ଭାଙ୍ଗ, ଚନ୍ଦ ଓ ମଣ୍ଡଳଆଦିର ଅଙ୍କନ, ଭାଙ୍ଗିବା କ୍ରିୟାର ଆଦେଶ ବଚନ ।
ଭାଙ୍ଗକ—କ୍ଲୀ. ବି. ଛିନ୍ନବସ୍ତ୍ର ।
ଭାଙ୍ଗଖୋର—ଗ୍ରା.ବିଂ. ଯେ ବେଶୀ ଭାଙ୍ଗ ଖାଏ ।
ଭାଜକ—ବି.ବିଂ. (ଭାଜ୍+କ.ଅକ)ଯେଉଁ ରାଶି ଦ୍ୱାରା ଭାଗ କରାଯାଏ, ବିଭାଗ-କାରୀ, (ସ୍ତ୍ରୀ) ଭାଜିକା ।
ଭାଜକାଂଶ—ପୁଂ. ବି. (ଭାଜକ+ଅଂଶ) ଗୁଣନୀୟକ, ଭାଗଫଳ ।
ଭାଜନ—କ୍ଲୀ. ବି. (ଭଜ୍+ଅନ) ପାତ୍ର, ଆଶ୍ରୟ, ସୁପାତ୍ର, ଆଧାର, ଯୋଗ୍ୟ-ପାତ୍ର, ଆଢ଼କ ପରିମାଣ,(ବିଂ)ଯୋଗ୍ୟ ।
ଭାଜି—ଗ୍ରା. ବି. ଭର୍ଜିତ ବ୍ୟଞ୍ଜନ, ଘିଅ ବା ତେଲରେ ଭଜା ହୋଇଥିବା ଖାଦ୍ୟ, (ପ୍ରା, ସମ୍ବ,ବ) କୋଶଳାଶାଗ, ଶାଗ ।
ଭାଜିତ—ବିଂ. (ଭାଜ୍+ତ) ପୃଥକ୍‌କୃତ, ବିଭକ୍ତ, (ବି) ଭାଗ, ଅଂଶ ।
ଭାଜିବା—ଗ୍ରା. କ୍ରି. (ଭଙ୍ଗଶବ୍ଦଜ) ଭାଙ୍ଗିବା ଓ ପଳାୟନ କରିବା, ଭାଙ୍ଗିଯିବା,ଭଗ୍ନ ହେବା, ରହିଯିବା, ଲୁପ୍ତପ୍ରାପ୍ତ ହେବା, ପରାଜିତ ହେବା, ଭର୍ଜନ କରିବା, ଚିହ୍ନାଶସ୍ୟ ପ୍ରଭୃତି ଭର୍ଜନ କରିବା ।
ଭାଜିଶାଗ—ଗ୍ରା. ବି. କୋଶଳା ଶାଗ, ଲେଉଟିଆ ଶାଗ ଇତ୍ୟାଦି ।
ଭାଜୀ—ପୁଂ. ବିଂ.(ଭଜ୍+ଇନ୍)ସେବକ ।
ଭାଜ୍ୟ—ବିଂ. (ଭଜ୍+ଘ୍ୟ) ବିଭଜନୀୟ, ଭାଗାର୍ହ, ଯାହାକୁ ଭାଗ କରାଯାଏ, (ବି) ଯେଉଁ ରାଶି ଅନ୍ୟ ରାଶି ଦ୍ୱାରା ଭାଗ କରାଯାଏ ।
ଭାଞ୍ଜ—ଗ୍ରା. ବି.ସ୍ୱର୍ଣ୍ଣରୌପ୍ୟାଦିରେ ମିଶା-ଯିବା ନିକୃଷ୍ଟ ଧାତୁ, ଖାଦ୍ୟ, ଭାଙ୍ଗ, ପରସ୍ତ, (ଗ୍ରା.ବିଂ) ନିକୃଷ୍ଟ ।
ଭାଞ୍ଜିବା—ଗ୍ରା.କ୍ରି. ଭାଙ୍ଗିବା, ପଳାଇବା ।
ଭାଟ—ଗ୍ରା. ବି. (ଭଟ୍ଟଶବ୍ଦଜ) ବର୍ଣ୍ଣସଙ୍କର ଜାତିବିଶେଷ, ବୈତାଳିକ, ରାଜଦୂତ, ସ୍ତୁତିପାଠକ ।
ଭାଟକ—ବି. ( ଭଟ+କ.ଅକ ) ମୂଲ୍ୟ, ଭଡ଼ା, କେରାୟା ।
ଭାଟି—ଗ୍ରା. ବି. (ସଂ-ଭାଣ୍ଡୀ) ବଡ଼ଚୁଲ୍ଲୀ, ମଦ୍ୟ ପ୍ରସ୍ତୁତ କରିବାର ବଡ଼ ହାଣ୍ଡି, ମଦ ଚୁଆଇ କରିବାର ଯନ୍ତ୍ର, ଧୋବା ଯେଉଁ ବଡ଼ ହାଣ୍ଡିରେ ଲୁଗା ସିଝାଏ, ଇଟା ପୋଡ଼ିବା ଚୁଲ୍ଲି, ଗେଙ୍ଗୁଟି ପୋଡ଼ି ଚୂନ ତିଆରି କରିବା ଚୁଲ୍ଲି, ପୋଡ଼ା ଯାଉଥିବା ଇଟାର ଗଦା, ଯେଉଁ ଘରେ ମଦ ତିଆରି ହୁଏ, ମଦଖଟି ।
ଭାଟିଆ—ଗ୍ରା. ବି. ଗୁଜରାଟବାସୀ ବୈଶ୍ୟ ବଣିକ, କଚ୍ଛ ଓ କାଠିଆବାଡ଼ର ଅଧି-ବାସୀ ଭାଟିଆମାନଙ୍କ କଥିତ ହିନ୍ଦୁଭାଷା, କଚ୍ଛି ଭାଷାର ରୂପାନ୍ତରିତ ଉପଭାଷା-ବିଶେଷ, ଭାଟିର ଭାରପ୍ରାପ୍ତ ବ୍ୟକ୍ତି ।
ଭାଟିଆବେଣ—ଗ୍ରା. ବି. ବଲ୍ଲଭାଚାର୍ଯ୍ୟ ପ୍ରବର୍ତ୍ତିତ ଧର୍ମସମ୍ପ୍ରଦାୟବିଶେଷ ।
ଭାଟିଆରି(ରୀ)—ଗ୍ରା. ବି. ଅନ୍ନବିକ୍ରେତା, ମଦବିକ୍ରେତା, ଯେ ଗୁଡ଼ଲଆଦିରୁ ମଦ ତିଆରି କରେ ।
ଭାଟିଆରି—ବି(ସଂ-ଭର୍ତ୍ତୃଦାରିକା)ଗୀତର ରାଗିଣୀବିଶେଷ ।
ଭାଟିବା—ଗ୍ରା. କ୍ରି, (ଜୁଆର)କମିବା ।
ଭାଟୁଇ—ଗ୍ରା. ବି. (ସଂ-ବର୍ତ୍ତିକ) ବତର-ଚଢ଼େଇ । [ ଭଗିନୀପତି ।
ଭାଟୋ—ପ୍ରା.(ସମ୍ବ)ଗ୍ରା.ପୁଂ.ବି.ଭଣୋଇ,
ଭାଡ଼ି—ଗ୍ରା. ବି. ( ସଂ-ବଣ୍ଟଙ୍କ ) କାଷ୍ଠାଦି ରଖିବାର ମଞ୍ଚା, କାଠ ବାଉଁଶଆଦିରେ ପ୍ରସ୍ତୁତ ମଞ୍ଚା,ମୁଢ଼ି ଲିଆଆଦି ଭାଜିବାର ଏକ ଖେପ ବା ଥର, ଦାନ୍ତମାନଙ୍କର ଏକ ପୂର୍ଣ୍ଣ ପଂକ୍ତି ।
ଭାଡ଼ୁଭାଡ଼ୁ—ଗ୍ରା. ଅବ୍ୟ. ଭଡ଼୍‌ଭଡ଼୍, କୌଣସି ଟାଣ ପଦାର୍ଥ ଚୋବାଇବାର ଶବ୍ଦ, କୁକ୍କୁର ଛେଳିଆଦି କାନକୁ ପିଟିବାର ଶବ୍ଦ । [ ଘର ।
ଭାଣ୍ଡ୍—ଗ୍ରା. ବି. ପାକଶାଳା, ରୋଷେଇ
ଭାଣ—ପୁଂ.ବି.(ଭଣ+ଅଧି+ଅ)କପଟ, ଛଳ, ଜ୍ଞାନ, ବୋଧ, ପ୍ରସ୍ତାବ, ନାଟ-କାଦି ଦଶରୂପକାନ୍ତର୍ଗତ ରୂପକବିଶେଷ
ଭାଣକ—ପୁଂ. ବି. (ଭାଣ+କ) କପଟ, ଛଳ, ଜ୍ଞାନ, ବୋଧ ।
ଭାଣିକା—ସ୍ତ୍ରୀ. ବି. ଭାଣ, ଏକ ଅଙ୍କରେ ସମାପ୍ତ ହାସ୍ୟରସପ୍ରଧାନ ନାଟକ ।
ଭାଣିଜୀ—ସ୍ତ୍ରୀ. ବି. ( ଭାଗିନେୟୀଶବ୍ଦଜ) ଭଗିନୀ କନ୍ୟା, ଭଉଣୀର ଝିଅ ।
ଭାଣିଜୀଜେଇଁ—ଗ୍ରା.ପୁଂ. ବି. ଭାଣିଜୀର ସ୍ୱାମୀ ।
ଭାଣ୍ଡ—ପ୍ରା. (ବାଲେ)ବି. କଇଁବେଣ୍ଟ, କଇଁଫୁଲର ବୀଜକୋଷ ।
ଭାଣ୍ଡା—ପ୍ରା. (ଗଞ୍ଜାମ) ବି. ଚିନାପ୍ରଭୃତିର ସ୍ନାନ ପାତ୍ର, (ପ୍ରା.ସମ୍ବ,ବ) ବାଇଗଣ ।

ଭଣ୍ଡ୍—ପ୍ରା: (ସମ୍ବ)ବିଂ. ଅଶ୍ଳୀଳ ।
ଭାଣ୍ଡ—କ୍ଳୀ. ବି. (ଭଣ୍+କ.ଡ଼) ପାତ୍ର; କୋଷ, ହାଣ୍ଡି,ବାଇଦ, ଢୋଲ,ଆନଦ୍ଧ ବାଦ୍ୟ,(ଭନ୍ଦ+କ.ଅ) ମୂଳଧନ, ପୁଞ୍ଜି, ଗଚ୍ଛିତ ଧନ, ନାପିତର ଅସ୍ତ୍ରାଧାର, ଭଣ୍ଡାରର ଖୁରମୁଠି, ଦେହ, (ଭା+କ.ଅଣ୍ଡ) ଅଳଙ୍କାର, ଘୋଡ଼ାର ସାଜ, ଅଶ୍ୱଭୂଷଣ, ନଦୀର ଶଯ୍ୟା,(ଭଣ୍ଡ + ଅ) ଭାଣ୍ଡପଣିଆ, (ଗ୍ରା.ବିଂ.ସଂ-ଭଣ୍ଡ) ପ୍ରତାରକ, ଶଠ, ନିର୍ଲଜ୍ଜ, ବିଦୂଷକ, ପଣ୍ଡ, ନିଷ୍ଫଳ,(ଗ୍ରା.ବି)ଠକ, ବିଦୂଷକ,ଅଶ୍ଳୀଳଭାଷୀ ବ୍ୟକ୍ତି, ଶରବନ୍ଧା ।
ଭାଣ୍ଡକ—ବି. କ୍ଷୁଦ୍ର ପାତ୍ରବିଶେଷ, ଛୋଟ ଛୋଟ ପାତ୍ର ।
ଭାଣ୍ଡକଥା—ଗ୍ରା. ବି. ଅଶ୍ଳୀଳକଥା, ନିର୍ଲଜ୍ଜ କଥା, ନିଷ୍ଫଳ ବିଷୟ ।
ଭାଣ୍ଡଗୋପକ—ପୁଂ. ବି. ବୌଦ୍ଧମାନଙ୍କର ଭଣ୍ଡାର ରକ୍ଷକ ।
ଭାଣ୍ଡପତି—ପୁଂ.ବି.ବଣିକ୍,ବ୍ୟବସାୟୀ ।
ଭାଣ୍ଡପୁଟ—ପୁଂ. ବି. (ଭାଣ୍ଡ+ପୁଟ+ +ଅ) ନାପିତ, ଭଣ୍ଡାରି ।
ଭାଣ୍ଡପୁଷ୍ପ—ପୁଂ. ବି. ସର୍ପବିଶେଷ ।
ଭାଣ୍ଡପ୍ରତିଭାଣ୍ଡକ—କ୍ଳୀ. ବି. ବିନିମୟ, ବଦଳ, ଜିନିଷ ଦେଇ ଜିନିଷ ଗ୍ରହଣ, ଲୀଳାବତୀକ୍ତ ଅଙ୍କବିଶେଷ ।
ଭାଣ୍ଡଭାଜକ—ପୁଂ. ବି. ବୌଦ୍ଧ ମଠମାନଙ୍କରେ ବିଭାଗକାରୀ ।
ଭାଣ୍ଡଲ—ପୁଂ. ବିଂ. ଭାଣ୍ଡଗ୍ରାହକ ।
ଭାଣ୍ଡଶାଳା—ସ୍ତ୍ରୀ.ବି.ଭାଣ୍ଡାଗାର,ଭଣ୍ଡାର
ଭାଣ୍ଡା—ଗ୍ରା.ବି.ଆପଦ, ଜୀବନର ଘାଟୀ ।
ଭାଣ୍ଡାଗାର—ପୁଂ.ବି.(ଭାଣ୍ଡ+ଆଗାର) ଧନାଗାର, ଭଣ୍ଡାର, ସରଘର, ପୁଞ୍ଜି ।
ଭାଣ୍ଡାଗାରିକ—ପୁଂ. ବି. (ଭାଣ୍ଡାଗାର+ଇକ)ଭାଣ୍ଡାରୀ, ଭଣ୍ଡାରରକ୍ଷକ,କୋଷାଧ୍ୟକ୍ଷ ।
ଭାଣ୍ଡାର—କ୍ଳୀ. ବି. ଭାଣ୍ଡାଗାର ଦେଖ ।
ଭାଣ୍ଡାରିକ—ପୁଂ. ବି. (ଭାଣ୍ଡାର+ଇକ) ଭାଣ୍ଡାଗାରିକ ଦେଖ ।
ଭାଣ୍ଡାରୀ—ପୁଂ.ବି.ଭାଣ୍ଡାଗାରିକ ଦେଖ ।
ଭାଣ୍ଡି—ପୁଂ.ବି. (ଭାଣ୍ଡ + ଇ) ନାପିତର କ୍ଷୁରାଦି ରଖିବା ଆଧାର, କ୍ଷୁରମୁଠି ।
ଭାଣ୍ଡିକ—ପୁଂ.ବି(ଭାଣ୍ଡ+ଇକ)ଭଣ୍ଡାରି, ନାପିତ, ଗାୟକ ।
ଭାଣ୍ଡିନୀ—ସ୍ତ୍ରୀ. ବି. ପେଟିକା, ପେଡ଼ି, ମଞ୍ଜୁଷା, ବାକ୍ସ ।
ଭାଣ୍ଡିର—ଗ୍ରା.ବି.ବେଲଗଛ, ବିଲ୍ୱବୃକ୍ଷ ।
ଭାଣ୍ଡିଲ—ପୁଂ. ବି. ନାପିତ, ଭଣ୍ଡାରି ।
ଭାଣ୍ଡିଲାୟନ—ପୁଂ. ବି. ସ୍ୱନାମଖ୍ୟାତ ଋଷିବିଶେଷ, ନାପିତବଂଶ ପ୍ରବର୍ତ୍ତକ ଋଷିବିଶେଷ ।
ଭାଣ୍ଡିବାହ—ପୁଂ.ବି. (ଭାଣ୍ଡି+ବହ୍+ଅ) ନାପିତ, କ୍ଷୌରକାର ।
ଭାଣ୍ଡିଶାଳା—ସ୍ତ୍ରୀ.ବି.କ୍ଷୌରଗୃହ, କ୍ଷୌର କରିବାର ଘର ।
ଭାଣ୍ଡୀର—ପୁଂ.ବି. (ଭଣ୍ଡ+ଈର+ଅ) ବଟବୃକ୍ଷ,କ୍ଷୁପବିଶେଷ,ବ୍ରଜମଲ୍ଲୀ,ବେଲଗଛ ।
ଭାଣ୍ଡୀରଲତିକା—ସ୍ତ୍ରୀ. ବି. ମଞ୍ଜିଷ୍ଠା ।
ଭାଣ୍ଡୀରବନ—କ୍ଳୀ, ବି. ବୃନ୍ଦାବନସ୍ଥ ଚୌରାଶୀବନାନ୍ତର୍ଗତ ଗୋଟିଏ ବନ ।
ଭାଣ୍ଡୁଆ—ଗ୍ରା.ପୁଂ.ବିଂ. (ସଂ-ଭଣ୍ଡ) ଶଠ, ଭଣ୍ଡ, ନିର୍ଲଜ୍ଜ, ଭାଡ଼ୁଆ, ଅଝଟିଆ, ଅଶ୍ଳୀଳଭାଷୀ ବ୍ୟକ୍ତି, (ସ୍ତ୍ରୀ) ଭାଣ୍ଡେଇ ।
ଭାଣ୍ଡୁଇ(ଭାଣ୍ଡୋଇ)—ଗ୍ରା.ପୁଂ.ବିଂ.ଭାଣ୍ଡୁଆ ଦେଖ, (ବି) ଅଝଟ ପରିହାସାଦି ।
ଭାତ—ପ୍ରା.(ସମ୍ବ)ବି. ଭାତ ।
ଭାତ୍‌ଖୁଆ—ପ୍ରା. (ସମ୍ବ) ବି. ଅନ୍ନପ୍ରାଶନ ଉତ୍ସବ ।
ଭାତ—କ୍ଳୀ. ବି. ( ଭା+ତ ) ସକାଳ, ପ୍ରଭାତ,ଦୀପ୍ତି, (ବି ) ଦୀପ୍ତିଯୁକ୍ତ,ପ୍ରକାଶିତ, ଦୀପ୍ତ, (ଗ୍ରା.ବି) ଅନ୍ନ, ସିଦ୍ଧ ତଣ୍ଡୁଳ, ଖାଦ୍ୟ, ଦାନା ।
ଭାତବର୍ତ୍ତନ—ଗ୍ରା.ବି. ଭୃତ୍ୟକୁ ଦିଆଯିବା ବେତନ, ଗୃହକରର ମୂଲ ବା ଦରମା ।
ଭାତରେ ଧୂଳିଦେବା—ଗ୍ରା.କ୍ରି. କୌଣସି ବ୍ୟକ୍ତିକୁ ପ୍ରହାରାଦି ଦ୍ୱାରା ଦଣ୍ଡ ନ ଦେଇ ତାହାର ଦାନା ବନ୍ଦ ହେବାର ଉପାୟ କରିବା,ଜୀବିକା କାଢ଼ିନେବା, ଗ୍ରାସାଚ୍ଛାଦନର ଉପାୟ ଉପରେ ବାଧା ଦେବା
ଭାତରେ ମାରିବା—ଗ୍ରା. କ୍ରି. ଭାତରେ ଧୂଳିଦେବା ଦେଖ ।
ଭାତଲୁଗା—ଗ୍ରା. ବି. ଅନ୍ନ ଓ ବସ୍ତ୍ର, ଖୋରାକପୋଷାକ ।
ଭାତା—ଗ୍ରା.ବି.(ସଂ-ଭସ୍ତ୍ରା)ବାୟୁ ସାହାଯ୍ୟରେ ନିଆଁ ଜାଳିବାପାଇଁ ବ୍ୟବହୃତ ଚମ ମୁଣା,ଭାତି, ଯନ୍ତ୍ର ।
ଭାତି—ସ୍ତ୍ରୀ.ବି. (ଭା+ତି)ଶୋଭା,ଦୀପ୍ତି, (ଗ୍ରା.ବି) ଭାତା ଦେଖ ।
ଭାତିଆ—ଗ୍ରା. ବି. ଦରମା, ଖୋରାକି, ଗୃହକରର ମାସିକ ପତ୍ରଧାନ, ଖାଦ୍ୟସାମଗ୍ରୀ, ରସ୍ତଖର୍ଚ୍ଚା ।
ଭାତୁ—ପୁଂ.ବି.(ଭା + ତୁ) ସୂର୍ଯ୍ୟ,ଦୀପ୍ତି ।
ଭାତୁଆ—ଗ୍ରା. ବି. ପରଭାତରେ ଯେ ଜୀବିକା ନିର୍ବାହ କରେ, ପରାନ୍ନପାଳିତ ବ୍ୟକ୍ତି, ଗୃହକର, ପିଣ୍ଡାଦ, ଅନ୍ନଦାସ, ଯେ ନିଜ ପେଟକୁ ଭାତମୁଠେ ପାଇଲେ ଅନ୍ୟ ଜୀବିକାଆଦିକୁ ପାଶୋରିପକାଏ ।
ଭାତୁଆଣି—ଗ୍ରା. ବି. ଫୁଟିଆଣି, ଭାତ ରନ୍ଧା ହେବା ପାଇଁ ପାକପାତ୍ରରେ ଫୁଟୁଥିବା ଜଳ ।
ଭାତୁଡ଼ି—ଗ୍ରା. ବି. ଦେହରେ ଜନ୍ମିବା କ୍ଷୁଦ୍ର ମାଂସପିଣ୍ଡ, ମାଂସକୀଳ ।
ଭାଦ୍ର—ପୁଂ.ବି. (ଭାଦ୍ର + ଅ + ଈ + ଅ) ଭାଦ୍ରବ ମାସ, ଭେଦୁଅମାସ ।
ଭାଦ୍ରଦାରବ—ବିଂ. ଭଦ୍ରଦାରୁ ସମ୍ବନ୍ଧୀୟ
ଭାଦ୍ରପଦ—ବି. ଭାଦ୍ରମାସ,ପୂର୍ବଭାଦ୍ରପଦ ଓ ଉତ୍ତରଭାଦ୍ରପଦ ନକ୍ଷତ୍ରଦ୍ୱୟ ।
ଭାଦ୍ରପଦା—ସ୍ତ୍ରୀ. ବି. ଭାଦ୍ରପଦ ଦେଖ ।
ଭାଦ୍ରମାତୁର—ପୁଂ.ବି. (ଭାଦ୍ର+ମାତୃ+ଅ) ସତୀପୁତ୍ର, ସାଧ୍ୱୀ ସ୍ତ୍ରୀର ପୁତ୍ର ।
ଭାଦ୍ରମୌଞ୍ଜ—ବି. ଭଦ୍ରମୁଞ୍ଜ ନିର୍ମିତ ମେଖଳା ।
ଭାଦ୍ରବ—ଗ୍ରା.ବି.ଭାଦ୍ରମାସ,ଭୋଦୁଅ ମାସ
ଭାଦ୍ରବିକ—ପୁଂ. ବି. ଚୀନଧାନ୍ୟ,ଚୀନାଧାନ ।
ଭାନ—କ୍ଳୀ. ବି.(ଭା+ଭା.ଅନ)ପ୍ରକାଶ,

ଦୀପ୍ତି, ଜ୍ଞାନ, ଶୋଭା, ପ୍ରତାପ, (ଗ୍ରା.ବ) ଛଳ, ବାହାନା, (ବି°) ଅସାର, ମନ୍ଦ ।

ଭାନବୀୟ—ବି°. ଭାନୁସମ୍ବନ୍ଧୀୟ, (ବି) ଭାନୁକରଣ । [ ଆଲୋକ ।

ଭାନିକର—ପୁଂ. ବି. କିରଣ ସମୂହ,

ଭାନୁ—ପୁଂ.ବି. (ଭା + ନୁ) ସୂର୍ଯ୍ୟ,ବିଷ୍ଣୁ, ପ୍ରଧାଙ୍କର ପୁତ୍ର, ଅଙ୍ଗିରସ୍ପୁତ୍ରତପସର ପୁତ୍ରଭେଦ,ଦୀପ୍ତି,କାନ୍ତି,କିରଣ,ଯାଦବବିଶେଷ, ଦ୍ୱାଦଶସଂଖ୍ୟା, ଶିବ, ଅରଖ ଗଛ, ପ୍ରଭୁ, ରାଜା,ଗନ୍ଧର୍ବଭେଦ,ଉତ୍ତର ମନ୍ୱନ୍ତର ଦେବତା ଭେଦ, ( ସ୍ତ୍ରୀ.ବ ) ଦକ୍ଷକନ୍ୟାବିଶେଷ, ଧର୍ମଙ୍କ ପତ୍ନୀ ।

ଭାନୁଉଦିତ—ଗ୍ରା. ବି. ସୁଗ୍ରୀବ, ସୂର୍ଯ୍ୟୋଦୟ ।

ଭାନୁକମ୍ପ—କ୍ଲୀ. ବି. ସୂର୍ଯ୍ୟଙ୍କର କମ୍ପନ ରୂପ ଦୁର୍ଲକ୍ଷଣବିଶେଷ ।

ଭାନୁକେଶର—ପୁଂ. ବି. ସୂର୍ଯ୍ୟ ।

ଭାନୁଜ—ପୁଂ. ବି. (ଭାନୁ+ଜନ୍+ଡ଼) ସୂର୍ଯ୍ୟପୁତ୍ର, ଯମ, ଶନି, ସୁଗ୍ରୀବ ।

ଭାନୁଜା—ସ୍ତ୍ରୀ.ବି. (ଭାନୁଜ+ଆ)ସୂର୍ଯ୍ୟସୁତା, ଯମୁନା । [ ରବିବାର ।

ଭାନୁଦିନ—କ୍ଲୀ. ବି. ସୂର୍ଯ୍ୟଙ୍କର ଦିନ,

ଭାନୁଦେବ—ପୁଂ. ବି. ସୂର୍ଯ୍ୟ, ଓଡ଼ିଶାର ଜଣେ ଖ୍ୟାତନାମା ନରପତି ।

ଭାନୁପତ୍ରୀ—ବି. (ରୂ.କ.ଧା) ରଶ୍ମିଶର, ରଶ୍ମିରୂପକ ଶର ।

ଭାନୁପାକ—ପୁଂ. ବି. ସୂର୍ଯ୍ୟକିରଣରେ ଲୌହର ପାକବିଶେଷ ।

ଭାନୁଫଳା—ସ୍ତ୍ରୀ.ବି.(ଭାନୁ+ଫଳା)କଦଳୀ

ଭାନୁମତୀ—ସ୍ତ୍ରୀ. ବି. (ଭାନୁ + ମତ୍ + ଈ) ବିକ୍ରମାଦିତ୍ୟଙ୍କର ସ୍ତ୍ରୀ,ଭୋଜରାଜାଙ୍କର ଝିଅ, ଭାନୁନାମକ ଯାଦବଙ୍କ କନ୍ୟା, ସହଦେବଙ୍କର ସ୍ତ୍ରୀ, (ସ୍ତ୍ରୀ.ବି°) କିରଣମୟୀ, ଅତି ସୁନ୍ଦରୀ (ସ୍ତ୍ରୀ) ।

ଭାନୁମୟ—ବି°. (ଭାନୁ+ମୟଟ୍)ରଶ୍ମିସମ୍ବଳିତ, ଆଲୋକମାଳା ସମାକୀର୍ଣ୍ଣ ।

ଭାନୁମାନ୍—ପୁଂ. ବି. ( ଭାନୁ+ମତ୍ ) ସୂର୍ଯ୍ୟ,କଳିଙ୍ଗଦେଶର ରାଜା,ଭାର୍ଗଙ୍କର ନାମାନ୍ତର, କୃଷ୍ଣପୁତ୍ର ଭେଦ, ( ବି° ) ଦୀପ୍ତିଯୁକ୍ତ, କାନ୍ତିମାନ୍, ଦୀପ୍ତିମାନ୍ ।

ଭାନୁବନ—କ୍ଲୀ. ବି. ଭାର୍ଗବ ନାମକ ଅରଣ୍ୟ ।

ଭାନୁବନ୍ତୀ—ଗ୍ରା. ବି. ଯାଦୁବିଦ୍ୟାବିଶେଷ, (ଲ.ଅର୍ଥ) ସୁନ୍ଦରୀ ସ୍ତ୍ରୀ । [ଙ୍କର ଦିନ ।

ଭାନୁବାର—ପୁଂ. ବି. ରବିବାର. ସୂର୍ଯ୍ୟ-

ଭାନୁସୁତା—ସ୍ତ୍ରୀ. ବି. ( ଭାନୁ + ସୁତା ) ସୂର୍ଯ୍ୟଙ୍କର କନ୍ୟା, ଯମୁନା ।

ଭାନୁସେନ—ପୁଂ. ବି. କର୍ଣ୍ଣଙ୍କର ପୁତ୍ର ।

ଭାନେମି—ପୁଂ. ବି. ( ଭା + ନେମି ) ସୂର୍ଯ୍ୟ, ଦିବାକର ।

ଭାନ୍ତ—ପୁଂ. ବି. (ଭା+ଅନ୍ତ) ଶୁକ୍ଳ ଓ କୃଷ୍ଣପକ୍ଷ ମଧ୍ୟରେ କାନ୍ତିର ଉପଚୟ ଓ ଅପଚୟ ଯୁକ୍ତ ଚନ୍ଦ୍ର, ନକ୍ଷତ୍ର ଓ ରାଶିର ଅନ୍ତ ।

ଭାନ୍ତ—ଗ୍ରା. ବି. କାନ୍ତି, ଦୀପ୍ତି, ପ୍ରକାର, ଢ଼ପ, ଢ଼ଙ୍ଗ ।

ଭାପ—ଗ୍ରା. ବି. ବାଷ୍ପ, ବାମ୍ଫ ।

ଭାପିବା—ଗ୍ରା. କ୍ରି. ବାମ୍ଫିବା, ବାଷ୍ପାୟମାନ ହେବା ।

ଭାମ—ପୁଂ.ବି. (ଭାମ୍+ଭା.ଅ)କୋପ କ୍ରୋଧ,( ଭା+କ.ମ ) ଭାନୁ, ସୂର୍ଯ୍ୟକିରଣ, ଦୀପ୍ତି, ଭଣେଇ, ଭଗିନୀପତି, କଟସଜାତୀୟ ଜନ୍ତୁ,ଓଧଜାତୀୟ ଜନ୍ତୁ ।

ଭାମକ—ପୁଂ ବି. (ଭାମ୍+କ) ଭଗିନୀ ପତି, ଭଣେଇଁ ।

ଭାମଣ୍ଡଳ—କ୍ଲୀ. ବି. ( ଭା+ମଣ୍ଡଳ ) କିରଣମଣ୍ଡଳ, ରଶ୍ମିମେଖଳା ।

ଭାମନ—ପୁଂ. ବି. ( ଭାମ୍+କ.ଅନ ) କ୍ରୋଧୀ ପୁରୁଷ, (ସ୍ତ୍ରୀ)ଭାମନା ।

ଭାମନୀ—ପୁଂ. ବି. (ଭାମ୍ + ନୀ + କ୍ୱିପ୍) ପରମେଶ୍ୱର ।

ଭାମା—ସ୍ତ୍ରୀ. ବି. ( ଭାମ୍+ଅ+ଆ ) କୋପନା ସ୍ତ୍ରୀ, ଚଣ୍ଡୀ ସ୍ତ୍ରୀ,ନାରୀ, ସତ୍ୟଭାମା, ଶ୍ରୀକୃଷ୍ଣଙ୍କ ପତ୍ନୀବିଶେଷ ।

ଭାମିନୀ—ସ୍ତ୍ରୀ. ବି. (ଭାମ୍+ଇନ୍ + ଈ) ଅତିକୋପନା ସ୍ତ୍ରୀ, ସ୍ତ୍ରୀ, ନାରୀ, (ସ୍ତ୍ରୀ) ଭାମୀର ସ୍ତ୍ରୀଲିଙ୍ଗ ।

ଭାମୀ—ପୁଂ.ବି°. (ଭାମ୍+ଇନ୍)କ୍ରୋଧୀ, ତେଜସ୍ୱୀ, (ସ୍ତ୍ରୀ) ଭାମିନୀ ।

ଭାୟା—ଗ୍ରା. ବି. (ଭ୍ରାତୃଶବ୍ଦଜ) ଭାଇ, ପଥମଧ୍ୟରେ ମିଳିବା ସଙ୍ଗୀ ।

ଭାର—ପୁଂ. ବି. (ଭୃ+ଅ) ପରିମାଣବିଶେଷ, ବିଷ୍ଣୁ, ଗୁରୁତ୍ୱ, ଧାବଧ, ରାଶି, ସମୂହ, ଦାୟିତ୍ୱ,ଭରଣପୋଷଣ,ତତ୍ତ୍ୱାବଧାନ, କଟକଦେଶୀୟ ଜାତିବିଶେଷ, (ଗ୍ରା.ବି) ନିର୍ଭରତା, ବାହାଙ୍ଗିର ଦୁଇ ପାଖରେ ଝୁଲିହୋଇ ଏକସଙ୍ଗେ ବୁହାଯିବା ଦୁଇଟି ବୋଝ,ଶିକା ଓ ବାହୁଙ୍ଗି, ଜଣେଲୋକ ବାହାଙ୍ଗିର ଦୁଇପାଖରେ ବୋହିପାରିବାର ପରିମାଣ,ବନ୍ଧୁଘରକୁ ପଠାଯିବା ଉପଢ଼ୌକନ,(ବି°) ଭାରି, କଷ୍ଟକର, ଶକ୍ତ, କଠିନ ।

ଭାରଇମଲ୍ଲ—ଗ୍ରା. ବି°. ଯେଉଁ ବ୍ୟକ୍ତି ଖୁବ୍ ଭାରିଦ୍ରବ୍ୟକୁ ଭୂମିରୁ ଉଠାଇ-ପାରେ, ପ୍ରଧାନ ବୀର ।

ଭାରକ—କ୍ଲୀ.ବି.ପରିମାଣବିଶେଷ,ଭାର ।

ଭାରକୀ—ସ୍ତ୍ରୀ. ବି. ପୋଷଣକର୍ତ୍ତ୍ରୀ ସ୍ତ୍ରୀ ।

ଭାରକୁଣ୍ଡା—ଗ୍ରା. ପୁଂ. ବି°. କ୍ରୋଧ ବା ଅଭିମାନ ଯୋଗୁଁ ବିରସ(ମୁଖ) ।

ଭାରକେନ୍ଦ୍ର—ବି. ( ୬ତତ୍ପୁ ) ପଦାର୍ଥର ମଧ୍ୟସ୍ଥ ନିର୍ଦ୍ଦିଷ୍ଟ ବିନ୍ଦୁ ।

ଭାରଗ୍ରସ୍ତ—ପୁଂ. ବି°. (୩ତତ୍ପୁ) ଯାହା ଉପରେ ଭାର ଲଦା ହୋଇଥାଏ, ଦାୟିତ୍ୱଗ୍ରସ୍ତ ।

ଭାରଗ୍ରହ—ପୁଂ. ବି°. (ଭାର + ଗ୍ରହ୍ + କ.ଅ) ଯେ ଭାର ବା ଦାୟିତ୍ୱ ଗ୍ରହଣ କରେ, (ସ୍ତ୍ରୀ) ଭାରଗ୍ରହା ।

ଭାରଗ୍ରାହୀ—ପୁଂ.ବି°.(ଭାରଗ୍ରହ୍ +ଇନ୍) ଭାରଗ୍ରହଣ ଦେଖ,(ସ୍ତ୍ରୀ) ଭାରଗ୍ରାହିଣୀ ।

ଭାରଣ୍ଡ—ପୁଂ. ବି. ଉତ୍ତର କୁରୁଦେଶର ଶକୁନ ପକ୍ଷୀ, ଗଣ୍ଡଭେରୁଣ୍ଡ ଚଢ଼େଇ ।

ଭାରତ—ବି. ଗ୍ରନ୍ଥଭେଦ, ବେଦବ୍ୟାସ ପ୍ରଣୀତ ଲକ୍ଷଶ୍ଳୋକାତ୍ମକ ମହାଭାରତ ନାମକ ଇତିହାସ ଗ୍ରନ୍ଥ, ଜମ୍ବୁଦ୍ୱୀପ, ନବବର୍ଷାନ୍ତର୍ଗତ ବର୍ଷବିଶେଷ,ଭାରତବର୍ଷ, ନଟ, ଅଗ୍ନି,ଭରତରାଜାଙ୍କ ପୁତ୍ର, ଭରତଙ୍କ ସଙ୍କଳିତ ସଙ୍ଗୀତ ବାଦ୍ୟ ଓ

ନାଟ୍ୟବିଷୟକ ଶାସ୍ତ୍ର, (ବି°) ଭରତବଂଶୀୟ ।

ଭାରତଖଣ୍ଡ—ବି. ଭାରତବର୍ଷ ।

ଭାରତଗୀତିକା—ବି. (ଆଧୁନିକ)ଜାତୀୟ ଭାବୋଦ୍ଦୀପକ ଭାରତବର୍ଷ ସମ୍ବନ୍ଧୀୟ ସଙ୍ଗୀତ ।

ଭାରତଗୌରବ—ବି. ଭାରତବର୍ଷର ଗୌରବ ବା ମର୍ଯ୍ୟାଦା ବୃଦ୍ଧିକାରୀ ।

ଭାରତଚନ୍ଦ୍ର—ବି.ଭାରତଗୌରବ ଦେଖ ।

ଭାରତପର୍ବ—ବି. ମହାଭାରତ ଗ୍ରନ୍ଥର ୧୮ ଖଣ୍ଡ ମଧ୍ୟରୁ କୌଣସି ଖଣ୍ଡ, (ଗ୍ରା. ବି°) ଭୀଷଣକାଣ୍ଡ, ମହା ଗଣ୍ଡଗୋଳ ।

ଭାରତମଣ୍ଡଳ—ବି. ଜମ୍ବୁଦ୍ୱୀପାନ୍ତର୍ଗତ ଭାରତାଖ୍ୟ ଦେଶ, ଭାରତବର୍ଷ ।

ଭାରତମହାସାଗର—ବି. ଭାରତର ଦକ୍ଷିଣସ୍ଥ ମହାସମୁଦ୍ର ।

ଭାରତମାତା—ସ୍ତ୍ରୀ. ବି. ଭାରତବାସୀଙ୍କ ଜନନୀରୂପ ଜନ୍ମଭୂମି ।

ଭାରତଯୁଦ୍ଧ—ବି.କୁରୁପାଣ୍ଡବଙ୍କ ମଧ୍ୟରେ ଅଷ୍ଟାଦଶ ଦିବସବ୍ୟାପୀ ହୋଇଥିବା ମହାସମର ।

ଭାରତରତ୍ନ—ବି. (୬ତତ୍) ଭାରତବର୍ଷର ମଣିସ୍ୱରୂପ, ଭାରତବର୍ଷର ଶ୍ରେଷ୍ଠଲୋକ । [ ଗଣ ।

ଭାରତରମଣୀ—ଗ୍ରା.ବି. ଭାରତୀୟା ସ୍ତ୍ରୀ-

ଭାରତଲୀଳା—ଗ୍ରା. ବି. ମହାଭାରତ ବର୍ଣ୍ଣିତ କୌଣସି ବିଷୟକୁ ଅବଲମ୍ବନ କରି କରାଯିବା ଯାତ୍ରା ଓ ନାଟ ।

ଭାରତବର୍ଷ—ବି. ଜମ୍ବୁଦ୍ୱୀପ ବା ଏସିଆ ମହାଦେଶର ଅନ୍ତର୍ଗତ ଗୋଟିଏ ଦେଶ, ଭାରତମହାଦେଶ ।

ଭାରତବର୍ଷୀୟ—ବି°. ଭାରତବର୍ଷ ସମ୍ବନ୍ଧୀୟ, ଭାରତୀୟ, ଭାରତବର୍ଷ ଜାତ ।

ଭାରତବାସୀ—ପୁଂ. ବି ଓ ବି°. ଭାରତରେ ବାସକରୁଥିବା, ଭାରତବର୍ଷର ବାସିନ୍ଦା, (ସ୍ତ୍ରୀ) ଭାରତବାସିନୀ ।

ଭାରତି—ଗ୍ରା. ବି. ଶରମୁଣ୍ଡା, ତୂଣୀର ।

ଭାରତିଆ—ଗ୍ରା. ବି. ଘର ଖୁଣ୍ଟଉପରେ ଦିଆଯିବା ବଡ଼ କଡ଼କାଠ, ଯାହା ଉପରେ ଆଡ଼ବାଗ ଗୋଟି ଗୋଟି କଡ଼ ଲଦା ହୁଏ ।

ଭାରତୀ—ସ୍ତ୍ରୀ. ବି. (ଭରତ+ଅ+ଈ) କଥା, ବଚନ, ସରସ୍ୱତୀ, ପକ୍ଷୀଭେଦ, କାବ୍ୟ ରଚନାର ବୃତ୍ତିଭେଦ,ସନ୍ନ୍ୟାସୀ ମାନଙ୍କର ଉପାଧିବିଶେଷ, ଭରଦିଆ ପକ୍ଷୀ, (ବି°) ଭରତବଂଶୀୟା, ଭରତ-ସମ୍ବନ୍ଧୀୟା ।

ଭାରତୀୟ—ବି°. ( ଭାରତ + ଈୟ ) ଭାରତବର୍ଷ ସମ୍ବନ୍ଧୀୟ, ଭାରତବର୍ଷୀୟ ଭାରତବାସୀ, ଭାରତଜାତ, ( ସ୍ତ୍ରୀ ) ଭାରତୀୟା ।

ଭାରତେଶ୍ୱର—ପୁଂ. ବି. ଭାରତବର୍ଷର ଅଧୀଶ୍ୱର, ସମ୍ରାଟ୍, ରାଜା ଭରତ ।

ଭାରଥ—ଗ୍ରା.ବି. ମହାଭାରତ, ଭାରତବର୍ଷ ।

ଭାରଥି(ଥୋ)ର—ଗ୍ରା. ବି. ବନ୍ଧୁଘରକୁ ପଠାଯିବା ଭାରବୋଝ ଆଦି ଉପଢୌକନ ।

ଭାରଦଣ୍ଡ—ବି. ବାହୁଙ୍ଗି ।

ଭାରଦା—ଗ୍ରା. ବି. ଯେଉଁଲୋକ ନିଜ ସ୍ତ୍ରୀକୁ ପରପାଖକୁ ପଠାଏ, ଭଡ଼ୁଆ, (ଗ୍ରା.ବି°) ନିର୍ଲଜ୍ଜ ।

ଭାରଦ୍ୱାଜ—ପୁଂ. ବି. (ଭରଦ୍ୱାଜ+ଅ) ଭରଦିଆ ପକ୍ଷୀ, ବ୍ୟାଘ୍ରାଟ ପକ୍ଷୀ, ବୃହସ୍ପତିଙ୍କର ପୁତ୍ର, ଦେଶଭେଦ, ଦ୍ରୋଣାଚାର୍ଯ୍ୟ,ଋଷିବିଶେଷ,ଅଗସ୍ତ୍ୟମୁନି,ମଙ୍ଗଳଗ୍ରହ, (କ୍ଲୀ) ଅସ୍ଥି,(ବି°)ଭରଦ୍ୱାଜବଂଶୀୟ

ଭାରଦ୍ୱାଜକ—ବି°. ଭରଦ୍ୱାଜ ସମ୍ବନ୍ଧୀୟ

ଭାରଦ୍ୱାଜୀ—ସ୍ତ୍ରୀ.ବି. ବନକାର୍ପାସୀ,କପାସିଆ ଗଛ, ନଦୀଭେଦ ।

ଭାରନେବା—ଗ୍ରା.କ୍ରି. କୌଣସି ଭାରକୁ ସ୍ଥାନାନ୍ତରକୁ ନେବା,କୌଣସି ଦାୟିତ୍ୱ ଗ୍ରହଣ କରିବା ।

ଭାରଭାର—ଗ୍ରା. ବି°. ବହୁତ, ଅନେକ, (ଗ୍ରା. କ୍ରି. ବି°.) ବହୁପରିମାଣରେ,(ଗ୍ରା. ବି) ଅନେକ ଭାର, ଭାରମାନ ।

ଭାରଭାରୀ—ପୁଂ.ବି°. ଭାରବହନକାରୀ, (ସ୍ତ୍ରୀ) ଭାରଭାରଣୀ ।

ଭାରଭୃତ୍—ବି°. (ଭାର+ଭୃ+କ୍ୱିପ୍) ଭାରଧାରକ,ଯେ ଭାରବହନ କରେ, (ପୁଂ.ବି) ବିଷ୍ଣୁ ।

ଭାରମଦାର—ଗ୍ରା.ବି.କୌଣସି କାର୍ଯ୍ୟର ଦାୟିତ୍ୱ, କୌଣସି କାର୍ଯ୍ୟର ଭାର ଓ ନିର୍ଭର ।

ଭାରମଧ୍ୟ—ବି. ବସ୍ତୁର ଯେଉଁ ସ୍ଥାନରେ ଭାରର ସମତା ହୁଏ ।

ଭାରୟ—ପୁଂ. ବି. ଭାରଦ୍ୱାଜ ପକ୍ଷୀ, ଭାରୁଇ ପକ୍ଷୀ ।

ଭାରଯଷ୍ଟି—ସ୍ତ୍ରୀ. ବି. ଭାରବହନ ଦଣ୍ଡ, ବହଙ୍ଗିକା, ବାହୁଙ୍ଗି । [ ଯୁକ୍ତ ।

ଭାରଯୁକ୍ତ—ବି°. (୩ତତ୍) ଭାରୀ,ଦାୟିତ୍ୱ-

ଭାରବ—କ୍ଲୀ. ବି. (ଭାର+ବା+ଅ) ଧନୁର୍ଗୁଣ ।

ଭାରବାନ୍—ପୁଂ. ବି°. (ଭାର+ବତୁ) ଭାରଯୁକ୍ତ, ଯେ ଭାର ବୋହୁଅଛି ।

ଭାରବାହକ—ପୁଂ. ବି°. ( ଭାର + ବହ୍ + ଅ+କ) ଯେ ଭାର ବହନ କରେ, ଭାରିକ, ଭାରବାହୀ,(ଗ୍ରା.ବି) ବୋଝିଆ, ଭାରୁଆ ।

ଭାରବାହକ—ପୁଂ.ବି°.ଭାରବାହୀ,ଭାର-ବହନକାରୀ, ବୋଝିଆ ।

ଭାରବାହୀ—ପୁଂ. ବି°. (ଭାର + ବହ୍ + ଇନ୍) ଭାରବହନକାରୀ, ବୋଝିଆ, ଭାରୀ, (ସ୍ତ୍ରୀ) ଭାରବାହିନୀ ।

ଭାରବାହୀପଶୁ—ଗ୍ରା.ବି.ଯେଉଁ ପଶୁ ବୋଝ ବୋହିପାରେ,(ଯଥା—ବଳଦ,ଘୋଡ଼ା, ଗଧ ଇତ୍ୟାଦି) ।

ଭାରବି—ପୁଂ. ବି. ଜଣେ ପ୍ରାଚୀନ କବି, କିରାତାର୍ଜୁନୀୟ ନାମକ ମହାକାବ୍ୟ ରଚୟିତା ।

ଭାରସହ—ବି°. (ଭାର+ସହ୍+କ.ଅ) ଗୁରୁ ଭାରବହନ କ୍ଷମ, ଯେ ଭାର ସହି ପାରେ, ଭାରସହନକାରୀ, ଟେମେଡ଼ା ।

ଭାରସାଧନ, (ସାଧୀ)—ପୁଂ. ବି. କଠିନ ବ୍ୟାପାର ସାଧନକାରୀ ।

ଭାରସୁମାରପଦ—ଗ୍ରା. ବି. ଗାରଡ଼ିମନ୍ତ୍ର, ସାପ ବିଷ ଝାଡ଼ିବା ପଦବିଶେଷ ।

ଭାରସୁହ୍ମା—ଗ୍ରା. ବିଂ. ଭାରସହ ଦେଖ ।

ଭାରହର—ପୁଂ. ବିଂ. (ଭାର+ହୃ+କ. ଅ) ଭାରବହ ଦେଖ, ଯେ ପୃଥିବୀର ଭାର ହରଣ କରନ୍ତି (ବି) ବିଷ୍ଣୁ ।

ଭାରହାରକ—ପୁଂ. ବିଂ. ଭାରହରଣକାରୀ, ଭାରବହନକାରୀ ।

ଭାରହାରୀ—ପୁଂ. ବିଂ. (ଭାର+ହୃ କ. ଇନ୍) ଭାରହରଣକାରୀ (ବି) ଭଗବାନ୍, ବିଷ୍ଣୁ ।

ଭାରା—ଗ୍ରା. ବିଂ. (ସଂ-ଭାର) ଭାରୀ, ଗୁରୁ, ଉଚ୍ଚ କୋଠାକାମ କରିବାବେଳେ ରାଜମାନଙ୍କ ବସିବା ଓ ଯିବା ଆସିବା ଓ ଇଟା ପଥରଆଦି ରଖିବା କାଠ ବା ବାଉଁଶରେ ପ୍ରସ୍ତୁତ ମଞ୍ଚା ବା ସିଡ଼ି, ବୋଝ, ଭାର, ଦାୟିତ୍ୱ, ଭରା, ଆଶ୍ରା, (ଗ୍ରା. ବିଂ) ଭାରୀ ।

ଭାରାକ୍ରାନ୍ତ—ପୁଂ. ବିଂ. (୩ତତ୍) ଭାରପୀଡ଼ିତ, (ସ୍ତ୍ରୀ) ଭାରାକ୍ରାନ୍ତା, ଛନ୍ଦୋଭେଦ ।

ଭାରାକାନ୍ତ—ଏକବାର୍ତ୍ତିକ ବୃତ୍ତ ।

ଭାରାକଳମ୍ବକତା(ତ୍ୱ)—ବି. ପଦାର୍ଥର ପରମାଣୁମାନଙ୍କ ମଧ୍ୟରେ ପରସ୍ପର ଆକର୍ଷଣ ।

ଭାରି—ପୁଂ. ବି. (ଭୃ+କ. ଇ) ସିଂହ, (ଗ୍ରା. ବିଂ) ଅତ୍ୟଧିକ, ଅଧିକ, ବଡ଼, ଦୁର୍ବହ, ଅତ୍ୟାବଶ୍ୟକ, ଲୋକରହଳ, ବ୍ୟଥାଯୁକ୍ତ, ଅସହ୍ୟ, (ଗ୍ରା. କ୍ରି. ବିଂ) ଅତ୍ୟନ୍ତ, ଅତ୍ୟଧିକ ଭାବରେ, (ଗ୍ରା. ବି) ଭାର, ଗୁରୁତ୍ୱ, ଓଜନ ।

ଭାରି(ରୁ)ଆ—ଗ୍ରା. ବି. ଭାରବହନକାରୀ, ଯେ ବାହୁଙ୍ଗି ଦ୍ୱାରା ଭାରବହନ କରେ

ଭାରିକ—ପୁଂ. ବିଂ (ଭାର+ଇକ) ଭାରବାହକ, ଭାରବିଶିଷ୍ଟ, (ସ୍ତ୍ରୀ) ଭାରିକା ।

ଭାରିଟ—ପୁଂ. ବି. ପକ୍ଷିବିଶେଷ, ଚଟକପକ୍ଷୀ ।

ଭାରିତ୍ୱ—ଗ୍ରା. ବି. ଧୀରତା, ସହିଷ୍ଣୁତା ।

ଭାରିମଲ—ଗ୍ରା. ବି. ଯୋଦ୍ଧାମାନଙ୍କର ରାଜପ୍ରଦତ୍ତ ଉପାଧିବିଶେଷ ।

ଭାରିଯା—ଗ୍ରା. ସ୍ତ୍ରୀ. ବି. (ସଂ-ଭାର୍ଯ୍ୟା) ମାଇପ, ସ୍ତ୍ରୀ, ପତ୍ନୀ ।

ଭାରିଲଗିବା—ଗ୍ରା. ବି. ଭାରବୋଧ ହେବା, ମାଡ଼ିପଡ଼ିବା, ଅସୁସ୍ଥତା ବୋଧ, ଓଜନ ଲଗିବା ।

ଭାରୀ—ପୁଂ. ବିଂ. (ଭାର+ଇନ୍) ଭାରବାହକ, ଦାୟିତ୍ୱପୂର୍ଣ୍ଣ, ଭାରଯୁକ୍ତ, ଗୁରୁ, ଭାରି, ବହୁତ, (ସ୍ତ୍ରୀ) ଭାରିଣୀ ।

ଭାରୁଆ—ଗ୍ରା. ବିଂ. ଯେ ଭାର ବହନ କରେ ।

ଭାରୁ(ରେ)ଇ—ଗ୍ରା. ବି. (ସଂ-ଭରଦ୍ୱାଜ) ଭରଦ୍ୱାଜ ପକ୍ଷୀ । [ ସମ୍ବନ୍ଧୀୟ ।

ଭାରୁଜିକ—ବିଂ (ଭରୁଜ୍+ଇକ) ଶୃଗାଳ-

ଭାରୁଣ୍ଡ—ବି. ଭାରଣ୍ଡ ଦେଖ, ରାମାୟଣୋକ୍ତ ପ୍ରାଚୀନ ବନବିଶେଷ ।

ଭାରୂପ—କ୍ଲୀ. ବି. ଚିଦାତ୍ମକ ଆତ୍ମା ।

ଭାରୋଦ୍ୱହ—ପୁଂ. ବି. ଭାରବାହୀ, କୁଲି, ଭାରୁଆ ।

ଭାରୋପଜୀବନ—ବିଂ. ଭାରବହନ ଦ୍ୱାରା ଜୀବିକା ନିର୍ବାହକାରୀ ।

ଭାରୌହୀ—ସ୍ତ୍ରୀ. ବି. (ଭାର+ବହ୍+ଇ +ଈ) ଭାରବାହିକା, ଭାରବହନକାରିଣୀ ସ୍ତ୍ରୀ ।

ଭାର୍ଗ—ପୁଂ. ବି. (ଭର୍ଗ+ଅ) ଭର୍ଗଦେଶର ରାଜା, ଭର୍ଗ ଋଷିଙ୍କର ପୁତ୍ର ।

ଭାର୍ଗଣ—ବି. ପାଣ୍ଡବଙ୍କ ପକ୍ଷୀୟ ଜନୈକ ଯୋଦ୍ଧା ।

ଭାର୍ଗବ—ପୁଂ. ବି. (ଭୃଗୁ+ଅ) ପରଶୁରାମ, ଶୁକ୍ରାଚାର୍ଯ୍ୟ, ଚକ୍ର, ଭୃଗୁମୁନିଙ୍କ ବଂଶଧର, ଭାରତବର୍ଷମଧ୍ୟସ୍ଥ ଦେଶବିଶେଷ, ହୀରା, କୁମ୍ଭାର, ମାର୍କଣ୍ଡେୟ, ଶୌନକ, ଶ୍ୟୋନାକ, ଫଣଫଣା, ନୀଳ ଭୃଙ୍ଗରାଜ ।

ଭାର୍ଗବନ—କ୍ଲୀ. ବି. ଦ୍ୱାରକାସ୍ଥିତ ଗୋଟିଏ ଅରଣ୍ୟ ।

ଭାର୍ଗବପ୍ରିୟ—ପୁଂ. ବି. ହୀରକ, ହୀରା ।

ଭାର୍ଗବୀ—ସ୍ତ୍ରୀ. ବି (ଭାର୍ଗବ+ଈ) ପାର୍ବତୀ, (ଭୃଗୁ+ଈ) ଲକ୍ଷ୍ମୀ, ଦୂର୍ବା (ନୀଳ ଓ ଶ୍ୱେତ), ଭୃଗୁବଂଶୀୟ ସ୍ତ୍ରୀମାନେ, (ଗ୍ରା. ବି) ଓଡ଼ିଶାରେ ପ୍ରବାହିତ ନଦୀବିଶେଷ ।

ଭାର୍ଗବୀୟ—ବିଂ. ଭାର୍ଗବସମ୍ବନ୍ଧୀୟ ।

ଭାର୍ଗୀ—ସ୍ତ୍ରୀ. ବି. (ଭାର୍ଗ+ଈ) ବ୍ରାହ୍ମଣଯଷ୍ଟା ଗୁଳ୍ମ ।

ଭାର୍ଜନ—ଗ୍ରା. ବିଂ. (ସଂ-ଭାଜନ) ଭାଜନ, ଯୋଗ୍ୟ, ଭାଗୀ, ଭୋଗକରିବା ଯୋଗ୍ୟ

ଭାର୍ଦ୍ୱାଜୀ—ସ୍ତ୍ରୀ. ବି. ଭାରଦ୍ୱାଜୀ, ବନକାର୍ପାସୀ, କପାସିଆ ।

ଭାର୍ଯ୍ୟା—ସ୍ତ୍ରୀ. ବି. (ଭୃ+ଯ+ଆ) ପତ୍ନୀ, ବିବାହିତା ସ୍ତ୍ରୀ । [ (ପୁରୁଷ) ।

ଭାର୍ଯ୍ୟାଜିତ—ପୁଂ. ବିଂ. (୩ତତ୍) ସ୍ତ୍ରୀବଶ

ଭାର୍ଜିତ—ବିଂ. (ଭୃଜ୍+ଣିଚ୍+ତ) ଯାହା ଭଜା ହୋଇଅଛି ।

ଭାର୍ଯ୍ୟାଟ—ପୁଂ. ବିଂ. (ଭାର୍ଯ୍ୟା+ଅଟ+କ. ଅ) ଯେ ନିଜ ସ୍ତ୍ରୀକୁ ପରର ଉପଭୋଗ ନିମିତ୍ତ ପ୍ରଦାନ କରେ ବା ପରପୁରୁଷ ନିକଟ ଗମନ କରିବାକୁ ଅନୁମତି ଦିଏ, ଭାରଦା ।

ଭାର୍ଯ୍ୟାଟିକ—ପୁଂ. ବିଂ (ଭାର୍ଯ୍ୟାଟ+ଇକ) ସ୍ତ୍ରୀକର୍ତ୍ତୃକ ପରାଜିତ, ହରିଣବିଶେଷ, ମୁନିବିଶେଷ, ସ୍ତ୍ରୈଣ ।

ଭାର୍ଯ୍ୟାପତି—ପୁଂ. ବି. ସ୍ତ୍ରୀ ଓ ସ୍ୱାମୀ, ଦମ୍ପତୀ, ଜମ୍ପତୀ, ଜାୟାପତି ।

ଭାର୍ଯ୍ୟାଧିକାରିକ—ବି. ଭାର୍ଯ୍ୟାସମ୍ବନ୍ଧୀୟ ବକ୍ତବ୍ୟ ବିଷୟ ଯହିଁରେ ଅଛି, ବାତ୍ସ୍ୟାୟନକୃତ କାମଶାସ୍ତ୍ର ଓ ତଦ୍ବିଷୟକ ଅଧ୍ୟାୟ ଭେଦ ।

ଭାର୍ଯ୍ୟାରୁ—ପୁଂ. ବି. (ଭାର୍ଯ୍ୟା+ଋ+ଉ) ମୃଗଭେଦ, କ୍ରୀଡ଼ା ଦ୍ୱାରା ପର ଭାର୍ଯ୍ୟାଠାରେ ପୁତ୍ରୋତ୍ପାଦନ, ପର୍ବତବିଶେଷ

ଭାର୍ଯ୍ୟାବନ୍ତ—ଗ୍ରା. ବିଂ. ଯାହାର ଭାର୍ଯ୍ୟା ଅଛି, ସପତ୍ନୀକ ।

ଭାର୍ଯ୍ୟାବାନ୍—ପୁଂ. ବିଂ. (ଭାର୍ଯ୍ୟା+ବତୁ) ପତ୍ନୀଯୁକ୍ତ, ଭାର୍ଯ୍ୟାଯୁକ୍ତ । [ ଗଛ ।

ଭାର୍ଯ୍ୟାବୃକ୍ଷ—ପୁଂ. ବି. ପଉଙ୍ଗବୃକ୍ଷ, ବକମ-

ଭାର୍ଯ୍ୟୋଢ଼—ପୁଂ. ବିଂ. (ବ. ବ୍ରୀ) କୃତଦାର, ବିବାହିତ ।

ଭାଲ—କ୍ଲୀ. ବି. କପାଳ, ଲଲାଟ, କର୍ମ, ଆଭା, ଦୀପ୍ତି, ଭାଲୁବର୍ଚ୍ଛା, ଶରରଫଳକ । [ ଗଣେଶ ।

ଭାଲଚନ୍ଦ୍ର—ପୁଂ. ବି. (ବ. ବ୍ରୀ) ଶିବ,

ଭାଲଣି(ଣୀ)—ସ୍ତ୍ରୀ. ବି (ସଂ-ଭାବନା) ଚିନ୍ତା,

ମନର ବ୍ୟାକୁଳତା, ଭାବନା ।

ଭାଲଦର୍ଶନ—କ୍ଲୀ.ବ. ସିନ୍ଦୂର, (ବ.ବ୍ରୀ) କପାଳଲୋଚନ, ମହାଦେବ ।

ଭାଲଦୃକ୍—ପୁଂ. ବ. (ବ.ବ୍ରୀ) ଶିବ ।

ଭାଲନେତ୍ର—ପୁଂ. ବ. ଶିବ ।

ଭାଲନେତ୍ରା—ସ୍ତ୍ରୀ. ବ. ଦୁର୍ଗା ।

ଭାଲପଟ୍ଟ—ବ. ( ରୂ.କ.ଧା ) କପାଳର ସମ୍ମୁଖ ଭାଗ, (ଗ୍ରା.ବ୍ୟ.ଲ.ଅର୍ଥ) କର୍ମ, ଅଦୃଷ୍ଟ ।

ଭାଲଲୋଚନ—ପୁଂ.ବ. (ବ.ବ୍ରୀ) ଭାଲନେତ୍ର, ଶିବ ।

ଭାଲା—ଗ୍ରା.(ସମ୍ବୋ)ବ. ଭାଲଆ ।

ଭାଲାଙ୍କ—ପୁଂ. ବ. କରପତ୍ରାସ୍ତ୍ର, କରତ, ଶାକଭେଦ, ରୋହିମାଛ, କଚ୍ଛପ, ମହାଲକ୍ଷଣସମ୍ପନ୍ନ ପୁରୁଷ,ଲଲାଟଚନ୍ଦ୍ର,ଶିବ ।

ଭାଲ୍ଲ(ଲ)—ଗ୍ରା. ବ. (ସଂ-ଭଲ୍ଲ) ଭଲ୍ଲାସ୍ତ୍ର, ବର୍ଚ୍ଛା, ଏକପ୍ରକାର ଅର୍ଦ୍ଧଚନ୍ଦ୍ରାକୃତି କାଣ୍ଡ ।

ଭାଲଆ—ଗ୍ରା. ବ. (ସଂ ଭଲ୍ଲାତକ) ଆମ୍ରାଦି ବର୍ଗର ମଧ୍ୟମାକୃତି ତରୁବିଶେଷ ଓ ତହିଁର ଫଳ, ସ୍ତନ ରୋଗବିଶେଷ,(ପ୍ରା. ଶବ୍ଦାର୍ଥ. ବ) ଲଙ୍କାଆମ୍ବ ।

ଭାଲଆଖାଇ—ଗ୍ରା. ବ. କୋଚିଲାଖାଇ ପରି ଏକପ୍ରକାର ପକ୍ଷୀ, ଶୁକପକ୍ଷୀବିଶେଷ ।

ଭାଳିବା—ଗ୍ରା.କ୍ରି. ଭାବିବା, ବିବେଚନା କରିବା, ପରାମର୍ଶ କରିବା, ଚିନ୍ତା କରିବା, ଅନୁତାପ କରିବା ।

ଭାଳିଭାଳି—ଗ୍ରା. କ୍ରି. ବିଂ. ବହୁ ବିବେଚନା କରି, ଭାବିଭାବି, ବହୁଚିନ୍ତାପୂର୍ବକ ।

ଭାଲୁ—ପୁଂ. ବ. (ଭୃ+ଉ) ଆଦିତ୍ୟ, (ଗ୍ରା.ବ)ଭଲ୍ଲୁକ, ଭାଲୁ, କୃଷ୍ଣବର୍ଣ୍ଣ ବଡ଼ ଲୋମଯୁକ୍ତ ବନ୍ୟ ଚତୁଷ୍ପଦ ହିଂସ୍ର ଜନ୍ତୁବିଶେଷ ।

ଭାଲୁଆ—ଗ୍ରା. ବିଂ. ଭାଲୁପରି ଘନ ଓ ବଡ଼ ଲୋମଯୁକ୍ତ ।

ଭାଲୁ(ଲୂ)କ—ପୁଂ.ବ.(ଭଲ + କ.ଉକ) ଋକ୍ଷ, ଭାଲୁ, ଭଲ୍ଲୁକ ।

ଭାଲୁକି—ପୁଂ. ବ. ଯୋଗଶାସ୍ତ୍ର ପ୍ରବର୍ତ୍ତକ ଋଷିବିଶେଷ, ବାଲ୍ମୀକି ।

ଭାଲୁକୁଣୀ—ଗ୍ରା. ବ. ବାଳକାମାନଙ୍କର ଗୋଟିଏ ଖେଳ,(ଲ.ଅର୍ଥ) ଯେଉଁ ସ୍ତ୍ରୀର ବାଳ ମୁକୁଳା ଓ ଇତସ୍ତତଃ ବିକ୍ଷିପ୍ତ ହୋଇ ପଡ଼ିଥାଏ ।

ଭାଲୁଜର—ଗ୍ରା. ବ. ଭାଲୁକୁ ଶୀତବାର ଦିନ ଆକ୍ରମଣ କରିବା ଅଳ୍ପକାଳସ୍ଥାୟୀ ଗାଢ଼ କମ୍ପ ।

ଭାଲେଣୀ—ଗ୍ରା. ବ. ଭାବନା, ଚିନ୍ତା, ମହାଚିନ୍ତା,ଉତ୍କଣ୍ଠା, ଦୁଶ୍ଚିନ୍ତା, ପରାମର୍ଶ ।

ଭାଲେଇ—ଗ୍ରା. ବ. ଚିଲିକା ହ୍ରଦର କୂଳରେ ଥିବା ଗୋଟିଏ ପର୍ବତ ।

ଭାଲ୍ଲୁକ—ପୁଂ.ବ.ଭାଲୁ,କୃଷ୍ଣବର୍ଣ୍ଣ ଲୋମଯୁକ୍ତ ବଡ଼ ଅରଣ୍ୟ ହିଂସ୍ରଜନ୍ତୁବିଶେଷ ।

ଭାବ—ପୁଂ.ବ. (ଭୂ+ଅ) ଉତ୍ପତ୍ତି, ସୃଷ୍ଟି, ଅସ୍ତିତ୍ୱ, ବିଭୂତି, ପ୍ରକୃତି, ସ୍ୱଭାବ, ସହଜଗୁଣ, ଚିତ୍ତ, ମନ, ଆତ୍ମା, କ୍ରିୟା, ଅବସ୍ଥା, ଦଶା, ଢଙ୍ଗ, ଭଙ୍ଗୀ,ମାନସିକ ଉଦ୍ବେଗ, ଚିନ୍ତା, ଭାବନା, ବାକ୍ୟାର୍ଥ, ଫଳ, ବୁଦ୍ଧି, ଉପଦେଶ, ଅଭିପ୍ରାୟ, ଉଦ୍ଦେଶ୍ୟ, ଚେଷ୍ଟା, ତାତ୍ପର୍ଯ୍ୟ, ମର୍ମ, ଜଗତ୍, ଧ୍ୟାନ,ଆବେଗ,ପ୍ରକାର,ରକମ, ସମ୍ଭାବନା, ମନର ଅବସ୍ଥା, କାମ, ଅନୁରାଗ, ପ୍ରୀତି, ସଦ୍ଭାବ, ବନ୍ଧୁତା,ଧାତୁର ଅର୍ଥ, କାବ୍ୟରେ ରସର ଉତ୍ପନ୍ନ, ନାଟକରେ ନାଟ୍ୟୋକ୍ତିରେ ବିଦ୍ୱାନ୍ ପ୍ରତି ସମ୍ବୋଧନ ଉକ୍ତି, ମୁଖର ଆକୃତି ବା ଚେଷ୍ଟା, ପର୍ଯ୍ୟାଲୋଚନା, ଶରୀର, ବିଦ୍ୱାନ୍ ବ୍ୟକ୍ତି, ଜନ୍ତୁ, ଯୋନି,କଳ୍ପନା, ମନରେ ଗୁପ୍ତ ରହିଥିବା ଇଚ୍ଛା, ରାଜ୍ୟ, (ଜ୍ୟୋତିଷ) ଲଗ୍ନାଦି ଦ୍ୱାଦଶ ରାଶି, ଯଥା:-ତନୁଭାବ, ଧନଭାବ ଇତ୍ୟାଦି, ଗ୍ରହମାନଙ୍କର ଶୟନାଦି ଦ୍ୱାଦଶ ଅବସ୍ଥା ଓ ଦୀପ୍ତାଦି ନବାବସ୍ଥା, ଲଜ୍ଜିତାଦି ଷଡ୍ଭାବଆଦି, ଯାହାକି ମନୁଷ୍ୟମାନଙ୍କର ଜାତକ ବିଚାର ସମୟରେ ଗଣନା କରାଯାଏ, ପ୍ରେମିକ ପ୍ରେମିକାଙ୍କର ମନୋଭାବ ଜ୍ଞାପକ ଭଙ୍ଗୀ, ଜନ୍ମ, ସ୍ଥିତି, ବୃଦ୍ଧି, ଓ କ୍ଷୀଣତାପ୍ରାପ୍ତ ପରିମାଣଯୁକ୍ତ ଅବିନଶ୍ୱର ପଦାର୍ଥ, ବୁଦ୍ଧିର ଯେଉଁ ଗୁଣଦ୍ୱାରା ଜ୍ଞାନ ଅଜ୍ଞାନ; ଧର୍ମ ଅଧର୍ମର ଧାରଣା ଜନ୍ମେ, (ବୈଶେଷିକ ଦର୍ଶନ) ଦ୍ରବ୍ୟ, ଗୁଣ, କର୍ମ, ସାମାନ୍ୟ,ବିଶେଷ, ସମବାୟ ଏହି ଛଅଗୋଟି ବିଦ୍ୟମାନ ବସ୍ତୁ, (ନାଟ୍ୟୋକ୍ତିରେ) ସୂତ୍ରଧାରଙ୍କୁ ନଟୀର ସମ୍ବୋଧନ, ନାୟକଆଦିଙ୍କୁ ଦେଖି କିମ୍ବା ଅନ୍ୟପ୍ରକାର ନାୟିକା ମନରେ ଉତ୍ପନ୍ନ ହେବା ୨୮ ଗୋଟି ସ୍ୱଭାବଜ ଅବସ୍ଥା ମଧ୍ୟରୁ ତିନୋଟି ଅଙ୍ଗଜ ଅଳଙ୍କାର, (ଭାବହାବ ଓ ହେଲା) ମଧ୍ୟରୁ ପ୍ରଥମ, ସଙ୍ଗୀତ କରୁଥିବା ବ୍ୟକ୍ତିର ଅଙ୍ଗଭଙ୍ଗୀ ।

ଭାବକ—ପୁଂ.ବ. (ଭାବ+ଅକ) ଯେଉଁ ଗାୟକ ଗୀତର ଭାବ ଅନୁସାରେ ସ୍ୱର ବଦଳାଇପାରେ, ଭାବୁକ ବା ଚିନ୍ତାଶୀଳ ବ୍ୟକ୍ତି, (ବିଂ) ଚିନ୍ତାଶୀଳ, ଉତ୍ପାଦନକାରୀ, (ସ୍ତ୍ରୀ) ଭାବିକା ।

ଭାବକରିବା—ଗ୍ରା.କ୍ରି. କୌଣସି ବ୍ୟକ୍ତିସଙ୍ଗେ ବନ୍ଧୁତା ସ୍ଥାପନ କରିବା ।

ଭାବକୂପ—ବ. ( ରୂ. କ.ଧା ) ଚିନ୍ତାରୂପ କୂପ ।

ଭାବଗତି—ଗ୍ରା.ବ. ଆନ୍ତରିକ ଓ ବାହ୍ୟ ଅବସ୍ଥା, ଆକାରପ୍ରକାର, ହାବଭାବ, ଛଟକ, ଭାବଭଙ୍ଗୀ, ଢଙ୍ଗଢାଙ୍ଗ, ଅବସ୍ଥା ।

ଭାବଗମ୍ଭୀର—ପୁଂ.ବିଂ. ପ୍ରଗାଢ଼ ଚିନ୍ତାଦ୍ୱାରା ପ୍ରଣୋଦିତ, ଯାହାର ତାତ୍ପର୍ଯ୍ୟ ଦୁରୂହ ଭାବର ପ୍ରାବଲ୍ୟ ଯୋଗୁଁ ଗମ୍ଭୀର

ଭାବଗର୍ଭ(କ)—ପୁଂ.ବିଂ. (ବ.ବ୍ରୀ) ଅର୍ଥଗର୍ଭ, ଯହିଁରେ ଅର୍ଥ ନିହିତ ଅଛି, ଆବେଗପୂର୍ଣ୍ଣ, (ସ୍ତ୍ରୀ) ଗର୍ଭା ।

ଭାବଗ୍ରାହୀ—ପୁଂ.ବିଂ. (ଭାବ+ଗ୍ରହ+ଇନ୍) ଯେ ଭାବ ଗ୍ରହଣ କରିପାରେ, ତାତ୍ପର୍ଯ୍ୟ ଗ୍ରହଣକାରୀ, ଅଭିପ୍ରାୟବୋଦ୍ଧା, ମର୍ମଜ୍ଞ, (ସ୍ତ୍ରୀ) ଭାବଗ୍ରାହିଣୀ, (ବ) ପରମେଶ୍ୱର ।

ଭାବତ—ବିଂ. (ଭବତ୍+ଅ) ଭବଦୀୟ,

ଆପଣଙ୍କର ।
ଭାବତରଙ୍ଗ—ବି. (ତତ୍ପୁ) ଭାବର ଢେଉ, ଭାବୋଚ୍ଛ୍ୱାସ ।
ଭାବତରଳ—ବିଂ. (ତତ୍ପୁ) ହୃଦୟର ଆବେଗଦ୍ୱାରା ବିଗଳିତ, ଭାବବିହ୍ୱଳ ।
ଭାବତାରଲ୍ୟ—ବି. ହୃଦୟର ଆବେଗଦ୍ୱାରା ବିଗଳିତ ହେବାର ଅବସ୍ଥା ।
ଭାବତ୍କ—ବିଂ. ଭବଦୀୟ, ଆପଣଙ୍କ ସମ୍ବନ୍ଧୀୟ ।
ଭାବଦୋହ୍ରି—ଗ୍ରା.ବି. ଗାଢ଼ ବନ୍ଧୁତା. ପ୍ରଣୟ, (ଗ୍ରା.ବିଂ) ପ୍ରଣୟ ସୂତ୍ରରେ ଆବଦ୍ଧ (ବ୍ୟକ୍ତି) ।
ଭାବନ(ନା)—ବି. (ଭୂ+ଣିଚ୍+ଅନ. ଆ) ଚିନ୍ତା, ଅଭିମିଶ୍ରଣ, ସୃଷ୍ଟା, ବିଷ୍ଣୁ, ଅଧିବାସନ, ଧ୍ୟାନ, କଳ୍ପନ, ବେଶବିନ୍ୟାସ, ବିବେଚନା, ସଜାଇବା, ଅନୁଭବରୁ ଓ ସ୍ମୃତିରୁ ଜାତ ମାନସିକ ସଂସ୍କାର, ମାନସିକ ଉଦ୍ବେଗ, ପର୍ଯ୍ୟାଲୋଚନ, ଅଭିଷେକ, ଔଷଧର ସଂସ୍କାରବିଶେଷ ।
ଭାବନାଦେବା—ଗ୍ରା. କ୍ରି. ଚୂର୍ଣ୍ଣାଦିରେ ରସାଦି ଦ୍ରବ୍ୟ ବା ତୈଳାଦି ମିଶାଇବା
ଭାବନାକରିବା—ଗ୍ରା.କ୍ରି. ଚିନ୍ତାକରିବା, ଉଦ୍ବିଗ୍ନହେବା ।
ଭାବନାମୟ—ବିଂ. ( ଭାବନା+ମୟ ) ଚିନ୍ତାନୁରୂପ, ଭାବନାସ୍ୱରୂପ ।
ଭାବନାଶ୍ରୟ—ପୁଂ.ବି. ଶିବଙ୍କର ନାମାନ୍ତର ।
ଭାବନୀୟ—ବିଂ. ( ଭାବ+ମିଂ.ଅନୀୟ ) ଚିନ୍ତା ବା ବିଚାରଯୋଗ୍ୟ ।
ଭାବପାଇବା—ଗ୍ରା.କ୍ରି. ଫଳ ଭୋଗକରିବା ।
ଭାବପ୍ରକାଶ—ବି. (ବୈଦ୍ୟକ) ଚିକିତ୍ସା ଗ୍ରନ୍ଥବିଶେଷ, ( ତତ୍ପୁ ) ମନୋଗତ ଭାବର ପ୍ରକାଶ, ଭାବବ୍ୟକ୍ତ କରିବା ।
ଭାବଭକ୍ତି—ବି. (ଦ୍ୱନ୍ଦ୍ୱ) ଅନୁରାଗ ଓ ସେବା ।
ଭାବଭଙ୍ଗୀ—ସ୍ତ୍ରୀ.ବି. (ଦ୍ୱନ୍ଦ୍ୱ) ଅଭିପ୍ରାୟ ଓ ଚେଷ୍ଟା, ଭାବଗତି ଦେଖ ।
ଭାବମୟ—ବିଂ. ଅର୍ଥପୂର୍ଣ୍ଣ, ପ୍ରେମପୂର୍ଣ୍ଣ, ଚିନ୍ତାପୂର୍ଣ୍ଣ ।
ଭାବମୂଳକ—ବିଂ. ( ବ.ବ୍ରୀ ) ଯାହାର ମୂଳରେ ଭାବ ବା ଆବେଗ ଥାଏ, ଅର୍ଥମୂଳକ ।
ଭାବୟିତବ୍ୟ—ବିଂ.(ଭୂ+ଣିଚ୍+ତବ୍ୟ) ଚିନ୍ତା ଯୋଗ୍ୟ ।
ଭାବୟିତା—ପୁଂ. ବିଂ. (ଭୂ+ଣିଚ୍+କ. ତୃ) ମଙ୍ଗଳାକାଂକ୍ଷୀ, ପ୍ରତିପାଳକ ଓ ରକ୍ଷଣାବେକ୍ଷଣକାରୀ, ଉଦ୍ଭାବନକର୍ତ୍ତା
ଭାବସ୍ଥ—ବିଂ(ଭାବ+ସ୍ଥା+ଡ)ଭାବେଚ୍ଛୁ
ଭାବରଖିବା—ଗ୍ରା. କ୍ରି. କୌଣସି ବ୍ୟକ୍ତି ସଙ୍ଗେ ସୌହାର୍ଦ୍ଦକୁ ଅକ୍ଷୁଣ୍ଣ ରଖିବା ।
ଭାବରୂପ—ବିଂ.ଯଥାର୍ଥ, ପ୍ରକୃତ, ଯାହାର ଅସ୍ତିତ୍ୱ ଅଛି ।
ଭାବ ଲଗା(ଗେ)ଇବା—ଗ୍ରା. କ୍ରି. ବନ୍ଧୁତା ସ୍ଥାପନ କରିବା, ପ୍ରଣୟ କରିବା ।
ଭାବଲହରୀ—ସ୍ତ୍ରୀ. ବି. (ରୂ.କ.ଧା)ଭାବରୂପ ତରଙ୍ଗ, ଚିନ୍ତାରୂପ ଢେଉ ।
ଭାବବଚନ—ବି.ବ୍ୟାକରଣୋକ୍ତ ଭାବବାଚକ ପ୍ରତ୍ୟୟାନ୍ତ ଶବ୍ଦ ।
ଭାବବନ୍ଧନ—ବି.ପ୍ରେମ ରଜ୍ଜୁଦ୍ୱାରା ଗୁନ୍ଥା ହେବା ।
ଭାବବହୁଳ—ବିଂ. (ତତ୍ପୁ)ଅର୍ଥରେପୂର୍ଣ୍ଣ
ଭାବବାଚ୍ୟ—ବି. (ବ୍ୟାକରଣ) ବାକ୍ୟର କର୍ତ୍ତୃସ୍ଥାନ ରୂପ ।
ଭାବବାଦୀ—ପୁଂ. ବିଂ.ଭବିଷ୍ୟତ୍ ବକ୍ତା, (ସ୍ତ୍ରୀ) ଭାବବାଦିନୀ ।
ଭାବବାନ୍—ପୁଂ, ବିଂ. (ଭାବ+ବତ୍) ଭାବଯୁକ୍ତ, (ସ୍ତ୍ରୀ) ଭାବବତୀ ।
ଭାବବିକାର—ବି. ଉତ୍ପତ୍ତିଯୁକ୍ତ ପଦାର୍ଥର ଜନ୍ମାଦି ଷଡ଼ଧର୍ମ ।
ଭାବବିନିମୟ—ବି. ( ତତ୍ପୁ ) ପରସ୍ପର ମଧ୍ୟରେ ଭାବର ଆଦାନ ପ୍ରଦାନ ।
ଭାବବିଳାସ—ବି.ଚିନ୍ତାରେ ଓ ଲେଖାରେ କୌଣସି କାଳ୍ପନିକ ଆଦର୍ଶର ଅନୁସରଣ ।
ଭାବବିଳାସୀ—ପୁଂ, ବିଂ. ଯେ ଚିନ୍ତାରେ ଓ ଲେଖାରେ କୌଣସି କାଳ୍ପନିକ ଆଦର୍ଶର ଅନୁସରଣ କରେ, (ସ୍ତ୍ରୀ) ବିଳାସିନୀ ।
ଭାବବୃତ୍ତ—ପୁଂ. ବି. ବ୍ରହ୍ମା, (ବିଂ) ସୃଷ୍ଟିପ୍ରକରଣ ସମ୍ବନ୍ଧୀୟ ।
ଭାବବୃହସ୍ପତି—ସୋମନାଥ ମନ୍ଦିରର ଜଣେ ପୁରୋହିତ ।
ଭାବବୋଧ—ବି. (ତତ୍ପୁ) ଅର୍ଥୋପଲବ୍ଧି, ଭାବକୁ ହୃଦୟଙ୍ଗମ କରିବା ।
ଭାବବୋଧକ—ବିଂ. ଯାହା କୌଣସି ଅର୍ଥ ବା ତାତ୍ପର୍ଯ୍ୟ ପ୍ରକାଶକରେ ।
ଭାବବ୍ୟକ୍ତି—ବି. (ତତ୍ପୁ)ମନରେ ଜନ୍ମିବା ଭାବର ପ୍ରକାଶ ବା ଅଭିବ୍ୟକ୍ତି ।
ଭାବବ୍ୟଞ୍ଜକ—ବିଂ. ଭାବସୂଚକ, ଭାବବୋଧକ ଦେଖ ।
ଭାବଶବଳା—ସ୍ତ୍ରୀ.ବି. ମନୋବୃତ୍ତି ସମୂହର ସମନ୍ୱୟ ।
ଭାବଶୁଦ୍ଧି—ବି. (ତତ୍ପୁ) ଚିନ୍ତାର ବିଶୁଦ୍ଧ ବା ପବିତ୍ରତା ।
ଭାବସଞ୍ଚାର—ବି.(ତତ୍ପୁ)ଚିନ୍ତାର ଉଦୟ
ଭାବସିନ୍ଧୁ—ବି. (ରୂ.କ.ଧା) ସମୁଦ୍ରପରି ଉଚ୍ଛୁଳୁଥିବା ଭାବ, ଭାବାର୍ଣ୍ଣବ ।
ଭାବାକୁଚ—କ୍ଲୀ. ବି. ମାନସିକ ଚିନ୍ତା ବା କଳ୍ପନା ଲହରୀ ।
ଭାବାଟ—ପୁଂ. ବି. (ଭାବ+ଅଟ୍+ଅ) ନଟ, ଭାବକ, ସାଧୁ, ବିବେଶ, କାମୁକ, ଭାବପ୍ରାପ୍ତି ।
ଭାବାତ୍ମକ—ବିଂ. ( ବ.ବ୍ରୀ ) କୌଣସି ବିଷୟର ପ୍ରକୃତାବସ୍ଥା ସୂଚକ, ତାତ୍ପର୍ଯ୍ୟପୂର୍ଣ୍ଣ, ଭାବପୂର୍ଣ୍ଣ, (ସ୍ତ୍ରୀ) ଭାବାତ୍ମିକା ।
ଭାବାନୁଗ—ପୁଂ.ବିଂ. (ଭାବ+ଅନୁ+ଗମ୍+ଅ) ଅଭିପ୍ରାୟାନୁଗତ, ଭକ୍ତିବାଦଦ୍ୱାରା ଅନୁଗତ, (ସ୍ତ୍ରୀ)ଭାବାନୁଗା, ଛାୟା ।
ଭାବାନ୍ତର—ବି. (କ.ଧା) ମନର ଅବସ୍ଥାନ୍ତର, ବିଭିନ୍ନ ଚିତ୍ତବୃତ୍ତି ।
ଭାବାବେଶ—ବି. ( ତତ୍ପୁ ) ଭାବର ଅଭିବୃଦ୍ଧି ।
ଭାବାବେଗ—ବି.(ତତ୍ପୁ) ଭାବର ଉପସ୍ଥିତି ବା ଆବିର୍ଭାବ ।

ଭାବାଭାସ—ବି. ଗଣିକାର ବା ଅନୁରାଗିଣୀ ସ୍ତ୍ରୀର ସମ୍ପର୍କ କୌଣସି ପୁରୁଷ ପକ୍ଷରେ କ୍ଷୋଭର,ଲଜ୍ଜାର, ବିଚନ୍ତାର ବିଷୟ ହେଲେ ପୁରୁଷର ଯେଉଁ ମାନସିକ ଅବସ୍ଥା ଉପସ୍ଥିତ ହୁଏ ।

ଭାବାର୍ଥ—ବି. (ଭାବ + ଅର୍ଥ) ଅଭିପ୍ରାୟ, ତାତ୍ପର୍ଯ୍ୟ, ଆଶୟ । [ ବିଶିଷ୍ଟ ।

ଭାବାର୍ଥକ--ବିଂ.(ଭାବାର୍ଥ+କ)ତାତ୍ପର୍ଯ୍ୟ-

ଭାବାର୍ଥଦୀପିକା—ସ୍ତ୍ରୀ.ବି. ଶ୍ରୀମଦ୍ଭାଗବତର ଶ୍ରୀଧର ସ୍ୱାମୀଙ୍କ କୃତ ପ୍ରସିଦ୍ଧ ଟୀକା ।

ଭାବାଳିନା—ସ୍ତ୍ରୀ. ବି. ଗ୍ରୀଷ୍ମ ।

ଭାବିକ—ବିଂ. (ଭାବ + ଇକ) ସ୍ୱାଭାବିକ, ରସାତ୍ମକ, ଭବିଷ୍ୟତ୍‌କାଳିକ, ଅର୍ଥଯୁକ୍ତ, ଭାବଯୁକ୍ତ, ଉଦ୍ଦୀପକ ।

ଭାବିତ—ବିଂ. (ଭାବ + ମିଂ.ତ) ବାସିତ, ପ୍ରାପ୍ତ, ଚିନ୍ତିତ, ବିଶୋଧିତ, ଚିନ୍ତିତ, ମିଶ୍ରିତ, ସମର୍ପିତ, ସ୍ୱୀକୃତ, ପ୍ରମାଣୀକୃତ, ଘଟିତ, ପ୍ରାପିତ, ଉଦ୍ବିଗ୍ନ, (ସ୍ତ୍ରୀ) ଭାବିତା, (ବି)ଭାବନସାଧ୍ୟ ପଦାର୍ଥ,ଅଳଙ୍କାର ଭେଦ,ବୀଜଗଣିତର ସମୀକରଣ ବିଶେଷ, ବୈଦ୍ୟକୋକ୍ତ ଭାବନାଯୁକ୍ତ ଦ୍ରବ୍ୟ ଶୁଦ୍ଧି । [ ଶୁଦ୍ଧାତ୍ମା ।

ଭାବିତାତ୍ମା—ପୁଂ.ବିଂ. (ବ.ବ୍ରୀ)ପୂତାତ୍ମା,

ଭାବିନ—ବି.(ଭାବ+ଇନ) ତ୍ରୈଲୋକ୍ୟ, ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ।

ଭାବିନୀ—ସ୍ତ୍ରୀ.ବିଂ. (ଭାବ+ଇନ୍+ଈ) ଭାବନାଯୁକ୍ତା, ଚିନ୍ତିତା,ସୁଲକ୍ଷଣଯୁକ୍ତା, କାମୁକୀ ସ୍ତ୍ରୀ, (ବି) କାମିନୀ, ସ୍ତ୍ରୀ, ପ୍ରିୟା ।

ଭାବିବା—କ୍ରି. ଚିନ୍ତାକରିବା, ସ୍ଥିରକରିବା, ଉଦ୍ବିଗ୍ନହେବା, ସ୍ମରଣକରିବା, ଉଦ୍ଭାବନ କରିବା,ବିବେଚନାକରିବା, ଅନୁତାପ କରିବା ।

ଭାବୀ—ପୁଂ, ବି. (ଭୂ+ଇନ୍) ଭବିଷ୍ୟତ୍ (କାଳାଦି), ଆଗାମୀ, ଭବିତବ୍ୟ,ଯାହା ଘଟିବ ।

ଭାବୁକ—ବି. (ଭୂ +ଉକ) ମଙ୍ଗଳ,(ବିଂ) ମଙ୍ଗଳଯୁକ୍ତ, ଚିନ୍ତାଶୀଳ, ଭାବଗ୍ରାହୀ, ଭାବନାଶ୍ରୟ, ଭାବନାଚତୁର, ( ସ୍ତ୍ରୀ ) ଭାବୁକୀ, (ପୁଂ.ବି) ଭଗିନୀପତି ।

ଭାବୁକତା(ତ୍ୱ)—ବି. (ଭାବୁକ+ଭା.ତା. ତ୍ୱ) ଚିନ୍ତାଶୀଳତା । [ (ବି) ପ୍ରଣୟ ।

ଭାବୁସି—ଗ୍ରା. ବିଂ. ପ୍ରେମଶୀଳ, ପ୍ରଣୟୀ,

ଭାବୋଚ୍ଛ୍ୱାସ—ବି.(୬ତତ୍)ଭାବତରଙ୍ଗ, ଉପର୍ଯ୍ୟୁପରି ଉଦିତ ହେବା ଭାବରାଶି ।

ଭାବୋଦୟ—ବି. ( ୬ତତ୍ ) ମନରେ ଭାବର ଉଦୟ ।

ଭାବୋଦ୍ଦୀପକ—ବିଂ. ଯାହା ମନରେ କୌଣସି ଭାବର ଉଦ୍ରେକ କରେ ।

ଭାବୋଦ୍ଦୀପନ(ନା)--ବି.(୬ତତ୍)ମନରେ ଭାବର ଉତ୍ତେଜନ ।

ଭାବୋନ୍ମତ୍ତ—ପୁଂ. ବିଂ. (୩ତତ୍)ଭାବଭୋଳ, (ସ୍ତ୍ରୀ) ଭାବୋନ୍ମତ୍ତା ।

ଭାବୋନ୍ମାଦ--ବି.ଭାବବିହ୍ୱଳତା,କୌଣସି ଭାବର ଆଧିକ୍ୟ ।

ଭାବ୍ୟ—ବିଂ. ( ଭୂ+ମିଂ.ଯ ) ଅବଶ୍ୟ ଭବିତବ୍ୟ, ଯାହା ନିଶ୍ଚୟ ହେବ, ନିଷ୍ପାଦ୍ୟ, ସାଧ୍ୟ, ଭବିଷ୍ୟତ, ଚିନ୍ତନୀୟ ।

ଭାଷ—ବି.(ଭାଷ୍+ଭା.ଅ)ଉକ୍ତି,କଥନ, (ମିଂ.ଅ) ବାକ୍ୟ, କଥନ, ବଚନ,(ଣ.ଅ) ଭାଷ୍ୟ, ଟୀକାଗ୍ରନ୍ଥ ।

ଭାଷକ—ପୁଂ. ବିଂ. (ଭାଷ୍+କ.ଅକ) ବକ୍ତା,କଥକ,ଯେ କହେ,(ସ୍ତ୍ରୀ)ଭାଷିକା ।

ଭାଷଜ୍ଞ—ପୁଂ. ବି ଓ ବିଂ. ଭାଷାରେ ଅଭିଜ୍ଞ, (ସ୍ତ୍ରୀ) ଭାଷଜ୍ଞା ।

ଭାଷଣ—କ୍ଲୀ. ବି. ( ଭାଷ୍+ଭା.ଅନ ) କଥନ, କହିବା, (ମିଂ.ଅନ)ଉକ୍ତି,ବାକ୍ୟ, ବକ୍ତୃତା ।

ଭାଷପତ୍ର—ବି. (କ.ଧା) ଏକାଧିକ ପଣ୍ଡିତଙ୍କ ସ୍ୱାକ୍ଷରିତ ବ୍ୟବସ୍ଥାପତ୍ର ।

ଭାଷା—ସ୍ତ୍ରୀ.ବି. (ଭାଷ୍+ଅ+ଆ)ଶାସ୍ତ୍ରୀୟ ଅଷ୍ଟାଦଶ ଭାଷା,ବାକ୍ୟ,ବାଗ୍‌ଦେବତା, ରାଗିଣୀବିଶେଷ, ମନଭାବର ଅଭିବ୍ୟକ୍ତି,ଏକର ମନୋଗତ ଭାବ ଅନ୍ୟର ବୋଧଗମ୍ୟ ହେବା ନିମିତ୍ତ ପ୍ରଯୁକ୍ତ ସଙ୍କେତ ବା ଶବ୍ଦ, ତଥ୍ୟଭାଷାର ପ୍ରାଦେଶିକ ବୋଲି, ଭାଖା,କଥ୍ୟଭାଷା, ଅର୍ଥଯୁକ୍ତ ଭାଷା ,ପ୍ରାକୃତ ଭାଷା, ବାକ୍ୟ ରଚନାର ଛଟା, ଅଭିଯୋଗ ପତ୍ର, ଅରଜ,ଯେଉଁ ସମସ୍ତ ଶବ୍ଦଦ୍ୱାରା ମନର ଭାବ ପ୍ରକାଶିତ ହୁଏ ତତ୍ସମୁଦାୟକୁ ଭାଷା କହନ୍ତି,ସ୍ଫୁଟ ଓ ଅସ୍ଫୁଟ ଭାବେ ଦୁଇପ୍ରକାର ଯଥା--ମନୁଷ୍ୟଭାଷା ସ୍ଫୁଟ ଓ ଇତର ଜୀବର ଭାଷା ଅସ୍ଫୁଟ.ସ୍ଫୁଟ-ଭାଷା, ସଂସ୍କୃତ, ଓଡ଼ିଆ, ବଙ୍ଗଳା, ଇଂରେଜପ୍ରଭୃତି ନାନାପ୍ରକାର ଭାରତବର୍ଷରେ ୧୯୭ ଗୋଟି ପ୍ରଚଳିତ ଭାଷା, ସମଗ୍ର ପୃଥିବୀରେ ସହସ୍ରାଧିକ ଭାଷା ବ୍ୟବହୃତ ହୁଏ, (ଗ୍ରା.ବି) ଚିଠିପତ୍ର ।

ଭାଷାଙ୍ଗ—ବି. (୬ତତ୍) ଯେଉଁ କ୍ରିୟା ସିଦ୍ଧାନ୍ତ ଧାତୁ ଏବଂ ବର୍ଣ୍ଣସଂଯୋଗରେ କଣ୍ଠରେ ଭାଷିତ ହୁଏ ।

ଭାଷାତତ୍ତ୍ୱ—ବି.ଭାଷାସମ୍ବନ୍ଧୀୟ,ବୈଜ୍ଞାନିକ ତଥ୍ୟ ।

ଭାଷାତୀତ—ବିଂ.(୫ତତ୍) ବଚନାତୀତ, ଯାହା କଥାରେ ପ୍ରକାଶିତ ହୋଇ ନ ପାରେ ।

ଭାଷାନ୍ତର—ବି. (କ.ଧା) ଅନ୍ୟ ଭାଷା, ଅନୁବାଦ, ତର୍ଜମା ।

ଭାଷାନ୍ତରିତ—ବିଂ. ତର୍ଜମା କରାଯାଇଥିବା, ଅନୂଦିତ ।

ଭାଷାପରିଚ୍ଛେଦ—ବି. ନ୍ୟାୟ ପରିଭାଷା ନାମକ ସଂସ୍କୃତ ଗ୍ରନ୍ଥବିଶେଷ ।

ଭାଷାପାଦ—ବି. ଚତୁଷ୍ପାଦ ବ୍ୟବହାରାନ୍ତର୍ଗତ ପ୍ରଥମ ପାଦ, ଚତୁଷ୍ପାଦ ବ୍ୟବହାର ପ୍ରତିଜ୍ଞାସୂଚକ ବାକ୍ୟରୂପର ପ୍ରଥମାଂଶ, ପୂର୍ବପାଦ, ଅଭିଯୋଗ ।

ଭାଷାବଦ୍ଧ—ବିଂ. (୩ତତ୍) ସାଧାରଣ କଥ୍ୟ ଭାଷାରେ ରଚିତ ।

ଭାଷାବନ୍ଧ—ବି.ଦେଶର କଥ୍ୟ ଭାଷାରେ ରଚନା ।

ଭାଷାବ୍ୟାକରଣ—ବି. କୌଣସି କଥ୍ୟ ଭାଷାର ବ୍ୟାକରଣ ।

ଭାଷାସମ—ପୁଂ.ବି.ଶବ୍ଦାଲଂକାରବିଶେଷ

ଭାଷିତ—ବି. (ଭାଷ୍+ଭା.ତ) କଥନ, ଭାଷା, (ମିଂ.ତ) ବଚନ, ବାକ୍ୟ, (ବିଂ. ମିଂ.ତ) କଥିତ ।

ଭାଷିତପୁଂସ୍କ—ବି. ବିଶେଷଣତ୍ୱ ପ୍ରାପ୍ତ,

ଯାହା ପୁଂଲିଙ୍ଗାଦିରେ ଅଭିହିତ ହୁଏ ।

ଭାଷିତା—ପୁଂ. ବିଂ. ( ଭାଷ୍+କ.ତୃ ) ଭାଷକ, କଥକ ।

ଭାଷିବା—ଗ୍ରା. କ୍ରି. କହିବା ।

ଭାଷୀ—ବିଂ. (ଭାଷ୍+କ.ଇନ୍) ବକ୍ତା, କଥକ, ଯେ କହେ, (ସ୍ତ୍ରୀ) ଭାଷିଣୀ ।

ଭାଷୁଭାଷୁ—ଗ୍ରା.ଅବ୍ୟ. ଫାଷୁଫାଷୁ, ଚକ୍ଷୁ ଆଦି କୁଟିବାର ଶବ୍ଦ ।

ଭାଷ୍ୟ—ବି.(ଭାଷ୍ୟ+ଭା.ଯ)ବ୍ୟାଖ୍ୟାନ. (ଣ.ଯ)ସୂତ୍ରବିବରଣ ଗ୍ରନ୍ଥ, ବ୍ୟାଖ୍ୟାଗ୍ରନ୍ଥ, ସୂତ୍ରମାନଙ୍କର ଟୀକାଥିବା ଗ୍ରନ୍ଥ, ଗ୍ରନ୍ଥବିଶେଷ, (ବିଂ) କଥନୀୟ ।

ଭାଷ୍ୟକାର(କୃତ୍)—ପୁଂ. ବି. (ଭାଷ୍ୟ+କୃ+ଅ.କୃତ୍)ଭାଷ୍ୟଲେଖକ, ଟୀକାକାର, ପତଞ୍ଜଳି ମୁନି ।

ଭାସ୍—ସ୍ତ୍ରୀ. ବି. (ଭାସ୍+କ୍ୱିପ୍) ଆଭା, ଶୋଭା, କାନ୍ତି, ଦୀପ୍ତି, ଆଲୋକ, କିରଣ, ଇଚ୍ଛା ।

ଭାସ—ପୁଂ. ବି. (ଭାସ୍+କ.ଅ) ଗୃଧ୍ରପକ୍ଷୀ, କୁକ୍କୁଟ, ପାଣିକୁଆ, ଗୋଷ୍ଠ, ଗୁହାଳ, ସ୍ୱାଦ, ମିଥ୍ୟା ଜ୍ଞାନ, ମହାଭାରତୋକ୍ତ ପର୍ବତବିଶେଷ, ସ୍ୱପ୍ନବାସବଦତ୍ତା ନାଟକପ୍ରଣେତା, ସହ୍ୟାଦ୍ରିବର୍ତ୍ତିତ ଜଣେ ରାଜା ।

ଭାସକ—ପୁଂ.ବିଂ.ପ୍ରକାଶକ, ଦ୍ୟୋତକ, ମାଳବିକାଗ୍ନିମିତ୍ର ଧୃତ ଜଣେ ନାଟ୍ୟକାର ।

ଭାସକର୍ଣ୍ଣ—ପୁଂ. ବି. (ବି.ଗ୍ରା) ଅଶୋକବନ ଉଜାଡ଼ ସମୟେ ହନୁମାନଙ୍କ ଦ୍ୱାରା ନିହତ ରାବଣର ସେନାପତି-ଅସୁରବିଶେଷ ।

ଭାସଦ—ବି. (ଭାସଦ୍+ଅ) ନିତମ୍ବ, କଟିପ୍ରଦେଶ, ପିଚ୍ଛ ।

ଭାସନ—କ୍ଲୀ.ବି (ଭାସ୍+ଭା.ଅନ)ଦୀପନ, ପ୍ରକାଶନ ।

ଭାସନ୍ତ—ପୁଂ.ବି (ଭାସ୍+କ.ଅନ୍ତ)ସୂର୍ଯ୍ୟ, ଚନ୍ଦ୍ର, ଗୃଧ୍ରପକ୍ଷୀ, ପାଣିକୁଆ, କୁକ୍କୁଟ, ନକ୍ଷତ୍ର, (ବିଂ) ମନୋହର ଦୀପ୍ତିଶୀଳ, ଭାସମାନ, (ସ୍ତ୍ରୀ) ଭାସନ୍ତୀ ।

ଭାସନ୍ତା—ଗ୍ରା. ବି. ଭାସୁଥିବା, ଭାସମାନ ।

ଭାସନ୍ତୀ—ସ୍ତ୍ରୀ. ବି. (ଭାସନ୍ତ+ଈ)ନକ୍ଷତ୍ର, ତାରକା ।

ଭାସମାନ—ବିଂ. ( ଭାସ୍+କ.ଆନ ) ଶୋଭମାନ, ଦୀପ୍ୟମାନ, ଜଳ ସନ୍ତରଣକାରୀ, ପାଣିରେ ଭାସୁଥିବା, (ସ୍ତ୍ରୀ) ଭାସମାନା ।

ଭାସାକେତୁ—ପୁଂ.ବିଂ (ଭାସା+କେତୁ) ଦୀପ୍ତିକାରକ । [ ମତ୍ସ୍ୟ ।

ଭାସିତ—ବିଂ.(ଭାସ+ଦ.ତ)ତେଜୋ-

ଭାସିବା—ଗ୍ରା.କ୍ରି.ଲଘୁ ପଦାର୍ଥ ବା ତରଳ ପଦାର୍ଥ ବାୟୁ ଉପରେ ସଞ୍ଚାଳିତ ହେବା, ବିପନ୍ନହେବା, ସର୍ବସ୍ୱାନ୍ତହେବା

ଭାସିଯିବା—ଗ୍ରା.କ୍ରି. ଜଳ ଉପରେ ଭାସି କରି ଗତି କରିବା, ସର୍ବସ୍ୱାନ୍ତହେବା ।

ଭାସୀ—ପୁଂ. ବିଂ. ( ଭାସ୍+କ.ଇନ୍ ) ଭାସମାନ ଦେଖ, (ସ୍ତ୍ରୀ) ଭାସିନୀ ।

ଭାସୁ—ପୁଂ. ବି. (ଭାସ୍+କ.ଉ)ସୂର୍ଯ୍ୟ ।

ଭାସୁର—ପୁଂ.ବି.(ଭାସ୍+ଉର)କୁଷ୍ଠୌଷଧ, ସ୍ଫଟିକ, ବୀର, (ବିଂ) ଦୀପ୍ତିଯୁକ୍ତ, ଦୀପ୍ୟମାନ,(ସ୍ତ୍ରୀ) ଭାସୁରା ।

ଭାସୁରତାପାଦନ-ବି.କେତେକ ଜଳୀୟ ପଦାର୍ଥ କିଛିକ୍ଷଣ ସ୍ଥିର ହୋଇ ବସିଗଲେ ପାତ୍ର ତଳରେ ଖଣ୍ଡଖଣ୍ଡ ଚକ୍‌ଚକିଆ ବସ୍ତୁ ବସିଯିବା ଅବସ୍ଥା ।

ଭାସୁରପୁଷ୍ପା—ସ୍ତ୍ରୀ.ବି.ବୃଶ୍ଚିକାଳି,ବିଛୁଆତି

ଭାସ୍କର—ବି.ତ୍ରି( ଭାସ୍+କୃ+କ.ଅ ) ସୁବର୍ଣ୍ଣ, ସୂର୍ଯ୍ୟ, ଅଗ୍ନି, ବୀର, ଅର୍କବୃକ୍ଷ, ମହାଦେବ, ଧାତୁପ୍ରସ୍ତରାଦିରେ କାରୁକାର୍ଯ୍ୟ ଓ ଗଠନକାରୀ, ସିଦ୍ଧାନ୍ତ ଶିରୋମଣି ପ୍ରଭୃତି ଜ୍ୟୋତିର୍ଗ୍ରନ୍ଥକାର,ଉଃ ପଃ ପ୍ରଦେଶବାସୀ ଜାତିବିଶେଷ, (ବିଂ) ଦୀପ୍ୟମାନ, (ଗ୍ରା.ବି.)କର୍ପୂର ।

ଭାସ୍କରଦ୍ୟୁତି—ପୁଂ. ବି. ବିଷ୍ଣୁ, (ସ୍ତ୍ରୀ.ବି) ସୂର୍ଯ୍ୟକିରଣ ।

ଭାସ୍କରପଣ୍ଡିତ—ଗ୍ରା. ବି. ନାଗପୁରର ରଘୁଜୀ ଭୋନ୍‌ସଲାଙ୍କ ଦେବାନ୍ ।

ଭାସ୍କରପ୍ରିୟ—ପୁଂ. ବି. ପଦ୍ମରାଗମଣି ।

ଭାସ୍କରରାଓ—ଜଣେ ମହାରାଷ୍ଟ୍ର ପ୍ରତିନିଧି ରଘୁନାଥ ରାଓଙ୍କ ପୁତ୍ର ।

ଭାସ୍କରବଂଶ—ବି. ସୂର୍ଯ୍ୟ ବଂଶ ।

ଭାସ୍କରବିଦ୍ୟା—ବି.କାରୁକାର୍ଯ୍ୟ ନୈପୁଣ୍ୟ ।

ଭାସ୍କରାଚାର୍ଯ୍ୟ—ବି. ଭାରତବର୍ଷର ଜଣେ ସର୍ବପ୍ରଧାନ ଜ୍ୟୋତିର୍ବିଦ୍ ପଣ୍ଡିତ ।

ଭାସ୍କର୍ଯ୍ୟ—ବି. (ଭାସ୍କର+ଯ) ଧାତୁପ୍ରସ୍ତରାଦି ଖୋଦିତ କରି ମୂର୍ତ୍ତି ଗଠନ କରିବା କଳା, ଚଉଷଷ୍ଠି କଳାରୁ ଏକତମ ।

ଭାସ୍କୋଡ଼ିଗାମା—ଯା. ବି. ଇସ୍ପୃଟେସପର ପର୍ତ୍ତୁଗାଲ ଦେଶୀୟ ଖ୍ୟାତ ନାବିକ ।

ଭାସ୍ୱନ—ବିଂ.(ଭାସ୍ୱନ୍+ଅ)ଭସ୍ମବିକାର ।

ଭାସ୍ୱତୀ—ସ୍ତ୍ରୀ. ବି. (ଭାସ୍ୱତ୍+ଈ) ନଦୀବିଶେଷ, ଗୋରୁ ପଦ୍ମା.ଦୀପ୍ତି, ଜ୍ୟୋତିର୍ଗ୍ରନ୍ଥବିଶେଷ, (ବିଂ) ଦୀପ୍ତିମତୀ ।

ଭାସ୍ୱର—ପୁଂ. ବି. (ଭାସ୍+କ.ବର) ଦିନ, ସୂର୍ଯ୍ୟ, ସୂର୍ଯ୍ୟଙ୍କର ଅନୁଚରବିଶେଷ, କୁଷ୍ଠୌଷଧ,(ବିଂ)ଦୀପ୍ତିଯୁକ୍ତ, ଆଭାମୟ, (ସ୍ତ୍ରୀ) ଭାସ୍ୱରା ।

ଭାସ୍ୱାନ୍—ପୁଂ.ବିଂ.(ଭାସ୍+କ.ବତ୍)ଦୀପ୍ତିଶାଳୀ, କିରଣଶାଳୀ, (ସ୍ତ୍ରୀ) ଭାସ୍ୱତୀ, (ପୁଂ.ବି)ସୂର୍ଯ୍ୟ, ବୀର, ଅର୍କବୃକ୍ଷ ।

ଭି—ପ୍ରା.(ସମ୍ଭ)ଅବ୍ୟ. ବି. ମଧ୍ୟ,ଆହୁରି-ମଧ୍ୟ, ଏବଂ ।

ଭିଃ ପିଃ—ଗ୍ରା.ବି. ଦ୍ରବ୍ୟମାନ ଡାକଦ୍ୱାରା ଗ୍ରହିତା ନିକଟରେ ପହଞ୍ଚାଇ ତାଠାରୁ ମୂଲ୍ୟ ଆଦାୟ କରି ପ୍ରେରକକୁ ଦିଆଇବାର ଡାକ ବିଭାଗର ପଦ୍ଧତି ।

ଭିଆ—ପ୍ରା.(ପୁରା) ବିବାହ,(ଗ୍ରା.ବି—ସଂବିଧାନ) ଅର୍ଜନ, ଉପାର୍ଜନ ।

ଭିଆଇବା—ଗ୍ରା.କ୍ରି. ଭେଳିବା,ପଟାଇବା, ସୃଷ୍ଟି କରିବା, ଯୋଗାଡ଼କରିବା,ନିର୍ମାଣ କରିବା, ସୂତ୍ରପାତ ଆରମ୍ଭ କରିବା, ଅର୍ଜନ କରିବା ।

ଭିଆଣ—ଗ୍ରା.ବି. (ସଂ-ବିଧାନ) ରଚନା, ନିର୍ମାଣ, ବନ୍ଦୋବସ୍ତବିଶେଷ, ସୃଷ୍ଟି, ସର୍ଜନ, ଉପାୟ ସୂତ୍ରପାତ, ଜମିଉପରେ କରଧାର୍ଯ୍ୟ, ଜମିର ଜମା ଲେଖାଥିବା କାଗଜ, ଗୁଡ଼ଆଁଦର ପାଗ, ଘଟଣ ।

ଭିକ(ଖ)—ଗ୍ରା.ବି. ଭିକ୍ଷା, ଭିକ୍ଷାଦ୍ରବ୍ୟ, ଭିକ୍ଷାବୃତ୍ତି ।

ଭିକା(ଖା)ରି—ଗ୍ରା.ପୁଂ. ବି. (ସଂ-ଭିକ୍ଷାକାରୀ, ଭିକ୍ଷୁକ, (ସ୍ତ୍ରୀ) ଭିକା(ଖା)ରୁଣୀ, (ପୁଂ.ବିଂ) ଭିକ୍ଷାଜୀବୀ, ପ୍ରାର୍ଥୀ ।

ଭିକାରପଞ୍ଚନାୟକ—ଗ୍ରା.ପୁଂ.ବି.ଜନୈକ ଓଡ଼ିଆ କବି (ଲଙ୍କାଦହନ ନାଟକର ରଚୟିତା ।

ଭିକାରୁଣୀ—ସ୍ତ୍ରୀ. ବି. ଭିକ୍ଷୁକୀ, ଭିକ୍ଷା କରୁଥିବା ସ୍ତ୍ରୀ ।

ଭିକ୍ଟୋରିଆ—ଯା. ବି. ସ୍ୱର୍ଗୀୟା ଭାରତେଶ୍ୱରୀ ଶ୍ରୀମତୀ ମହାରାଣୀ ।

ଭିକ୍ଷଣ—ବି. ଭିକ୍ଷାକରଣ, ଯାଚନ ।

ଭିକ୍ଷା—ସ୍ତ୍ରୀ.ବି.(ଭିକ୍ଷ୍+ଅ+ଆ)ଯାଚନା, ମାଗିବା, ସେବା, ଭୃତି, ଅନୁଗ୍ରହପ୍ରାର୍ଥନା, ଭିକ୍ଷାଲବ୍ଧ ବସ୍ତୁ, ଭିଖମାଗିବା (ଗ୍ରା.ବି) ସନ୍ନ୍ୟାସୀ ଓ ବ୍ରହ୍ମଚାରୀଙ୍କର ଭିକ୍ଷାଲବ୍ଧ ଦ୍ରବ୍ୟଦ୍ୱାରା ଭୋଜନ କ୍ରିୟା ନିର୍ବାହ । [ ଭିକ୍ଷାର୍ଥୀ ।

ଭିକ୍ଷାକ—ପୁଂ.ବି. ଭିକ୍ଷୁକ, ଭିକାରି,(ସ୍ତ୍ରୀ)

ଭିକ୍ଷାକରଣ—କ୍ଲୀ.ବି. ଭିକ୍ଷାକାର୍ଯ୍ୟ,ଭିଖମାଗିବା ।

ଭିକ୍ଷାକରିବା—ଗ୍ରା. କ୍ରି. ଭିଖମାଗିବା, ଅନୁଗ୍ରହପ୍ରାର୍ଥୀ ହେବା,(ସନ୍ନ୍ୟାସୀପକ୍ଷେ) ଭୋଜନ କରିବା ।

ଭିକ୍ଷୁକୀ—ସ୍ତ୍ରୀ.ବି. (ଭିକ୍ଷୁକ+ଈ)ଭିକ୍ଷୁକୀ, ଭିକାରୁଣୀ । [ ଭିକ୍ଷୁକ ।

ଭିକ୍ଷାଚର—ପୁଂ.ବି. (ଭିକ୍ଷା+ଚର୍+ଅ)

ଭିକ୍ଷାଚରଣ—ବି. ଭିକ୍ଷାଚର୍ଯ୍ୟା, ଭିକ୍ଷାମାଗିବା ।

ଭିକ୍ଷାଚର୍ଯ୍ୟା—ବି. (ଭିକ୍ଷା+ଚର୍+ଭା.ଯ+ଆ) ଭିଖ ମାଗି ଜୀବିକା ନିର୍ବାହକରିବା । [ କାର୍ଯ୍ୟ ।

ଭିକ୍ଷାବୃତ—ବି.ଭିକ୍ଷାକାର୍ଯ୍ୟ,ଭିଖମାଗିବା

ଭିକ୍ଷାଜୀବୀ—ପୁଂ. ବିଂ. (ଭିକ୍ଷା+ଜୀବ୍+କ.ଇନ୍)ଯେ ଭିକ୍ଷାମାଗି ପେଟ ପୋଷେ, (ସ୍ତ୍ରୀ) ଭିକ୍ଷାଜୀବିନୀ ।

ଭିକ୍ଷାଟନ—କ୍ଲୀ. ବି. ଭିକ୍ଷାର୍ଥ ଗମନ, ଭିକ୍ଷା କରିବା ନିମନ୍ତେ ଏଘର ସେଘର ଓ ନାନାସ୍ଥାନରେ ବୁଲିବା ।

ଭିକ୍ଷାନ୍ନ—କ୍ଲୀ. ବି. ( କ.ଧା ) ଭିକ୍ଷାଲବ୍ଧ ଖାଦ୍ୟ, ସନ୍ନ୍ୟାସୀଙ୍କର ( ଭିକ୍ଷାଲବ୍ଧ ) ଭୋଜନ ।

ଭିକ୍ଷାପାତ୍ର—କ୍ଲୀ.ବି. ଯେଉଁ ପାତ୍ରରେ ଭିକ୍ଷା ମାଗି ରଖାଯାଏ, ଥାଳ ।

ଭିକ୍ଷାପୁତ୍ର—ବି. ଉପନୟନ ସଂସ୍କାର ପରେ ବାଳକର ବ୍ରହ୍ମଚର୍ଯ୍ୟ ଭଙ୍ଗପୂର୍ବକ ଅପୁତ୍ରିକ ବ୍ୟକ୍ତିଦ୍ୱାରା ପୁତ୍ରରୂପେ ଗୃହୀତ ବ୍ରାହ୍ମଣକୁମାର, ପୋଷ୍ୟପୁତ୍ର, ଦତ୍ତକପୁତ୍ର ।

ଭିକ୍ଷାପ୍ରଚାର—ବି. ଭିକ୍ଷାନିମିତ୍ତ ଗମନ ।

ଭିକ୍ଷାଭୁକ୍—ପୁଂ.ବିଂ. ଭିକ୍ଷାଭୋଜୀ,ଭିକ୍ଷାଦ୍ୱାରା ଉଦରପୂରକ ।

ଭିକ୍ଷାମାଣବ—ପୁଂ.ବି. ଭିକାରି ଲୋକ ।

ଭିକ୍ଷାଭ୍ରମଣ—କ୍ଲୀ.ବି. ଭିକ୍ଷାନିମିତ୍ତ ଭ୍ରମଣ ।

ଭିକ୍ଷାର୍ଥୀ—ପୁଂ. ବିଂ. (ଭିକ୍ଷା+ଅର୍ଥ+ଇନ୍) ଭିକ୍ଷାପ୍ରାର୍ଥୀ, ଭିକ୍ଷୁକ,(ସ୍ତ୍ରୀ)ଭିକ୍ଷାର୍ଥିନୀ ।

ଭିକ୍ଷାଲବ୍ଧ—ବିଂ. (୩ତତ୍)ଭିକ୍ଷା ମାଗିବାଦ୍ୱାରା ପ୍ରାପ୍ତ ।

ଭିକ୍ଷାବାନ୍—ପୁଂ. ବିଂ. (ଭିକ୍ଷା+ବତ୍) ଭିକ୍ଷାକାରୀ, ଭିକାରି ।

ଭିକ୍ଷାବୃତ୍ତି—ପୁଂ.ବିଂ. (ବ.ବ୍ରୀ) ଭିକ୍ଷୁକ, ଭିକ୍ଷୋପଜୀବୀ, ଯେ ଭିଖମାଗି ଚଳେ, (ବି.-କ.ଧା) ଭିକ୍ଷା ବ୍ୟବସାୟ,ଯାଚ୍ଞାରୂପ ଜୀବିକା ।

ଭିକ୍ଷାଶୀ—ପୁଂ. ବିଂ. (ଭିକ୍ଷା+ଅଶ୍+ଇନ୍) ଭିକ୍ଷୁକ, ଭିକ୍ଷୋପଜୀବୀ, ଭିକାରି, (ସ୍ତ୍ରୀ) ଭିକ୍ଷାଶିନୀ ।

ଭିକ୍ଷାହାର—ପୁଂ.ବି. ଭିକ୍ଷାନ୍ନ ।

ଭିକ୍ଷିତ—ବିଂ. ( ଭିକ୍ଷ୍+ମି.ତ) ଯାଚିତ, ପ୍ରାର୍ଥିତ ।

ଭିକ୍ଷିତବ୍ୟ—ବିଂ. (ଭିକ୍ଷ୍+ତବ୍ୟ)ପ୍ରାର୍ଥିତବ୍ୟ, ଯାଚିତବ୍ୟ । [(ସ୍ତ୍ରୀ) ଭିକ୍ଷିଣୀ ।

ଭିକ୍ଷୀ—ପୁଂ.ବିଂ. (ଭିକ୍ଷ୍+ଇନ୍)ଭିକାରି,

ଭିକ୍ଷୁ—ପୁଂ.ବିଂ. (ଭିକ୍ଷ୍+କ.ଉ)ଯାଚକ, (ସ୍ତ୍ରୀ)ଭିକ୍ଷୁକୀ, (ବି) ଚତୁର୍ଥାଶ୍ରମୀ ଦ୍ୱିଜ, ସନ୍ନ୍ୟାସୀ, ଭିକାରି, ବୁଦ୍ଧଶିଷ୍ୟ,ବୌଦ୍ଧ ସନ୍ନ୍ୟାସୀ, ପରିବ୍ରାଜକ, ଦ୍ୱିଜାତିର ବୃଦ୍ଧାବସ୍ଥାରେ ଅବଲମ୍ବନ ଚତୁର୍ଥାଶ୍ରମ ।

ଭିକ୍ଷୁକ—ବି ଓ ବିଂ. ଭିକ୍ଷୁ ଦେଖ ।

ଭିକ୍ଷୁକାଶ୍ରମ—ବି. (୬ତତ୍) ଦ୍ୱିଜାତିଙ୍କର ଶାସ୍ତ୍ରନିର୍ଦ୍ଦିଷ୍ଟ ଚତୁର୍ଥାଶ୍ରମ ।

ଭିକ୍ଷୋପଜୀବୀ—ପୁଂ.ବିଂ. (ଭିକ୍ଷା+ଉପଜୀବନ୍) ଭିକ୍ଷାଜୀବୀ ଦେଖ ।

ଭିକ୍ଷ୍ୟମାଣ—ବିଂ.(ଭିକ୍ଷ୍+କ.ଆନ)ଭିକ୍ଷା ମାଗୁଥିବା ।

ଭିଖ—ଗ୍ରା.ବି. ଭିକ୍ଷା, ଭିକ ଦେଖ ।

ଭିଖାରି—ଗ୍ରା.ପୁଂ.ବି. ଭିକାରି ଦେଖ ।

ଭିଖୁକ—ଗ୍ରା.ବି. ( ସଂ-ଭିକ୍ଷୁକ ) ଭିକ୍ଷୁକ ଦେଖ ।

ଭିଗ୍‌ଲେଇବା—ପ୍ରା. ( ବାଲେ ) କ୍ରି. ଖତେଇହେବା, ମାଗିଲାବେଳେ ଅତିଶୟ ନ୍ୟୁନହେବା ।

ଭିଖାରେନ୍—ପ୍ରା.(ସମ୍ବ)ସ୍ତ୍ରୀ.ବି.ଭିଖାରୁଣୀ

ଭିଜା—ଗ୍ରା.ବିଂ. ଓଦା, ଆର୍ଦ୍ର ।

ଭିଜାଣ—ଗ୍ରା.ବି. ଓଦାକରିବା କ୍ରିୟା ।

ଭିଜିବା—ଗ୍ରା. କ୍ରି. ଓଦାହେବା, ଆର୍ଦ୍ରହେବା ।

ଭିଜିଟ୍—ଯା.ବି. ପରିଦର୍ଶକ କର୍ମଚାରୀଙ୍କ ଦ୍ୱାରା ବିଦ୍ୟାଳୟାଦି ପରିଦର୍ଶନ, ରୋଗୀକୁ ଡାକ୍ତର ଦେଖିବାକୁ ଗଲେ ଓ ରୋଗୀଠାରୁ ପାଇବା ସଲାମୀ ।

ଭିଜାଟେବଲ୍‌ଘିଅ—ଗ୍ରା. ବି. ଉଦ୍ଭିଦରୁ ଜାତ ଘିଅ ।

ଭିଙ୍କ—ଗ୍ରା.ପୁଂ.ବିଂ. (ସଂ-ଶ୍ରଭିଙ୍କ)ଚତୁର

ଭିଟ୍—ପ୍ରା. (ଯାଜପୁର) ବି. ସନ୍ଦିଗ୍ଧସ୍ଥଳ, ସନ୍ଦେହଜନକ ବିଷୟ, ସମସ୍ୟା ।

ଭିଟା—ଗ୍ରା.ବି. (ସଂ-ଭିତ୍ତି) ଜନ୍ମଜମି, ପୈତୃକ ବାସଭୂମି ।

ଭିଡ—ଗ୍ରା.ବି. (ସଂ-ବହୁଳ ) ଜନତା, ଲୋକଗହଳି, ଟଣାଟଣି, ଗୃପ, ଟାଣ କାର୍ଯ୍ୟର ଗୃପ ବା ଆଧିକ୍ୟ, କଷ୍ଟ, ବଡ଼ ଜାଲର ଗୋଟିଏ ଖଣ୍ଡ, (ଗ୍ରା.ବିଂ) ଚୁସ୍ତ, କସାକସ୍ । [ କାର୍ଯ୍ୟ ।

ଭିଡ଼କାମ—ଗ୍ରା. ବି. ବହୁ ପରିଶ୍ରମସାଧ୍ୟ

ଭିଡ଼ଭିଡ଼—ଗ୍ରା.ବି. ଖୁବ୍ ଜନତା, ନିବି-

ଛାଡିଣଯ୍ବ, ଖୁବ୍ ଟଣାଓଟରା, ଅନ୍ୟୋ-ନ୍ୟରେ ଟଣାଟଣି, ବଳ କସାକସି ।
ଭିଡ଼ା--ଗ୍ରା.ବ.(ସଂ-ପୀଡ଼୍ ଧାତୁ)ଦୃଢ଼ବନ୍ଧନ. ଗାଢ଼ାଲିଙ୍ଗନ, ଚୁପିବା, ଭିଡ଼ିବା,କସି-କରି ଟାଣିବା,ସ୍ତ୍ରୀଲୋକମାନେ ଜୁଡ଼ାରେ ବାନ୍ଧିବା ଧଡ଼ି ବା ପାଟଫୁଲ, (ସଂ-ବନ୍ଧୁ-ରର) ପୁଞ୍ଜ, ସମୂହ, ନୌକା ବା ସବାରିଆଦିର ଗତି ସ୍ଥଗିତ କରିବା ।
ଭିଡ଼ା(ଡ଼େ)ଇବା—ଗ୍ରା. କ୍ରି. ଅନ୍ୟଦ୍ୱାରା ଭିଡ଼ିବା କ୍ରିୟା କରାଇବା, ଯୁଟାଇବା, ମିଳିତ କରାଇବା, ସଂଲଗ୍ନ କରାଇବା, କଷ୍ଟସାଧହେବା, ଯାନଆଦିର ଗତି ସ୍ଥଗିତ କରାଇବା ।
ଭିଡ଼ାଭିଡ଼ା—ଗ୍ରା.ବିଂ. (ସଂ-ବନ୍ଧୁରର)ବନ୍ଧୁ
ଭିଡ଼ାଭିଡ଼—ଗ୍ରା.ବି. ଅନ୍ୟୋନ୍ୟ ଟଣା-ଟଣି, ଅନ୍ୟୋନ୍ୟ ସଂଲଗ୍ନହେବା,(ବିଂ) ପରସ୍ପର ଅଲିଙ୍ଗିତ, କୁଣ୍ଢିଆକୁଣ୍ଢି ।
ଭିଡ଼(ଡ଼ୁ)ଣି—ଗ୍ରା.ବି. ଜୁଡ଼ାରେ ବାନ୍ଧିବା ପାଇଁ ବ୍ୟବହୃତ ପାଟଫୁଲ ।
ଭିଡ଼ିବା--ଗ୍ରା.କ୍ରି.(ସଂ-ପୀଡ଼୍ ଧାତୁ)ଚିପିବା, ଜୋରରେ ଟାଣିବା, ଓଟାରିବା, ଦୃଢ଼-ଭାବରେ ବାନ୍ଧିବା, ବାନ୍ଧିବା,ଦୃଢ଼ଭାବେ ଆଲିଙ୍ଗନ କରିବା,ଦୃଢ଼ଭାବରେ ସଂଲଗ୍ନ କରିବା, ଦୃଢ଼ଗତିରେ ଟାଳିବା,ଚିପିବା ଜମାଇବା, ସ୍ଥିରକରିବା, ମୁଠାଇବା, ବନ୍ଧନକୁ ଦୃଢ଼ତର କରିବା ।
ଭିଡ଼ିମ୍ବ—ଗ୍ରା.ବି. ଆନନ୍ଦ ବାଦ୍ୟବିଶେଷ, ଢୋଲ । [ କର ।
ଭିଡ଼ିଭାଡ଼ି—ଗ୍ରା.କ୍ରି.ବିଂ. ଦୃଢ଼ରୂପେ ବାନ୍ଧ
ଭିଡ଼ିହେବା—ଗ୍ରା.କ୍ରି. ବନ୍ଧନମୁକ୍ତ ହେବା ସକାଶେ ଟାଣିଓଟାରି ହେବା, ମୋଡ଼ି-ଭିଡ଼ି ହେବା, ବାନ୍ଧିହେବା ।
ଭିଡ଼େ—କ୍ରି. ବିଂ. ଦୃଢ଼ଭାବରେ, ଖୁବ୍ କସିକରି ।
ଭିଣ୍ଭିଣା—ଗ୍ରା.ବିଂ. ଭିଣାଭିଣା ଦେଖ ।
ଭିଣା—ଗ୍ରା.ବି. (ସଂ-ଭିନ୍ନ) ତୁଳାଆଦିକୁ ପଞ୍ଜିବା, ବିଦାରଣ, ଚଖିର ଗୁମ୍ଫୁଡ଼ା, (ବିଂ) ଯେ ତୁଳା ଭିଣେ,ପିଞ୍ଜା ହୋଇ-ଥିବା (ତୁଳାଆଦି) ।

ଭିଣାଭିଣା—ଗ୍ରା. ବିଂ. ଭିଣା ତୁଳାପରି । ବିଦାରିତ,ଟିକିଟିକି ହୋଇ ବିଦାରିତ ।
ଭିଣାଭିଣି—ଗ୍ରା. ବି. ତୁଳାଭିଣିବା ବା ପିଞ୍ଜିବା କାର୍ଯ୍ୟ, ଗୁମ୍ଫୁଡ଼ାଗୁମ୍ଫୁଡ଼ି ।
ଭିଣିବା—ଗ୍ରା. କ୍ରି. ପିଞ୍ଜିବା, ଟିକିଟିକି କରି ବିଦାରଣ କରିବା ।
ଭିଣିଭିଣି—ଗ୍ରା. କ୍ରି. ବିଂ. ଭଲରୂପେ, ପ୍ରାଞ୍ଜଳଭାବରେ, ତନ୍ନତନ୍ନ କରି ।
ଭିଣିଭିଣିହେବା—ପ୍ରା.(ଯାଜପୁର)ରାଗରେ ଜରଜର ହେବା ।
ଭିଣେ(ଣୋ)ଇ—ଗ୍ରା.ପୁଂ.ବି. (ସଂ-ଭଗ୍ନୀ ପତି) ଭଗିନୀପତି, ତୁଳା ଭିଣିବା କର୍ମ, ତୁଳା ଭିଣିବାର ମଜୁରି ।
ଭିତ୍‌ରବଲ୍‌ଦ୍—ପ୍ରା.(ସମ୍ବ)ବି.ଶଗଡ଼ରେ ବା ହଳରେ ଲଗିଥିବା ବାଆଁପାଖର ବଳଦ ।
ଭିତ—ଗ୍ରା.ଅବ୍ୟ.(ସଂ-ଭିତ୍ତି ବା ଅଭିତଃ) ଆଡ଼, ଦିଗ, ଦଳ, ପକ୍ଷ, ପାଖ ।
ଭିତର—ଗ୍ରା.ବି. (ସଂ-ଅଭ୍ୟନ୍ତର)ଅନ୍ତଃ-ସ୍ଥଳ, ମଧ୍ୟ, ଅନ୍ତଃପୁର, ମନ, ହୃଦୟ, ଆନ୍ତରିକ ଇଚ୍ଛା, (ବିଂ) ଆଭ୍ୟନ୍ତରୀଣ, ଗୁପ୍ତ, ଆନ୍ତରିକ,ମାନସିକ,ଦୁଇର ମଧ୍ୟ-ବର୍ତ୍ତୀ ।
ଭିତରଗୁଡ଼—ପ୍ରା. ( ପୁରୀ ) ମନ୍ଦିରରେ ସେବକମାନଙ୍କ ତତ୍ତ୍ୱାବଧାରକ କର୍ମ-ଚାରୀଙ୍କର ରାଜଦତ୍ତ ଉପାଧିବିଶେଷ ।
ଭିତରଦୋଳ—ଗ୍ରା.ବି. ଶ୍ରୀକୃଷ୍ଣ ବିଗ୍ରହଙ୍କ ଉପରେ ଫାଲ୍‌ଗୁନ ଶୁକ୍ଳ ନବମୀ ଦିନ ଅବିର ଅର୍ପଣ ।
ଭିତରପୂଜା—ଗ୍ରା. ବି. ଦୁର୍ଗାଙ୍କର ଶରତ୍‌ କାଳୀନ ଷୋଡ଼ଶଦିନବ୍ୟାପୀ ପୂଜନର ଆରମ୍ଭ (ଆଶ୍ୱିନ ଶୁକ୍ଳ ସପ୍ତମୀ)ପର୍ଯ୍ୟନ୍ତ ଦୁର୍ଗାଙ୍କର ପୂଜା ।
ଭିତରବାହାର—ଗ୍ରା.ବି. (ସଂ-ଅଭ୍ୟନ୍ତର +ବହିଃ) ଅନ୍ତର ଓ ବହିଃସ୍ଥଳ, ମନ ଓ ଦେହ, ମାନସିକ ଚିନ୍ତା ଓ ବହିଃ-ପ୍ରକାଶିତ ହାବଭାବ ।
ଭିତରସେବା—ଗ୍ରା. ବି. ଦେବଦେବୀ-ମାନଙ୍କ ମନ୍ଦିର ମଧ୍ୟରେ କରାଯିବା ସେବା ।

ଭିତ(ଢ)ର—ଗ୍ରା. ବିଂ. (ସଂ-ଆଭ୍ୟନ୍ତ-ରିକ) ଆଭ୍ୟନ୍ତରୀଣ, ଆନ୍ତରିକ, ଗୁପ୍ତ, ଅନ୍ତଃପୁର ସମ୍ବନ୍ଧୀୟ,(ପ୍ରା. ଭିତରିଆଖି) ଭିତରକୁ, ମଧ୍ୟରେ ।
ଭିତ(ଢ)ରିଆ—ଗ୍ରା. ବିଂ. ଆଭ୍ୟନ୍ତରୀଣ, ରହସ୍ୟଭେଦକାରୀ, ଆନ୍ତରିକ, ମାନ-ସିକ, ଗୁପ୍ତ, ଅନ୍ତଃପୁର ସମ୍ବନ୍ଧୀୟ,(ବି) ରହସ୍ୟଭେଦକାରୀ ବ୍ୟକ୍ତି ।
ଭିତ(ଢ)ରିଆଟୋକା(ପିଲା)—ଗ୍ରା. ବି. ରାଜଅନ୍ତଃପୁରକୁ ଖବର ନିଆ ଅଣା କରିବା ବାଳକ ଚାକର ।
ଭିତ(ଢ)ରିଖବର—ଗ୍ରା.ବି. ଆଭ୍ୟନ୍ତରୀଣ ସମ୍ବାଦ, ଗୁପ୍ତଖବର ।
ଭିତ(ଢ)ରିପେଚ(ଞ୍ଚ)—ଗ୍ରା. ବି. କୂଟ-ନୀତି ବା କୌଶଳ ।
ଭିତ(ଢ)ରିଭିତ(ଢ)ରି—ଗ୍ରା. କ୍ରି. ବିଂ. ଗୋପନରେ ।
ଭିତରେ—ଗ୍ରା. କ୍ରି. ବିଂ. ଅବ୍ୟ. ଅନ୍ତଃ-ସ୍ଥଳରେ,ଅନେକଙ୍କ ମଧ୍ୟରେ,ମନରେ, ଦେହ, ଦ୍ୱାରା, ଗୋପନରେ, ସମୟର ସୀମା ମଧ୍ୟରେ ।
ଭିତରେଭିତରେ—ଗ୍ରା. କ୍ରି. ବିଂ.ଆପଣା ଆପଣା ମଧ୍ୟରେ । [ ତରଫ ।
ଭିତା—ପ୍ରା. (ମେଦିନୀ) ବି. ଧାର, ଦିଗ,
ଭିତେ—ପ୍ରା. (କଟକ) ଅବ୍ୟ. ଦ୍ୱାରା ।
ଭିତ୍ତ—ବିଂ. (ଭିଦ୍ + ର୍ମ.ତ) ଖଣ୍ଡିତ ।
ଭିତ୍ତି—ବି. ( ଭିଦ୍ + ର୍ମ.ତି ) ପ୍ରଦେଶ, ବିଭାଗ, ପାଚେରି, କାନ୍ଥ, ଖଣ୍ଡ,ପ୍ରଭେଦ, ମୂଳଦୁଆ ।
ଭିତ୍ତିକା—ସ୍ତ୍ରୀ. (ଭିତ୍ତି+କ+ଆ)କାନ୍ଥ ।
ଭିତ୍ତିମାସ—ବି. (୬ତତ୍ପୁ)କାନ୍ଥର ଉପରି ଭାଗ, କାନ୍ଥର ଦେହ ।
ଭିତ୍ତିଚୌର—ବି. ସିନ୍ଧିଆଳ ଚୋର ।
ଭିତ୍ତିଭୂମି—ବି. (୬ତତ୍ପୁ) ଘରର ମୂଳ-ଦୁଆ ।
ଭିତ୍ତିମୂଳ—ବି. (୬ତତ୍ପୁ) ମୂଳଦୁଆ ।
ଭିତ୍ତିହୀନ—ବିଂ. (୩ତତ୍ପୁ) ଯାହାର ମୂଳ-ଦୁଆ ନ ଥାଏ ।
ଭିଦ୍—ବିଂ.(ଭିଦ୍+କ.କ୍ୱିପ୍)ଭେଦକାରୀ ।

ଭିଦା—ବି.(ଭିଦ୍ + ଭା ଅ + ଆ) ଛେଦନ, କର୍ତ୍ତନ, ଭେଦ କରିବା, ଭିତରକୁ ପଶିବା, ଫାଡ଼ିବା, ବିଦାରଣ,ପାର୍ଥକ୍ୟ, ପ୍ରଭେଦ ।

ଭିଦୁ—ପୁଂ. ବି. (ଭିଦ୍+ଉ) ବଜ୍ର ।

ଭିଦୁର—ବି. ( ଭିଦ୍ + କ.ଉର ) ବଜ୍ର. ପ୍ଲକ୍ଷ ବୃକ୍ଷ,(ବିଂ)ମିଶ୍ର, ଏକତ୍ରିତ, ଭେଦଶୀଳ, ଭଙ୍ଗୁର ।

ଭିଦୁରସ୍ୱନ—ବି. ଅସୁରଭେଦ, ବଜ୍ର ନିର୍ଘୋଷ, (ବିଂ.ବି.ସ୍ତ୍ରୀ) ବଜ୍ରପରି ଶବ୍ଦକାରୀ ।

ଭିଦେଲିମ—ତ୍ରି. ବିଂ. (ଭିଦ୍+ଏଲିମ) ସ୍ୱୟଂ ଭିଦ୍ୟମାନ, ଭଙ୍ଗୁର ।

ଭିଦ୍ୟ—ପୁଂ.ବି. (ଭିଦ୍+ଯ)କୂଳଭେଦକାରୀ ନଦ, (ବିଂ) ଭେଦନୀୟ, ଯାହାକୁ ଭେଦ କରିବା ଉଚିତ ।

ଭିଦ୍ୟମାନ—ବିଂ(ଭିଦ୍+କ.ଆନ)ଯାହା ଭେଦ କରୁଅଛି, (ମିଂ.ଆନ) ଯାହାକୁ ଭେଦ କରି ଯାଉଅଛି ।

ଭିଦ୍ର—ବି. (ଭିଦ୍+ର) ବଜ୍ର ।

ଭିନେ—ଗ୍ରା.ବିଂ.(ସଂ-ଭିନ୍ନ) ଭିନ, ପୃଥଗନ୍ନ ଓ ପୃଥଗ୍ ବାସହୋଇଥିବା,ସ୍ୱତନ୍ତ୍ର

ଭିନେହେବା—ଗ୍ରା. କ୍ରି. ପୃଥଗନ୍ନ ବା ପୃଥକ୍‌ବାସ ହେବା ।

ଭିନ୍ଦପାଲ—ପୁଂ. ବି. (ଭିନ୍ଦ+ପାଲ+କ.ଅ) ହସ୍ତପ୍ରମାଣ କାଣ୍ଡ, ନାଳିକାସ୍ତ୍ର, ନଳବନ୍ଧୁକ,ନିକ୍ଷେପଣୀୟ ଅସ୍ତ୍ରବିଶେଷ, ଲଣ୍ଡିଆ ।

ଭିନ୍ନ—ତ୍ରି. ବିଂ. (ଭିଦ୍+ମିଂ.ତ) ଛିନ୍ନ, ବିଦାରିତ, ବିକଶିତ, ତ୍ୟକ୍ତ, ଶିଥିଳିତ, ବିଫଳିତ, ମର୍ଦ୍ଦିତ,ଭେଦବିଶିଷ୍ଟ, ଭଗ୍ନ, ସଙ୍ଗତ, ଅନ୍ୟ,ବିପରୀତ, ଲୁଣ୍ଠିତ,ସ୍ଖଳିତ, ସ୍ପୃଷ୍ଟ, ମଦସ୍ରାବୀ, ବିଦଳିତ, ବିଶୀର୍ଣ୍ଣ, ଖଣ୍ଡିତ, ବିକଳିତ, ମିଳିତ, ମିଶ୍ରିତ, ବିନା, ବ୍ୟତୀତ, (ସ୍ତ୍ରୀ) ଭିନ୍ନା, (ଗ୍ରା.ବି) ଭଗ୍ନାଂଶ ।

ଭିନ୍ନକ—ପୁଂ. ବି. (ଭିନ୍ନ+କ)ବୌଦ୍ଧଭିକ୍ଷୁ, କ୍ଷପଣକ ।

ଭିନ୍ନକର୍ଣ୍ଣ—ପୁଂ.ବିଂ. ଯାହାର କର୍ଣ୍ଣ ଛିଣ୍ଡି ଯାଇଅଛି, କାନ ଛିଣ୍ଡି ଯାଇଥିବା (ପଶୁଭେଦ) ।

ଭିନ୍ନକ୍ରମ—ପୁଂ.ବି. (ବି.ସ୍ତ୍ରୀ) ଭଗ୍ନପ୍ରକ୍ରମାଖ୍ୟ କାବ୍ୟଗତ ଦୋଷ ।

ଭିନ୍ନଗନ୍ଧିକା—ସ୍ତ୍ରୀ. ବି. କର୍କଟୀ, ଫୁଟି, କାକୁଡ଼ି ।

ଭିନ୍ନଗୁଣନ—କ୍ଲୀ. ବି. ଲୀଳାବତୀଉକ୍ତ ଭଗ୍ନାଂଶ ରାଶିମାନଙ୍କର ଗୁଣନ ।

ଭିନ୍ନଘନ—ପୁଂ. ବି. ଭଗ୍ନାଂଶର ଘନ ପରିମାଣ ବା ଗୁଣୀକରଣ ।

ଭିନ୍ନଜାତି—ଗ୍ରା. ବି. ବର୍ଣ୍ଣାନ୍ତର, ଅନ୍ୟ ଜାତି ବା ଶ୍ରେଣୀ ।

ଭିନ୍ନଜାତୀୟ—ତ୍ରି. ବିଂ. ପୃଥକ୍ ଜାତୀୟ, ଅନ୍ୟ ଜାତିସମ୍ବନ୍ଧୀୟ, ଏକ ରୂପର ଭିନ୍ନରୂପ ।

ଭିନ୍ନତ୍ୱ—କ୍ଲୀ. ବି. ଭିନ୍ନର ଭାବ ବା ଧର୍ମ୍ମ, ପୃଥକ୍ତ୍ୱ ।

ଭିନ୍ନଦର୍ଶୀ—ପୁଂ. ବିଂ. (ଭିନ୍ନ+ଦୃଶ୍+ଇନ୍) ପୃଥକ୍‌ଦ୍ରଷ୍ଟା, ବିଭିନ୍ନ ମତଦ୍ରଷ୍ଟା ।

ଭିନ୍ନଦୃକ୍—ବିଂ. (ଭିନ୍ନ+ଦୃଶ୍+କ୍ୱିପ୍)ଭିନ୍ନ ଦର୍ଶନକାରୀ ।

ଭିନ୍ନପରିକ୍ରମ—କ୍ଲୀ. ବି. ଲୀଳାବତୀଉକ୍ତ ସଚ୍ଛେଦର ସଙ୍କଳନ, ବ୍ୟବକଳନାଦି ରୂପ ଅଙ୍କସଂସ୍କାରାଷ୍ଟକ ।

ଭିନ୍ନପ୍ରକାର—ବି. (କ.ଧା) ଅନ୍ୟପ୍ରକାର (ବିଂ.ବି.ସ୍ତ୍ରୀ) ଅନ୍ୟପ୍ରକାରର ।

ଭିନ୍ନଭିନ୍ନ—ଗ୍ରା.ବିଂ. ଖଣ୍ଡଖଣ୍ଡ, ଟିକିଟିକି, ପୃଥକ୍ ପୃଥକ୍ ।

ଭିନ୍ନଭିନ୍ନାତ୍ମା—ପୁଂ. ବି. ଚଣକ, ଚଣା, ସୋଲ୍, ବୁଟ ।

ଭିନ୍ନମତ—ବି(କ.ଧା)ପୃଥକ୍ ମତ,ଅନ୍ୟମତ, (ପୁଂ.ବିଂ) ଭିନ୍ନମତାବଲମ୍ବୀ ।

ଭିନ୍ନମତାବଲମ୍ବୀ—ପୁଂ.ବିଂ. ପୃଥକ୍ ମତ ପୋଷଣକାରୀ, (ସ୍ତ୍ରୀ) ଲମ୍ବିନୀ ।

ଭିନ୍ନଯୋଜନୀ—ସ୍ତ୍ରୀ. ବି. (ଭିନ୍ନ+ଯୁଜ୍+ଣିଚ୍+ଇନ୍+ଈ)ପାଷାଣଭେଦୀ ଗଛ

ଭିନ୍ନରୁଚି—ବିଂ. (ବି.ସ୍ତ୍ରୀ) ପୃଥକ୍ ରୁଚିବିଶିଷ୍ଟ, (ବି.କ.ଧା) ପୃଥକ୍ ରୁଚି ।

ଭିନ୍ନଲିଙ୍ଗ—କ୍ଲୀ. ବି. ଅଲଂକାରଭେଦ, ପୃଥକ୍‌ଲିଙ୍ଗ, ପୃଥକ୍ ଚିହ୍ନ ।

ଭିନ୍ନବର୍ଗ—ପୁଂ. ବି. ଭଗ୍ନାଂଶ ବର୍ଗମୂଳ, (ବିଂ) ଭିନ୍ନଜାତୀୟ ।

ଭିନ୍ନବର୍ଣ୍ଣ—କ୍ଲୀ.ବି.ବ୍ରାହ୍ମଣାଦି ବିଭିନ୍ନ ବର୍ଣ୍ଣ

ଭିନ୍ନବର୍ତ୍ତୀ—ପୁଂ. ବି. ଘୋଡ଼ାର ଶୂଳରୋଗବିଶେଷ ।

ଭିନ୍ନବର୍ଚ୍ଚସ୍କତା—ସ୍ତ୍ରୀ.ବି. ପିତ୍ତଜନ୍ୟ ମଳଭେଦ ରୋଗ ।

ଭିନ୍ନବୃତ୍ତ—ତ୍ରି.ବିଂ.ବିଭିନ୍ନ ଛନ୍ଦରେ ଗ୍ରଥିତ

ଭିନ୍ନବୃତ୍ତି—ବି. (କ.ଧା) ବିଭିନ୍ନ ରୂପ ଜୀବନୋପାୟ,ସ୍ୱତନ୍ତ୍ର ବ୍ୟବସାୟ,ନାନାପ୍ରକାର ଜୀବିକା ।

ଭିନ୍ନବ୍ୟବକଳିତ—କ୍ଲୀ. ବି. ଭଗ୍ନାଂଶର ବ୍ୟବକଳନ ।

ଭିନ୍ନସଙ୍କଳିତ—ବି. ଭଗ୍ନାଂଶର ସଙ୍କଳନ

ଭିନ୍ନାଞ୍ଜନ—କ୍ଲୀ. ବି. ରସାଞ୍ଜନ ଚୂର୍ଣ୍ଣ, ଦଳିତାଞ୍ଜନ । [ ଭାବ ।

ଭିନ୍ନାଭିନ୍ନ—ଗ୍ରା.ବି. ପ୍ରଭେଦ, ଅନ୍ୟଥା-

ଭିନ୍ନାର୍ଥ—ବି. (କ.ଧା) ପୃଥକ୍ ବା ଅନ୍ୟ ଅର୍ଥ, (ବିଂ.ବି.ସ୍ତ୍ରୀ) ଭିନ୍ନାର୍ଥକ ଦେଖ ।

ଭିନ୍ନାର୍ଥକ—ତ୍ରି. ବିଂ. ଅନ୍ୟ ଅର୍ଥଯୁକ୍ତ, ପୃଥକ୍ ତାତ୍ପର୍ଯ୍ୟବିଶିଷ୍ଟ ।

ଭିନ୍ନେ—ଗ୍ରା.ବିଂ. ସ୍ୱତନ୍ତ୍ର, ପୃଥକ୍,ଅସାଧାରଣ, ପୃଥଗନ୍ନବାସ ।

ଭିୟଃ—କ୍ଲୀ. ବି. (ଭୀ+ଅସ୍) ଭୟ ।

ଭିୟା—ସ୍ତ୍ରୀ.ବି (ଭୀ+ଭା.ଆ) ଭୟ,ଶଙ୍କା

ଭିରଙ୍ଗ—ପ୍ରା. (ସମ୍ବ)ବି. ଘୃଣା ।

ଭିରଣ୍ଟିକ—ପୁଂ. ବି. ବୃଦ୍ଧଶୃଗାଳ, ବୁଢ଼ାଶିଆଳ । [ କାଇଞ୍ଚ ।

ଭିରଣ୍ଡିକା—ସ୍ତ୍ରୀ. ବି. ଶ୍ୱେତ ଗୁଞ୍ଜା, ଧଳା

ଭିରୁଡ଼ି—ଗ୍ରା. ବି. ପୀତଭ୍ରମର, ବିରୁଡ଼ି, (ପ୍ରା. ସିଂହଭୂମ) ଭିରୁଲ୍ ।

ଭିଲ୍(ର)—ପ୍ରା.(ସମ୍ବ)ବି. ଦଳ, ଗୋଷ୍ଠୀ, ମେଳା ।

ଭିଲ—ଗ୍ରା. ବି. ଜଙ୍ଗଲୀ ଜାତିବିଶେଷ ।

ଭିଲଙ୍ଗ—ଭାଗୀରଥୀର କଳେବରବର୍ଦ୍ଧିନୀ ପାର୍ବତ୍ୟସ୍ଥ ସ୍ରୋତସ୍ୱିନୀ(ନଦୀ)ବିଶେଷ ।

ଭିଲଷ—ଗ୍ରା. ବି. ଆର୍ଯ୍ୟଭାଷାର ଶାଖାବିଶେଷ, ଭିଲ୍‌ଭାଷା ।

ଭଲ୍ଲ—ମଧ୍ୟଭାରତବାସୀ ଭିଲ୍ଲ ଜାତିର ଶାଖାବିଶେଷ ।

ଭିଲ୍ଲ—ପୁଂ.ବି. (ଭିଲ+କ.ଲ) ଭାରତର ଜଙ୍ଗଲୀ ଅନାର୍ଯ୍ୟ ଜାତିବିଶେଷ, (ସ୍ତ୍ରୀ) ଭିଲ୍ଲୀ ।    [ ବିଶେଷ ।

ଭିଲ୍ଲକେଦାର—ହିମାଳୟର ଶିବଲିଙ୍ଗ-

ଭିଲ୍ଲଗବୀ—ସ୍ତ୍ରୀ. ବି. ଗବୟ, ବଣଗାଈ ।

ଭିଲ୍ଲତରୁ—ପୁଂ. ବି. ଲୋଧଗଛ ଓ ଫୁଲ

ଭିଲ୍ଲଭୂଷଣ—କ୍ଲୀ. ବି. ଗୁଞ୍ଜା, କାଇଁଚ ।

ଭିଲ୍ଲା—ପ୍ରା. ( ଗଞ୍ଜାମ )ବିଂ. ପରହାସ-ପ୍ରିୟ (ବ୍ୟକ୍ତି) ।

ଭିଲ୍ଲୀ—ସ୍ତ୍ରୀ. ବି. (ଭିଲ୍ଲ+କ.ଈ) ଲୋଧ୍ର, ଲୋଧବୃକ୍ଷ, ଭିଲ୍ଲଜାତୀୟା ସ୍ତ୍ରୀ ।

ଭିଲ୍ଲୋଟ—ପୁଂ.ବି.ଲୋଧ୍ରବୃକ୍ଷ, ଲୋଧଗଛ

ଭିଷକ୍—ପୁଂ.ବି. (ଭିଷ୍+ଅକ) ବୈଦ୍ୟ, ଚିକିତ୍ସକ, ଔଷଧ, ବିଷ୍ଣୁ ।

ଭିଷକ୍ପାଶ—ବି. ଅଧମ ବୈଦ୍ୟ ।

ଭିଷକ୍ପ୍ରିୟା—ସ୍ତ୍ରୀ. ବି. ଗୁଡୁଚୀ, ଗୁଳୁଚୀ

ଭିଷକ୍(ଗ୍)ବୃତ୍ତି—ବି. (୬ତତ୍) ବୈଦ୍ୟ-ବୃତ୍ତି, ଚିକିତ୍ସା ବ୍ୟବସାୟ ।

ଭିଷକ୍(ଗ୍)ଜିତ—ବି. (ବ.ବ୍ରୀ) ଔଷଧ ।

ଭିଷକ୍(ଗ୍)ଭଦ୍ରା—ସ୍ତ୍ରୀ. ବି. ଭଦ୍ରା, ଶୁଭ-ଦାୟିକା, ଭଦ୍ରଦନ୍ତୀ ।

ଭିଷକ୍(ଗ୍ମା)ତା—ସ୍ତ୍ରୀ.ବି.ବାସକ,ବାସଙ୍ଗ ।

ଭିଷକ୍(ଗ୍)ରତ୍ନ—ବି. (୭ତତ୍) ଉତ୍କୃଷ୍ଟ ଚିକିତ୍ସକ ।    [ ଭେଦ ।

ଭିଷଜାବର୍ତ୍ତ—ପୁଂ. ବି. ବିଷ୍ଣୁଙ୍କର ନାମ-

ଭିସ୍ତି—ଗ୍ରା.ବି. (ଫା॰ଭିସ୍ତା) ମସକ, ପାଣି-ବୋହିବା ନିମନ୍ତେ ଏକପ୍ରକାର ଚମ-ମୁଣା, ଜଳବାହୀ ମୁସଲମାନସମ୍ପ୍ରଦାୟ ବିଶେଷ ।

ଭିସ୍ସା—ସ୍ତ୍ରୀ. ବି. (ଭିଦ୍+ସୋ+କ.ଅ +ଆ) ଅନ୍ନ, ଭାତ ।    [ ଭାତ ।

ଭିସ୍ସ(ସି)ଟା—ସ୍ତ୍ରୀ.ବି.ଦଗ୍ଧାନ୍ନ, ପୋଡ଼ା-

ଭୀ—ସ୍ତ୍ରୀ. ବି. (ଭୀ+କ୍ୱିପ୍) ଭୟ, ଭୟ-କମ୍ପ, ଶଙ୍କା, ତ୍ରାସ ।

ଭୀକର—ତ୍ରି. ବିଂ. (ଭୀ+କୃ+ଅ)ଭୟ-ଙ୍କର, ଭୀତିପ୍ରଦାୟକ ।

ଭୀଡ଼ା—ଗ୍ରା. ବି. (ଫା॰ବହୁତର)ସମୂହ ।

ଭୀଣୀ—ସ୍ତ୍ରୀ.ବି.କୁମାରାନୁଚର ମାତୃଭେଦ

ଭୀତ—କ୍ଲୀ.ବି.(ଭୀ+ଭା.ତ) ଭୟ, (ପୁଂ. ବି) ମନ୍ତ୍ରଭେଦ, (ବିଂ. କ.ତ) ଭୟଯୁକ୍ତ, ଆଶଙ୍କିତ, ତ୍ରସ୍ତ, (ସ୍ତ୍ରୀ) ଭୀତା ।

ଭୀତକ—ଗ୍ରା.ପୁଂ.ବିଂ. ଭୟବିହ୍ୱଳ ।

ଭୀତଚିତ୍ତ—ବି.(କ.ଧା)ଭୟବିହ୍ୱଳ ହୃଦୟ

ଭୀତତ୍ରସ୍ତ—ପୁଂ.ବିଂ. ଅତ୍ୟନ୍ତ ତ୍ରସ୍ତ, (ସ୍ତ୍ରୀ) ଭୀତତ୍ରସ୍ତା ।

ଭୀତଧୀ—ବି. (ବ.ବ୍ରୀ) ଭୟ ଯୋଗୁଁ ଯାହାର ବୁଦ୍ଧି ବିହ୍ୱଳ ହୋଇଅଛି ।

ଭୀତହେବା—ଗ୍ରା. କ୍ରି. ଭୟ ପାଇବା ।

ଭୀତି—ସ୍ତ୍ରୀ. ବି. (ଭୀ+ଭା.ତି)ଭୟ, କମ୍ପ, ଆଶଙ୍କା, ତ୍ରାସ ।

ଭୀତିକର—ବିଂ. (ଭୀତି+କୃ+କ.ଅ) ଭୟ ଉତ୍ପାଦକ, ଯାହା ଭୟ ଜନ୍ମାଏ, (ସ୍ତ୍ରୀ) ଭୀତିକରୀ ।

ଭୀତିକୃତ୍—ବିଂ. ( ଭୀତି+କୃ+କ୍ୱିପ୍ ) ଭୟକାରକ, ଭୟଙ୍କର ।

ଭୀତିବିହ୍ୱଳ—ପୁଂ.ବିଂ(୩ତତ୍)ଭୟତ୍ରସ୍ତ ।

ଭୀରୁ—ଗ୍ରା.ବିଂ.ଭୀରୁ,ସ୍ୱଭାବତଃ ଭୟଶୀଳ

ଭୀମ—ପୁଂ.ବିଂ.(ଭୀ+ମ) ଭୀଷଣ, ଭୟା-ନକ, ଭୟଙ୍କର,(ସ୍ତ୍ରୀ)ଭୀମା, (ବି)ଭୟା-ନକ ରସ, ଶିବ, ବିଷ୍ଣୁ, ମହାଦେବ-ଙ୍କର ଅଷ୍ଟମୂର୍ତ୍ତିର ଅନ୍ତର୍ଗତ ଆକାଶ-ମୂର୍ତ୍ତି, ଗନ୍ଧର୍ବବିଶେଷ, ଅମ୍ଳବେତସ, ଆଙ୍ଗିରସ ବହ୍ନିଭେଦ, ଦାନବଭେଦ, ଅମାବସୁବଂଶୀୟ ନୃପଭେଦ, ସାତ୍ୱତ-ବଂଶୀୟ ରାଜା,ଅଷ୍ଟାଦଶାକ୍ଷର ମନ୍ତ୍ରଭେଦ । ମଧ୍ୟମ ପାଣ୍ଡବ ଭୀମସେନ, କୁମ୍ଭକର୍ଣ୍ଣ-ଙ୍କର ପୁତ୍ର, ଦମୟନ୍ତୀଙ୍କ ପିତା, ଭୀମ-ରାଜା ।

ଭୀମକ—ପୁଂ.ବି. ପାର୍ବତୀୟ କ୍ରୋଧଜାତ ଗଣଭେଦ, ଭୀମ ଶବ୍ଦାର୍ଥ ।

ଭୀମକର୍ମା—ପୁଂ. ବିଂ. (ବ.ବ୍ରୀ) ଭୀଷଣ କର୍ମକାରୀ, ବିଶେଷ କର୍ମୀ (ବ୍ୟକ୍ତି) ।

ଭୀମଗର୍ଜନ—ବି(କ.ଧା)ଭୀମନାଦ ଦେବ, (ବିଂ.ବ.ବ୍ରୀ)ଯାହାର ଗର୍ଜନ ଭୟାନକ ।

ଭୀମତିଥି—ପୁଂ.ବି.ଭୀମ ଏକାଦଶୀ, ମାଘ-ମାସର ଶୁକ୍ଳ ଏକାଦଶୀ ତିଥି ।

ଭୀମଦର୍ଶନ—ପୁଂ. ବିଂ. (ବ.ବ୍ରୀ) ଭୀଷଣ ରୂପବିଶିଷ୍ଟ, ଯାହାଙ୍କୁ ଦେଖିଲେ ଭୟ ହୁଏ, (ସ୍ତ୍ରୀ) ଭୀମଦର୍ଶନା ।

ଭୀମଦାସ—ଗ୍ରା.ବି. ପୁରୀଜିଲ୍ଲାର ଗୌଡ଼ୀୟ ବୈଷ୍ଣବମତାବଲମ୍ବୀ କରଣ କବି ।

ଭୀମଦ୍ୱାଦଶୀ—ସ୍ତ୍ରୀ. ବି. (କ.ଧା) ମାଘ-ମାସର ଶୁକ୍ଳଦ୍ୱାଦଶୀ ବ୍ରତଭେଦ ।

ଭୀମଧୀବର—ଗ୍ରା.ବି. ଓଡ଼ିଆ କପଟପାଶା ନାମକ କାବ୍ୟର କବିତାର ରଚୟିତା ।

ଭୀମନାଦ—ପୁଂ ବି. ( କ.ଧା ) ବିକଟ ଗର୍ଜନ, ସିଂହ, ଭୟାନକ ଶବ୍ଦ, (ପୁଂ. ବି) ଭୟାନକ ଶବ୍ଦବିଶିଷ୍ଟ, ଭୟଙ୍କର ନାଦକାରୀ ।

ଭୀମପରାକ୍ରମ—ତ୍ରି. ବିଂ. (ବ.ବ୍ରୀ) ଭୀଷଣ ପରାକ୍ରମଯୁକ୍ତ, (ପୁଂ.ବି) ବିଷ୍ଣୁ, ଜଣେ ପାଣ୍ଡ୍ୟରାଜ ।

ଭୀମପାଲ—ପୁଂ. ବି. ଜଣେ ନରପତି, ଏ ବର୍ଷାୟୁର୍ବେଦ ରଚନା କରିଥିଲେ ।

ଭୀମପୁର—କ୍ଲୀ. ବି. ବିଦର୍ଭରାଜନଗରୀ, କୁଣ୍ଡିନପୁର ।    [ କବି ।

ଭୀମଭୋଇ—ଗ୍ରା. ବି. ଅନ୍ଧ କନ୍ଧ ଓଡ଼ିଆ

ଭୀମମୁଖ—ବିଂ. (ବ.ବ୍ରୀ) ଭୟଙ୍କର ମୁଖ-ବିଶିଷ୍ଟ, (ପୁଂ.ବି) ବାଣଭେଦ ।

ଭୀମଯୁ—ସ୍ତ୍ରୀ. ବି. ଆପଣାଠାରେ ବୃଷଭ ଇଚ୍ଛା କରୁଥିବା ଗାଈ ।

ଭୀମର—କ୍ଲୀ. ବି. ଯୁଦ୍ଧ ।

ଭୀମରଡ଼ି—ଗ୍ରା. ବି. ଭୀମନାଦ, ବିକଟ ଗର୍ଜନ, ଦୁର୍ଯ୍ୟୋଧନକୁ ଯୁଦ୍ଧପାଇଁ ଡାକିଲାବେଳେ ଭୀମ କରିଥିବା ରଡ଼ି ।

ଭୀମରଥ—ପୁଂ.ବି.ଭୟାନକ ରଥ,ଭୀଷଣ ଗତି, ଅସୁରବିଶେଷ, ଧୃତରାଷ୍ଟ୍ରଙ୍କର ପୁତ୍ରଭେଦ,ଧନ୍ୱନ୍ତରିଙ୍କର ପୌତ୍ର,ବିକୃ-ତିର ପୁତ୍ରଭେଦ, ଶ୍ରୀକୃଷ୍ଣଙ୍କର ପୁତ୍ର, କେତୁମାନର ପୁତ୍ର ।

ଭୀମରଥୀ—ସ୍ତ୍ରୀ. ବି. ମନୁଷ୍ୟମାନଙ୍କର ବୃଦ୍ଧାବସ୍ଥା, ୭୭ ବର୍ଷ ୭ମାସ ବୟସର ସପ୍ତମୀ ରାତ୍ରି, ନଦୀବିଶେଷ ।

ଭୀମରାଜ—ବି. ସ୍ୱନାମଖ୍ୟାତ କୃଷ୍ଣବର୍ଣ୍ଣ ପକ୍ଷିବିଶେଷ ।

ଭୀମରଥି—ସ୍ତ୍ରୀ.ବ. ଭୟାନକ ରଥି,ମନୁଷ୍ୟର ୭୭ ବର୍ଷର ସପ୍ତମ ମାସର ସପ୍ତମ ରାତ୍ରି ।
ଭୀମଲ—ବି. ବଂ. (ଭୀ+ମଲ)ଭୟଙ୍କର ।
ଭୀମବଳ—ବ.ଭୟାନକ ସାମର୍ଥ୍ୟ,ଧୃତରାଷ୍ଟ୍ର ପୁତ୍ରଭେଦ, ବହ୍ନିଭେଦ।
ଭୀମବିକ୍ରମ—ପୁଂ. ବ. ଧୃତରାଷ୍ଟ୍ର ପୁତ୍ରଭେଦ, (ବଂ) ଭୟାନକ ବିକ୍ରମଶାଳୀ ।
ଭୀମବିକ୍ରାନ୍ତ—ପୁଂ. ବ. (ଭୀମ+ବିକ୍ରାନ୍ତ) ସିଂହ, (ବଂ) ଭୟାନକ ପରାକ୍ରମଶାଳୀ, (ସ୍ତ୍ରୀ) ଭୀମବିକ୍ରାନ୍ତା ।
ଭୀମବେଗ—ପୁଂ. ବ.( କ.ଧା ) ପ୍ରବଳବେଗ, ଦାନବଭେଦ, (ବଂ) ଭୟାନକ ବେଗବିଶିଷ୍ଟ ।
ଭୀମବେଗରବ—ପୁଂ. ବ. ଦ୍ରୁତଗାମୀ ବିକଟ ଶବ୍ଦ ।
ଭୀମବେଶ—ବି. ବଂ. ଭୟାନକ ବେଶଯୁକ୍ତ, ଭୀଷଣଦର୍ଶନ ।
ଭୀମଶର—ପୁଂ. ବ. ଧୃତରାଷ୍ଟ୍ରଙ୍କର ପୁତ୍ରଭେଦ, ଭୟାନକ ଶର ।
ଭୀମଶାସନ—ପୁଂ. ବ. ଯମ, କୃତାନ୍ତ, କଠୋର ଶାସନ,(ବଂ-ବ.ବ୍ରୀ)କଠୋର ଶାସନକାରୀ, (ସ୍ତ୍ରୀ) ଭୀମଶାସନା ।
ଭୀମସିଂହ—ଗ୍ରା.ବ. ମିବାରର ଜଣେ ରାଜା
ଭୀମସେନ—ପୁଂ. ବ. ମଧ୍ୟମ ପାଣ୍ଡବ, ବିଦର୍ଭରାଜ, ଦମୟନ୍ତୀଙ୍କ ପିତା,ଗନ୍ଧର୍ବ ଭେଦ, କର୍ପୂର ଭେଦ ।
ଭୀମସେନୀଏକାଦଶୀ—ବ. ଜ୍ୟେଷ୍ଠ ଶୁକ୍ଳ ଏକାଦଶୀ ।
ଭୀମସେନୀକର୍ପୂର—ଗ୍ରା.ବ. ବୋର୍ଣ୍ଣିଓ ଓ ସୁମାତ୍ରାଦ୍ଵୀପଜାତ କର୍ପୂର ।
ଭୀମହାସ—କ୍ଲୀ. ବ. ବୁଢ଼ିଆଣୀ ସୂତା ।
ଭୀମା—ସ୍ତ୍ରୀ. ବ. (ଭୀ+ମ+ଆ) ରୋଚନାଖ୍ୟ ଗନ୍ଧଦ୍ରବ୍ୟ, ଦୁର୍ଗାଦେବୀ, ନଦୀବିଶେଷ, କୋରଡ଼ା, ଗୃରୁକ, ( ବଂ ) ଭୟଙ୍କରୀ ।
ଭୀମାଦେବୀ—ସ୍ତ୍ରୀ. ବ. ଦେବୀବିଶେଷ, ଦୁର୍ଗାଙ୍କ ଅବତାରବିଶେଷ ।
ଭୀମୈକାଦଶୀ—ସ୍ତ୍ରୀ. ବ. (କ.ଧା) ମାଘମାସର ଶୁକ୍ଳ ଏକାଦଶୀ ।
ଭୀମୋତ୍ତର—ପୁଂ.ବ.କୁଷ୍ମାଣ୍ଡ,ପାଣିକଖାରୁ,
ଭୀମୋଦରୀ—ସ୍ତ୍ରୀ. ବ. ଉମା, ଦୁର୍ଗାଙ୍କର ନାମଭେଦ ।
ଭୀରୁ—ପୁଂ. ବଂ. ( ଭୀ+ରୁ ) ଡ଼ରୁଆ, ଭୟଶୀଳ, ଭୀତସ୍ଵଭାବବିଶିଷ୍ଟ, (ସ୍ତ୍ରୀ.ବ) ଭୟଶୀଳା ସ୍ତ୍ରୀ, ଶତାବରୀ, କଣ୍ଟକାରୀ, ଶତପଦିକା, ଅଜା, ଛାୟା, ଶୃଗାଳ, ବ୍ୟାଘ୍ର, ଇକ୍ଷୁଭେଦ, ( ଗ୍ରା.ବ ) ନାରୀ, ସ୍ତ୍ରୀ, ପତ୍ନୀ ।
ଭୀରୁକ—କ୍ଲୀ. ବ. ( ଭୀ+ରୁକ ) ବନ, (ପୁଂ.ବ) ପେଚକ, ଶୃଗାଳ, ଭଲ୍ଲୁକ, (ବଂ) ଭୟଯୁକ୍ତ, କାତର ।
ଭୀରୁଚେତା—ପୁଂ. ବଂ. (ବ.ବ୍ରୀ) ଭୀରୁହୃଦୟ, ଭୟଶୀଳଚିତ୍ତ ।
ଭୀରୁଣ—ବି. ବଂ. ଭୟାବହ ।
ଭୀରୁତା—ସ୍ତ୍ରୀ.ବ. (ଭୀରୁ+ତା)ଭୀରୁତ୍ଵ, ଭୟଶୀଳତା,କାପୁରୁଷତା,ଡର,ଭୟ ।
ଭୀରୁପତ୍ନୀ—ସ୍ତ୍ରୀ. ବ. ଶତମୂଳୀ ।
ଭୀରୁପ୍ରକୃତ—ପୁଂ. ବଂ. (ବ.ବ୍ରୀ) ଡ଼ରକୁଳା, ଡ଼ରୁଆ ।
ଭୀରୁମତ୍ସ୍ୟ—ବ. ତୋଡ଼ମାଛ ।
ଭୀରୁରନ୍ଧ୍ର—ପୁଂ. ବ. ଭୟଜନକ ରନ୍ଧ୍ର, ଅଗ୍ନିକୁଣ୍ଡ ।
ଭୀରୁସତ୍ତ୍ଵ—ବି.ବଂ. ଭୟଶୀଳଚିତ୍ତଯୁକ୍ତ ।
ଭୀରୁହୃଦୟ—ପୁଂ. ବ. (ବ.ବ୍ରୀ) ହରିଣ, ମୃଗ, (ବଂ) ଡ଼ରକୁଳା, ଡ଼ରୁଆ, (ସ୍ତ୍ରୀ) ହୃଦୟା । [ ନାରୀ ।
ଭୀରୂ—ସ୍ତ୍ରୀ. ବ. (ଭୀରୁ+ଊ) ଭୟଶୀଳା
ଭୀଲଭୂଷଣ—ବ. ଗୁଞ୍ଜା,କାଇଁଚ ।
ଭୀଲୁ—ବି. ବଂ. (ଭୀ+ଲୁ) ଭୟଶୀଳ, ଭୀରୁ, (ବ) ଶୃଗାଳ, ଭଲ୍ଲୁକ ।
ଭୀଲୁକ—ପୁଂ. ବଂ. ଭୀରୁ, ଭୟଶୀଳ, ଡ଼ରୁଆ, (ବ) ଭଲ୍ଲୁ ।
ଭୀଷକ—ପୁଂ. ବଂ. (ଭୀ+ଣିଚ୍+କ. ଅକ) ଭୟକାରକ, ଭୀଷଣ,ଭୟଙ୍କର, (ସ୍ତ୍ରୀ) ଭୀଷିକା ।
ଭୀଷଣ—ପୁଂ.ବଂ. (ଭୀ+ଣିଚ୍+କ.ଅନ) ଭୀମ, ଭୟଙ୍କର, ଦାରୁଣ, ଭୀତିପ୍ରଦ, ଗାଢ଼, ଦୃଢ଼, ( ବ ) ଶିବ, କପୋତ, ଭୟାନକ ରସ, ଭୟପ୍ରଦର୍ଶନ, କୁନ୍ଦୁରୁ, ଶଲ୍ଲକୀ ବୃକ୍ଷ, ବ୍ରହ୍ମା ।
ଭୀଷଣକ—ପୁଂ. ବଂ. ଭୟୋତ୍ପାଦକ ।
ଭୀଷଣତା(ତ୍ଵ)—ବ. ଦାରୁଣତା ।
ଭୀଷଣଦର୍ଶନ—ପୁଂ. ବଂ. (ବ.ବ୍ରୀ)ଭୀମଦର୍ଶନ ଦେଖ, (ସ୍ତ୍ରୀ) ଭୀଷଣଦର୍ଶନା ।
ଭୀଷଣାକାର—ପୁଂ. ବଂ. (ବ.ବ୍ରୀ) ଭୟଙ୍କର ରୂପବିଶିଷ୍ଟ, (ସ୍ତ୍ରୀ) ଭୀଷଣାକାରା ।
ଭୀଷଣାରବ—ବ. ( କ.ଧା ) ଭୟଙ୍କର ଶବ୍ଦ, ଭୀମନାଦ ।
ଭୀଷା—ସ୍ତ୍ରୀ. ବ. (ଭୀଷ୍+ଅ+ଆ)ଭୟପ୍ରଦର୍ଶନ, ଡ଼ରଇବା ।
ଭୀଷିତ—ବଂ. (ଭୀ+ଣିଚ୍+ଭଷି+ମି.ତ) ଭୟପ୍ରଦର୍ଶିତ ।
ଭୀଷିଦାସ—ପୁଂ.ବ. ଗୀତଗୋବିନ୍ଦ ଟୀକା ପ୍ରଣେତା ।
ଭୀଷ୍ମ—ବି. ବଂ. (ଭୀ+ଅପା.ମ)ଭୀଷଣ, ଭୟାନକ, (ବ)ଭୟାନକ ରସ,ରାକ୍ଷସ, ଗାଙ୍ଗେୟ, ଶାନ୍ତନୁରାଜାଙ୍କ ପୁତ୍ର,ଶିବ ।
ଭୀଷ୍ମକ—ପୁଂ.ବ.(ଭୀଷ୍ମ+କ)ଶ୍ରୀକୃଷ୍ଣଙ୍କର ମହିଷୀ, ରୁକ୍ମିଣୀଙ୍କର ପିତା, ବିଦର୍ଭାଧିପତି ।
ଭୀଷ୍ମକଟକ—ଗ୍ରା. ବ. ବଣାଖାପାଟଣା ଜିଲ୍ଲାର ଗୋଟିଏ ଓଡ଼ିଆ ଜମିଦାରୀ, ବିଷମ କଟକ ।
ଭୀଷ୍ମକେଶବ—ପୁଂ.ବ.କାଶୀସ୍ଥିତ କେଦେବମୂର୍ତ୍ତିଭେଦ ।
ଭୀଷ୍ମଜନନୀ—ସ୍ତ୍ରୀ. ବ. ଗଙ୍ଗା ।
ଭୀଷ୍ମତର୍ପଣ—ବ. ପ୍ରତ୍ୟେକ ହିନ୍ଦୁ ତର୍ପଣ କରିବା ସମୟରେ ଭୀଷ୍ମଙ୍କ ଉଦ୍ଦେଶ୍ୟରେ ଅର୍ପଣ କରିବା ଜଳଜଳାଦି ।
ଭୀଷ୍ମପଞ୍ଚକ—କ୍ଲୀ.ବ. ବକପଞ୍ଚକ,କାର୍ତ୍ତିକ ଶୁକ୍ଳ ଏକାଦଶୀ ଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ହବିଷ୍ୟାଦି ଅନୁଷ୍ଠେୟ ବ୍ରତବିଶେଷ ।
ଭୀଷ୍ମମଣି—ବ. ହିମାଳୟର ଉତ୍ତରଦେଶଜାତ ଶୁକ୍ଳବର୍ଣ୍ଣ ପ୍ରସ୍ତରବିଶେଷ ।
ଭୀଷ୍ମମିଶ୍ର—ବ. ଖଣ୍ଡନ ପ୍ରଣେତା, —ଜଣେ ମୈଥିଳୀ ପଣ୍ଡିତ ।

ଭୀଷ୍ମରତ୍ନ—କ୍ଲୀ. ବ. ଭୀଷ୍ମମଣି ଦେଖ ।
ଭୀଷ୍ମସୁତା—ବ.(୬ତତ୍) ଶ୍ରୀକୃଷ୍ଣଙ୍କ ପତ୍ନୀ. ରୁକ୍ମିଣୀ ।
ଭୀଷ୍ମଶ୍ରାଦ୍ଧ—ବ. (କ.ଧା) ମାଘ ଶୁକ୍ଲାଷ୍ଟମୀ ଦିନ ଭୀଷ୍ମଦେବଙ୍କର ଉଦ୍ଦେଶ୍ୟରେ ପ୍ରତ୍ୟେକ ହିନ୍ଦୁଗୃହସ୍ଥଙ୍କ ଅନୁଷ୍ଠେୟ ଶ୍ରାଦ୍ଧ
ଭୀଷ୍ମସୂ—ସ୍ତ୍ରୀ. ବ. (ଭୀଷ୍ମ+ସୂ) ଗଙ୍ଗା ।
ଭୀଷ୍ମସ୍ତବରାଜ—ପୁଂ. ବ. ଭୀଷ୍ମଦେବକୃତ ଶ୍ରୀକୃଷ୍ଣସ୍ତବ ।
ଭୀଷ୍ମସ୍ୱରରାଜ—ପୁଂ. ବ. ବୁଦ୍ଧଭେଦ ।
ଭୀଷ୍ମାଷ୍ଟମୀ—ସ୍ତ୍ରୀ. ବ ମାଘମାସର ଶୁକ୍ଲାଷ୍ଟମୀ ।
ଭୁଅ—ଗ୍ରା. ବ. (ସଂ-ବ୍ୟୂହ) ବ୍ୟୂହ ।
ଭୁଆ—ଗ୍ରା. ବ. ଅଗ୍ନିର ବରାଡ଼ି ।
ଭୁଆଁ—ଗ୍ରା. ବ. ମନୁଷ୍ୟ ବାଟ ଭୁଲି ବୁଲିବା ଅବାଟ, ଧମ୍ବାଳୁଆ ପୋକ, (ଗ୍ରା.ବିଂ) ଅସାର, ଭ୍ରାନ୍ତ, ବୋକା, ଫମ୍ପା, ଚିଲୁଆ ।
ଭୁଆଁରଦେଖାଇବା—ଗ୍ରା. (ଯାଜ) କ୍ରି. ବାଳିଙ୍ଗି କରିବା, ବାହାନା କରିବା ।
ଭୁଆସୁଣୀ—ଗ୍ରା. ବ. କୁଳବଧୂ, କୁଳସ୍ତ୍ରୀ, ବଧୂ, ଶିକୁମାର, ଏକପ୍ରକାର ପକ୍ଷୀ ।
ଭୁଆସେନ—ପ୍ରା. (ସମ୍ବଲ)ବ. ଭୁଆସୁଣୀ ଦେଖ ।
ଭୁଇଁ—ଗ୍ରା. ବ. (ସଂ-ଭୂମି) ପୃଥିବୀତଳ, ଜମି, ମାଟି, ପୃଥିବୀ ।
ଭୁଇଁଅଅଁଳା—ଗ୍ରା. ବ. ବର୍ଷାୟୁ କ୍ଷୁଦ୍ର ଶାକବିଶେଷ ।
ଭୁଇଁଅଦା—ଗ୍ରା.ବ. ହରିଦ୍ରା ବର୍ଗର ଉଚ୍ଚ ବହୁପତ୍ର ଶାକବିଶେଷ ।
ଭୁଇଁଆ—ଗ୍ରା. ବ.(ସଂ-ଭୂମିଜ) ଓଡ଼ିଶା ଗଡ଼ଜାତର ଅନାର୍ଯ୍ୟ ଜାତିବିଶେଷ, ଗଡ଼ଜାତର ଅପୂଜ୍ୟ ଦେବତାବିଶେଷ, ସାମନ୍ତରାଜା ଜମିଦାର, ବଙ୍ଗଦେଶର ୧୨ ଜଣ ସାମନ୍ତଭୂସ୍ୱାମୀ, ବାରଭୂୟାଁ, ଖଣ୍ଡାଏତମାନଙ୍କର ଉପାଧିବିଶେଷ ।
ଭୁଇଁକଖାରୁ—ଗ୍ରା.ବ. ଲତାକନ୍ଦବିଶେଷ
ଭୁଇଁକଦମ୍ବ—ଗ୍ରା. ବ. ଭୂକଦମ୍ବ ବୃକ୍ଷ, ସୋମରାଜ୍ୟାଦି ବର୍ଗର ବର୍ଷାୟୁ ଶାକଗୁଳ୍ମ ।
ଭୁଇଁକଲରା—ଗ୍ରା. ବ. ପଥର ଉପରେ ଉଠିବା ଗୁଳ୍ମବିଶେଷ ।
ଭୁଇଁକୋରୁଆଁ—ଗ୍ରା. ବ. ଏକପ୍ରକାର କୁଟଜ ବା କୁଡ଼ୁଚି ଗଛ ।
ଭୁଇଁଖଜୁରି—ଗ୍ରା.ବ. ଏକପ୍ରକାର ଶ୍ରେଷ୍ଠ ଖଜୁରି ଗଛ, ପେଣ୍ଡିଖଜୁରି ।
ଭୁଇଁଚଣା—ଗ୍ରା.ବ. ଚେରଚଣା, ଚୀନାବାଦାମ, ମୁଗଫଳୀ ।
ଭୁଇଁଚମ୍ପା—ଗ୍ରା.ବ.ହରିଦ୍ରା ବର୍ଗର କ୍ଷୁଦ୍ର ଶାକଗୁଳ୍ମବିଶେଷ ।
ଭୁଇଁଜାମୁ—ଗ୍ରା.ବ. ବଣଜାମୁ, ଏକପ୍ରକାର ଶ୍ରେଷ୍ଠ ଜାମୁଗଛ ଓ ତହିଁର ଫଳ ।
ଭୁଇଁଡ଼(ଦ)ଅ(ହ)ଣ—ଗ୍ରା.ବ.ରଜସଂକ୍ରାନ୍ତିର ପର ଦିବସ ।
ଭୁଇଁଡ଼ିମିରି—ଗ୍ରା. ବ. ଶ୍ରେଷ୍ଠ ଶ୍ରେଷ୍ଠ ଫଳଯୁକ୍ତ ଡିମ୍ବିରିଗଛ ।
ଭୁଇଁନିମ୍ବ—ଗ୍ରା.ବ. ଚିରେଇତା ଜାତୀୟ ବର୍ଷାୟୁ ଶାକଗୁଳ୍ମବିଶେଷ ।
ଭୁଇଁମୂଳ—ଗ୍ରା.ବ.ମୁସଲମାନ ଅମଳରେ ବିଶୋଇ ଅଧୀନରେ କାର୍ଯ୍ୟ କରୁଥିବା କାନୁନ୍‌ଗୋ ।
ଭୁଇଁହାର—ଗ୍ରା.ବ. ବିହାର ଓ ସଂଯୁକ୍ତ ପ୍ରଦେଶର ବ୍ରାହ୍ମଣ ଶ୍ରେଣୀବିଶେଷ ।
ଭୁଁ—ଗ୍ରା.ଅବ୍ୟ.ଶଙ୍ଖଧ୍ୱନି, ଭ୍ରମର ଗୁଞ୍ଜନ, ଭୁଁଭୁଁଧ୍ୱନି ।
ଭୁଁଡ଼ି—ପ୍ରା. (ସମ୍ବ)ବ.ଛିଦ୍ର, କଣା, ରନ୍ଧ୍ର
ଭୁକ୍—ବିଂ. (ଭୁଜ୍+କ.କ୍ୱିପ୍) ଭୋକ୍ତା, ଯେ ଖାଏ, ଖାଦକ ।
ଭୁକ(ଖ)—ଗ୍ରା.ବ. ଭୋଖ, କ୍ଷୁଧା ।
ଭୁକା—ଗ୍ରା.ବିଂ. କ୍ଷୁଧା, ଭୁଖା, (ଗ୍ରା ବ) ଭୁକିବା, କୁକୁରଆଦିଙ୍କ ବୋବାଳି ।
ଭୁକା(କେ)ଇବା—ଗ୍ରା.କ୍ରି.ଭୁକିବା କ୍ରିୟାର ଣିଜନ୍ତରୂପ, ଭୁକିବା ଦେଖ, ଭିତରକୁ ପୂରାଇବା ।
ଭୁକାଭୁକି—ଗ୍ରା.ବ. ବହୁଶଃ ଭୁକିବା ।
ଭୁକିବା—ଗ୍ରା.କ୍ରି. (କୁକୁରାଦି) ରଡ଼ି କରିବା, ପାଟିକରି ରଡ଼ିକରିବା, ବୃଥାରେ କନ୍ଦିହେବା, କଠିନ ବସ୍ତୁ ଆଦିରେ ଶସ୍ତ୍ରାଦି ପ୍ରବେଶ କରିବା ।
ଭୁକିହେବା—ଗ୍ରା.କ୍ରି. ବୃଥା ବହୁକାଳ ପାଟି କରିବା ।
ଭୁକି(ଖି)ଲା—ଗ୍ରା. ବ. (ସଂ ବୁଭୁକ୍ଷିତ) କ୍ଷୁଧାର୍ତ୍ତ, ଭୋଖିଲା ।
ଭୁକ୍ତ—ବି. ବିଂ. (ଭୁଜ୍+ତ) ଭକ୍ଷିତ, ଖାଇଥିବା, ଉପଭୁକ୍ତ, ଅନ୍ତର୍ଗତ, (ବ) ଭକ୍ଷଣ, ଭୋଗ ।
ଭୁକ୍ତତିଥି—ଯେଉଁ ତିଥିର ଅବସ୍ଥାନ କାଳ କ୍ଷୟ ହୋଇଅଛି ।
ଭୁକ୍ତପାକ—ବ. (୬ତତ୍) ଖାଦ୍ୟ ଦ୍ରବ୍ୟର ଜୀର୍ଣ୍ଣହେବା, ଚର୍ବିତଚର୍ବଣ ।
ଭୁକ୍ତପାତ—ଗ୍ରା.ବ.ଅନ୍ୟ ବ୍ୟକ୍ତିର ଉଚ୍ଛିଷ୍ଟ ବା ଦେବ ନୈବେଦ୍ୟକୁ ଖାଇବା ।
ଭୁକ୍ତପୂର୍ବ—ବିଂ. (ବ.ବ୍ରୀ) ପୂର୍ବେ ଯାହା ଅନ୍ୟ ବ୍ୟକ୍ତିଦ୍ୱାରା ଭୁକ୍ତ ବା ଉପଭୁକ୍ତ ହୋଇଅଛି, (ବ) ଅଇଣ୍ଠା ।
ଭୁକ୍ତପୂର୍ବୀ—ପୁଂ. ବିଂ.ପୂର୍ବଭୁକ୍ତ ପଦାର୍ଥ ।
ଭୁକ୍ତଭୋଗ—ବିଂ. (ବ.ବ୍ରୀ) କୃତଭୋଗ, (ବ) ଭୁକ୍ତଭୋଜନ ଦେଖ ।
ଭୁକ୍ତଭୋଗୀ—ପୁଂ.ବିଂ. (ଭୁକ୍ତଭୋଗ+ଇନ୍) ଯେ ଭୋଗ କରିଅଛି, ପ୍ରବୀଣ, କୃତଭୋଗ, ଅନୁଭବୀ, (ସ୍ତ୍ରୀ) ଭୋଗିନୀ ।
ଭୁକ୍ତଭୋଜନ—ବ. (୬ତତ୍) ଚର୍ବିତଚର୍ବଣ, ପରର ଅଇଣ୍ଠା ଖାଇବା ।
ଭୁକ୍ତସମୁଜ୍ଝିତ—ବି. ବିଂ. ପ୍ରଥମେ ଭୁକ୍ତ ପରେ ତ୍ୟକ୍ତ ।
ଭୁକ୍ତମାତ୍ର—ଅବ୍ୟ. ଭୋଜନର ଅବ୍ୟବହିତ ପର ।
ଭୁକ୍ତବୃଦ୍ଧି—ସ୍ତ୍ରୀ. ବ. ଉଦରଗତ ଭୁକ୍ତ ଦ୍ରବ୍ୟର ଉପଚୟ ।
ଭୁକ୍ତାବଶିଷ୍ଟ—ବିଂ. (୬ତତ୍) ଅଇଁଣ୍ଠା, ଉଚ୍ଛିଷ୍ଟ ।
ଭୁକ୍ତାବଶେଷ—କ୍ଲୀ.ବ.ଉଚ୍ଛିଷ୍ଟ, ଅଇଣ୍ଠା ।
ଭୁକ୍ତି—ସ୍ତ୍ରୀ.ବ. (ଭୁଜ୍+ଭା.ତି) ଭୋଜନ, ଦଖଲ, ଭୋଗ, ରବ୍ୟାଦି ଗ୍ରହମାନଙ୍କର ରାଶ୍ୟଂଶାଦିରେ ଗମନ ଓ ଭୋଗ ।
ଭୁକ୍ତିପାତ୍ର—କ୍ଲୀ. ବ. ଭୋଜନ ପାତ୍ର,

ଯନ୍ତ୍ରରେ ଖାଦ୍ୟ ପଦାର୍ଥ ଥାଏ ।
ଭୁକ୍ତିପ୍ରଦ—ପୁଂ.ବ. (ଭୁକ୍ତି+ପ୍ର+ଦା+ଅ) ମୁଖ, (ବିଂ) ଭୋଗଦାତା ।
ଭୁକ୍ତୋଚ୍ଛିଷ୍ଟ—ବିଂ. ଭୋଜନାବଶିଷ୍ଟ ।
ଭୁଖ୍—ପ୍ରା. (ଭତ୍ତବୁଭୁଖା) ଦୁର୍ଭିକ୍ଷ ।
ଭୁଖ—ଗ୍ରା. ବ. ଭୋକ, କ୍ଷୁଧା, ବୁଭୁକ୍ଷା ।
ଭୁଖା—ଗ୍ରା. ବିଂ. କ୍ଷୁଧିତ ।
ଭୁଖା(ଖୋ)ଇବା—ଗ୍ରା.କ୍ରି. ଭୋକକରିବା, କ୍ଷୁଧା ଲଗିବା ।
ଭୁଗ୍‌ଲ୍—ପ୍ରା.(ସମ୍ବ)ବ. ଗ୍ରେଟ ଟୋକେଇ
ଭୁଗା—ପ୍ରା.(ସମ୍ବ)ବ.ବଡ଼ପାଚିଆ,ବୋଝ, ବାଉଁଶିଆ ।
ଭୁଗ୍ନ—ତ୍ରି. ବିଂ. (ଭୁଜ୍+କ.ତ) ରୋଗାଦି ଦ୍ୱାରା କୁଟିଳୀକୃତ, ଭଗ୍ନ ସ୍ୱାସ୍ଥ୍ୟ, କୁବ୍ଜ, ବକ୍ର, ଆନତ, (ସ୍ତ୍ରୀ) ଭୁଗ୍ନା ।
ଭୁଜ—ବ. (ଭୁଜ୍+କ.ଅ) ବକ୍ରାକୃତ, ସମସ୍ତ ହସ୍ତ, ବାହୁ, କ୍ଷେତ୍ରର ବାହୁ ବା ସୀମା ରେଖା, ସର୍ପର କୁଣ୍ଡଳ, ହାତୀର ଶୁଣ୍ଢ, ବାଙ୍କ, ବୃକ୍ଷ ଶାଖା, ତ୍ରିଭୁଜଭୁମି, (ଜ୍ୟୋତିଷ)ଗ୍ରହସ୍ଫୁଟର ଭୁମି,(ବିଂ)କୁଟିଳ, (ଗ୍ରା. ବ) ଖାଇବା ପାଇଁ ସଞ୍ଚିତ ଧନ, ଭୁର୍ଜପତ୍ର ।
ଭୁଜକୋଟର—ପୁଂ.ବ.କକ୍ଷ, କାଖସନ୍ଧି ।
ଭୁଜଗ—ପୁଂ.ବ. (ଭୁଜ୍+ଗମ୍+କ.ଅ) ଅଶ୍ଳେଷା ନକ୍ଷତ୍ର, ସୀସକ, ବୋଡ଼ସାପ, ଫଣୀ, ଲମ୍ପଟ ବ୍ୟକ୍ତି, (ବ) ଲମ୍ପଟ, ଶଠ, ଧୂର୍ତ୍ତ, (ସ୍ତ୍ରୀ) ଭୁଜଗୀ ।
ଭୁଜଗଦାରଣ—ପୁଂ.ବ(ଭୁଜଗ+ଦାରଣ) ଗରୁଡ଼ ।
ଭୁଜଗନିସୃତା—ସ୍ତ୍ରୀ. ବ. ନବାକ୍ଷରପାଦ ଛନ୍ଦୋଭେଦ ।
ଭୁଜଗପତି—ପୁଂ.ବ. ବାସୁକି, ଅନନ୍ତ ।
ଭୁଜଗରାଜ—ପୁଂ. ବ. ଶେଷ, ଅନନ୍ତ, ବାସୁକି ।
ଭୁଜଗାନ୍ତକ—ପୁଂ.ବ. (୬ତତ୍ପୁ) ଗରୁଡ଼, ମୟୂର ।
ଭୁଜଗାଭୋଜୀ—ପୁଂ.ବ (ଭୁଜଗ+ଆ+ଭୁଜ୍+ଇନ୍) ମୟୂର ।
ଭୁଜଗାଶନ—ପୁଂ. ବ. (ଭୁଜଗ+ଅଶ୍ +ଅନ) ଗରୁଡ଼ ।
ଭୁଜଗେ(ଗେ)ନ୍ଦ୍ର—ପୁଂ. ବ. (୬ତତ୍ପୁ) ସର୍ପରାଜ, ବାସୁକି, ଅନନ୍ତ ।
ଭୁଜଗେଶ୍ୱର—ପୁଂ.ବ.ସର୍ପରାଜ,ବାସୁକି, ଅନନ୍ତ ।
ଭୁଜଙ୍ଗ—ପୁଂ. ବ. (ଭୁଜ+ଗମ୍+ଅ) ଭୁଜଗ ଦେଖ ।
ଭୁଜଙ୍ଗକନ୍ୟା—ସ୍ତ୍ରୀ.ବ.ସର୍ପିଣୀ,ନାଗକନ୍ୟା
ଭୁଜଙ୍ଗଘାତିନୀ—ସ୍ତ୍ରୀ. ବ. ବୃକ୍ଷବିଶେଷ, ସର୍ପ କଙ୍କାଳିକା । [ ଜିହ୍ୱା ।
ଭୁଜଙ୍ଗଜିହ୍ୱା—ସ୍ତ୍ରୀ.ବ. ମହାସମଙ୍ଗା,ସର୍ପ-
ଭୁଜଙ୍ଗଦମନୀ—ସ୍ତ୍ରୀ. ବ. ନକୁଳେଷ୍ଟା, ନାକୁଲୀକନ୍ଦ । [ ଦାଅଣା ।
ଭୁଜଙ୍ଗପର୍ଣ୍ଣିନୀ—ସ୍ତ୍ରୀ.ବ.ନାଗଦମନୀ,ନାଗ-
ଭୁଜଙ୍ଗପ୍ରୟାତ—କ୍ଲୀ.ବ.ଛନ୍ଦୋଭେଦ ।
ଭୁଜଙ୍ଗଭୋଜୀ—ପୁଂ. ବ. (ଭୁଜଙ୍ଗ+ଭୁଜ୍+ଇନ୍) ରାଜସର୍ପ, ଗରୁଡ଼, ମୟୂର ।
ଭୁଜଙ୍ଗମ—ପୁଂ.ବ.ସର୍ପ (କ୍ଲୀ.ବ)ସୀସକ ।
ଭୁଜଙ୍ଗଲତା—ସ୍ତ୍ରୀ.ବ.ନାଗବଲ୍ଲୀ, ପାନ ।
ଭୁଜଙ୍ଗବିଜୃମ୍ଭିତ—କ୍ଲୀ.ବ. ଛନ୍ଦୋଭେଦ, ସର୍ପଚେଷ୍ଟିତ ।
ଭୁଜଙ୍ଗସଙ୍ଗତା—ସ୍ତ୍ରୀ. ବ. ନବାକ୍ଷର ଛନ୍ଦୋବିଶେଷ ।
ଭୁଜଙ୍ଗଭୁକ୍—ପୁଂ.ବ (ଭୁଜଙ୍ଗ+ଭୁଜ୍+କ.କ୍ୱିପ୍) ମୟୂର, ଗରୁଡ଼ ।
ଭୁଜଙ୍ଗହା—ପୁଂ.ବ (ଭୁଜଙ୍ଗ+ହନ୍+କ୍ୱିପ୍) ଗରୁଡ଼ ।
ଭୁଜଙ୍ଗାକ୍ଷୀ—ସ୍ତ୍ରୀ. ବ. (ବ.ବ୍ରୀ) ରାସ୍ନା ।
ଭୁଜଙ୍ଗାଖ୍ୟ—ପୁଂ. ବ. (ବ.ବ୍ରୀ) ନାଗକେଶର, (ବିଂ) ସର୍ପ ନାମକ ।
ଭୁଜଙ୍ଗୀ(ଙ୍ଗୀ)—ସ୍ତ୍ରୀ. ବ. (ଭୁଜଙ୍ଗ+ଈ) ସର୍ପିଣୀ,ନାଗୁଣୀ, ନଷ୍ଟା ସ୍ତ୍ରୀ,କ୍ରୂର ନାରୀ, ଶକ୍ତି ମୂର୍ତ୍ତିଭେଦ ।
ଭୁଜଙ୍ଗେଶ—ପୁଂ.ବ. (ଭୁଜଙ୍ଗ+ଈଶ) ବାସୁକି, ପିଙ୍ଗଳ ମୁନି, ପତଞ୍ଜଳି ମୁନି ।
ଭୁଜଜ୍ୟା—ସ୍ତ୍ରୀ. ବ. ସୂର୍ଯ୍ୟସିଦ୍ଧାନ୍ତୋକ୍ତ ତ୍ରିକୋଣ କ୍ଷେତ୍ରର ଭୁଜଜୀବା ।
ଭୁଜଦଣ୍ଡ—ବ. ଦଣ୍ଡ ବା ଯଷ୍ଟି ସଦୃଶ ଭୂଲମ୍ବିତ ବାହୁ ।
ଭୁଜଦଳ—ପୁଂ.ବ(୬ତତ୍ପୁ)ହାତପାପୁଲି, କରପଲ୍ଲବ ।
ଭୁଜପାଶ—ବ. ଆଲିଙ୍ଗନ କାଳରେ ବିସ୍ତୃତ ଦୁଇ ହସ୍ତରୂପ ଫାସ ବା ବନ୍ଧନ-ରଜ୍ଜୁ ।
ଭୁଜପ୍ରତିଭୁଜ—ବ.ସମାନ୍ତରିକ କ୍ଷେତ୍ରରେ ପରସ୍ପର ସମ୍ମୁଖୀନ ବାହୁଦ୍ୱୟ ।
ଭୁଜବନ୍ଧନ—ବ. (୩ତତ୍ପୁ) ଭୁଜ ଦ୍ୱାରା ବନ୍ଧନ, ଆଲିଙ୍ଗନ, ହାତର ଅଳଙ୍କାର-ବିଶେଷ, ବଳୟ, ଭୁଜବେଷ୍ଟନ ।
ଭୁଜବଳ—ପୁଂ. ବ. (୬ତତ୍ପୁ) ବାହୁବଳ, ବାହୁ ପରାକ୍ରମ, କ୍ଷମତା । [ ଗୁଢ ।
ଭୁଜମଧ୍ୟ—କ୍ଲୀ. ବ. ଭୁଜାନ୍ତର, କୋଡ଼,
ଭୁଜମୂଳ—କ୍ଲୀ.ବ.ବାହୁମୂଳ,କାନ୍ଧ,କେଣା ।
ଭୁଜଲତା—ସ୍ତ୍ରୀ. ବ. ବାହୁରୂପ ଲତା, ଲତାସଦୃଶ ସୁନ୍ଦର ଓ କୋମଳ ବାହୁ ।
ଭୁଜଶାଳୀ—ପୁଂ.ବିଂ.ପ୍ରଶସ୍ତ ବାହୁସମ୍ପନ୍ନ, (ସ୍ତ୍ରୀ) ଭୁଜଶାଳିନୀ ।
ଭୁଜଶିଖର—କ୍ଲୀ.ବ(୬ତତ୍ପୁ)ସ୍କନ୍ଧ, କାନ୍ଧ ।
ଭୁଜଶିରଃ—କ୍ଲୀ. ବ. ସ୍କନ୍ଧ, କାନ୍ଧ ।
ଭୁଜା—ବ. (ଭୁଜ୍+ଣ.ଅ+ଆ) ବାହୁ, ହାତ, ତ୍ରିକୋଣାଦି କ୍ଷେତ୍ରର ପାର୍ଶ୍ୱ-ରେଖା, ସର୍ପର କୁଣ୍ଡଳ, ଗୁଡ଼ାଇବା, (ଗ୍ରା.ବ) ଭୃଷ୍ଟ ତଣ୍ଡୁଳ ଧାନ୍ୟାଦି, ମୁଢ଼ି ଉଖୁଡ଼ା ପ୍ରଭୃତି, (ପ୍ରା.ସମ୍ବ)ଜଳଖିଆ ।
ଭୁଜାଉଖୁଡ଼ା—ଗ୍ରା.ବ.ଭୁଜା ଓ ଉଖୁଡ଼ା ।
ଭୁଜାକଣ୍ଟ—ପୁଂ. ବ. (୬ତତ୍ପୁ)ହସ୍ତନଖ ।
ଭୁଜାଗ୍ର—ପୁଂ.ବ.(୬ତତ୍ପୁ)କର, ହାତର ଅଗ୍ରଭାଗ । [ ପଲ୍ଲବ ।
ଭୁଜାଦଳ—ପୁଂ.ବ.(୬ତତ୍ପୁ) ହସ୍ତ, କର-
ଭୁଜାନ୍ତର—କ୍ଲୀ. ବ. କୋଡ଼, କୋଳ, ବୁକ, ବକ୍ଷସ୍ଥଳ, ଅନ୍ୟଭୁଜ ।
ଭୁଜାମଧ୍ୟ—କ୍ଲୀ. ବ. ବାହୁର ମଧ୍ୟଭାଗ, କହୁଣୀ ।
ଭୁଜାମୂଳ—କ୍ଲୀ. ବ. ସ୍କନ୍ଧାଗ୍ର ।
ଭୁଜାଲି—ଗ୍ରା.ବ.ନେପାଳଦେଶୀୟ ବାଙ୍କ କଟୁରୀ ।
ଭୁଜି—ପୁଂ.ବ. (ଭୁଜ୍+ଇ) ଅଗ୍ନି, ଭୋଗ, ଭୋକ୍ତା ।

ଭୁଜିଷ୍ୟ—ପୁଂ.ବି.(ଭୁଜ୍ + ଇଷ୍ୟ)ସ୍ୱତନ୍ତ୍ର ହସ୍ତସୂତ୍ର, ଦାସ, ରୋଗ, ସଙ୍ଗୀ, ସହଚର, ହାତଖଡ଼ୁ ।

ଭୁଜିଷ୍ୟା—ସ୍ତ୍ରୀ.ବି. (ଭୁଜିଷ୍ୟ+ଆ)ଦାସୀ, ଗଣିକା, ବେଶ୍ୟା ।

ଭୁଜ୍ୟ—ଗ୍ରା.ବି. ଶ୍ରାଦ୍ଧପ୍ରଭୃତି ଦିନରେ ବ୍ରାହ୍ମଣଙ୍କୁ ଦିଆଯିବା ସଖ୍ୟା ।

ଭୁଞ୍ଜିବା—ପ୍ରା.(ବସ୍ତର)କ୍ରି. ଭଜିବା ।

ଭୁଞ୍ଜକ(କ)—ଗ୍ରା.ବି. ଉପପତି ।

ଭୁଞ୍ଜନ—ପୁଂ.ବିଂ. (ଭୁଞ୍ଜ + ଅନ୍ତ)ଭୋଗକର୍ତ୍ତା ।

ଭୁଞ୍ଜା—ଗ୍ରା.ବି. ଭୋଜନ, ଖାଇବା,ଭୋଗ

ଭୁଞ୍ଜାଇବା—ଗ୍ରା.କ୍ରି. ଖୁଆଇବା, ଭୋଗ କରାଇବା, ଯୋଗ କରାଇବା ।

ଭୁଞ୍ଜାନ—ପୁଂ.ବିଂ. (ଭୁଞ୍ଜ+ଆନ)ଭୋଗକର୍ତ୍ତା, ଭୋଗକାରୀ, (ସ୍ତ୍ରୀ) ଭୁଞ୍ଜାନା ।

ଭୁଞ୍ଜାଭୁଞ୍ଜି—ଗ୍ରା.ବି. (ପଦ୍ୟ)ଖିଆଖେଇ, ଅନ୍ୟୋନ୍ୟରେ ଖୁଆଇବା ।

ଭୁଞ୍ଜିବା—ଗ୍ରା. କ୍ରି. ଖାଇବା, ଭୋଗକରିବା, ଦୁଃଖ ବା ସୁଖ ଭୋଗକରିବା

ଭୁଟ୍—ଗ୍ରା.ବି. ଲୋପ ବା ଶେଷକରିବା, ଅପହରଣ ବା ଲୁଟି କରିବା, (ବିଂ) ଛିନ୍ନ, ଭିନ୍ନ ।

ଭୁଟ୍‌ଭୁଟ୍—ଗ୍ରା.ଅବ୍ୟ. ଗୁପ୍ତ କଥୋପକଥନ, କଥୋପକଥନ ଦ୍ୱାରା ଗୁପ୍ତ କଥାର ପ୍ରକାଶ ।

ଭୁଟ୍‌ଭୁଟ୍‌ହେବା—ଗ୍ରା. କ୍ରି. ଗୁନ ଗୁନ କଥାଭାଷା ହେବା ।

ଭୁଟ୍‌ଭାଟ୍—ଗ୍ରା. ଅବ୍ୟ. ଅଜୀର୍ଣ୍ଣତା ହେତୁ ଉଦରସ୍ଥ ବାୟୁର ବିକୃତ ଶବ୍ଦବିଶେଷ, ମଟର ସୋଲପ୍ରଭୃତି ଭାଜିବାର ଶବ୍ଦ ।

ଭୁଟ(ଟା)—ଗ୍ରା.ବି. ଜନରା ମକାପ୍ରଭୃତି ଉଦ୍ଭିଦ ଫଳର ଦାନା ବା ମଞ୍ଜି ।

ଭୁଟାନ୍—ଗ୍ରା.ବି. (ସଂ-ଭୋଟ୍) ଭୋଟନ୍, ହିମାଳୟ ସଂଲଗ୍ନ ଦେଶୀୟ ରାଜ୍ୟବିଶେଷ ।

ଭୁଟିଆ—ଗ୍ରା. ବିଂ. ଭୁଟାନଦେଶୀୟ, ତଦ୍ଦେଶବାସୀ । [ ଘୋଡ଼ା ।

ଭୁଟିଆଟାଙ୍ଗଣ—ଗ୍ରା.ବି.ଭୁଟାନ୍‌ଦେଶୀୟ

ଭୁଡ଼୍(ଡ଼ୁ)ଭୁଡ଼୍(ଡ଼ୁ)—ଗ୍ରା.ବି. ବଦ୍ୟାବୁଦ୍ଧିର ବନ୍ଧ ଆସ୍ଫୋଟନ ବା ବିକାଶ ଚେଷ୍ଟା, ଗୁଡ଼ାଖୁ ଖାଇବା ସମୟରେ ହୁକାରେ ଥିବା ଜଳଶବ୍ଦ ।

ଭୁଡ଼ା—ପ୍ରା. (ବାଲେ) ଅବ୍ୟ. ଥୋଡ଼ାଏ (ବାଟ) ।

ଭୁଡ଼ି—ଗ୍ରା.ବି. ବୁଦ୍‌ବୁଦ୍, ପେଟର ଅନ୍ତ

ଭୁଡ଼ୁଙ୍ଗା—ଗ୍ରା.ବି. ତୁରୀବାଦ୍ୟ, ଭେରୀ, କାହାଳୀ, ରଣଶିଙ୍ଗା । [ ବିଶିଷ୍ଟ ।

ଭୁଡ଼ୁଙ୍ଗା—ଗ୍ରା.ବିଂ. ଭୁରୁଷା, ସ୍ଥୂଳାକୃତି-

ଭୁଡ଼ୁଙ୍ଗିଆ—ଗ୍ରା. ବି. ତୁରୀ ବଜାଇବା ଲୋକ ।

ଭୁଣ୍ଡା—ଗ୍ରା.ବିଂ. ପୃଥୁଳ, ମୋଟା,ସ୍ଥୂଳୋଦର, ଭୁଷୁଣ୍ଡା, (ସ୍ତ୍ରୀ) ଭୁଣ୍ଡୀ ।

ଭୁତଅଇର—ଗ୍ରା.ବି. (ସଂ-ଭୂତଭୈରବୀ) ଏକପ୍ରକାର କଣ୍ଟକୀ ଗୁଳ୍ମ ।

ଭୁତା—ଗ୍ରା.ବିଂ. ଓଲୁ, ନିର୍ବୋଧ, ଭୁତପରି କଦାକାର ଓ କଳା । [ ଇବା ।

ଭୁତାଇବା—ଗ୍ରା.କ୍ରି. ଭଣ୍ଡାଇବା, ଧପା-

ଭୁଡ଼—ପ୍ରା.(ସମ୍ବ)ବି. ମଜୁରି, ମୂଲ, (ଗ୍ରା.ବି) ଠକାମି ।

ଭୁଡ଼ିଆ—ଗ୍ରା.ପୁଂ.ବି. ଏକଜାତୀୟ ପାଣିକୁଆଁ ଗଉଡ଼, (ଉହିଭାଷା)ମୂଲିଆ ।

ଭୁଡ଼ିଆ(ହା)ର୍—ପ୍ରା. (ସମ୍ବ)ବି. ଦୈନିକ ଧାନ ମୂଲନେଇ କାମ କରିବା ମୂଲିଆ

ଭୁଦାରଚଣ୍ଡୀ—ପ୍ରା.(ଖାଲଗିଣ)ବି. ଖାଲଗିର ଗଡ଼ଜାତର ପ୍ରସିଦ୍ଧ ଠାକୁରାଣୀ ।

ଭୁଦୁଅ—ଗ୍ରା.ବି. ଭାଦ୍ରବମାସ ।

ଭୁନି—ଗ୍ରା.ବି. (ସଂ-କ୍ଷୌମ) ଅଙ୍ଗରଖାବିଶେଷ,ବିଧବା ସ୍ତ୍ରୀମାନଙ୍କର ପରିଧେୟ ପାଟ ବା ସୂତାର ଧଳାଲୁଗା ।

ଭୁନିଖେଚୁଡ଼ି—ଗ୍ରା.ବି. ଅନ୍ନ ପାକବିଶେଷ

ଭୁନ୍ଦଡ଼—ଗ୍ରା.ବିଂ. ଓଲୁ, ବୁଦ୍ଧିହୀନ ।

ଭୁନ୍ଦୁ—ଗ୍ରା. ପୁଂ. ବିଂ. ଓଲୁ, ନିର୍ବୋଧ, ବୋକା ।

ଭୁୟାଁ—ଗ୍ରା.ବି. ଭୁଇଁଆ ଦେଖ ।

ଭୁର୍‌ଶା—ଗ୍ରା.ବିଂ.ଅଂଶୁକାୟ, ଅଂଶୁପରି ଲୋମଯୁକ୍ତ ।

ଭୁରା—ଗ୍ରା.ବି. ଗୁଡ଼ ବିକାର,ଖଣ୍ଡ, ଗୁଡ଼, ମେଘ ଅସର, ପାଦ, ପଦକ୍ଷେପ ।

ଭୁରକ୍—ସ୍ତ୍ରୀ.ବି. ପୃଥିବୀ,ବାହୁ, ଦ୍ୟାବା ଓ ପୃଥିବୀ, ସ୍ୱର୍ଗ ଓ ପୃଥିବୀ ।

ଭୁରୁକି—ଗ୍ରା.ବି. ଚୂର୍ଣ୍ଣ, ଚୂନା ।

ଭୁରୁଡ଼ା(ଡ଼ୁ)—ଗ୍ରା.ବି. ଦମ୍ଭପୂର୍ବକ ପ୍ରତ୍ୟାଖ୍ୟାନ, ଦାମ୍ଭିକତାପୂର୍ବକ ନିଜ ଦୋଷର ଅସ୍ୱୀକାର, ଠକାମି, ଦାମ୍ଭିକତା ।

ଭୁରୁଡ଼ା(ଡ଼େ)ଇବା—ଗ୍ରା. କ୍ରି. ଠକିବା, ସତ୍ୟ କଥାକୁ ନମାନିବା, (ପ୍ରା.ସମ୍ବ.କ୍ରି) ପ୍ରବର୍ତ୍ତାଇବା, ଉତ୍ତେଜନା କରିବା ।

ଭୁରୁଭଙ୍ଗ—ଗ୍ରା.ବି. ଭ୍ରୂକ୍ଷେପ,ଖାତିର୍ ।

ଭୁରୁଭୁର—ଗ୍ରା.ବି. କେଞ୍ଚୁଆଆଦି କୀଟଙ୍କଦ୍ୱାରା ଭୂମି ଖୋଳହୋଇଥିବା ମାଟି ଗୁଣ୍ଡ ।

ଭୁରୁସୁଙ୍ଗା—ଗ୍ରା.ବି. ନାରଙ୍ଗାଦି ବର୍ଗର ଶ୍ରେଷ୍ଠତରୁ, (ଏହା ପତ୍ରରେ କାଞ୍ଜିଆଦି ବଘାରଲେ ବାସେ) ।

ଭୁଲ୍—ଗ୍ରା.ବି. ବିସ୍ମୃତି, ଭ୍ରମ, ଭ୍ରାନ୍ତି, ଦୋଷ, ଅଶୁଦ୍ଧି, (ବିଂ) ଭ୍ରାନ୍ତ,ଅଶୁଦ୍ଧ ।

ଭୁଲ—ଗ୍ରା. ଭୋଲ ଦେଖ ।

ଭୁଲଣା—ଗ୍ରା.ବି. ବିସ୍ମୃତି, ଭୁଲାଇବା ।

ଭୁଲତା—ଗ୍ରା.ବି. (ସଂ-ଭ୍ରୂଲତା)ଆଖିଉପରେ ଥିବା ରୋମରାଜି ।

ଭୁଲ—ବି. ନର୍ମଦାର ସଙ୍ଗମସ୍ଥଳ ପ୍ରଦେଶରେ ଜନ୍ମିଥିବା ଗ୍ରହଗଣିତ ଚନ୍ଦ୍ରାମଣିନାମକ ଗ୍ରନ୍ଥର ରଚୟିତା, ଜନୈକ ଜ୍ୟୋତିଷୀ, (ଗ୍ରା.ବି) ଭୁଲିବାକର୍ମ ।

ଭୁଲା(ଲେ)ଇବା—ଗ୍ରା.କ୍ରି. ଭ୍ରମ କରାଇବା, ବିସ୍ମୃତି ଘଟାଇବା, ଭଣ୍ଡାଇବା, ମୁଗ୍ଧ କରାଇବା ।

ଭୁଲିଆ—ପ୍ରା.(ସମ୍ବ)ବି. ପାଣିକୁଆଁ ଏକଜାତୀୟ ତନ୍ତୀ ।

ଭୁଲିବା—ଗ୍ରା.କ୍ରି ବି. ଭ୍ରମ କରିବା, ବିସ୍ମୃତହେବା, ମୁଗ୍ଧହେବା, ପର କଥାରେ ପଡ଼ିବା,ଠକାମିରେ ପଡ଼ିବା ।

ଭୁବଃ—ଅବ୍ୟ. ( ଭୂ+କ.ଅସ୍ ) ସପ୍ତ ସ୍ୱର୍ଗର ଦ୍ୱିତୀୟ ଲୋକ, ଆକାଶ,ଗାୟତ୍ରୀର ବ୍ୟାହୃତିତ୍ରୟ ( ଭୂଃ ଭୁବଃ ସ୍ୱ ) ମଧ୍ୟରୁ ଏକ, ଚନ୍ଦ୍ର, ଅଗ୍ନି ।

ଭୁବନ—କ୍ଲୀ.ବି. (ଭୂ + କ.ଅନ)ସପ୍ତସ୍ୱର୍ଗ ଓ ସପ୍ତପାତାଳ ସମନ୍ୱିତ ବିଶ୍ୱ ପୃଥିବୀ, ଦେଶ, ବାସସ୍ଥାନ, ଘର, ଜଳ, ଏକକଡ଼ା କଉଡ଼ିର ଚଉଦ ଭାଗରୁ ଏକଭାଗ, ଜୀବ, ବିଭବଶାଳୀହେବା।

ଭୁବନକୋଶ—ପୁଂ.ବି. ଭୂଗୋଳ, ଭୂମଣ୍ଡଳ।

ଭୁବନଗୌରବ—ବିଂ. (୬ତତ୍) ଜଗତର ଗୌରବସ୍ୱରୂପ, ଜଗନ୍ମାନ୍ୟ।

ଭୁବନଜ—ଗ୍ରା.ବି. ମାଗିତ ବିକ୍ଷସ।

ଭୁବନଜୟୀ—ପୁଂ.ବିଂ. (ଭୁବନ+ଜି+କ.ଇନ୍) ଜଗଜ୍ଜୟୀ,ତ୍ରିଲୋକ ଜୟକାରୀ, (ସ୍ତ୍ରୀ)ଜୟିନୀ।

ଭୁବନତିଲକ—ପୁଂ.ବିଂ. ତ୍ରିଭୁବନତିଲକସ୍ୱରୂପ, ଜଗତର ଶିରୋମଣି।

ଭୁବନତ୍ରୟ—ବି. ତ୍ରିଭୁବନ, ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ।

ଭୁବନପତି—ପୁଂ.ବି. ଅଗ୍ନିଙ୍କର ଭ୍ରାତୃଭେଦ, ଭୁବନେଶ୍ୱର, ପ୍ରଭୁ, ସ୍ୱାମୀ।

ଭୁବନପାଳ— ବି. କଚ୍ଛପଘାତବଂଶୀୟ ଜଣେ ରାଜା, (୬ତତ୍) ଜଗତ୍ପାତା।

ଭୁବନପାବନ—ବିଂ.(୬ତତ୍)ଜଗତ୍ତ୍ରାତା, ପୃଥିବୀର ପବିତ୍ରତାକାରକ, (ସ୍ତ୍ରୀ) ଭୁବନପାବନୀ, ଗଙ୍ଗାଦେବୀ।

ଭୁବନଭର୍ତ୍ତା—ପୁଂ.ବି. ଭୁବନପତି।

ଭୁବନମୟ—ବିଂ. ଜଗଦ୍‌ବ୍ୟାପୀ, ସକଳ ଲୋକ ବ୍ୟାପ୍ତ, (ସ୍ତ୍ରୀ) ମୟୀ।

ଭୁବନମୋହନ—ପୁଂ. ବିଂ. (୬ତତ୍) ବିଶ୍ୱମୋହକାରୀ।

ଭୁବନମୋହିନୀ—ସ୍ତ୍ରୀ.ବିଂ. (୬ତତ୍)ବିଶ୍ୱବିମୋହିନୀ, ଜଗନ୍ମୁଗ୍ଧକାରିଣୀ।

ଭୁବନବିଖ୍ୟାତ—ବିଂ.( ୭ତତ୍ ) ଜଗଦ୍ବିଖ୍ୟାତ।

ଭୁବନବ୍ୟାପୀ—ପୁଂ.ବିଂ.(ଭୁବନ+ବି+ଆପ୍+କ.ଇନ୍) ଜଗଦ୍ବିଖ୍ୟାତ, (ସ୍ତ୍ରୀ) ବ୍ୟାପିନୀ।

ଭୁବନବିଜୟୀ—ପୁଂ.ବିଂ. ତ୍ରିଲୋକ ଜୟକାରୀ, (ସ୍ତ୍ରୀ) ବିଜୟିନୀ। [ କର।

ଭୁବନାଭୂତ—ତ୍ରି.ବିଂ. ଭୁବନ ବିସ୍ମୟ-

ଭୁବନାଧୀଶ—ପୁଂ. ବି. ରୁଦ୍ରଭେଦ, ତ୍ରିଭୁବନର ଅଧିପତି।

ଭୁବନାଧୀଶ୍ୱର—ପୁଂ. ବି. ତ୍ରିଭୁବନର ଅଧିପତି।

ଭୁବନାନନ୍ଦ—ପୁଂ.ବି. (୬ତତ୍)ଜଗତର ଆନନ୍ଦ, (ବ.ବ୍ରୀ) ପରମେଶ୍ୱର।

ଭୁବନାଶ୍ରୟ—ବି. (୬ତତ୍) ପୃଥିବୀର ଆଶ୍ରୟ ସ୍ଥଳ।

ଭୁବନେଶାନୀ—ସ୍ତ୍ରୀ. ବି. ଜଗତ୍‌କର୍ତ୍ତ୍ରୀ, ଜଗଦ୍ଧାତ୍ରୀ, ଦୁର୍ଗା। [ ଦୁର୍ଗା।

ଭୁବନେଶୀ—ସ୍ତ୍ରୀ. ବି. ଶକ୍ତି ମୂର୍ତ୍ତିଭେଦ,

ଭୁବନେଶ୍ୱର—ଗ୍ରା ବି. ଓଡ଼ିଶା ପ୍ରଦେଶର ଅନ୍ତର୍ଗତ ପୁରୀ ଜିଲ୍ଲାସ୍ଥ ଗୋଟିଏ ଶୈବକ୍ଷେତ୍ର, ଭୁବନେଶ୍ୱରସ୍ଥ ଶିବଲିଙ୍ଗ, (ସଂ-ବି) ଜଗଦୀଶ୍ୱର, ଶିବ।

ଭୁବନେଶ୍ୱରବଡ଼ପଣ୍ଡା—ଗ୍ରା. ବି. ଜଣେ ଉତ୍କଳୀୟ ପ୍ରସିଦ୍ଧ ପଣ୍ଡିତ ଓ ସ୍ମୃତିକାର, (ଏ ଉତ୍କଳୀୟ ବ୍ରାହ୍ମଣ, ଏହାଙ୍କ ଘର ଢଗିଆ)।

ଭୁବନେଶ୍ୱରୀ—ସ୍ତ୍ରୀ.ବି. ଦଶ ମହାବିଦ୍ୟା ମଧ୍ୟରେ ଦେବୀବିଶେଷ, ପାର୍ବତୀ, ଦୁର୍ଗା।

ଭୁବନେଶ୍ୱରୀକବଚ--ସ୍ତ୍ରୀ.ବି. ତନ୍ତ୍ରସାରୋକ୍ତ ଧାରଣୀୟ କବଚବିଶେଷ। [ମାତ୍ରା।

ଭୁବନେଷ୍ଟା—ପୁଂ.ବି. ସର୍ବବ୍ୟାପୀ ପର-

ଭୁବନୌକଃ—ପୁଂ. ବିଂ.(ବ.ବ୍ରୀ)ଭୁବନବାସୀ।

ଭୁବନ୍ତ—ପୁଂ. ବି. ଭୂମଣ୍ଡଳ ବିସ୍ତାରକ।

ଭୁବନ୍ୟୁ—ପୁଂ. ବି. ( ଭୂ+କ.ଅନ୍ୟୁ ) ସୂର୍ଯ୍ୟ, ଅଗ୍ନି, ଚନ୍ଦ୍ର, ପ୍ରଭୁ, ପର୍ବତ।

ଭୁବପତି—ପୁଂ.ବି. ଅଗ୍ନିର ଭ୍ରାତୃଭେଦ, ଭୁବର୍ଲୋକପତି।

ଭୁବର୍ଲୋକ—ପୁଂ.ବି. (ଭୁବସ୍+ ଲୋକ) ଭୂରାଦି ସପ୍ତଲୋକାନ୍ତର୍ଗତ ଦ୍ୱିତୀୟଲୋକ

ଭୁବସ୍ପତି—ପୁଂ.ବି. ଭୁବର୍ଲୋକର ସ୍ୱାମୀ।

ଭୁବି—ଗ୍ରା. ବି. ପୃଥିବୀ।

ଭୁବିଷ୍ଠ—ତ୍ରି. ବିଂ. ( ଭୁବି+ସ୍ଥା+ଅ ) ଭୁବିସ୍ଥିତ, ପୃଥିବୀସ୍ଥିତ।

ଭୁବିଃ—କ୍ଲୀ. ବି. (ଭୂ+ଇସ୍) ସମୁଦ୍ର।

ଭୁବୀନ୍ଦ୍ର—ଗ୍ରା. ବି. ରାଜା।

ଭୁଶ୍—ଗ୍ରା. ଅବ୍ୟ. ଶୁଖିଲା ମାଟି ହଠାତ୍ ଖସିପଡ଼ିବାର ଶବ୍ଦ, ହଠାତ୍ ପଡ଼ିବାର ଶବ୍ଦ, ହଠାତ୍।

ଭୁଶ୍କା(କି)—ଗ୍ରା. କ୍ରି. ହଠାତ୍ ଭୁଶ୍‌ଶବ୍ଦ ପୂର୍ବକ।

ଭୁଶା(ସା)—ଗ୍ରା. ବି. ଭୁସିବା, କେଞ୍ଚିବା ଦ୍ୱାରା ପ୍ରହାର, କେଞ୍ଚା, ( ଗ୍ରା. ବିଂ ) ଶୁଖିଲା (ମାଟି)।

ଭୁଶା(ସା)ଇବା—ଗ୍ରା.କ୍ରି. ଭୁଶିବାକ୍ରିୟାର ଣିଜନ୍ତରୂପ।

ଭୁଶା(ସା)ବାଲି—ଗ୍ରା. ବି. ଝୁରୁଗୁଲାବାଲି, ଯହିଁରେ ଗୋଡ଼ ଗଳିଯାଏ।

ଭୁଶା(ସା)ମାଟି—ଗ୍ରା. ବି. ଶିଥିଳମୃତ୍ତିକା।

ଭୁଶୁଣ୍ଡା—ଗ୍ରା. ପୁଂ. ବିଂ. ପୃଥୁଳ ଅଥଚ ଅକାମିକା ଅସୁନ୍ଦର (ଲୋକ), ( ସ୍ତ୍ରୀ ) ଭୁଶୁଣ୍ଡୀ।

ଭୁଶୁଣ୍ଡୀ—ବି. ପୁରାଣ ବର୍ଣ୍ଣିତ ତ୍ରିକାଳଜ୍ଞ କାକବିଶେଷ।

ଭୁଶୁଣ୍ଡୀ—ବି. ପ୍ରାଚୀନ ଭାରତର ଆଗ୍ନେୟାସ୍ତ୍ରବିଶେଷ। [ ମାତ୍ର।

ଭୁଷ—ପ୍ରା. (ଯାଜ) ବି. ଶ୍ରେଷ୍ଠ ଚଙ୍ଗୁଡ଼ି

ଭୁଷ(ସ)ଣ୍ଡୀ—ବି. ବିକ୍ଷେପଣୀୟ ଯୁଦ୍ଧାସ୍ତ୍ର।

ଭୁଷିବା—ଗ୍ରା. କ୍ରି. ବିନ୍ଧିବା, କେଞ୍ଚିବା, ଗାତରେ ମାଟିଆଦି ଭରତି କରିବା; ଶୋହଣିବା।

ଭୁଷୀ—ଗ୍ରା. ବି. ଗେଞ୍ଜଡ଼ି, ଚଷୁ।

ଭୁଷୁଡ଼ି(ଳି)ବା—ଗ୍ରା. କ୍ରି. ହଠାତ୍ ବସିଯିବା ହେବା, ସ୍ଖଳିତ ହେବା, ସ୍ଥାନଚ୍ୟୁତ ହେବା।

ଭୁସ୍କା—ଗ୍ରା. ବିଂ. ମୋଟା, ସ୍ଥୂଳକାୟ।

ଭୁସ୍ତୃଣ—ବି. ଗନ୍ଧମାଳୀ।

ଭୂ—ବି. (ଭୂ+କ୍ୱିପ୍) ପୃଥିବୀ, ପାତାଳଭୂମି, ପ୍ରଦେଶ, ଯଜ୍ଞାଗ୍ନି, ଆଧାର, (ବିଂ) ଯେ ଜନ୍ମେ।

ଭୂଃ—ଅବ୍ୟ. (ଭୂ+ସୁକ୍) ସପ୍ତଭୁବନ ମଧ୍ୟରୁ ପ୍ରଥମ ଭୁବନ, ପୃଥିବୀ।

ଭୂଇଁ—ଗ୍ରା. ବି. ଭୂମି,କ୍ଷେତ୍ର,କୃଷିକ୍ଷେତ୍ର

ଭୂଇଁଅଁଳା—ଗ୍ରା. ବି. ଭୂମିଆମଳକୀ।

ଭୂଇଁଆ—ଗ୍ରା.ବି. ଭୂସ୍ୱାମୀ,ଜାତିବିଶେଷ,

ଆଧୁନିକ ଜମିଦାର ।
ଭୁଇଁକଖାରୁ—ଗ୍ରା. ବି. ଭୂମିକୁଷ୍ମାଣ୍ଡ ।
ଭୁଇଁକମ୍ପ—ଗ୍ରା. ବି. ଭୂମିକମ୍ପ ।
ଭୁଇଁକାମଡ଼ା—ଗ୍ରା. ବି. ଏକପ୍ରକାର ଭୂମିରେ ମାଡ଼ିଥିବା ଲତାଶାକବିଶେଷ
ଭୁଇଁକୋରୁଆ—ଗ୍ରା. ବି. ସୁଗନ୍ଧି ବନ୍ୟ ପୁଷ୍ପବିଶେଷ ।
ଭୁଇଁଚମ୍ପା—ଗ୍ରା. ବି. ଭୂମିଚମ୍ପକ ।
ଭୁଇଁଗୁଲୁଣ୍ଡା—ଗ୍ରା. ବି. ଗୁଲୁଣ୍ଡା,ବନ୍ୟ-ଗୁଳ୍ମବିଶେଷ ।
ଭୁଇଁଜାମ୍ବୁ—ଗ୍ରା. ବି. ଭୂମିଜମ୍ବୁ ।
ଭୁଇଁଡାଳିମ୍ବ—ଗ୍ରା. ବି. ଭୂମିଡାଳିମ୍ବ-ଭେଦ । [ ଗଛ ।
ଭୁଇଁଡିମିରି—ଗ୍ରା.ବି. ଏକପ୍ରକାର ଡିମିରି
ଭୁଇଁଦଅଣ—ଗ୍ରା. ବି. ପୃଥିବୀ ରଜସ୍ୱଳା ହେବାର ପରଦିନ ।
ଭୁକ—ବି. (ଭୁ + କ.ଅକ) ଛିଦ୍ର, ଗର୍ତ୍ତ, ରନ୍ଧ୍ର, ଅନ୍ଧକାର, କଳା ।
ଭୂକଦମ୍ବ—ପୁଂ. ବି. ଭୁଇଁକଦମ୍ବ ଗଛ ।
ଭୂକଦମ୍ବକ—ପୁଂ. ବି. ଯବାନୀ,ଯୁଆଣୀ ।
ଭୂକଦମ୍ବା—ସ୍ତ୍ରୀ. ବି. ଗୋରକ୍ଷମୁଣ୍ଡୀ ।
ଭୂକନ୍ଦ—ପୁଂ.ବି. ମହାଶ୍ରାବଣିକା,ଶୂରଣ, ଓଲୁଅ ।
ଭୂକନ୍ଦର—ସ୍ତ୍ରୀ.ବି. ଯେ ଗ୍ରୀବାକୁ ଭୂମି ଖଣ୍ଡ ଅନ୍ୟ ଅପ୍ରଶସ୍ତ ଭୂମିଖଣ୍ଡ ଦ୍ୱୟକୁ ସଂଯୋଜିତ କରେ ।
ଭୂକମ୍ପ—ପୁଂ. ବି. (ଭୂମି+କମ୍ପ) ଭୂମି-କମ୍ପ, ପୃଥିବୀର କମ୍ପନ ।
ଭୂକର୍ଣ୍ଣ—ପୁଂ. ବି. (ଭୂ+କର୍ଣ୍ଣ) ବିଷୁବ-ରେଖାର ବ୍ୟାସାର୍ଦ୍ଧ ।
ଭୂକାଳ—ପୁଂ. ବି. ଦୁର୍ଦ୍ଦିନାଗାଣ୍ଡ ।
ଭୂକଶ୍ୟପ—ପୁଂ.ବି. (୬ତତ୍ପୁ)ବସୁଦେବ, ଶ୍ରୀକୃଷ୍ଣଙ୍କ ଜନକ ।
ଭୂକାକ—ପୁଂ. ବି. ସ୍ୱଳ୍ପକଙ୍କ,କୌଞ୍ଚ, ଦାତ୍ୟୂହ, ନୀଳ କପୋତ ।
ଭୂକୁମ୍ଭୀ—ସ୍ତ୍ରୀ. ବି. ଭୂପାଟଳୀ ।
ଭୂକୁଷ୍ମାଣ୍ଡୀ—ସ୍ତ୍ରୀ. ବି. ଭୁଇଁକଖାରୁ ।
ଭୂକେଶ—ପୁଂ. ବି. ( ଭୂ+କେଶ ) ଶୈବାଳ, ଶିଉଳି, ବଟବୃକ୍ଷ ।

ଭୂକେଶା—ସ୍ତ୍ରୀ. ବି. ( ଭୂକେଶ+ଆ ) ରାକ୍ଷସୀ ।
ଭୂକେଶୀ—ସ୍ତ୍ରୀ. ବି. ( ଭୂକେଶ+ଈ ) ସୋମରାଜୀ ଗଛ ।
ଭୂକ୍ଷିତ୍—ପୁଂ.ବି. (ଭୂଂ+କ୍ଷିଦ୍+କ୍ୱିପ୍) ଶୂକର ।
ଭୂଖଣ୍ଡ—କ୍ଲୀ. ବି. ଭୂମିଖଣ୍ଡ, ପୃଥିବୀର ଅଂଶ ବା ଅଞ୍ଚଳବିଶେଷ ।
ଭୂଖର୍ଜ୍ଜୁରୀ—ସ୍ତ୍ରୀ. ବି. ଭୁଇଁଖଜୁରି, ବଣ-ଖଜୁରି ।
ଭୂଗନ୍ଧା—ସ୍ତ୍ରୀ. ବି. ମୁରାମାଂସୀ ।
ଭୂଗର—କ୍ଲୀ. ବି. ବିଷ, ଗରଳ ।
ଭୂଗର୍ଭ—ପୁଂ. ବି. (୬ତତ୍ପୁ) ଭବଭୂତି କବି, ବିଷ୍ଣୁ, ପୃଥିବୀର ଅଭ୍ୟନ୍ତର, ମାଟିତଳ ।
ଭୂଗର୍ଭନିହିତ—ବିଂ. (୭ତତ୍ପୁ) ମାଟି-ତଳେ ସ୍ଥିତ ।
ଭୂଗର୍ଭବିଦ୍ୟା—ବି. ଯେଉଁ ଶାସ୍ତ୍ରରେ ପୃଥିବୀର ଅଭ୍ୟନ୍ତରସ୍ଥ ତଥ୍ୟମାନ ଆଲୋଚିତ ହୋଇଅଛି ।
ଭୂଗୃହ—କ୍ଲୀ. ବି. ଭୂମଧ୍ୟସ୍ଥିତ ଗୃହ, ତନ୍ତ୍ରୋକ୍ତ ଯନ୍ତ୍ରବହିଃସ୍ଥିତ ରେଖାଦ୍ୱୟ ବିଶେଷାତ୍ମକ ପଦାର୍ଥ ।
ଭୂଗୋଳ—ପୁଂ. ବି. ଭୂମଣ୍ଡଳ, ପୃଥିବୀ ଓ ବିଭିନ୍ନ ଦେଶର ବିବରଣ, ପୃଥିବୀ-ମଣ୍ଡଳ, ଗୋଲାକାର ପୃଥିବୀ ।
ଭୂଗୋଳକ—ବି. ପୃଥିବୀମଣ୍ଡଳ,ଗୋଲା-କୃତି ପୃଥିବୀ ।
ଭୂଗୋଳବିଦ୍ୟା—ସ୍ତ୍ରୀ. ବି.ଯେଉଁ ବିଦ୍ୟା ଦ୍ୱାରା ପୃଥିବୀର ଆକୃତି ଗୁଣଧର୍ମ,ବିଭାଗ ସମ୍ବନ୍ଧ ପ୍ରଭୃତି ଜଣାଯାଏ ।
ଭୂଘନ—ପୁଂ. ବି. ଶରୀର ।
ଭୂଚକ୍ର—କ୍ଲୀ. ବି. ପୃଥିବୀର ପରିଧି. ବିଷୁବରେଖା, ଅୟନବୃତ୍ତ, କ୍ରାନ୍ତିବୃତ୍ତ, ଅକ୍ଷର ଦ୍ରାଘିମ ରେଖା ।
ଭୂଚଣକ—ବି.ଭୁଇଁଚଣା, ଚୀନାବାଦାମ୍
ଭୂଚମ୍ପକ—ବି. ଭୁଇଁଚମ୍ପା ।
ଭୂଚର—ତ୍ରି. ବିଂ. (ଭୂ+ଚର+କ.ଅ) ଯେଉଁମାନେ ଭୂମିରେ ବାସ କରନ୍ତି,

ସ୍ଥଳଚର, (ବି) ଶିବ, ମନୁଷ୍ୟାଦି ସମସ୍ତ ପ୍ରାଣୀ, (ସ୍ତ୍ରୀ) ଭୂଚରୀ ।
ଭୂଚରସିଦ୍ଧି—ସ୍ତ୍ରୀ. ବି. ତନ୍ତ୍ରୋକ୍ତ ଏକ-ପ୍ରକାର ସିଦ୍ଧି, ଯହିଁ ଫଳରେ ସାଧକର କୌଣସି ସ୍ଥାନ ଅଗମ୍ୟ ଓ ଅପ୍ରାପ୍ୟ ଓ ଅଦୃଶ୍ୟ ରହେ ନାହିଁ ।
ଭୂଚିତ୍ର—କ୍ଲୀ. ବି. (ଭୂ+ଚିତ୍ର) ପୃଥିବୀର ମାନଚିତ୍ର, ମ୍ୟାପ୍ ।
ଭୂଚ୍ଛାୟା—ବି. (୬ତତ୍ପୁ) ଅନ୍ଧକାର,ପୃଥି-ବୀର ଛାୟା, ରାହୁ ।
ଭୂଜମ୍ବୁ—ସ୍ତ୍ରୀ. ବି. ଗୋଧୂମ, ଗହମ, ଗିଳିଗି ଜାମ୍ବୁଗଛ, ଭୁଇଁଅଁକୋଳି ।
ଭୂଟାନ—ଗ୍ରା.ବି. ହିମାଳୟର ପୂର୍ବ ପାଦ ଭୂମିରେ ଅବସ୍ଥିତ ଗୋଟିଏ ପାର୍ବତ୍ୟ ସ୍ୱାଧୀନ ସାମନ୍ତ ରାଜ୍ୟ ।
ଭୂତ—କ୍ଲୀ. ବି. ( ଭୂ+ତ ) ବାୟୁଚର ଦେବଯୋନି ବିଶେଷ,ପିଶାଚ,ଶିବଙ୍କର ଅନୁଚର ବା ଗଣ ସମୂହ, ଜଗତର ପଞ୍ଚମୌଳିକ ଉପାଦାନ, ପ୍ରାଣୀ, ଜୀବ-ତତ୍ତ୍ୱ, ସତ୍ୟ, ଅତୀତ ସମୟ, ତତ୍ତ୍ୱାନୁ-ସନ୍ଧାନ, କାର୍ତ୍ତିକେୟ,ଯୋଗୀନ୍ଦ୍ର,ପ୍ରେତ ପିଶାଚ ଆଦିଙ୍କ ଉପଦ୍ରବ ଶାନ୍ତ କରିବା ଔଷଧ, ଲୋଧ୍ରବୃକ୍ଷ, ସୃଷ୍ଟ ଜଡ଼ ବା ଚେତନ ବସ୍ତୁ, କୃଷ୍ଣପକ୍ଷ, ମୃତ ଶରୀର, ଶବ, ମୋକ୍ଷ ପ୍ରାପ୍ତ ହୋଇନଥିବା ପ୍ରେତାତ୍ମା,(ବ୍ୟାକରଣ)ଅତୀତ ହୋଇ-ଥିବା କ୍ରିୟାର କାଳ, ବୃଦ୍ଧି, ( ବିଂ ) ଅତୀତ, ଗତ, ଜାତ, ଉତ୍ପନ୍ନ, ପରିଣତ, ସତ୍ୟ, ଉଚିତ, ସ୍ୱରୂପ, ତୁଲ୍ୟ, ଉପା-ସିତ, ଅବସ୍ଥିତ, ଯୁକ୍ତ, ମିଳିତ, (ଗ୍ରା. ବିଂ) ଅବିବେକ, ପ୍ରେତପରି ବିଚରଣ-ଶୀଳ, ଦୁରନ୍ତ, ଦୁଷ୍ଟ ।
ଭୂତକରଣ—କ୍ଲୀ. ବି. ବୈଦିକ ବ୍ୟାକରଣୋକ୍ତ ସଂଜ୍ଞା ବିଶେଷ ।
ଭୂତକର୍ତ୍ତ୍ର—ପୁଂ. ବି. ବ୍ରହ୍ମା ।
ଭୂତକର୍ମ—ପୁଂ. ବି. ମନୁଷ୍ୟ ଭେଦ ।
ଭୂତକଟି—ବୌଦ୍ଧମତରେ ଜୀବ ଲୋକର ସଙ୍କୋଚସ୍ଥାନ, ଶୂନ୍ୟତା ।
ଭୂତକଳା—ସ୍ତ୍ରୀ. ବି. ପୃଥିବ୍ୟାଦି ପଞ୍ଚ-

ଭୂତର ଉତ୍ପାଦକାଦି ଶକ୍ତିଭେଦ ।

ଭୂତକାଳ—ପୁଂ.ବି.(କ.ଧା.)ଅତୀତକାଳ, ଯେଉଁ ସମୟ ଗତ ହୋଇଅଛି ।

ଭୂତକାଳିକ—ପୁଂ. ବିଂ. (ଭୂତକାଳ+ଇକ) ଅତୀତ କାଳ ସମ୍ବନ୍ଧୀୟ ।

ଭୂତକୃତ୍—ପୁଂ.ବି. (ଭୂତ+କୃ+କ୍ୱିପ୍) ଦେବତା, ବିଷ୍ଣୁ ।

ଭୂତକେଶ—ପୁଂ. ବି. (୬ତତ୍) ସ୍ୱନାମଖ୍ୟାତ ତୃଣବିଶେଷ.ଶ୍ୱେତଦୁବ୍ବା, ନୀଳନିର୍ଗୁଣ୍ଡୀ, ଇନ୍ଦ୍ରବାରୁଣୀ, ଶ୍ୱେତ ତୁଳସୀ ବୃକ୍ଷ,ଶେଫାଳିକା,ଜଟାମାଂସୀ,ପୁନର୍ନବା ।

ଭୂତକେଶୀ—ସ୍ତ୍ରୀ.ବି.ଭୂତକେଶ ଦେଖ, ନୀଳବେଗୁନିଆ ।

ଭୂତକେଶର—ସ୍ତ୍ରୀ.ବି.ମେଥିକା, ମେଥି ।

ଭୂତକ୍ରାନ୍ତି—ସ୍ତ୍ରୀ. ବି. ଭୂତାବେଶ,ଭୂତଲଗିବା ।

ଭୂତଖାନା—ଗ୍ରା. ବି. (ଲ.ଅର୍ଥ) ଯେଉଁ ସ୍ଥାନରେ ଅନେକ ଦୁଷ୍କର୍ମୀ ଓ ଦୁଷ୍ଟଲୋକ ଜମା ହୋଇଥାଆନ୍ତି, ଅନିର୍ଦ୍ଦିଷ୍ଟ ସ୍ୱାମିକ ବିଷୟ, ଥାନା, ଫାଣ୍ଡି ।

ଭୂତଗଣ—ବି.(୬ତତ୍)ଶିବାନୁଚରଗଣ ।

ଭୂତଗତ—ବିଂ. (୭ତତ୍) ପଞ୍ଚଭୂତରେ ପ୍ରବିଷ୍ଟ ବା ମିଳିତ ।

ଭୂତଗନ୍ଧା—ସ୍ତ୍ରୀ. ବି. ମୁରାମାଂସୀ ।

ଭୂତଗୁଣ—ବି.(୬ତତ୍) ଆକାଶାଦି ପଞ୍ଚଭୂତର ଗୁଣ, ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧ ଏହି ପଞ୍ଚ ବିଷୟ ।

ଭୂତଗ୍ରସ୍ତ—ବିଂ. (୩ତତ୍) ଯାହାକୁ ଭୂତଲଗିଥାଏ, (ସ୍ତ୍ରୀ) ଭୂତଗ୍ରସ୍ତା ।

ଭୂତଗ୍ରାମ—ପୁଂ. ବି. ଭୂତସମୂହ ।

ଭୂତଘ୍ନ—ପୁଂ. ବି. (ଭୂତ+ହନ୍+ଅ) ଉଷ୍ଟ୍ର, ରସୁଣ, ଭୂର୍ଜ୍ଜବୃକ୍ଷ, (ବିଂ) ଭୂତନାଶକ, (ସ୍ତ୍ରୀ) ଭୂତଘ୍ନୀ ।

ଭୂତଘ୍ନୀ—ସ୍ତ୍ରୀ.ବି. (ଭୂତଘ୍ନ+ଈ)ତୁଳସୀ, ମୁଣ୍ଡିତିକା ।

ଭୂତଚତୁର୍ଦ୍ଦଶୀ—ବି.କାର୍ତ୍ତିକମାସର କୃଷ୍ଣଚତୁର୍ଦ୍ଦଶୀ, ନରକ ଚତୁର୍ଦ୍ଦଶୀ ।

ଭୂତଚାରୀ—ପୁଂ. ବି. ମହାଦେବ ।

ଭୂତଚିନ୍ତା—ସ୍ତ୍ରୀ. ବି. ପଦାର୍ଥବିଷୟିଣୀ ଚିନ୍ତା ବା ଅନୁଶୀଳନ ।

ଭୂତଛଡ଼ାଇବା—ଗ୍ରା.କ୍ରି.ମନ୍ତ୍ରତନ୍ତ୍ରାଦି ଦ୍ୱାରା ଭୂତକୁ ଦୂର କରାଇବା ।

ଭୂତଜଟା—ସ୍ତ୍ରୀ. ବି. ଜଟାମାଂସୀ ।

ଭୂତଡାମର—କ୍ଲୀ. ବି. ତନ୍ତ୍ରଭେଦ ।

ଭୂତତତ୍ତ୍ୱ—କ୍ଲୀ.ବି.(୬ତତ୍) ପଞ୍ଚଭୂତର ଗୁଣ ବା ଧର୍ମ, ପଦାର୍ଥ ବିଦ୍ୟା, ଜଡ଼ବିଜ୍ଞାନ ।

ଭୂତତୃଣ—ପୁଂ. ବି. ବିଷଭେଦ, ଗନ୍ଧଦ୍ରବ୍ୟବିଶେଷ ।

ଭୂତତ୍ତ୍ୱ—କ୍ଲୀ. ବି. (୬ତତ୍) ପୃଥିବୀର ଉତ୍ପତ୍ତି ପରିଣତି ଆଦିସମ୍ବନ୍ଧୀୟ ବିଜ୍ଞାନ ।

ଭୂତତ୍ତ୍ୱବିଦ୍—ପୁଂ. ବିଂ. (ଭୂତତ୍ତ୍ୱ+ବିଦ୍+କ୍ୱିପ୍) ଭୂତତ୍ତ୍ୱ ବିଜ୍ଞାନ ବିଷୟରେ ଅଭିଜ୍ଞ (ବ୍ୟକ୍ତି) ।

ଭୂତତ୍ତ୍ୱବିଦ୍ୟା—ସ୍ତ୍ରୀ. ବି. ପୃଥିବୀର ଅଭ୍ୟନ୍ତରସ୍ଥ ପଦାର୍ଥ ସମୂହର ନିର୍ଣ୍ଣୟାତ୍ମକ ଶାସ୍ତ୍ର ।

ଭୂତଦ୍ରାବୀ—ପୁଂ. ବି. ଭୂତାଙ୍କୁଶ ବୃକ୍ଷ, ରକ୍ତ କରବୀର, ନାଲି ମନ୍ଦାର ।

ଭୂତଦ୍ରୁମ—ପୁଂ. ବି. ଶ୍ଳେଷ୍ମାନ୍ତକ ବୃକ୍ଷ ।

ଭୂତଧାତ୍ରୀ—ସ୍ତ୍ରୀ. ବି. (ଭୂତ+ଧାତ୍ରୀ) ପୃଥିବୀ, ଧରିତ୍ରୀ ।

ଭୂତଧାମ—ପୁଂ. ବି. ଇନ୍ଦ୍ର ପୁତ୍ରଭେଦ ।

ଭୂତଧାବନୀ—ସ୍ତ୍ରୀ. ବି. ପୃଥିବୀ ।

ଭୂତନାଥ—ପୁଂ.ବି.(୬ତତ୍) ଶିବ,ଭୂତପତି ରାମ ।

ଭୂତନାୟକ—ପୁଂ. ବି. (୬ତତ୍) ଶିବ ।

ଭୂତନାୟିକା—ସ୍ତ୍ରୀ. ବି. (୬ତତ୍) ଦୁର୍ଗା, ପାର୍ବତୀ ।

ଭୂତନାଶନ—କ୍ଲୀ. ବି. (ଭୂତ+ନଶ୍+ଣିଚ୍+ଅନ)ରୁଦ୍ରାକ୍ଷ,ଭଲିଆ,ସୋରିଷ ।

ଭୂତନିଚୟ—ପୁଂ. ବି. ଭୂତସମୂହ ।

ଭୂତନ୍ତ୍ୱବିଦ୍—ପୁଂ.ବି. ଭୂତତ୍ତ୍ୱଜ୍ଞ, ଭୂତତ୍ତ୍ୱବିଜ୍ଞାନ ସମ୍ବନ୍ଧରେ ଅଭିଜ୍ଞ ବ୍ୟକ୍ତି ।

ଭୂତପକ୍ଷ—ପୁଂ. ବି. କୃଷ୍ଣପକ୍ଷ ।

ଭୂତପତି—ପୁଂ. ବି. ମହାଦେବ, କୃଷ୍ଣ ତୁଳସୀବୃକ୍ଷ ।

ଭୂତପତ୍ରୀ—ସ୍ତ୍ରୀ.ବି.ତୁଳସୀ ।

ଭୂତପାଳ—ପୁଂ. ବି. ଭୂତ ପ୍ରତିପାଳକ, ବିଷ୍ଣୁ ।

ଭୂତପୁଷ୍ପ—ପୁଂ. ବି. (ବ.ବ୍ରୀ) ଶ୍ୟୋଣାକ ବୃକ୍ଷ, ଫଣଫଣା ଗଛ ।

ଭୂତପୂର୍ଣ୍ଣିମା—ସ୍ତ୍ରୀ. ବି. (କ.ଧା)ଆଶ୍ୱିନପୂର୍ଣ୍ଣିମା, କୋଜାଗର ପୂର୍ଣ୍ଣିମା ।

ଭୂତପୂର୍ବ—ତ୍ରି. ବିଂ. ଯାହା ପୂର୍ବରେ ଘଟିଥିଲା, ପୂର୍ବତନ, (ସ୍ତ୍ରୀ) ଭୂତପୂର୍ବା ।

ଭୂତପ୍ରତିଷେଧ—ପୁଂ.ବି.ଭୂତବିତାଡ଼ନ, ଭୂତ ଝଡ଼ିବା ।

ଭୂତପ୍ରଳୟ—ବି.(୬ତତ୍) ସୃଷ୍ଟ ଜୀବ ଓ ବସ୍ତୁମାନଙ୍କର ବିନାଶ ।

ଭୂତପ୍ରେତ—ବି. ଭୂତପ୍ରେତ ପିଶାଚାଦି ଦେବଯୋନି ।

ଭୂତଭବିଷ୍ୟତ୍—ଗ୍ରା. ବି. ଅତୀତ ଓ [ ଭବିଷ୍ୟତ୍ ।

ଭୂତଭର୍ତ୍ତା—ପୁଂ.ବି. (ଭୂତ+ଭୃ+କ.ତୃ) ଭୂତପତି, ଶିବ, ଭଗବାନ୍ ।

ଭୂତଭବ୍ୟ—ପୁଂ. ବି. ବିଷ୍ଣୁ ।

ଭୂତଭାବନ—ପୁଂ. ବି.(ଭୂତ+ଭାବି+ଅନ) ବିଷ୍ଣୁ,ବ୍ରହ୍ମା, ମହାଦେବ, ବଟୁକଭୈରବ, (ବିଂ) ଭୂତପାଳକ ।

ଭୂତଭାଷା—ସ୍ତ୍ରୀ. ବି. ପୈଶାଚିକ ଭାଷା ।

ଭୂତଭାଷିତ—କ୍ଲୀ. ବି. ପୈଶାଚ ଭାଷା ।

ଭୂତଭୂତ—ଗ୍ରା. ବି. ଅଶୋଷା ଅବସ୍ଥା ।

ଭୂତଭୃତ୍—ପୁଂ.ବି.ବିଷ୍ଣୁ, ପାଳନକର୍ତ୍ତା, (ବିଂ) ଭୂତଧାରକ ।

ଭୂତଭୌତିକ—ତ୍ରି.ବିଂ.ଭୂତ ଓ ଭୂତ- [ ଜାତ ।

ଭୂତମୟ—ତ୍ରି. ବିଂ. ଭୂତଯୁକ୍ତ, ପଞ୍ଚଭୌତିକ,ପଞ୍ଚଭୂତ ଉପାଦାନରେ ପୂର୍ଣ୍ଣ

ଭୂତମହେଶ୍ୱର—ପୁଂ. ବି. ବିଷ୍ଣୁ ।

ଭୂତମାତା—ସ୍ତ୍ରୀ.ବି.ଗୌର୍ଯ୍ୟାଦି ଅଷ୍ଟାଦଶମାତୃଗଣ, ବ୍ରାହ୍ମ୍ୟାଦି ନବଶକ୍ତି ମାତୃଗଣ

ଭୂତମଣ୍ଡଳ—କ୍ଲୀ.ବି.ପୃଥିବ୍ୟାଦିର ମଣ୍ଡଳ ଭେଦ ।

ଭୂତମାତ୍ରା—ସ୍ତ୍ରୀ.ବି.ଶବ୍ଦାଦି ପଞ୍ଚତନ୍ମାତ୍ର, ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧ ।

ଭୂତମାରି—କ୍ଲୀ. ବି. ଗନ୍ଧଦ୍ରବ୍ୟବିଶେଷ ।

ଭୂତଯଜ୍ଞ—ପୁଂ. ବି. ବୈଶ୍ୱଦେବ କର୍ମ, ଭୂତବଳି, ଜୀବମାନଙ୍କୁ ଖାଦ୍ୟ ଦାନ ।

ଭୂତଯୋନି—ବି. (୬ତତ୍) ଆକାଶାଦି ପଞ୍ଚଭୂତର ମୂଳ କାରଣ ପରମେଶ୍ୱର, ପ୍ରାଣୀମାନଙ୍କର ଭୂତ ବା ପ୍ରେତ ରୂପରେ ଜନ୍ମଗ୍ରହଣ ।

ଭୂତରାଟ୍—ପୁଂ.ବି.ଭୂତାଧିପତି ଶିବ ।

ଭୂତରୂପସ୍ଥାନ—କ୍ଳୀ.ବି.ଭୂତମୟ ଶରୀର

ଭୂତଳ—କ୍ଳୀ. ବି. (୬ତତ୍) ପୃଥିବୀ, ଭୂମଣ୍ଡଳ, ଭୂମିର ଅଧୋଭାଗ,ପାତାଳ

ଭୂତଳଶୟନ—ବି. (୭ତତ୍)ଭୂମିଶଯ୍ୟା

ଭୂତଳଶାୟୀ—ପୁଂ.ବିଂ. (ଭୂତଳ+ଶୀ +କ.ଇନ୍)ଭୂମିଶଯ୍ୟାରେ ଶୋଇଥିବା ।

ଭୂତଲଗିବା—ଗ୍ରା. ବି. କୌଣସି ଲୋକଠାରେ ଭୂତାବେଶ ହେବା, (ଲ.ଅର୍ଥ) କ୍ରୋଧରେ ବାଉଳାପରି ହେବା ।

ଭୂତଳିକା—ସ୍ତ୍ରୀ. ବି. ପିଣ୍ଡିଶାକ ।

ଭୂତଳୋନ୍ମଥନ—ପୁଂ.ବି.ଦାନବବିଶେଷ

ଭୂତବତ୍—ଅବ୍ୟ.ପୂର୍ବବତ୍, ପୂର୍ବପ୍ରକାର

ଭୂତବର୍ଗ—ପୁଂ. ବି. ଭୂତସମୂହ ।

ଭୂତବର୍ତ୍ତିମାନ—ଗ୍ରା.ବି. ଅତୀତ ଓ ବର୍ତ୍ତିମାନ କାଳ ।

ଭୂତବାଦୀ—ପୁଂ.ବିଂ. ଯଥାର୍ଥଭାଷୀ ।

ଭୂତବାସ—ପୁଂ.ବି. ବିଭୀତକ,ବାହାଡ଼ା, କଳ୍ପଦ୍ରୁମ, ମହାଦେବ, ବିଷ୍ଣୁ ।

ଭୂତବାହନ—ପୁଂ.ବି. ଶିବଙ୍କର ନାମାନ୍ତର ।

ଭୂତବାହନସାରଥି—ପୁଂ.ବି. ଶିବ ।

ଭୂତବିକ୍ରିୟା—ସ୍ତ୍ରୀ.ବି. ଅପସ୍ମାର ରୋଗ

ଭୂତବିଜ୍ଞାନ—କ୍ଳୀ. ବି. ଅପଦେବତାନିବାରଣ ବିଷୟକ ଶାସ୍ତ୍ରଜ୍ଞାନ ।

ଭୂତବିଦ୍—ବି.ବିଂ. ସର୍ବଜ୍ଞ ।

ଭୂତବିଦ୍ୟା—ସ୍ତ୍ରୀ.ବି. ଆୟୁର୍ବେଦର ଅଷ୍ଟବିଭାଗରୁ ଗୋଟିଏ ବିଦ୍ୟା, ଦେବ, ଅସୁର, ଗନ୍ଧର୍ବ, ଯକ୍ଷ, ପିଶାଚ, ନାଗ, ଗ୍ରହ, ଉପଗ୍ରହଆଦିଙ୍କ ପ୍ରଭାବରୁ ଉତ୍ପନ୍ନ ମାନସିକ ରୋଗମାନଙ୍କ ନିଦାନ ଓ ଉପାୟ ଆଲୋଚକ ଆୟୁର୍ବେଦର ଶାଖା । [ ଶିବ ।

ଭୂତବିନାୟକ—ପୁଂ. ବି. ଭୂତାଧିପତି

ଭୂତବୃକ୍ଷ—ପୁଂ. ବି. ଶାଖୋଟବୃକ୍ଷ, ଶାହାଡ଼ାଗଛ,ଶ୍ୟୋନାକ ବା ଫଣଫଣାଗଛ ।

ଭୂତବୃକ୍ଷକ—ପୁଂ. ବି. ଚର୍ମଣାଗଛ, ଫଣଫଣାଗଛ ।

ଭୂତବେଶୀ—ସ୍ତ୍ରୀ.ବି. ଶ୍ୱେତ ଶେଫାଳିକା ବୃକ୍ଷ, ନିର୍ଗୁଣ୍ଡୀ ।

ଭୂତବୈଶ୍ୱ—ବି. ଭୂତଅଇଶ ଦେଖ ।

ଭୂତବ୍ରାହ୍ମଣ—ପୁଂ.ବି. ଦେବଲ ।

ଭୂତଶୁଦ୍ଧି—ସ୍ତ୍ରୀ.ବି. (୬ତତ୍) ପୂଜାଆଦି ଅନୁଷ୍ଠାନରେ ମନ୍ତ୍ର ଓ ନ୍ୟାସାଦିଦ୍ୱାରା ଦେହଶୋଧନ, ଚୈତନ୍ୟ ।

ଭୂତସଙ୍ଘ—ପୁଂ.ବି. ଭୂତସମୂହ ।

ଭୂତସଂପ୍ଳବ—ପୁଂ. ବି. (୬ତତ୍) ପ୍ରଳୟ

ଭୂତସଂସାର—ପୁଂ.ବି.ଜଗତ୍, ବିଶ୍ୱବ୍ରହ୍ମାଣ୍ଡ

ଭୂତସଞ୍ଚାର—ପୁଂ.ବି.ଭୂତୋନ୍ମାଦ ରୋଗ, ଭୂତଲଗିବା, ଭୂତାବେଶ ।

ଭୂତସଞ୍ଚାରୀ—ବି. (ଭୂତ+ସମ୍+ଚର୍ +ଇନ୍) ଦାବାନଳ, ବନାଗ୍ନି ।

ଭୂତସର୍ଗ—ପୁଂ.ବି.(ଭୂ+ସର୍ଗ) ଚତୁର୍ଦ୍ଦଶ ପ୍ରକାର ଭୂତସୃଷ୍ଟି, ଯଥା—ବ୍ରାହ୍ମ, ପ୍ରାଜାପତ୍ୟ, ସୌମ୍ୟ, ଐନ୍ଦ୍ର,ଗାନ୍ଧର୍ବ, କୌବେର, ରକ୍ଷ, ପୈଶାଚ, ମାନୁଷ, ସ୍ଥାବର, ପାଶବ, ମାର୍ଗ, ସାର୍ପ ଓ ଶାକୁନିକ ।

ଭୂତସାକ୍ଷୀ—ପୁଂ. ବି. ସୃଷ୍ଟ ପଦାର୍ଥର ସାକ୍ଷୀସ୍ୱରୂପ ।

ଭୂତସାଧନୀ—ସ୍ତ୍ରୀ.ବି. (ଭୂତ+ସାଧ୍+ ଅନ+ଈ) ଭୂମି । [ ଫଣୀ ।

ଭୂତସାର—ପୁଂ.ବି. ଝଣର ସାର, ଫଣ-

ଭୂତସିଦ୍ଧ—ପୁଂ. ବିଂ. ପିଶାଚ ମନ୍ତ୍ରରେ ସିଦ୍ଧ, ଯେଉଁମାନେ ଶବସାଧନାଦିଦ୍ୱାରା ପିଶାଚ ମନ୍ତ୍ରରେ ଦୀକ୍ଷିତ ହୋଇ ଭୂତଭବିଷ୍ୟତାଦି ପ୍ରତ୍ୟକ୍ଷ କରିପାରନ୍ତି

ଭୂତସ୍ଥ—ବି. ଭୂତାବସ୍ଥିତ ବିଷ୍ଣୁ ।

ଭୂତସ୍ଥାନ—କ୍ଳୀ.ବି. ଜୀବମାନଙ୍କର ଅବସ୍ଥିତି ସ୍ଥାନ ।

ଭୂତହତ୍ୟା—ସ୍ତ୍ରୀ.ବି. ଜୀବହତ୍ୟା ।

ଭୂତହନ୍ତ୍ରୀ—ସ୍ତ୍ରୀ. ବି. (ଭୂତ+ହନ୍+ ତୃ+ଈ)ବନ୍ଧ୍ୟାକର୍କୋଟକୀ, ନୀଳଦୂର୍ବା, ଅଷାଢ଼ୁଆ ।

ଭୂତହର—ପୁଂ.ବି. (ଭୂତ+ହୃ+ଅ) ଗୁଗ୍ଗୁଳୁ ।

ଭୂତହା—ପୁଂ.ବି. ଭୂର୍ଜବୃକ୍ଷ ।

ଭୂତହାରୀ—କ୍ଳୀ.ବି. (ଭୂତ+ହୃ+ଇନ୍) ଦେବଦାରୁ, ରକ୍ତକରବୀର ।

ଭୂତହାସ—ପୁଂ.ବି. ଏକପ୍ରକାର ପ୍ରବଳ ସନ୍ନିପାତ ରୋଗ ।

ଭୂତା—ସ୍ତ୍ରୀ.ବି. (ଭୂତ+ଆ) କୃଷ୍ଣପକ୍ଷ ଚତୁର୍ଦ୍ଦଶୀ, କାର୍ତ୍ତିକ କୃଷ୍ଣ ଚତୁର୍ଦ୍ଦଶୀ ।

ଭୂତାଇବା—ଗ୍ରା.କ୍ରି. ଧପାଇବା, ଭଣ୍ଡାଇବା । [ ବିଶେଷ ।

ଭୂତାଙ୍କୁଶ—ପୁଂ.ବି. ସ୍ୱନାମଖ୍ୟାତ ବୃକ୍ଷ-

ଭୂତାତ୍ମକ—ପୁଂ. ବିଂ. ଭୂତସମ୍ବନ୍ଧୀୟ, ଭୂତମୟ, ଭୂତଜାତ ।

ଭୂତାତ୍ମା—ପୁଂ.ବି. ( ଭୂତ+ଆତ୍ମନ୍ ) ବ୍ରହ୍ମା, ପ୍ରେତାତ୍ମା, ପ୍ରେତଦେହ, ପରମେଶ୍ୱର, ଶିବ, ଯୁଦ୍ଧ, ବିଷ୍ଣୁ, ଜୀବାତ୍ମା ।

ଭୂତାଧିପତି—ପୁଂ.ବି. ଭୂତନାଥ, ଶିବ

ଭୂତାନ୍ତ—ଗ୍ରା.ବିଂ. ଅତୀତ, ଭୂତ ।

ଭୂତାନ୍ତକ—ପୁଂ. ବି. (ଭୂତ+ଅନ୍ତକ) ଯମ, ରୁଦ୍ର ।

ଭୂତାୟନ—ପୁଂ. ବି. ନାରାୟଣ ।

ଭୂତାରି—କ୍ଳୀ. ବି. (ଭୂତ+ଅରି)ହିଙ୍ଗୁ ।

ଭୂତାର୍ତ୍ତ—ପୁଂ. ବିଂ. (୩ତତ୍) ଭୂତାବିଷ୍ଟ ଦେଖ, (ସ୍ତ୍ରୀ) ଭୂତାର୍ତ୍ତା ।

ଭୂତାର୍ଥ—ବିଂ. (ଭୂତ+ଅର୍ଥ) ଯାଥାର୍ଥ୍ୟ, ସତ୍ୟ, ଅକୃତ୍ରିମ ।

ଭୂତାଳୀ—ବି. ଭୂପାଟଳୀ, ମୂଷଲୀ ।

ଭୂତାବାସ—ପୁଂ.ବି. (ଭୂତ+ଆବାସ) ବାହାଡ଼ା ଗଛ, ବିଷ୍ଣୁ, ଶାହାଡ଼ା ଗଛ, ଶରୀର ।

ଭୂତାବିଷ୍ଟ—ପୁଂ. ବିଂ. (୩ତତ୍)ପିଶାଚଗ୍ରସ୍ତ, (ସ୍ତ୍ରୀ) ଭୂତାବିଷ୍ଟା ।

ଭୂତାବେଶ—ପୁଂ. ବି. (୬ତତ୍) ଭୂତଲଗିବା, କୌଣସି ଲୋକ ଦେହରେ ଭୂତ ପଶିବା ।

ଭୂତି—ସ୍ତ୍ରୀ. ବି. (ଭୂ+ତି) ମହାଦେବଙ୍କର ଅଷ୍ଟଐଶ୍ୱର୍ଯ୍ୟ, ବିଭୂତି, ବୈଶ୍ୟ-

ଜାତର ଉପାଧି,ହସ୍ତୀର ସିନ୍ଦୂରାଦ୍ଧ ଦ୍ୱାରା ସଜ୍ଜା, ଅଭ୍ୟୁଦୟ, ମଙ୍ଗଳ, ଉତ୍ପତ୍ତି, ଉତ୍କର୍ଷ, ସିଦ୍ଧି, ଲକ୍ଷ୍ମୀ, (ଗ୍ରା. ବି) ମୂଲ୍ୟ, ଦାନ ।

ଭୂତିକ—କ୍ଲୀ. ବି. ଭୂନିମ୍ବ, କତ୍ତୃଣ, କଟଫଳ, ଯୁଆଣୀ, କର୍ପୂର, ଚନ୍ଦନ ।

ଭୂତିକର୍ମ—କ୍ଲୀ. ବି.ଗାର୍ହସ୍ଥ୍ୟ ସଂସ୍କାର ।

ଭୂତିକାମ—ପୁଂ.ବି. ରାଜମନ୍ତ୍ରୀ,ବୃହସ୍ପତି, (ବିଂ) ଐଶ୍ୱର୍ଯ୍ୟାଭିଳାଷୀ ।

ଭୂତିକାଳ—ପୁଂ.ବି. ଭୂଖାତ,ଖଣା,ଖାଲ

ଭୂତିକୃତ୍—ବି. (ଭୂତି+କୃ+କ୍ୱିପ୍) ଶିବ ।

ଭୂତିକୃତ୍ୟ—କ୍ଲୀ. ବି. ଗାର୍ହସ୍ଥ୍ୟସଂସ୍କାର ।

ଭୂତିଗର୍ଭ—ପୁଂ. ବି. (ବ.ବ୍ରୀ) ଭବଭୂତି କବି । [ ଶିବ ।

ଭୂତିଦ—ପୁଂ. ବି. (ଭୂତି+ଦା+ଅ)

ଭୂତିଦା—ସ୍ତ୍ରୀ. ବି. (ଭୂତିଦ+ଆ)ଗଙ୍ଗା।

ଭୂତିନିଧାନ—କ୍ଲୀ. ବି. ଧନିଷ୍ଠା ନକ୍ଷତ୍ର ।

ଭୂତିମାନ୍—ପୁଂ. ବିଂ. (ଭୂତି+ମତ୍) ଐଶ୍ୱର୍ଯ୍ୟଯୁକ୍ତ, (ସ୍ତ୍ରୀ) ଭୂତିମତୀ ।

ଭୂତିବାହନ—ପୁଂ.ବି. ଶିବଙ୍କର ନାମାନ୍ତର ।

ଭୂତୀକ—କ୍ଲୀ. ବି. ଭୂନିମ୍ବ, ଯୁଆଣୀ, ଧନିଆ, ଭୂତୃଣ, କତ୍ତୃଣ, କର୍ପୂର ।

ଭୂତୁମ୍ବୀ—ବି.ଏକପ୍ରକାର ଅଲାବୁ,ଲାଉ ।

ଭୂତୃଣ—କ୍ଲୀ. ବି. (୬ତତ୍) ସୁଗନ୍ଧିତୃଣ ବିଶେଷ, ଧନିଆ, ଗନ୍ଧତୃଣ ।

ଭୂତେଜ୍ୟ—ବି. ଭୂତଯଜ୍ଞ,ଉପଦେବତା ମାନଙ୍କର ତୃପ୍ତିସମ୍ପାଦନାର୍ଥ ଯାଗ ।

ଭୂତେନ୍ଦ୍ରିୟଜୟୀ—ପୁଂ. ବି. ଯେ ପଞ୍ଚ-ଭୂତ ଇନ୍ଦ୍ରିୟମାନଙ୍କୁ ଜୟ କରିଅଛି, ଯୋଗୀ, ସନ୍ନ୍ୟାସୀ ।

ଭୂତେଶ—ପୁଂ. ବି. ( ୬ତତ୍ ) ଶିବ, ପରମେଶ୍ୱର, ସ୍କନ୍ଦ, କାର୍ତ୍ତିକେୟ ।

ଭୂତେଶ୍ୱର—ପୁଂ. ବି. ଶିବ,ତୀର୍ଥଭେଦ, ହିମାଳୟର ପର୍ବତ ସ୍ଥିତ ଶିବଲିଙ୍ଗ ।

ଭୂତେଷ୍ଟା—ସ୍ତ୍ରୀ. ବି. କୃଷ୍ଣଚତୁର୍ଦ୍ଦଶୀ,ଆଶ୍ୱିନ କୃଷ୍ଣ ଚତୁର୍ଦ୍ଦଶୀ ।

ଭୂତୋନ୍ମାଦ—ପୁଂ. ବି. ଭୂତାବେଶ ଜନିତ ଉନ୍ମାଦରୋଗ, ଭୂତଲାଗିବା ବିକୃତି ।

ଭୂତୋପଦେଶ—ପୁଂ. ବି. ପ୍ରକୃତ ଉପ-ଦେଶ, ଯଥାର୍ଥ ଶିକ୍ଷାଦାନ ।

ଭୂତୋପମା—ସ୍ତ୍ରୀ. ବି. ଜୀବର ସହିତ ଉପମା, ପ୍ରକୃତ ଉପମା ।

ଭୂତୌଦନ—କ୍ଲୀ. ବି. ତିଳ,ଲୁଣ,ଦଧି, ଘିଅ ଓ ହଳଦୀଯୁକ୍ତ ଓଦନ ।

ଭୂତ୍ତମ—କ୍ଲୀ. ବି. (ଭୂ+ଉତ୍ତମ)ସୁବର୍ଣ୍ଣ, କାଞ୍ଚନ ।

ଭୂଦରାଶ୍ରୟା—ସ୍ତ୍ରୀ.ବି. ମୂଷିକକର୍ଣ୍ଣୀ,ମୂଷା କାନି ଗଛ ।

ଭୂଦଶିରବା—ସ୍ତ୍ରୀ. ବି. ଆଖୁପର୍ଣ୍ଣୀ ।

ଭୂଦର୍ଯ୍ୟା—ସ୍ତ୍ରୀ. ବି. ମୂଷିକକର୍ଣ୍ଣୀ, ମୂଷା-କାନି ଲତା ।

ଭୂଦାର—ପୁଂ. ବି. ( ଭୂ+ଦୃ+ଅ ) ଶୂକର, ବରାହ ।

ଭୂଦେବ—ପୁଂ. ବି. (୬ତତ୍) ବ୍ରାହ୍ମଣ ।

ଭୂଦୋଷ—ପୁଂ. ବି. ହିଂସା, ମିଥ୍ୟା, ପ୍ରତାରଣା ପ୍ରଭୃତି ।

ଭୂଧନ—ପୁଂ.ବି. (ବ.ବ୍ରୀ) ରାଜା,ଭୂପତି

ଭୂଧର—ପୁଂ. ବି. ( ୬ତତ୍ ) ପର୍ବତ, ଅନନ୍ତଦେବ,ବଟୁକଭୈରବ, ଭୂଧର-ଯନ୍ତ୍ର, ଆୟୁର୍ବେଦୋକ୍ତ ଯନ୍ତ୍ରବିଶେଷ ।

ଭୂଧରେଶ୍ୱର—ପୁଂ. ବି. ( ୬ତତ୍ ) ହିମାଳୟ ।

ଭୂଧାତ୍ରୀ—ସ୍ତ୍ରୀ. ବି. ଭୂଇଁଅଁଳା ।

ଭୂଧ୍ର—ପୁଂ. ବି. ( ଭୂ+ଧୃ+କ.ଅ ) ପର୍ବତ ।

ଭୂନାଗ—ପୁଂ.ବି. ଉପରସବିଶେଷ ।

ଭୂନିମ୍ବ—ପୁଂ.ବି.କ୍ଷୁପବିଶେଷ,ଚିରେଇତା

ଭୂନୀପ—ପୁଂ. ବି. ଭୂଇଁକଦମ୍ବ,ପୋକ-ଶୁଙ୍ଘା ।

ଭୂପ—ପୁଂ. ବି. ( ଭୂ+ପା+କ.ଅ ) ରାଜା, ନୃପତି ।

ଭୂପଞ୍ଜର—ପୁଂ. ବି. ପୃଥିବୀ ଦେହର ନିମ୍ନ ବିଭାଗ ।

ଭୂପତି—ପୁଂ. ବି. (୬ତତ୍) ରାଜା, ନୃପ, ବଟୁକଭୈରବ ।

ଭୂପତନ—ବିଂ. ( ୭ତତ୍ ) ଭୂପୃଷ୍ଠେ ପତିତ, ଯେ ଭୂମିରେ ପଡ଼ିଅଛି ।

ଭୂପତିଭଞ୍ଜ—ଗ୍ରା. ବି. ଜଣେ ରାଜା ଓ କବି, (ଗଣେଶବିଭୂତି ଏହାଙ୍କ ରଚିତ ପୁସ୍ତକ) ।

ଭୂପଦ—ପୁଂ. ବି. (ଭୂ+ପଦ) ବୃକ୍ଷ ।

ଭୂପଦୀ—ସ୍ତ୍ରୀ.ବି. (ଭୂପଦ+ଈ)ମଲ୍ଲିକା ।

ଭୂପପୁତ୍ର—ପୁଂ. ବି. ରାଜପୁତ୍ର ।

ଭୂପରିଧି—ପୁଂ. ବି. ପୃଥିବୀର ପରିଧି, ବ୍ୟାସ ।

ଭୂପଲାଶ—ପୁଂ. ବି. ବୃକ୍ଷଭେଦ ।

ଭୂପବିତ୍ର—କ୍ଲୀ. ବି. ଗୋମୟ ।

ଭୂପାଟଲୀ—ସ୍ତ୍ରୀ. ବି. ବୃକ୍ଷବିଶେଷ ।

ଭୂପାତିତ—ବିଂ. (୭ତତ୍) ଭୂପୃଷ୍ଠେ ପାତିତ, ଯାହାକୁ ଭୂମିରେ ପକାଇ ଦିଆଯାଇଅଛି ।

ଭୂପାଳ—ପୁଂ.ବି. (୬ତତ୍)ରାଜା, ଭୋଜ-ରାଜାଙ୍କ ନାମାନ୍ତର । [ ପତି ।

ଭୂପାଳସିଂହ—ନେପାଳର ଜଣେ ଅଧି-

ଭୂପାଳୀ—ସ୍ତ୍ରୀ. ବି. ରାଗିଣୀବିଶେଷ ।

ଭୂପୁତ୍ର—ପୁଂ.ବି(୬ତତ୍)ମଙ୍ଗଳ,ନରକା-ସୁର, (ସ୍ତ୍ରୀ) ଭୂପୁତ୍ରୀ, ଜାନକୀ ।

ଭୂପୁତ୍ରୀ—ସ୍ତ୍ରୀ. ବି. ( ୬ତତ୍ ) ସୀତା, ଜାନକୀ ।

ଭୂପୁର—କ୍ଲୀ.ବି.ଯନ୍ତ୍ର ବହିଃସ୍ଥିତ ରେଖା-ସନ୍ନିବେଶଯୁକ୍ତ ଭୂମ୍ୟାକାର ସ୍ଥାନ ।

ଭୂପେନ୍ଦ୍ର—ପୁଂ.ବି. (୬ତତ୍) ରାଜେନ୍ଦ୍ର, ନୃପଶ୍ରେଷ୍ଠ ।

ଭୂପେଷ୍ଟ—ପୁଂ. ବି. (୬ତତ୍) ରାଜାଦନୀ ବୃକ୍ଷ, (ବିଂ)ରାଜାମାନଙ୍କର ଅଭିଲଷିତ ।

ଭୂପ୍ରକମ୍ପ—ପୁଂ. ବି. ଭୂମିକମ୍ପ ।

ଭୂଫଳ—ପୁଂ.ବି. ମୁଦ୍ଗଭେଦ, ସୁନାମୁଗ, ହରଡ଼ମୁଗ ।

ଭୂଭଟ୍ଟ—ପୁଂ.ବି.ଅଙ୍ଗଦ ନାଟକପ୍ରଣେତା ।

ଭୂଭର୍ତ୍ତା—ପୁଂ. ବି. ପୃଥିବୀପତି ।

ଭୂଭାଗ—ପୁଂ. ବି. ଭୂମିଭାଗ, ସ୍ଥଳଭାଗ, ଦେଶାଂଶ ।

ଭୂଭାର—ବି. (୬ତତ୍) ପୃଥିବୀର ଭାର, ପୃଥିବୀରେ ପାପର ପ୍ରାବଲ୍ୟ ।

ଭୂଭାରତ—କ୍ଲୀ. ବ. (ଦ୍ୱନ୍ଦ୍ୱ) ଭାରତ ଓ ସମସ୍ତ ପୃଥିବୀ ।
ଭୂଭାରହରଣ—କ୍ଲୀ.ବ ୬ତତ୍ପୁ; ଭୂମଣ୍ଡଳସ୍ଥ ପାପିମାନଙ୍କର ବିନାଶସାଧନ ପୂର୍ବକ ଧରଣୀପୃଷ୍ଠର ଭାର ଲଘୂକରଣ ।
ଭୂଭାରହାରୀ—ପୁଂ.ବ.(ଭୂଭାର+ହୃ+କ.ଇନ୍) ପୃଥିବୀର ଭାର ହରଣକାରୀ କୃଷ୍ଣାଦିଙ୍କ ଅବତାର ।
ଭୂଭୁକ୍—ପୁଂ. ବ. (ଭୂ+ଭୁଜ୍+କ. କ୍ୱିପ୍) ରାଜା, ଭୂପତି ।
ଭୂଭୃତ୍—ପୁଂ.ବ.(ଭୂ+ଭୃ+କ.କ୍ୱିପ୍) ରାଜା, ପର୍ବତ ।
ଭୂମ—କ୍ଲୀ. ବ. ଭୂମି ।
ଭୂମଣ୍ଡନା—ସ୍ତ୍ରୀ.ବଂ.(୬ତତ୍ପୁ)ଅତିସୁନ୍ଦରୀ ।
ଭୂମଣ୍ଡଳ—କ୍ଲୀ.ବ. ମଣ୍ଡଳାକାର ଭୂଭାଗ, ଭୂଗୋଳକ, ପୃଥିବୀ ।
ଭୂମୟ—ତ୍ରି. ବଂ. (ଭୂ+ମୟ) ମୃଣ୍ମୟ, ମୃଦାତ୍ମକ, (ସ୍ତ୍ରୀ)ଭୂମୟୀ, ଛାୟା ସୂର୍ଯ୍ୟ-ପତ୍ନୀ ।
ଭୂମା—ପୁଂ. ବ. (ବହୁ+ଇମନ୍+ଅ) ବହୁତ୍ୱ, ସର୍ବବ୍ୟାପୀ ପୁରୁଷ ଭଗବାନ୍, ବାହୁଲ୍ୟ, (ବହୁ+ମନ୍)ଭୂୟିଷ୍ଠ,ବହୁଳ ।
ଭୂମାନନ୍ଦ—ବ.(କ.ଧା) ଅତ୍ୟନ୍ତ ଆନନ୍ଦ
ଭୂମି(ମୀ)—ସ୍ତ୍ରୀ.ବ.(ଭୂ+ଅଧି+ମି,ମୀ) ପୃଥିବୀ, ଦେଶ, କ୍ଷେତ୍ର, ଜମି, ପୃଥିବୀ ଉପରସ୍ଥ ମାଟି, ସ୍ଥାନ, ଆଧାର, ମୂଳଦୁଆ, ବାସସ୍ଥାନ, ଆକର, ଖଣି, ଜିହ୍ୱା, ଯୋଗୀମାନଙ୍କର ଅବସ୍ଥାବିଶେଷ, ପ୍ରତିମାର, ବଇଠି ।
ଭୂମିକଦମ୍ବ—ପୁଂ. ବ. କଦମ୍ବବିଶେଷ, କେଳି କଦମ୍ବଗଛ ।
ଭୂମିକଦମ୍ବିକା—ସ୍ତ୍ରୀ. ବ. ମୁଣ୍ଡୀରୀବୃକ୍ଷ ।
ଭୂମିକଦଳୀ—ସ୍ତ୍ରୀ. ବ. ଲତାଭେଦ ।
ଭୂମିକମ୍ପ—ପୁଂ. ବ. (୬ତତ୍ପୁ) ପୃଥିବୀର ଅଭ୍ୟନ୍ତରସ୍ଥ ଗଳିତ ଧାତୁଆଦିର ଆଲୋଡନଜନିତ ପୃଥିବୀପୃଷ୍ଠର କମ୍ପନ,ଚଳନ
ଭୂମିକା—ସ୍ତ୍ରୀ.ବ(ଭୂମି+କ+ଆ)ବକ୍ତବ୍ୟ ବିଷୟର ବା ଗ୍ରନ୍ଥର ଅବତରଣିକା, ପୂର୍ବାଭାସ, ପତନ, ମୂଳଦୁଆ, ସଜ୍ଜା, ବେଶଧାରଣ, ରୂପାନ୍ତର ପରିଗ୍ରହ, ରଚନା, ତଳର ଅବସ୍ଥାବିଶେଷ, ବେଶ ବଦଳାଇବା ।
ଭୂମିକୁଷ୍ମାଣ୍ଡ—ପୁଂ. ବ. ଭୂଇଁକଖାରୁ ।
ଭୂମିଖଣ୍ଡ—କ୍ଲୀ.ବ.ଭୂଭାଗ, ପଦ୍ମପୁରାଣର ଖଣ୍ଡଭେଦ ।
ଭୂମିଖର୍ଜ୍ଜୁରିକା—ସ୍ତ୍ରୀ.ବ. ବନ୍ୟ ଖର୍ଜ୍ଜୁରୀ, ଭୂଇଁ ଖଜୁରୀ । [ ଦେଖ ।
ଭୂମିଖର୍ଜ୍ଜୁରୀ—ସ୍ତ୍ରୀ. ବ. ଭୂମି ଖର୍ଜ୍ଜୁରିକା
ଭୂମିଗତ—ବଂ.(୨ତତ୍ପୁ) ଭୂମିରେ ଅବସ୍ଥିତ, ଭୂପତିତ, ଭୂମିଷ୍ଠ ।
ଭୂମିଗତେ—ଗ୍ରା.କ୍ରି.ବଂ.ଭୂମିଷ୍ଠ ହୋଇ
ଭୂମିଗମ—ପୁଂ. ବ. (ଭୂମି+ଗମ୍+କ. ଅ) ଉଷ୍ଟ୍ର, ଓଟ ।
ଭୂମିଗର୍ତ୍ତି—ପୁଂ.ବ.ଭୂମିବିବର,ଭୂଗର୍ତ୍ତ ।
ଭୂମିଗୁହା—ସ୍ତ୍ରୀ. ବ. ଭୂମିସ୍ଥ ଗହ୍ୱର ।
ଭୂମିଗୃହ—କ୍ଲୀ. ବ. (କ.ଧା) ଭୂମିସ୍ଥିତ ଗୃହ, ଭୂଇଁ ତଳେ ନିର୍ମିତ ଘର ।
ଭୂମିଚମ୍ପକ—ପୁଂ.ବ.ଭୂଇଁ ଚମ୍ପାଗଛ ।
ଭୂମିଚଳ—ପୁଂ.ବ.(୬ତତ୍ପୁ)ଭୂମିକମ୍ପ ।
ଭୂମିଚଳନ—କ୍ଲୀ. ବ. ଭୂମିକମ୍ପ ।
ଭୂମିଚୃଷ୍ଟି—ସ୍ତ୍ରୀ. ବ. ମୂଷିକକର୍ଣ୍ଣୀ, ମୂଷାକାନି ଗଛ ।
ଭୂମିଜ—ତ୍ରି.ବଂ. (ଭୂମି+ଜନ୍+କ.ଅ) ଭୂମିରୁ ଉତ୍ପନ୍ନ,କ୍ଷେତ୍ରଜାତ,କୃଷିଜାତ, (ସ୍ତ୍ରୀ) ଭୂମିଜା,(ବ)ମଙ୍ଗଳଗ୍ରହ,ନରକାସୁର, ମନୁଷ୍ୟ, ସୁନା, ସୀସା, (ଗ୍ରା.ଗ୍ରା) ଭୂଇଁଆ ଜାତି, ଭୂଇଁଆ ଜାତିର ଓଝା ।
ଭୂମିଜମ୍ବୁ(ମ୍ବୂ)—ସ୍ତ୍ରୀ. ବ. ଭୂଇଁଜମ୍ବୁ, ଗିଲବିଜାମ୍ବୁ ।
ଭୂମିଜା—ସ୍ତ୍ରୀ.ବ.(ଭୂମିଜ+ଆ)ଧରଣୀସୁତା, ସୀତା,ଜାନକୀ,(ବଂ)ଭୂମିଜାତା ।
ଭୂମିଜାତ—ବଂ(୭ତତ୍ପୁ)ଭୂମିରୁ ଉତ୍ପନ୍ନ, (ବ) ବୃକ୍ଷାଦି ଉଦ୍ଭିଦ ।
ଭୂମିଜୀବୀ—ପୁଂ. ବ. ( ଭୂମି+ଜୀବନ୍ ) ବୈଶ୍ୟ, କୃଷିଜୀବୀ, କୃଷକ, (ସ୍ତ୍ରୀ)ଭୂମିଜୀବିନୀ ।
ଭୂମିତଳ—କ୍ଲୀ. ବ. (୬ତତ୍ପୁ) ଭୂତଳ, ପୃଥିବୀର ଉପରଭାଗ ।
ଭୂମିଦଣ୍ଡା—ସ୍ତ୍ରୀ. ବ. ମଲ୍ଲିକା ପୁଷ୍ପବୃକ୍ଷ ।
ଭୂମିଦାଡ଼ିମ୍ବ—ସ୍ୱନାମ ପ୍ରସିଦ୍ଧ ଲୋହିତବର୍ଣ୍ଣ ଗୁଳ୍ମଭେଦ ।
ଭୂମିଦାନ—କ୍ଲୀ. ବ. (୬ତତ୍ପୁ) ହିନ୍ଦୁଶାସ୍ତ୍ରୋକ୍ତ ଦାନଭେଦ, ବ୍ରାହ୍ମଣଙ୍କୁ ଜମି ଦେବା ।
ଭୂମିଦୁନ୍ଦୁଭି—ପୁଂ.ବ.ଚର୍ମାଚ୍ଛାଦିତ ଭୂଗର୍ତ୍ତ
ଭୂମିଦେବ—ପୁଂ. ବ. (୬ତତ୍ପୁ) ବ୍ରାହ୍ମଣ, ରାଜା ।
ଭୂମିଧର—ପୁଂ.ବ.(ଭୂମି+ଧୃ+କ.ଅ) କୁଳପର୍ବତ, ପର୍ବତ ମାତ୍ର, ଭୂଧର, ଅନନ୍ତ, ଶେଷ ନାଗ ।
ଭୂମିପ—ପୁଂ. ବ. (ଭୂମି+ପା+କ.ଅ) ରାଜା, ଭୂପତି ।
ଭୂମିପକ୍ଷ—ପୁଂ. ବ.ବାତାଶ୍ୱ । [ ନାଥ ।
ଭୂମିପତି—ପୁଂ.ବ.(୬ତତ୍ପୁ) ରାଜା,ଭୂମି-
ଭୂମିପତିତ୍ୱ—କ୍ଲୀ. ବ. ଭୂମିପତିର ଭାବ ବା ଧର୍ମ, ରାଜତ୍ୱ । [ ଭୂପାଳ ।
ଭୂମିପାଳ—ପୁଂ. ବ. (୬ତତ୍ପୁ) ରାଜା,
ଭୂମିପିଶାଚ—ପୁଂ. ବ. ତାଳବୃକ୍ଷ ।
ଭୂମିପୁତ୍ର—ପୁଂ.ବ. (୬ତତ୍ପୁ) ମଙ୍ଗଳଗ୍ରହ, ନରକାସୁର, ଫଟଫଟୀ ଗଛ, (ସ୍ତ୍ରୀ) ଭୂମିପୁତ୍ରୀ, ସୀତା ।
ଭୂମିପୁରନ୍ଦର—ପୁଂ.ବ. ରାଜା ଦିଲୀପଙ୍କ ନାମାନ୍ତର ।
ଭୂମିପୃଷ୍ଠ—ପୁଂ. ବ. (୬ତତ୍ପୁ) ଭୂପୃଷ୍ଠ, ପୃଥିବୀର ଉପରଭାଗ ।
ଭୂମିଭାଗ—ପୁଂ. ବ. ଭୂମ୍ୟଂଶ, ସ୍ଥାନ ।
ଭୂମିଭୁକ୍—ପୁଂ.ବ. (ଭୂମି+ଭୁଜ୍+କ୍ୱିପ୍) ରାଜା ।
ଭୂମିଭୃତ୍—ପୁଂ. ବ. (ଭୂମି+ଭୃ+କ. କ୍ୱିପ୍) ରାଜା, ପର୍ବତ ।
ଭୂମିଭେଦୀ—ପୁଂ.ବଂ.ଭୂମିଭେଦକାରକ, ଭୂମିରୁ ପୃଥକ୍‌କାରୀ ।
ଭୂମିମଣ୍ଡ—ପୁଂ. ବ. ଅଷ୍ଟପାଦିକା ଲତା, ହାପର ମାଳୀ ।
ଭୂମିମଣ୍ଡପଭୂଷଣା—ସ୍ତ୍ରୀ.ବ. ମାଧବୀଲତା
ଭୂମିମାନ୍—ପୁଂ. ବଂ. (ଭୂମି+ମତ୍) ଭୂମିଯୁକ୍ତ, ଯାହାର ଭୂମି ଅଛି ।

ଭୂମିରକ୍ଷକ—ପୁଂ. ବି. ବାତାଶ୍ୱ, (ବିଂ) ଭୂମି ରକ୍ଷାକାରୀ । [ ଗଛ ।
ଭୂମିରୁହ—ପୁଂ.ବି. (ଭୂମି+ରୁହ)ବୃକ୍ଷ,
ଭୂମିଲଗ୍ନା—ସ୍ତ୍ରୀ. ବି. ଶୁକ୍ଳଗୋକର୍ଣ୍ଣୀ, ଶ୍ୱେତାପରାଜିତା, (ବିଂ) ଭୂଇଁରେ ଯେ ଲାଗିଥାଏ ।
ଭୂମିଲତା—ସ୍ତ୍ରୀ. ବି. ଶଙ୍ଖପୁଷ୍ପୀଲତା, କେଞ୍ଚୁଆ, ଜିଆ । [ ଯୋଗ ।
ଭୂମିଲବଣ—କ୍ଳୀ. ବି. ମୃତ୍ତିକା ଲବଣ,
ଭୂମିଲାଭ—ପୁଂ. ବି. (୬ତତ୍) ମୃତ୍ୟୁ, ଭୂମିର ପ୍ରାପ୍ତି ।
ଭୂମିଲୁଣ୍ଠିତ—ବିଂ.ଭୂମିରେ ଗଡୁଥିବା ।
ଭୂମିଲେପ—ବି. (୬ତତ୍)ଗୋବର ।
ଭୂମିଲେପନ—କ୍ଳୀ.ବି.(୬ତତ୍)ଗୋବର
ଭୂମିଲୋକ—ପୁଂ.ବି. ପୃଥିବୀର ଲୋକ ।
ଭୂମିବର୍ଦ୍ଧକ—ବି. ମୃତଶରୀର ।
ଭୂମିବଲା—ବି. ଶାକତରୁବିଶେଷ ।
ଭୂମିବାଡ଼ି—ଗ୍ରା.ବି.ଅଚଳାନ୍ତ ଭୂସମ୍ପତ୍ତି, ସମ୍ପତ୍ତି ।
ଭୂମିବାସ—ବି.(୬ତତ୍)ଜମି ଓ ଘରମାନ
ଭୂମିଶୟ—ପୁଂ. ବି. (ଭୂମି+ଶୀ+ଅ) ବାଳକ, ଘରଚଟିଆ, (ବିଂ) ଭୂମିରେ ଶୋଇଥିବା ମାତ୍ର ।
ଭୂମିଶଯ୍ୟା—ସ୍ତ୍ରୀ. ବି. (କ.ଧା) ଭୂମିରୂପ ଶଯ୍ୟା, ମୃତ୍ତିକାଶଯ୍ୟା, (୬ତତ୍) ଭୂତଳରେ ଶୋଇବା ।
ଭୂମିଶାୟୀ—ପୁଂ. ବିଂ. (ଭୂମି+ଶୀ+ଇନ୍) ଧରଣୀଶାୟୀ, ମୃତ, (ସ୍ତ୍ରୀ)ଶାୟିନୀ ।
ଭୂମିଷ୍ଠ—ପୁଂ. ବିଂ. (ଭୂମି+ସ୍ଥା+ଅ) ପ୍ରଣତ,ଭୂମିରେ ପତିତ,ଜାତ, ଉତ୍ପନ୍ନ, ଭୂମିରେ ଶାୟିତ, (ସ୍ତ୍ରୀ) ଭୂମିଷ୍ଠା ।
ଭୂମିସାଉଣ୍ଟା—ଗ୍ରା.ବି.ଭୂମିରେ ଲୁଣ୍ଠନ ।
ଭୂମିସନ୍ଧ—କ୍ଳୀ.ବି.ଭୂମି ଦାନରୂପ ସନ୍ଧି
ଭୂମିସଂପୁଟ—ପୁଂ.ବି. ଶରାବାନ୍ଧ ।
ଭୂମିସମ୍ପତ୍ତି—ବି. ଜମିବାଡ଼ି, ଭୂସମ୍ପତ୍ତି ।
ଭୂମିସମ୍ଭବା—ସ୍ତ୍ରୀ.ବି. (୬ତତ୍) ସୀତା, ଜାନକୀ ।
ଭୂମିସାତ୍—ଅବ୍ୟ. ଭୂମିଗତ, ଭୂପତିତ
ଭୂମିସୁର—ବି. ଭୂସୁର, ବ୍ରାହ୍ମଣ ।

ଭୂମିସୁତ—ପୁଂ.ବି. ମଙ୍ଗଳଗ୍ରହ,ନରକାସୁର ।
ଭୂମିସ୍ନୁ—ପୁଂ.ବି. ଭୂମିକୀଟ ।
ଭୂମିସ୍ପୃକ୍(ଶ୍)—ପୁଂ.ବି. (ଭୂମି+ସ୍ପୃଶ୍+କ୍ୱିପ୍) ମନୁଷ୍ୟ, ବୈଶ୍ୟ, ଚୌରବିଶେଷ, ଅନ୍ଧ, ଖଞ୍ଜ, (ବିଂ) ଭୂମିସ୍ପର୍ଶକାରୀ ।
ଭୂମିସ୍ପର୍ଶମୁଦ୍ରା—ବୌଦ୍ଧମାନଙ୍କର ଉପାସନାର୍ଥ ଆସନବିଶେଷ, ବଜ୍ରାସନ ।
ଭୂମିହାର—ବି. (ଭୂମି+ହୃ+କ.ଅ) ବିହାର ଓ ସଂଯୁକ୍ତ ପ୍ରଦେଶବାସୀ ବ୍ରାହ୍ମଣଙ୍କ ଶ୍ରେଣୀବିଶେଷ । [ ଦେଖ ।
ଭୂମୀ—ସ୍ତ୍ରୀ. ବି. ( ଭୂମି+ଈ ) ଭୂମି
ଭୂମୀନ୍ଦ୍ର—ପୁଂ.ବି. (୬ତତ୍) ରାଜା ।
ଭୂମୀରୁହ—ପୁଂ.ବି. (ଭୂମୀ+ରୁହ୍+ଅ) ବୃକ୍ଷ ।
ଭୂମୀସହ—ପୁଂ.ବି. (ଭୂମୀ+ସହ୍+ଅ) ବୃକ୍ଷବିଶେଷ ।
ଭୂମ୍ୟଧିକାରୀ—ପୁଂ.ବି. ଭୂସ୍ୱାମୀ, ଜମିଦାର ।
ଭୂମ୍ୟନନ୍ତର—ପୁଂ.ବି. ରାଜଶତ୍ରୁ ।
ଭୂମ୍ୟାମଳକୀ—ସ୍ତ୍ରୀ.ବି. ଭୂଇଁଅଁଳା ।
ଭୂମ୍ୟାମଲୀ—ସ୍ତ୍ରୀ.ବି. ଭୂଇଁଅଁଳା ।
ଭୂମ୍ୟାସନ—ବି. (ରୂପକ-କ.ଧା)ଭୂତଳରୂପ ଆସନ, ଭୂପୃଷ୍ଠରୂପ ଉପବେଶନ ସ୍ଥାନ, (ଦ୍ୱନ୍ଦ୍ୱ) ଭୂମି ଏବଂ ଆସନ ।
ଭୂମ୍ୟାହ୍ୱଳୀ—ସ୍ତ୍ରୀ.ବି. ଅପରାଜିତା ଲତା
ଭୂମ୍ୟାହ୍ୱଲ୍ୟ—କ୍ଳୀ. ବି. (ଭୂମି+ଆ+ହ୍ୱଲ୍+ଅ+ଯ) କ୍ଷୁପବିଶେଷ ।
ଭୂମ୍ୟୁଦରଗ୍ରସ୍ତା—ସ୍ତ୍ରୀ.ବି. ମୂଷାକାଣିଲତା
ଭୂୟଃ—ଅବ୍ୟ. (ବହୁ+ଈୟସ୍) ପୁନର୍ଥ, ପୁନଃ ପୁନଃ, ପୁନର୍ବାର, (ବି) ଆଧିକ୍ୟ, ବାହୁଲ୍ୟ, (ବିଂ) ଆଧିକ୍ୟ, ବହୁତ, ପ୍ରଚୁର ।
ଭୂୟସଃ—ଅବ୍ୟ. ବହୁଶଃ, ବହୁପ୍ରକାର ।
ଭୂୟସୀ—ସ୍ତ୍ରୀ.ବିଂ. ବହୁତରା, ପ୍ରଭୂତା, ବହୁଳା ।
ଭୂୟସ୍ତରାଂ—ଅବ୍ୟ. ଅତିଶୟ,ବାରବାର, ଥରକୁଥର ।

ଭୂୟସ୍ୱୀ—ପୁଂ.ବିଂ. ପୌନପୁଣ୍ୟବିଶିଷ୍ଟ ।
ଭୂୟାନ୍—ପୁଂ. ବିଂ. (ବ.ବ୍ରୀ) ବହୁତର, ପ୍ରଚୁର, ବହୁଳ, (ସ୍ତ୍ରୀ) ଭୂୟସୀ ।
ଭୂୟିଷ୍ଠ—ପୁଂ. ବିଂ. ( ବହୁ+ଇଷ୍ଠ ) ବହୁତର, ପ୍ରଚୁର, ଅଧିକ ।
ଭୂୟୁକ୍ତା—ସ୍ତ୍ରୀ. ବି. ଭୂମିଖର୍ଜ୍ଜୁରୀ, ବଣଖଜୁରୀ ।
ଭୂୟୋଦର୍ଶନ—ବି. ( କ.ଧା ) ପର୍ଯ୍ୟବେକ୍ଷଣ, ବାରମ୍ବାର ଦେଖିବା, ବହୁଦର୍ଶିତାଜନିତ ଜ୍ଞାନ ।
ଭୂୟୋ(ୟଃ)—ଅବ୍ୟ. ପୁନଃ ପୁନଃ, ବାରମ୍ବାର ।
ଭୂର୍ଭୁର୍—ଗ୍ରା. ବି. ଦାମ୍ଭିକପଣ, ଦାମ୍ଭିକତା, ଭୁରୁଡ଼ି ।
ଭୂରି—କ୍ଳୀ. ବି. ( ଭୂ+କ.ରି ) ସ୍ୱର୍ଣ୍ଣ, (ପୁଂ.ବି) ବିଷ୍ଣୁ, ବ୍ରହ୍ମା, ଶିବ, ବାସବ, ସୋମଦତ୍ତଙ୍କର ଏକପୁତ୍ର,(ବିଂ)ପ୍ରଚୁର, ବହୁ, ଅଧିକ । [ କର୍ମଯୁକ୍ତ ।
ଭୂରିକର୍ମା—ପୁଂ. ବିଂ. (ବ.ବ୍ରୀ) ପ୍ରଚୁର-
ଭୂରିଗନ୍ଧା—ସ୍ତ୍ରୀ. ବି. ମୁରାମାଂସୀ ।
ଭୂରିଗମ—ପୁଂ. ବି. (ଭୂରି+ଗମ୍+କ.ଅ) ରାସଭ, ଗଧ ।
ଭୂରିଜ୍—ସ୍ତ୍ରୀ. ବି. ପୃଥିବୀ ।
ଭୂରିଜ—ତ୍ରି. ବିଂ. (ଭୂରି+ଜନ୍+କ.ଅ) ଏକସମୟରେ ବହୁତ ଜାତ ।
ଭୂରିତେଜାଃ—ବିଂ. ଅତିଶୟ ତେଜସ୍ୱୀ, (ବି-ବ.ବ୍ରୀ) ସୁନା, ଅଗ୍ନି ।
ଭୂରିଦ—ତ୍ରି. ବିଂ. (ଭୂରି+ଦା+ଅ) ପ୍ରଭୂତଦାନକାରୀ ।
ଭୂରିଦକ୍ଷିଣ—ବିଂ. ( ବ.ବ୍ରୀ ) ବହୁତର ଦକ୍ଷିଣା ଦାନଯୁକ୍ତ (ଯଜ୍ଞ), ( ପୁଂ.ବି ) ବିଷ୍ଣୁ ।
ଭୂରିଦା—ସ୍ତ୍ରୀ. ବିଂ. ବଡ଼ଦାତା ।
ଭୂରିଦୁଗ୍ଧା—ସ୍ତ୍ରୀ.ବି. (ବ.ବ୍ରୀ) ବୃଶ୍ଚିକାଳୀ, ବିଛୁଆଡ଼ି ଲତା ।
ଭୂରିଦ୍ୟୁମ୍ନ—ପୁଂ. ବି. ନବମ ମନୁଙ୍କର ପୁତ୍ରଭେଦ ।
ଭୂରିଧନ—ବିଂ.(ବ.ବ୍ରୀ)ପ୍ରଭୂତ ଧନଯୁକ୍ତ
ଭୂରିଧାମା—ପୁଂ. ବି. ନବମ ମନୁଙ୍କର

ପୁତ୍ରଭେଦ, (ବିଂ) ପ୍ରଭୂତତେଜଯୁକ୍ତ ।
ଭୂରପତ୍ର—ପୁଂ. ବି. (ବ.ଗ୍ରା) ଉଶୀର-ତୃଣ, ବେଣା ।
ଭୂରପଲିତଦା—ସ୍ତ୍ରୀ.ବି. ପାଣ୍ଡୁରଫଳୀ ।
ଭୂରପାନ—ତ୍ରି. ବିଂ. ବହୁହସ୍ତମୁକ୍ତ ।
ଭୂରପୁଷ୍ପା—ସ୍ତ୍ରୀ.ବି. ଶତପୁଷ୍ପା ।
ଭୂରିପ୍ରୟୋଗ—ପୁଂ. ବି. ପଦ୍ମନାଭଦତ୍ତ ରଚିତ ଖଣ୍ଡିଏ ସଂସ୍କୃତ ଅଭିଧାନ ।
ଭୂରିପ୍ରେମା—ପୁଂ. ବି. ଚକ୍ରବାକ ।
ଭୂରିଫଳୀ—ସ୍ତ୍ରୀ. ବି. ପାଣ୍ଡୁରଫଳୀ ।
ଭୂରିଫେନା—ସ୍ତ୍ରୀ. ବି. ଚର୍ମକଷା ବୃକ୍ଷ ।
ଭୂରିବଳା—ସ୍ତ୍ରୀ. ବି. ଅତିବଳା,(ପୁଂ.ବିଂ) ପ୍ରଚୁର ବଳଯୁକ୍ତ, (ବି) ଧୃତରାଷ୍ଟ୍ରଙ୍କର ପୁତ୍ରଭେଦ ।
ଭୂରିଭଟ୍ଟ—ନିମ୍ବାର୍କସମ୍ପ୍ରଦାୟର ଜଣେ ଧର୍ମଗୁରୁ ।
ଭୂରିଭୋଜନ—ବି.(କ.ଧା) ପୂର୍ଣ୍ଣଭୋଜନ. ଅନେକ ଲୋକଙ୍କୁ ଖାଇବାକୁ ଦେବା ।
ଭୂରିମଞ୍ଜରୀ—ସ୍ତ୍ରୀ ବି.(ବ.ଗ୍ରା)ଧଳାତୁଳସୀ ।
ଭୂରିମଲ୍ଲୀ—ସ୍ତ୍ରୀ. ବି. ଅମ୍ବଷ୍ଠା, ଆମ୍ବଡା ।
ଭୂରିମାୟ—ବି.ଶୃଗାଳ,(ସ୍ତ୍ରୀ)ଭୂରିମାୟା. (ବିଂ) ପ୍ରଭୂତମାୟାବୀ । [ ଯୁକ୍ତ ।
ଭୂରିମୂଳ—ତ୍ରି. ବିଂ. ( ବ.ଗ୍ରା )ବହୁମୂଳ-
ଭୂରିମୂଳିକା—ସ୍ତ୍ରୀ.ବି. (ବ.ଗ୍ରା) ଆମ୍ବଡ଼ା ।
ଭୂରିରସ—ପୁଂ. ବି. (ବ.ଗ୍ରା) ଆଖୁଗଛ, (ବିଂ) ପ୍ରଭୂତ ରସଯୁକ୍ତ ।
ଭୂରିଲଗ୍ନା—ସ୍ତ୍ରୀ. ବି. ଶ୍ୱେତାପରାଜିତା ।
ଭୂରିଶଃ—ଅବ୍ୟ. (ଭୂରି+ଶସ୍)ବହୁଶଃ, ଭୂୟୋଭୂୟ, ବହୁବାର ।
ଭୂରିଶ୍ରବାଃ—ପୁଂ. ବି. (ଭୂରି+ଶ୍ରବସ୍) ଚନ୍ଦ୍ରବଂଶୀୟ ରାଜା ସୋମଦତ୍ତଙ୍କ ପୁତ୍ର, (ବିଂ) ବହୁଯଶୋବିଶିଷ୍ଟ ।
ଭୂରିଶ୍ରେଷ୍ଠିକ—ପୁଂ.ବି. ଗୌଡ଼ ଦେଶ-ସ୍ଥିତ ପୁରଭେଦ ।
ଭୂରିହା—ପୁଂ. ବି.(ଭୂରି+ହନ୍+କ୍ୱିପ୍) ବହୁତର ନାଶକ,(ବି)ଅସୁର ଭେଦ ।
ଭୂରୁ—ଗ୍ରା. ବି. ଭୂଲତା ।
ଭୂରୁଣ୍ଡ—ପୁଂ. ବି. ଜନ୍ତୁ ବିଶେଷ ।
ଭୂରୁଣ୍ଡୀ—ସ୍ତ୍ରୀ. ବି. ହାତୀଶୁଣ୍ଢା ଗଛ, ଶ୍ରୀହସ୍ତିନୀ ବୃକ୍ଷ ।
ଭୂରୁହ—ପୁଂ.ବି.(ଭୂ+ରୁହ୍+ଅ)ବୃକ୍ଷ ମହୀରୁହ, ଅର୍ଜୁନ ବୃକ୍ଷ, ଶାଳଗଛ ।
ଭୂରୁହା—ସ୍ତ୍ରୀ. ବି. ମାଂସରୋହିଣୀ,ଦୁବ ।
ଭୂରେନ୍ଦ୍ର—ପୁଂ. ବି. କିଞ୍ଜୁଲୁକ,କେଞ୍ଚୁଆ. ଜିଆ ।
ଭୂର୍ଜ—ପୁଂ. ବି.କୋମଳ ଚର୍ମବତ୍ ତ୍ୱକ୍-ବିଶିଷ୍ଟ ବୃକ୍ଷ ବିଶେଷ, ମୃଦୁତ୍ୱକ୍ ।
ଭୂର୍ଜକଣ୍ଟକ—ପୁଂ. ବି. ବର୍ଣ୍ଣସଙ୍କର ଜାତି ବିଶେଷ ।
ଭୂର୍ଜପତ୍ର—ପୁଂ.ବି. ଭୂର୍ଜ ବୃକ୍ଷର ବକଳ ଭୂଜପତ୍ର ।
ଭୂର୍ଜପତ୍ରକ—ପୁଂ. ବି. ଶାଖୋଟ ବୃକ୍ଷ, ଶାହାଡ଼ାଗଛ, ଭୂର୍ଜପତ୍ର ଶବ୍ଦାର୍ଥ ।
ଭୂର୍ଭୁକ୍—ପୁଂ. ବି. ବ୍ୟାହୃତି ଭେଦ. ବ୍ରହ୍ମାଙ୍କର ମାନସପୁତ୍ର ବିଶେଷ ।
ଭୂର୍ଭୁକର—ପୁଂ. ବି. କୁକ୍କୁର ।
ଭୂର୍ଭୁବେଶ୍ୱରତୀର୍ଥ—କ୍ଳୀ.ବି.ଭୃଗୁ କଚ୍ଛାନ୍ତ-ର୍ଗତ ତୀର୍ଥ ବିଶେଷ ।
ଭୂର୍ଲୋକ—ପୁଂ. ବି. ( ଭୂଃ+ଲୋକ ) ମର୍ତ୍ତ୍ୟଲୋକ, ପୃଥିବୀ ।
ଭୂଲଗ୍ନା—ସ୍ତ୍ରୀ. ବି.ଶଙ୍ଖପୁଷ୍ପୀ, (ବିଂ)ଭୂମି-ସଂଯୋଜିତା ।
ଭୂଲତା—ସ୍ତ୍ରୀ. ବି. କେଞ୍ଚୁଆ, ଜିଆ ।
ଭୂଲଙ୍ଗଶକୁନ—ପୁଂ. ବି.ବିଲଶାୟୀ ପକ୍ଷି-ଭେଦ ।
ଭୂଲୁଣ୍ଠିତ—ବିଂ. ( ୭ତତ୍ ) ଭୂପତିତ, ଭୂପୃଷ୍ଠେ ଲୁଣ୍ଠିତ ।
ଭୂଲେଖୀ—ପୁଂ. ବିଂ. ( ଭୂ+ଲିଖ୍+ଇନ୍) ଯେଉଁ ପକ୍ଷିମାନେ ନଖରେ ମାଟି ଖୋଳି ଖାଦ୍ୟ ଅନ୍ୱେଷଣ କରନ୍ତି ।
ଭୂଲୋକ—ପୁଂ. ବି. ପୃଥିବୀଲୋକ, ମର୍ତ୍ତ୍ୟ-ଲୋକ ।
ଭୂବ—ଗ୍ରା.ବି. ପୃଥିବୀ । [ କୋଳ
ଭୂବଦରୀ—ସ୍ତ୍ରୀ. ବି.କ୍ଷୁଦ୍ରକୋଳି, ବଁଥିର
ଭୂବଳୟ—କ୍ଳୀ. ବି. ( ୬ତତ୍ ) ଭୂମିର ପରିଧି, ପୃଥିବୀର ପରିଧି ।
ଭୂବଲ୍ଲଭ—ପୁଂ. ବି. ନୃପତି, ରାଜା ।
ଭୂବାୟୁ—ପୁଂ. ବି. ( ୬ତତ୍ ) ପୃଥିବୀର ଉପରସ୍ଥ ବାୟୁସ୍ତର ଭେଦ ।
ଭୂବିଦ୍ୟା—ସ୍ତ୍ରୀ. ବି. ଭୂତତ୍ତ୍ୱ ନିରୂପଣ କରିବାର ଶାସ୍ତ୍ର ବିଶେଷ ।
ଭୂବୃତ୍ତ—ବି. (୬ତତ୍) ନରକ୍ଷ ବୃତ୍ତ ।
ଭୂଶକ୍ର—ବି. (୬ତତ୍) ରାଜା ।
ଭୂଶୟ—ପୁଂ. ବି. ( ଭୂ+ଶୀ+କ.ଅ ) ନେଉଳ, ଗୋଧିଆଦି ବିଲେଶୟ ଜୀବ, ବିଷ୍ଣୁ ।
ଭୂଶଯ୍ୟା—ସ୍ତ୍ରୀ.ବି. ଭୂମିଶଯ୍ୟା ଦେଖ ।
ଭୂଶର୍କରା—ସ୍ତ୍ରୀ.ବି. କନ୍ଦଭେଦ ।
ଭୂଶୈଳ—ପୁଂ.ବି. ଭୂଇଁଚଲତା ।
ଭୂଷଣ—କ୍ଳୀ.ବି. (ଭୂଷ୍+ଅନ) ଅଳ-ଙ୍କାର, ଶୋଭା, ସଜ୍ଜା,ଅଳଙ୍କାର ପିନ୍ଧା-ଇବା, ବିଷ୍ଣୁ,(ଲ.ଅର୍ଥ) ଭୂଷଣସ୍ୱରୂପ, ପ୍ରଶଂସାଯୋଗ୍ୟ, ( ଗ୍ରା.ବି ) ପ୍ରଶଂସା-ଯୋଗ୍ୟ ବିଷୟ ।
ଭୂଷଣପ୍ରିୟ—ପୁଂ.ବିଂ.(ବ.ଗ୍ରା)ଅଳଙ୍କାର-ପ୍ରିୟ, (ସ୍ତ୍ରୀ) ଭୂଷଣପ୍ରିୟା ।
ଭୂଷଣଭଟ୍ଟ — ଗାୟତ୍ରୀପଦ୍ଧତିପ୍ରଣେତା କାଦମ୍ବରୀ ଉତ୍ତରାର୍ଦ୍ଧ ରଚୟିତା ବାଣ କବିଙ୍କର ପୁତ୍ର ।
ଭୂଷଣୀ—ଗ୍ରା.ସ୍ତ୍ରୀ.ବି. ଭୂଷିତା,ଅଳଙ୍କୃତା
ଭୂଷଣୀୟ—ବିଂ. ( ଭୂଷ୍+ର୍ମ.ଅନୀୟ ) ଅଳଙ୍କରଣୀୟ ।
ଭୂଷଣ୍ଡ—ବି. ଭୂଷଣ୍ଡ ଦେଖ.(ସ୍ତ୍ରୀ)ଭୂଷଣ୍ଡୀ ।
ଭୂଷା—ସ୍ତ୍ରୀ.ବି. ( ଭୂଷ୍+ର୍ମ.ଅ+ଆ ) ଅଳଙ୍କ୍ରିୟା, ପ୍ରସାଧନ, ଭୂଷଣ, (ଗ୍ରା. ବି) ବେଶବା, କେଶ ।
ଭୂଷାବତୀ—ସ୍ତ୍ରୀ.ବିଂ.ଅଳଙ୍କୃତା, (ପୁଂ.ବିଂ) ଭୂଷାବାନ୍ ।
ଭୂଷିତ—ତ୍ରି.ବିଂ.(ଭୂଷ୍+ତ)ଅଳଂକୃତ, ଶୋଭିତ, ସଜ୍ଜିତ, (ସ୍ତ୍ରୀ)ଭୂଷିତା ।
ଭୂଷିବା—ଗ୍ରା. କ୍ରି. କେଞ୍ଚିବା, ମଣ୍ଡିବା, ଭୂଷଣ କରିବା ।
ଭୂଷ୍ଣୁ—ତ୍ରି.ବିଂ. (ଭୂ+ଷ୍ଣୁ) ଭବିଷ୍ୟତ୍, ସାଧୁ ଭବନଶୀଳ, ଉତ୍ପତ୍ତିଶୀଳ ।
ଭୂଷ୍ୟ—ତ୍ରି.ବିଂ. (ଭୂ+ର୍ମ.ଯ) ଭୂଷ-ଣୀୟ, ଭୂଷଣାର୍ହ, ଭୂଷଣଯୋଗ୍ୟ ।
ଭୂସଂସ୍କାର—ପୁଂ.ବି.(୬ତତ୍)ଯଜ୍ଞାଦିରେ

ଭୂମିକୁ ଗୋମୟଦ୍ୱାରା ଲେପନ, ପର-
ସମୂହନାଦି ପଞ୍ଚବିଧ ସଂସ୍କାରବିଶେଷ ।
ଭୂସମ୍ପତ୍ତି—ସ୍ତ୍ରୀ.ବି. (କ.ଧା) ଭୂମିରୂପ
ସମ୍ପତ୍ତି, ଜମିବାଡ଼ି ।
ଭୂସାଇଁ—ଗ୍ରା.ବି. ରାଜା ।
ଭୂସୁତ—ପୁଂ.ବି. ମଙ୍ଗଳଗ୍ରହ, ନରକା-
ସୁର, ବୃକ୍ଷ ଲତାଦି, (ସ୍ତ୍ରୀ) ଭୂସୁତା ।
ଭୂସୁତା—ସ୍ତ୍ରୀ.ବି. ସୀତା, ଜାନକୀ ।
ଭୂସୁର—ପୁଂ.ବି. (୬ତତ୍) ବ୍ରାହ୍ମଣ ।
ଭୂସ୍ତୃଣ—କ୍ଲୀ.ବି. ସୁଗନ୍ଧ ତୃଣବିଶେଷ.
ଧନଶ୍ରୀ ।
ଭୂସ୍ଥ—ତ୍ରି.ବିଂ. (ଭୂ+ସ୍ଥା+ଅ)ପୃଥିବୀ-
ସ୍ଥିତ, (ବି) ମନୁଷ୍ୟ,(ବୈଦ୍ୟକ) ଗଣ୍ଡୂ-
ପଦୀ, ଜେଞ୍ଚୁଆ ।
ଭୂସ୍ପୃକ୍—ପୁଂ.ବି. (ଭୂ+ସ୍ପୃଶ୍+କ୍ୱିପ୍)
ମନୁଷ୍ୟ ।
ଭୂସ୍ୱର୍ଗ—ପୁଂ.ବି. (୬ତତ୍)ସୁମେରୁପର୍ବତ
ଭୂସ୍ୱାମୀ—ପୁଂ.ବି.(ଭୂ+ସ୍ୱାମିନ୍)ରାଜା,
ଜମିଦାର, (ସ୍ତ୍ରୀ) ଭୂସ୍ୱାମିନୀ ।
ଭୃକୁଂଶ(ସ)—ପୁଂ.ବି.(ଭ୍ରୂ+କୁଂଶ+
ଅ) ସ୍ତ୍ରୀ ବେଶଧାରୀ ନର୍ତ୍ତକ ।
ଭୃକୁଟୀ—ସ୍ତ୍ରୀ.ବି. ( ଭ୍ରୂ+କୁଟ୍+ଈ )
ଭ୍ରୂଭଙ୍ଗୀ,(ଗ୍ରା.ବି) ଶିବାନୁଚର,ଭୃଙ୍ଗୀ
ଭୃକୁଟିକୁଟିଳାନନ— ବି. ( ୩ତତ୍ )
ଭ୍ରୂଭଙ୍ଗିଦ୍ୱାରା ବକ୍ରହୋଇଥିବା ମୁଖ ।
ଭୃଗୁ—ପୁଂ.ବି. ( ଭ୍ରସ୍ଜ୍+ଉ ) ମୁନି-
ବିଶେଷ, ଶିବଙ୍କର ନାମାନ୍ତର, ମହା-
ଦେବ, ଶୁକ୍ରାଚାର୍ଯ୍ୟଙ୍କ ପିତା, ବ୍ରହ୍ମାଙ୍କର
ମାନସପୁତ୍ର,ପ୍ରଜାପତିବିଶେଷ,ଶୁକ୍ରଗ୍ରହ,
ସାନୁ, ଯମଦଗ୍ନି, ଅରଣ୍ୟକଣ୍ଟକ,ବ୍ୟାଘ୍ର,
ଗିରିପାର୍ଶ୍ୱୋଚ୍ଚ ଦେଶ, ନିରବଲମ୍ବ,
ପର୍ବତପାର୍ଶ୍ୱ, ପ୍ରପାତ, ଦ୍ରୋଣାଚାର୍ଯ୍ୟ,
ପର୍ଶୁରାମ ।
ଭୃଗୁକ—ପୁଂ. ବି. କୂର୍ମଚକ୍ରର ଦକ୍ଷିଣ
ପାର୍ଶ୍ୱସ୍ଥିତ ଦେଶଭେଦ ।
ଭୃଗୁକଚ୍ଛ—କ୍ଲୀ. ବି. ନର୍ମଦାର ଉତ୍ତର
ତଟସ୍ଥିତ ତୀର୍ଥକ୍ଷେତ୍ର ।
ଭୃଗୁକେଶବ—ପୁଂ.ବି.କାଶୀସ୍ଥିତ ଭୃଗୁ-
ସ୍ଥାପିତ କେଶବମୂର୍ତ୍ତିଭେଦ ।

ଭୃଗୁକ୍ଷେତ୍ର—ବି. ପ୍ରାଚୀନ ତୀର୍ଥବିଶେଷ,
ଭୃଗୁଜ—ପୁଂ.ବି. (ଭୃଗୁ+ଜନ୍+କ.ଅ)
ଭାର୍ଗବ, ଭୃଗୁଙ୍କ ପୁତ୍ର, ଶୁକ୍ରାଚାର୍ଯ୍ୟ,
ଭୃଗୁବଂଶୀୟ ବ୍ୟକ୍ତି ।
ଭୃଗୁତନୟ—ପୁଂ.ବି. (୬ତତ୍) ଶୁକ୍ରା-
ଚାର୍ଯ୍ୟ ।   [ ଭେଦ ।
ଭୃଗୁତୁଙ୍ଗ—କ୍ଲୀ.ବି. ହିମାଳୟସ୍ଥିତ ତୀର୍ଥ
ଭୃଗୁଦେବ—ପୁଂ.ବି.ପ୍ରବରାଧ୍ୟାୟ ପ୍ରଣେତା
ଭୃଗୁପତି—ପୁଂ.ବି.୬ତତ୍;ପର୍ଶୁରାମ,ଭାର୍ଗବ
ଭୃଗୁପଥ—ହିମାଳୟସ୍ଥିତ କେଦାରନାଥ
ତୀର୍ଥର ସମୀପସ୍ଥ ତୀର୍ଥଭେଦ ।
ଭୃଗୁପ୍ରସ୍ରବଣ—ପୁଂ.ବି. ହିମାଳୟ ସନ୍ନିହିତ
ପର୍ବତବିଶେଷ ।
ଭୃଗୁଭୂମି—ପୁଂ.ବି. ଭାର୍ଗବ ପୁତ୍ରବିଶେଷ
(ହରିବଂଶ) ।
ଭୃଗୁମାନ୍—ପୁଂ.ବିଂ. ( ଭୃଗୁ+ମତୁ )
ଗଣାଶିଆ (ପର୍ବତ) ।
ଭୃଗୁରାମ—ପୁଂ.ବି. ପରଶୁରାମ ।
ଭୃଗୁରେଖା—ବି. ( କ.ଧା ) ବିଷ୍ଣୁଙ୍କ
ବକ୍ଷୋଦେଶରେ ଭୃଗୁମୁନିଙ୍କ ପଦା-
ଘାତର ଚିହ୍ନ ।
ଭୃଗୁବାର—ବି. ଶୁକ୍ରବାର ।
ଭୃଗୁସୁତ—ପୁଂ.ବି. (ଭୃଗୁ+ସୁତ)ଶୁକ୍ରା-
ଚାର୍ଯ୍ୟ, ପରଶୁରାମ, ଶୁକ୍ରଗ୍ରହ ।
ଭୃଙ୍ଗ—ବି. ( ଭୃ+କ.ଗ ) ଭ୍ରମର,
ଭୀମରାଜ ପକ୍ଷୀ, ବିଟ, ଲମ୍ପଟ ବ୍ୟକ୍ତି,
ଗୁଡ଼ତ୍ୱକ୍, ଅଭ୍ର, ସ୍ୱର୍ଣ୍ଣର ଜଳପାତ୍ର,
କେଶଦୁଦୁରା, ଭୃଙ୍ଗରାଜଗଛ,ଭରୁଡ଼ି ।
ଭୃଙ୍ଗକ—ପୁଂ.ବି. (ଭୃଙ୍ଗ+କ)ଭୃଙ୍ଗ-
ରାଜ ପକ୍ଷୀ, ଭୀମରାଜ ଡେଣା ।
ଭୃଙ୍ଗଜ—କ୍ଲୀ.ବି. (ଭୃଙ୍ଗ+ଜନ୍+ଅ )
ଅଗୁରୁକାଷ୍ଠ, ସୁଗନ୍ଧ କାଷ୍ଠବିଶେଷ ।
ଭୃଙ୍ଗଜା—ସ୍ତ୍ରୀ.ବି. ଭାର୍ଗୀ, ବ୍ରାହ୍ମଣଯଷ୍ଟି ।
ଭୃଙ୍ଗଟ—ଗ୍ରା.ବି. ବୈରାଗୀଙ୍କ ପରିଧାନ-
ବିଶେଷ ।
ଭୃଙ୍ଗପର୍ଣ୍ଣିକା—ସ୍ତ୍ରୀ.ବି,ଛୋଟ ଅଳେଇଚ,
ଗୁଜୁରାତି ।
ଭୃଙ୍ଗପ୍ରିୟ—ପୁଂ.ବି. ଧୂଳିକଦମ୍ବ ।
ଭୃଙ୍ଗପ୍ରିୟା—ସ୍ତ୍ରୀ.ବି. ମାଧବୀଲତା ।

ଭୃଙ୍ଗବନ୍ଧୁ—ପୁଂ.ବି. (ବ.ବ୍ରୀ) କୁନ୍ଦବୃକ୍ଷ,
କଦମ୍ବଗଛ ।
ଭୃଙ୍ଗମାରି—ସ୍ତ୍ରୀ.ବି.କୋଙ୍କଣ ଦେଶ ପ୍ରସିଦ୍ଧ
କୋବକାପୁଷ୍ପବୃକ୍ଷ, ଭ୍ରମରମାରିଗଛ ।
ଭୃଙ୍ଗମୋହୀ—ପୁଂ.ବି. (ଭୃଙ୍ଗ+ମୁହ୍+
ଣ.ଇନ୍) ଚମ୍ପକବୃକ୍ଷ, ସ୍ୱର୍ଣ୍ଣ ଚମ୍ପାଗଛ ।
ଭୃଙ୍ଗରଜ—ପୁଂ.ବି. ଭୃଙ୍ଗରାଜ ।
ଭୃଙ୍ଗରଜଃ—ପୁଂ.ବି. ଭୃଙ୍ଗରାଜ ।
ଭୃଙ୍ଗରା—ସ୍ତ୍ରୀ.ବି. ଭୃଙ୍ଗରଜ,କେଶରାଜ ।
ଭୃଙ୍ଗରାଜ—ପୁଂ.ବି. (ଭୃଙ୍ଗ+ରାଜ୍+ଅ)
କଳାଭଅଁର, ଭ୍ରମରଶ୍ରେଷ୍ଠ, ବଡ଼
କଜଳପାତିଜାତୀୟ ଭୀମରାଜ ପକ୍ଷୀ,
ପକ୍ଷୀବିଶେଷ, ଗନ୍ଧ ସ୍ୱାଦବିହୀନ ଶାକ-
ବିଶେଷ. କେଶରଦା, କେଶଦୁଦୁରା,
ଦାରୁଚିନି, ଏକପ୍ରକାର ଗୁଳ୍ମ ।
ଭୃଙ୍ଗରିଟି—ପୁଂ.ବି. (ଭୃଙ୍ଗ+ରିଟ୍+ଅ)
ଶିବଙ୍କର ଦ୍ୱାରପାଳ ।
ଭୃଙ୍ଗରୀଟ—ପୁଂ.ବି. (ଭୃଙ୍ଗ+ରିଟ୍+ଅ)
ଶିବଙ୍କର ଦ୍ୱାରପାଳ, ଲୌହ ।
ଭୃଙ୍ଗରୋଳ—ପୁଂ. ବି. ଭରୁଡ଼ି, ଘୁରୁଙ୍ଗ
ଘୁରୁଆ ପତଙ୍ଗ ।
ଭୃଙ୍ଗବଲ୍ଲଭ—ପୁଂ.ବି.ଧାରାକଦମ୍ବ,ଭୂଇଁ-
କଦମ୍ବ ।   [ ପୁଷ୍ପବୃକ୍ଷ ।
ଭୃଙ୍ଗବଲ୍ଲଭା—ସ୍ତ୍ରୀ.ବି. ଭୂମିଜମ୍ବୁ, ତରଣୀ
ଭୃଙ୍ଗବୃକ୍ଷ—ପୁଂ.ବି. ଭୃଙ୍ଗରାଜ ଗଛ ।
ଭୃଙ୍ଗସୁହୃଦ୍—ପୁଂ.ବି. କୁନ୍ଦପୁଷ୍ପବୃକ୍ଷ ।
ଭୃଙ୍ଗସୋଦର—ପୁଂ.ବି. କେଶଦୁଦୁରା ।
ଭୃଙ୍ଗାଧିପ—ପୁଂ.ବି. ଭରୁଡ଼ି ।
ଭୃଙ୍ଗାନନ୍ଦା—ସ୍ତ୍ରୀ.ବି. ଯୂଇ, ଯୂଥିକା ।
ଭୃଙ୍ଗାଭୀଷ୍ଟ—ପୁଂ.ବି. ଆମ୍ରବୃକ୍ଷ, ଆମ୍ବଗଛ
ଭୃଙ୍ଗାର—କ୍ଲୀ.ବି. (ଭୃ+ଆର)ଲବଙ୍ଗ,
ସୁବର୍ଣ୍ଣ, ସୁବର୍ଣ୍ଣନିର୍ମିତ ଜଳପାତ୍ର, ଝରି,
ଗଡ଼ୁ, ଜଳପାତ୍ରବିଶେଷ ।
ଭୃଙ୍ଗାରକ—ପୁଂ.ବି. ଲବଙ୍ଗ, ସୁବର୍ଣ୍ଣ,
ଝରି, ଗଡ଼ୁ, ଜଳପାତ୍ରବିଶେଷ ।
ଭୃଙ୍ଗାରି—ସ୍ତ୍ରୀ.ବି. କୋବକା ପୁଷ୍ପବୃକ୍ଷ,
କିଆଗଛ, ଝିଙ୍କାରି ପୋକ ।
ଭୃଙ୍ଗାରିକା—ସ୍ତ୍ରୀ.ବି. ଝିଲ୍ଲୀପୋକ,ଝିଙ୍କାରି-
ପୋକ ।

ଭୃଙ୍ଗାଶ୍ମ—ସ୍ତ୍ରୀ.ବି. ଝିଲ୍ଲୀକୀଟ, ଝିଙ୍କାରି-ପୋକ ।

ଭୃଙ୍ଗାର୍କ—ପୁଂ.ବି.ଭୃଙ୍ଗରାଜ ବୃକ୍ଷ,କେଶ-ଦୁଦୁରା ଗୁଳ୍ମ ।

ଭୃଙ୍ଗାହ୍ୱ—ପୁଂ.ବି.ଜୀବକ, ଭୃଙ୍ଗରାଜ ।

ଭୃଙ୍ଗି—ପୁଂ. ବି. ଶିବଙ୍କର ଦ୍ୱାରପାଳ-ବିଶେଷ । [ ବିଶେଷ ।

ଭୃଙ୍ଗିରିଟି—ପୁଂ.ବି.ଶିବଙ୍କର ଦ୍ୱାରପାଳ-

ଭୃଙ୍ଗୀ—ପୁଂ.ବି(ଭୃଙ୍ଗ+ଇନ୍) ବଟଗଛ, ଶିବଙ୍କର ଦ୍ୱାରପାଳବିଶେଷ, (ସ୍ତ୍ରୀ.ବି) (ଭୃଙ୍ଗ+ଈ)ଅତିବିଷା, ମାଈ ଭଅଁର, ଖଙ୍କ ।

ଭୃଙ୍ଗୀଗୁହ୍ମ—କ୍ଲୀ. ବି. ଭରୁଡ଼ ବସା ।

ଭୃଙ୍ଗୀଫଳ—ପୁଂ. ବି. ଆମ୍ବଡ଼ା ।

ଭୃଙ୍ଗୀଶ—ପୁଂ. ବି. (ଭୃଙ୍ଗ+ଈଶ)ମହା-ଦେବ ।

ଭୃଙ୍ଗେଷ୍ଟା—ସ୍ତ୍ରୀ.ବି(ଭୃଙ୍ଗ+ଇଷ୍ଟ+ଆ) ଘିଅକୁଆଁରି, ବ୍ରାହ୍ମଣଯଷ୍ଟି, ତରୁଣୀ, କାକଜମ୍ବୁ ।

ଭୃଜ୍ଜନ—ପୁଂ.ବି.ଭର୍ଜ୍ଜନପାତ୍ର, ଭଜାହାଣ୍ଡି ବା ଖଇଜବାର ପାତ୍ର । [ ଗୁଞ୍ଜା ।

ଭୃଣ୍ଡିକା—ସ୍ତ୍ରୀ. ବି. ଧଳାକାଇଁଚ, ଶ୍ୱେତ

ଭୃଣ୍ଡି—ସ୍ତ୍ରୀ. ବି. ଖାତ, ତରଙ୍ଗ ।

ଭୃତ୍—ବିଂ. (ଭୃ+କ୍ୱିପ୍) ପାଳନକର୍ତ୍ତା, ଧାରଣକର୍ତ୍ତା, ଯେ ଉଠାଇ ଧରେ ।

ଭୃତ—ବିଂ. (ଭୃ+ମି.ତ) ପୁଷ୍ଟ, ବେତ-ନାଦି ଦ୍ୱାରା ପ୍ରତିପାଳିତ, ପୂର୍ଣ୍ଣ, (ବି) ଦାସଭେଦ, ଭୃତ୍ୟ ।

ଭୃତକ –ପୁଂ. ବିଂ. ( ଭୃ+ତ+କ ) ବେତନୋପଜୀବୀ,(ସ୍ତ୍ରୀ)ଭୃତକା,(କ୍ଲୀ.ବି) ବେତନ, ମାସ, ଭୃତ୍ୟ, ଚାକର ।

ଭୃତଭୃତ—ବିଂ. ( ଭୃତ୍+ଭୃତ ) କ୍ଷମତାଶାଳୀ,ଉନ୍ନତ,ବର୍ଦ୍ଧମାନ, ଭସ୍ମ-ବିଲେପିତ ।

ଭୃତି—ସ୍ତ୍ରୀ. ବି. ( ଭୃ+ତି ) ବେତନ, ମୂଲ୍ୟ, ଭରଣ, ପୋଷଣ,ବୃତ୍ତି,ଖୋରାକ-ପୋଷାକ, ଖଞ୍ଜା, ମୂଳଧନ ।

ଭୃତିକା—ସ୍ତ୍ରୀ. ବି. ବେତନ, ମୂଲ୍ୟ ।

ଭୃତିଜୀବୀ—ପୁଂ. ବିଂ. ( ଭୃତି+ଜୀବ+ଇନ୍ ) ବେତନଭୋଗୀ, ବୃତ୍ତିଭୋଗୀ, (ସ୍ତ୍ରୀ) ଜୀବନୀ ।

ଭୃତିଭୁକ୍—ପୁଂ. ବି. (ଭୃତି+ଭୁଜ୍+କ.କ୍ୱିପ୍)ବେତନୋପଜୀବୀ ଭୃତ୍ୟ,ବୃତ୍ତି-ଭୋଗୀ ।

ଭୃତ୍ୟ—ପୁଂ. ବି. (ଭୃ+ମି.ଯ) ଦାସ, ଚାକର, ପ୍ରତିପାଳ୍ୟ ବ୍ୟକ୍ତି, (ଣ.ଯ) ଭୃତ, (ଖ.ଯ) ଚାକରୀ ।

ଭୃତ୍ୟତ୍ୱ (ତ୍ୱ)—ସ୍ତ୍ରୀ.ବି. ଚାକର,ଭୃତ୍ୟପଣ

ଭୃତ୍ୟା—ସ୍ତ୍ରୀ.ବି. ବେତନ,ଭରଣ କ୍ରିୟା, ଦାସୀ, ଚାକରାଣୀ ।

ଭୃତ୍ୟାଧ୍ୟାପନ—କ୍ଲୀ. ବି. (ଭୃତି+ଅଧ୍ୟା-ପନ) ଅର୍ଥାତ୍ ଗ୍ରହଣ ପୂର୍ବକ ବେଦାଦି ଶିକ୍ଷାଦେବା ।

ଭୃମି—ପୁଂ. ବି.( ଭ୍ରମ+ଇ )ଘୂର୍ଣ୍ଣିବାୟୁ, ଜଳଭ୍ରମୀ, ଭଉଁରୀ, ଆବର୍ତ୍ତ, କର୍ମ-ନିର୍ବାହକ, ଭ୍ରମଣ, ଘୂରିବା, ବୈଦିକ କାଳର ବୀଣା ବିଶେଷ ।

ଭୃଶ—ବିଂ. ( ଭୃଶ୍+କ.ଅ ) ବହୁଳ, ଅତ୍ୟନ୍ତ, ବାରମ୍ବାର ଘଟୁଥିବା, ( କ୍ରି. ବିଂ) ଅତ୍ୟନ୍ତ, ପୁନଃ ପୁନଃ,ବାରମ୍ବାର. (ସ୍ତ୍ରୀ) ଭୃଶା ।

ଭୃଶଦ୍(ଦ୍)—ବି.(ଭୃଶ୍+କ.ଅଦ୍)ପାଷାଣ ପଥର ।

ଭୃଶପତ୍ରିକା—ସ୍ତ୍ରୀ. ବି. ମହାନୀଳୀ ।

ଭୃଶଂ—ଅବ୍ୟ. ମୁହୁର୍ମୁହୁ. ବାରମ୍ବାର, ଶୋଭନ ।

ଭୃଷାଳୀ—ବି. ମଏଣ୍ଡ ଦେଖ ।

ଭୃଷ୍ଟ—କ୍ରି.ବିଂ.(ଭ୍ରସ୍ଜ୍+ମି.ତ)ଭର୍ଜ୍ଜିତ, ଭଜାହୋଇଥିବା,ଭଜା, (ସ୍ତ୍ରୀ) ଭୃଷ୍ଟା ।

ଭୃଷ୍ଟକାର—ପୁଂ.ବିଂ. (ଭୃଷ୍ଟ+କୃ+ଅ) ଯେ ମୁଗ,ସୋଲ,ମୁଡ଼ିଆଦି ଭଜା ବିକ୍ରୟ କରେ ।

ଭୃଷ୍ଟତଣ୍ଡୁଳ—ପୁଂ. ବି. ଗୁଣ୍ଡଳଭଜା ।

ଭୃଷ୍ଟମୃତ୍—ସ୍ତ୍ରୀ. ବି. ପୋଡ଼ା ମାଟି ।

ଭୃଷ୍ଟଯବ—ପୁଂ. ବି. ଭଜାଯବ, ଚୂଡ଼ା ।

ଭୃଷ୍ଟାନ୍ନ—କ୍ଲୀ. ବି. (ଭୃଷ୍ଟ+ଅନ୍ନ)ମୁଢ଼ି ।

ଭୃଷ୍ଟି—ସ୍ତ୍ରୀ.ବି. (ଭ୍ରସ୍ଜ୍+ଭା.ତି)ଭର୍ଜନ, ଖଇକବା, (ମି.ତି) ମୁଢ଼ି, (ଅଧି.ତି)ଜନ-ଶୂନ୍ୟ ଉଦ୍ୟାନ, ଶୂନ୍ୟବାଟିକା ।

ଭେଇବା—ଗ୍ରା. କ୍ରି. (ଫ-ବଧାନ) ଭିଆଁ-ଇବା ଦେଖ ।

ଭେଉ—ଗ୍ରା. ବି.(ଫ-ଭେଦ)ମର୍ମ,ରହସ୍ୟ, (ଗ୍ରା.ଯାଜପୁର.ବି)ବାଟ,ଢଙ୍ଗ, ଘାଟ ।

ଭେଁ—ଗ୍ରା.ଅବ୍ୟ. ଉଚ୍ଚୈଃସ୍ୱରରେ କାନ୍ଦି-ବାର ଶବ୍ଦ ।

ଭେଁଡ଼—ପ୍ରା.(ବାମଣ୍ଡା)ବି.ମେଣ୍ଢା,ଭେଣ୍ଡି ।

ଭେକ—ପୁଂ. ବି. (ଭୀ+କ) ବେଙ୍ଗ, ମଣ୍ଡୂକ, ମେଘ, (ସ୍ତ୍ରୀ) ଭେକୀ, (ଗ୍ରା.ବି-ଫ-ବେଶ) ପୋଷାକ, ବେଶପରିଚ୍ଛଦ, ବୈଷ୍ଣବର ବେଶ,ବୈଷ୍ଣବ ବା ସନ୍ନ୍ୟାସୀ-ମାନେ ଦୀକ୍ଷା ନେଲାବେଳେ ଗୁରୁଠାରୁ ଗ୍ରହଣ କରିଥିବା ଡ଼ୋର କୌପୁନ, ଅବଲମ୍ବନ, ଆଶ୍ରୟ, ଶେଷ, ଭରସା, ଛଦ୍ମବେଶ, ଭିନ୍ନ ଭିନ୍ନ ବ୍ୟବସାୟର ଭିନ୍ନ ଭିନ୍ନ ବେଶ,ଜୀବିକା,ବୃତ୍ତି, ବ୍ୟବ-ସାୟ, ପଦବୀ ।

ଭେକଜମୁକ୍ତା—ବି. ବେଙ୍ଗ ମୁଣ୍ଡରୁ ଜାତ ମୁକ୍ତାପରି ପଥରବିଶେଷ,ଏହା ଦର୍ଦ୍ଦୁର ନାମରେ ଖ୍ୟାତ ।

ଭେକଟ(ଟା)—ପୁଂ. ବି. ମତ୍ସ୍ୟବିଶେଷ, ଖାକୁର ମାଛ ।

ଭେକନଥିଲେଭିଖମିଳେନାହିଁ--ଗ୍ରା.(ପ୍ରବ-ଚନ) ବୈଷ୍ଣବର ବେଶ ନ ଥିଲେ ସାଧାରଣ ଲୋକେ ତାଙ୍କୁ ବୈଷ୍ଣବବୋଲି ମାନନ୍ତି ନାହିଁ ବା ଭିକ୍ଷା ଦିଅନ୍ତି ନାହିଁ ।

ଭେକଳି—ପୁଂ. ବି. (ଭେକ + ଳ + ଇ) ଏଣ୍ଡୁଲା ମାଛ, ଖଡ଼ଙ୍ଗା ମାଛ ।

ଭେକପର୍ଣ୍ଣୀ—ସ୍ତ୍ରୀ ବି. (ଭେକ+ପର୍ଣ୍ଣ+ଈ) ମଣ୍ଡୂକପର୍ଣ୍ଣୀ ।

ଭେକଭୁକ୍(ଜ୍)—ପୁଂ. ବି. (ଭେକ + ଭୁଜ୍+କ୍ୱିପ୍) ସର୍ପ ।

ଭେକମୂତ୍ର—କ୍ଲୀ. ବି. ବେଙ୍ଗମୂତ୍ର ।

ଭେକରାଜ—ପୁଂ. ବି. ମହାଭେକ,ଭୃଙ୍ଗ-ରାଜ, କେଶଦୁଦୁରା ।

ଭେକା—ଗ୍ରା. ବିଂ. (ଫ-ଅବାକ୍) ବହୁଳ, ବାହ୍ୟଜ୍ଞାନଶୂନ୍ୟ, ଭେଲକା, ଓଲୁ ।

ଭେକାସନ—କ୍ଲୀ. ବି. ରୁଦ୍ରଯାମଳୋକ୍ତ

ପ୍ରଜାଙ୍କ ଆସନବିଶେଷ ।

ଭେଙ୍କା—ସ୍ତ୍ରୀ.ବି. (ଭେକ+ଈ)କେଙ୍କଅା, ମଣ୍ଡୁକପର୍ଣ୍ଣୀ ବୃକ୍ଷ, ଥାଲକୁଣି,ବେଙ୍ଗୀ, ମେଘ ।

ଭେକୁଲ—ସ୍ତ୍ରୀ. ବି. ଅମ୍ବୁଗେରୂପ ନକ୍ଷତ୍ର ।

ଭେଙ୍କାଳି—ଗ୍ରା.ବି ଭଙ୍ଗି,ମୁଖାବୟବ ନାଦର ବକ୍ରୀକରଣ, ସଙ୍କୁଚୀକରଣ, ବେଙ୍କ, ଛଇ । [ ଭେକ ।

ଭେକ୍ଲ—ପ୍ରା. (ସମ୍ବଲ) ବି. ଅଙ୍କଗ୍ରନ୍ଥ,

ଭେଜା—ଗ୍ରା.ବି. ଅନ୍ୟଦ୍ୱାରା ପଠାଇବା ।

ଭେଜାସିବା—ଗ୍ରା. କ୍ରି. ପଠାସିବା ।

ଭେଜ—ଗ୍ରା.ବି. ଅଙ୍କଗ୍ରନ୍ଥ, ଭେଜବାଇଗଣ,(ବିଂ) ଖୁବ୍ ଶ୍ରେଷ୍ଠ ଆକୃତବିଶିଷ୍ଟ ।

ଭେଜଆ—ଗ୍ରା. ବିଂ. ପାକଳ ମଞ୍ଜିରେ ପୂର୍ଣ୍ଣ (ବାଇଗଣ) ।

ଭେଜବା—ଗ୍ରା. କ୍ରି. ପଠାଇବା ।

ଭେଜବାଇଗଣ—ଗ୍ରା. ବି. ବଡ଼ାଙ୍କୁଡ଼, ପାକଳ ମଞ୍ଜିପୂର୍ଣ୍ଣ ଶ୍ରେଷ୍ଠ ବାଇଗଣ ।

ଭେଟ—ଗ୍ରା. ବି. ପରସ୍ପର ସନ୍ଦର୍ଶନ,ଦୁଇ ବା ତତୋଧିକ ବ୍ୟକ୍ତିଙ୍କର ପରସ୍ପର ସହିତ ସାକ୍ଷାତ୍ ବା ମିଳନ, ଦର୍ଶନ, ଦେଖା, ଦେବତା ଓ ରାଜାଙ୍କୁ ଦର୍ଶନ କରାସିବା ସମୟରେ ଦିଆଯିବା ଉପଢୌକନ, ଭେଟି, ସଲାମୀ, ଦଶହରାଦି ଉପଲକ୍ଷ୍ୟରେ ପାଇକଆଦିଙ୍କର ଅସ୍ତ୍ରଶସ୍ତ୍ର ଚାଳନ ପୂର୍ବକ ରାଜାଙ୍କ ଆଗରେ ସମ୍ମାନପ୍ରଦର୍ଶନ ।

ଭେଟଣ(ଣା)—ଗ୍ରା. ବି. (ଫ-ଭେଟନ) ହଠାତ୍ ଭେଟହେବା । [ ଦେବା ।

ଭେଟ(ଟି)ଦେବା—ଗ୍ରା. କ୍ରି. ଉପଢୌକନ

ଭେଟପାଇବା—ଗ୍ରା. କ୍ରି.ସାକ୍ଷାତ୍‌ପାଇବା, ଦର୍ଶନ ପାଇବା ।

ଭେଟଘାଟ—ଗ୍ରା. ବି. ମିଳନ, ଦର୍ଶନ ।

ଭେଟସଲାମୀ—ଗ୍ରା. ବି. ଭେଟି, ଉପଢୌକନ । [ ହେବା ।

ଭେଟହେବା—ଗ୍ରା.କ୍ରି. ଭେଟିବା, ସାକ୍ଷାତ୍

ଭେଟା—ଗ୍ରା. ବି. ଖରଦା, ଘରକଥା ନ ବୁଝି ଯେ ଏଣେତେଣେ ବୁଲୁଥାଏ ।

ଭେଟା(ଟେ)ଇବା—ଗ୍ରା. କ୍ରି. ଦୁଇଜଣଙ୍କର ମିଳନ ବା ଭେଟ କରାଇବା, ସାକ୍ଷାତ୍ କରିବା ।

ଭେଟାଭେଟି—ଗ୍ରା. ବି. ପରସ୍ପର ମିଳନ ବା ସାକ୍ଷାତ୍ ।

ଭେଟି—ଗ୍ରା. ବି. ସଲାମୀ, ଦର୍ଶନୀ,ରାଜା, ଜମିଦାର, ଦେବତା ଆଦିଙ୍କୁ ପ୍ରଥମେ ଭେଟିବା ସମୟରେ ଦିଆଯିବା ଉପଢୌକନ ।

ଭେଟିବା—ଗ୍ରା. କ୍ରି. ସାକ୍ଷାତ୍ କରିବା, ପରସ୍ପର ସନ୍ଦର୍ଶନ, ମିଳିତହେବା,ସମ୍ମିଳିବା, (ପ୍ରା. ବାଲେଶ୍ୱର) ବାଜିବା, ଆଘାତ ହେବା ।

ଭେଟିଆରଖାନା—ଯା. ବି. ସରାଇ, ହୋଟେଲ, ସାମାଜିକ ନିୟମବିରୁଦ୍ଧ ସ୍ଥାନ ।

ଭେଟେ—ଗ୍ରା. ଅବ୍ୟ. ଅଢେ଼ୌ, ଜମାରୁ, ଥରେସୁଦ୍ଧା ।

ଭେଡ଼—ପୁଂ. ବି. (ଭୀ+କ.ଡ)ମେଣ୍ଢା, (ଅଧି.ଡ) ଭେଲା, (ସ୍ତ୍ରୀ) ଭେଡ଼ୀ ।

ଭେଡ଼ା—ଗ୍ରା. ବି. (ଫ-ହେଡ଼) ମେଣ୍ଢା, ପଗାର, ବଡ଼ହୁଡ଼, ଜଙ୍ଗଲମୟ ଭୂମି, ପଢ଼ୁଆ,ନିର୍ବୋଧ ଲୋକପ୍ରତି ଶ୍ଲେଷୋକ୍ତି ଗୁଳବାର ବଡ଼େ ବାଟ, ନଦୀର ପଠା, ମାଢ଼ୁଅ । [ ମାଢ଼ ।

ଭେଡ଼ାଏ—ଗ୍ରା.କ୍ରି. ବିଂ. ଥରେ,ପାହୁଣ୍ଡେ

ଭେଡ଼ାମି—ଗ୍ରା.ବି.ମେଣ୍ଢାପରି ନିର୍ବୋଧତା

ଭେଡ଼ି—ଗ୍ରା. ବି. ମେଣ୍ଢା, ଏକପ୍ରକାର ଶ୍ରେଷ୍ଠମାଛ, (ସ୍ତ୍ରୀ) ଭେଡ଼ୀ ।

ଭେଡ଼ିବା—ପ୍ରା. (କଳକତା)କ୍ରି.ଦଉଡ଼ିବା, ଧାଇଁବା ।

ଭେଡ୍ର—ପୁଂ. ବି. (ଭୀ+କ.ଡ୍ର) ମେଷ, ମେଣ୍ଢା, (ସ୍ତ୍ରୀ) ଭେଡ୍ରୀ ।

ଭେଣେଇ—ଗ୍ରା. ପୁଂ.ବି. (ଫ-ଭଗ୍ନୀପତି) ଭଉଣୀଜୋଇଁ । [ ମଞ୍ଜି ।

ଭେଣ୍ଟ—ପ୍ରା. (ବାଲେ) ବି. କଇଁଫୁଲର

ଭେଣ୍ଡା—ଗ୍ରା. ବି. ଯୁବାପୁରୁଷ, ( ସ୍ତ୍ରୀ ) ଭେଣ୍ଡୀ, ଯୁବତୀ, ( ପୁଂ.ବିଂ ) ଯୁବା, ଯୁବକ, ବଳିଷ୍ଠ ।

ଭେଣ୍ଡାବଇସିଆ—ଗ୍ରା. ବିଂ. ଅଳ୍ପାୟୁ, ନବଯୁବକ ।

ଭେଣ୍ଡି—ଗ୍ରା.ବିଂ. (ଫ-ଭିଣ୍ଡି)ଖାଦ୍ୟଫଳବିଶେଷ. (ବିଂ)ଖାଦ୍ୟଯୁକ୍ତ,ଭେଲମିଶ୍ରିତ, ନିକୃଷ୍ଟ ଧାତୁମିଶ୍ରିତ (ସୁନା) ।

ଭେଣ୍ଡିଆ—ଗ୍ରା. ପୁଂ. ବି ଓ ବିଂ. ଭେଣ୍ଡା ଦେଖ ।

ଭେଣ୍ଡିଆପଣ—ଗ୍ରା. ବି. ପ୍ରଥମ ଯୌବନରେ ଲୋକର ଦୁଷ୍ଟାମି ଆଦି ।

ଭେଣ୍ଢେଗ—ପ୍ରା. (କଳାହାଣ୍ଡି)ବି.କୋକିଶିଆଳ ।

ଭେତବ୍ୟ—କ୍ରି. ବିଂ. ( ଭୀ+ତବ୍ୟ ) ଭୟାର୍ହ, ଭୟର ଯୋଗ୍ୟ ।

ଭେତ୍ତା—ପୁଂ.ବିଂ. (ଭିଦ୍+କ.ତୃ)ଭେଦକର୍ତ୍ତା, ଛେଦକ,ବିଦାରକ,(ସ୍ତ୍ରୀ)ଭେତ୍ତ୍ରୀ

ଭେଦ—ପୁଂ. ବି. (ଭିଦ୍+ଭା.ଅ) ବିଦାରଣ,ଫାଟିବା,ବୈଷମ୍ୟ,ପ୍ରଭେଦ,ବିଭାଗ, ବିବାଦ, ଅନ୍ୟୋନ୍ୟାଭାବ, ମର୍ମ, ଗୁପ୍ତକଥା, ରହସ୍ୟ, ଦସ୍ତରେଚନ, ତରଳମଳ ନିର୍ଗମ, ପ୍ରକାର, ଉନ୍ମେଷ, ଶତ୍ରୁବଶୀକରଣ ଉପାୟ ଚତୁଷ୍ଟୟ ମଧ୍ୟରୁ ତୃତୀୟ ଉପାୟ, ଅନୈକ୍ୟ, ଛେଦନ, ବୈଲକ୍ଷଣ୍ୟ, (ଗ୍ରା.ବି) ସମ୍ବନ୍ଧ ।

ଭେଦକ—କ୍ରି. ବିଂ. (ଭିଦ୍+କ.ଅକ) ବିଦାରକ, ବିଚ୍ଛେଦକାରକ, ପୃଥକ୍‌କାରକ, ଝାଡ଼ାକାରକ, ବିରେଚକ, ବିଶିଷ୍ଟତାବ୍ୟଞ୍ଜକ ।

ଭେଦକର—ପୁଂ. ବିଂ. ଭେଦକାରକ, ଯେ ଭେଦ କରେ ।

ଭେଦକରିବା—ଗ୍ରା.କ୍ରି. ବିଦାରଣକରିବା, ଫୋଡ଼ିବା, ପୃଥକ୍ କରିବା, ମନୋମାଳିନ୍ୟ ଜନ୍ମାଇବା ।

ଭେଦକାରୀ—ପୁଂ.ବିଂ. ଭେଦକ,ପୃଥକ୍‌କାରୀ, (ସ୍ତ୍ରୀ) ଭେଦକାରିଣୀ ।

ଭେଦଜ୍ଞାନ—ବି.(ଦ୍ୱୈତ)ସ୍ୱାତନ୍ତ୍ର୍ୟବୋଧ, ଅନାତ୍ମୀୟ ଭାବ, ଏକତାର ଅଭାବ ।

ଭେଦନ—ବି. (ଭିଦ୍+ଅନ) ଭେଦକରଣ, ବିଦାରଣ, ଫୋଡ଼ିବା, ଝାଡ଼ା କରାଇବା, ଅମ୍ଳବେତସ,ଶୂକର,ହେଙ୍ଗୁ, (ବିଂ)ଭେଦକାରକ,ବିରେଚନକାରକ ।

ଭେଦନାସ୍ତ୍ର—ବି.ଭେଦନ କରିବାର ଅସ୍ତ୍ର, ଫୋଡ଼ିବାର ଅସ୍ତ୍ର ।
ଭେଦନୀୟ—କ୍ରି.ବିଂ.(ଭିଦ୍ + ମି.ଅନୀୟ) ଭେଦନଯୋଗ୍ୟ, ଭେଦନାର୍ହ ।
ଭେଦପ୍ରତ୍ୟୟ—ପୁଂ.ବି. ଜଗତର ସକଳ ପଦାର୍ଥ ଈଶ୍ୱରଙ୍କଠାରୁ ଭିନ୍ନଜ୍ଞାନ ।
ଭେଦବତା(ତେ)ଇବା—ଗ୍ରା.କ୍ରି.କୌଣସି ବ୍ୟକ୍ତିକୁ କୌଣସି ବିଷୟର ରହସ୍ୟ ଶିଖାଇଦେବା ।
ଭେଦବାଦୀ—ପୁ.ବିଂ. (ଭେଦ+ବଦ୍+ଇନ୍)ଭିନ୍ନ ମତାବଲମ୍ବୀ, ଯେଉଁମାନେ ଏକ ବ୍ରହ୍ମଠାରେ ଭିନ୍ନ ରୂପତ୍ୱ ବା ଭେଦଜ୍ଞାନ କଳ୍ପନା କରିଥାଆନ୍ତି ।
ଭେଦବାନ୍ତ—ଗ୍ରା.ବି.ଖାଡ଼ାବାନ୍ତ,ବଇଜ ।
ଭେଦଭାବ—ଗ୍ରା.ବି.ଭେଦଜ୍ଞାନ, କପଟ ।
ଭେଦରା—ପ୍ରା.(କଳାହାଣ୍ଡି)ବି. ବଳଦ଼ିବାଇଗଣ । [ ସମର୍ଥ ।
ଭେଦସହ—କ୍ରି. ବିଂ. ଭିନ୍ନ କରିବାରେ
ଭେଦା—ଗ୍ରା. ବି. ଗୁନ୍ଦା ।
ଭେଦାନ୍ତ—ଗ୍ରା. ବି. ମର୍ମ, ରହସ୍ୟ ।
ଭେଦାଭେଦ—ବି. ପ୍ରଭେଦ ଓ ଐକ୍ୟ, ବିଚ୍ଛେଦ ଓ ମିଳନ, (ଗ୍ରା.ବି)ପ୍ରଭେଦ ।
ଭେଦାଭେଦବୁଦ୍ଧି—ଗ୍ରା. ବି. ଏ ଆତ୍ମୀୟ ଓ ସେ ପର ଏହିପରି ଜ୍ଞାନ ।
ଭେଦିତ—ବିଂ. ଭିନ୍ନ, ବିଦ୍ଧ, ଦାରିତ, ଛେଦିତ, ପୃଥକ୍‌କୃତ, (ପୁଂ,ବି) ତନ୍ତ୍ରସାରୋକ୍ତ ମନ୍ତ୍ରଭେଦ ।
ଭେଦିବା—ଗ୍ରା. କ୍ରି. ବିଦାରଣ କରିବା, (ଜଳ)ପଦାର୍ଥ ମଧ୍ୟରେ ପ୍ରବେଶକରିବା, ପ୍ରବେଶ କରିବା,ଉତ୍ତମ ରୂପେ ଜାଣିବା, ମୋହିବା ।
ଭେଦିନୀ—ସ୍ତ୍ରୀ.ବିଂ. (ଭିଦ୍+ ଇନ୍+ ଈ) ଭେଦକାରିଣୀ, ତାନ୍ତ୍ରିକ ଶକ୍ତିବିଶେଷ
ଭେଦ(ଦୁ)ର—କ୍ଲୀ.ବି.(ଭିଦ୍+ଉ+ର) ବଜ୍ର ।
ଭେଦୋ—ପ୍ରା (ସମ୍ବ)ବିଂ.ମୋଟା,ସ୍ଥୂଳ
ଭେଦ୍ୟ—କ୍ରି.ବିଂ, (ଭିଦ୍+ ମି.ଯ)ଶସ୍ତ୍ରାଦି ଦ୍ୱାରା ବିଦାର୍ଯ୍ୟ, ଭେଦନୀୟ ।
ଭେନ—ବି. (ଭୃ+ଇନ) ସୂର୍ଯ୍ୟ ।

ଭେୟୁ—ବିଂ.ଭୟଯୁକ୍ତ, ଇତସ୍ତତ ପଳାୟିତ ।
ଭେର୍‌ଲହା—ପ୍ରା. (ସମ୍ବ)ବିଂ. ଅକୁଳା, ବିହ୍ୱଳିଆ, ସମ ଜଚ୍ୟୁତ (ବ୍ୟକ୍ତି) ।
ଭେର—ପୁଂ.ବି.(ଭୀ+ର) ଭେରୀ,ଦୁନ୍ଦୁଭି
ଭେରଣ୍ଡା—ଗ୍ରା. ବି. ଗବଗଛ, ଅଣ୍ଡିରି ବିଲୁଆ, ହିଂସ୍ର ଜନ୍ତୁବିଶେଷ ।
ଭେରା—ଗ୍ରା. ବି. ଭେଡ଼ା, ଘେରା,ଖଣ୍ଡେଦୂର, ପାହୁଣ୍ଡ ।
ଭେରି(ରୀ)—ସ୍ତ୍ରୀ.ବି.(ଭି+ର,ଈ) ବୃହତ୍ ଢକା, ଦୁନ୍ଦୁଭି, ପଟହ, (ଗ୍ରା.ବି) ତୁରୀ, ବଡ଼ କାହାଳୀ ।
ଭେରୁ—ଗ୍ରା.ବି. (ସଂ-ବଲ୍ଲ) ହମ୍ବାଦିବର୍ଗର ମଧ୍ୟମାକୃତି ବନ୍ୟଜନ୍ତୁ ।
ଭେରୁଣ୍ଡ—କ୍ଲୀ. ବି. ଗର୍ଭଧାରଣ, (ବିଂ) ଭୟାନକ ।
ଭେରୁଣ୍ଡା—ସ୍ତ୍ରୀ. ବି. ଦେବତାବିଶେଷ, ପକ୍ଷିଣୀବିଶେଷ । [ ବିଲୁଆ ।
ଭେରେଣ୍ଡା—ପୁଂ. ବି. ଗବଗଛ, ଅଣ୍ଡିରି-
ଭେରେଷା—ଗ୍ରା. ବିଂ. ଭଣ୍ଡ, ନିର୍ଲଜ୍ଜ ।
ଭେଲ୍‌କି—ବିଂ. କୁହୁକ ।
ଭେଳ—କ୍ରି ବିଂ. (ଭୀ+ର)ଭୀରୁ. ମୂର୍ଖ, ଡେଙ୍ଗା, ଚଞ୍ଚଳ, ଗୁନିଆଁ, (ବି) ମୁନିବିଶେଷ, ଭେଲା ।
ଭେଲ—ଗ୍ରା. ବିଂ,ନକଲି, କୃତ୍ରିମ,ଅବିଶୁଦ୍ଧ, ମିଶ୍ରିତ,(ବି)ସୁନାଆଦିରେ ମିଶିବା ନକଲ ଧାତୁ,କୃତ୍ରିମ ପଦାର୍ଥ,ଜାଲ ଟଙ୍କା
ଭେଲକ—ପୁଂ.ବି(ଭେଲା + କ)ନଦ୍ୟାଦି ତରଣସାଧନ ବସ୍ତୁ, ଭେଲା ।
ଭେଲ(ଲ)କା—ଗ୍ରା.ବିଂ. ଓଲୁ,ନିର୍ବୋଧ, ହତବୁଦ୍ଧି, ସ୍ତମ୍ଭିତ, ଗୁନିଆଁ, ଅଜ୍ଞ, ମୋହିତ, (କ୍ଲୀ.ବି)କର୍ତ୍ତବ୍ୟ ବିମୂଢ଼ତା, କୁହୁକ, ସଂଜ୍ଞାଲୋପ ।
ଭେଲକାହେବା—ଗ୍ରା.କ୍ରି. ମୁଗ୍ଧହେବା, ହତବୁଦ୍ଧି ହେବା ।
ଭେଲକିଦେଖାଇବା—ଗ୍ରା, କ୍ରି. କୁହୁକ ଦେଖାଇବା ।
ଭେଲମିଶାଇବା—ଗ୍ରା.କ୍ରି.ବିଶୁଦ୍ଧ ପଦାର୍ଥରେ ନିକୃଷ୍ଟ ପଦାର୍ଥ ମିଶାଇବା ।

ଭେଳା—ଗ୍ରା. ବି. (ସଂ-ଭେଳ) ଜଳରେ ସ୍ଥାନାନ୍ତରକୁ ନିଆଯିବା ପାଇଁ କାଠ ବାଉଁଶଆଦିର ପଟାଳ,ଗେଣ୍ଡ୍ରା, ନୌକା ସମୂହ, ନଦୀଆଦି ପାରହେବା ନିମନ୍ତେ ଭାସମାନ କାଷ୍ଠାଦି, (ଲ.ଅର୍ଥ) ଜୀବିକା, ଆଶ୍ରୟ ସ୍ଥଳ ।
ଭେଲା—ଗ୍ରା. ବି. ଗୁଡ଼ଆଦିର ମେଞ୍ଚା, ପିଣ୍ଡୁଳା, (ବିଂ) ଅସୁନ୍ଦର, ବେଙ୍ଗା ।
ଭେଲାବାନ୍ଧିବା—ଗ୍ରା.କ୍ରି(ଲ.ଅର୍ଥ)କାର୍ଯ୍ୟ ସାଧନାର୍ଥ ଉପାୟ ଅବଲମ୍ବନ କରିବା
ଭେଲାବୁଡ଼ିବା—ଗ୍ରା.ବି. (ଲ.ଅର୍ଥ) କାର୍ଯ୍ୟ ନାଶ ଘଟିବା ।
ଭେଳାଭେଳା—ଗ୍ରା. କ୍ରି. ବିଂ. ପଲପଲ, ସଙ୍ଘୀନ, ବଡ଼ ବଡ଼ ମାଡ଼ିହୋଇ ।
ଭେଲି—ଗ୍ରା. ବି. ପଞ୍ଜା, ପଲ, ଦଳ ।
ଭେଲଆ—ପ୍ରା. (ଗଞ୍ଜାମ)ବି. ସାମର୍ଥ୍ୟ ।
ଭେଲିଗୁଡ଼-ଗ୍ରା.ବି.ଭେଲିଗୁଡ଼,କାଠୁଆଗୁଡ଼
ଭେଲୁ—ପ୍ରା. (ଗଞ୍ଜାମ)ବି, ଉପାୟ ।
ଭେଲୁଆ—ଗ୍ରା. ବି. ବାଇଗଣ ।
ଭେଲଲ—ଗ୍ରା. ବିଂ. ବେହ୍ଲା, ହେଉଁ-ପାଗେଳିଆ (ବ୍ୟକ୍ତି) ।
ଭେଶ୍‌ଡ଼ିଆ—ଗ୍ରା.ପୁଂ.ବିଂ ଅଶ୍ଳୀଳ,ନିର୍ଲଜ୍ଜ
ଭେଶ—ଗ୍ରା. ବି, ବେଶ, ସାଜସଜ୍ଜା, ଚେହେରା ।
ଭେଶଡ଼(ଡ଼ା)—ଗ୍ରା. ପୁଂ. ବିଂ. କଦର୍ଯ୍ୟ, କୁତ୍ସିତ, ମଇଳିଆ, ନିର୍ଲଜ୍ଜ ଅଶ୍ଳୀଳ ।
ଭେଶର—ପ୍ରା.(ଗଞ୍ଜାମ)ବି.ବେଶର ଗୁଣ ।
ଭେଷ—ବି. (ଭେଷ୍+ଭା.ଅ) ଭୟ ।
ଭେଷଜ—କ୍ଲୀ. ବି. (ଭେଷ୍+ଜି+ଅ) ଔଷଧ, ଜଳ, ସୁଖ,ଏକପ୍ରକାର ସଉପ, (ପୁଂ,ବି) ବିଷ୍ଣୁ ।
ଭେଷଜାଗାର—କ୍ଲୀ. ବି. (୬ତତ୍ପୁ)ଔଷଧାଳୟ, ଔଷଧ ପ୍ରସ୍ତୁତ କରିବା ଗୃହ ।
ଭେଷଜାଙ୍ଗ—କ୍ଲୀ.ବି.(୬ତତ୍ପୁ) ଅନୁପାନ
ଭେଷଜ୍ୟ—କ୍ରି. ବିଂ. (ଭେଷଜ+ଯ) ସ୍ୱାସ୍ଥ୍ୟପ୍ରଦ, ଆରୋଗ୍ୟକାରୀ ।
ଭୈକ୍ଷ—କ୍ଲୀ. ବି. (ଭିକ୍ଷା+ଅ) ଭିକ୍ଷାସମୂହ,ଭିକ୍ଷା,ବିଂ.ଭିକ୍ଷାଭବ, ଭିକ୍ଷାଲବ୍ଧ
ଭୈକ୍ଷଚର୍ଯ୍ୟା—ସ୍ତ୍ରୀ.ବି. (ଭୈକ୍ଷ+ଚର୍+

ଭି.ଅ+ଆ) ଭିକ୍ଷାଚରଣ, ଭିକ୍ଷାବୃତ୍ତି ଅବଲମ୍ବନ,ଦ୍ୱାରେ ଦ୍ୱାରେ ଭିକ୍ଷା ମାଗି ବୁଲିବା ।

ଭୈକ୍ଷଜୀବିକା—ସ୍ତ୍ରୀ.ବି ଭିକ୍ଷା ଦ୍ୱାରା ଜୀବନ ଯାପନ କରିବା ।

ଭୈକ୍ଷଜୀବୀ—ବିଂ. ( ଭୈକ୍ଷ+ଜୀବିନ୍ ) ଭିକ୍ଷାଜୀବୀ, ଭିକ୍ଷୁକ, (ସ୍ତ୍ରୀ) ଜୀବିନୀ ।

ଭୈକ୍ଷଭୁକ୍—ବି.ଭିକ୍ଷାଶୀ,ଭିକ୍ଷାନ୍ନ ଭୋଜନକାରୀ ।

ଭୈକ୍ଷବ—କ୍ଳୀ. ବି. ଭିକ୍ଷୁସମୂହ ।

ଭୈକ୍ଷବୃତ୍ତି—ସ୍ତ୍ରୀ.ବି. ଭିକ୍ଷା ଦ୍ୱାରା ଜୀବିକା ନିର୍ବାହ କରିବା ।

ଭୈକ୍ଷକୁଳ—କ୍ଳୀ.ବି.ଅନ୍ନଛତ୍ରଶାଳା, ଯେଉଁ ସ୍ଥାନରେ ବହୁଲୋକଙ୍କର ଅନ୍ନଦାନ ବା ଭିକ୍ଷାଦାନ ହୁଏ ।

ଭୈକ୍ଷାନ୍ନ—କ୍ଳୀ. ବି. ଭିକ୍ଷାଲବ୍ଧ ଅନ୍ନ ।

ଭୈକ୍ଷାଶୀ—ପୁଂ. ବିଂ.(ଭୈକ୍ଷ+ଅଶ୍+ଇନ୍) ଭିକ୍ଷାଭୋଜୀ, (ସ୍ତ୍ରୀ) ଭୈକ୍ଷାଶିନୀ ।

ଭୈକ୍ଷାହାର—ବିଂ. (ବି.ସ୍ତ୍ରୀ) ଭିକ୍ଷାଲବ୍ଧ ଦ୍ରବ୍ୟୋପଜୀବୀ ।

ଭୈକ୍ଷୁକ—କ୍ଳୀ. ବି. ଭିକ୍ଷୁକମଣ୍ଡଳୀ ।

ଭୈକ୍ଷ୍ୟ—କ୍ଳୀ. ବି. (ଭୈକ୍ଷ+ଅ) ଭିକ୍ଷାସମୂହ, ଚତୁର୍ଥାଶ୍ରମର କରଣୀୟ ବୃତ୍ତିବିଶେଷ । [ ସମୂହ ।

ଭୈକ୍ଷ୍ୟକ—ବି. (ଭିକ୍ଷା+ଯ+କ) ଭିକ୍ଷା-

ଭୈମ—ବି. ବିଂ. (ଭୀମ+ଅ) ଭୀମସମ୍ବନ୍ଧୀୟ, (ବି) ରାଜା ଉଗ୍ରସେନ ।

ଭୈମସେନ(ନି)—ପୁଂ.ବି. (ଭୀମସେନ+ଇ) ଭୀମସେନଙ୍କ ପୁତ୍ର । [ ଅପତ୍ୟ ।

ଭୈମି—ପୁଂ. ବି. (ଭୀମ+ଇ) ଭୀମଙ୍କର

ଭୈମୀ—ସ୍ତ୍ରୀ. ବି.(ଭୀମ+ଅ+ଈ)ଭୀମ ଏକାଦଶୀ, ମାଘ ଶୁକ୍ଳ ଏକାଦଶୀ, ଭୀମରାଜ ନନ୍ଦିନୀ ଦମୟନ୍ତୀ । [ ଏକାଦଶୀ

ଭୈମ୍ୟେକାଦଶୀ—ସ୍ତ୍ରୀ. ବି. ମାଘ ଶୁକ୍ଳ-

ଭୈରବ—ପୁ.ବି. ଭୀରୁ+ଅ ଭୟଙ୍କର, ଦୁଃଖାର୍ତ୍ତି,ଭୀମନାଦ,(ସ୍ତ୍ରୀ)ଭୈରବୀ.(ପୁଂ. ବି)ଶିବଙ୍କର ଭୟଙ୍କର ଅଷ୍ଟମୂର୍ତ୍ତି,(ଯଥା ଅସିତାଙ୍ଗ, ରୁରୁ, ଚଣ୍ଡ, କ୍ରୋଧ, ଉନ୍ମତ୍ତ, ରୁକ୍ଷ, କୁପିତ, ସଂହାର) ମହାଦେବ, ଭୟଙ୍କର ରୂପ, ରାଗବିଶେଷ,ସଙ୍ଗୀତର ଛଅଗୋଟି ରାଗ ମଧ୍ୟରୁ ଏକତମ, ମାଳବ ରାଗ, ଭୟଙ୍କର ଶବ୍ଦ, ତାରାବତୀ ଗର୍ଭରେ ଶିବଙ୍କ ଔରସରୁ ଜାତ ପୁତ୍ର, ନାଗବିଶେଷ, ସଙ୍ଗୀତର ତାଳବିଶେଷ ।

ଭୈରବଗଙ୍ଗା—ସ୍ତ୍ରୀ. ବି. କାଳିକାପୁରାଣବର୍ଣ୍ଣିତ ଭୈରବପର୍ବତର ତୀର୍ଥ ।

ଭୈରବଘାଟି—ଗ୍ରା. ବି. ଗଙ୍ଗୋତ୍ରୀଠାରୁ ଉତ୍ତରକୁ ଯିବାର ଘାଟି ।

ଭୈରବଝମ୍ପ—ବି.ହିମାଳୟସ୍ଥ ପର୍ବତର କେଦାରନାଥତୀର୍ଥ ସମୀପବର୍ତ୍ତୀ ଗୋଟିଏ ପର୍ବତଚୂଡ଼ା ।

ଭୈରବୀ—ସ୍ତ୍ରୀ.ବି. (ଭୈରବ+ଈ)ସତୀ. ଦୁର୍ଗା, ନଦୀବିଶେଷ, ମହାବିଦ୍ୟା ମୂର୍ତ୍ତିଭେଦ, ଚାମୁଣ୍ଡା,ରାଗିଣୀବିଶେଷ,ଶୈବ ସନ୍ନ୍ୟାସିନୀ, ଦୁର୍ଗା ପୂଜାରେ କଳ୍ପିତା ଦୁର୍ଗାରୂପେ ଦ୍ୱାଦଶବର୍ଷୀୟା କନ୍ୟା ।

ଭୈରବୀଚକ୍ର—ବି.ତାନ୍ତ୍ରିକ ମତରେ ଯେଉଁ ଚକ୍ର ବା ତନ୍ତ୍ରସାଧକ ମଣ୍ଡଳୀ ମଧ୍ୟରେ ବସି ପଞ୍ଚମକାର ସାଧନ କରାଯାଏ ।

ଭୈରବୀୟ—ବି. ବିଂ. ଭୈରବୀ ସମ୍ବନ୍ଧୀୟ, ଭୟାନକ ।

ଭୈରବେ—ଗ୍ରା. କ୍ରି. ବିଂ. ଭୀଷଣରୂପେ, ଅତି ଭୟୋତ୍ପାଦକ ଉଚ୍ଚୈଃସ୍ୱରରେ ।

ଭୈରବେଶ—ପୁଂ. ବି. (୬ତତ୍) ଶିବ. ମହାଦେବ ।

ଭୈରା—ପ୍ରା. (ଗଞ୍ଜାମ) ବି. ଚୋଡ଼ମାଛ ।

ଭୈରିକ—ପୁଂ.ବିଂ. ଭେରିବାଦ୍ୟକାରୀ ।

ଭୈଷଜ—କ୍ଳୀ. ବି. (ଭିଷକ୍+ଅ)ଲାବକ ପକ୍ଷୀ, ଭେଷଜ ଔଷଧ, ଭିଷକ୍‌ପୁତ୍ର, ବୈଦ୍ୟକ ଶିଷ୍ୟ ବା ଗ୍ରନ୍ଥସମୂହ,ଚିକିତ୍ସା ।

ଭୈଷଜ୍ୟ—କ୍ଳୀ.ବି.(ଭିଷଜ୍+ଯ)ଔଷଧ, ଔଷଧର ଉପକରଣ, ଚିକିତ୍ସା, ଆୟୁର୍ବେଦୀୟ ଚିକିତ୍ସକ ।

ଭୈଷଜ୍ୟରତ୍ନାବଳୀ—ବୈଦ୍ୟକ ଚିକିତ୍ସା ଗ୍ରନ୍ଥବିଶେଷ ।

ଭୈଷଜ୍ୟୋଦ୍ୟାନ—ବି.ଯେଉଁ ବଗିଚାରେ ଔଷଧପାଇଁ ପ୍ରୟୋଜନୀୟ ବୃକ୍ଷଲତାଦି ଥାଏ ।

ଭୈଷ୍ମକୀ—ସ୍ତ୍ରୀ. ବି. (ଭୀଷ୍ମକ+ଅ+ଈ) ଭୀଷ୍ମକରାଜକନ୍ୟା, ରୁକ୍ମିଣୀ ।

ଭୋ—ଅବ୍ୟ. (ଭା+ଓ,ଓସ୍) ସମ୍ବୋଧନ ସୂଚକ ଶବ୍ଦ, ହେ, ଆହେ, ହୋ,ଭୋ, ଭୋ ଦେଖ ।

ଭୋଇ—ଗ୍ରା.ବି.ଗ୍ରାମର ଜମିଜମା ସଂକ୍ରାନ୍ତ କାଗଜାଦିର ରକ୍ଷକ, ବାରୁଇମାନଙ୍କର ବଂଶଉପାଧି, ଇଂରେଜର ସ୍ୱାଧୀନ ରାଜାଙ୍କ ସମୟରେ ଗ୍ରାମଶାସନ ଭାରପ୍ରାପ୍ତ କର୍ମଚାରୀଙ୍କ ଉପାଧି ।

ଭୋଃ—ଅବ୍ୟ. ସମ୍ବୋଧନ,ଭୋ ଦେଖ ।

ଭୋଁ—ଗ୍ରା. ଅବ୍ୟ. ଶଙ୍ଖଆଦିର ଶବ୍ଦ ।

ଭୋକ—ଗ୍ରା. ବି. କ୍ଷୁଧା ।

ଭୋକରେ ଆଉଟୁପାଉଟୁ ହେବା—ଗ୍ରା.କ୍ରି. ଅତି କ୍ଷୁଧାର୍ତ୍ତ ହେବା ।

ଭୋକଶୋଷ—ଗ୍ରା. ବି. କ୍ଷୁଧା ଓ ତୃଷ୍ଣା ।

ଭୋକା(ଖା)—ଗ୍ରା. ବିଂ. କ୍ଷୁଧିତ ।

ଭୋକିବା—ଗ୍ରା. କ୍ରି. ଭୁକିବା ଦେଖ ।

ଭୋକୀଲୋକ—ଗ୍ରା. ବିଂ. କ୍ଷୁଧାର୍ତ୍ତ ।

ଭୋକୀଶୋଷୀ—ଗ୍ରା. ବି. ଅତି କ୍ଷୁଧିତ ଓ ଗରିବ ବ୍ୟକ୍ତିଗଣ ।

ଭୋକ୍ତବ୍ୟ—ବିଂ. (ଭୁଜ୍+ତବ୍ୟ)ଭୋଜନୀୟ, କର୍ମଜନ୍ୟ ଅନୁଭବନୀୟ, ଭକ୍ଷିତବ୍ୟ, ଉପଭୁକ୍ତ ହେବାର ଯୋଗ୍ୟ ।

ଭୋକ୍ତା—ପୁଂ. ବିଂ. ( ଭୁଜ୍+କ.ତୃ ) ଭୋଜନକର୍ତ୍ତା, ସୁଖଦୁଃଖାଦିର ଭୋଗକର୍ତ୍ତା, ଅନୁଭବକାରୀ,ଖାଦକ,(ପୁଂ.ବି) ବିଷ୍ଣୁ, ଭୋଗୀବ୍ୟକ୍ତି,ପ୍ରେତବିଶେଷ,ଭର୍ତ୍ତା, (ଗ୍ରା.ବି) ବଂଶଗତ ଉପାଧିବିଶେଷ ।

ଭୋକ୍ତୃତ୍ୱ—କ୍ଳୀ.ବି.ଭୋକ୍ତାର ଭାବ ବା ଧର୍ମ ।

ଭୋଖା(ଖୋ)ଇବା—ଗ୍ରା. କ୍ରି. କ୍ଷୁଧାରେ ଆତୁର ହେବା ।

ଭୋଗ—ପୁଂ.ବି. (ଭୁଜ୍+ଅ)ସୁଖ.ଦୁଃଖ, ସୁଖଦୁଃଖାଦ୍ୟନୁଭବ, ଉପଭୋଗ, ଭୋଜନ, ଧନାଦି ଉପଭୋଗ ଜନିତ ସୁଖ, ସୁଖବିଳାସ, ଧନ,ଐଶ୍ୱର୍ଯ୍ୟ,ଅଧିକାର, ଦେବତାଙ୍କ ଉଦ୍ଦେଶ୍ୟରେ ନିବେଦିତ ଭୋଜ୍ୟଦ୍ରବ୍ୟ, ନୈବେଦ୍ୟ, ଭୋଜ୍ୟବସ୍ତୁ, ସାପ, ସର୍ପଫଣା, ସାପର

ଦେହ, ବେଶ୍ୟାର ବେତନ, ପାଳନ, ଦେବ, ସମସ୍ତ ଯାପନ,ରୋଗୀର ଶରୀରରେ ରୋଗର ସ୍ଥିତିକାଳ,ସ୍ତ୍ରୀସମ୍ଭୋଗ, ରମଣ, ମାନପରିମାଣ, ଗୃହ, ପ୍ରାରବ୍ଧ ପୂର୍ବଜନ୍ମାର୍ଜିତ ପାପପୁଣ୍ୟର ଫଳ, ସୈନ୍ୟବ୍ୟୂହବିଶେଷ, ସମ୍ପତ୍ତିରେ ଅଧିକାର,ଦଖଲ, ଭଡ଼ା,କେରେୟା,ଗ୍ରହର ଏକରାଶିରେ ରହିବା ସମୟ,ନଗର ବା ପ୍ରଦେଶ, ଭୋଜନ । [ କାଳୀନ ।

ଭୋଗକ—ବି॰ (ଭୋଗ+କ) ଭୋଗ-

ଭୋଗକରିବା—ଗ୍ରା କ୍ରି. ଉପଭୋଗକରିବା. ରମଣ କରିବା, ଅନୁଭବରେ ଆଣିବା ନୈବେଦ୍ୟ ଅର୍ପଣ କରିବା, ସହିବା ।

ଭୋଗଗୁଚ୍ଛ—କ୍ଲୀ. ବି. ସମ୍ଭୋଗ ନିମିତ୍ତ ବେଶ୍ୟାକୁ ଦେବା ଧନ ।

ଭୋଗଗୃହ—କ୍ଲୀ. ବି. ବାସଗୃହ, ଅନ୍ତଃପୁର,ଦେବତାଙ୍କୁ ଭୋଗଦେବାର ଗୃହ

ଭୋଗତୃଷ୍ଣା—ବି. (୬ତତ୍)ଭୋଗଲାଲସା, ସୁଖଲାଭର ବାସନା ।

ଭୋଗଦ—ସ୍ତ୍ରୀ. ବି. କ୍ରିଗଣଭେଦ ।

ଭୋଗଦେବା—ଗ୍ରା. କ୍ରି. ଦେବତାଙ୍କୁ ନୈବେଦ୍ୟ ଦେବା ।

ଭୋଗଦେହ—ପୁଂ. ବି. ( ୬ତତ୍ ) ସ୍ୱର୍ଗ ବା ନରକଭୋଗ ନିମିତ୍ତ ସୂକ୍ଷ୍ମଦେହ ।

ଭୋଗଧର—ବି. (ଭୋଗ+ଧୃ+କ.ଅ) ଭୋଗୀ, ସର୍ପ ।

ଭୋଗପତି—ପୁଂ. ବି. (୬ତତ୍) କୌଣସି ନଗରର ବା ପ୍ରଦେଶର ଶାସନକର୍ତ୍ତା ।

ଭୋଗପାତ୍ର—କ୍ଲୀ. ବି. ଯେଉଁ ପାତ୍ରରେ ଦେବତାଙ୍କର ନୈବେଦ୍ୟାଦି ରଖାଯାଏ

ଭୋଗପାଳ—ପୁଂ. ବି. (ଭୋଗ+ପାଳ+ କ.ଅ) ସହିସ, ଅଶ୍ୱରକ୍ଷକ ।

ଭୋଗପିପାସା—ବି. (୬ତତ୍)ଭୋଗତୃଷ୍ଣା, ସୁଖଲାଭର ଇଚ୍ଛା ।

ଭୋଗପିପାସୁ—ବି॰.ସାଂସାରିକ ସୁଖଭୋଗ ନିମନ୍ତେ ଇଚ୍ଛୁକ ।

ଭୋଗପିଶାଚିକା—ସ୍ତ୍ରୀ. ବି. କ୍ଷୁଧା ।

ଭୋଗଭୂମି—ସ୍ତ୍ରୀ.ବି. ସୁଖଭୋଗ କରିବାର ସ୍ଥାନ, ସ୍ୱର୍ଗ, ଭାରତାନ୍ତର ପ୍ରଦେଶ ।

ଭୋଗଭୃତକ—ପୁଂ. ବି॰. ଯେଉଁମାନେ କେବଳ ବେତନ ପାଇଁ କର୍ମ କରନ୍ତି ।

ଭୋଗମୂର୍ତ୍ତି—ବି.ବଡ଼ ବଡ଼ ଦେବତାଙ୍କର ଚଳନ୍ତି ପ୍ରତିମା ।

ଭୋଗମୋକ୍ଷପ୍ରଦା—ସ୍ତ୍ରୀ.ବି.ସୁଖ ଓ ମୋକ୍ଷପ୍ରଦାୟିନୀ ଗଙ୍ଗା, ଭୈରବୀ ଭେଦ ।

ଭୋଗମଣ୍ଡପ—କ୍ଲୀ. ବି. ଦେବାଦିଙ୍କର ଉପଭୋଗ୍ୟ ଦ୍ରବ୍ୟାଦି ପ୍ରସ୍ତୁତ କରଣୋପଯୋଗୀ ସ୍ଥାନ, ଭୋଗରନ୍ଧନଶାଳା, ପୁରୁଷୋତ୍ତମ କ୍ଷେତ୍ରରେ ଜଗନ୍ନାଥ ମନ୍ଦିରସ୍ଥ ଭୋଗହେବାର ମଣ୍ଡପବିଶେଷ

ଭୋଗରି—ଗ୍ରା. ବି. ଗ୍ରାମରକ୍ଷକ ରାଜକର୍ମଚାରୀ ବା ସରବରାକାରର ଚାଷଜମି ।

ଭୋଗରାଇ—ଗ୍ରା. ବି. ବାଲେଶ୍ୱର ଜିଲ୍ଲା ଦକ୍ଷିଣସ୍ଥ ସୁବର୍ଣ୍ଣରେଖା ନଦୀ ମୁହାଣବର୍ତ୍ତୀ ଗୋଟିଏ ସୁବୃହତ୍ ବନ୍ଧ ।

ଭୋଗରାଗ-ଗ୍ରାବି.ଠାକୁରଙ୍କୁ ନୈବେଦ୍ୟାଦି ଦ୍ୱାରା ପୂଜନ, (ସଂ॰ବି) ଭୋଗବିଳାସ ଦେଖ ।

ଭୋଗଲଗାଇବା—ଗ୍ରା. କ୍ରି. ଦେବତାଙ୍କୁ ମନ୍ତ୍ରୋଚ୍ଚାରଣ ପୂର୍ବକ ନୈବେଦ୍ୟ ଅର୍ପଣ କରିବା ।

ଭୋଗଲାଭ—ପୁଂ.ବି. ସୁଖଭୋଗାଦି ପ୍ରାପ୍ତି

ଭୋଗଲାଲସା-ବି.୬ତତ୍;ଭୋଗତୃଷ୍ଣା ଦେଖ

ଭୋଗବନ୍ଟା—ପ୍ରା. (ଗଞ୍ଜାମ) ବି. ବିଷୟାଦିରେ ବିଶେଷ ଜ୍ଞାନ, ଅଭିଜ୍ଞତା, ବୈଷୟିକ ବିବରଣ ।

ଭୋଗବତୀ—ସ୍ତ୍ରୀ. ବି. (ଭୋଗ + ବତ୍ + ଈ) ପାତାଳଗଙ୍ଗା, ନାଗପୁରୀ, ନାଗପତ୍ନୀ, ନଦୀଭେଦ, ଗଙ୍ଗା, ତୀର୍ଥଭେଦ, କୁମାରାନୁଚର ମାତୃଭେଦ, କୃଷ୍ଣପକ୍ଷର ଦ୍ୱିତୀୟା ତିଥିର ରାତ୍ରି ।

ଭୋଗବନ୍ଧକ—ଗ୍ରା. ବି. ଦଖଲବନ୍ଧକ, ଫଳବନ୍ଧକ । [ ସମୁଚ୍ଚୟ ।

ଭୋଗବସ୍ତୁ—କ୍ଲୀ. ବି. ଉପଭୋଗ୍ୟ ଦ୍ରବ୍ୟ-

ଭୋଗବାନ୍—ପୁଂ. ବି. (ଭୋଗ+ବତ୍) ସର୍ପ, ନାଟ୍ୟ, ଗାନ, ପର୍ବତ, ( ବି॰ ) ଭୋଗୀ, ଭୋଗବିଶିଷ୍ଟ, ଫଣାଯୁକ୍ତ, କୁଣ୍ଡଳଯୁକ୍ତ, (ସ୍ତ୍ରୀ) ଭୋଗବତୀ ।

ଭୋଗବାସନା—ସ୍ତ୍ରୀ. ବି. (୬ତତ୍) ସୁଖଲାଭର ଇଚ୍ଛା, ଭୋଗାଭିଳାଷ ।

ଭୋଗବିଳାସ—ପୁଂ. ବି. (କ.ଧା) ଐହିକ ସୁଖଭୋଗ ଓ ଆନନ୍ଦ,ଆମୋଦପ୍ରମୋଦ

ଭୋଗବିଳାସୀ—ପୁଂ. ବି॰. ସୁଖଭୋଗଜନିତ ସ୍ଫୂର୍ତ୍ତିଯୁକ୍ତ, ଇନ୍ଦ୍ରିୟସୁଖକର ସାମଗ୍ରୀ ସମ୍ଭୋଗରେ ଅତ୍ୟାସକ୍ତ,(ସ୍ତ୍ରୀ) ବିଳାସିନୀ ।

ଭୋଗସଦ୍ମ—କ୍ଲୀ. ବି. (ଭୋଗ+ସଦ୍ମନ୍) ବାସଗୃହ, ଅନ୍ତଃପୁର ।

ଭୋଗସାଧନ—ବି. ଭୋଗପାଇଁ ସାଧନା, ଭୋଗର ଉପାୟ ବା ଉପାଦାନ ।

ଭୋଗସ୍ଥାନ—କ୍ଲୀ. ବି. ଭୋଗଭୂମି, ସୁଖଦୁଃଖାଦି ଭୋଗାତ୍ମକ ଶରୀର, ଇନ୍ଦ୍ରିୟସେବାର ସ୍ଥାନ, ଅନ୍ତଃପୁର ।

ଭୋଗହେବା—ଗ୍ରା. କ୍ରି. (ସମ୍ପତ୍ତି) ଉପଭୁକ୍ତ ହେବା, (ଦୁଃଖସୁଖାଦି) ଅନୁଭବରେ ଆଣିବା,(ସମୟ) ଅତିବାହିତ ହେବା ।

ଭୋଗା—ଗ୍ରା. ବି. ଧପ୍ପା, ପ୍ରତାରଣା, (ପ୍ରା. ଆଠମଲ୍ଲିକ) ଗୃହଲକ୍ଷ୍ମୀଆ ।

ଭୋଗା(ଗୋ)ଇ—ଗ୍ରା. ବି. ଶ୍ଳେଷ ବାଉଁଶିଆ, ଟୋକେଇ, ପାଚିଆ ।

ଭୋଗା(ଗୋ)ଇବା—ଗ୍ରା. କ୍ରି. କଷ୍ଟଭୋଗ କରାଇବା, କଷ୍ଟଦେବା,ଉଦ୍ଦିଷ୍ଟସ୍ଥାନରେ ପହଞ୍ଚିବା ।

ଭୋଗାଧାର—ବି. ଭୋଗସ୍ଥାନ ଦେଖ ।

ଭୋଗାଧି—ବି. ଭୋଗବନ୍ଧକ, ଦଖଲବନ୍ଧକ ।

ଭୋଗାନ୍ତ—ବି. ୬ତତ୍; ଭୋଗର ଶେଷ

ଭୋଗାନ୍ତର—ବି. ଅନ୍ୟପ୍ରକାରର ଭୋଗ

ଭୋଗାଭୋଗ—ବି. ଭୋଗ ଓ ଭୋଗର ଅଭାବ ।

ଭୋଗାୟତନ—ବି. (୬ତତ୍)ସ୍ଥୂଳଦେହ, ସୁଖଦୁଃଖାଦି ଭୋଗ କରିବା ଦେହ ।

ଭୋଗାର୍ଥୀ—ପୁଂ.ବି॰. (ଭୋଗ+ଅର୍ଥ+ ଇନ୍) ଭୋଗବିଳାସୀ, ଭୋଗପ୍ରାର୍ଥୀ, (ସ୍ତ୍ରୀ) ଭୋଗାର୍ଥିନୀ ।

ଭୋଗାର୍ଦ୍ଧ—କ୍ଲୀ. ବି. ( ଭୋଗ+ଅର୍ଦ୍ଧ )

ଧାନ୍ୟ, ସମ୍ପତ୍ତି, (ବିଂ-୬ତତ୍) ଭୋଗର ଉପଯୋଗୀ, (ସ୍ତ୍ରୀ) ଭୋଗାର୍ହା ।

**ଭୋଗାବଳୀ**—ସ୍ତ୍ରୀ.ବି. ସ୍ତୁତିପାଠକର ସ୍ତବ, ନାଗମାନଙ୍କର ବାସସ୍ଥାନ, ସ୍ତୁତିପାଠକ ଭୋଗଶ୍ରେଣୀ, ପ୍ରଶଂସା, ସ୍ତୁତି ।

**ଭୋଗାବାସ**—ପୁଂ. ବି. (୬ତତ୍) ବାସଗୃହ, ଅନ୍ତଃପୁର ।

**ଭୋଗାସକ୍ତ**--ପୁଂ.ବିଂ. ୭ତତ୍; ଐହିକ ସୁଖଭୋଗରେ ଅନୁରକ୍ତ,(ସ୍ତ୍ରୀ)ଭୋଗାସକ୍ତା ।

**ଭୋଗାସକ୍ତି**—ବି. ଐହିକ ସୁଖଭୋଗପ୍ରତି ଆସକ୍ତି ।

**ଭୋଗିକ**—ପୁଂ. ବି. ( ଭୋଗ+ଇକ ) ଅଶ୍ୱରକ୍ଷକ, ଘୋଡ଼ାସଇସ । [ ବାସୁ ।

**ଭୋଗିକାନ୍ତ**—ପୁଂ.ବି.(ଭୋଗିନ୍ + କାନ୍ତ)

**ଭୋଗିଗନ୍ଧିକା**—ସ୍ତ୍ରୀ. ବି. ସର୍ପଗନ୍ଧା ବୃକ୍ଷ, ଲଘୁଗନ୍ଧୁଷ୍ଟ ବୃକ୍ଷ ।

**ଭୋଗିନୀ**—ସ୍ତ୍ରୀ.ବି. ମହିଷୀ ବ୍ୟତୀତ ରାଜାଙ୍କର ଅନ୍ୟ ସ୍ତ୍ରୀ,ରାଜାଙ୍କର ରକ୍ଷିତା ସ୍ତ୍ରୀ ।

**ଭୋଗିଭୁକ୍**—ପୁଂ. ବି. (ଭୋଗୀ + ଭୁକ୍ + କ୍ୱିପ୍) ମୟୂର ।

**ଭୋଗିବଲ୍ଲଭ**—କ୍ଲୀ.ବି. (୬ତତ୍) ଚନ୍ଦନ ।

**ଭୋଗିବା**—ଗ୍ରା. କ୍ରି. ସୁଖଦୁଃଖ ଭୋଗ କରିବା, ଅନୁଭବରେ ଆଣିବା ।

**ଭୋଗୀ**--ପୁଂ.ବିଂ.(ଭୋଗ+ଇନ୍)ଭୋଗକାରୀ, ଭକ୍ଷକ, ସୁଖୀ, ଭୋଗାସକ୍ତ, ଧନୀ, ଫଣାଯୁକ୍ତ (ସର୍ପ), ଦଖଲକାର, ଅନୁଭବକାରୀ, ଯହିଁରେ ବାଙ୍କମାନ ଅଛି, (ବି) ଫଣୀ, ସର୍ପ, ରଜା, ଗ୍ରାମାଧ୍ୟକ୍ଷ, ନାପିତ, ଅଏସି ଲୋକ, ଇନ୍ଦ୍ରିୟବିଳାସୀ ବ୍ୟକ୍ତି,( ତେଲୁଗୁ ) ମକର ସଂକ୍ରାନ୍ତିର ପୂର୍ବଦିବସ ରାତିରେ ହେବା ଅଗ୍ନ୍ୟୁତ୍ସବ ।

**ଭୋଗୀ**—ପୁଂ. ବି. (୬ତତ୍) ନାଗରାଜା, ଅନନ୍ତ ଦେବ,ପତଞ୍ଜଳିଙ୍କର ନାମାନ୍ତର

**ଭୋଗୀନ**—ପୁଂ.ବି. ଇନ୍ଦ୍ରିୟ ସୁଖନିରତ ବା ଉଦରସର୍ବସ୍ୱ ବ୍ୟକ୍ତି,ପେଟୁ, ରଜା ବା ରାଜପୁତ୍ର,ଗ୍ରାମପତି,ନାପିତ,କୌଣସି ବିଶିଷ୍ଟ ବିଷୟରେ ବ୍ୟୟ ନିମିତ୍ତ ସଞ୍ଚୟକାରୀ । [ନାଗରାଜା ।

**ଭୋଗୀଶ**— ପୁଂ, ବି, ଅନନ୍ତଦେବ,

**ଭୋଗୁଆ** —ଗ୍ରା.ବିଂ. ଗେରୁମାଟିରେ ରଞ୍ଜିତ (ବସ୍ତ୍ର) । [ ଓ ସମ୍ପତ୍ତି ।

**ଭୋଗୈଶ୍ୱର୍ଯ୍ୟ**—ବି. (ଦ୍ୱନ୍ଦ୍ୱ) ସୁଖ ଭୋଗ

**ଭୋଗ୍ୟ**—କ୍ଲୀ.ବି. (ଭୁଜ୍+ର୍ମି.ଯ) ଧନରତ୍ନାଦି ଉପଭୋଗ,ଶସ୍ୟ, ଉପଭୋଗ୍ୟ ବସ୍ତୁ, ( ବିଂ ) ଭୋଜ୍ୟ, ଉପଭୋଗ କରୁଥିବାର ଯୋଗ୍ୟ ।

**ଭୋଗ୍ୟବସ୍ତୁ**—ବି.ମନୁଷ୍ୟର ଯାହା ଭୋଗଯୋଗ୍ୟ ପଦାର୍ଥ (ଯଥା—ଭୂମି ଗୌ ଦାସଦାସୀ ଚ ବସନ ଭୂଷଣାସନେ; ତୁରଗୋ ମନ୍ଦିରଷୋ ବାମା ଭୋଗ୍ୟ ବସ୍ତୁ ଦ୍ୱିପଞ୍ଚକଂ ।

**ଭୋଗ୍ୟା**—ସ୍ତ୍ରୀ.ବି.(ଭୋଗ୍ୟ+ଆ)ବେଶ୍ୟା, ଭୋଗର ଯୋଗ୍ୟ ଭୂମି ।

**ଭୋଜ**—ପୁଂ. ବି. (ଭୁଜ୍+କ.ଅ) ଯଦୁବଂଶ, ମାଳବ ଦେଶର ପ୍ରାଚୀନ ରାଜଧାନୀ, ଧାରାନଗରୀ, ଭୋଜପୁରୀ,ଭୋଜନଗରୀରର ରାଜାଙ୍କ ନାମ, ଭୋଜରାଜ, ବିଦର୍ଭ ଦେଶର ରାଜା, ଭୋଜବିଦ୍ୟା, କୁହୁକ, ଶାନ୍ତିଦେବୀଙ୍କ ଗର୍ଭଜାତ ବସୁଦେବଙ୍କପୁତ୍ର, ଶ୍ରୀକୃଷ୍ଣଙ୍କ ସଖା ଗୋପବାଳକ ବିଶେଷ, କାନ୍ୟକୁବ୍ଜର ରାଜା, ଆଧୁନିକ ବିହାର ପ୍ରଦେଶସ୍ଥ ଭୋଜପୁର

**ଭୋଜକ**—ପୁଂ.ବିଂ.(ଭୁଜ୍ + ଣିଚ୍ + କ) ଭୋଜନକାରୀ, ଭକ୍ଷକ; ଖାଦକ, (ସ୍ତ୍ରୀ) ଭୋଜିକା, (ବି) ଜୈନ ପୁରୋହିତ, ବିପ୍ର ବିଶେଷ ।

**ଭୋଜକଟ**—ପୁଂ. ବି. ( ଭୋଜ+କଟ ଅଧି.ଅ) ଭୋଜଦେଶ, ରୁକ୍ମନିର୍ମିତପୁର. ଗୋଟିଏ ପ୍ରାଚୀନ ଦେଶ । [ ଭବ ।

**ଭୋଜକଟୀୟ**—ବିଂ.ଭୋଜକଟ ଦେଶୋ-

**ଭୋଜକବ୍ରାହ୍ମଣ**—ଭାରତାଗତ ଶାକଦ୍ୱୀପୀୟ ବ୍ରାହ୍ମଣ ବିଶେଷ ।

**ଭୋଜଦୁହିତା**—ସ୍ତ୍ରୀ. ବି. ଭୋଜପୁତ୍ରୀ, ଭୋଜକନ୍ୟା ।

**ଭୋଜଦେବ**—ପୁଂ.ବି.ଭୋଜରାଜ, କଚ୍ଛର ଜଣେ ରଜା ।

**ଭୋଜନ**—କ୍ଲୀ. ବି. ( ଭୁଜ୍+ଭା.ଅନ ) ଭକ୍ଷଣ, ଖାଇବା, (ର୍ମି.ଅନ)ଭକ୍ଷଦ୍ରବ୍ୟ, ଖାଦ୍ୟ, (ଅଧି.ଅନ) ଭୋଜି ।

**ଭୋଜନକରିବା**—ଗ୍ରା. କ୍ରି. ଖାଇବା ।

**ଭୋଜନକାଳ**—ପୁଂ.ବି. ଭୋଜନସମୟ, ଖାଇବା ବେଳ ।

**ଭୋଜନଗର**—କ୍ଲୀ. ବି. ଭୋଜଦେଶସ୍ଥିତ ନଗର, ଧାରାପୁର ।

**ଭୋଜନତ୍ୟାଗ**—ପୁଂ.ବି.ଭୋଜନ ପରିତ୍ୟାଗ, ଭୋଜନ ଗ୍ରୁଡ଼ି ଉଠିଯିବା ।

**ଭୋଜନଦକ୍ଷିଣା**—ବି. ବ୍ରାହ୍ମଣଙ୍କୁ ଭୋଜନ ଦିଆଯିବା ପରେ ଦିଆଯିବା ଅର୍ଥକ ଉପଢୌକନ ।

**ଭୋଜନଦେବା**—ଗ୍ରା. କ୍ରି. ଅନ୍ୟବ୍ୟକ୍ତିକୁ ଖାଇବାକୁ ଦେବା ।

**ଭୋଜନପଟୁ**—ବି. ଖାଇବା ବିଷୟରେ ସିଦ୍ଧହସ୍ତ, ପେଟୁ, ଉଦରମ୍ଭରୀ ।

**ଭୋଜନପାତ୍ର**—କ୍ଲୀ.ବି. ଯେଉଁ ପାତ୍ରରେ ଭୋଜନ କରିବାକୁ ହୁଏ ।

**ଭୋଜନଭାଜନ**—ଗ୍ରା.ବି.ଖାଇବା କିମ୍ବା, ଖିଆପିଆ । [ ବାସନ ।

**ଭୋଜନଭାଣ୍ଡ**—କ୍ଲୀ. ବି. ଭୋଜନପାତ୍ର,

**ଭୋଜନବେଳା**—ସ୍ତ୍ରୀ. ବି.ଖାଇବାବେଳ, ଖାଇବାର ନିରୂପିତ ସମୟ ।

**ଭୋଜନବ୍ୟଗ୍ର**—ପୁଂ.ବି. ଖାଇବା ନିମିତ୍ତ ବ୍ୟତିବ୍ୟସ୍ତ । [ ସାମର୍ଥ୍ୟ ।

**ଭୋଜନଶକ୍ତି**—ବି. ଖାଇବା ବିଷୟରେ

**ଭୋଜନଶାଳା**—ବି. ଭୋଜନ କରିବା ନିମିତ୍ତ ନିର୍ଦ୍ଦିଷ୍ଟ ସ୍ୱତନ୍ତ୍ର ଗୃହ,ହୋଟେଲ ।

**ଭୋଜନସାମଗ୍ରୀ**—ବି.ପ୍ରସ୍ତୁତ ଖାଦ୍ୟସାମଗ୍ରୀ

**ଭୋଜନସ୍ପୃହା**—ବି. ଖାଇବା ନିମନ୍ତେ ଉତ୍କଣ୍ଠା, ଖାଦ୍ୟରେ ରୁଚି, କ୍ଷୁଧା ।

**ଭୋଜନାକାଙ୍କ୍ଷା**—ବି. ଭୋଜନେଚ୍ଛା, ଭୋକ, କ୍ଷୁଧା ।

**ଭୋଜନାକାଙ୍କ୍ଷୀ**—ପୁଂ, ବିଂ. ଭୋଜନ କରିବାକୁ ଇଚ୍ଛୁକ, (ସ୍ତ୍ରୀ) କାଙ୍କ୍ଷିଣୀ ।

**ଭୋଜନାଗାର**—ବି. (୬ତତ୍) ଭୋଜନଶାଳା ଦେଖ ।

**ଭୋଜନାଚ୍ଛାଦନ**—ବି. (ଦ୍ୱନ୍ଦ୍ୱ) ଖୋରାକ ପୋଷାକ, ଖାଦ୍ୟ ଓ ବସ୍ତ୍ର ।

**ଭୋଜନାଧିକାର**—ପୁଂ.ବି.ଖାଇବା ବିଷ-

ବିଷୟରେ ଅଧିକାର । [ ଉଚ୍ଛିଷ୍ଟ ।
ଭୋଜନାବଶିଷ୍ଟ—ବି°. ଭୁକ୍ତାବଶିଷ୍ଟ,
ଭୋଜନାବଶେଷ—ଭୁକ୍ତାବଶେଷ ।
ଭୋଜନାର୍ଥୀ—ପୁଂ.ବି°.ଭୋଜନକରିବା ଉଦ୍ଦେଶ୍ୟରେ ଉପସ୍ଥିତ,ଭୋଜନପ୍ରାର୍ଥୀ. ଭୋଜନାକାଂକ୍ଷୀ ।
ଭୋଜନୀୟ—ବି°. ( ଭୁଜ୍ + ମଂ.ଅନୀୟ) ଭୋଜନଯୋଗ୍ୟ, ଖାଇବା ଯୋଗ୍ୟ ।
ଭୋଜନୃପତି—ପୁଂ. ବି. ଭୋଜଦେବ ।
ଭୋଜନେଚ୍ଛା—ବି. ଭୋକ, ବୁଭୁକ୍ଷା. ଖାଇବାର ଇଚ୍ଛା ।
ଭୋଜପତି—ପୁଂ. ବି. କଂସଦେବ,ଭୋଜ ଦେଶର ରାଜା । [ ପତ୍ର ।
ଭୋଜପତ୍ର—ଗ୍ରା.ବି.ଭୂର୍ଜ ବଲ୍କଲ, ଭୂର୍ଜ-
ଭୋଜପୁତ୍ରୀ—ସ୍ତ୍ରୀ. ବି. ଭୋଜଦୁହିତା ।
ଭୋଜପୁର—ଗ୍ରା. ବି. ଭୋଜରାଜାଙ୍କ ରାଜଧାନୀ, ଧାରାନଗରୀ ।
ଭୋଜପୁରୀ—ଗ୍ରା. ବି. ବିହାରୀ ଭାଷାର ଏକ ବିକୃତ ଭାଷା,(ବି°) ଭୋଜପୁର-ସମ୍ବନ୍ଧୀୟ । [ ଗ୍ରନ୍ଥବିଶେଷ ।
ଭୋଜପ୍ରବନ୍ଧ—ବି.ଭୋଜରାଜାଙ୍କ ସମ୍ବନ୍ଧୀୟ
ଭୋଜୟିତା—ପୁଂ.ବି°. (ଭୋଜ+ ଣିଚ୍ + କ.ତୃ) ଅନ୍ନଦାତା, ଯେ ଭୋଜନ କରାଏ ବା ଖୁଆଏ, (ସ୍ତ୍ରୀ) ଭୋଜୟିତ୍ରୀ ।
ଭୋଜୟିତବ୍ୟ—ବି°. ଭୋଜନ କରାଇବାର ଯୋଗ୍ୟ ।
ଭୋଜରାଜ—ପୁଂ. ବି. ମାଳବଦେଶର ଧାରାନଗରାଧୀଶ୍ୱର । [ ନ୍ଧୀୟ ।
ଭୋଜରାଜୀୟ—ବି°. ଭୋଜରାଜ ସମ୍ବ-
ଭୋଜବର୍ମା—ବି. କାଲଞ୍ଜରର ଚନ୍ଦେଲ-ବଂଶୀୟ ଜଣେ ସୁପ୍ରସିଦ୍ଧ ରାଜା ।
ଭୋଜବାଜି—ଗ୍ରା.ବି.ଐନ୍ଦ୍ରଜାଲିକ କ୍ରୀଡ଼ା, ବାଜିକରି, ମାୟା । [ ଜାଦୁକର ।
ଭୋଜବିଦ୍ୟା—ବି. ଇନ୍ଦ୍ରଜାଲ ବିଦ୍ୟା,
ଭୋଜା—ଗ୍ରା.ବି. ଭୋଜ୍ୟଦ୍ରବ୍ୟ, ଖାଦ୍ୟ, ମୁଢ଼ି ଉଖୁଡ଼ାଆଦି ।
ଭୋଜାଧିପ—ପୁଂ.ବି. କଂସରାଜା ।
ଭୋଜି—ଗ୍ରା.ବି. ବହୁଲୋକଙ୍କୁ ଡାଆସିବା ଭୋଜନ ।
ଭୋଜିଦେବା—ଗ୍ରା. କ୍ରି. ବହୁଲୋକଙ୍କୁ ନିମନ୍ତ୍ରଣ କରି ଭୋଜନ ଦେବା ।
ଭୋଜିବା—ଗ୍ରା.(ପଦ୍ୟ)କ୍ରି. ଖାଇବା ।
ଭୋଜିଭାତ—ଗ୍ରା. ବି. ଭୋଜି ନିମନ୍ତେ ପ୍ରସ୍ତୁତ ଅନ୍ନ ବା ଖାଦ୍ୟ ।
ଭୋଜୀ—ପୁଂ. ବି. ( ଭୁଜ୍+ଇନ୍ ) ଯେ ଖାଏ, ଭୋଜନକର୍ତ୍ତା, (ସ୍ତ୍ରୀ) ଭୋଜିନୀ ।
ଭୋଜ୍ୟ—ତ୍ରି. ବି°. ( ଭୁଜ୍+ମଂ.ଯ ) ଭୋଜନଯୋଗ୍ୟ, ଭୋଜବଂଶୀୟ.(ବି) ଖାଦ୍ୟବସ୍ତୁ, ଲଭ, ପିତୃପୁରୁଷଙ୍କୁ ଅନ୍ନ-ରୂପେ ଦେୟ ଭୋଜ୍ୟବସ୍ତୁ ।
ଭୋଜ୍ୟକାଳ—ବି. ଭୋଜ୍ୟଦାନର ସମୟ. ଖାଇବାର ନିର୍ଦ୍ଧାରିତ ସମୟ ।
ଭୋଜ୍ୟମୟ—ତ୍ରି.ବି°. ଖାଦ୍ୟପୂର୍ଣ୍ଣ ।
ଭୋଜ୍ୟସମ୍ଭବ—ପୁଂ.ବି. ଶରୀରସ୍ଥିତ ରସ ଧାତୁ,ଭୋଜ୍ୟଜାତ ଶରୀରସ୍ଥ ରସଧାତୁ ।
ଭୋଜ୍ୟା—ସ୍ତ୍ରୀ. ବି°. ଭୋଜନଯୋଗ୍ୟା, (ବି) ଭୋଜବଂଶୀୟ ରାଜକନ୍ୟା ।
ଭୋଜ୍ୟାତ୍ମକ—ବି°. (ଭୋଜ୍ୟ+ଆତ୍ମନ୍ + କ) ଭୋଜ୍ୟ ବା ଖାଦ୍ୟଦ୍ରବ୍ୟସମ୍ବ-ନ୍ଧୀୟ, ଭୋଜ୍ୟୋତ୍ସର୍ଗସମ୍ବନ୍ଧୀୟ ।
ଭୋଜ୍ୟାନ୍ନ—ବି. (କ.ଧା) ଭୋଜନର ଉପଯୋଗୀ ଅନ୍ନ ।
ଭୋଜ୍ୟୋତ୍ସର୍ଗ—ବି. ଶ୍ରାଦ୍ଧ ଦିବସରେ ବ୍ରାହ୍ମଣଙ୍କୁ ଅରନ୍ଧା ଖାଦ୍ୟସାମଗ୍ରୀ ଉତ୍ସର୍ଗ କରିବା ରୂପ କର୍ମ ।
ଭୋଟ୍—ଯା.ବି. କୌଣସି ବିଶିଷ୍ଟ କାର୍ଯ୍ୟ ପାଇଁ ଆପଣା ମଧ୍ୟରୁ ବ୍ୟକ୍ତିବିଶେଷଙ୍କୁ ନିର୍ବାଚନ କରିବାପାଇଁ ଦଳସ୍ଥ ପ୍ରତ୍ୟେକ ବ୍ୟକ୍ତିଙ୍କର ମତଦେବା ।
ଭୋଟ—ପୁଂ.ବି. ଦେଶଭେଦ, ଆଧୁନିକ ତିବତ ଦେଶ, ତଦ୍ଦେଶବାସୀ ବ୍ୟକ୍ତି ।
ଭୋଟଦେଶ—ପୁଂ.ବି.ହିମାଳୟର ଉତ୍ତର ସ୍ଥିତ ଦେଶଭେଦ ।
ଭୋଟାଙ୍ଗ—ପୁଂ.ବି. ( ଭୋଟ+ଅଙ୍ଗ ) ଭୋଟାନଦେଶ, ନେପାଳ ନିକଟସ୍ଥ ସ୍ୱାଧୀନ ରାଜ୍ୟ ।
ଭୋଟାନ୍—ଗ୍ରା.ବି. ଭୋଟାଙ୍ଗ ଦେଖ ।
ଭୋଟିଆ—ଗ୍ରା.ବି°. ମୋଟା, ଭୋଟାନ୍ ଦେଶୀୟ, (ବି) ଭୋଟାନ ଦେଶବାସୀ ଜାତିବିଶେଷ, ଏହି ଜାତିର କଥିତ ଭାଷା ।
ଭୋଟୀ—ଗ୍ରା. ସ୍ତ୍ରୀ ବି°. ପ୍ରସ୍ତୁତଦେହା, ଅନୁନ୍ନତା (ଗାଈ) । [ ଦେଶୀୟ ।
ଭୋଟୀୟ—ବି° (ଭୋଟ+ଈୟ)ଭୋଟ-
ଭୋଟ୍ୟା—ବି. ସିନ୍ଧୁଦେଶବାସୀ କ୍ଷତ୍ରିୟ-ଜାତିର ଶାଖାବିଶେଷ ।
ଭୋଡ୍‌କା—ଗ୍ରା. ବି. ରୁଷିଆ ଦେଶରେ ପ୍ରଚଳିତ ଏକପ୍ରକାର ମାଦକ ପାନୀୟ ।
ଭୋଡ଼ଙ୍ଗ—ଗ୍ରା.ବି.ଭୁଡ଼ଙ୍ଗ,ରଣଶିଙ୍ଗା ।
ଭୋଡଙ୍ଗା—ଗ୍ରା.ବି°. ପୋଲ, ବଡ଼ ଓ ପୋଲା ।
ଭୋଡ଼ଙ୍ଗିଆ—ଗ୍ରା. ବି. ଉଜନଯୋଗରେ ତୁରୀ ବା ରଣଶିଙ୍ଗା ବଜାଉଥିବା ବ୍ୟକ୍ତି ।
ଭୋ ଦଇବ—ଗ୍ରା. ଅବ୍ୟ. ହା ଦୈବ, ହାୟରେ କପାଳ ।
ଭୋଦୁଆ—ଗ୍ରା.ବି. ଭାଦ୍ରମାସ ।
ଭୋଦୁଆ ଭୋଦେଇ—ଗ୍ରା. ବି°. ଭାଦ୍ରବ ମାସରେ ଜନ୍ମିବା ବା ଅମଳ ହେବା (ଗୁଣି ମକାଆଦି) ।
ଭୋଦେଇଖରା—ଗ୍ରା ବି. ଭାଦ୍ରବ ମାସର ପ୍ରଚଣ୍ଡ ଖରା ।
ଭୋଦେଇଖସା—ଗ୍ରା.ବି. ଭାଦ୍ରବ ମାସରେ ଅମଳ ହେବା ଏକପ୍ରକାର ଗୁଣି ।
ଭୋଦେଇଗୁଣି—ଗ୍ରା.ବି. ଭୋଦେଇ ଖସା ଦେଖ ।
ଭୋ ଦେବ—ଗ୍ରା.ଅବ୍ୟ.ମହାପ୍ରଭୁ ଓ ରାଜା-ଆଦିଙ୍କୁ ଭୃତ୍ୟର ସମ୍ବୋଧନ, ହେ ପ୍ରଭୋ ।
ଭୋଦୋ(ଦୌ)ବା—ଗ୍ରା.କ୍ରି.ବି°. କେବେ, କିମିତି, ଅକାଳେ, ଦୈବାତ୍. କ୍ୱଚିତ୍ ।
ଭୋପା—ଗ୍ରା.ବି. ମହାଦେବ ଓ ଗ୍ରାମ-ଦେବତାଙ୍କ ଶୂଦ୍ର, ସେବକ ବା ମାଳି-ଜାତି, ବାଗ ଡମ୍ବରପ୍ରିୟ ବ୍ୟକ୍ତି, ମିଛ, (ଗ୍ରା.ବି°) ଗପଡ଼ି, ମିଛୁଆ, ନିର୍ବୁଦ୍ଧିଆ, ଅବ୍ୟବସ୍ଥିତ ।
ଭୋପାଳ—ଗ୍ରା. ବି. ମଧ୍ୟ ଭାରତରେ ମୁସଲମାନଙ୍କଦ୍ୱାରା ଶାସିତ ଏକ ପ୍ରଧାନ ମିତ୍ରରାଜ୍ୟ ।

ଭୋବନ—ଗ୍ରା. ବି. ପ୍ରାଚୀନ ଉତ୍କଳର କ୍ଷତ୍ରିୟ ଜାତିବିଶେଷ ।

ଭୋଭୋ—ଗ୍ରା.ଅବ୍ୟ. ଉଚ୍ଚ କାନ୍ଦଣାର ଶବ୍ଦ

ଭୋ ଭୋ—ଅବ୍ୟ.ସମ୍ବୋଧନ,ହେ,ଏହେ, (ଗ୍ରା.ଅବ୍ୟ) ଭୋଭୋ ଦେଖ ।

ଭୋ ଭୋ ଡକାଛାଡ଼ିବା—ଗ୍ରା.କ୍ରି. ଅତ୍ୟନ୍ତ ବିକଳ ହୋଇ ଉଚ୍ଚସ୍ୱରରେ କ୍ରନ୍ଦନ କରିବା ।

ଭୋମୀର—ସ୍ତ୍ରୀ.ବି. ପ୍ରବାଳ,ପୋହଳା ।

ଭୋର୍—ଗ୍ରା.ବି. ପ୍ରାତଃକାଳ, ସକାଳ, ବଡ଼ସକାଳ, ଦପ୍ରି, ଆଡ଼ମ୍ବର, (ବିଂ) ପୂର୍ଣ୍ଣ, ଉଦ୍ଧୂତ୍, ବମାସ୍ତ, ଆଡ଼ମ୍ବରପୂର୍ଣ୍ଣ, ବିଭୋର୍, ଚକିତ ।

ଭୋର୍‌ବେଳା—ଗ୍ରା. ବି. ପ୍ରତ୍ୟୁଷକାଳ, ସକାଳ, ପ୍ରଭାତକାଳ ।

ଭୋର୍‌ଘାଟ—ଗ୍ରା.ବି. ବୋମ୍ବେଇ ପ୍ରଦେଶର ପଶ୍ଚିମଘାଟ ପର୍ବତମାଳାର ମଧ୍ୟରେ ଥିବା ଗୋଟିଏ ଗିରିସଙ୍କଟ ।

ଭୋଲ—ଗ୍ରା. ବି. ଭୁଲକିଆ, ବିସ୍ମରଣ, ଭ୍ରାନ୍ତ, ଶୂଦ୍ର ଓ ମାନ୍ଧାନମାନଙ୍କର ବଂଶୋପାଧିବିଶେଷ, ଜମିର ବନ୍ଧରେ ନା ହଳରେ ଫୁଟିବା କଣା ବା ଫୋଡ଼. (ବିଂ) ମୋହିତ, ବାଉଳ, ଭ୍ରାନ୍ତ, ବାଉଳା, (ସଂ-ବି) ଏକପ୍ରକାର ଜାତିଆ-ମାଛ ।

ଭୋଳହେବା—ଗ୍ରା. କ୍ରି. ଭୁଲିଯିବା, ଭ୍ରାନ୍ତହେବା,ନିଶାରେ ଉନ୍ମତ୍ତହେବା ।

ଭୋଳାନାଥ—ପୁଂ.ବି. ଶିବ, ନିର୍ଲିପ୍ତ-ଲୋକ ।

ଭୋଳ—ପୁଂ.ବି. ଉଷ୍ଟ୍ର, ଓଟ ।

ଭୋଳିତ—ଗ୍ରା.ବିଂ. ଭୋଳ, ଉନ୍ମତ୍ତ,ଭ୍ରାନ୍ତ

ଭୌଗୋଳିକ—ବିଂ. (ଭୂଗୋଳ+ଇକ) ଭୂଗୋଳସମ୍ବନ୍ଧୀୟ, ଭୂଗୋଳ ବିଦ୍ୟା ବିଶାରଦ । [ସମ୍ବନ୍ଧୀୟ ।

ଭୌଜକଟ—କ୍ରି.ବିଂ. ଭୋଜକଟ ଦେଶ-

ଭୌଜଙ୍ଗ—ବିଂ. (ଭୁଜଙ୍ଗ + ଅ) ସର୍ପ-ସମ୍ବନ୍ଧୀୟ, (ବି) ଅଶ୍ଳେଷା ନକ୍ଷତ୍ର ।

ଭୌଜ—ପୁଂ.ବିଂ. ଭୋଜଦେଶଭବ ।

ଭୌଜି—ପ୍ରା.(ବିସ୍ମୟ)ବା, ଖିଜନ ।

ଭୌଜ୍ୟ—ବି. (ଭୋଜ+ଯ) ଯେଉଁ ରାଜ୍ୟ କେବଳ ରାଜାଙ୍କ ସୁଖଭୋଗ ଦୃଷ୍ଟିରେ ଶାସିତ ହୁଏ, ପରନ୍ତୁ ପ୍ରଜା ପାଳନ ଓ ପ୍ରଜାଙ୍କ ମଙ୍ଗଳପ୍ରତି ଦୃଷ୍ଟି ରଖାଯାଏ ନାହିଁ ।

ଭୌଟ—ବିଂ. (ଭୋଟ + ଅ)ତିବ୍ବତୀୟ ।

ଭୌତ—ବିଂ. (ଭୂତ+ଅ) ପଞ୍ଚଭୂତ ସମ୍ବନ୍ଧୀୟ, ଭୂତପ୍ରେତାଦିସମ୍ବନ୍ଧୀୟ, ଜୀବସମ୍ବନ୍ଧୀୟ, ପାଗଳ, ପୈଶାଚିକ, (ବି) ଭୂତଯଜ୍ଞ, ଦେବଳ ବ୍ରାହ୍ମଣ ।

ଭୌତିକ—ବିଂ. (ଭୂତ + ଇକ) ଭୂତ-ସମ୍ବନ୍ଧୀୟ, ପ୍ରାକୃତିକ ପଞ୍ଚଭୂତଘଟିତ, ଭୂତପ୍ରେତସମ୍ବନ୍ଧୀୟ,(ବି) ଶିବ, ଭୂତ-ନାଥ, ଉପଦ୍ରବ, ଆଧିପ୍ରଭୃତି, ମୁକ୍ତା, ମୌଳିକ ଉପାଦାନଘଟିତ ବସ୍ତୁ ।

ଭୌତିକକାଣ୍ଡ—କ୍ଲୀ. ବି. ଭୂତସମ୍ବନ୍ଧିନୀ କ୍ରିୟା ।

ଭୌତିକତନ୍ତ୍ର—କ୍ଲୀ.ବି. ଭୂତ ଜଗତର ଆଲୋଚନା ବିଷୟକ ବିଦ୍ୟାବିଶେଷ ।

ଭୌତିକଦେହ—ବି. ପଞ୍ଚଭୂତଘଟିତ ଜଡ଼ଶରୀର ।

ଭୌତିକନିୟମ—ବି. ଯେଉଁ ନିୟମରେ ଭୌତିକ ପଦାର୍ଥର କାର୍ଯ୍ୟ ନିର୍ବାହ ହୁଏ, ପ୍ରାକୃତିକ ନିୟମ ।

ଭୌତିକପଦାର୍ଥ—ବି. ଜଳ, ବାୟୁ,ସ୍ୱର୍ଣ୍ଣ, ରୌପ୍ୟ,ମୃତ୍ତିକାଦି ଅଚେତନ ପଦାର୍ଥ, ଯେଉଁସବୁ ବସ୍ତୁ ଏକ ପ୍ରାକୃତିକ ପରମାଣୁର ଯୋଗରେ ଉତ୍ପନ୍ନ ହୁଏ, ପଞ୍ଚଭୂତରୁ ଜାତ ବସ୍ତୁ ।

ଭୌତିକବିଦ୍ୟା— ବି. ବେତାଳସାଧନା, ଭୂତ ବା ବେତାଳ ସାଧନାରୂପ ବିଦ୍ୟା, ଗାରୁଡ଼ି ବିଦ୍ୟା ।

ଭୌତିକବ୍ୟାପାର—ବି. ଆଶ୍ଚର୍ଯ୍ୟ ଘଟଣା ଭୂତପ୍ରେତଙ୍କ ଉପଦ୍ରବ । [ରାତ୍ରି ।

ଭୌତି—ସ୍ତ୍ରୀ.ବି. (ଭୌତ+ଈ)ରଜନୀ,

ଭୌତ୍ୟ— ପୁଂ. ବି. ଭୂତିମୁନି ପୁତ୍ର, ଚତୁର୍ଦ୍ଦଶ ମନୁ ।

ଭୌମ—ପୁଂ.ବି. (ଭୂମି+ଅ) ଆକାଶ, ରକ୍ତପୁରୁଣୀ, ଆସନଭେଦ,ମଙ୍ଗଳଗ୍ରହ, ନରକାସୁର, (ବି) ଭୂମିଭବ, ପାର୍ଥିବ, ଭୂମିସମ୍ବନ୍ଧୀୟ, (ସ୍ତ୍ରୀ) ଭୌମୀ, (ଗ୍ରା.ବି) ପ୍ରାଚୀନ ଉତ୍କଳର ଏକ ରାଜବଂଶ ।

ଭୌମଚାର—ବି. ଜ୍ୟୋତିଷୋକ୍ତ ମଙ୍ଗଳ ଗ୍ରହର ଚଳନବିଶେଷ ।

ଭୌମଜଳ—କ୍ଲୀ.ବି. ଭୂଗର୍ଭସ୍ଥ ଜଳ ।

ଭୌମନ—ପୁଂ.ବି. ବିଶ୍ୱକର୍ମା ।

ଭୌମବାର—ବି. ମଙ୍ଗଳବାର ।

ଭୌମବ୍ରତ—କ୍ଲୀ. ବି. ମଙ୍ଗଳସମ୍ବନ୍ଧୀୟ ବ୍ରତବିଶେଷ ।

ଭୌମରତ୍ନ—କ୍ଲୀ.ବି. ପ୍ରବାଳ,ପୋହଳା,

ଭୌମିକ—ବି. ଭୂମ୍ୟଧିକାରୀ, ଭୂସ୍ୱାମୀ, ଜମିଦାର, ସାମନ୍ତ ରାଜାଙ୍କ ଉପାଧି, ଭୂଇଁଆ, (ବିଂ) ଭୂମିସ୍ଥିତ, ଭୂମି-ସମ୍ବନ୍ଧୀୟ, (ସ୍ତ୍ରୀ) ଭୌମିକୀ ।

ଭୌମୀ—ସ୍ତ୍ରୀ. ବି. (ଭୂମି+ଅ+ଈ) ସୀତା, ଜାନକୀ ।

ଭୌରିକ—ପୁଂ. ବି. ( ଭୂରି + ଇକ ) କୋଷାଧ୍ୟକ୍ଷ, ଖାଜାଞ୍ଚି, ସ୍ୱର୍ଣ୍ଣାଧ୍ୟକ୍ଷ ।

ଭ୍ରଂଶ—ବି.(ଭ୍ରନ୍‌ସ୍ + ଅ) ଲୋପ, ନାଶ, ସର୍ବନାଶ, ପତନ, ଅବନତି, ଚ୍ୟୁତି, ପଳାୟନ, ସନ୍ମାର୍ଗରୁ ସ୍ଖଳନ, ଅଧଃ-ପତନ ।

ଭ୍ରଂଶକଳା—ଅବ୍ୟ. ହଂସା ।

ଭ୍ରଂଶଥୁ—ପୁଂ.ବି. (ଭ୍ରଂଶ୍ + ଅଥୁ)ଭ୍ରଂଶ, ଅଧଃପତନ ।

ଭ୍ରଂଶନ—କ୍ରି.ବିଂ. ଅଧଃପତନ ।

ଭ୍ରଂଶିତ—ବିଂ. (ଭ୍ରଂଶ+ଇତ) ନଷ୍ଟ, ନାଶପ୍ରାପ୍ତ ।

ଭ୍ରଂଶୀ—ପୁଂ.ବିଂ.(ଭ୍ରଂଶ୍ + ଇନ୍)ବିନାଶ-ବିଶିଷ୍ଟ, (ସ୍ତ୍ରୀ) ଭ୍ରଂଶିନୀ ।

ଭ୍ରକୁଂଶ(ସ)—ପୁଂ.ବିଂ (ଭ୍ରୂ+କୁନଶ୍+ଅ) ସ୍ତ୍ରୀବେଶଧାରୀ ନଟପୁରୁଷ ।

ଭ୍ରକୁଟି—ସ୍ତ୍ରୀ.ବି. କ୍ରୋଧାଦିଦ୍ୱାରା ଭ୍ରୂର କୌଟିଲ୍ୟ, ଭ୍ରୂଭଙ୍ଗୀ ।

ଭ୍ରଭଙ୍ଗ—ପୁଂ.ବି. ଭ୍ରୂଭଙ୍ଗ ।

ଭ୍ରମ—ପୁଂ.ବି. (ଭ୍ରମ୍ + ଘ.ଅ) ଭ୍ରାନ୍ତ, ଭୁଲ, ମିଥ୍ୟାଜ୍ଞାନ, ମାୟା, ଭ୍ରମଣ, ବୁଲିବା, ବଗିଡ଼ିବା, ଘୁରିବା, ମୂର୍ଚ୍ଛା

ବୁଲାଇହେବା, ମୂର୍ଚ୍ଛା, (କ.ଅ) କୁମ୍ଭାର ଚକ, କୁନ୍ଦାଯନ୍ତ୍ର, ଜଳାବର୍ତ୍ତ, ଜଳ-ନିର୍ଗମ ସ୍ଥାନ, ନର୍ଦ୍ଦମା, (ବିଂ) ଭ୍ରାନ୍ତ, (ଗ୍ରା.ବି)ସ୍ୱପ୍ନ।

ଭ୍ରମକୌତୁକ—ବି. (କ.ଧା) ଭ୍ରମଜନିତ ଆନନ୍ଦ, ଭୁଲରେ ପରିହାସ।

ଭ୍ରମଜାଲ(ଳ)—ବି. ଭ୍ରାନ୍ତିରୂପ ବିଷମ ଫାଶ, (୬ତତ୍) ଭ୍ରମସମୂହ।

ଭ୍ରମଣ—କ୍ଲୀ.ବି.(ଭ୍ରମ୍+ଭା.ଅନ)ଗମନ-ବିଶେଷ, ବୁଲିବା, ପର୍ଯ୍ୟଟନ,ଘୂରିବା।

ଭ୍ରମଣକାରୀ—ପୁଂ. ବିଂ. ଯେ ବୁଲେ, ପର୍ଯ୍ୟଟକ, (ସ୍ତ୍ରୀ) କାରିଣୀ।

ଭ୍ରମଣବୃତ୍ତାନ୍ତ—ପର୍ଯ୍ୟଟନର ବିବରଣ।

ଭ୍ରମଣଶୀଳ—ପୁଂବିଂ. (ବ.ବ୍ରୀ) ବୁଲିବା ଯାହାର ଅଭ୍ୟାସ, (ସ୍ତ୍ରୀ) ଭ୍ରମଣଶୀଳା।

ଭ୍ରମଣୀ—ସ୍ତ୍ରୀ.ବି. ( ଭ୍ରମ୍+ଅନ+ଈ ) ବୁଲିବା, ବୁଲା, କୋକ, (ଗ୍ରା.ବି)ଶାର-ଦୀୟ ଦୁର୍ଗାପୂଜାବେଳେ ଦଶାହରେ ଦେବୀଙ୍କର ବାହାରେ ଭ୍ରମଣ କରିବା।

ଭ୍ରମଣୀବେଳା—ଗ୍ରା.ବି.ବିଚରଣ କରିବାର ନିର୍ଦ୍ଧାରିତ ସମୟ।

ଭ୍ରମଣୀୟ—କ୍ରି. ବିଂ. (ଭ୍ରମ୍+ଅନୀୟ) ଭ୍ରମାର୍ହ, ଭ୍ରମଯୋଗ୍ୟ।

ଭ୍ରମତ୍କୁଟୀ—ସ୍ତ୍ରୀ.ବି.ତୃଣାଦିଚ୍ଛନ୍ନ,ଜଙ୍ଗଲ, କୁଟୀ, ଚୋପର। [କରଣ।

ଭ୍ରମନିରସନ—ବି. (୬ତତ୍) ଭ୍ରମଦୂରୀ-

ଭ୍ରମପ୍ରମାଦ—ବି. (କ.ଧା) ଭ୍ରାନ୍ତିଜନିତ ଅନବଧାନତା, (ଦ୍ୱନ୍ଦ୍ୱ)ଭୁଲ୍ ଓ ଅସାବ-ଧାନତା।

ଭ୍ରମବଶ(ଶ୍ୟ)—ପୁଂ.ବିଂ. ଭ୍ରାନ୍ତିର ଅଧୀନ, ଭ୍ରାନ୍ତ, (ସ୍ତ୍ରୀ) ବଶା।

ଭ୍ରମବଶତଃ—କ୍ରି. ବିଂ. ଭ୍ରାନ୍ତିହେତୁ, ଭ୍ରାନ୍ତିପୂର୍ବକ।

ଭ୍ରମବାତ—ବି. ସର୍ବଦା ଘୂରୁଥିବା ଆକାଶସ୍ଥ ବାୟୁମଣ୍ଡଳ।

ଭ୍ରମମାଣ—ପୁଂ. ବିଂ. ( ଭ୍ରମ୍+ଆନ ) ଯେ ବା ଯାହା ବୁଲୁଅଛି, ଭ୍ରମଣଶୀଳ, (ସ୍ତ୍ରୀ) ଭ୍ରମମାଣା।

ଭ୍ରମର—ପୁଂ. ବି. (ଭ୍ରମ୍+କ.ଅର)ଭୃଙ୍ଗ, ମଧୁକର, କାମୁକ, ଭଅଁର, କାଠରେ ଫୋଡ଼ କରିବା ଯନ୍ତ୍ର, (ସ୍ତ୍ରୀ) ଭ୍ରମରୀ।

ଭ୍ରମରକ—ପୁଂ. ବି. ( ଭ୍ରମର+କ ) ଲଲାଟଲମ୍ବିତ ଚୂର୍ଣ୍ଣକୁନ୍ତଳ,ଭଅଁରଯନ୍ତ୍ର ଜଳଭ୍ରମୀ, ଶୃଙ୍ଗ, ଭୃଙ୍ଗ, ବାଳମୂଷିକ।

ଭ୍ରମରକରଣ୍ଡକ—ପୁଂ.ବି.କ୍ଷୁଦ୍ରକୌଟା,-ଡବା, ଫରୁଆ।

ଭ୍ରମରକୀଟ—ପୁଂ. ବି. କୁମ୍ଭାରପୋକ, ମାଟିଭିରୁଡ଼।

ଭ୍ରମରକୁଣ୍ଡ—କ୍ଲୀ. ବି. କାମରୂପରେ ନୀଳ ପର୍ବତସ୍ଥ ପୁଣ୍ୟତୋୟା ନଦୀଭେଦ।

ଭ୍ରମରକୃଷ୍ଣ—ବିଂ. ଭ୍ରମରପରି କଳା।

ଭ୍ରମରଗୁଞ୍ଜନ—ବି. (୬ତତ୍) ଭଅଁରର ଗୁଣୁ ଗୁଣୁ ଧ୍ୱନି।

ଭ୍ରମରଚ୍ଛଲୀ—ସ୍ତ୍ରୀ. ବି. ଲତାବିଶେଷ, ଜଙ୍ଗଲି ବଡ଼ ବୃକ୍ଷବିଶେଷ।

ଭ୍ରମରଟଙ୍କାର—ବି. (୬ତତ୍) ଭ୍ରମର-ଗୁଞ୍ଜନ, ଭ୍ରମରର ଧ୍ୱନି।

ଭ୍ରମରନାଗ—ବି. (କ.ଧା) କଳାନାଗ।

ଭ୍ରମରପଦକ—କ୍ଲୀ.ବି. ଛନ୍ଦବିଶେଷ।

ଭ୍ରମରପ୍ରିୟ—ବି. (୬ତତ୍)ଧାରାକଦମ୍ବ।

ଭ୍ରମରମାରୀ—ସ୍ତ୍ରୀ. ବି.ଭଅଁରମାରି ଗଛ, କୁଷ୍ଠରୋଗର ପ୍ରଧାନ ଔଷଧ।

ଭ୍ରମରବିଲସିତା—ସ୍ତ୍ରୀ.ବି.ଏକାଦଶାକ୍ଷର ଛନ୍ଦବିଶେଷ।

ଭ୍ରମରହସ୍ତ—ବି. ନାଟକୋକ୍ତ ଚତୁର୍ଦ୍ଦଶ ପ୍ରକାର ଅସଂଯୁତ ହସ୍ତବିନ୍ୟାସର ଅନ୍ତର୍ଗତ ବିନ୍ୟାସଭେଦ।

ଭ୍ରମରାମ୍ବକ୍ଷେତ୍ର—ବି. ଦାକ୍ଷିଣାତ୍ୟର କାଣାଡ଼ା ଉପକୂଳବର୍ତ୍ତୀ ଗୋଟିଏ ହିନ୍ଦୁ ତୀର୍ଥ।

ଭ୍ରମରୀ—ସ୍ତ୍ରୀ.ବି. ଭ୍ରମରଚ୍ଛଲୀ ଦେଖ।

ଭ୍ରମରାତିଥି—ପୁଂ.ବି. (ବ.ବ୍ରୀ) ଚମ୍ପକ-ବୃକ୍ଷ।

ଭ୍ରମରାନନ୍ଦ—ପୁଂ.ବି. (ବ.ବ୍ରୀ) ବକୁଳ, ଅତି ମୁକ୍ତଲତା, ରକ୍ତାମ୍ଳାନ।

ଭ୍ରମରାଳକ—ପୁଂ.ବି. ଭ୍ରମରକ,କୁରୁଳ, ଲଲାଟସ୍ଥ ଚୂର୍ଣ୍ଣ କୁନ୍ତଳ।

ଭ୍ରମରାବଳୀ—ସ୍ତ୍ରୀ.ବି. ଛନ୍ଦୋଭେଦ।

ଭ୍ରମରୀ—ସ୍ତ୍ରୀ.ବି. (ଭ୍ରମର+ଈ) ମାଈ ଭଅଁର, ଜଉକାଲତା, ମୃଗୀରୋଗ, ପୁତ୍ରଦାତ୍ରୀ, ଷଟ୍‌ପଦୀ, ପାର୍ବତୀ, ଭ୍ରମରଚ୍ଛଲୀ।

ଭ୍ରମରେଷ୍ଟ—ପୁଂ.ବି. ଫଣଫଣାଗଛ।

ଭ୍ରମରେଷ୍ଟା—ସ୍ତ୍ରୀ.ବି. (ଭ୍ରମର+ଇଷ୍ଟ+ଆ) ଭାର୍ଗୀ, ବ୍ରାହ୍ମଣଯଷ୍ଟି, ଭୂମିଜାମ୍ବୁ।

ଭ୍ରମରୋତ୍ସବା—ସ୍ତ୍ରୀ. ବି. ମାଧବୀଲତା।

ଭ୍ରମସଂଶୋଧନ—ବି. (୬ତତ୍) ଭ୍ରାନ୍ତି-ଦୂରୀକରଣ।

ଭ୍ରମହେବା—ଗ୍ରା.ବି.ଭ୍ରାନ୍ତ, ବୁଲାଇବା।

ଭ୍ରମା—ଗ୍ରା. ବି. ଭ୍ରମ ଦେଖ।

ଭ୍ରମାତ୍ମକ—ବିଂ. (ଭ୍ରମ+ଆତ୍ମନ୍+କ) ଯହିଁରେ ବା ଯାହାସମ୍ବନ୍ଧେ ଭ୍ରମ ଜାତ ହୁଏ, ଭ୍ରାନ୍ତ, ସନ୍ଦିଗ୍ଧ।

ଭ୍ରମାନ୍ଧ—ବିଂ.(୩ତତ୍)ଭ୍ରମ ହେତୁ ଦୃଷ୍ଟି-ଶକ୍ତିରହିତ, ଭ୍ରାନ୍ତି ଦ୍ୱାରା ଜ୍ଞାନଶୂନ୍ୟ।

ଭ୍ରମାସକ୍ତ—ପୁଂ.ବିଂ. ଯେଉଁ ବ୍ୟକ୍ତି ଅସ୍ତ୍ର-ଶସ୍ତ୍ରାଦି ସଫା କରେ, ଭ୍ରମନିରତ।

ଭ୍ରମି—ସ୍ତ୍ରୀ. ବି. (ଭ୍ରମ+ଇ) ଭ୍ରମଣ, ଘୂରିବା, ଭ୍ରାନ୍ତି ଭୁଲ, ମଣ୍ଡଳାକାର ସୈନ୍ୟ ରଚନା, ଜଳଭଉଁରୀ,କୁମ୍ଭାର-ଚକ, ଘୂର୍ଣ୍ଣିବାୟୁ।

ଭ୍ରମିତ—ପୁଂ.ବିଂ (ଭ୍ରମ୍+ଇତ)ଭ୍ରମଣ-କାରୀ, ଭ୍ରାନ୍ତ, ଘୂର୍ଣ୍ଣିତ।

ଭ୍ରମିତନେତ୍ର—ପୁଂ.ବିଂ. (ବ.ବ୍ରୀ)ଟେରା, (ସ୍ତ୍ରୀ) ନେତ୍ରା। [ଘୂରିବା।

ଭ୍ରମିବା—ଗ୍ରା.କ୍ରି.ଭ୍ରମଣକରିବା,ବୁଲିବା,

ଭ୍ରମିହେବା—ଗ୍ରା.କ୍ରି.ବୃଥାରେ ବୁଲିବା, ଭ୍ରମରେ ପଡ଼ିବା।

ଭ୍ରମୀ—ପୁଂ. ବିଂ. (ଭ୍ରମ୍+ଇନ୍)ଭ୍ରାନ୍ତ, ଭ୍ରମବିଶିଷ୍ଟ, ଭୟଚକିତ, (ସ୍ତ୍ରୀ)ଭ୍ରମିଣୀ, (ବି) ଭ୍ରମି ଦେଖ।

ଭ୍ରଶିମା—ପୁଂ.ବି(ଭୃଶ୍+ଇମନ୍)ଭୃଶତ୍ୱ, ଅତିଶୟ ଭୃଶ। [ଭୃଶ।

ଭ୍ରଶିଷ୍ଠ—ବିଂ. (ଭୃଶ୍+ଇଷ୍ଠ) ଅତିଶୟ

ଭ୍ରଷ୍ଟ—କ୍ରି.ବିଂ.(ଭ୍ରଂଶ୍+କ.ତ)ଚ୍ୟୁତ, ଅଧଃପତିତ, ଗଳିତ, ଅଧାର୍ମିକ,ଦୋଷ-ଯୁକ୍ତ, ନଷ୍ଟ, ଦୁରାଚାର, (ଆଜ୍ଞା)ଲଙ୍ଘିତ,

(ସ୍ତ୍ରୀ) ଭ୍ରଷ୍ଟା ।
ଭ୍ରଷ୍ଟକରିବା—ଗ୍ରା. କ୍ରି. ନଷ୍ଟକରିବା, ଦୂଷିତକରିବା, ଆଜ୍ଞା ନ ପାଳିବା ।
ଭ୍ରଷ୍ଟକାର—ଗ୍ରା. ବିଂ. ଅଶ୍ଳୀଳ, ଅଭଦ୍ର, ଖଣ୍ଡ ।
ଭ୍ରଷ୍ଟଚରିତ—ପୁଂ. ବିଂ. (ବ.ବ୍ରୀ) ଚରିତହୀନ, ନଷ୍ଟଚରିତ, (ସ୍ତ୍ରୀ) ଚରିତା, (ବି. କ.ଧା) କଳୁଷିତଚରିତ, ଦୂଷିତ ଆଚରଣ । [ ଅବସ୍ଥା ।
ଭ୍ରଷ୍ଟତା(ତ୍ୱ)—ବି. ନଷ୍ଟ ଅବସ୍ଥା, ପତିତ
ଭ୍ରଷ୍ଟା—ସ୍ତ୍ରୀ. ବିଂ. (ଭ୍ରନ୍ଶ୍+ତ+ଆ) ଅଧଃପତିତା, ଦୂଷିତା, ଅସତୀ ।
ଭ୍ରଷ୍ଟାଚରଣ—ପୁଂ. ବିଂ. (ବ.ବ୍ରୀ) କଦାଚାରୀ, ପାପାଚାରୀ, (ସ୍ତ୍ରୀ) ଚରଣା ।
ଭ୍ରଷ୍ଟାଚାରୀ—ପୁଂ. ବିଂ (ବ.ବ୍ରୀ) କଦାଚାରୀ, ପାପାଚାରୀ, (ସ୍ତ୍ରୀ) ଚାରିଣୀ ।
ଭ୍ରାଜକ—କ୍ଳୀ. ବି. (ଭ୍ରାଜ୍+ଅକ) ଦେହସ୍ଥ ଧାତୁବିଶେଷ, ପିତ୍ତ, (ବିଂ) ଦୀପ୍ତିକାରକ, ଶୋଭାକର, (ସ୍ତ୍ରୀ) ଜିକା ।
ଭ୍ରାଜଥ—ପୁଂ. ବି. (ଭ୍ରାଜ୍+ଅଥୁ) ଦୀପ୍ତି, ସୌନ୍ଦର୍ଯ୍ୟ, ପ୍ରଭା ।
ଭ୍ରାଜଦୃଷ୍ଟି—ପୁଂ. ବି. ଶାଖିନାମ, ମରୁଭେଦ
ଭ୍ରାଜନ—କ୍ଳୀ. ବି. ଦୀପନ ।
ଭ୍ରାଜସ୍ୱାନ୍—ତ୍ରି. ବିଂ. (ଭ୍ରାଜସ୍+ମତ୍) ଦୀପ୍ତିଯୁକ୍ତ ।
ଭ୍ରାଜିବା—ଗ୍ରା. କ୍ରି. ଶୋଭା ପାଇବା ।
ଭ୍ରାଜିଷ୍ଣୁ—ତ୍ରି. ବିଂ. (ଭ୍ରାଜ+ଇଷ୍ଣୁ) ଅଳଂକାରାଦିଦ୍ୱାରା ଦୀପ୍ତିଯୁକ୍ତ, ଶୋଭିତ, (ପୁଂ. ବି) ବିଷ୍ଣୁ ।
ଭ୍ରାଜୀ—ପୁଂ. ବିଂ. (ଭ୍ରାଜ+ଇନ୍) ଦୀପ୍ତିମାନ, ଶୋଭାଯୁକ୍ତ, ଉଜ୍ଜ୍ୱଳ, (ସ୍ତ୍ରୀ) ଭ୍ରାଜିନୀ ।
ଭ୍ରାତଃ—(ସମ୍ବୋଧନ) ହେ ଭାଇ ।
ଭ୍ରାତା—ପୁଂ. ବି. (ଭ୍ରାଜ+କ.ତୃ) ସହୋଦର, ଭାଇ, ଭ୍ରାତୃସ୍ଥାନୀୟ (ଗୁରୁ), ଭାଇ ।
ଭ୍ରାତାଭଗିନୀ—ବି. ଭାଇ ଓ ଭଉଣୀ ।
ଭ୍ରାତୁଷ୍ପୁତ୍ର—ପୁଂ. ବି. (ଭ୍ରାତୁ+ପୁତ୍ର) ଭାଇର ପୁଅ, ପୁତୁରା, (ସ୍ତ୍ରୀ) ଭ୍ରାତୁଷ୍ପୁତ୍ରୀ ଝିଅ୍ସି ।
ଭ୍ରାତୁଷ୍ପୌତ୍ର—ପୁଂ. ବି. ଭାଇର ପୁଅର ପୁଅ, ନାତି ।
ଭ୍ରାତୃ—ପୁଂ. ବି. (ଭ୍ରାଜ+କ.ତୃ) ଭାଇ ।
ଭ୍ରାତୃକ—ତ୍ରି. ବିଂ. (ଭ୍ରାତୃ+କ) ଭ୍ରାତୃସମ୍ବନ୍ଧୀୟ, ଭ୍ରାତୃଯୋଗ୍ୟ, (ବି) ଭାଇଠାରୁ ମିଳିବା ଧନଆଦି । [ ପ୍ରତିମ ।
ଭ୍ରାତୃକଳ୍ପ—ପୁଂ. ବିଂ. ଭାଇପରି, ଭ୍ରାତୃ-
ଭ୍ରାତୃଜ—ପୁଂ. ବି. (ଭ୍ରାତୃ+ଜନ୍+ଅ) ଭାଇର ଅପତ୍ୟ, ପୁତୁରା, (ସ୍ତ୍ରୀ) ଭ୍ରାତୃଜା ।
ଭ୍ରାତୃଜାୟା—ସ୍ତ୍ରୀ. ବି. (୬ତତ୍) ଭାଇର ସ୍ତ୍ରୀ, ଭାଉଜ, ଭାଇବୋହୂ ।
ଭ୍ରାତୃତା(ତ୍ୱ)—ବି. ଭ୍ରାତାର ଭାବ ବା ଧର୍ମ, ଭାଇପଣ । [ ଭାଇ ।
ଭ୍ରାତୃଦେବ - ବି. ଦେବତାପ୍ରତିମ ବଡ଼-
ଭ୍ରାତୃଦ୍ୱିତୀୟା—ବି. ଯମଦ୍ୱିତୀୟା, କାର୍ତ୍ତିକ ମାସର ଶୁକ୍ଳ ଦ୍ୱିତୀୟା ।
ଭ୍ରାତୃନିର୍ବିଶେଷରେ—ଗ୍ରା. କ୍ରି. ବିଂ. ଭାଇ-ସମାନଭାବରେ, ଭାଇପରି ।
ଭ୍ରାତୃପତ୍ନୀ—ସ୍ତ୍ରୀ. ବି. (୬ତତ୍) ଭ୍ରାତୃଜାୟା, ଭାଇର ଭାର୍ଯ୍ୟା ।
ଭ୍ରାତୃପୁତ୍ର—ପୁଂ. ବି. (୬ତତ୍) ପୁତୁରା. (ସ୍ତ୍ରୀ) ଭ୍ରାତୃପୁତ୍ରୀ, ଝିଆରି ।
ଭ୍ରାତୃପ୍ରତିମ—ପୁଂ. ବିଂ. ଭାଇର ସମାନ, ଭାଇପରି । [ ସୌହାର୍ଦ୍ଦ୍ୟ ।
ଭ୍ରାତୃପ୍ରେମ—ବି. ଭାଇ ଭାଇ ମଧ୍ୟରେ
ଭ୍ରାତୃଭକ୍ତି—ବି. ବଡ଼ଭାଇ ପ୍ରତି ସାନ-ଭାଇର ଭକ୍ତି ।
ଭ୍ରାତୃଭାବ—ପୁଂ. ବି. (ଜ୍ୟୋତିଷ) ଲଗ୍ନଠାରୁ ତୃତୀୟ ସ୍ଥାନ, ସହଜଭାବ, ଭାଇ ଭାଇ ସମ୍ବନ୍ଧ, ସୌଭ୍ରାତ, ଭାଇ ଭାଇ ମଧ୍ୟରେ ଥିବା ସଦ୍ଭାବ ପରି ସଦ୍ଭାବ ।
ଭ୍ରାତୃମାନ୍—ପୁଂ. ବିଂ. (ଭ୍ରାତୃ+ମତ୍) ଭ୍ରାତୃଯୁକ୍ତ, ଯାହାର ଭାଇ ଅଛି, (ସ୍ତ୍ରୀ) ଭ୍ରାତୃମତୀ । [ ପରି ।
ଭ୍ରାତୃବତ୍—ଅବ୍ୟ. ଭ୍ରାତୃତୁଲ୍ୟ, ଭାଇ-
ଭ୍ରାତୃବତ୍ସଳ—ପୁଂ ବିଂ. ସାନଭାଇ ପ୍ରତି ସ୍ନେହଶୀଳ, (ସ୍ତ୍ରୀ) ଭ୍ରାତୃବତ୍ସଳା ।
ଭ୍ରାତୃବଧ—ବି. (୬ତତ୍) ଭାଇକୁ ହତ୍ୟା କରିବା । [ ଭାର୍ଯ୍ୟା ।
ଭ୍ରାତୃବଧୂ—ସ୍ତ୍ରୀ. ବି. ଭ୍ରାତୃଜାୟା, ଭାଇର
ଭ୍ରାତୃବଳ—ତ୍ରି. ବିଂ. (ଭ୍ରାତୃ+ବଳ) ଭ୍ରାତୃଯୁକ୍ତ, (ବି-୬ତତ୍) ଭାଇର ବଳ ।
ଭ୍ରାତୃବାତ୍ସଲ୍ୟ—ବି. ସାନଭାଇପ୍ରତି ବଡ଼-ଭାଇର ବା ବଡ଼ ଭଉଣୀର ସ୍ନେହ ।
ଭ୍ରାତୃବିଚ୍ଛେଦ—ବି. (୬ତତ୍) ଭାଇମାନେ ପରସ୍ପର ଠାରୁ ଦୂରରେ ରହିବା ।
ଭ୍ରାତୃବିବାଦ—ବି. (୬ତତ୍) ଭାଇମାନଙ୍କ ମଧ୍ୟରେ କଳହ ।
ଭ୍ରାତୃବ୍ୟ—ପୁଂ. ବି. ଭ୍ରାତୃପୁତ୍ର, ଭାଇର ପୁଅ, ଶତ୍ରୁ ।
ଭ୍ରାତୃବୃନ୍ଦ—ବି. ଭାଇମାନେ, ଏକଦେଶବାସୀ ବା ଏକଜାତୀୟ ବା ଏକବ୍ୟବସାୟାବଲମ୍ବୀ ବା ଏକସ୍ଥାନରେ ଉପସ୍ଥିତ ବ୍ୟକ୍ତିଗଣ ।
ଭ୍ରାତୃଶ୍ୱଶୁର—ପୁଂ. ବି. ଦେଢ଼ଶୁର, ଭାଇର ପତ୍ନୀର ପିତା, ଭାଇର ଶ୍ୱଶୁର ।
ଭ୍ରାତୃସ୍ଥାନୀୟ—ପୁଂ. ବିଂ. ସମ୍ପର୍କରେ ଭାଇ, ଭାଇ ପରି, ଭ୍ରାତୃବଳ ।
ଭ୍ରାତୃସ୍ନେହ—ବି. ସାନଭାଇପ୍ରତି ବାତ୍ସଲ୍ୟ, ଭ୍ରାତୃପ୍ରେମ ଦେଖ ।
ଭ୍ରାତୃହନ୍ତା—ପୁଂ. ବିଂ. ଯେ ଭାଇକୁ ହତ୍ୟାକରେ । [ ନ୍ଧୀୟ ।
ଭ୍ରାତ୍ର—ବିଂ. (ଭ୍ରାତୃ+ଅ) ଭାଇସମ୍ବ-
ଭ୍ରାତ୍ରୀୟ—ପୁଂ. ବି. ( ଭ୍ରାତୃ+ଈୟ ) ଭ୍ରାତୃପୁତ୍ର, ପୁତୁରା, (ବିଂ) ଭ୍ରାତୃସମ୍ବନ୍ଧୀ, ଭାଇପରି ।
ଭ୍ରାତ୍ରୀୟା—ସ୍ତ୍ରୀ. ବିଂ. (ଭ୍ରାତ୍ରୀୟ+ଆ) ଭ୍ରାତୃସମ୍ବନ୍ଧୀୟା, (ସ୍ତ୍ରୀ.ବି) ଭ୍ରାତୃକନ୍ୟା
ଭ୍ରାନ୍ତ—ତ୍ରି. ବିଂ. (ଭ୍ରମ୍+କ.ତ) ଭ୍ରାନ୍ତିବିଶିଷ୍ଟ, ଉନ୍ମତ୍ତ, ଭ୍ରମଯୁକ୍ତ, ଭ୍ରମଣଶୀଳ, ଘୂର୍ଣ୍ଣାୟମାନ, (ସ୍ତ୍ରୀ) ଭ୍ରାନ୍ତା, (ବି) ଭ୍ରମଣ, ମତ୍ତହସ୍ତୀ, ରାଜଧୁସ୍ତୁର ।
ଭ୍ରାନ୍ତଧାରଣା— ବି. ଭ୍ରମପୂର୍ଣ୍ଣ ବିଶ୍ୱାସ ।
ଭ୍ରାନ୍ତା(ନ୍ତ୍ୟା)ପହ୍ନୁତି—ବି. କୌଣସି ଭ୍ରାନ୍ତିର ଦୂରୀକରଣାର୍ଥ ସତ୍ୟବସ୍ତୁର ବର୍ଣ୍ଣନରୂପ କାବ୍ୟାଳଂକାରବିଶେଷ ।
ଭ୍ରାନ୍ତି—ସ୍ତ୍ରୀ. ବି. ( ଭ୍ରମ୍+ତି ) ଭ୍ରମ, ଭ୍ରମଣ, ଅନବସ୍ଥିତି, ଭୁଲ, ପ୍ରମାଦ, ମିଥ୍ୟାଜ୍ଞାନ, ମୋହ, ମାୟା, ସନ୍ଦେହ ।

ଭ୍ରାନ୍ତିକର—ବିଂ. (ଭ୍ରାନ୍ତି+କୃ+ଅ) ଯାହା ଭ୍ରାନ୍ତି ଜନ୍ମାଏ, ସନ୍ଦେହ ଉତ୍ପାଦକ, (ସ୍ତ୍ରୀ) ଭ୍ରାନ୍ତିକରୀ ।

ଭ୍ରାନ୍ତିଜନକ—ବିଂ. (୬ତତ୍) ପ୍ରମାଦକର, ଭ୍ରମଉତ୍ପାଦକ, (ସ୍ତ୍ରୀ) ଜନକା ।

ଭ୍ରାନ୍ତିନିବାରଣ—ବି. ମନରୁ ଭ୍ରାନ୍ତି ବା ସନ୍ଦେହ ଦୂରହେବା ।

ଭ୍ରାନ୍ତିମାନ୍—ପୁଂ. ବିଂ. (ଭ୍ରାନ୍ତି+ମତ୍) ଭ୍ରମଜ୍ଞାନଯୁକ୍ତ, ଭ୍ରମବିଶିଷ୍ଟ,(ସ୍ତ୍ରୀ) ମତୀ, (ବି) କାବ୍ୟାଳଂକାର ବିଶେଷ ।

ଭ୍ରାନ୍ତିମୂଳକ—ବିଂ.ଯାହା ଭ୍ରାନ୍ତିଯୋଗୁଁ ଘଟିଥାଏ ।

ଭ୍ରାନ୍ତିହର—ପୁଂ.ବି.(ଭ୍ରାନ୍ତି + ହୃ + ଅ) ମନ୍ତ୍ରୀ, (ବିଂ) ଭ୍ରମନାଶକ,ଯାହା ଭ୍ରାନ୍ତି ଦୂରକରେ ।

ଭ୍ରାମ—ବିଂ. (ଭ୍ରମ୍+ଅ) ଭ୍ରମଯୁକ୍ତ ।

ଭ୍ରାମକ—ପୁଂ. ବି. (ଭ୍ରମ୍+ଣିଚ୍+କ. ଅକ) ଶୃଗାଳ,ଧୂର୍ତ୍ତବ୍ୟକ୍ତି,କାନ୍ତଲୌହ, ସୂର୍ଯ୍ୟାବର୍ତ୍ତ, ଚୁମ୍ବକ ପଥର, ( ବିଂ ) ଭ୍ରମଜନକ, ଶଠ, ଧୂର୍ତ୍ତ ।

ଭ୍ରାମର—କ୍ଲୀ. ବି. (ଭ୍ରମର+ଅ) ମଧୁ, ମହୁ, ନୃତ୍ୟବିଶେଷ, ( ପୁଂ ) ଚୁମ୍ବକ ପଥର,ଅପସ୍ମାର ରୋଗ, (ବିଂ)ଭ୍ରମରସମ୍ବନ୍ଧୀୟ, (ସ୍ତ୍ରୀ) ଭ୍ରାମରୀ ।

ଭ୍ରାମରୀ—ପୁଂ. ବିଂ. (ଭ୍ରମର+ଇନ୍) ଅପସ୍ମାର ରୋଗୀ,(ସ୍ତ୍ରୀ.ବି-ଭ୍ରାମର+ଈ) ପାର୍ବତୀ, ପୁତ୍ରଦାତ୍ରୀ ଲତା, ଦୁର୍ଗା ।

ଭ୍ରାମରମିତ୍ରତା--ବି.ଭ୍ରମରତୁଲ୍ୟ ବନ୍ଧୁତା, ସ୍ୱାର୍ଥସିଦ୍ଧିର ଅଭିପ୍ରାୟରେ ବନ୍ଧୁତ୍ୱ କରିବା ।

ଭ୍ରାମ୍ୟମାଣ—ବିଂ. (ଭ୍ରମ + ଇ + ଆନ) ଯାହା ଘୂର୍ଣ୍ଣିତ ହେଉଅଛି, ଯାହାକୁ ଅନ୍ୟବ୍ୟକ୍ତି ବୁଲାଉଅଛି, (ସ୍ତ୍ରୀ) ଭ୍ରାମ୍ୟମାଣା ।

ଭ୍ରାଷ୍ଟ୍ର—କ୍ଲୀ.ବି.(ଭ୍ରାସ୍ଜ୍+ତ)ଆକାଶ, (ଭ୍ରଜ୍+ଅଧି.ଦ) ଭାଜିବାର ପାତ୍ର, ଭଜାଭଜା ହାଣ୍ଡି ।

ଭ୍ରାଷ୍ଟ୍ରକ—ବିଂ.ଯାହା ଭଜା ହୋଇଅଛି, ଭଜାଜିନିଷ ।

ଭ୍ରୁକୁଂସ--ପୁଂ.ବି.ସ୍ତ୍ରୀବେଶଧାରୀ ନର୍ତ୍ତକ, ନଟ ।

ଭ୍ରୁକୁଟୀ—-ସ୍ତ୍ରୀ. ବି. କ୍ରୋଧାଦି ଦ୍ୱାରା ଭ୍ରୂକୌଟିଲ୍ୟ, ଭ୍ରୂଭଙ୍ଗ ।

ଭ୍ରୁକୁଟୀମୁଖ—-କ୍ଲୀ. ବି. ଭ୍ରୂଭଙ୍ଗିଯୁକ୍ତ ମୁଖ, (ପୁଂ.ବି) ସର୍ପଭେଦ ।

ଭ୍ରୁଭଙ୍ଗ—ପୁଂ.ବି.ଭ୍ରୂଭଙ୍ଗ, ଭ୍ରୂକୌଟିଲ୍ୟ

ଭ୍ରୂ—ସ୍ତ୍ରୀ. ବି. (ଭ୍ରମ୍+ରୁ) ଚକ୍ଷୁର ଊର୍ଦ୍ଧ୍ୱ ଓ ଲଲାଟର ନିମ୍ନସ୍ଥିତ ଲୋମରାଜି ।

ଭ୍ରୂକୁଂସ—ପୁଂ. ବି. (ଭ୍ରୂ+କୁଂସ୍+ଅ) ସ୍ତ୍ରୀବେଶଧାରୀ ନର୍ତ୍ତକ ପୁରୁଷ ।

ଭ୍ରୂକୁଞ୍ଚନ—ବି.(ଭ୍ରୂ+କୁଞ୍ଚନ)କଟାକ୍ଷ, କ୍ରୋଧାଦିଜନିତ ଭ୍ରୂର ବକ୍ରତା ।

ଭ୍ରୂକୁଟି(ଟୀ)—ସ୍ତ୍ରୀ.ବି. (ଭ୍ରୂ+କୁଟ+ଇ) କ୍ରୋଧାଦି ଦ୍ୱାରା ଭ୍ରୂର କୌଟିଲ୍ୟ, କଟାକ୍ଷ ବକ୍ରତା, ଭ୍ରୂଭଙ୍ଗୀ ।

ଭ୍ରୂକ୍ଷେପ—ପୁଂ.ବି. (୬ତତ୍) ଭ୍ରୂଭଙ୍ଗ, ଭ୍ରୂଚାଳନ, ଭ୍ରୂବିଳାସ, ସଂକେତ ଜ୍ଞାନାର୍ଥ ଭ୍ରୂର ତାର୍ଯ୍ୟକ୍ ଚାଳନା,(ଲ.ଅର୍ଥ) ସମ୍ମାନ, ଖାତିର ।

ଭ୍ରୂକ୍ଷେପକରିବା—ଗ୍ରା. କ୍ରି. ଦୃଷ୍ଟି ପକାଇବା, ଖାତିର କରିବା ।

ଭ୍ରୂଣ—ପୁଂ.ବି. (ଭ୍ରୂଣ୍+ଅ) ବାଳକ, ଗର୍ଭସ୍ଥ ଶିଶୁ, ଶିଶୁର ଗର୍ଭରେ ଥିବା ବେଳର ଅବସ୍ଥା, ଅଜାତ ଶିଶୁ, ଶିଶୁର ଜନ୍ମ ହେବାର ପୂର୍ବ ଅବସ୍ଥା ।

ଭ୍ରୂଣଘ୍ନ—ପୁଂ. ବିଂ. (ଭ୍ରୂଣ+ହନ୍+କ୍ୱିପ୍)ଯେ ଗର୍ଭସ୍ଥ ଶିଶୁକୁ ନାଶ କରେ, ଗର୍ଭପାତକାରୀ ।

ଭ୍ରୂଣହତି—ସ୍ତ୍ରୀ.ବି.(ଭ୍ରୂଣ+ହନ୍+ତି) ଭ୍ରୂଣହତ୍ୟା ।

ଭ୍ରୂଣହତ୍ୟା—ସ୍ତ୍ରୀ. ବି. ଗର୍ଭପାତ ଦ୍ୱାରା ଗର୍ଭସ୍ଥ ଶିଶୁର ବିନାଶ ।

ଭ୍ରୂଣହା—ପୁଂ. ବିଂ. (ଭ୍ରୂଣ+ହନ୍+କ.କ୍ୱିପ୍) ଗର୍ଭସ୍ଥ ଶିଶୁ ନାଶକାରକ, ଗଭ ନଷ୍ଟକାରୀ ।

ଭ୍ରୂଧନୁ—-ବି. ( କ.ଧା ) ଧନୁକାକୃତି ଆଖିପତା ଉପରର ଲୋମରାଜି ।

ଭ୍ରୂଭଙ୍ଗ—ପୁଂ. ବି. କ୍ରୋଧରୁ ବା ଅସନ୍ତୋଷରୁ ଜାତ ଭ୍ରୂକୁଟୀ,ଭ୍ରୂକୌଟିଲ୍ୟ

ଭ୍ରୂଭଙ୍ଗୀ—-ବି. (୬ତତ୍) ଭ୍ରୂକୁଟୀ; ଭ୍ରୂବିଳାସ ।

ଭ୍ରୂଭେଦ—ପୁଂ.ବି.ଭ୍ରୂଭଙ୍ଗ,ଭ୍ରୂବିକାର

ଭ୍ରୂଭେଦୀ—ପୁଂ. ବିଂ. ( ଭ୍ରୂଭେଦ+ଇନ୍) ଭ୍ରୂଭଙ୍ଗଯୁକ୍ତ, ଭ୍ରୂଭେଦଯୁକ୍ତ ।

ଭ୍ରୂମଧ୍ୟ—ବି. ଭ୍ରୂଯୁଗଳର ମଧ୍ୟସ୍ଥାନ ।

ଭ୍ରୂଲତା—-ବି. ଭୂଲତା, ଆଖିପତାର ଉପରସ୍ଥ ଲୋମରାଜି ।

ଭ୍ରୂବିକାର—ବି. ଭ୍ରୂଭଙ୍ଗ,ଭ୍ରୂକୌଟିଲ୍ୟ

ଭ୍ରୂବିକାଶ—ବି. ଆଖିଠାର, କଟାକ୍ଷ ।

ଭ୍ରୂବିକ୍ଷେପ—ପୁଂ. ବି. ଭ୍ରୂଭଙ୍ଗ ।

ଭ୍ରୂବିଚେଷ୍ଟିତ—କ୍ଲୀ.ବି. ଭ୍ରୂକ୍ଷେପ ।

ଭ୍ରୂବିଳାସ—ପୁଂ. ବି. (୬ତତ୍) ଭ୍ରୂରବିଳାସ, ଭ୍ରୂଭଙ୍ଗ, ଭ୍ରୂର ନର୍ତ୍ତନ ।

ଭ୍ରୂସଙ୍କେତ—ବି. (୩ତତ୍) ଭ୍ରୂସଞ୍ଚାଳନ ଦ୍ୱାରା ଇଷାରା ।

ଭ୍ରେଷ(ଣ)—କ୍ଲୀ. ବି. (ଭ୍ରେଷ+ଅନ) ଚଳନ, ଗମନ, ଭ୍ରମଣ, ଅନଧିକାର ପ୍ରବେଶ, ଅନ୍ୟାୟ, ଦୋଷ, କୁପଥଗମନ, ନାଶ, ଭୟ, ଡର ।

ଭ୍ରୈଣଘ୍ନ—ନି. ବିଂ. ଭ୍ରୂଣ ହତ୍ୟାକାରୀ ସମ୍ବନ୍ଧୀୟ ।

ଭ୍ରୈଣହତ୍ୟ—-କ୍ଲୀ. ବି. ଭ୍ରୂଣହତ୍ୟା, ଗର୍ଭସ୍ଥ ଶିଶୁ ନାଶ ।

ଭ୍ରୈବେୟ—-ନି. ବିଂ. (ଭ୍ରୂବ+ଅ) ଭ୍ରୂସମ୍ବନ୍ଧୀ ।

ଭ୍ଲକ୍ଷ(ଧାତୁ)—ଭକ୍ଷଣ କରିବା ।

ଭ୍ଲାଶ—(ଧାତୁ) ଦୀପ୍ତି ପାଇବା ।

# ମ

ମ—ବ୍ୟଞ୍ଜନ ବର୍ଣ୍ଣମାଳାର ପଞ୍ଚବିଂଶତି ବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ମୁଖ ଓ ନାସିକା, ଜିହ୍ୱାଗ୍ର ଦ୍ୱାରା ଓଷ୍ଠଦ୍ୱୟ ସ୍ପର୍ଶ ହେଲେ ଏହା ଉଚ୍ଚାରିତ ହୁଏ, ଏହା ଅନୁନାସିକ ଓଷ୍ଠ୍ୟବର୍ଣ୍ଣ ।

ଭ୍ରାନ୍ତିକର—ବି°. (ଭ୍ରାନ୍ତି+କୃ+ଅ) ଯାହା ଭ୍ରାନ୍ତି ଜନ୍ମାଏ, ସନ୍ଦେହ ଉତ୍ପାଦକ, (ସ୍ତ୍ରୀ) ଭ୍ରାନ୍ତିକରୀ ।

ଭ୍ରାନ୍ତିଜନକ—ବି°. (୬ତତ୍) ପ୍ରମାଦକର, ଭ୍ରମଉତ୍ପାଦକ, (ସ୍ତ୍ରୀ) ଜନକା ।

ଭ୍ରାନ୍ତିନିବାରଣ—ବି. ମନରୁ ଭ୍ରାନ୍ତି ବା ସନ୍ଦେହ ଦୂରହେବା ।

ଭ୍ରାନ୍ତିମାନ୍—ପୁଂ. ବି°. (ଭ୍ରାନ୍ତି+ମତ୍) ଭ୍ରମଜ୍ଞାନଯୁକ୍ତ, ଭ୍ରମବିଶିଷ୍ଟ,(ସ୍ତ୍ରୀ) ମତୀ, (ବି) କାବ୍ୟାଳଂକାର ବିଶେଷ ।

ଭ୍ରାନ୍ତିମୂଳକ—ବି°.ଯାହା ଭ୍ରାନ୍ତିଯୋଗୁଁ ଘଟିଥାଏ ।

ଭ୍ରାନ୍ତିହର—ପୁଂ.ବି.(ଭ୍ରାନ୍ତି + ହୃ + ଅ) ମନ୍ତ୍ରୀ, (ବି°) ଭ୍ରମନାଶକ,ଯାହା ଭ୍ରାନ୍ତି ଦୂରକରେ ।

ଭ୍ରାମ—ବି°. (ଭ୍ରମ୍+ଅ) ଭ୍ରମଯୁକ୍ତ ।

ଭ୍ରାମକ—ପୁଂ. ବି. (ଭ୍ରମ୍+ଣିଚ୍+ଣକ. ଅକ) ଶୃଗାଳ,ଧୂର୍ତ୍ତବ୍ୟକ୍ତି,କାନ୍ତଲୌହ, ସୂର୍ଯ୍ୟାବର୍ତ୍ତି, ଚୁମ୍ବକ ପଥର, ( ବି° ) ଭ୍ରମଜନକ, ଶଠ, ଧୂର୍ତ୍ତ ।

ଭ୍ରାମର—କ୍ଲୀ. ବି. (ଭ୍ରମର+ଅ) ମଧୁ, ମହୁ, ନୃତ୍ୟବିଶେଷ, ( ପୁଂ ) ଚୁମ୍ବକ ପଥର,ଅପସ୍ମାର ରୋଗ, (ବି°)ଭ୍ରମରସମ୍ବନ୍ଧୀୟ, (ସ୍ତ୍ରୀ) ଭ୍ରାମରୀ ।

ଭ୍ରାମରୀ—ପୁଂ. ବି°. (ଭ୍ରମର+ଇନ୍) ଅପସ୍ମାର ରୋଗୀ,(ସ୍ତ୍ରୀ.ବି.ଭ୍ରାମର+ଈ) ପାର୍ବତୀ, ପୁତ୍ରଦାତ୍ରୀ ଲତା, ଦୁର୍ଗା ।

ଭ୍ରାମର୍ଷିହିତା—ବି.ଭ୍ରମରତୁଲ୍ୟ ବନ୍ଧୁତା, ସ୍ୱାର୍ଥସିଦ୍ଧିର ଅଭିପ୍ରାୟରେ ବନ୍ଧୁତ୍ୱ କରିବା ।

ଭ୍ରାମ୍ୟମାଣ—ବି°. (ଭ୍ରମ+ଇ + ଆନ) ଯାହା ଘୂର୍ଣ୍ଣିତ ହେଉଅଛି, ଯାହାକୁ ଅନ୍ୟବ୍ୟକ୍ତି ବୁଲାଉଅଛି, (ସ୍ତ୍ରୀ) ଭ୍ରାମ୍ୟମାଣା ।

ଭ୍ରାଷ୍ଟ୍ର—କ୍ଲୀ.ବି.(ଭ୍ରାସ୍ଜ୍+ତ୍ର)ଆକାଶ, (ଭୃଜ୍+ଅଧି.ତ୍ର) ଭାଜିବାର ପାତ୍ର, ଭଜାଭଜିହାଣ୍ଡି ।

ଭ୍ରାଷ୍ଟ୍ରକ—ବି°.ଯାହା ଭଜା ହୋଇଅଛି, ଭଜାଜିନିଷ ।

ଭ୍ରୂକୁଂସ—ପୁଂ.ବି.ସ୍ତ୍ରୀବେଶଧାରୀ ନର୍ତ୍ତକ, ନଟ ।

ଭ୍ରୂକୁଟୀ—ସ୍ତ୍ରୀ. ବି. କ୍ରୋଧାଦି ଦ୍ୱାରା ଭ୍ରୂକୌଟିଲ୍ୟ, ଭ୍ରୂଭଙ୍ଗ ।

ଭ୍ରୂକୁଟୀମୁଖ—କ୍ଲୀ. ବି. ଭ୍ରୂଭଙ୍ଗିଯୁକ୍ତ ମୁଖ, (ପୁଂ.ବି) ସର୍ପଭେଦ ।

ଭ୍ରୂଭଙ୍ଗ—ପୁଂ.ବି.ଭ୍ରୂଭଙ୍ଗ, ଭ୍ରୂକୌଟିଲ୍ୟ

ଭ୍ରୂ—ସ୍ତ୍ରୀ. ବି. (ଭ୍ରମ୍+ଉ) ଚକ୍ଷୁର ଊର୍ଦ୍ଧ୍ୱ ଓ ଲଲାଟର ନିମ୍ନସ୍ଥିତ ଲୋମରାଜି ।

ଭ୍ରୂକୁଂସ—ପୁଂ. ବି. (ଭ୍ରୂ+କୁଂସ୍+ଅ) ସ୍ତ୍ରୀବେଶଧାରୀ ନର୍ତ୍ତକ ପୁରୁଷ ।

ଭ୍ରୂକୁଞ୍ଚନ—ବି.(ଭ୍ରୂ+କୁଞ୍ଚନ)କଟାକ୍ଷ, କ୍ରୋଧାଦିଜନିତ ଭ୍ରୂର ବକ୍ରତା ।

ଭ୍ରୂକୁଟି(ଟୀ)—ସ୍ତ୍ରୀ.ବି. (ଭ୍ରୂ+କୁଟ+ଇ) କ୍ରୋଧାଦି ଦ୍ୱାରା ଭ୍ରୂର କୌଟିଲ୍ୟ, କଟାକ୍ଷ ବକ୍ରତା, ଭ୍ରୂଭଙ୍ଗୀ ।

ଭ୍ରୂକ୍ଷେପ—ପୁଂ.ବି. (୬ତତ୍) ଭ୍ରୂଭଙ୍ଗ, ଭ୍ରୂଚାଳନ, ଭ୍ରୂବିଳାସ, ସଂକେତ ଜ୍ଞାନାର୍ଥ ଭ୍ରୂର ତିର୍ଯ୍ୟକ୍ ଚାଳନା,(ଲ.ଅର୍ଥ) ସମ୍ମାନ, ଖାତିର ।

ଭ୍ରୂକ୍ଷେପକରିବା—ଗ୍ରା. କ୍ରି. ଦୃଷ୍ଟି ପକାଇବା, ଖାତିର କରିବା ।

ଭ୍ରୂଣ—ପୁଂ.ବି. (ଭ୍ରୂଣ୍+ଅ) ବାଳକ, ଗର୍ଭସ୍ଥ ଶିଶୁ, ଶିଶୁର ଗର୍ଭରେ ଥିବା ବେଳର ଅବସ୍ଥା, ଅଜାତ ଶିଶୁ, ଶିଶୁର ଜନ୍ମ ହେବାର ପୂର୍ବ ଅବସ୍ଥା ।

ଭ୍ରୂଣଘ୍ନ—ପୁଂ. ବି°. (ଭ୍ରୂଣ+ହନ୍+କ୍ୱିପ୍)ଯେ ଗର୍ଭସ୍ଥ ଶିଶୁକୁ ନାଶ କରେ, ଗର୍ଭପାତକାରୀ ।

ଭ୍ରୂଣହତି—ସ୍ତ୍ରୀ.ବି.(ଭ୍ରୂଣ+ହନ୍+ତି) ଭ୍ରୂଣହତ୍ୟା ।

ଭ୍ରୂଣହତ୍ୟା—ସ୍ତ୍ରୀ. ବି. ଗର୍ଭପାତ ଦ୍ୱାରା ଗର୍ଭସ୍ଥ ଶିଶୁର ବିନାଶ ।

ଭ୍ରୂଣହା—ପୁଂ. ବି°. (ଭ୍ରୂଣ+ହନ୍+କ.କ୍ୱିପ୍) ଗର୍ଭସ୍ଥ ଶିଶୁ ନାଶକାରକ, ଗର୍ଭ ନଷ୍ଟକାରୀ ।

ଭ୍ରୂଧନୁ—ବି. ( କ.ଧା ) ଧନୁକାକୃତି ଆଖିପତା ଉପରର ଲୋମରାଜି ।

ଭ୍ରୂଭଙ୍ଗ—ପୁଂ. ବି. କ୍ରୋଧରୁ ବା ଅସନ୍ତୋଷରୁ ଜାତ ଭ୍ରୂକୁଟୀ,ଭ୍ରୂକୌଟିଲ୍ୟ

ଭ୍ରୂଭଙ୍ଗୀ—ବି. (୬ତତ୍) ଭ୍ରୂକୁଟୀ, ଭ୍ରୂବିଳାସ ।

ଭ୍ରୂଭେଦ—ପୁଂ.ବି.ଭ୍ରୂଭଙ୍ଗ,ଭ୍ରୂବିକାର

ଭ୍ରୂଭେଦୀ—ପୁଂ. ବି°. ( ଭ୍ରୂଭେଦ+ଇନ୍) ଭ୍ରୂଭଙ୍ଗଯୁକ୍ତ, ଭ୍ରୂଭେଦଯୁକ୍ତ ।

ଭ୍ରୂମଧ୍ୟ—ବି. ଭ୍ରୂଯୁଗଳର ମଧ୍ୟସ୍ଥାନ ।

ଭ୍ରୂଲତା—ବି. ଭୂଲତା, ଆଖିପତାର ଉପରସ୍ଥ ଲୋମରାଜି ।

ଭ୍ରୂବିକାର—ବି. ଭ୍ରୂଭଙ୍ଗ,ଭ୍ରୂକୌଟିଲ୍ୟ

ଭ୍ରୂବିକାଶ—ବି. ଆଖିଠାର, କଟାକ୍ଷ ।

ଭ୍ରୂବିକ୍ଷେପ—ପୁଂ. ବି. ଭ୍ରୂଭଙ୍ଗ ।

ଭ୍ରୂବିଚେଷ୍ଟିତ—କ୍ଲୀ.ବି. ଭ୍ରୂକ୍ଷେପ ।

ଭ୍ରୂବିଳାସ—ପୁଂ. ବି. (୬ତତ୍) ଭ୍ରୂର ବିଳାସ, ଭ୍ରୂଭଙ୍ଗ, ଭ୍ରୂର ନର୍ତ୍ତନ ।

ଭ୍ରୂସଙ୍କେତ—ବି. (୬ତତ୍) ଭ୍ରୂସଞ୍ଚାଳନ ଦ୍ୱାରା ଇଶାରା ।

ଭ୍ରେଷ(ଣ)—କ୍ଲୀ. ବି. (ଭ୍ରେଷ+ଅନ) ଚଳନ, ଗମନ, ଭ୍ରମଣ, ଅନଧିକାର ପ୍ରବେଶ, ଅନ୍ୟାୟ, ଦୋଷ, କୁପଥଗମନ, ନାଶ, ଭୟ, ଡର ।

ଭୈ୍ରୌଣଘ୍ନ—ତ୍ରି. ବି°. ଭ୍ରୂଣ ହତ୍ୟାକାରୀ ସମ୍ବନ୍ଧୀୟ ।

ଭୌଣହତ୍ୟା—କ୍ଲୀ. ବି. ଭ୍ରୂଣହତ୍ୟା, ଗର୍ଭସ୍ଥ ଶିଶୁ ନାଶ ।

ଭ୍ରୌବେୟ—ତ୍ରି. ବି°. (ଭ୍ରୂବ+ଅ) ଭ୍ରୂସମ୍ବନ୍ଧୀ ।

ଭ୍ଲକ୍ଷ(ଧାତୁ)—ଭକ୍ଷଣ କରିବା ।

ଭ୍ଲାଶ—(ଧାତୁ) ଦୀପ୍ତି ପାଇବା ।

# ମ

ମ—ବ୍ୟଞ୍ଜନ ବର୍ଣ୍ଣମାଳାର ପଞ୍ଚବିଂଶତି ବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ମୁଖ ଓ ନାସିକା, ଜିହ୍ୱାଗ୍ର ଦ୍ୱାରା ଓଷ୍ଠଦ୍ୱୟ ସ୍ପର୍ଶ ହେଲେ ଏହା ଉଚ୍ଚାରିତ ହୁଏ, ଏହା ଅନୁନାସିକ ଓଷ୍ଠ୍ୟବର୍ଣ୍ଣ ।

ମ—ପୁଂ. ବି. (ମା+ଅ) ଶିବ, ବିଷ୍ଣୁ, ଚନ୍ଦ୍ର, ବ୍ରହ୍ମା, ମନ୍ତ୍ର, ଯମ, ସମୟ, ବିଷ, ମନୁଷ୍ୟ, ସୌନ୍ଦର୍ଯ୍ୟ, ମୁଖ, (ଗ୍ରା.ଅବ୍ୟ) ନିମ୍ନଲିଖିତ ସ୍ଥଳମାନଙ୍କରେ ବ୍ୟବହୃତ ହୁଏ—ସମ୍ବୋଧନ, ବାକ୍ୟ ସମାପ୍ତି, ବାକ୍ୟର ବିଶିଷ୍ଟତା ଦ୍ୟୋତକ, ଅନାଦରାର୍ଥକ, ବିସ୍ମୟ ସନ୍ଦେହ ବା ଆଶ୍ଚର୍ଯ୍ୟବ୍ୟଞ୍ଜକ ।

ମଅ—ଗ୍ରା. ଅ. ମ ଦେଖ । [ ଦେଖ ।

ମଅଣ—ଗ୍ରା.ବି. ବିଂ. ମଣ ଦେଖ, ମହଣ

ମଅମ—ଯା, ବି. ମହମ ଦେଖ ।

ମଅଳ—ଗ୍ରା.ବିଂ.ମଇଳିଆ,ମଳଯୁକ୍ତ,ମଈଳ, (ବି) ମଳ, ମଳି ।

ମଅଳମ୍ଳେଚ୍ଛ(ଚ୍ଛା)—ଗ୍ରା.ବିଂ. ମଳଯୁକ୍ତ ଓ କୁତ୍ସିତ (ଶରୀର ଓ ବସ୍ତ୍ରାଦି) ।

ମଅଳଆ—ଗ୍ରା. ବିଂ. ମଳିନ ।

ମଇ—ଗ୍ରା. ବି. (ସଂ-ମର୍ଦ୍ଦକୀ) ଚାଷ କରାଯାଇଥିବା କ୍ଷେତକୁ ସମତଳ କରିବାର କାଷ୍ଠ ନିର୍ମିତ ଯନ୍ତ୍ରବିଶେଷ,କଅଁଳଗଛ, ଏକପ୍ରକାର ଜଙ୍ଗଲଗଛ, (ଯା. ବି) ଇଂରାଜୀ ବର୍ଷର ୫ମ ମାସ ।

ମଇଆ—ପ୍ରା. (ସମ୍ବଲ. ଓ ବାମଣ୍ଡା)ବି. ପିଜୁଳି, ଆତ ।

ମଇଁଷାଘିଅ—ଗ୍ରା. ବି. ମଇଁଷିର ଦୁଧରୁ ପ୍ରସ୍ତୁତ ଘିଅ ।

ମଇଁଷାଳ—ଗ୍ରା.ପୁଂ.ବି. (ସଂ-ମହିଷପାଳ) ମହିଷରକ୍ଷକ, ଯେ ମହିଷ ଚରାଏ ।

ମଇଁଷାସୁର--ଗ୍ରା.ବି.ମହିଷାସୁର ଦେଖ ।

ମଇଁଷି—ଗ୍ରା. ପୁଂ.ସ୍ତ୍ରୀ. ବି. (ସଂ-ମହିଷ) ଗୋଜାତୀୟ ଧୂସର ବର୍ଣ୍ଣର ଗୃହପାଳିତ ପଶୁବିଶେଷ ।

ମଇଁଷିଆ—ଗ୍ରା. ବିଂ. ମହିଷସମ୍ବନ୍ଧୀୟ, ମହିଷଜାତ, ବଡ଼ଜାତୀୟ, (ଗ୍ରା.ପୁଂ.ବି) ମହିଷରକ୍ଷକ ।

ମଇଁଷିଆଜୋକ—ଗ୍ରା. ବି. ଏକପ୍ରକାର ବଡ଼ ଜୋକ,(ବେପରୀତ)ଗାଈଆ ଜୋକ ।

ମଇଁଷିଆଦ(ଦେ)ହ—ଗା. ବି. ଯେଉଁ ବ୍ୟକ୍ତିର ଶରୀର ନିଜକୁ ସର୍ବଦା ଗରମ ଥିବାପରି ଜଣାଯାଏ ଓ ସର୍ବଦା ଥଣ୍ଡା ପାଣିକୁ ସୁଖପାଏ । [ ଦେଖ ।

ମଇଁଷିଆଳ—ଗ୍ରା. ପୁଂ. ବି. ମଇଁଷାଳ

ମଇଛ(ଛୋ)ଦ—ପ୍ରା.(ପୁରୀ)ବିଂ.ମୁକ୍ତହସ୍ତ ।

ମଇତା—ଗ୍ରା.ବି. କୁଆମଇତା ଲତା ଓ ଫଳ ।

ମଇତ—ଗ୍ରା. ପୁଂ. ବି. (ସଂ-ମିତ୍ର) ମିତ୍ର, ସମନାମଯୁକ୍ତ ବ୍ୟକ୍ତି,ମିତ୍ରତା, ଧର୍ମବନ୍ଧୁତା

ମଇତାଣୀ—ଗ୍ରା.ସ୍ତ୍ରୀ. ବି. (ସଂ-ମିତ୍ରା)ମଇତର ସ୍ତ୍ରୀଲିଙ୍ଗ । [ ଗୋଧୂମ ଚୂର୍ଣ୍ଣ ।

ମଇଦା—ଗ୍ରା.ବି. (ସଂ-ସମୀଦ) ପରିଷ୍କୃତ

ମଇଦାଣ୍ଡି—ପ୍ରା. (ବାଲେ)ବି. ମେଢ଼ିଖୁଣ୍ଟ, ଧାନ ବେଙ୍ଗଳା ପକାଇବା ପାଇଁ ବଳଦ ଯୋଗ୍ୟ ଦାଉଣୀ ବନ୍ଧାଥିବା ଖୁଣ୍ଟ ।

ମଇଦାନ୍—ଯା. ବି. ବିସ୍ତୀର୍ଣ୍ଣ ପ୍ରାନ୍ତର, ପଡ଼ିଆ, ଘୋଡ଼ା ଫେରିବା,ଘୋଡ଼ାଦୌଡ଼, (ପ୍ରା. ସମ୍ବ.ବି) ଅପଗ୍ରନ୍ଥ ।

ମଇଦେବା—ଗ୍ରା. କ୍ରି. ଚାଷ ଜମିକୁ ମଇ ଦ୍ୱାରା ସମତଳ କରିବା ।

ମଇଧାନ—ପ୍ରା. (ସମ୍ବ)ବି. ଅପଗ୍ରନ୍ଥ ।

ମଇନର—ପ୍ରା. (ଗଞ୍ଜାମ)ବିଂ. ନାବାଳକ, (ବି) ନାବାଳକ, ପିଲା ।

ମଇନା—ଗ୍ରା. ବି. ( ସଂ-ମଦନସାରିକା ) ସାରୀପକ୍ଷୀ. (ପ୍ରା.ସମ୍ବ.ବି)ବଣିଚଢ଼େଇ ।

ମଇଫ(ଫି)ଲ—ଯା. ବି. ଆଡ଼ମ୍ବରଯୁକ୍ତ ସଭାମଣ୍ଡପ, ମଜଲିସ ପାଇଁ ସଜ୍ଜିତ ସଭା ଗୃହ ।

ମଇମନ୍—ଯା.ବି. ପଶ୍ଚିମଭାରତୀୟ କଚ୍ଛଦେଶୀୟ ବ୍ୟବସାୟୀ ମୁସଲମାନ ।

ମଇ(ୟ,ଏ)ରା—ଗ୍ରା.ବି(ସଂ-ମୋଦକକାର) ଗୁଡ଼ିଆ, ହାଲୁଇ, ଲର୍ଡ ହେଷ୍ଟିଂସ୍ ।

ମଇଷ—ଗ୍ରା.ବି.କବନ୍ଧ, ମୁଣ୍ଡହୀନ ମନୁଷ୍ୟ ଦେହ ।

ମଇ(ହୁ)ରଗିଣିଆ—ଗ୍ରା. ବି. (ସଂ-ମୟୂରଗ୍ରୀବକ)ତୁତିଆ, ତାମ୍ର ଘଟିତ ନୀଳବର୍ଣ୍ଣ ଉପରସ, ଉପଧାତୁବିଶେଷ ।

ମଇ(ଏ)ଲ(ଲୋ)ଖୁରା—ଯା. ବି.ଘୋଡ଼ାଙ୍କ ପିଠିରେ ଜିନ୍ ତଳେ ପକାଯିବା ପତଳା ଗଦି ।

ମଇଲ—ପ୍ରା. ( ଗଞ୍ଜାମ ) ବି. ମାଇଲ, ଅଧକ୍ରୋଶ ।

ମଇଲମ—ଯା. ବି. ମଲମ, ଦେବତାଙ୍କ ଅଙ୍ଗରେ ଚୂଆ ଚନ୍ଦନ ବୋଳିବା ମିଠାବିଶେଷ; ଦେବମୂର୍ତ୍ତିଙ୍କ ଦେହରୁ ପିନ୍ଧିଥିବା ବେଶ ଓ ଅଳଂକାର କାଢ଼ିବା

ମଇଳା—ଗ୍ରା.ବି.(ସଂ-ମଳ) ମଇଳା,ମଳ; ଅଳଆ, ବିଷ୍ଠା, ପାପ, ମନ୍ଦଚରିତ୍ର, (ବିଂ) ଅପରିଷ୍କୃତ, ମଳିଆ, ମଳିନ । [ଖାନା ।

ମଇଲଶ—ଗ୍ରା.(ପ୍ରାଚୀନ)ପଦ୍ୟ.ବି.ପାଇ-

ମଉ—ଗ୍ରା.ବି. (ସଂ-ମଧୁ) ମଧୁ , ମହୁ ।

ମଉଆ—ଗ୍ରା.ବି. ସ୍ୱନାମ ପ୍ରସିଦ୍ଧ ବୃକ୍ଷବିଶେଷ ।

ମଉଆଳୁ—ଗ୍ରା.ବି. ସ୍ୱନାମ ପ୍ରସିଦ୍ଧ କନ୍ଦ ବା ଆଳୁବିଶେଷ ।

ମଉକୁପ୍(ଫ୍,ବ୍)—ଯା.ବିଂ. ସ୍ଥଗିତ, କିଛି କାଳ ପାଇଁ ସ୍ଥଗିତ, (ଚାକିରିଆଦିରୁ) ବରଖାସ୍ତ, ରଦ୍ କରାଯାଇଥିବା ।

ମଉକୁପି(ଫି.ବି)—ଯା.ବି. ଗାହତ୍ୟ,ବରଖାସ୍ତି, ସାମୟିକ ଗାହତ୍ୟ, ରଦ୍,ରହିତ ହେବା ଅବସ୍ଥା ।

ମଉଚ୍ଛ,(ଚ୍ଛୋ)ବ—ଗ୍ରା.ବି (ସଂ-ମହୋତ୍ସବ) ମହୋତ୍ସବ, ବଡ଼ଭୋଜି ।

ମଉଜ--ଗ୍ରା.ବି.ମୌଜ, ଆମୋଦପ୍ରମୋଦ ମଜା,ଆନନ୍ଦ ଲହରୀ,ସୁଖଭୋଗ,ଆନନ୍ଦ,

ମଉଜବେଳ—ଗ୍ରା.ବି. ମଜାର ସମୟ ।

ମଉଜା—ଗ୍ରା. ବି. ପ୍ରଜାଙ୍କ ଆବାସର ସୁବିଧା ନିମନ୍ତେ ଗୃହସମୂହର ବା ଭୂମି, ସମୂହର ସମଷ୍ଟିଦ୍ୱାରା ଗଠିତ ଗ୍ରାମ,ଡିହ

ମଉଜାଓ୍ୱାର(ରି)—ଯା.ବିଂ. ଭିନ୍ନ ଭିନ୍ନ ମୌଜା ସଂକ୍ରାନ୍ତ ।

ମଉଜାଦାର--ଯା.ବି.ମଉଜାର ଜମିଦାର ।

ମଉଜି—ଗ୍ରା.ବିଂ. ଆମୋଦପ୍ରିୟ, ଯେଉଁ ବ୍ୟକ୍ତି ସର୍ବଦା ପ୍ରଫୁଲ୍ଲ ଥାଏ, ମନମଉଜୀ

ମଉ(ହୁ)ଜୁଦ(ଦ୍)—ଯା. ବିଂ. ଉପସ୍ଥିତ, ପ୍ରସ୍ତୁତ ହୋଇ ରଖାଯାଇଥିବା,ନଗଦ, ସଞ୍ଚିତ (ଧାନାଦି) ।

ମଉଡ଼—ଗ୍ରା.ବି.(ସଂ-ମୁକୁଟ)ବେକଷଣ୍ଢା, ଗରଦନ, ମୁକୁଟ, ଟୋପି,ସ୍ୱର୍ଣ୍ଣ ମୁଦ୍ରା, ମୋହର, ଚତୁଷ୍କୋଣ ଗୁଳଘର ।

ମଉଡ଼ଘର—ଗ୍ରା.ବ. ବଙ୍ଗଲା ଘର, ଯେଉଁ ଘରର ଗୃହ ଚଉକ୍ଷୋଣ ।

ମଉଡ଼ମଣି—ଗ୍ରା.ବ. ( ସଂ-ମୁକୁଟମଣି ) ମୁକୁଟରେ ଥିବା ପଥର, ( ଲ. ଅର୍ଥ ) ସର୍ବଶ୍ରେଷ୍ଠ ବ୍ୟକ୍ତି, ପ୍ରଧାନ ବା ସର୍ଦ୍ଦାର

ମଉଡ଼ା—ଗ୍ରା. ବ. ( ସଂ-ମୌଳି ) ପାଗ, ଶିରସ୍ତ୍ରାଣ, ବେକ, ସାଦୃଶ୍ୟ ।

ମଉ(ହୁ)ଡ—ପ୍ରା.(ଯାଜପୁର) ବ. ମୁଖର ସମସ୍ତ ।

ମଉନ—ଗ୍ରା.ବିଂ. ତୁନ, ମୌନ ଦେଖ ।

ମଉନମୁହାଁ—ଗ୍ରା.ପୁଂ.ବିଂ. (ସଂ-ମୌନମୁଖ) ମୌନାବଲମ୍ବୀ, ଚୁପ୍‌ଚାପ ରହୁଥିବା (ସ୍ତ୍ରୀ) ମଉନମୁହାଁ ।

ମଉନା(ନେ)ଇ—ଗ୍ରା.ସ୍ତ୍ରୀ.ବି. ଗ୍ରାମଦେବତାଙ୍କ ନାମ ।

ମଉନାବତୀ—ଗ୍ରା. ବି. (ସଂ-ମୌନବତୀ) ବେତାଳପଞ୍ଚବିଂଶତି କାହାଣୀରେ ବର୍ଣ୍ଣିତ ମୌନବ୍ରତଧାରିଣୀ ରାଜକନ୍ୟା ବିଶେଷ ।

ମଉନାବେଣୀ—ଗ୍ରା.ବି.ମୌନବ୍ରତଧାରଣ କରିଥିବା ସ୍ତ୍ରୀ । [ ଦେଖ ।

ମଉରସି—ଯା. ବି ଓ ବିଂ. ମୌରସ

ମଉ(ହୁ)ରାଡ଼(ଳ)—ଗ୍ରା.ବି. (ସଂ-ସରଳ) ମଧୁର ଜଳରେ ବାସ କରୁଥିବା ଏକପ୍ରକାର କ୍ଷୁଦ୍ର ମତ୍ସ୍ୟ ।

ମଉଳ(ଳି)—ଗ୍ରା.ବି. (ସଂ-ମୌଳି) ମସ୍ତକ, ଦେବମୂର୍ତ୍ତିଙ୍କର ମସ୍ତକରେ ଥିବା ମୁକୁଟ. (ଗ୍ରା.ବିଂ) (ଲ.ଅର୍ଥ) ଶ୍ରେଣୀ ମଧ୍ୟରେ ଶ୍ରେଷ୍ଠ ।

ମଉଲଶ୍ରୀ—ଯା.ବି. ମୌଲଶ୍ରୀ ଦେଖ ।

ମଉଳା—ଗ୍ରା.ବି. (ସଂ-ମାତୁଳ) ମାମୁଁ, ମାତୁଳ ।

ମଉ(ହ-ହୁ)ଳା ଅମାବସ୍ୟା—ଗ୍ରା.ବି.ଆଶ୍ୱିନ ମାସର ଅମାବାସ୍ୟା ।

ମଉଳା(ଳେ)ଇବା—ଗ୍ରା.କ୍ରି. ଝାଉଁଳିବାର ଉପାୟ କରିବା, ମଳିନ କରିବା, ସଭାଆଦି ଭଙ୍ଗାଇବା ।

ମଉ(ହା)ଳ ଛତୁ—ଗ୍ରା.ବି. ଆଶ୍ୱିନ ମାସରେ ଫୁଟିବା ଏକପ୍ରକାର ଛତୁ ।

ମଉଳାନିମନ୍ତ୍ରଣ—ଗ୍ରା.ବି.ବାଳକର ଉପନୟନ ବା ବାଳିକାର ବିବାହ ପୂର୍ବରୁ ମାମୁଁଙ୍କ ନିକଟକୁ ପଠାଯିବା ନିମନ୍ତ୍ରଣ ।

ମଉ(ହ)ଳାପକ୍ଷ—ଗ୍ରା.ବି. ପିତୃପକ୍ଷ,ଅପର ପକ୍ଷ, ଆଶ୍ୱିନ କୃଷ୍ଣପକ୍ଷ ।

ମଉଳାପୁଅଭାଇ—ଗ୍ରା.ବି.ମାମୁଁପୁଅ ଭାଇ

ମଉଳାଭୁକ୍ତା—ଗ୍ରା.ବି.ଗୃହଘରର ମଧ୍ୟାନ ବା ତୁଳଆ ।

ମଉ(ହ)ଳାଶ୍ରାଦ୍ଧ—ଗ୍ରା.ବି. ପିତୃପକ୍ଷରେ ବା ଆଶ୍ୱିନ କୃଷ୍ଣପକ୍ଷରେ କରାଯିବା ଶ୍ରାଦ୍ଧ

ମଉଳିବା—ଗ୍ରା. କ୍ରି. ଝାଉଁଳିବା, ମ୍ଳାନହେବା, ନିସ୍ତେଜ ହେବା, ନମ୍ରହେବା, (ସଭାଆଦି) ଭାଙ୍ଗିଯିବା ।

ମଉ(ହୁ)ଶଯ୍ୟା —ଗ୍ରା.ବି. ମଧୁଶଯ୍ୟା ଦେଖ

ମଉ(ହୁ)ଷଧ(ଧି)—ଗ୍ରା.ବି. ଅବ୍ୟର୍ଥ ଔଷଧ

ମଉସମ—ଗ୍ରା.ବି. ମୌସୁମୀବାୟୁ ଦେଖ

ମଉସା—ପୁଂ.ବି. ମାତାର ଭଗିନୀପତି ।

ମଏ—ଯା.ଅବ୍ୟ. ସହିତ, ମଧ୍ୟ, ଏବଂ, ଅମୁକକୁ ମିଶାଇ, (ଗ୍ରା.କ୍ରି.ବିଂ)ବ୍ୟାପକରୂପେ, (ଗ୍ରା.ବି) ପଶୁଆଦି ଜୀବଙ୍କର ଋତୁକାଳ ।

ମଏଁ—ପ୍ରା.(ସମ୍ବ)ସର୍ବ. ମୁଁ, ଆମ୍ଭେ ।

ମଏ(ୟୁ)କାଳ—ଗ୍ରା.ବି. ପଶୁଆଦି ଜୀବଙ୍କର ଋତୁ ବା ସଙ୍ଗମ କାଳ ।

ମଏ(ୟୁ,ଅ)ଣ—ଗ୍ରା. ବି. ( ସଂ-ମଦନ ) ଏକପ୍ରକାର କଣ୍ଟକୀ କ୍ଷୁପ, ଏକଜାତୀୟ ବଡ଼ ବନ୍ୟଗଛ, ମହାପିଣ୍ଡିତକ ।

ମଏଦାନ୍—ପ୍ରା.(ସମ୍ବ) ଯା.ବି. ମଇଦାନ ଦେଖ ।

ମଏମନ୍ତ୍ର(ନ୍ତା)—ଗ୍ରା.ବିଂ. (ସଂ-ମଦମତ୍ତ) ମତ୍ତ, ଉନ୍ମତ୍ତ । [ ବା ସର ।

ମଏଲକା—ପ୍ରା. (ସମ୍ବ)ବି. ମାଟିର ଖୁରି

ମଏଲଚ୍ଛ—ପ୍ରା.(ସମ୍ବ)ବିଂ. ( ସଂ-ମ୍ଲେଚ୍ଛ ) କୋଡରା, ମଳିଆ ।

ମଂଜରା—ପ୍ରା.(ବସ୍ତର)ବି. (ସଂ-ମଞ୍ଜରୀ) ମହାବ, ଗିନା ।

ମଂହନେଷ୍ଟ—ହି.ବିଂ. ଭାଗ ପ୍ରଦାନରେ ବର୍ତ୍ତିମାନ ।

ମଂହୁଷ୍ଟ—ହି.ବିଂ. ଅତିଶୟ ବୁଦ୍ଧିଯୁକ୍ତ ।

ମକ୍—ଭୂଷଣ, ଗାଢ଼ ।

ମକ୍ତବ—ଯା.ବି. ଆରବୀ ଓ ଫାରସୀଭାଷା ପଢ଼ିବାର ପ୍ରାଥମିକ ବିଦ୍ୟାଳୟ

ମକ୍(ଖ୍)ମଲ—ପ୍ରା.(ବସ୍ତର)ବି. ଗେଣ୍ଡୁ ଫୁଲ, କୁସୁମ ଫୁଲ ।

ମକ—ପୁଂ ଓ କ୍ଲୀ.ବି. ଶିବାଦିତୁଲ୍ୟ ।

ମକକ—ପୁଂ.ବି. ଜୀବଭେଦ ।

ମକଚ—ଗ୍ରା.ବି. (ସଂ-ମଳନ) ମୋଡ଼ିବା, ଦଳନ, ଦଳାମଳା, (ଗ୍ରା.ବିଂ)ଦଳିତ ।

ମକଚ(ଚେ)ଇବା—ଗ୍ରା.କ୍ରି. ଦଳାଇବା ।

ମକଚିବା—ଗ୍ରା .କ୍ରି. ମଳିବା, ଦଳିବା, ମୋଡ଼ିଦେବା ।

ମକଡ଼ା—ପ୍ରା.(ଆଠମଲ୍ଲିକ)ବି. ବୁଢ଼ିଆଣୀ, ମାକଡ଼ସା ।

ମକଦ(ଦ୍ଦ)ମ—ଯା.ବି. ଜମିଦାର ଓ ପ୍ରଜାଙ୍କର ମଧ୍ୟସ୍ଥିତ ମଧ୍ୟସ୍ୱତ୍ୱାଧିକାରୀ, ଯେଉଁ ବ୍ୟକ୍ତି ପ୍ରଜାଙ୍କଠାରୁ ଖଜଣା ଆଦାୟ କରି ଆପଣାର ନିର୍ଦ୍ଧାରିତ ମାଲିକାନା କାଟି ନେଇ ବାକି ଖଜଣା ଜମିଦାରଙ୍କୁ ଦିଏ, ଗ୍ରାମାଧିକାରୀ, ସରଦାର ।

ମକଦ(ଦ୍ଦ)ମା—ଯା. ବି. ମାମଲା, ଅଦାଲତରେ ଉପସ୍ଥାପିତ ଅଭିଯୋଗ ।

ମକଦ୍ଦମାକରିବା—ଗ୍ରା.କ୍ରି. ଅଦାଲତରେ ଅଭିଯୋଗ ଆଣିବା ।

ମକଦ୍ଦମାଖର୍ଚ୍ଚ(ର୍ଚ୍ଚା)—ଯା.ବି.ଅଦାଲତରେ ବା କଚିହରିରେ ମକଦ୍ଦମା ପାଇଁ କରାଯିବା ଆଇନନିର୍ଦ୍ଧାରିତ ବ୍ୟୟ ।

ମକଦ୍ଦମାଦାଏ (ୟୁ) ର୍ (ରି)—ଯା. ବି. କୌଣସି ବ୍ୟକ୍ତି ବିରୁଦ୍ଧରେ ମକଦ୍ଦମାର ଉପସ୍ଥାପନ ।

ମକଦ୍ଦମାବାଜ୍—ଯା. ବି. ମାମଲାପ୍ରିୟ ।

ମକଦ୍ଦମାମାମଲା—ଯା.ବି.ମକଦ୍ଦମାଆଦି ।

ମକଦ୍ଦମାଲଢ଼ିବା—ଗ୍ରା. କ୍ରି. ଅପର ପକ୍ଷ ବିରୁଦ୍ଧରେ ଆପଣା ପକ୍ଷର ଜୟଲାଭ ପାଇଁ ଅଦାଲତରେ ପ୍ରୟତ୍ନ କରିବା ।

ମକଦ(ଦ୍ଦ)ମି—ଯା.ବି.ଜମିଦାରଙ୍କ ଅଧୀନ ମଧ୍ୟସ୍ୱତ୍ୱବିଶେଷ । [ ବଢ଼ିଆଲ ।

ମକଦଲ—ପ୍ରା. (ଗଡ଼ଜାତ)ବି. ଆତ,

ମକଦଲଫୁଲ—ଗ୍ରା. ବି. ମଖମଲ ବା

ମାଣିକଗନ୍ଧ ଫୁଲ ।

ମକମକ—ଗ୍ରା.ଅ. ବେଙ୍ଗର ଡାକ, ବର୍ଷା ଋତୁରେ ଶାମୁକମାନଙ୍କର (କଳିତ) ଧ୍ୱନି,ସ୍ତ୍ରୀଲୋକମାନଙ୍କର କାମୋଦ୍ଦୀପନା ସୂଚକ ହାବଭାବ ବା ଚେଷ୍ଟା,ବରହାଉର ବଂକ୍ରିର କାମଚେଷ୍ଟା ଓ ଅସ୍ଥିରତା ।

ମକମକା(କି)—ଗ୍ରା.ବ.ଭେକରବ, ହାବଭାବ ଦ୍ୱାରା କାମମତ୍ତତା ପ୍ରକାଶ, (ବଂ) ମକମକଆ ଦେଖ ।

ମକମକିଆ—ଗ୍ରା. ପୁଂ. ବିଂ. କାମାତୁର, ଯେ କାମାତୁର ଭାବ ପ୍ରକାଶ କରେ ।

ମକରିଲ—ପ୍ରା. (ସମ୍ବ)ବ. କୁଢ଼ିଆଣୀ ।

ମକ(ଖ)ମଲ—ପ୍ରା. (ଗଞ୍ଜାମ) ବ. ଏକଜାତୀୟ ଫୁଲଗଛ ।

ମକର—ପୁଂ.ବ. (ମ+କୃ+କ.ଅ)ଜଳଜନ୍ତୁବିଶେଷ, କୁମ୍ଭୀର, ମକରରାଶି, କାମଦେବଙ୍କର ଧ୍ୱଜ, କୁବେରଙ୍କ ନିଧିବିଶେଷ, ଗଙ୍ଗାଙ୍କ ବାହନ ।

ମକରକୁଣ୍ଡଳ—କ୍ଳୀ. ବ. (କ.ଧା) ମକର ଆକୃତିବିଶିଷ୍ଟ କର୍ଣ୍ଣଭୂଷଣ ।

ମକରକେତନ—ପୁଂ.ବ. (ବ.ବ୍ରୀ)କାମଦେବ, କନ୍ଦର୍ପ, ମୀନକେତନ, ମକର ମତ୍ସ୍ୟର ଗୃହ, ସମୁଦ୍ର ।

ମକରକେତୁ—ପୁଂ. ବ. କନ୍ଦର୍ପ ।

ମକରକ୍ରାନ୍ତି—ବ. ନିରକ୍ଷ ବୃତ୍ତଠାରୁ ୨୩ ଅଂଶ ଦକ୍ଷିଣରେ କଳ୍ପିତ ରେଖା ।

ମକରଚାଉଳ—ଗ୍ରା. ବ. ମକର ସଂକ୍ରାନ୍ତି ଦିନ ଦେବତାଙ୍କୁ ଭୋଗ କରାଯିବା ଗୁଡ଼ମିଶ୍ରିତ ଅପକ୍ୱ ତଣ୍ଡୁଳ ।

ମକରଧ୍ୱଜ—ପୁଂ. ବ. (ମକର+ଧ୍ୱଜ) କାମଦେବ, କନ୍ଦର୍ପ, ଔଷଧବିଶେଷ, (ଗ୍ରା. ବ) ହନୁମାନର ପୁତ୍ରବିଶେଷ, ନାସିକାର ବାମପୁଡ଼ାରେ ବହୁଥିବା ନିଶ୍ୱାସ ପବନର ଦକ୍ଷିଣ ପୁଡ଼ାରେ ବହିବା ଅବସ୍ଥା ।

ମକରନ୍ଦ—ପୁଂ. ବ. (ମକର+ଦୋ+କ.ଅ)ପୁଷ୍ପରସ, ମଧୁ, ପୁଷ୍ପରେଣୁ, କୁନ୍ଦ ଫୁଲର ଗଛ, କୋକିଳ, ମଧୁମକ୍ଷିକା, ସୁବାସିତ ଆମ୍ରବୃକ୍ଷବିଶେଷ ।

ମକରନ୍ଦ—ପୁଂ.ବି.ଜନୈକ ପ୍ରାଚୀନ କବି

ମକରନ୍ଦକଣା—ପୁଂ.ବି.ପୁଷ୍ପରସ କଣିକା

ମକରନ୍ଦବତ୍ତୀ—ସ୍ତ୍ରୀ.ବ.ପାଟଳୀପୁଷ୍ପ, (ବଂ) ମଧୁବିଶିଷ୍ଟ । [ ପ୍ରବର୍ତ୍ତିକ ।

ମକରନ୍ଦଶର୍ମା—ପୁଂ. ବ. ଜନୈକ ଧର୍ମ-

ମକରବଲ୍ଲୀ—ବୋମ୍ବାଇପ୍ରେସିଡ଼େନ୍ସୀର ଧାରୱାଡ଼ ଜିଲାର ଗୋଟିଏ ଗଣ୍ଡଗ୍ରାମ ।

ମକରବାହନୀ—ସ୍ତ୍ରୀ.ବ.(ମକର+ବହ୍+କ.ଇନ୍+ଈ) ଜାହ୍ନବୀ, ଗଙ୍ଗା ।

ମକରବିଭୂଷଣକେତନ—ପୁଂ.ବ. କାମଦେବ, କନ୍ଦର୍ପ । [ ବିନ୍ୟାସ ।

ମକରବ୍ୟୂହ—ପୁଂ.ବ.ମକରାକାର ସୈନ୍ୟ-

ମକରମଙ୍ଗଳ—ବ.ମନୁଷ୍ୟର ଜନ୍ମକାଳୀନ ଜ୍ୟୋତିଷୋକ୍ତ ଶୁଭଯୋଗବିଶେଷ, ଜାତକରେ ମଙ୍ଗଳଗ୍ରହ ମକର ରାଶିରେ ରହିଥିଲେ ଏହିଯୋଗ ହୁଏ ।

ମକରସ୍ଥୀ—ଯା. ଯାହା ସ୍ଥାୟୀ ରୂପେ ବନ୍ଦୋବସ୍ତ ଅଛି,(ଗ୍ରା)ମୁକରସ୍ଥୀ ।

ମକରସଂକ୍ରାନ୍ତି—ସ୍ତ୍ରୀ. ବ. ମକରରାଶିରେ ରବିଙ୍କର ସଂକ୍ରମଣ, ମାଘସଂକ୍ରାନ୍ତି ।

ମକରସପ୍ତମୀ—ସ୍ତ୍ରୀ.ବ. ମାଘମାସର ଶୁକ୍ଳ ସପ୍ତମୀ ।

ମକରାକର—ପୁଂ.ବ. (ମକର+ଆକର) ସମୁଦ୍ର, କଣ୍ଟକ କରଞ୍ଜ ।

ମକରାକାର—ପୁଂ. ବ. ଷଡ଼୍‌ଗଛ, ଚଳିତ ଭାଷାରେ କଣ୍ଟାକରଞ୍ଜ ।

ମକରାକ୍ଷ—ପୁଂ.ବ. ରାବଣର ଭ୍ରାତୃପୁତ୍ର ।

ମକରାଙ୍କ—ପୁଂ. ବ. (ବ.ବ୍ରୀ)କାମଦେବ, ସମୁଦ୍ର, ମନ୍ତ୍ରଭେଦ, ମକରଧ୍ୱଜ ।

ମକରାନନ—ପୁଂ.ବ.ଶିବାନୁଚରଭେଦ ।

ମକରାୟଣ—କ୍ଳୀ.ବ. ମକର ସମ୍ବନ୍ଧୀୟ ।

ମକରାଳୟ—ପୁଂ. ବ. (ଷତତ୍ପୁ)ସମୁଦ୍ର ।

ମକରାଶ୍ୱ—ବ. (ବ.ବ୍ରୀ) ବରୁଣଦେବ ।

ମକରାବାସ—ପୁଂ. ବ. ସମୁଦ୍ର ।

ମକରନ୍—ପୁଂ. ବ. ସମୁଦ୍ର, ସନ୍ନିପାତ ଜ୍ୱରବିଶେଷ ।

ମକରିକା—ସ୍ତ୍ରୀ.ବ. (ମକର+ଇକ+ଆ) ମକରାକାର ପତ୍ରାବଳୀ ।

ମକରୀ—ପୁଂ. ବ. ( ମକର+ଇନ୍ ) ସମୁଦ୍ର, ଖଣ୍ଡଚନ୍ଦ୍ରବିଶେଷ ।

ମକରୀପତ୍ର—କ୍ଳୀ. ବ. ଲକ୍ଷ୍ମୀଙ୍କର ମୁଖାଙ୍କିତ ଚନ୍ଦ୍ରବିଶେଷ ।

ମକରୀପ୍ରସ୍ଥ—ପୁଂ. ବ. ମକରୀ ସମ୍ବନ୍ଧୀୟ ପ୍ରସ୍ଥ, ସାନୁ ।

ମକରୀଲେଖା—ସ୍ତ୍ରୀ. ବ. ଚନ୍ଦ୍ରଭେଦ ।

ମକରନ—ପଶ୍ଚିମ ବଙ୍ଗବାସୀ ପାର୍ବତୀୟ ଜାତିବିଶେଷ ।

ମକଷ୍ଟ—ପୁଂ. ବ. ଋଷିଭେଦ ।

ମକ୍ଖ(ଖ,ଖି)ଚୋଶ(ଚୁ)ଷ—ପ୍ରା. (ଯାଜ) ବିଂ. କୃପଣ ।

ମକା(କ୍କା)—ଗ୍ରା. ବ. ଧାନ୍ୟାଦି ବର୍ଗର ଶସ୍ୟବିଶେଷ ।

ମକାନ୍—ଯା. ବ. ବାସସ୍ଥାନ, ଘର ।

ମକାମ—ଯା. ବ. ବାସସ୍ଥାନ, ଘର ।

ମକାର—ପୁଂ. ବ. ମ ଅକ୍ଷର, ମ ଅକ୍ଷର ସୂଚକ ମାତ୍ରା, ଓଁକାର ମନ୍ତ୍ରର ଶେଷ ଅଙ୍ଗ, ମକାରାଦି ବର୍ଣ୍ଣଯୁକ୍ତ ତନ୍ତ୍ରୋକ୍ତ ପଦାର୍ଥବିଶେଷ, ମୈଥୁନ, ମାଂସ,ମତ୍ସ୍ୟ, ମଦ୍ୟ, ମୁଦ୍ରା ।

ମକାରସାଧନ(ନା)—ବ.ପଞ୍ଚମକାରଦ୍ୱାରା ତାନ୍ତ୍ରିକ ସାଧନା ।

ମକାଲ—ଗ୍ରା. ବ. (ସଂ-ମହାକାଳ) ମହାକାଳ ଲତା ।

ମକୁଟ—କ୍ଳୀ.ବ. (ମନ୍କ+ଉଟ)ମୁକୁଟ, ଶିରୋଭୂଷଣ, ଅଙ୍ଗାର ଦେଖ, ମକୁଟା ଦେଖ ।

ମକୁଟା—ଗ୍ରା.ବ. ମୋଟ ପାଟରେ ତିଆରି ଏକପ୍ରକାର ମଠା ।

ମକୁନ୍ଦ(ନ୍ଦା.ନ୍ଦ)—ଗ୍ରା. ପୁଂ. ବ. ମୁକୁନ୍ଦ, ଶ୍ରୀକୃଷ୍ଣ, ବିଷ୍ଣୁ ।

ମକୁନ୍ଦଉଖୁଡ଼ା—ଗ୍ରା. ବ. ଏକପ୍ରକାର ଉତ୍କୃଷ୍ଟ ଦୋପାଗି ଉଖୁଡ଼ା ।

ମକୁର—ପୁଂ.ବ. (ମନ୍କ+ଉର)କୁଲାଲଦଣ୍ଡ,କୁମ୍ଭକାରର ଦଣ୍ଡ,ଆଦର୍ଶ,ଦର୍ପଣ, ବକୁଳ ବୃକ୍ଷ, ମୁକୁଳ,କଢ଼ି, କୁନ୍ଦଫୁଲ ।

ମକୁଳ—ପୁଂ.ବ. (ମନ୍କ+ଉଲ)ବକୁଳ, ମୁକୁଳ, କଳିକା, ଫୁଲର କଢ଼ି ।

ମକୁଳକ—ପୁଂ. ବ. ଦନ୍ତୀବୃକ୍ଷ ।

ମକୁଷ୍ଟକ—ପୁଂ.ବି. ବନଜାତ ମୁଦ୍ଗ,ବଣ-ମୁଗ । [ ମୃଦୁଗାମୀ ।

ମକୁଷ୍ଠ—ପୁଂ.ବି. ବନମୁଦ୍ଗ, (ବିଂ)ମନ୍ଥର,

ମକୁଷ୍ଠକ—ପୁଂ. ବି. ବନମୁଦ୍ଗ, ( ବିଂ ) ମନ୍ଥର, ମୃଦୁଗାମୀ ।

ମକେରୁକ—ପୁଂ. ବି. କୃମିରୋଗ,ମଇଳା ଜାତ କୃମିବିଶେଷ । [ ବିଶେଷ ।

ମକ୍କଲ୍ଲ—ପୁଂ. ବି. ସ୍ତ୍ରୀମାନଙ୍କ ଶୂଳରୋଗ

ମକ୍କା—ଗ୍ରା. ବି. ସ୍ୱନାମଖ୍ୟାତ ଫଳବୃକ୍ଷ ବିଶେଷ, (ଯା.ବି) ମୁସଲମାନମାନଙ୍କର ପବିତ୍ର ଓ ପ୍ରସିଦ୍ଧ ସର୍ବପ୍ରଧାନ ତୀର୍ଥକ୍ଷେତ୍ର, ଆରବର ରାଜଧାନୀ ।

ମକ୍କା(କ୍କୋ)ଲ—ଯା.ବି.ଓକିଲଙ୍କ ଯଜମାନ

ମକ୍କୁଲ—କ୍ଲୀ. ବି. ଶିଳାଜତୁ ।

ମକ୍କୋଲ—କ୍ଲୀ. ବି. ଝଟିକା, ଖଡ଼ୀ, କଠିମା ।

ମକ୍ରୀ—ପ୍ରା. (କଳାହାଣ୍ଡି) ବି. ବୁଢ଼ିଆଣୀ ।

ମକ୍ଷ—ପୁଂ. ବି. (ମକ୍ଷ୍+ଅ) ସ୍ୱଦୋଷା-ଚ୍ଛାଦନ, କପଟାଗ୍ରହ, କ୍ରୋଧ, ସମୂହ, ଗଦା, ସ୍ତୂପ ।

ମକ୍ଷବୀର୍ଯ୍ୟ—ପୁଂ. ବି. ପିୟାଲ ବୃକ୍ଷ ।

ମକ୍ଷି—ଗ୍ରା. ବି. ମକ୍ଷିକା ଦେଖ, ( ବିଂ ) ଅତିକୃପଣ ।

ମକ୍ଷିକା—ସ୍ତ୍ରୀ. ବି. ( ମକ୍ଷ୍+ଅକ+ଆ ) ମାଛି, ମହୁମାଛି । ସିକ୍ଥ ।

ମକ୍ଷିକାମଳ—ବି. (୬ତତ୍) ମହମ, ମଧୁ-

ମକ୍ଷୀକା—ସ୍ତ୍ରୀ. ବି. (ମକ୍ଷ୍+ଅକ+ଆ) ମାଛି, ମଧୁମକ୍ଷିକା ।

ମକ୍ଷୁ—ବିଂ. (ମକ୍ଷ୍+ଉ) ଶୀଘ୍ରଗତିଯୁକ୍ତ, (କ୍ରି.ବିଂ) ଝଟିତି, ଶୀଘ୍ର, ପ୍ରକୃତରେ, ଅତ୍ୟନ୍ତ । [ ଯଜ୍ଞ ।

ମଖ—ପୁଂ ବି. (ମଖ୍+ଅ) ଯାଗ,କ୍ରତୁ,

ମଖକ୍ରିୟା—ସ୍ତ୍ରୀ.ବି. ଯାଗବିଷୟକ କାର୍ଯ୍ୟ ।

ମଖଘ୍ନ—ବିଂ. ଯଜ୍ଞବିନାଶକ ।

ମଖଡ଼—ଗ୍ରା. ବିଂ. ଦୁଷ୍ଟ ।

ମଖଣ୍ଡି—ପ୍ରା. (କଟକ) ବି. ଥଟ୍ଟାକଥା ।

ମଖତ୍ରାତା—ପୁଂ. ବି. ରାମଚନ୍ଦ୍ର, ( ବିଂ ) ଯଜ୍ଞରକ୍ଷକ ।

ମଖଦ୍ୱିଟ୍—ପୁଂ.ବି. (ମଖ୍+ଦ୍ୱିଷ୍+କ୍ୱିପ୍) ରାକ୍ଷସ, ଯଜ୍ଞଦ୍ୱେଷୀ ମାତ୍ର । [ରାକ୍ଷସ ।

ମଖଦ୍ୱେଷୀ—ପୁଂ.ବି. ଯଜ୍ଞବିଘ୍ନକାରୀ,(ବି)

ମଖନ—ଗ୍ରା. ବି. ଲହୁଣୀ, ନବନୀତ ।

ମଖନା—ପ୍ରା. (ଲରିଆ) ବି. ଦୋଇତି-କଖାରୁ । [ ବସ୍ତ୍ର ।

ମଖମଲ—ଯା.ବି. କୋମଳ ସ୍ଥୂଳ ଚିକ୍କଣ

ମଖମଲପୋକ—ଗ୍ରା.ବି. ଇନ୍ଦ୍ରଗୋପକୀଟ, ସାଧବାଣୀ ପୋକ ।

ମଖମଲି—ଯା.ବିଂ. ମଖମଲପରି କୋମଳ ଓ ଚିକ୍କଣ ।

ମଖମୟ—ପୁଂ. ବି. ଯଜ୍ଞସ୍ୱରୂପ ବିଷ୍ଣୁ ।

ମଖରକ୍ଷଣ—ବି. ଯଜ୍ଞରକ୍ଷାକାରୀ ବ୍ୟକ୍ତି, ଯଜ୍ଞକୁ ରକ୍ଷା କରିବା ।

ମଖବତ୍—ତ୍ରି.ବିଂ. ଯଜ୍ଞଯୁକ୍ତ,ଯଜ୍ଞକାରୀ ।

ମଖବହ୍ନି—ପୁଂ. ବି. ଯଜ୍ଞାଗ୍ନି ।

ମଖଶାଳା—ସ୍ତ୍ରୀ. ବି. ( ମଖ+ଶାଳା ) ଯଜ୍ଞଶାଳା ।

ମଖ(ଖା)ସା—ପ୍ରା.(ଗଞ୍ଜାମ)ବି. ପୁରସ୍କାର ରୂପେ ପ୍ରଦତ୍ତ ଜାଗିର ।

ମଖା(ଖୋ)ଇବା—ଗ୍ରା. କ୍ରି. ( ସଂ-ମ୍ରକ୍ଷଣ ) ଅନ୍ୟଦ୍ୱାରା ମାଖିବାକ୍ରିୟା କରିବା ।

ମଖାଂଶଭୁକ—ପୁଂ. ବିଂ. ଯଜ୍ଞାଂଶଭୋଗୀ, ଯେଉଁମାନେ ଯଜ୍ଞାଂଶ ପାଆନ୍ତି ।

ମଖାନ୍ନ—କ୍ଲୀ. ବି. (୬ତତ୍) ଏକପ୍ରକାର ଜଳଜାତ ଶାକ ଓ ତାହାର ଫଳ, ତାଳମାଖନା, ଯଜ୍ଞାନ୍ନ ।

ମଖାଳୟ—ପୁଂ. ବି. ଯଜ୍ଞଶାଳା ।

ମଖାସୁହୃଦ୍—ପୁଂ. ବି. (ମଖ+ଅସୁହୃତ୍) ଶିବ, କ୍ରତୁଧ୍ୱଂସୀ ।

ମଖୁନ୍ଦି—ପ୍ରା. (ବାଲେ)ବି. ମକୁନ୍ଦଭଖୁଡ଼ା

ମଗଦୁର—ଯା. ବି. କ୍ଷମତା, ଯୋଗ୍ୟତା, ଶକ୍ତି, ପରାକ୍ରମ ।

ମଗ—ବି. (ମ+ଗେ+ଅଧି.ଅ) ଶାକ-ଦ୍ୱୀପ, ମଘ ଦେଖ,(କ.ଅ)ସୂର୍ଯ୍ୟପୂଜକ, ପୁରୋହିତ, ପ୍ରାଚୀନ ପାରସ୍ୟ ଦେଶ-ବାସୀ, (ଗ୍ରା.ବି) ବ୍ରହ୍ମଦେଶ ଅନ୍ତର୍ବର୍ତ୍ତୀ ଆରାକାନ ପ୍ରଦେଶ ଓ ତଦ୍ଦେଶବାସୀ ବ୍ୟକ୍ତି

ମଗଜ—ଯା. ବି. ମସ୍ତିଷ୍କ, ମଜ୍ଜା, ବୁଦ୍ଧି, ମନ, ହୃଦୟଗତଭାବ ।

ମଗଜଲଡ଼ୁ—ଗ୍ରା.ବି. ଏକପ୍ରକାର ମିଷ୍ଟାନ୍ନ

ମଗଜା—ପ୍ରା. (ଯାଜପୁର) ବିଂ. ମନୁଆ, ମନମୋଟିଆ, ଗର୍ବିତ ।

ମଗଜି—ଯା. ବି. କନାର, ଧାର, ଧଡ଼ି, ବସ୍ତ୍ରାଦିର ଧଡ଼ି ।

ମଗଣ—ବି. କବିତାର ଆଠଗଣ ମଧ୍ୟରୁ ଏକ, ଯହିଁରେ ତିନି ଗୁରୁବର୍ଣ୍ଣର ପୁଞ୍ଜ-ଥାଏ ।

ମଗଧ—ପୁଂ.ବି. (ମଗ+ଧା+ଅ)ବିହାର ପ୍ରଦେଶର ଦକ୍ଷିଣାଂଶର ପ୍ରାଚୀନ ନାମ, ସ୍ତୁତିପାଠକ,ମଗଧ ଦେଶବାସୀ ଲୋକ, (ଗ୍ରା.ବି) ଓଡ଼ିଶାର ଜାଙ୍ଗଲ ଓ ଅନୂପ ପ୍ରଦେଶର ମଧ୍ୟବର୍ତ୍ତୀ ସମତଳ ଅଂଶ ।

ମଗଧଜା—ସ୍ତ୍ରୀ. ବି. ପିପ୍ପଳୀ, ପିପ୍ପଳୀଗଛ, ବଣପିପ୍ପଳୀ ।

ମଗଧଭାଷା—ବି. ମାଗଧୀ ବା ପାଲିଭାଷା ।

ମଗଧା—ସ୍ତ୍ରୀ.ବି. ପିପ୍ପଳୀ, (ଗ୍ରା.ବି)ଗଉଡ଼-ମାନଙ୍କ ଶ୍ରେଣୀବିଶେଷ ।

ମଗଧାଧିପ—ପୁଂ. ବି. (୬ତତ୍) ମଗଧର ରାଜା ଜରାସନ୍ଧ ।

ମଗଧାଧିପତି(ଧୀଶ୍ୱର)—ବି.ମଗଧଦେଶର ରାଜା ଜରାସନ୍ଧ ।

ମଗଧୀୟ—ତ୍ରି. ବିଂ. ମଗଧ ଦେଶୋଦ୍ଭବ

ମଗଧେଶ୍ୱର—ପୁଂ. ବି. (ମଗଧ+ଈଶ୍ୱର) ମଗଧ ଦେଶର ରାଜା ଜରାସନ୍ଧ ।

ମଗଧୋଦ୍ଭବା—ସ୍ତ୍ରୀ. ବି. ପିପ୍ପଳୀ, ବଣ-ପିପ୍ପଳୀ ।

ମଗନ—ଗ୍ରା. (ପଦ୍ୟ) ବିଂ. ମଗ୍ନ ଦେଖ ।

ମଗ(ଘ)ମ—ଗ୍ରା. ବି. କୌଣସି ବିଷୟର ମର୍ମ ବା ରହସ୍ୟ, ହୃଦୟ, ଅନ୍ତର, ଅନ୍ତର୍ଦେଶ, ( ବିଂ ) ଗୁପ୍ତ, ମର୍ମଭେଦୀ, ସଙ୍କେତ ଦ୍ୱାରା ପ୍ରକାଶିତ ।

ମଗର—ପ୍ରା. (ସମ୍ବଲପୁର) ଯା. ଅବ୍ୟ. କିନ୍ତୁ, ପରନ୍ତୁ ।

ମଗରମୁହାଁ—ଗ୍ରା. ବିଂ. ଯାହାର ମୁହଁ ବା ମୁଣ୍ଡଭାଗ ମଗରର ମୁହଁପରି ଶୁଣ୍ଢ-ଯୁକ୍ତ ହୋଇଥାଏ ।

ମଗରବ୍—ଯା. ବି. ପଶ୍ଚିମଦିଗ ।

ମଗରବୀ—ଯା.ବିଂ. ପଶ୍ଚିମଦିଗ ସମ୍ବନ୍ଧୀୟ,

(ଗ୍ରା.ବି) ଦୂର୍ଯ୍ୟାସ୍ତର ଅବ୍ୟବହୃତ ପର-ବର୍ତ୍ତୀ କାଳ ।

ମଗଣ—ସା. ପୁଂ. ବିଂ. ଦୁଷ୍ଟ, ଅଳସୁଆ, ଅମାନିଆଁ,ବି.ପାଣିଝିବାର ମାଟିର ନଳା

ମଗଲ—ପୁଂ. ବି. ଋଷିଭେଦ ।

ମଗଧୀ—ଗ୍ରା. ବି. (ସଂ-ମାଗଧୀ) ବିହାର ଭାଷାର ଏକପ୍ରାଦେଶିକ ରୂପ ।

ମଗା—ଗ୍ରା. ବି. ( ସଂ-ମାର୍ଗଣ ) ଯାଚ୍ଞା, ମାଗିବା, ଭିକ୍ଷୁକ, (ବିଂ) ମାଗିଆଣିଥିବା (ପଦାର୍ଥ) ।

ମଗା(ରେ)ଇବା—,ଗ୍ରା. କ୍ରି. ଅନ୍ୟଦ୍ୱାରା କୌଣସି ବସ୍ତୁ ମାଗିବା । [ ଯଗ୍ର ।

ମଗାମଗି—ଗ୍ରା.ବି. ମାଗିବାଙ୍କି ଯ୍ୱା, ମଗା-

ମଗାଯଗ୍ର—ଗ୍ରା. ବି. ମାଗିବା ଓ ଯାଚିବା, ଯାଚ୍ଞା, ମଗାମଗି, (ବିଂ) ଯାହା ମାଗି-କରି ଅଣାଯାଇଥାଏ । [ ଦେଖ ।

ମଗାହ୍ମ—ପ୍ରା. (ଗ୍ଲେଟ ନାଗପୁର) ବି.ମଗହ୍ମ

ମଗୁ—ଗ୍ରା. ବି. ଶାକଦ୍ୱୀପବାସୀ ବ୍ରାହ୍ମଣ, ମୃଗ, ରସ୍ତା, ବାଟ ।

ମଗୁଶିର—ଗ୍ରା. ବି. ମାର୍ଗଶିର ମାସ ।

ମଗ୍ନ—କ୍ରି. ବିଂ. (ମସ୍ଜ୍+କ.ତ) ବୁଡ଼ି-ଯାଇଥିବା, ସ୍ନାତ, ଜଳମଧ୍ୟରେ ପ୍ରବିଷ୍ଟ, ମଦମତ୍ତ, ଲୀନ, ପ୍ରସନ୍ନ,ତନ୍ମୟ,ଅନ୍ତଃ-ପ୍ରବିଷ୍ଟ, ( ବି ) ପୌରାଣିକ ମୈନାକ ପର୍ବତ ।

ମଗ୍ନଗିରି—ବି. (କ.ଧା) ସମୁଦ୍ର ମଧ୍ୟରେ ବୁଡ଼ିଥିବା ପର୍ବତ, ମୈନାକ ପର୍ବତ ।

ମଘ—ପୁଂ. ବି. (ମହ୍+ଅ) ମଘଦେଶ-ବାସୀ ବ୍ୟକ୍ତିଗଣ, ଦ୍ୱୀପବିଶେଷ, ଦେଶ ବିଶେଷ, ପୁଷ୍ପବିଶେଷ, ଧନ, ସୁଖ, ପୂଜା, ପୁରସ୍କାର, ଉପହାର, ମଘା-ନକ୍ଷତ୍ର, (ଗ୍ରା.ବି) ବ୍ରହ୍ମଦେଶର ଆରା-କାନ ପ୍ରଦେଶ ଓ ତଦ୍ଦେଶବାସୀ ବ୍ୟକ୍ତି-ଗଣ, (ବିଂ) କୃପଣ ।

ମଘଦେଶ—ଗ୍ରା.ବି. ବ୍ରହ୍ମଦେଶୀୟ ଆରା-କାନ ପ୍ରଦେଶ ।

ମଘବତ୍ତୀ—ସ୍ତ୍ରୀ. ବି. ( ମଘବତ୍+ଈ ) ଇନ୍ଦ୍ରାଣୀ, ଶଚୀ ।

ମଘବା(ବାଃ)—ପୁଂ. ବି. ( ମହ୍+ଅନ୍. ଅସ୍) ଇନ୍ଦ୍ର, ଦେବରାଜ, ପେଚକ, ବ୍ୟାସଙ୍କ ନାମାନ୍ତର ।

ମଘବାଜିତ୍—ବି. ରାବଣର ପୁତ୍ର, ଇନ୍ଦ୍ର-ଜିତ, ମେଘନାଦ ।

ମଘବାନ୍—ପୁଂ.ବି.ଇନ୍ଦ୍ର, (ସ୍ତ୍ରୀ)ମଘୋନୀ ।

ମଘା—ସ୍ତ୍ରୀ. ବି. (ମହ୍+ଅ+ଆ) ଦଶମ ନକ୍ଷତ୍ରବିଶେଷ, ଔଷଧବିଶେଷ ।

ମଘାତ୍ରୟୋଦଶୀ—ସ୍ତ୍ରୀ.ବି. ମଘା ନକ୍ଷତ୍ର-ଯୁକ୍ତ ଭାଦ୍ରମାସର କୃଷ୍ଣତ୍ରୟୋଦଶୀ ।

ମଘାପଞ୍ଚମୀଯୋଗ—ବି. ପଞ୍ଚମୀ ତିଥି ଓ ମଘାନକ୍ଷତ୍ରର ମିଳନ; ଏହି ଯୋଗରେ ଶ୍ରୀ କ୍ଷେତ୍ରରେ ଜଗନ୍ନାଥଙ୍କୁ ଦର୍ଶନ କରି ଇନ୍ଦ୍ରଦ୍ୟୁମ୍ନରେ ପିଣ୍ଡଦାନ କଲେ ପିତୃ-ଗଣ ମୁକ୍ତିଲାଭ କରନ୍ତି ।

ମଘାଭବ—ବିଂ. (ମଘା+ଭୂ+କ.ଅ) ମଘା ନକ୍ଷତ୍ରଜାତ, (ବି) ଶୁକ୍ରାଚାର୍ଯ୍ୟ, ଶୁକ୍ରଗ୍ରହ ।

ମଘାଭୂ—ପୁଂ. ବି. ବିଂ. (ମଘା+ଭୂ+କ୍ୱିପ୍) ମଘାଭବ ଦେଖ ।

ମଘୀ—ସ୍ତ୍ରୀ.ବି. ଧାନ୍ୟଭେଦ, ଆଶୁଧାନ୍ୟ, (ବିଂ) ମଘଦେଶଜାତ (ଦ୍ରବ୍ୟ) ।

ମଘୋନୀ—ସ୍ତ୍ରୀ. ବି. ଇନ୍ଦ୍ରାଣୀ, ଶଚୀ ।

ମଙ୍କଣକ—ବି. ଋଷିବିଶେଷ ।

ମଙ୍କଲକ—ପୁଂ. ବି. ଋଷିବିଶେଷ, ମହା-ଭାରତୋକ୍ତ କୁରୁକ୍ଷେତ୍ରର ଦ୍ୱାରପାଳ ଯକ୍ଷବିଶେଷ ।

ମଙ୍କି—ପୁଂ.ବି. (ମଙ୍କ+ଇନ୍) ଧନେଚ୍ଛୁ, ବଣିକ୍‌ଭେଦ ।

ମଙ୍କିଲ—ପୁଂ.ବି.(ମଙ୍କ+କ.ଇଲ)ଦାବାଗ୍ନି

ମଙ୍କୁ—ପୁଂ. ବିଂ. ଚଳଦ୍ବୃତବିଶିଷ୍ଟ ।

ମଙ୍କୁର—ପୁଂ.ବି.(ମନ୍କ୍+ଉର)ମୁକୁର, ଦର୍ପଣ ।

ମଙ୍କ୍ଷଣ—କ୍ଳୀ.ବି.ଜଙ୍ଘାତ୍ରାଣ, ଗୋଡ଼ରେ ପିନ୍ଧାଯିବା ସାଞ୍ଜୁ ।

ମଙ୍କ୍ଷୁ—ଅବ୍ୟ. (ମନ୍ଖ୍ ବା ମସ୍ଜ୍+ଉ) ଭୃଶ, ଶୈଘ୍ର୍ୟ, ଦ୍ରୁତ, ସାତିଶୟ ମନୋରମ, ଶୀଘ୍ର ।

ମଙ୍ଖ—ବି.ଜନୈକ ବିଖ୍ୟାତ କବି, ଭଟ, ଏକ ଶ୍ରେଣୀର ଔଷଧ ।

ମଙ୍ଗ୍—ପ୍ରା. (ସମ୍ବ)ଅବ୍ୟ. ତନ୍ତ ।

ମଙ୍ଗ୍‌ନି—ପ୍ରା. (ସମ୍ବ)ବି. ଭିକ୍ଷୁକ ।

ମଙ୍ଗ୍‌ନିଆ—ପ୍ରା.(କଳାହାଣ୍ଡି)ବି. ମାଗନ୍ତା ଭିକ୍ଷୁକ ।

ମଙ୍ଗ୍‌ର—ପ୍ରା. (ବସ୍ତର)ବି. ମଲ୍ଲି ଫୁଲ ।

ମଙ୍ଗ—ପୁଂ.ବି. (ମନ୍‌ଗ୍+ଅ) ନୌକାର ଶିରୋଭାଗ, ଡଙ୍ଗାର ମଙ୍ଗ, ଜାହାଜର ପାର୍ଶ୍ୱ ।

ମଙ୍ଗତ୍ରଜ(ଜା)ନ୍—ସା.ବି.ନର୍ତ୍ତକୀ,ବେଶ୍ୟା

ମଙ୍ଗଧର—ଗ୍ରା. ବି. ନୌକାର ପଛ ମଙ୍ଗରେ ଲଗିଥିବା ନୌକାର ଗତିର ନିୟନ୍ତ୍ରୟାତ୍ମକ ଆହୁଲା, ମଙ୍ଗୁଆଳ, (ଲ.ଅ) ଚାଳକ ।

ମଙ୍ଗଧରିବା—ଗ୍ରା.କ୍ରି.ଡଙ୍ଗାର ପଛ ମଙ୍ଗର ଆହୁଲାକୁ ଧରି ଡଙ୍ଗାର ଗତିକୁ ନିୟ-ନ୍ତ୍ରିତ କରିବା ।

ମଙ୍ଗନ—ଗ୍ରା.ବି. ବିବାହର ପୂର୍ବ ଦିବସ, ମଙ୍ଗଳ କୃତ୍ୟ ।

ମଙ୍ଗନହାଣ୍ଡି—ଗ୍ରା.ବି.ମଙ୍ଗଳହାଣ୍ଡି ଦେଖ

ମଙ୍ଗର—ପ୍ରା.(ସମ୍ବ)ବି. ମଗର, କୁମ୍ଭୀର ।

ମଙ୍ଗରାଜ—ଗ୍ରା. ବି. ନିୟଣ୍ଡ ପ୍ରଣେତା, କେତେକ ରାଜାଙ୍କ ବଂଶଗତ ଉପାଧି-ବିଶେଷ, କ୍ଷତ୍ରିୟଙ୍କ ଉପାଧିବିଶେଷ ।

ମଙ୍ଗରାଜ—ପ୍ରା.(ବାଲେ)ବି. ଏକପ୍ରକାର ଚୂଡ଼ାଭଜା ବା ହୁଡ଼ୁମ୍ବ ।

ମଙ୍ଗଳ—ବି. (ମନ୍‌ଗ୍+ଅଳ)ସୌଭାଗ୍ୟ, ମାହାତ୍ମ୍ୟ ବିଷୟକ କାବ୍ୟ,ଅଭିପ୍ରେତାର୍ଥ ସିଦ୍ଧି, କୁଶଳ, କଲ୍ୟାଣ, ଶିବ, ଗ୍ରହ-ବିଶେଷ, ମଙ୍ଗଳବାର, ଦେବାଦିଙ୍କର ସ୍ତୁତି, (ବିଂ) ମଙ୍ଗଳବିଶିଷ୍ଟ, ଶୁଭକର ।

ମଙ୍ଗଳଆଳତି—ଗ୍ରା.ବି.ପ୍ରତିଦିନ ସକାଳେ ଦେବବିଗ୍ରହମାନଙ୍କର ନିଦ୍ରା ତ୍ୟାଗ-ସୂଚକ କରାଯିବା ଆରତି ବା ଦୀପାଦି ପ୍ରଦର୍ଶନ ଦ୍ୱାରା ପୂଜା ।

ମଙ୍ଗଳକର—ବିଂ. (ମଙ୍ଗଳ+କୃ+କ. ଅ) ଶୁଭକର ।

ମଙ୍ଗଳକର୍ମ—ବି. ବିବାହାଦି ଶୁଭକର୍ମ ।

ମଙ୍ଗଳକାମନା— ବିଂ. କୁଶଳପ୍ରାର୍ଥନା, ହିତାକାଙ୍କ୍ଷା ।

**ମଙ୍ଗଳକାମୀ**—ପୁଂ. ବିଂ. ହିତାକାଙ୍‌କ୍ଷୀ, କଲ୍ୟାଣପ୍ରାର୍ଥୀ, (ସ୍ତ୍ରୀ) ମଙ୍ଗଳକାମିନୀ ।

**ମଙ୍ଗଳକୁମ୍ଭ**—ବି. ବ୍ରତ ବିବାହାଦି ଶୁଭାନୁଷ୍ଠାନ ଉପଲକ୍ଷରେ ବେଦୀରେ ବା ଗୃହର ଦ୍ୱାରଦେଶରେ ସ୍ଥାପିତ ଜଳପୂର୍ଣ୍ଣ କଳଶ, ପୂର୍ଣ୍ଣକୁମ୍ଭ ।

**ମଙ୍ଗଳକୃତ୍ୟ**—ବି. ବିବାହ ।

**ମଙ୍ଗଳଗାନ**—ବି.ଶୁଭାନୁଷ୍ଠାନଉପଲକ୍ଷରେ ଗାନ କରାଯିବା ସଙ୍ଗୀତ ।

**ମଙ୍ଗଳଘଟ**—ବି. ଯେଉଁ ଜଳପୂର୍ଣ୍ଣ କଳଶକୁ ଦେବୀପୂଜା ଉପଲକ୍ଷରେ ସ୍ଥାପିତ କରି ଦେବୀମୂର୍ତ୍ତି କଳ୍ପନା ରୂପେ ପୂଜା କରାଯାଏ ।

**ମଙ୍ଗଳଚଣ୍ଡିଆ**—ଗ୍ରା. ବି. ଭିକ୍ଷା କରିବା ପାଇଁ ସରସ୍ୱତୀ ଠାକୁରାଣୀଙ୍କ ସଙ୍ଗରେ ଧରି ଗ୍ରାମେ ଗ୍ରାମେ ବୁଲୁଥିବା ମାଟିବଂଶ ଅବଧାନମାନେ ।

**ମଙ୍ଗଳଚଣ୍ଡିକା(ଚଣ୍ଡୀ)**—ସ୍ତ୍ରୀ. ବି. ଦୁର୍ଗା, ଭଗବତୀ, ଅଭୀଷ୍ଟ ସିଦ୍ଧ୍ୟର୍ଥ ମଙ୍ଗଳବାରରେ ସ୍ତ୍ରୀଲୋକମାନେ ଯେଉଁ ଚଣ୍ଡୀଙ୍କ ପୂଜା କରନ୍ତି,(ଗ୍ରା.ବି) ମାଟିବଂଶ ଜାହାଙ୍କମାନେ ଭିକ୍ଷା କରିବା ପାଇଁ ସଙ୍ଗରେ ଧରି ବୁଲିବା ସରସ୍ୱତୀ ଠାକୁରାଣୀଙ୍କ ମୂର୍ତ୍ତି ।

**ମଙ୍ଗଳଚିନ୍ତା**—ବି. ଶୁଭକାମନା ।

**ମଙ୍ଗଳଗୁଚ୍ଛ**—ପୁଂ.ବି. (ବି.ଗ୍ରା)ବଟବୃକ୍ଷ, ପ୍ଲକ୍ଷ ବୃକ୍ଷ ।

**ମଙ୍ଗଳଣ(ନ)**—ଗ୍ରା.ବି.ମଙ୍ଗୁଳିବା,ମଙ୍ଗଳାଚରଣ, ବିବାହାଦି ପୂର୍ବରୁ ଅନ୍ତ୍ୟ ସ୍ତ୍ରୀମାନଙ୍କ ଦ୍ୱାରା ଅନୁଷ୍ଠିତ ଦେବାରାଧନା ଓ ହାଣ୍ଡି ମଙ୍ଗୁଳାଆଦି, ଅଭିମନ୍ତ୍ରଣ ପୂଜାଧିବାସ ।

**ମଙ୍ଗଳତୂର୍ଯ୍ୟ**—କ୍ଲୀ. ବି. ମଙ୍ଗଳ କାର୍ଯ୍ୟ ନିମିତ୍ତ ବାଦ୍ୟଧ୍ୱନି ।

**ମଙ୍ଗଳଦର୍ଶନ**—ବି. ଶୁଭସୂଚକ ବସ୍ତୁର ଦର୍ଶନ, ଶୁଭଶକୁନ, (ପୁଂ.ବିଂ)ଯାହାକୁ ଦେଖିଲେ ଭାବୀ ମଙ୍ଗଳ ଘଟିବାର ସୂଚିତ ହୁଏ । [ ପ୍ରଦ ।

**ମଙ୍ଗଳଦାୟକ**—ବିଂ.ହିତକର, କଲ୍ୟାଣ-

**ମଙ୍ଗଳଧ୍ୱନି**—ପୁଂ. ବି. ବିବାହକାଳୀନ ହୁଳହୁଳି । [ ହିତକର ।

**ମଙ୍ଗଳନିଦାନ**—ବିଂ. ମଙ୍ଗଳଦାୟକ,

**ମଙ୍ଗଳନୀରାଜନ**--କ୍ଲୀ.ବି.ଭଗବଦାରତ୍ରିକ ।

**ମଙ୍ଗଳପତ୍ର**—କ୍ଲୀ. ବି. ମାଙ୍ଗଳିକ ପତ୍ର, କବଚାଦି ।

**ମଙ୍ଗଳପାକ**—ଗ୍ରା.ବି. ବିବାହାଦି ମଙ୍ଗଳକୃତ୍ୟର ପୂର୍ବଦିନ ରାନ୍ଧିବା ପାଇଁ କରାଯିବା ନୂଆହାଣ୍ଡି ଓ କୁଟୁମ୍ବାଦିଙ୍କୁ ଦିଆଯିବା ଅନ୍ନଭୋଜନ ।

**ମଙ୍ଗଳପାଠକ**—ପୁଂ. ବି. ବନ୍ଦୀ, ସ୍ତୁତିପାଠକ, ଭାଟ ।

**ମଙ୍ଗଳପାତ୍ର**—କ୍ଲୀ. ବି. ମାଙ୍ଗଳିକ ଦ୍ରବ୍ୟପୂର୍ଣ୍ଣ ପାତ୍ର, ମଙ୍ଗଳ ଡାଲା, ମଙ୍ଗଳଘଟ ।

**ମଙ୍ଗଳପୁଷ୍ପ**—କ୍ଲୀ. ବି. ପୁଷ୍ପମାଳା ।

**ମଙ୍ଗଳପ୍ରତିସର**—ପୁଂ. ବି. ମଙ୍ଗଳସୂତ୍ର ଦେଖ, ଯାହା ଦ୍ୱାରା କବଚ ବନ୍ଧାଯାଏ

**ମଙ୍ଗଳପ୍ରଦ**—ପୁଂ. ବିଂ. ମଙ୍ଗଳଦାତା; ଶୁଭକର, ହିତକର, (ବି) ହରିଦ୍ରା, ଶମୀବୃକ୍ଷ ।

**ମଙ୍ଗଳପ୍ରସ୍ଥ**—ପୁଂ. ବି. ଭାରତବର୍ଷୀୟ ଗୋଟିଏ ପର୍ବତ ।

**ମଙ୍ଗଳମୟ**—ବିଂ ସୁଖପୂର୍ଣ୍ଣ,କଲ୍ୟାଣକର, (ସ୍ତ୍ରୀ) ମଙ୍ଗଳମୟୀ, (ପୁଂ.ବି) ଭଗବାନ୍, ଈଶ୍ୱର ।

**ମଙ୍ଗଳବଚଃ**—କ୍ଲୀ. ବି. ମଙ୍ଗଳଜନକ ବାକ୍ୟ, ମାଙ୍ଗଳିକ ବାକ୍ୟ ।

**ମଙ୍ଗଳବାଦ**—ପୁଂ. ବି. ଆଶୀର୍ବାଦ ।

**ମଙ୍ଗଳବାଦୀ**—ପୁଂ.ବିଂ. (ମଙ୍ଗଳ+ବଦ୍+କ.ଇନ୍)ଯେ ମଙ୍ଗଳ ଗାନ କରେ, ଯେ ମଙ୍ଗଳ ବିଷୟ କହେ,(ସ୍ତ୍ରୀ)ବାଦିନୀ

**ମଙ୍ଗଳବାଦ୍ୟ**—କ୍ଲୀ.ବି.ଶୁଭାନୁଷ୍ଠାନ ଉପଲକ୍ଷ୍ୟରେ ବଜାଯିବା ବାଦ୍ୟ, ମଙ୍ଗଳ ସୂଚକ ବାଦ୍ୟ ।

**ମଙ୍ଗଳବାର**—ପୁଂ.ବି.ରବି ପ୍ରଭୃତି ସପ୍ତବାର ମଧ୍ୟରୁ ତୃତୀୟ ବାର, (ଗ୍ରା.ବି) • ମଙ୍ଗଳବାରରେ କରାଯିବା ବ୍ରତବିଶେଷ

**ମଙ୍ଗଳବୃଷଭ**—ପୁଂ. ବି. ଯେଉଁ ବୃଷଭ ଘରେ ଥିଲେ ଲୋକର ଉନ୍ନତି ହୁଏ ।

**ମଙ୍ଗଳଶବ୍ଦ**—ପୁଂ.ବି. ମଙ୍ଗଳଧ୍ୱନି, ଶୁଭଶବ୍ଦ ।

**ମଙ୍ଗଳଶଂସନ**—କ୍ଲୀ.ବି. ଶୁଭ ସସୂଚନ ।

**ମଙ୍ଗଳଶଂସୀ**—ପୁଂ.ବିଂ.ଶୁଭବାଦୀ, ଶୁଭସୂଚକ, (ସ୍ତ୍ରୀ) ମଙ୍ଗଳଶଂସିନୀ ।

**ମଙ୍ଗଳସମାଚାର**—ବି. ସୁସମାଚାର, ଶୁଭସମ୍ବାଦ, (ଗ୍ରା.ବି.ପାଦ୍ରିଙ୍କଭାଷା)ବାଇବଲ

**ମଙ୍ଗଳସନ୍ନିଧାନ**—ବି.ସ୍ୱସ୍ତିକ ଶ୍ରୀ ପ୍ରଭୃତି, ବରଣ ଡାଲାରେ ଦେୟ ମାଙ୍ଗଳ୍ୟ ଦ୍ରବ୍ୟମାନ ।

**ମଙ୍ଗଳସୂଚକ**—ବିଂ. ଯାହା ଭାବୀ ଶୁଭର ସୂଚନା କରେ ।

**ମଙ୍ଗଳସୂତ୍ର**—କ୍ଲୀ. ବି. ମଙ୍ଗଳମୟ ସୂତ୍ର, ପୂର୍ଣ୍ଣିମା ରାକ୍ଷୀବନ୍ଧନ ସୂତାର ତାର ଇତ୍ୟାଦି, ବିବାହରେ ବର କନ୍ୟାଙ୍କ ହାତରେ ବନ୍ଧାଯିବା ଅଷାଢୁଆ ସୂତା ।

**ମଙ୍ଗଳସ୍ନାନ**—କ୍ଲୀ. ବି. ମଙ୍ଗଳ ନିମିତ୍ତ ସ୍ନାନ, ସର୍ବୌଷଧି ସ୍ନାନ ପ୍ରଭୃତି, କୋଇଲି ବୁଡ଼ ।

**ମଙ୍ଗଳହାଣ୍ଡି**—ଗ୍ରା.ବି.ବିବାହ ବା ବ୍ରତାଦି ଉପଲକ୍ଷ୍ୟ ପାକ କରିବା ପାଇଁ ଅନୁକୂଳ କରାଯିବା ପ୍ରଥମ ପାଗ ହାଣ୍ଡି ।

**ମଙ୍ଗଳା**—ସ୍ତ୍ରୀ.ବି.(ମଙ୍ଗଳ+ଆ) ପାର୍ବତୀ, ଶୁକ୍ଳଦୂର୍ବା,ପତିବ୍ରତା ସ୍ତ୍ରୀ, କରଞ୍ଜଭେଦ, ହରିଦ୍ରା, ନୀଳଦୂର୍ବା, ଦୁର୍ଗା, (ଗ୍ରା.ବି) ବିବାହର ଏତେଦିନ ସଂଜ୍ଞା, (ଯଥା—ସାତମଙ୍ଗଳା) ମଙ୍ଗଳଚଣ୍ଡିକା ଦେଖ ।

**ମଙ୍ଗଳାକର**—ବିଂ.ମଙ୍ଗଳମୟ, କଲ୍ୟାଣମୟ, (ବି) ମଙ୍ଗଳର ନିଦାନ ।

**ମଙ୍ଗଳାକାଙ୍‌କ୍ଷା**—ବି(୬ତତ୍)ମଙ୍ଗଳକାମନା ଦେଖ । [ ଦେଖ ।

**ମଙ୍ଗଳାକାଙ୍‌କ୍ଷୀ**—ପୁଂ. ବିଂ. ମଙ୍ଗଳକାମୀ

**ମଙ୍ଗଳାଖୁଣ୍ଟ**—ଗ୍ରା. ବି. ମଙ୍ଗଳାଙ୍କୁ ପୂଜା କରିବା ପାଇଁ ସ୍ଥାପିତ ଖୁଣ୍ଟ ।

**ମଙ୍ଗଳାଗୁରୁ**—କ୍ଲୀ. ବି. ଅଗୁରୁ ଚତୁଷ୍ଟୟ ମଧ୍ୟରୁ ଅଗୁରୁବିଶେଷ ।

**ମଙ୍ଗଳାଘର**—ଗ୍ରା.ବି.ଶୂଦ୍ରମାନଙ୍କର ଗ୍ରାମଦେବତା ମନ୍ଦିର, ମଙ୍ଗଳା କୋଠି ।

**ମଙ୍ଗଳାଙ୍କ ଘଟ(ଣ୍ଟ)**—ଗ୍ରା. ବି, କାକଟ-

ପୁରରେ ମଙ୍ଗଳା ଠାକୁରାଣୀଙ୍କ ନିକଟରେ ପୂଜା ହୋଇଥିବା କ୍ଷୁଦ୍ର ଜଳଘଟ, ମଙ୍ଗଳାଠାକୁରାଣୀଙ୍କ ପ୍ରତିମୂର୍ତ୍ତି ।
ମଙ୍ଗଳାଚରଣ—କ୍ଲୀ.ବି. (କ.ଧା) କର୍ମାରମ୍ଭରେ ପ୍ରଥମଥରର ସ୍ତୁତିପାଠ,ମଙ୍ଗଳଜନକ କାର୍ଯ୍ୟର ଆଚରଣ,ଗ୍ରନ୍ଥାରମ୍ଭାଦି କାର୍ଯ୍ୟର ପ୍ରଥମ ବିଘ୍ନ ବିନାଶ ନିମିତ୍ତ କୌଣସି ଦେବ ଦେବୀ ସ୍ତୁତି ବା ବସ୍ତୁ ନିର୍ଦ୍ଦେଶପୂର୍ବକ ଶ୍ଳୋକାଦିର ରଚନ ।
ମଙ୍ଗଳାଗୁର—ପୁଂ. ବି. ଶୁଭକର ବାଧି, ଶୁଭାନୁଷ୍ଠାନ, ମଙ୍ଗଳାଚରଣ ଦେଖ ।
ମଙ୍ଗଳାତୋଦ୍ୟ—କ୍ଲୀ. ବି. ମଙ୍ଗଳତୂର୍ଯ୍ୟ, ମଙ୍ଗଳବାଦ୍ୟ ।
ମଙ୍ଗଳାଦେଶବୃତ୍ତି—ପୁଂ. ବି. ଯେଉଁମାନେ ମଙ୍ଗଳାଦି ଉପଦେଶରେ ଜୀବିକା ନିର୍ବାହ କରନ୍ତି ।
ମଙ୍ଗଳାମଙ୍ଗଳ—ବି.ଭଲମନ୍ଦ, ଶୁଭାଶୁଭ ।
ମଙ୍ଗଳାୟନ—ତ୍ରି.ବି. (ବ.ବ୍ରୀ) ମଙ୍ଗଳଗତିଯୁକ୍ତ, (ବି.କ.ଧା) ମଙ୍ଗଳଗତି ।
ମଙ୍ଗଳାରମ୍ଭ—ପୁଂ. ବି. ମଙ୍ଗଳଜନକ କାର୍ଯ୍ୟର ଆରମ୍ଭ,ଗଣେଶଙ୍କ ନାମାନ୍ତର
ମଙ୍ଗଳାରୋପଣ—ବି. ବିବାହ ବା ବ୍ରତ କର୍ମର ପ୍ରାରମ୍ଭିକ କର୍ମ, ଭୂମ୍ୟାଦି ମଙ୍ଗଳକ ଦ୍ରବ୍ୟ ଗ୍ରହଣପୂର୍ବକ କରାଯିବା ଶୁଭାନୁଷ୍ଠାନର ବୈଦିକ କର୍ମ ।
ମଙ୍ଗଳାଲମ୍ଭନ—କ୍ଲୀ.ବି. ଭୂମ୍ୟାଦି ମଙ୍ଗଳଜନକ ଦ୍ରବ୍ୟବିଶେଷର ସ୍ପର୍ଶ ।
ମଙ୍ଗଳାଳୟ—ପୁଂ. ବି. ମଙ୍ଗଳାବାସ, ନାରାୟଣ ।
ମଙ୍ଗଳାବଟ—କ୍ଲୀ. ବି. ତୀର୍ଥଭେଦ ।
ମଙ୍ଗଳାବ୍ରତ—କ୍ଲୀ.ବି. ଚୈତ୍ରମାସ ମଙ୍ଗଳବାରରେ ଅନୁଷ୍ଠିତ ସ୍ତ୍ରୀମାନଙ୍କର ବ୍ରତବିଶେଷ ।
ମଙ୍ଗଳାଷ୍ଟକ—ବି. ବିବାହ ବ୍ରତ ଓ ଶୁଭ ଯାତ୍ରାଦି ଅନୁଷ୍ଠାନରେ ମଙ୍ଗଳାଚରଣ ରୂପ ବୋଲାଯିବା ଆଠୋଟି ଶ୍ଳୋକ ।
ମଙ୍ଗଳାହ୍ନିକ—ବି.ମଙ୍ଗଳ ନିମିତ୍ତ ପ୍ରତ୍ୟହ କର୍ତ୍ତବ୍ୟ ଅନୁଷ୍ଠେୟ କାର୍ଯ୍ୟ ।
ମଙ୍ଗ(ଙ୍ଗ୍)ଳିବା—ଗ୍ରା. କ୍ରି.ମଙ୍ଗଳାନୁଷ୍ଠାନ କରିବା ।
ମଙ୍ଗଳୀୟ—ତ୍ରି.ବିଂ. ମଙ୍ଗଳସମ୍ବନ୍ଧୀୟ ।
ମଙ୍ଗଳୋତ୍ସବ—ବି. ଶୁଭପର୍ବ, ଶୁଭାନୁଷ୍ଠାନ ।
ମଙ୍ଗଳ୍ୟ—ବିଂ. (ମଙ୍ଗଳ+ଯ) ଶୁଭକର, ମଙ୍ଗଳଜନକ, ରୁଚିର, ସାଧୁ, ସୁନ୍ଦର, (ସ୍ତ୍ରୀ) ମଙ୍ଗଳ୍ୟା, (ବି) ତ୍ରାୟମାଣା. ଅଶ୍ୱତ୍ଥ, ବିଲ୍ୱ, ମସୂରକ, ଜୀବକ,ନାରିକେଳ, କପିତ୍ଥ, ରିଠାଫଳ, ଜୀବନାମକ ଶାକ, ଦଧି, ଚନ୍ଦନ, ମଙ୍ଗଳାଗୁରୁ,ସ୍ୱର୍ଣ୍ଣ, ସିନ୍ଦୂର, ଖଇଡ଼, ନଡ଼ିଆଗଛ, ଗୋରୋଚନାଦି ।
ମଙ୍ଗଲ୍ୟକ—ପୁଂ.ବି. ମସୂରଡାଲି ।
ମଙ୍ଗଳ୍ୟକୁସୁମା—ସ୍ତ୍ରୀ.ବି. ଶଙ୍ଖପୁଷ୍ପୀ ।
ମଙ୍ଗଳ୍ୟନାମଧେୟା—ସ୍ତ୍ରୀ.ବି. ଜୀବନ୍ତୀ ।
ମଙ୍ଗଳ୍ୟବସ୍ତୁ—କ୍ଲୀ.ବି. ଦର୍ପଣାଦି ମଙ୍ଗଳଜନକ ପଦାର୍ଥ ।
ମଙ୍ଗଳ୍ୟା—ସ୍ତ୍ରୀ.ବି.(ମଙ୍ଗଳ୍ୟ+ଆ)ମଲ୍ଲିକା, ଗନ୍ଧଯୁକ୍ତ ଅଗୁରୁ,ଶମୀ,ଅଧଃପୁଷ୍ପୀ,ମସୀ. ଶୁକ୍ଳବଚ, ରୋଚନା,ପ୍ରିୟଙ୍ଗୁ, ଶଙ୍ଖପୁଷ୍ପୀ, ମାଷପର୍ଣ୍ଣୀ, ଜୀବନ୍ତୀ, ଋଦ୍ଧି, ବଚ, ହରିଦ୍ରା, ଦୂର୍ବା, ଦୁର୍ଗା, ଗୋରୋଚନା
ମଙ୍ଗଳ୍ୟାଗୁରୁ—ବି. କେଦାର ଖଣ୍ଡରେ ଉତ୍ପନ୍ନ ଅଗୁରୁବିଶେଷ ।
ମଙ୍ଗା—ଗ୍ରା. ବି. ମଙ୍ଗାମଙ୍ଗି ଦେଖ, ବନ୍ୟବୃକ୍ଷବିଶେଷ, ଜନ୍ତୁ ଶିକାରପାଇଁ କରାଯାଇଥିବା ଖାଡ଼ ବା ମଞ୍ଚା ।
ମଙ୍ଗା(ଙ୍ଗୋ)ଇବା—ଗ୍ରା.କ୍ରି. ମନାଇବା, ପ୍ରବର୍ତ୍ତାଇବା, ପ୍ରସନ୍ନ କରିବା ।
ମଙ୍ଗାମଙ୍ଗି—ଗ୍ରା.ବି. ସମ୍ମତି, ରାଜିହେବା, ରାଜିକରିବା ।
ମଙ୍ଗିବା—ଗ୍ରା.କ୍ରି. ସମ୍ମତ ହେବା, ମାନିବା
ମଙ୍ଗିନୀ—ସ୍ତ୍ରୀ. ବି. ( ମଙ୍ଗ୍+ଇନ୍+ଈ ) ନୌକା, ଡଙ୍ଗା । [ ସଂସ୍କୃତ ।
ମଙ୍ଗୁ—ଗ୍ରା.ପୁଂ.ବିଂ. ଯେ ରାଜୀ ହୁଏ,
ମଙ୍ଗୁଆଳ—ଗ୍ରା. ବିଂ. ଯେଉଁ ନାଉରି ନୌକାର ମଙ୍ଗ ଧରିଥାଏ, ମଙ୍ଗଧରା ।
ମଙ୍ଗ୍ମଠ—ଗ୍ରା.ବି. ପୁରୀରେ ଥିବା ଶିଖମାନଙ୍କ ମଠ ।
ମଙ୍ଗୁଳା—ଗ୍ରା.ବିଂ. ମଙ୍ଗଳଣ ସମ୍ପାଦିତ ହୋଇଥିବା (ବର, କନ୍ୟା, ହାଣ୍ଡି ଓ ଦେବତା) ।
ମଙ୍ଗୁଳି—ଗ୍ରା.ପୁଂ.ବିଂ.ଶୁଭଦର୍ଶନ(ବ୍ୟକ୍ତି), (ସ୍ତ୍ରୀ) ମଙ୍ଗୁଳୀ ।
ମଙ୍ଗୁଳିବା—ଗ୍ରା.କ୍ରି. ବିବାହ ଓ ବ୍ରତାଦି ଶୁଭାନୁଷ୍ଠାନ ପୂର୍ବରୁ ଗ୍ରାମ ଦେବତା ପୂଜା ଓ ହାଣ୍ଡି ମଙ୍ଗୁଳା ଆଦି ସ୍ତ୍ରୀମାନେ ମଙ୍ଗଳାଚାରର ଅନୁଷ୍ଠାନ କରିବା,(ଲ.ଅର୍ଥ) ଅଶୁଭ ଅବସ୍ଥାରେ ଛୁଇଁବା ।
ମଙ୍ଗ୍ରା—ଗ୍ରା.(ସମ୍ବ)ବିଂ. ମାଗୁଣିଆ ।
ମଚ୍ମଚ୍—ଗ୍ରା. ଅବ୍ୟ. କୋମଳ ବସ୍ତୁ ଚେପିଦେବାର ବା କୋତା ମଡ଼ାର ଶବ୍ଦ । [ ପଟୋଳବୃକ୍ଷ ।
ମଚକଗୃତମା—ସ୍ତ୍ରୀ. ବି. ଗୁଳ୍ମଭେଦ,
ମଚକା—ଗ୍ରା.ବିଂ. ଋଟକା, ଭଙ୍ଗପ୍ରବଣ (ବୃକ୍ଷାଦି) ।
ମଚକିବା—ଗ୍ରା.କ୍ରି.ମୋଡ଼ି ହୋଇଯିବା, ଈଷତ୍ ଭାଙ୍ଗିବା,ମଚ୍ମଚ୍ ଶବ୍ଦ କରିବା, ଅଳ୍ପ ଫାଟିବା ।
ମଚଳା—ଗ୍ରା.ବି. ଝୁଣ୍ଟିଲ କୁଣ୍ଡିଆ,ବାଇଶିରୋଗ, କୋଷ ବା କୋଡ଼ ମଧ୍ୟରେ ବା ଲିଙ୍ଗମୂଳରେ ହେବା ବନ୍ଧୁରୋଗ, ମେଦଳା ।
ମଚୁ—ଗ୍ରା.(ସମ୍ବ)ବି. ଗୁଳଘର ଭିତରେ କରାଯିବା ଭାଡ଼ି ।
ମଚୁନ—ଗ୍ରା.ବି. ମଞ୍ଚା ।
ମଚୁଆ—ଗ୍ରା.ବି. ଖଟର ଦଣ୍ଡା ।
ମଚ୍ଛ—ପୁଂ.ବି. (ମଦ୍+କ.ଣ) ମତ୍ସ୍ୟ,ମାଛ
ମଚ୍ଛଲ—ଗ୍ରା.ବିଂ. ବତ୍ସଳ ।
ମଚ୍ଛଡ଼—ପ୍ରା.(ବମ୍ବେ)ବି. ମଶା ।
ମଚ୍ଛଡ଼ଦାନ—ପ୍ରା.(ବମ୍ବେ)ବି. ମଶାରି ।
ମଜ୍ଜୁ—ଗ୍ରା.ବି,ପଣ୍ୟାର୍ଥ ରକ୍ଷିତ ବସ୍ତୁଆଦିର ନମୁନା ।
ମଜ୍କୁର—ଯା. ବିଂ. ପୂର୍ବକଥିତ, ପୂର୍ବକଥିତ, ଉକ୍ତ, ସେହି ।
ମଜ୍କୁରି—ଯା.ବିଂ. ଯେଉଁ ଜମିର ରାଜସ୍ୱ ନିଜେ ଜମିଦାର ବା ଗଭର୍ଣ୍ମେଣ୍ଟ ଅସୁଲ କରନ୍ତି ।

ମଜବୁ(ଭୁ)ତ୍—ଯା. ବି°. ଦୃଢ଼, କଠିନ, ଦୃଢ଼, ବଳବାନ୍, ଦକ୍ଷ, ପଟୁ ।

ମଜ୍‌ବୁତିଆ—ଗ୍ରା.ବି°. ମଜ୍‌ବୁତ୍ ଦେଖ ।

ମଜ୍‌ବୁତି—ଯା.ବି. ଦୃଢ଼ତା, କାଠିନ୍ୟ, ପଟୁତା । [ ଅତର ।

ମଜ୍‌ମୁଁ(ମୋ)ଆ—ଯା. ବି. ଏକପ୍ରକାର

ମଜ୍‌ମୁନ୍—ଯା.ବି. ମର୍ମ, ଲେଖାଯାଇଥିବା ବିଷୟର ସାରାଂଶ ।

ମଜ୍‌ରା—ଯା.ବି. ଆଳସ୍ୟ, ଶ୍ରାନ୍ତ, କ୍ଳାନ୍ତ, (ବି°) ଶ୍ରାନ୍ତ, କ୍ଳାନ୍ତ ।

ମଜ୍‌ଲ୍(ଲ)—ଯା. ବି. ଦିନକର ଗ୍ରମଣ ବାଟ, ଭ୍ରମଣ ।

ମଜ୍‌ଲ(ଲି)ମୁଣ୍ଡ—ଗ୍ରା.ବି. ଆରବ୍ଧ କର୍ମର ସମାପ୍ତି, ଭ୍ରମଣର ଶେଷସୀମା ।

ମଜଲ(ଲି)ସ୍—ଯା.ବି.ସଭ୍ୟ ସମ୍ମେଳନ, ସଭା,ଦରବାର,ପାରସ୍ୟର ରାଜସଭା, ଆମୋଦପ୍ରମୋଦ ।

ମଜ୍‌ଲସୀ—ଯା.ବି°. ସଭାର ଯୋଗ୍ୟ, ସଭାକୁ ଆହ୍ୱାନଯୋଗ୍ୟ ।

ମଜ୍(ଝ)ଲି—ଗ୍ରା.ବି.ମାର୍ଗମଧ୍ୟସ୍ଥ ପାନ୍ଥନିବାସ

ମଜହର—ଯା.ପୁଂ.ବି. ଆପତ୍ତିକାରୀ ବ୍ୟକ୍ତି ।

ମଜହର(ରି)ଲ—ଗ୍ରା.ବି. ଆପତ୍ତିକାରୀର ସ୍ୱପକ୍ଷ ପକ୍ଷ ।

ମଜା—ଗ୍ରା.ବି. ମାଜିବା, ମାର୍ଜନ କରିବା, (ବି°) ମର୍ଜିତ, ମଜା ହୋଇଥିବା, ମଗ୍ନ (ଯା.ବି) ମଉଜ, ସୁଖ, ଆନନ୍ଦ, ସୁଖ-ଭୋଗ, ତାମସା, ନିଶ୍ଚିନ୍ତତା, ଖାଦ୍ୟରେ ରୁଚି, ଥଟ୍ଟା, ପରିହାସ ।

ମଜାକ୍—ଯା. ବି. ମଜା, ମଉଜ, ସୁଖ, ଥଟ୍ଟା ।

ମଜାକରିବା—ଗ୍ରା.କ୍ରି. ମଉଜ କରିବା, ଇନ୍ଦ୍ରିୟାଦିଜନିତ ସୁଖ ଭୋଗକରିବା, ଥଟ୍ଟା କରିବା ।

ମଜାଟାଦେଖିବା—ଗ୍ରା. କ୍ରି. କୌତୁକ ଦେଖିବା,ସୁକଷ୍ଟ ବା ଦୁର୍ଦ୍ଦଶା ଦେଖିବା

ମଜାଦାର୍—ଯା.ବି°.ସ୍ୱାଦୁ, ଆସ୍ୱାଦଯୁକ୍ତ, ଆମୋଦଜନକ, କୌତୁକପ୍ରଦ ।

ମଜାଦେଖିବା—ଗ୍ରା.କ୍ରି. କୌତୁକ ବା ରଙ୍ଗ ଦେଖିବା, କୌଣସି ବ୍ୟକ୍ତିର ସୁକଷ୍ଟ ବା ଦୁର୍ଦ୍ଦଶା ଦେଖିବା ।

ମଜାନିକଳିଯିବା ବା ବାହାରିଯିବା—ଗ୍ରା. ବି. କୌଣସି କାର୍ଯ୍ୟର କୁଫଳ ଭୋଗ କରିବା, ଅନୁଭୂତ, ସୁଖ ଓ ଶାନ୍ତିର ଲୋପ । [ କ୍ରିୟା ।

ମଜାମଜି—ଗ୍ରା.ବି. ଉତ୍ତମରୂପେ ମାଜିବା

ମଜି(ଜ୍ଜି)ବା—ଗ୍ରା.କ୍ରି.ମଗ୍ନହେବା,ବୁଡ଼ିବା, ନିମଜ୍ଜିତ ହେବା, ଆସକ୍ତହେବା, ମୁଗ୍ଧ-ହେବା ।

ମଜୁତ(ଦ୍)—ଯା.ବି°. ଜମା, ବିଦ୍ୟମାନ, ପ୍ରସ୍ତୁତ, ସଞ୍ଚିତ, ନଗଦ, (ବି) ନଗଦ ଧନ । [ ଥିବା ।

ମଜୁଦ୍ଧ(ଦ)—ଯା.ବି°.ସଞ୍ଚିତ ରଖାଯାଇ-

ମଜୁମ୍—ଯା. ବି°. ବଳବନ୍ତ ।

ମଜୁମ୍‌ଦାର୍—ଯା. ବି. ବାଦସାହୀ ଅମଳରେ ଯେ ରାଜସ୍ୱ ସମ୍ବନ୍ଧୀୟ ହିସାବ ରଖେ, ( ଗ୍ରା.ବି ) ବଙ୍ଗୀୟ ବ୍ରାହ୍ମଣଙ୍କ ଉପାଧିବିଶେଷ ।

ମଜମୁନ୍—ଯା.ବି. ମସୁଦା,ଚଠା,ଆଲୋଚିତ ବା ଲିଖିତ ବିଷୟ । [ ମୂଲିଆ ।

ମଜୁର୍—ଯା. ବି. ସାମାନ୍ୟ ଶ୍ରମଜୀବୀ ।

ମଜୁରା—ଯା. ବି. ପରିଶୋଧ, ଭଣ୍ଡା ଦେବା, (ଗ୍ରା.ବି) ରାଜାଙ୍କୁ କରାଯିବା ପ୍ରଣାମ ବା ଅଭିବାଦନ ।

ମଜୁରି—ଯା.ବି. ଦୈନିକ ବେତନ,ମୂଲ, ପାରିଶ୍ରମିକ ।

ମଜୁରିଆ—ଯା. ବି. ମୂଲିଆ ।

ମଜୁରିଦାର୍—ଯା.ବି. ଦୈନିକ ବେତନ-ଭୋଗୀ ଶ୍ରମଜୀବୀ ମୂଲିଆ । [ ଜାତି ।

ମଜୁସି—ଗ୍ରା. ବି. ଅଗ୍ନି ଉପାସକ ପାରସୀ

ମଜେଜା—ଯା.ବି. ପଯ୍ୟଗମ୍ବରଙ୍କର ଅସାଧାରଣ କ୍ଷମତାଜନିତ କାର୍ଯ୍ୟମାନ, କରାମତ୍ତି । [ ଅସ୍ଥି ।

ମଜ୍ଜକୃତ୍—କ୍ଲୀ. ବି. (ମଜ୍ଜ + କୃ + କ୍ୱିପ୍)

ମଜ୍ଜଥୁ—ପୁଂ. ବି. (ମସ୍‌ଜ୍ + ଅଥୁ) ମଜ୍ଜନ ଦେଖ ।

ମଜ୍ଜନ—କ୍ଲୀ. ବି. ( ମସ୍‌ଜ୍ + ଭା.ଅନ ) ଅବଗାହନ, ସ୍ନାନ, ଉବୁଡ଼ିବା, ମଜ୍ଜା, ଅସ୍ଥିସାର ।

ମଜ୍ଜନୋନ୍ମୁଖ—ପୁଂ. ବି°. (୬ତତ୍ତ୍) ଯେ ବୁଡ଼ିଯାଇଅଛି ।

ମଜ୍ଜଫଳ—ବି. ମଜୁଫଳ ।

ମଜ୍ଜୟିତା—ପୁଂ. ବି°. ମଜ୍ଜନକାରୀ, (ସ୍ତ୍ରୀ) ମଜ୍ଜୟିତ୍ରୀ ।

ମଜ୍ଜସ୍—କ୍ଲୀ. ବି. ମଜ୍ଜା ।

ମଜ୍ଜସମୁଦ୍ଭବ—କ୍ଲୀ. ବି. ଶୁକ୍ର, ରେତଃ ।

ମଜ୍ଜା—ସ୍ତ୍ରୀ.ବି. (ମସ୍‌ଜ୍ + ଅ + ଆ) ଅସ୍ଥି-ସାର, ହାଡ଼ରସା, ବୃକ୍ଷର ସାର, ବୃକ୍ଷର ମଞ୍ଜ, ( ଗ୍ରା.ବି-ଲ.ଅର୍ଥ ) ଅନ୍ତଃସ୍ଥଳ, ହୃଦୟ, ଅନ୍ତଃକରଣ, ମନ, ଇଚ୍ଛା, ମନୋଗତ ଭାବ, (ଯା.ବି) ସୁଖ, ସୁଖ-ଭୋଗ, ଆନନ୍ଦ, କୌତୁକ ।

ମଜ୍ଜାଗତ—ବି°. (୨ତତ୍) ଅନ୍ତର୍ନିହିତ, ଶରୀରର ଧାତୁଗତ, ଦୃଢ଼ସମ୍ବନ୍ଧ ।

ମଜ୍ଜାଜ—ପୁଂ. ବି. ଭୂମିଜ, ଗୁଗ୍ଗୁଳୁ ।

ମଜ୍ଜାନ—କ୍ଲୀ. ବି. ବୁଡ଼ିବା, ମଜ୍ଜନ ।

ମଜ୍ଜାମେହ—ପୁଂ. ବି. ମଜ୍ଜାଗତ ପ୍ରମେହ, ପ୍ରମେହ ଭେଦ ।

ମଜ୍ଜାରଜଃ—ପୁଂ. ବି.ଗୁଗ୍ଗୁଳୁ । [ ଶୁକ୍ର ।

ମଜ୍ଜାରସ—ପୁଂ. ବି. (୬ତତ୍) ରେତଃ,

ମଜ୍ଜାବହସ୍ରୋତ—ପୁଂ. ବି. ମଜ୍ଜାଧାତୁ-ବାହକ ନାଡ଼ୀ ।

ମଜ୍ଜାସାର—କ୍ଲୀ. ବି. (ବ.ବ୍ରୀ) ଜାଡ଼ିଫଳ, ଜାଇଫଳ ।

ମଜ୍ଜିକା—ସ୍ତ୍ରୀ.ବି.ଲକ୍ଷଣାମୂଳ, ବକସ୍ତ୍ରୀ, ବକ୍ଷୀ

ମଜ୍ଜିତ—ବି°. (ମଜ୍ଜ + କ.ତ) ମଗ୍ନ ।

ମଜ୍ଜିବା—ଗ୍ରା. କ୍ରି. ମଜିବା ଦେଖ ।

ମଜ୍ଜୁକ—ତ୍ରି.ବି°. ମଜ୍ଜନଶୀଳ,(ବି)ମଣ୍ଡୁକ

ମଝ୍‌ଲି—ଗ୍ରା. (ସମ୍ବ) ବି°. ମଝିଭଳି, ଦୁଇ-ଶ୍ରେଣୀର ମଧ୍ୟସ୍ଥାନୀୟ ।

ମଝ୍‌ଲ—ଗ୍ରା. ବି°.ମଝିରେ ସ୍ଥିତ,ମଝିଆଁ, ମଝିଭଳି,ବଡ଼ ନୁହେଁ କି ସାନ ନୁହେଁ ।

ମଝା—ଗ୍ରା. ବି. ମଧ୍ୟଭାଗ, କଟି ।

ମଝାମଝି—ଗ୍ରା. କ୍ରି. ବି°. ମଧ୍ୟସ୍ଥଳରେ, ମଝିଭଳିଆ, ମଝିବାଟରେ ।

ମଝାଲ—ଗ୍ରା. ବି°. ମଝିଭଳି, ( ଗ୍ରା.ବି ) ମଧ୍ୟସ୍ଥାନ, ମଧ୍ୟସ୍ଥଳ ।

ମଝାଲି—ପ୍ରା. ( ବାଲେ ) ବ. ଯୋଡ଼ର ପଲଣଦ୍ୱୟର ମଝିରେ ଥିବା ଦଉଡ଼ି ।
ମଝି—ଗ୍ରା.ବ. ମଧ୍ୟଭାଗ, ମଧ୍ୟସ୍ଥଳରେ ଥିବ ବ୍ୟକ୍ତି, (ବିଂ) ମଧ୍ୟଭାଗରେ ସ୍ଥିତ,ମଝିରେ ଥିବା । [ ମାଝି ।
ମଝିଆ—ପ୍ରା. (ସମ୍ବ) ବ. କେଉଟଜାତି,
ମଝିଆଁ—ଗ୍ରା.ବିଂ. ମଧ୍ୟମ, ଜ୍ୟେଷ୍ଠ ଓ କନିଷ୍ଠର ମଧ୍ୟବର୍ତ୍ତୀ ।
ମଝିଆଁଣୀ—ଗ୍ରା.ସ୍ତ୍ରୀ.ବିଂ.ମଝିଆଁ ର ସ୍ତ୍ରୀଲିଙ୍ଗ
ମଝିଘର—ଗ୍ରା.ବ. ଦୁଇଘରର ମଝିରେ ଥିବା ଘର ।
ମଝିତନ—ଗ୍ରା.ବିଂ. ମଧ୍ୟସ୍ଥ ।
ମଝିଦାଣ୍ଡ—ଗ୍ରା.ବ. ଦାଣ୍ଡର ମଧ୍ୟଭାଗ ।
ମଝିନଇ—ଗ୍ରା.ବ. ନଦୀର ମଧ୍ୟସ୍ଥଳ ।
ମଝିମଝିକା—ଗ୍ରା. ବିଂ. ମଧ୍ୟଭାଗସ୍ଥିତ, ମଧ୍ୟସ୍ଥ ।
ମଞ୍ଚ—ପୁଂ.ବ. (ମନ୍ଚ୍+ଅ) ଖଟ,ଖଟ୍ୱା, ଭାଡ଼, ଉନ୍ନତ ସ୍ଥାନ, କର୍ଣ୍ଣିକଣ, ଉଚ୍ଚ ମଣ୍ଡପବିଶେଷ, ମଞ୍ଚା,ପର୍ଯ୍ୟଙ୍କ, (ଗ୍ରା.ବ) ମର୍ତ୍ତ୍ୟଲୋକ, ପୃଥିବୀ ।
ମଞ୍ଚକ—ପୁଂ.ବ. ମଞ୍ଚ ଦେଖ ।
ମଞ୍ଚକାଶ୍ରୟ—ପୁଂ. ବ. (ବ.ଗ୍ରା) ମତ୍କୁଣ, ଘୁଣପୋକ, ଉଡ଼ୁଣ, ଶଯ୍ୟାକୀଟ ।
ମଞ୍ଚଖଣ୍ଡ—ଗ୍ରା.ବ. ମର୍ତ୍ତ୍ୟମଣ୍ଡଳ,ପୃଥିବୀ ।
ମଞ୍ଚପୁର(ପୀ)—ଗ୍ରା.ବ. ମର୍ତ୍ତ୍ୟମଣ୍ଡଳ,ପୃଥିବୀ
ମଞ୍ଚମଣ୍ଡପ—ପୁଂ.ବ.କୁମା,କୁଡ଼ିଆ,ଶସ୍ୟାଦି ଜଗିବାର କୁଟୀର ।
ମଞ୍ଚା—ଗ୍ରା. ବ. ଭାଡ଼, ଫସଲ ଜଗିବାର କୁମା, ଶିକାର କରିବାର ମଞ୍ଚା ।
ମଞ୍ଚାଇବା—ଗ୍ରା.କ୍ରି. ହିନ୍ଦୋଳାଇବା, ଉତ୍ତେଜିତ କରିବା, ମତାଇବା ।
ମଞ୍ଚାଳନ—ଗ୍ରା.ବ.(ସଂ-ମର୍ଦ୍ଦନ)ସମ୍ବାହନ, ଘଷିବା, ଚପିବା, ମର୍ଦ୍ଦନ ।
ମଞ୍ଚାଳିବା—ଗ୍ରା.କ୍ରି. (ପାଦ) ଘଷିବା, ମର୍ଦ୍ଦିବା, ଚପିବା ।
ମଞ୍ଜ—ଗ୍ରା.ବ. ବୃକ୍ଷାଦି ଓ କାଷ୍ଠାଦିର ସାରଭାଗ, କଦଳୀ ଗଛର ଗଣ୍ଡିର ମଧ୍ୟଭାଗ ।
ମଞ୍ଜଖାଲାମାରିବା--ଗ୍ରା.ବ.ଧାନଗଛଆଦିର ମଞ୍ଜ ଶୁଖିଯିବା ଏକପ୍ରକାର ରୋଗ ।
ମଞ୍ଜନ—କ୍ଲୀ. ବ. ( ମନ୍ଜ୍+ଭା.ଅନ ) ମାର୍ଜନ, ଘର୍ଷଣ, ମଜା ।
ମଞ୍ଜର—କ୍ଲୀ.ବ.ମୁକ୍ତା,ତିଳକବୃକ୍ଷ, ବଲ୍ଲୀ ।
ମଞ୍ଜରୀ—ଗ୍ରା.ବ. ବାଦ୍ୟବିଶେଷ, ଝାଞ୍ଜ ।
ମଞ୍ଜରି(ରୀ)—ସ୍ତ୍ରୀ. ବ. (ମଞ୍ଜ+ର+ଇ) ବଲ୍ଲରୀ, ଅଙ୍କୁର, ମୁକୁଳ, ଡ଼ଙ୍କ, ଝାଡ଼, ମୁକ୍ତା, ତିଳକବୃକ୍ଷ, ଲତା କଢ଼ି, ଫୁଲ ବା ଶସ୍ୟର କେଣ୍ଡା, (ଗ୍ରା.ବ) ପାଦର ଅଳଙ୍କାରବିଶେଷ, ଘାଗୁଡ଼ି ।
ମଞ୍ଜରିକା—ସ୍ତ୍ରୀ.ବ.ମଞ୍ଜରି ଦେଖ ।
ମଞ୍ଜରିତ—କ୍ରି.ବିଂ. ( ମଞ୍ଜରି+କ.ତ ) ମୁକୁଳିତ, ଅଙ୍କୁରିତ ।
ମଞ୍ଜରିବା—ଗ୍ରା.(ପଦ୍ୟ)କ୍ରି. କଅଁଳିବା, ଗଜୁରିବା ।
ମଞ୍ଜରୀକ—ବ. ଗନ୍ଧତୁଳସୀ, ମୁକ୍ତା,ତିଳକବୃକ୍ଷ, ତୁଳସୀ, ବେତସ ଲତା,ଅଶୋକ ବୃକ୍ଷ ।
ମଞ୍ଜରୀନମ୍ର—ପୁଂ.ବ. ବେତସ ବୃକ୍ଷ ।
ମଞ୍ଜା—ସ୍ତ୍ରୀ.ବ. (ମନ୍ଜ୍+ଅ+ଆ)ଛାଗୀ, ମାଇଛେଳି, ମଞ୍ଜରୀ, (ଗ୍ରା.ବ) କଦଳୀ ବୃକ୍ଷର ମଧ୍ୟସ୍ଥ ସାରାଂଶ ।
ମଞ୍ଜାସି—ପୁଂ.ବ. ବରଗଡ଼,ବଲଇ ।
ମଞ୍ଜି—ପୁଂ.ବ.(ମନ୍ଜ୍+ଇ)ପଲ୍ଲବାଙ୍କୁର, ମଞ୍ଜରୀ, ବୀଜ, ( ଗ୍ରା.ବ ) ଫଳମଧ୍ୟସ୍ଥ ବୀଜ, ବିହନ, ଅଣ୍ଡକୋଷ, ମାଛଡ଼ିମ୍ବ, ବ୍ରଣମଧ୍ୟସ୍ଥ ପୂୟମୟ କଠିନ କୀଳକ, (ଲ.ଅର୍ଥ)କଥାର ଗୁପ୍ତମର୍ମ,ମୂଳକାରଣ, ମୂଳଯନ୍ତ୍ର ।
ମଞ୍ଜିଆ—ଗ୍ରା.ବିଂ. ବୀଜଯୁକ୍ତ, ଭେଜକ, ବେଶି ପରିମାଣରେ ମଞ୍ଜିଥିବା (ଫଳ) ।
ମଞ୍ଜିକା —ସ୍ତ୍ରୀ. ବ. ( ମଞ୍ଜ+ଇକ+ଆ ) ଗଣିକା, ବେଶ୍ୟା, (ଗ୍ରା.ବ) ସ୍ତର ବା ଧାଡ଼ି ।
ମଞ୍ଜିଫଳା—ସ୍ତ୍ରୀ.ବ. କଦଳୀ ।
ମଞ୍ଜିବା—ଗ୍ରା.କ୍ରି.ଘୋର ଅରଣ୍ୟ ମଧ୍ୟରେ ପଶିଯିବା ।
ମଞ୍ଜିମା—ବ. (ମଞ୍ଜୁ+ଭା.ଇମନ୍)ମନୋଜ୍ଞତା, ମଞ୍ଜୁଲତା, ସୌନ୍ଦର୍ଯ୍ୟ ।
ମଞ୍ଜିଲ—ବ. ଧାନ୍ୟକ୍ଷେତ୍ରଦ୍ୱୟର ମଧ୍ୟବର୍ତ୍ତୀ ପଥ, ଅଟ୍ଟାଳିକା,ଘର ।
ମଞ୍ଜିଷ୍ଠା—ସ୍ତ୍ରୀ.ବ. (ମଞ୍ଜୁ+ସ୍ଥା+ଅ+ଆ) ସ୍ୱନାମଖ୍ୟାତ ରକ୍ତବର୍ଣ୍ଣ ଲତାବିଶେଷ, ଅଳତା । [ ଭେଦ ।
ମଞ୍ଜିଷ୍ଠାମେହ—ପୁଂ.ବ.ପିତ୍ତଜ ପ୍ରମେହ-
ମଞ୍ଜୀ—ସ୍ତ୍ରୀ.ବ.(ମଞ୍ଜି+ଈନ୍) ମଞ୍ଜି ଦେଖ
ମଞ୍ଜୀର—ବ. (ମନ୍ଜ୍+ଈର) ନୂପୁର, ମନ୍ଥନ ଦଣ୍ଡ, ରଜ୍ଜୁ, ବନ୍ଧନାର୍ଥ ସ୍ତମ୍ଭ, ଚରଣାଭରଣ । [ ଧ୍ୱନିଯୁକ୍ତ ।
ମଞ୍ଜୀରକ—ପୁଂ. ବିଂ. ନୂପୁର ଧ୍ୱନିତୁଲ୍ୟ
ମଞ୍ଜୀରା—ସ୍ତ୍ରୀ.ବ. ନଦୀଭେଦ ।
ମଞ୍ଜୁ—କ୍ରି.ବିଂ. (ମନ୍ଜ୍+ଉ) ମନୋଜ୍ଞ, ମନୋହର, ସୁନ୍ଦର, ମଧୁର ।
ମଞ୍ଜୁଆଢ—ଗ୍ରା.ବ. ବୃକ୍ଷବିଶେଷ ।
ମଞ୍ଜୁକେଶୀ—ପୁଂ. ବିଂ. (ମଞ୍ଜୁ+କେଶ+ଇନ୍) ସୁନ୍ଦର କେଶବିଶିଷ୍ଟ, (ସ୍ତ୍ରୀ) ମଞ୍ଜୁକେଶିନୀ, (ବ) ଶ୍ରୀକୃଷ୍ଣ ।
ମଞ୍ଜୁଗମନ—ବ. (କ.ଧା) ସୁନ୍ଦର ଗତି, ହଂସ, ( ବିଂ-ବ.ବ୍ରୀ ) ସୁନ୍ଦରଗାମୀ, ଯାହାର ଗତି ସୁନ୍ଦର,(ସ୍ତ୍ରୀ)ମଞ୍ଜୁଗମନା, ହଂସୀ ।
ମଞ୍ଜୁଗର୍ତ୍ତ—ପୁଂ.ବ. ନେପାଳରାଜ୍ୟ ।
ମଞ୍ଜୁଗୀତ—ସ୍ତ୍ରୀ. ବ. ସୁମଧୁର ଗୀତ, ମନୋଜ୍ଞ ଗାନ ।
ମଞ୍ଜୁଘୋଷ—ପୁଂ. ବ. (ବ.ବ୍ରୀ) ପୂର୍ବ ଜିନଭେଦ,ତାନ୍ତ୍ରିକମାନଙ୍କର ଉପାସ୍ୟ ଦେବତାବିଶେଷ, (ବିଂ-ବ.ବ୍ରୀ)ସୁସ୍ୱରବିଶିଷ୍ଟ, (ସ୍ତ୍ରୀ) ମଞ୍ଜୁଘୋଷା ।
ମଞ୍ଜୁନାଥ—ନେପାଳ ପ୍ରସିଦ୍ଧ ବୌଦ୍ଧଗ୍ରନ୍ଥୀୟ ଭେଦ ।
ମଞ୍ଜୁନାଶୀ—ସ୍ତ୍ରୀ.ବ. ସୁନ୍ଦରୀ ରମଣୀ ।
ମଞ୍ଜୁନେତ୍ର—କ୍ରି.ବିଂ. (ବ.ବ୍ରୀ) ସୁନ୍ଦର ଚକ୍ଷୁବିଶିଷ୍ଟ, (ବ-କ.ଧା) ସୁନ୍ଦର ଚକ୍ଷୁ ।
ମଞ୍ଜୁପାଠକ—ପୁଂ.ବ. ଶୁକପକ୍ଷୀ, (ବିଂ) ସୁନ୍ଦର ପାଠକର୍ତ୍ତା, (ସ୍ତ୍ରୀ) ପାଠିକା ।
ମଞ୍ଜୁପ୍ରାଣ—ପୁଂ.ବ. ବ୍ରହ୍ମା ।
ମଞ୍ଜୁଭଣ୍ଠ—ପୁଂ.ବ. ଅମରକୋଷ ଟୀକାପ୍ରଣେତା ।

ମଞ୍ଜୁଭଷିଣୀ—ସ୍ତ୍ରୀ. ବ. ୧୩ ଅକ୍ଷରଯୁକ୍ତ ଛନ୍ଦୋବିଶେଷ ।

ମଞ୍ଜୁଭଷୀ—ପୁଂ. ବିଂ. (ମଞ୍ଜୁ+ଭଷ୍+ଇନ୍) ମଧୁରଭଷୀ, ମିଷ୍ଟଭଷୀ, (ସ୍ତ୍ରୀ) ମଞ୍ଜୁଭଷିଣୀ ।

ମଞ୍ଜୁର—ଯା. ବ. ହନ୍ଧ, ଅଙ୍ଗୀକାର, ସ୍ୱୀକାର, ଅନୁମୋଦନ ।

ମଞ୍ଜୁର—ପ୍ରା.(ବସ୍ତର)ବ. ମୟୂରପକ୍ଷୀ ।

ମଞ୍ଜୁଲ—ବ. ( ମଞ୍ଜୁ+ଲ ) ଜଳାଞ୍ଚଳ, ନିକୁଞ୍ଜ, ଶୈବାଳ, ଜଳଚରଙ୍ଗପକ୍ଷୀ, ନଦୀବିଶେଷ, (ବିଂ) ସୁନ୍ଦର, ମନୋହର, ଉପଯୁକ୍ତ, ସମୀଚୀନ, (ସ୍ତ୍ରୀ) ମଞ୍ଜୁଳା ।

ମଞ୍ଜୁଲତା—ବ. ( ମଞ୍ଜୁଲ+ଭା.ତା ) ସୌନ୍ଦର୍ଯ୍ୟ ।

ମଞ୍ଜୁଳବତୀ—ଗ୍ରା.ସ୍ତ୍ରୀ.ବିଂ. ମନୋହାରିଣୀ

ମଞ୍ଜୁବାଦୀ—ପୁଂ. ବିଂ. (ମଞ୍ଜୁ+ବଦ୍+ଇନ୍) ମଞ୍ଜୁଭଷୀ ଦେଖ, (ସ୍ତ୍ରୀ) ମଞ୍ଜୁବାଦିନୀ ।

ମଞ୍ଜୁଶ୍ରୀ—ସ୍ୱୟମ୍ଭୂ ପୁରାଣ ବର୍ଣ୍ଣିତ ଚୀନ ଦେଶାନ୍ତର୍ଗତ ପର୍ବତବିଶେଷ ।

ମଞ୍ଜୁଶ୍ରୀପ୍ରତିଷ୍ଠା—ବୌଦ୍ଧମାନଙ୍କର ଧାରଣୀବିଶେଷ ।

ମଞ୍ଜୁଷା—ସ୍ତ୍ରୀ.ବ. ମଞ୍ଜୁଷା ଦେଖ,(ଗ୍ରା.ବ) ଗଞ୍ଜାମ ଜିଲ୍ଲାର ଗୋଟିଏ ଜମିଦାରି ।

ମଞ୍ଜୁସୌରଭ—କ୍ଲୀ.ବ. ଛନ୍ଦୋଭେଦ ।

ମଞ୍ଜୁହାସୀ—ପୁଂ.ବିଂ. ସୁହାସ, ମଧୁର ହାସ୍ୟଯୁକ୍ତ, (ସ୍ତ୍ରୀ) ମଞ୍ଜୁହାସିନୀ ।

ମଞ୍ଜୁଷା—ସ୍ତ୍ରୀ. ବ. ( ମନ୍ଜ୍+ଉଷା ) ପେଟିକା, ପେଟରା, ବାକ୍ସ, ପେଡ଼ି, ସିନ୍ଦୁକ, ପାଷାଣ ।

ମଟ୍ମଟ୍—ଗ୍ରା. ଅବ୍ୟ. ମଡ୍ମଡ୍, କାଠ ବା ଗଛର ଡାଳ ଭାଙ୍ଗିଯିବାର ଶବ୍ଦ, ଖଟଆଦିର ଗଣ୍ଠି ଫୁଟିବାର ଶବ୍ଦ, ଏକଦୃଷ୍ଟିରେ ଚାହିଁବା । [ କାଲ

ମଟ୍କ—ଗ୍ରା.ବ.ଚକ୍ଷୁର ପଲକପତନମାତ୍ର

ମଟକା—ଗ୍ରା.ବିଂ. ମହକା, ମଚକା,ଭଙ୍ଗପ୍ରବଣ, (ବ) ପୋଟଲ ଆକୃତିର ଏକପ୍ରକାର ବନ୍ୟଲତାଫଳ ।

ମଟଚୀ—ସ୍ତ୍ରୀ. ବ. ରକ୍ତବର୍ଣ୍ଣ କ୍ଷୁଦ୍ର ପକ୍ଷିବିଶେଷ, ପାଷାଣ ବୃଷ୍ଟି ।

ମଟର—ଗ୍ରା.ବ. (ସଂ-ବର୍ତ୍ତୁଳ)ଶିମ୍ବଜାତୀୟ ଲତାଫଳବିଶେଷ, (ଯା.ବ) ମଟରକାର ଦେଖ ।

ମଟରକାର—ଯା.ବ. ଶୋଧିତ କେରୋସିନ ବା ପ୍ରେଟ୍ରୋଲ ଜଳାଯାଇ ତଦ୍ଦ୍ୱାରା ପରଗ୍ୱଳିତ କଳଗାଡ଼ି ।

ମଟରମାଳା—ଗ୍ରା. ବ. ଅଳଙ୍କାରଭେଦ, ଏ ଅଳଙ୍କାର ଗଳାରେ ପିନ୍ଧାଯାଏ ।

ମଟରଲରି—ଯା.ବ. ବହୁଲୋକ ବା ବହୁ ପରିମାଣରେ ପଦାର୍ଥ ବୋହିବାପାଇଁ ବ୍ୟବହୃତ ବଡ଼ ମଟରଗାଡ଼ି ।

ମଟାମ—ଗ୍ରା.ବ. ସମକୋଣବିଶିଷ୍ଟ ଯନ୍ତ୍ର, ସମତଲ ନିର୍ଣ୍ଣୟ କରିବାପାଇଁ ବ୍ୟବହୃତ ଯନ୍ତ୍ରବିଶେଷ ।

ମଟାଳ—ଗ୍ରା. ବିଂ. କଠିନ, କର୍ଦ୍ଦମମୟ ବା ଚକଟା (ମାଟି),(ବ)କର୍ଦ୍ଦମମୟ ଓ କଠିନ ମାଟି, ଗଳମୃ ।

ମଟାଳିବା—ଗ୍ରା.କ୍ରି.ଡେରି କରିବା, କାଳ ବିଳମ୍ବ କରିବା, କମିବା ।

ମଟିଆ—ପ୍ରା. (ସମ୍ବ) ବ. ପ୍ରେତଯୋନିବିଶେଷ ।

ମଟୁକ—କ୍ଳୀ.ବି. ଗୃହର ଶିରୋଭାଗ ।

ମଠ—ପୁଂ.ବ. (ମଠ୍+ଅଧି.ଅ) ଗ୍ରନ୍ଥାବାସ,ପରିବ୍ରାଜକ ଓ ଛପକେମାନଙ୍କର ଅବସ୍ଥାନ, ଟୋଲ୍ ବିଦ୍ୟାର୍ଥୀମାନଙ୍କ ଆଶ୍ରମ, ବାସସ୍ଥାନ, ମନ୍ଦିର, ଧର୍ମାଗୃହ, ସଂସାରତ୍ୟାଗୀ, ସନ୍ନ୍ୟାସୀମାନଙ୍କର ଆବାସ ସ୍ଥାନ, ଦେବସେବାଉଦ୍ଦେଶ୍ୟ ନିମିତ୍ତ ସ୍ଥାପିତ ଓ ଜମିବାଡ଼ି ଥିବା ଆଶ୍ରମ, ଦେଉଳ, ରଥ, (ଗ୍ରା.ବିଂ) ବିଳମ୍ବିତ, (ବ) ଡେରି, ବିଳମ୍ବ ।

ମଠକରିବା—ଗ୍ରା.କ୍ରି. ବିଳମ୍ବ କରିବା ।

ମଠଧାରୀ—ପୁଂ.ବ. (ମଠ+ଧୃ+ଇନ୍) ଯେଉଁ ବୈଷ୍ଣବମାନେ ମଠରେ ବାସ କରନ୍ତି, ମଠର ମହନ୍ତ, (ସ୍ତ୍ରୀ)ଧାରିଣୀ ।

ମଠପତି—ବ. ମଠଧାରୀ ଦେଖ, (ଗ୍ରା.ବ) ବୋମ୍ବାଇ ପ୍ରେସିଡ଼େନ୍ସୀର ଧାରବାର ଜିଲ୍ଲାବାସୀ ଜାତିବିଶେଷ ।

ମଠବାଡ଼ି—ଗ୍ରା. ବ. ମଠଆଦି, ମଠ ଓ ମଠର ସମ୍ପତ୍ତି ।

ମଠମଠକରିବା (ହେବା) —ଗ୍ରା. କ୍ରି. କୌଣସି କାର୍ଯ୍ୟ କରିବାକୁ ପଶ୍ଚାତ୍ପଦ ହେବା, କାମ କରିବାକୁ ଡେରିକରିବା ।

ମଠର—ପୁଂ. ବ. (ମଠ୍+କ.ଅର)ମୁନିବିଶେଷ ।

ମଠା—ଗ୍ରା. ବ. ରେଶମି ବସ୍ତ୍ରବିଶେଷ, ଟସର, ମକୁଟା, (ବିଂ) ଯାହା ଚକ୍କଣ ବା ମଠା ହୋଇଥାଏ, (ପ୍ରା.ଗଞ୍ଜାମ.ବ) ଘୋଳଦହି ।

ମଠା(ଠେ)ଇବା—ଗ୍ରା.କ୍ରି.ବିଳମ୍ବକରିବା, ଅନ୍ୟଦ୍ୱାରା ମଠିବା କାର୍ଯ୍ୟ କରାଇବା ।

ମଠାଧିପ(ତି)—ପୁଂ. ବ. ମଠାଧ୍ୟକ୍ଷ, ମହନ୍ତ । [ ମହନ୍ତ ।

ମଠାଧୀଶ—ପୁଂ. ବ. ଷତତ୍ପୁ ମଠାଧିପତି,

ମଠାୟତନ—କ୍ଲୀ. ବ.ମଠ, ସଙ୍ଘାରାମ ।

ମଠିଆ—ଗ୍ରା. (ବାଲେ) ବ. ମାଠିଆ ।

ମଠୁଆ—ଗ୍ରା. ବିଂ. ଅଳସୁଆ, ଯେ ସମସ୍ତ କାମରେ ମଠ କରେ ।

ମଠେ—ଗ୍ରା. (ପଦ୍ୟ) କ୍ରି. ବିଂ. ମଠରେ, ଧୀରେ ଧୀରେ ।

ମଡ଼ମଡ଼—ଗ୍ରା. ଅବ୍ୟ. ଶୁଷ୍କବୃକ୍ଷର ଶାଖା ଭାଙ୍ଗିବାର ଶବ୍ଦ,ଟାଣୁଆ ଜିନିଷ ଚୋବାଇବାର ଶବ୍ଦ ।

ମଡ—ପୁଂ. ବ. ବାଦ୍ୟବିଶେଷ, ବିପୁଳ ଡମରୁ ବାଦ୍ୟ ।

ମଡ଼କ—ଗ୍ରା. ବ. ମହାମାରୀ, ଯେଉଁ ସମୟରେ ବହୁଲୋକଙ୍କର ମୃତ୍ୟୁ ଘଟେ ।

ମଡକା—ଗ୍ରା. ବିଂ. ଭଙ୍ଗପ୍ରବଣ,ମଚକା ।

ମଡ଼ଙ୍ଗ—ପ୍ରା. (ବାଲେ) ବ. ସେଠାର ଏକପ୍ରକାର ମାଛ ।

ମଡ଼(ଡ଼)ଛୀ—ଗ୍ରା. ସ୍ତ୍ରୀ. ବିଂ. ମୃତବତ୍ସା, ଯେଉଁ ସ୍ତ୍ରୀର ସନ୍ତାନ ବଞ୍ଚନ୍ତି ନାହିଁ ।

ମଡ଼ମଡ଼ି—ଗ୍ରା.ବ. ଏକପ୍ରକାର ବଡ଼ଗୁଳ୍ମ ।

ମଡ଼ମଡ଼ିଆ—ଗ୍ରା. ବିଂ. ଟାଣ୍ଡୁଆ, ଦୁର୍ବଳ, ଭଙ୍ଗପ୍ରବଣ, ଅତ୍ୟନ୍ତ ଶୁଷ୍କ (ପଦାର୍ଥ) ।

ମଡ଼ା—ଗ୍ରା.ବ. ମୃତଦେହ,ମୁର୍ଦ୍ଦାର,ଢଳନ୍ତି,

ମାଡ଼ିବା, (ବଂ)ପଦଦଳିତ, ଯେ ମାଡ଼ି-ଥାଏ ।

ମଡାଅମଡ଼ା—ଗ୍ରା. ବଂ. ପାଣିମାଡ଼ିଥିବା ଓ ନମାଡ଼ିଥିବା (କ୍ଷେତ), କ; ପଥ ଓ ଅପଥ ।

ମଡ଼ା(ଡ଼ୋ)ଇବା—ଗ୍ରା. କ୍ରି. ଅନ୍ୟଦ୍ୱାରା ମାଡ଼ିବା କ୍ରିୟା କରାଇବା,ଦଳାଇବା ।

ମଡ଼ାକଢ଼ା—ଗ୍ରା. ବଂ. ଶବବାହକ ।

ମଡ଼ାକାମୁଡ଼ିବା—ଗ୍ରା.କ୍ରି. ଅତ୍ୟନ୍ତ କଷ୍ଟାନ କରିବା ।

ମଡ଼ାଖାଇ—ଗ୍ରା. ବ. ମଶାଣି, ଶ୍ମଶାନ ।

ମଡ଼ାଚଣ୍ଡିଆ—ଗ୍ରା. ପୁଂ. ବ. ଶ୍ମଶାନବାସୀ ବ୍ୟକ୍ତି, ଯେ ମଡ଼ାଚଣ୍ଡ ଗ୍ରହଣ କରେ ।

ମଡ଼ାଣ—ଗ୍ରା. ବ. ପୂର୍ବର ଭଉଁରିଆକୁ ଦେଖି ଜମିକୁ ମାପ କରିବା ।

ମଡ଼ାପଦା—ଗ୍ରା. (ଯାଜପୁର)ବ. ଶ୍ମଶାନ ।

ମଡ଼ାପୋଡ଼ା—ଗ୍ରା. ବ. ଶବଦାହ, (ବଂ) ଶବଦାହକ ।

ମଡ଼ାମଡ଼ି—ଗ୍ରା. ବ ଓ ବଂ. ଦଳାଦଳି, ଚକଟାଚକଟି, କୁଦାକୁଦି, ପରସ୍ପର କୁଦିବା ଚକଟିବା (କାର୍ଯ୍ୟ) ।

ମଢ଼—ଗ୍ରା.ବ. (ପ୍ରାଚୀନ ତାମ୍ରପଟ୍ଟ ସନନ୍ଦ) ଶ୍ରାଦ୍ଧାଦର ଅନୁଷ୍ଠାନ କରିବାଲାଗି ରାଜ ଅନୁମତି ପ୍ରାପ୍ତି ନିମନ୍ତେ ଦେୟ କର ।

ମଢ଼ଆ—ଗ୍ରା. ବଂ. ମଢ଼ିଆ ଦେଖ, (ପ୍ରା. ବସ୍ତର.ବ) ବସ୍ତରଅଧିବାସୀ କନ୍ଧମାନଙ୍କର ଭାଷା ।

ମଡ୍ଡୁ—ବ. ( ମଡ୍ଡ୍+କ.ଉ ) ଆନନ୍ଦ ବାଦ୍ୟବିଶେଷ ।

ମଡ୍ଡୁକ—ବ. (ମଡ୍ଡ୍+କ.ଉକ) ଆନନ୍ଦ ବାଦ୍ୟବିଶେଷ ।

ମଢ଼—ଗ୍ରା. ବ. ମୃତଦେହ, ଶବ ।

ମଢ଼ିଆ—ଗ୍ରା. ବ. ପଦକୁଢ଼ଆ,(ବଂ)ଶବ-ପରି ଶୀର୍ଣ୍ଣ, ମୂର୍ଚ୍ଛାତୁଆ, ଶବବାହକ, ଶୂଦ୍ରର ଶବଦାହରେ ସାହାଯ୍ୟକାରୀ ବା ପୁରୋହିତ କର୍ମକାରୀ ପତିତବ୍ରାହ୍ମଣ, ଅଗ୍ରଦାନୀ ବ୍ରାହ୍ମଣ ।

ମଢ଼ିଆଳ—ଗ୍ରା. (ପ୍ରାଚୀନ) ବ. ରଜକ, ଧୋବା, ମଳିଆ ଲୁଗା ।

ମଡୁଆ—ଗ୍ରା. ବ. ତାଳପତ୍ରର ପିଠି ପାଖରେ ଥିବା ଝାଣୁଆ ଖଣ୍ଡିକା ବା ଶର,ବଣାକାଠିରେ ଲଗିଥିବା ଡୋର, (ଯାହାକୁ ଧରି ଓଜନ କରାଯାଏ) ।

ମଢ଼ୁଆଣାକୋଳି—ଗ୍ରା.ବ. ଗୃହଶାଳୀରେ ଅବାଧ୍ୟ ପିଲାଙ୍କପାଇଁ ତାଳପତ୍ର ଶିରା-ନିର୍ମିତ ବନ୍ଧନବିଶେଷ ବା ଫାଶ ।

ମଣ—ଗ୍ରା. ବ. ଆୟତ୍ତ କରିବା, ମନେ-ଇବା, ଘୋଡ଼ା ଓ ଦାମୁଡ଼ି ବଳଦଙ୍କୁ ତାଲିମ୍ କରିବା, (ଅର୍ବାଚୀନସଂସ୍କୃତ) ମହଣ, ୪୦ ସେର ।

ମଣକରିବା—ଗ୍ରା. କ୍ରି. ଘୋଡ଼ା ବଳଦ ଆଦିଙ୍କୁ ତାଲିମ କରିବା ।

ମଣା—ଗ୍ରା.ବ. ବୋଧ,ଜ୍ଞାନ,ବୁଝାଇବା, ମନୋରଞ୍ଜନ ।

ମଣାଇବା—ଗ୍ରା.କ୍ରି. ବୁଝାଇବା,ମନୋ-ରଞ୍ଜନ କରିବା, ମୁକାବିଲା କରାଇବା, ପ୍ରବର୍ତ୍ତାଇବା, (ପଶୁପ୍ରଭୃତିଙ୍କୁ) କାର୍ଯ୍ୟ କୁଶଳ ହେବା ନିମନ୍ତେ ଶିକ୍ଷାଦେବା ।

ମଣାଣ—ଗ୍ରା.ବ.ମନାଇବା,ରାଜିକରାଇବା ।

ମଣି(ଣୀ)—ବ. ( ମଣ୍+କ.ଇ ) ରତ୍ନ, ବହୁମୂଲ୍ୟ ଦୀପ୍ତିଶାଳୀ ପ୍ରସ୍ତର, ମୁକ୍ତା, ସାପର ମୁଣ୍ଡରେ ଥିବା ଉଜ୍ଜ୍ୱଳ ରତ୍ନ-ସଦୃଶ ବସ୍ତୁ, ଚୂଡ଼ାଗ୍ର, ଅଜାଗଳସ୍ତନ, ଅକାଳେ ଉଦିତ ଇନ୍ଦ୍ରଧନୁ, ମଣିବନ୍ଧ, ଲିଙ୍ଗାଗ୍ର,ସୁପାରି, ସ୍ତ୍ରୀଯୋନିର ନାସିକା-କୃତି ଅଗ୍ରଭାଗ, ସେଣ୍ଟି, ଅଳଞ୍ଜର,ଜଳ-ପାତ୍ର, (ବଂ) ଶ୍ରେଷ୍ଠ ।

ମଣିଆଣିବା—ଗ୍ରା.କ୍ରି. ବରିବା,କୌଣସି ବସ୍ତୁକୁ ମୁକାବିଲାକରି ଗ୍ରହଣ କରିବା ।

ମଣିକ—କ୍ଲୀ. ବ. (ମଣି+କ) ଅଳଞ୍ଜର, ମାଠିଆ, ଜଳପାତ୍ର ।

ମଣିକଙ୍କଣ—ବ. ରତ୍ନଖଚିତ ବଳୟ ।

ମଣିକର୍ଣ୍ଣ—ପୁଂ,ବ. କାମରୂପସ୍ଥିତ ଶିବ-ଲିଙ୍ଗବିଶେଷ ।

ମଣିକର୍ଣ୍ଣିକା—ସ୍ତ୍ରୀ. ବ. କାଶୀସ୍ଥିତ ତୀର୍ଥ-ବିଶେଷ, ମଣିମୟ କର୍ଣ୍ଣଭୂଷଣ ।

ମଣିକର୍ଣ୍ଣୀଶ୍ୱର—ପୁଂ. ବ. କାଶୀସ୍ଥିତ ଶିବଲିଙ୍ଗବିଶେଷ ।

ମଣିକର୍ଣ୍ଣେଶ୍ୱର—ପୁଂ.ବ. କାମରୂପସ୍ଥିତ ଶିବଲିଙ୍ଗବିଶେଷ ।

ମଣିକାଚ—ପୁଂ.ବ. କାଚବିଶେଷ, ସ୍ଫଟିକ, ବାଣପୁଙ୍ଖ । [ ଓ ସ୍ୱର୍ଣ୍ଣ ।

ମଣିକାଞ୍ଚନ—ବ. ମଣି ଓ କାଞ୍ଚନ, ମୁକ୍ତା

ମଣିକାଞ୍ଚନଯୋଗ—ବ. ମଣି ଓ କାଞ୍ଚ-ନର ସମାବେଶ, ଦୁଇଟି ଉପଯୁକ୍ତ ବା ଶୋଭନ ବସ୍ତୁର ମିଳନ, ମଣି ଓ ସ୍ୱର୍ଣ୍ଣର ଏକତ୍ର ସମାବେଶ ପରି ଅତି ମନୋହର ଓ ଉପଯୁକ୍ତ ସଂଯୋଜନ ।

ମଣିକାନନ—କ୍ଲୀ. ବ. କଣ୍ଠ, ରତ୍ନବନ ।

ମଣିକାର—ପୁଂ. ବ. (ମଣି+କୃ+ଅ) ମଣିନିର୍ମିତ ଅଳଙ୍କାରାଦି କର୍ତ୍ତା, ଜହରି, ମଣିପରିଷ୍କାରକ, ମଣିପରୀକ୍ଷକ, ନ୍ୟାୟ-ଚିନ୍ତାମଣି ନାମକ ଗ୍ରନ୍ଥରଚୟିତା ।

ମଣିକୁଟ୍ଟିମ—ବ. ( କ.ଧା ) ମଣିଦ୍ୱାରା ଆଚ୍ଛାଦିତ ଗୃହର ତଳଦେଶ ବା ଚଟାଣ

ମଣିକୁଣ୍ଡଳ—ବ. ମଣିମୟ କର୍ଣ୍ଣାଭରଣ ।

ମଣିକୁସୁମ—ପୁଂ. ବ. ଜିନଭେଦ ।

ମଣିକୂଟ—ପୁଂ.ବ. କାମରୂପସ୍ଥିତ ଗୋଟିଏ ପର୍ବତ ।

ମଣିଖଣି(ନି)—ବ. ମଣିର ଆକର, ମଣି ଯେଉଁ ସ୍ଥାନରୁ ବାହାରେ ।

ମଣିଖୁମ୍ବ—ଗ୍ରା.ବ. ତେଣ୍ଡାବାହାଲର ଖୁମ୍ବ

ମଣିଗୁଣନିକର—ପୁଂ.ବ. ଛନ୍ଦୋଭେଦ ।

ମଣିଗ୍ରୀବ—ପୁଂ. ବ. କୁବେରପୁତ୍ର,(ବଂ) ରତ୍ନକଣ୍ଠର ।

ମଣିଚୂଡ଼—ବଂ. ( ବ.ବ୍ରୀ ) ଯାହାର ଚୂଡ଼ାରେ ବା ମସ୍ତକରେ ମଣିଥାଏ,(ବ) ସର୍ପବିଶେଷ, ( ଗ୍ରା.ବ ) ସପ୍ତରୂପରେ ଜନ୍ମିଥିବା ଅଭିଶପ୍ତ ଇନ୍ଦ୍ରଙ୍କ ପୁତ୍ର,ସୁଦ-ର୍ଶନ ।

ମଣିଚୂଳ—ଗ୍ରା. ବ. ସର୍ପବିଶେଷ ।

ମଣିଚ୍ଛିଦ୍ରା—ସ୍ତ୍ରୀ.ବ.ମେଦା ନାମକ ଔଷଧି, ଋଷଭାଖ୍ୟ ଔଷଧି ।

ମଣିଜଡ଼ିତ—ବଂ. (ତତ୍ପୁ) ମଣିମଣ୍ଡିତ, ରତ୍ନଖଚିତ ।

ମଣିଜଳା—ସ୍ତ୍ରୀ. ବ. ନଦୀଭେଦ ।

ମଣିତ—କ୍ଲୀ. ବ. (ମଣ୍+ତ) ମୈଥୁନ-

କାଳୀନ ବାକ୍ୟ, ଚୂମ୍ବନାଦି ଧ୍ୱନି, ରତିକୂଜିତ ।

ମଣିତାରକ—ପୁଂ. ବି. ସାରସପକ୍ଷୀ ।

ମଣିତ୍ଥ—ପୁଂ. ବି. ଜଣେ ପ୍ରାଚୀନ ଜ୍ୟୋତିର୍ବିଦ୍ ।

ମଣିଦର—ପୁଂ. ବି. ଜଣେ ଯକ୍ଷପତି ।

ମଣିଦର୍ପଣ—ବି. ମଣିବିମଣ୍ଡିତ, ଦର୍ପଣ ।

ମଣିଦୋଷ—ପୁଂ. ବି. ରତ୍ନାଦିଙ୍କର ଅଭିଜାତ (ଜନ୍ମଗତ) ଦୋଷ ।

ମଣିଦ୍ୱୀପ—ବି. କ୍ଷୀରସମୁଦ୍ର ମଧ୍ୟରେ ପଦ୍ମରାଗାଦି ମଣିମୟ ଅନ୍ତରୀପ, ଏହି ଦ୍ୱୀପ ତ୍ରିପୁରସୁନ୍ଦରୀର ବାସସ୍ଥାନ ।

ମଣିଧନୁ—ପୁଂ. ବି. ମଣିଖଚିତ ଧନୁ, ରାଜପୁତ୍ରଭେଦ ।

ମଣିଧନୁଃ—କ୍ଳୀ. ବି. ରାମଧନୁ ।

ମଣିଧର—ବି. (ମଣି + ଧୃ + ଅ) ସର୍ପ ।

ମଣିନାକ—ଗ୍ରା. ବି. ମୈନାକ ପର୍ବତ ।

ମଣିନାଗ—ପୁଂ. ବି. ( କ.ଧା ) ଯେଉଁ ନାଗସାପର ମୁଣ୍ଡରେ ମଣିଥାଏ, (ଗ୍ରା.ବି) ରଣପୁରର ପର୍ବତବିଶେଷ ।

ମଣିନାଗଦୁର୍ଗା—ଗ୍ରା. ବି. ରଣପୁରର ଅଧିଷ୍ଠାତ୍ରୀ ଦେବୀ ।

ମଣିଦା—ପ୍ରା. (ଯାଜ) ବି. ମୁନ୍ଦା ଘାସ ।

ମଣିପଦ୍ମ—ପୁଂ. ବି. ଏକବୋଧି ସତ୍ତ୍ୱଙ୍କ ନାମ ।

ମଣିପର୍ବତ—ପୁଂ. ବି. ଗିରିବିଶେଷ ।

ମଣିପୁ(ପୂ)ର—କ୍ଳୀ. ବି. ଆସାମ ନିକଟବର୍ତ୍ତୀ ପାର୍ବତ୍ୟସ୍ଥ ରାଜ୍ୟବିଶେଷ, ଷଟ୍‌ଚକ୍ରାନ୍ତର୍ଗତ ନାଭିମଧ୍ୟସ୍ଥ ତୃତୀୟଚକ୍ର, ନାଭିସ୍ଥଳ ।

ମଣିପୁଷ୍ପକ—ପୁଂ. ବି. ସହଦେବଙ୍କର ଶଙ୍ଖ

ମଣିପ୍ରଦୀପ—ପୁଂ. ବି. ମଣିମୟ ଦ୍ୱୀପ ।

ମଣିପ୍ରଭ—ବିଂ. (ବି.ବ୍ରୀ) ମଣିପରି ପ୍ରଭାଯୁକ୍ତ, ମଣିଦ୍ୱାରା ଆଭାଯୁକ୍ତ ।

ମଣିପ୍ରଭା—ସ୍ତ୍ରୀ. ବି. ଛନ୍ଦଭେଦ, (୬ତତ୍) ରତ୍ନର ଆଭା ।

ମଣିଭଦ୍ର—ବି. ଯକ୍ଷବିଶେଷ, ବଣିକବିଶେଷ, ଶିବଙ୍କ ଗଣବିଶେଷ । [ ପର୍ବତ ।

ମଣିଭଦ୍ରା—ଗ୍ରା. ବି. ଦଶପଲ୍ଲାସ୍ଥ ସୁରମ୍ୟ

ମଣିଭବ—ପୁଂ. ବି. ଧ୍ୟାନୀବୁଦ୍ଧବିଶେଷ ।

ମଣିଭିତ୍ତି—ସ୍ତ୍ରୀ. ବି. ରତ୍ନାଦିର ଉପର ନିର୍ମିତ ଭିତ୍ତି, ଅନନ୍ତନାଗରର ଆଳୟ ।

ମଣିଭୂ—ସ୍ତ୍ରୀ. ବି. (ମଣି + ଭୂ + ଅଧି. କ୍ୱିପ୍) ମଣିଖଣି, ରତ୍ନାକର, ଖଣି, (ବିଂ) ରତ୍ନାଦିର ଅଧିକାରୀ ।

ମଣିଭୂମି—ସ୍ତ୍ରୀ. ବି. ମଣିଭୂ ଦେଖ, ହିମାଳୟରେ ଥିବା ଗୋଟିଏ ପୁଣ୍ୟକ୍ଷେତ୍ର ।

ମଣିଭୂମିକା—ସ୍ତ୍ରୀ. ବି. କୃତ୍ରିମ ପୁତ୍ତିକା, କଣ୍ଢେଇ ।

ମଣିମଙ୍ଗଳସୂତ୍ର—ଗ୍ରା. ବି. ରାଜପରିବାରରେ ବା ସମ୍ଭ୍ରାନ୍ତ ପରିବାରରେ ବିବାହ ବେଦୀ ଉପରେ ହାତଗଣ୍ଠି ପଡ଼ିବା ପରେ କନ୍ୟା ହାତରେ ପିନ୍ଧିବା ଦୁଇଗୋଟି ଅଳଂକାର ।

ମଣିମଞ୍ଜରୀ—ଛନ୍ଦବିଶେଷ ।

ମଣିମଣ୍ଡପ—ପୁଂ. ବି. ରତ୍ନମୟ ଗୃହ, ରତ୍ନଖଚିତ ମଣ୍ଡପ, ଦେବତା ପୀଠସ୍ଥାନବିଶେଷ ।

ମଣିମଣ୍ଡିତ—ବିଂ. (୩ତତ୍) ମଣି ବା ରତ୍ନରେ ଖଚିତ । [ ବିଶେଷ ।

ମଣିମଧ୍ୟ—କ୍ଳୀ. ବି. ନବାକ୍ଷରଯୁକ୍ତ ଛନ୍ଦୋ-

ମଣିମନ୍ଥ—କ୍ଳୀ. ବି. (ମଣି + ମନ୍ଥ୍ + ଅଧି. ଅ) ସୈନ୍ଧବ ଲବଣ, ପର୍ବତବିଶେଷ, ଯକ୍ଷବିଶେଷ, (କ.ଅ) ନୃପବିଶେଷ ।

ମଣିମୟ—ତ୍ରି. ବିଂ. (ମଣି + ମୟ) ମଣିସ୍ୱରୂପ, ମଣିନିର୍ମିତ ବା ଖଚିତ ।

ମଣିମା—ଗ୍ରା. ବି. ରାଜା ଓ ରାଣୀଙ୍କ ସମ୍ବୋଧନସୂଚକ ଶବ୍ଦ, ପ୍ରଭୋ, ହେ ଦୟାମୟ, ରାଜା, ରାଣୀ ।

ମଣିମାଣିକ—ଗ୍ରା. ବି. ରତ୍ନାଦି ।

ମଣିମାଣିକ୍ୟ—ବି. ରତ୍ନାଦି ।

ମଣିମାନ୍—ତ୍ରି. ବିଂ. (ମଣି + ମତ୍) ମଣିବିଶିଷ୍ଟ, ରତ୍ନଭୂଷିତ, (ସ୍ତ୍ରୀ) ମଣିମତୀ, (ବି) କୁବେରଙ୍କର ପାର୍ଶ୍ୱଚର ରାକ୍ଷସବିଶେଷ, ନାଗବିଶେଷ, ସୂର୍ଯ୍ୟ ଯକ୍ଷବିଶେଷ, ପଶ୍ଚିମସ୍ଥିତ ଦେଶବିଶେଷ, ପୁରବିଶେଷ ।

ମଣିମାଳା—ସ୍ତ୍ରୀ. ବି. (ମଣି + ମାଳା) ହାର, ଦନ୍ତକ୍ଷତବିଶେଷ, ଲକ୍ଷ୍ମୀ, ଦୀପ୍ତି, ଛନ୍ଦୋବିଶେଷ ।

ମଣିମୁକ୍ତା—ସ୍ତ୍ରୀ. ବି. ନଦୀଭେଦ ।

ମଣିମେଖଳ—ତ୍ରି. ବିଂ. ରତ୍ନହାରବିମଣ୍ଡିତ

ମଣିମେଘ—ପୁଂ. ବି. ପର୍ବତଭେଦ, ଭାରତର ଦକ୍ଷିଣ ଭାଗରେ ଅବସ୍ଥିତ ଜନପଦଭେଦ ।

ମଣିରଙ୍ଗ—ବି. କାଶ୍ମୀର ରାଜ୍ୟସ୍ଥ ଗୋଟିଏ ଗିରି ସଙ୍କଟ ।

ମଣିରତ୍ନ—ତ୍ରି. ବିଂ. ନାନାରତ୍ନଯୁକ୍ତ, (ବି) ବହୁମୂଲ୍ୟ ରତ୍ନାଦି ।

ମଣିରତ୍ନବାନ୍—ପୁଂ. ବିଂ. ମଣିରତ୍ନ ସଦୃଶ

ମଣିରଥ—ପୁଂ. ବି. ମଣିମୟ ରଥ, ବୋଧିସତ୍ତ୍ୱଭେଦ ।

ମଣିରାଗ—କ୍ଳୀ. ବି. (ବ.ବ୍ରୀ) ହିଙ୍ଗୁଳ, (ପୁଂ.ବି. ୬ତତ୍) ମଣିର ବର୍ଣ୍ଣ ।

ମଣିରାଜ—ପୁଂ. ବି. ମଣୀନ୍ଦ୍ର, ଶ୍ରେଷ୍ଠମଣି, ଉତ୍ତମ ରତ୍ନ ।

ମଣିରାମ—ଗୁଣରତ୍ନମାଳା ନାମକ ସଂସ୍କୃତ ଗ୍ରନ୍ଥରଚୟିତା ଗୁଜରାଟୀ ବ୍ରାହ୍ମଣବିଶେଷ

ମଣିରାମଦୀକ୍ଷିତ—ଜଣେ ବିଖ୍ୟାତ ସ୍ମାର୍ତ୍ତ ପଣ୍ଡିତ ।

ମଣିରୋଗ—ବି. ପୁରୁଷେନ୍ଦ୍ରିୟର ରୋଗବିଶେଷ, ଚୁଟୁନ୍ଦ୍ର ।

ମଣିଲିଙ୍ଗେଶ୍ୱର—ବି. ସ୍ୱୟମ୍ଭୂ କ୍ଷେତ୍ରସ୍ଥ ଶିବଲିଙ୍ଗ ଭେଦ ।

ମଣିବ—ପୁଂ. ବି. ନାଗଭେଦ ।

ମଣିବଣିକ୍—ନବଦ୍ୱୀପ, କୃଷ୍ଣନଗର ପ୍ରଭୃତି ସ୍ଥାନବାସୀ ଜାତିବିଶେଷ ।

ମଣିବନ୍ଧ—ପୁଂ. ବି. ପ୍ରକୋଷ୍ଠ, କଟକି, ପର୍ବତବିଶେଷ ।

ମଣିବନ୍ଧନ—କ୍ଳୀ. ବି. କରଗ୍ରନ୍ଥି, ହସ୍ତଗ୍ରନ୍ଥି ।

ମଣିବା—ଗ୍ରା. କ୍ରି. ଅଙ୍ଗୀକାର କରିବା, ବୋଧ କରିବା, ଜାଣିବା, ବୁଝିବା, ବିଶ୍ୱାସ କରିବା, ମଙ୍ଗିବା, ରାଜିକରିବା, ଅନୁମାନ କରିବା ।

ମଣିବାନ୍—ପୁଂ. ବି. ଅଶ୍ୱିଦୈବତ ପଶୁଭେଦ

ମଣିବାହନ—ପୁଂ. ବି. ନୃପବିଶେଷ ।

ମଣିବିଗ୍ରହ—ବି. (୬ତତ୍) ମଣି ବା ପ୍ରସ୍ତରନିର୍ମିତ ଦେବମୂର୍ତ୍ତି ।

ମଣିବୀଜ—ବି.(ମଣି+ବୀଜ)ଡାଳିମ୍ବବୃକ୍ଷ

ମଣିବେଦୀ—ବି. ମଣିଖଚିତ ପୀଠ ବା ବେଦୀ ।

ମଣିଶିଳା—ଗ୍ରା. ବି. ମନଃଶିଳା ଦେଖ ।

ମଣିଶୈଳ—ପୁଂ.ବି. ମନ୍ଦରାଚଳର ପୂର୍ବସ୍ଥିତ ପର୍ବତଭେଦ ।

ମଣିଶ୍ୟାମ—ପୁଂ. ବି. ଇନ୍ଦ୍ରନୀଳମଣି ।

ମଣିଷ—ଗ୍ରା. ବି. ମନୁଷ୍ୟ, ନର ।

ମଣିଷମାରୁ—ଗ୍ରା. ବିଂ. ଯେ ମନୁଷ୍ୟକୁ ମାରିଦିଏ,ନରହନ୍ତା ।

ମଣିସର—ପୁଂ. ବି. ମୁକ୍ତାହାର, ମଣିଖଚିତ ହାର ।

ମଣିସୂତ୍ର—କ୍ଳୀ. ବି. ମୁକ୍ତାମାଳା ।

ମଣିସୋପାନ—କ୍ଳୀ.ବି.ମଣିମୟ ସୋପାନ, ରତ୍ନନିର୍ମିତ ପାବଚ୍ଛ ।

ମଣିସ୍କନ୍ଧ—ପୁଂ. ବି. ନାଗଭେଦ ।

ମଣିସ୍ତମ୍ଭ—ପୁଂ. ବି. ମଣିମୟ ସ୍ତମ୍ଭ, ମଣିଖୁମ୍ବ ଦେଖ ।

ମଣିସ୍ରକ୍—ସ୍ତ୍ରୀ. ବି. ମଣିମାଳା ।

ମଣିହର୍ମ୍ମ୍ୟ—କ୍ଳୀ. ବି. ମଣିନିର୍ମିତ ଗୃହ ।

ମଣିହରାଫଣୀ—ଗ୍ରା. ବିଂ. ଯେଉଁ ସର୍ପର ମଥାର ମାଣିକ୍ୟ ହଜିଯାଇଅଛି, ହୃତମଣି ସର୍ପପରି ଅସ୍ଥିର (ବ୍ୟକ୍ତି) ।

ମଣିହାରି—ଗ୍ରା.ବି.ଉଃ ପଃ ପ୍ରଦେଶବାସୀ ଜାତିବିଶେଷ, (ସଂ-ବି)ରତ୍ନହାର ।

ମଣିହାରୀ—ପୁଂ. ବିଂ. ରତ୍ନଜୀବୀ, ଅଳଂକାର ବ୍ୟବସାୟୀ, ରତ୍ନବେପାରୀ ।

ମଣୀ—ବି. (ମଣି+ଇନ୍) ସର୍ପ ।

ମଣୀଚକ—କ୍ଳୀ. ବି. (ମଣି+ଚକ୍+ଅ) ଇନ୍ଦୁକାନ୍ତ,ଚନ୍ଦ୍ରକାନ୍ତମଣି, ଶାକଦ୍ୱୀପର ବର୍ଷବିଶେଷ, (ପୁଂ) ମାଛରଙ୍କା ପକ୍ଷୀ ।

ମଣୀବ—ଅବ୍ୟ. ମଣିତୁଲ୍ୟ ।

ମଣୀବକ—କ୍ଳୀ. ବି. ପୁଷ୍ପ, ଫୁଲ ।

ମଣୀବତୀ—ସ୍ତ୍ରୀ. ବିଂ. ମଣୀଯୁକ୍ତା, (ବି) ନଦୀବିଶେଷ ।

ମଣୋହ—ଗ୍ରା. ବି. ନୈବେଦ୍ୟ, ରଜାମାନଙ୍କର ଭୋଜନ । [ ବରିପିଠା ।

ମଣ୍ଡ—ବି. ବଟକବିଶେଷ, ମଣ୍ଡାପିଠା,

ମଣ୍ଡ—ବି. (ମନ୍+ଡ) ଅନ୍ନ ଓ ଦଧିପ୍ରଭୃତିର ଅଗ୍ରରସ, ଭାତର ପେଜ, ଫେଣ, ଜାଉ, ସାର, ଏରଣ୍ଡ ବୃକ୍ଷ, ଶାକବିଶେଷ, ମସ୍ତୁ, ଭୂଷା, ଅଲଙ୍କାର, ତେଲଆଦିର କାଣ୍ଟି,ମୟୂରପୁଚ୍ଛ,ବେଙ୍ଗ, ଚାଉଳ ବା ଯବ ପ୍ରଭୃତିକୁ ଆଠଗୁଣ ବା ଚଉଦଗୁଣ ଜଳରେ ସିଦ୍ଧ କରି ଚକଟି ଗୁଣି ପ୍ରସ୍ତୁତ କରାଯିବା ରୋଗୀର ପଥ୍ୟ, ଅଳଂକରଣ, ସଜ୍ଜା, ସଜାଇବା ।

ମଣ୍ଡକ—ବି. ପିଷ୍ଟକବିଶେଷ, ମଣ୍ଡାପିଠା, ମାଧବୀଲତା, ଗୀତର ଅଙ୍ଗବିଶେଷ ।

ମଣ୍ଡଣି—ବି.ସଜ୍ଜା, ଭୂଷଣ, ଅଳଙ୍କରଣ ।

ମଣ୍ଡନ—କ୍ଳୀ. ବି. (ମଣ୍ଡ+ଭା.ଅନ)ପ୍ରସାଧନ, ସଜାଇବା, ଅଳଂକରଣ(ଣ.ଅନ) ଅଳଂକାର, ଭୂଷଣ, ସାଜସଜ୍ଜା, (ପୁଂ. ବିଂ. କ.ଅନ) ଶୋଭାବୃଦ୍ଧିକର, ଶ୍ରେଷ୍ଠ, ଅଳଂକାରକ, (ସ୍ତ୍ରୀ) ମଣ୍ଡନା, (ପୁଂ.ବି) ପଣ୍ଡିତବିଶେଷ ।

ମଣ୍ଡନମିଶ୍ର—ଗ୍ରା. ବି. ଶଙ୍କରାଚାର୍ଯ୍ୟ ସମସାମୟିକ ଜଣେ ସୁପ୍ରସିଦ୍ଧ ଦାର୍ଶନିକ ପଣ୍ଡିତ ।

ମଣ୍ଡନମିଶ୍ର ସାହିତ୍ୟ ରସପୋଷୀ—ଜଣେ ବିଖ୍ୟାତ ଶାବ୍ଦିକ ପଣ୍ଡିତ ।

ମଣ୍ଡନଲୀଳା—ଗ୍ରା.ବି. (ତନ୍ତ୍ର) ଦେହର ଅଳଂକାରମାନଙ୍କର ଶୋଭା ।

ମଣ୍ଡପ—ବି. (ମଣ୍ଡ+ପା+ଅ) ଲୋକବିଶ୍ରାମ ସ୍ଥାନ, ଜନାଶ୍ରୟ, ବିବାହଗୃହ, ବେଦୀ, ଦେବଗୃହ, ମନ୍ଦିର, ଗୁନ୍ଦୁଆ, ଗୁମ୍ଫା ମଣ୍ଡପ,! (ବିଂ)ମଣ୍ଡପାନକାରୀ ।

ମଣ୍ଡପକ୍ଷେତ୍ର—କ୍ଳୀ. ବି. ପବିତ୍ର ସ୍ଥାନ ।

ମଣ୍ଡପା—ସ୍ତ୍ରୀ.ବି. (ମଣ୍ଡପା+ଆ) ନିଷ୍ପାବୀ, ଶିମ୍ବ । [ ମଣ୍ଡପ ।

ମଣ୍ଡପିକା—ବି.(ମଣ୍ଡପ+କ+ଆ)ଗ୍ରେଟ

ମଣ୍ଡପୀ--ଗ୍ରା.ସ୍ତ୍ରୀ.ବି.କ୍ଷୁଦ୍ର ପଟୋପୋଦକୀ, କ୍ଷୁଦ୍ର ପତ୍ର ପୁଇଶାଗ, ସମସ୍ତ ଲୋକଙ୍କ ପୂଜା ସମୟେ ଯେ ଦୁର୍ଗ ମଣ୍ଡପରେ କାର୍ଯ୍ୟ କରେ । [ ଜୁତା ।

ମଣ୍ଡପଲ—କ୍ଳୀ.ବି. ଆଜାନୁଲମ୍ବିତ ବୋଟ୍

ମଣ୍ଡମଣ୍ଡିଆ—ଗ୍ରା. ବିଂ. ଖଣ୍ଡିଖଣ୍ଡି ମଣ୍ଡଯୁକ୍ତ, ଖଦଡ଼ିଆ (ଜଳୀୟ ବସ୍ତୁ) ।

ମଣ୍ଡୟନ୍ତ—ପୁଂ.ବି.ଅନ୍ନ, ବଧୂସଙ୍ଘ, ନଟ, ଅଳଂକାର ।

ମଣ୍ଡୟନ୍ତୀ—ସ୍ତ୍ରୀ. ବି. ଯୋଷିତ୍,ସ୍ତ୍ରୀ ।

ମଣ୍ଡର—ପୁଂ. ବି. ଭୂଷଣ ।

ମଣ୍ଡଳ—ବି.(ମଣ୍ଡ+ଅଳ)ଚନ୍ଦ୍ର ଓ ସୂର୍ଯ୍ୟଙ୍କର ପରିଧି, ଚନ୍ଦ୍ର ଓ ସୂର୍ଯ୍ୟଙ୍କର ଉତ୍ପାଦିତ ରଶ୍ମିମଣ୍ଡଳ, ପରିବେଶ, ପରିଧି, ଚକ୍ରବାଳ, ଗୋଲକ ଚକ୍ର, ନଖାଘାତ, ବୃତ୍ତାଧନ୍ୱମାନଙ୍କର ସ୍ଥାନପଞ୍ଚକାନ୍ତର୍ଗତସ୍ଥିତିବିଶେଷ, ବ୍ୟୂହବିଶେଷ, ବିଶ୍ୱ, କୁକୁର, ସର୍ପବିଶେଷ, ଦେହର ଅଷ୍ଟପ୍ରକାର ସନ୍ଧିର ଅନ୍ତର୍ଗତ ସନ୍ଧିବିଶେଷ, ରେସମ ଉପରେ ଜରୀର କାର୍ଯ୍ୟ କରାଯାଇଥିବା ବସ୍ତ୍ରଭେଦ, ବୃତ୍ତାକାର ଚିହ୍ନ, ଗ୍ରହମାନଙ୍କର ଗତି ରେଖା, ରାଜ୍ୟ, ଦେଶାଂଶ, ପ୍ରଦେଶ, ତକଲି, ପ୍ରଗନ୍ନା, ଅରି ମିତ୍ରାଦି ଦ୍ୱାଦଶ ପ୍ରକାର ରାଜାସମୂହ, ପୁଞ୍ଜ, ଦଶ୍ବଳୟ, ୪୦ ଯୋଜନ ଲମ୍ବ ଓ ୨୦ ଯୋଜନ ଚୌଡ଼ା ଭୂଖଣ୍ଡ, ନଖୀନାମକ ସୁଗନ୍ଧ ଦ୍ରବ୍ୟ, ଚକାଚକା ଦାଗ, କୁଷ୍ଠରୋଗବିଶେଷ, ଗୋଲାକାର ସୈନ୍ୟ ବ୍ୟୂହବିଶେଷ, (ଗ୍ରା.ବି) ବଂଶୋପାଧିବିଶେଷ, ଦେବତା ଓ ଗ୍ରହମାନଙ୍କ ଆବାହନ କରିବାର ଚିହ୍ନିତ ସ୍ଥାନ ।

ମଣ୍ଡଳକ—କ୍ଳୀ. ବି. (ମଣ୍ଡଳ+କ) ବିମ୍ବ, କୁଷ୍ଠରୋଗବିଶେଷ, ଦର୍ପଣ, କୁକ୍କୁର, ମଣ୍ଡଳାକାର ବ୍ୟୂହ, ସୂର୍ଯ୍ୟ ଓ ଚନ୍ଦ୍ରଙ୍କ ମଣ୍ଡଳ ।

ମଣ୍ଡଳକରାଜନ—ପୁଂ.ବି.ମଣ୍ଡଳାଧୀଶ୍ୱର ।

ମଣ୍ଡଳଚିହ୍ନ—କ୍ଳୀ.ବି.ମଣ୍ଡଳାକାର ଚିହ୍ନ ।

ମଣ୍ଡଳନୃତ୍ୟ—କ୍ଳୀ. ବି. ଚକ୍ରାକାରରେ ପରିଭ୍ରମଣ କରି ନୃତ୍ୟ କରିବା ।

ମଣ୍ଡଳପତ୍ରିକା—ସ୍ତ୍ରୀ. ବି. ରକ୍ତପୁନର୍ନବା, ରଙ୍ଗପୁରୁଣୀ ।

ମଙ୍ଗଳପୁଚ୍ଛକ—ପୁଂ. ବି. କୀଟଭେଦ ।

ମଣ୍ଡଳପୁରନ୍ଦର—ବି. ଜଣେ ବିଖ୍ୟାତ ଜୈନ ସାଧୁ ।

ମଣ୍ଡଳଭାଙ୍ଗିବା—ଗ୍ରା.କ୍ରି.ଭୂମିରେ ମଣ୍ଡଳାକାର ଚିହ୍ନ ଲେଖିବା ।

ମଣ୍ଡଳମଧ୍ୟବର୍ତ୍ତୀ—ବିଂ. ଚକ୍ରମଧ୍ୟସ୍ଥ ।
ମଣ୍ଡଳା—ଗ୍ରା. ବି. ଭୂମିଆଦିରେ ଅଙ୍କିତ ମଣ୍ଡଳାକାର ରେଖା ।
ମଣ୍ଡଳାକାର—ବିଂ. (ମଣ୍ଡଳ+ଆକାର) ଗୋଲାକାର, ଚକ୍ରାକାର ।
ମଣ୍ଡଳାଗ୍ର—ବି. (ମଣ୍ଡଳ + ଅଗ୍ର) ସୂକ୍ଷ୍ମାଗ୍ର ଭୋଁକ ଅସ୍ତ୍ରବିଶେଷ, ଝଣ୍ଟ୍ରୁ ।
ମଣ୍ଡଳାଘର—ପ୍ରା.(ସମ୍ବ)ବି. ପାଇଖାନା ।
ମଣ୍ଡଳାଧିପ(ତି)—ବି. (୬ତତ୍ପୁ) ମଣ୍ଡଳେଶ୍ୱର, ଗୃକଣ ଯୋଜନ ପରିମିତ ଦେଶର ରାଜା, ରାଜଚକ୍ରବର୍ତ୍ତୀ ।
ମଣ୍ଡଳାଧୀଶ—ପୁଂ.ବି.ମଣ୍ଡଳାଧିପ ଦେଖ ।
ମଣ୍ଡଳାୟିତ—କ୍ଲୀ.ବି (ମଣ୍ଡଳ + ଯ+ତ) ବର୍ତ୍ତୁଳ, ଚକ୍ରାକୃତି ।
ମଣ୍ଡଳି--ଗ୍ରା.ବି.ଖ୍ରୀଷ୍ଟୀୟାନମାନଙ୍କର ଏକ ଧର୍ମଯାଜକଙ୍କର ଅଧୀନ ଉପାସକଗଣ ।
ମଣ୍ଡଳିତ—ବି. ବିଂ. ମଣ୍ଡଳାନ୍ୱିତ,କୃତମଣ୍ଡଳ, ଘେରହୋଇଥିବା ।
ମଣ୍ଡଳିନୀ—ସ୍ତ୍ରୀ. ବି. (ମଣ୍ଡଳ + ଇନ୍ + ଈ) ଦୂବ ।
ମଣ୍ଡଳୀ—ବି. (ମଣ୍ଡଳ + ଇନ୍)ଜନସମୂହ. ସମାଜ, ଗୋଷ୍ଠୀ, କୁକ୍କୁର, ବଣଭୁଆ, ବିଡ଼ାଳ, ବଟବୃକ୍ଷ,ଗୋନାଶସର୍ପ,ସୂର୍ଯ୍ୟ, ବରଡ଼ି, ଡିମ୍ବିରଗଛ,ଚକ୍ର,ଦୂବ,ଗୁଳୁଚୀ, ବିଂ.ଚକ୍ରାକାରରେ ଘୂର୍ଣ୍ଣିତ,ମଣ୍ଡଳବିଶିଷ୍ଟ
ମଣ୍ଡଳୀକରଣ—-ବି. କୁଣ୍ଡଳୀକରଣ, ଗୋଲାଇବା ।
ମଣ୍ଡଳୀକୃତ--ବିଂ କୁଣ୍ଡଳୀକୃତ, ଗୋଲାଇ ହୋଇଥିବା ।
ମଣ୍ଡଳେଶ—ପୁଂ. ବି. (ମଣ୍ଡଳ+ଈଶ) ମଣ୍ଡଳେଶ୍ୱର, ରାଜା, ସମ୍ରାଟ୍ ।
ମଣ୍ଡଳେଶ୍ୱର—ପୁଂ. ବି. ଭୂମିର ଏକଦେଶାଧିପ, ପ୍ରଦେଶାଧିପ ।
ମଣ୍ଡହାରକ—ପୁଂ. ବି.(ମଣ୍ଡ+ହୃ+ଅକ) ଶୁଣ୍ଡି, ମଦ୍ୟବ୍ୟବସାୟୀ ।
ମଣ୍ଡା—ସ୍ତ୍ରୀ. ବି. ସୁରା,ଆମଳକୀ, (ଗ୍ରା.ବିଂ) ଗୋଲାକାର, ସଜ୍ଜିତ, (ଗ୍ରା.ବି) ପିଷ୍ଟକବିଶେଷ, ମଣ୍ଡାପିଠା, ପୁଷ୍ପସ୍ତବକ,ମଣ୍ଡାକାଇଁଚ, ମଣ୍ଡିବା ।

ମଣ୍ଡା(ଣ୍ଡେ)ଇବା—ଗ୍ରା. କ୍ରି. ମଣ୍ଡିତ କରାଇବା, ସୁସଜ୍ଜିତ କରିବା ।
ମଣ୍ଡାକାଇଞ୍ଚ—ଗ୍ରା.ବି.ଏକପ୍ରକାର ବର୍ତ୍ତୁଳ ନାଲିଫଳ । [ କଣ୍ଟକଲ ।
ମଣ୍ଡାଗିଲ—ଗ୍ରା ବି. ଏକଜାତୀୟ ଗିଲ,
ମଣ୍ଡାଫୁଲ—ଗ୍ରା. ବି. ବଡ଼ ଗେଣ୍ଡୁଫୁଲ ।
ମଣ୍ଡି—ଗ୍ରା. ବି. ପାଣିଆ ଦ୍ରବ୍ୟର ତଳେ ବସିଥିବା ଖଦଡ଼ା ଅଂଶ ।
ମଣ୍ଡିଆ--ଗ୍ରା.ବିଂ.ଖଦଡ଼ିଆ(ତରଳଦ୍ରବ୍ୟ) ।
ମଣ୍ଡିତ—ତ୍ରି. ବିଂ. (ମଣ୍ଡ+ତ) ଭୂଷିତ, ସଜ୍ଜିତ, ଖଚିତ, ବେଷ୍ଟିତ, ଆବୃତ, (ପୁଂ.ବି) ବୌଦ୍ଧଗଣାଧିପବିଶେଷ ।
ମଣ୍ଡିବା—ଗ୍ରା. କ୍ରି. ଭୂଷିତ କରିବା,ସଜାଇବା, ଶୋଭା ବଢ଼ାଇବା ।
ମଣ୍ଡୀଲକ—ବି. ଗୋଧୂମ ଚୂର୍ଣ୍ଣରେ ପ୍ରସ୍ତୁତ ପିଷ୍ଟକଭେଦ ।
ମଣ୍ଡୁ—ପୁଂ. ବି. ଋଷିବିଶେଷ ।
ମଣ୍ଡୁଅ—ଗ୍ରା. ବି. ମଣ୍ଡପ ।
ମଣ୍ଡୁଆ—ପ୍ରା. (ସମ୍ବଲ) ବି. ମଣ୍ଡପ ।
ମଣ୍ଡୁକ—ବି. (ମଣ୍ଡ୍+ମଂ.ଉକ) ଡାଲକୁ ଧରିବାର ସ୍ଥାନ ।
ମଣ୍ଡୁଲ—ପ୍ରା. (ସମ୍ବଲ)ବି. ମାଛଧରିବାର ଯନ୍ତ୍ରବିଶେଷ ।
ମଣ୍ଡୂକ—ପୁଂ.ବି. (ମଣ୍ଡ + ଊକ) ଭେକ, ବେଙ୍ଗ, ଶୋଣକ, ମୁନିବିଶେଷ,ରତିବନ୍ଧବିଶେଷ, ଅଶ୍ୱଜାତିଭେଦ,ପ୍ରାଚୀନ କାଳର ଏକବାଦ୍ୟ, ନୃତ୍ୟବିଶେଷ ।
ମଣ୍ଡୂକପର୍ଣ୍ଣ—ପୁଂ. ବି. ଶ୍ୟୋଣାକ ବୃକ୍ଷ, ଫଣଫଣା ।
ମଣ୍ଡୂକପର୍ଣ୍ଣିକା—ବି.ମଣ୍ଡୂକପର୍ଣ୍ଣୀଦେଖ ।
ମଣ୍ଡୂକପର୍ଣ୍ଣୀ—ସ୍ତ୍ରୀ. ବି. ମଞ୍ଜିଷ୍ଠା, ଥାଲକୁଣି ଗଛ,ଦାନ୍ତଖୋଳିଆ ଗୁଳ୍ମ,ଆଦିତ୍ୟଭକ୍ତା, ଔଷଧିବିଶେଷ, ବ୍ରାହ୍ମୀଶାକ ।
ମଣ୍ଡୂକପ୍ଲୁତ(ତି)—ବି. ଭେକ, ଲମ୍ଫ, ବେଙ୍ଗ ଡେଇଁବା ଗତି, ରଚନାର ଦୋଷବିଶେଷ, ଅକ୍ଷରରଚନାବିଶେଷ ।
ମଣ୍ଡୂକପ୍ଲୁତ(ତି)ନ୍ୟାୟ—ବି. ବେଙ୍ଗ ଯେଉଁପରି ଡେଇଁ ଡେଇଁ ଗତିକରେ. ସେହିପରି ମଧ୍ୟେ ମଧ୍ୟେ ରହି ରହି କୌଣସି କାର୍ଯ୍ୟ କରାଯିବା ।

ମଣ୍ଡୂକମାତା—ସ୍ତ୍ରୀ. ବି. ବ୍ରାହ୍ମୀ, ବେଙ୍ଗର ମାଆ ।
ମଣ୍ଡୂକବାଦ୍ୟ—ବି ଶିଶୁଙ୍କ କ୍ରୀଡ଼ନକ ଏକପ୍ରକାର ଆନନ୍ଦ ବାଦ୍ୟ, ବେଙ୍ଗିବାଇଦ । [ ଜଳାଶୟ ।
ମଣ୍ଡୂକସର—-କ୍ଲୀ. ବି. ମଣ୍ଡୂକପୂର୍ଣ୍ଣ
ମଣ୍ଡୂକା—ସ୍ତ୍ରୀ. ବି. ମଞ୍ଜିଷ୍ଠା ।
ମଣ୍ଡୂକାସନ—ବି. ଯୋଗର ଆସନବିଶେଷ ।
ମଣ୍ଡୂକି—ଗ୍ରା. ବି. ମଣ୍ଡୂକ ଦେଖ ।
ମଣ୍ଡୂକୀ—ସ୍ତ୍ରୀ. ବି. ଆଦିତ୍ୟଭକ୍ତା, ମାଈବେଙ୍ଗ, ମଣ୍ଡୂକପର୍ଣ୍ଣୀ, ବ୍ରାହ୍ମୀଶାକ, ଅସତୀ ସ୍ତ୍ରୀ ।
ମଣ୍ଡୂର—ବି. ଲୌହମଳ, ଲୁହାମଳ ।
ମଣ୍ଡୂରବଜ୍ରବଟକ—ପୁଂ.ବି.ଔଷଧବିଶେଷ
ମଣ୍ଡେଇବା—ପ୍ରା. (ଯାଜପୁର) ବି.ପିନ୍ଧେଇବା ।
ମଣ୍ଡୋଦ—ପୁଂ.ବି. ସହ୍ୟାଦ୍ରିଖଣ୍ଡ ବର୍ଣ୍ଣିତ ସପ୍ତସାଗର ମଧ୍ୟରୁ ଏକ ।
ମଣ୍ଡୋଦକ—କ୍ଲୀ.ବି. ପିଠଉପାଣି,ଆତର୍ପଣ, ଆଳିପଣା ।
ମତ୍—(ଅସ୍ମଦ୍ ଶବ୍ଦଜ ମତ୍ଶବ୍ଦାଂଶର ଏକରୂପ) ମଦଧିକୃତ, ମୋହର, ମୋସମ୍ବନ୍ଧୀୟ, ମୋଦ୍ୱାରା.(ବି)ପ୍ରତ୍ୟୟବିଶେଷ ।
ମତ୍କ—ବିଂ. ( ଅସ୍ମଦ୍+କ ) ମଦୀୟ, ମୋର, (ସ୍ତ୍ରୀ) ମତ୍କା, (ବି-ମତ୍+କ. କ) ଘୁରପୋକ ।
ମତ୍କାମନା—ବି. ( ଅସ୍ମଦ୍+କାମନା) ମୋଇଚ୍ଛା ।
ମତ୍କାମୀ—ପୁଂ. ବିଂ. (ଅସ୍ମଦ+କାମିନ୍) ମୋତେ ଲାଭ କରିବାକୁ ଇଚ୍ଛୁକ,(ସ୍ତ୍ରୀ) ମତ୍କାମିନୀ ।
ମତ୍କୁଣ—ବି. (ମତ୍+କ.କ୍ୱଣ) ଘୁରପୋକ, ଉଡ଼ୁଶ,ଉକୁଣି,ନିର୍ବିଷାଣହସ୍ତୀ, ମାଖୁନାହାତୀ, ନାରିକେଳ (ଗଛ ଓ ଫଳ), ଶ୍ମଶ୍ରୁହୀନ ମନୁଷ୍ୟ, ଜଙ୍ଘାତ୍ରାଣ, ପଦତ୍ରାଣ, ମତ୍କୁଷ ।
ମତ୍କୁଣା(ଣୀ)—ବି. ଅଜାଗଳ ସ୍ତନ,

ଅକାତଲୋମ ସ୍ତ୍ରୀଚିହ୍ନ,ଅଲୋମକ ଭଗ ।

ମତ୍କୁଣାର—ବି. ( ମତ୍କୁଣ+ଅର ) ଇନ୍ଦ୍ରାହନ, ହିଞ୍ଚି, ପଢ଼, ଗଣ୍ଡେଇ ।

ମତ୍କୃତ – ବି°. (ଅସ୍ମଦ୍+କୃତ) ୬ତତ୍; ମୋଦ୍ୱାରା କୃତ ବା ସମ୍ପାଦିତ ବା ରଚିତ ।

ମତ୍ପରାୟଣ—ପୁଂ.ବି°. (ଅସ୍ମଦ୍+ପରାୟଣ) ମୋ ପ୍ରତି ବିଶେଷ ଅନୁରକ୍ତ,(ସ୍ତ୍ରୀ) ମତ୍ପରାୟଣା ।

ମତ୍ପୁତ୍ର—ବି.(ଅସ୍ମଦ୍+ପୁତ୍ର)ମୋପୁଅ ।

ମତ୍ପ୍ରଣୀତ—ବି°. ( ଅସ୍ମଦ୍+ପ୍ରଣୀତ ) ମୋଦ୍ୱାରା ରଚିତ ।

ମତ—ବି. (ମନ୍+ର୍ମି.ତ) ମନର ଭାବ, ପରାମର୍ଶ, ଉଦ୍ଦେଶ୍ୟ, ବିଶ୍ୱାସ, ମନ୍ତବ୍ୟ, ଇଚ୍ଛା, ଅଭିମତ,ଜ୍ଞାନ,ଗୁଗ୍ଗୁଳ, ଅଗୁରୁ, ହସ୍ତୀ, ପ୍ରକାର,ରୀତି,ମତବାଦ, ମେଘ, ଧର୍ମର ବିଶ୍ୱାସ,ସମ୍ମତି,ମନ୍ତ୍ରଣା, ଅନୁକୂଳ ମତ, (ବି° ) ସମ୍ମତ, ଜ୍ଞାତ, ଯୁକ୍ତିଯୁକ୍ତ, ଅଭିପ୍ରେତ, ବିବେଚିତ, ଚିନ୍ତିତ, ଅନୁମିତ,ଜନ୍ମଦ୍ୱାରା ସ୍ୱୀକୃତ,ପୂଜିତ, ଅନୁଷ୍ଠିତ, କୁତ୍ସିତ ।

ମତଗଜ—ଗ୍ରା.ବି. ମତଙ୍ଗଜ, ମତ୍ତହସ୍ତୀ ।

ମତଗଜଗତି—ଗ୍ରା. ବି. ମତ୍ତହସ୍ତୀପରି ମୃଦୁଗମନ ।

ମତଗଜସିଂହ—ଗ୍ରା.ବି. ପାଇକ ଓ ଖଣ୍ଡାୟତଙ୍କୁ ଦିଆଯିବା ରାଜଉପାଧିବିଶେଷ ।

ମତଙ୍ଗ—ବି. (ମଦ୍+କ.ଅଙ୍ଗ)ମାତଙ୍ଗ, ହସ୍ତୀ, (ଣ.ଅଙ୍ଗ)ମେଘ, ରାଜର୍ଷିବିଶେଷ, ପ୍ରାଚୀନ ତୀର୍ଥବିଶେଷ, ମୁନିବିଶେଷ, ଦାନବବିଶେଷ, କାମରୂପର ଦେଶବିଶେଷ ।

ମତଙ୍ଗଜ--ପୁଂ.ବି.(ମତଙ୍ଗ+ଜନ୍+ଅ) ମୁନିବିଶେଷ, ହସ୍ତୀ ।

ମତଙ୍ଗତୀର୍ଥ—କ୍ଲୀ.ବି. ତୀର୍ଥଭେଦ ।

ମତଙ୍ଗଦେଶ—ବି. କାମରୂପର ବହ୍ନିକୋଣରେ ଅବସ୍ଥିତ ଜନପଦବିଶେଷ

ମତଙ୍ଗବାପୀ—ସ୍ତ୍ରୀ.ବି. ତୀର୍ଥବିଶେଷ ।

ମତଙ୍ଗାଶ୍ରମ—ବି. ଗୟା ଜିଲ୍ଲାସ୍ଥ ଫଲ୍ଗୁନଦୀର ଦକ୍ଷିଣକୂଳେ ଅବସ୍ଥିତ ପୁଣ୍ୟସ୍ଥାନ ।

ମତହେବା--ଗ୍ରା.କ୍ରି.ଅନୁମୋଦନ କରିବା. ଅଭିମତ ପ୍ରକାଶ କରିବା, ସ୍ୱୀକୃତ ହେବା, ଅନୁମତି ଦେବା, ପରାମର୍ଶ ଦେବା ।

ମତଦ୍ୱୈଧ—ବି. (୬ତତ୍) ଦୁଇଜଣଙ୍କ ମଧ୍ୟରେ ମତର ପ୍ରଭେଦ ବା ଅନୈକ୍ୟ, ଏକ ବିଷୟରେ ଦୁଇଟି ପୃଥକ୍‌ମତ ।

ମତପରିବର୍ତ୍ତନ—ବି. (୬ତତ୍) ପ୍ରକାଶିତ ବା ନିଶ୍ଚିତ ମତର ଅନ୍ୟଥାଭାବ ।

ମତପୋଷଣ—ବି. ( ୬ତତ୍ ) ମନରେ କୌଣସି ମତ ଧାରଣ କରିବା ।

ମତଭେଦ—ବି. (୬ତତ୍) ଏକାଧିକ ମତର ଅମେଳ, ଅନ୍ୟମତ ।

ମତର୍ଜିମ—ଯା. ଅନୁବାଦକ,ଦୋଭାଷୀ ।

ମତଲବ୍(ବ୍)—ଯା.ବି. ଇଚ୍ଛା, ଅଭିପ୍ରାୟ, ଗୂଢ଼ ଅଭିସନ୍ଧି, ଉଦ୍ଦେଶ୍ୟ, ତାତ୍ପର୍ଯ୍ୟ, ସ୍ୱାର୍ଥପରତା ।

ମତଲବି(ବୀ)—ଯା. ବି°. ଯାହାର ଅଭିସନ୍ଧି ଅଛି, ସ୍ୱେଚ୍ଛାଚାରୀ, ଫନ୍ଦିବାଜ୍: ସ୍ୱାର୍ଥପର ।

ମତଲ୍ଲିକା—ସ୍ତ୍ରୀ. ବି°. (ମତ୍+ଅଲ୍+କ. ଅକ+ଆ) ପ୍ରଶସ୍ତ, ଉତ୍ତମ, (ବି)ଛନ୍ଦୋଭେଦ ।

ମତବାୟୁ--ଗ୍ରା.ବି.ଇନ୍ଦ୍ରିୟବୃତ୍ତି ଚରିତାର୍ଥ ହୋଇ ନ ପାରିବା ଯୋଗୁଁ ପାଗଳ ।

ମତବାଦ—(ବି)ଆପଣାର ଜୀବନର ଗତି ପରିଚାଳକ ବା ଅନ୍ୟ ବିଷୟକ ମତ ବା ମୂଳମତ, ଅଭିମତ ପ୍ରକାଶ ।

ମତବାଦୀ—ପୁଂ. ବି°. (ମତ+ବଦ୍+ଇନ୍) ମତ ପ୍ରକାଶକାରୀ, (ସ୍ତ୍ରୀ)ବାଦିନୀ ।

ମତବିରୁଦ୍ଧ—ବି°. (୬ତତ୍) କୌଣସି ମତର ବିପକ୍ଷ ବା ପ୍ରତିକୂଳ ।

ମତବିରୋଧ—ବି.(୬ତତ୍) ମତମାନଙ୍କର ଭିନ୍ନତା ବା ଅମେଳ ।

ମତବିରୋଧୀ—ପୁଂ.ବି°.(୬ତତ୍) ବିପକ୍ଷମତ ପୋଷଣକାରୀ, (ସ୍ତ୍ରୀ) ବିରୋଧିନୀ ।

ମତା—ଗ୍ରା. ବି. ଉନ୍ମତ୍ତ ହେବା ଅବସ୍ଥା, ଅଣ୍ଡିରା ପାରାବିଶେଷ, (ବି°)ତରକୁଆଦି ଏକପାଖକୁ ଢଳିବା ଅବସ୍ଥାରେ ଥିବା ।

ମତାଇବା—ଗ୍ରା କ୍ରି. ଉନ୍ମତ୍ତ କରାଇବା, ପବର୍ତ୍ତାଇବା, ଆସକ୍ତ କରାଇବା ।

ମତାନୁଯାୟୀ—ପୁଂ. ବି°. ମତାବଲମ୍ବୀ, (ଗ୍ରା.କ୍ରି.ବି°) ମତ ଅନୁସାରେ ।

ମତାନ୍ତର—କ୍ଲୀ. ବି. ( ଅନ୍ୟ+ମତ ) ବିଭିନ୍ନ ମତ, ଅନ୍ୟମତ ।

ମତାବଲମ୍ବନ—କ୍ଲୀ.ବି.(୬ତତ୍)ଗୋଟିଏ ମତକୁ ଗ୍ରହଣ କରିବା, କୌଣସି ବ୍ୟକ୍ତିଙ୍କ ମତ ଅନୁସାରେ କାର୍ଯ୍ୟକରିବା ।

ମତାବଲମ୍ବୀ—ପୁଂ.ବି°. ଯେ କୌଣସି ଗୋଟିଏ ମତ ଅନୁସାରେ ଚଳେ, (ସ୍ତ୍ରୀ) ମତାବଲମ୍ବିନୀ ।

ମତାମତ—ବି. (ମତ+ଅମତ) ସମ୍ମତ ଓ ଅସମ୍ମତ, ଇଚ୍ଛା ବା ଅନିଚ୍ଛା ।

ମତାମତକରିବା—ଗ୍ରା. କ୍ରି. ତର୍କବିତର୍କ କରିବା ।

ମତାଲକ୍—ଯା.ବି°. ସମ୍ବନ୍ଧୀୟ, ସଂଯୁକ୍ତ କାର୍ଯ୍ୟସାଧନପାଇଁ ସ୍ଥଗିତ । [ ଦାବୀ ।

ମତାଲବ୍—ଯ,ବି. ପ୍ରାର୍ଥନା, ଅନୁରୋଧ,

ମତି—ସ୍ତ୍ରୀ.ବି. (ମନ୍+ଣ.ତି) ବୋଧଶକ୍ତି, ବୁଦ୍ଧି, ଜ୍ଞାନ, ସ୍ମୃତି,ଅନ୍ତଃକରଣ, ମନ (ଭା.କ୍ତି) ପ୍ରବୃତ୍ତି, ଇଚ୍ଛା, ପ୍ରକୃତି, ସମ୍ମତି, ବିବେଚନା,ଆର୍ଯ୍ୟ,ଶାକଭେଦ, (ଗ୍ରା.ବି) ଧୈର୍ଯ୍ୟ, ଧୃତି ।

ମତିଆରୀ—ଗ୍ରା. ବି. ରାଗବିଶେଷ ।

ମତିକର୍ମ—କ୍ଲୀ.ବି. ବୁଦ୍ଧିକାର୍ଯ୍ୟ,ମାନସିକ କାର୍ଯ୍ୟ ।

ମତିଗତି—ଗ୍ରା. ବି. ଆନ୍ତରିକ ଉଦ୍ଦେଶ୍ୟ ଓ ବାହ୍ୟ ପ୍ରଚେଷ୍ଟା ବା କ୍ରିୟାକଳାପ, ଢଙ୍ଗଢାଙ୍ଗ, ମନର ଭାବ, (ସ୍ତ୍ରୀ.ବି)ମନ ଓ କାର୍ଯ୍ୟ, ଅଭିପ୍ରାୟ ଓ ଚେଷ୍ଟା ।

ମତିଗର୍ଭ—ପୁଂ. ବି°. (ବ.ବ୍ରୀ)ବୁଦ୍ଧିମାନ୍, ଚତୁର, ହୁସିଆର, ବିଚକ୍ଷଣ,(ସ୍ତ୍ରୀ)ଗର୍ଭା

ମତିଚନ୍ଦ୍ର--ପୁଂ.ବି.ଅଶ୍ୱଘୋଷଙ୍କ ନାମାନ୍ତର

ମତିଚ୍ଛନ୍ନ—ବି°. (୩ତତ୍) ଭ୍ରଷ୍ଟବୁଦ୍ଧି, ଯାହାର ବୁଦ୍ଧି ଲୋପ ହୋଇଅଛି, କିଂକର୍ତ୍ତବ୍ୟବିମୂଢ଼,(ବି.୬ତତ୍)ବୁଦ୍ଧିନାଶ, ଭ୍ରମତ, ନିର୍ବୁଦ୍ଧିତା, (ସ୍ତ୍ରୀ)ମତିଚ୍ଛନ୍ନା ।

ମତିଦର୍ଶନ—କ୍ଳୀ. ବ. ଅପରର ବୁଦ୍ଧି ବା ମନୋଭାବ ଜାଣିବାର କ୍ଷମତା ।
ମତିଦା—ସ୍ତ୍ରୀ. ବଂ. (ମତି+ଦା+କ.ଅ+ଆ)ଯାହା ବୁଦ୍ଧିବୃତ୍ତି ପ୍ରଦାନକରେ, (ବ) ଜ୍ୟୋତିଷ୍ମତୀଲତା, ଶେମିଲୀଗଛ ।
ମତିଧ୍ୱଜ—ପୁଂ. ବ. ଶାକ୍ୟ ପଣ୍ଡିତଙ୍କର ଭ୍ରାତୁଷ୍ପୁତ୍ର ।
ମତିନଷ୍ଟସ୍ମୃ—ପୁଂ. ବ. ମତିର ନଷ୍ଟସ୍ମୃତା, ବୁଦ୍ଧିର ସ୍ଥିରତା ।
ମତିପୂର୍ବ—ଅବ୍ୟ. ବୁଦ୍ଧିପୂର୍ବକ, ବିବେଚନାର ସହିତ ।
ମତିପ୍ରକର୍ଷ—ବ.(୬ତତ୍ପୁ)ବୁଦ୍ଧିର ପ୍ରକର୍ଷ ।
ମତିପ୍ରଦା—ବ. ବଂ. ମତିଦା ଦେଖ ।
ମତିବୁଦ୍ଧି—ଗ୍ରା. ବ. ବୁଦ୍ଧିଶୁଦ୍ଧି ।
ମତିବିଭ୍ରଂଶ—ବ. (୬ତତ୍ପୁ) ବୁଦ୍ଧି ଶକ୍ତିର ବିନାଶ, ସ୍ମୃତିଶକ୍ତିର ଲୋପ, ଉନ୍ମାଦରୋଗ ।
ମତିଭେଦ—ପୁଂ. ବ. ବୁଦ୍ଧିର ଭିନ୍ନତା ।
ମତିଭ୍ରଂଶ—ପୁଂ.ବ. (୬ତତ୍ପୁ) ବୁଦ୍ଧିନାଶ, ଉନ୍ମାଦ ରୋଗ, ଭୁଲ୍, ବୁଦ୍ଧିହୀନତା, କୁବୁଦ୍ଧି ।
ମତିଭ୍ରମ—ପୁଂ. ବ. ବୁଦ୍ଧିଭ୍ରଂଶ, ଭ୍ରମ, ମିଥ୍ୟାମତି, ଭ୍ରାନ୍ତ, ଭୁଲ୍, କୁବୁଦ୍ଧି ।
ମତିଭ୍ରଷ୍ଟ—ପୁଂ. ବଂ. (୫ତତ୍ପୁ) ଭ୍ରାନ୍ତ, ବୋଧହୀନ, ଦୁର୍ମତି, ଉନ୍ମତ୍ତ, (ସ୍ତ୍ରୀ) ମତିଭ୍ରଷ୍ଟା ।
ମତିଭ୍ରାନ୍ତି—ସ୍ତ୍ରୀ. ବ. (୬ତତ୍ପୁ) ମତିଭ୍ରଂଶ, ବୁଦ୍ଧିନାଶ, ବୁଝିବାରେ ଭୁଲ୍ ।
ମତିମତେ—ଗ୍ରା.କ୍ରି.ବଂ.(ଅମୁକର)ଇଚ୍ଛାନୁସାରେ । [ମାନ୍ ।
ମତିମନ୍ତ—ଗ୍ରା.ପୁଂ.ବଂ. ମତିମାନ୍, ବୁଦ୍ଧି-
ମତିମାନ୍—ପୁଂ.ବଂ. (ମତି+ମତ୍)ବୁଦ୍ଧିମାନ୍,ସୁବିବେଚକ,ସୁଧୀ,(ସ୍ତ୍ରୀ)ମତିମତୀ, (ବ) ଶିବ ।
ମତିବିଦ୍—ପୁଂ.ବଂ. ମତିମାନ୍, ମେଧାବୀ, ବୁଦ୍ଧିମାନ୍ ।
ମତିବିଭ୍ରଂଶ—ବ. (୬ତତ୍ପୁ) ବୁଦ୍ଧି ଶକ୍ତିର ଲୋପ, ସ୍ମୃତିଶକ୍ତିର ବିନାଶ, ଉନ୍ମାଦରୋଗ ।
ମତିବିଭ୍ରମ—ପୁଂ. ବ. ଉନ୍ମାଦରୋଗ, ବୁଦ୍ଧିଭ୍ରଂଶ, ବୁଦ୍ଧିନାଶ ।
ମତିଶାଳୀ—ପୁଂ. ବଂ. ମେଧାବୀ, ବୁଦ୍ଧିଶାଳୀ, ବୁଦ୍ଧିମାନ୍ ।
ମତିଷ୍ଠ—ପୁଂ. ବଂ. (ମତିମତ୍+ଇଷ୍ଠ) ଅତିଶୟ ବୁଦ୍ଧିମାନ୍, ସୁବୁଦ୍ଧିବିଶିଷ୍ଟ,(ସ୍ତ୍ରୀ) ମତିଷ୍ଠା ।
ମତିସ୍ଥୈର୍ଯ୍ୟ—ବ(୬ତତ୍ପୁ)ବୁଦ୍ଧିର ସ୍ଥିରତା, ସଂକଳ୍ପର ଦୃଢ଼ତା ବା ଅଟଳତା ।
ମତିହୀନ—ପୁଂ.ବଂ.(୩ତତ୍ପୁ) ବୁଦ୍ଧିଭ୍ରଷ୍ଟ, ନିର୍ବୁଦ୍ଧିଆ, (ସ୍ତ୍ରୀ) ମତିହୀନା ।
ମତୀଶ୍ୱର—ପୁଂ.ବ.ବିଶ୍ୱକର୍ମାଙ୍କନାମାନ୍ତର
ମତୁଆ—ଗ୍ରା.ପୁଂ. ବଂ. ଉନ୍ମତ୍ତ, ପାଗଳ, ଯେ ଅନ୍ୟକୁ ମତାଏ ।
ମତୁଆଲ(ଲା)—ଗ୍ରା.ବଂ. ଉନ୍ମତ୍ତ,ପାଗଳ, ମଦୋନ୍ମତ୍ତ(ହସ୍ତୀ),ମଦୁଆ,ମଦନଶାରେ ଖେଳ ।
ମତୁଆଲ୍—ଗ୍ରା. ବ. ମୁସଲମାନଙ୍କ ମସଜିଦ୍‌ର ବା ଦେବୋତ୍ତର ସମ୍ପତ୍ତିର ମାରଫତ୍‌ଦାର ।
ମତେ—ଗ୍ରା. ଅବ୍ୟ. ପରି, ପ୍ରକାରେ, ମତ ଦେଖ ।
ମକ୍କ—ପୁଂ. ବଂ. (ମମ+କ) ମଦୀୟ, ଆମ୍ଭର, ଆମ୍ଭସମ୍ବନ୍ଧୀୟ(ସ୍ତ୍ରୀ)ମକ୍କା, (ପୁଂ. ବ. ମଦ+କ.କ୍ୱିପ୍) ମକ୍କୁଣ, ଢଙ୍କୁଣୀ, ଗୁରପୋକ ।
ମକ୍କୁଣ—ପୁଂ. ବ. (ମଦ୍+କୁଣ) ଗୁରପୋକ, ଢଙ୍କୁଣୀ, ଶ୍ମଶ୍ରୁହୀନ ପୁରୁଷ ।
ମକ୍କୁଣା—ସ୍ତ୍ରୀ. ବ. ମତ୍କୋଣା ଦେଖ ।
ମକ୍କୁଣାରି—ପୁଂ.ବ.ମତ୍କୁଣାରି ଦେଖ ।
ମକ୍କୁଣିକା—ସ୍ତ୍ରୀ.ବ.ମତ୍କୁଣିକା ଦେଖ ।
ମକ୍କୃତ—ବି. ବଂ. ମତ୍କୃତ ଦେଖ ।
ମତ୍ତ—ବଂ. (ମଦ୍+କ.ତ) ଆନନ୍ଦିତ, ହୃଷ୍ଟ, ବିହ୍ୱଳ, ମାତାଲ, ଅନବହିତ, ଗର୍ବିତ, ପ୍ରମତ୍ତ, ଉନ୍ମତ୍ତ, କ୍ରୁଦ୍ଧ,ଅତ୍ୟନ୍ତ ଆସକ୍ତ, (ସ୍ତ୍ରୀ) ମତ୍ତା, (ବ) କୋକିଳ, ବାଇଆ ହାତୀ, ମଦମତ୍ତ ହସ୍ତୀ, ମହିଷ, ଧୂସ୍ତୁର, (ପ୍ରା. ବାମଣ୍ଡା. ବ)ଧୈର୍ଯ୍ୟ,ବଳ ।
ମତ୍ତଉଠିବା—ଗ୍ରା. ବ. ମାତୁ ଉଠିବା, ମତ୍ତତା ଜାତହେବା ।
ମତ୍ତକଷ୍ଟ—ପୁଂ.ବ.(କ.ଧା) ବାୟା ହାତୀ, ମଦୋନ୍ମତ୍ତ ହସ୍ତୀ ।
ମତ୍ତକାଶିନୀ—ସ୍ତ୍ରୀ. ବ. (ମତ୍ତ+କାଶ୍+ଇନ୍+ଈ)ଉତ୍ତମା ସ୍ତ୍ରୀ, କାମୋନ୍ମତ୍ତା ସ୍ତ୍ରୀ
ମତ୍ତକାଶ—ପୁଂ.ବ.(ମତ୍ତ+କ+ଈଶ+କ.ଅ) ହସ୍ତୀ, ଗଜ ।
ମତ୍ତକୁଞ୍ଜର—ପୁଂ.ବ. ମତ୍ତକଷ୍ଟ ଦେଖ ।
ମତ୍ତଗଜଗତି—ବ.ହସ୍ତୀପରି ମନ୍ଥରଗତି ।
ମତ୍ତଗଜଗମନା—ସ୍ତ୍ରୀ. ବଂ. ମତ୍ତମାତଙ୍ଗ ପରି ମନ୍ଥରଗାମିନୀ ।
ମତ୍ତଗାମିନୀ—ସ୍ତ୍ରୀ. ବ. ଉତ୍ତମା ସ୍ତ୍ରୀ, (ବଂ) ଉନ୍ମତ୍ତପରି ଗମନଶୀଳା ।
ମତ୍ତଗାମୀ—ପୁଂ. ବଂ. ଉନ୍ମତ୍ତପରି ଗମନଶୀଳ (ବ୍ୟକ୍ତି) ।
ମତ୍ତତା—ବ(ମତ୍ତ+ଭା.ତା)ବୁଦ୍ଧିବିକାର, କ୍ଷିପ୍ତତା, ନିଶା, ବାତୁଳତା, ଉନ୍ମାଦ ।
ମତ୍ତନାଗ—ପୁଂ. ବ. ମଦୋନ୍ମତ୍ତ ହସ୍ତୀ ।
ମତ୍ତଭର—ଗ୍ରା.ବଂ. ମତୁଆଲ, ଉନ୍ମତ୍ତ ।
ମତ୍ତଭୃଙ୍ଗ—ବ. (କ.ଧା) ମଧୁପାନରେ ଉନ୍ମତ୍ତ (ଭ୍ରମର) ।
ମତ୍ତମୟୂର—ପୁଂ. ବ. କ.ଧା; (ମତ୍ତ+ମୟୂର)ଉନ୍ମତ୍ତ ମୟୂର, ମେଘ, ୧୩ଅକ୍ଷର ଛନ୍ଦ ।
ମତ୍ତମୟୂରକ—ପୁଂ.ବ.ଯୋଦ୍ଧୃ ଜାତିଭେଦ
ମତ୍ତମାତଙ୍ଗଲୀଳାକର—ଛନ୍ଦୋଭେଦ ।
ମତ୍ତର—ପୁଂ.ବଂ. (ଅସ୍ମଦ୍+ତର)ଆମ୍ଭଠାରୁ ବା ତୁମ୍ଭଠାରୁ ଅଧିକ ।
ମତ୍ତବାଇ—ଗ୍ରା. ବ. କାମୋନ୍ମତ୍ତତା, କାମୋନ୍ମାଦ । (ପୁରୁଷ) ।
ମତ୍ତବାୟା—ଗ୍ରା. ପୁଂ. ବଂ. କାମୋନ୍ମତ୍ତ
ମତ୍ତବାରଣ—ବ.(ମତ୍ତ+ବାରଣ)ଘରର ପିଣ୍ଡା ବା ବାରଣ୍ଡା, ଅପାଶ୍ରୟ, ପ୍ରାଙ୍ଗଣର ଆବରଣ, ଆବୃତସ୍ଥାନ, ନାଗଦନ୍ତକ, ପୂଗଚୂର୍ଣ୍ଣ, କୋଠାରେ ସଙ୍ଖ୍ୟା ହୋଇଥିବା କୁଣ୍ଡମଧ୍ୟସ୍ଥ ବୃକ୍ଷବୃତ୍ତି, (ପୁଂ. ବ. କ.ଧା)ମତ୍ତହସ୍ତୀ ।
ମତ୍ତବିଳାସିନୀ—ଛନ୍ଦୋଭେଦ ।
ମତ୍ତା—ସ୍ତ୍ରୀ.ବ.(ମତ୍ତ+ଆ) ମଦିରା, ପଙ୍କ୍ତି-

ଛନ୍ଦର ଅନ୍ତର୍ଗତ ଛନ୍ଦବିଶେଷ, (ବିଂ) ଅତିହୃଷ୍ଟା, ବହ୍ନିଲା ।
ମତ୍ତାକ୍ରୀଡ଼—ବି.(ମତ୍ତ+ଆକ୍ରୀଡ଼)ଅଷ୍ଟୋ-ବିଂଶାକ୍ଷର ଛନ୍ଦୋବିଶେଷ ।
ମତ୍ତାଲମ୍ବ—ପୁଂ. ବି. (ମତ୍ତ+ଆଲମ୍ବ) ପ୍ରାଙ୍ଗଣାବରଣ, ବାରଣ୍ଡା, ଅପାଶ୍ରୟ, ଆବୃତ ସ୍ଥାନ ।
ମତ୍ତେଭ—ପୁଂ.ବି.(ମତ୍ତ+ଇଭ)ମତ୍ତଗଜ, ମଦୋନ୍ମତ୍ତ ହସ୍ତୀ ।
ମତ୍ତେଭଗଡ—ବି.ବାସ୍ତୁ ହାତୀପରି ମନ୍ଥର ଗତି, ( ପୁଂ.ବିଂ.ବି.ଗ୍ରା ) ମତ୍ତଗଜପରି ମନ୍ଥରଗତିବିଶିଷ୍ଟ ।
ମତ୍ତେଭଗମନା—ସ୍ତ୍ରୀ.ବିଂ.ମତ୍ତଗଜଗାମିନୀ
ମତ୍ତେଭବିକ୍ରୀଡ଼ିତ—କ୍ଳୀ.ବି.ଛନ୍ଦୋବିଶେଷ
ମତ୍ୟ—କ୍ଳୀ. ବି. (ମତ+ଯ) ଚୃଷ ଜମି ସମାନ କରିବାର ସାଧନ ଫଳକ,ମଇ ।
ମତ୍ର—ବି. ଗୁପ୍ତୋକ୍ତି, ଗୁପ୍ତଭାଷଣ ।
ମତ୍ସ—ପୁଂ. ବି. (ମଦ୍+ସ) ମତ୍ସ୍ୟ,ମାଛ, ମତ୍ସ୍ୟରାଜ, ମତ୍ସ୍ୟଦେଶ, ମତ୍ସ୍ୟଦେଶ-ବାସୀ ବ୍ୟକ୍ତି ।
ମତ୍ସକାଶ—ବି. (ଅସ୍ମଦ୍+ସକାଶ) ମୋ ନିକଟତା ।
ମତ୍ସକାଶାତ୍--ଅବ୍ୟ.(ଅସ୍ମଦ୍+ସକାଶାତ୍) ମୋ ଠାରୁ, ମୋ ନିକଟରୁ ।
ମତ୍ସଗଣ୍ଡ—ପୁଂ. ବି. ବ୍ୟଞ୍ଜନ ବିଶେଷ, ଗଲଗଣ୍ଡ ।
ମତ୍ସଙ୍କଳ୍ପ—ବି. ( ଅସ୍ମଦ୍+ସଙ୍କଳ୍ପ ) ମୋର ସଙ୍କଳ୍ପ ।
ମତ୍ସଦୃଶ—ପୁଂ. ବିଂ. (ଅସ୍ମଦ୍+ସଦୃଶ) ମୋପରି, (ସ୍ତ୍ରୀ) ମତ୍ସଦୃଶୀ ।
ମତ୍ସର—ପୁଂ.ବି. (ମଦ୍+ସର) ପରଶ୍ରୀ-କାତରତା, ବୈର, ଦ୍ୱେଷ, କ୍ରୋଧ, ଗର୍ବ, ଲୋଭ, ସୋମଲତା, ମଶା,(ବିଂ-କ.ସର) ପରଶ୍ରୀକାତର, କ୍ରୁଦ୍ଧ,ଦ୍ୱେଷ-ପୂର୍ଣ୍ଣ, ଲୋଭୀ, କୃପଣ, ସ୍ୱାର୍ଥାନ୍ଧ, (ସ୍ତ୍ରୀ) ମତ୍ସରୀ ।
ମତ୍ସରତା—ବି. (ମତ୍ସର+ତା)ମାତ୍ସର୍ଯ୍ୟ, ଅସୂୟା, ପରଶ୍ରୀକାତରତା ।
ମତ୍ସରବାନ୍—ପୁଂ. ବିଂ. ମତ୍ସରଯୁକ୍ତ, ମତ୍ସରୀ ।
ମତ୍ସରା—ସ୍ତ୍ରୀ. ବିଂ. ମତ୍ସରର ସ୍ତ୍ରୀଲିଙ୍ଗ,(ବି) ମକ୍ଷିକା, ମାଛି, ମଶା ।
ମତ୍ସରୀ—ପୁଂ.ବିଂ.(ମତ୍ସର+ଇନ୍)ପିଶୁନ, ସୂଚକ, ନୀଚ, ଖଳ, ପରଶ୍ରୀକାତର, ବୈରଭାବାପନ୍ନ, କୃପଣ, କ୍ରୁଦ୍ଧ, ଲୋଭୀ, (ସ୍ତ୍ରୀ) ମତ୍ସରିଣୀ ।
ମତ୍ସୀ—ସ୍ତ୍ରୀ. ବି. (ମତ୍ସ+ଈ) ସ୍ତ୍ରୀ ମୀନ, ମାଈମାଛ ।
ମତ୍ସ୍ୟ—ବି. (ମଦ୍+ସ୍ୟ) ମାଛ, ମୀନ, ବିରାଟ ଦେଶ, ମତ୍ସ୍ୟଦେଶର ରାଜା, ନାରାୟଣ, ମୀନରାଶି, ପୁରାଣବିଶେଷ, ବିଷ୍ଣୁଙ୍କର ପ୍ରଥମ ଅବତାର, ( ଗ୍ରା.ବି ) ଉତ୍କଳଦେଶ,ବାଲେଶ୍ୱର ଜିଲାର ପର୍ବତ ବିଶେଷ ।
ମତ୍ସ୍ୟକରଣ୍ଡ—ବି. ଖାଲୋଇ ।
ମତ୍ସ୍ୟକରଣ୍ଡିକା—ସ୍ତ୍ରୀ. ବି. ମାଛରଖିବାର ପାତ୍ର, ଖାଲୋଇ ।
ମତ୍ସ୍ୟକ—ପୁଂ. ବି. କ୍ଷୁଦ୍ର ମାଛ ।
ମତ୍ସ୍ୟକେଶରୀ—ଗ୍ରା. ବି. ପ୍ରାଚୀନ ଉତ୍କଳର କେଶରୀ ବଂଶୀୟ ନରପତିବିଶେଷ
ମତ୍ସ୍ୟଗନ୍ଧ—ବିଂ. (ବି.ଗ୍ରା) ଯାହା ମାଛ-ପରି ଆଇ ଷିଆ ଗନ୍ଧାଏ, (ବି-ତତ୍ତ୍ୱ) ମାଛର ଗନ୍ଧ ।
ମତ୍ସ୍ୟଗନ୍ଧା—ସ୍ତ୍ରୀ. ବି. (ବି.ଗ୍ରା) ଲାଙ୍ଗଲୀ ବୃକ୍ଷ,ଜଳପିପ୍ପଳୀ,ବ୍ୟାସମାତା,ଯୋଜନ-ଗନ୍ଧା, (ସ୍ତ୍ରୀ.ବିଂ) ଯାହାର ଦେହ ମାଛ-ପରି ଗନ୍ଧାଉଥାଏ, ଆଇଁଷିଣିଆ ଗନ୍ଧ-ଯୁକ୍ତ ।
ମତ୍ସ୍ୟଘଣ୍ଟ—ପୁଂ.ବି.ମାଛପକା ଗୋଳଆ-ଗୋଳ ତରକାରୀ ।
ମତ୍ସ୍ୟଘାତୀ—ପୁଂ.ବିଂ. ମତ୍ସ୍ୟଜୀବୀ,ଯେଉଁ-ମାନେ ମାଛ ମାରି ଜୀବିକା ନିର୍ବାହ କରନ୍ତି ।
ମତ୍ସ୍ୟଜାଲ—ବି. (ତତ୍ତ୍ୱ) ମାଛନୁଆର, ମାଛଙ୍କ ମନ୍ଦା ବା ପଞ୍ଝା ।
ମତ୍ସ୍ୟଜାଲ—କ୍ଳୀ.ବି. ମାଛଧରିବା ଜାଲ ।
ମତ୍ସ୍ୟଜୀବୀ—ପୁଂ. ବି. କେଉଟଜାତିଆଦି, ଯେ ମାଛମାରି ଜୀବିକା ନିର୍ବାହ କରେ ।
ମତ୍ସ୍ୟଣ୍ଡିକା—ସ୍ତ୍ରୀ. ବି. (ମତ୍ସ୍ୟ+ଅଣ୍ଡ+କ+ଆ) ଶର୍କରାବିଶେଷ, ମିସିରୀ,କନ୍ଦ; ନବାତ, ମଠ, ହିମାଳୟ ଜାତ ଏକ-ଜାତୀୟ ବନ୍ୟଲତାର ତାଙ୍କରୁ ଉତ୍ପନ୍ନ ମାଛମଞ୍ଜିପରି ଦାନାବିଶିଷ୍ଟ ଔଷଧଦ୍ରବ୍ୟ
ମତ୍ସ୍ୟଣ୍ଡୀ—ସ୍ତ୍ରୀ. ବି. ମତ୍ସ୍ୟଣ୍ଡିକା ଦେଖ ।
ମତ୍ସ୍ୟତନ୍ତ୍ର—ବି. ଯଦ୍ଦ୍ୱାରା ମତ୍ସ୍ୟମାନଙ୍କର ତତ୍ତ୍ୱ ଜଣାଯାଏ ।
ମତ୍ସ୍ୟଦେଶ—ବି. ଆଧୁନିକ ରାଜପୁତାନାର ଜୟପୁର, ପ୍ରାଚୀନ ବିରାଟଦେଶ,ଆଧୁ-ନିକ କୁଚବିହାର,(ଗ୍ରା.ବି)ଉତ୍କଳଦେଶ ।
ମତ୍ସ୍ୟଦ୍ୱାଦଶୀ—ସ୍ତ୍ରୀ. ବି. ମାର୍ଗଶିର କୃଷ୍ଣ ଦ୍ୱାଦଶୀ, ଏଦିନ ମତ୍ସ୍ୟଭକ୍ଷଣ ନିଷେଧ
ମତ୍ସ୍ୟଧାନିକା—ବି. ମାଛ ରଖିବାର ଖାଲୋଇ ।
ମତ୍ସ୍ୟନାରୀ—ସ୍ତ୍ରୀ.ବି.ସତ୍ୟବତୀଙ୍କର ନାମା-ନ୍ତର, ଅର୍ଦ୍ଧାକାର ମତ୍ସ୍ୟ ଓ ଅର୍ଦ୍ଧାକୃତି ନାରୀମୂର୍ତ୍ତି ।
ମତ୍ସ୍ୟନାଶକ—ପୁଂ. ବି. କୁରରପକ୍ଷୀ, (ତ୍ରି.ବିଂ) ମତ୍ସ୍ୟନାଶକର୍ତ୍ତା ।
ମତ୍ସ୍ୟନାଶନ—ପୁଂ.ବି. ( ମତ୍ସ୍ୟ+ନଶ୍+ଣିଚ୍+ଅନ)କୁରରପକ୍ଷୀ,ମାଛରଙ୍କା ଚଢ଼େଇ ।
ମତ୍ସ୍ୟନ୍ୟାୟ(ନ୍ୟାୟ)—ବି. ମତ୍ସ୍ୟପରି ପର-ସ୍ପର ହନନ,ଅରାଜକତା ଓ ନରହତ୍ୟା
ମତ୍ସ୍ୟପିତ୍ତ—କ୍ଳୀ.ବି. ମାଛର ପିତ୍ତ ।
ମତ୍ସ୍ୟପିତ୍ତା—ସ୍ତ୍ରୀ.ବି. କଟୁରୋହିଣୀ,କଟୁକୀ, ପିତ୍ତକଟୁକୀ ।
ମତ୍ସ୍ୟପୁରାଣ—କ୍ଳୀ.ବି. ଅଷ୍ଟାଦଶ ପୁରାଣା-ନ୍ତର୍ଗତ ଏକ ହିନ୍ଦୁ ପୁରାଣ ।
ମତ୍ସ୍ୟବନ୍ଧ—ପୁଂ. ବି.ମାଛମରା କେଉଟ ।
ମତ୍ସ୍ୟବନ୍ଧକ—ପୁଂ. ବିଂ. ମୀନଘାତକ, ଯେ ମାଛମାରେ, (ବି)କେଉଟଜାତି ।
ମତ୍ସ୍ୟବନ୍ଧୀ—ପୁଂ. ବି. ଧୀବରଜାତି, କେଉଟ ।
ମତ୍ସ୍ୟବନ୍ଧିନୀ—ସ୍ତ୍ରୀ.ବି. (ମତ୍ସ୍ୟବନ୍ଧ+ଇନ୍+ଈ) କେଉଟୁଣୀ, ଧୀବରପତ୍ନୀ ।
ମତ୍ସ୍ୟଭୋଜୀ—ପୁଂ.ବିଂ. (ମତ୍ସ୍ୟ+ଭୁଜ୍+କ.ଇନ୍) ଆମିଷଭୋଜୀ,ଯେ ମାଛ ଖାଏ

(ସ୍ତ୍ରୀ) ଭୋଜିନୀ ।

ମତ୍ସ୍ୟମୁଦ୍ରା—ସ୍ତ୍ରୀ. ବ. ପୂଜାଙ୍ଗ ମୁଦ୍ରାବିଶେଷ ।

ମତ୍ସ୍ୟରଙ୍କ(ଙ୍ଗ)—ପୁଂ. ବ. ମାଛରଙ୍କା ଚଢ଼େଇ ।

ମତ୍ସ୍ୟରାଜ—ପୁଂ.ବ.(୬ତତ୍) ରୋହିମାଛ, (୬ତତ୍) ବିରାଟର ରାଜା,କର୍ଣ୍ଣରାଜ ।

ମତ୍ସ୍ୟରାଶି—ବ. ମୀନରାଶି । [ ପଟା ।

ମତ୍ସ୍ୟଲନ୍ଥ—ଗ୍ରା.(ଗଞ୍ଜାମ) ବ. ମାଛଧଆ

ମତ୍ସ୍ୟବିଦ୍—ପୁଂ.ବ. ମତ୍ସ୍ୟତତ୍ତ୍ୱ ଜାଣିବା ଲୋକ ।

ମତ୍ସ୍ୟବେଧନ—କ୍ଳୀ.ବ. (ମତ୍ସ୍ୟ+ ବିଧ୍+ +ଅନ) ସୂତାକଣ୍ଟା,ବନସୀ, ପାଣିକୁଆ

ମତ୍ସ୍ୟବେଧନୀ—ସ୍ତ୍ରୀ.ବ. ପାଣିକୁଆ,ବନସୀ

ମତ୍ସ୍ୟସଂଘ—ବ. ମାଛଙ୍କ ପଞ୍ଝା ବା ଦଳ, ମାଛକୁଆର ।

ମତ୍ସ୍ୟସଗନ୍ଧୀ—ବି.ବଂ. ମତ୍ସ୍ୟଗନ୍ଧଯୁକ୍ତ ।

ମତ୍ସ୍ୟସନ୍ତାନକ—ବ. ମଛ ଉଚ୍ଛାଗ୍ନି ।

ମତ୍ସ୍ୟସୂକ୍ତ—କ୍ଳୀ. ବ. ବେଣ୍ଟିଏ ପ୍ରସିଦ୍ଧ ତାନ୍ତ୍ରିକ ଗ୍ରନ୍ଥ ।

ମତ୍ସ୍ୟହା—ପୁ . ବଂ. (ମତ୍ସ୍ୟ+ହନ୍+କ୍ୱିପ୍) ମତ୍ସ୍ୟଘାତକ, (ବ) ଧୀବର,ମାଛମାରିବା ଲୋକ ।

ମତ୍ସ୍ୟାକ୍ଷକ—ପୁଂ.ବ. ସୋମଲତା ।

ମତ୍ସ୍ୟାକ୍ଷୀ(କ୍ଷୀ)—ସ୍ତ୍ରୀ.ବ. (ମତ୍ସ୍ୟ+ ଅକ୍ଷି+ଈ) ବ୍ରାହ୍ମୀଶାକ, ସୋମଲତା, ମତ୍ସ୍ୟାଦନୀ, ହିଡ଼ିମିଚ୍ଚ ଶାକ, ଗଣ୍ଡଦୂର୍ବା, ବୃହତୀ, କଣ୍ଟକାରି, ଜଳଜ ଶାକବିଶେଷ

ମତ୍ସ୍ୟାଘାତ—ପୁଂ. ବ. (୬ତତ୍) ମାଛଧରିବା, ମାଛମାରିବା ବୃତ୍ତି, (ମତ୍ସ୍ୟ+ହନ୍+କ.ଅ) ମାଛମରା କେଉଟ ।

ମତ୍ସ୍ୟାଣ୍ଡ—ବ. (୬ତତ୍) ମାଛ ବନ୍ଧନ, ମାଛମଞ୍ଜି ।

ମତ୍ସ୍ୟାଦ—ପୁଂ.ବ. (ମତ୍ସ୍ୟ+ ଅଦ୍+କ.ଅ) ଯେ ମାଛ ଖାଏ, ଆମିଷାଶୀ, (ବ) ମାଛରଙ୍କା ପକ୍ଷୀ, (ସ୍ତ୍ରୀ) ମତ୍ସ୍ୟାଦା ।

ମତ୍ସ୍ୟାଦନୀ—ସ୍ତ୍ରୀ. ବ. (ମତ୍ସ୍ୟ+ଅଦ୍+ଅନ+ଈ) ଜଳପିପ୍ପଳୀ, ବ୍ରାହ୍ମୀଶାଗ, ହିଡ଼ିମିଚ୍ଚ ଶାଗ ।

ମତ୍ସ୍ୟାଧାନୀ—ସ୍ତ୍ରୀ.ବ. (୬ତତ୍) ମାଛ ରଖିବାର ଖାଲୋଇ ।

ମତ୍ସ୍ୟାବତାର—ପୁଂ. ବ. ମତ୍ସ୍ୟରୂପୀ ଭଗବାନଙ୍କର ଅବତାରବିଶେଷ ।

ମତ୍ସ୍ୟାଶନ—ପୁଂ. ବ. (ମତ୍ସ୍ୟ+ଅଶ୍+ଅନ) ମାଛରଙ୍କା ପକ୍ଷୀ, (ବଂ) ଯେ ମାଛ ଖାଏ ।

ମତ୍ସ୍ୟାଶୀ—ପୁଂ.ବଂ. (ମତ୍ସ୍ୟ+ ଅଶ୍+କ. ଇନ୍) ମତ୍ସ୍ୟଭୋଜୀ, ଯେ ମାଛ ଖାଏ ।

ମତ୍ସ୍ୟାସନ—କ୍ଳୀ. ବ. ରୁଦ୍ରଯାମଳୋକ୍ତ ଯୋଗର ଆସନବିଶେଷ ।

ମତ୍ସ୍ୟାସୁର—ପୁଂ.ବ.ଅସୁରଭେଦ ।

ମତ୍ସ୍ୟୀ—ସ୍ତ୍ରୀ.ବ. (ମତ୍ସ୍ୟ+ଈ) ମାଇମାଛ

ମତ୍ସ୍ୟୋଦରୀ—ପୁଂ.ବ. (ମତ୍ସ୍ୟ+ଉଦର +ଇନ୍+ଈ) ରାଜା ବିରାଟ, ମତ୍ସ୍ୟରାଜ, (ସ୍ତ୍ରୀ.ବ) ବ୍ୟାସମାତା,ସତ୍ୟବତୀ, କାଶୀସ୍ଥିତ ତୀର୍ଥବିଶେଷ ।

ମତ୍ସ୍ୟୋଦରୀସୁ—ପୁଂ.ବ. (ମତ୍ସ୍ୟୋଦରୀ+ସୂ) ବ୍ୟାସଦେବ ।

ମତ୍ସ୍ୟୋପଜୀବୀ—ପୁଂ. ବଂ. ଯେଉଁମାନେ ମାଛ ବିକ୍ରୟ କରି ଜୀବିକା ନିର୍ବାହ କରନ୍ତି, (ବ.) ଧୀବର, କେଉଟ ।

ମଥନ—କ୍ଳୀ. ବ. (ମଥ୍+ଅନ) ମନ୍ଥନ, ମନ୍ଥିବା, ଆଲୋଡ଼ନ, ଦଳନ, କ୍ଲେଶ, ବିନାଶ, ଅତ୍ୟାଚାର, ଅସ୍ତ୍ରବିଶେଷ, ଅଗିବଥୁ ଗଛ, (ବଂ) ମନ୍ଥନକାରୀ ।

ମଥନାଚଳ—ପୁଂ. ବ. ମନ୍ଦର ପର୍ବତ ।

ମଥନୀ—ସ୍ତ୍ରୀ. ବ. ( ମଥ୍+ଅନ+ଈ ) ମନ୍ଥନ ଦଣ୍ଡ, ଖୁଆବାଡ଼ି ।

ମଥା—ସ୍ତ୍ରୀ. ବ. (ମଥ୍+ଣ.ଅ+ଆ)ଦହି ମୋହିଁବା ଖୁଆ, (ଗ୍ରା.ବ)ମୁଣ୍ଡ, ମସ୍ତକ, ବସ୍ତ୍ରର ଅଗ୍ରଭାଗ । [ ବିଶେଷ ।

ମଥାଜାଲି—ଗ୍ରା.ବ. ମସ୍ତକର ଅଳଂକାର-

ମଥାଦହି—ଗ୍ରା. ବ. ତେଲ, ତୈଳ ।

ମଥାନ—ଗ୍ରା.ବ.ଘର ଚାଳର ଶୀର୍ଷଭାଗ, ଚନ୍ଦ୍ରକରର ଲେଙ୍ଗୀ, ଚୂଳୀ ।

ମଥାନକରିବା—ଗ୍ରା. କ୍ରି. ଅଭାବ ପୂରଣ କରିବା, କ୍ଷତିପୂରଣ କରିବା । [ଲିତା ।

ମଥାଭ୍ରମ—ଗ୍ରା.ବ. ମୁଣ୍ଡ ବୁଲାଇବା,ବାତୁ-

ମଥାମଣି—ଗ୍ରା. ବ. ସ୍ତ୍ରୀଲୋକମାନଙ୍କର କପାଳର କେଶ ମଧ୍ୟସ୍ଥ ରେଖା ମୂଳରେ ପିନ୍ଧାହିବା ଅଳଂଙ୍କାର,(ଲ.ଅର୍ଥ)ଶ୍ରେଷ୍ଠ ।

ମଥିତ—ବଂ. (ମଥ୍+ର୍ମ.ତ)ବିଲୋଡ଼ିତ, ବ୍ୟାକୁଳୀକୃତ, ଉତ୍ପୀଡ଼ିତ, ଧ୍ୱସ୍ତ ନଷ୍ଟ, (ବ) ନିର୍ଜଳ ଘୋଳ, ତକ୍ର ।

ମଥୀ—ପୁଂ.ବ.(ମନ୍ଥ+ଇନ୍) ମନ୍ଥନଦଣ୍ଡ, (ପୁଂ.ବଂ) ମନ୍ଥନକାରୀ, (ସ୍ତ୍ରୀ) ମଥିନୀ ।

ମଥୁ(ଥୂ)ରା—ସ୍ତ୍ରୀ.ବ.(ମଥି+ ଅଧି.ଉର+ ଆ) ସ୍ୱନାମଖ୍ୟାତ ପୁରୀ, ତୀର୍ଥଭେଦ, ମଧୁପୁର, କଂସର ରାଜଧାନୀ ।

ମଥୁରାଘାଟ—ଗ୍ରା. ବ. ବୃନ୍ଦାବନରୁ ମଥୁରାକୁ ଆସିବା ପାଇଁ ଗୋପୀମାନଙ୍କର ଯମୁନା ନଦୀକୁ ପାରହେବା ଘାଟ ।

ମଥୁରାଧାମ—ବ. ମଥୁରାତୀର୍ଥ, ମଧୁପୁର ।

ମଥୁରାନାଥ—ପୁଂ. ବ. (୬ତତ୍) ଶ୍ରୀକୃଷ୍ଣ, ଜଣେ ପ୍ରସିଦ୍ଧ ଜ୍ୟୋତିର୍ବିଦ୍ ।

ମଥୁରାପୁର—ବ. ମଥୁରା ଦେଖ ।

ମଥୁରାପୁରିଆ—ଗ୍ରା.ବଂ.ମଥୁରାପୁର ନିବାସୀ, (ବ)ଗଉଡ଼ମାନଙ୍କର ଏକଜାତିବିଭାଗ ।

ମଥୁରାମଙ୍ଗଳ—ଗ୍ରା. ବ. କବି ଭକ୍ତଚରଣ ଦାସଙ୍କ କୃତ ଶ୍ରୀକୃଷ୍ଣଙ୍କ ମଥୁରାଲୀଳା-ବର୍ଣ୍ଣନାତ୍ମକ ଓଡ଼ିଆ ପଦ୍ୟଗ୍ରନ୍ଥ ।

ମଥୁରାମୋହନ—ବ. ଶ୍ରୀକୃଷ୍ଣ ।

ମଥୁରାଲୀଳା—ବ. ଶ୍ରୀକୃଷ୍ଣଙ୍କର ମଥୁରାନଗରୀରେ କରିଥିବା ଲୀଳା ବା କାର୍ଯ୍ୟକଳାପ ।

ମଥୁରା—ଗ୍ରା. ବ. ଦ୍ୱାଦଶ ଗୋପାଳଙ୍କ ମଧ୍ୟରୁ ଏକତମ ।

ମଥୁରେଶ—ପୁଂ. ବ. (୬ତତ୍) ଶ୍ରୀକୃଷ୍ଣ ।

ମଥେଇ—ଗ୍ରା. ବ. ତେଲ, ତୈଳ,ମଥାଦହି ।

ମଥ୍ୟ—ବି, ବଂ. (ମନ୍ଥ+ଯ) ମନ୍ଥନୀୟ, ମନ୍ଥନଯୋଗ୍ୟ ।

ମଥ୍ୟମାନ—ବଂ. (ମଥ୍+କ.ଆନ)ଯାହା ଆଲୋଡ଼ିତ ହେଉଅଛି, (ସ୍ତ୍ରୀ)ମାନା ।

ମଦ—ପୁଂ. ବ. (ମଦ୍+ଅ) ହର୍ଷଜନିତ ସମ୍ମୋହ, ଅତ୍ୟନ୍ତ ହର୍ଷ, ମଦଗ୍ଳାନିଜନିତ

ମଦୋନ୍ମାଦକାର, ଉନ୍ମତ୍ତତା, ପାଗଳାମି, ମଦିରା, ମଦ୍ୟ, କସ୍ତୁରୀ, ମତ୍ତ ହସ୍ତୀର ଗଣ୍ଡସ୍ଥଳରୁ ନିଃସୃତ ଉତ୍କଟ ଗନ୍ଧଯୁକ୍ତ-ରସ, ମକ୍ଷଳ, ଉନ୍ମାଦ ରୋଗ, କାମ-ଦେବ.(ଗ୍ରା.ବ) ଅସୁରବିଶେଷ,ରେତଃ, ଗର୍ବ ।

**ମଦଅଳସ**—ଗ୍ରା. ବିଂ. ମତ୍ତତା ଯୋଗୁଁ ଆଳସ୍ୟଯୁକ୍ତ ।

**ମଦକଟ**—ପୁଂ. ବ. (ମଦ+କଟ୍+ଅ) ଷଣ୍ଢ, ବୃଷ, ମତ୍ତହସ୍ତୀ, (ବିଂ) ମଦୋ-ଭିନ୍ନ, ମଦୋନ୍ମତ୍ତ, (ସ୍ତ୍ରୀ) ମଦକଟା ।

**ମଦକର**—ପୁଂ. ବ. ଧୁସ୍ତୁରବୃକ୍ଷ, (ସ୍ତ୍ରୀ) ମଦକରୀ ।

**ମଦକରୀ**—ପୁଂ. ବ. (ମଦ+କୃ+ଇନ୍) ମତ୍ତହସ୍ତୀ, ( ସ୍ତ୍ରୀ.ବ. ମଦକର+ଈ ) ଧାତକୀବୃକ୍ଷ, ମଦିରା ।

**ମଦକଳ**—ପୁଂ. ବ. (ମଦ+କଲ୍+ଅ) ମତ୍ତହସ୍ତୀ.(ପୁଂ.ବିଂ) ଅବ୍ୟକ୍ତ ପ୍ରଳାପୀ, ମଦାବ୍ୟକ୍ତବାଦୀ, ଉନ୍ମତ୍ତ, ମଦମତ୍ତ ।

**ମଦକଳା**—ଗ୍ରା.ସ୍ତ୍ରୀ. ବ. ନବଯୌବନା ।

**ମଦକାରୀ**—ତ୍ରି.ବିଂ. (ମଦ+କୃ+ଇନ୍) ମତ୍ତତାଜନକ, ମଦବର୍ଦ୍ଧକ (ସୁଗନ୍ଧ) ।

**ମଦକୃତ୍**—ତ୍ରି. ବିଂ. (ମଦ+କୃ+କ୍ୱିପ୍) ମତ୍ତତାକାରକ । [ ଗଛ ।

**ମଦକୃଦ୍‌ଦ୍ରୁମ**—ପୁଂ.ବ.ତାଳବୃକ୍ଷ,ଖଜୁରୀ-

**ମଦକୋହଳ**—ପୁଂ. ବ. ସ୍ୱେଚ୍ଛାଧୀନ ବିଚରଣକାରୀ ବୃଷଭ ।

**ମଦଖଟି**—ଗ୍ରା.ବ.ମଦଦୋକାନ, ଯେଉଁ-ଠାରେ ମଦୁଆମାନେ ମଦ ଖାଇବାକୁ ଜମା ହୁଅନ୍ତି ।

**ମଦଖୋର୍**—ଗ୍ରା. ପୁଂ. ବିଂ. ମଦୁଆ ।

**ମଦଗନ୍ଧ**—ପୁଂ. ବ. (ବ.ବ୍ରୀ) ସପ୍ତଚ୍ଛଦ-ବୃକ୍ଷ, ସତିଆଣାଗଛ, ମଦ୍ୟ, (୬ତତ୍) ହସ୍ତୀ କପାଳରୁ ନିସୃତ ମଦଜଳର ଉତ୍କଟଗନ୍ଧ, ମଦ୍ୟର ଗନ୍ଧ ।

**ମଦଗନ୍ଧା**—ସ୍ତ୍ରୀ.ବ(ମଦଗନ୍ଧ+ଆ) ମଦିରା. ଅତସୀ ।

**ମଦଗମନ**—ପୁଂ. ବ. (ବ.ବ୍ରୀ) ମହିଷ ।

**ମଦଗର୍ବ**—ବ.ମତ୍ତତାଜନିତ ଅହଙ୍କାର, ଦାମ୍ଭିକତା । [ ଗର୍ବିତା ।

ମଦଗର୍ବିତ—ପୁଂ. ବିଂ. ଗର୍ବମତ୍ତ, (ସ୍ତ୍ରୀ)

ମଦଗଳ(ଳା)—ଗ୍ରା. ବ. ମତ୍ତହସ୍ତୀ ।

ମଦଘ୍ନୀ—ସ୍ତ୍ରୀ. ବ. (ମଦ+ହନ୍+କ.ଅ +ଈ) ପୂତିକା, ପୋଇଶାଗ ।

ମଦଚ୍ୟୁତ୍—ତ୍ରି. ବିଂ. ( ମଦ+ଚ୍ୟୁ+କ୍ୱିପ୍) ଗର୍ବହନ୍ତା, ମଦସ୍ରାବୀ ଦେଖ ।

ମଦଜଳ—କ୍ଲୀ.ବ.ହସ୍ତୀଦାନବାରି, ମଦ୍ଦଳ

ମଦଟୁଙ୍କ—ଗ୍ରା. ବ. ମଦନିଶା ।

ମଦତ୍—ଗ୍ରା. ବ. ମାଦକ ଦ୍ରବ୍ୟବିଶେଷ, ଗୁଲି, (ଗ୍ରା.ବ) ସହାୟତା, ସାହାଯ୍ୟ ।

ମଦତ୍‌କାର—ଯା. ବିଂ. ମଦତ୍‌କାର, ସାହାଯ୍ୟକାରୀ ।

ମଦତ୍‌ମାଶ୍—ଯା. ବ. ମୁସଲମାନ ବାଦ-ସାହମାନଙ୍କ ଅମଳରେ ଧର୍ମଯାଜକ-ମାନଙ୍କ ଭରଣପୋଷଣାର୍ଥ ବା ଧର୍ମ-କାର୍ଯ୍ୟ ନିମନ୍ତେ ଅଳ୍ପ କରରେ ବା ନିଷ୍କର ଭାବେ ଦତ୍ତହୋଇଥିବା ବୃତ୍ତି ।

ମଦତି—ଗ୍ରା. ବିଂ. ମଦମତ୍ତ, ମଦୁଆ, ଗୁଲିଖୋର୍, ମଦତ୍‌ଖୋର ।

ମଦଦ୍ୱିପ—ପୁଂ. ବ. ମତ୍ତହସ୍ତୀ ।

ମଦନ—ପୁଂ.ବ(ମଦ+ଣିଚ୍+କ.ଅନ) କାମଦେବ, କନ୍ଦର୍ପ,ବସନ୍ତକାଳ,ବ୍ରୀହ୍ମ, ଭ୍ରମର, ଧଳା ଆଙ୍କୁଗଛ, ଖଇରଗଛ, ବଉଳଗଛ, ଦୁଦୁରା,କାମକ୍ରୀଡ଼ା,ମହଣ, ସାରୀ, ଲଗ୍ନଠାରୁ ସପ୍ତମଗୃହ, ଖଞ୍ଜନ-ପକ୍ଷୀ, ପ୍ରେମ, ମହାଦେବଙ୍କ ଚତୁର୍ଥ ଅବତାର, ଆଲିଙ୍ଗନବିଶେଷ, (ବିଂ) ମତ୍ତତାଜନକ ।

ମଦନକ—ପୁଂ. ବ. (ମଦନ+କ)ଦମ-ନକବୃକ୍ଷ, ସିକ୍ଥ, ମହଣ ।

ମଦନକଣ୍ଟକ—ପୁଂ.ବ.କାମାତୁର ବ୍ୟକ୍ତିର ରୋମାଞ୍ଚ, ସାତ୍ତ୍ୱିକ ରୋମାଞ୍ଚ, ମଏଣ ଦେଖ ।

ମଦନକଲହ—ବ. (କ.ଧା) ପ୍ରେମିକ ପ୍ରେମିକାଙ୍କ ମଧ୍ୟରେ ପ୍ରଣୟ ବିଷୟକ କଳହ । [ ବତ ।

ମଦନକାକୁରବ—ପୁଂ.ବ.(ବ.ବ୍ରୀ)ପାରି-

ମଦନଗୃହ—କ୍ଲୀ. ବ. (୬ତତ୍) ମଦନ ମନ୍ଦିର, ସ୍ତ୍ରୀଚିହ୍ନ, ଭଗ, ଯୋନି, ଜନ୍ମ କୁଣ୍ଡଳୀର ସପ୍ତମ ଗୃହ ।

**ମଦନଗୋପାଳ**—ପୁଂ.ବ (କ.ଧା)ଶ୍ରୀକୃଷ୍ଣ

**ମଦନଚତୁର୍ଦ୍ଦଶୀ**—ସ୍ତ୍ରୀ. ବ. ଚୈତ୍ର ଶୁକ୍ଳ ଚତୁର୍ଦ୍ଦଶୀ, ଏ ଦିନ ମଦନ ଦେବଙ୍କର ପୂଜାହୁଏ ।

**ମଦନଜ୍ୱର**—ବ. (କ.ଧା) କାମାତୁର ବ୍ୟକ୍ତିର ପୀଡ଼ିତାବସ୍ଥା, କାମଜ୍ୱର ।

**ମଦନତନ୍ତ୍ର**—ବ. ରତିଶାସ୍ତ୍ର ।

**ମଦନତ୍ରୟୋଦଶୀ**—ସ୍ତ୍ରୀ. ବ. ଚୈତ୍ରଶୁକ୍ଳ ତ୍ରୟୋଦଶୀ । [ ମହାଦେବ ।

**ମଦନଦମନ**—ପୁଂ. ବ. (୬ତତ୍) ଶିବ,

**ମଦନଦହନ**—ପୁଂ. ବ. (୬ତତ୍) କାମ-ଦେବଙ୍କର ଭସ୍ମକାରକ ଶିବ ।

**ମଦନଦଶା**—ବ. କାମାତୁର ବ୍ୟକ୍ତିର ଭିନ୍ନ ଭିନ୍ନ ଅବସ୍ଥା ।

**ମଦନଦୂତ**—ବ. (୬ତତ୍) କୋକିଳ ।

**ମଦନଦ୍ୱାଦଶୀ**—ସ୍ତ୍ରୀ. ବ. ଚୈତ୍ର ଶୁକ୍ଳ ଦ୍ୱାଦଶୀ ।

**ମଦନଧର୍ମ**—ବ. ରତିକ୍ରୀଡ଼ା ।

**ମଦନଧର୍ମୋତ୍ସବ**—ବ. ଦୋଳପର୍ବ, ହୋଲି, ଫାଲ୍‌ଗୁନ ପୂର୍ଣ୍ଣିମୀ ଉତ୍ସବ,ଚୈତ୍ର ପୂର୍ଣ୍ଣିମାରେ ଅନୁଷ୍ଠିତ ଉତ୍ସବବିଶେଷ ।

**ମଦନାଳିକା**—ସ୍ତ୍ରୀ. ବ. ଭ୍ରଷ୍ଟା ସ୍ତ୍ରୀ, ଅସତୀ ସ୍ତ୍ରୀ, ଅବଶ୍ୟାସିନୀ ରମଣୀ ।

**ମଦନପକ୍ଷୀ**—ପୁଂ. ବ. ଖଞ୍ଜନପକ୍ଷୀ,ସାରୀ-ଚଢ଼େଇ ।

**ମଦନପାଠକ**—ପୁଂ. ବ. କୋକିଳ ।

**ମଦନପୀଡ଼ା**—ବ କାମବାଧା, ମଦନ-ବ୍ୟଥା । [ ମନ୍ଦିର ।

**ମଦନପୁର**—କ୍ଲୀ.ବ. ଭଗ,ଯୋନି,ରତି-

**ମଦନପ୍ରିୟ**—ପୁଂ. ବ. (୬ତତ୍) ବସନ୍ତ, ମଦନସଖା ।

**ମଦନଫଳ**—ବ. ମଏଣ ଦେଖ ।

**ମଦନବାଇ**—ଗ୍ରା. ବ. କାମପୀଡ଼ାଜନିତ ବାତୁଳତା ।

**ମଦନବାଣ**—ବ. (୬ତତ୍) କାମବିଶିଖ, କାମପ୍ରବୃତ୍ତି, କାମବ୍ୟଥା ।

**ମଦନବିହ୍ୱଳ**—ପୁଂ. ବିଂ. କାମୋନ୍ମତ୍ତ,

(ସ୍ତ୍ରୀ) ବିହ୍ୱଳା ।

ମଦନବୃକ୍ଷ—ବି. ମଏଣ୍ଣ ଦେଖ ।

ମଦନବ୍ୟଥା—ବି. କାମଜନିତ ପୀଡ଼ା ।

ମଦନଭଞ୍ଜିକା—ସ୍ତ୍ରୀ. ବି. ମଦନଚତୁର୍ଦ୍ଦଶୀ ଦେଖ ।

ମଦନଭବନ—କ୍ଲୀ. ବି. ମଦନଗୃହ,ସ୍ତ୍ରୀ-ଚିହ୍ନ, ଭଗ, ଯୋନି ।

ମଦନଭେରୁ—ପ୍ରା.(ସିଂହଭୂମ) ବି.ବାଦ୍ୟ-ଯନ୍ତ୍ରବିଶେଷ ।

ମଦନମନୋହର—ପୁଂ.ବିଂ. କାମଦେବ ପରି କମନୀୟ (ରୂପ) ।

ମଦନମନ୍ଦିର—କ୍ଲୀ.ବି. ସ୍ମରଗୃହ,ପୟୋ-ଧର, ସ୍ତ୍ରୀସ୍ତନ ।

ମଦନମସ୍ତ—ଗ୍ରା. ବିଂ. କାମୋନ୍ମତ୍ତ, (ବି) ମଦନମସ୍ତକ ଦେଖ ।

ମଦନମସ୍ତକ—ଗ୍ରା.ବି. ଔଷଧରେ ବ୍ୟବ-ହୃତ ଜଙ୍ଗଲି ଓଲୁଅର ଶୁଖିଲା ଚକୁଡ଼ା, ଚମ୍ପାଜାତୀୟ ଏକପ୍ରକାର ପଣସ ଗନ୍ଧ-ଯୁକ୍ତ ଫୁଲ, ଚନ୍ଦନଚମ୍ପା ।

ମଦନମାଦକ—ଗ୍ରା. ବି. କାମୋନ୍ମତ୍ତତା ।

ମଦନମୋଦନୀ—ସ୍ତ୍ରୀ. ବି. ଗଣିକାରିକା, ଗନିଆରି ।

ମଦନମୋହନ—ପୁଂ. ବି. ଶ୍ରୀକୃଷ୍ଣ, (ବିଂ) ଅତି ସୁନ୍ଦର ରୂପବିଶିଷ୍ଟ ।

ମଦନରିପୁ—ପୁଂ. ବି. (୬ତତ୍) ଶିବ, ମଦନଫଳ । [ ମାତା ।

ମଦନରେଖା—ସ୍ତ୍ରୀ.ବି. ବିକ୍ରମାଦିତ୍ୟଙ୍କର

ମଦନଲତା—ବି. ମଏଣ୍ଣ ଦେଖ ।

ମଦନଲଳିତା—ସ୍ତ୍ରୀ. ବି. ଛନ୍ଦୋଭେଦ ।

ମଦନଲେଖ(ଖା)—ବି. ପ୍ରେମପତ୍ରିକା, ନାୟକ ନାୟିକାଙ୍କର ପ୍ରେମପତ୍ରିକା ।

ମଦନଶର—ପୁଂ.ବି. (୬ତତ୍)କାମବାଣ, କାମବ୍ୟଥା ।

ମଦନଶରାହତ—ପୁଂ.ବିଂ. (୬ତତ୍)କାମ-ପୀଡ଼ିତ ।

ମଦନଶଲାକା—ସ୍ତ୍ରୀ. ବି. କାମୋଦ୍ଦୀପକ ଔଷଧ, ସାରିଚଢ଼େଇ, କୋକିଳ ।

ମଦନସଦନ—କ୍ଲୀ. ବି. ମଦନ ମନ୍ଦିର ଦେଖ, ଜନ୍ମଲଗ୍ନର ସପ୍ତମ ସ୍ଥାନ ।

ମଦନସାରିକା—ସ୍ତ୍ରୀ. ବି. ସାରିଚଢ଼େଇ, କୋକିଳା ।

ମଦନସୁନ୍ଦର—ପୁଂ. ବିଂ. କାମଦେବଙ୍କ ପରି କମନୀୟ ।

ମଦନସୁନ୍ଦରପାଲା—ଗ୍ରା.ବି. ଧନୀ ସୌଦା-ଗରର ପୁଅ ମଦନସୁନ୍ଦରର ଜୀବନରେ ସତ୍ୟପୀର ଠାକୁରଙ୍କ ମାହାତ୍ମ୍ୟ ବର୍ଣ୍ଣିତ ହୋଇଥିବା ପାଲା ।

ମଦନା—ସ୍ତ୍ରୀ. ବି. (ମଦନ+ଆ) ସୁରା, ମଦ୍ୟ, ମୃଗନାଭି,କସ୍ତୁରୀ,ସାରିଚଢ଼େଇ, କାମୁକୀ ସ୍ତ୍ରୀ, (ଗ୍ରା.ବି) ମାଧବୀ ଜାତୀୟ ପୁଷ୍ପଲତା ବିଶେଷ ।

ମଦନାଙ୍କୁଶ—ପୁଂ. ବି. (୬ତତ୍) ପୁରୁଷ ଚିହ୍ନ, ଲିଙ୍ଗ; ମୈଥୁନ କାଳୀନ ନଖା-ଘାତ ।

ମଦନାତୁର—ବିଂ.(୩ତତ୍)ମଦନବିହ୍ୱଳ, କାମାତୁର, (ସ୍ତ୍ରୀ) ମଦନାତୁରା ।

ମଦନାନ୍ତକ—ପୁଂ. ବି. (୬ତତ୍) ଶିବ, ମହାଦେବ ।

ମଦନାନ୍ଧ—ପୁଂ. ବିଂ. (୩ତତ୍) ଅତ୍ୟନ୍ତ କାମପୀଡ଼ା ଯୋଗୁଁ ବାହ୍ୟଜ୍ଞାନଶୂନ୍ୟ ।

ମଦନାୟୁଧ—ପୁଂ.ବି. (ମଦନ+ଆୟୁଧ) ସ୍ତ୍ରୀଚିହ୍ନ, ଯୋନି, କାମବାଣ ।

ମଦନାୟୁଷ—ପୁଂ. ବି. କାମବୃଦ୍ଧି କ୍ଷୁପ ।

ମଦନାରି—ପୁଂ. ବି. ( ୬ତତ୍ ) ଶିବ, ମହାଦେବ ।

ମଦନାର୍ତ୍ତ—ପୁଂ. ବିଂ. (୩ତତ୍) କାମା-ତୁର, କାମବିହ୍ୱଳ, (ସ୍ତ୍ରୀ) ମଦନାର୍ତ୍ତା ।

ମଦନାଳୟ—ପୁଂ.ବି.(ମଦନ+ଆଳୟ) ସ୍ତ୍ରୀଚିହ୍ନ, ଭଗ, ଯୋନି, ଲଗ୍ନଠାରୁ ସପ୍ତମ ସ୍ଥାନ, ରାଜା, ପଦ୍ମ ।

ମଦନାବତୀ—ଗ୍ରା. ବି. କାହାଣୀ ବର୍ଣ୍ଣିତ ସୁନ୍ଦରୀ ରାଜକନ୍ୟା ।

ମଦନାବର୍ତ୍ତି—ବି. ମଦନଗୃହ, ଯୋନି ।

ମଦନାବସ୍ଥା—ସ୍ତ୍ରୀ. ବି. ( କ.ଧା ) କାମ-ଦଶା, କାମାତୁର ଲୋକର ଭିନ୍ନ ଭିନ୍ନ ଅବସ୍ଥା ।

ମଦନିକା—ସ୍ତ୍ରୀ. ବି. ମୃଚ୍ଛକଟିକ ବର୍ଣ୍ଣିତ ଜଣେ ନାୟିକା ।

ମଦନିଶା—ଗ୍ରା. ବି ମଦ୍ୟପାନ ଜନିତ ମତ୍ତତା ।

ମଦନୀ—ସ୍ତ୍ରୀ. ବି. (ମଦନ+ଈ) ସୁରା, କସ୍ତୁରୀ, କାମୁକୀ ସ୍ତ୍ରୀ, ଅତିମୁକ୍ତକ,ମେଥି, ଧାତକୀ ବୃକ୍ଷ ।

ମଦନୀୟ—ତ୍ରି. ବିଂ. ମଦ୍ୟ, ମଦନୋ-ଦ୍ଦୀପକ (ବସ୍ତୁ) ।

ମଦନୀୟହେତୁ—ପୁଂ. ବି. ଧାତକୀ ବୃକ୍ଷ ।

ମଦନୀୟା—ସ୍ତ୍ରୀ. ବି. ମଲ୍ଲିକା ବୃକ୍ଷ, ମଲ୍ଲି-ଫୁଲ ଗଛ । [ ଆମ୍ବ ।

ମଦନେଚ୍ଛାଫଳ—ପୁଂ. ବି. ବଡ଼ରସାଳ,

ମଦନୋତ୍ସବ—ପୁଂ.ବି. (ମଦନ+ଉତ୍ସବ) ବସନ୍ତୋତ୍ସବ, ଦୋଳଯାତ୍ରା,ସ୍ତ୍ରୀପୁରୁଷ-ଙ୍କର ସଙ୍ଗମ, ରମଣ, ଚୈତ୍ରପୂର୍ଣ୍ଣିମାରେ ଅନୁଷ୍ଠେୟ ଉତ୍ସବ ।

ମଦନୋତ୍ସବା—ସ୍ତ୍ରୀ. ବି. ସ୍ୱର୍ଗବେଶ୍ୟା, ଅପ୍ସରା । [ ବନ ।

ମଦନୋଦ୍ୟାନ—କ୍ଲୀ. ବି. ସୁରମ୍ୟ ଉପ-

ମଦପତି—ପୁଂ. ବି. ସୋମରସକର୍ତ୍ତା, ଇନ୍ଦ୍ର ଓ ବିଷ୍ଣୁଙ୍କ ନାମାନ୍ତର ।

ମଦପ୍ରୟୋଗ—ପୁଂ.ବି.(ମଦ+ପ୍ରୟୋଗ) ହସ୍ତୀମାନଙ୍କର ମଦୋଦ୍ଗମ ।

ମଦଭଞ୍ଜିନୀ—ସ୍ତ୍ରୀ. ବି. (ମଦ+ଭନ୍ଜ୍+ଇନ୍+ଈ) ଶତମୂଳୀ, ଶତାବରୀ ।

ମଦଭର—ଗ୍ରା. ବିଂ. ମଦମତ୍ତ ଦେଖ ।

ମଦଭଟି—ଗ୍ରା. ବି. ଯେଉଁଠାରେ ମଦ ପ୍ରସ୍ତୁତ କରାଯାଏ ।

ମଦଭୋଳ(ଳା)—ଗ୍ରା.ବି. ମଦନିଶା ଜନିତ ବାତୁଳତା ।

ମଦମତ୍ତ—ପୁଂ. ବିଂ. (୩ତତ୍) କାମୋ-ନ୍ମତ୍ତ, ମଦସ୍ରାବ ଯୋଗୁଁ ଉନ୍ମତ୍ତ(ହସ୍ତୀ), ମଦଦ୍ୱାରା ଉନ୍ମତ୍ତ ସ୍ତ୍ରୀ ।

ମଦମୁକ୍—ପୁଂ.ବିଂ.(ମଦ+ମୁଚ୍+କ୍ୱିପ୍) ମଦସ୍ରାବୀ ।

ମଦମୁକୁଳିତ—ବିଂ. (୩ତତ୍)ହର୍ଷହେତୁ ଅର୍ଦ୍ଧମୁଦ୍ରିତ, ଅନୁରାଗଜନ୍ୟ ଅର୍ଦ୍ଧନିମୀ-ଳିତ ।

ମଦମୁକୁଳିତାକ୍ଷ—ବିଂ. (ବ.ବ୍ରୀ) ଅତି-ଶୟ ହର୍ଷ, ଅନୁରାଗ ବା ଗର୍ବାଦିହେତୁ ଅର୍ଦ୍ଧନିମୀଳିତ ନୟନବିଶିଷ୍ଟ ।

ମଦମୁକ୍ତ—ବିଂ. ଗର୍ବଶୂନ୍ୟ,ମତ୍ତତାଶୂନ୍ୟ ।
ମଦୟନ୍ତିକା—ସ୍ତ୍ରୀ. ବ. ମଲ୍ଲିକା ।
ମଦୟନ୍ତୀ—ସ୍ତ୍ରୀ.ବ. ବନମଲ୍ଲିକା,ବଣମଲ୍ଲି ।
ମଦୟିତା—ପୁଂ. ବିଂ. ମଦଯୁକ୍ତ, ଯେ ମତ୍ତକରାଏ, (ସ୍ତ୍ରୀ) ମଦୟିତ୍ରୀ,(ବି)ମଦ୍ୟ, କାମଦେବ, ମେଘ, ଶୌଣ୍ଡିକ ।
ମଦୟିତ୍ନୁ—ବ. କନ୍ଦର୍ପ, ମଦ୍ୟ,ଶୌଣ୍ଡିକ, ଶୁଣ୍ଢି, (ବିଂ) ମାଦକ, ମତ୍ତତାଜନକ ।
ମଦୟିଲ୍ନୁ—ପୁଂ. ବ. (ମଦ୍+ଣିଚ୍+କ.ଇଲ୍ନୁ) କାମଦେବ, ମଦ୍ୟ, ମେଘ ।
ମଦରଙ୍ଗା—ଗ୍ରା. ବ. ଏକପ୍ରକାର ଶାଗ ।
ମଦରାଗ—ପୁଂ.ବ. ମଦନ, ମତ୍ତତାଜନିତ କ୍ରୋଧଯୁକ୍ତ ବ୍ୟକ୍ତି, ମତ୍ତକୁକ୍କୁଟ ।
ମଦଲେଖା—ସ୍ତ୍ରୀ. ବ. ଛନ୍ଦୋବିଶେଷ, ହସ୍ତୀର ଦାନବାରି ଧାରା ।
ମଦବାରି—କ୍ଲୀ. ବ. ହସ୍ତୀର ମଦଜଳ ।
ମଦବିକ୍ଷିପ୍ତ—ପୁଂ. ବ. ମତ୍ତହସ୍ତୀ ।
ମଦବୃଦ୍ଧ—ବି.ବିଂ. ସୋମପାନରେ ହୃଷ୍ଟ ।
ମଦବୃନ୍ଦ—ପୁଂ. ବ. ହସ୍ତୀ,ମଦସମୂହ ।
ମଦଶାକ—ପୁଂ. ବ. ପୋଇଶାଗ,ପୂତିକା ।
ମଦଶୌଣ୍ଡିକ—ପୁଂ. ବ. ଜାଇଫଳ ।
ମଦସାର—ପୁଂ.ବ.(ମଦ + ସୃ + ଣିଚ୍ + ଅ) ତୁଳବୃକ୍ଷ ।
ମଦସ୍ଥଳ—କ୍ଲୀ. ବ. ମଦ ପିଇବା ସ୍ଥାନ, ମଦ ଦୋକାନ ।
ମଦସ୍ରାବ—ବ. (୬ତତ୍ତ୍ୱ) ହାତୀର ଗଣ୍ଡରୁ ମଦ ଜଳର କ୍ଷରଣ ।
ମଦସ୍ରାବୀ—ପୁଂ. ବିଂ. (ମଦସ୍ରାବ+ଇନ୍) ଯାହାର ଗଣ୍ଡରୁ ମଦବାରିଧାରା ବହୁଥାଏ ।
ମଦହେତୁ—ପୁଂ. ବ. ଧାତକୀବୃକ୍ଷ, (ବିଂ) ମତ୍ତତାକାରକ ।
ମଦାଙ୍ଗ—ଗ୍ରା. ବ. ମଲଙ୍ଗ, ଅନ୍ୟ ଗଛ ଦେହରେ ଜନ୍ମିବା ଗଛ, ନିର୍ମୂଳୀ ।
ମଦାଢ୍ୟ—ପୁଂ. ବ. (୩ତତ୍ତ୍ୱ) ତାଳଗଛ, ଖଜୁରିଗଛ, (ସ୍ତ୍ରୀ) ମଦାଢ୍ୟା,(ବିଂ)ମଦଯୁକ୍ତ, ଅତି ଉନ୍ମତ୍ତ, ଅତି ଗର୍ବିତ ।
ମଦାଢ୍ୟା—ସ୍ତ୍ରୀ.ବ.ଲୋହିତ ଝିଣ୍ଟି, ନାଲି ବାସକେଶରଣ୍ଠା ।

ମଦାତଙ୍କ—ପୁଂ. ବ. (ମଦ+ଆତଙ୍କ) ମଦାତ୍ୟୟ ରୋଗ ।
ମଦାତ୍ୟୟ—ପୁଂ.ବ. (ମଦ+ଅତ୍ୟୟ) ଅତିରିକ୍ତ ମଦ୍ୟପାନଜନିତ ରୋଗବିଶେଷ
ମଦାନ୍ଧ—ବିଂ.(୩ତତ୍ତ୍ୱ)ମଦମତ୍ତ, ମତ୍ତତା ହେତୁ ହିତାହିତ ଜ୍ଞାନଶୂନ୍ୟ,ଅତିଦର୍ପୀ, (ସ୍ତ୍ରୀ) ମଦାନ୍ଧା ।
ମଦାମଦ—ବି. ବିଂ. ସଦା ମଦୋନ୍ମତ୍ତ ।
ମଦାମ୍ବର—ପୁଂ.ବ. (ମଦ+ଅମ୍ବର)ହସ୍ତୀ
ମଦାର—ଯା.ବ.କୌଣସି ବ୍ୟକ୍ତି ଉପରେ ଅର୍ପିତ କୌଣସି କାର୍ଯ୍ୟର ଭାର,ଦାୟିତ୍ୱ, ବିଶ୍ୱାସ, ନିର୍ଭର ।
ମଦାର—ପୁଂ.ବ.(ମଦ + କ.ଆର)ହସ୍ତୀ, କାମୁକ ବ୍ୟକ୍ତି,ଶୂକର, ମତ୍ତହସ୍ତୀ, ନୃପଭେଦ, ଗନ୍ଧଭେଦ,(ବିଂ)ଧୂର୍ତ୍ତ,କାମୁକ ।
ମଦାର୍ମଦ—ପୁଂ. ବ. (ମଦ+ଅର୍ମ+ଦା+ଅ) ଫଳକ ମତ୍ସ୍ୟ,ଫଲୀ ମାଛ ।
ମଦାଲସ—ପୁଂ. ବିଂ. (ମଦ + ଅଲସ + ଅ) ମଦବିହ୍ୱଳ,ଆବେଶ ବିହ୍ୱଳ, (ସ୍ତ୍ରୀ) ମଦାଳସା ।
ମଦାଲସା—ସ୍ତ୍ରୀ.ବ.ଧର୍ମଶାଳା ତତ୍ତ୍ୱବାଦନୀ ରାଣୀବିଶେଷ,(ସ୍ତ୍ରୀ.ବିଂ)କାମୁକୀ,ହର୍ଷାଦିବଶତଃ ବିହ୍ୱଳା ।
ମଦାଲସୀ—ଗ୍ରା.ସ୍ତ୍ରୀ. ବ. ମଦବିହ୍ୱଳା ସ୍ତ୍ରୀ, କାମୁକୀ ସ୍ତ୍ରୀ, ଉତ୍କଣ୍ଠା ସ୍ତ୍ରୀ ।
ମଦାଳାପ—ବ. (କ.ଧା) ମଧୁର ଭାଷଣ, ମଧୁରାଳାପ, ହର୍ଷପୂର୍ଣ୍ଣ କଥୋପକଥନ ।
ମଦାଳାପୀ—ପୁଂ.ବ. (ମଦ + ଆ + ଲପ୍ + ଇନ୍)କୋକିଳ, (ବିଂ) ମଧୁରଭାଷୀ, (ସ୍ତ୍ରୀ) ମଦାଳାପିନୀ ।
ମଦାବସ୍ଥା—ସ୍ତ୍ରୀ.ବ. ଉନ୍ମତ୍ତାବସ୍ଥା,କ୍ରୋଧାବସ୍ଥା ।
ମଦାହ୍ୱ—ପୁଂ.ବ(ବ.ବ୍ରୀ)କସ୍ତୁରୀ, ମୃଗମଦ
ମଦି(ଦୀ)—ସ୍ତ୍ରୀ. ବ. (ମଦ+ଇନ୍) କୃଷି ସାଧନ ଯନ୍ତ୍ରବିଶେଷ, ମଇ ।
ମଦିନା—ଗ୍ରା.ବ.ଆରବ ଦେଶର ଗୋଟିଏ ନଗର ।
ମଦିର—ପୁଂ. ବ. (ମଦ + କ.ଇର)ରକ୍ତ ଖଦିର, ମତ୍ତ ଖଞ୍ଜନପକ୍ଷୀ,(ବିଂ)ମତ୍ତତାଜନକ, (ସ୍ତ୍ରୀ) ମଦିରା ।

ମଦିରା—ସ୍ତ୍ରୀ. ବ. (ମଦ+ଇର+ଆ) ମଦ୍ୟ, ମତ୍ତ ଖଞ୍ଜନପକ୍ଷୀ, ବାରୁଣୀ ମଦ, ରକ୍ତଖଦିର, ଛନ୍ଦୋବିଶେଷ ।
ମଦିରାକ୍ଷ—ପୁଂ.ବିଂ.(ବ.ବ୍ରୀ)ଖଞ୍ଜନନୟନ, ସୁଲୋଚନ, (ସ୍ତ୍ରୀ) ମଦିରାକ୍ଷୀ ।
ମଦିରାକ୍ଷୀ—ସ୍ତ୍ରୀ. ବିଂ. ( ମଦିର+ଅକ୍ଷି ) ମତ୍ତଲୋଚନା (ସ୍ତ୍ରୀ),ସୁଲୋଚନା ।
ମଦିରାଗୃହ—କ୍ଲୀ. ବ. ମଦଭାଟି ଜାଗା, ମଦଖଟି, ମଦ ଦୋକାନ ।
ମଦିଷ୍ଟା—ସ୍ତ୍ରୀ. ବ. ( ମଦ+ଇଷ୍ଟ+ଆ ) ମଦିରା, ସୁରା ।
ମଦିଷ୍ଠ—ବି. ବିଂ. ମତ୍ତତାଯୁକ୍ତ,ପ୍ରଫୁଲ୍ଲ ।
ମଦୀୟ—ବି. ବିଂ. (ଅସ୍ମଦ୍+ଈୟ) ମତ୍‌ସମ୍ବନ୍ଧୀୟ, ଆମ୍ଭର, ମୋହର, (ସ୍ତ୍ରୀ) ମଦୀୟା ।
ମଦୁଆ—ଗ୍ରା. ପୁଂ. ବିଂ. ଯେ ମଦ ପାନ କରିଥାଏ ବା କରେ ।
ମଦୁଆଗନ୍ଧ—ବିଂ. ( ବ.ବ୍ରୀ ) ମଦପରି ଗନ୍ଧାଉଥିବା (ଗୁଡ଼ଆଦି); ( ବି-କ.ଧା ) ମଦର ଗନ୍ଧ ।
ମଦୁଡ଼—ଗ୍ରା.ବ. ମଲ୍ଲମାନଙ୍କ ଦ୍ୱାରା ଭୂମିକୁ ଆଘାତ ।
ମଦୁରା—ଗ୍ରା. ବ. ମାନ୍ଦ୍ରାଜ ପ୍ରେସିଡେନ୍ସିର ଦକ୍ଷିଣସ୍ଥ ଗୋଟିଏ ଜିଲ୍ଲା ଓ ନଗର ।
ମଦୋତ୍କଟ—ପୁଂ.ବ. (୩ତତ୍ତ୍ୱ) ମତ୍ତହସ୍ତୀ, (ବିଂ) ମଦୋଦ୍ଧତ,ଗର୍ବୋନ୍ମତ୍ତ, ମତୁଆଲ
ମଦୋତ୍କଟା—ସ୍ତ୍ରୀ. ବ. (ମଦୋତ୍କଟ + ଆ) ସୁରା, ମଦ୍ୟ ।
ମଦୋଦଗ୍ର—ପୁଂ. ବିଂ. (୩ତତ୍ତ୍ୱ) ମତ୍ତତା ଯୋଗୁଁ ବାହ୍ୟ ଜ୍ଞାନଶୂନ୍ୟ, ମତ୍ତ, ମଦମତ୍ତ,(ସ୍ତ୍ରୀ. ବି) ନାରୀ । [ ବେଶ ।
ମଦୋଦ୍ଧତ—ବିଂ. ମଦମତ୍ତ, ମଦୋଦଗ୍ର
ମଦୋନ୍ମତ୍ତ—ପୁଂ.ବିଂ.(୩ତତ୍ତ୍ୱ)ମଦ ଦ୍ୱାରା ଉନ୍ମତ୍ତ, ମତୁଆଲ, ମଦଗର୍ବିତ(ବି)ତନ୍ତ୍ରସାରୋକ୍ତ ମନ୍ତ୍ରଭେଦ ।
ମଦୋଲ୍ଲାପୀ—ପୁଂ. ବ. କୋକିଳ, (ସ୍ତ୍ରୀ) ମଦୋଲ୍ଲାପିନୀ ।
ମଦ୍‌ଗୁ—ପୁଂ. ବ. ( ମଦ୍+ଉ ) ପକ୍ଷିବିଶେଷ,ମୃଗଭେଦ,ମାଗୁର ମାଛ,ପାଣିକୁଆ, ଯୁଦ୍ଧଜାହାଜ ସମୂହ ।

ମଦ୍ଗୁର—ପୁଂ.ବ. (ମସ୍ଜ୍+ଉର) ମତ୍ସ୍ୟ ବିଶେଷ, ମାଗୁରମାଛ, ବର୍ଣ୍ଣସଙ୍କର ଜାତି ବିଶେଷ ।

ମଦ୍ଗୁରକ—ପୁଂ. ବ. ( ମଦ୍ଗୁର+ଅକ ) ମାଗୁରମାଛ, ଜାତିବିଶେଷ ।

ମଦ୍ଗୁରସୀ(ସୀ)—ସ୍ତ୍ରୀ. ବ. ଶୃଙ୍ଗିମତ୍ସ୍ୟ,ଶିଙ୍ଗିମାଛ, ମାଗୁରମାଛ । [ ଦେବ ।

ମଦ୍ଗୁରୁ—ବି. (ଅସ୍ମଦ୍+ଗୁରୁ) ମୋ ଗୁରୁ

ମଦ୍ଗୃହ—ବି. (ଅସ୍ମଦ+ଗୃହ) ମୋ ଘର

ମଦ୍ଧିକ—ବି. ଦ୍ରାକ୍ଷାରୁ ପ୍ରସ୍ତୁତ ମଦ ।

ମଦ୍ଧିତ—ବି. (୬ତତ୍)ମୋର ହିତ,ମୋର ମଙ୍ଗଳ ।

ମଦ୍ୟ—କ୍ଲୀ. ବ. ( ମଦ+ଣିଚ୍+ଯ ) ମଦ, ସୁରା, ରସାୟନକ ପ୍ରକ୍ରିୟାରେ ପ୍ରସ୍ତୁତ ଆସବ, ମହୁ, ଗୁଡ଼, ଦ୍ରାକ୍ଷା, ଅଙ୍ଗୁର, ପଣସ, ଧାଇଫୁଲ, ସୋମଲତା, ମହୁଲ, ଗୁଡ଼ଲ ଆଦିରୁ ପ୍ରସ୍ତୁତ ହୁଏ, ଏହାଛଡ଼ା ଖର୍ଜୁରୀ, ତାଳ, ନଡ଼ିଆଗଛମାନଙ୍କର ରସବିକାର ।

ମଦ୍ୟକୀଟ—ପୁଂ. ବ. ସୁରାଜାତ କୀଟଭେଦ

ମଦ୍ୟପ—ପୁଂ. ବିଂ. (ମଦ୍ୟ+ପା+କ. ଅ) ଯେ ମଦ ଖାଏ,ମଦୁଆ,(ସ୍ତ୍ରୀ)ମଦ୍ୟପା

ମଦ୍ୟପଙ୍କ—ପୁଂ. ବ. ସୁରାକଲ୍କ, (ଗ୍ରା.ବି) ମେଦ । [ ମଦପିଇବା ।

ମଦ୍ୟପାନ—କ୍ଲୀ.ବ.(୬ତତ୍)ମଦଖାଇବା,

ମଦ୍ୟପାୟୀ—ପୁଂ. ବିଂ. (ମଦ୍ୟ+ପା+କ.ଇନ୍)ମଦ୍ୟପ, ମାତାଲ,(ସ୍ତ୍ରୀ)ପାୟିନୀ

ମଦ୍ୟପାଶନ—କ୍ଲୀ. ବ. (ମଦ୍ୟପ+ଅଶ୍+ଅନ) ମଦ୍ୟପାନରୋଚକ ଭକ୍ଷଦ୍ରବ୍ୟ, ଗୁଡ଼ିଃ, ଚଟଣି ।

ମଦ୍ୟପୀ—ଗ୍ରା ପୁଂ. ବିଂ. ମଦୁଆ ।

ମଦ୍ୟପୀତ—ପୁଂ. ବିଂ. ସୁରାପାନକର୍ତ୍ତା, ଯେ ମଦ ପିଏ, (ସ୍ତ୍ରୀ) ମଦ୍ୟପୀତା ।

ମଦ୍ୟପୁଷ୍ପା—ସ୍ତ୍ରୀ. ବ. ଧାତକୀ,ଧାଇଫୁଲ ।

ମଦ୍ୟବୀଜ—କ୍ଲୀ. ବ. ନାନାଦ୍ରବ୍ୟ କୃତ ସୁରାବୀଜ, ଖ୍ୱାଟର, ଶୁଣ୍ଠିମୂଳ ।

ମଦ୍ୟବ୍ୟବସାୟୀ—ପୁଂ.ବିଂ. ଯେ ମଦର ବାଣିଜ୍ୟ କରେ । [ ପାତ୍ର ।

ମଦ୍ୟଭାଜନ—କ୍ଲୀ. ବ. ମଦ୍ୟଭାଣ୍ଡ, ମଦ୍ୟ-

ମଦ୍ୟମଣ୍ଡ—ପୁଂ. ବ. ସୁରାମଣ୍ଡ ।

ମଦ୍ୟବାସିନୀ—ସ୍ତ୍ରୀ. ବ. (ମଦ୍ୟ+ବାସ+ଇନ୍+ଈ) ଧାତକୀ ବୃକ୍ଷ ।

ମଦ୍ୟସନ୍ଧାନ—କ୍ଲୀ. ବ. ମଦ୍ୟୋତ୍ପାଦନ ବ୍ୟାପାର ।

ମଦ୍ୟାମୋଦ—ପୁଂ. ବ. (ବ.ବ୍ରୀ) ବକୁଳ ବୃକ୍ଷ, (୬ତତ୍) ମଦ୍ୟର ଗନ୍ଧ ।

ମଦ୍ର—ପୁଂ.ବ. (ମଦ+ର)ଦେଶବିଶେଷ, ମଦ୍ରଦେଶ, ଆହ୍ଲାଦ, ହର୍ଷ, ମଙ୍ଗଳ, ଭଦ୍ର ।

ମଦ୍ରକ—ତ୍ରି.ବିଂ. (ମଦ୍ର+କ)ମଦ୍ରଦେଶଭବ,(ବି)ଦେଶଭେଦ, ଜଣେ ପ୍ରାଚୀନ କବି ।

ମଦ୍ରକାର—ବିଂ. (ମଦ୍ର+କୃ+ଅ)କ୍ଷେମଙ୍କର, ମଙ୍ଗଳକାରକ ।

ମଦ୍ରଙ୍କର—ବିଂ. (ମଦ୍ର+କୃ+ଅ)କ୍ଷେମଙ୍କର, ମଙ୍ଗଳକର ।

ମଦ୍ରନାଭ—ପୁଂ. ବ. ନିଷାଦର ଔରସରେ ଉତ୍ପନ୍ନ ଜାତିବିଶେଷ ।

ମଦ୍ରପ—ପୁଂ. ବ. (ମଦ୍ର+ପା+ଅ)ମଦ୍ରଦେଶର ରାଜା । [ ଅଶ୍ୱପତି ।

ମଦ୍ରରାଜ—ପୁଂ. ବ. ମଦ୍ରଦେଶର ରାଜା

ମଦ୍ରସୁତା—ସ୍ତ୍ରୀ. ବ. ମଦ୍ରରାଜକନ୍ୟା, ମାଦ୍ରୀ, ପାଣ୍ଡୁପତ୍ନୀ ।

ମଦ୍ରାସା—ଯା. ବ. ଆରବୀ ଓ ପାରସୀ ଭାଷା ଶିକ୍ଷାଦିଆଯିବା ବିଦ୍ୟାଳୟ ।

ମଦ୍ବିଧ—ତ୍ରି. ବିଂ. ମତ୍ସଦୃଶ, ଆତ୍ମପର, ମୋପର ।

ମଧବ୍ୟ—ତ୍ରି. ବିଂ. ସୋମପାନ ଯୋଗ୍ୟ, ମିଷ୍ଟ, (ପୁଂ.ବି) ମଧୁମାସ ।

ମଧୁ—ବି. ( ମନ୍+କ.ଉ ) ମହୁ, ଫୁଲ ମଧ୍ୟରେ ଥିବା ମକରନ୍ଦ, ମଦ୍ୟ, ସୁମିଷ୍ଟ ରସ, ମଧୁରରସ, ମିଠା, ଜଳ, କ୍ଷୀର, କାମଦେବଙ୍କ ଅନୁଚର, ବସନ୍ତକାଳ, ଯଦୁବଂଶୀୟ ଜଣେ ରାଜା, ମଧୁଦ୍ରୁମ, ଆମ୍ବଗଛ, ମହୁଲଗଛ, ଚୈତ୍ରମାସ, ଅଶୋକବୃକ୍ଷ, ଯାଠିମଧୁ, ଅସୁରବିଶେଷ, ମଧୁଦୈତ୍ୟ,(ବିଂ) ସ୍ୱାଦୁ,ମିଷ୍ଟ ।

ମଧୁଅମାବାସ୍ୟା—ବି.ଚୈତ୍ର ଅମାବାସ୍ୟା ।

ମଧୁକ—ପୁଂ. ବ. (ମନ୍+ଉକ) ଯାଠିମଧୁ, ମହୁଲ ଗଛ ଓ ଫୁଲ,ମହୁଲମଦ ।

ମଧୁକଣ୍ଠ—ପୁଂ. ବ. (ବ.ବ୍ରୀ) କୋକିଳ, ଜଣେ ପ୍ରାଚୀନ କବି, ( ବିଂ-ବ.ବ୍ରୀ ) ମିଷ୍ଟକଣ୍ଠସ୍ୱରଯୁକ୍ତ, ମିଷ୍ଟଭାଷୀ ।

ମଧୁକର—ପୁଂ. ବ. (ମଧୁ+କୃ+ଅ) ଭ୍ରମର, ବାଣିଜ୍ୟରତ୍ନ, କାମୀ, ଭୃଙ୍ଗରାଜ ଗଛ, ଭୃଙ୍ଗୀ, ବଲ୍ଲଭ, ପ୍ରଣୟୀ, ନାଗର, (ବିଂ) ଯେ ମଧୁସଂଗ୍ରହ କରେ, ( ସ୍ତ୍ରୀ ) ମଧୁକରୀ । [ ପୁଞ୍ଜ ।

ମଧୁକରନିକର—ବି. (୬ତତ୍) ଭ୍ରମର-

ମଧୁକର୍ଷ—ପୁଂ. ବ. ମହୁମାଛି, ( ସ୍ତ୍ରୀ ) ମଧୁକରଣୀ ।

ମଧୁକର୍କଟୀ—ସ୍ତ୍ରୀ. ବ. ମଧୁର ରସଯୁକ୍ତ ଏକପ୍ରକାର ଟୋକାଲେମ୍ବୁ, କମଳା ।

ମଧୁକଲୋଚନ—ପୁଂ. ବ. ଶିବ ।

ମଧୁକସୁରା—ବି. ମହୁଲରୁ ପ୍ରସ୍ତୁତ ମଦ୍ୟ ।

ମଧୁକାର—ପୁଂ. ବ. (ମଧୁ+କୃ+କ.ଅ) ମଧୁକର, ମହୁମାଛି ।

ମଧୁକାଳ—ପୁଂ. ବ. ବସନ୍ତଋତୁ ।

ମଧୁକାଶ୍ରୟ—ପୁଂ. ବ. (୬ତତ୍)ମଧୁଚ୍ଛିଷ୍ଟ, ମହମ ।

ମଧୁକାଷ୍ଠ—ପୁଂ. ବ. ମହୁଲ ଗଛ ।

ମଧୁକିରଣ—ପୁଂ. ବ. ଚନ୍ଦ୍ର ।

ମଧୁକୁକ୍କୁଟିକା—ସ୍ତ୍ରୀ.ବ. ମଧୁର ରସଯୁକ୍ତ ଜମ୍ବୀରବିଶେଷ, କମଳା, ମଧୁର ଟୋକାଲେମ୍ବୁ ।

ମଧୁକୁଲ୍ୟା—ସ୍ତ୍ରୀ. ବ. ମଧୁର ସ୍ରୋତସ୍ୱିନୀ, କୁଶ ଦ୍ୱୀପସ୍ଥ ନଦୀଭେଦ ।

ମଧୁକୃତ୍—ପୁଂ. ବ. (ମଧୁ+କୃ+କ୍ୱିପ୍) ଭ୍ରମର, ଭୃଙ୍ଗ ।

ମଧୁକେଶଟ—ପୁଂ. ବ. ଭ୍ରମର ।

ମଧୁକୈଟଭ—ପୁଂ.ବ.ମଧୁକୈଟଭ ନାମକ ଦୁଇଜଣ ଅସୁର, ଏ ଦୁହେଁ ବିଷ୍ଣୁଙ୍କର କର୍ଣ୍ଣମୂଳରୁ ଜାତ ହୋଇଥିଲେ ।

ମଧୁକୈଟଭବିଧ୍ୱଂସୀ—ପୁଂ. ବ. ବିଷ୍ଣୁ ।

ମଧୁକୋଷ—ପୁଂ. ବ. (ମଧୁ+କୋଷ) ମଧୁଚକ୍ର, ମହୁଫେଣା । [ ମଧୁଚକ୍ର ।

ମଧୁକ୍ରମ—ପୁଂ.ବ. (ବ.ବ୍ରୀ) ମହୁଫେଣା,

ମଧୁକୋଢ଼ା—ବି. ମଧୁମସ୍ତକ, ଏକପ୍ରକାର ପିଠା ।
ମଧୁକ୍ଷୀର—ପୁଂ.ବି. (ବ.ଗ୍ରା) ଖର୍ଜୁରଗଛ ।
ମଧୁଶର୍କରା—ସ୍ତ୍ରୀ.ବି.ଅତି ମିଠା ଖଜୁରିବିଶେଷ, ଖଜୁରୀ ।
ମଧୁଗନ୍ଧ—ପୁଂ.ବି. (ବ.ଗ୍ରା) ବଉଳଗଛ, ଅର୍ଜୁନଗଛ,(ଵିତତ୍ତ୍ୱ) ମଦଗନ୍ଧ, ମଧୁରଗନ୍ଧ ।
ମଧୁଗନ୍ଧପ୍ରସୂନକ—ପୁଂ.ବି. ଅର୍ଜୁନଗଛ ।
ମଧୁଗନ୍ଧକ—ପୁଂ.ବିଂ.ମଧୁ ଗନ୍ଧଯୁକ୍ତ,(ସ୍ତ୍ରୀ) ମଧୁଗନ୍ଧକା ।
ମଧୁଗାୟନ—ପୁଂ. ବି. ( ମଧୁ+ଗୈ+ଅନ) କୋକିଳ ।
ମଧୁଗୁଞ୍ଜନ—ପୁଂ. ବି. ଶୋଭାଞ୍ଜନ ବୃକ୍ଷ, ସଜନାଗଛ ।
ମଧୁଘୋଷ—ପୁଂ.ବି. (ବ.ଗ୍ରା) କୋକିଳ ।
ମଧୁଚକ୍ର—କ୍ଲୀ. ବି. ମହୁଫେଣା ।
ମଧୁଚନ୍ଦ୍ରମା—ବି. ଖ୍ରୀଷ୍ଟିୟାନମାନଙ୍କର ବିବାହର ଅବ୍ୟବହିତ ପରେ ଦମ୍ପତିଙ୍କ ଏକତ୍ରାବସ୍ଥାନ କରିବା ଏକମ ସମୟ ।
ମଧୁଚୂଡା—ସ୍ତ୍ରୀ. ବି. ମୟୂରଶିଖା, ମୟୂରଚୂଳିଆ ଗଛ ।
ମଧୁଜ—କ୍ଲୀ. ବି. (ମଧୁ+ଜନ୍+କ.ଅ ମହୁଜିଠା, ମହଣ, (ବିଂ)ମଧୁରୁ ଉତ୍ପନ୍ନ ।
ମଧୁଜମ୍ବୀର—ପୁଂ.ବି. ମିଠା ଲେମ୍ବୁଗଛ. କମଳାଲେମ୍ବୁ ।
ମଧୁଜା—ସ୍ତ୍ରୀ. ବି. (ମଧୁ+ଜନ୍+କ.ଅ+ଆ) ପୃଥିବୀ, ସୀତା ।
ମଧୁଜିତ୍—ପୁଂ. ବି. (ମଧୁ+ଜି+କ୍ୱିପ୍) ବିଷ୍ଣୁ ,(ଅନ୍ୟରୂପ)ମଧୁଦଳନ,ମଧୁମଥନ
ମଧୁଜିହ୍ୱ—ବି. ବିଂ. ମଧୁରଭାଷୀ ଜିହ୍ୱାଯୁକ୍ତ,ମାଧୁର୍ଯ୍ୟ ରସାସ୍ୱାଦକ ଜିହ୍ୱାଯୁକ୍ତ ।
ମଧୁଜୀରକ—ପୁଂ. ବି. ମିଠାଜୀରା, ଶଲ୍ପ, ଶତପୁଷ୍ପା ।
ମଧୁଜୀବ—ପୁଂ.ବି. (ମଧୁ+ଜୀବ+କ.ଅ) ଭ୍ରମର । [ ଗଛ ।
ମଧୁଜୀବନ—ପୁଂ.ବି.ଶ୍ୱେତକବୃକ୍ଷ,ବାହାଡ଼ା
ମଧୁତୃଣ—କ୍ଲୀ.ବି(ମଧୁ+ତୃଣ)ଇକ୍ଷୁ,ଆଖୁ ।
ମଧୁଦ୍ରବ୍ୟ—କ୍ଲୀ. ବି. (ମଧୁ+ଦ୍ରବ୍ୟ) ମଧୁର ଦ୍ରବ୍ୟତ୍ରୟ, ମହୁ, ଘିଅ ଓ ଚିନି ଏହି ତିନି ପଦାର୍ଥ । [ ମଧୁରତ୍ରୟ ।
ମଧୁତ୍ୱ—କ୍ଲୀ. ବି. ମଧୁର ଭାବ ବା ଧର୍ମ,
ମଧୁତ୍ୱବର୍ତ୍ତିକା—ସ୍ତ୍ରୀ.ବି (ମଧୁତ୍ୱ+ବର୍ତ୍ତିକା) ମହୁମହଣ ।
ମଧୁଦୀପ—ପୁଂ. ବି. (ମଧୁ+ଦୀପ)କାମଦେବ, କନ୍ଦର୍ପ ।
ମଧୁଦୂତ—ପୁଂ. ବି. (ମଧୁ+ଦୂତ)ଆମ୍ରବୃକ୍ଷ, ଆମ୍ବଗଛ ।
ମଧୁଦୂତୀ—ସ୍ତ୍ରୀ.ବି.ପାଟଳାବୃକ୍ଷ, ପାଟଳୀଗଛ
ମଧୁଦୋହ—ପୁଂ. ବି. ଉଦକଦୋହବ, କୃଷ୍ଣଳାଲକଣ୍ଠି ।
ମଧୁଦୋହନ—ପୁଂ. ବି. ମଧୁଦୋହନ, ମଧୁ ବାହାର କରିଇବା ।
ମଧୁଦ୍ରୁ—ପୁଂ.ବି(ମଧୁ+ଦ୍ରୁ+ଅ)ଭ୍ରମର ।
ମଧୁଦ୍ରୁବ—ପୁଂ. ବି. ଲାଲ ସଜନାଗଛ ।
ମଧୁଦ୍ରୁମ—ପୁଂ.ବି. (ମଧୁ+ଦ୍ରୁମ)ମହୁଲଗଛ, ଗୁଡ଼ ପ୍ରସ୍ତୁତଗଛ, ଆମ୍ବଗଛ ।
ମଧୁଦ୍ୱିଷ୍—ପୁଂ.ବି(ମଧୁ+ଦ୍ୱିଷ୍+କ୍ୱିପ୍) ବିଷ୍ଣୁ, ମଧୁସୂଦନ ।
ମଧୁଧାତୁ—ପୁଂ. ବି. ସ୍ୱର୍ଣ୍ଣମାକ୍ଷି ।
ମଧୁଧାର—ବି.ଉଦକ ଧାରାଯୁକ୍ତ ମେଘ ।
ମଧୁଧାରା—ସ୍ତ୍ରୀ.ବି.ମଧୁର ଧାରା,ମଧୁବର୍ଷଣ
ମଧୁଧୂଳି—ସ୍ତ୍ରୀ. ବି. ଖଣ୍ଡ, ଗୁଡ଼, ଶର୍କରା ।
ମଧୁଧେନୁ—ସ୍ତ୍ରୀ. ବି. ଦାନ ନିମିତ୍ତ ମଧୁ ନିର୍ମିତ ସବତ୍ସାଧେନୁ (ବରାହପୁରାଣ) ।
ମଧୁନାଡ଼ୀ—ସ୍ତ୍ରୀ.ବି.ମହୁ ଫେଣାର ଗାତ, ଋକ୍‌ବେଦର ମନ୍ତ୍ରଭେଦ ।
ମଧୁନାପିତ—ବଙ୍ଗଳା ପ୍ରଦେଶବାସୀ ମଧୁରତା ମୋଦକ ଜାତିର ଗୋଟିଏ ଶାଖା ।
ମଧୁନାରକେଳ—ପୁଂ.ବି.ମଧୁର ନଡ଼ିଆ. ଏକପ୍ରକାର ଶ୍ରେଷ୍ଠ ଓ ମିଷ୍ଟ ଶସ୍ୟଯୁକ୍ତ ନଡ଼ିଆ ।
ମଧୁନିଷ୍ପାବ—ପୁଂ. ବି. ମୁକୁଟଶିମ୍ବି, ଏକପ୍ରକାର ମିଠା ଶିମ୍ବ ।
ମଧୁନିସୂଦନ—ପୁଂ. ବି. ବିଷ୍ଣୁ ।
ମଧୁନିହନ୍ତା—ପୁଂ. ବି. ବିଷ୍ଣୁ ।
ମଧୁନେତା—ପୁଂ. ବି. (ମଧୁ+ନୀ+ତୃ) ଭ୍ରମର ।
ମଧୁପ—ପୁଂ.ବି.(ମଧୁ+ପା+ଅ)ଭ୍ରମର, (ବିଂ)ମଧୁ ପାନକାରୀ, ମଦ୍ୟପାୟୀ, (ସ୍ତ୍ରୀ) ମଧୁପା ।
ମଧୁପଟଳ—ପୁଂ.ବି.ମଧୁଚକ୍ର, ମହୁଫେଣା
ମଧୁପତି—ପୁଂ. ବି. ଶ୍ରୀକୃଷ୍ଣ ।
ମଧୁପର୍କ—ପୁଂ. ବି. (ମଧୁ+ପୃଚ୍+ଅଧି. ଅ)ଦଧି,ଘୃତ, ଶର୍କରା, ଜଳ,ମଧୁ ଏହି ପାଞ୍ଚ ଦ୍ରବ୍ୟମିଶ୍ରିତ ଖାଦ୍ୟ ବା ନୈବେଦ୍ୟ
ମଧୁପର୍କ୍ୟ—ବି.ବିଂ. (ମଧୁପର୍କ+ଯ) ମଧୁପର୍କାର୍ହ, ମଧୁପର୍କ ଯୋଗ୍ୟ ।
ମଧୁପର୍ଣ୍ଣୀ—ସ୍ତ୍ରୀ. ବି. ନୀଳଗୁଳି ଗୁଳୁଚୀଲତା. ଗମ୍ଭାରୀ, ମଧୁର ବୃକ୍ଷ ।
ମଧୁପାନ—ବି. (ଵିତତ୍ତ୍ୱ) ପୁଷ୍ପରୁ ଭ୍ରମର ମଧୁ ପିଇବା, ମଦ୍ୟପାନ ।
ମଧୁପାୟୀ—ପୁଂ.ବି. (ମଧୁ+ପା+ଇନ୍) ଭ୍ରମର, ଏକପ୍ରକାର ପକ୍ଷୀ, (ବିଂ) ମଧୁପାନ କର୍ତ୍ତା, ମଦ୍ୟପାୟୀ,(ସ୍ତ୍ରୀ)ପାୟିନୀ ।
ମଧୁପାବଣ—ବି.ବସନ୍ତକାଳୀନ ଦୁର୍ଗୋତ୍ସବ ।
ମଧୁପାଳ—ପୁଂ. ବି. ମଧୁରକ୍ଷକ ।
ମଧୁପାଳିକା—ସ୍ତ୍ରୀ.ବି.(ମଧୁ+ପାଳ+କ. ଆ) ଗମ୍ଭାରୀ ।
ମଧୁପିଙ୍ଗାକ୍ଷ—ବି. ବିଂ. ମଧୁପରି ପିଙ୍ଗଳବର୍ଣ୍ଣ ଚକ୍ଷୁଯୁକ୍ତ, (ବି) ମୁନିଭେଦ ।
ମଧୁପୀଳୁ—ପୁଂ.ବି.ମହାପୀଳୁ, ଆଖରୋଟ ଗଛ ।
ମଧୁପୁର—ଗ୍ରା. ବି. କଟକ, ଜିଲାନ୍ତର୍ଗତ ଗୋଟିଏ କଲଜାତ ରାଜ୍ୟ, ସାନ୍ତାଳ ପ୍ରଗଣାର ଗୋଟିଏ ନଗର, ମଥୁରାନଗରୀ, ମଧୁପୁରୀ ଦେଶ ।
ମଧୁପୁରୀ—ସ୍ତ୍ରୀ. ବି. ମଥୁରା ନଗରୀ ।
ମଧୁପୁଷ୍ପ—ପୁଂ. ବି. (ବ.ଗ୍ରା) ମହୁଲଗଛ, ଅଶୋକଗଛ, ବଉଳଗଛ, ଶିରୀଷଗଛ, ଦନ୍ତୀବୃକ୍ଷ । [ ଧାତକୀ ।
ମଧୁପୁଷ୍ପା—ସ୍ତ୍ରୀ.ବି. (ମଧୁପୁଷ୍ପ+ଆ)ଦନ୍ତୀ,
ମଧୁପ୍ରିୟ—ପୁଂ. ବି. (ବ.ଗ୍ରା) ବଳରାମ, ଭୂଇଁ ଜାମୁ, (ବିଂ) ଯେ ମଧୁ ଖାଇବାକୁ ଭଲପାଏ ମଦ୍ୟପ, (ସ୍ତ୍ରୀ) ପ୍ରିୟା ।
ମଧୁଫଳ—ପୁଂ. ବି. ମଧୁ ନାରିକେଳ,

ଦ୍ରାକ୍ଷା, କସ୍‌ମିସ୍, ବଢକଙ୍କତ, ଭୁଇଁଈ ।
ମଧୁଫଳିକା—ସ୍ତ୍ରୀ.ବି.ମଧୁ ଖର୍ଜୁରିକା,ଖଜର ।
ମଧୁଭିଦ୍—ପୁଂ. ବି. (ମଧୁ+ଭିଦ୍+କ୍ୱିପ୍) ବିଷ୍ଣୁ ।
ମଧୁଭୃବନ—ବି. ମଧୁପୁରୀ ଦେଖ ।
ମଧୁଭୃତ୍—ପୁଂ.ବି.(ମଧୁ+ଭୃତ୍)ଭ୍ରମର ।
ମଧୁମକ୍ଷ—ପୁଂ. ବି. ମହୁମାଛି ।
ମଧୁମଙ୍ଗଳ—ସାନ୍ଦୀପନମୁନିଙ୍କର ପୁତ୍ର, ଶ୍ରୀକୃଷ୍ଣଙ୍କର ସଖା ।
ମଧୁମତୀ—ସ୍ତ୍ରୀ. ବି. (ମଧୁମତ୍+ଈ)ନଦୀବିଶେଷ, ଉପାସ୍ୟ ଯୋଗିନୀବିଶେଷ, ଛନ୍ଦୋବିଶେଷ, ମଧୁ ଦୈତ୍ୟର କନ୍ୟା, ପୁରାଣମତେ ନର୍ମଦା ନଦୀର ଏକ ଶାଖା, ପାତଞ୍ଜଳମତେ ସମାଧିର ଅବସ୍ଥାବିଶେଷ,ଗଙ୍ଗା, (ବିଂ) ମାଧୁର୍ଯ୍ୟମୟୀ ।
ମଧୁମତୀସାଧନ(ନା)—ବି.ମଧୁମତୀଯୋଗିନୀଙ୍କର ତନ୍ତ୍ରୋକ୍ତ ସାଧନା ।
ମଧୁମତ୍ତ—ତ୍ରି. ବିଂ. (୩ତତ୍) ମଧୁପାନ ଦ୍ୱାରା ମତ୍ତ(ଭ୍ରମର),ମଦ୍ୟପାନ ଯୋଗୁଁ ଉନ୍ମତ୍ତ(ବ୍ୟକ୍ତି),ବସନ୍ତାଗମରେ ଉତ୍‌ଫୁଲ୍ଲ [ ଶକ୍ତି ।
ମଧୁମଥନ—ପୁଂ.ବି.(ମଧୁ+ମନ୍ଥ+ଅନ) ବିଷ୍ଣୁ ।
ମଧୁମଦ—ପୁଂ. ବି. ମଦ୍ୟରେ ମାଦକତା ।
ମଧୁମନ୍ଥ—ପୁଂ.ବି.ମଧୁମିଶ୍ରଣଜାତ ମଦ୍ୟ ।
ମଧୁମୟ—ତ୍ରି.ବିଂ. ମଧୁପୂର୍ଣ୍ଣ, ଅତିମଧୁର, ମାଧୁର୍ଯ୍ୟମୟ । [ ଖଣ୍ଡ ।
ମଧୁମର୍କଟୀ—ସ୍ତ୍ରୀ.ବି.ମଧୁଜାତ ଖଣ୍ଡ,ସୀତା-
ମଧୁମଲ୍ଲୀ—ସ୍ତ୍ରୀ. ବି. ମାଳତୀ ।
ମଧୁମସ୍ତକ—କ୍ଲୀ. ବି. ଏକପ୍ରକାର ପିଠା, ମଇଦା ପିଠରେ ମହୁର ପୁର ଦିଆହୋଇ ଘିଅରେ ଛଣାହୋଇଥିବା ପିଠା ।
ମଧୁମାଧବ—ପୁଂ. ବି. ବସନ୍ତକାଳ, (ଗ୍ରା. ପୁଂ.ବି)ମଧୁମାଧବୀ ନାମ୍ନୀ ଅମରକୋଷ ଟୀକା ରଚୟିତା ।
ମଧୁମାଧବୀ—ସ୍ତ୍ରୀ.ବି.ବାସନ୍ତୀଲତା, ମଧୁରୁ ପ୍ରସ୍ତୁତ ସୁରା, ଭୈରବ ରାଗର ସହଚରୀ ରାଗିଣୀ ।
ମଧୁମାଧ୍ୱୀକ—କ୍ଲୀ. ବି.ସୁରା,ମଦ୍ୟ ।
ମଧୁମାନ୍—ପୁଂ. ବିଂ. (ମଧୁ+ମତ୍) ମଧୁପୂର୍ଣ୍ଣ, ଯହିଁରେ ମଧୁଅଛି, ମାଧୁର୍ଯ୍ୟପୂର୍ଣ୍ଣ, (ସ୍ତ୍ରୀ) ମଧୁମତୀ । [ ଭ୍ରମର ।
ମଧୁମାରକ—ପୁଂ. ବି. (ମଧୁ+ମାରକ)
ମଧୁମାଳତୀ—ସ୍ତ୍ରୀ.ବି. ସ୍ୱନାମ ପ୍ରସିଦ୍ଧ ପୁଷ୍ପ ଓ ତାହାର ଲତା ।
ମଧୁମାସ—ବି. ଚୈତ୍ରମାସ ।
ମଧୁମାସ—ତ୍ରି. ବିଂ. ମଧୁଯୁକ୍ତ, (ପୁଂ.ବି) ଜଣେ ଗ୍ରନ୍ଥକାର ଭବଚନ୍ଦ୍ରଙ୍କ ପୁତ୍ର ।
ମଧୁମୁର—ବି. ମଧୁଦୈତ୍ୟ ଓ ମୁରଦୈତ୍ୟ
ମଧୁମୁରନରକବିନାଶନ—ପୁଂ.ବି.ବିଷ୍ଣୁ, ଶ୍ରୀକୃଷ୍ଣ ।
ମଧୁମୂଳ—କ୍ଲୀ.ବି. ମହୁଆ ଆଳୁ, ନାଲିଆଳୁ । [ ବିଶେଷ ।
ମଧୁମେହ—ପୁଂ. ବି. ପ୍ରମେହ ରୋଗ-
ମଧୁମେହୀ—ପୁଂ.ବିଂ. (ମଧୁମେହ+ଇନ୍) ମଧୁମେହ ରୋଗଗ୍ରସ୍ତ । [ ମଧୁ ।
ମଧୁଯଷ୍ଟି—ସ୍ତ୍ରୀ.ବି. ଇକ୍ଷୁ, ଆଖୁ, ଯଷ୍ଟି-
ମଧୁଯଷ୍ଟିକା—ସ୍ତ୍ରୀ.ବି. (ମଧୁ+ଯଷ୍ଟି+କ+ଆ) ଯଷ୍ଟିମଧୁ, ଯାଠିମଧୁ,ଆଖୁ ।
ମଧୁଯଷ୍ଟୀ—ସ୍ତ୍ରୀ.ବି. ଯାଠିମଧୁ ।
ମଧୁଯାମିନୀ—ସ୍ତ୍ରୀ. ବି. ( କ.ଧା ) ବସନ୍ତ କାଳର ରାତ୍ରି, ଜ୍ୟୋତ୍ସ୍ନାମୟୀ ରାତ୍ରି ।
ମଧୁର—ପୁଂ. ବି. (ମଧୁ+ର+ଅ)ମାଧୁର୍ଯ୍ୟ ଗୁଣ, ମିଷ୍ଟରସ, ବିଷ, ହଳାହଳ,କ୍ଷୀଣଧାତୁ, କ୍ଷୀରକ ବୃକ୍ଷ, ନାଲିଆଖୁ, ଗୁଡ଼, ଧାନ, ଲୁହା, ମହୁଲ, ମଟର, ଜଙ୍ଗଲୀ ବରକୋଳି, ବାଦାମ ଗଛ, କାକୋଲୀ, (ବିଂ) ମିଠା, ମିଷ୍ଟ ରସଯୁକ୍ତ,ପ୍ରୀତିକର, ମନୋହର, ସୌମ୍ୟ, ପ୍ରିୟଦର୍ଶନ, ମନ୍ଦଗାମୀ, (ସ୍ତ୍ରୀ)ମଧୁରା ।
ମଧୁରକ—ପୁଂ.ବି. କ୍ଷୀରକ ବୃକ୍ଷ ।
ମଧୁରକଣ୍ଟକ—ପୁଂ.ବି. ମତ୍ସ୍ୟବିଶେଷ ।
ମଧୁରକର୍କଟୀ—ସ୍ତ୍ରୀ.ବି.ମିଠା ଟାଭାଲେମ୍ବୁ, କମଳା । [ କଖାରୁ ।
ମଧୁରକୁଷ୍ମାଣ୍ଡ—କ୍ଲୀ. ବି. ବୋଇତାଆଳୁ,
ମଧୁରଖର୍ଜୁରୀ—ସ୍ତ୍ରୀ.ବି. ଖଜୁରୀଗଛ ।
ମଧୁରଗନ୍ଧ—ବି. (କ.ଧା) ସ୍ନିଗ୍ଧ ଗନ୍ଧ, (ବିଂ) ସ୍ନିଗ୍ଧ ଗନ୍ଧଯୁକ୍ତ ।
ମଧୁରଗାୟନ—ବି. ଶ୍ରୁତିମଧୁର ଗୀତ ।
ମଧୁରଗୁଣ୍ଡା—ଗ୍ରା. ବି. ଜମ୍ବୁପିଠା, କିମ୍ବା ପବିତ୍ର ଗୁଣ୍ଡା ।
ମଧୁରଜମ୍ବୀର—ବି. ମିଠା ଜମ୍ବୀର, ଜମ୍ବିଲଗଛ ।
ମଧୁରଜ୍ୱର—ପୁଂ.ବି.ମନ୍ଥରନାମକ ଜ୍ୱରବିଶେଷ, (ଏ ଜ୍ୱରରେ ଦେହ ସର୍ବଦା ତାତିଯାଉଥାଏ) ।
ମଧୁରତରଡ଼ା—ଗ୍ରା. ବି. ଜହ୍ନିପରି ଏକପ୍ରକାର ବନ୍ୟ ଲତାଫଳ ।
ମଧୁରତା(ତ୍ୱ)—ସ୍ତ୍ରୀ.ବି. (ମଧୁର+ତ+ଆ) ମାଧୁର୍ଯ୍ୟ, ମିଷ୍ଟତା ।
ମଧୁରଦ୍ରବ୍ୟ—କ୍ଲୀ.ବି. ମଧୁ, ଘୃତ,ଶର୍କରା ଏହି ତିନଦ୍ରବ୍ୟ ।
ମଧୁରଦ୍ୱିଫଳା—ସ୍ତ୍ରୀ.ବି. ସମଭାଗ ଦ୍ରାକ୍ଷା, ଗମ୍ଭାରୀ, ଖଜୁରୀ ଏହି ତିନ ।
ମଧୁରତ୍ୱକ୍—ପୁଂ.ବି. (ବ.ବ୍ରୀ) ଧବବୃକ୍ଷ, ଡାଲଚିନି, ଗୁଡ଼ତ୍ୱକ୍ ।
ମଧୁରଧ୍ୱନ—ତ୍ରି.ବିଂ. (ବ.ବ୍ରୀ) ମଧୁର ସ୍ୱନଯୁକ୍ତ, (ସ୍ତ୍ରୀ) ମଧୁରସ୍ୱନା ।
ମଧୁରପର୍ଣ୍ଣୀ—ଗ୍ରା.ବି. ବର୍ଷାର ଜଳ,ବୃଷ୍ଟିର ଜଳ ।
ମଧୁରପ୍ରକୃତ—ବି. (କ.ଧା) କୋମଳପ୍ରକୃତି, (ବିଂ.ବ.ବ୍ରୀ) କୋମଳପ୍ରକୃତି ବିଶିଷ୍ଟ ।
ମଧୁରଫଳ—ପୁଂ.ବି. ରାଜବଦର,ନାରକୋଳି, ତରଭୁଜ ।
ମଧୁରଫଳା—ସ୍ତ୍ରୀ. ବି.ମିଠାଲେମ୍ବୁ ।
ମଧୁରଭକ୍ତି—ବି.ପ୍ରେମରସମିଶ୍ରିତ ଭକ୍ତି ।
ମଧୁରଭାଷୀ—ପୁଂ.ବିଂ. ଯେ ମିଷ୍ଟକଥା କହେ, (ସ୍ତ୍ରୀ) ମଧୁରଭାଷିଣୀ ।
ମଧୁରମୂରତ—ଗ୍ରା. ବି. କମନୀୟ ରୂପ, (ବିଂ) କମନୀୟ ରୂପଯୁକ୍ତ ।
ମଧୁରମୂର୍ତ୍ତି—ବି. (କ.ଧା)କମନୀୟ ରୂପ, (ବିଂ-ବ.ବ୍ରୀ) କମନୀୟ ରୂପବିଶିଷ୍ଟ ।
ମଧୁରରସ—ବି. (କ.ଧା)ମିଠାରସ,ପ୍ରେମରସ, (ବ.ବ୍ରୀ) ଆଖୁ ।
ମଧୁରରସା—ବି. ଦ୍ରାକ୍ଷା, ମୂର୍ବା, ଗମ୍ଭାରୀ, ଶତପୁଷ୍ପା, ପ୍ରସାରଣୀ ଲତା ।
ମଧୁରଲତା—ସ୍ତ୍ରୀ.ବି. ବଲ୍ଲୀ ଯଷ୍ଟିମଧୁ ।

ମଧୁରବଚନ—ବି. (କ.ଧା) ମିଷ୍ଟବାକ୍ୟ, (ପୁଂ.-ବିଂ-ବ.ବ୍ରୀ) ମିଷ୍ଟଭାଷୀ ।

ମଧୁରବର୍ଗ—ବି. ଦୁଗ୍ଧାଦି ମଧୁର ବର୍ଗମାନଙ୍କର ସମୂହ ।

ମଧୁରବଲ୍ଲୀ—ସ୍ତ୍ରୀ.ବି. ମଧୁବୀଜପୁର ।

ମଧୁରବାକ୍—ପୁ .ବିଂ.(ବ.ବ୍ରୀ)ମିଷ୍ଟଭାଷୀ, ମଧୁର ବାକ୍ୟଯୁକ୍ତ,(ବି-କ.ଧା)ମିଷ୍ଟକଥା

ମଧୁରବୀଜପୂର—ପୁଂ.ବି. ମିଷ୍ଟ ମାଉଲଙ୍ଗ ବୃକ୍ଷ, ମିଠାଲେମ୍ବୁ । [ ଫଳ ।

ମଧୁରସ—ପୁଂ.ବି. ଇକ୍ଷୁ, ଆଖୁ ,ତାଳ-

ମଧୁରସା—ସ୍ତ୍ରୀ.ବି. ମର୍ବା, ଦ୍ରାକ୍ଷା ,ଗମ୍ଭାରୀ, ଦୁଗ୍ଧିକା, ପ୍ରସାରଣୀ, ଶତମୂଳୀ,ଶତପ

ମଧୁରସ୍ରବା—ସ୍ତ୍ରୀ.ବି. ପିଣ୍ଡଖର୍ଜ୍ଜୁରୀ ।

ମଧୁରସ୍ୱର—ବି. (ବ.ବ୍ରୀ) ଗନ୍ଧର୍ବ,(କ.ଧା) ଶ୍ରୁତିମଧୁର ସ୍ୱର, (ବିଂ) ମଧୁର ସ୍ୱରବିଶିଷ୍ଟ ।

ମଧୁରହାସ(ସ୍ୟ)--ବି.(କ.ଧା)ମୃଦୁହାସ୍ୟ, (ପୁଂ.ବିଂ) ମୃଦୁହାସ୍ୟକାରୀ ।

ମଧୁରହାସୀ—ପୁଂ.ବିଂ. ମୃଦୁହାସ୍ୟକାରୀ, (ସ୍ତ୍ରୀ) ମଧୁରହାସିନୀ ।

ମଧୁରା—ସ୍ତ୍ରୀ. ବି. (ମଧୁର+ଆ) ଶତପୁ, ମିଠାପାଳଙ୍ଗ, ମଥୁରାପୁରୀ,ମଦୁରାନଗରୀ, ମିଠାଲେମ୍ବୁ, ଯଷ୍ଟିମଧୁ, ମେଦା, କାକୋଲୀ, କଦଳୀ, ଶିମ୍ବ, ମସୁର, ମିଠାଖଜୁରୀ, ମହାମେଦା, ( ସ୍ତ୍ରୀ.ବିଂ ) ମନୋହରା, (ଗ୍ରା.ବିଂ) ମିଷ୍ଟ ରସଯୁକ୍ତ, ଗୁଡ଼ପରି ମିଠା ଲାଗୁଥିବା ।

ମଧୁରାକର—ପୁଂ.ବି. ଇକ୍ଷୁ ।

ମଧୁରାକ୍ଷର—ତ୍ରି. ବିଂ. (ବ.ବ୍ରୀ) ମଧୁର ଅକ୍ଷରଯୁକ୍ତ (ବାକ୍ୟ),(ବି ମଧୁର ଏହି ରୂପ ଅକ୍ଷର । [ କାଳିଆଳୁ ।

ମଧୁରାଳୁକ—କ୍ଲୀ. ବି. ମହୁଆ ଆଳୁ,

ମଧୁରାମ୍ଳ—ବି. (ଦ୍ୱନ୍ଦ୍ୱ) ମିଠା ଓ ଖଟା ।

ମଧୁରାମ୍ଳକ—ପୁଂ.ବି. ଆମ୍ରାତକ,ଆମ୍ବଡ଼ାଗଛ ।

ମଧୁରାମ୍ଳଫଳ—ପୁଂ.ବି.ଆମ୍ବ ।

ମଧୁରାମ୍ଳରସ—ପୁଂ.ବି. (ବ.ବ୍ରୀ)ନାରଙ୍ଗୀ ଲେମ୍ବୁଗଛ ।

ମଧୁରାଳାପ—ବି. (କ.ଧା) ମିଷ୍ଟବଚନ, ( ପୁଂ.ବିଂ-ବ.ବ୍ରୀ ) ମିଷ୍ଟଭାଷୀ, (ସ୍ତ୍ରୀ) ମଧୁରାଳାପା ।

ମଧୁରାଳାପା—ସ୍ତ୍ରୀ.ବି. ସାରିକା ପକ୍ଷୀ ।

ମଧୁରାଳାପୀ—ଗ୍ରା.ପୁଂ.ବିଂ. ମିଷ୍ଟଭାଷୀ ।

ମଧୁରାଳିକା—ସ୍ତ୍ରୀ.ବି. ମଉରାଳିମାଛ ।

ମଧୁରାସ୍ୱାଦ—ବି. ପାଟିକୁ ମିଠାଲାଗିବା, (ବିଂ—ବ.ବ୍ରୀ ) ମିଠା, ମିଷ୍ଟକ ।

ମଧୁରିଆ—ଗ୍ରା.ବିଂ. ଈଷତ୍ ମଧୁର ।

ମଧୁରିକା—ସ୍ତ୍ରୀ.ବି. (ମଧୁର+କ+ଆ) ପାନମହୁରୀ, (ଗ୍ରା.ବି)ମୁଖବାଦ୍ୟବିଶେଷ, ମହୁରି ।

ମଧୁରିତ—ତ୍ରି.ବିଂ. ମଧୁଯୁକ୍ତ ।

ମଧୁରିପୁ—ପୁଂ.ବି. ( ୬ତତ୍ପୁ ) ବିଷ୍ଣୁ, ମଧୁସୂଦନ ।

ମଧୁରିମା—ପୁଂ. ବି. (ମଧୁର+ଇମନ୍) ମଧୁରତା, ସୌନ୍ଦର୍ଯ୍ୟ, ମାଧୁର୍ଯ୍ୟ ।

ମଧୁରୀ—ଗ୍ରା.ବି. ମହୁରି, ବାଜା ।

ମଧୁରେଣ ସମାପୟେତ୍—( ପ୍ରବଚନ ) କୌଣସି କାର୍ଯ୍ୟକୁ ମଧୁରତା ଦ୍ୱାରା ସମାପ୍ତ କରିବା ଉଚିତ, ଖାଇବା ଶେଷରେ ମିଠାଖାଦ୍ୟ ଖାଇବାର ବିଧି

ମଧୁରେଣ—ପୁଂ.ବି. କଟଭୀ ଫଳ, ଶୁଷ୍କପୁଷ୍ପପାଟଳା ।

ମଧୁରୋଦକ—ପୁଂ. ବି. (ବ.ବ୍ରୀ) ଜଳସମୁଦ୍ର, ପୁରାଣମତେ ସାତ ସମୁଦ୍ରର ଶେଷ ସମୁଦ୍ର, ଯାହାର ଜଳ ମିଠା ।

ମଧୁଳ—କ୍ଲୀ.ବି. (ମଧୁ+ଲା+ଅ)ମଦ୍ୟ, ମଦ ।

ମଧୁଲଗ୍ନ—ପୁଂ.ବି. ରକ୍ତଶୋଭାଞ୍ଜନବୃକ୍ଷ, ଲାଲ ସଜନାଗଛ ।

ମଧୁଲତା—ବି. ଏକପ୍ରକାର ଘାସ, (ଗ୍ରା. ବି) ବଳଦ ଫୁଲର ଲତାବିଶେଷ ।

ମଧୁଲମ୍ପଟ—ବିଂ. (୭ତତ୍ପୁ) ମଧୁଲୁବ୍ଧ, (ବି) ଭ୍ରମର ।

ମଧୁଳିକା—ସ୍ତ୍ରୀ. ବି. (ମଧୁଳ+କ+ଆ) ରାଇସୋରିଷ, ସ୍କନ୍ଦାନୁଚର ମାତୃଭେଦ, ସ୍ୱନାମଖ୍ୟାତ ବୃକ୍ଷ, କପିଳ ଦ୍ରାକ୍ଷା, ପୁଷ୍ପପରାଗ,ଶମୀ ଧାନ୍ୟଭେଦ, ମଧୂଳିନାମକ ଗହମରୁ ପ୍ରସ୍ତୁତ ମଦ ।

ମଧୁଲିଟ୍—ପୁଂ. ବି. (ମଧୁ+ଲିହ୍+କ୍ୱିପ୍) ମଧୁକର, ଭ୍ରମର । [ଭ୍ରମର ।

ମଧୁଲିହ—ବି. ( ମଧୁ+ଲିହ୍+କ.ଅ )

ମଧୁଳୀ—ବି. (ମଧୁ+ଲା+କ.ଅ)ଏକପ୍ରକାର ଗହମ ।

ମଧୁଲୁବ୍ଧ—ପୁଂ.ବିଂ.(୩ତତ୍ପୁ)ମଧୁପାନରେ ଲାଳସାଯୁକ୍ତ, (ସ୍ତ୍ରୀ) ଲୁବ୍ଧା ।

ମଧୁଲେହୀ—ପୁଂ.ବି.( ମଧୁ+ଲିହ୍+କ. ଇନ୍) ଭ୍ରମର ।

ମଧୁଲୋଲୁପ—ପୁଂ.ବି. ୭ତତ୍ପୁ;ଭ୍ରମର ।

ମଧୁବଟୀ—ସ୍ତ୍ରୀ. ବି. ମହାଭାରତୋକ୍ତ ପ୍ରାଚୀନ ଜନପଦଭେଦ ।

ମଧୁବନ—କ୍ଲୀ. ବି. (ମଧୁ+ବନ)ମଥୁରାର ଯମୁନାତୀରବର୍ତ୍ତୀ ବନ ବିଶେଷ, କିଷ୍କିନ୍ଧ୍ୟାର ଅଦୂରବର୍ତ୍ତୀ ସୁଗ୍ରୀବଙ୍କ ବନ ବିଶେଷ, ଲଙ୍କାର ଗୋଟିଏ ବନ, ପ୍ରମୋଦ ଉଦ୍ୟାନ, (ମଧୁ+ବନ୍+ଅ) କୋକିଳ, ପ୍ରେମିକ ପ୍ରେମିକାଙ୍କ ମିଳନକୁଞ୍ଜ । [ ରୂପ ।

ମଧୁବର୍ଣ୍ଣ—ତ୍ରି. ବିଂ. (ବ.ବ୍ରୀ) ମଧୁସଦୃଶ

ମଧୁବର୍ଷୀ—ବିଂ. (ମଧୁ+ବୃଷ୍+କ.ଇନ୍) ଅମୃତବର୍ଷୀ,ଅତି ମଧୁର,(ସ୍ତ୍ରୀ)ମଧୁବର୍ଷିଣୀ

ମଧୁବଲ୍ଲୀ—ସ୍ତ୍ରୀ. ବି. ଯଷ୍ଟି ମଧୁ ।

ମଧୁବହୁଳ(ଳା)--ବି. (ବ.ବ୍ରୀ)ମାଧବୀଲତା, ଧଳାମୂଳ ।

ମଧୁବାର—ପୁଂ. ବି.ଅବିଶ୍ରାନ୍ତ ମଦ୍ୟପାନ, ମଦ୍ୟ, ମଧୁକ୍ରମ, ମଦ୍ୟପାନର ରୀତି ।

ମଧୁବାସୀ—ପୁଂ. ବି. (ମଧୁ+ବସ୍+ଇନ୍) ମିଷ୍ଟ ଦ୍ରବ୍ୟବାସୀ ଲୋକ, ନଦୀଭେଦ ।

ମଧୁବିଦ୍ୟା—ସ୍ତ୍ରୀ.ବି.ଗୁପ୍ତ ବିଦ୍ୟା ଭେଦ ।

ମଧୁବିଦ୍ୱିଟ୍—ପୁଂ.ବି. ବିଷ୍ଣୁ ।

ମଧୁବୀଜ—ପୁଂ. ବି. ( ବ.ବ୍ରୀ ) ଦାଳିମ୍ବ, ଡାଳିମ୍ବ ।

ମଧୁବୀଜପୂର—ପୁଂ.ବି. ମଧୁକର୍କଟିକା,ମିଠା ଟଭା ଲେମ୍ବୁ ।

ମଧୁବୃଷ—ତ୍ରି. ବିଂ. ମଧୁବର୍ଷୀ ।

ମଧୁବ୍ରତ—ପୁଂ. ବି. (ବ.ବ୍ରୀ) ଭ୍ରମର, (ବ.ବ୍ରୀ) ଜଳ ନିମିତ୍ତ କର୍ମ ।

ମଧୁଶୟନ—ବି. ମଧୁଶଯ୍ୟା ଦେଖ ।

ମଧୁଶଯ୍ୟା—ବି. ବିବାହର ପ୍ରଥମ ସପ୍ତାହରେ ବରକନ୍ୟାଙ୍କର ଏକତ୍ର ଶୟନ ।
ମଧୁଶର୍କରା—ସ୍ତ୍ରୀ. ବି. ମଧୁଜାତ ଶର୍କରା, ମିଠା, ଖଣ୍ଡ, ଶିମ୍ବ ।
ମଧୁଶାଖ—ପୁଂ. ବି. ମହୁଲଗଛ, (ବିଂ) ମଧୁର ଶାଖାବିଶିଷ୍ଟ ।
ମଧୁଶିଗ୍ରୁ—ପୁଂ. ବି. ନାଲି ସଜନାଗଛ ।
ମଧୁଶିତା—ସ୍ତ୍ରୀ. ବି. ଶ୍ୱେତଜନଷ୍ଠୀବ, ଧଳା ଶିମ୍ବ । [ ଶିଠା ।
ମଧୁଶିଷ୍ଟ—କ୍ଲୀ. ବି. ମଧୁଚ୍ଛିଷ୍ଟ,ମହଣ.ମହୁ
ମଧୁଶେଷ—କ୍ଲୀ.ବି.ସିକ୍ଥ, ମହଣ,ମହୁଶିଠା
ମଧୁଶ୍ରୂୟତ୍—ତ୍ରି. ବିଂ. ମଧୁସ୍ରାବୀ ।
ମଧୁଶ୍ରୀ—ସ୍ତ୍ରୀ.ବି. ବସନ୍ତକାଳୀନ ଶୋଭା ।
ମଧୁଶ୍ରେଣୀ—ସ୍ତ୍ରୀ. ବି. ମୂର୍ବା ।
ମଧୁଶ୍ୱସା—ସ୍ତ୍ରୀ. ବି. ଜୀବନ୍ତୀ ବୃକ୍ଷ ।
ମଧୁଷ୍ଠୀଳ—ପୁଂ. ବି. ମଧୂକ ବୃକ୍ଷ, ମହୁଲ ଗଛ ।
ମଧୁସଂଗ୍ରହ—ବି. (୬ତତ୍) ମଧୁମକ୍ଷିକା ଓ ଭ୍ରମର ଦ୍ୱାରା ଫୁଲରୁ ମଧୁ ଆହରଣ ।
ମଧୁସଂକାଶ—ତ୍ରି. ବିଂ. ଦେଖିବାକୁ ମିଷ୍ଟ, ମନୋହର, ସୁଦର୍ଶନ ।
ମଧୁସଞ୍ଚୟ—ବି.(୬ତତ୍) ମଧୁମକ୍ଷିକା ଦ୍ୱାରା ମଧୁଚକରେ ମଧୁ ସଞ୍ଚିତ ହେବା ।
ମଧୁସଦୃଶ—ତ୍ରି. ବିଂ. ଦେଖିବାକୁ ସମସ୍ତଙ୍କର ପ୍ରୀତିକର ।
ମଧୁସମ୍ଭବ—କ୍ଲୀ.ବି.ସିକ୍ଥ, ମହୁଶିଠା,ମହଣ ।
ମଧୁସମ୍ଭବା—ସ୍ତ୍ରୀ. ବି. କପିଳଦ୍ରାକ୍ଷା ।
ମଧୁସହାୟ—ପୁଂ.ବି.କାମଦେବ, କନ୍ଦର୍ପ କୋକିଳ । [ ଚ୍ଛିଷ୍ଟ,ମହଣ ।
ମଧୁସିକ୍ଥକ—ପୁଂ. ବି. ସ୍ଥାବର ବିଷ, ମଧୁ
ମଧୁସୁହୃତ୍—ପୁଂ.ବି. କାମଦେବ,କୋକିଳ
ମଧୁସୂକ୍ତ—କ୍ଲୀ. ବି. ବୈଦିକ ସୂକ୍ତଭେଦ, ମଧୁବାତା ଋତାୟତେ ପ୍ରଭୃତି ।
ମଧୁସୂଦନ—ପୁଂ. ବି. ( ମଧୁ+ସୂଦନ ) ଭ୍ରମର, ଶ୍ରୀକୃଷ୍ଣ,ବିଷ୍ଣୁ,ଶାଳଗ୍ରାମ ବିଶେଷ, (ଗ୍ରା.ବି.)ସପ୍ତଦଶଶତାବ୍ଦୀର ଓଡ଼ିଆ କବି ।
ମଧୁସୂଦନଗୋସ୍ୱାମୀ—ଜଣେ ବିଖ୍ୟାତ ପଣ୍ଡିତ, ଏ ଗୋଢ଼ାନନ୍ଦବିଧ୍ୱଂସଗ୍ରନ୍ଥ ଇତ୍ୟାଦି କେତେ ଖଣ୍ଡି ପୁସ୍ତକ ରଚନା କରିଥିଲେ।
ମଧୁସୂଦନଦତ୍ତ—ଗ୍ରା.ବି. ବଙ୍ଗଳାର ପ୍ରସିଦ୍ଧ କବି, ମାଇକେଲ ମଧୁସୂଦନଦତ୍ତ ବଙ୍ଗଳାରେ ଅମିତ୍ରାକ୍ଷର ଛନ୍ଦରେ ମେଘନାଦବଧ କାବ୍ୟ ରଚନା କରିଥିଲେ ।
ମଧୁସୂଦନଦାସ—ଗ୍ରା.ବି. ଉତ୍କଳର ସ୍ୱର୍ଗୀୟ ଦେଶକର୍ମୀ ଓ ପ୍ରଧାନ ଓକିଲ ଥିଲେ ।
ମଧୁସୂଦନରାଓ—ଗ୍ରା.ବି.ଉତ୍କଳର ସ୍ୱର୍ଗୀୟ ଭକ୍ତ କବି ।
ମଧୁସୂଦନୀ—ସ୍ତ୍ରୀ. ବି. ପାଳଙ୍ଗ ଶାଗ ।
ମଧୁସ୍ଥାନ—କ୍ଲୀ. ବି. ମଧୁଚକ୍ର, ମହୁଫେଣା
ମଧୁସ୍ରବ—ପୁଂ. ବି. (ମଧୁ+ସ୍ରୁ+ଭା.ଅ) ମହୁଲଗଛ. ମଧୁସ୍ରବଣ ।
ମଧୁସ୍ରବସ୍—ପୁଂ. ବି. ମହୁଲ ଗଛ ।
ମଧୁସ୍ରବା—ସ୍ତ୍ରୀ. ବି. ଯାଠିମଧୁ, ଜୀବନ୍ତୀ, ନାଲି ଲଜକୁଳୀ ଲତା, ମୂର୍ବା, ପିଣ୍ଡଖର୍ଜୁର,ହଂସପଦୀ ଲତା ।
ମଧୁସ୍ରାବ—ପୁଂ. ବି. ମହୁଲଗଛ ।
ମଧୁସ୍ୱର—ବି. (କ.ଧା) ସୁମିଷ୍ଟ କଣ୍ଠରବ, (ବ.ବ୍ରୀ.) କୋକିଳ, (ବିଂ) ସୁମିଷ୍ଟ କଣ୍ଠରବ ବିଶିଷ୍ଟ, (ସ୍ତ୍ରୀ) ମଧୁସ୍ୱରା ।
ମଧୁହା—ପୁଂ.ବି.(ମଧୁ+ହନ୍+କ.କ୍ୱିପ୍) ବିଷ୍ଣୁ ,(ବିଂ.)ମଧୁହାରକ. ଭ୍ରମର ।
ମଧୁହନ୍ତା—ପୁଂ. ବି. (ମଧୁ+ହନ୍+ତୃ) ମଧୁଦୈତ୍ୟ ନାଶକ ବିଷ୍ଣୁ, ଶ୍ରୀକୃଷ୍ଣ ।
ମଧୁହାରୀ—ବି. ବିଷ୍ଣୁ, ଭ୍ରମର ।
ମଧୂକ—ପୁଂ.ବି. ମହୁଲ ଗଛ, ଯାଠିମଧୁ ।
ମଧୂକପର୍ଣ୍ଣୀସାହସ୍ରୀ—ସ୍ତ୍ରୀ. ବି.ତୁଳସୀବୃକ୍ଷ ।
ମଧୂକପର୍ଣ୍ଣୀ—ସ୍ତ୍ରୀ. ବି. ଆମ୍ବଡ଼ା ଗଛ ।
ମଧୂକଫାଣିତ—କ୍ଲୀ. ବି. ମହୁଲ ଗୁଡ଼ର ଚିନି । [ ଚିନି ।
ମଧୂକଶର୍କରା—ସ୍ତ୍ରୀ. ବି. ମହୁଲ ଗୁଡ ବା
ମଧୂକସୁରା—ବି. ମହୁଲରୁ ପ୍ରସ୍ତୁତ ମଦ ।
ମଧୂଚ୍ଛିଷ୍ଟ—କ୍ଲୀ. ବି. ( ୬ତତ୍ ) ମହଣ, ମହୁଶିଠା ।
ମଧୂତ୍ଥ—କ୍ଲୀ.ବି. (ମଧୁ+ଉତ୍+ସ୍ଥା+ଅ) ମଧୁଚ୍ଛିଷ୍ଟ, ମହମ ।
ମଧୂତ୍ଥବର୍ତ୍ତିକା—ବି. ମହଣବତି ।
ମଧୂତ୍ଥିତ—କ୍ଲୀ. ବି. ସିକ୍ଥ, ମହଣ, ମହୁଶିଠା ।
ମଧୂତ୍ପନ୍ନା—ସ୍ତ୍ରୀ. ବି. ମଧୁକୃତ ଶର୍କରା, ମହୁରୁ ଉତ୍ପନ୍ନ ଚିନି ।
ମଧୂତ୍ସବ—ପୁଂ. ବି. ଚୈତ୍ରୀପୂର୍ଣ୍ଣିମା, ବସନ୍ତୋତ୍ସବ, ମଦନୋତ୍ସବ ।
ମଧୂଦକ—କ୍ଲୀ. ବି. ଜଳମିଶ୍ରିତ ମଧୁ ।
ମଧୂଦ୍ୟାନ—କ୍ଲୀ.ବି. ବାସନ୍ତିକ ଉଦ୍ୟାନ ।
ମଧୂପଘ୍ନ—ବି.(୬ତତ୍) ମଥୁରା,(ଏଠାରେ ମଧୁଦୈତ୍ୟର ଆଶ୍ରୟ ହେତୁ) ।
ମଧୂଲ—ପୁଂ. ବି. ଜଳମହୁଆ ।
ମଧୂଲକ—ପୁଂ. ବି. ଜଳମହୁଆ ଗଛ ।
ମଧୂଲିକା—ସ୍ତ୍ରୀ.ବି.ମଧୂଲୀ ନାମକ ଗୋଧୂମରୁ ପ୍ରସ୍ତୁତ ମଦ୍ୟ, ଯଷ୍ଟିମଧୁ, ମୂର୍ବା, ଜଳଯଷ୍ଟି, ଏକପ୍ରକାର ଶ୍ରେଷ୍ଠଦାନାବାଲା ଗହମ, ଏକପ୍ରକାର ବିଷାକ୍ତ ମାଛି, ଜଳଜ ମହୁଆ ।
ମଧୂଲୀ—ସ୍ତ୍ରୀ.ବି. ମଧ୍ୟଭାରତ ଜାତ ଏକପ୍ରକାର କ୍ଷୁଦ୍ର ଗୋଧୂମ, ମିଠା ଜମ୍ବୀରଲେମ୍ବୁ. ଅମ୍ବ, ଜଳଜ ମଧୁଯଷ୍ଟି ।
ମଧୂବକ—କ୍ଲୀ. ବି. ମଧୁଚ୍ଛିଷ୍ଟ, ମହମ ।
ମଧ୍ୟ—ବି. (ମନ୍+ଅ) ଅଣ୍ଟା,କଟିଦେଶ, ମଣି ଦୁଇବିଶେଷସ୍ଥାନର ମଧ୍ୟସ୍ଥଳ ଭିତର, ଅଭ୍ୟନ୍ତର. ବିଶ୍ରାମ, ତାଳବିଶେଷ, ସଂଖ୍ୟାବିଶେଷ, ଏକରେ ଗୋ ୧୬ ଟା ଶୂନ୍ୟଦେଲେ ହେବା ସଂଖ୍ୟା, ନୃତ୍ୟବିଶେଷ, ହେମନ୍ତ ନାଚ, ଗ୍ରହର ଗତିବିଶେଷ, ହାତର ମଝିଆଙ୍ଗୁଠି, ପଶ୍ଚିମଦିଗ, ସୁଶ୍ରୁତମତେ ୧୬ ବର୍ଷ ଠାରୁ ୭୦ ବର୍ଷ ହେବା ପର୍ଯ୍ୟନ୍ତ ମନୁଷ୍ୟର ଅବସ୍ଥାଭେଦ,ନବଯୌବନା ନାୟିକାବିଶେଷ, (ବିଂ)ଅଧମ, ଅନୁତ୍ତମ; (ଗ୍ରା. ଅବ୍ୟ) ଅପିଚ, ପୁନଶ୍ଚ, ଆହୁରି, ସୁଦ୍ଧା, ବି ।
ମଧ୍ୟକୁରୁ—ପୁଂ. ବି. ଦେଶଭେଦ ।
ମଧ୍ୟକ୍ଷାମା—ସ୍ତ୍ରୀ.ବି. କ୍ଷୀଣ କଟୀତଟଶାଳିନୀ ସ୍ତ୍ରୀ, ଛନ୍ଦଭେଦ ।
ମଧ୍ୟକ୍ଷୀଣ—ପୁଂ. ବିଂ. (ବ.ବ୍ରୀ) କ୍ଷୀଣମଧ୍ୟ, ସରୁ କଟିଯୁକ୍ତ ।
ମଧ୍ୟଖଣ୍ଡ—କ୍ଲୀ.ବି.ଉତ୍ତରକାନ୍ତି ଓ ଦକ୍ଷିଣକାନ୍ତି ମଧ୍ୟରେଖାଗତ ପୃଥିବୀର ଅଂଶ ।

ମଧ୍ୟଗତ—ତ୍ରି. ବିଂ. (୨ତତ୍) ମଧ୍ୟସ୍ଥିତ, ମଧ୍ୟମ, ମଝି ।

ମଧ୍ୟଗନ୍ଧ—ପୁଂ. ବ. (ବ.ବ୍ରୀ) ଆମ୍ରଗଛ ।

ମଧ୍ୟଗନ୍ଧବର୍ଗ—ବ. ଜାଇଆଦି ଗୋ୧୬ଟି ଦ୍ରବ୍ୟ ।

ମଧ୍ୟଚାରୀ—ପୁଂ.ତ୍ରି. (ମଧ୍ୟ + ଚର୍ + ଇନ୍) ମଧ୍ୟସ୍ଥଳରେ ବିଚରଣକାରୀ ।

ମଧ୍ୟଜିହ୍ୱ—କ୍ଲୀ. ବ. ଜିହ୍ୱାର ମଧ୍ୟସ୍ଥାନ ।

ମଧ୍ୟତଃ—ଅବ୍ୟ. ମଧ୍ୟଦେଇ, ମଧ୍ୟରେ, ମଧ୍ୟେ, ମଧ୍ୟରୁ ।

ମଧ୍ୟଦିନ—କ୍ଲୀ. ବ. ମଧ୍ୟାହ୍ନ, ଦିବସର ମଧ୍ୟଭାଗ ।

ମଧ୍ୟଦେଶ—ବ. କୌଣସି ବସ୍ତୁର ମଧ୍ୟଭାଗ, କଟିଦେଶ,ଅଣ୍ଟା,ଭାରତର ମଧ୍ୟପ୍ରଦେଶ, ହିମାଳୟ ଓ ବିନ୍ଧ୍ୟାଚଳର ମଧ୍ୟବର୍ତ୍ତୀ ଦେଶ ।

ମଧ୍ୟଦେଶୀୟ—ତ୍ରି. ବିଂ. (ମଧ୍ୟଦେଶ+ଯ) ମଧ୍ୟଦେଶଜାତ ।

ମଧ୍ୟଦେହ—ପୁଂ. ବ. (୬ତତ୍) ଦେହର ମଧ୍ୟ, ଉଦର, ପେଟ ।

ମଧ୍ୟନିହିତ—ତ୍ରି. ବିଂ. ମଝିରେ ରଖାହୋଇଥିବା, ମଧ୍ୟସ୍ଥାନରେ ସ୍ଥାପିତ ।

ମଧ୍ୟନ୍ଦିନ—ପୁଂ. ବ. ( ୬ତତ୍ ) ମଧ୍ୟାହ୍ନ, ବନ୍ଧୂକ ବୃକ୍ଷ, ବନ୍ଧୁଲି ଗଛ ।

ମଧ୍ୟନ୍ଦିନରେଖା—ବି. ଦ୍ରାଘିମା ରେଖା, ଯେଉଁ କଳ୍ପିତ ରେଖା ବିଷୁବରେଖାକୁ ଡେଇଁ ଲମ୍ବଭାବରେ ଉଭୟ ମେରୁକୁ ସ୍ପର୍ଶ କରିଅଛି ।

ମଧ୍ୟନ୍ଦିନୀୟ—ବିଂ. ମଧ୍ୟାହ୍ନ ସମ୍ବନ୍ଧୀୟ ।

ମଧ୍ୟପଞ୍ଚମୂଳକ—କ୍ଲୀ.ବ. ପଞ୍ଚମୂଳ ପାଚନ ବିଶେଷ ।

ମଧ୍ୟପଦଲୋପୀସମାସ—ବ.ସମାସ ଗଠନକାରୀ ପଦମାନଙ୍କ ମଧ୍ୟରୁ ମଝିପଦଟି ଲୋପ ହୋଇ ଯେଉଁ ସମାସର ସମସ୍ତ ପଦ ଗଠିତ ହୁଏ ।

ମଧ୍ୟପାଣ୍ଡବ—ବି. ଅର୍ଜୁନ, ମଧ୍ୟମ ।

ମଧ୍ୟପାତ—ପୁଂ.ବି.ମଧ୍ୟାଭିମୁଖରେ ପତନ ଗୋଳା ପରିଚୟ ସମ୍ବନ୍ଧି ଜ୍ୟୋତିଃଶାସ୍ତ୍ରୋକ୍ତ ପାତଭେଦ ।

ମଧ୍ୟପାଳ—ଗ୍ରା. ବି. ରାଜଦୂତ, ଦୁଇ ରାଜାଙ୍କ ମଧ୍ୟସ୍ଥ ଦୂତ ।

ମଧ୍ୟପୁଷ୍ପ—ପୁଂ. ବ. ଜଳବେତସ ।

ମଧ୍ୟପ୍ରଦେଶ—ମଧ୍ୟଭାରତର ଅନ୍ତର୍ଗତ ଗୋଟିଏ ଭୂମିଭାଗ ।

ମଧ୍ୟପ୍ରାଚ୍ୟଦେଶ—ବ. ପାରସ୍ୟ, ଆଫଗାନିସ୍ଥାନ ଆଦି ଦେଶ ।

ମଧ୍ୟଭକ୍ତ—ତ୍ରି. ବିଂ. ଖାଇବା ମଝିରେ ଅନ୍ୟ ଖାଦ୍ୟ ଖାଇବା ।

ମଧ୍ୟଭଲ—ଗ୍ରା. ବିଂ. ମଧ୍ୟମପ୍ରକାରର ।

ମଧ୍ୟଭାଗ—ପୁଂ. ବ. ଦେହର ମଧ୍ୟଭାଗ, କଟିତଟ, ବସ୍ତୁର ମଧ୍ୟଦେଶ ।

ମଧ୍ୟଭାବ—ପୁଂ. ବ. ମଧ୍ୟମାବସ୍ଥା,ଯାହା ଦୂର ନୁହେଁ ବା ନିକଟ ନୁହେଁ ।

ମଧ୍ୟଭାରତ—ଭାରତବର୍ଷର ମଧ୍ୟାଂଶ ।

ମଧ୍ୟମ—ପୁଂ. ବ. (ମଧ୍ୟ+ମ)ସପ୍ତସ୍ୱର ମଧ୍ୟରେ ପଞ୍ଚମ ସ୍ୱର, ମୃଗଭେଦ, ମଧ୍ୟମ ନାମକ ରାଗବିଶେଷ, କାବ୍ୟନାଟକାଦିର ନାୟକବିଶେଷ, ମଧ୍ୟଦେଶ, ପ୍ରାଚୀନ ଜଳଯାନ ବିଶେଷ. (ଗ୍ରା.ବିଂ) ମନ୍ଦ,ମଝିମଝିଆ,ମଧ୍ୟଭଳିଆ, ଦୁଇଟିର ମଧ୍ୟରେ ସ୍ଥିତ, ମଝିଆଁ, ଭଲନୁହେଁ ବା ମନ୍ଦନୁହେଁ, ଚଳନସଇ,ଯାହା ଅତି ବଡ଼ ନୁହେଁ ବା ସାନ ନୁହେଁ ।

ମଧ୍ୟମକାବ୍ୟ—ବ. ଯେଉଁ କାବ୍ୟରେ ବାଚ୍ୟାର୍ଥ ଅପେକ୍ଷା ବ୍ୟଙ୍ଗ୍ୟାର୍ଥର ଚମତ୍କାରତା ଅଧିକ ନୁହେଁ ବା ବ୍ୟଙ୍ଗ୍ୟାର୍ଥ ବାଚ୍ୟାର୍ଥର ଚମତ୍କାରତାକୁ ବଢ଼ାଏ ନାହିଁ ।

ମଧ୍ୟମଖଣ୍ଡ—କ୍ଲୀ.ବ. ସମୀକରଣର ମଧ୍ୟରାଶି, ବୀଜଗଣିତୋକ୍ତ ସଂଜ୍ଞାଭେଦ, ମଧ୍ୟଭାଗ ।

ମଧ୍ୟମଗ୍ରାମ—ବି. ସଙ୍ଗୀତରୁ ସ୍ୱର ଗ୍ରାମର ମଧ୍ୟମ ସ୍ୱର, ମ ।

ମଧ୍ୟମଜାତ—ପୁଂ.ବିଂ. ମଝିଆଁ ।

ମଧ୍ୟମଣି—ବି. (କ.ଧା) ହାରଆଦି ଅଳଙ୍କାରର ମଧ୍ୟସ୍ଥଳରେ ସ୍ଥାପିତ ହୀରକାଦି, ଚକି, ପଦକ ।

ମଧ୍ୟମପାଣ୍ଡବ—ପୁଂ.ବି. ଅର୍ଜୁନ ।

ମଧ୍ୟମଯାନ— କ୍ଲୀ. ବି. ବୌଦ୍ଧମତସିଦ୍ଧ ନିର୍ବାଣ ମଧ୍ୟବର୍ତ୍ତୀ ଉପାୟଭେଦ ।

ମଧ୍ୟମରାତ୍ର—ପୁଂ. ବି. ମଧ୍ୟରାତ୍ର, ନିଶୀଥ, ଅଧରାତି ।

ମଧ୍ୟମଲୋକ—ପୁଂ.ବି. ପୃଥିବୀ, ଭୂମଣ୍ଡଳ, ମର୍ତ୍ତ୍ୟଲୋକ ।

ମଧ୍ୟମଲୋକପାଳ—ପୁଂ. ବି. ଭୂପାଳ, ମହୀପତି, ରାଜା ।

ମଧ୍ୟମବୟସ—କ୍ଲୀ. ବି. ବ୧୬ ବର୍ଷଠାରୁ ବ୭୦ଷ ପର୍ଯ୍ୟନ୍ତ ଜୀବିତ କାଳ,ପ୍ରୌଢ଼ବୟସ,ଅଧାବୟସ,ମତାନ୍ତରେ ବ୪୦ର୍ଷ ବୟସ ।

ମଧ୍ୟମବୟସ୍କ—ତ୍ରି.ବିଂ.ମଧ୍ୟମ ବୟସଯୁକ୍ତ, ଅଧାବୟସିଆ ।

ମଧ୍ୟମବାଦ୍ୟ—ବିଂ.ମନ୍ଦଗମନଦ୍ୱାରା ବାଦ୍ୟକ

ମଧ୍ୟମସଂଗ୍ରହ— ପୁଂ. ବି. ସ୍ତ୍ରୀସଂଗ୍ରହରୂପ ବିବାଦବିଶେଷ ।

ମଧ୍ୟମସାହସ—କ୍ଲୀ.ବି. ବଳଦର୍ପିତ ବ୍ୟକ୍ତିର ବସ୍ତ୍ର, ପଶୁ ଓ ଅନ୍ନ ପାନାଦିର ଭଙ୍ଗ, ଆକ୍ଷେପ ଓ ଉପମର୍ଦ୍ଦାଦିରୂପ ସହସା କ୍ରିୟମାଣ କର୍ମ, କର୍ମ, ଦଣ୍ଡବିଶେଷ, ପଞ୍ଚଶତ ପଳ ପରିମାଣ ଅର୍ଥଦଣ୍ଡ ।

ମଧ୍ୟମସ୍ଥ—ତ୍ରି.ବିଂ. ( ମଧ୍ୟମ + ସ୍ଥା+ଅ ) ମଧ୍ୟବର୍ତ୍ତୀ, ମଧ୍ୟରେ ସ୍ଥିତ ।

ମଧ୍ୟମା—ସ୍ତ୍ରୀ.ବି.(ମଧ୍ୟ + ମା) ମଝିଆଙ୍ଗୁଳି, ଜ୍ୟୋତିଷର ବୃତ୍ତିବିଶେଷ, ଦୃଷ୍ଟରଜସ୍କା ନାରୀ, କର୍ଣ୍ଣିକା, ହୃଦୟୋତ୍ଥିତ ବୁଦ୍ଧିଯୁକ୍ତ ନାଦରୂପ ବର୍ଣ୍ଣ, ସ୍ୱୀୟାଦିର ଅନ୍ତର୍ଗତ ନାୟିକାଭେଦ,ଗିରିଜାମ୍ବୁ ଗଛ, କାକୋଳୀ ମଝିରେ ଫୁଟିଥିବା କଢ଼ି ।

ମଧ୍ୟମାଗମ—ବି. ବୌଦ୍ଧମାନଙ୍କର ଗୋଟିଏ ଆଗମ ଶାସ୍ତ୍ର ।

ମଧ୍ୟମାଙ୍ଗୁଳି—ସ୍ତ୍ରୀ.ବି. ତର୍ଜନୀ ଓ ଅନାମିକା ମଧ୍ୟସ୍ଥିତ ଅଙ୍ଗୁଳି ।

ମଧ୍ୟମାଦି—ପୁଂ.ବି.ସଙ୍ଗୀତର ମ ଧାଭେଦ

ମଧ୍ୟମାନ—ବି. ସଙ୍ଗୀତର ତାଳବିଶେଷ ।

ମଧ୍ୟମାହରଣ—କ୍ଲୀ. ବି. ବୀଜଗଣିତୋକ୍ତ ଅବ୍ୟକ୍ତ ମାନଜ୍ଞାପକ ଗଣନାଭେଦ ।

ମଧ୍ୟମିକ—ପୁ°.ବି°.(ମଧ୍ୟମ+ଇକ)ମଧ୍ୟମ, (ସ୍ତ୍ରୀ) ମଧ୍ୟମିକା ।

ମଧ୍ୟମିକା—ସ୍ତ୍ରୀ.ବି.( ମଧ୍ୟମା+କା )ବୃଷ୍ଟ-ରଜସ୍କା ନାରୀ,ନବଯୁବତୀ ।

ମଧ୍ୟମେଶ୍ୱର—ପୁ°.ବି. (ମଧ୍ୟମ+ଈଶ୍ୱର) କାଶୀସ୍ଥିତ ଶିବଲିଙ୍ଗବିଶେଷ, କୁମା ଓ ନର ଅନ୍ତର୍ଗତ ହିମାଳୟସ୍ଥ ଗୋଟିଏ ପୁଣ୍ୟସ୍ଥାନ ।

ମଧ୍ୟସମକ—ବି. ଶବ୍ଦାଳଙ୍କାରବିଶେଷ ।

ମଧ୍ୟଯବ—ପୁ°. ବି. ଛଅଗୋଟି ଧଳା ସୋରିଷ ପରିମାଣ। [ ମଧ୍ୟବର୍ତ୍ତୀ ।

ମଧ୍ୟଯୋଗୀ—ପୁ .ବି°. (ମଧ୍ୟଯୁକ୍+ଇନ୍)

ମଧ୍ୟଗନ୍ଧ—ପୁ°.ବି°. କଣୀଅ, ଅଧିଗନ୍ଧ ।

ମଧ୍ୟରୁ—ଗ୍ରା.ଅବ୍ୟ. ଭିତରରୁ, (ବହୁତ) ଭିତରୁ ।

ମଧ୍ୟରେ—ଗ୍ରା.ଅବ୍ୟ. ଭିତରେ,ଦୁଇବସ୍ତୁ ବା ବ୍ୟକ୍ତି ମଧ୍ୟରେ,ଅନେକଙ୍କ ଭିତରେ, ଅମୁକ ସମୟରେ, ଅଧିକନ୍ତୁ ।

ମଧ୍ୟରେଖା—ସ୍ତ୍ରୀ.ବି. ପୃଥିବୀର ମଧ୍ୟଭାଗସ୍ଥିତ କଳ୍ପିତ ରେଖା ।

ମଧ୍ୟରେ ମଧ୍ୟରେ—ଗ୍ରା. ଅବ୍ୟ. ମଝିରେ ମଝିରେ, କେତେସମୟ ଗୁଡ଼ାଏ ଗୁଡ଼ାଏ, ସମୟ ସମୟ ।

ମଧ୍ୟଲଗ୍ନ—ବି.ଜ୍ୟୋତିଷୋକ୍ତ ଦଶଲଗ୍ନ-ସାଧନ ପ୍ରଣାଳୀବିଶେଷ ।

ମଧ୍ୟଲୋକ—ବି. ପୃଥିବୀ ।

ମଧ୍ୟଲୋକେଶ—ପୁ°.ବି. (ମଧ୍ୟଲୋକ+ଈଶ) ରାଜା, ଭୂପତି ।

ମଧ୍ୟବୟଃ—ତ୍ରି.ବି°. ଜୀବନର ମଧ୍ୟଭାଗ, ଅଧାବୟସ ।

ମଧ୍ୟବର୍ତ୍ତିତା—ବି.(ମଧ୍ୟବର୍ତ୍ତିନ୍+ଭା.ତା) ମଧ୍ୟରେ ଅବସ୍ଥିତ ହେବା ଅବସ୍ଥା, ମଧ୍ୟସ୍ଥତା, ଭଲଲୋକ ।

ମଧ୍ୟବର୍ତ୍ତୀ—ପୁ°.ବି°. (ମଧ୍ୟ+ବୃତ୍+କ.ଇନ୍) ମଧ୍ୟରେ ଅବସ୍ଥିତ,ମଧ୍ୟସ୍ଥ, ଅଭ୍ୟନ୍ତରସ୍ଥ, (ସ୍ତ୍ରୀ) ବର୍ତ୍ତିନୀ,(ବି)ସାକ୍ଷୀ

ମଧ୍ୟବଳ—ପୁ°.ବି°.ଯେ ଅତି ଧନୀ ନୁହେ ବା ଅତି ଗରିବ ନୁହେ,(ସ୍ତ୍ରୀ)ମଧ୍ୟବଳା

ମଧ୍ୟବିଦାରଣ—କ୍ଲୀ.ବି. ଚନ୍ଦ୍ର ବା ସୂର୍ଯ୍ୟ ଗ୍ରହଣ ପର ମୋକ୍ଷବିଶେଷ ।

ମଧ୍ୟବିଧ—ବି°.(ବ.ବ୍ରୀ) ମଧ୍ୟମ ପ୍ରକାର, (ସ୍ତ୍ରୀ) ମଧ୍ୟବିଧା ।

ମଧ୍ୟବୃତ୍ତ—କ୍ଲୀ.ବି. ନାଭି ।

ମଧ୍ୟଶରୀର—କ୍ଲୀ.ବି. ମଧ୍ୟଦେହ ।

ମଧ୍ୟଶାୟୀ—ପୁ°. ବି°. (ମଧ୍ୟ+ଶୀ+ଇନ୍) ମଧ୍ୟଭାଗରେ ଶୟନକାରୀ,ମଧ୍ୟବର୍ତ୍ତୀ ।

ମଧ୍ୟସ୍ଥ—ତ୍ରି.ବି°. (ମଧ୍ୟ+ସ୍ଥା+କ.ଅ) ମଧ୍ୟସ୍ଥାୟୀ, ନିରପେକ୍ଷ, ମଧ୍ୟବର୍ତ୍ତୀ,ଉଭୟ ପକ୍ଷୀୟଜନ,ସ୍ୱାର୍ଥ ରକ୍ଷାପୂର୍ବକ ପରାର୍ଥ ସାଧକ, ଉଦାସୀନ, (ସ୍ତ୍ରୀ) ମଧ୍ୟସ୍ଥା, (ବି) ଦୁଇଜଣଙ୍କ ମଧ୍ୟରେ ବିବାଦ ମୀମାଂସାକାରୀ ବ୍ୟକ୍ତି ।

ମଧ୍ୟସ୍ଥତା— ସ୍ତ୍ରୀ. ବି. ମଧ୍ୟସ୍ଥପଣିଆ, ମଧ୍ୟବର୍ତ୍ତିତା,ଭଲଲୋକ,ଉଦାସୀନତା, ପଞ୍ଚାଏତି ।

ମଧ୍ୟସ୍ଥଳ—କ୍ଲୀ.ବି. (କ.ଧା) କଟିଦେଶ, ଅଣ୍ଟା, ମଧ୍ୟଭାଗ, ଅନ୍ତଃସ୍ଥଳ ।

ମଧ୍ୟସ୍ଥାନ—କ୍ଲୀ.ବି. ମଧ୍ୟସ୍ଥଳ ଦେଖ ।

ମଧ୍ୟସ୍ଥିତ—ବି°. (୭ତତ୍ପୁ) ମଧ୍ୟସ୍ଥ, ମଧ୍ୟବର୍ତ୍ତୀ, ଅଭ୍ୟନ୍ତରୀଣ, ମଝିରେ ଥିବା ।

ମଧ୍ୟା—ସ୍ତ୍ରୀ.ବି. (ମଧ୍ୟ+ଆ)ମଝିଆଙ୍ଗୁଳି, ନାୟିକାବିଶେଷ, ଗ୍ରହର ଗତିବିଶେଷ, ଚାରିଅକ୍ଷର ବୃତ୍ତିବିଶେଷ ।

ମଧ୍ୟାଙ୍ଗୁଳ—ସ୍ତ୍ରୀ.ବି. ତର୍ଜନୀ ଓ ଅନାମିକା ଅଙ୍ଗୁଳିର ମଧ୍ୟ ଅଙ୍ଗୁଳି ।

ମଧ୍ୟାନୟନ—କ୍ଲୀ. ବି. ଗ୍ରହସ୍ଫୁଟ ଗଣନାର ପ୍ରଣାଳୀବିଶେଷ ।

ମଧ୍ୟାର୍ଜୁନ—କାବେରୀ ଓ କୋଲରୁଣ ନଦୀର ମଧ୍ୟସ୍ଥିତ ପୁଣ୍ୟକ୍ଷେତ୍ର, ବଟାରଣ୍ୟର ଦୁଇଯୋଜନ ପଶ୍ଚିମରେ ଅବସ୍ଥିତ କ୍ଷେତ୍ରଭେଦ ।

ମଧ୍ୟାହ୍ନ—ପୁ°.ବି. (ମଧ୍ୟ+ଅହ୍ନ)କୁତପକାଳ, ଦିନାର୍ଦ୍ଧ, ଦ୍ୱିପ୍ରହର ବେଳ, ତ୍ରିଧା ବିଭକ୍ତ ଦିନର ମଧ୍ୟଭାଗ, ପଞ୍ଚଧା ବିଭକ୍ତ ଦିନର ତୃତୀୟଭାଗ ।

ମଧ୍ୟାହ୍ନକାଳ—ବି. (କ.ଧା) ଦିବା ଦ୍ୱିପ୍ରହର, ମଧ୍ୟାହ୍ନ ଦେଖ ।

ମଧ୍ୟାହ୍ନକାଳୀନ—ବି°. ମଧ୍ୟାହ୍ନ ସମ୍ବନ୍ଧୀୟ,ମଧ୍ୟାହ୍ନରେ ଘଟିବା, ମଧ୍ୟାହ୍ନରେ କର୍ତ୍ତବ୍ୟ ।

ମଧ୍ୟାହ୍ନତପନ—ବି. (କ.ଧା) ଦ୍ୱିପ୍ରହର ସମୟର ସୂର୍ଯ୍ୟ ।

ମଧ୍ୟାହ୍ନଭୋଜନ—ବି. (କ.ଧା) ଦ୍ୱିପ୍ରହର ସମୟରେ କରାଯିବା ଭୋଜନ ।

ମଧ୍ୟାହ୍ନୋତ୍ତର—ବି°. (୬ତତ୍ପୁ)ମଧ୍ୟାହ୍ନର ପରବର୍ତ୍ତୀ ।

ମଧ୍ୟେ—ଗ୍ରା.ଅବ୍ୟ. ମଧ୍ୟରେ ଦେଖ ।

ମଧ୍ୟେଗଙ୍ଗ—ଅବ୍ୟ. ଗଙ୍ଗା ମଧ୍ୟରେ

ମଧ୍ୟେଗୁରୁ—ବି°. ମଧ୍ୟଦେଶରେ ଗୁରୁ ଶବ୍ଦଯୁକ୍ତ ।

ମଧ୍ୟେଜ୍ୟୋତିଃ—ସ୍ତ୍ରୀ.ବି.ତ୍ରିଷ୍ଟୁପ ଛନ୍ଦର ନାମାନ୍ତର । [ ଭାଗରେ ।

ମଧ୍ୟେନଗର—ଅବ୍ୟ. ନଗରର ମଧ୍ୟ-

ମଧ୍ୟେନଦୀ—ଅ. ନଦୀର ମଧ୍ୟଭାଗରେ ।

ମଧ୍ୟେପୃଷ୍ଠ—ଅ. ପିଠିର ମଝିରେ ।

ମଧ୍ୟେମଧ୍ୟେ—ଗ୍ରା.ଅ.ମଧ୍ୟରେ ମଧ୍ୟରେଦେଖ

ମଧ୍ୟେମାର୍ଗ—ଅ.ପଥ ମଧ୍ୟରେ, ପଥ ମଧ୍ୟଭାଗରେ ।

ମଧ୍ୟେବାରି—ଅ. ଜଳର ମଧ୍ୟ ଭାଗରେ ।

ମଧ୍ୟେସଭ—ଅ. ସଭାମଧ୍ୟରେ ।

ମଧ୍ୱ—ପୁ°.ବି. ଏହାର ପ୍ରକୃତ ନାମ ମଧ୍ୱ, ମଧ୍ୱ ସମ୍ପ୍ରଦାୟର ପ୍ରବର୍ତ୍ତକ ।

ମଧ୍ୱକ—ପୁ°. ବି. (ମଧୁ+ଅକ)ମହୁମାଛି ।

ମଧ୍ୱକ୍ଷ—ବି°. (ବ.ବ୍ରୀ) ମଧୁପରି ଯାହାର ଆଖି ପିଙ୍ଗଳବର୍ଣ୍ଣ ।

ମଧ୍ୱରିଷ୍ଟ—କ୍ଲୀ.ବି.(କ.ଧା)ମଧୁ ମିଶ୍ରଣରେ ପ୍ରସ୍ତୁତ ଅରିଷ୍ଟବିଶେଷ ।

ମଧ୍ୱଲ—ପୁ°.ବି(ମଧୁ+ଅଲ୍+ଅ)ପୁନଃପୁନଃ ସୁରାପାନ ପରିପାଟୀ, ଅତିପାନ ।

ମଧ୍ୱଷ୍ଠୀଲା—ସ୍ତ୍ରୀ. ବି. ମଧୁଗୁଚ୍ଛ, ମହୁର ଟୋପା ।

ମଧ୍ୱାଚାର୍ଯ୍ୟ—ପୁ°.ବି.ମଧ୍ୱାଚାର୍ଯ୍ୟଙ୍କ ମତାବଲମ୍ବୀ ସମ୍ପ୍ରଦାୟବିଶେଷ ।

ମଧ୍ୱାଚାର୍ଯ୍ୟ—ମାଧ୍ୱ ବା ମାଧ୍ୱାଚାର୍ଯ୍ୟ ସମ୍ପ୍ରଦାୟ ପ୍ରବର୍ତ୍ତକ ଜଣେ ମହାତ୍ମା ।

ମଧ୍ୱାଧାର—ପୁ°.ବି. (୬ତତ୍ପୁ) ମଧୁଚକ୍ର,

ମହୁଫେଣା ।
ମଧ୍ୱାମ୍ର—ପୁଂ. ବି. ବାଦ୍ଦରସାଲ ।
ମଧ୍ୱାଳୁ—କ୍ଲୀ.ବି.ମହୁଆ ଆଳୁ, ଶକର ଆଳୁ
ମଧ୍ୱାଳୁକ—କ୍ଲୀ.ବି ମହୁଆ ଆଳୁ.ଶକରଆଳୁ
ମଧ୍ୱାବାସ—ପୁଂ.ବି. (୬ତତ୍ର) ଆମ୍ରବୃକ୍ଷ, ଆମ୍ବଗଛ । [ ମଧ୍ୱଶିମ୍ବା ।
ମଧ୍ୱାଶୀ—ପୁଂ. ବିଂ. ମଧୁପାନକାରୀ,(ସ୍ତ୍ରୀ)
ମଧ୍ୱାସବ—ପୁଂ.ବି (ମଧୁ+ଆସବ)ମହୁଲି ମଦ, ମଧୁଜାତ ମଦ୍ୟ ।
ମଧ୍ୱାସବନକ—ପୁଂ.ବି.ଶୌଣ୍ଡିକ, ଶୁଣ୍ଡି, ଯେ ମଦ ତିଆରି କରି ବିକେ ।
ମଧ୍ୱାସାବ—ବି. ମଧୁରୁ ପ୍ରସ୍ତୁତ ସୁରା, ମହୁଲ ମଦ ।
ମଧ୍ୱାହୃତ—ସ୍ତ୍ରୀ. ବି. ମଧୁଦ୍ୱାରା ଆହୃତ ।
ମଧ୍ୱିକା—ସ୍ତ୍ରୀ. ବି. ମଦିରା, ମଦ୍ୟ ।
ମନ୍—(ଧାତୁ)ଜ୍ଞାନ କରିବା,ଅବବୋଧନ କରିବା, ବିଚାର କରିବା ।
ମନ୍‌ଜଲ୍—ଯା. ବି. ସୁଖପ୍ରାସାଦ ।
ମନ୍ତନ୍—ପ୍ରା. (ସମ୍ମା) ବି. ଗାଢ଼ ଅଭିନିବେଶ, ମନ ଓ ଦେହ ।
ମନ୍‌ସବଦାର୍—ଯା.ବି. ଉଚ୍ଚ ରାଜପଦସ୍ଥ ବ୍ୟକ୍ତି, ମୋଗଲ ବାଦସାହଙ୍କ ଉଚ୍ଚ ରାଜକର୍ମଚାରୀଙ୍କୁ ପ୍ରଦତ୍ତ ଉପାଧିବିଶେଷ
ମନ୍‌ସୁବା—ଯା.ବି. ମସୁଦା, ଆୟୋଜନ, କଳ୍ପିତ ବ୍ୟବସ୍ଥା, ଉଦ୍ଦେଶ୍ୟ, ଯୁକ୍ତି ।
ମନ୍‌ସୁବାଦାର—ଯା. ବି. ମନ୍‌ସବଦାର ଦେଖ ।
ମନ—ଗ୍ରା.ବି.ଚିତ୍ତ, ଅନ୍ତଃକରଣ,ଅନ୍ତରିନ୍ଦ୍ରିୟ, ଚିତ୍ତବୃତ୍ତି, ମନୋଗତ ଭାବ, ଅଭିଳାଷ, ମତି, ମାନସିକ ପ୍ରକୃତି ।
ମନଆପ—ବି. ବିଂ. (ମନ୍+ଅପ+ଅ) ମନୋଜ୍ଞ, ମନୋହର ।
ମନଇଚ୍ଛା—ଗ୍ରା. ବି. ସ୍ୱେଚ୍ଛା, (କ୍ରି.ବିଂ) ମନଇଚ୍ଛା ମୁତାବକ । [ ନୁସାରେ ।
ମନଇଚ୍ଛାମୁତାବକ୍—ଗ୍ରା.କ୍ରି.ବିଂ. ସ୍ୱେଚ୍ଛା-
ମନଉଡ଼ା(ଡ଼େ)ଇବା—ଗ୍ରା. କ୍ରି. କାହାର ମନକୁ କୌଣସି ବିଷୟରେ ଅଭିଷ୍ଟ ଅସ୍ଥିରତାଯୁକ୍ତ କରିବା, ମନକୁ ସ୍ଥିର ନ ରଖିବା ।
ମନଉଡ଼ିବା—ଗ୍ରା. ବି. ମନର ଚାଞ୍ଚଲ୍ୟ, ମନୋଯୋଗର ଅଭାବ ।
ମନଃ—ପୁଂ. ବି. (ମନ୍+ଣ.ଅସ୍) ଜଟାମାଂସୀ, ମନ ଦେଖ ।
ମନଃକଳ୍ପିତ—ବିଂ(୬ତତ୍ର)କଳ୍ପନାପ୍ରସୂତ
ମନଃକଷ୍ଟ—ବି. (୬ତତ୍ର) ମନୋଦୁଃଖ, ମାନସିକ ବେଦନା, ଦୁଶ୍ଚିନ୍ତା ।
ମନଃକ୍ଷେପ—ପୁଂ. ବି. ମନର ଉଦ୍‌ବେଗ, ମନର ଉତ୍କଣ୍ଠା ।
ମନଃକ୍ଷୁଣ୍ଣ—ବିଂ.(୬ତତ୍ର)ଅନ୍ତରେ ଦୁଃଖିତ, ହତାଶ, ହତାଶ୍ୱାସ ।
ମନଃପତ—ପୁଂ. ବି. (୬ତତ୍ର) ବସ୍ତ୍ର ।
ମନଃପର୍ଯ୍ୟାପ୍ତି—ବି.(୬ତତ୍ର) ସଙ୍କଳ୍ପ ଓ ବିକଳ୍ପ ଅନୁଭୂତ କରିବା ମାନସିକଶକ୍ତି ।
ମନଃପର୍ଯ୍ୟାୟ—ପୁଂ. ବି. ଜୈନମତରେ ନିର୍ବାଣପ୍ରାପ୍ତ ହେବାର ଶେଷାବସ୍ଥାର ପୂର୍ବାବସ୍ଥା ।
ମନଃପୀଡ଼ା—ବି(୬ତତ୍ର)ମାନସିକ କ୍ଲେଶ, ମନର ବ୍ୟଥା ।
ମନଃପୂତ—ବିଂ. (୬ତତ୍ର) ମନୋମତ, ଚିତ୍ତତୃପ୍ତିକର, ବିବେକବିହିତ, ନିର୍ମଳାନ୍ତଃକରଣଯୁକ୍ତ (ସ୍ତ୍ରୀ.ବି)ଚିତ୍ତର ଶୁଦ୍ଧି. ପ୍ରସନ୍ନତା । [ ସନ୍ତୋଷ ।
ମନଃପୂତ—ବି.(୬ତତ୍ର)ମନର ପବିତ୍ରତା
ମନଃପ୍ରସାଦ—ପୁଂ. ବି. (୬ତତ୍ର) ଚିତ୍ତର ପ୍ରସନ୍ନତା, ମନର ଶାନ୍ତି ।
ମନଃପ୍ରାଣ—ପୁଂ.ବି.(ଦ୍ୱନ୍ଦ୍ୱ)ମନ ଓ ପ୍ରାଣ, ସମୁଦାୟ ଅନ୍ତଃକରଣ ।
ମନଃପ୍ରୀତି—ସ୍ତ୍ରୀ.ବି(୬ତତ୍ର)ମନର ଆନନ୍ଦ
ମନଃଶାନ୍ତି—ବି. (୬ତତ୍ର) ମନର ଶାନ୍ତ ଅବସ୍ଥା ।
ମନଃଶାସ୍ତ୍ର—ବି. (କ.ଧା) ମନୋବିଜ୍ଞାନ ।
ମନଃଶିଳ(ଳା)—ପୁଂ. ବି. ମନଃଶିଳା, ଫନକ ଚକ୍ରବର୍ଣ୍ଣ ଧାତୁବିଶେଷ, ଶଙ୍ଖ ରସ ଓ ଗନ୍ଧକ ଯୋଗରେ ଉତ୍ପନ୍ନ ଉପରସବିଶେଷ ।
ମନଃସଂଯୋଗ—ବି. (୬ତତ୍ର) କୌଣସି ବିଷୟ ପ୍ରତି ମନନିବେଶ,ମନୋଯୋଗ
ମନଃସଂଯୋଗୀ—ପୁଂ.ବିଂ.ଯେ କୌଣସି ବିଷୟ ପ୍ରତି ଦୃଢ଼ ଭାବରେ ମନୋଯୋଗ ଦିଏ ।
ମନଃସ୍ଥୈର୍ଯ୍ୟ—କ୍ଲୀ. ବି. ମନର ସ୍ଥିରତା ।
ମନକଥା—ଗ୍ରା. ବି. ହୃଦୟଗତ ଭାବ ।
ମନକରିବା—ଗ୍ରା.କ୍ରି.ବିଂ. ବିଚାରକରିବା, କାମନା କରିବା, ମନସ୍ଥ କରିବା ।
ମନକଳିବା—ଗ୍ରା. କ୍ରି. ଅନ୍ୟର ମନର ଭାବକୁ ବୁଝିବା ।
ମନକଷିବା—ଗ୍ରା. କ୍ରି. ମନଗତ ଭାବ ଜାଣିବା ପାଇଁ ପରୀକ୍ଷା କରିବା ।
ମନକାମନା—ଗ୍ରା.ବି.ମନୋବାଞ୍ଛା, ମନସ୍କାମନା ।
ମନକୁ—ଗ୍ରା.ଅ.ସ୍ୱେଚ୍ଛାକ୍ରମେ,ଆପେ ଆପେ
ମନକୁଆଣିବା—ଗ୍ରା. କ୍ରି. କୌଣସି ବିଷୟକୁ ମନ ମଧ୍ୟରେ ଭାବିବା ।
ମନକୁଆସିବା—ଗ୍ରା.କ୍ରି.ମନୋମତହେବା, ଉଚିତ ବା ଯୁକ୍ତିଯୁକ୍ତ ବୋଲି ପ୍ରତୀତ ହେବା ।
ମନକୁଜାଣି—ଗ୍ରା.ଅ.ମନୋମତ, ମନୋବାଞ୍ଛା ଅନୁସାରେ ।
ମନକୁପାଇବା—ଗ୍ରା.କ୍ରି. ମନର ଅନୁମତ ହେବା, ବିଶ୍ୱାସ କରିପିବା, ବିବେଚିତ ହେବା ।
ମନକୁବାଧିବା—ଗ୍ରା.କ୍ରି. ମନରେ ବ୍ୟଥା ଜାତ କରିବା ।
ମନଖେଳିବା—ଗ୍ରା. କ୍ରି. ମନ ଘୂରିଆଡ଼େ ଗତି କରିବା, ଚିନ୍ତା କରିବା ।
ମନଃଖୋଲ୍—ଗ୍ରା.ବିଂ ସରଳାନ୍ତଃକରଣ
ମନଖୋଲିବା—ଗ୍ରା.କ୍ରି. ହୃଦ୍‌ଗତ ଭାବକୁ ଅନ୍ୟ ଆଗରେ ସରଳ ଭାବେ ପ୍ରକାଶ କରିବା ।
ମନଗଢ଼ା—ଗ୍ରା,ବିଂ.କାଳ୍ପନିକ,କପୋଳକଳ୍ପିତ, ଅବାସ୍ତବ ।
ମନଗଳିବା—ଗ୍ରା.ବି.ମନୋନିବେଶହେବା
ମନଗଲା(ଲେ)ଇବା—ଗ୍ରା. କ୍ରି. ଖୁବ୍ ଏକାଗ୍ର ଭାବରେ ମନୋନିବେଶକରିବା
ମନଘରଧରିବା—ଗ୍ରା. ବି. ଅବସ୍ଥାର ଗାମ୍ଭୀର୍ଯ୍ୟ ଅନୁଭୂତ ହେବା, ବିଶେଷ ଚିନ୍ତିତ ହେବା ।

**ମନଘେନବା**—ଗ୍ରା. କ୍ରି. ଖୁସି କରାଇବା, ପ୍ରସନ୍ନ କରାଇବା ।

**ମନଙ୍କୋଳହେବା**--ଗ୍ରା.ବି.ମନରଅସ୍ଥିରତା

**ମନଗେହ୍ଲା**—ଗ୍ରା.ବି.ଚିତ୍ତଚୋରା, ପ୍ରିୟତମ ବ୍ୟକ୍ତି, ପ୍ରଣୟୀ ବ୍ୟକ୍ତି ।

**ମନଛଡ଼େଇବା**—ଗ୍ରା. କ୍ରି. ଗୁପ୍ତ ମନ୍ତ୍ରଣା ଦ୍ୱାରା ଜଣକଠାରେ ଅନ୍ୟ ଜଣକର ବିରାଗ ଜନ୍ମାଇବା ।

**ମନଛୁଡ଼ିଯିବା**—ଗ୍ରା. ବି. କୌଣସି ବିଷୟରୁ ମନ ବିରତ ହେବା, କୌଣସି ବିଷୟରୁ କ୍ଷାନ୍ତହେବା ।

**ମନଚୁଲ**—ଗ୍ରା. ବି. ମନଃଶିଳା ।

**ମନଜଗିବା**—ଗ୍ରା.କ୍ରି.ଅନ୍ୟର ମନୋଗତ ଭାବକୁ ଲକ୍ଷ୍ୟକରି କାର୍ଯ୍ୟ କରିବା, ସନ୍ତୁଷ୍ଟ କରିବା ।

**ମନଜାଣିବା**—ଗ୍ରା.କ୍ରି.ପରର ମନୋଗତ ଭାବ ବୁଝି ପାରିବା, (ବି) ସାକ୍ଷାତ୍ ଅନୁଭୂତ ।

**ମନଜ୍ଞାନ**—ଗ୍ରା.ବି. ମନ ଓ କଳ୍ପନା, ମନ ଓ ବୁଦ୍ଧି, ମନୋଯୋଗ ।

**ମନଜ୍ଞାନକରିବା**—ଗ୍ରା. କ୍ରି. କୌଣସି ବିଷୟ ପ୍ରତି ମନୋଯୋଗ ଦେବା ।

**ମନଟଳିବା**—ଗ୍ରା.ବି.ପୂର୍ବ ସଂକଳ୍ପରୁ ମନ ବିଚ୍ୟୁତ ହେବା, ମୁଗ୍ଧ ହେବା ।

**ମନଟାଣିବା**—ଗ୍ରା. କ୍ରି. କୌଣସି ବିଷୟ ପ୍ରତି ମନ ଆକୃଷ୍ଟ ହେବା ।

**ମନଡାକିବା**—ଗ୍ରା.ବି. କୌଣସି ବସ୍ତୁ ବା କାର୍ଯ୍ୟପାଇଁ ମନରେ ଆକାଂକ୍ଷା ଜାତ ହେବା ।

**ମନଥଣ୍ଡା(ଣ୍ଡୁ)**—ଗ୍ରା.ବି. ଚିତ୍ତର ସ୍ଥିରତା, ମନର ଶୃଙ୍ଖଲ୍ୟରହିତ୍ୟ, ସନ୍ତୋଷ ।

**ମନଥଣ୍ଡାହେବା**—ଗ୍ରା.ବି. ମନରେ ଶାନ୍ତ ବା ସନ୍ତୋଷ ଜାତ ହେବା ।

**ମନଦୁଃଖ**—ଗ୍ରା. ବି. ଚିତ୍ତର ଅପ୍ରସନ୍ନତା, ବିମର୍ଷତା, ମନୋବେଦନା, ଅଭିମାନ ।

**ମନଦୁଃଖକରିବା**—ଗ୍ରା. କ୍ରି. ଦୁଃଖିତ ହେବା, ଅଭିମାନ କରିବା ।

**ମନଦୃଢ଼କରିବା**—ଗ୍ରା.କ୍ରି. ଦୃଢ଼ ସଂକଳ୍ପ କରିବା, ଅଟଳ ବିଶ୍ୱାସ କରିବା ।

**ମନଦେବା**—ଗ୍ରା.କ୍ରି.ଖୁବ୍ ଏକାଗ୍ରଭାବରେ ମନ ନିବେଶ କରିବା, ଆଦର କରିବା

**ମନଧରା**—ଗ୍ରା. ବି. ଅନ୍ୟର ମନ ଅନୁସାରେ କାର୍ଯ୍ୟ କରି ତା'ର ସନ୍ତୋଷ ଉତ୍ପାଦନ ।

**ମନଧରିବା**—ଗ୍ରା.କ୍ରି. କୌଣସି ବ୍ୟକ୍ତିର ଇଚ୍ଛାନୁରୂପ କାର୍ଯ୍ୟକରିବା, ମନଜଗିବା ଦେଖ ।

**ମନନ**—ବି. ( ମନ୍+ଭା.ଅନ ) ବୁଦ୍ଧି, ପ୍ରଗାଢ଼ ଚିନ୍ତନ, କୌଣସି ବିଷୟରେ ଅନବରତ ଅନୁଚିନ୍ତନ, ଅନୁମାନ, ଧାରଣା, ଚିନ୍ତା, ବୁଝିବା, ସଂକଳ୍ପ, ଅଭିଳାଷ ।

**ମନନେବା**—ଗ୍ରା. କ୍ରି. କୌଣସି ବ୍ୟକ୍ତିର ମନକୁ ସନ୍ତୁଷ୍ଟ କରିବା, ମୁଗ୍ଧକରିବା ।

**ମନପବନ**—ଗ୍ରା. ବି. ମନରୂପ ପବନ, ପବନ ପରି ଚଞ୍ଚଳ ମନ ।

**ମନପବନା**—ଗ୍ରା. ବିଂ. ଯାହା ପବନପରି ଦ୍ରୁତ କରି ଚାଳକକୁ ଇପ୍ସିତ ସ୍ଥାନରେ ପହଞ୍ଚାଏ ।

**ମନପବନଘୋଡ଼ା**—ଗ୍ରା. ବି. କାହାଣୀ ବର୍ଣ୍ଣିତ ଘୋଡ଼ା,ଯେଉଁ ଘୋଡ଼ାର ଗତି ମନପବନ ପରି ।

**ମନପାଇବା**—ଗ୍ରା.କ୍ରି. କୌଣସି ବ୍ୟକ୍ତିର ହୃଦ୍‌ଗତ ଭାବକୁ ହୃଦୟଙ୍ଗମ କରିବା, ଚିତ୍ତରଞ୍ଜନ କରିବା, (ଗ୍ରା.ବି) ପସନ୍ଦ ହେବା, ମନୋମତ ହେବା ।

**ମନପୋଡ଼ିବା**—ଗ୍ରା. ବି. ମନରେ ଗଭୀର ଦୁଃଖ ବା ବିରକ୍ତି ଜାତହେବା ।

**ମନଫା(ଫି)ଟିବା**—ଗ୍ରା.ବି. ଦୁଇଜଣଙ୍କର ମନୋମାଳିନ୍ୟ ଘଟିବା,କୌଣସି ବିଷୟ ପ୍ରତି ବିରାଗ ଜନ୍ମିବା ।

**ମନଫୁଲଣା**—ଗ୍ରା. ବିଂ. ଚିନ୍ତାଶୂନ୍ୟ,ହୃଷ୍ଟଚିତ୍ତ, ପ୍ରଫୁଲ୍ଲବାକ୍ ।

**ମନବଢ଼ିବା**—ଗ୍ରା.ବି. ମନବଳିବା ଦେଖ, ଆସକ୍ତିର ଆଧିକ୍ୟ ।

**ମନବଳା(ଳେ)ଇବା**—ଗ୍ରା. କ୍ରି. କୌଣସି କାର୍ଯ୍ୟ କରିବାକୁ ଦୃଢ଼ସଂକଳ୍ପ କରିବା, ଲାଳାୟିତ ହେବା ।

**ମନବଳିବା**—ଗ୍ରା. ବି. କୌଣସି କାର୍ଯ୍ୟ କରିବାପାଇଁ ମନରେ ଦୃଢ଼ପ୍ରତିଜ୍ଞାର ବା ଲାଳସାର ବା ଆସକ୍ତିର ଉଦ୍ରେକ ।

**ମନବାଞ୍ଛା**—ଗ୍ରା. ବି. ମନସ୍କାମନା ।

**ମନବିକଳ**—ବି. ଚିତ୍ତର ବ୍ୟାକୁଳତା, ଶୋକାଧୀରତା ।

**ମନବିଗିଡ଼ିବା**—ଗ୍ରା. ବି. ମନୋଭଙ୍ଗ, ମନୋଦୁଃଖ, ଅପତ୍ୱ, ମନୋମାଳିନ୍ୟ ଘଟିବା ।

**ମନବୁଝିବା**—ଗ୍ରା. କ୍ରି. ଅନ୍ୟବ୍ୟକ୍ତିର ମନୋଗତ ଭାବକୁ ପରୀକ୍ଷା କରିବା ।

**ମନବିରସ**—ଗ୍ରା.ବି. ଚିତ୍ତର ଅପ୍ରସନ୍ନତା ।

**ମନବୁଝିବା**—ଗ୍ରା. ବି. ମନବୋଧହେବା, ମନରେ ଶାନ୍ତ ହେବା,ସାନ୍ତ୍ୱନାପାଇବା

**ମନବୋଧ**—ଗ୍ରା. ବି. ମନସ୍ତୁଷ୍ଟି, ମନକୁ ବୁଝାଇବା ।

**ମନବୋଧିଆ**—ଗ୍ରା. ବିଂ. ମନକୁ ସନ୍ତୁଷ୍ଟ କରିବାକୁ କ୍ଷମ ବା ସମର୍ଥ ।

**ମନବ୍ୟାକୁଳ**—ଗ୍ରା. ବି. ଚିତ୍ତବ୍ୟାକୁଳତା, ମନଃକଷ୍ଟ ।

**ମନଭଙ୍ଗା**—ଗ୍ରା.ବିଂ.ବିଂ. ଯାହା ବା ଯେ ଦୁଇଜଣଙ୍କ ମଧ୍ୟରେ ମନୋମାଳିନ୍ୟ ଘଟାଏ ।

**ମନଭଙ୍ଗା(ଙ୍ଗେ)ଇବା**—ଗ୍ରା. କ୍ରି. ଦୁଇଜଣଙ୍କ ମଧ୍ୟରେ ମନୋମାଳିନ୍ୟ ଘଟାଇବା, ସଂକଳ୍ପିତ କାର୍ଯ୍ୟରୁ ନିବୃତ୍ତ କରାଇବା ।

**ମନଭାଙ୍ଗିଯିବା**—ଗ୍ରା. ବି. ମନବିଗିଡ଼ିବା ଦେଖ, ସମ୍ମୋହିତ ହେବା ।

**ମନଭୁଲା(ଲେ)ଇବା**—ଗ୍ରା. କ୍ରି. କୌଣସି ବ୍ୟକ୍ତିର ମନକୁ ତାହା ସଂକଳ୍ପରୁ କୌଶଳ କ୍ରମେ ଟଳାଇ ଦେବା, ଚିତ୍ତମୁଗ୍ଧ କରିବା ।

**ମନଭୁଲିଆ**—ଗ୍ରା. ବିଂ. ଯେଉଁ ବ୍ୟକ୍ତି କୌଶଳକ୍ରମେ ଅନ୍ୟର ମନକୁ ସଂକଳ୍ପରୁ ଭ୍ରଷ୍ଟ କରେ,ଚିତ୍ତମୁଗ୍ଧକର ।

**ମନଭୁଲିବା**—ଗ୍ରା.ବି. ମୁଗ୍ଧହେବା, ନିଜର ଅଜ୍ଞାତରେ ବା ଅସାବଧାନତାରେ ସଂକଳ୍ପରୁ ଟଳିବା ।

ମନଭୋଳହେବା—ଗ୍ରା.ବି. ମନ ବାଉଳା ହେବା, ବିସ୍ମୃତ ପଡ଼ିବା ।

ମନମଉଜୀ—ଗ୍ରା. ପୁଂ. ବିଂ. ସର୍ବଦା ପ୍ରଫୁଲ୍ଲମନା, ଯଥେଚ୍ଛାଚାରୀ ।

ମନମଜାଇବା—ଗ୍ରା. କ୍ରି. ଅନ୍ୟର ମନକୁ ମୁଗ୍ଧ କରିବା ।

ମନମଜିବା—ଗ୍ରା.ବି.ମୁଗ୍ଧ ହେବା,ପ୍ରେମ ମୁଗ୍ଧ ହେବା । [ କାମ ।

ମନମଥ—ଗ୍ରା. (ପଦ୍ୟ) ବି.ମନ୍ମଥ,କନ୍ଦର୍ପ,

ମନମନାଇବା—ଗ୍ରା. କ୍ରି. ସନ୍ତୁଷ୍ଟକରିବା, ରାଜିକରିବା । [ ଯଥେଚ୍ଛା ।

ମନମରଜି—ଗ୍ରା.ବି. ସ୍ୱଇଚ୍ଛା,(ଗ୍ରା.କ୍ରି.ବିଂ)

ମନମରିଯିବା—ଗ୍ରା.ବି. ପ୍ରଥମେ ଅନୁରାଗ ଜନ୍ମିଥିବା ବିଷୟ ପ୍ରତି ଉତ୍ସାହ କମିଯିବା

ମନମାନିବା—ଗ୍ରା. ବି. ମନସ୍ତୁଷ୍ଟି ହେବା, ମନୋମତ ହେବା, ଅନୁଭବ ଦ୍ୱାରା ଜ୍ଞାନ ଜନ୍ମିବା ।

ମନମାଫିକ୍—ଗ୍ରା.ବିଂ. ମନକୁଗୁହିଁ,ଅଭୀଷ୍ଟ ମୁତାବକ, ( ଗ୍ରା. କ୍ରି. ବିଂ ) ଆପଣା ଇଚ୍ଛା ଅନୁସାରେ ।

ମନମାରିବା—ଗ୍ରା. କ୍ରି. ମନଦୁଃଖକରିବା, ବିରସ ହେବା, ବିରତ ହେବା, ତୁଚ୍ଛ-ଜ୍ଞାନ କରିବା ।

ମନମେଳ—ଗ୍ରା.ବି. ସଦ୍ଭାବ,ସୌହାର୍ଦ୍ଦ୍ୟ ।

ମନମୁତାବକ—ଗ୍ରା. ବିଂ ଓ କ୍ରି. ବିଂ. ମନମାଫିକ୍ ଦେଖ । [ ଓ ଚେଷ୍ଟା ।

ମନମୂନ—ଗ୍ରା. ବି. ସମ୍ପୂର୍ଣ୍ଣ ମନୋଯୋଗ

ମନମୋଟ—ଗ୍ରା.ବି.ମନରଗର୍ବ,ବେଖାତିର. ବିଶେଷ ଗର୍ବ ।

ମନମୋଟହେବା—ଗ୍ରା.ବି.ଗର୍ବସ୍ଫୀତହେବା

ମନମୋଟିଆ—ଗ୍ରା. ପୁଂ. ବିଂ. ଗର୍ବସ୍ଫୀତ, ସ୍ୱେଚ୍ଛାଚାରୀ, ବେଖାତିରିଆ ।

ମନମୋହନ—ଗ୍ରା. ପୁଂ. ବିଂ. ମନୋ-ମୁଗ୍ଧକର, ଅତିରମଣୀୟ । [ ଦେଖ ।

ମନମୋହିବା—ଗ୍ରା. କ୍ରି. ମନରଞ୍ଜିବା

ମନଯୋଗ—ଗ୍ରା.ବି.ମନୋଯୋଗ ଦେଖ ।

ମନଯୋଗୀ—ଗ୍ରା.ପୁଂ. ବିଂ.ମନୋଯୋଗୀ ଦେଖ ।

ମନର କଥା—ଗ୍ରା.ବି. ମନକଥା ଦେଖ ।

ମନରକ୍ଷା—ଗ୍ରା. ବି. ପରର ମନକୁ ଜଗି କାର୍ଯ୍ୟ କରିବା ବା କଥା କହିବା ।

ମନର ଗତି—ଗ୍ରା.ବି. ମାନସିକ ଅବସ୍ଥା, ମନର ଭାବ, କଳ୍ପନା, ମନର ଚିନ୍ତା, ମନର ରୁଚି, ମନର ଅଭ୍ୟାସଗତ ଧାରଣା ।

ମନରଗାଇବା—ଗ୍ରା.କ୍ରି.କୌଣସି ବ୍ୟକ୍ତିର ମନରେ କ୍ରୋଧ ଜନ୍ମାଇବା ।

ମନରଗିବା—ଗ୍ରା. ବି. ମନରେ ରାଗ ଜନ୍ମିବା । [ ଅନୁସାରେ ।

ମନରଗୁଣେ—ଗ୍ରା. କ୍ରି.ବିଂ. ଆପଣାର ମନ

ମନର ଜୋର୍—ଗ୍ରା. ବି. ଦୃଢ଼ପ୍ରତିଜ୍ଞା, ଅଧ୍ୟବସାୟ, ମାନସିକଶକ୍ତି ।

ମନରଞ୍ଜାଇବା—ଗ୍ରା. କ୍ରି. ମନୋରଞ୍ଜନ କରିବା ।

ମନରଞ୍ଜିବା—ଗ୍ରା. କ୍ରି. ମୁଗ୍ଧ କରିବା, (ଗ୍ରା.ବି) ମନମୁଗ୍ଧ କରିବା ।

ମନର ଭାବ—ଗ୍ରା. ବି. ମନୋଗତ ଭାବ, ମାନସିକ ଅବସ୍ଥା, ମନର ଧାରଣା ।

ମନରହିବା—ଗ୍ରା.ବି.ମନ କୌଣସି ବିଷୟ ପ୍ରତି ଆକୃଷ୍ଟ ହୋଇ ତହିଁରେ ଅନୁରକ୍ତ ହେବା,ମନର ନିଶ୍ଚଳତା ବା ସ୍ଥିରତା ।

ମନରୁ ପାଶୋରିବା—ଗ୍ରା. କ୍ରି. ମନରୁ ଭୁଲିଯିବା, ମନେ ନ ପକାଇବା ।

ମନରୁ ଯିବା—ଗ୍ରା. କ୍ରି. ମନରୁ ବିସ୍ମୃତ ହେବା, ବିସ୍ମରଣ ହେବା ।

ମନରେ କରିବା—ଗ୍ରା.କ୍ରି.ସ୍ମରଣକରିବା, ହେଜିବା,କଳ୍ପନା କରିବା,ବିଚାର କରିବା

ମନରେ ଥିବା—ଗ୍ରା.କ୍ରି.ସ୍ମରଣରୁ ଅନ୍ତର ନ ହେବା,ମନୋଯୋଗର ବିଷୟ ହେବା

ମନରେଧରିବା—ଗ୍ରା.କ୍ରି.କୌଣସି ବିଷ-ୟକୁ ଗାମ୍ଭୀର୍ଯ୍ୟସହିତ ଗ୍ରହଣକରିବା ।

ମନରେ ପକାଇବା— ଗ୍ରା. କ୍ରି. ସ୍ମରଣ କରିବା, ସ୍ମରଣ କରାଇଦେବା ।

ମନରେ ପଡ଼ିବା—ଗ୍ରା. କ୍ରି. ସ୍ମରଣରେ ଆସିବା ।

ମନରେ ଭାବିତହେବା—ଗ୍ରା. କ୍ରି. ଚିନ୍ତା କରିବା, ଚିନ୍ତିତହେବା,ଦୁଃଖିତହେବା ।

ମନରେ ମନରେ—ଗ୍ରା.କ୍ରି.କଳ୍ପନାରେ, ପ୍ରକୃତରେ ନୁହେଁ, ଆପଣାର ମନକୁ, ଅପ୍ରକାଶ୍ୟରେ ।

ମନରେ ରଖିବା—ଗ୍ରା.କ୍ରି.ସ୍ମରଣକରିବା ।

ମନରେ ଲଖିବା—ଗ୍ରା.କ୍ରି.ସର୍ବଦା ସ୍ମର-ଣରେ ରହିବା ।

ମନଲଗା(ଗେ)ଇବା—ଗ୍ରା.କ୍ରି.କୌଣସି ବିଷୟପ୍ରତି ମନୋଯୋଗ ଦେବା ।

ମନଲଗିବା—ଗ୍ରା. ବି. କୌଣସି ବିଷୟ ପ୍ରତି ମନୋଯୋଗ, ମନରେ ଆଗ୍ରହ ।

ମନଲୋଭ—ଗ୍ରା.ବିଂ.ସୁନ୍ଦର,ମନୋହର ।

ମନଶିଳା—ଗ୍ରା. ବି. ମନଃଶିଳା ।

ମନଶ୍ଚକ୍ଷୁ—ବି. (ରୂପ.କ.ଧା) ଅନ୍ତର୍ଦ୍ଦୃଷ୍ଟି, ନିଜର ମନୋବୃତ୍ତିର କଳନ,ଭାବନା, କଳ୍ପନା, ଧ୍ୟାନ ।

ମନଶ୍ଚାଞ୍ଚଲ୍ୟ—ବି.(୬ତତ୍)ମନର ଉଦ୍ବେଗ, ଉତ୍କଣ୍ଠା, ମନର କ୍ଷିପ୍ରତା ।

ମନସବ୍‌ଦାର୍—ଯା.ବି.ଭାରତର ମୋଗଲ ବାଦସାହାମାନଙ୍କ ଅମଳରେ ଶତ-ସୈନ୍ୟର ନେତା ବା ସେନାପତିଙ୍କ ଉପାଧି ।

ମନସରସ୍—ଗ୍ରା.ବି. ମନର ଉତ୍ଫୁଲ୍ଲତା, ରସିକପ୍ରକୃତି, ମନର ଉଦାରତା ।

ମନସା—ସ୍ତ୍ରୀ. ବି. ( ମନସ୍+ଅ+ଆ ) କଶ୍ୟପଙ୍କ ଔରସରେ କଦ୍ରୁଙ୍କ ଗର୍ଭରେ ଜାତ କନ୍ୟା, (ଗ୍ରା.ଅବ୍ୟ) ମନେମନେ, ମନରେ, କଳ୍ପନା ଦ୍ୱାରା ।

ମନସାପଞ୍ଚମୀ—ବି. ଶ୍ରାବଣ କୃଷ୍ଣପଞ୍ଚମୀ ।

ମନସାପୂଜା—ବି. (୬ତତ୍) ମନସାଦେବୀ-ଙ୍କର ପୂଜା, ଶ୍ରାବଣ କୃଷ୍ଣପଞ୍ଚମୀରେ ଅନୁଷ୍ଠିତ ମନସାଦେବୀଙ୍କର ଆରାଧନା ।

ମନସାସିଜୁ—ଗ୍ରା.ବି. କଣ୍ଟାସିଜୁ,ପତ୍ରଥିଆ ସିଜୁ ।

ମନସିଜ—ପୁଂ.ବି.(ମନସି+ଜନ୍+କ.ଅ) କନ୍ଦର୍ପ, କାମଦେବ ।

ମନସ୍କାମ—ବି. ( ୬ତତ୍ ) ମନୋରଥ, ମନୋବାଞ୍ଛା, ମନର ଅଭିଳାଷ ।

ମନସ୍କାମସିଦ୍ଧି—ବି. (୬ତତ୍) ମନୋରଥର ସାଫଲ୍ୟ ।

ମନସ୍କାର—ବି. ( ମନସ୍+କୃ+ଅ )

ମନର ସୁଖ, ସନ୍ତୋଷ, ଅନୁଭବ, ଅଭିପ୍ରାୟ ।
ମନସ୍ତାପ—ପୁଂ. ବ. (୬ତତ୍)ମନଃପୀଡ଼ା, ଅନୁତାପ, ମନୋଦୁଃଖ ।
ମନସ୍ତାପୀ—ପୁଂ. ବିଂ. ମାନସିକ କ୍ଲେଶବିଶିଷ୍ଟ, (ସ୍ତ୍ରୀ) ମନସ୍ତାପିନୀ ।
ମନସ୍ତାଳ—ପୁଂ. ବ. ଦୁର୍ଗାଦେବୀଙ୍କ ସିଂହ, (କ୍ଲୀ.ବ) ହରିତାଳ ।
ମନସ୍ତୁଷ୍ଟି—ବ. (୬ତତ୍)ମନର ସନ୍ତୋଷ
ମନସ୍ତୁଷ୍ଟିକର—ବିଂ. (ମନସ୍+ତୁଷ୍ଟି+କୃ+ଅ) ଚିତ୍ତର ସନ୍ତୋଷଜନକ ।
ମନସ୍ତୃପ୍ତି—ବ. (୬ତତ୍)ମନର ସନ୍ତୋଷ
ମନସ୍ତୃପ୍ତିକର—ବିଂ. (ମନଃ+ତୃପ୍ତି+କୃ+କ.ଅ)ଚିତ୍ତର ସନ୍ତୋଷ ବିଧାୟକ
ମନସ୍ତୋକା—ସ୍ତ୍ରୀ.ବ.ଦୁର୍ଗାଙ୍କ ନାମାନ୍ତର
ମନସ୍ଥ—ବି. ବିଂ.(ମନସ୍+ସ୍ଥା+କ.ଅ) ହୃଦୟସ୍ଥ, ଆନ୍ତରିକ, କଳ୍ପିତ, ଅଭିପ୍ରେତ, (ଗ୍ରା.ବିଂ) କୃତସଂକଳ୍ପ ।
ମନସ୍ୱଚ୍ଛ—ଗ୍ରା. ବ. ମନର ସ୍ୱଚ୍ଛତା ବା ନିର୍ମଳତା, ମନର ଅନାବିଳତା,ସ୍ୱେଚ୍ଛା ।
ମନସ୍ୱିତା—ସ୍ତ୍ରୀ. ବ. (ମନସ୍ୱିନ୍+ତା) ଆଣୋଭରସା.ଅଧୀନତା,ସମ୍ମାନ, ପ୍ରଶସ୍ତମନ, ଚିତ୍ତର ଉଦାରତା ।
ମନସ୍ୱିନୀ—ସ୍ତ୍ରୀ.ବ.(ମନସ୍ୱିନ୍+ଈ)ପ୍ରଶସ୍ତମନାଃ ସ୍ତ୍ରୀ, ମୃକଣ୍ଡୁଙ୍କ ପତ୍ନୀ, ପ୍ରଜାପତିଙ୍କ ପତ୍ନୀ ।
ମନସ୍ୱୀ—ପୁଂ.ବିଂ.(ମନସ୍+ବିନ୍) ଯାହାର ମନ ପ୍ରଶସ୍ତ ବା ଉଦାର,ଉଦାରଚେତାଃ, ମହାମନାଃ, (ପୁଂ.ବ) ଶରଭ ।
ମନହେବା—ଗ୍ରା.ବ.ମନରେ ଇଚ୍ଛା ଜନ୍ମିବା
ମନା—ଗ୍ରା. ବ. ଅସ୍ୱୀକାର,ନିଷେଧ,(ବିଂ) ନିଷିଦ୍ଧ, ଯାହାର ମନ ଅଛି ।
ମନାଇବା—ଗ୍ରା.କ୍ରି.ପେନାଇବା, ସମ୍ମତ କରାଇବା, ରାଜିକରିବା, ମନରଞ୍ଜିବା, ଦେବତାଆଦିଙ୍କୁ ପ୍ରସନ୍ନ କରିବା,ମପିବା, ବଶୀଭୂତ କରିବା, କଥା ମାନିବାଭଳି ଅବସ୍ଥାକୁ ଆଣିବା, ଶୋଧପାଇବା, ରୁଚିକର ହେବା ।
ମନାକ୍—ଅବ୍ୟ. (ମନ୍+ମିଁ.ଆକ୍)ଅଳ୍ପ, ମନ୍ଦମନ୍ଦ, ଆସ୍ତେ ଆସ୍ତେ, କେତେକାଂଶରେ ।
ମନାକ(କେ)—ଗ୍ରା. ଅବ୍ୟ. ଥରେ ।
ମନାକରିବା—ଗ୍ରା. କ୍ରି. ବାରଣ କରିବା, ଅସ୍ୱୀକାର କରିବା, ବାଧାଦେବା ।
ମନାକା—ସ୍ତ୍ରୀ. ବ. ହସ୍ତିନୀ, ମାଈହାତୀ ।
ମନାକ୍କର—କ୍ଲୀ. ବ. (ମନାକ୍+କୃ+ଅ) ମଙ୍ଗଲ୍ୟା,ମଲ୍ଲିକା ଗନ୍ଧଯୁକ୍ତ ଅଗୁରୁ,(ବିଂ) ଈଷତ୍କାରକ, ଅଳ୍ପକାରକ ।
ମନାକ୍କା—ଯା. ବ. ଶୁଖିଲା ବଡ଼ ଅଙ୍ଗୁର କୋଳି ।
ମନାମ୍ବଜ—ଗ୍ରା. ବ. ମନସିଜ, କାମ ।
ମନାନକ୍—ଅବ୍ୟ. ଅଳ୍ପ, ଈଷତ୍ ।
ମନା(ନ)ପଲି—ଯା ବି.ଏକଗୁଟିଆ ଅଧିକାର ବିକ୍ରୟାର୍ଥ କୌଣସି ବ୍ୟକ୍ତିକୁ ପ୍ରଦତ୍ତ ଏକାଧିକାର ।
ମନାନ୍ତର—ଗ୍ରା. ବ. (ସଂ-ମନାନ୍ତର) ମନୋବିବାଦ, କଳହ ।
ମନାୟୀ—ସ୍ତ୍ରୀ.ବ.(ମନୁ+ଈ)ମନୁଙ୍କ ସ୍ତ୍ରୀ ।
ମନାବୀ—ସ୍ତ୍ରୀ. ବ. ମନୁଙ୍କ ପତ୍ନୀ ।
ମନାସ—ଗ୍ରା. ବ. ବାଞ୍ଛା, ଇଚ୍ଛା, ମନୋରଥ, ଦେବତାଙ୍କ ନିକଟ ମାନସିକ କରିବା ।
ମନାସଫ—ଯା.ବିଂ.ପସନ୍ଦ ସହିତ,ମନୋମତ, ଉପଯୁକ୍ତ,ସଙ୍ଗତ, ଯଥାଯୋଗ୍ୟ ।
ମନାସିବା—ଗ୍ରା.କ୍ରି.ବାଞ୍ଛା କରିବା,ଭାବିବା, ମନରେ ସ୍ଥିର କରିବା, ମନୋରଥ ସିଦ୍ଧହେଲେ କୌଣସି ଦେବତାଙ୍କୁ ସଙ୍କଳ୍ପିତ ନୈବେଦ୍ୟାଦି ଦେବାପାଇଁ ସ୍ୱୀକାର କରିବା ।
ମନିଅର୍ଡର—ଯା. ବି.ପୋଷ୍ଟଅଫିସ୍ ଜରିଆରେ ଟଙ୍କା ପଠାଇବାର ପଦ୍ଧତି ।
ମନିଆର—ଗ୍ରା.ଯା.ବ. ବିଦେଶରୁ ବାଣିଜ୍ୟାର୍ଥ ଏ ଦେଶକୁ ଆସୁଥିବା ଖେଳନା, କୁଣ୍ଢେଇ ଓ କାଚ ପ୍ରଭୃତିର ଗ୍ରେଟ ଜିନିଷମାନ ।
ମନିଚ୍ଛା—ଗ୍ରା. ବ. ନିଜର ଇଚ୍ଛା, ସ୍ୱେଚ୍ଛା, (ଗ୍ରା.କ୍ରି.ବିଂ)ଆପଣାର ଇଚ୍ଛାନୁସାରେ, ଯଥେଚ୍ଛା, ଆପଣା ସନ୍ତୋଷ ବିଧାନ ହେବା ପ୍ରକାରେ ।
ମନିତ—ବିଂ. (ମନ୍+ମିଁ.ତ) ଜ୍ଞାତ,(ବିଭା.ତ) ଜ୍ଞାନ, କଣ୍ଠଧ୍ୱନି ବିଶେଷ ।
ମନିଷ—ଗ୍ରା. ବି. ମନୁଷ୍ୟ, ଲୋକ,ଗୁକର, ସ୍ୱାମୀ, କଥକ ସ୍ୱୟଂ ।
ମନିଷକରିବା—ଗ୍ରା.କ୍ରି.ଶିଶୁକୁ ପ୍ରତିପାଳନ କରି ବୟସ୍କ କରାଇବା, ମୂର୍ଖ ବା ନିର୍ଦ୍ଧନ ବ୍ୟକ୍ତିକୁ ଶିକ୍ଷା ବା ସାହାଯ୍ୟ ଦ୍ୱାରା ପଣ୍ଡିତ ବା ଧନୀ କରିବା ।
ମନିଷପଣିଆ—ଗ୍ରା. ବ. ମନୁଷ୍ୟତା ।
ମନୀକ—କ୍ଲୀ. ବ. (ମନ+ଈକ)ଅଞ୍ଜନ ।
ମନୀଷା—ସ୍ତ୍ରୀ. ବ. (ମନସ୍+ଈଷା)ବୁଦ୍ଧି, ସ୍ତୁତି, ଚ୍ଛିଜ୍ଞା, ମନୋରଥ, ପ୍ରଶଂସା,(ଗ୍ରା. ବିଂ) ଯେ କାମନା କରେ, ଇଚ୍ଛାନୁସାରେ ଭିନ୍ନ ଭିନ୍ନ ରୂପଧାରୀ ।
ମନୀଷିକା—ସ୍ତ୍ରୀ. ବ. ମନୀଷା ଦେଖ ।
ମନୀଷିତ—ବି.ବିଂ.(ମନସ୍+ଈଷ୍+ତ) ମନୋଭିଲଷିତ, ବାଞ୍ଛିତ ।
ମନୀଷିତା—ସ୍ତ୍ରୀ. ବ. (ମନୀଷିନ୍+ତା) ବୁଦ୍ଧିମତ୍ତା, ମନୀଷିତ୍ୱ ।
ମନୀଷୀ—ପୁଂ.ବ.ପଣ୍ଡିତ,ବିଂ.(ମନୀଷା+ଇନ୍) ପ୍ରଜ୍ଞାବାନ୍, ମେଧାବୀ,ଜ୍ଞାନୀ, (ସ୍ତ୍ରୀ) ମନୀଷିଣୀ ।
ମନୁ—ସ୍ତ୍ରୀ. ବ.(ମନ୍+ଉ)ପୃକ୍କା,ପିଡ଼ଙ୍ଗଶାଗ, ମନୁଙ୍କ ପତ୍ନୀ,(ପୁଂ.ବ) ମନୁଷ୍ୟ, ଜିନ ବିଶେଷ, ମନ୍ତ୍ର, ବ୍ରହ୍ମାଙ୍କ ମାନସ, ପୁତ୍ରଗଣ,ବୈବସ୍ୱତ ମନୁ,ସୂର୍ଯ୍ୟଙ୍କ ପୁତ୍ର, ହିନ୍ଦୁ ସ୍ମୃତିଶାସ୍ତ୍ର ପ୍ରଣେତା ମୁନି ବିଶେଷ, ୭୧ମହାଯୁଗ ବା ୨୮୪ ଯୁଗ (କାଳ), ବିଷ୍ଣୁ; ଅନ୍ତଃକରଣ,ମନ,ଅଗ୍ନି, (ଗ୍ରା.ବ) ଶାପ, ଅପଡ଼, ମନୋମାଳିନ୍ୟ,କ୍ରୋଧ, ରାଗ,ଓଡ଼ିଆ ମନ ଶବ୍ଦର ପଞ୍ଚମୀ ବିଭକ୍ତି ଏକବଚନର ରୂପ, 'ମନୁ' ମନରୁ ।
ମନୁଆଁ—ଗ୍ରା. ପୁଂ. ବିଂ. କାମରୂପୀ,ଯାହା ଇଚ୍ଛା ହୁଏ ତାହା କରିବା ବ୍ୟକ୍ତି,ଏକଜିଦିଆ, ଖିଆଲିଆ, ଦୃଢ଼ଚିତ୍ତ, ନିପୁଣ, ଧୁରନ୍ଧର, ଧୀର, ସାହସୀ ।
ମନୁଖ—ପ୍ରା. (ଭଦ୍ରିଭାଷା)ବ. ମନୁଷ୍ୟ ।
ମନୁଗ—ପୁଂ. ବ. ମନୁଙ୍କ ନାତି, ଦ୍ୟୁତି-

ମାନଙ୍କ ପୁତ୍ର ।
ମନୁଜ—ପୁଂ. ବି. ( ମନୁ+ଜନ୍+ଅ ) ମନୁଷ୍ୟ, ମନୁଙ୍କଠାରୁ ଉତ୍ପନ୍ନ ବୋଲି ମନୁଷ୍ୟମାନଙ୍କୁ ମନୁଜ ବୋଲାଯାଏ, (ସ୍ତ୍ରୀ) ମନୁଜା ।
ମନୁଜକୁଳ—ବି.(୬ତତ୍)ମାନବ ଜାତି ।
ମନୁଜପତି—ପୁଂ.ବି. (୬ତତ୍) ମନୁଷ୍ୟମାନଙ୍କର ଅଧିପତି, ରାଜା ।
ମନୁଜପୁଙ୍ଗବ—ବି. (୭ତତ୍)ମାନବଶ୍ରେଷ୍ଠ
ମନୁଜାତ—ବିଂ.(୫ତତ୍)ମନୁ ବା ମାନବମାନଙ୍କଠାରୁ ଉତ୍ପନ୍ନ ।
ମନୁଜାତ୍ମଜ—ପୁଂ. ବି. ମାନବ, (ସ୍ତ୍ରୀ) ମନୁଜାତ୍ମଜା, ସ୍ତ୍ରୀ, ନାରୀ ।
ମନୁଜାଧିପ—ପୁଂ. ବି. (୬ତତ୍)ମନୁଷ୍ୟମାନଙ୍କର ଅଧିପତି, ରାଜା ।
ମନୁଜୀ—ସ୍ତ୍ରୀ. ବି. (ମନୁଜ+ଈ) ମାନୁଷୀ
ମନୁଜେନ୍ଦ୍ର—ପୁଂ. ବି. (୬ତତ୍) ମନୁଷ୍ୟମାନଙ୍କର ବଡ଼. ନରପତି ।
ମନୁଜ୍ୟେଷ୍ଠ—ପୁଂ.ବି. ଅସି, ଖଡ୍ଗ, ତରବାରି, ଲଠି, ଯଷ୍ଟି ।
ମନୁଭୂ—ପୁଂ. ବି. ( ମନୁ+ଭୂ+କ୍ୱିପ୍ ) ମନୁଷ୍ୟ, ମାନବ ।
ମନୁଯୁଗ—ବି. (୬ତତ୍) ମନ୍ୱନ୍ତର,ମହାଯୁଗ, ମନୁପରିମିତ କାଳବିଶେଷ ।
ମନୁରାଜ—ପୁଂ.ବି. (ମନୁ+ରାଜ+କ୍ୱିପ୍) କୁବେର ।
ମନୁବୃତ୍ତ—ତ୍ରି. ବିଂ. ମନୁଷ୍ୟ କର୍ତ୍ତୃକ ନିର୍ବାଚିତ ବା ନିଯୁକ୍ତ ।
ମନୁଷ୍—ପ୍ରା.(ସମ୍ଭ)ବି. ମନୁଷ୍ୟ ।
ମନୁଶ୍ରେଷ୍ଠ—ବି. ବିଷ୍ଣୁ ।
ମନୁଷୀ—ସ୍ତ୍ରୀ.ବି. (ମନୁଷ+ଈ)ମାନୁଷୀ, ମନୁଷ୍ୟପତ୍ନୀ ।
ମନୁଷେନ୍ଦ୍ର—ପୁଂ.ବି. ( ମନୁଷ+ଇନ୍ଦ୍ର ) ମନୁଜେନ୍ଦ୍ର, ରାଜା ।
ମନୁଷ୍ୟ—ପୁଂ.ବି. (ମନୁ+ଷ୍ୟ) ମାନବ, ଲୋକ, ବ୍ୟକ୍ତି, ମନୁଙ୍କ ପୁତ୍ର, (ସ୍ତ୍ରୀ) ମନୁଷ୍ୟୀ ।
ମନୁଷ୍ୟକଣ୍ଠ—ବି. (୬ତତ୍) ମାନବର ଗଳା, ମନୁଷ୍ୟର କଣ୍ଠସ୍ୱର ।

ମନୁଷ୍ୟକାର—ପୁଂ. ବି. ପୁରୁଷକାର, ପୁରୁଷର କୃତସାଧ୍ୟ ଚେଷ୍ଟା, ଉଦ୍ୟୋଗ
ମନୁଷ୍ୟକଲ୍ମଷ—ବି.ମାନବମାନଙ୍କର ପାପ
ମନୁଷ୍ୟକୃତ—ବିଂ. (୩ତତ୍) ମନୁଷ୍ୟ କର୍ତ୍ତୃକ ଅନୁଷ୍ଠିତ, ଶୁଭାଶୁଭ, ମାନବ ରଚିତ, କୃତ୍ରିମ ।
ମନୁଷ୍ୟଖାଦକ—ପୁଂ.ବିଂ. ଯେ ମନୁଷ୍ୟ ମାଂସ ଖାଏ । [ ଗନ୍ଧର୍ବ ।
ମନୁଷ୍ୟଗନ୍ଧର୍ବ—ପୁଂ. ବି. ମାନବରୂପୀ
ମନୁଷ୍ୟଚର—ତ୍ରି.ବିଂ.ମନୁଷ୍ୟ ସଙ୍ଗତରେ ବ୍ୟବହାରଶୀଳ ।
ମନୁଷ୍ୟଚରିତ—ବି. ( ୬ତତ୍ ) ମନୁଷ୍ୟ ଜାତିର ପ୍ରକୃତି ବା ସ୍ୱଭାବ, ବ୍ୟକ୍ତି ବିଶେଷର ସ୍ୱଭାବ ।
ମନୁଷ୍ୟଜ—ତ୍ରି. ବିଂ. (ମନୁଷ୍ୟ+ଜନ୍+ଅ) ମନୁଷ୍ୟଠାରୁ ଜାତ ।
ମନୁଷ୍ୟଜନ୍ମ—ବି. ( ୬ତତ୍ ) ମନୁଷ୍ୟ ରୂପରେ ସଂସାରରେ ଜନ୍ମହେବା ।
ମନୁଷ୍ୟତା(ତ୍ୱ)—ବି. ମନୁଷ୍ୟତ୍ୱ, ମଣିଷପଣିଆ, ପୌରୁଷ,ବଦାନ୍ୟତା,ଶିଷ୍ଟତା, ପୁରୁଷତ୍ୱ, ମନୁଷ୍ୟୋଚିତ ଧର୍ମ ।
ମନୁଷ୍ୟଭାବବର୍ଜିତ--ବିଂ.(୩ତତ୍)ନିଷ୍ଠୁର, ଅମାନୁଷ, ସାହସହୀନ, ପୁରୁଷତ୍ୱହୀନ ।
ମନୁଷ୍ୟତ୍ରା—ଅବ୍ୟ. ମନୁଷ୍ୟ ମଧ୍ୟରେ ।
ମନୁଷ୍ୟଦେବ—ବି. (୭ତତ୍)ନରଦେବ, ରାଜା ।
ମନୁଷ୍ୟଧର୍ମା—ପୁଂ.ବି. (ମନୁଷ୍ୟ+ଧର୍ମନ୍) କୁବେର, (ବିଂ) ମନୁଷ୍ୟପରି ଆଚରଣକାରୀ ।
ମନୁଷ୍ୟଯଜ୍ଞ--ବି.ପଞ୍ଚ ମହାଯଜ୍ଞର ଅନ୍ତର୍ଗତ ଯଜ୍ଞଭେଦ, ନୃଯଜ୍ଞ, ଅତିଥିପୂଜନ ।
ମନୁଷ୍ୟରଥ—ପୁଂ.ବି.(କ.ଧା) ମନୁଷ୍ୟର ବ୍ୟବହାରୋପଯୋଗୀ ରଥବିଶେଷ ।
ମନୁଷ୍ୟରାଜ—ପୁଂ. ବି. ମନୁଷ୍ୟମାନଙ୍କର ରାଜା, ମନୁଜେନ୍ଦ୍ର ।
ମନୁଷ୍ୟରାଶି—ବି. କନ୍ୟାରାଶି ।
ମନୁଷ୍ୟଲୋକ—ପୁଂ.ବି ମାନବ ଲୋକ, ଭୂଲୋକ, ପୃଥିବୀ, ମର୍ତ୍ତ୍ୟଲୋକ ।
ମନୁଷ୍ୟସଭା—ସ୍ତ୍ରୀ.ବି. ମନୁଷ୍ୟସମୂହ ।

ମନୁଷ୍ୟସବ—ପୁଂ.ବି. ନରମେଧ ଯଜ୍ଞ, ମନୁଷ୍ୟକୃତ ଯଜ୍ଞ ।
ମନୁଷ୍ୟୀ—ସ୍ତ୍ରୀ.ବି.(ମନୁଷ୍ୟ+ଈ)ମାନବୀ, ନାରୀ, ସ୍ତ୍ରୀ ।
ମନୁଷ୍ୟେନ୍ଦ୍ର—ପୁଂ.ବି. (୬ତତ୍) ମାନବମାନଙ୍କର ଇନ୍ଦ୍ର, ମନୁଷ୍ୟେଶ୍ୱର ।
ମନୁଷ୍ୟୋଚିତ—ବିଂ. (୬ତତ୍)ମନୁଷ୍ୟର କର୍ତ୍ତବ୍ୟ ।
ମନୁସଂହିତା—ବି. ମନୁପ୍ରଣୀତ ସ୍ମୃତିଶାସ୍ତ୍ର, ମାନବ ଧର୍ମଶାସ୍ତ୍ର ।
ମନେ—ଗ୍ରା.ବି. ମନରେ ।
ମନେକରିବା—ଗ୍ରା. କ୍ରି. ସ୍ମରଣ କରିବା, ହେଜିବା, ଭାବିବା, କଳ୍ପନା କରିବା ।
ମନେଥିବା—ଗ୍ରା.କ୍ରି. ପାଶୋର ନଯିବା, ସ୍ମରଣ ରହିବା ।
ମନେଧରିବା—ଗ୍ରା.କ୍ରି. ସ୍ମରଣ ରଖିବା, କୌଣସି ବିଷୟକୁ ଗୁରୁତର ଭାବେ ଗ୍ରହଣ କରିବା ।
ମନେପକାଇବା—ଗ୍ରା.କ୍ରି.ସ୍ମରଣ କରିବା, ଅନ୍ୟ ବ୍ୟକ୍ତିକୁ ଚେତାଇଦେବା ।
ମନେପଡ଼ିବା—ଗ୍ରା.କ୍ରି. ସ୍ମରଣ ହେବା ।
ମନେମନେ—ଗ୍ରା. କ୍ରି. ବିଂ. ମନେମନେ ଦେଖ ।
ମନେମନେ—ଗ୍ରା.କ୍ରି. ବିଂ. ସ୍ୱେଚ୍ଛାରେ, ଅନ୍ତରରେ, ଅପ୍ରକାଶ୍ୟରେ, ଆପଣାର ଭିତରରେ ।
ମନେମନେଉଖୁଡ଼ା ଖାଇବା—ଗ୍ରା. କ୍ରି. (ଲ.ଅର୍ଥ) ଭବିଷ୍ୟତ୍ ସମ୍ବନ୍ଧେ କଳ୍ପିତ ଚିନ୍ତା ବିଷୟରୁ ଭାବି ଆନନ୍ଦ ଉପଭୋଗ କରିବା ।
ମନେରଖିବା—ଗ୍ରା.କ୍ରି. ସ୍ମରଣ ରଖିବା, ସୁମରଣା କରିବା, ଗୁପ୍ତ ରଖିବା ।
ମନେହୁଏ—ଗ୍ରା.ଅବ୍ୟ. ମୋତେ ଜଣାଯାଏ ଯେ, ବୋଧହୁଏ, ସମ୍ଭବତଃ ।
ମନେହେବା—ଗ୍ରା. କ୍ରି. ବୋଧହେବା, ସ୍ମୃତହେବା ।
ମନୋଗତ—ବିଂ (ମନସ୍+ଗତ)ମାନସିକ, ଯାହା ମନରେ ଉଦିତ ହୁଏ, ମନସ୍ଥ ।

ମନୋଗତଭାବ—ବି. (କ.ଧା) ଆନ୍ତରିକ ଇଚ୍ଛା ।

ମନୋଗତି—ସ୍ତ୍ରୀ.ବି. (୬ତତ୍) ମନର ଗତି, ଅବସ୍ଥା, ମନବୃତ୍ତି, କଳ୍ପନାର କ୍ରୀଡ଼ା ।

ମନୋଗମ୍ୟ--ବିଂ.(୩ତତ୍)ଯାହା ମନରେ କଳ୍ପିତ ହୋଇପାରେ,ଚିନ୍ତନୀୟ ।

ମନୋଗବୀ--ସ୍ତ୍ରୀ.ବି.(ମନସ୍+ଗବୀ)ଇଚ୍ଛା, ଅଭିଳାଷ ।

ମନୋଗୁପ୍ତା—ସ୍ତ୍ରୀ.ବି. ( ମନସ୍+ଗୁପ୍ତ ) ମନଃଶିଳା ।

ମନୋଗ୍ରହଣ—କ୍ଲୀ.ବି. (ମନସ୍+ଗ୍ରହଣ) ମନକୁ ନେବା, ମନଦ୍ୱାରା ଗ୍ରହଣ (ସୁଖଦୁଃଖାଦି) ।

ମନୋଗ୍ରାହୀ—ପୁଂ.ବିଂ. (ମନସ୍+ଗ୍ରହ୍+ଇନ୍) ମନଦ୍ୱାରା ଗ୍ରହଣକାରୀ, (ସ୍ତ୍ରୀ) ମନୋଗ୍ରାହିଣୀ ।

ମନୋଗ୍ରାହ୍ୟ—ବିଂ. ( ମନସ୍+ଗ୍ରାହ୍ୟ ) ସୁଖଦୁଃଖାଦି (ଏ ସମସ୍ତ ମନରେ କେବଳ ଅନୁଭୂତ ହୁଏ ।

ମନୋଜ—ପୁଂ.ବି. (ମନସ୍+ଜନ୍+ଅ) ମନସିଜ, କାମ, (ବିଂ) ମନୋଜାତ, (ସ୍ତ୍ରୀ) ମନୋଜା ।

ମନୋଜଗତ୍(ତ)--ବି. (ମନସ୍+ଜଗତ) ମନୁଷ୍ୟର ଅନ୍ତରରେ ବା କଳ୍ପନା-ଚକ୍ଷୁରେ ଅଙ୍କିତ ବ୍ରହ୍ମାଣ୍ଡ ।

ମନୋଜନ୍ମା—ପୁଂ.ବି. (ବ.ବ୍ରୀ) କନ୍ଦର୍ପ, କାମଦେବ ।

ମନୋଜବ—ପୁଂ. ବି. ବିଷ୍ଣୁ, ମନର ବେଗ, ଅନଳ ପତ୍ନୀ, ଶିବାଙ୍କ ପୁତ୍ର, ରୁଦ୍ରଙ୍କର ପୁତ୍ରଭେଦ, ତୀର୍ଥବିଶେଷ ଷଷ୍ଠ ମନ୍ୱନ୍ତରର ଇନ୍ଦ୍ର, ମେଧାତିଥିଙ୍କ ପୁତ୍ର, ପିତୃତୁଲ୍ୟ, (ବିଂ-ବ.ବ୍ରୀ)ଅତିଶୟ ବେଗବାନ୍, (ସ୍ତ୍ରୀ) ମନୋଜବା ।

ମନୋଜବା—ସ୍ତ୍ରୀ.ବି. (ମନସ୍+ଜୁ+ଅ +ଆ) ଅଗ୍ନିଜିହ୍ୱାବିଶେଷ, ଅଗ୍ନିଜିହ୍ୱା ନାମ୍ନୀ ଦେବୀବିଶେଷ ।

ମନୋଜବୀ—ପୁଂ. ବିଂ. (ମନୋ+ଜବ୍ +ଇନ୍)ମନର ବେଗପରି ଶୀଘ୍ରଗାମୀ, (ସ୍ତ୍ରୀ) ମନୋଜବିନୀ ।

ମନୋଜବୃଦ୍ଧି—ସ୍ତ୍ରୀ.ବି. କାମବୃଦ୍ଧି କ୍ଷୁପ-ବିଶେଷ, (୬ତତ୍) କାମୋବୃଦ୍ଧି ।

ମନୋଜାତ—ପୁଂ. ବିଂ.(ମନସ୍+ଜାତ) ମନୋତ୍ପନ୍ନ, ମନରେ ଉଦିତ ହୋଇ-ଥିବା, ମାନସିକ, (ସ୍ତ୍ରୀ) ମନୋଜାତା ।

ମନୋଜିଘ୍ର—ତ୍ରି.ବିଂ. ଅନୁମାନଲବ୍ଧ ।

ମନୋଜ୍ଞ—ବିଂ. (ମନସ୍+ଜ୍ଞା+ମି.ଅ) ମନୋହର, ମନମୁଗ୍ଧକର, ଅତି ସୁନ୍ଦର, (ବି) ସରଳ କାଷ୍ଠ, କୁନ୍ଦବୃକ୍ଷ, (ଗ୍ରା.ବିଂ) ମନଗଢ଼ା, କଳ୍ପନାପ୍ରସୂତ, କାଳ୍ପନିକ, ମନୁଆ, (ସ୍ତ୍ରୀ) ମନୋଜ୍ଞା ।

ମନୋଜ୍ଞତା—ସ୍ତ୍ରୀ. ବି. (ମନୋଜ୍ଞ+ତ +ଆ) ମନୋଜ୍ଞର ଭାବ ବା ଧର୍ମ, ସୌନ୍ଦର୍ଯ୍ୟ ।

ମନୋଜ୍ଞସ୍ୱର—ପୁଂ.ବି. (ବ.ବ୍ରୀ) ଗନ୍ଧର୍ବ-ଭେଦ, (କ.ଧା) ସୁନ୍ଦର ସ୍ୱର ।

ମନୋଜ୍ଞା—ସ୍ତ୍ରୀ. ବି. ( ମନୋଜ୍ଞ+ଆ ) ମନୋହରା, ମନଃଶିଳା, କଳାଜୀରା, ଯାଇତ୍ରୀ, ମଦିରା,ରାଜପୁତ୍ରୀ,ଆବର୍ତ୍ତକୀ ।

ମନୋଦଣ୍ଡ—କ୍ଲୀ. ବି. (୬ତତ୍) ମାନସିକ ବୃତ୍ତି, ନିରୋଧଶକ୍ତି ।

ମନୋଦତ୍ତ--ବିଂ. ୩ତତ୍;ଦଆଯିବା ପାଇଁ ମନରେ ସଂକଳ୍ପିତ,(ସ୍ତ୍ରୀ)ମନୋଦତ୍ତା ।

ମନୋଦତ୍ତାକନ୍ୟା—ସ୍ତ୍ରୀ. ବି. ଯେଉଁ କନ୍ୟାକୁ କୌଣସି ବର ସହିତ ବିବାହ ଦେବାପାଇଁ କନ୍ୟାପିତା ସ୍ଥିରକରି-ଥାଆନ୍ତି ।

ମନୋଦାହୀ—ପୁଂ.ବିଂ. (ମନ+ଦହ୍+ଇନ୍) ମନଃପୀଡ଼ାଦାୟକ, ଯେ ମନକୁ ଦହନ କରେ, (ସ୍ତ୍ରୀ) ମନୋଦାହିନୀ ।

ମନୋଦୁଃଖ—ବି. ( ୬ତତ୍ ) ମାନସିକ ବେଦନା ବା ଅପ୍ରସନ୍ନତା ।

ମନୋଦୁଷ୍ଟ—ପୁଂ. ବିଂ. ଯାହାର ମନ ଦୂଷିତ ବା କଳୁଷିତ,(ସ୍ତ୍ରୀ)ମନୋଦୁଷ୍ଟା ।

ମନୋଦୃଷ୍ଟି—ବି. (୬ତତ୍) ମନୋନେତ୍ର, କୌଣସି ବିଷୟକୁ କଳ୍ପନା ନେତ୍ରରେ ଦେଖିବା । [ ବିବେକ ।

ମନୋଦେବତା—ବି.(୬ତତ୍) ଅନ୍ତରାତ୍ମା,

ମନୋବେଗ--ବି.(୬ତତ୍)ଚିତ୍ତର ଚାଞ୍ଚଲ୍ୟ

ମନୋଽଧିନାଥ—ପୁଂ.ବି.ପ୍ରାଣପତି,ସ୍ୱାମୀ ।

ମନୋଧୃତ—ତ୍ରି. ବିଂ. ସଂଯତମନସ୍କ, ଜିତେନ୍ଦ୍ରିୟ । [ ଧାନତା ।

ମନୋଽନବସ୍ଥାନ—କ୍ଲୀ.ବି.ଚିତ୍ତର ଅନବ-

ମନୋନୟନ—ବି.(୩ତତ୍)ଅନୁମୋଦନ, ପସନ୍ଦ କରିନେବା, ନିର୍ବାଚନ ।

ମନୋନାଶ—ପୁଂ. ବି. ମନର ନାଶ, ମନର ଲୟ ।

ମନୋନିବେଶ—ବି.(୬ତତ୍)ମନୋଯୋଗ ଅଭିନିବେଶ ।

ମନୋନୀତ—ବିଂ.(ମନସ୍+ନୀତ)ମନୋ-ମତ, ମନର ଅଭିଳଷିତ, ପସନ୍ଦ ।

ମନୋଽନୁଗ—ତ୍ରି. ବିଂ. (ମନସ୍+ଅନୁ+ଗମ୍+ଅ) ହୃଦୟାନୁଗ, ମନର ଅନୁ-ଗାମୀ, (ସ୍ତ୍ରୀ) ମନୋଽନୁଗା ।

ମନୋନେତ୍ର—ବି. (ରୂପ.କ.ଧା) ମନଃ-ଚକ୍ଷୁ, କଳ୍ପନାଚକ୍ଷୁ ।

ମନୋଽପହାରୀ—ପୁଂ.ବିଂ.(ମନସ୍+ଅପ୍ +ହୃ+ଇନ୍) ମନୋହାରୀ, ( ସ୍ତ୍ରୀ ) ମନୋଽପହାରିଣୀ ।

ମନୋଭଙ୍ଗ--ବି.(୬ତତ୍)ମନର ଅନୈକ୍ୟ, ମନାନ୍ତର, ଆଶାଭଙ୍ଗ, ବିଷାଦ, ବିଷ-ଣ୍ଣତା ।

ମନୋଭବ—ପୁଂ. ବି. (ମନସ୍+ଭୂ+କ.ଅ)କନ୍ଦର୍ପ,କାମ,(ବିଂ.)ମନରୁ ଉତ୍ପନ୍ନ ।

ମନୋଭାବ—ବି.(୬ତତ୍) ମନୋଗତଭାବ, ଆନ୍ତରିକ ଇଚ୍ଛା ।

ମନୋଽଭିନିବେଶ—ବି. (୬ତତ୍)ମନୋ-ନିବେଶ, ମନୋଯୋଗ ।

ମନୋଽଭିପ୍ରାୟ—ପୁଂ. ବି. ମନର ଅଭି-ଳାଷ, ଇଚ୍ଛା ।

ମନୋଽଭିରାମ—ପୁଂ.ବିଂ.ମନୋଜ୍ଞ,ସୁନ୍ଦର, (ବି) ଜନପଦ୍ଧତି ପ୍ରଣେତା ।

ମନୋଽଭିଳାଷ—ବି. (୬ତତ୍) ମନୋ-ବାସନା, ମନସ୍କାମନା, ହୃଦୟର ଇଚ୍ଛା ।

ମନୋଭିଳଷିତ—ବିଂ. (୩ତତ୍) ମନୋ-ଭୀଷ୍ଟ, ଇପ୍ସିତ, (ବି) ମନୋଽଭିଳାଷ ।

ମନୋଽଭୀଷ୍ଟ—ବିଂ.(୬ତତ୍) ଇପ୍ସିତ,(ବି-

ଷତତ୍ପୁ) ମନୋବାଞ୍ଛା, ମନୋରଥ ।
ମନୋଭୀଷ୍ଟଫଳ—ବି. (କ.ଧା) ଯେଉଁ ଫଳ ପାଇବାକୁ ମନୁଷ୍ୟ ବାଞ୍ଛା କରିଥାଏ ।
ମନୋଭୀଷ୍ଟଫଳପ୍ରଦ—ବିଂ. ଯେ ମନୋବାଞ୍ଛାନୁସାରେ ଫଳ ଦେଇପାରେ, (ସ୍ତ୍ରୀ) ଫଳପ୍ରଦା ।
ମନୋଭୀଷ୍ଟଫଳପ୍ରାପ୍ତି—ବି. (ଷତତ୍ପୁ) ମନୋବାଞ୍ଛାର ପୂରଣ ।
ମନୋଭୂ—ପୁଂ.ବି. (ମନସ୍+ଭୂ+କ୍ୱିପ୍) କାମଦେବ, ମନସିଜ ।
ମନୋଭୃତ୍—ବିଂ.ମନରେ ପୋଷଣକାରୀ ।
ମନୋମତ—ବିଂ. ଇଚ୍ଛାନୁରୂପ ।
ମନୋମଥନ—ପୁଂ.ବି. ମଦନ, କାମଦେବ
ମନୋମଦ—ବି.(ଷତତ୍ପୁ) ମାନସିକ ଗର୍ବ, ମନର ଅହଂକାର ।
ମନୋମୟ—ବି. ବିଂ. (ମନସ୍+ମୟଟ୍) ମନୋରୂପ, ମାନସିକ ।
ମନୋମୟକୋଷ—ବି. (ବେଦାନ୍ତଦର୍ଶନ) ମନୁଷ୍ୟର ଆତ୍ମାର ଆବରଣ ରୂପେ ଆତ୍ମାକୁ ବେଢ଼ି ରହିଥିବା ପାଞ୍ଚଗୋଟି କୋଷ ବା ଖୋଳ ମଧ୍ୟରୁ ଦ୍ୱିତୀୟକୋଷ
ମନୋମାଳିନ୍ୟ—ବି.(ଷତତ୍ପୁ)ମନୋାନ୍ତର ବା ମନୋବିବାଦ ।
ମନୋମୁଗ୍ଧକର—ବିଂ. (ମନସ୍+ମୁଗ୍ଧ+କୃ+କ.ଅ) ଯେ ବା ଯାହା ମନକୁ ମୋହିତ କରେ, (ସ୍ତ୍ରୀ) ମୁଗ୍ଧକରୀ ।
ମନୋମୁଷି—ବି. ବିଂ. ଆଧ୍ୟାତ୍ମିକାଦି ତାପକ୍ଲିଷ୍ଟ (ମନ) ।
ମନୋମୁହ୍—ବିଂ. ଉନ୍ମାଦକାରୀ, ମନୋମୋହନକାରୀ ।
ମନୋମୋହନ—ବିଂ. (ଷତତ୍ପୁ) ମନୋହର, ଅତିବ ରମଣୀୟ, (ସ୍ତ୍ରୀ) ମନୋମୋହିନୀ ।
ମନୋଯାୟୀ—ପୁଂ. ବିଂ. (ମନସ୍+ଯା+କ.ଇନ୍) ଇଚ୍ଛାମତ ଗମନକାରୀ, ମନପର ବେଗଶାଳୀ, (ସ୍ତ୍ରୀ) ମନୋଯାୟିନୀ ।
ମନୋଯୋଗ—ବି.(ଷତତ୍ପୁ)ମନଃସଂଯୋଗ, ଅଭିନିବେଶ, ମନୋନିବେଶ ।
ମନୋଯୋଗଆକର୍ଷଣକରିବା—ଗ୍ରା. କ୍ରି. କୌଣସିବିଷୟ ପ୍ରତି କୌଣସି ବ୍ୟକ୍ତିର ଦୃଷ୍ଟିକୁ ଆକର୍ଷଣ କରିବା ।
ମନୋଯୋଗକରିବା—ଗ୍ରା. କ୍ରି. କୌଣସି ବିଷୟ ପ୍ରତି ମନଦେବା ।
ମନୋଯୋଗୀ—ପୁଂ.ବିଂ. (ମନୋଯୋଗ+ଇନ୍) କୌଣସି ବିଷୟ ପ୍ରତି ଅଭିନିବେଶକାରୀ, (ସ୍ତ୍ରୀ) ମନୋଯୋଗିନୀ ।
ମନୋଯୋନି—ପୁଂ.ବି. (ବ.ବ୍ରୀ)ମନୋଭୂ, କନ୍ଦର୍ପ ।
ମନୋରଞ୍ଜକ—ବିଂ. (ଷତତ୍ପୁ) ଚିତ୍ତର ସନ୍ତୋଷସାଧକ, ମନର ପ୍ରଫୁଲ୍ଲତାଦାୟକ ।
ମନୋରଞ୍ଜନ—କ୍ଲୀ.ବି. ମନର ତୁଷ୍ଟିସମ୍ପାଦନ, ଚିତ୍ତର ସନ୍ତୋଷସାଧନ ।
ମନୋରଞ୍ଜିକା—ସ୍ତ୍ରୀ. ବିଂ. (ଷତତ୍ପୁ) ମନୋରଞ୍ଜନକାରିଣୀ, ଚିତ୍ତପ୍ରଫୁଲ୍ଲକାରୀ ।
ମନୋରଞ୍ଜିନୀ—ସ୍ତ୍ରୀ. ବିଂ. ମନୋରଞ୍ଜନକାରିଣୀ, ଚିତ୍ତ ସନ୍ତୋଷଦାୟିକା ।
ମନୋରଞ୍ଜୀ—ପୁଂ.ବିଂ. (ମନସ୍+ରଞ୍ଜ୍+ଇନ୍) ମନୋମୋହନ, ମନୋରଞ୍ଜକ. (ସ୍ତ୍ରୀ) ମନୋରଞ୍ଜିନୀ ।
ମନୋରଥ—ପୁଂ. ବି. (ମନସ୍+ରଥ) ମନର ବାଞ୍ଛା ବା ଅଭିଲାଷ, ମନସ୍କାମନା, ଇଚ୍ଛା, ଅଭିଳଷିତ ପଦାର୍ଥ ।
ମନୋରଥଗତି—ବି. ଯଥେଚ୍ଛା ଗମନଶକ୍ତି, (ଷତତ୍ପୁ) ମନର ଅଭିଲାଷର ଗତି, (ବିଂ-ବ.ବ୍ରୀ)ମନପର ଦ୍ରୁତଗାମୀ ।
ମନୋରଥତୃତୀୟା—ସ୍ତ୍ରୀ.ବି.ଚୈତ୍ରମାସର ଶୁକ୍ଳ ତୃତୀୟା, ଏହି ତିଥିରେ କର୍ତ୍ତବ୍ୟ ବ୍ରତବିଶେଷ ।
ମନୋରଥଦାୟକ—ବି.ବିଂ. ମନୋଭୀଷ୍ଟ ଫଳଦାୟକ, (ପୁଂ.ବି) କଳ୍ପବୃକ୍ଷ ।
ମନୋରଥଦ୍ୱାଦଶୀ—ବି. ଚୈତ୍ର ଶୁକ୍ଳଦ୍ୱାଦଶୀ, ଏହି ତିଥିରେ ଅନୁଷ୍ଠେୟ ବ୍ରତବିଶେଷ ।
ମନୋରଥଦ୍ୱିତୀୟା—ବି. ଆଷାଢ଼ ଶୁକ୍ଳଦ୍ୱିତୀୟା, ଗୁଣ୍ଡିଚା ଯାତ୍ରା ।
ମନୋରଥଦ୍ରୁମ—ପୁଂ.ବି. କାମଦେବ ।
ମନୋରଥସିଦ୍ଧି—ସ୍ତ୍ରୀ.ବି.ମନୋବାଞ୍ଛାର ସାଫଲ୍ୟ ।
ମନୋରଥସୃଷ୍ଟି—ସ୍ତ୍ରୀ. ବି. କାଳ୍ପନିକ ସୃଷ୍ଟି, ମନଗଢ଼ା ।
ମନୋରମ—ବି. ବିଂ. (ମନସ୍+ରମ+ଣିଚ୍+କ.ଅ) ମନୋଜ୍ଞ, ମନୋହର, ମନୋମୁଗ୍ଧକର, ସୁନ୍ଦର, (ଗ୍ରା.ବି) ଶୋଭା, ସୌନ୍ଦର୍ଯ୍ୟ ।
ମନୋରମା—ସ୍ତ୍ରୀ.ବି. (ମନୋରମ+ଆ) ଗୋରଚନା, ଇନ୍ଦୀବର ନାମକ ବିଦ୍ୟାଧର କନ୍ୟା, ସପ୍ତସରସ୍ୱତୀ ମଧ୍ୟରେ ଜଣେ, ଛନ୍ଦୋବିଶେଷ, ବୌଦ୍ଧ ଦେବତା ବିଶେଷ, କାର୍ତ୍ତବୀର୍ଯ୍ୟାର୍ଜୁନଙ୍କର ଧର୍ମପତ୍ନୀ, ଶାମଦ୍ଧୀ, ରୌଚ୍ୟମୁନିଙ୍କ ମାତା, (ସ୍ତ୍ରୀ.ବିଂ) ମନୋରମର ସ୍ତ୍ରୀଲିଙ୍ଗ ।
ମନୋରମ୍ୟ—ଗ୍ରା.ବିଂ.ରମଣୀୟ, ମନୋମୁଗ୍ଧକର ।
ମନୋର୍—ବୋମ୍ବାଇ ପ୍ରେସିଡ଼େନ୍ସୀର ଅନ୍ତର୍ଗତ କରଣ୍ଡୀ ଜିଲ୍ଲାର ଗୋଟିଏ ଅନ୍ତରୀପ ।
ମନୋର୍—ବି. (ରୂପକ.କ.ଧା) ଅନ୍ତଃକରଣ ରୂପ ରାଜତ୍ୱ, ହୃଦୟସ୍ଥ ରାଜ୍ୟ ।
ମନୋରି—ବୋମ୍ବାଇ ପ୍ରେସିଡେନ୍ସୀର ଥାନା ଜିଲ୍ଲାନ୍ତର୍ଗତ ଗୋଟିଏ ବନ୍ଦର ।
ମନୋଲୟ—ବି.(ଷତତ୍ପୁ)ମନର ନାଶ ।
ମନୋଲୁବ୍ଧକ—ବିଂ.ଯାହା ପ୍ରତି ମନରେ ଲୋଭ ଜାତହୁଏ, ଲୋଭଜନକ ।
ମନୋଲୋଭା—ସ୍ତ୍ରୀ. ବିଂ. (ମନସ୍+ଲୁଭ୍+କ.ଅ+ଆ) ମନର ଲୋଭଜନକା, ମନୋହର, ରମଣୀୟ ।
ମନୋଲୌଲ୍ୟ—କ୍ଲୀ.ବି. ଖାମଖିଆଲୀ, ମନର ଚଞ୍ଚଳ୍ୟ ।
ମନୋବତୀ—ସ୍ତ୍ରୀ. ବି ଅପ୍ସରାବିଶେଷ, ଚନ୍ଦ୍ରାଙ୍ଗଦ ବିଦ୍ୟାଧରଙ୍କ କନ୍ୟା, ଅସୁରପତି ସୁମାୟଙ୍କ କନ୍ୟା, ମେରୁଶେଖରସ୍ଥ ପୁରବିଶେଷ ।
ମନୋବାଞ୍ଛା—ବି. (ଷତତ୍ପୁ) ଇପ୍ସିତ, ଆନ୍ତରିକ ଇଚ୍ଛା ।

ମନୋବାଞ୍ଛାପୂରଣ—ବି.(୬ତତ୍)ମନରେ ବିଚାରିଥିବା ବାସନାର ସିଦ୍ଧି ।

ମନୋବାତ—ବି.(୬ତତ୍) ମନରବେଗ, ଚିତ୍ତର ବେଗ ।

ମନୋବିକାର—ବି.(୬ତତ୍)ମନର ବିକୃତି, ଚିତ୍ତର ଅସ୍ୱାଭାବିକ ଅବସ୍ଥା,ଚିତ୍ତବିଶୃଙ୍ଖଳା ।

ମନୋବିଚ୍ଛେଦ—ବି.(୬ତତ୍)ମନାନ୍ତର ।

ମନୋବିଜ୍ଞାନ—ବି. ଯେଉଁ ବିଜ୍ଞାନଶାସ୍ତ୍ର ଦ୍ୱାରା ମନୋବୃତ୍ତି ସମ୍ବନ୍ଧେ ଜ୍ଞାନ ଜନ୍ମେ ।

ମନୋବିଦ୍—ପୁଂ. ବିଂ. ମନୋଜ୍ଞ, ଯେ ମନୋଭାବ ଜାଣିପାରେ ।

ମନୋବିବାଦ—ବି.(୬ତତ୍) ମନୋନ୍ତର, ମନେ ମାଳିନ୍ୟ ।

ମନୋବିନୟନ—କ୍ଲୀ. ବି. ମନଃଶିକ୍ଷା ।

ମନୋବିରୁଦ୍ଧ—ତ୍ରି. ବିଂ. ମନରେ ଯାହା ଧାରଣା କରି ନ ଯାଏ, (ପୁଂ.ବି)ଦୈବ ପୁରୁଷ ଗଣଭେଦ ।

ମନୋବୃତ୍ତି—ସ୍ତ୍ରୀ. ବି. (୬ତତ୍) ମନର ବ୍ୟାପାର, ମନର କାର୍ଯ୍ୟ, ଇଚ୍ଛା, ଚିତ୍ତ-ବୃତ୍ତି, ଚିନ୍ତା, ସ୍ମରଣ, ମନନ, ଅନୁଧ୍ୟା-ନାଦି ମାନସିକ ବୃତ୍ତି ବା କାର୍ଯ୍ୟମାନ, (ପ୍ରା.ଗଞ୍ଜାମ.ବି) ସମ୍ପତ୍ତିରେ ଅଧିକାର ନ ଥିବା ବ୍ୟକ୍ତିର ଭରଣପୋଷଣାର୍ଥେ ନିର୍ଦ୍ଧାରିତ ଦେୟ ।

ମନୋବେଗ—ବି.(୬ତତ୍) ମନର ବେଗ ବା ଚଞ୍ଚଳତା, ଚିତ୍ତବିଶୃଙ୍ଖଳା, ମନପରି ଚଞ୍ଚଳଗତି, ମନୋବିକାର ।

ମନୋବେଦନା—ବି. (୬ତତ୍)ମାନସିକ ଯାତନା, ଅନ୍ତରର ଦୁଃଖ, ମନୋଦୁଃଖ

ମନୋହତ—ତ୍ରି. ବିଂ. (ମନସ୍+ହତ) ପ୍ରତିହତ, ଭଗ୍ନମାନା ।

ମନୋହର—ତ୍ରି.ବିଂ(ମନୋ+ହୃ+ଅ) ମନୋଜ୍ଞ, ସୁନ୍ଦର, ଚିତ୍ତାକର୍ଷକ, (ସ୍ତ୍ରୀ) ମନୋହରା, (ବି) କୁନ୍ଦବୃକ୍ଷ, ସୁବର୍ଣ୍ଣ, (ଗ୍ରା.ବି) ଲିଆକୁ ଚିନାକର ଗୁଡ଼ରେ ପାଗ କରିଯାଇ କରାହୋଇଥିବା ମୁଆଁ ।

ମନୋହରଣ—ବି.(୬ତତ୍) ଚିତ୍ତାକର୍ଷଣ, ମନରେ ଅନୁରାଗ ଉତ୍ପାଦନ ।

ମନୋହରଫାଶିଆରିପାଲ—ଗ୍ରା.ବି.ସତ୍ୟପୀର ପାଲାର ଗୋଟିଏ ଗଳ୍ପ ।

ମନୋହରା—ସ୍ତ୍ରୀ. ବି. (ମନୋହର+ଆ) ଜାଇଫୁଲ, ସୁବର୍ଣ୍ଣ, ଯୂଥିକା, ଯୂଇଫୁଲ, ଅପ୍ସରାବିଶେଷ,(ସ୍ତ୍ରୀ.ବିଂ) ଚିତ୍ତାକର୍ଷିକା, ମନୋରମା, ରମଣୀୟା, ସୁନ୍ଦରୀ ।

ମନୋହରି—ଯା. ବି. ମନୋଆରି ଦେଖ ।

ମନୋହର୍ତ୍ତା—ପୁଂ. ବିଂ. (ମନସ୍+ହର୍ତ୍ତୃ) ମନୋହରଣକର୍ତ୍ତା, ଚିତ୍ତାକର୍ଷକ, (ସ୍ତ୍ରୀ) ମନୋହର୍ତ୍ତ୍ରୀ ।

ମନୋହାରିତା(ତ୍ୱ)—ବି. ସୌନ୍ଦର୍ଯ୍ୟ ।

ମନୋହାରୀ—ପୁଂ.ବିଂ. (ମନସ୍+ହୃ+କ.ଇନ୍)ଚିତ୍ତାକର୍ଷକ,(ସ୍ତ୍ରୀ)ମନୋହାରିଣୀ

ମନୋହ୍ଲାଦ—ପୁଂ.ବି. ମନର ଆମୋଦ, ମନସ୍ତୁଷ୍ଟି । [ ସୁଖକର ।

ମନୋହ୍ଲାଦୀ—ପୁଂ.ବିଂ. ସୁନ୍ଦର, ମନର

ମନୋହ୍ୱା—ସ୍ତ୍ରୀ.ବି. (ମନସ୍+ହ୍ୱେ+ଅ+ଆ) ମନଃଶିଳା ।

ମନ୍ତ—ଗ୍ରା.ବିଂ.ପ୍ରତ୍ୟୟ, (ସଂ-ମତ୍ ପ୍ରତ୍ୟ-ୟର ଅପଭ୍ରଂଶ,ଯଥା-ଗୁଣମନ୍ତଇତ୍ୟାଦି, ଯାହାର ଅଛି, (ଗ୍ରା.ଅ) ପ୍ରତ୍ୟୟ ସର୍ବ-ନାମ ସଙ୍ଗେ ଯୁକ୍ତ, (ଯଥା—ଏମନ୍ତ, କେମନ୍ତ, ଯେ, ପ୍ରକାରେ) ।

ମନ୍ତବ୍ୟ—ତ୍ରି. ବିଂ. (ମନ୍+ର୍ମ.ତବ୍ୟ) ମନନୀୟ, କଳ୍ପନୀୟ, ବିଚାର୍ଯ୍ୟ, ଚିନ୍ତ-ନୀୟ, ବିବେଚନା ଯୋଗ୍ୟ, ମାନନୀୟ, (ଗ୍ରା.ବି)ଅଭିମତ, ପ୍ରକାଶିତ ଅଭିପ୍ରାୟ, ମତ । [ କରିବା ।

ମନ୍ତବ୍ୟଦେବା—ଗ୍ରା.କ୍ରି.ଅଭିମତ ପ୍ରକାଶ

ମନ୍ତର—ଗ୍ରା. (ପଦ୍ୟ)ବି. ମନ୍ତ୍ର ଦେଖ ।

ମନ୍ତା—ପୁଂ. ବିଂ. (ମନ୍+କ.ତୃ)ମନନ-କାରୀ, ଅନୁଚିନ୍ତନକାରୀ, ମନ୍ତ୍ରଣାଦାତା, ମନ୍ତ୍ରୀ, (ସ୍ତ୍ରୀ) ମନ୍ତ୍ରୀ ।

ମନ୍ତି—ସ୍ତ୍ରୀ. ବି. (ମନ୍+ତି)ମତି ।

ମନ୍ତୁ—ପୁଂ. ବି. (ମନ୍+ତୁ) ଅପରାଧ, ମନୁଷ୍ୟ,ପ୍ରଜାପତି,ରାଜା,ଈର୍ଷା,କୋପ ।

ମନ୍ତୁମାନ୍—ପୁଂ. ବି. (ମନ୍ତୁ+ମତ୍)ଜ୍ଞାନ-ଯୁକ୍ତ, ଜ୍ଞାନୀ, (ସ୍ତ୍ରୀ) ମନ୍ତୁମତୀ ।

ମନ୍ତୁରି—ଗ୍ରା.ବି. ଅଭିମନ୍ତ୍ରଣ,(ବିଂ) ଅଭି-ମନ୍ତ୍ରିତ ।

ମନ୍ତ୍ର—ପୁଂ.ବି.(ମନ୍ତ୍ର+ଅ)ବୈଦିକ ଉପା-ସନାରେ ବ୍ୟବହୃତ ଦେବତାବିଶେଷ-ଙ୍କର ଉପଯୁକ୍ତ ବାକ୍ୟ ବା ପଦ,ମନ୍ତ୍ରଣା, ଗୁପ୍ତବିଚାର, ସନ୍ଧି ବିଗ୍ରହାଦି ବିଷୟକ ରାଜନୀତିକ ଗୁପ୍ତ ବିଚାର,ବଶୀକରଣାଦି ଅଭିଚାର ନିମନ୍ତେ ପ୍ରଯୁଜ୍ୟ ତନ୍ତ୍ରୋକ୍ତ ଭିନ୍ନଭିନ୍ନ ପଦମାନ, ରହସ୍ୟ, ଗୁପ୍ତ-କଥା, ଗୁରୁଦତ୍ତ ଦୀକ୍ଷାପଦ, କୌଣସି କର୍ମର ମୂଳନୀତି, ବେଦର ଅଂଶ-ବିଶେଷ, ସଂହିତା, ଭିନ୍ନଭିନ୍ନ ବୈଦିକ ଉପଚାର ପାଇଁ ଉଚ୍ଚାରିତ ପଦମନ୍ତ୍ର ।

ମନ୍ତ୍ରକରିବା—ଗ୍ରା. କ୍ରି. ମନ୍ତ୍ର ପ୍ରୟୋଗ କରିବା, ମନ୍ତ୍ର ପ୍ରୟୋଗ ଦ୍ୱାରା ଅଭିଚାର କରିବା ।

ମନ୍ତ୍ରକାର—ପୁଂ.ବି. (ମନ୍ତ୍ର+କୃ+କ.ଅ) ମନ୍ତ୍ରର ରଚକ ।

ମନ୍ତ୍ରକୁଶଳ—ପୁଂ. ବିଂ. (୭ତତ୍) ମନ୍ତ୍ରଣା ବିଷୟରେ ଦକ୍ଷ, ମନ୍ତ୍ରଜ୍ଞ, ତନ୍ତ୍ରମନ୍ତ୍ରରେ ପାରଦର୍ଶୀ, (ସ୍ତ୍ରୀ) ମନ୍ତ୍ରକୁଶଳା ।

ମନ୍ତ୍ରକୃତ୍—ପୁଂ. ବିଂ. (ମନ୍ତ୍ର+କୃ+କ୍ୱିପ୍) ମନ୍ତ୍ରପ୍ରୟୋଗକାରୀ, ପରାମର୍ଶକାରୀ, ଦୌତ୍ୟକାରୀ, ମନ୍ତ୍ରପ୍ରଣେତା ମନ୍ତ୍ରୀ ।

ମନ୍ତ୍ରଗୁପ୍ତ—ପୁଂ.ବି.ଦଶକୁମାର ଚରିତର ଜଣେ କୁମାର ।

ମନ୍ତ୍ରଗୁପ୍ତି—ସ୍ତ୍ରୀ. ବି. (୬ତତ୍) ମନ୍ତ୍ରଣା-ଗୋପନ, ମନ୍ତ୍ରଣାକୁ ପ୍ରକାଶ ନ କରି ମନେ ମନେ ରଖିବା ।

ମନ୍ତ୍ରଗୁରୁ—ବି. (କ.ଧା)ଦୀକ୍ଷାଗୁରୁ ।

ମନ୍ତ୍ରଗୂଢ଼—ପୁଂ. ବି. (ବ.ବ୍ରୀ) ଗୁପ୍ତଚର ।

ମନ୍ତ୍ରଗୃହ—କ୍ଲୀ. ବି. ମନ୍ତ୍ରଣାଗାର, ଯେଉଁ ଘରେ ମନ୍ତ୍ରଣା କରାଯାଏ ।

ମନ୍ତ୍ରଗ୍ରହଣ—ବି. (୬ତତ୍) ଗୁରୁଙ୍କଠାରୁ ଶିଷ୍ୟର ବା ଶିଷ୍ୟାର ଇଷ୍ଟମନ୍ତ୍ର ନେବା କର୍ମ, ଗୁରୁଙ୍କଠାରୁ ଦୀକ୍ଷାଗ୍ରହଣ ।

ମନ୍ତ୍ରଚୈତନ୍ୟ—ବି.(୬ତତ୍)ଜପା ହେଉ-ଥିବା ମନ୍ତ୍ରରେ ନିର୍ଦ୍ଦିଷ୍ଟ କ୍ରିୟାମାନଙ୍କ ଦ୍ୱାରା ପ୍ରବେଶିତ ଜୀବନୀଶକ୍ତି ।

ମନ୍ତ୍ରଜ(ଜା)ପ—ବି. (୬ତତ୍) କୌଣସି ମନ୍ତ୍ରର ବାରମ୍ବାର ମାନସିକ ସ୍ମରଣ ।

ମନ୍ତ୍ରଜପିବା—ଗ୍ରା. କ୍ରି. କୌଣସି ମନ୍ତ୍ରକୁ ବାରମ୍ବାର ସ୍ମରଣ କରିବା ।

ମନ୍ତ୍ରଜଳ—କ୍ଲୀ.ବି. ମନ୍ତ୍ରଦ୍ୱାରା ପବିତ୍ରୀକୃତ ଜଳ, ମନ୍ତ୍ରୋଦକ ।

ମନ୍ତ୍ରଜା—ସ୍ତ୍ରୀ.ବି. (ମନ୍ତ୍ର+ଜନ୍+ଅ+ଆ) ମନ୍ତ୍ରଶକ୍ତି ।

ମନ୍ତ୍ରଜିହ୍ୱ—ପୁଂ.ବି. (ବ.ଗ୍ରା) ଅଗ୍ନି ।

ମନ୍ତ୍ରଜ୍ଞ—ପୁଂ.ବିଂ. (ମନ୍ତ୍ର+ଜ୍ଞା+ଅ) ଯେ ଉତ୍ତମରୂପେ ମନ୍ତ୍ରଣା ଜାଣେ, (ବି) ମନ୍ତ୍ରୀ, ଦୀକ୍ଷାଗୁରୁ, ଗୁପ୍ତଚର, (ସ୍ତ୍ରୀ) ମନ୍ତ୍ରଜ୍ଞା ।

ମନ୍ତ୍ରଣ—କ୍ଲୀ.ବି. (ମନ୍ତ୍ର+ଅନ) ମନ୍ତ୍ରଣା, ପରାମର୍ଶ, ସଲ୍ଲା, କୌଣସି ବିଷୟରେ ଏକାଧିକ ଲୋକଙ୍କ ମିଳିତ ବିଚାର, ପରାମର୍ଶ ଦେବା, (ଗ୍ରା.ବି) ଅଭିମନ୍ତ୍ରଣ ।

ମନ୍ତ୍ରଣା—ସ୍ତ୍ରୀ. ବି. (ମନ୍ତ୍ର+ଅନ+ଆ) ନିର୍ଜନରେ କର୍ତ୍ତବ୍ୟାବଧାରଣ, ମନ୍ତ୍ର, ଏକାଧିକ ବ୍ୟକ୍ତିଙ୍କ ମଧ୍ୟରେ ଗୁପ୍ତ ପରାମର୍ଶ ।

ମନ୍ତ୍ରଣାକରିବା—ଗ୍ରା.କ୍ରି. ଏକାଧିକ ଲୋକ ମିଳି ଗୁପ୍ତ ପରାମର୍ଶ କରିବା ।

ମନ୍ତ୍ରଣାଦେବା—ଗ୍ରା.କ୍ରି. ଗୁପ୍ତରେ ପରାମର୍ଶ ଦେବା ।

ମନ୍ତ୍ରତଃ—ଅବ୍ୟ. ମନ୍ତ୍ରରୁ ।

ମନ୍ତ୍ରତନ୍ତ୍ର—ଗ୍ରା.ବି. ମନ୍ତ୍ର ଓ ତାନ୍ତ୍ରିକ ବିଧିଦ୍ୱାରା ଦେବାରାଧନା ।

ମନ୍ତ୍ରତୋୟ—କ୍ଲୀ.ବି. ମନ୍ତ୍ରଜଳ, ଅଭିମନ୍ତ୍ରିତ ଜଳ ।

ମନ୍ତ୍ରଦ—ପୁଂ.ବି. (ମନ୍ତ୍ର+ଦା+ଅ) ଶିଷ୍ୟ କର୍ଣ୍ଣରେ ଶିଷ୍ୟମାନଙ୍କର କୁଳଦେବତାନୁସାରେ ଇଷ୍ଟମନ୍ତ୍ର ଦାତା, ଗୁରୁଦେବତା ।

ମନ୍ତ୍ରଦର୍ଶୀ—ପୁଂ. ବିଂ. (ମନ୍ତ୍ର+ଦୃଶ୍+ଇନ୍) ବେଦବିତ୍, ମନ୍ତ୍ରଦ୍ରଷ୍ଟା ।

ମନ୍ତ୍ରଦାତା—ପୁଂ. ବିଂ. ମନ୍ତ୍ରଦାନକର୍ତ୍ତା, ଯେ ମନ୍ତ୍ର ଦିଅନ୍ତି, (ସ୍ତ୍ରୀ) ମନ୍ତ୍ରଦାତ୍ରୀ, (ବି) ଗୁରୁ, ଆଚାର୍ଯ୍ୟ, ଇଷ୍ଟଦେବତା ।

ମନ୍ତ୍ରଦାନ—ବି. (୬ତତ୍) ମନ୍ତ୍ରପ୍ରଦାନ ଦେଖ ।

ମନ୍ତ୍ରଦୀଧିତି—ପୁଂ.ବି. (ବ.ଗ୍ରା) ଅଗ୍ନି ।

ମନ୍ତ୍ରଦୃକ୍—ପୁଂ.ବିଂ. (ମନ୍ତ୍ର+ଦୃଶ୍+କ୍ୱିପ୍) ମନ୍ତ୍ରଦ୍ରଷ୍ଟା (ଋଷି) । [ଦେବତା ।

ମନ୍ତ୍ରଦେବତା—ସ୍ତ୍ରୀ. ବି. ମନ୍ତ୍ରାଧିଷ୍ଠାତ୍ରୀ

ମନ୍ତ୍ରଦ୍ରଷ୍ଟା—ପୁଂ.ବିଂ. କୌଣସି ବୈଦିକ ମନ୍ତ୍ରକୁ ପ୍ରଥମେ ପ୍ରକାଶ ବା ଉଚ୍ଚାରଣ କରିଥିବା (ଋଷି), ବେଦଜ୍ଞ । [ଇନ୍ଦ୍ର ।

ମନ୍ତ୍ରଦ୍ରୁମ—ପୁଂ. ବି. ସ୍ୱାରୋଚିଷ ମନ୍ୱନ୍ତରର

ମନ୍ତ୍ରଧର—ପୁଂ. ବିଂ. (ମନ୍ତ୍ର+ଧୃ+ଅ) ମନ୍ତ୍ରୀ, ମନ୍ତ୍ରଣାକୁଶଳ ।

ମନ୍ତ୍ରଧାରୀ—ପୁଂ.ବି. ସଚିବ, ମନ୍ତ୍ରଣାଭିଜ୍ଞ ।

ମନ୍ତ୍ରଧୂଳି—ଗ୍ରା. ବି. ଯେଉଁ ଧୂଳି ମନ୍ତ୍ରପୂତ ହୋଇଥାଏ, ଅଭିମନ୍ତ୍ରିତ ଧୂଳି ।

ମନ୍ତ୍ରନେବା—ଗ୍ରା. କ୍ରି. ମନ୍ତ୍ରଗ୍ରହଣକରିବା, ଗୁରୁଙ୍କଠାରୁ ଇଷ୍ଟମନ୍ତ୍ରର ଦୀକ୍ଷାପାଇବା ।

ମନ୍ତ୍ରପତି—ପୁଂ. ବି. ମନ୍ତ୍ରାଧିଷ୍ଠିତ ଦେବବିଶେଷ ।

ମନ୍ତ୍ରପତ୍ର—କ୍ଲୀ. ବି. ମନ୍ତ୍ରଲିଖିତ ପତ୍ର, ଯହିଁରେ ମନ୍ତ୍ର ବିଷୟ ଲେଖାଥାଏ ।

ମନ୍ତ୍ରପୁରଶ୍ଚରଣ—ବି. (୬ତତ୍) ଅଭୀଷ୍ଟ ସିଦ୍ଧି ନିମନ୍ତେ ବିଧିପୂର୍ବକ ମନ୍ତ୍ରଜପ ।

ମନ୍ତ୍ରପୂତ—ବିଂ. (୩ତତ୍) ମନ୍ତ୍ରଦ୍ୱାରା ପବିତ୍ରୀକୃତ ।

ମନ୍ତ୍ରପୂତାତ୍ମା—ପୁଂ.ବି. (ବ.ଗ୍ରା) ଗରୁଡ଼ ।

ମନ୍ତ୍ରପ୍ରଦାନ—ବି. (୬ତତ୍) ଗୁରୁ ଶିଷ୍ୟକୁ ଇଷ୍ଟମନ୍ତ୍ରଦେବା ।

ମନ୍ତ୍ରପ୍ରୟୋଗ—ପୁଂ.ବି. (୬ତତ୍) କୌଣସି ବିଶେଷ ଉଦ୍ଦେଶ୍ୟରେ ଲାଭାର୍ଥ ମନ୍ତ୍ରର ବ୍ୟବହାର ।

ମନ୍ତ୍ରଫଳ—କ୍ଲୀ.ବି. ମନ୍ତ୍ରର ଉଦ୍ଦେଶ୍ୟ ।

ମନ୍ତ୍ରଭେଦ—ପୁଂ.ବି. ମନ୍ତ୍ରଣା ବ୍ୟର୍ଥକରଣ

ମନ୍ତ୍ରମୟ—ତ୍ରି.ବିଂ. (ମନ୍ତ୍ର+ମୟ) ମନ୍ତ୍ରାତ୍ମକ, ମନ୍ତ୍ରସ୍ୱରୂପ ।

ମନ୍ତ୍ରଭବନ—ବି. (୬ତତ୍) ମନ୍ତ୍ରଣାଗୃହ, ପରାମର୍ଶ ଗୃହ ।

ମନ୍ତ୍ରମୁଗ୍ଧ—ପୁଂ. ବିଂ. (୩ତତ୍) ମନ୍ତ୍ରର ପ୍ରଭାବରେ ବଶୀଭୂତ ।

ମନ୍ତ୍ରମୂର୍ତ୍ତି—ପୁଂ.ବି. ଶିବଙ୍କର ନାମାନ୍ତର

ମନ୍ତ୍ରମୂଳ—ବି.(ବ.ଗ୍ରା) ରାଜ୍ୟ ରାଜ୍ୟରକ୍ଷାର ମନ୍ତ୍ରଣା ଯାହାର ପ୍ରଧାନ କାରଣ, ମନ୍ତ୍ରର ଉପାସନା, ମନ୍ତ୍ର ଓ ତନ୍ତ୍ର ସିଦ୍ଧ୍ୟର୍ଥ ବ୍ୟବହୃତ ରେଖା, ଚିହ୍ନାଦି, (ଗ୍ରା.ବି) ତାନ୍ତ୍ରିକ ଅଭିଚାର, ଗୁଣିଗାରେଡ଼ି ।

ମନ୍ତ୍ରଯାନ—ବି. ଖ୍ରୀଷ୍ଟୀୟ ୭ମ ଶତାବ୍ଦୀରେ ଭାରତରେ ପ୍ରଚଳିତ ମନ୍ତ୍ରାତ୍ମକ ମତଭେଦ, ବୌଦ୍ଧ ଧର୍ମର ଶାଖାବିଶେଷ ।

ମନ୍ତ୍ରଯୁକ୍ତି—ସ୍ତ୍ରୀ.ବି. ମନ୍ତ୍ରର ପ୍ରୟୋଗ ।

ମନ୍ତ୍ରଯୋଗ—ପୁଂ.ବି. ମନ୍ତ୍ରପ୍ରୟୋଗ, ମନ୍ତ୍ରପାଠ କରିବା ।

ମନ୍ତ୍ରରାଜ—ବି. ମନ୍ତ୍ରମାନଙ୍କ ମଧ୍ୟରେ ଶ୍ରେଷ୍ଠ ମନ୍ତ୍ର, ଓଁ ଶ୍ରୀଂ କ୍ଲୀଂ ହ୍ଲୀଂ ଗୋପୀଜନ ବଲ୍ଲଭାୟ ନମଃ, ଓଁ କ୍ଲୀଂ ହ୍ଲୀଂ ଶ୍ରୀଂ ।

ମନ୍ତ୍ରବତ୍—ଅ. ମନ୍ତ୍ରସଦୃଶ, ମନ୍ତ୍ରପର ।

ମନ୍ତ୍ରବଳ—ବି. (୬ତତ୍) ମନ୍ତ୍ରର ପ୍ରଭାବ, ମନ୍ତ୍ରଶକ୍ତି ।

ମନ୍ତ୍ରବାଦୀ—ପୁଂ.ବିଂ. (ମନ୍ତ୍ର+ବଦ୍+ଇନ୍) ମନ୍ତ୍ରଜ୍ଞ, ଯେ ମନ୍ତ୍ର ଉଚ୍ଚାରଣ କରେ, (ସ୍ତ୍ରୀ) ମନ୍ତ୍ରବାଦିନୀ ।

ମନ୍ତ୍ରବିତ୍—ପୁଂ.ବି. ବିଂ. (ମନ୍ତ୍ର+ବିଦ୍+କ୍ୱିପ୍) ମନ୍ତ୍ରଜ୍ଞ ଦେଖ ।

ମନ୍ତ୍ରବିଦ୍ୟା—ବି. (କ.ଧା) ଯେଉଁ ବିଦ୍ୟା ସାହାଯ୍ୟରେ ମନ୍ତ୍ରାଦିର ପ୍ରୟୋଗ ଶିକ୍ଷା କରାଯାଏ, ତନ୍ତ୍ର ।

ମନ୍ତ୍ରବୀଜ—କ୍ଲୀ. ବି. (୬ତତ୍) ମୂଳମନ୍ତ୍ର ।

ମନ୍ତ୍ରସଂସ୍କାର—ପୁଂ. ବି. (୩ତତ୍) ମନ୍ତ୍ରର ଦଶବିଧ ସଂସ୍କାର, ମନ୍ତ୍ରକୁ ଫଳପ୍ରଦ କରିବା ପାଇଁ ଆଚରିତ ତନ୍ତ୍ରୋକ୍ତ କ୍ରିୟାବିଶେଷ, ବିବାହ ରୂପସଂସ୍କାର ।

ମନ୍ତ୍ରସଂସ୍କାରକୃତ୍—ପୁଂ.ବି.(ମନ୍ତ୍ର+ସଂସ୍କାର+କୃ+କ୍ୱିପ୍) ପତି, ସ୍ୱାମୀ ।

ମନ୍ତ୍ରସଂକ୍ରିୟା—ସ୍ତ୍ରୀ. ବି. ମନ୍ତ୍ରର ଦଶବିଧ ସଂସ୍କାର ।

ମନ୍ତ୍ରସଂହିତା—ସ୍ତ୍ରୀ.ବି. ବୈଦିକ ମନ୍ତ୍ରସଂଗ୍ରହ, ମନ୍ତ୍ରମାନ ବେଦର ଯେଉଁ ଅଂଶରେ ସଂଗୃହୀତ ହୋଇଅଛି ।

ମନ୍ତ୍ରସାଧନ—ବି. (୬ତତ୍) ମନ୍ତ୍ର ଦ୍ୱାରା ଅଭିଲଷିତ ବିଷୟ ସିଦ୍ଧି, ମନ୍ତ୍ରର ଉପାସନା ।

ମନ୍ତ୍ରସାଧିବା—ଗ୍ରା.କ୍ରି. ମନ୍ତ୍ରସାଧନ କରିବା ।

ମନ୍ତ୍ରସାଧ୍ୟ—ତ୍ରି. ବିଂ. ଯାହା ମନ୍ତ୍ର ଦ୍ୱାରା ସାଧନ କରାଯାଏ ।

ମନ୍ତ୍ରସିଦ୍ଧ—ପୁଂ.ବିଂ. (୩ତତ୍) ମନ୍ତ୍ର ଦ୍ୱାରା ସିଦ୍ଧ, (ବ.ବ୍ରୀ) ଯାହାର ମନ୍ତ୍ର ସଫଳ ହୋଇଅଛି ।

ମନ୍ତ୍ରସିଦ୍ଧି—ସ୍ତ୍ରୀ.ବି.(୬ତତ୍) ମନ୍ତ୍ରର ସାଧନାରେ ସଫଳତା ଲାଭ ।

ମନ୍ତ୍ରସୂତ୍ର—ବି. (କ.ଧା) ସୂତ୍ର ଗ୍ରଥିତ ମନ୍ତ୍ର, ଅଭିମନ୍ତ୍ରିତ ବା ମନ୍ତ୍ରପୂତ ସୂତା, ଯାହାକୁ ଧାରଣ କରିବାକୁ ହୁଏ, ବଳିତ ।

ମନ୍ତ୍ରସ୍ପୃଷ୍ଟ—ତ୍ରି.ବିଂ. ମନ୍ତ୍ରଦ୍ୱାରା ସ୍ପର୍ଶକାରୀ ।

ମନ୍ତ୍ରାରାଧନା—କ୍ଲୀ. ବି. (୬ତତ୍) ମନ୍ତ୍ରର ଆରାଧନା ।

ମନ୍ତ୍ରାବଳୀ—ସ୍ତ୍ରୀ. ବି. (୬ତତ୍)ମନ୍ତ୍ରସମୂହ ।

ମନ୍ତ୍ରିକ—ପୁଂ. ବି. (ମନ୍ତ୍ରିକ + କ)ମନ୍ତ୍ରୀ ।

ମନ୍ତ୍ରିକା—ସ୍ତ୍ରୀ. ବି.ଉପନିଷଦ୍‌ଭେଦ, ମନ୍ତ୍ରିକୋପନିଷଦ୍ (ଗ୍ରା.ବି)ମନ୍ତ୍ର ଦେଖ ।

ମନ୍ତ୍ରିତ—ବି. (ମନ୍ତ୍ର+ସଂ.ତ) ମନ୍ତ୍ର ଦ୍ୱାରା ସଂସ୍କୃତ, ଅଭିମନ୍ତ୍ରିତ, ପରାମର୍ଶପୂର୍ବକ ସ୍ଥିରୀକୃତ ।

ମନ୍ତ୍ରିତା(ତ୍ୱ)—ବି.(ମନ୍ତ୍ରିନ୍+ତା.ତ୍ୱ)ମନ୍ତ୍ରର କାର୍ଯ୍ୟ, ପରାମର୍ଶ ଦାତୃତ୍ୱ,ସଚିବର ପଦ

ମନ୍ତ୍ରିପତି—ପୁଂ. ବି. (୬ତତ୍) ମନ୍ତ୍ରିବର, ଶ୍ରେଷ୍ଠ ମନ୍ତ୍ରୀ ।

ମନ୍ତ୍ରିପ୍ରଧାନ—ପୁଂ.ବି.(୬ତତ୍)ମନ୍ତ୍ରିଶ୍ରେଷ୍ଠ ।

ମନ୍ତ୍ରିମୁଖ୍ୟ—ପୁଂ. ବି. ପ୍ରଧାନ ମନ୍ତ୍ରୀ ।

ମନ୍ତ୍ରିବଂଶ—ନାରେଗମ ରଙ୍ଗରେ ମନ୍ତ୍ରିବଂଶର ଆଦ୍ୟପୁରୁଷ ।

ମନ୍ତ୍ରିବର—ପୁଂ.ବି.(ମନ୍ତ୍ରିନ୍+ବର)ମନ୍ତ୍ରିଶ୍ରେଷ୍ଠ, ପ୍ରଧାନମନ୍ତ୍ରୀ ।

ମନ୍ତ୍ରୀ—ପୁଂ.ବିଂ.(ମନ୍ତ୍ର+ଇନ୍) କର୍ତ୍ତବ୍ୟ ନିଷ୍ପତ୍ତିକର୍ତ୍ତା, ଯେ ମନ୍ତ୍ରଣାର ଅବଧାରଣା କରେ, (ସ୍ତ୍ରୀ) ମନ୍ତ୍ରିଣୀ, (ପୁଂ.ବି)ସଚିବ ।

ମନ୍ତ୍ରୀ—ସ୍ତ୍ରୀ. ବିଂ. (ମନ୍ତ୍ର+ଈ) ମନ୍ତ୍ରକର୍ତ୍ତ୍ରୀ, ମନ୍ତ୍ରଦାତ୍ରୀ । [ ପାଣି ।

ମନ୍ତ୍ରୋଦକ—ସ୍ତ୍ରୀ.ବି.ମନ୍ତ୍ରପୂତ ଜଳ, ମନ୍ତ୍ରବ

ମନ୍ଥ—(ଧାତୁ) ମନ୍ଥନ କରିବା, ମୋହିଁବା, ବିଲୋଡ଼ନ କରିବା, ପ୍ରତିଘାତ, ହିଂସା, ପୀଡ଼ାଦେବା ।

ମନ୍ଥ—ପୁଂ.ବି. (ମନ୍ଥ + ଅ) ମନ୍ଥନ ଦଣ୍ଡ, ଖୁଆବାଡ଼ି, ବିଲୋଡ଼ନ, ନେତ୍ରରୋଗବିଶେଷ, ଅଣ୍ଡକ, ନେତ୍ରମଳ, ବିନାଶ, ବଧ, ଜଳ ମିଶ୍ରିତ ଘୃତାକ୍ତ ଛତୁଆ, ସୂର୍ଯ୍ୟ, ସୂର୍ଯ୍ୟକିରଣ,ଘର୍ଷଣ ଦ୍ୱାରା ଅଗ୍ନି ଉତ୍ପାଦକ ଯନ୍ତ୍ର, ଅରଣି, ଏକପ୍ରକାର ମୃଗ ।

ମନ୍ଥକ—ପୁଂ.ବିଂ.ମନ୍ଥନକାରୀ, (ବି)ଋଷିଭେଦ, ତଦ୍‌ବଂଶଧରଗଣ ।

ମନ୍ଥଗିରି—ବି. (କ.ଧା)ମନ୍ଥର ପର୍ବତ ।

ମନ୍ଥଗୁଣ—ବି. (କ.ଧା) ଖୁଆବାଡ଼ିରେ ଲାଗିଥିବା ଦଉଡ଼ି ।

ମନ୍ଥଜ—କ୍ଲୀ. ବି. (ମନ୍ଥ + ଜନ୍ + କ.ଅ) ନବନୀତ, ଲହୁଣୀ ।

ମନ୍ଥଡ଼—ଗ୍ରା.ବି. (ସଂ-ମନ୍ଥର)ଅନ୍ତର୍ବିବାଦ, ପାରିବାରିକ କଳହ, ବାଧା,ପ୍ରତିବନ୍ଧକ, (ବିଂ) ଯେ ଅନ୍ୟାନ୍ୟମାନଙ୍କ ମଧ୍ୟରେ କଳି ଲଗାଏ, ପର ଘରଭଙ୍ଗା ।

ମନ୍ଥଡ଼ା(ଡ଼ୀ)—ଗ୍ରା. ସ୍ତ୍ରୀ. ବି. ମନ୍ଥଡ଼ର ସ୍ତ୍ରୀଲିଙ୍ଗ, ମନ୍ଥରା ଦେଖ ।

ମନ୍ଥନ—କ୍ଲୀ.ବି.(ମନ୍ଥ + ଅନ)ବିଲୋଡ଼ନ, ମୋହିଁବା, ମନ୍ଥନ ଦଣ୍ଡ, ଖୁଆବାଡ଼ି. ବିନାଶ, ଦୁଇ ବସ୍ତୁର ଘର୍ଷଣରେ ଅଗ୍ନି ଉତ୍ପାଦନ, ଚକଟିବା, ଦଳିବା, କୁଟ୍ଟନ, (ଗ୍ରା.ବି) ମୈଥୁନ ।

ମନ୍ଥନଘଟୀ—ସ୍ତ୍ରୀ.ବି. (କ.ଧା) ଦଧିମନ୍ଥନ ପାତ୍ର । [ ବାଡ଼ି ।

ମନ୍ଥନଦଣ୍ଡ—ବି.(କ.ଧା)ଦହିଖୁଆ, ଖୁଆ-

ମନ୍ଥନରଜ୍ଜୁ—ବି. ଯେଉଁ ଦଉଡ଼ି ଦ୍ୱାରା ଦହି ଖୁଆକୁ ଘୂରାଇ କରାଯାଏ ।

ମନ୍ଥନୀ—ବି.(ମନ୍ଥନ + ଈ)ଦହି ମୋହିଁବା ହାଣ୍ଡି, ଖୁଆବାଡ଼ି ।

ମନ୍ଥନୋଦ୍ଭବ—କ୍ଲୀ.ବି.ନବନୀତ, ଲହୁଣୀ

ମନ୍ଥପର୍ବତ—ବି.ମନ୍ଥଶୈଳ, ମନ୍ଦରପର୍ବତ

ମନ୍ଥର—ବିଂ.(ମନ୍ଥ+କ.ଅର)ମନ୍ଦଗାମୀ, ଧୀର, ଚିରକ୍ରିୟ, ଅଳସ, ସ୍ଥୂଳ, ନମ୍ର, ବକ୍ର, ବୃହତ୍, ନତ,ନୀଚ, ବଡ଼, ସୂଚକ, (ସ୍ତ୍ରୀ) ମନ୍ଥରା, ( ବି.ସ.ଅର ) ମନ୍ଥନଦଣ୍ଡ, ପର୍ବତ, କୁସୁମଫୁଲ,ବାଧା, (ସଂ.ଅର) କୋଷ, ଦଣ୍ଡିତ ଧନ, ଫଳ, ମୁଣ୍ଡର କେଶ, ସଦ୍ୟ ନବନୀତ, ଦୁର୍ଗ, (କ.ଅର) ଧୀରଗାମୀ ଯୋଦ୍ଧା, ରାଗ, କୋପ, ଗୁପ୍ତଚର, ବୈଶାଖମାସ,(ଗ୍ରା.ବି) ବିଳମ୍ବ ।

ମନ୍ଥରଗତି—ବି.(କ.ଧା)ଧୀରଗତି,(ପୁଂ.ବିଂ—ବ.ବ୍ରୀ) ମନ୍ଦଗାମୀ ।

ମନ୍ଥରଗମନ—ପୁଂ.ବିଂ. (ବ.ବ୍ରୀ)ମନ୍ଥରଗତିବିଶିଷ୍ଟ, (ସ୍ତ୍ରୀ) ମନ୍ଥରଗମନା, (ବି) ଧୀରଗତି ।

ମନ୍ଥରଗମନୀ—ଗ୍ରା.ସ୍ତ୍ରୀ.ବିଂ. ଧୀରଗାମିନୀ ।

ମନ୍ଥରଗାମୀ—ପୁଂ. ବିଂ. (ମନ୍ଥର+ଗମ୍ +କ.ଇନ୍)ଯେ ଧୀରେ ଧୀରେ ଚାଲେ, (ସ୍ତ୍ରୀ) ଗାମିନୀ ।

ମନ୍ଥରବିବେକ—ପୁଂ.ବିଂ.(ବ.ବ୍ରୀ)ବିଚାର ଶକ୍ତିରେ ଧୀର, ବିଚାର ଶକ୍ତିହୀନ,(ସ୍ତ୍ରୀ) ମନ୍ଥରବିବେକା ।

ମନ୍ଥରା—ସ୍ତ୍ରୀ.ବି(ମନ୍ଥର+ଆ)କୈକେୟୀଙ୍କର ଦାସୀ, ମନ୍ଥରୀ. ମନ୍ଥନଦଣ୍ଡ,(ଗ୍ରା.ବି) ପ୍ରାଚୀନ ଜଳଯାନବିଶେଷ ।

ମନ୍ଥରୀ—ଗ୍ରା. ସ୍ତ୍ରୀ. ବି. ମନ୍ଥରା ଦେଖ ।

ମନ୍ଥରୁ—ପୁଂ. ବି. (ମନ୍ଥ+ଅରୁ) ଚାମର ଚାଳନ ଦ୍ୱାରା ପ୍ରବାହିତ ବାୟୁ ।

ମନ୍ଥଶୈଳ—ପୁଂ. ବି ମନ୍ଥାଚଳ, ମନ୍ଦରପର୍ବତ ।

ମନ୍ଥା—ସ୍ତ୍ରୀ. ବି. ମନ୍ଥନ ହେତୁ, ମେଥିକା, ମେଥୀ, (ଗ୍ରା.ବି) ମନ୍ଥନ, ମୋହିବା, (ଗ୍ରା.ବିଂ) ମନ୍ଥନକାରୀ, ମଥିତ ।

ମନ୍ଥାଚଳ—ପୁଂ.ବି.ମନ୍ଦରାଦ୍ରି, ମନ୍ଦରପର୍ବତ

ମନ୍ଥାନ—ପୁଂ.ବି. (ମନ୍ଥ+ଆନ)ମନ୍ଥନଦଣ୍ଡ, ଦହିଖୁଆ, ସୁନାରିଗଛ, ମନ୍ଦର ପର୍ବତ, ମହାଦେବ ।

ମନ୍ଥାନକ୍—ପୁଂ. ବି. ତୃଣଭେଦ, ଏକପ୍ରକାର ଘାସ ।

ମନ୍ଥନଭୈରବ—ପୁଂ.ବି.ଅମ୍ଳପିତ୍ତରୋଗାଧିକାରରେ ରସୌଷଧବିଶେଷ, ଜଣେ ପ୍ରସିଦ୍ଧ ହଠଯୋଗୀ ।

ମନ୍ଥାନଷଷ୍ଠୀ—ବି. ଭାଦ୍ର ଶୁକ୍ଲଷଷ୍ଠୀ ।

ମନ୍ଥାନୀ—ସ୍ତ୍ରୀ.ବି (ମନ୍ଥ+ଅଧି.ଅନ+ଈ)

ଦଧିଖଣ୍ଡ, ଦଧିମନ୍ଥନ ପାତ୍ର ।
ମନ୍ଥିତା—ପୁଂ.ବିଂ.(ମନ୍ଥ+କ.ତୃ)ମନ୍ଥନକାରୀ, ଯେ ମନ୍ଥନ କରେ,(ସ୍ତ୍ରୀ)ମନ୍ଥିତ୍ରୀ
ମନ୍ଥିନୀ—ସ୍ତ୍ରୀ.ବି.(ମନ୍ଥ+ଇନ୍+ଈ)ଦହିମୁହାଁ ହାଣ୍ଡି, ଦଧିଖଣ୍ଡ ।
ମନ୍ଥିବା—ଗ୍ରା. କି. ଘୋଳାଇବା,ବାଲୋଡ଼ନ କରିବା, ଦଳିବା ।
ମନ୍ଥୀ—ପୁଂ.ବି. (ମନ୍ଥ+କ.ଇନ୍)ମନ୍ଥନଦଣ୍ଡ, ରେତଃ, (ବିଂ) ମନ୍ଥନକାରୀ, ଯେ ମନ୍ଥେ, (ସ୍ତ୍ରୀ) ମନ୍ଥିନୀ ।
ମନ୍ଥୋଦକ—ପୁଂ. ବି. ଦୁଗ୍ଧ ସମୁଦ୍ର, ମଣ୍ଡୋଦକ ।
ମନ୍ଥୋଦଧି—ପୁଂ. ବି. (ମନ୍ଥ+ଉଦଧି) କ୍ଷୀରସମୁଦ୍ର ।
ମନ୍ଦ—ପୁଂ. ବିଂ.(ମନ୍ଦ+କ.ଅ)ମୃଦୁ,ଧୀରେ, ନିର୍ବୋଧ, ଜଡ଼, ମୂର୍ଖ, ଅଳସ, ବିଳମ୍ବିତ, ସୁକୁମାର,ଅତି ପତଳା ବା ସରୁ,ଅସୁସ୍ଥ, ପ୍ରତିକୂଳ, ଖରାପ, ହୀନ, ଅଧମ, ନୀଚ, ମତ୍ତ, ସ୍ୱାଧୀନ, ଅପକାରୀ,ଦୁଷ୍ଟ,ସାମାନ୍ୟ, ସଙ୍କୁଚିତ, ଅପକୃଷ୍ଟ, ଅପଟୁ, ଅତୀକ୍ଷ୍ଣ, କଟୁ, ଅଶ୍ଳୀଳ,ଉଦାସୀନ,ମ୍ଳାନ, ଅନୁଚ୍ଚ, ଗମ୍ଭୀର, ଦୁର୍ବଳ, କ୍ଷୀଣ,ପାନାସକ୍ତ,ହତଭାଗ୍ୟ, ଦୁଃଚରିତ୍ର,ଅସୁଖୀ, ଶିଥିଳ,ସ୍ୱଚ୍ଛନ୍ଦ, (ବି) ମୂର୍ଖ ବ୍ୟକ୍ତି, ଶନିଗ୍ରହ, କାକ,ଯମ, ପ୍ରଳୟ,ଗଜ ବିଶେଷ,(ଗ୍ରା.ବି) ଅପକାର, ଅନିଷ୍ଟ ।
ମନ୍ଦକ—ତ୍ରି. ବିଂ. ନିର୍ବୋଧ, ମୂଢ଼,ବୁଦ୍ଧିଶୂନ୍ୟ, ସରଳ, (ବି) ମହାଭାରତୋକ୍ତ ଜାତି ବିଶେଷ । [ କଥା ।
ମନ୍ଦକଥା—ଗ୍ରା. ବି. କଟୁକଥା, ଅଶ୍ଳୀଳ
ମନ୍ଦକର୍ଣ୍ଣି—ପୁଂ.ବି.ଜଣେ ପ୍ରାଚୀନ ମୁନି, (ବିଂ) ବଡ଼ କାଲ, ବଧିର, କାଲ, (ସ୍ତ୍ରୀ) ମନ୍ଦକର୍ଣ୍ଣୀ ।
ମନ୍ଦକର୍ମ—କ୍ଲୀ. ବି. (କ.ଧା) ମନ୍ଦଭାଗ୍ୟ, (ବିଂ) ନିକୃଷ୍ଟ, କାର୍ଯ୍ୟହୀନ,ଜଡ଼ବତ୍ ।
ମନ୍ଦକାମ—ଗ୍ରା. ବି. ଖରାପ କାର୍ଯ୍ୟ ।
ମନ୍ଦକାରୀ—ପୁଂ.ବିଂ. (ମନ୍ଦ+କୃ+ଇନ୍ ଅପକାରକାରକ,(ସ୍ତ୍ରୀ) ମନ୍ଦକାରିଣୀ ।
ମନ୍ଦଗ—ତ୍ରି. ବିଂ. ( ମନ୍ଦ+ଗମ୍+ଅ ) ମନ୍ଥର, ମୃଦୁଗାମୀ, ଧୀରଗତିବିଶିଷ୍ଟ, (ସ୍ତ୍ରୀ) ମନ୍ଦଗା, ( ବି ) ଧୀରଗମନଶୀଳ, ଘୋଡ଼ା, ଶନିଗ୍ରହ ।
ମନ୍ଦଗତି—ତ୍ରି. ବିଂ. (ମନ୍ଦ+ଗତି)ମନ୍ଦଗତିବିଶିଷ୍ଟ (ଗ୍ରହ),ବି-କ.ଧା;ଧୀରଗତି ।
ମନ୍ଦଗାମୀ—ପୁଂ. ବିଂ. (ମନ୍ଦ+ଗମ୍+ଇନ୍) ମୃଦୁଗମନଶୀଳ, ମନ୍ଥର, (ସ୍ତ୍ରୀ) ମନ୍ଦଗାମିନୀ ।
ମନ୍ଦଗ୍ରହ—ବି. (କ.ଧା) ଶନିଗ୍ରହ, ଅମଙ୍ଗଳକାରକ ଗ୍ରହ । [ ଟନା ।
ମନ୍ଦଘଟନା—ବି.ଅମଙ୍ଗଳ ଘଟିବା,ଦୁର୍ଘ
ମନ୍ଦଚରିତ—ବି. (କ.ଧା) ଖରାପ ଆଚରଣ, (ପୁଂ.ବିଂ)ଖରାପ ଆଚରଣବିଶିଷ୍ଟ, ଦୁଷ୍ଟଚରିତ, (ସ୍ତ୍ରୀ) ମନ୍ଦଚରିତା ।
ମନ୍ଦଚେତାଃ—ପୁଂ. ବିଂ. (ବ.ବ୍ରୀ) ମୂର୍ଚ୍ଛାଯାଉଥିବା, ଦୁରାତ୍ମା, ପାପାଶୟ, ନିର୍ବୁଦ୍ଧିଆ, ଅନ୍ୟମନସ୍କ ।
ମନ୍ଦଚ୍ଛାୟା—ବିଂ. ବ.ବ୍ରୀ; ଅନୁଜ୍ଜ୍ୱଳ,ଅସ୍ପଷ୍ଟ ଦେଖାଯାଉଥିବା ।
ମନ୍ଦଜନନୀ—ସ୍ତ୍ରୀ. ବି. (ଷତତ୍) ଶନିଶ୍ଚରଙ୍କ ମାତା; ସୂର୍ଯ୍ୟପତ୍ନୀ ।
ମନ୍ଦଜରସ୍—ବିଂ. ଯେ ଧୀରେ ଧୀରେ ବାର୍ଦ୍ଧକ୍ୟରେ ଉପନୀତ ହୋଇଅଛି ।
ମନ୍ଦଜଳବାୟୁ—ଗ୍ରା. ବି. ଅସ୍ୱାସ୍ଥ୍ୟକର ପାଣି ପବନ ।
ମନ୍ଦଜଳବୃଷ୍ଟି—ବି. ମନ୍ଦବୃଷ୍ଟି ଦେଖ ।
ମନ୍ଦଜାତ-ତ୍ରି.ବି ଧୀରେ ଧୀରେ ଉତ୍ପନ୍ନ ।
ମନ୍ଦଜାଳ—ଗ୍ରା. ବି. ନିଆଁକୁ ସାମାନ୍ୟ ଭାବରେ ଜାଳିବା, ନିଆଁର ସାମାନ୍ୟ ତାତି ।
ମନ୍ଦଟ—ପୁଂ. ବି. ( ମନ୍ଦ+ଅଟ୍+ଅ ) ପାରିଭଦ୍ର ବୃକ୍ଷ, ମନ୍ଦାର ଫୁଲର ଗଛ ।
ମନ୍ଦତନୟ—ଗ୍ରା.ବି.ମନ୍ଦ ଲୋକର ପୁଅ କୋକିଳ, କୋଇଲି ।
ମନ୍ଦତା(ତ୍ୱ)—ସ୍ତ୍ରୀ. ବି. ( ମନ୍ଦ+ତା ) ଆଳସ୍ୟ, ମନ୍ଦପଣିଆ, ମୂର୍ଖତା,କ୍ଷୀଣତା ମୃଦୁତା ।
ମନ୍ଦଦଶା—ବି. (କ.ଧା) ଜୀବନରେ ଅମଙ୍ଗଳକର ଘଟଣା ଘଟିବାର ଅବସ୍ଥା, ଗ୍ରହମାନଙ୍କର ଅମଙ୍ଗଳକର ଅବସ୍ଥାଜନିତ ଜୀବନର ମନ୍ଦଅବସ୍ଥା,ମନ୍ଦଭାଗ୍ୟ ।
ମନ୍ଦଧୀ—ତ୍ରି. ବିଂ. (ବ.ବ୍ରୀ) ଅଳ୍ପବୁଦ୍ଧି, ନିର୍ବୁଦ୍ଧିଆ ।
ମନ୍ଦନ—କ୍ଲୀ. ବି. ( ମନ୍ଦ+ଣ.ଅନ ) ସ୍ତୋତ୍ର, ପ୍ରଶଂସା, ସ୍ତୁତି ।
ମନ୍ଦପଦ—ବି. (କ.ଧା) ଧୀରପଦକ୍ଷେପ, (ପୁଂ.ବିଂ) ମନ୍ଦଗାମୀ, (ସ୍ତ୍ରୀ) ମନ୍ଦପଦା ।
ମନ୍ଦପରିଧି—ବି. ଗ୍ରହମାନଙ୍କର କକ୍ଷପଥରେ ପରିଭ୍ରମଣକାଳୀନ ମନ୍ଦୋଚ୍ଚ ବା ନୀଚୋଚ୍ଚ ଗତିର ପରିମାଣବିଶେଷ ।
ମନ୍ଦପବନ—ବି. ମୃଦୁପବନ, ଆସ୍ତେ ଆସ୍ତେ ବୋହୁଥିବା ପବନ ।
ମନ୍ଦପ୍ରକୃତି—ବି.(କ.ଧା) କୁସ୍ୱଭାବ,(ବିଂ-ବ.ବ୍ରୀ) କୁସ୍ୱଭାବବିଶିଷ୍ଟ ।
ମନ୍ଦପ୍ରକୃତିକ—ପୁଂ. ବିଂ. କୁସ୍ୱଭାବାପନ୍ନ, ନୀଚପ୍ରକୃତିକ, (ସ୍ତ୍ରୀ) ମନ୍ଦପ୍ରକୃତିକା ।
ମନ୍ଦପ୍ରଜ୍ଞ—ପୁଂ. ବିଂ. (ବ.ବ୍ରୀ)ଅଳ୍ପଜ୍ଞାନ, ନିର୍ବୁଦ୍ଧିଆ, (ସ୍ତ୍ରୀ) ମନ୍ଦପ୍ରଜ୍ଞା ।
ମନ୍ଦଫଳ—ବି. (କ.ଧା) ଅଶୁଭ ପରିଣାମ, କୁଫଳ, (ଷତତ୍) ଶନିଗ୍ରହର ଅଶୁଭ ଫଳ, ଜ୍ୟୋତିଷବିଜ୍ଞାନୋକ୍ତ ଗଣିତ ବିଶେଷ ।
ମନ୍ଦଭାଗୀ—ପୁଂ. ବିଂ. (ମନ୍ଦ+ଭାଗ+ଇନ୍) ହତଭାଗ୍ୟ, ( ସ୍ତ୍ରୀ ) ମନ୍ଦଭାଗିନୀ, ଦୁର୍ଭାଗ୍ୟବତୀ ।
ମନ୍ଦଭାଗ(ଗ୍ୟ)—ପୁଂ. ବିଂ. ହତଭାଗ୍ୟ, ବି-କ.ଧା ଦୁରଦୃଷ୍ଟ,(ସ୍ତ୍ରୀ)ମନ୍ଦଭାଗା;(ଗ୍ୟା)
ମନ୍ଦଭାଷଣ—ବି. (କ.ଧା) ଧୀରଭାଷଣ ।
ମନ୍ଦଭାଷୀ—ପୁଂ. ବିଂ. (ମନ୍ଦ+ଭାଷ୍+କ.ଇନ୍)ଯେ ଧୀରେ ଧୀରେ କଥା କହେ, (ସ୍ତ୍ରୀ) ମନ୍ଦଭାଷିଣୀ ।
ମନ୍ଦମତି—ବି ଓ ବିଂ. ମନ୍ଦବୁଦ୍ଧି ଦେଖ ।
ମନ୍ଦମଧୁର—ବିଂ. ମୃଦୁ ଓ ମଧୁର ।
ମନ୍ଦମଧୁରହାସ(ସ୍ୟ)—ବି. (କ.ଧା) ମୃଦୁ ଓ ମଧୁର ହାସ, (ପୁଂ. ବିଂ-ବ.ବ୍ରୀ)ଯେ ଅଳ୍ପ ଓ ମଧୁର ହସ ହସେ ।
ମନ୍ଦମଧୁରହାସୀ—ଗ୍ରା. ପୁଂ. ବିଂ ଓ ସ୍ତ୍ରୀ.

ମୃଦୁ ଓ ମଧୁର ଭାବରେ ହସୁଥିବା ।
ମନ୍ଦମନ୍ଦ—ଗ୍ରା. କ୍ରି. ବି°. ଧୀରେ ଧୀରେ, ଆସ୍ତେ ଆସ୍ତେ, ହାଉଳେ ହାଉଳେ ।
ମନ୍ଦମେଧା—ପୁଂ. ବ ଓ ବି°. ମନ୍ଦବୁଦ୍ଧି ଦେଖ ।
ମନ୍ଦୟନ୍ତୀ—ସ୍ତ୍ରୀ. ବ. ଦୁର୍ଗା ।
ମନ୍ଦର—ପୁଂ. ବ. ( ମନ୍ଦ୍+ଣ.ଅର ) ପୌରାଣିକ ପର୍ବତବିଶେଷ, ମୁକୁର, ଦର୍ପଣ.ଗୁଚ୍ଛ ଓ ନାଭିମଧ୍ୟସ୍ଥ ଅଂଶ,ମନ୍ଦାର, ଆଠ ବା ଷୋହଳ ସରିଆ ମୁକ୍ତାହାର, ସ୍ୱର୍ଗ,ବୃହତ୍ ସଂହିତାନୁସାରେ କୋଡ଼ିଏ ପ୍ରକାର ପ୍ରାସାଦ ମଧ୍ୟରୁ ଏକତମ,(ବି°) ବହୁଳ, ମନ୍ଦ, ଅଳସ, (ଗ୍ରା.ବି) ଗୋବର୍ଦ୍ଧନଗିରି, ମୁଙ୍ଗେର ନିକଟରେ ଥିବା ଏକ ପାହାଡ଼ ।
ମନ୍ଦରଗିରି—ପୁଂ. ବ. ମନ୍ଦରାଚଳ ।
ମନ୍ଦରଦନ୍ତ—ପୁଂ. ବି°. ବାନ୍ଦୁରା, (ସ୍ତ୍ରୀ) ମନ୍ଦରଦନ୍ତା ।
ମନ୍ଦରଧର—( ମନ୍ଦର+ଧୃ+କ.ଅ ) ବିଷ୍ଣୁ, ଶ୍ରୀକୃଷ୍ଣ ।
ମନ୍ଦରବାସିନୀ—ସ୍ତ୍ରୀ. ବ. ଦୁର୍ଗା ।
ମନ୍ଦରସ୍—ପ୍ରା. (ବସ୍ତର) ବ. ମଦ୍ଦ ।
ମନ୍ଦରହରଣ—ପୁଂ. ବ. ଜମ୍ବୁଦ୍ୱୀପର ଆଠଟି ଉପଦ୍ୱୀପାନ୍ତର୍ଗତ ଗୋଟିଏ ଦ୍ୱୀପ
ମନ୍ଦବସ୍ତ୍ର—ବ. (କ.ଧା) ମୋଟା ଲୁଗା ।
ମନ୍ଦବିଭବ—ପୁଂ. ବି°. (ବ.ଗ୍ରୀ) ଗରିବ, (ସ୍ତ୍ରୀ) ମନ୍ଦବିଭବା ।
ମନ୍ଦବିଷ—ବି°. ( ବ.ଗ୍ରୀ ) ବିଷହୀନ, ଅତ୍ୟଳ୍ପ ବିଷବିଶିଷ୍ଟ ।
ମନ୍ଦବିସର୍ପୀ—ପୁଂ.ବି°. ମନ୍ଦ ମନ୍ଦ ଗମନଶୀଳ, (ସ୍ତ୍ରୀ) ମନ୍ଦବିସର୍ପିଣୀ ।
ମନ୍ଦବୁଦ୍ଧି—ବ. (କ.ଧା) ସ୍ଥୂଳ ବା ଜଡ଼ବୁଦ୍ଧି, ଦୁର୍ବୁଦ୍ଧି,(ବି°-ବ.ଗ୍ରୀ)ନିର୍ବୋଧ, ଦୁର୍ବୁଦ୍ଧିବିଶିଷ୍ଟ ।
ମନ୍ଦବୃଷ୍ଟି—ବ. (କ.ଧା) ସାମାନ୍ୟ ବର୍ଷା, ଝିପିଝିପି ବର୍ଷା ।
ମନ୍ଦସାନ(ନୁ)—ପୁଂ. ବ. (ମନ୍ଦ+ସାନ) ଅଗ୍ନି, ପ୍ରାଣ, ନିଦ୍ରା, (ବି°)ମୋଦମାନ ।
ମନ୍ଦସୁତ—ବ. (୬ତତ୍) କୋକିଳ ।
ମନ୍ଦସ୍ମିତା—ବ. ( କ.ଧା ) ମୃଦୁହାସ୍ୟ, (ବି°-ବ.ଗ୍ରୀ) ମୃଦୁହାସ୍ୟକାରୀ, ( ସ୍ତ୍ରୀ ) ମନ୍ଦସ୍ମିତା ।
ମନ୍ଦହାର—ରାଜପୁତମାନଙ୍କର ଗୋଟିଏ ଦସ୍ତୁଦାୟ ।
ମନ୍ଦହାସ(ସ୍ୟ)—ବ.(କ.ଧା) ଈଷଦ୍ଧାସ୍ୟ, ମୁରୁକିହସା, (ପୁଂ.ବି°) ସ୍ମେରମୁଖ ।
ମନ୍ଦହାସୀ—ଗ୍ରା. ସ୍ତ୍ରୀ. ବି°. ଅଳ୍ପ ଅଳ୍ପ ହସୁଥିବା (ସ୍ତ୍ରୀ) ।
ମନ୍ଦହିଲ୍ଲୋଳ—ବ. (କ.ଧା) ମୃଦୁତରଙ୍ଗ, ମୃଦୁକମ୍ପନ ।
ମନ୍ଦା—ସ୍ତ୍ରୀ. ବ. (ମନ୍ଦ+ଆ) ସଂକ୍ରାନ୍ତିବିଶେଷ, (ଗ୍ରହର ଗତିପଥର ଯେଉଁ ଅଂଶ କୋଣେଇ ହୋଇଥାଏ),ଉତ୍ତରଫାଲ୍‌ଗୁନୀ, ଉତ୍ତରାଷାଢ଼ା, ଉତ୍ତର ଭାଦ୍ରପଦ ଓ ରୋହିଣୀ ନକ୍ଷତ୍ରଯୁକ୍ତ ସଂକ୍ରାନ୍ତି, ଲତାକସ୍ତୂରୀ, (ଗ୍ରା.ବି) ଗଛରେ ପାଣି ଦେବା ନିମନ୍ତେ ମୂଳର ଚାରିପାଖରେ ହିଡ଼ କରାଯାଇଥିବା ମଳା, ଆଳବାଳ, କଖାରୁ, କଖାରୁ, ଲାଉ ଇତ୍ୟାଦିର ମଞ୍ଜି ଭୂଇଁରେ ପୋତିଲା ବେଳେ ଖୋଳାଯାଇଥିବା ଅଳ୍ପ ଗଭୀର ଗୋଲ ଗାତ, ଦେହରେ ବା ଲୁଗାଆଦିରେ ହେବା ଖଣ୍ଡ ଖଣ୍ଡ ଗୋଲାକାର ଦାଗ, ଦଳ, ସମୂହ, ପୁଞ୍ଜ ।
ମନ୍ଦା(ନ୍ଦ)ଏ—ଗ୍ରା. ବ ଓ ବି°. ଅଳ୍ପପରିମିତ (ଜଳାଦି), ମୁନ୍ଦେ, ମୁନ୍ଦାଏ ।
ମନ୍ଦାକ—କ୍ଲୀ. ବ. (ମନ୍ଦ୍+ଆକ) ସ୍ତବନ, ସ୍ତୋତ୍ର, ପ୍ରଶଂସା, (ଗ୍ରା.ବି)ମନ୍ଦାଏମାନ ।
ମନ୍ଦାକିନୀ—ସ୍ତ୍ରୀ. ବ. (ମନ୍ଦାକ+ଇନ୍+ଈ) ସ୍ୱର୍ଗଗଙ୍ଗା, ଗଙ୍ଗାନଦୀ, ଦ୍ୱାଦଶାକ୍ଷର ଛନ୍ଦୋବିଶେଷ, ହିମାଳୟରୁ ବାହାରି ଉତ୍ତର କାଶୀବାଟେ ବହି ଭାଗୀରଥୀ ନଦୀରେ ମିଳିଥିବା ଏକନଦୀ. ଚିତ୍ରକୂଟ ନିକଟ ଦେଇ ବୋହୁଥିବା ଏକନଦୀ, ଦ୍ୱାରକା ପାଖଦେଇ ବହୁଥିବା ଏକନଦୀ । [ ବିଶେଷ ।
ମନ୍ଦାକ୍ରାନ୍ତା—ବ. ସପ୍ତଦଶାକ୍ଷର ଛନ୍ଦୋ-
ମନ୍ଦାକ୍ଷ—କ୍ଲୀ. ବ. ( ମନ୍ଦ+ଅକ୍ଷି+ଅ ) ବ.ଗ୍ରୀ; ଲଜ୍ଜା, ହୟା, (କ.ଧା) ସଙ୍କୁଚିତ ନେତ୍ର, ( ବି°-ବ.ଗ୍ରୀ ) ଯାହାର ନେତ୍ର ସଙ୍କୁଚିତ, ଯାହାର ଆଖିଗୁଡ଼ିଏ ଛୋଟ, ଦୃଷ୍ଟିଶକ୍ତି କମ୍ (ବ୍ୟକ୍ତି) ।
ମନ୍ଦାଗ୍ନି—ପୁଂ. ବ. (ମନ୍ଦ+ଅଗ୍ନି) କ୍ଷୁଧାମାନ୍ଦ୍ୟ, ଜୀର୍ଣ୍ଣଶକ୍ତିର ଅଳ୍ପତା, (ବି°-ବ.ଗ୍ରୀ) ଯାହାର ଜୀର୍ଣ୍ଣଶକ୍ତି କମ୍‌ଥାଏ, (ଗ୍ରା.ବି)ଦୁକ୍‌ଦୁକ୍‌ହୋଇ ଜଳିବା ନିଆଁ ।
ମନ୍ଦାତ୍ମ—ପୁଂ. ବି°. (ମନ୍ଦ+ଆତ୍ମନ୍)ମୂଢ଼, ନିର୍ବୋଧ, ଅଜ୍ଞ ।
ମନ୍ଦାଦର—ବ. ( କ.ଧା ) ଅଳ୍ପାଦର, ଉପଯୁକ୍ତ ଆଦର ବା ଯତ୍ନ ନ କରିବା, (ବି°) ଅଳ୍ପ ସମ୍ମାନଯୁକ୍ତ, ଯେ ଯଥୋଚିତ ଆଦର ବା ସମ୍ମାନ ପାଇନାହିଁ ।
ମନ୍ଦାନଳ—ବ. (କ.ଧା) ମନ୍ଦାଗ୍ନି ।
ମନ୍ଦାନିଳ—ପୁଂ. ବ. ( କ.ଧା ) ଧୀରେ ଧୀରେ ବୋହୁଥିବା ବାୟୁ,ମୃଦୁପବନ ।
ମନ୍ଦାମନ୍ଦା—ଗ୍ରା. କ୍ରି. ବି°. ପଞ୍ଝା ପଞ୍ଝା ହୋଇ, ଦଳ ଦଳ ହୋଇ ।
ମନ୍ଦାୟୁଃ—ପୁଂ. ବି°. (ବ.ଗ୍ରୀ) ଅଳ୍ପାୟୁ ।
ମନ୍ଦାର୍—ପ୍ରା. (ସିଂହଭୂମ) ବ. ଲେଉଟା, ଆଡି ।
ମନ୍ଦାର—ପୁଂ.ବ. (ମନ୍ଦ+ଆର)ସ୍ୱର୍ଗୀୟ ପଞ୍ଚବୃକ୍ଷାନ୍ତର୍ଗତ ଏକତମ ଦେବ ବୃକ୍ଷବିଶେଷ, ଜବା ଫୁଲ ଓ ଗଛ, ଅରଖ ଓ ଆକନ୍ଦ ଗଛ, ପାରିଭଦ୍ର ବା ପାଲଧୁଆ ଗଛ ଓ ଫୁଲ, ତୀର୍ଥବିଶେଷ,ଧୂର୍ତ୍ତବ୍ୟକ୍ତି, ମଙ୍ଗଳଗ୍ରହ ।
ମନ୍ଦାରପୁଷ୍ପ—ବ.ମନ୍ଦାରଫୁଲ,ଜବାଫୁଲ ।
ମନ୍ଦାରମାଳା—ସ୍ତ୍ରୀ.ବ. ବସୁଙ୍କର କନ୍ୟା ଏବଂ ବିଦ୍ୟାଧରଙ୍କ ସ୍ତ୍ରୀ, ମନ୍ଦାରଫୁଲର ମାଳା । [ ଷଷ୍ଠୀ ।
ମନ୍ଦାରଷଷ୍ଠୀ—ସ୍ତ୍ରୀ. ବ. ମାଘମାସର ଶୁକ୍ଳ-
ମନ୍ଦାରସପ୍ତମୀ—ସ୍ତ୍ରୀ.ବ.ମାଘମାସର ଶୁକ୍ଳସପ୍ତମୀ । [ ବୃକ୍ଷ ଶାଳତା ।
ମନ୍ଦାରତା—ସ୍ତ୍ରୀ.ବ.ମନ୍ଦପ୍ରଭ ଘୃଣା,ମନ୍ଦାର-
ମନ୍ଦାରୀ—ପୁଂ.ବି°.(ମନ୍ଦାର+ଇନ୍)ମନ୍ଦାର ବୃକ୍ଷଯୁକ୍ତ, (ସ୍ତ୍ରୀ) ମନ୍ଦାରିଣୀ ।
ମନ୍ଦାରୁ—ପୁଂ. ବ. ମନ୍ଦାର ।

ମନ୍ଦାର୍କୀୟ—ଅଯୋଧ୍ୟାର ରାଜପୁତ୍ର ସମ୍ପ୍ରଦାୟ ବିଶେଷ ।

ମନ୍ଦାସ୍ୟ—ବି. ( ବ.ବ୍ରୀ ) ଲଜ୍ଜା, ତ୍ରପା, ( କ.ଧା ) ସଙ୍କୁଚିତମୁଖ, (ବିଂ-ବ.ବ୍ରୀ) ସଙ୍କୁଚିତ ମୁଖବିଶିଷ୍ଟ ।

ମନ୍ଦଏ—ଗ୍ରା. ବି ଓ ବିଂ. ମୁନ୍ଦଏ, ଅଳ୍ପ ପରିମିତ (ଜଳୀୟ ପଦାର୍ଥ) ।

ମନ୍ଦକ—ଗ୍ରା. ବି ଓ ବିଂ. ମନ୍ଦଏ ମାତ୍ର (ଜଳାଦି) ।

ମନ୍ଦକୁକୁର—ପୁଂ. ବି. ମତ୍ସ୍ୟ ବିଶେଷ, ମଳ୍ଲିକୁକୁଡ଼ (ପାଠାନ୍ତର) ।

ମନ୍ଦିର—କ୍ଲୀ. ବି. (ମନ୍ଦ୍ + ଅଧି.ଇର)ଗୃହ, ଭବନ, ଆବାସ, ବାସଗୃହ, ପୁର, ଦେଉଳ, ନଗର, ଦେବାରାଧନାସ୍ଥାନ, ଉପାସନା ଗୃହ,ସମୁଦ୍ର, ଜାନୁର ପଛଭାଗ, ଶିବିର, ସେନାନିବେଶ ।

ମନ୍ଦିରଚୂଡ଼ା— ବି. (ଷତତ୍) ଦେଉଳର ଅଗ୍ରଭାଗ ।

ମନ୍ଦିରପଶୁ—ବି. (କ.ଧା)ବିଡ଼ାଳ,ବିରାଡ଼ି

ମନ୍ଦିରମଣି—ପୁଂ. ବି. ଶିବ ।

ମନ୍ଦିରା--ବି.(ମନ୍ଦ୍ + ଣି.ଇର+ଆ)କାଂସ୍ୟନିର୍ମିତ ଶ୍ରେଷ୍ଠ ଝାଞ୍ଜ, ଗିନି, କୁବୁଜ, (ମନ୍ଦ+ଅଧି.ଇର+ଆ) ଘୋଡ଼ାଶାଳ ।

ମନ୍ଦିଷ୍ଠ—ବି.ବିଂ,ଅତିଶୟ ମୋହନକର ।

ମନ୍ଦୀକୃତ—ବିଂ. ପୂର୍ବେ ମନ୍ଦ ନଥିବା, କିନ୍ତୁ ବର୍ତ୍ତମାନକୁ ମନ୍ଦ କରାଯାଇଥିବା, (ସ୍ତ୍ରୀ) ମନ୍ଦୀକୃତା ।

ମନ୍ଦୀଭୂତ—ବିଂ. (ମନ୍ଦ+ଚ୍ୱି+ଭୂ+ତ) ଅଳ୍ପୀଭୂତ, ଜଡ଼ୀଭୂତ, ଅଧୁନା କ୍ଷୀଣ ହୋଇଥିବା, (ସ୍ତ୍ରୀ) ମନ୍ଦୀଭୂତା ।

ମନ୍ଦୁ—ଗ୍ରା.ବି.ମାଳବର ପ୍ରାଚୀନ ରାଜଧାନି

ମନ୍ଦୁର—ବି. ବିଂ. (ମନ୍ଦ+ଉର) ମାଦକର. ଆମୋଦଜନକ ।

ମନ୍ଦୁରା—ସ୍ତ୍ରୀ. ବି. (ମନ୍ଦ + ଅଧି.ଉର+ଆ ଘୋଡ଼ାଶାଳ, ଅସ୍ତାବଲ, ଶଯ୍ୟାର ତୃଣନିର୍ମିତ ଆସ୍ତରଣ, ମସୁଣି । [ ସଇସ ।

ମନ୍ଦୁରିକ—ପୁଂ.ବି. (ମନ୍ଦୁରା+ ଇକ)ଘୋଡ଼ା

ମନ୍ଦେ—ଗ୍ରା. ବିଂ. ମନ୍ଦାଏ ଦେଖ, (ପ୍ରା. ପଦ୍ୟ) କ୍ରି. ବିଂ.; ଧୀରେ ଧୀରେ ।

ମନ୍ଦେହ—ପୁଂ. ବି. ରାକ୍ଷସଗଣ ବିଶେଷ, ଏମାନଙ୍କର ସଂଖ୍ୟା ସାଢ଼େ ତିନିକୋଟି; କୁଶଦ୍ୱୀପବାସୀ ଶୂଦ୍ରଜାତି ।

ମନ୍ଦେହା—ସ୍ତ୍ରୀ. ବି. (କ.ଧା)ମନ୍ଦଚେଷ୍ଟା ।

ମନ୍ଦୋଚ୍ଚ—ପୁଂ.ବି. ଗ୍ରହମାନଙ୍କର ଗତିଭେଦ ।

ମନ୍ଦୋତ୍ସାହ--ପୁଂ.ବିଂ.(ବ.ବ୍ରୀ)ନିରୁତ୍ସାହ, (ସ୍ତ୍ରୀ) ମନ୍ଦୋତ୍ସାହା ।

ମନ୍ଦୋଦରୀ—ସ୍ତ୍ରୀ. ବି. (ମନ୍ଦ + ଉଦର+ଈ) ଲଙ୍କାଦ୍ୱୀପ ରାବଣରାକ୍ଷସର ମହିଷୀ. ମୟଦାନବର କନ୍ୟା, ଇନ୍ଦ୍ରଜିତର ମାତା, (ସ୍ତ୍ରୀ.ବିଂ) କ୍ଷୀଣୋଦରୀ ।

ମନ୍ଦୋଦରୀଶ—ପୁଂ.ବି. (ଷତତ୍)ରାବଣ ।

ମନ୍ଦୋଦରୀସୁତ—ପୁଂ. ବି. ( ଷତତ୍ ) ଇନ୍ଦ୍ରଜିତ, ମେଘନାଦ ।

ମନ୍ଦୋଷ୍ଣ—ବି. (କ.ଧା)ଈଷଦୁଷ୍ଣ,ସାମାନ୍ୟ ଗରମଭାବ, (ବିଂ) କଦୋଷ୍ଣ, ସାମାନ୍ୟ ଗରମ ।

ମନ୍ଦ୍ର—ପୁଂ. ବିଂ. (ମନ୍ଦ + ଣି.ର) ଗମ୍ଭୀର ଧ୍ୱନି, ଘଡ଼ ଘଡ଼ ଧ୍ୱନିଯୁକ୍ତ,ନମ୍ର,ପ୍ରଶଂସନୀୟ, ମନୋହର, ସୁନ୍ଦର,ପ୍ରସନ୍ନ, ହୃଷ୍ଟ. (ବି) ଗମ୍ଭୀର ଧ୍ୱନି, ନମ୍ରଧ୍ୱନି, ଆନଦ୍ଧ ବାଦ୍ୟଯନ୍ତ୍ର ବିଶେଷ, ମୃଦଙ୍ଗ, ସଙ୍ଗୀତର ସ୍ୱର ବିଶେଷ,ଉଦାର ସ୍ୱର, ଏକ ଜାତୀୟ ହାତୀ ।

ମନ୍ଧାତା—ପୁଂ. ବିଂ. ମେଧାବୀ, ( ବି ) ଯୁବନାଶ୍ୱଙ୍କପୁତ୍ର, ମାନ୍ଧାତା ।

ମନ୍ନାଥ—ପୁଂ.ବି.(ଅସ୍ମଦ୍ + ନାଥ)ମୋହର ସ୍ୱାମୀ ବା ପ୍ରଭୁ ।

ମନ୍ମଥ—ପୁଂ. ବି. (ମନସ୍+ମଥ୍+ଅ) କନ୍ଦର୍ପ, କାମଦେବ, ପ୍ରୀତି, ପ୍ରଣୟ, ପ୍ରେମ, କଇଥଗଛ,କାମଚିନ୍ତା,ଷଷ୍ଟିସମ୍ବତ୍ସରାନ୍ତର୍ଗତ ୨୯ ବର୍ଷ ।

ମନ୍ମଥକର—ପୁଂ.ବି.କୁମାରାନୁଚର ଭେଦ

ମନ୍ମଥପ୍ରିୟା—ବି. (ଷତତ୍)କାମଦେବଙ୍କର ପତ୍ନୀ, ରତିଦେବୀ ।

ମନ୍ମଥଲେଖ—ପୁଂ. ବି. (କ.ଧା) ପ୍ରେମପତ୍ର, ପ୍ରଣୟପତ୍ରିକା ।

ମନ୍ମଥା—ସ୍ତ୍ରୀ. ବି. (ମନ୍ମଥ + ଆ) ହେମକୂଟର ଦାକ୍ଷାୟଣୀ ।

ମନ୍ମଥାନନ୍ଦ—ପୁ . ବି. (ମନ୍ମଥ+ନନ୍ଦି+ଅ ) ମହାରାଜଚୂତ, ଏକପ୍ରକାର ଉତ୍କୃଷ୍ଟ ଆମ୍ବ ।

ମନ୍ମଥାଳୟ—ପୁଂ.ବି.(ମନ୍ମଥ + ଆଳୟ) ଆମ୍ର ବୃକ୍ଷ,ପ୍ରେମିକ ଓ ପ୍ରେମିକାଙ୍କ ମିଳନ ସ୍ଥଳ ।

ମନ୍ମଥୀ--ପୁଂ.ବିଂ.(ମନ୍ମଥ+ଇନ୍)କାମୁକ; କାମୀ, (ସ୍ତ୍ରୀ) ମନ୍ମଥିନୀ ।

ମନ୍ମନ—ପୁଂ. ବି. (ମନସ୍+ମନ୍+ଅ) ଗଦ୍‌ଗଦ୍ ଆଳାପ, ଦମ୍ପତିଙ୍କ କଥନ ବିଶେଷ, କର୍ଣ୍ଣ ମୂଳରେ ଗୁପ୍ତାଳାପ, କାମଦେବ ।

ମନ୍ମନା(ନାଃ)ପୁଂ.ବିଂ. (ବ.ବ୍ରୀ)ମୋଠାରେ ମନକୁ ଯେ ସମର୍ପଣ କରିଅଛି ।

ମନ୍ମୟ--ତ୍ରି. ବିଂ. ମୋଠାରେ ଅଛି, ମୋଠାରେ ଥିବା ।

ମନ୍ୟ—ତ୍ରି. ବିଂ. (ମନ୍ + କ.ଯ) ମନନୀୟ, ଯେ ଆପଣାକୁ (ଅମୁକ) ପରି ବିଗୁଣରେ ବା ଦେଖାଇ ହୁଏ,(ସ୍ତ୍ରୀ)ମନ୍ୟା ।

ମନ୍ୟକା—ସ୍ତ୍ରୀ.ବି. ମନ୍ୟା, ଗ୍ରୀବା ।

ମନ୍ୟନ୍ତୀ—ସ୍ତ୍ରୀ.ବି. ଅଗ୍ନିମନ୍ତୁଙ୍କ କନ୍ୟା (ମହାଭାରତ) ।

ମନ୍ୟା—ସ୍ତ୍ରୀ.ବି. ( ମନ୍ + ନି.ଯ+ଆ ) ଗ୍ରୀବାର ପଶ୍ଚ ଭାଗର ଶିରା, ସ୍ନାୟୁ, (ଭା. ଯ+ଆ ଜ୍ଞାନ । [ ବିଶେଷ ।

ମନ୍ୟାଗ୍ରହୀ—ସ୍ତ୍ରୀ.ବି. ଅଶ୍ୱର ବାତବ୍ୟାଧି-

ମନ୍ୟାସ୍ତମ୍ଭ—ପୁଂ.ବି. ବାତବ୍ୟାଧିବିଶେଷ, ଯହିଁରେ ବେକର ଶିରା ଅବଶ ହୋଇଯାଏ, ଅଶ୍ୱର ବାତବ୍ୟାଧିବିଶେଷ ।

ମନ୍ୟୁ—ପୁଂ.ବି. (ମନ୍+ଯୁ) ଦୈନ୍ୟ, ଦୀନତା, ବିରକ୍ତି, ଶୋକ, ଘୃଣା,ଅହଙ୍କାର, କ୍ରୋଧ, ଘୋଡ଼ାଆଦିଙ୍କ ତେଜୀପଣ, ତେଜଃ, ଔତ୍ସୁକ୍ୟ, ସ୍ତୋତ୍ର,ଯଜ୍ଞ, ଋଷିବିଶେଷ, ଶିବ, ଅଗ୍ନି ।

ମନ୍ୟୁଦେବ—ପୁଂ. ବି. ଜଣେ ପ୍ରସିଦ୍ଧ ବୈୟାକରଣ. (ରୂପକ.କ.ଧା) ଦେବରୂପେ କଳ୍ପିତ କ୍ରୋଧ ।

ମନ୍ୟୁମୟ—ତ୍ରି.ବିଂ, କ୍ରୋଧମୟ, ଅତି·

ଦାରୁଣ, (ସ୍ତ୍ରୀ) ମନ୍ୟୁମସ୍ତୀ ।
ମନ୍ୟୁମାନ୍—ପୁଂ.ବିଂ. ( ମନ୍ୟୁ + ମତ୍ ) କ୍ରୋଧୀ, କ୍ରୋଧନସ୍ୱଭାବ, ଧୀନତାଗ୍ରସ୍ତ, ତେଜସ୍ୱାନ୍, (ସ୍ତ୍ରୀ) ମନ୍ୟୁମତୀ ।
ମନ୍ୟୁମୀ—ବି.ବିଂ. (ମନ୍ୟୁ+ମୀ+କ୍ୱିପ୍) କୋପକାରୀ, ଅଭିମନ୍ୟୁମାନ ଶତ୍ରୁର ହିଂସାକାରୀ । [ ଉପାସ୍ୟ ।
ମନ୍ୟୁଶମନ—ବି.ବିଂ. କ୍ରୋଧ ନିବାରଣେ
ମନ୍ୱନ୍ତର—କ୍ଳୀ. ବି. ( ମନୁ+ଅନ୍ତର ) ଦେବତାମାନଙ୍କର ୭୧ଟି ଯୋଗ, ପୁରାଣର ୧୦ ଲକ୍ଷଣ ମଧ୍ୟରୁ ଏକତମ, ମନୁରାଜ୍ୟ ଶାସନକାଳ, ଅକାଳ ।
ମନ୍ୱନ୍ତରା—ବି.ପ୍ରାଚୀନ କାଳରେ ଆଷାଢ଼ ଶୁକ୍ଳଦଶମୀ ଶ୍ରାବଣ କୃଷ୍ଣ ଅଷ୍ଟମୀ ଓ ଭାଦ୍ର ଶୁକ୍ଳଚତୁର୍ଥୀରେ ଅନୁଷ୍ଠିତ ଉତ୍ସବବିଶେଷ ।
ମନ୍ୱାଦ୍ୟ—କ୍ଳୀ.ବି. ଧାନ୍ୟ ।
ମପ(ପ୍ର)ଷ୍ଟ—ପୁଂ.ବି. ମକୁଷ୍ଟ, ବଣମୁଗ ।
ମପ(ପ୍ର)ଷ୍ଟକ—ପୁଂ.ବି. ବନମୁଦ୍ଗ ।
ମପ(ଫ)ସଲ—ଯା. ବି. ଗ୍ରାମ ନଗରର ଦୂରସ୍ଥ ଦେଶାଂଶ, ସହରଠାରୁ ଦୂରବର୍ତ୍ତୀ ସ୍ଥାନ, ଅପ୍ରକାଶ୍ୟ ଅଞ୍ଚଳ ।
ମପ(ଫ)ସଲିଆ(ସଲି)—ଗ୍ରା.ବିଂ.ମଫସଲ ସମ୍ବନ୍ଧୀୟ, ଗ୍ରାମ୍ୟ, ମଫସଲବାସୀ, ମଫସଲରେ ପ୍ରଚଳିତ,(ଗ୍ରା.ବି)ମଫସଲ ବାସୀ ବ୍ୟକ୍ତି, ଯେଉଁମାନେ ଗୃହ ଚତୁର ନୁହନ୍ତି ।
ମପା—ଗ୍ରା.ବି.ମାପ, ମାପିବା,ମାପକରିବା, (ବିଂ) ମାପ ହୋଇଥିବା ।
ମପାପୋଇବା—ଗ୍ରା.ବି.ମାପିବା କ୍ରିୟାର ଣିଜନ୍ତ ରୂପ ।
ମପାମପି—ଗ୍ରା.ବି. ଅନେକ ପଦାର୍ଥ ବା ଅନେକ ଥର ମାପିବା କ୍ରିୟା ।
ମଫତ୍ଖୋର—ଯା. ବିଂ. ବୃତ୍ତିଭୋଗୀ, ଯେ ବିନା କାର୍ଯ୍ୟରେ ଅର୍ଥ ଲାଭ କରେ ।
ମବଲକ୍(ଗ୍)—ଯା. ବି. ନଗଦ ଟଙ୍କା, ରେଜକଡ଼ି, ମୋଟ ଟଙ୍କା, ( ଯା.ବିଂ ) ନଗଦ,ମୋଟ,(ବି.ବିଂ)ହାତେହାତେ, ନଗଦାନଗଦ, ଦସ୍ତବଦସ୍ତ, ଅକ୍ଷରରେ (ଅଙ୍କରେ ଲେଖିବା) ।
ମବାରକ—ଯା.ବିଂ. ଭାଗ୍ୟବାନ୍, ପବିତ୍ର, ପୁଣ୍ୟପ୍ରଦ, ସୁଖୀ । [ ପଶୁ ।
ମଭେଣ୍ଡି—ଗ୍ରା.(ବାମଣ୍ଡା)ବି. ଗୋମେଷାଦି
ମମ୍—ଗ୍ରା.(ସିଂହଭୂମ)ବି. ମହମ ।
ମମ୍ଲାମା—ଯା.ବିଂ. ମଣ୍ଡଦ୍ୱାରା ଲିପ୍ତ ।
ମମ୍ତାଜମହଲ—ଯା. ବି. ତାଜମହଲ ଦେଖ,ସାହାଜାହାନଙ୍କ ମହିଷୀଙ୍କ ନାମ
ମମ—ଅବ୍ୟ. ମଦୀୟ, ମୋର, ଆମ୍ଭର ।
ମମକାର—ପୁଂ.ବି. ( ମମ+କୃ+ଅ ) ନିଜସ୍ୱ, ଆପଣାର କୌଣସି ବିଷୟ, ଏ ଧନଜନ ମୋର ବୋଲି ମନରେ ବିଚାର କରିବା, ମମତା । [ ଜନକ ।
ମମକୃତ୍ୟ—ବିଂ. ହିତକର ବା ସୁବିଧା-
ମମତା(ତ୍ୱ)—ବି. (ମମ+ତ+ଆ) ଏହି ପଦାର୍ଥ ମୋର ଏହିପରି ଜ୍ଞାନ, ମମତ୍ୱ, ସ୍ୱାଭିମାନ,ଅହଂଭାବ,ଦର୍ପ,ସହାନୁଭୂତି, ସ୍ନେହ, ଏ ସଂସାରପ୍ରତି ମିଥ୍ୟା ମାୟା-ମୋହ ।
ମମତାଯୁକ୍ତ—ବିଂ. ସ୍ନେହଶୀଳ, ସ୍ନେହାଶକ୍ତ, ବୈଷୟିକ ଅଭିମାନଯୁକ୍ତ, ସହାନୁଭୂତିଯୁକ୍ତ, ଆତ୍ମମ୍ଭରି, (ବି) କୃପଣ ପୁରୁଷ ।
ମମତାଶୂନ୍ୟ—ପୁଂ ବିଂ. (୬ତତ୍) ନିର୍ମମ, କ୍ରୂର, ସ୍ନେହବର୍ଜିତ, ବୈରାଗ୍ୟଯୁକ୍ତ, (ସ୍ତ୍ରୀ)ମମତାଶୂନ୍ୟା । [ ମାତା, ଜନନୀ ।
ମମା—ଗ୍ରା. ବି. ପୟୋଧର, ସ୍ତ୍ରୀ ସ୍ତନ,
ମମାଦଲ—ଯା.ବିଂ. ଅଲାହିଦା, ସ୍ୱତନ୍ତ୍ର ।
ମମାପତାଲ—ପୁଂ.ବି. ବିଷୟ ।
ମମ୍ମୀ—ଯା.ବି. ମହମଆଦି ମସଲା ଦଆଯାଇ ପ୍ରାଚୀନ ମିସର ଦେଶୀୟ ପ୍ରଥାନୁସାରେ ବହୁକାଳ ଅବିକୃତ ଅବସ୍ଥାରେ ସଂରକ୍ଷିତ ମୃତଦେହ, ଶବ ।
ମୟ—ପୁଂ.ବି. (ମୟ୍+ଅ) ରାବଣର ସ୍ତ୍ରୀ ମନ୍ଦୋଦରୀର ପିତା, ଉଷ୍ଟ୍ର, ଅଶ୍ୱତର, ଅଶ୍ୱଚିକିତ୍ସକ, ଇନ୍ଦ୍ରପ୍ରସ୍ଥରେ ରାଜା ଯୁଧିଷ୍ଠିରଙ୍କର ଅପୂର୍ବ ସଭାନିର୍ମାଣକାରୀ ଦାନବଶିଳ୍ପୀ,(କ୍ଳୀ) ସୁଖ, ଦେଶଭେଦ, ପ୍ରଚୁର, ବିଶିଷ୍ଟ, ନିର୍ମିତ, ବ୍ୟାପୀ ଅର୍ଥରେ ବ୍ୟାକରଣର ପ୍ରତ୍ୟୟବିଶେଷ ।
ମୟକ୍ଷେତ୍ର—ବି. ଦକ୍ଷିଣାପଥର ଅନ୍ତର୍ଗତ ଗୋଟିଏ ପୁଣ୍ୟସ୍ଥାନ ।
ମୟଟ୍—ପୁଂ.ବି. (ମୟ+ଅଧି.ଅଟ୍)ପର୍ଣ୍ଣକୁଟୀର, ଉଚ୍ଚଯୁକ୍ତ ହର୍ମ୍ୟ, ପ୍ରାସାଦ ।
ମୟଦାନ—ଯା. ବି. କ୍ଷେତ୍ର, ପଡ଼ିଆ, ପ୍ରମୋଦ ଉଦ୍ୟାନ, ଆଧୁନିକ ପାର୍କ ।
ମୟଦାନବ—ପୁଂ. ବି. ରାବଣର ସ୍ତ୍ରୀ, ମନ୍ଦୋଦରୀଙ୍କ ପିତା ।
ମୟନ—ପୁଂ.ବି. ମଦନବୃକ୍ଷ,(କ୍ଳୀ)ମହମ, ମହଣିଠା ।
ମୟନା—ଯା.ବି. ସ୍ୱନାମ ପ୍ରସିଦ୍ଧ କୃଷ୍ଣବର୍ଣ୍ଣ ପକ୍ଷୀବିଶେଷ, ସାରୀ ଚଢ଼େଇ, କୁହୁଳି ।
ମୟନାମତୀ—ବି. ତ୍ରିପୁରା ରାଜ୍ୟର ଅନ୍ତର୍ଗତ ଗୋଟିଏ ଗିରିମାଳା, ବଙ୍ଗରାଜା ମାଣିକଚନ୍ଦ୍ରଙ୍କ ମହିଷୀ ।
ମୟରା—ଗ୍ରା. ବି. ବଙ୍ଗଳାର ପ୍ରସିଦ୍ଧ ମିଠା ଇତ୍ୟାଦି ତିଆରିକରି ବିକ୍ରି କରିବା ଜାତି, ଗୁଡ଼ିଆ ଜାତି ।
ମୟଷ୍ଟକ—ପୁଂ.ବି. ବନମୁଦ୍ଗ, ବଣମୁଗ ।
ମୟସର—କ୍ଳୀ.ବି. ମୟନିର୍ମିତ ସରୋବର ଭେଦ ।
ମୟା—ସ୍ତ୍ରୀ. ବି. ( ମୟ + ଣ.ଅ + ଆ ) ଚିକିତ୍ସା, (ସଂ ଅସ୍ମଦ୍ ଶବ୍ଦର ତୃତୀୟା ବିଭକ୍ତି ଏକ ବଚନରୂପ'ମୟା' ଏହାର ଅର୍ଥ ମୋ କର୍ତ୍ତୃକ, ଆତ୍ମ କର୍ତ୍ତୃକ) ।
ମୟାଣ୍ଡ—ଗ୍ରା.(ପ୍ରାଚୀନ)ବି. ମଦନ,କାମଦେବ ।
ମୟୀ—ସ୍ତ୍ରୀ. ବି. ( ମୟ+ଈ ) ଉଷ୍ଟ୍ରୀ ମାଈ ଓଟ, ଘୋଡ଼ୀ ।
ମୟୁ—ପୁଂ. ବି. ( ମୟ+କ.ଉ ) ମୃଗ, ଅଶ୍ୱମେଧ ଯଜ୍ଞାଶ୍ୱ,ଅଶ୍ୱ,ଅଶ୍ୱତର,ଉଷ୍ଟ୍ର, (ମି+କ.ଉ) କିନ୍ନର, କିଂପୁରୁଷ ।
ମୟୁରାଜ—ବି. (୬ତତ୍) କୁବେର,ଧନାଧିପ । [ ବଣମୃଗ ।
ମୟୁଷ୍ଟକ—ପୁଂ. ବି. (ମୟୁ + ସ୍ତକ + ଅ)
ମୟୂକ—ପୁଂ.ବି. (ମୟ+କ.ଊକ)ମୟୂର
ମୟୂଖ—ପୁଂ.ବି. (ମା + ମି.ଊଖ)କିରଣ, ଦୀପ୍ତି, ଜ୍ୱାଳା, ଶୋଭା, ଅଗ୍ନିଶିଖା, (ଣ,

ଊଖା) ସୂର୍ଯ୍ୟ ଘଡ଼ିର କଣ୍ଟା, ପର୍ବତ-ଶିଳକ, ଖିଲ । [ମାଳା ।
ମୟୂଖମାଳା—ସ୍ତ୍ରୀ.ବି- (୬ତତ୍) କିରଣ-
ମୟୂଖମାଳୀ—ବି. (ମୟୂଖ+ମାଳା+ଇନ୍) ସୂର୍ଯ୍ୟ, କିରଣମାଳୀ ।
ମୟୂଖବାନ୍—ତ୍ରି.ବିଂ. (ମୟୂଖ+ବତ୍) କିରଣଯୁକ୍ତ, ମୟୂଖବିଶିଷ୍ଟ ।
ମୟୂଖାଦିତ୍ୟ—ପୁଂ.ବି. ଆଦିତ୍ୟଭେଦ ।
ମୟୂଖୀ—ପୁଂ. ବିଂ. ( ମୟୂଖ+ଇନ୍ ) ଉଜ୍ଜ୍ୱଳ, ଜ୍ୟୋତିର୍ମୟ, ମୟୂଖବିଶିଷ୍ଟ, (ସ୍ତ୍ରୀ) ଯୋଗିନୀ, (ବି) ଭାରତୀୟ ଆର୍ଯ୍ୟ-ମାନଙ୍କର ଯୁଦ୍ଧାସ୍ତ୍ରବିଶେଷ ।
ମୟୂର—ପୁଂ.ବି. ( ମି+ଊର ) ସ୍ୱନାମ ପ୍ରସିଦ୍ଧ ବୃହତ୍ ପକ୍ଷିବିଶେଷ,ଶିଖୀ,(ସ୍ତ୍ରୀ) ମୟୂରୀ, ପୁଷ୍ପବିଶେଷ, ସୂର୍ଯ୍ୟଶତକ ନାମକ ଗ୍ରନ୍ଥ ରଚୟିତା, ସମୟ ମାପ କରିବାପାଇଁ ବ୍ୟବହୃତ ଯନ୍ତ୍ରବିଶେଷ, (ଗ୍ରା,ବି) ବାଦ୍ୟଯନ୍ତ୍ରବିଶେଷ ।
ମୟୂରକ—କ୍ଲୀ.ବି.(ମୟୂର+କ) ମୟୂର, ମୟୂରଚୂଳ, ଅପାମାର୍ଗ, ଭୃଙ୍ଗରାଜ ।
ମୟୂରଗତି—ସ୍ତ୍ରୀ.ବି. (ବ.ଗ୍ରୀ) ୨୪ ଅକ୍ଷରର ବୃତ୍ତିବିଶେଷ ।
ମୟୂରଗିରିଆ—ଗ୍ରା.ବି. ଭୃଙ୍ଗଆ ।
ମୟୂରଗୁଣା—ଗ୍ରା.ବି.ସ୍ତ୍ରୀମାନଙ୍କର ଡାହାଣ ନାକ ପୁଡ଼ାରେ ପିନ୍ଧାଯିବା ଗୁଣା ।
ମୟୂରଗ୍ରୀବକ—କ୍ଲୀ.ବି. ଭୃଙ୍ଗଆ, ମୟୂରଗିରିଆ ।
ମୟୂରଚଟକ—ପୁଂ. ବି. ଗୃହକୁକ୍କୁଟ, ପୋଷା କୁକୁଡ଼ା । [ ଦେଖ ।
ମୟୂରଚନ୍ଦ୍ରକ—ବି. (୬ତତ୍)ମୟୂରଚନ୍ଦ୍ରିକା
ମୟୂରଚନ୍ଦ୍ରିକା—ଗ୍ରା.ବି.ମୟୂରର ଲଞ୍ଜରେ ଥିବା ଚନ୍ଦ୍ରାକୃତ ଚିତ୍ର ବର୍ଣ୍ଣବିଶିଷ୍ଟ-ଚିହ୍ନ, ଚନ୍ଦ୍ରକବିଶିଷ୍ଟ ମୟୂରପୁଚ୍ଛ, ପଶ୍ଚିମ ଦିଗରେ ଦେଖାଯିବା ଇନ୍ଦ୍ରଧନୁ ।
ମୟୂରଚୂଡ଼ା—କ୍ଲୀ.ବି.ମୟୂର ମୁଣ୍ଡ ଉପରେ ଠିଆ ବାଗରେ ଅବସ୍ଥିତ ପକ୍ଷଗୁଚ୍ଛ, ଈଶ୍ୱରଜଟା ଗୁଳ୍ମ, ମୟୂରଶିଖା ।
ମୟୂରଚୂଳ—ବି. ମୟୂର ଚୂଡ଼ା ଦେଖ ।
ମୟୂରଚୂଳିଆ—ଗ୍ରା.ବିଂ.ଯେ ମୟୂର ଚୂଳ ମୁଣ୍ଡରେ ପିନ୍ଧିଥାଏ, (ବି) ଈଶ୍ୱରଜଟା, ଶ୍ରୀକୃଷ୍ଣ ।
ମୟୂରଜଙ୍ଘ—ପୁଂ.ବି (ବ.ଗ୍ରୀ)ଶ୍ୟୋନାକ, ଫଣଫଣା ।
ମୟୂରଝୋଲ—ପ୍ରା. (ବାମଣ୍ଡା)ବି. ମୟୂର-ଚନ୍ଦ୍ରିକାଯୁକ୍ତ ପକ୍ଷ ।
ମୟୂରଟୋଲ—ଗ୍ରା.ବି.ନାଟୁଆଆଦି ମୁଣ୍ଡରେ ପିନ୍ଧିବା ମୟୂରପୁଚ୍ଛର ଟୋପି ।
ମୟୂରତୁତ୍ଥ—କ୍ଲୀ. ବି. ତୁତିଆ, ମୟୂର-ଗିରିଆ ।
ମୟୂରଧ୍ୱଜ—ବି. ପୁରାଣବର୍ଣ୍ଣିତ ଜଣେ ପ୍ରାଚୀନ ହିନ୍ଦୁ ରାଜା, ମୟୂରଭଞ୍ଜର ପୂର୍ବତନ ରାଜବଂଶର ଉପାଧି ।
ମୟୂରପଙ୍ଖା—ଗ୍ରା. ବି. ମୟୂରପୁଚ୍ଛ ନିର୍ମିତ ବିଞ୍ଚଣା ।
ମୟୂରପଦକ—କ୍ଲୀ.ବି.ଶୃଙ୍ଗାର ସମୟରେ ସ୍ତ୍ରୀ ପୁରୁଷଙ୍କ ଅନ୍ୟୋନ୍ୟ ଶରୀରରେ ପ୍ରଦତ୍ତ ନଖାଘାତର ଚିହ୍ନ ।
ମୟୂରପନ୍ତ—ଗ୍ରା. ବି. କେଲାବଳୀ ପ୍ରଣେତା ଜଣେ ମହାରାଷ୍ଟ୍ର କବି ।
ମୟୂରପୁଚ୍ଛ—ବି.(୬ତତ୍)ମୟୂରର ଲଞ୍ଜ ।
ମୟୂରବଦଲା—ସ୍ତ୍ରୀ.ବି. (ମୟୂର+ବି+ଦଲ+ଅ+ଆ) ଅମ୍ବଷ୍ଠା, ଆମ୍ବଡ଼ା ।
ମୟୂରଭଞ୍ଜ—ଗ୍ରା. ବି.ଓଡ଼ିଶାର ଅନ୍ତର୍ଗତ ପ୍ରସିଦ୍ଧ ନେତୃସ୍ଥାନୀୟ ରାଜ୍ୟ । [ କେତୁ ।
ମୟୂରରଥ—ପୁଂ.ବି.(ବ.ଗ୍ରୀ)ସ୍କନ୍ଦ, କାର୍ତ୍ତି
ମୟୂରରୋମା—ପୁଂ.ବିଂ.(ବ.ଗ୍ରୀ) ମୟୂର-ରୋମ ସଦୃଶ ରୋମଯୁକ୍ତ ।
ମୟୂରଲଞ୍ଜା—ଗ୍ରା.ବି. ମୟୂରପୁଚ୍ଛ, ମୟୂର-ପୁଚ୍ଛାକୃତ ପଶ୍ଚିମାକାଶରେ ଦେଖାଯିବା ମେଘ ।
ମୟୂରବାହନ—ପୁଂ.ବି. (ବ.ଗ୍ରୀ) କାର୍ତ୍ତି-କେୟ,କଲାପକାରକାପାର ପ୍ରଣେତା ।
ମୟୂରବ୍ୟଂସକ—ପୁଂ. ବି. ଧୂର୍ତ୍ତ ମୟୂର, ପାଣିନୀୟ ସମାସ ପ୍ରକରଣୋକ୍ତ ନିପାତ-ନିଷ୍ପନ୍ନ ଶବ୍ଦଭେଦ ।
ମୟୂରଶର୍ମା—ପୁଂ.ବି.ଜଣେ ପ୍ରଧାନ କବି, ଅନେକେ ମୟୂରଭଟ୍ଟ ବୋଲି ମନେ କରନ୍ତି ।
ମୟୂରଶିଖା—ସ୍ତ୍ରୀ. ବି. (ବ.ଗ୍ରୀ) ମୟୂର-ଚୂଳିଆ ଗଛ, ବୈଦ୍ୟକ ଔଷଧି କ୍ଷୁପ-ବିଶେଷ, (୬ତତ୍) ମୟୂରଚୂଡ଼ା ।
ମୟୂରସିଂହାସନ—ବି. (କ.ଧା) ମୋଗଲ ବାଦସାହା ସାହାଜାହାନଙ୍କର ଦିଲ୍ଲିରେ ନିର୍ମିତ ମୟୂରାକୃତ ରତ୍ନସିଂହାସନ ।
ମୟୂରସାରଣୀ—ସ୍ତ୍ରୀ.ବି. ୧୦ ଅକ୍ଷର ପାଦ-ବିଶିଷ୍ଟ ଛନ୍ଦୋବିଶେଷ ।
ମୟୂରହାସି—ପୁଂ. ବିଂ. ମୟୂରପରି ପୁଚ୍ଛ ବିସ୍ତାରକାରୀ, ଗର୍ବିତ ।
ମୟୂରାକ୍ଷକ—ରାଜା ବିଶ୍ୱକର୍ମାଙ୍କ ମନ୍ତ୍ରୀ ।
ମୟୂରାକ୍ଷୀ—ବଙ୍ଗଳାର ବୀରଭୂମ ଜିଲ୍ଲା ସିଉଡ଼ି ନଗର ଉତ୍ତରରେ ପ୍ରବାହିତ ଗୋଟିଏ ନଦୀ । [ ବିଶେଷ ।
ମୟୂରାଦ୍ୟଘୃତ—କ୍ଲୀ. ବି. ଘୃତୌଷଧ-
ମୟୂରାରି—ପୁଂ. ବି. ଜ୍ୟେଷ୍ଠି, ଝିଟିପିଟି ।
ମୟୂରିକା—ସ୍ତ୍ରୀ. ବି. ଆମ୍ବଡ଼ା, ବିଷାକ୍ତ କୀଟବିଶେଷ ।
ମୟୂରୀକାବନ୍ଧ—ପୁଂ.ବି.ରତିବନ୍ଧଭେଦ ।
ମୟୂରୀ—ସ୍ତ୍ରୀ. ବି. (ମୟୂର+ଈ) ମାଈ-ମୟୂର, ମୟୂରର ସ୍ତ୍ରୀଲିଙ୍ଗ ।
ମୟୂରେଶ—ପୁଂ. ବି. (ମୟୂର+ଈଶ) କାର୍ତ୍ତିକେୟ । [ ନ୍ତର ।
ମୟେଶ୍ୱର—ପୁଂ.ବି.ମୟଦାନବର ନାମା-
ମୟୋଭବ—ତ୍ରି. ବିଂ. ସଂସାର ସୁଖପ୍ରଦ, ଯେ ସଂସାର ସୁଖଦିଏ ।
ମର—ଗ୍ରା.ଅ.ମଲ୍ଲା, ଉମର,ଭୂ ମୃତ ହୋ
ମର୍‌ଗେଜ—ଯା. ବି. ଭୂସମ୍ପତ୍ତି ବନ୍ଧକ ଦେଇ ଟଙ୍କା ନେବା କାରବାର,ବନ୍ଧକ ।
ମରଚା—ପ୍ରା.(ସିଂହଭୂମ)ବି. ଲଙ୍କାମରିଚ ।
ମର୍‌ଡ଼ା—ପ୍ରା. (ସମ୍ବ)ବି. ମୃତଦେହ, ଶବ ।
ମର୍‌ଡେଲ—ପ୍ରା. (ସମ୍ବ)ବି.ବିଂ. ମରଣା-ନ୍ତକ ଭାବରେ, ମରିଯିବା ଭଳି ।
ମର୍‌ନେ—ପ୍ରା.(ସମ୍ବ)ଅ. ମୋ ପାଖରେ, ମୋଠାରେ, ମୋ ସହ ।
ମର୍‌ବା—ପ୍ରା. (ସମ୍ବ)କ୍ରି. ମରିବା ।
ମର୍‌ହା—ପ୍ରା. (ସମ୍ବ)ବି. ମଡ଼ା, ଶବ ।
ମର—ପୁଂ.ବି. (ମୃ+ଅ) ମୃତ୍ୟୁ, ମରଣ, ଜଗତ୍, ପୃଥିବୀ, (ବିଂ) ମରଣାଧୀନ,

ବିନାଶଶୀଳ ।

ମରକ—ପୁଂ. ବ. (ମୃ+ଅକ) ମାରି, ମଡ଼କ,ଦୈବବ୍ୟସନ, ଦେଶ ସଂକ୍ରାମକ ବ୍ୟାଧି ।

ମରକତ—ବ. (ମରକ+ତୃ+ଅ)ହରିଦ୍ବର୍ଣ୍ଣ ମଣିବିଶେଷ, ପର୍ଣ୍ଣୀ ।

ମରକତକେଶରୀ—ଗ୍ରା.ବ.କେଶରୀବଂଶର ନୃପବିଶେଷ ।

ମରକତମୟ—ବିଂ. ମରକତମଣିନିର୍ମିତ (ଅଳଙ୍କାରାଦି) ।

ମରକୁମେ—ଯା. ଅ. ( ଦଲିଲ୍‌ଆଦିରେ ବ୍ୟବହୃତ) ଅମୁକ ତାରିଖରେ ଲିଖିତ

ମରକ୍ତ—କ୍ଲୀ. ବ. ମରକତମଣି ।

ମରଜଗତ୍—ବ. (କ.ଧା) ମରଣ ଧର୍ମଶୀଳ ବିଶ୍ୱ, ନଶ୍ୱର ଜଗତ୍, ପୃଥିବୀ ।

ମରଜି—ଯା. ବ. ଇଚ୍ଛା,ଅଭିପ୍ରାୟ, ଖୁସି, ସମ୍ମତ, ମନ, ହୃଦୟର ଭାବ ।

ମରଜ୍ଜୀ(ଠୀ)—ଗ୍ରା.ବିଂ.ମରହଟ୍ଟୀ ଦେଖ ।

ମରଡ଼—ଗ୍ରା. ବ. ମଡ଼କ, ମହାମାରୀ ।

ମରଡ଼ା—ଗ୍ରା. ବିଂ. ମହାମାରୀ ପ୍ରପୀଡ଼ିତ ରୋଗୀଙ୍କର କ୍ଷୀଣଦେହବିଶିଷ୍ଟ ।

ମରଡ଼ି—ଗ୍ରା.ବ.ମରୁଡ଼ି, ମାରାତ୍ମକ ସଂକ୍ରାମକ ରୋଗ, ଶସ୍ୟନାଶ,ଅକାଳମରଣ ।

ମରଣ—କ୍ଲୀ. ବ. (ମୃ+ଅନ) ବତ୍ସନାଭ ନାମକ ବିଷ, ମୃତ୍ୟୁ, ଦେହନାଶ, ବିଜାତୀୟ ଆତ୍ମମନଃ ସଂଯୋଗ, ଧ୍ୱଂସ, ପଞ୍ଚତ୍ୱ, ମୃତ୍ୟୁ, ମହାନିଦ୍ରା । [ ଇଚ୍ଛା ।

ମରଣକାମନା—ବ. (୬ତତ୍) ମରିବାର

ମରଣକାମୀ—ପୁଂ.ବିଂ.ମରିବାକୁ ଇଚ୍ଛୁକ, (ସ୍ତ୍ରୀ) କାମିନୀ । [ ସମୟ ।

ମରଣକାଳ—ବ. (୬ତତ୍) ମୃତ୍ୟୁ ଘଟିବା

ମରଣଦଶା—ବ. (୬ତତ୍) ମରଣାପନ୍ନ ଅବସ୍ଥା , ମରିବାପରି ଅବସ୍ଥା ।

ମରଣଦୁଃଖ—ବ. (୬ତତ୍) ମୃତ୍ୟୁ ସମୟରେ ଅନୁଭୂତ କଷ୍ଟ ।

ମରଣଧର୍ମ—ନି. ବିଂ. ଯାହାର ମୃତ୍ୟୁ ଅବଶ୍ୟମ୍ଭାବୀ, ମରଣ ସ୍ୱଭାବ, ମରଣରୂପ ଧର୍ମ ।

ମରଣଧର୍ମଶୀଳ—ପୁଂ.ବିଂ(ବ.ବ୍ରୀ)ମରଣାଧୀନ, ମର, ନଶ୍ୱର, ମରଣଧର୍ମୀ (ଅନୁରୂପ) । [ ଦ୍ରୋଷ ।

ମରଣସନ୍ତୋଷ—ଗ୍ରା. ବ. ଅତ୍ୟନ୍ତ ଅସ-

ମରଣାନ୍ତ—ବିଂ.(ବ.ବ୍ରୀ)ମରଣ ପର୍ଯ୍ୟନ୍ତ, ମରଣାବଧି, ଯାହାର ଶେଷଫଳ ମୃତ୍ୟୁ ଅଟେ । [ ମୁମୂର୍ଷୁ ।

ମରଣାପନ୍ନ—ବିଂ. (୨ତତ୍) ମୃତପ୍ରାୟ,

ମରଣାଶୌଚ—ବ. (କ.ଧା) ମୃତ୍ୟୁକିଆ, ମୃତକାଶୌଚ, ଜ୍ଞାତି ବା କୁଟୁମ୍ବର ମରଣଜନିତ ଅଶୌଚ ।

ମରଣୋତ୍ତର—ନି. ବିଂ. ମରଣପର, ମୃତ୍ୟୁର ପର ।

ମରଣୋଦ୍ୟତ—ବିଂ. (୭ତତ୍) ମରଣପାଇଁ ପ୍ରସ୍ତୁତ, ମୁମୂର୍ଷୁ ।

ମରଣୋନ୍ମୁଖ—ବିଂ. (୭ତତ୍) ମରଣୋଦ୍ୟତ, ମୁମୂର୍ଷୁ, ଯାହାର ମୃତ୍ୟୁ ନିକଟବର୍ତ୍ତୀ । [ ମୃତ୍ୟୁ ।

ମରତ—ପୁଂ. ବ. (ମୃ+ଭା.ଅତ୍) ମରଣ,

ମରଦ(ର୍ଦ୍ଦ)—ଯା.ପୁଂ.ବ. ପୁରୁଷ,ମନୁଷ୍ୟ, ସ୍ୱାମୀ, ଅଣ୍ଡିରା, (ବିଂ) ସାହସୀ ।

ମରଦନ—ଗ୍ରା. ବ. ମର୍ଦ୍ଦନ ଦେଖ,ରଜାଙ୍କର ତେଲ ଲଗାଇବା ବିଧି ।

ମରଦନାମା—ଗ୍ରା. ବ. ପୁରୁଷଜାତୀୟ ବ୍ୟକ୍ତି, ପୁରୁଷ ନାମବାଚକ ବ୍ୟକ୍ତି ।

ମରଦନିଆ—ଗ୍ରା.ବିଂ.ଯେ ମର୍ଦ୍ଦନ କରେ ।

ମରଦପଣ—ଗ୍ରା. ବ. ପୌରୁଷ, ବୀରତ୍ୱ, ସାହସ, ପୁଂସ୍ତ୍ୱ, ଅଣ୍ଡିରାପଣିଆ ।

ମରଦପିଲା—ଗ୍ରା.ବ. ସାହସୀବ୍ୟକ୍ତି,ବୀର୍ଯ୍ୟବାନ୍ ବ୍ୟକ୍ତି ।

ମରଦାଣୀ—ଗ୍ରା. ସ୍ତ୍ରୀ. ବିଂ. ସାହସିକା-ନାରୀ, ଅଣ୍ଡିରାଚଣ୍ଡୀ ।

ମରଦାନା(ନୀ)—ଯା.ବିଂ.ପୁରୁଷସମ୍ବନ୍ଧୀୟ, ପୁରୁଷୋଚିତ,ବୀରୋଚିତ, (ବି) ମରଦପଣ ଦେଖ ।

ମରଦିବା—ଗ୍ରା. କ୍ରି. ଘଷିବା, ମରଦନ କରିବା, ମଳିବା, ଉତ୍ପୀଡ଼ନ କରିବା, କଷ୍ଟଦେବା ।

ମରନ୍ଦ—ପୁଂ.ବ.( ମର+ଦୋ+କ.ଅ ) ମକରନ୍ଦ, ପୁଷ୍ପରସ ।

ମରନ୍ଦକ—ପୁଂ. ବ. (ମରନ୍ଦ+କ)ମକରନ୍ଦ, ପୁଷ୍ପରସ ।

ମରନ୍ଦୌକସ—କ୍ଲୀ. ବ. ମକରନ୍ଦସ୍ଥାନ, ମଧୁଫେଣା ।

ମରମ—ଗ୍ରା. ବ. ହୃଦୟର ସନ୍ଧିସ୍ଥାନ, ଶରୀରର ଜୀବସ୍ଥାନ (ଅର୍ଥାତ୍ ଯେଉଁ ସ୍ଥାନରେ ସାମାନ୍ୟ ଆଘାତ ଲାଗିଲେ ମୃତ୍ୟୁ ଘଟେ), ମର୍ମକଥା, ଅପ୍ରକାଶ୍ୟ ବିଷୟ, ଗୋପନଭେଦ, ଗୂଢ଼ରହସ୍ୟ,ଗୁପ୍ତ ଉଦ୍ଦେଶ୍ୟ, ତାତ୍ପର୍ଯ୍ୟ, ଉପସ୍ଥ, ( ବିଂ ) ଆନ୍ତରିକ, ଗୁପ୍ତ ।

ମରମକହିବା—ଗ୍ରା.କ୍ରି.କୌଣସି ବ୍ୟକ୍ତିର ଗୁପ୍ତକଥା ପ୍ରକାଶ କରିବା ।

ମରମକୁ ବାଧିବା—ଗ୍ରା. କ୍ରି. (କୌଣସି ବିଷୟ) କୌଣସି ବ୍ୟକ୍ତିର ହୃଦୟରେ ବ୍ୟଥା ଜନ୍ମାଇବା ।

ମରମକୁହା—ଗ୍ରା.ପୁଂ. ବିଂ. ଯେ ଅନ୍ୟର ମର୍ମକଥା କହି ମର୍ମବେଦନା ଜାତ କରାଏ ।

ମରମବେଦନା-ବ. ମର୍ମବେଦନା ଦେଖ ।

ମରମଭିତର—ଗ୍ରା.ବ.ହୃଦୟର ଭିତର, ଆନ୍ତରିକଭାବ ।

ମରମଭେଦୀ—ଗ୍ରା.ବିଂ. ମର୍ମଭେଦୀ,ଯାହା ମର୍ମକୁ ବ୍ୟଥାଦିଏ ।

ମରମର—ଯା. ବ. ଶଙ୍ଖମଲମଲ ପଥର, (ଗ୍ରା.ଅ) ଶୁଷ୍କପତ୍ରଆଦିର ମର୍ମର ଧ୍ୱନି, (ଗ୍ରା.ବିଂ) ମରଣୋନ୍ମୁଖ, ଦରମରା ।

ମରମରିବା—ଗ୍ରା. (ପଦ୍ୟ) କ୍ରି. ମର୍ମର ଧ୍ୱନି କରିବା ।

ମରମସନ୍ଧି—ଗ୍ରା. ବ. ମର୍ମସନ୍ଧି, ଶରୀରର ଜୀବସ୍ଥାନ, ଗୁପ୍ତରହସ୍ୟ ।

ମରମସ୍ଥାନ—ଗ୍ରା.ବ. ଶରୀରର ଜୀବସ୍ଥାନ, ଅଣ୍ଡକୋଷ, ଯୋନିଆଦି ଗୁପ୍ତସ୍ଥାନ ।

ମରମାନ୍ତ—ଗ୍ରା. ବିଂ. ମର୍ମାନ୍ତକ, ମର୍ମଭେଦୀ, ମର୍ମବ୍ୟଥା ଉତ୍ପାଦକ ।

ମରମେମରମେ—ଗ୍ରା.କ୍ରି.ବିଂ.ଆପଣାହୃଦୟ ଭିତରେ,ହୃଦୟ ବା ମର୍ମସ୍ଥଳକୁ ଭେଦ କରିବା ପ୍ରକାରେ, ଅତି ଗୁପ୍ତଭାବରେ, ଦେହର ସମସ୍ତ ଅଂଶରେ ।

ମରମେମରମେମରିବା—ଗ୍ରା. କ୍ରି. ମର୍ମାନ୍ତିକ ଦୁଃଖରେ ବା ଲଜ୍ଜାରେ ମ୍ରିୟମାଣ ହେବା ।

ମରସିଆ—ଯା.ବି.କୌଣସି ମୃତ ବ୍ୟକ୍ତିର ଗୁଣ ଓ କୀର୍ତ୍ତି ଗାନ ଉଦ୍ଦେଶ୍ୟରେ ରଚିତ ଶୋକସଙ୍ଗୀତ ।

ମରସୁମ୍(ମୀ)—ଯା. ବି. ମୌସୁମୀ, ଋତୁ, ସୁଯୋଗ, (ଯା.ବିଂ) ଋତୁକାଳୀନ ।

ମରହଟ୍ଟା(ଠା)—ଗ୍ରା.ବି. ମହାରାଷ୍ଟ୍ର ଜାତି, ମହାରାଷ୍ଟ୍ର ଜାତୀୟ ପୁରୁଷ, (ବିଂ)ମହାରାଷ୍ଟ୍ର ଜାତୀୟ, ମହାରାଷ୍ଟ୍ର ଦେଶୀୟ ।

ମରହଟ୍ଟାଅମଲ—ଗ୍ରା.ବି.ଉତ୍କଳରେ ଯେଉଁ ସମୟରେ ମରହଟ୍ଟାମାନେ ରାଜ୍ୟଶାସନ କରୁଥିଲେ, ଇଂରେଜ ରାଜତ୍ୱର ପୂର୍ବ ସମୟ ।

ମରହଟ୍ଟାଯୁଦ୍ଧ—ଗ୍ରା. ବି. ଇଂରାଜମାନଙ୍କ ସଙ୍ଗେ ଶିବାଜୀଙ୍କ ପରବର୍ତ୍ତୀ ମହାରାଷ୍ଟ୍ରୀୟ ରାଜାମାନଙ୍କ ଯୁଦ୍ଧ ।

ମରହଟ୍ଟୀ—ଗ୍ରା.ବିଂ.ମହାରାଷ୍ଟ୍ର ସମ୍ବନ୍ଧୀୟ, ମରହଟ୍ଟା ଅମଳର, ପୁରୁଣାକାଳିଆ (ଲୋକ ଓ ଗୀତ) ।

ମରହଟ୍ଟୀଭାଷା—ଗ୍ରା. ବି. ବୋମ୍ବାଇ ଓ ବେରାର ଓ ମଧ୍ୟଭାରତରେ କଥିତ ଆର୍ଯ୍ୟ ଭାଷା ବିଶେଷ ।

ମରହମ୍—ଯା. ବି. ପ୍ରଲେପୌଷଧ ।

ମରହୁମ୍—ଯା. ବିଂ. ସ୍ୱର୍ଗୀୟ, ମୃତ ।

ମରା—ଗ୍ରା. ବି. ମଡ଼ା, ଶବ, ହୃଦୟାଦି ଜୀବନସ୍ଥାନ,(ଗ୍ରା.ବିଂ) ଯେ ମାରେ, ଯେ ମରଏ ।

ମରା(ରେ)ଇ—ଗ୍ରା. ବି. ଧାନରଖିବାର ସ୍ଥାନ, ଗୋରଡ଼ି, ଅମାର ।

ମରା(ରେ)ଇବା—ଗ୍ରା.କ୍ରି.ମାରିବା କ୍ରିୟାର ଣିଜନ୍ତ ରୂପ (ମାରିବା କ୍ରିୟାର ଭିନ୍ନ ଭିନ୍ନ ଅର୍ଥ ଦେଖ ), ମରିବା କ୍ରିୟାର ଣିଜନ୍ତରୂପ ।

ମରାକାଳୀ—ସ୍ତ୍ରୀ. ବି. ବୃଷ୍ଟିକାଳୀ, ବନ୍ଧୁଆଦି ଲତା

ମରାଚଣ୍ଡିଆ—ଗ୍ରା. ବି.ମଡ଼ାଚଣ୍ଡିଆ ଦେଖ

ମରାଟ—ଗ୍ରା. ବି.ମୁରାଟ ଦେଖ,ରକୋପକରଣ ବିଶେଷ

ମରାଠା—ବୋମ୍ବାଇ ପ୍ରଦେଶାନ୍ତର୍ଗତ ଧାରୱାଡ଼ ଜିଲ୍ଲାର କୃଷିଜୀବୀ ଜାତିବିଶେଷ ।

ମରାତ(ବ)ବ—ଯା. ବି. ପଦ-ପଦବୀ, ଉତ୍ତରୋତ୍ତର ଘଟିବା ଅବସ୍ଥା, ସମ୍ମାନ, ଧ୍ୱଜା, ପତାକା ।

ମରାମତ(ତି)—ଯା.ବି.ଜୀର୍ଣ୍ଣସଂସ୍କାର, ସଜାଡ଼ିବା, (ଗ୍ରା.ବିଂ) ଯାହାର ଜୀର୍ଣ୍ଣସଂସ୍କାର କରାଯାଇଅଛି ।

ମରାମତକରିବା—ଗ୍ରା. କ୍ରି. ଜୀର୍ଣ୍ଣସଂସ୍କାର କରିବା ।

ମରାମର—ବି.(ମର + ଅମର)ମନୁଷ୍ୟ ଓ ଦେବତା, (ବିଂ) ମରଣଶୀଳ ଓ ଅମର ।

ମରାମରା—ଗ୍ରା. ବିଂ. ଦରମରା ।

ମରାମରି—ଗ୍ରା. ବି. ପରସ୍ପରକୁ ମାରିବା, ମାରପିଟ୍,ଫିଙ୍ଗାଫିଙ୍ଗି,(ଗ୍ରା.ବିଂ)ଅନ୍ୟୋନ୍ୟରେ ମାରପିଟ୍ ହେଉଥିବା ।

ମରାଯି(ଯେ)ବା—ଗ୍ରା.କ୍ରି.ମରିବା କ୍ରିୟାର କର୍ମ ବାଚ୍ୟରେ ରୂପ ।

ମରାର—ପୁଂ. ବି. ( ମର + ଅଲ + ଅ ) ଶସ୍ୟରକ୍ଷଣସ୍ଥାନ, ମରେଇ, ଖଳା ।

ମରାଳ—ପୁଂ.ବି.(ମୃ+କ.ଆଳ)ରାଜହଂସ, କଜ୍ଜ୍ୱଳ, ପାତିହଂସ, କୁଜିହଂସ, କାରଣ୍ଡବ, ଅଶ୍ୱ, ମେଘ, ଡାଳିମ୍ବ, ବନହାତୀ, (ବିଂ)ମସୃଣ, କୋମଳ, ଚିକ୍କଣ, ସ୍ନିଗ୍ଧ, ତେଲିଆ ।

ମରାଳକ—ପୁଂ. ବି. (ମରାଳ+କ)ଜଳହଂସ ।

ମରାଳଗତି—ବି. (୬ତତ୍) ମରାଳର ଗତି ପରି ଗତି,ହଂସପରି ଧୀରଗତି,(୬ତତ୍) ହଂସର ଗତି, (ସ୍ତ୍ରୀ.ବି) ମରାଳଗମନା ଦେଖ ।

ମରାଳଗମନା—ସ୍ତ୍ରୀ.ବିଂ.(ବ.ବ୍ରୀ) ରାଜହଂସ ପରି ଧୀର ମନୋହର ଗତିବିଶିଷ୍ଟା (ସ୍ତ୍ରୀ)

ମରାଳଗମନୀ—ଗ୍ରା.ସ୍ତ୍ରୀ.ବିଂ. ମରାଳଗମନା ଦେଖ ।

ମରାଳଗାମିନୀ—ସ୍ତ୍ରୀ. ବିଂ. (ମରାଳ+ଗମ୍ +କ.ଇନ୍+ଈ)ରାଜହଂସପରି ମନୋହର ଗତିଶାଳିନୀ, ଯେ ମରାଳ ପରି ଧୀର ଗମନ କରେ ।

ମରାଳନନ୍ଦିତ—ବିଂ. ମରାଳଠାରୁ ସୁନ୍ଦର ବା ମନୋହର ।

ମରାଳପନ୍ତି—ଗ୍ରା.ବି.ହଂସମାନଙ୍କର ଧାଡ଼ି

ମରାଳିକା—ସ୍ତ୍ରୀ.ବି.ସପୁଲା,ସିଝୁ ବିଶେଷ ।

ମରାବର—ଭାରତବର୍ଷର ଦକ୍ଷିଣପ୍ରାନ୍ତବାସୀ ଆଦିମ ଜାତିବିଶେଷ ।

ମରି—ଗ୍ରା. ଅବ୍ୟ. ଆହା ! ମୋ ଜୀବନ ସାର୍ଥକ ହେଲା,କେଡ଼େ ସୁନ୍ଦର,ହାୟ !

ମରିଆ(ୟ)ମ୍—ଗ୍ରା. ବି. ଯୀଶୁଖ୍ରୀଷ୍ଟଙ୍କ ମାତା, କୁମାରୀ ମେରୀ ।

ମରି(ରୀ)ଚ—କ୍ଲୀ.ବି. (ମୃ+ଇଚ)ଗୋଲମରିଚ, ସ୍ୱନାମଖ୍ୟାତ ବର୍ତ୍ତୁଳାକାର କଟୁଦ୍ରବ୍ୟବିଶେଷ । [ ମରିଚ ।

ମରିଚଗୁଣ୍ଡା—ଗ୍ରା. ବି. ଚୂର୍ଣ୍ଣଯାଇଥିବା

ମରିଚପତ୍ରକ—ବି. ସରଳବୃକ୍ଷ, ଏକପ୍ରକାର ଶାଳଗଛ । [ ଜଳ ।

ମରିଚପାଣି—ଗ୍ରା. ବି. ମରିଚ ବଟାମିଶ୍ରିତ

ମରିଚସଦୃଶ—ବି. କଙ୍କୋଲ ବୃକ୍ଷ ।

ମରିଚ୍ଚ—ଯା. ବି. ଅବ୍ୟବହୃତ ଲୁହା ଉପରେ ଜାତହେବା କଳଙ୍କି ।

ମରିଚ୍ଚଧରିବା(ପଡ଼ିବା)—ଗ୍ରା. କ୍ରି. ଅସ୍ତ୍ର ବା ଧାତୁନିର୍ମିତ ବାସନରେ କଳଙ୍କି ଲାଗିବା, କଳଙ୍କିଯୁକ୍ତ ହେବା ।

ମରିବା—ଗ୍ରା. କ୍ରି. ମୃତହେବା (ଜୀବ), ପ୍ରାଣତ୍ୟାଗ କରିବା, ଅଦୃଶ୍ୟହେବା, ବିନଷ୍ଟହେବା, ଶୁଖିଯିବା; ହତଗର୍ବହେବା, ଅତି ଲଜ୍ଜିତ ହେବା, ଝାଉଁଳିବା,ତେଜଃଶୂନ୍ୟ ହେବା,(କ୍ରୋଧଆଦି) ଉପଶାନ୍ତ ହେବା ।

ମରିୟାମୁଜ୍ଜମାନୀ—ମୋଗଲ ସମ୍ରାଟ୍ ଆକବରଶାହଙ୍କ ମହିଷୀ ।

ମରିୟାମ୍ମକାନୀ--ସମ୍ରାଟ୍ ଆକବରଶାହଙ୍କ ମାତା । [ ଦ୍ୱୀପ ।

ମରିସସ୍—ଭାରତ ମହାସାଗରସ୍ଥ ଗୋଟିଏ

ମରିହଜିଯିବା—ଗ୍ରା.ବି. କୌଣସି ଗ୍ରାମର ବା ପରିବାରର ଲୋପ ସାଧନ ହେବା ।

ମରୀଚ—ବି. (ମୃ + ଇଚ)ଦନୁଙ୍କର ପୁତ୍ର, ମରୁଦ୍‌ଗଣର ଅନ୍ୟତମ,ପ୍ରିୟବ୍ରତବଂଶୀୟ

ସମ୍ରାଜଙ୍କ ପୁତ୍ର, ଷଟ୍‌ପଦସରେଣୁ, ପରମାଣ, କର, କିରଣ, ଅପ୍ସରାବିଶେଷ, ମରୀଚିକା, ସପ୍ତର୍ଷିମାନଙ୍କ ମଧ୍ୟରୁ ଜଣେ, ଭୃଗୁଙ୍କ ପୁତ୍ର ।

**ମରୀଚିକା**—ସ୍ତ୍ରୀ. ବ. ମୃଗତୃଷ୍ଣା, କିରଣ, ସୂର୍ଯ୍ୟକିରଣରେ ଜଳଭ୍ରମ ।

**ମରୀଚିଗର୍ଭ**—ପୁଂ. ବ. ସୂର୍ଯ୍ୟ, ଜଗଭେଦ, ଦକ୍ଷସାବର୍ଣ୍ଣି ମନ୍ୱନ୍ତରରେ ଦେବଗଣବିଶେଷ ।

**ମରୀଚିଜଳ(ତୋୟ)**—କ୍ଲୀ.ବ. ମରୀଚିକା, ମୃଗତୃଷ୍ଣା ।          [ ଋଷି ।

**ମରୀଚିନନ୍ଦନ**—ପୁଂ.ବ.(୬ତତ୍) କଶ୍ୟପ-

**ମରୀଚିପ**—ତ୍ରି. ବଂ. ସୂର୍ଯ୍ୟରଶ୍ମିପାନରେ, ଦେହଧାରୀ,(ବ)ମରୀଚିପାଳକ ଦେବତା. ଋଷିକୁଳବିଶେଷ ।

**ମରୀଚିମାନ୍**—ପୁଂ. ବଂ. (ମରୀଚି+ମତ୍) ମରୀଚିଯୁକ୍ତ, କିରଣଯୁକ୍ତ ।

**ମରୀଚିମାଳୀ**—ପୁଂ. ବଂ. (ମରୀଚିମାଳା+ଇନ୍) ମରୀଚିମାଳାଯୁକ୍ତ, କିରଣମାଳାବିଶିଷ୍ଟ, (ବ) ସୂର୍ଯ୍ୟ, ଅଂଶୁମାଳୀ ।

**ମରୀମୃଜ୍**—କ୍ଲୀ. ବ. ପୁନଃ ପୁନଃ ମାର୍ଜ୍ଜବା ଦ୍ୱାରା ପରିଷ୍କାରକରଣ ।

**ମରୀମୃଶ୍**—ତ୍ରି. ବଂ. ଅନୁଭବକରଣ ।

**ମରୁ**—ବ. ( ମୃ+ଅଧି.ଉ ) ବାରିଶୂନ୍ୟ, ଉଦ୍ଭିଦଶୂନ୍ୟ ଓ ପ୍ରାଣୀଶୂନ୍ୟ ଏବଂ କଙ୍କର ଓ ବାଲୁକାମୟ ବିସ୍ତୃତ ପ୍ରାନ୍ତର,ପର୍ବତ, ନିର୍ଜଳପର୍ବତ, ମାରବାଡ଼ ଦେଶ,ସୂର୍ଯ୍ୟବଂଶୀୟ ଭାବୀରାଜବିଶେଷ, ମରୁଆଗୁଳ୍ମ, ନରକାସୁରର ସହଚରବିଶେଷ, (ବଂ) ଅନୁର୍ବର ।

**ମରୁଆ**—ଗ୍ରା. ବ. ସୁଗନ୍ଧ ପୁଷ୍ପବିଶେଷ ।

**ମରୁକ**—ପୁଂ. ବ. ମୟୂରବିଶେଷ, ମୃଗବିଶେଷ ।

**ମରୁକଚ୍ଛ**—ପୁଂ. ବ. ଦେଶବିଶେଷ ।

**ମରୁକାନ୍ତାର**—ବ. ବାଲୁକାମୟ ବିସ୍ତୀର୍ଣ୍ଣ ପଡ଼ିଆ ।

**ମରୁଜ**—ପୁଂ.ବ. ନଖୀନାମକ ଗନ୍ଧଦ୍ରବ୍ୟ, (କ୍ଲୀ) ବଂଶାଙ୍କୁର, କଷାର, (ବଂ) ମରୁଦେଶଜାତ ।

**ମରୁଜା**—ସ୍ତ୍ରୀ.ବ.(ମରୁଜ+ଆ)ମୃଗେର୍ବାରୁ

**ମରୁଜାତା**—ସ୍ତ୍ରୀ. ବ. ବାଇଡ଼ଙ୍କ ଲତା, କପିକଚ୍ଛୁ ।

**ମରୁଣ୍ଟା**—ସ୍ତ୍ରୀ. ବ. (ମୃ+ଉଣ୍ଟ+ଆ)ଉଚ୍ଚ ଲଲାଟଯୁକ୍ତା ସ୍ତ୍ରୀ ।

**ମରୁଡ଼ି**—ଗ୍ରା. ବ. ଅନାବୃଷ୍ଟି, ଶସ୍ୟନାଶ, ମହାମାରୀ, ମଡ଼କ, ଦୁର୍ଭିକ୍ଷ, ସଂକ୍ରାମକ ରୋଗ ପ୍ରଭାବରୁ ବହୁ ଲୋକଙ୍କର ମରଣ

**ମରୁଡ଼ିଆ**—ଗ୍ରା. ବଂ. ଦୁର୍ଭିକ୍ଷ ପ୍ରପୀଡ଼ିତ, ମହାମାରୀ ପ୍ରପୀଡ଼ିତ, ଅତି ଜୀର୍ଣ୍ଣଶୀର୍ଣ୍ଣ, ଜଳା ଭାବରୁ ଯେଉଁ ଦେଶର ଶସ୍ୟ ନଷ୍ଟ ହୋଇଅଛି, (ଗାଳି) ନଅଙ୍କିଆ ।

**ମରୁଣ୍ଡା**—ସ୍ତ୍ରୀ.ବ. (ମୃ+ଉଣ୍ଡ+ଆ)ଉଚ୍ଚ କପାଳୀ ସ୍ତ୍ରୀ ।

**ମରୁତ୍(ତ)**—ପୁଂ.ବ. (ମୃ + ଉତ୍) ବାୟୁଦେବତା, ପବନ ଦେବତା, ବାୟୁ କୋଣ, ପ୍ରାଣ, ପ୍ରାଣବାୟୁ, ସୁନା, ସୌନ୍ଦର୍ଯ୍ୟ, ମରୁଆ, ଗ୍ରନ୍ଥିପର୍ଣ୍ଣ ।

**ମରୁତ୍କର**—ପୁଂ.ବ. ବାୟୁକାର୍ଯ୍ୟ, (ବଂ) ଅଧୋବାୟୁ ତ୍ୟାଗୀ ।

**ମରୁତ୍କର୍ମ**—ବ. ଉଦରାଧ୍ମାନ, ବାୟୁନିଃସରଣ ।

**ମରୁତ୍କ୍ରିୟା**—ବ.(୬ତତ୍)ଅପାନୋତ୍ସର୍ଗ, ବାତକର୍ମ, ଅଧୋବାୟୁ କରିବା ।

**ମରୁତ୍କୋଣ**—ବ. ବାୟୁକୋଣ, ଉତ୍ତର ପଶ୍ଚିମ କୋଣ ।

**ମରୁତ୍ପତି**—ପୁଂ. ବ. (୬ତତ୍) ଇନ୍ଦ୍ର, ନାରାୟଣ, ବିଷ୍ଣୁ ।

**ମରୁତ୍ପଥ**—ପୁଂ. ବ. (୬ତତ୍) ଆକାଶ, ଶୂନ୍ୟମାର୍ଗ ।          [ ଅ) ଇନ୍ଦ୍ର ।

**ମରୁତ୍ପାଳ**—ପୁଂ.ବ.(ମରୁତ୍+ପାଳି+

**ମରୁତ୍ପୁତ୍ର**—ପୁଂ.ବ.(୬ତତ୍) ଭୀମସେନ, ହନୁମାନ୍ ।          [ ସିଂହ ।

**ମରୁତ୍ପ୍ଲବ**—ପୁଂ. ବ. (ମରୁତ୍+ପ୍ଲୁ+ଅ)

**ମରୁତ୍ଫଳ**—କ୍ଲୀ.ବ.ଘନୋପଳ, କରକା, କୁଆପଥର ।

**ମରୁତ୍ୱାନ୍**—ପୁଂ.ବ (ମରୁତ୍+ବତ୍)ଇନ୍ଦ୍ର, ଧର୍ମପୁତ୍ର ଦେବଗଣବିଶେଷ, ମେଘ, ସମୁଦ୍ର, ହନୂମାନ୍, (ବଂ) ବାୟୁବିଶିଷ୍ଟ ।

**ମରୁତ୍ୱତୀ**—ସ୍ତ୍ରୀ. ବ. ଦକ୍ଷପ୍ରଜାପତିଙ୍କ କନ୍ୟା, ଧର୍ମଙ୍କ ପତ୍ନୀ ।

**ମରୁତ୍ସଖ**—ପୁଂ.ବ. (ମରୁତ୍+ସଖି+ଅ) ଇନ୍ଦ୍ର, ଅଗ୍ନି, ବାୟୁସଖା ।

**ମରୁତ୍ସଖି**—ବ. ସରସ୍ୱତୀ, ଇନ୍ଦ୍ର ।

**ମରୁତ୍ସହାୟ**—ପୁଂ.ବ. (୬ତତ୍)ଅଗ୍ନି ।

**ମରୁତ୍ସୁତ**—ପୁଂ.ବ. ବାୟୁପୁତ୍ର, ହନୁମାନ୍, ଭୀମ ।

**ମରୁତ୍ସ୍ତନ**—ଗ୍ରା. ବ. ପ୍ରାଣାୟାମ ।

**ମରୁତ୍ତ**—ପୁଂ. ବ. (ମରୁତ୍ + ତ) ଚନ୍ଦ୍ରବଂଶୀୟ ରାଜାବିଶେଷ,ଯଦୁବଂଶୀୟ କରନ୍ଧମ ପୁତ୍ର, ଶିଳେୟୁ ରାଜପୁତ୍ର, ପବନ, ବାୟୁ ।          [ ଟକ ।

**ମରୁତକ**—ପୁଂ.ବ ମରୁବକ ବୃକ୍ଷ, ମରୁଆ-

**ମରୁତ୍ତମ**—ତ୍ରି.ବଂ.ମରୁତତୁଲ୍ୟ ବେଗଗାମୀ

**ମରୁଦାନ୍ଦୋଳ**—ବ. ( ୬ତତ୍ ) ଖଡ଼ି, ନଆକୁ ଉତ୍ତେଜନା କରିବା ଯନ୍ତ୍ର ।

**ମରୁଦାନ୍ଦୋଳକ**—ବ. (୬ତତ୍) ଖଡ଼ି ।

**ମରୁଦିଷ୍ଟ**—ପୁଂ.ବ(ମରୁତ୍+ଇଷ୍ଟ)ଗୁଗ୍ଗୁଳ

**ମରୁଦେବ**—ପୁଂ.ବ.ଇକ୍ଷ୍ୱାକୁବଂଶୀୟ ରାଜଭେଦ, (ସ୍ତ୍ରୀ) ମରୁଦେବୀ ।

**ମରୁଦେଶ**—ପୁଂ.ବ. ମରୁଭୂମି, ମାରବାର ନାମକ ଜନପଦ ।

**ମରୁଦ୍ଗଣ**—ପୁଂ.ବ.ମରୁତ୍ସମୂହ,ଦେବଗଣ

**ମରୁଦ୍ଭବା**—ସ୍ତ୍ରୀ.ବ.ତାମ୍ରମୂଳା କ୍ଷୁଦ୍ର ଝିରାଇ

**ମରୁଦ୍ଭିଜ**—କ୍ଲୀ. ବ. ବାତରୁଜ,ବୁଢ଼ିଆଣୀ ସୂତା ।

**ମରୁଦ୍ଗନ୍ଧ**—ପୁଂ.ବ.ଯଜ୍ଞୀୟ ପାତ୍ରବିଶେଷ, ସାମବେଦର ଶାଖାବିଶେଷ, ବିଷ୍ଣୁ ।

**ମରୁଦ୍ବର୍ତ୍ମ**—ବ. ଆକାଶ ।

**ମରୁଦ୍ୱାର**—ବ. ଅଗ୍ନି, ଧୂଆଁ ।[ ଧୂଆଁ ।

**ମରୁଦ୍ବାହ**—ପୁଂ.ବ(ମରୁତ୍ + ବାହ)ଅଗ୍ନି,

**ମରୁଦ୍ୱିପ**—ବ. (୬ତତ୍) ଓଟ୍ଟ୍ର ଓଟ ।

**ମରୁଦ୍ୱୀପ**— ପୁଂ. ବ. ମରୁଭୂମି ମଧ୍ୟସ୍ଥ ଉର୍ବର ଭୂଖଣ୍ଡ ।          [ ନଦୀ ।

**ମରୁଦ୍ବତୀ**—ସ୍ତ୍ରୀ.ବ.ନଦୀଭେଦ,କାବେରୀ

**ମରୁଦ୍ବୃଧା**—ସ୍ତ୍ରୀ.ବ. ପୁଣ୍ୟତୋୟା ନଦୀବିଶେଷ ।

**ମରୁଦ୍ବୃଦ୍ଧ**—ତ୍ରି.ବଂ. ମରୁତ୍କର୍ତ୍ତୃକ ବର୍ଦ୍ଧ-

ମାନ, ପଞ୍ଜାବଅନ୍ତର୍ଗତ ଗୋଟିଏ ନଦୀ ।
ମରୁଦ୍ବେଗ—ପୁଂ.ବ.ବାୟୁବେଗ, ଦୈତ୍ୟବିଶେଷ ।
ମରୁଦ୍ରଥ—ପୁଂ.ବ.(ବ.ଗ୍ରୀ)ଅଶ୍ବ,(୭ତତ୍ତ୍ବ) ଦେବରଥ, ବ୍ୟୋମଯାନ, ବିମାନ ।
ମରୁଦ୍ରୁମ—ପୁଂ. ବ. ପାକଡ଼ା ଖଇର ।
ମରୁଧନ୍ବା—ପୁଂ.ବ. ଉଦକ ଶୂନ୍ୟଦେଶ, ଜନଶୂନ୍ୟ ପ୍ରଦେଶ, ମରୁପ୍ରଦେଶ,ବିଦ୍ୟାଧର ଇନ୍ଦୀବରଙ୍କ ଶ୍ବଶୁର ।
ମରୁଧର—ବ. ମାରବାଡ଼ ଦେଶ ।
ମରୁନ୍ମାଳା—ସ୍ତ୍ରୀ. ବ. ପିଡ୍ଙ୍ଗ ଶାଗ ।
ମରୁପ୍ରଦେଶ—ବ.ମରୁଭୂମି, ମରୁମୟଦେଶ ।
ମରୁପ୍ରିୟ—ପୁଂ.ବ.(ବ.ଗ୍ରୀ) ଉଷ୍ଟ୍ର, ଓଟ ।
ମରୁଭୂ—ସ୍ତ୍ରୀ. ବ. ଦାସେରକ ଦେଶ, ମାରୁବାଡ଼ ଦେଶ, ନିର୍ଜଳଭୂମି, (ବିଂ) ତଦ୍ଦେଶବାସୀ ।
ମରୁଭୂତ—ପୁଂ.ବ.ଯୌଗନ୍ଧରାୟଣଙ୍କପୁତ୍ର ।
ମରୁଭୂମି—ବ. ବୃକ୍ଷଲତାଦି ପରିଶୂନ୍ୟ ବାଲୁକାମୟ ବିସ୍ତୀର୍ଣ୍ଣ ପତିତ ଭୂଖଣ୍ଡ, ମାରବାଡ଼ ଦେଶ ।
ମରୁଭୂରୁହ—ପୁଂ. ବ.(ମରୁଭୂ + ରୁହ୍ + ଅ) କରୀର ବୃକ୍ଷ, (ବିଂ)ମରୁଭୂମିଜାତ ।
ମରୁମହୀ—ସ୍ତ୍ରୀ. ବ. ମରୁଭୂମି ଦେଖ ।
ମରୁଲ—ପୁଂ.ବ. (ମୃ+ଉଲ) କାରଣ୍ଡବ ପକ୍ଷୀ, ପାତିହଂସ ।
ମରୁବ—ପୁଂ.ବ. (ମରୁ+ବା + ଅ)ମରୁଆ ଗଛ ।
ମରୁବକ—ପୁଂ.ବ. (ମରୁବ + କ)କଣ୍ଟକୀବୃକ୍ଷବିଶେଷ, ମରୁଆଫୁଲ, ସ୍ବଳ୍ପପତ୍ର ତୁଳସୀ, ଜମ୍ବୀର, କ୍ଷୁପବିଶେଷ, ବ୍ୟାଘ୍ର, ରାହୁ, ପିଣ୍ଡଖର୍ଜୁର, ମଦନ ଦେଖ,(ବିଂ) ଭୟାନକ ।
ମରୁସମ୍ଭବା—ସ୍ତ୍ରୀ. ବ. ମହେନ୍ଦ୍ରବାରୁଣୀ, ମହାକାଳ ଫଳ, କ୍ଷୁଦ୍ର ଦୁରାଲଭା, ହ୍ରସ୍ବ ଖଦିର, କାର୍ପାସ ।
ମରୁସ୍ଥଳ—କ୍ଲୀ. ବ. ମରୁଭୂମି, ଜନଶୂନ୍ୟ ବାଲୁକାମୟ ସ୍ଥାନ ।
ମରୁସ୍ଥଳୀ—ରାଜପୁତାନାର ଅନ୍ତର୍ଗତ ବର୍ତ୍ତମାନ-ମରଗଡ଼ ପ୍ରଦେଶର ପ୍ରାଚୀନ ସଂସ୍କୃତ ନାମ ।
ମରୁସ୍ଥା—ସ୍ତ୍ରୀ.ବ. (ମରୁ+ସ୍ଥା+ଅ+ଆ) କ୍ଷୁଦ୍ର ଦୁରାଲଭା ।
ମରୂକ—ପୁଂ.ବ.(ମୃ+ଊକ)ମୃଗବିଶେଷ, ମୟୂର, ଶଟୀ ।
ମରୁଦ୍ୟାନ—ବ. (କ.ଧା)ମରୁଦ୍ବୀପ ।
ମରୁଦ୍ଭବା—ସ୍ତ୍ରୀ.ବ(ମରୁତ୍ + ଭୂ + ଅ + ଆ)କାର୍ପାସୀ, ଦୁରାଲଭା, ଯବାସ, ହ୍ରସ୍ବଖଦିର ।
ମରୂ(ରୋ)ଳ—ବ. ମୁର୍ଗାଘାସ ।
ମରେଇ—ଗ୍ରା.ବ.କୁଟାରେ ଢଆଣ ଧାନ ଅମାର, ଧାନ ଅମାର,ଡ଼ୋଲ, ଗୁରୁଡ଼ି ।
ମରେଇପୋକ—ଗ୍ରା. ବ. କ୍ରିମି ଜାତୀୟ ଉଇଁ । ନୌକାର ପାଣିରେ ଥିବା କାଷ୍ଠାଂଶ କାଟି ପକାଉଥିବା ଏକପ୍ରକାର ପୋକ ।
ମରେନମରେ—ଗ୍ରା.ବିଂ. ମୁମୂର୍ଷୁ ।
ମରୋଳ(କ)—ବ(ମୃ + ଓଲ + କ)ମକର
ମରୋଲୀ—ପୁଂ.ବ. (ମରୁ+ଲା+ଇନ୍) ମକର, କୁମ୍ଭୀର,ମକର ଜାତୀୟ ବୃହତ୍ ସାମୁଦ୍ରିକ ଜନ୍ତୁବିଶେଷ ।
ମର୍କ—ପୁଂ.ବ. (ମର୍କ+ଅ)ଦେହ, ବାୟୁ, ଶୁକ୍ରାଚାର୍ଯ୍ୟଙ୍କ ଏକ ପୁତ୍ର, ବାନର ।
ମର୍କକ—ପୁଂ. ବ. (ମର୍କ+କ)ହାଡ଼ଗିଲା ଚଢ଼େଇ, ଉର୍ଣ୍ଣନାଭ, ମାକଡ଼ସା ।
ମର୍କଟ—ପୁଂ.ବ(ମର୍କ+କ.ଅଟ)ବାନର, ପାତିମାଙ୍କଡ଼, ଉର୍ଣ୍ଣନାଭ, ସ୍ଥାବର ବିଷବିଶେଷ,ହାଡ଼ଗିଲା ପକ୍ଷୀ,(ସ୍ତ୍ରୀ)ମର୍କଟୀ ।
ମର୍କଟକ—ପୁଂ.ବ.(ମର୍କଟ + କ)ବାନର, ଲୂତା, ମାକଡ଼ସା, ଶସ୍ୟବିଶେଷ,ମତ୍ସ୍ୟଭେଦ, ଦୈତ୍ୟବିଶେଷ ।
ମର୍କଟକେଶରୀ—ଗ୍ରା. ପୁଂ. ବ.ମରକତକେଶରୀ ଦେଖ । [ କେନ୍ଦୁଗଛ ।
ମର୍କଟତିନ୍ଦୁକ—ପୁଂ.ବ. କୁପିଳୁ, ମାଙ୍କଡ଼
ମର୍କଟପିପ୍ପଳୀ—ସ୍ତ୍ରୀ.ବ. ଅପାମାର୍ଗ ।
ମର୍କଟପ୍ରିୟ—ବ.(ମର୍କଟ + ପ୍ରିୟ)କ୍ଷୀରବୃକ୍ଷ
ମର୍କଟରାଜ —ବ. (୬ତତ୍ତ୍ବ) ସୁଗ୍ରୀବ,ବାଳି, ହନୁମାନ୍ । [ ମୁହାଁ ।
ମର୍କଟବଦନ—ପୁଂ.ବିଂ.(ବ.ଗ୍ରୀ)ମାଙ୍କଡ଼-
ମର୍କଟବଦନୀ—ଗ୍ରା. ସ୍ତ୍ରୀ. ବିଂ. ବାନର ମୁଖୀ, ବାନରମୁହାଁ ।
ମର୍କଟବାସ—ପୁଂ. ବ. ଲୂତାତନ୍ତୁ, ବୁଡ଼ିଆଣୀଜାଲ ।
ମର୍କଟଶୀର୍ଷ—କ୍ଲୀ. ବ. ହିଙ୍ଗୁଳ ।
ମର୍କଟହ୍ରଦ—ବ. ବୈଶାଳୀର ଅନ୍ତର୍ଗତ ହ୍ରଦବିଶେଷ ।
ମର୍କଟାସ୍ୟ—ବ.ବାନରମୁଖ, ତାମ୍ର,ତମ୍ବା, (ବିଂ) ବାନରମୁଖା, (ସ୍ତ୍ରୀ)ମର୍କଟାସ୍ୟା ।
ମର୍କଟୀ—ସ୍ତ୍ରୀ. ବ. (ମର୍କ+ଅଟ+ଈ) କପିକଚ୍ଛୁ, ବାଇଡ଼ଙ୍କ, ଅପାମାର୍ଗ,ଅଜମୋଦା, ମାଙ୍କଡ଼ କରଞ୍ଜ,ମାଈ ମାଙ୍କଡ଼, ମାଈ ମାକଡ଼ସା ।
ମର୍କଟେନ୍ଦୁ—ପୁଂ. ବ. କାକତିନ୍ଦୁକ ବୃକ୍ଷ, କୋଚିଲା ଗଛ ।
ମର୍କତ—ଗ୍ରା. ବ. ମରକତମଣି ।
ମର୍କର—ପୁଂ.ବ.(ମର୍କ+ଅର)ଭୃଙ୍ଗରାଜ
ମର୍କରା—ସ୍ତ୍ରୀ. ବ. (ମର୍କର+ଆ) ଗୁହା, ଦରୀ, ଖଣ୍ଡ, ସୁଡ଼ଙ୍ଗ, ବନ୍ଧ୍ୟା ସ୍ତ୍ରୀ ।
ମର୍ଗେଜ—ଯା.ବ. ସମ୍ପତ୍ତି ବନ୍ଧକ ।
ମର୍ଚ୍ଚ୍ୟା—ଗ୍ରା.ବ.ମଇଳା ଲୌହାଦି ଦ୍ରବ୍ୟର ମଇଳା ।
ମର୍ତ୍ତ—ପୁଂ. ବ. (ମୃ+ତ)ମନୁଷ୍ୟ,ମାଣବକ, ଭୂର୍ଲୋକ, ପୃଥିବୀ ।
ମର୍ତ୍ତବ୍ୟ—ବିଂ.(ମୃ+ତବ୍ୟ)ମରଣଶୀଳ, ମରଣଯୋଗ୍ୟ, (ବ) ମରଣ, ମୃତ୍ୟୁ, (ସ୍ତ୍ରୀ) ମର୍ତ୍ତବ୍ୟା । [ ପଣ ।
ମର୍ତ୍ତଭାବ—ବ. ମନୁଷ୍ୟପ୍ରକୃତ, ମନୁଷ୍ୟ-
ମର୍ତ୍ତମହିତ—ବ. (୭ତତ୍ତ୍ବ) ଦେବ ।
ମର୍ତ୍ତ୍ୟକାମ—ପୁଂ.ବିଂ. ମରିବାକୁ ଅଭିଳାଷୀ
ମର୍ତ୍ତ୍ୟ—ପୁଂ. ବ. (ମର୍ତ୍ତ+ଯ) ମନୁଷ୍ୟ, ମଧ୍ୟମଲୋକ, ଭୂର୍ଲୋକ, (କ୍ଲୀ) ଶରୀର, ଅମୃତପାଣି କଦଳୀ । [ ଅନୁଷ୍ଠିତ ।
ମର୍ତ୍ତ୍ୟକୃତ—ବି. ବିଂ. ମନୁଷ୍ୟ କର୍ତ୍ତୃକ
ମର୍ତ୍ତ୍ୟତା—ସ୍ତ୍ରୀ. ବ. (ମର୍ତ୍ତ୍ୟ+ତ+ଆ) ମନୁଷ୍ୟର ଭାବ ବା ଧର୍ମ ।
ମର୍ତ୍ତ୍ୟଧର୍ମ—ପୁଂ.ବ.ମାନବର ଜନ୍ମର ସହଜ ଗୁଣ, ମରଣଶୀଳତା ।
ମର୍ତ୍ତ୍ୟଧର୍ମା—ବିଂ.(ମର୍ତ୍ତ୍ୟ +ଧର୍ମନ୍) ଅନିତ୍ୟ, ମନୁଷ୍ୟଧର୍ମା ।

ମର୍ତ୍ତ୍ୟଧର୍ମୀ—ପୁଂ.ବିଂ. ମନୁଷ୍ୟ ଧର୍ମଯୁକ୍ତ, (ସ୍ତ୍ରୀ) ମର୍ତ୍ତ୍ୟଧର୍ମିଣୀ ।
ମର୍ତ୍ତ୍ୟପୁର—ପୁଂ. ବି. ( ମର୍ତ୍ତ୍ୟ + ପୁର ) ମନୁଷ୍ୟପୁର, ପୃଥିବୀ ।
ମର୍ତ୍ତ୍ୟଭାବ—ପୁଂ. ବି. ମନୁଷ୍ୟ ସ୍ୱଭାବ, ମନୁଷ୍ୟତ୍ୱ ।
ମର୍ତ୍ତ୍ୟଭୁବନ—କ୍ଲୀ.ବି. ମର୍ତ୍ତ୍ୟଲୋକ,ପୃଥିବୀ
ମର୍ତ୍ତ୍ୟମହିତ—ବିଂ. ( ୩ତତ୍ ) ମନୁଷ୍ୟ କର୍ତ୍ତୃକ ପୂଜିତ, (ବି) ଦେବ ।
ମର୍ତ୍ତ୍ୟମୁଖ—ପୁଂ. ବି. (ବ.ବ୍ରୀ) କିନ୍ନର, ଯକ୍ଷ ପ୍ରଭୃତି ।
ମର୍ତ୍ତ୍ୟଲୀଳା—ବି. (୬ତତ୍)ମାନବ ଲୀଳା, ସଂସାରରେ ମୃତ୍ୟୁ ପର୍ଯ୍ୟନ୍ତ ଖେଳ ।
ମର୍ତ୍ତ୍ୟଲୀଳାସମ୍ବରଣ—ବି.(୬ତତ୍)ମୃତ୍ୟୁ ।
ମର୍ତ୍ତ୍ୟଲୋକ—ପୁଂ. ବି (୬ତତ୍) ମନୁଷ୍ୟ ଜାତି, ଭୂଲୋକ, ପୃଥିବୀ ।
ମର୍ଦ୍ଦ—ପୁଂ ବି. (ମୃଦ୍+ଭା.ଅ) ମର୍ଦ୍ଦନ, ମର୍ଦ୍ଦନ ସ୍ୱଭାବ, ପେଡ଼ିବା, ପେଷିବା, ପ୍ରେଷଣ, ଦଳନ, ମଳିବା, ଚୂରିବା, ସଂବାହନ, ଘଷିବା, ଗୁପିବା, (ବିଂ.କ. ଅନ) ମର୍ଦ୍ଦନଶୀଳ, (ସ୍ତ୍ରୀ) ମର୍ଦ୍ଦା,(ଯା.ବି) ମରଦ, ବଳବାନ୍ ବ୍ୟକ୍ତି ।
ମର୍ଦ୍ଦକ—ପୁଂ, ବିଂ. ( ମୃଦ୍+କ.ଣକ ) ମର୍ଦ୍ଦନକାରକ, ଦଳନକାରୀ, (ସ୍ତ୍ରୀ) ମର୍ଦ୍ଦିକା ।
ମର୍ଦ୍ଦରାଜ—ଗ୍ରା. ବି.ପୁଂ. କ୍ଷତ୍ରିୟମାନଙ୍କ ରାଜଦତ୍ତ ଉପାଧି ବିଶେଷ,ନାମ ବିଶେଷ (ବିଂ) ବାହାଦୁର,ବୀର ।
ମର୍ଦ୍ଦରାଜପାଲ—ଗ୍ରା. ବି. ସତ୍ୟନାରାୟଣ ପାଲାରେ ବର୍ଣ୍ଣିତ ଗୋଟିଏ ରାଜପୁତ୍ରର ନାମ ।
ମର୍ଦ୍ଦରାଜ—ଗ୍ରା.ବି. ଉତ୍କଳର କ୍ଷତ୍ରିୟ ଓ ରାଜାମାନଙ୍କର ବଂଶଗତ ଉପାଧି ବିଶେଷ
ମର୍ଦ୍ଦଳ—ପୁଂ. ବି. (ମର୍ଦ୍ଦ+ଲା+କ.ଅ) ବାଦ୍ୟବିଶେଷ, ମାଦଳ, ଢୋଲ ।
ମର୍ଦ୍ଦା—ଯା.ପୁଂ.ବି.ଇତର ଜୀବ ଜାତିର ପୁରୁଷ ଜାତି, (ସ୍ତ୍ରୀ) ମାଈ ।
ମର୍ଦ୍ଦାନା—ଯାଁ. ବିଂ. ପୁରୁଷତ୍ୱ, ପୁରୁଷର ସାହସ, (ବିଂ) ପୁରୁଷ ସମ୍ବନ୍ଧୀୟ,ମନୁ-ଷ୍ୟୋଚିତ ।
ମର୍ଦ୍ଦିତ—ତ୍ରି. ବିଂ.(ମୃଦ୍+ଣିଚ୍+ର୍ମ.ତ) ଗ୍ରନ୍ଥିତ, ଚୂର୍ଣ୍ଣିତ, ଦଳିତ, ପିଷ୍ଟ, (ସ୍ତ୍ରୀ) ମର୍ଦ୍ଦିତା ।
ମର୍ଦ୍ଦିବା—ଗ୍ରା.କ୍ରି,(ସଂ-ମୃଦ୍.ଧାତୁ)ଦଳିବା ।
ମର୍ଫିଆ—ଯା.ବି.ରସାୟନିକ ପ୍ରକ୍ରିୟାରେ ଅଫିମରୁ ପ୍ରସ୍ତୁତ ଧଳା ଗୁଣ୍ଡା ଓ ଅରକ ।
ମର୍ବୁ(ର୍ଭୁ)ଦ—ସ୍ତ୍ରୀ.ବି.୧୦କୋଟି ସଂଖ୍ୟା
ମର୍ମ(ନ୍)—(ମୃ+ଅପା+ମନ୍) ପ୍ରାଣ-ସ୍ଥାନ, ଦେହର ସନ୍ଧିସ୍ଥାନ, ହୃଦୟ ସ୍ୱରୂପ, ଅଭିପ୍ରେତ, ତତ୍ତ୍ୱ, ରହସ୍ୟ, ତାତ୍ପର୍ଯ୍ୟ, ଶିରା, ସ୍ନାୟୁ, ସନ୍ଧି, ଅସ୍ଥି ଓ ମାଂସାଦିର ଏକତ୍ର ମିଳନ ସ୍ଥାନ,(ଦେହ ମଧ୍ୟରେ ୧୦୭ଟି ମର୍ମଅଛି, ଯଥା— ମାଂସରେ୧୧,ଅସ୍ଥିରେ୮,ସନ୍ଧିରେ ୨୦, ସ୍ନାୟୁରେ ୨୭, ଏବଂ ଶିରାରେ ୪୧, ଏଥି ମଧ୍ୟରୁ ପାଦ ଦ୍ୱୟରେ ୨୨, ହସ୍ତ ଦ୍ୱୟରେ ୨୨, ବକ୍ଷରେ ଓ ଉଦରରେ ୧୨, ପୃଷ୍ଠରେ ୧୪, ଗ୍ରୀବାରେ ଓ ତହିଁର ଊର୍ଦ୍ଧ୍ୱରେ ୩୭ ଗୋଟି) ମର୍ମ ପାଞ୍ଚପ୍ରକାର ଯଥା—୧ ସଦ୍ୟ ପ୍ରାଣହର (ଏଥିରେ ଆଘାତ ଲାଗିଲେ ତତ୍କ୍ଷଣାତ୍ ମୃତ୍ୟୁ ହୁଏ,ଏହାର ସଂଖ୍ୟା୧୯, - ୨— କାଳାନ୍ତର ପ୍ରାଣହର (ଏଥିରେ ଆଘାତ ଲାଗିଲେ କିଛି ଦିନ ପରେ ମୃତ୍ୟୁ ଘଟେ. ଏଥିର ସଂଖ୍ୟା ୩୩) ୩—ବୈକଲ୍ୟକର (ଏଥିରେ ଆଘାତ ଲାଗିଲେ ଅଙ୍ଗ ବିକଳ ହୁଏ, ଏଥିର ସଂଖ୍ୟା ୪୪ ) ୪-ପୀଡ଼ାକର,ଏଥିରେ ଆଘାତ ଲାଗିଲେ ଗୁରୁତର ପୀଡ଼ା ଜନ୍ମେ,ଏହାର ସଂଖ୍ୟା ୮) ୫-ବିଶଲ୍ୟଘ୍ନ, ଏଥିରେ ଶଲ୍ୟାଦି ବିଦ୍ଧହେଲେ ତାହା ଉତ୍ପାଟନ ମାତ୍ରକେ ମୃତ୍ୟୁ ଘଟେ, ଏଥିର ସଂଖ୍ୟା ୩ ) ।
ମର୍ମକଥା—ବି. ମରମ କଥା ଦେଖ ।
ମର୍ମକାତରତା—ବି.ଆନ୍ତରିକ ବ୍ୟାକୁଳତା
ମର୍ମକୀଳ—ପୁଂ. ବି. ( ମର୍ମ+କୀଲ୍+ଅ ) ଭର୍ତ୍ତା,ସ୍ୱାମୀ । [ (ସ୍ତ୍ରୀ) ମର୍ମଗା ।
ମର୍ମଗ—ପୁଂ.ବିଂ.(ମର୍ମ+ଗମ୍+ଅ)ମର୍ମଜ୍ଞ,
ମର୍ମଗ୍ରହଣ—ବି. (୬ତତ୍) ତାତ୍ପର୍ଯ୍ୟାବ-ଧାରଣ, ରହସ୍ୟବୋଧ ।
ମର୍ମଗ୍ରାହୀ—ପୁଂ. ବିଂ. ( ମର୍ମ+ଗ୍ରାହିନ୍ ) ଯେ କଥାର ତାତ୍ପର୍ଯ୍ୟ ଗ୍ରହଣ କରେ, (ସ୍ତ୍ରୀ) ଗ୍ରାହିଣୀ ।
ମର୍ମାଘାତ—ବି. ( ୭ତତ୍ ) ପ୍ରାଣଘାତ, ହତ୍ୟା, ହୃଦୟରେ ଦୁଃଖ ଦେବା,ମର୍ମ ସ୍ଥଳରେ ଆଘାତ ବା ଚୋଟ ।
ମର୍ମଘାତୀ—ପୁଂ. ବିଂ. (ମର୍ମ+ହନ୍+କ. ଇନ୍) ମର୍ମଭେଦୀ, ହୃଦୟରେ ବ୍ୟଥା-ଦାୟକ, ପ୍ରାଣଘାତୀ ।
ମର୍ମଘ୍ନ—ପୁଂ. ବିଂ. (ମର୍ମ+ହନ୍+ଅ) ମର୍ମଘାତୀ ଦେଖ ।
ମର୍ମଚର—କ୍ଲୀ.ବି. (ମର୍ମ+ଚର୍+କ.ଅ) ହୃଦୟ ।
ମର୍ମଚ୍ଛିତ୍—ବିଂ. (ମର୍ମନ୍+ଛିଦ୍+କ. କ୍ୱିପ୍) ମର୍ମନ୍ତୁଦ, ହୃଦୟଭେଦୀ, ହୃଦୟ-ବିଦାରକ ।
ମର୍ମଜ୍ଞ—ପୁଂ.ବିଂ.(ମର୍ମନ୍+ଜ୍ଞା+କ.ଅ) ମର୍ମବିଦ୍, ତତ୍ତ୍ୱଜ୍ଞ, ତାତ୍ପର୍ଯ୍ୟଗ୍ରାହୀ ।
ମର୍ମତୁଦ—ବିଂ. (ମର୍ମ+ତୁଦ୍+କ.ଅ) ହୃଦୟବିଦାରକ, (ସ୍ତ୍ରୀ) ମର୍ମତୁଦା ।
ମର୍ମଦ—କ୍ଲୀ. ବି. ହୃଦୟାଚ୍ଛାଦକ, (ବି) ବର୍ମବିଶେଷ ।
ମର୍ମନ୍ତୁଦ—ଗ୍ରା. ବିଂ. ମର୍ମତୁଦ ଦେଖ ।
ମର୍ମପାରଗ—ପୁଂ. ବିଂ. (ମର୍ମ+ପାର୍+ଗମ୍+ଅ) ମର୍ମଜ୍ଞ, ତତ୍ତ୍ୱଜ୍ଞ ।
ମର୍ମପୀଡ଼କ—ବିଂ. ଯାହା ମର୍ମରେ ବା ହୃଦୟରେ ବେଦନା ଦିଏ ।
ମର୍ମପୀଡ଼ା—ସ୍ତ୍ରୀ. ବି. (୬ତତ୍)ମନଃପୀଡ଼ା, ମନଃକ୍ଲେଶ, ମର୍ମବେଦନା ।
ମର୍ମପୀଡ଼ିତ—ପୁଂ. ବିଂ. (୭ତତ୍) ମର୍ମା-ହତ ଦେଖ ।
ମର୍ମଭେଦ—ପୁଂ. ବି. ( ମର୍ମ+ଭେଦ ) ମର୍ମଚ୍ଛେଦ, ଗୁପ୍ତରହସ୍ୟର ଅବଧାରଣ, ଦୁଃଖରେ ଛାତି ଫାଟିଯିବା, ହୃଦୟ-ବେଦନା,ଶରଆଦି ମର୍ମସ୍ଥାନରେ ଫୁଟିବା
ମର୍ମଭେଦନ—ପୁଂ. ବି. (ମର୍ମ+ଭିଦ୍+ଭା.ଅନ)ମର୍ମଭେଦକ ଅସ୍ତ୍ର,(ବିଂ-କ.ଅନ) ମର୍ମଭେଦକାରୀ ।

ମର୍ମଭେଦୀ—ପୁଂ. ବଂ. (ମର୍ମ+ଭିଦ୍+ଣ.ଇନ୍) ମର୍ମଭେଦକାରୀ, ଜୀବସ୍ଥାନ-ଭେଦକାରୀ, (ସ୍ତ୍ରୀ) ମର୍ମଭେଦିନୀ ।

ମର୍ମମୟ—ବି. ବଂ. (ମର୍ମ+ମୟ) ମର୍ମ-ସ୍ୱରୂପ, ଗୁପ୍ତବିଷୟ ସମ୍ବନ୍ଧୀୟ ।

ମର୍ମର—ପୁଂ. ବି. (ମୃ+ଅର) ଶୁଷ୍କ ପତ୍ରାଦିର ଅବ୍ୟକ୍ତ ଧ୍ୱନି,ମର୍ମରଶବ୍ଦ,(ବଂ ମର୍ମର ଧ୍ୱନିକାରକ, (ଗ୍ରା.ବି) ପଥର-ବିଶେଷ, ସମୁଦ୍ରବିଶେଷ ।

ମର୍ମରଧ୍ୱନି—ବି. (କ.ଧା) ମର୍ମର ରବ. ଶୁଷ୍କପତ୍ରାଦିର ଅବ୍ୟକ୍ତ ଶବ୍ଦ ।

ମର୍ମରପର୍ବତ—ବି. ମଧ୍ୟପ୍ରଦେଶର ଜବଲପୁର ଜିଲାନ୍ତର୍ଗତ ବିନ୍ଧ୍ୟଗିରିର ଗୋଟିଏ ଶାଖା । [ବିଶେଷ

ମର୍ମରପ୍ରସ୍ତର—ବି. ସ୍ୱନାମ ପ୍ରସିଦ୍ଧ ପ୍ରସ୍ତର-

ମର୍ମରିବା—କ୍ରି. (ପଦ୍ୟ) ବି. ମର୍ମର ଧ୍ୱନି କରିବା ।

ମର୍ମରୀ—ସ୍ତ୍ରୀ. ବି. (ମର୍ମର+ଈ) ଏକ-ପ୍ରକାର ଦେବଦାରୁ, ହଳଦୀ, ଦାରୁ-ହରିଦ୍ରା, ସରଳକାଷ୍ଠ, କର୍ଣ୍ଣସ୍ଥିତ ଶିରା-ବିଶେଷ ।

ମର୍ମରୀକ—ପୁଂ. ବଂ. (ମର୍ମର+ଈକ) ଦୀନ, ଗରିବ, (ସ୍ତ୍ରୀ) ମର୍ମରିକା, (ବି) ଗରିବଲୋକ ।

ମର୍ମବଚନ—ବି. (କ.ଧା) ମର୍ମଭେଦୀ-ବାକ୍ୟ, ଗୁପ୍ତକଥା, ରହସ୍ୟ ।

ମର୍ମବିଦ୍—ପୁଂ.ବଂ. (ମର୍ମ+ବିଦ୍+କ୍ୱିପ୍) ମର୍ମଜ୍ଞ ଦେଖ ।

ମର୍ମବିଦାରଣ—ବି.ବଂ. ମର୍ମଚ୍ଛେଦକାରକ, (ବି) ମର୍ମଚ୍ଛେଦ । [ଦେଖ ।

ମର୍ମବିଦ୍ଧ—ପୁଂ. ବଂ. (୭ତତ୍) ମର୍ମାହତ

ମର୍ମବିଭେଦୀ—ପୁଂ.ବଂ. (ମର୍ମ+ବି+ଭିଦ୍+ଇନ୍) ମର୍ମଭେଦକାରକ ।

ମର୍ମବେଦନା—ବି. (୭ତତ୍) ଆନ୍ତରିକ କ୍ଲେଶ ।

ମର୍ମବେଦୀ—ପୁଂ. ବଂ. (ମର୍ମ+ବିଦ୍+ଇନ୍) ମର୍ମବିଦ୍, ମର୍ମଜ୍ଞ, (ସ୍ତ୍ରୀ) ମର୍ମ-ବେଦିନୀ ।

ମର୍ମବେଧୀ—ପୁଂ. ବଂ. (ମର୍ମ+ବିଧ୍+ଇନ୍) ମର୍ମବେଧକାରକ, ମର୍ମବେଧକ ।

ମର୍ମବ୍ୟଥା—ବି.(୭ତତ୍)ଆନ୍ତରିକକ୍ଲେଶ ।

ମର୍ମସ୍ଥଳ—ବି. (କ.ଧା) ମର୍ମସ୍ଥାନ,ଜୀବନ-ସ୍ଥାନ, ଅନ୍ତଃକରଣ ।

ମର୍ମସ୍ପର୍ଶୀ—ବଂ. (ମର୍ମ+ସ୍ପୃଶ୍+ଣ.ଇନ୍) ମର୍ମଭେଦୀ,ହୃଦୟରେ ଦୟାର ଉଦ୍ରେକକାରୀ, (ସ୍ତ୍ରୀ) ମର୍ମସ୍ପର୍ଶିନୀ ।

ମର୍ମସ୍ପୃକ୍—ବି. ବଂ. (ମର୍ମ+ସ୍ପୃଶ୍) ମର୍ମ-ପୀଡ଼କ, ଆନ୍ତରିକ ବ୍ୟଥାଦାୟକ ।

ମର୍ମାଘାତ—ବି. (୭ତତ୍) ମର୍ମସ୍ଥଳରେ ଆଘାତ, ହୃଦୟରେ ଜାତ ବେଦନା ।

ମର୍ମାନ୍ତକ—ପୁଂ. ବଂ. (୬ତତ୍) ମର୍ମ-ପର୍ଯ୍ୟନ୍ତ, ମର୍ମପୀଡ଼କ,ମର୍ମସ୍ପର୍ଶୀ(କ୍ଲେଶ), ହୃଦୟବିଦାରକ ।

ମର୍ମାନ୍ତକବେଦନା—ବି.(କ.ଧା) ହୃଦୟ-ବିଦାରକ କଷ୍ଟ ।

ମର୍ମାନ୍ୱେଷଣ—ବି.(୬ତତ୍)ତତ୍ତ୍ୱାନୁସନ୍ଧାନ. ମନୁଷ୍ୟର ଦୁର୍ବଳତା ଓ ଗୁପ୍ତବିଷୟର ଅନୁସନ୍ଧାନ ।

ମର୍ମାନ୍ୱେଷୀ—ପୁଂ. ବଂ. ତତ୍ତ୍ୱାନୁସନ୍ଧାନ-କାରୀ, (ସ୍ତ୍ରୀ) ମର୍ମାନ୍ୱେଷିଣୀ ।

ମର୍ମାବଧାରଣ—ବି. (୬ତତ୍) ସ୍ୱରୂପାର୍ଥ ନିର୍ଣ୍ଣୟ ।

ମର୍ମାବରଣ—ବି. (୬ତତ୍)ବର୍ମ, କବଚ ।

ମର୍ମାବିଦ୍—ପୁଂ.ବଂ. (ମର୍ମ+ଆ+ବ୍ୟଧ୍+କ୍ୱିପ୍) ସନ୍ଧିସ୍ଥାନ ବେଧକର୍ତ୍ତା ।

ମର୍ମାର୍ଥ—ବି. ତାତ୍ପର୍ଯ୍ୟାର୍ଥ, ପ୍ରକୃତାର୍ଥ, ସ୍ୱରୂପାର୍ଥ ।

ମର୍ମାହତ—ପୁଂ.ବଂ. (୭ତତ୍) ମର୍ମରେ ଆଘାତପ୍ରାପ୍ତ, ଅନ୍ତରରେ ବେଦନାପ୍ରାପ୍ତ

ମର୍ମିକ—ପୁଂ.ବଂ. (ମର୍ମ+ଇକ) ମର୍ମଜ୍ଞ ଦେଖ, ଗୂଢ଼ଜ୍ଞାନବାନ୍ ।

ମର୍ମୀ—ପୁଂ.ବଂ. (ମର୍ମ+ଇନ୍) ତାତ୍ପର୍ଯ୍ୟ ବା ରହସ୍ୟଗ୍ରାହୀ ।

ମର୍ମୋଦ୍ଘାଟନ—ବି. (୬ତତ୍) ରହସ୍ୟ-ଭେଦ, ସ୍ୱରୂପାର୍ଥ ପ୍ରକାଶ । [ଦ୍ଘାଟନ ।

ମର୍ମୋଭେଦ—ପୁଂ.ବି. (୬ତତ୍) ମର୍ମୋ-

ମର୍ଯ୍ୟ—ପୁଂ.ବି. (ମୃ+ଯ) ମନୁଷ୍ୟ ।

ମର୍ଯ୍ୟକ—ପୁଂ.ବି. ମର୍ତ୍ତ୍ୟସଙ୍ଘ,ମର୍ତ୍ତ୍ୟସମୂହ, ସୃଷ୍ଟ । [ଜୀୟ ।

ମର୍ଯ୍ୟଶ୍ରୀ—ବି.ବଂ. ମନୁଷ୍ୟ କର୍ତ୍ତୃକ ଉଦ-

ମର୍ଯ୍ୟା(ର୍ଯ୍ୟା)—ବି. (ମୃ+ଯ+ଆ)ସୀମା, ପର୍ଯ୍ୟନ୍ତ ।

ମର୍ଯ୍ୟାଦକ—ବି.ବଂ. (ମର୍ଯ୍ୟାଦା+କ) ମର୍ଯ୍ୟାଦାକର୍ତ୍ତା, ସମ୍ମାନକାରୀ ।

ମର୍ଯ୍ୟାଦା—ସ୍ତ୍ରୀ.ବି. (ପରି+ଆ+ଦା+ମି.ଅ+ଆ) ଦେବାଦିଙ୍କ ପୂଜା, ନିୟମ,ସଦାଚାର,ମାନସମ୍ଭ୍ରମ,ଗୌରବ, ସମ୍ମାନ, ସୁନାମ, (ମର୍ଯ୍ୟା+ଦା+ମି. ଅ+ଆ) ସୀମା, ତୀର, କୂଳ, ଶେଷ, ଚିହ୍ନ, ନିର୍ଦ୍ଧାରିତ ବା ଅପରିବର୍ତ୍ତନୀୟ ରୀତି, ନିୟମ, ଚୁକ୍ତି, (ଗ୍ରା.ବି) ଲୌକି-କତା, ବେଭାର.ବିବାହାଦି ଉପଲକ୍ଷରେ ନିମନ୍ତ୍ରିତ ବ୍ୟକ୍ତିମାନଙ୍କୁ ଦିଆଯିବା ଉପ-ଢୌକନ ।

ମର୍ଯ୍ୟାଦାକର—ବଂ. (ମର୍ଯ୍ୟାଦା+କୃ+ଣ.ଅ) ସମ୍ମାନଜନକ ।

ମର୍ଯ୍ୟାଦାକରିବା—କ୍ରି.ବି. ସମ୍ମାନ ଦେଖା-ଇବା, ନିମନ୍ତ୍ରିତ ବନ୍ଧୁଙ୍କୁ ଉପଢୌକନ ଓ ସତ୍କାରଦ୍ୱାରା ସମ୍ମାନିତ କରିବା ।

ମର୍ଯ୍ୟାଦାଗିରି—ବି. (କ.ଧା) କୁଳାଚଳ, ବର୍ଷର ବା ଦେଶର ସୀମା ପର୍ବତ ।

ମର୍ଯ୍ୟାଦାଚଳ—ପୁଂ.ବି. ମର୍ଯ୍ୟାଦାପର୍ବତ, ସୀମାପର୍ବତ ।

ମର୍ଯ୍ୟାଦାନ୍ୱିତ—ବଂ. ମର୍ଯ୍ୟାଦାଯୁକ୍ତ, ସମ୍ଭ୍ରାନ୍ତ ।

ମର୍ଯ୍ୟାଦାବାନ୍—ପୁଂ.ବଂ.(ମର୍ଯ୍ୟାଦା+ବତୁ) ସମ୍ଭ୍ରାନ୍ତ, ସମ୍ମାନିତ, ମର୍ଯ୍ୟାଦାଯୁକ୍ତ, ମର୍ଯ୍ୟାଦାନ୍ୱିତ ।

ମର୍ଯ୍ୟାଦାବନ୍ଧ—ବି. ଅଧିକାରରେ ରକ୍ଷଣ, ସମ୍ମାନ ସହିତ ଆବଦ୍ଧକରଣ, ନଜର-ବନ୍ଦ ।

ମର୍ଯ୍ୟାଦାବିହୀନ—ବଂ. (୩ତତ୍) ଅସମ୍ମାନିତ, ସମ୍ଭ୍ରମହୀନ ।

ମର୍ଯ୍ୟାଦାଲଙ୍ଘନ—ବି.(୬ତତ୍)ସଦାଚାରର ସୀମାତିକ୍ରମ ।

ମର୍ଯ୍ୟାଦାଲଙ୍ଘିବା—କ୍ରି.ବି. ସଦାଚାରର ସୀମାକୁ ଅତିକ୍ରମ କରିବା ।

ମର୍ଯ୍ୟାଦାଶାଳୀ—ପୁଂ.ବିଂ. (ମର୍ଯ୍ୟାଦା+ ଶାଳିନ୍) ସମ୍ଭ୍ରାନ୍ତ ।
ମର୍ଯ୍ୟାଦାଶୀଳ—ବିଂ. (ବ.ବ୍ରୀ)ମର୍ଯ୍ୟାଦା- ବାନ୍ ଦେଖ ।
ମର୍ଯ୍ୟାଦାସିନ୍ଧୁ—ବିଂ. ମର୍ଯ୍ୟାଦାସାଗର, ବିଶେଷରୂପେ ସମ୍ମାନିତ ।
ମର୍ଯ୍ୟାଦାହାନି—ବି.(୬ତତ୍) ସମ୍ଭ୍ରମହାନି, ଗୌରବହାନତା ।
ମର୍ଯ୍ୟାଦୀ—ପୁଂ.ବିଂ.ସୀମାଯୁକ୍ତ, ଅଙ୍କଗତ, (ସ୍ତ୍ରୀ) ମର୍ଯ୍ୟାଦିନୀ ।
ମର୍ଶ—ପୁଂ.ବି. (ମୃଶ୍+ଭା.ଅ) ପରାମର୍ଶ, ଯୁକ୍ତି, ମନ୍ତ୍ରଣା, ଉପଦେଶ, ନାସ,ନସ୍ୟ, ଘର୍ଷଣ, ଦେହରୁ ମଳ ଛଡ଼ାଇବା ।
ମର୍ଶନ—ବି. ( ମୃଶ୍ + ଭା.ଅନ ) ମର୍ଶ ଦେଖ ।
ମର୍ଷ—ପୁଂ.ବି., ( ମୃଷ୍+ଭା.ଅ ) କ୍ଷାନ୍ତି, ଧୈର୍ଯ୍ୟ, କ୍ଷମା, ସହନ, ନାଶନ ।
ମର୍ଷଣ—କ୍ଲୀ.ବି. ( ମୃଷ୍+ଭା.ଅନ ) ମର୍ଷ ଦେଖ, (ବିଂ-କ.ଅନ) ମର୍ଷକ ।
ମର୍ଷଣୀୟ—ହି. ବିଂ. (ମୃଷ୍+ର୍ମ.ଅନୀୟ) ମର୍ଷଣାର୍ହ, କ୍ଷମାଯୋଗ୍ୟ ।
ମର୍ଷିତ—ହି.ବିଂ. (ମୃଷ୍+ର୍ମ.ତ)ଯାହାକୁ କ୍ଷମାଦିଆଯାଇଥାଏ, କ୍ଷାନ୍ତିବିଶିଷ୍ଟ, ଯାହା ସହ୍ୟ ହୋଇଥାଏ, (କ.ତ) କ୍ଷମା- ଶୀଳ, (ବି-ଭା.ତ) କ୍ଷମା, ଧୈର୍ଯ୍ୟ ।
ମର୍ଷିତବାନ୍—ପୁଂ.ବିଂ. (ମୃଷ୍+ତବତ୍) ସହିଷ୍ଣୁ, କ୍ଷାନ୍ତ, (ସ୍ତ୍ରୀ) ମର୍ଷିତବତୀ ।
ମସୁ୍ମ—ଯା.ବି. ଋତୁ, ଉପଯୁକ୍ତ ସମୟ, ସୁଯୋଗ ।
ମସୁ୍ମୀ—ଯା ବିଂ. ମୌସୁମୀ, ଋତୁ ଅନୁ- ସାରେ ଘଟିବା (ବର୍ଷା ଓ ବାୟୁ) ।
ମଲ୍ ମଲ୍—ଗ୍ରା.ବି. ଅତି ସୂକ୍ଷ୍ମ ସୂତାର ଲୁଗା, ମର୍ମର ଦେଖ ।
ମଳ—ବି. (ମୃଜ୍+ଅଳ) ମୂତ୍ର, ଶ୍ଳେଷ୍ମା, ଶିଙ୍ଘାଣି, ବିଷ୍ଠା, କୀଟ, କର୍ପୂର, ବାତ, ପିତ୍ତ, କଫ, ଲୁହାଆଦିର କଳଙ୍କି, ମଳିଗୁଡ଼, ତରଳପଦାର୍ଥର ତଳେ ଯାହ ବସିଯାଏ, ତରଳ ପଦାର୍ଥ ଉପରେ ଯାହା ଭାସିଉଠେ, ଫେଣ, ମଇଳା, ମଳି,ପାପ,ହୃଦୟର ଅଶୁଦ୍ଧତା,କଳଙ୍କ, ସମୁଦ୍ର ଫେଣ, କଷାଯାଇଥିବା ଚମଡ଼ା, ଚମଡ଼ାର ପୋଷାକ, ଦୋଷ, (ବିଂ) ମଳଯୁକ୍ତ କୃପଣ,(ସ୍ତ୍ରୀ) ମଳା ।
ମଲ୍—ଗ୍ରା. ବି. ପାଦବଳୟ, ଗୁଜ୍ରିଆ, ଗଉଡ଼, ମାରବାଡ଼ିଙ୍କ ଉପାଧିବିଶେଷ ।
ମଳକଡ଼ି—ଗ୍ରା. ବି. କାନର ଉପର- ପାଖରେ ପିନ୍ଧାଯିବା ଅଳଙ୍କାରବିଶେଷ
ମଳକର୍ଷଣ—କ୍ଲୀ.ବି ମଇଳା ପରିଷ୍କାର- କରଣ ।
ମଳକୁଟି—ଗ୍ରା. ବି. ହଳଦି ଆଦି ଲଗାଇ ଦେହକୁ ହାତରେ ଘଷିଲେ ଯେଉଁ ମଳି ବଳିବଳି ହୋଇ ବାହାରେ ।
ମଳକ୍କାପ୍ରଣାଳୀ—ମଳୟୋପଦ୍ୱୀପ ଓ ସୁମାତ୍ରାର ମଧ୍ୟବର୍ତ୍ତୀ ଜଳପଥ ।
ମଳଗ—ପୁଂ.ବି. ରଜକ, ଧୋବା ।
ମଳଘ୍ନ—ପୁଂ.ବି. (ମଳ+ହନ୍+କ.ଅ) ଶାଲ୍ମଳୀ କନ୍ଦ,ଶିମିଳି କନ୍ଦା,ଏକପ୍ରକାର ଲତା କରଞ୍ଜ, (ବିଂ) ମଳନାଶକ,ମଳ- ପରିଷ୍କାରକ । [ ଦମନୀ ।
ମଳଘ୍ନୀ—ସ୍ତ୍ରୀ.ବି. (ମଳଘ୍ନ+ଈ) ନାଗ-
ମଳଙ୍ଗ—ଗ୍ରା.ଚି. ଲୁଣ ମାରିବାର ସ୍ଥାନ, ସୁନ୍ଦରବନବାସୀ ଲବଣ ପ୍ରସ୍ତୁତକାରୀ ଜାତିବିଶେଷ ।
ମଳଙ୍ଗୀ—ଗ୍ରା.ବି. ଏକପ୍ରକାର ଦେଶୀ- ଡଙ୍ଗା, ସମୁଦ୍ର ପାଣିରୁ ଲୁଣ ମାରିବା ମୂଲିଆ, (ଫ-ବ) ମନ୍ଥରଗତିମାନ୍ଥ ।
ମଳଜ—କ୍ଲୀ. ବି. (ମଳ+ଜନ୍+କ.ଅ) ପୂୟ,ବିଂ.ମଳୋଦ୍ଭବ,ମଇଳାରୁ ଜାତ ।
ମଳତ୍ୟାଗ—ବି.(୬ତତ୍) ଝାଡ଼ାଫେରିବା, ବିଷ୍ଠାତ୍ୟାଗ ।
ମଳଦ—ପୁଂ.ବି. କାଳିନ୍ଦୀ ଓ ମହାନଦୀର ସଙ୍ଗମ ସ୍ଥଳରେ ଅବସ୍ଥିତ ଦେଶବିଶେଷ
ମଳଦିଗ୍ଧାଙ୍ଗ—ହି.ବିଂ. ବ.ବ୍ରୀ; ମଳଯୁକ୍ତ (ଦେହ) ।
ମଳଦୂଷିତ—ହି.ବିଂ. ( ୩ତତ୍ ) ମଳିନ, ମଳଦ୍ୱାରା ଅପବିତ୍ର ବା ନଷ୍ଟ ।
ମଳଦ୍ରାବୀ—ପୁଂ. ବି. (ମଳ+ଦ୍ରୁ+ଣିଚ୍ +ଇନ୍) ଜୟପାଳ, କନକା ।
ମଳଦ୍ୱାର—ବି. (୬ତତ୍) ମଳତ୍ୟାଗର ପଥ, ଗୁହ୍ୟ, ପାୟୁ ।
ମଳଧାତ୍ରୀ—ସ୍ତ୍ରୀ.ବି.(କ.ଧା)ଧାତ୍ରୀବିଶେଷ, ଯେଉଁ ଧାତ୍ରୀ ବା ଧାଈ ମଳମୂତ୍ର ପରି- ଷ୍କାର କରେ ।
ମଳନ—କ୍ଲୀ.ବି.(ମଳ+ଭା.ଅନ)ମର୍ଦ୍ଦନ, ବିଲେପନ, (କ.ଅନ) ପଟ୍ଟବାସ,ତମ୍ବୁ, ରାଉଟି ।
ମଳନିଃସରଣ—ବି. ୬ତତ୍. ମଳୋତ୍ସର୍ଗ, ମଳତ୍ୟାଗ ।
ମଳପଙ୍କୀ—ପୁଂ.ବିଂ. ମଳଯୁକ୍ତ,ପଙ୍କଲିପ୍ତ, (ସ୍ତ୍ରୀ) ମଳପଙ୍କିନୀ ।
ମଳପୂ—ସ୍ତ୍ରୀ. ବି. ( ମଳ+ପୂ+କ୍ୱିପ୍ ) କାକୋଦୁମ୍ବରିକା, ଡିମ୍ବିରିଗଛ ।
ମଳପୃଷ୍ଠ—ବି.ପୁସ୍ତକର ବାହାରର ପୃଷ୍ଠା ।
ମଳଭାଣ୍ଡ—ବି. (୬ତତ୍) ଶରୀର ମଧ୍ୟରେ ଥିବା ମଳାଧାର,(କ.ଧା)ମଳପୂର୍ଣ୍ଣ ଭାଣ୍ଡ ।
ମଳଭୁକ୍(ଜ୍)—ପୁଂ.ବି. (ମଳ+ଭୁଜ୍+ କ୍ୱିପ୍+ଅ) କାକ,(ବିଂ)ମଳଭୋଜୀମାତ୍ର, ଗୁହଖିଆ ।
ମଳଭେଦନୀ—ସ୍ତ୍ରୀ. ବି. (ମଳ+ଭିଦ୍+ ଇନ୍+ଈ) କଟୁକୀ ।
ମଳଭେଦୀ--ବିଂ.(ମଳ+ଭିଦ୍+କ.ଇନ୍) ଯାହା କଠିନ ମଳକୁ ତରଳ କରାଏ, (ସ୍ତ୍ରୀ) ଭେଦନୀ ।
ମଲମ୍—ଯା.ବି. ପ୍ରଲେପ ଔଷଧବିଶେଷ
ମଳମଳ—ଗ୍ରା.ବିଂ. ନିଦ୍ରାଯୋଗୁଁ ବାରମ୍ବାର ଯୋଡ଼ାଇ ହୋଇ ପଡ଼ୁଥିବା ବା ମଳିନତା ଛାଡ଼ିନଥିବା ଚକ୍ଷୁ ବା ଚକ୍ଷୁଯୁକ୍ତ (ବ୍ୟକ୍ତି) ।
ମଳମଳି—ଗ୍ରା.ବି. ଜଳସ୍ରୋତର ଆବର୍ତ୍ତ ବା ଭଉଁରୀ, ଜଳାବର୍ତ୍ତ, ବିପଦଜନକ ଘଟନା ।
ମଳମଲ୍ଲକ—କ୍ଲୀ.ବି. କୌପୀନ ।
ମଳମାସ—ପୁଂ.ବି. ଅଧିକ ମାସ,ଅଧିମାସ, ମାସବୃଦ୍ଧି ।
ମଳମାସକୃତ୍ୟ—ବି.(୭ତତ୍)ମଳମାସରେ କର୍ତ୍ତବ୍ୟ ପ୍ରାତଃସ୍ନାନ ହବିଷ୍ୟ ଓ ବନ୍ଧ- ର୍ଜପାଦି ବ୍ରତ ।

ମଳମାସମାହାତ୍ମ୍ୟ—ବି. (୬ତତ୍) ମଳମାସରେ କୃତ ବ୍ରତାଦିର ଫଳ ।
ମଳମୂତ୍ରପରିତ୍ୟାଗ—ବି. (୬ତତ୍) ଝାଡ଼ା ଫେରିବା ଓ ପ୍ରସ୍ରାବ କରିବା ।
ମଳମୂତ୍ରରୋଧ—ବି. ( ୬ତତ୍ ) ରୋଗବିଶେଷ, ଯେଉଁ ରୋଗରେ ରୋଗୀର ମଳମୂତ୍ର ବନ୍ଦ ହୋଇଯାଏ ।
ମଳମ୍ବା—ଗ୍ରା.ବି. ତାମ୍ର ପତ୍ର ଉପରେ ସୁନାପାଣି ପିଆଇବା, ଗିଲ୍ଟି କରିବା ।
ମଳୟ—ପୁଂ.ବି. (ମଳ+ଅୟ) ସ୍ୱନାମଖ୍ୟାତ ପର୍ବତବିଶେଷ,ଚନ୍ଦନାଦ୍ରି,ବସନ୍ତ ପବନ, ଶୈଳାଙ୍ଗ, ଦେଶବିଶେଷ, ଆରାମ,ଉପବନ, ନନ୍ଦନବନ,ଅଷ୍ଟାଦଶ ଦ୍ୱୀପାନ୍ତର୍ଗତ ଏକତମ,ଋଷଭଦେବଙ୍କ ଶତପୁତ୍ର ମଧ୍ୟରୁ ପଞ୍ଚମପୁତ୍ର ।
ମଳୟଉପକୂଳ—ଗ୍ରା.ବି. ଭାରତର ପଶ୍ଚିମ ଉପକୂଳ, ମାଲବାର ଉପକୂଳ ।
ମଳୟକେତୁ—ପୁଂ. ବି. ମୁଦ୍ରାରାକ୍ଷସବର୍ଣ୍ଣିତ ଜଣେ ନାୟକ ।
ମଳୟଗନ୍ଧିନୀ—ସ୍ତ୍ରୀ.ବି. (ମଳୟ+ଗନ୍ଧ+ଇନ୍+ଈ) ରମଣୀଙ୍କ ସଖୀବିଶେଷ ।
ମଳୟଗିରି—ଗ୍ରା.ବି. ପାଲଲହଡ଼ା ରାଜ୍ୟାନ୍ତର୍ଗତ ଗୋଟିଏ ପର୍ବତ ।
ମଳୟଚନ୍ଦନ—ବି.(୬ତତ୍)ଅଗୁରୁ ଚନ୍ଦନ, ମଳୟ ଗିରିଜାତ ଉତ୍କୃଷ୍ଟ ଚନ୍ଦନ ।
ମଳୟଜ—ପୁଂ.ବି.ଚନ୍ଦନ, ମଳୟ ଦେଶଜାତ, ବାୟୁ, ରାହୁ, ଜଣେ ପ୍ରାଚୀନ କବି, (ବିଂ) ମଳୟ ପର୍ବତଜାତ ।
ମଳୟଜପଙ୍କ—ବି. (୬ତତ୍) ଘୋରା ଚନ୍ଦନ ।
ମଳୟଜରଜଃ—କ୍ଲୀ. ବି. ଚନ୍ଦନଗୁଣ୍ଡା, ଚନ୍ଦନଧୂଳି ।
ମଳୟଜଶୀତଳ—ବିଂ. (କ.ଧା) ଘୋରା ଚନ୍ଦନପରି ଥଣ୍ଡା । [ ବୃକ୍ଷ ।
ମଳୟଦ୍ରୁମ—ପୁଂ.ବି. ମଦନବୃକ୍ଷ, ଚନ୍ଦନ
ମଳୟପବନ—ବି.(୬ତତ୍) ମଳୟୋଦ୍ଭବ ବାୟୁ, ବସନ୍ତପବନ, ଦକ୍ଷିଣ ଦିଗର ପବନ ।
ମଳୟଭୂଭୃତ୍—ପୁଂ.ବି. ମଳୟ ପର୍ବତ ।
ମଳୟଭୂମି—ସ୍ତ୍ରୀ.ବି. ହିମାଳୟ ପର୍ବତସ୍ଥ ସ୍ଥାନଭେଦ ।
ମଳୟମ(ମା)ରୁତ—ବି. (୬ତତ୍) ବସନ୍ତ ପବନ, ଦକ୍ଷିଣା ମରୁତ ।
ମଳୟବାହ—ପୁଂ.ବି. ମଳୟାନିଳ ।
ମଳୟବାତ—ବି.(୬ତତ୍)ବସନ୍ତପବନ ।
ମଳୟବାୟୁ—ବି.(୬ତତ୍)ବସନ୍ତପବନ ।
ମଳୟବାସିନୀ—ସ୍ତ୍ରୀ. ବି. ଦୁର୍ଗା ।
ମଳୟବାସୀ—ପୁଂ. ବିଂ. (ମଳୟ+ବସ୍+କ.ଇନ୍) ମଳୟ ପର୍ବତରେ ବା ମଳୟ ଦେଶରେ ବାସକରୁଥିବା, (ବି) ଦକ୍ଷିଣାପବନ ।
ମଳୟସମୀର(ଣ)—ବି. (୬ତତ୍) ବସନ୍ତ ପବନ, ଦକ୍ଷିଣାପବନ ।
ମଳୟା—ସ୍ତ୍ରୀ. ବି. (ମଳ+ଅୟ+ଆ) ତ୍ରିବୃତ୍, ତହୁଡ଼ି, ସୋମରାଜୀ ।
ମଳୟାଚଳ—ଗ୍ରା. ବି. ବୋମ୍ବାଇ ପ୍ରେସିଡେନ୍ସୀର ସହ୍ୟାଦ୍ରି ପର୍ବତର ଗୋଟିଏ ଅଂଶମାତ୍ର, (ପୁ-ବି) ମଳୟପର୍ବତ ।
ମଳୟାଦ୍ରି—ପୁଂ. ବି. ମଳୟପର୍ବତ ।
ମଳୟାନିଳ—ବି. ବସନ୍ତକାଳୀନ ବାୟୁ, ବାସନ୍ତ ।
ମଳୟାଳ—ଗ୍ରା. ବି. ଦାକ୍ଷିଣାତ୍ୟବାସୀ ପାର୍ବତୀୟ ଜାତିବିଶେଷ ।
ମଳୟୂ—ସ୍ତ୍ରୀ.ବି.ମଳପୂ,କାକୋଦୁମ୍ବରିକା ।
ମଳୟୋଦ୍ଭବ—କ୍ଲୀ. ବି. (ବ.ବ୍ରୀ)ଚନ୍ଦନ, ଗନ୍ଧସାର । [ ଦେଖ ।
ମଳରୋଧ—ବି. (୬ତତ୍) ମଳରୋଧନ
ମଳରୋଧକ—ବିଂ. ( ୬ତତ୍ ) ଯାହା କୋଷ୍ଠବଦ୍ଧତା କରାଏ ।
ମଳରୋଧନ—କ୍ଲୀ. ବି. ବିଷ୍ଟମ୍ଭ, ଅନାହ ରୋଗ, ମଳବଦ୍ଧତା ।
ମଳବତୀ—ସ୍ତ୍ରୀ. ବିଂ. ( ମଳବତ୍+ଈ ) ମଳବାନର ସ୍ତ୍ରୀଲିଙ୍ଗ; (ସ୍ତ୍ରୀ.ବି) ଋତୁମତୀ ସ୍ତ୍ରୀ ।
ମଳବଦେଶ—ବି. ମାଳବଦେଶ ।
ମଳବଦ୍ଧ—ପୁଂ. ବିଂ. (ବ.ବ୍ରୀ) ଯାହାର କୋଷ୍ଠବଦ୍ଧ ହୋଇଥାଏ ।
ମଳବଦ୍ଧତା—ବି.କୋଷ୍ଠ ଶୁଦ୍ଧି ନ ହେବା, ଝାଡ଼ା ବନ୍ଦ ।
ମଳବାସାଃ—ପୁଂ.ବିଂ.ମଳିନବସ୍ତ୍ର ବିଶିଷ୍ଟ, (ସ୍ତ୍ରୀ) ଋତୁମତୀ ସ୍ତ୍ରୀ ।
ମଳବା—ଗ୍ରା. ବି. ଭଙ୍ଗା କୋଠାଆଦିରୁ ବାହାରିବା ଇଟା ଓ ଚୂନଆଦିର କ୍ଷୁଦ୍ର ଖଣ୍ଡମାନ ।
ମଳବାନ୍—ପୁଂ. ବିଂ. ( ମଳ+ବତ୍ ) ମଳଯୁକ୍ତ, ମଇଳା, ମଳପୂର୍ଣ୍ଣ, ( ସ୍ତ୍ରୀ ) ମଳବତୀ ।
ମଳ(ଲ)ବାର—ବି. ଦକ୍ଷିଣ ଭାରତର ପଃ ଉପକୂଳରେ ତ୍ରିବାଙ୍କୁଡ଼ ରାଜ୍ୟ ଉତ୍ତରସ୍ଥ ପ୍ରଦେଶବିଶେଷ ।
ମଳବାରଉପକୂଳ—ଗ୍ରା. ବି. ଦକ୍ଷିଣଭାରତର ପଶ୍ଚିମ ଉପକୂଳ ।
ମଳବାସିକ—ବି. ଦକ୍ଷିଣ ଭାରତାନ୍ତର୍ଗତ ଗୋଟିଏ ପ୍ରାଚୀନ ଜନପଦ ।
ମଳବାହୀ—ପୁଂ. ବିଂ. (ମଳ+ବହ୍+ଇନ୍) ମଳବହନକାରୀ,(ସ୍ତ୍ରୀ) ବାହିନୀ ।
ମଳବିନାଶିନୀ—ସ୍ତ୍ରୀ. ବି. (ମଳ+ବି+ନଶ୍+ଣିଚ୍+ଇନ୍+ଈ) ଶଙ୍ଖପୁଷ୍ପୀ, ଖାରଦ୍ରବ୍ୟ ମାତ୍ର ।
ମଳବିଶୋଧନ—ବି.ମଳପରିଷ୍କାରକରଣ, ସ୍ୱର୍ଣ୍ଣାଦିର ଖାଦ ବାଦ୍‌ଦେବା ।
ମଳବିସର୍ଜନ—କ୍ଲୀ.ବି. ମଳତ୍ୟାଗ,ଝାଡ଼ାଫେରିବା ।
ମଳବେଗ—ପୁଂ. ବି. (ବ.ବ୍ରୀ) ଅତିସାର ରୋଗ, (୬ତତ୍) ଝାଡ଼ା ତଳକୁ ହେବା ।
ମଳଶୁଦ୍ଧି—ସ୍ତ୍ରୀ. ବି. ମଳଶୋଧନ,ସଫାହୋଇ ଝାଡ଼ାହେବା ।
ମଳଶୈତ୍ୟ—କ୍ଲୀ. ବି. ତନ୍ନାମକ ଶ୍ଳେଷ୍ମଜ ରୋଗ ।
ମଳହନ୍ତ୍ରୀ—ପୁଂ. ବି. (ମଳ+ହନ୍+ତୃ) ଶିମୁଳୀକନ୍ଦା ।
ମଳହର—ପୁଂ.ବି.ଜୈପାଳ ବୃକ୍ଷ,କନକା
ମଳହାରକ—ପୁଂ. ବିଂ. ପାପହାରକ, ପାପହରଣକାରୀ, (ବି) ମେହେନ୍ତର, ହାଡ଼ୀ ।
ମଳା—ବି. (ମଳ+ଆ) ବସ୍ତ୍ରର ଲଙ୍ଗର ଅଗ୍ରଭାଗ, କଙ୍କଡ଼ାବିଚ୍ଛାର ନାଙ୍ଗୁଡ଼, ଏକ-

ପ୍ରକାର କଂସା ବା ପିତ୍ତଳ, ବେକଙ୍କଡ, ଭୁଇଁଅଁ, ଭୁଇଁଅଁଳା, ଆମ୍ବଅଦା, ଆମ୍ବହଳଦ, ନାଭନାଳା, (ଗ୍ରା.ବ)ବୃତ୍ତା-କାର ରେଖା,ଗୋଲାକାର ଚକ୍ର, ଆଳ-ବାଳ, ମନ୍ଦା, ଅଗାଣ୍ଡିଆ ପାଦ (ମାଟିଆ ଆଦ)ରଖିବା ପାଇଁ ଭୂମିରେ ଖୋଳା ହେବା ଅଟାଳିର ଚଉଡ଼ା ଗାତ ଓ ପାଳଆଦରେ ନିର୍ମିତ ଶୂନ୍ୟଗର୍ଭ ବଇଠି, ମଲବା କର୍ମ, ସାପ, ଗମିପୋକଆଦର ଶୋଇବାର କୁଣ୍ଡଳୀ, ବହୁସଂଖ୍ୟକ ଉଇ ପିମ୍ପୁଡ଼ିଆଦଙ୍କ ଏକତ୍ର ସନ୍ନିବେଶ, କାଠ, ନଡ଼ାଆଦର ସ୍ତୂପ ବା ଗଦା. (ଗ୍ରା.ବଂ) ଯେ ମଲେ ବା ମଲବା କର୍ମ କରେ ।

ମଲ୍ଲ—ଗ୍ରା.ବଂ.ମୃତ, ମୁମୂର୍ଷୁ, ମୃତପ୍ରାୟ, ମରଣାପନ୍ନ ଜୀବପରି କ୍ଷୀଣ, ପ୍ରଭାହୀନ, (ଗ୍ରା.ବ)ମୁମୂର୍ଷୁ ଅବସ୍ଥା, ଅତି ଦୁଃଖମୟ ଅବସ୍ଥା, (ଗ୍ରା.ଅ) ଛି, ବିରକ୍ତି ଓ ଅବ-ମାନନା ସୂଚକ ଅବ୍ୟୟ ।

ମଲ୍ଲ(ଲୋ)ଇ—ଗ୍ରା.ବ.ଯବନ ଆକ୍ରଟାବୁଧ, ଗବଡ଼ା । [ ଶିକନ୍ଦରୂପ ।

ମଲା(ଲେ)ଇବା—ଗ୍ରା.କ୍ରି. ମଲବା କ୍ରିୟାର

ମଲାକର୍ଷୀ—ପୁଂ.ବ. (ମଲ୍ + ଆ + କୃଷ୍ ଇନ୍) ହାଡ଼ୀ, ମେହେନ୍ତର, (ସ୍ତ୍ରୀ)ମଲା-କର୍ଷିଣୀ ।

ମଲାକା—ସ୍ତ୍ରୀ.ବ. (ମଲ + ଅକ + ଅ + ଆ)କାମିନୀ, ବେଶ୍ୟା, ଅଧମା ସ୍ତ୍ରୀ, ହସ୍ତିନୀ, ଦୂତୀ, ସମ୍ବାଦବାହିକା ସ୍ତ୍ରୀ ।

ମଲାକାଜାମରୁଲ—ଗ୍ରା. ବ. ମଲାକା ଦେଶଜାତ ଏକପ୍ରକାର ସ୍ୱାଦୁ ଫଳଗଛ

ମଲାକେଟେଣ୍ଡି—ପ୍ରା(ବାଲେ)ବ.ଟେଲୁଣି ପୋକ । [ (ବ୍ୟକ୍ତି) ।

ମଲାଟଲ—ଗ୍ରା.ବଂ.ମୃତ ଓ ଦେହତ୍ୟାଗୀ

ମଲିଗିହାଳପୁଅ—ଗ୍ରା. ଅ. ବେଖାତର ସୂଚକ ଅବ୍ୟୟ ।

ମଲିଙ୍ଗ—ଗ୍ରା.ବ.(ସଂ-ବନ୍ଦା) ପରବୃକ୍ଷଜୀବୀ ବୃକ୍ଷ,ନିର୍ମୂଳୀଗଛ,ପରପୁଷ୍ଟାଙ୍ଗ ଉଦ୍ଭିଦ

ମଲିଜହ୍ନ—ଗ୍ରା. ବ. ଦିନରେ ଆକାଶରେ ଦେଖାଯିବା ପ୍ରଭାହୀନ ଚନ୍ଦ୍ର ।

ମଲ୍ଲଟ—ଗ୍ରା. ବ. ତାଳପତ୍ର ପୋଥିର ପଟା, କାଗଜ ବହିର ଉପରସ୍ଥ ଆବ-ରଣ, ପିଠିକା, ବଡ଼ ହାତୁଡ଼ି, ପିଟଣା, ଛପା ହେବା ପୂର୍ବରୁ ସୀସାର ଟାଇପ୍-ମାନଙ୍କୁ ଫର୍ମରେ ବସାଇ ସମତୁଲ କରିବା ପାଇଁ ବ୍ୟବହୃତ କାଠର ହାତୁଡ଼ି ବା ପିଟଣା ।

ମଲଣୀ—ଗ୍ରା.ଅ. ମଲ୍ଲ ଦେଖ ।

ମଲାପକର୍ଷଣ—କ୍ଳୀ. ବ. ପାପମୋଚନ, ମଳଦୂରୀକରଣ,ମଇଳା ପରିଷ୍କାର କରିବା

ମଲ୍ଲପଣା—ପ୍ରା. (ଗଞ୍ଜାମ)ବ. ପ୍ରେତପଣା, ମୃତ ବ୍ୟକ୍ତିର ଅନ୍ତ୍ୟେଷ୍ଟିକ୍ରିୟା ଉପ-ଲକ୍ଷରେ ମୃତ୍ୟୁର ୪ର୍ଥ, ୭ମ, ୧୨ମ ଦିନ ବ୍ରାହ୍ମଣଙ୍କୁ ଖାଇବାକୁ ଦିଆଯିବା ଶୀତଳ ବା ଜଳଖିଆ ସାମଗ୍ରୀ ।

ମଲ୍ଲପ(ସ)ଇ—ଗ୍ରା ବଂ.ମୃତବତ୍,ମୁମୂର୍ଷୁ

ମଳାପସାରକ—ବଂ. (ମଳ + ଅପ + ସୃ କ.ଅକ) ଯାହା ମଳ (ମଇଳା, ପାପ ଇତ୍ୟାଦି) ଦୂରକରେ, (ସ୍ତ୍ରୀ) ସାରିକା, (ଅନ୍ୟରୂପ)ମଳାପସାରୀ, ମଳାପହ ।

ମଳାପହା—ସ୍ତ୍ରୀ.ବ. (ମଳ + ଅପ୍ + ହନ୍ ଅ + ଆ) ନଦୀବିଶେଷ ।

ମଳାଭ—ତ୍ରି. ବଂ. କୁତ୍ସିତ, କଦର୍ଯ୍ୟ ।

ମଲ୍ଲମୁରୁକୁ(ଚୁ)ଟିଆ—ଗ୍ରା. ବଂ. (ସଂ-ମୃତ + ମର୍କଟ) ମୁରୁକୁଟିଆ ଦେଖ ।

ମଲ୍ଲମରୁଡ଼ି—ଗ୍ରା. ବ. ଅନାବୃଷ୍ଟିଜନିତ ଶସ୍ୟହାନି ।

ମଲ୍ଲମରୁଡ଼ିଆ—ଗ୍ରା.ବଂ.ମରୁକୁଟିଆ ଦେଖ, ଦୁର୍ଭିକ୍ଷ ପ୍ରପୀଡ଼ିତ,ଅନାହାରକ୍ଳିଷ୍ଟ, ଶୀର୍ଣ୍ଣ

ମଳାମଳା—ଗ୍ରା. ବଂ. ଚକ୍ରାକାର ବହୁ ଚିହ୍ନସମନ୍ୱିତ, ମେଘଛନ୍ନ, (ଗ୍ରା.ବ) ମନ୍ଦାମନ୍ଦା, ଚକାଚକା ଦାଗମାନ, (କ୍ରି. ବଂ)ଚକାଚକା ଦାଗମାଡ଼ିବା ପ୍ରକାରେ

ମଳାମଳି—ଗ୍ରା. ବ. ବହୁବାର ମଳିବା-କ୍ରିୟା, ଦଳାଦଳି, ଘଷାଘଷି, ବହୁଶଃ ଖୋସାମଦ ।

ମଲ୍ଲମାଇଲ୍ଲକାଲ—ଗ୍ରା. ବ. ଅତି ସଙ୍କଟ-ମୟ ସମୟ, ଦୁର୍ଭିକ୍ଷକାଳ, ଯେଉଁ ସମ-ୟରେ ଲୋକେ ବ୍ୟାଧି ଓ ଉପବାସରୁ

ମରୁଥାଆନ୍ତି । [ କ୍ଷୀଣ ।

ମଲ୍ଲମୁର୍ଦାରିଆ—ଗ୍ରା.ବଂ. ମୁର୍ଦାରପରି ଅତି

ମଳାୟନ—ବ. (ଜଡ଼ତ୍ୱ) ପେଟ ମଧ୍ୟରୁ ଗୁହ୍ୟଦ୍ୱାରକୁ ମଳ ଆସିବାର ବାଟ ।

ମଲାର—ଗ୍ରା. ବ. ମଲ୍ଲାର ଦେଖ ।

ମଳାବରୋଧ—ବ. ମଳରୋଧ ଦେଖ ।

ମଳାବରୋଧକ—ବଂ.ମଳରୋଧକ ଦେଖ, (ଅନ୍ୟରୂପ—ମଳରୋଧୀ) ।

ମଳାବହ—କ୍ଳୀ.ବ. (ମଳ + ଆ + ବହ୍ + ଅ) ନବବିଧ ପାପର ଅନ୍ତର୍ଗତ ପାପ-ବିଶେଷ ।

ମଳାଶୟ—ପୁଂ. ବ. ଉଦର, ମଳସ୍ଥାନ ।

ମଲାଶୁର—ଗ୍ରା.ପୁଂ.ବ.ଆପଣା ସ୍ୱାମୀ ବା ସ୍ତ୍ରୀଙ୍କର ମାମୁଁ ।

ମଳି—ସ୍ତ୍ରୀ. ବ. ଅଧିକାର, ଅଧୀନତା, (ଗ୍ରା.ବ) ଦେହର ମଇଳା, ମଇଳା, (ବଂ) ମଳିନ, ମଳଯୁକ୍ତ ।

ମଲି—ଗ୍ରା.ବ.ମଲ୍ଲୀଫୁଲ, (ଅ-ପୀଡ଼ାସୂଚକ ଆର୍ତ୍ତଧ୍ୱନି) ମୁଁ ମଲ୍ଲପ୍ରାୟ ହେଲି ।

ମଳିଆ—ଗ୍ରା.ବଂ.ମଳିନ,ମଳଯୁକ୍ତ,ମଇଳା

ମଲିଆ—ଗ୍ରା. ବ. ଭୁବନେଶ୍ୱର ନିକଟସ୍ଥ କପିଳେଶ୍ୱର ମହାଦେବଙ୍କ ମାଳସେବକ, (ବଂ) ପିଙ୍ଗଳଚକ୍ଷୁ ଓ ତାମ୍ରବର୍ଣ୍ଣ କେଶ-ବିଶିଷ୍ଟ (ବ୍ୟକ୍ତି ବା ଜୀବ) ।

ମଲିକ—ଗ୍ରା.ବ.ଚୌକିଦାର ବା କଣ୍ଡରା-ମାନଙ୍କ ବଂଶୋପାଧି, ଗ୍ରାମର ମୁଖ୍ୟବ୍ୟକ୍ତି, ଶୂଦ୍ରମାନଙ୍କର ଉପାଧିବିଶେଷ ।

ମଲିକଡ଼(ଡ଼ି)—ଗ୍ରା.ବ.ମଲ୍ଲିଫୁଲ କଡିପରି ଗୋଟିଗୋଟିକିଆ ରୂପାର ବା ସୁନାର ଗୋଲକ ମାଳାରୂପେ ଗୁନ୍ଥା ହୋଇ-ଥିବା ସ୍ତ୍ରୀଲୋକମାନଙ୍କର ଜୁଡ଼ାର ଅଳ-ଙ୍କାର ।

ମଳିଚମ—ଗ୍ରା. ବ. ମନୁଷ୍ୟ ଦେହର ଉପରେଥିବା ଖୁବ୍ ପତଳା ଚମ ।

ମଳିଛଡ଼ା(ଡ଼େ)ଇବା—ଗ୍ରା.କ୍ରି. ଦେହରୁ ବା ବାସନରୁ ମଳି ସଫା କରିବା ।

ମଳିଛାଡ଼ିବା—ଗ୍ରା. ବ. କୌଣସି ବସ୍ତୁ ଉପରେ ଜମିଥିବା ମଳି ପରିଷ୍କୃତହେବା

ମଳି(ଲ)ଛୁଆ—ଗ୍ରା. ପୁଂ. ବଂ. ମଳଯୁକ୍ତ,

ମଇଳା, ଯେଉଁ ବ୍ୟକ୍ତିର ଦେହ ଓ ବସ୍ତ୍ର ମଳଯୁକ୍ତ, କୃପଣ, ଅପରିଷ୍କୃତ, ମ୍ଳେଚ୍ଛ ।
ମଳିଣ—ଗ୍ରା. ବିଂ. ମଳିନ ଦେଖ ।
ମଳିଦା—ଯା. ବି. କାଶ୍ମୀର ଦେଶନିର୍ମିତ ମେଷଲୋମର ବସ୍ତ୍ରବିଶେଷ ।
ମଳିଧୂଳି—ଗ୍ରା.ବି.ମଳି ଓ ଧୂଳି,ମଇଳା ।
ମଳିନ—ବିଂ. (ମଳ+ଇନ) ମଳଯୁକ୍ତ (ପଦାର୍ଥ),ଦୂଷିତ,ମଳିଆ, ବିବର୍ଣ୍ଣ,ମ୍ଳାନ, ଫିକ୍କା, କୃଷ୍ଣବର୍ଣ୍ଣବିଶିଷ୍ଟ, ପାପଯୁକ୍ତ, ପାପିଷ୍ଠ, ବିଷଣ୍ଣ,ତେଜୋହୀନ, ନିକୃଷ୍ଟ, ନିତ୍ୟ ନୈମିତ୍ତିକ କ୍ରିୟାତ୍ୟାଗୀ, (ବି) କଳଙ୍କ, ପାଶୁପତ, ଏକଶ୍ରେଣୀର ସାଧୁ, ଘୋଳଦହି, କୃଷ୍ଣାଗୁରୁ, ତାଜା ଗାଈ-ଦୁଧ, ଟଙ୍କଣ, ହଂସ, ବେଣ୍ଟ, ଦୋଷ, ରତ୍ନର ଫିକାପଣ ଓ ଧୂମ୍ରବର୍ଣ୍ଣ ହେବା ଦୋଷ, ପାପ, (ଗ୍ରା.ବି) ମ୍ଳାନଭାବ, ମଳିନତା, (ସ୍ତ୍ରୀ) ମଳିନା ।
ମଳିନତା(ତ୍ୱ)—ବି. (ମଳିନ+ତା,ତ୍ୱ) ମାଳିନ୍ୟ, ମ୍ଳାନତା ।
ମଳିନବଦନ(ମୁଖ)—ପୁଂ. ବି. (କ.ଧା) ମ୍ଳାନମୁଖ, କୃଷ୍ଣମୁଖ, ମଳଯୁକ୍ତ ମୁଖ, (ବ.ବ୍ରୀ)ବାନର, ପୋଡ଼ାମୁହାଁ ବାନ୍ଦର, ପ୍ରେତ, ଅଗ୍ନି, ବଳଦର ଲଙ୍ଗୁଡ଼, (ବିଂ) ମ୍ଳାନମୁଖଯୁକ୍ତ, କୃଷ୍ଣମୁଖଯୁକ୍ତ, କ୍ରୂର, ଖଳ ।
ମଳିନବସନ—ବି. (କ.ଧା) ମଳିଆଲୁଗା, (ପୁଂ.ବିଂ. ବ.ବ୍ରୀ) ମଳିନ ବସ୍ତ୍ରଧାରୀ, (ସ୍ତ୍ରୀ) ବସନା ।
ମଳିନବାସଃ—ବି.(କ.ଧା)ମଇଳା ଲୁଗା ।
ମଳିନବାସାଃ—ପୁଂ.ବିଂ.(ବ.ବ୍ରୀ) ମଳିନ-ବସ୍ତ୍ରଧାରୀ ।
ମଳିନା—ସ୍ତ୍ରୀ.ବି.(ମଳିନ+ଆ)ରଜସ୍ୱଳା ସ୍ତ୍ରୀ, ଶର୍କରା,ଖଣ୍ଡ, କନ୍ଦ, ବୃହତୀ, ଭେଣ୍ଡି ବାଇଗଣ ।
ମଳିନାମ୍ବୁ—କ୍ଲୀ.ବି. (କ.ଧା) ମସୀ,କାଳି, ସ୍ୟାହି ।
ମଳିନାସ୍ୟ—ବି ଓ ବିଂ.ମଳିନମୁଖଦେଖ ।
ମଳିନିମା—ବି. (ମଳିନ୍+ଇମନ୍) ମଳି-ନତା ଦେଖ ।
ମଳିନୀ—ସ୍ତ୍ରୀ. ବି. (ମଳ+ଇନ୍+ଈ) ରଜସ୍ୱଳା ସ୍ତ୍ରୀ ।
ମଳିନୀକରଣ—କ୍ଲୀ. ବି. ନିର୍ମଳ ପଦାର୍ଥକୁ ମଇଳା କରିବା ।
ମଳିଫୁଲ—ଗ୍ରା. ବି. ମଲ୍ଲୀନାମକ ଗଛର ଫୁଲ, ସୁନା ବା ରୁପାର ମଲ୍ଲୀଫୁଲପରି ଆକୃତି ବିଶିଷ୍ଟ ଅଳଙ୍କାରବିଶେଷ ।
ମଳିମ୍ଳୁଚ—ପୁଂ. ବି. (ମଳିନ୍+ମ୍ରୁଚ୍+କ.ଅ) ମଳମାସ, ଅଗ୍ନି, ବାୟୁ, ଚୋର, ପଞ୍ଚଯଜ୍ଞକାରୀ ଗୃହସ୍ଥ ।
ମଳିବା—ଗ୍ରା.କ୍ରି.ଦଳିବା,ମର୍ଦ୍ଦିବା,ଘଷିବା, ଚିପିବା, ମାଜିବା, ଆଖିଦଳିବା ।
ମଳିଷ୍ଠ—ତ୍ରି. ବିଂ. (ମଳ+ଇଷ୍ଠ) ଅତି ମଳଯୁକ୍ତ, ଅତି ମଳିନ,(ସ୍ତ୍ରୀ) ମଳିଷ୍ଠା, ରଜସ୍ୱଳା ସ୍ତ୍ରୀ ।
ମଳୀ—ବିଂ. (ମଳ+ଇନ୍) ମଳଯୁକ୍ତ, କୃଷ୍ଣବର୍ଣ୍ଣବିଶିଷ୍ଟ, (ସ୍ତ୍ରୀ) ମଳିନୀ ।
ମଳୀମସ—କ୍ଲୀ. ବି. (ମଳ+ଇମସ୍) ଲୌହ, ମଳମାସ, ପାପ, (ବିଂ)ମଳିନ, ମଳଦୂଷିତ, କୃଷ୍ଣବର୍ଣ୍ଣ ।
ମଳୀୟାନ୍—ପୁଂ. ବିଂ. (ମଳ+ଈୟସ୍) ଅତି ବିବର୍ଣ୍ଣ,ଅତିମଳିଆ,(ସ୍ତ୍ରୀ)ମଳୀୟସୀ ।
ମଳୁ—ଗ୍ରା. ବି. ପୀଡ଼ାଯୁକ୍ତ ବ୍ୟକ୍ତି,ରୋଗୀ, ବୈଦ୍ୟକ ଚିକିତ୍ସାଧୀନ ବ୍ୟକ୍ତି ।
ମଳୁକ—ପୁଂ. ବି. (ମଳ+ଉକ) କୃମି-ବିଶେଷ, ଉକୁଣୀ, ଉଦର, ଏକପ୍ରକାର ପକ୍ଷୀ ।
ମଳୁଖ—ଗ୍ରା. ବି. ଖୁଦ ବଗ୍ରୁହୋଇଥିବା ମୋଟ ଗୃଉଳ, ଅଟାକୁ ଗୁଲୁଣୀରେ ଚଲାଇବା ପରେ ଯେଉଁ ଭୂଷି ଗୁଲୁ-ଣିରେ ରହିଯାଏ, ଚୋକଡ଼, କୁଟା-ଧାନକୁ ପାଛୁଡ଼ି ଗୃଉଳ ବାହାର କଲା-ପରେ ଶେଷକୁ ଗୋଟେ ଗୋଟେ ଧାନଥିବା ଗୃଉଳଚୂନାର ଖଦଡ଼ ।
ମଳୁଲ—ବି. ବସ୍ତ୍ର ବିଶେଷ, ମସ୍‌ଲିନ୍ ।
ମଳୁହି—ଗ୍ରା. ବି. ଗାଈର ବାଛୁରୀ ମର-ଗଲେ ତାହାଠାରୁ ଅନ୍ୟ କୌଶଳ ଦ୍ୱାରା ଦୁଧ ଦୁହିଁବା ।
ମଲେଇ—ଗ୍ରା.ବି.କୁଟାରେ ପ୍ରସ୍ତୁତ ଧାନର ଅମାର, ମଳୁଖ ଦେଖ, (ଯା.ବି)ଘିବଢ଼ି, ଘନୀକୃତ ଦୁଗ୍ଧସର ।
ମଲ୍ଲ—ପୁଂ.ବି.(ମଲ୍ଲ+କ.ଅ)ବାହୁଯୋଦ୍ଧା, ମାଲ,ପହଲ୍‌ବାନ୍,କପୋଳ,ଗାଲ,ମାଲା, ପାନପାତ୍ର, ମାଲବାର ଦେଶ, ବର୍ଣ୍ଣ-ସଙ୍କର ଜାତି ବିଶେଷ, ନୈବେଦ୍ୟର ଅବଶିଷ୍ଟାଂଶ,ମତ୍ସ୍ୟ ଦେଶ, ବିରାଟଦେଶ ନିକଟସ୍ଥ ପ୍ରାଚୀନ ଦେଶ, ଦୀପ, (ବିଂ) ବଳିଷ୍ଠ, ଉତ୍ତମ, ଉତ୍କୃଷ୍ଟ ।
ମଲ୍ଲକ—ପୁଂ. ବି. (ମଲ୍ଲ+କ)ଦୀପ, ଦୀପ-ରୁଖା, ଦୀପ ବୃକ୍ଷ, ନଡ଼ିଆ ସଢ଼େଇରେ ନିର୍ମିତ ପାତ୍ର, ଦାନ୍ତ ବାସନାଦି ଗ୍ରନ୍ଥି-ବାର ସଂପୁଟ, ଏକପ୍ରକାର ମଲ୍ଲୀଫୁଲ ।
ମଲ୍ଲକ୍ରୀଡ଼ା—ସ୍ତ୍ରୀ. ବି. (୬ତତ୍ପୁ) ମାଲମାନ-ଙ୍କର ଖେଳ, ମାଲଯୁଦ୍ଧ ।
ମଲ୍ଲଖଣ୍ଡ—ପୁଂ.ବି.ଗୁଡ଼, ନାଲିବର୍ଣ୍ଣ ଖଣ୍ଡ ।
ମଲ୍ଲଘଟୀ—ସ୍ତ୍ରୀ.ବି.ନୃତ୍ୟ ପ୍ରକ୍ରିୟା ବିଶେଷ, ନାଟ୍ୟ ରଙ୍ଗ ବିଶେଷ ।
ମଲ୍ଲଜ—କ୍ଲୀ. ବି. (ମଲ୍ଲ+ଜନ୍+ଅ) ଗୋଲମରିଚ, (ବିଂ) ମଲ୍ଲଦେଶ ଜାତ ।
ମଲ୍ଲଟ—ଗ୍ରା.ବି.ମେବାର ରାଜ୍ୟର ଗୁହିଲ ବଂଶୀୟ ଜଣେ ରାଜା ।
ମଲ୍ଲତରୁ—ପୁଂ. ବି. ପିୟାଳ ବୃକ୍ଷ ।
ମଲ୍ଲତୂର୍ଯ୍ୟ—କ୍ଲୀ. ବି. ବାଦ୍ୟବିଶେଷ ।
ମଲ୍ଲଦେବ—ପୁଂ. ବି. କାଳଜ୍ଞାନ ନାମକ ବୈଦ୍ୟକ ଗ୍ରନ୍ଥ ରଚୟିତା ।
ମଲ୍ଲନାଗ—ପୁଂ. ବି. କାମଶାସ୍ତ୍ର ପ୍ରଣେତା ବାତ୍ସ୍ୟାୟନ ମୁନି, ଲେଖହାର, ପତ୍ର ବାହକ, ରଣହସ୍ତୀ, ଐରାବତ ହସ୍ତୀ ।
ମଲ୍ଲଭଟ୍ଟ—ଜଣେ ପ୍ରାଚୀନ ବୈୟାକରଣ, ଆନନ୍ଦଲହରୀ ଟୀକାକାର ।
ମଲ୍ଲଭୂ(ମି)—ସ୍ତ୍ରୀ. ବି. ରଣଭୂମି, ମଲ୍ଲମାନ-ଙ୍କର କ୍ରୀଡ଼ାସ୍ଥଳ ବା ଆଖଡ଼ାସ୍ଥାନ ମଲ୍ଲକ୍ରୀଡ଼ାର ରଙ୍ଗଭୂମି,ମାଲଭୂମ,ବଙ୍ଗର ବାଙ୍କୁଡ଼ା ଜିଲାନ୍ତର୍ଗତ ବିଷ୍ଣୁପୁର ଅଞ୍ଚଳ ।
ମଲ୍ଲଯାତ୍ରା—ସ୍ତ୍ରୀ. ବି. ମାଲମାନଙ୍କର ଯୁଦ୍ଧ ଯାତ୍ରା ।
ମଲ୍ଲଯୁଦ୍ଧ—ବି. (୬ତତ୍ପୁ)ଦୁଇଜଣ ମାଲଙ୍କ

ମଧ୍ୟରେ ଲଢ଼ାଲଢ଼ି, ବାହୁଯୁଦ୍ଧ ।
ମଲ୍ଲଯୋଦ୍ଧା—ବିଂ. ଯେଉଁ ମଲ୍ଲ ଅନ୍ୟ ମଲ୍ଲ ସଙ୍ଗେ ଯୁଦ୍ଧକରେ ।
ମଲ୍ଲରାଜ—ରସରତ୍ନଦୀପିକା ନାମ୍ନୀ ଅଳଙ୍କାର ଗ୍ରନ୍ଥ ପ୍ରଣେତା ।
ମଲ୍ଲରାଜବଂଶ—ବିଷ୍ଣୁପୁର ଓ ନେପାଳର ପ୍ରାଚୀନ ରାଜବଂଶ ।
ମଲ୍ଲବିଦ୍ୟା—ସ୍ତ୍ରୀ.ବି.ମାଲମାନଙ୍କର ଅଭ୍ୟସ୍ତ ବିଦ୍ୟାଭେଦ, କୁସ୍ତି ବିଦ୍ୟା, କସରତ ।
ମଲ୍ଲଶାଳା—ବି. (୬ତତ୍) ମଲ୍ଲମାନଙ୍କର କ୍ରୀଡ଼ାସ୍ଥାନ, ମାଲମାନଙ୍କର ଆଖଡ଼ା ଜାଗା ।
ମଲ୍ଲା—ସ୍ତ୍ରୀ. ବି. (ମଲ୍ଲ+ଆ) ସ୍ତ୍ରୀ, ନାରୀ, ମଲ୍ଲିଫୁଲ ବିଶେଷ, ଦେହରେ ସୁବାସ ଚନ୍ଦନାଦି ଲେପନ, ଲତାବିଶେଷ, ପତ୍ରବଲ୍ଲୀ, ମଲ୍ହା ନୌବାହକ ଜାତି ବିଶେଷ, (ଯା. ବି) ନାବିକ, ମାଝି ।
ମଲ୍ଲାର—ପୁଂ. ବି. (ମଲ୍ଲ+ର୍+ଅ) ସଙ୍ଗୀତ ରାଗବିଶେଷ, ଷଡ଼ରାଗ ମଧ୍ୟରେ ଦ୍ୱିତୀୟ ରାଗ, (ଗ୍ରା.ବି) ଦେଶ ବିଶେଷ, ବନ୍ୟ ଅନାର୍ଯ୍ୟ ଜାତି ବିଶେଷ ।
ମଲ୍ଲାରି—ପୁଂ. ବି. (୬ତତ୍) କୃଷ୍ଣ, ଶିବ, (ସ୍ତ୍ରୀ.ବି) ମଲ୍ଲାରୀ ଦେଖ ।
ମଲ୍ଲାରୀ(ରି)—ସ୍ତ୍ରୀ.ବି. ବସନ୍ତରାଗର ମତାନ୍ତରେ ମେଘରାଗର ରାଗିଣୀବିଶେଷ ।
ମଲ୍ଲାସୁର—ପୁଂ.ବି. ଅସୁରଭେଦ,ଏହାକୁ ଶ୍ରୀକୃଷ୍ଣ ବଧ କରିଥିଲେ । [ ଭେଦ ।
ମଲ୍ଲି—ବି. (ମଲ୍ଲ+ଇ) ମଲ୍ଲୀଫୁଲ, ତୀର୍ଥ-
ମଲ୍ଲିକ—ପୁଂ. ବି. (ମଲ୍ଲ+ଇ+କ)ମଳିନଚଞ୍ଚୁ ଚରଣବିଶିଷ୍ଟ ହଂସ,ଭୂମ୍ୟଧିକାରୀର ଉପାଧିବିଶେଷ, ମାଳିକ, ପୁଷ୍ପବିଶେଷ,
ମଲ୍ଲିକା—ସ୍ତ୍ରୀ. ବି. (ମଲ୍ଲ+କ+ଆ) ଏକପ୍ରକାର ଏକପାଖୁଡ଼ିଆ ମଲ୍ଲିଫୁଲ,ମତ୍ସ୍ୟବିଶେଷ, ମୃତ୍ପାତ୍ରବିଶେଷ ।
ମଲ୍ଲିକାକ୍ଷ—ପୁଂ. ବି. (ବ.ବ୍ରୀ)ମଳିନଚଞ୍ଚୁଚରଣବିଶିଷ୍ଟ ହଂସ, ଶୁକ୍ଳବର୍ଣ୍ଣ ବେଷ୍ଟିତ ଚକ୍ଷୁଦ୍ୱୟଯୁକ୍ତ ଅଶ୍ୱ, (ବିଂ) ଯାହାର ଆଖି ଧଳା, (ସ୍ତ୍ରୀ) ମଲ୍ଲିକାକ୍ଷୀ ।
ମଲ୍ଲିକାଖ୍ୟ—ବି.(ବ.ବ୍ରୀ) ରକ୍ତାଭ ଚଞ୍ଚୁ ଓ ଚରଣବିଶିଷ୍ଟ ଧୂମ୍ରବର୍ଣ୍ଣ ହଂସ ।
ମଲ୍ଲିକାଖ୍ୟା—ସ୍ତ୍ରୀ. ବି. ତ୍ରିପୁରମାଲୀପୁଷ୍ପ, ଏକପ୍ରକାର ଯୂଥିଫୁଲ । [ ଚନ୍ଦନ ।
ମଲ୍ଲିକାଗନ୍ଧ—କ୍ଳୀ. ବି. (ବ.ବ୍ରୀ) ଅଗୁରୁ,
ମଲ୍ଲିକାଚ୍ଛାଦନ—କ୍ଳୀ. ବି. ଆଲୋକରଶ୍ମିରୁ ଆଖିକୁ ଶିତଳ ରଖିବା ପାଇଁ ଯେ ଆଚ୍ଛାଦନ ଦିଆହୁଏ,ଏକପ୍ରକାର ଚଷମା
ମଲ୍ଲିକାପୁଷ୍ପ—ପୁଂ. ବି. ( ବ.ବ୍ରୀ ) ଗିରିମଲ୍ଲିକା,କୁଟଜ,କୁରେଇ ଗଛ,(୬ତତ୍) ମଲ୍ଲୀଫୁଲ ।
ମଲ୍ଲିକାର୍ଜୁନ—ବି. ହିମାଳୟ ପର୍ବତସ୍ଥିତ ଶିବଲିଙ୍ଗବିଶେଷ ।
ମଲ୍ଲିଗନ୍ଧ—କ୍ଳୀ. ବି. ଅଗୁରୁ, ଚନ୍ଦନ ।
ମଲ୍ଲିଦେବ—ବି.ଗୈଳବଂଶୀୟ ଜଣେ ରାଜା ।
ମଲ୍ଲିନାଥ—ପୁଂ.ବି. ଜଣେ ପ୍ରସିଦ୍ଧ ସଂସ୍କୃତ ପଣ୍ଡିତ ଓ ଟୀକାକାର, (ଏହାଙ୍କର ପ୍ରକୃତ ନାମ କୋଲାଚଳ ମଲ୍ଲିନାଥ) ।
ମଲ୍ଲିନୀ—ସ୍ତ୍ରୀ. ବି. ଅତିମୁକ୍ତକ ପୁଷ୍ପବୃକ୍ଷ ।
ମଲ୍ଲିପତ୍ର—କ୍ଳୀ. ବି. (ବ.ବ୍ରୀ) ଛତ୍ରକ ।
ମଲ୍ଲିବାର—କ୍ଳୀ. ବି. ସ୍ଥାନବିଶେଷ,ମଲବାର ଦେଶ ।
ମଲ୍ଲୀ—ସ୍ତ୍ରୀ.ବି.(ମଲ୍ଲ+ଈ)ମଲ୍ଲିକା ଦେଖ ।
ମଲ୍ଲୀକର—ବି.(ମଲ୍ଲୀ+କୃ+ଅ)ଚୋର ।
ମଲ୍ଲୁ—ପୁଂ.ବି. (ମଲ୍ଲ+ଉ)ଭାଲୁ,ମାଙ୍କଡ଼ ।
ମଲ୍ଲୂର—ପୁଂ. ବି. ମଣ୍ଡୂର, ଲୌହକୀଟ, ଲୁହାମଳ ।
ମଲ୍ଲୂ—ବି. ଶମ୍ବୁ ।
ମଲ୍ହ—ବି. ଗୋସ୍ତନ, ପହ୍ଲା ।
ମଲ୍ହାର—ବି.ସଙ୍ଗୀତର ରାଗବିଶେଷ ।
ମବାଜିବ—ଯା. ବି. ମାମୁଲି, ନିୟମିତ ସମୟରେ ନିୟମିତ ମାତ୍ରାରେ ବ୍ୟକ୍ତିବିଶେଷଙ୍କୁ ମିଳିବା ପଦାର୍ଥ, ଖଞ୍ଜାବସ୍ତୁ ।
ମବାରକଶାହ—ସୈୟଦ୍ବଂଶୀୟ ଦିଲ୍ଲୀ ସମ୍ରାଟ୍ ।
ମବତ—ତ୍ରି. ବିଂ. (ମବ୍+କ୍ତ.ତ) ବଦ୍ଧ ।
ମଶ୍କୁ(ଖୁ)ଲ୍—ଯା.ବିଂ. ମୁସ୍କୁଲ, ଅତ୍ୟନ୍ତ ବଡ଼ କାର୍ଯ୍ୟରେ ଅତିବ୍ୟସ୍ତ ।
ମଶ୍ଜିଦ୍(ତ୍)—ଯା. ବି, ମୁସଲମାନଙ୍କ ପ୍ରାର୍ଥନା ମନ୍ଦିର, ମସଜିଦ୍ ।
ମଶ୍ମଶ୍—ଗ୍ରା.ଅବ୍ୟ. ଶୁଖିଲା ପତ୍ରଉପରେ ଚାଲିଲେ ଯେଉଁ ଶବ୍ଦ ଶୁଭେ,ତାଳପତ୍ର ଭାଙ୍ଗିବାର ଲଘୁଶବ୍ଦ,କାକୁଡ଼ି ମୂଳାଆଦି ଚୋବାଇବାର ଶବ୍ଦ ।
ମଶମଶିଆ—ଗ୍ରା. ବିଂ. ମସ୍ଗ,ଭଙ୍ଗପ୍ରବଣ, ଭଙ୍ଗୁର (ଡାଳ), ଯାହା ସହଜରେ ଚୋବାଇ ହୁଏ, ମୁଡ଼ୁମୁଡ଼ିଆ ।
ମଶ—ପୁଂ. ବି. ( ମଶ୍+ଅ ) ଗୁଣୁଗୁଣୁ ଶବ୍ଦ, କ୍ରୋଧ, ମଶକ, ମଶା ।
ମଶକ—ବି. (ମଶ୍+କ.ଅକ)କୀଟବିଶେଷ, ମଶା, ଚର୍ମରୋଗବିଶେଷ,ଖଟୁଡ଼ି,ଜଳବହନ କରିବା ପାଇଁ ଚର୍ମମୟ ପାତ୍ର, ଭସ୍ତ୍ରୀ, ଶାକଦ୍ୱୀପସ୍ଥ କ୍ଷତ୍ରିୟ ଅଧ୍ୟୁଷିତ ଦେଶବିଶେଷ, କଳ୍ପସୂତ୍ର ରଚୟିତା ଗାର୍ଗ୍ୟଗୋତ୍ରଜ ମୁନିବିଶେଷ, ତୈଳାଦି ରଖିବାର ବଡ଼ ଚର୍ମପାତ୍ର ।
ମଶକା—ଗ୍ରା. ବିଂ. ଭଙ୍ଗପ୍ରବଣ (ଗଛର ଡାଳ). ମଚକା, ଯାହା ଅଳ୍ପ ବଳପ୍ରୟୋଗରେ ଭାଙ୍ଗିଯାଏ ।
ମଶକକୁଟି(ଟୀ)—ସ୍ତ୍ରୀ. ବି. ମଶା ହୁରୁଡ଼ାଇବା ପାଇଁ ବ୍ୟବହୃତ ଚାମର ।
ମଶକଜମ୍ଭନ—ବି. ମଶକ ବିତାଡ଼ନ ।
ମଶକବରଣ—କ୍ଳୀ. ବି. ମଶା ଅଡ଼ାଇବା ନିମିତ୍ତ ଚାମରବିଶେଷ ।
ମଶକହରୀ—ବି.(ମଶକ+ହୃ+ଅ+ଈ) ମଶକ ନିବାରକ ପ୍ରାବରଣବିଶେଷ,ମଶାରି
ମଶକାବତୀ—ସ୍ତ୍ରୀ.ବି. ନଦୀବିଶେଷ,ସାଗର ବିଶେଷ । [ ମୂର ବୃକ୍ଷ ।
ମଶକୀ—ପୁଂ. ବି. (ମଶକ+ଇନ୍) ଉଦୁ-
ମଶଚ୍ଛଦ—ପୁଂ. ବି. ଗୁଳ୍ମଭେଦ ।
ମଶଣିଆ—ଗ୍ରା. ବି. ତମ୍ବାଲୁ ଦେଖ ।
ମଶନଦ୍—ଯା. ବି. ସିଂହାସନ, ବଡ଼ତକିଆ ।
ମଶଲ—ଯା.ବି. ମସଲା,ବ୍ୟଞ୍ଜନକୁ ସରସ ସୁଗନ୍ଧ ଓ ରୁଚିକର କରିବାର ଉପକରଣ, ଖିଲିପାନ ତୈଳ ଓ ମୁଖକୁ ସୁବାସିତ କରିବାର ଉପକରଣ,ଔଷଧରେ ବ୍ୟବହୃତ ଭିନ୍ନ ଭିନ୍ନ ଉପକରଣ, ପକ୍କା ଓ କୋଠାଆଦିର ଗାନ୍ଥିନିକରିବା

ପାଇଁ ବ୍ୟବହୃତ ଚୂନ ବାଲି ଓ ସୁରୁକି ଆଦି ମିଶ୍ରିତ ଉପକରଣ । [ମସଲ୍ଲ ।
ମଶଲ୍‌ମଶଲି—ଗ୍ରା. ବି. ନାନାପ୍ରକାରର
ମଶଲିବା—ଯା. ବି. (କାନ) ମୋଡ଼ିବା, ହାତରେ ରଗଡ଼ିବା ବା ଦଳିବା ।
ମଶହରି—ସ୍ତ୍ରୀ.ବି.ମଶାରି,ମଶକବାରିଣୀ ।
ମଶା—ବି.ଦ୍ୱିପକ୍ଷୀ ଷଟ୍‌ପଦୀ କୀଟବିଶେଷ, ଏକଭାଗର ଏକଦଶମାଂଶ ।
ମଶାଣ(ଣି)—ବି.(ସଂ-ଶ୍ମଶାନ)ସମାଧିସ୍ଥାନ, ପ୍ରେତଭୂମି, ମୁର୍ଦ୍ଦାରଖାନା । [ ଦେଖ ।
ମଶାଣିଚଣ୍ଡିଆ—ଗ୍ରା. ବି. ମଡ଼ାଚଣ୍ଡିଆ
ମଶାଣିଚଣ୍ଡୀ—ଗ୍ରା. ବି. ଶ୍ମଶାନଚଣ୍ଡୀ, ଶ୍ମଶାନବାସିନୀ ଠାକୁରାଣୀବିଶେଷ ।
ମଶାଣିପଦା—ଗ୍ରା. ବି. ଶ୍ମଶାନ ଭୂମି ।
ମଶାଣିଆ—ଗ୍ରା.ବି.ତମ୍ବାକୁ ଦେଖ, (ଗ୍ରା. ବିଂ) ଯେ ସର୍ବଦା ଶ୍ମଶାନରେ ରହେ, ଶ୍ମଶାନବାସୀ (ପ୍ରେତ) ।
ମଶାରି—ଗ୍ରା.ବି.ବଢ଼ିଥିବା ନଦୀରେ ଭାତ ଫୁଟିଲାପରି ଫୁଟୁଥିବା ପାଣି ।
ମଶାରି—ଗ୍ରା.ବି.ମଶୁରି,ଜାଲୁଆ ଲୁଗାରେ ତିଆରି ଚନ୍ଦ୍ରାତପବିଶେଷ ।
ମଶାଲ—ଗ୍ରା. ବି. ଦହୁଡ଼ି, ଦୀପ, ସ୍ଥୂଳବର୍ତ୍ତିକା, ତୈଳସିକ୍ତ ବସ୍ତ୍ରାଦି ଦ୍ୱାରା ନିର୍ମିତ ବୃହତ୍ ଆଲୋକ ।
ମଶାଲଚି—ଯା. ବି. ମଶାଲବାହକ, ସାହେବମାନଙ୍କ କୋଠିରେ ଆଲୁଅ-ଆଦି ଲଗାଇବା ଚାକର ।
ମଶାଲିଆ—ଗ୍ରା. ପୁଂ. ବି. ମଶାଲ ଧରିବା ବ୍ୟକ୍ତି, ଦହୁଡ଼ିଆ ।
ମଶି(ଶୀ,ଷି,ଷୀ,ସି,ସୀ)—ବି. (ମଶ+କ. ଇ.ଈ) ଲେଖିବାର କାଳି, ହାଣ୍ଡିକଳା, ଦୀପକଳା, ଅଙ୍ଗାର କଳାଆଦି ନାନାପ୍ରକାର କଳା, ଶେଫାଳିକା ବୃକ୍ଷ ।
ମଶିଆ—ଗ୍ରା.ବିଂ.ମଳିଆ, ମଳଯୁକ୍ତ, (ଗ୍ରା. ବି) ଏକପ୍ରକାର ଫଳଆଳୁ ।
ମଶିକୂପିକା—ବି. ଦୁଆତ, କାଳିଘଡ଼ି ।
ମଶିଗୁଣ୍ଡ(ଣ୍ଡା)—ଗ୍ରା.ବି. ସୂକ୍ଷ୍ମଚୂର୍ଣ୍ଣ, ଯେଉଁ ଚୂନାରେ ପାଣି ପକାଇଲେ କାଳି ତିଆରି ହୁଏ,ଅଙ୍ଗାର ଚୂନା,କଳାମୁରୁକ

ମଶିଚିହ୍ନିତ—ବିଂ.(ଶତତ୍ତ୍ୱ)କାଳି ଦାଗଯୁକ୍ତ
ମଶିଜୀବୀ—ପୁଂ.ବିଂ. (ମଶି+ଜୀବ୍+କ. ଇନ୍) ଯେ ଲେଖାଲେଖି କରି ଜୀବିକା ନିର୍ବାହ କରେ,(ବି) ଲେଖକ, ମୋହରିର, କରଣ ।
ମଶିଣ(ଣି)—ଗ୍ରା. ବିଂ. ମସୃଣ ।
ମଶିଣା—ଗ୍ରା. ବି. (ସଂ-ମସୃଣ) ଚଟେଇ, ସପ, ତୃଣର ଆସ୍ତରଣ ।
ମଶିଧାନ(ନୀ)—ବି. ଦୁଆତ, କାଳିଘଡ଼ି ।
ମଶିନନ୍ଦିତ—ବିଂ. ମଶିଲାଞ୍ଛିତ ଦେଖ ।
ମଶିପଣ୍ୟ—ବି. ବିଂ. (ବି.ସ୍ତ୍ରୀ) ମଶିଜୀବୀ ଦେଖ, (ସ୍ତ୍ରୀ) ପଣ୍ୟା ।
ମଶିପଥ—ବି. (ଶତତ୍ତ୍ୱ) କଲମ ।
ମଶିପ୍ରସୂ—ବି.ମସ୍ୟାଧାର,ଦୁଆତ,ଲେଖନୀ, କଲମ, ପେନ୍‌ସିଲ ।
ମଶିବର୍ଣ୍ଣ—ବି.(ବି.ସ୍ତ୍ରୀ)ସ୍ୟାହିପରି କାଳିଆ
ମଶିବିନ୍ଦୁ—ବି. (ଶତତ୍ତ୍ୱ) ଶିଶୁମାନଙ୍କୁ କୁଦୃଷ୍ଟିର କୁଫଳରୁ ରକ୍ଷା କରିବା ପାଇଁ ସେମାନଙ୍କ ମୁଣ୍ଡରେ ଦିଆଯିବା କଜ୍ଜ୍ୱଳ ଟୋପି ।
ମଶିମଣି—ବି.ଲେଖନୀ, କଲମ,ପେନ୍‌ସିଲ
ମଶିମସ୍ତ—ବିଂ.କାଳିମସ୍ତ,କାଳି ବୋଳାହୋଇଥିବା ।
ମଶିଲାଞ୍ଛିତ—ବି. (ବି.ସ୍ତ୍ରୀ) କାଳି ଅପେକ୍ଷା ଅଧିକତର କୃଷ୍ଣବର୍ଣ୍ଣ, ଘୋରକଳା, (ଶତତ୍ତ୍ୱ.ବିଂ)କାଳିରେ ଦାଗ ଦିଆଯାଇଥିବା । [ ହୋଇଥିବା ।
ମଶିଲିପ୍ତ—ବିଂ. (ଶତତ୍ତ୍ୱ) କାଳି ବୋଳା-
ମଶୁ—ଗ୍ରା.ବି. ଏକପ୍ରକାର ଆରଣ୍ୟ ବୃକ୍ଷ, ନୂଆ ଆମ୍ବୁଲ କଟୁଥିବା ରହିଗଲେ ତା' ଉପରେ ପଡ଼ିବା ଫଙ୍ଗୁପରି ଲୁଣ ମସଲ୍ଲା-ଆଦିର ଅଂଶ ।
ମଶୁଣି—ଗ୍ରା. ବି. ମଶିଣା, ତୃଣାସ୍ତରଣ, ବାଛୁରି ବାନ୍ଧିବାର ଛନ୍ଦ ଦଉଡ଼ି ।
ମଶୁନ୍—ପୁଂ.ବି. (ମଶ୍+କ,ଉନ୍)କୁକୁର
ମଶୁର୍—ଯା.ବିଂ.ଖୁବ୍, ଅତ୍ୟନ୍ତ, ପ୍ରସିଦ୍ଧ, ବିଖ୍ୟାତ ।
ମଶୁରି—ଗ୍ରା. ବି. ମଶାରି, ମଶକହାରୀ ।
ମଶୋବ୍ରା—ବି.ପଞ୍ଜାବରେ ଥିବା ଗୋଟିଏ

ପର୍ବତ ।
ମଷକ୍‌ଦାନା—ଯା. ବି. କଳା କସ୍ତୁରୀ ।
ମଷା—ଗ୍ରା.ବି.ପରିମାଣବିଶେଷ, ୧୦ ଭରି ଓଜନ ।
ମଶାଏ—ଗ୍ରା.ବି ଓ ବିଂ.ଏକମଶା ପରିମାଣ ବା ପରିମିତ ।
ମଷ୍ଟିବା—ପ୍ରା.(ସିଂହଭୂମ)କ୍ରି. ଚକଟିବା, (ଗ୍ରା.କ୍ରି) ମଳିବା, ଖୋସାମଦ କରିବା ।
ମସକ—ଯା. ବି. ଅଭ୍ୟାସ ।
ମସକରି—ଯା.ବି. ଥଟ୍ଟା, ବ୍ୟଙ୍ଗ୍ୟ, (ଯା. ବିଂ) ଥଟ୍ଟିଲ, ପରିହାସକାମୀ ।
ମସ୍‌କରିଆ—ଗ୍ରା.ପୁଂ.ବିଂ. ଥଟ୍ଟିଲ ।
ମସକ—ବି.(ମସ୍+ଅ+କ)ମଶକ ଦେଖ
ମସକା—ଗ୍ରା. ବିଂ. ମଟକା, ଯାହା ଅଳ୍ପ ଆଘାତରେ ଭାଙ୍ଗିଯାଏ । [ନମାଜପଢ଼ ।
ମସଜିଦ୍—ଯା. ବି. ମୁସଲମାନମାନଙ୍କ
ମସତ୍ତ—ପ୍ରା.(ସମ୍ବ)ବିଂ.ମସ୍ତ, ଅତ୍ୟନ୍ତବଡ଼
ମସଲି—ପ୍ରା. (ବସ୍ତର)ବି. ମଶିଣା ।
ମସଲ୍ଲା—ଗ୍ରା. ବି. ମସଲା ଦେଖ ।
ମସଲିପଟମ୍—ଗ୍ରା.ବି.ପ୍ରାଚୀନ କଳିଙ୍ଗର ବନ୍ଦରବିଶେଷ ।
ମସା—ଗ୍ରା.ବି.ମଷା ଦେଖ,ମଶକ ଦେଖ ।
ମସାର—ପୁଂ.ବି. (ମସ୍+ର୍+ଅ)ଇନ୍ଦ୍ରନୀଳମଣି । [ ନୀଳମଣି ।
ମସାରକ—ପୁଂ.ବି. (ମସାର+କ)ଇନ୍ଦ୍ର-
ମସାହତ—ଯା. ବି. ଭୂମିର ପରିମାଣ, ଜ୍ୟାମିତି ।
ମସାହରି—ଯା.ବି.ମାସିକ ବେତନ,ବୃତ୍ତି
ମସି(ଶି,ସୀ)—ବି. (ମସ୍+ଇ) କାଳି, ଲେଖନ ଦ୍ରବ୍ୟ,ଅଞ୍ଜନ, ରଞ୍ଜନୀ,ଶେଫାଳିକା ବୃକ୍ଷ ।
ମସିକ—ପୁଂ. ବି. ସର୍ପବିବର ।
ମସିକା—ସ୍ତ୍ରୀ. ବି. ଶେଫାଳିକା ।
ମସିକୂପୀ—ସ୍ତ୍ରୀ.ବି.ମସ୍ୟାଧାର, କାଳିଘଡ଼ି, ଦୁଆତ ।
ମସିଗୁଣ୍ଡା—ବିଂ. ଖଣ୍ଡଖଣ୍ଡ, ଛିକିଛିକି ।
ମସିଜଳ—କ୍ଲୀ. ବି. ଲେଖିବାର କାଳି ।
ମସିଣା—ଗ୍ରା.ବି.ବିଛଣା, ଚଟେଇ, ତୃଣ

ନିର୍ମିତ ଆସ୍ତରଣ ।
ମସିଧାନ—କ୍ଳୀ. ବ. ମସ୍ୟାଧାର ।
ମସିଧାନୀ—କ୍ଳୀ. ବ. ମସ୍ୟାଧାର, ଦୁଆତ, ମସିମଣି, ବର୍ଣ୍ଣକୂପିକା ।
ମସିନ୍—କ୍ଳୀ.ବ (ମସ + ଇନ୍)ସପିଣ୍ଡକ ।
ମସିପଣ୍ୟ—ବ. (ମସି+ପଣ୍ୟ) ଲେଖନୀ, କଲମ, (ବିଂ) ଲେଖନୋପଜୀବୀ ।
ମସିପ୍ରସୂ—ସ୍ତ୍ରୀ. ବ. (ମସି+ପ୍ରସୂ) ମସ୍ୟାଧାର, ଲେଖନୀ, ଦୁଆତ, କଲମ, ପେନ୍‌ସିଲ୍ ।
ମସିମଣି—ସ୍ତ୍ରୀ. ବ. (ମସି + ମଣି) ମସ୍ୟାଧାର, ଦୁଆତ, କଲମ, ପେନସିଲ୍ ।
ମସିବର୍ଦ୍ଧନ—କ୍ଳୀ. ବ. ରସଗନ୍ଧ ।
ମସିହ—ଯା. ବ. ଯିଶୁଖ୍ରୀଷ୍ଟ ।
ମସିହା—ଯା.ବ.ଖ୍ରୀଷ୍ଟାବ୍ଦ, ଇଂରାଜୀ ସନ ।
ମସୀ—ସ୍ତ୍ରୀ. ବ. ମଷି ଦେଖ ।
ମସୀଜୀବୀ—ବିଂ. ଯେ ମସୀଦ୍ୱାରା ଜୀବିକା ନିର୍ବାହ କରେ,(ବ)ଲିପିକର,ମୋହରର, କେରାନି ।
ମସୀନା—ସ୍ତ୍ରୀ.ବ. (ମସ୍+ର୍ମ.ଇନ୍+ଆ) ସ୍ୱନାମଖ୍ୟାତ ଶସ୍ୟବିଶେଷ,ଅତସୀ,ତିସି ।
ମସୀନାତୈଳ—ବ. ଆୟୁର୍ବେଦ ପ୍ରକ୍ରିୟାରେ ପ୍ରସ୍ତୁତ ତୈଳ ।
ମସୀନନ୍ଦତ—ବିଂ. (ବ.ବ୍ରୀ) ମସୀଲିପ୍ତ, ଲେଖିବାର କାଳି ଅପେକ୍ଷା କୃଷ୍ଣବର୍ଣ୍ଣ, ଘୋରକଳା ।
ମସୀଲ—ଯା. ବ. ଶାସନଦଣ୍ଡ ।
ମସୀଲିପ୍ତ—ବିଂ. (ବ.ବ୍ରୀ) ମସୀନନ୍ଦତ ଦେଖ ।
ମସୀଲିପ୍ତ—ବିଂ.(୩ତତ୍)ମଷିଲିପ୍ତ ଦେଖ
ମସୁଦା(ଧା)—ଯା.ବ. ପ୍ରସ୍ତାବ, ପରାମର୍ଶ, ଯୁକ୍ତି, ଉପାୟ ।
ମସୁକଦା(ଧା)—ଯା.ବ. ଚଠା, ଖସଡ଼ା ।
...ର—ଗ୍ରା.(ମେଦନୀ)ବ. ମଶାର ।
...ର—ବ. (ମସ୍+ର୍ମ.ଉର) ମୁଗ ...ଜାତୀୟ ଲତାଜାତ ଶସ୍ୟ ।
...କ—ବ. ମସୁର ଦେଖ, ଟକଆ ।
...ରୀ)ର—ଗ୍ରା.ବ.ହିମାଳୟ ଅଞ୍ଚଳର ...ସ୍ୱାସ୍ଥ୍ୟକର ସ୍ଥାନର ନାମ ।

ମସୂର—ବ.(ମସ୍ + ଉର)ମସୁର ଦେଖ ।
ମସୂରକ—ବ. ଗୋଲବାଲିଶ, ଟକିଆ ।
ମସୂରବଦଳା—ସ୍ତ୍ରୀ.ବ.କୃଷ୍ଣତ୍ରିବୃତ୍, କଳାଡହୁଡ଼ି ।
ମସୂରସୂପ—ପୁଂ.ବ. ଭର୍ଜିତ ମସୂରକୃତ ଯୂଷ ବା ଝୋଳ ।
ମସୂରା—ସ୍ତ୍ରୀ. ବ. ବେଶ୍ୟା, ମସୂର ଶସ୍ୟ, ମେଣ୍ଢାଶିଙ୍ଘା, ଡହୁଡ଼ି । [ରୋଗ ।
ମସୂରଖା—ବ.ମସୁରିକା ରୋଗ, ବସନ୍ତ-
ମସୂରିକା—ସ୍ତ୍ରୀ. ବ. ମସୂରୀ ଦେଖ ।
ମସୂରୀ—ସ୍ତ୍ରୀ. ବ. (ମସୂର + ଈ) ଇଚ୍ଛା, ବସନ୍ତରୋଗ,ମସୁରପରି କ୍ଷୁଦ୍ର ପୀଡ଼କାଯୁକ୍ତ ବସନ୍ତ, ନାଲିଆ ଡହୁଡ଼ି,ବେଶ୍ୟା ।
ମସୃଣ—ତ୍ରି. ବିଂ. (ମସ୍+ଋଣ) ଚିକ୍କଣ, ନରମ, ସ୍ନିଗ୍ଧ, କର୍ଣ୍ଣମଧୁର, ମନୋହର
ମସୃଣା—ସ୍ତ୍ରୀ. ବ. ମସୀନା, ତିସି ।
ମସ୍କ—ଯା. ବ. ମୃଗନାଭି ।
ମସ୍କଟ—ଗ୍ରା.ବ.ମସ୍କଟ ଦେଶଜାତ ଡାଳିମ୍ବ ବିଶେଷ ।
ମସ୍କର—ପୁଂ. ବ. (ମସ୍କ+ଅର) ବଂଶ. ପୋଲା ବାଉଁଶ, ବାଉଁଶବାଡ଼ି, ଗତି ଜ୍ଞାନ ।
ମସ୍କରା—ଯା. ବିଂ. ଗଳ୍ପାକାରକ, ପରିହାସକ,ଭଣ୍ଡ,(ବ)ପରିହାସ,ରଙ୍ଗ,ତାମସା
ମସ୍କରୀ—ପୁଂ. ବ. (ମସ୍କର + ଇନ୍)ଭିକ୍ଷୁ, ଚତୁର୍ଥାଶ୍ରମୀ, ଚନ୍ଦ୍ର ।
ମସ୍କଲ—ଗ୍ରା. ବ. ଅଲଙ୍କାରକୁ ଚିକ୍କଣ କରିବା ପାଇଁ ଏକପ୍ରକାର ଲୁହାର ହତିଆର ।
ମସ୍କାମସ୍କି—ଗ୍ରା.ବ. (ଦୁଇଜଣ)ଧରାଧରି ।
ମସ୍ତ—ଯା. ବିଂ.ବୃହତ୍,ମତ୍ତ, ମଦ୍ୟପାନଯୁକ୍ତ, ଗର୍ବିତ,କାମୋନ୍ମତ୍ତ,(ବ)ମତ୍ତତା ।
ମସ୍ତ—କ୍ଳୀ. ବ. (ମସ୍ + ତ)ମସ୍ତକ, ମୁଣ୍ଡ, ଅଗ୍ରଭାଗ, ଶିରଃ,(ଗ୍ରା.ବିଂ)ଉଚ୍ଚ,ଉନ୍ନତ, ବିଶାଳ, ପ୍ରକାଣ୍ଡ, ମହତ୍ ( କ୍ରି.ବିଂ ) ଅତ୍ୟନ୍ତ ।
ମସ୍ତକ—ବ. (ମସ୍ତ + କ) ମୁଣ୍ଡ, ଶିରୋଦେଶ, କପାଳ, କେଶଭୂ, (ବିଂ) ଉଚ୍ଚ, (ସ୍ତ୍ରୀ) ମସ୍ତକା ।

ମସ୍ତକଚ୍ଛେଦନ—ବ.(୬ତତ୍)ମୁଣ୍ଡକାଟ ।
ମସ୍ତକଜ୍ୱର—ପୁଂ. ବ.ଶିରୋବ୍ୟଥା, ମୁଣ୍ଡବ୍ୟଥା ।
ମସ୍ତକମୁଣ୍ଡନ—ବ. (୬ତତ୍) ମୁଣ୍ଡ ଲଣ୍ଡା ହୋଇ କ୍ଷିଅର ହେବା ।
ମସ୍ତକମୂଳକ—ବ. (୬ତତ୍) ବେକ ।
ମସ୍ତକସ୍ନେହ—ବ. (୬ତତ୍) ମସ୍ତିଷ୍କ ।
ମସ୍ତକାଖ୍ୟ—ପୁଂ. ବ. (ବ.ବ୍ରୀ)ବୃକ୍ଷ ଶିର, ଗଛର ଅଗ ।
ମସ୍ତକି(ଗି)—ଯା.ବ.ଭୂମଧ୍ୟସାଗର ନିକଟବର୍ତ୍ତୀ ପ୍ରଦେଶରେ ଜନ୍ମିବା ଆମ୍ରାଦବର୍ଗର କ୍ଷୁପବିଶେଷରୁ ଉତ୍ପନ୍ନ ଝୁଣା ତୁଲ୍ୟ ପଦାର୍ଥ ।
ମସ୍ତଦାରୁ—ବ. ଦେବଦାରୁ ।
ମସ୍ତବଡ଼—ଗ୍ରା. ବିଂ. ଅତିବୃହତ୍ ।
ମସ୍ତମୂଳକ—ବ. ମସ୍ତକର ମୂଳ, ଗ୍ରୀବା, କଣ୍ଠ, ବେକ ।
ମସ୍ତକାମ୍—ଯା.ବିଂ. ସରଳଭାବେ ଦଣ୍ଡାୟମାନ, ବଳିଷ୍ଠ ।
ମସ୍ତର—ଗ୍ରା. ବ. ପ୍ରକାର ।
ମସ୍ତରାମ୍—ଗ୍ରା. ବ. ପାଗଳପରି କାମ କରିବା ବ୍ୟକ୍ତି ।
ମସ୍ତହେବା—ଗ୍ରା. କ୍ରି. ନିଜର ଆଚରଣ ଦ୍ୱାରା ମତ୍ତତା ପ୍ରକାଶ କରିବା,ମାତିବା ।
ମସ୍ତା—ଗ୍ରା. ବିଂ. ଉନ୍ମତ୍ତ ।
ମସ୍ତାଦ୍—ଯା. ବିଂ. ପ୍ରସ୍ତୁତ,ଉପଯୁକ୍ତ,ପାରଦର୍ଶୀ । [ (ବ୍ୟକ୍ତି) ।
ମସ୍ତାନ—ପୁଂ. ବିଂ. ଈଶ୍ୱରଭକ୍ତିବିହ୍ୱଳ
ମସ୍ତାନି—ଯା. ବ. ମତ୍ତତା,ମାଦକତା ।
ମସ୍ତି—ସ୍ତ୍ରୀ. ବ. (ମସ୍+ଭା.ତି) ପରମାଣ, ମାପିବା, ଓଜନ କରିବା ।
ମସ୍ତିକ—ବ.(ମସ୍ତ+ ଇକ) ମସ୍ତକ, ମୁଣ୍ଡ ।
ମସ୍ତିଷ୍କ—ବ. ( ମସ୍+ତି+ଅ ) ମସ୍ତକଭବ ଘୃତାକାର ସ୍ନେହ ପଦାର୍ଥ, ବୁଦ୍ଧି, ମସ୍ତିଷ୍କ ଉପରେ କ୍ରିୟା କରିବା କୌଣସି ଔଷଧ । [ (ସ୍ତ୍ରୀ) ସ୍ନାନ ।
ମସ୍ତିଷ୍କହୀନ—ପୁଂ.ବିଂ. ନିର୍ବୁଦ୍ଧିଆ(ବ୍ୟକ୍ତି)
ମସ୍ତୁ—ବ. (ମସ୍+ର୍ମ.ତୁ) ଘୋଳଦହି, ଦଧିଜଳ, ଛେନାପାଣି,ବସାଦହିର ମଣ୍ଡ,

ମସ୍ତୁଲୁଙ୍ଗ(କ)—ବି. ମସ୍ତିଷ୍କ ।
ମସ୍ନଦ୍—ଯା. ବି. ରାଜସିଂହାସନ,ଆଉଜି ବସିବାପାଇଁ ବ୍ୟବହୃତ ତକିଆ ।
ମସ୍ୟାଧାର—କ୍ଲୀ. ବି. (ଦେଶଜ) ଦୁଆତ ।
ମହ—ପୁଂ. ବି. (ମହ୍ + ଅ) ଉତ୍ସବ,ଯଜ୍ଞ, ତେଜଃ,ମହସ୍,ମର୍ତ୍ତ୍ୟଭୁବନ ମଧ୍ୟରୁ ଚତୁର୍ଥ ଭୁବନ, (ବିଂ) ପୂଜନୀୟ । [ ତେଜଃ
ମହଃ—ବି.(ମହ୍ + ଣ.ଅସ୍) ଯଜ୍ଞ.ଉତ୍ସବ,
ମହକ—ପୁଂ. ବି. ( ମହ୍ + କ ) ମହତ୍ ବ୍ୟକ୍ତି, ମହାପୁରୁଷ, କଚ୍ଛପ, ବିଷ୍ଣୁ, (ଗ୍ରା. ବିଂ) ସୁବାସଯୁକ୍ତ,(ବି) ସୌରଭ, ଦୂରବ୍ୟାପୀ ସୁଗନ୍ଧ ।
ମହକା(କେ)ଇବା—ଗ୍ରା.କ୍ରି. ସୁବାସରେ ମୁଗ୍ଧ କରିବା, ବାସିବା ।
ମହକିବା—ଗ୍ରା. କ୍ରି. ବାସିବା, ବାସନା କରିବା, ସୁବାସ ପ୍ରସାରିତ ହେବା ।
ମହକି(କ୍ରି)ଲ-ଯା.ବି.ମୌକିଲ,ମୋକ୍କେଲ, ମୁକ୍ତାର ଓ ଉକିଲଙ୍କୁ ମକଦ୍ଦମାପାଇଁ ନିଯୁକ୍ତ କରିବା ପକ୍ଷ ।
ମହକୁପ୍(ବ୍)—ଯା. ବି. ମକୁବ୍ ଦେଖ ।
ମହକୁମା—ଯା. ବି. ଉପବିଭାଗ, ହାକିମଙ୍କର ଅଧିଷ୍ଠିତ ସ୍ଥାନ, ଇଜ୍‌ଲାସ,ବିଚାରାଳୟ, ସବ୍‌ଡିଭିଜନର ରାଜଧାନୀ, ସରକାରଙ୍କର ଭିନ୍ନ ଭିନ୍ନ ଶାସନ ବିଭାଗ ।
ମହକ୍କ—ବି. (ମହ୍ + କ.ଅକ) ବହୁଳାମୋଦ, ବହୁଦୂର ପ୍ରସାରିତ ସୁଗନ୍ଧ ।
ମହଙ୍ଗା—ଗ୍ରା.ବିଂ. (ସଂ-ମହାର୍ଘ) ମହର୍ଘ, ମହାର୍ଘ, (ବି) ଦ୍ରବ୍ୟର ସାଧାରଣ ମୂଲ୍ୟ ଅପେକ୍ଷା ଅଧିକା ମୂଲ୍ୟ, ପଣ୍ୟ ଦ୍ରବ୍ୟର ଚଢ଼ା ମୂଲ୍ୟ ।
ମହଙ୍ଗିଆ—ଗ୍ରା. ବିଂ. ପୁଂ. ମହରଗିଆ, ଯେଉଁ ଦୋକାନୀ ବଜାର ଦର ଅପେକ୍ଷା ମହରଗରେ ଜିନିଷ ବିକେ ।
ମହଜରନାମା—ଯା. ବି. ଦରଖାସ୍ତ ।
ମହଜିଦ୍(ଦ୍)—ଯା. ବି. ମଶଜିଦ୍ ଦେଖ
ମହଜୁଦ୍(ଦ୍)—ଯା.ବିଂ. ବର୍ତ୍ତମାନ,ଉପସ୍ଥିତ, ବିଦ୍ୟମାନ, ପ୍ରସ୍ତୁତ, ସଞ୍ଚିତ ।
ମହଣ—ଗ୍ରା.ବି.ଓଜନ ପରିମାଣ ବିଶେଷ, ଚାଳିଶ ସେର,ମଣ୍ଡ ଦେଖ,ମହୁସିଠା,ମହୁଶାଦ, ଅଠା ବିଶେଷ, ମାଂସାରୁ, ବଳଦ ଓ ଘୋଡ଼ା ଆଦିଙ୍କୁ ତାଲିମ୍ ପ୍ରକ୍ରିୟା, ମଣ୍ଡ, ମଦ୍ଦମ, (ବିଂ) ମହଣ ହୋଇଥିବା, ମହଣରେ ପ୍ରସ୍ତୁତ ।
ମହଣକରିବା—ଗ୍ରା. କ୍ରି. ପଶୁ ଆଦିଙ୍କୁ କାମ କରିବା ପାଇଁ ତାଲିମ୍ କରିବା ।
ମହଣକିଆ—ଗ୍ରା.ବିଂ.ଏକମହଣ ଓଜନଯୁକ୍ତ ।
ମହଣଛଡ଼ା—ଗ୍ରା. ବି. କନାଛଡ଼ା, ବଳାଉ କନାଛଡ଼ା ।
ମହଣତେଲ—ଗ୍ରା.ବି.ମହଣ ସଙ୍ଗେ ମସଲା ମିଶାଇ ପ୍ରସ୍ତୁତ କରାଯିବା ତେଲ ।
ମହଣବନ୍ଧ—ଯା. ବି. ଧାପରୂପେ ବ୍ୟବହୃତ ଚକରେ ନିର୍ମିତ ବନ୍ଧ ।
ମହଣା(ଣେ)ଇବା—ଗ୍ରା. କ୍ରି. ମିଠାଦ୍ରବ୍ୟ ଖାଇବାପରେ ଯେଉଁ ଅନିଚ୍ଛା ଜନ୍ମେ, (ଗ୍ରା.କ୍ରି)ଦାମୁଡ଼ି ଓ ବଳଦ ଆଦିଙ୍କୁ ପ୍ରଥମ ତାଲିମ୍ କରିବା ।
ମହଣିଆ—ଗ୍ରା. ବିଂ. ଏତେ ମହଣ ଓଜନର, ଏତେ ମହଣ ସମ୍ଭାଇବା ଭଳି ।
ମହଣିହେବା—ଗ୍ରା.ବି. ମହଣାଇବା ଦେଖ
ମହତ୍—ସ୍ତ୍ରୀ. ବିଂ. (ମହ + ଅତ୍) ବଡ଼, ପ୍ରବଳ, ବୃହତ୍, ଅନେକ, ଶ୍ରେଷ୍ଠ, ଉଦାର, ଅତି ଉତ୍ତମ, ଦୀର୍ଘ, ସତ୍, ପ୍ରସିଦ୍ଧ, ଚଞ୍ଚଳ, ପ୍ରୟୋଜନୀୟ ଉଚ୍ଚୈଃସ୍ୱର ବିଶିଷ୍ଟ, ପ୍ରଧାନ, ବେଶି, ସତ୍ତ୍ୱଗୁଣବିଯୁକ୍ତ, (ବି) ତତ୍ତ୍ୱଜ୍ଞାନ, ପଠର ଅଧ୍ୟକ୍ଷ, ମହତ୍.ମହତ୍ତ୍ୱ,ବହୁସଂଖ୍ୟକତା, ଅନନ୍ତତା, ଶିବ, ଉଷ୍ଟ୍ର, ରାଜ୍ୟ, ବୃଦ୍ଧି, ଜଳ ।
ମହତ୍‌କ୍ଷେତ୍ର—ବିଂ.(ବ.ବ୍ରୀ)ଯାହା ବିସ୍ତୃତ ସ୍ଥାନ ଅଧିକାର କରିଥାଏ ।
ମହତ୍‌ସେବା—ବି. (ଦେଶଜ) ମହାପୁରୁଷ ବା ବଡ଼ଲୋକଙ୍କର ସେବା ।
ମହତ୍‌ସ୍ଥାନ—ବି. ( କ.ଧା ) ଉଚ୍ଚସ୍ଥାନ, ଉଚ୍ଚପଦ ।
ମହତ—ଗ୍ରା. ବି. ( ସଂ-ମହତ୍ତ୍ୱ )ସମ୍ମାନ, ମର୍ଯ୍ୟାଦା, ଇଜ୍ଜତ, ସତୀତ୍ୱ ।
ମହତନେବା—ଗ୍ରା. କ୍ରି. ଅନ୍ୟବ୍ୟକ୍ତିଙ୍କୁ ବେଇଜ୍ଜତ କରିବା, କୁଳ ସ୍ତ୍ରୀର ସତୀତ୍ୱ ନାଶ କରିବା । [ ଆଚରଣ, ମହତ୍ତ୍ୱ ।
ମହତପଣ—ଗ୍ରା. ବି. ମହତ୍ ବ୍ୟକ୍ତିଙ୍କ
ମହତପଦାରେପଡ଼ିବା—ଗ୍ରା. କ୍ରି. ମର୍ଯ୍ୟାଦାର ହାନି ହେବା,ସମ୍ମାନ ନଷ୍ଟହେବା ।
ମହତମର୍ଯ୍ୟାଦା—ଗ୍ରା. ବି. ମାନମହତ୍ତ୍ୱ, ସମ୍ମାନ, ଭଦ୍ରସମାଜୋଚିତ ବ୍ୟବହାର, ବେଭାର ବିଆଦେଇ ।
ମହତଲୋକ—ଗ୍ରା. ବି. ମହାନ୍ ବ୍ୟକ୍ତି, ମହାପୁରୁଷ, ସାଧୁବ୍ୟକ୍ତି ।
ମହତରଖିବା—ଗ୍ରା. କ୍ରି. ଅନ୍ୟ ବ୍ୟକ୍ତିର ଅଭାବ ପୂରଣ କରିବା (ଯାହାର ପୂରଣ ହୋଇ ନ ଥିଲେ ତାହାର ମର୍ଯ୍ୟାଦା ହାନି ହୋଇଥାନ୍ତା) । [କରିବା ।
ମହତସମ୍ଭାଳିବା—ଗ୍ରା. କ୍ରି.ସମ୍ମାନ ରକ୍ଷା-
ମହତସରୁ—ଗ୍ରା.ବିଂ.ମର୍ଯ୍ୟାଦାହାନିକର, ଯେଉଁ କାର୍ଯ୍ୟ ଦ୍ୱାରା ମର୍ଯ୍ୟାଦା ନଷ୍ଟ ହୁଏ ।
ମହତସାରିବା—ଗ୍ରା.କ୍ରି. ଆପଣାର ମହତ୍ତ୍ୱ ନିଜେ ହାନି କରିବା, ମହତ ନେବା ଦେଖ, ସ୍ତ୍ରୀର ସତୀତ୍ୱ ନାଶ କରିବା ।
ମହତସୈନ୍ୟ—ଗ୍ରା. ବି. ବହୁସଂଖ୍ୟକ ସୈନ୍ୟ ।
ମହତସ(ହ)ରି(ରେ)ଇବା—ଗ୍ରା. କ୍ରି.ମନ୍ଦ ବା ଅନୁଚିତ କାର୍ଯ୍ୟଦ୍ୱାରା ଆପଣାର ମର୍ଯ୍ୟାଦାହାନିର କାରଣ ହେବା ।
ମହତହାନି—ଗ୍ରା.ବିଂ.ମାନନାଶ, ମର୍ଯ୍ୟାଦାଲୋପ ।
ମହତାପ୍(ବ୍)—ଯା.ବି. ଚନ୍ଦ୍ରବିନ୍ଦୁଆବାଣ, ପଶ୍ଚିମା କ୍ଷତ୍ରିୟମାନଙ୍କର ବଂଶୋପାଧିବିଶେଷ ।
ମହତାପାନ—ଗ୍ରା. ବି. ବଡ଼ପାନ ।
ମହତାବ୍‌ଚାନ୍ଦ୍—ଗ୍ରା.ବି.ବର୍ଦ୍ଧମାନର ସ୍ୱର୍ଗୀୟ ମହାରାଜା ।
ମହତାସିନ୍—ଗ୍ରା. ବି. ମୁସଲମାନ ରାଜତ୍ୱରେ ପ୍ରଦେଶର ପ୍ରଧାନ କର୍ମଚାରୀଙ୍କ ଉପାଧିବିଶେଷ ।
ମହତିଆ—ଗ୍ରା. ବିଂ. ମହତ୍ତ୍ୱଯୁକ୍ତ ।
ମହତୀ—ସ୍ତ୍ରୀ.ବି.ନାରଦଙ୍କ ବୀଣାର ନାମ, ମହତ୍ତ୍ୱ, ବୃହତୀ, ବାଇଗଣ, (ସ୍ତ୍ରୀ.ବିଂ)

ମହତ୍ତ୍ୱର ସ୍ତ୍ରୀଲିଙ୍ଗ ।

ମହତ୍ତଦେବତା—ଗ୍ରା. ବି. ପୂଜ୍ୟତମା ବା ଶ୍ରେଷ୍ଠ ଦେବତା ।

ମହତ୍ତଦ୍ୱାଦଶୀ—ସ୍ତ୍ରୀ. ବି. ଶ୍ରବଣାନକ୍ଷତ୍ର-ଯୁକ୍ତ ଭାଦ୍ରବ ଶୁକ୍ଳଦ୍ୱାଦଶୀ ।

ମହତ୍କଥ—ପୁଂ. ବିଂ. ( ବ.ବ୍ରୀ ) ମଧୁର ବାକ୍ୟଦ୍ୱାରା ପରର ମନୋରଞ୍ଜନକାରୀ, ଚାଟୁଭାଷୀ, (୬ତତ୍ପୁ) ବଡ଼ଲୋକ ବା ମହାପୁରୁଷଙ୍କ ଦ୍ୱାରା କଥିତ, ( ସ୍ତ୍ରୀ ) ମହତ୍କଥା ।

ମହତ୍ତତ୍ତ୍ୱ—ବି. ସାଂଖ୍ୟଦର୍ଶନୋକ୍ତ ସୃଷ୍ଟିର ଚତୁର୍ବିଂଶତି ତତ୍ତ୍ୱାନ୍ତର୍ଗତ ୨ ୟ ବା ବୁଦ୍ଧିସ୍ୱରୂପ ତତ୍ତ୍ୱ. ଜୀବାତ୍ମା ।

ମହତ୍ତମ—ବିଂ. (ମହତ୍+ତମ) ଅନେକଙ୍କ ମଧ୍ୟରେ ବଡ଼, ଅତି ମହତ୍, (ସ୍ତ୍ରୀ) ମହତ୍ତମା ।

ମହତ୍ତର—ବିଂ.(ମହତ୍+ତର) ଅତିଶୟ ମହତ୍, ଉତ୍କୃଷ୍ଟତର,ଅତ୍ୟଧିକ,ଦୁଇଟିର ମଧ୍ୟରେ ବଡ଼, ଅପେକ୍ଷାକୃତ, ( ବି ) ଶୂଦ୍ର, ଗ୍ରାମର ବୟୋଜ୍ୟେଷ୍ଠ ବ୍ୟକ୍ତି, ଗ୍ରାମର ମୁଖ୍ୟବ୍ୟକ୍ତି ବା ନେତା, ରାଜସଭାର ସଦସ୍ୟ, ଦଳର ନେତା ।

ମହତ୍ତରକ—ପୁଂ. ବି. (ମହତ୍ତର+କ) ରାଜସଭାର ସଦସ୍ୟ, ରାଜଶୟନାଗାରର ରକ୍ଷକ ।

ମହତ୍ତରକା—ବି. (ମହତ୍ତର+କ+ଆ) ବର୍ତ୍ତିସଙ୍କର ଜାତିବିଶେଷ । [ ଭବତା

ମହତ୍ତା—ବି. ( ମହତ୍+ତା ) ମହାନୁ-

ମହତ୍ତ୍ୱ—କ୍ଲୀ. ବି. (ମହତ୍+ତ୍ୱ) ମହାନୁଭବତା, ଔଦାର୍ଯ୍ୟ, ଶ୍ରେଷ୍ଠତା, ଗୁରୁତା, ପ୍ରାଧାନ୍ୟ, ଉତ୍କର୍ଷ, ଆଧିକ୍ୟ, ଉଚ୍ଚପଦ, ଗୌରବ, ଐଶ୍ୱର୍ଯ୍ୟ, (ଗ୍ରା.ବ୍ର) କୁଳୀନତା, ବଂଶମର୍ଯ୍ୟାଦା ।

ମହତ୍ତ୍ୱମର୍ଯ୍ୟାଦା—ଗ୍ରା. ବି. ସଦାଚାର, ମର୍ଯ୍ୟାଦା, ସମ୍ମାନ ପ୍ରଦର୍ଶନ,ବନ୍ଧୁମାନଙ୍କ ମଧ୍ୟରେ ସମୁଚିତ ବେଭାର ଆଦାନ-ପ୍ରଦାନ ।

ମହତ୍ତ୍ରାଣ—ଗ୍ରା.ବିଂ.ଭଦ୍ରଲୋକଙ୍କ ଭରଣପୋଷଣପାଇଁ ଛଡ଼ାଯାଇଥିବା(ଜମି) ।

ମହଦ୍‌ବ୍ୟକ୍ତି—ବି. (କ.ଧା) ମହାନୁଭବ ବ୍ୟକ୍ତି, ଉଦାର ବ୍ୟକ୍ତି ।

ମହଦବି—ବି. ମୁସଲମାନମାନଙ୍କର ଧର୍ମ ସମ୍ପ୍ରଦାୟବିଶେଷ ।

ମହଦାବାସ—ବି. (କ.ଧା) ବୃହତ୍ ଅଟ୍ଟାଳିକା, ବଡ଼ଘର ।

ମହଦାଶୟ—ବି. (କ.ଧା)ସତ୍‌ଅଭିଳାଷ, ଉଚ୍ଚାକାଙ୍କ୍ଷା, ଉଦାର ହୃଦୟ,(ପୁଂ.ବିଂ-ବ.ବ୍ରୀ) ସଦାଶୟ, ଉଦାରଚେତାଃ, (ସ୍ତ୍ରୀ) ମହଦାଶୟା ।

ମହଦାଶା—ସ୍ତ୍ରୀ.ବି. (କ.ଧା) ଉଚ୍ଚାଶା, ମହତ୍‌ଆଶା ।

ମହଦାଶ୍ଚର୍ଯ୍ୟ—ବିଂ.ଅତ୍ୟନ୍ତ ବିସ୍ମୟଜନକ

ମହଦାଶ୍ରୟ—ବି. (୬ତତ୍ପୁ) ବଡ଼ଲୋକର ଆଶ୍ରୟ ନେବା,ମହନ୍ତ ବ୍ୟକ୍ତିଙ୍କର ଆନୁଗତ୍ୟ ।

ମହଦାଶ୍ରିତ—ପୁଂ. ବିଂ. ଯେ ମହତ ଲୋକର ଆଶ୍ରୟ ଗ୍ରହଣ କରିଥାଏ ।

ମହଦେଶ୍ୱର—ବି. ମହୀସୁରରେ ଜାତ, ଏକଜାତୀୟ ହୃଷ୍ଟପୁଷ୍ଟ ଓ ବଳବାନ୍ ବଳଦ ।

ମହଦ୍‌ଗୁଣ—ପୁଂ.ବିଂ. (ବ.ବ୍ରୀ)ମହାଗୁଣ-ବିଶିଷ୍ଟ, ମହାପୁରୁଷମାନଙ୍କ ଗୁଣବିଶିଷ୍ଟ (ବ୍ୟକ୍ତି) ।

ମହଦ୍‌ବିଲ—କ୍ଲୀ.ବି.ଆକାଶ,ଶୂନ୍ୟ ।

ମହଦ୍‌ଭୟ—କ୍ଲୀ.ବି. ଅତିଶୟ ଭୟ,ମହତ୍ ବ୍ୟକ୍ତିଠାରୁ ଭୟ ।

ମହଦ୍ୟୁମ୍ନ—କ୍ଲୀ.ବି. ସୂର୍ଯ୍ୟ, ତୀର୍ଥବିଶେଷ

ମହଦ୍ୱାରୁଣୀ—ସ୍ତ୍ରୀ. ବି. ମହେନ୍ଦ୍ରବାରୁଣୀ-ଲତା ।

ମହଦ୍ୱ୍ୟତିକ୍ରମ—ବି. ଅତିଶୟ ବ୍ୟତ୍ୟୟ ।

ମହନ—ଗ୍ରା.ବି. ଅସଲ ଦେଉଳକୁ ଲାଗିଥିବା କ୍ଷୁଦ୍ରତର ଦେଉଳ,ଜଗମୋହନ

ମହନଭୋଗ—ଗ୍ରା.ବି. ହାଲୁଆ, ଘିଅରେ ଖରଡ଼ା ହୋଇଥିବା ସୁଜି ସଙ୍ଗେ ପାଣି, ଦୁଧ, କନ୍ଦ ଓ ମସଲା ମିଶାଯାଇ ପ୍ରସ୍ତୁତ ଖାଦ୍ୟ ।

ମହନଆ—ଗ୍ରା.ବିଂ. ମୃଦୁକାରୀ ।

ମହନଲଗା(ଗେ)ଇବା—ଗ୍ରା. କ୍ରି. ମନ୍ତ୍ର-ଯନ୍ତ୍ରାଦି ବା ତାନ୍ତ୍ରିକ ପ୍ରୟୋଗଦ୍ୱାରା (କୌଣସି ବ୍ୟକ୍ତିକୁ) ବିମୋହିତ କରିବା

ମହନ୍ମା—ଗ୍ରା.ବି. (ସଂ-ମୋହନୀ) କୌଣସି ବ୍ୟକ୍ତିକୁ ମୋହନ ବା ବଶୀକରଣ କରିବା ଉପାୟ,ମୋହିତ କରିବା ଶକ୍ତି ।

ମହମାୟ—ପୁଂ ବିଂ. ( ମହ+ଅମାୟ ) ପୂଜନୀୟ,ମାନ୍ୟ,ମହତ୍,(ସ୍ତ୍ରୀ)ମହମାୟା ।

ମହନ୍ତ—ପୁଂ. ବି. ମଠାଧିପତି, ମଠର ମାଲ୍‌ଫତ୍‌ଦାର, ମହାପୁରୁଷ ।

ମହଫିଲ୍—ଯା.ବି. ସଭା, ବନ୍ଧୁ ଲୋକଙ୍କ ସମ୍ମେଳନ ।

ମହମ—ଗ୍ରା.ବି. ମହଣ, ମହୁଣିଠା ।

ମହମଜାମା—ଯା.ବି ଓ ବିଂ. ମମ୍‌ଜାମା ଦେଖ । [ ବନ୍ଧ ।

ମହମବନ୍ଧ—ଗ୍ରା.ବି. ମହମବଳନ୍ତା,ମହଣ-

ମହମହ—ଗ୍ରା.ଅବ୍ୟ. ଚହଟ,ବାସନାଯୁକ୍ତ, ବହୁଦୂର ବିସ୍ତାରିତ,ସୁଗନ୍ଧଯୁକ୍ତ ।

ମହମହବାସିବା—ଗ୍ରା.କ୍ରି. (କୌଣସିଦ୍ରବ୍ୟ) ଖୁବ୍ ବାସିବା, ସୁବାସଦ୍ୱାରା ଘରଆଦି ସୁଗନ୍ଧିତ କରିବା ।

ମହମୁଦ୍‌ଗଜନୀ—ଯା.ବି. ଖ୍ରୀଷ୍ଟୀୟ ଏକାଦଶ ଶତାବ୍ଦୀରେ ଉତ୍ତର ଭାରତ ଆକ୍ରମଣକାରୀ ମୁସଲମାନ୍ ରାଜା ।

ମହମ୍ମଦ—ଯା.ବି.ମୁସଲମାନ ଧର୍ମ ପ୍ରବର୍ତ୍ତକ ଈଶ୍ୱରପ୍ରେରିତ ଦୂତ ବା ମହାପୁରୁଷଙ୍କ ନାମ ।

ମହମ୍ମଦଘୋରୀ—ଯା. ବି. ଭାରତରେ ପ୍ରଥମ ମୁସଲମାନ ରାଜ୍ୟର ପ୍ରତିଷ୍ଠାତା ।

ମହମ୍ମଦତୋଗଲକ୍—ଯା. ବି. ଭାରତର ତୋଗଲକବଂଶୀୟ ମୁସଲମାନ ରାଜା ।

ମହମ୍ମଦବିନ୍‌କାସିମ୍—ଯା.ବି. ଭାରତର ପ୍ରଥମ ମୁସଲମାନ ଆକ୍ରମଣକାରୀ ।

ମହମ୍ମଦମହସୀନ—ଯା.ବି. ବଙ୍ଗଦେଶର ହୁଗୁଲି ନିବାସୀ ଧର୍ମପରାୟଣ ଓ ଦାନଶୀଳ ମୁସଲମାନ ।

ମହମ୍ମଦୀୟ—ଗ୍ରା. ବିଂ. ମହମ୍ମଦଙ୍କ ସମ୍ବନ୍ଧୀୟ, ମୁସଲମାନଙ୍କ ଧର୍ମସମ୍ବନ୍ଧୀୟ ।

ମହମ୍ମଦୀୟଧର୍ମଶାସ୍ତ୍ର—ଗ୍ରା.ବି.ମୁସଲମାନମାନଙ୍କ ଧର୍ମଶାସ୍ତ୍ର,କୋରାନ୍, ମହମ୍ମଦଙ୍କ

ମୁଝନଃହୃତ ବାକ୍ୟସମ୍ବଳିତ ଗ୍ରନ୍ଥ ।
ମହର୍—ବି. (ମହ୍ + ମିଁ.ଅର୍)ମହର୍ଲୋକ ଦେଖ, (ଣ.ଅର୍) ବ୍ୟାହୃତିବିଶେଷ ।
ମହରଗ(ଗି)—ଗ୍ରା.ବିଂ.ମହଙ୍ଗା,ଦୁର୍ମୂଲ୍ୟ, (ଗ୍ରା.ବି) ପଣ୍ୟ ଦ୍ରବ୍ୟର ଦୁର୍ମୂଲ୍ୟତା, ଦୁର୍ଭିକ୍ଷ ।
ମହରଗକାଳ—ଗ୍ରା.ବି. ଯେଉଁ ସମୟରେ ପଣ୍ୟଦ୍ରବ୍ୟାଦି ମହାର୍ଘ ହୁଏ ।
ମହରଗପଡ଼ିବା—ଗ୍ରା. ବି. ଦେଶରେ ମହାର୍ଘ କାଳ ଉପସ୍ଥିତ ହେବା,ଦୁର୍ଭିକ୍ଷ ପଡ଼ିବା ।
ମହରଗିଆ—ଗ୍ରା.ବିଂ. ଯେଉଁ ଦୋକାନୀ ପଣ୍ୟଦ୍ରବ୍ୟମାନଙ୍କପାଇଁ ଦାଣ୍ଡଭାଉ ଅପେକ୍ଷା ବେଶି ଭାଉ କରେ, ଦୁର୍ଭିକ୍ଷ-ପ୍ରପୀଡ଼ିତ ।
ମହରଡ଼ା—ଗ୍ରା.ବି.ଏକପ୍ରକାର ବଡ଼ ଶିମ୍ବ-ଜାତୀୟ ଲତାଫଳ, ମହୁରଡ଼ା ।
ମହରତ—ଗ୍ରା. ବି. ଦୋକାନର ବନ୍ଧା ଗ୍ରାହକମାନେ ନବ ବର୍ଷାରମ୍ଭ ଦିନ ଦୋକାନକୁ ଆସି ବର୍ଷର ପ୍ରଥମ କାର-ବାର ଅନୁକୂଳ କରିବା ।
ମହରମ—ଯା. ବି. ମୁସଲମାନମାନଙ୍କର ଖେଦ ପ୍ରକାଶକ ପ୍ରଧାନ ଯାତ୍ରା, ମୁସଲମାନମାନଙ୍କର ଚାନ୍ଦ୍ରମାସ ।
ମହରା—ପ୍ରା.(ସମ୍ବ)ବି. ପେଁକାଳି,ମହୁରୀ ।
ମହରେଲ୍—ପ୍ରା.(ସମ୍ବ)ବି. ମହୁରାଡ଼ମାଛ
ମହର୍ଘ—ଗ୍ରା.ବି. ମହରଗ ଦେଖ ।
ମହର୍ଦ୍ଧି—ବିଂ.(ବି.ଗ୍ରୀ)ବିପୁଳ ଧନସମ୍ପନ୍ନ, (ବ୍ରି-କ.ଧା) ଅଧିକ ଉନ୍ନତି, ଅଧିକ ଧନ
ମହର୍ଦ୍ଧିକ—ବିଂ. ଦୈବଶକ୍ତି ସମ୍ପନ୍ନ, ବିପୁଳ ଧନଶାଳୀ ।
ମହର୍ଦ୍ଧିପ୍ରାପ୍ତ—ପୁଂ.ବି. ଗାରୁଡ଼ ଦେଶର ରାଜା, (ବିଂ) ବିପୁଳବିଭବ, ସମ୍ପତ୍ତିଶାଳୀ
ମହର୍ଦ୍ଧିମାନ୍—ପୁଂ.ବିଂ. ଦୈବଶକ୍ତିଦ୍ୱାରା ଧନଶାଳୀ ।
ମହର୍ଲୋକ—ବି. (ମହଃ+ଲୋକ)ଭୂରାଦି ସପ୍ତଲୋକର ଅନ୍ତର୍ଗତ ଚତୁର୍ଥଲୋକ ।
ମହର୍ଷଭ—ପୁଂ. ବି. ( ମହାନ୍+ ଋଷଭ ) (କ.ଧା) ବୃହତ୍ ଷଣ୍ଢ, ବଡ଼ଷଣ୍ଢ ।

ମହର୍ଷିଣୀ—ସ୍ତ୍ରୀ.ବି.କପିକଚ୍ଛୁ,ବାଇଡ଼ଙ୍କ ।
ମହର୍ଷି—ପୁଂ.ବି. (ମହାନ୍ + ଋଷି,କ.ଧା) ସପ୍ତପ୍ରକାର ଋଷିମଧ୍ୟରେ ଶ୍ରେଷ୍ଠ ଋଷି, ପ୍ରଧାନ ମୁନି ।
ମହର୍ଷିକା—ସ୍ତ୍ରୀ.ବି. ଶୁକ୍ଳ କଣ୍ଟକାରୀ ।
ମହର୍ଷିଦେବେନ୍ଦ୍ରନାଥଠାକୁର—ଗ୍ରା. ବି. ବଙ୍ଗର ଠାକୁର ଜମିଦାର ବଂଶର ଜଣେ ମହାପଣ୍ଡିତ ସାଧକ ଓ ପ୍ରଧାନ ଧାର୍ମିକ ବ୍ୟକ୍ତି । [ ପ୍ରାସାଦ ।
ମହଲ୍—ଯା.ବି. ପକ୍କାଘର, ରାଜଯୋଗ୍ୟ
ମହଲ—ଗ୍ରା.ବିଂ. ମଳିନ, ମଳଯୁକ୍ତ, (ବି) ମଳ, ମଳି ।
ମହଲ—ଯା. ବି. ବାସସ୍ଥାନ, ଆଳୟ, ପ୍ରକୋଷ୍ଠ, କାମରା, ପ୍ରାସାଦ, ରାଜବାଟି, ଅନ୍ତଃପୁର ।
ମହଲତ୍—ଯା. ବି. ମକଦ୍ଦମାରେ ପକ୍ଷ ଅବକାଶ ବା ସମୟ ନେବା ।
ମହଲ୍ଦାର୍—ଯା.ବି. ଜମିଦାର ।
ମହଲା—ଯା.ବି.କୋଠାର ତଳ ବା ସ୍ତର, ଘର, ପୁର, ଏକମହଲା, ଏକତାଲା ଇତ୍ୟାଦି । [ ବିବର୍ତ୍ତ ।
ମହଲିଆ—ଗ୍ରା. ବିଂ. ମଳଯୁକ୍ତ, ମଳିଆ,
ମହଲ୍ଲକ—ପୁଂ.ବି. (ମହଲ୍ଲ+କ)କଞ୍ଚୁକୀ, ରାଜାନ୍ତଃପୁରରକ୍ଷୀ ।
ମହଲ୍ଲ—ପୁଂ.ବି. ବୃଦ୍ଧଲୋକ ।
ମହଲ୍ଲା—ଯା.ବି. ମହଲ୍ଲ ଦେଖ, ନଗର ବା ସହରର ଏକଅଂଶ,ପଲ୍ଲୀ ବା ପଡ଼ା ।
ମହଲ୍ଲିକ—ପୁଂ.ବି. ରାଜଅନ୍ତଃପୁରରକ୍ଷକ ଭୃତ୍ୟ ।
ମହସ୍—ବି. (ମହ୍+ମିଁ.ଅସ୍) ତେଜଃ, (ଅଧି.ଅସ୍) ଉତ୍ସବ, (ଣ.ଅସ୍)ଯଜ୍ଞ ।
ମହସ—କ୍ଲୀ.ବି. ( ମହ୍ + ଅସ ) ଜ୍ଞାନ, ପ୍ରକାର, ପ୍ରଭେଦ । [ ଦେଖ ।
ମହସିଲ୍ଦାର୍—ଯା.ବି. ତହସିଲ୍ଦାର୍
ମହସୁଲ୍—ଯା.ବି. ପ୍ରକାର, ରକମ,ଋତୁ
ମହସ୍ୱାନ୍—ପୁଂ.ବି.(ମହସ୍+ବତୁ)ଆନନ୍ଦ ବର୍ଦ୍ଧକ, ମହତ୍ତ୍ୱ, ଜ୍ୟୋତିର୍ବିଶିଷ୍ଟ, (ପୁଂ.ବି) ରାଜଭେଦ ।
ମହା—ସ୍ତ୍ରୀ.ବି.(ମହ୍+ଅ+ଆ)ଗୋପ-ବଲ୍ଲୀ, ଗୋରକ୍ଷ ଗୁଣ୍ଡଲିଆ, ଗାଈ, ଧେନୁ, (ବିଂ-ମହ୍+ଆ)ପୂଜନୀୟା,ମହ ଦେଖ, ( ଗ୍ରା. ବିଂ) ପ୍ରଧାନ, ଶ୍ରେଷ୍ଠ, ଅତ୍ୟନ୍ତ ବଡ଼ ।
ମହାଅକଲ—ଗ୍ରା.ବି. ଅତ୍ୟନ୍ତ ଅସୁବିଧା, (ବିଂ) ଅତ୍ୟନ୍ତ ଅସୁବିଧାଜନକ ।
ମହାଅକଳିଆ—ଗ୍ରା.ବିଂ. ଭାରି ଅଖଣ୍ଡିଆ, ଅତ୍ୟନ୍ତ ଅସୁବିଧାଜନକ (କାର୍ଯ୍ୟ) ।
ମହାଅସାଧ—ଗ୍ରା.ବିଂ. ଅତ୍ୟନ୍ତ ଅସାଧ୍ୟ, ଅତ୍ୟନ୍ତ ଅଗମ୍ୟ, ଭାରି ଅବୁଝମଣା (ଲୋକ) ।
ମହାଆନନ୍ଦ—ଗ୍ରା.ବି. ବିଶେଷ ଆନନ୍ଦ, (ବିଂ) ବିଶେଷ ଆନନ୍ଦିତ ।
ମହାଋଷି—ଗ୍ରା.ବି. (ସଂ-ମହର୍ଷି) ଶ୍ରେଷ୍ଠ ଋଷି, ମହାମୁନି ।
ମହାକଚ୍ଛ—ପୁଂ.ବି. (ବି.ଗ୍ରୀ) ସମୁଦ୍ର; ବରୁଣ, ପର୍ବତ, ଜନପଦଭେଦ ।
ମହାକଣ୍ଟିନୀ—ସ୍ତ୍ରୀ.ବି. ଶ୍ୱେତ କଣ୍ଟିବୃକ୍ଷ
ମହାକଣ୍ଟକିନୀ—ସ୍ତ୍ରୀ. ବି. ବିଶ୍ୱସାରକ, ଫଣିମନସା, କଣ୍ଟାସିଜୁ ଗଛ ।
ମହାକଣ୍ଟା—ସ୍ତ୍ରୀ. ବି. ଶେବନ୍ତୀବୃକ୍ଷ, ଗୋଲାପ ।
ମହାକଦମ୍ବ—ପୁଂ.ବି. କେଳିକଦମ୍ବ ।
ମହାକନ୍ଦ—ପୁଂ.ବି. ( କ.ଧା ) ରସୁଣ, ମୂଳକ, ବଡ଼ ପିଆଜ, ରାଜପଳାଣ୍ଡୁ ।
ମହାକପାଲ—ବି. ରାକ୍ଷସଭେଦ, ଶିବାନୁଚରବିଶେଷ ।
ମହାକପି—ପୁଂ.ବି. ରାଜଭେଦ, ଶିବାନୁ-ଚରବିଶେଷ, ବୁଦ୍ଧଙ୍କର ଅବତାର-ବିଶେଷ । [ ରସୁଣ ।
ମହାକପିତ୍ଥ—ପୁଂ.ବି. ବେଲଗଛ, ନାଲି
ମହାକପିଳପଞ୍ଚରାତ୍ର—ବି. ଗୋଟିଏ ପୁରା-ତନ ଧର୍ମଗ୍ରନ୍ଥ ।
ମହାକପୋଳ—ପୁଂ.ବି.ଶିବାନୁଚରଭେଦ
ମହାକମ୍ବୁ—ବିଂ. ନଗ୍ନ, (ପୁଂ.ବି)ଶିବ ।
ମହାକର—ପୁଂ. ବିଂ. (ବି.ଗ୍ରୀ) ଯାହାର ହାତ ବଡ଼, ଯାହାର ରାଜସ୍ୱ ଅଧିକ, (ବି)ଏକ ବୌଦ୍ଧସନ୍ନ୍ୟାସୀ,(କ.ଧା)ବଡ଼ହାତ, ବେଶି ଖଜଣା ।

ମହାକରଞ୍ଜ—ବି. କରଞ୍ଜବିଶେଷ, ବଡ଼ କରଞ୍ଜ ।

ମହାକରୁଣ—ବି° (ବି.ସଂ) ଅତିଶୟ ଦୟାଳୁ । [ଭେଦ ।

ମହାକରୁଣଚନ୍ଦ୍ର—ପୁଂ.ବି. ବୋଧିସତ୍ତ୍ୱ-

ମହାକକାରୁ—ପୁଂ.ବି. ଗୁଳ୍ମଭେଦ ।

ମହାକର୍ଣ୍ଣ—ପୁଂ. ବି. ଶିବ, ନାଗଭେଦ, (ବି°) ବୃହତ୍ କର୍ଣ୍ଣଯୁକ୍ତ ।

ମହାକର୍ଣ୍ଣିକାର—ପୁଂ. ବି. (କ.ଧା) ଆରଗ୍ୱଧ ବୃକ୍ଷ, ସୁନାରି ଗଛ ।

ମହାକର୍ମ—କ୍ଲୀ. ବି. ବୃହତ୍କର୍ମ ।

ମହାକର୍ମା—ପୁଂ.ବି°. (ବି.ସଂ) ମହତ୍ କର୍ମସାଧନକାରୀ, (ବି) ଶିବ, ବିଷ୍ଣୁ ।

ମହାକର୍ଷଣ—ବି. ଅତି ପ୍ରବଳ ଭାବରେ ଆକର୍ଷଣ,ଯେଉଁ ଶକ୍ତିଦ୍ୱାରା ସମସ୍ତ ପଦାର୍ଥ ସମସ୍ତ ପଦାର୍ଥକୁ ଆକର୍ଷଣ କରେ,ମାଧ୍ୟାକର୍ଷଣ ।

ମହାକଲରବ—ବି. (କ.ଧା) ଭୟାନକ ଗୋଳମାଳ, ଘୋଘା ।

ମହାକଳା—ସ୍ତ୍ରୀ. ବି. ଅମାବାସ୍ୟା, ଅମା ନାମକ କଳା ।

ମହାକଳ୍ପ—ପୁଂ.ବି. ସମୟଭେଦ,କଳ୍ପାନ୍ତର, ଶିବ ।

ମହାକଳ୍ପତରୁନାଥ—ବି. ଜନୈକ ଜୈନ ଅର୍ହତ ।

ମହାକବି—ବି. ମହାକାବ୍ୟର ପ୍ରଣେତା, ଉଚ୍ଚଶ୍ରେଣୀସ୍ଥ କବି ।

ମହାକବିପ୍ରୟୋଗ—ବି. (୬ତତ୍) ମହାକବିମାନେ ରଚନାରେ ବ୍ୟବହାର କରିଥିବା ବ୍ୟାକରଣ ବିରୁଦ୍ଧ ବା ଭାଷାର ରୀତିବିରୁଦ୍ଧ ପ୍ରୟୋଗ, ଶିଷ୍ଟପ୍ରୟୋଗ ।

ମହାକଷ୍ଟ—ବି. (କ.ଧା) ଅତି ଦୁଃଖ, (ବି°-ବି.ସଂ) ଅତିଦୁଃଖୀ ।

ମହାକଷ୍ଟୀ—ତ୍ରି.ବି°. ଯେ ଅତ୍ୟନ୍ତ ଦୁଃଖ ଭୋଗକରୁଥାଏ ।

ମହାକାନ୍ତ—ପୁଂ. ବି. ଶିବ, (ତ୍ରି.ବି°) ଅତିବ ରମଣୀୟ ।

ମହାକାନ୍ତା—ସ୍ତ୍ରୀ.ବି.ପୃଥିବୀ । [ଭେଦ ।

ମହାକାନ୍ତାର—ବି. ପ୍ରାଚୀନ ଜନପଦ

ମହାକାୟ—ପୁଂ. ବି. (ବି.ସଂ) ନନ୍ଦୀ, ଶିବଙ୍କର ଦ୍ୱାରପାଳ, ବଡ଼ହାତୀ, ବିଷ୍ଣୁ, (ବି°.ବି.ସଂ) ବୃହତ୍ ଶରୀରବିଶିଷ୍ଟ ।

ମହାକାର—ତ୍ରି. ବି°. (ମହାନ୍+ଆକାର) ସୁବୃହତ୍, ବୃହଦାକାର ।

ମହାକାରଣ—ପୁଂ.ବି.ସର୍ବକର୍ମର ନିୟନ୍ତା ବା କାରଣଭୂତ ପରମେଶ୍ୱର ।

ମହାକାର୍ତ୍ତିକ—ତ୍ରି. ବି. ମହାପୁଣ୍ୟମୟ କାର୍ତ୍ତିକ ମାସ ।

ମହାକାର୍ତ୍ତିକୀ—ସ୍ତ୍ରୀ. ବି. କାର୍ତ୍ତିକ ପୂର୍ଣ୍ଣିମାର ରାତ୍ରି, ରୋହଣୀନକ୍ଷତ୍ର ଯୁକ୍ତ କାର୍ତ୍ତିକ-ପୂର୍ଣ୍ଣିମା ।

ମହାକାଳ—ପୁଂ. ବି. (ମହାନ୍+କାଳ) ରୁଦ୍ର, ଶିବ, ପ୍ରଥମଗଣବିଶେଷ,ଅନବଚ୍ଛିନ୍ନ କାଳ, ଅନନ୍ତକାଳ, ଉଜ୍ଜୟିନୀସ୍ଥ ପ୍ରସିଦ୍ଧ ଶିବଲିଙ୍ଗ ମହାଦୁର୍ଭିକ୍ଷ, ଭୈରବବିଶେଷ, ଏକପ୍ରକାର ଲତା ଓ ତାହାର ଫଳ ।

ମହାକାଳୀ—ସ୍ତ୍ରୀ. ବି. (ମହତ୍+କାଳୀ) ମହାକାଳଙ୍କ ପତ୍ନୀ, ରୁଦ୍ରାଣୀ, କାଳୀ, ଶ୍ୟାମା ।

ମହାକାଳେଶ୍ୱର—ପୁଂ. ବି. ଉଜ୍ଜୟିନୀସ୍ଥ ଶିବଲିଙ୍ଗ ଭେଦ ।

ମହାକାବ୍ୟ—କ୍ଲୀ. ବି. (କ.ଧା) ପୁରାଣାନ୍ତର୍ଗତ ପ୍ରସିଦ୍ଧ ବୃତ୍ତାନ୍ତ ବା ଦେବତା; ଉଚ୍ଚବଂଶୀୟ ବ୍ୟକ୍ତି;ମହାପୁରୁଷ ବା ରାଜା ଆଦିଙ୍କ ଚରିତ ଓ ବଂଶାନୁଚରିତ ଆଦି ଯେଉଁ କାବ୍ୟରେ ବର୍ଣ୍ଣିତ ହୋଇଥାଏ ।

ମହାକାଶ—ପୁଂ. ବି. ମହାଶୂନ୍ୟ, ଅନନ୍ତ ଆକାଶ, ପର୍ବତଭେଦ, (ବି°) ମହାଦୀପ୍ତିଯୁକ୍ତ ।

ମହାକାଶ୍ୟପ—ପୁଂ. ବି. ଗୌତମବୁଦ୍ଧଙ୍କ ଶିଷ୍ୟଭେଦ ।

ମହାକାଷ୍ଠପର୍ବତ—ପୁଂ. ବି. ଗନ୍ଧମାର୍ଦନର ଅନ୍ତର୍ଗତ ପର୍ବତଭେଦ ।

ମହାକୁ(ଖୁ)ଡ଼—ତ୍ରି. ବି. (ଫ-ମହାକୁଳ) ଗଉଡ଼, ଗୋପାଳ,ଗଉଡ଼ଙ୍କର ବଂଶୋପାଧିବିଶେଷ, ଗାଈମାନଙ୍କର ସଂଖ୍ୟାବିଶେଷ ।

ମହାକୁଣ୍ଡ—ପୁଂ.ବି. ଶିବାନୁଚରଭେଦ ।

ମହାକୁମାର—ପୁଂ. ବି. ଯୁବରାଜ, ଯୁବରାଜ, ରାଜାର ଜ୍ୟେଷ୍ଠପୁତ୍ର ।

ମହାକୁମୁଦା—ସ୍ତ୍ରୀ. ବି. କାଶ୍ମରୀ, ଗମ୍ଭାରୀ ।

ମହାକୁମ୍ଭୀ—ସ୍ତ୍ରୀ. ବି. କଟଫଳ ।

ମହାକୁଳ—ବି°. (ବି.ସଂ) ଉତ୍ତମ କୁଳଜାତ, କୁଳୀନ, (ସ୍ତ୍ରୀ) ମହାକୁଳା, (ବି-କ.ଧା) ପ୍ରସିଦ୍ଧବଂଶ, ଉଚ୍ଚକୁଳ ।

ମହାକୁଳୀନ—ବି°.ମହାକୁଳ ଦେଖ,(ସ୍ତ୍ରୀ) ମହାକୁଳୀନା ।

ମହାକୁଷ୍ଠ – ବି.(କ.ଧା)ବୃହତ୍ କୁଷ୍ଠରୋଗ, ଗଳିତକୁଷ୍ଠ ।

ମହାକୂପ—ବି. ବୃହତ୍କୂପ ।

ମହାକୃଚ୍ଛ୍ର—ବି. କୃଚ୍ଛ୍ରାତିକୃଚ୍ଛ୍ର, ବିଷ୍ଣୁ ।

ମହାକୃଷ୍ଣ—ପୁଂ. ବି. ଦର୍ବୀକର ସର୍ପବିଶେଷ, ମୂଷିକବିଶେଷ ।

ମହାକୃଷ୍ଣା—ବି. କୃଷ୍ଣାପରାଜିତା ।

ମହାକେତୁ—ବି°. (ବି.ସଂ) ଦୀର୍ଘପତାକାଯୁକ୍ତ, (ବି) ଶିବ ।

ମହାକେଶ—ବି°. (ବି.ସଂ) ସୁବୃହତ୍ କେଶଶାଳୀ, (ବି) ଶିବ ।

ମହାକୋଶ—ବି°. ସୁବୃହତ୍ କୋଶଯୁକ୍ତ, (ବି) ଶିବ ।

ମହାକୋଶଫଳା—ସ୍ତ୍ରୀ. ବି. ଦେବଦାଲି ଲତା, ମହାକାଳ ।

ମହାକୋଶାତକୀ—ବି. ତରଡ଼ା ।

ମହାକ୍ରତୁ—ପୁଂ. ବି. (କ.ଧା) ରାଜସୂୟ ଅଶ୍ୱମେଧାଦି ମହାଯଜ୍ଞ ।

ମହାକ୍ରମ—ପୁଂ. ବି. ବିଷ୍ଣୁଙ୍କ ନାମାନ୍ତର ।

ମହାକ୍ରୋଧ—ବି. (କ.ଧା) ଭୟଙ୍କର ରାଗ, (ବି.ସଂ) ଶିବ,(ସ୍ତ୍ରୀ ମହାକ୍ରୋଧା ।

ମହାକ୍ରୋଧୀ—ପୁଂ. ବି°. (ମହାକ୍ରୋଧ+ଇନ୍) ଅତ୍ୟନ୍ତ କ୍ରୋଧପ୍ରକୃତିକ, ଅତିକ୍ରୋଧନ ।

ମହାକ୍ଲୀତକ—କ୍ଲୀ. ବି. ଶାଳପର୍ଣ୍ଣୀ ।

ମହାକ୍ଲୀତକା—ସ୍ତ୍ରୀ. ବି. ଶାଳପର୍ଣ୍ଣୀ ।

ମହାକ୍ଷ—ପୁଂ. ବି. (ବି.ସଂ) ଶିବ,ବିଷ୍ଣୁ ।

ମହାକ୍ଷତି—ତ୍ରି. ବି ଓ ବି°. ମହାକ୍ଷତିସ୍ଥ ଦେଖ ।

ମହାକ୍ଷହିମ୍ବୁ—ଗ୍ରା. ପୁ. ବଂ. ପ୍ରବଳପରାକ୍ରମୀ, (ଗ୍ରା.ବ)ମହାଯୋଦ୍ଧା,ମହାବଳୀ, ମହାପୁରୁଷ। [ ବିଶେଷ।

ମହାକ୍ଷାର—ପୁଂ. ବ. ତେଜସ୍କର କ୍ଷାର-

ମହାକ୍ଷୀର—ପୁଂ. ବ. (ବ.ଗ୍ରା) ଇକ୍ଷୁବୃକ୍ଷ, ଆଖୁ।

ମହାକ୍ଷପଣକ—ପୁଂ. ବ. କାଶ୍ମୀରବାସୀ ଜଣେ ପଣ୍ଡିତ।

ମହାକ୍ଷେତ୍ର—ବ. କାଳିକା ପୁରାଣ ବର୍ଣ୍ଣିତ ତୀର୍ଥବିଶେଷ।

ମହାଖର୍ବ—ପୁଂ. ବ. ସଂଖ୍ୟା ବିଶେଷ, (ଶହେ ଖର୍ବରେ ଏକ ମହାଖର୍ବ ହୁଏ)

ମହାଖଳା—ଗ୍ରା. ବଂ. ସୁବିସ୍ତୃତ, ମହତ୍, ବୃହତ୍, (ବ) ସୁବିସ୍ତୃତ ସ୍ଥାନ।

ମହାଖାତ—ତ୍ରି. ବଂ. ବିସ୍ତୃତ ଖାତଯୁକ୍ତ, (ବ) ସୁପ୍ରାଚୀନ ଖାନାଦି।

ମହାଖୁସି—ଗ୍ରା.ବ. ମହା ଆନନ୍ଦ,(ଗ୍ରା.ବଂ) ଅତି ଆନନ୍ଦିତ।

ମହାଖ୍ୟାତ—ତ୍ରି.ବଂ. ଖ୍ୟାତ.ସୁପ୍ରସିଦ୍ଧ।

ମହାଗ—ତ୍ରି.ବଂ.(ବ.ଗ୍ରା) ଉନ୍ନତ,ବର୍ଦ୍ଧନଶୀଳ।

ମହାଗଙ୍ଗା—ସ୍ତ୍ରୀ. ବ. ନଦୀଭେଦ।

ମହାଗଜ—ପୁଂ. ବ. ଦିଗ୍‌ଗଜ, ପୃଥିବୀର ଆଶ୍ରୟଭୂତ ହସ୍ତୀଭେଦ।

ମହାଗଣ—ପୁଂ. ବ. ଲୋକସଙ୍ଘ, ମହାସମୁଦ୍ର, ଅତିଅପୁଞ୍ଜ, ଭିଡ଼।

ମହାଗଣପତି—ପୁଂ. ବ. ଗଣେଶଙ୍କର ନାମାନ୍ତର. ଶିବାନୁଚର।

ମହାଗଣେଶ—ପୁଂ. ବ. ଗଣେଶଙ୍କର ନାମାନ୍ତର, ଗଣନାୟକ।

ମହାଗତ—ବ. ଉତ୍କୃଷ୍ଟପଥ,ମହାପଥ।

ମହାଗଦ—ପୁଂ. ବ. ( କ.ଧା ) ଜ୍ୱର. ମହାରୋଗ. ବାତବ୍ୟାଧି, ପ୍ରମେହ,କୁଷ୍ଠ, ଅର୍ଶ, ଭଗନ୍ଦର, ଅଶ୍ମରୀ, ମୂଢ଼ଗର୍ଭ, ଓ ଉଦରୀ ଏହି ଆଠଗୋଟି ରୋଗ, ଔଷଧବିଶେଷ।

ମହାଗନ୍ଧ(ମହାଗନ୍ଧ)—ପୁଂ. ବ. ବୃକ୍ଷଭେଦ, ଗୁଳମୁଗୁର ଗଛ।

ମହାଗନ୍ଧ—ବଂ.(ବ.ଗ୍ରା) ଖୁବ୍ ସୁଗନ୍ଧଯୁକ୍ତ, (ବ)ଜଳବେତସ,ଚନ୍ଦନ, କୁଟଜବୃକ୍ଷ।

ମହାଗନ୍ଧା—ସ୍ତ୍ରୀ.ବ. ନାଗବଳା,କୋଳକା ପୃଷ୍ଠ, କଅ, ଗୃମୁଣ୍ଡା,(ବଂ) ମହାଗନ୍ଧତ ସ୍ତ୍ରୀଲିଙ୍ଗ।

ମହାଗର୍ତ୍ତି—ପୁଂ. ବ. (ବ.ଗ୍ରା) ବିଷ୍ଣୁ।

ମହାଗର୍ଭ—ପୁଂ. ବ. (ବ.ଗ୍ରା)ବିଷ୍ଣୁ,ଶିବ, ମହୋଦର, ଦାନବଭେଦ।

ମହାଗଳ—ତ୍ରି. ବଂ. ( ମହତ୍+ଗଳା ) ବ.ଗ୍ରା; ଯାହାର ଗଳା ଅତ୍ୟନ୍ତ ଲମ୍ବ. ଦୀର୍ଘଗ୍ରୀବ।

ମହାଗବ—ପୁଂ. ବ. ( ମହତ୍+ଗୋ ) ଗବୟ,ଗବୟ,ଗୋ ସଦୃଶ ବନ୍ୟଜନ୍ତୁ

ମହାଗିରି—ପୁଂ. ବ. (କ.ଧା) କୁବେରଙ୍କ ଅପୁତ୍ର ମଧ୍ୟରୁ ଏକ, ବୃହତ୍ ପର୍ବତ. ଦାନବବିଶେଷ।

ମହାଗୀତ—ବ. ଶିବ।

ମହାଗୁଣ—ବ. (କ.ଧା) ଶ୍ରେଷ୍ଠ ଗୁଣ, ଉତ୍ତମଗୁଣ ବିଶେଷ. ଆଗୃର୍ଯ୍ୟ ଭେଦ।

ମହାଗୁବ—ବ. କଫଜ କୃମି ବିଶେଷ।

ମହାଗୁରୁ—ବ. (କ.ଧା)ଶ୍ରେଷ୍ଠ ଗୁରୁଜନ, (ପୁରୁଷର ମହାଗୁରୁ—ପିତା, ମାତା, ଓ ଆଗୃର୍ଯ୍ୟ;ଅବିବାହିତା କନ୍ୟାର ମହାଗୁରୁ ପିତା ଓ ମାତା,ବିବାହିତା କନ୍ୟାର ମହାଗୁରୁ କେବଳ ସ୍ୱାମୀ)।

ମହାଗୁଲ୍ମା—ସ୍ତ୍ରୀ.ବ.(ବ.ଗ୍ରା)ସୋମବଲ୍ଲୀ।

ମହାଗୁହା—ସ୍ତ୍ରୀ.ବ.(ବ.ଗ୍ରା) ପୃଶ୍ନିପର୍ଣ୍ଣୀ।

ମହାଗୃଷ୍ଟି—ସ୍ତ୍ରୀ. ବ. ଉଚ୍ଚ କକୁଦଯୁକ୍ତ ଗାଭୀ, ବଡ଼ କୂଳଥିବା ଗାଈ।

ମହାଗୋଧୂମ—ପୁଂ. ବ.ବୃହତ୍ ଗୋଧୂମ, ବଡ଼ ଗହମ।

ମହାଗୋପା—ସ୍ତ୍ରୀ. ବ. ଅନନ୍ତ ମୂଳ।

ମହାଗୌରୀ—ସ୍ତ୍ରୀ.ବ.ନଦୀବିଶେଷ, ଦୁର୍ଗା

ମହାଗ୍ରନ୍ଥ—ବ.ଶ୍ରେଷ୍ଠ ଗ୍ରନ୍ଥ, ମହାଭାରତାଦି ସୁବୃହତ୍ ଓ ପବିତ୍ର ପୁସ୍ତକ, ଋକ୍‌ବେଦ

ମହାଗ୍ରନ୍ଥିକ—ବ.ଯେଉଁ ଔଷଧ ସେବନରେ ରୋଗ ନିଶ୍ଚିତ ରୂପେ ଉପଶାନ୍ତ ହୁଏ ଓ ବଢ଼େ ନାହିଁ।

ମହାଗ୍ରହ—ପୁଂ. ବ. (କ.ଧା)ରାହୁ ଗ୍ରହ, ପ୍ରଧାନ ଗ୍ରହ।

ମହାଗ୍ରୀବ—ପୁଂ.ବ. (ବ.ଗ୍ରା) ଓଟ,ଉଷ୍ଟ୍ର, ଶିବ, ମହାଦେବ, (ବଂ) ବୃହତ୍ ଗ୍ରୀବାବିଶିଷ୍ଟ, (ସ୍ତ୍ରୀ) ମହାଗ୍ରୀବା। [ ଦେଖ।

ମହାଗ୍ରୀବକ—ପୁଂ.ବ ଓ ବଂ. ମହାଗ୍ରୀବ

ମହାଗ୍ରୀବୀ—ପୁଂ.ବ. (ମହାଗ୍ରୀବା+ଇନ୍) ଓଟ, ଉଷ୍ଟ୍ର।

ମହାଘଟ—ପୁଂ.ବ. ଜଳପାତ୍ରବିଶେଷ।

ମହାଘସ—ପୁଂ.ବ. ଭୋଜନପଟୁ ଶିବାନୁଚରବିଶେଷ।

ମହାଘୂର୍ଣ୍ଣା—ସ୍ତ୍ରୀ.ବ. (ମହତ୍+ଘୂର୍ଣ୍ଣ+ଅ+ଆ) ସୁରା,ମଦିରା, ଅତିଶୟ ଭ୍ରମି।

ମହାଘୃତ—କ୍ଲୀ.ବ. ୧୧୧ ବର୍ଷ ରକ୍ଷିତ ପୁରାତନ ଘିଅ।

ମହାଘୋର—ତ୍ରି.ବଂ.ଅତିଶୟ ଭୟାନକ।

ମହାଘୋଷ—ବ. (ବ.ଗ୍ରା)ବଜାର,ହାଟ, (କ.ଧା) ଉଚ୍ଚଶବ୍ଦ, (ବଂ-ବ.ଗ୍ରା) ଉଚ୍ଚ ଦୋଯୁକ୍ତ। [ ଶୃଙ୍ଗୀ।

ମହାଘୋଷା--ସ୍ତ୍ରୀ.ବ.କର୍କଟଶୃଙ୍ଗୀ,କାକଡ଼ା-

ମହାଙ୍ଗ—ପୁଂ.ବ. (ବ.ଗ୍ରା) ଓଟ, ଉଷ୍ଟ୍ର, ଗୋକ୍ଷୁରକ, ଇନ୍ଦ୍ରଚନ୍ଦକ, (ବଂ)ବିପୁଳାବୟବବିଶିଷ୍ଟ।

ମହାଚନ୍ଦ୍ର—କ୍ଲୀ.ବ. ବୃହତ୍‌ଚକ୍ର,ଭବଚକ୍ର, (ପୁଂ.ବ)ଦାନବବିଶେଷ।

ମହାଚକ୍ରବର୍ତ୍ତିତା--ସସାଗରା ଧରାର ଅଧୀଶ୍ୱରତ୍ୱ, ରାଜଚକ୍ରବର୍ତ୍ତୀର କାର୍ଯ୍ୟ।

ମହାଚକ୍ରବର୍ତ୍ତୀ—ପୁଂ.ବ.ସମ୍ରାଟ୍, ରାଜାଧିରାଜ।

ମହାଚକ୍ରୀ—ପୁଂ.ବଂ. କୁଚକ୍ରୀ, ଅପରଦଭିପ୍ରାୟରେ ମନ୍ତ୍ରଣାକାରୀ, (ପୁଂ.ବ.)ବିଷ୍ଣୁ।

ମହାଚଞ୍ଚୁ—ସ୍ତ୍ରୀ.ବ. ଏକପ୍ରକାର ବନ୍ୟଶାକ।

ମହାଚଣ୍ଡ—ପୁଂ.ବ.(ମହତ୍+ଚଣ୍ଡ)ଯମଦୂତ,ଶିବାନୁଚରବିଶେଷ,(ବଂ)ପ୍ରଚଣ୍ଡ, ଭୟାନକ, (ସ୍ତ୍ରୀ) ମହାଚଣ୍ଡା।

ମହାଚପଳା—ସ୍ତ୍ରୀ.ବ. ଆର୍ଯ୍ୟାଛନ୍ଦୋଭେଦ

ମହାଚମୂ—ସ୍ତ୍ରୀ.ବ.ସେନାଦଳ, ବାହିନୀ।

ମହାଚର୍ଯ୍ୟା—ସ୍ତ୍ରୀ.ବ. ବୋଧିସତ୍ତ୍ୱର ଅବଲମ୍ବନୀୟ ଜୀବନପଥ। [ ପର୍ବତ।

ମହାଚଳ—ପୁଂ.ବ. ମହାପର୍ବତ, ବୃହତ୍

ମହାଗୃଯ୍ୟ—ପୁଂ. ବି. ଆଗ୍ରର୍ଯ୍ୟୋତ୍ତମ, ଶିବ, ଚଣ୍ଡମାରୁତ ପ୍ରଣେତା ।
ମହାଚଣ୍ଡୀ—ସ୍ତ୍ରୀ. ବି. ଅପ୍ସରାବିଶେଷ ।
ମହାଚଣ୍ଡପାଟଳ—କ୍ଲୀ.ବି. ଗୁଳ୍ମଭେଦ ।
ମହାଚୀନ—ଚୀନ ସାମ୍ରାଜ୍ୟର ଅଂଶବିଶେଷ, ସେ ଦେଶର ଅଧିବାସୀ ।
ମହାଚୁଞ୍ଚୁ—ପୁଂ. ବି. ବୃହତ୍ ଚୁଞ୍ଚୁ କ୍ଷୁପ ।
ମହାଚୂଡ଼ା—ସ୍ତ୍ରୀ. ବି. ସ୍କନ୍ଦାନୁଚର ମାତୃଭେଦ ।
ମହାଚୂତ—ପୁଂ. ବି. ମହାରାଜାମ୍ରବୃକ୍ଷ ।
ମହାଚ୍ଛଦା—ପୁଂ ବି.(ବି.ଗ୍ରା) ଦେବତାଡ଼ବୃକ୍ଷ, (କ.ଧା) ବୃହତ୍ପତ୍ର ।
ମହାଚ୍ଛାୟ—ପୁଂ. ବି. (ମହତ୍+ଛାୟା) ବଟବୃକ୍ଷ, (ବିଂ.ବି.ଗ୍ରା)ବୃହଚ୍ଛାୟାଯୁକ୍ତ ।
ମହାଚ୍ଛିଦ୍ର—ବି. ଶରୀରର ପ୍ରତ୍ୟଙ୍ଗ ରୂପ ନବଦ୍ୱାର, ଶରୀରର ନବଦ୍ୱାର ।
ମହାଜ—ପୁଂ.ବି.(ମହାନ୍+ଅଜ)କ.ଧା; ବୃହଚ୍ଛାଗ, ବିଂ (ମହତ୍+ଜନ୍+ଅ) ମହାକୁଳୋଦ୍ଭବ ।
ମହାଜଟା—ସ୍ତ୍ରୀ.ବି. (ବି.ଗ୍ରା) ରୁଦ୍ରଜଟା, (କ.ଧା) ବୃହତ୍ଜଟା, ମହତୀଜଟା ।
ମହାଜତ୍ରୁ—ପୁଂ. ବି. ଶିବ ।
ମହାଜନ—ବିଂ(ମହାନ୍+ଜନ୍)+କ.ଧା, ଧାର୍ମିକ, ବେଦରେ ଶ୍ରଦ୍ଧାବାନ୍, ଯଶସ୍ୱୀ, ଭକ୍ତିମାନ୍, ସାଧୁ,(ବି)ମହାପୁରୁଷ, ସାଧୁପୁରୁଷ, ଶ୍ରେଷ୍ଠବ୍ୟକ୍ତି, ଋଷି, ମୁନି, ବହୁବ୍ୟକ୍ତି, ଉତ୍ତମର୍ଣ୍ଣ, ବଣିକ, ସାଧବ, ସାହୁକାର, ଧର୍ମବ୍ୟକ୍ତି, (ସ୍ତ୍ରୀ) ମହାଜନୀ, (ଗ୍ରା.ବି) ବ୍ରାହ୍ମଣ ଶାସନବାସୀ ବ୍ରାହ୍ମଣ ପରିବାରଙ୍କ କର୍ତ୍ତା ।
ମହାଜନ(ନୀ)—ଗ୍ରା. ବି. କାରବାର, ବେପାର, ବାଣିଜ୍ୟ,ଋଣଦେବା ବ୍ୟବସାୟ, (ବିଂ) ମହାଜନସମ୍ବନ୍ଧୀୟ, (ଗ୍ରା. ବି) ବ୍ରାହ୍ମଣ ଶାସନର ମହାଜନ ରୂପ ସ୍ୱତ୍ୱ ଓ ଅଧିକାର ।
ମହାଜନୀୟ—ହି. ବିଂ. ବାଣିଜ୍ୟୋପଯୋଗୀ,ମହାଜନସମ୍ପର୍କୀୟ । [ଲେମ୍ବୁ ।
ମହାଜମ୍ବୀର—ପୁଂ.ବି.ବଡ଼ ଜମ୍ବୀର,ଟଭା-
ମହାଜମ୍ବୁ—ସ୍ତ୍ରୀ.ବି. ବଡ଼ ଜାମୁକୋଳି ଓ ଗଛ, ଗୋଲାପଜାମୁ ।
ମହାଜମ୍ଭ—ପୁଂ. ବି. ଶିବାନୁଚରବିଶେଷ
ମହାଜୟ—ପୁଂ. ବି. ନାଗଭେଦ, (ବିଂ) ଜୟଶୀଳ । [ଦୁର୍ଗା ।
ମହାଜୟା—ବି. ( ମହତ୍ + ଜୟ + ଆ )
ମହାଜର—ପ୍ରା (ଜୟପୁର)ବି.ଦରଖାସ୍ତ, ବହୁ ଲୋକଙ୍କ ସ୍ୱାକ୍ଷରିତ ଆବେଦନ ପତ୍ର
ମହାଜରି—ପ୍ରା. (ଜୟପୁର) ବି. ଗ୍ରାମର ପ୍ରତ୍ୟେକ ଲୋକଙ୍କ ଦ୍ୱାରା ସ୍ୱାକ୍ଷରିତ ଆବେଦନ ପତ୍ର ।
ମହାଜଳ—ବି. (ବି.ଗ୍ରା) ସମୁଦ୍ର ।
ମହାଜବ—ପୁଂ.ବି.ଗବୟ, ଶୀକାରୀ ମୃଗ, (ପୁଂ.ବିଂ) ଅତି ବେଗଯୁକ୍ତ, (ସ୍ତ୍ରୀ)ମହାଜବା ।
ମହାଜାତି—ସ୍ତ୍ରୀ. ବି. (କ.ଧା) ବାସନ୍ତୀ ପୁଷ୍ପଲତା,ଶ୍ରେଷ୍ଠବର୍ଣ୍ଣ,ପରାକ୍ରାନ୍ତ ଜାତି ।
ମହାଜାତୀୟ—ବିଂ.ମହତ୍, ମହତ୍ପ୍ରକାର
ମହାଜାନୁ—ବି.ମହାଭାରତୋକ୍ତ ବ୍ରାହ୍ମଣଭେଦ, ଶିବାନୁଚରବିଶେଷ ।
ମହାଜାଲି—ଗ୍ରା.ବି. ମାଟି ଉପରେ ବହୁଆଡ଼କୁ ଚେରମାଡ଼ି ଉଠିଥିବା ଲତା ।
ମହାଜାଲୀ—ବି. କାଙ୍କଡ଼, କର୍କୋଟକୀ ।
ମହାଜିହ୍ୱ—ପୁଂ.ବି.ମହାଦେବ, ଦୈତ୍ୟଭେଦ । [ଜ୍ଞାନ ।
ମହାଜ୍ଞାନ—କ୍ଲୀ.ବି.ପରମଜ୍ଞାନ, ବିଶେଷ-
ମହାଜ୍ଞାନସୂତା—ସ୍ତ୍ରୀ. ବି. ମନସାଦେବୀଙ୍କ ନାମାନ୍ତର ।
ମହାଜ୍ଞାନୀ—ପୁଂ. ବିଂ. (କ.ଧା) ମହତ୍ଜ୍ଞାନବିଶିଷ୍ଟ, ତତ୍ତ୍ୱଜ୍ଞାନୀ,ସାଧୁ, (ବି) ଶିବ ।
ମହାଜ୍ୟେଷ୍ଠୀ—ବି. ରବିବାରେ ପ୍ରାପ୍ତ ଜ୍ୟେଷ୍ଠପୂର୍ଣ୍ଣିମା, ବୃହସ୍ପତି ଓ ସୋମବାରରେ ଜ୍ୟେଷ୍ଠା ନକ୍ଷତ୍ରର ବା ରବିବାରରେ ରୋହିଣୀ ନକ୍ଷତ୍ରର ସଂଯୋଗେ ଜାତ ଶୁଭଯୋଗ ବିଶେଷ ।
ମହାଜ୍ୟୋତିଷିକ—ବି. ଅଙ୍କ ଜ୍ୟୋତିଷବିଦ୍ୟା ବ୍ୟବସାୟୀ,ଜ୍ୟୋତିଷ ବିଦ୍ୟାରେ ମୂର୍ଖ ।
ମହାଜ୍ୟୋତିଷ୍ମତୀ—ବି.ଫଟଫଟକା ଦେଖ, ଲତାଫଟକୀ ।
ମହାଜ୍ୟୋତିଃ—ପୁଂ. ବି. ଶିବ (ବିଂ) ଜ୍ୟୋତିର୍ବିଶିଷ୍ଟ ।
ମହାଜ୍ୱାଲ—ପୁଂ. ବି. (ମହତ୍+ଜ୍ୱାଳା) ବି.ଗ୍ରା; ଯଜ୍ଞାଗ୍ନି,ହୋମାଗ୍ନି, ଏକ ନରକର ନାମ, ଶିବ ।
ମହାଜ୍ୱାଲା—ସ୍ତ୍ରୀ. ବି. (ବି.ଗ୍ରା) ଜୈନଦେବୀବିଶେଷ, ବୃହଦଗ୍ନି ଶିଖା ।
ମହାଟବି—ବି. ଦେଶବିଶେଷ, ତଦ୍ଦେଶବାସୀ ବ୍ୟକ୍ତି ।
ମହାଢ୍ୟ—ପୁଂ. ବି. (ମହାନ୍+ଆଢ୍ୟ) କଦମ୍ବ, (ବିଂ.କ.ଧା) ଅତିଶୟ ଧନଯୁକ୍ତ, ଧନୀ, (ସ୍ତ୍ରୀ) ମହାଢ୍ୟା ।
ମହାତନ୍ତ୍ର—କ୍ଲୀ.ବି.ଜ୍ଞାନତନ୍ତ୍ର, ସାଂଖ୍ୟୋକ୍ତ ଦ୍ୱିତୀୟ ତନ୍ତ୍ର । [ବିଶେଷ ।
ମହାତନ୍ତ୍ରା—ସ୍ତ୍ରୀ.ବି.ଦୁର୍ଗାଙ୍କର ଅନୁଚରୀ-
ମହାତପଃସପ୍ତମୀ—ବି. କଷ୍ଟସାଧ୍ୟ ସପ୍ତମୀ ଯାଗବିଶେଷ, ଉତ୍ସବବିଶେଷ ।
ମହାତପନ—ବି. ନରକବିଶେଷ ।
ମହାତପାଃ—ବିଂ. ( ମହତ୍ + ତପସ୍ ) ଘୋର ତପସ୍ୟାକାରୀ, (ବି) ବିଷ୍ଣୁ, ମୁନିବିଶେଷ ।
ମହାତପ୍ତକୃଚ୍ଛ୍ର—ବି.ଗୃଶଦିନବ୍ୟାପୀ ବ୍ରତ, ପ୍ରାୟଶ୍ଚିତ୍ତବିଶେଷ ।
ମହାତମଃ—କ୍ଲୀ. ବି. ଅବିଦ୍ୟା ।
ମହାତରୁ—ବି. ସ୍ନୁହୀବୃକ୍ଷ, ସିଜୁଗଛ, ବୃହତ୍ବୃକ୍ଷ ।
ମହାତରେ—ଗ୍ରା. କ୍ରି.ବିଂ.(ସଂ-ମହତ୍ତର) ଅପେକ୍ଷାକୃତ ଅଧିକ ।
ମହାତଳ—କ୍ଲୀ. ବି. ପାତାଳବିଶେଷ, ସପ୍ତପାତାଳ ମଧ୍ୟରେ ପଞ୍ଚମ ପାତାଳ ।
ମହାତାପ—ବି. (କ.ଧା)ଅତିଶୟ ତାପ, ତୀବ୍ର ଅନୁତାପ, ଅତ୍ୟନ୍ତ ଜ୍ୱାଳା ।
ମହାତାରା—ସ୍ତ୍ରୀ. ବି. (ମହା + ତୃ + ଣିଚ୍ +ଅ + ଆ)କ.ଧା; ତନ୍ତ୍ରୋକ୍ତ ତାରିଣୀଦେବୀ, ଜୈନ୍ୟଦେବୀବିଶେଷ ।
ମହାତାଳା—ସ୍ତ୍ରୀ. ବି. (ମହାତାଳ+ଆ) ଆବର୍ତ୍ତକୀଲତା ।
ମହାଢକ—ଗ୍ରା. ବିଂ. ମହାଆତତାୟୀ, ପରର ଅତି ଅନିଷ୍ଟକାରୀ ।

ମହାତକ୍ର—ପୁଂ. ବ. ମହାନମ୍ବ, ଚିରେଇତା, ମାହାଲଗଛ, ଯବତକ୍ରା, (ବିଂ) ଅତ୍ୟନ୍ତ ପିତା ।

ମହାତକ୍ରା—ସ୍ତ୍ରୀ.ବ.ଯବତକ୍ରା, ଅକାନବନ୍ଧ

ମହାତୀକ୍ଷ୍ଣ—ବିଂ. (କ.ଧା)ଅତିଶୟତୀକ୍ଷ୍ଣ, ଅତିଧାରୁଆ, (ସ୍ତ୍ରୀ) ମହାତୀକ୍ଷ୍ଣା, ଭଲିଆ ।

ମହାତୁମ୍ବୀ—ବ. ମହାଲାଉ, ବଡ଼ଲାଉ, ତିକ୍ତିଆଲାଉ ।

ମହାତେଜଃ—କ୍ଲୀ. ବ. (ବ.ବ୍ରୀ) ପାରଦ, (କ.ଧା) ଅତିଶୟ ତେଜ ।

ମହାତେଜସ୍ୱୀ—ପୁଂ.ବିଂ.(ମହାତେଜସ୍ + ବିନ୍)ଅତିବ ତେଜସ୍ୱୀ, ଅତ୍ୟନ୍ତପ୍ରଭାବଶୀଳ, (ସ୍ତ୍ରୀ) ତେଜସ୍ୱିନୀ ।

ମହାତେଜାଃ—ପୁଂ. ବିଂ. ( ମହତ୍ + ତେଜସ୍)ଅତିତେଜସ୍ୱୀ,ମହାବୀର୍ଯ୍ୟଶାଳୀ, ଅତ୍ୟନ୍ତ ପ୍ରଭାବଶାଳୀ, ( ବ ) ପାରଦ, ଅଗ୍ନି, ଶିବ, କାର୍ତ୍ତିକେୟ ।

ମହାତେଜୋଗର୍ଭ—ପୁଂ. ବ. ତପସ୍ୟାର ପ୍ରକାର ବିଶେଷ ।

ମହାତୈଳ—କ୍ଲୀ. ବ. ତୈଳ ବିଶେଷ, ମନୁଷ୍ୟ ଦେହରୁ ନିର୍ଗତ ଚର୍ବି ।

ମହାତୋଦ୍ୟ—କ୍ଲୀ.ବ. ଗମ୍ଭୀର ନିନାଦକାରୀ, ବୃହତ୍ ଆନାହ ଯନ୍ତ୍ର ।

ମହାତ୍ମା—ପୁଂ. ବିଂ. (ମହତ୍ + ଆତ୍ମନ୍) ବ.ବ୍ରୀ, ଉତ୍ତମ ସ୍ୱଭାବଯୁକ୍ତ, ମହୋନ୍ନତ, ମହାନୁଭବ, ବଦାନ୍ୟ, ମନସ୍ୱୀ, ଉଦାର,ମହାମନାଃ,(ପୁଂ.ବ) ପରମାତ୍ମା, ମହତ୍ତତ୍ତ୍ୱ, ମହାପୁରୁଷ, ମହାଦେବ, ପିତୃଗଣ ବିଶେଷ, ମହର୍ଷି ।

ମହାତ୍ମାଗାନ୍ଧୀ—ଗ୍ରା. ବ. ଭାରତର ଆଧୁନିକ ଜଗତ୍ପରିଚିତ ମହାପୁରୁଷ, ମୋହନଦାସ କରମ୍ଚାନ୍ଦ ଗାନ୍ଧୀ ।

ମହାତ୍ମାଣୀ—ଗ୍ରା.ସ୍ତ୍ରୀ.ବ. ଉଦାରସ୍ୱଭାବା ସ୍ତ୍ରୀ ।

ମହାତ୍ରିଫଳା—ସ୍ତ୍ରୀ. ବ. ପଥ୍ୟା, ବାହାଡ଼ା ଓ ଅଁଳା ।

ମହାତ୍ୟୟ—ପୁଂ. ବ. ଘୋର ବିବାଦ, ମହାନାଶ ବା ଧ୍ୱଂସ, ସର୍ବନାଶ ।

ମହାତ୍ୟାଗ—ବ. ବଦାନ୍ୟତା, ଦାନ, ସଂସାରେ ନିସ୍ପୃହତା ।

ମହାତ୍ୟାଗମୟ—ବିଂ. ବୈରାଗ୍ୟଯୁକ୍ତ, ସର୍ବତ୍ୟାଗୀ ।

ମହାତ୍ୟାଗୀ—ପୁଂ. ବିଂ.ତ୍ୟାଗଶୀଳ,ଯେ ସଂସାରର ସମସ୍ତ ମାୟାମମତା ତ୍ୟାଗ କରିଅଛି, (ପୁଂ.ବ) ଶିବ ।

ମହାଦଂଷ୍ଟ୍ରା—ବିଂ.(ବ.ବ୍ରୀ) ବୃହଦ୍ଦନ୍ତଯୁକ୍ତ, (ପୁଂ.ବ) ରାକ୍ଷସବିଶେଷ ।

ମହାଦଣ୍ଡ—ପୁଂ. ବ. (ବ.ବ୍ରୀ) ଯମଦୂତ ବିଶେଷ, ବୃହତ୍ଦଣ୍ଡ ।

ମହାଦନ୍ତ—ପୁଂ. ବ. (କ.ଧା) ଗଜଦନ୍ତ, (ବ ବ୍ରୀ) ମହାଦେବ ।

ମହାଦନ୍ତା—ସ୍ତ୍ରୀ. ବ. ନାଗବଳା ।

ମହାଦଶା—ବ. ମହାବିପଦ୍,(ଜ୍ୟୋତିଷ) ମନୁଷ୍ୟର ଜୀବନରେ ଭୋଗହେଉଥିବା ଗ୍ରହର ସଞ୍ଚାରଜନିତ ଅବସ୍ଥା ।

ମହାଦାନ—କ୍ଲୀ. ବ. (ମହତ୍ + ଦାନ) ତୁଳାପୁରୁଷାଦି ଷୋଡ଼ଶ ଦାନ, ସତ୍ର, ଗ୍ରହଣ ଉପରାଗ ସମୟରେ ଡ଼ମ, ହାଡ଼ି ଆଦି ନିମ୍ନଶ୍ରେଣୀସ୍ଥ ବ୍ୟକ୍ତିଙ୍କୁ ଦିଆଯିବା ଦାନ ।

ମହାଦାରୁ—କ୍ଲୀ. ବ. (ବ.ବ୍ରୀ) ଦେବଦାରୁ, ବୃହତ୍କାଷ୍ଠ ।

ମହାଦୀପ—ଗ୍ରା. ବ. ଶିବମନ୍ଦିର ଗନ୍ଧିରେ ମହାଦେବଙ୍କ ମନ୍ଦିରର ଚୂଡ଼ାପ୍ରଦେଶରେ ରଖାଯିବା ପ୍ରଦୀପ ।

ମହାଦୁନ୍ଦୁ—ପୁଂ.ବ. ରଣବାଦ୍ୟବିଶେଷ ।

ମହାଦୁର୍ଗ—କ୍ଲୀ. ବ. ମହାବିପଦ୍, ଯାହା ଅତି କଷ୍ଟରେ ଅତିକ୍ରମ କରଯାଏ ନାହିଁ ।

ମହାଦୁର୍ଗାଲୋକ-ବ.ଦେବଲୋକବିଶେଷ ।

ମହାଦୂତ—କ୍ଲୀ. ବ. ଯମଦୂତ ।

ମହାଦ୍ଭୁତ—ପୁଂ.ବ.ଚମତ୍କାର ଥଳି,ବ୍ୟାଗ୍

ମହାଦେଈ—ଗ୍ରା.ସ୍ତ୍ରୀ.ବ.(ସଂ-ମହାଦେବୀ) ରାଣୀ, ରାଜପତ୍ନୀ, ରାଣୀମାନଙ୍କ ନାମପରେ ଲେଖାଯିବା ଉପାଧି ।

ମହାଦେବ—ପୁଂ. ବ. ( କ.ଧା ) ଶିବ, ଏହା ଅଷ୍ଟମୂର୍ତ୍ତିର ଅନ୍ତର୍ଗତ ସୋମମୂର୍ତ୍ତି ।

ମହାଦେବଦାସ—ଗ୍ରା. ପୁଂ. ବ. ଜଣେ ଓଡ଼ିଆ ପୁରାଣ ଲେଖକ, ( କାର୍ତ୍ତିକ ମାହାତ୍ମ୍ୟ, ପଦ୍ମପୁରାଣ, ମାର୍କଣ୍ଡେୟ ପୁରାଣଆଦି ସାତଖଣ୍ଡି ଏହାଙ୍କ ରଚିତ)

ମହାଦେବଦୈବଜ୍ଞ—ବ. ଗୋଚରନିର୍ଣ୍ଣୟ ଗ୍ରନ୍ଥର ରଚୟିତା ।

ମହାଦେବମଣି—ପୁଂ. ବ. ମହାମେଧା ।

ମହାଦେବୀ—ସ୍ତ୍ରୀ. ବ. (ମହାଦେବ + ଈ) ଦୁର୍ଗା, ପାର୍ବତୀ, ରାଜାଙ୍କ ପ୍ରଧାନପତ୍ନୀଙ୍କ ଉପାଧି ।

ମହାଦେଶ—ବ. ବହୁଦେଶର ସମଷ୍ଟି, ଯେଉଁ ବିସ୍ତୀର୍ଣ୍ଣ ଭୂଖଣ୍ଡରେ ଅନେକ ଦେଶ ଥାଏ ।

ମହାଦ୍ୱନ୍ଦ୍ୱ—କ୍ଲୀ.ବ. (କ.ଧା) ଘୋରତର ଯୁଦ୍ଧ, ଦାରୁଣ ବିବାଦ, ଅତି କଳହ, (ପୁଂ.ବ-ବ.ବ୍ରୀ) ରଣବାଦ୍ୟ ।

ମହାଦ୍ୱିଜ—ବ. ନିକୃଷ୍ଟ ବ୍ରାହ୍ମଣ, ମହାବ୍ରାହ୍ମଣ ଦେଖ ।

ମହାଦ୍ୱୀପ—ବ. ( କ.ଧା ) ମହାସାଗର ବେଷ୍ଟିତ ସୁବିସ୍ତୀର୍ଣ୍ଣ ଭୂଭାଗ, ଆଧୁନିକ ପାଶ୍ଚାତ୍ୟ ମତେ ସମଗ୍ର ପୃଥିବୀ ଦୁଇଟି ମହାଦ୍ୱୀପରେ ବିଭକ୍ତ. ପ୍ରାଚୀନ ମହାଦ୍ୱୀପ ଓ ନୂତନ ମହାଦ୍ୱୀପ, ତନ୍ମଧ୍ୟେ ଏଶିଆ, ଇଉରୋପ ଓ ଆଫ୍ରିକା ଏହି ତିନଗୋଟି ମହାଦେଶ ପ୍ରାଚୀନ ମହାଦ୍ୱୀପରେ ଏବଂ ଉତ୍ତର ଓ ଦକ୍ଷିଣ ଆମେରିକା ନୂତନ ମହାଦ୍ୱୀପରେ, ପରନ୍ତୁ ଆର୍ଯ୍ୟମତରେ ମହାଦ୍ୱୀପ ସାତଗୋଟି, (ଯଥା—ଜମ୍ବୁ, ପ୍ଳକ୍ଷ, ଶାଲ୍ମଳୀ, କୁଶ, କ୍ରୌଞ୍ଚ, ଶାକ ଏବଂ ପୁଷ୍କର) ।

ମହାଦ୍ୟୁତ—ବିଂ. ( ବ.ବ୍ରୀ ) ବିଶେଷ ତେଜୋମୟ, ( ବ-କ.ଧା ) ଉଜ୍ଜ୍ୱଳ ଆଲୋକ, ଚନ୍ଦ୍ରମଣ୍ଡଳପରି ଅତ୍ୟୁଜ୍ଜ୍ୱଳ ଜ୍ୟୋତିଃପ୍ରକାଶ ।

ମହାଦ୍ୟୋତ—ସ୍ତ୍ରୀ.ବ. ତନ୍ତ୍ରୋକ୍ତ ଦେବୀ- [ ବିଶେଷ ।

ମହାଦ୍ରାବକ—ପୁଂ. ବ. (ମହା + ଦ୍ରୁ + ଣିଚ୍ + ଅକ) ଔଷଧବିଶେଷ, ଗନ୍ଧଦ୍ରାବକ ।

ମହାଦ୍ରୁମ—ପୁଂ.ବ. (କ.ଧା) ଅଶ୍ୱତ୍ଥବୃକ୍ଷ, ବଡ଼ଗଛ, ତାଳଗଛ,ମହୁଆ ଗଛ,ବଟଗଛ, ଦେଶବିଶେଷ ।

ମହାଦ୍ରୋଣା—ସ୍ତ୍ରୀ.ବ. ଦ୍ରୋଣପୁଷ୍ପୀ, ଗଇଶ

ଗଛ, ଶିବ, ମେରୁ ପର୍ବତ ।
ମହାଧନ—ବି.(କ.ଧା) ସବୁଧନ ମଧ୍ୟରେ • ଶ୍ରେଷ୍ଠ. ଶ୍ରେଷ୍ଠଧନ, ସ୍ୱର୍ଣ୍ଣ, ( ବ.ଗ୍ରୀ ) କୃଷିକାର୍ଯ୍ୟ, ସୁଗନ୍ଧଧୂପ, ବହୁମୂଲ୍ୟବସ୍ତ୍ର, (ବି°-କ.ଧା) ଧନାଢ୍ୟ,ଧନୀ, ବହୁମୂଲ୍ୟ, (ସ୍ତ୍ରୀ) ଧନା
ମହାଧାତୁ—ବି. (କ.ଧା) ସ୍ୱର୍ଣ୍ଣ ।
ମହାଧୀ—ପୁଂ ବି°. ମହାଜ୍ଞାନୀ, ବିଶିଷ୍ଟ ବୁଦ୍ଧିସମ୍ପନ୍ନ ।
ମହାଧ୍ୱନ—ପୁଂ. ବି. ଦାନବବିଶେଷ, (କ୍ଲୀ.ବି) ଅଷ୍ଟୁଛନ୍ଦ ।
ମହାଧ୍ୱନିକ—ପୁଂ. ବି. (ମହତ୍+ଅଧ୍ୱନ୍ +ଇକ) ପୁଣ୍ୟାର୍ଥ ହିମାଳୟାଦିଧି ମହାପଥ ଗମନ ଦ୍ୱାରା ସମ୍ପାଦିତ ମୃତ୍ୟୁ ।
ମହାଧ୍ୱର—ପୁଂ. ବି. ଶ୍ରେଷ୍ଠଯଜ୍ଞ ।
ମହାନ୍—ପୁଂ,ବି°. ମହତ୍ ଶବ୍ଦର ପୁଂଲିଙ୍ଗ, ମହତ୍ ଦେଖ, (ସ୍ତ୍ରୀ) ମହତୀ ।
ମହାନକ—ପୁଂ.ବି.ଆନକ ଯନ୍ତ୍ରବିଶେଷ ।
ମହାନଖ—ବି°. ( କ.ଧା ) ଦୀର୍ଘନଖ (ବ.ଗ୍ରୀ) ଶିବ ।
ମହାନଗର—କ୍ଲୀ ବି. (କ.ଧା) ସାଧାରଣ ନଗର ଅପେକ୍ଷା ବୃହତ୍ ନଗର,ପ୍ରଧାନ ନଗର, ରାଜଧାନୀ ।
ମହାନଗ୍ନ-ପୁଂ.ବି°.ସର୍ବତୋଭାବେ ଉଲଙ୍ଗ, ଅନାଚ୍ଛାଦିତ, ତ୍ରଣୟୀ, (ବି) ଉପପତି, ପ୍ରାଚୀନ ଭାରତର ଉଚ୍ଚପଦସ୍ଥ ରାଜକର୍ମ-ଗୃସ୍ଥବିଶେଷ, (ସ୍ତ୍ରୀ) ମହାନଗ୍ନୀ ।
ମହାନଟ—ପୁଂ. ବି. ଶିବ, ମହାଦେବ ।
ମହାନଦୀ—ସ୍ତ୍ରୀ. ବି. ( ମହତୀ+ନଦୀ ) କ.ଧା; ବଡ଼ନଦୀ, ଓଡ଼ିଶାର କଟକର ଉତ୍ତରାଂଶରେ ପ୍ରବାହିତ ନଦୀ, ଗଙ୍ଗା, ଦଣ୍ଡପଲ୍ଲି ନିକ୍ୟାନ୍ତର୍ଗତ ଗୋଟିଏ କ୍ଷୁଦ୍ର ନଦୀ ।
ମହାନନ—ବି°. (ବ.ଗ୍ରୀ) ବୃହତ୍ ମୁଖବିଶିଷ୍ଟ, (ବି-କ.ଧା) ଶ୍ରେଷ୍ଠ ବା ସୁନ୍ଦର ମୁଖ ।
ମହାନନ୍ଦ—ପୁଂ. ବି. (କ.ଧା) ମୁକ୍ତି,ସଂସାର ଦୁଃଖ ମୋଚନ,ଆନନ୍ଦର ଶେଷସୀମା, ଅତିଶୟ ଅହ୍ଲାଦ, ଦଶଅଙ୍ଗୁଳ ଲମ୍ବ ବଂଶୀ, ମଗଧର ନନ୍ଦବଂଶର ଶେଷ ନୃପତି,(ବି°) ବ.ଗ୍ରୀ—ଅତିଶୟ ଆନନ୍ଦ ଯୁକ୍ତ, (ସ୍ତ୍ରୀ) ମହାନନ୍ଦା ।
ମହାନନ୍ଦା—ସ୍ତ୍ରୀ. ବି. ସୁରା, ମଦ୍ୟ, ମାଘ-ଶୁକ୍ଳନବମୀ,ନଦୀ ବିଶେଷ, ବି°. ବ.ଗ୍ରୀ; ବିଶେଷ ଆନନ୍ଦଯୁକ୍ତ ।
ମହାନରକ—କ୍ଲୀ.ବି.ଅତିଶୟ ଯାତନାପ୍ରଦ ନରକ ବା ସ୍ଥାନ ।
ମହାନଳ—କ୍ଲୀ. ବି.ଦାବାନଳ. ବୃହଦଗ୍ନି ଭୟାନକ ଅଗ୍ନି, ତୀର୍ଥ ବିଶେଷ ।
ମହାନବମୀ—ସ୍ତ୍ରୀ. ବି. ( କ.ଧା ) ଗୃଦ୍ର ଆଶ୍ୱିନର ଶୁକ୍ଳନବମୀ,ଦଶହରାର ପୂର୍ବଦିନ ।
ମହାନସ—କ୍ଲୀ. ବି. (ମହତ୍+ଅନସ୍+ଆ) ପାକଶାଳା, ରନ୍ଧନଗୃହ, ରନ୍ଧନପାତ୍ର, ଭାରଗାଡ଼ି ।
ମହାନସାଧ୍ୟକ୍ଷ—ପୁଂ. ବି. ରନ୍ଧନଶାଳାର ଅଧ୍ୟକ୍ଷ, ରସବତ୍ୟଧିକାରୀ ପୁରୁଷ ।
ମହାନାଗ—ପୁଂ. ବି. ସୁରପୁନ୍ନାଗ ବୃକ୍ଷ, ବାସୁକି, ଅନନ୍ତନାଗ ।
ମହାନାଟକ—କ୍ଲୀ. ବି. ନାଟକ ଲକ୍ଷଣଯୁକ୍ତ ଦଶଅଙ୍କ ବିଶିଷ୍ଟ ନାଟକ,ହନୁମାନଙ୍କ ପ୍ରଣୀତ ଶ୍ରୀରାମଚରିତ ବର୍ଣ୍ଣିକାତ୍ମକ ସଂସ୍କୃତ ନାଟକ ବିଶେଷ ।
ମହାନାଦ—ବି. (କ.ଧା) ଘୋରନାଦ, ଅତି ଉଚ୍ଚଶବ୍ଦ, ଗର୍ଜନ,(ବ.ଗ୍ରୀ) ହସ୍ତୀ, ବର୍ଷୁକ ମେଘ,ସିଂହ,କର୍ଣ୍ଣ, ଉଷ୍ଟ୍ର,ଶଙ୍ଖ, କାହାଳବାଦ୍ୟ,ମହାଦେବ,ବି°.ବ.ଗ୍ରୀ; ମହାଶବ୍ଦଯୁକ୍ତ, ଗମ୍ଭୀର ନାଦକାରୀ ।
ମହାନାଭ—ପୁଂ. ବି, ଅସ୍ତ୍ରାଦି ମନ୍ତ୍ରପୂତକରଣାର୍ଥ ମନ୍ତ୍ର ବିଶେଷ, ହିରଣାକ୍ଷର ପୁତ୍ର ଦାନବ ବିଶେଷ ।
ମହାନାରାୟଣ—ପୁଂ. ବି. ବିଷ୍ଣୁ ।
ମହାନାସ—ପୁଂ. ବି. ଶିବ,ବି°.ବ.ଗ୍ରୀ—ବୃହନ୍ନାସାଯୁକ୍ତ ।
ମହାନିଦ୍ର—ବି°. ଗାଢ଼ନିଦ୍ରାଭିଭୂତ ।
ମହାନିଦ୍ରା—ସ୍ତ୍ରୀ. ବି. ମରଣ, ଚିରନିଦ୍ରା, ନିମିଳନ ।
ମହାନିଦ୍ରାଗତ—ପୁଂ. ବି°. ମୃତ, (ସ୍ତ୍ରୀ) ମହାନିଦ୍ରାଗତା ।
ମହାନିନାଦ—ପୁଂ. ବି. ନାଗ ବିଶେଷ ।
ମହାନିମିତ୍ତ—କ୍ଲୀ. ବି. ମହତ୍ କାରଣ ।
ମହାନିମ୍ବ—ବି.ନିମ୍ବବୃକ୍ଷ ବିଶେଷ,ଘୋଡ଼ାନିମ୍ବ. ମାହାଲ ଗଛ ।
ମହାନିଯମ—ପୁଂ. ବି. ବିଷ୍ଣୁ ।
ମହାନିରୟ—ବି. ନରକ ବିଶେଷ ।
ମହାନିରସ୍ତ—ପୁଂ. ବି. କୋଷସ୍ଥାନବୃଷଭ, ବଳଦ, ଦାମୁଡ଼ି ।
ମହାନିର୍ବାଣ—ବି.ମୋକ୍ଷ ବା ନିର୍ବାଣ ମୁକ୍ତି
ମହାନିର୍ବାଣତନ୍ତ୍ର—ବି. ତାନ୍ତ୍ରିକ ଗ୍ରନ୍ଥବିଶେଷ ।
ମହାନିଶା—ସ୍ତ୍ରୀ. ବି. ( କ.ଧା ) କଳ୍ପାନ୍ତ ବା ପ୍ରଳୟ ରାତ୍ରି, ନିଶୀଥ, ଅର୍ଦ୍ଧରାତ୍ର ।
ମହାନିଶୀଥ—ପୁଂ. ବି. ଜୈନସମ୍ପ୍ରଦାୟ ବିଶେଷ ।
ମହାନୀଚ—ବି. ରଜକ, ଧୋବା, (ବି°) ଅତିଶୟ ହୀନବର୍ଣ୍ଣ ବା ଜାତି ।
ମହାନୀଳ—ପୁଂ. ବି. ଭୃଙ୍ଗରାଜ, ନାଗ ବିଶେଷ, ମେରୁ ସନ୍ନିକଟସ୍ଥ ପର୍ବତ ବିଶେଷ, ସିଂହଳଦ୍ୱୀପଜାତ ନୀଳକାନ୍ତମଣି, ଗୁଗ୍ଗୁଳର ଜାତି ଭେଦ ।
ମହାନୀଳା—ସ୍ତ୍ରୀ. ବି. ମହାଜମ୍ବୁ ।
ମହାନୀଳୀ—ସ୍ତ୍ରୀ. ବି. ନୀଳ ।
ମହାନୀଳୋପଳ—ବି. ଇନ୍ଦ୍ରନୀଳମଣି ।
ମହାନୁପ୍ରାଣତା—ବି.ମହାନୁଭବତା ଦେଖ
ମହାନୁଭବ—ପୁଂ. ବି°. (ବ.ଗ୍ରୀ) ମହାପ୍ରଭାବଶାଳୀ, ମହାଶୟ,ମହାତ୍ମା,ଉଦାରପ୍ରକୃତିକ,ବ.କ.ଧା;—ଅତ୍ୟନ୍ତ ପ୍ରଭାବ
ମହାନୁଭବତା(ତ୍ୱ)--ବି.ଉଦାରତା, ସଦାଶୟତା
ମହାନୁରାଗ—ବି. ଐକାନ୍ତିକ ପ୍ରେମ ବା ଆସକ୍ତି ।
ମହାନୁଶଂସିଦ—ବି°.ଅତ୍ୟଧିକ ସ୍ୱଚ୍ଛନ୍ଦତା ବା ସୁଯୋଗ ସମ୍ପନ୍ନ ।
ମହାନୃତ୍ୟ—ବି. (ବ.ଗ୍ରୀ) ଶିବ, (କ.ଧା) ଅତିଶୟ ନୃତ୍ୟ, (ବି°) ଅତିଶୟ ନୃତ୍ୟଯୁକ୍ତ ।
ମହାନେତ୍ର—ବି°. (ବ.ଗ୍ରୀ) ପ୍ରଶସ୍ତ ଚକ୍ଷୁଯୁକ୍ତ, (ପୁଂ.ବି) ଶିବ ।

ମହାନେମି—ବି. କାକ, କୁଆ ।
ମହାନ୍ତ—ପୁଂ. ବି.(ବି.ଗ୍ରା) ନବଧାଭକ୍ତି-ଯୁକ୍ତ, କୃଷ୍ଣଭକ୍ତ ।
ମହାନ୍ତକ—ପୁଂ.ବି.ମୃତ୍ୟୁ,ଅନ୍ତକାରୀ ଶିବ
ମହାନ୍ତି—ଗ୍ରା. ପୁଂ. ବି. ଉତ୍କଳର କରଣ ଜାତି, ମହାନ୍ତି, ବଂଶୋପାଧି ବିଶେଷ ।
ମହାନ୍ତିଆ—ଗ୍ରା. ବିଂ. ମହାନ୍ତି ସମ୍ବନ୍ଧୀୟ ।
ମହାନ୍ଧକାର—ବି.ଅବିଦ୍ୟା ରୂପ ଅନ୍ଧକାର, ଘୋର ଅନ୍ଧକାର ।
ମହାନ୍ଧ୍ର—ବି. ଦେଶ ବିଶେଷ ଓ ତଦ୍ଦେଶ ବାସୀବ୍ୟକ୍ତି ।
ମହାନ୍ୟାସ—ବି. ମୁଖଂନ୍ୟସ୍ୟମ, ଶ୍ରେଷ୍ଠବିଧି
ମହାନ୍ୱୟ—ବିଂ. (ବି.ଗ୍ରା) ସମ୍ଭ୍ରାନ୍ତ ବଂଶ-ଜାତ, ଉଚ୍ଚକୁଳୋଦ୍ଭୂତ ।
ମହାପକ୍ଷ—ବି. ରାଜହଂସ ବିଶେଷ, (ବିଂ) ବୃହତ୍ ପରିବାର ବା ବହୁସଙ୍ଗୀଯୁକ୍ତ ।
ମହାପକ୍ଷୀ—ପୁଂ. ବି. ପେଚକ; ପେଚା, ଗରୁଡ଼ ।
ମହାପଗା—ସ୍ତ୍ରୀ. ବି. ନଦୀ ବିଶେଷ ।
ମହାପଙ୍କ—କ୍ଲୀ. ବି. ଗାଢ଼କର୍ଦ୍ଦମ ।
ମହାପଞ୍ଚମୂଳ—ବି. ବୃହତ୍ ପଞ୍ଚମୂଳ,(ବିଲ୍ୱ, ଅଗ୍ନିମନ୍ଥ, ଫଣଫଣା, ପାଟଳି ଓ କାଶ୍ମରୀ) ।
ମହାପଞ୍ଚବିଷ—କ୍ଲୀ.ବି. ବୃହତ୍ ବିଷପଞ୍ଚକ. (ଯଥା:—ଶୃଙ୍ଗୀ, କାଳକୂଟ, ବତ୍ସନାଭ, ଶଙ୍ଖୁଆ ଓ ମୁସ୍ତକ) ।
ମହାପଞ୍ଚାଙ୍ଗୁଳ—ବି. ରକ୍ତଏରଣ୍ଡ ବୃକ୍ଷ ।
ମହାପଣ୍ଡିତ—ବି. ଦାର୍ଶନିକ ବା ନୈୟା-ୟିକ ପଣ୍ଡିତଚୂଡ଼ାମଣି, (ବିଂ) ଗଭୀର ପାଣ୍ଡିତ୍ୟଯୁକ୍ତ, (ସ୍ତ୍ରୀ) ମହାପଣ୍ଡିତା ।
ମହାପଦ୍ମ—ବି. ମହାଜମ୍ବୁ, (ବିଂ-ବି.ଗ୍ରା) ବୃହତ୍‌ପଦ୍ମଯୁକ୍ତ ।
ମହାପଥ—ବି. (କ.ଧା) ରାଜମାର୍ଗ,ପ୍ରଧାନ ମାର୍ଗ, ସ୍ୱର୍ଗାରୋହଣପନ୍ଥା, ମୃତ୍ୟୁପଥ, ଶିବ, ବ୍ରହ୍ମରନ୍ଧ୍ର ନାମକ ନରକଭେଦ, ହିମାଳୟସ୍ଥ ତୀର୍ଥବିଶେଷ, ହିମାଳୟର ଯେଉଁ ପଥଦେଇ ପଞ୍ଚପାଣ୍ଡବ ସ୍ୱର୍ଗକୁ ଯାଇଥିଲେ ।
ମହାପଥଗମନ—କ୍ଲୀ.ବି. (୭ତତ୍)ମରଣ, ମହାପଥରେ ଗମନ ।
ମହାପଥିକ—ବିଂ. ମହାପ୍ରସ୍ଥାନକାରୀ ।
ମହାପଦ୍ମ—ବି.ଅନନ୍ତାଦି ଅଷ୍ଟନାଗ ମଧ୍ୟରୁ ଜଣେ,ଦର୍ବୀକର ଜାତୀୟ ସର୍ପବିଶେଷ, କୁବେରଙ୍କର ନବନିଧିର ଅନ୍ତର୍ଗତ ନିଧି-ବିଶେଷ, ଗଙ୍ଗୋତ୍ତରବର୍ତ୍ତୀ ନରକ-ବିଶେଷ, ଦୈତ୍ୟବିଶେଷ, ଲକ୍ଷକୋଟି ସଂଖ୍ୟା, ଶୁକ୍ଳପଦ୍ମ, ନନ୍ଦରାଜାଙ୍କ ନାମା-ନ୍ତର, ନନ୍ଦପୁରଭେଦ, କୁବେରାନୁଚର କିନ୍ନରବିଶେଷ, ଜୈନମତରେ ନାଗ-ମାନଙ୍କର ଅଧିକୃତ ନିଧିବିଶେଷ ।
ମହାପଦ୍ମପତି—ପୁଂ. ବି. ନନ୍ଦରାଜାଙ୍କର ନାମାନ୍ତର । [ ବିଶେଷ ।
ମହାପଦ୍ମସରଃ—କ୍ଲୀ. ବି.କାଶ୍ମୀରସ୍ଥ ହ୍ରଦ-
ମହାପଦ୍ୟ—ବି. ମହାକାବ୍ୟ ।
ମହାପଦ୍ୟଷଟ୍କ—ବି. କାଳିଦାସ କୃତ ଶ୍ଳୋକରଚନାଙ୍କ ଗୁଣବର୍ଣ୍ଣନମୂଳକ ଷଟ୍-ଶ୍ଳୋକାତ୍ମକ କବିତାବିଶେଷ ।
ମହାପନସ—ପୁଂ.ବି. ମଣ୍ଡଳୀସର୍ପବିଶେଷ ଫଣା ବାଲସାପ ।
ମହାପରାକ୍ରମ—ବିଂ. (ବି.ଗ୍ରା) ଅତ୍ୟନ୍ତ ସାହସୀ, ମହାବୀର୍ଯ୍ୟବାନ୍, (ବି-କ.ଧା) ଅତ୍ୟନ୍ତ ପରାକ୍ରମ ।
ମହାପରାହ୍ଣ—ବି. ଅପରାହ୍ଣର ଶେଷଭାଗ ।
ମହାପରିନିର୍ବାଣ—ବି. ନିର୍ବାଣବିଶେଷ, ମହାମୋକ୍ଷ ।
ମହାପର୍ଣ୍ଣୀ—ପୁଂ. ବି. ବ୍ରହ୍ମରାକ୍ଷସ, ରୋହି-ତକ, ଭୂମିଶାଳ । [ ବିଷ୍ଣୁ ।
ମହାପବିତ୍ର—ବିଂ. ଅତ୍ୟନ୍ତ ପବିତ୍ର, (ବି)
ମହାପଶୁ—ବି. ଗବାଦିପଶୁ, ବଳିନିମିତ୍ତ ଉତ୍ସୃଷ୍ଟ ମହିଷ, ମହିଷବଳି ।
ମହାପାତ—ବି. କାଣ୍ଡ ବା ବନ୍ଧୁକଆଦି ମାଇଲେ ଯେତେ ଦୂରରେ ପଡ଼େ ।
ମହାପାତକ—କ୍ଲୀ. ବି. (କ.ଧା) ପାପ-ବିଶେଷ, ବ୍ରହ୍ମହତ୍ୟା, ସୁରାପାନ, ଗୁରୁ-ପତ୍ନୀହରଣ, ସ୍ୱର୍ଣ୍ଣଚୌର୍ଯ୍ୟ, ଚୌର୍ଯ୍ୟ, ଏହି ପଞ୍ଚ ମହାପାତକ ।
ମହାପାତକୀ—ପୁଂ.ବି . (ମହାପାତକ + ଇନ୍) ମହାପାପୀ, ଯେ ମହାପାତକ କରେ, ପତିତ ବ୍ୟକ୍ତି ।
ମହାପାତ୍ର—ପୁଂ. ବି. ( ମହତ୍ + ପାତ୍ର ) ପ୍ରଧାନ ମନ୍ତ୍ରୀ, ଉତ୍କଳୀୟ ବ୍ରାହ୍ମଣଙ୍କ ବଂଶୋପାଧି, ଉପାଧିବିଶେଷ, ମାଳିଆଦି କେତେକ ଶୂଦ୍ର ଜାତିର ବଂଶୋପାଧି, ମହାବ୍ରାହ୍ମଣ ଦେଖ । [ଶିବ ।
ମହାପାଦ—ବିଂ.ବୃହତ୍ ପାଦଯୁକ୍ତ,(ପୁଂ.ବି)
ମହାପାପ—କ୍ଲୀ.ବି. ମହାପାତକ ଦେଖ ।
ମହାପାପ୍ମା—ବିଂ. ଅତିଶୟ ପାପାତ୍ମା ।
ମହାପାପିଷ୍ଠ—ପୁଂ. ବି. (ମହାପାପିନ୍ + ଇଷ୍ଠ) ଘୋରତର ପାପକାର୍ଯ୍ୟକାରୀ, (ସ୍ତ୍ରୀ) ମହାପାପିଷ୍ଠା ।
ମହାପାପୀ—ପୁଂ.ବିଂ. (ମହାପାପ + ଇନ୍) ମହାପାପଯୁକ୍ତ, ଗୁରୁତର ପାପକାର୍ଯ୍ୟ-କାରୀ, (ସ୍ତ୍ରୀ) ମହାପାପିନୀ ।
ମହାପାରେବତ—କ୍ଲୀ.ବି.ଫଳବୃକ୍ଷବିଶେଷ, ଏକପ୍ରକାର ବଡ଼ ପିଜୁଳି ।
ମହାପାର୍ଶ୍ୱ—ବି. ଦାନବବିଶେଷ,ଧୂମାକ୍ଷଣ ବର୍ଣ୍ଣିତ ରାବଣର ପୁତ୍ରବିଶେଷ ।
ମହାପାଶ—ବି. (ବି.ଗ୍ରା)ଯମଦୂତବିଶେଷ, (କ.ଧା) ବୃହତ୍ ପାଶ ।
ମହାପାଶୁପତ—ପୁଂ. ବି. ବକୁଳବୃକ୍ଷ; ଶୈବ ସମ୍ପ୍ରଦାୟବିଶେଷ ।
ମହାପାସକ—ପୁଂ. ବି. (ମହା + ପସ + ଅକ) ବୁଦ୍ଧ ଭିକ୍ଷୁକ, ଶ୍ରମଣ ।
ମହାପିଚୁମର୍ଦ୍ଦ—ପୁଂ. ବି. ପର୍ବତ ନିମ୍ବ, ମହାଲିମ୍ବ ।
ମହାପିଣ୍ଡୀତକ—ପୁଂ.ବି. କୃଷ୍ଣବର୍ଣ୍ଣ ମହା-ମଦନ ବୃକ୍ଷ ।
ମହାପିଣ୍ଡୀତରୁ—ପୁଂ. ବି. ବୃକ୍ଷବିଶେଷ, ଶ୍ୱେତପିଣ୍ଡୀବୃକ୍ଷ । [ ବିଶେଷ ।
ମହାପିତୃଯଜ୍ଞ—ବି. ଶ୍ରାଦ୍ଧକୃତ୍ୟରୂପ ଯଜ୍ଞ-
ମହାପୀଠ—କ୍ଲୀ.ବି.ସତୀଙ୍କ ଅଙ୍ଗର,ପ୍ରସିଦ୍ଧ ୫୧ ପୀଠ, ପୀଠ ଦେଖ ।
ମହାପୀଲୁ—ବି.(କ.ଧା)ପୀଲୁବୃକ୍ଷବିଶେଷ ।
ମହାପୀଲୁପତି—ପୁଂ.ବି. ଇନ୍ଦ୍ର ।
ମହାପୁଂସ—ପୁଂ.ବି. ମହାତ୍ମା ବ୍ୟକ୍ତି ।
ମହାପୁଣ୍ୟ—ପୁଂ. ବି. (କ.ଧା) ବିଶେଷ ପୁଣ୍ୟ, ବୋଧିସତ୍ତ୍ୱବିଶେଷ ।

ମହାପୁଣ—ପୁଂ.ବି. ପୌତ୍ର, ନାତି ।
ମହାପୁର—କ୍ଲୀ. ବି. ଦୁର୍ଗାଦି ସୁରକ୍ଷିତ ନଗର, ତୀର୍ଥଭେଦ, (ସ୍ତ୍ରୀ) ମହାପୁରୀ, ରାଜଧାନୀ ।
ମହାପୁରାଣ—କ୍ଲୀ.ବି. ବିଶେଷ ଲକ୍ଷଣଯୁକ୍ତ ମହର୍ଷି ବେଦବ୍ୟାସ ପ୍ରଣୀତ ଅଷ୍ଟାଦଶ ସଂଖ୍ୟକ ପୁରାଣବିଶେଷ ।
ମହାପୁରୁଷ—ପୁଂ.ବି.(କ.ଧା) ପୁରୁଷୋତ୍ତମ, ଶ୍ରେଷ୍ଠ ନର, ପରମାତ୍ମା,ନାରାୟଣ. ମହାମେଧା, ଦେବତା, ଦୈବଶକ୍ତିସମ୍ପନ୍ନ ବ୍ୟକ୍ତି ।
ମହାପୁରୁଷଦନ୍ତା—ସ୍ତ୍ରୀ.ବି. ଶତମୂଳୀ ।
ମହାପୁରୁଷଦନ୍ତିକା—ସ୍ତ୍ରୀ. ବି. ମହାଶତାବରୀ, ସହସ୍ରମୂଳୀ ।
ମହାପୁରୁଷବିଦ୍ୟା—ସ୍ତ୍ରୀ.ବି. ମନ୍ତ୍ରବିଶେଷ ।
ମହାପୁରୁଷଲକ୍ଷଣ—ବି. ସାଧୁ ବ୍ୟକ୍ତିଙ୍କର ବିଶିଷ୍ଟ ଲକ୍ଷଣ, (ଯଥା—ଦୟା, କ୍ଷମା, ଅହିଂସା, ସତ୍ୟ, ଧୈର୍ଯ୍ୟ, ସରଳତା, ଓ ଉଦାରତା ଇତ୍ୟାଦି), (ଜ୍ୟୋତିଷମତେ) କେତେକ ଶାରୀରିକ ଶୁଭ ଚିହ୍ନ ।
ମହାପୁଷ୍ପ—ବି. କୁନ୍ଦ ଫୁଲଗଛ, ରକ୍ତକାଞ୍ଚନ, ଲବଣବୃକ୍ଷ, କୀଟବିଶେଷ, (ବିଂ) ମହାପୁଷ୍ପବିଶିଷ୍ଟ ।
ମହାପୁଷ୍ପା—ସ୍ତ୍ରୀ.ବି. ଅପରାଜିତା, ମହାକୋଷାତକୀ ।
ମହାପୂଜା—ସ୍ତ୍ରୀ.ବି.ବିଶିଷ୍ଟ ପ୍ରକାର ପୂଜା, ଶରତ୍କାଳୀନ ଦୁର୍ଗାପୂଜା, ଦୁର୍ଗୋତ୍ସବ
ମହାପୂତ—ବିଂ. (କ.ଧା) ଅତି ପବିତ୍ର ।
ମହାପୃଷ୍ଠ—ପୁଂ.ବି. (ବ.ବ୍ରୀ) ଓଟ,ଉଷ୍ଟ୍ର, (ବିଂ) ବୃହତ୍ ପୃଷ୍ଠଯୁକ୍ତ ।
ମହାପୈଠୀନସି—ପୁଂ. ବି. ଜନୈକ ପ୍ରାଚୀନ ସ୍ମୃତିକାର ।
ମହାପୋଟଗଳ—ବି.ଅବତାରାଦିର ଆବିର୍ଭାବ ବା ପ୍ରକାଶ । [ ଦେଖ ।
ମହାପୋଟଗଳ—ପୁଂ. ବି. ମହା ପୋଟଗଳ
ମହାପ୍ରକୃତି—ସ୍ତ୍ରୀ.ବି.ଆଦ୍ୟାଶକ୍ତି,ଭଗବତୀ ଦୁର୍ଗା ।
ମହାପ୍ରକାପତି—ପୁଂ.ବି. ବିଷ୍ଣୁ ।
ମହାପ୍ରଜାପତୀ—ସ୍ତ୍ରୀ.ବି. ଶାକ୍ୟ ମୁନିଙ୍କର ପିତୃବ୍ୟ ପତ୍ନୀ, ଗୌତମୀ ।
ମହାପ୍ରତାପ—ବିଂ. ଅତିଶୟ ପ୍ରଭାବଯୁକ୍ତ
ମହାପ୍ରତିହାର—ପୁଂ.ବି. ଉଚ୍ଚପଦସ୍ଥ ରକ୍ଷିବିଶେଷ ।
ମହାପ୍ରଦାନ—କ୍ଲୀ.ବି. ବୃହତ୍ ଦାନ ।
ମହାପ୍ରପଞ୍ଚ—ପୁଂ.ବି. (କ ଧା) ମନୁଷ୍ୟମାନ ଜଗତ୍ ପ୍ରପଞ୍ଚ, ବ୍ରହ୍ମାଣ୍ଡ, (ଗ୍ରା.ବି) ଅତ୍ୟନ୍ତ ଭୟାନକ ଘଟନା, (ବିଂ) ଅତ୍ୟନ୍ତ ଦୁଷ୍ଟ (ବ୍ୟକ୍ତି) ।
ମହାପ୍ରଭ—ବିଂ. (ମହତ୍+ପ୍ରଭା-ବ.ବ୍ରୀ) ଅତିଶୟ ଦୀପ୍ତିଯୁକ୍ତ, (ସ୍ତ୍ରୀ) ମହାପ୍ରଭା ।
ମହାପ୍ରଭା—ସ୍ତ୍ରୀ.ବି. ମହତୀ ଦୀପ୍ତି, ବାର୍ତ୍ତିକଲୋକ, ନଦୀବିଶେଷ ।
ମହାପ୍ରଭାବ—ପୁଂ.ବିଂ. (ବ.ବ୍ରୀ)ଅତ୍ୟଧିକ ବୀର୍ଯ୍ୟଶାଳୀ,ବି-କ.ଧା;ଅତ୍ୟନ୍ତ ପ୍ରଭାବ ।
ମହାପ୍ରଭୁ—ବି. (କ.ଧା) ପରମେଶ୍ୱର, ଚୈତନ୍ୟ, ଦେବତା, ବ୍ରାହ୍ମଣ, ରାଜା, ସନ୍ନ୍ୟାସୀ, ସାଧୁ, ବିଷ୍ଣୁ, ଇନ୍ଦ୍ର, ଶିବ, (ଗ୍ରା.ଅବ୍ୟ) ବୈଷ୍ଣବ, ଦେବତା, ବ୍ରାହ୍ମଣ ଓ ରାଜାଙ୍କ ପ୍ରତି ସମ୍ବୋଧନ ।
ମହାପ୍ରଭୋ !—ବି. ମହାପ୍ରଭୁର ସମ୍ବୋଧନ ହେ ମହାପ୍ରଭୁ ! [ ଦେଖ ।
ମହାପ୍ରୟାଣ—କ୍ଲୀ.ବି. (କ.ଧା)ମହାପ୍ରସ୍ଥାନ
ମହାପ୍ରଳୟ—ବି. ସର୍ବନାଶ, ତ୍ରିଲୋକନାଶ, ବ୍ରହ୍ମା ଓ ବ୍ରହ୍ମାଣ୍ଡର ନାଶ, ଏକଜଣ ବ୍ରହ୍ମାଙ୍କର ଆୟୁଷ୍କାଳ, (ଗ୍ରା.ବି) ଉତ୍ପୁଲକାଣ୍ଡ, ମହାବିପଦ ।
ମହାପ୍ରସାଦ—ପୁଂ.ବି. (କ.ଧା)ଦେବତାଙ୍କ ନୈବେଦ୍ୟ ଦ୍ରବ୍ୟ, ଅତି ପ୍ରସନ୍ନତା,ଖୁବ୍ ଅନୁଗ୍ରହ, ପାଦୋଦକ, ନିର୍ମାଲ୍ୟ,ମହାର୍ଦ୍ଦ, ପୁରୀ ଜଗନ୍ନାଥଦେବଙ୍କୁ ନୈବେଦ୍ୟ ଭୋଗ ବସ୍ତୁ, ଭୁବନେଶ୍ୱର ଲିଙ୍ଗରାଜ ଠାକୁରଙ୍କୁ ନୈବେଦ୍ୟ ଖାଦ୍ୟ, (ଗ୍ରା.ବି) ଦୁଇଜଣ ପରସ୍ପର ମଧ୍ୟରେ ନିର୍ମାଲ୍ୟ ଦିଆଦେଇହୋଇମୈତ୍ରୀ ସମ୍ବନ୍ଧ ସ୍ଥାପନ
ମହାପ୍ରସାଦନିବନ୍ଧ—ଗ୍ରା.ବି.ବରକର୍ତ୍ତା ଓ କନ୍ୟାକର୍ତ୍ତାଙ୍କ ମଧ୍ୟରେ ମହାପ୍ରସାଦ ଦିଆଦେଇ ହୋଇ ବିବାହ ସମ୍ବନ୍ଧେ ଯେଉଁ ସ୍ଥିର କବାବ ବା ବାଗ୍ଦାନ କରାଯାଏ । [ ପ୍ରୀତିବନ୍ଧୁ ।
ମହାପ୍ରସାଦବନ୍ଧୁ—ଗ୍ରା. ବି. ଧର୍ମବନ୍ଧୁ,
ମହାପ୍ରସାଦସେବା—ଗ୍ରା. ବି. ପ୍ରତିଦିନ ମହାପ୍ରସାଦ କଣିକା ମାତ୍ର ସେବନ, ବିବାହାଦି ଉତ୍ସବରେ ମହାପ୍ରସାଦସହ ଜଳଖିଆ ଆଦି ଭୋଜନ ।
ମହାପ୍ରସ୍ଥାନ—କ୍ଲୀ. ବି. (ମହାନ୍+ପ୍ର+ସ୍ଥା+ଅନ୍'କ.ଧା; ମରଣପନ୍ଥା, ମୃତ୍ୟୁ, ମରଣ ଉଦ୍ଦେଶ୍ୟ କରି ହିମାଳୟ ପର୍ଯ୍ୟନ୍ତ ଗମନ, ମହାଯାତ୍ରା,ମହାଭାରତର ପର୍ବବିଶେଷ, ପତିତ ବ୍ୟକ୍ତିର ଦଣ୍ଡ ସ୍ୱରୂପ ଦେଶାନ୍ତର ଗମନ ।
ମହାପ୍ରସ୍ଥାନିକ—ବିଂ. ( ମହାପ୍ରସ୍ଥାନ+ଇକ ) ମହାପ୍ରସ୍ଥାନସମ୍ବନ୍ଧୀୟ, (ବି) ମହାଭାରତର ୧୭ଶ ପର୍ବ ।
ମହାପ୍ରାଜ୍ଞ—ପୁଂ.ବିଂ. (ମହା+ପ୍ର+ଜ୍ଞା+ଅ) ଅତିଶୟ ଜ୍ଞାନୀ ।
ମହାପ୍ରାଣ—ପୁଂ. ବି. ( ମହତ୍+ପ୍ରାଣ ) ବ.ବ୍ରୀ; ଦ୍ରୋଣକାକ, ଡାମରକୁଆ, (ପୁଂ.ବିଂ) ଅତି ଉଦାର ହୃଦୟଯୁକ୍ତ (ବ୍ୟକ୍ତି),ମହାବଳ, ମହାଶୟ, (ବି)ବର୍ଣ୍ଣବିଶେଷ, ବର୍ଗର ୨ୟ ଓ ୪ର୍ଥ ବର୍ଣ୍ଣମାନ, (ଖ, ଘ, ଛ, ଝ, ଠ, ଢ, ଥ,ଧ, ଫ, ଭ, ଓ ଶ, ଷ, ସ, ହ, ( ସ୍ତ୍ରୀ ) ମହାପ୍ରାଣା ।
ମହାପ୍ରାଣୀ—ବି (ମହତ୍+ପ୍ରାଣିନ୍)ଉଚ୍ଚ ଶ୍ରେଣୀୟ ଜୀବ, ଜୀବାତ୍ମା(ଯଥା-ମନୁଷ୍ୟ)
ମହାଫଣକ—ପୁଂ. ବି. ନାଗଭେଦ ।
ମହାଫଣକ—ପୁଂ. ବି. ନାଗଭେଦ ।
ମହାଫଳ—ପୁଂ. ବି. (ବ.ବ୍ରୀ)ବିଲ୍ୱବୃକ୍ଷ, ନାରକେଳ ବୃକ୍ଷ,ତାଳବୃକ୍ଷ, ପୀଳୁବୃକ୍ଷ, ( କ୍ଲୀ.ବି.କ.ଧା ) ବୃହତ୍‌ଫଳ, ଅଧିକ ପୁରସ୍କାର, (ବିଂ) ବୃହତ୍ ଫଳବିଶିଷ୍ଟ, ଯେଉଁ କାର୍ଯ୍ୟ ଦ୍ୱାରା ମହତ୍ ଫଳପ୍ରାପ୍ତି ହୁଏ, ବହୁଫଳ ପ୍ରସବକାରୀ, ଯହିଁରୁ ବହୁ ପୁରସ୍କାର ଲଭହୁଏ, (ସ୍ତ୍ରୀ) ମହାଫଳା ।
ମହାଫଳା—ବି. (ମହାଫଳ+ଆ)ଇନ୍ଦ୍ରବାରୁଣୀ, ପାଞ୍ଚକୋଡ଼ମେଇ ଲତା,

ମହାକାଳ, ପିତାଳଉ, ଏକପ୍ରକାର ବର୍ତ୍ତା, ମହାକୋଶାତକୀ, ମଧୁର ମାରୁ-ଲୁଙ୍ଗ, ମିଠା ଟାଭାଲେମ୍ବୁ, କମଳାଫଳ, ମାଳୀ, ନାଗବଳା ।

ମହାଫିଜ୍(ହ୍)—ଯା.ବ.ଅଫିସର କାଗଜ-ପତ୍ରର ରକ୍ଷକ କର୍ମ, ଅଦାଲତର ନଥି ଓ ଅନ୍ୟାନ୍ୟ ଦଲିଲ ପତ୍ରର ରକ୍ଷକ କର୍ମଚାରୀ ଓ ତାହାର କର୍ମ,ନାବାଳଗର ଅଭିଭାବକ ।

ମହାଫିଜ୍(ହ୍)ଖାନା—ଯା. ବ. ଯେଉଁ ସ୍ଥାନରେ ଅଫିସ୍‌ର ଯାବତୀୟ କାଗଜ-ପତ୍ର ରକ୍ଷିତ ହୋଇଥାଏ ।

ମହାଫେଣା—ସ୍ତ୍ରୀ. ବ. ଡିଣ୍ଡୀର, ସମୁଦ୍ର-ଫେଣ ।  [ ଯୋଦ୍ଧା ।

ମହାଭଟ—ପୁଂ. ବ. (କ.ଧା) ଅତିଶୟ

ମହାଭଦ୍ର—ପୁଂ.ବ.ପର୍ବତବିଶେଷ,ହ୍ରଦ-ବିଶେଷ, (କ୍ଲୀ. ବ) ମେରୁର ଉତ୍ତର ପାର୍ଶ୍ୱସ୍ଥ ସରୋବର, (ସ୍ତ୍ରୀ) ଭଦ୍ରା ।

ମହାଭଦ୍ରା—ସ୍ତ୍ରୀ.ବ.ଗଙ୍ଗାନଦୀ, କାଶ୍ମରୀ ।

ମହାଭୟ—କ୍ଲୀ. ବ. (କ.ଧା) ଅତିଶୟ ଭୟ, (ପୁଂ.ବ) ଅଧର୍ମଙ୍କ ଔରସରେ ନିର୍‌ଋତିଙ୍କର ଗର୍ଭଜାତ ପୁତ୍ର ।

ମହାଭୟଙ୍କର—ବିଂ. ଅତ୍ୟନ୍ତ ଭୀଷଣ, (ସ୍ତ୍ରୀ) ମହାଭୟଙ୍କରୀ ।  [ ବଚ ।

ମହାଭରୀ—ବି.ଏକପ୍ରକାର ବଚ,ଘୋଡ଼ା

ମହାଭାଗ—ପୁଂ. ବିଂ. (ମହତ୍ + ଭାଗ) ମହାତ୍ମା, ମହାଶୟ, ଦୟାଦାକ୍ଷିଣ୍ୟାଦି ଗୁଣଯୁକ୍ତ, ଭାଗ୍ୟବାନ୍, (ବି) ଅତିଶୟ ଭାଗ୍ୟ, (ସ୍ତ୍ରୀ) ମହାଭାଗା ।

ମହାଭାଗବତ—ବି(କ.ଧା)ପରମବୈଷ୍ଣବ, ବିଷ୍ଣୁଙ୍କର ଶ୍ରେଷ୍ଠ ଭକ୍ତ, ଉପପୁରାଣ-ଭେଦ,ମହାଭାଗବତ ପୁରାଣ, କେତେ-ଜଣ ପ୍ରସିଦ୍ଧ ମହାଭକ୍ତ,(ଯଥା—ମନୁ. ସନକାଦି ସପ୍ତର୍ଷି, ନାରଦ, ଜନକ, ବ୍ରହ୍ମା, ବଳି, ଭୀଷ୍ମ, ପ୍ରହ୍ଲାଦ, ଶୁକ-ଦେବ, ଧର୍ମରାଜ ଓ ଶିବ ।

ମହାଭାଗୀ—ପୁଂ.ବିଂ. ସୌଭାଗ୍ୟଶାଳୀ ।

ମହାଭାଗ୍ୟ—ବି. (କ.ଧା) ପ୍ରବଳ ଭାଗ୍ୟ, ଶୁଭାଦୃଷ୍ଟ, ଅତ୍ୟନ୍ତ ସୌଭାଗ୍ୟ, (ବିଂ) ଅତି ସୌଭାଗ୍ୟଶାଳୀ,(ସ୍ତ୍ରୀ)ମହାଭାଗ୍ୟା ।

ମହାଭାର—ପୁଂ. ବି. (କ.ଧା) ଅତିଶୟ ଭାର, ଗୁରୁଭାର, ଗୁରୁଦାୟିତ୍ୱ ।

ମହାଭାରତ—କ୍ଲୀ. ବ. ମହର୍ଷି ବ୍ୟାସ ପ୍ରଣୀତ ଅଷ୍ଟାଦଶ ପର୍ବଯୁକ୍ତ ବିରାଟ ସଂସ୍କୃତ ପଦ୍ୟଗ୍ରନ୍ଥ,(ଗ୍ରା.ବ)ମହାଭାରତ-ପରି ପ୍ରକାଣ୍ଡ ଗ୍ରନ୍ଥ, ମହାଭାରତ ଯୁଦ୍ଧ-ପରି ତୁମୁଳ ବିବାଦ ବା କଳହ ।

ମହାଭାରତପର୍ବ—ବ. ମହାଭାରତ ଗ୍ରନ୍ଥର ୧୮ଟି ଭାଗ ବା ଖଣ୍ଡ ।

ମହାଭାରତଯୁଦ୍ଧ—ବି.ଅଠରଦିନ ବ୍ୟାପୀ କୁରୁ ପାଣ୍ଡବଙ୍କ ମଧ୍ୟରେ କୁରୁକ୍ଷେତ୍ର ଯୁଦ୍ଧ, (ଗ୍ରା.ବ) ମହାଭାରତ ଯୁଦ୍ଧପରି ବହୁଦିନବ୍ୟାପୀ ଯୁଦ୍ଧ ବା ବିବାଦ ।

ମହାଭାରତିକ—ପୁଂ. ବିଂ. ମହାଭାରତା-ଭିଜ୍ଞ, ଯେ ସମ୍ପୂର୍ଣ୍ଣ ରୂପେ ମହାଭାରତ ତତ୍ତ୍ୱ ଅବଗତ ହୋଇଅଛି ।

ମହାଭାରତୀୟ—ବିଂ(ମହାଭାରତ+ଈୟ) ମହାଭାରତସମ୍ବନ୍ଧୀୟ, ମହାଭାରତରେ ବର୍ଣ୍ଣିତ ।

ମହାଭାର୍—ଗା. ବ. ଗୁରୁଭାର ବା ଦାୟିତ୍ୱ

ମହାଭାଷ୍ୟ—କ୍ଲୀ.ବ.ପତଞ୍ଜଳିକୃତ ପାଣିନି-ବ୍ୟାକରଣ ସୂତ୍ରର ବିଶଦ ଭାଷ୍ୟ ।

ମହାଭାସୁର—ପୁଂ.ବ. ବିଷ୍ଣୁ, (ବିଂ)ଅତି-ଶୟ ଦୀପ୍ତିଯୁକ୍ତ ।

ମହାଭିକ୍ଷୁ—ପୁଂ.ବ.ଭିକ୍ଷୁଶ୍ରେଷ୍ଠ ଶାକ୍ୟମୁନି

ମହାଭିଜନ—ପୁଂ.ବ.ଉଚ୍ଚବଂଶ, ସମ୍ଭ୍ରାନ୍ତ, ବଂଶ ।

ମହାଭିଜନଜାତ—ବିଂ.ସମ୍ଭ୍ରାନ୍ତବଂଶସମ୍ଭୂତ

ମହାଭିଜ୍ଞାନାଭିଭୂ—ପୁଂ. ବ. ବୁଦ୍ଧ ।

ମହାଭିମାନ—ପୁଂ.ବ.ଅତିଶୟ ଅଭିମାନ

ମହାଭିଷେକ—ପୁଂ. ବ. ପ୍ରଧାନ ଅଭି-ଷେକ କ୍ରିୟା ।  [ କାରକ ।

ମହାଭିଷ୍ୟନ୍ଦୀ—ବିଂ. ଅତ୍ୟନ୍ତ ଆର୍ଦ୍ରତା-

ମହାଭୀତ—ପୁଂ.ବିଂ. ଅତିଶୟ ଭୟଯୁକ୍ତ, (ସ୍ତ୍ରୀ) ମହାଭୀତା ।

ମହାଭୀତା—ସ୍ତ୍ରୀ.ବ. ଲଜ୍ଜାଳୁଲତା, ଲାଜ-କୁଳୀଲତା ।

ମହାଭୀତି—ବ. (କ.ଧା) ଅତିଶୟ ଭୟ, (ବିଂ.ବ.ବ୍ରୀ) ମହାଭୟଗ୍ରସ୍ତ,ମହାଭୀତ ।

ମହାଭୀମ—ପୁଂ. ବ. ଶାନ୍ତନୁରାଜା, ଭୃଙ୍ଗୀ ନାମକ ଶିବଙ୍କର ଦ୍ୱାରପାଳ, (ବିଂ) ଅତିଶୟ ଭୟାନକ, (ସ୍ତ୍ରୀ)ମହାଭୀମା ।

ମହାଭୀରୁ—ପୁଂ. ବ. ଗଉଡ଼ୁଣୀ ପୋକ, ତେଲୁଣୀପୋକ, (ବିଂ) ଅତିଶୟ ଭୟ-ଶୀଳ ।  [ ଭୀତିକର ।

ମହାଭୀଷଣକ—ବିଂ.ଅତିଶୟ ଭୟାବହ,

ମହାଭୀଷ୍ମ—ପୁଂ. ବ. ଶାନ୍ତନୁରାଜା ।

ମହାଭୁଜ—ପୁଂ.ବ. ମହାବାହୁ, ଆଜାନୁ-ଲମ୍ବିତ ଭୁଜ ।

ମହାଭୂତ—କ୍ଲୀ. ବ. ସୃଷ୍ଟିର ପାଞ୍ଚଗୋଟି ପ୍ରଧାନ ଉପାଦାନ.(ଯଥା—କ୍ଷିତି,ଅପ୍, ତେଜ, ମରୁତ୍ ଓ ବ୍ୟୋମ),ବିଶ୍ୱେଶ୍ୱର, ଶିବ, ଶ୍ରେଷ୍ଠଜୀବ, ପରମେଶ୍ୱର ।

ମହାଭୂମି—ସ୍ତ୍ରୀ.ବ.ବିପୁଳଭୂମି, ମହାଦେଶ

ମହାଭୂଷଣ—କ୍ଲୀ.ବ.ମୂଲ୍ୟବାନ୍ ଅଳଙ୍କାର

ମହାଭୃଙ୍ଗ—ପୁଂ.ବ.(କ.ଧା) ନୀଳ ଭୃଙ୍ଗ-ରାଜ ।

ମହାଭୈରବ—ପୁଂ.ବ.ଶରଭରୂପୀ ହର, (ସ୍ତ୍ରୀ) ମହାଭୈରବୀ ।

ମହାଭୋଇ—ଗ୍ରା. ବ. ଗଉଡ଼ଆଦି ଆଉ କେତେକଜାତିର ବଂଶୋପାଧି, ଗୋରୁ-ମାନଙ୍କର ସଂଖ୍ୟାବିଶେଷ, ୧୦୦ ମହା-କୁଡ଼ ଗାଈ, ବଂଶୋପାଧିବିଶେଷ ।

ମହାଭୋଗ—ବିଂ. (ମହାନ୍+ଆଭୋଗ) ବ,ବ୍ରୀ; ଅତିଶୟ ବିଶାଳ, (ସ୍ତ୍ରୀ) ମହା-ଭୋଗା, (ବ) ସର୍ପ, (କ.ଧା) ଅତ୍ୟନ୍ତ ଭୋଗ ।

ମହାଭୋଗୀ—ପୁଂ.ବ.(ମହତ୍+ଭୋଗିନ୍) ମହତ୍ତ୍ଚ ଚନ୍ଦ୍ର ବା ଫଣାଧର ସର୍ପ ।

ମହାଭୋଜ—ବ. ରାଜଚକ୍ରବର୍ତ୍ତୀ, ରାଜ-ଭେଦ, ଭୋଜନରୂପ ବୃହତ୍ ବ୍ୟାପାର

ମହାଭୋଟ—ପୁଂ.ବ. ଭୋଟ ବା ତିବ୍ବତ ରାଜ୍ୟ ।

ମହାଭ୍ର—କ୍ଲୀ. ବ. ଘନ, ମେଘ ।

ମହାଭ୍ରମ—ବ. (କ.ଧା) ଅତ୍ୟନ୍ତ ଭୁଲ ।

ମହାମଖ—ବ. ମହାଯଜ୍ଞ, ମାନବମାନ-ଙ୍କର ପ୍ରତିଦିନ କର୍ତ୍ତବ୍ୟ ପଞ୍ଚମହାଯଜ୍ଞ ।

ମହାମଙ୍ଗଳା—ସ୍ତ୍ରୀ.ବି.ପୁରୀଜିଲ୍ଲାର କାକଟପୁରରେ ଥିବା ପ୍ରସିଦ୍ଧ ଠାକୁରାଣୀ ।

ମହାମଣି—ପୁଂ.ବି.ମୂଲ୍ୟବାନ୍ ରତ୍ନ, ଶିବ ।

ମହାମଣିଚୂଡ଼—ପୁଂ. ବି. ନାଗବିଶେଷ ।

ମହାମଣ୍ଡଳ—ପୁଂ.ବି. ରାଜଭେଦ, ମହାସଭା, ବିରାଟସଭା ।

ମହାମଣ୍ଡୂକ—ପୁଂ. ବି. ପୀତମଣ୍ଡୂକ, ସୁନାବେଙ୍ଗ ।

ମହାମଣ୍ଡଳେଶ୍ୱର-ବି. ରାଜୋପାଧିବିଶେଷ

ମହାମତ—ବିଂ. ସମ୍ମାନାର୍ହ ।

ମହାମତି—ବିଂ.(ବ.ବ୍ରୀ) ଅତି ବୁଦ୍ଧିମାନ୍, ଚତୁର,(ପୁଂ.ବି)ଗଣେଶ, ବୃହସ୍ପତିଗ୍ରହ, ଯକ୍ଷରାଜବିଶେଷ, ବୋଧିସତ୍ତ୍ୱବିଶେଷ, (ସ୍ତ୍ରୀ.ବି) କରୁଣାକରଙ୍କ ପତ୍ନୀ, ପଦ୍ମନାଭଙ୍କ ମାତା ।

ମହାମତ୍ତ—ବିଂ. ଅତିଶୟ ମତ୍ତ, ପ୍ରମତ୍ତ ।

ମହାମତ୍ସ୍ୟ—ପୁଂ.ବି.ତିମିପ୍ରଭୃତି ବୃହଦାକାର ସାମୁଦ୍ରିକ ମତ୍ସ୍ୟ ।

ମହାମଦ—ବି.(ବ.ବ୍ରୀ)ମତ୍ତହସ୍ତୀ,(କ.ଧା) ଅତିଶୟ ହର୍ଷ, (ପୁଂ.ବିଂ) ମଦବିଶିଷ୍ଟ, ପ୍ରମତ୍ତ, (ସ୍ତ୍ରୀ) ମହାମଦା ।

ମହାମନସ୍ୱୀ--ପୁଂ.ବିଂ(ମହାନ୍+ମନସ୍ୱିନ୍) କ.ଧା; ଶ୍ରେଷ୍ଠମନସ୍ୱୀ, ଅତିଧୀର, (ସ୍ତ୍ରୀ) ମହାମନସ୍ୱିନୀ ।

ମହାମନସ୍କ—ବିଂ. ଉଚ୍ଚାନ୍ତଃକରଣବିଶିଷ୍ଟ; (ବି) ଶରଭଜାତୀୟ ଜୀବବିଶେଷ,ରାଜଭେଦ ।

ମହାମନାଃ—ପୁଂ.ବିଂ. (ମହତ୍+ମନସ୍) ମହାଶୟ, ମହାମତି, ଉଦାରଚେତାଃ, ଗର୍ବିତ ।

ମହାମନ୍ତ୍ର—ପୁଂ. ବି. (କ.ଧା) ଇଷ୍ଟମନ୍ତ୍ର, ଗୁରୁମନ୍ତ୍ର, ମନ୍ତ୍ରସମ୍ବଳିତ ପ୍ରସିଦ୍ଧ ବେଦଗ୍ରନ୍ଥ ।

ମହାମନ୍ତ୍ରୀ—ପୁଂ. ବି. (ମହତ୍ + ମନ୍ତ୍ରିନ୍) ପ୍ରଧାନ ମନ୍ତ୍ରଣାଦାତା,ରାଜାଙ୍କର ପ୍ରଧାନ ସଚିବ ।

ମହାମରକତ—ପୁଂ. ବି. (କ.ଧା) ଶ୍ରେଷ୍ଠ ମରକତମଣି, (ବ.ବ୍ରୀ) ମହାମରକତମଣି ଶୋଭିତ ଅଳଙ୍କାର ।

ମହାମଲ୍ଲ—ବିଂ(କ.ଧା) ବଳବାନ୍ ଯୋଦ୍ଧା, ମହାବଳୀ ବୀର ।

ମହମହ—ପୁଂ. ବି. ମହୋତ୍ସବ ।

ମହାମହାବାରୁଣୀ—ସ୍ତ୍ରୀ.ବି. ଗଙ୍ଗାସ୍ନାନର ଯୋଗବିଶେଷ, ଚୈତ୍ର କୃଷ୍ଣ ତ୍ରୟୋଦଶୀରେ ଶୁଭଯୋଗ ଓ ଶନିବାରଯୁକ୍ତ ଶତଭିଷା ନକ୍ଷତ୍ରର ଯୋଗ ।

ମହାମହାରଥୀ—ସ୍ତ୍ରୀ. ବି. ଅତ୍ୟନ୍ତ ବଳଶାଳୀ ଯୋଦ୍ଧାମାନେ ।

ମହାମହାରୂପକ—ସ୍ତ୍ରୀ.ବି. କାବ୍ୟର ଅଳଙ୍କାରବିଶେଷ ।

ମହାମହିମ—ପୁଂ.ବିଂ(ମହତ୍ + ମହିମନ୍) ବ.ବ୍ରୀ;ଅତି ମହିମାନ୍ୱିତ, ଅତି ମହତ୍ତ୍ୱଯୁକ୍ତ, (ସ୍ତ୍ରୀ) ମହାମହିମା,(ପୁଂ.ବି)ଅତିଶୟ ମହିମା, ଐଶ୍ୱର୍ଯ୍ୟପ୍ରଭାବ ।

ମହାମହିମା--ବି.(କ.ଧା) ବିଶେଷ ମହିମା, (ସ୍ତ୍ରୀ.ବିଂ) ମହାମହିମର ସ୍ତ୍ରୀଲିଙ୍ଗ ।

ମହାମହିମାନ୍ୱିତ—ବିଂ. (ତତ୍ପୁ) ଅତି ଗୌରବାନ୍ୱିତ, (ସ୍ତ୍ରୀ)ମହିମାନ୍ୱିତା ।

ମହାମହିମାର୍ଣ୍ଣବ—ପୁଂ. ବିଂ. ବିଶେଷ ଗୌରବାନ୍ୱିତ ।

ମହାମହେଶ—ପୁଂ.ବି. ପରମେଶ୍ୱର,ଶିବ

ମହାମହେଶବ୍ରହ୍ମ—ବିଂ.ପ୍ରଭୂତ ଶକ୍ତିସମ୍ପନ୍ନ ।

ମହାମହେଶ୍ୱରପୁତନ—କ୍ଳୀ.ବି. ଦେବଲୋକବିଶେଷ ।

ମହାମହୋପାଧ୍ୟାୟ—ପୁଂ. ବି. ଶ୍ରେଷ୍ଠ ପଣ୍ଡିତ, (ସ୍ତ୍ରୀ.ବି) ପ୍ରଧାନ ପଣ୍ଡିତଙ୍କର ସମ୍ମାନସୂଚକ ଉପାଧିବିଶେଷ ।

ମହାମାଂସ—କ୍ଳୀ.ବି.ନରମାଂସ,ଗୋମାଂସ

ମହାମାଇ—ସ୍ତ୍ରୀ. ବି. ଦେବୀ, ଠାକୁରାଣୀ, ଦୁର୍ଗା, କାଳୀ, ମହତୀମାତା ।

ମହାମାତ୍ୟ—ପୁଂ. ବି. (କ.ଧା) ପ୍ରଧାନରାଜସଭାସଦ୍ ବା ମନ୍ତ୍ରୀ ।

ମହାମାତ୍ର—ପୁଂ. ବିଂ. (ମହତ୍ + ମାତ୍ରା) ବ.ବ୍ରୀ; ଧନୀ,ଖୁବ୍‌ବଡ଼, ପ୍ରଧାନ,ସମୃଦ୍ଧ, (ବି)ପ୍ରଧାନ ଅମାତ୍ୟ, ରାଜ୍ୟର ପ୍ରଧାନ କର୍ମକର୍ତ୍ତା, ଧନାଢ୍ୟବ୍ୟକ୍ତି, ହସ୍ତିପକାଧିପ, ମହାଦେବ, ଶ୍ରେଷ୍ଠବ୍ୟକ୍ତି, ଆଚାର୍ଯ୍ୟ

ମହାମାତ୍ରୀ—ସ୍ତ୍ରୀ. ବି. ( ମହାମାତ୍ର+ଈ ) ଆଚାର୍ଯ୍ୟପତ୍ନୀ, ମହାମାତ୍ରପତ୍ନୀ ।

ମହାମାନ—ବି.(କ.ଧା)ବିଶେଷ ସମ୍ମାନ ।

ମହାମାନୀ—ପୁଂ.ବିଂ. (ମହାମାନ୍+ଇନ୍) ଅତିଶୟ ଅଭିମାନୀ, ଦମ୍ଭାନ୍ୱିତ, (ସ୍ତ୍ରୀ) ମହାମାନିନୀ ।

ମହାମାୟ—ପୁଂ. ବିଂ. (ମହା+ମାୟା) ବ.ବ୍ରୀ; ଅତିଶୟ ମାୟାବୀ, ମହାମାୟାଯୁକ୍ତ, (ପୁଂ.ବି) ବିଷ୍ଣୁ, ଶିବ, ଅସୁରବିଶେଷ, ବିଦ୍ୟାଧରଭେଦ ।

ମହାମାୟା—ସ୍ତ୍ରୀ. ବି. (ମହତୀ+ମାୟା) କ.ଧା;ଜଗତରେ ବ୍ୟାପିଥିବା ଅବିଦ୍ୟା ବା ମାୟା, ସଂସାରଭ୍ରମ, ପ୍ରକୃତି,ଦୁର୍ଗା, ଗଙ୍ଗାଦେବୀ, ଶୁଦ୍ଧୋଦନଙ୍କ ପତ୍ନୀ ବୁଦ୍ଧଦେବଙ୍କ ମାତା, (ବ.ବ୍ରୀ) ଲକ୍ଷ୍ମୀ, (ବିଂ) ମହାମାୟାର ସ୍ତ୍ରୀଲିଙ୍ଗ ।

ମହାମାୟାଧର—ପୁଂ. ବି. (ମହାମାୟା+ଧୃ+ଅ) ବିଷ୍ଣୁ ।

ମହାମାରକତ—ବିଂ.(ମହା + ମରକତ + ଅ)ମରକତମଣି ମଣ୍ଡିତ (ଅଳଙ୍କାର) ।

ମହାମାରୀ—ବି. ( କ.ଧା ) ମହାକାଳୀ, ଅତିଶୟ ମରକ ।

ମହାମାଳ—ପୁଂ. ବି. ଶିବ ।

ମହାମାଳିକା—ବି. ଛନ୍ଦୋବିଶେଷ ।

ମହାମାଷ—ବି. ରାଜମାଷ, ବରଗଡ଼ା, ବରଗୁଡ଼ା । [ ବିଶେଷ ।

ମହାମାହେଶ୍ୱର—ପୁଂ. ବି. ଶିବୋପାସକ

ମହାମୀନ—ପୁଂ.ବି.(କ.ଧା) ମତ୍ସ୍ୟବିଶେଷ, ବଡ଼ମାଛ ।

ମହାମୁଖ—ପୁଂ. ବି. ( ବ.ବ୍ରୀ ) କୁମ୍ଭୀର, ମହାଦେବ, (କ.ଧା) ବଡ଼ମୁଖ, ନଦୀର ମୁହାଣ, ( ବିଂ-ବ.ବ୍ରୀ ) ବୃହତ୍ ମୁଖବିଶିଷ୍ଟ ।

ମହାମୁଣ୍ଡିତକା—ସ୍ତ୍ରୀ. ବି. ମହାଶ୍ରାବଣିକା, ଗୋରକ୍ଷମୁଣ୍ଡୀ ।

ମହାମୁଦ୍ରା—ସ୍ତ୍ରୀ. ବି. ( କ.ଧା ) ଯୋଗପ୍ରକରଣୋକ୍ତ ମୁଦ୍ରାବିଶେଷ, ତନ୍ତ୍ରୋକ୍ତ ସାଧନୋପଯୋଗୀ ଯନ୍ତ୍ର ।

ମହାମୁନି—ପୁଂ. ବି. (କ.ଧା) ମୁନିଶ୍ରେଷ୍ଠ, ଅଗସ୍ତ୍ୟପ୍ରଭୃତି,କୃପାଚାର୍ଯ୍ୟ, ବୁଦ୍ଧ,କାଳ,

ବ୍ୟାସଦେବ, ଜନଭେଦ, ଭୂମ୍ୟୁରୁକ୍ଷ, ଔଷଧବିଶେଷ ।

ମହାମୂଢ଼—ବିଂ. ଅତିଶୟ ମୂଢ଼, ମୂର୍ଖ ।

ମହାମୂର୍ଖ—ପୁଂ. ବିଂ. (କ.ଧା) ଅତିଶୟ ଅଜ୍ଞ, ଅତ୍ୟନ୍ତ ନିର୍ବୋଧ ।

ମହାମୂର୍ତ୍ତି—ପୁଂ. ବି. (ବ.ବ୍ରୀ) ବିଷ୍ଣୁ ।

ମହାମୂର୍ଦ୍ଧା—ପୁଂ. ବି. (ବ.ବ୍ରୀ) ଶିବ,(ବିଂ) ବୃହନ୍ମସ୍ତକଯୁକ୍ତ ।

ମହାମୂଳ—ପୁଂ.ବି.(ବ.ବ୍ରୀ) ରାଜପଲାଣ୍ଡୁ, ମୂଳା, ପିଆଜ, ଲିଲି ।

ମହାମୂଲ୍ୟ—ବିଂ. (କ.ଧା) ମହାର୍ଘ, ବହୁମୂଲ୍ୟବିଶିଷ୍ଟ, ଯାହାର ଦର ଅଧିକ, (ବି. ବ.ବ୍ରୀ) ପଦ୍ମରାଗମଣି ।

ମହାମୂଷିକ—ପୁଂ. ବି. ବଡ଼ମୂଷା, ବୃହତ୍ ଇନ୍ଦୁର ।

ମହାମୃଗ—ପୁଂ. ବି. ହସ୍ତୀ, ଶରଭ ।

ମହାମୃତ୍ୟୁ—ପୁଂ. ବି. ଯମ, ଶିବ ।

ମହାମୃତ୍ୟୁଞ୍ଜୟ—ପୁଂ. ବି. ଶିବଙ୍କର ମନ୍ତ୍ରବିଶେଷ, ଶିବ ।

ମହାମୃତ୍ୟୁଞ୍ଜୟମନ୍ତ୍ର—ବି. ମହାଦେବଙ୍କର ମନ୍ତ୍ରବିଶେଷ ।

ମହାମୃଧ—ପୁଂ. ବି. ଭୀଷଣଯୁଦ୍ଧ ।

ମହାମେଘ—ପୁଂ. ବିଂ. (ରୂ.କ.ଧା) ଶିବ, (କ.ଧା) ଅତିଶୟ ମେଘ, ଗାଢ଼ମେଘ ।

ମହାମେଘସ୍ୱାନ—ବି. (କ.ଧା) ବଜ୍ରପାତ ପର ନିଦାରୁଣ ଶବ୍ଦ, (ବିଂ-ବ.ବ୍ରୀ) ମେଘନିର୍ଘୋଷପରି ଯାହାର ଶବ୍ଦ ।

ମହାମେଘୌଘନିର୍ଘୋଷ—ବିଂ. ଜୀମୂତମନ୍ଦ୍ରର ଘୋରଶବ୍ଦପରମ୍ପରାବିଶିଷ୍ଟ ।

ମହାମେଘନିବାସୀ—ପୁଂ. ବି. ଶିବ, ଯେ ଚିରତୁଷାରାବୃତ କୈଳାସ ଶିଖରରେ ଅବସ୍ଥାନ କରନ୍ତି ।

ମହାମେଦ—ପୁଂ. ବି. (ମହା+ମିଦ୍+ ଣିଚ୍+ଅ) ବୃହନ୍ମେଦ ।

ମହାମେଦା—ସ୍ତ୍ରୀ.ବି. ସ୍ୱନାମଖ୍ୟାତ ଲତାର ମୂଳ, ଔଷଧିବିଶେଷ ।

ମହାମେରୁ—ପୁଂ. ବି. ଶ୍ରେଷ୍ଠମେରୁ, (ଗ୍ରା. କ୍ଲୀ)ମେରୁପର୍ବତପରି ବଡ଼ ଓ ଦୃଢ଼,ଅତି ବଡ଼, (ବି) ପର୍ବତବିଶେଷ ।

ମହାମୈତ୍ରୀ—ପୁଂ. ବି. ବୁଦ୍ଧଭେଦ ।

ମହାମୋହ—ପୁଂ. ବି. ସଂସାର ବିଷୟବାସନାରୂପ ଅଜ୍ଞାନ, ମହାମୋହଜନକ କାମରାଜଗୀକ, ଭୋଗେଚ୍ଛାରୂପ ଅଜ୍ଞାନ, ସଂସାର ମୂଳକାରଣ ରାଗରୂପ ମୋହ, ମହାମାୟା ।

ମହାମୋହା—ସ୍ତ୍ରୀ. ବି. (ମହାମୋହ+ଆ) ଦୁର୍ଗା । [ବିଶିଷ୍ଟ ।

ମହାମୋହନ—ବିଂ.ଅତିଶୟ ମହାମୋହ-

ମହାମ୍ବୁକ—ପୁଂ. ବି. ଶିବ ।

ମହାମ୍ବୁଜ—ପୁଂ. ବି. ଶିବ ।

ମହାମ୍ଳ—କ୍ଲୀ. ବି. ତନ୍ତୁଡ଼ୀ, (ବିଂ) ଅତିଶୟ ଅମ୍ଳରସବିଶିଷ୍ଟ ।

ମହାଯକ୍ଷ—ପୁଂ. ବି. ଅର୍ହତ୍ର ଉପାସକବିଶେଷ, ଯକ୍ଷପତି, ବୌଦ୍ଧଦେବଗଣଭେଦ ।

ମହାଯଜ୍ଞ—ବି. (ମହତ୍+ଯଜ୍ଞ) କ.ଧା; ବେଦାଧ୍ୟୟନ, ଅଗ୍ନିହୋତ୍ର,ପିତୃତର୍ପଣ, ଭୂତବଳି ଓ ଅତିଥିପୂଜା ଏହି ପାଞ୍ଚପ୍ରକାର ମହାଯଜ୍ଞ;ଋଷିଯଜ୍ଞ, ଦେବଯଜ୍ଞ, ପିତୃଯଜ୍ଞ,ନୃଯଜ୍ଞ ଓ ଭୂତବଳି ଗୃହସ୍ଥର ନିତ୍ୟକର୍ତ୍ତବ୍ୟ ଏହି ପାଞ୍ଚପ୍ରକାର,(ବ.ବ୍ରୀ) ବିଷ୍ଣୁ ।

ମହାଯଜ୍ଞଭାଗହର—ପୁଂ. ବି. ବିଷ୍ଣୁ ।

ମହାଯମ—ପୁଂ. ବି. ଯମରାଜ ।

ମହାଯମକ—କ୍ଲୀ.ବି.କାବ୍ୟାଦିରେ ବ୍ୟବହୃତ ଶବ୍ଦାଳଂକାରବିଶେଷ ।

ମହାଯଶାଃ—ପୁଂ. ବି. (ମହା+ଯଶସ୍) ବ.ବ୍ରୀ; ଶିବ, ଭୂତାର୍ହତବିଶେଷ, (ବିଂ) ଅତିଶୟ ଯଶସ୍ୱୀ । [ଯୁକ୍ତ ।

ମହାଯୁସ--ବିଂ. ମହାଫଳକ,ମହାଲୌହ-

ମହାଯାତ୍ରା—ବି. ମହାପ୍ରସ୍ଥାନ ଦେଖ, ମରଣାର୍ଥ ଗମନ, ତୀର୍ଥମୃତ୍ୟୁ ଲଭିବା ପାଇଁ କାଶୀଯାତ୍ରା, (ଗ୍ରା.ବି) ପାଣ୍ଡବମାନଙ୍କର ମହାପ୍ରସ୍ଥାନ ବର୍ଣ୍ଣନାତ୍ମକ କବିବର ରାଧାନାଥଙ୍କର ଅସମ୍ପୂର୍ଣ୍ଣ ଓଡ଼ିଆ କାବ୍ୟବିଶେଷ ।

ମହାଯାନ—କ୍ଲୀ. ବି. ବୃହତ୍‌ଯାନ,ଶ୍ରେଷ୍ଠଯାନ, ବୌଦ୍ଧସମ୍ପ୍ରଦାୟବିଶେଷ ।

ମହାଯାନଦେବ—ଗ୍ରା. ପୁଂ. ବି. ଚୀନପରିବ୍ରାଜକ ହୁଇଏନ୍‌ସିୟାଙ୍ଗଙ୍କର ଉପାଧି ।

ମହାଯାନପରଗ୍ରାହକ—ପୁଂ. ବିଂ. ମହାଯାନମତାବଲମ୍ବୀ ।

ମହାଯାମ୍ୟ—ପୁଂ.ବି. ବିଷ୍ଣୁ ।

ମହାଯୁଗ—କ୍ଲୀ.ବି. ଦେବଗଣଙ୍କ ଯୁଗ, ସତ୍ୟ, ତ୍ରେତା, ଦ୍ୱାପର ଓ କଳି ଏହି ଚାରି ଯୁଗର ସମଷ୍ଟି,ମନୁଷ୍ୟମାନଙ୍କର ଏହି ଚାରି ଯୁଗରେ ଦେବତାଙ୍କର ଏକଯୋଗ ହୁଏ,ଏହା ୪୩ଲକ୍ଷ ୨୦ହଜାର ବର୍ଷ ।

ମହାଯୁଦ୍ଧ—ବି. (କ.ଧା) ତୁମୁଳ ସଂଗ୍ରାମ ।

ମହାୟୁଧ—ପୁଂ,ବି. (ବ.ବ୍ରୀ) ଶିବ, (ବିଂ) ମହାନ୍ ଆୟୁଧବିଶିଷ୍ଟ ।

ମହାଯୋଗ—ବି.(ମହାନ୍+ଯୋଗ,କ.ଧା) ପ୍ରଧାନ ଯୋଗ ବା ସୁସମୟ, କଠୋର ତପସ୍ୟା ।

ମହାଯୋଗୀ—ପୁଂ.ବିଂ. (କ.ଧା)ତପୋନିରତ, ମହାତପାଃ, ଶ୍ରେଷ୍ଠଯୋଗୀ, (ପୁଂ.ବି) ବିଷ୍ଣୁ, ଶିବ, କୁକ୍କୁଟ ।

ମହାଯୋଗେଶ୍ୱର—ପୁଂ. ବି. ଭଗବାନ୍, ବିଷ୍ଣୁ, ମହାଋଷି ଓ ଯୋଗୀରୂପେ ବିଖ୍ୟାତ କଠପସ୍ୱ ଋଷି, (ଏହାଙ୍କର ନାମ ପିତାମହ,ପୁଲସ୍ତ୍ୟ, ପୁଲହ,ଅଙ୍ଗିରା କ୍ରତୁ, କାଶ୍ୟପ) ।

ମହାଯୋଗେଶ୍ୱରୀ—ସ୍ତ୍ରୀ.ବି. ନାଗଦମନୀ, ନାଗଦଅଣା, ଦୁର୍ଗା ।

ମହାଯୋନି—ସ୍ତ୍ରୀ,ବି.ଯୋନିରୋଗବିଶେଷ

ମହାର୍ଯ୍ୟ—ବିଂ. ପୂଜ୍ୟ ।

ମହାରକ୍ଷଃ—ବି. ଭୀଷଣ ରାକ୍ଷସ ।

ମହାରକ୍ଷା—ସ୍ତ୍ରୀ. ବି. ବୌଦ୍ଧକୁଳଦେବୀବିଶେଷ ।

ମହାରକ୍ତ—କ୍ଲୀ.ବି. ପ୍ରବାଳ

ମହାରଜତ—କ୍ଲୀ.ବି. ସୁବର୍ଣ୍ଣ, ଧୂତୁରା, ବୃହତ୍ ରୌପ୍ୟ ।

ମହାରଜନ—କ୍ଲୀ. ବି. (ମହା+ରଜ+ ଅନ) କୁସୁମଫୁଲ, ସ୍ୱର୍ଣ୍ଣ ।

ମହାରଣ—ପୁଂ.ବି. ମହାଯୁଦ୍ଧ ।

ମହାରଣା—ଗ୍ରା.ବି. ବଢ଼େଇ, ପଥୁରିଆ, କମାର ଓ ଚିତ୍ରକାରଙ୍କ ବଂଶୋପାଧି

ମହାରଣ୍ୟ—କ୍ଳୀ.ବି. ବୃହଦ୍‌ବନ, କାନ୍ତାର, ନିବିଡ଼ ଅରଣ୍ୟ ।

ମହାରତ୍ନ—କ୍ଳୀ. ବି. ମୁକ୍ତାଦି ନବରତ୍ନ, ଶ୍ରେଷ୍ଠ ମଣି ।

ମହାରତ୍ନମୟ—ବିଂ. ମହାର୍ଘ ରତ୍ନବିଶିଷ୍ଟ ।

ମହାରତ୍ନବାନ୍—ପୁଂ.ବିଂ. ମହାର୍ଘ ରତ୍ନସମ୍ପନ୍ନ, (ସ୍ତ୍ରୀ) ମହାରତ୍ନବତୀ ।

ମହାରଥ-ପୁଂ.ବି.ଶିବ,ରାଜବିଶେଷ,(ବ.ଗ୍ରା) ଅସାଧାରଣ ଯୁଦ୍ଧକୁଶଳ ବ୍ୟକ୍ତି, ଅଯୁତ ସଂଖ୍ୟକ ଧନ୍ୱୀ ସହିତ ଅସ୍ତ୍ରଶସ୍ତ୍ରନିପୁଣ ଯୋଦ୍ଧା,କ.ଧା;ବୃହତ୍ ରଥ,ମନୋରଥ ।

ମହାରଥା—ଗ୍ରା.ବି. ମାହାରଥ ଦେଖ, ରାଜପ୍ରଦତ୍ତ ଉପାଧିବିଶେଷ ।

ମହାରଥୀ—ଗ୍ରା.ପୁଂ.ବି.କ୍ଷତ୍ରିୟଙ୍କ ବଂଶୋପାଧିବିଶେଷ,ରାଜପ୍ରଦତ୍ତ ଉପାଧିବିଶେଷ

ମହାରଥ୍ୟା—ସ୍ତ୍ରୀ.ବି.ରାଜପଥ,ପ୍ରଶସ୍ତମାର୍ଗ

ମହାରମ୍ଭ—କ୍ଳୀ.ବି. ଗଡ଼ ଲବଣ, (ବିଂ) ମହାରମ୍ଭବିଶିଷ୍ଟ ।

ମହାରବ—ପୁଂ. ବି. (ବ.ଗ୍ରା) ଭେକ, (କ.ଧା) ଘୋର ଶବ୍ଦ ।

ମହାରୟ—ପୁଂ. ବିଂ. ( ବ.ଗ୍ରା ) ଅତି ବେଗଶାଳୀ, (ବି.କ.ଧା) ଦ୍ରୁତବେଗ ।

ମହାରସ—ବି. କାଞ୍ଜିକ, ଖର୍ଜୁର,ବିମଳ, କୋଷକାର, କଶେରୁ,ଶସ୍ୟ,ବୈକ୍ରାନ୍ତ, ଇକ୍ଷୁ, ଆମ୍ର, ପାରଦ, କାନ୍ତଲୌହ, ହିଙ୍ଗୁଳ, ସ୍ୱର୍ଣ୍ଣମକ୍ଷିକ, ଅଭ୍ରକ,ରୌପ୍ୟମାକ୍ଷିକ, ଜମ୍ବୁବୃକ୍ଷ, (ବିଂ-ବ.ଗ୍ରା)ମହାରସବିଶିଷ୍ଟ, ଅତିଶୟ ରସମୟ ବା ସୁସ୍ୱାଦୁ ବା ରୁଚିକର ।

ମହାରସବାନ୍—ପୁଂ.ବିଂ.ଉତ୍କୃଷ୍ଟ ଆସ୍ୱାଦବିଶିଷ୍ଟ, (ବି) ଖାଦ୍ୟବିଶେଷ ।

ମହାରହସ୍ୟ--ବି.କ.ଧା;ଅତି ଗୁପ୍ତବିଷୟ ।

ମହାରାଗ—ଗ୍ରା. ବି. ଅତ୍ୟନ୍ତ କ୍ରୋଧ, (ଗ୍ରା.ବିଂ) କ୍ରୁଦ୍ଧ ।

ମହାରାଗୀ—ଗ୍ରା.ପୁଂ.ବିଂ. ଅତ୍ୟନ୍ତ କ୍ରୋଧୀ

ମହାରାଜ—ପୁଂ. ବି. (ମହାନ୍+ରାଜନ୍) ରାଜେନ୍ଦ୍ର, ସମ୍ରାଟ୍,ରାଜା, ପ୍ରଧାନକ୍ଷତ୍ରିୟ, ପୂଜ୍ୟଜନ ବିଶେଷ, ନଖ, ମହାନ୍‌ରାଜ୍ୟ, ଶ୍ରେଷ୍ଠରାଜା,(ଗ୍ରା.ଅବ୍ୟ. ସମ୍ବୋଧନ—ରାଜା, ମହନ୍ତ, ବାବାଜି, ସମ୍ମାନାର୍ହ ବ୍ୟକ୍ତି ଓ ବ୍ରାହ୍ମଣଙ୍କ ପ୍ରତି ପ୍ରଯୁକ୍ତ ଉକ୍ତି) ମହିମା, ମହାପ୍ରଭୁ, ହଜୁର ।

ମହାରାଜକୁମାର—ବି. ସମ୍ରାଟଙ୍କ ପୁତ୍ର, (ଗ୍ରା.ବି)ଗଭର୍ଣ୍ଣମେଣ୍ଟଙ୍କ ଠାରୁ ମହାରାଜା ଉପାଧି ପ୍ରାପ୍ତ ମହାରାଜାଙ୍କ କୁମାରଙ୍କ ଉପାଧି

ମହାରାଜଚୂତ—ପୁଂ. ବି. ଉତ୍ତମ ଆମ୍ବ ।

ମହାରାଜଦ୍ରୁମ—ପୁଂ. ବି. ସୁନାରିଗଛ ।

ମହାରାଜପନ୍ଥୀ—ଗ୍ରା. ବି. ଦକ୍ଷିଣଭାରତର ବୈଷ୍ଣବ ସମ୍ପ୍ରଦାୟ ବିଶେଷ ।

ମହାରାଜା—ଗ୍ରା. ବି. ସମ୍ରାଟ୍, ରାଜେନ୍ଦ୍ର, ଶ୍ରେଷ୍ଠରାଜା, ଭାରତ ଗଭର୍ଣ୍ଣମେଣ୍ଟଙ୍କ ପ୍ରଦତ୍ତ ଉପାଧି ବିଶେଷ, ( ଗ୍ରା.ଅବ୍ୟ. ) ମହାରାଜ ଦେଖ ।

ମହାରାଜାଧିରାଜ—ବି. ରାଜେନ୍ଦ୍ର, ରାଜଚକ୍ରବର୍ତ୍ତୀ, ସାର୍ବଭୌମ,(ଗ୍ରା.ବି)ଭାରତ ସରକାରଙ୍କ ପ୍ରଦତ୍ତ ଉପାଧି ବିଶେଷ ।

ମହାରାଜାବାହାଦୁର—ଗ୍ରା. ବି. ଭାରତଗଭର୍ଣ୍ଣମେଣ୍ଟଙ୍କ ପ୍ରଦତ୍ତ ଉପାଧି ।

ମହାରାଜିକ—ପୁଂ. ବି.(ମହାରାଜ+ଇକ) ୨୨୦ ବା ୨୩୬ ସଂଖ୍ୟକ ଗଣଦେବତା ବିଶେଷ, ବିଷ୍ଣୁ । [ କରଣ ।

ମହାରାଜୋପଚାର—ବି.ରାଜାର୍ହ ପ୍ରକୋପ-

ମହାରାଜ୍ଞୀ—ସ୍ତ୍ରୀ. ବି. (କ.ଧା) (ମହତୀ+ରାଜ୍ଞୀ) ଦୁର୍ଗା,ମହାମନାରାଜ୍ଞୀ,(ଗ୍ରା.ବି—ସଂ-ମହାରାଜୀ ) ସାମ୍ରାଜ୍ଞୀ, ମହାରାଜମହିଷୀ । [ ରାଜ୍ୟ ।

ମହାରାଜ୍ୟ—କ୍ଳୀ.ବି.ଶ୍ରେଷ୍ଠରାଜ୍ୟ, ବିପୁଳ-

ମହାରାଣା—ଗ୍ରା. ବି. ଉଦୟପୁର ବା ଚିତୋର ରାଜବଂଶର ଉପାଧି ।

ମହାରାଣୀ—ଗ୍ରା.ସ୍ତ୍ରୀ. ବି. ମହାରାଜ୍ଞୀ ଦେଖ

ମହାରାତ୍ର—କ୍ଳୀ.ବି.ଦ୍ୱିପ୍ରହରରାତ୍ରି, ନିଶୀଥ, ଅର୍ଦ୍ଧରାତ୍ର ।

ମହାରାତ୍ରି—ସ୍ତ୍ରୀ. ବି. ( ମହତୀ+ରାତ୍ରୀ ) କ.ଧା;ବ୍ରହ୍ମଲୟୋପଲକ୍ଷିତା ମହାପ୍ରଳୟ ରାତ୍ରି,ବ୍ରହ୍ମମରଣୋପଲକ୍ଷିତା ରାତ୍ରି,ଦୁର୍ଗା, ଅର୍ଦ୍ଧରାତ୍ରର ପର ଦୁଇ ମୁହୂର୍ତ୍ତକାଳ, ଆଶ୍ୱିନ ଶୁକ୍ଳାଷ୍ଟମୀ ରାତ୍ରି,ଦୁର୍ଗାଷ୍ଟମୀ, କାଳରାତ୍ରି ।

ମହାରାୟ—ଗ୍ରା. ବି. ମହାରାଜ, କ୍ଷତ୍ରିୟମାନଙ୍କ ବଂଶୋପାଧିବିଶେଷ ।

ମହାରାଷ୍ଟ୍ର—ବି. (କ.ଧା) ଭାରତବର୍ଷର ଦକ୍ଷିଣ ପଶ୍ଚିମାନ୍ତବର୍ତ୍ତୀ ଗୋଟିଏ ପ୍ରଧାନ ଜନପଦ, ମରହଟ୍ଟାଦେଶ, ତଦ୍ଦେଶବାସୀ ବ୍ୟକ୍ତି ।

ମହାରାଷ୍ଟ୍ରକ—ବିଂ. ( ମହାରାଷ୍ଟ୍ର+କ ) ମହାରାଷ୍ଟ୍ର ଦେଶଜାତ ।

ମହାରାଷ୍ଟ୍ରୀ—ସ୍ତ୍ରୀ. ବି. (ମହାରାଷ୍ଟ୍ର+ଈ) ମରହଟ୍ଟା ଦେଶର ଅଧିବାସୀ,ମରହଟ୍ଟୀ ଭାଷା, ଜଳପିପ୍ପଳୀ, ମହାଶୁଣ୍ଡା, ଶାକବିଶେଷ, କାନ୍‌ସିରଶାଗ ।

ମହାରାଷ୍ଟ୍ରୀୟ—ବିଂ. (ମହାରାଷ୍ଟ୍ର+ଈୟ) ମହାରାଷ୍ଟ୍ର ସମ୍ବନ୍ଧୀୟ, ମରହଟ୍ଟୀ ।

ମହାରଷ୍ଟ—ବି. ମହାନିମ୍ବବିଶେଷ ।

ମହାରୁଜ୍—ବି. ଅତିଶୟ ପୀଡ଼ା ।

ମହାରୁଣ୍ଡା—ଗ୍ରା. ବି. କାନ୍‌ସିର ଶାଗ, ଜଳପିପ୍ପଳୀ, (ଗ୍ରା.ପୁଂ.ବିଂ) ଅତିକୃପଣ, ମହାରେଣ୍ଡା ।

ମହାରୁଣ୍ଡୀ—ଗ୍ରା. (ସମ୍ବ) ବି. ହଳଦିଆଫୁଲଯୁକ୍ତ ପୋକଶୁଙ୍ଘା ଗଛପରି ଏକଜାତୀୟ ଗୁଳ୍ମ, ଏହାର ଫଳ ଶିବଲିଙ୍ଗପରି ।

ମହାରୁଦ୍ର—ପୁଂ. ବି. ( କ.ଧା ) ଶିବ, ମହାଦେବ,କାଳଜ୍ଞାନ ନାମକ ବୈଦ୍ୟକ ଗ୍ରନ୍ଥର ପ୍ରଣେତା ।

ମହାରୁରୁ—ପୁଂ. ବି. ମୃଗବିଶେଷ ।

ମହାରୂପ—ବି.(ବ.ଗ୍ରା) ଶିବ,ମହାଦେବ, ବିଂ.ଅତିଶୟ ରୂପଯୁକ୍ତ,(ସ୍ତ୍ରୀ)ମହାରୂପା ।

ମହାରୂପକ—କ୍ଳୀ. ବି. ନାଟକ, କାବ୍ୟର ଅର୍ଥାଳଂକାରବିଶେଷ ।

ମହାରେତଃ—ପୁଂ.ବି. ସାତିଶୟ ବୀର୍ଯ୍ୟବାନ୍ ଶିବ ।

ମହାରୋଗ—ବି. ମହାବ୍ୟାଧି ମାତ୍ର,ପାପରୋଗବିଶେଷ, ଏହି ରୋଗ ଅଷ୍ଟବିଧ, (ଉନ୍ମାଦ, ତ୍ୱକ୍‌ଦୋଷ, କୁଷ୍ଠ,ରାଜଯକ୍ଷ୍ମା, ଶ୍ୱାସ, ମଧୁମେହ, ଭଗନ୍ଦର, ଉଦରୀ ଓ

ଅଶ୍ଳୀଳ) । [ ବା ଗ୍ରନ୍ଥ ।

ମହାରେଗୀ—ପୁଂ. ବିଂ. ମହାରେଗଯୁକ୍ତ

ମହାରେମା—ପୁଂ.ବ. ଶିବ,(ବିଂ) ବୃହତ୍‌ରୋମଯୁକ୍ତ, ଅତି ଲୋମଶ ।

ମହାରୋଷ—ବ.(କ.ଧା)ବିଶେଷ କ୍ରୋଧ ।

ମହାରୌଦ୍ର—ପୁଂ. ବି. ଅତି ଭୟଙ୍କର, ଅତ୍ୟନ୍ତ ରୌଦ୍ର, (ସ୍ତ୍ରୀ) ମହାରୌଦ୍ରୀ, (ପୁଂ.ବ) ଶିବ ।

ମହାରୌଦ୍ରୀ—ସ୍ତ୍ରୀ. ବ. ଦୁର୍ଗା ।

ମହାରୌରବ—ପୁଂ. ବ. (ମହତ୍+ରୁରୁ+ଅ) ନରକବିଶେଷ ।

ମହାରୌହିଣ—ପୁଂ.ବ.ଦାନବବିଶେଷ ।

ମହାର୍ଘ—ବିଂ. (ମହତ୍+ଅର୍ଘ) ବ.ଗ୍ରୀ; ମହାମୂଲ୍ୟ, ଦାମିକା, ଦୁର୍ମୂଲ୍ୟ, (ବ) ଲାବକପକ୍ଷୀ, ମହାମୋମଲତା ।

ମହାର୍ଘ୍ୟ—ବିଂ. ( ମହତ୍+ଅର୍ଘ+ଯ ) ମହାମୂଲ୍ୟ,ଦାମିକା,(ବ) ଲାବକଜାତୀୟ ପକ୍ଷିବିଶେଷ ।

ମହାର୍ଚ୍ଚିଃ—ପୁଂ. ବ. (ମହତ୍+ଅର୍ଚ୍ଚିସ୍) ବ.ଗ୍ରୀ; ଅଗ୍ନି, ବିଂ.ଅତ୍ୟୁଚ୍ଚ ଶିଖାବିଶିଷ୍ଟ ।

ମହାର୍ଣ୍ଣବ—ପୁଂ. ବ. (ମହାନ୍+ଅର୍ଣ୍ଣବ) ମହାସମୁଦ୍ର, ଶିବ, କୂର୍ମରୂପୀ ଭଗବାନଙ୍କର ଦକ୍ଷପାଦୋଦ୍ଭବ ଦେଶ ।

ମହାର୍ଥ—ବିଂ. ଧନୀ, ମହତ୍, ଜରୁରୀ,ଅର୍ଥପୂର୍ଣ୍ଣ, (କ୍ଲୀ.ବ) ମହାଭାଷ୍ୟ ।

ମହାର୍ଥକ—ତ୍ରି. ବିଂ. ଅତିଶୟ ମୂଲ୍ୟବାନ୍ ।

ମହାର୍ଥବାନ୍—ପୁଂ.ବିଂ. (ମହାର୍ଥ+ବତ୍) ମହାର୍ଥଯୁକ୍ତ, (ସ୍ତ୍ରୀ) ମହାର୍ଥବତୀ ।

ମହାର୍ଦ୍ରକ—କ୍ଲୀ. ବ. ବନାର୍ଦ୍ରକ, ବଣଅଦା, ଶୁଣ୍ଠୀ ।

ମହାର୍ବୁଦ—କ୍ଲୀ. ବ. ଦଶାର୍ବୁଦ, ଶତକୋଟି ସଂଖ୍ୟା, ଏକବୃନ୍ଦ ।

ମହାର୍ହ—କ୍ଲୀ. ବ. (ମହା+ଅର୍ହ) ବ.ଗ୍ରୀ; ଶ୍ୱେତଚନ୍ଦନ, (ବିଂ) ମହାର୍ଘ, ଅମୂଲ୍ୟ, ମହାପୂଜ୍ୟ, ମୂଲ୍ୟବାନ୍ ।

ମହାଲ—ଯା. ବି. ଭୂମିସମ୍ପତ୍ତି, ଯେଉଁ ଭୂଖଣ୍ଡ ସମୂହର ରାଜକୀୟ କର ସ୍ୱତନ୍ତ୍ର ନିର୍ଦ୍ଦିଷ୍ଟ ଥାଏ, ଜମିଦାରୀ ।

ମହାଲକ୍ଷ୍ମୀ—ସ୍ତ୍ରୀ. ବ. ( କ.ଧା ) ରାଧା, ନାରାୟଣଙ୍କ ଶକ୍ତି, ନାରାୟଣୀ,ଧନଦାତ୍ରୀ ଦେବୀ, ଶ୍ରୀ, ବିଭବ, ସମ୍ପତ୍ତି, ଦୁର୍ଗାରୂପେ କଳ୍ପିତା ଓ ପୂଜିତା ବାଳିକା ।

ମହାଲକ୍ଷ୍ମୀପୂଜା—ଗ୍ରା. ବ. କୁମାରୋତ୍ସବ, କୋଜାଗର ପୂର୍ଣ୍ଣିମା,ଆଶ୍ୱିନ ପୂର୍ଣ୍ଣିମା ।

ମହାଲକ୍ଷ୍ମୀବୁଡ଼—ଗ୍ରା. ବ. ମହାଲକ୍ଷ୍ମୀସ୍ନାନ, ରଜସଂକ୍ରାନ୍ତିର ତୃତୀୟ ଦିବସ ।

ମହାଲକ୍ଷ୍ମୀବ୍ରତ—ଗ୍ରା. ବ. ସୁଦଶାବ୍ରତ, ମାର୍ଗଶିର ଗୁରୁବାର ଓଷା ।

ମହାଲଜ୍ଜା—ସ୍ତ୍ରୀ. ବ. ଅତ୍ୟନ୍ତ ଲଜ୍ଜା ।

ମହାଲୟ—ବ. ବିହାର,ତୀର୍ଥ, ପରମାତ୍ମା, ଆଶ୍ୱିନମାସର କୃଷ୍ଣପକ୍ଷ, ଅପରପକ୍ଷ, ପିତୃପକ୍ଷ, ବଡ଼ଘର ।

ମହାଲୟା—ସ୍ତ୍ରୀ. ବ. (ମହାଲୟ+ଆ) ଆଶ୍ୱିନମାସର ଅମାବାସ୍ୟା ।

ମହାଲୟାଶ୍ରାଦ୍ଧ—ବ. ଯେଉଁ ତିଥିରେ ପିତାଙ୍କର ମୃତ୍ୟୁ ହୋଇଥାଏ ଆଶ୍ୱିନ ମାସର ପିତୃପକ୍ଷରେ ସେହି ତିଥିରେ କିମ୍ବା ଆଶ୍ୱିନ ଅମାବାସ୍ୟା ଦିନ କରାଯିବା ପିତୃଶ୍ରାଦ୍ଧ । [ ମହାଳସା ।

ମହାଲସ—ବିଂ. ଅତିଶୟ ଅଳସ, (ସ୍ତ୍ରୀ)

ମ(ମା)ହାଳିଆ—ଗ୍ରା. ବିଂ. ନିଷ୍ପ୍ରୟୋଜନ, ନିଷ୍ଫଳ, ମାଗଣା,(ଗ୍ରା.କ୍ରି.ବିଂ)ବୃଥାରେ, ଉଚ୍ଛାଳୁ, ଅକାରଣରେ ।

ମ(ମା)ହାଳିଆମ୍ବୁଜଦେବ—ଗ୍ରା. ବ. ଜନୈକପ୍ରାଚୀନ ପୁରୀରାଜାଙ୍କର ଉପାଧି. (ଗ୍ରା.ବ-ଲ.ଅର୍ଥ) ଉପାଧି ଅନୁସାରେ କାର୍ଯ୍ୟ ନକରିବା ବ୍ୟକ୍ତି । [ ବୃକ୍ଷ ।

ମହାଲିକଣ୍ଟକୀ—ସ୍ତ୍ରୀ. ବ. ଶ୍ୱେତକଣ୍ଟକାରୀ

ମହାଲିଙ୍ଗ—ବ. ଶିବ,ହିମାଳୟସ୍ଥିତ ଶିବଲିଙ୍ଗବିଶେଷ, (କ.ଧା) ବୃହତ୍‌ଲିଙ୍ଗ, (ପୁଂ.ବିଂ-ବ.ଗ୍ରୀ) ବୃହଲ୍ଲିଙ୍ଗଯୁକ୍ତ ।

ମହାଲମ୍ବ—ବ.ବଡ଼ ବଡ଼ ପତ୍ରଯୁକ୍ତ ଲମ୍ବାବର୍ଗର ତରୁ ।

ମହାଲିଳସରସ୍ୱତୀ—ସ୍ତ୍ରୀ. ବ. ତନ୍ତ୍ରୋକ୍ତ ତାରାଦେବୀବିଶେଷ ।

ମହାଲୋଭ—ପୁଂ. ବ. (ବ.ଗ୍ରୀ) କାକ, (ବିଂ) ଅତିଶୟ ଲୋଭୀ ।

ମହାଲୋମା—ପୁଂ. ବ. ଶିବ, (ବିଂ) ବୃହଲ୍ଲୋମଯୁକ୍ତ, ମହାରୋମ ।

ମହାଲୋଳ—ପୁଂ. ବ. କାକ,(ବିଂ-କ.ଧା) ଅତିଚଞ୍ଚଳ, (ସ୍ତ୍ରୀ) ମହାଲୋଳା ।

ମହାଲୋହ—କ୍ଲୀ.ବ. (କ.ଧା) ଅୟସ୍କାନ୍ତ, ଚୁମ୍ବକପଥର ।

ମହାବଂଶ—ପୁଂ. ବ. ପ୍ରସିଦ୍ଧବଂଶ, ପାଲିଭାଷାରେ ଲିଖିତ ପ୍ରସିଦ୍ଧ ସିଂହଳୀୟ ରାଜ ଇତିହାସ ।

ମହାବଂଶ୍ୟ—ବିଂ. ମହଦ୍‌ବଂଶୋତ୍ପନ୍ନ,ମହାବଂଶ ସମ୍ଭବ ।

ମହାବକାଶ—ପୁଂ.ବ.ଅତିଶୟ ଅବକାଶ ।

ମହାବକ୍ତ୍ର—ବିଂ. (ବ.ଗ୍ରୀ) ବୃହତ୍ ମୁଖବିଶିଷ୍ଟ, (ବିଂ) ଦାନବବିଶେଷ ।

ମହାବକ୍ଷା—ପୁଂ. ବ. ( ବ.ଗ୍ରୀ ) ଶିବ, ମହାଦେବ, (ବିଂ)ବୃହତ୍ ବକ୍ଷୋଯୁକ୍ତ ।

ମହାବଣିକ୍—ପୁଂ. ବ. ଶ୍ରେଷ୍ଠ ବଣିକ୍, ବଡ଼ ମହାଜନ ।

ମହାବନ—କ୍ଲୀ. ବ. (କ.ଧା) ମହାରଣ୍ୟ, ଅଗନାଗ୍ନି ବନସ୍ଥ, ଘୋରଜଙ୍ଗଲ,ବୃନ୍ଦାବନସ୍ଥ ୮୪ ବନର ଅନ୍ତର୍ଗତ ବନବିଶେଷ ।

ମହାବନ୍ଧ—କ୍ଲୀ. ବ. ଯୋଗପ୍ରକ୍ରିୟାରେ ହସ୍ତପଦାଦିର ବନ୍ଧନୀବିଶେଷ ।

ମହାବରୀ—ସ୍ତ୍ରୀ. ବ. (ମହତ୍+ବୃ+[illegible]+ଆ) ଦୂବ ।

ମହାବରାହ—ପୁଂ.ବ. ବରାହରୂପୀ ଭଗବାନ୍, ବିଷ୍ଣୁସହସ୍ରନାମୋକ୍ତ ବିଷ୍ଣୁଙ୍କର ଏକନାମ ।

ମହାବରୋହ—ବ. ପ୍ଲକ୍ଷବୃକ୍ଷ ।

ମହାବଳ—ପୁଂ. ବିଂ. (ବ.ଗ୍ରୀ) ପ୍ରବଳ, ଅତ୍ୟଧିକ ବଳଶାଳୀ,(ବ) ବୁଦ୍ଧଦେବ, ବାୟୁ, ସୀସାଧାତୁ, (ଗ୍ରା.ବ) ଶାର୍ଦ୍ଦୂଳ, ବଡ଼ବାଘ ।

ମହାବଳା—ବ. (ମହାବଳ+ଆ) ଶ୍ୱେତ ବାଡ଼ିଅଁଳା, ବଜ୍ରମୂଳୀ ।

ମହାବଳୀ—ପୁଂ.ବିଂ. (ମହାନ୍+ବଳିନ୍) ଅତ୍ୟନ୍ତ ବଳଶାଳୀ, ପ୍ରବଳ ପରାକ୍ରମୀ, (ବ) ମହାବୀର, ମହାବାହା,ଦେବତାରୂପେ ପୂଜିତ ହନୁମାନ୍ ମୂର୍ତ୍ତି ।

ମହାବଲ୍ଲୀ—ସ୍ତ୍ରୀ.ବି. ମାଧବୀ ଲତା,ଉତ୍ତମା-ଲତା । [ ଶିଂଶୁମାର ।
ମହାବସ—ପୁଂ.ବି.(ମହତ୍+ବସା)ବି.ଗ୍ରା;
ମହାବସୁ—ବିଂ. ପ୍ରଭୂତ ଧନଶାଳୀ, (ପୁଂ,ବି) ଇନ୍ଦ୍ରାବରୁଣ ।
ମହାବାକ୍ୟ—କ୍ଲୀ. ବି. ( କ.ଧା ) ମହତ୍ ବାକ୍ୟ, ଆପ୍ତବାକ୍ୟ, ପ୍ରବଚନ,ଯୋଗ୍ୟ-ତାକାଙ୍କ୍ଷା ସତ୍ତିଯୁକ୍ତ ବାକ୍ୟସମୂହ,ସଂକଳ୍ପ ବାକ୍ୟ, ପ୍ରତିଷ୍ଠା ଓ ଦାନାଦି କାର୍ଯ୍ୟରେ ଉତ୍ସର୍ଗ ବାକ୍ୟ, ତତ୍ତ୍ୱମସି ବାକ୍ୟ, ବ୍ରହ୍ମ ପ୍ରତିପାଦକ ବାକ୍ୟ, ପ୍ରଣବ, ଓଁ ତତ୍-ସତ୍ ଏହିବାକ୍ୟ ।
ମହାବାତ—ପୁଂ.ବି. (କ ଧା) ଅତିଶୟ ବାୟୁ, ପ୍ରବଳ ଝଡ଼ । [ ବିଶେଷ ।
ମହାବାତବ୍ୟାଧି—ପୁଂ.ବି. ବାତରୋଗ-
ମହାବାଦୀ—ପୁଂ,ବିଂ, ବିରୁଦ୍ଧବାଦୀ, (ସ୍ତ୍ରୀ) ମହାବାଦିନୀ ।
ମହାବାୟୁ—ପୁଂ.ବି.(କ.ଧା) ପ୍ରବଳ ଝଡ଼, ପଞ୍ଚ ମହାଭୂତରୁ ଏକତମ, ମରୁତ୍, ତୋଫାନ, ପ୍ରାଣବାୟୁ
ମହାବାରୁଣୀ—ସ୍ତ୍ରୀ. ବି. ଗଙ୍ଗାସ୍ନାନର ଯୋଗବିଶେଷ ।
ମହାବାର୍ତ୍ତାକିନୀ—ସ୍ତ୍ରୀ. ବି. ମହାବାର୍ତ୍ତାକୀ ବୃକ୍ଷ, ବନବାଇଗଣ ।
ମହାବାହୁ—ବିଂ. (ବି.ଗ୍ରା) ବିଶାଳ ବାହୁ-ବିଶିଷ୍ଟ, ଅତିଶୟ ଶକ୍ତିଶାଳୀ, (ବି) ଶ୍ରୀକୃଷ୍ଣ, ବିଷ୍ଣୁ ।
ମହାବିକ୍ରମ—ବିଂ. ପ୍ରବଳ ପରାକ୍ରମଶାଳୀ, (ପୁଂ.ବି-ବି.ଗ୍ରା) ସିଂହ, ନାଗବିଶେଷ, (କ.ଧା) ପ୍ରବଳ ପରାକ୍ରମ,(ସ୍ତ୍ରୀ) ମହା-ବିକ୍ରମା ।
ମହାବିକ୍ରମଶାଳୀ—ପୁଂ, ବିଂ. ଅତିଶୟ ପରାକ୍ରମଶାଳୀ, (ସ୍ତ୍ରୀ) ମହାବିକ୍ରମଶାଳିନୀ
ମହାବିକ୍ରମୀ—ପୁଂ.ବି. ବୋଧିସତ୍ତ୍ୱଭେଦ, (ବିଂ) ମହାପରାକ୍ରମୀ । [ ବାଧା ।
ମହାବିଘ୍ନ—ପୁଂ. ବି. ପ୍ରବଳ ବିଘ୍ନ,ପ୍ରବଳ
ମହାବିଜ୍ଞ—ବିଂ. (ମହାନ୍+ବି+ଜ୍ଞା+ଅ) ଅତିଶୟ ଜ୍ଞାନୀ ।
ମହାବିଦେହ—କ୍ଲୀଂ,ବି. ପୁଣ୍ୟକ୍ଷେତ୍ରବିଶେଷ
ମହାବିଦେହା—ସ୍ତ୍ରୀ.ବି. ଯୋଗଶାସ୍ତ୍ରୋକ୍ତ ମନର ବହିର୍ବୃତ୍ତିବିଶେଷ ।
ମହାବିଦ୍ୟା—ସ୍ତ୍ରୀ.ବି. ଦଶ ମହାବିଦ୍ୟା, ଦୁର୍ଗା ବା ଶକ୍ତିଙ୍କର ତନ୍ତ୍ରୋକ୍ତ ଦଶ-ଗୋଟି ମୂର୍ତ୍ତି, ଯଥା—କାଳୀ, ତାରା, ମହାବିଦ୍ୟା, ଷୋଡ଼ଶୀ, ଭୁବନେଶ୍ୱରୀ, ଭୈରବୀ, ଛିନ୍ନମସ୍ତା, ଧୂମାବତୀ,ମାତଙ୍ଗୀ, ବଗଳା ଏହି ଦଶ ।
ମହାବିଦ୍ୟୁତ୍ପ୍ରଭା—ପୁଂ.ବି.(ବି.ଗ୍ରା)ନାଗ-ବିଶେଷ । [ ବିଶେଷ ।
ମହାବିଦ୍ୟେଶ୍ୱରୀ—ସ୍ତ୍ରୀ. ବି. ଦୁର୍ଗାମୂର୍ତ୍ତି-
ମହାବିନାୟକ—ବି. ଗଣପତି, ଗଣେଶ, (ଗ୍ରା.ବି) ଉତ୍କଳର ପ୍ରଧାନ ପଞ୍ଚତୀର୍ଥ ମଧ୍ୟରୁ ଏକତମ ।
ମହାବିପଦ୍(ତ୍)—ବି.(କ.ଧା)ଘୋରବିପତ୍ତି
ମହାବିପ୍ଲବ—ବି.(କ.ଧା) ଘୋର ଗୋଳ-ମାଳ ।
ମହାବିଭୂତ—ବିଂ.(ବି.ଗ୍ରା) ମହୈଶ୍ୱର୍ଯ୍ୟ-ଶାଳୀ, (ପୁଂ.ବି) ବିଷ୍ଣୁ ।
ମହାବିରାଟ—ପୁଂ. ବି. ମହାବିଷ୍ଣୁ ।
ମହାବିଲ—କ୍ଲୀ. ବି. (କ.ଧା) ଆକାଶ, ବୃହଚ୍ଛିଦ୍ର,ଅନ୍ତଃକରଣ, ବୃହତ୍ ଗଭୀର ଗର୍ତ୍ତ, ଜଳଘଟ ।
ମହାବିଶିଷ୍ଟ—ବିଂ. ଅତିପ୍ରସିଦ୍ଧ ।
ମହାବିଷ—ପୁଂ. ବି. (ବି.ଗ୍ରା) କାଳସର୍ପ, ଦୋମୁଣ୍ଡିଆ ସାପ,(ବିଂ)ମହାବିଷବିଶିଷ୍ଟ, (ବି.କ.ଧା) ଗରଳ, ହଳାହଳ ।
ମହାବିଷୁବ—କ୍ଲୀ. ବି. ମେଷ ସଂକ୍ରାନ୍ତି, ପଣାସଂକ୍ରାନ୍ତି,ଏଦିନ ଦିନରାତ୍ରି ସମାନ ।
ମହାବିଷୁବଚକ୍ର—କ୍ଲୀ. ବି. ନକ୍ଷତ୍ରଘଟିତ ନରାକାର ଚକ୍ର, ସଂକ୍ରାନ୍ତି ପୁରୁଷ ଚକ୍ର ।
ମହାବିହାର—ପୁଂ. ବି. ସିଂହଳ ଦ୍ୱୀପର ଅନୁରାଧାପୁରସ୍ଥ ବୌଦ୍ଧସଂଘାରାମବିଶେଷ
ମହାବୀଚ—ବି. (ବି.ଗ୍ରା)ନରକବିଶେଷ ।
ମହାବୀର—ପୁଂ. ବିଂ. (ମହାନ୍+ବୀର) ଅତି ବଳବାନ୍, (ବି) ଗରୁଡ଼, ସୁର, ସିଂହ, ପ୍ରସିଦ୍ଧ ଯୋଦ୍ଧା, ହନୁମାନ୍, ଲକ୍ଷ୍ମଣ, ଯଜ୍ଞପାତ୍ର, ଯଜ୍ଞାଗ୍ନି, କୋକିଳ, ବଜ୍ର, ଶ୍ୱେତ ତୁରଙ୍ଗ, ଛୁଞ୍ଚାଣପକ୍ଷୀ, ଜୈନତୀର୍ଥଙ୍କର ବିଶେଷ,(ସ୍ତ୍ରୀ)ମହାବୀରା ।
ମହାବୀରଚରିତ—କ୍ଲୀ.ବି.ମହାକବି ଭବ-ଭୂତି ପ୍ରଣୀତ ପ୍ରସିଦ୍ଧ ଶ୍ରୀ ରାମଚରିତା-ଖ୍ୟାନ ।
ମହାବୀରଚରିତ—କ୍ଲୀ. ବି. ଜୈନତୀର୍ଥ-ଙ୍କର ମହାବୀରଙ୍କ ଜୀବନୀ ।
ମହାବୀରା—ସ୍ତ୍ରୀ.ବି.(ମହାବୀର+ଆ)କ୍ଷୀର-କାକୋଲୀ ।
ମହାବୀର୍ଯ୍ୟ—ପୁଂ. ବି. (ବି.ଗ୍ରା) ବୁଦ୍ଧ-ବିଶେଷ, ବ୍ରହ୍ମା, ବାରାହୀକନ୍ଦ, ବୌଦ୍ଧ-ଭିକ୍ଷୁବିଶେଷ, ଜୈନଅର୍ହତ୍ଭେଦ, ତାମସରୌଚ୍ୟ ରୌଚ୍ୟ ମନ୍ୱନ୍ତରର ଇନ୍ଦ୍ରଭେଦ,(କ.ଧା) ଅତି ବୀରତ୍ୱ,ଅତି-ଶୟ ପରାକ୍ରମ ବା ତେଜ, (ବିଂ.ବି.ଗ୍ରା) ଅତିଶୟ ବଳଯୁକ୍ତ, ଅତ୍ୟନ୍ତ ବୀର୍ଯ୍ୟ-ଶାଳୀ, ବଳିଷ୍ଠ, (ସ୍ତ୍ରୀ) ମହାବୀର୍ଯ୍ୟା ।
ମହାବୀର୍ଯ୍ୟା—ସ୍ତ୍ରୀ. ବି. (ମହାବୀର୍ଯ୍ୟ+ଆ) ସୂର୍ଯ୍ୟପତ୍ନୀ, ସଂଜ୍ଞା, ବନକାର୍ପାସୀ, ମହା-ଶତାବରୀ ।
ମହାବୁଦ୍ଧ—ବି. ନେପାଳସ୍ଥ ବୁଦ୍ଧମୂର୍ତ୍ତି-ଭେଦ, ବୁଦ୍ଧଦେବ ।
ମହାବୃକ୍ଷ—ପୁଂ. ବି. (କ.ଧା) ବଡ଼ଗଛ, ସ୍ନୁହୀବୃକ୍ଷ, ସିଜୁଗଛ, କରଞ୍ଜବୃକ୍ଷ, ତାଳ-ଗଛ, ମହାପୀଲୁ ବୃକ୍ଷ ।
ମହାବୃଦ୍ଧ—ବିଂ. ଅତିଶୟ ବୃଦ୍ଧ ।
ମହାବୃନ୍ଦ—କ୍ଲୀ.ବି. ସଂଖ୍ୟାବିଶେଷ, ଲକ୍ଷ-ବୃନ୍ଦସଂଖ୍ୟା ।
ମହାବୃହତୀ—ସ୍ତ୍ରୀ.ବି. ବାର୍ତ୍ତାକୀ, ବାଇଗଣ
ମହାବେଗ—ପୁଂ.ବି(ବି.ଗ୍ରା)ଶିବ,ଗରୁଡ଼, ମର୍କଟବିଶେଷ,(କ.ଧା) ଅତିବେଗ,(ବିଂ, ବି.ଗ୍ରା) ଅତିଶୟ ବେଗଯୁକ୍ତ, ପ୍ରବଳ ବେଗଶାଳୀ, (ସ୍ତ୍ରୀ) ମହାବେଗା ।
ମହାବେଗବତୀ—ସ୍ତ୍ରୀ.ବିଂ. (ମହାବେଗ+ବତ୍+ଈ) ଅତି ବେଗବିଶିଷ୍ଟ, (ବି) ବୃକ୍ଷବିଶେଷ ।
ମହାବେଦୀ—ସ୍ତ୍ରୀ.ବି.ଶ୍ରେଷ୍ଠବେଦୀ, ପୀଠ-ରୂପ ଉଚ୍ଚସ୍ଥାନ, ଯଜ୍ଞବେଦୀ ।
ମହାବେଦମହୋତ୍ସବ—ବି. ଶ୍ରୀଜଗନ୍ନାଥ-ଙ୍କର ଗୁଣ୍ଡିଚାବିଜୟୋତ୍ସବ ।

ମହାବେଧ—ପୁଂ. ବି. ଯୋଗପ୍ରକ୍ରିୟୋକ୍ତ ହସ୍ତପଦାଦିର ସଞ୍ଚାଳନବିଶେଷ ।

ମହାବେଳ—ବିଂ. (ବି.ଗ୍ରା) ମହାତରଙ୍ଗ ବା ସ୍ରୋତଯୁକ୍ତ, ବହୁତରଙ୍ଗଯୁକ୍ତ ।

ମହାବୈଦ୍ୟ—ପୁଂ. ବି. (କ.ଧା) ଉତ୍କୃଷ୍ଟ ଚିକିତ୍ସକ ।

ମହାବୈପୁଲ୍ୟ--କ୍ଲୀ.ବି.ଅତିଶୟ ବିପୁଳତା

ମହାବୈର—କ୍ଲୀ.ବି.(କ.ଧା)ଚିରଶତ୍ରୁତା, ଘୋର ଶତ୍ରୁତା ।

ମହାବୈରୀ—ପୁଂ.ବି. (ମହାନ୍+ବୈରୀ) ଘୋର ଶତ୍ରୁ, (ସ୍ତ୍ରୀ) ମହାବୈରିଣୀ ।

ମହାବୋଧି—ବି.(ମହାନ୍+ବୋଧି)ବୁଦ୍ଧଦେବ, ବୌଦ୍ଧ ଭିକ୍ଷୁ, ବୁଦ୍ଧ ବା ଜ୍ଞାନୀଙ୍କର ବୋଧଶକ୍ତି ।

ମହାବୋଧିଦ୍ରୁମ—ବି.ଗୟା ନିକଟସ୍ଥ ବୁଦ୍ଧଗୟା ନାମକ ସ୍ଥାନରେ ଥିବା ପ୍ରାଚୀନ ଅଶ୍ୱତ୍ଥ ବୃକ୍ଷ ।

ମହାବୋଧିସତ୍ତ୍ୱ—ବି. ବୁଦ୍ଧଦେବ ।

ମହାବ୍ୟସ୍ତ—ବିଂ.(ମହତ୍+ବ୍ୟସ୍ତ)କ.ଧା; ଅତି ଦୁଃଖିତ, ଅତିଚଞ୍ଚଳ, ଅତି କାର୍ଯ୍ୟବ୍ୟସ୍ତ ।

ମହାବ୍ୟାଧି—ବି. (କ.ଧା) ଦୁରାରୋଗ୍ୟ ପୀଡ଼ା, କୁଷ୍ଠ ପ୍ରଭୃତି ରୋଗ ।

ମହାବ୍ୟାହୃତି—ସ୍ତ୍ରୀ.ବି. (କ.ଧା) ଗାୟତ୍ରୀମନ୍ତ୍ରାନ୍ତର୍ଗତ ପ୍ରଣବ ଓ ସ୍ୱାହାଯୁକ୍ତବ୍ୟାହୃତିତ୍ରୟ, (ଓଁ ଭୂଃ ସ୍ୱାହା, ଓଁ ଭୁବଃ ସ୍ୱାହା, ଓଁ ସ୍ୱଃ ସ୍ୱାହା ଏହି ତିନିମନ୍ତ୍ର ।

ମହାବ୍ୟୁତ୍ପତ୍ତି—ସ୍ତ୍ରୀ. ବି.ଭୋଟ ଭାଷାରେ ରଚିତ ଖଣ୍ଡିଏ ସଂସ୍କୃତ ଅଭିଧାନ ।

ମହାବ୍ରଣ—କ୍ଲୀ. ବି. (କ.ଧା) ଦୁଷ୍ଟବ୍ରଣ, ନାଳୀଘା, ଦୁରାରୋଗ୍ୟ ବ୍ରଣରୋଗ ।

ମହାବ୍ରତ—କ୍ଲୀ. ବି. (କ.ଧା) ଦ୍ୱାଦଶ ବାର୍ଷିକ ବ୍ରତବିଶେଷ, ଶରତ୍‌କାଳୀନ ଦୁର୍ଗାପୂଜା, ଅରୁଣୋଦୟ କାଳରେ ମାଘ ମାସରେ ଗଙ୍ଗାସ୍ନାନ, ପାଶୁପତାଦି ବ୍ରତ, (ବିଂ. ବ.ବ୍ରୀ) ମହାବ୍ରତଧାରୀ, ଶ୍ରେଷ୍ଠ ବ୍ରତମାତ୍ର, (ସ୍ତ୍ରୀ) ମହାବ୍ରତା ।

ମହାବ୍ରତକ—ବିଂ.ମହାବ୍ରତ ପାଳନକାରୀ. ପାଶୁପତ ବ୍ରତାବଲମ୍ବୀ ।

ମହାବ୍ରତୀ—ପୁଂ.ବିଂ. (ମହାବ୍ରତ+ଇନ୍) ମହାବ୍ରତଯୁକ୍ତ, (ବି) ଶିବ, ଉଗ୍ରତପ ।

ମହାବ୍ରାହ୍ମଣ—ବି.(କ.ଧା)ଉତ୍କୃଷ୍ଟ ବ୍ରାହ୍ମଣ, ସମାଜଚ୍ୟୁତ ବ୍ରାହ୍ମଣ,ଅଗ୍ରଦାନୀ ବ୍ରାହ୍ମଣ, ଶ୍ରେଷ୍ଠ ବ୍ରାହ୍ମଣ,ଶୂଦ୍ରମାନଙ୍କର ଅନ୍ତ୍ୟେଷ୍ଟିକ୍ରିୟା କରୁଥିବା ପୁରୋହିତ ବ୍ରାହ୍ମଣ, ଶଯ୍ୟା ଓ କରଟା ଦାନ ଗ୍ରହଣ କରୁଥିବା ବ୍ରାହ୍ମଣ ।

ମହାଶକ୍ତି—ପୁଂ.ବି(ବ.ବ୍ରୀ) କାର୍ତ୍ତିକେୟ, ଶିବ, କୃଷ୍ଣଙ୍କର ଏକପୁତ୍ର, (ସ୍ତ୍ରୀ. ବି. କ.ଧା)ଆଦ୍ୟାଶକ୍ତି, ଦୁର୍ଗା, ପ୍ରବଳ ପରାକ୍ରମ ବା କ୍ଷମତା, (ବିଂ) ମହାପରାକ୍ରମଶାଳୀ, ଅତିଶୟ ଶକ୍ତିଶାଳୀ ।

ମହାଶଙ୍ଖ—ପୁଂ.ବି.ସଂଖ୍ୟାବିଶେଷ, ଦଶଲକ୍ଷ କୋଟି ସଂଖ୍ୟା, କର୍ଣ୍ଣ ଓ ନେତ୍ରର ମଧ୍ୟବର୍ତ୍ତୀ ଅସ୍ଥି, ଲଲାଟାସ୍ଥି. ବଡ଼ଶଙ୍ଖ, ଭୀମଙ୍କ ଶଙ୍ଖ, କୁବେରଙ୍କ ନିଧିବିଶେଷ, ଶଙ୍ଖନିଧି, ଅସ୍ତ୍ରବିଶେଷ ।

ମହାଶଙ୍ଖଦ୍ରାବକ—ବି. ପ୍ଳୀହା ଓ ଯକୃତ୍ ରୋଗନାଶକ ଔଷଧବିଶେଷ ।

ମହାଶଠ—ପୁଂ. ବି. ରାଜଧୁସ୍ତୂର, (ବିଂ) ଅତିଶୟ ଧୂର୍ତ୍ତ, ଅତ୍ୟନ୍ତ ପ୍ରତାରକ ।

ମହାଶଣ—ବି.ସ୍ୱନାମ ପ୍ରସିଦ୍ଧ ବୃକ୍ଷବିଶେଷ

ମହାଶଣପୁଷ୍ପିକା—ବି. ଶଣପୁଷ୍ପୀ ନାମକ କ୍ଷୁପବିଶେଷ ।

ମହାଶଣା—ବି. ଅରଣ୍ୟ ଶଣ ।

ମହାଶତାବରୀ—ସ୍ତ୍ରୀ. ବି. ବୃହଚ୍ଛତାବରୀ, ସହସ୍ରମୂଳୀ ।

ମହାଶନ—ପୁଂ. ବି. ଅସୁର ଭେଦ,(ବିଂ) ମହାଭୋଜୀ, ପେଟୁ ।

ମହାଶନି—ବି. (ମହା+ଅଶନି)ଭୟଙ୍କର ବଜ୍ର, ରାମାୟଣୋକ୍ତ ଦୈତ୍ୟବିଶେଷ ।

ମହାଶବ୍ଦ—ବି. ଭୟାନକ ଶବ୍ଦ, ( ବିଂ ) ମହାଶବ୍ଦଯୁକ୍ତ ।

ମହାଶମୀ—ସ୍ତ୍ରୀ. ବି. ବଡ଼ ଶମୀବୃକ୍ଷ ।

ମହାଶମ୍ଭୁ—ପୁଂ. ବି. ମହାଶିବ, ପ୍ରସିଦ୍ଧ ଶିବଲିଙ୍ଗ ।

ମହାଶୟ—ପୁଂ.ବିଂ. (ବ.ବ୍ରୀ)ମହାମନାଃ, ଉଦାରହୃଦୟ, ମହାନୁଭବ, (ପୁଂ.ବି) ସମୁଦ୍ର, (ଗ୍ରା.ବି) ଭଦ୍ରବ୍ୟକ୍ତି, ସମ୍ଭ୍ରାନ୍ତଲୋକ,ଗୁରୁଜନ ଓ ସମ୍ମାନନୀୟ ବ୍ୟକ୍ତିଙ୍କ ସମ୍ବୋଧନ, ବଙ୍ଗଦେଶର ପ୍ରାଚୀନ ରାଜଦତ୍ତ ସମ୍ମାନସୂଚକ ବଂଶୋପାଧି ।

ମହାଶୟନ—କ୍ଲୀ. ବି. ମହାଶଯ୍ୟା ।

ମହାଶଯ୍ୟା—ସ୍ତ୍ରୀ. ବି.(କ.ଧା)ରାଜଶଯ୍ୟା, ସିଂହାସନ, ବୃହତ୍ ଶଯ୍ୟା ।

ମହାଶର—ବି. ସ୍ଥୂଳଶର, ରାମଶର ।

ମହାଶରୀର—ବି. (କ.ଧା) ବୃହଦ୍‌ଦେହ, (ପୁଂ.ବିଂ.ବ.ବ୍ରୀ) ବୃହତ୍‌କାୟ, (ସ୍ତ୍ରୀ) ମହାଶରୀରା ।

ମହାଶଲ୍କ—ବି. ( ବ.ବ୍ରୀ ) ଚିଙ୍ଗୁଡ଼ିମାଛ, ( କ.ଧା ) ବଡ଼କାତି, (ବିଂ—ବ.ବ୍ରୀ ) ବଡ଼କାତି ବିଶିଷ୍ଟ ।

ମହାଶସ୍ତ୍ର—କ୍ଲୀ. ବି. ଭୀଷଣ ବା ତୀକ୍ଷ୍ଣଶସ୍ତ୍ର ।

ମହାଶାକ୍ୟ—ପୁଂ.ବି. ଶ୍ରେଷ୍ଠଶାକ୍ୟ ବଂଶ ।

ମହାଶାଖ—ବିଂ.(ବ.ବ୍ରୀ) ବୃହତ୍ ଶାଖାଯୁକ୍ତ ।

ମହାଶାଖା—ସ୍ତ୍ରୀ. ବି. (ମହତୀ+ଶାଖା) ବ.ବ୍ରୀ;ନାଗବଳା ।

ମହାଶାନ୍ତି—ସ୍ତ୍ରୀ. ବି. ବିଘ୍ନନାଶନ ନିମିତ୍ତ ମନ୍ତ୍ରାନୁଷ୍ଠାନ ।

ମହାଶାଳ—ବି. (କ.ଧା) ବଡ଼ଘର,(ବିଂ. ବ.ବ୍ରୀ) ମହାଗୃହସ୍ଥ,ବୃହତ୍ ଗୃହ ଯୁକ୍ତ ।

ମହାଶାଳୀନ—ବିଂ. ଅତି ବିନୀତ ।

ମହାଶାସନ—କ୍ଲୀ. ବି. ରାଜାଦେଶ, (ପୁଂ. ବି) ସଚିବ ବିଶେଷ, ଯେ ରାଜଶାସନ ବା ଦାନପତ୍ର ପ୍ରସ୍ତୁତ କରିଥାଏ, (ବିଂ) ମହାଶକ୍ତିବିଶିଷ୍ଟ ।

ମହାଶିରୋଧର—ବିଂ. ବୃହତ୍‌ଗ୍ରୀବ ।

ମହାଶିଳା—ସ୍ତ୍ରୀ. ବି. ଶସ୍ତ୍ର ଭେଦ ।

ମହାଶିବ—ପୁଂ. ବି. (କ.ଧା)ମହାଦେବ, ମହାଶମ୍ଭୁ ।

ମହାଶୀତବତୀ—ସ୍ତ୍ରୀ.ବି. ବୌଦ୍ଧମାନଙ୍କର ପଞ୍ଚମହାଦେବୀଙ୍କର ଅନ୍ତର୍ଗତ ଦେବୀ ବିଶେଷ ।

ମହାଶୀତା—ସ୍ତ୍ରୀ. ବି.ଶତମୂଳୀ,ଶତାବରୀ, (ବିଂ) ଅତିଶୀତବୀର୍ଯ୍ୟଯୁକ୍ତ ( ବନସ୍ପତି ବିଶେଷ) ।

ମହାଶୀର୍ଷ—ପୁଂ. ବି. (ବ.ଗ୍ରୀ) ଶିବାନୁଚର ଭେଦ ।
ମହାଶୀଳ—ପୁଂ.ବି.ଜନମେଜୟଙ୍କ ପୁତ୍ର ।
ମହାଶୁକ୍ତି—ସ୍ତ୍ରୀ. ବି. ମୁକ୍ତାମାତା, ମୁକ୍ତା ପ୍ରସବକାରୀ ଶୁକ୍ତି.ମୁକ୍ତାଗୃହ, ବଡଶାମୁକା ।
ମହାଶୁକ୍ଳ—ବିଂ. (ବ.ଗ୍ରୀ) ଅତିଶୁଭ୍ର, (ସ୍ତ୍ରୀ) ମହାଶୁକ୍ଳା ।
ମହାଶୁକ୍ଳା—ସ୍ତ୍ରୀ. ବି. (କ.ଧା) ସରସ୍ୱତୀ, (ବିଂ) ଅତିଶୁଭ୍ର ବର୍ଣ୍ଣଯୁକ୍ତା ।
ମହାଶୂଦ୍ର—ପୁଂ. ବି. ଆଭୀର, ଗଉଡ଼, ମତାନ୍ତରେ ଗଉଡ଼ ଓ ଭଣ୍ଡାର, (ସ୍ତ୍ରୀ) ମହାଶୂଦ୍ରୀ ।
ମହାଶୂଦ୍ରୀ—ସ୍ତ୍ରୀ. ବି. (ମହାଶୂଦ୍ର+ଈ) ଆଭୀରୀ, ଗଉଡୁଣୀ ।
ମହାଶୂନ୍ୟ—କ୍ଲୀ. ବି. ଅନନ୍ତ ଆକାଶ, (ବିଂ) ସମ୍ପୂର୍ଣ୍ଣ ରୂପେ ଶୂନ୍ୟ ।
ମହାଶୂନ୍ୟତା—ସ୍ତ୍ରୀ. ବି.(ମହାଶୂନ୍ୟ+ତ+ଆ) ବ୍ୟୋମର ଭାବ, ଯୋଗିମାନଙ୍କର ନିର୍ବାଣାବସ୍ଥା ।
ମହାଶୂର—ବିଂ. ଅତିଶୟ ବଳବାନ୍ ।
ମହାଶୈଗ୍ରୀ—ସ୍ତ୍ରୀ.ବି.ଶ୍ୱେତକଣିଶ୍ମ ବୃକ୍ଷ, କଟଲୀ ବୃକ୍ଷ । [ ବିଶେଷ ।
ମହାଶୈଷିର—ବି. ମୁଖକ୍ଷତ ରୋଗ
ମହାଶ୍ମ—ବି. ପଦ୍ମରାଗମଣି ।
ମହାଶ୍ମଶାନ—କ୍ଲୀ. ବି. ଯେଉଁଠାରେ ସର୍ବଦା ଶବଦାହ ହେଉଥାଏ, କାଶୀ, (ଯେଉଁଠାରେ ମନୁଷ୍ୟର ମୃତ୍ୟୁ ହେଲେ ସମସ୍ତ କର୍ମ ବିନଷ୍ଟ ହୁଏ, ଅତଏବ ଆଉ ପୁନର୍ଜନ୍ମ ନାହିଁ) । [ ବୃକ୍ଷ ।
ମହାଶ୍ୟାମା—ସ୍ତ୍ରୀ.ବି. ଶ୍ୟାମଲତା, ଶିଂଶପା
ମହାଶ୍ରମଣ—ପୁଂ.ବି.(କ.ଧା)ବୁଦ୍ଧବିଶେଷ, ଶାକ୍ୟମୁନି । [ ପ୍ରଧାନ ଶିଷ୍ୟ ।
ମହାଶ୍ରାବକ—ପୁଂ. ବି. ଶାକ୍ୟବୁଦ୍ଧଙ୍କ
ମହାଶ୍ରାବଣିକା—ସ୍ତ୍ରୀ. ବି. ସ୍ୱନାମଖ୍ୟାତ ବୃହତ୍ କ୍ଷୁପ, ଭୂଇଁକଦମ୍ବ ।
ମହାଶ୍ରାବଣୀ—ସ୍ତ୍ରୀ. ବି. ଭୂଇଁକଦମ୍ବ ।
ମହାଶ୍ରୀ—ସ୍ତ୍ରୀ. ବି. ବୁଦ୍ଧଶକ୍ତି ବିଶେଷ ।
ମହାଶ୍ରୁତ—ପୁଂ. ବି. ଗନ୍ଧର୍ବ ବିଶେଷ ।
ମହାଶ୍ୱ—ପୁଂ. ବି. (କ.ଧା) ଶ୍ରେଷ୍ଠ ଅଶ୍ୱ ।

ମହାଶ୍ୱାସ—ବି.ଶ୍ୱାସରୋଗ ବିଶେଷ.ମୃତ୍ୟୁକାଳୀନ ଚରମ ଶ୍ୱାସ ।
ମହାଶ୍ୱେତ—ବିଂ.(କ.ଧା)ଅତିଶୟ ଧବଳ, ତୁଷାର ଧବଳ, (ବି)ମହାଶଣପୁଷ୍ପିକା, ଧଳାଚନ୍ଦନ ।
ମହାଶ୍ୱେତା—ସ୍ତ୍ରୀ. ବି. ସରସ୍ୱତୀ, ଦୁର୍ଗା, ଶ୍ୱେତାପରାଜିତାପୁଷ୍ପ, କୃଷ୍ଣଭୂଇଁକଖାରୁ ଶ୍ୱେତକଣିଶ୍ମ ବୃକ୍ଷ, କାଦମ୍ବରୀ ବର୍ଣ୍ଣିତ ଏକ ଗନ୍ଧର୍ବକନ୍ୟା, ଧଳାଚନ୍ଦନ ବା କନ୍ଦ, ପ୍ରାଚୀନ ଭାରତର ନଗର ବିଶେଷ ।
ମହାଷଷ୍ଠୀ—ସ୍ତ୍ରୀ. ବି. ଦୁର୍ଗା ।
ମହାଷ୍ଟମୀ—ସ୍ତ୍ରୀ. ବି. କ.ଧା; ଆଶ୍ୱିନମାସର ଶୁକ୍ଳାଷ୍ଟମୀ ।
ମହାସତୀ—ସ୍ତ୍ରୀ. ବି. ଅତ୍ୟନ୍ତ ସ୍ୱାମୀ ପରାୟଣା ସ୍ତ୍ରୀ ।
ମହାସତ୍ତ୍ୱ—ବିଂ. (ବ.ଗ୍ରୀ)ମହାବଳଶାଳୀ, ମହାମନାଃ, ଧର୍ମପରାୟଣ, (ବି) ବୃହତ୍‌କାୟ ଜୀବ, କୁବେର, ଶାକ୍ୟମୁନି ।
ମହାସତ୍ୟ—ପୁଂ. (ବି) ଯମରାଜ ।
ମହାସନ—କ୍ଲୀ. ବି. ସିଂହାସନ ।
ମହାସନ୍ଧିବିଗ୍ରହ—ବି. ଶାନ୍ତିସ୍ଥାପନ ଓ ଯୁଦ୍ଧସଂଘଟନାଦି କାର୍ଯ୍ୟର ପ୍ରଧାନ ସାଚିବ୍ୟ ।
ମହାସନ୍ନ—ପୁଂ. ବି. ( ମହାନ୍+ସନ୍ନ ) କୁବେର,(ମହା+ଆସନ୍ନ) ଅତିନିକଟ ।
ମହାସପ୍ତମୀ—ସ୍ତ୍ରୀ. ବି. ଆଶ୍ୱିନମାସର ଶୁକ୍ଳସପ୍ତମୀ ।
ମହାସଫର—ବି. ଛେଲ୍ଲାକେଗଣ୍ଡିମାଛ, ସେରେଣାମାଛ ।
ମହାସମଙ୍ଗା—ସ୍ତ୍ରୀ.ବି. ଏକପ୍ରକାର ବାଡ଼ିଅଁଳା ଜାତୀୟ ଔଷଧି ଗୁଳ୍ମ ।
ମହାସମାରୋହ—ବି. କ.ଧା; ଅତିଶୟ ଆଡ଼ମ୍ବର, ଜାକଜମକ ।
ମହାସମୁଦ୍ର—ପୁଂ.ବି.ମହାସାଗର,ଯେଉଁ ସୁବିସ୍ତୀର୍ଣ୍ଣ ଜଳରାଶି ପୃଥିବୀର ସ୍ଥଳଭାଗକୁ ବେଷ୍ଟନ କରିଅଛି ।
ମହାସମ୍ମତ—ବିଂ. ଅତିଶୟ ସମ୍ମାନିତ ।
ମହାସମ୍ମୋହନ—ବିଂ.ଅତିଶୟ ମୁଗ୍ଧକାରୀ, (କ୍ଲୀ.ବି) ତନ୍ତ୍ରଭେଦ ।

ମହାସରସ୍ୱତୀ—ସ୍ତ୍ରୀ.ବି. ଶ୍ରେଷ୍ଠା ସରସ୍ୱତୀ ।
ମହାସରୋଜ—କ୍ଲୀ. ବି. ସଂଖ୍ୟା ବିଶେଷ, ମହାପଦ୍ମ ଦେଖ ।
ମହାସର୍ଗ—ପୁଂ. ବି. ପ୍ରଳୟ ପରେ ଜଗତର ପୁନର୍ବାର ସୃଷ୍ଟି । [ ଗଛ ।
ମହାସର୍ଜ—ପୁଂ. ବି. ଅସନବୃକ୍ଷ, ପଣସ-
ମହାସର୍ବଯମକ—ବି.ଶବ୍ଦାଳଙ୍କାର ବିଶେଷ
ମହାସହ—ପୁଂ. ବି. କୁବ୍ଜକ ବୃକ୍ଷ ।
ମହାସହା—ସ୍ତ୍ରୀ. ବି. ମାଷପର୍ଣ୍ଣୀ, ଅମ୍ଳାନ ବୃକ୍ଷ. କୁବ୍ଜକବୃକ୍ଷ ।
ମହାସାଗର—ପୁଂ. ବି.ମହାସମୁଦ୍ର ଦେଖ
ମହାସାଧନଭାଗ—ପୁଂ. ବି. ରାଜକାର୍ଯ୍ୟର ପ୍ରଧାନ ମନ୍ତ୍ରୀ ବିଶେଷ ।
ମହାସାଧୁ—ବିଂ. (ମହାନ୍+ସାଧୁ) ଅତିଶୟ ସାଧୁ, ସଜ୍ଜନ ।
ମହାସାଧ୍ୱୀ—ସ୍ତ୍ରୀ. ବି. ମହାସତୀ ଦେଖ ।
ମହାସାନ୍ତପନ—କ୍ଲୀ. ବି.(ମହତ୍+ସାନ୍ତପନ) ଛଅଦିବସସାଧ୍ୟ ବ୍ରତ ବା ପ୍ରାୟଶ୍ଚିତ୍ତବିଶେଷ ।
ମହାସାନ୍ଧିବିଗ୍ରହିକ—ପୁଂ. ବି. ରାଜାଙ୍କର ଶାନ୍ତିସ୍ଥାପକ ଓ ଯୁଦ୍ଧାଦି ବିଷୟର ବ୍ୟବସ୍ଥାପକ ସଚିବ ।
ମହାସାର—ବି.ବିଟ୍‌ଖଦିର,ପାକଡ଼ାଖଇର
ମହାସାରଥି—ପୁଂ.ବି.ଅରୁଣ, ଶ୍ରେଷ୍ଠସାରଥି
ମହାସାର୍ଥ—ପୁଂ. ବି. ଧନବନ୍ତ ଯାତ୍ରୀ ।
ମହାସାହସ—କ୍ଲୀ. ବି. ଅତିବଳକାର କୃତ କାର୍ଯ୍ୟ, ଅତିଶୟ ଦମ୍ଭ, ମହାବଳ, ଅତିଦୁଷ୍କୃତ କର୍ମ,ଅତିଶୟ ଦ୍ୱେଷ ।
ମହାସାହସିକ—ବି. ଚୌର,(ବିଂ)ଅତ୍ୟନ୍ତ ସାହସଯୁକ୍ତ, ବଳପୂର୍ବକାପହାରକ ।
ମହାସାହସିକତା—ସ୍ତ୍ରୀ.ବି.ମହାସାହସିକର କାର୍ଯ୍ୟ ।
ମହାସିଂହ—ପୁଂ. ବି. (କ.ଧା) ଶରଭ, ବୃହତ୍‌ସିଂହ, ଭଗବତୀଙ୍କର ବାହନ, (ଗ୍ରା.ବି)ପଞ୍ଜାବକେଶରୀ ରଣଜିତଙ୍କର ପିତା । [ ସିଦ୍ଧିବିଶେଷ ।
ମହାସିଦ୍ଧି—ସ୍ତ୍ରୀ. ବି. ଅଷ୍ଟସିଦ୍ଧିର ଅନ୍ତର୍ଗତ
ମହାସୁଆର—ଗ୍ରା. ବି. ଦେବତାଙ୍କ ଓ

ରାଜାଙ୍କ ଅନ୍ନାଦ ପାକ କରିବା ବ୍ରାହ୍ମଣ ସୂପକାର ।
ମହାସୁଖ—ବି.(କ.ଧା) ଅତିଶୟ ଆନନ୍ଦ, (ବି.ବ୍ରୀ)ବୁଦ୍ଧଦେବ, ବୁଦ୍ଧତ୍ୱପ୍ରାପ୍ତ ବ୍ୟକ୍ତି, ରତି, (ବିଂ) ଅତିଶୟ ସୁଖଯୁକ୍ତ ।
ମହାସୁଗନ୍ଧ—ବିଂ. (ବ.ବ୍ରୀ)ଅତି ସୁଗନ୍ଧ-ଯୁକ୍ତ ।
ମହାସୁଗନ୍ଧଷଟ୍କ—କ୍ଳୀ.ବି. ଛଅପ୍ରକାର ସୁଗନ୍ଧି ଦ୍ରବ୍ୟ,(ଯଥା—ଚନ୍ଦନ, କସ୍ତୂରୀ, କର୍ପୂର, କୃଷ୍ଣାଗୁରୁ, କୁଙ୍କୁମ, ମୁରା) ।
ମହାସୁଗନ୍ଧା—ସ୍ତ୍ରୀ. ବି. ଗନ୍ଧନାକୁଲୀ ।
ମହାସୁପର୍ଣ୍ଣ—ପୁଂ. ବି. ପକ୍ଷିବିଶେଷ ।
ମହାସୁର—ପୁଂ. ବି. ଦାନବବିଶେଷ ।
ମହାସୁରୀ—ସ୍ତ୍ରୀ. ବି. ମହାଦେବୀ ଦୁର୍ଗା ।
ମହାସୁହସ୍ୟ—ପୁଂ.ବି. ଶ୍ରେଷ୍ଠ ଅଶ୍ୱ, ଋକ୍-ବେଦର ଦଶମ ଖଣ୍ଡର ଏକଋଷି ।
ମହାସୂକ୍ତ—କ୍ଳୀ. ବି. ବୈଦିକ ମହାସ୍ତୋତ୍ର
ମହାସୂକ୍ଷ୍ମ—ବିଂ. ଅତିଶୟ ସୂକ୍ଷ୍ମ ।
ମହାସୂକ୍ଷ୍ମା—ସ୍ତ୍ରୀ. ବି. ( ମହାସୂକ୍ଷ୍ମ+ଆ ) ବାଲୁକା ।
ମହାସୂଚୀବ୍ୟୂହ—ପୁଂ. ବି. ଯୁଦ୍ଧକାଳରେ ସୈନ୍ୟ ସଂସ୍ଥାପନବିଶେଷ ।
ମହାସୂତ—ପୁଂ. ବି. ରଣବାଦ୍ୟବିଶେଷ
ମହାସେତୁ—ପୁଂ. ବି. ବୃହତ୍ ସେତୁ, ମନ୍ତ୍ରବିଶେଷ ।
ମହାସେନ—ପୁଂ. ବି. (ମହତ୍ + ସେନା + ଅ)କାର୍ତ୍ତିକେୟ, ଶିବ, ମହାସେନା-ପତି, ବୃଦ୍ଧାର୍ହତ ପିତୃବିଶେଷ, ରାଜ-ଭେଦ, (ବିଂ) ବିପୁଳ ସୈନ୍ୟବିଶିଷ୍ଟ ।
ମହାସେନା—ସ୍ତ୍ରୀ.ବି.(କ.ଧା)ବିପୁଳସୈନ୍ୟ
ମହାସ୍କନ୍ଧ—ବିଂ. (ବ.ବ୍ରୀ) ବୃହତ୍ ସ୍କନ୍ଧ-ଯୁକ୍ତ, (ପୁଂ.ବି) ଉଷ୍ଟ୍ର, ଓଟ ।
ମହାସ୍କନ୍ଧୀ—ପୁଂ.ବି.ଅଷ୍ଟପଦବିଶିଷ୍ଟ ଜନ୍ତୁ-ଭେଦ, ଶରଭ ।
ମହାସ୍ତୂପ—ପୁଂ.ବି.ବୌଦ୍ଧ ସ୍ମୃତି ରକ୍ଷିତ ମନ୍ଦିରାକାର ଉଚ୍ଚ ସ୍ତୂପ ।
ମହାସ୍ତ୍ର—କ୍ଳୀ. ବି. ଅସ୍ତ୍ରବିଶେଷ, ପ୍ରଧାନ ଅସ୍ତ୍ର, ଶ୍ରେଷ୍ଠାସ୍ତ୍ର ।
ମହାସ୍ଥଳୀ—ସ୍ତ୍ରୀ.ବି. ପୃଥିବୀ, ଶ୍ରେଷ୍ଠସ୍ଥାନ, ଅତ୍ୟୁତ୍ତମ ସ୍ଥାନ ।
ମହାସ୍ଥବିର—ପୁଂ.ବି.ବୃଦ୍ଧ ବୌଦ୍ଧ ଭିକ୍ଷୁ ।
ମହାସ୍ଥାନ—କ୍ଳୀ. ବି. ଉଚ୍ଚସ୍ଥାନ ।
ମହାସ୍ନାନ-ବି.ଦେବତାଙ୍କ ବିଗ୍ରହ କୌଣସି କାରଣରୁ ଅଶୁଦ୍ଧ ହେଲେ ତାହାଙ୍କର ଅନୁଷ୍ଠିତ ସ୍ନାନ ।
ମହାସ୍ନାୟୁ—ପୁଂ. ବି. ଅସ୍ଥିବନ୍ଧନ ନାଡ଼ୀ, ଚକ୍ରବାହିନୀ ନାଡ଼ୀ ।
ମହାସ୍ପଦ—ବିଂ. ମହାପ୍ରଭାବଶାଳୀ, ମହା-ଶକ୍ତିସମ୍ପନ୍ନ ।
ମହାସ୍ମୃତି—ସ୍ତ୍ରୀ.ବି. ଚିରପ୍ରଚଳିତ ବାକ୍ୟ, କିମ୍ବଦନ୍ତୀ, ଦୁର୍ଗା ।
ମହାସ୍ରଗ୍ୱୀ—ପୁଂ.ବି. (ମହ+ସ୍ରକ୍+ଇନ୍) ମହାଦେବ ।
ମହାସ୍ୱନ—ପୁଂ. ବି. (ବ.ବ୍ରୀ) ମଲ୍ଲତୂର୍ଯ୍ୟ, ରଣବାଦ୍ୟ. (କ.ଧା)ବୃହତ୍ ଶବ୍ଦ, (ବିଂ) ବୃହତ୍ ଶବ୍ଦବିଶିଷ୍ଟ ।
ମହାସ୍ୱର—ବିଂ. (ବ.ବ୍ରୀ) ଉଚ୍ଚ ସ୍ୱରଯୁକ୍ତ, (ବି. କ.ଧା) ଉଚ୍ଚସ୍ୱର ।
ମହାସ୍ୱାଦ—ପୁଂ. ବି. ସ୍ୱାଦୁ, ସୁମିଷ୍ଟ ।
ମହାହଂସ—ପୁଂ.ବି. ହଂସଭେଦ, ବିଷ୍ଣୁ ।
ମହାହନୁ—ପୁଂ.ବି(ମହତ୍+ହନୁ)ବ.ବ୍ରୀ; ଶିବ, ସର୍ପବିଶେଷ, (ବିଂ) ବୃହତ୍ ହନୁ-ଯୁକ୍ତ ।
ମହାହୟ—ପୁଂ.ବି. (କ.ଧା) ରାଜଭେଦ, ମହାନ୍ ଅଶ୍ୱ,ଉତ୍ତମ ଅଶ୍ୱ,ବଡ଼ଘୋଡ଼ା ।
ମହାହର୍ମ୍ୟ—କ୍ଳୀ. ବି. ଉତ୍ତମ ଅଟ୍ଟାଳିକା, ରାଜପ୍ରାସାଦ ।
ମହାହବ—ପୁଂ. ବି. ଘୋରତରଯୁଦ୍ଧ ।
ମହାହବିଃ—କ୍ଳୀ.ବି.ଗବ୍ୟଘୃତ, ଗୁଆଘିଅ, ବିଷ୍ଣୁ, ବୃହତ୍ ଯାଗବିଶେଷ ।
ମହାହସ୍ତ—ପୁଂ.ବି. (ବ.ବ୍ରୀ) ଶିବ, (ବିଂ) ବୃହତ୍ ହସ୍ତବିଶିଷ୍ଟ ।
ମହାହାସ—ପୁଂ.ବି.ଅଟ୍ଟହାସ୍ୟ,ଉଚ୍ଚହାସ୍ୟ
ମହାହି—ପୁଂ.ବି.(ମହାନ୍+ଅହି)ବୃହତ୍ ସର୍ପ, ଅନନ୍ତନାଗ ।
ମହାହିଗନ୍ଧା—ସ୍ତ୍ରୀ. ବି. ଗନ୍ଧନାକୁଲୀ ।
ମହାହିମବାନ୍—ପୁଂ. ବି. ( ମହାହିମ+ବତ୍) ହିମାଳୟ ପର୍ବତ ।
ମହାହିବଳୟ—ପୁଂ. ବିଂ. (ବ.ବ୍ରୀ)ମହା-ସର୍ପ ଦ୍ୱାରା ବେଷ୍ଟିତ ।
ମହାହିଶୟନ—ବି. (କ.ଧା) ବିଷ୍ଣୁଙ୍କର ଅନନ୍ତ ଶଯ୍ୟା ।
ମହାହ୍ନ—ପୁଂ. ବି. ଅଧ୍ୟାହ୍ନ, ମଧ୍ୟାହ୍ନ ।
ମହାହ୍ରଦ—ପୁଂ. ବି. ବୃହତ୍ ପୁଷ୍କରିଣୀ, ତୀର୍ଥଭେଦ, ଶିବ ।
ମହାହ୍ରସ୍ୱ—ବିଂ. ଅତି ଖର୍ବ, (ସ୍ତ୍ରୀ)ମହା-ହ୍ରସ୍ୱା—କପିକଚ୍ଛୁ ।
ମହି(ହୀ)—ସ୍ତ୍ରୀ.ବି(ମହ+ ର୍ମି.ଇ.,ଈ)ପୃଥିବୀ, ଗୌ, ଗାଈ, ମହତ୍ତ୍ୱ, ବୃଦ୍ଧି, ମହିମା, ମହତତ୍ତ୍ୱ, (ଗ୍ରା.ବି) ଦୁଧକୁ ବସାଦହି କରିଯିବା ନିମନ୍ତେ ସେଥିରେ ପକା-ଯିବା ଖଟା ଦହି.ଦଧିମଣ୍ଡ,(ଗ୍ରା.କଳାହାଣ୍ଡି. ବି) ଦଧି, (ଗ୍ରା.ସମ୍ବ.ବି) ଘୋଳଦହି ।
ମହିଁମ—ଗ୍ରା. ବି. ମାହାତ୍ମ୍ୟ ।
ମହିକା—ସ୍ତ୍ରୀ. ବି. (ମହ + ଅକ + ର୍ମି.ଆ) ହିମ, କୁହୁଡ଼ି ।
ମହିଞ୍ଜିକ—ପୁଂ. ବି. ମୂଷିକ ।
ମହିତ—ବିଂ. (ମହ + ର୍ମି.ତ) ପୂଜିତ, ସମ୍ମାନିତ, (ସ୍ତ୍ରୀ) ମହିତା,(ବି) ଶିବଙ୍କର ତ୍ରିଶୂଳ ।
ମହି(ହୀ)ତାଳ—ବି. (୬ତତ୍) ଭୂତଳ, ଧରାପୃଷ୍ଠ, ଭୂଇଁ ।
ମହି(ହୀ)ଧର—ପୁଂ. ବି. (ମହୀ+ଧୃ+ଅ) ଭୂଧର, ପର୍ବତ ।
ମହିନ—କ୍ଳୀ. ବି. ରାଜ୍ୟ, (ବିଂ)ପୂଜନୀୟ ।
ମହିନସ—ପୁଂ.ବି.ଶିବଙ୍କ ମୂର୍ତ୍ତିବିଶେଷ ।
ମହିନା—ଯା.ବି.ମାସିକଦରମା,ବେତନ ।
ମହିନ୍ଦକ - ପୁଂ.ବି.ଇନ୍ଦୂର,ମୂଷା,ନେଉଳ, ଖାର ବନ୍ଧନାର୍ଥ ଦଣ୍ଡସଂଲଗ୍ନ ରଜ୍ଜୁ, ଖାରସିକା ।
ମହିପଦ—ଗ୍ରା.ବି.ଏକପ୍ରକାର ନାଗସାପ, ଗୋଖୁର ସାପ ।
ମହିମ—ଗ୍ରା. ବି. ଜମ୍ବୁ ।
ମହିମଣ୍ଡନ—ପୁଂ.ବିଂ.ପୃଥିବୀର ଅଳଙ୍କାର ସ୍ୱରୂପ,ଅତି ସୁନ୍ଦର,(ସ୍ତ୍ରୀ)ମହିମଣ୍ଡନା ।
ମହିମବ୍ୟଞ୍ଜକ—ବିଂ (ମହିମନ୍+ ବ୍ୟଞ୍ଜକ) ଗୌରବସୂଚକ ।

**ମହିମା**—ବି. (ମହତ୍‌+ଇମନ୍) ଉତ୍କର୍ଷ, ଗୌରବ, ମହତ୍ତ୍ୱ, ଉଚ୍ଚପଦବୀ, ମହାଦେବଙ୍କର ଅଷ୍ଟବିଭୂତି ମଧ୍ୟରୁ ଏକତମ ମାହାତ୍ମ୍ୟ, ଶକ୍ତି,(ଗ୍ରା.ବି)ମହତ୍ତ୍ୱର ଚରମ ସୀମା, ମହାନ୍ ପୁରୁଷ, ସମସ୍ତଙ୍କର ପ୍ରଭୁ, ମହିମାଧର୍ମ । [ ବା ବର୍ଣ୍ଣନ ।

**ମହିମାକୀର୍ତ୍ତନ**—ଗ୍ରା. ବି. ମାହାତ୍ମ୍ୟ କଥନ

**ମହିମାଗାଦି**—ଗ୍ରା. ବି. ଢେଙ୍କାନାଳ ରାଜ୍ୟାନ୍ତର୍ଗତ ଜୋରନ୍ଦା ଗ୍ରାମରେ ଅବସ୍ଥିତମହିମା ଧର୍ମର ପୀଠ ।

**ମହିମାଧର୍ମ**—ଗ୍ରା. ବି. ଅଲେଖ ଧର୍ମ ।

**ମହିମାଧର୍ମୀ**—ଗ୍ରା.ବିଂ.ମହିମା ଧର୍ମାବଲମ୍ବୀ (ବ୍ୟକ୍ତି) ।

**ମହିମାବାନ୍**—ବି. ପିତୃଗଣବିଶେଷ ।

**ମହିମାବ୍ୟଞ୍ଜକ**—ଗ୍ରା.ବିଂ.ମାହାତ୍ମ୍ୟଜ୍ଞାପକ ।

**ମହିମାର୍ଣ୍ଣବ**—ବିଂ.ସମୁଦ୍ରପରି ଅପରିମେୟ ଗୌରବବିଶିଷ୍ଟ ।

**ମହିମିତା**—ଗ୍ରା. ବିଂ. ମହିମାଯୁକ୍ତ ।

**ମହିମ୍ନ**—ବି. ଶିବଙ୍କର ପ୍ରସିଦ୍ଧ ସ୍ତୋତ୍ରବିଶେଷ, (ଏହା ପୁଷ୍ପଦନ୍ତ ନାମକ ଗନ୍ଧର୍ବ ରଚନା କରିଥିଲେ) ।

**ମହିର**—ପୁଂ. ବି. (ମହ+ଇର) ସୂର୍ଯ୍ୟ, ଅର୍କବୃକ୍ଷ ।

**ମହିରି**—ଗ୍ରା. ବି. ଗୁଣ୍ଡିଆ ।

**ମହିଳା**—ସ୍ତ୍ରୀ. ବି. ( ମହ+ଇଲ+ଆ ) ସ୍ତ୍ରୀମାନ, ପ୍ରିୟଙ୍ଗୁଲତା, ମଦମତ୍ତା ସ୍ତ୍ରୀ. ରେଣୁକା ନାମକ ଗନ୍ଧଦ୍ରବ୍ୟ, (ଗ୍ରା.ବି) ଭଦ୍ରବଂଶୀୟା ସ୍ତ୍ରୀ । [ ଲତା ।

**ମହିଳାହ୍ୱୟା**—ସ୍ତ୍ରୀ.ବି. ମହିଳା, ପ୍ରିୟଙ୍ଗୁ-

**ମହିଲି**—ଗ୍ରା. ବି. ଛୋଟ ନାଗପୁର ଓ ପଶ୍ଚିମ ବଙ୍ଗବାସୀ ପାର୍ବତ୍ୟ ଜାତିବିଶେଷ

**ମହିଶୂର**—ଗ୍ରା.ବି.ଦକ୍ଷିଣ ଭାରତର ସ୍ୱାଧୀନ ରାଜ୍ୟବିଶେଷ ।

**ମହିଷ**—ପୁଂ.ବି. (ମହ+ଇଷ) ମଇଁଷି, ସ୍ୱନାମଖ୍ୟାତ ପଶୁ,କାସର,ମହିଷାସୁର, ଶ୍ମଶ୍ରୁଧାରୀ ମ୍ଲେଚ୍ଛ ଜାତିବିଶେଷ, ଅହୀନ୍ଦ୍ର ଧ୍ୱଜବିଶେଷ, ଦେବଗଣବିଶେଷ, କୁଶଦ୍ୱୀପସ୍ଥିତ ପର୍ବତବିଶେଷ, କୃତାଭିଷେକ ଭୂପାଳ, ରାଜା, ଅଗ୍ନିବିଶେଷ, କୁଶଦ୍ୱୀପର ଦେଶଭେଦ, କ୍ଷତ୍ରିୟ ପିତା ଓ ବୈଶ୍ୟା ମାତାଠାରୁ ଜାତ ବର୍ଣ୍ଣସଙ୍କର ଜାତି । [ ବିଶେଷ ।

**ମହିଷକ**—ପୁଂ. ବି. ବର୍ଣ୍ଣସଙ୍କର ଜାତି-

**ମହିଷକନ୍ଦ**—ବି. ଧଳା ଦେଶୀଆଳୁ ।

**ମହିଷଘ୍ନୀ**—ସ୍ତ୍ରୀ. ବି. (ମହିଷ+ହନ୍+ଅ +ଈ) ଭଗବତୀ, ଦୁର୍ଗା ।

**ମହିଷଧ୍ୱଜ**—ପୁଂ. ବି. ( ବ.ବ୍ରୀ ) ଯମ, ଅର୍ହତବିଶେଷ ।

**ମହିଷପଟ୍ଟା**—ଗ୍ରା. ବି. ବାଲେଶ୍ୱରର ଗୋଟିଏ ପର୍ବତର ନାମ ।

**ମହିଷପାଳ**—ପୁଂ.ବି. ଯେ ମହିଷ ପାଳନ କରେ, ମହିଷ ଜଗୁଆଳ,ମଇଁଷି ଚରୁଆ ।

**ମହିଷମତ୍ସ୍ୟ**—ପୁଂ. ବି. ମତ୍ସ୍ୟବିଶେଷ, କଳାବାଇଁଶି ମାଛ ।

**ମହିଷମର୍ଦ୍ଦିନୀ**—ସ୍ତ୍ରୀ. ବି. ଦୁର୍ଗା,ମହିଷାସୁରବିନାଶିନୀ ଦେବୀ ।

**ମହିଷବଳି**—ବି.ଦୁର୍ଗାଙ୍କ ଆଗରେ ହଣାଯିବା ଅଣ୍ଡିରା ମଇଁଷି ।

**ମହିଷବଲ୍ଲୀ**—ସ୍ତ୍ରୀ. ବି. ସୋମଲତା ପରି ଏକପ୍ରକାର ଲତା । [ରାଜ ।

**ମହିଷବାହନ**—ପୁଂ. ବି. (ବ.ବ୍ରୀ) ଯମ-

**ମହିଷାର୍ଦ୍ଦନ**—ପୁଂ. ବି. ସ୍କନ୍ଦଙ୍କର ନାମାନ୍ତର, କାର୍ତ୍ତିକେୟ ।

**ମହିଷାସୁର**—ପୁଂ. ବି. (କ.ଧା) ଅସୁରବିଶେଷ, ରମ୍ଭାସୁରର ପୁତ୍ର,(ରମ୍ଭାସୁର ଶିବଙ୍କୁ ତପସ୍ୟାରେ ସନ୍ତୁଷ୍ଟ କରି ଏହି ପୁତ୍ର ଲାଭ କରିଥିଲା,ଏ ଅତ୍ୟନ୍ତ ଦୁର୍ଦ୍ଦାନ୍ତ ହୋଇ ଉଠିବାରୁ ଦେବତାମାନଙ୍କ ଅନୁରୋଧରେ ଦୁର୍ଗା ଏହାକୁ ବଧ କରିଥିଲେ । [ ବତୀ ।

**ମହିଷାସୁରମର୍ଦ୍ଦିନୀ**—ସ୍ତ୍ରୀ. ବି. ଦୁର୍ଗା, ଭଗ-

**ମହିଷାସୁରସମ୍ଭବ**-ପୁଂ.ବି.ଭୂମିଜ ଗୁଗ୍ଗୁଳୁ ।

**ମହିଷାସୁରହନ୍ତ୍ରୀ**—ସ୍ତ୍ରୀ. ବି. ଦୁର୍ଗା ।

**ମହିଷାକ୍ଷ**—ବି. ଗୁଗ୍ଗୁଳୁ ।

**ମହିଷୀ**—ସ୍ତ୍ରୀ. ବି. ( ମହିଷ+ଈ ) ମାଈ ମଇଁଷି,କୃତାଭିଷେକା ରାଜପତ୍ନୀ,ପାଟରାଣୀ, ସୈରିନ୍ଧ୍ରୀ, ବ୍ୟଭିଚାରିଣୀ ସ୍ତ୍ରୀ, ବ୍ୟଭିଚାରିଣୀ ସ୍ତ୍ରୀର ଉପାର୍ଜିତ ଧନ, ନିଜସ୍ତ୍ରୀର ବ୍ୟଭିଚାରଲବ୍ଧ ଧନ,ଔଷଧିବିଶେଷ ।

**ମହିଷୀତକ୍ର**-କ୍ଲୀ.ବି.ମହିଷୀଦହିର ଘୋଳ ।

**ମହିଷୀଦଧି**—କ୍ଲୀ. ବି. ମଇଁଷି ଦୁଗ୍ଧରେ ପ୍ରସ୍ତୁତ ଦହି ।

**ମହିଷୀଦୁଗ୍ଧ**—କ୍ଲୀ. ବି. ମଇଁଷିକ୍ଷୀର ।

**ମହିଷୀପାଳ**—ପୁଂ. ବି. ଯେଉଁମାନେ ଦୁଗ୍ଧ ନିମିତ୍ତ ମଇଁଷିପାଳନ କରନ୍ତି ।

**ମହିଷୋତ୍ସର୍ଗ**—ବି. ଯାଗବିଶେଷ ।

**ମହିଷ୍ଠ**—ପୁଂ.ବିଂ. (ମହତ୍‌+ଇଷ୍ଠ)ଅତିଶୟ ବୃହତ୍, ଅତ୍ୟନ୍ତ ବଡ଼ ।

**ମହିଷ୍ମାନ୍**—ବିଂ. ମହିଷୀଯୁକ୍ତ, ଯାହାର ମହିଷୀ ଅଛି, (ପୁଂ.ବି) ଜନୈକ ରାଜା, (ସ୍ତ୍ରୀ) ମହିଷ୍ମତୀ, ଅଙ୍ଗିରାଙ୍କ କନ୍ୟା ।

**ମହୀ**—ସ୍ତ୍ରୀ. ବି. (ମହ+ଅ+ଈ)ପୃଥିବୀ, ନଦୀବିଶେଷ, ଗାଈ, ହଳମୋଚକା, ଲୋକ ।

**ମହୀଅଳ**—ଗ୍ରା. (ପଦ୍ୟ)ବି. ଭୂମି,ପୃଥିବୀ ।

**ମହୀକମ୍ପ**—ବି. ଭୂମିକମ୍ପ ।

**ମହୀକ୍ଷିତ୍**—ବି. ( ମହୀ+କ୍ଷି+କ.କ୍ୱିପ୍ ) ଭୂଭୃତ୍, ରାଜା ।

**ମହୀଗତ**—ବିଂ. ଭୂପୃଷ୍ଠରେ ଲଗ୍ନ, ପୃଥିବୀରେ ପତିତ, ଭୂମିରେ ଶାୟିତ ।

**ମହୀଚନ୍ଦ୍ର**—ପୁଂ. ବି. କନୌଜର ଜଣେ ରାଜା ।

**ମହୀଚର**—ବିଂ. ସ୍ଥଳଚର, ପୃଥିବୀଗାମୀ, ଯେଉଁମାନେ ପୃଥିବୀରେ ବିଚରଣ କରନ୍ତି ।

**ମହୀଚାରୀ**—ପୁଂ. ବିଂ. ପୃଥିବୀରେ ବିଚରଣକାରୀ, (ପୁଂ.ବି) ମହାଦେବ ।

**ମହୀଜ**—ବି. (ମହୀ+ଜନ୍+ଅ) ମଙ୍ଗଳ ଗ୍ରହ, ନରକାସୁର, ଅଦା,(ବିଂ) ପୃଥିବୀଜାତମାତ୍ର, (ସ୍ତ୍ରୀ) ମହୀଜା ।

**ମହୀତଳ**—କ୍ଲୀ. ବି. ( ୬ତତ୍ ) ଭୂତଳ, ପୃଥିବୀ ।

**ମହୀଦେବ**—ପୁଂ. ବି. (୬ତତ୍) ଭୂଦେବ, ବ୍ରାହ୍ମଣ ।

**ମହୀଧର**—ପୁଂ. ବି. (ମହୀ+ଧୃ+କ.ଅ) ବିଷ୍ଣୁ, ଶେଷନାଗ, ବାସୁକି, ପର୍ବତ ।

ମହୀଧ୍ର—ପୁଂ. ବ. ( ମହୀ+ଧୃ+କ.ଅ ) ଭୂଧର, ପର୍ବତ,ପୃଥିବୀର ଉଦ୍ଧାରକର୍ତ୍ତା ।
ମହୀଧ୍ରକ—ପୁଂ.ବ. ମହୀଧ୍ର ଦେଖ,ଜନୈକ ରାଜା ।
ମହୀନ—ପୁଂ. ବ. (ମହୀ+ଇନ୍) ୬ତତ୍, ମହୀପତି, ରାଜା ।
ମହୀନାଥ—ପୁଂ.ବ. (ମହୀ+ନାଥ)୬ତତ୍; ପୃଥିବୀପତି, ରାଜା ।
ମହୀନ୍ଦ୍ର—ବ. ( ମହୀ+ଇନ୍ଦ୍ର ) ୬ତତ୍; ନରେନ୍ଦ୍ର, ନରନାଥ, ରାଜା, ରାମାୟଣ ବର୍ଣ୍ଣିତ ମର୍କଟ ଯୂଥପତିବିଶେଷ ।
ମହୀନ୍ଦ୍ରବାହାଦୁର—ଗ୍ରା. ବ. ଓଡ଼ିଶାର ଢେଙ୍କାନାଳ ରାଜବଂଶ ଉପାଧି ।
ମହୀପ—ପୁଂ. ବ. (ମହୀ+ପା+କ.ଅ) ପୃଥିବୀପତି, ରାଜା, ଜନୈକ ଆଭିଧାନିକ ।
ମହୀପତନ—କ୍ଲୀ.ବ.ସାଷ୍ଟାଙ୍ଗ ପ୍ରଣିପାତ ।
ମହୀପତି—ପୁଂ. ବ. (୬ତତ୍) ପୃଥିବୀର ଅଧୀଶ୍ୱର, ରାଜା ।
ମହୀପାଳ—ପୁଂ. ବ. (ମହୀ+ପାଳ+ଅ) ରାଜା,ମଗଧ ପାଳବଂଶର ପ୍ରସିଦ୍ଧ ରାଜା ।
ମହୀପୁତ୍ର—ପୁଂ.ବ. (୬ତତ୍) ମଙ୍ଗଳଗ୍ରହ,
ମହୀପ୍ରକମ୍ପ—ବ. ଭୂମିକମ୍ପ ।
ମହୀପ୍ରରୋହ—ପୁଂ.ବ. (ମହୀ+ପ୍ର+ରୁହ୍+ଅ) ବୃକ୍ଷ, ମହୀରୁହ ।
ମହୀପ୍ରାଚୀର—କ୍ଲୀ. ବ. ସମୁଦ୍ର ।
ମହୀପ୍ରାବର—ପୁଂ. ବ. ସମୁଦ୍ର । [ ବିଷ୍ଣୁ ।
ମହୀଭର୍ତ୍ତା—ପୁଂ. ବ. ପୃଥିବୀପତି, ରାଜା,
ମହୀଭାର—ପୁଂ.ବ.ଭୂଭାର,ପୃଥିବୀର ଭାର ।
ମହୀଭୁକ୍—ପୁଂ.ବ.(ମହୀ+ଭୁଜ୍+କ୍ୱିପ୍) ରାଜା ।
ମହୀଭୃତ୍—ପୁଂ.ବ. (ମହୀ+ଭୃ+କ.କ୍ୱିପ୍) ପର୍ବତ, ରାଜା ।
ମହୀମଘବା—ପୁଂ. ବ. (୬ତତ୍) ପୃଥିବୀର ଇନ୍ଦ୍ର, ସମ୍ରାଟ୍, ରାଜା ।
ମହୀମଣ୍ଡନ—ପୁଂ. ବଂ. ଯେଉଁ ବ୍ୟକ୍ତି ନିଜର ଅଙ୍ଗଶୋଭା ଦ୍ୱାରା ପୃଥିବୀକୁ ମଣ୍ଡିତ ବା ଶୋଭିତ କରେ,(ସ୍ତ୍ରୀ) ମହୀମଣ୍ଡନା ।

ମହୀମଣ୍ଡଳ—କ୍ଲୀ. ବ. ପୃଥିବୀ,ଭୂମଣ୍ଡଳ ।
ମହୀମୟ—ବଂ. (ମହୀ+ମୟ) ମୃତ୍ତିକାନିର୍ମିତ, ମୃତ୍ତିକାବିକାର ।
ମହୀମହିଳା—ସ୍ତ୍ରୀ. ବ. ପୃଥିବୀର ସମ୍ରାଜ୍ଞୀ ।
ମହୀମହେନ୍ଦ୍ର—ପୁଂ. ବ ପୃଥିବୀର ରାଜା ।
ମହୀୟାନ୍—ପୁଂ. ବଂ. (ମହତ୍+ଇୟସ୍) ଅତି ମହତ୍, (ସ୍ତ୍ରୀ) ମହୀୟସୀ ।
ମହୀୟମାନ—ପୁଂ.ବଂ. (ମହୀୟ ନାମଧାତୁ+କ.ଆନ) ପୂଜ୍ୟ, ପୂଜ୍ୟମାନ, (ସ୍ତ୍ରୀ) ମହୀୟମାନା ।
ମହୀରଜଃ—କ୍ଲୀ.ବ.ପୃଥିବୀର ରେଣୁ ଧୂଳି ।
ମହୀରଣ—ପୁଂ. ବ. ବିଶ୍ୱାଗର୍ଭରେ ଧର୍ମଙ୍କ ଔରସଜାତ ପୁତ୍ର (ହରିବଂଶ) ।
ମହୀରନ୍ଧ୍ର—କ୍ଲୀ.ବ.ପୃଥିବୀର ଛିଦ୍ର,ଭୂଗର୍ତ୍ତ ।
ମହୀରାବଣ—ଗ୍ରା.ବ. ଇନ୍ଦ୍ରଜିତ ପୁତ୍ର ଅସୁର ବିଶେଷ, (ହାଃଶବ୍ଦସାଗର ମତେ)ରାବଣର ପୁତ୍ର ।
ମହୀରୁହ—ପୁଂ.ବ.(ମହୀ+ରୁହ୍+କ.ଅ) ପାଦପ, ବୃକ୍ଷ, ଗଛ ।
ମହୀଲତା—ସ୍ତ୍ରୀ. ବ. କେଞ୍ଚୁଆ, ଜିଆ ।
ମହୀଳା—ସ୍ତ୍ରୀ. ବ. ମହିଳା,ସ୍ତ୍ରୀମାତ୍ର,ମହିଳା ଦେଖ ।
ମହୀଶ—ପୁଂ. ବ. (୬ତତ୍) ପୃଥିବୀପତି, ରାଜା, ଜନୈକ ପ୍ରାଚୀନ ହିନ୍ଦୁରାଜା ।
ମହୀଶାସକ—ପୁଂ. ବ. (୬ତତ୍) ପୃଥିବୀପତି, ରାଜା ।
ମହୀଶୂର—ବ. ଦକ୍ଷିଣ ଭାରତର ଗୋଟିଏ କରଦରାଜ୍ୟ ।
ମହୀଶ୍ୱର—ପୁଂ. ବ. (୬ତତ୍) ପୃଥିବୀପତି, ରାଜା ।
ମହୀସାଇଁ—ଗ୍ରା.ପୁଂ. ବ.ମହୀପତି, ରାଜା ।
ମହୀସୁତ— ପୁଂ. ବ. (୬ତତ୍)ମଙ୍ଗଳଗ୍ରହ, ନରକାସୁର । [ ଜାନକୀ ।
ମହୀସୁତା—ସ୍ତ୍ରୀ. ବ. ( ୬ତତ୍ ) ସୀତା,
ମହୀସୁର—ପୁଂ.ବ.(୬ତତ୍) ଭୂଦେବତା, ବ୍ରାହ୍ମଣ, ଦକ୍ଷିଣଭାରତର ଗୋଟିଏ କରଦରାଜ୍ୟ ।
ମହୀସୂନୁ—ପୁଂ.ବ. (୬ତତ୍) ମଙ୍ଗଳଗ୍ରହ, ନରକାସୁର ।

ମହୁ—ଗ୍ରା. ବ.ମଧୁ,ପୁଷ୍ପର ମଧୁ,ମହୁମାଛି ।
ମହୁଆ—ଗ୍ରା. ବଂ. ମହୁପରି ମିଠା, (ବି) ମହୁଲ, ଗୋରୁଙ୍କ ଚର୍ମରୋଗବିଶେଷ, ଧାନକ୍ଷୀର ହେଲାବେଳେ ଧାନକ୍ଷୀରକୁ ଖାଇବା ଏକପ୍ରକାର କୀଟ ।
ମହୁଆଆଳୁ—ଗ୍ରା. ବ. (ସଂ-ମଧ୍ୱାଳୁ) ମଧୁମୂଳ ଦେଖ ।
ମହୁଆଖାଇବା—ଗ୍ରା. ବ. ଧାନକ୍ଷୀରକୁ ମହୁଆପୋକ ଖାଇଯିବା ।
ମହୁଆଖିଆ—ଗ୍ରା. ବଂ. ମହୁଆ ପୋକ ଖାଇବା ଦ୍ୱାରା ଫମ୍ପା ହୋଇଯାଇଥିବା (ଧାନ) ।
ମହୁଆମାରିବା--ଗ୍ରା.ବ.(ବାଛୁରୀଦେହରେ) ମହୁଆ ରୋଗ ପ୍ରକାଶ ପାଇବା ।
ମହୁକ—ଗ୍ରା. ବ. (ସଂ-ମଧୂକ) ମଧୂକ, ଏକପ୍ରକାର ମିଠାଶିମ୍ବ, ମହୁଲ ।
ମହୁକା—ଗ୍ରା. ବ. ଗୁଳ୍ମ ବିଶେଷ, ମହୁକ ଦେଖ, (ବଂ) ମହୁପରି ମିଠା ।
ମହୁକିଆ—ଗ୍ରା. ବଂ. ମହୁପରି ମିଠା ଓ ବାସନାଯୁକ୍ତ ।
ମହୁଖଣ୍ଡ—ଗ୍ରା. ବ. ମଧୁମକ୍ଷିକାସଞ୍ଚିତ ଏକପ୍ରକାର କଠିନ ମଧୁ ।
ମହୁଘରା—ଗ୍ରା.ବ.(ସଂ-ମଧୁଚକ୍ର)ମହୁମାଛିଙ୍କ ଦ୍ୱାରା ପ୍ରସ୍ତୁତ ଚକ୍ରାକାରବସା ।
ମହୁଡ—ଗ୍ରା. ବ. ମଉଡ଼ ଦେଖ ।
ମହୁଡାଟ—ଗ୍ରା. ବ. ମହୁଘରା ଦେଖ ।
ମହୁମାଛି—ଗ୍ରା. ବ.(ସଂ-ମଧୁମକ୍ଷିକା) ମଧୁସଂଗ୍ରହକାରୀ କୀଟ ବିଶେଷ ।
ମହୁର—ଗ୍ରା. ବ.(ସଂ-ମଧୁର)ନାନାପ୍ରକାର ପରିବାମିଶ୍ରିତ ଘାଣ୍ଟିଆ ତରକାରୀ,ମିଶ୍ରକ, ମିଠା, ମଧୁର । [ ଭେଦ ।
ମହୁରା—ଗ୍ରା. ବ.ଅତିବିଷା,ସ୍ଥାବର ବିଷ-
ମହୁରାଡ଼—ଗ୍ରା. ବ. ଶିମ୍ବଜାତୀୟ ମିଠା ଲମ୍ବା ଫଳ ବିଶେଷ ।
ମହୁରୂପା—ଗ୍ରା. ବ. କଲାରୂପା ।
ମହୁରିଆ—ଗ୍ରା.ବଂ. ମଧୁର ଲାଗୁଥିବା,(ବି) ମହୁରୀ ବଜାଇବା ବ୍ୟକ୍ତି ।
ମହୁରୀ—ଗ୍ରା.ବ.ମୁହଁରେ ଫୁଙ୍କି ବଜାଇବା ସ୍ୱରଯୁକ୍ତ ଏକପ୍ରକାର ତୁରୀ,ପାନମହୁରୀ,

ପାଣି ବୋହୁଥିବା ନଳା ।
**ମହୁଲ**—ଗ୍ରା. ବି. (ସଂ ମଧୂକ) ବକୁଳାଦି ବର୍ଗର ଅରଣ୍ୟତରୁ ଓ ତାହାର ଫୁଲ । [ ମହୁଲଗୁଡ଼
**ମହୁଲଗୁଡ଼**—ଗ୍ରା. ବି. ମହୁଲ ଫୁଲରୁ ପ୍ରସ୍ତୁତ କରାଯିବା ଗୁଡ଼ ।
**ମହୁଲମଦ**—ଗ୍ରା.ବି.ମହୁଲ ଫୁଲରୁ ପ୍ରସ୍ତୁତ କରାଯିବା ମଦ ।
**ମହୁଲଶୀତ**—ଗ୍ରା. ବି. ଫାଲ୍ଗୁନ ଚୈତ୍ର-ମାସର ଶେଷ ରାତିରେ (ପାହାନ୍ତିଆ) ହେବା ଅଳ୍ପଶୀତ ।
**ମହୁଲି**—ଗ୍ରା. ବି. ପକ୍ଷିବିଶେଷ ।
**ମହୁଲିଆ**—ଗ୍ରା.ବିଂ. ମହୁଲସମ୍ବନ୍ଧୀୟ,(ବି) କୃଷ୍ଣରୋଗବିଶେଷ ।
**ମହୁସିଠା**—ଗ୍ରା. ବି. ମହୁଣ, ମଧୁଚ୍ଛିଷ୍ଟ ।
**ମହେଚ୍ଛ**—ପୁଂ. ବିଂ. (ବ.ବ୍ରୀ) ମହାଶୟ, ମହାମନାଃ,ଉଦାରସ୍ୱଭାବ.(ସ୍ତ୍ରୀ)ମହେଚ୍ଛା
**ମହେନ୍ଦ୍ର**—ପୁଂ.ବି. (ମହାନ୍+ଇନ୍ଦ୍ର)ବିଷ୍ଣୁ, ଶିବ,ଇନ୍ଦ୍ର, ଅଶୋକଙ୍କର ପୁତ୍ରବିଶେଷ. ଓଡ଼ିଶାର ଗଞ୍ଜାମଜିଲାରେ ଥିବା ପର୍ବତ-ଶ୍ରେଣୀ । [ କଦଳୀ ।
**ମହେନ୍ଦ୍ରକଦଳୀ**—ଗ୍ରା.ବି.ଏକପ୍ରକାର ବଣ୍ୟ
**ମହେନ୍ଦ୍ରଗିରି**—ବି.ମହେନ୍ଦ୍ର ପର୍ବତ,ଓଡ଼ି-ଶାର ଦକ୍ଷିଣ ଗଞ୍ଜାମଜିଲାରେ ଥିବା ପର୍ବତବିଶେଷ । [ ଇନ୍ଦ୍ରଧନୁ ।
**ମହେନ୍ଦ୍ରଚାପ**—ବି. (୬ତତ୍) ଇନ୍ଦ୍ରଚାପ,
**ମହେନ୍ଦ୍ରନଗରୀ**—ସ୍ତ୍ରୀ. ବି. ଅମରାବତୀ, ଇନ୍ଦ୍ରଙ୍କ ନଗରୀ, ଇନ୍ଦ୍ରପୁରୀ ।
**ମହେନ୍ଦ୍ରମନ୍ତ୍ରୀ**—ପୁଂ.ବି. (୬ତତ୍) ଦେବ-ରାଜ ଇନ୍ଦ୍ରଙ୍କ ମନ୍ତ୍ରୀ, ବୃହସ୍ପତି ।
**ମହେନ୍ଦ୍ରଲାଲସରକାର**—ଗ୍ରା. ବି. କଲି-କତାର ପ୍ରଧାନ ଦେଶହିତୈଷୀ ସ୍ୱର୍ଗୀୟ ଡାକ୍ତର ଓ ବିଜ୍ଞାନାଚାର୍ଯ୍ୟ ।
**ମହେନ୍ଦ୍ରବାରୁଣୀ**—ସ୍ତ୍ରୀ.ବି.ବଡ଼ ମହାକାଳ, ଲତା ଓ ତାହାର ଫଳ ।
**ମହେନ୍ଦ୍ରସୂରି**—ବି ଫିରୋଜସାହା ତୋଗ-ଲକଙ୍କ ସଭାର ପ୍ରଧାନ ପଣ୍ଡିତ ।
**ମହେନ୍ଦ୍ରାଣୀ**—ସ୍ତ୍ରୀ.ବି. ଇନ୍ଦ୍ରଭାର୍ଯ୍ୟା, ଶଚୀ, ଇନ୍ଦ୍ରପତ୍ନୀ ।
**ମହେନ୍ଦ୍ରୀ**—ସ୍ତ୍ରୀ. ବି. ମହାକାଳଲତା ।

**ମହେନ୍ଦ୍ରୀୟ**—ବିଂ.ମହେନ୍ଦ୍ର,ବା ଇନ୍ଦ୍ର ସମ୍ବ-ନ୍ଧୀୟ ।
**ମହେରଣା**—ସ୍ତ୍ରୀ. ବି. ଶଲ୍ଲକୀ ବୃକ୍ଷ ।
**ମହେଲା**—ସ୍ତ୍ରୀ. ବି. (ମହ + ଇଲା)ନାରୀ, ମହିଳା ।
**ମହେଲିକା**—ସ୍ତ୍ରୀ. ବି. ନାରୀ, ମହିଳା, ବଡ଼ ଅଳେଇଚ । [ ଦେବ ।
**ମହେଶ**—ପୁଂ.ବି. (ମହା+ଈଶ)ମହା-
**ମହେଶବନ୍ଧୁ**—ପୁଂ.ବି.ଶ୍ରୀଫଳବୃକ୍ଷ, ବେଲ ଗଛ, ଷଣ୍ଢ, ବଳଦ ।
**ମହେଶାଖ୍ୟ**—ବିଂ. (ମହେଶ + ଆଖ୍ୟା) ବ.ବ୍ରୀ;ଅତି ପ୍ରସିଦ୍ଧ, ସୁବିଖ୍ୟାତ, (ପୁଂ. ବି) ମହେଶ ଦେଖ ।
**ମହେଶାନ**—ପୁଂ. ବି. (ମହା+ଈଶାନ) ଶିବ, (ସ୍ତ୍ରୀ) ମହେଶାନୀ=ଦୁର୍ଗା ।
**ମହେଶିତା**—ପୁଂ. ବି. ଶିବ । [ ଦୁର୍ଗା ।
**ମହେଶୀ**—ସ୍ତ୍ରୀ.ବି.(ମହେଶ+ଈ)ପାର୍ବତୀ,
**ମହେଶ୍ୱର**—ପୁଂ.ବି. (ମହାନ୍+ଈଶ୍ୱର) ଶିବ;ମହାଦେବ, ପରମେଶ୍ୱର,ଐଶ୍ୱର୍ଯ୍ୟ-ଶାଳୀ ରାଜା, ଶ୍ୱେତ ମନ୍ଦାର, (କ୍ଲୀ.ବି) ସ୍ୱର୍ଣ୍ଣ ।
**ମହେଶ୍ୱରୀ**—ସ୍ତ୍ରୀ. ବି. (ମହେଶ୍ୱର+ଈ) ମହେଶ୍ୱର ପତ୍ନୀ, ଭବାନୀ, ପାର୍ବତୀ, ଅପରାଜିତା, କାଂସ୍ୟ, ପିତ୍ତଳ, ରାଜ-ରୀତି, ଯବତିକ୍ତା ଲତା ।
**ମହେଷୁ**—ବି. ( ମହା+ଇଷୁ ) କ.ଧା; ବଡ଼ଶର, (ବିଂ.ବ.ବ୍ରୀ) ମହଦିଷୁଯୁକ୍ତ ।
**ମହେଷୁଧି**—ପୁଂ. ବିଂ (ମହାନ୍+ଇଷୁଧି) ବ.ବ୍ରୀ; ଧାନୁଷ୍କ, ଧନୁର୍ଦ୍ଧାରୀ ।
**ମହେଷ୍ୱାସ**—ପୁଂ.ବିଂ.(ମହାନ୍+ଇଷ୍ୱାସ) ବ.ବ୍ରୀ, ମହାଧନୁର୍ଦ୍ଧାରୀ, ଧାନୁଷ୍କ, (ବି. କ.ଧା) ବୃହତ୍ ଧନୁ ।
**ମହୈକୋଦ୍ଦିଷ୍ଟ**—ବି. ଆଦ୍ୟଶ୍ରାଦ୍ଧ, ମୃତ ବ୍ୟକ୍ତିର ଅଶୌଚାନ୍ତ ଦିନରେ ଯେଉଁ ଶ୍ରାଦ୍ଧ ହୁଏ । [ ବଡ଼ ଜଡ଼ା ।
**ମହୈରଣ୍ଡ**—ପୁଂ,ବି.(କ.ଧା) ସ୍ଥୂଳଏରଣ୍ଡ,
**ମହୈଲା**—ସ୍ତ୍ରୀ.ବି.(ମହା+ଏଲା)କ.ଧା; ବଡ଼ ଅଳେଇଚ ।
**ମହୈଶ୍ୱର୍ଯ୍ୟ**—କ୍ଲୀ.ବି. (ମହା+ଐଶ୍ୱର୍ଯ୍ୟ) ବିପୁଳ ଐଶ୍ୱର୍ଯ୍ୟ, ରାଜପଦ, ମହାଶକ୍ତି ।

**ମହୋକ୍ଷ**—ପୁଂ.ବି. (କ.ଧା) ବୃହତ୍‌ବୃଷ, ପୁଙ୍ଗବ,ବଡ଼ଷଣ୍ଢ । [ ମହୋଲ୍କା ।
**ମହୋଜ୍ଜ୍ୱଳା**—ସ୍ତ୍ରୀ. ବି. ( ମହତ୍+ଉଲ୍କା )
**ମହୋତ୍ପଳ**—କ୍ଲୀ.ବି.(କ.ଧା) ସାରସପକ୍ଷୀ, ନୀଳପଦ୍ମ, ନୀଳକଇଁ ।
**ମହୋତ୍ସବ**—ବି (ମହା+ଉତ୍ସବ)କ.ଧା; ଅତିଶୟ ସୁଖଜନକ କର୍ମ, ଅତିଶୟ ଉତ୍ସବ, (ବ.ବ୍ରୀ) କାମଦେବ, (ଗ୍ରା.ବି) ବୈଷ୍ଣବମାନଙ୍କର ଭୋଜି, ମଉଚ୍ଛବ, ବଡ଼ ଭୋଜି ।
**ମହୋତ୍ସାହ**—ବିଂ. (ବ.ବ୍ରୀ) ଅତିଶୟ ଉତ୍ସାହଯୁକ୍ତ, ବିଶେଷ ଉଦ୍ୟମଶୀଳ, (ପୁଂ.ବି.କ.ଧା) ଅତିଶୟ ଉଦ୍ୟମ,ଅଧ୍ୟ-ବସାୟ, ବିଷ୍ଣୁ, (ସ୍ତ୍ରୀ) ମହୋତ୍ସାହା ।
**ମହୋଦଧି**—ପୁଂ. ବି. (କ.ଧା) ସମୁଦ୍ର, ମହାସାଗର, ଇନ୍ଦ୍ର ।
**ମହୋଦୟ**—ବି. (ବ.ବ୍ରୀ) ପୂଜ୍ୟବ୍ୟକ୍ତି, ପ୍ରଭୁ, ସ୍ୱାମୀ, କାନ୍ୟକୁବ୍ଜ ଦେଶ, ପୁର-ବିଶେଷ, ଆଧିପତ୍ୟ, (କ.ଧା) ମୁକ୍ତି, ମୋକ୍ଷ, ଅପବର୍ଗ, କର୍ତ୍ତୃତ୍ୱ, ସମୃଦ୍ଧି, ସୌଭାଗ୍ୟ, ମଧୁମିଶ୍ରିତ ଦଧି,(ବିଂ)ଅତି-ଉନ୍ନତ, ଅତିସମୃଦ୍ଧ, ମହାନୁଭବ, ଅତି ଭାଗ୍ୟବାନ୍, (ସ୍ତ୍ରୀ) ମହୋଦୟା ।
**ମହୋଦୟା**—ସ୍ତ୍ରୀ. ବି. (ମହୋଦୟ + ଆ) ନାଗବଳା, ନଦୀବିଶେଷ ।
**ମହୋଦର**—ପୁଂ.ବିଂ (ମହାନ୍+ଉଦର) ବ.ବ୍ରୀ, ବୃହତ୍ ଉଦରଯୁକ୍ତ, ଯାହାର ପେଟ ବଡ଼,(କ୍ଲୀ.ବି.କ.ଧା) ସ୍ଥୂଳପେଟ, ବଡ଼ପେଟ,(ପୁଂ.ବି.ବ.ବ୍ରୀ)ନାଗବିଶେଷ, ଜଳୋଦରୀ ରୋଗ, ଦାନବବିଶେଷ, ଧୃତରାଷ୍ଟ୍ରଙ୍କର ଏକପୁତ୍ର, (ସ୍ତ୍ରୀ) ମହୋ-ଦରୀ=ମହାଶତାବରୀ ।
**ମହୋଦରମୁଖ**—ପୁଂ.ବି(ବ.ବ୍ରୀ)ଶିବାନୁ-ଚରବିଶେଷ ।
**ମହୋଦରୀ**—ସ୍ତ୍ରୀ. ବି. (ମହାନ୍+ଉଦର +ଈ)ବ.ବ୍ରୀ; ଭଗବତୀ, ଦୁର୍ଗା, ମହା-ଶତାବରୀ ।
**ମହୋଦ୍ୟମ**—ପୁଂ.ବିଂ (ବ.ବ୍ରୀ)ଉଦ୍ୟମ-

ଶୀଳ, ଅତିଶୟ ଉତ୍ସାହବିଶିଷ୍ଟ, (ପୁଂ.ବି
କ.ଧା)ଅତିଶୟ ଉଦ୍ଯୋଗ, (ସ୍ତ୍ରୀ)ମହୋ-
ଦ୍ୟମା । [ ଦେଖ ।
ମହୋଦ୍ଯୋଗ—ପୁଂ. ବି°.ବି. ମହୋଦ୍ୟମ
ମହୋନ୍ନତ—ପୁଂ.ବି.ତାଳଗଛ, ନଡ଼ିଆ-
ଗଛ, ଧାଉଁକଦମ୍ବ,(ବି°)ଅତ୍ୟୁନ୍ନତଯୁକ୍ତ,
(ସ୍ତ୍ରୀ) ମହୋନ୍ନତା ।
ମହୋନ୍ନତି—ସ୍ତ୍ରୀ. ବି. (କ.ଧା) ଅତିଶୟ
ସମୃଦ୍ଧି, ଅତିଶୟ ଉନ୍ନତି ।
ମହୋନ୍ମଦ—ପୁଂ.ବି.ମତ୍ସ୍ୟବିଶେଷ, (ବି°)
ଅତ୍ୟୁନ୍ମତ, ଅତିଶୟ ମତ୍ତ ।
ମହୋନ୍ମାନ—ବି°.ବିସ୍ତୃତ, ବିପୁଳ,ଭର-
ଯୁକ୍ତ, ଭରବିଶିଷ୍ଟ ।
ମହୋପକାର—ବି. (କ.ଧା) ବିଶେଷ
ଉପକାର ବା ହିତ ।
ମହୋପକାରି—ପୁଂ.ବି°(ମହାନ୍+ଉପ-
କାରୀ) ବିଶେଷ ହିତକର,(ସ୍ତ୍ରୀ)ମହୋପ-
କାରିଣୀ ।
ମହୋପାଧ୍ୟାୟ—ପୁଂ. ବି. (ମହାନ୍+
ଉପାଧ୍ୟାୟ) ପ୍ରଧାନ ଆଚାର୍ଯ୍ୟ, ବିଦ୍ୱାନ୍,
ଗୁରୁ ।
ମହୋରଗ—ପୁଂ.ବି. (ମହାନ୍+ଉରଗ)
ସର୍ପଗଣବିଶେଷ, ବୃହତ୍ ସର୍ପ,ଅଜଗର,
(କ୍ଳୀ.ବି) ତଗରପାଦପ ।
ମହୋରସ୍କ—ପୁଂ.ବି°. (ମହତ୍+ଉରସ୍
+କ) ବିଶାଳବକ୍ଷଃ, ଯାହାର ଛାତି
ଚଉଡ଼ା,(ବି)ଶିବ, (ସ୍ତ୍ରୀ) ମହୋରସ୍କା ।
ମହୋଲ୍କା—ସ୍ତ୍ରୀ.ବି.(କ.ଧା) ଉଲ୍କା ବିଶେଷ,
ବୃହତ୍ ଉଲ୍କା, ବଡ଼ ମଶାଲ ।
ମହୋଲ୍ଲାସ—ବି.(କ.ଧା)ଅତ୍ୟନ୍ତ ଆନନ୍ଦ ।
ମହୋଷ୍ଠ—ପୁଂ. ବି. ଶିବ, (ବି°.ବ.ବ୍ରୀ)
ମହଦୋଷ୍ଠଯୁକ୍ତ, ଯାହାର ଓଠ ବଡ଼ ।
ମହୌଜାଃ—ପୁଂ.ବି°. (ମହତ୍+ଓଜସ୍)
ବ.ବ୍ରୀ, ମହାନ୍ ଶକ୍ତିଶାଳୀ, ଅତିଶୟ
ତେଜସ୍ୱୀ, (ବି) ମହାବୀର ।
ମହୌଜସ୍କ—ବି°.(ମହତ୍+ଓଜଃ)ବ.ବ୍ରୀ;
ଅତି ତେଜସ୍ୱୀ ।
ମହୌଷଧ—କ୍ଳୀ. ବି. (କ.ଧା) ଉତ୍କୃଷ୍ଟ
ଔଷଧ,ଚୂର୍ଣ୍ଣୀ, ରସୋନ, ବାରାହୀକନ୍ଦ,
ବତ୍ସନାଭ, ମହୁରି, ପିପ୍ପଳୀ, ଅତୁଷୀ ।
ମହୌଷଧି—ସ୍ତ୍ରୀ. ବି. ଦୁବ, ଲଜକୁଳୀ-
ଲତା, ଶ୍ରେଷ୍ଠ ଔଷଧି, ସଞ୍ଜୀବନୀ,ମହା-
ଗୁଣସ୍ୟ ଦ୍ରବ୍ୟବିଶେଷ ।
ମହୌଷଧୀ—ସ୍ତ୍ରୀ.ବି. (ମହୌଷଧି+ଈ)
ଶ୍ୱେତ କଣ୍ଟକାରୀ, ବ୍ରାହ୍ମୀ, କଟୁକୀ,
ଅତୁଷୀ, ହଂସମୋଚକା,ହଡ଼ମିଗ୍ଧ,ରାତ୍ରି-
କାଳରେ ଦୀପ୍ତିଶୀଳ ତୃଣଲତାଦି,
ସଞ୍ଜୀବନୀ ଲତା ।
ମହ୍ଲାର—ଗ୍ରା. ବି. ବନ୍ୟକାଠବିଶେଷ ।
ମା- ଅବ୍ୟ.ବାରଣ,ନିଷେଧାର୍ଥକ,ବିକଳ୍ପ,
ନିନ୍ଦା, ପଶ୍ଚାତ୍, ( ବି ) ଲକ୍ଷ୍ମୀ, ମାତା,
ଜନନୀ, ଜ୍ଞାନ, ଦୀପ୍ତି, କାନ୍ତି, ଶ୍ରୀ,
ସୌନ୍ଦର୍ଯ୍ୟ, ପରିମାଣ, (ଗ୍ରା.ବି) ସଙ୍ଗୀ-
ତର ସପ୍ତସ୍ୱରର ଚତୁର୍ଥସ୍ୱର, ମାତୃ-
ସ୍ଥାନୀୟା ବା ଆପଣ ଠାରୁ ସାନ କନ୍ୟାଦି
ବା ଦେବୀଙ୍କୁ ସମ୍ବୋଧନ, (ଗ୍ରା.ଅବ୍ୟ)
ଭୟ, ବିସ୍ମୟ ଓ ଆତୁରତା ସୂଚକ
ଅବ୍ୟୟ, ହେ ମା !
ମାଆ—ଗ୍ରା. ବି. ( ସଂ-ମା ) ଠାକୁରାଣୀ,
ଦେବୀ, ମାତା, ଜନନୀ, ଗୁରୁପତ୍ନୀ ଆଦି
ପୂଜ୍ୟା ସ୍ତ୍ରୀ,(ଗ୍ରା.ଅବ୍ୟ) ମା ଦେଖ, (ଗ୍ରା.
ବି) ମାତୃସ୍ଥାନୀୟା ବା ଆପଣାଠାରୁ
ବୟସରେ ସାନ କନ୍ୟାଦି ବା ଦେବୀଙ୍କୁ
ସମ୍ବୋଧନ ।
ମାଆଛେଉଣ୍ଡ—ଗ୍ରା. ବି°. ବାଲ୍ୟକାଳରୁ
ମାତୃହୀନ ।
ମାଆଝିଅ—ଗ୍ରା. ବି. ମାତା ଓ କନ୍ୟା ।
ମାଆଠାକୁରାଣୀ—ଗ୍ରା. ସ୍ତ୍ରୀ. ବି. ଲକ୍ଷ୍ମୀ,
ଭଗବତୀ, ଗ୍ରାମଦେବତା ଆଦି ଦେବୀଙ୍କ
ପ୍ରତି ସମ୍ବୋଧନ ଉକ୍ତି, ବସନ୍ତରୋଗର
ଅଧିଷ୍ଠାତ୍ରୀ ଦେବୀ ।
ମାଆପୁଅ—ଗ୍ରା. ବି. ମାତା ଓ ପୁତ୍ର ।
ମାଆପେଟ—ଗ୍ରା. ବି. ମାତୃଗର୍ଭ ।
ମାଆବାପ—ଗ୍ରା. ବି. ମାତା ଓ ପିତା,
ରକ୍ଷକ, ପୃଷ୍ଠପୋଷକ ।
ମାଆଭଉଣୀ—ଗ୍ରା.ବି. ଲୋକର ମାତା ଓ
ଭଗିନୀ ।
ମାଆମାଉସୀ—ଗ୍ରା.ବି.ମାତା ଓ ମାତୃସ୍ୱସା,
ଆପଣାର ମାତୃସ୍ଥାନୀୟା ସ୍ତ୍ରୀଗୁରୁଜନ ।
ମାଆଲୋ—ଗ୍ରା.ଅବ୍ୟ.ଭୟ ଓ ବିସ୍ମୟରେ
ବ୍ୟବହୃତ ଆର୍ତ୍ତନାଦ,ଆଲୋ ମ ଆଲୋ,
ମାତାର ସମ୍ବୋଧନ । [ ଗଣ ।
ମାଇକି—ଗ୍ରା. (ସମ୍ବ)ଅବ୍ୟ. ମୋ ମାଆଙ୍କ
ମାଇକିନା—ଗ୍ରା.ସ୍ତ୍ରୀ. ବି. ନାରୀ,ସ୍ତ୍ରୀଲୋକ,
ପତ୍ନୀ, ସ୍ତ୍ରୀ, ସ୍ତ୍ରୀଜାତି । [ ଦେଖ ।
ମାଇକିନିଆ—ଗ୍ରା. ସ୍ତ୍ରୀ. ବି. ମାଇକିନା
ମାଇକିନିଆପିଲା—ଗ୍ରା.ସ୍ତ୍ରୀ. ବି. ବାଳିକା,
ଶିଶୁବାଳିକା ।
ମାଇ(କିନିଆ)ପୀକଥା--ଗ୍ରା.ବି. ସ୍ତ୍ରୀଲୋକଙ୍କ
ମଧ୍ୟରେ କଥାଭାଷା,ସ୍ତ୍ରୀଲୋକଙ୍କ ମଧ୍ୟରେ
ଚର୍ଚ୍ଚା ହେବାର ଯୋଗ୍ୟବିଷୟ,(ଲ ଅର୍ଥ)
ଅତ୍ୟନ୍ତ ନିରର୍ଥକ କଥା, ଭାର୍ଯ୍ୟାର
ଆଦେଶ, ସ୍ତ୍ରୀ ଜନୋଚିତ ବାକ୍ୟ ବା
ବିଷୟ ।
ମାଇ(କିନିଆ)ପୀକାଳ—ଗ୍ରା. ବି. ଯେଉଁ
ସମୟରେ ସ୍ତ୍ରୀ ଲୋକଙ୍କମତ ପ୍ରବଳ ହୁଏ ।
ମାଇ(କିନିଆ)ପୀଗାଧୁଆବେଳ—ଗ୍ରା. ବି.
ସକାଳ ଓଳିର ପ୍ରଥମ ପ୍ରହର ବେଳ ।
ମାଇ(କିନିଆ)ପୀବୁଝାମଣା—ଗ୍ରା. ବି. ସ୍ତ୍ରୀ-
ଲୋକମାନଙ୍କର ଅବୁଝାମଣା କଥା ।
ମାଇ(କିନିଆ)ପୀଲୋକ ସ୍ତ୍ରୀ.ବି. ସ୍ତ୍ରୀବ୍ୟକ୍ତି ।
ମାଇ(କିନିଆ)ପୀସଭା—ଗ୍ରା.ବି. ସ୍ତ୍ରୀଲୋକ-
ମାନଙ୍କର ଏକତ୍ର ବୈଠକ ।
ମାଇକେଲମଧୁସୂଦନଦତ୍ତ—ଗ୍ରା. ବି.
ବଙ୍ଗଳାର ପ୍ରଧାନ ଓ ଅଦ୍ୱିତୀୟ କବି ।
ମାଇଗୁଲିଆ—ଗ୍ରା. ପୁଂ ବି°. ମାଇଚୁ,
ସ୍ତ୍ରୀସ୍ୱଭାବଯୁକ୍ତ (ପୁରୁଷ), ଯେ ସର୍ବଦା
ସ୍ତ୍ରୀମହଲରେ ରହିବାକୁ ଭଲପାଏ ।
ମାଇଚୁ(ଚିଆ)—ଗ୍ରା. ପୁଂ. ବି°. ମାଇ-
ଗୁଲିଆ ଦେଖ । [ ବାଳିକା ।
ମାଇଝି—ଗ୍ରା.ବି. ମାଇପୀଲୋକ,ସ୍ତ୍ରୀଜାତି,
ମାଇତି—ପ୍ରା. (ବାଲେ-ମେଦି)ବି.ମାହିଷ୍ୟ
ଓ କୈବର୍ତ୍ତଙ୍କ ବଂଶୋପାଧି ।
ମାଇନର୍—ପା.ବି.ନାବାଳଗପିଲା, ପ୍ରାଥ-
ମିକ ଶିକ୍ଷାର ପରବର୍ତ୍ତୀ ଶିକ୍ଷାମାନ,
ମଧ୍ୟଇଂରେଜ ଶିକ୍ଷା । [ କରିବା ।
ମାଇନା—ପା. ବି.ଉତ୍ତମରୂପେ ପରୀକ୍ଷା-

ମାଇନାକରିବା—ଗ୍ରା.କ୍ରି.କୌଣସି ବିଷୟ ଉତ୍ତମରୂପେ ପରୀକ୍ଷା କରିବା ।

ମାଇପ—ଗ୍ରା. ସ୍ତ୍ରୀ. ବି. ( ସଂ-ମାତୃକା ) ଆପଣାର ଭାର୍ଯ୍ୟା, ସ୍ତ୍ରୀ ।

ମାଇପକରିବା—ଗ୍ରା.କ୍ରି. (ଅଶ୍ଳୀଳ) ପରସ୍ତ୍ରୀ ସହବାସ କରିବା ।

ମାଇପଚଟା—ଗ୍ରା. ପୁଂ. ବିଂ. ସ୍ତ୍ରୀପ୍ରତି ଅତ୍ୟନ୍ତ ଆସକ୍ତ, ଯେ ସ୍ତ୍ରୀର ମନତୋଷ କରିବାକୁ ସର୍ବଦା ଖୋସାମଦ କରେ ।

ମାଇପବୁଦ୍ଧିଆ—ଗ୍ରା. ପୁଂ. ବିଂ. ସ୍ତ୍ରୀବୁଦ୍ଧି ଦ୍ୱାରା ପରଚାଳିତ, ନିର୍ବୋଧ ।

ମାଇପବୋଲକରା—ଗ୍ରା. ପୁଂ. ବିଂ. ସ୍ତ୍ରୀର ଆଦେଶ ପରିପାଳନକାରୀ ।

ମାଇପରଣ୍ଡା—ଗ୍ରା. ପୁଂ. ବିଂ. ମୃତଦାର, ଯେଉଁ ପୁରୁଷ ବଞ୍ଚି ଥାଉଁ ଥାଉଁ ତାର ଭାର୍ଯ୍ୟା ବିଧବା ପରି ନିରାଶ୍ରୟା ହୋଇ ଚଳେ ।

ମାଇପରଣ୍ଡକରା—ଗ୍ରା. ପୁଂ. ବିଂ. (ଗାଳି) ଯେ ମାଇପକୁ ରଣ୍ଡକରିବାର ଉପଯୁକ୍ତ କାର୍ଯ୍ୟ କରିଅଛି, ଅର୍ଥାତ୍ ନିଜେ ମରିବାର କାର୍ଯ୍ୟ କରିଅଛି ।

ମାଇପସୁଆଗିଆ—ଗ୍ରା. ପୁଂ. ବିଂ. ଯେ ଆପଣାର ସ୍ତ୍ରୀପ୍ରତି ବା ସ୍ତ୍ରୀ ଆପଣା ପ୍ରତି ଅତିରିକ୍ତ ଆଦର ଦେଖାଏ ।

ମାଇପହେବା—ଗ୍ରା. କ୍ରି. (କୌଣସି ସ୍ତ୍ରୀ) ପରପୁରୁଷ ଦ୍ୱାରା ରକ୍ଷିତା ହେବା ।

ମାଇପୀ—ଗ୍ରା. ସ୍ତ୍ରୀ. ବି. ସ୍ତ୍ରୀଲୋକ, ନାରୀ, ବିଂ.ସ୍ତ୍ରୀଜନେ ଚିତ,ସ୍ତ୍ରୀସୁଲଭ,ସ୍ତ୍ରୀଜାତୀୟ

ମାଇପୀଡ଼ାହାଣା—ଗ୍ରା. ପୁଂ.ବିଂ. ଯେଉଁ ଲୋକ ସ୍ତ୍ରୀଲୋକଙ୍କୁ ଦେଖିବାକୁ ଲାଳାୟିତ, ଯେଉଁ ବ୍ୟକ୍ତି ପରସ୍ତ୍ରୀ ଉପରେ ଲୋଭଦୃଷ୍ଟି ପକାଏ, ସ୍ତ୍ରୀପ୍ରତି ଅତ୍ୟନ୍ତ ଆସକ୍ତ, ସ୍ତ୍ରୈଣ ।

ମାଇମୁହାଁ—ଗ୍ରା. ପୁଂ. ବିଂ. ସ୍ତ୍ରୀଲୋକପରି ସୌମ୍ୟମୁଖବିଶିଷ୍ଟ, ମାଇଚ୍ଛ, ସ୍ତ୍ରୈଣ, ଲଜ୍ଜାଶୀଳ, ସ୍ତ୍ରୀଙ୍କପରି ଭୀରୁ ।

ମାଇଲ୍—ଯା. ବି. ପଥାଦିର ଦୂରତ୍ୱବୋଧକ ଚିହ୍ନବିଶେଷ, ଅର୍ଦ୍ଧକ୍ରୋଶ ଦୂରତ୍ୱ ।

ମାଇଲା—ଗ୍ରା. ବିଂ. ମାରିଥିବା (ବ୍ୟକ୍ତି), ମାରୁଥିବା, ( ଗ୍ରା.କ୍ରି ) ମାରିବା ଧାତୁର ଅତୀତକାଳ ।

ମାଈ—ଗ୍ରା. ବିଂ. ସ୍ତ୍ରୀଜାତୀୟ (ଜୀବ) ବି; ସ୍ତ୍ରୀଜାତୀୟ ପ୍ରାଣୀ, ସ୍ତ୍ରୀ, ନାରୀ ।

ମାଈଅଣ୍ଡିରା—ଗ୍ରା. ବି ଓ ବିଂ. ସ୍ତ୍ରୀଜାତୀୟ ଓ ପୁରୁଷଜାତୀୟ ଜୀବ ।

ମାଈଁ—ଗ୍ରା. ସ୍ତ୍ରୀ. ବି. ( ସଂ-ମାତୁଳାନୀ ) ମାମୁଙ୍କର ସ୍ତ୍ରୀ ।

ମାଈକାକର—ଗ୍ରା.ବି. ପାହାନ୍ତିଆ ସନ୍ଧିରେ ପଡ଼ିବା କାକର ।

ମାଈକାକରପଡ଼ିବାବେଳ—ଗ୍ରା.ବି.ସନ୍ଧିର ପାହାନ୍ତିଆ ସମୟ ।

ମାଈଗଛ—ଗ୍ରା.ବି. ଫଳନ୍ତ ଗଛ, ଯେଉଁ ଗଛରେ ଫଳ ଧରେ ।

ମାଈଗୋବର—ଗ୍ରା.ବି.ଗାଈର ଗୋବର ।

ମାଈଛୁଆ—ଗ୍ରା. ବି. ଜୀବମାନଙ୍କର ସ୍ତ୍ରୀଶିଶୁ ।

ମାଈଦୁଧ—ଗ୍ରା. ବି. ସ୍ତ୍ରୀସନ୍ତାନ ଜନ୍ମକରିଥିବା ମାତାର ଦୁଗ୍ଧ,ସ୍ତ୍ରୀସ୍ତନରୁ ଉତ୍ପନ୍ନ ଦୁଗ୍ଧ ।

ମାଈନୁହେଁକିଗାଈନୁହେଁ-ଗ୍ରା.ବିଂ.ଅତ୍ୟନ୍ତ ନିଷ୍କପଟ, ନିରୀହ, ଉଦାସୀନ ।

ମାଈଫୁଲ—ଗ୍ରା.ବି.ବୃକ୍ଷଲତାଦିର ଯେଉଁ ଫୁଲରେ ଫଳ ଧରେ ।

ମାଈବାଛୁରୀ—ଗ୍ରା. ବି. ସ୍ତ୍ରୀବତ୍ସା ।

ମାଉଁସ—ଗ୍ରା. ବି. (ସଂ-ମାଂସ) ଶରୀରସ୍ଥ କୋମଳାଂଶବିଶେଷ,ପିଶିତ,ଖାଦ୍ୟାର୍ଥେ ବ୍ୟବହୃତ ମୃତ ବା ହତ ଜୀବର ମାଂସ ।

ମାଉଁସଲାଗିବା—ଗ୍ରା. ବି. ଶୀର୍ଣ୍ଣଦେହର ମାଂସବୃଦ୍ଧିଯୋଗୁଁ ସ୍ଥୂଳତ୍ୱଭାବ,ମେଦୋବୃଦ୍ଧି (ଲ.ଅର୍ଥ) ।

ମାଉଁସିଆ—ଗ୍ରା.ବିଂ. (ସଂ-ମାଂସଲ)ସ୍ଥୂଳକାୟ, ମୋଟା, ମାଂସଲ । [ପତ୍ନୀ ।

ମାଉଗ—ପ୍ରା. (ମେଦିନୀ) ବି ସ୍ତ୍ରୀ, ଭାର୍ଯ୍ୟା,

ମାଉଡ଼ା(ମାହୁଣ୍ଡା)—ଗ୍ରା.ପୁଂ, ବିଂ.ମାନ୍ଦା, ଅଳସ, ନିରୁଦ୍ୟମ, ନିକମା ।

ମାଉଳ—ପ୍ରା.(ବାଲେ) ବି. ଶାଳଆପଡାଳ, ଗନ୍ଧମାର୍ଜାର ।

ମାଉଳୀ—ପ୍ରା. (ସମ୍ବ)ସ୍ତ୍ରୀ.ବି.ପ୍ରେତଯୋନି ବିଶେଷ ।

ମାଉସୀ—ଗ୍ରା. ସ୍ତ୍ରୀ. ବି. ( ସଂ-ମାତୃସ୍ୱସା ) ମାଆଙ୍କ ଭଉଣୀ,ସଙ୍ଗାତ ବା ମିତଙ୍କର ମାତା, ମାତୃସ୍ଥାନୀୟା ଓ ଆପଣାଠାରୁ ବୟୋଜ୍ୟେଷ୍ଠାମାନଙ୍କପତି ପ୍ରଯୁକ୍ତ ଉକ୍ତି ।

ମାଉସୀମାଆ—ଗ୍ରା.ସ୍ତ୍ରୀ.ବି.ପିତାଙ୍କମାଉସୀ, ମାଉସୀ, ମାଆର ଭଉଣୀ, ରଥଯାତ୍ରା ସମୟରେ ରଥ ଅଟକାଯାଇ ବଡ଼ଦାଣ୍ଡର ଯେଉଁ ଲୋକପ୍ରଚଳିତ (ମାଉସୀମାଆ) ଠାକୁରାଣୀଙ୍କ ଘର ନିକଟରେ ପୋଡ଼ପିଠା ଭୋଗ ହୁଅନ୍ତି, ( ପ୍ରା. ସମ୍ବ. ବି ) ଧାତ୍ରୀ, ଉପମାତା ।

ମାଉସୀଶାଶୁ—ଗ୍ରା . ସ୍ତ୍ରୀ. ବି. ଆପଣାର ସ୍ୱାମୀଙ୍କର ବା ସ୍ତ୍ରୀଙ୍କର ମାଉସୀ ।

ମାଏ—ଗ୍ରା. ବି.ମାତାମାନେ,(ସମ୍ବୋଧନ) ହେ ମାତଃ !

ମାଏନ୍ମଂନସା—ପ୍ରା. (ସମ୍ବ) ବିଂ. ବହୁବିଧ, ଅନେକପ୍ରକାର ।

ମାଂସ—କ୍ଲୀ.ବି. (ମନ୍+ସଂ.ସ) ରକ୍ତଜାତ ଧାତୁବିଶେଷ, ଶରୀରସ୍ଥ କୋମଳାଂଶ ବିଶେଷ, ପିଶିତ, ଖାଦ୍ୟାର୍ଥେ ବ୍ୟବହୃତ ମୃତ ବା ହତଜୀବର ମାଂସ,କାଲ,କୀଟ, ଫଳର କୋମଳାଂଶ । [ ବିଶେଷ ।

ମାଂସକଚ୍ଛପ—ବି. ତାଳୁଗତ ମୁଖରୋଗ

ମାଂସକନ୍ଦୀ—ସ୍ତ୍ରୀ. ବି. (୬ତତ୍) ଅର୍ବୁଦ, ମାଂସର ଫୁଲାରୋଗ, ଆବୁ ।

ମାଂସକାମ—ବିଂ. (ବ.ବ୍ରୀ) ମାଂସପ୍ରିୟ, ଯେଉଁ ବ୍ୟକ୍ତି ମାଂସ ଖାଇବାକୁ ଭଲପାଏ ।

ମାଂସକାରି—କ୍ଲୀ. ବି. (ମାଂସ+କୃ+କ.ଇନ୍) ରକ୍ତ ।

ମାଂସକୀଲକ—ପୁଂ.ବି.ଅର୍ଶରୋଗବିଶେଷ ।

ମାଂସଖଣ୍ଡ—କ୍ଲୀ. ବି. (୬ତତ୍) ମାଂସର ଟୁକୁରା, ଖଣ୍ଡେ ମାଂସ,ଫଡ଼ାଏ ମାଂସ ।

ମାଂସଖୁରା—ପୁଂ. ବି. ଯେଉଁ ଅଶ୍ୱର ଖୁରାରେ ବହୁତ ମାଂସ ଥାଏ ।

ମାଂସଜ୍ୱର—ବି. ଜ୍ୱରରୋଗବିଶେଷ ।

ମାଂସବୃଦ୍ଧି—ବି. ( ୬ତତ୍ ) ମାଂସଜାତ

ଗ୍ରନ୍ଥିରୋଗ, ଗିଲ୍‌ଟି, ପିଳୁକା ।

ମାଂସଚ୍ଛଦା—ସ୍ତ୍ରୀ.ବି. ମାଂସରୋହିଣୀଲତା ।

ମାଂସଚ୍ଛେଦୀ—ପୁଂ. ବି. ମାଂସବିକ୍ରୟକାରୀ ଜାତିବିଶେଷ ।

ମାଂସଜ—କ୍ଲୀ. ବି. (ମାଂସ + ଜନ୍ + କ.ଅ) ଦେହସ୍ଥିତ ମାଂସଜାତ ମେଦ, ଚର୍ବି, (ବିଂ) ମାଂସଜାତ ମାତ୍ର ।

ମାଂସଜାତି—ସ୍ତ୍ରୀ.ବି. ମୃଗ,ବିଷ୍କିର,ପ୍ରତୁଦ, ପ୍ରସହ, ବିଳେଶୟ, ମହାମୃଗ,ଜଳଚର ଓ ମତ୍ସ୍ୟ ପ୍ରଭୃତି ଅଷ୍ଟବିଧ ମାଂସଜାତି ।

ମାଂସଜାଲ—କ୍ଲୀ. ବି. ମାଂସଝିଲ୍ଲି,ମାଂସ- ପେଶି ।

ମାଂସତାନ-ବି.ଗଳାର ମାଂସବୃଦ୍ଧିରୋଗ ।

ମାଂସତେଜଃ—କ୍ଲୀ. ବି.(ବ.ଗ୍ରୀ) ମେଦ ।

ମାଂସଦଳନ—ବି. ପ୍ଳୀହଘ୍ନ ବୃକ୍ଷ, ରକ୍ତ- ରୋହିତକ ବୃକ୍ଷ ।

ମାଂସଦ୍ରାବୀ—ବି. (୬ତତ୍) ଅମ୍ଳବେତସ, ଝଣ୍ଟାପାଳଙ୍ଗ ।

ମାଂସନିର୍ଯ୍ୟାସ—ବି. ( ୬ତତ୍ ) ଦେହର କେଶ, ଲୋମ । [ ପିଶାଚ ।

ମାଂସପ—ବି. ( ମାଂସ + ପା + କ.ଅ )

ମାଂସପଚନ—କ୍ଲୀ. ବି.(ବ.ଗ୍ରୀ)ମାଂସପାକ ପାତ୍ର, ମାଂସପାକ ।

ମାଂସପାକ—ବି. ମାଂସରନ୍ଧନ, ଲିଙ୍ଗର ମାଂସ ଫାଟିଯାଇ ପୀଡ଼ାଦେବା ରୋଗ ବିଶେଷ ।

ମାଂସପିଟକ—ବି. ମାଂସପୂର୍ଣ୍ଣ ଟୋକେଇ, ବହୁପରିମିତ ମାଂସ ।

ମାଂସପିଣ୍ଡ—ବି. (୬ତତ୍)ଦେହ, ଶରୀର, ମାଂସଖଣ୍ଡ ।

ମାଂସପିତ୍ତ—କ୍ଲୀ.ବି. (୬ତତ୍)ଅସ୍ଥି,ହାଡ଼ ।

ମାଂସପୁଷ୍ପିକା—ସ୍ତ୍ରୀ.ବି.ଭ୍ରମରାର ପୁଷ୍ପବୃକ୍ଷ ।

ମାଂସପେଶୀ—ସ୍ତ୍ରୀ. ବି. (୬ତତ୍)ଚର୍ମସ୍ଥା- ବୟବ ଭେଦ, ଶରୀରର ମାଂସପିଣ୍ଡ ମାନଙ୍କୁ ପରସ୍ପର ବାନ୍ଧିବା ମାଂସର ସୂତା

ମାଂସଫଳ—ବି. ତରମୁଜ, ତରଭୁଜ ।

ମାଂସଫଳା—ସ୍ତ୍ରୀ. ବି. ବାର୍ତ୍ତାକୀ,ବାଇଗଣ ଭେଣ୍ଡି । [ ବିଶେଷ ।

ମାଂସଭକ୍ଷ—ବି. ମାଂସଭକ୍ଷକ ଦାନବ-

ମାଂସଭୁକ୍—ବିଂ. ( ମାଂସ + ଭୁଜ୍ + କ. କ୍ୱିପ୍ )ମାଂସଖାଦକ,ମାଂସାଦ,ମାଂସାଶୀ ।

ମାଂସଭେତ୍ତା—ପୁଂ.ବିଂ. ( ମାଂସ + ଭିଦ୍ କ.ତୃ) ମାଂସଭେଦକାରୀ ।

ମାଂସଭୋଜୀ—ପୁଂ. ବିଂ. (ମାଂସ + ଭୁଜ୍ କ.ଇନ୍) ମାଂସାଶୀ,ମାଂସଭୋଜନକାରୀ. (ସ୍ତ୍ରୀ) ମାଂସଭୋଜିନୀ ।

ମାଂସମଣ୍ଡ—ବି. ମାଂସର ଝୋଳ ବା ସୋରୁଆଁ । [ ବହୁଳ ।

ମାଂସମୟ—ବିଂ. ମାଂସସ୍ୱରୂପ, ମାଂସ-

ମାଂସମାସା—ସ୍ତ୍ରୀ. ବି. ମାଂସପର୍ଣ୍ଣୀ ।

ମାଂସଯୋନି—ପୁଂ.ବି. (ବ.ଗ୍ରୀ) ରକ୍ତ- ମାଂସରୁ ଉତ୍ପନ୍ନ ଜୀବ, ମନୁଷ୍ୟ ।

ମାଂସରକ୍ତା—ସ୍ତ୍ରୀ. ବି. ରୋହିଣୀ, ମାଂସ- ରୋହିଣୀ ।

ମାଂସରଜ୍ଜୁ—ସ୍ତ୍ରୀ. ବି. ମାଂସନିବନ୍ଧନ ସ୍ନାୟୁ, ମାଂସପେଶୀ ଦେଖ ।

ମାଂସରସ—ପୁଂ. ବି. (୬ତତ୍) ମାଂସର ରସ, ମାଂସର ଝୋଳ, ସୋରୁଆଁ ।

ମାଂସରୁହା—ସ୍ତ୍ରୀ. ବି. ମାଂସରୋହିଣୀ ।

ମାଂସରୋହା—ସ୍ତ୍ରୀ. ବି. ମାଂସରୋହିଣୀ ।

ମାଂସରୋହିକା—ସ୍ତ୍ରୀ. ବି. ମାଂସରୋହିଣୀ ବିଶେଷ ।

ମାଂସରୋହିଣୀ—ସ୍ତ୍ରୀ, ବି.ଅଗ୍ନିରୁହା, ଚର୍ମ- କଷା, ଏକପ୍ରକାର ଜଙ୍ଗଲି ଲତାଳିଆ ଗୁଳ୍ମ ।

ମାଂସଲ—ପୁଂ. ବିଂ. (ମାଂସ + ଲ) ମାଉଁ- ସିଆ, ବଳବାନ୍, ସ୍ଥୂଳ,ମାଂସଯୁକ୍ତ,ଅତି ବହଳ, (ସ୍ତ୍ରୀ) ମାଂସଲା ।

ମାଂସଲତା—ସ୍ତ୍ରୀ. ବି. (ମାଂସଲ + ତ + ଆ) ସ୍ଥୂଳତା, ପୁଷ୍ଟି ।

ମାଂସଲଫଳା—ସ୍ତ୍ରୀ. ବି. ବ.ଗ୍ରୀ;ବାର୍ତ୍ତାକୀ, ଭଣ୍ଟାକୁଜ, ଭେଣ୍ଡୀ ।

ମାଂସଲିପ୍ତ—କ୍ଲୀ. ବି. ଅସ୍ଥି, ହାଡ଼ ।

ମାଂସବର୍ଗ—ବି. ଜଳଚର, ସଜଳଦେଶ- ଚର,ଗ୍ରାମ୍ୟ,ମାଂସଭୋଜୀ,ଏକଶଫ ଏବଂ ଜାଙ୍ଗଲ ଏହି ଛଅପ୍ରକାର ମାଂସ ବର୍ଗ ।

ମାଂସବହସ୍ରୋତଃ—କ୍ଲୀ.ବି.ମାଂସନାସୂକ ନାଡ଼ୀ ।

ମାଂସବାରୁଣୀ—ସ୍ତ୍ରୀ.ବି.(କ.ଧା)ହରିଣାଦି ମାଂସରୁ ଉତ୍ପନ୍ନ ଏକପ୍ରକାର ମଦ୍ୟ ।

ମାଂସବିକ୍ରୟୀ—ପୁଂ. ବିଂ.(୬ତତ୍)ଆମିଷ ବିକ୍ରୟକର୍ତ୍ତା, କଂସେଇ, ଧନଲୋଭରେ ଯେ ପୁତ୍ର କନ୍ୟା ବିକ୍ରୟ କରେ ।

ମାଂସବିକ୍ରେତା—ପୁଂ ବିଂ. ମାଂସବିକ୍ରୟୀ ଦେଖ ।

ମାଂସବୃଦ୍ଧି—ସ୍ତ୍ରୀ. ବି. (୬ତତ୍) ଅର୍ବୁଦ, ଗଳଗଣ୍ଡ, ଶ୍ଳୀପଦ, କୋରଣ୍ଡ, ଅଣ୍ଡ- କୋଷର ମାଂସବୃଦ୍ଧି ।

ମାଂସଶୀଳ—ବିଂ. ମାଂସଲ,ମାଂସପ୍ରିୟ ।

ମାଂସସଙ୍କୋଚ—ବି. ମାଂସର ଶଠିତଭାବ, ମାଂସ ସାଙ୍କୁଡ଼ିବା ।

ମାଂସସଙ୍ଘାତ—ବି.ତାଳୁ ରୋଗ ବିଶେଷ ।

ମାଂସସମ୍ଭବା—ସ୍ତ୍ରୀ. ବି. ବ.ଗ୍ରୀ; ବସା, ଚର୍ବି ।

ମାଂସସାର—ବି. (୬ତତ୍)ମେଦୋଧାତୁ, ବିଂ—ବ.ଗ୍ରୀ; ହୃଷ୍ଟପୁଷ୍ଟ, ସ୍ଥୂଳକାୟ, (ସ୍ତ୍ରୀ) ମାଂସସାରା ।

ମାଂସସ୍ନେହ—ବି. (୬ତତ୍)ମେଦୋବୃଦ୍ଧି, ବସା, ଚର୍ବି ।

ମାଂସହାସା—ସ୍ତ୍ରୀ. ବି. (ମାଂସ + ହାସ + ଆ) ଚର୍ମ, ଚମଡ଼ା ।

ମାଂସାଦ୍—ବିଂ. ( ମାଂସ + ଅଦ୍ + କ୍ୱିପ୍ ) ମାଂସଭକ୍ଷକ,(ବି)ରାକ୍ଷସ,ମାଂସାଶୀ ଜୀବ ।

ମାଂସାଦ—ବିଂ. ( ମାଂସ + ଅଦ୍ + ଅ ) ମାଂସାଶୀ,ମାଂସଭକ୍ଷକ, ( ବି ) ରାକ୍ଷସ, ମାଂସାଶୀ ପ୍ରାଣୀ ।

ମାଂସାଦୀ—ପୁଂ. ବିଂ. (ମାଂସ + ଅଦ୍ + ଇନ୍) ମାଂସାଶୀ, ମାଂସଭୋଜୀ ।

ମାଂସାଙ୍କୁର—ବି.ଅଙ୍କୁରବତ୍ ମାଂସସମୂହ, ଅର୍ଶରୋଗର ବଳି ।

ମାଂସାର—ବି.(ମାଂସ + ଅର)ଅମ୍ଳବେତସ, ଝଣ୍ଟାପାଳଙ୍ଗ ।

ମାଂସାର୍ବୁଦ—କ୍ଲୀ.ବି. ଶୂକରୋଗ ବିଶେଷ, ଅର୍ବୁଦରୋଗ ।

ମାଂସାଶନ—କ୍ଲୀ. ବି. (ମାଂସ + ଅଶ୍ + ଭା.ଅନ) ମାଂସଭୋଜନ, (କ.ଅ)ରାକ୍ଷସ, (ବିଂ) ମାଂସାଶୀ, ମାଂସଭକ୍ଷକ ।

ମାଂସାଶୀ—ପୁଂ. ବିଂ. (ମାଂସ + ଅଶ୍ +

ଇନ୍) ମାଂସଭକ୍ଷକ, ଯେ ମାଂସ ଖାଏ, (ସ୍ତ୍ରୀ) ମାଂସାଶିନୀ,(ବି) ରାକ୍ଷସ ।

ମାଂସାଷ୍ଟକା—ସ୍ତ୍ରୀ. ବି. ଗୌଣଚାନ୍ଦ୍ର ମାଘ କୃଷ୍ଣାଷ୍ଟମୀରେ କର୍ତ୍ତବ୍ୟ ମାଂସଯୁକ୍ତ ଶ୍ରାଦ୍ଧ ବିଶେଷ ।

ମାଂସାହାର—ବି. (୬ତତ୍)ମାଂସଭୋଜନ, (ପୁଂ.ବିଂ) ବ.ବ୍ରୀ; ମାଂସାହାରୀ ଦେଖ ।

ମାଂସାହାରୀ—ପୁଂ. ବିଂ. (ମାଂସାହାର+ଇନ୍) ମାଂସାଦ, ମାଂସଭୋଜୀ, (ସ୍ତ୍ରୀ) ମାଂସାହାରିଣୀ ।

ମାଂସିକ॰ ବି.(ମାଂସ+ଇକ)ମାଂସବିକ୍ରୟୀ, ଶୌନିକ, କଂସେଇ, (ସ୍ତ୍ରୀ) ମାଂସିକୀ ।

ମାଂସିକା—ସ୍ତ୍ରୀ. ବି, ଜଟାମାଂସୀ ।

ମାଂସିନୀ—ସ୍ତ୍ରୀ. ବି.(ମାଂସ+ଇନ୍+ଈ) ଜଟାମାଂସୀ ।

ମାଂସୀ—ସ୍ତ୍ରୀ.ବି.(ମାଂସ+ଈ)ଜଟାମାଂସୀ, କାକୋଳୀ, ମାଂସଚ୍ଛଦା, ମୁରାମାଂସୀ, ଚନ୍ଦନତେଲ, ବାଡ଼ିଅଁଳା, ଅଳେଇଚ, ଅଙ୍ଗାରକ ତୈଳ,ମାଂସରୋହିଣୀ ବିଶେଷ. ରୁଦନ୍ତୀ ।

ମାଂସୀୟ—ବିଂ. ମାଂସେଚ୍ଛୁ ।

ମାଂସେପାଦ୍—ବିଂ. ମାଂସଳ ପାଦଯୁକ୍ତ ।

ମାଂସୋନ୍ନତ—ସ୍ତ୍ରୀ.ବି.ମାଂସର ସ୍ଫୀତତା ।

ମାଂସୋପଜୀବୀ—ପୁଂ. ବିଂ. ମାଂସବିକ୍ରୟ ଦ୍ୱାରା ଜୀବିକା ନିର୍ବାହକାରୀ ।

ମାଂସୌଦନ—ପୁଂ. ବିଂ.(ମାଂସ+ଓଦନ) ପଲାନ୍ନ, ପଲଉ ।

ମାଂସୌଦନିକ—ବିଂ.ମାଂସୌଦନ ସମ୍ବ- [ ନ୍ଧୀୟ ।

ମାଁମା—ଗ୍ରା. ବି. ମାତା, ମା, ଜନନୀ ।

ମାକ୍(ଙ୍କ)ଡ଼ି—ପ୍ରା. ବାଲେ. ବି. କର୍ଣ୍ଣାଳଙ୍କାର ବିଶେଷ, (ସଂ-ମକରକୁଣ୍ଡଳ) ।

ମାକ(ଙ୍କ)ଡ଼—ଗ୍ରା. ବି. ବାନର, ମର୍କଟ, (ସ୍ତ୍ରୀ) ମାକ (ଙ୍କ)ଡ଼ୀ ।

ମାକଡ଼କେନ୍ଦୁ—ଗ୍ରା. ବି. ( ସଂ-ତିନ୍ଦୁକ ) ଏକପ୍ରକାର କେନ୍ଦୁ ଓ ତାହାର ଗଛ ।

ମାକଡ଼ଚଢ଼—ଗ୍ରା. ବି. ଉଚ୍ଚସ୍ଥାନରୁ ବନ୍ଧଭଙ୍ଗି ପାଣି ଉପରକୁ ଡେଇଁ ପାଣିରେ ଚିତ୍ତହୋଇ ପଡ଼ିବା ।

ମାକଡ଼ଫାଶ—ବି. ଏକପ୍ରକାର ଦଉଡ଼ି ଆଦିର ଗଣ୍ଠି, ବାଘୁଆଫାଶ ।

ମାକଡ଼ବସ—ଗ୍ରା. ବି. ଶ୍ରେଷ୍ଠ ପାଣ୍ଡୁର କଙ୍କଡ଼ାବିଛା ।

ମାକ(ଙ୍କ)ଡ଼ମୁହାଁ—ଗ୍ରା. ପୁଂ.ବିଂ. ମର୍କଟବଦନ, ଅସୁନ୍ଦରମୁହାଁ, (ସ୍ତ୍ରୀ)ମାକ (ଙ୍କ) ଡ଼ମୁହାଁ ।

ମାକ(ଙ୍କ)ଡ଼ସା—ଗ୍ରା.ବି.ବୁଢ଼ିଆଣୀ, ଊର୍ଣ୍ଣନାଭ, ଅଷ୍ଟପଦୀ କୀଟ ବିଶେଷ ।

ମାକ(ଙ୍କ)ଡ଼ସାଜାଲ—ଗ୍ରା. ବି. ବୁଢ଼ିଆଣୀ ଜାଲ ।

ମାକ(ଙ୍କ)ଡ଼ାପଥର—ଗ୍ରା.ବି. ଏକପ୍ରକାର ନାଲି ଛିଦ୍ରବହୁଳ ପଥର ।

ମାକ(ଙ୍କ)ଡ଼ି—ଗ୍ରା. ବି. ସୁନାର ମକର କୁଣ୍ଡଳ ବା ଅର୍ଦ୍ଧଚନ୍ଦ୍ରାକୃତି କର୍ଣ୍ଣବଳୟ. ପାଣିକୁହା ତେଣ୍ଡାର ବା ଯନ୍ତ୍ରର ଦୁଇ ଖୁଣ୍ଟ ଉପରେ ଥିବା ଆଡ଼ଧାରଣା,ଆଡ଼ୁ ଉପରେ ଯେଉଁ ଖୁଣ୍ଟି ଉପରେ ଶେଣୀ ରହେ ।

ମାକ(ଙ୍କ)ଡ଼ିଆ—ଗ୍ରା. ବିଂ. ମର୍କଟ ପରି ଅସୁନ୍ଦର ଓ କ୍ଷୀଣକାୟ, ରୋଗ ଆଦି କୌଣସି କାରଣରୁ ବିକୃତ ହୋଇଥିବା (ଫଳଆଦି),(ଗ୍ରା.ବି)ଯେ ମାଙ୍କଡ଼ନଗ୍ରଇ ପେଟ ପୋଷେ,ଯେଉଁ ଅନାର୍ଯ୍ୟ ଜଙ୍ଗଲି ମାନେ ମାଙ୍କଡ଼ ମାରନ୍ତି ଓ ଖାଆନ୍ତି ।

ମାକ(ଙ୍କ)ଡ଼ୀଦୁଧୀ—ଗ୍ରା.ସ୍ତ୍ରୀ.ବିଂ.କ୍ଷୀଣସ୍ତନା (ନାରୀ), ମର୍କଟସ୍ତନୀ ।

ମାକନ୍ଦ—ପୁଂ. ବି.(ମା + କନ୍ଦ)ଆମ୍ବଗଛ, ଆମ୍ବଫଳ, ଚନ୍ଦନ ବୃକ୍ଷ ।

ମାକନ୍ଦୀ—ସ୍ତ୍ରୀ. ବି. (ମାକନ୍ଦ + ଈ)ଗଙ୍ଗା କୂଳରେ ଅବସ୍ଥିତ ମହାଭାରତୋକ୍ତ ପ୍ରାଚୀନ ନଗରୀ ବିଶେଷ, ଆମଳକୀ, ପୀତଚନ୍ଦନ, ମାଦ୍ରାଣୀ ।

ମାକର—ବିଂ.(ମକର + ଅ)ମକର ସମ୍ବନ୍ଧୀୟ, (ସ୍ତ୍ରୀ) ମାକରୀ ।

ମାକରନ୍ଦ—ବିଂ. (ମକରନ୍ଦ + ଅ)ମକରନ୍ଦ ବା ପୁଷ୍ପରସ ନିର୍ଯ୍ୟାସ ସମ୍ବନ୍ଧୀୟ ।

ମାକରୀ—ସ୍ତ୍ରୀ. ବି. ମରୁଆଫୁଲ ଗଛ ।

ମାକରୀ—ସ୍ତ୍ରୀ. ବି.(ମକର+ଅ+ଈ)ମାଘମାସର ଶୁକ୍ଳସପ୍ତମୀ, (ବିଂ) ମକରରାଶି ସମ୍ବନ୍ଧୀୟ ।

ମାକଳ—ପୁଂ. ବିଂ. ଅଜାତଦନ୍ତ ହ୍ରସ୍ୱଦେହ ହସ୍ତୀ,ମାଖୁନାହାତୀ । [ ମାଚଳ ।

ମାକଳି—ପୁଂ. ବି.ଚନ୍ଦ୍ର, ଇନ୍ଦ୍ରଙ୍କ ସାରଥି

ମାକାରଧ୍ୟାନ—କ୍ଳୀ. ବି. ଈଶ୍ୱର ଚନ୍ତାର ପ୍ରକାର ବିଶେଷ ।

ମାକି(କେ)ନ୍ଦ—ଗ୍ରା.ବି. ଏକପ୍ରକାର ଶ୍ରେଷ୍ଠ କାଠ ମାଛ ।

ମାକୀ—ସ୍ତ୍ରୀ. ବିଂ. ନିର୍ମାତ୍ରୀ, ଭୂତଜାତର ନିର୍ମାଣକର୍ତ୍ତ୍ରୀ ।

ମାକୁ—ଗ୍ରା.ବି.ତନ୍ତରେ ଲୁଗା ବୁଣିବାର ଯନ୍ତ୍ରବିଶେଷ ।

ମାକୁ(ଖୁ)ନ୍ଦା—ଗ୍ରା.ବିଂ. ମାଖୁନା ଦେଖ ।

ମାକୁଲୀ—ପୁଂ. ବି. ସର୍ପବିଶେଷ ।

ମାକୁଲ୍—ଯା.ବିଂ.ଯଥାଯୋଗ୍ୟ,ନିୟମିତ

ମାକେଡ଼ି—ଗ୍ରା. ବି. ଗୃଳଧରର ଗୁଳ ଓ ଶେଣୀ ମଧ୍ୟରେ ବସିଥିବା କାଷ୍ଠଖଣ୍ଡ ।

ମାକ୍ଷି(କ୍ଷୀ)କ—କ୍ଳୀ.ବି.(ମକ୍ଷିକା+ଅ)ମଧୁ, ମହୁ, ତାରମାକ୍ଷିକ ଓ ସ୍ୱର୍ଣ୍ଣମାକ୍ଷିକ ନାମକ ଉପଧାତୁବିଶେଷ, (ବିଂ) ମକ୍ଷିକାସମ୍ବନ୍ଧୀୟ, ମଧୁମକ୍ଷିକାସମ୍ବନ୍ଧୀୟ, (ସ୍ତ୍ରୀ)ମାକ୍ଷିକୀ

ମାକ୍ଷିକଜ—କ୍ଳୀ.ବି (ମାକ୍ଷିକ+ଜନ୍+ଅ) ମହଣ, ମହୁସିଠା ।

ମାକ୍ଷିକଫଳ—ବି. (ବ.ବ୍ରୀ) ମଧୁ ନାରିକେଲ ବୃକ୍ଷ, (କ.ଧା) ମଧୁ ନାରିକେଲ ଫଳ ।

ମାକ୍ଷିକଶର୍କରା—ସ୍ତ୍ରୀ.ବି. ସିତାଖଣ୍ଡ, ମିଶିରି ପରି ଦାନାବନ୍ଧା ଚିନି,ମହୁରୁ ଜାତ ଚିନି

ମାକ୍ଷି(କ୍ଷୀ)କଶ୍ରେଷ୍ଠା—ରୌପ୍ୟମାକ୍ଷିକ ।

ମାକ୍ଷି(କ୍ଷୀ)କାନ୍ତ—କ୍ଳୀ. ବି. ମାଧବୀମଦ୍ୟ ।

ମାକ୍ଷିକାଶ୍ରୟ—କ୍ଳୀ.ବି. ମହୁସିଠା, ମହଣ, ମଧୁଚକ୍ର ।

ମାକ୍ସମୁଲର—ଯା. ବି. (ନାମ); ପ୍ରଧାନ ସଂସ୍କୃତଜ୍ଞ ଅନୁସନ୍ଧିତ୍ସୁ ପୃଥିବୀ ବିଖ୍ୟାତ ଜର୍ମାନ ପଣ୍ଡିତ ।

ମାଖ—ବିଂ. (ମଖ+ଅ) ଯଜ୍ଞସମ୍ବନ୍ଧୀୟ ।

ମାଖନ—ଗ୍ରା. ବି. (ସଂ-ମ୍ରକ୍ଷଣ) ନବନୀତ, ଜହୁଣୀ, (ପ୍ରା.ସମ୍ବ.ବି) ବୋଇତକଖାରୁ

ମାଖ(ଖୁ)ନା—ଗ୍ରା. ପୁଂ. ବିଂ. ଶ୍ମଶ୍ରୁହୀନ (ପୁରୁଷ), ଅଜାତଦନ୍ତ (ହସ୍ତୀ) ।

ମାଂ(ଖେ)ଶ—ଗ୍ରା. ବଂ. ନୁଖୁର୍, ଯାହା ଚିକ୍କଣ ନୁହେ, ଅସ୍ନିଗ୍ଧ, ଅମସୃଣ, ଯହା ତୈଳଲିପ୍ତ ନୁହେ, ଶୁଖିଲ. (ଲ.ଅର୍ଥ) କପର୍ଦ୍ଦକଶୂନ୍ୟ ।

ମାଖିବା—ଗ୍ରା.କ୍ରି. (ସଂ-ମ୍ରକ୍ଷଣ) ଦେହରେ ତେଲଆଦି ବୋଳିବା, ଲେପିବା ।

ମାଖିହେବା—ଗ୍ରା.କ୍ରି.ଦେହରେ ତେଲ-ଆଦି ବୋଳି ହେବା ।

ମା(ମାଁ)ଗନ—ପ୍ରା(ସମ୍ବ)ବ.ଶୂଦ୍ରମାନଙ୍କର ବିବାହ ପୂର୍ବରୁ କନ୍ୟା ଘରଠାରେ ବର-କର୍ତ୍ତା ଓ କନ୍ୟାକର୍ତ୍ତାଙ୍କ ମହାପ୍ରସାଦ-ବନ୍ଧନ ସ୍ୱୀକାର ।

ମାଗ—ଗ୍ରା.ବ. (ସଂ-ମାର୍ଗଣ) ମାଗିବାକର୍ମ, ଭୁମ୍ଭେ ଯାଚ୍ଞା କର ।

ମାଗଣ—ଗ୍ରା. ବ. (ସଂ-ମାର୍ଗଣ) ମାଗିବା, ରାଜା ବା ଜମିଦାର ଆପଣାର ଆବଶ୍ୟକ ବା ପାରିବାରିକ ଉତ୍ସବାଦି ଉପଲକ୍ଷରେ ପ୍ରଜାଙ୍କ ଧନ ସାହାଯ୍ୟ ମାଗିବା, ରାଜାଙ୍କ ପ୍ରଜା ବିଶିଷ୍ଟ କାର୍ଯ୍ୟ ଉପଲକ୍ଷରେ ଅର୍ଥ ସାହାଯ୍ୟ ଦାନ ।

ମାଗଣା—ଗ୍ରା.ବଂ. ବିନା ମୂଲ୍ୟରେ ପ୍ରାପ୍ତ, ମାହାଳିଆ, ଫୋକଟ, (କ୍ରି.ବଂ) ମୂଲ୍ୟ ନ ଦେଇ, ବିନା ମୂଲ୍ୟରେ ।

ମାଗଣାକଥା—ଗ୍ରା. ବ. ମୂଲ୍ୟହୀନକଥା, ଅଯାଚିତ ଉପଦେଶ,ନିରର୍ଥକ ବାକ୍ୟ ।

ମାଗଣାଖିଆ—ଗ୍ରା.ପୁଂ.ବଂ. ପରାନ୍ନଭୋଜୀ, ଯେ ମାହାଳିଆ ଖାଏ, (ବ) ପରାନ୍ନ-ଭୋଜନ ।

ମାଗଣାପରିଶ୍ରମ—ଗ୍ରା.ବ. ବୃଥା ପରିଶ୍ରମ ।

ମାଗଣାମାଲ—ଗ୍ରା.ବ.ଯେଉଁ ଦ୍ରବ୍ୟ ପାଇଁ ଦ୍ରବ୍ୟଗ୍ରାହୀକୁ ଧନ ଦେବାକୁ ପଡ଼େନାହିଁ

ମାଗଧ—ପୁଂ. ବ. (ମଗଧ + ଅ) ବନ୍ଦୀ, ସ୍ତୁତିପାଠକ, ଜରାସନ୍ଧରାଜ, ଧଳାଜିରା, ପିପ୍ପଳୀମୂଳ, ସୌବର୍ଚ୍ଚ ଲବଣ, ବୈଶ୍ୟ ଔରସରେ କ୍ଷତ୍ରିୟା ଗର୍ଭରେ ଜାତ ବର୍ଣ୍ଣସଙ୍କର ଜାତିବିଶେଷ; ଭାଟଜାତି, ମଗଧ ଦେଶବାସୀ ବ୍ୟକ୍ତି, (ବଂ)ମଗଧ-ଦେଶଜାତ ଶୁକ୍ଳଜୀରି (ପ୍ରକୃତିବାଦ), (ସ୍ତ୍ରୀ) ମାଗଧୀ ।

ମାଗଧକ—ପୁଂ. ବ. ସ୍ତୁତିପାଠକ, ବନ୍ଦୀ, ଭାଟ, ମଗଧର ଲୋକ ।

ମାଗଧପୁର—କ୍ଲୀ.ବ. ମଗଧର ରାଜଧାନୀ, ରାଜଗୃହ ।

ମାଗଧା—ସ୍ତ୍ରୀ. ବ. (ମାଗଧ + ଆ)ମଗଧ ରାଜପୁତ୍ରୀ, ପିପ୍ପଳୀ ।

ମାଗଧଦେଶୀ—ସ୍ତ୍ରୀ. ବ. ରାଧିକା ।

ମାଗଧିକ—ବଂ. (ମଗଧ+ଇକ) ମଗଧ ଦେଶୀୟ ।

ମାଗଧିକା—ସ୍ତ୍ରୀ. ବ. ପିପ୍ପଳୀ ।

ମାଗଧୀ—ସ୍ତ୍ରୀ. ବ. (ମଗଧ+ଅ+ଈ) ଯୂଥିକା, ଯୂଇଫୁଲ, ପିପ୍ପଳୀ, ଶୁଭ୍ର ଶର୍କରା, ଚିନି, ମଗଧ ଦେଶର ଭାଷା, ପାଲୀଭାଷା, ମଗଧ ରାଜକନ୍ୟା, ମଗଧ ଦେଶୀୟା ଗଣିକା, ଶ୍ରେଷ୍ଠ ଅଳଙ୍କୃତ, ଧଳାଜିରା, ଜୁଆଣୀ, ଶୋଣନଦୀ, କ୍ଷତ୍ରିୟା ମାତା ଓ ବୈଶ୍ୟ ପିତା ଔରସ କନ୍ୟା ।

ମାଗଧୀପ୍ରାକୃତ—ବ.ମଗଧ ଅଞ୍ଚଳ (ଆଧୁନିକ ଦକ୍ଷିଣ ବିହାର) ରେ ପ୍ରଚଳିତ ପ୍ରାକୃତ ଭାଷା, ପାଲୀଭାଷା ।

ମାଗଯାଚ—ଗ୍ରା. ବ. (ଏକାର୍ଥ ସହଚର) ମାଗିବା କର୍ମ, ମଗାଯାଚ୍ ।

ମାଗିଓଲିକିଯାଚିକଲ୍ୟାଣ—ଗ୍ରା. ବ. କଥକକୁ ସମ୍ମାନ ଦେଖାଇବା ସକାଶେ ଅନ୍ୟକୁ ଅନୁରୋଧ କରିବା ବା ବିନା ନମସ୍କାରରେ ଆଶୀର୍ବାଦ କରିବା ରୂପ-କର୍ମ ।

ମାଗିଆଣିବା—ଗ୍ରା. କ୍ରି. କୌଣସି ଦ୍ରବ୍ୟ ବ୍ୟବହାରାର୍ଥ ଅନ୍ୟଠାରୁ ଆଣିବା ।

ମାଗିଖାଇବା—ଗ୍ରା. କ୍ରି. ଭିକ୍ଷାନ୍ନ ଦ୍ୱାରା ଉଦରପୂରଣ କରିବା ।

ମାଗିଖିଆ—ଗ୍ରା.ପୁଂ.ବଂ. ଯେ ଭିକ୍ଷାକରି ପେଟ ପୋଷେ ।

ମାଗିବା—ଗ୍ରା.କ୍ରି. (ସଂ-ମାର୍ଗଧାତୁ)ଯାଚ୍ଞା କରିବା,ଭିକ୍ଷାକରିବା, କୌଣସି ବ୍ୟକ୍ତି-ଠାରୁ କୌଣସି ଦ୍ରବ୍ୟ ପାଇବା ଲାଗି ପ୍ରାର୍ଥନା କରିବା, କୌଣସି ସଂଖ୍ୟାକୁ ଅନ୍ୟ ସଂଖ୍ୟାରେ ଗୁଣନ କରିବା,ପଣି-କିଆ ବୋଲିବା ।

ମାଗିବାଯାଚିବା—ଗ୍ରା. କ୍ରି. (ଏକାର୍ଥସହଚର) ମାଗିବା, ଭିକ୍ଷାକରିବା, ପ୍ରାର୍ଥନା କରିବା ।

ମାଗୁଣି—ଗ୍ରା.ପୁଂ.ବ. (ସଂ-ମାର୍ଗଣ) ମାଗଣ ଦେଖ, ମାଗିବା, ଅପର୍ତ୍ତିଆଣି ପିଲାଙ୍କୁ ଡାଆଯିବା ନାମ ।

ମାଗୁଣିଆଁ—ଗ୍ରା.ବ.ମାଗଲା, ଯେ ମାଗେ, ପ୍ରାର୍ଥନାକାଙ୍କ୍ଷୀ ।

ମାଗୁର—ଗ୍ରା. ବ. (ସଂ-ମଦ୍ଗୁର) ମଧୁର ଜଳରେ ରହୁବା ଏକପ୍ରକାର କାତି ନ ଥିବା ମାଛ, ମାଗୁରମାଛ ।

ମାଗୁରଖୁଣ୍ଟିଆ,ମାଗୁରିଆ—ଗ୍ରା.ପୁଂ. ବଂ. ଶ୍ରେଷ୍ଠ ଓ ହୃଷ୍ଟପୁଷ୍ଟ (ବ୍ୟକ୍ତି) ।

ମାଗୁରନଣା—ଗ୍ରା.ପୁଂ.ବଂ. ଯେଉଁ ପୁରୁଷର ମୁହଁରେ ମାଗୁର ନଣପରି ଅଳ୍ପ ଗୋଟି କେତେ କେଶ ଦିଶେ ।

ମାଗୁରମୁହାଁ—ଗ୍ରା.ପୁଂ. ବଂ. ମାଗୁରପରି ଯେଉଁମାନଙ୍କ ମୁହଁ ଚେପ୍ଟା, ଚେପ୍ଟା-ମୁହାଁ ।

ମାଗୋସାଇଁ—ଗ୍ରା. ସ୍ତ୍ରୀ. ବ. ମାତା ବା ଦେବୀଙ୍କ ପ୍ରତି ବ୍ୟବହୃତ ଭକ୍ତିସୂଚକ ବାକ୍ୟ ।

ମାଘ—ପୁଂ.ବ.( ମଘା + ଅ + ଈ=ମାଘୀ-+ଅ) ମଘା ନକ୍ଷତ୍ରଯୁକ୍ତ ପୌର୍ଣ୍ଣମାସୀ-ବିଶିଷ୍ଟ ଚାନ୍ଦ୍ରମାସ, ମାଘମାସ, ଶିଶୁପାଳ-ବଧ ସଂସ୍କୃତ କାବ୍ୟର ପ୍ରଣେତା ।

ମାଘଚୈତନ୍ୟ—ପୁଂ.ବ.କଳ୍ପଲତା ନାମକ ଗ୍ରନ୍ଥର ଅଷ୍ଟମଭାଗ ପ୍ରଣେତା ।

ମାଘମା—ସ୍ତ୍ରୀ. ବ. କର୍କଟ ।

ମାଘବତୀ(ନୀ)—ସ୍ତ୍ରୀ ବ.(ମଘବତ୍+ଅ+ଈ) ପୂର୍ବଦିଗ, ମାଘବତର ସ୍ତ୍ରୀଲିଙ୍ଗ ।

ମାଘବତ(ନ)—କ୍ଲୀ.ବ. (ମଘବତ୍ + ଅ) ଇନ୍ଦ୍ରସମ୍ବନ୍ଧୀ ବସ୍ତୁ, (ବଂ)ଇନ୍ଦ୍ରସମ୍ବନ୍ଧୀୟ

ମାଘବ୍ରତ—ବ. ମାଘମାସରେ ହିନ୍ଦୁମାନ-ଙ୍କର କରଣୀୟ ପ୍ରାତଃସ୍ନାନ, ହବିଷ୍ୟ ଓ ଜପଆଦି ବ୍ରତ ।

ମାଘସପ୍ତମୀ—ବ.ମାଘମାସର ଶୁକ୍ଳସପ୍ତମୀ

ମାଘସ୍ନାନ—ଗ୍ରା. ବ. ମାଘମାସରେ କରାଯିବା ପ୍ରାତଃସ୍ନାନ, ପ୍ରୟାଗରେ ତ୍ରିବେ-

ଣୀରେ କରାଯିବା ସ୍ନାନ, ମହାସ୍ନାନ ଦେଖ ।
ମାଘଦ୍ୱଷ୍ୟ—ବି. ମାଘମ ସବାହିତ ଏକ-ଭକ୍ତ ଉପବାସ ।
ମାଘୀ—ସ୍ତ୍ରୀ. ବି. (ମଘା+ଅ+ଈ)ମଘା-ନକ୍ଷତ୍ରଯୁକ୍ତା ପୌର୍ଣ୍ଣମାସୀ, (ଗ୍ରା. ବିଂ) ମାଘମାସରେ ଜାତ ବା ଅମଳହେବା (ଶସ୍ୟ-ଋଣିଆଦି) ।
ମଘୀପୂର୍ଣ୍ଣିମା—ବି. ଅଗ୍ନ୍ୟୁତ୍ସବ ପୂର୍ଣ୍ଣିମା, ମାଘପୂର୍ଣ୍ଣିମା ।
ମଘୁଆଣି—ଗ୍ରା.ବିଂ. ମାଘମାସରେ ହେବା (ବରଷା,ଫଳ ଇତ୍ୟାଦି) ।
ମାଘୋନ—ବିଂ. (ମଘବାନ୍+ଅ)ଇନ୍ଦ୍ର-ସମ୍ବନ୍ଧୀୟ, (ସ୍ତ୍ରୀ) ମାଘୋନୀ ।
ମାଘ୍ୟ—କ୍ଲୀ. ବି. (ମାଘ+ଯ) କୁନ୍ଦପୁଷ୍ପ, (ବିଂ) ମାଘମାସରେ ଜାତ ।
ମାଙ୍ଗ(ଙ୍ଗୁ)—ଗ୍ରା. ବି. ସୀମନ୍ତ, ମସ୍ତକର ସମ୍ମୁଖସ୍ଥ ବିନ୍ୟସ୍ତକେଶର ମଧ୍ୟରେଖା, ସିଁଥି । [ ନ କହିବା ।
ମାଙ୍ଗଟ—ଗ୍ରା. ବି. ଅଭିମାନ କଣ କଥା
ମାଙ୍ଗଟିକା—ଗ୍ରା. ବି. ସ୍ତ୍ରୀଲୋକମାନେ କପାଳ ଉପରେ ପିନ୍ଧିବା ଅଳଂକାର-ବିଶେଷ, ମଥାମଣି ।
ମାଙ୍ଗଳ—କ୍ଲୀ. ବି. ଅଶ୍ୱିନୀକୁମାର ଦ୍ୱୟଙ୍କ ଉଦ୍ଦେଶ୍ୟରେ ମଙ୍ଗଳଜନକ ସ୍ତୁତିମନ୍ତ୍ର ।
ମାଙ୍ଗଳିକ—ବିଂ(ମଙ୍ଗଳ+ଇକ)ମଙ୍ଗଳ-ଜନକ, ଶୁଭାନୁଷ୍ଠାନସମ୍ବନ୍ଧୀୟ, ମଙ୍ଗଳ-ଗୀତପାଠକ, ସୌଭାଗ୍ୟବାନ୍, (ବି) ଶୁଭ, ମଙ୍ଗଳାଚାର, ମାଙ୍ଗଲ୍ୟ ଦ୍ରବ୍ୟ, ନାଟକରେ ମଙ୍ଗଳ ଗୀତପାଠକାରୀ ନଟ
ମାଙ୍ଗଳିକଉତ୍ସବ—ବି.ବିବାହ, ବ୍ରତ,ଯଜ୍ଞ ଆଦି ଶୁଭକର କାର୍ଯ୍ୟ ।
ମାଙ୍ଗଳିକଦ୍ରବ୍ୟ—ବି. ମାଙ୍ଗଳିକ ଉତ୍ସବରେ ବ୍ୟବହୃତ ଦ୍ରବ୍ୟାଦି ।
ମାଙ୍ଗଳିକା—ସ୍ତ୍ରୀ. ବି. ଦଶକୁମାରଚରିତ ବର୍ଣ୍ଣିତ ନାୟିକାବିଶେଷ ।
ମାଙ୍ଗଲ୍ୟ—ବିଂ.(ମଙ୍ଗଳ+ଯ)ଶୁଭଜନକ, ମଙ୍ଗଳକର, (ବି) ମଙ୍ଗଳଭାବ, ଶୁଭ, କଲ୍ୟାଣ, ସୌଭାଗ୍ୟ ।

ମାଙ୍ଗଲ୍ୟକାମ୍ୟା—ସ୍ତ୍ରୀ. ବି. ଦୂର୍ବା. ହରିଦ୍ରା. ଋଦ୍ଧି, ମାଷପର୍ଣ୍ଣୀ, ଗୋରୋଚନା,ହରି-ତକୀ, ଧାତ୍ରୀ ।
ମାଙ୍ଗଲ୍ୟକୁସୁମା—ସ୍ତ୍ରୀ.ବି. ଶଙ୍ଖପୁଷ୍ପୀ ।
ମାଙ୍ଗଲ୍ୟପ୍ରବରା—ସ୍ତ୍ରୀ. ବି. ବଚ୍ଚ, ବଚ ।
ମାଙ୍ଗଲ୍ୟା—ସ୍ତ୍ରୀ. ବି. ଗୋରୋଚନା, ଶମୀ-ବୃକ୍ଷ, ଜୀବନ୍ତୀ ।
ମାଙ୍ଗଲ୍ୟାଗୁରୁ—ବି. ଅଗୁରୁବିଶେଷ ।
ମାଙ୍ଗଲ୍ୟାହ୍ୱା—ସ୍ତ୍ରୀ, ବି. ତ୍ରାୟମାଣାଲତା ।
ମାଚ—ପୁଂ. ବି. ପନ୍ଥା, ପଥ ।
ମାଚଲ—ପୁଂ. ବି. ( ମା + ଚଲ + ଅ ) ଗ୍ରହ, ରୋଗ, ବନ୍ଦୀ, ଚୌର ।
ମାଚିକା—ସ୍ତ୍ରୀ.ବି.(ମା + ଅଞ୍ଚ୍ + କ + ଆ) ମକ୍ଷିକା, ପାଠା, ଅକାନବନ୍ଧ, ଅମ୍ବଷ୍ଠା, ଆମ୍ବଡ଼ା ।
ମାଚିର—ଅବ୍ୟ. ମା-ଚିର, ଶୀଘ୍ର ।
ମାଚୀକ—ବି. ଦେବଦାରୁ ।
ମାଚୀପତ୍ର—କ୍ଲୀ. ବି. ସୁରପର୍ଣ୍ଣ ନାମକ ପତ୍ରଶାକ ।
ମାଛ—ଗ୍ରା. ବି (ସଂ-ମତ୍ସ୍ୟ)ମୀନ, ମତ୍ସ୍ୟ, ଖାଦ୍ୟରୂପେ ବ୍ୟବହୃତ ଜଳଜୀବ-ବିଶେଷ ।
ମାଛଆଖିଆ—ଗ୍ରା. ବି. ମାଛଆଖିପରି ଗୋଲଚିହ୍ନବିଶିଷ୍ଟ, ତଳପାରେ ହେବା କଷ୍ଟପ୍ରଦ ରୋଗବିଶେଷ ।
ମାଛକଣ୍ଟା—ଗ୍ରା.ବି. ମାଛଦେହରେ ଥିବା ଅସ୍ଥି, ଏକପ୍ରକାର ସରୁଧାନ ।
ମାଛକର—ଗ୍ରା.ବି. ନଈପୋଖରୀରୁ ମାଛ ମାରିବା ପାଇଁ ଜମିଦାରଙ୍କୁ ଦିଆଯିବା ଖଜଣା ।
ମାଛଗାର—ଗ୍ରା. (ବସ୍ତ୍ର)ବି. ମାଛମଞ୍ଜି ।
ମାଛଗାରକ—ଗ୍ରା.ବି. ଓଜନରେ ବିଶାଏ ମାଛ ।
ମାଛଜାଆଁଳ—ଗ୍ରା.ବି.ବଡ଼ମାଛର ଛୁଆ ।
ମାଛଡ଼ିମ୍ବ—ଗ୍ରା. ବି. ମାଛପେଟରେ ଥିବା ଅଣ୍ଡାକାର ପଦାର୍ଥ, [ଦ୍ରେ—ମାଈମାଛ-ମାନେ ଜଳସ୍ରୋତର ବିପରୀତରେ ଉଠିଲାବେଳେ ସ୍ୱରଜଃ(ଅର୍ଥାତ୍‌ପେଟରେ ଥିବା ଅଣ୍ଡାକାର ପଦାର୍ଥ) ଜଳରେ

ଆସ୍ତେ ଆସ୍ତେ ଛାଡ଼ନ୍ତି,ସେହି ସମୟରେ ପୁଂମତ୍ସ୍ୟ ବୀର୍ଯ୍ୟ ତ୍ୟାଗକରେ, ଏହି ଉଭୟ ମିଳିତ ହୋଇ ୮ ଘଣ୍ଟା ପରେ ଛୁଆ ହୁଅନ୍ତି, ଅତଏବ ମାଈ ମାଛର ପେଟରେ ଥିବା ଅଣ୍ଡାକାର ପଦାର୍ଥ •କେବଳ ରଜଃ ଅଟେ,ତହିଁରେ ଅଣ୍ଡିରା ମାଛର ବୀର୍ଯ୍ୟ ସଂଯୋଗ ନ ହେଲେ ତହିଁରୁ ଛୁଆ ହୋଇ ପାରନ୍ତି ନାହିଁ] (ବଳଭଦ୍ର ଗ୍ରନ୍ଥାବଳୀ) ।
ମାଛତରକାରୀ—ଗ୍ରା.ବି. ମତ୍ସ୍ୟରେ ପ୍ରସ୍ତୁତ ବ୍ୟଞ୍ଜନ ।
ମାଛଧ(ମା)ରିବା—ଗ୍ରା. କ୍ରି. ଜଳାଶୟରୁ ଜାଲଆଦିଦ୍ୱାରା ମାଛ ସଂଗ୍ରହ କରିବା ।
ମାଛଭାତ—ଗ୍ରା. ବି. ଭାତ ଓ ତା ସଙ୍ଗେ ଖିଆଯିବା ମାଛତରକାରୀ ଭଜା ଆଦି, (ଦ୍ରେ—କୁଟୁମ୍ବରେ କେହି ମଲେ କୁଟୁ-ମ୍ବର ଲୋକମାନେ ମାଛ ମାଂସ ଖାଆନ୍ତି ନାହିଁ,ଅଶୌଚ ଶେଷହେବା ପରଦିନ (ଦ୍ୱାଦଶଦିନ) କୁଟୁମ୍ବୀମାନେ ମାଛଭାତ ଖାଇବା ରୀତି) । [ ଦଳ ।
ମାଛମନ୍ଦା—ଗ୍ରା. ବି. ଗ୍ରେଟମାଛମାନଙ୍କର
ମାଛମ(ଧ)ରା—ଗ୍ରା. ବି. ଖାଦ୍ୟପାଇଁ ଜାଲଆଦି ଦ୍ୱାରା ମାଛ ଧରିବା,ମାଛୁଆ, କେଉଟ ।
ମାଛମାଂସ—ଗ୍ରା. ବି. ଖାଦ୍ୟାର୍ଥ ବ୍ୟବ-ହୃତ ମତ୍ସ୍ୟ ଓ ମାଂସ ।
ମାଛମାରହେବା—ଗ୍ରା. ବି. ମାଛ ଜଳର ଉପରଭାଗକୁ ଉଠି ଜଳକୁ ଆନ୍ଦୋଳିତ କରିବା ।
ମାଛମୁଣ୍ଡା—ଗ୍ରା. ବି. କଟା ହୋଇଥିବା ମାଛର ବଡ଼ଖଣ୍ଡ ।
ମାଛରଙ୍କା—ଗ୍ରା.ବି.(ସଂ-ମତ୍ସ୍ୟରଙ୍କ(ଙ୍ଗ), ଶାଖାଶ୍ରୟୀ ପକ୍ଷିବିଶେଷ, ପାଣିଭିତରୁ ମାଛଧରି ଖାଇବା ଏକପ୍ରକାର ଗ୍ରେଟ-ପକ୍ଷୀ ।
ମାଛସାହାଣ—ଗ୍ରା.ବି.ବଡ଼ମାଛର ଦଳ ।
ମାଛି(ଛୀ)—ଗ୍ରା.ବି. (ସଂ-ମକ୍ଷିକା)ଦ୍ୱିପକ୍ଷ-ଯୁକ୍ତ ଷଟ୍‌ପଦୀ କୀଟ, ମକ୍ଷିକା, ବନ୍ଧୁକ ନଳର ଅଗ୍ରଭାଗର ଊର୍ଦ୍ଧ୍ୱାଂଶରେ ଥିବା

ମାଛିପରି କ୍ଷୁଦ୍ର ଲୁହାଗୁଳି, ମାଛିପରି ଦିଶୁଥିବା ନାକର ଗ୍ରେଚ ଅଳଂକାର ବିଶେଷ ।

ମାଛିଅନ୍ଧାର—ଗ୍ରା. ବି. ମୁହଁସନ୍ଧ୍ୟା,ଧୂମ-ଳୁଚ୍ଚ ଅନ୍ଧାର (ଏ ସମୟରେ ଆଖିକୁ ମାଛି ଦେଖାଯାଉ ନ ଥିବାରୁ) ।

ମାଛିଆପାତକ— ଗ୍ରା. ବି. (ସଂ-ମକ୍ଷିକା-ପାତକ) ମନୁଷ୍ୟର ଘାଆରେ ପୋକହେବା ଯୋଗୁଁ ଅପବିତ୍ରତା ।

ମାଛିଓସିପଡ଼ିବା—ଗ୍ରା. ବି. କୌଣସି ବ୍ୟକ୍ତିର ବା ପଶୁର ଦେହ ହୃଷ୍ଟପୁଷ୍ଟ ହୋଇଥିବା ଯୋଗୁଁ ଅତି ଚିକ୍କଣ ଦେଖାଯିବା ଅବସ୍ଥା । [ କୃପଣ ।

ମାଛିଚପା—ଗ୍ରା. ବିଂ. ମକ୍ଷିଚୁସ୍, ଅତି-

ମାଛିପଟଜୀବ—ଗ୍ରା. ବି. ମାଛିଭଳି କ୍ଷୁଦ୍ର ବା ନଗଣ୍ୟ ଜୀବ ବା ବ୍ୟକ୍ତି ।

ମାଛିପିଚୁଳଯିବା—ଗ୍ରା. ବି. (ଘରଆଦି) ଅତି ପରିଷ୍କାର ହେତୁ ମାଛି ବସି ନ ପାରିବା,(ଯେହେତୁ ମାଛିମାନେ ମଇଳା ଦୁର୍ଗନ୍ଧାଦି ସ୍ଥାନରେ ବସିବାକୁ ଭଲ ପାଆନ୍ତି) ।

ମାଛିବସା(ସେ)ଇନଦେବା—ଗ୍ରା. କି. ଶରୀର ବା ଖାଦ୍ୟ ଉପରେ ମାଛି ନ ବସିବା ପାଇଁ ଯତ୍ନ କରିବା ।

ମାଛିବସିବା—ଗ୍ରା. କି. ଘାଆ ଉପରେ ମାଛି ବସିବା ଦ୍ୱାରା ତହିଁରେ ଅଂଶେଇ ବା କ୍ଷୁଦ୍ର କୀଟ ଜାତ ହେବା ।

ମାଛିବେଢ଼ିବା—ଗ୍ରା. ବି. ଖାଦ୍ୟଦ୍ରବ୍ୟ ପଚୁଘା ବା ଜିନିଷ ଉପରେ ବହୁ-ସଂଖ୍ୟାରେ ମାଛି ବସିବା ଓ ଭଣଭଣ ଶବ୍ଦ କରିବା ।

ମାଛିମଣିବା—ଗ୍ରା.କି. ଅତି ହେୟବୋଲି ବିଚାରିବା, ନ ଗଣିବା, ଖାତିର ନ କରିବା ।

ମାଛିମରିଯିବା—ଗ୍ରା. ବି. କୌଣସି ସ୍ଥାନ ଜନଶୂନ୍ୟ ହେବା,ଅତି ଦୁର୍ଗନ୍ଧ ଅଧୋ-ବାୟୁ ତ୍ୟାଗ କରିବା ।

ମାଛିଲାଗିବା—ଗ୍ରା. ବି. ଗୋମେଷାଦିଙ୍କ ଦେହକୁ ଆକ୍ରମଣ କରିବା ପାଇଁ ମାଛି ତାଙ୍କ ଦେହରେ ସଂଲଗ୍ନ ହେବା ।

ମାଛିଲାଗିଲାପରହେବା—ଗ୍ରା.କି. ଗୋରୁ-ଆଦିଙ୍କ ଦେହରେ ମାଛି ଲାଗିଲେ ସେମାନେ ଅସ୍ଥିର ହେଲାପରି ଅସ୍ଥିର ହେବା ।

ମାଛୁଆ—ଗ୍ରା. ପୁଂ. ବି. କେଉଟ,ମତ୍ସ୍ୟ-ଜୀବୀ ଜାତି, (ବିଂ) ମତ୍ସ୍ୟପ୍ରିୟ,ଆଇଁଷିଆ ଗନ୍ଧବିଶିଷ୍ଟ ।

ମାଜଣା—ଗ୍ରା.ବି. (ସଂ-ମାର୍ଜନା)ମାର୍ଜନା, ଦେହମାର୍ଜନା, ସ୍ନାନ, ଦେବତା ଓ ରାଜାଙ୍କ ସ୍ନାନବିଧି, ରାଜ୍ୟାଭିଷେକ, ସେଚନ ।

ମାଜଣାନତ—ଗ୍ରା. ବି. ରାଜାଙ୍କର ସ୍ନାନ ଓ ଅଙ୍ଗମାର୍ଜନା, (ଅନ୍ୟରୂପ-ମାଜଣା-ବିଧି) ।

ମାଜଣାବଢ଼ିବା—ଗ୍ରା. କି. ରାଜା ବା ଦେବଗଣଙ୍କ ସ୍ନାନବିଧିର ସମାପ୍ତି ।

ମାଜରା—ଯା. ବି. ଘଟଣା, ଢଙ୍ଗ, ଅବସ୍ଥା, ମକଦ୍ଦମାର ବୃତ୍ତାନ୍ତ ।

ମାଜରାଜାଗା—ଯା. ବି. ଘଟଣାସ୍ଥଳ ।

ମାଜଲ—ପୁଂ. ବି. ଗୃହପକ୍ଷୀ, ଚଷାପୁଅ ଚଢ଼େଇ ।

ମାଜିକ—ପୁଂ.ବି. ରଜତରଙ୍ଗିଣୀ ବର୍ଣ୍ଣିତ ମନୁଷ୍ୟଭେଦ ।

ମାଜିବା—ଗ୍ରା.କି.(ସଂ-ମୃଜ୍ଧାତୁ)ମାର୍ଜନା କରିବା,ଘଷି ପରିଷ୍କାର କରିବା,(ଗୋଡ଼) ଘଷିବା, ନଖକୁ ତାଞ୍ଛି ସଫା କରିବା, କୌଣସି ବିଷୟ ଉତ୍ତମରୂପେ ବା ପୁନଃ ପୁନଃ ଆଲୋଚନା କରିବା ।

ମାଜୁଫଳ—ଗ୍ରା. ବି. ପାଶ୍ଚାତ୍ୟ ଦେଶର 'ଓକ' ନାମକ ବୃକ୍ଷର ଗଣ୍ଠିରୁ ପୋକ-ମାନେ ଗାଳଥିବା ଏକପ୍ରକାର ଅଣ୍ଡାକାର କୋଷ, (ଏହା ଦେଖିବାକୁ ଗୁଆଫଳ ପରି ପ୍ରକୃତରେ ଫଳ ନୁହେ, ଏଥିରୁ କାଳି ପ୍ରସ୍ତୁତ ହୁଏ ଓ ଔଷଧରୂପେ ବ୍ୟବହାର କରାଯାଏ) ।

ମାଜୁମ—ଯା. ବି. ମିଷ୍ଟାନ୍ନବିଶେଷ, ଭାଙ୍ଗ-ପଣା । [ କର୍ମଚ୍ୟୁତ ।

ମାଜୁ ଦୁ(ଲ)—ଯା. ବିଂ. କର୍ମଚ୍ୟୁତ, (ବି)

ମାଝ—ଗ୍ରା. ବି. ( ସଂ-ମଧ୍ୟ ) ମଧ୍ୟସ୍ଥଳ, ଅଭ୍ୟନ୍ତର, ଅନ୍ତଃସ୍ଥଳ, ଭିତର, କଟି, ଅଣ୍ଟା ।

ମାଝି—ଗ୍ରା. ବି. ନାବିକ,ନୌକାବାହକ, ସାମାନ୍ୟ ରାଜକର୍ମଚାରୀ ବା ପିଆଦାଙ୍କ ଉପାଧି, କେଉଟମାନଙ୍କ ବଂଶୋପାଧି, ସାମନ୍ତରାଜାଙ୍କ ଉପାଧିବିଶେଷ, ମହା-ଲାୟକ ବା ଡଗରମାନଙ୍କ ବଂଶୋପାଧି

ମାଝିଅ—ଗ୍ରା.ସ୍ତ୍ରୀ. ବି. ମାତା ଓ କନ୍ୟା ।

ମାଞ୍ଚ—ଗ୍ରା. ବି. (ସଂ-ମଞ୍ଚ) ଚଉକି, (ପ୍ରା. ପୁରୀ, ଚନ୍ଦ୍ରାମ, ତେଲଗୁ, ବିଂ.)ଉତ୍କୃଷ୍ଟ, ଉତ୍ତମ ।

ମାଞ୍ଜି—ଗ୍ରା. ବି. ( ସଂ-ମାର୍ଜନ ) ଘୁଡ଼ିର ସୂତାକୁ ମାଜିକରି ଶକ୍ତକରିବା ପାଇଁ କାଚଗୁଣ୍ଡା ବା ବାଲିଆଦି ମିଶାଇ ତିଆରି କରାଯିବା ଅଠା ।

ମାଞ୍ଜିଷ୍ଠ—ବି. (ମଞ୍ଜିଷ୍ଠା+ଅ) ଲୋହିତ-ବର୍ଣ୍ଣ, ରକ୍ତବର୍ଣ୍ଣ ପ୍ରସ୍ରାବ ହେବା ଏକ-ପ୍ରକାର ପ୍ରମେହ, (ବିଂ) ମଞ୍ଜିଷ୍ଠାଯୁକ୍ତ, ଲୋହିତବର୍ଣ୍ଣବିଶିଷ୍ଟ ।

ମାଞ୍ଜିଷ୍ଠକ—ବିଂ. (ମାଞ୍ଜିଷ୍ଠ+କ) ଲୋହି-ବର୍ଣ୍ଣ, ମଞ୍ଜିଷ୍ଠାପରି ରକ୍ତବର୍ଣ୍ଣ ।

ମାଞ୍ଜିଷ୍ଠିକ—ବିଂ. ମାଞ୍ଜିଷ୍ଠକ ଦେଖ ।

ମାଞ୍ଜୁ—ପ୍ରା.(କଳାହାଣ୍ଡି)ବି. (ସଂ-ମାର୍ଜାର) ବିଲେଇ, ବିରାଡ଼ି ।

ମାଟ୍‌ଖେଡ଼ା—ପ୍ରା. (ବସ୍ତର)ବି.ଖେଡ଼ାଶାଗ ।

ମାଟପକା—ପ୍ରା. (ସିଂହ) ବି. ବାଟପଷ, ବିବାହ ବା ବ୍ରତଘରର ଦୁଇଦିନ ପୂର୍ବରୁ ହେବା ଉତ୍ସବ ।

ମାଟି—ଗ୍ରା. ବି. ( ସଂ-ମୃତ୍ତିକା ) ଭୂମି, ଭୂତଳ, ଧୂଳି, ଶରୀର, ସାରହୀନତା, ରଦ୍ଦି ମାଲ,(ବିଂ) ପଣ୍ଡ, ବୃଥା, ନିଷ୍ଫଳ, ଆଳସ୍ୟଯୁକ୍ତ, ଅଯୋଗ୍ୟ,ରଦ୍ଦି ବା ନଷ୍ଟ, ଦରବିକିଆ ।

ମାଟିଆ—ଗ୍ରା.ବିଂ. (ସଂ-ମାର୍ତ୍ତିକ)ମୃତ୍ତିକା-ମିଶ୍ରିତ, ମୃତ୍ତିକା ସମ୍ବନ୍ଧୀୟ. ମାଟିପରି ବିସ୍ୱାଦଯୁକ୍ତ,ମାଟିପରି ଫିକା ରଙ୍ଗଯୁକ୍ତ, (ଗ୍ରା.ବି)ଉତ୍କଳୀୟ କେତେକ ବ୍ରାହ୍ମଣ-ଙ୍କର ବଂଶପରିଚୟବିଶେଷ,ଆଭିଜାତ୍ୟ-

କର୍ମଦ୍ୱାରା ପେଷାଯିବା ବେତାଳବିଶେଷ, କୁଢିଙ୍ଖାରୀ ଓଡ଼ିଆ ଜାତିବିଶେଷ, ମାଟି ଖୋଳିବା ବ୍ୟବସାୟୀ ନୀଚ ଅନାର୍ଯ୍ୟ ଜାତିବିଶେଷ, ଏକପ୍ରକାର ଜନ୍ତୁ ।

**ମାଟିଆକେଲା**—ଗ୍ରା. ବି. ଏକଜାତୀୟ ଦକ୍ଷିଣିଆ କେଳା ।

**ମାଟିଆଚଲ**—ଗ୍ରା.ବି. (ଫ-ମାର୍ଟିକ୍ଲ + ଚଲ୍) ମାଟିଆରଙ୍ଗର ଏକପ୍ରକାର ଚଳପକ୍ଷୀ ।

**ମାଟିଆତେଲ**—ଗ୍ରା. ବି. ଭୂଗର୍ଭଜାତ ଏକପ୍ରକାର ମଇଳା କେରୋସିନ୍ ତେଲ

**ମାଟିଆମିଶ୍ର**—ଗ୍ରା. ବି. ଉତ୍କଳର ଏକଜାତୀୟ ମିଶ୍ର ଉପାଧିଧାରୀ ବ୍ରାହ୍ମଣ ।

**ମାଟିଆବର୍ଣ୍ଣ**—ଗ୍ରା. ବି ମାଟିପରି ପାଣ୍ଡୁବର୍ଣ୍ଣ, ଖାକି ।

**ମାଟିକରିବା**—ଗ୍ରା.କ୍ରି. (ଲ.ଅର୍ଥ)କୌଣସି ଉତ୍କୃଷ୍ଟ ବସ୍ତୁକୁ ନଷ୍ଟ କରିବା,ପରିଶ୍ରମକୁ ବ୍ୟର୍ଥ କରିବା, କୌଣସି ବ୍ୟକ୍ତି ବା ବସ୍ତୁକୁ ନିକମା ବା ଋଦ୍ଧି କରିଦେବା ।

**ମାଟିକଲ**—ପ୍ରା. (ପୁରୀ) ବି. ତୁମ୍ବୁବାଣର ବାରୁଦଉପରେ ଦିଆଯିବା ମାଟିର ସ୍ତର ।

**ମାଟିକାମ**—ଗ୍ରା.ବି. ମାଟିଦ୍ୱାରା କରିବା କୌଣସି କାମ ।

**ମାଟିକାମୁଡ଼ିରହିବା**—ଗ୍ରା. ବି. (ଲ.ଅର୍ଥ) କୌଣସି ସ୍ଥାନକୁ ନ ଛାଡ଼ି ନାନା ଦୁଃଖ କଷ୍ଟ ସହି ସେଠାରେ ଦୃଢ଼ବ୍ରତ କରି ରହିବା ।

**ମାଟିକିଣିବା**—ଗ୍ରା.କ୍ରି. କୌଣସି ସ୍ଥାନରେ ମରିବାପାଇଁ ପୂର୍ବରୁ ଟାଣିହୋଇ ସେଠାକୁ ଯିବା, କୌଣସି ସ୍ଥାନରେ ମରିବା ।

**ମାଟିକୋଠା**—ଗ୍ରା.ବି. ମାଟିରେ ନିର୍ମିତ ଗୃହଯୁକ୍ତ କୋଠା ।

**ମାଟିଖାଇବା**—ଗ୍ରା. କ୍ରି. ( ଶିଶୁମାନେ ) ମୃତ୍ତିକା ଭକ୍ଷଣ କରିବା, ( ଗର୍ଭିଣୀମାନେ ) ଦୋହଦସୂଚକ ସ୍ପୃହାଯୋଗୁଁ ମାଟି ଖାଇବା, ମୃତ୍ୟୁପରେ ଶବରୂପେ ମାଟିରେ ପୋତାହେବା, ଲୁହ ଆଦି କୌଣସି ଦ୍ରବ୍ୟ ମାଟିରେ ପଡ଼ିରହିବା ହେତୁରୁ ନଷ୍ଟ ହୋଇଯିବା, (ଲ.ଅର୍ଥ) କୁକର୍ମ କରିବାଦ୍ୱାରା ଆପେ ନଷ୍ଟହେବା

**ମାଟିଖୋଳିବା**—ଗ୍ରା.କ୍ରି.ବଳଆଦି କରିବା ପାଇଁ ଭୂମିକୁ ଖୋଳିବା,ଗାତ ଖୋଳିବା

**ମାଟିଚଣ୍ଟି**—ଗ୍ରା.ବି.ତୁମ୍ବୁବାଣରେ ବାରୁଦ ଖୁନ୍ଦିବା ପୂର୍ବରୁ ଚକଟା ମାଟି ଖୁନ୍ଦାହୋଇ ଯେଉଁ ଟାଣୁଆ ପରତ କରାଯାଏ ।

**ମାଟିଗାନ୍ଥିବା(ପଚା)**—ଗ୍ରା.ବି. ଇଟାକୁ ମାଟି କାଦୁଅ ଦ୍ୱାରା ସ୍ତର ସ୍ତର କରି ବସାଇ କାନ୍ଥ ତିଆରି କରିବା କାମ ।

**ମାଟିଗୋବର**—ଗ୍ରା.ବି. ଘରଆଦି ଲିପିବା ପାଇଁ ବ୍ୟବହୃତ ମୃତ୍ତିକା ଓ ଗୋବର

**ମାଟିଘର**—ଗ୍ରା.ବି. ମାଟିର କାନ୍ଥ ମେଜିଆ ଓ ମୁନ୍ଦୁଆଆଦି ତିଆରି ହୋଇଥିବା ଗୃହଘର ।

**ମାଟିଘୋଡ଼ା**—ଗ୍ରା. ବି. ଗ୍ରାମଦେବତା ଆଦିଙ୍କୁ ଭେଟି ଦିଆଯିବା ମାଟିର ଘୋଡ଼ାମୂର୍ତ୍ତି ।

**ମାଟିଘେନିବା**—ଗ୍ରା.କ୍ରି.(ହିନ୍ଦୁଙ୍କ ମଧ୍ୟରେ) ମଳତ୍ୟାଗ ପରେ ଗୁହ୍ୟଦ୍ୱାରରେ ହାତରେ ଗୋଡ଼ରେ ମାଟିବୋଳି ଜଳଦ୍ୱାରା ପରିଷ୍କାର କରିବା, (ମୁସଲମାନଙ୍କର) ମଳ ଓ ମୂତ୍ର ତ୍ୟାଗପରେ ଗୁହ୍ୟଦ୍ୱାର ବା ଲିଙ୍ଗକୁ ମଳ ବା ମୂତ୍ରସ୍ରାବ କରିବାପାଇଁ ମାଟିର ଖଣ୍ଡ ଉକ୍ତ ସ୍ଥାନରେ ପ୍ରୟୋଗ କରିବା, (ଲ.ଅର୍ଥ) କୌଣସି ସ୍ଥାନରେ ମୃତହେବା ।

**ମାଟିଚଟା**—ଗ୍ରା.ବି. ଏକପ୍ରକାର ପକ୍ଷୀ ।

**ମାଟିଛଟା**—ଗ୍ରା. ବି. କାନ୍ଥଆଦିରେ କାଦୁଅକୁ ଦୂରରୁ ଫିଙ୍ଗି ଲେଷିବା କର୍ମ ।

**ମାଟିଚ୍ଛିଟିବା**—ଗ୍ରା. କ୍ରି. କାନ୍ଥ ଆଦିରେ କାଦୁଅକୁ ଫିଙ୍ଗି ଲଗାଇବା ।

**ମାଟିତେଲ**—ପ୍ରା.(ନୟାଗଡ଼)ବି. କେରୋସିନ୍ ତେଲ ।

**ମାଟିଦବିବା**—ଗ୍ରା. ବି. ପକାଯାଇଥିବା ନୂଆ ମାଟିରେ ଜଳ ପଡ଼ିବାରୁ ତାହା ତଳକୁ ନଇଁଯିବା ।

**ମାଟିଦେବା**—ଗ୍ରା.କ୍ରି. ମୃତାରିକୁ ପୋତିବା, କବରଦେବା, ଏକ ଯୋଦ୍ଧା ବା ପହଲବାନ୍ (ବିପକ୍ଷ ନିକଟକୁ) ଯୁଦ୍ଧାର୍ଥ ଆହ୍ୱାନସୂଚକ ଟିକିଏ ମାଟି ପଠାଇଦେବା ।

**ମାଟିଧରିବା**—ଗ୍ରା.କ୍ରି. କୁସ୍ତି ଇତ୍ୟାଦିରେ (ମଲ୍ଲ) ଭୂମିକୁ ଜାବୁଡ଼ିକରି ଧରିବା, (କୁମ୍ଭୀରାଦି ଜଳଚର ଜନ୍ତୁ) ବନ୍ଧୁକାଦିଦ୍ୱାରା ଆହତ ହୋଇ ଜଳର ନିମ୍ନଦେଶକୁ ଯିବା ।

**ମାଟିଧୂଳି**—ଗ୍ରା.ବି. ମୃତ୍ତିକା ଓ ଧୂଳି ।

**ମାଟିନେବା**—ଗ୍ରା.କ୍ରି. କୌଣସି ସ୍ଥାନରେ ମୃତହେବା ।

**ମାଟିବଂଶନାୟୁ(ହା)କ**—ଗ୍ରା.ବି. ଓଡ଼ିଶାର ନାୟକ (ଗଣକ) ଶ୍ରେଣୀର ଏକଶାଖା, କ୍ଷିତିବଂଶ ଅବଧାନ ।

**ମାଟିବଂଶକରଣ**—ଗ୍ରା.ବି. ବୈଶ୍ୟକରଣ

**ମାଟିବସିଯିବା**—ଗ୍ରା.ବି. ବର୍ଷାଦ୍ୱାରା ମାଟି ତଳକୁ ଦବିଯିବା ।

**ମାଟିବାଉଡ଼ସାପ**—ଗ୍ରା.ବି. ମାଟିଆ ରଙ୍ଗର ଶ୍ଳେଷ୍ମ ନିର୍ବିଷ ସାପ ।

**ମାଟିବୋଳିବା**—ଗ୍ରା. କ୍ରି. କାନ୍ଥରେ ବା ଘରର ତଳରେ ପାଣିଆ ମାଟିର ପ୍ରଲେପ ଦେବା ।

**ମାଟିଭଅଁର**—ଗ୍ରା. ବି. କୁମ୍ଭାରପୋକ, କାଦୁଅରେ ବସା ବାନ୍ଧିବା ଏକପ୍ରକାର ଭଅଁର ।

**ମାଟିମାଟିଲାଗିବା**—ଗ୍ରା. ବି. ଅବସନ୍ନତା ବୋଧହେବା, ଆଳସ୍ୟବୋଧହେବା ।

**ମାଟିରେ ମିଶିବା**—ଗ୍ରା. କ୍ରି. ( ମନୁଷ୍ୟ ) ମୃତହେବା, ଦେହତ୍ୟାଗ କରିବା, (କୋଠାଘର) ଭାଙ୍ଗିଯାଇ ଭୂମିସାତ୍ ହେବା, କୌଣସି ପଦାର୍ଥ ସଡ଼ିପଚି ମାଟିରେ ମିଶିଯିବା ।

**ମାଟିଶୁଙ୍ଘିଲେ ଶୋଇବା**—ଗ୍ରା. କ୍ରି.ଝଡ଼ୁଣୀରେ ପଡ଼ିବାମାତ୍ରେ ଗାଢ଼ ନିଦ୍ରାରେ ଅଭିଭୂତ ହେବା ।

**ମାଟିହେବା**—ଗ୍ରା.କ୍ରି. ପଣ୍ଡହେବା,ବ୍ୟର୍ଥହେବା, ସମ୍ପୂର୍ଣ୍ଣରୂପେ ନଷ୍ଟହେବା ।

**ମାଟୁ(ଟୁ)**—ଗ୍ରା.ବି. ଆଟୁ, ଚିକାରି ଲୁଚିକରି ଜନ୍ତୁ ମାରିବାପାଇଁ ମାଟିଭିତରେ

ଯେଉଁ ଗଣ୍ଠି ଖୋଲାହୋଇଥାଏ ଏବଂ ଯାହା ଉପରେ ତାଳପତ୍ରଆଦି ଯୋଡ଼ା ହୋଇଥାଏ, ମଞ୍ଚା, ମଞ୍ଚ ।

ମାଟେଇବା—ଗ୍ରା. କ୍ରି. ମଠ ବା ବିଳମ୍ବ କରିବା,କୌଣସି କାର୍ଯ୍ୟ ଧୀରେ ଧୀରେ କରିବା,ସ୍ଥଗିତ ହେବା,ମାଟିର ପ୍ରଲେପ ଦେବା ।

ମାଟ୍ରିକ—ଯା. ବି.ମାଟ୍ରିକୁଲେସନ୍ ଦେଖ, ମାଟ୍ରିକୁଲେଟ୍ ଦେଖ ।

ମାଟ୍ରିକୁଲେଟ୍—ଯା.ବିଂ.ପ୍ରବେଶିକା ପରୀକ୍ଷାରେ ପାଶ୍ କରିଥିବା (ଗ୍ରନ୍ଥ ବା ବ୍ୟକ୍ତି) ।

ମାଟ୍ରିକୁଲେସନ୍—ଯା. ବି. ବିଶ୍ୱବିଦ୍ୟାଳୟର ପ୍ରବେଶିକା ପରୀକ୍ଷା ।

ମାଠ—ଗ୍ରା. ବି. ( ସଂ-ଗ୍ରସ୍ତା ) ପଢ଼ୁଆ, ଦେଶୀ ସୂତାରେ ବୁଣା ମୋଟା ଦୁଇ ପରସ୍ତିଆ ଶୀତ ଚଦର, ଚିକ୍କଣ କରିବା ହତିଆର, ଏକପ୍ରକାର ଚିକ୍କଣ ପାଲିଶ୍ ଖଣ୍ଡ, (ବିଂ) ପାଲିଶ୍ କରାଯାଇଥିବା (ଅଳଂକାରାଦି) ।

ମାଠଗୁଣା—ଗ୍ରା. ବି. ସ୍ତ୍ରୀଲୋକମାନଙ୍କର ନାକପୁଡ଼ାର ଅଳଙ୍କାରବିଶେଷ ।

ମାଠଣି—ଗ୍ରା. ବି. ଅଳଙ୍କାରାଦିକୁ ବାରମ୍ବାର ଘଷିବା ଦ୍ୱାରା ଉତ୍ପନ୍ନ ପାଲିସ୍ ବା ମସୃଣତା, ପାଲିସକରିବା କର୍ମ ।

ମାଠତସ୍—ଗ୍ରା. ବି. ବଢ଼େଇମାନଙ୍କ ସରୁ ନିହଣ ।

ମାଠପଥର—ଗ୍ରା. ବି. ବଣିଆଙ୍କର ଅଳଙ୍କାରକୁ ଚକ୍‌ଚକ୍ କରିବା ପାଇଁ ବ୍ୟବହୃତ ଟାଣ ପଥର, ରସାଣପଥର ।

ମାଠର—ପୁଂ.ବି.ସୂର୍ଯ୍ୟଙ୍କର ପାରିପାର୍ଶ୍ୱିକ ଗ୍ରହବିଶେଷ, ବ୍ୟାସ, ବିପ୍ର, ବ୍ରାହ୍ମଣ, କାଡଭେଦ, ଶୌଣ୍ଡିକ, ଶୁଣ୍ଡି, ଯମବିଶେଷ ।

ମାଠରନ୍ଦା—ବି. କାଠକୁ ଚିକ୍କଣ କରିବା ପାଇଁ ବ୍ୟବହୃତ ଶ୍ରେଷ୍ଠ ରନ୍ଦା ।

ମାଠବ୍ୟ—ପୁଂ. ବି. ଶକୁନ୍ତଳା ବର୍ଣ୍ଣିତ ବିଦୂଷକ ମାଧବ୍ୟଙ୍କ ନାମାନ୍ତର ।

ମାଠା—ଗ୍ରା. ବି. ଦୁଗ୍ଧର ସାରାଂଶ,ନବନୀତ, ଲହୁଣୀ ।

ମାଠି—ଗ୍ରା. ବି.ଏକପ୍ରକାର ପାଲିସ୍ ରୂପା ବା କଂସାରଖଣ୍ଡ ବା ହସ୍ତରବଳୟ, ବଣିଆଙ୍କର ଖୁନ୍ ସାନ ଚୁଡ଼ା ।

ମାଠିଆ—ଗ୍ରା.ବି.(ସଂ-ମୃଦ୍ଭାଣ୍ଡ)ମାଟିର କୁମ୍ଭ, କଳସ ।

ମାଠିଣି—ଗ୍ରା. ବି. ମାଠଣି ଦେଖ, ପଲସ୍ତରା ହୋଇଥିବା ଚୂନ ବା ସିମେଣ୍ଟ ଉପରେ କରଣି ଘଷି କରାଯିବା ପାଲିସ୍, କାନ୍ଥ ବା ଚଟାଣ ଉପରେ କରାଯିବା ଚୂନ ବା ସିମେଣ୍ଟର ପଲସ୍ତରା ।

ମାଠିବା—ଗ୍ରା. କ୍ରି. କୌଣସି ବସ୍ତୁକୁ ଘଷିକରି ମସୃଣକରିବା,(ଦେହରେତୈଳାଦି) ଚିକ୍କଣକରି ବୋଳିବା, କୌଣସି ବିଷୟକୁ ପୁନଃ ପୁନଃ ଆଲୋଚନା କରିବା, ଘୋଷିହେବା ।

ମାଠିହେବା—ଗ୍ରା. କ୍ରି. ଦେହରେ ତେଲ ହଳଦି ଆଦି ଉତ୍ତମରୂପେ ବୋଳିହେବା. କୌଣସି କଥାକୁ ଘୋଷିହେବା ।

ମାଠୀ—ସ୍ତ୍ରୀ. ବି. ସାଞ୍ଜୁ, ବର୍ମ ।

ମାଠୁଆ—ଗ୍ରା. ପୁଂ. ବିଂ. ( ସଂ-ମନ୍ଥର ) ମଠୁଆ,ଯେ ଅତ୍ୟନ୍ତ ବିଳମ୍ବରେ କାର୍ଯ୍ୟ କରେ, ଯେ ବିଳମ୍ବରେ କିମ୍ବା ଡେରିକରି କୌଣସି କାର୍ଯ୍ୟ କରେ,(ସଂ-ମୃଷ୍ଟ) ଯେ ଆପଣା ଦେହରେ ଚିକ୍କଣ କରି ତେଲ ଇତ୍ୟାଦି ଲଗାଇ ହୁଏ ।

ମାଠୁଣି--ଗ୍ରା.ବି.ଶ୍ରେଷ୍ଠ ହାଣ୍ଡୁଡ଼ୀ ବା ଚଡ଼ା ।

ମାଠୁଲ୍—ପ୍ରା. ସମ୍ବ. ବି. କୁମ୍ଭ, ମାଠିଆ ।

ମାଡ଼ପିଟ୍—ଗ୍ରା. ବି. ମାରପିଟ୍ ଦେଖ ।

ମାଡ଼ବାର୍—ଗ୍ରା. ବି. ରାଜପୁତାନାର ଉତ୍ତର ଅଂଶ ମରୁଦେଶ,ମାର୍‌ବାଡ଼୍ ଦେଖ ।

ମାଡ଼ବାରି—ଗ୍ରା.ବି.ମାର୍‌ବାଡ଼ି, ମାରବାଡ଼ ଦେଶବାସୀ, ରାଜପୁତାନା ଅଞ୍ଚଳର ଜୟପୁର ଅଞ୍ଚଳବାସୀ, ବ୍ୟବସାୟବୃତ୍ତିଜୀବୀ ବ୍ୟକ୍ତି ।

ମାଡ଼—ପୁଂ.ବି. ବନ୍ୟ ବୃକ୍ଷବିଶେଷ,ପରିମାଣ, ଓଜନ,(ଗ୍ରା.ବି)ପ୍ରହାର,କୌଣସି କାର୍ଯ୍ୟର ହସ୍ତ ବା ତୋଡ଼ ।

ମାଡ଼ଖାଇବା—ଗ୍ରା.କ୍ରି.ଅନ୍ୟ ଦ୍ୱାରା ପ୍ରହୃତ ହେବା, ଆହତ ହେବା, ଧକ୍କାଖାଇବା ।

ମାଡ଼ଖାଇଯିବା—ଗ୍ରା.କ୍ରି. ପ୍ରହୃତ ହୋଇ ମୃତହେବା,ସମ୍ପୂର୍ଣ୍ଣରୂପେ ବିନଷ୍ଟହେବା, ପ୍ରହାର ଖାଇବା ।

ମାଡ଼ଖିଆ—ଗ୍ରା.ପୁଂ. ବିଂ. ମାଡ଼ୁଆ ବ୍ୟକ୍ତି, (ଗ୍ରା.ବି) ମାଡ଼ ଖାଇବା କର୍ମ ।

ମାଡ଼ଖୁଆଇବା—ଗ୍ରା. କ୍ରି. କୌଣସି ବ୍ୟକ୍ତିକୁ ପ୍ରହାର ଦେବାପାଇଁ ଯାହାଙ୍କର ଅଧିକାର ବା ପ୍ରଭୁତ୍ୱ ଅଛି ସେହି ବ୍ୟକ୍ତି ବିରୁଦ୍ଧରେ ଉକ୍ତ ପ୍ରଭୁଙ୍କ ଆଗରେ ମିଛ ସତ କରି ନାନା ରକମ କହି ପ୍ରହୃତ କରାଇବା ।

ମାଡ଼ଣ—ଗ୍ରା.ବି.ମାଡ଼ିବା, ଚିପିବା,ମାରଣ, ମାଡ଼ିକରି ମାରି ପକାଇବା ଯୁଦ୍ଧାସ୍ତ୍ରବିଶେଷ ।

ମାଡ଼ଦେବା—ଗ୍ରା.କ୍ରି. ପ୍ରହାର କରିବା ।

ମାଡ଼ବର୍ଷିବା—ଗ୍ରା. ବି. (କୌଣସି ବ୍ୟକ୍ତି ବା ପ୍ରାଣୀ ଉପରେ)ପ୍ରହାର ବୃଷ୍ଟିହେବା ।

ମାଡ଼ବୃଷ୍ଟି—ଗ୍ରା. ବି. ଅତ୍ୟଧିକ ଉପର୍ଯ୍ୟୁପରି ବୃଷ୍ଟି ପରି ପ୍ରହାର । [ପ୍ରହାର ।

ମାଡ଼ମରାମରି—ଗ୍ରା. ବି. ଅନ୍ୟୋନ୍ୟରେ

ମାଡ଼ମୁଲ(ଲେ)ଇବା—ଗ୍ରା. କ୍ରି. ମାଡ଼ ଖାଇବାର ଯୋଗ୍ୟ କାର୍ଯ୍ୟ କରିବା ।

ମାଡ଼ି—ବି. ରାଜପ୍ରାସାଦ, (ଗ୍ରା.ବି) ଦନ୍ତବେଷ୍ଟ, ଦାନ୍ତର ମୂଳ, ଲମ୍ବ କାଠଆଦି ରଖିବା ପାଇଁ ପ୍ରଥମେ ଭୂମିରେ ଆଡ଼ବାଗରେ ପକାଯିବା ଦୁଇଖଣ୍ଡ କାଠ, ଚିତାଗ୍ନିରେ ପ୍ରଥମେ ଯେଉଁ କାଠର କଡ଼ ଗଡ଼ ଦୁଇଟା ରଖାଯାଇ ତା ଉପରେ ଅନ୍ୟ କାଠ ସଜ୍ଜାଯାଏ, ମୃତାରକୁ ଚିତା ଉପରେ ମୁହଁ ମାଡ଼ାଇ ଶୁଆଇ ଦେବାପରେ ବେକଠାରେ ଓ ଗୋଡ଼ଠାରେ ଯେଉଁ ବଡ଼ ଗଣ୍ଡିକାଠ ଦିଆଯାଏ, ଶଗଡ଼ ଦଣ୍ଡାରେ ଆଡ଼ବାଗରେ ଦିଆଯାଇଥିବା ପଟାଳିଆ କାଠ ଦୁଇଖଣ୍ଡ ଯହିଁରେ କୀଳା ରହିବାର ଫୋଡ଼ ହୋଇ କୀଳା ଦିଆଯାଏ, (କ୍ରି.ବିଂ) ଆବୋରି, ଅଧିକାରକରି ।

ମାଡ଼ିଆ—ପ୍ରା. (ବସ୍ତର)ବି.କୃଷକ ଜାତିବିଶେଷ ।

ମାଡ଼ଆସିବା—ଗ୍ରା. କ୍ରି. ପ୍ରବଳ ବେଗରେ ଅଗ୍ରସର ହେବା, ସର୍ବତ୍ର ବ୍ୟାପିଯିବା, ବଢ଼ଣାଦି କୌଣସି ସ୍ଥାନରେ କ୍ଷଣମାତ୍ର ପାଦଦେଇ ସେଠାରୁ ଚାଲିଆସିବା ।

ମାଡ଼କାଠ—ଗ୍ରା. ବି. ମାଡ଼ ଦେଖ ।

ମାଡ଼ଦେବା—ଗ୍ରା. କ୍ରି. କୌଣସି ବ୍ୟକ୍ତି ବା ବସ୍ତୁକୁ ତଳକୁ ବା ପାଣିଭିତରକୁ ଚାପିଦେବା, ଭର୍ତ୍ତି କରଦେବା, ଗୁଞ୍ଜିବା, (ମୁହଁକୁ) ତଳକୁ ପୋତିବା ।

ମାଡ଼ପକା(କେ)ଇବା—ଗ୍ରା. କ୍ରି. ଅକସ୍ମାତ୍ କୌଣସି ବସ୍ତୁ ଉପରେ ପାଦ ପକାଇ ଦେବା ।

ମାଡ଼ପଡ଼ିବା—ଗ୍ରା. କ୍ରି. ଉପରୁ କିଏ ତଳକୁ ଆପଣାକୁ ଚାପିବା ପରି ଜଣା-ଯିବା, ଅଖଞ୍ଜିଆ ବୋଧହେବା, ବାଧିବା, ଗଦାହେବା, ଉପରେ ଲଦି ହୋଇ ଚାପିଦେବା, ଉପଦ୍ରବର ଆଶଙ୍କା ବୋଧ-ହେବା ।

ମାଡ଼ବସିବା—ଗ୍ରା. କ୍ରି. ହଠାତ୍ କୌଣସି ବ୍ୟକ୍ତିକୁ ବା ଜନ୍ତୁକୁ ଆକ୍ରମଣ କରିବା, ଘୋଟିଯିବା, ଜବରଦସ୍ତି କୌଣସିସ୍ଥାନ ଆଦିକୁ ଅଧିକାର କରିବା, ପରର ପ୍ରାପ୍ୟକୁ ନଦେଇ ଅନ୍ୟାୟ ପୂର୍ବକ ରହିବା, କୌଣସି ସ୍ଥାନ ଅଧିକାର କରି ରହିବା ।

ମାଡ଼ିବା—ଗ୍ରା. କ୍ରି. (ସକର୍ମକ) ଉପରୁ ତଳକୁ ଚାପିବା, ମର୍ଦ୍ଦନ କରିବା, ଦଳିବା, ମଳିବା, କୌଣସି ପଦାର୍ଥ ଉପରେ ପାଦ ପକାଇବା, ଆକ୍ରମଣାର୍ଥ ଅଗ୍ରସର ହେବା, (ଲତା) ଲମ୍ବାଇବା, ପାଦପକାଇବା, ପ୍ରବେଶ କରିବା, ଗ୍ରାସ କରିବା, ବିବାକ୍ ଘୋଡ଼ାଇ ପକାଇବା, ଘୋଟିବା, (ବୃକ୍ଷର ଚେର ଡାଳ ବା ଜଳଆଦି) କୌଣସି ସ୍ଥାନରେ ବିସ୍ତୃତ ହେବା, (ଜାଡ଼ୁ, ଛତ୍ର ବା ରୋଗ) ଦେହତମାମ ବ୍ୟାପିବା, (ଝାଡ଼ା, ପ୍ରସ୍ରା, ହସ, ଲଜ, ଡର ଆଦିର ବେଗ) ମନୁଷ୍ୟକୁ ଅଭିଭୂତ କରିବା, ବସ୍ତାଦିକୁ ଏକସ୍ଥାନରେ ଉପର୍ଯ୍ୟୁପରି ଗଦା କରିବା, ଜୋର ପୂର୍ବକ ଚାପିବା, ଛିଦ୍ର ଆଦିର ମୁଖ ବନ୍ଦ କରିବାପାଇଁ ସେ ଛିଦ୍ରରେ ଠିପିଆଦି ଚୁସ୍ତ କରି ଭରିବା, ଚୁଣ୍ଡିବା, (ଲ.ଅର୍ଥ) କୌଣସି ପ୍ରସ୍ତାବ ବା ଭାବକୁ ଗ୍ରହଣ କରିବା, ମୁହଁକୁ ଭୂମି ଆଡ଼କୁ ନତ କରିବା, (ଚାଲିବାପାଇଁ) ପାଦରେ (କୋତା, କଠାଉ) ସଂଯୁକ୍ତ କରିବା, ଭର୍ତ୍ତିକରିବା, ସ୍ପର୍ଶ କରିବା, ଚୁଟିବା, ଠେଲିଦେବା, (ପ୍ରାଃ ଭଃ ବାଲେ. କ୍ରି.) ଲାଗିବା, ବୋଧ-ହେବା ।

ମାଡ଼ମଖାସା—ପ୍ରା. ଗଞ୍ଜା. ବି. ଜାଗିର ।

ମାଡ଼ମାଲ—ଗ୍ରା. ବି. କୋରଡ଼ା, ଚାବୁକ

ମାଡ଼ଯିବା—ଗ୍ରା. କ୍ରି. ବିସ୍ତାରିତ ହେବା, ବୃଦ୍ଧିପାଇବା, ଚାଲିଯିବା, ବ୍ୟାପିଯିବା ।

ମାଡ଼ରହିବା—ଗ୍ରା. କ୍ରି. ଅଚ୍ଛାଦିତ କରି-ରହିବା, ଆବରଣ କରିବା, ଘୋଡ଼ାଇବା, ସ୍ଥାୟୀ ଭାବରେ ଅଧିକାର କରିବା, ସ୍ଥାନ ଅଧିକାର କରିବା ।

ମାଡ଼ୁ—ଗ୍ରା. ବି. (ସଂ-ମଣ୍ଡ) ଆଗ୍ରହପାଇଁ କଞ୍ଚା ଚଉଆମ୍ବ ଭିତରେ ଭରିଢିକରିବା ମସଲାଗୁଣ୍ଡା ।

ମାଡ଼ୁଆ—ଗ୍ରା. ପୁଂ. ବିଂ. ଯେ ମାଡ଼ଖାଏ ବା ଦଣ୍ଡ, ପ୍ରହାର ଖାଇବାର ଯୋଗ୍ୟ, ଅଳସୁଆ (ବଳଦ) ।

ମାଡ଼ୁମାଡ଼ୁ—ଗ୍ରା. ଅବ୍ୟ. ଟାଣ ଜିନିଷ ବା ମୂଳା ଆଦି କଞ୍ଚା ଜିନିଷକୁ ଚୋବାଇ-ବାର ଶବ୍ଦ ।

ମାଡ଼େ—ଗ୍ରା. ବି. ମାଡ଼ର ଏକଥର ବା ଦଫା, ବୋଧହୁଏ ।

ମାଡ଼ୁକ—ପୁଂ. ବି. ମାଡ଼ୁନାମକ ବାଦ୍ୟ-ବାଦକ, ଢୋଲିଆ, ଢୋଲ ବଜାଇବା ବ୍ୟକ୍ତି ।

ମାଡ଼ୁକକ—ପୁଂ. ବି. ମାଡ଼ୁକ ଦେଖ ।

ମାଡ୍ରାସ—ଗ୍ରା. ବି. ମାନ୍ଦ୍ରାଜ ପ୍ରଦେଶ ଓ ନଗର ।

ମାଢ଼ା—ଗ୍ରା. ବି. ଅର୍ଦ୍ଧତୋଳା ଓଜନ, ୧୦ଚଣା ପରିମାଣ ।

ମାଢ଼ି—ସ୍ତ୍ରୀ. ବି. (ମହ+ମି.ତା) ଦେହବିଶେଷ ପଞ୍ଜରଶିରା, ଦୈନ୍ୟପ୍ରକାଶ, ଦାନ୍ତମୂଳ, ଦାନ୍ତମୂଳକୁ ଆବୃତ କରିଥିବା ମାଂସର ହାଡ଼, ଗଛର ଅଧଃସ୍ଥ ପଥର, ବାହାଡ଼ା-ଦାନ୍ତ, (ଗ୍ରା.ଢ) ସମ୍ମାନ ଦେଖାଇବା, ପୂଜନ, କ୍ରୋଧ, ମନୋଦୁଃଖ, ବସ୍ତ୍ରର ଧଡ଼ି, (ଗ୍ରା.ବି) ଜହ୍ନି କଖାରୁ ଆଦିର ଏକମଞ୍ଜା ।

ମାଢ଼ୀ—ସ୍ତ୍ରୀ. ବି. (ମାଢ଼ି+ଈ) ଦନ୍ତଶିରା, ଦନ୍ତମୂଳ ।

ମାଢ଼େ—ଗ୍ରା. ଅବ୍ୟ. ଅତି ସାମାନ୍ୟ ମାତ୍ର, ଅନେକ, ପ୍ରଚୁର, (ଗ୍ରା. ବିଂ.) ଏକମାତ୍ର ପରିମିତ, ବନ୍ଧୁପରିମିତ, (ଗ୍ରା.ବି) ସାମାନ୍ୟ ପରିମିତ ବସ୍ତୁ ।

ମାଢ଼ୋଣ—ଗ୍ରା.ବି. ଗଣିତ ସମସ୍ୟା ସାଧନ କରିବାର ଖାଳ ସୂତ୍ର ବା ସୂକ୍ଷ୍ମ ପ୍ରଣାଳୀ

ମାଣ(ନ୍)କ—ଗ୍ରା. ବି. କୋହ୍ଲମାନଙ୍କର ଅନେକ ଗୁଣ୍ଡିଏ ଗ୍ରାମସର୍ଦ୍ଦାର ଉପରେ ପ୍ରଧାନ ସର୍ଦ୍ଦାର ।

ମାଣ—ବି. ମାଣସାରୁ, (ଗ୍ରା.ବି) ମାପ ପାତ୍ର ବିଶେଷ, ୪୨ଟଙ୍କା ଓଜନର ପରିମାଣ, ୨୫ଗୁଣ୍ଠ ପରିମିତ ଜମି, ଏକ ଏକର ।

ମାଣଓ(ବ)ସା—ଗ୍ରା. ବି. ମାର୍ଗଶିର ବା ମାଘମାସ ଗୁରୁବାରଦିନ ଲକ୍ଷ୍ମୀ ରୂପେ କଳ୍ପିତ ଧାନପୂର୍ଣ୍ଣ ମାଣ ବସାଇ କରା-ଯିବା ଲକ୍ଷ୍ମୀପୂଜା । [ କନ୍ଦ) ।

ମାଣକ—ବି. ମାଣସାରୁ, (ଅନ୍ୟରୂପ ମାଣ-

ମାଣକଚୁ—ବି. ମାଣସାରୁ ।

ମାଣଗଉଣୀ, (ଗୌଣୀ)—ଗ୍ରା.ବି. ଶସ୍ୟ ମାପି-ବାର ପାତ୍ର ଦ୍ରବ୍ୟ, ଶସ୍ୟ ମାପିବାର ପରିମାଣ ଦ୍ରବ୍ୟ, ମାଣ (କ୍ଷୁଦ୍ର) ଓ ଗୌଣୀ (ବଡ଼) ।

ମାଣରୁଣ୍ଡିକ—ବି. ଜଳଚର ପକ୍ଷିବିଶେଷ

ମାଣପୂରିବା—ଗ୍ରା. ବି. (ଲ.ଅର୍ଥ) ପରମାୟୁ ଶେଷ ହେବା ।

ମାଣବ—ପୁଂ. ବି. ( ମନୁ+ଅ ) ଶ୍ରେଷ୍ଠ ମନୁଷ୍ୟ, ଗେଡ଼ା ଲୋକ, ବାଳକ, ବ୍ରାହ୍ମଣ ବାଳକ, ଷୋଡ଼ଶବର୍ଷୀୟ ବାଳକ, ୧୬ସେରିଆ ବା ୨୦ସେରିଆ ହାର, କୁତ୍ସିତଲୋକ, ବଟୁ, ନିର୍ବୋଧ ବ୍ୟକ୍ତି, ଧର୍ମ ବିଷୟ ଶିକ୍ଷା କରୁଥିବା ଛାତ୍ର ।

ମାଣବକ—ପୁଂ. ବି. ( ମନୁ+ଅ+କ )

ମାଣବକ ଦେଖ,ଅଷ୍ଟାକ୍ଷର ଛନ୍ଦୋବିଶେଷ ।
ମାଣବକକ୍ରୀଡ଼ା—କ୍ଲୀ. ବି. ଛନ୍ଦୋବିଶେଷ
ମାଣବସା(ସେ)ଇବା—ଗ୍ରା. କ୍ରି. ମାଘମାସ ବା ମାର୍ଗଶିର ଗୁରୁବାରଦିନ ମାଣରେ ସ୍ୱଳ୍ପଧାନ୍ୟ ପୂରାଇ ବସ୍ତ୍ରାଦିରେ ବିଭୂଷିତ କରି ତାକୁ ମହାଲକ୍ଷ୍ମୀ ରୂପେ ପୂଜା କରିବା ।
ମାଣବୀନ--ବିଂ. ( ମାଣବ+ଈନ) ମାଣବ-ସମ୍ବନ୍ଧୀ, ଟୋକାଳିଆ, ଶିଶୁଜନୋଚିତ ।
ମାଣବ୍ୟ—କ୍ଲୀ. ବି. (ମାଣବ+ଯ) ଶିଶୁ-ସମୂହ,ଗୁଡ଼ାଏବାଳକ,ବାଲ୍ୟକାଳ,ଶୈଶବ
ମାଣି—ଗ୍ରା. ବି. ଅଭିମାନ ।
ମାଣିଆ(ଆଁ)—ଗ୍ରା. ବିଂ. (ଅନ୍ୟ ସଂଖ୍ୟା-ବାଚକ ଶବ୍ଦ ସଙ୍ଗେ ପ୍ରଯୁକ୍ତ ହୁଏ,ଯଥା-ବାରମାଣିଆ ଚକ) ଏତେମାଣ ପରିମିତ
ମାଣିଆବନ୍ଧ—ଗ୍ରା.ବି. ଓଡ଼ିଆ ଗଡ଼ଜାତର ବଡ଼ମ୍ବାରାଜ୍ୟର ମାଣିଆବନ୍ଧ ନାମକ ସ୍ଥାନରେ ତନ୍ତୀମାନଙ୍କ ଦ୍ୱାରା ବୁଣା ହେବା ରେସମ ଧଡ଼ିଆ ସାଦା ସୂତାଲୁଗା ଓ ଶାଢ଼ି ।
ମାଣିକ(କ)ଗୁନ୍ଦ—ଗ୍ରା.ବି.ବଙ୍ଗ ଓ ଉତ୍କଳ ଦେଶରେ ମିଳୁଥିବା ନିକୃଷ୍ଟ ଓ ଶ୍ରେଷ୍ଠ ସୁଆ, ଏକପ୍ରକାର ଶ୍ରେଷ୍ଠ ସାରୁ, ଏକ-ପ୍ରକାର ଗେଣ୍ଡୁ ଫୁଲ ।
ମାଣିକ—ଗ୍ରା.ବି. ମାଣିକ୍ୟ, ପଦ୍ମରାଗମଣି ।
ମାଣିକଗଞ୍ଜ—ଗ୍ରା. ବି. ଢାକାଜିଲାର ଗୋଟିଏ ଉପବିଭାଗ ।
ମାଣିକଚନ୍ଦ୍ର—ପୁଂ. ବି. ଉତ୍ତର ବଙ୍ଗର ଜଣେ ଧର୍ମଶୀଳ ରାଜା ।
ମାଣିକା—ସ୍ତ୍ରୀ. ବି. (ମାଣକ+ଆ) ଅଷ୍ଟ-ପଲ ପରିମିତ ମଦ ।
ମାଣିକାଗଉଡୁଣୀ—ଗ୍ରା. ବି. ଇତିହାସ-ପ୍ରସିଦ୍ଧ ଉତ୍କଳର ଗୋଟିଏ ଗଉଡୁଣୀ, (ଯାହାଠାରୁ ପୁରୁଷୋତ୍ତମଦେବ ପୁରୀର ରାଜା) କାଞ୍ଚି ଜୟକରି ଫେରିଲାବେଳେ ଅଶ୍ୱାରୋହୀ ସୈନ୍ୟ ବେଶରେ ଶ୍ରୀଜଗ-ନ୍ନାଥ ଓ ବଳଭଦ୍ର ସ୍ୱନାମାଙ୍କିତ ସ୍ମାରକ ମୁଦ୍ରିକା ବନ୍ଧକ ଦେଇ ଦହି ଖାଇ-ଥିଲେ ଏବଂ କହିଥିଲେ ଯେ ପଛରେ ସୈନ୍ୟସହ ଆସୁଥିବା ରାଜାଙ୍କୁ ଏ ମୁଦ୍ରିକା ଦେଖାଇଲେ ସେ ଦହିର ମୂଲ୍ୟ ଦେବେ, ଏହିକଥା ଅନୁସାରେ ଏହି ମାଣିକା ଗଉଡୁଣୀ ରାଜାଙ୍କୁ ମୁଦି ଦେଇ ଦହିର ମୂଲ୍ୟସ୍ୱରୂପ ମାଣିକପାଟଣା ଗ୍ରାମକୁ ରାଜା ଏହି ଗଉଡୁଣୀକୁ ଦାନ କରି-ଥିଲେ, ଏହି ଗ୍ରାମର ନାମ ଏହି ଗଉ-ଡୁଣୀ ନାମ ଅନୁସାରେ ହୋଇଅଛି ।
ମାଣିକାପାଟଣା—ଗ୍ରା. ବି. ପୁରୀଜିଲାର ଦକ୍ଷିଣରେ ଚିଲିକା କୂଳବର୍ତ୍ତୀ ଗୋଟିଏ ଗ୍ରାମ ।
ମାଣିକ୍ୟ—କ୍ଲୀ.ବି.(ମଣି+କୈ+କ.ଯ) ମାଣିକ, ପଦ୍ମରାଗମଣି, ଆଠପଲର ଏକ ମାନ ।
ମାଣିକ୍ୟଦେବ—ଗ୍ରା.ବି. ସଂସ୍କୃତରେ ଏକ ଶକ୍ତିଗ୍ରନ୍ଥ ପ୍ରଣେତା ।
ମାଣିକ୍ୟମୟ—ବିଂ.ପଦ୍ମରାଗମଣିମଣ୍ଡିତ ।
ମାଣିକ୍ୟା—ସ୍ତ୍ରୀ. ବି. ( ମାଣିକ୍ୟ+ଆ ) ଜ୍ୟେଷ୍ଠୀ, ଝିଣ୍ଟିପିଟି, ଡମ୍ପେଇନେଉଳ ।
ମାଣିକ୍ୟାଦିବର୍ଗ—ବି. ମାଣିକ୍ୟାଦି ସମସ୍ତ ପ୍ରକାର ରତ୍ନ ।
ମାଣିଖୁଣ୍ଟି—ଗ୍ରା.ବି.ପେଷଣୀ ଚକର ତଳ-ପଟର କେନ୍ଦ୍ରରେ ପୋତାଯାଇଥିବା କାଠର କିଲା ।
ମଣିଚକି—ଗ୍ରା. ବି. ଚକର ପିହାଣିଆ, ଚକି ଉପର ପଟର ମଧ୍ୟରେ ଛିଦ୍ରଯୁକ୍ତ ଯେଉଁ କାଠଖଣ୍ଡି ଭରାଯାଇଥାଏ ଓ ଯାହାର ଛିଦ୍ରରେ ମାଣିଖୁଣ୍ଟି ପ୍ରବେଶ କରିବାରୁ ଚକି ବୁଲେ ।
ମଣିଚର—ବି. ରଥାଙ୍ଗର ପରିଚାଳନ ଶକ୍ତିବିଶେଷ ।
ମାଣିବନ୍ଧ—କ୍ଲୀ. ବି. ସୈନ୍ଧବ ଲବଣ ।
ମାଣିଭଦ୍ର—ପୁଂ. ବି. ( ମଣିଭଦ୍ର+ଅ ) ମଣିଭଦ୍ରାତ୍ମଜ, ଜନୈକ ଯକ୍ଷରାଜା ।
ମଣିମନ୍ଥ—କ୍ଲୀ. ବି. ସୈନ୍ଧବ ଲବଣ ।
ମାଣେଟଗଲ—ଗ୍ରା.ବି.ଖୁବ୍ ବେଶି ଆନନ୍ଦ
ମାଣ୍ଟୁ—ଗ୍ରା. ବି. ମାଙ୍କୁଡ଼ ଦେଖ, ହସ୍ତିଶୁଣ୍ଡି ପଡ଼ିଆ । [ ହିନ୍ଦୀ ।
ମାଣ୍ଡପ—ବିଂ. (ମଣ୍ଡପ+ଅ) ମଣ୍ଡପ ସମ୍ବ-
ମାଣ୍ଡମାଣ୍ଡ – ଗ୍ରା.(ବାଲେ)ବିଂ. ଅଣ୍ଡଛୁଙ୍କ, ପଶ୍ଚାତ୍ପଦ ।
ମାଣ୍ଡଳିକ—ବିଂ. (ମଣ୍ଡଳ+ଇକ)ପ୍ରାଦେ ଶିକ, ମଣ୍ଡଳସମ୍ବନ୍ଧୀୟ ।
ମାଣ୍ଡବୀ—ସ୍ତ୍ରୀ. ବି. କୁଶଧ୍ୱଜଙ୍କ କନ୍ୟା, ରାମାନୁଜ, ଭରତଙ୍କ ପତ୍ନୀ, ମାଣ୍ଡବ୍ୟ ନଗରସ୍ଥିତ ଦାକ୍ଷାୟଣୀ ମୂର୍ତ୍ତି ।
ମାଣ୍ଡବ୍ୟ—ପୁଂ.ବି. ବୈଦିକ ଆଚାର୍ଯ୍ୟ-ବିଶେଷ, ଋଷିବିଶେଷ, ମାଣ୍ଡବୀଙ୍କ ପୁତ୍ର
ମାଣ୍ଡି—ଗ୍ରା.ବି. ଚକଟା, ଚମୁଲା, ମୁଚୁଲା, ଚୂଲପରର ଗଡ଼(ର), (ଅନାର୍ଯ୍ୟଭାଷା) ଭାତ, (ଗ୍ରା.ପୁଂ.ବିଂ)ହୃଷ୍ଟପୁଷ୍ଟ ଓ ଗେଡ଼ା (ଶିଶୁ) ।
ମାଣ୍ଡିଆ—ଗ୍ରା.ବି. (ସଂ-ମଣ୍ଡ)ଶରତ୍କାଳୀନ ଏକପ୍ରକାର ନିକୃଷ୍ଟ ଶସ୍ୟ,(ପ୍ରା.ବାଲେ.ବି) ପିଉଳର ବଡ଼ କୁଣ୍ଡ ।
ମାଣ୍ଡିଆକଙ୍କଡ଼ା—ଗ୍ରା. ବି. ବଡ଼ କଙ୍କା କଙ୍କଡ଼ା, ସାମୁଦ୍ରିକ କଙ୍କଡ଼ା ।
ମାଣ୍ଡିବା—ପ୍ରା. (ବାଲେ)କ୍ରି. ମାଡ଼ିବା ।
ମାଣ୍ଡୁ—ଗ୍ରା.ବି. (ସଂ-ମଣ୍ଡଳ ) ଦେବତା ବିଶେଷଙ୍କୁ ଆବାହନ କରିବାପାଇଁ ଭୂମିରେ ଅଙ୍କିତ ଚକ୍ରବିଶେଷ,ଧର୍ମମାଣ୍ଡୁ, ଅଭିଯୁକ୍ତ ବ୍ୟକ୍ତିକୁ ପରୀକ୍ଷା କରିବାପାଇଁ ପୂର୍ବକାଳରେ ବ୍ୟବହୃତ ଧର୍ମପରୀକ୍ଷା, ଶପଥ, ତେଳଚୁଲି(ଲା), ଶଗଡ଼ର ଦଣ୍ଡା ତଳେ ଅଖ ଉପରେ ଆଡ଼-ବାଗରେ ବସାଯାଇଥିବା ଦୁଇଖଣ୍ଡ ଲମ୍ବକାଠ, ତାଲଗୋଟମା,କଷିତାଲ ।
ମାଣ୍ଡୁଅ—ଗ୍ରା.ବି. ପୂରଦିଆ ପିଠା,ମଣ୍ଡା-ପିଠା, ନାନାମାନ ।
ମାଣ୍ଡୁଆ—ଗ୍ରା.ପୁଂ.ବିଂ. (ସଂ-ମନ୍ଦ) ହବୁ-ଡିଆ, ମୋଟାବୁଦ୍ଧିଆ, ମୋଟ, ବହ-ଳିଆ, ସ୍ଥୂଳକାୟ ।
ମାଣ୍ଡୁଦେବା—ଗ୍ରା.ବି. ଅଭିଯୁକ୍ତ ବ୍ୟକ୍ତିକୁ ଶପଥ ଦେବା ବା କରାଇବା ।
ମାଣ୍ଡୁଧରା—ଗ୍ରା.କ୍ରି. ମାଣ୍ଡୁଦ୍ୱାରା ଶପଥ କରାଇବା ।
ମାଣ୍ଡୂକ—ପୁଂ. ବି. ବୈଦିକ ମଣ୍ଡୂକ ଶାଖାଭୁକ୍ତ ବ୍ରାହ୍ମଣ ।

ମାଣ୍ଡୂକାୟନ—ପୁଂ.ବ.ବୈଦିକ ମଣ୍ଡୂକଶାଖୋକ୍ତ ବ୍ରାହ୍ମଣ ।
ମାଣ୍ଡୂକୀ—ବ. ଥାଲକୁଣି ଗୁଳ୍ମ ।
ମାତ୍—ଗ୍ରା.ବ. (ଫ-ମଉତା)ମାରୁ,ମଉତା, ଜଗର, ଜଦ୍, (ଯା.ବ) ପରାଜୟ ।
ମାତ୍‌ବା—ପ୍ରା.(ସମ୍ବ)କ୍ରି.ନିଶାରେ ଭୋଳହେବା ।
ମାତ—ଗ୍ରା. ବ. ମାତ୍ର ( ଦେଖ ), ମାରୁ ଦେଖ,ମାତା,(ସମ୍ବୋଧନ)ହେ ମାତଃ ।
ମାତଃ—ଅବ୍ୟ. (ମାତୃ ଶବ୍ଦର ସମ୍ବୋଧନ) ହେ ମାତଃ ।
ମାତଙ୍ଗ—ପୁଂ.ବ. (ମତଙ୍ଗ+ଅ) ହସ୍ତୀ, ଅଶ୍ୱତ୍ଥବୃକ୍ଷ, କିରାତ ଜାତିବିଶେଷ, ଶ୍ୱପଚ, ଚଣ୍ଡାଳ, ସର୍ବଶ୍ରେଷ୍ଠ ମେଘ, ନାଗବିଶେଷ, ଋଷିବିଶେଷ, ଅର୍ହଦ୍ଉପାସକବିଶେଷ ।
ମାତଙ୍ଗଜ—ପୁଂ.ବ. (ମାତଙ୍ଗ+ଜନ୍+ଅ) ହସ୍ତି ଶିଶୁ ।
ମାତଙ୍ଗଦିବାକର—ଗ୍ରା.ବ. ସମ୍ରାଟ୍ ହର୍ଷବର୍ଦ୍ଧନଙ୍କ ସଭାସ୍ଥ ଜନୈକ କବି ।
ମାତଙ୍ଗନକ୍ର—ପୁଂ.ବ. (କ.ଧା)ଜଳହସ୍ତୀ, ହାତୀ ପରି ବଡ଼ କୁମ୍ଭୀର ।
ମାତଙ୍ଗମକର—ପୁଂ. ବ. ମାତଙ୍ଗନକ୍ର ଦେଖ । [ ଭେଦ ।
ମାତଙ୍ଗନେ—ବ. କାମରୂପସ୍ଥ ପୁଣ୍ୟସ୍ଥାନ
ମାତଙ୍ଗୀ—ସ୍ତ୍ରୀ. ବ. (ମାତଙ୍ଗ+ଅ+ଈ) ଦଶ ମହାବିଦ୍ୟା ମଧ୍ୟରେ ୯ମ ବିଦ୍ୟା, ହାତୁଣୀ, ଚଣ୍ଡାଳୁଣୀ, କଶ୍ୟପଙ୍କ ଏକ କନ୍ୟା ।
ମାତପ(ବ)ର—ଯା.ବଂ. ପ୍ରଧାନ,ମଣ୍ଡଳ, ସର୍ଦ୍ଦାର, ମୁରବି,ବିଶ୍ୱସ୍ତ,ପ୍ରଭୃତି, ଧନୀ ।
ମାତପ(ବ)ରି—ଯା.ବ.ଯମିନ୍, ପ୍ରଭୁତ୍ୱ, ବ୍ୟବସାୟ କ୍ଷେତ୍ରରେ ଖାତିର,ବିଶ୍ୱାସ, ଶ୍ରେଷ୍ଠତା, ପ୍ରାଧାନ୍ୟ, ପ୍ରଭୁତ୍ୱ, ମୁରବିପଣିଆଁ ।
ମାତମ୍—ଯା.ବ. ମୃତ୍ୟୁଜନିତ ଶୋକ ।
ମାତର—ଗ୍ରା.ଅବ୍ୟ.(ପଦ୍ୟ) (ଫ-ମାତ୍ରଂ) କିନ୍ତୁ, ମାତ୍ର, କେବଳ ।
ମାତରଙ୍ଗ—ପ୍ରା.(ଗଞ୍ଜାମ)ବ. (ଫ-ମାତୁଲୁଙ୍ଗ) ନାରଙ୍ଗ ।
ମାତରପିତରୌ—ପୁଂ. ବ. ତାତ ଓ ଜନୟିତ୍ରୀ, ମାଆବାପ ।
ମାତରପୁରୁଷ—ପୁଂ.ବ. ଯେ ନିଜ ଘରେ ବା ମାଆ ଭଉଣୀଙ୍କ ଆଗରେ ବୀରତ୍ୱ ପ୍ରକାଶ କରେ କିନ୍ତୁ ଅପର ନିକଟରେ ଭୀରୁ, କାହାରିକୁ କିଛି କରିପାରେ ନାହିଁ, ଗେହେଶୂର ।
ମାତରିଶ୍ୱ—ପୁଂ.ବ.ମାତରିଶ୍ୱା,ଅଗ୍ନିଭେଦ
ମାତରିଶ୍ୱା—ପୁଂ. ବ. (ମାତରି+ଶ୍ୱି+କ.ଅନ୍) ବାୟୁ, ଅଗ୍ନି ।
ମାତଲମି—ଗ୍ରା.ବ. ନିଶାରେ ଉନ୍ମତ୍ତତା, ମଦ୍ୟୋନ୍ମତ୍ତ ବ୍ୟକ୍ତିର ଆଚରଣ, ଉନ୍ମତ୍ତତା, ମଦୁଆପଣ ।
ମାତଲ—ପୁଂ.ବ. ଇନ୍ଦ୍ରଙ୍କ ସାରଥି, (ଗ୍ରା. ବ), (ବିଶ୍ୱାସ)ଘାତକତା ।
ମାତଲୀ—ପୁଂ. ବ. ବେଦୋକ୍ତ ଯମ ଓ ପିତୃସଦୃଶ ଉଭୟ ଦେବବିଶେଷ ।
ମାତଲୀୟ—ବଂ. ମାତଲୀସମ୍ବନ୍ଧୀୟ ।
ମାତହସ୍ତ—ଯା.ବ. ଅଧୀନସ୍ଥ କର୍ମଚାରୀ ।
ମାତା—ସ୍ତ୍ରୀ.ବ.(ମାନ୍+ତ+ଆ)ଜନନୀ ମାଆ, ଗର୍ଭଧାରିଣୀ, ମାତୃ ସ୍ଥାନୀୟା ସ୍ତ୍ରୀ (ଗୁରୁପତ୍ନୀଆଦି), ଶ୍ରୀ, ଲକ୍ଷ୍ମୀ, ସୃଷ୍ଟିର ୮ ଗୋଟି ଶକ୍ତି ବା ଦେବତା,ଜୀବ,ଗମନ, ଆକାଶ, (ପୁଂ.ବଂ-ମା+କ.ତୃ)ପରିମାଣକର୍ତ୍ତା, (ସ୍ତ୍ରୀ.)ମାତ୍ରୀ,(ଗ୍ରା.ସ୍ତ୍ରୀ.ବ) ଦେବୀ, ମାତାଜୀ, ସଂସାରତ୍ୟାଗିନୀ ସ୍ତ୍ରୀ,ମେଣ୍ଢାମାନଙ୍କର ରୋଗବିଶେଷ, (ପ୍ରା. ସମ୍ବ. ବ) ବସନ୍ତରୋଗ ।
ମାତାଜୀ—ଗ୍ରା.ସ୍ତ୍ରୀ.ବ. ସଂସାରତ୍ୟାଗିନୀ ସ୍ତ୍ରୀ, ସ୍ତ୍ରୀ ସାଧୁ ।
ମାତାଟିପା—ପ୍ରା. (ସମ୍ବ)ବ. ବସନ୍ତରୋଗ ନିବାରକ ଟୀକା, ଟୀକାଦେବା ବ୍ୟକ୍ତି, ଟିକାରି, ସୁତାରି ।
ମାତାପିତରୌ—ପୁଂ.ବ.ମାତା ଓ ପିତା, ମାଆବାପ ।
ମାତାପିତା—ଗ୍ରା.ବ. (ଦ୍ୱନ୍ଦ୍ୱ) ମାଆବାପ, ଜନକଜନନୀ ।
ମାତାପିତୃହୀନ—ପୁଂ.ବଂ.ଅନାଥ (ଶିଶୁ), ଯେଉଁ ଶିଶୁର ମାତାପିତା ମରିଅଛନ୍ତି ।
ମାତାପୁତ୍ର—ପୁଂ.ବ.(ଦ୍ୱନ୍ଦ୍ୱ)ମାଆ ଓ ପୁଅ ।
ମାତାମହ—ପୁଂ. ବ. (ମାତୃ+ଡତ୍‌ପିତା ଅର୍ଥରେ ଆମହ) ମାଆର ବାପ, ଅଜା, (ସ୍ତ୍ରୀ) ମାତାମହୀ ।
ମାତାମହୀ—ସ୍ତ୍ରୀ.ବ. (ମାତାମହ+ଈ)ମାର ମା, ଆଈ, (ପୁଂ) ମାତାମହ ।
ମାତାମହୀୟ—ବଂ. ମାତାମହ ସମ୍ବନ୍ଧୀୟ ।
ମାତାଲ୍—ଗ୍ରା.ବଂ. ମତ୍ତ, ଯେଉଁମାନେ ମଦ ଖାଇ ମତ୍ତ ହୁଅନ୍ତି, ମଦୁଆଲ, ମଦ୍ୟପ ।
ମାତାଲୀ—ସ୍ତ୍ରୀ. ବ. ( ମାତା+ଆଳୀ ) ମାଆର ସଖୀ ।
ମାତି—ସ୍ତ୍ରୀ.ବ. (ମା+କ୍ତି.ତି) ପରିମାଣ, (ଣ.ଚ) ଚିନ୍ତା, ଭାବ, ଯଥାର୍ଥ ଜ୍ଞାନ, ପ୍ରକୃତ ଅବଗତି ।
ମାତିଉଠିବା—ଗ୍ରା.କ୍ରି. ହଠାତ୍ ଉନ୍ମତ୍ତତା ପ୍ରକାଶ କରିବା, ଉନ୍ମାଦ ଗୁଣ ପ୍ରାପ୍ତହେବା, (ଦଦୁଆଦି)କଣ୍ଡୁଯୁକ୍ତ ହେବା ।
ମାତିବା—ଗ୍ରା.କ୍ରି. ମତ୍ତହେବା, ଉନ୍ମତ୍ତତା ପ୍ରକାଶ କରିବା,ଆତ୍ମବିସ୍ମୃତ ବା ବାହ୍ୟଜ୍ଞାନ ଶୂନ୍ୟ ହୋଇ କୌଣସି ବିଷୟରେ ଆସକ୍ତ ହେବା, ଉତ୍ତେଜିତ ହେବା, ମନପ୍ରାଣ ଲଗାଇ କୌଣସି କାର୍ଯ୍ୟ କରିବା, କୁପିତ ହେବା, (କ୍ଷତଆଦି) କୁପିତ ହେବା, ( ବାଘ ଗୋରୁଆଦି ) ପ୍ରବଳ ହେବା, (ବୃକ୍ଷଲତାଦି)ବଢ଼ିଯିବା, ବିଶେଷ ପରିମାଣରେ ବିସ୍ତୃତ ହେବା, (ପ୍ରଜାଆଦି) ରାଜଶକ୍ତି ବିରୁଦ୍ଧରେ ବିଦ୍ରୋହୀ ହେବା, ( କାଦୁ ଛଉଆଦି ) ଦେହତମାମ୍ ବ୍ୟାପିବା ।
ମାତିଯିବା—ଗ୍ରା.କ୍ରି. ଉନ୍ମତ୍ତତା ସହିତ କୌଣସି କାର୍ଯ୍ୟରେ ଲାଗିଯିବା, ଅଧ୍ୟବସାୟ ସହିତ କାର୍ଯ୍ୟ କରିବା ।
ମାତୁ—ଗ୍ରା. ବ. ( ଫ-ମଉତା ) ମଉତା, କାମୋନ୍ମତ୍ତ, କଣ୍ଡୁ, ଗଲ୍ଲୁ, ଜଗର, ଜଦ୍, ଉତ୍ସାହ ବା ବ୍ୟଗ୍ରତା ।
ମାଉଉଠିବା—ଗ୍ରା.କ୍ରି. (ଫ-ମଉତା)ଉନ୍ମତ୍ତତା ଜାତ ହେବା, କାଣ୍ଡୁ ଉଠିବା ।

ମାଉଳ—ପୁଂ.ବ. (ମାତୃ+ ଭାତୃଅର୍ଥରେ ଉଳ) ମାଆର ଭାଇ,ମାମୁଁ, ସର୍ପବିଶେଷ, ବୋଡ଼ାସାପ, ଧାତୁରା, ମଦନବୃକ୍ଷ, ଏକପ୍ରକାର ଗୁଉଳ ।

ମାଉଳକ—ପୁଂ. ବ. ( ମାଉଳ+କ ) ଧାତୁରା ଗଛ, ମାମୁଁ,ମାଉଳ ।

ମାଉଳଦ୍ରୁମ—ବ. ଧୁସ୍ତୁରବୃକ୍ଷ, ଶାଲ୍ମଳୀବୃକ୍ଷ । [ ପୂର ।

ମାଉଳ(ଲୁ)ଙ୍ଗ—ବ. ଟାବଲେମ୍ବୁ, ବୀଜ-

ମାଉଳପୁତ୍ରକ—ପୁଂ.ବ. ଧୁସ୍ତୁର ଫଳ, ମାଉଳେୟ, ମାମୁଁ ପୁଅ ।

ମାଉଳପୁଷ୍ପ—କ୍ଲୀ.ବ. ଧୁସ୍ତୁରପୁଷ୍ପ ।

ମାଉଳା, ମାଉଳାନୀ, ମାଉଳୀ—ସ୍ତ୍ରୀ. ବ. ( ମାଉଳ+ଆ, ଆନୀ, ଈ ) ମାମୁଁର ପତ୍ନୀ, ମାଇଁ, ଶଣ, ପ୍ରିୟଙ୍ଗୁବୃକ୍ଷ, ଭଙ୍ଗ, ସିଦ୍ଧି, ଗଞ୍ଜେଇ ।

ମାଉଳାଳୟ—ବ. (୬ତତ୍ପୁ) ମାମୁଁଘର

ମାଉଳାହି—ପୁଂ.ବ.ସର୍ପବିଶେଷ, ବୋଡ଼ାସାପ । [ ସାରଥି ।

ମାଉଳି—ପୁଂ. ବ. ମାତଳି, ଇନ୍ଦ୍ରଙ୍କ

ମାଉଳୁଙ୍ଗ—ବ. (ମା+ଉଲା+ଗମ୍+ କ.ଅ) ଟାବଲେମ୍ବୁ, ବୀଜପୂର,ଡାଳିମ୍ବ ।

ମାଉଳୁଙ୍ଗଶିଫା—ସ୍ତ୍ରୀ. ବ. ଟାବଲେମ୍ବୁଗଛର ମୂଳ ।

ମାଉଳୁଙ୍ଗୀ—ସ୍ତ୍ରୀ.ବ. ମଧୁକୁକ୍କୁଟୀ, ଟାବଲେମ୍ବୁ, ବୀଜପୂର ।

ମାଉଳୁଙ୍ଗିକା—ସ୍ତ୍ରୀ.ବ.ବନବୀଜପୂର ।

ମାଉଳେୟ—ପୁଂ.ବ. ମାମୁଁ ପୁଅ ଭାଇ, (ସ୍ତ୍ରୀ)ମାଉଳେୟୀ=ମାମୁଁ ଝିଅ ଭଉଣୀ ।

ମାଉଳ୍ୟ—କ୍ଲୀ.ବ. (ମାଉଳ+ଯ)ମାଉଳାଳୟ, ମାମୁଘର । [ ମାଉସୀ ।

ମାଉସ୍ୱ(ସ୍ୱ)ସା—ସ୍ତ୍ରୀ.ବ. ମାତାର ଭଗିନୀ,

ମାତୃ—ସ୍ତ୍ରୀ. ବ. (ମା+କ.ତୃ) ମାଆ, ଜନନୀ, ଗୁରୁପତ୍ନୀଆଦି ମାତୃସ୍ଥାନୀୟା ସ୍ତ୍ରୀ, ମାତୃବତ୍ ପୂଜ୍ୟା ସ୍ତ୍ରୀ, ଗାଈ, ଭୂମି, ବିଭୂତି, ଲକ୍ଷ୍ମୀ, ପୃଥିବୀ, ସପ୍ତମାତୃକା, ଅଷ୍ଟମାତୃକା, ଗୌର୍ଯ୍ୟାଦି ଅଷ୍ଟାଦଶ (ମତାନ୍ତରେ)ଷୋଡ଼ଶ ମାତୃଗଣ,ଦୁର୍ଗା, ରେବତୀ, ଆକାଶ, ଆଖୁକର୍ଣ୍ଣୀ, ମୂଷାକାଣୀଲତା, ମହାକାଳ ଲତା, ମହାଶ୍ରାବଣିକା, ଜଟାମାଂସୀ, ପିତୃଲୋକଙ୍କ ମଧ୍ୟରେ ସ୍ୱୀକାର୍ଯ୍ୟ ୮ମଶ୍ରେଣୀ, (ବଂ) ପରିମାଣକାରୀ, ନିର୍ମାଣକାରୀ ।

ମାତୃଅଂଶ—ଗ୍ରା. ବ. ଶିଶୁ ଧାରଣ କରିଥିବା ଆପଣା ମାତାଙ୍କ ଚେହେରା ।

ମାତୃଅଂଶୀୟା—ଗ୍ରା.ପୁଂ. ବଂ. (ସଂ-ମାତୃ +ଅଂଶୀ) ମାତାଙ୍କ ଗୁଣ ଓ ଚେହେରା ଧରି ଜନ୍ମ ହୋଇଥିବା (ଶିଶୁ) ।

ମାତୃକ—ବଂ. (ମାତୃ+କ) ମାତାସମ୍ବନ୍ଧୀୟ, ମାତାଙ୍କଠାରୁ ଉତ୍ତରାଧିକାରୀରୂପେ ପ୍ରାପ୍ତ (ସମ୍ପତ୍ତି),ମାତୃ ବା ପାଳକରୂପେ ପରିଣତ, (ସ୍ତ୍ରୀ) ମାତୃକା ।

ମାତୃକଚ୍ଛିଦ୍—ପୁଂ.ବ.(ମାତୃକ+ଛିଦ୍+ କ.କ୍ୱିପ୍) ପରଶୁରାମ ।

ମାତୃକଳ୍ପା—ସ୍ତ୍ରୀ.ବ.ମାତାଙ୍କ ପରି ପୂଜ୍ୟା ସ୍ତ୍ରୀ

ମାତୃକା—ସ୍ତ୍ରୀ. ବ. (ମାତୃକ+ଆ)ମାତା, ଧାତୃକା, ଦେବୀବିଶେଷ, କରଣ, ଉପମାତା, ଧାତ୍ରୀ, ଧାଇମାଆ, ସାବତମା, ମାତାମହୀ, ଗ୍ରୀବାଦେଶସ୍ଥ ଆଠଗୋଟି ଶିରାବିଶେଷ, ସ୍ୱର, 'ଅ, ଆ, କ, ଖ' ପ୍ରଭୃତି ସମସ୍ତ ବର୍ଣ୍ଣ,ଗୌର୍ଯ୍ୟାଦି ଷୋଡ଼ଶ ବା ଅଷ୍ଟାଦଶ ମାତୃଗଣ, ମୂଳକାରଣ, (ବଂ) ମାତୃସମ୍ବନ୍ଧୀୟା ।

ମାତୃକାକୁ(ଣ୍ଡ୍ର)ଧ—ବ. ଶିଶୁମାନଙ୍କର ଗୁହ୍ୟଦ୍ୱାରରେ ହେବା ବ୍ରଣବିଶେଷ ।

ମାତୃକାନ୍ୟାସ—ବ. ପୂଜାଦିରେ ମନ୍ତ୍ରପ୍ରୟୋଗ ରୂପ ବର୍ଣ୍ଣମାଳାର ଶରୀରରେ କରାଯିବା କ୍ରମାନୁଯାୟୀ ନ୍ୟାସ ।

ମାତୃକାମୟ—ବଂ. ଷୋଡ଼ଶ ମାତୃକାର ବୀଜମନ୍ତ୍ରଯୁକ୍ତ । [ ବିଶେଷ ।

ମାତୃକାଯନ୍ତ୍ର—କ୍ଲୀ. ବ. ତନ୍ତ୍ରୋକ୍ତ ଯନ୍ତ୍ର-

ମାତୃକେଶଟ—ପୁଂ. ବ. (ମାତୃକେ+ଶଟ୍ +ଅ) ମାଉଳ, ମାମୁଁ ।

ମାତୃକୁଳ—ବ.(୬ତତ୍ପୁ) ମାତାଙ୍କର ଜନ୍ମ ବଂଶ, (ବିପରୀତ)ପିତୃବଂଶ ।

ମାତୃଗଣ—ବ. ଶିବଙ୍କର ପରିବାର ବର୍ଗ, ଦେବାଂଶ ରୂପଧାରିଣୀ ଦୁର୍ଗାଙ୍କର ଭିନ୍ନଭିନ୍ନ ୮ଗୋଟି ରୂପ, ଅଷ୍ଟଶକ୍ତି, ଜନ୍ମପାଳନ ଓ ବିନାଶକାରିଣୀ ୮ଗୋଟି ଦେବୀ,ମାର୍କଣ୍ଡେୟପୁରାଣାନ୍ତର୍ଗତ ହରିହର ବ୍ରହ୍ମ ବିରଚିତ ଦେବୀକବଚରେ(ପ୍ରେତସଂସ୍ଥାଚାମୁଣ୍ଡାଦି)୧୧ ଗୋଟି ମାତୃଗଣ ।

ମାତୃଗନ୍ଧିନୀ—ସ୍ତ୍ରୀ. ବ. (ମାତୃ+ଗନ୍ଧ+ ଇନ୍+ଈ)ମାତୃ ନାମଧାରିଣୀ,ବିମାତା, ସାବତମାଆ ।

ମାତୃଗର୍ଭ—ପୁଂ. ବ. (୬ତତ୍ପୁ) ମାତାଙ୍କ ଗର୍ଭ ବା ପେଟ ।

ମାତୃଗାମୀ—ପୁଂ. ବଂ. (ମାତୃ+ଗମ୍+ ଇନ୍) ମାତାଙ୍କ ସହ ସହବାସକାରୀ ।

ମାତୃଗ୍ରାମ—ବ. ସ୍ତ୍ରୀଜାତି । [ ହତ୍ୟା ।

ମାତୃଘାତ—ବ. (ମାତୃ+ହନ୍+ଅ)ମାତୃ-

ମାତୃଘାତକ—ପୁଂ.ବଂ. (୬ତତ୍ପୁ) ମାତୃହନ୍ତା, ମାତୃ ହତ୍ୟାକାରୀ, (ସ୍ତ୍ରୀ) ମାତୃଘାତକୀ ।

ମାତୃଘାତୀ—ପୁଂ. ବ. ( ମାତୃ+ହନ୍+ ଇନ୍) ମାତୃହନ୍ତା, ଯେ ମାତାଙ୍କୁ ହନନ କରେ, (ସ୍ତ୍ରୀ) ମାତୃଘାତିନୀ ।

ମାତୃଘାତୁକ—ପୁଂ.ବଂ. ମାତୃହତ୍ୟାକାରୀ, (ପୁଂ.ବ) ଇନ୍ଦ୍ର ।

ମାତୃଘ୍ନ—ପୁଂ. ବଂ. (ମାତୃ+ହନ୍+ଅ) ମାତୃଘାତକ ।

ମାତୃଚକ୍ର—କ୍ଲୀ.ବ.ଜ୍ୟୋତିଷୋକ୍ତ ଚକ୍ରଭେଦ, ମାତୃଗଣସମୂହ, ଦେବ ମାତୃଗଣର ଏକତ୍ରାବସ୍ଥାନ ।

ମାତୃତଃ—ଅବ୍ୟ. ମାତାଙ୍କଠାରୁ ।

ମାତୃତୀର୍ଥ—କ୍ଲୀ.ବ.କରତଳସ୍ଥିତ କନିଷ୍ଠାଙ୍ଗୁଳିର ନିମ୍ନସ୍ଥାନ ।

ମାତୃତ୍ୱ—ବ. (ମାତୃ+ଭା.ତ୍ୱ) ସନ୍ତାନ ପ୍ରସବ କରିବାର ଅବସ୍ଥା ।

ମାତୃଦାୟ—ବ. ( ମଧ୍ୟ-କ.ଧା ) ମାତୃବିୟୋଗଜନିତ ସଙ୍କଟ, ମୃତା ମାତାଙ୍କ ଶ୍ରାଦ୍ଧାଦି ପାରଲୌକିକ କ୍ରିୟା ନିର୍ବାହରୂପ କର୍ତ୍ତବ୍ୟ ।

ମାତୃଦାୟଗ୍ରସ୍ତ—ପୁଂ. ବଂ. ( ୬ତତ୍ପୁ ଓ ୩ତତ୍ପୁ) ମାତାଙ୍କର ମୃତ୍ୟୁ ହେତୁରୁ ଯାହା ଉପରେ ଅବଶ୍ୟ କର୍ତ୍ତବ୍ୟ ଶ୍ରାଦ୍ଧାଦି କାର୍ଯ୍ୟ ନିଷ୍ପନ୍ନ କରିବାର ଦାୟିତ୍ୱ ପଡ଼ିଥାଏ ।

ମାତୃଦିବସ—ବି. (୬ତତ୍) ସାମ୍ବତ୍ସରିକ ମାତୃଶ୍ରାଦ୍ଧ ।

ମାତୃଦେବ—ପୁଂ. ବିଂ. (ବ.ଗ୍ରୀ) ଯେ ମାତାଙ୍କୁ ଦେବତାତୁଲ୍ୟ ପୂଜା କରେ ।

ମାତୃଦେବୀ—ସ୍ତ୍ରୀ.ବି. ଶକ୍ତିମୂର୍ତ୍ତିବିଶେଷ ।

ମାତୃଦ୍ରୋହ—ବି. (୬ତତ୍) ମାତାଙ୍କର ବିରୁଦ୍ଧାଚରଣ ।

ମାତୃଦ୍ରୋହୀ—ପୁଂ. ବିଂ. (୬ତତ୍) ଯେ ଆପଣା ମାତାଙ୍କ ପ୍ରତି ଶତ୍ରୁତାଚରଣ କରେ, (ସ୍ତ୍ରୀ) ମାତୃଦ୍ରୋହିଣୀ ।

ମାତୃନନ୍ଦନ—ପୁଂ.ବି. କାର୍ତ୍ତିକେୟ,ମହା-କରଞ୍ଜ ବୃକ୍ଷ, ଗୁଚ୍ଛକରଞ୍ଜ ବୃକ୍ଷ ।

ମାତୃନନ୍ଦୀ—ପୁଂ.ବି.ମାତୃନନ୍ଦନ ଦେଖ ।

ମାତୃନନ୍ଦକ—ପୁଂ. ବିଂ. ଜନନୀର ଆନନ୍ଦ-କାରୀ, (ବି) ପ୍ରତୁଦଜାତୀୟ ପକ୍ଷୀ ।

ମାତୃପାଳିତ—ପୁଂ. ବି. ଦାନବଭେଦ ।

ମାତୃପିତୃ—ଗ୍ରା. ବି. ମାତା ଓ ପିତା ।

ମାତୃପୂଜନ—କ୍ଲୀ.ବି. (୬ତତ୍)ମାତାଙ୍କର ସେବା,ମାତୃକାମାନଙ୍କର ପୂଜା,ଦେଶ-ମାତା ବା ଜନ୍ମଭୂମିର ପୂଜା । [ ଦେଖ ।

ମାତୃପୂଜା—ସ୍ତ୍ରୀ.ବି. (୬ତତ୍) ମାତୃପୂଜନ

ମାତୃଭକ୍ତ—ପୁଂ. ବିଂ. ୬ତତ୍) ମାତାଙ୍କ ପ୍ରତି ଭକ୍ତିଯୁକ୍ତ, (ସ୍ତ୍ରୀ)ମାତୃଭକ୍ତା ।

ମାତୃଭକ୍ତି—ବି. (୬ତତ୍) ମାତାଙ୍କ ପ୍ରତି ଶ୍ରଦ୍ଧା ।

ମାତୃଭାବ—ବି. (୬ତତ୍) ସନ୍ତାନ ପ୍ରତି ମାତାଙ୍କର ମନର ଭାବ ବା ସ୍ନେହ ।

ମାତୃଭାଷା—ବି. (ମଧ୍ୟ-କ.ଧା) ଆପଣାର ଜାତୀୟ ଭାଷା,ସ୍ୱଦେଶର ଭାଷା,ଘରୋଇ ଭାଷା ।

ମାତୃଭୂମି—ବି. ନିଜର ଜନ୍ମଭୂମି ।

ମାତୃମଣ୍ଡଳ—ବି.ନେତ୍ରଦ୍ୱୟର ମଧ୍ୟସ୍ଥଳ, (ଏହିସ୍ଥାନ ଆସନ୍ନମୃତ୍ୟୁ ବ୍ୟକ୍ତିକୁ ଦୃଶ୍ୟ ହୁଏନାହିଁ) ମାତୃକାଗଣର ସମୂହ, (ଗ୍ରା. ବି) ଅରୁନ୍ଧତୀ, ଧ୍ରୁବ ଓ କୃତ୍ତିକା ଏହି ୩ ଗୋଟି ନକ୍ଷତ୍ର ମଣ୍ଡଳ, ଚକ୍ଷୁର୍ମଧ୍ୟସ୍ଥ ତାରକା ।

ମାତୃମାତା—ସ୍ତ୍ରୀ. ବି. (୬ତତ୍) ମାଆର ମାଆ, ଆଈ ।

ମାତୃମାନ୍—ପୁଂ.ବିଂ(ମାତୃ + ମତ୍)ମାତୃ-ଯୁକ୍ତ, ଯାହାର ମାତା ଅଛନ୍ତି ।

ମାତୃମୁଖ—ପୁଂ. ବିଂ. ଜଡ଼, ନିର୍ବୋଧ, ଅଜ୍ଞ, ମୂର୍ଖ, ସ୍ତ୍ରୀବୁଦ୍ଧି ପରିଚାଳିତ, (ବି) ନିର୍ବୋଧ ବା ମୂର୍ଖ ବ୍ୟକ୍ତି ।

ମାତୃମୁହାଁ—ଗ୍ରା.ପୁଂ. ବିଂ. ମାଆ ଅଂଶୀଆ (ପିଲା),ମାଆର ମୁହଁପରି ଯାହାର ମୁହଁ ଅଛି ।

ମାତୃମୃଷ୍ଟ—ବିଂ. (୩ତତ୍) ଜନନୀକର୍ତ୍ତୃକ ବିଶୁଦ୍ଧୀକୃତ ।

ମାତୃଯଜ୍ଞ—ପୁଂ. ବି. ମାତୃଗଣ ଉଦ୍ଦେ-ଶ୍ୟରେ ଅନୁଷ୍ଠେୟ ଯଜ୍ଞଭେଦ ।

ମାତୃରିଷ୍ଟ(ଷ୍ଟି)—ବି.ଫଳିତଜ୍ୟୋତିଷରେ ମାତାର ଅନିଷ୍ଟକାରକ ଯୋଗ ବା ଶିଶୁ-ଜାତକରେ ଶିଶୁର ଜନନୀଙ୍କ ମୃତ୍ୟୁ-କାରକ ଗ୍ରହମାନଙ୍କ ସ୍ଥିତିବିଶେଷ,(ଜାତ ବାଳକର ଜନ୍ମ ଲଗ୍ନର ୪ର୍ଥରେ ବଳ-ବାନ୍ ପାପଗ୍ରହ ଏବଂ ଏହି ପାପଗ୍ରହର କେନ୍ଦ୍ର ସ୍ଥାନରେ ପାପଗ୍ରହ ଥିଲେ,ଅଥବା ଲଗ୍ନର ୪ର୍ଥ,୮ମ,୧୦ମ, ୫ମ, ୯ମରେ ପାପଗ୍ରହ ଥିଲେ ଏବଂ ପାପଗ୍ରହଯୁକ୍ତ ଶୁକ୍ରର ୪ର୍ଥ ସ୍ଥାନରେ ପାପଗ୍ରହ ଥିଲେ ଏବଂ ତିନୋଟି ପାପଗ୍ରହଦୃଷ୍ଟ ଚନ୍ଦ୍ରର ୬ଷ୍ଠ ସ୍ଥାନରେ ପାପଗ୍ରହ ଥିଲେ ମାତୃ-ରିଷ୍ଟି ହୁଏ, ଏହି ଯୋଗରେ ମାତାର ମୃତ୍ୟୁ ଘଟେ ବା ଭୟଙ୍କର ପୀଡ଼ାହୁଏ)

ମାତୃବତ୍—ଅବ୍ୟ.(ମାତୃ + ବତ୍)ମାତାର ତୁଲ୍ୟ, ମାଆସଦୃଶ, ମାଆପରି ।

ମାତୃବତ୍ସଳ—ପୁଂ. ବିଂ. ମାଆପ୍ରତି ଭକ୍ତି-ଯୁକ୍ତ, (ପୁଂ.ବି)କାର୍ତ୍ତିକେୟ,(ସ୍ତ୍ରୀ)ମାତୃ-ବତ୍ସଳା ।

ମାତୃବଧ—ପୁଂ.ବି. (୬ତତ୍)ମାତୃହତ୍ୟା ।

ମାତୃବନ୍ଧୁ—ବି.(୬ତତ୍)ଆପଣାର ମାତା-ଙ୍କର ମାମୁପୁଅ ଭାଇ,ମାଉସୀ ପୁଅ ଭାଇ ଓ ପିଉସୀ ପୁଅ ଭାଇ ।

ମାତୃବର୍ତ୍ତୀ—ପୁଂ.ବିଂ.ମାଆର ଆଜ୍ଞାକାରୀ

ମାତୃବହିଣୀ—ସ୍ତ୍ରୀ. ବି. (ମାତୃ + ବହ୍ + ଇନ୍ + ଈ) ବଲ୍‌ଗୁଲା ପକ୍ଷୀ, (ଗ୍ରା.ବି) ମାତାଙ୍କ ଭଉଣୀ ।

ମାତୃବାନ୍ଧବ—ବି. (୬ତତ୍) ଆପଣାର ମାତାଙ୍କର ମାତା, ପିତା , ଭାଇ, ଭ୍ରାତୃ-ଷ୍ପୁତ୍ର ଓ ପିତୃସହୋଦର ଭ୍ରାତା, (ଅର୍ଥାତ୍—ଆଈ, ଅଜା,ମାମୁଁ,ମଉଳା-ପୁଅ ଭାଇ ଓ ଅଜାଙ୍କ ଭାଇ) ।

ମାତୃବିଚ୍ଛେଦ—ବି (୬ତତ୍)ମାତୃବିୟୋଗ, ମାତାଙ୍କ ଠାରୁ ପୃଥକ୍‌ହେବା ।

ମାତୃବିଯୋ(ୟୋ)ଗ—ବି.(୬ତତ୍)ମାତା-ଙ୍କର ମୃତ୍ୟୁ ।

ମାତୃଶାସିତ—ପୁଂ. ବିଂ. (୩ତତ୍) ଅତି ସ୍ନେହ ହେତୁରୁ କେବଳ ମାତୃକର୍ତ୍ତୃକ ଶାସିତ) ଏଣୁ ମୂର୍ଖ, ଅଜ୍ଞ ।

ମାତୃଷ୍ୱ(ସ୍ୱ)ସା—ସ୍ତ୍ରୀ. ବି. (ମାତୃ + ସ୍ୱସୃ) ମାଆର ଭଉଣୀ, ମାଉସୀ, ମାତାଙ୍କ-ଭଗିନୀ ।

ମାତୃଷ୍ୱସେୟ—ପୁଂ.ବି. (ମାତୃ + ସ୍ୱସ୍ + ଏୟ) ମାଉସୀପୁଅ ଭାଇ, (ସ୍ତ୍ରୀ)ମାତୃସ୍ୱ-ସେୟୀ ।

ମାତୃଷ୍ୱସ୍ରୀୟ—ପୁଂ. ବି. (ମାତୃ + ସ୍ୱସୃ + ଈୟ) ମାଉସୀପୁଅ ଭାଇ, (ସ୍ତ୍ରୀ) ମାତୃ-ସ୍ୱସ୍ରେୟୀ ।

ମାତୃସପତ୍ନୀ—ସ୍ତ୍ରୀ.ବି. ମାଆର ସଉତୁଣୀ, ବିମାତା, ସାବତମା ।

ମାତୃସମ୍ବତ୍ସର—ବି. ମାଆଙ୍କର ମୃତ୍ୟୁ ଦିବସଠାରୁ ଏକବର୍ଷ କାଳ ।

ମାତୃସିଂହା—ସ୍ତ୍ରୀ. ବି. ବାସକ ବୃକ୍ଷ ।

ମାତୃସେବକ—ପୁଂ.ବିଂ. ଯେ ମାତାଙ୍କର ସେବା କରେ । [ ଆରାଧନା ।

ମାତୃସେବା—ବି. (୬ତତ୍) ମାତାଙ୍କର

ମାତୃସେବାବ୍ରତ—ବି.ବ୍ରତ ରୂପେ ପାଳିତ ମାତୃସେବା । [ ମାଆର ଥନ ।

ମାତୃସ୍ତନ—ବି(୬ତତ୍) ମାତାଙ୍କର ସ୍ତନ,

ମାତୃସ୍ତନ୍ୟ—ବି.(୬ତତ୍)ମାତାଙ୍କ ସ୍ତନରୁ ଜାତ ଦୁଗ୍ଧ ।

ମାତୃସ୍ଥାନୀୟା—ସ୍ତ୍ରୀ. ବିଂ. ମାତୃକଳ୍ପା, ମାତାଙ୍କ ପରି ପୂଜ୍ୟା ।

ମାତୃସ୍ନେହ-ବି.ମାତାଙ୍କର ଅପତ୍ୟସ୍ନେହ ।

ମାତୃହତ୍ୟା—ବି. ଆପଣାର ମାଆଙ୍କୁ ମାରି ପକାଇବା ।

ମାତୃହନ୍ତା—ପୁଂ. ବିଂ. ଯେ ନିଜର ମାତାଙ୍କୁ ବଧ କରେ ।

ମାତୃହା—ପୁଂ. ବିଂ. ମାତୃହନ୍ତା, ଯେ ମାଆକୁ ହନନ କରେ ।

ମାତୃସ୍ୱନ—ପୁଂ. ବିଂ. ମାଆଛେଉଣ୍ଡ, ଯାହାର ମାଆ ମରିଅଛନ୍ତି, (ସ୍ତ୍ରୀ) ମାତୃସ୍ୱନା ।

ମାତ୍ର—କ୍ଲୀ. ବି. ( ମା+ତ୍ର ) କାର୍ତ୍ସ୍ନ୍ୟ, ସାଫଲ୍ୟ, ସମଗ୍ର, ସୀମା, ମାପ,ପରିମାଣ, ଅବଧାରଣ, ପର୍ଯ୍ୟନ୍ତ, (ବିଂ) ପରିମିତ, ପ୍ରକାରେ, ଶ୍ରେଣୀର ସମସ୍ତ ବସ୍ତୁବିଶିଷ୍ଟ, ( ଅବ୍ୟ ) କେବଳ, ମାତ୍ରକେ, ଛଣି, ପକ୍ଷାନ୍ତରେ, କିନ୍ତୁ ।

ମାତ୍ରକ—ଗ୍ରା.ବିଂ. (ସଂ-କଣ୍ଟନ୍ଧାତ୍ର) କମାନିକ,ଅତି ସାମାନ୍ୟ,(ଅବ୍ୟ)ମାତ୍ର ଦେଖ

ମାତ୍ରକେ—ଗ୍ରା. ଅବ୍ୟ. ଶ୍ରେଣୀର ସମସ୍ତ, କେବଳ, ସକଳ, ତତ୍କ୍ଷଣାତ୍, ଛଣି, ପରମୁହୂର୍ତ୍ତିରେ ।

ମାତ୍ରା—ସ୍ତ୍ରୀ. ବି. (ମାତ୍ର+ଆ) ପରିମାଣ, ଅକ୍ଷରାବୟବ, ଫଳା, କାଳବିଶେଷ, ହ୍ରସ୍ୱବର୍ଣ୍ଣର ଉଚ୍ଚାରଣକାଳ,କର୍ଣ୍ଣଭୂଷଣ, ଛନ୍ଦର ହ୍ରସ୍ୱଦୀର୍ଘାଦି ପ୍ରଭେଦ,ଇନ୍ଦ୍ରିୟବୃତ୍ତି, ଇନ୍ଦ୍ରିୟ, ଅଂଶ, ଭାଗ, ଶିଳୋଚ୍ଚୟ, ଶକ୍ତି, ଅବୟବ, ଧନ,(ସଙ୍ଗୀତ) ପ୍ରତ୍ୟେକ ସ୍ୱରର ଅବସ୍ଥାନକାଳ,ହସ୍ତର ଏକବାର ପତନ ଓ ଉତ୍ଥାନକର କାଳ, ଔଷଧର ପାନ, ଥରେ ଔଷଧ ସେବନ କରିବାର ପରିମାଣ, ମୁହୂର୍ତ୍ତି, କ୍ଷଣ, ସନ୍ନ୍ୟାସୀଙ୍କର ପରିଚ୍ଛଦ, ଅବଚ୍ଛେଦ, ପରିମାଣ ବା ମାନର ନିର୍ଦ୍ଧାରିତ ମାନ, ବଟକରା ବା ନିର୍ଦ୍ଧାରିତ ମାନର ପାତ୍ର, ଯଥାର୍ଥ ମାପ, କଣିକା,କ୍ଷୁଦ୍ରାଂଶ,ମହାଭୂତ, ଜଡ଼ଜଗତ୍. ଅଳଂକାର,ଦେବନାଗରାକ୍ଷରର ଊର୍ଦ୍ଧ୍ୱାଂଶ ।

ମାତ୍ରାଗତ—ଗ୍ରା. ବିଂ. (୨ତତ୍) ମାତ୍ରାସମ୍ବନ୍ଧୀୟ, ପରିମାଣ ସମ୍ବନ୍ଧୀୟ ।

ମାତ୍ରାଘଟିତ—ଗ୍ରା. ବିଂ. (୨ତତ୍) ମାତ୍ରାଗତ ଦେଖ ।

ମାତ୍ରାଛନ୍ଦଃ—ବି.ପଦ୍ୟରେ ସ୍ୱରର ଉଚ୍ଚାରଣକାଳ ପରିମିତ ଛନ୍ଦଃ, ଗୁରୁଲଘୁ ମାତ୍ରାନୁସାରେ ରଚିତ ପଦ୍ୟ ।

ମାତ୍ରାଦୋଷ—ଗ୍ରା.ବି. ବ୍ୟକ୍ତିବିଶେଷଙ୍କର ଇନ୍ଦ୍ରିୟସୁଖ ଭୋଗଜନିତ ବ୍ୟସନ, ମଦ୍ୟପାନରୂପ ଦୋଷ, ମୁଦ୍ରାଦୋଷ କଥା କହିବାବେଳେ ହାତ ହଲାଇବା କିମ୍ବା କୌଣସି ନିରର୍ଥକ ବୋଲ ବ୍ୟବହାର କରିବାରୂପ ଦୁରଭ୍ୟାସ ।

ମାତ୍ରାଧିକ୍ୟ—ବି. (୬ତତ୍) ପରିମାଣର ଆଧିକ୍ୟ,ଔଷଧର ନିୟମିତ ପରିମାଣର ଆଧିକ୍ୟ ।

ମାତ୍ରାପତାକା—ସ୍ତ୍ରୀ. ବି. ଛନ୍ଦୋଗ୍ରନ୍ଥୋକ୍ତ ମାତ୍ରାବୃତ୍ତସ୍ଥ ଲଘୁଗୁରୁ ଜ୍ଞାନାନୁଗୁଣ ପତାକାର ଚକ୍ର ।

ମାତ୍ରାପାନ—ବି.ପରିମିତପାନ,ଅଳ୍ପ ଅଳ୍ପ ପରିମାଣରେ ପିଇବା । [ ଥଳ ।

ମାତ୍ରାଭସ୍ତା—ସ୍ତ୍ରୀ.ବି.ପୁଟକ,ଥଳ,ଟଙ୍କାର

ମାତ୍ରାମର୍କଟୀ—ସ୍ତ୍ରୀ. ବି. ଛନ୍ଦୋଗ୍ରନ୍ଥୋକ୍ତ ମାତ୍ରାବୃତ୍ତସ୍ଥିତ ଲଘୁଗୁରୁ ଜ୍ଞାନାନୁଗୁଣ କାଳଚକ୍ରବିଶେଷ ।

ମାତ୍ରାମେରୁ—ବି. ଛନ୍ଦୋଗ୍ରନ୍ଥୋକ୍ତ ଲଘୁଗୁରୁ ଜ୍ଞାନାନୁଗୁଣ ମେରୁଚକ୍ର ।

ମାତ୍ରାବସ୍ତି—ବି.ଗୁହ୍ୟଦ୍ୱାର ବାଟେ ମଳଭାଣ୍ଡରେ ଦିଆଯିବା ପିଚକାରି ।

ମାତ୍ରାବାନ୍—ପୁଂ. ବିଂ. ମାତ୍ରାଯୁକ୍ତ ।

ମାତ୍ରାବୃତ୍ତ—କ୍ଲୀ. ବି. ଗୁରୁଲଘୁ ମାତ୍ରାଭେଦେ ରଚିତ ଛନ୍ଦୋବିଶେଷ ।

ମାତ୍ରାଶିତ—କ୍ଲୀ. ବି. ପରିମିତ ଭୋଜନ, ପରିମିତାହାର ।

ମାତ୍ରାଶୀ—ପୁଂ. ବିଂ. (ମାତ୍ରା+ଅଶ୍+ଇନ୍) ପରିମିତଭୋଜୀ ।

ମାତ୍ରାସଙ୍ଗ—ବି. ( ୭ତତ୍ ) ସାଂସାରିକ ସମ୍ପତ୍ତିପାଇଁ ମମତା ।

ମାତ୍ରାସମକ—କ୍ଲୀ. ବି. ଛନ୍ଦୋବିଶେଷ ।

ମାତ୍ରାସ୍ପର୍ଶ—ପୁଂ. ବି. ରୂପରସାଦି ବିଷୟର ସହିତ ଇନ୍ଦ୍ରିୟସଂଯୋଗ, ଭୌତିକ ପଦାର୍ଥ ସମୂହର ଏକତ୍ର ସମନ୍ୱୟ ।

ମାତ୍ରାସ୍ୱରଚକ୍ର-ବି.ତନ୍ତ୍ରୋକ୍ତ ଚକ୍ରବିଶେଷ ।

ମାତ୍ରିକ—ବିଂ. ମାତ୍ରାସମ୍ବନ୍ଧୀୟ ।

ମାତ୍ସର—ପୁଂ.ବିଂ. (ମତ୍ସର+ଅ) ସ୍ୱାର୍ଥପର, ହିଂସୁକ, ପରଶ୍ରୀକାତର, ପରର ଉନ୍ନତରେ ଦୁଃଖିତ ।

ମାତ୍ସରିକ—ପୁଂ. ବିଂ. (ମତ୍ସର+ଇକ) ମାତ୍ସର ଦେଖ ।

ମାତ୍ସର୍ଯ୍ୟ—କ୍ଲୀ.ବି.(ମତ୍ସର+ଯ) ପରଶ୍ରୀକାତରତା ।

ମାତ୍ସ୍ୟ(ସ୍ୟିକ)—ବି. ( ମତ୍ସ୍ୟ+ଯ.ଇକ ) ମତ୍ସ୍ୟଦେଶର ରାଜା,ଋଷିବିଶେଷ,ପୁରାଣବିଶେଷ, (ବିଂ) ମତ୍ସ୍ୟମାରି ବ୍ୟବସାୟୀ, ଜାଲୁକ, ଧୀବର, ମତ୍ସ୍ୟତୁଲ୍ୟ ।

ମାତ୍ସ୍ୟକ—ତ୍ରି. ବିଂ. ମତ୍ସ୍ୟ ସମ୍ବନ୍ଧୀୟ ।

ମାତ୍ସ୍ୟଗନ୍ଧ—ବି. ଜାତିବିଶେଷ ।

ମାତ୍ସ୍ୟିକ—ପୁଂ.ବିଂ.ଜାଲିକ, ମତ୍ସ୍ୟଘାତକ, ମାଛମାରି ବ୍ୟବସାୟୀ । [ ବିଶେଷ ।

ମାତ୍ସ୍ୟେୟ—ବି. ମତ୍ସ୍ୟଦେଶବାସୀ ଜାତି-

ମାଥ—ପୁଂ. ବି. (ମାଥ୍+ଭା.ଅ) ମନ୍ଥନ, ବିଲୋଡ଼ନ, ବଧ, ବ୍ୟଥା, (ମୁଁ. ଅ)ପଥ, ମାର୍ଗ, (ଗ୍ରା.ବି) ମସ୍ତକ, ମୁଣ୍ଡ, ମଥା ।

ମାଥିତକ—ବିଂ, (ମଥିତ+ଇକ)ମଥିତବିକ୍ରେୟୁକ ।

ମାଥୁର—ପୁଂ. ବିଂ. (ମଥୁରା+ଅ) ମଥୁରା ସମ୍ବନ୍ଧୀୟ, ମଥୁରାରୁ ଆଗତ, ମଥୁରାଜାତ, (ସ୍ତ୍ରୀ) ମାଥୁରୀ, (ବି) ଶ୍ରୀକୃଷ୍ଣଙ୍କର ମଥୁରାଘଟିତ ବ୍ୟାପାରର ଗୀତ

ମାଥୁରକ—ବିଂ. (ମାଥୁର+କ) ମଥୁରାଦେଶ ସମ୍ବନ୍ଧୀୟ, ମଥୁରାର ଅଧିବାସୀ ।

ମାଥୁରଦେଶ୍ୟ—ବିଂ. ମଥୁରାଦେଶଭବ ।

ମାଥୁରୀ—ଗ୍ରା. ବି. ବ୍ରଜଭାଷା ଦେଖ ।

ମାଥେଘେନିବା—ଗ୍ରା. କ୍ରି. (ଆଦେଶ) ପାଳନ କରିବା, ଶିରୋଧାର୍ଯ୍ୟ କରିବା ।

ମାଦ—ବି. (ମଦ+ଭା.ଅ) ଦର୍ପ, ହର୍ଷ, ମତ୍ତତା, ଅହଙ୍କାର ।

ମାଦକ—ବି. (ମଦ୍+ଅକ)ଦାତ୍ୟୂହପକ୍ଷୀ, ଡାହୁକ ଚଢ଼େଇ, ମାଦକଦ୍ରବ୍ୟ, ଅହିଫେନ, ଅଫିମ, ଭାଙ୍ଗ,ଗଞ୍ଜେଇ, ହରିଣବିଶେଷ, ( ବିଂ-ମଦ+ଣିଚ୍+ଅକ ) ଯାହା ନିଶା କରାଏ, ମତ୍ତତାଜନକ, ଯାହା ଆନନ୍ଦ ଜନ୍ମାଏ, (ଗ୍ରା.ବି) ମାତୁ,

ନିଶା,ମଦ୍ୟ, ମଉଜ । [ କ୍ଷମତା ।
ମାଦକତା—ବି. ନିଶା, ନିଶାଜନ୍ମାଇବାର
ମାଦକଦ୍ରବ୍ୟ—ବି.(କ.ଧା) ଯାହା ସେବନ
କଲେ ନିଶା ହୁଏ । [ ଖାଇବା ।
ମାଦକସେବନ—ବି. (୬ତତ୍) ନିଶା-
ମାଦକୀ—ପୁଂ. ବିଂ. ମାଦକସେବୀ,ନିଶା-
ଖୋର, ମାତାଲ୍, (ସ୍ତ୍ରୀ) ମାଦକିନୀ ।
ମାଦନ—କ୍ଳୀ. ବି. (ମଦ+ଣିଚ୍+କ.
ଅନ) ଲବଙ୍ଗ, (ପୁଂ.ବି) କାମଦେବ,
ମଦନବୃକ୍ଷ, ଧାତୁରଗଛ, ( ଭ.ଅନ )
ହର୍ଷ, ନିଶା, (ବିଂ) ହର୍ଷଜନକ,ମତ୍ତତା
ଉତ୍ପାଦକ ।
ମାଦନୀ—ସ୍ତ୍ରୀ.ବି. (ମାଦନ+ଈ) ମାକନ୍ଦୀ,
ବିଜୟା, ଗଞ୍ଜେଇ ।
ମାଦନୀୟ-ବିଂ. (ମଦ+ଣିଚ୍+ର୍ମ.ଅନୀୟ)
ମତ୍ତତାଜନକ, ( ବି ) ନିଶାଉତ୍ପାଦକ
ପାନୀୟ, ଭାଙ୍ଗପାଣି । [ ହେତୁ ।
ମାଦୟିଷ୍ଣୁ—ବିଂ. ହର୍ଷୋତ୍ପାଦକ, ହର୍ଷର
ମାଦଲ—ଗ୍ରା. ବି. (ଫ-ମର୍ଦ୍ଦଲ) ବାଦ୍ୟ-
ଯନ୍ତ୍ରବିଶେଷ, ପଖାଉଜ, ମୁଣ୍ଡ ହାତ
ଗୋଡ଼ ନ ଥିବା ଦେହର ଅଂଶ, ଗଣ୍ଡି ।
ମାଦଳା—ଗ୍ରା. ବି. ଶ୍ରୀ ଜଗନ୍ନାଥ ମହା-
ପ୍ରଭୁଙ୍କ ମନ୍ଦିରରେ ରକ୍ଷିତ ତାଳପତ୍ର
ପଞ୍ଜିକା, ବଂଶାବଳୀ, କୌଣସି ବଂଶର
ବା ବିଷୟର ପ୍ରାଚୀନ ଇତିହାସ ।
ମାଦଳି—ଗ୍ରା.ବି.ମାଦଳିଆ ଦେଖ,କେଉଟ
ଜାତିର ବଂଶୋପାଧି ।
ମାଦଳିଆ—ଗ୍ରା.ବି. ଯେ ମର୍ଦ୍ଦଳ ବଜାଏ,
ଦାଣ୍ଡଘର ଭଡୁଆ, ଭଡୁଆ ଜାତିର
ବଂଶୋପାଧି ।
ମାଦା—ଯା. ବି. ସ୍ତ୍ରୀଜନ୍ତୁ, (ଗ୍ରା.ବିଂ. ମନ୍ଦ
ଶବ୍ଦଜ) ଅଳସୁଆ, ନିର୍ବୁଦ୍ଧିଆ, ଯେ
ସମସ୍ତ କାର୍ଯ୍ୟ ଧୀରେ ଧୀରେ କରେ ।
ମାଦିନୀ—ବି. (ମଦ୍+ଣିଚ୍+କ.ଅନ+
ଈ) ଭାଙ୍ଗ, ସିଦ୍ଧି, ଗଞ୍ଜେଇ, ଭାଙ୍ଗପାଣି,
ନିଶା ଉତ୍ପାଦକ ପାନୀୟ ।
ମାଦୀ—ଯା. ସ୍ତ୍ରୀ. ବିଂ. ମାଈ, ସ୍ତ୍ରୀଜାତୀୟ
(ଜୀବ)ବି. ମାଈ ଜୀବ । [ ବଥ ।
ମାଦୁ—ଗ୍ରା.ବି. ବ୍ରଣଶୋଥ, ବାଳମୂଳିଆ,

ମାଦୁଆଣୀ—ଗ୍ରା. ସ୍ତ୍ରୀ. ବି. ମାଈ ଘୋଡ଼ୀ,
ଘୋଟକୀ ।
ମାଦୁରଗ୍ରେଦ୍—ଯା.ପୁଂ. ବି. ମାତୃଗାମୀ,
ମାତୃ ହରଣକାରୀ ।
ମାଦୁର—ଗ୍ରା.ବି. ମନ୍ଦୁରା, ଘୋଡ଼ାଶାଳ ।
ମାଦୁଲ୍—ଯା. ବି. ବରଖାସ୍ତ, କାର୍ଯ୍ୟ-
ରହିତ୍ୟ,(ବିଂ) ବରଖାସ୍ତ ହୋଇଥିବା ।
ମାଦୁଲ୍‌କରିବା—ଗ୍ରା.କ୍ରି.କୌଣସିବ୍ୟକ୍ତିକୁ
କର୍ମଚ୍ୟୁତ କରିବା ।
ମାଦୁଲ୍‌ହେବା—ଗ୍ରା.କ୍ରି.କର୍ମଚ୍ୟୁତହେବା,
କାର୍ଯ୍ୟରୁ ରହିତ ହେବା ।
ମାଦୁଲି(ଲି)—ଗ୍ରା. ବି. ତେଉଁରିଆ ।
ମାଦୃକ୍—ପୁଂ. ବିଂ. ( ଅସ୍ମଦ୍+ମତ୍+
ଦୃଶ୍+କ୍ୱିପ୍) ମତ୍ସଦୃଶ, ମୋତୁଲ୍ୟ, (ସ୍ତ୍ରୀ)
ମାଦୃଶୀ ।
ମାଦୃକ୍ଷ—ପୁଂ.ବିଂ.(ମତ୍+ଦୃଶ୍+କ.ଣ)
ମାଦୃକ୍, ମୋପରି, ମୋତୁଲ୍ୟ, (ସ୍ତ୍ରୀ)
ମାଦୃକ୍ଷୀ ।
ମାଦୃଶ—ପୁଂ.ବିଂ.(ଅସ୍ମଦ୍+ଅତ୍+ଦୃଶ୍
+ଅ) ମୋପରି, ମୋତୁଲ୍ୟ, ମତ୍ସଦୃଶ,
(ସ୍ତ୍ରୀ) ମାଦୃଶୀ । [ (ସ୍ତ୍ରୀ) ମାଦ୍ରକୀ ।
ମାଦ୍ରକ—ପୁଂ.ବି. ମଦ୍ରଦେଶର ରାଜପୁତ୍ର,
ମାଦ୍ରନଗର—ବି. ମଦ୍ରଦେଶର ରାଜଧାନୀ
ମାଦ୍ରବତୀ—ସ୍ତ୍ରୀ.ବି. ରାଜା ପରୀକ୍ଷିତଙ୍କର
ପତ୍ନୀ,ମାଦ୍ରୀ,ପାଣ୍ଡୁଙ୍କର କନିଷ୍ଠା ଭାର୍ଯ୍ୟା ।
ମାଦ୍ରାସା—ଯା.ବି. ମୁସଲମାନମାନଙ୍କ ଉଚ୍ଚ
ଶିକ୍ଷାର୍ଥ ବିଦ୍ୟାଳୟ ।
ମାଦ୍ରୀ—ସ୍ତ୍ରୀ.ବି. (ମଦ୍ର+ଅ+ଈ) ପାଣ୍ଡୁ
ରାଜାଙ୍କ ପତ୍ନୀ, ନକୁଳ ସହଦେବଙ୍କ
ମାତା, ଅତିବିଷା, ମଦ୍ରୁରା । [ ଦେବ ।
ମାଦ୍ରୀନନ୍ଦନ—ପୁଂ.ବି. ନକୁଳ ଓ ସହ-
ମାଦ୍ରୀପତି—ପୁଂ.ବି.(୬ତତ୍) ପାଣ୍ଡୁରାଜା
ମାଦ୍ରୀସୁତ—ପୁଂ.ବି. (୬ତତ୍) ନକୁଳ ଓ
ସହଦେବ ।
ମାଦ୍ରେୟ—ପୁଂ. ବି. ( ମାଦ୍ରୀ+ଏୟ )
ମାଦ୍ରୀଗର୍ଭଜାତ ପୁତ୍ର, ନକୁଳ ଓ
ସହଦେବ ।
ମାଧବ—ପୁଂ. ବି. ( ମା+ଧବ ) ବିଷ୍ଣୁ,
ନାରାୟଣ, (ମଧୁ+ଅ) ବସନ୍ତକାଳ,

ବୈଶାଖମାସ, କାମଦେବଙ୍କ ସହଚର
ବସନ୍ତ, ମହୁଲଗଛ, କୃଷ୍ଣମୁଦ୍ଗ, ଶୀରକ-
ବୃକ୍ଷ, ଇନ୍ଦ୍ର, ଯାଦବଗଣ, ୨୪ ଅକ୍ଷର
ବର୍ଣ୍ଣ ବୃତ୍ତବିଶେଷ, ଭୈରବ ରାଗର
୮ ପୁତ୍ର ମଧ୍ୟରୁ ଏକ, ମହ୍ଲାର ରାଗ,
(ବିଂ) ମଧୁ ସମ୍ବନ୍ଧୀୟ, ମହୁପରି ମଧୁର,
ବସନ୍ତକାଳୀନ, (ସ୍ତ୍ରୀ) ମାଧବୀ ।
ମାଧବକ—ବି. ( ମାଧବ+କ ) ମହୁରୁ
ଉତ୍ପନ୍ନ ମଦ୍ୟ, ମହୁଲ ଫୁଲରୁ ଜାତ
ମଦ୍ୟ, ମହୁଲମଦ ।
ମାଧବକର—ପୁଂ.ବି. ଜନୈକ ସୁପ୍ରସିଦ୍ଧ
ଚିକିତ୍ସକ; ଏ ନିଦାନାଦି ବହୁ ପ୍ରକାର
ବୈଦ୍ୟକ ଗ୍ରନ୍ଥ ପ୍ରଣୟନ କରିଥିଲେ ।
ମାଧବପ୍ରିୟା—ସ୍ତ୍ରୀ.ବି. ( ୬ତତ୍ ) ଲକ୍ଷ୍ମୀ;
କମଳା । [ ମାଧବରାଓ ।
ମାଧବରାଓ—ଗ୍ରା.ବି.ରାଜା ସର୍ ଟାଞ୍ଜୋର
ମାଧବବଲ୍ଲୀ—ସ୍ତ୍ରୀ.ବି. ମାଧବୀ ଲତା ।
ମାଧବବୈଦ୍ୟ—ପୁଂ.ବି. ଆନନ୍ଦ ଲହରୀର
ଟୀକା ପ୍ରଣେତା ।
ମାଧବଶ୍ରୀ—ସ୍ତ୍ରୀ. ବି. (୬ତତ୍) ବସନ୍ତ-
କାଳୀନ ସୌନ୍ଦର୍ଯ୍ୟ ।
ମାଧବାଚାର୍ଯ୍ୟ—ପୁଂ.ବି. ନିମ୍ବାର୍କ ସମ୍ପ୍ର-
ଦାୟର ଜଣେ ଗୁରୁ, ଖ୍ରୀଷ୍ଟୀୟ ୧୪ଶ
ଶତାବ୍ଦୀର ମଧ୍ୟଭାଗର ବିଖ୍ୟାତ ପଣ୍ଡିତ
ସଂସ୍କୃତ ଗ୍ରନ୍ଥକାର ଓ ଟୀକାକାର ।
ମାଧବାନନ୍ଦନ୍ୟାୟବାଚସ୍ପତି—ଗ୍ରା. ବି.
ଉତ୍କଳୀୟ ନୈୟାୟିକ ସ୍ୱର୍ଗୀୟ ପଣ୍ଡିତ ।
ମାଧବିକା—ସ୍ତ୍ରୀ.ବି. (ମଧୁ+ଅ+କ+ଆ)
ମାଧବୀ ଲତା, ପ୍ରସିଦ୍ଧ ପୁଷ୍ପଲତା ।
ମାଧବୀ—ସ୍ତ୍ରୀ.ବି.(ମଧୁ+ଅ+ଈ) ସ୍ୱନାମ
ପ୍ରସିଦ୍ଧ ପୁଷ୍ପଲତା, ମଧୁଶର୍କରା, ମିଶ୍ରୀ,
ଓଡ଼ବଜାତୀୟା ରାଗିଣୀବିଶେଷ,କୁନ୍ଦ୍ରୀ,
ମଦିରା, ତୁଳସୀ, ଦୁର୍ଗା, ଲକ୍ଷ୍ମୀ, ମହା-
ବ୍ୟାଧି, ଗୋଧନରେ ଧନବତୀ ।
ମାଧବୀକୁଞ୍ଜ-ବି.ମାଧବୀଲତାଚ୍ଛାଦିତ କୁଞ୍ଜ ।
ମାଧବୀଦେଈ—ଗ୍ରା. ସ୍ତ୍ରୀ.ବି. ଶ୍ରୀଚୈତନ୍ୟ-
ଦେବଙ୍କର ପ୍ରଧାନ ଭକ୍ତ ଉତ୍କଳୀୟ
କରଣ ସ୍ତ୍ରୀ । [ ମଣ୍ଡପ ।
ମାଧବୀମଣ୍ଡପ—ବି. ମାଧବୀଲତାଚ୍ଛାଦିତ
ମାଧବୀୟ—ବିଂ. (ମାଧବ+ଈୟ) ବସନ୍ତ

ସମ୍ପର୍କୀୟ,ମାଧବସମ୍ବନ୍ଧୀୟ,ମାଧବାଗୃର୍ଯ୍ୟ ପ୍ରଣୀତ । [ ପୁଷ୍ପଲତା ।
ମାଧବୀଲତା— ସ୍ତ୍ରୀ. ବ. ସୁନାମଖ୍ୟାତ
ମାଧବେଷ୍ଟା—ସ୍ତ୍ରୀ.ବ. ବାରାହୀକନ୍ଦ,ଦୁର୍ଗା ।
ମାଧବୋଚିତ—ବ.କକ୍କୋଲକ,କାଙ୍କୁଲ ।
ମାଧବୋଦ୍ଭବ—ବ. ରାଜାଦନୀ ବୃକ୍ଷ ।
ମାଧା—ଗ୍ରା. ପୁଂ. ବଂ. ମାଦା ଦେଖ ।
ମାଧି—ଗ୍ରା. ବ. ଦସ୍ତା ।
ମାଧୁକ—ପୁଂ. ବ. ବର୍ଣ୍ଣସଙ୍କର ଜାତିବିଶେଷ, ମୈନ୍ଦ୍ରେୟକ, ମହୁଲମଦ, (ବଂ) ମଧୁରଭାଷୀ ।
ମାଧୁକର—ବ. (ମଧୁକର+ଅ) ଭ୍ରମର ସମ୍ବନ୍ଧୀୟ, (ସ୍ତ୍ରୀ) ମାଧୁକରୀ ।
ମାଧୁକରୀ—ସ୍ତ୍ରୀ.ବ. (ମଧୁକର + ଅ + ଈ) ଭୃତୀୟାଶ୍ରମଗୃହୀ ଭିକ୍ଷୁମାନଙ୍କର ପଞ୍ଚଗୃହାହୃତ ଭିକ୍ଷା ।
ମାଧୁକି—ପୁଂ.ବ. (ମଧୁକ+ଇ) ଅଶ୍ୱିନୀକୁମାର ଦ୍ୱୟ ।
ମାଧୁକୀ—ବ. (ମଧୁକ+ଈ)ମହୁଲଫୁଲର ମଦ, ମହୁଲମଦ, ମାଧ୍ୱୀକ ।
ମାଧୁପର୍କିକ—ବଂ. ( ମଧୁପର୍କ+ଇକ ) ସମ୍ମାନ ପ୍ରଦର୍ଶନପୂର୍ବକ ଅତିଥିଙ୍କୁ ଅର୍ପିତ, (ସ୍ତ୍ରୀ) ମାଧୁପର୍କିକୀ ।
ମାଧୁର—କ୍ଳୀ.ବ. (ମଧୁର + ଅ) ମଲ୍ଲିକାପୁଷ୍ପ, ( ବଂ ) ମଧୁରସମ୍ଭବ, ମଧୁରସଜାତ, ପୁଷ୍ପରସୋତ୍ପନ୍ନ ।
ମାଧୁରୀ—ସ୍ତ୍ରୀ. ବ. ( ମଧୁର + ଅ + ଈ ) ମାଧୁର୍ଯ୍ୟ, ମିଷ୍ଟତା, ହୃଦୟସ୍ପର୍ଶୀତା, ଲାବଣ୍ୟ,ସୌନ୍ଦର୍ଯ୍ୟ,ଉତ୍କୃଷ୍ଟତା, ମୃଦୁତା, ମାଧୁକୀ, ମହୁଲମଦ,ମହୁରୁ ପ୍ରସ୍ତୁତ ମଦ, ମଦ୍ୟ,ଗ୍ରା.ବ.କଠିନତା,ମନ୍ଥରୀ,ସ୍ୱାଦୁତା ।
ମାଧୁରୀକଳ—ଗ୍ରା. ବ. ସ୍ତନ । [ ପୂର୍ଣ୍ଣ ।
ମାଧୁରୀମୟ—ବଂ.ମାଧୁର୍ଯ୍ୟପୂର୍ଣ୍ଣ, ମଧୁରତା-
ମାଧୁର୍ଯ୍ୟ--କ୍ଳୀ.ବ. (ମଧୁର+ଯ) ମଧୁରତା, ଲାବଣ୍ୟ,ପାଞ୍ଚାଳୀ ରୀତି,ବିଶିଷ୍ଟକାବ୍ୟଗୁଣ, ନାୟିକାମାନଙ୍କର ଅଯତ୍ନଜ ଅଳଙ୍କାରବିଶେଷ, ସାତ୍ତ୍ୱିକ ନାୟକ ଗୁଣଭେଦ, ଦୟା, ଦାକ୍ଷିଣ୍ୟ ।
ମାଧୁର୍ଯ୍ୟରସଯୁକ୍ତଭକ୍ତି—ବ. ସ୍ନେହରସମୟ ଭକ୍ତି, (ଶ୍ରୀକୃଷ୍ଣଙ୍କୁ ଗୋପୀମାନେ ଓ ସଖାମାନେ ଯେଉଁ ରସଦ୍ୱାରା ଭକ୍ତି କରୁଥିଲେ) ।
ମାଧୂକ—ବ. (ମଧୂକ+ଅ) ବର୍ଣ୍ଣସଙ୍କର ଜାତିବିଶେଷ, (ବଂ) ମଧୁରଭାଷୀ ।
ମାଧୂକର—ବଂ. ମଧୁମକ୍ଷିକାପରି ସଂଗ୍ରହକାରୀ, ସଞ୍ଚୟଶୀଳ ।
ମାଧୋଇ—ଗ୍ରା. ପୁଂ. ବ. ମାଧବ ବା ଶ୍ରୀକୃଷ୍ଣଙ୍କୁ ସ୍ନେହ ସମ୍ବୋଧନ,ଚୈତନ୍ୟ ଦେବଙ୍କ ସମସାମୟିକ ନଦିଆବାସୀ ବ୍ୟକ୍ତିବିଶେଷଙ୍କ ନାମ ।
ମାଧ୍ୟ—ବଂ. (ମଧ୍ୟ+ଅ) ମଧ୍ୟସ୍ଥ,କେନ୍ଦ୍ରସ୍ଥ ।
ମାଧ୍ୟନ୍ଦିନ—ବଂ. ( ମଧ୍ୟଂ+ଦିନ+ଅ ) ମଧ୍ୟମ ଦିନ, ମଧ୍ୟାହ୍ନ, ବାଜସନେୟୀଙ୍କର ଏକଶ୍ରେଣୀ, (ବଂ) ମଧ୍ୟନ୍ଦିନ ସମ୍ବନ୍ଧୀୟ, ମଧ୍ୟସ୍ଥ, କେନ୍ଦ୍ରସ୍ଥ ।
ମାଧ୍ୟନ୍ଦିନଶାଖା—ସ୍ତ୍ରୀ.ବ.ଶୁକ୍ଳଯଜୁର୍ବେଦର ଶାଖାବିଶେଷ ।
ମାଧ୍ୟନ୍ଦିନି—ପୁଂ.ବ. ମାଧ୍ୟନ୍ଦିନଙ୍କ ଗୋତ୍ରାପତ୍ୟ, ଜନୈକ ବୈୟାକରଣ ।
ମାଧ୍ୟନ୍ଦିନେୟ—ପୁଂ. ବ.ମଧ୍ୟନ୍ଦିନ ସମ୍ବନ୍ଧୀ ଯଜ୍ଞ, ମଧ୍ୟ ।
ମାଧ୍ୟମ—ବଂ. (ମଧ୍ୟମ+ଅ) ମଧ୍ୟେଭବ, ମଧ୍ୟମ, ମଧ୍ୟରେ ସ୍ଥିତ ।
ମାଧ୍ୟମକେୟ—ବ. ଜାତିବିଶେଷ ।
ମାଧ୍ୟମସ୍ଥ୍ୟ—କ୍ଳୀ.ବ.ମଧ୍ୟଭାଗରେ ଅବସ୍ଥିତି ।
ମାଧ୍ୟମିକ—ବଂ. (ମଧ୍ୟମ+ଇକ) ମଧ୍ୟମସମ୍ବନ୍ଧୀୟ, ମଧ୍ୟଭାରତବାସୀ ଜାତିବିଶେଷ, ବୌଦ୍ଧମାନଙ୍କର ସମ୍ପ୍ରଦାୟବିଶେଷ, ( ବଂ ) ମଧ୍ୟମ ଦେଖ, (ଗ୍ରା.ବଂ)ଉଚ୍ଚଶିକ୍ଷା ଓ ପ୍ରାଥମିକ ଶିକ୍ଷାର ମଧ୍ୟବର୍ତ୍ତୀ ( ଶିକ୍ଷାର ମାନ) ।
ମାଧ୍ୟସ୍ଥ—ପୁଂ. ବଂ. (ମଧ୍ୟସ୍ଥ + ଅ) ମଧ୍ୟବର୍ତ୍ତୀ, ପକ୍ଷପାତଶୂନ୍ୟ, ନିରପେକ୍ଷ, ନିରୁତ୍ସାହ, ମଧ୍ୟସ୍ଥ ।
ମାଧ୍ୟସ୍ଥ୍ୟ—କ୍ଳୀ. ବ. (ମଧ୍ୟସ୍ଥ +ଯ) ଔଦାସୀନ୍ୟ,ମଧ୍ୟସ୍ଥତା,ମଧ୍ୟସ୍ଥର ଭାବ,ସାଳସ ।
ମାଧ୍ୟାକର୍ଷଣ—ବ. ( ମଧ୍ୟ+ଆକର୍ଷଣ ) ଭୂପୃଷ୍ଠରେ ପତିତ ବସ୍ତୁର କେନ୍ଦ୍ରାଭିଗ ଆକୃଷ୍ଟିବିଶେଷ ।
ମାଧ୍ୟାକର୍ଷଣହେତୁକସ୍ଥିତିଗତି—ବ.(ବିଜ୍ଞାନ ପରିଭାଷା) ଉଦ୍ଭିଦର ଚେରଗୁଡ଼ିକ ଭୂଗର୍ଭକୁ ଭେଦକରି କେନ୍ଦ୍ରଆଡ଼କୁ ଗତି କରିବାର ରୀତି ।
ମାଧ୍ୟାହ୍ନିକ—ବଂ.(ମଧ୍ୟାହ୍ନ + ଇକ) ମଧ୍ୟାହ୍ନକାଳୀନ ବ୍ୟାପାର,ମଧ୍ୟାହ୍ନ ସମ୍ବନ୍ଧୀୟ ।
ମାଧ୍ୱ—ବଂ. (ମଧୁ+ଅ) ମଧୁରୁ ପ୍ରସ୍ତୁତ, ମଧୁର, ମାଧ୍ୱାଗୃର୍ଯ୍ୟଙ୍କମତାବଲମ୍ବୀ,(ବ) ମଦ,ମାଧ୍ୱୀମଦ୍ୟ,ମଧୁରକଣ୍ଟକ ମତ୍ସ୍ୟ, ମହୁରଙ୍ଗମାଛ, ମଧୁରୁ ପ୍ରସ୍ତୁତ ମଦ୍ୟ, ମାଧ୍ୱାଗୃର୍ଯ୍ୟଙ୍କ ଶିଷ୍ୟସମ୍ପ୍ରଦାୟ ।
ମାଧ୍ୱକ—କ୍ଳୀ.ବ. (ମାଧ୍ୱ+କ) ମଧୂକପୁଷ୍ପକୃତ ମଦ୍ୟ, ମହୁଲିମଦ, ମଦ, ମଧୁରୁ ପ୍ରସ୍ତୁତ ମଦ୍ୟ ।
ମାଧ୍ୱୀବ୍ରାହ୍ମଣ—ବ. ଦାକ୍ଷିଣାତ୍ୟ ବ୍ରାହ୍ମଣ ଶ୍ରେଣୀବିଶେଷ ।
ମାଧ୍ୱୀ—ସ୍ତ୍ରୀ. ବ. (ମଧୁ+ଅ+ଈ) ମହୁଲରୁ ଜାତ ମଦ, ମଦ୍ୟ, ମହୁରୁ ଜାତ ମଦ୍ୟ,ମହୁରଙ୍ଗମାଛ,ମାଧବୀଲତା,ସର୍ପପ, ପୌରାଣିକ ନଗରୀବିଶେଷ,(ବଂ)ମାଧ୍ୱୀର ସ୍ତ୍ରୀଲିଙ୍ଗ, ମଧୁମତ୍ତ, ମଧୁଯୁକ୍ତ ।
ମାଧ୍ୱୀକ—କ୍ଳୀ.ବ.(ମାଧ୍ୱୀ+କ)ମହୁଲିମଦ, ମଧୁ, ମକରନ୍ଦ, ଦ୍ରାକ୍ଷାରୁ ଉତ୍ପନ୍ନ ମଦ୍ୟ, ଶିମ୍ବ, ଦ୍ରାକ୍ଷା ।
ମାଧ୍ୱୀକଫଳ—ବ. ମଧୁନାରିକେଲ ବୃକ୍ଷ ।
ମାଧ୍ୱୀକା—ସ୍ତ୍ରୀ. ବ. ଶ୍ୱେତନିଷ୍ପାବ, ଧଳାଶିମ୍ବ, ଶିମ୍ବ ।
ମାଧ୍ୱୀମଧୁରା—ସ୍ତ୍ରୀ.ବ. ମଧୁର ଖର୍ଜୁରିକା, ମିଠାଖଜୁରୀ ।
ମାଧ୍ୱୀଶର୍କରା—ସ୍ତ୍ରୀ. ବ. ମଧୁଜାତଶର୍କରା, ମହୁରୁ ପ୍ରସ୍ତୁତ ଚିନି ।
ମାଧ୍ୱୀସିତା—ସ୍ତ୍ରୀ. ବ. ମଧୁଶର୍କରା ଦେଖ ।
ମାନ୍—ଗ୍ରା. ପୁଂ.ବଂ. ଯାହାର ଅଛି,(ସ୍ତ୍ରୀ) ମତୀ, (ଯା.ବ) ମାନେ, ଅର୍ଥ, ଶବ୍ଦାର୍ଥ, (ପ୍ରା. ସମ୍ବ. ବ) ମାଣ,ଶସ୍ୟମାପିବା ପାତ୍ର, (ପ୍ରା. କଳା. ବ) ମରଦ, ପୁରୁଷ ।
ମାନ—କ୍ଳୀ.ବ. (ମା + ଣ+ଅନ)ପରିମାଣସାଧନ, (ସଙ୍ଗୀତ) ତାଳର ବିରାମ,

ଚିତ୍ତସମୁନ୍ନତ, ଯାହା ଦ୍ୱାରା ଓଜନ ବା ପରିମାଣ ବା ଦୈର୍ଘ୍ୟ ଆଦି ସ୍ଥିର କରାଯାଏ, (ମି.ଅନ) ପରିମାଣ, (ମାନ୍+ଭା.ଅ) ସମ୍ମାନ, ପୂଜା, ମର୍ଯ୍ୟାଦା, ମାନ, କ୍ରୋଧ, ଗର୍ବ, ଅହଙ୍କାର, ଅଭିମାନ, (ଣ.ଅ) ଇଜତ୍,ସୁନାମ, ପଦମର୍ଯ୍ୟାଦା, ପ୍ରଣୟୀର ଅପରାଧ ଦର୍ଶନରେ ପ୍ରଣୟିନୀର ଗମ୍ଭୀର କୋପ,ରୁଷା,ବିଦ୍ୟାଳୟରେ ଭିନ୍ନ ଭିନ୍ନ ଶ୍ରେଣୀ ବିଭାଗ,ଆତ୍ମପ୍ରତ୍ୟୟ, ସାମ୍ୟ, ସମାନତା, ପ୍ରମାଣ, ପ୍ରାମାଣିକତା, ମତ, ଆକାର, ପୌରାଣିକ ପୁଷ୍କର ଦ୍ୱୀପର ପର୍ବତବିଶେଷ,ସାମର୍ଥ୍ୟ, ଶକ୍ତି, ଉତ୍ତର ଦିଗର ଦେଶବିଶେଷ, ଗ୍ରହ, ମନ୍ତ୍ର, (ଗ୍ରା.ବି) ଅପମାନ ।

ମାନଅଭିମାନ—ଗ୍ରା.ବି. ସମ୍ମାନ ଓ ଅପମାନ । [ ମାଲାକନ୍ଦ ।

ମାନକ—ବି.ମାଣସାରୁ, ଶରାବ, ୧ସେର

ମାନକରିବା—ଗ୍ରା. କ୍ରି. ଅଭିମାନକରିବା, (ନାୟିକା)ନାୟକ ପ୍ରତି କୋପକରିବା ।

ମାନକଳହ—ବିଂ.(କ.ଧା) ଈର୍ଷା, ଅଭିମାନଜନିତ ନାୟକ ନାୟିକା ମଧ୍ୟରେ କଜିଆ, ରୁଷାରୁଷି । [ କଳହ ।

ମାନକଳି—ବି. (କ.ଧା) ଅଭିମାନଜନିତ

ମାନକୃତ୍—ବିଂ. ( ମାନ+କୃ+କ୍ୱିପ୍ ) ସମ୍ମାନଜନକ । [ ମାନହାନି ।

ମାନକ୍ଷତି—ବି. (ମାନ+କ୍ଷତି) ୬ତତ୍, ମାନଗୃହ—ବି. (କ.ଧା) କୋପ ଭବନ ।

ମାନଗୋବିନ୍ଦ—ପୁଂ.ବି.ଦୁର୍ଯ୍ୟୋଧନଙ୍କର ନାମ ।

ମାନଗ୍ରନ୍ଥ—ବି.ସମ୍ମାନ ବା ଗର୍ବର ସ୍ଥାନ ।

ମାନଗ୍ରନ୍ଥି—ବି.ଅପରାଧ, ସ୍ତ୍ରୀର ଗୁରୁ ଅଭିମାନରୂପ ଦୁରପନେୟ ଗ୍ରନ୍ଥି,ଅଭିମାନବର୍ଦ୍ଧନ । [ ମାନଘ୍ନୀ ।

ମାନଘ୍ନ— ବିଂ. ସମ୍ମାନବିନାଶକ, (ସ୍ତ୍ରୀ)

ମାନଚିତ୍ର—ବି. ଦେଶଆଦିର ଆକାର ଓ ଭୌଗଳିକ ବିଷୟଆଦି ପ୍ରଦର୍ଶନ ନକ୍ସା

ମାନଛାଡ଼ିବା—ଗ୍ରା. କ୍ରି. ମନରୁ ଅଭିମାନ ତ୍ୟାଗ କରିବା ।

ମାନଜ—ବିଂ.ମନରୁ ଉତ୍ପନ୍ନ,(ବି)କ୍ରୋଧ ।

ମାନତ୍(ନ୍ତ)—ଗ୍ରା.ବି.(ଫା-ମନସ୍ତ)ଦେବାନୁଗ୍ରହ ଲାଭାର୍ଥ ମନେ ମନେ ସଙ୍କଳ୍ପ, ମାନସିକ, ମନାସ, ଜାମିନ୍,(ବିଂ. ଫା-ମାନିତ) ମାନ୍ୟ ପାଇବାର ଉପଯୁକ୍ତ, ସମ୍ମାନନୀୟ, ଅନ୍ୟ ପାଇଁ ଜାମିନ ହୋଇଥିବା ।

ମାନତରୁ—ବି. ପର୍ଯ୍ୟଟକ, ଯାମ୍ପିଡ଼ା ।

ମାନତଃ—ଅ. ମାନରୁ, ମାନବିଷୟରେ ।

ମାନତୁଙ୍ଗ—ପୁଂ.ବି.ଜୈନାଚାର୍ଯ୍ୟବିଶେଷ

ମାନଦ—ପୁଂ. ବିଂ. (ମାନ+ଦା+ଅ) ସମ୍ମାନ ପ୍ରଦର୍ଶକ, ଗର୍ବୀ, ଗର୍ବବିନାଶକ, ଯେ ମାନ ପ୍ରଦାନ କରେ, ମାନରକ୍ଷକ, (ପୁଂ.ବି)ବିଷ୍ଣୁ, 'ଆ' ଅକ୍ଷରର ଗୁପ୍ତନାମ

ମାନଦଣ୍ଡ—ପୁଂ. ବି. ତୁଳାଦଣ୍ଡ, ନିକିତି, ପଦକା, ଲଠା ।

ମାନଦ୍ରୁମ—ପୁଂ. ବି. ଶାଲ୍ମଳୀବୃକ୍ଷ ।

ମାନଧନ—ବିଂ. (ମାନ+ଧନ) ବ.ବ୍ରୀ; ଅତ୍ୟନ୍ତ ସମ୍ମାନିତ, ଅତିଶୟ ମାନୀ ।

ମାନଧାତା—ଗ୍ରା.ବି. ମାନ୍ଧାତା, କ୍ଷତ୍ରିୟଙ୍କ ଉପାଧିବିଶେଷ ।

ମାନଧାନିକା—ସ୍ତ୍ରୀ.ବି କର୍କଟୀ, କାକୁଡ଼ି ।

ମାନନ—କ୍ଲୀ.ବି.(ମାନ+ଭା.ଅନ)ସମ୍ମାନପ୍ରଦର୍ଶନ, ମାନ୍ୟକରିବା, ଅର୍ଚ୍ଚନ,ପୂଜାକରିବା ।

ମାନନା—ବି. ମାନନ ଦେଖ, (ଗ୍ରା.ବି) ଚୁଲିପାଇଁ ଭୂମିରେ ଗାତ କରି ମାଟି ହାଣ୍ଡି ପୋତି ତା ଭିତରେ ମାଟି ଲେପିବା

ମାନନାଶ— ବି. (୬ତତ୍) ସମ୍ମାନନାଶ, ଅପମାନ ।

ମାନନୀୟ—ପୁଂ.ବିଂ. (ମାନ+ମି.ଅନୀୟ) ପୂଜନୀୟ, ପୂଜାର୍ହ, ମାନ୍ୟ ।

ମାନପତ୍ର—ବି.ଯେଉଁ ପତ୍ର ଦ୍ୱାରା କୌଣସି ବ୍ୟକ୍ତିଙ୍କଠାରେ ସମ୍ମାନ ଅର୍ପିତ ହୁଏ ।

ମାନପର—ପୁଂ.ବିଂ(ମାନ+ପର)ବ.ବ୍ରୀ; ମାନଧନ,ଅତିଶୟ ମାନୀ,(ସ୍ତ୍ରୀ)ମାନପରା ।

ମାନପରିଖଣ୍ଡନ—କ୍ଲୀ.ବି.ମାନହାନି,ଅବମାନନା ।

ମାନପାଇବା—ଗ୍ରା.କ୍ରି.ଆପଣାର ଯଥୋଚିତ ସମ୍ମାନ ପ୍ରାପ୍ତ ହେବା ।

ମାନପାତ୍ର—ବି. ଘଡ଼ି, ସମୟ ଜାଣିବା ପାଇଁ ବାଲି କିମ୍ବା ପାଣି ଭର୍ତ୍ତି ହେବା ନିମନ୍ତେ ନିର୍ମିତ ପାତ୍ର, ମାପିବା ପାତ୍ର ।

ମାନପ୍ରାଣ—ପୁଂ.ବିଂ.(ବ.ବ୍ରୀ)ମାନଜୀବନ, ଯାହାର ମାନ କେବଳ ପ୍ରାଣ, ଯେ ମାନକୁ ପ୍ରାଣ ଅପେକ୍ଷା ଅଧିକ ମନେ କରେ ।

ମାନଭଙ୍ଗ—ବି. (୬ତତ୍) କ୍ରୋଧ ଅପନୟନ, ଅଭିମାନ ତୁଟିଯିବା, ସମ୍ମାନନାଶ, ମାନହାନି, ଅପମାନ ।

ମାନଭଞ୍ଜନ—ବି. (୬ତତ୍) ଅଭିମାନର ନିରସନ ।

ମାନଭାଙ୍ଗିବା—ଗ୍ରା.କ୍ରି. କୌଣସି ବ୍ୟକ୍ତିର ଅଭିମାନକୁ ନିରସନ ବା ଦୂର କରିବା ।

ମାନଭାବ—ବି.ଥଟ୍ଟା, ଖେଳ, ପରିହାସ ।

ମାନଭୂମ—ଗ୍ରା.ବି.ପଶ୍ଚିମ ବଙ୍ଗର ଗୋଟିଏ ଜିଲ୍ଲା ।

ମାନଭୃତ୍—ପୁଂ.ବିଂ. ଅତ୍ୟନ୍ତ ଗର୍ବୀ ।

ମାନମଣ୍ଡ—କ୍ଲୀ. ବି. ମାଣସାରୁର ସହଯୋଗରେ ପ୍ରସ୍ତୁତ ଔଷଧ ବିଶେଷ ।

ମାନମନ୍ଦିର—ବି. ଜ୍ୟୋତିଷ୍କ ମଣ୍ଡଳୀର ଗତିବିଧି ନିରୂପଣ ନିମନ୍ତେ ବୈଜ୍ଞାନିକ ଯନ୍ତ୍ର ସମ୍ବଳିତ ଅଟ୍ଟାଳିକା,ବେଧଶାଳା ।

ମାନମୟ—ବିଂ.(ମାନ+ମୟ)ଗର୍ବଯୁକ୍ତ ।

ମାନମର୍ଯ୍ୟାଦା—ବି. ମାନସମ୍ମାନ ।

ମାନମହତ୍—ବିଂ. ଅତ୍ୟନ୍ତ ମାନୋନ୍ନତ ।

ମାନମହତ୍ତ୍ୱ—ବି. ସମ୍ମାନ ।

ମାନମହାନ୍—ପୁଂ. ବିଂ. ଅତ୍ୟନ୍ତ ଗର୍ବୀ, (ସ୍ତ୍ରୀ) ମାନମହତୀ । [ କାରେ ।

ମାନମାନସେ—ଗ୍ରା. କ୍ରି.ବିଂ. ଗର୍ବ ସହ-

ମାନମାନ୍ୟତା—ବି. ଇଜତ୍, ପ୍ରତିଷ୍ଠା ।

ମାନମାରିବା—ଗ୍ରା. କ୍ରି. କୌଣସି ବ୍ୟକ୍ତି ପ୍ରତି ଅଭିମାନ ପ୍ରକାଶ କରିବା ।

ମାନମିଳିବା—ଗ୍ରା.ବି. କୌଣସି ବ୍ୟକ୍ତିର ପ୍ରାପ୍ୟ ସମ୍ମାନ ତାକୁ ପ୍ରାପ୍ତହେବା,ମାନରକ୍ଷା ହେବା ।

ମାନୟିତବ୍ୟ—ପୁଂ.ବିଂ.ସମ୍ମାନାର୍ହ,ସମ୍ମାନ ପାଇବାର ଯୋଗ୍ୟ । [ ମାନୟିତ୍ରୀ ।

ମାନୟିତା—ପୁଂ.ବିଂ. ସମ୍ମାନକାରୀ, (ସ୍ତ୍ରୀ)

ମାନଯୋଗ—ବି.(ଷତତ୍) ମାପିବାର ବା ତୁଳିବାର ଯଥାର୍ଥ ପ୍ରଣାଳୀ ।

ମାନରକ୍ଷା—ବି(ଷତତ୍)କୌଣସି ବ୍ୟକ୍ତିର ଇଜତ୍ ବା ସମ୍ମାନର ଅକ୍ଷୁଣ୍ଣତା ।

ମାନରଖିବା—ଗ୍ରା. କ୍ରି. ସମ୍ମାନକୁ ଅକ୍ଷୁଣ୍ଣ ରଖିବା ।

ମାନରନ୍ଧ୍ରା—ସ୍ତ୍ରୀ.ବି.ତାମ୍ରୀ,ତାମ୍ବ୍ରୀ,ପ୍ରାଚୀନ ହିନ୍ଦୁମାନଙ୍କର ସମୟ ନିରୂପକ ଯନ୍ତ୍ରବିଶେଷ ।

ମାନବ—ପୁଂ. ବି. (ମନୁ + ଅ) ମନୁଷ୍ୟ, ନର, ବାଳକ, ଅର୍ଥଦଣ୍ଡବିଶେଷ,(ବିଂ) ମନୁଙ୍କସମ୍ବନ୍ଧୀୟ, ମନୁଙ୍କ ସଙ୍କଳିତ (ସଂହିତାଦି),ମନୁଙ୍କଠାରୁ ଜାତ,ମନୁଙ୍କସମ୍ବନ୍ଧୀୟ,(ସ୍ତ୍ରୀ) ମାନବୀ ।

ମାନବକ—ପୁଂ.ବି.(ମାନବ+କ)ବାଳକ,

ମାନବଜାତି—ବି.ମନୁଷ୍ୟ ଜାତି,ପୃଥିବୀର ମନୁଷ୍ୟଗଣ ।

ମାନବତତ୍ତ୍ୱ—ବି. ମାନବ ଜାତିର ପ୍ରାକୃତିକ ଇତିହାସ ।

ମାନବଦେବ—ପୁଂ. ବି. (ଷତତ୍)ରାଜା ।

ମାନବଧର୍ମ—ବି. (ଷତତ୍) ମନୁଷ୍ୟର ସ୍ୱାଭାବିକ ଗୁଣ ।

ମାନବଧର୍ମଶାସ୍ତ୍ର—ବି. (କ.ଧା) ମନୁଙ୍କର ରଚିତ ଧର୍ମଶାସ୍ତ୍ର ବା ସଂହିତା ।

ମାନବପତି—ପୁଂ. ବି. (ଷତତ୍)ରାଜା ।

ମାନବପ୍ରକୃତି—ବି. (କ.ଧା) ମନୁଷ୍ୟର ହୃଦୟଗତ ବା ସହଜ ପ୍ରକୃତି ।

ମାନବମଣ୍ଡଳୀ—ବି. (ଷତତ୍) ମାନବସମୂହ, ମନୁଷ୍ୟଜାତି ।

ମାନବରାକ୍ଷସ—ବି.ନରରୂପଧାରୀ ରାକ୍ଷସ, ରାକ୍ଷସ ପ୍ରକୃତିକ ମନୁଷ୍ୟ ।

ମାନବର୍ଜିତ—ବିଂ.(ତୃତତ୍)ସମ୍ମାନରହିତ, ଅବମାନିତ, ମାନହୀନ, ନୀଚ, ଅପ୍ରତିଷ୍ଠିତ, ଅପବାଦକାରୀ ।

ମାନବର୍ତ୍ତିକ—ପୁଂ.ବି. ପ୍ରାଚ୍ୟ ଜନପଦବିଶେଷ ଓ ତଦ୍ଦେଶବାସୀ ବ୍ୟକ୍ତି ।

ମାନବଲକ—ପୁଂ. ବି. ଜାତିବିଶେଷ ।

ମାନବଲୀଳା—ବି. (ଷତତ୍) ନରଲୀଳା, ମନୁଷ୍ୟର ସାଂସାରିକ କାର୍ଯ୍ୟ, ମନୁଷ୍ୟର ଜୀବିତ କାଳର କାର୍ଯ୍ୟକଳାପ ।

ମାନବଲୀଳାସମ୍ବରଣ—ବି.(ଷତତ୍)ମରଣ, ମୃତ୍ୟୁ ।

ମାନବବିଗ୍ରହ—ପୁଂ.ବି. (ଷତତ୍)ମନୁଷ୍ୟଗଣର ସହିତ ଯୁଦ୍ଧ, ମନୁଷ୍ୟଦେହ ।

ମାନବଶାସ୍ତ୍ର—ବି.ଯେଉଁ ଶାସ୍ତ୍ରରେ ମାନବଜାତିର ଉତ୍ପତ୍ତି, ବିକାଶ, ଭିନ୍ନ ଭିନ୍ନ ଅଞ୍ଚଳକୁ ଗମନ,ମନୁଷ୍ୟମାନଙ୍କ ଶ୍ରେଣୀବିଭାଗ ଜୀବଜଗତରେ ମନୁଷ୍ୟର ସ୍ଥାନ ମନୁଷ୍ୟ ସମାଜରେ ସଭ୍ୟତାର କ୍ରମବିସ୍ତାରଆଦି ଆଲୋଚିତ ହୋଇଥାଏ, ମନୁସଂହିତା ।

ମାନବସମାଜ—ବି. (ଷତତ୍)ବହୁ ମନୁଷ୍ୟଙ୍କ ଦ୍ୱାରା ଗଠିତ ଦଳ । [ ମନ ।

ମାନବହୃଦୟ—ବି. (ଷତତ୍) ମନୁଷ୍ୟର

ମାନବା—ଗ୍ରା.ବି. ମନୁଷ୍ୟମାନେ,ମନୁଷ୍ୟ ଜାତି, ପ୍ରଜାବର୍ଗ ।

ମାନବାନ୍—ପୁଂ. ବିଂ. (ମାନ + ବତ୍) ଗର୍ବିତ, ଯେ ଅଭିମାନ କରିଅଛି, ଅଭିମାନୀ, (ସ୍ତ୍ରୀ) ମାନବତୀ ।

ମାନବୀ—ସ୍ତ୍ରୀ.ବି.(ମାନବ + ଈ) ମନୁଷ୍ୟସ୍ତ୍ରୀ,ସ୍ତ୍ରୀଜାତି,ସ୍ୱାୟମ୍ଭୁବ ମନୁଙ୍କ କନ୍ୟା, ଶାସନ ଦେବତାବିଶେଷ ।

ମାନବୀୟ—ବିଂ. (ମାନବ+ଈୟ)ମାନବସମ୍ବନ୍ଧୀୟ, (ମନୁ+ଈୟ)ମନୁସମ୍ବନ୍ଧୀୟ, (ବି) ଅର୍ଥଦଣ୍ଡବିଶେଷ । [ ରାଜା ।

ମାନବେନ୍ଦ୍ର—ପୁଂ. ବି. (ମାନବ+ଇନ୍ଦ୍ର)

ମାନବେୟ—ପୁଂ.ବି.ମନୁଙ୍କ ଗୋତ୍ରାପତ୍ୟ ।

ମାନବେଶ—ପୁଂ.ବି. ( ମାନବ + ଈଶ ) (ଷତତ୍) ରାଜା । [ ଉପଯୁକ୍ତ ।

ମାନବୋଚିତ—ବିଂ. (ଷତତ୍)ମନୁଷ୍ୟର

ମାନବୌପ—ପୁଂ. ବି. କାଳୀପୂଜାରେ ଅର୍ଚ୍ଚନୀୟ ଗୁରୁପଂକ୍ତିବିଶେଷ ।

ମାନବ୍ୟ—କ୍ଲୀ.ବି. (ମାନବ+ଯ)ମାନବ ସମୂହ, ମାନବମଣ୍ଡଳୀ, ଶୈଶବାବସ୍ଥା, (ମାନ +ବ୍ୟ) ମାନମନ୍ଦିର ।

ମାନବ୍ୟାୟନା—ସ୍ତ୍ରୀ. ବି. ବାଳକସମୂହ, ଯୁବକ ସମିତି ।

ମାନଃଶିଳ—ବିଂ. ( ମନଃଶିଳା + ଅ ) ମନଃଶିଳାସମ୍ବନ୍ଧୀୟ ।

ମାନସ—କ୍ଲୀ.ବି. ( ମନସ୍ + ଅ ) ମନଃ, ସଙ୍କଳ୍ପ, କଳ୍ପନା,ଇଚ୍ଛା,ମନର ତାପ, ମାନସିକ ଦୁଃଖଭୋଗ, ମାନସରୋବର, ବିଷ୍ଣୁ, ପ୍ରତିମାବିଶେଷ, ( ହିନ୍ଦୁଆଇନ ) ମୌନ ସମ୍ମତି, ଏକପ୍ରକାର ଲୁଣ, କାମଦେବ, ଏକ ନାଗର ନାମ,ଶାଳ୍ମଳୀ ଦ୍ୱୀପର ଏକ ବର୍ଷ ବା ଦେଶ, ପୁଷ୍କର ଦ୍ୱୀପର ଏକ ପର୍ବତ, ମାନବ, ମନୁଷ୍ୟ, (ବିଂ) ମାନସିକ, ମନଃସମ୍ବନ୍ଧୀୟ, ମନଗଢ଼ା, କପୋଳକଳ୍ପିତ, ଆଧ୍ୟାତ୍ମିକ, କଳ୍ପନୀୟ, ଇଚ୍ଛାମାତ୍ରେ ଜାତ, ମାନସରୋବରରେ ବାସ କରୁଥିବା ।

ମାନସକରିବା—ଗ୍ରା.କ୍ରି. ଇଚ୍ଛା କରିବା, ସଙ୍କଳ୍ପ କରିବା ।

ମାନସଚାରୀ—ପୁଂ.ବିଂ. (ମାନସ + ଚର୍ + କ.ଇନ୍) ମାନ ସରୋବରରେ ବିଚରଣକାରୀ (ହଂସ), (ସ୍ତ୍ରୀ) ଚାରିଣୀ, (ବି) ରାଜହଂସ ।

ମାନସଜନ୍ମା—ବିଂ. (ମାନସ + ଜନ୍ମନ୍) ମାନସରୁ ବା ମନରୁ ଜାତ,ମାନସ ସରୋବରରୁ ଉତ୍ପନ୍ନ, (ବି) ରାଜହଂସ,କନ୍ଦର୍ପ

ମାନସଜପ—ବି. ମନେ ମନେ ଦେବତାଙ୍କର ନାମ ସ୍ମରଣ, ବୁଦ୍ଧିଦ୍ୱାରା ବର୍ଣ୍ଣମାଳାର ଉଚ୍ଚାରଣ ।

ମାନସତପଃ—ବି. ମନଃପ୍ରସାଦ,ସୌମ୍ୟତ୍ୱ, ମୌନ,ଆତ୍ମ ବିନିଗ୍ରହ ଓ ଭାବ ସଂଶୁଦ୍ଧି ।

ମାନସତୀର୍ଥ—କ୍ଲୀ.ବି. ରାଗାଦିରହିତ ମନ, ରିପୁବର୍ଜିତ ମନ ।

ମାନସତ୍ୱ—କ୍ଲୀ. ବି. ଚିନ୍ତାଶୀଳତା, ଆଧ୍ୟାତ୍ମିକତା ।

ମାନସନୟନ,ନେତ୍ର—କ୍ଲୀ. ବି. ମନୋରୂପ ଚକ୍ଷୁ, ଅନ୍ତଃକରଣରୂପ ନୟନ ।

ମାନସପଟ—ବି.ଚିତ୍ତପଟ,ଚିତ୍ତରୂପ ପଟ ।

ମାନସପୁତ୍ର—ପୁଂ.ବି. (ଦେବତାଦିଙ୍କର) ମନ ମଧ୍ୟରୁ ଜାତହେବା ପୁଅ ।

ମାନସପୂଜା—ସ୍ତ୍ରୀ. ବି. (କ.ଧା) ବାହ୍ୟ ଉପକରଣ ବିନା ସାହାଯ୍ୟରେ ମନେ ମନେ ପୂଜା, ମନୋରଚିତ ଦ୍ରବ୍ୟରେ ସପର୍ଯ୍ୟା ।

ମାନସମନ୍ଦର—ବି. (ରୂ-କ.ଧା) ମନୋମନ୍ଦର, ମନୋରୂପ ଗୃହ ।

ମାନସମ୍ଭ୍ରମ—ବି. (ଦ୍ୱନ୍ଦ୍ୱ) ମାନମର୍ଯ୍ୟାଦା, ସମ୍ମାନ ପ୍ରତିପତ୍ତି । [ ଦେଖ ।

ମାନସର—ଗ୍ରା. ବି. ମାନସରୋବର

ମାନସରାଜ୍ୟ—ବି. (ରୂ-କ.ଧା) ମନୋରୂପକ ରାଜ୍ୟ । [ ଦୁଃଖ ।

ମାନସରୁକ୍—ସ୍ତ୍ରୀ.ବି. (ତତ୍ପୁ) ମନୋ-

ମାନସରୋବର—ଗ୍ରା. ବି. ହିମାଳୟର ଉତ୍ତର ପାର୍ଶ୍ୱରେ ଅବସ୍ଥିତ ଗୋଟିଏ ପୁଣ୍ୟତୋୟ ହ୍ରଦ ।

ମାନସକଳିବା—ଗ୍ରା ବି. କୌଣସି ବିଷୟ ପ୍ରତି ବିଶେଷ ଆଗ୍ରହ ଜନ୍ମିବା ।

ମାନସବିଜ୍ଞାନ—ବି. (କ.ଧା)ମନୋବିଜ୍ଞାନ. ମନର କାର୍ଯ୍ୟ, ମନର ଗଠଆଦି ଯେଉଁ ବିଦ୍ୟାରେ ଆଲୋଚିତ ହୁଏ ।

ମାନସବେଗ—ବି. ( ତତ୍ପୁ ) ମନର ବେଗ, ଚନ୍ଦ୍ରା, ଜନୈକ ରାଜା ।

ମାନସବ୍ରତ—କ୍ଲୀ. ବି. ଲୋଭରହିତ୍ୟ, ଦାନ, ଅକ୍ରୋଧ, ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ ଏବଂ ଅକଳ୍କତା ଏହା ସମସ୍ତ ମାନସବ୍ରତ ।

ମାନସଶୁଚ୍—ବି. ( ତତ୍ପୁ ) ମନଃପୀଡ଼ା, ଅନ୍ତଃକରଣ ଦୁଃଖ । [ ଦୁଃଖ ।

ମାନସସନ୍ତାପ—ବି. ମନଃପୀଡ଼ା, ମନୋ-

ମାନସସନ୍ନ୍ୟାସୀ—ପୁଂ.ବି. ଯେଉଁ ବ୍ୟକ୍ତିଙ୍କର ମନରେ ବୈରାଗ୍ୟ ଉଦୟ ହେବାରୁ ସେ ଗୃହସ୍ଥାଶ୍ରମ ତ୍ୟାଗକରି ବନରେ ରହି ତପସ୍ୟା କରନ୍ତି, ଦଶନାମୀ ସନ୍ନ୍ୟାସୀ ମଧ୍ୟରେ ଏକତମ ।

ମାନସସରୋବର—ବି. ମାନସରୋବର ଦେଖ । [ ପୂରଣ ।

ମାନସସିଦ୍ଧି—ବି. (ତତ୍ପୁ) ଅଭିଳାଷର

ମାନସହଂସ—ବି.କ.ଧା;ମାନସ ସରୋବର ବିହାରୀ ରାଜହଂସ, ଏକବର୍ଣ୍ଣ ବୃତ୍ତି ।

ମାନସାଙ୍କ—କ୍ଲୀ.ବି. ମନେ ମନେ ଉତ୍ତର ସମାଧାନ କରିବା ଅଙ୍କ, ଗୁଣ୍ଡଅଙ୍କ ।

ମାନସାଲୟ—ବି. ( ମାନସ + ଆଲୟ ) ବି.ଗ୍ରା; ରାଜହଂସ ।

ମାନସିଂହ—ଗ୍ରା. ବି. ମୋଗଲ ସମ୍ରାଟ୍ ଆକବରଙ୍କର ସେନାପତି, କ୍ଷତ୍ରିୟଙ୍କ ଉପାଧିବିଶେଷ ।

ମାନସିକ—ବିଂ.(ମାନସ+ଇକ) ମନଃସମ୍ବନ୍ଧୀୟ, କାଳ୍ପନିକ, ଆନ୍ତରିକ, (ବି) ମନୋଭବ, କଳ୍ପନା, ବିଷ୍ଣୁ, (ଗ୍ରା.ବି)ଦେବଦେବୀଙ୍କ ନିକଟରେ ଅଭୀଷ୍ଟ ସିଦ୍ଧି ନିମିତ୍ତ ଭୋଗଆଦି ଯାଚିବା କାର୍ଯ୍ୟ ।

ମାନସିକକରିବା—ଗ୍ରା.କ୍ରି. ମାନତ କରିବା ଦେଖ ।

ମାନସୀ—ସ୍ତ୍ରୀ.ବିଂ. (ମନସ୍+ଈ) ମାନସର ସ୍ତ୍ରୀଲିଙ୍ଗ, ମନଃ ସମ୍ବନ୍ଧୀୟା,ମନୋଜାତା, (ବି) ଦେବୀବିଶେଷ, ମାନସପୂଜା ଦେଖ ।

ମାନସୀକନ୍ୟା—ସ୍ତ୍ରୀ. ବି. ମନରୁ ଜାତ କନ୍ୟା, ମନରେ କନ୍ୟାଜାତ ହେଉ-ବୋଲି କଳ୍ପନା କରିବାମାତ୍ରେ ଯେଉଁ କନ୍ୟା ଜାତ ହୁଏ । [ କର୍ମ ।

ମାନସୀକାର୍ଯ୍ୟ—ଗ୍ରା.ବି.ମନରେ ସଙ୍କଳ୍ପିତ

ମାନସୀମୂର୍ତ୍ତି—ବି. ମନଃକଳ୍ପିତ ରୂପ ।

ମାନସୀବ୍ୟଥା—ସ୍ତ୍ରୀ. ବି. ହୃଦୟଜାତ ଶୋକଦୁଃଖାଦି ।

ମାନସୂତ୍ର—କ୍ଲୀ.ବି. ସ୍ୱର୍ଣ୍ଣାଦି ନିର୍ମିତ କଟିସୂତ୍ର, ଅଣ୍ଟାସୂତା, ମପିବାର ସୂରୁଲ ।

ମାନସୋକ—ପୁଂ.ବିଂ.ମାନ ସରୋବରକୁ ଯିବାପାଇଁ ଆଗ୍ରହାନ୍ୱିତ (ହଂସ) ।

ମାନସୋତ୍ତର—ବି. ପର୍ବତ ଶ୍ରେଣୀବିଶେଷ

ମାନସୌକାଃ—ପୁଂ.ବି.(ବି.ଗ୍ରା)ରାଜହଂସ, (ବିଂ) ମାନସବାସୀ ।

ମାନହଂସ—ବି. ଏକବର୍ଣ୍ଣ ବୃତ୍ତି ।

ମାନହରା(ରେ)ଇବା—ଗ୍ରା.କ୍ରି.ଆପଣାର ସମ୍ମାନ ନଷ୍ଟ କରିବା ଭଳି କାର୍ଯ୍ୟ କରିବା

ମାନହା—ପୁଂ.ବିଂ. (ମାନ+ହନ୍+କ୍ୱିପ୍) ମାନହନ୍ତା, ମାନନାଶକ ।

ମାନହାନି—ବି. (ତତ୍ପୁ) ମାନର ହାନି, ଅବମାନନା, ଅପବାଦଦ୍ୱାରା ପରର ମର୍ଯ୍ୟାଦା ନାଶ ।

ମାନହାନିକର—ବି. (ତତ୍ପୁ)ମର୍ଯ୍ୟାଦାର କ୍ଷତିକାରକ ।

ମାନହୀନ—ପୁଂ.ବିଂ. ମର୍ଯ୍ୟାଦାହୀନ,ଅଭିମାନିଆ, ଗର୍ବହୀନ, ମାନରହିତ,ଯାହାର ମର୍ଯ୍ୟାଦା ନଷ୍ଟ ହୋଇଅଛି, (ସ୍ତ୍ରୀ)ମାନହୀନା ।

ମାନାଙ୍ଗୁଳମହାତନ୍ତ୍ର—କ୍ଲୀ. ବି. ପ୍ରାଚୀନ ତନ୍ତ୍ରବିଶେଷ ।

ମାନାନୟନ—କ୍ଲୀ.ବି.ଗଣନା କରି ପରିମାଣ ସ୍ଥିର କରିବା ।

ମାନାମାନ—ଗ୍ରା.ବି. ମାନ ଓ ଅପମାନ ।

ମାନାରଉପସାଗର—ବି. ଭାରତବର୍ଷର ଦକ୍ଷିଣରେ ଅବସ୍ଥିତ ଭାରତ ମହାସାଗରର ଅଂଶବିଶେଷ ।

ମାନାସକ୍ତ—ବିଂ. ଅଭିମାନୀ, ମାନରକ୍ଷା କେବଳ ଯାହାର ମୂଳମନ୍ତ୍ର ।

ମାନି—ଗ୍ରା.ବି. ପ୍ରତିଭୂ, ଜାମିନ୍, (ବିଂ) ଜାମିନ୍ ହୋଇଥିବା,ସ୍ୱେଚ୍ଛାପ୍ରଣୋଦିତ ।

ମାନିଆ(ଆଁ)—ଗ୍ରା.ପୁଂ. ବିଂ. ଅଭିମାନୀ, ଯେ ଗୁରୁଜନଆଦିଙ୍କୁ ସମ୍ମାନ ଦେଖାଏ, ମାନନୀୟ (ବ୍ୟକ୍ତି), ଭକ୍ତ, ରାଜଭକ୍ତ, (ଗ୍ରା.ବି) ଏକପ୍ରକାର ଫୁଲଗଛ, ବାଉଁଶ ଟୋକେଇ,(ଗ୍ରା.କ୍ରି.ବିଂ) ନିର୍ଦ୍ଦିଷ୍ଟ ସମୟ ପାଇଁ,ସକାଶେ,ଯଥେଷ୍ଟ ହେବା ପ୍ରକାରେ

ମାନିକଯୋଡ଼—ଗ୍ରା.ବି. ପକ୍ଷିବିଶେଷ ।

ମାନିକପୀର—ଗ୍ରା. ବି. ମୁସଲମାନମାନଙ୍କର ଉପାସୀ ଜନୈକ ପୀର ।

ମାନିକ—ବି. ଅଷ୍ଟପଲ ପରିମିତ, ଶରାବ, ଏକ ସେର ।

ମାନିକରିବା—ଗ୍ରା. କ୍ରି. ଆପଣାପାଇଁ ଅନ୍ୟ ବ୍ୟକ୍ତିକୁ ଜାମିନ୍‌ରୂପେ ଠିଆ କରାଇବା ।

ମାନିକା—ସ୍ତ୍ରୀ. ବି. (ମନ୍+ଣିଚ୍+ଅକ+ଆ) ମଦ୍ୟ, ଶରାବ, ଏକସେର, ଅଠପଲ ବା ଷାଠିଏ ତୋଳାର ଏକମାନ ।

ମାନିତ—ବିଂ. (ମାନ୍+ଣିଚ୍+କ୍ତ) ସମ୍ମାନିତ, ପୂଜିତ, ଆଦୃତ, ସମ୍ମାନଯୋଗ୍ୟ, (ଗ୍ରା.ବିଂ) ଅଭିମାନୀ, ମକଦ୍ଦମାର ପକ୍ଷଦ୍ୱାରା ସ୍ୱୀକୃତ, ବା କଚେରୀରେ ଉପସ୍ଥିତ ହେବାପାଇଁ ଉଲ୍ଲିଖିତ

ସାକ୍ଷୀ ବା ମଧ୍ୟସ୍ଥ ।
ମାନ୍ଧତବ୍ୟ—ପୁଂ.ବିଂ. (ମାନ୍+ମି.ତବ୍ୟ) ପୂଜନୀୟ, ମାନ୍ୟ (ସ୍ତ୍ରୀ) ମାନ୍ଧତବ୍ୟା ।
ମାନ୍ଧତା—ସ୍ତ୍ରୀ. ବି. (ମାନ୍ଧନ୍+ତ+ଆ) ସମ୍ମାନ, ଗୌରବ, ଅହଂକାର, ଗର୍ବ, ମନନ୍ଧ, (ସ୍ତ୍ରୀ.ବିଂ) ମାନ୍ଧତର ସ୍ତ୍ରୀଲିଙ୍ଗ ।
ମାନ୍ଧନୀ—ସ୍ତ୍ରୀ.ବି. (ମାନ୍ଧନ୍+ଈ)ଫଳମୀ-ବୃକ୍ଷ, ପ୍ରିୟଙ୍ଗୁ ଲତା, ନାୟିକାବିଶେଷ, ଶରୀର ପରିମାଣ, ଏକସେର, ଅଷ୍ଟ-ଶର୍କରୀ ନାମକ ଛନ୍ଦୋବିଶେଷ, (ବିଂ) ମାନବତୀ, ଅଭିମାନଯୁକ୍ତା (ସ୍ତ୍ରୀ) ।
ମାନ୍ଧବା—ଗ୍ରା.କ୍ରି.ମାନ୍ୟ କରିବା,ସମ୍ମାନ ଚକ୍ଷୁରେ ଦେଖିବା, ଆଦେଶ ପାଳନ କରିବା, ସଙ୍କଳ୍ପ କରିବା, ମାନସିକ କରିବା, ସ୍ୱୀକାର କରିବା, (ଅକର୍ମକ) ଶୋଭା ପାଇବା, ( ସକର୍ମକ ) ଗ୍ରାହ୍ୟ କରିବା, ଖାତିର କରିବା, ଅନ୍ୟର ଅନୁରୋଧ ବା ଉପଦେଶକୁ ଗ୍ରହଣ କରିବା, (ଦୋଷାଦି) ସ୍ୱୀକାର କରିବା, ସାକ୍ଷୀ ବା ମଧ୍ୟସ୍ଥହେବାକୁ ଅନ୍ୟକୁ ସ୍ୱୀକାର କରିବା, ( ଅକର୍ମକ ) ରୂପକୁ ଗୃହିଁ ଶୋଭାପାଇବା, ସାଜିବା, ଦେଶକାଳ-ପାତ୍ରକୁ ଗୃହିଁ ଉପଯୁକ୍ତ ଦେଖାଯିବା, (ମନ)ବୁଝିବା, ରାଜିହେବା, ଆୟତ୍ତରେ ରହିବା, ବୋଧକରିବା, ଦକ୍ଷ, କ୍ଷମତା-ବାନ୍,ଯୋଗ୍ୟ,ପୂଜ୍ୟ ବା ଶ୍ରେଷ୍ଠ ବୋଲି ସ୍ୱୀକାର କରିବା, କଳ୍ପନା କରିବା, ସ୍ୱୀକୃତ ହେବା, ଲକ୍ଷ୍ୟ କରିବା ।
ମାନ୍ଧିବା—ଗ୍ରା.କ୍ରି.ଦୋଷାଦି ସମ୍ପୂର୍ଣ୍ଣ ରୂପେ ସ୍ୱୀକାର କରିବା, ସମ୍ପୂର୍ଣ୍ଣରୂପେ ଆୟତ୍ତାଧୀନ ହେବା,ପୋଷା ମାନିବା ।
ମାନ୍ଧହେବା—ଗ୍ରା.କ୍ରି. କୌଣସି ବ୍ୟକ୍ତି-ପାଇଁ ଜମିନ୍ ହେବା ।
ମାନୀ—ପୁଂ.ବିଂ. (ମାନ+ଇନ୍)ଅଭିମାନୀ, ମନୋଯୋଗୀ, ସମ୍ମାନିତ, ମାନନୀୟ, ମନସ୍ୱୀ,ସମ୍ଭ୍ରାନ୍ତ,(ବିଂ ହି ହ,(ସ୍ତ୍ରୀ)ମାନିନୀ ।
ମାନୁଷ—ପୁଂ. ବି. (ମନୁ+ଅ) ମନୁଷ୍ୟ, ମାନବ, ( ବିଂ-ମନୁଷ+ଅ ) ମନୁଷ୍ୟ ସମ୍ବନ୍ଧୀୟ, ମନୁଷ୍ୟକୃତ, ଦୟାଳୁ,(ସ୍ତ୍ରୀ) ମାନୁଷୀ । [ସମ୍ବନ୍ଧୀୟ ।
ମାନୁଷକ—ବିଂ.(ମାନୁଷ+କ) ମନୁଷ୍ୟ-
ମାନୁଷଘାତୀ—ପୁଂ.ବିଂ. (ମାନୁଷ+ହନ୍ +ଇନ୍) ନରହନ୍ତା, (ସ୍ତ୍ରୀ) ଘାତିନୀ ।
ମାନୁଷରାକ୍ଷସ—ପୁଂ. ବି. ରାକ୍ଷସ ପ୍ରକୃତି-ଯୁକ୍ତ ମନୁଷ୍ୟଶରୀର, ଦୁଷ୍ଟ ଉଗ୍ରପ୍ରକୃତିକ ଦସ୍ୟୁପ୍ରଭୃତି, ମନୁଷ୍ୟର ଶତ୍ରୁ ।
ମାନୁଷଲୋକ—ବି. ଇହଲୋକ,ପୃଥିବୀ ।
ମାନୁଷଲୌକିକ—ବିଂ.ନରଲୋକ ସମ୍ବ-ନ୍ଧୀୟ, ମନୁଷ୍ୟ ଜାତିର ଉପଯୋଗୀ ।
ମାନୁଷିକ—ବିଂ.(ମାନୁଷ+ଇକ) ମନୁଷ୍ୟ-କର୍ମାଦି, ମନୁଷ୍ୟ ସମ୍ବନ୍ଧୀୟ, ଲୌକିକ, (ସ୍ତ୍ରୀ) ମାନୁଷିକୀ । [ ବୁଦ୍ଧଦେବ ।
ମାନୁଷିବୁଦ୍ଧ—ପୁଂ. ବି. ନରଦେହଧାରୀ
ମାନୁଷୀ—ସ୍ତ୍ରୀ.ବି.(ମାନୁଷ+ଈ)ମନୁଷ୍ୟ-ସ୍ତ୍ରୀଜାତି,ଚିକିତ୍ସାବିଶେଷ,(ବିଂ)ମନୁଷ୍ୟ-ସମ୍ବନ୍ଧୀୟା ।
ମାନୁଷ୍ୟ—କ୍ଲୀ. ବି. ମନୁଷ୍ୟତ୍ୱ, ମନୁଷ୍ୟ-ଶରୀର, ମାନବଧର୍ମ, ( ମନୁଷ+ଯ ) ମନୁଷ୍ୟ ସମ୍ବନ୍ଧୀୟ ।
ମାନୁଷ୍ୟକ—କ୍ଲୀ. ବି. ( ମନୁଷ୍ୟ+କ ) ମନୁଷ୍ୟସମୂହ, ( ବିଂ-ମାନୁଷ୍ୟ+କ ) ମନୁଷ୍ୟ ସମ୍ବନ୍ଧୀୟ ।
ମାନେ—ଯା. ବି. ଅର୍ଥ, ଶବ୍ଦର ତାତ୍ପର୍ଯ୍ୟ, (ଗ୍ରାମ୍ୟ ବହୁବଚନାନ୍ତ ପ୍ରତ୍ୟୟ) ଗଣ, ସମୂହ ।
ମାନେଜର—ଯା. ବି. କର୍ମନିର୍ବାହକ, ନିର୍ବାହକାରୀ ।
ମାନେମାନେ—ଅବ୍ୟ. ସମ୍ମାନର ସହିତ, ସମ୍ମାନ ବଜାଏ ଥାଉଁ ଥାଉଁ, ଆପଣାର ଇଜ୍ଜତକୁ ଅକ୍ଷୁଣ୍ଣରଖି ।
ମାନୋଜ୍ଞକ—କ୍ଲୀ.ବି. (ମନୋଜ୍ଞ+ଅକ) ମନୋଜ୍ଞତା, କମନୀୟତା ।
ମାନ୍ତ୍ର—ବିଂ. (ମନ୍ତ୍ର+ଅ) ମନ୍ତ୍ରସମ୍ବନ୍ଧୀୟ ।
ମାନ୍ତ୍ରବର୍ଣ୍ଣିକ—ବି. ବୈଦିକ ସ୍ତୋତ୍ରାଦି ଲକ୍ଷିତ ମନ୍ତ୍ର ବର୍ଣ୍ଣ ସଙ୍ଖ୍ୟାଭେଦ ।
ମାନ୍ତ୍ରିକ—ପୁଂ. ବିଂ. (ମନ୍ତ୍ର+ଇକ) ମନ୍ତ୍ର-ସିଦ୍ଧ, ମନ୍ତ୍ରରଚୟିତା, ଗୁଣିଆ, ମନ୍ତ୍ର-ବେତ୍ତା,(ସ୍ତ୍ରୀ) ମାନ୍ତ୍ରିକୀ ।
ମାନ୍ଥର୍ଯ୍ୟ—କ୍ଲୀ. ବି. ( ମନ୍ଥର+ଷ୍ଣ.ଯ ) ଦୁର୍ବଳତା, ଗତିର ଧୀରତା, ମନ୍ଥର ସ୍ୱା ଭ୍ୟର ଭାବ ।
ମାନ୍ଥାଳ—ବି.ମୂଷିକଜାତୀୟ ଜୀବବିଶେଷ ।
ମାନ୍ଥ୍ୟ—ବିଂ. ( ମନ୍ଥ+ଯ ) ମନ୍ଥନ ବା ମର୍ଦ୍ଦନଯୋଗ୍ୟ ।
ମାନ୍ଦ—ବି. (ମନ୍ଦ+ଅ) ଭୌମାଦି ଗ୍ରହ-ମାନଙ୍କର ରବି ବା ଚନ୍ଦ୍ର ସମ୍ବନ୍ଧୀୟ ନୀଚୋଚ୍ଚ ବା ମନ୍ଦୋଚ୍ଚ ଗତି, ତଡ଼ାଗ-ଭବଜଳ ।
ମାନ୍ଦା—ଗ୍ରା. ବିଂ. (ସଂ-ମନ୍ଦ) ଅଳସୁଆ, ମନ୍ଦ, ଧୀର, ହ୍ରାସଯୁକ୍ତ, ରୋଗଯୁକ୍ତ, ଅଳ୍ପ, ପଣ୍ୟଦ୍ରବ୍ୟାଦିର ଗ୍ରାହକ କମିବା ଯୋଗୁଁ ବସ୍ତୁବିଷୟ କମିଯିବା(ବଜାର), ଗ୍ରାହକଙ୍କର ଅନାଗ୍ରହହେତୁ କାରବାର କମିଯିବା, (ବି) ମାନ୍ଦ୍ୟ, ମନ୍ଦତା,ହ୍ରାସ, ଆଳସ୍ୟ ।
ମାନ୍ଦାର—ବିଂ. (ମନ୍ଦାର+ଅ) ମନ୍ଦାର-ସମ୍ବନ୍ଧୀୟ, (ବି) ଲକୁଚ, ଜେଉଡ଼ ।
ମାନ୍ଦାର୍ଯ୍ୟ—ବିଂ. ବୀତରାଗ,ମମତ୍ୱାଭିମାନ-ଶୂନ୍ୟ, ବିଷୟାନୁରାଗରହିତ ।
ମାନ୍ଦାଲୟ—ବି.ଉତ୍ତର ବ୍ରହ୍ମର ରାଜଧାନୀ ।
ମାନ୍ଦ୍ୟ—ବି. (ମନ୍ଦ+ଷ୍ଣ.ଯ) ଅଳ୍ପତା, ନ୍ୟୂନତା, ହାନି, ଜଡ଼ତା, ଆଳସ୍ୟ, ପୀଡ଼ା, ରୋଗ ।
ମାନ୍ଦ୍ରାଜ—ଗ୍ରା. ବି. (ସଂ-ମଦ୍ରରାଜ୍ୟ)ଭାର-ତର ଦକ୍ଷିଣାଂଶ, ଦାକ୍ଷିଣାତ୍ୟର ପୂର୍ବ ଭାଗରେ ଥିବା ସମୁଦ୍ରର ଉପକୂଳସ୍ଥ ପ୍ରଦେଶ ଓ ନଗର ।
ମାନ୍ଦ୍ରାଜୀ—ଗ୍ରା. ବିଂ. ମାନ୍ଦ୍ରାଜ ସମ୍ବନ୍ଧୀୟ, ମାନ୍ଦ୍ରାଜଦେଶୀୟ ବା ଦେଶଜାତ, (ବି) ମାନ୍ଦ୍ରାଜପ୍ରଦେଶବାସୀ ବ୍ୟକ୍ତି,ମାନ୍ଦ୍ରାଜରେ ତିଆରି ବସ୍ତ୍ରାଦି ।
ମାନ୍ଧାତା—ପୁଂ. ବି. (ମାଂ+ଧେ+କ. ତୃ) ଜଣେ ସୂର୍ଯ୍ୟବଂଶୀୟ ସମ୍ରାଟ୍,ଯୁବ-ନାଶ୍ୱଙ୍କପୁତ୍ର ।
ମାନ୍ଧାତ୍ର—ବିଂ. ମାନ୍ଧାତା ସମ୍ବନ୍ଧୀୟ,(ବି) ମାନ୍ଧାତାଙ୍କ ବଂଶଧର ।
ମାନ୍ମଥ—ବିଂ. (ମନ୍ମଥ+ଅ) ମନ୍ମଥ ବା

କାମସମ୍ବନ୍ଧୀୟ, (ସ୍ତ୍ରୀ) ମାନ୍ମଥୀ ।
ମାନ୍ୟ—ପୁଂ.ବିଂ. (ମାନ୍+ର୍ମ.ଯ)ଅର୍ଚ୍ଚ୍ୟ, ପୂଜନୀୟ, (ଣିଚ୍+ର୍ମ.ଯ) ପ୍ରାର୍ଥନୀୟ. (ବି) ବିଷ୍ଣୁ, ଶିବ, ମିତ୍ରାବରୁଣ, (ଗ୍ରା.ବି) ସମ୍ମାନ, ମର୍ଯ୍ୟାଦା, ସମ୍ମାନସୂଚକ ଉପଢୌକନ, ସଲାମି, ଭେଟି ।
ମାନ୍ୟଗଣ୍ୟ—ବିଂ. ଗଣ୍ୟ ଓ ମାନ୍ୟ, ସମାଜରେ ମାନନୀୟ ଓ ଗଣନୀୟ(ବ୍ୟକ୍ତି), ସମ୍ଭ୍ରାନ୍ତ ।
ମାନ୍ୟତ୍ୱ—କ୍ଲୀ.ବି.ପୂଜ୍ୟତ୍ୱ,ସମ୍ମାନ,ପୂଜା ।
ମାନ୍ୟଧର୍ମ—ଗ୍ରା. ବି. ଗୁରୁଜନଆଦିଙ୍କୁ ପ୍ରଦର୍ଶିତ ସମ୍ଭ୍ରମ, ସମ୍ମାନ, ନମସ୍କାର ।
ମାନ୍ୟତା—ଗ୍ରା. ବି. ସମ୍ମାନତା,ନମସ୍କାର ।
ମାନ୍ୟପାତ୍ର—ବି. (କ.ଧା) ସମ୍ମାନ ପାଇବାର ଉପଯୁକ୍ତ (ବ୍ୟକ୍ତି) ।
ମାନ୍ୟମାନ—ପୁଂ. ବି. ମାନ୍ୟମାନର ଗୋତ୍ରାପତ୍ୟ, (ବିଂ) ଅତଶୟ ସମ୍ମାନଯୋଗ୍ୟ ।
ମାନ୍ୟରକ୍ଷା—ବି. କୌଣସି ବ୍ୟକ୍ତିଙ୍କର ସମ୍ମାନକୁ ଅକ୍ଷୁଣ୍ଣ ରଖିବା ।
ମାନ୍ୟବ—ବିଂ. ମନୁଷ୍ୟସମ୍ବନ୍ଧୀୟ ।
ମାନ୍ୟବତୀ—ସ୍ତ୍ରୀ. ବି. ମାନନୀୟା, ରାଜକନ୍ୟାବିଶେଷ ।
ମାନ୍ୟବର—ପୁଂ.ବିଂ. ମାନ୍ୟବ୍ୟକ୍ତିମାନଙ୍କ ମଧ୍ୟରେ ଶ୍ରେଷ୍ଠ, ମହାମାନ୍ୟ, ( ସ୍ତ୍ରୀ ) ମାନ୍ୟବରା ।
ମାନ୍ୟବରେଷୁ—ବିଂ.(ମାନ୍ୟବର ଶବ୍ଦର ୭ମୀ ବିଭକ୍ତି ବହୁବଚନ); (ମାନନୀୟ ବ୍ୟକ୍ତିଙ୍କ ନିକଟକୁ ପତ୍ର ଲେଖିବାର ଶିରୋନାମାରେ ସମ୍ମାନସୂଚକ ଶବ୍ଦ), ଅମୁକ ମାନ୍ୟବରଙ୍କଠାରେ (ମାନ୍ୟାର୍ଥେ ବହୁବଚନ) ।
ମାନ୍ୟବାନ୍—ପୁଂ. ବିଂ. (ମାନ୍ୟ+ବତ୍) ସମ୍ମାନିତ, ମାନନୀୟ, (ସ୍ତ୍ରୀ)ମାନ୍ୟବତୀ ।
ମାନ୍ୟସୂଚକ—ଗ୍ରା.ବି. ଯଦ୍ଦ୍ୱାରା କୌଣସି ବ୍ୟକ୍ତିଙ୍କର ମାନ୍ୟସୂଚିତ ହୁଏ ।
ମାନ୍ୟସ୍ଥାନ—ବିଂ.ପୂଜ୍ୟତ୍ୱକାରଣ,ଆଦର ବା ସମ୍ମାନର କାରଣ ।
ମାନ୍ୟସ୍ଥାନୀୟ—ପୁଂ.ବିଂ.ମାନନୀୟ ବ୍ୟକ୍ତି, (ସ୍ତ୍ରୀ) ମାନ୍ୟସ୍ଥାନୀୟା ।
ମାନ୍ୟସ୍ଥାପନ—ଗ୍ରା. ବି. କୌଣସି ବ୍ୟକ୍ତିଙ୍କର ସମ୍ମାନ ରକ୍ଷା କରିବା, ସମ୍ମାନ ଦେଖାଇବା ।
ମାନ୍ୟସ୍ୱରୂପ—ଗ୍ରା.କ୍ରି. ବିଂ. ସମ୍ମାନ ପ୍ରଦର୍ଶନ ଚିହ୍ନ ବା ନିଦର୍ଶନ ସ୍ୱରୂପ ।
ମାନ୍ୟା—ସ୍ତ୍ରୀ. ବି. (ମାନ୍ୟ+ଆ) ପୂଜନୀୟା, (ବି) ମରୁନ୍ମାଳା ।
ମାନ୍ୟାର୍ହ—ପୁଂ. ବିଂ. ସମ୍ମାନିତହେବାର ଯୋଗ୍ୟ, ମାନନୀୟ, (ସ୍ତ୍ରୀ) ମାନ୍ୟାର୍ହା ।
ମାନ୍ୟାସ୍ପଦ—ଗ୍ରା. ପୁଂ. ବିଂ. ମାନ୍ୟାର୍ହ ଦେଖ, (ସ୍ତ୍ରୀ) ମାନ୍ୟାସ୍ପଦା ।
ମାପ୍‌ଜୁଖ—ଗ୍ରା. ବି. ମାପିବାକ୍ରିୟା,ଜରିବ ବନ୍ଦୋବସ୍ତ ।
ମାପ—ଗ୍ରା. ବି. ( ମା+ଣିଚ୍+ଭା.ଅ ) ବସ୍ତୁର ପରିମାଣ ସ୍ଥିରୀକରଣ, ମାପିବାକ୍ରିୟା, ଓଜନ, ପରିମାଣ ।
ମାପକ—ବିଂ. ( ମା+ଣିଚ୍+କ.ଅକ ) ମାପୁଣି, ଯେ ମାପେ, ଯଦ୍ଦ୍ୱାରା ମାପ କରାଯାଏ, (ସ୍ତ୍ରୀ) ମାପିକା ।
ମାପକରିବା—ଗ୍ରା. କ୍ରି. ମାପିବା ଦେଖ ।
ମାପତ୍ୟ—ପୁଂ.ବି. (ମା+ଅପତ୍ୟ)କାମଦେବ, କନ୍ଦର୍ପ ।
ମାପନ—ପୁଂ.ବି.(ମା+ଣିଚ୍+ଣ.ଅନ) ତୁଳାଦଣ୍ଡ,(କ୍ଲୀ.ବି ଭା.ଅନ)ମାପିବାକର୍ମ, ପରିମାଣ ସ୍ଥିରୀକରଣ ।
ମାପନୀୟ—ବିଂ.(ମା+ଣିଚ୍+ର୍ମ.ଅନୀୟ) ମାପିବାର ଯୋଗ୍ୟ ।
ମାପିବା—ଗ୍ରା. କ୍ରି. କୌଣସି ବସ୍ତୁର ପରିମାଣ ନିର୍ଣ୍ଣୟ କରିବା ।
ମାପୁଣି—ଗ୍ରା.ବି. ପରିମାପକ,ମାପକରିବା ଲୋକ, ମାପିବା ଲୋକକୁ ଦିଆଯିବା ପାରିଶ୍ରମିକ, ମାପିବାକ୍ରିୟା ।
ମାଫ୍—ଯା. ବି. କ୍ଷମା,ଛୁଡ଼୍, ମୁକ୍ତି,ଅବ୍ୟାହତି, (ବିଂ) କ୍ଷମିତ, ରହିତ, ସ୍ଥଗିତ (କର୍ମ),ଯାହା କ୍ଷମା କରାଯାଇଅଛି ।
ମାଫ୍‌କରିବା—ଗ୍ରା. କ୍ରି. କ୍ଷମାଦେବା, ଛାଡ଼ିଦେବା ।
ମାଫ୍‌ପାଇବା—ଗ୍ରା. କ୍ରି. କ୍ଷମାପାଇବା, ମୁକ୍ତିପାଇବା, ଛାଡ଼ପାଇବା ।
ମାଫି—ଯା. ବିଂ. ନିଷ୍କର(ବୃତ୍ତି).ଲାଖରାଜ (ବୃତ୍ତି), ମାଫ୍ ଦେଖ,(ବି) ନିଷ୍କରବୃତ୍ତି, ମାଫ୍ ଦେଖ ।
ମାଫିକ୍—ଯା.ଅବ୍ୟ. ଅନୁରୂପ,ମୁତାବକ୍, ପରିମାଣାନୁଯାୟୀ ।
ମାଫିଦାର୍—ଯା. ବି. ନିଷ୍କରବୃତ୍ତି ଭୋଗ କରୁଥିବା ବ୍ୟକ୍ତି,ଲାଖରାଜଦାର୍ ।
ମାବାପ୍(ପା)—ଗ୍ରା. ବି. ମାତା ଓ ପିତା, ଅଭିଭାବକ, ନିୟାମକ ।
ମାଭଉଣୀ—ଗ୍ରା. ବି. ମାତା ଓ ଭଗିନୀ ।
ମାଭୈଃ—ଅବ୍ୟ. ତୁମ୍ଭେ ଭୟ କରନା ! ଏପରି ଆଶ୍ୱାସବାଣୀ ।
ମାମ୍ବ—ପ୍ରା. (ବାଲେ) ବି.ପଠାଣଭୂତ ।
ମାମ—ପୁଂ.ବି. (ମମ+ଅ) ମାଉଳ,ମାମୁଁ, (ବିଂ) ମାମକ ଦେଖ ।
ମାମକ—ବିଂ. (ମମ+ଇଦଂ) ମଦୀୟ, ମତ୍ସମ୍ବନ୍ଧୀୟ, ମମତାଯୁକ୍ତ, ସ୍ୱାର୍ଥପର, କୃପଣ, ମୋର, (ବି) ମାଉଳ, ମାମୁଁ, କୃପଣ ବ୍ୟକ୍ତି ।
ମାମକୀନ—ପୁଂ. ବିଂ. (ମାମକ+ଈନ) ମଦୀୟ, ମତ୍ସମ୍ବନ୍ଧୀୟ, (ସ୍ତ୍ରୀ)ମାମକୀନା ।
ମାମକୀୟ—ବିଂ. (ଅସ୍ମଦ୍+ମଦ୍+ଈୟ) ମତ୍ସମ୍ବନ୍ଧୀୟ, ମଦୀୟ ।
ମାମତେୟ—ବିଂ.(ମମତା+ଈୟ)ମମତାସମ୍ବନ୍ଧୀୟ ।
ମାମଲତ୍(ତ)—ଯା. ବି. କାର୍ଯ୍ୟ, ମକଦ୍ଦମା, ବ୍ୟବହାର, ବ୍ୟବସାୟ, କାର୍ଯ୍ୟ ସମ୍ବନ୍ଧୀୟ କଥାବାର୍ତ୍ତା ।
ମାମଲତ୍‌କାର—ଯା. ବି. ଗୃହର ବୈଷୟିକ କାର୍ଯ୍ୟମାନ ବୁଝିବା ବ୍ୟକ୍ତି ।
ମାମଲତି—ଯା. ବିଂ. କାର୍ଯ୍ୟକ୍ଷମ ।
ମାମଲା—ଯା. ବି. ମକଦ୍ଦମା, ବ୍ୟାପାର ।
ମାମଲାମକଦ୍ଦମା—ଯା.ବି. ମକଦ୍ଦମାମାମଲା, ମାଲିମକଦ୍ଦମା ।
ମାମଲ୍ଲଦେବୀ—ସ୍ତ୍ରୀ.ବି. ନୈଷଧରଚୟିତା ଶ୍ରୀହର୍ଷଙ୍କର ମାତା ।
ମାମା—ଗ୍ରା.ସ୍ତ୍ରୀ. ବି. ମାତା, (ପ୍ରା.ବାଲେ. ପୁଂ.ବି) ମାମୁଁ ।

ମାମୀ—ସ୍ତ୍ରୀ. ବ. (ମାମ + ଈ) ମାଈଁ, ମାତୁଳାନୀ ।
ମାମୁଁ—ଗ୍ରା.ପୁଂ. ବ. ମାତୁଳ,(ସ୍ତ୍ରୀ)ମାଈଁ
ମାମୁଁଅଜା—ଗ୍ରା.ପୁଂ. ବ. ପିତାଙ୍କ ମାମୁଁ, ମାଆଙ୍କର ମାମୁଁ ।
ମାମୁଁଘର—ଗ୍ରା. ବ. ମାତୁଳାଳୟ, (ଲ. ଅର୍ଥ)ଜେଲଖାନା, ଶୌଣ୍ଡିକାଳୟ,ମଦ ଭାଟି ।
ମାମୁଦ୍—ଯା ବ. ଭାରତ ଆକ୍ରମଣକାରୀ ଗଜନୀବଂଶୀୟ ରାଜା ।
ମାମୁଭଣଜାପାହାଡ଼—ଗ୍ରା. ବ. ଚିଲିକା-କୂଳରେ ପୁଟଙ୍ଗଲ ବାଲୁଗାଁର ନିକଟରେ ଥିବା ଗୋଟିଏ ବଡ଼ ଓ ଗୋଟିଏ ଛୋଟ ପାହାଡ଼ର ନାମ ।
ମାମୂଲ୍—ଯା. ବିଂ. ପ୍ରସ୍ତୁତ ।
ମାମୁଲି—ଯା.ବ.ଚିରପ୍ରଚଳିତ ପ୍ରଥା,ରୀତି, ଅଭ୍ୟସ୍ତ କାର୍ଯ୍ୟ, ଦସ୍ତୁର, ଅଭ୍ୟାସ,(ବିଂ) ପ୍ରଚଳିତ, ପୂର୍ବରୁ ସ୍ଥିରୀକୃତ, ନିୟମିତ, ସାଧାରଣ, ନିର୍ଦ୍ଧାରିତ ସମୟରେ ପ୍ରାପ୍ୟ ବା ଦେୟ ।
ମାୟ୍—ଯା. ଅବ୍ୟ. ସହିତ, ଏକାଠି, ମିଶାଇକରି, ମଧ୍ୟ ।
ମାୟ—ପୁଂ.ବ. (ମାୟା + ଅ)ପୀତାମ୍ବର, ଅସୁର, ଐନ୍ଦ୍ରଜାଲିକ, (ବିଂ) କୁହୁକୀ, (ସ୍ତ୍ରୀ) ମାୟୀ ।
ମାୟଦାସ—ପୁଂ.ବ. ରତ୍ନକୌସ୍ତୁଭପ୍ରଣେତା
ମାୟାବାନ୍—ପୁଂ.ବ.ମାୟାଯୁକ୍ତ,ମାୟାବୀ ।
ମାୟା—ସ୍ତ୍ରୀ.ବ(ମା + ଯ + ଆ)ଇନ୍ଦ୍ରଜାଲ, କୁହୁକ, ଛଦ୍ମବେଶ, ଭୂମିକା, ବୁଦ୍ଧି, ମମତା, କୃପା, ଦମ୍ଭ, ଶଠତା, ପ୍ରଜ୍ଞା, ରାଜାମାନଙ୍କର କୂଟନୀତି, ଦୁର୍ଗା,ଦେବୀ, ବୁଦ୍ଧଦେବଙ୍କ ମାତା, ଧନ, ବର୍ଣ୍ଣବୃତ୍ତ-ବିଶେଷ, କାଳ୍ପନିକ ମୂର୍ତ୍ତି, (ବେଦାନ୍ତ) ଅବିଦ୍ୟା, ବିସଦ୍ଗୁଣ ପ୍ରଭୃତି ସାଧନ, ଯେଉଁ ଗୁଣ ଦ୍ୱାରା ପ୍ରକୃତ ବିଷୟ ଅନ୍ୟ ରୂପେ ଦେଖାଯାଏ, ମିଥ୍ୟାଜ୍ଞାନ,ମୋହ, ଭ୍ରାନ୍ତି, ଗୟା ନଗରର ଏକ ନାମ, ଛଳତା, ଦୁଷ୍ଟତା,ପ୍ରକୃତି, ନାରୀ,ଲକ୍ଷ୍ମୀ, (ମୟ + ଅ + ଆ)ମୟଦାନବର କନ୍ୟା, ବିଶ୍ରବାଙ୍କ ସ୍ତ୍ରୀ, ଖରଦୂଷଣ ଓ ସୂର୍ପ-ଣଖାର ମାତା, ମନ୍ତ୍ରରେ ଦେବତାଙ୍କ ଲୀଳା, ଆଦରଣୀୟା ସ୍ତ୍ରୀ ।
ମାୟାକାର—ପୁଂ.ବ. (ମାୟା + କୃ + ଅ) ଐନ୍ଦ୍ରଜାଲିକ, ବାଜିଗର, (ବିଂ) ଯେ ମାୟା ଘଟାଏ ।
ମାୟାକାନନ—ବ.(କ.ଧା)କୁହୁକ ବିଦ୍ୟା-ପ୍ରଭାବରେ ସୃଷ୍ଟ ଉପବନ ।
ମାୟାକାରୀ—ପୁଂ.ବିଂ.ମାୟାକର ଦେଖ ।
ମାୟାକୃତ୍—ପୁଂ. ବ. ( ମାୟା + କୃ + କ୍ୱିପ୍) ମାୟାକର ଦେଖ ।
ମାୟାଗଣ୍ଡୀ—ବ. ( ୬ତତ୍ ) ମାୟାର ବେଷ୍ଟନୀ, ମାୟାର ଆବରଣ ।
ମାୟାଗ୍ରସ୍ତ—ବ.(୩ତତ୍) ମାୟାରୂପ ଆବ-ରଣ ଦ୍ୱାରା ଆଚ୍ଛନ୍ନ ।
ମାୟାଚଣ—ବିଂ.(ମାୟା + ଚଣ) ଅତିଶୟ ମାୟାବୀ, (ସ୍ତ୍ରୀ) ମାୟାଚଣୀ ।
ମାୟାଚୁର—ପୁଂ. ବିଂ. ମାୟାବୀ, (ବି. କ.ଧା) ମାୟାବିଷୟ ବ୍ୟବହାର, ଛଳନା-ମୟ ଆଚରଣ ।
ମାୟାଚ୍ଛନ୍ନ—ବିଂ.(୩ତତ୍)ମାୟାଗ୍ରସ୍ତ ଦେଖ
ମାୟାଜଡ଼ିତ—ବିଂ. (୩ତତ୍) ମାୟାଗ୍ରସ୍ତ ଦେଖ ।
ମାୟାଜାଲ—ବ. (୬ତତ୍) ମାୟାସମୂହ, ଅନେକ ପ୍ରକାରର ମାୟା ।
ମାୟାଜାଲ—ବ. (ରୂ.କ.ଧା) ଜାଲପରି ବେଢ଼ିଥିବା ମାୟା ।
ମାୟାଜୀବୀ—ପୁଂ. ବ. (ବ.ବ୍ରୀ) କୁହୁକୀ, ଯେ କୁହୁକ ଦେଖାଇ ପେଟ ପୋଷେ, (ସ୍ତ୍ରୀ) ମାୟାଜୀବନୀ ।
ମାୟାଡ଼ୋର(ରି)—ଗ୍ରା. ବ. ଦଉଡ଼ି ପରି ଜୀବକୁ ଛନ୍ଦିଥିବା ମାୟା, ସ୍ନେହବନ୍ଧନ ।
ମାୟାତ—ବ. (ମାୟା + ତ) ମନୁଷ୍ୟର ସନ୍ତୋଷବିଧାନାର୍ଥ ଦିଆଯିବା ବଳି, ନରବଳି, ମେରିଆ ।
ମାୟାତ୍ମକ—ବିଂ. (ମାୟା + ଆତ୍ମନ୍ + କ) ମାୟାମୟ, ମିଥ୍ୟା, ମାୟାଯୁକ୍ତ, (ସ୍ତ୍ରୀ) ମାୟାତ୍ମିକା ।
ମାୟାଦ—ପୁଂ.ବ. (ମାୟା + ଅଦ୍ + ଅ) କୁମ୍ଭୀର, (ବିଂ. ମାୟା + ଦା + ଅ)ଯେ ମାୟା ଦିଏ ।
ମାୟାଦେବୀ—ସ୍ତ୍ରୀ.ବ.ବୁଦ୍ଧଦେବଙ୍କ ମାତା
ମାୟାଦେବୀସୁତ—ପୁଂ.ବ.(୬ତତ୍)ବୁଦ୍ଧ-ଦେବ ।
ମାୟାଧର—ପୁଂ.ବିଂ. (ମାୟା + ଧୃ + ଅ) ମାୟାବୀ, ମାୟାପଟୁ, କୁହୁକୀ, ଭ୍ରାନ୍ତି-ଜନକ, (ବି) ଅସୁର, ଶ୍ରୀକୃଷ୍ଣ ।
ମାୟାଧାରୀ—ପୁଂ.ବିଂ.(୬ତତ୍)ମାୟାଧର, ମାୟାକାରୀ, ମାୟାବୀ, ଐନ୍ଦ୍ରଜାଲିକ, କୁହୁକୀ, (ସ୍ତ୍ରୀ) ଧାରିଣୀ ।
ମାୟାପଟୁ—ପୁଂ.ବ(୭ତତ୍)ମାୟାକୁଶଳ, ମାୟାବୀ ।
ମାୟାପତି—ପୁଂ. ବ. (୬ତତ୍) ମାୟାର ସ୍ୱାମୀ, (ବିଂ) ମାୟାବୀ ।
ମାୟାପାଶ—ବ. (ରୂ.କ.ଧା) ମାୟାରୂପ-ଜାଲ, ମମତାର ଫାନ୍ଦ ।
ମାୟାଫଳ—କ୍ଳୀ. ବ. ମାଜୁଫଳ ।
ମାୟାମମତା—ବ. ସ୍ନେହ ଓ ମମତା ।
ମାୟାମୟ—ବିଂ. (ମାୟା + ମୟ) ମାୟା-ସ୍ୱରୂପ, ମାୟା ଦ୍ୱାରା ପୂର୍ଣ୍ଣ, ମାୟାଚ୍ଛନ୍ନ, (ସ୍ତ୍ରୀ) ମାୟାମୟୀ ।
ମାୟାମୁକ୍ତ—ପୁଂ. ବିଂ. (୫ତତ୍) ଜଗତ-ମୋହ, (ସ୍ତ୍ରୀ) ମାୟାମୁକ୍ତା ।
ମାୟାମୃଗ—ବ. (କ.ଧା) ମାୟା ବିଦ୍ୟା-ଦ୍ୱାରା ସୃଷ୍ଟ ମୃଗ ।
ମାୟାମୋହ—ବ.(ମାୟା + ମୁହ୍ + ଣିଚ୍ + ଅ) ବିଷ୍ଣୁଦେହ ନିର୍ଗତ ଅସୁର-ମୋହନକାରୀ ପୁରୁଷବିଶେଷ, ବିଶେଷ, ମାୟା ବା ଅବିଦ୍ୟାଜନିତ ଅଜ୍ଞାନ ।
ମାୟାଯନ୍ତ୍ର—କ୍ଳୀ. ବ. ସମ୍ମୋହନ ।
ମାୟାଯୁଦ୍ଧ-ବ.ମାୟା ବା ଛଳନା ପ୍ରୟୋଗ ଦ୍ୱାରା ଯୁଦ୍ଧ । [ ପ୍ରୟୋଗ ।
ମାୟାଯୋଗ—ବ. (୬ତତ୍) କୁହୁକର
ମାୟାରଜ୍ଜୁ—ବ. (କ.ଧା) କୁହୁକରଚିତ ରଜ୍ଜୁ,ମାୟାଜାଲ, ମାୟାଡ଼ୋର, ସ୍ନେହ-ବନ୍ଧନୀ, ଭ୍ରାନ୍ତିବିଜୃମ୍ଭିତ ଦଉଡ଼ି ।
ମାୟାରଥ—ବ. (କ.ଧା) ମାୟାକଳ୍ପିତ ରଥ, କୁହୁକବିଦ୍ୟା ପ୍ରଭାବରେ ରଚିତ

ମିଥ୍ୟା ସ୍ପନ୍ଦନ ବା ଶକଟ ।
ମାୟାରସିକ—ପୁଂ. ବିଂ. ପରପ୍ରତାରକ, ମାୟାପଟୁ ।
ମାୟାରାଜ୍ୟ—ବି. (କ.ଧା) ମିଥ୍ୟାରାଜ୍ୟ, ମାୟାରଚିତ ରାଜ୍ୟ, (ଷତତ୍) ମାୟାର ଅଧିକାର ।
ମାୟାରୂପ—ବି. (କ.ଧା) ମାୟା ଦ୍ୱାରା ସୃଷ୍ଟ ମୂର୍ତ୍ତି, ଛଦ୍ମରୂପ ।
ମାୟାରୂପୀ—ବିଂ. ଛଦ୍ମରୂପଧାରୀ, ଯେ ଇନ୍ଦ୍ରଜାଲ ଦ୍ୱାରା ନାନା ମିଥ୍ୟାରୂପ-ଧରିପାରେ, (ସ୍ତ୍ରୀ) ରୂପିଣୀ ।
ମାୟାଲୋକ—ଗ୍ରା.(ବାଲେ)ବି.ମାଇକିନିଆ, ସ୍ତ୍ରୀଲୋକ, ସ୍ତ୍ରୀମାନେ ।
ମାୟାବଚନ—କ୍ଳୀ. ବି. ଛଳବାକ୍ୟ ।
ମାୟାବତୀ—ସ୍ତ୍ରୀ.ବି.(ମାୟା + ବତ୍ + ଈ) କାମଦେବଙ୍କ ପତ୍ନୀ, ରତି, ବିଦ୍ୟାଧରୀ-ବିଶେଷ, ବୁଦ୍ଧଦେବଙ୍କ ମାତା, ମାୟା-ଦେଖ, (ବିଂ) ମହତ୍ତ୍ୱଯୁକ୍ତା,ସ୍ନେହଶୀଳା, ମାୟାବିନୀ, କୁହୁକିନୀ ।
ମାୟାବଦ୍ଧ—ବିଂ. (ଓତତ୍) ମାୟା ପାଶରେ ଆବଦ୍ଧ ।
ମାୟାବଳ—ବି. (ଷତତ୍) ମାୟାର ଶକ୍ତି, ମାୟାର ପ୍ରଭାବ ।
ମାୟାବଶ—ପୁଂ.ବିଂ. (ଷତତ୍) ମାୟାର ଅଧୀନ, (ସ୍ତ୍ରୀ) ମାୟାବଶା ।
ମାୟାବସାନ—ବି. (ଷତତ୍) ମାୟା ବା ଅଜ୍ଞାନର ବିନାଶ ।
ମାୟାବସିକ—ପୁଂ. ବିଂ. (ମାୟା + ଅବ + ସୋ + ଇକ) ପର ପ୍ରତାରକ,ପ୍ରବ-ଞ୍ଚକ, (ସ୍ତ୍ରୀ) ମାୟାବସିକା ।
ମାୟାବାଦ—ବି. ମାୟା ବିଷୟକ କଥନ, ବୌଦ୍ଧଧର୍ମ ମତବାଦ ।
ମାୟାବାଦୀ—ପୁଂ. ବିଂ. (ମାୟାବାଦ + ଇନ୍)ମାୟାବାଦର ବିଶ୍ୱାସକାରୀ(ବ୍ୟକ୍ତି), ବୌଦ୍ଧମତାବଲମ୍ବୀ, (ସ୍ତ୍ରୀ) ବାଦିନୀ ।
ମାୟାବାନ୍—ପୁଂ. ବିଂ. (ମାୟା + ବତ୍ ) କପଟାଚାରୀ, ମାୟାବୀ, ମହାବିଷ୍ଟ, କୁହୁକିଆ, (ସ୍ତ୍ରୀ) ମାୟାବତୀ ।
ମାୟାବିଦ୍—ପୁଂ.ବିଂ. (ମାୟା + ବିଦ୍ + କ୍ୱିପ୍) ମାୟାବୀ‌ନ୍ ଦେଖ ।
ମାୟାବିଦ୍ୟା—ବି.କୁହୁକବିଦ୍ୟା, ଇନ୍ଦ୍ରଜାଲ
ମାୟାବିନୀ—ସ୍ତ୍ରୀ. ବିଂ. (ମାୟାବିନ୍ + ଈ) ମାୟାବୀର ସ୍ତ୍ରୀଲିଙ୍ଗ, ମାୟାଯୁକ୍ତା,କୁହୁକିନୀ, (ବି) ଡାକିନୀ ।
ମାୟାବୀ—ପୁଂ. ବିଂ. ( ମାୟା + ବିନ୍ ) ମାୟାକର, କପଟାଚାରୀ, ମିଥ୍ୟା,ଅବାସ୍ତବ, ଐନ୍ଦ୍ରଜାଲିକ, (ବି) ବିଡାଲ, ମୋହନ ଶକ୍ତିଯୁକ୍ତ ପରମାତ୍ମା, ମାଜୁଫଳ, ଦୁନ୍ଦୁଭି ଅସୁରର ଜ୍ୟେଷ୍ଠପୁତ୍ର, (ସ୍ତ୍ରୀ) ମାୟାବିନୀ । [ ମନ୍ତ୍ରବୀଜ ।
ମାୟାବୀଜ—ବି. ହ୍ରୀଂ ନାମକ ତାନ୍ତ୍ରିକ
ମାୟାବୃତ—ବିଂ. (ଓତତ୍) ମାୟାଗ୍ରସ୍ତ ।
ମାୟାବେଶ—ବି. (କ.ଧା) ମାୟାଦ୍ୱାରା ରଚିତ ବେଶ, ଛଦ୍ମବେଶ ।
ମାୟାସଂସାର—ବି. (କ.ଧା) ମାୟାଦ୍ୱାରା କଳ୍ପିତ ସୃଷ୍ଟି ।
ମାୟାସାଗର—ବି. (ରୂ-କ.ଧା) ସମୁଦ୍ର-ପରି ମହା ଗଭୀର ବା ଦୁସ୍ତର ମାୟା ।
ମାୟାସୀତା—ସ୍ତ୍ରୀ. ବି.ଯୋଗ ଦ୍ୱାରା ଅଗ୍ନି-କୃତ ସୀତାଦେବୀଙ୍କର ପ୍ରତିକୃତି ।
ମାୟାସୁତ—ପୁଂ. ବି. (ଷତତ୍)ବୁଦ୍ଧଦେବ
ମାୟାସ୍ତ୍ର—ବି. ଏକ କଳ୍ପିତ ଅସ୍ତ୍ର, ଯାହାର ପ୍ରୟୋଗ ବିଶ୍ୱାମିତ୍ର ରାମଚନ୍ଦ୍ରଙ୍କୁ ଶିଖାଇ ଥିଲେ ।
ମାୟିକ—ବି. (ମାୟା + ଇକ) ମାଜୁଫଳ, (ବିଂ) ମାୟାରେ ରଚିତ, କାଳ୍ପନିକ, ମାୟାକାର, ଐନ୍ଦ୍ରଜାଲିକ, ମାୟାବିଶିଷ୍ଟ, (ସ୍ତ୍ରୀ) ମାୟିକା ।
ମାୟୀ—ପୁଂ. ବିଂ.(ମାୟା + ଇନ୍)ମାୟାବୀ ଦେଖ, (ବି) ବାଜିଗର, ଅଗ୍ନି, ଶିବ, ବ୍ରହ୍ମା, କାମଦେବ, ଶଠଲୋକ,କୁହୁକ, (ଗ୍ରା.ସ୍ତ୍ରୀ.ବି.) ନାରୀ, ସ୍ତ୍ରୀ, ଦେଖ ।
ମାୟୁ—ପୁଂ. ବି. ( ମା + କ.ଉ ) ଶବ୍ଦ, ବାକ୍ୟ, ଶରୀରସ୍ଥ ଧାତୁବିଶେଷ, ପିତ୍ତ ଧାତୁ, ସୂର୍ଯ୍ୟ ।
ମାୟୁକ—ବିଂ. ଶବ୍ଦକାରୀ ।
ମାୟୁରାଜ—ପୁଂ. ବି. କୁବେରଙ୍କର ପୁତ୍ର, ଜନୈକ କବି ।
ମାୟୂର—ବିଂ. (ମୟୂର + ଅ)ମୟୂର ସମ୍ବନ୍ଧୀୟ,ମୟୂର ଦ୍ୱାରା ଟଣା ଯିବା(ରଥ), ମୟୂର ପକ୍ଷନିର୍ମିତ ।
ମାୟୂରିକ—ପୁଂ.ବି.ଯେ ମୟୂର ଧରେ ବା ମାରେ, ମୟୂରଶିକାରୀ ।
ମାୟୂରୀ—ସ୍ତ୍ରୀ. ବି. କାକୋଦୁମ୍ବରିକା ।
ମାୟୂରିକ—ପୁଂ. ବିଂ. ଯେ ମୟୂର ଧରି ବିକ୍ରୟ କରେ ।
ମାୟୂରୀ—ସ୍ତ୍ରୀ. ବି. (ମାୟୂର + ଈ)ଅଜ-ମୋଦା, ବନଯୁଆଣୀ । [ କାତ ।
ମାୟେୟ—ବିଂ. (ମାୟା + ଏୟ) ମାୟା-
ମାୟୋଭବ—ବି. ଶୁଭ, ସୌଭାଗ୍ୟ ।
ମାର୍—ଗ୍ରା. ଅବ୍ୟ. ଭର୍ତ୍ସନା ଓ ଘୃଣା-ସୂଚକ ଶବ୍ଦ, ଦୂର୍, ଛି ।
ମାର୍କିନ—ଯା.ବିଂ. ଆମେରିକାଦେଶୀୟ, ଆମେରିକାର ଅଧିବାସୀ, ଆମେରିକା ଦେଶଜାତ, (ବି) ଏକପ୍ରକାର ଲୁଗାର ଥାନ ।
ମାର୍ଖୋର୍—ଯା. ବି. କାଶ୍ମୀର ଓ ଆଫ-ଗାନସ୍ଥାନର ଏକପ୍ରକାର ବଡ ମେଣ୍ଢା ।
ମାର୍ତ୍ତୁଲ୍—ଯା.ବି.ଲୁହାର ବଡ ହାତୁଡ଼ି
ମାର୍ଧର୍—ଗ୍ରା. ବି. ପ୍ରହାର,ଟଣାଓଟରା ।
ମାର୍ପିଟ୍—ଗ୍ରା. ବି. ବିଶେଷ ପ୍ରହାର, ଅନ୍ୟୋନ୍ୟରେ ମରାମରି, ମାଡପିଟ୍ ।
ମାର୍ଫତ୍—ଯା. ଅବ୍ୟ. ଜରିଆରେ, ଜିମା, ସଙ୍ଗେ, ଦ୍ୱାରା, ନିକଟ ।
ମାର୍ଫତ୍‌ଦାର—ଯା. ବି. ଜିମାଦାର, କୌଣସି ବସ୍ତୁ ସୁରକ୍ଷିତ ହେବା ପାଇଁ ଯାହା ଜିମାରେ ଥାଏ, ଦେବୋତ୍ତର ବା ସାଧାରଣ ସମ୍ପତ୍ତି ପରିଚାଳନାର୍ଥ ନିଯୁକ୍ତ ବ୍ୟକ୍ତି ।
ମାର୍ବେଲ୍—ଯା. ବି. ଶଙ୍ଖମର୍ମରପ୍ରସ୍ତର କାଚ ବା ପଥରର କ୍ରୀଡ଼ନକ ଗୋଟାଇ, ଏକପ୍ରକାର ରଙ୍ଗିନ୍ କାଗଜ ।
ମାର୍ବାର୍—ବି. ରାଜପୁତନା ଅନ୍ତର୍ଗତ ଗୋଟିଏ ସାମନ୍ତ ରାଜ୍ୟ,ମେବାରଦେଶ ।
ମାର୍ବାଡ଼ି(ରି)—ଗ୍ରା.ବିଂ. ମାରବାରବାସୀ, (ବି) ବଣିକ୍ ସମ୍ପ୍ରଦାୟ, ମାରୁଆଡ଼ି ।
ମାର—ପୁଂ. ବି. (ମୃ + ଘ.ଅ) ମୃତ୍ୟୁ,

(ମୃ + ଣିଚ୍ + କ.ଅ)କାମଦେବ,ଧୁସ୍ତୁର ବୃକ୍ଷ, (ଭା.ଅ) ବାଧା,ବିଘ୍ନ; ବଧ,ମାରଣ, ପ୍ରେମ, ପ୍ରଣୟ ।

ମାରକ—ପୁଂ. ବି. ( ମୃ+ଣିଚ୍+କ. ଅକ) ମରକ,ମହାମାରୀ,ଉତ୍ପାତ,ଛଞ୍ଚାଣ-ପକ୍ଷୀ, ମୃତ୍ୟୁକାରକ ଗ୍ରହ, କାମଦେବ, (ବିଂ)ମାରଣକର୍ତ୍ତା,ହତ୍ୟାକାରୀ,ଘାତକ, ବିନାଶକ, (ସ୍ତ୍ରୀ) ମାରିକା ।

ମାରକଗ୍ରହ—ବି. ନିଧନାଧିପତିଗ୍ରହ,ମନୁ-ଷ୍ୟର ମୃତ୍ୟୁକାରକ ଗ୍ରହ ।

ମାରକଣ୍ଡ—ଗ୍ରା. ବି. ମାର୍କଣ୍ଡ ଦେଖ ।

ମାରକତ—ବିଂ(ମରକତ+ଅ)ମରକତ-ମଣିନିର୍ମିତ, ମରକତମଣିସମ୍ବନ୍ଧୀୟ, (ସ୍ତ୍ରୀ) ମାରକତୀ ।

ମାରକଦଶା—ବି. ଯେଉଁ ଗ୍ରହଦଶାରେ ମନୁଷ୍ୟର ମୃତ୍ୟୁ ଘଟେ ।

ମାରକମା—ଗ୍ରା. ବି. ଦେବୀବିଶେଷ ।

ମାରକାଧିପ—ପୁଂ. ବି. ନିଧନାଧିପତି, ମନୁଷ୍ୟର ଜାତକରେ ମୃତ୍ୟୁ ଘଟାଇବା ଗ୍ରହ ।

ମାରକାୟିକ—ବିଂ.ବୌଦ୍ଧମତରେ ମାରର ଅନୁଚରବର୍ଗ ।

ମାରକୁଣ୍ଡି—ଗ୍ରା. ବି. ବିବାହାର୍ଥୀ ବର କନ୍ୟା ଗୃହକୁ ଯାତ୍ରା କରିବା ସମୟରେ ତାହା ସଙ୍ଗେ ପାଲିଙ୍କିରେ ବସିଥିବା ବାଳକ ।

ମାରକୁଣ୍ଡିଆ—ଗ୍ରା.ପୁଂ.ବିଂ.ଦୁଷ୍ଟ, ମାରଣା ।

ମାରକୁଣ୍ଡୀ—ଗ୍ରା.ସ୍ତ୍ରୀ.ବିଂ. ଦୁଷ୍ଟା(ବାଳିକା)

ମାରଙ୍ଗା—ସ୍ତ୍ରୀ. ବି. ମେଦା ।

ମାରଜିତ୍—ପୁଂ.ବି (ମାର+ଜି+କ୍ୱିପ୍) ଶିବ, ବୁଦ୍ଧ, (ବିଂ) କନ୍ଦର୍ପବିଜେତା ।

ମାରଣ—କ୍ଲୀ.ବି. (ମୃ + ଣିଚ୍ + ଭା.ଅନ) ହନନ, ବଧ, ଅଭିଚାରବିଶେଷ, ଆକ୍ର-ମଣ, ଅତ୍ୟାଚାର, ସ୍ୱର୍ଣ୍ଣାଦିକୁ ଭସ୍ମରେ ପରିଣତ କରିବା ପ୍ରକ୍ରିୟା,ବିଷବିଶେଷ ।

ମାରଣରସ—ଗ୍ରା.ବି.ରସ ବା ଧାତୁଆଦିର ଭସ୍ମୀକରଣ, କ୍ଷାରରସ ।

ମାରଣା—ଗ୍ରା. ବିଂ. (ପଶୁ) ଯେ ମାରେ, ଯେ ବିନ୍ଧେ, ଘାତକ, (ବି)ଖଣ୍ଡା, ଦସ୍ୟୁ, ଡକାଏତ, ଡାକୁ ।

ମାର(ରୁ)ଣି—ଗ୍ରା.ବି.ମାରଣ,ହତ୍ୟା,ବଧ ।

ମାରଣ୍ଡ—ବି. ସର୍ପାଣ୍ଡ, ପଥ, ଗୋମୟ-ମଣ୍ଡଳ, ଗୋବରଲିପା ସ୍ଥାନ ।

ମାରଦାଲଇ—ଗ୍ରା.ବି.ଲଇହେବା ଯୋଗ୍ୟ ଏକପ୍ରକାର ଲତା ।

ମାରଲ—ପ୍ରା.(ଭଦ୍ରୀ ଭାଷା) ପ୍ରହାରକର ।

ମାରବ—ବି. ମରୁଦେବତା ।

ମାରବାଡ଼ିବ୍ରାହ୍ମଣ—ଗ୍ରା.ବି.ମହାରାଷ୍ଟ୍ରବାସୀ ଏକଶ୍ରେଣୀରର ବ୍ରାହ୍ମଣ ।

ମାରି—ଗ୍ରା.ବିଂ. ନଷ୍ଟ, ସ୍ପର୍ଶଦୂଷିତ, ମାରୁ. ବୃଥାରେ ଯାପିତ (ସମୟ),ବି. କ୍ଷତି, ଲୋକସାନ, ଋତୁମତୀ ହେବା ଯୋଗୁଁ ଅସ୍ପୃଶ୍ୟ (ସ୍ତ୍ରୀ) ।

ମାରିକରିବା—ଗ୍ରା.କ୍ରି.କୌଣସି ଶୁଦ୍ଧବସ୍ତୁକୁ ସ୍ପର୍ଶ ବା ଭୋଜନ କରିବା ଦ୍ୱାରା ଦୂଷିତ କରିବା,କୌଣସି କାର୍ଯ୍ୟକୁ ନଷ୍ଟକରିବା, କ୍ଷତିଗ୍ରସ୍ତ କରାଇବା ।

ମାରିଗ—ଗ୍ରା. ବି. ମରକତମଣି, (ବିଂ) ମରକତ ମଣିର ବର୍ଣ୍ଣବିଶିଷ୍ଟ ।

ମାରାତ୍ମକ—ବିଂ. (ମାର+ଆତ୍ମନ୍+କ) ହିଂସ୍ର,ଖଳସ୍ୱଭାବ,ଘାତକ,ପ୍ରାଣନାଶକ. ଯାହା ମୃତ୍ୟୁଘଟାଏ,(ସ୍ତ୍ରୀ)ମାରାତ୍ମିକା ।

ମାରିପଡ଼ିବା—ଗ୍ରା. କ୍ରି. (ସ୍ୱାଭାବିକରୂପେ) ମରିବା, ନିହତହେବା, କୌଣସି ବସ୍ତୁ କାର୍ଯ୍ୟର ଅନୁପଯୁକ୍ତ ହେବା ।

ମାରାଭିଭୂ—ପୁଂ. ବି. ( ମାର+ଅଭି+ଭୂ + କ୍ୱିପ୍) ବୁଦ୍ଧଦେବ, ମାରଜିତ୍ ।

ମାରିହେବା—ଗ୍ରା.କ୍ରି.ଅସ୍ପୃଶ୍ୟ ବା ଅପବିତ୍ର ବା ଦୂଷିତ ହେବା, (ସମୟ ବା ଧନ) କ୍ଷତିହେବା ।

ମାରି—ସ୍ତ୍ରୀ. ବି. ( ମୃ+ଣିଚ୍+ଭା.ଇ ) ମାରଣ,ବଧ,ଜନକ୍ଷୟ,ମରକ,ମହାମାରୀ ।

ମାରିଆଣିବା—ଗ୍ରା. କ୍ରି. କୌଣସି ଜୀବକୁ ବଧ କରି ଗୃହକୁ ଆଣିବା, ଠକିକରି ହସ୍ତଗତ କରିବା ।

ମାରିଗୋଡ଼ାଇବା—ଗ୍ରା.କ୍ରି. ପ୍ରହାର କରି-ବାକୁ ଆକ୍ରମଣ ବା ପଶ୍ଚାଦ୍ଧାବନ କରିବା, (ଲ.ଅର୍ଥ) ଭୟ ଦେଖାଇବା, ଘାଇ-ଗୋଡ଼ାଇବା ।

ମାରିଚକ—ବିଂ. (ମରିଚ+ଇକ) ମରିଚ ଦ୍ୱାରା ସଂସ୍କୃତ, ମରିଚମିଶ୍ରିତ ।

ମାରିତ—ପୁଂ.ବିଂ. (ମୃ+ଣିଚ୍+ମଁ.ତ) ଆହତ, ବିନାଶିତ, ନଷ୍ଟୀକୃତ, ଭସ୍ମୀ-କୃତ, ଜାରିତ ।

ମାରିନେବା—ଗ୍ରା.କ୍ରି. ବଳ ବା କୌଶଳ-ପୂର୍ବକ ଯେନତେବା ବା ଛଡ଼ାଇ ନେବା ।

ମାରିପକା(କେ)ଇବା—ଗ୍ରା. କ୍ରି ହତ୍ୟା-କରିବା, ବଧକରିବା, ଖାଦ୍ୟ ଓ ଯତ୍ନ ଅଭାବରୁ (କୌଣସି ଜୀବକୁ) ଶୁଖାଇ ମରଣାପନ୍ନ କରିବା, (ଧ୍ୱସାଇ ଧ୍ୱସାଇ ବା କନ୍ଦାଇ କନ୍ଦାଇ) ବେଦମ୍‌କରିବା ।

ମାରିମିଶିବା—ଗ୍ରା.କ୍ରି. କୌଣସି ବ୍ୟକ୍ତିକୁ ମାଡ଼ ମାରିବା ପାଇଁ ଆକ୍ରମଣ କରିବା ବା ଉଦ୍ୟତ ହେବା ।

ମାରିବା—ଗ୍ରା. କ୍ରି. ହତ୍ୟାକରିବା, ପ୍ରାଣ-ନାଶ କରିବା, ଆଘାତକରିବା, ଲେପ କରିବା, କୀଲାଆଦି ବାଡ଼େଇ ପ୍ରବିଷ୍ଟ କରାଇବା,ଗ୍ରୁପାଆଦି ସଂଲଗ୍ନକରାଇବା, ତାପଆଦି ଦ୍ୱାରା ଜଳୀୟାଂଶକୁ ନିଃଶେ-ଷିତ କରିବା,ଶୁଖାଇବା,ହରଣକରିବା, ଆତ୍ମସାତ୍‌କରିବା; ବାଣ ବନ୍ଧୁକାଦି ଫୁଟାଇବା,ନିକ୍ଷେପକରିବା,ପିନ୍ଧାଲୁଗାର କୁଞ୍ଚଆଦିକୁ ଖୋସିବା, ବାଜିମାରିବା, (ଦିଆସିଲିଇ)ଅଗ୍ନିଉତ୍ପାଦନାର୍ଥ ଘଷିବା, ଡ଼ିଆଁଆଦି କୌଣସି କାର୍ଯ୍ୟ ସମ୍ପାଦନ-କରିବା, (ସକର୍ମକ) ଉଚ୍ଚୈଃସ୍ୱରରେ ଉଚ୍ଚାରଣ କରିବା, ଚଞ୍ଚଳ ବା ପେଟୁ ଭାବରେ ଖାଇବା, ପ୍ରବୃତ୍ତିକୁ ନିରୁଦ୍ଧ କରିବା, ଦେହରେ ବୋଳିବା, ପେଟ-ଆଦିକୁ ପୀଡ଼ାଯୁକ୍ତ କରିବା, ଲୁଣଆଦି ପ୍ରସ୍ତୁତ କରିବା, ପତାକାଦି ପୋତି ଠିଆ କରିବା, ବେଗପୂର୍ବକ କୌଣସି ସ୍ଥାନରୁ ଗତିକରିବା, କାଳକ୍ଷେପଣ କରିବା, କାଉଁଶଆଦିର ଗଣ୍ଠିକୁ ହାଣିବା, ଅଙ୍କିତ କରିବା, ରନ୍ଧାଆଦି ଯନ୍ତ୍ରକୁ ସ୍ଥଳିତ-କରିବା,ଅଣ୍ଟାଆଦିରେ ଖୋସିବା,ଧାତୁ-ଆଦିକୁ ମାରଣ କରିବା, ( ବିଜୁଳି )

ପ୍ରକଟିତ ହେବା, କାଟିବା, ବାଧିବା, ଲେଖା ଉପରେ ଗାର ପକାଇବା, (ମନକୁ) ବିରସ କରିବା, (କଣ୍ଠ)ଉପଶାନ୍ତ କରିବା, (ଜାତି) ନଷ୍ଟ କରିବା, ଆଖି ଦ୍ୱାରା ଇଙ୍ଗିତକରିବା, ଲେଖିବା ।

ମାରିବାତାରିବା—ଗ୍ରା. କ୍ରି. ସର୍ବନାଶ ଘଟାଇବା ଓ ରକ୍ଷା କରିବା ।

ମାରିବାଧରିବା—ଗ୍ରା.କ୍ରି.ମାର୍‌ପିଟ୍‌କରିବା, ମାରଧରକରିବା, ପ୍ରହାରକରିବା ।

ମାରିବ୍ୟସନବାରକ—ପୁଂ. ବି. ରାଜର୍ଷିବିଶେଷ ।

ମାରିଷ—ବି.(ମା+ରିଷ୍+ଅ) ନାଟ୍ୟୋକ୍ତିରେ ମାନ୍ୟବ୍ୟକ୍ତି, ଲେଉଟିଆ ଶାଗ, ଖଡ଼ା ଶାଗ ।

ମାରିଷା—ସ୍ତ୍ରୀ.ବି. (ମାରିଷ+ଆ) ଦକ୍ଷଙ୍କ ମାତା, ଦେବର୍ଷୀଙ୍କ ପତ୍ନୀ ।

ମାରି—ପୁଂ. ବିଂ. ଘାତକ, ହତ୍ୟାକାରୀ, ମୃତ୍ୟୁମୁଖରେ ପ୍ରବେଶକାରୀ,(ସ୍ତ୍ରୀ.ବି.ମାର+ଇ) ଚଣ୍ଡୀ, ଜନକ୍ଷୟ, ମାର,ମଡ଼କ, ମାହେଶ୍ୱରୀ ଶକ୍ତି ।

ମାରିଚ—ପୁଂ.ବି. (ମରିଚ+ଅ) ରାକ୍ଷସବିଶେଷ, କଶ୍ୟପ, କକ୍କୋଲକ, ଯାଜକ ବ୍ରାହ୍ମଣ, ରାଜହସ୍ତୀ, ପାଟହାତୀ, ମାରିଚ ବନ, ଗୋଲମରିଚ ଗଛ, (ବିଂ)ମରିଚସମ୍ବନ୍ଧୀୟ ।

ମାରିଚପତ୍ରକ—ବି. ସରଳବୃକ୍ଷ ।

ମାରିଚପତ୍ରିକା—ବି. ସରଳ ଦେବଦାରୁ, ସର୍ଜତରୁ । [ ଚନ୍ଦ୍ର ।

ମାରିତମାରି—ଗ୍ରା.ବି.ମାରିଚହନ୍ତା, ରାମ ।

ମାରିଚବଲ୍ଲୀ—ବି. ମାରିଚବୃକ୍ଷ ।

ମାରିଚୀ—ସ୍ତ୍ରୀ.ବି.ଦେବତାବିଶେଷ, ବଜ୍ରକାଳିକା ବା ବଜ୍ରବାରାହୀ, ଗୌରୀ ।

ମାରିଚ୍ୟ—ପୁଂ.ବି.ଅଗ୍ନିଷ୍ୱାତ୍ତ, ପିତୃବିଶେଷ

ମାରିଭୟ—ବି. (୬ତତ୍) ମଡ଼କ, ମହାମାରୀ,ମଡ଼କ ସମୟରେ ଜାତହେବା ଭୟ

ମାରିମୃତ--ବିଂ.ଯେ ମହାମାରୀରେ ମରେ ।

ମାରୀୟ—ବିଂ.(ମାର+ଈୟ)କାମଦେବସମ୍ବନ୍ଧୀୟ ।

ମାରୁ—ବି.(ମୃ+ଣିଚ୍+ଭା,ଉ) ହତ୍ୟା, ମାରଣ, ବଧ, ବିନାଶ, (କ.ଉ) ମହାମାରୀ, (ଭା.ଉ) ଆଘାତ, ପ୍ରହାର, (ଗ୍ରା. ବି) ଘାତୁକ ବ୍ୟକ୍ତି, ଅପବିତ୍ର ଅବସ୍ଥା, ସ୍ତ୍ରୀ ଋତୁକାଳୀନ ଅସ୍ପୃଶ୍ୟ ଅବସ୍ଥା,(ପୁଂ. ବିଂ) ଘାତୁକ, ନଷ୍ଟ, ଦୂଷିତ,ଅପବିତ୍ରୀକୃତ, (ସ୍ତ୍ରୀ.ବିଂ) ଋତୁମତୀ, ରଜସ୍ୱଳା (ସ୍ତ୍ରୀ), ମନ୍ଦ, ଅକର୍ମଣ୍ୟ, ନିକୃଷ୍ଟ,(ପ୍ରା.ଉ: ବାଲେ. ବି) ମାଡ଼ ।

ମାରୁକ—ବିଂ. ମୃତ୍ୟୁମୁଖୀ, ମୁମୂର୍ଷୁ ।

ମାରୁଣି-ଗ୍ରା.ବି.ମାରଣ,ବଧ,ହନନ,ହତ୍ୟା

ମାରୁଣ୍ଡ—ବି.ସର୍ପାଣ୍ଡ,ପନ୍ଥା,ଗୋମୟରାଶି ।

ମାରୁତ—ପୁଂ. ବି. (ମରୁତ+ଅ) ବାୟୁ, ଅଣରୁଣପବନ, ଦକ୍ଷିଣସ୍ଥ ଜନପଦବିଶେଷ, ଅଗ୍ନିବିଶେଷ ।

ମାରୁତମୟ—ବିଂ. ବାୟୁମୟ ।

ମାରୁତବ୍ରତ—ବି. ରାଜଧର୍ମବିଶେଷ ।

ମାରୁତସୂନୁ—ପୁଂ. ବି. (୬ତତ୍) ବାୟୁପୁତ୍ର ହନୁମାନ୍, ଭୀମ ।

ମାରୁତାତ୍ମଜ—ପୁଂ. ବି. (୬ତତ୍) ହନୁମାନ୍, ଭୀମ ।

ମାରୁତାପହ—ପୁଂ.ବି.(ମାରୁତ+ଅପ+ହନ୍+ଅ)ବରୁଣବୃକ୍ଷ,ବିଂ.ବାୟୁନାଶକ ।

ମାରୁତାଶନ—ପୁଂ.ବି. ସର୍ପ,ପବନାଶନ, କାର୍ତ୍ତିକେୟ, ସୈନ୍ଧବିଶେଷ, (ବିଂ-ବ.ବ୍ରୀ) ଯେ ପବନ ଖାଇ ବଞ୍ଚେ ।

ମାରୁତାଶ୍ୱ—ବିଂ.ବାୟୁସଦୃଶ ବେଗଗାମୀ ଅଶ୍ୱଯୁକ୍ତ ।

ମାରୁତି—ପୁଂ. ବି. (ମରୁତ+ଇ) ହନୁମାନ୍, ଭୀମ, ଗର୍ଭ ବା ଭ୍ରୂଣ ।

ମାରୁବାର—କ୍ଲୀ. ବି. ମାରବାର ଦେଖ ।

ମାରେଦ୍ୟମ—ଗ୍ରା. ବି. କାମଚେଷ୍ଟା ।

ମାର୍କ—ବି. ଭୃଙ୍ଗରାଜ, (ଯା.ବି) ଗ୍ରୁନ୍ଦ ପାଇଥିବା ନମ୍ବର, ବିଭିନ୍ନତାଜ୍ଞାପକ ଚିହ୍ନ । [ ଛାୟ, ମର୍କଟବାନ୍ ।

ମାର୍କଟ—ବିଂ. (ମର୍କଟ+ଅ) ମର୍କଟ ସମ୍ବ-

ମାର୍କଟପିପୀଲିକା—ସ୍ତ୍ରୀ. ବି. କ୍ଷୁଦ୍ରକାୟ କଳାପିମ୍ପୁଡ଼ି । [ ଅପାମାର୍ଗ ।

ମାର୍କଟପିପ୍ପଳୀ—ସ୍ତ୍ରୀ. ବି. କପିପିପ୍ପଳୀ,

ମାର୍କଣ୍ଡ—ପୁଂ. ବି. (ମୃକଣ୍ଡୁ+ଅ) ମାର୍କଣ୍ଡେୟମୁନି,ମୃକଣ୍ଡୁମୁନିଙ୍କ ପୁତ୍ର,କଳ୍ପାନ୍ତ ଜୀବୀ ମୁନି ।

ମାର୍କଣ୍ଡଦାସ—ଗ୍ରା. ବି. ଉତ୍କଳୀୟ ପ୍ରସିଦ୍ଧ କବିବିଶେଷ ।

ମାର୍କଣ୍ଡେୟ—ପୁଂ. ବି, (ମୃକଣ୍ଡୁ+ଏୟ) ମୃକଣ୍ଡୁ ମୁନିଙ୍କ ପୁତ୍ର, ପୁରାଣବିଶେଷ, ଶ୍ରୀକ୍ଷେତ୍ରସ୍ଥ ଗୋଟିଏ ତୀର୍ଥପୁଷ୍କରିଣୀ ।

ମାର୍କଣ୍ଡେୟାବଟ—ବି. (ମାର୍କଣ୍ଡେୟ+ଅବଟ) ମାର୍କଣ୍ଡେୟ ନାମକ ପୁରୁଷୋତ୍ତମ କ୍ଷେତ୍ରର ତୀର୍ଥଜଳାଶୟ ।

ମାର୍କଣ୍ଡେଶ୍ୱର—ବି. ମାର୍କଣ୍ଡେୟ ପୁଷ୍କରିଣୀ କୂଳରେ ପ୍ରତିଷ୍ଠିତ ମହାଦେବ ।

ମାର୍କଣ୍ଡେଶ୍ୱରଆଉଣ୍ଡାରି—ଗ୍ରା. ବି.(ଲ.-ଅର୍ଥ) ଯେ ପାଞ୍ଚଜଣଙ୍କ ସେବାକୁ ଆଦରି ସମସ୍ତଙ୍କୁ ଅର୍ଦ୍ଧସେବିତ କରି ହରକତ କରେ ।

ମାର୍କର(ବ)—ବି. ଭୃଙ୍ଗରାଜ ।

ମାର୍କା—ଯା. ବି. ବିଭିନ୍ନତାଜ୍ଞାପକ ଚିହ୍ନ ବା ମୋହର, ଚିହ୍ନ, ଦାଗ, ଛାପ ।

ମାର୍କାମରା—ଗ୍ରା . ବିଂ.ଚିହ୍ନଯୁକ୍ତ,ବ୍ୟାଖ୍ୟାତ, ନିର୍ଦ୍ଧାରିତ, ବିଶିଷ୍ଟଚିହ୍ନଯୁକ୍ତ ।

ମାର୍ଗ—ତ୍ରି. (ମୃଗ+ର୍ମ.ଅ) ପନ୍ଥା, ରାସ୍ତା, ଗୁହ୍ୟ, ପାୟୁ, ମୃଗମଦ, କସ୍ତୁରୀ, (ମୃଗ+ଅ) ମାର୍ଗଶିରମାସ,ମୃଗଶିରାନକ୍ଷତ୍ର, ବିଷ୍ଣୁ, ରକ୍ତଅପାମାର୍ଗ, (ମାର୍ଗ+ଭା.ଅ) ଅନ୍ୱେଷଣ, ଗବେଷଣା,(ଲ.ଅର୍ଥ)ଆଚରିତ ପନ୍ଥା,ପ୍ରକାର,ନିର୍ଦ୍ଦିଷ୍ଟଉପାୟ,(ବିଂ) ମୃଗସମ୍ବନ୍ଧୀୟ, (ସ୍ତ୍ରୀ) ମାର୍ଗୀ ।

ମାର୍ଗକ—ବି. (ମାର୍ଗ+କ) ଅଗ୍ରହାୟଣମାସ, ମାର୍ଗଶିର୍ଷ ।

ମାର୍ଗଣ—କ୍ଲୀ. ବି. ( ମାର୍ଗ+ଭା.ଅନ ) ଅନ୍ୱେଷଣ, ଯାଚ୍ଞା, ପ୍ରାର୍ଥନା, ପ୍ରଣୟ, (ପୁଂ.ବି-ଣ.ଅନ) ଶର, ବାଣ, (ବିଂ-କ.ଅନ) ଯାଚକ, ପ୍ରାର୍ଥୀ,(ସ୍ତ୍ରୀ)ମାର୍ଗଣା ।

ମାର୍ଗଣକ—ପୁଂ. ବିଂ. ( ମାର୍ଗଣ+କ ) ଯାଚକ, ଭିକ୍ଷୁକ ।

ମାର୍ଗଣତା—ସ୍ତ୍ରୀ. ବି. ଯାଚକତା ।

ମାର୍ଗତୋରଣ—କ୍ଲୀ ବି, ରାସ୍ତା ପାର୍ଶ୍ୱରେ ସ୍ଥାପିତ ତୋରଣ ।

ମାର୍ଗଦ—ପୁଂ. ବ. (ମାର୍ଗ+ଦା+କ.ଅ) ନାଉରି, କେଉଟ । [ସୂଣୀ ।
ମାର୍ଗଦାୟିନୀ—ସ୍ତ୍ରୀ.ବ.କେଦାରସ୍ଥ ଦାକ୍ଷା-
ମାର୍ଗଦ୍ରୁମ—ପୁଂ. ବ. ରାସ୍ତାପାର୍ଶ୍ୱସ୍ଥ ବୃକ୍ଷ ।
ମାର୍ଗଧେନୁ(କ)—ବ.ଏକଯୋଜନ ପରି-ମାଣ, ୪ କୋଶ ବା ୮ ମାଇଲ ।
ମାର୍ଗପ(ତି)—ପୁଂ.ବ. (ମାର୍ଗ+ପା+ଅ) ରାଜକର୍ମଚାରୀବିଶେଷ,ରାସ୍ତାର ଭାରପ୍ରାପ୍ତ କର୍ମଚାରୀ ।
ମାର୍ଗପାଳୀ—ବ. (ମାର୍ଗ+ପାଳ+ଈ) ସ୍ତମ୍ଭ, କୁଶକାଶମୟ ସ୍ତମ୍ଭ ।
ମାର୍ଗମାଣ—ବିଂ. ପଥରେ ଧାବମାନ ।
ମାର୍ଗମିତ୍ର—ପୁଂ. ବ. ସହଯାତ୍ରୀ, ପଥର ସଙ୍ଗୀ ।
ମାର୍ଗରକ୍ଷକ—ପୁଂ. ବିଂ. ପଥରକ୍ଷକ, ପହରାବାଲା ।
ମାର୍ଗବ—ପୁଂ. ବ. ନିଷାଦ ପିତା ଓ ଆୟୋଗବୀ ମାତାଠାରୁ ଉତ୍ପନ୍ନ ବର୍ଣ୍ଣ-ସଙ୍କର ଜାତିବିଶେଷ ।
ମାର୍ଗବତୀ—ସ୍ତ୍ରୀ. ବ. ପଥିକମାନଙ୍କର ରକ୍ଷୟିତ୍ରୀ ଦେବୀଭେଦ । [ପଥରୋଧ ।
ମାର୍ଗବନ୍ଧନ—କ୍ଲୀ. ବ. (ମାର୍ଗ+ବନ୍ଧନ)
ମାର୍ଗବଶାନୁଗ(ସ୍ଥିତ)—ପୁଂ.ବିଂ.ପଥାନୁ-ବର୍ତ୍ତୀ, ପଥସ୍ଥିତ ।
ମାର୍ଗବିଦ୍ୟା—ସ୍ତ୍ରୀ. ବ. ଗୀତବାଦ୍ୟ ଓ ନୃତ୍ୟର ପ୍ରକରଣ ବିଦ୍ୟା, ପଥନିର୍ମାଣ ବିଦ୍ୟା ।
ମାର୍ଗବେୟ—ପୁଂ.ବ.ଐତରେୟ ବ୍ରାହ୍ମ-ଣୋକ୍ତ ଋଷିକୁମାରବିଶେଷ ।
ମାର୍ଗଶାଖୀ—ପୁଂ. ବ. ମାର୍ଗସ୍ଥିତ ବୃକ୍ଷ, ରାସ୍ତାପାଖରେ ଥିବା ବୃକ୍ଷ ।
ମାର୍ଗଶିର—ପୁଂ. ବ. (ମାର୍ଗଶିରା+ଅ) ଅଗ୍ରହାୟଣମାସ, ମାର୍ଗଶିରମାସ ।
ମାର୍ଗଶିରଃ—ବ.ମାର୍ଗଶୀର୍ଷ,ମାର୍ଗଶିରମାସ ।
ମାର୍ଗଶିରୀ—ସ୍ତ୍ରୀ. ବ. (ମୃଗଶିରା+ଈ) ମୃଗଶିରା ନକ୍ଷତ୍ରଯୁକ୍ତ ପୂର୍ଣ୍ଣିମା, ମାର୍ଗଶିର ପୂର୍ଣ୍ଣିମା ।
ମାର୍ଗଶୀର୍ଷ—ବ. (ମାର୍ଗଶୀର୍ଷୀ+ଅ) ଅଗ୍ର-ହାୟଣ ମାସ, ମାର୍ଗଶିର ମାସ ।

ମାର୍ଗଶୀର୍ଷକ—ବ.(ମାର୍ଗଶୀର୍ଷ+କ)ମାର୍ଗ-ଶିର ମାସ ।
ମାର୍ଗଶୀର୍ଷୀ—ସ୍ତ୍ରୀ. ବ.(ମୃଗଶୀର୍ଷ+ଅ+ଈ) ମାର୍ଗଶିରୀ ଦେଖ ।
ମାର୍ଗଶୋଧକ—ପୁଂ. ବିଂ. (ମାର୍ଗ+ଶୁଧ୍+କ.ଅକ) ପଥପରିଷ୍କାରକ, ଝାଡ଼ୁ-କରିବା(ବ୍ୟକ୍ତି) । [ସଜ୍ଜା ।
ମାର୍ଗଶୋଭା—ବ.ସମ୍ମାନପ୍ରଦର୍ଶନାର୍ଥ ପଥ-
ମାର୍ଗହର୍ମ୍ୟ—କ୍ଲୀ.ବ. ପଥସ୍ଥିତଗୃହ,ପାନ୍ଥ-ଶାଳା । [ଉପସ୍ଥିତ ।
ମାର୍ଗାଗତ—ବିଂ. (ମାର୍ଗ+ଆଗତ)ପଥରୁ
ମାର୍ଗାସ୍ତୃତ—ବିଂ. ପଥବିସ୍ତୃତ ।
ମାର୍ଗାରି—ପୁଂ. ବ. ମୃଗାଦର ଅପତ୍ୟ ।
ମାର୍ଗାବଲମ୍ବନ—ବ. (୬ତତ୍) କୌଣସି ପନ୍ଥା ଧରିବା ।
ମାର୍ଗାବଲମ୍ବୀ—ପୁଂ.ବିଂ.କୌଣସି ପନ୍ଥାର ଅନୁଧାବନକାରୀ,(ସ୍ତ୍ରୀ) ମାର୍ଗାବଲମ୍ବିନୀ ।
ମାର୍ଗିକ—ପୁଂ.ବିଂ. (ମାର୍ଗ+ଇକ)ପଥିକ, (ମୃଗ+ଇକ) ମୃଗହନ୍ତା, ଶିକାରୀ, ବ୍ୟାଧ, (ସ୍ତ୍ରୀ) ମାର୍ଗିକା ।
ମାର୍ଗିତ—ବିଂ. (ମାର୍ଗ+ତ) ଅନ୍ୱେଷିତ, ପ୍ରାର୍ଥିତ, ଅନୁଧାବିତ ।
ମାର୍ଗିତବ୍ୟ—ବିଂ. (ମାର୍ଗ+ତବ୍ୟ)ଅନ୍ୱେ-ଷଣୀୟ,ଅନ୍ୱେଷଣ କରିବାର ଯୋଗ୍ୟ ।
ମାର୍ଗୀ—ପୁଂ. ବିଂ. (ମାର୍ଗ+ଇନ୍) ମାର୍ଗ-ଗାମୀ, ପଥାବଲମ୍ବନକାରୀ, (ପୁଂ.ବ) ନେତା, ପଥପ୍ରଦର୍ଶକ,ଅଗ୍ରଗାମୀ ବ୍ୟକ୍ତି, ସଙ୍ଗୀତର ମୂର୍ଚ୍ଛନାବିଶେଷ ।
ମାର୍ଗେଶ—ପୁଂ. ବ. (ମାର୍ଗ+ଈଶ) ମାର୍ଗପ, ମାର୍ଗପତି । [ଦେଷ୍ଟା ।
ମାର୍ଗୋପଦେଶ—ପୁଂ. ବିଂ. ଉପାୟୋପ-
ମାର୍ଗ୍ୟ—ବିଂ. ମାର୍ଜନୀୟ, ଅନ୍ୱେଷଣୀୟ ।
ମାର୍ଚ୍ଚ—ଯା. ବ. ଇଂରାଜୀ ଗଣନାର ୩ୟ ମାସ, ପାଦଦ୍ୱାରା ଗତିକରିବା,ସେନା-ମାନଙ୍କ ନିୟନ୍ତ୍ରିତ ଗତି ।
ମାର୍ଚ୍ଚେଣ୍ଟ—ଯା.ବ.ବଣିକ୍ । [କରିବା ।
ମାର୍ଜ—(ଧାତୁ); ମାର୍ଜନ କରିବା, ଧ୍ୱନି-
ମାର୍ଜ—ପୁଂ. ବ. (ମାର୍ଜ୍+ଅ) ବିଷ୍ଣୁ, ରଜକ, ଧୋବା,(ଭା.ଅ)ମାର୍ଜନଦେଖ ।

ମାର୍ଜକ—ପୁଂ. ବିଂ. (ମାର୍ଜ+କ.ଅକ) ଯେ କ୍ଷମାଦିଏ, ଯେ ମାର୍ଜନା କରେ, (ପୁଂ.ବ) ରଜକ, ସମ୍ମାର୍ଜକ, ଝାଡେ଼-ଇବାବାଲା ।
ମାର୍ଜନ—କ୍ଲୀ. ବ. (ମାର୍ଜ+ଭା.ଅନ) ପ୍ରୋଞ୍ଛନାଦି ଦ୍ୱାରା ଅଙ୍ଗନିର୍ମଳୀକରଣ, ପରିଷ୍କରଣ, ସ୍ନାନବିଶେଷ, (ଣ.ଅନ) ଲୋଧ୍ରବୃକ୍ଷ, ଲୋଧଗଛ, (ଗ୍ରା.ବ) ଧନୁର ଟଙ୍କାର,ମନ୍ତ୍ରୋଚ୍ଚାରଣ ପୂର୍ବକ ଦେହକୁ ଝାଡ଼ିବା ।
ମାର୍ଜନ(ନା)କରିବା—ଗ୍ରା. କ୍ରି. ପରିଷ୍କାର କରିବା, ମାଜିବା, ପାଲିସ କରିବା, କ୍ଷମାଦେବା, ଫୁଙ୍କା ଝଡ଼ା କରିବା ।
ମାର୍ଜନା—ବ. (ମାର୍ଜନ+ଆ) ମାଜିବା, ପରିଷ୍କାରକରଣ, ପୋଛିବା,ଲଗାଇବା, ମୂରଜଧ୍ୱନି, (ଗ୍ରା.ବ) କ୍ଷମା, ଦୋଷ-କ୍ଷାଳନ, ଅଙ୍ଗୁଳି ବା କୁଶାଗ୍ର ଦ୍ୱାରା ଦେହରେ ଜଳ ଛିଞ୍ଚିବା,ବିଶୁଦ୍ଧୀକରଣ ।
ମାର୍ଜନୀ—ସ୍ତ୍ରୀ. ବ. (ମାର୍ଜନ+ଈ) ସମ୍ମା-ର୍ଜନୀ, ଓଞ୍ଚୁଣି, ଝାଡ଼ୁ, ଗାମୁଛା, ପୋଛା, (କ.ଈ) ଦୁର୍ଗାଙ୍କର ସହଚରୀ ବିଶେଷ, ସଙ୍ଗୀତର ପ୍ରଥମସ୍ୱରର ଶ୍ରୁତିଚତୁଷ୍ଟୟ ମଧ୍ୟରୁ ଅନ୍ତିମ ଶ୍ରୁତି ।
ମାର୍ଜନୀୟ—ବିଂ.(ମୃଜ୍+ମିଂ.ଅନୀୟ)ମାର୍ଜନ-ଯୋଗ୍ୟ, କ୍ଷମାର୍ହ, କ୍ଷମଣୀୟ, ଘଷିବା-ଯୋଗ୍ୟ, ପରିଷ୍କୃତ ହେବା ଯୋଗ୍ୟ, (ବ) ଅଗ୍ନି, ଶୋଧନ ।
ମାର୍ଜାର(ଲ)—ପୁଂ. ବ.(ମାର୍ଜ+କ.ଆର. ଲ) ରକ୍ତଚିତା ଗଛ, ପୂତିଶାରିବା, କଟାଶ, ବିରାଡ଼ି, ଗନ୍ଧନକୁଳ,ଶାଳଆ-ପତନ ।
ମାର୍ଜାରକ—ପୁଂ. ବ. (ମାର୍ଜାର+କ) ମୟୂର, ବିଡାଲ, (ସ୍ତ୍ରୀ) ମାର୍ଜାରିକା ।
ମାର୍ଜାରକଣ୍ଠ—ପୁଂ. ବ. (ବ.ବ୍ରୀ)ମୟୂର ।
ମାର୍ଜାରକରଣ—ବ. ରତିବନ୍ଧ ବିଶେଷ ।
ମାର୍ଜାରକର୍ଣ୍ଣିକା—ସ୍ତ୍ରୀ. ବ.ଚାମୁଣ୍ଡାଦେବୀ ।
ମାର୍ଜାରକର୍ଣ୍ଣୀ—ସ୍ତ୍ରୀ. ବ. ଚାମୁଣ୍ଡାଦେବୀ ।
ମାର୍ଜାରଗନ୍ଧା—ସ୍ତ୍ରୀ. ବ. ମୁଦ୍ଗପର୍ଣ୍ଣୀ, ବଣମୁଗ ।

ମାର୍ଜାରଗନ୍ଧିକା—ବି. ମୁଗ୍ଗପର୍ଣ୍ଣୀ,ବଣମୁଗ

ମାର୍ଜାରପାଦ—ପୁଂ. ବି. ଅଶ୍ୱ ବିଶେଷ।

ମାର୍ଜାରି—ପୁଂ.ବି. ମଗଧରାଜ ସହଦେବର ପୁତ୍ର ।

ମାର୍ଜାରୀ—ସ୍ତ୍ରୀ. ବି.(ମାର୍ଜାର + ଈ)କସ୍ତୁରୀ, ମାଈବିରାଡ଼ି, ଗନ୍ଧନାକୁଳି,ମାଈ ଖାଳିଆ-ପତନି ।

ମାର୍ଜାରୀୟ—ପୁଂ. ବି. (ମାର୍ଜାର+ଈୟ) ବିଡ଼ାଳ, ଶୂଦ୍ର, କାୟଶୋଧନ, (ବିଂ) ବିରାଡ଼ି ସମ୍ବନ୍ଧୀୟ ।

ମାର୍ଜାଲ—ପୁଂ. ବି. ମାର୍ଜାର, ବିଡ଼ାଳ ।

ମାର୍ଜାଲୀୟ--ବି ଓ ବିଂ.(ମାର୍ଜାଲ+ଈୟ) ମାର୍ଜାରୀୟ ଦେଖ, ମହାଦେବ, ଋଷି ବିଶେଷ ।

ମାର୍ଜିତ—ବିଂ. ( ମୃଜ୍+ଣିଚ୍+ର୍ମ.ତ ) ପରିଷ୍କୃତ, କ୍ଷମାପ୍ରାପ୍ତ, ଶୋଧିତ, ମଜା-ହୋଇଥିବା, ସଂସ୍କୃତ, (ସ୍ତ୍ରୀ) ମାର୍ଜିତା, (ବି) ଦଧି ଚିନି ମଧୁ ଗୋଲମରିଚ ଓ କର୍ପୂର ମିଶ୍ରିତ ଏକପ୍ରକାର ପ୍ରାଚୀନ ପେୟ ।

ମାର୍ଜିତବୁଦ୍ଧି—ବିଂ. ବି.(ବି.ଗ୍ରୀ)ତୀକ୍ଷ୍ଣବୁଦ୍ଧି-ବିଶିଷ୍ଟ, (ବି.କ.ଧା) ତୀକ୍ଷ୍ଣବୁଦ୍ଧି ।

ମାର୍ଜିତରୁଚି—ବି.(କ.ଧା)ଦୋଷହୀନରୁଚି, ବିଶୁଦ୍ଧରୁଚି, (ବିଂ)ବ.ବ୍ରୀ;ଯାହାର ରୁଚି ବିଶୁଦ୍ଧ ଅଟେ ।

ମାର୍ଜିତସମାଜ—ଗ୍ରା. ବି. ସଭ୍ୟସମାଜ, ସଂସ୍କୃତ ସମାଜ, ଯେଉଁ ସମାଜରେ ଦେଶକାଳୋଚିତ ସଂସ୍କାରମାନ ପ୍ରବର୍ତ୍ତିତ ହୋଇଅଛି ।

ମାର୍ଜିତା—ସ୍ତ୍ରୀ. ବିଂ. ମାର୍ଜିତର ସ୍ତ୍ରୀଲିଙ୍ଗ, ନିର୍ଦ୍ଦୋଷୀକୃତା, ପରିଷ୍କୃତା, (ବି)ଶର୍କରା-ମିଶ୍ରିତ ଦଧି, ରସାଳା ।

ମାର୍ଜିନ୍—ଯା. ବି. ଲେଖା ବା ଛପା ହୋଇଥିବା କାଗଜର ପାର୍ଶ୍ୱାଂଶ,ହାସିୟା।

ମାର୍ତ୍ତଣ୍ଡ—ପୁଂ. ବି. (ମୃତାଣ୍ଡ+ଅ) ଅର୍କ ବୃକ୍ଷ, ସୂର୍ଯ୍ୟ, ଶୂକର, ଘୁଘୁରି, ଦ୍ୱାଦଶ ସଂଖ୍ୟା, ସ୍ୱର୍ଣ୍ଣମାକ୍ଷିକ ।

ମାର୍ତ୍ତଣ୍ଡତିଲକସ୍ୱାମୀ—ପୁଂ. ବି. ପ୍ରସିଦ୍ଧ ଦାର୍ଶନିକ ବାଚସ୍ପତି ମିଶ୍ରଙ୍କ ଗୁରୁ ।

ମାର୍ତ୍ତଣ୍ଡବଲ୍ଲଭା—ସ୍ତ୍ରୀ.ବି. ସୂର୍ଯ୍ୟପତ୍ନୀ,ଛାୟା, ସଂଜ୍ଞା. ଆଦିତ୍ୟଭକ୍ତା ।

ମାର୍ତ୍ତଣ୍ଡମିଶ୍ର—ବି. ପ୍ରାୟଶ୍ଚିତ୍ତମାର୍ତ୍ତଣ୍ଡ ଓ ସଂସ୍କାରମାର୍ତ୍ତଣ୍ଡ ଗ୍ରନ୍ଥର ରଚୟିତା ।

ମାର୍ତ୍ତିବସ୍ର—କ୍ଳୀ. ବି. ( ମୃତବସ୍ରା+ଅ) ମୃତବସ୍ରାର ଅପତ୍ୟ ।

ମାର୍ତ୍ତାଣ୍ଡ—ପୁଂ. ବି. ମାର୍ତ୍ତଣ୍ଡ ଦେଖ ।

ମାର୍ତ୍ତିକ—ପୁଂ. ବି. (ମୃତ୍ତିକା+ଅ) ଶରା, ଏକପ୍ରକାର ମାଠିଆ,(ବିଂ)ମୃତ୍ତିକାନିର୍ମିତ (ସ୍ତ୍ରୀ) ମାର୍ତ୍ତିକୀ ।

ମାର୍ତ୍ତ୍ୟ—ବି. (ମର୍ତ୍ତ୍ୟ+ଅ)ଦୈହିକ ଧାତୁ-ମଳ, ମରଣଶୀଳତା, ( ବିଂ ) ମର୍ତ୍ତ୍ୟ-ସମ୍ବନ୍ଧୀୟ, ମରଣଶୀଳ ।

ମାର୍ତ୍ତ୍ୟବ—ପୁଂ. ବିଂ. ମୃତ୍ୟୁ ସମ୍ବନ୍ଧୀୟ, ଅନ୍ତକର ଗୋତ୍ରାପତ୍ୟ ।

ମାର୍ତ୍ତ୍ୟଞ୍ଜୟ—ବିଂ.ମୃତ୍ୟୁଞ୍ଜୟ ସମ୍ବନ୍ଧୀୟ ।

ମାର୍ତ୍ସ୍ନ—ବିଂ. କ୍ଷୁଦ୍ର ଚୂର୍ଣ୍ଣ ।

ମାର୍ଦ୍ଦଙ୍ଗ—ବି. (ମୃଦଙ୍ଗ+ଅ) ପତ୍ତନ, ନଗର, ସହର, (ବିଂ)ମୃଦଙ୍ଗବାଦକ ।

ମାର୍ଦ୍ଦଙ୍ଗିକ—ବିଂ.(ମୃଦଙ୍ଗ + ଇକ)ମୃଦଙ୍ଗ-ବାଦକ, (ସ୍ତ୍ରୀ) ମାର୍ଦ୍ଦଙ୍ଗିକୀ,(ବି) ସହର, ନଗର ।

ମାର୍ଦ୍ଦବ—କ୍ଳୀ.ବି.(ମୃଦୁ+ଅ)ପରଦୁଃଖରେ ମାନସିକ ପୀଡ଼ା, ଅକାଠିନ୍ୟ, ମୃଦୁତା, କୋମଳତ୍ୱ, (ପୁ.ବି) ବର୍ଣ୍ଣସଙ୍କର ଜାତି-ବିଶେଷ ।

ମାର୍ଦ୍ଦବୀକୃତ—ବିଂ.ନରମ କରାଯାଇଥିବା ।

ମାର୍ଦ୍ୱୀକ—କ୍ଳୀ.ବି.(ମୃଦ୍ୱିକା+ଅ) ସୁପକ୍ୱ ଅଙ୍ଗୁରରୁ ପ୍ରସ୍ତୁତ ମଦ୍ୟ, ଦ୍ରାକ୍ଷାରୁ ପ୍ରସ୍ତୁତ ମଦ୍ୟ ।

ମାର୍ମିକ—ପୁଂ. ବିଂ. (ମର୍ମ+ଇକ)ମର୍ମଜ୍ଞ କୌଣସି ବିଷୟର ତତ୍ତ୍ୱଜ୍ଞ ।

ମାର୍ଷିକ—ବି. (ମାର୍ଷ+ଇକ) ମାରିଷଶାକ

ମାର୍ଷ୍ଟବ୍ୟ—ବିଂ. ପରିଷ୍କର୍ତ୍ତବ୍ୟ, ପରିଷ୍କାର କରିବାର ଯୋଗ୍ୟ ।

ମାର୍ଷ୍ଟି—ବି. (ମୃଜ୍+ତି) ମାର୍ଜନା ଦେଖ, ତେଲଲଗାଇବା ।

ମାଲ୍—ଯା. ବି.ପଣ୍ୟଦ୍ରବ୍ୟ,ଦ୍ରବ୍ୟ,ସମ୍ପତ୍ତି. ଉପାଦାନ, ରାଜସ୍ୱ, ମଦ୍ୟ ।

ମଲ୍‌କାନା—ଗ୍ରା. ବି ଭାରତର ଉତ୍ତର ଅଞ୍ଚଳବାସୀ ଭ୍ରଷ୍ଟାଚାରର ଯୋଗୁଁ ପତିତ ହୋଇଥିବା ହିନ୍ଦୁ ବା ରାଜପୁତ ଜାତି ।

ମାଲ୍‌ଖାନା—ଯା. ବି ଧନାଗାର,ଭଣ୍ଡାର-ଘର,ଜବତ ସର୍କାରମାଲ୍ ରଖିବା ଘର ।

ମାଲ୍‌ଖେଙ୍କାରି—ପ୍ରା. ସମ୍ଭ. ବି. କୋକି-ଶିଆଳି ।

ମାଲ—ବି. (ମା+ଲା+କ.ଅ) ଉଚ୍ଚଭୂମି, ପର୍ବତର ଉପରସ୍ଥ ସମତଳ ପ୍ରଦେଶ, କ୍ଷେତ୍ର, ବନ, କାପଟ୍ୟ, ଛଳନା,ହରି-ତାଳ, ମନୁଷ୍ୟ, ମ୍ଳେଚ୍ଛଜାତି ବିଶେଷ, ବସ୍ତ୍ର, ପ୍ରାଚୀନଦେଶ ବିଶେଷ, (ସ୍ତ୍ରୀ.ବି-ସଂ-ମାଳା)ପୁଷ୍ପାଦିର ମାଳା,ମାଲ୍ୟ, ଗଳା-ହାର, ସମୂହ, ବନ, ଅଞ୍ଚଳ, ପ୍ରଦେଶ, ଗାନ୍ଧି ମହର୍ଷିଙ୍କ ପଲ୍ଲୀ, (ପ୍ରା.ବାଲେ.ବି) ମାଛଧରିବା ଜାଲ ବିଶେଷ ।

ମାଲ—ଯା.ବି.ଅରଟର ଚକ ଓ ଟାକୁଆ ସଙ୍ଗେ ସଂଲଗ୍ନ ସୂତା, ତନ୍ତୀର ଲୁଗା-ବୁଣିବାର ଉପାୟ ତୁଳା ଓ ସୂତା, ମାଲ୍ ଦେଖ, ସୈନ୍ୟାଦ୍ୟ ଦ୍ରବ୍ୟ, ଗୃହର ଚଳନ୍ତି ଅସବାବ୍, ପଣ୍ୟଦ୍ରବ୍ୟ, (ଗ୍ରା.ବି) ମାଲ୍ଲ,ପହଲ୍‌ବାନ୍,ଯୋଦ୍ଧା,ବୀର, ପାଣି-ବାହିବାର ମାହାରି, ବନ୍ୟ ଅସଭ୍ୟ-ଜାତି ବିଶେଷ ।

ମାଲକ—ବି.(ମାଲ+କ)ନିମ୍ବବୃକ୍ଷ,ସ୍ଥଳ-ପଦ୍ମ, ତୁଳସୀ, ନାରିକେଳମାଳା,ନଡ଼ିଆ-ସରେଇ, ମାଳା, ଗ୍ରାମନିକଟସ୍ଥ ବନ ।

ମାଲକଚ୍ଛା—ଗ୍ରା. ବି. ମାଲକାଚ୍ଛା ଦେଖ ।

ମାଲକାଚ୍ଛା—ଗ୍ରା. ବି. ପାଇକଚ୍ଛା, ପିନ୍ଧି-ଥିବା ଲୁଗାର କୁଞ୍ଚ ବା କାନିକୁ ପଛପାଖେ ନେଇ ଖୋସିବା । [ ହୋଇ ।

ମାଲକୁମାଲ—ଗ୍ରା. କ୍ରି. ବିଂ. ଢଳଢଳ

ମାଲକୁସ୍ତି—ଗ୍ରା. ବି. ମଲ୍ଲଯୁଦ୍ଧ ।

ମାଲକେଳି—ଗ୍ରା.ବି.ପିଲାମାନେ ପରସ୍ପର ହାତ ଧରାଧରି ହୋଇ ମାଳାକାରରେ ଠିଆ ହୋଇ ଖେଳିବାର ଖେଳ ।

ମାଲ(ଲ)କୌଶ-ବି.ସଙ୍ଗୀତର କୌଶିକ ରାଗ ।

ମାଲକ୍କା—ଗ୍ରା. ବି. ମାଲୟ ଉପଦ୍ୱୀପର

ଗୋଟିଏ ନଗର, ପ୍ରଶାନ୍ତ ମହାସାଗରର ଦ୍ୱୀପପୁଞ୍ଜ, ସୁମାତ୍ରା ଓ ମାଲୟ ଉପଦ୍ୱୀପ ମଧ୍ୟସ୍ଥ ପ୍ରଣାଳୀ ।
ମାଲଗାଡ଼ି—ଗ୍ରା. ବ. ଯେଉଁ ରେଳ ଗାଡ଼ିରେ ପଣ୍ୟଦ୍ରବ୍ୟମାନ ବୁହାଯାଏ ।
ମାଲଗୁଜାରି—ଯା.ବ.ରାଜସ୍ୱ, ଖଜଣା ।
ମାଲଗୁର୍ଜରୀ—ବ. ରାଗିଣୀବିଶେଷ ।
ମାଲଗୋଦାମ—ଯା. ବ. ପଣ୍ୟଦ୍ରବ୍ୟର ସଞ୍ଚୟଶାଳା । [ ଆମ୍ବ ।
ମାଲଗୋବା—ଯା.ବ. ଏକପ୍ରକାର ବଡ଼
ମାଲଚକ୍ରକ—ବ. ଫଡ଼ିଆ, ପିଗୁର ଯେଉଁ ଅଂଶ ଅଣ୍ଟା ଓ ଜଙ୍ଘ ମଧ୍ୟରେ ଅବସ୍ଥିତ ।
ମାଲଚନ୍ଦନ—ଗ୍ରା.ବ. ଦେବତାଙ୍କ ପର-ହୃତ ମାଲା ଓ ଚନ୍ଦନ ।
ମାଲଚାଲାଣ—ଯା. ବ. ପୋଲିସ ଦ୍ୱାରା ଧୃତବସ୍ତୁକୁ କୋର୍ଟକୁ ପ୍ରେରଣ, ଦ୍ରବ୍ୟ-ପ୍ରେରଣ, ପ୍ରେରିତ ଦ୍ରବ୍ୟର ତାଲିକା ।
ମାଲଚୂଳ—ଗ୍ରା. ବ. ଶ୍ରୀ ଜଗନ୍ନାଥ ମହା-ପ୍ରଭୁ ବେକରେ ପିନ୍ଧିଥିବା ମାଲା ଓ ଚୂଳରେ ପିନ୍ଧିଥିବା ପୁଷ୍ପଗୁଚ୍ଛ ।
ମାଲଜବତ(ି)—ଯା. ବ. ଧୃତଦ୍ରବ୍ୟର ଅଟକ । [ ପତନ ।
ମାଲଜାତକ—ବ.ଗନ୍ଧମାର୍ଜାର, ଖାଙ୍କଆ-
ମାଲଞ୍ଚ—ଗ୍ରା. ବ. ପୁଷ୍ପୋଦ୍ୟାନ ।
ମାଲତାଲିକା—ଯା.ବ. ପଦାର୍ଥମାନଙ୍କର ତାଲିକା ବା ଲିଷ୍ଟ । [ ବିଶେଷ ।
ମାଲତିକା—ସ୍ତ୍ରୀ. ବ. ସ୍କନ୍ଦାନୁଚର ମାତୃ-
ମାଲତୀ—ସ୍ତ୍ରୀ.ବ.(ମା+ଲତ୍+କ.ଅ+ଈ)ସ୍ୱନାମଖ୍ୟାତ ପୁଷ୍ପବିଶେଷ, କଳିକା, କଢ଼ି, ଜାତିଲତା, ଜାଇଫଳ ଗଛ, କୁମାରୀ, ଯୁବତୀ, କାଚମାଳୀ, ବିଶଲ୍ୟା, ଜ୍ୟୋତ୍ସ୍ନା, ରାତି, ଅକାଳବନ୍ଧି ଲତା, ନଦୀବିଶେଷ, ଛନ୍ଦୋବିଶେଷ ।
ମାଲତୀକ୍ଷାରକ—ବ.ଟାଙ୍କଣା, ସୋହାଗା ।
ମାଲତୀଜାତ—ବ. ଟାଙ୍କଣା, ସୋହାଗା ।
ମାଲତୀତୀରଜ—ବ.ମାଲତୀ ନଦୀର ତୀର-ଜାତ ଟାଙ୍କଣା ।
ମାଲତୀତୀରସମ୍ଭବ-କ୍ଲୀ.ବ.ଶ୍ୱେତଟାଙ୍କଣା ।
ମାଲତୀପତ୍ରିକା—ବ. ଜାତିପତ୍ରୀ, ଜାଇ-ପତ୍ରୀ, ଜାୟତ୍ରୀ ।
ମାଲତୀପୁଷ୍ପ—କ୍ଲୀ.ବ ମାଲତୀ ଫୁଲ ଜାତି-ପୁଷ୍ପ । [ ଫଳ ।
ମାଲତୀଫଳ—କ୍ଲୀ.ବ. ଜାତିଫଳ, ଜାଇ-
ମାଲତୀମାଧବ—ଗ୍ରା.ବ. କବି ଭବଭୂତି-ପ୍ରଣୀତ ସଂସ୍କୃତ ନାଟକବିଶେଷ ।
ମାଲତୀମାଲା—ବ. ମାଲତୀ ଫୁଲର ମାଲା
ମାଲତୀଲତା—ବ.ସ୍ୱନାମଖ୍ୟାତ ପୁଷ୍ପଲତା
ମାଲଦ—ବ. ଜାତିବିଶେଷ ।
ମାଲଦହ—ଗ୍ରା.ବ.ବଙ୍ଗଦେଶର ଜିଲ୍ଲା ଓ ନଗରବିଶେଷ ।
ମାଲଦାର—ଯା.ବଂ. ଧନୀ, ବଡ଼ଲୋକ ।
ମାଲଦଣ୍ଡ—ଗ୍ରା.ବ. ଗୋଟିଏ ପୋଲା ବାଉଁଶରେ ଝୁଣ୍ଟା ମାଲ ପରି ଲମ୍ବ ଓ ବହୁ ସଂଖ୍ୟକ ବର୍ତ୍ତି ଜଳୁଥିବା ମସାଲ ।
ମାଲଦେବ—ପୁଂ.ବ.ଯୋଧପୁରର ଜଣେ ପ୍ରସିଦ୍ଧ ରାଜା ।
ମାଲଦ୍ୱୀପ—ଗ୍ରା. ବ. ଭାରତ ମହାସାଗ-ରର ଅନ୍ତର୍ଗତ ସିଂହଳର ସନ୍ନିହିତ ଗୋଟିଏ ଦ୍ୱୀପପୁଞ୍ଜ ।
ମାଲପା—ଗ୍ରା.ବ. ତେଲ. ତୈଲ ।
ମାଲପୁଆ—ଗ୍ରା. ବ. ଅମାଲୁ. ମଇଦାର ପିଠଉ ସଙ୍ଗେ ଗୁଡ଼ ମିଶାଇ ଘିଅରେ ଛଣାଯିବା ପିଷ୍ଟକବିଶେଷ ।
ମାଲପ୍ରଦେଶ—ବ. ଜଙ୍ଗଲମୟ ଅଞ୍ଚଳ ।
ମାଲଭଞ୍ଜିକା—ସ୍ତ୍ରୀ.ବ. (ମାଲ+ଭଞ୍ଜ+ଇକ+ଆ) କ୍ରୀଡ଼ାବିଶେଷ ।
ମାଲଭାଇ—ଗ୍ରା. ବ. ଶବବହନ କରିବା ଜ୍ଞାତି ବା ଜାତିଭାଇ ।
ମାଲଭାରୀ—ପୁଂ. ବଂ. (ମାଲା+ଭୃ+କ. ଇନ୍) ମାଲାଧାରୀ ।
ମାଲଭୂମ(ି)—ଗ୍ରା.ବ. ପଶ୍ଚିମ ବଙ୍ଗର ପାର୍ବତ୍ୟ ଦେଶବିଶେଷ ।
ମାଲଭୂମି—ବ. ଯେଉଁ ବିଶାଳ ଭୂଭାଗ ସାଧାରଣଭୂଭାଗଅପେକ୍ଷାବେଶି ଉନ୍ନତ ।
ମାଲମତା—ଗ୍ରା.ବ. ଚଳନ୍ତ ସମ୍ପତ୍ତି,ମୂଲ୍ୟ-ବାନ୍ ଦ୍ରବ୍ୟ ।
ମାଲମସଲା—ଗ୍ରା.ବ. ଉପକରଣ ।
ମାଲାମହାପ୍ରସାଦ—ଗ୍ରା.ବ. ଦେବତାଙ୍କର ପ୍ରସାଦୀକୃତ ଫୁଲହାର ଓ ଭୋଗ, ମହା-ପ୍ରସାଦନିର୍ବନ୍ଧ ଦେଖ ।
ମାଲମାଲ—ଗ୍ରା.ବଂ. ଅସଂଖ୍ୟ, (କ୍ରି.ବଂ) ବହୁସଂଖ୍ୟାରେ, ପଞ୍ଝା ପଞ୍ଝା ହୋଇ ।
ମାଲୟ—ବ. (ମଲୟ+ଅ)ଚନ୍ଦନବୃକ୍ଷ, ଅଭିସାର ସ୍ଥ ନଗରବିଶେଷ,(ବଂ) ମଲୟ-ଜାତ ବା ସମ୍ବନ୍ଧୀୟ, (ଗ୍ରା.ବ)ବଙ୍ଗୋପ-ସାଗରର ପୂର୍ବ ଉପକୂଳସ୍ଥ ଉପଦ୍ୱୀପ ।
ମାଲୟମକ—ବ. ଶବ୍ଦାଲଙ୍କାରବିଶେଷ, (ଏହି ଅଲଙ୍କାରରେ ଏକଶବ୍ଦର ବହୁ-ବାର ସମାବେଶ ହୋଇଥାଏ ) ।
ମାଲୟାଲମ୍—ଗ୍ରା.ବ.ମାଲୟ ଦେଶୀୟ ଭାଷା
ମାଲବ—ବ. (ମାଲ+ବା+କ.ଅ)ଅବନ୍ତୀ ଦେଶ, ମଧ୍ୟ ଭାରତର ଅନ୍ତର୍ଗତ ଗୋଟିଏ ପ୍ରଦେଶ, ଅଶ୍ୱପତି ରାଜାଙ୍କର ମାଲତୀ ଗର୍ଭଜାତ ପୁତ୍ରଗଣ, ରାଗ-ବିଶେଷ ।
ମାଲବକ—ବଂ.(ମାଲବ+କ) ମାଲବ ଦେଶସମ୍ବନ୍ଧୀୟ ତଦ୍ଦେଶବାସୀ (ବ୍ୟକ୍ତି)
ମାଲବଗଉଡ଼ା—ବ.ମିଶ୍ରରାଗିଣୀବିଶେଷ ।
ମାଲବନ୍ଧ—ଗ୍ରା.ବ.ମଲ୍ଲମାନଙ୍କର କସରତ
ମାଲବଶ୍ରୀ—ବ. ରାଗିଣୀବିଶେଷ ।
ମାଲବା—ଗ୍ରା. ବ. ମାଲବ ପ୍ରଦେଶ ।
ମାଲବାର—ଗ୍ରା.ବ. ଦକ୍ଷିଣ ଭାରତବର୍ଷର ପଶ୍ଚିମ ଉପକୂଳସ୍ଥ ପ୍ରଦେଶ ।
ମାଲବିକ—ପୁଂ. ବଂ. (ମାଲବ+ଇକ) ମାଲବଦେଶୀୟ, (ସ୍ତ୍ରୀ) ମାଲବିକା ।
ମାଲବିକା—ସ୍ତ୍ରୀ. ବ. ନିଶୁତ୍ର, ତେଉଡ଼ି, ମାଲବିକାଗ୍ନିମିତ୍ର ନାଟକର ପ୍ରଧାନ ନାୟିକା ।
ମାଲବିକାଗ୍ନିମିତ୍ର-ବ.କାଳିଦାସଙ୍କ ରଚିତ ନାଟକବିଶେଷ ।
ମାଲବିଜୁଳି—ଗ୍ରା.ବ. ଚନ୍ଦ୍ରମାଲା, ମାଲା-ପରି ଝଟକୁଥିବା ବିଦ୍ୟୁତ୍ ।
ମାଲବୃଟପୀ—ପୁଂ.ବ. ଲକ୍ଷ୍ମୀବୃକ୍ଷ ।
ମାଲବନ୍ଧାଣି—ଗ୍ରା.ବ. ମଲ୍ଲଯୁଦ୍ଧ ।
ମାଲବହାର—ଗ୍ରା.ବ. ଓଡ଼ିଶାର କ୍ଷତ୍ରିୟ-ମାନଙ୍କ ବଂଶୋପାଧିବିଶେଷ ।
ମାଲଶୀ—ସ୍ତ୍ରୀ.ବ.ପାଠା,ଅକାଳବନ୍ଧି ଲତା

ଶ୍ରୀରାଗର ପତ୍ନୀ ରାଗିଣୀବିଶେଷ ।
ମାଲବୀୟ—ବି°.(ମାଲବ + ଈୟ)ମାଲବ-
ଦେଶ ସମ୍ବନ୍ଧୀୟ, ତଦ୍ଦେଶବାସୀ ।
ମାଲବୀବ୍ରାହ୍ମଣ—ବି. ଉ: ଦ: ଭାରତବାସୀ
ବ୍ରାହ୍ମଣ ଶ୍ରେଣୀର ଗୋଟିଏ ଶାଖା ।
ମାଲବ୍ୟ—ବି. ମାଲବ ରାଜପୁତ୍ର,(ଗ୍ରା.ବି)
ଉ: ପ: ପ୍ରଦେଶର ବ୍ରାହ୍ମଣମାନଙ୍କର
ବଂଶୋପାଧିବିଶେଷ ।
ମାଲଶ୍ରୀ—ଗ୍ରା.ବି.(ସଂ·ମାଲବଶ୍ରୀ) ଶ୍ରୀରାଗର
ପତ୍ନୀ ରାଗିଣୀବିଶେଷ, (ଏହା ଗାଇବାର
ସମୟ ଦିବା ୪ର୍ଥ ପ୍ରହର)।
ମାଲଶ୍ରୀଲମ୍ବାଇବା—ଗ୍ରା. କ୍ରି. କୌଣସି
କଥାକୁ ଉପର୍ଯ୍ୟୁପରି କହିବା ବା
ଘୋଷିହେବା ।
ମାଲ(ଳ)ସ୍—ଯା.ବି. ଦେହରେ ତେଲା-
ଦିର ମର୍ଦ୍ଦନ ।
ମାଲସା—ଗ୍ରା.ବି. ମାଟିର ଗଭୀର ବଡ଼
ପଲମ, ପଢ଼ୁଆ, ଉମ୍ବେଇ ।
ମାଲସୀ—ବି. କେଶପୁଷ୍ପବୃକ୍ଷ, ରାଗିଣୀ-
ବିଶେଷ, ମାଲବଶ୍ରୀ ।
ମାଳା—ସ୍ତ୍ରୀ.ବି. ( ମା + ଲା + ଅ + ଆ )
ଶ୍ରେଣୀ, ଧାଡ଼ି, ପୁଷ୍ପମାଳ', ମାଳ, ଜପ-
ମାଳ, କଣ୍ଠହାର, ବଲ୍ଲୀ, ଦୁବା, ଭୂଇଁ-
ଅଁଳା, ସମୂହ, ନଦୀବିଶେଷ ।
ମାଳାକଉପୂଜ—ଗ୍ରା.ବି. ବାବାଜୀମାନଙ୍କ
ଭେକର ଦୁଇଟି ପ୍ରଧାନ ଉପକରଣ ।
ମାଳାକଣ୍ଟ—ବି. ଅପାମାର୍ଗ ।
ମାଳାକଣ୍ଡ—ବି. ଗୁଲ୍ମବିଶେଷ ।
ମାଳାକନ୍ଦ—ବି. ମୂଳବିଶେଷ ।
ମାଳାକର—ପୁଂ. ବି. ( ମାଳା + କୃ
+ କ.ଅ) ଉଦ୍ୟାନପାଳ, ପୁଷ୍ପ ବିକ୍ରୟ-
କାରୀ ବର୍ଣ୍ଣସଙ୍କର ଜାତିବିଶେଷ, ଫୁଲ-
ଫଳର ଉଦ୍ୟାନ ରକ୍ଷକ, (ବି°)ମାଳା-
ଗ୍ରଥନକାରୀ ।
ମାଳାକା—ସ୍ତ୍ରୀ.ବି. ମାଳା ।
ମାଳାକାରୀ—ସ୍ତ୍ରୀ.ବି.ମାଳିଆଣୀ,ମାଳୁଣୀ,
ବୃତ୍ତବିଶେଷ ।
ମାଳାକୁଟଦନ୍ତୀ—ସ୍ତ୍ରୀ.ବି. ରାକ୍ଷସୀ ।
ମାଳାକ୍ଷ—ବି. ଭାରତ ମହାସାଗରର
ଦ୍ୱୀପପୁଞ୍ଜ ।
ମାଳାଗଉଡ଼(ର)—ବି. ମାଲବଗଉଡ଼ [ ଦେଖ ।
ମାଳାଗୁଣ—ବି. ମାଳା ଗୁନ୍ଥିବାର ସୂତା ।
ମାଳାଗୁଣା—ସ୍ତ୍ରୀ.ବି.ଅସାଧ ଲୂତାବିଶେଷ,
ବୁଢ଼ିଆଣୀସୂତା ।
ମାଳାଗ୍ରନ୍ଥି—ବି. ମାଳାଦୁବା,ବଲ୍ଲୀଦୂବା ।
ମାଳାତୃଣ—କ୍ଲୀ.ବି. ଭୂତୃଣ ।
ମାଳାତୃଣକ—କ୍ଲୀ.ବି. ଗନ୍ଧତୃଣ,ଧନ୍ୟାକୀ,
ଗନ୍ଧବେଣା ।
ମାଳାଦୀପକ—କ୍ଲୀ.ବି.ଅର୍ଥାଲଙ୍କାରବିଶେଷ
ମାଳାଦୂବା—ସ୍ତ୍ରୀ.ବି. ଦୂବାବିଶେଷ,ଗଣ୍ଠି-
ଦୂବ, ଲମ୍ବଦୂବ ।
ମାଳାଧର—ପୁଂ.ବି°. (ମାଳା + ଧୃ + କ.
ଅ) ମାଳାଧାରୀ, (ସ୍ତ୍ରୀ) ମାଳାଧରା ।
ମାଳାଧରା—ସ୍ତ୍ରୀ.ବି. ଦେବୀବିଶେଷ ।
ମାଳାଧାର—ପୁଂ.ବି. ଦେବତାବିଶେଷ ।
ମାଳାଫଳ—କ୍ଲୀ.ବି. ରୁଦ୍ରାକ୍ଷ ।
ମାଳାମଣି—ବି. ରୁଦ୍ରାକ୍ଷ ।
ମାଳାମନ୍ତ୍ର—ପୁଂ.ବି.ମାଳାକାରରେ ଲିଖିତ
ମନ୍ତ୍ରବିଶେଷ ।
ମାଳାମୟ—ବି°. ମାଳାଯୁକ୍ତ ।
ମାଳାରଷ୍ଟା—ସ୍ତ୍ରୀ.ବି. ପାଣ୍ଠିନାମକ ସୁଗନ୍ଧ
ପତ୍ର ।
ମାଳାରୂପକ—ବି. ରୂପକ ଦେଖ ।
ମାଳାଲିକା—ସ୍ତ୍ରୀ.ବି. ପୃକ୍କା, ପିଡ଼ଙ୍ଗଶାଗ
ମାଳାଲୀ—ସ୍ତ୍ରୀ.ବି. ପୃକ୍କା, ପିଡ଼ଙ୍ଗଶାଗ ।
ମାଳାବତୀ—ସ୍ତ୍ରୀ.ବି.ସଙ୍କର ରାଗିଣୀବିଶେଷ
ମାଳାବାନ୍—ପୁଂ. ବି°. (ମାଳା + ବତୁ)
ମାଳାବିଶିଷ୍ଟ,ଯାହାର ମାଳା ଅଛି, (ସ୍ତ୍ରୀ)
ମାଳାବତୀ ।
ମାଳାଶ୍ରେଷ୍ଠତମା—ସ୍ତ୍ରୀ. ବି. ତୁଳସୀବୃକ୍ଷ ।
ମାଳି—ପୁଂ. ବି. ସୁକେଶ ରାକ୍ଷସର ପୁତ୍ର
ଓ ରାବଣର ମାତାମହ ରାକ୍ଷସବିଶେଷ,
(ଗ୍ରା.ବି)ଜପମାଳା, ହାର, ମାଳାକାର,
ପୁଷ୍ପବ୍ୟବସାୟୀ, ଶିବଙ୍କୁ ପୂଜା କରିବା
ସେବକବିଶେଷ ।
ମାଳିଆ—ଗ୍ରା.ବି°.ମାଳା ବ୍ୟବହାରକାରୀ
ବା ପରିଧାନକାରୀ (ବ୍ୟକ୍ତି), ଜଙ୍ଗଲ
ଅର୍ଦ୍ଧବାସୀ, ମାଳଅଞ୍ଚଳବାସୀ ।
ମାଳି(ଳ)ଆଣୀ—ଗ୍ରା.ସ୍ତ୍ରୀ.ବି. (ସଂ·ମାଳିନୀ)
ମାଳାକାରର ସ୍ତ୍ରୀ, ମାଳାକାରିଣୀ ସ୍ତ୍ରୀ ।
ମାଳିଆଳି—ଗ୍ରା.ବି. ମାଳିମାନେ, ଦେବ-
ସେବକଗଣ ।
ମାଳିକ—ବି. (ମାଳା + ଇକ)ମାଳାକାର,
ମାଳି, ରଙ୍ଗକର, ରଜକ, ଦ୍ରାକ୍ଷାମଦ୍ୟ,
ମଲ୍ଲିକାବିଶେଷ ମଦ୍ୟ,ସପ୍ତଳା, ଅତସୀ,
(ବି°) ମାଳାସମ୍ବନ୍ଧୀୟ, ମାଲ୍ୟ ନିର୍ମାଣ-
କାରୀ ।
ମାଲିକ—ଯା.ବି. ରାଜା,ସର୍ବୋଚ୍ଚଶାସନ-
କର୍ତ୍ତା, ସ୍ୱତ୍ୱାଧିକାରୀ, ଅଧିକାରୀ, ଗୃହର
କର୍ତ୍ତା. ଦଳର ନେତା ।
ମାଳିକା—ସ୍ତ୍ରୀ.ବି(ମାଳା+କ.ଆ)ସପ୍ତଳା,
ମଲ୍ଲିକା,ମଲ୍ଲୀଫୁଲ, ଫୁଲହାର, ଦୁହିତା,
ଝିଅ, କଣ୍ଠି, ମାଳ,ମୁରା, କ୍ଷୁମା,ଅତସୀ,
(ଗ୍ରା.ବି)ଅଚ୍ୟୁତାନନ୍ଦଦାସଆଦିଙ୍କ ଭବି-
ଷ୍ୟତ୍ ବାଣୀନିହିତ ପଦ୍ୟପୁସ୍ତକ ।
ମାଲିକାନା—ଯା. ବି. ସ୍ୱାମୀ ବା ପ୍ରଭୁର
ପ୍ରାପ୍ୟ, ରାଜାଙ୍କ ପ୍ରାପ୍ୟ ଶୁଳ୍କ, ଖଜଣା
ଆଦାୟ କରିବା ବ୍ୟକ୍ତି(ସରବରାକାର)ର
ଖଜଣାରୁ ପାଇବା ଆଂଶିକ ପାରିଶ୍ରମିକ
ମାଲିକୀ—ଯା.ବି°.ମାଲିକସମ୍ବନ୍ଧୀୟ, (ବି)
ସୁନ୍ନୀସମ୍ପ୍ରଦାୟଭୁକ୍ତ ମୁସଲମାନମାନଙ୍କ
ଗୋଟିଏ ଶାଖାମଧ୍ୟରୁ ଏକଶାଖା ।
ମାଳିନୀ—ସ୍ତ୍ରୀ. ବି. (ମାଳା + ଇନ୍ + ଈ)
ମାତୃକାବିଶେଷ,ମାଳିଆଣୀ,ମାଳାକାର-
ପତ୍ନୀ, ଗୌରୀ, କାଳୀ, ଦୁର୍ଗା, ଚମ୍ପା-
ନଗରୀ, ମନ୍ଦାକିନୀ ନଦୀ, ଅଗ୍ନି ଶିଖା-
ବୃକ୍ଷ, ଦୁରାଲଭା,ବୃତ୍ତିବିଶେଷ, ଅପ୍ସରୋ-
ବିଶେଷ, ଦ୍ରୌପଦୀଙ୍କର ନାମାନ୍ତର,
ରାକ୍ଷସୀବିଶେଷ, ଶ୍ୱେତକର୍ଣ୍ଣଙ୍କ ପତ୍ନୀ,
ସ୍କନ୍ଦମାତୃଗଣର ଅନ୍ୟତମା ।
ମାଳିନ୍ୟ—କ୍ଲୀ.ବି(ମଳିନ + ଯ)ମଳିନତା,
ମଇଳା,କଳୁଷ,କୁପ୍ରବୃତ୍ତି,ମନୋଦୁଃଖ ।
ମାଳିନ୍ଦ୍ୟ—ବି. ପର୍ବତବିଶେଷ ।
ମାଲିମ୍—ଯା. ବି. ପୋତଚାଳକ, ଜାହା-
ଜର ଚାଳକ ।
ମାଲିମକଦମା—ଯା.ବି.ମାମଲା ମକଦ୍ଦମା ।
ମାଲିମହାପାତ୍ର—ଗ୍ରା.ବି.ମହାପାତ୍ର ଉପାଧି-

ଧାରୀ ମାଳିକାଗ୍ରସ୍ତ ବ୍ୟକ୍ତି ।
ମାଲପୃତ—ଯା. ବି. ଧନସମ୍ପତ୍ତି,ଭଣ୍ଡାର
ମାଲଶ(ସି)—ଯା. ବି. ତୈଳାଦିମର୍ଦ୍ଦନ ।
ମାଳସେବକ—ଗ୍ରା.ବି.ଦେବତାଙ୍କର ପୁଷ୍ପ-ସଂଗ୍ରାହକ ଓ ମୂଳକ ଶୂଦ୍ର ସେବକ ।
ମାଳୀ—ପୁଂ. ବି. (ମାଲ + ଇନ୍) ମାଲାକାର, ରାବଣର ପିତାମହ ରାକ୍ଷସବିଶେଷ, ମହାଦେବ, ଉଦ୍ୟାନପାଳକ, (ପୁଂ.ବିଂ)ମାଲାଧାରୀ, (ସ୍ତ୍ରୀ)ମାଳିନୀ ।
ମାଲୀୟ—ବିଂ. (ମାଲା+ଈୟ) ମାଲା-ସମ୍ବନ୍ଧୀୟ, ମାଲାକାରସମ୍ବନ୍ଧୀୟ ।
ମାଳୁ—ସ୍ତ୍ରୀ. ବି. ନାରୀ, ପତ୍ରମୟ ଲତା, ବନ୍ୟଜାତିବିଶେଷ ।
ମାଳୁଆ—ଗ୍ରା.ବିଂ.(ସଂ-ମାଲୀୟ)ମାଳ ବା ଜଙ୍ଗଲ ପ୍ରଦେଶ ସମ୍ବନ୍ଧୀୟ, ଜଙ୍ଗଲୀ, (ଗ୍ରା.ବି) ଜଙ୍ଗଲଜାତି ।
ମାଳୁକ—ବି. କୃଷ୍ଣାର୍ଜକ, କୃଷ୍ଣତୁଳସୀ, ଈଷତ୍ ଶ୍ୱେତ ରାଜହଂସ ।
ମାଳୁଦାଚ୍ଛଦ—ପୁଂ. ବି. ଅଶ୍ମନ୍ତକ ବୃକ୍ଷ ।
ମାଲୁଣୀ—ଗ୍ରା. ସ୍ତ୍ରୀ. ବି. ମାଲାକାର ସ୍ତ୍ରୀ, ମାଳିକାଗ୍ରସ୍ତା ସ୍ତ୍ରୀ ।
ମାଲୁଦ୍—ଗ୍ରା. ବି. ଚକ୍ରକାହ୍ୱଦ ନିକଟସ୍ଥ ବାଲୁକାମୟ ପ୍ରଦେଶ ।
ମାଳୁଧାନ—ପୁଂ. ବି. ଏକପ୍ରକାର ନାଗ ସାପ, ମହାପଥ ।
ମାଲୁମ୍—ଯା. ବିଂ. ଜ୍ଞାତ, ଦୃଷ୍ଟ, (ବି) ଜ୍ଞାନ, ଅବଗତ ।
ମାଲୂକ—ପୁଂ. ବି. କୃଷ୍ଣାର୍ଜକ, କୃଷ୍ଣପତ୍ର ତୁଳସୀ, କଳାତୁଳସୀ ।
ମାଲୂର—ବି. (ମା+ଲୂ+ମଂ.ଉର) ବେଲ ବୃକ୍ଷ ଓ ଫଳ, କପିତ୍ଥବୃକ୍ଷ ଓ ଫଳ ।
ମାଲେ—ଗ୍ରା.ବି. ରାଜମହଲ ଶୈଳମାଳା-ବାସୀ ପାର୍ବତ୍ୟଜାତିବିଶେଷ, ଏକମାଲ ମାପ । [ (ବାସନ ଆଦି) ।
ମାଲେଇ—ଗ୍ରା. ବିଂ. ନିକୃଷ୍ଟ ଜାତୀୟ
ମାଲେନ୍—ପ୍ରା.ସମ୍ବ. ସ୍ତ୍ରୀ. ବି. ମାଳିର ସ୍ତ୍ରୀ. ମାଳିଆଣୀ । [ ସମ୍ବନ୍ଧୀୟ ।
ମାଲେୟ—ବିଂ. (ମାଲା + ଏୟ) ମାଲା-
ମାଲେୟା—ବି. ( ମାଲା + ଏୟ+ଆ ) ସ୍ଥୂଳଏଲା, ବଡ଼ଅଲେଇଚ ।
ମାଲେରିଆ—ଯା. ବି. ମେଲେରିଆ ଦେଖ
ମାଲୋଦ୍ଧ—ଗ୍ରା. ବି. କାରୁକାର୍ଯ୍ୟ ଦୋଳି-ନ ଥିବା(ବାସନାଦି),ପୁର ଦିଆହୋଇ-ନ ଥିବା (ଜାକରପିଠା ଆଦି) ।
ମାଲୋପମା—ବି. ( ମାଲା+ଉପମା ) କାବ୍ୟର ଅଳଙ୍କାର ବିଶେଷ, ଯହିଁରେ ଏକ ଉପମେୟର ବହୁ ଉପମାନ ଥାଏ
ମାଲ୍ୟ—କ୍ଲୀ. ବି.(ମାଲା + ଯ) ପୁଷ୍ପମାଲା, ଶିରୋମାଲା, (ବିଂ)ମାଲାଗୁନ୍ଥା ହେବାର ଉପଯୁକ୍ତ ।
ମାଲ୍ୟକ—ବି. ମଦନବୃକ୍ଷ, ମାଲା ।
ମାଲ୍ୟଗିରି—ଗ୍ରା. ବି. ପାଲଲହଡ଼ାରେ ଅବସ୍ଥିତ ଉତ୍କଳର ସର୍ବୋଚ୍ଚ ପର୍ବତ-ବିଶେଷ ।
ମାଲ୍ୟଚନ୍ଦନ—କ୍ଲୀ.ବି.ମଦନ ବୃକ୍ଷ,ମାଲା ।
ମାଲ୍ୟଜୀବକ—ବି. (ମାଲ୍ୟ+ଜୀବକ)ମାଲାକାର ।
ମାଲ୍ୟଦାନ—ବି.(ତନ୍ତ୍ର)କୌଣସି ବ୍ୟକ୍ତିକୁ ଫୁଲମାଳ ଭେଟିବା ।
ମାଲ୍ୟପିଣ୍ଡକ—ବି. ମାଲ୍ୟଗୁଚ୍ଛ ।
ମାଲ୍ୟପୁଷ୍ପ—ବି. ବ.ଗ୍ର; ଶଣବୃକ୍ଷ ।
ମାଲ୍ୟପୁଷ୍ପିକା—ସ୍ତ୍ରୀ. ବି. ଶଣପୁଷ୍ପୀ ।
ମାଲ୍ୟବନ୍ତ—ଗ୍ରା.ବି. (ସଂ-ମାଲ୍ୟବାନ୍)ମାଲ୍ୟବାନ୍ ପର୍ବତ, ରାକ୍ଷସ ବିଶେଷ, (ଗ୍ରା.ବିଂ) ମାଲାବିଭୂଷିତ ।
ମାଲ୍ୟବାନ୍—ପୁଂ. ବି. ( ମାଲ୍ୟ+ବତ୍ ) ପର୍ବତବିଶେଷ, ରାକ୍ଷସବିଶେଷ, (ବିଂ) ମାଲାଧାରୀ,(ସ୍ତ୍ରୀ) ମାଲ୍ୟବତୀ ।
ମାଲ୍ୟବିନିମୟ—ବି. ( ତନ୍ତ୍ର ) ବିବାହ ସମୟରେ ବରକନ୍ୟାଙ୍କର ମାଲାର ବଦଳାବଦଳି ।
ମାଲ୍ୟବୃତ୍ତି—ପୁଂ. ବିଂ. (ବ.ଗ୍ର) ମାଲ୍ୟ ବିକ୍ରୟ କରି ଜୀବିକା ନିର୍ବାହକାରୀ ।
ମାଲ୍ୟା—ସ୍ତ୍ରୀ. ବି. ତୃଣଭେଦ ।
ମାଲ୍ୟାପଣ—ବି. ମାଲ୍ୟବିକ୍ରୟ ସ୍ଥାନ,ଫୁଲମାଲାର ଦୋକାନ ।
ମାଲ୍ଲ—ପୁଂ. ବି. (ମଲ୍ଲ+ଅ) ବର୍ଣ୍ଣସଙ୍କର ଜାତିବିଶେଷ ।
ମାଲ୍ଲବାସ୍ତବ—ବିଂ. ମଲ୍ଲବାସ୍ତୁ ସମ୍ବନ୍ଧୀୟ ।
ମାଲ୍ଲୀ—ସ୍ତ୍ରୀ. ବି. ( ମଲ୍ଲ+ଅଚ୍+ଈ ) ମଲ୍ଲମାନଙ୍କର କ୍ରୀଡ଼ା ପ୍ରଦର୍ଶନ,ମଲ୍ଲଯୁଦ୍ଧ ।
ମାଲ୍ଲା—ଯା. ବି. ଧୀବର ଓ ନୌକାବାହୀ ଜାତିବିଶେଷ, ନାବିକ ।
ମାଲ୍ୟ—କ୍ଲୀ. ବି.ମୂର୍ଖତା,ବିବେକହୀନତା, ଅଧୈର୍ଯ୍ୟ ।
ମାବିଳମ୍ବ—ଅବ୍ୟ. ବିଳମ୍ବ ନ କରି ।
ମାଶବ୍ଦିକ—ବିଂ.(ମାଶବ୍ଦ+ଇକ)ନିଷେଧ-କର୍ତ୍ତା, (ସ୍ତ୍ରୀ) ମାଶବ୍ଦିକା । [ ଟିକସ ।
ମାଶୁଲ—ଯା.ବି. ମାହାଶୁଲ, ଶୁଳ୍କ,କର,
ମାଷ—ବି. (ମାଷ+ଅ) ବିରି, ମୂର୍ଖ, ପରିମାଣବିଶେଷ, ଏକମଷା, ଆଠରତି, ଚର୍ମରୋଗବିଶେଷ ।
ମାଷକ—ବି(ମାଷ+କ)ଏକମଷା ଓଜନ, ଅଠରତି ପରିମାଣ, ବ୍ରୀହି, ବିରି ।
ମାଷକଲାୟ—ବି. ସ୍ୱନାମଖ୍ୟାତ ଶସ୍ୟ, ବ୍ରୀହି, ବିରି ।
ମାଷପର୍ଣ୍ଣିକା—ସ୍ତ୍ରୀ.ବି.ମାଷପର୍ଣ୍ଣୀ, ବଣବିରି
ମାଷପର୍ଣ୍ଣୀ—ସ୍ତ୍ରୀ. ବି. ବଣବିରି ।
ମାଷଭକ୍ତବଳି—ବି. ବ୍ରୀହି ତଣ୍ଡୁଳ ଦଧି ମିଶ୍ରିତ ପୂଜୋପହାରବିଶେଷ ।
ମାଷଯୋନି—ବି. ଖାଦ୍ୟଦ୍ରବ୍ୟବିଶେଷ, ପାମ୍ପଡ଼ ।
ମାଷରୀ—ବି. ଅନ୍ନମଣ୍ଡ, ପେଜ ।
ମାଷବେଷ୍ଟିକା—ବି. ବରିପିଠା ।
ମାଷବଟକ—ବି. ବରବରା(ଡ଼ା) ।
ମାଷବଟୀ—ବି. ବଟିକୌଷଧବିଶେଷ ।
ମାଷବର୍ଦ୍ଧକ—ବି. (ମାଷ + ବୃଧ୍ + ଣିଚ୍+ ଅକ) ସ୍ୱର୍ଣ୍ଣକାର, ସୁନାରି ବଣିଆଁ ।
ମାଷସୂପ—ବି. ଭୃଷ୍ଟ ମାଷପ୍ରସ୍ତୁତ ଯୂଷ ।
ମାଷାଦ—ପୁଂ. ବି. (ମାଷ+ ଅଦ୍+ ଅ) କଚ୍ଛପ,କଇଁଛ,(ବିଂ)ବ୍ରୀହିଭକ୍ଷଣକାରୀ ।
ମାଷାଦିକ୍ୱାଥ—ବି. ପକ୍ଷାଘାତ ରୋଗରେ ପ୍ରଯୁଜ୍ୟ କ୍ୱାଥବିଶେଷ ।
ମାଷାଦିତୈଳ—କ୍ଲୀ.ବି.ପକ୍ଷାଘାତ ରୋଗର ତୈଳୌଷଧବିଶେଷ ।
ମାଷାନ୍ନ—କ୍ଲୀ. ବି. ବିରି ଓ ଗୁଡ଼ଲରେ ପ୍ରସ୍ତୁତ ଖେଚୁଡ଼ି ।

ମାଷାଶ—ପୁଂ. ବି. (ମାଷ+ଅଶ୍+ଅ) ଘୋଡ଼ା । [ମିତ୍ର ।

ମାଷିକ—ବି. ଜୀବଶାକ,(ବିଂ) ମାଷ ପରି-

ମାଷୀ(ଷ୍ୟ)ଣ-କ୍ଲୀ.ବି.ମାଷକ୍ଷେତ୍ର,ବିରିପଦା ।

ମାଷେଗୁଟ—ବି. ମାଷପିଷ୍ଟ ବିକୃତ ।

ମାଷୋଣ(ନ)—ବିଂ. ( ମାଷ+ଊନ ) ଏକ ମଷା ପରିମାଣ ଊଣା ।

ମାଷ୍ଟର—ଯା.ବି. ଶିକ୍ଷକ,ବିଦ୍ୟାଳୟ ଗୁରୁ ।

ମାସ୍—ବି. (ମା+ଅସ୍)ଚନ୍ଦ୍ର.ମାସ ମାଂସ ।

ମାସ—ବି. ( ମସ+ଅ ) ମାଷପରିମାଣ, ଏକମଷା ଓଜନ,କୃଷ୍ଣ ଶୁକ୍ଳ ପକ୍ଷ ଦ୍ୱୟାତ୍ମକ କାଳ,କୃଷ୍ଣ ପ୍ରତିପଦାଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ କାଳ, ଚାନ୍ଦ୍ରମାସ, ବୈଶାଖାଦି, ସୌରମାସ, ସୂର୍ଯ୍ୟଙ୍କର ଏକରାଶିରେ ଅବସ୍ଥାନ କରିବା ସମୟ, ୩୦ ଦିନ ପରିମାଣ କାଳ, ମେଷାଦି, ଦ୍ୱାଦଶସଂଖ୍ୟା, ମାଷ, ବ୍ରୀହି, ବିର ।

ମାସକ—ବି. (ମାସ+କ) ଏକ ମଷା ପରିମାଣ ଓଜନ, ମୁଖ୍ୟମାସ, ( ଗ୍ରା.ବି ) ଏକମାସକାଳ ।

ମାସକଧର୍ମ—ଗ୍ରା. ବି. ଏକମାସ ମଧ୍ୟରେ ଅର୍ଜିତ ବା ସଞ୍ଚିତ ପୁଣ୍ୟ ।

ମାସକାଳିକ—ବିଂ. ଏକ ମାସକାଳ ପରିମିତ, ମାସିକ ।

ମାସକାବାର—ଗ୍ରା. ବି. ମାସର ଶେଷ, ମାସାନ୍ତ ।

ମାସକାବାରି—ଗ୍ରା. ବିଂ. ପ୍ରତ୍ୟେକ ମାସ ଶେଷରେ କରଣୀୟ, ମାସାନ୍ତେଦେୟ, (ବି)ସ୍ତ୍ରୀମାନଙ୍କର ଋତୁସ୍ରାବ,ପ୍ରତିମାସର ଶେଷ ।

ମାସକିଆ—ଗ୍ରା. ବିଂ. (ସଂ-ମାସିକ) ଏକମାସବୟସ୍କ, ମାସିକ,(ଗ୍ରା.ବି) ସ୍ତ୍ରୀମାନଙ୍କ ମାସିକଧର୍ମ, ଋତୁସ୍ରାବ ।

ମାସକୁମାସ—ଗ୍ରା. ବିଂ. ପ୍ରତିମାସରେ, ଫି ମାସରେ ।

ମାସକୃତ୍ୟ—ବିଂ. ( ଜ୍ୟୋତିଷ ) ପ୍ରତ୍ୟେକ ମାସରେ ନିର୍ଦ୍ଦିଷ୍ଟ କର୍ତ୍ତବ୍ୟ ।

ମାସକେ—ଗ୍ରା.କ୍ରି.ବିଂ.ଏକମାସ ମଧ୍ୟରେ ।

ମାସକେଲ୍—ପ୍ରା. (ସମ୍ବ) ବି. ଶାମୁକା ।

ମାସଗଡ଼ିବା—ଗ୍ରା.ବି. (ସ୍ତ୍ରୀଲୋକର)ଗର୍ଭସଞ୍ଚାର ହେବା ।

ମାସଗଡ଼ିଯିବା—ଗ୍ରା. ବି. ସ୍ତ୍ରୀମାନଙ୍କର ମାସିକ ଋତୁ ନ ହେବା ଯୋଗୁଁ ଗର୍ଭସଞ୍ଚାର ହେବାର ଜଣାଯିବା, ନିର୍ଦ୍ଦିଷ୍ଟ ସମୟରେ ପ୍ରସୂତ ନ ହେବା ।

ମାସଗଣତି—ଗ୍ରା. ବି. ବର୍ଷର ମାସମାନଙ୍କର ସଂଖ୍ୟା ଗଣନା ।

ମାସଚାରକ—ପୁଂ.ବିଂ. (ମାସ+ଚର୍+ର୍ମି.ଇକ) ମାସାନୁଷ୍ଠେୟ, ଏକମାସ ପର୍ଯ୍ୟନ୍ତ କର୍ତ୍ତବ୍ୟ, (ସ୍ତ୍ରୀ) ମାସଚାରିକା ।

ମାସଜାତ—ପୁଂ. ବିଂ. ଏକମାସ ବୟସ୍କ, ଯାହା ମାସେ ମାତ୍ର ହୋଇଅଛି,ମୋଟେ ମାସକର ।

ମାସଜ୍ଞ—ପୁଂ. ବି. (ମାସ+ଜ୍ଞା+କ.ଅ) ଦାତ୍ୟୂହପକ୍ଷୀ, ଡାହୁକ, ଏକପ୍ରକାର ମୃଗ, (ବି) ମାସଜ୍ଞାତା ।

ମାସତମ—ବିଂ. ମାସିକ, ପୂର୍ଣ୍ଣ ଏକମାସ ।

ମାସତମାମ୍—ଯା. ବି. ମାସଯାକ, ପୂର୍ଣ୍ଣ ଏକମାସ ।

ମାସତାଳା—ବି. (ମାସ+ତାଳ+ଆ) ବାଦ୍ୟଯନ୍ତ୍ରବିଶେଷ, କରତାଳ ।

ମାସତୁଲ୍ୟ—ବିଂ. ମାସସମୟ ପରିମିତ ।

ମାସତ୍ରୟ—କ୍ଲୀ. ବି. ତିନମାସ ।

ମାସତ୍ରୟାବଧି—ଅବ୍ୟ.ତିନମାସଯାବତ୍ ।

ମାସଦିନ—ବି. ମାସ ଓ ଦିନ, ମାସ ମଧ୍ୟରେ ୩୦ ଦିନଯୁକ୍ତ ସମୟ ।

ମାସଦେୟ—ବିଂ. ପ୍ରତିମାସରେ ପରିଶୋଧନୀୟ ।

ମାସଦ୍ୱୟୋଦ୍ଭବ—ବି.ଷଷ୍ଟିକଧାନ୍ୟ,ଷାଠିଏ ଧାନ, ଗୌରଷଷ୍ଟିକ ।

ମାସଧା—ଅବ୍ୟ. ପ୍ରତିମାସରେ ।

ମାସପକ୍ଷ—ବି. ମାସ ଓ ପକ୍ଷ ।

ମାସପଞ୍ଜିକା(ଞ୍ଜୀ)—ବି.କୌଣସି ମାସରେ ଘଟିବା ତିଥି ବାର ଉତ୍ସବ ଓ ଘଟନାବଳୀ, ବିବରଣ ।

ମାସପତ୍ର—ବି.(ଜ୍ୟୋତିଷ)ମାସଫଳ,ଜ୍ୟୋତିଷ ଗଣନା କ୍ରମେ . ଯେଉଁ ଲେଖାରେ କୌଣସି ମାସର ଶୁଭାଶୁଭଫଳ ଲେଖା ହୋଇଥାଏ ।

ମାସପଶିବା—ଗ୍ରା. ବି. କୌଣସି ମାସର ପ୍ରବେଶ ବା ଆରମ୍ଭ ।

ମାସପାକ—ବିଂ. ଏକମାସରେ ପରିପାକ, ଯାହା ଏକମାସ ମଧ୍ୟରେ ହୁଏ ।

ମାସପୂରିବା—ଗ୍ରା.ବି.ଏକମାସ ପୂର୍ଣ୍ଣହେବା, ପୂର୍ଣ୍ଣଗର୍ଭ ହେବାର ସମୟ ।

ମାସପୂର୍ବ—ବିଂ. (ବ.ଗ୍ରା) ପୂର୍ବମାସରେ ସଂଘଟିତ, ଏକମାସପୂର୍ବେ ଯାହା ଘଟିଅଛି ।

ମାସପ୍ରମିତ—ବିଂ. ମାସଘଟିତ, ଯାହା ମାସରେ ଥରେ ଘଟେ,(ବି)ନବୀନଚନ୍ଦ୍ର, ପ୍ରତିପଦଚନ୍ଦ୍ର । [ ପ୍ରଥମ ଦିନ ।

ମାସପ୍ରବେଶ—ବି. ମାସାଗମ, ମାସର

ମାସଫଳ—ବି. ( ଜ୍ୟୋତିଷ ) ପ୍ରତ୍ୟେକ ମାସରେ ଘଟିବା ଫଳ ବା ଘଟନା, ମାସପତ୍ର ଦେଖ ।

ମାସଭୁକ୍ତି-ବି. (ମାସ+ଭୁକ୍ତି)ମାସିକଗତି ।

ମାସମାନ—ବି. (ବ.ଗ୍ରା) ବତ୍ସର, ବର୍ଷ, (ଜ୍ୟୋତିଷ) ଏକମଷା ପରିମାଣ, ମାସର ପରିମାଣ

ମାସର—ପୁଂ. ବି. (ମାସ+ଅର) ଭାତର ପେଜ, ଅନ୍ନସମ୍ଭୂତ ମଣ୍ଡ, କାଞ୍ଜିକ ।

ମାସଲ—ବିଂ. (ମାସ+ଅଲ) ମାଂସଲ, ମାଂସଯୁକ୍ତ, ହୃଷ୍ଟପୁଷ୍ଟ, (ଗ୍ରା.ବି) ଏକପ୍ରକାର ପକ୍ଷୀ ।

ମାସବରଷ—ଗ୍ରା. ବି. ମାସ ଓ ବର୍ଷ ।

ମାସବର୍ତ୍ତିକା—ବି. ଶ୍ୟାମାଜାତୀୟ ପକ୍ଷିବିଶେଷ ।

ମାସବାଢିବା—ଗ୍ରା. ବି. ଏକମାସ ସମୟଗତ ହେବା, ମାସଗଡ଼ିଯିବା ।

ମାସବୃଦ୍ଧି—ବି. ( ଜ୍ୟୋତିଷ ) ମଳମାସ, ଅଧିମାସ ।

ମାସଶଃ—ଅବ୍ୟ. ପ୍ରତିମାସ, ମାସମାସ ।

ମାସସଞ୍ଚୟିକ—ବିଂ. ମାସକ ପାଇଁ ଅନ୍ନ ସଞ୍ଚୟକାରୀ ।

ମାସହାରା—ଗ୍ରା. ବି. ମାସିକ ବେତନ ।

ମାସାଦ୍ୟ—ବି. (ଜ୍ୟୋତିଷ) ମାସର ପ୍ରଥମ ଦିନ ।

ମାସାଧିପ—ବି. (ଜ୍ୟୋତିଷ)ମାସସ୍ୱାମୀ,ଯେଉଁ

ଛନ୍ଦ ଯେଉଁ ମାସରେ ପୃଥିବୀର ଅଧିପତି କଳ୍ପିତରୂପେ ହୁଏ ।

ମାସାଧିପତି—ବି. ( ୬ତତ୍ ) ମାସାଧିପ ଦେଖ । [ ଦେଖ ।

ମାସାଧୀଶ—ବି. ( ୬ତତ୍ ) ମାସାଧିପତି

ମାସାନୁମାସିକ—ବିଂ. ମାସର ଆରମ୍ଭରୁ ମାସ ଶେଷ ପର୍ଯ୍ୟନ୍ତ କାର୍ଯ୍ୟକାରୀ,ପ୍ରତି· ମାସ ସମ୍ବନ୍ଧୀୟ ।

ମାସାନ୍ତ—ପୁଂ. ବି. (୬ତତ୍) ଅମାବସ୍ୟା, ମାସର ଶେଷଦିନ, ସୌର ମାସର ସଂକ୍ରାନ୍ତିର ପୂର୍ବଦିନ ।

ମାସାନ୍ତସଂକ୍ରାନ୍ତି—ବି. ଏକମାସର ଶେଷ-ଦିନ.ତା ପରମାସର ପ୍ରଥମଦିନ ।

ମାସାପବର୍ଗ-ବିଂ.ଏକମାସ କାଳ ପର୍ଯ୍ୟନ୍ତ ।

ମାସାବଧି—ଗ୍ରା. ବି. ଏକମାସ ସମୟ, (କ୍ରି.ବିଂ) ଏକମାସହେଲା ।

ମାସାବଧିକ—ବିଂ. ମାସପର୍ଯ୍ୟନ୍ତ ।

ମାସାହାର—ବିଂ. ( ବ.ବ୍ରୀ ) ଏକମାସ ଅନ୍ତରରେ ଭୋଜନକାରୀ ।

ମାସି—ଗ୍ରା.ବିଂ. (ସଂ-ମାସିକ) ମାସ ସମ୍ବନ୍ଧୀୟ, (ଗ୍ରା. କ୍ରି. ବିଂ) ମାସିକ, ପ୍ରତି-ମାସରେ ।

ମାସିଆ—ଗ୍ରା. ବିଂ. ( ସଂ-ମାସିକ ) ମାସ ସମ୍ବନ୍ଧୀୟ, ଏତେମାସ ଗର୍ଭରେ ରହି ଜନ୍ମହୋଇଥିବା (ଶିଶୁ), ଏତେମାସ ବୟସ୍କ, ଏତେମାସ ସ୍ଥାୟୀ ବା ବ୍ୟାପୀ ।

ମାସିକ—ବିଂ. (ମାସ+ଇକ) ମାସ ସମ୍ବନ୍ଧୀୟ, ପ୍ରତିମାସରେ କର୍ତ୍ତବ୍ୟ, ଏକ-ମାସକାଳସ୍ଥାୟୀ, ପ୍ରତିମାସରେ ଥରେ ଘଟିବା, ପ୍ରତିମାସରେ ଦେୟ, ( ବି ) ମୃତବ୍ୟକ୍ତିଙ୍କ ଉଦ୍ଦେଶ୍ୟରେ ମୃତ୍ୟୁର ଏକ ବର୍ଷ ମଧ୍ୟରେ ପ୍ରତିମାସରେ କର୍ତ୍ତବ୍ୟ ଶ୍ରାଦ୍ଧ । [ ଋତୁସ୍ରାବ ।

ମାସିକଧର୍ମ—ବି. ( କ.ଧା ) ସ୍ତ୍ରୀମାନଙ୍କର

ମାସୀନ—ପୁଂ. ବିଂ. (ମାସ+ଈନ)ଏକ-ମାସ ବୟସ୍କ, ମାସସମ୍ବନ୍ଧୀୟ,ଏତେମାସ ବୟସ୍କ, (ସ୍ତ୍ରୀ) ମାସୀନା ।

ମାସୁଆଣ—ଗ୍ରା. ବିଂ. ମାସିକ ନିର୍ଦ୍ଦିଷ୍ଟ,(ବି) ମାସିକବେତନ, ମାସିକ ଋତୁସ୍ରାବ ।

ମାସୁରୀ—ସ୍ତ୍ରୀ. ବି. (ମସୁର+ଅ+ଈ) ଶ୍ମଶ୍ରୁ, ଦାଢ଼ି, ମାଉସୀ, ମାତୃଭଗିନୀ, ପିଉସୀ,ପିତାଙ୍କର ଭଉଣୀ,ଏକପ୍ରକାର ଜାକୁଆ ଶସ୍ୟ ।

ମାସେ—ଗ୍ରା. ବି. ଏକମାସ ସମୟ, (ଗ୍ରା. କ୍ରି. ବିଂ) ଏକମାସ ପାଇଁ ।

ମାସେକେ—ଗ୍ରା. କ୍ରି. ବିଂ. ଏକମାସରେ, ପ୍ରତି ମାସରେ ।

ମାସେଖଣ୍ଡେ—ଗ୍ରା. ବି. ମାସକରୁ କିଛି କମ୍ ବା ବେଶି ସମୟ, ମାସେକାନ୍ତର, ମାସେଅଧେ, ମାସେପକ୍ଷେ ।

ମାସୋପବାସ—ବି. ଏକମାସକାଳ ଅନ-ଶନ ବ୍ରତାଗ୍ରହ ।

ମାସୋପବାସିନୀ—ସ୍ତ୍ରୀ.ବି. ଏକମାସ ଉପ-ବାସକାରିଣୀ ସ୍ତ୍ରୀ ।

ମାସ୍ତାନ—ଗ୍ରା. ବି. ଓଡ଼ିଶାର ଅଧସ୍ତନ ଶ୍ରେଣୀର ଏକଜାତୀୟ ବ୍ରାହ୍ମଣ ।

ମାସ୍ତାନିଆ—ଗ୍ରା.ବିଂ. ମାସ୍ତାନସମ୍ବନ୍ଧୀୟ ।

ମାସ୍ତୁଲ—ଯା.ବି. ଗୁଣବୃକ୍ଷ, ତଲ୍ଲଉ ଖୁଣ୍ଟ, ଜାହାଜରେ ବା ନୌକାରେ ପାଲ ଟାଙ୍ଗିବାର ଖୁଣ୍ଟି । [ ବୟସ ।

ମାସ୍ୟ—ବିଂ. ( ମାସ+ଯ ) ଏକମାସ

ମାସ୍ମ—ଅବ୍ୟ. ବାରଣ, ନିଷେଧାର୍ଥକ ଅବ୍ୟୟ ।

ମାହକସ୍ଥଲକ—ବିଂ. ମାହକ ସ୍ଥଳବାସୀ ଓ ତଦ୍ଦେଶସମ୍ବନ୍ଧୀୟ ।

ମାହକସ୍ଥଳୀ-ବି.ପ୍ରାଚୀନ ଜନପଦବିଶେଷ ।

ମାହକି—ପୁଂ.ବି. ଆଗ୍ନେୟଭେଦ ।

ମାହତ—ବି. ( ମହତ+ଅ ) ମହତର ଭାବ ବା ଧର୍ମ, ମହତ୍ତ୍ୱ । [ ବ୍ରାହ୍ମଣ ।

ମାହନ--ବି.(ମା+ହନ=ହତ୍ୟା କରନା)

ମାହନୀୟ—ବିଂ. (ମାହନ+ଈୟ)ପୂଜ-ନୀୟ, ଶ୍ରେଷ୍ଠ ।

ମାହୁଆଣ—ଯା.ବି ଓ ବିଂ. ମାସୁଆଣ, ମାସିକ, (କ୍ରି.ବିଂ)ପ୍ରତି ମାସରେ ।

ମାହା—ସ୍ତ୍ରୀ.ବି. ଗାଈ (ଯା.ବି)ମାସ ।

ମାହାକୁଲ—ବିଂ. (ମହାକୁଲ+ଅ)ଉଚ୍ଚ-ବଂଶସମ୍ଭୂତ, ମହାକୁଳୋଦ୍ଭବ ।

ମାହାକୁଲୀନ—ବିଂ. (ମହାକୁଲ+ଅ+ଈନ) ଉଚ୍ଚବଂଶଜାତ ।

ମାହାଜନିକ—ବିଂ. (ମହାଜନ+ଇକ) ମହାଜନ ବିଷୟରେ ହିତକର ।

ମାହାଜନୀନ—ବିଂ. (ମହାଜନ+ଈନ) ମହାଜନ ବିଷୟରେ ସାଧୁ ।

ମାହାତମା—ଗ୍ରା.ପୁଂ.ବି. ମହାତ୍ମା ଦେଖ ।

ମାହାତାର୍ବ—ଯା.ବି, ଚନ୍ଦ୍ରକିରଣ ।

ମାହାତ୍ମିକ—ବିଂ. ( ମହାତ୍ମନ୍+ଇକ ) ମହାତ୍ମା ସମ୍ବନ୍ଧୀୟ ।

ମାହାତ୍ମ୍ୟ—କ୍ଲୀ. ବି. (ମହାତ୍ମନ୍+ଷ୍ୟ ଯ) ମହିମା, ଗୌରବ,ମହତ୍ତ୍ୱ ତୀର୍ଥଦର୍ଶନ ଓ ଦେବଦେବୀ ପୂଜାର ଶୁଭଫଳ, ଆଦର, ମାନ, ତୀର୍ଥ ଓ ଦେବଦେବୀଙ୍କ ପୂଜାର ଫଳବର୍ଣ୍ଣନାତ୍ମକ ଗ୍ରନ୍ଥ ।

ମାହାନଦ—ବିଂ. (ମହାନଦ+ଅ)ମହା-ନଦ ସମ୍ବନ୍ଧୀୟ, ତଜ୍ଜାତମାଚ ।

ମାହାନସ—ବିଂ. (ମହାନସ+ଅ) ମହା-ନସ ସମ୍ବନ୍ଧୀୟ ।

ମାହାନାମିକ—ବି. ମହାନାମ୍ନୀନାମକ ଋଗ୍‌ବେଦବେତ୍ତା ବ୍ରାହ୍ମଣ ।

ମାହାନାମ୍ନିକ—ବି. ମହାନାମ୍ନି ଆଢ଼ ଋଗ୍‌ବେତ୍ତା, ବ୍ରାହ୍ମଣ ।

ମାହାପୁରୁ—ଗ୍ରା.ବି. ମହାପ୍ରଭୁ ଦେଖ ।

ମାହାପ୍ରାଣ—ବିଂ.(ମହାପ୍ରାଣ+ଅ)ମହା-ପ୍ରାଣ ବା ଦୀର୍ଘଶ୍ୱାସ ସମ୍ବନ୍ଧୀୟ ।

ମାହାଭାଗ୍ୟ-କ୍ଲୀ.ବି.ମହାଭାଗ୍ୟ,ସୌଭାଗ୍ୟ ।

ମାହାର—ଗ୍ରା.ପୁଂ.ବି. ମେହେନ୍ତର,ପଶୁ-ରକ୍ଷକ, (ସ୍ତ୍ରୀ) ମହାରାଣୀ ।

ମାହାରଜନ—ବିଂ. (ମହାରଜନ+ଅ) ମହାରଜନଦ୍ୱାରା ରଞ୍ଜିତ ।

ମାହାରା—ଗ୍ରା.ବି. ପାଣି ଯିବାର ପଛଣି ବା ନାଳି ।

ମାହାରାଣୀ—ଗ୍ରା. ସ୍ତ୍ରୀ. ବି. ମେହେନ୍ତ୍ରାଣୀ, ମେହେନ୍ତରର ଜାତୀୟା ସ୍ତ୍ରୀ, ହାଡ଼ିଆଣୀ

ମାହାରୀ--ଗ୍ରା.ସ୍ତ୍ରୀ.ବି.ଦେବନର୍ତ୍ତକୀ, ନର୍ତ୍ତକୀ

ମାହାରସାଢ଼ି—ଗ୍ରା. ବି. ସ୍ତ୍ରୀମାନେ ପିନ୍ଧିବା ଏକପ୍ରକାର ମୋଟା ଦେଶୀ ତନ୍ତରେ ତିଆରି ଲୁଗା । [ ଦେଖ ।

ମାହାଲ—ଗ୍ରା. ବି.(ସଂ-ମହାଲମ୍ବ) ମହାଲମ୍ବ

ମାହାଲାଏକ—ଗ୍ରା. ବି. ମହାନାଏକ ଦେଖ ।
ମାହାଲ—ଗ୍ରା. ବି. କେଉଟମାନଙ୍କର ବଂଶୋପାଧି ବିଶେଷ ।
ମାହାଲିଆ—ଗ୍ରା. କ୍ରି. ବିଂ.ଅକାରଣ,ବୃଥା
ମାହାଳିଆମୁକୁନ୍ଦଦେବ—ଗ୍ରା. ବି. ରାଜ-ଜ୍ୟସ୍ଥ କ୍ଷମତାଶୂନ୍ୟ ମୁକୁନ୍ଦଦେବ ନାମ-ଧାରୀ ପୁରୀର ଭୂତପୂର୍ବ ରାଜା.(ଲ.ଅର୍ଥ) ଫମ୍ପା ଅଧିକାର ସୂଚକ ଉପାଧି ବିଶେଷ
ମାହାବାର୍ତ୍ତିକ—ବିଂ. କାତ୍ୟାୟନ କୃତ ପାଣିନିଙ୍କର ବାର୍ତ୍ତିକଙ୍କ ।
ମାହାବ୍ରତୀ—ବିଂ. ପାଶୁପତବ୍ରତାବଲମ୍ବୀ, ( ବି ) ଯଜ୍ଞମୀମାଂସା, ପାଶୁପତଶାସ୍ତ୍ର ସଂହିତା ।
ମାହାବ୍ରତୀୟ—ବିଂ. ମହାବ୍ରତ ସମ୍ବନ୍ଧୀୟ ।
ମାହି—ଯା. ବି. ମାସ, (ଗ୍ରା.ବି) ଦକ୍ଷିଣ-ଭାରତର ମାଲବାର ଉପକୂଳସ୍ଥ ଫ୍ରାନ୍ସ-ଅଧିକୃତ ବନ୍ଦର ।
ମାହିକ—ବି. ଜାତି ବିଶେଷ ।
ମାହିନ—ବି. (ମହ+ଇନ) ରାଜଧାନୀ, ସାମ୍ରାଜ୍ୟ, ରାଜ୍ୟ, (ବିଂ) ମହନୀୟ,ପୂଜ୍ୟ, ଶ୍ରେଷ୍ଠ, ପ୍ରବୃଦ୍ଧ ।
ମାହିନା—ଯା.ବି.ବେତନ,ମାସିକବେତନ
ମାହିନାଦାର୍—ଯା. ବିଂ. ଯେ ବେତନ ଦିଏ, ଯେ ପ୍ରତିମାସରେ ବେତନ ଦିଏ
ମାହିୟାନା—ଯା. ବି. ବେତନ, ମାସିକ ବେତନ ।
ମାହିର—ପୁଂ. ବି. (ମହ+ଇର) ଇନ୍ଦ୍ର, ମହେନ୍ଦ୍ର, ଦେବରାଜ ।
ମାହିଷ—ବି.(ମହିଷ+ଅ) ମହିଷ, (ସ୍ତ୍ରୀ) ମହିଷୀ, (ବିଂ) ମହିଷ ସମ୍ବନ୍ଧୀୟ, ମହିଷ ଠାରୁ ପ୍ରାପ୍ତ ।
ମାହିଷକ—ପୁଂ. ବି.ମଇଁଷିଚରୁଆ ଗଉଡ଼
ମାହିଷଘୃତ—କ୍ଲୀ. ବି. ମଇଁଷିଘିଅ ।
ମାହିଷଦଧି—କ୍ଲୀ. ବି. ମଇଁଷି ଦହି ।
ମାହିଷନବନୀତ—କ୍ଲୀ.ବି. ମଇଁଷି ଦୁଗ୍ଧର ନବନୀ ।
ମାହିଷମୂତ୍ର—କ୍ଲୀ. ବି. ମଇଁଷିମୂତ୍ର ।
ମାହିଷବଲ୍ଲରୀ—ସ୍ତ୍ରୀ. ବି. କୃଷ୍ଣବୃଦ୍ଧଦାରକ
ମାହିଷବଲ୍ଲିକା—ସ୍ତ୍ରୀ.ବି. ଶ୍ୱେତବୃଦ୍ଧଦାରକ
ମାହିଷବଲ୍ଲୀ—ସ୍ତ୍ରୀ. ବି. ମଧୁସୋମଲତା ।
ମାହିଷାକ୍ଷ—ବି. ମହିଷାକ୍ଷ ଗୁଗ୍ଗୁଳୁ ।
ମାହିଷିକ—ବି. (ମହିଷୀ+ଇକ)ମହିଷୀ-ପତି, ବ୍ୟଭିଚାରିଣୀସ୍ତ୍ରୀର ପତି, ଯେଉଁ ସ୍ୱାମୀ ବ୍ୟଭିଚାରିଣୀ ପତ୍ନୀର ପ୍ରତି ଅନୁରକ୍ତ, ମହିଷୋପଜୀବୀ,ବ୍ୟଭିଚାରିଣୀସ୍ତ୍ରୀର ଉପାର୍ଜିତ ଧନରେ ଯେ ବଞ୍ଚେ ।
ମାହିଷିକା—ସ୍ତ୍ରୀ. ବି. ନଦୀବିଶେଷ ।
ମାହିଷେୟ—ପୁଂ. ବି. ଜଣେ ପ୍ରାଚୀନ ବୈୟାକରଣ,ମହିଷୀର ଗର୍ଭଜାତ ସୁତ ଜାତି ।
ମାହିଷ୍ମତୀ—ସ୍ତ୍ରୀ. ବି. ରାଜା ଶିଶୁପାଳଙ୍କ ରାଜଧାନୀ, ନର୍ମଦାତୀରସ୍ଥ ନଗରୀ-ବିଶେଷ, ଏହାର ବର୍ତ୍ତମାନ ନାମ ଚୂଲି-ମହେଶ୍ୱର ।
ମାହିଷ୍ୟ—ବିଂ. (ମହିଷ+ଯ)ମହିଷ ସମ୍ବନ୍ଧୀୟ, ମାହିଷ, (ବି. ମହିଷୀ+ଯ)ବର୍ଣ୍ଣ-ସଙ୍କର ଜାତି ବିଶେଷ, ବୈଶ୍ୟାଗର୍ଭରେ କ୍ଷତ୍ରିୟ ଔରସଜାତ ଜାତି ବିଶେଷ, (ପ୍ରା.ମେଦି.ବି)ହାଳିକ, କୈବର୍ତ୍ତଜାତୀୟ ଲୋକ ।
ମାହୁତ(ନ୍ତ)—ଗ୍ରା. ବି. (ସଂ-ମହାପାତ୍ର) ହସ୍ତୀଚାଳକ,ଗଜାରୋହୀ ସୈନ୍ୟ,କ୍ଷତ୍ରିୟଙ୍କ ବଂଶୋପାଧି ବିଶେଷ ।
ମାହୁତୀ—ଗ୍ରା. ବି. ଗଜସୈନ୍ୟ ବା ଗଜାରୋହୀ ସୈନ୍ୟ ।
ମାହେ—ଗ୍ରା. ଅବ୍ୟ.ଅମୁକମାସରେ,(ଗ୍ରା.ବି) ମାସ ।
ମାହେନ୍ଦ୍ର—ବିଂ. ( ମହେନ୍ଦ୍ର+ଅ ) ଇନ୍ଦ୍ର-ସମ୍ବନ୍ଧୀୟ, (ସ୍ତ୍ରୀ) ମାହେନ୍ଦ୍ରୀ, (ବି) ଶୁଭ-ଦଣ୍ଡ ବିଶେଷ ।
ମାହେନ୍ଦ୍ରଜ—ପୁଂ. ବି. ଜୈନମାନଙ୍କର ଦେବତା ବିଶେଷ ।
ମାହେନ୍ଦ୍ରଦଣ୍ଡ—ବି. (କ.ଧା) ମାହେନ୍ଦ୍ର-ଯୋଗ ଘଟିତ ସମୟ ।
ମାହେନ୍ଦ୍ରବାରୁଣୀ—ସ୍ତ୍ରୀ. ବି.ନଦୀବିଶେଷ ।
ମାହେନ୍ଦ୍ରବେଳ—ଗ୍ରା. ବି.ମାହେନ୍ଦ୍ରଦଣ୍ଡ ଦେଖ ।
ମାହେନ୍ଦ୍ରୀ—ସ୍ତ୍ରୀ. ବି. (ମାହେନ୍ଦ୍ର+ଅ+ଈ) ଶଚୀ, ଇନ୍ଦ୍ରାଣୀ, ଗାଈ, ପୂର୍ବଦିଗ, ମହାକାଳଲତା,ସ୍କନ୍ଦାନୁଚର ମାତୃଭେଦ, ସପ୍ତମାତୃକା ଭେଦ, ଐନ୍ଦ୍ରୀଶକ୍ତି ।
ମାହେୟ—ବିଂ. (ମହୀ+ଏୟ) ମହୀ ବା ପୃଥିବୀ ସମ୍ବନ୍ଧୀୟ, ମୃଣ୍ମୟ, (ବି) ମଙ୍ଗଳ-ଗ୍ରହ, ନରକାସୁର, ପ୍ରବାଳ, ( ସ୍ତ୍ରୀ ) ମାହେୟୀ ।
ମାହେୟୀ—ସ୍ତ୍ରୀ. ବି. ( ମାହେୟ+ଈ ) ଗାଭୀ, ଗାଈ, ସୀତା, ନଦୀ ବିଶେଷ ।
ମାହେଲ—ପୁଂ. ବି. ଗୋତ୍ର ପ୍ରବର୍ତ୍ତକ ଋଷି ବିଶେଷ ।
ମାହେଶ—ପୁଂ. ବିଂ. ( ମହେଶ+ଅ ) ମହେଶସମ୍ବନ୍ଧୀୟ, ( ବି ) ବ୍ୟାକରଣ ବିଶେଷ । [ ଦୁର୍ଗା ।
ମାହେଶୀ—ସ୍ତ୍ରୀ. ବି. (ମହେଶ+ଅ+ଈ)
ମାହେଶ୍ୱର—ବିଂ. ( ମହେଶ୍ୱର+ଅ ) ମହେଶ୍ୱର ସମ୍ବନ୍ଧୀୟ, (ସ୍ତ୍ରୀ)ମାହେଶ୍ୱରୀ, (ବି) ଉପପୁରାଣ ବିଶେଷ, ଯଜ୍ଞଭେଦ, ଶିବୋପାସକ ବିଶେଷ, ଅସ୍ତ୍ରବିଶେଷ, ସ୍ୱର ଓ ବ୍ୟଞ୍ଜନମାଳା ସୂଚକ ପାଣିନିଙ୍କ ୧୪ଟି ସୂତ୍ର,ସଭା ନାଟକ ଗ୍ରନ୍ଥ ପ୍ରଣେତା
ମାହେଶ୍ୱରଧୂପ—ବି. ଜ୍ୱରାଧିକାରୋକ୍ତ ଧୂପୌଷଧ ।
ମାହେଶ୍ୱରୀ—ସ୍ତ୍ରୀ. ବି. ( ମହେଶ୍ୱର+ଅ+ଈ) ଯବତିକ୍ତା, ଦୁର୍ଗା, ମାତୃଭେଦ, ପୀଠସ୍ଥାନବିଶେଷ, ଭୂଇଁନିମ୍ବ, ନଦୀ-ବିଶେଷ ।
ମାହୋୟାରୀ—ଯା.ବି. ମାସୁଆର ଦେଖ ।
ମାହ୍ମୁଦ—ଯା. ବି. ପ୍ରସିଦ୍ଧ ମୁସଲମାନ୍ ସମ୍ରାଟ୍ ।
ମାହ୍ଲା—ପ୍ରା. (ସମ୍ବ) ବି. (ଇତର ଜନ ବ୍ୟବହୃତ) ପୋଡ଼ୁଅ ।
ମାହ୍ଳା—ପ୍ରା.(ମେଦି)ବି.ନଡ଼ିଆ ସଢ଼େଇ ।
ମାହ୍ଳୁଆ—ପ୍ରା. (ବାଲେ) ବି. ଶାଳିଆ-ପତନ, ଗନ୍ଧମାର୍ଜାର ।
ମି—(ଧାତୁ) କ୍ଷେପାରେ ।
ମିଂ—ଚୀନ ଦେଶର ଗୋଟିଏ ଜାତି ।
ମିଆଁ—ଯା.ପୁଂ.ବି. ମୁସଲମାନମାନଙ୍କର ସମ୍ମାନାର୍ଥକ ଉପାଧିବିଶେଷ,ମୁସଲମାନ ।

ମିଆଁଉଁ—ଗ୍ରା. ଅବ୍ୟ. ବିରାଡ଼ି ବୋବାଇବାର ଶବ୍ଦ ।

ମିଆଦ(ଧ)—ଯା. ବି. ନିର୍ଦ୍ଧାରିତ ସମୟ, କାରାବନ୍ଧନ, କାରାବନ୍ଧନର ସମୟ, କାରାଦଣ୍ଡାଦେଶ ।

ମିଆଦି—ଯା.ବି°.ମିଆଦଘଟିତ,ଯହିଁରେ କାଳ ନିର୍ଦ୍ଦିଷ୍ଟ ଥାଏ, କାରାଦଣ୍ଡରେ ଦଣ୍ଡିତ, (ଯା.ବି) ପକ୍ଷମାନଙ୍କୁ ଅଦାଲତ ତରଫରୁ ତଲବ କରିବାର ନୋଟିସ ଚିଠି, ଯାହାକି ପକ୍ଷମାନଙ୍କୁ ଦେବାକୁ ହୁଏ, ପିଆଦାଖରଚ ।

ମିଆନ—ଯା.ବି.ତରବାରିଆଦିର ଖୋଳ, ଛୁରି, ଗ୍ରେଗ ।

ମିଁ—ଗ୍ରା.ଅବ୍ୟ. ଛେଳିଛୁଆଙ୍କର ଓ ଅତି ଦୁର୍ବଳ ବ୍ୟକ୍ତିଙ୍କର କ୍ଷୀଣଧ୍ୱନି ।

ମିମିଁଆ—ଗ୍ରା. ବି°. ମିଁମିଁ କ୍ଷୀଣ ଶବ୍ଦ କରୁଥିବା, ଅତିକ୍ଷୀଣ ଓ ଦୁର୍ବଳ, (ଗ୍ରା, ବି) ଛେଳିଙ୍କ ରୋଗବିଶେଷ ।

ମିଁମିଁହେବା—ଗ୍ରା.କ୍ରି.ଅତି ଦୁର୍ବଳ ହୋଇ କ୍ଷୀଣ ଧ୍ୱନି କରିବା, ଅତିଦୁର୍ବଳ ଓ କ୍ଷୀଣହେବା,(ଛେଳିଛୁଆ)ବୋବାଇବା ।

ମିକା(କେ)ଡ଼ୋ—ଯା. ବି. ଯାପାନ ରାଜ୍ୟର ସମ୍ରାଟଙ୍କ ଉପାଧି ।

ମିକ୍ଷୁକ—ପୁଂ.ବି.ବୌଦ୍ଧ ସ୍ଥବିରବିଶେଷ ।

ମିଙ୍ଗ୍ରି—ଯା. ବି. ମିସରି, ମିଶ୍ରୀ ।

ମିଛ—ଗ୍ରା.ବି(ସଂ-ମିଥ୍ୟା)ଅନୃତ,ଅସତ୍ୟ, ମିଥ୍ୟାକଥା, ଅବାସ୍ତବ ବିଷୟ, (ଗ୍ରା. ବି°) ଅସତ୍ୟ, ଲୋକଙ୍କୁ ଦେଖାଇବା ପାଇଁ କରାଯିବା, ବାହ୍ୟ, ଅବାସ୍ତବ, ଅମୂଳକ, ବୃଥା, ନିଷ୍ଫଳ ।

ମିଛକଥା—ଗ୍ରା. ବି. ଅବାସ୍ତବ ବିଷୟ, ଅସତ୍ୟ କଥା ।

ମିଛକହିବା--ଗ୍ରା.କ୍ରି.ଅସତ୍ୟ କଥା କହିବା

ମିଛମାୟା—ଗ୍ରା.ବି.କପଟ ସ୍ନେହ,କୁହୁକ, ଅସାର ମୋହ, (ଗ୍ରା.ବି°) ମାୟାପୂର୍ଣ୍ଣ, ଅବାସ୍ତବ, ଅସାର ।

ମିଛରେ—ଗ୍ରା. କ୍ରି.ବି°. ଅନର୍ଥକ, ବୃଥା, ମିଥ୍ୟା ଘଟଣା ରୂପେ, ମାୟାପୂର୍ଣ୍ଣ ଭାବରେ, ନିଷ୍ଫଳ ଭାବରେ ।

ମିଛରେମିଛରେ—ଗ୍ରା. କ୍ରି. ବି°. ଅନର୍ଥକ, ବୃଥା, ନିଷ୍ଫଳରେ, ମିଥ୍ୟାକଥା କହି ହୃଦୟରେ ଅନୁଭବ ନ କରି ଦେଖାଇବା ପ୍ରକାରରେ, ବିନାକାରଣରେ

ମିଛସତ—ଗ୍ରା ବି.ମିଥ୍ୟାକଥା ଓ ସତ୍ୟକଥା, ଚୁଗୁଲି, ପରୋକ୍ଷରେ ପରନିନ୍ଦା, (ବି°)ମିଥ୍ୟା ବା ସତ୍ୟ(କଥା ବା ବିଷୟ), ଅବାସ୍ତବ ଓ ବାସ୍ତବ ।

ମିଛସତଲଗାଇକହିବା—ଗ୍ରା. କ୍ରି. ପରନାମରେ ସତ୍ୟ ଓ ମିଥ୍ୟା ଲଗାଇ ଦୁର୍ନାମ ବା ଚୁଗୁଲି କରିବା ।

ମିଛସାକ୍ଷୀ—ଗ୍ରା.ବି. ମିଥ୍ୟା ସାକ୍ଷ, ମିଥ୍ୟାସାକ୍ଷଦାତା ।

ମିଛୁଆ—ଗ୍ରା.ପୁଂ.ବି°. ମିଥ୍ୟାବାଦୀ ।

ମିଜ୍‌ରାବ୍—ଯା. ବି. ସେତାର ବଜାଇବା ପାଇଁ ଆଙ୍ଗୁଠିରେ ପିନ୍ଧାଯିବା ତାରର କୋଣବିଶିଷ୍ଟ ମୁଦିଆ ।

ମିଜାଜ୍—ଯା. ବି. ସ୍ୱଭାବ, ମନ, ଅନ୍ତଃକରଣ, ମନୋଭାବ, ପ୍ରକୃତି ।

ମିଞ୍ଚଡ଼(ଡ଼ା)—ଗ୍ରା. ପୁଂ.ବି°. ଖେଚଡ଼ା, ଦୁଷ୍ଟ, ଅତି ଗ୍ରେଷ୍ଟ (ବାଳକ) ।

ମିଞ୍ଚକ—ଗ୍ରା. ବି. ବାଳକ ।

ମିଞ୍ଜିମିଞ୍ଜି—ଗ୍ରା. କ୍ରି.ବି°. ଆଖିକୁ ମିଟିମିଟି କରିବା ପ୍ରକାରରେ, ଦୁକ୍‌ଦୁକ୍, ଆଲୋକ କ୍ଷୀଣଭାବରେ ଜଳିବା ପ୍ରକାରେ

ମିଟ୍‌ମାଟ୍—ଗ୍ରା. ବି. (ସଂ-ମିଳିତ)ନିଷ୍ପତ୍ତି, ବିବାଦର ମୀମାଂସା,ବିବାଦର ଆପୋସରେ ନିଷ୍ପତ୍ତି, ମେଳମାଳ ।

ମିଟ୍(ଟି)ମିଟ୍(ଟି)—ଗ୍ରା. ଅବ୍ୟ. ଆଖିକୁ ଉପର୍ଯ୍ୟୁପରି ମେଲି କରିବା,ଜୁଳୁଜୁଳୁ କରି ଧୀରେ ଧୀରେ ଆଖି ପିଟୁଳିବା ।

ମିଟ୍‌ମିଟିଆ—ଗ୍ରା.ବି°.ଅନୁଜ୍ଜ୍ୱଳ ବା କ୍ଷୀଣଭାବରେ ଜଳୁଥିବା (ଆଲୋକ) ।

ମିଟା(ଟେ)ଇବା—ଗ୍ରା.କ୍ରି.ବିବାଦ ମେଣ୍ଟାଇବା, ଦୁଇ ପକ୍ଷକୁ ମିଳାଇବା, ବିବାଦ ନିଷ୍ପତ୍ତି କରିବା ।

ମିଟାମିଟି—ଗ୍ରା. ବି. ମିଟ୍‌ମାଟ୍ ଦେଖ ।

ମିଟିଆଣୀ—ଗ୍ରା. ବି. ପୁରୀ ଅଠରନଳା ତଳେ ପ୍ରବାହିତ ନଦୀବିଶେଷ ।

ମିଟିକା—ଗ୍ରା. ବି. ପଲକ, ଆଖିପିଛଡ଼ା, ଆଖିଠାର ।

ମିଟିବା—ଗ୍ରା. ବି. ମେଣ୍ଟିବା, ମୀମାଂସା ହେବା, ନିର୍ବାହିତ ହେବା, ସଫଳୀକୃତ ହେବା ।

ମିଟିଯିବା—ଗ୍ରା. କ୍ରି.(ବିବାଦ ବା ଅଡ଼ୁଆ) ଶେଷ ନିଷ୍ପତ୍ତି ହେବା, (ମନର ଇଚ୍ଛା) କାର୍ଯ୍ୟରେ ପରିଣତ ହେବା ।

ମିଟୁକୁଣିଆ—ଗ୍ରା.ବି. ବନ୍ୟବୃକ୍ଷବିଶେଷ ।

ମିଠ—ଗ୍ରା. ବି°. ମିଠା ଦେଖ ।

ମିଠା—ଗ୍ରା.ବି°. (ସଂ-ମିଷ୍ଟ) ମିଷ୍ଟ, ମଧୁର, କୋମଳ, ମୃଦୁ, ଶ୍ରୁତିମଧୁର, ସୁସ୍ୱାଦୁ, ମନମୋହକର,କଡ଼ା ହୋଇ ନ ଥିବା, ଫିକା (ଗୁଣ୍ଡିଆଦି),(ବି) ମିଷ୍ଟତା,ମଧୁରସ୍ୱାଦ, କଣ୍ଠମଧୁରତା, କୋମଳତା ।

ମିଠା(ଠେ)ଇ—ଗ୍ରା. ବି. ମିଷ୍ଟାନ୍ନ, ମିଷ୍ଟଖାଦ୍ୟ, (ବି°) ସୁମିଷ୍ଟ ।

ମିଠାଖଟା—ଗ୍ରା. ବି°. ମିଷ୍ଟ ଓ ଅମ୍ଳ ।

ମିଠାଗନ୍ଧ--ଗ୍ରା.ବି.ମଧୁର ମନୋହର ଗନ୍ଧ ।

ମିଠାପାନ—ଗ୍ରା.ବି.କଡ଼ା ଗୁଣ୍ଡିଆଦି ଦିଆଯାଇ ନ ଥିବା ଖିଲପାନ ।

ମିଠାବିଷ—ଗ୍ରା.ବି.ମହୁରା ନାମକ ବିଷ ।

ମିଠାମାଛ—ଗ୍ରା. ବି. ମଧୁରମାଛ, ମଧୁର ଜଳରେ ଥିବା ମାଛ ।

ମିଠାଲଗିବା—ଗ୍ରା. କ୍ରି.(କୌଣସି ବସ୍ତୁ) ସୁସ୍ୱାଦୁ ବୋଧହେବା, ମଧୁର ଲାଗିବା ।

ମିଠାଳିଆ—ଗ୍ରା. ବି°. ଈଷତ୍ ମିଷ୍ଟ ବା ମଧୁର । [ କମଳା ।

ମିଠାଲେମ୍ବୁ—ଗ୍ରା. ବି. ମିଷ୍ଟରସଯୁକ୍ତ

ମିଡ—ପ୍ରା. (ବାଲେ) ବି. ରୋହିକାତୀୟ ଅତି ବୃହତ୍ ମତ୍ସ୍ୟବିଶେଷ, ମିରିକାଲାମାଛ ।

ମିଣିପ—ଗ୍ରା. ପୁଂ. ବି. ମନୁଷ୍ୟ, ପୁରୁଷ, ଅଣ୍ଡିରା, ମର୍ଦ୍ଦ, ସ୍ୱାମୀ ।

ମିଣିପେ—ଗ୍ରା. ବ. ପୁରୁଷମାନେ ।

ମିଣ୍ଡେଇ—ଗ୍ରା. ବି. ବେଙ୍ଗଲା ।

ମିଣ୍ଣିଣ—ବି°. ଅସ୍ପଷ୍ଟ ଭାବେ ନାକରେ କଥା କହୁଥିବା ।

ମିତ—ବି°.(ମା+ସଂ.ତ)ପରିମିତ,ଖଣ୍ଡିତ,

ପରିଚ୍ଛିନ୍ନ, ସ୍ୱଳ୍ପ, ଜ୍ଞାତ, ସମ୍ମିତ, ଅନୁମିତ, (ମି + ମିଂ.ତ) କ୍ଷିପ୍ତ, (ଗ୍ରା ପୁଂ. ସ୍ତ୍ରୀ.ବି) ମିତ୍ର, ସୁହୃତ୍, ବନ୍ଧୁ, ନାମର ସାଦୃଶ୍ୟ ଯୋଗୁଁ ଧର୍ମ ଦୃଷ୍ଟିରେ ବନ୍ଧୁ ହୋଇଥିବା ଦୁଇବ୍ୟକ୍ତି ।

**ମିତଙ୍ଗମ**—ପୁଂ. ସ୍ତ୍ରୀ. ବି. (ମିତଂ + ଗମ୍ + ଅ) ଗଜ, (ବିଂ) ପରିମିତଗାମୀ, ମୃଦୁଗାମୀ, (ସ୍ତ୍ରୀ) ମିତଙ୍ଗମୀ ।

**ମିତଣୀ**—ଗ୍ରା. ସ୍ତ୍ରୀ. ବି. (ଦେ-ମିତ୍ର)ନାମ ସାଦୃଶ୍ୟଥିବା ସ୍ତ୍ରୀ, (ପୁରୁଷ ପକ୍ଷରେ) ଆପଣାର ମିତଙ୍କ ସ୍ତ୍ରୀ,(ସ୍ତ୍ରୀପକ୍ଷରେ)ସଖୀ. ସ୍ତ୍ରୀ, ଭଗିନୀ ।

**ମିତଦ୍ରୁ**—ପୁଂ.ବି. (ମିତ + ଦ୍ରୁ + କ.ଉ) ସମୁଦ୍ର, (ବିଂ) ପରିମିତଗାମୀ ।

**ମିତଧ୍ୱଜ**—ପୁଂ. ବି. ରାଜବିଶେଷ ।

**ମିତଭାଷିତା**—ବି. (ମିତଭାଷିନ୍ + ତା) ପରିମିତ ଭାଷଣ, ( ପୁଂ.ବିଂ.କ.ତ୍ରି ) ବିବେଚନାପୂର୍ବକ ବକ୍ତା ।

**ମିତଭାଷୀ**—ପୁଂ. ବିଂ. (ମିତ + ଭାଷ୍ + କ.ଇନ୍) ସ୍ୱଳ୍ପଭାଷୀ, ଯେ ବେଶି କଥା କହେନାହିଁ, (ସ୍ତ୍ରୀ) ଭାଷିଣୀ ।

**ମିତଭୁକ୍**--ପୁଂ.ବିଂ(ମିତ + ଭୁଜ୍ + କ୍ୱିପ୍) ଯେ ପରିମିତ ଆହାର କରେ ।

**ମିତଭୁକ୍ତ**—ବିଂ.ପରିମିତ ଭାବରେ କୃତାହାର ।

**ମିତଭୋଜନ**—ବି. (କ.ଧା) ମିତାହାର ଦେଖ, (ବିଂ.ବ.ବ୍ରୀ) ମିତଭୁକ୍ ଦେଖ, (ସ୍ତ୍ରୀ) ଭୋଜନା ।

**ମିତଭୋଜୀ**—ପୁଂ. ବିଂ. (ମିତ + ଭୁଜ୍ + କ.ଇନ୍)ପରିମିତ ଭୋଜନକାରୀ,ଅଳ୍ପାହାରୀ, (ସ୍ତ୍ରୀ) ଭୋଜିନୀ ।

**ମିତମତି**—ବିଂ(ବ.ବ୍ରୀ)ଅଳ୍ପମତି, ସଙ୍କୀର୍ଣ୍ଣ ବୁଦ୍ଧିବିଶିଷ୍ଟ ।

**ମିତମ୍ପଚ**—ପୁଂ.ବିଂ. (ମିତଂ + ପଚ୍ + କ.ଅ) ବ୍ୟୟକୁଣ୍ଠ, କୃପଣ, ପରିମିତପାକକାରୀ, (ସ୍ତ୍ରୀ) ମିତମ୍ପଚା ।

**ମିତରାବୀ**—[illegible] ବିଂ. ଅଳ୍ପ ଶବ୍ଦକାରୀ, ପରିମିତ [illegible] (ସ୍ତ୍ରୀ) ରାବିଣୀ ।

**ମିତରେତଃ**—[illegible] ପରିମିତ ବୀର୍ଯ୍ୟଶାଳୀ ।

**ମିତବଚନ**—ବି ଓ ବିଂ.ମିତବାକ୍ ଦେଖ. (ସ୍ତ୍ରୀ) ମିତବଚନା ।

**ମିତବାକ୍**--ପୁଂ.ବିଂ.(ବ.ବ୍ରୀ)ପରିମିତଭାଷୀ (ସ୍ତ୍ରୀ) ମିତବାଗ୍,(ବି—କ.ଧା) ପରିମିତ ଭାଷଣ, ଅଳ୍ପକଥା, ହିତକଥା ।

**ମିତବାକ୍ୟ**—ବି ଓ ବିଂ.ମିତବାକ୍ ଦେଖ ।

**ମିତବାଦ**—ବି ଓ ବିଂ.ମିତବଚନ ଦେଖ ।

**ମିତବାଦିତା**—ବି. (ମିତବାଦିନ୍ + ତା) ପରିମିତ ଭାଷଣର ଅବସ୍ଥା ।

**ମିତବାଦୀ**—ପୁଂ.ବିଂ. (ପରିମିତ + ବାଦିନ୍) ପରିମିତଭାଷୀ, ଯେ ଅଳ୍ପ କଥା କହେ, (ସ୍ତ୍ରୀ) ବାଦିନୀ ।

**ମିତବ୍ୟୟ**—ବି.(କ.ଧା) ପରିମିତ ବ୍ୟୟ, (ପୁଂ.ବିଂ-ବ.ବ୍ରୀ) ମିତବ୍ୟୟୀ ଦେଖ, (ସ୍ତ୍ରୀ) ମିତବ୍ୟୟା ।

**ମିତବ୍ୟୟୀ**-ପୁଂ.ବିଂ. (ମିତବ୍ୟୟ + ଇନ୍) ପରିମିତ ବ୍ୟୟକାରୀ, ଯେ ଅଳ୍ପ ଖର୍ଚ୍ଚ କରେ, (ସ୍ତ୍ରୀ) ମିତବ୍ୟୟିନୀ ।

**ମିତଶାୟୀ**—ପୁଂ.ବିଂ. ଅଳ୍ପ ନିଦ୍ରାଶୀଳ, ଯେ ଅଳପ ଶୁଏ, (ସ୍ତ୍ରୀ) ଶାୟିନୀ ।

**ମିତହାସିନୀ**—ସ୍ତ୍ରୀ.ବିଂ. (ମିତ + ହସ୍ + କ.ଇନ୍) ଈଷତ୍ ହାସ୍ୟକାରିଣୀ,ସଂଯତ ଭାବେ ହାସ୍ୟଶୀଳା(ସ୍ତ୍ରୀ),(ପୁଂ)ମିତହାସୀ

**ମିତାକ୍ଷର**--ପୁଂ.ବିଂ. (ବ.ବ୍ରୀ) ମିତବାକ୍ ଦେଖ, (ବି-କ.ଧା) ମିତବାକ୍ୟ ଦେଖ, (ସ୍ତ୍ରୀ) ମିତାକ୍ଷରା ।

**ମିତାକ୍ଷରା**-ସ୍ତ୍ରୀ.ବି.ହିନ୍ଦୁ ସ୍ମୃତି ଗ୍ରନ୍ଥବିଶେଷ

**ମିତାକ୍ଷରା**—ବି.ଅକ୍ଷର ବିଶେଷର ଉଚ୍ଚାରଣ ପରିବର୍ତ୍ତନପୂର୍ବକ ବ୍ୟବହୃତ ସାଙ୍କେତିକ ବାକ୍ୟ, ଶିଠାର ।

**ମିତାଚାର**—ପୁଂ.ବି. (କ.ଧା) ପରିମିତ ଆଚାର, ସଂଯତ ବ୍ୟବହାର, (ବିଂ) (ବ ବ୍ରୀ) ମିତାଚାରୀ ଦେଖ ।

**ମିତାଚାରୀ**—ପୁଂ.ବିଂ.(ମିତାଚାର + ଇନ) ପରିମିତାଚରଣବିଶିଷ୍ଟ, ଯାହାର ବ୍ୟବହାର ସୁସଂଯତ,(ସ୍ତ୍ରୀ) ମିତାଚାରିଣୀ ।

**ମିତାର୍ଥ**— ପୁଂ.ବି. (କ.ଧା) ପରିମିତାର୍ଥ, ପ୍ରକୃତାର୍ଥ,(ବ.ବ୍ରୀ)ପରିମିତଭାଷୀ ଦୂତବିଶେଷ, (ବିଂ-ବ.ବ୍ରୀ)ପରିମିତାର୍ଥଯୁକ୍ତ, ଯେଉଁ ବାକ୍ୟର ଅର୍ଥ ସୀମାବଦ୍ଧ,(ସ୍ତ୍ରୀ) ମିତାର୍ଥା । [ ଦେଖ ।

**ମିତାର୍ଥକ**—ପୁଂ. ବି ଓ ବିଂ. ମିତାର୍ଥ

**ମିତାଶନ**--ବି.(କ.ଧା)ପରିମିତ ଆହାର, (ପୁଂ.ବିଂ-ବ.ବ୍ରୀ)ପରିମିତ ଭୋଜୀ,(ସ୍ତ୍ରୀ) ମିତାଶନା ।

**ମିତାଶିତା(ତ୍ୱ)**—ବି.ପରିମିତ ଭୋଜିତା ।

**ମିତାଶୀ**—ପୁଂ.ବିଂ. (ମିତ + ଅଶ୍ + କ. ଇନ୍) ମିତଭୁକ୍ ଦେଖ ।

**ମିତାହାର**—ବି. (କ.ଧା) ପରିମିତ ଭୋଜନତା, ଯଥାର୍ଥ ଭୋଜନ ।

**ମିତାହାରୀ**—ପୁଂ. ବିଂ. (ମିତାହାର + ଇନ୍) ମିତଭୁକ୍ ଦେଖ, (ସ୍ତ୍ରୀ) ମିତାହାରିଣୀ ।

**ମିତି**—ବି.(ମା + ଭା.ତି) ମାପ,ପରିମାଣ, (ଣ.ତି) ଜ୍ଞାନ, (ମିଂ.ତି) ପ୍ରମାଣ, ଅବଚ୍ଛେଦ, ସୀମା, ନିର୍ଦ୍ଦିଷ୍ଟ ଧନ ବା ମୁଦ୍ରା, ନିର୍ଦ୍ଦିଷ୍ଟ ତିଥି ବା ତାରିଖ, (ଭା.ତି) କ୍ଷେପଣ, (ଗ୍ରା.ଅବ୍ୟ) ମିତିକା ଦେଖ ।

**ମିତିକା**—ଗ୍ରା.ଅବ୍ୟ. ପରି, ପ୍ରକାରେ, (ଯଥା—ଏମିତିକଆ, କେମିତିକଆ) ।

**ମିତିନ୍**—ପ୍ରା.(ହିନ୍ଦି)ଅବ୍ୟ. ପରି ।

**ମିତୋକ୍ତି**—ସ୍ତ୍ରୀ.ବି.ଅଳ୍ପ ବାକ୍ୟ ପ୍ରୟୋଗ, (ପୁଂ.ବିଂ) ଅଳ୍ପବାକ୍ୟବକ୍ତା ।

**ମିତ୍ର**—କ୍ଳୀ.ବି. (ମିଦ୍ + ତ୍ର)ବନ୍ଧୁ,ସୁହୃତ୍ ବୟସ୍ୟ, ଅନ୍ତରଙ୍ଗ ଲତା, ଅନୁକୂଳ, (ପୁଂ.ବି) ସୂର୍ଯ୍ୟ, ଜ୍ୟୋତିଷୋକ୍ତ ନକ୍ଷତ୍ରର ଯୋଗବିଶେଷ, ମରୁତ୍ ଗଣର ଅନ୍ୟତମ,ବଶିଷ୍ଠଙ୍କ ଊର୍ଜାଗର୍ଭଜାତ ପୁତ୍ରବିଶେଷ, (ଗ୍ରା.ବି) ବଙ୍ଗଦେଶୀ କାୟସ୍ଥ ବଂଶଗତ ଉପାଧିବିଶେଷ, (ଗ୍ରା.ବିଂ) ସ୍ନିଗ୍ଧ, ପ୍ରିୟ ।

**ମିତ୍ରକ**—ବି. (ମିତ୍ର + କ)ମିତ୍ରଶବ୍ଦାର୍ଥ ।

**ମିତ୍ରକର୍ମ**—କ୍ଳୀ.ବି. ବନ୍ଧୁର କାର୍ଯ୍ୟ ।

**ମିତ୍ରକାମ**—ପୁଂ.ବିଂ. ବନ୍ଧୁସଙ୍ଗ ଲାଭେଚ୍ଛୁ ।

**ମିତ୍ରକାର୍ଯ୍ୟ**—କ୍ଳୀ. ବି. ବନ୍ଧୁତ୍ୱ, ମିତ୍ରତାସ୍ଥାପନ ।

**ମିତ୍ରକୃତ**—ସ୍ତ୍ରୀ.ବି. ମିତ୍ରର କାର୍ଯ୍ୟ ।

**ମିତ୍ରକୃତ୍ୟ**—କ୍ଳୀ.ବି. ମିତ୍ରର କାର୍ଯ୍ୟ ।

ମିତ୍ରକୃ—ପୁଂ. ବିଂ. ମିତ୍ର ସମ୍ବନ୍ଧରେ କ୍ରୂର କର୍ମକାରୀ ।

ମିତ୍ରଗୁପ୍ତ—ବିଂ. ମିତ୍ରଦ୍ୱାରା ରକ୍ଷିତ,(ପୁଂ. ବି) ଦଶକୁମାର ଚରିତ ବର୍ଣ୍ଣିତ ନାୟକ ବିଶେଷ ।

ମିତ୍ରଗ୍ରହ—ବି. ପରସ୍ପର ମିତ୍ର ଭାବାପନ୍ନ କେତେକ ଗ୍ରହ ।

ମିତ୍ରଘାତକ—ପୁଂ. ବିଂ. (ମିତ୍ର+ହନ୍ କ.ଅକ) ମିତ୍ରହତ୍ୟାକାରୀ, ମିତ୍ରଘାତୀ ।

ମିତ୍ରଘ୍ନ—ପୁଂ.ବିଂ. (ମିତ୍ର+ହନ୍+କ.ଅ) ମିତ୍ର ହନନକାରୀ, ବିଶ୍ୱାସଘାତକ,(ବି) ରାକ୍ଷସବିଶେଷ, (ସ୍ତ୍ରୀ) ମିତ୍ରଘ୍ନୀ ।

ମିତ୍ରଜ୍ଞ—ପୁଂ. ବିଂ. ଯଜ୍ଞଦ୍ରବ୍ୟାପହାରୀ ରାକ୍ଷସବିଶେଷ ।

ମିତ୍ରତା(ତ୍ୱ)—ବି.(ମିତ୍ର+ତା,ତ୍ୱ) ବନ୍ଧୁତା ମୈତ୍ର୍ୟ,ସଖ୍ୟ ।

ମିତ୍ରତାର—ବି. ଜ୍ୟୋତଷୋକ୍ତ ନକ୍ଷତ୍ର ଯୋଗବିଶେଷ ।

ମିତ୍ରତୂର୍ଯ୍ୟ—କ୍ଲୀ.ବି. ବନ୍ଧୁବର୍ଗର ଜୟୋଲ୍ଲାସ ।

ମିତ୍ରଦେବ—ପୁଂ.ବି. ମହାଭାରତ ବର୍ଣ୍ଣିତ ଜନୈକ ରାଜା, ଦ୍ୱାଦଶ ମନୁଙ୍କ ପୁତ୍ର, ଆଦିତ୍ୟବିଶେଷ ।

ମିତ୍ରଦ୍ରୋହ—ବି. (ମିତ୍ର+ଦ୍ରୁହ୍+ଘ. ଅ) ବନ୍ଧୁ ପ୍ରତି ଶତ୍ରୁତାଚରଣ ବା ଅନିଷ୍ଟ ସାଧନ ।

ମିତ୍ରଦ୍ରୋହୀ—ପୁଂ. ବିଂ. (ମିତ୍ର+ଦ୍ରୁହ୍ +ଇନ୍) ବନ୍ଧୁର ଶତ୍ରୁତାଚରଣ ବା ଅନିଷ୍ଟ ସାଧନକାରୀ, (ସ୍ତ୍ରୀ) ଦ୍ରୋହିଣୀ ।

ମିତ୍ରଦ୍ୱିଷ୍—ପୁଂ.ବିଂ. ମିତ୍ରର ହିଂସାକାରୀ

ମିତ୍ରଦ୍ୱେଷୀ—ପୁଂ.ବିଂ. (ମିତ୍ର+ଦ୍ୱିଷ୍+ କ.ଇନ୍) ବନ୍ଧୁପ୍ରତି ହିଂସାକାରୀ, (ସ୍ତ୍ରୀ) ମିତ୍ରଦ୍ୱେଷିଣୀ ।

ମିତ୍ରଧର୍ମା—ପୁଂ.ବି.ଯଜ୍ଞ ବିଘ୍ନକାରୀ ଅସୁର ବିଶେଷ । [ କାର୍ଯ୍ୟ ।

ମିତ୍ରଧେୟ—ବି.ଯଜମାନର ଯାଗଲକ୍ଷଣ

ମିତ୍ରଧ୍ରୁକ୍—ପୁଂ.ବିଂ. (ମିତ୍ର+ଧ୍ରୁ+କ୍ୱିପ୍) ମିତ୍ରଦ୍ରୋହୀ, ମିତ୍ରଦ୍ୱେଷୀ ।

ମିତ୍ରପଞ୍ଚକ—କ୍ଲୀ. ବି. ରସେନ୍ଦ୍ରସାର-ସଂଗ୍ରହୋକ୍ତ ପଞ୍ଚଦ୍ରବ୍ୟ, ( ଯଥା-ଘୃତ, ମଧୁ, ଟାଙ୍କଣ,ଗୁଞ୍ଜା, ଗୁଗ୍ଗୁଳୁ) ।

ମିତ୍ରପତି—ପୁଂ.ବି. ମିତ୍ରପ୍ରତିପାଳକ ।

ମିତ୍ରପୂଜା—ବି. ( ୬ତତ୍ପୁ ) ସୂର୍ଯ୍ୟପୂଜା, ସୂର୍ଯ୍ୟଙ୍କର ଆରାଧନା ।

ମିତ୍ରପ୍ରତିଷ୍ଠା—ସ୍ତ୍ରୀ.ବି. ବନ୍ଧୁପ୍ରତି ସମ୍ମାନ, ବନ୍ଧୁ ନିମିତ୍ତ ଅପେକ୍ଷା ।

ମିତ୍ରଭାବ—ବି. ବନ୍ଧୁର ଧର୍ମ, ବନ୍ଧୁତା ।

ମିତ୍ରଭୃତ୍—ପୁଂ.ବିଂ. (ମିତ୍ର+ଭୃ+କ୍ୱିପ୍ ମିତ୍ର ପୋଷଣକାରୀ ।

ମିତ୍ରଭେଦ—ବି. (୬ତତ୍ପୁ) ମିତ୍ର ସମ୍ବନ୍ଧରେ କଳହ ଲଗାଇଦେବା ।

ମିତ୍ରୟୁ—ପୁଂ.ବିଂ. ( ମିତ୍ର+ଯା+ଉ ) ମିତ୍ରବତ୍ସଳ,ଲୋକଯାତ୍ରିକ, (ବିଂ)ଲୋମହର୍ଷଣଙ୍କ ଜନୈକ ଶିଷ୍ୟ ।

ମିତ୍ରରାଜା—ବି.(କ.ଧା) ଯେଉଁ ରାଜାଙ୍କ ସଙ୍ଗେ କୌଣସି ରାଜାଙ୍କର ମିତ୍ରତା ସ୍ଥାପିତ ହୋଇଥାଏ । [ ରାଜ୍ୟ ।

ମିତ୍ରରାଜ୍ୟ—ବି. (୬ତତ୍ପୁ) ମିତ୍ର ରାଜାଙ୍କ

ମିତ୍ରଲବ୍ଧି—ବି. (୬ତତ୍ପୁ) ମିତ୍ରପ୍ରାପ୍ତି ।

ମିତ୍ରଲାଭ—ବି. (୬ତତ୍ପୁ) ମିତ୍ରସହ ସମ୍ମିଳନ, ସୁହୃତ୍ପ୍ରାପ୍ତି, ହିତୋପଦେଶ ଗ୍ରନ୍ଥର ଏକଅଂଶ ।

ମିତ୍ରବଂଶ—ବି. ଭାରତବର୍ଷର ସୁନାମପ୍ରସିଦ୍ଧ ରାଜବଂଶ ।

ମିତ୍ରବତ୍ସଳ-ପୁଂ.ବିଂ. (୬ତତ୍ପୁ) ମିତ୍ରପ୍ରିୟ, ମିତ୍ରପ୍ରତି ସ୍ନେହଯୁକ୍ତ,(ସ୍ତ୍ରୀ)ମିତ୍ରବତ୍ସଳା ।

ମିତ୍ରବତ୍ସଳତା—ବି. ମିତ୍ରପ୍ରତି ଅନୁରକ୍ତି, ମିତ୍ରବାତ୍ସଲ୍ୟ ।

ମିତ୍ରବର—ପୁଂ.ବି.(୬ତତ୍ପୁ)ପ୍ରଧାନ ବନ୍ଧୁ

ମିତ୍ରବର୍ଚ୍ଚସ୍—ପୁଂ.ବି. ଋଷିବିଶେଷ ।

ମିତ୍ରବର୍ଦ୍ଧନ—ବି. ମହାଭାରତୋକ୍ତ ରାଜଭେଦ, ଦସ୍ୟୁବିଶେଷ,(ବିଂ)ବନ୍ଧୁ ବୃଦ୍ଧିକାରୀ ।

ମିତ୍ରବାନ୍—ପୁଂ.ବିଂ.(ମିତ୍ର+ବତ୍)ସୁହୃଦ୍ଯୁକ୍ତ,(ବି) ଅସୁରବିଶେଷ, ଶ୍ରୀକୃଷ୍ଣଙ୍କର ଏକ ପୁତ୍ର ।

ମିତ୍ରବାହୁ—ପୁଂ.ବି. ଦ୍ୱାଦଶ ମନୁଙ୍କର ଏକପୁତ୍ର,ଶ୍ରୀକୃଷ୍ଣଙ୍କର ଏକ ପୁତ୍ର ।

ମିତ୍ରବିଚ୍ଛେଦ—ବି. (୬ତତ୍ପୁ) ମିତ୍ରଙ୍କର ପରସ୍ପର ସଙ୍ଗେ ବିଚ୍ଛେଦ ।

ମିତ୍ରବିଦ୍—ପୁଂ. ବି. (ମିତ୍ରବିଦ୍+କ୍ୱିପ୍) ଗୁପ୍ତଚର ।

ମିତ୍ରବିନ୍ଦ—ବି. ବନ୍ଧୁଲାଭ, ଅଗ୍ନି,ଦ୍ୱାଦଶ ମନୁଙ୍କର ପୁତ୍ରବିଶେଷ, ଶ୍ରୀକୃଷ୍ଣଙ୍କର ଏକପୁତ୍ର ।

ମିତ୍ରବିନ୍ଦା—ବି.(ନାମ) ଶ୍ରୀକୃଷ୍ଣଙ୍କର ଅଷ୍ଟପଟ୍ଟମହିଷୀଙ୍କ ମଧ୍ୟରୁ ଜଣେ ।

ମିତ୍ରବିରୋଧ—ବି. (୬ତତ୍ପୁ)ମିତ୍ରମାନଙ୍କ ମଧ୍ୟରେ ମନୋମାଳିନ୍ୟ ।

ମିତ୍ରବୈର-କ୍ଲୀ.ବି.ବନ୍ଧୁଦ୍ୱେଷ,ମିତ୍ରଦ୍ରୋହ ।

ମିତ୍ରଶକ୍ତି-ବି.(ଆଧୁନିକପ୍ରୟୋଗ)ମିତ୍ରରାଜା

ମିତ୍ରଷଡ଼ଷ୍ଟକ—ବି. ବିବାହ ବିଷୟକ ଜ୍ୟୋତିଷୋକ୍ତ ଶୁଭଯୋଗବିଶେଷ ।

ମିତ୍ରସପ୍ତମୀ—ବି. (ମଧ୍ୟ କ.ଧା)ମାର୍ଗଶିର ଶୁକ୍ଳାସପ୍ତମୀ ।

ମିତ୍ରସଂପ୍ରାପ୍ତି--ବି.ମିତ୍ରସମାଗମ,ମିତ୍ରଲାଭ ।

ମିତ୍ରସହ--ପୁଂ.ବି. କଲ୍ମାଷପାଦପ ରାଜା, ହରିବଂଶବର୍ଣ୍ଣିତ ଜନୈକ ବ୍ରାହ୍ମଣ,(ବିଂ) ମିତ୍ରସହ ବାସକାରୀ ।

ମିତ୍ରସାହ୍ୱୟା-ବି.ସ୍ୱର୍ଗସ୍ଥ ଦେବତାବିଶେଷ ।

ମିତ୍ରସେନ—ପୁଂ. ବି. ଦ୍ୱାଦଶମନୁଙ୍କର ଏକପୁତ୍ର, ଶ୍ରୀକୃଷ୍ଣଙ୍କର ପୁତ୍ରବିଶେଷ, ବୌଦ୍ଧବିଶେଷ ।

ମିତ୍ରସୈନ୍ୟ—ବି. ମିତ୍ରରାଜାଙ୍କ ସେନା ।

ମିତ୍ରହତ୍ୟା—ବି. ବନ୍ଧୁବିନାଶ, ମିତ୍ରକୁ ମାରିପକାଇବା ।

ମିତ୍ରହନ୍ତା—ପୁଂ. ବିଂ. (ମିତ୍ର+ହନ୍+ +କ.ତୃ) ମିତ୍ରଘ୍ନ, ଯେ ମିତ୍ରକୁ ବଧ କରେ ।

ମିତ୍ରହିଂସକ—ପୁଂ. ବିଂ. ବନ୍ଧୁର ହିଂସାକାରୀ । [ ମିତ୍ରଘ୍ନ ।

ମିତ୍ରହା—ପୁଂ.ବିଂ.(ମିତ୍ର+ହନ୍+କ୍ୱିପ୍)

ମିତ୍ରହୂ—ବିଂ. ବନ୍ଧୁର ଆହ୍ୱାନକାରୀ ।

ମିତ୍ରା—ବି. ( ମିତ୍ର+ଆ ) ଶତ୍ରୁଘ୍ନଙ୍କ ମାତା, ସୁମିତ୍ରା, ପରାଶର ଶିଷ୍ୟ ମୈତ୍ରେୟଙ୍କ ଜନନୀ,ମିତ୍ରଦେବଙ୍କ ସ୍ତ୍ରୀ, ଅପ୍ସରାବିଶେଷ ।

ମିତ୍ରାକ୍ଷର—କ୍ଲୀ. ବି. ଛନ୍ଦୋବଦ୍ଧପଦ, ଯେଉଁ ଛନ୍ଦରେ ପ୍ରତ୍ୟେକ ଚରଣର ଶେଷବର୍ଣ୍ଣର ମେଳଥାଏ, (ବିପ) ଅମିତ୍ରାକ୍ଷର ।

ମିତ୍ରାଖ୍ୟ—ବି°. (ମିତ୍ର+ଆଖ୍ୟା) ମିତ୍ରନାମଧେୟ ।

ମିତ୍ରାନୁଗ୍ରହଣ—କ୍ଲୀ. ବି. ବନ୍ଧୁଙ୍କୁ ଅନୁଗ୍ରହକରଣ ।

ମିତ୍ରାଭିଦ୍ରୋହ—ପୁଂ.ବି°.ବନ୍ଧୁବିଦ୍ୱେଷକ ।

ମିତ୍ରାୟୁ—ପୁଂ. ବି°. ମିତ୍ରେଚ୍ଛୁ, (ପୁଂ.ବି) ଦିବୋଦାସଙ୍କ ପୁତ୍ର ।

ମିତ୍ରାବରୁଣ—ପୁଂ. ବି. ସୂର୍ଯ୍ୟ ଓ ବରୁଣ, ଦେବବିଶେଷ ।

ମିତ୍ରାବସୁ—ପୁଂ. ବି. ବିଶ୍ୱାବସୁଙ୍କ ପୁତ୍ର. ସିଦ୍ଧମାନଙ୍କର ରାଜା ।

ମିତ୍ରେୟୁ—ପୁଂ.ବି. ଦିବୋଦାସଙ୍କ ପୁତ୍ର ।

ମିତ୍ରେଶ୍ୱର—ପୁଂ.ବି. ମିତ୍ରଶର୍ମ ପ୍ରତିଷ୍ଠିତ କାଶୀରସ୍ଥ ଶିବଲିଙ୍ଗବିଶେଷ ।

ମିତ୍ରୋଦୟ—ପୁଂ.ବି. ସୂର୍ଯ୍ୟୋଦୟ, ବନ୍ଧୁବର୍ଗର ସୌଭାଗ୍ୟୋଦୟ ।

ମିଥଃ(ଥସ୍)—ଅବ୍ୟ.ଅନ୍ୟୋନ୍ୟ,ପରସ୍ପର, ରହଃ, ଗୋପନରେ ।

ମିଥି—ପୁଂ. ବି. (ମିଥ+ଇ) ନିମିରାଜତନୟ, ଜନକରାଜା ।

ମିଥିଲ—ପୁଂ.ବି.ରାଜର୍ଷି ଜନକରାଜାଙ୍କର ନାମାନ୍ତର ।

ମିଥିଲା—ସ୍ତ୍ରୀ. ବି. (ମିଥିଲ+ଆ) ସୁପ୍ରାଚୀନ ଜନପଦ, ଜନକରାଜାଙ୍କ ପୁରୀ. ଆଧୁନିକ ତିର୍ହୁତ ।

ମିଥୁ—ଅବ୍ୟ. ଅସତ୍ୟ (ସାୟଣ) ।

ମିଥୁନ—କ୍ଲୀ. ବି. (ମିଥ+କ.ଉନ) ସ୍ତ୍ରୀ ଓ ପୁରୁଷଯୁଗ୍ମ,ସ୍ତ୍ରୀପୁରୁଷ ସଙ୍ଗମ,ମିଳନ, ସଂଯୋଗ, ଜ୍ୟୋତିଷୋକ୍ତ ତୃତୀୟରାଶି, ସୌର ଆଷାଢ଼ମାସ ।

ମିଥୁନତା(ତ୍ୱ)—ବି.(ମିଥୁନ+ଭା.ତା.ତ୍ୱ) ମିଥୁନାବସ୍ଥା, ଯୁଗଳାବସ୍ଥା ।

ମିଥୁନଭାବ—ବି. ମିଥୁନାବସ୍ଥା । [ଗୃସ୍ତ ।

ମିଥୁନବ୍ରତୀ—ପୁଂ. ବି°. ମୈଥୁନ ବ୍ରତା-

ମିଥୁନୀଭାବ—ବି. ସଙ୍ଗମାବସ୍ଥା ।

ମିଥୁଃ(ଥୁସ୍)—ଅବ୍ୟ. ଅନ୍ୟୋନ୍ୟ, ପରସ୍ପର, ଗୋପନରେ । [ଅନ୍ୟୋନ୍ୟ ।

ମିଥୋ—ଅବ୍ୟ. ମିଥସ୍, ପରସ୍ପର,

ମିଥୋଭାଷଣ—ବି. (ମିଥଃ+ଭାଷଣ) ଗୁପ୍‌ଚୁପ୍ କଥାବାର୍ତ୍ତା । [କାଶୀ ।

ମିଥୋଯୋଧ—ବି°. ପରସ୍ପର ଯୋଧନ-

ମିଥ୍ୟା—ଅବ୍ୟ.(ମିଥ୍+ଯ+ଆ)ଅସତ୍ୟ, ମିଛ, ଅନୃତ, କାଳ୍ପନିକ, ଅବାସ୍ତବ, କପଟ, ବୃଥା ।

ମିଥ୍ୟାଭିଯୋଗ—ସ୍ତ୍ରୀ. ବି. ମିଥ୍ୟାରେ ଦୋଷାରୋପ ବା ନାଲିସ । [କହିବା ।

ମିଥ୍ୟାକଥନ—କ୍ଲୀ. ବି. (ତତ୍ପୁ) ମିଛ

ମିଥ୍ୟାକଥା—ସ୍ତ୍ରୀ. ବି. ମିଛବାକ୍ୟ,ବୃଥାକଥା, ମିଛବିଷୟ ।

ମିଥ୍ୟାକର୍ମ—କ୍ଲୀ. ବି. ଅସତ୍‌କାର୍ଯ୍ୟ ।

ମିଥ୍ୟାକୋପ—ବି. ବୃଥାକ୍ରୋଧ ।

ମିଥ୍ୟାଗ୍ରହ—ବି. (ମିଥ୍ୟା+ଆଗ୍ରହ)ବୃଥା ଆଗ୍ରହ, ଅନର୍ଥକରୋଧ ।

ମିଥ୍ୟାଚରଣ—ବି. (ମଧ୍ୟ-କ.ଧା)କପଟାଚାର,ଅସତ୍ୟବ୍ୟବହାର,ମିଥ୍ୟାକଥନ ।

ମିଥ୍ୟାଚର୍ଯ୍ୟା—ବି. (ମଧ୍ୟ-କ.ଧା) ମିଥ୍ୟାପୂର୍ଣ୍ଣ ବ୍ୟବହାର, କପଟାଚରଣ,ମିଥ୍ୟାକଥନ ।

ମିଥ୍ୟାଚାର—ପୁଂ. ବି°. (ବ.ବ୍ରୀ)କପଟାଚାରୀ, ଦାମ୍ଭିକ, ମିଥ୍ୟାଚାରୀ, (ସ୍ତ୍ରୀ) ମିଥ୍ୟାଚାରା ।

ମିଥ୍ୟାଚାରତା—ବି.(ମିଥ୍ୟାଚାରିନ୍+ତା) କପଟ ବ୍ୟବହାର, ମିଥ୍ୟାଚରଣ ।

ମିଥ୍ୟାଚାରୀ—ପୁଂ. ବି°. (ମିଥ୍ୟା+ଚର୍+କ.ଇନ୍)ମିଥ୍ୟାପୂର୍ଣ୍ଣବ୍ୟବହାରକାରୀ, କପଟାଚାରୀ,(ସ୍ତ୍ରୀ) ମିଥ୍ୟାଚାରିଣୀ ।

ମିଥ୍ୟାଜଳ୍ପନା—ବି. ମିଛରେ ଗୁଜବ, ମିଥ୍ୟାକଥା । [ଦେଖ ।

ମିଥ୍ୟାଜଳ୍ପିତ—କ୍ଲୀ. ବି. ମିଥ୍ୟାଜଳ୍ପନା

ମିଥ୍ୟାଜ୍ଞାନ—କ୍ଲୀ. ବି. ଅସତ୍ୟବୋଧ, ଭ୍ରାନ୍ତି ବା ଅସତ୍ୟଧାରଣା ।

ମିଥ୍ୟାତ୍ୱ—କ୍ଲୀ.ବି.ମିଥ୍ୟାର ଭାବ,ମାୟା, ଜୈନମତରେ ଅଷ୍ଟାଦଶ ଦୋଷମଧ୍ୟରେ ଏକ ।

ମିଥ୍ୟାତ୍ମୀ—ପୁଂ. ବି°. ମାୟାଚ୍ଛନ୍ନ ।

ମିଥ୍ୟାଦର୍ଶନ—କ୍ଲୀ. ବି. ଭୁଲ୍‌ଦେଖିବା, ଭ୍ରାନ୍ତମତ,ଯେଉଁ ଦର୍ଶନରେ ମିଥ୍ୟାକଥା ଲେଖାଅଛି ।

ମିଥ୍ୟାଦଲିଲ—ସ୍ତ୍ରୀ. ବି. ମିଛରେ ଜାଲ କରି ପ୍ରସ୍ତୁତ କରାଯାଇଥିବା ଦଲିଲ ।

ମିଥ୍ୟାଦୃଷ୍ଟି—ବି. (କ.ଧା) କର୍ମଫଳାପବାଦକ ଜ୍ଞାନ,ନାସ୍ତିକତା, ଅସତ୍ ଭାବ ବା ଧାରଣା ।

ମିଥ୍ୟାଧାରଣା—ବି. ଭ୍ରାନ୍ତବିଶ୍ୱାସ ।

ମିଥ୍ୟାଧ୍ୟବସିତ—ବି. ମିଥ୍ୟା ଅଧ୍ୟବସାୟ, ଅସତୋତ୍ସାହ ।

ମିଥ୍ୟାନାଲିଶ—ସ୍ତ୍ରୀ.ବି.ମିଥ୍ୟାଭିଯୋଗ ।

ମିଥ୍ୟାନିରସନ—କ୍ଲୀ. ବି. (ମିଥ୍ୟା+ନିର୍+ଅସ୍+ଭା.ଅନ) ଶପଥଦ୍ୱାରା ଅଙ୍ଗୀକାର, ଶପଥ ।

ମିଥ୍ୟାପଣ୍ଡିତ—ବି°. ଆପଣାକୁ ପଣ୍ଡିତ ବୋଲି ଭାବନକାରୀ, ମୂର୍ଖ । [କ୍ଷେପ ।

ମିଥ୍ୟାପବାଦ—ବି. ମିଥ୍ୟାରେ ଦୋଷା-

ମିଥ୍ୟାପୁରୁଷ—ପୁଂ. ବି. ଛାୟାପୁରୁଷ, ଯେଉଁ ପୁରୁଷର ପ୍ରକୃତ ସତ୍ତା ନାହିଁ ।

ମିଥ୍ୟାପ୍ରତିଜ୍ଞ—ପୁଂ.ବି°.(ବ.ବ୍ରୀ)ମିଥ୍ୟାଶପଥକାରୀ, ଅବିଶ୍ୱାସୀ,ବିଶ୍ୱାସଘାତକ, ଅଙ୍ଗୀକାର ଭଙ୍ଗକାରୀ, (ସ୍ତ୍ରୀ) ମିଥ୍ୟାପ୍ରତିଜ୍ଞା ।

ମିଥ୍ୟାପ୍ରମାଣସର୍ଜନ(ନା)—ବି.([illegible]) ମିଛରେ କୌଣସି ବିଷୟକୁ ପ୍ରମାଣିତ କରିବା ପାଇଁ ଉଦ୍ୟୋଗ ।

ମିଥ୍ୟାପ୍ରବାଦୀ—ପୁଂ. ବି°. ମିଥ୍ୟାବାଦୀ, (ସ୍ତ୍ରୀ) ମିଥ୍ୟାପ୍ରବାଦିନୀ ।

ମିଥ୍ୟାପ୍ରବୃତ୍ତି—ବି. ଅସଦିଚ୍ଛା, ମିଥ୍ୟାକାର୍ଯ୍ୟରେ ଅନୁରାଗ ।

ମିଥ୍ୟାପ୍ରସୁପ୍ତ—ପୁଂ. ବି°. ଯେ ଚେଇଁ ଶୋଇଥାଏ, (ସ୍ତ୍ରୀ) ମିଥ୍ୟାପ୍ରସୁପ୍ତା ।

ମିଥ୍ୟାପ୍ରସୁପ୍ତି—ବି. ଚେଇଁ ଶୋଇବା ।

ମିଥ୍ୟାପ୍ରିୟ—ପୁଂ. ବି°. (ବ.ବ୍ରୀ) ଯେ ମିଥ୍ୟା କହିବାକୁ ଭଲପାଏ, (ସ୍ତ୍ରୀ) ମିଥ୍ୟାପ୍ରିୟା ।

ମିଥ୍ୟାଫଳ—କ୍ଲୀ. ବି. କାଳ୍ପନିକଫଳ,

ମିଥ୍ୟାପୁରସ୍କାର ।

ମିଥ୍ୟାଭାଷଣ—ବି. ( ୬ତତ୍ ) ମିଥ୍ୟା-
କଥନ ।

ମିଥ୍ୟାଭାଷୀ—ପୁଂ. ବିଂ. ମିଥ୍ୟାବାଦୀ
ଦେଖ, (ସ୍ତ୍ରୀ) ମିଥ୍ୟାଭାଷିଣୀ ।

ମିଥ୍ୟାଭିଧାନ—କ୍ଲୀ. ବି. ମିଛକହିବା ।

ମିଥ୍ୟାଭିଯୋଗ—ବି.( କ.ଧା ) ମିଥ୍ୟା-
ପ୍ରବାଦ, ମିଥ୍ୟାରେ କୌଣସି ବ୍ୟକ୍ତିର
ନାମରେ ନାଲିଶ ।

ମିଥ୍ୟାଭିଶଂସନ—କ୍ଲୀ. ବି. ( ୬ତତ୍ )
ମିଥ୍ୟାକଥା ପ୍ରଚାର, ମିଥ୍ୟାପ୍ରବାଦ,
ମିଥ୍ୟା ନାଲିଶ ।

ମିଥ୍ୟାଭିଶସ୍ତି—ବି. ମିଥ୍ୟାଭିଯୋଗ ।

ମିଥ୍ୟାଭିଶାପ—ବି. ମିଥ୍ୟାବାଦ ।

ମିଥ୍ୟାମତି—ସ୍ତ୍ରୀ. ବି. (କ.ଧା) ଭ୍ରାନ୍ତି,
ଅସତ୍ୟବୁଦ୍ଧି, ମିଥ୍ୟାଜ୍ଞାନ ।

ମିଥ୍ୟାମାନ—ବି.ବୃଥାସମ୍ମାନ,ବୃଥାଦମ୍ଭ ।

ମିଥ୍ୟାଯୋଗ—ବି. ରୂପରସାଦିର ବିରୁଦ୍ଧ
ଯୋଗ । [ ବାଦୀ ।

ମିଥ୍ୟାବାକ୍—ପୁଂ. ବିଂ. (ବ.ବ୍ରୀ)ମିଥ୍ୟା-

ମିଥ୍ୟାବାକ୍ୟ—ବି. (କ.ଧା)ମିଥ୍ୟାବାଦ,
ମିଛକଥା ।

ମିଥ୍ୟାବାଦ—ବି. ମିଛକଥା,ମିଛକହିବା ।

ମିଥ୍ୟାବାଦିତା—ବି. (ମିଥ୍ୟାବାଦିନ୍+
ଭା.ତା) ମିଛକହିବାର ଅଭ୍ୟାସ ।

ମିଥ୍ୟାବାଦୀ—ପୁଂ. ବିଂ. (ମିଥ୍ୟା+ବାଦ
+ଇନ୍) ଯେ ମିଛ କହେ, ମିଛୁଆ,
(ସ୍ତ୍ରୀ) ମିଥ୍ୟାବାଦିନୀ । [ ହାର ।

ମିଥ୍ୟାବିହାର—ବି. ବୃଥା ଅଟନ,କୁବ୍ୟବ-

ମିଥ୍ୟାବ୍ୟାହାର—ବି. ଅସତ୍‌କାର୍ଯ୍ୟ, ଅନ-
ଧିକାର ଚର୍ଚ୍ଚା ।

ମିଥ୍ୟାଶପଥ—ବି. (କ.ଧା) ମିଛରେ
ହଲପ କରିବା ।

ମିଥ୍ୟାସାକ୍ଷ୍ୟ—ବି. (ମଧ୍ୟ-କ.ଧା) କୌଣସି
ମକଦ୍ଦମାରେ ମିଥ୍ୟାରେ ବିଚାରାଧିକର-
ଣରେ ଜବାନ୍‌ବନ୍ଦି ଦେବା ।

ମିଥ୍ୟାସାକ୍ଷୀ-ପୁଂ.ବିଂ,(ମଧ୍ୟ-କ.ଧା)ମିଥ୍ୟା-
ଭାଷୀ ସାକ୍ଷୀ, ଜାଲ୍‌ସାକ୍ଷୀ ।

ମିଥ୍ୟାସୁକୃତ—ଗ୍ରା.ବି, କୌଣସି ମିଛ
ବିଷୟରେ କରିବା ଶପଥ ବା ନିୟମ ।

ମିଥ୍ୟାହାର—ବି. ଅନୁଚିତ ଆହାର,ପ୍ରକୃ-
ତିର ଆହାର ।

ମିଥ୍ୟୁକ—ପୁଂ.ବି.(ମିଥ୍ୟା+ଉକ)ମିଛୁଆ.
(ସ୍ତ୍ରୀ) ମିଥ୍ୟୁକା ।

ମିଥ୍ୟୋତ୍ତର—କ୍ଲୀ. ବି. ଚାରିପ୍ରକାର ଉତ୍ତ-
ରର ଅନ୍ତର୍ଗତ ଉତ୍ତର ବିଶେଷ, ଫାଙ୍କି
ଜବାବ ।

ମିଥ୍ୟୋପଚାର—ବି. ପ୍ରତାରଣାଦି ସେବନ
ରୂପ ଅନୁଚିତ ଆଚାର, ଉପକାର କରି
ବାର ଛଳନା ।

ମିଦ୍ଧ—କ୍ଲୀ. ବି. (ମିଦ୍+ଭା.ତ)ଆଳସ୍ୟ,
ନିଦ୍ରାଳୁତା, ଜଡ଼ତା, ତନ୍ଦ୍ରା ।

ମିନ—ପ୍ରା. ସମ୍ବ. ବିଂ. ସୂକ୍ଷ୍ମ, ବାରିକ୍ ।

ମିନତି—ଯା. ବି. (ଫ-ବିନତି) ବିନତି,
ନମ୍ରତା,କାତରତା ପ୍ରକାଶ,ବିନୟପୂର୍ବକ
ପ୍ରାର୍ଥନା ।

ମିନା—ଯା. ବି. (ଫର୍ମୀନା =ନୀଳବର୍ଣ୍ଣ)
ଧାତୁପଦାର୍ଥ ଉପରେ ବିନ୍ୟସ୍ତ ନାନା-
ବର୍ଣ୍ଣର କାଚପରି ମସୃଣ ପୁଟ ବିଶେଷ,
ଏକଧାତୁ ଉପରେ ଅନ୍ୟ ଧାତୁର ପୁଟ
ଦେବା,ଅଲଙ୍କାରର ଜଡ଼ାଉ ବା କୁନ୍ଦନ
କାମ, ନୀଳରତ୍ନବିଶେଷ, ପାନପାତ୍ର
ବିଶେଷ, ମିହ୍ନା ଦେଖ, କମିଯ୍ୟାଁ, (ଗ୍ରା.
ବି)ବେକର ଅଲଙ୍କାର ବିଶେଷ ।

ମିନାକୋପୀ—ଗ୍ରା.ବି. ଆନ୍ଦାମାନ ଦ୍ୱୀପ-
ବାସୀ ଜାତିବିଶେଷ । [ ଟମ୍ବୁଲ ।

ମିନାର—ଯା.ବି.ମନ୍ଦିରାଦିର ଶୀର୍ଷଦେଶ.

ମିନିଟ୍—ଯା.ବି. ଏକଘଣ୍ଟାର ୬୦ଭାଗରୁ
. ଏକଭାଗ,୨୨/୧ ଦଣ୍ଡ ସମୟ, କୋଣର
ଏକଡ଼ିଗ୍ରିର ୬୦ ଭାଗରୁ ଏକଭାଗ ।

ମିନିଟ୍‌କଣ୍ଟା—ଗ୍ରା. ବି. ଘଣ୍ଟାରେ ମିନିଟ୍
ଜ୍ଞାପକ ଲୌହଶଳାକା ।

ମିନିଟୋଲ୍—ଗ୍ରା. ବି. ସୁନାର ଗୋଲ-
କାଦି ଉପରେ ଗାରଗାର ଚିହ୍ନ କୁଟି-
ବାର ଠସା ।

ମିନ୍ନ—ବିଂ. କ୍ଲିନ୍ନ ।

ମିନ୍ନତ୍—ଯା. ବି. ମିନତି ଦେଖ ।

ମିମଙ୍କ୍ଷା—ସ୍ତ୍ରୀ. ବି. (ମସଜ୍+ସନ୍+ଭା.
ଆ) ମଜ୍ଜନେଚ୍ଛା, ମଜ୍ଜନାର୍ଥ ଚେଷ୍ଟା,
ବୁଡ଼ିବାର ଇଚ୍ଛା ।

ମିମଙ୍କ୍ଷୁ—ପୁଂ.ବିଂ. (ମସଜ୍+ସନ୍+କ.
ଉ) ମଜ୍ଜନେଚ୍ଛୁ, ଡୁବିବାକୁ ଇଚ୍ଛୁକ ।

ମିମନ୍ଥିଷା—ସ୍ତ୍ରୀ. ବି.(ମନ୍ଥ+ସନ୍+ଭା.ଆ)
ମନ୍ଥନେଚ୍ଛା, ମନ୍ଥନ କରିବାର ଇଚ୍ଛା,
ବଧ ବା ବିନାଶ କରିବାର ଇଚ୍ଛା ।

ମିମନ୍ଥିଷୁ—ପୁଂ.ବିଂ. (ମନ୍ଥ+ସନ୍+କ.
ଉ) ମନ୍ଥନେଚ୍ଛୁ, ବିଲୋଡ଼ନାଭିଳାଷୀ,
ବଧେଚ୍ଛୁ । [ ଭିଳାଷୀ ।

ମିମର୍ଦ୍ଦିଷୁ—ପୁଂ.ବିଂ.ମର୍ଦ୍ଦନେଚ୍ଛୁ,ଦଳନା-

ମିମିକ୍ଷ—ତ୍ରି. ବିଂ. ଜଳସିକ୍ତ ।

ମିମିକ୍ଷା—ବି. (ମିହ୍+ସନ୍+ଅ+ଆ)
ପ୍ରସ୍ରାବ କରିବାର ଇଚ୍ଛା,ମୂତ୍ରତ୍ୟାଗେଚ୍ଛୁ ।

ମିୟାନା—ଯା. ବି. ପାଲିଙ୍କି ।

ମିର୍—ଯା. ବି. (ଫା-ସର୍ଦ୍ଦାର, ପ୍ରଧାନ)
ମୁସଲମାନଙ୍କ ନାମ ପୂର୍ବରେ ଲାଗିବା
ଉପାଧିବିଶେଷ ।

ମିର୍‌କାସିମ୍—ଯା. ବି. ଇଂରେଜମାନଙ୍କ
ମନୋନୀତ ବଙ୍ଗଦେଶର ୨ୟ ନବାବ ।

ମିର୍(ର)ଗା—ପ୍ରା.(ବାଲେ)ବି.ମିର୍ଗୀ ଦେଖ

ମିର୍(ର)ଗୀ—ପ୍ରା.(ସମ୍ବ)ବି.ଲଙ୍କାମରିଚ ।

ମିର୍‌ଜାଫର—ଯା.ବି.ଇଂରେଜଙ୍କ ଦ୍ୱାରା
ମନୋନୀତ ବଙ୍ଗର ପ୍ରଥମ ନବାବ ।

ମିର୍‌ବହରୀ—ଯା. ବି. ନୌସେନାଧ୍ୟକ୍ଷ ।

ମିର୍‌ବାର୍—ଯା.ବି.ବାଦସାହାଙ୍କୁ ଭେଟିବା-
ବାକୁ ଯିବା ବ୍ୟକ୍ତିଙ୍କୁ ପରୀକ୍ଷା କରିବା
କର୍ମଚାରୀ ।

ମିର୍‌ମଂଜିଲ୍—ଯା.ବି. ସେନାମାନେ ପହ-
ଞ୍ଚିବା ପୂର୍ବରୁ ଶିବିରର ସମସ୍ତ ବ୍ୟବସ୍ଥା-
କାରୀ କର୍ମଚାରୀ ।

ମିର୍‌ମଜ୍‌ଲିସ୍—ଯା. ବି. ସଭାପତି ।

ମିର୍‌ମହଲ୍ଲା—ଯା. ବି. ବଜାରର ସର-
ଦାର, ଚୌଧୁରି ।

ମିର୍‌ଶିକାର—ଯା.ବି. ବାଦସାହଙ୍କ ଶିକା-
ରର ବ୍ୟବସ୍ଥାକାରୀ ପ୍ରଧାନ କର୍ମଚାରୀ ।

ମିର୍‌ସାମନ୍—ଯା.ବି.ବାଦସାହଙ୍କ ପାକ-
ଶାଳାର ବ୍ୟବସ୍ଥାକାରୀ ପ୍ରଧାନ କର୍ମଚାରୀ

ମିର(ର)ଧା—ଯା.ବି.ଗ୍ରାମାଧିକାରୀ,ଗ୍ରାମର ମଣ୍ଡଳ ।

ମିର(ର)ଶିଙ୍ଗା—ପ୍ରା(ଗଞ୍ଜାମ)ବି. (ସଂ-ଭୃଙ୍ଗ-ଯୁଗନ୍ଧ) ଭୃଙ୍ଗୁଶୁଙ୍ଗା ।

ମିରା—ସ୍ତ୍ରୀ. ବି. ମୂର୍ଚ୍ଛା, ମଦରା ।

ମିରାସ୍ଦାର—ପ୍ରା.(ଗଞ୍ଜାମ)ଯା.ବି. ଗ୍ରାମର କାନୁନ୍ଗୋ କର୍ମ କରିବା ପାଇଁ ରାଜାଙ୍କ ଠାରୁ ପୁରୁଷାନୁକ୍ରମେ ଜାଗିର ପାଇଥିବା କର୍ମଚାରୀ ।

ମିରି—ପ୍ରା. (ବସ୍ତର) ବି. ଲଙ୍କାମରିଚ ।

ମିରିକାଲ(କଲା)—ଗ୍ରା.ବି. ରୋହୁଜାତୀୟ ଅପେକ୍ଷାକୃତ ଶ୍ରେଷ୍ଠ ମାଛ ।

ମିରଗ—ଗ୍ରା ବି. (ସଂ-ମୃଗ) ମୃଗ ।

ମିରଗଛାଲ—ଗ୍ରା. ବି. ମୃଗଚର୍ମ ।

ମିରଗାଣିଡ଼ମ୍ବ—ପ୍ରା.(ଜୟପୁର) ବି.ନୀଚ ଅସ୍ପୃଶ୍ୟ ଜାତିବିଶେଷ ।

ମିରିଗିରୋଗ—ଗ୍ରା.ବି. (ସଂ-ମୃଗୀରୋଗ) ଅପସ୍ମାର ।

ମିରଜା—ଯା. ବି. ମୁସଲମାନ ସମ୍ଭ୍ରାନ୍ତ ବଂଶୀୟ ବ୍ୟକ୍ତିଙ୍କର ଉପାଧିବିଶେଷ, ମୋଗଲମାନଙ୍କ ବଂଶୋପାଧି, ତୈମୁର ବଂଶର ରାଜକୁମାରଙ୍କ ଉପାଧି, ରାଜକୁମାର । [ ଭଗ କୁର୍ତ୍ତି ।

ମିରଜା(ଜେ)ଇ—ଗ୍ରା. ବି.କୁର୍ତ୍ତା, ଝୁଲା-

ମିର୍ମିର—ବିଂ. ମିଟ୍ମିଟ୍ ଆଲୋକଯୁକ୍ତ ।

ମିଲ୍—ଯା. ବି. ସୁପ୍ରସିଦ୍ଧ ଇଂରାଜ ଦାର୍ଶନିକ, ଲୁଗା ଆଦିର କଲ ।

ମିଲ—ଗ୍ରା. ବି. (ସଂ-ମିଲ୍ଧାତୁ) ମେଳ, ସୌହାର୍ଦ୍ଦ୍ୟ, ସଂଯୋଗ, ଭେଟ, ଐକ୍ୟ, ସମତା ।

ମିଲ୍ମାଲ୍—ଗ୍ରା. ବି. ବିବାଦର ଆପୋସରେ ମୀମାଂସା ।

ମିଲ୍ମିଲା—ଗ୍ରା.ବି. କ୍ଷୁଦ୍ର ବସନ୍ତରୋଗ, ବିସ୍ଫୋଟକ ରୋଗ ବିଶେଷ ।

ମିଲ୍ଲୁଗା—ଗ୍ରା. ବି. କଲବୁଣା ଲୁଗା ।

ମିଲ୍ବା—ପ୍ରା. ସମ୍ବ. କ୍ରି. ମିଳିବା ।

ମିଳ—ବି. ( ମିଲ୍+ଭା.ଅ ) ମିଳନ, ସଂଯୋଗ, ସମ୍ପର୍କ, ଐକ୍ୟ ।

ମିଳକ—ପୁଂ. ବିଂ. ( ମିଲ୍+ଅକ ) ମେଳନକାରୀ ।

ମିଲକାଫି(ଫ)—ଗ୍ରା.ବି. ଜଣେ ଶିଖସର୍ଦ୍ଦାର ।

ମିଳଣ—ଗ୍ରା. ବି. ମିଳନ ଦେଖ ।

ମିଳନ—କ୍ଲୀ. ବି. (ମିଲ୍+ଭା.ଅନ)ସମାଗମ, ସଂଶ୍ଲେଷ, ଯୋଗ, ସଙ୍ଗମ,ମିଶ୍ରଣ, ଐକ୍ୟ, ସାକ୍ଷାତ୍କାର, ତୁଳନା, ଉପମା, କଳହର ଅନ୍ତେ ପୁନର୍ବାର ସଦ୍ଭାବ, ପ୍ରାପ୍ତି, ଘଟନ ।

ମିଳନସଙ୍ଗୀତ—କ୍ଲୀ. ବି.(୬ତତ୍ପୁ)ଐକ୍ୟଗୀତ, ପ୍ରେମିକପ୍ରେମିକାଙ୍କର ମିଳନ ବିଷୟକ ଗାନ ।

ମିଳନସାଧନ—କ୍ଲୀ.ବି. (୬ତତ୍ପୁ)ଐକ୍ୟସମ୍ପାଦନ, ଏକୀକରଣ, ସଂଯୋଗର ଉପାୟ ।

ମିଳନସ୍ଥାନ—କ୍ଲୀ. ବି. ଯେଉଁସ୍ଥାନରେ ମିଳନ ହୁଏ ।

ମିଳପତ୍ର—ପୁଂ.ବି.(ବ.ବ୍ରୀ) ଅଶ୍ମନ୍ତକ ବୃକ୍ଷ

ମିଳମିଳଆ—ଗ୍ରା. ବି. ଆସାମ ପ୍ରଦେଶର କାମରୂପଜିଲ୍ଲା ଅନ୍ତର୍ଗତ ଗୋଟିଏ ବିସ୍ତୀର୍ଣ୍ଣ ଶାଳବନ ।

ମିଳା—ଗ୍ରା. ବି. (ସଂ-ମିଲ୍ଧାତୁ)ମିଶିବା, ଭେଟ, ଏକତ୍ରହେବା, (ବିଂ) ପଚୁ, ମିଳାଇଯାଇଥିବା, କ୍ଳାନ୍ତ ।

ମିଳାଇଦେବା—ଗ୍ରା. କ୍ରି. ଦୁଇଜଣଙ୍କୁ ମେଳ କରାଇବା, କଳହ ମେଣ୍ଟାଇ ଦେବା ।

ମିଳାଇବା—ଗ୍ରା. କ୍ରି. ମିଶାଇବା, ଦୁଇଜଣଙ୍କୁ ମିଳିତକରାଇବା, ସଂଯୋଜିତ କରାଇବା, ସାମଞ୍ଜସ୍ୟଘଟାଇବା, ପ୍ରାପ୍ତ କରାଇବା, ବିଲୀନ ହେବା, ପାଣିରେ ଲୁଣ ଆଦି ମିଶିଯାଇ ଅଦୃଶ୍ୟ ହେବା, ପଚିଯିବା, ତରଳାଇବା ।

ମିଳାଇଯିବା—ଗ୍ରା. କ୍ରି. ପଚସଢ଼ିଯିବା, ମ୍ଳାନ ହେବା,(ଲ.ଅର୍ଥ)ବିସ୍ମୃତହେବା, ଲୋପହେବା ।

ମିଳାପ୍—ଯା.ବି. ସନ୍ଧି,ସାମାଜିକ ପ୍ରସଙ୍ଗ, (ପ୍ରା.ସମ୍ବ.ବି.)ସୌହାର୍ଦ୍ଦ୍ୟ ।

ମିଳାପ—ଗ୍ରା. ବି. ମିଳନ, ମିଳାମିଶା, ମେଳ, ମେଳାପ,ବନ୍ଧୁତା,ସୌହାର୍ଦ୍ଦ୍ୟ ।

ମିଳାପି—ଗ୍ରା.ବିଂ. ମେଳାପୀ, ଯେ ମିଳିମିଶି କଥାବାର୍ତ୍ତା କରେ, ଘନିଷ୍ଠ ରୂପେ ପରିଚିତ, (ବି) ଘନିଷ୍ଠ ବନ୍ଧୁ ।

ମିଳାମିଶା—ଗ୍ରା.ବି. ମିଲ୍ମାଲ, ମିଳନ, ଘନିଷ୍ଠତା, ଆପୋସିରେ ବିବାଦର ମେଣ୍ଟନ ।

ମିଳିକ(କ୍ୟ)ତ୍ର(ତ)—ଗ୍ରା. ବି. ଭୂସମ୍ପତ୍ତି, ସମ୍ପତ୍ତିରେ ସ୍ୱତ୍ୱ, ଜମିଦାରୀ ।

ମିଲିଟେରି—ଯା.ବିଂ.ସୈନ୍ୟସମ୍ବନ୍ଧୀୟ ।

ମିଲିଟେରିପୁଲିସ୍—ଯା. ବି. ସରକାରଙ୍କର ପୁଲିସ୍ ବିଭାଗର ସାମରିକ ଉପବିଭାଗ ।

ମିଳିତ—ବିଂ. (ମିଲ୍+କ.ତ) ଶ୍ଳିଷ୍ଟ, ସମ୍ବଦ୍ଧ, ବିଶିଷ୍ଟ, ସଂଯୁକ୍ତ, ସମବେତ, ପ୍ରାପ୍ତ, ମିଶ୍ରିତ, ପରସ୍ପର ସମ୍ବନ୍ଧ, ସ୍ପର୍ଶକରିଥିବା, କୃତସାକ୍ଷାତ୍କାର, ଭେଟାଭେଟି ହୋଇଥିବା, (ସ୍ତ୍ରୀ) ମିଳିତା ।

ମିଳିତରାଜ୍ୟ—ବି. ବହୁ ରାଜ୍ୟସଂଯୁକ୍ତ ହୋଇଥିବା ରାଜ୍ୟ ।

ମିଳିତସେନା—ବି. ଏକୀଭୂତ ସୈନ୍ୟ ।

ମିଳିନ୍ଦ—ବି. (ମିଲ୍+କ.ଇନ୍ଦ)ଭ୍ରମର ।

ମିଳିନ୍ଦକ—ପୁଂ. ବି. ଏକପ୍ରକାର ସର୍ପ ।

ମିଳିମିଳା—ଗ୍ରା.ବି.ମିଲ୍ମିଲା ଦେଖ ।

ମିଳିମିଳି—ଗ୍ରା. ଅବ୍ୟ. ମିଟିମିଟି,ମିଞ୍ଜିମିଞ୍ଜି ଦେଖ ।

ମିଳିମିଶି—ଗ୍ରା.ଅବ୍ୟ.ଏକତ୍ର,ଏକାଠେଇଁ ।

ମିଳିମିଶିଯିବା—ଗ୍ରା.କ୍ରି. ମିଳିଯିବାଦେଖ ।

ମିଳିଯିବା—ଗ୍ରା. କ୍ରି. ନିଶ୍ଚିତରୂପେ ପ୍ରାପ୍ତହେବା, ମିଳିତହେବା,କଳହ ମୀମାଂସା ହୋଇ ପୁନର୍ବାର ସୌହାର୍ଦ୍ଦ୍ୟ ସ୍ଥାପିତ ହେବା, ମିଳାଇଯିବା ।

ମିଳିବା—ଗ୍ରା. କ୍ରି. (ସଂ-ମିଲ୍ଧାତୁ)ମିଶାହେବା, ମିଳିତହେବା, ସଂଯୁକ୍ତହେବା, ଯୁଟିବା, ହାବୁଡ଼ିବା,ଲଭ୍ୟହେବା,ପ୍ରାପ୍ତହେବା, ପହଞ୍ଚିବା, ଏକହେବା, ସ୍ପର୍ଶ କରିବା ।

ମିଲ୍ଟନ—ଗ୍ରା. ବି. ଇଂଲଣ୍ଡର ଜଣେକ ସୁପ୍ରସିଦ୍ଧ ମହାକବି ।

ମିବାର—ଗ୍ରା. ବି. ରାଜସ୍ଥାନର ପ୍ରସିଦ୍ଧ

ପ୍ରାଚୀନ ଦେଶୀୟ ରାଜ୍ୟବିଶେଷ ।
**ମିଁଶ୍**—ଯା.ସ୍ତ୍ରୀ.ବି.କୁମାରୀଙ୍କ ନାମପୂର୍ବରେ ଲଗିବା ଉପାଧି ।
**ମଶମୀ**—ଗ୍ରା. ବି. ଆସାମର ପୂର୍ବସୀମାନ୍ତବର୍ତ୍ତୀ କ୍ଷୋଟିଏ ପାର୍ବତ୍ୟ ପ୍ରଦେଶ ଓ ତତ୍ପ୍ରଦେଶବାସୀ ଆଦିମଜାତିବିଶେଷ ।
**ମିଶର**—ଗ୍ରା. ବି. ଆଫ୍ରିକାର ଉତ୍ତର ପୂର୍ବାଂଶରେ ଅବସ୍ଥିତ ମୁସଲମାନରାଜ୍ୟ ।
**ମିଶଲ**—ଯା. ବି. ମକଦ୍ଦମାର ନଥି,ଅଦାଲତରେ ବିଚାରପତିଙ୍କ ଆସନ,ବିଚାରାସନ,ବିଚାରପତିଙ୍କର ବିଚାର କରିବାର ଏକଥର, ସ୍ୱତନ୍ତ୍ର ନାୟକଙ୍କ ଅଧୀନ ସ୍ୱତନ୍ତ୍ର ଶିଖମାନଙ୍କ ଦଳ ।
**ମିଶା**—ଗ୍ରା. ବିଂ. ( ସଂ-ମିଶ୍ର ) ମିଶ୍ରିତ, ବର୍ଣ୍ଣସଙ୍କର, ( ବି ) ମିଶ୍ରଣ, (ଗଣିତ) ଯୋଗକରଣ, (ଅବ୍ୟ) ମଧ୍ୟ ।
**ମିଶା(ଶେ)ଇବା**—ଗ୍ରା. କ୍ରି. (ଏକାଧିକ ପଦାର୍ଥ) ମିଶ୍ରିତ କରିବା, (ଗଣିତ) ରାଶିମାନଙ୍କୁ ଯୋଗ କରିବା,ଏକବସ୍ତୁକୁ ଅନ୍ୟବସ୍ତୁ ସଙ୍ଗେ ସଂଯୋଗ କରିବା, ମେଳାଇବା, ଦଳଭୁକ୍ତ କରିବା ।
**ମିଶାଣ**—ଗ୍ରା.ବି. (ସଂ-ମିଶ୍ରଣ), (ଗଣିତ) ସଂଖ୍ୟାମାନଙ୍କୁ ଏକତ୍ର ଯୋଗ କରିବା, ମିଳନ, ମିଶ୍ରଣ, (ଗ୍ରା.ବିଂ ) ମିଳାପୀ, ଯେ ଲୋକମାନଙ୍କ ସଙ୍ଗେ ମିଳିମିଶି ଚଳେ, (ଅନ୍ୟରୂପ) ମିଶାଣିଆ ।
**ମିଶାମିଶି**—ଗ୍ରା. ବି. (ସଂ-ମିଶ୍ରଣ)ମିଳାମିଶା,ସୌହାର୍ଦ୍ଦ୍ୟ,ବିବାଦପରେ ସଦ୍ଭାବ, ବହୁଦ୍ରବ୍ୟକୁ ମିଶାଇବା, ଭେଟାଭେଟି, (ବିଂ) ମିଶ୍ରିତ, ବହୁଦ୍ରବ୍ୟର ମିଶ୍ରଣରେ ଉତ୍ପନ୍ନ ।
**ମିଶାରୁ**—ପ୍ରା. (ଗଞ୍ଜାମ) ଅବ୍ୟ. ଆଦୌ ।
**ମିଶାରେ**—ପ୍ରା. (ଜୟପୁର) ଅବ୍ୟ. ମଧ୍ୟ, ମିଶା (ଅନ୍ୟରୂପ) ।
**ମିଶି(ଷି,ସି)**—ସ୍ତ୍ରୀ. ବି. (ମିଶ୍+ମଁ.ଇ) ମଧୁରିକା,ପାନମହୁରୀ,ଶତପୁଷ୍ପା,ସତପ, ଜଟାମାଂସୀ, ମେଥୀ, କାଉଁଶୀ, ଗଣ୍ଠି, (ଯା.ବି) ହୀରାକସ ଓ ତୁତିଆ ଯୋଗେ ପ୍ରସ୍ତୁତ ଦନ୍ତମଞ୍ଜନ ଚୂର୍ଣ୍ଣ ।
**ମିଶିଆସିବା**—ଗ୍ରା. କ୍ରି. ମାରିବାକୁ ବା ଆକ୍ରମଣ କରିବାକୁ କୌଣସି ବ୍ୟକ୍ତି ଉପରେ ପଛଲାପର ଅଗ୍ରସର ହେବା, ମାରିବାକୁ ଉଦ୍ଯୁକ୍ତିବା ।
**ମିଶିବା**—ଗ୍ରା. କ୍ରି. ଏକତ୍ର ମିଶ୍ରିତହେବା, ମିଳିତହେବା, ଘନିଷ୍ଠଭାବେ ବନ୍ଧୁତା ସୂତ୍ରରେ ଆବଦ୍ଧହେବା,(ଏକାଧିକବସ୍ତୁ) ଘନଭାବରେ ଏକତ୍ର ସଂଶ୍ଳିଷ୍ଟ ହେବା, ଲୀନହେବା, (ଗଣିତ) ବହୁରାଶି ଏକତ୍ର ଯୋଗହେବା, ଘନପଦାର୍ଥ ତରଳ ପଦାର୍ଥରେ ମିଳାଇଯିବା, ମିଳିଯିବା, ଅଦୃଶ୍ୟ ହେବା, କୌଣସି ବ୍ୟକ୍ତିଙ୍କ ନିକଟରେ ଯାଇ ପହଞ୍ଚିବା,ସାଙ୍ଗହେବା, ସମାନହେବା, ପହଞ୍ଚିବା ।
**ମିଶୀ**—ସ୍ତ୍ରୀ.ବି. (ମିଶି + ଈ)ଜଟାମାଂସୀ, ମହୁରୀ, ପାନମହୁରୀ ।
**ମିଶୁଆ**—ଗ୍ରା. ପୁଂ. ବିଂ. ଯେ ମିଳିମିଶି ଚଳିବାକୁ ଭଲପାଏ ।
**ମିଶେ**—ଗ୍ରା. ଅବ୍ୟ. ମଧ୍ୟ ।
**ମିଶ୍ର(ସ୍ର)**—(ଧାତୁ), ଯୋଜନ କରିବା, ଯୋଗକରଣ ।
**ମିଶ୍ର**—ବି. (ମିଶ୍+ର) ମୂଳା, ମୂଳକ, ରକ୍ତ, ଉତ୍କଳୀୟ ସପ୍ତଗଣର ଅନ୍ତର୍ଗତ ସପ୍ତମଗଣ,ଚତୁର୍ବିଧ ଗଜଜାତିର ଅନ୍ତର୍ଗତ ଜାତିବିଶେଷ, (ବି)ମିଶ୍ରିତ,ଶ୍ରେଷ୍ଠ, ସନ୍ନିପାତ, ସଂଯୁକ୍ତ, ଏକାଧିକ ବସ୍ତୁ ମିଶ୍ରଣରେ ଉତ୍ପନ୍ନ,ଦୋନୋସଲ,ବର୍ଣ୍ଣସଙ୍କର,(ଅନ୍ୟପଦପରେ ଯୁକ୍ତହେଲେ) ଶ୍ରେଷ୍ଠ. ପୂଜ୍ୟ, (ଗଣିତ)ଯୋଗଜନିତ, ଅଡୁଆଡଡ଼ିଆ, ଛନ୍ଦାଛନ୍ଦ,ମିଶ୍ରଣକାରୀ, (ବି)ଏକାଧିକ ଉପାଦାନର ମିଶ୍ରଣରେ ଉତ୍ପନ୍ନ ପଦାର୍ଥ,ମିଶ୍ରିତଦ୍ରବ୍ୟ,ବ୍ରାହ୍ମଣଙ୍କ ଉପାଧିବିଶେଷ, ଶ୍ରେଷ୍ଠବ୍ୟକ୍ତି, ମିଶରଦେଶ ।
**ମିଶ୍ରକ**—କ୍ଲୀ.ବି. (ମିଶ୍ର + ମଁ.କ) ଊଷର ଲବଣ, ମୂଳକ, ବଙ୍ଗଭେଦ,(ଅଧି.ଅ) ଦେବୋଦ୍ୟାନ, (କ. ଅକ) ମିଶ୍ରଣକାରୀ ବ୍ୟକ୍ତି, 'ମଧ୍ୟମରୂପେ ପାରଦର୍ଶୀ ଗାୟକ, (ପୁଂ.ବିଂ.-କ.ଅକ) ମିଶ୍ରଣକାରୀ, (ମଁ.ଅକ) ମିଶ୍ରିତ, ବାକେ, ମିଶାମିଶି ।
**ମିଶ୍ରକାବଣ(ନ)**—କ୍ଲୀ. ବି. ଇନ୍ଦ୍ରଙ୍କର ଉଦ୍ୟାନ, ନନ୍ଦନକାନନ ।
**ମିଶ୍ରକେଶୀ**—ସ୍ତ୍ରୀ. ବି. ଅପ୍ସରୋବିଶେଷ ।
**ମିଶ୍ରଜ**—ପୁଂ. ବିଂ. (ମିଶ୍ର+ଜନ୍+ଅ) ଦୁଇଭିନ୍ନ ଜାତିର ମିଶ୍ରଣରୁ ଉତ୍ପନ୍ନ, ଦୋନୋସଲ, (ବି) ମିଶ୍ରଜାତି,ଖଚର, ଅଶ୍ୱତର ।
**ମିଶ୍ରଜାତି**—ବି. ( କ.ଧା ) ବର୍ଣ୍ଣସଙ୍କର, ଦୋମିଶା ।
**ମିଶ୍ରଣ**—କ୍ଲୀ. ବି. ( ମିଶ୍ର+ଭା.ଅନ ) ମିଶାଣ, ଯୋଗ, ଏକତ୍ରୀକରଣ, ଏକାଧିକ ବସ୍ତୁକୁ ମିଶାଇବା ।
**ମିଶ୍ରଣୀୟ**—ବିଂ. ( ମିଶ୍ର+ମଁ.ଅନୀୟ ) ମିଶ୍ରଣଯୋଗ୍ୟ,ମିଶାଇବାର ଯୋଗ୍ୟ ।
**ମିଶ୍ରଦନକର**—ଶିଶୁପାଳବଧର ଟୀକାକାର ।
**ମିଶ୍ରଧାତୁ**—ବି. ( କ.ଧା ) ଏକାଧିକ ମୌଳିକ ଧାତୁର ମିଶ୍ରଣରେ ଉତ୍ପନ୍ନ ଧାତୁ ।
**ମିଶ୍ରଧାନ୍ୟ**—କ୍ଲୀ. ବି. (କ.ଧା) ବାରମିସିର ଧାନ,(ବିଂ) ନାନାପ୍ରକାର ଧାନ୍ୟ ମିଶାଇ ପ୍ରସ୍ତୁତ ।
**ମିଶ୍ରପଦାର୍ଥ**—ବି.ବିଭିନ୍ନ ମୌଳିକ ପଦାର୍ଥ ଦ୍ୱାରା ଗଠିତ ପଦାର୍ଥ ।
**ମିଶ୍ରପୁଷ୍ପା**—ସ୍ତ୍ରୀ. ବି. ମେଥିକା, ମେଥୀ ।
**ମିଶ୍ରବର୍ଣ୍ଣ**—ବି. ( ବ.ଗ୍ରୀ ) କୃଷ୍ଣାଗୁରୁ, (କ.ଧା) ମିଶ୍ରଜାତି ଦେଖ, ଏକାଧିକ ମିଶ୍ରିତବର୍ଣ୍ଣ, ଆଖୁ, ( ବିଂ )ନାନାବର୍ଣ୍ଣ ସମନ୍ୱିତ ।
**ମିଶ୍ରବର୍ଣ୍ଣଫଳା**—ବି. (ବ.ଗ୍ରୀ) ବାର୍ତ୍ତାକୀ, ବାଇଗଣ ।
**ମିଶ୍ରବ୍ୟବହାର**—ବି. (ମଧ୍ୟ-କ.ଧା)ମିଶ୍ରରାଶି ସମ୍ବନ୍ଧୀୟ ଗାଣିତିକ ହିସାବ ।
**ମିଶ୍ରଶବ୍ଦ**—ବି.(ବ.ଗ୍ରୀ)ଖଚର,ଅଶ୍ୱତର ।
**ମିଶ୍ରି**—ଯା. ବି. ବଡ଼ ବଡ଼ ଦାନା ବା ଲୁଆରେ ପରିଣତ କନ୍ଦ ବା ସୁପରିଷ୍କୃତ ଗୁଡ଼ର ବିକାର ।

ମିଶ୍ରିତ—ବିଂ. (ମିଶ୍ର+ମି.ତ) ମିଳିତ, ଯୁକ୍ତ, କେନ୍ଦ୍ରୀଭୂତ, ଗୌରବିତ,ସମ୍ମିଳିତ, (ବହୁସଂଖ୍ୟା) ଯୋଗକରାଯାଇଥିବା ।

ମିଶ୍ରିତଭାଷା—ବି. (କ.ଧା) ବିଭିନ୍ନଭାଷାର ମିଶ୍ରଣରୁ ଉତ୍ପନ୍ନ ଭାଷା ।

ମିଶ୍ରିତା—ସ୍ତ୍ରୀ. ବି. (ମିଶ୍ରିତ+ଆ)କୃତ୍ତିକା ଓ ବିଶାଖା ନକ୍ଷତ୍ରଯୁକ୍ତ ସଂକ୍ରାନ୍ତିବିଶେଷ, (ବିଂ) ମିଶ୍ରିତର ସ୍ତ୍ରୀଲିଙ୍ଗ ।

ମିଶ୍ରୀ—ପୁଂ. ବିଂ. ( ମିଶ୍ର+କ.ଇନ୍ ) ମିଶ୍ରଣକାରୀ, (ସ୍ତ୍ରୀ) ମିଶ୍ରିଣୀ, (ପୁଂ.ବି) ନାଗବିଶେଷ ।

ମିଶ୍ରୀକରଣ—ବି.ଏକତ୍ରୀକରଣ,ଏକାଧିକ ବସ୍ତୁକୁ ମିଳାଇବା ।

ମିଶ୍ରୀତୁତ୍ଥ—କ୍ଲୀ.ବି. ଖର୍ପର, ଖପରଧାତୁ ।

ମିଶ୍ରୀଭବ—ବି. ଅମିଶ୍ରାବସ୍ଥା, ମିଳିତହେବା ।

ମିଶ୍ରୀଭୂତ—ବି. ବିଂ. ଏକତ୍ରୀଭୂତ ।

ମିଶ୍ରେୟା—ସ୍ତ୍ରୀ. ବି. (ମିଶ୍ର+ଇ+ଆ) ମଧୁରିକା,ପାନମହୁରୀ,ଶତପୁଷ୍ପା,ଶଉଫ ।

ମିଶ୍ରୋଦନ—ବି.(ମିଶ୍ର+ଓଦନ)ଖେଚରିକା, ଖେଚୁଡ଼ି ।

ମିଷ—କ୍ଲୀ. ବି. ( ମିଷ୍+ଭା.ଅ ) ଛଳ, କପଟତା, ଈର୍ଷା, ଦର୍ଶନ, ସେଚନ, ସ୍ପର୍ଦ୍ଧା, ପ୍ରତିଯୋଗିତା, ଛଦ୍ମବେଶ ।

ମିଷି—ସ୍ତ୍ରୀ. ବି. (ମିଷ୍+ଅ+ଇ)ଜଟାମାଂସୀ,ପାନମହୁରୀ,ଶଉଫ, ଅଜମୋଦ, ଉଶୀର ।

ମିଷିକା—ସ୍ତ୍ରୀ. ବି. ( ମିଷି+କ+ଆ ) ମିଷି ଦେଖ ।

ମିଷ୍ଟ—ବିଂ. (ମିଷ୍+ମି.ତ)ମଧୁର ରସଯୁକ୍ତ, ସିକ୍ତ, ସ୍ପର୍ଦ୍ଧିତ, ସୁସ୍ୱାଦ, ମିଠା, ସମସ୍ୟୋଚିତ, ରନ୍ଧାହୋଇଥିବା, ସିଝା ବା ଭଜା ବା ସେକାଯାଇଥିବା, ( ବି ) ମିଷ୍ଟାନ୍ନ, ମିଠେଇ,ମଧୁରରସ, ମଧୁରଖାଦ୍ୟ, ମଧୁରତା ।

ମିଷ୍ଟକଥା—ବି.ମଧୁରବାକ୍ୟ,ସଦଯ଼ଭାଷା ।

ମିଷ୍ଟକର୍ତ୍ତା—ପୁଂ.ବିଂ.ଖାଦ୍ୟାଦିର ଉତ୍ତମରୂପେ ପାକକାରୀ ।

ମିଷ୍ଟତା(ତ୍ୱ)— ବି. ( ମିଷ୍ଟ+ତା.ତ୍ୱ ) ମଧୁରତା ।

ମିଷ୍ଟଦ୍ରବ୍ୟ—ବି. (କ.ଧା) ସୁସ୍ୱାଦୁପଦାର୍ଥ ।

ମିଷ୍ଟନମ୍ବ—ବି. ଯେଉଁ ନମ୍ବୁପତ୍ରର ଉକ୍ତଟାରେ ଈଷତ୍ ମିଷ୍ଟତା ମିଶିଥାଏ, ମିଠାନମ୍ବ ।

ମିଷ୍ଟନମ୍ବୁ—ବି. ମଧୁରଜମ୍ବୀର, ମିଠାକମଳା ।

ମିଷ୍ଟପାକ—ବି.(କ.ଧା)ମିଷ୍ଟାନ୍ନ,ମିଠାଇ ।

ମିଷ୍ଟପାଚକ—ପୁଂ.ବିଂ.ଯେ ସୁସ୍ୱାଦଖାଦ୍ୟ ରନ୍ଧିପାରେ,ସୁମିଷ୍ଟରୂପେ ରନ୍ଧନକାରୀ, (ସ୍ତ୍ରୀ) ପାଚିକା ।

ମିଷ୍ଟପାଟ—ବି.ବୃକ୍ଷବିଶେଷ,ଶାକବିଶେଷ ।

ମିଷ୍ଟଭାଷୀ—ପୁଂ. ବିଂ. ସୁମଧୁର କଥନଶୀଳ, (ସ୍ତ୍ରୀ) ମିଷ୍ଟଭାଷିଣୀ ।

ମିଷ୍ଟରସ—କ୍ଲୀ.ବି.ସ୍ୱାଦୁପାକ ରସଦ୍ରବ୍ୟ ।

ମିଷ୍ଟବକ୍ତା—ପୁଂ. ବିଂ. ମଧୁରଭାଷୀ ବ୍ୟବହାରକାରୀ, (ସ୍ତ୍ରୀ) ମିଷ୍ଟବକ୍ତ୍ରୀ ।

ମିଷ୍ଟସ୍ୱର—ବି. କଣ୍ଠମଧୁର ସ୍ୱର ।

ମିଷ୍ଟାନ୍ନ—କ୍ଲୀ. ବି. (ମିଷ୍ଟ+ଅନ୍ନ) ମିଷ୍ଟରସଯୁକ୍ତ ଭକ୍ଷ ଦ୍ରବ୍ୟ, ମିଠେଇ ।

ମିଷ୍ଟାନ୍ନପ୍ରିୟ—ପୁଂ. ବିଂ. ବ.ବ୍ରୀ; ଯେ ମିଷ୍ଟାନ୍ନ ଖାଇବାକୁ ସୁଖପାଏ, (ସ୍ତ୍ରୀ) ମିଷ୍ଟାନ୍ନପ୍ରିୟା ।

ମିଷ୍ଟାନ୍ନଭୋଜୀ—ପୁଂ. ବିଂ. ( ମିଷ୍ଟାନ୍ନ+ଭୁଜ୍+କ.ଇନ୍) ମିଷ୍ଟଦ୍ରବ୍ୟ ଭକ୍ଷଣକାରୀ,(ସ୍ତ୍ରୀ) ଭୋଜିନୀ ।

ମିସାଲ୍—ପ୍ରା. ସମ୍ବ. ଅବ୍ୟ. ମଧ୍ୟ, ବି, ସଙ୍ଗେ ମିଶା ।

ମିସି—ସ୍ତ୍ରୀ. ବି.(ମିସ+ଇ)ମିଷି ଦେଖ ।

ମିସ୍ତର୍—ଯା.ବି. ଅଳ୍ପ ଛଡ଼ା ଛଡ଼ା ଖୁବ୍ ମୋଟ ସମାନ୍ତର ରେଖାମାନ ଟଣାଯାଇଥିବା ମୋଟକାଗଜ ବା କାଗଜର ଚକ୍ତି ।

ମିସ୍ତ୍ରୀ—ଯା. ବି. କାରିଗର, ଚେଳମିସ୍ତ୍ରୀ ।

ମିହ—ବିଂ. (ମିହ୍+କ.ଅ)ମେହନଶୀଳ, (ବି) ମେଘ, ବର୍ଷୁକ ମେଘ ।

ମିହନତ୍—ଯା. ବି. ପରିଶ୍ରମ, କାୟିକ ପରିଶ୍ରମ ।

ମିହନତି—ଯା. ବି. ପରିଶ୍ରମର ମଜୁରି, ପାରିଶ୍ରମିକ,ବିଂ.ପରିଶ୍ରମକାରୀ,ପରିଶ୍ରମୀ

ମିହନ୍ତ(ନ୍ତା)ନା—ଯା. ବି. ପାରିଶ୍ରମିକ, ପରିଶ୍ରମର ମୂଲ୍ୟ, ମଜୁରି ।

ମିହି—ଯା. ବିଂ. ସୂକ୍ଷ୍ମ,ସରୁ, ଖୁବ୍ପତଳା, ବାରିକ୍ ।

ମିହିକା—ସ୍ତ୍ରୀ. ବି. (ମିହ+କ.ଇକ+ଆ) ନୀହାର, ତୁଷାର, ଶିଶିର,କର୍ପୂର ।

ମିହିର—ପୁଂ. ବି. ( ମିହ+କ.ଇର ) ସୂର୍ଯ୍ୟ, ଅର୍କବୃକ୍ଷ, ତମ୍ବା, ମେଘ, ବାୟୁ, ଚନ୍ଦ୍ର, ଭୂପତି, କିରଣମାଳା, ମୁନିବିଶେଷ, ବରାହଙ୍କ ପୁତ୍ର, ବୃଦ୍ଧବ୍ୟକ୍ତି, ବିକ୍ରମାଦିତ୍ୟଙ୍କର ନବରତ୍ନ ମଧ୍ୟରେ ଏକ ପଣ୍ଡିତ, (ପୁଂ.ବିଂ)ବୃଦ୍ଧ, (ସ୍ତ୍ରୀ.ବି) କବିସୂର୍ଯ୍ୟ ବଳଦେବରଥ ।

ମିହିରକୁଳ—ବି. ସୂର୍ଯ୍ୟବଂଶ ।

ମିହିରମଣ୍ଡଳ—ବି.(ଷତତ୍ପୁ) ସୂର୍ଯ୍ୟମଣ୍ଡଳ, ଚନ୍ଦ୍ରମଣ୍ଡଳ ।

ମିହିରାଣ—ପୁଂ. ବି. (ମିହିର+ଅନ୍+କ.ଅ) ଶିବ, ମହାଦେବ ।

ମିହିରେଶ୍ୱର-ପୁଂ.ବି.(ମିହିର+ଈଶ୍ୱର) ମିହିରକୁଳ ପ୍ରତିଷ୍ଠିତ ଶିବ ।

ମିହିନ୍—ଯା. ବିଂ. ମିହି ଦେଖ ।

ମିହ୍ନା—ଯା. ବି.ମିନା ଦେଖ,ନିଷ୍ଫଳଭୂମି, (ବିଂ) ନିଷ୍ଫଳ ।

ମୀ—ସ୍ତ୍ରୀ. ବି. (ସଙ୍ଗୀତ) ଦୁଇପାର୍ଶ୍ୱବର୍ତ୍ତୀ ସ୍ୱରର ଏକ ଲହରରେ ଉଚ୍ଚାରିତ ହେବାର ଅବସ୍ଥା ।

ମୀଡ଼ମ୍—କ୍ଲୀ. ବି. ବିବାଦ, ଦ୍ୱନ୍ଦ୍ୱ,(ଅବ୍ୟ) ଅତି ମୃଦୁ ବା କ୍ଷୀଣସ୍ୱରରେ ।

ମୀଢ଼—ପୁଂ. ବିଂ. (ମିହ୍+କ.ତ) ମୂତ୍ରିତ, ପର ଜଳୀୟ, ମୂତ୍ରମାର୍ଗରେ ବାହାରିଥିବା, ମୂତ୍ରିତ ।

ମୀଢୁଷ—ବିଂ.ଦୟାର୍ଦ୍ର,(ପୁଂ.ବି)ଇନ୍ଦ୍ରପୁତ୍ର ।

ମୀଢୁଷ୍ଟମ—ପୁଂ.ବି.ଶିବ,ସୂର୍ଯ୍ୟ, ଚୌର ।

ମୀଢ୍ୱସ୍—ପୁଂ. ବି. ଶିବ ।

ମୀନ—ବି.(ମୀ+ନ)ମତ୍ସ୍ୟ,ମାଛ,ମେଷାଦି ଦ୍ୱାଦଶରାଶିର ଅନ୍ତର୍ଗତ ଅନ୍ତିମ ରାଶି, ବିଷ୍ଣୁଙ୍କର ପ୍ରଥମ ଅବତାର, ସୌର

ଚୈତ୍ରମାସ, (ଗ୍ରା.ବ) ଅତି ଶ୍ରେଷ୍ଠ ମାଛ, ଜଳଚର ପ୍ରାଣୀ ।

**ମୀନକ**—କ୍ଲୀ. ବ. ନୟନାଞ୍ଜନ ବିଶେଷ ।

**ମୀନକାକ୍ଷ**—ବ. ଶୁକ୍ଳ କନ୍ଦଅର ।

**ମୀନକେତନ**—ପୁଂ. ବ. ବ.ବ୍ରୀ; କନ୍ଦର୍ପ, (କଚିତ୍) ସମୁଦ୍ର, ଜଳାଶୟ ।

**ମୀନଗନ୍ଧା**—ସ୍ତ୍ରୀ. ବ. ବ.ବ୍ରୀ; ମତ୍ସ୍ୟଗନ୍ଧା, ସତ୍ୟବତୀ, ବ୍ୟାସମାତା

**ମୀନଗୋଧିକା**—ବ.ଜଳାଶୟ, ପୁଷ୍କରିଣୀ, ପଲ୍ୱଳ, କ୍ଷୁଦ୍ର ଜଳାଶୟ ।

**ମୀନଘାତୀ**—ପୁଂ. ବ. (ମୀନ+ହନ୍+କ.ଇନ୍) ବକପକ୍ଷୀ, (ବିଂ) ମତ୍ସ୍ୟଘାତ, ଯେ ମାଛମାରେ,(ସ୍ତ୍ରୀ) ଘାତିନୀ ।

**ମୀନନାଥ**—ପୁଂ.ବ. ସ୍ମରଦୀପିକାପ୍ରଣେତା, ପ୍ରସିଦ୍ଧ ଯୋଗୀ,ଗୋରକ୍ଷନାଥଙ୍କ ଗୁରୁ ।

**ମୀନନେତ୍ରା**—ସ୍ତ୍ରୀ. ବ. ବ.ବ୍ରୀ; ଗଣ୍ଡଦୂର୍ବା, ମତ୍ସ୍ୟାକ୍ଷୀ ସ୍ତ୍ରୀ, କୁବେରଙ୍କ କନ୍ୟା ।

**ମୀନପିତ୍ତ**—କ୍ଲୀ. ବ. କଟୁକୀ ।

**ମୀନର**—ପୁଂ. ବ. (ମୀନ+ରା+କ.ଅ) ମକର, ମଗର, କୁମ୍ଭୀର ।

**ମୀନରଙ୍କ(ଙ୍ଗ)**—ପୁଂ. ବ. ମାଛରଙ୍କା ଚଢ଼େଇ, ଜଳକାକ, ପାଣିକୁଆ ।

**ମୀନରାଜ**—ପୁଂ. ବ. ମତ୍ସ୍ୟରାଜ, ଜାତକ ପ୍ରଣେତା ଜଣେ ପ୍ରସିଦ୍ଧ ଜ୍ୟୋତିର୍ବିଦ୍, ଏ ଜବନେଶ୍ୱର ନାମରେ ପ୍ରସିଦ୍ଧ ।

**ମୀନରାଶି**—ବ. (ଜ୍ୟୋତିଷ) ମେଷାଦି ଦ୍ୱାଦଶ ରାଶି ମଧ୍ୟରୁ ଶେଷ ରାଶି ।

**ମୀନଲାଞ୍ଛନ**—ବ.ବ.ବ୍ରୀ;ମଦନ,କାମଦେବ

**ମୀନଷଟ୍କ**—ବ. ଜ୍ୟୋତିଷୋକ୍ତ ଯୋଗ ବିଶେଷ,ଛଅଗ୍ରହ ମୀନ ରାଶିରେ ରହିବା ସମୟ (ଏହି ସମୟରେ ପୃଥିବୀରେ ଦୁର୍ଭିକ୍ଷ, ମରକ, ଲୋକପୀଡ଼ା ଆଦି ଅମଙ୍ଗଳ ଘଟେ ।

**ମୀନସଂକ୍ରମଣ**—ବ. ସୌରଚୈତ୍ର ମାସର ସଂକ୍ରାନ୍ତି ବା ପ୍ରଥମଦିନ ।

**ମୀନସ୍ୟନ୍ଦନ**—ବ.ବ.ବ୍ରୀ;ମଦନ,କାମଦେବ

**ମୀନା**—ସ୍ତ୍ରୀ. ବ. ଉଷାକନ୍ୟା, କଶ୍ୟପଙ୍କ ଭାର୍ଯ୍ୟା ।

**ମୀନାକ୍ଷ**—ପୁଂ. ବ. ରାକ୍ଷସ ବିଶେଷ,(ବିଂ) ବ.ବ୍ରୀ; ମତ୍ସ୍ୟପରି ନେତ୍ରଯୁକ୍ତ, (ସ୍ତ୍ରୀ) ମୀନାକ୍ଷୀ ।

**ମୀନାକ୍ଷୀ**—ସ୍ତ୍ରୀ. ବ. (ମୀନ+ଅକ୍ଷି+ଈ) ମତ୍ସ୍ୟାକ୍ଷୀ ସ୍ତ୍ରୀ, ଗଣ୍ଡଦୂର୍ବା, କୁବେରଙ୍କ କନ୍ୟା, ବ୍ରାହ୍ମୀଶାକ, ଶର୍କରା, ଦେଶ ବିଶେଷ ।

**ମୀନାଘାତୀ**—ପୁଂ. ବିଂ. (ମୀନ+ଆ+ହନ୍+କ.ଇନ୍) ମୀନବଧକାରୀ,(ବି)କେଉଟ ମାଛମରା ଜାତି, ବଗ ।

**ମୀନାଣ୍ଡ**—କ୍ଲୀ. ବ. (୬ତତ୍) ମତ୍ସ୍ୟାଣ୍ଡ, ମାଛଡିମ୍ବ, ମାଛମଞ୍ଜି ।

**ମୀନାଣ୍ଡୀ**—ସ୍ତ୍ରୀ. ବ. (ମୀନ+ଅଣ୍ଡ+ଈ) ଶର୍କରା ବିଶେଷ, ମିଶ୍ରି, ଚିନି ।

**ମୀନାମାଣି**—ପୁଂ.ବ. ବଦୁର୍ଗମ୍ପ,ଶଙ୍ଖଚିଲ ପକ୍ଷୀ ।

**ମୀନାଲୟ**—ବ.(ମୀନ+ଆଲୟ) ସମୁଦ୍ର, ଜଳାଶୟ ।

**ମୀମାଂସକ**—ପୁଂ. ବିଂ. (ମୀମାଂସା+କ) ମୀମାଂସାଶାସ୍ତ୍ର ବେତ୍ତା, ନିଷ୍ପତ୍ତିକାରକ, (ବି) ବିବାଦ ବା ପ୍ରଶ୍ନର ସମାଧାନକାରୀ ବ୍ୟକ୍ତି,(ଜୈମିନି,କୁମାରିଲଭଟ୍ଟ,ଶବର-ସ୍ୱାମୀ, ପ୍ରଭାକର,ଶଙ୍କରାଚାର୍ଯ୍ୟ,ରାମାନୁଜ, ମଧ୍ୱାଚାର୍ଯ୍ୟ ପ୍ରଭୃତି ମୀମାଂସା ଶାସ୍ତ୍ରଜ୍ଞ ଓ ଦ୍ୱୈତବାଦୀ ଅଟନ୍ତି ।

**ମୀମାଂସନ**—କ୍ଲୀ. ବ. (ମାନ୍+ସନ୍+ଭା.ଅନ) ମୀମାଂସାକରଣ,ନିର୍ଣ୍ଣୟକରଣ, ତତ୍ତ୍ୱାନୁସନ୍ଧାନ ।

**ମୀମାଂସା**—ସ୍ତ୍ରୀ.ବ. (ମାନ୍+ସନ୍+ଭା.ଅ+ଆ) ସିଦ୍ଧାନ୍ତ,ନିଷ୍ପତ୍ତି, ବିଚାର,ଶେଷ-ଫଳ, ତତ୍ତ୍ୱାନୁସନ୍ଧାନ, ଜୈମିନିକୃତ ଦର୍ଶନଶାସ୍ତ୍ର,ପୂର୍ବମୀମାଂସା,ବେଦବ୍ୟାସଙ୍କ କୃତ ବେଦାନ୍ତ, ଉତ୍ତରମୀମାଂସା ।

**ମୀମାଂସିତ**—ବିଂ. (ମାନ୍+ସନ୍+ମି.ତ) ବିଚାରପୂର୍ବକ ସ୍ଥିରୀକୃତ, ନିଷ୍ପତ୍ତି କରାଯାଇଥିବା ।

**ମୀମାଂସ୍ୟ**—ବିଂ. (ମାନ୍+ସନ୍+ମି.ଯ) ମୀମାଂସାରଯୋଗ୍ୟ ।

**ମୀର**—ପୁଂ.ବ.(ମୀ+ର)ସମୁଦ୍ର,ପର୍ବତର ଏକଦେଶ, ସୀମା, ପାନୀୟ, ଜଳ, (ଯା.ବିଂ) ପ୍ରଥମ, ଶ୍ରେଷ୍ଠ ।

**ମୀରକାସିମ**—ପୁଂ. ବ. ବଙ୍ଗର ଶେଷ ସୁବାଦାର ଓ ନବାବ ।

**ମୀରାବାଈ**—ସ୍ତ୍ରୀ. ବ. କୃଷ୍ଣଭକ୍ତିପରାୟଣା ରାଜପୁତ ମହର୍ଷୀ,ରାଠୋରବଂଶୀୟ କନ୍ୟା ଓ ମିବାରର ରାଜା କୁମ୍ଭଙ୍କର ରାଣୀ ।

**ମୀର୍ଜାପୁର**—ସ୍ତ୍ରୀ.ବ. ଉଃ ପଃ ପ୍ରଦେଶର ବନାରସ ବିଭାଗର ଗୋଟିଏ ସ୍ୱନାମ-ପ୍ରସିଦ୍ଧ ଜିଲ୍ଲା ।

**ମୀଲ**—କ୍ଲୀ.ବ. (ମୀଲ୍+କ.ଅ) ବନ, ଜଙ୍ଗଲ, (ଭା.ଅ) ମିଳନ ଦେଖ ।

**ମୀଲକ**—ପୁଂ.ବ. ରୋହିତମତ୍ସ୍ୟ, ରୋହି ମାଛ ।

**ମୀଲନ**—କ୍ଲୀ.ବ.(ମୀଲ୍+ଭା.ଅନ)ନେତ୍ର-ମୁଦ୍ରଣ, ସଂକୋଚନ, ମୁଦ୍ରଣ,ଗୁପ୍ତୋ-ପମାଲଙ୍କାର ।

**ମୀଲିତ**—ବିଂ. (ମୀଲ୍+ତ) ସଙ୍କୁଚିତ, ମୁଦ୍ରିତ, ଅପ୍ରଫୁଲ୍ଲ, (ବି) କାବ୍ୟର ଅଲଙ୍କାରବିଶେଷ ।

**ମୀବର**—ପୁଂ.ବିଂ. (ମୀ+ବର) ହିଂସ୍ର, ପୂଜ୍ୟ, ଷଡ଼ଜନକ, (ସ୍ତ୍ରୀ) ମୀବରା, (ବି) ସେନାପତି ।

**ମୀବା**—ବ.(ମୀବ+କ.ଅ+ଆ)ଉଦର-କୃମି, ବାୟୁ, ଶୀକର, ସାର ।

**ମୀଶାନ**—ପୁଂ.ବ. ମହାରନ୍ଧ୍ରବୃକ୍ଷ ।

**ମୁ**—ପୁଂ.ବ. (ମୁ+ଉ) ମହେଶ,ବନ୍ଧନ, (ଗ୍ରା) ମୁକାମ, ମୁକାବିଲା, ମୁଚୋପା, ମୁତାବକ, ମୁତାଲୁକେ, ମୁନ୍ସଫ୍, ମୁଦଲକ, ମୁତଫର୍କାମାନଙ୍କର ସାଙ୍କେ-ତିକ ଚିହ୍ନ, (ପ୍ରା.ଭବୀଭାଷା) ମୁହଁ ।

**ମୂଆଜା**—ଯା. ବ. ଅଭିଯୁକ୍ତ ବ୍ୟକ୍ତିର ସାକ୍ଷାତରେ କୌଣସି ବିଷୟ ପ୍ରମାଣ କରାଇବା, ମୁକାବିଲା, ସାକ୍ଷାଲକ୍ଷ୍ୟ ପ୍ରତ୍ୟକ୍ଷ ପ୍ରମାଣ, ସାକ୍ଷ୍ୟପ୍ରମାଣ ।

**ମୁଆଜବ୍**—ଯା.ବ. ନିଷ୍କର ଭୂମି ।

**ମୁଆଜ୍ଜିନ୍**—ଯା.ବିଂ. ଯେ ଅଜାନ୍ ଦିଏ, ଯେ ମସଜିଦ୍ ଚୂଡ଼ାରେ ଠିଆହୋଇ ମୁସଲମାନମାନଙ୍କୁ ନମାଜ କରିବାକୁ ଉଚ୍ଚ ସ୍ୱରରେ ଡ଼ାକେ,ଅଜାନ୍ ଦେଖ ।

ମୁଆଳି—ଗ୍ରା. ବି. ଅଣ୍ଟୁକୁଡ଼ା ଧନ, ପୋଲଧନ,ବିଧବା ସ୍ତ୍ରୀ, ଭାଇ, ଭଉଣୀ-ଥିବା ସତ୍ତ୍ୱେ ଲୋକ ପୁତ୍ରହୀନ ହୋଇ ମଲେ ତାହାର ସମ୍ପତ୍ତି ରାଜାଙ୍କ ଖାସ ଦଖଲକୁ ଆସିବା ରୀତି ।

ମୁଆଁ—ଗ୍ରା.ବି.(ସଂ-ମୋଦକ)ଖଇ, ମୁଢ଼ି-ଆଦି ଗୁଡ଼ ବା ଚିନିର ପାଗରେ ପକାଇ ବନାଯାଇଥିବା ମିଷ୍ଟାନ୍ନ ଗୋଲକ, ଗୁଡ଼ପକ୍ୱ ଖଇ ଆ ମୁଢ଼ିଆଦିର ଲଡ଼ୁ ।

ମୁଇ—ଗ୍ରା. ସର୍ବ. ମୁଁ, ମୁହିଁ, ଆମ୍ଭେ ।

ମୁଁ—ଗ୍ରା. ସର୍ବ. ମୁହିଁ, ଆମ୍ଭେ ।

ମୁକ୍‌ତବ୍—ଯା. ବି. ମକ୍ତବ୍, ମୁସଲମାନ-ମାନଙ୍କ ପ୍ରାଥମିକ ପାଠଶାଳା ।

ମୁକତ—ଗ୍ରା. (ପଦ୍ୟ)ବିଂ. ମୁକ୍ତ ଦେଖ ।

ମୁକତି-ଗ୍ରା.(ପଦ୍ୟ)ମୁକ୍ତି ଦେଖ,ବିଂ.ମୁକତ

ମୁକତିପସରା—ଗ୍ରା. ବି. ମୁକ୍ତିର ପ୍ରଧାନ ଅବଲମ୍ବନ ।

ମୁକଦ(ଦ୍ଦ)ମ—ଯା.ବି.ମକଦ୍ଦମ ଦେଖ ।

ମୁକଦ୍ଦମା—ଯା.ବି. ଅଭିଯୋଗ, ନାଲିଶ, ପ୍ରଥମାଂଶ ।

ମୁକ(କୁ)ନ୍ଦକ—ବି. ପଲାଣ୍ଡୁ, ପିଆଜ ।

ମୁକରି—ଯା. ଅବ୍ୟ. ନିଶ୍ଚେ, ଅଲବତ୍ତ, ଅବଶ୍ୟ ।

ମୁକରି(ରି)ର୍—ଯା. ବି. ସ୍ଥାୟୀରୂପେ ନିଯୁକ୍ତି, ସ୍ଥାୟୀ ଭାବରେ ନିର୍ଦ୍ଦେଶ,(ବିଂ) ସ୍ଥାୟୀ, ନିର୍ଦ୍ଦିଷ୍ଟ ।

ମୁକରି(ର)ରିଜମା—ଯା. ବି. ଚିରକାଳ ପାଇଁ ନିର୍ଦ୍ଦିଷ୍ଟ ଭୂମିର ଖଜଣା ।

ମୁକରରି—ଯା. ବି. ଜମିର ଖଜଣାର ପରିମାଣର ଚିରସ୍ଥାୟୀ ବନ୍ଦୋବସ୍ତ, ଇସ୍ତମରାରି ।

ମୁକରିଦାର—ଯା. ବି. ମୁକରରି ଜମା-ଭୋଗୀ ପ୍ରଜା ।

ମୁକରିରପରୁଆନା—ଯା. ବି. କୌଣସି କାର୍ଯ୍ୟରେ ନିଯୁକ୍ତି ସୂଚକ ଆଦେଶ ପତ୍ର

ମୁକଲ—ପୁଂ.ବି. ଆରଗ୍ୱଧ, ସୁନାରିଗଛ, ଗୁଗ୍ଗୁଲୁ ।

ମୁକ(କୁ)ଶାଳି—ଗ୍ରା.ବି. (ସଂ-ମୁଖଶାଳା) ମୁଖଶାଳା ଦେଖ ।

ମୁକା—ଗ୍ରା.ବି. ଥର, ଦଫା, ଦଳ, (ଯା. ବି) ସୁବିଧା, ସୁଯୋଗ, ଅବସର ।

ମୁକାଏମ୍—ଯା.ବି.ପ୍ରତିନିଧି,ସ୍ଥଳାଭିଷିକ୍ତ ବ୍ୟକ୍ତି ।

ମୁକାବିଲା—ଯା.ବି. ସମ୍ମୁଖବର୍ତ୍ତିତା, ଉପ-ସ୍ଥିତି, ପ୍ରତ୍ୟକ୍ଷକରିବା, ମୁଆଜା,ତୁଳନା, ମିଳନ, ପରୀକ୍ଷା, ସମ୍ମୁଖ ଯୁଦ୍ଧ, ଦୁଇ-ଜଣଙ୍କର ଉପସ୍ଥିତିରେ ପ୍ରମାଣ କରିବା ।

ମୁକାବିଲେ—ଗ୍ରା. ଅବ୍ୟ. ସାମନାରେ, ସାକ୍ଷାତରେ, ଉପସ୍ଥିତିରେ ।

ମୁକାମ୍—ଯା. ବି. ବାସସ୍ଥାନ, ରହିବାର ଠିକଣା, ପଥିକର ଯାତ୍ରାକାଳୀନ ରାତ୍ରି-ଯାପନ ସ୍ଥାନ ।

ମୁକାମୁକା—ଗ୍ରା, ଅବ୍ୟ. ଥରଥର କରି, ବହୁଥର, ଅନେକ ଥର, ଦଳଦଳ ।

ମୁ(ମୁଁ)କାର—ଗ୍ରା. ବି. ଅହଂଗୁଣ, ଅହ-ମିକା, ଗର୍ବ, ଅହଙ୍କାର ।

ମୁକୁ—ବି.(ମୁଚ୍+ଣ.କୁ) ମୁକ୍ତି, ମୋକ୍ଷ ।

ମୁକୁଟ—କ୍ଲୀ.ବି.(ମନକ୍+କ.ଉଟ)ସ୍ୱନାମ ପ୍ରସିଦ୍ଧ ଶିରୋଭୂଷଣ, ମକୁଟ ଦେଖ, (ବିଂ) ଶ୍ରେଷ୍ଠ, ପ୍ରଧାନ ।

ମୁକୁଟିଆ—ଗ୍ରା.ପୁଂ.ବିଂ. ମୁକୁଟଧାରୀ ।

ମୁକୁଟୀ—ପୁଂ. ବିଂ. (ମୁକୁଟ+ଇନ୍) ମୁକୁଟଧାରୀ,(ସ୍ତ୍ରୀ. ମୁକୁଟ+ଈ)ଅଙ୍ଗୁଳି-ମୋଟନ, ଆଙ୍ଗୁଠି ଫୁଟାଇବା ।

ମୁକୁଟେକାର୍ଷାପଣ—କ୍ଲୀ. ବି. ରାଜାଙ୍କ ମୁକୁଟ ନିର୍ମାଣାର୍ଥ ଗୃହୀତ ରାଜକର-ବିଶେଷ ।

ମୁକୁଣ୍ଠ—ବି. ଜାତିବିଶେଷ ।

ମୁକୁତା—ଗ୍ରା.ବି(ସଂ-ମୁକ୍ତା)ମୁକ୍ତା,ମୋତି ।

ମୁକୁତାକେଶ—ଗ୍ରା.ବି.ଏକପ୍ରକାର ସାରୁ. ମୁକୁତାର ଝରା ।

ମୁକୁତାଚନ୍ଦ୍ର—ଗ୍ରା.ବି.ଧାଡ଼ି ହୋଇ ସଜ୍ଜିତ ମୁକ୍ତାଗଣ ।

ମୁକୁତି—ଗ୍ରା.ବି.(ସଂ-ମୁକ୍ତି)ମୁକ୍ତି ଦେଖ ।

ମୁକୁନ୍ଦ—ପୁଂ.ବି.(ମୁକୁଂ+ଦା+କ.ଅ) ବିଷ୍ଣୁ, ନିଧିବିଶେଷ, କୁନ୍ଦୁରୁଖୋଟି, ପାରଦ, ଶ୍ୱେତ କନିଅର,ଉପୋଦିକା, ପୋଇ, ଗମ୍ଭାରିଗଛ ।

ମୁକୁନ୍ଦକ—ବି. (ମୁକୁନ୍ଦ+କ) ପଲାଣ୍ଡୁ, ପିଆଜ, ଷଷ୍ଟିଗ୍ରାହ୍ୟ,୬୦ ଦିନରେ ହେବା ଶସ୍ୟବିଶେଷ ।

ମୁକୁନ୍ଦଦେବ—ଗ୍ରା.ପୁଂ.ବି.ଓଡ଼ିଶା ରାଜ-ପତି ବଂଶର ଶେଷ ନରପତି ।

ମୁକୁନ୍ଦରାମଚକ୍ରବର୍ତ୍ତୀ—ଗ୍ରା. ବି. ବଙ୍ଗ-ଭାଷାରେ କବିକଙ୍କଣଚଣ୍ଡୀର ରଚ-ୟିତା କବି । [ବିଶେଷ ।

ମୁକୁନ୍ଦି—ପ୍ରା.(ବାଲେ)ବି.ସାମୁଦ୍ରିକ ମତ୍ସ୍ୟ-

ମୁକୁନ୍ଦୁ—ବି. (ମୁଚ୍+ଉନ୍ଦ+ଉ)କୁନ୍ଦରୁ ।

ମୁକୁମ୍—ଅ. (ମୁଚ୍+ଭା.କୁମ୍) ନିର୍ବାଣ ମୁକ୍ତି, ଭକ୍ତିରସ, ପ୍ରେମ ।

ମୁକୁର—ବି. (ମନକ୍+ଣ.ଉର) ଦର୍ପଣ, ଆଇନା, ବକୁଳବୃକ୍ଷ, କୁମ୍ଭାର ଦଣ୍ଡ, ମଲ୍ଲିକା ପୁଷ୍ପଗୁଚ୍ଛ, କୁନ୍ଦବୃକ୍ଷ, କୋରକ, ମୁକୁଳ, କଢ଼ି ।

ମୁକୁରିତ—ବିଂ.(ମୁକୁର+ଇତ)ସଂଜାତ-ମୁକୁର, ମୁକୁଳିତ,କଢ଼ ହୋଇଥିବା ।

ମୁକୁଳ—ବି. (ମୁଚ୍+କ.ଉଳ) ଈଷତ୍ ବିକଶିତ କଳିକା, ଫୁଲର କଢ଼ି,ଶରୀର, ଆତ୍ମା, (ଗ୍ରା.ବି) ଶସ୍ୟ କଟାଳମାନଙ୍କୁ ଦିଆଯିବା ପାରିଶ୍ରମିକ ଆଂଶିକ ଶସ୍ୟ, (ବିଂ) ଫିଟା, ମେଲା, ବନ୍ଧନରହିତ, ଉନ୍ମୁକ୍ତ ।

ମୁକୁଳବତୀ—ସ୍ତ୍ରୀ.ବିଂ.କଳିକାବତୀ,ଅଦୃଷ୍ଟ-ରଜାଃ ଦେଖ ।

ମୁକୁଳା—ଗ୍ରା. ବିଂ. (ସଂ-ମୁକ୍ତ) ଖୋଲା, ଖୋଲା,ବନ୍ଧନରହିତ,ଉନ୍ମୁକ୍ତ(କେଶାଦି), ସାହାଖିରଚୀ, ମୁକ୍ତହସ୍ତ, ସରଳ, ଅସ-ତର୍କ ।

ମୁକୁଳା(ଳେ)ଇବା-ଗ୍ରା.କ୍ରି.ବନ୍ଧନରୁ ମୁକ୍ତ-କରିବା,ବନ୍ଧକ ଦିଆଯାଇଥିବା ଜିନିସକୁ ମୁକ୍ତକରି ଆଣିବା, କାରାମୁକ୍ତ କରିବା, ବିପଦରୁ ଉଦ୍ଧାର କରିବା ।

ମୁକୁଳାଗ୍ର—କ୍ଲୀ. ବି. ପୁଷ୍ପକୋରକ ପରି ମୁଖାଗ୍ରବିଶିଷ୍ଟ ଶରୀରବ୍ୟବଚ୍ଛେଦକ ଅସ୍ତ୍ରବିଶେଷ ।

ମୁକୁଳିତ—ବିଂ(ମୁକୁଳ+ଇତ)କଳିକା-ସମ୍ପନ୍ନ, ମୁକୁଳଯୁକ୍ତ,ଈଷତ୍ ବିକଶିତ ।

ମୁକୁଳବା—ଗ୍ରା. ବି. ମୁକ୍ତିଲାଭ କରିବା, ଆସନ୍ନ ବିପଦରୁ ଉଦ୍ଧାର ପାଇବା, କାରାମୁକ୍ତ ହେବା ।

ମୁକୁଳୀ—ପୁଂ. ବିଂ. (ମୁକୁଳ+ଇନ୍) ମୁକୁଳଯୁକ୍ତ, ମୁକୁଳବିଶିଷ୍ଟ, (ସ୍ତ୍ରୀ) ମୁକୁଳିନୀ ।

ମୁକୁଳୀଭାବ—ବି.ଅବକାଶର ବିକାଶଭାବ

ମୁକୁଳୋଦ୍ଗମ—ବି. (୬ତତ୍ପୁ) ମୁକୁଳୋତ୍ପତ୍ତି, ମୁକୁଳର ଜନ୍ମ ।

ମୁକୁଳୋତ୍ପତ୍ତି—ବି. (୬ତତ୍ପୁ) ଗଛରୁ କଢ଼ି ବାହାରିବା ।

ମୁକୁଷ୍ଟ—ବି. ବନମୁଦ୍ଗ, ବଣମୁଗ ।

ମୁକୁଷ୍ଟକ—ବି.(ମୁକୁ+ସ୍ତକ+ଅ)ବନମୁଦ୍ଗ, ବଣମୁଗ । [ ବୃକ୍ଷ ।

ମୁକୂଲକ—ବି.(ମୁଚ୍+ଊଲ+କ)ଦନ୍ତି-

ମୁକ୍କୁର—ବି. ମୁକୁର ଦେଖ ।

ମୁକ୍ତା—ବି. ମୁକା ଦେଖ ।

ମୁକ୍ତ—ବିଂ. (ମୁଚ୍+ତ) ପ୍ରାପ୍ତମୋକ୍ଷ, ମୋଚିତ, ମଣ୍ଡିତ, ମୁକ୍ତିପ୍ରାପ୍ତ,ପରିତ୍ୟକ୍ତ, ଉନ୍ମୁକ୍ତ, ପୃଥକ୍‌କୃତ, ଉଦ୍ଘାଟିତ,ମେଲା, ଖୋଲା, ଅବାଧ, ନଗ୍ନ, ଲଙ୍ଗଳା, (ବି) ଋଷିବିଶେଷ, ନୃପବିଶେଷ ।

ମୁକ୍ତକ—କ୍ଲୀ. ବି. (ମୁଚ୍+ତ+କ) କ୍ଷେପଣୀୟ ଅସ୍ତ୍ରବିଶେଷ,ବର୍ଚ୍ଛା, ସମାସରହିତ ରଚନାବିଶେଷ ।

ମୁକ୍ତକଚ୍ଛ—ପୁଂ. ବିଂ. (ବ.ବ୍ରୀ) ଯେ କଚ୍ଛ ନ ମାରି ଲୁଗା ପିନ୍ଧିଥାଏ, (ସ୍ତ୍ରୀ) ମୁକ୍ତକଚ୍ଛା, (ବି) ବୌଦ୍ଧ ଧର୍ମାବଲମ୍ବୀ ସମ୍ପ୍ରଦାୟବିଶେଷ ।

ମୁକ୍ତକଞ୍ଚୁକ—ବି. (ବ.ବ୍ରୀ)ଅଚିରତ୍ୟକ୍ତତ୍ୱକ୍ ସର୍ପ,ଯେଉଁ ସାପ ଅଳ୍ପଦିନ ହେଲା କାତି ଛଡ଼ାଇଅଛି,(ବିଂ)ଉଜ୍ଝିତକଞ୍ଚୁକ, କାତି ଛଡ଼ାଇଥିବା(ସାପ),ଯେ ଦେହରୁ ସାଞ୍ଜୁ କାଟିଅଛି, (ସ୍ତ୍ରୀ) କଞ୍ଚୁକା ।

ମୁକ୍ତକଣ୍ଠ—ପୁଂ. ବିଂ. (ବ.ବ୍ରୀ) ଉଚ୍ଚସ୍ୱରକାରୀ, ଅନବରୁଦ୍ଧ କଣ୍ଠ ସ୍ୱରବିଶିଷ୍ଟ, ନିଷ୍କପଟ, ନିର୍ଲୋଭ, (ବି.କ.ଧା) ଉଚ୍ଚୈଃସ୍ୱର, ଅନବରୁଦ୍ଧ କଣ୍ଠସ୍ୱର ।

ମୁକ୍ତକଣ୍ଠରେ—ଗ୍ରା. କ୍ରି. ବିଂ. ଅନବରୁଦ୍ଧ କଣ୍ଠସ୍ୱରରେ, ସ୍ପଷ୍ଟ ସ୍ୱରରେ, ଅକୃତ୍ରିମ ଭାବରେ, ସ୍ୱେଚ୍ଛା ପ୍ରଣୋଦିତ ହୋଇ ।

ମୁକ୍ତକେଶ—ପୁଂ.ବିଂ. (ବ.ବ୍ରୀ) ଆଲୁଳାୟିତ କେଶବିଶିଷ୍ଟ, ଯାହାର ବାଳ ମୁକୁଳା ଅଛି, (ସ୍ତ୍ରୀ) ମୁକ୍ତକେଶୀ, (ବି-କ.ଧା) ଆଲୁଳାୟିତ କୁନ୍ତଳ, ମୁକୁଳାବାଳ । [ ବିଶିଷ୍ଟା କାଳୀ ।

ମୁକ୍ତକେଶୀ—ସ୍ତ୍ରୀ.ବି.ଆଲୁଳାୟିତ କେଶ-

ମୁକ୍ତଚକ୍ଷୁଃ—ପୁଂ. ବି.(ବ.ବ୍ରୀ)ସିଂହ,(ବିଂ) ଉନ୍ମୀଳିତ ନେତ୍ର, ଯାହାର ଚକ୍ଷୁ ବୁଜି ହୋଇ ନାହିଁ,(କ୍ଲୀ.ବି.କ.ଧା)ଖୋଲା ଆଖି

ମୁକ୍ତଚନ୍ଦନ—ବି. ରକ୍ତଚନ୍ଦନ ।

ମୁକ୍ତଚେତାଃ—ପୁଂ. ମୋକ୍ଷପ୍ରାପ୍ତାତ୍ମା ।

ମୁକ୍ତଦ୍ୱାର—ବିଂ. (ବ.ବ୍ରୀ)ଯେଉଁ ସ୍ଥାନର ଦ୍ୱାର ଖୋଲାଥାଏ, (ବି.କ.ଧା)ଅବାଧଗମନ, ମେଲାଥିବା କବାଟ ।

ମୁକ୍ତନିଦ୍ର—ପୁଂ.ବିଂ. (ମୁକ୍ତ+ନିଦ୍ରା)ବ.ବ୍ରୀ; ଜାଗ୍ରତ ।

ମୁକ୍ତନିର୍ମୋକ—ପୁଂ.ବିଂ.(ବ.ବ୍ରୀ) ଯେଉଁ ସାପ କାତି ଛଡ଼ାଇଅଛି ।

ମୁକ୍ତପଥ—ବି. (କ.ଧା) ଅବାରିତ ପଥ ।

ମୁକ୍ତପବନ—ବି.(କ.ଧା)ଖୋଲା ହାଉଆ, ଯେଉଁ ବାୟୁ ବହିବା ବେଳେ ବାଧା ପାଏ ନାହିଁ ।

ମୁକ୍ତପାଲେବତ—ବି. ଦ୍ୱୈପଖର୍ଜୁରବୃକ୍ଷ

ମୁକ୍ତପୁରୁଷ—ପୁଂ.ବି. (କ.ଧା) ଯାହାର ଅଜ୍ଞାନାନ୍ଧକାର ଦୂର ହୋଇଅଛି, ଜୀବନ୍ମୁକ୍ତ ବ୍ୟକ୍ତି ।

ମୁକ୍ତଫୁତ୍କାର—ବିଂ. (ବ.ବ୍ରୀ)ଶବ୍ଦକାରୀ ।

ମୁକ୍ତବନ୍ଧନ—ପୁଂ.ବିଂ.(ବ.ବ୍ରୀ)ଶୃଙ୍ଖଳମୁକ୍ତ, ଯାହାର ବନ୍ଧନ ଖୋଲାହୋଇଅଛି ।

ମୁକ୍ତଭାଷ—ବି. (କ.ଧା) ସ୍ପଷ୍ଟକଥା ।

ମୁକ୍ତମଣ୍ଡପ—ଗ୍ରା.ବି. ମୁକ୍ତିମଣ୍ଡପ ଦେଖ ।

ମୁକ୍ତମଣ୍ଡୂକକଣ୍ଠ—ପୁଂ. ବିଂ. ( ବ.ବ୍ରୀ ) ବେଙ୍ଗପରି ଅହରହ ଚିତ୍କାରକାରୀ ।

ମୁକ୍ତମାତା—ସ୍ତ୍ରୀ.ବି. ଶୁକ୍ତି, ଶାମୁକା ।

ମୁକ୍ତମୂର୍ଦ୍ଧଜ—ପୁଂ.ବିଂ. (ବ.ବ୍ରୀ)ମୁକ୍ତକେଶ ଦେଖ, (ସ୍ତ୍ରୀ) ମୁକ୍ତମୂର୍ଦ୍ଧଜା ।

ମୁକ୍ତରସା—ସ୍ତ୍ରୀ.ବି. (ବ.ବ୍ରୀ)ରାସ୍ନା,(ବିଂ) ତ୍ୟକ୍ତରସବିଶିଷ୍ଟା ।

ମୁକ୍ତରୋଷ—ପୁଂ.ବିଂ.( ବ.ବ୍ରୀ )ତ୍ୟକ୍ତକ୍ରୋଧ, କୋପଶୂନ୍ୟ ।

ମୁକ୍ତଲଜ୍ଜ—ପୁଂ.ବିଂ. ( ବ.ବ୍ରୀ ) ନିର୍ଲଜ୍ଜ, ତ୍ୟକ୍ତଲଜ୍ଜ, (ସ୍ତ୍ରୀ) ମୁକ୍ତଲଜ୍ଜା ।

ମୁକ୍ତବନ୍ଧନା—ସ୍ତ୍ରୀ.ବି. ମଲ୍ଲିକା ।

ମୁକ୍ତବର୍ହିଃ—ବି.ମୂଷାକାନି, ବର୍ଷାୟୁ ଶାକବିଶେଷ । [ ପ୍ରଶସ୍ତ ପଥ ।

ମୁକ୍ତବର୍ତ୍ମ—କ୍ଲୀ.ବି. ମୁକ୍ତିମାର୍ଗ, ସରଳ ଓ

ମୁକ୍ତବସନ—ପୁଂ.ବିଂ (ବ.ବ୍ରୀ)ମୁକ୍ତାମ୍ବର, ଲଙ୍ଗଳା, (ବି) ଜୈନସନ୍ନ୍ୟାସୀ, (ସ୍ତ୍ରୀ) ମୁକ୍ତବସନା ।

ମୁକ୍ତବାସ—ବି. ଶୁକ୍ତି, ଶାମୁକା ।

ମୁକ୍ତବୁଦ୍ଧି—ପୁଂ.ବିଂ. (ବ.ବ୍ରୀ) ଯାହାର ବୁଦ୍ଧିବୃତ୍ତି ଅଜ୍ଞାନାନ୍ଧକାରରୁ ମୁକ୍ତ ହୋଇଅଛି ।

ମୁକ୍ତବେଣୀ—ସ୍ତ୍ରୀ.ବି. (କ.ଧା) ବିମୁକ୍ତ କେଶପାଶ, ଅବାଧ ସ୍ରୋତଃ,ତ୍ରିବେଣୀ, ଗଙ୍ଗାଯମୁନା ଓ ସରସ୍ୱତୀ ନଦୀର ସଙ୍ଗମସ୍ଥଳ, (ବିଂ-ବ.ବ୍ରୀ) ଯାହାର ବେଣୀ ବନ୍ଧାହୋଇ ଲମ୍ବିଅଛି ।

ମୁକ୍ତବ୍ୟାପାର—ବିଂ. (ବ.ବ୍ରୀ) କାର୍ଯ୍ୟ ପରିତ୍ୟାଗକାରୀ, ସଂସାର ବାସନାରୁ ନିର୍ଲିପ୍ତ ।

ମୁକ୍ତଶୃଙ୍ଗ—ପୁଂ.ବି. (ବ.ବ୍ରୀ) ରୋହିତକ ମତ୍ସ୍ୟ, ରୋହିମାଛ ।

ମୁକ୍ତସଂଶୟ—ବିଂ. (ବ.ବ୍ରୀ) ଯାହାର ସନ୍ଦେହ ନିରାକୃତ ହୋଇଅଛି ।

ମୁକ୍ତସଙ୍ଗ—ପୁଂ.ବିଂ. (ବ.ବ୍ରୀ) ବିଷୟାସକ୍ତି ରହିତ, ନିସ୍ପୃହ, ବାସନାରହିତ, (ବି) ପରିବ୍ରାଜକ ।

ମୁକ୍ତସାର—ବି. କଦଳୀଗଛ ।

ମୁକ୍ତସ୍ୱାମୀ—ବି. କାଶ୍ମୀର ରାଜ ପ୍ରତିଷ୍ଠିତ ମୋକ୍ଷଦାତା ଦେବମୂର୍ତ୍ତିବିଶେଷ ।

ମୁକ୍ତହସ୍ତ—ପୁଂ.ବିଂ. (ବ.ବ୍ରୀ)ଦାନଶୀଳ, ବଦାନ୍ୟ, ଯେ ବ୍ୟୟକୁଣ୍ଠ ନୁହେ, (ସ୍ତ୍ରୀ) ମୁକ୍ତହସ୍ତା,(ବି-କ.ଧା) ମୁଠାହୋଇ ନ ଥିବା ହାତ, ଦାନ କରିବାକୁ ଅକୁଣ୍ଠିତ ହସ୍ତ ।

ମୁକ୍ତହସ୍ତତା—ବି. (ମୁକ୍ତହସ୍ତ + ଭା.ତା) ବଦାନ୍ୟତା ।

ମୁକ୍ତା—ସ୍ତ୍ରୀ.ବି. (ମୁଚ୍+ତ+ଆ)ସମ୍ମା. ରତ୍ନବିଶେଷ, ମୋତି, ଶାମୁକାରୁ ଜାତ ମଣି, ବେଶ୍ୟା, ପୁଂଶ୍ଚଳୀ, (ସ୍ତ୍ରୀ.ବିଂ) ମୁକ୍ତର ସ୍ତ୍ରୀଲିଙ୍ଗ, ନଗ୍ନା, ଅବନ୍ଧା ।

ମୁକ୍ତାକଳାପ—ବି. (୬ତତ୍ପୁ)ମୁକ୍ତାହାର, ମୁକ୍ତାର ମାଳା, ମୁକ୍ତାସମୂହ ।

ମୁକ୍ତାକାର—ବିଂ. (ବ.ବ୍ରୀ) ମୁକ୍ତାପରି ଆକୃତିବିଶିଷ୍ଟ । [ ବାଇଗଣ ।

ମୁକ୍ତାକେଶୀ—ବି. ଏକପ୍ରକାର ଉତ୍କୃଷ୍ଟ

ମୁକ୍ତାଖଚିତ(ଜଡ଼ିତ)—ବିଂ. (୩ତତ୍ପୁ) ଯେଉଁ ଅଳଙ୍କାରରେ ମୁକ୍ତା ବସିଅଛି ।

ମୁକ୍ତାଗାର—କ୍ଳୀ. ବି. (୬ତତ୍ପୁ) ଶୁକ୍ତି, ଯେଉଁ ଶାମୁକା ମଧ୍ୟରେ ମୁକ୍ତା ଜନ୍ମେ ।

ମୁକ୍ତାଗୁଣ—ବି. ମୁକ୍ତାହାର, ମୁକ୍ତାର ମାଳା ।

ମୁକ୍ତାଜାଲ—କ୍ଳୀ.ବି. ମୁକ୍ତାର ଅଳଙ୍କାରବିଶେଷ, ମୁକ୍ତାସମୂହ ।

ମୁକ୍ତାତ୍ମା—ପୁଂ. ବିଂ. ( ମୁକ୍ତ+ଆତ୍ମନ୍ ) ବ.ବ୍ରୀ; ମୁକ୍ତପୁରୁଷ, ( ବି-କ.ଧା ) ସଂସାରରୂପ ବନ୍ଧନରୁ ମୁକ୍ତିପ୍ରାପ୍ତ ଆତ୍ମା ।

ମୁକ୍ତାଦାମ—ବି. (୬ତତ୍ପୁ) ମୁକ୍ତାମାଳା ।

ମୁକ୍ତାପନ୍ତି—ଗ୍ରା. ବି. ଧାଡ଼ି ଧାଡ଼ି ସଜ୍ଜିତ ମୋତି ।

ମୁକ୍ତାପୀଡ଼—ପୁଂ. ବି. କାଶ୍ମୀରର ରାଜାବିଶେଷ, ଜନୈକ ପ୍ରାଚୀନ କବି ।

ମୁକ୍ତାପୁର—ବି.ହିମାଳୟ ପର୍ବତର ସ୍ଥାନବିଶେଷ । [ ଫୁଲ ଗଛ ।

ମୁକ୍ତାପୁଷ୍ପ—ବି. (ବ.ବ୍ରୀ) କୁନ୍ଦବୃକ୍ଷ,କୁନ୍ଦ-

ମୁକ୍ତାପ୍ରସୂ—ସ୍ତ୍ରୀ. ବି. (ମୁକ୍ତା+ପ୍ର+ସୂ+କ୍ୱିପ୍) ଶୁକ୍ତି, ଶାମୁକା ।

ମୁକ୍ତାପ୍ରାଲମ୍ବ—ପୁଂ. ବି. ମୁକ୍ତାହାରବିଶେଷ ।

ମୁକ୍ତାଫଳ—କ୍ଳୀ. ବି. ମୌକ୍ତିକ, ମୁକ୍ତା, ଲବଲୀଫଳ, ଆତ, ନଅରକୋଳି, ଶବରରାଜ ବୋପଦେବ କୃତ ଗ୍ରନ୍ଥବିଶେଷ । [ ମୁକ୍ତାମାଳା ।

ମୁକ୍ତାଫଳଲତା—ସ୍ତ୍ରୀ. ବି. ମୁକ୍ତାହାର,

ମୁକ୍ତାଭ—ବି. ସିନ୍ଦୁରମଲ୍ଲିକା ।

ମୁକ୍ତାମଣି—ବି. ମୁକ୍ତାରତ୍ନ, ମୁକ୍ତା ।

ମୁକ୍ତାମୟ—ବିଂ. ମୁକ୍ତାବିନିର୍ମିତ, ମୁକ୍ତାଯୁକ୍ତ । [ ଶାମୁକା ।

ମୁକ୍ତାମାତା—ସ୍ତ୍ରୀ. ବି. (୬ତତ୍ପୁ) ଶୁକ୍ତି,

ମୁକ୍ତାମାଳା—ବି. (୬ତତ୍ପୁ) ମୁକ୍ତାଗ୍ରଥିତ ହାର ।

ମୁକ୍ତାମୁକ୍ତ—ବିଂ. କ୍ଷିପ୍ତାକ୍ଷିପ୍ତ ।

ମୁକ୍ତାମୋଦକ—ବି. ମୋତିଚୁରଲଡ଼ୁ ।

ମୁକ୍ତାମ୍ବର—ବିଂ. (ବ.ବ୍ରୀ) ନଗ୍ନ, ମୁକ୍ତବସନ, ( ବି ) ଜୈନସନ୍ନ୍ୟାସୀଭେଦ, ଦିଗମ୍ବର ।

ମୁକ୍ତାର—ଯା. ବି. ଅଦାଲତରେ ମକଦ୍ଦମାର ଯାବତୀୟ କାର୍ଯ୍ୟ କରିବା ପାଇଁ ପକ୍ଷମାନଙ୍କ ପ୍ରତିନିଧି, ନିମ୍ନଶ୍ରେଣୀର ଆଇନ ବ୍ୟବସାୟୀ,କ୍ଷମତାପ୍ରାପ୍ତ କାରପରଦାଜ୍ । [ ମୌକ୍ତିକ ।

ମୁକ୍ତାରତ୍ନ—ବି. ମୁକ୍ତାମଣି, ମୁକ୍ତା,

ମୁକ୍ତାଲତା—ସ୍ତ୍ରୀ.ବି.(୬ତତ୍ପୁ)ମୁକ୍ତାହାର ।

ମୁକ୍ତାବଳୀ—ସ୍ତ୍ରୀ. ବି. (୬ତତ୍ପୁ) ମୁକ୍ତାହାର, ମୁକ୍ତାସମୂହ, ମୌକ୍ତିକଶ୍ରେଣୀ, ତାଳବିଶେଷ ।

ମୁକ୍ତାଶମ୍ବୁକ—ବି. ମୁକ୍ତାଶୁକ୍ତି ଦେଖ ।

ମୁକ୍ତାଶୁକ୍ତି—ସ୍ତ୍ରୀ. ବି. ଯେଉଁ ଶୁକ୍ତି ବା ଶାମୁକାରୁ ମୁକ୍ତା ଜନ୍ମେ ।

ମୁକ୍ତାସନ—କ୍ଳୀ. ବି. ପରିତ୍ୟକ୍ତାସନ, ସିଦ୍ଧାସନ, ଯୋଗପ୍ରକ୍ରିୟାର ଆସନବିଶେଷ ।

ମୁକ୍ତାସାର—ବି. (୬ତତ୍ପୁ)ଶ୍ରେଷ୍ଠମୁକ୍ତା ।

ମୁକ୍ତାସ୍ଫୋଟ—ପୁଂ. ବି. (ମୁକ୍ତା+ସ୍ଫୁଟ୍ +ଅଧି.ଅ) ଶୁକ୍ତି, ଶାମୁକା ।

ମୁକ୍ତାସ୍ଫୋଟା—ସ୍ତ୍ରୀ. ବି. ଶୁକ୍ତି ।

ମୁକ୍ତାସ୍ରକ୍—ସ୍ତ୍ରୀ. ବି. ମୁକ୍ତାମାଳା ।

ମୁକ୍ତାହାର—ପୁଂ. ବିଂ. ( ବ.ବ୍ରୀ ) ଯେ ଆହାର ପରିତ୍ୟାଗ କରିଅଛି,ଉପବାସୀ. (ବି-୬ତତ୍ପୁ) ମୋତିମାଳା ।

ମୁକ୍ତି—ସ୍ତ୍ରୀ. ବି. (ମୁଚ୍+ଭା.ତି) ଆତ୍ୟନ୍ତିକ ଦୁଃଖନିବୃତ୍ତି,କାରାମୋଚନ,ବନ୍ଧନମୋଚନ, ନିଷ୍କୃତି, ମୋକ୍ଷ, ପରିତ୍ରାଣ, ଅପବର୍ଗ, ସଂସାର ବନ୍ଧନରୁ ବିମୁକ୍ତି, ପରଜନ୍ମରୂପ ବନ୍ଧନରୁ ଉଦ୍ଧାରପ୍ରାପ୍ତି, ସ୍ୱାଧୀନତାଲାଭ ।

ମୁକ୍ତିଆର—ଯା. ବି. ମୁକ୍ତାର ଦେଖ ।

ମୁକ୍ତିଆରନାମା—ଯା.ବି. ଯେଉଁ ଦଲିଲ ଦ୍ୱାରା ପକ୍ଷ ଅଦାଲତରେ ଆପଣାର ପକ୍ଷ ସମର୍ଥନ କରିବା ପାଇଁ ମୁକ୍ତାର ନିଯୁକ୍ତ କରେ, କ୍ଷମତାପତ୍ର ।

ମୁକ୍ତିଆରି—ଯା.ବି. ମୁକ୍ତିଆରଙ୍କ କାର୍ଯ୍ୟ, ଅଦାଲତରେ କୌଣସି ବ୍ୟକ୍ତିର ମୁକ୍ତାର ସ୍ୱରୂପ ପକ୍ଷସମର୍ଥନ, (ବିଂ) ମୁକ୍ତାର ସମ୍ବନ୍ଧୀୟ, ମୁକ୍ତାରଙ୍କ ଉପଯୋଗୀ ।

ମୁକ୍ତିକା—ସ୍ତ୍ରୀ. ବି. ମୁକ୍ତିକୋପନିଷତ୍-ଭେଦ ।

ମୁକ୍ତିକ୍ଷେତ୍ର—କ୍ଳୀ.ବି. (କ.ଧା) ମୁକ୍ତିପ୍ରଦସ୍ଥାନ, କାଶୀ, ବାରଣସୀ, କାବେରୀ ନଦୀକୂଳସ୍ଥ ପ୍ରାଚୀନ ତୀର୍ଥ, ଯାହାର ଅନ୍ୟନାମ କୁଳାରଣ୍ୟ ।

ମୁକ୍ତିତୀର୍ଥ—ବି. ମୁକ୍ତିଦାତା, ବିଷ୍ଣୁ ।

ମୁକ୍ତିଦ—ପୁଂ.ବି. ବିଂ. (ମୁକ୍ତି+ଦା+କ.ଅ) ପରିତ୍ରାତା, ମୋକ୍ଷକର୍ତ୍ତା, (ସ୍ତ୍ରୀ) ମୁକ୍ତିଦା ।

ମୁକ୍ତିଦାତା—ପୁଂ. ବି. ବିଂ. ମୁକ୍ତିଦ ଦେଖ, (ସ୍ତ୍ରୀ) ମୁକ୍ତିଦାତ୍ରୀ ।

ମୁକ୍ତିଦାନ—ବି. (୬ତତ୍ପୁ) ଅବ୍ୟାହତି ଦେବା, ମୁକୁଳାଇବା, ସାଂସାରିକ ଦୁଃଖର ବିନାଶକରଣ ।

ମୁକ୍ତିଧନ—ବି (ରୂ.କ.ଧା)ମୁକ୍ତିରୂପସମ୍ପଦ

ମୁକ୍ତିପଞ୍ଚକ—ଗ୍ରା.ବି ବ୍ରତବିଶେଷ,(ସମ୍ବତ୍ସରର ଆଦ୍ୟଦିନ—ଫାଲ୍ଗୁନପୂର୍ଣ୍ଣିମାଠାରୁ ଆରମ୍ଭକରି ପ୍ରତିମାସର ପ୍ରଥମଦିନ ଶ୍ରୀ ଭଗବାନଙ୍କର ଦ୍ୱାଦଶ ନାମ ଅନୁସାରେ ଦ୍ୱାଦଶ ମୂର୍ତ୍ତି ନିର୍ମାଣ କରି ଭକ୍ତମାନେ ଏ ସାମ୍ବତ୍ସରିକ ବ୍ରତ ଅନୁଷ୍ଠାନ କରନ୍ତି) । [ ଦାତା ।

ମୁକ୍ତିଗତ—ବି. (ମୁକ୍ତି+ଗତ)ମୁକ୍ତି-

ମୁକ୍ତିପନ୍ଥ—ଗ୍ରା.ବି. ବନ୍ଧନଆଦିରୁ ମୁକ୍ତି ପାଇବାର ନିଦର୍ଶନ ବା ଆଦେଶଲିପି, ଆପଣାର ଦାବୀ ବା ସ୍ୱତ୍ୱକୁ ଅନ୍ୟ

ବ୍ୟକ୍ତି ପକ୍ଷରେ ପରିତ୍ୟାଗ କରିବାର ନିର୍ଦ୍ଦେଶ ଦଲିଲ ।
ମୁକ୍ତିପଥ—ବି. (ଷତତ୍) ପରିତ୍ରାଣର ଉପାୟ, ଯେଉଁ ପଥ ଧରିଲେ ମନୁଷ୍ୟ ମୁକ୍ତି ବା ମୋକ୍ଷ ଲଭେ ।
ମୁକ୍ତିପଦ—ବି. (ଷତତ୍) ଅପବର୍ଗ ରୂପ ଐଶ୍ୱର୍ଯ୍ୟ, କୈବଲ୍ୟପଦ ।
ମୁକ୍ତିପନ୍ଥା—ବି.(ଷତତ୍)ମୁକ୍ତିପଥ ଦେଖ
ମୁକ୍ତିପସର—ଗ୍ରା.ବି. ମୁକ୍ତି ବା ମୋକ୍ଷର ସ୍ଥାନ, ମୁକ୍ତିଲାଭ କରିବା ନିମନ୍ତେ ଆଶ୍ରୟ (ବ୍ୟକ୍ତି ବା ଦେବତା) ।
ମୁକ୍ତିପ୍ରଦ—ପୁଂ.ବି.ବିଂ. ମୁକ୍ତିଦ ଦେଖ, (ସ୍ତ୍ରୀ) ପ୍ରଦା,(ବି)ଶାଗୁଆ ବା କଲାମୁଗ ।
ମୁକ୍ତିପ୍ରଦାୟକ—ବି.ବିଂ.ମୁକ୍ତିଦ ଦେଖ, (ସ୍ତ୍ରୀ) ପ୍ରଦାୟିକା ।
ମୁକ୍ତିପ୍ରାର୍ଥନା—ବି. (ଷତତ୍) ମୋକ୍ଷ ପାଇବା ପାଇଁ ଯାଚ୍ଞା ।
ମୁକ୍ତିପ୍ରାର୍ଥୀ—ପୁଂ. ବିଂ. (ମୁକ୍ତି+ପ୍ର+ଅର୍ଥ+ଇନ୍)ମୋକ୍ଷ ଲାଭେଚ୍ଛୁ, ମୁମୁକ୍ଷୁ, (ସ୍ତ୍ରୀ) ମୁକ୍ତିପ୍ରାର୍ଥିନୀ ।
ମୁକ୍ତିଫଉଜ,ଫୌଜ—ଗ୍ରା.ବି.ବଏସ୍କାଉଟ୍, ଯୁବ ସ୍ୱେଚ୍ଛାସେବକ, ବାଳଚର ।
ମୁକ୍ତିମଣି—ଗ୍ରା.ବି. ଶ୍ରେଷ୍ଠ ମୁକ୍ତିଦାତା ।
ମୁକ୍ତିମଣ୍ଡପ—ବି. (କ.ଧା) କାଶୀବିଶ୍ୱେଶ୍ୱରଙ୍କ ଦକ୍ଷିଣପାର୍ଶ୍ୱସ୍ଥ ମଣ୍ଡପବିଶେଷ, ପୁରୀ ଜଗନ୍ନାଥ ମନ୍ଦିରର ଦକ୍ଷିଣ ପାର୍ଶ୍ୱସ୍ଥିତ ମଣ୍ଡପ ।
ମୁକ୍ତିମୁକ୍ତ—ବି. ଶିହ୍ଲକ, ଶିଳାରସ ।
ମୁକ୍ତିଲାଭ—ବି.ପରିତ୍ରାଣପ୍ରାପ୍ତି, ମୋକ୍ଷଲାଭ ।
ମୁକ୍ତିବାଦ—ବି. ମୁକ୍ତିବିଷୟକ ବିଚାର
ମୁକ୍ତିସାଧନ—କ୍ଲୀ. ବି. ମୋକ୍ଷଲାଭାର୍ଥ ଈଶ୍ୱରାନୁଚିନ୍ତନରୂପ ସାଧନାବିଶେଷ ।
ମୁକ୍ତେଶ୍ୱର—ଗ୍ରା. ବି. ଓଡ଼ିଶା ଭୁବନେଶ୍ୱରରେ ପ୍ରତିଷ୍ଠିତ ଶିବଲିଙ୍ଗ ।
ମୁଖ୍‌ଲସ୍—ଯା. ବି. ଦରିଦ୍ର ବ୍ୟକ୍ତି, (ଲ. ଅର୍ଥ) ଅବ୍ୟବାହିତ ପୁରୁଷ, ନପୁଂସକ ।
ମୁଖ—କ୍ଲୀ. ବି. (ଖନ୍+ମି.ଅ) ବଦନ, ମୁହଁ, ପାଟି, ସୂଚପାତ, ପ୍ରାରମ୍ଭ, ଉପାୟ, ଅଗ୍ରଭାଗ, ବାକ୍ୟ ନିଃସରଣ ଓ ଭୋଜ୍ୟ ଗ୍ରହଣର ଦ୍ୱାର, ପ୍ରବେଶମାର୍ଗ, ଗୃହାଦିର ଦ୍ୱାର, ନିଃସରଣ ପଥ, ଛିଦ୍ର, ପାତ୍ରାଦିର ଧାର, ବାକ୍ୟ, ଶବ୍ଦ, ଜୀବ, ପକ୍ଷୀର ଚଞ୍ଚୁ ବା ଥଣ୍ଟ, ନାଟକାଦିର ସନ୍ଧିବିଶେଷ, ପ୍ରଧାନ ବ୍ୟକ୍ତି ବା ପଦାର୍ଥ, କେଉଡ଼ଗଛ, ନଦୀର ମୁହାଣ,(ଗଣିତ) କୌଣସି ଶ୍ରେଣୀର ପ୍ରଥମ ବା ଆଦ୍ୟ ସଂଖ୍ୟା, (ଜ୍ୟାମିତି) ଚତୁର୍ଭୁଜ ବିଶିଷ୍ଟ କ୍ଷେତ୍ରର ଭୂମିର ବିପରୀତ ବାହୁ, ପାଣିକୁଆ, (ବିଂ) ପ୍ରଧାନ, ଆଦ୍ୟ ।
ମୁଖକଟୁ—ବି. ରୂଢ଼ବାକ୍ୟ ପ୍ରୟୋଗ, ବିରକ୍ତି ସହିତ କହିବା, (ବିଂ) ବ.ଗ୍ରା; କଟୁଭାଷୀ । [ ଆଟହି ।
ମୁଖକଣ୍ଡୁ—ବି.କଥାକହିବାପାଇଁ ଅତ୍ୟନ୍ତ
ମୁଖକବାଟି—ଗ୍ରା.ବି.'ଝାଡ଼ୁଆଦିକୁ ପିନ୍ଧିବା ପରେ ଯେଉଁ କବଜା ଦ୍ୱାରା ତାହା ମୁଦାଯାଏ ।
ମୁଖକମଳ—ବି. ପଦ୍ମପରି ସୁନ୍ଦର ମୁଖ
ମୁଖକାନ୍ତି—ବି. (ଷତତ୍) ମୁଖର ଶ୍ରୀ, ମୁଖର ଶୋଭା । [ ବିଶେଷ ।
ମୁଖକୃଷ୍ଟ—ବି. ମୁଖଶଲ୍ଲିକା, ମୁଖରୋଗ
ମୁଖକୋଷ—ବି. ମୁଖାଚ୍ଛାଦନ, ମୁଖା ।
ମୁଖକ୍ଷତ—ବି. ( ଷତତ୍ ) ତୁଣ୍ଡଘାଆ, ମୁହଁରେ ଘାଆ ।
ମୁଖକ୍ଷୁର—ବି. (ଷତତ୍) ଦନ୍ତ,(ଦନ୍ତରେ କ୍ଷୁର ପରି ଧାର ଥିବାରୁ) ।
ମୁଖଗନ୍ଧ—ବି.(ଷତତ୍)ଅପରିଷ୍କୃତ ପାଟିରୁ ବାହାରିବା ପୂତିଗନ୍ଧ ।
ମୁଖଗନ୍ଧକ—ବି. ( ମୁଖ+ଗନ୍ଧ+କ ) ପଲାଣ୍ଡୁ, ପିଆଜ ।
ମୁଖଗହ୍ୱର—ବି. ପାଟି ।
ମୁଖଗୋଲ—ଗ୍ରା.ବି. ପାଟି, ଘୋଷ, ଶବ୍ଦ, ମୁଖରବ ।
ମୁଖଘଣ୍ଟା—ସ୍ତ୍ରୀ. ବି. ହୁଳହୁଳି ଧ୍ୱନି ।
ମୁଖଚନ୍ଦ୍ର—ବି. ଚନ୍ଦ୍ରପରି ସମୁଜ୍ଜ୍ୱଳ ମୁଖଶ୍ରୀ, ଚନ୍ଦ୍ରତୁଲ୍ୟ ମନୋହର ମୁଖ ।
ମୁଖଚପଲ—ପୁଂ. ବିଂ. ବ.ଗ୍ରା; ମୁଖର, ବହୁଭାଷୀ, କଟୁଭାଷୀ,(ସ୍ତ୍ରୀ) ମୁଖଚପଳା ।
ମୁଖଚପଳତା(ତ୍ୱ)ବି.ଅତ୍ୟଧିକ ବାଚାଳତା ।
ମୁଖଚାହିଁବା—ଗ୍ରା.କି. କୌଣସି ବ୍ୟକ୍ତିର ମୁହଁକୁ ଦେଖିବା, କୌଣସି ବ୍ୟକ୍ତିକୁ ଦେଖିବା । [ ଜିହ୍ୱା ।
ମୁଖଚରୀ—ବି.(ମୁଖ+ଚର୍+କ.ଇନ୍)
ମୁଖଚୌରୀ—ସ୍ତ୍ରୀ. ବି. (ମୁଖଚୌର+ଈ) ଜିହ୍ୱା, ପଲାଣ୍ଡୁ, ପିଆଜ ।
ମୁଖଚୋର—ଗ୍ରା. ବିଂ. ଲଜ୍ଜାଶୀଳ, ଭୀରୁ, ଲାଜକୁଳା, ଯେ ସଭା ବା ଭଦ୍ରଲୋକଙ୍କ ସମକ୍ଷରେ ପରିଷ୍କାର ରୂପେ କଥା କହି ପାରେନାହିଁ ।
ମୁଖଚ୍ଛବି—ବି. (ଷତତ୍)ମୁଖକାନ୍ତି, ମୁଖଶ୍ରୀ
ମୁଖଜ—ବି.(ମୁଖ+ଜନ୍+ଅ, ବ୍ରହ୍ମାଙ୍କ ମୁଖରୁ ଜାତ ବୋଲି) ବ୍ରାହ୍ମଣ, ଦାନ୍ତ, (ବିଂ) ମୁଖରୁ ଜାତ, (ସ୍ତ୍ରୀ) ମୁଖଜା ।
ମୁଖଜାହ—କ୍ଲୀ. ବି.(ମୁଖ+ଜାହ)ମୁଖମୂଳ ।
ମୁଖଡିଣ୍ଡିମ—ବି.ମୁଖଘଣ୍ଟା, ହୁଳହୁଳିଶବ୍ଦ
ମୁଖଡ଼ୁ—ଗ୍ରା. ବିଂ. (ସଂ-ମୁଖର) ମୁଖର, ଯେ ଖୁବ୍ କହିପାରେ ।
ମୁଖତଃ—ଅବ୍ୟ.(ମୁଖ+ତସ୍)ମୁହଁରେ, ମୁହଁରୁ, ମୁଖରୁ ।
ମୁଖଦଘ୍ନ—ବିଂ. (ମୁଖ+ଦଘ୍ନ)ମୁଖପରିମିତ, ଆପାଦମୁଖ, ମୁଖପର୍ଯ୍ୟନ୍ତ ଉଚ୍ଚ ବା ଗଭୀର ।
ମୁଖଦୂଷଣ—ବି. ପଲାଣ୍ଡୁ, ପିଆଜ ।
ମୁଖଦୂଷିକା—ବି. ମୁଖରେ ବାହାରିବା କ୍ଷୁଦ୍ର ବ୍ରଣ, କାଠବରଣ୍ଡ ।
ମୁଖଦୂଷୀ—ବି. ରସୁଣ ।
ମୁଖଦୌର୍ଗନ୍ଧ୍ୟ—ବି. ପିତ୍ତାଧିକ୍ୟ ହେତୁ ମୁଖବିବରରୁ ନିର୍ଗତ ଏକପ୍ରକାର ଦୁର୍ଗନ୍ଧ
ମୁଖଧାବନ—କ୍ଲୀ. ବି. (ମୁଖ+ଧାବ୍+ଅନ) ଷତତ୍; ମୁହଁଧୋଇବା ।
ମୁଖଧୌତା—ସ୍ତ୍ରୀ. ବି. ( ମୁଖ+ଧାବ+ମି.ତ + ଆ) ବ୍ରାହ୍ମଣଯଷ୍ଟିକା, ଭାର୍ଗୀ ।
ମୁଖନିବାସିନୀ—ସ୍ତ୍ରୀ. ବି. (ମୁଖ+ନି+ବସ୍+ଇନ୍+ଈ) ସରସ୍ୱତୀ ।
ମୁଖନିରୀକ୍ଷକ—ପୁଂ. ବିଂ. (ମୁଖ+ନିର୍+ଈକ୍ଷ+ଅକ) ଅଳସ, ପକ୍ଷପାତୀ, ଅନ୍ୟାୟାର୍ଥଦର୍ଶୀ, ଯେ ମୁହଁ ଦେଖି କାମ

କରେ, ମୁଖଦର୍ଶନକାରୀ, (ସ୍ତ୍ରୀ) ମୁଖନିରୀକ୍ଷିକା ।

ମୁଖନିରୀକ୍ଷଣ—ବି.(୬ତତ୍ପୁ)ମୁହଁଦେଖିବା ।

ମୁଖନିର୍ଗତ—ବି°. ( ୫ତତ୍ପୁ ) ମୁଖରୁ ବାହାରିଥିବା, ଉଚ୍ଚାରିତ ।

ମୁଖପଖାଳିବା—ଗ୍ରା.କ୍ରି. ମୁହଁଧୋଇବା ।

ମୁଖପଟ—ବି. (କ.ଧା) ମୁଖଛବି, ମୁଖଛାଦକବସ୍ତ୍ର,ମୁହଁଘୋଡ଼ାଇବା ଓଢ଼ଣା ।

ମୁଖପଦ୍ମ—ବି. ମୁଖକମଳ ଦେଖ ।

ମୁଖପାକ—ପୁଂ. ବି. ଅଶ୍ୱର ମୁଖରୋଗବିଶେଷ ।

ମୁଖପାତ—ଗ୍ରା. ବି. ବସ୍ତ୍ରାଦିର ସମ୍ମୁଖଭାଗ, କାର୍ଯ୍ୟର ପ୍ରାରମ୍ଭ ।

ମୁଖପାନ୍ଥ--ବି°. (କ.ଧା)ପ୍ରତିନିଧି,ପ୍ରଧାନ, ଶ୍ରେଷ୍ଠ, ଅଗ୍ରଣୀ ।

ମୁଖପୀଡ଼ିକା—ବି.କାଠବ୍ରଣ,ମୁହଁରେ ହେବା ବ୍ରଣ ।

ମୁଖପିଣ୍ଡ—ବି. କଲପୂର୍ବ ଖାଦ୍ୟ, ମୃତ ବ୍ୟକ୍ତିର ଉଦ୍ଦେଶ୍ୟରେ ଅନ୍ତ୍ୟେଷ୍ଟି କ୍ରିୟାରେ ପ୍ରଥମେ ପ୍ରଦତ୍ତ ପିଣ୍ଡ ।

ମୁଖପୂରଣ—କ୍ଲୀ.ବି. ଗଣ୍ଡୂଷ, କୁଳୁକୁଞ୍ଚା ।

ମୁଖପ୍ରକ୍ଷାଳନ—କ୍ଲୀ.ବି. (୬ତତ୍ପୁ) ମୁଖଧାବନ, ମୁହଁ ଧୋଇବା ।

ମୁଖପ୍ରସେକ—ପୁଂ.ବି. ଶ୍ଳେଷ୍ମଜନ୍ୟ ମୁଖରୋଗ ।

ମୁଖପ୍ରସାଦ—ବି.ଶ୍ରୀମାନ୍ ମୁଖମଣ୍ଡଳ ।

ମୁଖପ୍ରିୟ—ବି. ନାରଙ୍ଗ, କାକୁଡ଼ି,(ବି°) ସୁସ୍ୱାଦ ରସନାତର୍ପଣ ।

ମୁଖପ୍ରେକ୍ଷ—ବି°. ପରର ଅଭିପ୍ରାୟ ଜାଣିବାପାଇଁ ମୁହଁ ଚୁହିଁବା ।

ମୁଖଭଙ୍ଗୀ—ବି.(୬ତତ୍ପୁ)ମୁଖର ଛଟକ, ମୁହଁକୁ ବିକୃତ କରିବା ।

ମୁଖଭାର(ରି)—ଗ୍ରା.ବି. ଆନ୍ତରିକ କ୍ରୋଧ ବା ଅଭିମାନଯୋଗୁଁ ମୁଖକୁ ଗମ୍ଭୀର ବା ବିରସ କରିବା ।

ମୁଖଭୂଷଣ—କ୍ଲୀ.ବି.ତାମ୍ବୁଲ,ପାନଖିଲି ।

ମୁଖମଣ୍ଡନ—ବି.ମୁହଁକୁ ଚନ୍ଦନ ତୈଳାଦି ଦ୍ୱାରା ସଜାଇବା, ମୁହଁକୁ ବେଶକରିବା ପାଇଁ ବ୍ୟବହୃତ ଚନ୍ଦନ,ଗୋରୋଚନା ସିନ୍ଦୂରଆଦି ମୁହଁର ଅଳଙ୍କାର, ଯେଉଁ କବିତା ବା ଶ୍ଳୋକାଦି ମୁଖସ୍ଥ ରଖିବା ଉଚିତ ।

ମୁଖମଣ୍ଡନକ—ବି. (ମୁଖମଣ୍ଡନ+କ) ତିଳବୃକ୍ଷ, (ବି°) ଆସ୍ୟଭୂଷକ, ମୁଖମଣ୍ଡନ ।

ମୁଖମଣ୍ଡଳ--କ୍ଲୀ.ବି.(କ.ଧା)ମୁଖପ୍ରଦେଶ, ସମଗ୍ର ମୁଖ, ପରିଧିବିଶିଷ୍ଟ ମୁଖ ।

ମୁଖମଣ୍ଡଳୀୟ—ବି°.ମୁଖମଣ୍ଡଳସମ୍ବନ୍ଧୀୟ

ମୁଖମଣ୍ଡଳୀୟପକ୍ଷାଘାତ—ଗ୍ରା.ବି. ଯେଉଁ ପକ୍ଷାଘାତ ରୋଗ ମୁଖମଣ୍ଡଳରୁ ଆକ୍ରମଣ କରେ ।

ମୁଖମଣ୍ଡଳୀୟକସ୍ନାୟୁଶୂଳ—ଗ୍ରା.ବି.ମୁହଁକୁ ଆକ୍ରମଣକରିବା ସ୍ନାୟୁଶୂଳରୋଗବିଶେଷ

ମୁଖମଣ୍ଡିକା—ସ୍ତ୍ରୀ.ବି. ମୁଖରୋଗବିଶେଷ. ମୁଖରୋଗର ଅଧିଷ୍ଠାତ୍ରୀ ଦେବୀ,ବାଳଗ୍ରହବିଶେଷ, ମାତୃକାଗ୍ରହ ।

ମୁଖମଣ୍ଡିତିକା-ସ୍ତ୍ରୀ.ବି. ବାଳରୋଗବିଶେଷ

ମୁଖମଳ—ବି. ପାଟି ଭିତରର ମଇଳା, ଛତୁଆ ।

ମୁଖମାଧୁର୍ଯ୍ୟ—ବି. ( ୬ତତ୍ପୁ ) ଶ୍ଳେଷ୍ମକ ମୁଖରୋଗବିଶେଷ ।

ମୁଖମାରୁତ—ବି. (କ.ଧା) ମୁଖନିଃସୃତ ବାୟୁ, ଫୁତ୍କାର ।

ମୁଖମାର୍ଜନ—ବି. ମୁଖ ଧୌତକରଣ, ମୁହଁ ଧୋଇବା ।

ମୁଖମିଷ୍ଟ - ବି°. ( ବ.ବ୍ରୀ ) ମିଷ୍ଟଭାଷୀ, ମଧୁରଭାଷୀ । [ ଶଲ୍ଲକୀବୃକ୍ଷ ।

ମୁଖମୋଦ—ବି.ଶୋଭାଞ୍ଜନ, ସଜନାଗଛ

ମୁଖମ୍ପଚ—ବି. (ମୁଖ+ପଚ୍+କ.ଅ) ଭିକ୍ଷୁକ, ଯାଚୟିତା । [ ବାଗ ।

ମୁଖଯନ୍ତ୍ରଣ—କ୍ଲୀ.ବି. କବିକା, ଲଗାମ୍

ମୁଖର—ପୁଂ.ବି°. (ମୁଖ+ର)ଅପ୍ରିୟଭାଷୀ, ଅତିଭାଷୀ, ବାଚାଳ, ଅଗ୍ରଭାଷୀ, କଟୁଭାଷୀ, ବଡ଼ପାଟିଆ, ଶବ୍ଦାୟମାନ, ଅଗ୍ରଯାୟୀ,ପ୍ରଧାନ (ବ୍ୟକ୍ତି),(ସ୍ତ୍ରୀ)ମୁଖରା, (ପୁଂ.ବି) କାକ, ଶଙ୍ଖ,ଅଗ୍ରବର୍ତ୍ତୀ ବ୍ୟକ୍ତି. ନେତା ।

ମୁଖରକ୍ଷା—ବି. (୬ତତ୍ପୁ) ମାନରକ୍ଷା, ଅନୁରୋଧ ରକ୍ଷା ।

ମୁଖରଜ—ବି. (୩ତତ୍ପୁ) ଅସ୍ୱାଭାବିକ ଉପାୟରେ ଅନ୍ୟର ମୁଖ ସାହାଯ୍ୟରେ ଇନ୍ଦ୍ରିୟବୃତ୍ତି ଚରିତାର୍ଥ କରିବା କ୍ରିୟା ।

ମୁଖରିବା--ଗ୍ରା.କ୍ରି.(ପଦ୍ୟ).ଧ୍ୱନିତ କରିବା, ଶବ୍ଦାୟିତ କରିବା ।

ମୁଖରିତ—ବି°.(ମୁଖର+ଇତ)ରବଯୁକ୍ତ, ଶବ୍ଦାୟମାନ, (ମି.ତ) ଶବ୍ଦିତ, ଧ୍ୱନିତ ।

ମୁଖରୀକରଣ—ବି. ( ମୁଖର+ଚ୍ୱି+କରଣ) ଅଣ୍ଟା, ତାମସା ।

ମୁଖରୁଚି—ବି. ( ୬ତତ୍ପୁ ) ମୁଖର ଶ୍ରୀ, ମୁଖଶୋଭା, (ଗ୍ରା.ବି°) ମୁଖରୋଚକ ।

ମୁଖରୋଗ—ବି. ବକ୍ତ୍ରାମୟ, ମୁହଁର ବେମାରି । [ ରୁଚକର ।

ମୁଖରୋଚକ—ବି°. (୬ତତ୍ପୁ)ଖାଇବାକୁ

ମୁଖରୋଧ—ବି. (୬ତତ୍ପୁ) ମୁଖବନ୍ଧନ ଦେଖ ।

ମୁଖର୍ଜି---ଗ୍ରା. ବି. ବଙ୍ଗୀୟ ମୁଖୋପାଧ୍ୟାୟ ବ୍ରାହ୍ମଣଙ୍କ ଆଧୁନିକ ଉପାଧି ।

ମୁଖଲଜ୍ଜା—ଗ୍ରା.ବି.ଚକ୍ଷୁଲଜ୍ଜା,ମୋହିତତ୍ତ୍ୱ, ଅନ୍ୟର ମନ ନେବାପାଇଁ ଉତ୍କଣ୍ଠା ।

ମୁଖଲାଙ୍ଗଲ—ପୁଂ. ବି. (ବ.ବ୍ରୀ) ଶୂକର, ବରାହ, ଘୁଷୁରି, କୁକ୍କୁର ।

ମୁଖବନ୍ଧ---ବି. ଗ୍ରନ୍ଥର ଅନୁକ୍ରମଣିକା, ଭୂମିକା ।

ମୁଖବନ୍ଧନ—ବି. ମୁଖବନ୍ଧ ଦେଖ ।

ମୁଖବଲ୍ଲଭ—ବି.(୬ତତ୍ପୁ) ଡ଼ାଳିମ୍ବ, (ବି°) ମୁଖପ୍ରିୟ ।

ମୁଖବାଚକା —ବି. ଅମ୍ବଷ୍ଠା, ଆମ୍ବଡ଼ା ।

ମୁଖବାଦ୍ୟ—କ୍ଲୀ. ବି. (କ.ଧା) ହୁଳହୁଳି, (ଶିବପୂଜାରେ) 'ବମ୍' 'ବମ୍' ଶବ୍ଦ, ଗଲ୍ଲବାଦ୍ୟ ।

ମୁଖବାସ—ବି. ଗନ୍ଧତୃଣ, ଧନିଆ, ତରଭୂଜଲତା, ମୁଖର ଦୁର୍ଗନ୍ଧ ନାଶକ ଦ୍ରବ୍ୟ, ପାନ କର୍ପୂର ମସଲାଆଦି ।

ମୁଖବାସନ—ବି. (ମୁଖ+ବସ୍+ଣିଚ୍+ଅନ) ମୁଖବାସ ଦେଖ ।

ମୁଖବାସିନୀ—ସ୍ତ୍ରୀ.ବି. (ମୁଖ+ବାସ୍+ଇନ୍+ଈ) ସରସ୍ୱତୀ ।

ମୁଖବିପୁଲା—ସ୍ତ୍ରୀ.ବି.ମାତ୍ରାବୃତ୍ତବିଶେଷ ।

ମୁଖବିଲୁଣ୍ଠିକା—ସ୍ତ୍ରୀ. ବି. (ମୁଖ+ବି+ଲୁଣ୍ଠ୍+ଣିଚ୍+ଇକ+କ+ଆ)ଗୁଣ୍ଡୀ, ମାଇଛେଳି ।

ମୁଖବିଷ୍ଟା—ସ୍ତ୍ରୀ.ବି. ତୈଳପାୟିକା,ଅସରପା ପୋକ,(ଏମାନଙ୍କ ମୁଖରେ ବିଷ୍ଟା ଥିବାରୁ) ।

ମୁଖବୁଜିବା—ଗ୍ରା.କ୍ରି.ମୁଖ ବନ୍ଦ କରିବା, କିଛି ନ କହିବା ।

ମୁଖବ୍ୟଙ୍ଗ—ବି. ଭଙ୍ଗରୋଗ, ମୁହଁରେ ଦେଖାଯିବା ସାନସାନ ଅସୁନ୍ଦର ଦାଗମାନ ।

ମୁଖଶଫ—ପୁଂ.ବିଂ. ଦୁର୍ମୁଖ,କଟୁଭାଷୀ ।

ମୁଖଶଶୀ—ବି. ମୁଖଚନ୍ଦ୍ର ଦେଖ ।

ମୁଖଶାଳା—ବି. ଦେବତାଙ୍କ ରହିବା ମନ୍ଦିରର ସମ୍ମୁଖକୁ ଲାଗିଥିବା କ୍ଷୁଦ୍ରତର ମନ୍ଦିର ।

ମୁଖ(ଖେ)ଶାଳ—ଗ୍ରା. ବି. ଦେଉଳର ବିମାନ, ମୁଖଶାଳା, ଜଗମୋହନ ।

ମୁଖଶୁଦ୍ଧି—ସ୍ତ୍ରୀ.ବି(ଷତତ୍)ବକ୍ତ୍ରଶୋଧନ, ମୁଖପ୍ରକ୍ଷାଳନ, ଦାନ୍ତ ଘଷିବା, ମୁଖଶୁଦ୍ଧି ଅର୍ଥରେ ବ୍ୟବହୃତ ହରିତକୀଆଦି ଦ୍ର୍ୟ ।

ମୁଖଶୋଧନ—ବି.(ଷତତ୍)ମୁଖକୁ ପରିଷ୍କାର କରିବା,ମୁଖଶୋଧକ ଦ୍ରବ୍ୟମାତ୍ର, କଟୁରସ, ମସଲାଆଦି ଖାଇବା ଦ୍ୱାରା ମୁଖର ଦୁର୍ଗନ୍ଧନାଶକରଣ ।

ମୁଖଶୋଧୀ—ପୁଂ. ବି. (ମୁଖ+ଶୁଧ୍+ଣିଚ୍+ଇନ୍)ଜମ୍ବୀର, ଲେମ୍ବୁ, ସୁଗନ୍ଧି ମସଲା, (ବିଂ)ମୁଖଶୋଧକ ଦ୍ରବ୍ୟମାତ୍ର, ଯାହା ମୁଖର ଦୁର୍ଗନ୍ଧି ନାଶକରେ ।

ମୁଖଶୋଭା-ବି.(ଷତତ୍)ମୁହଁର ସୌନ୍ଦର୍ଯ୍ୟ

ମୁଖଶୋଷ—ବି. ଶୁଷ୍କାସ୍ୟତା, ମୁହଁ ଶୁଖିଯିବା ।

ମୁଖଶ୍ରୀ—ସ୍ତ୍ରୀ. ବି.ମୁଖଶୋଭା,ମୁଖକାନ୍ତି ।

ମୁଖଷ୍ଟୀବ—ବିଂ. ଦୁର୍ମୁଖ, କଟୁଭାଷୀ ।

ମୁଖସମ୍ଭବ—ବି.(ମୁଖ+ସମ୍ଭବ)ବ୍ରାହ୍ମଣ (ବ୍ରହ୍ମାଙ୍କ ମୁଖରୁ ଜାତ ବୋଲି),(ବିଂ) ମୁଖରୁ ଜାତ, (ସ୍ତ୍ରୀ) ସମ୍ଭବା ।

ମୁଖସମ୍ଭୂତ—ବିଂ. ମୁଖରୁ ଜାତ,(ସ୍ତ୍ରୀ) ମୁଖସମ୍ଭୂତା ।

ମୁଖସିଞ୍ଚନମନ୍ତ୍ର—ବି. ବିଷପାନ କରିଥିବା ବ୍ୟକ୍ତିର ମୁହଁକୁ ସିଞ୍ଚିବା ପାଇଁ ପାଣି ମନ୍ତୁରିବାର ମନ୍ତ୍ର ।

ମୁଖସୁଖ—କ୍ଳୀ.ବି. ତୃପ୍ତି, ସୁସ୍ୱାଦୁ, (ବିଂ) ମୁଖର ସୁଖଜନକ ମାତ୍ର,ମୁଖରୋଚକ ।

ମୁଖସୁଧା—ବି. (ଷତତ୍) ଛେପ, ପାଟିର ନାଳ ।

ମୁଖସୁର—କ୍ଳୀ. ବି. (କ.ଧା) ତାଳସୁରା, ତାଡ଼ୀ, ଅଧରାମୃତ, ଛେପ, ଲାଳ ।

ମୁଖସୂଚୀ—ସ୍ତ୍ରୀ.ବି. (ବ.ବ୍ରୀ) ଆମ୍ରାତକ, ଆମ୍ବଡ଼ାଗଛ ।

ମୁଖସ୍ଥ—ବିଂ. (ମୁଖ+ସ୍ଥା+ଅ) କଣ୍ଠସ୍ଥ. ପଢ଼ିଛାଇଥିବା, ମୌଖିକ, ବାହ୍ୟ, ସ୍ମରଣକରି ରଖିଥିବା ।

ମୁଖସ୍ରାବ—ବି. (ମୁଖ+ସ୍ରୁ+ଭା.ଅ) ଲାଳ, ଛେପ, ବାଳରୋଗବିଶେଷ ।

ମୁଖା—ଗ୍ରା.ବି. (ସଂ-ମୁଖକୋଷ) ମୁଖାଚ୍ଛାଦନ, ମୁହଁ ଉପରେ ପିନ୍ଧିବା କୃତ୍ରିମ ମୁଖ, ବନ୍ୟବୃକ୍ଷବିଶେଷ, (ଗ୍ରା.ପୁଂ.ବିଂ) ମୁଖଯୁକ୍ତ. (ଯଥା—ବାନରମୁଖା), କ୍ରି. ବିଂ. କୌଣସି ଦିଗକୁ ମୁହଁକରି (ଯଥା-ପୂର୍ବମୁଖା) ।

ମୁଖାକାର—ବି. ମୁଖସଦୃଶ ।

ମୁଖାଗ୍ନି—ପୁଂ. ବି. (ଷତତ୍) ଦାବାଗ୍ନି, ( କ.ଧା ) ଶବଦାହ କାଳରେ ଶବ ମୁଖରେ ଦତ୍ତ ବହ୍ନି,ଶବଦାହ କାଳରେ ପ୍ରଥମେ ଶବ ମୁଖରେ ଅଗ୍ନି ଲଗାଇବା ରୂପ ସଂସ୍କାରବିଶେଷ, (ବ୍ରାହ୍ମଣ, ଚିରଗୁଣି, ଯଜ୍ଞାଗ୍ନି, ଏକପ୍ରକାର ବିଲୁଆ, ଉଲ୍କାମୁଖୀ) ।

ମୁଖାଗ୍ର—ବି. (ଷତତ୍) ଓଷ୍ଠାଦି ଦ୍ରବ୍ୟବିଶେଷର ଅଗ୍ର ବା ପ୍ରାନ୍ତଭାଗ, ( ବିଂ ) ମୁଖସ୍ଥ, କଣ୍ଠସ୍ଥ, ଯେଉଁ ବିଷୟ ବା କଥା କୌଣସି ବ୍ୟକ୍ତିଙ୍କ ମୁହଁରୁ ଉଚ୍ଚାରିତ ହେବାକୁ ପ୍ରସ୍ତୁତ ଥାଏ ।

ମୁଖାଚ୍ଛାଦନ—ବି. (ଷତତ୍) ଅବଗୁଣ୍ଠନ, ଓଢ଼ଣା, ପାତ୍ରାଦିର ମୁହଁରେ ଘୋଡ଼ାଯିବା ଢାଙ୍କୁଣି ।

ମୁଖାନଳ—ବି. (ଷତତ୍) ମୁଖମାରୁତ, ମୁଖବାୟୁ ।

ମୁଖାପସେକ—ବି. (ଷତତ୍) ମୁହଁରେ ଲାଳ ଉଠିବା ରୋଗବିଶେଷ, ମୁହଁ ଲାଳେଇବା ।

ମୁଖାପେକ୍ଷକ—ପୁଂ. ବିଂ. ସାହାଯ୍ୟଲାଭାର୍ଥ ଅପରର ଅନୁଗ୍ରହାକାଙ୍କ୍ଷୀ ।

ମୁଖାପେକ୍ଷା—ବି. (ଷତତ୍) ଅନ୍ୟର ବା ଅନୁଗ୍ରହର ସାହାଯ୍ୟପ୍ରାପ୍ତିର ଆଶା, ଅନୁରୋଧ, ପକ୍ଷପାତ ।

ମୁଖାପେକ୍ଷିତା—ବି.(ମୁଖାପେକ୍ଷିନ୍+ଭା. ତା) ପକ୍ଷପାତିତା,ଅନ୍ୟର ମୁଖାପେକ୍ଷା କରିବାର ଭାବ, ଅନୁରୋଧ ।

ମୁଖାପେକ୍ଷୀ—ପୁଂ. ବିଂ. (ମୁଖାପେକ୍ଷା+ଇନ୍) ଅନୁଗ୍ରହପ୍ରତ୍ୟାଶୀ, ଯେ ଅନ୍ୟର ମୁଖାପେକ୍ଷା କରେ, ପକ୍ଷପାତୀ, ଯେ ଅନ୍ୟର ମୁହଁକୁ ଗୃହଁରହେ, ଆଶ୍ରିତ ।

ମୁଖାମୟ—ବି. (ଷତତ୍-ମୁଖ+ଆମୟ) ମୁଖରୋଗ ।

ମୁଖାମୁଖି—ଗ୍ରା. କ୍ରି. ବିଂ. ଦୁଇଜଣଙ୍କର ସାମନାସାମନି, (ବି) ଦେଖାସାକ୍ଷାତ ।

ମୁଖାମୃତ—କ୍ଳୀ.ବି. (କ.ଧା)ମୁଖନିଃସୃତ ବାକ୍ୟରୂପ ଅମୃତ, ମୁଖଶ୍ରୀ, ସନ୍ତାନାଦିର ମୁଖନିଃସୃତ ଲାଳ ।

ମୁଖାରି—ଗ୍ରା. ବି. ସଙ୍ଗୀତର ରାଗିଣୀବିଶେଷ, ମୁହଁ, ଦାନ୍ତକାଠି ।

ମୁଖାର୍ଚ୍ଚିଃ—କ୍ଳୀ. ବି. ମୁଖାଗ୍ନି ।

ମୁଖାର୍ଜକ—ପୁଂ. ବି. ଅର୍ଜକବୃକ୍ଷ, ବଣତୁଳସୀ ।

ମୁଖାଲିପ୍—ଯା. ବିଂ. ବିପରୀତ,ବିରୋଧୀ (ବ୍ୟକ୍ତି), ଶତ୍ରୁତାପନ୍ନ, ପ୍ରତିଦ୍ୱନ୍ଦ୍ୱୀ, (ବି) ଶତ୍ରୁ,ବିରୋଧୀ ବ୍ୟକ୍ତି ।

ମୁଖାଳୁ—ବି. ସ୍ୱନାମଖ୍ୟାତ କନ୍ଦଶାକବିଶେଷ, ମିଠାଳୁ ।

ମୁଖାବୟବ—ପୁଂ.ବି. (ଷତତ୍) ମୁଖର ଗଠନ ।

ମୁଖାବଲୋକନ—ବି. (ଷତତ୍) ମୁଖନିରୀକ୍ଷଣ, ମୁହଁଦେଖିବା ।

ମୁଖାସବ—ବି. (କ.ଧା) ଲାଳ,ମୁଖମଦ, ମୁଖମଧୁ, ଛେପ ।

ମୁଖାସ୍ତ—ପୁଂ. ବି. (ମୁଖ+ଅସ୍ତ୍ର;ବ.ବ୍ରୀ) କର୍କଟ, କଙ୍କଡ଼ା ।

ମୁଖସ୍ରାବ—ବି.ମୁଖରୁ କ୍ଷରିତ ଲାଳପ୍ରଭୃତି

ମୁଖି—ଗ୍ରା. ବି. ବଦ୍ଧମୁଷ୍ଟି, ବଦ୍ଧମୁଷ୍ଟି ଦ୍ୱାରା ମୁହଁରେ ଆଘାତ,ଶୂଦ୍ରମାନଙ୍କର ବଂଶୋପାଧିବିଶେଷ, ଆଦିମ ଜାତି-ବିଶେଷ, ହାଡ଼ିଜାତିର ବଂଶୋପାଧି ।

ମୁଖିଆ—ଗ୍ରା. ବିଂ. (ସଂ-ମୁଖ୍ୟ) ନେତା, ପ୍ରଧାନ (ବ୍ୟକ୍ତି), ଶ୍ରେଷ୍ଠ, ପ୍ରତିନିଧି-ସ୍ଥାନୀୟ, ( ବି ) ଦଳପତି, ପ୍ରତିନିଧି, ସର୍ଦ୍ଦାର,ବଲ୍ଲଭଗଡ଼ୀୟ ସମ୍ପ୍ରଦାୟର ମନ୍ଦି-ରର ପୂଜକ ଓ ପାଚକ ବାବାଜୀଙ୍କ ଉପାଧି ।

ମୁଖୀ—ବିଂ. (ମୁଖ+ଇନ୍)ମୁଖବିଶିଷ୍ଟ, (ସ୍ତ୍ରୀ-ମୁଖ+ ଈ)ମୁଖଯୁକ୍ତା,( ବି )ସାରୁ ଅଦା ଆଳୁ ଓଲୁଅ ଆଦିରୁ ବାହାରିବା ଶ୍ରେଷ୍ଠ ଗଜା ବା ଅଙ୍କୁର,(ଗ୍ରା.ବି)କୁହୁଣ୍ଡା ।

ମୁଖେ—ଗ୍ରା. କ୍ରି. ବିଂ. ସାମନାରେ, ହାବୁଡ଼େ, ଆଗରେ । [ ପୃନ୍ନ ।

ମୁଖୋଦ୍ଭବ—ବିଂ. ମୁଖଜାତ, ମୁଖୋ-

ମୁଖୋତ୍କୀର୍ଣ୍ଣ—ବି. କାଶ୍ମୀରପତି କୁମାର ସେନଙ୍କ ସଚିବ ।

ମୁଖୋତ୍ସଙ୍ଗ—ବି. ମୁଖରୋଗବିଶେଷ ।

ମୁଖୋପାଧ୍ୟାୟ—ଗ୍ରା.ବି. ବଙ୍ଗୀୟ ବ୍ରାହ୍ମ-ଣଙ୍କ ଉପାଧିବିଶେଷ ।

ମୁଖୋଲ୍କା—ସ୍ତ୍ରୀ. ବି. ଦାବାନଳ ।

ମୁଖ୍ୟ—ବି. (ମୁଖ+ଯ) ପ୍ରଥମ କଳ୍ପ-ବେଦାଧ୍ୟୟନ, ମୁଖ୍ୟଚାନ୍ଦ୍ରମାସ ଦେଖ, (ବିଂ) ଶ୍ରେଷ୍ଠ, ପ୍ରଧାନ, ପ୍ରଥମ, ଅଗ୍ରଣୀ, ପ୍ରତ୍ୟକ୍ଷ, (ଗ୍ରା.ବିଂ) ଉଚିତ ।

ମୁଖ୍ୟକର୍ମ—ବି. (ବ୍ୟାକରଣ) ଗୋଟିଏ ଦ୍ୱିକର୍ମକକ୍ରିୟାର ଦୁଇଟି କର୍ମସଙ୍ଗେ ସମ୍ବନ୍ଧଥିଲେ ସେଥିମଧ୍ୟରୁ ପ୍ରଧାନକର୍ମ, ପ୍ରଧାନକାର୍ଯ୍ୟ । [ ପ୍ରଧାନ ।

ମୁଖ୍ୟକୁଳୀନ-ବିଂ.କୁଳୀନମାନଙ୍କ ମଧ୍ୟରେ

ମୁଖ୍ୟଚାନ୍ଦ୍ରମାନମାସ—ବି. ଶୁକ୍ଳପ୍ରତିପଦ ଠାରୁ ଅମାବାସ୍ୟା ପର୍ଯ୍ୟନ୍ତ ଗଣାଯିବା ମାସ ।

ମୁଖ୍ୟତର(ମ)—ବିଂ. (ମୁଖ୍ୟ+ତର.ତମ) ସର୍ବପ୍ରଧାନ, ସାରାତ୍ସାର, (ସ୍ତ୍ରୀ) ମୁଖ୍ୟତରା—ତମା ।

ମୁଖ୍ୟତଃ—ଅବ୍ୟ.(ମୁଖ୍ୟ+ତସ୍)ଶ୍ରେଷ୍ଠ ରୂପେ, ପ୍ରାଧାନ୍ୟକ୍ରମେ ।

ମୁଖ୍ୟତା—ସ୍ତ୍ରୀ. ବି. (ମୁଖ୍ୟ+ତ+ଆ) ଶ୍ରେଷ୍ଠତା, ପ୍ରାଧାନ୍ୟ, ମୁଖ୍ୟତ୍ୱ ।

ମୁଖ୍ୟନୃପ—ପୁଂ. ବି. ଶ୍ରେଷ୍ଠରାଜା ।

ମୁଖ୍ୟମନ୍ତ୍ରୀ—ପୁଂ. ବି. ପ୍ରଧାନ ସଚିବ ।

ମୁଖ୍ୟଶଃ—ଅବ୍ୟ.ପ୍ରଧାନତଃ,ସର୍ବାଗ୍ରତଃ

ମୁଖ୍ୟସର୍ଗ—ବି.(କ.ଧା) ସ୍ଥାବରସୃଷ୍ଟି ।

ମୁଖ୍ୟାର୍ଥ—ବି. ଶ୍ରେଷ୍ଠାର୍ଥ, ପ୍ରଧାନଅର୍ଥ, (ବିଂ) ଶ୍ରେଷ୍ଠାର୍ଥଯୁକ୍ତ ।

ମୁଗ—ଗ୍ରା. ବି. ( ସଂ-ମୁଦ୍ଗ ) ଗ୍ରାହ୍ମପର ଶିମ୍ବାଦିବର୍ଗର କୃଷିଜାତ କ୍ଷୁଦ୍ରଲତା ଓ ତାହାଁର ଛୁଇଁରେ ଥିବା ବୀଜ ।

ମୁଗଚକୁଳି—ଗ୍ରା. ବି. ବଟାମୁଗର ପିଠ-ଉରେ ପ୍ରସ୍ତୁତ ଚକୁଳିପିଠା ।

ମୁଗଜାଇ—ଗ୍ରା.ବି.କଞ୍ଚା ବା ଭଜାମୁଗକୁ ରଗଡ଼ି ଚୋପା ବାହାର କରି ପ୍ରସ୍ତୁତ କରାଯିବା ଡାଲିମାନ ।

ମୁଗଡ଼ାଲି—ଗ୍ରା. ବି. ମୁଗଜାଇ, ମୁଗ-ଜାଇକୁ ଜଳରେ ସିଝାଇକରି ପ୍ରସ୍ତୁତ କରା-ଯିବା ଜଳୀୟ ବ୍ୟଞ୍ଜନ ।

ମୁଗପଇତ—ଗ୍ରା.ବି. ଉତ୍ତମରୂପେ ଘଷା-ଯାଇ ଯାଉପରହୋଇଥିବା ମୁଗଡ଼ାଲି ।

ମୁଗଫଳୀ—ଗ୍ରା. ବି. ଚିନାବାଦାମ୍, ଭୂଇଁଚଣା, ଚେରଚଣା ।

ମୁଗବୋତ-ଗ୍ରା. ବି.ଶୁଖିଲା ମୁଗଛୁଇଁକୁ ମଳି ମୁଗ ବାହାର କରିନେଲାପରେ ବାକି ରହିଯିବା ଚୋପାଆଦି ଅସାରଅଂଶ

ମୁଗମ୍—ଯା. ବି. ଗୁପ୍ତରହସ୍ୟ, ସାର-ମର୍ମ୍ମ, ଦେହର ମର୍ମ୍ମସ୍ଥାନ, ମନ, (ବିଂ) ଗୁପ୍ତ ।

ମୁଗଶିଂସା—ଗ୍ରା. ବି. ଜଳସିଦ୍ଧ ଗୋଟା-ମୁଗ, ମୁଗସିଝା ।

ମୁଗା(ଙ୍ଗା)—ଯା.ବି. ଆସାମ ଦେଶଜାତ ଏକପ୍ରକାର ଗୋଟିପୋକ ଜାତ ଈଷତ୍ ହଳଦିଆ ରେଶମ୍ ଲୁଗା, ଆସାମୀମଠା, ଆସାମ ଦେଶୀୟ ରେଶମ ଉତ୍ପାଦନ-କାରୀ କୀଟବିଶେଷ ।

ମୁଗା(ଗେ)ଇ—ଗ୍ରା. ବିଂ. ମୁଗର ଆକୃତି-ବିଶିଷ୍ଟ, ମୁଗର ରଙ୍ଗବିଶିଷ୍ଟ ।

ମୁଗା(ଗେ)ଇଠାକୁରାଣୀ(ବସନ୍ତ)—ଗ୍ରା.ବି. ମୁଗ ଆକାରବିଶିଷ୍ଟ ବସନ୍ତବିସ୍ଫୋଟକ ରୋଗ । [ ପର୍ଣ୍ଣୀ ।

ମୁଗାଣି(ନି)—ଗ୍ରା.ବି. ବଣମୁଗ, ମୁଦ୍ଗ-

ମୁଗୁଡ଼(ରି)—ଗ୍ରା. ବି.ବଟାମୁଗରେ ପ୍ରସ୍ତୁତ ଘୃତପକ୍ୱ ମିଷ୍ଟାନ୍ନବିଶେଷ ।

ମୁଗୁନା—ଗ୍ରା.ବି. ସଜନା ମଞ୍ଜିରୁ ଉଠି-ଥିବା ସଜନାଗଛ, ବଣମୁଗ, ଘୋଡ଼ା-ମୁଗ ।

ମୁଗୁନି—ଗ୍ରା. ବି. ଏକପ୍ରକାର ମସୃଣ ଓ କୃଷ୍ଣବର୍ଣ୍ଣ ଟାଣୁଆ ପଥର ।

ମୁଗୁର—ଗ୍ରା. ବି. (ସଂ-ମୁଦ୍ଗର) ମୁଗର, କଲହଣ ଉପରେ ଯେଉଁ କାଠହାତୁଡ଼ି ପିଟି ଫୋଡ଼ଆଦି କରନ୍ତି ।

ମୁଗୁରା—ଗ୍ରା. ବି. ମାଛଧରିବାର ଏକ-ପ୍ରକାର ଯନ୍ତ୍ର, (ବିଂ) ମୁଗୁରର ଆକୃତି-ବିଶିଷ୍ଟ କ୍ଷୁଦ୍ର ଅଥଚ ମୋଟା ।

ମୁଗୁରାମଲ୍ଲି—ଗ୍ରା. ବି. ଏକପ୍ରକାର ମଲ୍ଲି-ଫୁଲ ।

ମୁଗୁରି—ଗ୍ରା.ବି. ଏକପ୍ରକାର ଗାଲମୁଣ୍ଡି, ଧନୁଗୁଣରେ ଯୋଖିବା ପାଇଁ ଶରର ମୂଳରେ କରାଯାଇଥିବା ଘରା,ଧନୁଆଦି ଅସ୍ତ୍ରଦେହରେ ରଚିତ ପ୍ରବାଳ ରତ୍ନା-ଦିରେ ଖଚିତ କାରୁକାର୍ଯ୍ୟ ।

ମୁଗୂହ—ପୁଂ. ବି. ଦାତ୍ୟୂହପକ୍ଷୀ, ଡାହୁକ ପକ୍ଷୀ, ଏକପ୍ରକାର ହରିଣ ।

ମୁଗ୍ଧ—ପୁଂ. ବିଂ. (ମୁହ୍+କ.ତ) ମୂଢ଼, ମୂର୍ଖ, ସୁନ୍ଦର, ମୋହିତ, ମୋହପ୍ରାପ୍ତ, ହତସଂଜ୍ଞ, ନୂତନ, (ସ୍ତ୍ରୀ) ମୁଗ୍ଧା ।

ମୁଗ୍ଧଚିତ୍ତ—ବି. (କ.ଧା) ମୋହିତମନ, (ପୁଂ.ବିଂ-ବ.ବ୍ରୀ)ଯାହାର ମନ ମୋହିତ ହୋଇଅଛି, କିଂକର୍ତ୍ତବ୍ୟବିମୂଢ଼, (ସ୍ତ୍ରୀ) ମୁଗ୍ଧଚିତ୍ତା ।

ମୁଗ୍ଧତା—ସ୍ତ୍ରୀ. ବି. (ମୁଗ୍ଧ+ତ+ଆ)

ମୂଢ଼ତା,ସୌନ୍ଦର୍ଯ୍ୟ,ବିମୋହିତର ଭାବ ।
ମୁଗ୍ଧଦୃକ୍—ବିଂ. ସୁନ୍ଦର ଚକ୍ଷୁବିଶିଷ୍ଟ, ବିଶାଳଦୃଷ୍ଟି ।
ମୁଗ୍ଧଦୃଷ୍ଟି—ବି. (କ.ଧା) ବିମୋହିତଚକ୍ଷୁ, ମନୋହରଦୃଷ୍ଟି, ( ପୁଂ.ବିଂ.-ବ.ବ୍ରୀ ) ଯାହାର ଚକ୍ଷୁ ମୋହିତ ବା ଚକିତ ହୋଇଅଛି ।
ମୁଗ୍ଧୀ—ବିଂ. ସରଳବୁଦ୍ଧି, ମୂଢ଼ଧୀ ।
ମୁଗ୍ଧନେତ୍ର (ଲୋଚନ)—କ୍ଲୀ. ବି. (କ.ଧା) ବିମୋହିତଚକ୍ଷୁ, (ବିଂ-ବ.ବ୍ରୀ) ବିମୋହିତ ଚକ୍ଷୁବିଶିଷ୍ଟ ।
ମୁଗ୍ଧଭାବ—ବି. ସରଳତା, ବୁଦ୍ଧିହୀନତା ।
ମୁଗ୍ଧବତ୍—ବିଂ. ମୋହିତ, ଜଡ଼ପ୍ରାୟ ।
ମୁଗ୍ଧବୁଦ୍ଧି-ବିଂ. ବାହ୍ୟଦୃଶ୍ୟରେ ମୋହିତ ହୋଇ ଯାହାର ବୁଦ୍ଧିଶକ୍ତି ଅଜ୍ଞାନୋପଚ୍ଛନ୍ନ ହୋଇଅଛି ।
ମୁଗ୍ଧବୋଧ—କ୍ଲୀ.ବି. ବୋପଦେବକୃତ ସଂସ୍କୃତ ବ୍ୟାକରଣ ଗ୍ରନ୍ଥବିଶେଷ, (ବିଂ ମୁଗ୍ଧ + ବୁଧ୍ + ଣିଚ୍ + ଣ.ଅ) ଯାହାଦ୍ୱାରା ନିର୍ବୋଧ ବ୍ୟକ୍ତିଙ୍କୁ ସହଜରେ ବୁଝାଇ ଦିଆଯାଇପାରେ ।
ମୁଗ୍ଧା—ସ୍ତ୍ରୀ.ବି. (ମୁଗ୍ଧ + ଆ) ନାୟିକା ବିଶେଷ,ପ୍ରଣୟୀପ୍ରତି ଯେଉଁ ନାୟିକାର ଦୃଢ଼ବିଶ୍ୱାସ ଥାଏ,ସରଳସ୍ୱଭାବା ସୁନ୍ଦରୀ ଯୁବତୀ, ନବୋଢ଼ା ଯୁବତୀ ।
ମୁଙ୍ଗେର--ଗ୍ରା.ବି. ବଙ୍ଗଳାର ପଶ୍ଚିମବଙ୍ଗର ଗୋଟିଏ ଜିଲ୍ଲା ।
ମୁଚ୍‌କିହସା—ଗ୍ରା. ବି. ମୃଦୁ ମଧୁରହାସ୍ୟ (ବିଂ) ଯେ ମୁଚ୍‌କିରି ହସେ ।
ମୁଚ୍‌ମୁଚିଆ-ଗ୍ରା. ବିଂ. କୁଞ୍ଚିତ,କୁଞ୍ଚିକୁଞ୍ଚିଆ ।
ମୁଚ୍‌ଲୀ—ପ୍ରା. ସମ୍ପୃ. ବି.ମୁଚୁଲା,ତକିଆ ।
ମୁଚକ—ବି. (ମୁଚ୍ + କ.ଅକ)ଲାକ୍ଷା ।
ମୁଚକୁନ୍ଦ—ବି. ସ୍ୱନାମଖ୍ୟାତ ପୁଷ୍ପ ବୃକ୍ଷ ବିଶେଷ,ମୁନି ବିଶେଷ,ଦୈତ୍ୟବିଶେଷ ।
ମୁଚଙ୍ଗ—ଯା. ବି. ବାଦ୍ୟଯନ୍ତ୍ର ବିଶେଷ, ଏହାର ତାରକୁ ଦାନ୍ତରେ କାମୁଡ଼ି ବଜାଇବାକୁ ହୁଏ ।
ମୁଚଲିକା—ଯା. ବି. ଉତ୍ପନ୍ନ ଫସଲର ଭାଗ ଦେବାପାଇଁ ରୟତ ଜମିଦାରଙ୍କୁ ସମ୍ପାଦନ କରି ଦେବା କବୁଲିୟତ୍ ।
ମୁଚୁଲିକା—ଯା. ବି. ଅଙ୍ଗୀକାର ପତ୍ର, ଅଙ୍ଗୀକାର କରିଥିବା କାର୍ଯ୍ୟ ନକଲେ ଅଙ୍ଗୀକାର ଭଙ୍ଗକାରୀ କି ଦଣ୍ଡପାଇବ ବା କେତେ ଅର୍ଥଦଣ୍ଡ ଦେବ ତାହା ଯହିଁରେ ଲେଖାଥାଏ, ପ୍ରତିଜ୍ଞାପତ୍ର ।
ମୁଚି—ଗ୍ରା. ପୁଂ. ବି. ମୋଚି, ଜୋତା ତିଆରି କରିବା ବ୍ୟବସାୟୀ ଜାତି ।
ମୁଚିର—ପୁଂ. ବିଂ. ( ମୁଚ୍ + କ.ଇର ) ବଦାନ୍ୟ, ଦାତା, (ସ୍ତ୍ରୀ) ମୁଚିରା,(ପୁଂ. ବି) ଦେବତା, ବାୟୁ, ଧର୍ମଦେବତା ।
ମୁଚିଲିଙ୍ଗ—ବି. ମୁଚୁକୁନ୍ଦ ବୃକ୍ଷ, ତିଳକ ବୃକ୍ଷ, ରାଜାଦନ ବୃକ୍ଷ, ନାଗ ବିଶେଷ, ଚନ୍ଦବର୍ତ୍ତୀ ବିଶେଷ ।
ମୁଚୁକୁନ୍ଦ—ପୁଂ. ବି. ମୁଚୁକୁନ୍ଦ ଦେଖ ।
ମୁଚୁଟୀ—ସ୍ତ୍ରୀ. ବି. ( ମୁଚ୍ + ଖ.ଉଟୀ ) ଆଙ୍ଗୁଠି ଫୁଟାଇବା,ଆଙ୍ଗୁଠି ଦ୍ୱାରା ଫୁଟୁକି, (ମିଂ.ଉଟୀ) ମୁଷ୍ଟି,ମୁଠା ।
ମୁଚୁଲା(କି)—ଗ୍ରା. ବି. ମଣ୍ଡି, ତକିଆ, ଚମୁଲା, ମଲା, ଅଦ୍ଧରା ।
ମୁଛିବା—ଗ୍ରା. କ୍ରି. ମୁରୁଛିବା, ମାୟା ତ୍ୟାଗକରିବା, ତ୍ୟାଗକରିବା, ଧନ ଲୋଭ ତ୍ୟାଗକରି ବ୍ୟୟ କରିବା ।
ମୁଛ—ଗ୍ରା. ବି. ନିଶ । [ ଦାଢ଼ି ।
ମୁଛଦାଢ଼ି—ଗ୍ରା.ବି. ମୁଛ ଓ ଦାଢ଼ି,ନିଶ-
ମୁଛମୋଡ଼ିବା—ଗ୍ରା.ବି.ହାତଦ୍ୱାରା ନିଶକୁ ମୋଡ଼ିବା ।
ମୁଚ୍ଛି—ଗ୍ରା. ପୁଂ. ବିଂ. ନିଶୁଆ,ମୁଛଯୁକ୍ତ
ମୁଚ୍ଛି—ପ୍ରା. ମେଦ. ବି. ମାଲି ଦେଖ ।
ମୁଚ୍ଛିଆହଳଦୀବସନ୍ତ—ଗ୍ରା.ବି. ଏକପ୍ରକାର ହଳଦିବସନ୍ତ ପକ୍ଷୀ ।
ମୁଚ୍ଛିଡ଼ିବା—ଗ୍ରା. କ୍ରି. ଠକିବା ।
ମୁଚ୍ଛିଦ—ଯା.ବି. ସାହାରିକ ବିଷୟ କର୍ମର ଭାରପ୍ରାପ୍ତ କର୍ମଚାରୀ, ଗୁମାସ୍ତା, କାର୍ଯ୍ୟାଧ୍ୟକ୍ଷ, ମୋହରର,ଲେଖକ ।
ମୁଜମ୍ମା—ଯା. ବି. ଘୋଡ଼ାକୁ ରୋକିବା ସକାଶେ ଘୋଡ଼ାର ମୁହଁପାଖ କଡ଼େଇ ସଙ୍ଗେ ସଂଯୁକ୍ତ ଚମଡ଼ାର ଲଗାମ୍ ।
ମୁଜରିମ୍—ଯା. ବି ଓ ବିଂ. ମୁଦ୍ଦାଲି, କୌଣସି ଅପରାଧରେ ଅଭିଯୁକ୍ତ ବ୍ୟକ୍ତି ।
ମୁଜାହିମ୍—ଯା.ବି ଓ ବିଂ. ଆପତ୍ତିକାରୀ, ଦାବୀଦାର, ଆପତ୍ତି,ଦାବୀ,ଜଣେ ଦାବୀ କରୁଥିବା ସମ୍ପତ୍ତି ସମ୍ବନ୍ଧେ ବିପରୀତ ଦାବୀ ।
ମୁଜାବର—ଯା. ବି. କୌଣସି ପୀରଙ୍କ ଦରଘାରେ ବା ଆସ୍ଥାନରେ ରହି ସେଠା ଓଲାଇବା ଓ ସନ୍ଧ୍ୟାବତୀ ଆଦି ଲଗାଇବା କାର୍ଯ୍ୟ କରିବା ମୁସଲମାନ ।
ମୁଜୁମ୍—ଗ୍ରା. ବି. ଜିଦ, ଜିଗର ।
ମୁଞ୍ଚକ—ପୁଂ. ବି. ( ମୁଞ୍ଚ + କ.ଅକ ) ମୁଷ୍କକବୃକ୍ଷ, ବୃଷଣ, ଅଣ୍ଡକୋଷ ।
ମୁଞ୍ଚନ—କ୍ଲୀ. ବି. ( ମୁଞ୍ଚ + ଖ.ଅନ ) ମୋଚନ, ପରିତ୍ୟାଗ, ମଳତ୍ୟାଗ ।
ମୁଞ୍ଚା—ଗ୍ରା. ବି. ତ୍ୟାଗ, (ବିଂ) ତ୍ୟକ୍ତ ।
ମୁଞ୍ଚିବା—ଗ୍ରା. କ୍ରି.ତ୍ୟାଗକରିବା,ମୋଚନ କରିବା ।
ମୁଞ୍ଜ—ବି. (ମୁଞ୍ଜ୍ + ଅ) ଶରତୃଣ, ଫୁଲି ଶରଗଛ, ଶରବାଣ, ଯଜ୍ଞୋପବୀତ, ମାଳବଦେଶରାଜ ହର୍ଷଦେବଙ୍କ ପୁତ୍ର ।
ମୁଞ୍ଜକ—ବି. ଅଶ୍ୱର କୃମିଜନିତ ଚକ୍ଷୁରୋଗ ବିଶେଷ ।
ମୁଞ୍ଜକେତୁ—ବି. ରାଜା ବିଶେଷ ।
ମୁଞ୍ଜକେଶ—ପୁଂ.ବିଂ. (ବ.ବ୍ରୀ) ଯାହାର କେଶ ମୁଞ୍ଜପରି ଟାଣୁଆ, କରଡ଼ାବାଳ ଯାହାର,(ପୁଂ.ବି) ଶିବ, ବିଷ୍ଣୁ,ଆର୍ଯ୍ୟଭେଦ,ରାଜଭେଦ,(ସ୍ତ୍ରୀ)ମୁଞ୍ଜକେଶା(ଶୀ)
ମୁଞ୍ଜକେଶୀ—ପୁଂ. ବି. ( ମୁଞ୍ଜକେଶ + ଇନ୍)ବିଷ୍ଣୁ ।
ମୁଞ୍ଜଜାଳ—କ୍ଲୀ. ବି. ଅଶ୍ୱର କୃମିଜନିତ ଚକ୍ଷୁରୋଗ ବିଶେଷ ।
ମୁଞ୍ଜନେଞ୍ଜନ—ବିଂ. ମୁଞ୍ଜତୃଣ ଦ୍ୱାରା ଶୋଭିତ, ତୃଣରହିତ ।
ମୁଞ୍ଜନିଷ୍ଠ—ବିଂ. ମୁଞ୍ଜରସ ପାନକାରୀ, ମୁଞ୍ଜା ନାମକ ତୃଣର ରସପାୟୀ ।
ମୁଞ୍ଜପୃଷ୍ଠ—ବି.ହିମାଳୟପର୍ବତସ୍ଥ ପ୍ରାଚୀନ ଜନପଦ ଭେଦ, ହିମାଳୟର ଶୃଙ୍ଗ ବିଶେଷ ।
ମୁଞ୍ଜମଣି—ବି. ପୁଷ୍ପରାଗମଣି ।

ମୁଞ୍ଜମୟ—ବି°.ମୁଞ୍ଜାଘାସ ସମନ୍ୱିତ ବା ନିର୍ମିତ । [ ମେଖଳା ।

ମୁଞ୍ଜମେଖଳା—ସ୍ତ୍ରୀ.ବି. ମୁଞ୍ଜତୃଣ ନିର୍ମିତ

ମୁଞ୍ଜମେଖଳୀ—ପୁଂ. ବି. (ମୁଞ୍ଜମେଖଳ +ଇନ୍) ବିଷ୍ଣୁ, ଶିବ ।

ମୁଞ୍ଜର—କ୍ଳୀ. ବି. (ମୁଞ୍ଜ+ଅର)ପଦ୍ମର-କଞ୍ଚିଲ, ନବପଲ୍ଲବ ଓ ଫୁଲ, ଶାଲୁକ, ପଦ୍ମର ଓ କଇଁର ମୂଳ ।

ମୁଞ୍ଜରିତ—ବି°. (ମୁଞ୍ଜର + ଇତ)ନବ-ପଲ୍ଲବିତ (ଫୁଲ) ।

ମୁଞ୍ଜସି—ବି. (ମୁଞ୍ଜର+ଈ)ତୁଳସୀପୁଞ୍ଜି, ତୁଳସୀର କଅଁ ବା ମଞ୍ଜରି,ତୃଣର ଶିଷା, ପଦ୍ମକେଶର ।

ମୁଞ୍ଜବନ୍ଧନ(ମ)—ବି. (ଲ.ଧା) ନବବ୍ରହ୍ମ-ଗୃହୀଙ୍କ ପରିଧେୟ ମୁଞ୍ଜତୃଣନିର୍ମିତ ମେଖଳା ।

ମୁଞ୍ଜବାନ୍—ପୁଂ. ବି°. ( ମୁଞ୍ଜ+ବତ୍ ) ମୁଞ୍ଜବିଶିଷ୍ଟ,ମୁଞ୍ଜଯୁକ୍ତ,(ବି) କୈଳାସ-ପର୍ବତ ନିକଟସ୍ଥ ପର୍ବତ ଭେଦ,ସୋମ ଲତା ବିଶେଷ ।

ମୁଞ୍ଜବାସୀ—ପୁଂ. ବି. ଶିବ ।

ମୁଞ୍ଜା—ସ୍ତ୍ରୀ. ବି. ମୁଞ୍ଜ ଦେଖ ।

ମୁଞ୍ଜାତ—ବି. ତୃଣ ବିଶେଷ ।

ମୁଞ୍ଜାତକ—ବି. (ମୁଞ୍ଜ+ଅତ୍+ଅ+କ) ମୁଞ୍ଜ ଦେଖ.ଔଷଧରେ ବ୍ୟବହୃତ ଏକ-ପ୍ରକାର ତୃଣ ମୂଳ ।

ମୁଞ୍ଜାଦିତ୍ୟ—ପୁଂ. ବି. ଜନୈକ କବି ।

ମୁଞ୍ଜାଳ--ବି.ଲଘୁମାନସନାମକ ଜ୍ୟୋତିଷ ଗ୍ରନ୍ଥ ରଚୟିତା ଜନୈକ ଜ୍ୟୋତିର୍ବିଦ୍

ମୁଞ୍ଜାବଟ—କ୍ଳୀ. ବି. ମହାଭାରତୋକ୍ତ ତୀର୍ଥ ବିଶେଷ ।

ମୁଟ୍(ଟୁ)ମୁଟ୍(ଟୁ)—ସ୍ତ୍ରୀ. ଅବ୍ୟ. ମଟମଟ ଠାରୁ ଅଳ୍ପଲଘୁଶବ୍ଦ, ଗ୍ରେଟଡାଳ ଆଦି ଭାଙ୍ଗିବାର ଶବ୍ଦ । [ ଦେଖ ।

ମୁଟ—ପ୍ରା. (ବାଲେ.) ବି ଓ ବି°. ମୋଟ

ମୁଟ(ଟୁ)ସି—ସ୍ତ୍ରୀ. ବି.ଗଣ୍ଡିଲା, ବୋକଗୁ ।

ମୁଟ(ଟୁ)ରି—ସ୍ତ୍ରୀ. ବି. ଗ୍ରେଟ ପୁଟୁଳି, ଗ୍ରେଟଗଣ୍ଠିଲି, ଧାନଗଛର ଏକପ୍ରକାର ରୋଗ ।

ମୁଡ଼ିଆ— ପ୍ରା.(ବାଲେ.)ବି. ବୋଡ଼ିଆ ।

ମୁଠ—ସ୍ତ୍ରୀ.ବି. ତରବାରି ଆଦିର ବେଣ୍ଟ

ମୁଠା—ସ୍ତ୍ରୀ. ବି. (ସଂ-ମୁଷ୍ଟି) ମୁଠି, କୁଞ୍ଚିତ କରତଳ, ସଙ୍କୁଚିତ କରତଳ ମଧ୍ୟରେ ରହି ପାରିବା ବସ୍ତୁର ପରିମାଣ, ତର-ବାରିଆଦିର ବେଣ୍ଟ, ପ୍ରଗନ୍ନା. ଗ୍ରାମ-ସମଷ୍ଟି, ଅକ୍ତିଆର, ଆୟତ୍ତ, ଏକପ୍ରକାର ଗୁମର,ଏକହାତରେ ପିନ୍ଧାଯିବା କାଚ, ଖଡ଼ୁକା ଆଦି ଏକାଠି ବନ୍ଧା ହୋଇଥିବା ଗୁଞ୍ଜୁଣି ବା ପହଁଚି, ତାସ୍‌ର ପୂପ ୫୨ ଖଣ୍ଡ, କନ୍ଧମାନଙ୍କ ଗ୍ରାମମଣ୍ଡଳୀ, (ସ୍ତ୍ରୀ. ବି°) ମୁଷ୍ଟିମେୟ, ପାନ ବରଜଙ୍କର ସମ୍ପର୍କ । [ ଆଦେଶ ।

ମୁଠଆଜ୍ଞା—ସ୍ତ୍ରୀ.ବି. ରଜାଙ୍କ ସ୍ୱୀହସ୍ତାଙ୍କିତ

ମୁଠା(ଠେ)ଇବା—ସ୍ତ୍ରୀ.କ୍ରି. ହାତର ମୁଠା ଦ୍ୱାରା ଧରିବା, ଜାବୁଡ଼ିକରି ଧରିବା ।

ମୁଠାଏ—ସ୍ତ୍ରୀ. ବି.ବି°. ମୁଠାରେ ଧରିବା ପରିମିତ, ପୁଳାଏ (ଟଙ୍କାଆଦି), ଏକ-ମୁଠା ମାତ୍ର, ଗଣ୍ଡାଏ । [ ଗଣ୍ଡାକ ।

ମୁଠାକ—ସ୍ତ୍ରୀ. ବି. ବି°. ମୁଠାଏ ଦେଖ,

ମୁଠାମୁଠା—ସ୍ତ୍ରୀ.ବି°. ବହୁମୁଷ୍ଟି ପରିମିତ, ବହୁ ପରିମିତ ।

ମୁଠାମୁଠାକରିବା—ସ୍ତ୍ରୀ. କ୍ରି. କରତଳକୁ ମୁଷ୍ଟିବଦ୍ଧ କରିବା, ଅନିଚ୍ଛା ବା ଭୟ ପ୍ରକାଶ କରିବା ।

ମୁଠାରୁଖସିବା—ସ୍ତ୍ରୀ.କ୍ରି. ଆପଣାର ଅଧୀ-ନତାରୁ ବାହାରିଯିବା ।

ମୁଠାରେରଖିବା—ସ୍ତ୍ରୀ. କ୍ରି. ଆପଣାର ଅଧୀନ ବା ବଶବର୍ତ୍ତୀ କରି ରଖିବା ।

ମୁଠି(ଠୀ)—ସ୍ତ୍ରୀ. ବି. (ସଂ-ମୁଷ୍ଟି) ମୁଠା ଦେଖ, ଏକମୁଷ୍ଟି ପରିମାଣ, ପ୍ରାୟ ତିନି ଇଞ୍ଚ, ଭଣ୍ଡାରି ଖୁରଆଦି ରଖିବାର ଚମଡ଼ା ବା କନାର ମୁଣୀ, ଖଡ୍ଗ ଆଦିର ବେଣ୍ଟ ।

ମୁଠିଏ—ସ୍ତ୍ରୀ.ବି.ବି°. ଏକମୁଷ୍ଟି ପରିମିତ

ମୁଠିଗୁଉଳ—ସ୍ତ୍ରୀ. ବି. ମୁଷ୍ଟିଭିକ୍ଷା ଦେବା ନିମନ୍ତେ ରଖାଯିବା ଗୁଉଳ, କୌଣସି ଏକ ରବି ସଂକ୍ରାନ୍ତିରୁ ଆରମ୍ଭ କରି ପ୍ରତିଦିନ ଖାଇବା ଗୁଉଳରୁ ମୁଠିଏ ଲେଖାଏଁ ରଖି ଅଭୀଷ୍ଟ ପୂରଣାର୍ଥ ଅପର ସଂକ୍ରାନ୍ତିରେ ବ୍ରାହ୍ମଣଙ୍କୁ ଦେବା ଗୁଉଳ ।

ମୁଠୁଣି—ସ୍ତ୍ରୀ.ବି. (ସଂ-ମୁଷ୍ଟ୍ୟନ) କହୁଣୀ-ଠାରୁ ମୁଷ୍ଟିବଦ୍ଧ କରତଳର କୁଞ୍ଚିତ କନିଷ୍ଠ ଅଙ୍ଗୁଳିର ମଧ୍ୟପର୍ଯ୍ୟନ୍ତ ଲମ୍ବ, ପ୍ରାୟ ୧୬ଇଞ୍ଚ ।

ମୁଠୁଣିଏ—ସ୍ତ୍ରୀ.ବି ଓ ବି°. ଏକମୁଠୁଣି ପରିମିତ । [ ମଧ୍ୟପିଣ୍ଡ ।

ମୁଡ଼୍—ପ୍ରା.(ଝଡ଼ିଆଲ)ବି. ଶଗଡ଼ ଚକର

ମୁଡ଼୍କି—ପ୍ରା.(ହିନ୍ଦି)ବି. ଉଖୁଡ଼ା ।

ମୁଡ଼୍(ଡ଼ୁ)ମୁଡ଼୍(ଡ଼ୁ)—ସ୍ତ୍ରୀ.ଅବ୍ୟ. ମୁଢ଼ି-ଆଦି ଚୋବାଇବା ଶବ୍ଦ । [ ଦେଖ ।

ମୁଡ଼୍ମୁଡ଼ି—ସ୍ତ୍ରୀ.ବି. ଗୁଳ୍ମବିଶେଷ, ମୁଣ୍ଡିକା

ମୁଡ଼୍ମୁଡ଼ିଆ—ସ୍ତ୍ରୀ.ବି°. ଯାହା ସାମାନ୍ୟ ଆଘାତରେ ଚୂର୍ଣ୍ଣ ହୋଇଥାଏ ।

ମୁଢ଼ାକରିବା—ସ୍ତ୍ରୀ.କ୍ରି. କୌଣସି ବ୍ୟକ୍ତି-ପ୍ରତି ତାନ୍ତ୍ରିକଅଭିଗୃରିକ ପ୍ରୟୋଗପୂର୍ବକ ତାହାକୁ ଚେତନାଶୂନ୍ୟ କରିବା ।

ମୁଢ଼ି—ସ୍ତ୍ରୀ.ବି. ଭୃଷ୍ଟ ତଣ୍ଡୁଳ, ଗୁଉଳକୁ ଲୁଣପାଣିରେ ପାଗକରି ଭାଜିବା ଭୂଜା ।

ମୁଣା—ସ୍ତ୍ରୀ.ବି. ବଡ଼ଥଳି, ମୁଣି, (ପ୍ରା. ବାଲେ.) ଗାଈରଖୁଆଳ ।

ମୁଣି—ସ୍ତ୍ରୀ. ବି. ଗ୍ରେଟ ଥଳି, ଝୁଲି, ଲଫାଫା, (ପ୍ରା. ବାଲେ.) ପାନବଟୁଆ ।

ମୁଣ୍ଡହୁଁ—ସ୍ତ୍ରୀ.କ୍ରି.ବି°. ଆଦୌ, ମୂଳରୁ, ଜମାରୁ, ମୋଟେ ।

ମୁଣେହିଁ—ସ୍ତ୍ରୀ.ବି. ମଣୋହି,ରଜାମାନ-ଙ୍କର ଭୋଜନକ୍ରିୟା ।

ମୁଣ୍ଡ—ବି. (ମୁଣ୍ଡ୍+ଅ) ବଳି ରଜାର ସୈନିକ ଦୈତ୍ୟବିଶେଷ, ଶୁମ୍ଭ ଦୈତ୍ୟର ସେନାପତି, ରାହୁଗ୍ରହ, ନାପିତ, ଲଣ୍ଡା-ଗଛ, ମୂର୍ଦ୍ଧା, ମସ୍ତକ, ମୁଣ୍ଡଲୌହ, ବୋଲ, (ସ୍ତ୍ରୀ,ବି) ଗୋଟିଏ ଜୀବ,ବ୍ୟକ୍ତି, ପଦାର୍ଥର ଅଗ୍ରଭାଗ, ଲମ୍ବ ବସ୍ତୁର ଶେଷ-ଭାଗ, ଶେଷସୀମା, ପ୍ରାନ୍ତ, ସମୟର ସୀମା, ବହୁ ବ୍ୟକ୍ତିଙ୍କ ମଧ୍ୟରେ କର୍ତ୍ତା, ଅଭିଭାବକ, ମସ୍ତିଷ୍କ, ମଗଜ, ବୁଦ୍ଧି, ମଣ୍ଡର ବାଳ, (ଯଥା-ମୁଣ୍ଡବାନ୍ଧିବା) ।

ମୁଣ୍ଡଉପର—ସ୍ତ୍ରୀ.ବି. ଆପଣାଠାରୁ ଉଚ୍ଚ-

ତର ସ୍ଥାନ, ଆପଣା ମୁଣ୍ଡର ଠିକ୍ ସିଧାରେ ଆକାଶର ଅଂଶ ।

ମୁଣ୍ଡକ—ବି. (ମୁଣ୍ଡ+କ) ମସ୍ତକ,ମୁଣ୍ଡ. ଉପନିଷଦ୍‌ଭେଦ,(ମୁଣ୍ଡ+ଅକ) ନାପିତ, ଭଣ୍ଡାରି. (ଗ୍ରା.ଅବ୍ୟ)ଏକମୁଣ୍ଡ ବା ଜୀବ ବା ବ୍ୟକ୍ତି ମାତ୍ର ।

ମୁଣ୍ଡକର--ଗ୍ରା. ବି. ପ୍ରତ୍ୟେକ ବ୍ୟକ୍ତି ଉପରେ ବସାଯିବା ରାଜକର ।

ମୁଣ୍ଡକାଟ—ଗ୍ରା. ବି. ମସ୍ତକ ଛେଦନ, ମସ୍ତକ ଛେଦନରୂପ ପ୍ରାଣଦଣ୍ଡ, ମହାଜନୀ କାରବାରର ଋଷୀସଙ୍ଗେ କାଟପତ୍ର, ଫିରିଦାଖଲଖାରଜ ।

ମୁଣ୍ଡକାଟଜାଗିର—ଗ୍ରା.ବି. ପୂର୍ବେ ରାଜାଙ୍କ ଆଦେଶ ଅନୁସାରେ ଅପରାଧୀର ବା ଶତ୍ରୁର ମୁଣ୍ଡ କାଟିଥିବା ବ୍ୟକ୍ତିଙ୍କୁ ରାଜାଙ୍କ ଠାରୁ ମିଳିବା ଜାଗିର ।

ମୁଣ୍ଡକାଟି—ପ୍ରା, (ଯାଜ)ବି. ସଜସାଗଛ ।

ମୁଣ୍ଡକାଟିବା—ଗ୍ରା.କ୍ରି. ମସ୍ତକ ଛେଦନ କରିବା, ଅତ୍ୟନ୍ତ ଲଜ୍ଜିତ କରିବା ।

ମୁଣ୍ଡକାନଆଉଁଦିବା--ଗ୍ରା.କ୍ରି.ଅନନ୍ୟୋପାୟ ହେବା,ନାଗର ହେବା, ଆପଣା ଭାଗ୍ୟକୁ ଆଦରିବା ।

ମୁଣ୍ଡକିଣିବା—ଗ୍ରା.କ୍ରି. କୌଣସି ବ୍ୟକ୍ତିକୁ କ୍ରୀତଦାସରୂପେ ପାଇବା ।

ମୁଣ୍ଡକୁଣ୍ଡା(ଣ୍ଡେ)ଇବା—ଗ୍ରା. କ୍ରି. ମୁଣ୍ଡର କେଶକୁ ପାନିଆ ଦ୍ୱାରା କୁଣ୍ଡାଇ ସୁବିନ୍ୟସ୍ତ କରିବା ।

ମୁଣ୍ଡକୁପାଣିଛଡ଼ାଇବା—ଗ୍ରା.କ୍ରି.କୌଣସି କାର୍ଯ୍ୟ ସାଧନ ପାଇଁ ଆପଣାର ଜୀବନକୁ ଉତ୍ସର୍ଗ କରିବା ।

ମୁଣ୍ଡକୁହାତପାଇବା—ଗ୍ରା. ବି. ବାଲ୍ୟାବସ୍ଥା ଅତିକ୍ରମ କରି ଆପଣାର ବିଷୟ ଆପେ ବୁଝିବା ପାଇଁ ସମର୍ଥ ହେବା, ସାବାଲଗ ହେବା ।

ମୁଣ୍ଡକେ—ଗ୍ରା.ଅବ୍ୟ. ଜଣକେ,ଜଣପିଚ୍ଛା

ମୁଣ୍ଡକୋଡ଼ିବା—ଗ୍ରା. କ୍ରି. ଦୁଃଖାତିଯୋଗୁଁ ଭୂମିରେ ମଣ୍ଡକୁ ଆଘାତ କରିବା ।

ମୁଣ୍ଡଖାଇବା--ଗ୍ରା.କ୍ରି (ଲ.ଅର୍ଥ)କୌଣସି ବ୍ୟକ୍ତିର ସର୍ବନାଶର କାରଣ ହେବା, ଗୁଣପକାଇବା, କୌଣସି ବ୍ୟକ୍ତିର ମୁଣ୍ଡ ପର୍ଯ୍ୟନ୍ତ ଉଚ୍ଚହେବା ।

ମୁଣ୍ଡଖୁଜାଇବା—ପ୍ରା.(ସମ୍ଭ)କ୍ରି. ଅସମ୍ମତି ପ୍ରକାଶ କରିବା, ନାହିଁ କରିବା ।

ମୁଣ୍ଡଖୋଳାଇବା—ଗ୍ରା.କ୍ରି. ଅନ୍ୟ ଦ୍ୱାରା ନିଜ ମୁଣ୍ଡରୁ ଉକୁଣିଆଦି ମରାଇବା ।

ମୁଣ୍ଡଗଡ଼ାଇବା—ଗ୍ରା.କ୍ରି. ଆପଣାର ମସ୍ତକକୁ ଭୂମିରେ ଲୁଣ୍ଠିତ କରିବା, (ଲ. ଅର୍ଥ) ଆପଣାର ନିର୍ଦ୍ଧନତ୍ୱ ପ୍ରକାଶ କରିବା ଓ ଅର୍ଥ ବ୍ୟୟ କରିବାକୁ ଅକ୍ଷମ ଥିବାର ପ୍ରକାଶ କରିବା, ରୋଗଜନିତ ସଙ୍ଜ୍ଞାହୀନ ହୋଇ ବ୍ୟାକୁଳ ହେବା, ମୁମୂର୍ଷୁ ଅବସ୍ଥା ଘଟିବା ।

ମୁଣ୍ଡଗଣ୍ଡି—ଗ୍ରା. ବି. ମସ୍ତିକ ଓ ଶରୀରର ଅନ୍ୟ ଅଂଶ, ବିରକ୍ତିସୂଚକ ସାମାନ୍ୟମାତ୍ର ବସ୍ତୁ ବା ବିଷୟ ।

ମୁଣ୍ଡଗଳାଇବା—ଗ୍ରା.କ୍ରି.ଛିଦ୍ରରେ ଆପଣାର ମୁଣ୍ଡକୁ ପୂରାଇବା, (ଲ.ଅର୍ଥ) କୌଣସି ବିଷୟ ବୁଝିବା ପାଇଁ ମସ୍ତିଷ୍କ ଚାଳନା କରିବା ।

ମୁଣ୍ଡଗୁଞ୍ଜିବା—ଗ୍ରା.କ୍ରି.(ଲ.ଅର୍ଥ)ଅତ୍ୟନ୍ତ ଦୁର୍ଦ୍ଦଶାଗ୍ରସ୍ତ ଓ ନିରାଶ୍ରୟ ହୋଇ କୌଣସି ସ୍ଥାନରେ ବା କୌଣସି ବ୍ୟକ୍ତିଙ୍କ ନିକଟରେ ଅତି କଷ୍ଟରେ ଆଶ୍ରୟ ଗ୍ରହଣ କରିବା ।

ମୁଣ୍ଡଘୁରାଇବା—ଗ୍ରା.କ୍ରି. କୌଣସି ବିଷୟରେ ମସ୍ତିଷ୍କ ଚାଳନାପୂର୍ବକ ଚିନ୍ତାକରିବା ।

ମୁଣ୍ଡଚଣକ—ବି. ବଡ଼ଚଣା ।

ମୁଣ୍ଡଚ୍ଛେଦ—ବି. (୬ତତ୍) ମୁଣ୍ଡକାଟ, ମସ୍ତକକର୍ତ୍ତନ ।

ମୁଣ୍ଡଚୁଣ୍ଡାଇଦେବା—ଗ୍ରା. କ୍ରି. (ଗାଳି) ସତ୍ୟାନାଶକରିବା,ତଳିତଳାନ୍ତକରିବା, (ଲ.ଅର୍ଥ)ଖୁବ୍ ଜୋରରେ ସ୍ରୋତବହିବା

ମୁଣ୍ଡଛିଣ୍ଡିଯିବା—ଗ୍ରା.ବି.ଅପମାନିତ ହେବା. (ଲ.ଅର୍ଥ) ସ୍ରୋତର ବେଗ ଅତି ବଳବାନ୍ ହେବା ।

ମୁଣ୍ଡଝାଳରୁଣ୍ଡରେପଶିବା—ଗ୍ରା. ବି. (ଲ.ଅର୍ଥ) ବିଶେଷ କାୟିକ ପରିଶ୍ରମ ।

ମୁଣ୍ଡଟେକିବା— ଗ୍ରା.କ୍ରି.ମସ୍ତକ ଉତ୍ତୋଳନ କରିବା, (ଲ.ଅର୍ଥ) ଲଜ୍ଜାଜନକ କାର୍ଯ୍ୟ କରି ନ ଥିବାରୁ ନତମସ୍ତକ ନ ହୋଇ ସମାଜରେ ମୁହଁ ଟେକି ଚଳିବା,ନିତାନ୍ତ ବିପନ୍ନ ବା ଦରିଦ୍ରାବସ୍ଥାରୁ ଉନ୍ନତ ତର ଅବସ୍ଥାକୁ ଆସିବା ।

ମୁଣ୍ଡଦେବା—ଗ୍ରା.କ୍ରି. (ଲ.ଅର୍ଥ) ଜୀବନ ଉତ୍ସର୍ଗ କରିବା,ବୁଦ୍ଧି ପ୍ରୟୋଗକରିବା, କୌଣସି କାର୍ଯ୍ୟକ୍ଷେତ୍ରରେ ପ୍ରତିଯୋଗିତା କରିବା, ଚେଷ୍ଟା କରିବା, ପ୍ରକାଶ୍ୟରେ ନିହ୍ନାପଡ଼ି କୌଣସି କାର୍ଯ୍ୟ କରିବା ।

ମୁଣ୍ଡଧରିବା—ଗ୍ରା.ବି.ମୁଣ୍ଡ ବିନ୍ଧିବା,ମସ୍ତିଷ୍କ ଉପରେ କୌଣସି ମାଦକ ଦ୍ରବ୍ୟର କାର୍ଯ୍ୟ, (ଗ୍ରା.କ୍ରି) କୌଣସି ବଡ଼ଲୋକ କିମ୍ବା ମୁରବିସ୍ଥାନୀୟ ଲୋକଙ୍କ ଆଶ୍ରୟ ନେବା, (କୌଣସି ସ୍ତ୍ରୀ) ପୁରୁଷ ବିଶେଷକୁ ସ୍ୱାମୀରୂପେ ଆଶ୍ରୟ କରିବା, (କୌଣସି କର୍ମ) ଶେଷ ହୋଇ ଆସିବା ।

ମୁଣ୍ଡନ—କ୍ଲୀ.ବି.(ମୁଣ୍ଡ + ଭା.ଅନ)କେଶଛେଦନ,ସମୁଦାୟ ମୁଣ୍ଡ କ୍ଷୌରହେବା ।

ମୁଣ୍ଡନା(ଲ)ଇଁବା—ଗ୍ରା.ବି. ମସ୍ତକ ନତହେବା, (ଲ.ଅର୍ଥ)ଲଜ୍ଜାରେ ଅବନତମସ୍ତକ ହେବା, ବଶ୍ୟତା ସ୍ୱୀକାର ।

ମୁଣ୍ଡନୁ(ଲୁ)ଆଇଁବା—ଗ୍ରା. କ୍ରି. ମସ୍ତକ ଅବନତକରିବା,ଲଜ୍ଜାରେ ମୁଣ୍ଡପୋତିବା, ନମସ୍କାରକରିବା, (ଲ.ଅର୍ଥ) ବଶ୍ୟତାସ୍ୱୀକାର କରିବା ।

ମୁଣ୍ଡନକ—ବି.ଶାଳିଧାନ୍ୟବିଶେଷ, ଶ୍ୱେତ ବଟବୃକ୍ଷ । [ ଧାନ ।

ମୁଣ୍ଡନକା—ସ୍ତ୍ରୀ.ବି. ଶୁଙ୍ଗ ନଥିବା ମେଣ୍ଢା

ମୁଣ୍ଡପତାଇବା—ଗ୍ରା. କ୍ରି. (ଲ.ଅର୍ଥ) କୌଣସି ବ୍ୟକ୍ତିର ଆଦେଶକୁ ଶିରୋଧାର୍ଯ୍ୟ କରିବା ବା ସ୍ୱୀକାର କରିବା, ଅନ୍ୟ ବ୍ୟକ୍ତି ଦ୍ୱାରା ଆପଣାର ମସ୍ତକ ଛେଦିତ ହେବାପାଇଁ ତାଙ୍କୁ ଆପଣା ମୁଣ୍ଡକୁ ଦେଖାଇଦେବା, କୌଣସି କାର୍ଯ୍ୟର ଦାୟିତ୍ୱ ବହନ କରିବା ।

ମୁଣ୍ଡପାଣିଛଡ଼ାଇବା—ଗ୍ରା. ବି. (ଲ.ଅର୍ଥ) କୌଣସି ଅସାଧ୍ୟ କର୍ମ ସାଧନ କରିବାକୁ ସାହସ ବାନ୍ଧିବା ।

ମୁଣ୍ଡପାତ—ବି. (ତତ୍ସ) ମସ୍ତକଚ୍ଛେଦନ ।

ମୁଣ୍ଡପୀଡ଼ା—ବି. (ତତ୍ସ) ମୁଣ୍ଡବ୍ୟଥା ।

ମୁଣ୍ଡପୋତା—ଗ୍ରା.ବି.ମୁଣ୍ଡ ପୋତି ଗ୍ରାମେ ଗ୍ରାମେ ଭିକ୍ଷାକରି ବଞ୍ଚିବା ନୀଚ ଅସ୍ପୃଶ୍ୟ ଭିକ୍ଷୁକ ଜାତି ବିଶେଷ ।

ମୁଣ୍ଡପୋତିବା—ଗ୍ରା. କ୍ରି. (ଲ.ଅର୍ଥ) ଲଜ୍ଜାରେ ମୁହଁ ତଳକୁ କରିବା, ମୁଣ୍ଡ ତଳକୁ ନତକରିବା ।

ମୁଣ୍ଡଫଟାଇବା—ଗ୍ରା.କ୍ରି. ଲଗୁଡ଼ପ୍ରଭୃତିର ଆଘାତରେ ମସ୍ତକକୁ ବିଦୀର୍ଣ୍ଣ କରାଇବା ।

ମୁଣ୍ଡଫଳ—ବି. (ବି.ଗ୍ରା) ନାରିକେଳ ବୃକ୍ଷ ।

ମୁଣ୍ଡବଥା—ଗ୍ରା.ବି. ମସ୍ତକରେ ବେଦନା, ଶିରଃପୀଡ଼ା, (ଲ.ଅର୍ଥ) ବେଦନାରେ ଅସ୍ଥିର ହେଲାପରି ମହାଚିନ୍ତାରେ ଅସ୍ଥିର ହେବା, ଗମ୍ଭୀର ଚିନ୍ତା ।

ମୁଣ୍ଡବନ୍ଧା—ଗ୍ରା. ବି. ଶିରପା, ଠେକା ବାନ୍ଧିବା ପାଇଁ ବ୍ୟବହୃତ ଲୁଗା,କେଶକୁ ଗଣ୍ଠିପକାଇବା ବା ଜୁଡ଼ାବାନ୍ଧିବା ।

ମୁଣ୍ଡବନ୍ଧାଦେବା—ଗ୍ରା. କ୍ରି. ଅନ୍ୟ ନିକଟରେ ସମ୍ପୂର୍ଣ୍ଣ ପରାଧୀନତା ବା ଦାସତ୍ୱ ସ୍ୱୀକାର କରିବା ।

ମୁଣ୍ଡବାଡ଼େଇବା—ଗ୍ରା. କ୍ରି. ଦୁଃଖ ବା ଶୋକ ଯୋଗୁଁ ମୁଣ୍ଡକୋଡ଼ିବା,(ଲ.ଅର୍ଥ କୌଣସି ବ୍ୟକ୍ତିର ସର୍ବନାଶ ଘଟାଇବା ।

ମୁଣ୍ଡବାନ୍ଧିବା—ଗ୍ରା. କ୍ରି. କେଶକୁ କୁଣ୍ଡାଇ ଗଣ୍ଠି ବା ଖୋସା ଆଦି ପକାଇବା ।

ମୁଣ୍ଡବାଳ—ବି. (ତତ୍ସ) ଶିରସ୍ଥ କେଶ ।

ମୁଣ୍ଡବିକା—ଗ୍ରା. ବିଂ. (ଲ.ର୍ଥ) ଚାକିରି ଖଟିବା (ଲୋକ),ସମ୍ପୂର୍ଣ୍ଣ ରୂପେ ପରଠାରେ ଆପଣାକୁ ଅର୍ପଣ କରିଥିବା (ବ୍ୟକ୍ତି) । [ କରିବା ।

ମୁଣ୍ଡବିକିବା—ଗ୍ରା. କ୍ରି. ଦାସତ୍ୱ ସ୍ୱୀକାର-

ମୁଣ୍ଡବିନ୍ଧା—ଗ୍ରା.ବି. ମୁଣ୍ଡବ୍ୟଥା ଦେଖ ।

ମୁଣ୍ଡବୁଡ଼ାଇବା—ଗ୍ରା. କ୍ରି. ବୁଡ଼ିକରି ସ୍ନାନ କରିବା ।

ମୁଣ୍ଡବୁଲ—ଗ୍ରା.ବି. ମସ୍ତକଘୂର୍ଣ୍ଣନ,ଶିରୋଘୂର୍ଣ୍ଣନ ।

ମୁଣ୍ଡବୋଝ—ଗ୍ରା. ବି. ମୁଣ୍ଡରେ ବହନ କରାଯିବା ବୋଝ ।

ମୁଣ୍ଡବୋଝିଆ—ଗ୍ରା.ବିଂ.ମୁଣ୍ଡରେ ବୋଝ ବହିବା(ବ୍ୟକ୍ତି),ମୁଣ୍ଡରେ ବୋଝବହିବା ଯାହାର ଜୀବିକା,ମୋଟିଆ,ଯେ ମୁଣ୍ଡରେ ପଣ୍ୟଦ୍ରବ୍ୟର ବୋଝ ବହି ଗ୍ରାମେଗ୍ରାମେ ବିକି କୁଟୁମ୍ବ ପୋଷେ ।

ମୁଣ୍ଡଭିଡ଼ା—ଗ୍ରା.ବି.ଜୁଡ଼ାରେ ବନ୍ଧାଯିବା ପାଟଫୁଲ, ମୁଣ୍ଡରେ ଭିଡ଼ାଯିବା ବସ୍ତ୍ର ।

ମୁଣ୍ଡମଣ୍ଡଳ—ବି.ମୁଣ୍ଡିତ ମସ୍ତକସମୂହ, ଅଶିକ୍ଷିତ ସେନାବୃନ୍ଦ ।

ମୁଣ୍ଡମାରିବା—ଗ୍ରା କ୍ରି.(ଲ.ଅର୍ଥ)କୌଣସି ବ୍ୟକ୍ତିର ସର୍ବନାଶ ଘଟାଇବା ।

ମୁଣ୍ଡମାଳା—ସ୍ତ୍ରୀ.ବି. (ତତ୍ସ) ବହୁ ନର ମୁଣ୍ଡରେ ଗ୍ରଥିତ ମାଳା, ମାଳାରେ ଗ୍ରଥିତ ହେଲାପରି ଏକତ୍ରସ୍ଥିତ ଅନେକ ମୁଣ୍ଡ, ଛନ୍ଦବିଶେଷ, ନଦୀବିଶେଷ ।

ମୁଣ୍ଡମାଳିନୀ—ସ୍ତ୍ରୀ. ବି. ( ମୁଣ୍ଡମାଳିନ୍ + ଈ) ଦୁର୍ଗା, କାଳୀ,(ସ୍ତ୍ରୀ.ବିଂ)ମୁଣ୍ଡମାଳାଧାରିଣୀ ।

ମୁଣ୍ଡମାଳୀ—ପୁଂ.ବିଂ.(ମୁଣ୍ଡମାଳ +ଇନ୍) ମୁଣ୍ଡମାଳ ବେକରେ ପକାଇଥିବା, (ପୁଂ.ବି) ମହାଦେବ ।

ମୁଣ୍ଡମୁକୁଳା—ଗ୍ରା. ବି. ଆଲୁଲାୟିତ କେଶ, ଓଢ଼ଣା ନ ଥିବା ମୁଣ୍ଡ ।

ମୁଣ୍ଡମୋଡ଼ିବା—ଗ୍ରା. କ୍ରି. ମୁଣ୍ଡକୁ ମୋଡ଼ି ଗଳିରୁ ମୁଣ୍ଡକୁ ଛିଣ୍ଡାଇ ଦେବା ।

ମୁଣ୍ଡରଖିବା—ଗ୍ରା.କ୍ରି. କୌଣସି ବ୍ୟକ୍ତିର ଜୀବନ ରକ୍ଷା କରିବା, କୌଣସିବ୍ୟକ୍ତିକୁ ପ୍ରାଣଦଣ୍ଡରୁ ବା ମୃତ୍ୟୁ ମୁଖରୁ ରକ୍ଷା କରିବା ।

ମୁଣ୍ଡରେଅଠାବୋଳିବା—ଗ୍ରା.କ୍ରି(ଲ.ର୍ଥ) କୌଣସି ବ୍ୟକ୍ତି ଉପରେ ଦୋଷ ବା କଳଙ୍କ ଆରୋପ କରିବା ।

ମୁଣ୍ଡରେଆକାଶଛିଣ୍ଡିପଡ଼ିବା—ଗ୍ରା. ବି. ହଠାତ୍ ବିପଦଗ୍ରସ୍ତ ହୋଇ ବ୍ୟତିବ୍ୟସ୍ତ ହୋଇ ପଡ଼ିବା, କିଂକର୍ତ୍ତବ୍ୟ ବିମୂଢ଼ ହେବା ।

ମୁଣ୍ଡରେଉକୁଣୀକାମୁଡ଼ିବା—ଗ୍ରା.ବି.ମସ୍ତକରେ ଉକୁଣୀ ଦଂଶନ କରିବା,ଅତ୍ୟନ୍ତ ଚିନ୍ତିତ ହେବା ।

ମୁଣ୍ଡରେଗୋଡ଼ଦେବା—ଗ୍ରା. କ୍ରି. ଅପମାନ ଦେବା, ପ୍ରଶ୍ରୟ ପାଇ କ୍ଷମତାତୀତ କାମକରିବା ବା କ୍ଷମତାର ଅପବ୍ୟବହାର କରିବା ।

ମୁଣ୍ଡରେଚଢ଼ିବା(ବସିବା)—ଗ୍ରା. କ୍ରି. କୌଣସି ବ୍ୟକ୍ତିଙ୍କଠାରୁ ପ୍ରଶ୍ରୟପାଇବା ଯୋଗୁଁ ତାଙ୍କ ନିକଟରେ ଅବାଧ୍ୟତା ପ୍ରକାଶ କରିବା ।

ମୁଣ୍ଡରେପଶିବା—ଗ୍ରା. କ୍ରି. ମସ୍ତିଷ୍କରେ ପ୍ରବେଶ କରିବା, ବୋଧଗମ୍ୟ ହେବା ।

ମୁଣ୍ଡରେବଜ୍ରପଡ଼ିବା—ଗ୍ରା. କ୍ରି. ବିପନ୍ନ ଅବସ୍ଥାରେ କିଂକର୍ତ୍ତବ୍ୟବିମୂଢ଼ ଓ ବିହ୍ୱଳ ହେବା ।

ମୁଣ୍ଡରେଶିକାଛିଣ୍ଡିବା—ଗ୍ରା.ବି. ଅପ୍ରତ୍ୟାଶିତ ଭାବରେ କୌଣସି ଲୋକର ଅନେକ ଅର୍ଥପ୍ରାପ୍ତି ବା ସୌଭାଗ୍ୟପ୍ରାପ୍ତି ହେବା ।

ମୁଣ୍ଡରେହାତଦେଇବସିବା—ଗ୍ରା. କ୍ରି. ଦୁର୍ଭାବନାରେ କିଂକର୍ତ୍ତବ୍ୟବିମୂଢ଼ ହେବା, ଆଶୀର୍ବାଦ କରିବା ।

ମୁଣ୍ଡରେହାତବୁଲାଇବା—ଗ୍ରା.କ୍ରି.କୌଣସି ବ୍ୟକ୍ତିଙ୍କୁ ଠକାଇ କରି ତା'ଠାରୁ କିଛି ପଦାର୍ଥ ନେବା,ଆଶୀର୍ବାଦ କରି ଦକ୍ଷିଣା ସ୍ୱରୂପ କୌଣସି ବ୍ୟକ୍ତିଠାରୁ କିଛି ପଦାର୍ଥ ନେବା ।

ମୁଣ୍ଡଲା(ଳ)—ଗ୍ରା. ବି. ବୃତ୍ତାକାର ଚକ ।

ମୁଣ୍ଡଲୌହ—କ୍ଲୀ. ବି. ଲୌହବିଶେଷ ।

ମୁଣ୍ଡଶାଳ(ଳୀ)—ବି. ଏକପ୍ରକାର ଦାଳୁଅ ଧାନ ।

ମୁଣ୍ଡା—ସ୍ତ୍ରୀ.ବି. (ମୁଣ୍ଡ+ଆ)ମୁଣ୍ଡିକା, ମୁଣ୍ଡିତକା, ମହାଶ୍ରାବଣିକା,ବଡ଼ ଆଲୁକୁଣୀ ଗଛ,ମୁଣ୍ଡିତା ସ୍ତ୍ରୀ,ଲଣ୍ଡୀ ସ୍ତ୍ରୀ, (ଗ୍ରା. ବି) ହଳଦୀ ସାରୁ ଓ କଦଳୀ ଗଛର ମୂଳପିଣ୍ଡ, ଶାଖାଆଦି ବର୍ଜିତ ବୃକ୍ଷରଗଣ୍ଡି, କାଠ ବା ପଥରର ବଡ଼ଖଣ୍ଡ, ମାଛ ବା ମାଂସର ବଡ଼ଖଣ୍ଡ, ଲଙ୍ଗଳହେବା ବଡ଼କାଠଖଣ୍ଡ, (ଗାଳି) ଆପଣା ପରିବାରର ସମସ୍ତ ମୃତପରେ

ଯେ ଏକା ବଞ୍ଚିଥାଏ, କର୍ଣ୍ଣର ମୂଳଭାଗ, ବେଙ୍ଗମୁଣ୍ଡା, ଚେକ୍ ରସିଦଆଦିର ଶେଷ ଅଂଶ ଚିରା ହୋଇ ଗଲା ପରେ ରହୁଥିବା ମୂଳଅଂଶଖଣ୍ଡ, ଗହ୍ୱରଜମି, ନାଳ ବା ଗଡ଼ାଣିଆଁ ଭୂମିର ଜଳପାଖେ ବନ୍ଧ ବାନ୍ଧିଦେଇ ପ୍ରସ୍ତୁତ କରାଯିବା ଜଳାଶୟ ବା ବନ୍ଧ, ଅନାର୍ଯ୍ୟ ଜାତିବିଶେଷ, (ପ୍ରା. ସିଂହ. ବ) ଗ୍ରାମର ପ୍ରଧାନ ପୁରୁଷ, ପଧାନ, କୋହ୍ଲମାନଙ୍କ ସର୍ଦ୍ଦାର, (ଗ୍ରା.ବ) ଢିଙ୍କିମୁଣ୍ଡା, ଯେଉଁ କାଠଗଣ୍ଡିର ଉପରେ ଗାତ ହୋଇଅଛି, ଧାନଗଛର ରୋଗବିଶେଷ, (ପ୍ରା.ବାମଣ୍ଡା) ଶାରଭଙ୍ଗ ଜମି, (ଗ୍ରା.ବିଂ) ଦନ୍ତୁରା, ଦାଢ଼ ନ ଥିବା (ଅସ୍ତ୍ର), ପୁଂ.ବିଂ; ଯାହାର ସ୍ତ୍ରୀ ଓ ସନ୍ତାନାଦି ମରିଅଛନ୍ତି, ନିର୍ବଂଶିଆ, ମୁଣ୍ଡଯୁକ୍ତ ।

ମୁଣ୍ଡାଇବା—ଗ୍ରା.କ୍ରି. ମୁଣ୍ଡଦ୍ୱାରା ବୋଝ ଟେକାଇବା, ଛତାଆଦି ମୁଣ୍ଡଉପରକୁ ଧରିବା, (ଲ.ଅର୍ଥ) ସମ୍ମାନ ଦେଖାଇବା, ଦାୟିତ୍ୱ ଗ୍ରହଣ କରିବା, କ୍ଷୌରହେବା ।

ମୁଣ୍ଡାକଲମ—ଗ୍ରା.ବି. ଥୁନ୍ତା କଲମ ।

ମୁଣ୍ଡାଖ୍ୟା—ସ୍ତ୍ରୀ.ବି.ବି.ସ୍ତ୍ରୀ; ମହାଶ୍ରାବଣିକା ।

ମୁଣ୍ଡାଚେକ୍—ଗ୍ରା.ବି. ଦୁଇଟିକଖଣ୍ଡ ଏକକଥା ଛପା ହୋଇଥିବା ଚେକ୍‌ପାଉତିଆଦି କାଗଜର ଶେଷ ଅଂଶମାନ ଚିରାଯିବା ପରେ ରହୁଥିବା ମୂଳ ଖଣ୍ଡି ।

ମୁଣ୍ଡାମୁଣ୍ଡା—ଗ୍ରା.ବି. ମାଛମାଂସ ଦହିଗୁଡ଼ଆଦି ଖାଦ୍ୟର ବଡ଼ ବଡ଼ ଖଣ୍ଡ ବା ଘନାଂଶ । [ ଲୌହ ।

ମୁଣ୍ଡାୟସ—କ୍ଲୀ.ବି. (ମୁଣ୍ଡ+ଅୟସ୍+ଅ)

ମୁଣ୍ଡାରକତ—ଗ୍ରା. ବି. ବସିଯାଇଥିବା ରକ୍ତର ଖଣ୍ଡମାନ ।

ମୁଣ୍ଡାଳ—ଗ୍ରା. ବି. ଅଗ୍ରଭାଗ, ଶେଷସୀମା, ଶେଷଭାଗ, (ବିତନ୍ତ୍ର) ମୁଣ୍ଡସମ୍ବନ୍ଧ ।

ମୁଣ୍ଡାସନ—କ୍ଲୀ.ବି. ଯୋଗ ପ୍ରଦୀପୋକ୍ତ ଆସନବିଶେଷ ।

ମୁଣ୍ଡାସୁର—ଗ୍ରା. ବି. ଦଃ ପଃ ଭାରତର ଜାତିବିଶେଷ ।

ମୁଣ୍ଡି—ଗ୍ରା.ବି.(ସଂ-ମୁଣ୍ଡ) ଯଷ୍ଟିଆଦିର ଅଗ୍ରଭାଗ, ସ୍ତନର ଅଗ୍ରଭାଗ, ଚୁଚୁକ, ମୁଣ୍ଡିତିକା, ଶାଳ ପିଆଶାଳଆଦି କାଠର ଲମ୍ବ ମୋଟ ଗଣ୍ଡି, ବାଇଗଣ କାକୁଡ଼ିଆଦି ଫଳର ବୃନ୍ତସଂଲଗ୍ନ ଅଂଶ, ଦେଉଳର ଅଗ୍ରଭାଗ, (ପ୍ରା.ସମ୍ବ.ବ) କେଳିକଦମ୍ବଗଛ

ମୁଣ୍ଡିଆ—ଗ୍ରା. ବି. ମୁଣ୍ଡଦ୍ୱାରା ଆଘାତ. ଭୂମିରେ ମୁଣ୍ଡ ଲଗାଇ ନମସ୍କାର, ବୃକ୍ଷଶୂନ୍ୟ କ୍ଷୁଦ୍ର ପାହାଡ଼, (ଗ୍ରା.ପୁଂ.ବିଂ) ମୁଣ୍ଡଯୁକ୍ତ, (ବି) ବୋଦାଆଦି ହଣା ପଶୁର ମୁଣ୍ଡ ।

ମୁଣ୍ଡିଆଳ—ପ୍ରା. (କଟକ)ବି. ଗ୍ରାମସର୍ଦ୍ଦାର, ଶ୍ରେଷ୍ଠବ୍ୟକ୍ତି, ନେତା ।

ମୁଣ୍ଡିକା—ଗ୍ରା.ବି. ( ମୁଣ୍ଡିତିକା ) ବଟୁଆ ଗୁଣ୍ଡଶାଗ, ମୋଡ଼ା ଫଳ ।

ମୁଣ୍ଡିକାକୁଡ଼—ଗ୍ରା.ବି. ଏକଜାତୀୟ କ୍ଷୁଦ୍ର କାକୁଡ଼ ।

ମୁଣ୍ଡିକାଠ—ଗ୍ରା.ବି. ମୂଳରୁ ଛେଦିତ ବଡ଼ ଗଛର ଶାଖାଶୂନ୍ୟ ଗଣ୍ଡି ।

ମୁଣ୍ଡିତ—ବିଂ. (ମୁଣ୍ଡ+ର୍ମି.ତ) ଯାହାର ମସ୍ତକ ମୁଣ୍ଡନ ହୋଇଅଛି, କ୍ଷୌର ହୋଇଥିବା, (କ୍ଲୀ.ବି) ଲୌହ ।

ମୁଣ୍ଡିତକେଶ—ପୁଂ. ବିଂ.(ବି.ସ୍ତ୍ରୀ) ଲଣ୍ଡାମୁଣ୍ଡିଆ, ଲଣ୍ଡାମୁଣ୍ଡା, ଟାଙ୍ଗରା ।

ମୁଣ୍ଡିତ(ର)କା—ସ୍ତ୍ରୀ. ବି. ମୁଣ୍ଡୀରି, ବଡ଼ ଥାଲକୁଣୀଗଛ, ମୁଣ୍ଡିକା ଦେଖ ।

ମୁଣ୍ଡିନୀ—ସ୍ତ୍ରୀ.ବି. ( ମୁଣ୍ଡ+ଇନ୍+ଈ ) କସ୍ତୂରୀ ମୃଗ ।

ମୁଣ୍ଡିବା—ଗ୍ରା. କ୍ରି. ଗଛର ଉପରଭାଗରୁ ଶାଖାପ୍ରଶାଖା କାଟିବା, ତାଳ ଗଛରୁ ଡାଳ ହାଣିବା, ଅଗରୁ କର୍ତ୍ତନ କରିବା, କ୍ଷୌର କରିବା ।

ମୁଣ୍ଡି ମାରିବା—ଗ୍ରା. କ୍ରି. ଦେଉଳଆଦିର କାର୍ଯ୍ୟ ଶେଷ କରିବା, ମୁଦିବା ।

ମୁଣ୍ଡୀ—ପୁଂ.ବି. (ମୁଣ୍ଡ+ଇନ୍) ନାପିତ, ଭଣ୍ଡାର, ମହାଦେବ, ମୁଣ୍ଡିକା ଦେଖ, ଯୋଗାଗ୍ରସଂଯ୍ୟବିଶେଷ, (ବିଂ)ସମ୍ପାଦିତ-କେଶଚ୍ଛେଦନ, ମୁଣ୍ଡିତ କେଶ, (ଗ୍ରା.ସ୍ତ୍ରୀ.ବିଂ) ମୁଣ୍ଡଯୁକ୍ତା, (ଯଥା-ଉକୁଣୀ-ମୁଣ୍ଡୀ ଇତ୍ୟାଦି) ।

ମୁଣ୍ଡୀରିକା—ସ୍ତ୍ରୀ.ବି. (ମୁଣ୍ଡି+ଈର+ଈ+କ.ଅ+ଆ) ମୁଣ୍ଡିତିକା ଦେଖ

ମୁଣ୍ଡୀବୃକ୍ଷାନୁକାରକ—ପୁଂ.ବି. ମୁଚୁକୁନ୍ଦ ବୃକ୍ଷ ।

ମୁଣ୍ଡୁଳା(ଳ)-ଗ୍ରା.ବି. (ସଂ-ମଣ୍ଡଳ) ମଣ୍ଡଳାକାର ରେଖା, ବୃତ୍ତ, ମଣ୍ଡଳାକାର ଚିହ୍ନ ।

ମୁଣ୍ଡେଶ୍ୱରତୀର୍ଥ—କ୍ଲୀ.ବି. ତୀର୍ଥବିଶେଷ, ଦକ୍ଷିଣ ମୁଣ୍ଡୀଶ୍ୱର ତୀର୍ଥ । [ ରହିତ ।

ମୁଣ୍ଡୁ—ଗ୍ରା.ବିଂ. ମୁଣ୍ଡା, ଦନ୍ତୁରା, ଦାଢ଼-

ମୁଣ୍ଡୁଆ—ପ୍ରା. (ବାଲେ) ବି. ଗଣ୍ଠିଯୁକ୍ତ କାଠର ଗଡ଼ ବା ଖଣ୍ଡ ।

ମୁଣ୍ଡୁହୁଁ—ଗ୍ରା.କ୍ରି.ବିଂ. ମୁଣ୍ଡୁହୁଁ ଦେଖ ।

ମୁତ୍—ସ୍ତ୍ରୀ.ବି. ବୃଦ୍ଧ୍ୟୌଷଧି (ମୁଦ୍+କ୍ୱିପ୍) ମୁଦ୍, ହର୍ଷ ।

ମୁତ୍ଫରକା—ଯା.ବିଂ. ବିବିଧ, ନାନାଜାତୀୟ ବସ୍ତୁ ମିଶ୍ରିତ, ଅନାବଶ୍ୟକ, ବାଜେ, ବିଭକ୍ତ, ବିକ୍ଷିପ୍ତ ।

ମୁତ୍ସୁଦ୍ଦି—ଯା.ବି. ଆୟବ୍ୟୟାଦିର ହିସାବକାରୀ ଲେଖକ, କାର୍ଯ୍ୟାଳୟର ତତ୍ତ୍ୱାବଧାୟକ । [ତ୍ୟାଗ ।

ମୁତ—ଗ୍ରା.ବି. (ସଂ-ମୂତ୍ର) ପ୍ରସ୍ରାବ, ମୂତ୍ର-

ମୁତଇନ୍—ଯା. ବିଂ. ନିଯୁକ୍ତ, ସ୍ଥାୟୀଭାବରେ ନିଯୁକ୍ତ । [କାରୀ ।

ମୁତରଜମ୍—ଯା.ବି. ଅନୁବାଦକ, ତର୍ଜମା-

ମୁତା—ଗ୍ରା. ବି. ମୂତ୍ରତ୍ୟାଗ, ( ଯା.ବି ) ମୁସଲମାନମାନଙ୍କ ପ୍ରଚଳିତ କିଛିକାଳ ସ୍ଥାୟୀ ବିବାହ, (ପ୍ରା.ଗଞ୍ଜା.ବି) ଲୋଟା, ସ୍ନାନପାତ୍ର ।

ମୁତାଇବା—ଗ୍ରା କ୍ରି. ପ୍ରହାରାଦିର ଭୟ ଦେଖାଇବା ଦ୍ୱାରା ମୂତ୍ରୋତ୍ସର୍ଗ କରାଇବା

ମୁତାଲିକ—ଯା. ବିଂ. ସଂଶ୍ଳିଷ୍ଟ, ସଂଯୁକ୍ତ, ଅଂଶୀଦାର ।

ମୁତାଲୁକେ—ଯା.(ଅବ୍ୟ ଓ ବିଂ) ଇଲାକାଭୁକ୍ତ, ଅଧୀନ, ସମ୍ବନ୍ଧୀୟ, ଅନ୍ତର୍ଗତ ।

ମୁତାବକ୍—ଯା. କ୍ରି. ବିଂ. ଅନୁସାରେ ।

ମୁତାହ୍ମା—ଯା. ସ୍ତ୍ରୀ. ବି ଓ ବିଂ. (ମୁସଲମାନମାନଙ୍କ ପକ୍ଷରେ) ମୁତାବିବାହ-ରୀତିରେ ଅସ୍ଥାୟୀଭାବରେ ରକ୍ଷିତା ସ୍ତ୍ରୀ ।

ମୁତ୍ରପକାଇବା—ଗ୍ରା. କ୍ରି. ବି. ଭୟ ବା ପ୍ରହାରାଦିହେତୁ ଅନିଚ୍ଛା ସତ୍ତ୍ୱେ ମୂତ୍ରତ୍ୟାଗ

କରିବା, ମୁତିବା ଦେଖ ।
ମୁତିବା—ଗ୍ରା. କ୍ରି. ମୂତ୍ରୋତ୍ସର୍ଗ କରିବା, ପ୍ରସ୍ରାବ କରିବା ।
ମୁତିଯିବା—ଗ୍ରା.କ୍ରି. ପ୍ରସ୍ରାବ କରିବାପାଇଁ ବାହାରକୁ ଯିବା ।
ମୁତୁରା—ଗ୍ରା. ପୁଂ. ବିଂ. ଯେ ଅତ୍ୟଧିକ ପ୍ରସ୍ରାବ କରେ, ମୂତ୍ରରୋଗଗ୍ରସ୍ତ, (ସ୍ତ୍ରୀ) ମୁତୁରୀ ।
ମୁତୁରି—ଗ୍ରା.ସ୍ତ୍ରୀ.ବି. ଏକପ୍ରକାର କଣ୍ଟକୀ ଲତା, (ଏହା ଦାନ୍ତକାଠି ରୂପେ ବ୍ୟବହୃତ ହୁଏ) ।
ମୁତୋଫା(ଫେ)—ଗ୍ରା. ପୁଂ. ବିଂ. ମୃତ, ପରଲୋକଗତ ।
ମୁତୋଲି—ଯା. ବି.ସମଜିଦ୍ ଆଦି ସାଧାରଣ ସମ୍ପତ୍ତିର ମାରଫତ୍‌ଦାର୍, ନାବାଳଗ ଓ ତାହାର ସମ୍ପତ୍ତିର ଅଭିଭାବକ
ମୁତ୍ୟ—କ୍ଲୀ. ବି. ମୁକ୍ତାରତ୍ନ ।
ମୁଥ—ଗ୍ରା. ବି.(ସଂ-ମୁଷ୍ଟି)ଆଘାତୋଦ୍ୟତ ଆବଦ୍ଧମୁଷ୍ଟି,ମୁଷ୍ଟିବଦ୍ଧ କରତଳ ଦ୍ୱାରା ଗାଲରେ ବା ମୁହଁରେ ଆଘାତ, ଥର, ବାର ।
ମୁଥକୁମୁଥ—ଗ୍ରା. କ୍ରି. ବିଂ. ଥରକୁଥର, ଅନେକଥର, ବାରମ୍ବାର ।
ମୁଥଶିଳ—ବି. ଫଳିତ ଜ୍ୟୋତିଷୋକ୍ତ ତୃତୀୟଯୋଗଭେଦ ।
ମୁଥା—ଗ୍ରା.ବି.(ସଂ-ମୁସ୍ତା) ମୁସ୍ତକ, ଏକପ୍ରକାର ଘାସ, ଉକ୍ତ ଘାସର ଗୋଲକ କନ୍ଦ ।
ମୁଦ୍—ସ୍ତ୍ରୀ. ବି. ( ମୁଦ୍+ଭା.କ୍ୱିପ୍ ) ହର୍ଷ, ସନ୍ତୋଷ, ଆନନ୍ଦ, ସୁଖ, ନିଶା ଦ୍ୱାରା ଉନ୍ମତ୍ତତା, (କ.କ୍ୱିପ୍) ସ୍ତ୍ରୀ, ଭାର୍ଯ୍ୟା ।
ମୁଦ—ଗ୍ରା. ବି. ଆନନ୍ଦ, ଚିଠିଆଦି ବନ୍ଦ କରି ତାହା ଉପରେ ଦିଆଯିବା ମୋହର ବା ଛାପ, ମୁଦ୍ରିତ କରିବା, ମୋହର ମରାଯାଇ ବନ୍ଦ ହୋଇଥିବା ଚିଠି ।
ମୁଦକର—ବି. ଜନପଦବିଶେଷ ଓ ତଦ୍ଦେଶବାସୀ,(ଗ୍ରା.ବିଂ) ଆନନ୍ଦଦାୟକ
ମୁଦ(ଦ)ତ୍—ଯା. ବି. କୌଣସି କାର୍ଯ୍ୟ କରିବା ବ୍ୟକ୍ତିକୁ ଦିଆଯିବା ସାହାଯ୍ୟ, ସାହାଯ୍ୟ କରିବା ପାଇଁ କୌଣସି ବ୍ୟକ୍ତିକୁ ପ୍ରେରଣ କରିବା,ମିଆଦ,ସମୟ, ସମୟର ସୀମା ।
ମୁଦତ୍‌କାର—ଯା. ବିଂ. ସାହାଯ୍ୟକାରୀ ।
ମୁଦତି(ତୀ)—ଯା. ବିଂ. ନିର୍ଦ୍ଦିଷ୍ଟକାଳୀନ, ଯହିଁପାଇଁ କୌଣସି ସମୟ ନିର୍ଦ୍ଦିଷ୍ଟ ହୋଇଅଛି, ଯାହାର ନିର୍ଦ୍ଦିଷ୍ଟକାଳ ଗତ ହୋଇଅଛି, ସ୍ଥାୟୀ ଭାବରେ ନିଯୁକ୍ତ ହୋଇଥିବା ।
ମୁଦିଦେବା(ମାରିବା)—ଗ୍ରା.କ୍ରି. ଚିଠି ବା ଦ୍ୱାର ବା ବାକ୍ସ ଆଦି ବନ୍ଦକରି ତହିଁ ଉପରେ ମୋହର ମାରିବା ।
ମୁଦା—ସ୍ତ୍ରୀ.ବି. (ମୁଦ+ଭା.କ୍ୱିପ୍+ଆ)ହର୍ଷ, ପ୍ରୀତି, (ଗ୍ରା.ବି. ସଂ-ମୁଦ୍ରଣ) ମୋହର-ମାରିବା,ଗୁଳା,ଗୋଲକ, ଢିବା,କଗଟ, ମୁଦିବା କର୍ମ, ହାତ ମୁଠାରେ ଲୁଗାଇ ରଖିଥିବା ପଦାର୍ଥ, ଯାହା ସମ୍ବନ୍ଧରେ କାଳିସୀ ଲାଗିଥିବା ବ୍ୟକ୍ତିକୁ ବା ସର୍ବଙ୍କୁ ପରୀକ୍ଷା କରିବା ପାଇଁ ପ୍ରଶ୍ନକରନ୍ତି, (ଗ୍ରା.ବିଂ)ମୁଦ୍ରିତ, ଗୋଲ, ଚୋରଠାରୁ ଚୋରି ମାଲ ଓ ଆନୁସଙ୍ଗିକ ପ୍ରମାଣର ସାବ୍ୟସ୍ତ ।
ମୁଦାଧରିବା—ଗ୍ରା.କ୍ରି. ଠାକୁରାଣୀ ଲାଗିଥିବା ବ୍ୟକ୍ତିକୁ ବାଛିବା ପାଇଁ ମୁଠାରେ କିଛି ଜିନିଷ ଧରି କଅଣ ଅଛି ବୋଲି ତାକୁ ପଚାରିବା, ଚୋରି ଜିନିଷଆଦିର ସାବ୍ୟସ୍ତକରିବା ।
ମୁଦାମ(ମ)—ଯା.ବିଂ.ସ୍ଥାୟୀ,ସର୍ବକାଳିକ, ନିରବଚ୍ଛିନ୍ନ,ନିରନ୍ତର,ଚିରକାଳ ନିମନ୍ତେ ସ୍ଥିରୀକୃତ, (ଯା,ଅବ୍ୟ) ସର୍ବଦା, ନିରବଚ୍ଛିନ୍ନ ଭାବରେ, ଲଗେଲଗେ,ସ୍ଥାୟୀଭାବରେ ।
ମୁଦାରା—ଗ୍ରା. ବି. (ସଂ-ମନ୍ଦ୍ର) (ସଙ୍ଗୀତ) ଗମ୍ଭୀର ଧ୍ୱନି ବା ସ୍ୱରବିଶେଷ, ତାରସ୍ୱର ଓ କ୍ଷୀଣ ସ୍ୱରର ମଧ୍ୟସ୍ଥ ଧ୍ୱନି ।
ମୁଦାଲି—ଯା.ପୁଂ.ବି.ଫୌଜଦାରୀ ମକଦ୍ଦମାରେ ଆସାମୀ, ଦେଓ୍ୱାନି ମକଦ୍ଦମାରେ ପ୍ରତିବାଦୀ । [ ପୁନି ।
ମୁଦାବସୁ—ପୁଂ.ବି. ପ୍ରଜାପତିଙ୍କର ଏକ-
ମୁଦାବାନ୍—ପୁଂ. ବିଂ. ( ମୁଦା+ବତ୍ ) ହର୍ଷଯୁକ୍ତ, ହୃଷ୍ଟ, ଆନନ୍ଦିତ ।
ମୁଦି—ଗ୍ରା.ବି.(ସଂ-ମୁଦ୍ରିକା) ଅଙ୍ଗୁରୀୟକ, ହାତ ବା ଗୋଡ଼ ଆଙ୍ଗୁଠିରେ ପିନ୍ଧାଯିବା ଧାତୁଆଦିର ଗୋଲାକାର ବଳୟ, ଗୁଡ଼ଲ ଡାଲିଆଦି ଦୈନନ୍ଦିନ ବ୍ୟବହାର୍ଯ୍ୟ ପଦାର୍ଥର ଖୁଚୁରା ବିକ୍ରୟକାରୀ ଦୋକାନୀ । [ ଧାତୁବଳୟ ।
ମୁଦିଆ—ଗ୍ରା. ବି. ମୁଦିପରି ଗୋଲାକାର
ମୁଦିତ—ପୁଂ. ବିଂ. (ମୁଦ+କ.ତ) ବା (ମୁଦ+ଇତ)ସନ୍ତୁଷ୍ଟ, ଆନନ୍ଦିତ,ହୃଷ୍ଟ, (ବି) ଆଲିଙ୍ଗନବିଶେଷ, (ସ୍ତ୍ରୀ)ମୁଦିତା ।
ମୁଦିତା—ସ୍ତ୍ରୀ.ବି. (ମୁଦ୍+ଇ+ତ+ଆ) ମୁଦା, ହର୍ଷ,ଆନନ୍ଦ,ପରକୀୟା ନାୟିକାବିଶେଷ, (ବିଂ) ମୁଦିତର ସ୍ତ୍ରୀଲିଙ୍ଗ ।
ମୁଦିବା—ଗ୍ରା.କ୍ରି.ମୁଦ୍ରିତକରିବା,ଘୋଡ଼ାଇବା,ଆବୃତକରିବା,ଆବରଣ ମଧ୍ୟରେ ରଖିବା, ଛିଦ୍ରବୁଜିବା,ତୋଷିବା, ବନ୍ଧକରିବା, ବନ୍ଦକରିବା ।
ମୁଦିର—ବି.(ମୁଦ+ଇର)ମେଘ, ଭେକ, (ପୁଂ.ବିଂ)କାମୁକ, ଲମ୍ପଟ,(ସ୍ତ୍ରୀ)ମୁଦିରା ।
ମୁଦିରଥ—ଗ୍ରା. ବି. ପୁରୀ ଜଗନ୍ନାଥଙ୍କର ସେବକବିଶେଷ (ଏମାନେ ନୂଆ କଳେବର ବେଳେ ପୁରାତନ ମୂର୍ତ୍ତିରୁ ବ୍ରହ୍ମ ପଦାର୍ଥକୁ ଆଣି ନୂତନ ପ୍ରତିମୂର୍ତ୍ତିରେ ସ୍ଥାପନକରନ୍ତି ଓ ପୁରୀ ରାଜାଙ୍କର ପ୍ରତିନିଧିରୂପେ କେତେକ ସେବା କରନ୍ତି)
ମୁଦୀ—ସ୍ତ୍ରୀ.ବି(ମୁଦ୍+ଅ+ଈ)କୌମୁଦୀ, ଚନ୍ଦ୍ରକିରଣ ।
ମୁଦୁଲି—ଗ୍ରା. ବି. କୁମ୍ଭାରମାନଙ୍କ ବଂଶଗତ ଉପାଧିବିଶେଷ, କେତେକ ଶୂଦ୍ରଙ୍କର ଉପାଧି, ଜଗନ୍ନାଥ ମନ୍ଦିରର ସେବକବିଶେଷ ।
ମୁଦୁସୁଲି—ଗ୍ରା.ସ୍ତ୍ରୀ. ବି. (ସଂ-ମୃଦୁଶୀଳା) ଅନ୍ତଃପୁରସ୍ଥା,ଦାସୀ,ପୋଇଲି, ଧାଈ ।
ମୁଦେ(ଦେ)ଇ—ଯା. ବି. ଶତ୍ରୁ, ମକଦ୍ଦମାରେ ଫେରିଆଦି,ବିଚାରାର୍ଥୀ, (ଯା. ବିଂ) ବିପକ୍ଷ, ପ୍ରତିକୂଳ, (ପ୍ରା.ଗଞ୍ଜା.ବି) ମୁଦାଲି ।

ମୁଦ୍ଗ—ବି. (ମୁଦ୍+କ.ଗ) ପକ୍ଷିବିଶେଷ, ପାଣିକୁଆ, ମୁଗ ନାମକ ଶସ୍ୟ ।
ମୁଦ୍ଗଗିରି—ବି. ମୁଙ୍ଗେର ।
ମୁଦ୍ଗଦଳା—ସ୍ତ୍ରୀ.ବି.ମୁଦ୍ଗପର୍ଣ୍ଣୀ,ବଣମୁଗ ।
ମୁଦ୍ଗପର୍ଣ୍ଣୀ—ସ୍ତ୍ରୀ.ବି. ବନମୁଦ୍ଗ, ବଣମୁଗ, ମୁଗାନି, ଘୋଡ଼ାମୁଗ ।
ମୁଦ୍ଗଭୁକ୍—ବି (ମୁଦ୍ଗ+ଭୁଜ୍+କ.କ୍ୱିପ୍) ଘୋଟକ, ଘୋଡ଼ା ।
ମୁଦ୍ଗଭୋଜୀ--ପୁଂ. ବି. (ମୁଦ୍ଗ+ଭୁଜ୍+ଇନ୍) ଅଶ୍ୱ, ଘୋଡ଼ା ।
ମୁଦ୍ଗମାଷ—ବି. (ଦ୍ୱନ୍ଦ୍ୱ)ମୁଗ ଓ ବିରି ।
ମୁଦ୍ଗମୋଦକ—ବି. ମୁଗରେ ତିଆରି ଲଡ୍ଡୁ, ମୁଗମଣ୍ଡା, ମୁଗମିଠେଇ,ମିଷ୍ଟାନ୍ନ ।
ମୁଦ୍ଗର—କ୍ଲୀ. ବି. (ମୁଦ୍+ଗୃ+କ.ଅ) ମଲ୍ଲିକାଭେଦ, ମୁଗୁରମଲ୍ଲୀ, (ପୁଂ)ସପ୍ତପର୍ଣ୍ଣବୃକ୍ଷ, ମାଗୁରମାଛ, ଗଦାପରି ଯୁଦ୍ଧାସ୍ତ୍ରବିଶେଷ, କାଠର ବଡ଼ ହାତୁଡ଼ି, ମୁଗର, ଚେଲା ପିଟା କାଠର ପିଟଣା. ସୁଗନ୍ଧରାଜ ଫୁଲଗଛ, କମାର, କରମଙ୍ଗା ଗଛ ।
ମୁଦ୍‌ଗରକ—ପୁଂ. ବି. (ମୁଦ୍‌ଗର+କ) କରମଙ୍ଗାଗଛ ଓ ଫଳ ।
ମୁଦ୍‌ଗରପର୍ଣ୍ଣକ—ପୁଂ.ବି.ନାଗବିଶେଷ ।
ମୁଦ୍‌ଗରପିଣ୍ଡକ—ପୁଂ.ବି.ନାଗବିଶେଷ ।
ମୁଦ୍‌ଗଲ—ବି. (ମୁଦ୍‌ଗ+ଲା+ଅ) ରୋହିଷତୃଣ,ଗନ୍ଧରାଜଫୁଲଗଛ,ଗୋତ୍ରପ୍ରବର୍ତ୍ତକ ମୁନିବିଶେଷ, ହର୍ଯ୍ୟଶ୍ୱରାଜାଙ୍କ ପୁତ୍ର, ଉପନିଷଦ୍‌ଭେଦ ।
ମୁଦ୍‌ଗଲଡ୍ଡୁକ—ବି. (କ.ଧା) ମୁଦ୍‌ଗମୋଦକ ଦେଖ ।
ମୁଦ୍‌ଗବଟକ.ବି—ମୁଗରେ ତିଆରି ଏକପ୍ରକାର ପିଠା, ମୁଗବଡ଼ା (ଗ୍ରା) ।
ମୁଦ୍‌ଗବଟୀ—ବି. ମୁଗବଡ଼ି ଦେଖ ।
ମୁଦ୍‌ଗଷ୍ଟ—ବି. ବଣମୁଗ, ମୁଗାନି ।
ମୁଦ୍‌ଗଷ୍ଟକ--ବି.ବଣମୁଗ, ମୁଦ୍‌ଗପର୍ଣ୍ଣୀ ।
ମୁଦ୍‌ଗାର୍ଦ୍ରବଟକ—ବି. ମୁଗ ଓ ଅଦାମିଶ୍ରଣରେ ତିଆରି ଏକପ୍ରକାର ବଡ଼ା ।
ମୁଦ୍‌ଗାନ୍ନ—ବି. (ମୁଦ୍‌ଗ+ଅନ୍ନ) ମୁଗଡାଲି ପକାଇ କରାଯିବା ଖେଚୁଡ଼ି ।
ମୁଦ୍‌ଗାମଲକଯୂଷ—ବି.(ବୈଦ୍ୟକ)ମୁଗଡାଲି ଓ ଅଁଳାକୋଳି ଏକତ୍ର ପାକ କରାଯାଇ ପ୍ରସ୍ତୁତ ଝୋଳ ।
ମୁଦ୍ଧଫରାସ--ଯା.ବି.ଯେଉଁମାନେ କୁଟୁମ୍ବସ୍ୱାନ ବ୍ୟକ୍ତିର ଶବ ବହନ ଓ ଦହନ କରନ୍ତି, ଢୋଲକମାଡ଼ିଆ ।
ମୁଦ୍ଧା—ଯା. ବି. ଇଚ୍ଛା, ଅଭିପ୍ରାୟ ।
ମୁଦ୍ର—କ୍ଲୀ. ବି. ମୁଦ୍ରା ।
ମୁଦ୍ରଣ—କ୍ଲୀ. ବି. (ମୁଦ୍ର+ଭା.ଅନ) ପୁସ୍ତକାଦି ମୁଦ୍ରିତକରଣ, ଛାପିବା, ମୋହରମାରିବା, ମୁଦ୍ରାଙ୍କନ, ଅକ୍ଷର ନିବଦ୍ଧକରଣ, ବୁଜିବା, ନିମୀଳନ,(ଣି. ଅନ) ହାତର ମୁଦି, ନିୟମନ, ଗ୍ରନ୍ଥ ଦ୍ୱାରା ମୁଦ୍ରା ବା ସିଲ୍ ତିଆରିକରିବା ।
ମୁଦ୍ରଣପ୍ରମାଦ—ବି.ମୁଦ୍ରିତ ପୁସ୍ତକାଦିରେ ପରିଲକ୍ଷିତ ଭ୍ରମ ।
ମୁଦ୍ରଣା—ସ୍ତ୍ରୀ.ବି. ମୁଦ୍ରିତକରଣ,ମୁଦ୍ରାଙ୍କନ, ନିୟମନ, ଅଙ୍ଗୁଳିମୁଦ୍ରା, ମୁଦି ।
ମୁଦ୍ର(ଦ୍ରି)ଣୀ—ସ୍ତ୍ରୀ. ବି. ଲକ୍ଷା, ଅଲତା ।
ମୁଦ୍ରହସ୍ତ—ଗ୍ରା. ବି. ପ୍ରାଚୀନ ଉତ୍କଳର ରାଜୋପାଧିବିଶେଷ ।
ମୁଦ୍ରା—ସ୍ତ୍ରୀ. ବି. (ମୁଦ୍+ର+ଆ) ପ୍ରତ୍ୟୟକାରିଣୀ, ମୋହର, ସିଲ୍,ଛାପ, ମୁଦ୍ରିକା,ନାମାଙ୍କିତ ମୁଦି, ନଗଦଧନ, ଖୋଦିତ ଲିପି, ପଞ୍ଚପ୍ରକାର ଲିପିର ଅନ୍ତର୍ଗତ ଲିପିବିଶେଷ, ପଞ୍ଚମକାରର ଅନ୍ତର୍ଗତ ଭୃଷ୍ଟଦ୍ରବ୍ୟବିଶେଷ,ଶରୀରରେ ଧାରଣୀୟ ଭଗବାନଙ୍କର ଆୟୁଧାଦି ଚିହ୍ନ,ଦେବତାବିଶେଷଙ୍କର ପ୍ରୀତିଜନକ ଅଙ୍ଗୁଳିରଚନା ବା ଭଙ୍ଗିବିଶେଷ (ଆବାହନାଦି), ରାଜକୀୟ ଚିହ୍ନାଙ୍କିତ ନିର୍ଦ୍ଦିଷ୍ଟ ଭାର ଓ ମୂଲ୍ୟବିଶିଷ୍ଟ ସ୍ୱର୍ଣ୍ଣରୌପ୍ୟାଦି ନିର୍ମିତ ଧାତୁଖଣ୍ଡ ବା ଚକତି, ଟଙ୍କା ପଇସା ଇତ୍ୟାଦି, ମୁଦ୍ରିତ ଅକ୍ଷର, ମଦ୍ୟପାନ କାଳରେ ବ୍ୟବହୃତ ଗୁଟି, ତୁଷ୍ଣୀଭାବ, ମୌନାବସ୍ଥା, ବିନ୍ୟାସ, ନିୟମନ, ହସ୍ତାଦି ଅବୟବର ଭଙ୍ଗି, ଚେହେରାର ଢଙ୍ଗ,ଅଗସ୍ତ୍ୟପତ୍ନୀ ଲୋପାମୁଦ୍ରା, ଆଲିଙ୍ଗନ, ସୀମା ।
ମୁଦ୍ରାକର—ପୁଂ. ବିଂ. ଯେ ମୁଦ୍ରା ବା ଟଙ୍କା ପଇସାଦି ପ୍ରସ୍ତୁତ କରେ, ଛାପାଖାନାରେ ଯେ ପୁସ୍ତକାଦି ଛାପାକରେ ।
ମୁଦ୍ରାକରପ୍ରମାଦ—ବି. ବହି ଛାପିବା ବ୍ୟକ୍ତି ଭୁଲକରି ଗ୍ରନ୍ଥକାରଙ୍କ ଲିଖିତ ଅକ୍ଷର ପରିବର୍ତ୍ତେ ଛାପି ଥିବା ଅନ୍ୟ ଅକ୍ଷର । [ ଅକ୍ଷର ।
ମୁଦ୍ରାକ୍ଷର—କ୍ଲୀ.ବି. ମୁଦ୍ରଣୋପଯୋଗୀ
ମୁଦ୍ରାଙ୍କ—ବି. ମୁଦ୍ରାଚିହ୍ନ, ମୁଦ୍ରା ବା ମୋହରର ଉପରେ ଚିହ୍ନ ।
ମୁଦ୍ରାଙ୍କନ—କ୍ଲୀ. ବି. (୬ତତ୍ପୁ) ମୁଦ୍ରିତକରଣ, ଛାପିବା, ମୋହର ମାରିବା ।
ମୁଦ୍ରାଙ୍କିତ—ବିଂ. (ମୁଦ୍ରା+ଅଙ୍କିତ) ୩ତତ୍ପୁ; ମୁଦ୍ରିତ, ଛାପାହୋଇଥିବା ।
ମୁଦ୍ରାତତ୍ତ୍ୱ(ବିଜ୍ଞାନ)—ବି. ମୁଦ୍ରାସମ୍ବନ୍ଧୀୟ ଯାବତୀୟ ପ୍ରକୃତତତ୍ତ୍ୱର ନାମ ।
ମୁଦ୍ରାଦୋଷ—ବି. (କ.ଧା) କୌଣସି କୌଣସି ବ୍ୟକ୍ତିଙ୍କର କଥା କହିବା ବେଳେ ଅତ୍ୟନ୍ତ ବିଶିଷ୍ଟ ବାଗ୍‌ଭଙ୍ଗି ବା ଅଙ୍ଗଭଙ୍ଗି ଆଦି ।
ମୁଦ୍ରାମାର୍ଗ—ବି. ବ୍ରହ୍ମରନ୍ଧ୍ର, ମସ୍ତକର ଯେଉଁ ସ୍ଥାନଦେଇ ପ୍ରାଣବାୟୁ ବହିର୍ଗତ ହୁଏ ।
ମୁଦ୍ରାଯନ୍ତ୍ର—ବି. କାଷ୍ଠାଦି କଠିନ ପଦାର୍ଥୋପରି ଅଙ୍କିତ ଚିହ୍ନ ବା ଲିପିମାଳାର ପ୍ରତିଲିପି ଗ୍ରହଣୋପଯୋଗୀ ଯନ୍ତ୍ରବିଶେଷ, ଛାପାକଳ । [ ଶାଳା ।
ମୁଦ୍ରାଯନ୍ତ୍ରାଳୟ—ବି. ଛାପାଖାନା, ଟାଙ୍କ-
ମୁଦ୍ରାରକ୍ଷକ—ବି. (ମୁଦ୍ରା+ରକ୍ଷକ) କୋଷାଧ୍ୟକ୍ଷ, ଖଜାଞ୍ଚି ।
ମୁଦ୍ରାଲିପି—ବି. (୬ତତ୍ପୁ) ପଞ୍ଚଧାଲିପିର ଅନ୍ତର୍ଗତ ଲିପିବିଶେଷ, ଛାପାଅକ୍ଷର, ଧାତୁନିର୍ମିତ ଅକ୍ଷରର ଗୁଚ୍ଛ ।
ମୁଦ୍ରାଶଙ୍ଖ—ବି. ମୁର୍ଦ୍ଦାରଶଙ୍ଖ, ଖନିଜ ବିଷବିଶେଷ, ସୀସକଭସ୍ମ ।
ମୁଦ୍ରାହାର—ବି. ଆଲିଙ୍ଗନରୂପ ହାର ।
ମୁଦ୍ରିକା—ସ୍ତ୍ରୀ. ବି. (ମୁଦ୍ରା+କ+ଆ) ସ୍ୱର୍ଣ୍ଣରୌପ୍ୟାଦି ନିର୍ମିତ ମୁଦ୍ରା, ମୁଦି,

ମୋହର, ନାମାଙ୍କିତ ମୁଦ୍ର, ଛାପା-ଅକ୍ଷର ।

**ମୁଦ୍ରଣୀ**—ସ୍ତ୍ରୀ. ବ. ଲକ୍ଷା, ଅଳତା ।

**ମୁଦ୍ରିତ**—ବିଂ. ( ମୁଦ୍ରା+ଇତ ) ଛାପୀ ହୋଇଥିବା, ମୁଦ୍ରାଚିହ୍ନଯୁକ୍ତ, ନିମୀଳିତ, ଅପ୍ରଫୁଲ୍ଲ, ପରିତ୍ୟକ୍ତ, ସଙ୍କୁଚିତ ।

**ମୁଧା**—ଅବ୍ୟ. ( ମୁହ୍+ଆ ) ବୃଥା, ନିଷ୍ଫଳ, ନିରର୍ଥକ ।

**ମୁନ୍‌ସଫ୍**—ଯା. ବ. ଇଂରେଜ ଶାସିତ ଜିଲ୍ଲାର ବା ମହକୁମାର ନିମ୍ନତମ ଦେବାନି ଅଦାଲତର ବିଚାରପତି ।

**ମୁନ୍‌ସି**—ଯା. ବ. ଲେଖକ, ରାଇଟର୍, ମୋହରର, କିରାନି ।

**ମୁନ**—ଗ୍ରା. ବ. (ସଂ-ମୁଖ) ଛୁଞ୍ଚିଆଦି ସରୁ ଅସ୍ତ୍ରର ଅଗ୍ରଭାଗ, ଲମ୍ବବସ୍ତୁର ସୂକ୍ଷ୍ମ ଅଗ୍ରଭାଗ, କୁଶାଗ୍ର ବା ବୁଦ୍ଧି, ତୀକ୍ଷ୍ଣବୁଦ୍ଧି, (ଗ୍ରା.ବିଂ) ତୀକ୍ଷ୍ଣାଗ୍ର, ମୁନିଆ ।

**ମୁନକା**—ଯା. ବ. ଶୁଖିଲା ଅଙ୍ଗୁରଫଳ ।

**ମୁନା**—ଗ୍ରା. ବ. ମୁନଯୁକ୍ତ ଅସ୍ତ୍ର, ତେଣ୍ଟା, ବର୍ଚ୍ଛା, (ଗ୍ରା.ବିଂ) ମୁନିଆ ।

**ମୁନା(ନେ)ଇବା**—ଗ୍ରା. କ୍ରି. ମୁନକରିବା ଦେଖ, (ମଞ୍ଜି) ଗଜୁରିବା ।

**ମୁନାକେରା**—ଯା. ବ. କଳହ, ବିବାଦ ।

**ମୁନାଫା**—ଯା ବ. ଲାଭ, ନଫା ।

**ମୁନାରା**—ପ୍ରା. (କଳାହାଣ୍ଡି) ବ. ଅଟକ ଜଙ୍ଗଲ ।

**ମୁନାବ**—ଯା. ବ. ଚୂଡ଼ାଯୁକ୍ତ ସ୍ତମ୍ଭ ।

**ମୁନାସୀବ୍**—ଯା.ବିଂ. ଉପଯୁକ୍ତ, ଯୋଗ୍ୟ, ସୁବିଧା, ପସନ୍ଦ, ଅବସ୍ଥାନୁରୂପ, ସୁବିଧାଜନକ ।

**ମୁନି**—ପୁଂ. ବ. (ମନ୍+ଇ) ମୌନବ୍ରତଧାରୀ ବ୍ୟକ୍ତି, ତ୍ରିକାଳଜ୍ଞବ୍ୟକ୍ତି, ଋଷି, ପଣ୍ଡିତ, ଶାପାସ୍ତ୍ର, ସତ୍ୟବାକ୍, ତପସ୍ୱୀ, ଅଗସ୍ତିଗଛ, ଜୈନଗୁରୁ, ମହର୍ଷି ଅଗସ୍ତ୍ୟ, ସପ୍ତସଂଖ୍ୟା, ଭରତର୍ଷି, ପ୍ରିୟାଳବୃକ୍ଷ, ପଳାଶଗଛ, ଦମନକବୃକ୍ଷ, ଅଷ୍ଟବସୁଙ୍କ ଅନ୍ତର୍ଗତ ଅପନାମକ ବସୁଙ୍କ ପୁତ୍ର, କ୍ରୌଞ୍ଚଦ୍ୱୀପର ଦେଶବିଶେଷ, ଦ୍ୟୁତିମାନଙ୍କ ପୁତ୍ର, କୁରୁପୁତ୍ର, ଜନୈକ ଆଭିଧାନିକ, (ସ୍ତ୍ରୀ.ବ) ଦକ୍ଷକନ୍ୟାବିଶେଷ, (ବିଂ) ମନନଯୁକ୍ତ, ଜ୍ଞାନୀ, ଗମ୍ଭୀର ଚିନ୍ତାଶୀଳ, (ଗ୍ରା.ବ) ଚୁପ୍‌ରହିବା ଲୋକ, ଶିବପୂଜକ ଶୂଦ୍ରଜାତିବିଶେଷ, (ପ୍ରା. ସମ୍ବ. ବ) ମୁଣ୍ଡି ।

**ମୁନିଆ(ଁ)**—ଗ୍ରା.ବିଂ. ଗୋଜିଆ, ସୂକ୍ଷ୍ମାଗ୍ରବିଶିଷ୍ଟ, ମୁନଯୁକ୍ତ, (ଗ୍ରା.ବ) ତେଣ୍ଟା, ଭୂମିହୁସ୍ତାନରକରଣ, ପକ୍ଷିବିଶେଷ ।

**ମୁନିକା**—ସ୍ତ୍ରୀ. ବ. ବ୍ରାହ୍ମୀକ୍ଷୁପ ।

**ମୁନିକେଶ**—ପୁଂ. ବିଂ.(ତ.ସ୍ତ୍ର) ମୁନିଙ୍କପର ଜଟାକଳାପଧାରୀ ।

**ମୁନିଖର୍ଜୁରିକା**—ସ୍ତ୍ରୀ.ବ.(କ.ଧା)ଖର୍ଜୁରିବିଶେଷ, ଭୂଇଁଖଜୁରି ।

**ମୁନିଗା**—ଗ୍ରା. ବ. ଧାନବିଲରେ ମନକୁ ଉଠିବା ଏକପ୍ରକାର ଘାସ, (ପ୍ରା. ସମ୍ବ. ବ) ସଜନା ।

**ମୁନିଗାଥା**—ସ୍ତ୍ରୀ. ବ. ପ୍ରାଚୀନ ମୁନିଗଣୋକ୍ତ ବାକ୍ୟାବଳୀ ।

**ମୁନିଛଦ**—ପୁଂ.ବ. ସପ୍ତଚ୍ଛଦ, ଛତିଆନା, ମେଥିକା, ମେଥୀ ।

**ମୁନିତରୁ**—ପୁଂ. ବ. (କ.ଧା) ବକବୃକ୍ଷ, ରକ୍ତବର୍ଣ୍ଣ ବକବୃକ୍ଷ ।

**ମୁନିଦ୍ରୁମ**—ପୁଂ.ବ. (କ.ଧା)ଶ୍ୟୋନାକ, ଫଣଫଣ'ଗଛ, ଅଗସ୍ତିଗଛ, ବକବୃକ୍ଷ ।

**ମୁନିଧର୍ମ**—ବ. ମୁନିମାନଙ୍କର ଆଚରିତ ଧର୍ମ, ମୌନବ୍ରତ ।

**ମୁନିଧାନ୍ୟ**—କ୍ଲୀ. ବ. ନୀବାରଧାନ୍ୟ, ବାଲୁଙ୍ଗାଧାନ ।

**ମୁନିନଗ**—ବ. ଅଗସ୍ତିଗଛ ।

**ମୁନିନଗର**—ବ. ଋଷିଆଶ୍ରମ ।

**ମୁନିନିର୍ମିତ**—ବ. ଡିଣ୍ଡିଶ ଫଳବୃକ୍ଷ, ଭେଣ୍ଡି ।

**ମୁନିନ୍ଧା**—ଗ୍ରା. ବ. ଶୁଆଁଜାତୀୟ ଏକପ୍ରକାର ଘାସ, କନଡ଼ାଘାସ ।

**ମୁନିପତ୍ର**—ପୁଂ. ବ. ଦମନକବୃକ୍ଷ ।

**ମୁନିପରମ୍ପରା**—ସ୍ତ୍ରୀ. ବ. ମୁନିସମୂହ ।

**ମୁନିପାଦପ**—ପୁଂ. ବ. ବକବୃକ୍ଷ, ଅଗସ୍ତିଗଛ ।

**ମୁନିପିତ୍ତଳ**—କ୍ଲୀ. ବ. ତାମ୍ର, ତମ୍ବା ।

**ମୁନିପୁଙ୍ଗବ**—ପୁଂ. ବ. ମୁନିଶ୍ରେଷ୍ଠ ।

**ମୁନିପୁତ୍ର**—ପୁଂ. ବ. ଦମନକବୃକ୍ଷ, ଋଷିପୁତ୍ର, ମୁନିତନୟ ।

**ମୁନିପୁତ୍ରକ**—ପୁଂ.ବ.(ମୁନି+ପୁତ୍ର+କ) ଖଞ୍ଜନପକ୍ଷୀ, କଜଳପାତି ଚଢ଼େଇ, ମୁନିପୁତ୍ର ଦେଖ ।

**ମୁନିପୁଷ୍ପ**—ବ. ବକପୁଷ୍ପ, ଅଗସ୍ତିଫୁଲ, (ବ.ବ୍ରୀ) ବକବୃକ୍ଷ, ଅଗସ୍ତିଗଛ ।

**ମୁନିପୂଗ**—ପୁଂ. ବ. ଗୁବାକବିଶେଷ, ରାମଗୁଆ ।

**ମୁନିପ୍ରିୟ**—ପୁଂ.ବ. ପକ୍ଷିରାଜଧାନ୍ୟ, ପିଣ୍ଡୀ ଖର୍ଜୁର ବୃକ୍ଷ, ପ୍ରିୟାଳବୃକ୍ଷ, (ସ୍ତ୍ରୀ) ମୁନିପ୍ରିୟା ।

**ମୁନିଭକ୍ତ**—ବ. ଦେବଧାନ୍ୟ, ନୀବାରଧାନ୍ୟ, ବାଲୁଙ୍ଗାଧାନ ।

**ମୁନିଭେଷଜ**—କ୍ଲୀ. ବ. (ଷତତ୍ର) ହରୀତକୀ, ହରଡ଼ା, ଅଗସ୍ତିପୁଷ୍ପ, ଉପବାସ, ଲଙ୍ଘନ ।

**ମୁନିଭୋଜନ**—ବ.(ଷତତ୍ର)ଦେବଧାନ୍ୟ, ନୀବାର, ବାଲୁଙ୍ଗାଧାନ ।

**ମୁନିବ**—ଯା. ବ. ପ୍ରଭୁ, ଶିକ୍ଷକ, ପ୍ରତିପାଳକ, ଖାମିନ୍ଦ, ପୃଷ୍ଠପୋଷକ ।

**ମୁନିବନ**—କ୍ଲୀ. ବ. (କ.ଧା) ମୁନିରକ୍ଷିତ ବନ, ଯେଉଁ ବନରେ ବହୁ ମୁନି ବାସ କରନ୍ତି ।

**ମୁନିବର**—ବ. (ଷତତ୍ର) ପୁଣ୍ଡ୍ରକବୃକ୍ଷ, ମୁନିଶ୍ରେଷ୍ଠ, ମହର୍ଷି, ( ଗ୍ରା.ବ ) ଓଡ଼ିଆ ଛାନ୍ଦର ବାଣୀବିଶେଷ ।

**ମୁନିବଲ୍ଲଭ**—ବ. ପ୍ରିୟାଳବୃକ୍ଷ ।

**ମୁନିବାରି**—ଗ୍ରା. ବିଂ. ମୁନିବ ସମ୍ବନ୍ଧୀୟ ।

**ମୁନିବୀ**—ଯା.ବ.ମୁନିବର କାର୍ଯ୍ୟ, ପ୍ରଭୁତ୍ୱ ।

**ମୁନିବାର୍ଯ୍ୟ**—ବ. ସ୍ୱର୍ଗୀୟ ବିଶ୍ୱଦେବଙ୍କର ଅନ୍ତର୍ଗତ ଦେବତାବିଶେଷ ।

**ମୁନିବୃକ୍ଷ**—ପୁଂ. ବ. ଅଗସ୍ତିଗଛ ।

**ମୁନିବ୍ରତ**—ପୁଂ.ବିଂ. ମୌନବ୍ରତାବଲମ୍ବୀ, (ସ୍ତ୍ରୀ) ମୁନିବ୍ରତା ।

**ମୁନିଶ**—ବ. ମୁନି ସମୂହ ।

**ମୁନିଶସ୍ତ୍ର**—କ୍ଲୀ. ବ. ଶ୍ୱେତଦର୍ଭ ।

**ମୁନିସ**—ପ୍ରା.(ମେଦ), ବ. ମୂଲିଆ ।

**ମୁନିସନ**—ବ. ଇଷ୍ଟିଭେଦ, ଯଜ୍ଞବିଶେଷ ।

ମୁନସୁତ—ପୁଂ.ବ.ଦମନକବୃକ୍ଷ,ମୁନିପୁତ୍ର ।
ମୁନସ୍ଥଳ—ବ. ଜନପଦ ବିଶେଷ ।
ମୁନିସ୍ଥାନ—ବ. (ତନ୍ତ୍ର) ଆଶ୍ରମ, ଋଷି-ଆଶ୍ରମ ।
ମୁନିଦ୍ରୁ—ଗ୍ରା. ବ. ଦୃଢ, ସ୍ଥିର ।
ମୁନିଦ୍ରୁମ—ବ. ସମସ୍ଥଳି କ୍ଷୁପ ।
ମୁନୀନ୍ଦ୍ର—ପୁଂ. ବ. (ତନ୍ତ୍ର) ଋଷିଶ୍ରେଷ୍ଠ, ବୁଦ୍ଧଦେବ, ନାଟକ ବିଶେଷ, ପାଷଣ୍ଡ-ମୁଖଚପେଟିକା ପ୍ରଣେତା କବି ।
ମୁନୀଶ—ପୁଂ.ବ.(ମୁନି+ଈଶ)ବାଲ୍ମୀକି, ବୁଦ୍ଧଦେବ, ମୁନିଶ୍ରେଷ୍ଠ । [ବୁଦ୍ଧ ।
ମୁନୀଶ୍ୱର—ପୁଂ. ବ. ମୁନିଶ୍ରେଷ୍ଠ, ବିଷ୍ଣୁ,
ମୁନୁ—ପ୍ରା. ସମ୍ବ. ବଂ.କନିଷ୍ଠ,କ୍ଷୁଦ୍ରତର ।
ମୁନୁଷ୍—ପ୍ରା.(ସମ୍ବ)ବ.ମନୁଷ୍ୟ, ମୁନିଆ ।
ମୁନ୍ନା—ଯା. ବ. ମୁସଲମାନସିହ୍ନା ସମ୍ପ୍ରଦାୟରେ ପ୍ରଚଳିତ କଣ୍ଠକାଳ ପାଇଁ ବିବାହ, (ପ୍ରା.ଗଞ୍ଜା.ବ)ସାନ ଛୁଆ ।
ମୁନ୍ନିହା—ସ୍ତ୍ରୀ. ବ. ମୁନ୍ନା ଦେଖ ।
ମୁନ୍ଥା—ସ୍ତ୍ରୀ. ବ. (ଜ୍ୟୋତିଷ) ବାମାବର୍ତ୍ତରେ ଗଣାଯାଉ ବର୍ଷଲଗ୍ନ ।
ମୁନ୍ଦା—ଗ୍ରା. ବ. (ଫ-ବନ୍ଦୁ)ସାମାନ୍ୟ ପରିମିତ ଜଳୀୟ ପଦାର୍ଥ । [(ଜଳାଦି) ।
ମୁନ୍ଦାଏ—ଗ୍ରା. ବଂ. ସାମାନ୍ୟ ପରିମିତ
ମୁନ୍ଦାକ—ଗ୍ରା. ବଂ. ମୁନ୍ଦାଏ ଦେଖ ।
ମୁନ୍ଦୁର—ଗ୍ରା. ବ. ତୃଣନିର୍ମିତ ଶଯ୍ୟା ବିଶେଷ, ହେଁସ ।
ମୁନ୍ନୀବେଗମ୍—ଗ୍ରା.ବ.ବଙ୍ଗଳାର ନବାବ ମୀରଜାଫରଖାଁଙ୍କ ଜନୈକ ମହିଷୀ ।
ମୁନ୍ୟନ୍ନ—କ୍ଲୀ. ବ. (ମୁନି+ଅନ୍ନ)ନୀବା-ଷାଦ, ବାଲୁଙ୍ଗାଧାନ ।
ମୁନ୍ସେଫ୍—ଯା. ବ. ସର୍ବନିମ୍ନ ପଦସ୍ଥ ଦେଓ୍ୱାନି ବିଚାରକ ।
ମୁଫତ୍—ଯା. କ୍ରି. ବଂ. ବିନା ମୂଲ୍ୟରେ, ପ୍ରୟୋଜନବ୍ୟତିରେକେ,(ବଂ) ମାଗଣା, ବିନା ମୂଲ୍ୟରେ ପ୍ରାପ୍ତ, ମୋଫତ୍ ।
ମୁଫତୀ—ଯା. ବ. ଓକିଲ, ଆଇନବ୍ୟବ-ସ୍ଥୀୟ ଫତ୍‌ୱାଦାତା ।
ମୁଫ୍ତି—ଯା.ବ.ମୁସଲମାନ ମୁକ୍ତଶାସ୍ତ୍ରଜ୍ଞ ବ୍ୟକ୍ତି, ମୁସଲମାନ ବ୍ୟବସ୍ଥାପକ ।

ମୁଫ୍ଲିସ୍—ଯା. ବଂ. ଦେବାଲିଆ, ଦରିଦ୍ର, ନିଃସ୍ୱ, (ବ) ଅବବାହିତ ପୁରୁଷ ।
ମୁବଲକ୍(ଗ୍)—ଯା. ବ.ଟଙ୍କାର ସମଷ୍ଟି, (କ୍ରି.ବଂ) ମୋଟରେ,ସର୍ବସୁଦ୍ଧା ।
ମୁବାରକ୍—ଯା. ବଂ. ସୁଖୀ, ସ୍ୱାଗତ, ଶୁଭ, ମଙ୍ଗଳମୟ,ଆଶୀଷପ୍ରାପ୍ତ, ଈଶ୍ୱରାନୁଗୃହୀତ । [ପାରେ ।
ମୁମକିନ୍—ଯା.ବଂ.ସମ୍ଭବ, ଯାହାହୋଇ
ମୁମ୍ତାଜ୍ମହଲ୍—ଯା. ବ. ମୋଗଲ-ସମ୍ରାଟ୍‌ଶାହାଜାହାନଙ୍କ ପ୍ରିୟତମା ପତ୍ନୀ
ମୁମାଦଲ—ଯା.ବ.ବଦଳ, (ବଂ) ବଦଳ କରାଯାଇଥିବା ।
ମୁମୁକ୍ଷା—ସ୍ତ୍ରୀ. ବ. (ମୁଚ୍+ସନ୍+ଅ+ଆ)ମୁକ୍ତିର ଇଚ୍ଛା,ମୁକ୍ତିର ଅଭିଳାଷ ।
ମୁମୁକ୍ଷୁ—ପୁଂ. ବଂ.(ମୁଚ୍+ସନ୍+କ.ଉ) ମୋକ୍ଷଲାଭେଚ୍ଛୁ, ମୁକ୍ତି ଅଭିଳାଷୀ, ବିରାଗୀ, (ବ) ଯତି, ସନ୍ନ୍ୟାସୀ ।
ମୁମୁଚାନ—ପୁଂ. ବ. (ମୁଚ୍+କ.ଅନ) ମେଘ, (ବଂ) ମୁକ୍ତ, ଯେ ମୁକ୍ତହୋଇ ଅଛି, ଯେ ମୋକ୍ଷ ଲାଭ କରିଅଛି ।
ମୁମୂର୍ଷା—ସ୍ତ୍ରୀ. ବ. (ମୃ+ସନ୍+ଅ+ଆ) ମରଣେଚ୍ଛା, ମରିବାର ଅଭିଳାଷ ।
ମୁମୂର୍ଷୁ—ପୁଂ. ବଂ. (ମୃ+ସନ୍+କ.ଉ)ଆସନ୍ନମୃତ୍ୟୁ,ମରଣକାମୀ, ମରଣାପନ୍ନ
ମୁମ୍ୱେଁ—ପ୍ରା. (ଉତ୍ତରୀ ଭାଷା) (ସର୍ବ),ମୁଁ, ଆମ୍ଭେ ।
ମୁର—ଯା. ବ. ଆଫ୍ରିକାରୁ ଆସିଥିଆ ଓ ଓ ସ୍ପେନ୍ ଆଦିକୁ ପ୍ରଥମେ ଆସିଥିବା ମୁସଲମାନଧର୍ମାବଲମ୍ବୀ କୃଷ୍ଣକାୟ ଜାତି ବିଶେଷ ।
ମୁର—କ୍ଲୀ. ବ. (ମୁର୍+ଘ.ଅ)ବେଷ୍ଟନ, କ୍ଲେଶ, ସନ୍ତାପ, (ପୁଂ.ବ-କ.ଅ)ଦୈତ୍ୟ ବିଶେଷ । [କୁକୁଡ଼ା ।
ମୁରଗ୍—ଯା. ବ. କୁକ୍କୁଟ,କୁକୁଡ଼ା,ଅଣ୍ଡିର
ମୁରଗଣ୍ଡ—ପୁଂ. ବ. (ମୁର+ଗଣ୍ଡ+ଅ) ନଗଣ୍ଡ, ଦର୍ପଣ, କାଠକଣ୍ଡୁଣ ।
ମୁରଗୀ—ଯା.ବ. କୁକ୍କୁଟୀ, ମାଈକୁକୁଡ଼ା ପକ୍ଷୀ ।
ମୁରଙ୍ଗିକା—ସ୍ତ୍ରୀ. ବ. ମୂର୍ବା ଦେଖ ।

ମୁରଙ୍ଗୀ—ସ୍ତ୍ରୀ. ବ. କୃଷ୍ଣଶିଗ୍ରୁବୃକ୍ଷ, କାଲ ସଜନାଗଛ ।
ମୁରଜ୍—ଗ୍ରା.ବ.ଦୁର୍ଗର ପ୍ରାଚୀର, ବୁରୁଜ
ମୁରଜ୍ବନ୍ଧ—ଗ୍ରା. ବ. ପରଖାପ୍ରାଚୀର ଦ୍ୱାରା ଦୁର୍ଗର ବପ୍ର ଦୃଢ଼ୀକରଣ ।
ମୁରଜ—ବ. ( ମୁର୍+ଜନ୍+କ.ଅ ) ମୃଦଙ୍ଗ, ପଖାଉଜ, ବାଦ୍ୟ ବିଶେଷ ।
ମୁରଜଫଳ—ପୁଂ.ବ.(ବ.ବ୍ରୀ)ପଣସଗଛ ।
ମୁରଜବନ୍ଧ—ବ. (କ.ଧା) ମୃଦଙ୍ଗଆକାରରେ ସନ୍ନିବେଶିତ ଅକ୍ଷର ସମ୍ବଳିତ ଛନ୍ଦରଚନା ବିଶେଷ ।
ମୁରଜା—ସ୍ତ୍ରୀ. ବ. କୁବେରଙ୍କ ପତ୍ନୀ, ବଡ଼ପଖାଉଜ, ଢୋଲ ।
ମୁରଜିତ୍—ପୁଂ. ବ. (ମୁର+ଜି+କ୍ୱିପ୍) ଶ୍ରୀକୃଷ୍ଣ, ମୁରାରି ।
ମୁରତ—ଗ୍ରା.ବ. (ପଦ୍ୟ) ମୂର୍ତ୍ତି ଦେଖ ।
ମୁରତବ୍—ଯା. ବଂ.ସୁରକ୍ଷିତ, ଶୃଙ୍ଖଳାବଦ୍ଧ, ନିୟମପୂର୍ବକ ସଜ୍ଜିତ ।
ମୁରଦାରୁଣ—ପୁଂ.ବ.(ଦ୍ୱନ୍ଦ୍ୱ)ମୁରଦୈତ୍ୟ ଓ ତାହାର ଭାଇ ଦାରୁଣ ଦୈତ୍ୟ ।
ମୁରଦ୍ୱିଟ୍—ପୁଂ. ବ. (ମୁର+ଦ୍ୱିଷ୍+କ୍ୱିପ୍) ଶ୍ରୀକୃଷ୍ଣ, ମୁରାରି ।
ମୁରନ୍ଦଲା—ସ୍ତ୍ରୀ. ବ. (ମୁର୍+ଦଲ୍+ଅ+ଆ) ନର୍ମଦା ନଦୀ ।
ମୁରବା(କା)—ଯା. ବ. ମୁରୁବା ଦେଖ ।
ମୁରବ୍ବୀ—ଯା. ବ. ବୟୋଜ୍ୟେଷ୍ଠ ବ୍ୟକ୍ତି, ଅଭିଭାବକ, ରକ୍ଷକ, ଶିକ୍ଷକ, ଶରଣ, ଆଶ୍ରୟ ।
ମୁରବ୍ବୀଆନା—ଯା. ବ. କର୍ତ୍ତାପଣିଆ, ଅଭିଭାବକତ୍ୱ, ମୁରବ୍ବୀପଣିଆ ।
ମୁରମଣ୍ଡ—ବ. ମୁରଗଣ୍ଡ ଦେଖ ।
ମୁରମଥନ—ପୁଂ. ବ. ମୁରାରି, ବିଷ୍ଣୁ, (ଅନ୍ୟରୂପ—ମୁରହର, ମୁରଘ୍ନ,ମୁରଭିଦ୍, ମୁରରିପୁ) ।
ମୁରମର୍ଦ୍ଦନ—ପୁଂ. ବ. (ମୁର+ମୃଦ୍+ଅନ) ବିଷ୍ଣୁ, ମୁରାରି ।
ମୁରଲ—ପୁଂ. ବ. ମନ୍ଦୁରଗଡ଼ମାଛ ।
ମୁରଲା—ସ୍ତ୍ରୀ. ବ. (ମୁର+ଲା+ଅ+ଆ) ନର୍ମଦା ନଦୀ ।

ମୁରଲୀ—ସ୍ତ୍ରୀ. ବି. ( ମୁର + ଲା + କ.ଅ + ଈ) ସ୍ୱନାମଖ୍ୟାତ ସୁଷିର ବାଦ୍ୟ-ଯନ୍ତ୍ର, ବଂଶୀ।

ମୁରଲୀଧର—ପୁଂ. ବି. ( ମୁରଲୀ + ଧୃ + ଅ) ଶ୍ରୀକୃଷ୍ଣ,(ବିଂ)ହାତରେ ମୁରଲୀ ଧରିଥିବା (ବ୍ୟକ୍ତି) ।

ମୁରଲୀଧରୀ—ଗ୍ରା. ବି. ଶ୍ରୀକୃଷ୍ଣ,(ଗ୍ରା. ବିଂ) ଯେ ମୁରଲୀ ଧରିଥାଏ ।

ମୁରଲୀଧାରୀ—ପୁଂ.ବି. (ମୁରଲୀ + ଧର + କ.ଇନ୍) ଶ୍ରୀକୃଷ୍ଣ, ବଂଶୀଧର ।

ମୁରଲୀଧ୍ୱନି—ବି.(୬ତତ୍ପୁ)ବଂଶୀନିର୍ଗତଶବ୍ଦ

ମୁରଲୀବଦନ—ପୁଂ.ବିଂ(ବ.ବ୍ରୀ)ଯାହାର ମୁଖରେ ମୁରଲୀ ସଂଯୁକ୍ତ ।

ମୁରବୈରୀ—ପୁଂ. ବି. ମୁରାରି, ଶ୍ରୀକୃଷ୍ଣ ।

ମୁରହା—ପୁଂ.ବି. (ମୁର + ହନ୍ + କ୍ୱିପ୍) ବିଷ୍ଣୁ, ଶ୍ରୀକୃଷ୍ଣ ।

ମୁରା—ସ୍ତ୍ରୀ. ବି. ମୁରାମାଂସୀ, ମଗଧରାଜ ମହାନନ୍ଦଙ୍କ ଦାସୀ ଓ ଚନ୍ଦ୍ରଗୁପ୍ତଙ୍କ ମାତା

ମୁରାଟ—ଗ୍ରା. ବି. (ସଂ-ମୂର୍ତ୍ତି) ଭ୍ରୂଭଙ୍ଗି-ପୂର୍ବକ ଚାହାଣୀ,ଆଖିତରାଟିବା,ଭ୍ରୂକୁଟି, କ୍ରୋଧପୂର୍ଣ୍ଣ ଏକଦୃଷ୍ଟି, ତେଜପୂର୍ଣ୍ଣ ଚେହେରା,ସୌନ୍ଦର୍ଯ୍ୟ,ଶରୀର ଗଢ଼ଣି-ପରି ଗଢ଼ଣି, (ଗ୍ରା. ବିଂ) ଭ୍ରୂକୁଟିଯୁକ୍ତ, ଭ୍ରୂଭଙ୍ଗି, କୁଟିଳ ( ବ୍ୟକ୍ତି ବା ମୁଖ ), ସୁନ୍ଦର, ଉଜ୍ଜ୍ୱଳ, ପ୍ରଧାନ, ଉତ୍ତମ ।

ମୁରାଡ଼—ଗ୍ରା. ବି. ମୁରାଲ ଦେଖ ।

ମୁରାତବ୍—ଯା. ବି. ସମ୍ମାନ, ମର୍ଯ୍ୟାଦା, ମନୁଷ୍ୟତା, ଯୋଗ୍ୟତା, (ବିଂ)ଉପଯୁକ୍ତ, ଯୋଗ୍ୟ ।

ମୁରାଦ୍—ଯା. ବି. ଅଭିପ୍ରାୟ, ଅଭିଳାଷ, ସମ୍ରାଟ୍ ଆକବରଙ୍କ ୨ୟ ପୁତ୍ର ।

ମୁରାଦ—ଯା. ବି. (୧ସୁଲତାନ୍)ତୁରସ୍କର ଓସମାନବଂଶୀୟ ୩ୟ ସମ୍ରାଟ୍ ।

ମୁରାଦାବାଦ—ଗ୍ରା. ବି. ଯୁକ୍ତପ୍ରଦେଶର ରୋହିଲଖଣ୍ଡ ବିଭାଗର ଗୋଟିଏ ଜିଲ୍ଲା ଓ ନଗର ।

ମୁରାମାଂସୀ—ବି. ଔଷଧରେ ବ୍ୟବହୃତ ଏକପ୍ରକାର ଗନ୍ଧଦ୍ରବ୍ୟ ।

ମୁରାରି—ପୁଂ. ବି. (ମୁର + ଅରି)୬ତତ୍ପୁ; ଶ୍ରୀକୃଷ୍ଣ, ବିଷ୍ଣୁ, ଅନର୍ଘରାଘବ ନାମକ ଗ୍ରନ୍ଥର ପ୍ରଣେତା ।

ମୁରାରିଭଟ୍ଟ—ପୁଂ.ବି.ସାରସଂଗ୍ରହପ୍ରଣେତା, ତର୍କଭାଷା ଟୀକାର ରଚୟିତା ।

ମୁରାଲ—ଗ୍ରା.ବି. ଏକପ୍ରକାର ଜଙ୍ଗଲି ସନ୍ଧି-ଚର ପକ୍ଷୀ ।

ମୁରିଆ—ପ୍ରା.(ବସ୍ତ୍ର)ବି.ବସ୍ତ୍ରର ଅଞ୍ଚଳର ଏକ କୃଷକ ଜାତି ଓ ତାହାଙ୍କର ଭାଷା

ମୁରିଦ୍—ଯା.ବି. ଛାତ୍ର,ଶିଷ୍ୟ, ଇଚ୍ଛୁକ ।

ମୁରୁ—ପୁଂ. ବି. ଦେଶବିଶେଷ, ଲୌହ-ବିଶେଷ, ଗୁଳ୍ମବିଶେଷ ।

ମୁରୁକି—ଗ୍ରା.ବିଂ. ଈଷତ୍, ( କ୍ରି.ବିଂ ) ଈଷତ୍ ଭାବରେ ।

ମୁରୁକିହସ(ସା)—ଗ୍ରା. ବି. ମନ୍ଦହାସ୍ୟ, ଈଷଦ୍ଧାସ୍ୟ ।

ମୁରୁକୁଟିଆ-ଗ୍ରା.ପୁଂ.ବିଂ.ଅତି କ୍ଷୀଣକାୟ, ଶୀର୍ଣ୍ଣ, ସୁଖିଯାଇଥିବା, ମୁର୍ଦ୍ଦାରିଆ,(ପ୍ରା. ବାଲେ.ବି) ଚମଡ଼ା ପୋଡ଼ିବାର ଗନ୍ଧ, ପୁରୁକୁଟିଆ ।

ମୁରୁଖ—ଗ୍ରା.ପୁଂ.ବିଂ. ମୂଢ଼, ଅଜ୍ଞାନ ।

ମୁରୁଖାଣ୍ଡି(ଆ)—ଗ୍ରା.ବିଂ.ମୂର୍ଖର ଉପଯୁକ୍ତ ବା ବ୍ୟବହାର ।

ମୁରୁଗ—ଗ୍ରା.ବି. (ସଂ-ମୃଗ) ମୃଗ ଦେଖ

ମୁରୁଗା—ଗ୍ରା.ବି. (ସଂ-ମୂର୍ବା)ବନ୍ୟ ଗୁଳ୍ମ-ବିଶେଷ, କୁକୁଡ଼ାଜଟ ଫୁଲ, ଈଶ୍ୱର-ଜଟା ଫୁଲ ଓ ଗଛ ।

ମୁରୁଗୀ—ଯା.ବି. କୁକୁଡ଼ା, ମୁର୍ଗୀରୋଗ ।

ମୁରୁଗୁଡ଼ିଆ—ଗ୍ରା.ବିଂ.ମୁରୁକୁଟିଆ ଦେଖ

ମୁରୁଗୁଣୀ—ଗ୍ରା.ସ୍ତ୍ରୀ.ବି. ମୃଗୁଣୀ,ହରିଣୀ, ସ୍ତ୍ରୀମୃଗ, ଏଣୀ ।

ମୁରୁଙ୍ଗୀ—ସ୍ତ୍ରୀ.ବି. କୃଷ୍ଣଶିଗୁବୃକ୍ଷ, କଳା ସଜନାଗଛ ।

ମୁରୁଚ୍ଚ—ଯା. ବି. ଲୁହାଆଦି ଧାତୁରେ ଲାଗିବା କଳଙ୍କ, ମରଚ୍ଚ, ଗଡ଼ ଚାରିପାଖ ପାଚେରି, ଗଡ଼ଖାଇ, ଦୁର୍ଗର ପ୍ରାଚୀରରେ ନିର୍ମିତ ଗୃହ ।

ମରୁଛନା—ଗ୍ରା.ବି. ମୂର୍ଚ୍ଛନା ଦେଖ ।

ମୁରୁଚ୍ଛା—ଗ୍ରା.ବି. ( ସଂ-ମୂର୍ଚ୍ଛା ) ମୂର୍ଚ୍ଛା ଦେଖ, ମୁରୁଛିବା ଦେଖ ।

ମୁରୁଛିତ—ଗ୍ରା.(ପଦ୍ୟ)ବିଂ. ମୂର୍ଚ୍ଛିତ ।

ମରୁଛିବା-ଗ୍ରା.କ୍ରି.ତ୍ୟାଗକରିବା,ଛାଡ଼ିବା, ପାଶୋରିବା, ପାଶରୁ ଅନ୍ତର ହୋଇ-ଯିବା, ଲୋଭ ତ୍ୟାଗକରିବା ।

ମରୁଜ—ଗ୍ରା.ବି.ଚିକ୍କଣ ଓ ଧଳା ପଥର-ଆଦିର ଚୂନା, ଯାହାଦ୍ୱାରା ପୂଜାଆଦି ସ୍ଥାନରେ ଚିତ୍ର ରଚନା ବା ଠାଆ କରା-ଯାଏ ।

ମୁରୁଜପଥର—ଗ୍ରା.ବି. ଶୁକ୍ଳ ଭଙ୍ଗପ୍ରବଣ ପ୍ରସ୍ତରବିଶେଷ ।

ମୁରୁଜମାନ୍—ଗ୍ରା.ବିଂ. ( ସଂ-ମ୍ରିୟମାଣ ) ଯେ ଖେଦ ପ୍ରକାଶ କରେ, ଦୁଃଖିତ ।

ମୁରୁଡ଼—ଗ୍ରା.ବି. ହୁଡ଼, ପଣ, ତ୍ୟାଗ, ବସ୍ତ୍ରତ୍ୟାଗ, (ବିଂ) ଉଲଗ୍ନ କରାଯିବା (ବସ୍ତ୍ର) ।

ମୁରୁଣ୍ଡକ—ପୁଂ.ବି.ଉଦ୍ୟାନର ଅନ୍ତର୍ଗତ ପର୍ବତଭେଦ, କ୍ରୀଡ଼ାଶୈଳ ।

ମୁରୁତାନଦେଶ—ପୁଂ.ବି. ଦେଶବିଶେଷ ମୁଲତାନ ।

ମୁରୁଡ଼କିଆ—ଗ୍ରା. ବିଂ. ଏକମୂର୍ତ୍ତି ବା ଏକଖଣ୍ଡବିଶିଷ୍ଟ (ଲୁଗା), (ଗ୍ରା.ବି) ମର-ଣାଶୌଚ ।

ମୁରୁଦାରିଆ—ଗ୍ରା,ବିଂ.ମଡ଼ାପରି ଶୁଷ୍କ ବା କ୍ଷୀଣ, ମଡ଼ାପରି ଗନ୍ଧାଉଥିବା,ଅତିକ୍ଷୀଣ

ମୁରୁବା(ବ୍ବା)—ଯା. ବି. ମୁରବ୍ବା, ମିଷ୍ଟ ରସରେ ପାକ କରାଯାଇ ବହୁ-ଦିନ ସକାଶେ ରଖାଯାଇଥିବା ଫଳ ।

ମୁରୁମ—ପ୍ରା.(ବସ୍ତ୍ର) ବି. କାଠବରଣ୍ଡ, ବୃକ୍ଷବିଶେଷ ।

ମୁର୍କୁଣ୍ଡ—ଗ୍ରା.ବି ଓ ବିଂ. ଖର୍ବ, ଲୁକ ।

ମୁର୍ଗା—ଗ୍ରା. ବି. ବନ୍ୟ ଗୁଳ୍ମବିଶେଷ, କୁକୁଡ଼ା, ମୁକୁଟ ଫୁଲ ।

ମୁର୍ଗୀ—ଗ୍ରା.ବି.ମାଈ କୁକ୍କୁଟ,ମାଈକୁକୁଡ଼ା ।

ମୁର୍ଜମାନ—ଗ୍ରା.ବିଂ. ଅତି ଦୁଃଖିତ ।

ମୁର୍ଦ୍ଦଙ୍ଗ—ଗ୍ରା.ବି. ମୃଦଙ୍ଗ ଦେଖ ।

ମୁର୍ଦ୍ଦାଫରାସ୍—ଯା.ବି. ବଙ୍ଗଳାର ଡୋମ ଜାତିର ଶାଖାବିଶେଷ—ଶବବାହକ ସମ୍ପ୍ରଦାୟବିଶେଷ ।

ମୁର୍ଦ୍ଦାର—ଗ୍ରା.ବି. ଶବ, ମଡ଼ା ।

ମୂର୍ଦ୍ଦାରିଆ—ଗ୍ରା.ବିଂ. ମଣ୍ଡାପରି ଶୀର୍ଣ୍ଣ ବା କ୍ଷୀଣ, ମଣ୍ଡାପରି ଗନ୍ଧାଉଥିବା ।

ମୂର୍ଦ୍ଧନା—ଗ୍ରା.ବି. ମସ୍ତକ, ମୁଣ୍ଡ, ଶିରଃ ବା ଅଗ୍ରଭାଗ, ବହୁଲୋକଙ୍କ ମଧ୍ୟରେ ଶ୍ରେଷ୍ଠ ବ୍ୟକ୍ତି ।

ମୂର୍ଦ୍ଧନ—ଗ୍ରା.ବି. ଜାତିର ସର୍ଦ୍ଦାର ବା ପ୍ରଧାନ ବ୍ୟକ୍ତି,ଜାତିବେହେରା,ମସ୍ତକ ।

ମୂର୍ଦ୍ଧନ୍ୟ—ଗ୍ରା.ବିଂ. ମୂର୍ଦ୍ଧନ୍ୟ ଦେଖ ।

ମୂର୍ଦ୍ଧା—ଗ୍ରା. ବି. ଏକପ୍ରକାର ପଲାଶ-ଜାତୀୟ ବନ୍ୟଗଛ ।

ମୂର୍ବା—ଯା.ବି. ମୂରବା ଦେଖ ।

ମୂର୍ବୀ—ବି. (ମୂର୍ବ+ଣ.ଅ+ଈ) ମୂର୍ବା ଦେଖ ।

ମୂର୍ଭିଣୀ—ସ୍ତ୍ରୀ.ବି.ଅଙ୍ଗାର ଧାନକା, ନଆଁ ଉମ୍ନେଇ ।

ମୂର୍ମୁର—ପୁଂ. ବି. (ମୁର୍+କ.କ୍ୱିପ୍=ମୁର+ମୁର୍+ଅ) ତୁଷାଗ୍ନି, ତଷୁନିଆ ମନ୍ମଥ, କାମଦେବ, ସୂର୍ଯ୍ୟଙ୍କ ରଥର ଅଶ୍ୱବିଶେଷ ।

ମୂର୍ଶିଦ୍‌କୁଲିଖାଁ—ଗ୍ରା. ବି. ମୋଗଲ ସମ୍ରାଟ୍ ଆଓରଙ୍ଗଜେବ ଓ ତତ୍ପର-ବର୍ତ୍ତୀ ସମ୍ରାଟଙ୍କ ଅଧୀନ ବଙ୍ଗଳାର ସୁବାଦାର ଦେବାନ ଓ ନବାବ ।

ମୂର୍ଶିଦାବାଦ୍—ଗ୍ରା.ବି. ବଙ୍ଗର ଗୋଟିଏ ଜିଲ୍ଲା ଓ ନଗର ।

ମୂଲ୍—ପ୍ରା.(ସମ୍ବ)ବି. ମୂଲ ଦେଖ ।

ମୂଲ୍‌ତ(ତୁ)ବି—ଯା.ବି. ପରେ କରିବା-ପାଇଁ କିମ୍ବା ଦନପାଇଁ ସ୍ଥଗିତ ରଖାଯିବା, ମହଲତ୍, ବିଲମ୍ବ କରିବା ।

ମୂଲ୍‌ତାନ୍—ଗ୍ରା.ବି. ପଞ୍ଜାବର ନଗର-ବିଶେଷ ।

ମୂଲ୍‌ନା—ଯା.ବି. ମୁସଲମାନ ପଣ୍ଡିତ ।

ମୂଲ୍‌ହୁ—ଗ୍ରା.ଅବ୍ୟ. ମୂଳଠାରୁ,ଆରମ୍ଭରୁ, ଆଦୌ ।

ମୂଲକ—ଯା.ବି. ରାଜ୍ୟ, ଦେଶ,ସଂସାର, (ଗ୍ରା.ବିଂ) ବହୁ, ଅନେକ ।

ମୂଲକି(କୀ)—ଗ୍ରା.ବିଂ. ରାଜ୍ୟ ପ୍ରଚଳିତ, ଦେଶୀୟ ।

ମୂଲଗଡ଼—ଗ୍ରା.ବି. ଘର ଚାଳର ପଟ୍ଟାଳି ବା ମୂଲଗଡ଼ ।

ମୂଲଗୂଲ—ଗ୍ରା.ବି. କୌଣସି ଦ୍ରବ୍ୟକୁ ମୂଲାଇବା ।

ମୂଲଗୂଲକରିବା—ଗ୍ରା. କ୍ରି. ମୂଲାଇବା, ଦରଦାମ୍ କରିବା ।

ମୂଲତା—ପ୍ରା.(ସମ୍ବ)ବି. ବଳତା ।

ମୂଲତାନ—ଗ୍ରା. ବି. ପଞ୍ଜାବପ୍ରଦେଶର ଗୋଟିଏ ଜିଲ୍ଲା ଓ ନଗର ।

ମୂଲତାନ(ନୀ)—ଗ୍ରା.ବି.ରାଗିଣୀବିଶେଷ ।

ମୂଲା(ଲ୍ଲା)-ଯା.ବି.ମୁସଲମାନମାନଙ୍କ ଗ୍ରାମ୍ୟ ଧର୍ମୋପଦେଶକ ବା ପୁରୋହିତ ।

ମୂଲାଇ(ଏ)ମ୍--ଯା.ବିଂ.କୋମଳ,ସୁକୁମାର

ମୂଲାଇ(ଏ)ମି—ଯା. ବି. କୋମଳତା, ସୁକୁମାରପଣ ।

ମୂଲୁମ୍ଲିଆ—ଗ୍ରା. ପୁଂ. ବିଂ. ଅଳସୁଆ, (ବି)ନିଆଁ ଗୁଲ ମିଶି କରିଥିବା ପାଉଁଶ

ମୂଲୁମୂଲୁ—ଗ୍ରା. ଅ. କାର୍ଯ୍ୟ କରିବାରେ ବିଳମ୍ବ ।

ମୂଲାକାତ୍(ତ)—ଯା.ବି.ଦେଖା ସାକ୍ଷାତ, ସମ୍ମିଳନ, ଭେଟ,(ବିଂ)ଦୃଷ୍ଟ; ସାକ୍ଷାତ୍-କାରସମ୍ବନ୍ଧୀୟ, ପରିଚିତ ।

ମୂଲାହିଜା—ଯା.ବି.ଚକ୍ଷୁର୍ଲଜ୍ଜା,ମୋହବ୍ବତ୍ ।

ମୂଲୁରୁମୂଲୁରୁହେବା—ପ୍ରା. (ସମ୍ବଲ)କ୍ରି. ମୁରୁକିମୁରୁକି ହସିବା ।

ମୂର୍(ଶୁ)ମୁର୍(ଶୁ)—ଗ୍ରା. ଅ, ଶୁଖିଲା ପତ୍ର-ଆଦି ମକଚିବାର ଶବ୍ଦ, ମୁଢ଼ି ଖାଇବାଇ-ବାର ଶବ୍ଦ ।

ମୂଶ୍‌କା(କିଆ)--ଗ୍ରା.ବିଂ.ଯେ ଅନ୍ୟ ବ୍ୟକ୍ତିର ପ୍ରାପ୍ୟ ଧନାଦିକୁ ବା ଋଣକୁ ଭୁରୁଡ଼ାଇ ଦିଏ ବା ନଦିଏ ।

ମୂଶଟୀ—ସ୍ତ୍ରୀ. ବି. ଶ୍ୱେତ କଙ୍ଗୁଧାନ, ଧଳାକାଙ୍ଗୁ । [ବେଦନା ।

ମୂଶକ୍କତ୍—ଯା. ବି. ପରିଶ୍ରମ, କଷ୍ଟକର

ମୂଶ(ଷ)ଳିକା—ସ୍ତ୍ରୀ. ବି. ତାଳମୂଳୀ ।

ମୂଶ୍‌କିଲ—ଯା.ବିଂ.କଷ୍ଟକର, ବିପଜ୍ଜନକ. ବେଦନାଦାୟକ ।

ମୂଶାଫି (ଫେ)ର (ର)—ଯା. ବି. ପାନ୍ଥ, ପଥିକ,ପ୍ରବାସୀ,ଭ୍ରମଣ, ପ୍ରବାସ,ମୁସଲ-ମାନ ସାଧୁ ।

ମୂଶାବିଦା(ଧା)—ଯା. ବି. ଦଲିଲଆଦିର ଚଠା, ପାଣ୍ଡୁଲିପି ।

ମୂଶାହା(ହ)ବ୍—ଯା. ବି. ବଡ଼ଲୋକଙ୍କ ପାର୍ଶ୍ୱଚର ସ୍ତାବକ ବା ଖୋସାମଦକାରୀ ବା ବିଦୂଷକ ବ୍ୟକ୍ତି ।

ମୂଶାହବି—ଯା. ବି. ସ୍ତାବକର କାର୍ଯ୍ୟ, ଖୋସାମଦ ।

ମୂଶିଆରି—ପ୍ରା.(ମେଦ)ବି ଧଳାସିଂଘିମାଛ

ମୂଷକିଲ୍—ଯା.ବି ଓ କ୍ରି.ବିଂ.ମହା,ଶକ୍ତ, କଷ୍ଟକର, ବିପଜ୍ଜନକ,ଅତ୍ୟନ୍ତ ଜଟିଳ, ଅତି ସନ୍ଦେହଜନକ, (ବି) ବିପଦ, ଗୋଳମାଳ, ଅଡୁଆ, ମହା ବିଘ୍ନ ବା ଦୁଃଖ, କଷ୍ଟ, ବିଷମ ସମସ୍ୟା ।

ମୂଷକ—ପୁଂ. ବି. ମୂଷିକ ।

ମୂଷ(ଶ,ସ)ଲ—ବି.(ମୂଷ+ଣ.ଅଲ)ଗଦା, ମୁଦ୍‌ଗର, ହମାମଦସ୍ତା ବା ଢିଙ୍କିରେ ଜିନିଷଆଦି କୁଟିବାର ଦଣ୍ଡ,ଆୟୋଃଗ୍ର, ବଳରାମ ଙ୍କ ଦଣ୍ଡ, ଢିଙ୍କିର ପାହୁରାଣି, ଉଦ୍ଭିଜ୍ଜବିଶେଷ, (ଲ.ଅର୍ଥ) ମୂଷଲପରି ଲମ୍ବ ଓ ମୋଟ ବସ୍ତୁ, କୌଣସି ବ୍ୟକ୍ତି ପ୍ରତି ଶତ୍ରୁ ଦ୍ୱାରା ପ୍ରୟୋଗ କରାଯିବା ବିଘ୍ନ ।

ମୂଷଲଧାରା—ଗ୍ରା. ବି. ମୂଷଳପରି ଘନ ବୃଷ୍ଟିର ଧାରା, ଦୁମ୍‌କାଣି ।

ମୂଷଲଧାରେ—କ୍ରି.ବିଂ.ମୂଷଲପରି ସ୍ଥୂଳ-ଧାରାର ଆକାରରେ ।

ମୂଷଲପାଣି—ପୁଂ.ବି.(ବ.ବ୍ରୀ)ବଳରାମ ।

ମୂଷଳ—ଗ୍ରା.ବିଂ. ମୂଷଳପରି ମୋଟା ଓ ଲମ୍ବା, ମୂଷଳିଆ ।

ମୂଷଳିଆ—ଗ୍ରା.ପୁଂ.ବିଂ.ଯେ କିଛି ନ ମାନି କାର୍ଯ୍ୟକରେ, ଯେ ଜବରଦସ୍ତି ଛଡ଼ାଇ ନିଏ ।

ମୂଷ(ଶ,ସ)ଳୀ—ସ୍ତ୍ରୀ.ବି. (ମୂଷ+କ.ଅଳ+ଈ) ତାଳମୂଳିକା, ଗୃହଗୋଧିକା, ଝିଟିପିଟି, ( ପୁଂବିଂ. ମୂଷଳ+ଇନ୍ ) ମୂଷଳଧାରୀ । [ମୂଳୀ ।

ମୂଷଳୀକନ୍ଦ—ବି(ମୂଷଳୀ+କନ୍ଦ)ତାଳ-

ମୂଷଲ୍ୟ—ପୁଂ.ବିଂ.(ମୂଷଲ+ଯ)ମୂଷଳ-ଦ୍ୱାରାବଧ୍ୟ ।

**ମୂଷା**—ସ୍ତ୍ରୀ. ବ. (ମୁଷ୍ + ଅ + ଆ) ଧାତୁ-ଗଳନ୍ତ ପାତ୍ର, କୋଇ ।

**ମୁଷି**—ବଂ. (ମୁଷ୍ + ଷ୍ଣ.ଇ) ଚୁରି, ଚୋରି ।

**ମୁଷିତ**—ବି.ବଂ (ମୁଷ୍ + ର୍ମ.ତ) ଚୋରିତ ଦ୍ରବ୍ୟ, ବଞ୍ଚିତ, ଅପହୃତ ।

**ମୁଷିତକ**—ବ. ( ମୁଷିତ + କ ) ମୀଚ ଭାବରେ ଚୁରି, ଚୋରମାଲ୍ ।

**ମୁଷିବତ୍**—ଯା.ବ. କଷ୍ଟ, ଦୁଃଖ, ବିପତ୍ତି ।

**ମୁଷୁଣ୍ଡା**—ପ୍ରା.(ସିଂହ) ବ.ଢ଼ିଙ୍କିର ମୁଷଳ, ଘୁଡ଼ୁଗ ବାଡ଼େଇବାର କାଠ ପାହାର

**ମୁଷ୍କ**—ପୁଂ.ବ.(ମୁଷ୍ + କ.ଅ) ଅଣ୍ଡକୋଷ. ତସ୍କର, ମାଂସଳ, ଘଣ୍ଟାପାଟଳୀବୃକ୍ଷ ।

**ମୁଷ୍କକ**—ପୁଂ. ବ. (ମୁଷ୍କ + କ) ବୃକ୍ଷ-ବିଶେଷ, ଘଣ୍ଟାପାଟଳୀ ବୃକ୍ଷ ।

**ମୁଷ୍କକଚ୍ଛୁ**—ପୁଂ. ବ. ଅଣ୍ଡକୋଷ ।

**ମୁଷ୍କଗ୍ରନ୍ଥି**—ବ. ଅଣ୍ଡକୋଷର ନାଡ଼ୀ, ଅଣ୍ଡକୋଷ ।

**ମୁଷ୍କଚ୍ଛିନ୍ନ**—ପୁଂ. ବଂ. (ବ.ବ୍ରୀ) ଆକ୍ତା, ଖାସୀ ହୋଇଥିବା ।

**ମୁଷ୍କଚ୍ଛେଦ**—ବ. (୬ତତ୍) ପୁଂସ୍ତ୍ୱ ନଷ୍ଟ କରିବା ପାଇଁ ପୁରୁଷ ଜୀବର ଅଣ୍ଡ-କୋଷକୁ କାଟିବା ପ୍ରକ୍ରିୟା, ଖାସୀକରିବା

**ମୁଷ୍କଭାର**—ବି. ବଂ. ପ୍ରବୃଦ୍ଧ ମୁଷ୍କ, ଅଣ୍ଡ-କୋଷବୃଦ୍ଧି ।

**ମୁଷ୍କର**—ପୁଂ. ବ. (ମୁଷ୍କ + ଲମ୍ବାର୍ଥେ ର) ଫ୍ରଲବାଣ୍ଡ, କୁରୁଣ୍ଡିଆ ।

**ମୁଷ୍କବାନ୍**—ପୁଂ. ବି.ମୁଷ୍କଯୁକ୍ତ, ମୁଷ୍କସମ୍ପୂର୍ଣ

**ମୁଷ୍କଶୂନ୍ୟ**—ପୁଂ.ବଂ.ବୃଷଣ ରହିତ, ଯାହାର ଅଣ୍ଡକୋଷ ନାହିଁ ।

**ମୁଷ୍କାବର୍ହ**—ପୁଂ. ବ.(ମୁଷ୍କ + ଆ + ବୃହ୍ + କ.ଅ) ଯେଉଁବ୍ୟକ୍ତି ଗବାଦି ଜୀବଙ୍କ ଅକ୍ତା ବା ଖାସୀକରେ । [ ଦେଖ ।

**ମୁଷ୍କିଲ୍**—ଯା. ବଂ ଓ ବି. ବଂ. ମୁସ୍କିଲ୍

**ମୁଷ୍ଟ**—ବି. ବଂ. (ମୁଷ୍ + ର୍ମ.ତ) ମର୍ଦ୍ଦିତ, ଅପହୃତ, (ବ.ଖ-ତ) ଚୋର ।

**ମୁଷ୍ଟାମୁଷ୍ଟି**—ଅବ୍ୟ.ପରସ୍ପର ମୁଷ୍ଟିପ୍ରହାର ଦ୍ୱାରା ପ୍ରବୃତ୍ତ ଯୁଦ୍ଧ, ପରସ୍ପର [illegible] ମୁଥ ମରାମରି ।

**ମୁଷ୍ଟି**—ବ. (ମୁଷ୍ + ଣ.ତ) କୁଞ୍ଚିତ କର-ତଳ, ମୁଠା, ମୁଠାଏ ପରିମାଣ, ମୁଠା ଦ୍ୱାରା ଆଘାତ, ମୁଥ, ବିଧା, (ଷ.ତ) ଚୋରି, ଧାତୁତରଳାଇବା ଖଡ଼ାଦର ବେଣ୍ଟ, ଚାରତୋଳା ପରିମାଣ, (ଅଧି.ତ) ଦୁର୍ଭିକ୍ଷକାଳ, ଘଣ୍ଟାପାଟଳୀଗଛ, ଋଦ୍ଧି ନାମକ ଔଷଧି ଦ୍ରବ୍ୟ, (ଷ.ତ) ଗୋପନ

**ମୁଷ୍ଟିକ**—ପୁଂ. ବ. (ମୁଷ୍ଟି + କ) ଧାତୁ ତରଳାଇବା ପାତ୍ର, କୋଇ, କଂସରାଜାର ମଲ୍ଲ ବିଶେଷ, ସ୍ୱର୍ଣ୍ଣକାର, ବଳଦାନ-ଯୋଗ୍ୟୋପକରଣ ବିଶେଷ ।

**ମୁଷ୍ଟିକସ୍ୱସ୍ତିକ**—ପୁଂ. ବ.ନୃତ୍ୟକାଳରେ ମୁଷ୍ଟିର ଅବସ୍ଥା ଭେଦ ।

**ମୁଷ୍ଟିକାନ୍ତକ**—ପୁଂ.ବ.(ମୁଷ୍ଟିକ + ଅନ୍ତକ) ମୁଷ୍ଟିକ ନାମକ ମଲ୍ଲକୁ ବିନାଶକାରୀ ବଳଦେବ ।

**ମୁଷ୍ଟିଦେଶ**—ପୁଂ. ବ. ଧନୁର ମଧ୍ୟଦେଶ, (ଯେଉଁଠାରେ ଧନୁକୁ ମୁଠାକରି ଧରି-ବାକୁ ହୁଏ ।

**ମୁଷ୍ଟିଦ୍ୟୂତ**—କ୍ଳୀ.ବ.ଦ୍ୟୂତକ୍ରୀଡ଼ା ବିଶେଷ

**ମୁଷ୍ଟିନ୍ଧୟ**—ପୁଂ. ବ. (ମୁଷ୍ଟି + ଧେ + କ.ଅ) ବାଳକ, ସ୍ତନନ୍ଧୟ, ମୁଷ୍ଟିବନ୍ଧନ କ୍ରିୟା, ସଂଗ୍ରାହ, ହାତକୁ ମୁଠାକରିବା

**ମୁଷ୍ଟିପାତ**—ବ. (୬ତତ୍) ବିଧା ବା ମୁଥ ମାରିବା ।

**ମୁଷ୍ଟିପୀଡ଼େ**—ଗ୍ରା.କ୍ରି.ବଂ.ଦୃଢ଼ମୁଷ୍ଟିରେ

**ମୁଷ୍ଟିଭିକ୍ଷା**—ବ.ମୁଠିଭିକ, ଦୁଆର ଦୁଆର ବୁଲି ମୁଠାଏ ଲେଖାଏ ଭିକ୍ଷା କରିବା ।

**ମୁଷ୍ଟିମାଡ଼**—ବ. ମୁଥ ବା ବିଧାମାଡ଼ ।

**ମୁଷ୍ଟିମିତ**—ବିଂ. (୩ତତ୍) ମୁଠାଏ ପରି-ମିତ, ସାମାନ୍ୟ, ଅଳ୍ପସଂଖ୍ୟକ, (ସ୍ତ୍ରୀ) ମୁଷ୍ଟିମିତା ।

**ମୁଷ୍ଟାମୁଷ୍ଟି**—ବ. ପରସ୍ପର ମୁଥ ମରାମରି ହୋଇ ଯେଉଁ ଯୁଦ୍ଧ ହୁଏ ।

**ମୁଷ୍ଟିମେୟ**—ବି. ବଂ. (ମୁଷ୍ଟି + ମା + କ. ଯ) ମୁଷ୍ଟି ଦ୍ୱାରା ପରିମେୟ, ମୁଠାଏ, ଅଳ୍ପ ସଂଖ୍ୟକ, ଅଳ୍ପପରିମିତ ।

**ମୁଷ୍ଟିଯୁଦ୍ଧ**—କ୍ଳୀ. ବ. ମୁଷ୍ଟି ଦ୍ୱାରା ଯୁଦ୍ଧ, ମୁଥ ବା ବିଧା ମରାମରି ।

**ମୁଷ୍ଟିଯୋଗ**—ବ. ଚୁଟ୍‌କା ଔଷଧ, ସଦ୍ୟ-ଫଳପ୍ରଦ ଔଷଧ, ଶରୀରରକ୍ଷା ।

**ମୁଷ୍ଟିଲ**—ଗ୍ରା. ବଂ. ମୁଷ୍ଟିଯୁକ୍ତ ।

**ମୁଷ୍ଟିବଦ୍ଧ**—ବଂ. ମୁଷ୍ଟିକୃତ, ମୁଠା କରା-ଯାଇଥିବା (ହାତ) । [ କରିବା ।

**ମୁଷ୍ଟିବନ୍ଧ**—ବ. (୬ତତ୍) ହାତକୁ ମୁଠା-

**ମୁଷ୍ଟିସଂଗ୍ରହ**—ବ. ମୁଷ୍ଟିବନ୍ଧ ଦେଖ ।

**ମୁଷ୍ଟିହତ୍ୟା**—ସ୍ତ୍ରୀ. ବ. ମୁଷ୍ଟିପ୍ରହାରଦ୍ୱାରା ହତ୍ୟା, ମୁଷ୍ଟିପ୍ରହାର ।

**ମୁଷ୍ଟ୍ୟାଘାତ**—ବ. (୩ତତ୍) ମୁଷ୍ଟି ଦ୍ୱାରା ପ୍ରହାର, ବିଧା ଓ ମୁଥ ।

**ମୁସ୍ତକ**—ପୁଂ. ବ. ରାଜସର୍ଷପ ।

**ମୁହ୍‌କଆ**—ପ୍ରା. (ସମ୍ବ) ପୁଂ. ବଂ. ଅନ୍ୟ ବ୍ୟକ୍ତିର ପ୍ରାପ୍ୟଧନ ବା ଋଣକୁ ନ ଦେଇ ଯେ ମାଡ଼ିବସେ ।

**ମୁସ୍(ସୁ)କିଲ୍**—ଯା. ଅ. ଓ ବଂ ଇ ବଂ. ବି. ବଂ. ମହା, ଅତ୍ୟନ୍ତ ଶକ୍ତ, ଅସ-ହଜ ।

**ମୁସ୍‌ମୁସିଖରା**—ଗ୍ରା. ବ. ବର୍ଷା ଦିନରେ ହେବା ତେଜୋହୀନ ମେଘୁଆ ଖରା ।

**ମୁସ୍‌ଲା(ଲେ)ମ୍**—ଯା.ବ ଓ ବଂ.ମୁସଲ-ମାନ୍ ଦେଖ ।

**ମୁସ୍‌ଲିମ୍‌ଲୀଗ୍**—ଯା. ବ. ଭାରତରେ ପ୍ରତିଷ୍ଠିତ ମୁସଲମାନମାନଙ୍କ କେନ୍ଦ୍ରସଙ୍ଘ ।

**ମୁସଣ୍ଡୀ**—ସ୍ତ୍ରୀ. ବ. ଶ୍ୱେତ କାଙ୍ଗୁଧାନ୍ୟ, ଧଳାକାଙ୍ଗୁ ।

**ମୁସ(ସୁ)ଦ୍ଦ(ଦ୍ଦି)**—ଯା. ବ. ମୋହରିର, ଲେଖକ, ପେସ୍କାର, ଗୁମାସ୍ତା ।

**ମୁସମା(ମ୍ମା)**—ଯା. ବ ଓ ବଂ. ମଜୁରା ।

**ମୁସମା(ମ୍ମା)ତ୍**—ଯା. ବ. ମୁଷମା(ମ୍ମା)ତ୍ ଦେଖ ।

**ମୁସଲ**—ବ. ମୁଷଲ ଦେଖ ।

**ମୁସଲକ**—ପୁଂ. ବ. ପର୍ବତ ଭେଦ, ସର୍ପବିଶେଷ ।

**ମୁସଲସ୍**—ଯା. ଅବ୍ୟ.ଆଦୌ, ମୂଳରୁ, ବିଲ୍‌କୁଲ୍ ।

**ମୁସଲମାନ**—ଯା.ବ. ଆରବଦେଶବାସୀ ଇସଲାମ୍ ଧର୍ମାବଲମ୍ବୀ ଜାତିବିଶେଷ, ପଠାଣ, ଇସଲମ୍ ଧର୍ମ ।

**ମୁସଲମାନଧର୍ମ**—ବ.ହଜରତ୍ ମହମ୍ମଦଙ୍କ

ପ୍ରବର୍ତ୍ତିତ ଇସଲାମ ଧର୍ମ ।

ମୁସଲମାନି—ଯା. ବି. ମୁସଲମାନର ଆଚରଣ,(ବିଂ)ମୁସଲମାନ ସମ୍ବନ୍ଧୀୟ ।

ମୁସଲ୍ୟ—ହି. ବିଂ. ମୁଷଳ ଦ୍ୱାରା ହନନ ଯୋଗ୍ୟ ବା ବଧ୍ୟ ।

ମୁସା—ବି. ବାଇବେଲ ଗ୍ରନ୍ଥ ପ୍ରସିଦ୍ଧ ଜଣେ ଧର୍ମପ୍ରବର୍ତ୍ତକ ।

ମୁସାହର—ପଶ୍ଚିମ ବଙ୍ଗବାସୀ ଆଦିମ ଜାତିବିଶେଷ ।

ମୁସାହେବ—ଯା.ସଙ୍ଗୀ,ତୋଷାମଦକାରୀ, ବଶ୍ୟତ ଅନୁଚର ।

ମୁସ୍ତ—ପୁଂ.ବି. (ମୁସ୍ତ+କ.ଅ)ମୁସ୍ତକ, ମୁଥା, ଦୁବଘାସ, ଏକପ୍ରକାର ଘାସର ସୁଗନ୍ଧମୂଳ, ଯଥା, (ଯା:ବି.), ଥର, ବାର, କିସ୍ତି ।

ମୁସ୍ତକ—ବି. (ମୁସ୍ତ+କ) ମୁସ୍ତଦେଖ, ସ୍ଥାନର ବିଷଭେଦ ।

ମୁସ୍ତକିମ୍—ଯା. ବିଂ. ସରଳ, ସତ୍, ଯଥାର୍ଥବାଦୀ ।

ମୁସ୍ତଜି—ଯା. ବି. ମୁସ୍ତାଜିର ଦେଖ ।

ମୁସ୍ତଣ୍ଡା—ଗ୍ରା. ବି. ହୃଷ୍ଟପୁଷ୍ଟ ଓ ବଳିଷ୍ଠ, ଦୁଷ୍ଟ ।

ମୁସ୍ତଫା—ଯା. ବି. ମୁସଲମାନ ଉଚ୍ଚବଂଶୀୟ ବ୍ୟକ୍ତିଙ୍କ ନାମପୂର୍ବରେ ଲାଗିବା ଉପାଧିବିଶେଷ, ହଜରତ୍ ମହମ୍ମଦଙ୍କ ନାମାନ୍ତର ।

ମୁସ୍ତର—ଯା. ବି. ମୁସ୍ତ ଦେଖ ।

ମୁସ୍ତସି—ଯା. ପୁଂ. ବି. ସମ୍ପତ୍ତିକ୍ରୟକାରୀ, କ୍ରେତା । [ ଦେଖ ।

ମୁସ୍ତା—ସ୍ତ୍ରୀ. ବି. ( ମୁସ୍ତ+ଆ ) ମୁସ୍ତ

ମୁସ୍ତାଜ(ଦା)ର—ଯା. ବି. ଯେଉଁଲୋକ ଜମିଦାରୀ ଆଦିରୁ ଖଜଣା ଅସୁଲ କରିବାକୁ ଜମିଦାରଙ୍କ ଠାରୁ ଇଜାରା ନିଏ, ଠିକାଦାର । [ ବା ପଦ ।

ମୁସ୍ତାଜତି—ଯା.ବି.ମୁସ୍ତାଜରର କାର୍ଯ୍ୟ

ମୁସ୍ତାଫ—ଯା,ବି. ବେଶଭୂଷାରେ ସଜ୍ଜିତ କରଣ । [ ଶୂକର ।

ମୁସ୍ତାଦ—ପୁଂ.ବି. (ମୁସ୍ତ+ଅଦ୍+ଅ)

ମୁସ୍ତାଭ—କ୍ଲୀ. ବି. ମୁସ୍ତକବିଶେଷ, ନାଗରମୁଥା ।

ମୁସ୍ରୁ—ପୁଂ. ବି. (ମୁସ୍+ରୁ) ମୁଷ୍ଟି ।

ମୁସ୍ତୈଜ୍—ଯା. ବିଂ. ଉଦ୍ୟତ ।

ମୁସ୍ର—କ୍ଲୀ. ବି. (ମୁସ୍+ର) ମୁସଳ. ନୟନଜଳ, ଲୋତକ ।

ମୁହ୍କମ—ଯା. ବି. ଦୃଢ଼ବନ୍ଧ ।

ମୁହଁ—ଗ୍ରା. ବି. (ସଂ-ମୁଖ) ମୁଖ,ବଦନ, ପାଟି, ମୁଣ୍ଡ, ସମ୍ମୁଖଭାଗ, ଚେହେରା ।

ମୁହଁଅନ୍ଧାର—ଗ୍ରା.ବି.ମାଚ୍ଛୁଅନ୍ଧାର,ବେଳ ବୁଡ଼ିବା ସମୟର ସାମାନ୍ୟ ଅନ୍ଧାର, ପ୍ରାତଃକାଳର ଠିକ୍ ପୂର୍ବ ସମୟ ।

ମୁହଁଆଣ୍ଠ—ଗ୍ରା.ବି.ବାକ୍ୟରେ ଦାମ୍ଭିକତା, ମୁହଁଭୁରୁଡ଼ୁ ।

ମୁହଁକଥା—ଗ୍ରା.ବି.ବାକ୍ୟମାତ୍ରରେ ପର୍ଯ୍ୟବସିତ ବଚନ, ବାଗାଡ଼ମ୍ବର ।

ମୁହଁକରିବା—ଗ୍ରା.କ୍ରି. ମୁଖଭଙ୍ଗୀ କରିବା, କୌଣସିଆଡ଼କୁ ମୁଖ ବୁଲାଇବା ।

ମୁହଁକୁଏଡ଼େକରିବା—ଗ୍ରା.କ୍ରି.କ୍ରୋଧ ବା ଅଭିମାନରେ ମୁହଁ ଫୁଲାଇବା ।

ମୁହଁକୁଗୁହଁବା—ଗ୍ରା.କ୍ରି. ପରର ମୁଖାପେକ୍ଷୀ ହେବା,(ଲ.ଅର୍ଥ)ଅନ୍ୟ ବ୍ୟକ୍ତିକୁ ଉପ୍ରୋଧ ରଖିବା ।

ମୁହଁକୁମୁହଁ—ଗ୍ରା. ଅବ୍ୟ, ସାମନାସାମନି, ମୁହାଁମୁହିଁ ।

ମୁହଁକୁମୁହଁନଦିଶିବା—ଗ୍ରା.ବି. (ଅନ୍ଧକାରଯୋଗୁଁ) ସମ୍ମୁଖରେ ଠିଆହୋଇଥିବା ବ୍ୟକ୍ତିଦ୍ୱୟ ପରସ୍ପର ମୁଖ ଦେଖି ନ ପାରିବା, ଗାଢ଼ ଅନ୍ଧକାର ।

ମୁହଁଖର—ଗ୍ରା.ପୁଂ.ବିଂ.କଟୁଭାଷୀ,ମୁଖର ।

ମୁହଁଖରାପ—ଗ୍ରା.ବି. କଟୁଭାଷଣ ।

ମୁହଁଖୋଲିବା—ଗ୍ରା.କ୍ରି. କଥାକହିବା ।

ମୁହଁଚଲୁ—ଗ୍ରା.ବି. ମୁଖକଣ୍ଡୁ, କଥା କହିବାକୁ ପ୍ରବଳ ସ୍ପୃହା, ମୁଖରତା ।

ମୁହଁଗାଣ୍ଠିହେବା—ଗ୍ରା. ବି. ମୁଖୋଚ୍ଚାରିତ ବାକ୍ୟ ପ୍ରତିପାଳିତ ନ ହେବା ।

ମୁହଁଗାଲୁ—ଗ୍ରା.ବି. ଦାମ୍ଭିକତା, କୌଣସି ସତ୍ୟ କଥାକୁ ନ ମାନିବା ।

ମୁହଁଗାଲୁଭାଙ୍ଗିଦେବା—ଗ୍ରା.କ୍ରି.ପ୍ରହାରଦ୍ୱାରା ଦାମ୍ଭିକତାକୁ ଚୂର୍ଣ୍ଣ କରିଦେବା ।

ମୁହଁଗୋଜକରିବା-ଗ୍ରା.କ୍ରି. ଅଭିମାନହେତୁ ଓଷ୍ଠଦ୍ୱୟକୁ ଲମ୍ବାଇବା ।

ମୁହଁଘୋଡ଼ାଇବା—ଗ୍ରା.କ୍ରି. ବସ୍ତ୍ରଦ୍ୱାରା ବା ଅବଗୁଣ୍ଠନଦ୍ୱାରା ମୁହଁକୁ ଆବୃତ କରିବା

ମୁହଁଗୃହଁବା—ଗ୍ରା. କ୍ରି. ମୁଖ ଦେଖିବା, ଅନ୍ୟର ମୁଖାବଲୋକନ କରିବା, ପରର ମୁଖାପେକ୍ଷୀ ହେବା ।

ମୁହଁଚୁହାଁ— ଗ୍ରା. ବି. ମୁଖାବଲୋକନ, ଶ୍ୱଶୁର ଘରୁ ଆଠମଙ୍ଗଳାଦିନ କନ୍ୟାକୁ ଦେବା ଉପଢୌକନ, (ବିଂ) ମୁଖାପେକ୍ଷୀ, ମୋହବତ୍ ନେଇ ଯଥାର୍ଥ କହୁନଥିବା ।

ମୁହଁଚୁହାଁ ଚୁହିଁ—ଗ୍ରା.ବି. ଅନ୍ୟୋନ୍ୟ ମୁଖାବଲୋକନ ।

ମୁହଁଛୁଅଡ଼ା—ଗ୍ରା.ବି.ବିରକ୍ତି ପ୍ରକାଶପୂର୍ବକ ମୁଖଭଙ୍ଗୀ ।

ମୁହଁଛୁଞ୍ଚାଡ଼ିବା—ଗ୍ରା. କ୍ରି. ବିରକ୍ତି ବା ଘୃଣାରେ ମୁହଁ କୁଞ୍ଚିତ କରିବା ।

ମୁହଁଘ୍ରୁଡ଼ିବା—ଗ୍ରା.କ୍ରି. ଦାନ୍ତ ନେସେଡ଼ିବ., ନିର୍ଲଜ୍ଜଭାବରେ ହସିବା ।

ମୁହଁଜଳିଯିବା—ଗ୍ରା. ବି. ଲଜ୍ଜାରେ ମୁଖ ବିବର୍ଣ୍ଣ ହେବା ।

ମୁହଁଜୋର୍—ଗ୍ରା. ବି. ଦାମ୍ଭିକତା, ବାକ୍ଶକ୍ତିର ପ୍ରଖରତା,(ବିଂ) ବଚନକୁଶଳ ।

ମୁହଁଟାଣ—ଗ୍ରା.ପୁଂ ଓ ସ୍ତ୍ରୀ. ବିଂ. ଦାମ୍ଭିକ, ଭୁରୁଡ଼ିଆ,(ବି) ଦାମ୍ଭିକତା,ମୁହଁଗାଲୁ ।

ମୁହଁଘୁଞ୍ଚିବା—ଗ୍ରା.କ୍ରି.ମୋହବତ୍ ତୁଟାଇ ଗାଳିଦେବା ।

ମୁହଁଥିବା—ଗ୍ରା. ବି. କୌଣସି ବ୍ୟକ୍ତିର ନିକଟରେ ଅନୁରୋଧ ବା ପ୍ରାର୍ଥନା କରିପାରିବାର ସାମର୍ଥ୍ୟ ।

ମୁହଁଦେଖାଇବା—ଗ୍ରା. କ୍ରି. ( ଲ.ଅର୍ଥ ) ଲଜ୍ଜାରେ ନତମସ୍ତକ ନ ହୋଇ ସମାଜରେ ସ୍ୱଚ୍ଛନ୍ଦରେ ବିଚରଣ କରିବା ।

ମୁହଁଦେଖାଯିବା—ଗ୍ରା. କ୍ରି. ଦର୍ପଣରେ ମୁଖ ପ୍ରତିଫଳିତ ହେବା ।

ମୁହଁଦେଖିବା—ଗ୍ରା: କ୍ରି. ମୁହଁଗୃହଁବା ଦେଖ,ଆପଣାର ମୁଖକୁ ଦର୍ପଣ ସାହାଯ୍ୟରେ ଦେଖିବା ।

ମୁହଁଦେବା—ଗ୍ରା. କ୍ରି. କୌଣସି ବ୍ୟକ୍ତିକୁ

ଅଯଥା ପ୍ରଶଂସା ଦେବା ।

ମୁହଁନଗୃହିଁବା—ଗ୍ରା.କ୍ରି.ଦୋଷୀ ବା ଅପରାଧୀକୁ ନ ଦେଖିବା ।

ମୁହଁପାଇବା—ଗ୍ରା. କ୍ରି. ଅଯଥା ଉତ୍ସାହ ବା ପ୍ରଶଂସା ଦେବା, ମୁହଁ ବଢ଼ିବା ।

ମୁହଁପାଣି-ଗ୍ରା.ବି. (ଲ. ଅର୍ଥ)ମୁହଁବାଲିଙ୍ଗି, ବାଗାଡ଼ମ୍ବର ।

ମୁହଁପାଣିମୁହଁରେମାରିବା—ଗ୍ରା. ବି. ବାହାଦୁର ବା ଦାମ୍ଭିକତାପୂର୍ଣ୍ଣ ଉକ୍ତିର ଯଥାର୍ଥ ଉତ୍ତର ପାଇବାଦ୍ୱାରା ଲଜ୍ଜିତ ହେବା, ଶିକ୍ଷା ପାଇବା, ଅକୃତକାର୍ଯ୍ୟ ହେବା ।

ମୁହଁପୋଡ଼ା—ଗ୍ରା.ବି. କୌଣସି ବ୍ୟକ୍ତି ପ୍ରତି ଅତ୍ୟନ୍ତ ବିରକ୍ତି ହେବା ରୂପ ଆଭିଚାରିକ କର୍ମ, ଗାଳିବିଶେଷ ।

ମୁହଁଫିଟିବା—ଗ୍ରା.କ୍ରି.ବାକ୍ୟ ଉଚ୍ଚାରଣ କରିବା ।

ମୁହଁଫୁଲ(ଲେ)ଇବା--ଗ୍ରା.କ୍ରି. କ୍ରୋଧାଦି ଯୋଗୁଁ ମୁହଁକୁ ସ୍ଫୀତ କରି କାହାକୁ କିଛି ନ କହିବା ।

ମୁହଁଫୁଲାଫୁଲି—ଗ୍ରା.ବି ଓ ବିଂ. ପରସ୍ପର ପରସ୍ପର ପ୍ରତି ଅଭିମାନ କରିବା ।

ମୁହଁବଢ଼ିବା—ଗ୍ରା. ବି. ଅଯଥା ପ୍ରଶଂସା ପାଇବାଯୋଗୁଁ ଆସ୍ପର୍ଦ୍ଧା ବୃଦ୍ଧି ହେବା ।

ମୁହଁବନ୍ଦ—ଗ୍ରା.ବି. କଥା କହିବା କ୍ଷମତାର ରାହିତ୍ୟ ।

ମୁହଁବନ୍ଦକରିବା—ଗ୍ରା. କ୍ରି. ମୌନାବଲମ୍ବନ କରିବା, (ଲ.ଅର୍ଥ) ଉପଯୁକ୍ତ ଯୁକ୍ତି ଆଦିଦ୍ୱାରା କୌଣସି ବ୍ୟକ୍ତିକୁ ଲଜ୍ଜିତ ଓ ନିରୁତ୍ତର କରାଇବା ।

ମୁହଁବାଲିଙ୍ଗି - ଗ୍ରା.ବି. ବୃଥା ଆସ୍ଫାଳନ ।

ମୁହଁବାନ୍ଧିବା—ଗ୍ରା.କ୍ରି.ତନ୍ତ୍ରମନ୍ତ୍ର ପ୍ରୟୋଗଦ୍ୱାରା ବାକ୍‌ଶକ୍ତି ଲୋପକରିବା, ଅତ୍ୟଧିକ ମିଷ୍ଟତାଯୋଗୁଁ ଖାଦ୍ୟରେ ଅରୁଚି ଜନ୍ମାଇବା ।

ମୁହଁବୁଜିବା—ଗ୍ରା.କ୍ରି. (ନିଜେ) ଚୁପ୍ ହେବା, କଥା ନ କହିବା ।

ମୁହଁବୁଲାଇବା—ଗ୍ରା. କ୍ରି. ଘୃଣାଆଡ଼କୁ ଚାହିଁବା ।

ମୁହଁମରିବା—ଗ୍ରା.ବି.ଉତ୍ସାହ ବା ଉଦ୍ୟମ କମିଯିବା,ସରସ ମୁହଁ ବିରସ ହେବା ।

ମୁହଁମାଡ଼ିପଡ଼ିରହିବା—ଗ୍ରା. କ୍ରି. କୌଣସି ସ୍ଥାନରେ ସକଳପ୍ରକାର ଦୁଃଖ କଷ୍ଟସହି ରହିବା ।

ମୁହଁମାରିବା—ଗ୍ରା. କ୍ରି. ଖାଦ୍ୟଦ୍ରବ୍ୟକୁ ନ ଖାଇ କେବଳ ମୁଖଦ୍ୱାରା ସ୍ପର୍ଶ କରିବା, କୌଣସି ସ୍ଥାନରେ କିଛିସମୟ ନ ରହି କେବଳ ସେହି ସ୍ଥାନଦେଇ ଚାଲି ଆସିବା ।

ମୁହଁମୋଡ଼ିବା—ଗ୍ରା. କ୍ରି. ବେଖାତିର ବା ଘୃଣାସୂଚକ ମୁଖଭଙ୍ଗି ।

ମୁହଁରଖିବା—ଗ୍ରା.କ୍ରି.ମାନରକ୍ଷା କରିବା, ଉପ୍ରୋଧ ରକ୍ଷା କରିବା ।

ମୁହଁରୁପାଣିଶୁଖିଯିବା—ଗ୍ରା. ବି. ସରମପଣିଆ ଭାଙ୍ଗିଯିବା ।

ମୁହଁରୁବାହାରିପଡ଼ିବା—ଗ୍ରା. କ୍ରି. ନିଜର ଅସାବଧାନତା ଯୋଗୁଁ(କୌଣସିବାକ୍ୟ) ହଠାତ୍ ପ୍ରକାଶିତ ହେବା ।

ମୁହଁରେ କାଳି ଲଗାଇବା—ଗ୍ରା. କ୍ରି. କୌଣସି ବ୍ୟକ୍ତିକୁ ଅପମାନିତ ଓ ଅପଦସ୍ତ କରିବା ।

ମୁହଁରେନିଆଁ—ଗ୍ରା.ଅବ୍ୟ. (ମୃତ୍ୟୁକାମନା ପୂର୍ବକ ଗାଳି) ତୁ ମର, ମୁଖାଗ୍ନି ।

ମୁହଁରେନିଆଁଦେବା—ଗ୍ରା. କ୍ରି. ମୃତବ୍ୟକ୍ତିର ମୁଖରେ ମୁଖାଗ୍ନି ଦେବା, ମୁହଁରେ ନିଆଁ ବୋଲି ଗାଳିଦେବା ।

ମୁହଁରେପାଣିଦେବା—ଗ୍ରା. କ୍ରି. ମୁହଁ ଧୋଇବା, ଉପବାସ ପରେ ପ୍ରଥମେ ଜଳଗ୍ରହଣ କରିବା ।

ମୁହଁରେପାଣିମାରିବା—ଗ୍ରା. କ୍ରି. ମୁଖ ପ୍ରକ୍ଷାଳନ କରିବା, ମୁହଁ ଧୋଇବା ।

ମୁହଁରେପାଲଚୁଣାମାରିବା—ଗ୍ରା. କ୍ରି. ତୁନିହୋଇ ରହିବା ।

ମୁହଁରେବାଡ଼ବତାନଥିବା—ଗ୍ରା.ବି. ଆଗପଛକୁ ଦୃଷ୍ଟି ନ ରଖି ଯାହା ଆସିଲା ତାହା କହିବା, ଅସଙ୍ଗତ ରୂପେ କଥା କହିବା ।

ମୁହଁରେବାଡ଼ିଏ ଦେବା--ଗ୍ରା.କ୍ରି.କୌଣସି ବ୍ୟକ୍ତିକୁ ସାମନାସାମନି ଅପ୍ରିୟ ଉତ୍ତର ଦେଇ ତୁନି କରିଦେବା ।

ମୁହଁସଞ୍ଜ(ନ୍ଧ୍ୟା)---ଗ୍ରା. ବି. ପ୍ରଦୋଷ, ଗୋଧୂଳି ବେଳା ।

ମୁହଁସମ୍ଭାଳିବା---ଗ୍ରା. କ୍ରି. ସାବଧାନ ହୋଇ କଥା କହିବା ।

ମୁହଁସୁଆଗ---ଗ୍ରା. ବି. ଶୁଖିଲା ସୁଆଗ, ବାହ୍ୟ ଆଦର ।

ମୁହଁସୁଆଦ—ଗ୍ରା.ବି.ତୁଣ୍ଡସୁଆଦ,ଭୋଜନ ଶେଷରେ ମିଷ୍ଟାନ୍ନ ଗ୍ରହଣ ପୂର୍ବକ ମୁଖ ଦ୍ୱାରା ମଧୁର ସ୍ୱାଦଗ୍ରହଣ, କଥାବାର୍ତ୍ତା ଦ୍ୱାରା ଆନନ୍ଦ ଉପଲବ୍ଧି ।

ମୁହଁହଲାଇବା—ଗ୍ରା. କ୍ରି. ଅସମ୍ମତିର ଚିହ୍ନସ୍ୱରୂପ ମୁଣ୍ଡକୁ ଚାଳନ କରିବା, ତାଚ୍ଛଲ୍ୟ ପୂର୍ବକ କଥା କହିବା ।

ମୁହଁହାତ—ଗ୍ରା. ବି. ମୁଖ ଓ ହସ୍ତ ।

ମୁହଁହେବା—ଗ୍ରା.ବିଂ.ରାଜା ବା କୌଣସି କ୍ଷମତାବାନ୍ ବ୍ୟକ୍ତି ଯାହାର ପରାମର୍ଶ ବା କଥା ଗ୍ରହଣ କରନ୍ତି ।

ମୁହାଁ—ଗ୍ରା. ବି. ଦଧିମନ୍ଥନ ଅଭିମୁଖୀ ହେବା ମୁଖା, ଛେଳିଆଦିଙ୍କର ମୁଖର ରୋଗବିଶେଷ, ଏକପ୍ରକାର ବାଷ୍ପସିଦ୍ଧ ପିଠା ।

ମୁହାଁଇବା—ଗ୍ରା. କ୍ରି. ମନ୍ଥନ କରାଇବା, ମୁଖ ବୁଲାଇବା, ଚୁଲିରେ କାଠ ଭର୍ତ୍ତି କରିବା, ମେଣ୍ଟାଇବା ।

ମୁହାଁଟି—ଗ୍ରା. ବି. ଚାଳଘରର ପ୍ରଥମ ଗଡ଼, ଠିପି, ସାମନା ।

ମୁହାଁଣ—ଗ୍ରା. ବି. ନଦୀ ବା ଉପନଦୀ ସମୁଦ୍ର ଓ ନଦୀରେ ପଡ଼ିବା ବା ମିଶିବା ସ୍ଥାନ ।

ମୁହାଁମୁହିଁ—ଗ୍ରା.ବିଂ. ପରସ୍ପର ସମ୍ମୁଖବର୍ତ୍ତୀ, (କ୍ରି. ବିଂ) ସାମନାସାମନି ହାବୁଡ଼ିବା ପ୍ରକାରେ ।

ମୁହାଁସ—ଗ୍ରା. ବି. ଦାରା ପୁତ୍ରାଦିଙ୍କ ପ୍ରତି ମାୟାମମତା, ବିଷୟାଭିଳାଷ, ଇଚ୍ଛା ।

ମୁହିଁର—ପୁଂ. ବି. (ମୁହ୍ + ଣ.ଇର) କନ୍ଦର୍ପ, ସ୍ନେହ, ପ୍ରେମ, ଆକାଙ୍କ୍ଷା,(କ.-ଇର) ମୂର୍ଖ,ନିର୍ବୋଧ ବ୍ୟକ୍ତି, ( ବିଂ )

ନିର୍ବୋଧ,ଅସଭ୍ୟ, ଜଡ଼, (ସ୍ତ୍ରୀ) ମୁହୁରୀ।
ମୁହଁ—ଗ୍ରା. ସର୍ବ. ମୁଁ, ଆମ୍ଭେ।
ମୁହାଁ—ଗ୍ରା. ସ୍ତ୍ରୀ. ବିଂ. ମୁଖଯୁକ୍ତ।
ମୁହୁଁ—ଅବ୍ୟ. ମୁହୁଃ ଦେଖ।
ମୁହୁଃ—ଅବ୍ୟ. ବାରମ୍ବାର, ପୁନଃପୁନଃ, ସଦ୍ୟଃ, ତତ୍କ୍ଷଣାତ୍, ଅତ୍ୟନ୍ତ।
ମୁହୁଣ୍ଡା—ଗ୍ରା. ବି. ମୁହଁ, ସାମନାପାଖ।
ମୁହୁର—ପୁଂ. ବିଂ. (ମୁହ୍+ଉର) ନିର୍ବୋଧ, (ସ୍ତ୍ରୀ) ମୁହୁରୀ।
ମୁହୁରଙ୍ଗା—ଗ୍ରା. ବି. ମହୁରୀ।
ମୁହୁର୍ଭାଷା—ସ୍ତ୍ରୀ. ବି. ପୁନଃପୁନଃ କଥନ, ଦ୍ୱିରୁକ୍ତ, କାବ୍ୟର ଅଳଙ୍କାରବିଶେଷ।
ମୁହୁର୍ଭୁକ୍—ପୁଂ. ବି. (ମୁହୁଃ+ଭୁଜ୍+କ୍ୱିପ୍) ଅଶ୍ୱ, ଘୋଡ଼ା।
ମୁହୁର୍ମୁହୁ—ଅବ୍ୟ. ବାରମ୍ବାର, ପୁନଃପୁନଃ, ଘନଘନ।
ମୁହୁର୍ବଚଃ—କ୍ଲୀ.ବି.ପୁନଃପୁନଃ କଥନ।
ମୁହୁସ୍ତାସ୍ୱ—ପୁଂ. ବିଂ. ପୁନଃପୁନଃ ସ୍ଫୁଟନଶୀଳ।
ମୁହୁଷ୍କାମ—ପୁଂ. ବିଂ. ପୁନଃପୁନଃ ପ୍ରାପ୍ତେଚ୍ଛୁ, ଅହରହ ବାସନାଶୀଳ।
ମୁହୂର୍ତ୍ତ—ବି. (ମୁର୍ଚ୍ଛ+କ.ତ) ଦ୍ୱାଦଶକ୍ଷଣ ପରିମିତ କାଳ, ଘଟିକାଦ୍ୱୟ, ଦୁଇଦଣ୍ଡ ୪୮ ମିନଟ୍ କାଳ, ଅତି ଅଳ୍ପକାଳ, ଜ୍ୟୋତିର୍ବିଦ୍।
ମୁହୂର୍ତ୍ତିକ—ବି. ମୁହୂର୍ତ୍ତ ଦେଖ, (ବିଂ) ମୁହୂର୍ତ୍ତ ସମ୍ବନ୍ଧଯୁକ୍ତ, (ଗ୍ରା.ବି) ଏକ ମୁହୂର୍ତ୍ତମାତ୍ର କାଳ।
ମୁହୂର୍ତ୍ତଗଣପତି--ପୁଂ.ବି.ସମୟ ନିର୍ଣ୍ଣାୟକ ପ୍ରସିଦ୍ଧ ଜ୍ୟୋତିର୍ଗ୍ରନ୍ଥ।
ମୁହୂର୍ତ୍ତମାତ୍ର—ଅବ୍ୟ. କ୍ଷଣକାଳପାଇଁ।
ମୁହୂର୍ତ୍ତା—ସ୍ତ୍ରୀ. ବି. ଦକ୍ଷକନ୍ୟାଭେଦ।
ମୁହୂର୍ତ୍ତେକ—ଗ୍ରା. ବି. ଏକ ମୁହୂର୍ତ୍ତ ବା ଅଳ୍ପକ୍ଷଣକାଳ।
ମୁହେଁ—ଗ୍ରା. ବି. ମୁହଁରେ ଦେଖ।
ମୁହେଁମୁହେଁ—ଗ୍ରା.ଅବ୍ୟ.ସାମନାସାମନି, ସମ୍ମୁଖରେ।
ମୁହେଁମୁହେଁନାହିଁବା(ଦେଖିବା, ହେବା)—ଗ୍ରା. କ୍ରି. (କୌଣସି ବ୍ୟକ୍ତିର ଅତି ପ୍ରିୟ ବସ୍ତୁ ବା ବ୍ୟକ୍ତିବିଚ୍ଛେଦ ବା ମୃତହେତୁ) ସର୍ବଦା ଆଖି ଆଗରେ ବା ନିକଟରେ ଥିଲାପରି ପ୍ରତୀତ ହେବା।
ମୁହେର—ପୁଂ. ବିଂ. (ମୁହ୍+ଏର) ମୂର୍ଖ, ମୂଢ଼।
ମୁହ୍ୟମାନ—ପୁଂ.ବି. (ମୁହ୍+କ.ଆନ) ଯାହାର ଚଉଧାତୁର ବିକୃତି ଘଟିଅଛି, ମୋହପ୍ରାପ୍ତ, ଅଚେତ ହୋଇଥିବା।
ମୁହ୍ଲାକା—ଗ୍ରା. ବି. ଉପରୋଧ।
ମୂ—ସ୍ତ୍ରୀ. ବି. (ମୂ+ଭା.କ୍ୱିପ୍) ବନ୍ଧନ।
ମୂକ—ପୁଂ. ବିଂ. (ମୂ+କ.କ) ବାକ୍‌ଶକ୍ତିରହିତ, ଘୁଙ୍ଗା, ଦରିଦ୍ର, ନିରୁପାୟ, (ପୁଂ.ବି-ମୂ.କ) ମତ୍ସ୍ୟ,ଦୈତ୍ୟ,ଦାନବଭେଦ, ଦୀନଜନ,ନାଗରର ବ୍ୟକ୍ତି।
ମୂଃ—ବି. (ମୂର୍ଚ୍ଛ+ଭା.ଅ) ମୂର୍ଚ୍ଛା।
ମୂକତ(ତ୍ୱ)—ବି. ମୂକତ୍ୱ,ମୂକର ଭାବ, ବାକ୍‌ଶକ୍ତିହୀନତା, ଦୀନତା।
ମୂକସାକ୍ଷୀ—ବି. (କ.ଧା) ବାକ୍‌ଶକ୍ତିରହିତ ସାକ୍ଷୀ।
ମୂକାମ୍ବିକା—ସ୍ତ୍ରୀ.ବି. ଦୁର୍ଗାଙ୍କ ନାମାନ୍ତର, ନାଗର ଭେଦ।
ମୂକିମା—ପୁଂ. ବି. ମୂକତା ଦେଖ।
ମୂଢ଼—ବିଂ. (ମୁହ୍+କ.ତ) ମୁଗ୍ଧ, ମୋହାଚ୍ଛନ୍ନ, ଭ୍ରାନ୍ତ, ଶୀତଳ, ଅଜ୍ଞ, ମୂର୍ଖ, ବିବେକହୀନ, ବାଳ, ଜଡ଼, ତନ୍ଦ୍ରିତ, ନିଶ୍ଚେଷ୍ଟ, (ସ୍ତ୍ରୀ) ମୂଢ଼ା, (ବି) ମୂର୍ଚ୍ଛା, ମୂଢ଼ବ୍ୟକ୍ତି।
ମୂଢ଼ଗର୍ଭ—ଗର୍ଭସ୍ରାବାଦି ରୋଗ, ପ୍ରସବକାଳରେ ଅତି କଷ୍ଟରେ ସନ୍ତାନ ପ୍ରସବ ହେବା, ଗର୍ଭସ୍ଥ ମୃତ ଭ୍ରୂଣ।
ମୂଢ଼ଚେତନ--ପୁଂ.ବିଂ.(ବ.ବ୍ରୀ)ନିର୍ବୋଧ, ବ୍ୟାକୁଳଚିତ୍ତ, ସରଳ, ମୂର୍ଖ।
ମୂଢ଼ଚେତାଃ--ପୁଂ. ବିଂ. (ବ.ବ୍ରୀ) ମୂଢ଼ଚେତନ, ନିର୍ବୋଧ, ମନ୍ଦମତି, ମୂର୍ଖ. ଯାହାର ବୁଦ୍ଧି ଲୋପ ଘଟିଅଛି।
ମୂଢ଼ତା(ତ୍ୱ)—ବି. (ମୂଢ଼+ତା,ତ୍ୱ) ମୂର୍ଖତ୍ୱ, ମୂଢ଼ଭାବ, ଜଡ଼ତା।
ମୂଢ଼ଧୀ—ପୁଂ. ବିଂ. (ବ.ବ୍ରୀ) ମନ୍ଦବୁଦ୍ଧି, ମୂଢ଼ମତି।
ମୂଢ଼ପ୍ରଭୁ—ପୁଂ.ବି. ମୂଢ଼ଶ୍ରେଷ୍ଠ,ବୋକାଙ୍କ ସର୍ଦ୍ଦାର।
ମୂଢ଼ମତି—ପୁଂ. ବିଂ. (ବ.ବ୍ରୀ) ମନ୍ଦବୁଦ୍ଧି, ମୂର୍ଖ।
ମୂଢ଼ବାତ—ବି.କୌଣସି କୋଷ ମଧ୍ୟରେ ଆବଦ୍ଧ ବାୟୁ।
ମୂଢ଼ାତ୍ମା—ପୁଂ. ବିଂ. ନିର୍ବୋଧ, ବୋକା, ଅଜ୍ଞାନ, ଚଞ୍ଚଳଚିତ୍ତ।
ମୂଢ଼େଶ୍ୱର—ପୁଂ.ବି. ଏକ ବିଖ୍ୟାତ ସାଧୁ, (ବିଂ) ଅତ୍ୟନ୍ତ ବୋକା।
ମୂତ—ବିଂ. (ମୂ+ତ)ବଦ୍ଧ, (ବି)ବନ୍ଧନ, ଧାନ୍ୟରକ୍ଷଣାର୍ଥ ତୃଣମୟ ଆଧାରବିଶେଷ, ପୁଡୁଗ, (ଗ୍ରା.ବି) ପ୍ରସ୍ରାବ।
ମୂତା(ତେ)ଇବା—ଗ୍ରା. କ୍ରି. ମୁତାଇବା ଦେଖ।
ମୂତିବା—ଗ୍ରା. କ୍ରି. ମୁତିବା ଦେଖ।
ମୂତୁରୀ(ରି)—ଗ୍ରା. ବିଂ. ମତୁରୀ ଦେଖ।
ମୂତ୍ର—କ୍ଲୀ.ବି. (ମୂତ୍ର+ଅ) ଉପସ୍ଥନିର୍ଗତ ଜଳ, ପ୍ରସ୍ରାବ।
ମୂତ୍ରକର—ବିଂ. (ମୂତ୍ର+କୃ+ଅ) ମୂତ୍ରଜନକ।
ମୂତ୍ରକାରକ—ବିଂ. ଯେଉଁ ଔଷଧ ବା ଖାଦ୍ୟଦ୍ୱାରା ମୂତ୍ରର ପରିମାଣ ବେଶି ହୁଏ।
ମୂତ୍ରକାରୀ—ବିଂ. ମୂତ୍ରକାରକ ଦେଖ।
ମୂତ୍ରକୃଚ୍ଛ୍ର--କ୍ଲୀ.ବି.(ବ.ବ୍ରୀ) ରୋଗବିଶେଷ, କଷ୍ଟସହିତ ମୂତ୍ରତ୍ୟାଗ, ମୂତ୍ରରୋଧ ରୋଗ, ଅଶ୍ମରୀକୃଚ୍ଛ୍ର।
ମୂତ୍ରକୋଶ—ପୁଂ.ବି.(୬ତତ୍)ମୂତ୍ରାଶୟ, ଯେଉଁ ସ୍ଥାନରେ ମୂତ୍ର ଥାଏ।
ମୂତ୍ରକ୍ଷୟ—ପୁଂ. ବି. (୬ତତ୍) ମୂତ୍ରାଘାତ ରୋଗ।
ମୂତ୍ରଗ୍ରନ୍ଥି—ପୁଂ. ବି. ମୂତ୍ରାଘାତ ରୋଗଭେଦ, ମୂତ୍ରାଶୟର ଉପରେ ଥିବା ଗଣ୍ଠି।
ମୂତ୍ରଗ୍ରହ—ପୁଂ. ବି. ଅଶ୍ୱର ମୂତ୍ରରୋଗବିଶେଷ।
ମୂତ୍ରଜଠର—ପୁଂ.ବି.ମୂତ୍ରାଘାତ ରୋଗବିଶେଷ।
ମୂତ୍ରତ୍ୟାଗ—ବି.ପ୍ରସ୍ରାବକରିବା,ମୂତିବା।
ମୂତ୍ରଦଶକ—କ୍ଲୀ.ବି. ଦଶପ୍ରକାର ଜୀବର ମୂତ୍ର, ଯଥାः—ହାତୀ, ମେଣ୍ଢା, ଓଟ, ଗାଈ, ଛେଳି, ଘୋଡ଼ା, ମଇଁଷି,ଗଧ,

ମନୁଷ୍ୟ ଓ ସ୍ତ୍ରୀ ।
ମୂତ୍ରଦାହ—ବି. ପ୍ରସ୍ରାବପୋଡ଼ା ।
ମୂତ୍ରଦୋଷ—ପୁଂ. ବି. (ବ.ଗ୍ରା) ପ୍ରମେହ ରୋଗ, ମୂତ୍ରାଘାତ ରୋଗ, ମୂତ୍ରକୃଚ୍ଛ୍ର ରୋଗ ।
ମୂତ୍ରଦ୍ୱାର —ବି. ମୂତ୍ରରନ୍ଧ୍ର, ମୂତ୍ରନାଳ ଦେଖ ।
ମୂତ୍ରନାଳ—ବି. ମୂତ୍ରନିର୍ଗମ ବାଟ ।
ମୂତ୍ରନିକ୍ଷେପାସ୍ତ୍ର—ବି. ପ୍ରସ୍ରାବ ରୋଧ ହେଲେ ମୂତ୍ର ନିଃସାରଣାର୍ଥ ମୂତ୍ରାଶୟ ପର୍ଯ୍ୟନ୍ତ ପ୍ରବେଶ କରାଇବା ଶଲ୍ୟାସ୍ତ୍ର ।
ମୂତ୍ରନିରୋଧ— ପୁଂ.ବି. ମୂତ୍ରପ୍ରତିଘାତକ ରୋଗବିଶେଷ ।
ମୂତ୍ରନିରୋଧନ—ବି. (ଭିତରୁ) ପ୍ରସ୍ରାବ ତଳବ ହେଲାବେଳେ ପ୍ରସ୍ରାବ ନ କରିବା ।
ମୂତ୍ରନିବାରକ—ଯେଉଁ ଦ୍ରବ୍ୟ ସେବନ ବା ପ୍ରୟୋଗ ଦ୍ୱାରା ମୂତ୍ରର ପରିମାଣ ବା ପ୍ରବାହ କମିଯାଏ ।
ମୂତ୍ରପଞ୍ଚକ—କ୍ଲୀ.ବି. ପଞ୍ଚବିଧ ମୂତ୍ର,ଯଥା- ଗାଈ, ଛେଳି, ମେଷୀ, ମଇଁଷି ଓ ଗର୍ଦ୍ଦଭୀ, ଏହି ପାଞ୍ଚ ମାଈଜୀବର ମୂତ୍ର ।
ମୂତ୍ରପତନ—ପୁଂ. ବି. ଗନ୍ଧମାର୍ଜାର, ଶାଳିଆପତନୀ, ଚୁଚୁନ୍ଦ୍ରା, (ବି) ମୂତ୍ର- ଦ୍ୱାରରୁ ପ୍ରସ୍ରାବ ବାହାରିବା ।
ମୂତ୍ରପଥ—ପୁଂ. ବି. ଯୋନି, ଉପସ୍ଥ, ମୂତ୍ରନାଳ ।
ମୂତ୍ରପରୀକ୍ଷା--ବି.ରୋଗନିର୍ଣ୍ଣୟାର୍ଥ ରୋଗୀର ମୂତ୍ରର ଓ ରୋଗର ଲକ୍ଷଣମାନ ବିଜ୍ଞାନ ସାହାଯ୍ୟରେ ନିର୍ଣ୍ଣୟ କରିବା ପାଇଁ ମୂତ୍ରକୁ ଦେଖିବା ।
ମୂତ୍ରପାତ୍ର—ବି. ଯେଉଁ ପାତ୍ରରେ ପ୍ରସ୍ରାବ କରାଯାଏ ।
ମୂତ୍ରପିଣ୍ଡ—ବି. ମୂତ୍ରାଶୟ ।
ମୂତ୍ରପୁଟ—କ୍ଲୀ. ବି. ମୂତ୍ରାଶୟ, ନାଭିର ଅଧୋଭାଗ, ତଳିପେଟ ।
ମୂତ୍ରପୁରୀଷ—ବି. ମୂତ ଓ ଗୁହ ।
ମୂତ୍ରପ୍ରଣାଳୀ—ବି.ମୂତ୍ରନାଳ, ମୂତ୍ରନିର୍ଗମ ମାର୍ଗ ।
ମୂତ୍ରପ୍ରବାହ—ବି. ମୂତ୍ରଦାହ ଦେଖ ।
ମୂତ୍ରପ୍ରସେକ—ପୁଂ. ବି. ମୂତ୍ରନାଳ ।
ମୂତ୍ରଫଳ—ସ୍ତ୍ରୀ.ବି.କର୍କଟୀ, ତ୍ରପୁଷୀ,ଶଶା, କାକୁଡ଼ି ।
ମୂତ୍ରମାର୍ଗ—ବି. ମୂତ୍ରନାଳ ଦେଖ ।
ମୂତ୍ରରନ୍ଧ୍ର—ବି. ଯେଉଁ ଛିଦ୍ରବାଟେ ମୂତ୍ର ପଦାକୁ ବାହାରେ ।
ମୂତ୍ରରୋଧ—ପୁଂ.ବି. (ଭିତରୁ) ମୂତ୍ରକୃଚ୍ଛ୍ର ରୋଗ ।
ମୂତ୍ରରୋଧକ—ବି. (ଭିତରୁ)ମୂତ୍ର ନିରୋ- ଧକ ଦେଖ ।
ମୂତ୍ରଳ—କ୍ଲୀ.ବି.(ମୂତ୍ର + ଲା + ଅ)ରଙ୍ଗ, ତ୍ରପୁଷ, କାକୁଡ଼ି, (ବିଂ) ମୂତ୍ରବର୍ଦ୍ଧକ ଦେଖ । [ କାକୁଡ଼ି ।
ମୂତ୍ରଳା—ସ୍ତ୍ରୀ.ବି.(ମୂତ୍ରଳ+ଆ) କର୍କଟୀ,
ମୂତ୍ରବର୍ଦ୍ଧକ—ବିଂ.ପ୍ରସ୍ରାବବୃଦ୍ଧିକାରୀ(ଔଷଧ)
ମୂତ୍ରବହନାଡ଼ୀ--ସ୍ତ୍ରୀ.ବି.ମୂତ୍ରବହା ନାଡ଼ୀ, ଯେଉଁ ନାଡ଼ୀ ଦ୍ୱାରା ଆମାଶୟରୁ ବସ୍ତି- ଦେଶକୁ ମୂତ୍ର ନୀତହୁଏ ।
ମୂତ୍ରବାହ—ବିଂ.(ମୂତ୍ର+ବହ୍+କ.ଅ) ଯାହା ମୂତ୍ରକୁ ମୂତ୍ରାଶୟରୁ ବୋହିଆଣେ ।
ମୂତ୍ରବିଜ୍ଞାନ—ବି. ଯେଉଁ ଜ୍ଞାନ ବଳରେ ମୂତ୍ରର ନାନା ଭେଦ ଓ ଦୋଷାଦୋଷ ବିଚାର କରାଯାଏ ।
ମୂତ୍ରବୀଜକ—ବି. ଅସନବୃକ୍ଷ ।
ମୂତ୍ରବୃଦ୍ଧି—ସ୍ତ୍ରୀ. ବି. ଅନ୍ତ୍ରବୃଦ୍ଧି ରୋଗ, ମୂତ୍ରର ବୃଦ୍ଧି, ପ୍ରସ୍ରାବର ଆଧିକ୍ୟ ।
ମୂତ୍ରବେଗ—ବି.(ଭିତରୁ)ମୂତ ମାଡ଼ିବା ।
ମୂତ୍ରଶୁକ୍ର—କ୍ଲୀ.ବି. ରୋଗବିଶେଷ, ମୂତ୍ର ସଙ୍ଗେ ଶୁକ୍ରପତନ । [ ବେଦନା ।
ମୂତ୍ରଶୂଳ—ପୁଂ.ବି. ମୂତ୍ରଜନିତ ଶୂଳ ବା
ମୂତ୍ରଶୋଧନିକା—ସ୍ତ୍ରୀ. ବି. ଚିର୍ଭିଟିକା, ବନ କର୍କଟିକାବିଶେଷ ।
ମୂତ୍ରଶୈତ୍ୟ—କ୍ଲୀ.ବି.ଶ୍ଳେଷ୍ମଜ ମୂତ୍ରରୋଗ
ମୂତ୍ରସଂକ୍ଷୟ—ପୁଂ.ବି. ମୂତ୍ରକ୍ଷୟ ରୋଗ ।
ମୂତ୍ରସଙ୍ଗ—ପୁଂ. ବି. ମୂତ୍ରାଘାତ ରୋଗ- ଭେଦ, ମୂତ୍ରରୋଧ । [ ବିଶେଷ ।
ମୂତ୍ରସାଦ—ପୁଂ.ବି. ମୂତ୍ରାଘାତ ରୋଗ-
ମୂତ୍ରସ୍ଥଳୀ—ବି. ମୂତ୍ରରୋଧ ।
ମୂତ୍ରାଘାତ—ପୁଂ.ବି. (ବ.ଗ୍ରା) ପ୍ରସ୍ରାବ- ରୋଧକ ରୋଗବିଶେଷ ।
ମୂତ୍ରାତୀତ—ପୁଂ.ବି. ମୂତ୍ରାଘାତ ରୋଗ- ବିଶେଷ ।
ମୂତ୍ରାଧାର—ବି. (ଭିତରୁ) ମୂତ୍ରାଶୟ ।
ମୂତ୍ରାଧିକ୍ୟ—କ୍ଲୀ.ବି.ଶ୍ଳେଷ୍ମାଜନିତ ମୂତ୍ର ରୋଗଭେଦ, ବହୁମୂତ୍ରରୋଗ ।
ମୂତ୍ରାନୁବନ୍ଧ--ବି.ମୂତ୍ରକୃଚ୍ଛ୍ର,ପ୍ରସ୍ରାବପୋଡ଼ା
ମୂତ୍ରାମ୍ଳ—ବି. ମୂତ୍ରଜ ଅମ୍ଳରସବିଶେଷ
ମୂତ୍ରାଶୟ--ପୁଂ.ବି.ନାଭିର ଅଧୋଦେଶ, ମୂତ୍ରସ୍ଥଳୀ, ତଳିପେଟ ।
ମୂତ୍ରାଶୟାଶ୍ମ—ବି. ଅଶ୍ମରୀ ବା ପଥୁରିଆ- ରୋଗ ।
ମୂତ୍ରାଷ୍ଟକ—କ୍ଲୀ. ବି. (ଭିତରୁ) ଅଷ୍ଟବିଧ ପ୍ରାଣୀର ମୂତ୍ର, (ଯଥା-ଗୋ,ଛାଗ,ମେଷ, ମହିଷ, ଅଶ୍ୱ, ଗଧ, ଓଟ ଓ ହସ୍ତୀର ମୂତ୍ର) ।
ମୂତ୍ରାସାଦ—ପୁଂ.ବି. ମୂତ୍ରାଘାତରୋଗ ।
ମୂତ୍ରିକା—ବି. ଶଲ୍ଲକୀବୃକ୍ଷ ।
ମୂତ୍ରିତ—ପୁଂ. ବିଂ. (ମୂତ୍ର+ଇତ)କୃତ- ମୂତ୍ରୋତ୍ସର୍ଗ, ମୀତ, (ସ୍ତ୍ରୀ) ମୂତ୍ରିତା ।
ମୂତ୍ରୋତ୍ପାଦକ—ବି.ମୂତ୍ରବର୍ଦ୍ଧକ ଦେଖ ।
ମୂତ୍ରୋତ୍ସଙ୍ଗ—ପୁଂ.ବି.ମୂତ୍ରାଘାତରୋଗ ।
ମୂତ୍ରୋତ୍ସର୍ଗ—ବି(ଭିତରୁ)ମୂତିବା,ପ୍ରସ୍ରାବ କରିବା । [ ପ୍ରସ୍ରାବକରିବା ।
ମୂତ୍ରୋତ୍ସାରଣ—ବି. (ଭିତରୁ) ମୂତିବା,
ମୂତ୍ରୋକ୍ଷୟତା—ସ୍ତ୍ରୀ.ବି. ପିତ୍ତଜନିତ ମୂତ୍ର- ରୋଗବିଶେଷ ।
ମୂତ୍ର୍ୟ—ତ୍ରି.ବିଂ(ମୂତ୍ର+ଯ)ମୂତ୍ରସମ୍ବନ୍ଧୀୟ
ମୂର—ତ୍ରି. ବିଂ. ମୂର୍ଚ୍ଛ(ଜନ), ମାରକ ।
ମୂରତ—ଗ୍ରା.ବି. (ସଂ-ମୂର୍ତ୍ତି) ମୂର୍ତ୍ତିଦେଖ ।
ମୂରଦେବ--ପୁଂ.ବି.ମାରକଜୀବ,ରାକ୍ଷସ ।
ମୂରୁଣ୍ଡ—କ୍ଲୀ. ବି. ଦେଶଭେଦ ।
ମୂର୍ଖ—ବିଂ. (ମୁହ୍+ଖ) ଅଜ୍ଞ, ବିଦ୍ୟା- ହୀନ୍ୟ,ଗାୟତ୍ରୀରହିତ(ବ୍ରାହ୍ମଣ),ନିର୍ବୋଧ, (ବି)ନିର୍ବୋଧ ବ୍ୟକ୍ତି, ବିଦ୍ୟାହୀନ ବ୍ୟକ୍ତି, ଗାୟତ୍ରୀରହିତ ବ୍ରାହ୍ମଣ, ବନମୁଦ୍ଗ, ମାଷ, (ସ୍ତ୍ରୀ) ମୂର୍ଖା ।
ମୂର୍ଖତା(ତ୍ୱ)—ବି. (ମୂର୍ଖ+ଭା.ତା,ତ୍ୱ)

ଅଜ୍ଞତା, ନିର୍ବୋଧତା ।
ମୂର୍ଖତାପ୍ରକାଶକରିବା—ଗ୍ରା. କ୍ରି. ନିଜର ଅଜ୍ଞତା ପ୍ରକାଶ କରିବା ।
ମୂର୍ଖପଣ—ଗ୍ରା. ବି. ମୂର୍ଖତା, ମୂର୍ଖାମି ।
ମୂର୍ଖପୁତ୍ର—ବି.(କ.ଧା)ବିଦ୍ୟାହୀନ ସନ୍ତାନ
ମୂର୍ଖଭ୍ରାତୃକ—ପୁଂ.ବିଂ. ମୂର୍ଖ ଭ୍ରାତୃଯୁକ୍ତ, ଯାହାର ଭାଇ ମୂର୍ଖ ।
ମୂର୍ଖମଣ୍ଡଳ(ଳୀ)—ବି. (୬ତତ୍) ମୂର୍ଖମାନଙ୍କର ସଭା ।
ମୂର୍ଖାମି—ଗ୍ରା. ବି. ମୂର୍ଖତା, ମୂର୍ଖ ବ୍ୟକ୍ତି କରିବା କାମ ।
ମୂର୍ଖାମିଆ—ଗ୍ରା. ବିଂ. ମୂର୍ଖର ଉପଯୁକ୍ତ (କାର୍ଯ୍ୟ ବା କଥା),ନିର୍ବୁଦ୍ଧିଆ (କାମ) ।
ମୂର୍ଖିମା—ପୁଂ.ବି(ମୂର୍ଖ+ଇମନ୍)ମୂର୍ଖତା, ମୂର୍ଖପଣିଆ ।
ମୂର୍ଚ୍ଛତ—ତ୍ରି.ବିଂ.ମୂର୍ଚ୍ଛାପ୍ରାପ୍ତ,ମୂର୍ଚ୍ଛାଗତ ।
ମୂର୍ଚ୍ଛନ—କ୍ଳୀ. ବି. (ମୂର୍ଚ୍ଛ୍+ଭା. ଅନ) ସଂଜ୍ଞାଲୋପ, କନ୍ଦର୍ପଙ୍କ ବାଣବିଶେଷ, ତୈଳୌଷଧର ସଂସ୍କାରବିଶେଷ, ପ୍ରତିପାଳନ, ଔଷଧାଦିର ଶୋଧନ, ବଢ଼ାଇବା, ଗନ୍ଧକ ସହିତ ପାରଦର ଭସ୍ମୀକରଣ, ମିଶ୍ରଣ,ସାକ୍ଷାତକରଣ,କୌଣସି ବ୍ୟକ୍ତିର ମୂର୍ଚ୍ଛା ଆନୟନ, ମୂର୍ଚ୍ଛିତ କରିବା ମନ୍ତ୍ରଯନ୍ତ୍ର ।
ମୂର୍ଚ୍ଛନା—ସ୍ତ୍ରୀ. ବି. (ମୂର୍ଚ୍ଛ୍+ଅନ+ଆ) ଗୀତାଙ୍ଗବିଶେଷ, ସଙ୍ଗୀତରେ ସପ୍ତସ୍ୱରର ଆରୋହ ଅବରୋହବିଶେଷ, ସ୍ୱରଗ୍ରାମ ।
ମୂର୍ଚ୍ଛା—ସ୍ତ୍ରୀ.ବି.(ମୂର୍ଚ୍ଛ୍+ଆ) ସମ୍ମୋହ, ମୋହ, ମୂର୍ଚ୍ଛନା,ରୋଗଭେଦ,ବିସ୍ତାର, ବୃଦ୍ଧି, ଔଷଧାଦିର ମୂର୍ଚ୍ଛନା,ପ୍ରତିପାଳନ ।
ମୂର୍ଚ୍ଛାକ୍ଷେପ—ପୁଂ.ବି.ମୂର୍ଚ୍ଛାର ସହିତ ପ୍ରବଳ ଅଙ୍ଗଚ୍ଛା ପ୍ରକାଶ ।
ମୂର୍ଚ୍ଛାଗତ—ପୁଂ.ବିଂ.(୬ତତ୍) ମୂର୍ଚ୍ଛିତ, ମୂର୍ଚ୍ଛାପନ୍ନ, ମୋହପ୍ରାପ୍ତ,(ସ୍ତ୍ରୀ)ଗତା ।
ମୂର୍ଚ୍ଛାପନ୍ନ—ପୁଂ. ବିଂ. (୩ତତ୍) ମୂର୍ଚ୍ଛିତ, (ସ୍ତ୍ରୀ) ମୂର୍ଚ୍ଛାପନ୍ନା ।
ମୂର୍ଚ୍ଛାପାକ—ବି. କବିରାଜୀ ତୈଳ ପାକ ହେବା ସମୟରେ ସେଥିରେ ରସ-ପ୍ରୟୋଗ ।
ମୂର୍ଚ୍ଛାବାୟୁ—ବି. ମୃଗୀରୋଗ, ବାୟୁଜନିତ ମୂର୍ଚ୍ଛା, ବାତ ମାରିବା ।
ମୂର୍ଚ୍ଛାଭଙ୍ଗ—ବି. (୬ତତ୍)ମୂର୍ଚ୍ଛା ପରେ ସଂଜ୍ଞାଲାଭ ।
ମୂର୍ଚ୍ଛାରୋଗ—ପୁଂ. ବି. ରୋଗବିଶେଷ, ବାୟୁରୋଗ, ମୃଗୀରୋଗ ।
ମୂର୍ଚ୍ଛାଳ—ତ୍ରି.ବିଂ.(ମୂର୍ଚ୍ଛା+ଳ)ମୂର୍ଚ୍ଛିତ, ମୂର୍ଚ୍ଛାପ୍ରାପ୍ତ, ମୂର୍ଚ୍ଛାରୋଗଗ୍ରସ୍ତ ।
ମୂର୍ଚ୍ଛିତ—ପୁଂ.ବିଂ. (ମୂର୍ଚ୍ଛା+ଇତ)ମୂର୍ଚ୍ଛାଯୁକ୍ତ, ଉଚ୍ଛ୍ରାୟ, ମୂଢ଼, ବୃଦ୍ଧ, ବ୍ୟାପ୍ତ, ବିସ୍ତୃତ, ମୂର୍ଚ୍ଛନାପ୍ରାପ୍ତ ।
ମୂର୍ଚ୍ଛିବା—ଗ୍ରା. କ୍ରି. ମୁରୁଛିବା ଦେଖ ।
ମୂର୍ତ୍ତ—ତ୍ରି. ବିଂ. ବଦ୍ଧ ।
ମୂର୍ତ୍ତ—ତ୍ରି.ବିଂ.(ମୂର୍ଚ୍ଛ୍+କ.ତ) ମୂର୍ଚ୍ଛିତ, କଠିନ, ମୂର୍ତ୍ତିମାନ୍, ରୂପଧାରୀ, ବାସ୍ତବ, (ସ୍ତ୍ରୀ)ମୂର୍ତ୍ତା,(ବି--ନ୍ୟାୟମତେ) କ୍ଷିତି,ଅପ୍, ତେଜ, ବାୟୁ ଓ ମନ, କାନନ, ବନ ।
ମୂର୍ତ୍ତତା—କ୍ଳୀ. ବି. (ମୂର୍ତ୍ତ+ତ+ଆ) ମୂର୍ତ୍ତ ପଦାର୍ଥର ଧର୍ମ ।
ମୂର୍ତ୍ତି—ସ୍ତ୍ରୀ. ବି. (ମୂର୍ଚ୍ଛ୍+ତି) କାଠିନ୍ୟ, ଶରୀର, ପ୍ରତିମା, ସ୍ୱରୂପ, ବ୍ରହ୍ମ ସାବିତ୍ରୀଙ୍କ ପୁତ୍ର, ଆକାର, ରୂପ,ଦେବତାଙ୍କ ଅବତାର, ଅବୟବ, ଦ୍ରବ୍ୟ ।
ମୂର୍ତ୍ତିକାର—ପୁଂ.ବି. (ମୂର୍ତ୍ତି+କୃ+ଅ) ମୂର୍ତ୍ତି ନିର୍ମାଣ କରିବା ବ୍ୟକ୍ତି ।
ମୂର୍ତ୍ତିକିଆ—ଗ୍ରା. ବି. ମୃତକାଶୌଚ ।
ମୂର୍ତ୍ତିଚିତ୍ର—ବି(୬ତତ୍)କୌଣସି ବ୍ୟକ୍ତିର ବା ବସ୍ତୁର ଆକୃତି ଅନୁରୂପ ଚିତ୍ର ।
ମୂର୍ତ୍ତିଚିତ୍ରଣ—ବି.(୬ତତ୍) ରୂପ ବା ଚିତ୍ର ଆଙ୍କିବା ।
ମୂର୍ତ୍ତିତ୍ୱ—କ୍ଳୀ. ବି. (ମୂର୍ତ୍ତି+ତ୍ୱ)ମୂର୍ତ୍ତିର ଭାବ ବା ଧର୍ମ ।
ମୂର୍ତ୍ତିଧର—ପୁଂ.ବିଂ. (ମୂର୍ତ୍ତି+ଧୃ+ଅ) ମୂର୍ତ୍ତିବିଶିଷ୍ଟ, ମୂର୍ତ୍ତିଧାରଣକାରୀ,ଅବୟବୀ, ଶରୀରୀ ।
ମୂର୍ତ୍ତିଧରିବା—ଗ୍ରା.କ୍ରି.କୌଣସି ଗୋଟିଏ ରୂପ ଧାରଣ କରିବା ।
ମୂର୍ତ୍ତିଧାରଣ—ବି. (୬ତତ୍) ରୂପଧରିବା, ଗୋଟିଏ ରୂପ ଗ୍ରହଣ କରିବା ।
ମୂର୍ତ୍ତିଧାରୀ—ପୁଂ. ବିଂ. (ମୂର୍ତ୍ତି+ଧୃ+କ.ଇନ୍) ଯେ ରୂପ ଧରିଥାଏ, (ସ୍ତ୍ରୀ) ଧାରିଣୀ ।
ମୂର୍ତ୍ତିପ—ପୁଂ.ବି.(ମୂର୍ତ୍ତି+ପା+କ.ଅ) ଦେବମୂର୍ତ୍ତି ପୂଜକ,ପୁରୋହିତ ପୂଜକ ।
ମୂର୍ତ୍ତିପରିଗ୍ରହ—ବି(୬ତତ୍)ଦେହଧାରଣ, ରୂପଧରିବା ।
ମୂର୍ତ୍ତିପୂଜକ—ପୁଂ.ବି ଓ ବିଂ.ଯେ ମୂର୍ତ୍ତି-ପୂଜା କରେ, ପ୍ରତିମାପୂଜକ ।
ମୂର୍ତ୍ତିପୂଜା—ବି. (୬ତତ୍) ପ୍ରତିମାପୂଜା ।
ମୂର୍ତ୍ତିପ୍ରକାଶ-ବି.(୬ତତ୍)ରୂପ ଦେଖାଇବା
ମୂର୍ତ୍ତିବିଦ୍ୟା—ବି. ପ୍ରତିମାଆଦି ଗଢ଼ିବାର କଳା, ଚିତ୍ରାଙ୍କନ ବିଦ୍ୟା ।
ମୂର୍ତ୍ତିମନ୍ତ—ଗ୍ରା. ବିଂ. ମୂର୍ତ୍ତିମାନ୍ ଦେଖ ।
ମୂର୍ତ୍ତିମସ୍ତ—(ମୂର୍ତ୍ତି+ମସ୍ତ) ମୂର୍ତ୍ତି ସ୍ୱରୂପ ।
ମୂର୍ତ୍ତିମାନ୍—ପୁଂ. ବି. (ମୂର୍ତ୍ତି+ମତ୍)ଶରୀର, କୁଶଙ୍କପୁତ୍ର; (ବିଂ)ମୂର୍ତ୍ତି ବିଶିଷ୍ଟ,ସାକାର, ବାସ୍ତବ, ଶରୀରୀ, କଠିନ,(ସ୍ତ୍ରୀ)ମୂର୍ତ୍ତିମତୀ ।
ମୂର୍ତ୍ତିଯୁକ୍ତ—ପୁଂ. ବିଂ. (୩ତତ୍) ଯାହାର ରୂପ ଅଛି ।
ମୂର୍ତ୍ତିଲିଙ୍ଗ—କ୍ଳୀ.ବି. ପ୍ରାଗ୍‌ଜ୍ୟୋତିଷରେ ପ୍ରତିଷ୍ଠିତ ଶିବଲିଙ୍ଗ ବିଶେଷ ।
ମୂର୍ତ୍ତିହୀନ—ବିଂ. (୩ତତ୍) ନିରାକାର, ଅଶରୀରୀ ।
ମୂର୍ତ୍ତ୍ୟନ୍ତର—ବି. (ଅନ୍ୟ+ମୂର୍ତ୍ତି) ଅନ୍ୟ ମୂର୍ତ୍ତି, ପୃଥକ୍ ରୂପ ।
ମୂର୍ତ୍ତ୍ୟନ୍ତରଗ୍ରହଣ--ବି.(୬ତତ୍) ଅନ୍ୟରୂପ-ଧାରଣ ।
ମୂର୍ଦ୍ଧକ—ପୁଂ.ବି.(ମୂର୍ଦ୍ଧନ୍+କ) କ୍ଷତ୍ରିୟ ।
ମୂର୍ଦ୍ଧକର୍ଣ୍ଣୀ—ସ୍ତ୍ରୀ. ବି. (ମୂର୍ଦ୍ଧନ୍+କର୍ଣ୍ଣ+ଇନ୍) ଛତ୍ର,ଆତପତ୍ର,ଛତା,ଟୋପରି, ଝାମ୍ପି ।
ମୂର୍ଦ୍ଧକର୍ପରୀ—ସ୍ତ୍ରୀ.ବି.(ମୂର୍ଦ୍ଧନ୍+କର୍ପର+ଈ) ମୂର୍ଦ୍ଧକର୍ଣ୍ଣୀ ଦେଖ ।
ମୂର୍ଦ୍ଧଖୋଳ—କ୍ଳୀ.ବି.ମୂର୍ଦ୍ଧକର୍ଣ୍ଣୀ ଦେଖ ।
ମୂର୍ଦ୍ଧଗତ—ବିଂ. (୨ତତ୍)ମସ୍ତିଷ୍କ ମଧ୍ୟକୁ ଯାଇଥିବା, ମସ୍ତିଷ୍କସ୍ଥ ।
ମୂର୍ଦ୍ଧଜ—ପୁଂ. ବି. (ମୂର୍ଦ୍ଧନ୍+ଜନ୍+ଅ) କେଶ,ବାଳ,(ବିଂ)ମସ୍ତକରେ ଜାତ

ମୂର୍ଦ୍ଧଜ୍ୟୋତଃ—କ୍ଲୀ. ବ. ବ୍ରହ୍ମରନ୍ଧ୍ର ।
ମୂର୍ଦ୍ଧତଃ—ଅ. ମସ୍ତକରେ, ମସ୍ତକରୁ ।
ମୂର୍ଦ୍ଧନା(ନ)—ଗ୍ରା. ବ. ମୁଣ୍ଡ, ମସ୍ତକ, ପର୍ବତାଦିର ଅଗ୍ରଭାଗ ।
ମୂର୍ଦ୍ଧନାପାତ—ଗ୍ରା.ବ.ମୁଣ୍ଡଚ୍ଛେଦନ,ମୃତ୍ୟୁ ।
ମୂର୍ଦ୍ଧନାଫାଟିବା—ଗ୍ରା. ବ. ମୁଣ୍ଡଫାଟିବା, ମୃତ୍ୟୁ । [ ଦେଖ ।
ମୂର୍ଦ୍ଧନାଭିଷେକ—ଗ୍ରା.ବି. ମୂର୍ଦ୍ଧାଭିଷେକ
ମୂର୍ଦ୍ଧନ—ଗ୍ରା. ଅବ୍ୟ.ମସ୍ତକରେ,(ଗ୍ରା.ବିଂ) ଶ୍ରେଷ୍ଠ, ସର୍ବୋତ୍ତମ, (ଗ୍ରା.ବି) ଜାତି ବା ସମାଜର ପ୍ରଧାନ ବ୍ୟକ୍ତି, ଘରର କର୍ତ୍ତା, ମସ୍ତକ ।
ମୂର୍ଦ୍ଧନ୍ୟ—ତ୍ରି.ବିଂ. (ମୂର୍ଦ୍ଧନ୍+ଯ)ମସ୍ତକଭବ, ମୁଣ୍ଡଭିତରୁ ଉଚ୍ଚାରିତ (ବର୍ଣ୍ଣ), (ବି.)ଜାତି ବା ସମାଜର ପ୍ରଧାନବ୍ୟକ୍ତି, ମୂର୍ଦ୍ଧନ୍ୟବର୍ଣ୍ଣ ଦେଖ, (ଗ୍ରା.କ୍ରି.ବିଂ)ପ୍ରଥମରେ ।
ମୂର୍ଦ୍ଧନ୍ୟଣ—ବି. ଟ ବର୍ଗର ପଞ୍ଚମ ଅନୁନାସିକ ବର୍ଣ୍ଣ ।
ମୂର୍ଦ୍ଧନ୍ୟବର୍ଣ୍ଣ—ବି. (ବ୍ୟାକରଣ) ମୂର୍ଦ୍ଧାରୁ ଉଚ୍ଚାରିତ ବର୍ଣ୍ଣ, (ଯଥା—ଋ, ୠ, ଟ, ଠ, ଡ, ଢ, ଣ, ର, ଷ ।
ମୂର୍ଦ୍ଧନ୍ୟଷ—ବି. ମୂର୍ଦ୍ଧାରୁ ଉଚ୍ଚାରିତ ଷ ।
ମୂର୍ଦ୍ଧପାତ—ପୁଂ. ବ. ମସ୍ତକ ବିଦାରଣ ।
ମୂର୍ଦ୍ଧପିଣ୍ଡ—ପୁଂ. ବ. ବାରକୁମ୍ଭ ।
ମୂର୍ଦ୍ଧପୁଷ୍ପ—ପୁଂ. ବ. (ବି.ଗ୍ରା) ଶିରୀଷବୃକ୍ଷ
ମୂର୍ଦ୍ଧରସ—ପୁଂ. ବ. ଭାତର ପେଜ, ଫେନ, କେଶ ।
ମୂର୍ଦ୍ଧବେଷ୍ଟନ—କ୍ଲୀ. ବ. ଉଷ୍ଣୀଷ, ପଗଡ଼ି, ପାଗ, ଠେକା, ଫିତା, ଟୋପି, ମୁକୁଟ ।
ମୂର୍ଦ୍ଧା—ବି. (ମୂର୍ଦ୍ଧ+ଅଧି.ଅନ୍)ଉତ୍ତମାଙ୍ଗ, ମସ୍ତକ, ପର୍ବତାଦିର ଅଗ୍ରଭାଗ, (ଜ୍ୟାମିତିକ) କୌଣସି ଜ୍ୟାମିତିକ କ୍ଷେତ୍ରର ଭୂମି ।
ମୂର୍ଦ୍ଧାବସିକ୍ତ—ବି. ବର୍ଣ୍ଣସଙ୍କର ଜାତିବିଶେଷ, ବ୍ରାହ୍ମଣ ଔରସରେ କ୍ଷତ୍ରିୟା ଗର୍ଭଜାତ ସନ୍ତାନ ।
ମୂର୍ଦ୍ଧାଭିଷିକ୍ତ—ପୁଂ. ବ. କ୍ଷତ୍ରିୟ,ସିଂହାସନାଭିଷିକ୍ତ ରାଜା,ବହୁ ରାଜାଙ୍କ ମଧ୍ୟରେ ଚକ୍ରବର୍ତ୍ତୀ, ସମ୍ରାଟ୍,ପ୍ରଧାନ ମନ୍ତ୍ରୀ, ଯୁବରାଜ, ମୂର୍ଦ୍ଧାବସିକ୍ତ ଦେଖ, ଜାତିର ସର୍ଦ୍ଦାର, ବ୍ରାହ୍ମଣ ଜାତି, (ବିଂ) ଯାହାର ମୁଣ୍ଡରେ ଅଭିଷେକ କରାଯାଇଅଛି, ରାଜ୍ୟାଭିଷିକ୍ତ, କୃତାଭିଷେକ ।
ମୂର୍ଦ୍ଧାଭିଷେକ—ପୁଂ. ବ.(ତତ୍ପୁ)ରାଜାମାନଙ୍କର ସିଂହାସନାରୋହଣ କାଳରେ ମନ୍ତ୍ରପୂତ ତୀର୍ଥବାରି ଦ୍ୱାରା ମସ୍ତକରେ ଅଭିଷେକ ଜଳସେଚନ ।
ମୂର୍ଦ୍ଧାଭିଷେକୀ—ଗ୍ରା. ବିଂ. ମୂର୍ଦ୍ଧାଭିଷିକ୍ତ ଦେଖ, (ବି) ଗାଦିନସିନ୍‌ରାଜା, ଚକ୍ରବର୍ତ୍ତୀ ରାଜା । [ ମୃତ୍ୟୁ ।
ମୂର୍ଦ୍ଧାପାତ--ବି.ମୁଣ୍ଡପାତ,ମସ୍ତକଚ୍ଛେଦନ,
ମୂର୍ଦ୍ଧାପାତକ—ବି. ଯେ ମୁଣ୍ଡ ପାତକରେ ବା ମନୁଷ୍ୟର ମୁଣ୍ଡକୁ ହାଣେ ।
ମୂର୍ବା—ସ୍ତ୍ରୀ. ବ. (ମୂର୍ବ+ଅ+ଆ)ଲତାବିଶେଷ, ମରୁଗାଗଛ ।
ମୂର୍ବିକା—ସ୍ତ୍ରୀ. ବ. ମୂର୍ବା ।
ମୂଲ୍—ଗ୍ରା.(ସମ୍ପ) ବି ଓ ବିଂ. ଓ କ୍ରି.ବିଂ. ମୂଳ ଦେଖ ।
ମୂଲରୁ—ଗ୍ରା. କ୍ରି. ବିଂ. ମୂଳରୁ ଦେଖ ।
ମୂଳ—କ୍ଲୀ. ବ. (ମୂଲ୍+ଅ) ଶିଫା,ଶିଅ, ଚେର, ଆଳୁ, ସାରୁ ପ୍ରଭୃତି କନ୍ଦଖାଦ୍ୟ, ମୂଳା, ଆଦ୍ୟ, ନିକୁଞ୍ଜ, ଅନ୍ତିକ, ସମୀପ, ମୂଳଧନ, ପାଣ୍ଠି, ଆଦିଗ୍ରନ୍ଥ, ଟୀକାହିଁଗ୍ରନ୍ଥ, ଓଲୁଅ, ପିପ୍ପଳୀମୂଳ,ପୁଷ୍କରମୂଳ କୁଡ଼ କାରଣ,ଊନବିଂଶ ନକ୍ଷତ୍ର, ମୂଳନକ୍ଷତ୍ର, ଦୁର୍ଗ, ରାଷ୍ଟ୍ର,ଦେବତାମାନଙ୍କର ବୀଜମନ୍ତ୍ର,ପାହାଡ଼ ଓ ବୃକ୍ଷ ଆଦିର ଭୂମିସଂଲଗ୍ନ ଅଂଶ, ଉତ୍ପତ୍ତିସ୍ଥାନ,ଆଦିକାରଣ, ଗୋଡ଼, ଚରଣ, ଗୁଣିତ ରାଶିର ପିଣ୍ଡକରଣ, ବର୍ଗମୂଳ, ଘନମୂଳ,ସ୍ୱନଗର, ନିବାସଗୃହ, ବଂଶପ୍ରବର୍ତ୍ତକ ଆଦିପୁରୁଷ, ପ୍ରଧାନ ବ୍ୟକ୍ତି ବା ବସ୍ତୁ ନିଷ୍ଟସ୍ୱତା ।
ମୂଳ—ଗ୍ରା.ବି.ମୂଲ୍ୟ, ମଜୁରୀ,ପାରଶ୍ରମିକ
ମୂଳକ—ବି. ମୂଳା, ମୂଳ ଜାତୀୟ ଖାଦ୍ୟଶାକବିଶେଷ, ଚତୁର୍ବିଂଶତି ସ୍ଥାବର ବିଷ ଜାତ୍ୟନ୍ତର୍ଗତ ବିଷଭେଦ, (ବିଂ) ଉପରେ ପ୍ରତିଷ୍ଠିତ, ମୂଳ ବା କାରଣରୁ ଜାତ, ମୂଳ ସ୍ୱରୂପ ।
ମୂଳକଚ୍ଛଦ—ପୁଂ. ବ. କୃଷ୍ଣଶିଗ୍ରୁ,ସଜନା ,
ମୂଳକଥା—ଗ୍ରା. ବ. ଅସଲକଥା, ପ୍ରଥମ ବିଷୟ, ପ୍ରଧାନ କଥା, ମୂଳ କାରଣ ରୂପକ ବିଷୟ ।
ମୂଳକପଣ—ବି. ଏକାଧିକ ମୂଳା ବାନ୍ଧି ହୋଇଥିବା ଗୋଟିଏ ବିଡ଼ା ।
ମୂଳକପର୍ଣ୍ଣୀ—ସ୍ତ୍ରୀ. ବ. ଶୋଭାଞ୍ଜନ ବୃକ୍ଷ, ସଜନାଗଛ ।
ମୂଳକପୋତା—ସ୍ତ୍ରୀ. ବ. ବାଳମୂଳକ, କଷିମୂଳା, ସ୍ଥୂଳଟମୂଳା । [ ଦେଖ ।
ମୂଳକପୋତିକା—ସ୍ତ୍ରୀ.ବ.ମୂଳକ ପୋତା
ମୂଳକବୀଜ—କ୍ଲୀ. ବ. ମୂଳାମଞ୍ଜି ।
ମୂଳକମୂଳା—ବି. କ୍ଷୀରକାଙ୍କୁଲି ଗଛ ।
ମୂଳକରିବା--ଗ୍ରା.କ୍ରି.ସ୍ଥିରକରିବା,କୌଣସି କାର୍ଯ୍ୟ କରିବା ନିମନ୍ତେ କୃତସଙ୍କଳ୍ପ ହେବା, ପ୍ରଧାନ ଆଶ୍ରୟ ରୂପେ ଅବଲମ୍ବନ କରିବା, ( ଗଣିତ ) ସମସ୍ୟା ସାଧନ କରିବା ପାଇଁ କୌଣସି ମୂଳ ରାଶିକୁ ପିଣ୍ଡ ରୂପେ ଆପିବା ।
ମୂଳକଦିବୋ—ଗ୍ରା. କ୍ରି. କୌଣସି ଦ୍ରବ୍ୟ କିଣିବା ପାଇଁ ଦରଦାମ୍ କରିବା ।
ମୂଳକର୍ମ—କ୍ଲୀ. ବ. ଔଷଧାଦି ମୂଳ ଦ୍ୱାରା ଯାସନ,ଉଚ୍ଚାଟନ,ସ୍ତମ୍ଭନ,ବଶୀକରଣାଦି କର୍ମ, ଉପତାପବିଶେଷ, ପ୍ରଧାନ କର୍ମ ।
ମୂଳକଳନ୍ତର—ଗ୍ରା.ବ ସୁଧମୂଳ, ଋଣର ମୂଳଧନ ଓ ସୁଧ ।
ମୂଳକଶାକ—ପୁଂ. ବ. ଶାଗରୂପେ ଖିଆ ଯିବା ମୂଳାପତ୍ର ।
ମୂଳକାଟ—ଗ୍ରା. ବ. ଗଛର ମୂଳଚ୍ଛେଦନ (ଲ.ଅର୍ଥ) ସମୂଳ ଉଚ୍ଛେଦ ।
ମୂଳକାର—ପୁଂ.ବିଂ. (ମୂଳ+କୃ+କ. ଅ) ମୂଳଗ୍ରନ୍ଥକର୍ତ୍ତା, ଯେ ମୂଳଗ୍ରନ୍ଥ ପ୍ରସ୍ତୁତ କରିଅଛି ।
ମୂଳକାରଣ—କ୍ଲୀ. ବ. ପ୍ରଧାନକାରଣ, ପ୍ରଧାନ ହେତୁ ।
ମୂଳକାରିକା—ସ୍ତ୍ରୀ. ବ. (ମୂଳକାରକ+ଆ)ଚୁଲ୍ଲୀ, ମୂଳଗ୍ରନ୍ଥାର୍ଥ ପ୍ରକାଶକ ପଦ୍ୟ, ମୂଳ ଧନର ବୃଦ୍ଧିବିଶେଷ, ଚୁଲ୍ଲୀ ।

ମୂଳକୃଚ୍ଛ୍ର—କ୍ଳୀ. ବି. ଏକାଦଶବିଧ ପର୍ଣ୍ଣ-
କୃଚ୍ଛ୍ର ବ୍ରତାନ୍ତର୍ଗତ ବ୍ରତବିଶେଷ ।
ମୂଳକୃତ୍—ତ୍ରି.ବିଂ.(ମୂଳ + କୃ + କ୍ୱିପ୍)
ମୂଳକାର ଦେଖ ।
ମୂଳକେଶର—ପୁଂ. ବି. ଲେମ୍ବୁ ।
ମୂଳଖାଦକ—ପୁଂ.ବି. ବର୍ଣ୍ଣସଙ୍କର ଜାତି-
ବିଶେଷ, (ଏମାନେ ବୃକ୍ଷାଦି ମୂଳଖାଇ
ବଞ୍ଚନ୍ତି) ।
ମୂଳଗଡ଼—ଗ୍ରା. ବି. ଘରଚାଳର ପ୍ରଥମ
ଗଡ଼, ଗଛର ମୂଳଖଣ୍ଡ । [ ବାକ୍ୟ ।
ମୂଳଗ୍ରନ୍ଥ—ପୁଂ. ବି. ଶାକ୍ୟମୁନି କଥିତ
ମୂଳଗ୍ରନ୍ଥି—ସ୍ତ୍ରୀ ବି.ବଳିଦୁବା,ପ୍ରଧାନଗ୍ରନ୍ଥି ।
ମୂଳଚାଲ—ଗ୍ରା.ବି.ଦରଦାମ୍, ମୂଳାଇବା
ମୂଳଚ୍ଛେଦ—ପୁଂ.ବି. (୬ତତ୍)ମୂଳନାଶ,
ଗଛର ମୂଳ କାଟିବା,(ଲ.ଅର୍ଥ)ଉଚ୍ଛେଦ
ମୂଳଚ୍ଛେଦନ—ବି. (୬ତତ୍) ମୂଳଚ୍ଛେଦ
ଦେଖ ।
ମୂଳଜ—ବି. ବୀଜରୁ ଉତ୍ପନ୍ନ ନ ହୋଇ
ମୂଳରୁ ହେବା ଉଦ୍ଭିଦ,ଆର୍ଦ୍ରକ,ଅଦା,
ଉତ୍ପଳାଦି, (ବିଂ) ମୂଳୋଦ୍ଭବ ମାତ୍ର ।
ମୂଳଜାତି—ସ୍ତ୍ରୀ. ବି. ପ୍ରଧାନ ଜାତି ।
ମୂଳତଃ—ଅ. ମୂଳରୁ, ମୂଳରେ, ମୂଳ
ଦେଶରେ ।
ମୂଳତ୍ରିକୋଣ—କ୍ଳୀ.ବି.ରବିପ୍ରଭୃତି ଗ୍ରହ-
ମାନଙ୍କର ରାଶିରୂପ ଗୃହବିଶେଷ,ମୂଳା-
ଧାର ଦେଖ ।
ମୂଳଦାମ—ଗ୍ରା. ବି. ଉଚିତ କିଣାଦାମ୍ ।
ମୂଳଦୁଆ—ଗ୍ରା.ବି. ଗୃହାଦିର ମୂଳଭିତ୍ତି,
କାନ୍ଥର ଯେଉଁ ଅଂଶ ମାଟିତଳେ ଥାଏ
ମୂଳଦେବ—ପୁଂ.ବି.(କ.ଧା) କଂସରାଜ,
ଅଗ୍ନିମିତ୍ରଙ୍କ ପୁତ୍ର ଯୋଗାଚାର୍ଯ୍ୟ ଭେଦ ।
ମୂଳଦ୍ରବ୍ୟ—କ୍ଳୀ. ବି. ମୂଳଧନ, ପ୍ରଧାନ
ବସ୍ତୁ ବା ଉପକରଣ ।
ମୂଳଦ୍ୱାର—କ୍ଳୀ.ବି.ପ୍ରଧାନଦ୍ୱାର, ସିଂହ-
ଦ୍ୱାର, ସଦର ଦରଜା ।
ମୂଳଦ୍ୱାରବତୀ—ସ୍ତ୍ରୀ.ବି.ଦ୍ୱାରବତୀ ନଗ-
ରୀର ପ୍ରାଚୀନାଂଶ ।
ମୂଳଧନ—କ୍ଳୀ. ବି. ଆଦିଦ୍ରବ୍ୟ, ଯେଉଁ
ଧନରେ ପ୍ରଥମେ ବ୍ୟବସାୟାଦିକାର୍ଯ୍ୟରେ
ପ୍ରବୃତ୍ତ ହେବାକୁ ହୁଏ ।
ମୂଳଧାତୁ—ପୁଂ. ବି. ଅକୃତ୍ରିମ ଧାତୁ,
ଲସିକା, ମଜ୍ଜା ।
ମୂଳନଗର—କ୍ଳୀ.ବି.ପ୍ରକୃତ ନଗର ଭାଗ,
ଶାଖା ନଗରରୁ ସ୍ୱତନ୍ତ୍ର ।
ମୂଳନାଶ—ପୁଂ.ବି.(୬ତତ୍) ମୂଳଦ୍ରବ୍ୟର
ବିନାଶ ।
ମୂଳନିକୃନ୍ତନ—ତ୍ରି.ବିଂ.ମୂଳୋଚ୍ଛେଦନ ।
ମୂଳନୀତି—ବି. ଆଦିମତ, ମୌଳିକନୀତି,
ଯେଉଁ ପ୍ରଧାନ ନୀତି ଅବଲମ୍ବନ କରି
କୌଣସି କାର୍ଯ୍ୟ କରାଯାଏ ।
ମୂଳପଦ୍ମ—କ୍ଳୀ.ବି.ତାନ୍ତ୍ରିକ ମତରେ ଶରୀ-
ରାଦିବିଶେଷର ନାମ । [ ଗଛ ।
ମୂଳପର୍ଣ୍ଣୀ—ସ୍ତ୍ରୀ.ବି. ମଣ୍ଡୂକପର୍ଣ୍ଣୀ,ଥାଲକୁଣି
ମୂଳପିଣ୍ଡ—ବି. ଆଳୁଆଦିର ମୂଳ,ଯହିଁରୁ
ଗଛ ମାଡ଼େ ଓ ପିଣ୍ଡ ବଢ଼େ, ମୂଳଧନ
ଦେଖ ।
ମୂଳପୁରୁଷ—ବି. ବଂଶର ଆଦିପୁରୁଷ ।
ମୂଳପୁଲିଶସିଦ୍ଧାନ୍ତ—ପୁଂ.ବି. ପୁଲିଶକୃତ
ଆଦିସିଦ୍ଧାନ୍ତ ଗ୍ରନ୍ଥ । [ ଭେଦ ।
ମୂଳପୁଷ୍କର—କ୍ଳୀ.ବି. ପୁଷ୍କର ମୂଳ, କୁଡ଼-
ମୂଳପୋଛ—ଗ୍ରା.ବି. ମୂଳକାଟ (ଦେଖ),
(ଗ୍ରା.ବିଂ) ମୂଳରୁ ପୋଛିହୋଇ କଟା
ଯାଇଥିବା, ସମୂଳେ ବିନଷ୍ଟ ।
ମୂଳପୋତୀ—ସ୍ତ୍ରୀ.ବି. ପୁଇଶାଗ,ପୋଦିକା.
ବଣପୋଇ ।
ମୂଳପ୍ରକୃତି—ସ୍ତ୍ରୀ.ବି.ଆଦ୍ୟାଶକ୍ତି, ଦୁର୍ଗା, ।
ମୂଳପ୍ରଣିହିତ—ତ୍ରି.ବିଂ. ମୂଳ ବିଷୟରେ
ସାବଧାନ ।
ମୂଳଫଳଦ—ପୁଂ.ବି. (ମୂଳଫଳ+ଦା
+ଅ) ପଣସଗଛ ।
ମୂଳଭଦ୍ର—ପୁଂ.ବି. କଂସରାଜ ।
ମୂଳଭବ—ତ୍ରି.ବିଂ. ( ମୂଳ+ଭୂ+ଅ )
ଯାହା ମୂଳରୁ ଉତ୍ପନ୍ନ ହୁଏ, ମୂଳରୁ
ଜାତ । [ ମୂଳ ।
ମୂଳଭାର—ପୁଂ.ବି. କନ୍ଦ,ସମୂହ, ପ୍ରଭୃତି
ମୂଳଭିତ୍ତି—ସ୍ତ୍ରୀ.ବି.(କ.ଧା)ପ୍ରଧାନ ଭିତ୍ତି,
ପ୍ରଧାନ ଆଧାର ।
ମୂଳଭୃତ୍ୟ—ପୁଂ.ବି. (କ.ଧା) ପୁରାତନ
ଭୃତ୍ୟ, ଯେଉଁମାନେ ପୁରୁଷାନୁକ୍ରମେ
ଏକଘରେ ଚାକିରି କରନ୍ତି ।
ମୂଳମଣ୍ଡଳ—କ୍ଳୀ.ବି. ପୂର୍ଣ୍ଣମଣ୍ଡଳ ।
ମୂଳମନ୍ତ୍ର—ପୁଂ. ବି. (କ.ଧା) ଦେବତା-
ମାନଙ୍କର ହ୍ରୀଂ, ଶ୍ରୀଂ, କ୍ଳୀଂ ପ୍ରଭୃତି ବୀଜ-
ମନ୍ତ୍ର, ଇଷ୍ଟମନ୍ତ୍ର,(ଲ.ଅର୍ଥ)ପ୍ରଧାନ ସଂକଳ୍ପ
ବା ଉଦ୍ଦେଶ୍ୟ । [ ନାମାନ୍ତର ।
ମୂଳମିତ୍ରି—ପୁଂ. ବି. ଗୋଭିଲଙ୍କର
ମୂଳମୂଳିକା—ଗ୍ରା.ବି. ଔଷଧରେ ବ୍ୟବ-
ହୃତ ଚେରମୂଳଆଦି,ଚେରମୂଳ ।
ମୂଳରସ—ପୁଂ.ବି. ମୋରଟଲତା ।
ମୂଳରୁ(ହୁଁ)—ଗ୍ରା. କ୍ରି. ବିଂ. ଆଦୌ,
ମୂଳରୁ, ପ୍ରଥମରୁ ।
ମୂଳଲାଗିବା—ଗ୍ରା. କ୍ରି . ଧନ ମଜୁରିରେ
କାମ କରିବା ।
ମୂଳବଚନ—କ୍ଳୀ.ବି. ପ୍ରକୃତ ବଚନ,ମୂଳ
ଗ୍ରନ୍ଥର ବଚନ ।
ମୂଳବଣିକ୍‌ଧନ—କ୍ଳୀ.ବି. ବଣିକ୍‌ମାନଙ୍କର
ମୂଳଧନ, ବାଣିଜ୍ୟର ମୂଳଧନ ।
ମୂଳବନ୍ଧ—ବି. ଅଙ୍ଗୁଳି ନ୍ୟାସବିଶେଷ,
(ବିଂ) ମୂଳଦ୍ୱାରା ଦୃଢ଼ବଦ୍ଧ ।
ମୂଳବର୍ହଣ—ବି. ମୂଳଚ୍ଛେଦନ, ମୂଳୋ-
ନ୍ମୂଳନ ।
ମୂଳବାନ୍—ପୁଂ.ବିଂ.ସୁନିଷ୍ଠ ମୂଳଯୁକ୍ତ ।
ମୂଳବାପ—ପୁଂ. ବିଂ. ଗଛ ହେବା
ନିମନ୍ତେ ଯେ ମୂଳ ବା ଚେର ହୁଏ ।
ମୂଳବିତ୍ତ—କ୍ଳୀ.ବି. ମୂଳଧନ ।
ମୂଳବିଦ୍ୟା-ସ୍ତ୍ରୀ.ବି.ପ୍ରଧାନଜ୍ଞାନ,ଦ୍ୱାଦଶାକ୍ଷର
ମନ୍ତ୍ରବିଶେଷ ।
ମୂଳବିନାଶନ—କ୍ଳୀ.ବି.ସମୂଳେ ସଂହାର,
ସମୂଳେ ଉତ୍ପାଟନ ।
ମୂଳବିଭୁଜ—ପୁଂ.ବିଂ. ମୂଳ ବକ୍ରକାରୀ,
ମୂଳ ବଙ୍କା କରି ଯେ ବାଢ଼ି ପ୍ରସ୍ତୁତ
କରେ, (ବି) ଗାଡ଼ି, ରଥ, ଚେରମୂଳ
ବକ୍ରଯୁକ୍ତକାରୀ ବ୍ୟକ୍ତି ।
ମୂଳବିରେଚନ—ପୁ. ବି. ତ୍ରିବୃତାଦିର
ମୂଳରୂପ ଶ୍ରେଷ୍ଠ ବିରେଚନ ବା ଭେଦୀ ।
ମୂଳବିଷ—କ୍ଳୀ. ବି. ବିଷାକ୍ତ ମୂଳଯୁକ୍ତ
ବୃକ୍ଷ, କରବୀରାଦି ।

ମୂଳବୀଜ—ବି. (ଗଣିତ)ମୌଳିକସଂଖ୍ୟା ମୂଳମନ୍ତ୍ର, (ଲ.ଅର୍ଥ) ମୂଳକାରଣ ।
ମୂଳବ୍ୟସନ—କ୍ଲୀ.ବି. ମାରଣ ।
ମୂଳବ୍ରତୀ—ପୁଂ. ବିଂ. ମୂଳଭକ୍ଷଣଦ୍ୱାରା ଜୀବିକା ନିର୍ବାହକାରୀ, (ସ୍ତ୍ରୀ) ବ୍ରତିନୀ ।
ମୂଳଶକୁନ—ପୁଂ.ବି. ପ୍ରଧାନ ପକ୍ଷୀ ।
ମୂଳଶାକଟ(ଶାକିନ)—ବି. ମୂଳାଆଦି-ମୂଳଜାତୀୟ ଫସଲର ଉପଯୋଗୀ କ୍ଷେତ୍ର ।
ମୂଳଶୋଧନ—ପୁଂ.ବି. ପୁଣ୍ଡ୍ରକ ବୃକ୍ଷ, ଯୋଗଶାସ୍ତ୍ରୋକ୍ତ ଅପାନ ବାୟୁର ସ୍ଥାନ-ଶୋଧନରୂପ କ୍ରିୟା ।
ମୂଳଶ୍ରୀପତିତୀର୍ଥ—କ୍ଲୀ.ବି. ତୀର୍ଥଭେଦ ।
ମୂଳସଂଘ—ପୁଂ.ବି. ଆଦିଜୈନ ସମ୍ପ୍ରଦାୟ ଭେଦ । [ ସହିତ ।
ମୂଳସମେତ—ଗ୍ରା.ବିଂ. ଆମୂଳ, ମୂଳ-
ମୂଳସର୍ବାସ୍ତିବାଦ—ପୁଂ. ବି. ବୌଦ୍ଧ-ସମ୍ପ୍ରଦାୟଭେଦ ।
ମୂଳସାଧନ—କ୍ଲୀ.ବି. ( କ.ଧା ) ପ୍ରଧାନ ଅବଲମ୍ବନ, ମୂଳ ଅସ୍ତ୍ର ।
ମୂଳସୂତ୍ର—କ୍ଲୀ. ବି. ବେଦାନ୍ତ ଦର୍ଶନାଦିର ଅଭିବ୍ୟକ୍ତ ସୂତ୍ର, ପ୍ରଧାନ ବା ଆଦି ନିୟମ ।
ମୂଳସ୍ଥଳ—କ୍ଲୀ. ବି. ନଗରଭେଦ ।
ମୂଳସ୍ଥାନ—କ୍ଲୀ. ବି. ସ୍ୱର୍ଗ,ଆକାଶ,ପୃଥିବୀକୁ ବେଢ଼ିଥିବା ବାୟୁମଣ୍ଡଳ, ପ୍ରଧାନ ସ୍ଥାନ, ଭିତ୍ତି, ଈଶ୍ୱର, ମୂଲତାନ ନଗରର ପ୍ରାଚୀନ ନାମ,(ସ୍ତ୍ରୀ.ବି)ମୂଳସ୍ଥାନୀ, ଗୌରୀ ।
ମୂଳସ୍ଥାନତୀର୍ଥ—କ୍ଲୀ.ବି.ମୂଲତାନ ନଗରର ଭାସ୍କରତୀର୍ଥ ।
ମୂଳସ୍ଥାୟୀ—ପୁଂ. ବିଂ. ସୃଷ୍ଟି ଆଦ୍ୟରୁ ଅବସ୍ଥାନକାରୀ ।
ମୂଳସ୍ରୋତଃ—କ୍ଲୀ. ବି. ନଦୀର ଉତ୍ପତ୍ତି-ସ୍ଥାନ ବା ଝରଣା, ସ୍ଥୂଳନଦୀ; ଯେଉଁ ନଦୀରୁ ଶାଖାନଦୀମାନ ବାହାରିଥାଏ ।
ମୂଳହର—ପୁଂ.ବିଂ. ମୂଳନାଶକ,ମୂଳ-ଚ୍ଛେଦକାରୀ । [ଅମୂଳକ ।
ମୂଳହୀନ—ବିଂ. (ଦର୍ଶନ) ଭିତ୍ତିଶୂନ୍ୟ,

ମୂଳହୁଁ—ଗ୍ରା.କ୍ରି. ବିଂ. ମୂଳରୁ ଦେଖ ।
ମୂଳହୁଁଶେଷ—ଗ୍ରା. କ୍ରି.ବିଂ. ମୂଳଠାରୁ ଶେଷପର୍ଯ୍ୟନ୍ତ ।
ମୂଳା—ସ୍ତ୍ରୀ. ବି. ( ମୂଳ + ଅ + ଆ ) ଊନବିଂଶ ନକ୍ଷତ୍ର ବା ତାରାପୁଞ୍ଜ,ଏକପ୍ରକାର ଆଳୁ, ଶତାବରୀ, ସ୍ଥାବର ବିଷ ବିଶେଷ, (ଗ୍ରା.ବି) ସ୍ୱନାମଖ୍ୟାତ ମୂଳଜାତୀୟ ଖାଦ୍ୟବିଶେଷ, ମୂଳକ ।
ମୂଳାଂଶ—ବି.(ମୂଳ + ଅଂଶ)ବୃନ୍ତମୁଖ ।
ମୂଳା(ଲେ)ଇବା—ଗ୍ରା. କ୍ରି. କୌଣସି ଦ୍ରବ୍ୟ କିଣିବା ଉଦ୍ଦେଶ୍ୟରେ ଦରଦାମ୍ କରିବା, କୌଣସି ଆପଦ ବା ଦଣ୍ଡକୁ ଆପଣା ଉପରକୁ ଡାକି ଆଣିବା ।
ମୂଳାଇବା—ଗ୍ରା.କ୍ରି. ବୃକ୍ଷଆଦିକୁ ମୂଳରୁ ଛେଦିବା, ପୋତା ହୋଇଥିବା ଖୁଣ୍ଟ-ଆଦିର ଭୂମିରେ ଥିବା ଅଂଶ କୁଟୁରି-ଯିବା ।
ମୂଳାକାନ୍ତି—ଗ୍ରା. ବି. ଯେଉଁ କାନ୍ତିରେ ମୂଳା ସିଦ୍ଧ ହୋଇଥାଏ ।
ମୂଳାଣୁ—ବି. (ଉଦ୍ଭିଦ ବିଜ୍ଞାନ) ବୀଜର ଯେଉଁ ଅଂଶ ନିମ୍ନଦିଗକୁ ବୃଦ୍ଧିପାଇ ଚେରରୂପେ ଭୂମିରେ ପ୍ରବେଶକରେ ।
ମୂଳାଧାର—ପୁଂ. ବି. (କ.ଧା) ଗୁହ୍ୟ ଓ ଲିଙ୍ଗ ମଧ୍ୟବର୍ତ୍ତୀ ଦୁଇଅଙ୍ଗୁଳ ପରିମାଣ ସ୍ଥାନ, ମୂଳକାରଣ ।
ମୂଳାଭ—କ୍ଲୀ. ବି.ମୂଳକ ନାମକ ଉଦ୍ଭିଦ ବିଶେଷ । [ ଶାସ୍ତ୍ର ।
ମୂଳାଭିଧର୍ମଶାସ୍ତ୍ର—କ୍ଲୀ. ବି. ଆଦି ଅଭିଧର୍ମ
ମୂଳାୟତନ—କ୍ଲୀ. ବି. (କ.ଧା) ଆଦିମ ଆବାସ, ପୈତୃକ ଭଦ୍ରାସନ ।
ମୂଳାବିଦ୍ୟାବିନାଶକ—କ୍ରି.ବିଂ. ସମୂଳେ ଅଜ୍ଞାନାନ୍ଧକାର ନାଶକାରୀ ।
ମୂଳାଶୀ—ପୁଂ. ବିଂ. (ମୂଳ+ଅଶ୍+କ.ଇନ୍) କନ୍ଦସେବୀ, ଯେ ମୂଳଖାଇ ବଞ୍ଚେ, (ସ୍ତ୍ରୀ) ମୂଳାଶିନୀ ।
ମୂଳାଷ୍ଟମୀ—ବି. ଆଶ୍ୱିନ କୃଷ୍ଣାଷ୍ଟମୀ ।
ମୂଳାହ୍ୱ—କ୍ଲୀ. ବି.(ବ.ବ୍ରୀ)ମୂଳକ,ମୂଳା, ମୂଳ ।
ମୂଳି—ଗ୍ରା. ବି. ଔଷଧ ନିମନ୍ତେ ବ୍ୟବ-

ହୃତ ମୂଳ,ବାଉଁଶର ଚେର ବା ମୂଳ-ନିକଟସ୍ଥ ଅଂଶ,ବାଉଁଶଠେଙ୍ଗୁରି,(ବିଂ) ହୃଷ୍ଟପୁଷ୍ଟ, ମୋଟାସୋଟା ।
ମୂଳିଆ—ଗ୍ରା. ବିଂ. ମୂଳ ସମ୍ବନ୍ଧୀୟ ।
ମୂଳିଆ—ଗ୍ରା.ପୁଂ.ବି.ମଜୁରିଦାର,ଦୈନିକ ମଜୁରିନେଇ କାମ କରିବା ବ୍ୟକ୍ତି ।
ମୂଳିଆମୁଣ୍ଡ—ଗ୍ରା.ବି.ଗରିବ ମୂଳିଆ ମୁଣ୍ଡ ।
ମୂଳିକ—ବିଂ. (ମୂଳ + ଇକ) ମୂଳସମ୍ବନ୍ଧୀୟ,ପ୍ରଧାନ,ଆଦି,ମୂଳଭୋଜୀ,କରେଟି ବା ମୂଳ ଆଦିକୁ ଅବସ୍ଥିତ,(ସ୍ତ୍ରୀ)ମୂଳିକା, (ବି) ସନ୍ୟାସୀ, ଯୋଗୀ ।
ମୂଳିକା—ସ୍ତ୍ରୀ. ବି. ( ମୂଳ + କ + ଆ ) ମୂଳ ସମୂହ, ( ଗ୍ରା.ବି ) ମୂଳମୂଳିକା, ଔଷଧପାଇଁ ବ୍ୟବହୃତ ଚେର ମୂଳମାନ
ମୂଳିକାମୂଳ—କ୍ଲୀ. ବି. କ୍ଷୀରକାମୂଳ ।
ମୂଳିବାଉଁଶ—ଗ୍ରା. ବି. ବାଉଁଶର ମୂଳ ପାଖର ଗଣ୍ଡ,ଏକଜାତୀୟ କଣ୍ଟାବାଉଁଶ ।
ମୂଳିମାବର୍ଗ—ପୁଂ.ବି.ସୁଶ୍ରୁତୋକ୍ତ ଷୋଡ଼ଶ ପ୍ରକାର ମୂଳ ।
ମୂଳିମୂଳିକା—ଗ୍ରା. ବି. ଔଷଧାର୍ଥ ବ୍ୟବହୃତ ଚେରମୂଳ ।
ମୂଳୀ—ପୁଂ. ବି. (ମୂଳ + ଇନ୍) ବୃକ୍ଷ, (ବିଂ) ମୌଳିକ,ଯାହାର ମୂଳଅଛି,(ସ୍ତ୍ରୀ, ବି-ମୂଳ+ଈ) ଔଷଧି, ଝିଟିପିଟି, ଗୃହ-ଗୋଧିକା ।
ମୂଳୀଭୂତ—କ୍ରି. ବିଂ. ମୂଳଯୁକ୍ତ, ଆଦି, ମୂଳ କାରଣ ସ୍ୱରୂପ ।
ମୂଳୀୟ—ବିଂ. ( ମୂଳ+ଈୟ ) ମୂଳ ସମ୍ବନ୍ଧୀୟ ।
ମୂଳୁଁ—ଗ୍ରା. କ୍ରି. ବିଂ. ମୂଳରୁ ।
ମୂଳୁମୂଳିଆ—ଗ୍ରା. ପୁଂ. ବିଂ. ଅଳସୁଆ, କାର୍ଯ୍ୟ କରିବାକୁ ଅନିଚ୍ଛୁକ, (ଗ୍ରା.ବି) ନିଆଁଗୁଲମିଶା ଖୁବ୍ ତାତିଲା ପାଉଁଶ ।
ମୂଳେ—ଗ୍ରା.ଅ.ଦ୍ୱାରା,କରିଆରେ,ଠାରେ, ପାଖରେ, ନିକଟକୁ, ସମ୍ମୁଖରେ,ସହିତ, ମୂଳୀଭୂତ କାରଣ ।
ମୂଳେର—ପୁଂ. ବି. (ମୂଳ+ଏର)ଜଟା, ଗଛର ଚେର, ରାଜା ।
ମୂଳୋଚ୍ଛେଦ(ନ)—ପୁଂ. ବି. (ଭତତ୍ପ)

ମୂଳହାଣିବା, ମୂଳୋତ୍ପାଟନ,(ଲ.ଅର୍ଥ) ସମୂଳେ ବିନାଶ ।

ମୂଳୋତ୍ଖାତ—ତ୍ରି. ବିଂ. ( ୫ତତ୍ ) ସମୂଳେ ବିନଷ୍ଟ, ମୂଳସହ ଉତ୍ପାଟିତ, (ବି) ମୂଳୋତ୍ପାଟନ ଦେଖ ।

ମୂଳୋତ୍ପାଟକ—ବି. ଯେ ମୂଳଉତ୍ପାଟନ କରିଅଛି,ଯେ ସମୂଳେ ନଷ୍ଟ କରିଅଛି ।

ମୂଳୋତ୍ପାଟନ—କ୍ଲୀ. ବ. ମୂଳ ବା ଭିତ୍ତି ସହିତ ଉତ୍ତୋଳନ, ନିର୍ମୂଳୀକରଣ ।

ମୂଳୌଷଧ—ସ୍ତ୍ରୀ. ବ.(କ.ଧା)ମୂଳଔଷଧ. ଔଷଧ ରୂପେ ବ୍ୟବହୃତ ମୂଳ, ଗୁଳ୍ମଭେଦ

ମୂଲ୍ୟ—କ୍ଲୀ. ବ. (ମୂଲ+ଯ) ଦ୍ରବ୍ୟର ପଣ ବା ଦାମ, ଦର, ମୂଲ, ପରିଶ୍ରମର ଦାମ୍, ମୁଦ୍ରାଦି ଶସ୍ୟ, ବ୍ୟବହାର ପାଇଁ ଦିଆଯିବା ଭଡ଼ା, ବେତନ,(ବିଂ)ପ୍ରତିଷ୍ଠା-ଯୋଗ୍ୟ, ରୋପଣ ଯୋଗ୍ୟ, ଫେରିଦ୍‌କର-ବାର ଯୋଗ୍ୟ,ଦାମୀ,ମୂଳରୁ ଉତ୍ପାଟନ ଯୋଗ୍ୟ, (ମୁଦ୍ରାଦି) ।

ମୂଲ୍ୟକରଣ—କ୍ଲୀ. ବ. ମୂଲ୍ୟ ନିରୂପଣ, ଦାମ୍ ଠିକ୍ କରିବା ।

ମୂଲ୍ୟନାଶକ—ବିଂ.ଯାହା କୌଣସି ବସ୍ତୁର ଦର କମାଇ ଦିଏ ।

ମୂଲ୍ୟନିରୂପଣ—ବ. (୬ତତ୍) ପଦାର୍ଥର ଦାମ୍ ଠିକ୍ କରିବା, ଦରଦାମ କରିବା ।

ମୂଲ୍ୟବାନ୍—ବିଂ (ମୂଲ୍ୟ+ବତ୍)ବହୁମୂଲ୍ୟ

ମୂଲ୍ୟବର୍ଜିତ—ବିଂ. ମୂଲ୍ୟହୀନ, ଅମୂଲ୍ୟ

ମୂଲ୍ୟହୀନ—ବିଂ.(୩ତତ୍); ଯାହାର କିଛି-ମାତ୍ର ମୂଲ୍ୟନାହିଁ ।

ମୂଲ୍ୟାବଧାରଣ—ବ.ମୂଲ୍ୟନିରୂପଣ ଦେଖ

ମୂଶଳୀ—ସ୍ତ୍ରୀ. ବ. ତାଳମୂଳୀ ।

ମୂଷ—ପୁଂ. ସ୍ତ୍ରୀ. ବିଂ. (ମୂଷ+କ.କ୍ୱିପ୍) ମୂଷିକ, ମୂଷା, (ଣ.କ୍ୱିପ୍) ତେଜସା-ବର୍ତ୍ତିନୀ, କୋଇ ।

ମୂଷ—ପୁଂ. ବ. (ମୂଷ+କ.ଅ) ମୂଷା, (ଣ.ଅ) ଧାତୁ ତରଳାଇବାର ପାତ୍ର, କୋଇ ।

ମୂଷକ—ପୁଂ.ବ.(ମୂଷ+କ.ଅକ)ଇନ୍ଦୁର, ମୂଷା, ଦସ୍ୟୁ, ଲୁଣ୍ଠନକାରୀ, (ଣ.ଅକ) ତେଜସାବର୍ତ୍ତିନୀ,କୋଇ ।

ମୂଷକମାର୍ଗ—ସ୍ତ୍ରୀ. ବ. (ମୂଷକ+ମୃ+ଣିଚ୍+ଅ-ଈ) ଶୁକ୍ଳଶ୍ରେଣୀ ଲତା ।

ମୂଷକକର୍ଣ୍ଣୀ—ସ୍ତ୍ରୀ. ବ. ଆଖୁକର୍ଣ୍ଣୀଲତା, ମୂଷାକାନିଲତା ।

ମୂଷକଯୁଗ୍ମ—କ୍ଲୀ.ବ.ହ୍ରସ୍ୱ ଓ ଦୀର୍ଘ ମୂଷ-କର୍ଣ୍ଣୀଦ୍ୱୟ ।

ମୂଷକଶତ୍ରୁ—ପୁଂ. ବ. ବିଡ଼ାଲ ।

ମୂଷକା—ସ୍ତ୍ରୀ.ବ (ମୂଷକ+ଆ)ମୂଷିକା, ମୂଷା ।

ମୂଷକାଦ—ପୁଂ.ବ. (ମୂଷକ+ଅଦ୍+କ.ଅ) ବିଡ଼ାଲ, ବିରାଡ଼ି । [ ବିରାଡ଼ି

ମୂଷକାରାତି—ପୁଂ. ବ. (୬ତତ୍)ବିଡ଼ାଲ,

ମୂଷଣ—ବ.(ମୂଷ୍+ଭା.ଅନ) ଅପହରଣ ଚୋରି ।

ମୂଷଲ—ବ. ମୁଷଳ ଦେଖ । [ ଦେଖ ।

ମୂଷଲୀ—ବ. ତାଳମୂଳୀ, (ବିଂ) ମୁଷଲୀ

ମୂଷା—ସ୍ତ୍ରୀ.ବ. (ମୂଷ+ଅ+ଆ) ସ୍ୱର୍ଣ୍ଣ-ଦ୍ରାବକରଣପାତ୍ର, କୋଇ,ଦେବତାଡ଼-ବୃକ୍ଷ, ମାଇମୂଷା, ଗୋକ୍ଷୁରବୃକ୍ଷ,ଗବାକ୍ଷ (ଗ୍ରା.ବ) ମୂଷିକ ।

ମୂଷାକ—ବ. ମୂଷା ଦେଖ ।

ମୂଷାକର୍ଣ୍ଣୀ—ସ୍ତ୍ରୀ.ବ.ଆଖୁକର୍ଣ୍ଣୀ, ମୂଷାକାନି

ମୂଷାକାନି—ଗ୍ରା.ବ. ମୂଷିକପର୍ଣ୍ଣୀ ଦେଖ, କଙ୍କଣ ଦେଶଜ ଏକପ୍ରକାର ଗୁଳ୍ମ, ଏକକାଣ୍ଡସ୍ଥ କ୍ଷୁଦ୍ର ବନ୍ୟଲତା ।

ମୂଷାତୁଣ୍ଡ—କ୍ଲୀ.ବ.ତୁଣ୍ଡିଆ, ମୟୂରଗ୍ରୀବା, ନୀଳତୁଣ୍ଡିଆ ।

ମୂଷାମାଟି—ଗ୍ରା. ବ. ମୂଷା ଗାତର ମୁହଁ ଆଡ଼କୁ ମୂଷା ଗାଳିଥିବା ମାଟି ।

ମୂଷି—ଗ୍ରା.ବ. ସ୍ଲେଟମୂଷା, ସ୍ଲେଟ ସ୍ଲେଟ ଅଙ୍ଗାର ।

ମୂଷି(ଷୀ)କ—ପୁଂ.ବ (ମୂଷ୍+କ+ଇକ) ମୂଷା, ଚୋର, ଦସ୍ୟୁ, ଶିରୀଷ ଫୁଲର ଗଛ, ଦକ୍ଷିଣ ଭାରତର କୁମାରିକା ଓ କୁଇଁଲନ୍ ଅନ୍ତରୀପ ମଧ୍ୟସ୍ଥ ଦେଶ ।

ମୂଷି(ଷୀ)କପର୍ଣ୍ଣୀ—ସ୍ତ୍ରୀ. ବ. ଆଖୁକର୍ଣ୍ଣୀ-ଲତା, ମୂଷାକାନି ନାମକ ବର୍ଷାସ୍ଥ ଭୂଷମାନ ଜଳଜ ଶାକ ।

ମୂଷି(ଷୀ)କତୈଳ—କ୍ଲୀ. ବ. ଯୋନିକନ୍ଦ ରୋଗର ତୈଳୌଷଧିବିଶେଷ ।

ମୂଷି(ଷୀ)କରଥ—ପୁଂ.ବ(ବ.ବ୍ରୀ)ଗଣେଶ

ମୂଷି(ଷୀ)କରୁହା—ସ୍ତ୍ରୀ.ବ.ମୂଷିକର୍ଣ୍ଣୀ ।

ମୂଷି(ଷୀ)କବାହନ—ପୁଂ. ବ. (ବ.ବ୍ରୀ) ଗଣେଶ ।

ମୂଷି(ଷୀ)କା—ସ୍ତ୍ରୀ.ବ.ମୂଷିକପର୍ଣ୍ଣୀ,ଇନ୍ଦୁର, ମାଇମୂଷା, କୋଇ ।

ମୂଷି(ଷୀ)କାଙ୍କ—ପୁଂ.ବ(ବ.ବ୍ରୀ)ଗଣେଶ

ମୂଷି(ଷୀ)କାଞ୍ଚନ—ପୁଂ. ବ. (ମୂଷିକ+ଅଞ୍ଚ+ଅନ) ଗଣେଶ ।

ମୂଷି(ଷୀ)କାଦ—ପୁଂ.ବ. ବିଡ଼ାଲ,ନାଗ-ବିଶେଷ ।

ମୂଷି(ଷୀ)କାନ୍ତକୃତ୍—ପୁଂ.ବ. (୬ତତ୍) ବିଡ଼ାଲ, ବିରାଡ଼ି ।

ମୂଷି(ଷୀ)କାର—ପୁଂ. ବ. ପୁଂମୂଷିକ, ଅଣ୍ଡିରାମୂଷା ।

ମୂଷି(ଷୀ)କାରାତି—ପୁଂ.ବ(୬ତତ୍)ବିଡ଼ାଲ

ମୂଷି(ଷୀ)କାଶ—ପୁଂ.ବ.(ମୂଷିକ+ଅଶ) ବିରାଡ଼ି, କଙ୍କଣ ଦେଶଜ ଏକପ୍ରକାର ଗୁଳ୍ମ । [ କର୍ଣ୍ଣୀ ।

ମୂଷି(ଷୀ)କାହ୍ୱୟ-ପୁଂ.ବ.(ବ.ବ୍ରୀ)ମୂଷିକ-

ମୂଷିକକା—ସ୍ତ୍ରୀ. ବ. ମୂଷିକା ।

ମୂଷିତ—ବିଂ.(ମୂଷ୍+ର୍ମ.ତ)ଅପହୃତ ।

ମୂଷିପର୍ଣ୍ଣିକା—ସ୍ତ୍ରୀ.ବ (ମୂଷିକ+ପର୍ଣ୍ଣ+କ+ଆ) ମୂଷିକପର୍ଣ୍ଣୀ, ମୂଷାକାନି ।

ମୂଷ୍ୟାୟଣ—ପୁଂ. ବିଂ. ଅଜ୍ଞାତପିତୃକ, ଗୁଢ଼ୋତ୍ପନ୍ନ, ଜାରଜ, ଯାହାର ପିତା ଜଣାନାହିଁ, (ସ୍ତ୍ରୀ) ମୂଷ୍ୟାୟଣୀ ।

ମୃକଣ୍ଡ—ପୁଂ. ବ. ମୃକଣ୍ଡ ମୁନି ।

ମୃକଣ୍ଡୁ(କ)—ପୁଂ.ବ.ମୁନିବିଶେଷ,ମାର୍କ-ଣ୍ଡେୟଙ୍କ ପିତା ।

ମୃକ୍ଷ—ପୁଂ. ବ. ଦର୍ବୀବିଶେଷ, (ବିଂ) ଶୋଧକ, ପରିଚରଣୀୟ ।

ମୃକ୍ଷିଣୀ—ସ୍ତ୍ରୀ. ବ. ମୃକ୍ଷବତୀ, ପରିମୃଷ୍ଟା ।

ମୃଗ୍—(ଧାତୁ). ଅନ୍ୱେଷଣ କରିବା ।

ମୃଗ—ପୁଂ, ବ. (ମୃଗ୍+ଅ) ପ୍ରାର୍ଥନା, ମାର୍ଗଶିରମାସ, ମୃଗନାଭି, ମକରରାଶି, ଯକ୍ଷବିଶେଷ,ମୃଗଶିରା ନକ୍ଷତ୍ର, ଶୀକାର, ମୃଗୟା, ପଶୁମାତ୍ର, ଅନ୍ୱେଷଣ, ହରିଣ

ବିଂଧ ପୁରୁଷ ମଧ୍ୟରୁ ପୁରୁଷବିଶେଷ, ମିରଗ,ହରିଣ, କପୋଳଦେଶରେ ଶ୍ୱେତ ଚିହ୍ନଯୁକ୍ତ ଗଜବିଶେଷ, (ସ୍ତ୍ରୀ) ମୃଗୀ ।

ମୃଗକାନନ—କ୍ଲୀ. ବ: ମୃଗୟାର ଉପଯୁକ୍ତ ବନ ।

ମୃଗକାୟନ—ପୁଂ.ବ. ଗୋତ୍ର ପ୍ରବର୍ତ୍ତକ ଋଷିବିଶେଷ ।

ମୃଗକ୍ଷୀର—କ୍ଲୀ. ବ. ମୃଗୀଦୁଗ୍ଧ ।

ମୃଗଗାମିନୀ—ସ୍ତ୍ରୀ. ବ. (ମୃଗ+ଗମ୍+ଇନ୍+ଈ) ବିଡ଼ଙ୍ଗ, (ବିଂ)ମୃଗସଦୃଶ ଗମନଶୀଳା ।

ମୃଗଘର୍ମଜ—କ୍ଲୀ.ବ.ଜବାଦନାମକ ଗନ୍ଧଦ୍ରବ୍ୟ, ମୃଗନାଭି କସ୍ତୁରୀ, (ବିଂ) ମୃଗଘର୍ମଜାତ ।

ମୃଗଚର୍ମ—ବ. (୬ତତ୍) ମିରିଗଛାଲ ।

ମୃଗଚର୍ମୀୟ—ପୁଂ. ବିଂ. ମୃଗଚର୍ମସମ୍ବନ୍ଧୀୟ, ମୃଗ ଚର୍ମରେ ପ୍ରସ୍ତୁତ ।

ମୃଗଚର୍ଯ୍ୟା—ସ୍ତ୍ରୀ.ବ.ମୃଗସଦୃଶ ଆଚରଣ

ମୃଗଚୃର୍ଣ୍ଣ—ପୁଂ.ବିଂ.ମୃଗପରି ଆଚରଣବାନ୍

ମୃଗଚେଟକ—ପୁଂ.ବ. (ମୃଗ+ଚଟ୍+ଣିଚ୍+ଅକ) ଖଟାଶ, ବଣଭୁଆ ।

ମୃଗଜନ୍ତୁ—ପୁଂ. ବ. ହରିଣ ଶିଶୁ ।

ମୃଗଜା—ସ୍ତ୍ରୀ. ବ. କସ୍ତୁରୀ, ମୃଗନାଭି ।

ମୃଗଜାଲିକା—ସ୍ତ୍ରୀ. ବ. (୬ତତ୍) ମୃଗବନ୍ଧନାର୍ଥ ଜାଲ, ବାଗୁରି ।

ମୃଗଜୀବନ—ପୁଂ. ବ. (ବ.ବ୍ରୀ) ବ୍ୟାଧ, ଶୀକାରୀ ।

ମୃଗଜୀବୀ—ପୁଂ.ବ(ବ.ବ୍ରୀ)ବ୍ୟାଧ,ଶୀକାରୀ

ମୃଗତୃଷ୍ଣ—ପୁଂ.ବ. ଅଶ୍ୱର ବାତ ବ୍ୟାଧିରୋଗବିଶେଷ ।

ମୃଗଣ(ଣା)—ସ୍ତ୍ରୀ.ବ.(ମୃଗ+ଅନ+ଆ) ଅପହୃତ ଦ୍ରବ୍ୟର ଅନ୍ୱେଷଣ,ଅନୁସନ୍ଧାନ

ମୃଗଣ୍ୟ—ବିଂ. ପଟୁଙ୍ଘ ।

ମୃଗତୀର୍ଥ—କ୍ଲୀ. ବ. ସବନ ଯାଗପର ଶାଖାର କ୍ରିୟା ସମ୍ପାଦନାର୍ଥ ଯେଉଁ ପଥ ଦେଇ ପୁରୋହିତାଦିମାନେ ଗମନ କରନ୍ତି, ତୀର୍ଥଭେଦ ।

ମୃଗତୃଟ୍(ଷ୍,ଷା)—ସ୍ତ୍ରୀ.ବ.(ବ.ବ୍ରୀ) ମୃଗତୃଷ୍ଣା ଦେଖ ।

ମୃଗତୃଷ୍ଣା—ସ୍ତ୍ରୀ.ବ. (ବ.ବ୍ରୀ) ମରୁ ମରୀଚିକା, ସୂର୍ଯ୍ୟ କିରଣରେ ଜଳଭ୍ରମ, (ଲ.ଅର୍ଥ) ବୃଥା ଆଶା ଦେଖାଇବାରେ ଛଳନା ।

ମୃଗତୃଷ୍ଣି—ସ୍ତ୍ରୀ. ବ. ମୃଗତୃଷ୍ଣା ।

ମୃଗତୃଷ୍ଣିକା—ସ୍ତ୍ରୀ. ବ. ମରୀଚିକା, ମୃଗତୃଷ୍ଣା ଦେଖ । [ ତୃଷ୍ଣା ।

ମୃଗତୋୟ—କ୍ଲୀ.ବ.ମରୁମରୀଚିକା, ମୃଗ-

ମୃଗଦଂଶ—ପୁଂ. ବ. କୁକୁର ।

ମୃଗଦଂଶକ—ପୁଂ. ବ. କୁକୁର ।

ମୃଗଦାବ—ପୁଂ. ବ. ମୃଗକାନନ, ବାରାଣସୀ ପାର୍ଶ୍ୱସ୍ଥ ପ୍ରାଚୀନ ବୌଦ୍ଧ କ୍ଷେତ୍ର, (ଏହାର ବର୍ତ୍ତମାନ ନାମ ସାରନାଥ ।

ମୃଗଦୃପ୍ତ—ବିଂ. (ମୃଗ+ଦୃପ୍+କ.କ୍ୱିପ୍) ମୃଗୟାକାରୀ, ଶୀକାରୀ ।

ମୃଗଦୃକ୍—ବିଂ.(ବ.ବ୍ରୀ)ମୃଗସଦୃଶ ଚକ୍ଷୁବିଶିଷ୍ଟ, ମୃଗଲୋଚନ । [ ଶୀକାରୀ ।

ମୃଗଦ୍ୟୁ—ବିଂ. (ବ.ବ୍ରୀ) ମୃଗୟାକାରୀ,

ମୃଗଧର—ପୁଂ.ବି.ଚନ୍ଦ୍ର, ରାଜା ପ୍ରସେନଜିତଙ୍କ ପ୍ରଧାନ ମନ୍ତ୍ରୀ ।

ମୃଗଧୂମ—କ୍ଲୀ. ବ. ତୀର୍ଥଭେଦ ।

ମୃଗଧୂର୍ତ୍ତ—ପୁଂ. ବ. ଶୃଗାଲ, ବିଲୁଆ ।

ମୃଗଧୂର୍ତ୍ତିକ—ବ.(୬ତତ୍)ଶୃଗାଲ,ବିଲୁଆ

ମୃଗନୟନା—ସ୍ତ୍ରୀ. ବିଂ. ଏଣୀନୟନା, ମୃଗପରି ମନୋହର ନୟନବିଶିଷ୍ଟା (ସ୍ତ୍ରୀ)

ମୃଗନୟନୀ—ଗ୍ରା.ସ୍ତ୍ରୀ.ବିଂ. ମୃଗନୟନା ।

ମୃଗନାଭି—ପୁଂ. ବ. (୬ତତ୍) କସ୍ତୁରୀ, ମୃଗମଦ ।

ମୃଗନାଭିଜା—ସ୍ତ୍ରୀ.ବ. (ମୃଗନାଭି+ଜନ+ଅ+ଆ) କସ୍ତୁରୀ ।

ମୃଗନେତ୍ର—ବିଂ.ମୃଗଶିରାନକ୍ଷତ୍ରଯୁକ୍ତ ।

ମୃଗନେତ୍ରା—ସ୍ତ୍ରୀ. ବ. (ବ.ବ୍ରୀ) ମୃଗଶିରା ନକ୍ଷତ୍ରଯୁକ୍ତା ରାତ୍ରି, ମାର୍ଗଶିର ମାସର ରାତ୍ରି,(ବିଂ)ମୃଗତୁଲ୍ୟ ନେତ୍ରବିଶିଷ୍ଟା(ସ୍ତ୍ରୀ)

ମୃଗପତି—ପୁଂ. ବ. (୬ତତ୍) ପଶୁରାଜ, ସିଂହ, ସିଂହରାଶି ।

ମୃଗପଦ—କ୍ଲୀ. ବ.ମୃଗର ପଦ, ମୃଗର ପଦସ୍ଥ ଚିହ୍ନ ।

ମୃଗପାଳିକା—ସ୍ତ୍ରୀ. ବ. କସ୍ତୁରୀ ମୃଗ ।

ମୃଗପିପ୍ଳୁ—ପୁଂ.ବ.(ବ.ବ୍ରୀ)ଚନ୍ଦ୍ର,ଶଶାଙ୍କ ।

ମୃଗପ୍ରଭୁ—ପୁଂ.ବ. ( ୬ତତ୍ ) ପଶୁରାଜ, ସିଂହ ।

ମୃଗପ୍ରିୟ—କ୍ଲୀ.ବ. (୬ତତ୍)ପର୍ବତ ତୃଣ, ଭୂତୃଣାଖ୍ୟ ତୃଣ, (ସ୍ତ୍ରୀ.ବ) ମୃଗପ୍ରିୟା, ହରିଣୀ, ଜଳକଦଳୀ ।

ମୃଗଭକ୍ଷଣ—ବ. ଜଟାମାଂସୀ ।

ମୃଗଭକ୍ଷା—ସ୍ତ୍ରୀ. ବ. ଜଟାମାଂସୀ, ଇନ୍ଦ୍ରବାରୁଣୀ, ମହାକାଳଲତା ।

ମୃଗଭୋଜନୀ—ସ୍ତ୍ରୀ.ବ. ବିଶାଲା, ମହାକାଳ ଲତା ଓ ଫଳ,ପାଞ୍ଚ କୋଡ଼ିମେଇ ଲତା

ମୃଗମଦ—ପୁଂ.ବ. (ବ.ବ୍ରୀ) କସ୍ତୁରୀ, (୬ତତ୍) ହରିଣ ନୟନର ଗର୍ବ ।

ମୃଗମଦବାସା—ସ୍ତ୍ରୀ.ବ. (ବ.ବ୍ରୀ)କସ୍ତୁରୀ, ମଲ୍ଲିକା ।

ମୃଗମଦା—ସ୍ତ୍ରୀ.ବ.(ମୃଗମଦ+ଆ)କସ୍ତୁରୀ

ମୃଗମଦାସବ—ସନ୍ନିପାତ ରୋଗର ଔଷଧ ବିଶେଷ ।

ମୃଗମୟ—ବିଂ. ବନ୍ୟ ଶ୍ୱାପଦବିଶିଷ୍ଟ, ବିଲୁଆ କୁକୁର ବହୁ ପରିମାଣରେ ଥିବା (ବନ) ।

ମୃଗମାନ—ପୁଂ.ବିଂ. ( ମୃଗ+କ.ଆନ ) ଅନ୍ୱେଷଣ କରୁଥିବା, ଶୀକାର ପଛରେ ଗୋଡ଼ାଇଥିବା, (ସ୍ତ୍ରୀ) ମୃଗମାନା ।

ମୃଗୟା—ସ୍ତ୍ରୀ. ବ. ( ମୃଗ+ଯା+କ୍ୱିପ୍ ) ରାଜାମାନଙ୍କର ବନରେ ମୃଗ ହନନ କ୍ରିୟା, ଶୀକାର ।

ମୃଗୟାରଣ୍ୟ—କ୍ଲୀ. ବ. କ୍ରୀଡ଼ାକାନନ, ଶୀକାରୀ ଜଙ୍ଗଲ ।

ମୃଗୟାବନ—କ୍ଲୀ.ବ. ଶୀକାରୋପଯୋଗୀ ବନ, ମୃଗକାନନ ।

ମୃଗୟୁ—ପୁଂ.ବ. (ମୃଗ+ଯା+ଉ)ବ୍ରହ୍ମା, ଶୃଗାଲ, ବ୍ୟାଧ । [ କାଳି ।

ମୃଗରସା—ସ୍ତ୍ରୀ. ବ. ସହଦେବୀ, ମହା-

ମୃଗରାଟ୍—ପୁଂ.ବ. (ମୃଗ+ରାଜ୍+କ୍ୱିପ୍) ପଶୁରାଜ, ସିଂହ, ଚନ୍ଦ୍ର,ମୃଗଶିରା ନକ୍ଷତ୍ର ।

ମୃଗରାଜ—ପୁଂ.ବ. (୬ତତ୍ ) ମୃଗରାଟ୍ ଦେଖ । [ ରାଶି ।

ମୃଗରାଜଧାରୀ—ପୁଂ. ବ. ଚନ୍ଦ୍ର, ସିଂହ-

ମୃଗରାଜଲକ୍ଷ୍ମା—ପୁଂ. ବିଂ. ସିଂହ ଚିହ୍ନ-ବିଶିଷ୍ଟ ।
ମୃଗରଟିକା—ସ୍ତ୍ରୀ. ବି. (ମୃଗ+ରଟ୍+ଅକ+ଆ) କାକନ୍ଦୀ ।
ମୃଗରିପୁ—ପୁଂ.ବି. (୬ତତ୍) ସିଂହ ।
ମୃଗରୋମଜ—ବିଂ. (ମୃଗରୋମ+ଜନ୍+ଅ) ପଶୁ ଲୋମଜାତ ବସ୍ତ୍ରାଦି ।
ମୃଗଲ—ବି. ମୃଗାଲ ଦେଖ ।
ମୃଗଲଣ୍ଡିକା—ସ୍ତ୍ରୀ.ବି. ଫଳବିଶେଷ ।
ମୃଗଲାଞ୍ଛନ—ପୁଂ.ବି.(ବି.ଗ୍ରା)ଚନ୍ଦ୍ର, ମୃଗଶିର ନକ୍ଷତ୍ର ।
ମୃଗଲାଞ୍ଛନଜ—ପୁଂ. ବି. (ମୃଗଲାଞ୍ଛନ+ଜନ୍+ଅ) ଚନ୍ଦ୍ରଜ, ବୁଧ ।
ମୃଗଲେଖା—ସ୍ତ୍ରୀ. ବି. (୬ତତ୍) ମୃଗଚିହ୍ନିତ ଚନ୍ଦ୍ରଙ୍କର କଳଙ୍କରେଖା ।
ମୃଗଲୋଚନା—ସ୍ତ୍ରୀ. ବି. (ବି.ଗ୍ରା) ମୃଗନୟନା ଦେଖ ।
ମୃଗବଣ୍ଡି—ସ୍ତ୍ରୀ.ବି.ସୁମେରୁ ଓ ଭଲ୍ଲୁକାଦିଙ୍କର ପୁରାଣ କଳ୍ପିତ ଆଦିମାତା ।
ମୃଗବଧାଜୀବ—ପୁଂ.ବି. (ବି.ଗ୍ରା) ମୃଗଘାତୀ ବ୍ୟାଧ ।
ମୃଗବନ—କ୍ଲୀ. ବି. ପଶ୍ଵାଦି ପରିବୃତ ରାଜରକ୍ଷିତ ଉପବନବିଶେଷ, ଶ୍ଵାପଦ-ସଙ୍କୁଳ ବନ୍ୟପ୍ରଦେଶ ।
ମୃଗବନତୀର୍ଥ—କ୍ଲୀ. ବି. ନର୍ମଦା ନଦୀ-ତୀରସ୍ଥ ତୀର୍ଥଭେଦ ।
ମୃଗବନ୍ଧନୀ—ସ୍ତ୍ରୀ. ବି. (କ.ଧା) ମିରିଗ ଧରିବାର ଜାଲ, ବାଗୁରା ।
ମୃଗବର—ବି. (୭ତତ୍) ପଶୁରାଜ, ସିଂହ ।
ମୃଗବଲ୍ଲଭ—ପୁଂ.ବି.(୬ତତ୍)କୁନ୍ଦୁରୁ ତୃଣ
ମୃଗବାହନ—ପୁଂ.ବି. (ବି.ଗ୍ରା) ବାୟୁ. ରାଜଭେଦ ।
ମୃଗବୀଥି—ସ୍ତ୍ରୀ.ବି. ଶ୍ରବଣା, ଶତଭିଷା ଓ ପୂର୍ବ ଭାଦ୍ରପଦ ନକ୍ଷତ୍ରଯୁକ୍ତ ଚନ୍ଦ୍ରଙ୍କର ଗତିପଥଭେଦ ।
ମୃଗବ୍ୟ—କ୍ଲୀ.ବି. (ମୃଗ+ବ୍ୟଧ୍+ଅଧି. କ୍ୱିପ୍) ମୃଗୟା,ଶୀକାର,ଧନୁର ଲକ୍ଷ୍ୟ ।
ମୃଗବ୍ୟାଧ—ପୁଂ.ବି. ମୃଗାନ୍ୱେଷୀ ବ୍ୟାଧ, ନକ୍ଷତ୍ରଭେଦ, ଶିବଙ୍କ ମଧ୍ୟରେ ଜଣେ, ଏକାଦଶ ରୁଦ୍ର ।
ମୃଗଶାୟିକା—ସ୍ତ୍ରୀ.ବି. ମୃଗର ଶୋଇ- [ ଥିବା ଅବସ୍ଥା ।
ମୃଗଶାବ—ପୁଂ.ବି. ହରିଣ ଶିଶୁ ।
ମୃଗଶିରଃ—କ୍ଲୀ.ବି. (ବି.ଗ୍ରା) ମୃଗଶିର ନକ୍ଷତ୍ର, (୬ତତ୍) ମୃଗର ମୁଣ୍ଡ ।
ମୃଗଶିରାଃ—ବି.(ବି.ଗ୍ରା)ମୃଗଶିର ନକ୍ଷତ୍ର, (୬ତତ୍) ମୃଗର ମୁଣ୍ଡ ।
ମୃଗଶିର—ବି.(ବି.ଗ୍ରା)ମୃଗଶିର ନକ୍ଷତ୍ର, (୬ତତ୍) ମୃଗର ମୁଣ୍ଡ ।
ମୃଗଶୀର୍ଷ—ବି. ମୃଗଶିର ନକ୍ଷତ୍ର ।
ମୃଗଶୀର୍ଷକ—ବି. ମୃଗଶିର ନକ୍ଷତ୍ର ।
ମୃଗଶୃଙ୍ଗ—କ୍ଲୀ.(୬ତତ୍) ହରିଣର ଶିଙ୍ଗ, (ଏହାର ଭସ୍ମ ହୃଦ୍ରୋଗରେ ବିଶେଷ-ଉପକାରୀ) ।
ମୃଗଶୃଙ୍ଗବ୍ରତୀ—ପୁଂ.ବି. ଉପାସକ ସମ୍ପ୍ରଦାୟ ଭେଦ ।
ମୃଗଶ୍ରେଷ୍ଠ—ବି.ବ୍ୟାଘ୍ର, ବାଘ ।
ମୃଗସତ୍ର—କ୍ଲୀ.ବି. ଊନବିଂଶଦିନ ବ୍ୟାପୀ ଯଜ୍ଞଭେଦ ।
ମୃଗହା—ପୁଂ.ବି.(ମୃଗ+ହନ୍+କ୍ୱିପ୍) [ ବ୍ୟାଧ ।
ମୃଗୀ—ସ୍ତ୍ରୀ.ବି. ସହଦେବୀଲତା, (ପ୍ରା-ସିଂହଭୂମ. ବି.)-ମୃଗୀରୋଗ,ଅପସ୍ମାର-ରୋଗ ।
ମୃଗାକ୍ଷୀ-ସ୍ତ୍ରୀ.ବି.ମୃଗାଦନୀ ଦେଖ,ବିଶାଳା, (ସ୍ତ୍ରୀ.ବିଂ—ବି.ଗ୍ରା) ମୃଗନେତ୍ର ତୁଲ୍ୟ ନେତ୍ରଯୁକ୍ତା(ସ୍ତ୍ରୀ) ।
ମୃଗାଖର—ପୁଂ.ବି. ବନ୍ୟ ପଶୁର ଗର୍ତ୍ତ ।
ମୃଗାଙ୍କ—ପୁଂ.ବି. (ବି.ଗ୍ରା) ଚନ୍ଦ୍ର,କର୍ପୂର. ବାୟୁ, (୬ତତ୍) ଚନ୍ଦ୍ର ଦେହରେ ମୃଗ ଆକାରର କଳଙ୍କ ।
ମୃଗାଙ୍କଜ—ବି. (ମୃଗାଙ୍କ+ଜନ୍+ଅ) କସ୍ତୁରୀ, ଚନ୍ଦ୍ରକ ।
ମୃଗାଙ୍କରସ—ପୁଂ.ବି. ଯକ୍ଷ୍ମା, କାଶପ୍ରଭୃତି ରୋଗର ପ୍ରଧାନ ଔଷଧବିଶେଷ ।
ମୃଗାଙ୍କଲେଖା—ସ୍ତ୍ରୀ.ବି.ବିଦ୍ୟାଧର ରାଜ-କନ୍ୟାଭେଦ ।
ମୃଗାଙ୍କବତୀ—ସ୍ତ୍ରୀ.ବି.ଇକ୍ଷ୍ୱାକୁବଂଶୀୟ ଧର୍ମ-ଧ୍ୱଜଙ୍କର ପତ୍ନୀ,ବିଦ୍ୟାଧରରାଜ ମୃଗାଙ୍କ ସେନଙ୍କ ପତ୍ନୀ ।
ମୃଗାଙ୍କଶେଖର—ବି. (ବି.ଗ୍ରା)ଚନ୍ଦ୍ରଚୂଡ଼, ଶିବ ।
ମୃଗାଙ୍ଗକ—ପୁଂ.ବି. ମୃଗାଙ୍କ ।
ମୃଗାଙ୍ଗଜା—ସ୍ତ୍ରୀ.ବି. ମୃଗନାଭି.ବାରୁଣୀ-ଲତା ।
ମୃଗାଙ୍ଗନା—ସ୍ତ୍ରୀ.ବି. (୬ତତ୍) ହରିଣୀ, [ ମୃଗୀ ।
ମୃଗାଜିନ—ବି. (୬ତତ୍)ମିରିଗ ଚମଡ଼ା ।
ମୃଗାଜିନଧର— ପୁଂ. ବିଂ. ମୃଗଚର୍ମ-ପରିଧାନକାରୀ ।
ମୃଗାଜୀବ—ପୁଂ. ବି. (ମୃଗ+ଆ+ଜୀବ୍+ଅ) ବ୍ୟାଧ, ହେଣ୍ଟା, ଗଧିଆ ।
ମୃଗାଟବୀ—ସ୍ତ୍ରୀ ବି.ମୃଗକାନନ, ମୃଗବନ ।
ମୃଗାଣ୍ଡଜା—ସ୍ତ୍ରୀ.ବି. (ମୃଗାଣ୍ଡ+ଜନ୍+ଅ+ଆ) କସ୍ତୁରୀ ।
ମୃଗାତ୍(ଦ୍)—ପୁଂ. ବି. (ମୃଗ+ଅଦ୍+କ.କ୍ୱିପ୍) ସିଂହ, ତରକ୍ଷୁ, ନେକଡ଼ା-ବାଘ, ବ୍ୟାଘ୍ର ।
ମୃଗାଦନ—ପୁଂ.ବି. (ମୃଗ+ଅଦ୍+କ. ଅନ) କ୍ଷୁଦ୍ର ବ୍ୟାଘ୍ର, ଚିତାବାଘ, (ସ୍ତ୍ରୀ) ମୃଗାଦନୀ ।
ମୃଗାଦନୀ—ସ୍ତ୍ରୀ.ବି. ଇନ୍ଦ୍ରବାରୁଣୀ, ସହ-ଦେବୀ, ମହାକାଳ ଲତା ।
ମୃଗାଧିପ—ପୁଂ.ବି. (୬ତତ୍) ସିଂହ ।
ମୃଗାଧିପତ୍ୟ-କ୍ଲୀ.ବି. ବନ୍ୟ ଜନ୍ତୁ ଉପରେ ପ୍ରଭୁତ୍ୱ ।
ମୃଗାଧିରାଜ—ପୁଂ.ବି. (୬ତତ୍) ସିଂହ ।
ମୃଗାନ୍ତକ—ପୁଂ.ବି. (୬ତତ୍)ଚିତାବାଘ, ବ୍ୟାଧ ।
ମୃଗାର— ପୁଂ. ବି. ଅଥର୍ବବେଦୋକ୍ତ ଋଷି, ପ୍ରସେନଜିତ୍ ରାଜାଙ୍କ ମନ୍ତ୍ରୀ ।
ମୃଗାରାତି—ପୁଂ.ବି. (୬ତତ୍) କୁକୁର, ମୃଗଶତ୍ରୁ,ସିଂହ,ବାଘ, ନାଲି ସଜନା-ଗଛ, ରକ୍ତପିତ୍ତ ।
ମୃଗାରି—ପୁଂ.ବି. (୬ତତ୍) ମୃଗାରାତି [ ଦେଖ ।
ମୃଗାବତୀ—ସ୍ତ୍ରୀ. ବି. ଯମୁନାତୀରବର୍ତ୍ତୀ ଦାକ୍ଷାୟଣୀ ନଗରୀ ।
ମୃଗାବିଦ୍—ପୁଂ.ବି. (ମୃଗ+ବ୍ୟଧ+କ. କ୍ୱିପ୍) ମୃଗାବେଧନଶୀଳ, ବ୍ୟାଧ ।
ମୃଗାଳ—ବି. (ମୃ+ଲ+କ.ଅ)ମିରି-

କାଳିମାଛ ।
ମୃଗାସ୍ୟ—ବି°. (ବ.ବ୍ରୀ)ମୃଗରୁଳ୍ୟ ମୁଖ, (ବ) ମକରକ୍ରାନ୍ତ ।
ମୃଗିତ—ବି.ବି°. (ମୃଗ+ର୍ମ.ତ)ଅନ୍ୱେଷିତ, ଅନ୍ୱିଷ୍ଟ, ଯାଚିତ ।
ମୃଗିତବ୍ୟ—ବି°. (ମୃଗ୍+ର୍ମ.ତବ୍ୟ) ମୃଗ୍ୟ, ଅନୁସନ୍ଧେୟ ।
ମୃଗୀ—ସ୍ତ୍ରୀ.ବ.( ମୃଗ+ଈ ) ହରିଣୀ. କସ୍ତୁରୀ, ପୀତବର୍ଣ୍ଣ ସିତୋଦର ବରାଟକଭେଦ, ପୁଲହ ଋଷିଙ୍କ ଭାର୍ଯ୍ୟା, ଅପସ୍ମାରରୋଗ, କାମଶାସ୍ତ୍ରୋକ୍ତ ସ୍ତ୍ରୀଜାତିସ୍ତ୍ ସ୍ତ୍ରୀ ମଧ୍ୟରୁ ଏକତମା, ଚିତ୍ରିଣୀ ସ୍ତ୍ରୀ, ଛନ୍ଦୋବିଶେଷ । [ ସ୍ତ୍ରୀ ।
ମୃଗୀଦୃକ୍-ସ୍ତ୍ରୀ.ବ. (ବ.ବ୍ରୀ) ହରିଣନୟନା
ମୃଗୀପତି—ପୁଂ.ବ. ଶ୍ରୀକୃଷ୍ଣ, ପୁଂମୃଗ, ଅଣ୍ଡିରା ମିରଗ ।
ମୃଗୀଲୋଚନା—ସ୍ତ୍ରୀ.ବି°. (ବ.ବ୍ରୀ)ଏଣୀନୟନା (ସ୍ତ୍ରୀ) ।
ମୃଗୁଣୀ—ଗ୍ରା.ସ୍ତ୍ରୀ.ବ. ସ୍ତ୍ରୀମୃଗ,ହରିଣୀ ।
ମୃଗୁଣୀସ୍ତୁତି—ଗ୍ରା.ବ. ବ୍ୟାଧଦ୍ୱାରା ପ୍ରପୀଡ଼ିତା ସବତ୍ସା ଗର୍ଭିଣୀ ମୃଗୀ ବିପନ୍ନା ହୋଇ ଭଗବାନଙ୍କୁ ସ୍ତୁତି କରି ବିପଦରୁ ଉଦ୍ଧାର ପାଇବା ସମ୍ବନ୍ଧରେ ରଚିତ ସ୍ତବ ।
ମୃଗେକ୍ଷଣ—କ୍ଳୀ. ବ. (୬ତତ୍) ମୃଗର ଦର୍ଶନ, ମୃଗଚକ୍ଷୁ, (ବି°) ମୃଗପରି ନେତ୍ରବିଶିଷ୍ଟ ।
ମୃଗେକ୍ଷଣା—ସ୍ତ୍ରୀ. ବ. (ମୃଗ+ଈକ୍ଷ୍+ଅନ+ଆ) ମୃଗାକ୍ଷୀ ଦେଖ ।
ମୃଗେନ୍ଦ୍ର—ପୁଂ.ବ. (୬ତତ୍) ସିଂହ,ପଶୁରାଜ । [ ଛନ୍ଦାଣ ।
ମୃଗେନ୍ଦ୍ରଚଟକ—ପୁଂ. ବ. ଶ୍ୟେନପକ୍ଷୀ,
ମୃଗେନ୍ଦ୍ରମୁଖ—କ୍ଳୀ. ବ. ଛନ୍ଦୋବିଶେଷ, (୬ତତ୍) ସିଂହର ମୁଖ ।
ମୃଗେନ୍ଦ୍ରାଣୀ—ସ୍ତ୍ରୀ.ବ. ବକବୃକ୍ଷ, ଅଗସ୍ତିଗଛ, ସିଂହୀ ।
ମୃଗେନ୍ଦ୍ରାସନ—କ୍ଳୀ. ବ. ସିଂହାସନ ।
ମୃଗେନ୍ଦ୍ରାସ୍ୟ—ବ. (୬ତତ୍) ସିଂହମୁଖ, (ପୁଂ.ବ) ବିଷ୍ଣୁ ।

ମୃଗୈର୍ବାରୁ—ସ୍ତ୍ରୀ. ବ. (ମୃଗ+ଏର୍ବାରୁ) ଶ୍ୱେତଚନ୍ଦ୍ର, ବାରୁଣୀ,ପଞ୍ଚକୋଳମେଇ ଲତା, ଶ୍ୱେତମହାକାଳ ଲତା, ଶ୍ୱେତ ହରିଣ । [ ସିଂହ ।
ମୃଗେଶ୍ୱର—ପୁଂ. ବ. (୬ତତ୍)ମୃଗେନ୍ଦ୍ର,
ମୃଗେଷ୍ଟ—ପୁଂ. ବ. ମୁଦ୍ଗର ପୁଷ୍ପବୃକ୍ଷ, ମୁଗୁରାମଲ୍ଲୀ, ଗନ୍ଧରାଜ ଫୁଲର ଗଛ ।
ମୃଗୋତ୍ତମ—ପୁଂ.ବ.ମୃଗଶ୍ରେଷ୍ଠ,(କ୍ଳୀ.ବ) ମୃଗଶିରା ନକ୍ଷତ୍ର ।
ମୃଗ୍ୟ—ବି. ବି°. (ମୃଗ+ର୍ମ.ଯ) ମୃଗିତବ୍ୟ, ଅନ୍ୱେଷଣୀୟ, ଅନ୍ୱେଷଣାର୍ହ ।
ମୃତସ୍ନୁ—ପୁଂ.ବି°.ମରଣଶୀଳ, କ୍ଷଣସ୍ଥାୟୀ, ଚଞ୍ଚଳ । [ ଗୁଣି ।
ମୃଚ୍ଛସ୍ନୁ—ପୁଂ. ବ. (ମୃତ୍+ଚସ୍ନୁ)ମୃତ୍ତିକା
ମୃଚ୍ଛକଟ—ବ. ମୃଚ୍ଛକଟିକା ଦେଖ ।
ମୃଚ୍ଛକଟିକ-କ୍ଳୀ.ବ.ରାଜା ଶୂଦ୍ରକଙ୍କ ପ୍ରଣୀତ ଖଣ୍ଡିଏ ସଂସ୍କୃତ ନାଟକ ।
ମୃଚ୍ଛକଟିକା—(ମୃତ୍+ଶକଟିକା) ଶିଶୁମାନଙ୍କର ଖେଳିବା ମାଟି ଶକଟ ।
ମୃଚ୍ଛିଲାମୟ—ବି°. ( ମୃଚ୍ଛିଲା+ମୟ ) ମୃତ୍ତିକା ବା ଶିଳାବିକାର, ମାଟି ବା ପଥରର ତିଆରି ।
ମୃଜ—ପୁଂ. ବ. (ମୃଜ୍+ଣ.ଅ) ବାଦ୍ୟବିଶେଷ, ମାର୍ଦ୍ଦଳ, ମୃଦଙ୍ଗ ।
ମୃଜା—ସ୍ତ୍ରୀ. ବ. (ମୃଜ୍+ଭା.ଅ+ଆ) ମାର୍ଜନ, ମାଜି ପରିଷ୍କାର କରିବା ।
ମୃଜାନ୍ୱିତ—ବି°. ( ମୃଜା+ଅନ୍ୱିତ ) ପରିଷ୍କୃତ ।
ମୃଜାବାନ୍—ପୁଂ. ବି°. (ମୃଜା+ବତ୍) ପରିଷ୍କାରାନ୍ୱିତ ।
ମୃଜ୍ୟ—ବି. ବି°. (ମୃଜ୍+ର୍ମ.ଯ) ମାର୍ଜନୀୟ, ମାର୍ଜନଯୋଗ୍ୟ ।
ମୃଡ଼୍—ପୁଂ. ବ. ( ମୃଡ଼୍+ଅ ) ଶିବ, ମହାଦେବ, ହୋମାଗ୍ନି, (ସ୍ତ୍ରୀ)ମୃଡ଼ାନୀ ।
ମୃଡ଼ଙ୍କଣ—ପୁଂ. ବ. ( ମୃଡ଼୍+ଅଙ୍କଣ ) ବାଳକ, ଶିଷ୍ୟ । [ ଧିତକରଣ ।
ମୃଡ଼ନ—କ୍ଳୀ. ବ. ସୁଖୀକରଣ, ଆନ-
ମୃଡ଼ୟୁ—ପୁଂ. ବ. ସଦୟ, କୃପାଳୁ ।
ମୃଡ଼ା(ଡ଼ୀ)—ସ୍ତ୍ରୀ. ବ. (ମୃଡ଼+ଆ+ଈ) ଦୁର୍ଗା ।

ମୃଡ଼ାନୀ—ସ୍ତ୍ରୀ. ବ. (ମୃଡ଼+ଆନୀ)ଦୁର୍ଗାଙ୍କର ନାମାନ୍ତର, ଶିବା ।
ମୃଡ଼ୀ—ସ୍ତ୍ରୀ. ବ. ଦୁର୍ଗା ।
ମୃଡ଼ୀକ—ପୁଂ. ବ. ( ମୃଡ଼୍+ଈକ ) ହରିଣ,ମୃଗ ।
ମୃଣ(ଧାତୁ)—ହିଂସାକରିବା,ବଧକରିବା ।
ମୃଣାଳ—ବ. (ମୃଣ+ଆଳ) ପଦ୍ମନାଡ଼, କମଳଦଣ୍ଡ,ଉଶୀର,ଗନ୍ଧବେଣା,ବୀରଣମୂଳ, ବେଣାଚେର ।
ମୃଣାଳକ—ପୁଂ. ବ. ( ମୃଣାଳ+କ ) ମୃଣାଳ ଦେଖ, (ସ୍ତ୍ରୀ) ମୃଣାଳିକା ।
ମୃଣାଳକଣ୍ଠ—ପୁଂ. ବ. ଜଳଚର ପକ୍ଷିବିଶେଷ ।
ମୃଣାଳମୂଳ—ସ୍ତ୍ରୀ.ବ. (୬ତତ୍)ପଦ୍ମକନ୍ଦ, ପଦ୍ମମୂଳ ।
ମୃଣାଳବାନ୍—ବି°. (ମୃଣାଳ+ବତ୍) ମୃଣାଳବିଶିଷ୍ଟ, ମୃଣାଳଯୁକ୍ତ ।
ମୃଣାଳିନୀ—ସ୍ତ୍ରୀ. ବ. (ମୃଣାଳ+ଇନ୍+ଈ) ପଦ୍ମିନୀ, ପଦ୍ମଯୁକ୍ତ ଦେଶ,ପଦ୍ମଲତା, ପଦ୍ମସମୂହ ।
ମୃଣାଳୀ—ପୁଂ.ବି.(ମୃଣାଳ+ଇନ୍)ପଦ୍ମ ।
ମୃଣ୍ମୟ—ବି°. (ମୃଦ୍+ମୟ) ମୃତ୍ତିକାନିର୍ମିତ, (ସ୍ତ୍ରୀ) ମୃଣ୍ମୟୀ ।
ମୃଣ୍ମୟୀପ୍ରତିମା—ବ. ମାଟିରେ ତିଆରି ମୂର୍ତ୍ତି । [ ମାଟି ।
ମୃତ୍(ଦ୍)—(ମୃଦ୍+କ.କ୍ୱିପ୍) ମୃତ୍ତିକା,
ମୃତ୍କ(କା)ର—ବ. (ମୃଦ୍+କୃ+କ. କ୍ୱିପ୍) କୁମ୍ଭକାର, କୁମ୍ଭାର ।
ମୃତ୍କାଂସ—ବ. (କ.ଧା) ମାଟିର ସରା, ମାଟିର ପାତ୍ର, ମାଟିର ଘଡ଼ି ।
ମୃତ୍କିରା—ବ. ବାଲିଭଉଁରୀ ପୋକ, ବାଲିମେଣ୍ଢା ପୋକ, ଘୁର୍ଘୁରକୀଟ ।
ମୃତ୍ପାଣ୍ଡୁ—ବ. (ବ.ବ୍ରୀ) କମଳରୋଗ ।
ମୃତ୍ପାତ୍ର—ବ. (କ.ଧା) ମାଟିର ପାତ୍ର ।
ମୃତ୍ପିଣ୍ଡ—ବ.(୬ତତ୍) ମାଟିର ପିଣ୍ଡୁଳା ବା ଗୋଳା ।
ମୃତ—କ୍ଳୀ. ବ. (ମୃ+ଭା.ତ) ମରଣ, ବିନାଶ, ଯାଚ୍ଞାବୃତ୍ତି,(ବି°-ମୃ+କ.ତ) ଯାଚିତ (ବସ୍ତୁ),ଗତ(ପ୍ରାଣ), ମରିଯାଇ-

ଥିବା, ଅତୀତ, ଲୁପ୍ତ,ଭସ୍ମୀକୃତ(ଧାତୁ), ଅବସ୍ଥାନ୍ତରପ୍ରାପ୍ତ (ଧାତୁ) ।

ମୃତକ—କ୍ଲୀ.ବି.(ମୃତ+କ)ମୃତଦେହ, ଶବ, ମରଣାଶୌଚ ।

ମୃତକଳ୍ପ—ବିଂ.(ମୃତ+କଳ୍ପ)ମରଣାପନ୍ନ, ମୃତପ୍ରାୟ, ସଙ୍କଟାପନ୍ନ, ରୋଗ ଶୋକ ଦାରିଦ୍ର୍ୟ ପ୍ରଭୃତି କଷ୍ଟରେ ମୃତ ପରି ଜୀବନଧାରଣକାରୀ ।

ମୃତକାନ୍ତକ—ପୁଂ.ବି. (ମୃତ+ଅନ୍ତକ) ଶୃଗାଳ ।

ମୃତକାଶୌଚ—ବି. (କ.ଧା) ମରଣାଶୌଚ, ମୁଣ୍ଡିକିଆ ।

ମୃତଗର୍ଭ—ପୁଂ. ବିଂ. (ବ.ବ୍ରୀ) ଜନ୍ମହେବା ପୂର୍ବରୁ ମରିଥିବା (ଶିଶୁ),(ସ୍ତ୍ରୀ); ମୃତଗର୍ଭା ।

ମୃତଗୃହ—କ୍ଲୀ. ବି. ମୁମୂର୍ଷୁ ଗଙ୍ଗାଯାତ୍ରୀର ରକ୍ଷାର୍ଥ ଗୃହ, ସମାଧିସ୍ଥାନ, କବର ।

ମୃତଜାତ—ପୁଂ. ବିଂ. (ବ.ବ୍ରୀ) ମୃତଗର୍ଭ ଦେଖ, (ସ୍ତ୍ରୀ) ମୃତଜାତା ।

ମୃତଜୀବ—ପୁଂ.ବି. ତିଲକ ବୃକ୍ଷ, ମୃତପ୍ରାଣୀ । [ ଗଛ ।

ମୃତଜୀବନୀ—ସ୍ତ୍ରୀ. ବି. ଦୁଗ୍ଧିକା, ଖିରୁଇ

ମୃତଜୀବୀ—ପୁଂ. ବି. ଦୁଗ୍ଧିକା ।

ମୃତଣ୍ଡ—ପୁଂ.ବି. ସୂର୍ଯ୍ୟଦେବଙ୍କ ପିତା ।

ମୃତଦାର—ପୁଂ.ବିଂ. (ବ.ବ୍ରୀ) ଯାହାର ସ୍ତ୍ରୀ ମରିଅଛି, ବିପତ୍ନୀକ, ( ପୁଂ.ବିଂ ) ମୃତପତ୍ନୀକ ।

ମୃତଦେହ—ବି. (କ.ଧା) ମୁର୍ଦ୍ଦାର,ଶବ ।

ମୃତଦେହପରୀକ୍ଷା—ବି. ଶବ ଦେହର ବ୍ୟବଚ୍ଛେଦ ପୂର୍ବକ ତଦ୍‌ବ୍ୟକ୍ତିର ମୃତ୍ୟୁର କାରଣ ଓ ଲକ୍ଷଣାଦିର ନିର୍ଣ୍ଣୟ ।

ମୃତପ—ପୁଂ. ବି ଓ ବିଂ. (ମୃତ+ପା+କ.ଅ) ମୃତପା ଦେଖ ।

ମୃତପା—ପୁଂ. ବିଂ. (ମୃତ+ପା+ଅ+ଆ) ଶବରକ୍ଷକ, ଶବ ବସ୍ତ୍ରଶଯ୍ୟାଦି ଗ୍ରାହୀ, ଶବଭକ୍ଷକ, (ବି) ନଦୀତୀରସ୍ଥ ଶ୍ମଶାନରେ ଶବଦହନକାରୀ ନିମ୍ନଶ୍ରେଣୀସ୍ଥ ଜାତିବିଶେଷ ।

ମୃତପତ୍ନୀକ—ପୁଂ. ବି ଓ ବିଂ (ବ.ବ୍ରୀ) ମୃତଦାର ଦେଖ ।

ମୃତପିତୃକ—ପୁଂ.ବିଂ. (ବ.ବ୍ରୀ)ଯାହାର ପିତା ମୃତ ହୋଇଅଛି, (ସ୍ତ୍ରୀ) ମୃତପିତୃକା ।

ମୃତପୁତ୍ରକ—ପୁଂ.ବିଂ. (ବ.ବ୍ରୀ)ଯାହାର ପୁତ୍ର ମରିଯାଇଅଛି, (ସ୍ତ୍ରୀ)ମୃତପୁତ୍ରକା ।

ମୃତପୁତ୍ରିକା—ସ୍ତ୍ରୀ. ବିଂ. ଯେଉଁ ସ୍ତ୍ରୀର କନ୍ୟା ମରିଯାଇଅଛି,(ପୁଂ)ମୃତପୁତ୍ରିକ ।

ମୃତପ୍ରାୟ—ବିଂ. ମୃତକଳ୍ପ ଦେଖ ।

ମୃତମତ୍ତ(କ)—ପୁଂ.ବି.(ତନ୍ତ୍ର)ଶୃଗାଳ ।

ମୃତମନାଃ—ପୁଂ. ବିଂ. (ବ.ବ୍ରୀ) ହତଚୈତନ୍ୟ, ଅନ୍ୟମନସ୍କ ।

ମୃତମାତୃକ—ପୁଂ. ବିଂ. (ବ.ବ୍ରୀ)ଯାହାର ମାତା ମରିଅଛନ୍ତି, (ସ୍ତ୍ରୀ) ମାତୃକା ।

ମୃତବତ୍—ବିଂ. ମୃତକଳ୍ପ ଦେଖ ।

ମୃତବତ୍ସା—ସ୍ତ୍ରୀ.ବି. (ବ.ବ୍ରୀ)ମୃତାପତ୍ୟା, ମଢ଼ଛୀ, ଯେଉଁ ସ୍ତ୍ରୀର ସନ୍ତାନମାନେ ଜନ୍ମପରେ ବେଶିଦିନ ବଞ୍ଚନ୍ତି ନାହିଁ, ଯେଉଁ ସ୍ତ୍ରୀ ମଲାପିଲା ଜନ୍ମକରେ, ଅଜୀବତ୍ସନ୍ତାନା, ଯୋନିବ୍ୟାପଦ୍ ଦୋଷଭେଦ ।

ମୃତବସ୍ତ୍ରଭୃତ୍—ବିଂ. ମୃତର ପରିଚ୍ଛଦାଦି ପରିଧାନକାରୀ ।

ମୃତଶଙ୍କା—ବି. ( ୬ତତ୍ ) ମୃତ୍ୟୁଭୟ, ମୃତ୍ୟୁର ଆଶଙ୍କା ।

ମୃତଶବ୍ଦ —ପୁଂ. ବି. ମୃତ୍ୟୁସମ୍ବାଦ ।

ମୃତଶଯ୍ୟା—ବି. ମୃତ୍ୟୁଶଯ୍ୟା ଦେଖ ।

ମୃତଶଯ୍ୟାଦାନ—ବି.ମୃତବ୍ୟକ୍ତିର ଶୁଦ୍ଧିକ୍ରିୟା ଉପଲକ୍ଷ୍ୟରେ ଶଯ୍ୟା ଓ ଖଟ ପ୍ରଭୃତି ବ୍ରାହ୍ମଣଙ୍କୁ ଦାନ କରିବା ।

ମୃତସଂସ୍କାର—ପୁଂ. ବି. ମୃତବ୍ୟକ୍ତିର ସଂସ୍କାର ଦାହାଦି ଅନ୍ତ୍ୟେଷ୍ଟିକ୍ରିୟା ।

ମୃତସଞ୍ଜୀବନ—କ୍ଲୀ.ବି. (ମୃତ+ସମ୍+ଜୀବ୍+ଣି.ଅନ)ମୃତବ୍ୟକ୍ତିର ପୁନର୍ବାର ଜୀଇଁବା,(ବିଂ)ଯଦ୍ଦ୍ୱାରା ମୃତବ୍ୟକ୍ତି ଜୀଏଁ ।

ମୃତସଞ୍ଜୀବନରସ—ବି.ଜ୍ୱରରୋଗ ନାଶକ ରସୌଷଧବିଶେଷ ।

ମୃତସଞ୍ଜୀବନୀ—ସ୍ତ୍ରୀ. ବି. ଜ୍ୱରରୋଗର ଔଷଧବିଶେଷ, ଗୋରକ୍ଷଦୁଗ୍ଧୀ, ଏକପ୍ରକାର କ୍ଷୁଦ୍ର ଗୁଳ୍ମ, କାଉଦଲା, ମଲାଜୀବକୁ ପୁନର୍ଜୀବିତ କରିବାର ବିଦ୍ୟାବିଶେଷ ।

ମୃତସଞ୍ଜୀବୀ—ପୁଂ. ବିଂ. ମୃତର ଜୀବନ ଦାନକାରୀ ।

ମୃତସୂତ—ପୁଂ. ବି. ରସସିନ୍ଦୂର ।

ମୃତସୂତକ—କ୍ଲୀ. ବି. ମୃତବତ୍ସା, ମୃତପୁତ୍ର ପ୍ରସବକାରୀ ବ୍ୟକ୍ତି,ଜାରିତପାରଦ ।

ମୃତସ୍ନାତ—ପୁଂ. ବିଂ. (କ.ଧା) ମୃତୋଦ୍ଦେଶେ ସ୍ନାତ, ଜ୍ଞାତି ବା ବନ୍ଧୁ କେହି ମୃତହେଲେ ତଦୁଦ୍ଦେଶ୍ୟରେ ଯେଉଁ ସ୍ନାନ କରନ୍ତି,ସ୍ନାତ ହେବାପରେ ମୃତ ହୋଇଥିବା (ବ୍ୟକ୍ତି), (ସ୍ତ୍ରୀ)ମୃତସ୍ନାତା, (ବି) ସଂସ୍କାରାର୍ଥ ସ୍ଥାପିତ ମୃତଦେହ ।

ମୃତସ୍ନାନ—କ୍ଲୀ. ବି. ( କ.ଧା ) ମୃତ ଉଦ୍ଦେଶ୍ୟରେ ସ୍ନାନ, ଅପସ୍ନାନ, ମୃତବ୍ୟକ୍ତିର ସ୍ନାନ,ମଲାଖବର ଶୁଣିଲା ମାତ୍ରେ ଶୋକାଶ୍ରୁତ୍ୟାଗ ପୂର୍ବକ ଗାଧୋଇବା ।

ମୃତହାର—ପୁଂ. ବି. ମୃତବହନକାରୀ, ଶବଦାହ ନିମିତ୍ତ ଶବକୁ ଯେଉଁମାନେ ବହି ଶ୍ମଶାନକୁ ନିଅନ୍ତି ।

ମୃତହାରୀ—ପୁଂ. ବିଂ. ଶବବାହୀ, ଶବବହନକାରୀ ।

ମୃତାଙ୍ଗ—ପୁଂ. ବି. ଶବଦେହ ।

ମୃତାଙ୍ଗାର—ପୁଂ. ବି. ମଡ଼ାର ଗୁଇ, ଚିତାଗ୍ନିର ଅଙ୍ଗାର ।

ମୃତାଣ୍ଡ—ପୁଂ. ବି. ପକ୍ଷିପ୍ରଭୃତିର ଦୃଶ୍ୟମାନ ପ୍ରାଣଶୂନ୍ୟ ଅଣ୍ଡ, ସୂର୍ଯ୍ୟ ।

ମୃତାଧାନ—କ୍ଲୀ. ବି. ଚିତା ଉପରେ ଶବ ସ୍ଥାପନ ।

ମୃତାମଦ—କ୍ଲୀ. ବି. ତୁତ୍ଥ, ତୁତିଆ, ମୟୂରଗ୍ରୀବା ।

ମୃତାଲକ—କ୍ଲୀ. ବି. (ମୃତ+ଅଲ୍+ଣିଚ୍+ଅକ)ଆଢ଼କୀ, ହରଡ଼, ଗୋପୀଚନ୍ଦନ, ସୌରାଷ୍ଟ୍ରମୃତ୍ତିକା । [ କାକ୍ଷୀ ।

ମୃତାଶନ—ତ୍ରି. ବିଂ.ଶବଦେହ ଭକ୍ଷଣ-

ମୃତାଶୌଚ—ବି. ମୃତକ, ମୁଣ୍ଡିକିଆ, ଆତ୍ମୀୟସ୍ୱଜନ, ଗୁରୁ, ବ୍ରାହ୍ମଣ, ପ୍ରଭୃ-

ବେଶୀ ପଣ୍ଡିତର ମୃତରେ ଅପର ଯେଉଁ
ମାନେ ନୈଷ୍ଠିକାଳ ବ୍ରହ୍ମଚର୍ଯ୍ୟ ଅବ-
ଲମ୍ବନ କରି ଗୃହ ବା ଦେବ କର୍ମରୁ
ଅସ୍ପୃଷ୍ଟଭାବରେ ଅବସ୍ଥାନ କରନ୍ତି ସେହି
ନିରୂପିତ ସମୟ ।
ମୃତାହ—କ୍ଲୀ.ବ.(ମୃତ+ଅହନ୍)ମୃତାହ
ଦିନ, ଯେଉଁ ଦିନ ମୃତ୍ୟୁ ହୁଏ ସେହି
ଦିନ ବା ତିଥି, ଅନ୍ତ୍ୟେଷ୍ଟି ।
ମୃତାହକର୍ମ(କ୍ରିୟା)—ବ. ଶୁଦ୍ଧି କ୍ରିୟା,
ଅନ୍ତ୍ୟେଷ୍ଟି କ୍ରିୟା ।
ମୃତାହଦଶକଦାନ—ବ. ଏକାଦଶାହଦିନ
ମୃତ ବ୍ୟକ୍ତିର ପ୍ରେତର ମୁକ୍ତି ଉଦ୍ଦେ-
ଶ୍ୟରେ ଦିଆଯିବା ଗୋରୁ, ଭୂମି, ସ୍ୱର୍ଣ୍ଣ,
ବସ୍ତ୍ର, ଶାଳଗ୍ରାମ, ଅନ୍ନ, ଜଳପାତ୍ର,ଘର,
ବଛଣା ଓ ଘିଅ ଏହି ଦଶବସ୍ତୁର ଦାନ
ମୃତାହପଞ୍ଚକ-ବ.ମୃତ ବ୍ୟକ୍ତିର ଅନ୍ତ୍ୟେଷ୍ଟି
କ୍ରିୟା ଉପଲକ୍ଷ୍ୟରେ ବ୍ରାହ୍ମଣଙ୍କୁ ଦିଆ-
ଯିବା ଗୋ,ଭୂମି, ବସ୍ତ୍ର, ସୁନା ଓ ଶାଳ-
ଗ୍ରାମ ଦାନ ।
ମୃତି—ସ୍ତ୍ରୀ.ବ.(ମୃ+ଭା.ତି) ମରଣ,ମୃତ୍ୟୁ
ମୃତିମା—ପୁଂ. ବ. ମରକ, ମଡ଼କ ।
ମୃତୁ—ଗ୍ରା. ବ. ମୃତ୍ୟୁ ଦେଖ ।
ମୃତୋଦ୍ଭବ—ପୁଂ.ବ.ସମୁଦ୍ର,ମହାସାଗର,
ମହୋଦଧି ।
ମୃତ୍ଖଣ୍ଡ—କ୍ଲୀ. ବ. ମୃତ୍ତିକା ଖଣ୍ଡ ।
ମୃତ୍କପାଳ—କ୍ଲୀ. ବ ଖପର, ପୋଡ଼ାମାଟି,
ଭଙ୍ଗାଖପର, ହାଣ୍ଡି ।
ମୃତ୍କ(ତ୍କା)ର—ପୁଂ. ବ. (ମୃତ୍+କୃ+
ଅ) କୁମ୍ଭକାର, କୁମ୍ଭାର ।
ମୃତ୍କାଂସ୍ୟ—କ୍ଲୀ. ବ. ଶରା, ଘଡ଼, ମାଟିର
ଶ୍ଳେଷପାତ୍ର ।
ମୃତ୍କିରା—ସ୍ତ୍ରୀ. ବ. ମୃତ୍କର ଦେଖ ।
ମୃତ୍ଖଳମା—ସ୍ତ୍ରୀ. ବ. ଚର୍ମକଷା ବୃକ୍ଷ ।
ମୃତ୍ତାଲ—କ୍ଲୀ. ବ.(ମୃତ୍+ଅଲ୍+କ.ଅ)
ଆଢ଼କୀ, ହରଡ଼, ସୌରାଷ୍ଟ୍ରମୃତ୍ତିକା,
ସୁଗନ୍ଧ ମୃତ୍ତିକାବିଶେଷ ।
ମୃତ୍ତାଲକ—କ୍ଲୀ. ବ.(ମୃତ୍ତାଲ+କ)ଆଢ଼କୀ,
ସୌରାଷ୍ଟ୍ର ମୃତ୍ତିକା ।
ମୃତ୍ତିକା—ସ୍ତ୍ରୀ. ବ. (ମୃଦ୍+ତିକ+ଆ)
ପୃଥିବୀ, ମାଟି,କାଦୁଅ,ଗନ୍ଧମାଟି,ଭୂମି ।
ମୃତ୍ତିକାଧାର—ବ. (ମୃତ୍ତିକା+ଆଧାର)
ମୃତ୍ପାତ୍ର ।
ମୃତ୍ତିକାଭକ୍ଷଣେଚ୍ଛା—ବ. (ଗର୍ଭିଣୀର ବା
ଶିଶୁର)ମାଟିଖାଇବା ନିମନ୍ତେ ଅଭିଳାଷ
ମୃତ୍ତିକାଲବଣ—କ୍ଲୀ.ବ.କ୍ଷାରମୃତ୍ତିକା,ଖାରି
ମାଟି । [ ବୋଳିବା ।
ମୃତ୍ତିକାଲେପନ—ବ. ( ୬ତତ୍ ) ମାଟି
ମୃତ୍ତିକାତୈଳ—ବ.ଭୂଗର୍ଭ ନିଃସୃତ ତୈଳ-
ବିଶେଷ ।
ମୃତ୍ପାଣ୍ଡୁ—ପୁଂ.ବ. ପାଣ୍ଡୁରୋଗ ଭେଦ ।
ମୃତ୍ପାତ୍ର—କ୍ଲୀ. ବ. ମୃତ୍ପାତ୍ର ଦେଖ ।
ମୃତ୍ପିଣ୍ଡ—ବ. ଲୋଷ୍ଟ୍ର, ଢେଲା, ମାଟିର
ବାଟୁଳି ବା ଗୋଲା ।
ମୃତ୍ଫଳୀ—ସ୍ତ୍ରୀ. ବ. ( ମୃତ୍ଫଳ+ଈ )
କୁଷ୍ଠୌଷଧି, କୁଡ଼ ।
ମୃତ୍ୟବ—ପୁଂ. ବ. କୁମ୍ଭକାର.କୁମ୍ଭାର ।
ମୃତ୍ୟା—ସ୍ତ୍ରୀ. ବ. ବ୍ୟାଧି ।
ମୃତ୍ୟୁ—ପୁଂ. ବ. (ମୃ+ତ୍ୟୁ) ଯମ,କଂସ,
ପ୍ରାଣବିୟୋଗ, ମାରଣ, ବିଷ୍ଣୁ, ବ୍ରହ୍ମା,
ମାୟା, କେଳି, ଆୟୁର୍ଯ୍ୟଭେଦ, ଅଷ୍ଟ
ଦ୍ୱାପରର ବ୍ୟାସଭେଦ,ଏକାଦଶରୁଦ୍ରଙ୍କ
ଅନ୍ତର୍ଗତ ରୁଦ୍ରଭେଦ, ଏକାହ ଭେଦ,
ଫଳିତଜ୍ୟୋତିଷୋକ୍ତ ଅଷ୍ଟମ ଗୃହ.
ଜ୍ୟୋତିଷୋକ୍ତ ୧୭ ଯୋଗ, କାମଦେବ
ମୃତ୍ୟୁକ—ବି°. ମୃତ୍ୟୁସମ୍ବନ୍ଧୀୟ,(ବ)ମୃତ୍ୟୁ,
ମୃତକାଶୌଚ ।
ମୃତ୍ୟୁକନ୍ୟା—ସ୍ତ୍ରୀ. ବ. ମୃତ୍ୟୁର ଅଧିଷ୍ଠାତ୍ରୀ
ଦେବୀ, ଯମକନ୍ୟା ।
ମୃତ୍ୟୁକର—ବି°. (ମୃତ୍ୟୁ+କୃ+କ.ଅ)
ମୃତ୍ୟୁଜନକ, ଯାହା ମୃତ୍ୟୁଘଟାଏ,ମାରି-
ମୂକ ।
ମୃତ୍ୟୁକାରକ—ବି°. ମୃତ୍ୟୁକର ଦେଖ ।
ମୃତ୍ୟୁକାଳ—ବ. ମରଣ ଘଟିବା ସମୟ ।
ମୃତ୍ୟୁକାଳଜ୍ଞ—ପୁଂ. ବି°. ଯେଉଁ ବ୍ୟକ୍ତି
କେତେକ ପୂର୍ବଲକ୍ଷଣ ବା ଶକୁନ ଦେଖି
ମନୁଷ୍ୟର ମରିବା ସମୟ ପୂର୍ବରୁ ଜାଣି
ପାରନ୍ତି ।
ମୃତ୍ୟୁକାଳଜ୍ଞାନ—ବ. ବିଜ୍ଞାନୋକ୍ତ ବା
ଶାସ୍ତ୍ରୋକ୍ତ ଲକ୍ଷଣମାନ ଦେଖି ମନୁଷ୍ୟର
ମୃତ୍ୟୁ ଘଟିବାସମୟ ପୂର୍ବରୁ ଜାଣିପାରିବା ।
ମୃତ୍ୟୁଚ୍ଛାୟା—ବ.(ଲ.ଅର୍ଥ)ଆସନ୍ନ ମୃତ୍ୟୁର
ଛାୟା ବା କାଳିମା ।
ମୃତ୍ୟୁଜନକ—ବି°. (୬ତତ୍) ମୃତ୍ୟୁକର
ଦେଖ, (ସ୍ତ୍ରୀ) ଜନିକା ।
ମୃତ୍ୟୁଜିତ୍—ପୁଂ. ବ. (ମୃତ୍ୟୁ+ଜି+କ୍ୱିପ୍)
ମୃତ୍ୟୁଞ୍ଜୟ, ଶିବ ।
ମୃତ୍ୟୁଞ୍ଜୟ—ପୁଂ. ବ. ( ମୃତ୍ୟୁଂ+ଜି+
କ.ଅ) ଶିବ, (ବି°) ମୃତ୍ୟୁକୁ ଜୟକାରୀ,
ଅମରଯଶାଃ ।
ମୃତ୍ୟୁଞ୍ଜୟମନ୍ତ୍ର—ବ. ମହାଦେବଙ୍କର ଜପ
ମନ୍ତ୍ରବିଶେଷ ।
ମୃତ୍ୟୁଞ୍ଜୟରଥ—ଗ୍ରା. ବ.ସ୍ୱର୍ଗୀୟ ଉତ୍କଳ-
ଭାଷାଭିଜ୍ଞ ପଣ୍ଡିତ ।
ମୃତ୍ୟୁତୂର୍ଯ୍ୟ—କ୍ଲୀ. ବ. ବାଦ୍ୟଯନ୍ତ୍ରବିଶେଷ,
ଶବଦାହ ସମୟରେ ବଜାଯିବା ବାଦ୍ୟ-
ବିଶେଷ ।
ମୃତ୍ୟୁଦୂତ—ପୁଂ. ବ. ଯମଦୂତ, ମୃତ୍ୟୁ
ସମ୍ବାଦ ବହନକାରୀ ।
ମୃତ୍ୟୁଦ୍ୱାର—କ୍ଲୀ. ବ. ଯେଉଁ ଦ୍ୱାରଦେଇ
ପ୍ରାଣବାୟୁ ବହିର୍ଗତ ହୁଏ ।
ମୃତ୍ୟୁନାଶକ—ପୁଂ. ବ. (ମୃତ୍ୟୁ+ନାଶ
+ଅକ) ପାରଦ, ପାରଦଧାତୁ, (ବି°)
ମରଣହାରକ ।
ମୃତ୍ୟୁନାଶନ—କ୍ଲୀ. ବ. ଅମୃତ, ଯାହା
ପାନକଲେ ମରଣ ଭୟ ଥାଏ ନାହିଁ ।
ମୃତ୍ୟୁପଥ—ପୁଂ.ବ. ମରଣପଥ, ମରଣର
ଉପାୟ ।
ମୃତ୍ୟୁପା—ପୁଂ. ବ. ଶିବ ।
ମୃତ୍ୟୁପାଶ—ବ. (୬ତତ୍)ମୃତ୍ୟୁଙ୍କ ପାଶାସ୍ତ୍ର,
ଯମଙ୍କ ବନ୍ଧନରଜ୍ଜୁ ।
ମୃତ୍ୟୁପୁର—ବ. ମର୍ତ୍ତ୍ୟପୁର ।
ମୃତ୍ୟୁପୁଷ୍ପ—ପୁଂ. ବ. ଇକ୍ଷୁ, ଆଖୁ, (ସ୍ତ୍ରୀ)
ମୃତ୍ୟୁପୁଷ୍ପା, କଦଳୀବୃକ୍ଷ
ମୃତ୍ୟୁଫଳ—ପୁଂ. ବ. ମହାକାଳଫଳ,
କଦଳୀଫଳ ।
ମୃତ୍ୟୁଭଙ୍ଗୁରକ—ପୁଂ. ବ.ମରଣକାଳରେ
ବାଦନୀୟ ପଟହ ।

ମୃତ୍ୟୁଭୟ—ପୁଂ. ବ. (ଷତତ୍ର) ମରଣ ଭୟ, ମରିବାର ଆଶଙ୍କା ।
ମୃତ୍ୟୁଭୃତ୍ୟ—ପୁଂ. ବ.(ଷତତ୍ର) ରୋଗ ।
ମୃତ୍ୟୁମାନ୍—ପୁଂ. ବି°. ( ମୃତ୍ୟୁ+ମତ୍ର ) ମୃତ୍ୟୁଯୁକ୍ତ. ମୃତ୍ୟୁ ବିଶିଷ୍ଟ, ମରଣଶୀଳ ।
ମୃତ୍ୟୁମୁଖ—ବ. (ଷତତ୍ର) କାଳକବଳ, ମୃତ୍ୟୁର ବା କାଳଦେବତାଙ୍କ ପାଟି ।
ମୃତ୍ୟୁମୁଖରେପଡ଼ିବା—ଗ୍ରା.କ୍ରି.ମରିବା
ମୃତ୍ୟୁଯୋଗ—ଜ୍ୟୋତିଷୋକ୍ତ ଅଶୁଭ ଯୋଗବିଶେଷ, ମନୁଷ୍ୟର ମୃତ୍ୟୁ ଘଟିବାର (ନିର୍ଦ୍ଦିଷ୍ଟ ଲକ୍ଷଣ ଯୁକ୍ତ) ଯୋଗ, ମାରକଦଶା, ମାରକଯୋଗ ।
ମୃତ୍ୟୁରାଜ—ପୁଂ. ବ. ଯମରାଜ ।
ମୃତ୍ୟୁରୂପୀ—ବି°. ମୃତ୍ୟୁର ତୁଲ୍ୟ ଆକାରଯୁକ୍ତ, (ବ) ଯମ ବା ଯମଦୂତ, ବର୍ଣ୍ଣମାଳାର 'ଣ' ଅକ୍ଷର ।
ମୃତ୍ୟୁଲୋକ—ପୁଂ. ବ. ଯମଲୋକ ।
ମୃତ୍ୟୁବଞ୍ଚନ—ପୁଂ. ବ. (ବ.ବ୍ରୀ) ଶିବ, ବିଲ୍ୱବୃକ୍ଷ, ଦଣ୍ଡକାକ, ଡାମରକୁଆ ।
ମୃତ୍ୟୁବନ୍ଧୁ—ପୁଂ.ବ. ଯମ, (ବି°) ମୃତ୍ୟୁକାଳରେ ବନ୍ଧୁତୁଲ୍ୟ କାର୍ଯ୍ୟକାରୀ,ମରଣଶୀଳ ।
ମୃତ୍ୟୁବୀଜ—ବ.ବାଉଁଶ, ଜନ୍ମମୃତ୍ୟୁର ବୀଜ
ମୃତ୍ୟୁଶଯ୍ୟା—ବ. (କ.ଧା) ମୃତ୍ୟୁ ବ୍ୟକ୍ତି ଶୁଦ୍ଧିକ୍ରିୟା ଉପଲକ୍ଷ୍ୟରେ ବ୍ରାହ୍ମଣଙ୍କୁ ଦାନ ଦିଆଯିବା ସୁସଜ୍ଜିତ ଶଯ୍ୟା,ଆସନ୍ନମୃତ୍ୟୁ ବା ମୃତ ବ୍ୟକ୍ତିର ଶଯ୍ୟା ।
ମୃତ୍ୟୁସଂଖ୍ୟା—ବ(ଷତତ୍ର)ଯୁଦ୍ଧ ଓ ରୋଗଆଦିରେ ମୃତ୍ୟୁ ବ୍ୟକ୍ତିମାନଙ୍କର ଗଣନା
ମୃତ୍ୟୁସଞ୍ଜୀବନ—ବ.ବି°. ମୃତ ସଞ୍ଜୀବନ ଦେଖ । [ ଦେଖ ।
ମୃତ୍ୟୁସଞ୍ଜୀବନୀ—ସ୍ତ୍ରୀ. ବ. ମୃତସଞ୍ଜୀବନୀ
ମୃତ୍ୟୁସାତ୍—ଅବ୍ୟ. ମୃତ୍ୟୁରେ ପରିଣତ ।
ମୃତ୍ୟୁସୁତ—ପୁଂ. ବ. କେତୁଗ୍ରହ ।
ମୃତ୍ୟୁସୂତ—ସ୍ତ୍ରୀ.ବ. କର୍କଟୀ, ମାଇକଙ୍କଡ଼ା
ମୃତ୍ୟୁସେନା—ସ୍ତ୍ରୀ. ବ. (ଷତତ୍ର) ମୃତ୍ୟୁର ସେନା, ଯମଦୂତ ।
ମୃତ୍ସ୍ନ—କ୍ରି. ବି°. ପିଚ୍ଛିଳ ।
ମୃତ୍ସା—ସ୍ତ୍ରୀ.ବ.ପ୍ରଶସ୍ତ ମୃତ୍ତିକା,ସୌରାଷ୍ଟ୍ର ମୃତ୍ତିକା, ଉତ୍ତମ ମାଟି ।
ମୃତ୍ସ୍ନା—ସ୍ତ୍ରୀ.ବ.(ମୃତ୍ସ୍ନ+ଆ)ମୃତ୍ସାଦେଖ
ମୃଦ୍—ବ(ମୃଦ୍+କ.କ୍ୱିପ୍)ମୃତ୍ତିକା,ମାଟି ।
ମୃଦଙ୍କୁର—ପୁଂ. ବ. ହାଣ୍ଡିଗପକ୍ଷୀ ।
ମୃଦଙ୍ଗ—ପୁଂ.ବ.(ବ.ବ୍ରୀ)ପଟହ,ଗୋଲମାଲ, ଶବ୍ଦ, ବଂଶ, ବାଉଁଶ, ମୃତ୍ତିକାନିର୍ମିତ ଦୁଇ ମୁଖବିଶିଷ୍ଟ ଚର୍ମାନଦ୍ଧ ବାଦ୍ୟଯନ୍ତ୍ରବିଶେଷ, ଖୋଳ ।
ମୃଦଙ୍ଗକ—କ୍ଳୀ. ବ. ଛନ୍ଦୋଭେଦ ।
ମୃଦଙ୍ଗଫଳ—ପୁଂ. ବ. ପଣସଫଳ ।
ମୃଦଙ୍ଗଫଳିନୀ—ସ୍ତ୍ରୀ.ବ.କୋଷାତକୀ,ଜହ୍ନି
ମୃଦଙ୍ଗାର—ବ (ମୃତ୍ତ୍+ଅଙ୍ଗାର)ପଥର କୋଇଲା ।
ମୃଦଙ୍ଗିଆ—ଗ୍ରା. ବ. ମୃଦଙ୍ଗ ବଜାଇବା ବ୍ୟକ୍ତି, (ବି°) ମୃଦଙ୍ଗଆକୃତିବିଶିଷ୍ଟ ।
ମୃଦଙ୍ଗୀ—ସ୍ତ୍ରୀ.ବ(ମୃଦଙ୍ଗ+ଈ) କୋଷାତକୀ. ଜହ୍ନୀ,(ପୁଂ.ବ. ମୃଦଙ୍ଗ+ଇନ୍) ମୃଦଙ୍ଗବାଦକ ।
ମୃଦର—ପୁଂ. ବ. (ମୃଦର+ଅ)ବ୍ୟାଧି, କଳ, (ବି°)ଚଳକ, ଚତୁର,କ୍ଷଣସ୍ଥାୟୀ; କ୍ରୀଡ଼ନଶୀଳ, (ସ୍ତ୍ରୀ) ମୃଦରା ।
ମୃଦବ—କ୍ଳୀ. ବ. ନାଟକଭାଷାରେ ଗୁଣ ସହିତ ଦୋଷର ବୈଷମ୍ୟ ପ୍ରଦର୍ଶନ ।
ମୃଦା—ସ୍ତ୍ରୀ.ବ(ମୃଦ୍+ଅ+ଆ)ମୃତ୍ତିକା, ମାଟି ।
ମୃଦାକର—ପୁଂ. ବ. (ମୃଦ୍+ଆକର) ବଜ୍ର, ଅଶନି ।
ମୃଦାହ୍ୱୟା—ସ୍ତ୍ରୀ.ବ. ସୌରାଷ୍ଟ୍ର ମୃତ୍ତିକା ।
ମୃଦିତ—କ୍ରି. ବି°. (ମୃଦ+ମ୍ନି.ତ)ଚୂର୍ଣ୍ଣୀକୃତ, ମର୍ଦ୍ଦିତ, ଦଳିତ, ପଦଦଳିତ ।
ମୃଦିନୀ—ସ୍ତ୍ରୀ. ବ. (ମୃଦା+ଇନ୍+ଈ) ପ୍ରଶସ୍ତ ମୃତ୍ତିକା, ଗୋପୀଚନ୍ଦନ ।
ମୃଦୁ—କ୍ରି.ବି°.(ମୃଦ୍+ଉ)ଯାହା ଦାଢ଼ୁଆ ନୁହେ, ନମ୍ର, ଭଦ୍ର, ଆର୍ଦ୍ର, କୋମଳ, ନରମ, ବିନୀତ, ଶାନ୍ତ,ଦୟାଳୁ, ଧୀର, (ସ୍ତ୍ରୀ) ମୃଦ୍ୱୀ ।
ମୃଦୁ—ପୁଂ. ବ. ମୃଦୁଗଣ ଦେଖ, ଶନିଗ୍ରହ, (ସ୍ତ୍ରୀ.ବ) ଗୃହକନ୍ୟା,ଘରର ଝିଅ, ଘୃତକୁମାରୀ,ଶୁଭ୍ରଜାତି ପୁଷ୍ପବୃକ୍ଷ,ବୃଂହଣ, ଧୂମପାନବିଶେଷ ।
ମୃଦୁକ—କ୍ରି.ବି°.କୋମଳ,ନରମ,ନମ୍ର ।
ମୃଦୁକଣ୍ଟକ—ପୁଂ.ବ.ଧଳା ଦାସକେରେଣ୍ଟା
ମୃଦୁକଣ୍ଟକଫଳା—ସ୍ତ୍ରୀ.ବ. କର୍କଟୀଲତା, କାଙ୍କୁଡ଼ିଗଛ ।
ମୃଦୁକର୍ମ—କ୍ଳୀ.ବ.କଠିନର ମୃଦୁକରଣ, (ବି°) ମୃଦୁ କାର୍ଯ୍ୟକାରୀ ।
ମୃଦୁକୃଷ୍ଣାୟସ—କ୍ଳୀ. ବ. ସୀସକ,ସୀସା ।
ମୃଦୁକୋଷ୍ଠ—ପୁଂ. ବି°. (ବ.ବ୍ରୀ)ଯେଉଁ ବ୍ୟକ୍ତିର ଝାଡ଼ା ତରଳିଆ ହୁଏ, ଯେଉଁ ବ୍ୟକ୍ତିଠାରେ ଔଷଧାଦି ସହଜରେ କାର୍ଯ୍ୟକାରୀ ହୁଏ ।
ମୃଦୁକ୍ରିୟା—ସ୍ତ୍ରୀ.ବ.ଧୀରେ ଧୀରେ କର୍ମସାଧନ, କୋମଳତା ସମ୍ପାଦନ ।
ମୃଦୁକ୍ଷୁର—ପୁଂ.ବ. ଅଶ୍ୱର ପାଦବେଗବିଶେଷ ।
ମୃଦୁଗଣ—ପୁଂ. ବ. ଚିତ୍ରା, ଅନୁରାଧା, ମୃଗଶିରା ଓ ରେବତୀ ନକ୍ଷତ୍ର ।
ମୃଦୁଗତି—ବ.(କର୍ମଧା) ଧୀରଗତି, (ପୁଂ, ବି°.ବ.ବ୍ରୀ) ଧୀରଗତିବିଶିଷ୍ଟ ।
ମୃଦୁଗନ୍ଧ—ବ.(କ.ଧା)ଈଷତ୍‌ଗନ୍ଧ, (ବି°. ବ.ବ୍ରୀ) ଈଷତ୍‌ଗନ୍ଧବିଶିଷ୍ଟ ।
ମୃଦୁଗନ୍ଧିକ—ପୁଂ.ବ. ଗୁଳ୍ମଭେଦ, (ବି°) ମୃଦୁଗନ୍ଧବିଶିଷ୍ଟ ।
ମୃଦୁଗମନ—ବ(କ.ଧା)ମୃଦୁଗତି ଦେଖ, (ପୁଂ.ବି°.ବ.ବ୍ରୀ)ଧୀରଗତିବିଶିଷ୍ଟ, (ସ୍ତ୍ରୀ) ମୃଦୁଗମନା ।
ମୃଦୁଗମନା—ସ୍ତ୍ରୀ.ବ. ହଂସୀ, (ସ୍ତ୍ରୀ.ବି°) ମନ୍ଦଗମନବିଶିଷ୍ଟା (ସ୍ତ୍ରୀ) ।
ମୃଦୁଗମ୍ଭୀର—ବି°.ଧୀର ଅଥଚ ଗାମ୍ଭୀର୍ଯ୍ୟବିଶିଷ୍ଟ(ବ୍ୟକ୍ତି),ଧୀର ଅଥଚ ଗମ୍ଭୀର ସ୍ୱର
ମୃଦୁଗାମୀ—ପୁଂ.ବି°.ମୃଦୁଗମନ ଦେଖ ।
ମୃଦୁଗୁଞ୍ଜନ—ବ.(କ.ଧା)କୋମଳ ଗୁଣୁଗୁଣୁ ଶବ୍ଦ । [ ଦେଖ ।
ମୃଦୁଗୁଞ୍ଜିତ—ବ. (କ.ଧା) ମୃଦୁଗୁଞ୍ଜନ
ମୃଦୁଗ୍ରନ୍ଥି—ପୁଂ. ବ. ମଞ୍ଜର ତୃଣ ।
ମୃଦୁଚର୍ମା(ର୍ମୀ)—ପୁଂ. ବ. (ମୃଦୁଚର୍ମ+ଇନ୍) ଭୂର୍ଜବୃକ୍ଷ, (କ୍ରି.ବି°) କୋମଳତ୍ୱକ୍‌ବିଶିଷ୍ଟ ।

ମୃଦୁଗୃପ—ପୁଂ. ବି. ଦାନବଭେଦ ।

ମୃଦୁଚ୍ଛଦ—ପୁଂ. ବି. ଭୂର୍ଜବୃକ୍ଷ, ଗିରିଜ ପାକୁଡ଼ବୃକ୍ଷ, ପୋକଶୁଙ୍ଘା ଗୁଳ୍ମ, କୁକୁଡ଼ଦ୍ରୁମ, ଶ୍ରୀତାଳ, କୋଙ୍କଣ ଦେଶପ୍ରସିଦ୍ଧ ପୋଡ଼ାପାକୁ, ନଳ, ଝିଲିମିଳି ତୃଣ, ପିଣ୍ଡୀ ଖର୍ଜୂରବୃକ୍ଷ, ଲୋଲହାକୁଚ, (ବିଂ.ବ.ବ୍ରୀ) କୋମଳ ଆଚ୍ଛାଦନଯୁକ୍ତ ।

ମୃଦୁଜାତସ୍ତ—ତ୍ରି.ବିଂ. ଦୁର୍ବଳ ପ୍ରକୃତିକ, ମୃଦୁପ୍ରାପ୍ତ । [ ଶିଖା ।

ମୃଦୁଜ୍ୱଳ—ବି. (ମୃଦୁ+ଜ୍ୱଳ) ଅଳ୍ପଦୀପ୍ତ

ମୃଦୁତା(ତ୍ୱ)—ବି. ( ମୃଦୁ + ତ + ଆ ) କୋମଳତା, ନରମ ଅବସ୍ଥା ।

ମୃଦୁତାଳ—ପୁଂ. ବି. ବୃକ୍ଷଭେଦ, ଶ୍ରୀତାଳ

ମୃଦୁତୀକ୍ଷ୍ଣ—ତ୍ରି. ବିଂ. ମୃଦୁ ଓ ତୀକ୍ଷ୍ଣ, କୋମଳ ଓ ତେଜସ୍ୱୀ, (ବି) ମୃଦୁ ଓ ତୀକ୍ଷ୍ଣଗଣ ନକ୍ଷତ୍ର ।

ମୃଦୁତ୍ୱକ—ପୁଂ.ବି.(ବ.ବ୍ରୀ) ଭୂର୍ଜ ବୃକ୍ଷ ।

ମୃଦୁଦର୍ଭ—ପୁଂ. ବି. ଶୁକ୍ଳକୁଶ ।

ମୃଦୁଦ୍ଭବ—ବି. (ବ.ବ୍ରୀ) ମାଟିରୁ ଉତ୍ପନ୍ନ ବସ୍ତୁ, ଉଦ୍ଭିଜ୍ଜ. (ବିଂ) ମାଟିରୁ ଜାତ ।

ମୃଦୁନାଦ—ବି. (କ.ଧା) କୋମଳସ୍ୱର, (ପୁଂ.ବିଂ) କୋମଳ ସ୍ୱରବିଶିଷ୍ଟ ।

ମୃଦୁନାଦୀ—ପୁଂ. ବିଂ. ମଧୁରସ୍ୱରକାରୀ, (ସ୍ତ୍ରୀ) ମୃଦୁନାଦିନୀ ।

ମୃଦୁନ୍ନକ—କ୍ଳୀ. ବି. ସୁବର୍ଣ୍ଣ, ସୁନା ।

ମୃଦୁପତ୍ର—ବି. (କ.ଧା) ନଳ, କୋମଳ ପତ୍ର, (ବ.ବ୍ରୀ) ଭୂର୍ଜ ବୃକ୍ଷ, ଶାକବିଶେଷ. ଚକ୍ର ଚଲ୍ଲୀ, (ବିଂ-ବ.ବ୍ରୀ) କୋମଳପତ୍ରବିଶିଷ୍ଟ, (ସ୍ତ୍ରୀ) ମୃଦୁପତ୍ରା ।

ମୃଦୁପତ୍ରା—ସ୍ତ୍ରୀ. ବି. ଚଲ୍ଲୀଶାକ, ଚକ୍ର ଚଲ୍ଲୀଶାକ ।

ମୃଦୁପର୍ବକ—ପୁଂ. ବି. (ମୃଦୁ + ପର୍ବନ୍ + କ) ବେତ, ବେନ୍ତ, (ବିଂ) କୋମଳପର୍ବବିଶିଷ୍ଟ ।

ମୃଦୁପୀଠକ—ପୁଂ.ବି. ମତ୍ସ୍ୟଜାତିବିଶେଷ

ମୃଦୁପୁଷ୍ପ—ପୁଂ. ବି. (ବ.ବ୍ରୀ) ଶିରୀଷବୃକ୍ଷ, (କ.ଧା) କୋମଳ ପୁଷ୍ପ, (ବିଂ) କୋମଳକୁସୁମଯୁକ୍ତ, (ସ୍ତ୍ରୀ) ମୃଦୁପୁଷ୍ପା ।

ମୃଦୁପୂର୍ବ—ତ୍ରି. ବିଂ. ବିନୟ ପୂର୍ବକ ।

ମୃଦୁଫଳ—ପୁଂ. ବି. (ବ.ବ୍ରୀ) ଭୁଇଁଅଁଳା ଗଛ, ମଧୁନାରିକେଳ, (ବିଂ) କୋମଳ ଫଳବିଶିଷ୍ଟ (ବୃକ୍ଷ ବା ଲତା) ।

ମୃଦୁଭାବ—ବି. (କ.ଧା) କୋମଳଭାବ, (ପୁଂ.ବିଂ-ବ.ବ୍ରୀ) କୋମଳଭାବାନ୍ୱିତ, (ସ୍ତ୍ରୀ) ମୃଦୁଭାବା ।

ମୃଦୁମଧୁର—ବିଂ. (ଦ୍ୱନ୍ଦ୍ୱ) ମୃଦୁ ଓ ମଧୁର

ମୃଦୁମନ୍ଦ—ବିଂ.ଅତି ମନ୍ଦ, ଅତି ଧୀର ।

ମୃଦୁମଳୟ—ବି. (କ.ଧା) ଧୀରପ୍ରବାହିତ ଦକ୍ଷିଣାପବନ ।

ମୃଦୁରୋମବାନ୍—ପୁଂ.ବି. ଖରଆ, ଖରପୋଷ୍, (ବିଂ) କୋମଳ ଲୋମବିଶିଷ୍ଟ ।

ମୃଦୁଳ—କ୍ଳୀ. ବି. (ମୃଦୁ+ଲା+କ.ଅ) ଜଳ, ଅଙ୍ଗୀରଫଳ, (ପୁଂ.ବିଂ.ମୃଦୁ+ଲ) କୋମଳ, ଧୀର, (ସ୍ତ୍ରୀ) ମୃଦୁଳା ।

ମୃଦୁଲୋମକ—ପୁଂ. ବି. (ବ.ବ୍ରୀ) ଶଶକ. ଖରପୋଷ, ଖରଆ, ( ବିଂ-ବ.ବ୍ରୀ ) କୋମଳଲୋମବିଶିଷ୍ଟ ।

ମୃଦୁଲୋମା—ବି ଓ ବିଂ. (ବ.ବ୍ରୀ) ମୃଦୁଲୋମକ ଦେଖ ।

ମୃଦୁବଚନ—ବି.(କ.ଧା) କୋମଳ ବାକ୍ୟ. (ପୁଂ.ବିଂ-ବ.ବ୍ରୀ) ଯେ କୋମଳ କଥା କହେ, (ସ୍ତ୍ରୀ) ମୃଦୁବଚନା ।

ମୃଦୁବର୍ଗ—ପୁଂ.ବି.(ଜ୍ୟୋତିଷ) ମୃଦୁଗଣୋକ୍ତ ନକ୍ଷତ୍ର ସକଳ । [ କଥା କହେ ।

ମୃଦୁବାକ୍—ବିଂ. ମଧୁରାଳାପୀ, ଯେ କୋମଳ

ମୃଦୁବାତ—ବି. (କ.ଧା) ମନ୍ଦମାରୁତ, ଧୀରସମୀରଣ ।

ମୃଦୁବିରେଚକ—ବିଂ. ( କ.ଧା ) ଯାହା ସାମାନ୍ୟ ପରିମାଣରେ ଝାଡ଼ା କରାଏ ।

ମୃଦୁବେଗ—ବି. (କ.ଧା) ଧୀରଗତି, (ପୁଂ. ବିଂ-ବ.ବ୍ରୀ) ଧୀରଗତିବିଶିଷ୍ଟ ।

ମୃଦୁସ୍ପର୍ଶ—ବିଂ. (ବ.ବ୍ରୀ) କୋମଳସ୍ପର୍ଶବିଶିଷ୍ଟ, ଯାହା କୌଣସି ବସ୍ତୁକୁ କୋମଳ ଭାବରେ ସ୍ପର୍ଶ କରେ, ଯାହା ଛୁଇଁଲେ କୋମଳ ଲାଗେ, (ବି-କ.ଧା) କୋମଳ ଭାବରେ ଛୁଇଁବା ।

ମୃଦୁସ୍ୱଭାବ—ବି. (କ.ଧା) ନମ୍ରପ୍ରକୃତି, (ବିଂ. ବ.ବ୍ରୀ) ନମ୍ରପ୍ରକୃତିବିଶିଷ୍ଟ, ଶାନ୍ତପ୍ରକୃତିକ ।

ମୃଦୁସ୍ୱର—ବି. (କ.ଧା) କୋମଳ କଣ୍ଠସ୍ୱର, କ୍ଷୀଣଶବ୍ଦ, ବିନୀତ ବାକ୍ୟ, (ପୁଂ. ବିଂ. ବ.ବ୍ରୀ) ମୃଦୁସ୍ୱରବିଶିଷ୍ଟ, (ସ୍ତ୍ରୀ) ମୃଦୁସ୍ୱରା ।

ମୃଦୁସ୍ୱାଦ—ବିଂ. (ବ.ବ୍ରୀ) ଈଷତ୍ ସ୍ୱାଦବିଶିଷ୍ଟ, (ଯାହା ଖଟା ବା ରାଗ ବା ମିଠା ନୁହେ) ।

ମୃଦୁସ୍ରୋତଃ—ବି. (କ.ଧା) ଧୀରପ୍ରବାହ, ପୁଂ. ବିଂ. (ବ.ବ୍ରୀ) ଧୀରପ୍ରବାହାନ୍ୱିତ ।

ମୃଦୁହାସ(ସ୍ୟ)—ବି.(କ.ଧା) ସ୍ମିତହାସ୍ୟ, ମୁରୁକିହସ, (ପୁଂ.ବିଂ) ସ୍ମିତହାସ୍ୟଯୁକ୍ତ ।

ମୃଦୁହୃଦୟ—ପୁଂ. ବିଂ. (ବ.ବ୍ରୀ) କୋମଳହୃଦୟ, ଦୟାଳୁ ।

ମୃଦୂ—ଅବ୍ୟ. ମୃଦୁଭାବ ।

ମୃଦୂତ୍ପଳ—କ୍ଳୀ. ବି. (କ.ଧା) ନୀଳପଦ୍ମ, ନୀଳକଇଁ ।

ମୃଦୂଭାବ—ପୁଂ. ବି. ଯାହା ପୂର୍ବେ ମୃଦୁନ ଥିଲା ପରେ ତାହା ମୃଦୁ ହେବା ।

ମୃଦ୍ଗ—ପୁଂ. ବି. ( ମୃଦ୍+ଗମ୍+ଅ ) ମତ୍ସ୍ୟ ବିଶେଷ । [ ମାଟିଆ ।

ମୃଦ୍ଘଟ—ପୁଂ. ବି. (କ.ଧା) ମାଟିର ଘଟ,

ମୃଦ୍ଭାଜନ(ଭାଣ୍ଡ)—କ୍ଳୀ. ବି. ମୃତ୍ତିକାନିର୍ମିତ ପାତ୍ର, ମାଟିର ପାତ୍ର ବା ହାଣ୍ଡି ।

ମୃଦ୍ୱଙ୍ଗ—କ୍ଳୀ. ବି. (ବ.ବ୍ରୀ) ବଙ୍ଗ, ରଙ୍ଗ ଧାତୁ, କୋମଳାବୟବ, କୋମଳଶରୀର, (ବିଂ) କୋମଳାବୟବ ବିଶିଷ୍ଟ ।

ମୃଦ୍ୱୀ—ସ୍ତ୍ରୀ.ବି.(ମୃଦୁ+ଈ) କୋମଳାଙ୍ଗୀ (ସ୍ତ୍ରୀ), କପିଳଦ୍ରାକ୍ଷା, ଦ୍ରାକ୍ଷାଲତା ।

ମୃଦ୍ୱୀକା—ସ୍ତ୍ରୀ. ବି. (ମୃଦୁ+ଇକ+ଆ) ଦ୍ରାକ୍ଷା, କପିଳଦ୍ରାକ୍ଷା, ଦ୍ରାକ୍ଷାସବ, ଅଙ୍ଗୁର ।

ମୃଦ୍ୱୀକାଦି-ପୁଂ.ବି. ପିତ୍ତଜ୍ୱରରେ ପ୍ରଯୋଜ୍ୟ ଦ୍ରାକ୍ଷାଦିସିଦ୍ଧ କଷାୟ । [ ମଦ୍ୟ ।

ମୃଦ୍ୱୀକାସବ—ପୁଂ.ବି. ଦ୍ରାକ୍ଷାସବ, ଦ୍ରାକ୍ଷା-

ମୃଧ—କ୍ଳୀ. ବି. (ମୃଧ୍ + ଅ) ଯୁଦ୍ଧ, ରଣ ।

ମୃଧା—ଅବ୍ୟ. ମୃଷା, ମିଥ୍ୟା, ବୃଥା, ଅନର୍ଥକ

ମୃଧ୍ର—ବିଂ. କ୍ଷତିକାମନାକାରୀ ଶତ୍ରୁ, (ବି) ଘୃଣା, ଅବମାନନା । [ କଥନ ।

ମୃଧ୍ରବାକ୍—ବି. ଅବମାନନା ସୂଚକ ବାକ୍ୟ-

**ମୃନ୍ମୟ**—ତ୍ରି. ବ°. (ମୃଦ୍+ମୟ) ମୃତ୍ତିକା-ନିର୍ମିତ, ମୃଣ୍ମୟ ।

**ମୃନ୍ମରୁ**—ପୁଂ. ବ.(ମୃତ୍+ମରୁ) ପାଷାଣ, ପଥର, ପାହାଡ଼, ପର୍ବତ ।

**ମୃନ୍ମାନ**—କ୍ଳୀ. ବ. (ମୃତ୍+ମାନ) କୂପ, କୂଅ । [ ଢେଲା ।

**ମୃଲ୍ଲୋଷ୍ଟ**—କ୍ଳୀ. ବ. ମୃତ୍ତିକାଖଣ୍ଡ, ମାଟିଢ

**ମୃଷା**—ଅ. ମିଥ୍ୟାରେ, ଅନର୍ଥକ, ବୃଥା, (ବ ) ଅସତ୍ୟ, ମିଥ୍ୟା । [ ଜ୍ଞାନ ।

**ମୃଷାଜ୍ଞାନ**—କ୍ଳୀ. ବ. ମିଥ୍ୟାଜ୍ଞାନ, ଅଯଥା-

**ମୃଷାତ୍ମ**—କ୍ଳୀ.ବ.ମିଥ୍ୟାତ୍ମ, ମିଥ୍ୟାର ଭାବ ବା ଧର୍ମ ।

**ମୃଷାଦାନ**—କ୍ଳୀ. ବ. ବୃଥାଦାନ, କପଟତାର ସହିତ ଦାନାଙ୍ଗୀକାର ।

**ମୃଷାଦୃଷ୍ଟି**—କ୍ରି.ବ°.ଭୁଲ୍ ଦେଖିବା,ଭ୍ରମପୂର୍ଣ୍ଣମତ ପ୍ରଦାନ ।

**ମୃଷାଧ୍ୟାୟୀ**—ପୁଂ. ବ. (ମୃଷା+ଧ୍ୟୈ+ଇନ୍) ବକ, ବଗ ।

**ମୃଷାନୁଶାସୀ**—ପୁଂ. ବ°.(ମୃଷା + ଅନୁଶାସନ + ଇନ୍) ମିଥ୍ୟାନୁଶାସନକାରୀ, ବୃଥା ଅନୁଯୋଗକାରୀ ।

**ମୃଷାଭାଷୀ**—ପୁଂ. ବ°. (ମୃଷ୍+ଭାଷ୍+ଇନ୍) ମିଥ୍ୟାବାଦୀ, (ସ୍ତ୍ରୀ)ମୃଷାଭାଷିଣୀ ।

**ମୃଷାର୍ଥକ**—କ୍ଳୀ. ବ. ଅତ୍ୟନ୍ତ ଅସମ୍ଭବାର୍ଥକ ବାକ୍ୟ, ଅଦ୍ଭୁତ, (ବ°) ଅନୃତ ବା ଅସମ୍ଭବାର୍ଥକ, (ଘୋଡ଼ାଡ଼ିମ୍ବ, ଆକାଶକୁସୁମ ପ୍ରଭୃତି ।

**ମୃଷାଲକ**—ପୁଂ.ବ.(ମୃଷା+ଅଲ+କୈ+ଅ) ଆମ୍ରବୃକ୍ଷ ।

**ମୃଷାବାକ୍**—ସ୍ତ୍ରୀ.ବ. ମିଥ୍ୟାବାକ୍ୟ, (ବ°) ମିଥ୍ୟାବାଦୀ ।

**ମୃଷାବାଦ**—ପୁଂ.ବ. (ମୃଷା + ବଦ୍+ଭା. ଅ) ମିଥ୍ୟାବାକ୍ୟ, ଥଟ୍ଟା ଉପହାସ, ଉପହାସାତ୍ମକ ପ୍ରଶଂସା ।

**ମୃଷାବାଦୀ**—ପୁଂ.ବ°. (ମୃଷା+ବଦ୍+କ.ଇନ୍) ମିଥ୍ୟା ଅଭିଯୋକ୍ତା, ମିଥ୍ୟାବାଦୀ ।

**ମୃଷୋଦ୍ୟ**—କ୍ଳୀ. ବ. (ମୃଷା + ବଦ୍+ଭା.ଯ) ଅନୃତ ଭାଷଣ, ମିଥ୍ୟାବାକ୍ୟ, (ମି.ଯ) ମିଥ୍ୟୋକ୍ତି, (ପୁଂ.ବ°-କ.ଯ) ଅନୃତଭାଷୀ, ମିଥ୍ୟାବାଦୀ, ( ମି.ଯ ) ମିଥ୍ୟୋକ୍ତ ।

**ମୃଷ୍ଟ**—ତ୍ରି. ବ°. (ମୃଜ୍+ତ) ଶୋଧିତ, ମାର୍ଜିତ, ସ୍ପୃଷ୍ଟ, ସଂସ୍କୃତ, ପରିଷ୍କୃତ,ସିକ୍ତ, (ମୃଷ୍+ମି.ତ) ଘୃଷ୍ଟ, (ବ) ମରିଚ ।

**ମୃଷ୍ଟି**—ସ୍ତ୍ରୀ. ବ. (ମୃଜ୍ + ଭା.ତି)ପକ୍ବଟିଭି ଅନ୍ନାଦିର ସଂସ୍କାରବିଶେଷ,ସ୍ପର୍ଶନ,ସଲିପ୍ତ ହେବା, ଶୋଧନ, ସେଚନ ।

**ମୃଷ୍ଟେରୁକ**—ପୁଂ. ବ°. ଦାତା,ବଦାନ୍ୟ, ମିଷ୍ଟାଶୀ,ଅତିଥିଦ୍ୱେଷ୍ଟା,(ସ୍ତ୍ରୀ)ମୃଷ୍ଟେରୁକା

**ମେଇଁ**--ପ୍ରା.(ଉତ୍ତର ବାଲେ ) ବି. ବଗଡ଼

**ମେଇଭଙ୍ଗ**—ପଶ୍ଚିମ ବଙ୍ଗବାସୀ ପାର୍ବତ୍ୟ ଜାତିବିଶେଷ ।

**ମେଇସ୍ତ୍ରୀମର୍ଦ୍ଦା**—ଯା. ବ. ପୁରୁଷପ୍ରକୃତିକା ରମଣୀ, ସ୍ତ୍ରୀ ପୁରୁଷ ।

**ମେଉଆ**—ଯା. ବ. କାବୁଲ ଦେଶଜାତ ସୁମିଷ୍ଟ ଖାଦ୍ୟଫଳ ସମୂହ ।

**ମେଁ**—ଯା. ବ. ଇଂରାଜୀ ଗଣନାରେ ୫ମ ମାସ, (ଗ୍ରା.ଅବ୍ୟ) ମେଣ୍ଢା ବା ଛେଳିର ରବ ।

**ମେଁଏଁମେଁଏଁ**—ଗ୍ରା. ଅ. ମେଁ ଦେଖ ।

**ମେକ**—ପୁଂ.ବ. (ମେ + କୈ + ଅ)ଛାଗ ।

**ମେକଲ**—ପୁଂ.ବ.(ମି+କ.କଲ) ବିନ୍ଧ୍ୟପର୍ବତାଂଶ, ମଧ୍ୟପ୍ରଦେଶ ଓ ରେବା ରାଜ୍ୟର ମଧ୍ୟସ୍ଥ ଗିରିମାଳା, ମେଖଲ, ଋଷିବିଶେଷ । [ ନଦୀ ।

**ମେକ(ଖ)ଲକନ୍ୟକା**—ସ୍ତ୍ରୀ. ବ. ନର୍ମଦା-

**ମେକଲାଦ୍ରି**—ପୁଂ. ବ. ବିନ୍ଧ୍ୟପର୍ବତ ।

**ମେକଲାଦ୍ରିଜା**—ସ୍ତ୍ରୀ. ବ. ନର୍ମଦାନଦୀ ।

**ମେକାପ୍**—ଗ୍ରା. ବ. ନେକାପ୍, ଜଗନ୍ନାଥ ଓ ବିଷ୍ଣୁ ମନ୍ଦିରର କରଣ ବା ଶୂଦ୍ର ସେବକବିଶେଷ,ରାଜସେବକବିଶେଷ ।

**ମେକ୍ଷଣ**—କ୍ଳୀ. ବ. ଯଜ୍ଞୀୟ ପାତ୍ରବିଶେଷ ।

**ମେକ୍ସିକୋ**—ଯା.ବ.ଦକ୍ଷିଣ ଆମେରିକାର ରାଜ୍ୟବିଶେଷ ।

**ମେଖ**—ଯା. ବ. ଖିଲ, ଖୁଣ୍ଟା, ସୂକ୍ଷ୍ମାଗ୍ର କ୍ଷୁଦ୍ରଦଣ୍ଡ, କଣ୍ଟା, କୀଳା, ( ଲ.ଅର୍ଥ ) ବିପଦ, ବାଧା ।

**ମେଖଡ଼(ଡ଼)**—ଗ୍ରା.ବ.କୌଣସି କାର୍ଯ୍ୟରେ ଉପସ୍ଥିତ ବାଧା ବା ବିଘ୍ନ,ବିବାଦ,କଳି, (ବ°) ବିଘ୍ନକାରୀ ।

**ମେଖମାରିବା**—ଗ୍ରା. କ୍ରି. କୀଳା ମାରିବା, ଖିଲ ଦେବା, ( ଲ.ଅର୍ଥ ) କୌଣସି କାର୍ଯ୍ୟରେ ବାଧା ଜନ୍ମାଇବା, ବିପଦ ଘଟାଇବା । [ ଦେଖ ।

**ମେଖଲ**—ବ. (ମି+ମି.ଖଲ) ମେକଲ

**ମେଖଲା**—ସ୍ତ୍ରୀ. ବ. (ମି+ମି.ଖଲ+ଆ) ସ୍ତ୍ରୀ କଟ୍ୟାଭରଣ,ଅଣ୍ଟାସୂତା,ଚନ୍ଦ୍ରହାର, ଗୋଠଇତ୍ୟାଦି,ପର୍ବତର କଟିପ୍ରଦେଶ, ପର୍ବତର ପାର୍ଶ୍ୱଦେଶ, ନର୍ମଦା ନଦୀ, ପୃଶ୍ନିପର୍ଣ୍ଣୀ, ଗୁଡ଼ୁଲଆ, ଦ୍ୱିଜାତି ବାଳକର ଉପନୟନ କାଳରେ ଧାରଣୀୟ ମୁଞ୍ଜନିର୍ମିତ ସୂତ୍ରତ୍ରୟ, ହୋମ କୁଣ୍ଡର ଉପରିଦେଶରେ ମୃଦ୍ଘଟିତ ବେଷ୍ଟନବିଶେଷ, ଯଜ୍ଞବେଷ୍ଟନ ସୂତ୍ର, ସମୁଦ୍ର, ଶିକ୍କାନିକା, ହସ୍ତଦ୍ୱାରା ଦୃଢ଼ତା ସହିତ ଧରିବା ପାଇଁ ବ୍ୟବହୃତ ଖଡ୍ଗାଦିର ମୁଷ୍ଟିସ୍ଥିତ ଚର୍ମବନ୍ଧନୀ, କମରବନ୍ଧ,ବ୍ରାହ୍ମଣର ବ୍ରତ ସମୟରେ ଧାରଣୀୟ କୃଷ୍ଣାଜିନ ନିର୍ମିତ ଉପବୀତ ।

**ମେଖଲାଗୁଣ**—ବ. ଅଣ୍ଟାସୂତାର ସରି ।

**ମେଖଲାଦ୍ରି**—ବ. ବିନ୍ଧ୍ୟପର୍ବତ ।

**ମେଖଲାଦ୍ରିଜା**—ସ୍ତ୍ରୀ. ବ. ନର୍ମଦାନଦୀ ।

**ମେଖଲାପଦ**—କ୍ଳୀ. ବ. ନିତମ୍ବ, କଟିପ୍ରଦେଶ । [ ଶିବ ।

**ମେଖଲ୍ଲ**—ବ°. ମେଖଲାଳଙ୍କୃତ,(ବ)

**ମେଖଲାବାନ୍**—ପୁଂ. ବ°.ମେଖଲାଯୁକ୍ତ, ଯେ ମେଖଲା ବା ଅଣ୍ଟାସୂତା ପିନ୍ଧିଅଛି, (ସ୍ତ୍ରୀ) ମେଖଲାବତୀ ।

**ମେଖଲାବନ୍ଧ**-କ୍ଳୀ.ବ.ଯେଉଁ ସମସ୍ତ କ୍ରିୟାବିଶେଷଦ୍ୱାରା ମେଖଲା ବନ୍ଧନ କରାହୁଏ, ମୌଞ୍ଜୀବନ୍ଧନ, ମେଖଲାବନ୍ଧନ ।

**ମେଖଲି**—ଗ୍ରା.ବ. କଟିମେଖଲା ।

**ମେଖଲିକ**—ବ°. ମେଖଲାଶୋଭି ।

**ମେଖଲୀ**--ପୁଂ.ବ. ମେଖଲାଧ ରୀବ୍ରହ୍ମଚାରୀ, ଶିବ ।

**ମେଖା**—ପ୍ରା.(ସମ୍ବ)ବ. ମେଖ ଦେଖ ।

ମେଗାସ୍ଥିନିସ୍—ଗ୍ରା.ବି. ଜଣେକ ପ୍ରାଚୀନ ଗ୍ରୀକ୍ ପର୍ଯ୍ୟଟକ ।
ମେଘ୍—ପ୍ରା.(ସମ୍ଭ)ବି. ମେଘ ।
ମେଘ୍ବାଦଲ୍-ପ୍ରା.(ସମ୍ଭ)ବି. ମେଘୁଆପାଗ
ମେଘ—ପୁଂ.ବି. (ମିହ୍+ଅ) ମୁଥା,ଗୁଜୁଳିଆ ଶାଗ, ଲେଉଟିଆଶାଗ, ରାକ୍ଷସ, ସୁନାମଖ୍ୟାତ ଦ୍ରବପଦାର୍ଥ, ଅଭ୍ର, ଯେ ଜଳ ବର୍ଷଣକରେ, ଜଳଦ,ବାରିବାହ, ରାଗବିଶେଷ, (ଗ୍ରା.ବି) ଆକାଶ, ବର୍ଷା ।
ମେଘଅନ୍ଧାର-ଗ୍ରା. ବି ଆକାଶ ମେଘାଚ୍ଛନ୍ନ ହେବାରୁ ପୃଥିବୀରେ ଘୋଟିବା ଅନ୍ଧାର
ମେଘଅସରା—ଗ୍ରା. ବି. ବର୍ଷିବାର ଥର
ମେଘକଫ—ପୁଂ.ବି.କରକା, କୁଆପଥର
ମେଘକର୍ତ୍ତ୍ରୀ—ସ୍ତ୍ରୀ.ବି. ସ୍କନ୍ଦାନୁଚର ମାତୃଭେଦ ।
ମେଘକାଳ—ପୁଂ.ବି.(୬ତତ୍ପୁ)ବର୍ଷାକାଳ, ବର୍ଷାଋତୁ ।
ମେଘଗମ୍ଭୀର-ବି.ବିଂ. ମେଘତୁଲ୍ୟ ଗମ୍ଭୀର
ମେଘଗର୍ଜନ—କ୍ଲୀ.ବି.(୬ତତ୍ପୁ)ମେଘଧ୍ୱନି, ଘଡ଼ଘଡ଼ି ଶବ୍ଦ ।
ମେଘଘଡ଼ଘଡ଼ି-ଗ୍ରା.ବି. ବୃଷ୍ଟି ଓ ବଜ୍ରଧ୍ୱନି
ମେଘଘୋଟିବା-ଗ୍ରା.ବି,ମେଘାଚ୍ଛନ୍ନ ହେବା
ମେଘଘୋଡ଼ାଇବା—ଗ୍ରା. ବି. ଆକାଶ ମେଘାଚ୍ଛନ୍ନ ହେବା, ସୂର୍ଯ୍ୟ ଚନ୍ଦ୍ର ତାରାଆଦିଙ୍କୁ ଘୋଡ଼ାଇବା ।
ମେଘଙ୍କର—ବି.ବିଂ. (ମେଘଂ+କୃ+କ. ଅ) ମେଘକାରୀ, ଯାହା ବର୍ଷା କରାଏ (ଋତୁ) ।
ମେଘଚମକ—ଗ୍ରା.ବି. ବିଦ୍ୟୁତ୍ ।
ମେଘଚିନ୍ତକ—ପୁଂ.ବି. ଚାତକପକ୍ଷୀ ।
ମେଘଜ—ବିଂ. ( ମେଘ+ଜନ୍+ଅ ) ମେଘଭବ ବସ୍ତୁ, ମେଘରୁ ଜାତ, (ବି) ଏକପ୍ରକାର ବୃହତ୍ ମୁକ୍ତା ।
ମେଘଜାଳ(କ)—ବି. ( ୬ତତ୍ପୁ ) ଅଭ୍ର, ମେଘମାଳ, ମେଘସମୂହ ।
ମେଘଜୀବକ—ବି. ଚାତକପକ୍ଷୀ ।
ମେଘଜୀବନ—ବି. ଚାତକପକ୍ଷୀ ।
ମେଘଜ୍ୟୋତିଃ-ପୁଂ.ବି. ବଜ୍ରାଗ୍ନି,ବିଦ୍ୟୁତ୍
ମେଘଡ଼ମ୍ବୁର—ପୁଂ. ବି. ମେଘଗର୍ଜନ, ଆକାଶରେ ମେଘ ଘୋଟିଯିବା, ବଡ଼ ଗୃନ୍ଦୁଆ, ଏକପ୍ରକାର ବଡ଼ ଛତା ।
ମେଘଡ଼ମ୍ବୁରୁ—ଗ୍ରା.ବି. କଳାମେଘୀ ଶାଢ଼ୀ, ନୀଳଶାଢ଼ୀ । [ ଧନ ।
ମେଘତମିର-ପୁଂ.ବି. (ବ.ସ୍ତ୍ରୀ)ମେଘାଚ୍ଛନ୍ନ
ମେଘଦୀପ—ପୁଂ.ବି. (୬ତତ୍ପୁ) ବିଦ୍ୟୁତ୍, ବିଜୁଳି ।
ମେଘଦୁନ୍ଦୁଭି—ପୁଂ.ବି. ଅସୁରଭେଦ, ମେଘଗର୍ଜନ ।
ମେଘଦୁନ୍ଦୁଭିସ୍ୱରରାଜ-ପୁଂ.ବି.ବୁଦ୍ଧଭେଦ ।
ମେଘଦୂତ—ବି. ମହାକବି କାଳିଦାସ ପ୍ରଣୀତ ସଂସ୍କୃତ ଖଣ୍ଡକାବ୍ୟବିଶେଷ, ମେରୁତୁଙ୍ଗସୂରି ବିରଚିତ ଖଣ୍ଡିଏ ଜୈନଗ୍ରନ୍ଥ ।
ମେଘଦେଖିଛତାଧରିବା-ଗ୍ରା.କ୍ରି.(ଲ.ଅର୍ଥ) ସମୟର ପ୍ରଭାବ ଅନୁସାରେ ନିଜର ଆଚରଣକୁ ବାଗେଇବା ।
ମେଘଦ୍ୱାର—କ୍ଲୀ.ବି. ( ୬ତତ୍ପୁ ) ଶୂନ୍ୟ, ଆକାଶ ।
ମେଘଧନୁଃ—ବି. (କ.ଧା) ଇନ୍ଦ୍ରଧନୁ ।
ମେଘଧ୍ୱନି—ବି. (୬ତତ୍ପୁ)ଘଡ଼ଘଡ଼ି ଶବ୍ଦ ।
ମେଘନା—ଗ୍ରା.ବି. ପୂର୍ବ ବଙ୍ଗରେ ପ୍ରବାହିତ ଗୋଟିଏ ନଦୀ ।
ମେଘନାଥ—ବି. (୬ତତ୍ପୁ) ଇନ୍ଦ୍ର ।
ମେଘନାଦ—ପୁଂ.ବି. (ମେଘ+ନଦ+ଣିଚ୍+ଅ) ବରୁଣଦେବତା, ଘଡ଼ଘଡ଼ି ଶବ୍ଦ, ପଳାଶବୃକ୍ଷ, ଲେଉଟିଆଶାଗ, ତଣ୍ଡୁଳୀୟଶାଗ, ରାବଣର ପୁତ୍ର ଇନ୍ଦ୍ରଜିତ, ମୟୂର, ବିଡ଼ାଳ, ଗୁଗ, ମୃତସଞ୍ଜୀବନୀ, ସହ୍ୟାଦ୍ରି ବର୍ଣ୍ଣିତ ଦୁଇଜଣ ରାଜା, (ଗ୍ରା.ବି) ଅତି ଉଚ୍ଚ ପ୍ରାଚୀର ।
ମେଘନାଦଜିତ୍—ପୁଂ.ବି. (ମେଘନାଦ+ଜି+କ.କିପ୍) ରାମାନୁଜ, ଲକ୍ଷ୍ମଣ ।
ମେଘନାଦପାଚେରି—ଗ୍ରା. ବି. ରାଜପୁରର ବା ଦେବାଳୟର ବାହାର ବେଢ଼ାରେ ବୁଲିଥିବା ଉଚ୍ଚ ପ୍ରାଚୀର ।
ମେଘନାଦବଧ—ବି. ଲକ୍ଷ୍ମଣଙ୍କଦ୍ୱାରା ଯୁଦ୍ଧରେ ଇନ୍ଦ୍ରଜିତର ପ୍ରାଣନାଶ,(ଗ୍ରା.ବି) ବଙ୍ଗୀୟ କବି ମାଇକେଲ୍ ମଧୁସୂଦନଙ୍କ ପ୍ରଣୀତ ଅମିତ୍ରାକ୍ଷର ଛନ୍ଦୋବଦ୍ଧ ପ୍ରସିଦ୍ଧ ମହାକାବ୍ୟ ।
ମେଘନାଦାନୁଲାସକ—ପୁଂ. ବି. (ମେଘନାଦ+ଅନୁ+ଲସ୍+ଅକ)ମୟୂର ।
ମେଘନାଦାନୁଲାସୀ—(ମେଘନାଦ+ଅନୁ+ଲସ୍+କ.ଇନ୍) ମୟୂର ।
ମେଘନାଦୀ –ପୁଂ.ବି. ଇନ୍ଦ୍ରଜିତ, (ବିଂ) ମେଘତୁଲ୍ୟ ଶବ୍ଦକାରୀ ।
ମେଘନାମା—ପୁଂ.ବି. ( ବ.ସ୍ତ୍ରୀ ) ମୁଥା, ମୁସ୍ତକ ।
ମେଘନାଳ—ଗ୍ରା.ବି.ଅଭ୍ର, କାଣିଚ ଲଉଟିଆ ।
ମେଘନିର୍ଘୋଷ—ପୁଂ.ବି. (୬ତତ୍ପୁ)ମେଘଧ୍ୱନି, (ବିଂ) ମେଘତୁଲ୍ୟ ଶବ୍ଦବିଶିଷ୍ଟ ।
ମେଘନୀଳକ—ପୁଂ.ବି. ତାଳୀଶବୃକ୍ଷ ।
ମେଘପଟଳ—ବି. (୬ତତ୍ପୁ) ମେଘସମୂହ, ଗୁରୁଆଡ଼େ ଘୋଟିଥିବା ମେଘ ।
ମେଘପୁଷ୍ପ—ପୁଂ.ବି. (ମେଘ+ପୁଷ୍ପ+ଅ) ଇନ୍ଦ୍ରଙ୍କ ଅଶ୍ୱ, ଶ୍ରୀକୃଷ୍ଣଙ୍କ ଅଶ୍ୱ, ଜଳ, ପିଣ୍ଡାଭ୍ର,ନଦୀଜଳ, ଅଳଶୃଙ୍ଗ, ମୁସ୍ତକ, ମୁଥା ।
ମେଘପୁଷ୍ପା—ସ୍ତ୍ରୀ. ବି. ବେତସ, ଜଳ, କରକା ।
ମେଘପ୍ରବାହ—ପୁଂ.ବି.ସ୍କନ୍ଦାନୁଚରଭେଦ
ମେଘପ୍ରସବ—ପୁଂ.ବି. ଜଳ, (ବିଂ)ଜଳଜାତ, ମେଘଜାତ ।
ମେଘଫଳ—କ୍ଲୀ. ବି.ବିକଙ୍କତ ଫଳବୃକ୍ଷ, ଭୁଇଁଅଁଗଛ, ( ଜ୍ୟୋତିଷ ) ମେଘର ବର୍ଷଦ୍ୱାରା ବର୍ଷର ଫଳ ନିର୍ଣ୍ଣୟ ।
ମେଘଭଟ୍ଟ—ପୁଂ.ବି.ବୈଦ୍ୟବଲ୍ଲଭ ଟୀକା ପ୍ରଣେତା ।
ମେଘଭାଙ୍ଗିଯିବା—ଗ୍ରା. କ୍ରି. ମେଘାଚ୍ଛନ୍ନ ଆକାଶ ମେଘଶୂନ୍ୟ ହୋଇ ପରିଷ୍କୃତ ହେବା ।
ମେଘଭୂତ—ପୁଂ.ବି. (ମେଘ+ଭୂ+କ. ତ) ବଜ୍ର, ବିଜୁଳି ।
ମେଘମଞ୍ଜରୀ-ସ୍ତ୍ରୀ.ବି. କାଶ୍ମୀରାଧିପ ବିଜୟପାଳଙ୍କ କନ୍ୟା ।
ମେଘମଠ—ପୁଂ.ବି. ରାଜାମେଘ ବାହନ-

ପ୍ରତିଷ୍ଠିତ ମଠ ଓ ବିଦ୍ୟାଗାର ।
ମେଘମଣ୍ଡଳ—କ୍ଲୀ.ବି. ଆକାଶ ।
ମେଘମଣ୍ଡିତ—ବିଂ. (୩ତତ୍) ମେଘଦ୍ୱାରା ଆବୃତହୋଇ ଶୋଭମାନ ।
ମେଘମନ୍ଦ୍ର—ବିଂ. ( ବ.ବ୍ରୀ ) ମେଘପରି ଗମ୍ଭୀର (ଧ୍ୱନି), (ବି-୬ତତ୍) ମେଘର ଧ୍ୱନି ।
ମେଘମୟ—ତ୍ରି. ବିଂ. ମେଘାଚ୍ଛନ୍ନ,ମେଘରୂପ, ମେଘପରିପୂର୍ଣ୍ଣ ।
ମେଘମଲ୍ଲାର—ବି. ମିଶ୍ର ରାଗବିଶେଷ ।
ମେଘମାଳ—ପୁଂ.ବି.ରମା ଗର୍ଭଜାତ କଳ୍କି ଦେବଙ୍କ ପୁତ୍ର, ପ୍ଲକ୍ଷଦ୍ୱୀପର ପର୍ବତବିଶେଷ, ରାକ୍ଷସବିଶେଷ ।
ମେଘମାଳା—ସ୍ତ୍ରୀ. ବି. (୬ତତ୍) ମେଘଶ୍ରେଣୀ, କାଦମ୍ବିନୀ,ସ୍କନ୍ଦାନୁଚରୀ ମାତୃକାଭେଦ ।
ମେଘମାଳୀ—ପୁଂ. ବିଂ. ମେଘପରିବୃତ, (ପୁଂ.ବି) ଅସୁରଭେଦ, ରାଜଭେଦ, ସ୍କନ୍ଦାନୁଚରବିଶେଷ ।
ମେଘଯୁଦ୍ଧ—ବି. (୬ତତ୍)ଏକ ମେଘଖଣ୍ଡ ସଙ୍ଗେ ଅନ୍ୟ ମେଘ ଘଷିହେବା ।
ମେଘଯୋନି—ପୁଂ. ବି. (ବ.ବ୍ରୀ) ଧୂମ, କୁଜ୍ଝଟିକା, କୁହୁଡ଼ି । [ ପକ୍ଷୀ ।
ମେଘରବ—ପୁଂ. ବି. ସଂଘାତ ଜଳଚର
ମେଘରାଗ—ବି. ସଙ୍ଗୀତର ଷଡ଼ରାଗର ଅନ୍ତର୍ଗତ ରାଗବିଶେଷ ।
ମେଘରାଜ—ପୁଂ. ବି. (୬ତତ୍) ଇନ୍ଦ୍ର ।
ମେଘରାଜି—ସ୍ତ୍ରୀ. ବି. ମେଘସମୂହ ।
ମେଘରାବ—ପୁଂ. ବି. ସଘାତ ଜଳଚର ପକ୍ଷିବିଶେଷ, ମୟୂରପକ୍ଷୀ ।
ମେଘରେଖା—ସ୍ତ୍ରୀ. ବି. ମେଘଶ୍ରେଣୀ, ମେଘପୁଞ୍ଜ ।
ମେଘଲ—ଗ୍ରା. ବିଂ. ମେଘୁଆ,ମେଘାଚ୍ଛନ୍ନ ।
ମେଘଲେଖା—ସ୍ତ୍ରୀ. ବି. ମେଘପଂକ୍ତି ।
ମେଘବତ୍—ଅବ୍ୟ. ମେଘସଦୃଶ ।
ମେଘବର୍ଣ୍ଣ—ତ୍ରି. ବିଂ. ( ବ.ବ୍ରୀ ) ମେଘ ସଦୃଶ ବର୍ଣ୍ଣଯୁକ୍ତ, ( ସ୍ତ୍ରୀ ) ମେଘବର୍ଣ୍ଣା, ନୀଳୀବୃକ୍ଷ, (ପୁଂ.ବି) ମେଘତୁଲ୍ୟ ବର୍ଣ୍ଣ, ନୀଳବର୍ଣ୍ଣ, ଘଟୋତ୍କଚ ରାକ୍ଷସର ପୁତ୍ର ।
ମେଘବପୁଃ—ପୁଂ. ବି. (୬ତତ୍) ମେଘର ଆକାର, (ବିଂ-ବି.ବ୍ରୀ) ମେଘପରି ନୀଳବର୍ଣ୍ଣ ଶରୀରବିଶିଷ୍ଟ । [ ଗଗନ ।
ମେଘବର୍ତ୍ମ—କ୍ଲୀ. ବି. (୬ତତ୍) ଆକାଶ,
ମେଘବଲ୍ଲୀ—ବି. ଲତାବିଶେଷ ।
ମେଘବହ୍ନି—ପୁଂ. ବି. (କ.ଧା) ବଜ୍ରାଗ୍ନି, ବିଦ୍ୟୁତ୍ ।
ମେଘବାଆଦନ—ଗ୍ରା. ବି. ବରଷାର ଓ ଝଡ଼ର କାଳ ବା ଋତୁ ।
ମେଘବାଦଲ--ଗ୍ରା.ବି.ଆକାଶରେ ଉଠାଇଥିବା ମେଘମାଳା, ବର୍ଷା ଓ ମେଘ ।
ମେଘବାହନ—ପୁଂ. ବି. (ବ.ବ୍ରୀ) ଇନ୍ଦ୍ର ।
ମେଘବାସାଃ—ପୁଂ. ବି. ଦୈତ୍ୟଭେଦ, ମେଘପରିହିତ ।
ମେଘବାହ୍ମ—ପୁଂ. ବି. ଇନ୍ଦ୍ର ।
ମେଘବିଚ୍ଛୁରିତ—ବିଂ. (୩ତତ୍) ମେଘ ଦ୍ୱାରା ସିଞ୍ଚା ହୋଇଥିବା (ଜଳ) ।
ମେଘବିତାନ—କ୍ଲୀ. ବି. ଛନ୍ଦୋଭେଦ ।
ମେଘବିସ୍ଫୂର୍ଜିତ--ବି.ବଜ୍ର.ଅତିଧୃତି ଛନ୍ଦୋବିଶେଷ । [ ରାଜଭେଦ ।
ମେଘବେଗ—ପୁଂ. ବି. ମହାଭାରତୋକ୍ତ
ମେଘବେଶ୍ମ—କ୍ଲୀ. ବି. (୬ତତ୍)ଆକାଶ ।
ମେଘଶ୍ୟାମ—ପୁଂ. ବିଂ. (କ.ଧା) ମେଘପରି କୃଷ୍ଣବର୍ଣ୍ଣ ।
ମେଘସଖ—ପୁଂ. ବି. ପର୍ବତଭେଦ ।
ମେଘସନ୍ଦେଶ—ପୁଂ. ବି. ମେଘଦୂତ ।
ମେଘସମ୍ଭବ—ପୁଂ.ବି.ନାଗଭେଦ,ଜଳ ।
ମେଘସାର—ପୁଂ. ବି. ଚୀନକର୍ପୂର, ଶ୍ରୀକର୍ପୂର ।
ମେଘସୁହୃତ୍—ପୁଂ. ବି. (ବ.ବ୍ରୀ)ମୟୂର ।
ମେଘସ୍ତନିତ—ପୁଂ. ବି. (୬ତତ୍)ମେଘଶବ୍ଦ ।
ମେଘସ୍ତନିତୋଦ୍ଭବ—ପୁଂ. ବି. ବିକଙ୍କତ ବୃକ୍ଷ, ଭୂଇଁଅଁଗଛ ।
ମେଘସ୍ୱନ—ପୁଂ. ବି. (୬ତତ୍) ମେଘଗର୍ଜନ, ମେଘଶବ୍ଦ, ଘଡ଼ଘଡ଼ି, ( ବିଂ ) ମେଘରତୁଲ୍ୟ ଶବ୍ଦବିଶିଷ୍ଟ ।
ମେଘସ୍ୱନାଙ୍କୁର—ପୁଂ.ବି.ବୈଦୁର୍ଯ୍ୟମଣି ।
ମେଘହ୍ରାଦ—ପୁଂ. ବି. ମେଘସ୍ୱନ,ମେଘଧ୍ୱନି ।
ମେଘା—ଗ୍ରା. ବି. ମେଘୁଆ, ମସୃଣ ଆବରଣଯୁକ୍ତ ଆତ, ଆନନ୍ଦ ବାଦ୍ୟ ଯନ୍ତ୍ରବିଶେଷ, ଲତାଫୁଲବିଶେଷ । [ମୁଥା ।
ମେଘାଖ୍ୟ—କ୍ଲୀ. ବି. (ବ.ବ୍ରୀ) ମୁସ୍ତକ,
ମେଘାଗମ—ପୁଂ. ବି. (୬ତତ୍) ମେଘ ଉଠାଇବା, ମେଘର ଆଗମନ,(ବ.ବ୍ରୀ) ବର୍ଷାଋତୁ, ଧାରାକଦମ୍ବ,କେଳିକଦମ୍ବ ।
ମେଘାଗ୍ନି—ବି. (୬ତତ୍) ବିଦ୍ୟୁତ୍ ।
ମେଘାଚ୍ଛନ୍ନ—ତ୍ରି. ବିଂ. (୩ତତ୍) ମେଘଦ୍ୱାରା ଆଚ୍ଛାଦିତ, ମେଘାବୃତ, ମେଘ ଘୋଟିଥିବା ।
ମେଘାଟୋପ—ପୁଂ.ବି. (୬ତତ୍) ମେଘଶବ୍ଦ, ମେଘଗର୍ଜନ ।
ମେଘାଡ଼ମ୍ବର—ପୁଂ. ବି. (୬ତତ୍)ମେଘଗର୍ଜନ, ମେଘର ଆଡ଼ମ୍ବର ।
ମେଘାତ୍ୟୟ—ବି. (ବ.ବ୍ରୀ)ଶରତ୍କାଳ ।
ମେଘାନନ୍ଦ—ପୁଂ. ବି. (ବ.ବ୍ରୀ) ମୟୂର, ବଗ,ବକ, (ସ୍ତ୍ରୀ) ମେଘାନନ୍ଦା,ବଳାକା ।
ମେଘାନନ୍ଦୀ—ପୁଂ. ବି. (ମେଘ+ଆନନ୍ଦ +ଇନ୍) ମୟୂର ।
ମେଘାନ୍ତ—ପୁଂ.ବି.(ବ.ବ୍ରୀ)ଶରତ୍କାଳ ।
ମେଘାରମ୍ଭ—ବି. (୬ତତ୍) ମେଘାଗମ ଦେଖ । [ ବାୟୁ ।
ମେଘାରି—ପୁଂ.ବି.(ମେଘ+ଅରି)୬ତତ୍;
ମେଘାବିତତ—ତ୍ରି. ବିଂ. (୩ତତ୍) ମେଘ ଦ୍ୱାରା ସମାଚ୍ଛାଦିତ ।
ମେଘାସନ—ଗ୍ରା.ବି. ମୟୂରଭଞ୍ଜର ଶିମୂଳୀପାଳ ପର୍ବତର ପ୍ରଧାନ ଶିଖର ।
ମେଘାସନ—ଗ୍ରା. ବି. ମୟୂରଭଞ୍ଜର ପର୍ବତବିଶେଷ ।
ମେଘାସ୍ଥି—କ୍ଲୀ. ବି. ( ମେଘ+ଅସ୍ଥି ) କରକା, କୁଆପଥର ।
ମେଘାସ୍ପଦ—କ୍ଲୀ. ବି. (୬ତତ୍) ଆକାଶ ।
ମେଘି—ଗ୍ରା. ବିଂ. ମେଘର ବର୍ଣ୍ଣବିଶିଷ୍ଟ ।
ମେଘୁଆ—ଗ୍ରା. ବିଂ. ମେଘାଚ୍ଛନ୍ନ, ମେଘଯୁକ୍ତ, ଆକାଶର ବର୍ଣ୍ଣବିଶିଷ୍ଟ, ( ବି ) ମେଘାଚ୍ଛନ୍ନ ଦିବସ ବା ଋତୁ ।
ମେଘେଶ୍ୱର—ଗ୍ରା.ବି. ଓଡ଼ିଶାର ସୁପ୍ରସିଦ୍ଧ ଭୁବନେଶ୍ୱର କ୍ଷେତ୍ରାନ୍ତର୍ଗତ ଗୋଟିଏ

ପ୍ରାଚୀନ ଶିବଲିଙ୍ଗ ।
ମେଘେଶ୍ୱରତୀର୍ଥ—ବ.ରେବା ବା ନର୍ମଦା ତୀରସ୍ଥ ତୀର୍ଥଭେଦ ।
ମେଘୋଦକ—କ୍ଲୀ.ବ. (ମେଘ+ଉଦକ) ମେଘତୋୟ, ମେଘର ଜଳ ।
ମେଘୋଦୟ—ପୁଂ.ବ. (୬ତତ୍ପୁ)ମେଘର ଉଦୟ, ମେଘାରମ୍ଭ ।
ମେଘୋଦର—ପୁଂ. ବ. ଅର୍ହତପିତା, ପଦ୍ମମଜନ ବା ବୁଦ୍ଧବଶେଷଙ୍କ ପିତା ।
ମେଘ୍ୟ—ବି. ବଂ. (ମେଘ + ଯ) ମେଘଭବ ।
ମେଚକ—ବ.(ମିଚ୍+କ.ଅକ)ସ୍ରୋତୋଂଞ୍ଜନ, ଅନ୍ଧକାର, ନୀଳାଞ୍ଜନ, ଶ୍ୟାମବର୍ଣ୍ଣ, ଧୂମ,ସଜନାଗଛ,କଜ୍ଜଳ,ମୁଷ୍କକବୃକ୍ଷ,ପିତଶୋଳ,କୁନ୍ଦୁରୁଖୋଟୀ,ସୌବର୍ଚ୍ଚଲବଣ, ବିଟ୍‌ଲବଣ, ବିଚନ୍ଦନବର୍ଣ୍ଣ, କୃଷ୍ଣପୀତ ରକ୍ତବର୍ଣ୍ଣ, ମନ୍ଦବିଷ ବୃଶ୍ଚିକ ଜାତ, ସୌବୀରାଞ୍ଜନ, ମେଘ, (ବଂ) ଶ୍ୟାମଳ ।
ମେଚକୋ—ସ୍ତ୍ରୀ. ବ. ବନକାର୍ପାସୀ,କପାସିଆ ଗଛ ।
ମେଚକାଞ୍ଜନ—କ୍ଲୀ.ବ. କୃଷ୍ଣାଞ୍ଜନ,କଜ୍ଜଳ ।
ମେଚକାପଗା—ବ.(କ.ଧା)ଯମୁନା ନଦୀ ।
ମେଚକାଭଧା—ବ. (ବ.ବ୍ରୀ) ପାତାଳଗରୁଡ଼ଲତା ।
ମେଛ—ପ୍ରା. (ଖଡ଼ିଆଳ) ବ. ମୁଛ, ନିଶ ।
ମେଚ୍ଛ—ପ୍ରା. (ସମ୍ବଲ) ବ. ମୁଛ, ନିଶ ।
ମେଜ—ଯା. ବ. ଟେବଲ, ମୃତ୍ତିକାର ଆବରଣଭେଦ । [ ଟଙ୍କାର ।
ମେଜବାନ୍—ଯା. ବ. ଅତଥି, ଅତଥି-
ମେଜପୋସ୍—ଯା. ବ. ମେଜ ଉପରେ ଘୋଡ଼ାଇବା ଚଦର ।
ମେଜର—ଯା.ବ. ଇଂରାଜ ସୈନ୍ୟନାୟକଙ୍କ ଉପାଧିବିଶେଷ, ( ବ, ଓ ବଂ ) ସଞ୍ଚାଳକ ।
ମେଜାଜ୍—ଯା. ବ. ମିଜାଜ୍, ସ୍ୱଭାବ, ଅଭିପ୍ରାୟ, ମସ୍ତିଷ୍କ ।
ମେଜ୍ଝିଆ—ଗ୍ରା. ବ. ( ସ-ମଧ୍ୟ ) ଗୃହର ଭୂମିର ମଧ୍ୟସ୍ଥଳ, ଗୃହର ତଳଦେଶ, ଚଟାଣ ।

ମେଜ୍ଜକ୍—ଯା. ବ. ଭୋଜବାଜି ।
ମେଜେଣ୍ଟର—ଗ୍ରା. ବ. ଆଲକାତରାରୁ ରାସାୟନିକ ପ୍ରକ୍ରିୟାରେ ପ୍ରସ୍ତୁତ ଏକପ୍ରକାର କୃତ୍ରିମ ରଙ୍ଗ ।
ମେଞ୍ଚ—ପ୍ରା. (ସିଂହଭୂମ)ବ.ମଛର ମଞ୍ଜି ।
ମେଞ୍ଚଡ଼—ଗ୍ରା. ପୁଂ. ବଂ. ଶିଶୁ, (ଗ୍ରା.ବଂ) ଅତକ୍ଷୁଦ୍ର, ଖର୍ବକାୟ, ଶିଶୁପର, (ସ୍ତ୍ରୀ) ମେଞ୍ଚଡ଼ୀ ।
ମେଞ୍ଚା—ଗ୍ରା. ବ. କାଦୁଅ ଆଦର ଗୁଳା, ପୁଞ୍ଜୀକୃତ ପଦାର୍ଥ ।
ମେଞ୍ଚାଏ—ଗ୍ରା. ବଂ. ପୁଳାଏ, ଗୁଳାଏ (ଖାଦ୍ୟାଦ) । [ ମାନ ।
ମେଞ୍ଚାକ—ଗ୍ରା.ବଂ.ଏକମେଞ୍ଚା ବା ପୁଳେ
ମେଞ୍ଚାମେଞ୍ଚା—ଗ୍ରା. ବି. ବଂ. ପୁଳାପୁଳା, ବହୁଶଃ ପିଣ୍ଡୀକୃତ, ବହୁପରମାଣରେ ବ୍ୟାପ୍ତହେବା ପ୍ରକାରେ, ସାଲୁସାଲୁ. ଭେଳାଭେଳା ।
ମେଞ୍ଚାହେବା—ଗ୍ରା. ବି. ଦଳହୋଇ, ପିଣ୍ଡୀକୃତ ହେବା ।
ମେଞ୍ଚି—ଗ୍ରା. ବ. ଗ୍ଲେଟପିଣ୍ଡ ।
ମେଞ୍ଚିଏ—ଗ୍ରା.ବ ଓ ବଂ.ମେଞ୍ଚାଏଦେଖ ।
ମେଟ୍(ଣ୍ଟ୍)—ଯା. ବ. କୁଲି ବା ମୂଲିଆଙ୍କ ଦଳର ସର୍ଦ୍ଦାର ।
ମେଟୁଲା—ସ୍ତ୍ରୀ. ବ. ଆମଳକୀ, ଅଁଳା ।
ମେଟା—ପ୍ରା.(ଗଞ୍ଜାମ)ବ. ଗ୍ଲେଟ ପାହାଡ଼ ବା ମୁଣ୍ଡିଆ ।
ମେଠ—ପୁଂ.ବ.(ମେଟ+ଅ) ହସ୍ତିପକ, ମାହୁନ୍ତ, ମେଣ୍ଠ ।
ମେଡ଼ାଲ୍—ଯା.ବ.ପାରତୋଷିକ ରୂପେ ପ୍ରଦତ୍ତ ମୁଦ୍ରାଙ୍କିତ ଧାତୁଖଣ୍ଡ, ପଦକ, ତକମା ।
ମେଢ଼—ଗ୍ରା. ବ. (ସ-ମଣ୍ଡପ) ମାଟିର ପ୍ରତମା,ବାଉଁଶ,କାଠ ବା କୁଟାଆଦରେ ରଚିତ ଠାକୁର ପ୍ରତମାଙ୍କର ଆଟ, ଦେବତାମାନଙ୍କର ସିଂହାସନ ରୂପେ ବ୍ୟବହୃତ କାଠର ବା ମାଟିର ଅର୍ଦ୍ଧଚନ୍ଦ୍ରାକାର ଆସନ, ସୀମା ନିର୍ଦ୍ଦେଶକ ରେଖା, ନଅର, ରାଜପ୍ରାସାଦ, ଅଟ୍ଟାଳିକା, ଅନ୍ତଃପୁର ମଧ୍ୟସ୍ଥିତ ସୁସଜ୍ଜିତ

ପ୍ରକୋଷ୍ଠ, ଷେନ୍ଦର ଗୁରପାଖେ ଦିଆ-ଯିବା ଉଚ୍ଚ ହିଡ଼ ।
ମେଢା—ଗ୍ରା.ବ. ଯେଉଁ କାଠ କିଳାରେ ଡାଳ ଦ୍ୱାରା ବାଡ଼ ମୋଡ଼ାଯାଏ,କାଠର ଲମ୍ବ ସରୁ ଖୁଣ୍ଟି ।
ମେଢି—ଗ୍ରା. ବ. ମେଢ଼ୀ ଦେଖ ।
ମେଢ଼ିଆ—ଗ୍ରା. ବଂ. ମେଢି ଖୁଣ୍ଟ ପାଖେ ଲାଗି ବୁଲୁଥିବା (ବଳଦ),ଶୀର୍ଣ୍ଣକାୟ ।
ମେଢ଼ି(ଢ଼ୀ)—ଗ୍ରା.ବ.ବେଙ୍ଗଲାରେ ଯେଉଁ ଖୁଣ୍ଟିର ବୁଲପାଖେ ଦାଉଣିରେ ଯୋଗ୍ଯ ହୋଇଥିବା ବଳଦମାନେ ଘାଉଁଶ ଖାଇ ବୁଲନ୍ତି, ଦଳର ପ୍ରଧାନ ବ୍ୟକ୍ତି, ନେତା ।
ମେଢ୍ର—ପୁଂ.ବ (ମିହ+କ.ଟ)ପୁରୁଷୋପସ୍ଥ, ଶିଶ୍ନ, ଲିଙ୍ଗ, ମେଷ, ମେଣ୍ଢା ।
ମେଢ୍ରତ୍ୱକ୍—ସ୍ତ୍ରୀ.ବ(୬ତତ୍ପୁ)ଲିଙ୍ଗାଚ୍ଛାଦକ ଚର୍ମ ।
ମେଢ୍ର ରୋଗ—ପୁଂ. ବ. ଉପସ୍ଥରୋଗ, ଉପଦଂଶ ବା ଗରମିରୋଗ ।
ମେଢ୍ରଶୃଙ୍ଗୀ—ସ୍ତ୍ରୀ. ବ. ମେଷଶୃଙ୍ଗୀବୃକ୍ଷ ।
ମେଣ୍ଠ—ପୁଂ.ବ.(ମିହ+କ.ଅ)ହସ୍ତିପକ, ମାହୁନ୍ତ, ମେଣ୍ଢା, (ଗ୍ରା.ବ) ପଲ, ଦଳ, ମେଳି ।
ମେଣ୍ଠକ—ବ.(ମେଣ୍ଠ+କ)ମେଷ,ମେଣ୍ଢା ।
ମେଣ୍ଣ(ନ)—ଗ୍ରା.ବ ମେଣ୍ଟାଇବା,ମିଟାଇବା, ଏଡ଼ିବା, ଲଙ୍ଘନ, କ୍ଷମିବା, ନିରାକରଣ, ଦୁଃଖର ମୋଚନ, ବିବାଦର ନିଷ୍ପତ୍ତି, ନିବୃତ୍ତି ।
ମେଣ୍ଣବାନ୍ଧିବା—ଗ୍ରା. ବି. ଦଳ ବାନ୍ଧିବା, ଦଳବଦ୍ଧହେବା, ଅନେକ ଲୋକ ମିଶି ଷଡ଼ଯନ୍ତ୍ର କରିବା ।
ମେଣ୍ଣଭାଙ୍ଗିବା—ଗ୍ରା. ବି.ମେଳ ଭାଙ୍ଗିବା ।
ମେଣ୍ଣରୁଖସିବା—ଗ୍ରା. ବି. ଦଳରୁ ଅନ୍ତର ହେବା ।
ମେଣ୍ଟା—ଗ୍ରା.ବ. (କେନ୍ଦ୍ରାପଡ଼ା)ବ.ଖୁଣ୍ଟ ।
ମେଣ୍ଟାଇବା—ଗ୍ରା. ବି. (ବାସନା)ନିବୃତ୍ତି କରାଇବା, (ବିବାଦ) ମୀମାଂସା କରାଇବା,(ଆଦେଶ)ଲଙ୍ଘନକରିବା,ଦୋଷ ଖଣ୍ଡନ କରିବା,(ଅପରାଧ)କ୍ଷମାକରିବା,

(ଶ୍ରାନ୍ତ)ଅପନୋଦନ କରିବା,(ଗୁଜୁରାଣ) ନିର୍ବାହ କରିବା, (ଦୁଃଖ) ଦୂରକରିବା, ( ସନ୍ଦେହ ) ଖଣ୍ଡାଇବା, (ଖରବର୍ଷା) କଟାଇବା, (ବାଣ ବା ଶର)ଏଡ଼ିବା ।

ମେଣ୍ଢାମେଣ୍ଢି—ଗ୍ରା.ବି. ମିଟ୍‌ମାଟ୍ ଦେଖ. ଉଲ୍ଲଙ୍ଘନ ।

ମେଣ୍ଟିବା—ଗ୍ରା.କ୍ରି.ମିଟିବା ଦେଖ,ମୀମାଂସିତହେବା, ଦୂରହେବା,ଦୂରକରିବା, ଲଙ୍ଘିବା ।

ମେଣ୍ଢ—ବି. (ମିହ୍ନ+କ.ଅ)ମେଣ୍ଢା ।

ମେଣ୍ଡ୍‌ରି—ପ୍ରା.(ସମ୍ବ)ବି.ଲୁହଆ, ଶଗଡ଼ ଚକର ନାଭିକେନ୍ଦ୍ରରେ ଲାଗିଥିବା ଲୁହାର ବଳୟ, ଉଲୁଆ ।

ମେଣ୍ଠ—ପୁଂ. ବି. ହସ୍ତିପକ ।

ମେଣ୍ଡକା—ପ୍ରା. (ବସ୍ତର)ବି. ବେଙ୍ଗ ।

ମେଣ୍ଡା—ପ୍ରା.(ବସ୍ତର)ବିଂ.ମେଞ୍ଚା, ଜମାଟ୍ ବନ୍ଧା ଗୁଳା । [ ଲେନ୍ଧେଇ

ମେଣ୍ଡିଆ—ପ୍ରା. (ଯାଜ,ବାଲେ)ବି.ଆଖିର

ମେଣ୍ଢ଼—ପୁଂ. ବି. ମେଷ, (ଗ୍ରା.ବି) ତନ୍ତ୍ରୀଙ୍କର ବଂଶୋପାଧି,ଭେଟ, ସମ୍ମୁଖମିଳନ, ପଦାଧାଙ୍କ ବୁଣାର ତନ୍ତ୍ରଦ୍ୱାର ଦ୍ୱାର ପୁନର୍ବାର ହଳକରିବା ।

ମେଣ୍ଢା—ଗ୍ରା.ବି.(ସଂ-ମେଢ୍ର)ମେଷ,ଗାରଡ଼ (ଲ.ଅର୍ଥ)ମେଷପରି ନିର୍ବୋଧ ବ୍ୟକ୍ତି ।

ମେଣ୍ଢାଇବା—ଗ୍ରା. କ୍ରି. ହାବୁଡ଼େଇବା, ଜୁଟେଇବା, ଅନ୍ୟର ଅନିଚ୍ଛା ସତ୍ତ୍ୱେ ଜବରଦସ୍ତି କରି ତାହା ମୁଣ୍ଡରେ କୌଣସି କାର୍ଯ୍ୟ ଲଦାଇ ଦେବା ।

ମେଣ୍ଢାଗୁହାଳେନିଆଁ ଲାଗିବା—ଗ୍ରା.(ପ୍ରବଚନ) ଯେପରି ମେଣ୍ଢା ରହିବା ଘରେ ନିଆଁ ଲାଗିଲେ ମେଣ୍ଢାମାନେ ଉପର୍ଯ୍ୟୁପରି ଅତ୍ୟନ୍ତ ରାବ କରୁଥାଆନ୍ତି ଅଥଚ ବାଟ ଥିଲେ ସୁଦ୍ଧା ପଳାନ୍ତିନାହିଁ ସେହିପରି ବହୁ ଲୋକ ଏକାଠି ରୁଣ୍ଡ ହୋଇ କାହାରି କଥା କେହି ନ ଶୁଣି ଉଚ୍ଚ ସ୍ୱରରେ ଅମୂଳକ କଥାବାର୍ତ୍ତା ହେବା ଦ୍ୱାରା ଉପୁଜିବା ଗୋଳମାଳ ।

ମେଣ୍ଢାମାରି—ପ୍ରା. (ବାଲେ) ବି. ଏକଜାତୀୟ ଶ୍ରେଷ୍ଠ କଣ୍ଟାକାଠୀୟ ଗୁଳ୍ମ ।

ମେଣ୍ଢାଲଢ଼ାଇ—ଗ୍ରା.ବି.ଦୁଇମେଷ ଉଭୟଙ୍କ ମଧ୍ୟରେ ମୁଣ୍ଡ ଦ୍ୱାରା ଆଘାତ କରିବା ରୂପ ଯୁଦ୍ଧ ।

ମେଣ୍ଢାଶିଙ୍ଗା—ପ୍ରା. (ବାମଣ୍ଡା)ବି. ଶିଙ୍ଗା, ଭେଣ୍ଡି, ମହୁରୀ, ମେଣ୍ଢାଶିଙ୍ଗ ଆକୃତିବିଶିଷ୍ଟ ମିଷ୍ଟାନ୍ନ ।

ମେଣ୍ଢାଶିଙ୍ଗାମହୁରୀ—ଗ୍ରା. ବି. ଏକପ୍ରକାର ବିଷାକ୍ତ ମୂଳ ।

ମେଣ୍ଡି—ପ୍ରା. (ସିଂହଭୂମ)ବି. ଭେଣ୍ଡି ।

ମେଣ୍ଢୀ—ଗ୍ରା.ସ୍ତ୍ରୀ.ବି. ମାଈ ମେଣ୍ଢା ।

ମେଣ୍ଢେଇବା—ଗ୍ରା.କ୍ରି.ଜୁଟାଇବା,ହାବୁଡ଼େଇବା, ମୁହଁ ନିକଟକୁ ପହଞ୍ଚାଇବା, ଢୁଙ୍ଗେଇବା ।

ମେଣ୍ଢେଇହେବା—ଗ୍ରା. କ୍ରି. ବିନା ନିମନ୍ତ୍ରଣରେ ବା ଆଦରରେ ଯାଇ ପହଞ୍ଚିବା

ମେତର—ଯା.ବି. ନିକୃଷ୍ଟ ଜାତିବିଶେଷ, ମେହେନ୍ତର, ହାଡ଼ିଜାତି ।

ମେତରାଣୀ—ଯା.ସ୍ତ୍ରୀ.ବି.ମେହେନ୍ତରର ସ୍ତ୍ରୀ, ମେହେନ୍ତରାଣୀ ।

ମେଥ—ସ୍ତ୍ରୀ. ବି. ମେଥିକା, ମେଥୀ ।

ମେଥି(ଥୀ)—ପୁଂ. ବି. (ମେଥ+ଣ.ଇ) ଶିମ୍ବାଦିବର୍ଗର କୃଷିଜାତ ଶାକ,ଖଳାରେ ବଳଦ ବୁଲିବାର ମଧ୍ୟ କାଠ, ମେଢ଼ି ।

ମେଥିକା—ସ୍ତ୍ରୀ. ବି. (ମେଥ+ଣ.ଇକ+ଆ) ଶିମ୍ବାଦିବର୍ଗର କୃଷିଜାତ ଶାକ, ମେଥିଶାକ, ମେଥୀ ।

ମେଥିନା—ସ୍ତ୍ରୀ. ବି. ମେଥିକା ଦେଖ ।

ମେଥିମୁଗ—ଗ୍ରା. ବି. ବନ୍ୟମୁଦ୍ଗ, ଏକପ୍ରକାର ପୀତ ବା ହଳଦିଆ ମୁଗ ।

ମେଥିମୋଦକ—ବି. (ବୈ.ଧା) ମୋଦକ-ଔଷଧବିଶେଷ । [ ଦେଖ ।

ମେଥୀ—ସ୍ତ୍ରୀ. ବି. (ମେଥି+ଈ)ମେଥିକା

ମେଦ(ଦଃ)—ପୁଂ.ବି.(ମିଦ୍+ଣ.ଅ)ମଜ୍ଜା, ଚର୍ବି, ବସା, ହାଡ଼ରସା, ମ୍ଲେଚ୍ଛ ଜାତିବିଶେଷ, ମଞ୍ଜିଷ୍ଠା, ଶରୀରର ୪ର୍ଥ ଧାତୁ, ଅଳଂବୁଷା, ଐରାବତ କୁଳଯାତ ନାଗବିଶେଷ, ମେଦାଦେଖ, କସ୍ତୁରୀ.ମାଳାରହିର ଗ୍ରନ୍ଥୀବିଶେଷ, (ଗ୍ରା.ବି) ପୁଷ୍ଟିକର ଗୋଖାଦ୍ୟ ଔଷଧବିଶେଷ,କୁମ୍ଭୀର ବାଲୁଆ ପ୍ରଭୃତିଙ୍କ ମାଂସରୁ ପ୍ରସ୍ତୁତ ଆମବାତନାଶକ ଔଷଧବିଶେଷ ।

ମେଦଃସାରଃ—ବି. ମେଦା ଦେଖ ।

ମେଦକ—ପୁଂ. ବି. (ମିଦ୍+ଅକ)ଜଗଲ, ସୁରା, ଘନତର ସୁରା । [ ମାଂସ ।

ମେଦକୃତ୍—ବି. (ମେଦ+କୃ+କ୍ୱିପ୍)

ମେଦ(ଦା)ଗ୍ରସ୍ତ—ବିଂ. (ଶତତ୍ରୁ)ସ୍ଥୂଳକାୟ

ମେଦ(ଦୋ)ଜ—ପୁଂ.ବି. (ମେଦ+ଜନ୍+ଅ)ଭୂମିଜ, ଗୁଗ୍ଗୁଲ୍‌, (ବିଂ)ମେଦୋଦ୍ଭବ, ମେଦରୁ ଜାତ ।

ମେଦପାଟ—ପୁଂ. ବି. ରାଜପୁନତାର ମେବାର ରାଜ୍ୟର ସଂସ୍କୃତ ନାମ ।

ମେଦପୁଚ୍ଛ(କ)—ପୁଂ. ବି. (ବ.ଗ୍ରା)ଦୁମ୍ବା ନାମକ ଭେଡ଼ା ।

ମେଦ(ଦୋ)ବର୍ଦ୍ଧକ—ବିଂ. (ବୈଦ୍ୟ) ଯାହା ଶରୀରର ମେଦ ଧାତୁକୁ ବୃଦ୍ଧିକରେ ।

ମେଦ(ଦୋ)ବୃଦ୍ଧି—ବି. (ବୈଦ୍ୟ) ସ୍ଥୂଳକାୟତ୍ୱ ରୋଗବିଶେଷ ।

ମେଦଃସାର—ତ୍ରି. ବିଂ.ମେଦସ୍ୱୀ, ମେଦପ୍ରଧାନ, ଯାହାର ମେଦ ଧାତୁ ପ୍ରବଳ ।

ମେଦସ୍କୃତ୍—କ୍ଲୀ.ବି. (ମେଦସ୍+କୃ+କ୍ୱିପ୍) ମାଂସ ।

ମେଦସ୍ତେଜଃ—କ୍ଲୀ. ବି. ଅସ୍ଥି ।

ମେଦସ୍ୱାନ୍—ପୁଂ. ବିଂ. ମେଦଯୁକ୍ତ ।

ମେଦସ୍ୱୀ—ପୁଂ. ବିଂ. (ମେଦସ୍+ବିନ୍) ମେଦୋମୟ,ସ୍ଥୂଳ,(ସ୍ତ୍ରୀ)ମେଦସ୍ୱିନୀ

ମେଦା—ସ୍ତ୍ରୀ.ବି. (ମେଦ+ଅ+ଆ)ଅଷ୍ଟବର୍ଗ ପ୍ରସିଦ୍ଧ ଔଷଧିବିଶେଷ ।

ମେଦିତ—ବିଂ. (ମିଦ+କ.ତ) ସ୍ନିଗ୍ଧ, ତେଲିଆ ।

ମେଦିନୀ—ସ୍ତ୍ରୀ. ବି. (ମେଦ୍+ଇନ୍+ଈ) ମେଦା, କାଶ୍ମରୀ, ପୃଥିବୀ । [ ପ୍ରଣେତା ।

ମେଦିନୀକର—ପୁଂ.ବି. ମେଦିନୀ କୋଷର

ମେଦିନୀଜ—ପୁଂ.ବି.ଭୂମିଜ, ମଙ୍ଗଳଗ୍ରହ, ମେଦିନୀପୁତ୍ର,(ବିଂ) ପୃଥିବୀଜାତ ମାତ୍ର ।

ମେଦିନୀଦ୍ରବ—ବି. (ବୈଦ୍ୟ) ଧୂଳି ।

ମେଦିନୀପତି—ପୁଂ. ବି. (ବୈଦ୍ୟ)ପୃଥିବୀପତି ।

ମେଦନୀପୁର—ଗ୍ରା.ବି. ଓଡ଼ିଶାର ଉତ୍ତର ଓ ବଙ୍ଗ ପ୍ରଦେଶର ଦକ୍ଷିଣରେ ଥିବା ଜିଲ୍ଲା ଓ ନଗରବିଶେଷ ।

ମେଦବା--ଗ୍ରା. କ୍ରି. ମର୍ଦ୍ଦିବା, ଚକଟିବା, ଏକଯୋଗ କରିବା ।

ମେଦର—ପ୍ରା. (ଗଞ୍ଜାମ)ବି. ନୀଚ ଅସ୍ପୃଶ୍ୟ ଶୂଦ୍ର ଜାତୀୟ ଶିଳ୍ପିବିଶେଷ ।

ମେଦୀ—ପୁଂ.ବିଂ (ମେଦ+ଇନ୍)ମେଦ-ଯୁକ୍ତ ।

ମେଦୁର—ବିଂ. (ମିଦ୍+କ.ଉର)ସ୍ନିଗ୍ଧ, ତେଲିଆ, ମସୃଣ, କୋମଳ, ଉଦ୍ଭଟ, ଉତ୍ତମ, ପୂର୍ଣ୍ଣ,ଶ୍ୟାମବର୍ଣ୍ଣ,(ସ୍ତ୍ରୀ)ମେଦୁରା ।

ମେଦୁରା—ସ୍ତ୍ରୀ.ବି(ମିଦ୍+କ.ଉର+ଆ) କଙ୍କୋଲୀ ନାମକ ଔଷଧି କନ୍ଦ, କ୍ଷୀର-କାଙ୍କୋଲୀ ।

ମେଦୋଜ—ବି.(ମେଦସ୍+ଜନ୍+କ.ଅ) ଅସ୍ଥି , ହାଡ଼ ।

ମେଦୋଧରା—ସ୍ତ୍ରୀ. ବି. ଦେହର ତୃତୀୟ କଳା ଅର୍ଥାତ୍ ମେଦୋଯୁକ୍ତ ଝିଲ୍ଲି ।

ମେଦୋବତୀ—ସ୍ତ୍ରୀ. ବି. ମେଦା ।

ମେଦୋବୃଦ୍ଧି—ସ୍ତ୍ରୀ. ବି.(୬ତତ୍)ଦେହ-ସ୍ଥୌଲ୍ୟ, ଅଣ୍ଡବୃଦ୍ଧି ।

ମେଦ୍ୟ—କ୍ରି.ବିଂ. (ମେଦ+ଯ)ମେଦୋ-ଜନିତ, ମେଦୋଦ୍ଭବ ।

ମେଧ—-ପୁଂ. ବି. (ମେଧ୍+ଅ) ଯଜ୍ଞ. ଯଜ୍ଞହବିଃ, ଘିଅ, ଯଜ୍ଞରେ ବଳି ଦିଆ ଯିବା ପଶୁ, ଯଜ୍ଞରେ ବଧ୍ୟ ପଶୁର ଅବୟବ, ପ୍ରିୟବ୍ରତଙ୍କ ପୁତ୍ର ।

ମେଧଜ—ପୁଂ.ବି. (ମେଧ+ଜନ୍+ଅ) ବିଷ୍ଣୁ ।

ମେଧପତି—ପୁଂ.ବି(୬ତତ୍)ଯଜ୍ଞପାଳକ ।

ମେଧସ୍ୟୁ—କ୍ରି. ବିଂ. ମେଦନୀୟ, ବଳିଷ୍ଠ, ସଂଗ୍ରାମେଚ୍ଛୁ, ଯଜ୍ଞକର୍ମଣେଚ୍ଛୁ ।

ମେଧା—ସ୍ତ୍ରୀ. ବି. (ମେଧ+ଅ+ଆ) ଧାରଣାଶକ୍ତି, ବୁଦ୍ଧି; ମେଧା ବୃଦ୍ଧିକର ଔଷଧ, ଦକ୍ଷପ୍ରଜାପତିଙ୍କ କନ୍ୟାବିଶେଷ ଧନ, ମାତୃକାବିଶେଷ ।

ମେଧାଃ—ବି. ସ୍ୱାୟମ୍ଭୁବମନୁଙ୍କ ପୁତ୍ର ।

ମେଧାକର—ବିଂ. (ମେଧା+କୃ+ଅ) ଯାହା ସ୍ମୃତି ଶକ୍ତି ଜନ୍ମାଏ ବା ବୁଦ୍ଧିକୁ ପ୍ରଖର କରାଏ । [ ଜନକ ।

ମେଧାକାର—ପୁଂ.ବିଂ. ଟୀକାକର୍ତ୍ତା,ମେଧା-

ମେଧାକୃତ୍—କ୍ଲୀ. ବି. ସିତାବର ଶାକ, (ବିଂ) ମେଧାଜନକ, ମେଧାକାରକ ।

ମେଧାଜନକ—କ୍ରି.ବିଂ.ଜ୍ଞାନବର୍ଦ୍ଧକ, ସ୍ମୃତି-ଶକ୍ତିବର୍ଦ୍ଧକ ।

ମେଧାଜିତ୍—ପୁଂ. ବି. (ମେଧା+ଜି+କ୍ୱିପ୍) କାତ୍ୟାୟନ ମୁନି ।

ମେଧାତିଥି—ପୁଂ.ବି. କଣ୍ୱମୁନିଙ୍କର ପିତା, ମନୁସଂହିତାର ପ୍ରଧାନ ଭାଷ୍ୟକାର,ପ୍ରିୟ-ବ୍ରତଙ୍କ ପୁତ୍ର, ସପ୍ତଦଶ ଦ୍ୱାପରଯୁଗର ବ୍ୟାସ ପ୍ରଜାପତି କର୍ଦ୍ଦମଙ୍କ ପୁତ୍ର ।

ମେଧାରୁଦ୍ର—ପୁଂ. ବି. କାଳିଦାସ ।

ମେଧାବାନ୍—ପୁଂ. ବି. (ମେଧା+ବତ୍) ମେଧାବିଶିଷ୍ଟ,ମେଧାବୀ, ସ୍ତ୍ରୀ)ମେଧାବତୀ ।

ମେଧାବତୀ—ସ୍ତ୍ରୀ. ବିଂ. (ମେଧାବତ୍+ଈ) ମେଧାବାନ୍‌ର ସ୍ତ୍ରୀଲିଙ୍ଗ, (ସ୍ତ୍ରୀ.ବି)ମହା ଜ୍ୟୋତିଷ୍ମତୀ ଲତା [ ବୁଦ୍ଧିତା ।

ମେଧାବିତା—ସ୍ତ୍ରୀ.ବି. ମେଧାବିତ୍ୱ,ଚତୁର-

ମେଧାବିନୀ—ସ୍ତ୍ରୀ. ବି. (ମେଧାବିନ୍+ଈ) ବ୍ରହ୍ମାଙ୍କପତ୍ନୀ, ଶାରିକା, (ବିଂ)ମେଧା-ବିଶିଷ୍ଟା ।

ମେଧାବୀ--ପୁଂ.ବି. (ମେଧା+ବିନ୍)କଶ୍ୟପ-ଙ୍କର ଏକପୁତ୍ର, ଚ୍ୟବନଙ୍କର ଏକପୁତ୍ର, ଶୁକପକ୍ଷୀ, ମଦିରା, ବ୍ୟାଡ଼ି (ପୁଂ.ବିଂ) ପଣ୍ଡିତ, ମେଧାବିଶିଷ୍ଟ, ବୁଦ୍ଧିମାନ୍, (ସ୍ତ୍ରୀ) ମେଧାବିନୀ । [ ଅଭିବ ।

ମେଧାଭିବ—ବି. (୬ତତ୍) ବୁଦ୍ଧି ଶକ୍ତିର

ମେଧି—ପୁଂ.ବି. (ମେଧ+ଇ) ସ୍ତମ୍ଭପାଦର ଅଂଶବିଶେଷ, ମେଥି, ମେଢ଼ି ଦେଖ ।

ମେଧିର—ପୁଂ. ବିଂ. (ମେଧା+ଇର) ମେଧାବୀ, ଯଜ୍ଞବାନ୍, ହବିଷ୍ମାନ୍, (ସ୍ତ୍ରୀ) ମେଧିରା । [ ମେଧିଷ୍ଠା ।

ମେଧିଷ୍ଠ—ପୁଂ.ବିଂ.ଅତିଶୟ ମେଧାବୀ,(ସ୍ତ୍ରୀ)

ମେଧୀ—ପୁଂ. ବିଂ. (ମେଧା+ଇନ୍)ଅବ-ଲମ୍ବନ ବା ଦଙ୍ଗକାଠି, (ସ୍ତ୍ରୀ)ମେଧିନୀ ।

ମେଧୀୟାନ୍—ପୁଂ. ବିଂ.(ମେଧା+ଈୟସ୍) ଅତିଶୟ ମେଧାଯୁକ୍ତ, (ସ୍ତ୍ରୀ) ମେଧୀୟସୀ ।

ମେଧ୍ୟ—କ୍ରି. ବିଂ. (ମେଧ+ଯ) ଶୋଧିତ, ଯଜ୍ଞୀୟ, ଯଜ୍ଞର ଉପଯୁକ୍ତ, ପବିତ୍ର, ଶୁଚି, (ମେଧା+ଯ)ମେଧାଜନକ, (ସ୍ତ୍ରୀ) ମେଧ୍ୟା, (ବି) ଯବ, ଖଦିର, ଛାଗ ।

ମେଧ୍ୟା—ସ୍ତ୍ରୀ. ବି. (ମେଧ+ଆ)ରକ୍ତବର୍ଣ୍ଣ, ରୋଚନା, କେତକୀ, ଜ୍ୟୋତିଷ୍ମତୀଲତା, ଶଙ୍ଖପୁଷ୍ପୀ, ବ୍ରାହ୍ମୀ, ଶ୍ୱେତବର୍ଣ୍ଣ, ଶମୀ, ମଣ୍ଡୂକୀ, ଗୋରୋଚନା, ଶର୍କରା, ଇକ୍ଷୁ, ଅପରାଜିତା, ନଦୀବିଶେଷ, ମଞ୍ଜିଷ୍ଠା, ନାଡ଼ୀବିଶେଷ ।

ମେନକା—ସ୍ତ୍ରୀ. ବି. (ମେ+ନ+କ+ଆ) ଅପ୍ସରୋଭେଦ, ସ୍ୱର୍ଗବେଶ୍ୟା, ଉମାଙ୍କ ମାତା, ହିମାଳୟଙ୍କ ପତ୍ନୀ, ଶକୁନ୍ତଳାଙ୍କ ମାତା । [ ନ୍ତଳା ।

ମେନକାତ୍ମଜା-ସ୍ତ୍ରୀ.ବି.(୬ତତ୍) ଦୁର୍ଗା, ଶକୁ-

ମେନକାପ୍ରାଣେଶ—ପୁଂ. ବି. ହିମାଳୟ ।

ମେନା—ସ୍ତ୍ରୀ. ବି. ମେନକା,ପିତୃମାନଙ୍କର ମାନସୀ କନ୍ୟା,ବାକ୍,ନଦୀବିଶେଷ,ସ୍ତ୍ରୀ ।

ମେନାକା—ସ୍ତ୍ରୀ. ବି. (ମେନା+ଜନ୍+କ.ଅ+ଆ) ପାର୍ବତୀ, ଦୁର୍ଗା ।

ମେନାଦ—ପୁଂ. ବି. ( ବି.ସ୍ତ୍ରୀ ) ବିଡ଼ାଳ, ଛାଗ, ମୟୂର । [ ଗିରିରାଜ ।

ମେନାଧବ—ପୁଂ. ବି. (୬ତତ୍)ହିମାଳୟ,

ମେନି—ପୁଂ. ବି. ଆୟୁଧବିଶେଷ, ବଜ୍ର, ବାଗ୍‌ବଜ୍ର, ଶକ୍ତି ।

ମେନିଲା—ସ୍ତ୍ରୀ. ବି. ରାଜକନ୍ୟାବିଶେଷ ।

ମେନୁଲ—ପୁଂ.ବି. ଗୋତ୍ରପ୍ରବର୍ତ୍ତିକ ଋଷି-ବିଶେଷ ।

ମେନ୍ଥୁତ—ଗ୍ରା. ବିଂ.(ସଂ-ମନ୍ଥର) ଯେ କଳି ଲଗାଏ, ମନ୍ଦପରାମର୍ଶଦାତା ।

ମେନ୍ଧ(ଢ଼ି)—ଗ୍ରା. ବି. ମେନ୍ଧକା ଦେଖ ।

ମେନ୍ଧକା—ସ୍ତ୍ରୀ. ବି. (ମା+ଇନ୍ଧ+ଣ: ଅକ+ଆ)କ୍ଷୁପବିଶେଷ,ମେହେନ୍ଦି,ମଞ୍ଜିଷ୍ଠା

ମେନ୍ଧୀ—ସ୍ତ୍ରୀ. ବି. ମେନ୍ଧକା ଦେଖ ।

ମେବସ୍ତ୍ର—ଗ୍ରା. (ପ୍ରାଚୀନ) ବି. ବୃହତ୍ ସଂଖ୍ୟାବିଶେଷ, ଅର୍ବୁଦ ସଂଖ୍ୟା ।

ମେବା—ଯା. ବି. ମେଉଆ ଦେଖ ।

ମେବାଖାନା—ଯା.ବି.ଫଳର ଦୋକାନ, ଯେଉଁଠାରେ ଫଳ ରକ୍ଷିତ ହୁଏ ।

ମେବାଜାତ—ଯା. ବ. ଫଳସମୂହ ।
ମେମ୍—ଯା. ବ. ୟୁରୋପୀୟ ମହିଳା, ବିବି, ତାସ୍‌ଖେଳରେ ମେମ୍‌ଚିହ୍ନଯୁକ୍ତ ୧୨ ସଂଖ୍ୟକ ତାସ ।
ମେମ୍‌ସାହେବ୍—ଯା.ବ.ମେମ୍ ଓ ସାହେବ, ୟୁରୋପୀୟ ଭଦ୍ରମହିଳା ।
ମେମନ୍—ଯା. ବ. ମୈମନ୍, ଭାରତର ବମ୍ବେଉପକୂଳବାସୀ ମୁସଲମାନ ଜାତିବିଶେଷ ।
ମେମିଷ—ବ. ପଲକଶୂନ୍ୟ ଦୃଷ୍ଟି ।
ମେମୋ—ଯା. ବ. ସ୍ମାରକଲିପି ।
ମେମୋରଣ୍ଡମ୍—ଯା. ବ. ସ୍ମାରକପତ୍ର, ସ୍ମାରକଲିପି ।
ମେମୋରିଅଲ—ଯା.ବ. ସର୍ବୋଚ୍ଚ କର୍ତ୍ତୃପକ୍ଷଙ୍କ ପଠାଯିବା ଆପତ୍ତି ପତ୍ର ।
ମେୟ—ବି. ବଂ. (ମା+ମି.ଯ) ପରିମାଣାର୍ହ, ପରିମାଣଯୋଗ୍ୟ,ଯାହା ମାପ କରାଯିବ । [ ସ୍ତ୍ରୀଲିଙ୍ଗ ।
ମେୟା—ସ୍ତ୍ରୀ.ବଂ. (ମେୟ+ଆ)ମେୟର
ମେୟାନା—ଯା. ବ. ମଧ୍ୟବର୍ତ୍ତୀ, ପଲ୍ଲୀବିଶେଷ । [ ବଡ଼ଲାଟ ।
ମେୟୋ—ସ୍ତ୍ରୀ.ବ. ଭାରତବର୍ଷର ଜନୈକ
ମେରଦା—ଗ୍ରା. ବ. ଚଞ୍ଚାମ ଓ ଆଠଗଡ଼ ଜମିଦାରର ପଥୁର ନାମକ ସ୍ଥାନରେ ଚନ୍ଦ୍ରଗୋଟି ବଡ଼ ଖମ୍ବ ଉପରେ ପ୍ରତିଷ୍ଠିତ ମନ୍ଦିର ।
ମେର—ଯା. ବ. ମୋର, ମୋହର ।
ମେରଆ—ଗ୍ରା. ବ. ନରବଳି, କନ୍ଧମାନେ ଦେବା ନରବଳି । [ ଧନ ।
ମେରାଜାନ୍—ଯା. ଅ. ହେ ! ମୋ ଜୀବ-
ମେରୁ—ପୁଂ.ବ. (ମି+କ.ରୁ)ହିମାଳୟ ଭୂମଣ୍ଡଳର ଉତ୍ତର ଓ ଦକ୍ଷିଣପ୍ରାନ୍ତ, ଜପମାଳାର ଅଗ୍ରବର୍ତ୍ତିନୀ ଗୋଟିଏ ମାଳୀ, ମେରୁହାଡ଼, ଙ୍ଗୁଷ୍ଠାଦର ମୁଷ୍ଟିପ୍ରଦେଶ, କରମାଳାର ଅଙ୍ଗୁଳି ପର୍ବବିଶେଷ,ହାରର ମଧ୍ୟମଣି, ( ଗ୍ରା.ବ ) ପଣାସଂକ୍ରାନ୍ତିଦନ ଦଣ୍ଡଯାତ୍ରା ସମାପ୍ତିର ଉତ୍ସବବିଶେଷ, (ଗ୍ରା.ବଂ) ଅତିବଡ଼, ପ୍ରକାଣ୍ଡ ।
ମେରୁକ—ପୁଂ. ବ. (ମେରୁ+କ) ଯକ୍ଷଧୂପ, ଝୁଣା ।
ମେରୁକଳ୍ପ—ପୁଂ. ବ. ବୁଦ୍ଧବିଶେଷ ।
ମେରୁକୂଟ—ପୁଂ. ବ. ମେରୁ, ପର୍ବତର ଶୃଙ୍ଗ । [ ଗ୍ରନ୍ଥି ।
ମେରୁଗ୍ରନ୍ଥି—ପୁଂ. ବ. ମୂତ୍ରାଶୟ, ମୂତ୍ର-
ମେରୁତେଜଃ—ବ. ଗନ୍ଧର୍ବପୁର ।
ମେରୁଦଣ୍ଡ—ଭୂଗୋଳ ମଧ୍ୟରେ ଉଭୟ କେନ୍ଦ୍ର ବଲମ୍ବିତ କାଳ୍ପନିକ ସରଳରେଖା, ପିଠି ମଧ୍ୟରେ ଥିବା ମଝିହାଡ଼ ବା ଶିରଦାଣ୍ଡି, ( ଲ.ଅର୍ଥ ) କୌଣସି ବସ୍ତୁର ସାରାଂଶ ।
ମେରୁଦଣ୍ଡାଧଃ—ବ.ପୃଷ୍ଠବଂଶର ନିମ୍ନଭାଗ
ମେରୁଦଣ୍ଡୀ—ବଂ. ଯେଉଁ ପ୍ରାଣୀଙ୍କର ମେରୁଦଣ୍ଡ ଅଛି ।
ମେରୁଦୁହିତା—ସ୍ତ୍ରୀ.ବ.ମେରୁକନ୍ୟା,ଦୁର୍ଗା. ପାର୍ବତୀ ।
ମେରୁଦୃଶ୍ୱା—ପୁଂ.ବଂ.ମେରୁଦର୍ଶନକାରୀ ।
ମେରୁଧାମା—ପୁଂ. ବ. (ବ.ବ୍ରୀ) ଶିବ, (ବଂ) ମେରୁବାସୀ ମାତ୍ର ।
ମେରୁନନ୍ଦ—ପୁଂ. ବ. ସ୍ୱାରୋଚିଷମନୁଙ୍କ ପୁତ୍ର । [ ପର୍ବତ ।
ମେରୁପର୍ବତ—ବ. ପୁରାଣୋକ୍ତ ସୁମେରୁ
ମେରୁପୁତ୍ରୀ—ସ୍ତ୍ରୀ. ବ. ମେରୁକନ୍ୟା,ଦୁର୍ଗା ।
ମେରୁପୃଷ୍ଠ—କ୍ଲୀ.ବ.ମେରୁଶିଖର,ଆକାଶ, ସ୍ୱର୍ଗ, (ପୁଂ.ବ) ଋଷିବିଶେଷ ।
ମେରୁପ୍ରଭ—ପୁଂ. ବଂ. (ବ.ବ୍ରୀ) ମେରୁବତ୍ ପ୍ରଭାସମ୍ପନ୍ନ । [ ବିଶେଷ ।
ମେରୁବଳପ୍ରମର୍ଦ୍ଦୀ—ପୁଂ. ବ. ଯକ୍ଷରାଜ-
ମେରୁମନ୍ଦର—ପୁଂ. ବ. ପର୍ବତଭେଦ ।
ମେରୁମତୀ—ସହ୍ୟାଦ୍ରିପାଦ ପ୍ରବାହିତ ନଦୀଭେଦ । [ ମାଳ ।
ମେରୁମାଳ—ଗ୍ରା. ବ. ଜପମାଳାର ମଧ୍ୟ-
ମେରୁମୂଳ—କ୍ଲୀ.ବ.ମେରୁସାନୁ,ମେଡ଼ିମୂଳ
ମେରୁଯନ୍ତ୍ର—କ୍ଲୀ. ବ. ଗାଣିତୋକ୍ତ ଚରଖାର ତୁଲ୍ୟ ଆକୃତି ଚକ୍ରଭେଦ, ଚରଖା ଅରଟ । [ ସ୍ୱର୍ଗ ।
ମେରୁଶିଖର—ବ.ମେରୁ,ପର୍ବତର ଶୃଙ୍ଗ,
ମେରୁଶିଖରକୁମାରଭୂତ୍—ପୁଂ. ବ. ବୋଧିସତ୍ତ୍ୱଭେଦ ।
ମେରୁଶ୍ରୀଗର୍ଭ—ପୁଂ.ବ. ବୋଧିସତ୍ତ୍ୱଭେଦ ।
ମେରୁସାବର୍ଣ୍ଣ—ପୁଂ. ବ. ଏକାଦଶମନୁ, (ମତାନ୍ତରେ) ଚତୁର୍ଦ୍ଦଶମନୁ ।
ମେରୁହାଡ଼—ଗ୍ରା. ବ. ପୃଷ୍ଠବଂଶ, ବେଣ୍ଟ-ଶିରହାଡ଼ ।
ମେର୍ଢା—ଯା. ବ. ମାଟିଆଦର ଉଚ୍ଚସ୍ତୂପ, (ପା. ଗଞ୍ଜାମ ବ). ଆଣ୍ଠୁ ।
ମେର୍ବାଦ୍ରିକର୍ଣ୍ଣିକା—ସ୍ତ୍ରୀ. ବ. ପୃଥିବୀ ।
ମେଲ୍—ଯା.ବ.ଚିଠିପତ୍ରାଦି ବୋହିବାର ଡାକ, ଡାକ ବୁହାଯିବା ରେଲଗାଡ଼ି ।
ମେଲ୍‌ଗ୍ରୁ—ପ୍ରା. (ସମ୍ବ) ବ ଛେଳିଛୁଆ, (ଖୋଡ଼ାଆଳ) ଖାସୀଛେଳି ।
ମେଳ—ପୁଂ. ବ. (ମିଲ୍+ଅ) ମିଳନ, ଐକ୍ୟ,ସଙ୍ଗ, ରାଢ଼ୀୟବ୍ରାହ୍ମଣମାନଙ୍କର କୁଳସମ୍ବନ୍ଧ, ( ଗ୍ରା.ବ ) ଲୋକସମାଗମ, ଦଳ,ସୌହାର୍ଦ୍ଦ୍ୟ,ମନର,ମିଳନ,ବିକ୍ରୋହ ସୁସଜ୍ଜିତ ଦ୍ରବ୍ୟସମୂହ, ସହବାସ, ନମୁନା ବା ଆଦର୍ଶ ପରି ଅନ୍ୟ ବସ୍ତୁ, (ଗ୍ରା.ବଂ) ଯୁକ୍ତ, ମିଳିତ ।
ମେଳକ—ପୁଂ.ବ.(ମିଲ୍+ଭା.କ)ସଙ୍ଗ, ସହବାସ, ସମୂହ, ମିଳନ, ମେଳା, ଜନସମାଗମ,ସ୍ତ୍ରୀ ପୁରୁଷଙ୍କର ବିବାହରେ ଗୁଣାଦି ମିଳିବା କରଣ,ବଂ.(ମିଲ୍+ଣିଚ୍ +ଅକ)ଯେ ଦୁଇଜଣକୁ ମିଳିତ କରାଏ, ଯୋଜକ ।
ମେଳକରିବା—ଗ୍ରା.କ୍ରି. ଦୁଇଜଣଙ୍କୁ ମିଳିତ କରାଇବା, ମିଳାଇବା, ମିଶାଇବା, ମିଳିବା ।
ମେଳକଲବଣ—କ୍ଲୀ. ବ.ଔଷଧ ଲବଣ ।
ମେଳଖାଇବା—ଗ୍ରା. କ୍ରି. ଏକହେବା,ସମ୍ପୃକ୍ତ ହେବା । [ କରାଇବା ।
ମେଳଖୋଇବା—ଗ୍ରା.ବ. ମିଳାଇବା, ମେଳ
ମେଳଗିରୀ—ମାନ୍ଦ୍ରାଜପ୍ରଦେଶର ସାଲେମ ଜିଲ୍ଲାର ଅନ୍ତର୍ଗତ ଗୋଟିଏ ଶୈଳଶ୍ରେଣୀ ।
ମେଳଣ—ଗ୍ରା. ବ. ମେଳନ ଦେଖ ।
ମେଳନ—କ୍ଲୀ. ବ. ( ମିଲ+ଭା.ଅନ ) ମିଳନ, ଏକତ୍ରହେବା, ସାକ୍ଷାତ୍କାର, ସହବାସ, ସଭା. ମନର ମେଳ ।
ମେଳନ—ଗ୍ରା.ବ. ଯାତ୍ରା ବା ପର୍ବ ଉପ-

ଲକ୍ଷ୍ୟରେ ଅନେକଗୁଡ଼ିଏ ଦେବପ୍ରତିମାକୁ ଏକସ୍ଥାନରେ ସମବେତ କରାଇବା ଉତ୍ସବ ।

ମେଲବାନ୍ଧିବା—ଗ୍ରା. କ୍ରି. ଦଳଗଠନ କରିବା, ଦଳବଦ୍ଧ ହେବା ।

ମେଲଭଙ୍ଗିବା—ଗ୍ରା. କ୍ରି. ଗଠିତ ଦଳ ବା ମେଳକୁ ଇତସ୍ତତଃ କରିଦେବା ।

ମେଲମାଳ—ଗ୍ରା. ବି. ବିବାଦ ପରେ ସୌହାର୍ଦ୍ଦ୍ୟ ସ୍ଥାପନ, ମନର ମେଳ ।

ମେଲରେ—ଗ୍ରା. କ୍ରି. ବିଂ. ସମୂହ ମଧ୍ୟରେ ।

ମେଲା—ସ୍ତ୍ରୀ. ବି. ( ମେଲ+ଅ+ଆ ) ମେଳକ, ମସୀ, କାଳି, ଅଞ୍ଜନ, କଜ୍ଜଳ, ମହାନୀଳୀ ।

ମେଳା—ଗ୍ରା. ବି. ମହୋତ୍ସବ, ଯାତ୍ରା, ସମାଜ, ସଭା. ହାଟ, ବହୁ ବସ୍ତୁର ମିଳନ ତୀର୍ଥାଦି ସ୍ଥଳରେ ବହୁ ଲୋକର ସମାଗମ, (ଗ୍ରା. ବିଂ) ବହୁ ଜନପୂର୍ଣ୍ଣ, ଅସଂଖ୍ୟ ବହୁ ପଶୁପକ୍ଷୀରେ ପୂର୍ଣ୍ଣ ।

ମେଲ୍—ଗ୍ରା. ବିଂ. ଖୋଲା, ଅନାବୃତ, ପ୍ରଶସ୍ତ, ଅନାବଦ୍ଧ ।

ମେଲା(ଲେ)ଇବା-ଗ୍ରା. କ୍ରି. ମେଲ କରିବା, ମେଲିବାର ଣିଜନ୍ତରୂପ ।

ମେଳାକରିବା-ଗ୍ରା. କ୍ରି. ମହୋତ୍ସବ କରିବା

ମେଲକରିବା—ଗ୍ରା. କ୍ରି. ଉନ୍ମୁକ୍ତ କରିବା, ଅନାବୃତ କରିବା ।

ମେଲଘର—ଗ୍ରା. ବି. କାନ୍ଥ ନ ଥିବା ଘର, ଦ୍ୱାର ବନ୍ଦହୋଇନଥିବା ଘର ।

ମେଲଙ୍କ—ଗ୍ରା. ବି. ଏକ ସଂଖ୍ୟାରୁ ଆରମ୍ଭ କରି ତତ୍ପରବର୍ତ୍ତୀ ରାଶିମାନ କ୍ରମଶଃ ଯୋଗ କରିବା ପ୍ରଣାଳୀ, (ଓଡ଼ାଙ୍କ)ରେ ଯେଉଁ ରାଶି ସର୍ବ ଶେଷରେ ଯୋଗ କରାଯାଇଥାଏ ।

ମେଲଣି—ଗ୍ରା. ବି. ବନ୍ଧୁ ଭାବରେ ଦୁଇଜଣଙ୍କର ଶେଷ ମିଳନ ପରେ ବିଦାୟ ଗ୍ରହଣ, ବିଦାୟକାଳୀନ ଉପହାର ।

ମେଲନନ୍ଦା—ସ୍ତ୍ରୀ. ବି. ମସ୍ୟାଧାର, ଦୁଆତ ।

ମେଲାନ୍ଧୁ—ସ୍ତ୍ରୀ. ବି. ମସ୍ୟାଧାର, ଦୁଆତ ।

ମେଲାପ—ଗ୍ରା. ବି. ମେଳ, ମିଳାମିଶା, ସଦାଳାପ, (ସଂ-ବି)ମେଲାପକ ଦେଖ ।

ମେଳାପକ-ପୁଂ. ବି. ସମ୍ମିଳନ, ଗ୍ରହାଦିର ସଂଯୋଗ, ଗୋଷ୍ଠୀ, ସମୂହ, ଜନତା ।

ମେଲାପହ୍ନପଟ—ଗ୍ରା. ବି. ଗୃହଆଡ଼େ ଖୋଲା ଓ ପବନଯୁକ୍ତ ସ୍ଥାନ ।

ମେଲାପୀ—ଗ୍ରା. ବିଂ. ମିଶାଣିଆ(ଲୋକ), ଯେ ଅନ୍ୟ ସଙ୍ଗେ ସଦାଳାପ କରିବାପାଇଁ ସର୍ବଦା ପ୍ରସ୍ତୁତ ।

ମେଲାମଉତ୍ସବ—ଗ୍ରା. ବି. ପ୍ରୀତିଭୋଜ, ବନ୍ଧୁ ବାନ୍ଧବଙ୍କ ସହିତ ମିଳନ ଓ ମଉଜ ।

ମେଲାମନ୍ଦା—ସ୍ତ୍ରୀ. ବି. ମସ୍ୟାଧାର, ଦୁଆତ

ମେଲମୁହାଁଣିଆଁ—ଗ୍ରା. ବିଂ. ଯାହାର ମୁହଁ ମେଲା ହୋଇଥାଏ, ଭଙ୍ଗା ଦଦରା (ଗୃହାଦି) ।

ମେଳାମ୍ବୁ—ସ୍ତ୍ରୀ. ବି. ମସ୍ୟାଧାର, ଦୁଆତ ।

ମେଲାୟନ—କ୍ଲୀ. ବି. ସମ୍ମିଳନ ।

ମେଳି—ଗ୍ରା. ବି. କୁମନ୍ତ୍ରଣା, ଚକ୍ରାନ୍ତ, ଷଡ଼ଯନ୍ତ୍ରପୂର୍ବକ ରାଜା ବା ପ୍ରଭୁଙ୍କ ବିରୁଦ୍ଧରେ ଦଳଗଠନ, ବିଦ୍ରୋହ, ଗୋଳମାଳ ଲୋକଗହଳି । [ ବିଦ୍ରୋହୀ ।

ମେଳିଆ—ଗ୍ରା. ପୁଂ. ବିଂ. ଷଡ଼ଯନ୍ତ୍ରକାରୀ,

ମେଳିକରିବା—ଗ୍ରା. କ୍ରି. ବିଦ୍ରୋହପାଇଁ ଷଡ଼ଯନ୍ତ୍ର କରିବା ।

ମେଳିକା—ଗ୍ରା. ବି. ସମୂହ ।

ମେଳିଭଙ୍ଗିବା—ଗ୍ରା. କ୍ରି. ବିଦ୍ରୋହ ଦମନ କରିବା, ଜନତାକୁ ଛିନ୍ନଛନ୍ନ କରାଇବା ।

ମେଲିବା—ଗ୍ରା. କ୍ରି. ମେଲା କରିବା, ମେଲାଇବା, ଉନ୍ମୁକ୍ତ କରିବା, ବିସ୍ତାରିତ କରିବା, ମିଶାଇବା, ପାଣିରେ ଭସାଇଦେବା, ପ୍ରସାରିତ କରିବା, ଖୋଲିବା, ବର୍ଜିତ କରିବା । [ ସାଥିରେ ।

ମେଳେ—ଗ୍ରା. କ୍ରି. ବିଂ. ସଙ୍ଗରେ, ସହିତ,

ମେଲେରିଆ—ଗ୍ରା. ବି. ଦୂଷିତ ଜଳବାୟୁଜନିତ ଦୁଷ୍ଟିକାସ୍ତ୍ୟ ଜ୍ୱରବିଶେଷ ।

ମେସ୍—ଯା. ବି. ଗୃହାଦି ସମ୍ପର୍କଶୂନ୍ୟ ଅଥଚ ଏକବୃତ୍ତି ଅବଲମ୍ବନକାରୀ କେତେକ ଲୋକ ଯେଉଁ ସ୍ଥାନରେ ଏକାନ୍ନ ହୋଇ ଏକତ୍ର ରହନ୍ତି ବା ରହିବାର ବ୍ୟବସ୍ଥା ।

ମେଶିକା—ସ୍ତ୍ରୀ. ବି. ମଞ୍ଜିଷ୍ଠାବିଶେଷ ।

ମେଶୀ—ସ୍ତ୍ରୀ. ବି. ଜଳ ।

ମେଶୋପଟମିଆଁ—ଗ୍ରା. ବି. ଆସିଆଟିକ୍ ତୁରସ୍କର ପ୍ରଦେଶବିଶେଷ ।

ମେଷ—ପୁଂ. ବି. (ମିଷ+କ.ଅ) ଭେଡ଼ା, ମେଣ୍ଢା, ଜ୍ୟୋତିଷୋକ୍ତ ପ୍ରଥମ ରାଶି, ମେଷ ଲଗ୍ନ, ଚକ୍ରମର୍ଦ୍ଦ ଗଛ, ଔଷଧବିଶେଷ, ନୈଗମେଷ ଗ୍ରହ ଏରକ, ଜୀବଶାକ, ସୌର ବୈଶାଖମାସ ।

ମେଷକ—ପୁଂ. ବି. ମେଷ, ଜୀବଶାକ ।

ମେଷକମ୍ବଳ—ପୁଂ. ବି. ମେଷ ଲୋମନିର୍ମିତ ଶୀତବସ୍ତ୍ର ।

ମେଷକୁସୁମ-ପୁଂ. ବି. ଚକ୍ରମର୍ଦ୍ଦ, ଗୁଳୁଞ୍ଚା ଗଛ

ମେଷଘୋଷ—ବି. ଜନତା, ଭିଡ଼, ଜନତାରୁ ଉଠିବା ଶବ୍ଦ ।

ମେଷପାଳ-ପୁଂ. ବି. ମେଷପାଳକ, ମେଣ୍ଢା ରଖୁଆଳ, ମେଣ୍ଢାପଲ ।

ମେଷପାଳକ—ପୁଂ. ବିଂ. ମେଣ୍ଢା ଜଗୁଆଳି, (ସ୍ତ୍ରୀ) ମେଷପାଳିକା ।

ମେଷପୁଷ୍ପା-ସ୍ତ୍ରୀ. ବି. ମେଷଶୃଙ୍ଗୀ, ମେଣ୍ଢାଶିଙ୍ଗା

ମେଷମାଂସ—କ୍ଲୀ. ବି. ଭେଡ଼ାର ମାଂସ ।

ମେଷଯୁଦ୍ଧ—ବି. ଶବ୍ଦାଲଙ୍କାରବିଶେଷ ।

ମେଷଲୋଚନ-ପୁଂ. ବି. ଚକ୍ରମର୍ଦ୍ଦ, ଗୁଳୁଞ୍ଚାଗଛ, (ବିଂ) ମେଷ ଚକ୍ଷୁପରି ଯାହାର ଚକ୍ଷୁ ।

ମେଷବଲ୍ଲୀ—ସ୍ତ୍ରୀ. ବି. ଅଜଶୃଙ୍ଗୀ, ଏକପ୍ରକାର କଣ୍ଟକୀ ଲତା ଓ ଏହାର ଫଳ ।

ମେଷବାହନ—ପୁଂ. ବି. (ବ. ବ୍ରୀ) ଅଗ୍ନି ।

ମେଷବାହ୍ୟ—ପୁଂ. ବିଂ. ମେଷାରୋହୀ, (ସ୍ତ୍ରୀ) ମେଷବାହନୀ, ସ୍କନ୍ଦାନୁଚରୀ ମାତୃଭେଦ ।

ମେଷବିଷାଣିକା—ସ୍ତ୍ରୀ. ବି. ମେଷବଲ୍ଲୀ ଦେଖ ।

ମେଷଶୃଙ୍ଗ—ପୁଂ. ବି. ମେଣ୍ଢାଶିଙ୍ଗା ମହୁଲ, ସ୍ଥାବରବିଷଭେଦ, (କ୍ଲୀ ବି)ମେଣ୍ଢାର ଶିଙ୍ଗ

ମେଷଶୃଙ୍ଗୀ—ସ୍ତ୍ରୀ. ବି. (ମେଷଶୃଙ୍ଗ + ଈ) ଅଜଶୃଙ୍ଗୀ, ମେଷବଲ୍ଲୀ ଦେଖ ।

ମେଷସଂକ୍ରମଣ—ବି. ବୈଶାଖ ସଂକ୍ରାନ୍ତି, ପଣାସଂକ୍ରାନ୍ତି ।

ମେଷହୃତ୍—ପୁଂ. ବି. ଗରୁଡ଼ଙ୍କ ପୁତ୍ର ।

ମେଷା—ସ୍ତ୍ରୀ. ବି. (ମେଷ+ମି.ଅ + ଆ)

ଗୁଳବାଡ, ଶ୍ରେଷ୍ଠ ଅଳାଇଚ ।
ମେଷାକ୍ଷିକୁସୁମ—ପୁଂ.ବ. (ବ.ଗ୍ରା) ଚକ୍ର-ମର୍ଦ୍ଦ, ଗୃକୁଣ୍ଡା ।
ମେଷାଖ୍ୟ—ପୁଂ. ବ. ବାଲଗ୍ରହବିଶେଷ, ନୈବାମେଷ ଗ୍ରହ ।
ମେଷାଣ୍ଡ—ପୁଂ.ବ.(ବ.ଗ୍ରା) ଇନ୍ଦ୍ର,ଦେବ-ରାଜ, (ଵତନ୍ତ୍ର) ମେଣ୍ଢାର ଅଣ୍ଡକୋଷ ।
ମେଷାନ୍ତ୍ରୀ—ସ୍ତ୍ରୀ ବ. ଅଜାନ୍ତ୍ରୀ ଲତା ।
ମେଷାଳୁ—ପୁଂ.ବ. ବର୍ବରବୃକ୍ଷ ।
ମେଷାହ୍ୱୟ—ପୁଂ.ବ. (ବ.ଗ୍ରା)ଚକ୍ରମର୍ଦ୍ଦ, ଗୃକୁଣ୍ଡା ।
ମେଷିକା—ସ୍ତ୍ରୀ. ବ. (ମେଷୀ+କ+ଆ) ମେଷୀ, ମାଇମେଣ୍ଢା, ମୂତ୍ରରୋଗବିଶେଷ, ମୂତ୍ର ।
ମେଷୀ-ସ୍ତ୍ରୀ.ବ. (ମେଷ+ଈ) ଢଳଣବୃକ୍ଷ, କାଞ୍ଚଣଗଛ, ଜଟାମାଂସୀ, ମେଷ ସ୍ତ୍ରୀ-ଜାତି, ମେଣ୍ଢୀ ।
ମେଷୂରଣ—କ୍ଲୀ. ବ. (ଜ୍ୟୋତିଷ)ଦଶମ ଲଗ୍ନ, କର୍ମସ୍ଥାନ ।
ମେସ୍‌ମେରିଜମ୍-ଯା.ବ.ଆଧୁନିକ ପାଶ୍ଚାତ୍ୟ ପ୍ରକ୍ରିୟାଦ୍ୱାରା ମନୁଷ୍ୟକୁ ହତଚେତନ କରିବା ।
ମେହ—ପୁଂ.ବ. ( ମିହ+ଅ ) ପ୍ରମେହ ରୋଗ, ମେଷ, ମେଣ୍ଢା, ପ୍ରସ୍ରାବ, ମୂତ୍ର ।
ମେହଘ୍ନୀ—ସ୍ତ୍ରୀ. ବ. (ମେହ+ହନ୍+ଅ +ଈ) ହରିଦ୍ରା, ହଳଦୀ ।
ମେହନ—କ୍ଲୀ.ବ.(ମିହ+ଅନ) ମେଢ୍ର, ଶିଶ୍ନ, ଲିଙ୍ଗ, ମୂତ୍ର, ମୂତ୍ରୋତ୍ସର୍ଗ, ମୁଷ୍କକ-ବୃକ୍ଷ, ଘଣ୍ଟା ପାଟଳିଗଛ ।
ମେହନତ—ଯା. ବ. ପରିଶ୍ରମ, ମିହନ୍ତ ।
ମେହନତି—ଯା. ବ. ପାରିଶ୍ରମିକ, (ବିଂ) ପରିଶ୍ରମୀ ।
ମେହନା—ସ୍ତ୍ରୀ.ବ. ମହିଳା ।
ମେହର—ଗ୍ରା. ବ. ଅଗ୍ରା ନିବାସୀ ଜଣେ ମୁସଲମାନ ଜାତି ।
ମେହୀ—ପୁଂ.ବିଂ. (ମେହ+ଇନ୍)ମେହ-ରୋଗୀ, (ସ୍ତ୍ରୀ) ମେହିନୀ
ମେହ୍ଲୁଣ୍ଡି—ପ୍ରା,(ବାଙ୍କି)ବ. ଧୀପଦଣ୍ଡି ।
ମେହୁ—ଗ୍ରା.ବ, ମେଘ ।

ମେହେଙ୍ଗା—ଗ୍ରା. ବିଂ. ଅତିଡେଙ୍ଗା ଓ ଶୀର୍ଣ୍ଣ, (ବି)ଏକପ୍ରକାର ବନ୍ୟ କୋଳିଗଛ
ମେହେନା—ଯା.ବ. ତାମଜାନ୍, ଏକ-ପ୍ରକାର ପାଲଙ୍କି ।
ମେହେନ୍ଦ୍ର—ଗ୍ରା.ବ. ମଞ୍ଜୁଆତି, ହେନା ।
ମେହେନ୍ତର—ଯା. ପୁଂ. ବ.ହାଡ଼ି, ମଳ-ପରିଷ୍କାରକ ଅସ୍ପୃଶ୍ୟ ଜାତିବିଶେଷ ଚଣ୍ଡାଳ ।
ମେହେନ୍ତରି—ଯା.ବ.ମେହେନ୍ତରର କର୍ମ
ମେହେମାନ୍—ଯା.ବ. ଅତିଥି ।
ମେହେମାନି—ଯା.ବ. ଆତିଥ୍ୟ ।
ମେହେର—ଯା.ବ. ବନ୍ଧୁତ୍ୱ, ଅନୁଗ୍ରହ, ସୌହାର୍ଦ୍ଦ୍ୟ ।
ମେହେରଉନ୍ନିଶା—ଯା. ବ. ମୋଗଲ ସମ୍ରାଟ୍ ଜାହାଙ୍ଗୀରଙ୍କର ପ୍ରିୟତମା ପତ୍ନୀ ନୁରଜାହାନଙ୍କ ପୂର୍ବନାମ ।
ମେହେରବାନ୍-ଯା.ବ.ଦୟାଳୁତା,ସୁହୃତ୍, ବନ୍ଧୁ, (ବିଂ) ଦୟାଳୁ,ଅନୁକୂଳ ।
ମେହେରବାନ୍‌ଦୋସ୍ତାନ୍—ଯା. ଅବ୍ୟ. ପ୍ରିୟତମ ଓ ସ୍ନେହୀ ବନ୍ଧୋ ।
ମେହେରବାନି-ଯା.ବ. ଅନୁଗ୍ରହ, ଦୟାଳୁତା, ଦୟା, ବନ୍ଧୁତା ।
ମେହେରବ—ଯା.ବ. ତୋରଣ,ତୋରଣ ଉପରେ ବୁଲିବା ଖିଲାଣ, ଖିଲଣ, ଗୋଲାକାର ଶିଖର ।
ମେଁ—ପ୍ରା.(ଭଟ୍ଟୀଗ୍ରାଖ୍ୟା)ସର୍ବ. ମୁଁ ଆମ୍ଭେ ।
ମୈତ୍ର—ବ(ମିତ୍ର+ଅ)ଅନୁରାଧା ନକ୍ଷତ୍ର, ଆଦିତ୍ୟ ଲୋକ,ପୁରୀଷୋତ୍ସର୍ଗ, ଉତ୍ସର୍ଗ, ମିତ୍ର, ମଳଦ୍ୱାର, ଉଦୟ ମୁହୂର୍ତ୍ତଠାରୁ ତୃତୀୟ ମୁହୂର୍ତ୍ତ, ବର୍ଣ୍ଣସଙ୍କର ଜାତି-ବିଶେଷ, ମିତ୍ରତା, ବନ୍ଧୁତ୍ୱ, (ବିଂ)ମିତ୍ର-ସମ୍ବନ୍ଧୀୟ, ମିତ୍ରତାଶାଳୀ, (ଗ୍ରା.ବ) ବଙ୍ଗୀୟ ବାରେନ୍ଦ୍ର ଶ୍ରେଣୀର ବ୍ରାହ୍ମଣଙ୍କ ବଂଶୋପାଧିବିଶେଷ ।
ମୈତ୍ରକ—କ୍ଲୀ.ବ.(ମୈତ୍ର+କ)ମିତ୍ରତା, ବନ୍ଧୁତ୍ୱ ।
ମୈତ୍ରକଣ୍ଟା—ଗ୍ରା. ବ. ଜୁଆଳର ଠିକ୍ ମଧ୍ୟରେ ଥିବା କଣ୍ଟା ବା ଖିଲ ।
ମୈତ୍ରତା—ସ୍ତ୍ରୀ. ବ. ମିତ୍ରତା, ବନ୍ଧୁତ୍ୱ ।

ମୈତ୍ରଭ—କ୍ଲୀ. ବ. ଅନୁରାଧା ନକ୍ଷତ୍ରର ନାମାନ୍ତର । [କାଶ୍ମୀ
ମୈତ୍ରବର୍ଦ୍ଧକ—ପୁଂ.ବିଂ. ମିତ୍ରତା ବୃଦ୍ଧି-
ମୈତ୍ରସୂତ୍ର—କ୍ଲୀ.ବ.ମୈତ୍ରତା ରୂପ ରଜ୍ଜୁ, ବୌଦ୍ଧ ସୂତ୍ରଭେଦ ।
ମୈତ୍ରାକ୍ଷଜ୍ୟୋତିକ—ପୁଂ. ବ. ପୁୟଭକ୍ଷ ପ୍ରେତଯୋନିବିଶେଷ,ଭ୍ରଷ୍ଟକର୍ମା ବୈଶ୍ୟ ମୃତ୍ୟୁ ପରେ ଏହି ଯୋନି ପ୍ରାପ୍ତ ହୁଏ ।
ମୈତ୍ରାୟଣି—ପୁଂ. ବ. ଉପନିଷଦ୍‌ଭେଦ ।
ମୈତ୍ରାୟଣୀ—ସ୍ତ୍ରୀ.ବ. ଜନୈକ ବୌଦ୍ଧ ସ୍ତ୍ରୀ ଆଚାର୍ଯ୍ୟ ।
ମୈତ୍ରାବରୁଣ—ପୁଂ. ବ. (ମିତ୍ର+ବରୁଣ +ଅ) ଅଗସ୍ତ୍ୟ ଋଷି ।
ମୈତ୍ରାବରୁଣି—ପୁଂ.ବ. (ମିତ୍ରାବରୁଣ+ ଅ+ଇ) ଅଗସ୍ତ୍ୟଋଷି, ବଶିଷ୍ଠ ଋଷି ।
ମୈତ୍ରାବରୁଣୀୟ—ବିଂ. ମୈତ୍ରାବରୁଣ ଋତ୍ୱିକ୍‌ସମ୍ବନ୍ଧୀୟ ।
ମୈତ୍ରିକ—ପୁଂ.ବ.ମିତ୍ର ସମ୍ବନ୍ଧୀୟ କାର୍ଯ୍ୟ ।
ମୈତ୍ରୀ—ପୁଂ. ବିଂ. (ମିତ୍ର+ଇନ୍)ମିତ୍ର, ବନ୍ଧୁ, ମିତ୍ରତାଯୁକ୍ତ,(ସ୍ତ୍ରୀ.ବ—ମୈତ୍ର+ ଅ+ଈ) ମିତ୍ରର ଭାବ, ମିତ୍ରର କର୍ମ, ମିତ୍ରତା, ବନ୍ଧୁତ୍ୱ, ସହଯୋଗ, ସଂସର୍ଗ, ସହବାସ ।
ମୈତ୍ରୀକରଣ—ବ. ମିତ୍ରତା ସ୍ଥାପନ ।
ମୈତ୍ରୀବଳ—ପୁଂ.ବ. ବୁଦ୍ଧଦେବ, (ବିଂ) ମିତ୍ରତା ବଳବିଶିଷ୍ଟ ।
ମୈତ୍ରୀବ୍ରତ—ବ. ମିତ୍ରତାରୂପ ବ୍ରତ ।
ମୈତ୍ରୀଭାବ-ପୁଂ.ବ.ବନ୍ଧୁତା,ସୌହାର୍ଦ୍ଦ୍ୟ ।
ମୈତ୍ରେୟ—ପୁଂ.ବ (ମିତ୍ର+ଏୟ)ବୁଦ୍ଧ-ଭେଦ, ମୁନିବିଶେଷ, କୋଣାର୍କସ୍ଥ ପବିତ୍ର ବନ, ସୂର୍ଯ୍ୟ, ବର୍ଣ୍ଣସଙ୍କରଜାତି, (ବିଂ) ମିତ୍ରସମ୍ବନ୍ଧୀୟ ।
ମୈତ୍ରେୟକ—ପୁଂ.ବ. (ମୈତ୍ରେୟ+କ) ବର୍ଣ୍ଣସଙ୍କର ଜାତିବିଶେଷ,ଯେ ମୁହୂର୍ତ୍ତ ବା ସମୟ ଜ୍ଞାପନ କରେ ।
ମୈତ୍ରେୟିକା—ବ. ମିତ୍ରଯୁଦ୍ଧ,ବନ୍ଧୁମାନଙ୍କ ମଧ୍ୟରେ ପରସ୍ପର ସଂଗ୍ରାମ ।
ମୈତ୍ରେୟିକା—ସ୍ତ୍ରୀ.ବ.ବନ୍ଧୁ ମଧ୍ୟରେ ପର-ସ୍ପର ଯୁଦ୍ଧ, ମିତ୍ରଯୁଦ୍ଧ ।

ମୈତ୍ରେୟୀ—ସ୍ତ୍ରୀ. ବ. ଉପନିଷଦ୍‌ଭେଦ, ଯାଜ୍ଞବଲ୍କ୍ୟଙ୍କ ପତ୍ନୀ, ଅହଲ୍ୟାଙ୍କ ନାମାନ୍ତର. ସୁଲଭା ।

ମୈତ୍ର୍ୟ—କ୍ଲୀ. ବ. ( ମିତ୍ର+ଯ ) ମିତ୍ରର ଭାବ ବା ମିତ୍ରର ଧର୍ମ, ମିତ୍ରତା, ବନ୍ଧୁତ୍ୱ ।

ମୈଥିଳ—ବି°. ( ମିଥିଳା+ଅ ) ମିଥିଳା ଦେଶବାସୀ, ମିଥିଳାଦେଶସମ୍ବନ୍ଧୀୟ, ସ୍ତ୍ରୀ.ମିଥିଳା ଦେଶର ରାଜା,ମିଥିଳ ଦେଶବାସୀ ବ୍ୟକ୍ତି,ରାଜର୍ଷି ଜନକ,(ସ୍ତ୍ରୀ)ମୈଥିଳୀ

ମୈଥିଳବ୍ରାହ୍ମଣ—ମିଥିଳାବାସୀ ବ୍ରାହ୍ମଣ ସମ୍ପ୍ରଦାୟ ।

ମୈଥିଳଶ୍ରୀଦତ୍ତ—ପୁଂ. ବ. ମିଥିଳାବାସୀ ଜଣେ ପଣ୍ଡିତ ଓ ଗ୍ରନ୍ଥକର୍ତ୍ତା ।

ମୈଥିଳକ—ପୁଂ.ବ.ମିଥିଳାବାସୀ ବ୍ୟକ୍ତି ।

ମୈଥିଳୀ—ସ୍ତ୍ରୀ. ବ. (ମିଥିଳା + ଅ + ଈ) ସୀତା,ଜନକଦୁହିତା, ବିହାରୀ ଭାଷାର ପ୍ରାଦେଶିକ ଭାଷା ।

ମୈଥିଳେୟ—ପୁଂ.ବି°.ମିଥିଳା ସମ୍ବନ୍ଧୀୟ ।

ମୈଥୁନ –କ୍ଲୀ.ବ. (ମିଥୁନ + ଅ) ବିବାହ କର୍ମ, ସ୍ତ୍ରୀ ପୁରୁଷର ସଙ୍ଗମ, ସୁରତ, ରତିକ୍ରିୟା, ସଂସର୍ଗ ।

ମୈଥୁନଧର୍ମୀ—ପୁଂ.ବି°. (ମୈଥୁନଧର୍ମ + ଇନ୍) ମୈଥୁନ ଧର୍ମବିଶିଷ୍ଟ ।

ମୈଥୁନବାସ—କ୍ଲୀ. ବ. ମୈଥୁନକାଳୀନ ପରିଧେୟ ବସ୍ତ୍ରବିଶେଷ ।

ମୈଥୁନାଭିଘାତ-ପୁଂ.ବ.ମୈଥୁନକାଳରେ ଆଘାତପ୍ରାପ୍ତି ପ୍ରଭୃତି କାରଣରୁ ଉତ୍ପନ୍ନ ରୋଗାଦି ।

ମୈଥୁନିକ—ତ୍ରି. ବି°. ମୈଥୁନକାରୀ, ମୈଥୁନୀ,କୃତ ସ୍ତ୍ରୀସଂସର୍ଗ, (ସ୍ତ୍ରୀ) ମୈଥୁନିକା ।

ମୈଥୁନୀ—ପୁଂ. ବି°. (ମୈଥୁନ + ଇନ୍) କୃତମୈଥୁନ, ସ୍ତ୍ରୀସଂସର୍ଗକାରୀ ।

ମୈଥୁନ୍ୟ—ତ୍ରି. ବି°. ( ମୈଥୁନ + ଯ ) ମୈଥୁନ ବିଷୟରେ ହିତକର, ( ବ ) ଗାନ୍ଧର୍ବ ବିବାହ ।

ମୈଦାନୀ—ଗ୍ରା. ବ. ପଞ୍ଜାବ ପ୍ରଦେଶର କାନ୍ଥୁଜିଲ୍ଲାର ଅନ୍ତର୍ଗତ ଗୋଟିଏ ପର୍ବତ ଶ୍ରେଣୀ ।

ମୈଧାବ--ପୁଂ.ବ.ମେଧାବୀ ବ୍ୟକ୍ତିର ପୁତ୍ର ।

ମୈଧାବକ—ପୁଂ.ବ. ମେଧା, ଧୃତିଶକ୍ତି ।

ମୈନାକ—ପୁଂ. ବି. ( ମେନକା + ଅ ) ହିମାଳୟଙ୍କ ପୁତ୍ରରୂପେ କଳ୍ପିତ ପାର୍ବତ୍ୟ ବିଶେଷ, (ଗ୍ରା.ବ) ରଣପୁର ରାଜଧାନୀ ନିକଟବର୍ତ୍ତୀ ବିଶାଳ ପର୍ବତ

ମୈନାକସ୍ୱସା—ସ୍ତ୍ରୀ.ବ.(ତନ୍ତ୍ର)ପାର୍ବତୀ ।

ମୈନିକ—ପୁଂ. ବ. (ମୀନ+ଇକ) ଯେ ମତ୍ସ୍ୟଧରି ଜୀବିକା ନିର୍ବାହ କରେ, ମତ୍ସ୍ୟବ୍ୟବସାୟୀ ।

ମୈନ୍ଦ—ପୁଂ. ବ. ଅସୁରବିଶେଷ,କଂସର ଅନୁଚର, ବାନରବିଶେଷ ।

ମୈନ୍ଦହା—ପୁଂ. ବ. (ମୈନ୍ଦ+ହନ୍+କ୍ୱିପ୍) ବିଷ୍ଣୁ । [ ଜିଲ୍ଲା ।

ମୈମନସିଂହ—ଗ୍ରା.ବ.ବଙ୍ଗଳାର ଗୋଟିଏ

ମୈରତା—ରାଜପୁତନାର ମାରବାର ପ୍ରଦେଶର ଗୋଟିଏ ବିଭାଗ ଓ ଜିଲ୍ଲା ।

ମୈରବ—ପୁଂ. ବି°. (ମେରୁ+ଅ) ମେରୁ ସମ୍ବନ୍ଧୀୟ ।

ମୈରବାର-ମାରବାରପ୍ରଦେଶର ନାମାନ୍ତର

ମୈରାବଣ—ଅସୁରଭେଦ, ମହୀରାବଣ ନାମକ ଅସୁର ।

ମୈରେୟ—କ୍ଲୀ. ବ. ( ମାର+ଏୟ ) ମଦ୍ୟବିଶେଷ, ମଧୁମିଶ୍ରିତ ମଦ୍ୟ ଓ ଆସବ ।

ମୈରେୟକ—ବ.ମଦ୍ୟଭେଦ, ସୈରନ୍ଧ୍ରୀ ଗର୍ଭରେ ବୈଦେହ ଔରସରେ ଉତ୍ପନ୍ନ ବର୍ଣ୍ଣସଙ୍କର ଜାତିବିଶେଷ ।

ମୈରେୟାମ୍ଳ—କ୍ଲୀ. ବ. କାଞ୍ଜିକଭେଦ, ମୈରେୟ ମଦ୍ୟ ।

ମୈଲନ୍ଦ—ପୁଂ. ବ. ଭ୍ରମର ।

ମୈଲା—ସ୍ତ୍ରୀ. ବ. ନୀଳୀବୃକ୍ଷ ।

ମୈଶ୍ରଧାନ୍ୟ—କ୍ଲୀ.ବ. ତଣ୍ଡୁଳାଦି ବିଭିନ୍ନ ଶସ୍ୟସହଯୋଗେ ପ୍ରସ୍ତୁତ ଖାଦ୍ୟଦ୍ରବ୍ୟ ବିଶେଷ ।

ମୈଷାସୁର—ଗ୍ରା. ବ. ମହିଷାସୁର ।

ମୈସ୍ମର—ଯା. ବ. ମେସ୍ମେରିଜମ୍, ଯେଉଁ ମନ୍ତ୍ର ଶକ୍ତି,ଇଚ୍ଛାଶକ୍ତି ବା କୌଶଳଦ୍ୱାରା ଅନ୍ୟ ବ୍ୟକ୍ତିର ଶରୀରକୁ ଓ ମନକୁ ଆଜ୍ଞାଧୀନ କରାଯାଏ ।

ମୈସ୍ମରଶକ୍ତି—ଗ୍ରା. ବ. ଭୌତିକ ଶକ୍ତି ।

ମୈହ୍ନିକ—ତ୍ରି.ବି°.ମେହରୋଗ ସମ୍ବନ୍ଧୀୟ ।

ମୋ—ଗ୍ରା. ସର୍ବ. ଆମ୍ଭର, ମୋର ।

ମୋଆଜା—ଗ୍ରା. ବ. ମୁଆଜା ଦେଖ ।

ମୋଆଫିକ୍—ଯା. ଅବ୍ୟ. ଅନୁରୂପ,ଠିକ୍, ମୁତାବକ୍ ।

ମୋକ—କ୍ଲୀ. ବ. ପଶୁଚର୍ମ ।

ମୋକାନ୍(ମ୍)—ଯା.ବ.ଗୃହସ୍ଥାନ,ଦେଶ, କାରବାରର ଜାଗା ।

ମୋକି—ସ୍ତ୍ରୀ. ବ. ରାତ୍ରି । [ ଆମ୍ଭଙ୍କୁ ।

ମୋକେ—ପ୍ରା.(କଳାହାଣ୍ଡି)ସର୍ବ.ମୋତେ,

ମୋକ୍ତବ—ଯା. ବ. ଆରବୀ ବିଦ୍ୟାଳୟ, ମୁସଲମାନୀ ପାଠଶାଳା ।

ମୋକ୍ତବ୍ୟ—ବି°. ( ମୁଚ୍+ଣ.ତବ୍ୟ ) ମୋଚନୀୟ, ମୁକ୍ତହେବା ଯୋଗ୍ୟ ।

ମୋକ୍ତା—ପୁଂ. ବି°. ( ମୁଚ୍ + କ.ତୃ ) ମୋଚନକର୍ତ୍ତା, ଯେ ମୁକ୍ତକରେ, (ସ୍ତ୍ରୀ) ମୋକ୍ତ୍ରୀ ।

ମୋକ୍ତାର--ଯା.ବି°.ନିର୍ବାଚିତ,ଭାରପ୍ରାପ୍ତ, ସ୍ୱାଧୀନ,ପ୍ରତିନିଧି,(ବ) ମୁକ୍ତାର ଦେଖ ।

ମୋକ୍ତାରୀ—ଯା.ବ. ମୋକ୍ତାରର କାର୍ଯ୍ୟ ।

ମୋକ୍ଷ—(ଧାତୁ). କ୍ଷେପଣ କରିବା ।

ମୋକ୍ଷ—ପୁଂ. ବ. (ମୋକ୍ଷ+ଣ.ଅ)ମୁକ୍ତି, ପରିତ୍ରାଣ, ଘଣ୍ଟାପାଟଳି ବୃକ୍ଷ,ମୋଚନ, ମୃତ୍ୟୁ, ବିଶ୍ଳେଷ, ପତନ, ସୂର୍ଯ୍ୟ ବା ଚନ୍ଦ୍ର ଗ୍ରହଣକାଳୀନ ଗ୍ରାସରୁ ମୁକ୍ତି,ସଂସାର ବନ୍ଧନରୁ ମୁକ୍ତି, (ଗ୍ରା.ବି°) ଲୁପ୍ତ ।

ମୋକ୍ଷକ—ପୁଂ. ବ. ( ମୋକ୍ଷ+ଅକ ) ପୁଷ୍ପକବୃକ୍ଷ, ଘଣ୍ଟାପାଟଳି ଗଛ, ( ବି° ) ମୋଚନକର୍ତ୍ତା, ଯେ ପରିତ୍ରାଣ କରେ ।

ମୋକ୍ଷକର୍ତ୍ତା—ଗ୍ରା.ବ. ପରିତ୍ରାଣ କର୍ତ୍ତା ।

ମୋକ୍ଷକାମନା—ବ. ନିର୍ବାଣ ନିମନ୍ତେ ବାସନା ।

ମୋକ୍ଷକାମୀ—ପୁଂ. ବି°. ନିର୍ବାଣ ପ୍ରାପ୍ତିର ଅଭିଳାଷୀ, (ସ୍ତ୍ରୀ) କାମିନୀ ।

ମୋକ୍ଷଣ—ବ. (ମୋକ୍ଷ+ଣି.ଅନ) ମୁକ୍ତିଦାନ, ମୋଚନ,ଉଦ୍ଧାରକରଣ,ମରଣ, ନିଃସାରଣ, କ୍ଷେପଣ ।

ମୋକ୍ଷଣୀୟ—ତ୍ରି.ବଂ. (ମୋକ୍ଷ+ଅନୀୟ) ମୋକ୍ଷଣର ଯୋଗ୍ୟ,କ୍ଷେପଣ ଯୋଗ୍ୟ, କ୍ଷେପଣୀୟ ।

ମୋକ୍ଷତୀର୍ଥ—କ୍ଲୀ.ବ. ତୀର୍ଥଭେଦ,ମୋକ୍ଷ-ପ୍ରଦାୟକ ତୀର୍ଥ ।

ମୋକ୍ଷଦ—ପୁଂ.ବଂ. (ମୋକ୍ଷ+ଦା+ଅ) ମୋକ୍ଷଦାତା,ମୁକ୍ତିଦାତା,(ସ୍ତ୍ରୀ)ମୋକ୍ଷଦା, ମୁକ୍ତିଦାୟିନୀ ।

ମୋକ୍ଷଦା—ସ୍ତ୍ରୀ.ବ.(ମୋକ୍ଷଦ+ଆ)ଦୁର୍ଗା ।

ମୋକ୍ଷଦାତା—ପୁଂ. ବଂ. (ମୋକ୍ଷ+ଦା+ତୃ) ତ୍ରାଣକର୍ତ୍ତା,(ସ୍ତ୍ରୀ) ମୋକ୍ଷଦାତ୍ରୀ ।

ମୋକ୍ଷଦେବ—ପୁଂ. ବ. ଚୀନପରିବ୍ରାଜକ ଇଉଏନ୍‌ସିୟାଙ୍ଗଙ୍କ ଉପାଧି ।

ମୋକ୍ଷଦ୍ୱାର—ବ. ମୁକ୍ତିର ଉପାୟ,ସୂର୍ଯ୍ୟ. କାଶୀ ।

ମୋକ୍ଷଧର୍ମ—ପୁଂ. ବ. ମୁକ୍ତିବିଷୟକ ଧର୍ମ, ମହାଭାରତର ଅନ୍ତର୍ଗତ ପର୍ବାଧ୍ୟାୟ ।

ମୋକ୍ଷଧାମ—ବ.କୈବଲ୍ୟଧାମ,ବୈକୁଣ୍ଠ-ପୁରୀ, ସ୍ୱର୍ଗ । [ ଉପାୟ ।

ମୋକ୍ଷପଥ—ବ. (୬ତତ୍) ପରିତ୍ରାଣର

ମୋକ୍ଷପଦ—ବ.ମୋକ୍ଷଲାଭରୂପ ଐଶ୍ୱର୍ଯ୍ୟ ।

ମୋକ୍ଷମହାପରିଷଦ୍—ସ୍ତ୍ରୀ. ବ. ବୌଦ୍ଧ-ମାନଙ୍କର ପ୍ରଧାନ ଧର୍ମସମିତି ।

ମୋକ୍ଷପାନ—ଗ୍ରା. ବଂ. ଶ୍ରେଷ୍ଠ ।

ମୋକ୍ଷପୁରୀ—ସ୍ତ୍ରୀ.ବ. କାଶୀକ୍ଷେତ୍ରପ୍ରଭୃତି ସାତଟି ପୁରୀ ।

ମୋକ୍ଷପ୍ରଦ—ବ.ଓ ବଂ. ତ୍ରାଣକର୍ତ୍ତା,(ସ୍ତ୍ରୀ) ମୋକ୍ଷପ୍ରଦା ।

ମୋକ୍ଷପ୍ରାପ୍ତ—ପୁଂ.ବଂ. (୨ତତ୍)ନିର୍ବାଣ-ପ୍ରାପ୍ତ, ସ୍ୱାଧୀନତାପ୍ରାପ୍ତ ।

ମୋକ୍ଷପ୍ରାପ୍ତି—ବ.(୬ତତ୍)ନିର୍ବାଣ ଲାଭ ।

ମୋକ୍ଷମୂଲର-ଜର୍ମାନୀ ଦେଶବାସୀ ଜଣେ ବିଖ୍ୟାତ ସଂସ୍କୃତ ଶାସ୍ତ୍ରବିତ୍ ପଣ୍ଡିତ ।

ମୋକ୍ଷଲକ୍ଷ୍ମୀବିଳାସ—ପୁଂ. ବ. କାଶୀସ୍ଥ ବିଶ୍ୱେଶ୍ୱରଙ୍କ ନିକଟବର୍ତ୍ତୀ ମଣ୍ଡପଭେଦ ।

ମୋକ୍ଷଲାଭ—ବ. (୬ତତ୍) ମୁକ୍ତିଲାଭ, ସଂସାର ବନ୍ଧନଚ୍ଛେଦ, ସ୍ୱର୍ଗପ୍ରାପ୍ତି ।

ମୋକ୍ଷବିଦ୍ୟା—ବ.(କ.ଧା)ବେଦାନ୍ତଶାସ୍ତ୍ର ।

ମୋକ୍ଷଶାସ୍ତ୍ର—କ୍ଲୀ. ବ. ଯେଉଁ ଶାସ୍ତ୍ରରେ ମୋକ୍ଷ ବିଷୟକ ଉପଦେଶ ଅଛି, ବେଦାନ୍ତ ଶାସ୍ତ୍ର ।

ମୋକ୍ଷସାଧନ—କ୍ଲୀ.ବ. (୬ତତ୍)ମୋକ୍ଷର ଉପାୟ, ତପସ୍ୟା । [ ମୋକ୍ଷପ୍ରାପ୍ତ ।

ମୋକ୍ଷା—ଗ୍ରା. ବ. ମୋକ୍ଷ ଦେଶ, (ବଂ)

ମୋକ୍ଷିତ—ବଂ. (ମୋକ୍ଷ+ଇତ) ମୁକ୍ତ, ସ୍ୱାଧୀନତା ପ୍ରାପ୍ତ ।

ମୋକ୍ଷୀ—ପୁଂ. ବଂ. ( ମୋକ୍ଷ+ଇନ୍ ) ମୋକ୍ଷଯୁକ୍ତ (ପୁରୁଷ), ମୁକ୍ତ ।

ମୋକ୍ଷୋପାୟ—ପୁଂ. ବ.(୬ତତ୍) ମୁକ୍ତି-ସାଧନ, ତପସ୍ୟା, ଶମ, ଦମ, ଯୋଗ ଜ୍ଞାନାଦି, (ବ.ଗ୍ରା) ମୁନି, ତପସ୍ୱୀ ।

ମୋକ୍ଷ୍ୟ—ପୁଂ. ବଂ. (ମୋକ୍ଷ+ର୍ମ.ଯ) ମୁକ୍ତିର ଯୋଗ୍ୟ, ମୋକ୍ଷପ୍ରାପ୍ତ ହେବାର ଯୋଗ୍ୟ, (ସ୍ତ୍ରୀ) ମୋକ୍ଷ୍ୟା ।

ମୋଖାଲଫ—ଯା.ବଂ. ମତବିରୁଦ୍ଧବାଦୀ, ପ୍ରତିକୂଳ, ବିପରୀତ, ଶତ୍ରୁଭାପନ୍ନ ।

ମୋଗ—ପୁଂ. ବ. ବସନ୍ତରୋଗଭେଦ ।

ମୋଗ(ଘ)ମ୍—ଯା. ବ. ଗୁପ୍ତରହସ୍ୟ, ଗୁପ୍ତଖାଜ, ମର୍ମସ୍ଥାନ ।

ମୋଗଲ—ଯା. ବ. ମଧ୍ୟଏସିଆ ଖଣ୍ଡର ତାତାରନାମକ ଅଧିତ୍ୟକାବାସୀ ଜାତି-ବିଶେଷ, ମୁସଲମାନ ଜାତିର ଗୋଟିଏ ଶାଖା ।

ମୋଗଲବନ୍ଦି—ଗ୍ରା. ବ. ଆକବରଙ୍କ ପ୍ରଧାନ ସେନାପତି ଟୋଡ଼ରମଲ୍ଲଙ୍କ ଦ୍ୱାରା ମୋଗଲମାନଙ୍କର ଖାସ ଶାସନକୁ ଆସିଥିବା ଓଡ଼ିଶାର ସମୁଦ୍ର ଉପକୂଳସ୍ଥ (କଟକ,ପୁରୀ ଓ ବାଲେଶ୍ୱର)ଜିଲ୍ଲାମାନ

ମୋଗଲବନ୍ଦିଆ—ଗ୍ରା.ବଂ.ମୋଗଲବନ୍ଦି-ନିବାସୀ ।

ମୋଗଲବାଦଶା—ଯା.ବ.ମୋଗଲ ସମ୍ରାଟ ।

ମୋଗଲବାଦସାହା—ଯା. ବ.ମୋଗଲ-ସମ୍ରାଟ ।

ମୋଗଲମାରି—ଗ୍ରା. ବ. ବାଲେଶ୍ୱର-ଜିଲ୍ଲାର ଜଲେଶ୍ୱର ନିକଟସ୍ଥ ପ୍ରାଚୀନ ଯୁଦ୍ଧକ୍ଷେତ୍ରବିଶେଷ ।

ମୋଗଲସରାଇ—ଗ୍ରା.ବ. ଯୁକ୍ତପ୍ରଦେଶର ବାରଣସୀଜିଲ୍ଲାର ଅନ୍ତର୍ଗତ ଗୋଟିଏ ନଗର ।

ମୋଗଲ୍ଲ(ଲେ)ଇ—ଯା. ବଂ.ମୋଗଲ୍-ଜାତିସମ୍ବନ୍ଧୀୟ । [ ଅଧିକୃତ ।

ମୋଗଲାଣୀ—ଗ୍ରା.ବ. ମୋଗଲ ସମ୍ରାଟଙ୍କ

ମୋଘ—ତ୍ରି. ବଂ. (ମୁହ୍+ଅ)ନିରର୍ଥକ, ପରିତ୍ୟକ୍ତ, ବ୍ୟର୍ଥ, ନିଷ୍ଫଳ, ଅଜ୍ଞାନ,(ପୁଂ. ବ) ପ୍ରାଚୀର, ବାଡ଼ ।

ମୋଘକର୍ମା—ବଂ. (ବ.ଗ୍ରା) ଯେ ନିଷ୍ଫଳ କାର୍ଯ୍ୟ କରେ ।

ମୋଘଜ୍ଞାନ—ପୁଂ.ବଂ. ବ.ଗ୍ରା; ଧର୍ମଜ୍ଞାନ ବିରହିତ,ବୃଥା ଜ୍ଞାନ ଅନୁଶୀଳନକାରୀ (ବ୍ୟକ୍ତି) ।

ମୋଘତା—ସ୍ତ୍ରୀ.ବ. (ମୋଘ+ତ+ଆ) ମୋଘତ୍ୱ, ନିଷ୍ଫଳତ୍ୱ ।

ମୋଘପୁଷ୍ପା—ସ୍ତ୍ରୀ.ବଂ.(ବ.ଗ୍ରା)ବନ୍ଧ୍ୟା(ସ୍ତ୍ରୀ) ।

ମୋଘା—ସ୍ତ୍ରୀ.ବ. (ମୋଘ+ଆ)ପାଟଳି, ବିଡଙ୍ଗ, ବଦରୀ, (ବଂ) ନିଷ୍ଫଳା ।

ମୋଘାଶ—ପୁଂ.ବଂ. (ବ.ଗ୍ରା)ବୃଥା ଆଶା-ପୋଷଣକାରୀ, ଯାହାର ଆଶା ବିଫଳ ହୋଇଅଛି, (ସ୍ତ୍ରୀ) ମୋଘାଶା ।

ମୋଘିଆ—ରାଜପୁତନା ଓ ମଧ୍ୟଭାରତ-ବାସୀ ଅସଭ୍ୟ ଜାତିବିଶେଷ, ପୂର୍ବବଙ୍ଗ ଓ ଆସାମବାସୀ ଜାତିବିଶେଷ ।

ମୋଘୋଲ୍—ପୁଂ. ବ. ପ୍ରାଚୀର ।

ମୋଘ୍ୟ—ବ.(ମୋଘ+ଭା.ଯ)ବିଫଳତା ।

ମୋଚ—କ୍ଲୀ.ବ. (ମୁଚ୍+ର୍ମ.ଅ)କଦଳୀ ଫଳ,(ପୁଂ.ବ)ସଜନାଗଛ, ଶିମିଳିଗଛ, ପାଟଳିଗଛ ।

ମୋଚକ—ପୁଂ.ବ. (ମୁଚ୍+ଣିଚ୍+ଅକ) ମୋକ୍ଷ, କଦଳୀ, ସଜନା, ମୁଷ୍କକ ବୃକ୍ଷ, ଘଣ୍ଟାପାଟଳି ଗଛ, ଶିମିଳିଗଛ, (ବଂ) ବିରାଗୀ, ମୁକ୍ତିଦାତା, ତ୍ରାଣକର୍ତ୍ତା ।

ମୋଚକର୍ଣ୍ଣି—ବ. ରାମାୟଣୋକ୍ତ ରାକ୍ଷସ-ବିଶେଷ, ଛେଳି ।

ମୋଚଙ୍ଗ—ଗ୍ରା. ବ. ବାଦ୍ୟବିଶେଷ ।

ମୋଚନ—କ୍ଲୀ.ବ. (ମୁଚ୍+ଅନ)ମୋକ୍ଷ, କମ୍ପନ, ଶଠତା, ମୁକ୍ତକରିବା, ମୁକ୍ତି, କଳ୍ପନ, କାଣ୍ଡି, ମଇଳା, ଦମ୍ଭ, ଅହଙ୍କାର, ପୋଛିଦେବା, ମାର୍ଜନକରଣ, ତ୍ୟାଗକରିବା, କ୍ଷମାଦେବା, ମୁକୁଳା-

କରିବା, ଫିଟାଇବା, ଦୂରୀକରଣ, (ବ୍ଂ) ମୋଚନକର୍ତ୍ତା ।

ମୋଚନିକା—ସ୍ତ୍ରୀ.ବ.ମୋଚମ୍ନୀ,କଣ୍ଟକାରୀ ।

ମୋଚନିର୍ଯ୍ୟାସ—ପୁଂ.ବ.(୬ତତ୍ପୁ)ମୋଚରସ, ଶିମିଳିଗଛର ଅଠା ।

ମୋଚମ୍ନୀ—ସ୍ତ୍ରୀ.ବ. (ମୁଚ୍+ଣିଚ୍+ଅନ ଈ) କଣ୍ଟକାରୀ ।

ମୋଚନୀୟ—ବି. ବ୍ଂ. (ମୁଚ୍+ଅନୀୟ) ମୋଚନ ଯୋଗ୍ୟ,ମୋଚନାର୍ହ, ତ୍ୟାଗଯୋଗ୍ୟ ।

ମୋଚମର୍ଦ୍ଦ(ନ)—ବ. ଛଣ ମୋଡ଼ିବା ।

ମୋଚୟିତା—ପୁଂ. ବ୍ଂ. (ମୁଚ୍+ଣିଚ୍+ତୃ) ମୋଚନକର୍ତ୍ତା, ମୁକ୍ତିଦାତା ।

ମୋଚରସ—ପୁଂ. ବ. (୬ତତ୍ପୁ) ଶିମିଳି ଗଛର ଅଠା ବା ରସ ।

ମୋଚ୍ୟ—ସ୍ତ୍ରୀ.ବ. (ମୁଚ୍+କ.ଆ)ଶାଳ୍ମଳୀ ବୃକ୍ଷ, କଦଳୀବୃକ୍ଷ, ନୀଳୀବୃକ୍ଷ, ଶଲ୍ଲକୀବୃକ୍ଷ, (ଗ୍ରା.ବ୍ଂ) ଲେଚ୍ଚ, ସଂକୁଚିତ ।

ମୋଚ୍ୟାଟ—ପୁଂ. ବ. (ମୁଚ୍+ଅଟ+କ.ଅ) କୃତ୍ରିକାରକ, ରମ୍ଭାସ୍ଥି,କଦଳୀଫଳ, ଚନ୍ଦନବୃକ୍ଷ, କଦଳୀ ମଞ୍ଜା ।

ମୋଚ୍ୟଫଳ—କ୍ଳୀ. ବ. କଦଳୀ ।

ମୋଚ୍ୟମୋଚ୍ୟ(ଚି)—ଗ୍ରା. ବ୍ଂ. ଲେଚ୍ଚକୋଚ୍ଚ ଦେଖ ।

ମୋଚ—ଗ୍ରା.ପୁଂ.ବ.ଚର୍ମକାର, କୋତାଡ଼ଆର କରିବା ମାଚ ଜାତିବିଶେଷ ।

ମୋଚକା—ସ୍ତ୍ରୀ. ବ. ମତ୍ସ୍ୟଭେଦ, ବାଲିଗରଡ଼ାମାଛ ।

ମୋଚିତ—ବ୍ଂ. (ମୁଚ୍+ଣିଚ୍+ର୍ମ.ତ) ଅନ୍ୟ ଦ୍ୱାରା ମୁକ୍ତ ।

ମୋଚପାଣି—ଗ୍ରା. ବ. ମୋଚଶାଳର କୁଣ୍ଡରେ ଥିବା ପାଣି, ଯେଉଁ କୁଣ୍ଡରେ ଚମଡ଼ାଆଦି ମୋଚ ବତୁରାଇ କାମକରେ ।

ମୋଚନୀ—ସ୍ତ୍ରୀ. ବ. କଣ୍ଟକାରୀ ।

ମୋଚୀ—ପୁଂ. ବ୍ଂ. (ମୋଚ+ଇନ୍) ମୋଚନଶୀଳ ।

ମୋଚୀ—ସ୍ତ୍ରୀ.ବ. (ମୁଚ୍+ଅ+ଈ)ହିଲମୋଚିକା, ହିଡ଼ିମିଚ୍ଚ ଶାଗ ।

ମୋଚ୍ୟ—ବି.ବ୍ଂ. (ମୁଚ୍+ର୍ମ.ଯ)ମୋଚନାର୍ହ, ମୋଚନଯୋଗ୍ୟ, ତ୍ୟାଜ୍ୟ ।

ମୋଚ୍ଛିକାଯନ୍ତ୍ର—କ୍ଳୀ. ଚ. ସୁଚ୍ଛିସ୍ରୋତନ ଯନ୍ତ୍ର, ଯେଉଁ ଯନ୍ତ୍ର ଦ୍ୱାରା ମଦ କ୍ଷରଣ କରାଯାଏ ।

ମୋଛ—ଗ୍ରା. ବ. ମୁଛ, କ୍ଷଣ ।

ମୋଚ୍ଛର—ଗ୍ରା.ବ୍ଂ. ଗୁର ମୁଁ, କଡାନ୍ତ କରଣୀୟ ମୁଁ ଅଟେ । [ ମୁଣ ।

ମୋଜା—ଯା.ବ.ଚରଣାବରଣ, ଗୋଡ଼-

ମୋଜେସ—ଯା. ବ. ମୂଷା, ମୂଷିକ ।

ମୋଟ—ଗ୍ରା. ବ. (ସଂ-ସମଷ୍ଟି) ସମଷ୍ଟି, ବୋଧ, ଗଣ୍ଠିର, ମୁଣ୍ଡବୁଜା ବୋଝ. (ଗ୍ରା.ବ୍ଂ) ସ୍ଥୂଳକାୟ, ପୃଥୁଳ, ବଗଡ଼ା, ସ୍ଥୂଳ, ଘନ,ଗୋଲମାଲଆ, ସମଷ୍ଟିକୃତ, ସର୍ବସମେତ, ଗୁରୁତର, ଗର୍ବସ୍ଫୀତ, ଅସାବଧାନ, ବେଖାତିରିଆ ।

ମୋଟଉପରେ—ଗ୍ରା. କ୍ରି. ବ୍ଂ. ସ୍ଥୂଳରେ, ସ୍ଥୂଳଦୃଷ୍ଟିରେ, ଦେଖିବାକୁ ଗଲେ, ହାରାହାରି ଧରିବାକୁ ଗଲେ ।

ମୋଟକ—କ୍ଳୀ.ବ.ଶ୍ରାଦ୍ଧରେ ପିତୃଦାନାର୍ଥ ଦ୍ୱିଗୁଣ ଭୁଗ୍ନ କୁଶଦ୍ୱୟ, (ଦ୍ୱିଗୁଣ ଭୁଗ୍ନ ଦର୍ଭମୋଟକଂ ପିତୃ ବ୍ରାହ୍ମଣ ବାମପାର୍ଶ୍ୱେ ଦଦ୍ୟାତ୍) ।

ମୋଟକଥା—ଗ୍ରା. ବ. ସ୍ଥୂଳ ବଚନର ଦ୍ୱାରା ପ୍ରତିପାଦିତ ବିଷୟ, ଗୁରୁତର ବିଷୟ, ସଂକ୍ଷିପ୍ତସାର, ସାଧାରଣ ବିଷୟ ।

ମୋଟକରିବା—ଗ୍ରା. କ୍ରି.ବସ୍ତୁ ରାଶି ଯୋଗ କରିବା, ସରୁଆ ପଦାର୍ଥକୁ ସ୍ଥୂଳକରିବା, ଆକାର ବୃଦ୍ଧି କରାଇବା, ବଢ଼ାଇବା, ( କଥାକୁ ) ଉପର୍ଯ୍ୟୁପରି ଆଲୋଚନା ଦ୍ୱାରା ଗୁରୁତର ବା ଗୋଲମାଲଆ କରିବା । [ ବିଶେଷ ।

ମୋଟକୀ—ସ୍ତ୍ରୀ.ବ.(ମୋଟକ+ଈ) ରାଗିଣୀ-

ମୋଟଦର—ଗ୍ରା. ବ. ପଣ୍ୟଦ୍ରବ୍ୟ ଏକକାଳୀନ ବହୁ ପରିମାଣରେ ବିକ୍ରି କରାଯିବାର ମୂଲ୍ୟ ।

ମୋଟଦରିଆ—ଗ୍ରା. ବ୍ଂ. ଏକା ଥରକେ ବହୁ ପରିମାଣରେ ବ୍ୟବହୃତ ।

ମୋଟଧାନ—ଗ୍ରା. ବ, ବଗଡ଼ା ଧାନ ।

ମୋଟନ—କ୍ଳୀ.ବ, (ମୁଟ୍+ଅନ) ଚୂର୍ଣ୍ଣୀକରଣ,(ଅଙ୍ଗୁଳିଆଦି)ମୋଡ଼ିବା, ଫୁଟାଇବା, ଆକ୍ଷେପ, ବାୟୁ,ପବନ,ବାଟିବା, ମଳିବା, ପେଷିବା, ଘଷିବା ।

ମୋଟନକ—କ୍ଳୀ. ବ. (ମୋଟନ+କ) ବିନାଶ, କ୍ଷୟ, ଧ୍ୱଂସ, ୧୧ଅକ୍ଷର ବିଶିଷ୍ଟ ଛନ୍ଦୋବିଶେଷ ।

ମୋଟବନିବା(ହେବା)—ଗ୍ରା.କ୍ରି.ବ.(କ୍ଷୀଣକାୟ ବ୍ୟକ୍ତି) ସ୍ଥୂଳକାୟ ହେବା ।

ମୋଟ(ଟା)ବୁଦ୍ଧି—ଗ୍ରା. ବ. ସ୍ଥୂଳବୁଦ୍ଧି, ନିର୍ବୋଧତା ।

ମୋଟ(ଟା)ବୁଦ୍ଧିଆ—ଗ୍ରା.ପୁଂ.ବ୍ଂ. ଜଡ଼ବୁଦ୍ଧି , ସ୍ଥୂଳବୁଦ୍ଧିବିଶିଷ୍ଟ, ନିର୍ବୁଦ୍ଧିଆ ।

ମୋଟଭାତ—ଗ୍ରା.ବ.ମୋଟ ଚାଉଳର ଭାତ ।

ମୋଟମୋଟ—ଗ୍ରା.ବ୍ଂ.ଅତିମୋଟା, ପୃଥୁଳ

ମୋଟର—ଯା. ବ. ତୁରନ୍ତ କିରାସିନ ତେଲର ବାଷ୍ପରୁ ଉତ୍ପନ୍ନ ବିଦ୍ୟୁତ୍ ଶକ୍ତି ଦ୍ୱାରା ପରିଚାଳିତ ଯାନ,(ଗ୍ରା.ବ)ମଟର, ଶିମ୍ବାଦିବର୍ଗର କୃଷିଜାତ ଶସ୍ୟ ।

ମୋଟରା—ଗ୍ରା. ବ. ଗଣ୍ଠିଲି, ଗଣ୍ଠିରି ।

ମୋଟରେ—ଗ୍ରା.କ୍ରି.ବ୍ଂ. ମୋଟ ଉପରେ ଦେଖ ।

ମୋଟା—ସ୍ତ୍ରୀ.ବ (ମୁଟ୍+ଅ+ଆ)ବଳା, ବାଡ଼ିଅଁଳା, ଜୟନ୍ତୀ; ଚୁଳ, ଖଟାପାଲଙ୍କ,(ଗ୍ରା. ପୁଂ.ବ୍ଂ) ସ୍ଥୂଳକାୟ, କର୍କଶ, ମାଂସଳ, ଦାଢ଼ ନ ଥିବା ।

ମୋଟା(ଟେ)ଇବା—ଗ୍ରା.କ୍ରି. ସ୍ଥୂଳକରିବା ।

ମୋଟାକାମ—ଗ୍ରା. ବ. ଯେଉଁ କାମରେ ସୂକ୍ଷ୍ମ କାରୁକାର୍ଯ୍ୟ ନ ଥାଏ ।

ମୋଟାଗଳା—ଗ୍ରା.ବ. କର୍କଶସ୍ୱର,ଉଚ୍ଚୈଃସ୍ୱର, ବସିଯାଇଥିବା ଗଳାର ସ୍ୱର ।

ମୋଟାତାଜା—ଗ୍ରା.ବ୍ଂ. ହୃଷ୍ଟପୁଷ୍ଟ, ସ୍ଥୂଳକାୟ ଓ ସହର୍ଷ ।

ମୋଟାଦରମା—ଗ୍ରା. ବ. ଉଚ୍ଚ ବେତନ, ବେଶି ଟଙ୍କା ଦରମା । [ ଦନ୍ତୁର ।

ମୋଟାଦାଢ଼ୁଆ—ଗ୍ରା.ବ୍ଂ.ସ୍ଥୂଳଧାରଯୁକ୍ତ,

ମୋଟାମାଂସ—ଗ୍ରା. ବ. ଗୋମାଂସ ।

ମୋଟାମୋଟି—ଗ୍ରା.କ୍ରି. ବ୍ଂ. ଚଳନୀୟ, ଯାହା ଭଲ ନୁହେ କି ମନ୍ଦନୁହେ, ସ୍ଥୂଳରେ ।

ମୋଟ୍ଟାର—ଗ୍ରା. ବି°. ସ୍ଥୂଳ, ଏକସ୍ଥ ।
ମୋଟାସୋଟା—ଗ୍ରା. ବି. ଅତି ମୋଟା, ପୃଥୁଳ, ସ୍ଥୂଳକାୟ ।
ମୋଟାବୁଦ୍ଧି—ଗ୍ରା. ବି. ସ୍ଥୂଳବୁଦ୍ଧି, ଯେ କୌଣସିବିଷୟ ସହଜରେ ବୁଝିପାରେ ନାହିଁ ।
ମୋଟାହେବା—ଗ୍ରା.ବି.ସ୍ଥୂଳକାୟ ହେବା
ମୋଟିଆ—ଗ୍ରା. ବି. କୁଲି,ବୋଝିଆ, ଯେ ମୋଟର ବହନ କରେ,(ବି°)ପ୍ରାୟମୋଟ
ମୋଟୀ-ଗ୍ରା.ସ୍ତ୍ରୀ.ବି°.ପୃଥୁଳା.ସ୍ଥୂଳକାୟା(ସ୍ତ୍ରୀ)
ମୋଟୁଆ—ଗ୍ରା.ବି°.ସ୍ଥୂଳ,ମୋଟା.ପୃଥୁଳ ।
ମୋଟେ—ଗ୍ରା. କ୍ରି. ବି°. ମୁଣ୍ଡୁହିଁ, ଏକାବେଳକେ, ଆଦୌ, ସବୁ ସମେତ ।
ମୋଟ୍ଟାୟିତ—କ୍ଳୀ. ବି. (ମୁଟ୍+ଆୟ+ଇତ) ନାୟିକାର ଭାବବିଶେଷ, ନାୟକକୁ ଦେଖି ବା ସ୍ମରଣକରି ନାୟିକାର କାମୋଦ୍ଦୀପନସୂଚକ ଦେହ ମୋଡ଼ାଭଙ୍ଗ ହେବାରୂପ ଭଙ୍ଗୀ ।
ମୋଠଉଁ—ଗ୍ରା. ଅବ୍ୟ. ମୋ ନିକଟରୁ, ମୋଠାରୁ, ମୋଅପେକ୍ଷା ।
ମୋଠା(ଠେ)ଇଁ—ଗ୍ରା.ଅ. ମୋଠାରେ, ମୋ ନିକଟରେ ।
ମୋଠାକୁ—ଗ୍ରା.ଅବ୍ୟ. ମୋନିକଟକୁ ।
ମୋଠାରେ—ଗ୍ରା.ଅବ୍ୟ. ମୋ ନିକଟରେ
ମୋଡ଼—ଗ୍ରା. ବି.ବାଙ୍କ,କୌଣସି ବସ୍ତୁର ବଙ୍କା ହୋଇଯାଇଥିବା ସ୍ଥାନ, ଯେଉଁଠାରେ ପଥ ବା ବନ୍ଧ ବା ନଦୀ ବଙ୍କହୋଇ ଅନ୍ୟଦିଗକୁ ଯାଇଥାଏ, ବଙ୍କକରଣ, ପଥଶୀର୍ଷ, ଦୁଇଟି ରାସ୍ତା ବା ଗଳିର ଛକ, କପଟତା, ଶଠତା ।
ମୋଡ଼ା—ଗ୍ରା. ବି. ବଳିବା, ମୋଡ଼ିବା, ଅନ୍ୟଦିଗକୁ ବୁଲାଇବା, ବାଉଁଶ ବା ବେତରେ ନିର୍ମିତ ଉଚ୍ଚଆସନ, ଅଙ୍ଗପ୍ରତ୍ୟଙ୍ଗାଦି ଘଷିବା, ବନ୍ଦୀକରଣ,ପରାଜୟ,ଅଗାଣ୍ଡିଆ ପାନାଦି ରଖିବାର ମଲ ବା ଅଖିରା, ମୋଟକ, ସୂତାଆଦି ବସ୍ତୁର ଗୁଡ଼ିଆ ହୋଇଥିବା କୁଣ୍ଡଳୀ, କେତେଗୁଡ଼ିଏ କେଶ ଏକଥିବା ସନ୍ତାକଣ୍ଟା,(ବି°) ବଳାହୋଇଥିବା ।
ମୋଡ଼ାଏ—ଗ୍ରା. ବି. ଏକଥର ମୋଡ଼ିବା, ଏକମୋଡ଼ା ସୂତା ।
ମୋଡ଼ାଛୁଇଁ—ଗ୍ରା. ବି. (ସଂ-ମୂର୍ଣ୍ଣି ତିକା) ଏକାପ୍ରକାରଛୁଇଁ,ମୋଡ଼ାଫଳ(ଏହାକୁ ତେଲରେ ପକାଇ ଶିଶୁମାନଙ୍କୁ ଲଗାଇବାକୁ ଦେଲେ ଶିଶୁମାନଙ୍କର ମୋଡ଼ାଭଡ଼ା ଓ ପୁଅରୋଗ ଛାଡ଼ିଯାଏ) ।
ମୋଡ଼ାମୋଡ଼—ଗ୍ରା. ବି.ମୋଡ଼ିବା କ୍ରିୟା
ମୋଡ଼ି—ଗ୍ରା. ବି. ମରହଟ୍ଟାମାନଙ୍କର ସାଧାରଣ ବ୍ୟବହୃତ ଲିଖିତ ଲିପି ।
ମୋଡ଼ିଭଙ୍ଗିହେବା—ଗ୍ରା. କ୍ରି. ଦେହହାତ ମୋଡ଼ିଭଙ୍ଗି ହୋଇ ଅଳସ ମେଣ୍ଟାଇବା
ମୋଡ଼ିବା—ଗ୍ରା.କ୍ରି.ବଙ୍କକରିବା, ବଙ୍କେଇବା, ଅଙ୍ଗମର୍ଦ୍ଦନ କରିବା, ଘଷିବା, ଅନ୍ୟଦିଗକୁ ବୁଲାଇବା, ମୋଡ଼ାଇବା, (ଅ.ଲର୍ଥ)ଚଢ଼ଆଦିକୁ ହାତଦ୍ୱାରା ମୋଡ଼ି ମାରିପକାଇବା ।
ମୋଡ଼ିମାଡ଼ିହେବା—ଗ୍ରା. କ୍ରି. ଆପଣାର ଅଙ୍ଗପ୍ରତ୍ୟଙ୍ଗକୁ ନିଜ ହାତରେ ମୋଡ଼ି ହେବା, ମୋଡ଼ିଭଙ୍ଗିହେବା ଦେଖ ।
ମୋଡ଼ିମାଡ଼ିହୋଇରହିବା—ଗ୍ରା. କ୍ରି. ଆପଣାର ପରାକ୍ରମ ଦେଖାଇସାରି ଶେଷକୁ ନିରସ୍ତ ହୋଇ ରହିବା,ଭୁଷ୍ଣୀଂଭାବ ଧାରଣକରିବା ।
ମୋଡ଼ିମୋଡ଼ି—ଗ୍ରା. (ଅସମାପିକା କ୍ରି. ଓ ବି°) ମୋଡ଼ିବା କାର୍ଯ୍ୟକରି,ମର୍ଦ୍ଦନକରି, (ଗ୍ରା.ବି°) ବଙ୍କ, ବଙ୍କା ।
ମୋଡ଼ିମୋଡ଼ିଆ—ଗ୍ରା. ବି°. ମୋଡ଼ିମୋଡ଼ି ହୋଇଥିବା, (ଗ୍ରା. ବି. ବୈଦ୍ୟକ)ଏକପ୍ରକାର ଗଛ ।
ମୋଡ଼ିହେବା—ଗ୍ରା. ବି. ବ୍ୟଥିତହେବା, ଶୂଳଗ୍ରସ୍ତ ହେବା,ପେଟକାମୁଡ଼ି ହେବା
ମୋଢ଼ା—ଗ୍ରା. ବି°.ମୂଢ଼,ନିର୍ବୋଧ, ଦୁଷ୍ଟ, ଘାତୁକ ।
ମୋଣ—ପୁ°. ବି.(ମୁଣ୍+ଅ) ଶୁଷ୍କଫଳ, ନକ୍ର, କୁମ୍ଭୀର,ମକ୍ଷିକାବିଶେଷ,ପରିମାଣବିଶେଷ, ୪୦ସେର, ସାପର ପେଡ଼ା ।
ମୋତ୍ସୋ—ଗ୍ରା. (ଉତ୍ତରଭାଷା) ସର୍ବ. ମୋତେ, ମୋର ।
ମୋତହୁଁ—ଗ୍ରା. (ପ୍ରାଚୀନ)ଅ.ମୋଠାରେ।
ମୋତହୁଁ—ଗ୍ରା. (ପ୍ରାଚୀନ)ଅ. ମୋଠାରୁ, ମୋ ଅପେକ୍ଷା । [ ଅସ୍ଥାୟୀ ବିବାହ ।
ମୋତା—ଯା. ବି. ମୁସଲମାନମାନଙ୍କ
ମୋତାବକ୍—ଯା. ବି. ମୁତାବକ ଦେଖ ।
ମୋତାଲୁକେ-ଯା.ବି°.ମୁତାଲୁକେ ଦେଖ
ମୋତି—ଗ୍ରା. ବି. (ସଂ-ମୌକ୍ତିକ) ମୁକ୍ତା, କଂସାରିମାନଙ୍କର ଚଦରଖୋଳିବା ମୋଟା ଆକାରର ଯନ୍ତ୍ର ।
ମୋତିଆ—ଗ୍ରା. ବି. ମଲ୍ଲୀଫୁଲ ।
ମୋତିଆବିନ୍ଦୁ—ଗ୍ରା.ବି.ଚକ୍ଷୁରୋଗବିଶେଷ, ଆଖିରେ ମାଡ଼ିବା ଏକପ୍ରକାର ପରଳ ।
ମୋତିଚୁର୍—ଗ୍ରା.ବି.ସ୍ୱନାମଖ୍ୟାତ ମିଷ୍ଟାନ୍ନବିଶେଷ, ଏକପ୍ରକାର ଧୂଆଁପତ୍ର ।
ମୋତିଜାଲି—ଗ୍ରା. ବି. ମୋତି ଗୁନ୍ଥା ହୋଇ ଜାଲପରି ବୁଣାଯାଇଥିବା ସ୍ତ୍ରୀମାନଙ୍କ କେଶଭୂଷଣ ।
ମୋତିଝଡ଼ା(ଡ଼େ)ଇବା--ଗ୍ରା.କ୍ରି.(ଲ.ଅର୍ଥ) ମନକୁ ମୋହିବାପ୍ରକାରେ ହସିବା,ଲୁହଗଡ଼ାଇବା, କାନ୍ଦିବା, ମନକୁ ମୋହିବା ପ୍ରକାରେ କଥା କହିବା, ଅତି ସୁନ୍ଦର ଗୋଲ ସ୍ପଷ୍ଟ ଅକ୍ଷର ଲେଖିବା ।
ମୋତିଝଡ଼ିବା—ଗ୍ରା. ବି. (ଲ.ଅର୍ଥ)ମନକୁ ମୋହିବାପ୍ରକାରେ ହସିବା,ଲୁହଗଡ଼ାଇ କାନ୍ଦିବା, ମନକୁ ମୋହିବାପ୍ରକାରେ କଥା କହିବା ।
ମୋତିଝରଣା—ବଙ୍ଗଳାର ସାନ୍ତାଳ ପରଗଣାର ରାଜମହଲ ଉପବିଭାଗର ଅନ୍ତର୍ଗତ ଦମାନ. ଇ. କୋ. ନାମକ ପାର୍ବତ୍ୟ ବିଭାଗର ଗୋଟିଏ ଜଳପ୍ରପାତ
ମୋତିମ—ଯା. ବି. ମୁକ୍ତା ।
ମୋତିମସ୍ଜିଦ୍—ଗ୍ରା.ବି. ମୋଗଲସମ୍ରାଟ ସାହାଜାହାନଙ୍କ ନିର୍ମିତ ଆଗ୍ରାର ମସ୍ଜିଦ୍
ମୋତିମାଳ(ଳି)—ଗ୍ରା. ବି କଣ୍ଠାଭରଣବିଶେଷ ।
ମୋତିଲାଲ୍ନେହେରୁ—ଗ୍ରା. ବି. ଆଲ୍ଲାହାବାଦର ସ୍ୱନାମ ପ୍ରସିଦ୍ଧ ସ୍ୱର୍ଗୀୟ ଦେଶସେବକ । [ ଦେଖ ।
ମୋତିହାର-ଗ୍ରା.ବି.ମୁକ୍ତାମାଳା, ମୋତିହାରା

ମୋଡହାସ୍ତ—ଗ୍ରା.ବି.ଏକପ୍ରକାରଧୂଆଁପତ୍ର
ମୋଣପାଲ୍ଲୀ—ମାନ୍ଦ୍ରାଜ ପ୍ରେସିଡେନ୍ସୀର କୃଷ୍ଣାଜିଲ୍ଲାର ଅନ୍ତର୍ଗତ ଗୋଟିଏ ସୁପ୍ରାଚୀନ ବନ୍ଦର ।
ମୋତେ—ଗ୍ରା. ସର୍ବ. ମୋତେ, (ପଦ୍ୟ) ମୋର, ଆମ୍ଭଙ୍କୁ ।
ମୋଥ—ପୁଂ. ବି. ମୁଥା, ମସ୍ତକ ।
ମୋଦ—ପୁଂ. ବି. (ମୁଦ୍+ଭା.ଅ) ହର୍ଷ, ଆନନ୍ଦ, ଆମୋଦ, ସୁଗନ୍ଧ, ସୁବାସ ।
ମୋଦକ—ବି. ( ମୁଦ୍+ଣିଚ୍+ଅକ ) ଖାଦ୍ୟଦ୍ରବ୍ୟବିଶେଷ,ଗୁଡ଼ ଯବାସ ଶର୍କରା, ଶର୍କରାଦିଦ୍ୱାରା ପକ୍ୱୌଷଧବିଶେଷ,ଲଡୁ, ମୁଆଁ, ବର୍ଣ୍ଣସଙ୍କର ଜାତିବିଶେଷ, କ୍ଷତ୍ରିୟପିତା ଓ ଶୂଦ୍ରାମାତାଠାରୁ ଜାତ ସନ୍ତାନ, ଗୁଡ଼ିଆ, (ବିଂ)ଆହ୍ଲାଦଜନକ. (ସ୍ତ୍ରୀ) ମୋଦକା ।
ମୋଦକକାର—ପୁଂ.ବି. ମିଷ୍ଟାନ୍ନ ପ୍ରସ୍ତୁତକାରୀ ଗୁଡ଼ିଆ । [ ପୂରଣ ।
ମୋଦକମୟ—ତ୍ରି. ବିଂ. ମିଷ୍ଟଦ୍ରବ୍ୟପରି-
ମୋଦକର—ପୁଂ.ବି. ଜଣେ ମୁନି, (ବିଂ) ହର୍ଷଜନକ ।
ମୋଦକିକା—ସ୍ତ୍ରୀ. ବି. ମିଷ୍ଟଦ୍ରବ୍ୟ ।
ମୋଦକୀ—ସ୍ତ୍ରୀ. ବି. ମୂର୍ବା, କିଙ୍କିଣୀ,ଏକପ୍ରକାର ଗଦା ।
ମୋଦଦାୟିନୀ—ସ୍ତ୍ରୀ. ବି. ଜାତିପୁଷ୍ପ ବୃକ୍ଷ, (ବିଂ) ଆନନ୍ଦଦାୟିନୀ ।
ମୋଦନ—କ୍ଲୀ. ବି. (ମୁଦ୍+ଣିଚ୍+ଭା. ଅନ) ସିକ୍ଥକ, ମହଣ, ହର୍ଷ, ଆନନ୍ଦ, ଆନନ୍ଦକରଣ, (ବିଂ. କ.ଅନ) ଆନନ୍ଦଜନକ, ହର୍ଷଜନକ ।
ମୋଦନୀୟ—ତ୍ରି. ବିଂ. ଆହ୍ଲାଦଯୋଗ୍ୟ ।
ମୋଦମୋଦିନୀ—ସ୍ତ୍ରୀ. ବି. (ମୋଦମୋଦ +ଇନ୍+ଈ) ଜମ୍ବୁ ।
ମୋଦୟନ୍ତୀ—ସ୍ତ୍ରୀ.ବି.ବନମଲ୍ଲିକା, କାଠମଲ୍ଲୀ, ମୁଗ୍ଧବମଲ୍ଲୀ ।
ମୋଦା—ସ୍ତ୍ରୀ.ବି. (ମୁଦ୍+ଣିଚ୍+ଅ+ଆ) ଅଜମୋଦା, ଶାଲ୍ମଳୀବୃକ୍ଷ, ଜୁଆଣି, ବଣଜୁଆଣି,-(ଗ୍ରା.ବି.)ଆମୋଦ,ଆନନ୍ଦ
ମୋଦାଲ୍ଲ—ଗ୍ରା. ଅ.ଐଶ୍ୱର୍ଯ୍ୟ ବା ବିସ୍ମୟସୂଚକ ଉଚ୍ଚାରିତ ଶବ୍ଦ, ଆହା ।
ମୋଦାଖ୍ୟ—ପୁଂ. ବି. ( ମୋଦ+ଆ+ ଖ୍ୟା+ଅ) ଆମ୍ରବୃକ୍ଷ ।
ମୋଦାଗିରି—ପୁଂ. ବି. ଦେଶଭେଦ ।
ମୋଦାଢ୍ୟା—ସ୍ତ୍ରୀ. ବି. ଅଜମୋଦା,ବନଜୁଆଣି, ଜୁଆଣି, ( ବିଂ ) ହର୍ଷଯୁକ୍ତା, ଆନନ୍ଦବିଶିଷ୍ଟା ।
ମୋଦାଦ୍ରି—ଗ୍ରା.ବି. ମୁଙ୍ଗେରର ନିକଟବର୍ତ୍ତୀ ପର୍ବତଭେଦ ।
ମୋଦିତ—ତ୍ରି.ବିଂ. (ମୁଦ୍+ଣିଚ୍+ମି. ତ) ହର୍ଷଯୁକ୍ତ, ଆନନ୍ଦିତ, (ବି.ଭା.ତ) ଆନନ୍ଦ, ହର୍ଷ ।
ମୋଦିନୀ—ସ୍ତ୍ରୀ.ବି.(ମୋଦ୍+ଇନ୍+ଈ) ଜୁଆଣି, ମଲ୍ଲିକା, ଯୂଥିକା, କସ୍ତୁରୀ, ମଦିରା, ଅଜମୋଦା ।
ମୋଦୀ—ପୁଂ.ବିଂ.(ମୁଦ୍+ଣିଚ୍+ଇନ୍) ଆନନ୍ଦଦାୟକ,ହର୍ଷଯୁକ୍ତ, (ସ୍ତ୍ରୀ)ମୋଦିନୀ
ମୋଧତଲେ—ଗ୍ରା.ଅ.ଆଶ୍ଚର୍ଯ୍ୟ ବା ବିସ୍ମୟସୂଚକ ବାକ୍ୟ ।
ମୋଧନ—ଗ୍ରା.ଅ.(ପ୍ରେମ ବା ସ୍ନେହସୂଚକ ସମ୍ବୋଧନ) ହେ ମୋ ଜୀବଧନ !
ମୋନୁଁ—ପ୍ରା.(ବୌଦ୍ଧ)ଅ. ମୋଠାରୁ ।
ମୋନେ—ପ୍ରା.(ବୌଦ୍ଧ)ଅ. ମୋଠାରେ ।
ମୋପଲ୍ଲା—ଗ୍ରା.ବି.ଦକ୍ଷିଣ ଭାରତର ପଶ୍ଚିମ ଉପକୂଳ କାଲିକଟଅଞ୍ଚଳସ୍ଥ ମୁସଲମାନ ଜାତିବିଶେଷ । [ ଦେଖ ।
ମୋଫତ୍—ଯା. ବି. ବିନାମୂଲ୍ୟ, ମୁଫତ୍
ମୋଫତ—ଯା.ବିଂ.ମାଗଣାରେ ପ୍ରାପ୍ତ ।
ମୋବଲକ(ଗ)—ଯା.ବି.ମୁବଲକ୍ ଦେଖ
ମୋମ—ଗ୍ରା. ବି. ସ୍ୱନାମଖ୍ୟାତ ମକ୍ଷିକାମଳ, ମହଣ, ମହୁସିଠା ।
ମୋମଜାମା—ଯା.ବି.ମହଣ ଲଗିଥିବା ବସ୍ତ୍ର
ମୋମହୃଷ—ପୁଂ. ବି. ମୋମହୃଷବିଳାସ ନାମକ ବୈଦ୍ୟକ ଗ୍ରନ୍ଥପ୍ରଣେତା ।
ମୋମୁଣ୍ଡଖାଆ—ଗ୍ରା. (ବାକ୍ୟ)ମୋରାଣ ।
ମୋର—ଗ୍ରା. ସର୍ବ. ଆମ୍ଭର ।
ମୋରଟ—କ୍ଲୀ. ବି. (ମୁର+ଅଟ) ଧଳା ଆଖୁଗଛ, ଅଙ୍କୋଟପୁଷ୍ପ, କରଡଗଛ, ପ୍ରସବର ସପ୍ତରାତ୍ର ପରେ ସ୍ତନରୁ ଜାତ ଦୁଗ୍ଧ ।
ମୋରଟକ—କ୍ଲୀ. ବି. (ମୋରଟ୍+କ) ମୋରଟ ଦେଖ, ବୃକ୍ଷବିଶେଷ, ଖଦିର, ପାକଡ଼ା ଖଇର । [ ଦୂର୍ବା ।
ମୋରଟା—ସ୍ତ୍ରୀ.ବି.(ମୋରଟ+ଆ)ମୂର୍ବା,
ମୋରବ୍ବା—ଯା. ବି. ରସ ଦ୍ୱାରା ପକ୍ୱ ଫଳାଦି, ମୁରବ୍ବା ଦେଖ ।
ମୋରମ୍—ଯା.ବି. ପକ୍କା ରାସ୍ତାରେ ବିଛାଯିବା ଶ୍ରେଷ୍ଠ ଗୋଡ଼ି । [ ରାଣ ।
ମୋରମା—ପ୍ରା.(କଳାହାଣ୍ଡି)ବି.ମୋ ମାଆଙ୍କ
ମୋରାକ—ପୁଂ.ବି. କାଶ୍ମୀରରାଜ ପ୍ରବରସେନଙ୍କର ମନ୍ତ୍ରୀ ।
ମୋରାଦାବାଦ—ଉ: ପଃଭାରତର ଗୋଟିଏ ନଗର ଓ ଜିଲ୍ଲା ।
ମୋରାଲକାମୁଣ୍ଡ—ଉତ୍ତର ଭାରତର ବୃଣାହର ରାଜ୍ୟର ଅନ୍ତର୍ଗତ ଗୋଟିଏ ପର୍ବତଶ୍ରେଣୀ ।
ମୋରିକା—ସ୍ତ୍ରୀ.ବି. ଜନୈକ ସ୍ତ୍ରୀ କବି ।
ମୋରିହ(ହାଁ)—ଗ୍ରା.ବି.ଘନକେନା ଥିବା ପତ୍ରବିଶିଷ୍ଟ ବଡ଼ ବନ୍ୟଗଛ ।
ମୋରେ—ଗ୍ରା.ସର୍ବ. ମୋଠାରେ, ମୋ ପ୍ରତି, ମୋଦ୍ୱାରା, ମୋତେ, ଆମ୍ଭଙ୍କୁ ।
ମୋରେଶ୍ୱରଭଟ୍ଟ-ବୈଦ୍ୟାମୃତ ରଚୟିତା
ମୋର୍ଣ୍ଣା—ବି. ବେରାର ରାଜ୍ୟରେ ପ୍ରବାହିତ ଗୋଟିଏ ନଦୀ, ପୂର୍ଣ୍ଣାନଦୀର ଅନ୍ୟତମ ଶାଖା ।
ମୋଲ୍—ପ୍ରା.(ବସ୍ତର ଓ ଭଡରଭାଷା)ବି. ମୂଲ୍ୟ, ଦାମ୍ ।
ମୋଲ୍ନା—ଯା. ବି.ମୁସଲମାନ ପଣ୍ଡିତମାନଙ୍କ ଉପାଧି ।
ମୋଲାଏମ୍—ଯା. କୋମଳ, ଅଭିମତ, ସୁଖସେବ୍ୟ ।
ମୋଲିଖ୍—ଗ୍ରା.ବିଂ. ମୋ ତୁଲ୍ୟ,ମୋପରି, ମୋର ଉପଯୁକ୍ତ ।
ମୋଲମ—ଯା. ବିଂ. କୋମଳ, ନରମ, ପଦ୍ମର ମୃଣାଳ ।
ମୋଲ୍ଲା—ଯା.ବି. ଶିକ୍ଷକ, ବିଦ୍ୱାନ୍ ।
ମୋଷ—ପୁଂ.ବି. (ମୁଷ୍+ଭା.ଅ)ଆଚ୍ଛେଦ, ପ୍ରତାରଣା, ପ୍ରତ୍ୟାହରଣ, ଚୈର, ଲୁଣ୍ଠନ, ଅପହରଣ, ଛେଦନ, ବଧ, ନାଶ ।

ମୋଷକ—ପୁଂ. ତ. ( ମୁଷ୍+କ.ଅକ ) ତସ୍କର, ଚୋର, ଲୁଣ୍ଠକ, ଧପ୍ପାବାଜ୍ (ସ୍ତ୍ରୀ) ମୋଷିକା ।

ମୋଷକ—ଗ୍ରା. ବି. ମୁସଲମାନମାନଙ୍କ ବ୍ୟବହୃତ ଚର୍ମନିର୍ମିତ ଜଳାଧାରବିଶେଷ ।

ମୋଷଣ—କ୍ଲୀ.ବି. (ମୁଷ୍+ଭା.ଅନ)ଚୋର ପ୍ରତାରଣା, ଲୁଣ୍ଠନ, ଛେଦନ, ବଧ, (ବିଂ.କ.ଅନ) ଅପହାରକ ।

ମୋଷୟିତ୍ନୁ—ପୁଂ.ବି.ବ୍ରାହ୍ମଣ,କୋକିଳ ।

ମୋଷା—ସ୍ତ୍ରୀ. ବି. ଚୌର୍ଯ୍ୟ, ଡକାଏତି ।

ମୋଷିତା—ତ୍ରି.ବିଂ.(ମୁଷ୍+ତୃ)ମୋଷକ, ଚୌର ।

ମୋସ୍ତର—ଯା. ବି. ପ୍ରକାର ।

ମୋସ୍ତାଏଦ୍—ଯା. ବିଂ. ପ୍ରସ୍ତୁତ,ଉଦ୍ୟତ, ମୁସ୍ତୈଦ ।

ମୋସ୍ଲିମ—ଯା. ବି. ମୁସଲମାନ ।

ମୋହ—ପୁଂ. ବି. (ମୁହ୍+ଭା.ଅ)ମୂର୍ଚ୍ଛା, ଅବିଦ୍ୟା, ଦୁଃଖ, ଅଚୈତନ୍ୟ, ଅଜ୍ଞତା, ମମତା, ମାୟା,କିଂକର୍ତ୍ତବ୍ୟ ବିମୂଢ଼ତା, ଭ୍ରମ, ପ୍ରେମ, ସ୍ନେହ, ସାହିତ୍ୟରେ ୩୩ ଟି ସଞ୍ଚାରୀଭାବ ମଧ୍ୟରୁ ଏକତମ ।

ମୋହକ—ପୁଂ. ବିଂ. (ମୋହ+କ.ଅକ) ମୋହୋତ୍ପାଦକ,ଯାହା ମୋହ ଜନ୍ମାଏ ।

ମୋହକାରକ—ପୁଂ. ବିଂ. ଯାହା ମୋହ ଜନ୍ମାଏ । [ କୂପ ।

ମୋହକୂପ—ବି. (ରୂ.କ.ଧା) ମୋହରୂପ

ମୋହଘୋର—ପୁଂ. ବି. (୬ତତ୍)ମାୟାଜନ୍ୟ ଭ୍ରମ, ଉତ୍କଟମୋହ ।

ମୋହଜ—ବିଂ.(ମୋହ+ଜନ୍+କ.ଅ) ମୋହରୁ ଜାତ ।

ମୋହଜନକ—ପୁଂ. ବିଂ. ମୋହୋତ୍ପାଦକ, ଯାହାଦ୍ୱାରା ମୋହ ଜନ୍ମେ, (ବି) ଜାଦୁକର ।

ମୋହଜାଲ—ବି.(ରୂ.କ.ଧା)ମୋହପାଶ ।

ମୋହଧ୍ୱଂସ—ବି. ( ୬ତତ୍ ) ମୋହର ବିନାଶ ।

ମୋହନ—ପୁଂ.ବି.(ମୁହ୍+ଣିଚ୍+ଅନ) ଧୁସ୍ତୁରବୃକ୍ଷ,କାମଦେବଙ୍କର ପଞ୍ଚବାଣାନ୍ତର୍ଗତ ବାଣବିଶେଷ, ନୃପବିଶେଷ, ମୁଗ୍ଧକରିବା, ମୁଗ୍ଧ ହେବା,ମୈଥୁନ, ପ୍ରଲୋଭନ,ତନ୍ତ୍ରୋକ୍ତ ଅଭିଚାରବିଶେଷ, ଶ୍ରୀକୃଷ୍ଣ,(ପୁଂ.ବିଂ)ମୋହଜନକ,ମନୋମୋହକର, (ସ୍ତ୍ରୀ) ମୋହନୀ ।

ମୋହନଦାସକରମଚାନ୍ଦଗାନ୍ଧି—ଗ୍ରା. ବି. ଆଧୁନିକ ଭାରତର ଓ ସଭ୍ୟଜଗତରେ ନବଯୁଗର ପ୍ରବର୍ତ୍ତୟିତା ମହାପୁରୁଷ, ମହାତ୍ମାଗାନ୍ଧି ।

ମୋହନଭୋଗ—ପୁଂ.ବି. ସମିତ (ସୁଜି) ଶର୍କରା ଘୃତାଦିଯୁକ୍ତ ମିଷ୍ଟାନ୍ନବିଶେଷ ।

ମୋହନମାଳା—ବି.ମଉନମାଳା ଦେଖ ।

ମୋହନଲାଲ—ଗ୍ରା.ବି. ପାରସ୍ୟଭାଷାବିଦ୍ ଜଣେ ହିନ୍ଦୁପଣ୍ଡିତ, ବାଲବୋଧ ନାମକ ବ୍ୟାକରଣ ପ୍ରଣେତା ଜଣେ ହିନ୍ଦୁ କବି ।

ମୋହନବଲ୍ଲିକା—ସ୍ତ୍ରୀ. ବି. ବନ୍ଦାକ, ମୋହନବଲ୍ଲୀ ।

ମୋହନା—ସ୍ତ୍ରୀ.ବି. (ମୋହ+ଅନ+ଆ) ତ୍ରିପୁରମାଳୀପୁଷ୍ପ, ମରୁଜ୍ୱାଲା, (ଗ୍ରା.ବି) ଗୁଳ୍ମବିଶେଷ ।

ମୋହନାମୋଗଲ—ଗ୍ରା. ବି. ଓଡ଼ିଶାର ମାଳିକାମାନଙ୍କରେ ଲିଖିତ କଳିର ଶେଷଭାଗରେ ଭାରତ ଆକ୍ରମଣକାରୀ ସୱାର ।

ମୋହନାସ୍ତ୍ର—ବି. ଶତ୍ରୁକୁ ମୂର୍ଚ୍ଛିତ କରିବାରେ ପ୍ରଯୁକ୍ତ ପ୍ରାଚୀନାସ୍ତ୍ରବିଶେଷ ।

ମୋହନି—ଗ୍ରା. ବି. ଗୁଣି, ଜାଦୁ, ଜାଦୁ ପ୍ରୟୋଗ ଦ୍ୱାରା ମୁଗ୍ଧ କରିବା ।

ମୋହନିଦ୍ରା—ସ୍ତ୍ରୀ. ବି. (କ.ଧା) ମୋହ, ମୋହରୂପ ନିଦ୍ରା, ମୋହାନ୍ଧକାର ।

ମୋହନୀ—ସ୍ତ୍ରୀ. ବି. (ମୁହ୍+ଅନ+ଈ) ମାୟା, ଜାଦୁ, ଗୁଣି, ବଶୀକରଣମନ୍ତ୍ର, ଉପୋଦକୀ,ପୁଇଶାଗ,ବଟପତ୍ରୀ ନାମକ ଗୁଳ୍ମ ।

ମୋହନୀୟ—ତ୍ରି.ବିଂ.(ମୁହ୍+ମୈ.ଅନୀୟ) ମୋହିତ କରିବାର ଯୋଗ୍ୟ, ଯାହା ଅନ୍ୟକୁ ମୋହିତ କରିପାରେ,ଗୋଲମାଲିଆ ।

ମୋହନ୍ତ—ଗ୍ରା. ବି. ସନ୍ନ୍ୟାସୀବିଶେଷ, ମହନ୍ତ, ମଠାଧୀଶ ।

ମୋହପାଶ—ବି. (ରୂ.କ.ଧା) ମୋହରୂପ ଜାଲ, ସଂସାରର ମାୟାବନ୍ଧନ ।

ମୋହବତ୍—ଯା. ବି. ଉପରୋଧ, ଚକ୍ଷୁଲଜ୍ଜା, ବନ୍ଧୁତ୍ୱ ।

ମୋହବତ୍କରିବା—ଗ୍ରା. କ୍ରି. ବନ୍ଧୁତ୍ୱ ବା ଚକ୍ଷୁଲଜ୍ଜାକୁ ଦୃଷ୍ଟିରେ ରଖି କାର୍ଯ୍ୟକରିବା ।

ମୋହବତି—ଯା. ବିଂ. ଯେ ଉପରୋଧ ରଖି କାର୍ଯ୍ୟ କରେ ।

ମୋହବନ୍ଦ—ଗ୍ରା. ବିଂ. (୩ତତ୍) ମାୟାଦ୍ୱାରା ଆବଦ୍ଧ ।

ମୋହବନ୍ଧନ—ବି. (୬ତତ୍) ମାୟାରୂପ ବନ୍ଧନ, ଅଜ୍ଞାନର ଆବରଣ ।

ମୋହମଦ—ବି. (କ.ଧା) ମୋହଜନ୍ୟ ଗର୍ବ,ମୋହାଚ୍ଛନ୍ନତା ହେତୁ ଅହଙ୍କାର ।

ମୋହମନା—ଗ୍ରା.ବିଂ.ବିଷୟାସକ୍ତି ଜଡ଼ିତ ।

ମୋହମନ୍ତ୍ର—ପୁଂ. ବି. ମୋହ ଉତ୍ପାଦକ ମନ୍ତ୍ରବିଶେଷ, ମୁଗ୍ଧତାଜନକ ବାକ୍ୟ ।

ମୋହମୟ—ତ୍ରି. ବିଂ. (ମୋହ+ମୟ) ମୋହପୂର୍ଣ୍ଣ, ମାୟାଚ୍ଛନ୍ନ, (ସ୍ତ୍ରୀ) ମୋହମୟୀ ।

ମୋହମାନ—ଗ୍ରା. ବି. ଗୀତର ପ୍ରଥମ ଅକ୍ଷରରେ ମୃଦଙ୍ଗାଦି ବାଦ୍ୟର ତାଳ ଛିଣ୍ଡିବା ବା ବିରାମହେବା, ( ଗ୍ରା.ବିଂ ) ମୋହିତ ।

ମୋହମୁଗ୍ଧ—ବିଂ. (୩ତତ୍) ମାୟାମୁଗ୍ଧ, ଅଜ୍ଞାନତାବଶତଃ ମୋହପ୍ରାପ୍ତ ।

ମୋହମୁଦ୍ଗର—ପୁଂ. ବି. ଶଙ୍କରାଚାର୍ଯ୍ୟ ବିରଚିତ ସଂସାରର ଅନିତ୍ୟତାଜ୍ଞାପକ ଗ୍ରନ୍ଥବିଶେଷ ।

ମୋହୟିତା—ପୁଂ. ବିଂ. (ମୁହ୍+ଣିଚ୍+ତୃ) ମୋହକାରକ ।

ମୋହରିବା—ଗ୍ରା. କ୍ରି. ମୂର୍ଚ୍ଛିତ ହେବା ।

ମୋହର—ଯା.ବି.ସ୍ୱର୍ଣ୍ଣ ମୁଦ୍ରା,ମୁଦ୍ରା, ଛାପ, ସିଲ୍, ନାମାଙ୍କିତ ମୁଦ୍ରା, ( ଗ୍ରା.ସଂ ) ମୋର, ଆମ୍ଭର ।

ମୋହରର—ଯା. ବି,ଲେଖକ,ଲେଖକକର୍ମଚାରୀ ।

ମୋହରରି—ଯା.ବି,ମୋହରରର କାର୍ଯ୍ୟ ।

ମୋହଗ୍ରନ୍ଥି—ସ୍ତ୍ରୀ. ବି. (୬ତତ୍)ଦୈନନ୍ଦିନ

ପ୍ରଳୟ, ବ୍ରହ୍ମାଙ୍କ ପରମାୟୁର ୧୫ ବର୍ଷ ପରେ ଘଟିବା ମହାପ୍ରଳୟପ୍ରଭୃତି, ଜନ୍ମାଷ୍ଟମୀପ୍ରଭୃତି । [ ଆମୃର ।

ମୋହରଣ—ଗ୍ରା. ସଂ. ନଜର. ଆପଣାର,

ମୋହବାନ୍—ପୁଂ.ବଂ. (ମୋହ + ବତ୍) ମୋହଯୁକ୍ତ, ମୋହବିଶିଷ୍ଟ ।

ମୋହଶାସ୍ତ୍ର—କ୍ଲୀ.ବ. (କ.ଧା) ଅବିଦ୍ୟାଜନକଗ୍ରନ୍ଥ, ଜାଦୁବିଦ୍ୟା ।

ମୋହାଣ—ଗ୍ରା. ବ. ମୁହାଣ ଦେଖ ।

ମୋହାନ୍ତ—ପୁଂ.ବ. (ବ.ଗ୍ରା) ମଠାଧୀଶ, ସନ୍ନ୍ୟାସୀ, ବୈରାଗୀ, ମହନ୍ତ ।

ମୋହାବେଶ--ବ.(୬ତତ୍ର)ମୋହଘଟିବା ।

ମୋହିଁବା—ଗ୍ରା. କ୍ରି. (ସକର୍ମକ) ଦଧିଦୁଗ୍ଧଆଦି ଜଳୀୟ ପଦାର୍ଥକୁ ମୁହିଁାଇବା, ମନ୍ଥନ କରିବା,(କୌଣସି ବସ୍ତୁ,କୌଣସି ସ୍ଥାନ ବା ଜନ୍ତୁର) ଅଭିମୁଖରେ ଗତ କରିବା, ଆଡ଼କୁ ମୁହଁ କରିବା ।

ମୋହିତ — ବଂ. (ମୋହ + ଇତ)ମୋହପ୍ରାପ୍ତ, ପ୍ରତାରିତ, ମୁଗ୍ଧ ।

ମୋହନ—ଗ୍ରା.ବ. ଓଡ଼ିଶା ଗଡ଼ଜାତରେ ଜାତ ଏକପ୍ରକାର ଗଛ, ମଇଗଛ ।

ମୋହିନୀ—ସ୍ତ୍ରୀ.ବ. (ମୁହ୍ + ଣିଚ୍ + ଇନ୍ + ଈ) ତ୍ରିପୁରମାଳୀ ପୁଷ୍ପ, ବଟପର୍ଣ୍ଣୀ, ସମୁଦ୍ରମନ୍ଥନ କାଳରେ ଭଗବାନଙ୍କର ସ୍ତ୍ରୀରୂପ ଅବତାରବିଶେଷ, ସ୍ୱବେଶ୍ୟା ବା ଅପ୍ସରାବିଶେଷ, ତନ୍ତ୍ରୋକ୍ତ ଅଭିଚାର ବା ପ୍ରୟୋଗବିଶେଷ, ମୋହକାରିଣୀ ସ୍ତ୍ରୀ,ବଞ୍ଚନାକାରିଣୀ ସ୍ତ୍ରୀ,ବୈଶାଖ ଶୁକ୍ଳ ଏକାଦଶୀ, ଜାଦୁ, ଗୁଣି,(ସ୍ତ୍ରୀ.ବଂ) ମୋହକାରିଣୀ, ବଞ୍ଚନାକାରିଣୀ ।

ମୋହିନୀକନ୍ୟା—ସ୍ତ୍ରୀ. ବ. ସମୁଦ୍ରମନ୍ଥନ କାଳରେ ଅସୁରମାନଙ୍କୁ ମୋହିତକରିବା ନିମନ୍ତେ ଭଗବାନଙ୍କର ସ୍ତ୍ରୀରୂପ ଅବତାରବିଶେଷ ।

ମୋହିବା—ଗ୍ରା. କ୍ରି. (ସକର୍ମକ) ମୁଗ୍ଧ କରିବା,ବଶୀଭୂତକରିବା,ମୁଗ୍ଧହେବା, ବ୍ୟାକୁଳ କରିବା,ବ୍ୟାକୁଳହେବା,ଏକାଠି ମିଶାଇ ଘାଣ୍ଟି କରିବା, ଭ୍ରମରେ ପକାଇବା ।

ମୋହୀ—ପୁଂ.ବଂ. (ମୁହ୍ + ଣିଚ୍ + ଇନ୍) ମୋହକର୍ତ୍ତା, ମୋହକାରକ, ଜ୍ଞାନନାଶକ, (କ.ଇନ୍) ମୋହପ୍ରାପ୍ତ,ମୁଗ୍ଧ, (ସ୍ତ୍ରୀ) ମୋହିନୀ ।

ମୋହୁଳ—ପୁଂ. ବଂ. ମୋହବାଧାଯୁକ୍ତ ।

ମୋହୁଡ଼—ଗ୍ରା.(ମେଦିନୀପୁର)ବ.ଗୋରୁଙ୍କ ମୁହଁରେ ବନ୍ଧାଯିବା ତୁଣ୍ଡୀ ।

ମୋହୋ—ଗ୍ରା. ସଂ. ମୋହର, ମୁଁ ।

ମୋହୋପମା—ସ୍ତ୍ରୀ. ବ. ଉପମାଲଙ୍କାର ଭେଦ ।

ମୌ—ଗ୍ରା. ବ. ମୌଃ ଦେଖ ।

ମୌଃ—ଯା. ଅବ୍ୟ. ମୌଜା, ମୌଜେ, ସାକନ୍ ।

ମୌକୁଳି—ପୁଂ. ବ. (ମୁକୁଳ + ଅ + ଇ) କାକ, କୁଆ ।

ମୌକ୍ତିକ—କ୍ଲୀ. ବ. ( ମୁକ୍ତା + ଇକ ) ମୁକ୍ତା, ମୋତି, ଅନ୍ନ ।

ମୌକ୍ତିକତଣ୍ଡୁଳ—ପୁଂ.ବ.ଧବଳ ଯବନାଳ, ଶ୍ୱେତ ଜନର ।

ମୌକ୍ତିକଦାମ—କ୍ଲୀ. ବ. ଛନ୍ଦୋଭେଦ ।

ମୌକ୍ତିକପ୍ରସବା—ସ୍ତ୍ରୀ.ବ. (୬ତତ୍ର)ଶୁକ୍ତି, ଶାମୁକା ।

ମୌକ୍ତିକମାଳା—ସ୍ତ୍ରୀ. ବ. ଛନ୍ଦୋଭେଦ ।

ମୌକ୍ତିକରତ୍ନ—କ୍ଲୀ. ବ. ମୁକ୍ତା ରତ୍ନ ।

ମୌକ୍ତିକଶୁକ୍ତି—ସ୍ତ୍ରୀ. ବ. ଶୁକ୍ତି, ମୁକ୍ତାର ଶାମୁକା ।

ମୌକ୍ତିକାବଳି—ପୁଂ. ବ. (୬ତତ୍ର)ମୁକ୍ତାବଳୀ, ମୁକ୍ତାହାର, ମୁକ୍ତାମାଳା ।

ମୌକ୍ୟ—କ୍ଲୀ.ବ. (ମୂକ + ଷ୍ଣ.ଯ)ମୂକର ଭାବ, ମୂକତା ।

ମୌକ୍ଷିକ—ତ୍ରି. ବଂ. ଗ୍ରହଣାନ୍ତେ ଗ୍ରହଣ ମୋକ୍ଷସମ୍ବନ୍ଧୀୟ ।

ମୌଖ--କ୍ଲୀ.ବ.(ମୁଖ + ଅ)ମୁଖସମ୍ବନ୍ଧାଧୀନ ବା କୃତପାପ, (ବଂ) ମୁଖସମ୍ବନ୍ଧୀୟ ।

ମୌଖର--ବ .(ମୁଖର + ଅ)ମୁଖରଭାବ, ମୁଖରତା । [ ରାଜବଂଶ ।

ମୌଖର—ବ.ଉତ୍ତର ଭାରତର ଗୋଟିଏ

ମୌଖର୍ଯ୍ୟ—କ୍ଲୀ. ବ. (ମୁଖର + ଯ)ମୁଖରର ଭାବ, ପ୍ରଗଲ୍‌ଭତା, ମୁଖରତା ।

ମୌଖିକ—ବଂ. ( ମୁଖ + ଇକ ) ମୁଖସମ୍ବନ୍ଧୀୟ, ବାଚକ, ବାକ୍ୟରେ ପ୍ରକାଶିତ,ଛଳନାପୂର୍ଣ୍ଣ,କଳ୍ପନାପୂର୍ଣ୍ଣ,ବାହ୍ୟ ।

ମୌଖିକଗଣିତ—ବ. ମାନସାଙ୍କ ।

ମୌଖ୍ୟ—କ୍ଲୀ. ବ. (ମୁଖ + ଅ) ମୁଖ୍ୟତ୍ୱ, ପ୍ରାଧାନ୍ୟ ।

ମୌଗ୍ଧ—ଗ୍ରା. ବ. ନବଯୌବନ ।

ମୌଗ୍ଧ୍ୟ—କ୍ଲୀ.ବ(ମୁଗ୍ଧ + ଷ୍ଣ.ଯ)ନିର୍ବୋଧତା,ମୁଗ୍ଧତା,ସ୍ତ୍ରୀଲୋକର ଭାବବିଶେଷ ।

ମୌଘ୍ୟ—କ୍ଲୀ.ବ(ମୋଘ + ଯ)ବିଫଳତା, ବୃଥା ।

ମୌଚ—କ୍ଲୀ.ବ. କଦଳୀଫଳ, ମୋଚ ।

ମୌଜ୍—ଯା.ବ.ତରଙ୍ଗ, ଢେଉ, ମାଦକ ଦ୍ରବ୍ୟ ସେବନରେ ମାନସିକ ସୁଖାନୁଭବ, ଖାମ୍‌ଖିଆଲ୍, ମଉଜ ଦେଖ ।

ମୌଜା--ଯା.ବ.ପରଗଣାର ବିଭାଗ,ଗ୍ରାମ ।

ମୌଜ—ଯା. ବଂ. ମଉଜ ଦେଖ ।

ମୌଜୁଦ(ଦ୍)—ଯା.ଯାହା ଉପସ୍ଥିତ ଅଛି, ପ୍ରସ୍ତୁତ, ଉଦ୍ଧୃତ,ସଞ୍ଚିତ, ଗଚ୍ଛିତ, ମଉଜୁଦ୍ ଦେଖ ।

ମୌକେର—ଯା. ବ. କାରଣ, ହେତୁ ।

ମୌଞ୍ଜ—ତ୍ରି.ବଂ(ମୁଞ୍ଜ + ଅ)ମୁଞ୍ଜତୃଣ ନିର୍ମିତ

ମୌଞ୍ଜକ—ପୁଂ.ବ.ମୁଞ୍ଜ ତୃଣର ଗୋଟିଏ ଗୋଟିଏ ପତ୍ର ।

ମୌଞ୍ଜୀ—ପୁଂ.ବଂ. (ମୁଞ୍ଜ + ଅ + ଇନ୍) ମୁଞ୍ଜତୃଣ ମେଖଳା ପରିହିତ, (ସ୍ତ୍ରୀ.ବ. ମୁଞ୍ଜ + ଅ + ଈ)ମୁଞ୍ଜନିର୍ମିତ ମେଖଳା ।

ମୌଞ୍ଜୀତୃଣାଜ୍ୟ—ପୁଂ.ବ(ବ.ଗ୍ରା)ମୁଞ୍ଜତୃଣ

ମୌଞ୍ଜୀପତ୍ରା—ସ୍ତ୍ରୀ. ବ. ବଲ୍‌ଜା ।

ମୌଞ୍ଜୀମେଖଳା—ବ. ମୌଞ୍ଜୀ ଦେଖ ।

ମୌଞ୍ଜୀୟ—ତ୍ରି. ବଂ. ମୁଞ୍ଜସମ୍ବନ୍ଧୀୟ, ତୃଣନିର୍ମିତ ।

ମୌଞ୍ଜୀବନ୍ଧ(ନ)—କ୍ଲୀ.ବ. (୬ତତ୍ର)ଉପନୟନ ସଂସ୍କାରବିଶେଷ ।

ମୌଢ୍ୟ—କ୍ଲୀ. ବ. (ମୂଢ଼ + ଯ) ମୂଢ଼ତା, ମୋହ, ମୂଢ଼ ପୁଣ, ବାଲ୍ୟାବସ୍ଥା ।

ମୌଣ୍ଡ୍ୟ—ବ.(ମୁଣ୍ଡ + ଯ) ସ୍ୱାଭାବିକ ବା କୃତ୍ରିମ କେଶବିହୀନତା ।

ମୌଢ୍ର—ଗ୍ରା. ବ. ନଶାଖୋରର ମାଦ-

କର୍ତ୍ତା ଉପଭୋଗ ବା ମଇଳ ।
**ମୌତ**—ଯା. ବି. ମରଣ ।
**ମୌତାଦ**—ଯା. ବି. ସ୍ୱଭାବ, ଅଭ୍ୟାସ ।
**ମୌତ୍ର**—କ୍ଳୀ.ବି. (ମୂତ୍ର+ଅ)ମୂତ୍ରସମ୍ବନ୍ଧୀୟ
**ମୌତ୍ରିକ**—ତ୍ରି.ବିଂ. (ମୂତ୍ର+ଇକ)ମୂତ୍ର-ସମ୍ବନ୍ଧୀୟ ।
**ମୌଦ୍ଗ**—ତ୍ରି.ବିଂ. (ମୁଦ୍ଗ+ଅ) ମୁଦ୍ଗ-ସଂସୃଷ୍ଟ, ମୁଦ୍ଗଯୁକ୍ତ ।
**ମୌଦ୍ଗଲ**—ପୁଂ. ବି. (ମୁଦ୍ଗଲ+ଅ) ମୁଦ୍ଗଲ ଋଷିଙ୍କର ଗୋତ୍ରାପତ୍ୟ ।
**ମୌଦ୍ଗଲି**—ପୁଂ. ବି. (ମୁଦ୍ଗଲ+ଇ) କାକ, ବାୟସ ।
**ମୌଦ୍ଗଲାୟନ**—ତ୍ରି.ବିଂ. ମୁଦ୍ଗଲ ନିବାସ, ମୁଦ୍ଗଲଙ୍କର ଅଦୂର ଦେଶ,ମୁଦ୍ଗଲ ଋଷିଥିବା ଦେଶ ।
**ମୌଦ୍ଗଲ୍ୟ**—ପୁଂ.ବିଂ.(ମୁଦ୍ଗଲ+ଯ)ମୁଦ୍ଗଲ ମୁନିଙ୍କ ପୁତ୍ର, ଗୋତ୍ର ପ୍ରବର୍ତ୍ତକ ଋଷିବିଶେଷ ।
**ମୌଦ୍ଗଲ୍ୟାୟନ**--ପୁଂ.ବି. ଶାକ୍ୟ ବୁଦ୍ଧଙ୍କର ଜଣେ ପ୍ରଧାନ ଶିଷ୍ୟ ।
**ମୌଦ୍ଗିକ**—ତ୍ରି.ବିଂ.ମୁଦ୍ଗ ଦ୍ୱାରା କ୍ରୀତ ।
**ମୌଦ୍ଗୀନ**—ତ୍ରି.ବିଂ. (ମୁଦ୍ଗ+ଈନ) ମୁଦ୍ଗ ଦ୍ୱାରା ଜୀବିକା ନିର୍ବାହକାରୀ, (ବି) ଯେଉଁ ଜମିରେ ମୁଗ ହୁଏ ।
**ମୌନ**—ବି. (ମୁନି+ଅ) ତୁଷ୍ଣୀଂଭାବ, କଥା ନକହିବା, ବିଷଣ୍ଣତା, ମୁନିବ୍ରତ, ଫାଲ୍ଗୁନ ମାସର ପ୍ରଥମ ପକ୍ଷ ।
**ମୌନଗୁଣ୍ଡ**—ତ୍ରି.ବିଂ.(ବି.ଗ୍ରା) ଅବନତ-ମସ୍ତକ, ହେଟମାଥ, ନତମୁଖ ।
**ମୌନଭଙ୍ଗ**—ବି. ନିର୍ଦ୍ଦିଷ୍ଟ ସମୟ ମୌନ ରହିବା ପରେ କଥା କହିବା ।
**ମୌନଭଟ୍ଟ**—ପୁଂ. ବି. ଉତ୍ତରରାମଚରିତର ଟୀକାକାର, ନାରାୟଣଙ୍କର ପୂର୍ବ-ପୁରୁଷ, ତର୍କରତ୍ନାକରସେତୁ ପ୍ରଣେତା ।
**ମୌନଭାବ**—ବି. ତୁଷ୍ଣୀଂଭାବ ।
**ମୌନମାଳା**—ଗ୍ରା.ବି. ମଉନମାଳା ।
**ମୌନମୁହାଁ**-ଗ୍ରା.ପୁଂ.ବିଂ.ମଉନମୁହାଁ ଦେଖ
**ମୌନହେବା**—ଗ୍ରା. କ୍ରି. ତୁନିହୋଇ ରହିବା ।

**ମୌନବତୀ**—ସ୍ତ୍ରୀ. ବି. ମୌନଭାବ ଧର-ଥିବା ସ୍ତ୍ରୀଲୋକ ।
**ମୌନବ୍ରତ**—କ୍ଳୀ. ବି. ମୌନରୂପ ବ୍ରତ, ଏହି ବ୍ରତରେ ବାକ୍ନିୟମନ ଆବଶ୍ୟକ
**ମୌନବ୍ରତଗ୍ରହଣ**—ବି. କିଛିକାଳପାଇଁ ପାଟି ନଫିଟାଇବା ରୂପ ବ୍ରତ କରିବା
**ମୌନବ୍ରତଧାରଣ**—ବି. ମୌନବ୍ରତ-ଗ୍ରହଣ ଦେଖ ।
**ମୌନବ୍ରତଧାରୀ**—ପୁଂ. ବିଂ. କିଛିକାଳ ପାଇଁ ପାଟି ନଫିଟାଇବାରୂପ ବ୍ରତା-ଚରଣକାରୀ, (ସ୍ତ୍ରୀ) ଧାରିଣୀ ।
**ମୌନବ୍ରତୀ**—ପୁଂ.ବି. ଉପାସକ ସମ୍ପ୍ର-ଦାୟବିଶେଷ, (ବିଂ) ମୌନବ୍ରତଧାରୀ ଦେଖ, (ସ୍ତ୍ରୀ) ମୌନବ୍ରତିନୀ ।
**ମୌନସମ୍ମତି**—ବି.ମୌନାବଲମ୍ବନଦ୍ୱାରା ସୂଚିତ ସମ୍ମତି ।
**ମୌନସ୍ୱଭାବ**—ବି.କ.ଧା; ନୀରବ ସ୍ୱଭାବ, (ବିଂ)ବି.ଗ୍ରା; ମୌନ ପ୍ରକୃତି-ବିଶିଷ୍ଟ ।
**ମୌନାବତୀ**—ଗ୍ରା.ବି. ମଉନାବତୀ ଦେଖ
**ମୌନାବଲମ୍ବନ**--ବି. ମୌନଭାବଧାରଣ
**ମୌନାବଲମ୍ବୀ**--ପୁଂ.ବିଂ.ଯେ ମଉନଭାବ ଧାରଣ କରିଥାଏ, (ସ୍ତ୍ରୀ) ଲମ୍ବିନୀ ।
**ମୌନିକ**—ତ୍ରି.ବିଂ. (ମୁନି+ଇକ)ମୁନି-ତୁଲ୍ୟ, ମୁନିପର ।
**ମୌନୀ**—ବିଂ. (ମୌନ+ଇନ୍) ନୀରବ, ମୌନବ୍ରତଧାରୀ, (ପୁଂ.ବି) ମୁନି, ଋଷି ।
**ମୌମାଛି**—ଗ୍ରା.ବି. ସ୍ୱନାମପ୍ରସିଦ୍ଧ ପତଙ୍ଗ ଜାତିବିଶେଷ, ମଧୁମାଛି ।
**ମୌରଜିକ**—ପୁଂ.ବିଂ. (ମୁରଜ+ଇକ) ମୃଦଙ୍ଗବାଦକ ।
**ମୌରସ**—ଯା. ବି. ଭୂମିର ଚିରସ୍ଥାୟୀ ବନ୍ଦୋବସ୍ତ,ପିତୃପିତାମହାଦି ପୂର୍ବପୁରୁଷ
**ମୌରସି**—ଯା.ବିଂ. ପୈତୃକ, ପିତୃପିତା-ମହିକ, ପିତୃପିତାମହ କ୍ରମେ ଭୋଗ ହୋଇ ଆସୁଥିବା ।
**ମୌରସିପଟ୍ଟା**—ଯା.ବି. ଭୂମିର ଚିରସ୍ଥାୟୀ ବନ୍ଦୋବସ୍ତ ବା ପଟ୍ଟା ।
**ମୌରସିହାସଲ(ଲ)**—ଯା.ବିଂ.ପିତୃପିତା-ମହଙ୍କ ଅର୍ଜିତ ।

**ମୌର୍ଖ୍ୟ**—କ୍ଳୀ.ବି. (ମୂର୍ଖ+ଯ) ମୂର୍ଖର ଭାବ ବା ଧର୍ମ, ମୂର୍ଖତା ।
**ମୌର୍ତ୍ତିକ**—ବିଂ. (ମୂର୍ତ୍ତି+ଇକ)ମୂର୍ତ୍ତି ବା ଛନ୍ଦସମ୍ବନ୍ଧୀୟ,ମୂର୍ତ୍ତିକା ଛନ୍ଦଦ୍ୱାରାସୂଚିତ ।
**ମୌର୍ବୀ**—ସ୍ତ୍ରୀ.ବି. (ମୁର୍ବା+ଈ)ଧନୁର୍ଗୁଣ, ଦୃଢ଼ର ଜ୍ୟା, କୁଇମଇତା, ଅଜଶୃଙ୍ଗୀ, (ବିଂ) ମୂର୍ବା, ତୃଣିସମ୍ବନ୍ଧୀୟ ।
**ମୌର୍ଯ୍ୟ**—ପୁଂ.ବି. (ମୁରା+ଯ) ମୁରାର ଅପତ୍ୟ, ଚନ୍ଦ୍ରଗୁପ୍ତ ରାଜା ।
**ମୌର୍ଯ୍ୟବଂଶ**—ବି. ଚନ୍ଦ୍ରଗୁପ୍ତ ରାଜାଙ୍କ ପ୍ରତିଷ୍ଠିତ ରାଜବଂଶ ।
**ମୌଳ**—ପୁଂ.ବିଂ. (ମୂଳ+ଅ) ଭୂମ୍ୟା-ଦିର ମୂଳଜ୍ଞାତା, ବିଜିଗୀଷୁ ଅରି ମଧ୍ୟରେ ଉଦାସୀନ,ମୂଳଭୂତ, ମୌଳିକ, ମୂଳ-ସମ୍ବନ୍ଧୀୟ, ବିଶୁଦ୍ଧ ବଂଶଜ, ବିଶ୍ୱସ୍ତ, ମୌରସି, ପୈତୃକ,(ବି)ଗ୍ରାମର ମଣ୍ଡଳ ବା ଜମିଦାର,ସଚିବ, ଅମାତ୍ୟ, ଶ୍ରେଷ୍ଠ, ଆଦର୍ଶ ।
**ମୌଲନା**—ଯା.ବି. ମୁସଲମାନ ପଣ୍ଡିତ-ମାନଙ୍କ ଉପାଧି ।
**ମୌଳଭାରକ**-ତ୍ରି.ବିଂ. (ମୂଳଭାର+ଇକ) ମୂଳଭାର ହରଣକାରୀ ବା ବହନକାରୀ
**ମୌଲମିନ୍**--ଗ୍ରା.ବି.ଏକପ୍ରକାର କଦଳୀ ।
**ମୌଲଭୀ**—ଯା.ବି. ମୁସଲମାନ ପଣ୍ଡିତ ବା ଅଧ୍ୟାପକ ବା ଧର୍ମଶାସ୍ତ୍ର ବ୍ୟାଖ୍ୟାତା ।
**ମୌଳା**—ବି. ମଉଳା ଦେଖ ।
**ମୌଳି**—ବି. (ମୂଳ+ଇ) ଅଗ୍ରଭାଗ, ଶିଖା,ମୁକୁଟ, ଜଟାଜୁଟ, ଚୂଡ଼ା,ସଂଯତ-କେଶ, ମସ୍ତକ, ପ୍ରଧାନବ୍ୟକ୍ତି, ଭୂମି, ପୃଥିବୀ, ଅଶୋକ ବୃକ୍ଷ ।
**ମୌଳିକ**—ପୁଂ. ବି. (ମୂଳ+ଇକ) ଦେଶବିଶେଷ, (ବିଂ) ମୂଳ ସମ୍ବନ୍ଧୀୟ, ମୂଳଭୂତଆଦ୍ୟ, ପ୍ରାଥମିକ, ସଦ୍ବଂଶଜାତ, ପ୍ରଧାନ ।
**ମୌଳିକପଦାର୍ଥ**--ବି. ଯେ କୌଣସି ବସ୍ତୁର ମୂଳପିଣ୍ଡ,ଯାହାର କ୍ଷୟ ବୃଦ୍ଧି ବା ବିନାଶ ନାହିଁ ।
**ମୌଳିମଣ୍ଡନ**—ବି.(ଷତତ୍ର) ଶିରୋଭୂଷଣ, ମସ୍ତକର ଅଳଂକାରବିଶେଷ ।

ମୌଳିମାଳା—ସ୍ତ୍ରୀ.ବି. ଶିରଶୋଭା ନିମିତ୍ତ ମାଳାବିଶେଷ ।
ମୌଳିମାଳିକା—ସ୍ତ୍ରୀ.ବି. ମସ୍ତକର ଶୋଭା ବୃଦ୍ଧିନିମିତ୍ତ ଯେଉଁ ପୁଷ୍ପ ବା ମୌକ୍ତିକ ମାଳା ଦିଆଯାଏ ।
ମୌଳିମାଳୀ—ପୁଂ. ବିଂ. (ମୌଳିମାଳା + ଇନ୍) ଶିରୋମାଳାଧାରୀ ।
ମୌଳି—ସ୍ତ୍ରୀ.ବି. (ମୂଲ୍ + ଅ + ଇ)ଭୂମି, କେଶ,ସଂଯତ କେଶ, ମୁକୁଟ, ମସ୍ତକ ଚୂଡ଼ା, ଅଗ୍ରଭାଗ, ( ପୁଂ.ବିଂ.-ମୌଳି + ଇନ୍ ) ମୁକୁଟଧାରୀ, (ସ୍ତ୍ରୀ) ମୌଳିନୀ ।
ମୌଳିରତ୍ନ—ବି. ଶିରୋରତ୍ନ,ମଥାମଣି ।
ମୌଲ୍ୟ—ବିଂ. (ମୂଲ+ଯ) ମୂଲ୍ୟ ସମ୍ବନ୍ଧୀୟ ।
ମୌଶୁଫ୍—ଯା.ପୁଂ.ବିଂ.ପୂର୍ବୋକ୍ତ(ବ୍ୟକ୍ତି)
ମୌଶୁମ୍—ଯା.ବି. ଋତୁ,ମୌଶୁମ୍ ବାୟୁ. ମୌଶୁମ୍ ବୃଷ୍ଟି ଦେଖ, ଉପଯୁକ୍ତ ଋତୁ ବା ସମୟ । [ ପବନ ।
ମୌଶୁମ୍ ବାୟୁ—ଗ୍ରା. ବି. ଋତୁକାଳୀନ
ମୌଶୁମ୍ ବୃଷ୍ଟି--ଗ୍ରା.ବି.ବର୍ଷାକାଳୀନ ବୃଷ୍ଟି।
ମୌଶୁମୀ—ଯା. ବିଂ. ଋତୁକାଳୀନ,ଉପଯୁକ୍ତ ଋତୁରେ ଘଟିବା ।
ମୌଷଳ—ବିଂ. (ମୂଷଳ+ଅ)ମୂଷଳିଆ, ମୂଷଳହସ୍ତଗ, ମୂଷଳ ସମ୍ବନ୍ଧୀୟ ।
ମୌଷଳପର୍ବ—ବି. ମହାଭାରତର ୧୮ଶ ପର୍ବ ମଧ୍ୟରୁ ଷୋଡ଼ଶ ପର୍ବ ।
ମୌଷ୍ଟା—ସ୍ତ୍ରୀ.ବି. ମୁଷ୍ଟି+ଅ+ଆ)ମୁଷ୍ଟିପ୍ରହରଣ କ୍ରୀଡ଼ା, ଯେଉଁ ଖେଳରେ ବିଧା ମୁଥ ମରାମରି ହୁଏ । [ ଚୋର ।
ମୌଷ୍ଟିକ—ପୁଂ. ବି. ସ୍ତେୟ, ପ୍ରବଞ୍ଚକ,
ମୌସଲ୍ୟ—ପୁଂ. ବି. (ମୁସଲ + ଯ)ମୁସଲ ନାମକ ଋଷିଙ୍କ ଗୋତ୍ରାପତ୍ୟ ।
ମୌସିଲ୍—ଯା.ବି.ସମ୍ପତ୍ତି ଦଖଲଦେବା ନିମିତ୍ତ ନିଯୁକ୍ତ ରାଜକର୍ମଚାରୀ ।
ମୌସୀ—ପ୍ରା. (ବିସ୍ତର) ବି. ମାଉସୀ ।
ମୌହା—ବି. ମହୁଆ ଦେଖ ।
ମୌହୂର୍ତ୍ତ—ପୁଂ. ବି. ( ମୁହୂର୍ତ୍ତ + ଅ ) ଜ୍ୟୋତିର୍ବେତ୍ତା ।
ମୌହୂର୍ତ୍ତିକ—ପୁଂ.ବି. (ମୁହୂର୍ତ୍ତ+ଇକ) ଜ୍ୟୋତିର୍ବେତ୍ତା, ମୁହୂର୍ତ୍ତ ଶାସ୍ତ୍ରାଭିଜ୍ଞ, ଦୈବଜ୍ଞ, ଜ୍ୟୋତିଃଶାସ୍ତ୍ରାଧ୍ୟେତା,ଦକ୍ଷକନ୍ୟା ମୁହୂର୍ତ୍ତୋଦ୍ଭବ ଦେବଗଣବିଶେଷ, (ବିଂ) ମୁହୂର୍ତ୍ତୋଦ୍ଭବ ।
ମ୍ୟାଉଁମ୍ୟାଉଁ—ଗ୍ରା.ଅ. ବିରାଡ଼ି ବୋବାଇବାର ଶବ୍ଦ ।
ମ୍ୟାକ୍ସମୂଲର—ଯା. ବି. ସୁପ୍ରସିଦ୍ଧ ଭାଷାବିଜ୍ଞାନବେତ୍ତା ସ୍ୱର୍ଗୀୟ ଜର୍ମାନ୍‌ପଣ୍ଡିତ ।
ମ୍ରକ୍ଷ—ପୁଂ. ବି. (ମ୍ରକ୍ଷ+ଅ) ସ୍ୱଦୋଷ ଗୂହନ,ନିଜଦୋଷ ଗୋପନ, ମ୍ରକ୍ଷଣ, ବଧ ।
ମ୍ରକ୍ଷଣ—କ୍ଲୀ. ବି. (ମ୍ରକ୍ଷ+ଅନ) ତୈଳ, ଏକାଧିକ ବସ୍ତୁର ମିଶ୍ରଣ,ସ୍ନେହନ, ରାଶୀକରଣ, ଲେପନ, ବୋଳିବା, ମାଖିବା, ତୈଳ ବା ଘୃତ ଲଗାଇବା ।
ମ୍ରଦିମା—ପୁଂ.ବି.(ମୃଦୁ + ଇମନ୍)ମୃଦୁତା. ନମ୍ରତା, କୋମଳତା ।
ମ୍ରଦିଷ୍ଠ—ବି. ବିଂ.(ମୃଦୁ+ଇଷ୍ଠ)ଅତିଶୟମୃଦୁ, ଅତ୍ୟନ୍ତ କୋମଳ,(ସ୍ତ୍ରୀ)ମ୍ରଦିଷ୍ଠା ।
ମ୍ରଦୀୟାନ୍—ବିଂ. (ମୃଦୁ + ଈୟସ୍) ଅତିଶୟ ମୃଦୁ, (ସ୍ତ୍ରୀ) ମ୍ରଦୀୟସୀ ।
ମ୍ରାତନ—କ୍ଲୀ. ବି.କୈବର୍ତ୍ତୀମୁସ୍ତକ,କେଉଟିଆ ମୁଥା ।
ମ୍ରିୟମାଣ—ପୁଂ. ବିଂ. ( ମୃ + କ.ଆନ ) ମୃତକଳ୍ପ, ମୃତପ୍ରାୟ,ଅବସନ୍ନ,ଦୁଃଖିତ. ଅତିଶୟ କାତର, ଅତିଲଜ୍ଜିତ ।
ମ୍ଲକ୍ତ—କ୍ଲୀ. ବି.(ମ୍ଲୁଚ୍ + ତ) ଚୈତନ୍ୟ ।
ମ୍ଲାନ—ବି. ବିଂ.(ମ୍ଲୈ +କ.ତ) ମଳିନ, ନିଷ୍ପ୍ରଭ, ଦୁର୍ବଳ, ଗ୍ଲାନ, ବିଷଣ୍ଣ, ଅପ୍ରସନ୍ନ, ବିଶୀର୍ଣ୍ଣ, ଝାଉଁଳିଯାଇଥିବା,କ୍ଳାନ୍ତ. ନିର୍ଲଜ୍ଜ, (ସ୍ତ୍ରୀ) ମ୍ଲାନା ।
ମ୍ଲାନତା—ସ୍ତ୍ରୀ.ବି.(ମ୍ଲାନ+ତା)ମଳିନତା।
ମ୍ଲାନବଦନ—ବି. (କ.ଧା) ବିଷଣ୍ଣମୁଖ, (ପୁଂ. ବିଂ. (ବ.ବ୍ରୀ) ବିଷଣ୍ଣମୁଖବିଶିଷ୍ଟ, (ସ୍ତ୍ରୀ) ମ୍ଲାନବଦନା ।
ମ୍ଲାନି—ସ୍ତ୍ରୀ. ବି. (ମ୍ଲୈ+ନି) କାନ୍ତିକ୍ଷୟ, ମାଳିନ୍ୟ, କ୍ଳାନ୍ତି, କୃଶତା ।
ମ୍ଲାନିମା—ବି. ମ୍ଲାନି ଦେଖ ।
ମ୍ଲାୟୀ—ପୁଂ. ବିଂ. (ମ୍ଲୈ+ଇନ୍) ମ୍ଲାନିଯୁକ୍ତ, ମ୍ଲାନ, ଅତି ଦୁଃଖିତ ।
ମ୍ଲାମ୍ନ—ବି. ବିଂ. କ୍ଷୀଣ,ଶୀର୍ଣ୍ଣତାପ୍ରାପ୍ତ ।
ମ୍ଲିଷ୍ଟ—ବିଂ. (ମ୍ଲେଚ୍ଛ + ମଁ.ତ) ଅପମିତ, ଅସ୍ପଷ୍ଟ, ଅବ୍ୟକ୍ତ, ମ୍ଲାନ,(ବି.ଭା.ତ)ଅସ୍ପଷ୍ଟ କଥା ।
ମ୍ଲେଚ୍ଛ—ପୁଂ. ବି. (ମ୍ଲେଚ୍ଛ + କ.ଅ)ପାମର, ପାମରବ୍ୟକ୍ତି, (କିରାତ,ଶବର, ପୁଳିନ୍ଦ, ଯବନପ୍ରଭୃତି),ବର୍ବର ବା ଅସଭ୍ୟଜାତି, ଅନାର୍ଯ୍ୟ, ବିଦେଶୀୟ ବ୍ୟକ୍ତି, (ମଁ.ଅ) ଅପଭ୍ରଷା, ବିଦେଶୀୟଭାଷା, ହିଙ୍ଗୁଳ, ହିଙ୍ଗୁ, ତମ୍ବା, (ବିଂ) ପାପିଷ୍ଠ, ଖଳ, କଦାଚାରୀ, ନୀଚ. (ଗ୍ରା.ବିଂ)ଅତି ମଳିନ (ବେଶ, ଶରୀର) । [ ରସୁଣ ।
ମ୍ଲେଚ୍ଛକନ୍ଦ—ପୁଂ. ବି. (କ.ଧା) ରସୋନ,
ମ୍ଲେଚ୍ଛଜାତି—ସ୍ତ୍ରୀ, ବି. ଗୋମାଂସଖାଦକ ବହୁ ବିରୁଦ୍ଧଭାଷକ ଓ ସଦାଚାରବର୍ଜ୍ଜିତ ବର୍ଣ୍ଣ ।
ମ୍ଲେଚ୍ଛଦେଶ--ପୁଂ.ବି.(୬ତତ୍) ଚାତୁର୍ବର୍ଣ୍ଣ୍ୟ ବ୍ୟବସ୍ଥାଦି ରହିତ ସ୍ଥାନ ।
ମ୍ଲେଚ୍ଛନ—କ୍ଲୀ. ବି. (ମ୍ଲେଚ୍ଛ+ଭା.ଅନ) ଅସ୍ଫୁଟକଥା, ମ୍ଲେଚ୍ଛଭାଷାରେ କଥନ ।
ମ୍ଲେଚ୍ଛଫଳ—ବି. କାଫି ।
ମ୍ଲେଚ୍ଛବାକ୍—ପୁଂ. ବିଂ. (ମ୍ଲେଚ୍ଛ+ବଚ୍ କ.କ୍ୱିପ୍) ମ୍ଲେଚ୍ଛଭାଷା ବ୍ୟବହାରକାରୀ ।
ମ୍ଲେଚ୍ଛଭାଷା—ବି.ବିଦେଶୀୟଭାଷା,ମ୍ଲେଚ୍ଛଜାତିମାନଙ୍କ କଥ୍ୟ ଭାଷା ।
ମ୍ଲେଚ୍ଛଭାଷୀ—ପୁଂ. ବିଂ. ଅପଭ୍ରଷା ବ୍ୟବହାରକାରୀ ।
ମ୍ଲେଚ୍ଛଭୋଜନ—କ୍ଲୀ. ବି. ( ମ୍ଲେଚ୍ଛ+ ଭୁଜ୍+ମଁ.ଅନ) ଯାବକ, ( ପୁଂ.ବି ) ଗୋଧୂମ,ଗହମ ।
ମ୍ଲେଚ୍ଛମଣ୍ଡଳ—କ୍ଲୀ. ବି. ମ୍ଲେଚ୍ଛଦେଶ ।
ମ୍ଲେଚ୍ଛମୁଖ—କ୍ଲୀ. ବି. ତାମ୍ର, ତମ୍ବା ।
ମ୍ଲେଚ୍ଛାଖ୍ୟ—କ୍ଲୀ.ବି.(ବ.ବ୍ରୀ)ମ୍ଲେଚ୍ଛ, ତାମ୍ର, ତମ୍ବା ।
ମ୍ଲେଚ୍ଛାଚାର—ବି.(୬ତତ୍)ପାପାଚାର, ଅପବିତ୍ର ଆଚରଣ,ମ୍ଲେଚ୍ଛଜାତିର ବ୍ୟବହାର
ମ୍ଲେଚ୍ଛାଚାରୀ—ବିଂ. (ବ.ବ୍ରୀ) ପାପାଚାରୀ, କଦାଚାର ପରାୟଣ, (ସ୍ତ୍ରୀ) ମ୍ଲେଚ୍ଛାଚାରିଣୀ ।

ମ୍ଳେଚ୍ଛାଶ—ପୁଂ.ବ.(ମ୍ଳେଚ୍ଛ+ଅଶ୍+ର୍ମ.ଅ) ମ୍ଳେଚ୍ଛଭୋଜନ, ଗୋଧୂମ ।
ମ୍ଳେଚ୍ଛାସ୍ୟ—କ୍ଳୀ. ବ. ତାମ୍ର, ତମ୍ବା ।
ମ୍ଳେଚ୍ଛିତ—କ୍ଳୀ. ବ. (ମ୍ଳେଚ୍ଛ+ଭା.ତ) ମ୍ଳେଚ୍ଛଭାଷା,ପରଭାଷା, ଅବ୍ୟାକରଣିକ ଭାଷା,(ବି°) ଅଶୁଦ୍ଧ ଭାବରେ ଉଚ୍ଚାରିତ
ମ୍ଳେଟ—(ଧାତୁ) ଉନ୍ମାଦହେବା, ବାୟୁଗ୍ରସ୍ତ ହେବା । [ କରିବା ।
ମ୍ଳେବ—(ଧାତୁ) ପୂଜାକରିବା, ସେବା-
ମ୍ଳୈ—(ଧାତୁ) ମ୍ଳାନହେବା,କ୍ଷରନ୍ତହେବା

# ଯ

ଯ—ବ୍ୟଞ୍ଜନ ବର୍ଣ୍ଣମାଳାର ଷଡ଼ବିଂଶ ଅକ୍ଷର ଓ ପ୍ରଥମ ଅବର୍ଗୀୟ ବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ତାଳୁ, ଏହାକୁ ଅନ୍ତସ୍ଥ ବର୍ଣ୍ଣ କହନ୍ତି, (ପୁଂ.ବ. ଯା+କ.ଅ) ଯଶଃ, ବାୟୁ,ଯୋଗ, ତେଜ, ଆଲୋକ, ଖ୍ୟାତି, ଯବ,(ଯା+ଭା.ଅ) ଖ୍ୟାତି,ତ୍ୟାଗ-କରଣ, ପରିହାର, କୁକ୍ଷିର ବା ପେଟର ଦକ୍ଷିଣଭାଗ, ଗତି, ଯାତ୍ରା, (ଯମ୍+କ.ଅ) ଯମଦେବ, (ଯମ୍+ଭା.ଅ)ଦମନ, ଯମନ, ନିୟମନ, ସଂଯମନ, ଯୋଗ, (ଯମ୍+ଣ.ଅ) ଯାନ, (ଯା+କ.ଅ) ଗତିକାରୀ ବ୍ୟକ୍ତି,(ଯା+ଣ.ଅ) ଗାଢ଼ ଧ୍ୟାନ, ଯଗଣ ଦେଖ, (ବି°. ଯା+କ.ଅ) ଗମନକାରୀ, ଯାତା, (ଗ୍ରା.ବ)ଯବ-ଧାନ, (ଗ୍ରା. କ୍ରି) ଯାଅ (ତୁମ୍ଭେ) ।
ଯଅ—ଗ୍ରା.ବ.(ସଂ-ଯବ--ପ୍ରା-ଯଅ) ଯବ-ଧାନ୍ୟ, ଯବ ପରିମିତ ଲମ୍ବ,(ପ୍ରା.ପୁରୀ) କ୍ରି. ଯାଅ ।
ଯଅଃ—ପ୍ରା.(ପୁରୀ)ଅ. (ଅବଜ୍ଞାର୍ଥକ)ଦୂର, ଯାଃ, ଛିଃ, ଏକଥା ଏପରି ନୁହେ ।
ଯଅଧାନ—ଗ୍ରା. ବ. (ସଂ-ଯବଧାନ୍ୟ, ପ୍ରା. ଯଅଧାନ) ଯବଧାନ ।
ଯଅବାଡ଼(ଳି)—ଗ୍ରା.ବ. ଜବାଡ଼, ଜବଳି, ସ୍ଥାନ ଜହ୍ଲାମ ଛ ।

ଯଇଁ—ଗ୍ରା.(ଇତର) ବ. (ସଂ-ଯାମାତା) ଜୋଇଁ, ଜାମାତା ।
ଯଇ(ଏ)ନ୍‌କରିବା—ଯା.କ୍ରି.(ଇଂ-ଯଏନ୍) ଜଏନ୍ କରିବା, କାର୍ଯ୍ୟ କ୍ଷେତ୍ରରେ କାର୍ଯ୍ୟ କରିବା ପାଇଁ ପ୍ରଥମେ ଉପସ୍ଥିତ ହେବା ।
ଯଇଶୁ(ଶୋ)ଳମାଧିଆ—ପ୍ରା.(କଟକ)ବ. ଯେଉଁ ପରିବାରସ୍ଥାନ ବ୍ୟକ୍ତି ନିଷ୍କର୍ମା ଓ ଗୃହସ୍ଥାନ ହୋଇ ଏଣେତେଣେ ବୁଲୁ-ଥାଏ ।
ଯଉଁ—ଗ୍ରା.ସର୍ବ.(ସଂ-ଯତ୍) ଯେଉଁ, ଯେ, ଯାହା,ଯହୁଁ,ଯେଉଁଠାରୁ, ଯହୁଁ ଦେଖ ।
ଯଉଁଖି(କ୍ଷ,ଛ,ଚ୍ଛ)ଣି—ଗ୍ରା.ଅବ୍ୟ.ଯେଉଁ-କ୍ଷଣି ଦେଖ ।
ଯଉଁଠା—ଗ୍ରା.ସର୍ବ. ଯେଉଁଠା ଦେଖ ।
ଯଉଁଠି(ଠିଁ)—ଗ୍ରା. ସର୍ବ. ଯେଉଁଠି(ଠିଁ) ଦେଖ । [ ଦେଖ ।
ଯଉଁଠିକ(କୁ)—ଗ୍ରା.ସର୍ବ.ଯେଉଁଠିକ(କୁ)
ଯଉଁଠୁ(ଠୁଁ)-ଗ୍ରା.ସର୍ବ.ଯେଉଁଠୁ(ଠୁଁ)ଦେଖ
ଯଉଁଣ(ଣି)ସି—ଗ୍ରା.ସର୍ବ. ଯେଉଁଣ(ଣି)ସି ଦେଖ । [ ଯୁବାବସ୍ଥା ।
ଯଉବନ—ଗ୍ରା. ବ. ସ୍ତ୍ରୀ ସ୍ତନ, ଯୌବନ,
ଯଉବନୀ—ଗ୍ରା.ସ୍ତ୍ରୀ. ବି°. ଯଉବନପ୍ରାପ୍ତା ସ୍ତ୍ରୀ ।
ଯଏଗ୍—ପ୍ରା.(ସମ୍ବ)ବ.(ସଂ-ଯଜ୍ଞ)ଯାଗ,ଯଜ୍ଞ
ଯଏ(ଇ)ଣ୍ଟମେଜି(ଜ)ଷ୍ଟ୍ରେଟ୍—ଯା. ବ. ଜିଲ୍ଲାମାଜିଷ୍ଟ୍ରେଟଙ୍କ ସହକାରୀ ରାଜ-କର୍ମଚାରୀ ।
ଯକ—କ୍ରି.ବି°(ଯତ୍+ଅନଚ୍)ଯତ୍‌ଶବ୍ଦାର୍ଥ, ଯେ ଚଳିତ ।
ଯକଟ(ଡ଼)ମକଟ(ଡ଼)—ଗ୍ରା.କ୍ରି.ବି°.(ପୁରୀ) ଅତି ଦୃଢ଼ଭାବରେ, ଜୋରରେ,ଜାବୁଡ଼ି କରି ।
ଯକାର—କ୍ଳୀ. ବ. "ଯ" ବର୍ଣ୍ଣ ।
ଯକାରାଦି(ଦ୍ୟ)—'ଯ'ଆଦି ଅନ୍ତସ୍ଥ ବର୍ଣ୍ଣ-ମାନ, 'ଯ',(ବି°.ବ.ବ୍ରୀ) ଯେଉଁ ଶବ୍ଦର ଆଦ୍ୟରେ ଯ ଅକ୍ଷର ଥାଏ ।
ଯକାରାନ୍ତ—ବି°.(ବ.ବ୍ରୀ) 'ଯ' ଅକ୍ଷର ଯେଉଁ ଶବ୍ଦ ଶେଷରେ ଥାଏ ।

ଯକୃତ୍‌କଣ୍ଟା—ବ. (ଆଧୁନିକ) ଯକୃତସ୍ଥ ସ୍ନାୟୁଜାଲ ।
ଯକୃତ୍—କ୍ଳୀ. ବ. (ଯ+କୃ+କ.କ୍ୱିପ୍) ପିତ୍ତାଶୟ, କୁକ୍ଷିର ଦକ୍ଷିଣସ୍ଥ ମାଂସପିଣ୍ଡ-ବିଶେଷ, କଳାବୁକୁ,(ସଂ-ନାମ-କରଣ୍ଡା, କାଳକ,କାଳଖଣ୍ଡୀ,କାଳଖଣ୍ଡ,କାଳେୟ, ମହାନ୍ତ୍ରାୟୁ) ଯକୃତ୍‌ବୃଦ୍ଧି ବିଶିଷ୍ଟ ରୋଗ ।
ଯକୃତ—ଗ୍ରା. ବ. (ସଂ-ଯକୃତ୍) ଯକୃତ୍ ଦେଖ । [ ଆଧାର ।
ଯକୃତ୍‌କୋଷ—ବ.(ଆଧୁନିକ) ଯକୃତର
ଯକୃତ୍‌କ୍ଷତ—ବ.(ଆଧୁନିକ)୭ତଭ୍;ଯକୃ-ତର ଘାଆ ।
ଯକୃତ୍‌ପାଥରୀ—ଗ୍ରା.ବ (ଆଧୁନିକ)ଯକୃତ୍ ମଧ୍ୟରେ ଜାତ ଅଶ୍ମରୀ ରୋଗ ।
ଯକୃତ୍‌ପ୍ରଣାଳୀ-ବ(ଆଧୁନିକ)ପିତ୍ତବାହୀନାଡ଼ୀ
ଯକୃତ୍‌ପ୍ଳୀହାରିଲୌହ—କ୍ଳୀ. ବ.ଔଷଧ-ବିଶେଷ ।
ଯକୃତ୍‌ସ୍ରାବ—ବ. (ଆଧୁନିକ) ଯକୃତରୁ ଅତ୍ୟଧିକ ପିତ୍ତନିଃସରଣ ରୋଗ ।
ଯକୃତ(ତା)ର୍ବୁଦ—ବ. (ଆଧୁନିକ)ଯକୃ-ତରେ ବଥ ବା ଆବୁ ରୋଗ ।
ଯକୃତୌଷ—ଗ୍ରା. ବ. (ଆଧୁନିକ)ଯକୃତ୍ ଫୁଲି ଯୋଉଡ଼ା ରୋଗ ।
ଯକୃଦରିଲୌହ—କ୍ଳୀ.ବ.ଔଷଧବିଶେଷ ।
ଯକୃଦାତ୍ମିକା—ବ. (ଯକୃତ୍+ଆତ୍ମନ୍+ଇକ+ଆ) ତୈଳପାୟିକା, ଅରସପା ।
ଯକୃଦ୍‌ବେଦନା—ବ. (ଆଧୁନିକ).ଯକୃ-ତରେ ବିଶେଷ ରୂପେ ବ୍ୟଥା ।
ଯକୃଦୁଦର--କ୍ଳୀ.ବ.ଉଦରରୋଗବିଶେଷ
ଯକୃଦ୍‌ବୈରି—ପୁଂ.ବ.(ଯକୃତ୍+ବୈରି) ରୋହିତକବୃକ୍ଷ ।
ଯକ୍ଖ—ବ. ସିଂହଳ ବା ଲଙ୍କାର ଆଦିମ ଅସଭ୍ୟଅଧିବାସୀ,(ଗ୍ରା.କ.ବି°)ଯକ୍ଷଦେଖ
ଯକ୍ଷ—(ଧାତୁ).ସଂ- ଅର୍ଚ୍ଚନାକରିବା,ପୂଜା କରିବା ।
ଯକ୍ଷ—ପୁଂ.ବ.(ଯକ୍ଷ୍+ର୍ମ.ଅ) ଦେବଯୋନି ବିଶେଷ,କୁବେରଭବନ ରକ୍ଷକ.ଗୁହ୍ୟକ, ଭୂତଯୋନିବିଶେଷ, (ପୁଂ. ବ. ଯକ୍ଷ୍+ଭା.ଅ) ପୂଜା, ( ଗ୍ରା.ବ ) ଅଧିକୃପଣ,

ମ୍ଳେଚ୍ଛାଣ—ପୁଂ.ବ.(ମ୍ଳେଚ୍ଛ+ଅଣ୍+ମି. ଅ) ମ୍ଳେଚ୍ଛଦେଶଜନ, ଗୋଧୂମ ।

ମ୍ଳେଚ୍ଛାସ୍ୟ—କ୍ଳୀ. ବ. ତାମ୍ର, ତମ୍ବା ।

ମ୍ଳେଚ୍ଛିତ—କ୍ଳୀ. ବ. (ମ୍ଳେଚ୍ଛ+ଭା.ତ) ମ୍ଳେଚ୍ଛଭାଷା,ପରଭାଷା, ଅବ୍ୟାକରଣିକ ଭାଷା,(ବିଂ) ଅଶୁଦ୍ଧ ଭାବରେ ଉଚ୍ଚାରିତ [ କରିବା ।

ମ୍ଳେଟ—(ଧାତୁ) ଉନ୍ମାଦହେବା, ବାୟୁ-ହେବା ।

ମ୍ଳେବ—(ଧାତୁ) ପୂଜାକରିବା, ସେବା-

ମ୍ଳୈ—(ଧାତୁ).ମ୍ଳାନହେବା,କ୍ଷରଣହେବା

# ଯ

ଯ—ବ୍ୟଞ୍ଜନ ବର୍ଣ୍ଣମାଳାର ଷଡ୍‌ବିଂଶ ଅକ୍ଷର ଓ ପ୍ରଥମ ଅବର୍ଗ୍ୟ ବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ତାଳୁ, ଏହାକୁ ଅନ୍ତସ୍ଥ ବର୍ଣ୍ଣ କହନ୍ତି, (ପୁଂ.ବ. ଯା+କ.ଅ) ଯଶଃ, ବାୟୁ,ଯୋଗ, ତେଜ, ଆଲୋକ, ଖ୍ୟାତି, ଯବ,(ଯା+ଭା.ଅ) ପ୍ରାପ୍ତି,ତ୍ୟାଗ-କରଣ, ପରିହାର, କୁକ୍ଷିର ବା ପେଟର ଦକ୍ଷିଣଭାଗ, ଗତି, ଯାତ୍ରା, (ଯମ୍+କ. ଅ) ଯମଦେବ, (ଯମ୍+ଭା.ଅ)ଦମନ, ସଂଯମନ, ନିୟମନ, ସଂଯମନ, ଯୋଗ, (ଯମ୍+ଣ.ଅ) ଯାନ, (ଯା+କ.ଅ) ଗତିକାରୀ ବ୍ୟକ୍ତି,(ଯା+ଣ.ଅ) ଗାଢ଼. ଧ୍ୟାନ, ଯଗଣ ଦେଖ, (ବିଂ. ଯା+କ. ଅ) ଗମନକାରୀ, ଯାତା, (ଗ୍ରା.ବ)ଯବ-ଧାନ, (ଗ୍ରା. କ୍ରି) ଯାଅ (ତୁମ୍ଭେ) ।

ଯଅ—ଗ୍ରା.ବ.(ସଂ-ଯବ--ପ୍ରା-ଯଅ) ଯବ-ଧାନ୍ୟ, ଯବ ପରିମିତ ଲମ୍ବ,(ପ୍ରା.ପୁରୀ) କ୍ରି. ଯାଅ ।

ଯଅଃ—ପ୍ରା.(ପୁରୀ) ଅ. (ଅବଜ୍ଞାର୍ଥକ)ଦୂର୍, ଯାଃ, ଛିଃ, ଏକଥା ଏପରି ନୁହେ ।

ଯଅଧାନ—ଗ୍ରା. ବ. (ସଂ-ଯବଧାନ୍ୟ, ପ୍ରା. ଯଅଧାନ) ଯବଧାନ ।

ଯଅରାଡ଼(ଳି)—ଗ୍ରା.ବ. ଜଗଡ଼, ଜଗଳି, ସ୍ଥାନ ଜହ୍ଲାମ ଛ ।

ଯଇଁ—ଗ୍ରା.(ଇତର) ବ. (ସଂ-ଯାମାତା) ଜୋଇଁ, ଜାମାତା ।

ଯଇ(ଏ)ନ୍‌କରିବା—ଯା.କ୍ରି.(ଇଂ-ଯଏନ୍) ଜଏନ୍ କରିବା, କାର୍ଯ୍ୟ କ୍ଷେତ୍ରରେ କାର୍ଯ୍ୟ କରିବା ପାଇଁ ପ୍ରଥମେ ଉପସ୍ଥିତ ହେବା ।

ଯଇଶୁ(ଶୋ)ଲମାଧିଆ—ପ୍ରା.(କଟକ)ବ. ଯେଉଁ ପରିବାରସ୍ଥିତ ବ୍ୟକ୍ତି ନିଷ୍କର୍ମୀ ଓ ଗୃହସ୍ଥିତ ହୋଇ ଏଣେତେଣେ ବୁଲୁ-ଥାଏ ।

ଯଉଁ—ଗ୍ରା.ସର୍ବ.(ସଂ-ଯତ୍) ଯେଉଁ, ଯେ, ଯାହା,ଯହୁଁ,ଯେଉଁଠାରୁ, ଯହୁଁ ଦେଖ ।

ଯଉଁଖି(ଷ,ଛୁ,ଚୁ)ଣି—ଗ୍ରା.ଅବ୍ୟ.ଯେଉଁ-କ୍ଷଣି ଦେଖ ।

ଯଉଁଠା—ଗ୍ରା.ସର୍ବ. ଯେଉଁଠା ଦେଖ ।

ଯଉଁଠି(ଠିଁ)—ଗ୍ରା. ସର୍ବ. ଯେଉଁଠି(ଠିଁ) ଦେଖ । [ ଦେଖ ।

ଯଉଁଠିକ(କୁ)—ଗ୍ରା.ସର୍ବ.ଯେଉଁଠିକ(କୁ)

ଯଉଁଠୁ(ଠୁଁ)-ଗ୍ରା.ସର୍ବ.ଯେଉଁଠୁ(ଠୁଁ)ଦେଖ

ଯଉଁଣ(ଣି)ସି—ଗ୍ରା.ସର୍ବ. ଯେଉଁଣ(ଣି)ସି ଦେଖ । [ ଯୁବାବସ୍ଥା ।

ଯଉବନ—ଗ୍ରା. ବ. ସ୍ତ୍ରୀ ସ୍ତନ, ଯୌବନ,

ଯଉବନା—ଗ୍ରା.ସ୍ତ୍ରୀ. ବିଂ. ଯଉବନପ୍ରାପ୍ତା ଯୁବତୀ ।

ଯଏଗ୍—ପ୍ରା.(ସମ୍ବ)ବ.(ସଂ-ଯଜ୍ଞ)ଯାଗ,ଯଜ୍ଞ

ଯଏ(ଇ)ଣ୍ଟମେଜି(ଜ)ଷ୍ଟ୍ରେଟ୍—ଯା. ବ. ଜିଲ୍ଲାମାଜିଷ୍ଟ୍ରେଟଙ୍କ ସହକାରୀ ରାଜ-କର୍ମଚାରୀ ।

ଯକ—କ୍ରି.ବିଂ(ଯତ୍+ଅନଚ୍)ଯତ୍ନଶବ୍ଦାର୍ଥ, ଯେ ଚଳିତ ।

ଯକଟ(ଡ଼)ମକଟ(ଡ଼)—ଗ୍ରା.କ୍ରି.ବିଂ.(ପୁରୀ) ଅତି ଦୃଢ଼ଭାବରେ, ଜୋର୍‌ରେ,ଜାବୁଡ଼ି କରି ।

ଯକାର—କ୍ଳୀ. ବ. "ଯ" ବର୍ଣ୍ଣ ।

ଯକାରାଦ(ଦ୍ୟ)—'ଯ'ଆଦ୍ୟ ଅନ୍ତସ୍ଥ ବର୍ଣ୍ଣ-ମାନ, 'ଯ',(ବିଂ.ବ.ବ୍ରୀ) ଯେଉଁ ଶବ୍ଦର ଆଦ୍ୟରେ ଯ ଅକ୍ଷର ଥାଏ ।

ଯକାରାନ୍ତ—ବିଂ.(ବ.ବ୍ରୀ) 'ଯ' ଅକ୍ଷର ଯେଉଁ ଶବ୍ଦ ଶେଷରେ ଥାଏ ।

ଯକୃତ୍କଣ୍ଠା—ବ. (ଆଧୁନିକ) ଯକୃତ୍‌ସ୍ଥ ସ୍ନାୟୁଜାଲ ।

ଯକୃତ୍—କ୍ଳୀ. ବ. (ଯ+କୃ+କ.କ୍ୱିପ୍) ପିତ୍ତାଶୟ, କୁକ୍ଷିର ଦକ୍ଷିଣସ୍ଥ ମାଂସପିଣ୍ଡ-ବିଶେଷ, କଲାକୁଲ୍ଲୁ,(ସଂ-ନାମ-କରଣ୍ଡା, କାଲକ,କାଲଗଞ୍ଜୀ,କାଲଖଣ୍ଡ,କାଲେୟ, ମହାନ୍ନାୟୁ) ଯକୃତ୍‌ବୃଦ୍ଧି ବିଶିଷ୍ଟ ରୋଗ ।

ଯକୃତ—ଗ୍ରା. ବ. (ସଂ-ଯକୃତ୍) ଯକୃତ୍ ଦେଖ । [ ଆଧାର ।

ଯକୃତ୍‌କୋଷ—ବ.(ଆଧୁନିକ) ଯକୃତର

ଯକୃତ୍‌କ୍ଷତ—ବ.(ଆଧୁନିକ)ଦେଖ;ଯକୃ-ତର ଘାଆ ।

ଯକୃତ୍‌ପାଥରି—ଗ୍ରା.ବ (ଆଧୁନିକ)ଯକୃତ୍ ମଧ୍ୟରେ ଜାତ ଅଶ୍ମରୀ ରୋଗ ।

ଯକୃତ୍‌ପ୍ରଣାଳୀ-ବ(ଆଧୁନିକ)ପିତ୍ତବାହୀନାଡ଼ୀ

ଯକୃତ୍‌ପ୍ଲୀହାରିଲୌହ—କ୍ଳୀ. ବ.ଔଷଧ-ବିଶେଷ ।

ଯକୃତ୍‌ସ୍ରାବ—ବ. (ଆଧୁନିକ) ଯକୃତରୁ ଅତ୍ୟଧିକ ପିତ୍ତନିଃସରଣ ରୋଗ ।

ଯକୃତ(ତା)ବୃଦ୍ଧି—ବ. (ଆଧୁନିକ)ଯକୃ-ତରେ ବଥ ବା ଆବୁ ରୋଗ ।

ଯକୃତୋଷ—ଗ୍ରା. ବ. (ଆଧୁନିକ)ଯକୃତ୍ ଫୁଲି ପୋଡ଼ିବା ରୋଗ ।

ଯକୃଦରିଲୌହ—କ୍ଳୀ.ବ.ଔଷଧବିଶେଷ ।

ଯକୃଦାତ୍ମିକା—ବ. (ଯକୃତ୍+ଆତ୍ମନ୍+ ଇକ+ଆ) ତୈଳପାୟିକା, ଅରସପା ।

ଯକୃଦ୍‌ବେଦନା—ବ. (ଆଧୁନିକ). ଯକୃ-ତରେ ବିଶେଷ ରୂପେ ବ୍ୟଥା ।

ଯକୃଦୁଦର--କ୍ଳୀ.ବ.ଉଦରରୋଗବିଶେଷ

ଯକୃଦ୍‌ବୈରୀ—ପୁଂ.ବ.(ଯକୃତ୍+ବୈରୀ) ରୋହିତକବୃକ୍ଷ ।

ଯକ୍ଖ—ବ. ସିଂହଳ ବା ଲଙ୍କାର ଆଦିମ ଅସଭ୍ୟଅଧିବାସୀ,(ଗ୍ରା.କ.ବିଂ)ଯକ୍ଷଦେଖ

ଯକ୍ଷ—(ଧାତୁ).ସଂ- ଅର୍ଚ୍ଚନାକରିବା,ପୂଜା କରିବା ।

ଯକ୍ଷ—ପୁଂ.ବ.(ଯକ୍ଷ୍+ମି.ଅ) ଦେବଯୋନି ବିଶେଷ,କୁବେରଭବନ ରକ୍ଷକ.ଗୁହ୍ୟକ, ଭୂତଯୋନିବିଶେଷ, (ପୁଂ. ବ. ଯକ୍ଷ୍+ ଭା.ଅ) ପୂଜା, ( ଗ୍ରା.ବ ) ଅତିକୃପଣ,

ନିର୍ଦ୍ଦୟବ୍ୟକ୍ତି, ଖୁବ୍ ଧନୀଲୋକ,(ଗ୍ରା.ବି°) କୃପଣ, ନିର୍ଦ୍ଦୟ, ଧନୀ ଅଥଚ କୃପଣ ।
ଯକ୍ଷକର୍ଦ୍ଦମ—ପୁଂ. ବି. ଅଗୁରୁ, କୁଙ୍କୁମ, କସ୍ତୁରୀ, କର୍ପୂରମିଶ୍ରିତ ସୁଗନ୍ଧ ଲେପନ ଦ୍ରବ୍ୟ । [ କୁମାରୀ ସାଧନ ।
ଯକ୍ଷକନ୍ୟାକାସାଧନ—କ୍ଲୀ. ବି.ତନ୍ତ୍ରୋକ୍ତ
ଯକ୍ଷକୂପ—ପୁଂ. ବି.ପୁଣ୍ୟତୋୟାପୁଷ୍କରିଣୀ
ଯକ୍ଷକୃତ୍ୟ—କାଶ୍ମୀରବାସୀ ଜାତିବିଶେଷ ।
ଯକ୍ଷଗ୍ରହ—ପୁଂ. ବି ଓ ବି°.(ଯକ୍ଷ+ଗ୍ରହ୍ +ମି.ଅ) ଯେଉଁ ବ୍ୟକ୍ତିକୁ ଯକ୍ଷ ବା ଭୂତଲାଗିଅଛି, (ସ୍ତ୍ରୀ) ଯକ୍ଷଗ୍ରସ୍ତା ।
ଯକ୍ଷଣ—କ୍ଲୀ. ବି. ପୂଜନ ।
ଯକ୍ଷତରୁ—ପୁଂ. ବି. (୬ତତ୍) ବଟବୃକ୍ଷ, (ମପି-କ.ଧା) ଯକ୍ଷବାସ ଦେଖ ।
ଯକ୍ଷତା—ସ୍ତ୍ରୀ. ବି. ଯକ୍ଷତ୍ୱ, ଯକ୍ଷର ଭାବ ।
ଯକ୍ଷଦାମୀ—ସ୍ତ୍ରୀ. ବି. ଶୂଦ୍ରକଙ୍କ ପତ୍ନୀ ।
ଯକ୍ଷଦୃକ୍--ପୁଂ.ବି°.ଉତ୍ସବଦ୍ରଷ୍ଟା; ଯେ ଉତ୍ସବାଦି ଦେଖେ । [ ତୈଳ ।
ଯକ୍ଷଧୂପ—ପୁଂ. ବି.(୬ତତ୍)ଝୁଣା,ତାର୍ପିନ୍
ଯକ୍ଷନାୟକ—ପୁଂ. ବି. କୁବେର ।
ଯକ୍ଷପତି—ପୁଂ. ବି. କୁବେର ।
ଯକ୍ଷବିତ୍ତ—ପୁଂ. ବି°. (ବ.ବ୍ରୀ) କୃପଣ, ଯେ ଧନ ବ୍ୟୟରେ କୁଣ୍ଠିତ, (ସ୍ତ୍ରୀ) ଯକ୍ଷବିତ୍ତା ।
ଯକ୍ଷପାଳ—ପୁଂ.ବି.ବୌଦ୍ଧରାଜବିଶେଷ ।
ଯକ୍ଷଭୃତ୍—ତ୍ରି. ବି°. ପୂଜିତ ।
ଯକ୍ଷମଲ୍ଲ—ପୁଂ.ବି.ନେପାଳର ତୃତୀୟରାଜା
ଯକ୍ଷରସ—ପୁଂ. ବି.ପୁଷ୍ପମଦ୍ୟ, ଏକପ୍ରକାର ମାଦକ ପାନୀୟ ।
ଯକ୍ଷରାଜ୍—ବି. କୁବେର, ମଲ୍ଲଯୁଦ୍ଧପାଇଁ ପ୍ରସ୍ତୁତସ୍ଥାନ, ମଣିଭଦ୍ର, ରଙ୍ଗମଣ୍ଡପ ।
ଯକ୍ଷରାଜ(ଟ୍)—ପୁଂ.ବି.(୬ତତ୍)କୁବେର ।
ଯକ୍ଷରାଜପୁରୀ—ସ୍ତ୍ରୀ.ବି.କୈଳାସପର୍ବତୋପରିସ୍ଥ ଅଳକାପୁରୀ, କୁବେରପୁରୀ ।
ଯକ୍ଷରାତ୍ରି—ସ୍ତ୍ରୀ.ବି. (ମଧ୍ୟ-କ.ଧା)କାର୍ତ୍ତିକପୂର୍ଣ୍ଣିମାରାତ୍ରି, କାର୍ତ୍ତିକପୂର୍ଣ୍ଣିମା ।
ଯକ୍ଷଲୋକ—ପୁଂ.ବି.ଯକ୍ଷଯୋନିର ସ୍ୱର୍ଗସ୍ଥ ଆବାସଭୂମି, ବ୍ରହ୍ମଲୋକ, ପିତୃଲୋକ, ସୋମଲୋକ, ଇନ୍ଦ୍ରଲୋକ, ଗନ୍ଧର୍ବଲୋକ, ରାକ୍ଷସଲୋକ, ଯକ୍ଷ ଓ ପିଶାଚଲୋକ ।
ଯକ୍ଷସାଧନ(ନା)—କ୍ଲୀ.ବି.(୬ତତ୍)ଯକ୍ଷୋପାସନା, ଯକ୍ଷର ତନ୍ତ୍ରୋକ୍ତ ପୂଜା ।
ଯକ୍ଷସେନ—ପୁଂ. ବି.ବୌଦ୍ଧରାଜାବିଶେଷ
ଯକ୍ଷସ୍ଥଳ—ପୁଂ. ବି. ତୀର୍ଥସ୍ଥାନବିଶେଷ ।
ଯକ୍ଷାଙ୍ଗୀ—ସ୍ତ୍ରୀ. ବି. ନଦୀବିଶେଷ ।
ଯକ୍ଷାଧିପ—ପୁଂ.ବି. ଯକ୍ଷପତି, କୁବେର ।
ଯକ୍ଷାଧିପତି—ପୁଂ. ବି. କୁବେର ।
ଯକ୍ଷାବାସ—ପୁଂ. ବି. (୬ତତ୍) ଡୁମ୍ବିରି ଓ ଅଶ୍ୱତ୍ଥବୃକ୍ଷ, ବଟବୃକ୍ଷ ।
ଯକ୍ଷାମଲକ—ବି. ପିଣ୍ଡୀଖର୍ଜ୍ଜୁର ।
ଯକ୍ଷିଣୀ—ସ୍ତ୍ରୀ. ବି. (ଯକ୍ଷ+ଈ) କୁବେରପତ୍ନୀ, ଯକ୍ଷସ୍ତ୍ରୀ, ପିଶାଚୀ ଜୈନମାନଙ୍କର ପୂଜିତା ଦେବୀବିଶେଷ. ସାଧକପୁରୁଷଙ୍କ ସହବାସକାରିଣୀ ଦେବୀବିଶେଷ (ଗ୍ରା.ସ୍ତ୍ରୀ.ବି°) କୃପା ।
ଯକ୍ଷିଣୀତ୍ୱ--କ୍ଲୀ.ବି.ଯକ୍ଷିଣୀର ଭାବ ବା ଧର୍ମ
ଯକ୍ଷୀ—ସ୍ତ୍ରୀ. ବି. ( ଯକ୍ଷ+ଈ ) ଯକ୍ଷସ୍ତ୍ରୀ, କୁବେରପତ୍ନୀ, ଅତି କୃପଣବ୍ୟକ୍ତି ।
ଯକ୍ଷେନ୍ଦ୍ର—ପୁଂ. ବି. (୬ତତ୍) ଯକ୍ଷରାଜା, କୁବେର ।
ଯକ୍ଷେଶ—ପୁଂ. ବି. ଯକ୍ଷରାଜା,କୁବେର ।
ଯକ୍ଷେଶ୍ୱର—ପୁଂ.ବି. କୁବେର,ଯକ୍ଷରାଜ ।
ଯକ୍ଷୋଡ଼ୁମ୍ବର—କ୍ଲୀ. ବି.ଅଶ୍ୱତ୍ଥଫଳ
ଯକ୍ଷ୍ମଗୃହୀତ—ତ୍ରି. ବି°. ଯକ୍ଷ୍ମାରୋଗଗ୍ରସ୍ତ ।
ଯକ୍ଷ୍ମଗ୍ରସ୍ତ—ପୁଂ. ବି°.(୩ତତ୍)ଯକ୍ଷ୍ମାରୋଗଦ୍ୱାରା ଆକ୍ରାନ୍ତ, (ସ୍ତ୍ରୀ) ଯକ୍ଷ୍ମାଗ୍ରସ୍ତା ।
ଯକ୍ଷ୍ମଗ୍ରହ--ପୁଂ.ବି. (ଯକ୍ଷ୍ମନ୍+ଗ୍ରହ୍+ଭା.ଅ) କ୍ଷୟରୋଗ, ରାଜଯକ୍ଷ୍ମା ।
ଯକ୍ଷ୍ମଘ୍ନୀ—ସ୍ତ୍ରୀ. ବି. (ଯକ୍ଷ୍ମନ୍+ହନ୍+କ.ଅ+ଈ) ଦ୍ରାକ୍ଷା, କିସ୍ମିସ୍, ଅଙ୍ଗୁର ।
ଯକ୍ଷ୍ମା—ପୁଂ. ବି. (ଯକ୍ଷ+ଅଧି+ମି.ଅନ) କ୍ଷୟକାଶରୋଗ ।
ଯକ୍ଷ୍ମାନାଶନ—ବି°. ଯକ୍ଷ୍ମାରୋଗ ନାଶକାରି
ଯକ୍ଷ୍ମାନ୍ତକଲୌହ—ଯକ୍ଷ୍ମାନାଶକ ଔଷଧ ବିଶେଷ ।
ଯକ୍ଷ୍ମାରିଲୌହ-ଯକ୍ଷ୍ମାନାଶକ ଔଷଧବିଶେଷ
ଯକ୍ଷ୍ମୀ—ପୁଂ.ବି°. ( ଯକ୍ଷ୍ମନ୍+ଇନ୍)ଯକ୍ଷ୍ମାରୋଗଗ୍ରସ୍ତ(ବ୍ୟକ୍ତି),(ସ୍ତ୍ରୀ) ଯକ୍ଷ୍ମିଣୀ ।
ଯକ୍ଷ୍ମୋଦା—ସ୍ତ୍ରୀ. ବି. ରୋଗ ବିଶେଷ ।
ଯକ୍ଷ୍ୟମାଣ—ପୁଂ. ବି°. (ଯକ୍ଷ+କ.ଆନ) ପୂଜାକରଣେଚ୍ଛୁ, ( ସ୍ତ୍ରୀ ) ଯକ୍ଷ୍ୟମାଣା, ପୂଜାରେ ନିଯୁକ୍ତ ।
ଯଙ୍ଗନାଗ୍ନୟ୍ୟ—ଦକ୍ଷିଣାତ୍ୟର ଜଣେ ପ୍ରସିଦ୍ଧ ଇଷ୍ଟକାଦି ଗୃହ ନିର୍ମାଣକାରୀ ।
ଯଗଚ୍ଛ—ମହୀସୁର ରାଜ୍ୟାନ୍ତର୍ଗତ ଗୋଟିଏ ଉପନଦୀ ।
ଯଗଣ—ବି. କବିତା ରଚନା ସମ୍ପର୍କରେ ୮ଟି ଗଣମଧ୍ୟରୁ ପ୍ରଥମେ ଗୋଟିଏ ହ୍ରସ୍ୱବର୍ଣ୍ଣ ଓ ପରେ ଦୁଇଟି ଦୀର୍ଘବର୍ଣ୍ଣ ସମ୍ବଳିତ ଗଣବିଶେଷ ।
ଯଗ୍ରାଫି—ଯା. ବି. ଭୂଗୋଲ ବିଦ୍ୟା ।
ଯଙ୍—ବ୍ୟାକରଣୋକ୍ତ ପ୍ରତ୍ୟୟବିଶେଷ ।
ଯଙନ୍ତ—ବି.(ବ୍ୟାକରଣ). ପୌନଃପୁନ୍ୟ ବା ଅତିଶୟାର୍ଥକ କ୍ରିୟାବିଶେଷ ।
ଯଙଲୁଗନ୍ତ—ବି. (ବ୍ୟାକରଣ).ଅତିଶୟ ବା ପୌନଃପୁନ୍ୟାର୍ଥ ଧାତୁର ଦ୍ୱିତ୍ୱଭାବ ଧାରଣ କରିବା ଅବସ୍ଥା ।
ଯଚ୍ନଆ(ୟା)—ପ୍ରା. (ସମ୍ବ)ବି°. ମାଗଣା, ଅଯାଚିତଭାବେ ପ୍ରାପ୍ତ । [ ଦେଖ ।
ଯଚୃ—ଗ୍ରା. ବି. (ସଂ-ଯାଚ୍ଞା) ଯାଚିବା
ଯଚୃ(ଚେ)ଇ—ଗ୍ରା. ବି. ( ସଂ-ଯାଚ୍ଞା ) ମାଗିବା, ଯାଚ୍ଞା,ଭିକ୍ଷାକରିବା,ସୁନାଦି ମୂଲ୍ୟ ପରୀକ୍ଷା ପୂର୍ବକ ନିରୂପଣ ।
ଯଚୃ(ଚେ)ଇକରିବା—ଗ୍ରା. କ୍ରି.କୌଣସି ଦ୍ରବ୍ୟକୁ ବଜାରରେ ଏକାଧିକ ସ୍ଥାନରେ ଦେଖାଇ ତହିଁର ମୂଲ୍ୟ ବା ସ୍ୱରୂପ ଜାଣିବା, ସ୍ୱର୍ଣ୍ଣାଦିର ମୂଲ୍ୟ ଓ ପ୍ରକାର ନିରୂପଣ କରିବା ।
ଯଚୃ(ଚେ)ଇବା--ଗ୍ରା.କ୍ରି. ଯଚୃଇକରିବା-ଦେଖ, ଅନ୍ୟବ୍ୟକ୍ତିଙ୍କ ଦ୍ୱାରା ଯାଚିବା କ୍ରିୟା କରାଇବା ।
ଯଚ୍ଛ—ଗ୍ରା. ବି. (ସଂ-ଯଶଃ) ଯଶ, କୀର୍ତ୍ତି, ସୁଖ୍ୟାତି, ସୁନାମ,ବାହାଦୁରି,ପ୍ରଶଂସା ।
ଯଚ୍ଛନ୍—ପୁଂ. ବି°. ( ଦା+କ.ଅତ୍ ) ଦାନକାରୀ, (ସ୍ତ୍ରୀ) ଯଚ୍ଛନ୍ତୀ ।
ଯଜ୍—(ଧାତୁ).ଦେବତାଙ୍କୁ ପୂଜାକରିବା, ସଙ୍ଗକରିବା,ଦାନକରିବା,ଯାଗକରିବା ।

ଯଜ—ପୁଂ. ବ. (ଯଜ୍+ଅଧି.ଅ) ଯଜ୍ଞ, ଅଗ୍ନି,ପୂଜା, ସଙ୍ଗମ, ଦାନ ।
ଯଜତ୍ର—ପୁଂ. ବ. ଯାଗକର୍ତ୍ତା ।
ଯଜତ—ପୁଂ. ବ. ( ଯଜ୍+କ.ଅତ ) ଋତ୍ୱିକ୍, ଚନ୍ଦ୍ର, ପୁରୋହିତ, ଶିବ, (ପୁଂ-ବିଂ-ଯଜ୍+ମିଂ.ଅତ) ପୂଜ୍ୟ, ମହାନ୍, ପବିତ୍ର । [ କର୍ମ ।
ଯଜଥ—ପୁଂ.ବ.(ଯଜ୍+ଣ.ଅଥ)ଯଜ୍ଞାଦି-
ଯଜଥଦେଶ—ବ. ଯଜ୍ଞବେଦୀର ଦକ୍ଷିଣରେ ଅବସ୍ଥିତ ସ୍ଥାନ ।
ଯଜନ—ପୁଂ. ବ.(ଯଜ୍+କ.ଅନ)ଅଗ୍ନିଅ-ହୋତ୍ରୀ,(ଯଜ୍+ଣ.ଅନ)ଅଗ୍ନିହୋତ୍ର ।
ଯଜଥ—ପୁଂ. ବ. ଦେବପୂଜା, ଯଜ୍ଞ, ଯଜନ, ସ୍ତୁତିକର୍ତ୍ତା, ଯଷ୍ଟା ।
ଯଜନ୍—ପୁଂ. ବିଂ. ( ଯଜ୍+କ.ଅନ୍ତ ) ଯଜ୍ଞକାରୀ, (ସ୍ତ୍ରୀ) ଯଜନ୍ତୀ ।
ଯଜନ—କ୍ଲୀ.ବ.(ଯଜ୍+ଭା.ଅନ) ଆପଣା ପାଇଁ ଯାଗକର୍ତ୍ତା, ପୂଜନ,ପୂଜାକରିବା, (ଯଜ୍+ଣ.ଅନ) ଯାଗ, (ଯଜ୍+ଅଧି. ଅନ) ଯଜ୍ଞସ୍ଥାନ ।
ଯଜନୀୟ—ବି. ବିଂ. (ଯଜ୍+ମିଂ.ଅନୀୟ) ଯଜନଯୋଗ୍ୟ,ଯାଗକରଣର ଉପଯୁକ୍ତ
ଯଜନ୍ତ—ପୁଂ. ବ. ଯାଗକର୍ତ୍ତା ।
ଯଜପ୍ରୈଷ—ବି. ବିଂ. ( ଯଜ୍+ପ୍ରୈଷ ) ଆମନ୍ତ୍ରଣ ମନ୍ତ୍ର ।
ଯଜମାନ—ପୁଂ. ବିଂ. (ଯଜ୍+କ.ଆନ) ଯାଗକାରୀ, (ବ)ଯେଉଁ ବ୍ୟକ୍ତି ବ୍ରାହ୍ମଣକୁ ଦକ୍ଷିଣାଦେଇ ବ୍ରାହ୍ମଣ ଦ୍ୱାରା ଯାଗକ୍ରିୟା କରନ୍ତି,ସ୍ୱୟଂ ଯଜ୍ଞାନୁଷ୍ଠାନକାରୀ ବ୍ୟକ୍ତି, ପୁରୋହିତଙ୍କ ନିଯୋକ୍ତା ବ୍ୟକ୍ତି, ପରିବାରର କର୍ତ୍ତା, ଜାତିର ମୁଖ୍ୟବ୍ୟକ୍ତି ମହାଦେବଙ୍କ ଅଷ୍ଟମୂର୍ତ୍ତିରୁ ପ୍ରଧାନ ମୂର୍ତ୍ତି. (ଗ୍ରା.ବ) ପୁରୋହିତ ଯେଉଁ ବ୍ୟକ୍ତିଙ୍କଠାରୁ ଦକ୍ଷିଣା ନେଇ ଉକ୍ତ ବ୍ୟକ୍ତିର ପାରିବାରିକ ଦେବପୂଜା, ବିବାହାଦି କ୍ରିୟାରେ ହୋମାଦି କରନ୍ତି, ଯେଉଁ ଯାତ୍ରୀ ତୀର୍ଥସ୍ଥ ଦେବତାମାନଙ୍କର ପୂଜା ପଣ୍ଡା ଦ୍ୱାରା କରାଏ । [ କାରୀ ।
ଯଜମାନକ—ପୁଂ.ବିଂ.ଯଜ୍ଞବ୍ୟୟ ବହନ-

ଯଜମାନତ୍ୱ—କ୍ଲୀ. ବ. ଯଜମାନର ଭାବ ବା ଧର୍ମ ।
ଯଜମାନବ୍ରାହ୍ମଣ—କ୍ଲୀ. ବ. ଯଜମାନର କାର୍ଯ୍ୟକାରୀ ବ୍ରାହ୍ମଣ ।
ଯଜମାନଲୋକ—ପୁଂ.ବ. ଯଜ୍ଞକାରୀପାଇଁ ସ୍ୱର୍ଗର ନିର୍ଦ୍ଦିଷ୍ଟ ସ୍ଥାନ ।
ଯଜମାନଶିଷ୍ୟ—ପୁଂ. ବ. ଯଜ୍ଞବ୍ୟୟ ବହନକାରୀ ବ୍ରାହ୍ମଣର ଦୀକ୍ଷିତ ଶିଷ୍ୟ ।
ଯଜମାନୀ—ଗ୍ରା.ବିଂ. ଯଜମାନ ସମ୍ବନ୍ଧୀୟ, ( ଗ୍ରା.ବ ) ଯଜମାନୀବୃତ୍ତି, ଯଜମାନୀ ହେବାର ଅବସ୍ଥା ।
ଯଜମାନୀବୃତ୍ତି—ଗ୍ରା. ବ. ଯଜମାନଠାରୁ ଦକ୍ଷିଣାଆଦି ପାଇ ଜୀବିକା ନିର୍ବାହ, ପୌରୋହିତ୍ୟ ।
ଯଜସ୍—କ୍ଲୀ. ବ. ଯାଗ, ଯଜ୍ଞ ।
ଯଜା—ସ୍ତ୍ରୀ. ବ. ଶାସ୍ତ୍ରୋକ୍ତ ପୁଣ୍ୟଚରିତା ଜଣେ ରମଣୀ ।
ଯଜାକ—ପୁଂ. ବିଂ. ( ଯଜ୍+କ.ଅକ ) ଦାତା, ପୂଜାକାରୀ ।
ଯଜାନ—ଗ୍ରା. କ୍ରି. ଯାଜନ କରିବା, ପୌରୋହିତ୍ୟ କରିବା, ଆଚରଣୀୟ ଅନାଚରଣୀୟ ସବୁ ସବୁ ବର୍ଣ୍ଣଙ୍କୁ ଏକାକାର କରିବା ।
ଯଜି—ପୁଂ. ବ. ( ଯଜ୍+କ.ଇ ) ଯଷ୍ଟା, ଯାଗକାରୀ ବ୍ୟକ୍ତି, ( ଯଜ୍+ଭା.ଇ ) ଯଜ୍ଞକର୍ମ, (ଣ.ଇ) ଯାଗ ।
ଯଜିଷ୍ଠ—ବି.ବିଂ. ଅତିଶୟ ପୂଜ୍ୟ,ଯଷ୍ଟୃତମ । [ ଯଜନଶୀଳ ।
ଯଜିଷ୍ଣୁ—ବି. ବିଂ. ( ଯଜ୍+ଇଷ୍ଣୁ )
ଯଜୀ—ପୁଂ. ବିଂ. ( ଯଜ୍+କ.ଇନ୍ ) ଯଜ୍ଞକାରୀ, ପୂଜାକାରୀ, (ସ୍ତ୍ରୀ) ଯଜିନୀ ।
ଯଜୀୟାନ୍—ପୁଂ.ବିଂ. ଅତିଶୟ ଯଜନଶୀଳ (ସ୍ତ୍ରୀ) ଯଜୀୟସୀ । [ ଏକ ଅଶ୍ୱ ।
ଯଜୁ—ପୁଂ. ବ. ଚନ୍ଦ୍ରାଶ୍ୱଭେଦ,ଚନ୍ଦ୍ରଙ୍କର
ଯଜୁଃ—କ୍ଲୀ. ବ. ( ଯଜ୍+ଣ. ଉସ୍ ) ଦ୍ୱିତୀୟବେଦ, ଯଜ୍ଞୀୟ ସ୍ତବ ବା ମନ୍ତ୍ର, ଯଜୁର୍ବେଦର ଗଦ୍ୟମନ୍ତ୍ର ।
ଯଜୁର୍ମୟ—ବି. ବିଂ. ଯଜୁର୍ମନ୍ତ୍ର ସମ୍ବଳିତ ।
ଯଜୁର୍ଲକ୍ଷ୍ମୀ—ବ. ମନ୍ତ୍ରବିଶେଷ ।

ଯଜୁର୍ବିଦ୍—ପୁଂ. ବିଂ. ଯଜୁର୍ବେଦବେତ୍ତା ।
ଯଜୁର୍ବେଦ—ପୁଂ. ବ. ( ମଧ୍ୟ-କ.ଧା ) ଦ୍ୱିତୀୟବେଦ ।
ଯଜୁର୍ବେଦୀ—ପୁଂ. ବିଂ. (ଯଜୁସ୍+ବେଦ +କ.ଇନ୍)ଯଜୁର୍ବେଦ ସମ୍ବନ୍ଧୀୟ,ଯଜୁର୍ବେଦାଧ୍ୟାୟୀ, (ବ) ଯଜୁର୍ବେଦାଧ୍ୟାୟୀ ବ୍ରାହ୍ମଣ, ଯଜୁର୍ବେଦୋକ୍ତ କ୍ରିୟାକାଣ୍ଡର ଅନୁଷ୍ଠାତା ବ୍ରାହ୍ମଣ ।
ଯଜୁର୍ବେଦୀୟ—ବିଂ. (ଯଜୁର୍ବେଦ+ଈୟ) ଯଜୁର୍ବେଦ ସମ୍ବନ୍ଧୀୟ ।
ଯଜୁଷ୍କ—ବି.ବିଂ. ଯଜୁଃମନ୍ତ୍ର ସମ୍ବଳିତ ।
ଯଜୁଷ୍କୃତ—ବି.ବିଂ. ଯଜୁଃମନ୍ତ୍ରଦ୍ୱାରା ପୂତ ବା ଉତ୍ସର୍ଗୀକୃତ ।
ଯଜୁଷ୍କୃତି—ସ୍ତ୍ରୀ.ବ.ଯଜୁର୍ମନ୍ତ୍ରଦ୍ୱାରା ଦେବତାଙ୍କୁ ପ୍ରଦାନ । [ ବିଶେଷ ।
ଯଜୁଷ୍କ୍ରିୟା—ସ୍ତ୍ରୀ.ବ.ଯଜୁଃଯଜ୍ଞର କ୍ରିୟା-
ଯଜୁଷ୍ଟମ—କ୍ଲୀ.ବ. ଉତ୍କୃଷ୍ଟତମ ଯଜୁର୍ମନ୍ତ୍ର ।
ଯଜୁଷ୍ଟର-କ୍ଲୀ.ବ.ମଧ୍ୟମ ପ୍ରକାର ଯଜୁର୍ମନ୍ତ୍ର ।
ଯଜୁଷ୍ଟସ୍—ଅବ୍ୟ. ଯଜୁର୍ବେଦାନୁସାରେ ।
ଯଜୁଷ୍ଟା—ସ୍ତ୍ରୀ.ବ. ଯଜୁର ଭାବ ବା ଧର୍ମ ।
ଯଜୁଷ୍ପତି—ପୁଂ.ବ. ବିଷ୍ଣୁ ।
ଯଜୁଷ୍ପାତ୍ର—କ୍ଲୀ. ବ. ଯଜୁର୍ବେଦୀୟ ଯଜ୍ଞପାତ୍ରବିଶେଷ ।
ଯଜୁଷ୍ମତ୍—ବି.ବିଂ. ଯାଗ ମନ୍ତ୍ରର କ୍ରିୟାସମ୍ବନ୍ଧୀୟ ।
ଯଜୁଷ୍ୟ—ବି.ବିଂ. ଯଜ୍ଞସମ୍ବନ୍ଧୀୟ ।
ଯଜୁଷ୍ଟାତ୍—ଅବ୍ୟ. ଯଜୁର୍ମନ୍ତ୍ରରୂପେ ।
ଯଜୁଦର--ବିଂ. ଯାହାର ଉଦରରେ ଯଜୁର୍ମନ୍ତ୍ର ଅଛି, ବ୍ରାହ୍ମଣ ।
ଯଜ୍ଞ—ପୁଂ.ବ. (ଯଜ୍+ଭା.ନ)ବେଦୋକ୍ତ ହୋମ, ପୂଜାବିଧି, କ୍ରତୁ, ଇଷ୍ଟି, ହୋମ, ବିଷ୍ଣୁ, ହିନ୍ଦୁ ଗୃହସ୍ଥର ଓ ବ୍ରାହ୍ମଣର ନିତ୍ୟକର୍ତ୍ତବ୍ୟ ବୈଶ୍ୱଦେବ ବଳିଦାନାଦି କର୍ମ, ଯଜ୍ଞର ଦେବତା ।
ଯଜ୍ଞକ—ପୁଂ.ବି. ଯଜ୍ଞ, ଯାଜକ ।
ଯଜ୍ଞକର୍ତ୍ତା—ପୁଂ.ବ ବା ବିଂ. (୬ତତ୍ପୁ)ଯେ ଯଜ୍ଞକାର୍ଯ୍ୟ କରେ, ଯଜମାନ ।
ଯଜ୍ଞକର୍ମ—ବ.ହୋମକାର୍ଯ୍ୟ,ଯଜ୍ଞକାର୍ଯ୍ୟ ।
ଯଜ୍ଞକଳ୍ପ—ବ.ବିଷ୍ଣୁ, ଯଜ୍ଞବରାହ,ଯଜ୍ଞ-

ରୂପ ଅବସ୍ଥବଦ୍ଧାର ଯେ କଳିତ ହୁଏ ।

ଯଜ୍ଞକାମ—ବି.ବଂ. ଯଜ୍ଞାଭିଳାଷୀ ।

ଯଜ୍ଞକାର—ବି.ବଂ. ଯଜ୍ଞକାରୀ ।

ଯଜ୍ଞକାଳ—ବ. (ମଧ୍ୟ-କ.ଧା)ଯଜ୍ଞାଦିପାଇଁ ଶାସ୍ତ୍ରନିର୍ଦ୍ଦିଷ୍ଟ ସମୟ, ଅମାବସ୍ୟା ଓ ପୂର୍ଣ୍ଣିମା ।

ଯଜ୍ଞକୀଲକ—ପୁଂ.ବ. (ମଧ୍ୟ-କ.ଧା) ଯୂପ-କାଷ୍ଠ,ଯଜ୍ଞପଶୁ ବନ୍ଧାହେବା ଯୂପକୀଳ ।

ଯଜ୍ଞକୁଣ୍ଡ—କ୍ଲୀ. ବ. (୬ତତ୍ପୁ) ଯେଉଁ କୁଣ୍ଡରେ ଘୃତ ଆହୁତ ଦିଆଯାଏ ।

ଯଜ୍ଞକୃତ୍—ପୁଂ ଓ ସ୍ତ୍ରୀ.ବଂ. (ଯଜ୍ଞ+କୃ +କ.କ୍ୱିପ୍) ଯଜ୍ଞ ଅନୁଷ୍ଠାନକାରୀ, (ବି) ବିଷ୍ଣୁ, ଜଣେ ରାଜା ।

ଯଜ୍ଞକୃନ୍ତନ-କ୍ଲୀ.ବ.ଯଜ୍ଞର ଅଂଶବିଶେଷ ।

ଯଜ୍ଞକେତୁ—ପୁଂ. ବ. ଯଜ୍ଞଚିହ୍ନ, ଯଜ୍ଞ ପ୍ରଜ୍ଞାପକ, ରାକ୍ଷସଭେଦ ।

ଯଜ୍ଞକୋପ—ପୁଂ.ବ.ଯଜ୍ଞଦ୍ୱେଷୀ,ରାକ୍ଷସ ।

ଯଜ୍ଞକ୍ରତୁ—ପୁଂ.ବ.ସମ୍ପୂର୍ଣ୍ଣ ଯାଗ, ଯଜ୍ଞର ଶେଷ, ଯଜ୍ଞର ପ୍ରଧାନ ଅଙ୍ଗ, ବିଷ୍ଣୁ, ଯଜ୍ଞ, କ୍ରତୁଯାଗ ।

ଯଜ୍ଞକ୍ରିୟା—ସ୍ତ୍ରୀ.ବ. ଯାଗାଦି କାର୍ଯ୍ୟ ।

ଯଜ୍ଞଗାଥା—ସ୍ତ୍ରୀ.ବ. ଯଜ୍ଞାର୍ଥବିହିତ ମନ୍ତ୍ର ।

ଯଜ୍ଞଗୀତା—ସ୍ତ୍ରୀ. ବ. ଯଜ୍ଞ ପ୍ରକରଣ ନିର୍ବାହାର୍ଥ ମନ୍ତ୍ରସମୂହ ।

ଯଜ୍ଞଗୁପ୍ତ—ଜଣେ ପ୍ରସିଦ୍ଧ ଜୈନ ।

ଯଜ୍ଞଘିଅ—ଗ୍ରା.ବ. ଯଜ୍ଞରେ ହୋମ କରା-ଯିବା ନିମିତ୍ତ ଉତ୍ସୃଷ୍ଟ ଘିଅ, ଆଜ୍ୟ ।

ଯଜ୍ଞଘ୍ନ—ବି.ବଂ. ଯଜ୍ଞ ନାଶକାରୀ, ଯଜ୍ଞ ବିଘ୍ନୋତ୍ପାଦକ (ରାକ୍ଷସାଦି),(ପୁଂ.ବ) (ଯଜ୍ଞ+ହନ୍+କ.ଅ) ରାକ୍ଷସ,ଅସୁର ।

ଯଜ୍ଞଛାଗ-ପୁଂ.ବ. ଯଜ୍ଞଛେଳି, ଯଜ୍ଞପଶୁ ।

ଯଜ୍ଞଜ୍ଞ—ବଂ.ଯଜ୍ଞବିଦ୍, ଯଜ୍ଞ ବିଧାନଜ୍ଞ ।

ଯଜ୍ଞଡୁମି(ମ୍ବି)ର-ଗ୍ରା.ବ.(ସଂ-ଯଜ୍ଞୋଦୁମ୍ବର) ଏକପ୍ରକାର ବଡ଼ ଡୁମିର ।

ଯଜ୍ଞତତି—ସ୍ତ୍ରୀ.ବ. ବଳି, ଯଜ୍ଞେ ଉତ୍ସର୍ଗ-ଯୋଗ୍ୟ ଉପକରଣାଦି ।

ଯଜ୍ଞତନୁ—ସ୍ତ୍ରୀ.ବ. ଯଜ୍ଞ ପ୍ରକାର, ଯଜ୍ଞର ଇଷ୍ଟାପୂର୍ତ୍ତି, ବ୍ୟାହୃତିବିଶେଷ ।

ଯଜ୍ଞତ୍ରାତା-ପୁଂ.ବ.ଯଜ୍ଞରକ୍ଷାକର୍ତ୍ତା,ବିଷ୍ଣୁ ।

ଯଜ୍ଞଦକ୍ଷିଣା—ସ୍ତ୍ରୀ. ବ. ଯଜ୍ଞ ଶେଷରେ ଯଜ୍ଞକର୍ତ୍ତା ବ୍ରାହ୍ମଣର ଦକ୍ଷିଣା ।

ଯଜ୍ଞଦତ୍ତ—ପୁଂ. ବ. ରାମାୟଣ ବର୍ଣ୍ଣିତ ଜନୈକ ବ୍ୟକ୍ତି,ପୌରାଣିକ ବ୍ୟକ୍ତିଦ୍ୱୟ ।

ଯଜ୍ଞଦତ୍ତକ—ପୁଂ.ବ. ଯଜ୍ଞଦତ୍ତ ପୁତ୍ର ।

ଯଜ୍ଞଦୀକ୍ଷା—ସ୍ତ୍ରୀ.ବ.ଯଜ୍ଞ ବିଷୟକ ଦୀକ୍ଷା ।

ଯଜ୍ଞଦୀକ୍ଷିତ—ଅଗ୍ନୀଧ୍ରପ୍ରୟୋଗ ରଚୟିତା

ଯଜ୍ଞଦ୍ୱିଟ୍—ପୁଂ.ବଂ. (ଯଜ୍ଞ+ଦ୍ୱିଷ୍+ କ.କ୍ୱିପ୍)ଯଜ୍ଞ ବିଘ୍ନକାରୀ, (ବି) ରାକ୍ଷସ ।

ଯଜ୍ଞଦ୍ୱେଷୀ—ପୁଂ.ବଂ. (ଯଜ୍ଞ+ଦ୍ୱେଷିନ୍) ଯଜ୍ଞ ବିଘ୍ନକାରୀ, (ବି) ରାକ୍ଷସ ।

ଯଜ୍ଞଦ୍ରବ୍ୟ—କ୍ଲୀ.ବ. ଯଜ୍ଞରେ ବ୍ୟବହୃତ ପଦାର୍ଥ ।

ଯଜ୍ଞଦ୍ରୁହ—ପୁଂ. ବ. (ଯଜ୍ଞ+ଦ୍ରୁହ୍+ କ.ଅ) ଯଜ୍ଞ ବିଘ୍ନକାରକ ରାକ୍ଷସାଦି ।

ଯଜ୍ଞଧର—ପୁଂ.ବ. ବିଷ୍ଣୁ ।

ଯଜ୍ଞଧୀର—ବି. ବଂ. ଯାଗାଦିରେ ପରି-ପକ୍ୱବୁଦ୍ଧି ।

ଯଜ୍ଞଧ୍ୱଂସ—ବ. (୬ତତ୍ପୁ) ଯଜ୍ଞ କର୍ମରେ-ବାଧା ଦାନ ।

ଯଜ୍ଞନାରାୟଣ—ପୁଂ. ବ. ମହାଭାରତ ବ୍ୟାଖ୍ୟାନ ଓ ରଘୁନାଥବିଳାସପ୍ରଣେତା, ଜଣେ ବୈୟାକରଣ ।

ଯଜ୍ଞନାରାୟଣଦୀକ୍ଷିତ—ପ୍ରଭାମଣ୍ଡଳଟିକା ରଚୟିତା, ଆଚାର୍ଯ୍ୟବିଶେଷ ।

ଯଜ୍ଞନିଷ୍କୃତ୍—ବି. ବଂ. ଯଜ୍ଞର ନିର୍ଗମନ କର୍ତ୍ତା ।

ଯଜ୍ଞନୀ-ବି.ବଂ.ଯଜ୍ଞନିର୍ବାହକ,ଯଜ୍ଞନେତା ।

ଯଜ୍ଞନେମି—ପୁଂ. ବ. ଶ୍ରୀକୃଷ୍ଣ ।

ଯଜ୍ଞପତି—ପୁଂ.ବ. ଯଜମାନ, ଯେ ଯଜ୍ଞ କରେ, ବିଷ୍ଣୁ, ନାରାୟଣ ।

ଯଜ୍ଞପତିଉପାଧ୍ୟାୟ—ତତ୍ତ୍ୱଚିନ୍ତାମଣିପ୍ରଭା ପ୍ରଣେତା ।

ଯଜ୍ଞପତ୍ନୀ—ସ୍ତ୍ରୀ.ବ.ଦକ୍ଷିଣା, ଦୀକ୍ଷିତଭାର୍ଯ୍ୟା ।

ଯଜ୍ଞପଥ—ପୁଂ. ବ. ଯଜ୍ଞପ୍ରଣାଳୀ, ଯେଉଁ ପଥରେ ଯଜ୍ଞକୁ ଯାଆନ୍ତି ।

ଯଜ୍ଞପଦ—ସ୍ତ୍ରୀ. ବ. ଯଜ୍ଞକାମୀ ବା ଯଜ୍ଞ-ନେଇ ଯେ ବୁଲେ ।

ଯଜ୍ଞପତିଭାଷ୍ୟ-ଆପସ୍ତମ୍ବକୃତ ସୂତ୍ରଭେଦ ।

ଯଜ୍ଞପରୁଷ୍—କ୍ଲୀ. ବ. ଯଜ୍ଞାଂଶ ।

ଯଜ୍ଞପର୍ବତ—ନର୍ମଦାର ଉତ୍ତର ପଶ୍ଚିମ-ଦିଗସ୍ଥ ଶୈଳଶୃଙ୍ଗ ।

ଯଜ୍ଞପଶୁ—ପୁଂ ବ.(ମଧ୍ୟ-କ.ଧା ବା ୪ତତ୍ପୁ) ଯଜ୍ଞରେ ବଳି ଦିଆଯିବା ପଶୁ, ଘୋଡ଼ା ।

ଯଜ୍ଞପାତ୍ର—କ୍ଲୀ. ବ. ଯଜ୍ଞରେ ବ୍ୟବହୃତ ବିବିଧପାତ୍ର ।

ଯଜ୍ଞପାତ୍ରୀୟ-ବି.ବଂ.ଯଜ୍ଞପାତ୍ରସମ୍ବନ୍ଧୀୟ ।

ଯଜ୍ଞପାଳ—ବ. (ଯଜ୍ଞ+ପାଲି+କ.ଅ) ଯେ ଯଜ୍ଞକୁ ରକ୍ଷାକରେ ।

ଯଜ୍ଞପାର୍ଶ୍ୱ—ପୁଂ. ବି. ଜନୈକ ମୁନି ।

ଯଜ୍ଞପୁଚ୍ଛ—କ୍ଲୀ. ବ. ଯଜ୍ଞର ଶେଷଭାଗ ।

ଯଜ୍ଞପୁମସ୍—ପୁଂ. ବ. ଯଜ୍ଞପୁରୁଷ,ବିଷ୍ଣୁ ।

ଯଜ୍ଞପୁର—ଗ୍ରା. ବ. ଯାଜପୁର ।

ଯଜ୍ଞପୁରୁଷ—ପୁଂ. ବ. (୬ତତ୍ପୁ) ଯଜ୍ଞ-ପୁରୁଷ ବିଷ୍ଣୁ ।

ଯଜ୍ଞପ୍ରୀ—ବି. ବଂ. ଯଜ୍ଞୀୟହବି ଦ୍ୱାରା ଦେବତାଙ୍କ ପ୍ରୀତିଉତ୍ପାଦକ ।

ଯଜ୍ଞଫଳ—ବି. ଯଜ୍ଞଡୁମ୍ବିର ଦେଖ ।

ଯଜ୍ଞଫଳଦ—ପୁଂ. ବଂ. ଯଜ୍ଞଫଳଦାତା, (ବି) ବିଷ୍ଣୁ ।

ଯଜ୍ଞବନ୍ଧୁ—ପୁଂ.ବ.ଯଜ୍ଞକର୍ମର ସହକାରୀ ।

ଯଜ୍ଞବଚସ୍—କ୍ଲୀ. ବ.ଯଜ୍ଞମନ୍ତ୍ର, (ପୁଂ.ବ) ଆଚାର୍ଯ୍ୟବିଶେଷ ।

ଯଜ୍ଞବତ୍—ବି.ବଂ.ଯଜ୍ଞବିଶିଷ୍ଟ,ଯଜ୍ଞକାରୀ

ଯଜ୍ଞବନସ୍—ବି. ବଂ. ସଂଭକ୍ତଯଜ୍ଞ, ପରସ୍ପର ବିଭକ୍ତ ଯଜ୍ଞ ।

ଯଜ୍ଞବରାହ—ପୁଂ.ବ (ମଧ୍ୟ-କ.ଧା)ବିଷ୍ଣୁ ।

ଯଜ୍ଞବର୍ଦ୍ଧନ—ବି. ବଂ, ଯଜ୍ଞବୃଦ୍ଧିକାରୀ ।

ଯଜ୍ଞବର୍ମା—ପୁଂ.ବ.ପ୍ରାଚୀନ ରାଜାବିଶେଷ

ଯଜ୍ଞବଲ୍କ—ପୁଂ.ବ. ମୁନିବିଶେଷ, ଯାଜ୍ଞ-ବଲ୍କ୍ୟଋଷିଙ୍କ ପିତା,ମିତାକ୍ଷରରଚୟିତା ।

ଯଜ୍ଞବଲ୍ଲୀ(ଲ୍ଲି)—ସ୍ତ୍ରୀ. ବ. (ମଧ୍ୟ-କ.ଧା) ସୋମବଲ୍ଲୀ, ସୋମଲତା ।

ଯଜ୍ଞବାଟ—ପୁଂ. ବ. ଯଜ୍ଞଭୂମି ।

ଯଜ୍ଞବାସ୍ତୁ—କ୍ଲୀ. ବ. ଯଜ୍ଞସ୍ଥାନ ।

ଯଜ୍ଞବାହ—ପୁଂ.ବ. (ଯଜ୍ଞ+ବହ୍+କ. ଅ) ଯଜ୍ଞକାରୀ ବ୍ୟକ୍ତି, ଯାଜକ, ସ୍କନ୍ଦା-ନୁଚରବିଶେଷ ।

ଯଜ୍ଞବାହନ—ପୁଂ.ବିଂ. ଯଜ୍ଞବହନକାରୀ, (ବି) ବ୍ରାହ୍ମଣ, ବିଷ୍ଣୁ, ଶିବ ।

ଯଜ୍ଞବାହୀ—ପୁଂ.ବିଂ(ଯଜ୍ଞ+ବହ୍+ଇନ୍ ଯଜ୍ଞବହନକାରୀ ।

ଯଜ୍ଞବାହୁ—ବି. (ବ.ବ୍ରୀ) ଅଗ୍ନି ।

ଯଜ୍ଞବିଦ୍—ପୁଂ.ବିଂ (ଯଜ୍ଞ+ବିଦ୍+କ୍ୱିପ୍) ଯଜ୍ଞବେତ୍ତା, ଯେ ଯଜ୍ଞ ଜାଣେ ।

ଯଜ୍ଞବିଦ୍ୟା—ସ୍ତ୍ରୀ. ବି. ଯଜ୍ଞ ବିଷୟରେ ସମ୍ୟକ୍ ଅଭିଜ୍ଞାନ ।

ଯଜ୍ଞବୀର୍ଯ୍ୟ—ପୁଂ. ବି. ବିଷ୍ଣୁ । [ ଗୁଳ୍ମ ।

ଯଜ୍ଞବୃକ୍ଷ—ପୁଂ. ବି. ବଟବୃକ୍ଷ, ବିକଙ୍କତ

ଯଜ୍ଞବେଦୀ—ସ୍ତ୍ରୀ. ବି, (ମଧ୍ୟ-କ.ଧା)ଯେଉଁ ବେଦୀ ଉପରେ ଯଜ୍ଞ କରାଯାଏ ।

ଯଜ୍ଞବୈଶସ—କ୍ଲୀ. ବି. (୬ତତ୍) ଯଜ୍ଞର ନାଶ ବା ଅପବିତ୍ରୀକରଣ ।

ଯଜ୍ଞବ୍ରତ—ବି.ଯଜ୍ଞକାରୀ ବ୍ୟକ୍ତି, ଯାଜକ, ସ୍କନ୍ଦାନୁଚରବିଶେଷ ।

ଯଜ୍ଞଭାଗ—ପୁଂ.ବି.(୬ତତ୍) ଯାହା ଭିନ୍ନ ଭିନ୍ନ ଦେବତାଙ୍କୁ ଦିଆଯାଏ, ଯଜ୍ଞର ଅଂଶ, (ବି.ବ୍ରୀ) ଯେଉଁ ଦେବତାଙ୍କୁ ଯଜ୍ଞର ଆହୁତି ଅର୍ପିତ ହୁଏ ।

ଯଜ୍ଞଭାଜନ—କ୍ଲୀ. ବି. ଯଜ୍ଞପାତ୍ର ।

ଯଜ୍ଞଭାଣ୍ଡ—କ୍ଲୀ.ବି. ଯଜ୍ଞର ଭାଣ୍ଡ, ଯଜ୍ଞ-ପାତ୍ର ।

ଯଜ୍ଞଭାବନ—ପୁଂ. ବି. ବିଷ୍ଣୁ ।

ଯଜ୍ଞଭୁକ୍—ଯଜ୍ଞଭୋକ୍ତା ବିପ୍ର ।

ଯଜ୍ଞଭୂମି—ସ୍ତ୍ରୀ.ବି.(୬ତତ୍) ଯଜ୍ଞର ଉପ-ଯୁକ୍ତ ଭୂମି ।

ଯଜ୍ଞଭୂଷଣ-ପୁଂ.ବି.ଶ୍ୱେତଦର୍ଭ,କୁଶ ମାତ୍ର ।

ଯଜ୍ଞଭୃତ୍—ପୁଂ. ବି. ବିଷ୍ଣୁ ।

ଯଜ୍ଞଭୋକ୍ତା—ପୁଂ.ବି. ଯଜ୍ଞଭୋକ୍ତା ବିଷ୍ଣୁ ।

ଯଜ୍ଞମଣ୍ଡପ--କ୍ଲୀ.ବି(ମଧ୍ୟ-କ.ଧା)ଯଜ୍ଞବେଦୀ ।

ଯଜ୍ଞମଣ୍ଡଳ—କ୍ଲୀ. ବି. ଯଜ୍ଞସ୍ଥଳ ।

ଯଜ୍ଞମନାଃ—ପୁଂ.ବି. ଯଜ୍ଞାଦିରେ ନ୍ୟସ୍ତ (ଚିତ୍ତ) । [ ସ୍ୱରୂପଯଜ୍ଞ ।

ଯଜ୍ଞମୟ—ତ୍ରି. ବିଂ. ଯଜ୍ଞସ୍ୱରୂପ, ଯଜ୍ଞ-

ଯଜ୍ଞମହୋତ୍ସବ—ପୁଂ. ବି. ଯଜ୍ଞ ନିମିତ୍ତ ଯେଉଁ ଉତ୍ସବ ହୁଏ ।

ଯଜ୍ଞମାଳ—ପୁଂ.ବି.ବୃହନ୍ନାରଦୀୟ ପୁରାଣ-ବର୍ଣ୍ଣିତ ଜଣେ ବ୍ରାହ୍ମଣ, ବେଦମାଳିର ପୁଅ ।

ଯଜ୍ଞମୁଖ—କ୍ଲୀ. ବି. ଯଜ୍ଞର ପ୍ରାରମ୍ଭ ବା ମୁଖପାତ । [ (ରାକ୍ଷସ) ।

ଯଜ୍ଞମୁଷ୍—ପୁଂ. ବିଂ. ଯଜ୍ଞାପହରଣକାରୀ

ଯଜ୍ଞମେନ—କ୍ଲୀ.ବି. ଆୟୁଧବିଶେଷ ।

ଯଜ୍ଞଯଶାଃ- କ୍ଲୀ.ବି.ଯଜ୍ଞଗରିମା ବା ବଡ଼ାଇ

ଯଜ୍ଞଯୋଗ୍ୟ—ପୁଂ. ବି. ଉଡ଼ୁମ୍ବର ବୃକ୍ଷ, (ବିଂ) ଯାଗାର୍ହ, ଯଜ୍ଞର ଯୋଗ୍ୟ ।

ଯଜ୍ଞରସ—ପୁଂ.ବି(ମଧ୍ୟ-କ.ଧା)ସୋମରସ

ଯଜ୍ଞରାଜ—ପୁଂ. ବି. ଚନ୍ଦ୍ରମା, ଯଜ୍ଞରାଟ୍ ।

ଯଜ୍ଞରୁଚ—ପୁଂ. ବି. ଦାନବବିଶେଷ ।

ଯଜ୍ଞରେତାଃ—କ୍ଲୀ. ବି. ସୋମ ରସ ।

ଯଜ୍ଞର୍ତ୍ତି—ତ୍ରି.ବିଂ.ଯଜ୍ଞାର୍ଥ ନିର୍ଦ୍ଦିଷ୍ଟ ବା ରକ୍ଷିତ

ଯଜ୍ଞଲିଙ୍ଗ—ପୁଂ. ବି. ଶ୍ରୀକୃଷ୍ଣ ।

ଯଜ୍ଞଶତ୍ରୁ—ପୁଂ. ବି. ରାକ୍ଷସ, (ବିଂ)ଯଜ୍ଞ-ବିଘ୍ନୋତ୍ପାଦକ ।

ଯଜ୍ଞଶରଣ—କ୍ଲୀ.ବି.ଯଜ୍ଞବେଦୀର ଉପରେ ନିର୍ମିତ ସାମୟିକ ଆଚ୍ଛାଦନ ।

ଯଜ୍ଞଶାଳା—ସ୍ତ୍ରୀ. ବି. ଯଜ୍ଞଗୃହ ।

ଯଜ୍ଞଶାସ୍ତ୍ର—କ୍ଲୀ.ବି.ଯେଉଁ ଶାସ୍ତ୍ରରେ ଯଜ୍ଞ ବିଷୟରେ ଲେଖାଅଛି ।

ଯଜ୍ଞଶୀଳ—ପୁଂ.ବିଂ. (ବ.ବ୍ରୀ)ଯେ ବାର ବାର ଯଜ୍ଞକରେ, (ବି) ବ୍ରାହ୍ମଣ ।

ଯଜ୍ଞଶେଷ—ପୁଂ.ବି(୬ତତ୍)ଯାଗସମାପ୍ତି, ଯଜ୍ଞ ସରିବା ପରେ ଯେ ଦ୍ରବ୍ୟ ବାକିଥାଏ

ଯଜ୍ଞଶ୍ରୀ—ସ୍ତ୍ରୀ. ବି. ଯଜ୍ଞର ସମ୍ପଦ, (ପୁଂ) ରଜାବିଶେଷ । [ ଲତା ।

ଯଜ୍ଞଶ୍ରେଷ୍ଠା—ସ୍ତ୍ରୀ.ବି. ସୋମବଲ୍ଲୀ, ସୋମ-

ଯଜ୍ଞସଂଶିତ—ବିଂ. ଯଜ୍ଞୋଲ୍ଲାସିତ ।

ଯଜ୍ଞସଂସ୍ଥା—ସ୍ତ୍ରୀ. ବି. ଯଜ୍ଞର ଆକାର ବା ମୂଳଭିତ୍ତି ।

ଯଜ୍ଞସଦନ—କ୍ଲୀ ବି.ଯଜ୍ଞଗୃହ,ଯଜ୍ଞସ୍ଥାନ ।

ଯଜ୍ଞସଦଃ—କ୍ଲୀ. ବି. ଯଜ୍ଞସ୍ଥଳରେ ସମ-ବେତ ମନୁଷ୍ୟଗଣ ।

ଯଜ୍ଞସମ୍ଭାର—ବି. ( ୬ତତ୍ ) ଯଜ୍ଞପାଇଁ ଆବଶ୍ୟକୀୟ ବସ୍ତୁଗଣ ।

ଯଜ୍ଞସାଧ—ପୁଂ.ବିଂ.(ଯଜ୍ଞ+ସାଧ୍+କ୍ୱିପ୍) ଯଜ୍ଞସାଧକ, ଯଜ୍ଞନିଷ୍ପାଦକ ।

ଯଜ୍ଞସାଧନ—ପୁଂ.ବିଂ. (ଯଜ୍ଞ+ସାଧ୍+ କ.ଅନ) ଯଜ୍ଞରକ୍ଷକ, (ବି) ବିଷ୍ଣୁ ।

ଯଜ୍ଞସାର—ପୁଂ. ବି. ( ଯଜ୍ଞ+ସାର ) ଉଡ଼ମ୍ବର ଗଛ ।

ଯଜ୍ଞସାରଥି—କ୍ଲୀ. ବି. ସାମଭେଦ ।

ଯଜ୍ଞସିଦ୍ଧି—ସ୍ତ୍ରୀ. ବି. ଯଜ୍ଞସମାପ୍ତି, ଯଜ୍ଞର ଉଦ୍ଦେଶ୍ୟ ସିଦ୍ଧି ।

ଯଜ୍ଞସୂ(ଶୂ)କର—ପୁଂ. ବି. ବିଷ୍ଣୁ ।

ଯଜ୍ଞସୂତ୍ର—କ୍ଲୀ. ବି. (ମଧ୍ୟ-କ.ଧା) ଯଜ୍ଞୋ-ପବୀତ, ପଇତା ।

ଯଜ୍ଞସେନ—ପୁଂ. ବି. ଦ୍ରୌପଦୀଙ୍କ ପିତା, ଦ୍ରୁପଦରଜା, ବିଷ୍ଣୁ, ଦାନବବିଶେଷ, ବ୍ରାହ୍ମଣଦ୍ୱୟ ।

ଯଜ୍ଞସୋମ—ପୁଂ. ବି. କଥାସରିତ୍ସାଗର ବର୍ଣ୍ଣିତ ଜଣେ ବ୍ରାହ୍ମଣ ।

ଯଜ୍ଞସ୍ଥଳ—କ୍ଲୀ. ବି. ଯଜ୍ଞମଣ୍ଡପ, କଳିଙ୍ଗ-ଦେଶାନ୍ତର୍ଗତ ନଗରବିଶେଷ, ଗ୍ରାମ-ଭେଦ, ଅଗ୍ରହାର ଭେଦ ।

ଯଜ୍ଞସ୍ଥାଣୁ—ପୁଂ. ବି. ଯଜ୍ଞସ୍ତମ୍ଭ ।

ଯଜ୍ଞସ୍ଥାନ—କ୍ଲୀ. ବି. (୬ତତ୍) ଯଜ୍ଞଭୂମି ।

ଯଜ୍ଞସ୍ୱାମୀ—କଥାସରିତ୍ସାଗର ବର୍ଣ୍ଣିତ ଜଣେ ବ୍ରାହ୍ମଣ ।

ଯଜ୍ଞହା—ପୁଂ.ବିଂ.(ଯଜ୍ଞ+ହନ୍+କ୍ୱିପ୍) ଯଜ୍ଞବିଘ୍ନକାରକ, (ବି) ରାକ୍ଷସ,ଶିବ ।

ଯଜ୍ଞହୃଦୟ—ପୁଂ. ବି. ବିଷ୍ଣୁ ।

ଯଜ୍ଞହୋତା—ପୁଂ. ବି. ଯଜ୍ଞର ହୋତା, ଉତ୍ତମମନୁଙ୍କ ପୁତ୍ରବିଶେଷ ।

ଯଜ୍ଞାଂଶ—ପୁଂ. ବି. ଯଜ୍ଞର ଅଂଶ,ଯଜ୍ଞର ଭାଗ ।

ଯଜ୍ଞାଂଶଭୁକ୍—ପୁଂ. ବି. ଦେବଗଣ ।

ଯଜ୍ଞାଗାର—ପୁଂ. ବି. ଯଜ୍ଞଗୃହ ।

ଯଜ୍ଞାଙ୍ଗ—ପୁଂ. ବି. (୬ତତ୍) ଉଡ଼ୁମ୍ବର ବୃକ୍ଷ, ଖଦିର ବୃକ୍ଷ, ବ୍ରାହ୍ମଣଯଷ୍ଟିଆ ଗଛ, ସୋମଲତା, ବିଷ୍ଣୁ, (କ୍ଲୀ.ବି) ଯଜ୍ଞର ଅବୟବ, ଯଜ୍ଞସାଧନ ଦ୍ରବ୍ୟ ।

ଯଜ୍ଞାଙ୍ଗଯୋନି—ସ୍ତ୍ରୀ. ବି. (୬ତତ୍) ଯଜ୍ଞ-ସାଧନ ଦ୍ରବ୍ୟାଦିର ଉଦ୍ଭବସ୍ଥଳ, (ବିଂ) ଯଜ୍ଞର ଉପକରଣ ସମୂହର ଉତ୍ପାଦକ ।

ଯଜ୍ଞାତ୍ମା—ପୁଂ. ବି. ବିଷ୍ଣୁ ।

ଯଜ୍ଞାନୁକାଶୀ—ପୁଂ.ବଂ. ଯଜ୍ଞୀୟସଦସ୍ୟ, ଯଜ୍ଞ ପର୍ଯ୍ୟବେକ୍ଷଣକାରୀ, ଯଜ୍ଞତତ୍ତ୍ୱ ପ୍ରକାଶନସମର୍ଥ ।

ଯଜ୍ଞାନ୍ତ—ପୁଂ. ବ. ଅବଭୃତ,ଯାଗଶେଷ ।

ଯଜ୍ଞାନ୍ତକୃତ୍—ପୁଂ.ବ.(ଯଜ୍ଞ+ଅନ୍ତ+କୃ+କ୍ୱିପ୍) ବିଷ୍ଣୁ ।

ଯଜ୍ଞାଯଜ୍ଞୀୟ—କ୍ଳୀ. ବ. ସାମଭେଦ ।

ଯଜ୍ଞାୟତନ—କ୍ଳୀ. ବ. ଯଜ୍ଞମଣ୍ଡପ ।

ଯଜ୍ଞାୟୁଧ—କ୍ଳୀ.ବ.ଦଶପ୍ରକାର ଯଜ୍ଞପାତ୍ର ।

ଯଜ୍ଞାୟୁଧୀ—ତ୍ରି. ବଂ. ଯଜ୍ଞପାତ୍ର ଦ୍ୱାରା ସମ୍ପନ୍ନ, ଯଜ୍ଞପାତ୍ର ନିଷ୍ପାଦିତ ।

ଯଜ୍ଞାରଙ୍ଗେଶପୁରୀ—ସ୍ତ୍ରୀ.ବ.ନଗରଭେଦ ।

ଯଜ୍ଞାରି—ପୁଂ.ବ. (୬ତତ୍) ଶିବ,ରାକ୍ଷସ ।

ଯଜ୍ଞାର୍ଥ—ଅବ୍ୟ. ଯଜ୍ଞପାଇଁ ।

ଯଜ୍ଞାର୍ହ—ପୁଂ. ବ. ଯଜ୍ଞର ଉପଯୁକ୍ତ ।

ଯଜ୍ଞାବୟବ—ପୁଂ. ବ. ବିଷ୍ଣୁ ।

ଯଜ୍ଞାଶନ—ପୁଂ. ବ. ଦେବତା ।

ଯଜ୍ଞାସାଃ—ତ୍ରି.ବଂ.ଯଜ୍ଞସହ,ଯଜ୍ଞର ଧାରୟିତା ।

ଯଜ୍ଞିକ—ପୁଂ. ବ. (ଯଜ୍ଞ+ଇକ)ପଲାଶ ଗଛ, ଦ୍ୱାପରଯୁଗ, ଯଜ୍ଞପ୍ରସାଦରୁ ପ୍ରାପ୍ତ ପୁତ୍ର ।

ଯଜ୍ଞିୟ—ତ୍ରି.ବଂ.(ଯଜ୍ଞ+ଇୟ)ଯଜ୍ଞସମ୍ବନ୍ଧୀୟ, ପବିତ୍ର, ପୂଜ୍ୟ, ପୁଣ୍ୟାତ୍ମା,(ବ) ଦ୍ୱାପରଯୁଗ, ଦେବତା, ଖଇରଗଛ, ପଲାଶଗଛ, ଯଜ୍ଞର ହିତକର ବସ୍ତୁ ।

ଯଜ୍ଞିୟଦେଶ—ପୁଂ. ବ. (କ.ଧା) ଯାଗକରିବାର ଉପଯୁକ୍ତ ଦେଶ,ଆର୍ଯ୍ୟାବର୍ତ୍ତ ।

ଯଜ୍ଞିୟଶାଳା—ସ୍ତ୍ରୀ.ବ.ଯାଗମଣ୍ଡପ,ଯଜ୍ଞଗୃହ ।

ଯଜ୍ଞୀୟ—ପୁଂ.ବ.ଡିମ୍ବିରିଗଛ. (ବଂ)ଯଜ୍ଞସମ୍ବନ୍ଧୀୟ ।

ଯଜ୍ଞୀୟବ୍ରହ୍ମପାଦପ—ପୁଂ.ବ.ବିକଙ୍କତ ବୃକ୍ଷ ।

ଯଜ୍ଞେଶ—ପୁଂ. ବ. ବିଷ୍ଣୁ ।

ଯଜ୍ଞେଶ୍ୱର—ପୁଂ. ବ. (୬ତତ୍)ବିଷ୍ଣୁ ।

ଯଜ୍ଞେଶ୍ୱରୀ—ସ୍ତ୍ରୀ.ବ. ମନ୍ତ୍ରବିଶେଷ ।

ଯଜ୍ଞେଷ୍ଟ—କ୍ଳୀ.ବ.ଦୀର୍ଘ ରୋହିଷକ ତୃଣ ।

ଯଜ୍ଞୋଡୁମ୍ବର—ପୁଂ.ବ.(ମଧ୍ୟ-କ.ଧା) ଯଜ୍ଞଡିମ୍ବିରି ଦେଖ ।

ଯଜ୍ଞୋପକରଣ—କ୍ଳୀ. ବ. ଯେଉଁ ସବୁ ପଦାର୍ଥ ଦ୍ୱାରା ଯଜ୍ଞକର୍ମ ନିର୍ବାହ ହୁଏ ।

ଯଜ୍ଞୋପବୀତ—କ୍ଳୀ.ବ.(ମଧ୍ୟ-କ.ଧା)ଯଜ୍ଞସୂତ୍ର ଦେଖ ।

ଯଜ୍ଞୋପବୀତୀ—ପୁଂ.ବ. (ଯଜ୍ଞୋପବୀତ+ଇନ୍) ପଇତାଧାରୀ ବ୍ରାହ୍ମଣ ।

ଯଜ୍ଞୋପାସକ—ପୁଂ.ବଂ.ଯଜ୍ଞ ପୂଜାକାରୀ, ଯଜ୍ଞକାରୀ ।

ଯଜ୍ୱ—ପୁଂ.ବଂ. (ଯଜ୍+ମି.ବ)ପୂଜନୀୟ, (ବ. ଯଜ୍+ଭା.ବ) ପୂଜାକର୍ମ, ଯଜ୍ଞ ।

ଯଜ୍ୱନାଂପତି—ବ.ନିଶାନାଥ,ଚନ୍ଦ୍ର,ସୋମ ।

ଯଜ୍ୱପତି—ପୁଂ. ବ. ଚନ୍ଦ୍ର ।

ଯଜ୍ୱା—ପୁଂ.ବଂ(ଯଜ୍+କ.ବନ୍)ଯାଜ୍ଞିକ, ପୂଜାକାରୀ,ଯାଗକର୍ତ୍ତା,(ଯଜ୍+ଭା.ବନ୍) ପୂଜା, (ଯଜ୍+ଅଧି.ବନ୍)ଯଜ୍ଞ, (ଯଜ୍+କ.ବନ୍)ବିଷ୍ଣୁ ।

ଯଜ୍ୟ—ତ୍ରି. ବଂ. (ଯଜ୍+ମି.ଯ) ଯଜନକରିବା ଯୋଗ୍ୟ, ପୂଜନୀୟ ।

ଯଜ୍ୟୁ—ତ୍ରି. ବଂ. (ଯଜ୍+କ.ୟୁ)ଧାର୍ମିକ, ପୁଣ୍ୟାତ୍ମା, ପୂଜାକାରୀ, (ବ) ଯଜୁର୍ବେଦୀ ବ୍ରାହ୍ମଣ, ଯଜମାନ ।

ଯଣ୍ୱ—କ୍ଳୀ. ବ. ସାମବେଦର ଏକଅଂଶ ।

ଯତ୍—ତ୍ରି. ବଂ. ସର୍ବ. ( ସଂ-ଯଦ୍ଶବ୍ଦ ) ଯେ, ଯେଉଁ,ଯାହା,(ଗ୍ରା)ତାଳବିଶେଷ ।

ଯତ୍—(ଧାତୁ).ଯତ୍ନ, ନିକାର, ଉପସ୍କାର, ଚେଷ୍ଟାକରିବା, ମନସ୍ଥକରିବା,ଯାତନାଦେବା, ପ୍ରହାରକରିବା, ଆଦେଶକରିବା,ସଂଗ୍ରହକରିବା,ନିର୍ମାଣକରିବା, ନିବାରଣକରିବା, ଅପନୋଦନକରିବା. ଫେରାଇ ଦେବା, ବଦଳ କରିବା, ଶୋଧନ କରିବା, ପରିଶ୍ରମକରିବା, ଆକାଙ୍କ୍ଷାକରିବା, ଉତ୍କଣ୍ଠିତ ହେବା ।

ଯତ୍କର୍—ପ୍ରା.(ସମ୍ପ)ବି.ବଂ. (ସଂ-ଯଦ ଓ କୃଦ) ଏଣେତେଣେ ଓ ଯହିଁତହିଁ ।

ଯତ୍କାଲ—ବ. (କ.ଧା) ଯେଉଁସମୟ ।

ଯତ୍କିଞ୍ଚିତ୍—ସର୍ବ. ଅତି ସାମାନ୍ୟ ପରିମିତ, ଅତିତୁଚ୍ଛ ।

ଯତ୍କ୍ଷଣ—ବ. ଯେଉଁକ୍ଷଣ ।

ଯତ୍ପରୋନାସ୍ତି—ବଂ. ଅତ୍ୟନ୍ତ, ଯାହାଠାରୁ ବଳି ଆଉନାହିଁ ।

ଯତ୍ସମୟ—ବ. ଯେଉଁ ସମୟ ।

ଯତ୍ସକାଶାତ୍—ଅବ୍ୟ.ଯିହାଠାରୁ,ଯେଉଁ କାରଣରୁ ।

ଯତ୍ସାମାନ୍ୟ—ତ୍ରି. ବଂ. ଅତି ସାମାନ୍ୟ, ଅତିଅଳ୍ପ, ଅତିକ୍ଷୁଦ୍ର, ନଗଣ୍ୟ ।

ଯତ୍ସାୟଂଗୃହ—ପୁଂ.ବଂ. ଯାଉଁ ଯାଉଁ ବାଟରେ ଯେଉଁଠାରେ ସନ୍ଧ୍ୟା ହୁଏ ସେଠାରେ ଯେ ରହେ,(ସ୍ତ୍ରୀ)ଯତ୍ସାୟଂଗୃହୀ ।

ଯତ—ଗ୍ରା. ବ. (ସଂ-ଯତ୍ନ) ଯତ୍ନ ଦେଖ, (ବଂ)ସୁନ୍ଦର, (ସଂ-ବଂ) (ଯମ୍+ମି.ତ) ସଂଯତ, ବଦ୍ଧ, ନିୟମିତ, ନିୟନ୍ତ୍ରିତ, ପରିମିତ, ଶାସିତ, ବଶକୁ ଆଣିତ, (ବ. ଯମ୍+ଭା.ତ)ସଂଯମ, ପାଦ ଦ୍ୱାରା ଗଜତାଡ଼ନ ।

ଯତଃ—ଅବ୍ୟ.(ଯଦ୍+ତସ୍) ଯେହେତୁ, ସୁତରାଂ, ଯେତେବେଳେ, ଯେପରି, ଯେଉଁଠାରୁ, ଯାହାଠାରୁ, ଯେଉଁ ବ୍ୟକ୍ତିଠାରୁ, ଯେଉଁ କାରଣରୁ, ଯେଉଁସମୟରୁ ।

ଯତଗୀର—ସଂଯତବାକ୍ୟ ।

ଯତଚିତ୍ତ—ପୁଂ.ବଂ. (ଯତ+ଚିତ୍ତ,ବ.ବ୍ରୀ) ଯେ ଆପଣାର ଚିତ୍ତକୁ ସଂଯତ ବା ବଶୀଭୂତ କରିଅଛି, (ସ୍ତ୍ରୀ) ଯତଚିତ୍ତା ।

ଯତଚେତାଃ—ପୁଂ. ବଂ ଓ ସ୍ତ୍ରୀ. (ବ.ବ୍ରୀ) (ଯତ+ଚେତସ୍) ଯତଚିତ୍ତ ଦେଖ ।

ଯତନ—ବ. (କ-ପ୍ର). (ଯତ୍+ଭା.ଅନ) ପ୍ରଚେଷ୍ଟା, ଉଦ୍ଯୋଗ, ଉଦ୍ୟମ, ପରିଶ୍ରମ, ଯତ୍ନ, ପ୍ରଯତ୍ନ,ସାବଧାନତା, ହୁସିଆରୀ, (ଗ୍ରା.ବ)ଉପାୟ,ଫିକର,(ଗ୍ରା.ବଂ)ସୁନ୍ଦର, ସୁଚଳ ।

ଯତନା(ନେ)ଇବା—ଗ୍ରା. କ୍ରି. ଯତ୍ନପୂର୍ବକ ରଖିବା, ସାଇତିବା । [ ତଦ୍ୟ ।

ଯତମାୟ—ବଂ.(ଯତ୍+ମି.ଅମାୟ)ଚେଷ୍ଟି-

ଯତବାକ୍—ପୁଂ. ବଂ.(ବ.ବ୍ରୀ) ବାକ୍ୟରେ ସଂଯମ ଅବଲମ୍ବନକାରୀ,ମୌନାବଲମ୍ବୀ ।

ଯତବ୍ୟ—ପୁଂ. ବଂ. ପ୍ରଯତ୍ନବାନ୍ ।

ଯତବ୍ରତ—ପୁଂ. ବଂ. (ବ.ବ୍ରୀ)ସଂଯମରୂପ ବ୍ରତଧାରୀ, ଦୃଢ଼ବ୍ରତ, (ସ୍ତ୍ରୀ)ଯତବ୍ରତା ।

ଯତମ—ପୁଂ. ବଂ. (ଯଦ୍+ତମ)ବହୁତ

ଭିତରୁ ଯେଉଁ ଗୋଟିକ,(ସ୍ତ୍ରୀ) ଯତମା ।
**ଯତମାନ**—ପୁଂ. ବିଂ. (ଯତ୍+କ.ଆନ) ଚେଷ୍ଟାକରୁଥିବା, (ସ୍ତ୍ରୀ) ଯତମାନା ।
**ଯତମୈଥୁନ**—ପୁଂ.ବିଂ. (ଯତ+ମୈଥୁନ ବ.ବ୍ରୀ; ସହବାସବିମୁଖ, ସହବାସ ସମ୍ବନ୍ଧେ ସଂଯତ, (ସ୍ତ୍ରୀ) ଯତମୈଥୁନା ।
**ଯତର**—ତ୍ରି. ବିଂ. ଏ ଦୁହିଁଙ୍କ ମଧ୍ୟରୁ ଯେଉଁଟି,(ସ୍ତ୍ରୀ) ଯତରା ।
**ଯତରକତର**—ଗ୍ରା. ଅବ୍ୟ. ଯହିଁକହିଁ ଦେଖ, (ପ୍ରା.ସମ୍ବ.ବ) ଦ୍ୱିଧାଭିନ୍ନ ।
**ଯତରକତରକରିବା**—ପ୍ରା. (ସମ୍ବ. ଓ ଗ୍ରା.କ୍ରି.) ଦ୍ୱିଧାକରିବା ।
**ଯତରତତର**—ପ୍ରା.(ସମ୍ବ. ଓ ଅବ୍ୟ.) ଯହିଁତହିଁ ଦେଖ, (ଗ୍ରା କ୍ରି.ବିଂ) ଦ୍ୱିଧାକରଣ ।
**ଯତସ୍ତତଃ**—ଅବ୍ୟ. (ଯତଃ+ତତଃ) ଯେ କୌଣସି ସ୍ଥାନରୁ, ଯେ କୌଣସି ବ୍ୟକ୍ତିଠାରୁ, ଯେ କୌଣସି ସ୍ଥାନରେ, ସବୁ ଦିଗରେ, ଚୁଡ଼ିଆଡ଼େ, ଯେ କୌଣସି ଦିଗରେ ।
**ଯତରଶ୍ମି**—ତ୍ରି.ବିଂ. ସଂଯତରଶ୍ମି ।
**ଯତାତ୍ମା**—ପୁଂ. ବିଂ. (ଯତ+ଆତ୍ମନ. ନ.ବ୍ରୀ) ଯତଚିତ୍ତ ଦେଖ, ସଂଯମଚିତ୍ତ, ସଞ୍ଜମୀ ।
**ଯତାହାର**—ପୁଂ.ବିଂ. (ଯତ+ଆହାର) ବ.ବ୍ରୀ; ନିୟମିତଭୋଜୀ, ଖାଇବା ବିଷୟରେ ସଂଯତ, (ସ୍ତ୍ରୀ) ଯତାହାରା ।
**ଯତି**—ପୁଂ.ବି. (ଯତ୍+କ.ଇ) ଯମୀ, ମୁନି, ତପସ୍ୱୀ, ବ୍ରହ୍ମଚାରୀ, ଭିକ୍ଷୁ, ପରିବ୍ରାଜକ, (ଯମ୍+ଭା.ତି) ନିବୃତ୍ତି,ଦମନ. (ଯମ୍+ଅଧି.ତି) ଛନ୍ଦର ବା ଶ୍ଳୋକର ମଧ୍ୟରେ ଜିହ୍ୱାର ବିଶ୍ରାମ ସ୍ଥାନ, ପାଠବିଚ୍ଛେଦ, ବିଧବା, ପଦାଂଶ, ଅନୁଭୂତି. ଯତ୍ନନାମକ ତାଳ,ବ୍ରହ୍ମାଙ୍କର ଏକପୁତ୍ର, ନହୁଷଙ୍କ ଏକପୁତ୍ର, (ସ୍ତ୍ରୀ.ବି) (ଯମ୍+ଭା.ତି) ଶ୍ଳୋକାଦି ପାଠ କାଳେ ଜିହ୍ୱାର ଇଷ୍ଟବିରାମ ସ୍ଥାନ ।
**ଯତିଗୃହାୟଣ**—କ୍ଳୀ. ବି. ସର୍ବପାପହର ବ୍ରତବିଶେଷ ।
**ଯତିଚିହ୍ନ**—ଉଚ୍ଚାରଣର ବିଚ୍ଛେଦସୂଚକ ଜିହ୍ୱାର ବିରାମାର୍ଥ ବ୍ୟବହୃତ ଚିହ୍ନ ।
**ଯତିତ**—ବିଂ. (ଯତ୍+ମ୍ନି.ତ) ଯାହା ଚେଷ୍ଟା କରାଯାଇଅଛି ।
**ଯତିତବ୍ୟ**—ତ୍ରି. ବିଂ. (ଯତ୍+ମ୍ନି.ତବ୍ୟ) ଯତ୍ନଯୋଗ୍ୟ, ଚେଷ୍ଟନୀୟ ।
**ଯତିତ୍ୱ**—କ୍ଳୀ. ବି. (ଯତି+ଭା.ତ୍ୱ) ଯତିର ଧର୍ମ ବା କର୍ମ ବା ଭାବ, ବ୍ରହ୍ମଚର୍ଯ୍ୟ ।
**ଯତିଥ**—ତ୍ରି. ବିଂ. ଯେତେଥିକ, ଯେତେତେତେ ।
**ଯତିଧର୍ମ**—ପୁଂ. ବି. ଯତିର କର୍ତ୍ତବ୍ୟ ନିୟମମାନ ।
**ଯତିଧର୍ମା**—ପୁଂ.ବି. ଶ୍ୱଫଲଙ୍କ ଏକପୁତ୍ର ।
**ଯତିଧା**—ଅବ୍ୟ. ଯେତେଅଂଶ, ଯେତେ ଉପାୟରେ, ଯେତେପ୍ରକାରେ ।
**ଯତିନୀ**—ସ୍ତ୍ରୀ. ବି. (ଯତ୍+ଇନ୍+ଈ) ବିଧବା, ସନ୍ନ୍ୟାସିନୀ ।
**ଯତିପଡ଼ିବା**—ଗ୍ରା. ବି. ପଦ୍ୟର ସ୍ଥାନବିଶେଷରେ ଉଚ୍ଚାରଣ ବିଶ୍ରାମ ଘଟିବା, (ଲ.ଅର୍ଥ) ଦୁଇଜଣଙ୍କ ମନର ଐକ୍ୟ ।
**ଯତିପାତ**—ପୁଂ.ବି. (୬ତତ୍) ପଦ୍ୟାବୃତ୍ତି କରିବା ସମୟରେ ଯେଉଁ ଯେଉଁଠାରେ ଟିକିଏ ଟିକିଏ ବିଶ୍ରାମ କରିବାକୁ ହୁଏ ।
**ଯତିପାତଦୋଷ**—ବି. ଛନ୍ଦୋଦୋଷ ବିଶେଷ ।
**ଯତିପାତଭଙ୍ଗ**—ପୁଂ. ବି. (୬ତତ୍) ଛନ୍ଦୋଦୋଷବିଶେଷ ।
**ଯତିବର୍ଯ୍ୟ**—ପୁଂ. ବି. ଦୀଧିତିଟୀକାକାର ଜଣେ ନୈୟାୟିକ ପଣ୍ଡିତ ।
**ଯତିଭ୍ରଷ୍ଟ**—ତ୍ରି. ବିଂ. ଯେଉଁ ଛନ୍ଦରେ ଯତି ପଡ଼ିନାହିଁ ।
**ଯତିଯମକ**—ବି. ଯମକବିଶେଷ ।
**ଯତିସାନ୍ତପନ**—କ୍ଳୀ. ବି. ଯତିଚାନ୍ଦ୍ରାୟଣ ବ୍ରତବିଶେଷ ।
**ଯତୀ**—ପୁଂ. ବି. (ଯତ୍+କ.ଇନ୍) ଜିତେନ୍ଦ୍ରିୟ ମୁନି, ସନ୍ନ୍ୟାସୀ ।
**ଯତୀନ୍ଦ୍ର**—ପୁଂ. ବିଂ ଓ ବି. (୬ତତ୍) ପ୍ରଧାନ ଯତି, ପରମହଂସ, ଯତିଶ୍ରେଷ୍ଠ ।
**ଯତୀନ୍ଦ୍ରମୋହନଠାକୁର**-ବଡ଼ଲାଟଙ୍କ ବ୍ୟବସ୍ଥାପକ ସଭାର ଜଣେ ସଦସ୍ୟ ।
**ଯତୀନ୍ଦ୍ରମୋହନରାୟ**—ଢାକାର ଇତିହାସ ଲେଖକ ।
**ଯତୀୟସ୍**—କ୍ଳୀ. ବି. ରୌପ୍ୟ ।
**ଯତୁକା**—ବି. ଚକମର୍ଦ୍ଦ ଗଛ ।
**ଯତୁନ**—ତ୍ରି. ବିଂ. ଗନ୍ତା, ଯତନଶୀଳ ।
**ଯତେନ୍ଦ୍ରିୟ**—ପୁଂ. ବିଂ. ( ବ.ବ୍ରୀ ) ଯେ ଇନ୍ଦ୍ରିୟମାନଙ୍କୁ ସଂଯତ କରିଅଛି, (ସ୍ତ୍ରୀ) ଯତେନ୍ଦ୍ରିୟା ।
**ଯତୋଜ**—ତ୍ରି.ବିଂ. ଯାହାଠାରୁ ଉତ୍ପନ୍ନ ।
**ଯତୋଭବ**—ତ୍ରି.ବିଂ. ଯାହାଠାରୁ ଉତ୍ପନ୍ନ ।
**ଯତୋଧର୍ମସ୍ତତୋଜୟଃ**--(ସଂ-ପ୍ରବ.) ଧର୍ମବାନ୍ ପ୍ରାଣୀ ସର୍ବଦା ଜୟଲାଭ କରେ ।
**ଯତ୍କାମ୍ୟା**—ଅବ୍ୟ. ଯେଉଁ ଅଭିପ୍ରାୟରେ ।
**ଯତ୍କାରଣରୁ**-ଗ୍ରା.ଅବ୍ୟ. (ସଂ-ଯତ୍କାରଣାତ୍) ଯେଉଁ କାରଣରୁ, ଯେହେତୁ ।
**ଯତ୍କାରୀ**—ତ୍ରି.ବିଂ. ଯେକାର୍ଯ୍ୟକାରୀ ।
**ଯତ୍କାର୍ଯ୍ୟ**--ଅବ୍ୟ. ଯେଉଁ କାର୍ଯ୍ୟରେ ।
**ଯତ୍କିଞ୍ଚିତ୍**—ଅବ୍ୟ. ଯେ କିଛି, କିଞ୍ଚିତ୍ ପରିମାଣ ।
**ଯତ୍କୃତୁ**—ତ୍ରି.ବିଂ. ଯେ ଉପାୟେ, ଯେ ସଂକଳ୍ପ ।
**ଯତ୍ତ**—ପୁଂ.ବି. (ଯତ୍+କ.ତ) ଚେଷ୍ଟା କରୁଥିବା, ପ୍ରଯତ୍ନବିଶିଷ୍ଟ, ଯତ୍ନ ନେଉଥିବା, ପ୍ରସ୍ତୁତ, ଉଦ୍ୟତ, ଯେ ସଂକଳ୍ପ କରିଅଛି, ( ଯତ୍+ମ୍ନି.ତ ) ଯାହାପ୍ରତି ଯତ୍ନ କରାଯାଇଅଛି ।
**ଯତ୍ନ**—ପୁଂ.ବି. (ଯତ୍+ଭା.ନ) ଚେଷ୍ଟା, ଉଦ୍ଯୋଗ, ପ୍ରଯତ୍ନ, ଉଦ୍ୟମ, ପରିଶ୍ରମ, ଅଧ୍ୟବସାୟ, ଆଦର, ମନୋଯୋଗ, ସତର୍କତା, ସାବଧାନତା, ଆଗ୍ରହ, କଷ୍ଟସ୍ୱୀକାର, (ଗ୍ରା.ବି) ରୋଗୀର ସେବା, ଚିକିତ୍ସା, ଉପାୟ, ଅବଧାନ ।
**ଯତ୍ନକରିବା**—ଗ୍ରା. କ୍ରି. ଉଦ୍ୟମ କରିବା, ଚେଷ୍ଟାକରିବା, ଉପାୟ କରିବା ।
**ଯତ୍ନତଃ**—କ୍ରି.ବିଂ. (ଯତ୍ନ+ତସ୍) ବିଶେଷ ଯତ୍ନକରି, ବହୁ ଚେଷ୍ଟା କରି, ଆଦରପୂର୍ବକ ।
**ଯତ୍ନନେବା**-ଗ୍ରା.କ୍ରି. ତତ୍ତ୍ୱନେବା, ଧ୍ୟେୟା-

ଜତ୍ନ କରିବା, ହୃଷ୍ଟିରଖିବା, ସମାଦର କରିବା ।

ଯତ୍ନପାଳିତ—ବି°. (୩ତତ୍) ଯତ୍ନସହିତ ପାଳିତ ହୋଇଥିବା ।

ଯତ୍ନପୂର୍ବକ-କ୍ରି.ବି°.(ବ.ସ୍ତ୍ରୀ)ଯତ୍ନସହକାରେ

ଯତ୍ନବାନ୍—ପୁ°. ବି°. ( ଯତ୍ନ+ବତ୍ ) ଚେଷ୍ଟାଯୁକ୍ତ, ଆଗ୍ରହଯୁକ୍ତ, ଅଧ୍ୟବସାୟୀ, (ସ୍ତ୍ରୀ) ଯତ୍ନବତୀ ।

ଯତ୍ନଲଭ୍ୟ—ବି. (୩ତତ୍) ପରିଶ୍ରମ ବା ଚେଷ୍ଟାଦ୍ୱାରା ପ୍ରାପ୍ୟ ।

ଯତ୍ନଶୀଳ-ବି°.(ବ.ସ୍ତ୍ରୀ)ଯତ୍ନବାନ୍,ସଚେଷ୍ଟ ।

ଯତ୍ନହୋଇ—ଗ୍ରା. କ୍ରି.ବି°.ଉଦ୍ୟମରୂପେ ।

ଯତ୍ନାକ୍ଷେପ—ପୁ°. ବି. ଅଳଙ୍କାରଶାସ୍ତ୍ରୋକ୍ତ ଆକ୍ଷେପବିଶେଷ, ଆପତ୍ତି ବନ୍ଦକରିବା ପାଇଁ ଚେଷ୍ଟାକରାଯାଇଥିବାସତ୍ତ୍ୱେ କରାଯିବା ଆପତ୍ତି ।

ଯତ୍ନେକୃତେଯଦିନସିଧ୍ୟତିକୋଽତ୍ରଦୋଷଃ-(ସଂସ୍କୃତପ୍ରବଚନ)କୌଣସି କାର୍ଯ୍ୟପାଇଁ ଚେଷ୍ଟାକରି କୃତକାର୍ଯ୍ୟ ନହେଲେ ଆପଣାକୁ ଦୋଷଲାଗେ ନାହିଁ ।

ଯତ୍ର—ଅବ୍ୟ. (ଯଦ୍+ତ୍ର,୭ତତ୍)ଯେଉଁଠାରେ ,ଯହିଁ, ଯେଉଁ ବିଷୟରେ ।

ଯତ୍ରଆୟସ୍ତତ୍ରବ୍ୟୟ—ଗ୍ରା. ( ପ୍ରବଚନ ) ଯେତିକିଆୟ ସେତିକି ବ୍ୟୟ ବା ଖର୍ଚ୍ଚ

ଯତ୍ରକୁତ୍ର—ଗ୍ରା. ଅବ୍ୟ. (ସଂ-ଯତ୍ର + କୁତ୍ର) ଯଥାକଥଞ୍ଚିତ୍, ଅତିକଷ୍ଟରେ, ଯେଉଁଠାରେ ଇଚ୍ଛା ସେଠାରେ, ଯେନକେନ ପ୍ରକାରେଣ ।

ଯତ୍ରକାମ—ଅବ୍ୟ. ଯଥେଚ୍ଛା ବା ଇଚ୍ଛାନୁସାରେ । [ବିଶେଷ ।

ଯତ୍ରକାମାବସାୟ—ପୁ°. ବି. ଯୋଗୀଙ୍କ

ଯତ୍ରକୁତ୍ର—ଅବ୍ୟ.ଯେ କୌଣସିସମୟରେ ଏଠାରେ ସେଠାରେ ।

ଯତ୍ରତତ୍ର—କ୍ରି-ବି°.ଯେ କୌଣସିଠାରେ, ଯଥାତଥା, ସବୁଠାରେ ।

ଯତ୍ରତତ୍ରଶୟ—ପୁ°. ବି°. ଯେଉଁଠାରେ ସେଠାରେ ଶୋଇବା ଲୋକ ।

ଯତ୍ରତ୍ୟ—କ୍ରି.ବି° .ଯେଉଁ ଠାରେ ଉତ୍ପନ୍ନ, ଯେଉଁ ସ୍ଥାନର, ଯେଉଁସ୍ଥାନର ଅଧିବାସୀ

ଯତ୍ରଯତ୍ର—ଅବ୍ୟ. (ଯତ୍ର+ଯତ୍ର) ଯେଉଁ ଯେଉଁ ସ୍ଥାନରେ ।

ଯତ୍ରସାୟଂପ୍ରତିଶ୍ରୟଃ—କ୍ରି. ବି°. (ସଂ-ପ୍ରବଚନ) ଦାଣ୍ଡରେ ଯାଉଁ ଯାଉଁ ଯେଉଁଠାରେ ସନ୍ଧ୍ୟାହୁଏ ସେଠାରେ ଶୋଇବା ଯତି

ଯତ୍ରସ୍ଥ—କ୍ରି.ବି°. ଯେଉଁଠାରେ ଅବସ୍ଥାନକାରୀ ।

ଯତ୍ରାକୂତ—କ୍ଲୀ. ବି. ସଙ୍କଳ୍ପ, ମନରେ ଯାହା ଇଚ୍ଛା ହୋଇଅଛି ।

ଯତ୍ରୁ—ବି.ଗ୍ରୀବାଉପରେ ଓ ଗଳାର ତଳେ ଥିବା ମଣ୍ଡଳାକାର ଅସ୍ଥି ।

ଯତ୍ସକାଶାତ୍--ଅବ୍ୟ.(ସଂ-ଯତ୍+ସକାଶାତ୍) ଯାହାଙ୍କଠାରୁ ।

ଯତ୍ସତ୍ୟ-କ୍ରି.ବି°.(ଅବ୍ୟୟୀଭାବ)ଯଥାର୍ଥରେ

ଯତ୍ସାମାନ୍ୟ--କ୍ରି.ବି°.ଯତ୍‌କିଞ୍ଚିତ୍,ଅତ୍ୟଳ୍ପ ।

ଯଥଂକଥଂ—ଗ୍ରା. କ୍ରି. ବି°. ଯଥାକଥଞ୍ଚିତ ଦେଖ ।

ଯଥର୍ଷି—ଅବ୍ୟ. ଋଷିଙ୍କ ଅନୁସାରେ ।

ଯଥର୍ଚ୍ଚ—ଅବ୍ୟ. ଋକ୍‌ଅନୁରୂପ ।

ଯଥର୍ତ୍ତୁ—ଅବ୍ୟ. ଋତୁର ଅନୁରୂପ,ନିର୍ଦ୍ଦିଷ୍ଟ ସମୟାନୁରୂପ. ଯଥାସମୟ ।

ଯଥର୍ତ୍ତୁକ—କ୍ରି. ବି . ନିର୍ଦ୍ଦିଷ୍ଟଋତୁସମ୍ବନ୍ଧୀୟ

ଯଥର୍ଷି--ଅବ୍ୟ·ଋଷିକଥିତ ବାକ୍ୟାନୁସାରେ

ଯଥା—ଅବ୍ୟ. (ଯଦ୍+ପ୍ରକାରାର୍ଥେ.ଥା) ଯେଉଁପ୍ରକାରେ, ଯେଉଁପରି, ଯଦୃଶ, ଉପର୍ଯ୍ୟୁକ୍ତରୂପେ, ଉଦାହରଣ ସ୍ୱରୂପ, ଅନୁସାରେ, ଅତିକ୍ରମ ନକରି, (ବା°.ବି) ଜଥା ଦେଖ । [ସାରେ ।

ଯଥାଋତୁ—କ୍ରି. ବି°. ଉଚିତଋତୁ ଅନୁ·

ଯଥାକଥଞ୍ଚିତ୍—କ୍ରି . ବି°. (ଯଥା+କଥଂ +ଚିତ୍)ଯେକୌଣସିପ୍ରକାରେ,ଅତିକଷ୍ଟରେ

ଯଥାକଥା—କ୍ରି . ବି°.(ସଂ-ଯଥା+କଥଂ) ଯଥାକଥଞ୍ଚିତ୍, କହିବାନୁସାରେ, (ବି) ଯେତେଦୂର ସମ୍ଭବ ତେତେ ।

ଯଥାକଥିତ—କ୍ରି . ବି°.କହିବାନୁସାରେ, ଯାହା ବୋଲାଯାଇଅଛି । [ନକଶ ।

ଯଥାକନିଷ୍ଠ—ଅବ୍ୟ. କନିଷ୍ଠକୁ ଅତିକ୍ରମ

ଯଥାକର୍ତ୍ତବ୍ୟ—ଅବ୍ୟ. ( ଯଥା+କୃ+ତବ୍ୟ) ଯେପରି କରିବା ଉଚିତ, (ବି) କର୍ତ୍ତବ୍ୟକର୍ମ ।

ଯଥାକର୍ମ—କ୍ରି.ବି°. ନିଜର କର୍ତ୍ତବ୍ୟ କର୍ମ ଅନୁସାରେ, ଦେଶ, କାଳ, ପାତ୍ର, ଅନୁସାରେ ।

ଯଥାକର୍ମଗୁଣ—ଅବ୍ୟ. କର୍ମ ଓ ଗୁଣର ଅନୁରୂପ ।

ଯଥାକର୍ମେ-ଗ୍ରା.କ୍ରି.ବି°.ଯଥାକ୍ରମେ ଦେଖ ।

ଯଥାକଳ୍ପ—କ୍ରି. ବି°. (ଯଥା+କଳ୍ପ) କଳ୍ପିତହେବା ପ୍ରକାରେ, ନିୟମାନୁସାରେ

ଯଥାକାଣ୍ଡ—ଅବ୍ୟ. କାଣ୍ଡ ଅର୍ଥାତ୍ ଶାଖାର ଅନୁରୂପ । [ସାରେ ।

ଯଥାକାମ—ଗ୍ରା. କ୍ରି.ବି°.ନିଜର ଇଚ୍ଛାନୁ-

ଯଥାକାମୀ(ମିନ୍)—ପୁ°. ବି°.(ଯଥା+କାମ ଇନ୍; କୃ+ଇନ୍)ଯଥେଚ୍ଛାଗ୍ରସ୍ତ,ସ୍ୱେଚ୍ଛାଗ୍ରସ୍ତ, (ସ୍ତ୍ରୀ) ଯଥାକାମିନୀ—ଇଣୀ

ଯଥାକାମ୍ୟ—କ୍ଲୀ.ବି.ଯଥେଷ୍ଟ,କାମନାରୂପ ।

ଯଥାକାୟ—ଅବ୍ୟ. କାୟର ଅନୁରୂପ ।

ଯଥାକାର—ଅବ୍ୟ. ଯେପ୍ରକାର ।

ଯଥାକାଳ—କ୍ରି. ବି°. ( ଯଥା+କାଳ) ଅବ୍ୟୟୀଭାବ; ଉପଯୁକ୍ତ ସମୟରେ, ଯଥା ସମୟରେ, (ପୁ°.ବି-କ.ଧା)ଉପଯୁକ୍ତସମୟ ।

ଯଥକାଳେ—ଗ୍ରା. କ୍ରି. ବି°. ଅକାଳ ଦେଖ, (ପୁ°. ବି)ଉପଯୁକ୍ତ ସମୟରେ ।

ଯଥାକୁଳେଜନ୍ମତଥାଗରିଷ୍ଠଃ(ସଂ-ପ୍ରବଚନ) ଯେ ଯେପରି (ଉଚ୍ଚ) କୁଳରେ ଜନ୍ମ ହୋଇଥାଏ ସେହିପରି ମହାନ୍ ହୁଏ ।

ଯଥାକୃତ—କ୍ରି. ବି°. ସ୍ୱୀକୃତହୋଇଥିବା ଅନୁସାରେ, ( ଗ୍ରା.ବି°) ଯାହାଅନୁସାରେ କରାଯାଇଥିବା ।

ଯଥାକ୍ରମ—କ୍ରି. ବି°. (ଅବ୍ୟୟୀଭାବ)କ୍ରମ-ଅନୁସାରେ, କ୍ରମାନ୍ୱୟରେ ।

ଯଥାକ୍ରମେ-ଗ୍ରା.କ୍ରି.ବି°. ଯଥାକ୍ରମ ଦେଖ ।

ଯଥାକ୍ଷମ—କ୍ରି.ବି°. (ଅବ୍ୟୟୀଭାବ) ଶକ୍ତି ଅନୁସାରେ, ଯେତେଦୂର ସମ୍ଭବ ।

ଯଥାଗତ—କ୍ରି.ବି°. ଅବ୍ୟୟୀଭାବ.(ଯଥା +ଆଗତ) ଯେଉଁରୂପେ ଉପସ୍ଥିତ ବା ଆଗତ, (ଯଥା + ଗତ) ଯେଉଁରୂପେ ଗତ ବା ପ୍ରସ୍ଥିତ, ଯେଉଁରୂପେ ଅଜ୍ଞାତ,

(ଯଥା+ଆଗତ) ଯେଉଁବାଟେ ଆସି-
ଥିଲ ସେହିବାଟେ,(ବିଂ)ନବୋଧ,ମୂର୍ଖ,
ଯେଉଁଠାରେ ଉତ୍ପନ୍ନ ।
ଯଥାଗମ—କ୍ରି ବିଂ. (ଅବ୍ୟୟୀଭାବ)ଆଗମ
ବା ପାରମ୍ପରିକ ଶାସ୍ତ୍ର ବା କୁଳମର୍ଯ୍ୟାଦା
ଅନୁସାରେ ।
ଯଥାଗ୍ରହ—କ୍ରି. ବିଂ.( ଅବ୍ୟୟୀଭାବ );
ଆଗ୍ରହ ବା ବାଧ୍ୟ ଅନୁସାରେ ।
ଯଥାଜାତ—କ୍ରି.ବିଂ. ( ଯଥା+ଜାତ )
ଅସଭ୍ୟ, ବର୍ବର, ବନ୍ୟ, ସ୍ଥାନ,ନିକୃଷ୍ଟ,
ନୀଚ, ମୂର୍ଖ, ନିର୍ବୋଧ ।
ଯଥାଜାତି—କ୍ରି.ବିଂ. ଜାତି ବା ବର୍ଣ୍ଣ
ଅନୁସାରେ ।
ଯଥାଜ୍ଞାନ—କ୍ରି. ବିଂ. ( ଅବ୍ୟୟୀଭାବ );
ଜ୍ଞାନମତେ, ବୋଧାନୁସାରେ ।
ଯଥାଜ୍ୟେଷ୍ଠ—କ୍ରି.ବିଂ. (ଅବ୍ୟୟୀଭାବ),
ଜ୍ୟେଷ୍ଠତ୍ୱ, ବୟସର ଆଧିକ୍ୟ ଅନୁ-
ସାରେ, ପଦବୀ ବା ମର୍ଯ୍ୟାଦା ଅନୁସାରେ
ଯଥାତଥ—ବି.କୌଣସି ବିଷୟର ସମସ୍ତ
ପ୍ରକୃତ ବିବରଣ, ପୁରାବୃତ୍ତ, ପ୍ରାଚୀନ
ଇତିହାସ, (ବିଂ) ଯଥାର୍ଥ, ପ୍ରକୃତ, (କ୍ରି.
ବିଂ) ଯେଉଁପରି ଘଟିଥିଲ ସେହିପରି,
ଉଚିତରୂପେ,(ଗ୍ରା.କ୍ରି.ବିଂ)ଯେନକେନ
ପ୍ରକାରେ ।
ଯଥାତଥା—କ୍ରି.ବିଂ. ଯେଉଁଠାରେ ଇଚ୍ଛା
ସେଠାରେ, ସ୍ଥାନାସ୍ଥାନ ବିଚାର ନକରି,
ଯେଉଁପରି ସେହିପରି, (ଗ୍ରା.କ୍ରି.ବିଂ)
ଯେକୌଣସି ପ୍ରକାରେ ।
ଯଥାତଥ୍ୟ—ଅବ୍ୟ. ପ୍ରକୃତ, ଯଥାର୍ଥ ।
ଯଥାତୃପ୍ତି—କ୍ରି. ବିଂ. ( ଅବ୍ୟୟୀଭାବ );
ମନବୋଧ ହେବା ଅନୁସାରେ, ନିଜର
ସନ୍ତୋଷ ଜନ୍ମିବା ପ୍ରକାରେ ।
ଯଥାତ୍ମକ—ବିଂ. ସ୍ୱଭାବାନୁରୂପ, ପ୍ରକୃତିର
ଅନୁରୂପ ।
ଯଥାଦର୍ଶନ—କ୍ରି.ବିଂ.( ଅବ୍ୟୟୀଭାବ );
ଦେଖିବା ପ୍ରକାରେ ।
ଯଥାଦାୟ—ଅବ୍ୟ. ଅଂଶାନୁରୂପ,ଯାହାର
ଯେରୂପ ଅଂଶ ।
ଯଥାଦିକ୍(ଶ)—କ୍ରି. ବିଂ. (ଅବ୍ୟୟୀଭାବ);
ସବୁଦିଗରେ, ସବୁଆଡ଼େ ।
ଯଥାଦିଷ୍ଟ—ବି ଓ କ୍ରି.ବିଂ.(ଅବ୍ୟୟୀଭାବ);
ଆଦେଶ ଅନୁସାରେ,ଆଦେଶାନୁଯାୟୀ
ଯଥାଦୀକ୍ଷ—ଅବ୍ୟ. ଦୀକ୍ଷାନୁରୂପ, ଯେରୂପ
ଭାବେ ମନ୍ତ୍ରାଦିରେ ଦୀକ୍ଷିତ ହୋଇଅଛି
ତଦନୁରୂପ ।
ଯଥାଦୃଷ୍ଟ-କ୍ରି.ବିଂ.ଦେଖିଥିବା ଅନୁସାରେ
ଯଥାଦୃଷ୍ଟଂ ତଥାକଥିତମ୍—(ବାକ୍ୟାଂଶ),
ଯାହା ଦେଖିଥିଲ ତାହା କହିଲ ।
ଯଥାଦୃଷ୍ଟଂତଥାଲିଖିତମ୍-( ବାକ୍ୟାଂଶ ),
ଯାହା ଦେଖିଥିଲ ତାହା ଲେଖିଲ ।
ଯଥାଦେହେ ତଥାଦେବେ—(ବାକ୍ୟାଂଶ)
ମନୁଷ୍ୟର ଦେହରେ ଯେପରି, ଦେବ-
ତାଙ୍କଠାରେ ମଧ୍ଯ ସେହିପରି, ମନୁଷ୍ୟ
ଦେବତାଙ୍କଠାରେ ଆପଣାର ଦେହ ଓ
ଅନୁଭୂତ ଅନୁସାରେ ଗୁଣଆଦି କଳ୍ପନା
କରିବାର ପ୍ରଣାଳୀ । [ ଦେଖ ।
ଯଥାନିୟମ—ବିଂ ଓ କ୍ରି. ବିଂ. ଯଥାବିଧି
ଯଥାନିରୁପ୍ତ—ଅବ୍ୟ.ଯଥା ପ୍ରଦତ୍ତ,ଯେପରି
ଭାବେ ଉତ୍ସର୍ଗ କରାହୋଇଅଛି ।
ଯଥାନିର୍ଦ୍ଦିଷ୍ଟ—କ୍ରି.ବିଂ. ( ଅବ୍ୟୟୀଭାବ )
ପୂର୍ବରୁ ନିର୍ଦ୍ଦିଷ୍ଟ ବା ନିର୍ଦ୍ଧାରିତ ହେବା
ପ୍ରକାରେ, ପୂର୍ବୋକ୍ତ ପ୍ରକାରେ, (ବିଂ)
ପୂର୍ବନିର୍ଦ୍ଦିଷ୍ଟ ।
ଯଥାନିୟମେ—କ୍ରି.ବିଂ. (ଅବ୍ୟୟୀଭାବ),
ନିୟମାନୁଯାୟୀ,ରୀତିମତ ।
ଯଥାନିଲୟ—ଅବ୍ୟ. ଯାହାର ଯେରୂପ
ଆବାସସ୍ଥାନ, ଯାହାର ଯେପରି ଘର ।
ଯଥାନୀକ—ଅବ୍ୟ. ସୈନ୍ୟର ବିଭାଗାନୁ-
ସାରେ, ଅନୀକାନୁରୂପ ।
ଯଥାନୁପୂର୍ବ(ର୍ବ୍ୟ)—କ୍ରି. ବିଂ. (ଯଥା+
ଅନୁପୂର୍ବ—ସ) ଯଥାକ୍ରମରେ ।
ଯଥାନୁଭୂତ-କ୍ରି.ବିଂ.ଅନୁଭବ ଅନୁସାରେ.
ପୂର୍ବର ଅନୁଭୂତଦ୍ୱାରା ।
ଯଥାନୁରୂପ—କ୍ରି. ବିଂ. ସମ୍ପୂର୍ଣ୍ଣ ମେଳ
ହେବା ପ୍ରକାରେ ।
ଯଥାନ୍ୟସ୍ତ—ଅବ୍ୟ. ଯଥାରକ୍ଷିତ,ଯେରୂପ
ଭାବେ ରଖାହୋଇଅଛି ।
ଯଥାନ୍ୟାୟ—ବିଂ. (ଅବ୍ୟୟୀଭାବ)ଯଥାର୍ଥ,
ନ୍ୟାୟସଙ୍ଗତ, (କ୍ରି.ବିଂ) ନ୍ୟାୟମାର୍ଗା-
ନୁସାରେ ।
ଯଥାନ୍ୟୁପ୍ତ--ଅବ୍ୟ.ଯେଉଁ କ୍ରମରେ ଦତ୍ତ ।
ଯଥାପର୍ବ—ଅବ୍ୟ. ସନ୍ଧିରେ ସନ୍ଧିରେ,
ଅଙ୍ଗେ ଅଙ୍ଗେ ।
ଯଥାପୁର—କ୍ରି.ବିଂ. ପୂର୍ବପରି ।
ଯଥାପୂର୍ବ—କ୍ରି.ବିଂ. ପୂର୍ବପରି, ପୂର୍ବବତ୍,
ଆଗପରି, ପୂର୍ବେ ଯେପରି ଘଟିଥିଲ
ସେହିପରି, ଯଥାକ୍ରମେ, (ବିଂ) ପୂର୍ବ
ବା ଆଗେ ଥିବା, ପୂର୍ବବର୍ତ୍ତୀ ।
ଯଥାପ୍ରଜ୍ଞ—ଅବ୍ୟ. ଜ୍ଞାନାନୁରୂପ, ପ୍ରଜ୍ଞାନୁ-
ସାରେ ।
ଯଥାପ୍ରାର୍ଥିତ-କ୍ରି.ବିଂ.ପ୍ରାର୍ଥନା ଅନୁସାରେ
ଯଥାପ୍ରୀତି—ବିଂ. ପ୍ରୀତିର ଅନୁରୂପ, ପ୍ରୀତି
ଅନୁସାରେ ।
ଯଥାବକାଶ—କ୍ରି.ବିଂ.ସମ୍ଭାଇବାକୁ ସ୍ଥାନ
ଥିବା ଅନୁସାରେ, ଦେଶକାଳପାତ୍ରର
ସୁଯୋଗ ଅନୁସାରେ, ଆପଣାର ଫୁରୁ-
ସତ୍ ଅନୁସାରେ, ଉପଯୁକ୍ତ ସ୍ଥାନରେ ।
ଯଥାବତ୍-କ୍ରି.ବିଂ ଓ ବିଂ.(ଯଥା+ବତ୍)
ଯଥାର୍ଥରୂପେ, ଅବିକଳ, ଧାରାବାହିକ-
ରୂପେ, ସମୁଚିତରୂପେ, ନିୟମାନୁସାରେ
ଯଥାବନ୍ତ-ଗ୍ରା.ବିଂ ଓ କ୍ରି.ବିଂ.(ସଂ-ଯଥା-
ବତ୍) ଯଥାବତ୍ ଦେଖ ।
ଯଥାବୟସ—ଅବ୍ୟ.ଉପଯୁକ୍ତ ବୟଃକ୍ରମ ।
ଯଥାବର୍ଣ୍ଣ—ଅବ୍ୟ. ଉପଯୁକ୍ତ ବର୍ଣ୍ଣ ।
ଯଥାବଳ—କ୍ରି.ବିଂ.(ଅବ୍ୟୟୀଭାବ).ନିଜର
ବଳକୁ ଚାହିଁ,ନିଜର କ୍ଷମତା ଅନୁସାରେ ।
ଯଥାବସର—ଅବ୍ୟ. ଅବସରମତେ ।
ଯଥାବସ୍ତୁ—କ୍ରି.ବିଂ.(ଅବ୍ୟୟୀଭାବ)ଯଥାର୍ଥ-
ରୂପେ, ଘଟଣା ଅନୁସାରେ ।
ଯଥାବସ୍ଥ—କ୍ରି.ବିଂ. ( ଅବ୍ୟୟୀଭାବ) ;
ଅବସ୍ଥାର ଅନୁରୂପେ ।
ଯଥାବସ୍ଥିତ—ବିଂ ଓ କ୍ରି.ବିଂ. (ଯଥା+
ଅବସ୍ଥିତ) ଯେଉଁପରି ଥିଲ ସେହିପରି;
ସ୍ଥିର, ଅଚଳ, ସତ୍ୟ, ଠିକ୍ ।
ଯଥାବାସ—କ୍ରି. ବିଂ. ( ଅବ୍ୟୟୀଭାବ )
ଯେଝା ଘରକୁ ସେ ।
ଯଥାବିତ୍ତ—ଅବ୍ୟ. ଧନାନୁରୂପ ।

ଯଥାବଦ୍ୟ—ଅବ୍ୟ. ଯେପରି ଜ୍ଞାନ ।
ଯଥାବଧ—ବଂ. ଯେଉଁ ପ୍ରକାରର ।
ଯଥାବଧି—କ୍ରି.ବଂ. (ଅବ୍ୟୟୀଭାବ)ନିୟମାନୁଯାୟୀ, ବିଧିପୂର୍ବକ, ଆଇନ୍ ଅନୁସାରେ, (ସ୍ତ୍ରୀ) ଯଥାବିଧା ।
ଯଥାବିଭବ—କ୍ରି. ବଂ. ନିଜର ଆୟ ବା ଧନ ସାମର୍ଥ୍ୟ ଅନୁସାରେ ।
ଯଥାବିହିତ-କ୍ରି.ବଂ.ଯଥୋଚିତ ଭାବରେ, ଯଥୋଚିତ ।
ଯଥାବାର୍ଯ୍ୟ—ଅବ୍ୟ. ଉପଯୁକ୍ତ ପ୍ରଭାବସହକାରେ ।
ଯଥାବୃତ୍ତ—କ୍ରି.ବଂ. ଯେପରି ଘଟିଥିଲା ସେହିପରି,ପ୍ରକୃତରେ ଘଟିଥିବା ବିଷୟମାନ, ପୂର୍ବେ ଘଟିଥିବା ଘଟଣା ।
ଯଥାବୃତ୍ତାନ୍ତ—ଅବ୍ୟ.ପୂର୍ବକଥିତ ବୃତ୍ତାନ୍ତାନୁରୂପ । [ ନୁରୂପ ।
ଯଥାବୃତ୍ତି—ଅବ୍ୟ. ଆବୃତ୍ତାନୁରୂପ, ଅର୍ଥା-
ଯଥାଭାଗ—ବଂ ଓ କ୍ରି.ବଂ. ଯଥୋଚିତ ଭାଗ ବା ହିଂସା ଅନୁସାରେ ।
ଯଥାଭବ—ବ. ଭାଗ୍ୟ, କପାଳ ।
ଯଥାଭିକାମ—ଅବ୍ୟ. ଯଥାଭିରୁଚି ।
ଯଥାଭିମତ—କ୍ରି.ବଂ. ଆପଣା ଇଚ୍ଛାନୁସାରେ, (ବଂ) ଅଭିଲାଷ ଅନୁସାରେ ଘଟିବା ।
ଯଥାଭିରୁଚି—କ୍ରି.ବଂ.ଆପଣାର ଅଭିରୁଚି ଅନୁସାରେ । [ ମନୋଜ୍ଞ ।
ଯଥାଭିରୁଚିତ—ବଂ. ( ଅବ୍ୟୟୀଭାବ );
ଯଥାଭିରୂପ—ଅବ୍ୟ.ଅଭିମତ ପ୍ରକାରେ ।
ଯଥାମତ—ଗ୍ରା.ଅବ୍ୟ.ଯେଉଁପରି ଘଟିଥିଲା ସେହି ପ୍ରକାରେ ।
ଯଥାମତି—କ୍ରି. ବଂ. ( ଅବ୍ୟୟୀଭାବ ); ଆପଣାର ଜ୍ଞାନ ବା ବୁଦ୍ଧି ଅନୁସାରେ ।
ଯଥାମନୀଷିତ—ଅବ୍ୟ, ଅଭିଲାଷାନୁରୂପ ।
ଯଥାମୁଖୀନ—ପୁଂ.ବଂ. (ଅମୁକର)ମୁହଁକୁ ଦିଧାରେ ଚାହିଁଥିବା, (ସ୍ତ୍ରୀ)ଯଥାମୁଖୀନା ।
ଯଥାଯଥ-ବଂ.(ଅବ୍ୟୟୀଭାବ)ଯଥାଯୋଗ୍ୟ, (କ୍ରି.ବଂ) ପୂର୍ବାନୁଯାୟୀ, ଯେପରି ଘଟିଥିଲା ସେହିପରି, ପ୍ରକୃତରେ ଯେଉଁପରି ଅଛି ସେହିପରି, ସମୁଚିତରୂପେ, ଯଥାକ୍ରମେ ।
ଯଥାଯଥା--କ୍ରି.ବଂ.ଯେଉଁଯେଉଁଠାରେ, ଭିନ୍ନଭିନ୍ନ ସ୍ଥାନରେ, ଯେଉଁଯେଉଁ ପ୍ରକାରେ ।
ଯଥାଯୁକ୍ତି—ଅବ୍ୟ. ଯୁକ୍ତିଅନୁସାରେ,ପରାମର୍ଶ ଅନୁସାରେ ।
ଯଥାଯୋଗ୍ୟ—ବଂ.ଯଥୋପଯୁକ୍ତ, ଯାହାକୁ ଯାହା ଉପଯୁକ୍ତ,(କ୍ରି.ବଂ) ଯାହା ଯାହାକୁ ଉପଯୁକ୍ତ ସେହି ଭାବରେ ।
ଯଥାରଥ—ଗ୍ରା. ବଂ. ଓ କ୍ରି. ବଂ. (ସଂ-ଯଥାର୍ଥ) ଯଥାର୍ଥ ଦେଖ ।
ଯଥାରୀତି—ବଂ. ଓ କ୍ରି. ବଂ. (ଅବ୍ୟୟୀଭାବ); ରୀତିଅନୁସାରେ ।
ଯଥାରୁଚି—ବଂ. ଓ କ୍ରି. ବଂ. (ଅବ୍ୟୟୀଭାବ); ପସନ୍ଦମତେ, ଆପଣାର ରୁଚି ଅନୁସାରେ ।
ଯଥାରୂପ—କ୍ରି. ବଂ. (ଅବ୍ୟୟୀ ଭାବ); ରୂପ ବା ଆକାର ଅନୁସାରେ, ପ୍ରକୃତର ଅନୁରୂପ, ଉଚିତରୂପେ ।
ଯଥାର୍ଥ—ବଂ. (ବ.ଗ୍ରା)ବାସ୍ତବିକ,ପ୍ରକୃତ, ସତ୍ୟ, ନିଶ୍ଚିତ, ଉପଯୁକ୍ତ, ଯୋଗ୍ୟ, ପ୍ରକୃତ ଅର୍ଥଅନୁସାରେ, ( କ୍ରି.ବଂ ) ପ୍ରକୃତରେ, ସତ୍ୟସତ୍ୟ,ଉପଯୁକ୍ତରୂପେ, ଉଚିତରୂପେ ।
ଯଥାର୍ଥକ—ବଂ. (ଯଥାର୍ଥ+କ)ପ୍ରକୃତ ।
ଯଥାର୍ଥତଃ—କ୍ରି. ବଂ. (ଅବ୍ୟୟୀଭାବ) ନ୍ୟାୟତଃ, ବସ୍ତୁତଃ, ପ୍ରକୃତରେ ।
ଯଥାର୍ଥତା—ବ. ( ଯଥାର୍ଥ+ଭା.ତା ) ଯାଥାର୍ଥ୍ୟ, ବାସ୍ତବିକତା ।
ଯଥାର୍ଥନାମା—ପୁଂ ଓ ସ୍ତ୍ରୀ. ବଂ (ବ.ଗ୍ରା) ଯେଉଁବ୍ୟକ୍ତିର ନାମର ଅର୍ଥ ସଙ୍ଗେ କାମର ମେଳଥାଏ ।
ଯଥାର୍ଥବକ୍ତା—ପୁଂ. ବଂ. ସତ୍ୟବାଦୀ,(ବ) ସତ୍ୟବାଦୀ ବ୍ୟକ୍ତି,(ସ୍ତ୍ରୀ) ଯଥାର୍ଥବକ୍ତ୍ରୀ ।
ଯଥାର୍ଥ(ର୍ହ)ବର୍ଣ୍ଣ—ପୁଂ. ବ. ଗୁପ୍ତଚର, ଯଥାଯୋଗ୍ୟ ଅକ୍ଷର, ଯଥାଯୋଗ୍ୟରୂପ, ଯଥାଯୋଗ୍ୟବର୍ଣ୍ଣ । [ ବିଦ୍ୟା ।
ଯଥାର୍ଥବିଦ୍ୟା—ବ. ଦର୍ଶନଶାସ୍ତ୍ର, ଅଧ୍ୟାତ୍ମ-
ଯଥାର୍ଥବ୍ୟୟୀ—ପୁଂ. ବଂ. ମିତବ୍ୟୟୀ, (ସ୍ତ୍ରୀ) ଯଥାର୍ଥବ୍ୟୟିନୀ ।
ଯଥାର୍ହ—ବଂ. (ଯଥା+ଅର୍ହ)ଯଥୋଚିତ, ଯଥାଯୋଗ୍ୟ ।
ଯଥାର୍ହଣ—ଅ. ଯଥାଯୋଗ୍ୟ ।
ଯଥାର୍ଥିତ—ବଂ. ଅନୁରୂପ ଅର୍ଥଯୁକ୍ତ ।
ଯଥାଲଭ—ଗ୍ରା. ବ. ଯତ୍କିଞ୍ଚିତ୍ ବା ଯତ୍ ସାମାନ୍ୟଲାଭ, (ସଂ-କ୍ରି. ବଂ) ଲାଭଅନୁସାରେ ।
ଯଥାଲିଙ୍ଗ—ଅବ୍ୟ. ଲିଙ୍ଗାନୁରୂପ ।
ଯଥାଲୋକ—ଅବ୍ୟ. ଲୋକାନୁରୂପ ।
ଯଥାଶକ୍ତି—କ୍ରି.ବଂ.ଓ ବଂ.(ଅବ୍ୟୟୀଭାବ) ସାମର୍ଥ୍ୟାନୁସାରେ ।
ଯଥାଶୟ—ଅବ୍ୟ. ଅଭିପ୍ରାୟାନୁରୂପ ।
ଯଥାଶାସ୍ତ୍ର—ବଂ. (ଅବ୍ୟୟୀଭାବ) ଶାସ୍ତ୍ରସମ୍ମତ,ଆଇନ୍‌ସଙ୍ଗତ,(କ୍ରି.ବଂ)ଶାସ୍ତ୍ରାନୁସାରେ, ଆଇନ୍‌ଅନୁସାରେ ।
ଯଥାଶୀଘ୍ର—କ୍ରି. ବଂ. ( ଅବ୍ୟୟୀଭାବ ) ଯେତେଶୀଘ୍ର ହେବା ସମ୍ଭବ ସେତେ ଶୀଘ୍ର
ଯଥାଶ୍ରମ—ଅ. ଶ୍ରମାନୁରୂପ, ଯେରୂପ ପରିଶ୍ରମ, ଶ୍ରମକୁ ଅତିକ୍ରମ ନକରି,ପରିଶ୍ରମାନୁସାରେ ।
ଯଥାଶୀଳ—କ୍ରି. ବଂ. ଶୀଳ ବା ସ୍ୱଭାବ ଅନୁସାରେ ମିଜାଜ୍ ଅନୁସାରେ ।
ଯଥାଶ୍ରଦ୍ଧ—ଅବ୍ୟ. ଶ୍ରଦ୍ଧାନୁସାରେ ।
ଯଥାଶ୍ରୁତ—କ୍ରି. ବଂ.ଶୁଣା କଥା ଅନୁସାରେ, ଯେଉଁପରି ଶୁଣିଥିଲା ସେହିପରି, ଶାସ୍ତ୍ରଜ୍ଞାନାନୁସାରେ ।
ଯଥାଶ୍ରୁତଂତଥାକଥିତଂ—(ସଂ-ବାକ୍ୟାଂଶ) ଯାହାଶୁଣିଥିଲା ତାହା କହିଲା ।
ଯଥାଶ୍ରୁତଂତଥାଲିଖିତଂ—(ସଂ-ବାକ୍ୟାଂଶ) ଯାହାଶୁଣିଥିଲା ତାହା ଲେଖିଲା ।
ଯଥାଶ୍ରୁତ—ଅବ୍ୟ.ଶ୍ରବଣାନୁରୂପ,ଶାସ୍ତ୍ରାନୁରୂପ ।
ଯଥାଶ୍ରେଷ୍ଠ--କ୍ରି.ବଂ.ଶ୍ରେଷ୍ଠତାଅନୁସାରେ ।
ଯଥାସଙ୍ଗତ—ଅବ୍ୟ. ସଙ୍ଗଅନୁସାରେ, ସଙ୍ଗତାନୁରୂପ ।
ଯଥାସଂଖ୍ୟ—ବ.(ଅବ୍ୟୟୀଭାବ) କାବ୍ୟାଲଙ୍କାରବିଶେଷ ।
ଯଥାସଂସ୍ଥ—ଅବ୍ୟ, ଯଥାବସ୍ଥିତ ।

ଯଥାସମୟ—ପୁଂ. ବ.(କ.ଧା)ଯଥାକାଳ, ଉପଯୁକ୍ତସମୟ,(କ୍ରି)ବିଂ.(ଅବ୍ୟୟୀଭାବ); ଉପଯୁକ୍ତ ସମୟରେ, ସ୍ୱୀକୃତ ବା ସ୍ଥିତ ଅନୁସାରେ ।

ଯଥାସମ୍ଭବ—ବିଂ.ଯେଉଁ ରୂପ ସମ୍ଭବହୁଏ, ଯଥାସଙ୍ଗତ ।

ଯଥାସମୟେ—ପୁଂ. ବ. (କ.ଧା) ଯଥାକାଳେ, ଉପଯୁକ୍ତ ସମୟେ ।

ଯଥାସର୍ବସ୍ୱ—ବ. ବା ଅବ୍ୟ. (ଅବ୍ୟୟୀଭାବ); ସମସ୍ତ ସମ୍ପତ୍ତି, ଯାହାକିଛି ଥିଲ ସବୁ ।

ଯଥାସମ୍ଭବ—କ୍ରି. ବିଂ. (ଅବ୍ୟୟୀଭାବ); ଯେତେଦୂର ସମ୍ଭବପର,ବିଂ.ସମ୍ଭବପର

ଯଥାସମ୍ଭାବିତ—ବିଂ (ଅବ୍ୟୟୀଭାବ)ସମୁଚିତ, ଉପଯୁକ୍ତ । [ ଦେଖ ।

ଯଥାସାଧ୍ୟ—ବିଂ. ଓ କ୍ରି. ବିଂ. ଯଥାଶକ୍ତି

ଯଥାସାର—ଅ.ବସ୍ତୁର ସାରବତ୍ତାନୁଯାୟୀ ।

ଯଥାସୁଖ—କ୍ରି. ବିଂ. (ଅବ୍ୟୟୀଭାବ)ସୁଖପୂର୍ବକ,ଖୁସିରେ,ଆପଣା ଇଚ୍ଛାନୁସାରେ ।

ଯଥାସ୍ତୁତ—ଅ. ଯେ ରୂପ ସ୍ତୁତ, ପୂଜିତ ।

ଯଥାସ୍ଥାନ—କ୍ଲୀ. ବ. (ଅବ୍ୟୟୀଭାବ ବା କ.ଧା)ଯାହାର ଯେଉଁ ସ୍ଥାନ ଉପଯୁକ୍ତ ତାହାର ସେହିସ୍ଥାନ, ଉପଯୁକ୍ତ ସ୍ଥାନ, (କ୍ରି. ବିଂ) ଉପଯୁକ୍ତ ସ୍ଥାନରେ, ତତ୍‌କ୍ଷଣାତ୍, ପଦମର୍ଯ୍ୟାଦା ଅନୁସାରେ ।

ଯଥାସ୍ଥାନାବସ୍ଥିତ—ବିଂ.ନିଜନିଜର ଉପଯୁକ୍ତ ସ୍ଥାନରେ ଅବସ୍ଥାନ କରୁଥିବା ।

ଯଥାସ୍ଥାମ--ଅ. ଯଥାସ୍ଥାନ,ଯଥାନୁକ୍ରମ ।

ଯଥାସ୍ଥିତ—କ୍ରି. ବିଂ. ଯେଉଁଠାରେ ଥିଲ ସେହିଠାରେ, ପୂର୍ବ ସ୍ଥାନରେ, ଯଥାର୍ଥରେ, ଘଟଣାନୁସାରେ, (ବିଂ) ପ୍ରକୃତ, ସତ୍ୟ, ଉପଯୁକ୍ତ ।

ଯଥାସ୍ଥିତି--ଅ.ଯେଉଁ ସ୍ଥାନରେ ଅବସ୍ଥିତ ।

ଯଥାସ୍ମୃତ—ଅ.ସ୍ମୃତିର ପ୍ରାମାଣ୍ୟାନୁସାରେ

ଯଥାସ୍ୱ—କ୍ରି.ବିଂ. ଯେଉଁକୁ ଯେ, ଯଥାଯୋଗ୍ୟ, (ବିଂ) ଯଥାର୍ଥ ।

ଯଥେସ୍ୱୈର—ଅବ୍ୟ. ଧୀରେତାନୁସାରେ, ସ୍ୱେଚ୍ଛାନୁରୂପ ।

ଯଥେପ୍ସିତ—କ୍ରି. ବିଂ. (ଅବ୍ୟୟୀଭାବ); ନିଜେ ଦେଖିଥିବା ପ୍ରକାରେ ।

ଯଥେଚ୍ଛ—କ୍ରି.ବିଂ.(ଅବ୍ୟୟୀଭାବ),ସ୍ୱେଚ୍ଛାକ୍ରମେ, ଇଚ୍ଛାନୁସାରେ, (ବିଂ) ସ୍ୱେଚ୍ଛାକ୍ରମେ ଅନୁଷ୍ଠିତ ।

ଯଥେଚ୍ଛକ—ଅ.ଇଚ୍ଛାନୁରୂପ କାର୍ଯ୍ୟକାରୀ ।

ଯଥେଚ୍ଛା—ଇଚ୍ଛାନୁରୂପ, ଇଚ୍ଛାପ୍ରବଣ ।

ଯଥେଚ୍ଛାଚାର—ପୁଂ.ବ.(ଯଥା+ଇଚ୍ଛା+ଆଚାର)କ.ଧା;ସ୍ୱେଚ୍ଛାଚାର,ଉଚ୍ଛୃଙ୍ଖଳତା

ଯଥେଚ୍ଛାଚାରରାଜତ୍ୱ-ବ(ଆଧୁନିକ). ରାଜାଙ୍କର ଇଚ୍ଛାମତେ ପ୍ରଜାଶାସନ ।

ଯଥେଚ୍ଛାଚାରଶାସନପ୍ରଣାଳୀ—ବ. (ଆଧୁନିକ), ରାଜାଙ୍କ ଇଚ୍ଛାମତେ ପ୍ରଜାଙ୍କୁ ଶାସନ କରିବା ରୀତି ।

ଯଥେଚ୍ଛାଚାରିତା—ସ୍ତ୍ରୀ.ବ(ଯଥେଚ୍ଛାଚାରିନ୍+ଭା.ତା)ଉଚ୍ଛୃଙ୍ଖଳତା,ଇଚ୍ଛାନୁସାରେ କାର୍ଯ୍ୟକରିବା ।

ଯଥେଚ୍ଛାଚାରୀ—ପୁଂ. ବିଂ. (ଯଥେଚ୍ଛ+ଆ+ଚର୍+କ.ଇନ୍)ସ୍ୱେଚ୍ଛାଚାରୀ, ଇଚ୍ଛାନୁରୂପ କାର୍ଯ୍ୟକାରୀ,ଯେ ନିଜ ଇଚ୍ଛାନୁସାରେ କାର୍ଯ୍ୟ କରେ, (ସ୍ତ୍ରୀ) ଯଥେଚ୍ଛାଚାରିଣୀ ।

ଯଥେଚ୍ଛାଚାରରାଜା—ପୁଂ. ବ. ଉଚ୍ଛୃଙ୍ଖଳ ରାଜା । [ ଇଚ୍ଛା ।

ଯଥେପ୍ସା—ସ୍ତ୍ରୀ.ବ.ଯଥ ଭିଳାଷୀ, ଯେପରି

ଯଥେପ୍ସିତ—ବିଂ. ( ଯଥା+ଇପ୍‌ସିତ ) ବାଞ୍ଛାନୁରୂପ, ବାଞ୍ଛାକଳିତ, (କ୍ରି.ବିଂ) ଯଥେଚ୍ଛ ଦେଖ ।

ଯଥେଷ୍ଟ—ବିଂ. (ଯଥା+ଇଷ୍ଟ)ବାଞ୍ଛାନୁରୂପ, ପ୍ରଚୁର, ଅନେକ, (କ୍ରି.ବିଂ) ଯଥେଚ୍ଛା ଦେଖ ।

ଯଥେଷ୍ଟଚାରୀ—ପୁଂ.ବ. (ଯଥା+ଇଷ୍ଟ+ଆଚର୍+ଇନ୍)ପକ୍ଷୀ,(ବିଂ)ଯଥାଭିମତ ସ୍ଥାନବିଚରଣକାରୀ ମାତ୍ର ।

ଯଥେଷ୍ଟାଚରଣ—ବ.ଯଥେଚ୍ଛାଚାର ଦେଖ

ଯଥେଷ୍ଟାଚାରୀ—ବ.ପକ୍ଷୀ,(ପୁଂ.ବିଂ)ଯଥେଚ୍ଛାଚାରୀ ।

ଯଥୋକ୍ତ—ବିଂ. (ଯଥା+ଉକ୍ତ) ଯେପରି ବୋଲାଯାଇଅଛି, ପୂର୍ବୋକ୍ତ, ଉପର୍ଯ୍ୟୁପରି

ଯଥୋକ୍ତକାରୀ—ପୁଂ. ବିଂ. ଯଥୋକ୍ତରୂପ ଅନୁଷ୍ଠାନକାରୀ, ଶାସ୍ତ୍ରାଦିରେ ଯେପରି ନିର୍ଦ୍ଦିଷ୍ଟ ଅଛି ତଦନୁସାରେ କାର୍ଯ୍ୟକାରୀ

ଯଥୋକ୍ତବାଦୀ—ପୁଂ. ବ. ଦୂତ

ଯଥୋଚିତ—ବିଂ(ଯଥା+ଉଚିତ,ଅବ୍ୟୟୀଭାବ);ଯଥାଯୋଗ୍ୟ, ଯଥାବିହିତ, (କ୍ରି. ବିଂ) ଉଚିତ ରୂପେ ।

ଯଥୋତ୍ତର—କ୍ରି. ବିଂ. (ଅବ୍ୟୟୀଭାବ) ଏକାଦିକ୍ରମେ, କ୍ରମାନୁସାରେ, ଉଚିତ ଉତ୍ତର, ଉତ୍ତରାନୁରୂପ ।

ଯଥୋତ୍ସାହ—ଅ.ଉତ୍ସାହ ଅନୁରୂପ,ଯଥାସାମର୍ଥ୍ୟ ।

ଯଥୋଦୟ—ଅ. ଯଥାପ୍ରକାଶ ।

ଯଥୋଦିତ—ଅ.ଯଥୋକ୍ତ,ଯେପରି କୁହାହୋଇଅଛି ।

ଯଥୋଦ୍ଗତ—ବିଂ. ଯେରୂପେ ବହିର୍ଗତ, ଅଙ୍କୁରିତ ବା ଉତ୍ପନ୍ନ ।

ଯଥୋଦ୍ଦିଷ୍ଟ--ବିଂ.ପୂର୍ବବର୍ଣ୍ଣିତ, ପୂର୍ବସୂଚିତ, (କ୍ରି.ବିଂ) ଯଥୋଦ୍ଦେଶ ଦେଖ ।

ଯଥୋଦ୍ଦେଶ—କ୍ରି. ବିଂ. (ଅବ୍ୟୟୀଭାବ) ଯେଉଁପରି ବର୍ଣ୍ଣିତ ବା ସୂଚିତ ହୋଇଅଛି ।

ଯଥୋଦ୍ଭବ—ଅ. ଉଦ୍ଭବାନୁରୂପ ।

ଯଥୋପଦେଶ—କ୍ରି. ବିଂ. (ଅବ୍ୟୟୀଭାବ); ଯେଉଁପରି ଉପଦେଶ ଦିଆହୋଇଅଛି, (ବିଂ) ଯଥୋପଦିଷ୍ଟ ।

ଯଥୋପପତ୍ତି—ଅ.ଉପପତ୍ତିର ଅନୁରୂପ ।

ଯଥୋପପାଦ – ଅ. ଯଥାସମ୍ଭବ ।

ଯଥୋପଯୁକ୍ତ—ବିଂ(ଅବ୍ୟୟୀଭାବ),ଯଥାଯୋଗ୍ୟ ଦେଖ ।

ଯଥୋପଯୋଗ—କ୍ରି.ବିଂ.(ଅବ୍ୟୟୀଭାବ); ଆବଶ୍ୟକତାନୁସାରେ,ଅବ୍ୟ. ଉପଯୁକ୍ତ ପ୍ରୟୋଗ । [ ଅଛି ।

ଯଥୋପ୍ତ—କ୍ରି.ବିଂ.ଯେପରି ଭାବେ ବୁଣା-

ଯଥୌଚିତ୍ୟ—ବ.ଔଚିତ୍ୟ,ଉପଯୋଗିତା, (ଅବ୍ୟ) ଔଚିତ୍ୟାନୁରୂପ ।

ଯଦ୍—ସର୍ବନାମଶବ୍ଦ. (ଯଜ୍+ମି.ଅଦ୍) ଯାହା, ଯେ, (ଅବ୍ୟ) ଯେହେତୁ ।

ଯଦପି—ସର୍ବ.(ଯଦ୍+ଅପି)ଯେ କୌଣସି ବସ୍ତୁ ବା ବ୍ୟକ୍ତି, (ଅବ୍ୟ) ଯଦ୍ୟପି ।

ଯଦବଧି—ଅବ୍ୟ. (ଯତ୍ + ଅବଧି) ଯେଉଁ ସମୟଠାରୁ ଯେଉଁ ସମୟ ପର୍ଯ୍ୟନ୍ତ ।

ଯଦର୍ଥ(ର୍ଥେ)—ବି.ବି°. ଯେଉଁ କାରଣରୁ, ଯେଉଁ ଉଦ୍ଦେଶ୍ୟରେ, ଯାହାଙ୍କ ନିମନ୍ତେ ।

ଯଦା—ଅବ୍ୟ.(ଯଦ୍ + କାଳାଧିକରଣ.ଆ) ଯେବେ, ଯେଉଁ କାଳରେ, ଯେହେତୁ ।

ଯଦାତଦା—ବି. ବି°. (ଦେଶଜ ବ୍ୟବହାର); ଯେବେ ଇଚ୍ଛା ତେବେ, ଯେ କୌଣସି ସମୟରେ ।

ଯଦାତ୍ମକ—ବି. ବି°. ଯାହା ସ୍ୱରୂପ ।

ଯଦାପ୍ରଭୃତି—ବି. ବି°. ଯେଉଁ ସମୟରୁ ।

ଯଦି—ଅବ୍ୟ. (ଯତ୍ + ସ୍ତ୍ର.ଇ) ଯେବେ, ସମ୍ଭାବନାର୍ଥକ, ସନ୍ଦେହାର୍ଥକ, ପକ୍ଷାନ୍ତରରେ, ଅବଧାରଣ, ହୁଏତ, ସମ୍ଭବତଃ, ପ୍ରକାଶଥାଉକି, ଯେବେ ।

ଯଦିଓ—ଗ୍ରା. ଅବ୍ୟ. (ବଙ୍ଗଳାରୁ ଅନୁକୃତ); ଯଦ୍ୟପି ଦେଖ । [ ଅବା ।

ଯଦିବ(ବା)—ଅବ୍ୟ.ପକ୍ଷାନ୍ତରେ, ଯେବେ-

ଯଦିଚ୍ଛା—ସ୍ତ୍ରୀ. ବି. ଯେ ଅଭିପ୍ରାୟ ।

ଯଦିବା—ଅବ୍ୟ. ଅଥବା, ପକ୍ଷାନ୍ତର ।

ଯଦିସ୍ୟାତ୍—ଅବ୍ୟ. କେଜାଣି ଯେବେ, କେଜାଣି ଅବା, ସମ୍ଭବତଃ, ଯେବେସୁଦ୍ଧା

ଯଦୀୟ—ବି. ବି°. (ଯଦ୍ + ଈୟ) ଯାହା ସମ୍ବନ୍ଧୀୟ, ଯାହାର ।

ଯଦୁ—ପୁଂ. ବି. ଦେବଯାନୀ ଗର୍ଭଜାତ ଯଯାତିଙ୍କର ଜ୍ୟେଷ୍ଠପୁତ୍ର, ଯାଦବବଂଶ, ଦଶାର୍ହ ଦେଶ ।

ଯଦୁକୁଳ—କ୍ଲୀ.ବି. (୬ତତ୍)ଯାଦବବଂଶ ।

ଯଦୁଧ୍ର—ପୁଂ. ବି. ଋଷିବିଶେଷ ।

ଯଦୁନନ୍ଦନ—ପୁଂ.ବି.ଜଣେ ପ୍ରସିଦ୍ଧ ଭକ୍ତ, ଶ୍ରୀକୃଷ୍ଣ ।

ଯଦୁନାଥ—ପୁଂ. ବି. (୬ତତ୍) ଶ୍ରୀକୃଷ୍ଣ ।

ଯଦୁପତି—ପୁଂ. ବି. ଶ୍ରୀକୃଷ୍ଣ, ବେଦେଶତୀର୍ଥଙ୍କ ଶିଷ୍ୟ ।

ଯଦୁବଂଶ—କ୍ଲୀ. ବି. (୬ତତ୍)ଯାଦବବଂଶ, ଚନ୍ଦ୍ରବଂଶୀୟ ଯଦୁରାଜାଙ୍କ ବଂଶ ।

ଯଦୁବଂଶୀ—ବି°. (ଯଦୁବଂଶ + ସ୍ତ୍ର.ଇନ୍) ଯଦୁବଂଶରୁ ଜାତ, (ଗ୍ରା.ବି) ଗୋପାଳମାନଙ୍କର ଶାଖାବିଶେଷ ବା ମଥୁରାପୁରୀଆଙ୍କ ଉପାଧି ।

ଯଦୁବ(ବୀ)ର—ପୁଂ.ବି.(୬ତତ୍)ଶ୍ରୀକୃଷ୍ଣ ।

ଯଦୁମଣିଭଞ୍ଜ—ଗ୍ରା. ବି. ବ ୧୫୦ ବର୍ଷ ତଳର ଜଣେ କବି ।

ଯଦୁମଣିମହାପାତ୍ର--ଗ୍ରା.ବି.ଜଣେ ଉତ୍କଳର କୌତୁକପ୍ରିୟ ଆଶୁକବି ।

ଯଦୃଚ୍ଛୟା—ବି. ବି°. (ନିଜର ସ୍ୱାଧୀନ ଇଚ୍ଛାଅନୁସାରେ, ଦୈବକ୍ରମେ ।

ଯଦୃଚ୍ଛୟାଭିଜ୍ଞ—ପୁଂ. ବି. ଯଦୃଚ୍ଛାଭିଜ୍ଞ ଦେଖ ।

ଯଦୃଚ୍ଛା—ସ୍ତ୍ରୀ. ବି. (ଯତ୍ + ଋଚ୍ଛ୍ + ସ୍ତ୍ର.ଅ + ଆ) ସ୍ୱେଚ୍ଛା, ଅନାୟାସ, ଦୈବାତ୍, ସ୍ୱତନ୍ତ୍ରତା, ନିଜର ସ୍ୱାଧୀନ ଇଚ୍ଛା, (ଗ୍ରା) ଦୈବକ୍ରମେ ।

ଯଦୃଚ୍ଛାକ୍ରମେ—ଗ୍ରା. କି. ବି°. (ବି.ସ୍ତ୍ର) ସ୍ୱେଚ୍ଛାମତେ, ମନଇଚ୍ଛାରେ, ସ୍ୱାଧୀନତାମତେ ।

ଯଦୃଚ୍ଛାଗତି—ବି. ନିଜ ଇଚ୍ଛାଅନୁସାରେ ଗତି, ଯେଉଁ ଆଡ଼କୁ ଯିବାକୁ ଇଚ୍ଛା କରିବା ସେଣେ ଗମନ ।

ଯଦୃଚ୍ଛାଚରଣ—ବି. ସ୍ୱେଚ୍ଛାଚାର, ଯଥେଚ୍ଛାଚରଣ ।

ଯଦୃଚ୍ଛାଚାରୀ—ପୁଂ. ବି°. ଯଥେଚ୍ଛାଚାରୀ ଦେଖ, (ସ୍ତ୍ରୀ) ଯଦୃଚ୍ଛାଚାରିଣୀ ।

ଯଦୃଚ୍ଛାପ୍ରବୃତ୍ତ—ବି°. (ଯଦୃଚ୍ଛା + ପ୍ରବୃତ୍ତ) ସ୍ୱେଚ୍ଛାନୁସାରେ ନିଯୁକ୍ତ ।

ଯଦୃଚ୍ଛାଭିଜ୍ଞ—ପୁଂ.ବି°. (ସ୍ମୃତି) ଯେ ସ୍ୱେଚ୍ଛାକ୍ରମେ ଉପସ୍ଥିତ ହୋଇ ସାକ୍ଷ୍ୟ ଦିଏ, ଯେଉଁ ସାକ୍ଷୀ ଘଟଣାସ୍ଥଳରେ ଦୈବାତ୍ ପହଞ୍ଚିଥାଏ, (ସ୍ତ୍ରୀ)ଯଦୃଚ୍ଛାଭିଜ୍ଞା ।

ଯଦୃଚ୍ଛାଲବ୍ଧ—ବି°. ( ଯଦୃଚ୍ଛା + ଲବ୍ଧ ) ଅନାୟାସଲବ୍ଧ ।

ଯଦୃଚ୍ଛାଶବ୍ଦ—ବି.(ବ୍ୟାକରଣ)ପ୍ରାଣିବିଶେଷର ବା ସ୍ଥାନବିଶେଷର ନାମ ।

ଯଦୃଚ୍ଛାସମ୍ବାଦ—ବି. ଦୈବାତ୍ କୌଣସି ଲୋକ ସଙ୍ଗେ କଥାବାର୍ତ୍ତା ବା ଭେଟ ।

ଯଦୃଚ୍ଛିକ—ପୁଂ. ବି. ( ଯଦୃଚ୍ଛା + ଇକ ) ଯେ ନିଜକୁ ଅନ୍ୟର ପୋଷ୍ୟପୁତ୍ର ସ୍ୱୀକୃତ ହେବାପାଇଁ ପ୍ରସ୍ତାବ କରେ ।

ଯଦ୍ଦୈବତ—ବି. ବି°. ଯାହାର ଯେ ଦେବତା, ଯେ ଦେବତା ସମ୍ବନ୍ଧୀୟ ।

ଯଦ୍ୱାହ୍ୱ—କ୍ଲୀ. ବି. ସାମବେଦର ଅଂଶବିଶେଷ ।

ଯଦ୍ୱତ୍—ଅବ୍ୟ. ଯେଉଁପରି ।

ଯଦ୍ୱା—ଅବ୍ୟ. (ସଂ-ଯତ୍ + ବା) କିମ୍ବା, ପକ୍ଷାନ୍ତରେ ।

ଯଦ୍ୱାତଦ୍ୱା—ଅବ୍ୟ. (ଯଦ୍ୱା + ତଦ୍ୱା) କେବେକେବେ ।

ଯଦ୍ୱୃତ୍ତ—ବି. (ଯଦ୍ + ବୃତ୍ତ) ଦୈବାତ୍ ଯେଉଁ ଘଟଣା ଘଟେ ।

ଯଦ୍ଭବିଷ୍ୟ—ପୁଂ. ବି°. (ଯଦ୍ + ଭବିଷ୍ୟ) ଯେଉଁ କଥା ଘଟିବା ଭାଗ୍ୟ ଉପରେ ନିର୍ଭର କରେ, ଭାଗ୍ୟାପେକ୍ଷୀ, ଅଦୃଷ୍ଟବାଦୀ, (ବି)ଯାହା ଘଟିବାର ଅଦୃଷ୍ଟରେ ଥିବ ତାହା ।

ଯଦ୍ଭବିଷ୍ୟବାଦୀ—ପୁଂ. ବି° ଓ ବି. (ଯଦ୍ଭବିଷ୍ୟ + ବାଦିନ୍) ଅଦୃଷ୍ଟବାଦୀ, (ବି) ଯଦ୍, ଭବିଷ୍ୟବାଦ ( ସ୍ତ୍ରୀ ) ଯଦ୍ଭବିଷ୍ୟବାଦିନୀ ।

ଯଦ୍ୟପି—ଅବ୍ୟ. (ଯଦି + ଅପି) ଯେବେସୁଦ୍ଧା, ଯେବେମଧ୍ୟ ।

ଯଦ୍ୟପିସାତ୍—ଅବ୍ୟ. ଯଦି ।

ଯନ୍ତ—ଗ୍ରା. ବି. (ସଂ-ଯନ୍ତ୍ର) ଯନ୍ତ୍ର ଦେଖ ।

ଯନ୍ତବ୍ୟ--ବି.ବି°.ଯମନୀୟ, ଦମନଯୋଗ୍ୟ ।

ଯନ୍ତର୍(ଇତ୍ୟାଦି)—-ପ୍ରା. (ସମ୍ବ)ଜନ୍ତର୍ ଇତ୍ୟାଦି ଦେଖ ।

ଯନ୍ତର(ଇତ୍ୟାଦି)—-ଗ୍ରା. ବି. (ସଂ-ଯନ୍ତ୍ର) ଯନ୍ତ୍ର ଇତ୍ୟାଦି ଦେଖ ।

ଯନ୍ତା—ଗ୍ରା. ବି. ଜନ୍ତା ଦେଖ ।

ଯନ୍ତା—ପୁଂ. ବି°. (ଯମ୍ + କ.ତୃ) ଦମନକାରକ, ଶାସକ, ନିୟାମକ, ନିବୃତ୍ତିକର, (ବି)ସାରଥି, ରଥଚାଳକ, କନ୍ଦୁଆନ୍, କର୍ମ ନିୟନ୍ତ୍ରଣ କରିବା କର୍ମଚାରୀ, ତନଖିବା ବ୍ୟକ୍ତି, ହାତୀଚାଳକ, ହସ୍ତୀପକ, (ଗ୍ରା.ବି) ଯନ୍ତା ଇତ୍ୟାଦି ଦେଖ, (ପ୍ରା.ସମ୍ବ.ବି) ଚକି । [ ଦେଖ ।

ଯନ୍ତାଯନ୍ତ(ନ୍ତ୍ର)--ବି. ଓ ବି°.ଜନ୍ତାଜନ୍ତ(ନ୍ତ୍ର)

ଯନ୍ତି—ସ୍ତ୍ରୀ. ବି. (ଯମ୍ + ତି)ଯମନ ।

ଯନ୍ତ୍ରବା—ଗ୍ରା. କ୍ରି. ଜନ୍ତ୍ରବା ଦେଖ ।

ଯନ୍ତ୍ର—(ଧାତୁ) ସଂକୁଚିତକରିବା, ଦମନକରିବା, ବନ୍ଧନକରିବା, ପୀଡ଼ାଦେବା, ପେଷିବା, ବାଧ୍ୟକରିବା ।

ଯନ୍ତ୍ର—କ୍ଳୀ. ବି. (ଯନ୍ତ୍ର+ଣ.ଅ) ଯେଉଁ ପଦାର୍ଥର ସାହାଯ୍ୟରେ ଅଳ୍ପ ବଳର ପ୍ରୟୋଗରେ ବହୁ ବଳସାଧ୍ୟ କାର୍ଯ୍ୟ ସମ୍ପନ୍ନ ହୁଏ, ଇଞ୍ଜିନ୍, ଅସ୍ତ୍ର, ଶସ୍ତ୍ର, ହତିଆର, ଯୁଦ୍ଧଯନ୍ତ୍ର, ଆତ୍ମରକ୍ଷା ଓ ଶତ୍ରୁକୁ ଆକ୍ରମଣ କରିବାପାଇଁ ବ୍ୟବହୃତ ଅସ୍ତ୍ରାଦି, ପଦାର୍ଥ ନିରୂପଣ ସାମଗ୍ରୀ, ଶିଳ୍ପସାଧନ ସାମଗ୍ରୀ, କବାଟର କଳଣୀ ବା କୋଳପ, ଅଳ୍ପ ପରିଶ୍ରମରେ ଓ ସମୟରେ ବହୁ ପରିଶ୍ରମସାଧ୍ୟ ଓ ବହୁକାଳସାଧ୍ୟ କର୍ମ କରିବା ଉପାୟ, ବନ୍ଧୁକ, ଅଗ୍ନିଯନ୍ତ୍ର. ଘଣା, ଦେବତାଙ୍କର ଅଧିଷ୍ଠାନ ଚକ୍ର, ବାଦ୍ୟଯନ୍ତ୍ର, ଗ୍ରହନକ୍ଷତ୍ରାଦିର ଅବସ୍ଥାନଚକ୍ର, ଦେହାନ୍ତର୍ଗତ କ୍ରିୟାଶୀଳ ଅଙ୍ଗ, ଅଭିମନ୍ତ୍ରିତ ତେଉଁରିଆ ବା ପଦକାଦି, ଠେସ, ଢ଼ିପ, କୌଣସି କଳର ଅଙ୍ଗ ବା ନିର୍ମାଣକୌଶଳ, (ଯନ୍ତ୍ର+ଭା.ଅ) ତନ୍ତ୍ରୋକ୍ତ ମାରଣ, ସ୍ତମ୍ଭନ, ମୋହନ, ବଶୀକରଣ, ଉଚ୍ଚାଟନ, ବିଦ୍ୱେଷଣାଦି କ୍ରିୟା ନିମନ୍ତେ ବ୍ୟବହୃତ ମନ୍ତ୍ର, କୌଶଳ ବା ପ୍ରୟୋଗ, ନିୟନ୍ତ୍ରଣ, (ଗ୍ରା.ବି-ଭା.ତ) କୁହୁକ, ବାଜିଗର ।

ଯନ୍ତ୍ରକ—ବି. (ଯନ୍ତ୍ର+କ) ଯନ୍ତ୍ର ଦେଖ, ଯନ୍ତ୍ରକାଷ୍ଠ, କୁନ୍ଦ, ପେଷଣ ଯନ୍ତ୍ର, ଚକି, ଘାଆ ଆଦିରେ ବନ୍ଧାଯିବା ପଟି, (ଯନ୍ତ୍ର+ଭା.ଅକ) ବେଦନା, ବ୍ୟଥା, କଷ୍ଟ, ବାନ୍ଧିବା, ଅଟକାଇ ରଖିବା, ନିବାରଣ, ଶାସନ, (ଯନ୍ତ୍ର+କ.ଅକ) ଯନ୍ତ୍ର ପରିଚାଳକ, ଶାସକ, ଶିଳ୍ପୀମାନେ, ନିୟାମକ, (ପୁଂ.ବିଂ) ବଶୀକରଣଶୀଳ, ଯନ୍ତ୍ର ପରିଚାଳନକାରୀ, ନିୟନ୍ତ୍ରଣକାରୀ, (ସ୍ତ୍ରୀ) ଯନ୍ତ୍ରିକା

ଯନ୍ତ୍ରକରଣ୍ଡିକା—ସ୍ତ୍ରୀ. ବି. (ମଧ୍ୟ-କ.ଧା) କୁହୁକିଆର ପେଡ଼ି ।

ଯନ୍ତ୍ରକରିବା-ଗ୍ରା. କ୍ରି. ଯନ୍ତ୍ର ନିର୍ମାଣ କରିବା, କୌଶଳ ପ୍ରୟୋଗ କରିବା, ତାନ୍ତ୍ରିକ ଅଭିଚାରର ପ୍ରୟୋଗ କରିବା ।

ଯନ୍ତ୍ରକର୍ମକୃତ୍—ପୁଂ.ବି. ଶିଳ୍ପୀ, ଯନ୍ତ୍ରାଦି ପ୍ରସ୍ତୁତକାରୀ ।

ଯନ୍ତ୍ରକଳା—ବି. ଯନ୍ତ୍ରବିଦ୍ୟା ।

ଯନ୍ତ୍ରକା(ଣୀ)—ସ୍ତ୍ରୀ. ବି. (ଯନ୍ତ୍ରକ+ଆ) ନନନ୍ଦା ଶାଳିକା, ଶାଳୀ, କେଳି କୁଞ୍ଚିକା ।

ଯନ୍ତ୍ରକାଷ୍ଠ-ବି. କୁନ୍ଦ, କାଠ କୁନ୍ଦିବା ଯନ୍ତ୍ର ।

ଯନ୍ତ୍ରକୁଶଳ—ପୁଂ. ବିଂ. (୭ତତ୍) ଯନ୍ତ୍ରନିର୍ମାଣ ବା ପରିଚାଳନ ବିଷୟରେ ଦକ୍ଷ, ବି. ଯନ୍ତ୍ରକୁଶଳତା, (ସ୍ତ୍ରୀ) ଯନ୍ତ୍ରକୁଶଳା ।

ଯନ୍ତ୍ରକୌଶଳ—ବି (୭ତତ୍) ଯନ୍ତ୍ର ନିର୍ମାଣରେ ନିୟୋଜିତ କୌଶଳ ।

ଯନ୍ତ୍ରକୌଶଳୀ—ପୁଂ. ବିଂ. ଯନ୍ତ୍ରଶିଳ୍ପୀ, ଯନ୍ତ୍ରକଳାବିତ୍, (ସ୍ତ୍ରୀ) ଯନ୍ତ୍ରକୌଶଳିନୀ ।

ଯନ୍ତ୍ରଗରୁଡ଼—ପୁଂ. ବି. ଯନ୍ତ୍ରକୌଶଳରେ ପ୍ରସ୍ତୁତ ଗରୁଡ଼ାକୃତି ।

ଯନ୍ତ୍ରଗୋଳ—ପୁଂ.ବି. ମଟର ପ୍ରଭୃତି ।

ଯନ୍ତ୍ରଗୃହ—କ୍ଳୀ.ବି.(୬ତତ୍) ତୈଳଶାଳା, ଘଣାଘର, ବେଧଶାଳା, ରସାୟନିକ ଯନ୍ତ୍ରାଗାର, ଯନ୍ତ୍ରଣା ଦେବାର ଘର ।

ଯନ୍ତ୍ରଚେଷ୍ଟିତ—କ୍ଳୀ.ବି.ଭୌତିକକ୍ରିୟା, ଯାଦୁକାର୍ଯ୍ୟ ।

ଯନ୍ତ୍ରଣ—କ୍ଳୀ.ବି. (ଯନ୍ତ୍ର+ଭା.ଅନ) ନିୟମ, ଦମନ, ଶାସନ, ନିୟନ୍ତ୍ରଣ, ପୀଡନ, ପୀଡ଼ା, ବନ୍ଧନ, ସଂକୋଚନ, ରକ୍ଷାକରିବା, ଜଗିବା, (ଯନ୍ତ୍ର+ଣ.ଅନ) ପଟି, ବନ୍ଧନୀ ।

ଯନ୍ତ୍ରଣବାସ—କ୍ଳୀ.ବି. ଘାପ୍ରଭୃତି ବାନ୍ଧିବାର କନା ।

ଯନ୍ତ୍ରଣା—ସ୍ତ୍ରୀ.ବି. (ଯନ୍ତ୍ର+ଭା.ଅନ+ଆ) ପୀଡ଼ା, ବେଦନା, ଯାତନା, ଦୁଃଖ, ବ୍ୟଥା, ଦେହରେ ଚନ୍ଦନାଦିଦ୍ୱାରା ଚିତ୍ରରଚନା ।

ଯନ୍ତ୍ରଣାକର--ବିଂ.(ଯନ୍ତ୍ରଣା+କୃ+କ.ଅ) ଦୁଃଖପ୍ରଦ ।

ଯନ୍ତ୍ରଣାଗ୍ନି—ବି. (ରୂପକ) ଅଗ୍ନି ସଙ୍ଗେ ତୁଳନୀୟ ଯାତନା ।

ଯନ୍ତ୍ରଣାଦାତା—ପୁଂ. ବିଂ. (ଉପପଦ), ଉତ୍ପୀଡ଼କ ।

ଯନ୍ତ୍ରଣାଭୋଗ—ବି. (୬ତତ୍) କଷ୍ଟଭୋଗ, ଯାତନାଭୋଗ ।

ଯନ୍ତ୍ରତକ୍ଷ—ପୁଂ.ବି. ଯନ୍ତ୍ରକାର, ଯେ ଯନ୍ତ୍ର ନିର୍ମାଣ କରେ ।

ଯନ୍ତ୍ରତନ୍ତ୍ର—ବି.(ସହଚର).ଶିଳ୍ପୀର ଉପକରଣ ଓ ଶସ୍ତ୍ରାଦି, ଯନ୍ତ୍ରମନ୍ତ୍ର ଦେଖ ।

ଯନ୍ତ୍ରତୋରଣ-ବି. (ମଧ୍ୟ-କ.ଧା) କଳଦ୍ୱାରା ପରିଚାଳିତ ଖିଲାଣ ।

ଯନ୍ତ୍ରଦୃଢ଼—ତ୍ରି.ବିଂ. (୩ତତ୍) କଳଣୀଦ୍ୱାରା କିଳିତ (ଦ୍ୱାର) ।

ଯନ୍ତ୍ରଧାରାଗୃହ—କ୍ଳୀ.ବି. ଯନ୍ତ୍ରଦ୍ୱାରା ପରିଚାଳିତ ଜଳଧାରାଯୁକ୍ତ ସ୍ନାନଗୃହ ।

ଯନ୍ତ୍ରନାଳ—କ୍ଳୀ.ବି. (ମଧ୍ୟ-କ.ଧା) ପାଣିକଳ, କୂପାଦିରୁ ପାଣି ଉଠାଇବା କଳ ।

ଯନ୍ତ୍ରନିର୍ମାଣ—ବି. (୬ତତ୍) ଯନ୍ତ୍ର ଗଢ଼ିବା, ଯନ୍ତ୍ରମାତୃକା ଦେଖ ।

ଯନ୍ତ୍ରନିର୍ମାତା—ପୁଂ.ବିଂ.ଯେ ଯନ୍ତ୍ର ତିଆରି କରିଥାଏ, ଯାନ୍ତ୍ରିକ, (ସ୍ତ୍ରୀ) ଯନ୍ତ୍ରନିର୍ମାତ୍ରୀ ।

ଯନ୍ତ୍ରପତର-ଗ୍ରା.ବି.(ନିରର୍ଥକ ୨ୟ ସହଚର) ଯନ୍ତ୍ରାଦି, ଯନ୍ତ୍ରତନ୍ତ୍ର ।

ଯନ୍ତ୍ରପିତୁଳା(କ)—ଗ୍ରା. ବି. (ସଂ-ଯନ୍ତ୍ର+ପୁତ୍ତଳିକା) ଯନ୍ତ୍ରଚାଳିତ ପିତୁଳା ।

ଯନ୍ତ୍ରପୁଷ୍ପକ—ପୁଂ.ବି.(ମଧ୍ୟ-କ.ଧା) କଳକଣ୍ଢେଇ ।

ଯନ୍ତ୍ରପେଷଣୀ—ସ୍ତ୍ରୀ.ବି. ଚକି, କଳଚକି ।

ଯନ୍ତ୍ରପ୍ରବାହ—ବି. (ମଧ୍ୟ-କ.ଧା) ଯନ୍ତ୍ର ପରିଚାଳିତ ବା କୃତ୍ରିମ ଜଳସ୍ରୋତ, ଦମକଳ ।

ଯନ୍ତ୍ରବତ୍—ତ୍ରି.ବିଂ. ଯନ୍ତ୍ରବିଶିଷ୍ଟ, ଯନ୍ତ୍ରଯୁକ୍ତ, ଯନ୍ତ୍ରପରି ।

ଯନ୍ତ୍ରବିଜ୍ଞାନ—କ୍ଳୀ ଓ ସ୍ତ୍ରୀ.ବି. (ଆଧୁନିକ). ଯନ୍ତ୍ର ନିର୍ମାଣ ଓ ପରିଚାଳନ ଆଦିର ଜ୍ଞାନସମ୍ବନ୍ଧୀୟ ଶାସ୍ତ୍ର ।

ଯନ୍ତ୍ରଭୃତ୍ୟ—ବି. (ଆଧୁନିକ). ମିଲ୍‌ରେ ବା କଳରେ କାମ କରୁଥିବା କୁଲି ।

ଯନ୍ତ୍ରମନ୍ତ୍ର—ବି. (ସହଚର), ଯନ୍ତ୍ର ଓ ମନ୍ତ୍ର, ଗୁଣିଗାରେଡ଼ି । [ ଚଟେଇ ।

ଯନ୍ତ୍ରମୟ—ତ୍ରି.ବିଂ. ଯନ୍ତ୍ରସମ୍ବନ୍ଧୀୟ, ଯନ୍ତ୍ର-

ଯନ୍ତ୍ରମାତୃକା—ସ୍ତ୍ରୀ. ବ. ଚଉଷଠି କଳା ମଧ୍ୟରୁ ଏକ, ଯନ୍ତ୍ରନିର୍ମାଣ ବିଦ୍ୟା, ଯେଉଁ କଳାଦ୍ୱାରା ନାନା ଯନ୍ତ୍ର ତିଆରି କରା-ଯାଏ।

ଯନ୍ତ୍ରମାର୍ଗ—ପୁଂ. ବ. (ମଧ୍ୟ-କ.ଧା) କୃତ୍ରିମ ନାଳ, କେନାଲ, ଖାଲ।

ଯନ୍ତ୍ରଯୁକ୍ତ—ତ୍ରି. ବଂ. ଯନ୍ତ୍ରସମନ୍ୱିତ।

ଯନ୍ତ୍ରରାଜ—ବ. (୬ତତ୍) ନକ୍ଷତ୍ର ଓ ଗ୍ରହ-ମାନଙ୍କର ଗତିଜ୍ଞାପକ ଜ୍ୟୋତିଷିକ ଯନ୍ତ୍ର ବା ଚକ୍ରବିଶେଷ, ଶ୍ରେଷ୍ଠଯନ୍ତ୍ର।

ଯନ୍ତ୍ରଶର—ପୁଂ. ବ. (ମଧ୍ୟ-କ.ଧା) ଯନ୍ତ୍ର-ଦ୍ୱାରା ଫିଙ୍ଗାଯିବା ବାଣ।

ଯନ୍ତ୍ରଶାଳା—ସ୍ତ୍ରୀ. ବ. (୬ତତ୍ ବା ମଧ୍ୟ-କ.ଧା) ବେଧଶାଳା, ଅନେକପ୍ରକାର ଯନ୍ତ୍ରଥିବା ଗୃହ, କାରଖାନା।

ଯନ୍ତ୍ରଶିଳ୍ପ—ବ. ( ଆଧୁନିକ ). ଯନ୍ତ୍ରଦ୍ୱାରା କୃତ ଶିଳ୍ପ।

ଯନ୍ତ୍ରଶିଳ୍ପୀ—ପୁଂ. ବ. (୬ତତ୍) ଯନ୍ତ୍ରପରି-ଚାଳନରେ ଦକ୍ଷ ବ୍ୟକ୍ତି।

ଯନ୍ତ୍ରସୂତ୍ର—କ୍ଲୀ. ବ. (ମଧ୍ୟ କ.ଧା) ଯେଉଁ ସୂତ୍ରଦ୍ୱାରା କଳକବ୍ଜାଙ୍କୁ ଚାଳିତ କରା-ଯାଏ। [ବିଶେଷ।

ଯନ୍ତ୍ରାପୀଡ଼—ପୁଂ. ବ. ସନ୍ନିପାତ ଜ୍ୱର-

ଯନ୍ତ୍ରାରୂଢ଼—ତ୍ରି. ବଂ. ଯନ୍ତ୍ରୋପରି ନିବେଶିତ।

ଯନ୍ତ୍ରାଳୟ—ପୁଂ. ବ. (ମଧ୍ୟ-କ.ଧା) ମୁଦ୍ରା-ଯନ୍ତ୍ର, ଛାପାଖାନା, ଯନ୍ତ୍ରାଗାର ମାତ୍ର।

ଯନ୍ତ୍ରିକା—ସ୍ତ୍ରୀ. ବ. ( ଯନ୍ତ୍ର + କ + ଆ ) ପତ୍ନୀର କନିଷ୍ଠା ଭଗିନୀ, ଶାଳୀ, ଗୁଆ-କାତି, ଶ୍ରେଷ୍ଠ କୋଲପ, ହାତଚକି, ଶ୍ରେଷ୍ଠକଳ।

ଯନ୍ତ୍ରିଣୀ—ସ୍ତ୍ରୀ. ବଂ. (ଯନ୍ତ୍ରିନ୍ + ଈ) ଯନ୍ତ୍ରୀର ସ୍ତ୍ରୀଲିଙ୍ଗ, (ସ୍ତ୍ରୀ. ବ) ଶାଳୀ।

ଯନ୍ତ୍ରିତ—ତ୍ରି. ବଂ. (ଯନ୍ତ୍ର + ଈ.ତ) ବଦ୍ଧ, ଶୃଙ୍ଖଳିତ, ଦମିତ, କୋଲପ ପଡ଼ିଥିବା ବା କିଲା ଯାଇଥିବା।

ଯନ୍ତ୍ରିତକଥ—ପୁଂ. ବଂ. (ବ.ବ୍ରୀ) ଯାହାକୁ ବାଧକର କଥା କହିବା ବିଷୟରୁ ବନ୍ଦ କରାଯାଇଅଛି, (ପୁଂ.ଷ୍ଠୀ) ଯନ୍ତ୍ରିତବାକ୍, (ସ୍ତ୍ରୀ) ଯନ୍ତ୍ରିତକଥା।

ଯନ୍ତ୍ରିବା—ଗ୍ରା.(ପଦ୍ୟ) କ୍ରି. (ସଂ-ଯନ୍ତ୍ରଧାତୁ) ନିୟୋଜିତ କରିବା, ଯନ୍ତ୍ରଣା ପାଇବା।

ଯନ୍ତ୍ରୀ—ପୁଂ. ବଂ. (ଯନ୍ତ୍ର + ଇନ୍) ଚଳା-ଇକାରୀ, ଯନ୍ତ୍ର ସମ୍ବନ୍ଧୀୟ, ଧୂର୍ତ୍ତ, ଉଦ୍ଭା-ବନଶୀଳ, ଜିନ୍ ଓ ଲଗାମ ଆଦିରେ ସଜ୍ଜିତ (ଘୋଡ଼ା), ବେଡ଼ିଙ୍ଗଶିଆ ଦ୍ୱାରା ସୁରକ୍ଷିତ (ବ୍ୟକ୍ତି), ଉତ୍ପୀଡ଼ନକାରୀ, ନିୟନ୍ତ୍ରଣକାରୀ, (ପୁଂ.ବ) କୌଣସି ଅନୁ-ଷ୍ଠାନର ମୁଖ୍ୟଧର ବ୍ୟକ୍ତି, ଉକ୍ତାଷ୍ଟବାଦକ, କାରଖାନା ଘରର ମାଲିକ, ଶିଳ୍ପକାର, ଶିଳ୍ପୀ, ଯନ୍ତ୍ରସ୍ୱାମୀ, ଗୁଣୀ ଜନ, ପଞ୍ଜିକା, ସଣ୍ଡ ଅସି, ଚୁମ୍ବକ, ଗୁଣିଆ (ଗ୍ରା.ବ) ଗୁଣିଗାରଡ଼ିରେ ପ୍ରୟୋଗ କରଯିବା ଶ୍ରେଷ୍ଠକାଠି, କ୍ୟାଲେଣ୍ଡର୍, ପଞ୍ଚପଞ୍ଜିକା. (ଗ୍ରା. ସମ୍) ଚକି।

ଯନ୍ତ୍ରୋପଲ—ପୁ. ବ. ଯନ୍ତାପଥର।

ଯନ୍ନିମିତ୍ତ—ଅବ୍ୟ. ଯେ ହେତୁ, ଯେ କାର-ଣରୁ! [ବିଶେଷ।

ଯନ୍ନଂହସ୍ତୀୟ—କ୍ଲୀ. ବ. ସାମବେଦାଂଶ

ଯନ୍ମଧ୍ୟେ—ଅବ୍ୟ. ଯାହାଭିତରେ।

ଯନ୍ମୟ—ତ୍ରି. ବଂ. ଯଦ୍‌ବ୍ୟାପ୍ତ, ଯତ୍‌ସ୍ୱରୂପ, ଯଦ୍ଦ୍ୱାରା ଗଠିତ।

ଯନ୍ମାତ୍ର—ତ୍ରି. ବଂ. ଯେ ପରିମାଣ।

ଯନ୍ମୂର୍ଦ୍ଧା—ପୁଂ. ବ. ଯାହାର ମୁଣ୍ଡ।

ଯଦବଧିକ୍—ଗ୍ରା. କ୍ରି. ବଂ. ଯେବେଯାଏ, ଯେତେବେଳ ପର୍ଯ୍ୟନ୍ତ।

ଯବ—ପୁଂ. ବ. (ଯୁ + କ.ଅ) ଶୂକଧାନ୍ୟ, ଯଅଧାନ, ୬ଧାନ ପରିମାଣ, ପରିମାଣ ବା ଓଜନବିଶେଷ, ହାତ ଆଙ୍ଗୁଠିର ପର୍ବସନ୍ଧିମାନଙ୍କରେ ଥିବା ଯବାକାର ରେଖା, ଇନ୍ଦ୍ରଯବ, ବେଗ, ଦ୍ୱିପୁଟପୃଷ୍ଠ କାଚ, ପୂର୍ବପକ୍ଷ, ଯବୋଦର ପରିମିତ ଦୈର୍ଘ୍ୟ, ଯବଦ୍ୱୀପ, ଦୁଇମୁଣ୍ଡ ସରୁଆ ଓ ମଝି ମୋଟା ହୋଇଥିବା ବସ୍ତୁ, (ପ୍ରା. ବାମଣ୍ଡା.ବଂ.) ବହୁତ।

ଯବକ—ପୁଂ. ବ. (ଯବ + କ) ଯବଧାନ।

ଯବକ୍ୟ(କ୍ୟା)—ବଂ. (ଯବକ + ଯ,ଆ) ଯବଶସ୍ୟ ଜନ୍ମିବାର ଉପଯୁକ୍ତ(କ୍ଷେତ୍ର)।

ଯବକଣ୍ଟକ—ପୁଂ. ବ. ପର୍ପଟକ, କ୍ଷେତପାପଡ଼ା, ଘରପୋଡ଼ିଆ।

ଯବକଲଶ—ପୁଂ. ବ. ଇନ୍ଦ୍ରଯବ।

ଯବକାଞ୍ଜିକ—କ୍ଲୀ. ବ. ଯବକାଞ୍ଜି।

ଯବକ୍ରୀ—ପୁଂ. ବଂ. ଯବକ୍ରୟକାରୀ, (ବ) ଯବକ୍ରୀତ ମୁନି।

ଯବକ୍ରୀତ—ପୁଂ. ବ. ମୁନିବିଶେଷ, ଭର-ଦ୍ୱାଜ ମୁନିଙ୍କ ପୁତ୍ର।

ଯବକ୍ଷା—ସ୍ତ୍ରୀ. ବ. ନଦୀବିଶେଷ।

ଯବକ୍ଷାର—ବ. (ମଧ୍ୟ-କ.ଧା) କ୍ଷାରବିଶେଷ, ସୋରା, ଯବଭସ୍ମଜାତ କ୍ଷାର।

ଯବକ୍ଷାରଜ—କ୍ଲୀ. ବ. ଯବକ୍ଷାରରୁ ଉତ୍ପନ୍ନ ବାଷ୍ପବିଶେଷ।

ଯବକ୍ଷାରଜ(ଜା)ନ—ପୁଂ. ବ. (ବ.ବ୍ରୀ) ବାୟୁର ଉପାଦାନଭୂତ ବାଷ୍ପସମୂହର ଅନ୍ୟତମ।

ଯବକ୍ଷାରଦ୍ରାବକ—ପୁଂ. ବ. ଯବକ୍ଷାରରୁ ରାସାୟନିକ ପ୍ରକ୍ରିୟାଦ୍ୱାରା ପ୍ରସ୍ତୁତ ଝଟା-ଦ୍ରବ୍ୟ।

ଯବକ୍ଷାରାମ୍ଳ—କ୍ଲୀ.ବ. ସୋରାଦ୍ୱାରା ପ୍ରସ୍ତୁତ ଅମ୍ଳୌଷଧବିଶେଷ।

ଯବକ୍ଷେତ୍ର—କ୍ଲୀ. ବ. ଯବୋତ୍ପାଦନର ଉପଯୋଗୀ କ୍ଷେତ୍ର।

ଯବକ୍ଷୋଦ—ପୁଂ. ବ. (୬ତତ୍) ଯବର ଚୂର୍ଣ୍ଣ, ଦାଲି।

ଯବଖାର—ଗ୍ରା. ବ. ଯବକ୍ଷାର ଦେଖ।

ଯବଗଣ୍ଡ—ପୁଂ. ବ. (ଯବ + ଗଣ୍ଡ) ଯୁବ-ଗଣ୍ଡ, କାଠନରୁଣ।

ଯବଗୋଧୂମସମ୍ଭବ—କ୍ଲୀ. ବ. ଯବମିଶ୍ର କାଞ୍ଜି, (ବଂ) ଯବ ଓ ଗହମ ମିଶ୍ରଣରେ ପ୍ରସ୍ତୁତ (ଦ୍ରବ୍ୟ)।

ଯବଗ୍ରୀବ—ତ୍ରି. ବଂ. ଯବପରି ଗ୍ରୀବାଯୁକ୍ତ (କୁକ୍କୁଟ)। [ଚତୁର୍ଥୀ।

ଯବଚତୁର୍ଥୀ—ସ୍ତ୍ରୀ. ବ. ବୈଶାଖ ଶୁକ୍ଳ

ଯବଜ—ପୁଂ.ବ. (ଯବ + ଜନ୍ + କ.ଅ) ଯବକ୍ଷାର, ଯୁଆଣି, ଯବକ୍ଷୀର, ପାଳୁଅ, ଆରାରୁଟ୍।

ଯବଜୋଦ୍ଭବ—କ୍ଲୀ. ବ. ଯବକ୍ଷୀର।

ଯବତକ୍ତା—ସ୍ତ୍ରୀ.ବ. ଲତାବିଶେଷ, ଭୂଇଁ-ନିମ୍ବ, ବାସକାଦିବର୍ଗର ବର୍ଷାୟୁଃ ଶାକ-

ବିଶେଷ ।

ଯବଚ୍ଛିଲ--କ୍ଲୀ.ବି.ଯବଚୂର୍ଣ୍ଣାଦିଯୁକ୍ତ ପକ୍ୱଚ୍ଛିଲବିଶେଷ ।

ଯବଦ୍ୱୀପ—ପୁଂ.ବି. (ମଧ୍ୟ-କ.ଧା) ଦ୍ୱୀପବିଶେଷ, ଜାଭାଦ୍ୱୀପ ।

ଯବଦୋଷ—ବି.ରତ୍ନର ଦୋଷବିଶେଷ ।

ଯବନ—ବି. (ଯୁ+ର୍ମି.ଅନ) ଗୋଧୂମ, ଚନ୍ଦନ, ଗର୍ଜର, ଶାକବିଶେଷ, ଗାଜର, ୟୁନାନଦେଶ, ଦେଶବିଶେଷ, ଆରବ, ପାରସ୍ୟ, ତୁରସ୍କ ଓ ଗ୍ରୀସଦେଶ, (ଯୁ+କର୍ତ୍ତୃ.ଅନ) ମ୍ଳେଚ୍ଛଜାତି, ଅହିନ୍ଦୁ,ବିଦେଶୀୟ ଜାତି,ୟୁନାନ୍ ଦେଶବାସୀ ବ୍ୟକ୍ତି, କାଳଯବନ, ମୁନିବିଶେଷ, (ଜୁ+ଭା.ଅନ) ବେଗ, (ଜୁ+କ.ଅନ) ବେଗବାନ୍ ଅଶ୍ୱ, (ବିଂ) ବେଗବାନ୍, (ସ୍ତ୍ରୀ) ଯବନୀ ।

ଯବନକ—ପୁଂ.ବି.ଗୋଧୂମ,ଯବନ ଶବ୍ଦାର୍ଥ

ଯବନଦେଶଜ—ତ୍ରି.ବିଂ. ଜବନ ଦେଶଜାତ ।

ଯବନଦ୍ୱିଷ୍ଟ—ପୁଂ. ବି. ଗୁଗ୍ଗୁଳ ।

ଯବନଦ୍ୱୀପ—କ୍ଲୀ.ବି.ଯମ ବା ଯବଦ୍ୱୀପ ।

ଯବନପୁର—ଗ୍ରା.କ୍ଲୀ.ବି. ଆଲେକ୍‌ଜାଣ୍ଡ୍ରିଆଙ୍କ ପ୍ରାଚୀନ ଭାରତୀୟ ନାମ ।

ଯବନପ୍ରିୟ—କ୍ଲୀ. ବି. ମରିଚ ।

ଯବନମୁଣ୍ଡ—ପୁଂ.ବି.ମୁଣ୍ଡିତଶିର ଯବନ, ଯବନମାନଙ୍କ ପରି ମୁଣ୍ଡିତ ମସ୍ତକ ।

ଯବନାଚାର୍ଯ୍ୟ—ପୁଂ. ବି. ଜଣେ ପ୍ରାଚୀନ ଜ୍ୟୋତିଃଶାସ୍ତ୍ର ପ୍ରଣେତା, ଯବନେଶ୍ୱର ।

ଯବନାନୀ—ସ୍ତ୍ରୀ. ବି. (ଯବନ+ଆନୀ) ଆରବୀ, ପାର୍ଶୀ, ଗ୍ରୀକ୍‌ଆଦି ଯାବନିକ ଲିପି,ୟୁନାନୀଭାଷା,(ବିଂ)ଯବନଦେଶୀୟ, ୟୁନାନୀ ।

ଯବନାରି—ପୁଂ.ବି.(ଷତତ୍ପୁ) ଶ୍ରୀକୃଷ୍ଣଙ୍କର ନାମାନ୍ତର ।

ଯବନାଲ—ପୁଂ, ବି. ଧାନ୍ୟବିଶେଷ, ଦେଧାନ, ବାଜରା, ଜୁଆରି, ଯବତୃଣର ନଡ଼ା ।

ଯବନାଳକ—ବି. ଯବକ୍ଷାର ।

ଯବନାଳଜ—ପୁଂ. ବି. ଯବକ୍ଷାର ।

ଯବନାଶ୍ୱ—ବି. ମିଥିଳା ଦେଶର ଜଣେ ପ୍ରାଚୀନ ରାଜା. ବନ୍ଧୁକାଶ୍ୱଙ୍କ ପିତା ।

ଯବନିକା—ସ୍ତ୍ରୀ.ବି. (ଜୁ+ଣ.ଅନ+କ+ଆ) ତିରସ୍କରଣୀ, ପରଦା, କନାନ୍ଥିବାଡ଼, ରଙ୍ଗାଳୟର ବହିଃସ୍ଥ ପରଦା, ଯବନ ସ୍ତ୍ରୀ, ପଠାଣୀ, ଯୁଆଣୀ ।

ଯବନିକାପତନ—ପୁଂ.କ୍ଲୀ. ବି. (ଷତତ୍ପୁ) ପଟକ୍ଷେପଣ, ଅଭିନୟ ଶେଷରେ ପର୍ଦ୍ଦା ପଡ଼ିବା ।

ଯବନୀ—ସ୍ତ୍ରୀ.ବି.(ଯବନ+ଈ)ଯବନ ସ୍ତ୍ରୀ, ପଠାଣୀ, ଯୁଆଣି, (ଯୁ+ଣ.ଅ+ଈ) ଯବନିକା, ପର୍ଦ୍ଦା ।

ଯବନେଷ୍ଟ—ପୁଂ. ବି. (ଯବନ+ଇଷ୍ଟ) ଷତତ୍ପୁ; ସୀସା, ମରିଚ, ଶ୍ରେଷ୍ଠ ପିଆଜ, ରସୁଣ, ନିମ୍ବବୃକ୍ଷ, ଗାଜର, ସାଲଗମ୍ ।

ଯବନେଷ୍ଟା—ବି. (ଯବନ+ଇଷ୍ଟ+ଆ) ଖଜୁରି ।

ଯବପଟୋଲ—ପୁଂ. ବି. ଜ୍ୱରରୋଗେ ପ୍ରଯୋଜ୍ୟ କଷାୟ ଭେଦ ।

ଯବପଲ୍ଲି—ପୁଂ.ବି.ଯବପାଳ ବା ପୁଆଳ ।

ଯବପିଷ୍ଟ—କ୍ଲୀ.ବି. ଯବଚୂର୍ଣ୍ଣ,ଯବପିଠା ।

ଯବପ୍ରଖ୍ୟା—ସ୍ତ୍ରୀ.ବି.କ୍ଷୁଦ୍ର ରୋଗବିଶେଷ, ଯବାକାର ଫୁଟୁକା ।

ଯବଫଲ—ପୁଂ. ବି. (ବ.ବ୍ରୀ) ବାଉଁଶ, ଜଟାମାଂସୀ, କୁଟଜ, ଇନ୍ଦ୍ରଯବ ଦେଖ, ପିଆଜ, ପ୍ଲକ୍ଷବୃକ୍ଷ ।

ଯବବିନ୍ଦୁ--ବି.(ବ.ବ୍ରୀ)ଯବିନ୍ଦୁ ଯବରେଖାବିଶିଷ୍ଟ ହୀରକ ।

ଯବବୁସ—ପୁଂ. ବି. ଯବର ତଷୁ ।

ଯବମଣ୍ଡ—ପୁଂ.ବି.(ଷତତ୍ପୁ) ଯବକୁ ସିଦ୍ଧକରି ବାହାର କରାଯିବା ମଣ୍ଡ ।

ଯବମଦ୍ୟ—କ୍ଲୀ.ବି.(ମଧ୍ୟ-କ.ଧା)ଯବଧାନ ଦିଆଯାଇ ତହିଁରୁ ପ୍ରସ୍ତୁତ ମଦ୍ୟ ।

ଯବମଧ୍ୟ—କ୍ଲୀ. ବି. (ବ.ବ୍ରୀ) ଚାନ୍ଦ୍ରାୟଣବିଶେଷ, କୃଷ୍ଣପ୍ରତିପଦଠାରୁ ଅମାବାସ୍ୟା ପର୍ଯ୍ୟନ୍ତ ଖାଦ୍ୟର ପରିମାଣ କ୍ରମଶଃ କମାଇ ଶୁକ୍ଳ ପ୍ରତିପଦଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ପୁଣି ଖାଦ୍ୟ ବଢ଼ାଇବା ରୂପ ବ୍ରତବିଶେଷ, ପାଞ୍ଚଦିନରେ ସମାପ୍ତ ଯଜ୍ଞବିଶେଷ, (ବିଂ) ଯାହାର ଦୁଇମୁଣ୍ଡ ଅପେକ୍ଷା ମଧ୍ୟସ୍ଥଳ ସ୍ଥୂଳ ।

ଯବମଧ୍ୟମ—କ୍ଲୀ. ବି. ଯବମଧ୍ୟ ।

ଯବମଧ୍ୟା— ବି. (ବ.ବ୍ରୀ) ଛନ୍ଦୋବିଶେଷ, ତିନିଚରଣଯୁକ୍ତ ଛନ୍ଦୋବିଶେଷ, ଯହିଁର ମଝି ଧାଡ଼ିରେ ଉପର ଓ ତଳ ଧାଡ଼ି ଅପେକ୍ଷା ଗୋଟିଏ ଅକ୍ଷର ବେଶୀଥାଏ ।

ଯବମତ୍—ତ୍ରି.ବିଂ.ଯବବିଶିଷ୍ଟ, ଯବଯୁକ୍ତ ।

ଯବମନ୍ଥ—ବି. ଯବଧାନର ଛତୁଆ ।

ଯବମୟ—ତ୍ରି.ବିଂ: (ଯବ+ମୟ) ଯବନିର୍ମିତ । [ ମାଣ ।

ଯବମାନ—ତ୍ରି.ବିଂ.ଯବସଦୃଶ. ଯବପରି-

ଯବଯବାଗୁକା--ସ୍ତ୍ରୀ.ବି.ଯବଧାନର ଯାଉ ।

ଯବଯସ—କ୍ଲୀ.ବି.ପ୍ଲକ୍ଷଦ୍ୱୀପସ୍ଥ ବର୍ଷବିଶେଷ

ଯବରେଚିକା—ବି.(ମଧ୍ୟ-କ.ଧା)ଯବଅରୁଚି ।

ଯବଲକ—ପୁଂ. ବି. ପକ୍ଷିବିଶେଷ ।

ଯବଲାସ—ପୁଂ. ବି. ଯବକ୍ଷାର ।

ଯବବତ୍—ତ୍ରି. ବିଂ. ଯବଟୁକସଦୃଶ ।

ଯବବର୍ଣ୍ଣାଭ—ପୁଂ. ବି. ସବିଷ ମଣ୍ଡୁକ ଜାତୀୟ କୀଟ ।

ଯବବିକୃତ—ସ୍ତ୍ରୀ.ବି. ପ୍ରମେହର ହିତକର ଯବକୃତ ପିଠାଦି ।

ଯବଶକ୍ତୁ—ପୁଂ.ବି. (ଯବ+ଶକ୍ତୁ)ଯବଛତୁଆ । [ ଚିନି ।

ଯବଶର୍କରା—ସ୍ତ୍ରୀ. ବି. ସିଦ୍ଧ ଯବରୁ ପ୍ରସ୍ତୁତ

ଯବଶସ୍ୟ—କ୍ଲୀ.ବି. ଯବଧାନ ।

ଯବଶାକ—କ୍ଲୀ.ବି. ଶାଗବିଶେଷ, ଚଲ୍ଲୀଶାକ, ଗୌରବ ଶାକ ।

ଯବଶିରଃ—ତ୍ରି.ବିଂ. ଯବାଗ୍ର, ଯବଗ୍ରୀବ ।

ଯବଶୂକ—ପୁଂ. ବି. (ଷତତ୍ପୁ)ଯବଧାନର ଶିଂଘ, ଯବକ୍ଷାର ।

ଯବଶୂକଜ—ପୁଂ.ବି. ଯବକ୍ଷାର ।

ଯବଶ୍ରାଦ୍ଧ—କ୍ଲୀ. ବି. ଯବଦ୍ୱାରା ନିଷ୍ପାଦିତ ଶ୍ରାଦ୍ଧବିଶେଷ, ଅକ୍ଷୟ ତୃପ୍ତିପ୍ରାଦନ ଯବଚୂର୍ଣ୍ଣର ପିଣ୍ଡରେ କରାଯିବା ଶ୍ରାଦ୍ଧ ।

ଯବଶ୍ୱେତା—ସ୍ତ୍ରୀ. ବି. ଯବଶର୍କରା,ଯବଛତୁଆ ।

ଯବସ—କ୍ଲୀ.ବି.(ଯୁ+ର୍ମି.ଅସ୍)ତୃଣ,ଘାସ, ଗୋରୁଙ୍କ ଚରା, ପୁଂ.ବିଂ. ( ଯୁ+କ.

ଅସ୍) ଦକ୍ଷ, (ସ୍ତ୍ରୀ) ଯବସା ।

ଯବସାଦ୍—ପୁଂ. ବ୍ରିଂ. ତୃଣଭକ୍ଷକ ।

ଯବସାହ୍ୱ--ପୁଂ.ବ.ଯମାନୀକ୍ଷୁପ, ଯୁଆଣୀଗଛ

ଯବସାହ୍ୱୟା—ସ୍ତ୍ରୀ. ବ. ଯମାନୀ, ଯୁଆଣୀ ।

ଯବସୁରା—ବ. (ମଧ୍ୟ-କ.ଧା) ଯବରୁ ପ୍ରସ୍ତୁତ ମଦ୍ୟ ।

ଯବସୌବୀର—କ୍ଲୀ. ବ. ଯବକାଞ୍ଜି ।

ଯବାଗୂ—ସ୍ତ୍ରୀ. ବ. (ଯୁ+ର୍ମ.ଆଗୁ) ଷଡ଼୍‌ଗୁଣ ଜଳରେ ପକ୍ୱଗୁଡ଼ଳ ବା ଯବଗୁଣ୍ଡା, ଯାଉ,ଯବ ବା ଗୁଡ଼ଳର ବାସୀତୋରାଣି

ଯବାଗ୍ର—କ୍ଲୀ. ବ.(୬ତ ତ୍ରୁ)ଯବର ଭୁଷୀ, ଯବଚଷୁ ।

ଯବାଗ୍ରଜ—ପୁଂ. ବ. (ଯବ+ଅଗ୍ରଜ)ଯବକ୍ଷାର, ଯୁଆଣି, କାଞ୍ଜି, ସୋରା ।

ଯବାଗ୍ରୟଣ—କ୍ଲୀ. ବ. ଯବଶୀଷା, ସର୍ବପ୍ରଥମେ ନିର୍ଗତ ଯବଧାନର ଶୀଷା ।

ଯବାଚିତ—ତ୍ରି.ବ୍ରିଂ. ଯବସମ୍ଭାର,ଯବରାଶି, ଯବକୀର୍ଣ୍ଣ ।

ଯବାଦ୍—ତ୍ରି. ବ୍ରିଂ. ଯବଭକ୍ଷକ ।

ଯବାନ୍(ଇତ୍ୟାଦ)—ଯା. ବ. ଓ ବ୍ରିଂ. ଜବାନ୍ ଇତ୍ୟାଦ ଦେଖ ।

ଯବାନ—ପୁଂ. ବ୍ରିଂ. ( ଯବ+ଆ+ନୀ+କ.ଅ) ବେଗବାନ୍, ଦ୍ରୁତଗାମୀ ।

ଯବା(ନୀ)ନକା—ସ୍ତ୍ରୀ. ବ. (ଯବ+ଆ+ନୀ+କ.ଅ+ଇ) ଜୁଆଣୀ ।

ଯବାନ୍ନ—କ୍ଲୀ. ବ. (ଯବ+ଅନ୍ନ)୬ତତ୍ରୁ; ଜଳପକ୍ୱଯବ, ଯବଭାତ ।

ଯବାପତ୍ୟ-କ୍ଲୀ.ବ.(ଯବ+ଅପତ୍ୟ,୬ତତ୍ରୁ) ଯବକ୍ଷାର ।

ଯବାମ୍ଳ—କ୍ଲୀ.ବ.(ଯବ+ଅମ୍ଳ)ବାସୀଯାଉ, ଯବର କାଞ୍ଜି,ଯବାଗୂ ।

ଯବାମ୍ଳଜ—କ୍ଲୀ. ବ. ଯବାନ୍ନ ।

ଯବାସ—ବ. (ଯୁ+କ.ଆସ)କଣ୍ଟକୀକ୍ଷୁପବିଶେଷ, ଏକପ୍ରକାର ଖଇର, ଦୁରାଲଭା ଜବାସା ।

ଯବାସକ—ପୁଂ. ବ. ଦୁର୍ଲଭା ।

ଯବାସଶର୍କରା—ସ୍ତ୍ରୀ. ବ.ଯବାସରସଘଟିତ ଏକପ୍ରକାର ଶର୍କରା, ସୁଧାମୋଦକ, ଖଣ୍ଡମୋଦକ, ମୋଦକ, ଦୁରାଲଭାରୁ ପ୍ରସ୍ତୁତ ଏକପ୍ରକାର ଚିନି ।

ଯବାସା—ସ୍ତ୍ରୀ. ବ. (ଯବାସ+ଆ)ଗୁଣ୍ଡାହିମା ତୃଣ ।

ଯବାସିନୀ—ସ୍ତ୍ରୀ. ବ. ଯବାସକ୍ଷୁପପୂର୍ଣ୍ଣ କ୍ଷେତ ବା ଦେଶ ।

ଯବାହାର—ତ୍ରି. ବ୍ରିଂ. ଯବାନ୍ନଭୋଜୀ ।

ଯବାହ୍ୱ—ପୁଂ. ବ. ଯବକ୍ଷାର ।

ଯବିକ—ତ୍ରି. ବ୍ରିଂ. ଯବଯୁକ୍ତ, ଯବବିଶିଷ୍ଟ ।

ଯବିଷ୍ଠ--ପୁଂ.ବ୍ରିଂ.(ଯୁବନ୍+ଇଷ୍ଠ) ଅତ୍ୟନ୍ତ ଯୁବା, କନିଷ୍ଠ, ( ବ ) ସବା ସାନଭାଇ, ଅଗ୍ନି, ମୁନିବିଶେଷ, (ସ୍ତ୍ରୀ) ଯବିଷ୍ଠା ।

ଯବିଷ୍ଠବତ୍—ତ୍ରି. ବ୍ରିଂ. ଯୁବାପର ।

ଯବିଷ୍ଠ୍ୟ—ତ୍ରି. ବ୍ରିଂ. ଅତିଶୟ ଯୁବା ।

ଯବୀନର—ପୁଂ.ବ.ଆଜମୀଢ଼ ପୁତ୍ରବିଶେଷ, ବାହ୍ୟାଶ୍ୱ ।

ଯବୀୟାନ୍—ପୁଂ. ବ୍ରିଂ.(ଯୁବନ୍+ଈୟସ୍), ଅତିଯୁବା,କନୀୟାନ୍,(ପୁଂ) ଦୁଇଜଣଙ୍କ ମଧ୍ୟରେ ସାନ, (ବ) ଆପଣା ଠାରୁ ସାନଭାଇ ।

ଯବୀୟୁଧ—ତ୍ରି. ବ୍ରିଂ.. ରଣପ୍ରିୟ ।

ଯବୁ—କାବୁଲ ଜାତ କ୍ଷୁଦ୍ର ଅଶ୍ୱଜାତି ବିଶେଷ ।

ଯବୁଅବୁ—ଗ୍ରା. ବ୍ରିଂ. ଅକର୍ମଣ୍ୟ,ଚଳଚ୍ଛକ୍ତିରହିତ, ଅଥର୍ବ ।

ଯବେ--ଗ୍ରା.ବ୍ରିଂ.ଯବପରିମାଣ,ଯବେଲମ୍ବ ।

ଯବୋତ୍ଥ—କ୍ଲୀ. ବ. ସୌବୀରକ ।

ଯବୋଦାର—କ୍ଲୀ. ବ. ଯବ ମଧ୍ୟଭାଗ, ୧/୮ ଇଞ୍ଚ, ଯବର ପ୍ରସ୍ଥ ପରିମାଣ ।

ଯବୋଦ୍ଭବ—ପୁଂ.ବ.(ବ.ବ୍ରୀ)ଯବକ୍ଷାର ।

ଯବୋଦ୍ଭୂତା—ସ୍ତ୍ରୀ. ବ. ଯବଶର୍କରା ।

ଯବୋର୍ବରା—ସ୍ତ୍ରୀ. ବ. ଯବକ୍ଷେତ୍ର ।

ଯବ୍ୟ—ତ୍ରି. ବ୍ରିଂ. ( ଯବ୍+ଯ ) ଯବାଦି ଉତ୍ପନୋଚିତ କ୍ଷେତ୍ର, ଯଷ୍ଟିବ୍ୟ,ଯବୋଚିତ,ମାସ,ନଦୀବିଶେଷ,(ପୁଂ) ଚାନ୍ଦ୍ରମାସ

ଯଭ୍(ଧାତୁ)— ମୈଥୁନକରିବା, ସଙ୍ଗମ କରିବା ।

ଯଭନ—ବ. (ଯଭ୍+ଭା.ଅନ) ମୈଥୁନ,

ଯମ୍(ଧାତୁ)— ବିରତହେବା, ପରିବେଷଣ କରିବା, ପରିକ୍ଷେପିବା, ବେଷ୍ଟନ କରିବା, କେଢ଼ିବା, ଦମନ କରିବା, ଦେବା, ଘିବା, ବର୍ଦ୍ଧିତ କରିବା, ଦେଖାଇବା, ପାଳନ କରିବା, ବନ୍ଦ କରିବା, ନିବୃତ୍ତି, ବନ୍ଧନ ।

ଯମ୍ବା—ପ୍ରା. (ସମ୍ବ) ତ୍ରି. ଜମିବା,ଏକତ୍ର ବା ଠୁଳହେବା ।

ଯମ—ତ୍ରି.ବ୍ରିଂ. (ଯମ୍+କ.ଅ) ଯୁଗ୍ମଜାତ ଯମଜ, ଯୁଗ୍ମ ହୋଇଥିବା, ( ପୁଂ.ବ ) ଯମଜ ସନ୍ତାନରୁ ଜଣେ,(ଯମ୍+ଭା.ଅ) ଶରୀର ସାଧନାପେକ୍ଷ ନିତ୍ୟକର୍ତ୍ତବ୍ୟ ନୈତିକ ବା ଧାର୍ମିକ କର୍ତ୍ତବ୍ୟ କର୍ମ ବା ବ୍ରତ, ସଂଯମ, ଇନ୍ଦ୍ରିୟନିଗ୍ରହ, (ଯମ୍+କ.ଅ) ଋଷିବିଶେଷ, କାକ, କୁଆ, ଶନିଗ୍ରହ, ଧର୍ମରାଜ, ଦକ୍ଷିଣ ଦିଗ୍‌ପାଳ । (ଯମ୍+ଭା.ଅ) ସଂଯମ, ଧର୍ମ ସମ୍ବନ୍ଧୀୟ ବାରଣ, ବିରତି, ନିବୃତ୍ତି,ଉପସଂହାର. ଶେଷ, ଅନ୍ତ, ଚରମ,ପ୍ରାୟଶ୍ଚିତ୍ତ, ମୃତ୍ୟୁ, ସହିଷ୍ଣୁତା,ଉତ୍ସବବିଶେଷ,ଯୁଗ୍ମ,ମିଥୁନ, ଯମନାମକ ପିତୃଗଣ, ଯୁଗ୍ମ ବା ଯୋଡ଼ା ମଧ୍ୟରୁ ଏକତର, ଦୁଇସଂଖ୍ୟା,(ବ୍ୟାକରଣ) ଦୁଇଥର ଏକତ୍ର ଉଚ୍ଚାରିତ ବ୍ୟଞ୍ଜନବର୍ଣ୍ଣ, ସ୍ୱରର ଉଚ୍ଚତା, ବାୟୁ ।

ଯମଆଳ-ଗ୍ରା.ବ.(ସଂ-ଯମଆଳୟ)ଯମପୁରୀ ।

ଯମକ—କ୍ଲୀ.ବ. (ଯମ୍+ସ୍ୱାର୍ଥେ.କ)ଯମଜ ସନ୍ତାନଦ୍ୱୟରୁ ଏକତର, ସଂଯମ, ଶବ୍ଦାଳଙ୍କାର ବିଶେଷ, ନିୟନ୍ତ୍ରଣ, ଯୋଡ଼ାକ ମଧ୍ୟରୁ ଏକ, ଡବଲ୍ ପଙ୍କ୍ତି, (ବ୍ରିଂ) ଯାଆଁଳା,ଦୋପରସ୍ତିଆ,ଡ଼ବଲ, (ଗ୍ରା.ବ) ସମାରୋହ, ବ୍ୟୂହବିଶେଷ, ଆଡ଼ମ୍ବର, ( ଗ୍ରା.ବ୍ରିଂ ) ଆଡ଼ମ୍ବରମୟ, କର୍ଣ୍ଣସୁଖକର ।

ଯମକରଗତ—ପୁଂ.ବ୍ରିଂ. (୬ତତ୍ରୁ) ମୃତ, (ସ୍ତ୍ରୀ) ଯମକରଗତା ।

ଯମକରେ—ଗ୍ରା.କ୍ରି.ବ୍ରିଂ. ସମାରୋହରେ, ଆଡ଼ମ୍ବରରେ ।

ଯମକାଳନ୍ଦୀ—ସ୍ତ୍ରୀ. ବ. ସଂଜ୍ଞା, ସରଣ୍ୟୁ, ସୂର୍ଯ୍ୟପତ୍ନୀ, ଯମ ଓ ଯମୁନାର ମାତା ।

ଯମକିଂକର—ପୁଂ.ବ. (୬ତତ୍ରୁ)ଯମଦୂତ,

ଯମଭୃତ୍ୟ ।
ଯମକୀଟ—ପୁଂ. ବ. ଘୁରୁଘୁରିଆପୋକ, ବାଲିମେଣ୍ଟି ପୋକ, ଜିଆ, କେଞ୍ଚୁଆ, କାଠକଟା ପୋକ ।
ଯମକୀଲ—ପୁଂ.ବ. ବିଷ୍ଣୁ ।
ଯମକୁ ଭେଟିବା—ଗ୍ରା.କ୍ରି.ମରିବା ।
ଯମକୂଟ--ନିଷଧର ଉତ୍ତର ଦିଗସ୍ଥ ପର୍ବତ-ବିଶେଷ ।
ଯମକେତୁ—ପୁଂ.ବ. ମୃତ୍ୟୁଧ୍ୱଜ,ମୃତ୍ୟୁସୂଚକ ଯମର କେତୁ ।
ଯମକୋଟି—ସ୍ତ୍ରୀ.ବ. ଲଙ୍କାର ପୂର୍ବଦିଗସ୍ଥ ଦେବନିର୍ମିତ ପୁରୀ ।
ଯମକ୍ଷୟ—ପୁଂ.ବ. ନାଶ, ମୃତ୍ୟୁ ।
ଯମଗାଥା—ସ୍ତ୍ରୀ.ବ.ଯମସ୍ତୁତି । [ ସ୍ମୃତି ।
ଯମପୁରାଣ--କ୍ଲୀ.ବ.ବିଷ୍ଣୁ ପୁରାଣୋକ୍ତ ଯମ-
ଯମଗୀତା—କ୍ଲୀ.ବ. ଅଗ୍ନିପୁରାଣାନ୍ତର୍ଗତ ଯମମାହାତ୍ମ୍ୟ ବର୍ଣ୍ଣନାତ୍ମକ ଗ୍ରନ୍ଥ ।
ଯମଗ୍ରାମ—ବି. ଯମପୁରୀ, ଯମପୁର ।
ଯମଘଣ୍ଟ—ପୁଂ.ବ. ଜ୍ୟୋତିଷୋକ୍ତ ଯାତ୍ରା-ନିଷିଦ୍ଧ ଯୋଗବିଶେଷ, କାର୍ତ୍ତିକ ଶୁକ୍ଳ ପ୍ରତିପଦା, ରାବଣ ପୁତ୍ରବିଶେଷ ।
ଯମଘଣ୍ଟଯୋଗ—ବାର ନକ୍ଷତ୍ର ଯୋଗେ ଦୁଷ୍ଟ ଯୋଗବିଶେଷ ।
ଯମଘର—ଗ୍ରା.ବି. ଯମପୁର ।
ଯମଘ୍ନ—ତ୍ରି.ବିଂ. ( ଯମ+ହନ୍+ଅ ) ଯମଘାତୀ ।
ଯମଜ—ତ୍ରି.ବିଂ. (ଯମ୍+ଜନ୍+କ.ଅ) ଯାଆଁଳା, ସହଜାତ, ତୁଲ୍ୟ, ସଦୃଶ, (ସ୍ତ୍ରୀ) ଯମଜା ।
ଯମଜୟୀ—ତ୍ରି. ବିଂ. (ଯମ+ଜି+କ. ଇନ୍) ମୃତ୍ୟୁଞ୍ଜୟ, ଅମର, (ସ୍ତ୍ରୀ) ଯମ-ଜୟିନୀ ।
ଯମଜାଙ୍ଗାଲ—(ବଙ୍ଗ-ଦେ.)ବି.ଛାୟାପଥ, ଆକାଶଗଙ୍ଗା ।
ଯମଜାତ—ତ୍ରି.ବିଂ. ଯମଜ ।
ଯମଜିତ୍—ପୁଂ. ବ.(ଯମ୍+ଜି+କ୍ୱିପ୍) ମୃତ୍ୟୁଞ୍ଜୟ, ଶିବ ।
ଯମଝାଳ—ଗ୍ରା.ବି. ଜମଝାଳ ଦେଖ ।
ଯମତର୍ପଣ—ବି. ( ଯମ୍+ତର୍ପଣ ) ଯମ ନାମକ ପିତୃମାନଙ୍କୁ ତର୍ପଣ କରିବା ।
ଯମତା—ବି. (ଯମ୍+ଭା.ତା) ମୃତ୍ୟୁ ।
ଯମତୀର୍ଥ—କ୍ଲୀ.ବି. ତୀର୍ଥବିଶେଷ ।
ଯମତ୍ୱ—କ୍ଲୀ.ବି. ଯମର ଭାବ ବା ଧର୍ମ ।
ଯମଦଗ୍ନି—ପୁଂ.ବି.ଋଷିବିଶେଷ, ପରଶୁ-ରାମଙ୍କ ପିତା ।
ଯମଦଂଷ୍ଟ୍ର--ପୁଂ.ବି. ଅସୁରବିଶେଷ,ଦେବ-ପକ୍ଷୀୟ ଜଣେ ଯୋଦ୍ଧା ।
ଯମଦଂଷ୍ଟ୍ରା—ସ୍ତ୍ରୀ.ବି. (୬ତତ୍), ମୃତ୍ୟୁର ଆକ୍ରମଣ, ଆଶ୍ୱିନ ଓ କାର୍ତ୍ତିକ ମାସର ବିଶିଷ୍ଟ ସମୟ, ଯହିଁରେ ରୋଗର ଓ ମୃତ୍ୟୁର ବିଶେଷ ଭୟ ଥାଏ ।
ଯମଦଣ୍ଡ—ପୁଂ. ବି. (ମଧ୍ୟ-କ.ଧା) ମୃତ୍ୟୁ-ଦଣ୍ଡ, ମୃତ୍ୟୁ,ମନୁଷ୍ୟ ଲଲାଟର ରେଖା-ବିଶେଷ, (୬ତତ୍) ଯମରାଜାଙ୍କ ଧୃତ କଳ୍ପିତ ଦଣ୍ଡ ବା ଯଷ୍ଟି ।
ଯମଦାଢ଼—ଗ୍ରା.ବି. (ସଂ-ଯମଧାର)ଉଭୟ ପାର୍ଶ୍ୱରେ ତୀକ୍ଷ୍ଣଧାରବିଶିଷ୍ଟ ଖଡ୍ଗ କଟାର, (ସଂ-ଯମଦଂଷ୍ଟ୍ରା)ମୃତ୍ୟୁର ଆକ୍ରମଣ,ମୃତ୍ୟୁ-ମୁଖ ।
ଯମଦୂତ—ପୁଂ.ବି. (୬ତତ୍)ଯମକିଙ୍କର, କାକ, ନବମ ସମିଧରୁ ଏକ, ଯମ-ଦୂତଙ୍କ ପରି ବିକଟ ଆକାର,ଭୟଙ୍କର ମୂର୍ତ୍ତି ।
ଯମଦୂତକ—ପୁଂ, ବି. (ଯମଦୂତ+କ) ଯମଦୂତ ଦେଖ, (ଯମଦୂତ+କୈ+ଅ) କାକ ।
ଯମଦୂତିକା—ସ୍ତ୍ରୀ.ବି. (ଯମଦୂତ+କ+ଆ) ତେନ୍ତୁଳି, କଣ୍ଟିଆଁ ।
ଯମଦେବତା—ସ୍ତ୍ରୀ. ବି. (ବ.ବ୍ରୀ)ଭରଣୀ ବା ଦ୍ୱିଜା ନକ୍ଷତ୍ର ।
ଯମଦେଶ—ଗ୍ରା. ବି. ଯମପୁର ।
ଯମଦୈବତ—ତ୍ରି. ବିଂ. ଯମଦେବତା-ସମ୍ବନ୍ଧୀୟ ।
ଯମଦ୍ରୁମ—ପୁଂ. ବି. ଶିମିଳିଗଛ ।
ଯମଦ୍ୱାର—ବି. (୬ତତ୍) ମୃତ୍ୟୁର ଦ୍ୱାର, ଯମପୁରର ପ୍ରବେଶ ପଥ ।
ଯମଦ୍ୱାରରୁ ଫେରି(ଲେଉଟି )ଆସିବା—ଗ୍ରା.କ୍ରି. ଆସନ୍ନ ମୃତ୍ୟୁର କବଳରୁ ରକ୍ଷା ପାଇ ବଞ୍ଚିବା ।
ଯମଦ୍ୱିତୀୟା—ସ୍ତ୍ରୀ. ବି. ଭ୍ରାତୃଦ୍ୱିତୀୟା, କାର୍ତ୍ତିକ ଶୁକ୍ଳଦ୍ୱିତୀୟା ।
ଯମଦ୍ୱୀପ—ପୁଂ.ବି ଗୋଟିଏ ଦ୍ୱୀପର ନାମ ।
ଯମଧାନୀ—ସ୍ତ୍ରୀ. ବି. ଯମପୁରୀ ।
ଯମଧାର—ପୁଂ. ବି. ଦୁଇପାଖ ଧାରଯୁକ୍ତ ଅସ୍ତ୍ରବିଶେଷ, କଟାର ।
ଯମନ—କ୍ଲୀ. ବି. (ଯମ୍+ଭା.ଅନ)ବନ୍ଧନ, ବାନ୍ଧିବା, ନିରୋଧନ, ସଂଯମନ, ଉପ-ରମ, ନିବୃତ୍ତି,ବିରାମ, ଛେଦନ,ବିନାଶ, ଶାସନ, ପରିଚାଳନ, (ପୁଂ. ଯମ୍+କ. ଅନ) ଯମରାଜ ।
ଯମନକ୍ଷତ୍ର—କ୍ଲୀ. ବି. ଭରଣୀ ନକ୍ଷତ୍ର ।
ଯମନଗର—କ୍ଲୀ. ବି. ଯମପୁରୀ, ଯମଙ୍କ ରାଜଧାନୀ ।
ଯମନିକ—ଗ୍ରା. ବି. ତୀର୍ଥବିଶେଷ ।
ଯମନିକା—ସ୍ତ୍ରୀ.ବି. (ଯମ୍+ଣ.ଅନ+କ+ଆ)ଯମନିକ ଦେଖ, ଯବନିକା ।
ଯମନିୟମ—କ୍ଲୀ. ବି. (ସହଚର).ଅଷ୍ଟାଙ୍ଗ ଯୋଗସାଧ୍ୟ ସାଧନବିଶେଷ ।
ଯମନେତ୍ର—ତ୍ରି. ବିଂ. ଯମ ଯେଉଁଠାରେ ଅଧିନାୟକ ରୂପେ ଅଛନ୍ତି ।
ଯମପତ୍ନୀ—ବି.(୬ତତ୍) ଯମ ରାଜାଙ୍କ ସ୍ତ୍ରୀ, ଧୂମୋର୍ଣ୍ଣା, ବିଜୟା ।
ଯମପାଞ୍ଜି—ଗ୍ରା.ବି(ସଂ-ଯମ+ପଞ୍ଜୀ)ଚିତ୍ର-ଗୁପ୍ତଙ୍କ ପାଞ୍ଜି,ଯହିଁରେ ପ୍ରତ୍ୟେକ ଲୋକର ପାପପୁଣ୍ୟର ହିସାବ ଲେଖାଥାଏ ।
ଯମପାଞ୍ଜିପୋଛିବା—ଗ୍ରା.ବି. ମୃତ୍ୟୁ ଆସନ୍ନ ହେବା ।
ଯମପୁର—ବି. (୬ତତ୍) ନରକ; ଯମ-ରାଜାଙ୍କ ରାଜଧାନୀ, ସଂଯମନୀପୁରୀ ।
ଯମପୁରକୁପେଷିବା--ଗ୍ରା.କ୍ରି.ହତ୍ୟାକରିବା ।
ଯମପୁରୀ—ସ୍ତ୍ରୀ. ବି. (୬ତତ୍)ଯମାଳୟ ।
ଯମପୁରୁଷ—ପୁଂ. ବି. ଯମ, ଯମଦୂତ ।
ଯମପ୍ରସ୍ଥପୁର—କ୍ଲୀ.ବି କୁରୁକ୍ଷେତ୍ରସ୍ଥ ନଗର ବିଶେଷ ।
ଯମପ୍ରିୟ—ପୁଂ.ବି.ବଟବୃକ୍ଷ, ଡିମିରିଗଛ ।
ଯମବସ୍ତ୍ର—ପୁଂ. ବି. ଯମଜ ଗୋବତ୍ସ ।
ଯମବାନ୍—ପୁଂ.ବିଂ(ଯମ୍+ବତ୍)ଜିତେ-

ଧ୍ୱସ୍ତ, ସଂଯମୀ (ସ୍ତ୍ରୀ) ଯମବନ୍ତୀ ।
ଯମବାସୀ—ଗ୍ରା.ବଂ. (ସଂ ଯମପୁରବାସୀ) ଯମପୁରସ୍ଥ ଅର୍ଥାତ୍ ମୃତ ବା ହତ ।
ଯମବାହନ—ପୁଂ. ବ. (୬ତତ୍)ମଇଁଷି, ମହିଷ ।
ଯମବୈବସ୍ୱତ—ସୂର୍ଯ୍ୟପୁତ୍ର, ଯମ ।
ଯମବ୍ରତ—କ୍ଲୀ. ବ. ରାଜଧର୍ମବିଶେଷ,ପକ୍ଷପାତଶୂନ୍ୟ ବିଚାର ।
ଯମଭଗିନୀ—ସ୍ତ୍ରୀ. ବ, (୬ତତ୍)ଯମୁନା ।
ଯମଭୟ—ବ. (୫ତତ୍) ମୃତ୍ୟୁଭୟ ।
ଯମମାର୍ଗ—ପୁଂ. ବ. ମୃତ୍ୟୁପଥ ।
ଯମମାର୍ଗଗମନ—କ୍ଲୀ. ବ. ଯମ ପଥାନୁବର୍ତ୍ତନ,କୃତକାର୍ଯ୍ୟର ପୁରସ୍କାରପ୍ରାପ୍ତି ।
ଯମମାସ—ବ. (ମଧ୍ୟ-କ.ଧା)କାର୍ତ୍ତିକମାସ ।
ଯମଯନ—ପୁଂ.ବ.ଶିବ, ବ୍ରହ୍ମଶିରୋହର୍ତ୍ତା ।
ଯମଯନ୍ତ୍ରଣା—ସ୍ତ୍ରୀ.ବ. (ମଧ୍ୟ-କ.ଧା)ମୃତ୍ୟୁର ଆନୁସଙ୍ଗିକ ଯନ୍ତ୍ରଣା, ନରକ ଯନ୍ତ୍ରଣା, (ଲ.ଅର୍ଥ) ଅତି ଭୟଙ୍କର ଉତ୍ପୀଡ଼ନ ।
ଯମଯା—ସ୍ତ୍ରୀ. ବ. ଜ୍ୟୋତିଷୋକ୍ତ ୭ମ (ମତାନ୍ତରେ ୮ମ)ନକ୍ଷତ୍ର ଯୋଗ ।
ଯମଯାତନା—ସ୍ତ୍ରୀ.ବ, ଯମକର୍ତ୍ତୃକ ନିଗ୍ରହ, ମୃତ୍ୟୁବତ୍ ଯନ୍ତ୍ରଣା, ଯମଯନ୍ତ୍ରଣା ଦେଖ ।
ଯମୟିଷ୍ଣୁ—ବି.ବଂ.ନମସ୍କାରେଚ୍ଛୁ, (ସାମବେଦ) । [ ଯମ ।
ଯମର(ରା)ଜା—ଗ୍ରା. ବ. ମୃତ୍ୟୁର ଅଧିପତି
ଯମରଥ—ପୁଂ. ବ. ମହିଷ, ଯମବାହନ ।
ଯମର ଭେଟ—ଗ୍ରା. ବ. ମୃତ୍ୟୁ ।
ଯମରାଜ୍(ଟ୍)—ପୁଂ.ବ. (ଯମ+ରାଜ୍+କ. କ୍ୱିପ୍) ଶମନ, କୃତାନ୍ତ, ମୃତ୍ୟୁରାଜ ।
ଯମରାଜ—ଜ୍ଞାନାର୍ଣ୍ଣବ ପ୍ରଣେତା ଜଣେ ପ୍ରଧାନ ତନ୍ତ୍ରକାର ।
ଯମରାଜ୍ୟ—କ୍ଲୀ. ବ. ଯମଙ୍କ ରାଜ୍ୟ ।
ଯମରାଷ୍ଟ୍ର—କ୍ଲୀ. ବ. ଯମଲୋକ ।
ଯମର୍କ୍ଷ—କ୍ଲୀ.ବ.ଯମନକ୍ଷତ୍ର,ଭରଣୀନକ୍ଷତ୍ର ।
ଯମଲ—କ୍ଲୀ. ବ. (ଯମ୍+କ.ଅଲ) ଯୁଗ୍ମ, ଯୋଡ଼ା, ଦୁଇସଂଖ୍ୟା, ବୃନ୍ଦାବନସ୍ଥ ବୃକ୍ଷବିଶେଷ, ଯୋଡ଼ାରୁ ଏକ ।
ଯମଲଚ୍ଛଦ—ପୁଂ. ବ. (ବ.ବ୍ରୀ) କାଞ୍ଚନ ଗଛ, ରକ୍ତକାଞ୍ଚନ ଗଛ ।
ଯମଲପତ୍ରକ—ପୁଂ. ବ. ଅଶ୍ମନ୍ତକ ବୃକ୍ଷ, କୋବିଦାର ବୃକ୍ଷ, କରଣ୍ଟ ଦେଖ ।
ଯମଲସୂ—ସ୍ତ୍ରୀ.ବ. (ଯମଲ+ସୂ+କ.କ୍ୱିପ୍) ଯାଆଁଳାଶିଶୁ ପ୍ରସବକାରିଣୀ(ସ୍ତ୍ରୀ,ଗାଈ) ।
ଯମଲା—କ୍ଲୀ. ବ. ହିକ୍କାବିଶେଷ,ତନ୍ତ୍ରୋକ୍ତ ଦେବତାବିଶେଷ, ନଦୀବିଶେଷ ।
ଯମଲାର୍ଜ୍ଜୁନ—ପୁଂ.ବ. ଗୋକୁଳସ୍ଥ ଅର୍ଜ୍ଜୁନ ବୃକ୍ଷଦ୍ୱୟ, (ବୃନ୍ଦାବନସ୍ଥ ବୃକ୍ଷଦ୍ୱୟ) ।
ଯମଲାର୍ଜ୍ଜୁନହା—ପୁଂ. ବ. (ଯମଲାର୍ଜ୍ଜୁନ +ହନ୍+କ.କ୍ୱିପ୍) ଶ୍ରୀକୃଷ୍ଣ ।
ଯମଲୀ—ସ୍ତ୍ରୀ.ବ. (ଯମଲ+ଈ)ଦୁଇଖଣ୍ଡ-ବିଶିଷ୍ଟ ପୋଷାକ,(ଯଥା--ଲୁଗା-ଚଦର, ଘାଘରା-କାଞ୍ଚୁଲି) ।
ଯମଲେଶ୍ୱର-ନେପାଳସ୍ଥ ଶିବଲିଙ୍ଗବିଶେଷ
ଯମଲୋକ—ପୁଂ. ବ. ( ଯମ+ଲୋକ ) ଯମ ନାମକ ପିତୃଗଣଙ୍କ ଓ ଯମରାଜାଙ୍କ ବାସସ୍ଥାନ ।
ଯମଲୋକଦେଖାଇବା--ଗ୍ରା. କ୍ରି. କୌଣସି ବ୍ୟକ୍ତିକୁ ହତ୍ୟାକରିବା ।
ଯମଲୋକଦେଖିବା—ଗ୍ରା.କ୍ରି.ମରିବା,ପ୍ରାଣତ୍ୟାଗକରିବା ।
ଯମଶିଖ—ପୁଂ. ବ. ବେତାଳବିଶେଷ ।
ଯମଶ୍ୱା—ପୁଂ. ବ. ଯମାଳୟର ଦ୍ୱାରରକ୍ଷକ କୁକ୍କୁରବିଶେଷ, କର୍ବୁର ।
ଯମସଦନ--କ୍ଲୀ.ବ.ଯମଲୋକ,ଯମଙ୍କ ଗୃହ
ଯମସଭା—କ୍ଲୀ.ବ.(୬ତତ୍)ଯମଙ୍କ ବିଚାରମଣ୍ଡପ ।
ଯମସନ୍ଧିବା—ଗ୍ରା. ବ.ଯମଦଣ୍ଡ ବା ମୃତ୍ୟୁଭୋଗ ନକରି କିଛିକାଳ ବଞ୍ଚି ରହିବା ।
ଯମସାତ୍—ପୁଂ ଓ ସ୍ତ୍ରୀ. ବଂ (ଯମ+ ଦେୟ ଅର୍ଥରେ—ସାତ୍) ମୃତ ।
ଯମସାଦନ—କ୍ଲୀ.ବ.ଯମଗୃହ,ଯମଙ୍କ ଘର
ଯମସାଧନ—କ୍ଲୀ. ବ. (୬ତତ୍) ସଂଯମସାଧନ,ଅହିଂସା,ସତ୍ୟକଥନ,ବ୍ରହ୍ମଚର୍ଯ୍ୟ, ନିରହଂକାରତା,ଅସ୍ତେୟ,ଏହି ପଞ୍ଚବିଷୟର ଅଭ୍ୟାସ ।
ଯମସୂ—ପୁଂ.ବ. (ଯମ+ସୂ+କ+କ୍ୱିପ୍) ସୂର୍ଯ୍ୟ, (ବ.ସ୍ତ୍ରୀ) ଯେଉଁ ସ୍ତ୍ରୀ ଯାଆଁଳି ପିଲା ପ୍ରସବ କରେ ।
ଯମସୂର୍ଯ୍ୟ—ପୁଂ.ବ.(ବ.ବ୍ରୀ)ଯେଉଁଘରର ଗୋଟିଏ କୋଠରୀର ମୁହଁ ଉତ୍ତରକୁ ଓ ଅନ୍ୟ କୋଠରୀର ମୁହଁ ପଶ୍ଚିମକୁ ହୋଇଥାଏ ।
ଯମସ୍ତୁ—କ୍ଲୀ. ବ. ଯମସ୍ତୋତ୍ର ।
ଯମସ୍ତୋମ—ପୁଂ. ବ. ଏକାହବିଶେଷ ।
ଯମସ୍ୱସା—ସ୍ତ୍ରୀ. ବ.(୬ତତ୍)ଯମୁନାନଦୀ, ଦୁର୍ଗା ।
ଯମସ୍ୟକରୁଣାନାସ୍ତି--(ଶ୍ଳୋକାଂଶ).ମୃତ୍ୟୁର କାହାପ୍ରତି ଦୟା ନାହିଁ ।
ଯମହାର୍ଦ୍ଦିକା—ସ୍ତ୍ରୀ.ବ.ଦେବୀଙ୍କ ଅନୁଚରୀ ବିଶେଷ ।
ଯମହାସେଶ୍ୱରତୀର୍ଥ—କ୍ଲୀ.ବ.ତୀର୍ଥ ବିଶେଷ
ଯମା(ଇତ୍ୟାଦି)--ଯା.ବ ଓ ବଂ ଓ କ୍ରି.ବଂ. ଜମାଇତ୍ୟାଦି ଦେଖ ।
ଯମାଇବା—ଗ୍ରା. କ୍ରି. ଜମାଇବା ଦେଖ, ଆଡମ୍ବରସହକାରେ ଶୋଭାଯାତ୍ରା କରିବା ।
ଯମାଉ(ଏ)ତ୍ ଇତ୍ୟାଦି—ଯା.ବ. ଜମାଉତ୍ ଇତ୍ୟାଦି ଦେଖ ।
ଯମାତିରାତ୍ର—ପୁଂ. ବ. ଏକୋନ ପଞ୍ଚାଶ ଦିନସାଧ୍ୟ ସତ୍ରଭେଦ ।
ଯମାଦିଅ(ଉ)ଲ୍ଅୱ୍ୱଲ୍—ଯା. ବ. ମୁସଲମାନମାନଙ୍କ ମାସ ବିଶେଷ ।
ଯମାଦିଅସ୍ସାନ—ଯା. ବ. ମୁସଲମାନମାନଙ୍କ ମାସବିଶେଷ ।
ଯମାଦର୍ଶନତ୍ରୟୋଦଶୀ—ସ୍ତ୍ରୀ. ବ. ଶୁକ୍ଳତ୍ରୟୋଦଶୀବିଶେଷ ।
ଯମାଦିତ୍ୟ-ପୁଂ.ବ.ସୂର୍ଯ୍ୟଙ୍କର ରୂପବିଶେଷ
ଯମାନା—ପ୍ରା. (ସମ୍.) ଯା.ବ. ସମୟ, ଯୁଗ, କାଳ, ଅମଳ ।
ଯମାନିକା—ସ୍ତ୍ରୀ. ବ. ଯୁଆଣୀ ।
ଯମାନିକାଦିଚୂର୍ଣ୍ଣ—ପ୍ଲୀହାରୋଗ ନାଶକ ଔଷଧବିଶେଷ । [ ଯୁଆଣୀ ।
ଯମାନୀ—ସ୍ତ୍ରୀ.ବ.(ଯମ୍+ଆ+ନୀ ସବାନୀ,
ଯମାନୁଗ—ପୁଂ. ବଂ. ଯମଙ୍କ ଅନୁଗାମୀ, ବ. ୬ତତ୍; ଅନୁଚର, ଯମଦୂତ ।
ଯମାନୁଚର—ବ. (୬ତତ୍) ଯମଦୂତ ।
ଯମାନୁଜା—ସ୍ତ୍ରୀ. ବ.(୬ତତ୍)ଯମୁନାନଦୀ ।
ଯମାନ୍ତକ—ପୁଂ. ବ.(ଯମ+ଅନ୍ତକ)ଶିବ,

ମହାଦେବ, ବୈବସ୍ୱତ ଓ କାଳ ।
ଯମାର—ପୁଂ. ବ. (୬ତତ୍) ବିଷ୍ଣୁ ।
ଯମାଳୟ—ପୁଂ. ବ. (୬ତତ୍)ଯମପୁରୀ ।
ଯମି(ଇତ୍ୟାଦି)—ଯା. ବ. ଜମିଇତ୍ୟାଦି ଦେଖ ।
ଯମିକ-କ୍ଲୀ.ବ.ସାମବେଦର ଅଂଶବିଶେଷ
ଯମିତ—ବି. ବିଂ. (ଯମ୍+ଣିଚ୍+ର୍ମ.ତ) ସଂଯମ, ବଦ୍ଧ, ଛେଦିତ ।
ଯମିଦାର(ରୀ)—ବ.ଜମିଦାର(ରୀ)ଇତ୍ୟାଦି ଦେଖ ।
ଯମିବା—ଗ୍ରା.କ୍ରି. ଜମିବା ଦେଖ,ଏକତ୍ର ହେବା, ଠୁଳହେବା,(ଘୋଡ଼ା) ଅଗ୍ରସର ନହୋଇ ଏକସ୍ଥାନରେ ଠିଆହେବା, (ଲକ୍ଷଣାରେ) ଆଡ଼ମ୍ବରମୟ ହେବା ।
ଯମିସ୍ଥ—ବି. ବିଂ.ସଂଯମ ବିଷୟରେ ଅତ୍ୟନ୍ତ ଦୃଢ଼ (ଅଶ୍ୱାଦି) ।
ଯମୀ—ସ୍ତ୍ରୀ.ବ.(ଯମ+ଈ)ଯମଙ୍କ ଭଉଣୀ ଯମୁନାନଦୀ, ବିବସ୍ୱତକନ୍ୟା, (ପୁଂ.ବିଂ) (ଯମ+ଇନ୍)ଜିତେନ୍ଦ୍ରିୟ,ସଂଯମବିଶିଷ୍ଟ ।
ଯମୁନା—ସ୍ତ୍ରୀ. ବ. (ଯମ୍+କ.ଉନ୍+ସ୍ତ୍ରୀ. ଆ) ଦୁର୍ଗା, ଭବାନୀ, ଭଗବତୀ, ଉତ୍ତର-ଭାରତର ନଦୀବିଶେଷ, (ଗ୍ରା. ବ) ସ୍ତ୍ରୀ-ଲୋକଙ୍କର ଡାକନାମ ।
ଯମୁନାକୂଳିଆ—ଗ୍ରା. ବିଂ. ଶ୍ରୀକୃଷ୍ଣଙ୍କର ବିଶେଷଣ ।
ଯମୁନାଗାଧୁଆ—ଗ୍ରା.ବ.(ଯମୁନା + ଗାଧୁଆ-ଧାପନ)ଯମୁନାନଦୀରେ ସ୍ନାନ, ଶ୍ରୀକୃଷ୍ଣ ପ୍ରତିମାଙ୍କୁ ନଦୀରେ ନେଇ ସ୍ନାନ କରାଇବା ରୂପ ଉତ୍ସବବିଶେଷ ।
ଯମୁନାଜନକ--ପୁଂ.ବ. (ଯମୁନା+ଜନକ) ସୂର୍ଯ୍ୟ ।
ଯମୁନାତୀର୍ଥ—ପୁରୁଣା ତୀର୍ଥବିଶେଷ ।
ଯମୁନାଦ୍ୱୀପ—ପୁଂ.ବ. ଜନପଦବିଶେଷ ।
ଯମୁନାପୁଳିନ—ପୁଂ.ବ. (୬ତତ୍)ଯମୁନା ନଦୀର ତୀର, କାଳିନ୍ଦୀତଟ ।
ଯମୁନାପ୍ରଭବ—ପୁଂ. ବ. ଯମୁନା ନଦୀର ଉତ୍ପତ୍ତି ସ୍ଥାନ ।
ଯମୁନାଭିଦ୍—ପୁଂ. ବ. (ଯମୁନା + ଭିଦ୍ + କ.କ୍ୱିପ୍)ବଳରାମ ।
ଯମୁନାଭ୍ରାତା—ପୁଂ. ବ. (୬ତତ୍) ଯମ-ଦେବତା ।
ଯମୁନା—ଗ୍ରା. ସ୍ତ୍ରୀ. ବ. ହିମାଳୟରୁ ଉତ୍ପନ୍ନ ହୋଇ ନେପାଳ ଓ ଦ୍ୱାରଭଙ୍ଗା ଦେଇ ଗଙ୍ଗାର ଉପନଦୀ ବାଘମତୀ ନଦୀରେ ମିଳିଥିବା ଗ୍ରୋତନଦୀ ।
ଯମୁନୋତ୍ତରୀ—ପୁଂ.ବ. ହିମାଳୟ ଗଢ଼-ୱାଲ୍ ପ୍ରଦେଶସ୍ଥ ଏକ ପର୍ବତ,(ଏଥିରୁ ଯମୁନା ବାହାରିଅଛି) ।
ଯମୁନ୍ଦ—ପୁଂ. ବ. ଋଷିବିଶେଷ ।
ଯମୁଷଦେବ—କ୍ଲୀ. ବ. ବସ୍ତ୍ରବିଶେଷ ।
ଯମେରୁକା—ସ୍ତ୍ରୀ. ବ. ଜୟଢ଼କ୍କା, ଏକ-ପ୍ରକାର ବଡ଼ଝାଞ୍ଜ ।
ଯମେଶ—ପୁଂ. ବିଂ. ଯମଭକ୍ତ, (କ୍ଲୀ.ବ) ଭରଣୀନକ୍ଷତ୍ର ।
ଯମେଶ୍ୱର—କ୍ଲୀ. ବ. (ମଧ୍ୟ-କ.ଧା) ଶିବ-ଲିଙ୍ଗବିଶେଷ, (ପୁଂ.ବ) ଶିବ ।
ଯଯାତି—ପୁଂ. ବ. (ଯ+ଯା+କ.ତି) ଚନ୍ଦ୍ରବଂଶୀୟ ନହୁଷରାଜାଙ୍କ ପୁତ୍ର,ଚନ୍ଦ୍ର-ବଂଶର ପଞ୍ଚମ ରାଜା ।
ଯଯାତିକେଶରୀ—ଗ୍ରା. ବ. ସ୍ୱାଧୀନ ଉତ୍କଳର ଜଣେ ରାଜା ।
ଯଯାତିପତନ—କ୍ଲୀ. ବ. ତୀର୍ଥବିଶେଷ ।
ଯଯାତୀଶ୍ୱର—ଶିବଲିଙ୍ଗବିଶେଷ ।
ଯଯାବର—ପୁଂ. ବିଂ. ଯାଯାବର ଦେଖ, ନାନାସ୍ଥାନ ଭ୍ରମଣକାରୀ, (ସ୍ତ୍ରୀ)ଯଯାବରୀ ।
ଯଯି—ବି.ବିଂ. ଗମନଯୁକ୍ତ,ଗମନଶୀଳ ।
ଯଯୀ—ପୁଂ. ବ. (ଯା+ଈ) ଶିବ, ମହା-ଦେବ, (ଯା+ଅଧି.ଈ) ପଥ, ରାସ୍ତା, (ଯା+ଣ.ଈ) ଘୋଡ଼ା ।
ଯୟୁ—ପୁଂ. ବ. ( ଯା+କ.ଉ ) ଅଶ୍ୱ-ମେଧୀୟ ଅଶ୍ୱ, ଅଶ୍ୱ ।
ଯଶ—ଗ୍ରା. ବ. (ସଂ-ଯଶଃ) ବାହାଦୁରୀ, ପ୍ରଶଂସା, ପୁରୁଷାର୍ଥ, ଯଶଃ ଦେଖ ।
ଯଶଃ—ବ. ( ଅଶ୍+କ.ଅସ୍.ଯ.ଆଗମ ) ଖ୍ୟାତି, ସୁଖ୍ୟାତି, କୀର୍ତ୍ତି, ଯଶସ୍ୱୀବ୍ୟକ୍ତି, (ବୈଦିକ ଅଶ୍+ଭା.ଅସ୍ )ବ୍ୟାପକତା, ସୌନ୍ଦର୍ଯ୍ୟ,ଅନୁଗ୍ରହ, ପକ୍ଷପାତ, ଧନ, ଖାଦ୍ୟଦ୍ରବ୍ୟ, ଜଳ, ( ବିଂ ) ସୁନ୍ଦର, ମନୋହର, ଯୋଗ୍ୟ, ସମ୍ମାନିତ ।
ଯଶଃକର୍ଣ୍ଣ—ପୁଂ. ବ. ରାଜପୁତ୍ରବିଶେଷ ।
ଯଶଃକୀର୍ତ୍ତନ—କ୍ଲୀ. ବ. (୬ତତ୍) କୀର୍ତ୍ତି ଘୋଷଣା କରିବା,ଯଶୋଗାନ,ସୁଖ୍ୟାତି-କଥନ ।
ଯଶଃକ୍ଷୟ—ବ. (୬ତତ୍) ଯଶୋହାନି, ସୁନାମର ହାନି ।
ଯଶଃକ୍ଷେତ୍ର—ବ. ( ୬ତତ୍ ) ମନୁଷ୍ୟ ଯେଉଁଠାରେ କୀର୍ତ୍ତିଲାଭ କରେ ।
ଯଶଃକେତୁ—ପୁଂ.ବ. ରାଜପୁତ୍ରବିଶେଷ ।
ଯଶଃନାଶ—ବ. (୬ତତ୍) ଯଶୋହାନି ।
ଯଶଃପଟହ—ପୁଂ. ବ. (ଯଶସ୍+ପଟହ) ଯଶବାଦ୍ୟ, ଢୋଲ, ଜୟଢ଼କ୍କା ।
ଯଶଃପ୍ରଭବ—ବିଂ.(ବ.ବ୍ରୀ)ଯଶରୁ ଉତ୍ପନ୍ନ ।
ଯଶଃପ୍ରଭା—ବ.(୬ତତ୍)କୌଣସିଲୋକର କୀର୍ତ୍ତିରୂପ ଆଲୋକ ।
ଯଶଃପ୍ରଭାବ—ବ.(୬ତତ୍)କୀର୍ତ୍ତିର ମହତ୍ତ୍ୱ ।
ଯଶଃଶେଷ—ପୁଂ. ବ. (ବ.ବ୍ରୀ) ମୃତ୍ୟୁ, (ବିଂ) ମୃତ, ପରଲୋକଗତ ।
ଯଶଃଶୈଳ—ବ. ( ରୂ.କ.ଧା ) ପର୍ବତ ସଙ୍ଗେ ତୁଳନୀୟ ଯଶୋରାଶି ।
ଯଶଃଶ୍ରୀ—ବ. (ଦ୍ୱନ୍ଦ୍ୱ) କୀର୍ତ୍ତି ଓ ସମ୍ପଦ, ( ୬ତତ୍ ବା ମଧ୍ୟ କ.ଧା ) କୀର୍ତ୍ତିଜନିତ ଶ୍ରୀ ବା ସମ୍ପଦ, କୀର୍ତ୍ତିରୂପ ସମ୍ପଦ ।
ଯଶଃଶ୍ରୀବାଞ୍ଛିତଶୁଭାଶୀର୍ବାଦ—ବ. କୀର୍ତ୍ତି ଓ ସମ୍ପଦପ୍ରାପ୍ତି ବାଞ୍ଛାଯୁକ୍ତ ଆଶୀର୍ବାଦ ।
ଯଶଃସମୂହ—ବ. ଯଶୋରାଶି ଦେଖ ।
ଯଶଃସାଧନ—ବିଂ. ( ଯଶଃ+ସାଧନ ) ଯଶସ୍କର ।
ଯଶଃସୌଭାଗ୍ୟ—ବ.ଯଶୋଭାଗ୍ୟଦେଖ ।
ଯଶଃସୌରଭ—ବ. (ରୂ.କ.ଧା) ସୁବାସ ପରି ଚତୁର୍ଦ୍ଦିଗେ ବ୍ୟାପିବା ଯଶଃ ।
ଯଶଃସ୍ତମ୍ଭ—ବ. (ମଧ୍ୟ-କ.ଧା) କୀର୍ତ୍ତିସ୍ତମ୍ଭ ।
ଯଶଅପଯଶ—ଗ୍ରା.ବ. (ସଂ-ଯଶଃ+ଅପ-ଯଶଃ, ବିପରୀତ ସହଚର) ଖ୍ୟାତି ଓ ଅଖ୍ୟାତି ।
ଯଶଆକାଙ୍କ୍ଷା—ବ. ଯଶୋଲିପ୍ସା ।
ଯଶଆକାଙ୍କ୍ଷୀ--ପୁଂ. ବିଂ.(ଯଶଃ+ଆକାଙ୍କ୍ଷୀ) ଯଶୋଲିପ୍ସୁ, (ସ୍ତ୍ରୀ) ଯଶଆକାଙ୍କ୍ଷିଣୀ ।

ଯଶକରବା—ଗ୍ରା.କ୍ରି. କୀର୍ତ୍ତିଗାନକରବା, ପ୍ରଶଂସା କରବା ।
ଯଶକାଶ—ଗ୍ରା.ବିଂ.(ସଂ-ଯଶସ୍କର)ଯଶସ୍ୱୀ
ଯଶଦ—ପୁଂ. ବ. (ଅସ୍+କ.ଅଦ୍)ଦସ୍ତା-ଧାତୁ ।
ଯଶଦଅୟୁଷ୍ମତ—ବୌଦ୍ଧ ଅର୍ହଦ୍‌ବିଶେଷ ।
ଯଶନେବା—ଗ୍ରା.କ୍ରି.ଯଶପାଇବା ଦେଖ, ଜୟଲାଭ କରବା ।
ଯଶପାଇବା—ଗ୍ରା କ୍ରି.ଯଶୋଲାଭ କରବା, ପ୍ରଶଂସା ଲାଭକରବା,ପ୍ରଶଂସିତହେବା ।
ଯଶପୁର—ଗ୍ରେଟ ନାଗପୁର ଅନ୍ତର୍ଗତ ଗୋଟିଏ ରାଜ୍ୟବିଶେଷ,ଯୁକ୍ତପ୍ରଦେଶାନ୍ତର୍ଗତ ନଗର ।
ଯଶମିଳିବା—ଗ୍ରା. ବ. ଯଶୋଲାଭ ।
ଯଶସ୍କର—ପୁଂ.ବିଂ. (ଯଶସ୍+କୃ+କ. ଅ) କୀର୍ତ୍ତିଜନକ, ସୁଖ୍ୟାତିଜନକ,(ସ୍ତ୍ରୀ) ଯଶସ୍କରୀ ।
ଯଶସ୍କାମ—ପୁଂ. ବିଂ. (ଯଶସ୍+କମ୍+କ.ଅ)ବ.ବ୍ରୀ; ଯଶୋଲିପ୍ସୁ ଦେଖ ।
ଯଶସ୍କାମୀ—ପୁଂ. ବିଂ. (ଯଶସ୍+କମ୍+କ.ଇନ୍) ଯଶୋଲିପ୍ସୁ ଦେଖ, (ସ୍ତ୍ରୀ) ଯଶସ୍କାମିନୀ ।
ଯଶସ୍କାମବତ୍—ପୁଂ.ବିଂ.(ଯଶସ୍+କମ୍+ଅନ୍ତୁ)ଯଶୋଲିପ୍ସୁ ଦେଖ,(ସ୍ତ୍ରୀ)ସ୍କାମ୍ୟନ୍ତୀ ।
ଯଶସ୍କୃତ—ପୁଂ. ବିଂ. ଯଶସ୍କର ।
ଯଶସ୍ୱାନ୍—ପୁଂ.ବିଂ.ଯଶସ୍ୱୀ ଦେଖ,(ସ୍ତ୍ରୀ) ଯଶସ୍ୱତୀ ।
ଯଶସ୍ୱିନୀ—ସ୍ତ୍ରୀ.ବିଂ.(ଯଶସ୍+ବିନ୍+ଈ) ଯଶସ୍ୱୀର ସ୍ତ୍ରୀଲିଙ୍ଗ, କୀର୍ତ୍ତିମତୀ, ଖ୍ୟାତିଶାଳିନୀ, (ବି)କଟେରୀ, ମହାଜ୍ୟୋତିଷ୍ମତୀ ଲୁଲ୍ଲ, ଯବତିକ୍ତା, ଦୁରାଲଭା, ବଦରୀ, ବନକାର୍ପାସୀ, ବଣକପା, ବୋଡ଼କପା, ଟଙ୍କୋନଦୀ, ସତ୍ୟବ୍ରତ ପତ୍ନୀ (ଗ୍ରା.ବ) ଶରୀରସ୍ଥ ପ୍ରଧାନ ଦଶନାଡ଼ୀ ମଧ୍ୟରୁ ଏକତମ ।
ଯଶସ୍ୱୀ—ପୁଂ.ବ(ଯଶସ୍+ବିନ୍)ବିଖ୍ୟାତ, କୀର୍ତ୍ତିଶାଳୀ, (ସ୍ତ୍ରୀ) ଯଶସ୍ୱିନୀ ।
ଯଶସ୍ୟ—ପୁଂ.ବିଂ (ଯଶସ୍+ଯ)ଯଶସ୍କର ଦେଖ, ଯଶୋଦାତା ଦେଖ, (ସ୍ତ୍ରୀ) ଯଶସ୍ୟା ।
ଯଶସ୍ୟା—ବ. ଜୀବନ୍ତୀ ବା ବୃଦ୍ଧିନାମକ ମହୌଷଧ, (ସ୍ତ୍ରୀ. ବିଂ. ଯଶସ୍ୟ+ଆ) ଯଶସ୍ୟର ସ୍ତ୍ରୀଲିଙ୍ଗ ।
ଯଶସ୍‌ସୌଭାଗ୍ୟ—ବ.ଯଶଃସୌଭାଗ୍ୟଦେଖ
ଯଶହାନି—ଗ୍ରା.ବିଂ. ଯଶୋହାନି ଦେଖ ।
ଯଶାକାଙ୍କ୍ଷା—ବ(ଯଶସ୍+ଆକାଙ୍କ୍ଷା) ଯଶୋଲିପ୍ସା ଦେଖ ।
ଯଶାକାଙ୍କ୍ଷୀ—ପୁଂ.ବିଂ.(ଯଶଃ+ଆକାଙ୍କ୍ଷା+ଇନ୍) ଯଶୋଲିପ୍ସୁ ଦେଖ, (ସ୍ତ୍ରୀ) ଯଶାକାଙ୍କ୍ଷିଣୀ । [ଦେଖ ।
ଯଶୋକୀର୍ତ୍ତନ—ବ. (୬ତତ୍ପୁ)ଯଶଃକୀର୍ତ୍ତନ
ଯଶୋଗାଥା—ବ(୬ତତ୍ପୁ)କୌଣସି ବ୍ୟକ୍ତିଙ୍କର କୀର୍ତ୍ତିଜ୍ଞାପକ ପଦାବଳୀ ।
ଯଶୋଗାନ—କ୍ଲୀ.ବ. (୬ତତ୍ପୁ) ସୁଖ୍ୟାତିକୀର୍ତ୍ତନ, ଯଶୋଗୀତ ଦେଖ ।
ଯଶୋଗାୟନ—ବ. କୌଣସି ବ୍ୟକ୍ତିଙ୍କର କୀର୍ତ୍ତି ଗାଇବା ।
ଯଶୋଗୀତ(ତ)—ବ. ( ମଧ୍ୟ-କ.ଧା ) କୌଣସି ବ୍ୟକ୍ତିଙ୍କର ଯଶଃ ବର୍ଣ୍ଣନା କରି ବୋଲା ଯାଉଥିବା ଗୀତ, ଯେଯେକାର ।
ଯଶୋଘ୍ନ—ପୁଂ.ବିଂ. (ଯଶଃ+ହନ୍+କ. ଅ)ଯଶୋହାନିକାରକ, ଯଶୋନାଶକ, (ସ୍ତ୍ରୀ) ଯଶୋଘ୍ନୀ ।
ଯଶୋଦ—ପୁଂ ବିଂ. (ଯଶଃ+ଦା+କ. ଅ) ଯଶୋଦାତା ଦେଖ, (ବି) ପାରଦ, ପାରା, (ସ୍ତ୍ରୀ) ଯଶୋଦା ।
ଯଶୋଦା—ସ୍ତ୍ରୀ. ବିଂ. (ଯଶଃ+ଦା+କ. ଅ+ଆ) ଯଶୋଦାତ୍ରୀ, କୀର୍ତ୍ତିପ୍ରଦା, ସୁଖ୍ୟାତିଦାୟିକା, (ବି)ବ୍ରଜରାଜନନ୍ଦଙ୍କ ସ୍ତ୍ରୀ,ଶ୍ରୀକୃଷ୍ଣଙ୍କର ପାଳୟିତ୍ରୀ ମାତା,ରାଜା ଦିଲ୍ଲୀପଙ୍କ ମାତା, ସ୍ତ୍ରୀଙ୍କ ନାମ ।
ଯଶୋଦାତା—ପୁଂ.ବିଂ (ଯଶଃ+ଦାତା) ଯେ କୌଣସି ବ୍ୟକ୍ତିକୁ ଯଶସ୍କର କରାଏ, (ସ୍ତ୍ରୀ) ଯଶୋଦାତ୍ରୀ ।
ଯଶୋଦାଦୁଲାଳ—ଗ୍ରା.ବ.(୬ତତ୍ପୁ)ଶ୍ରୀକୃଷ୍ଣ
ଯଶୋଦାନନ୍ଦନ—ବ. (୬ତତ୍ପୁ)ଶ୍ରୀକୃଷ୍ଣ ।
ଯଶୋଦାମନ୍—ଜନୈକ ପଶ୍ଚିମ କ୍ଷତ୍ରପ ।
ଯଶୋଦି—ଗ୍ରା.ସ୍ତ୍ରୀ.ବ. ଯଶୋଦାଙ୍କ ଡ଼ାକ ନାମ ।
ଯଶୋଦେବ—ପୁଂ. ବ. ବୌଦ୍ଧ ଯତିବିଶେଷ, ରାମଚନ୍ଦ୍ରଙ୍କ ପୁଅ ।
ଯଶୋଧନ—ପୁଂ. ବିଂ. (ବ.ବ୍ରୀ)ଯଶସ୍ୱୀ, (ସ୍ତ୍ରୀ)ଯଶୋଧନା,ପୁଂ.ବ.ଧନଞ୍ଜୟବିଜୟବ୍ୟାୟୋଗ ପ୍ରଣେତା ।
ଯଶୋଧର—ପୁଂ. ବିଂ. କୀର୍ତ୍ତିରକ୍ଷାକାରୀ, (ବି) ରୁକ୍ମିଣୀ ଗର୍ଭଜାତ ଶ୍ରୀକୃଷ୍ଣଙ୍କର ଏକପୁତ୍ର, (ସ୍ତ୍ରୀ)ଯଶୋଧରା, କର୍ମମାସର ପଞ୍ଚମ ଦିନ ।
ଯଶୋଧରା—ସ୍ତ୍ରୀ.ବ.ବୁଦ୍ଧଦେବଙ୍କ ପତ୍ନୀ, କର୍ମମାସର ୪ର୍ଥ ରଜନୀ ।
ଯଶୋଧରେୟ—ପୁଂ. ବ. ଯଶୋଧରଙ୍କ ପୁତ୍ର ।
ଯଶୋଧା—ପୁଂ. ବିଂ. କୀର୍ତ୍ତିଧାରୀ ।
ଯଶୋଧାମ—କ୍ଲୀ. ବ. ଯଶର ଆଶ୍ରୟ ।
ଯଶୋଧାରା—ସ୍ତ୍ରୀ. ବ. (ରୂ.କ.ଧା) ବୃଷ୍ଟିଧାରାରୂପ ଅଜସ୍ର ଯଶଃ, ବୁଦ୍ଧଦେବଙ୍କ ଭାର୍ଯ୍ୟା ।
ଯଶୋବନ୍ତଦାସ—ଗ୍ରା.ବ. ଶ୍ରୀ ଚୈତନ୍ୟଙ୍କ ପଞ୍ଚସଖା ମଧ୍ୟରୁ ଏକତମ ।
ଯଶୋବନ୍ତୀ—ଗ୍ରା.ବ. ଯଶୋଦା ଶ୍ରୀକୃଷ୍ଣଙ୍କ ପାଳୟିତ୍ରୀ ମାତା ।
ଯଶୋବର—ରୁକ୍ମିଣୀ ଗର୍ଭଜାତ ଶ୍ରୀକୃଷ୍ଣଙ୍କ ଏକପୁତ୍ର ।
ଯଶୋବିସ୍ତାର—ବ. ଯଶ ଗୁଣଆଦି ବ୍ୟାପିବା । [ଯୁକ୍ତ ।
ଯଶୋଭଗିନ୍—ବି. ବିଂ. ଯଶସ୍ୱୀ,ଖ୍ୟାତି-
ଯଶୋଭଗୀନ—ବି. ବିଂ. ଯଶୋଭଗବିଶିଷ୍ଟ, ଯଶୋଭାଗୀ, ଯଶସ୍ୱୀ ।
ଯଶୋଭଗ୍ୟ—ବି. ବିଂ. ଯଶୋଭାଗୀ, ଯଶସ୍ୱୀ ।
ଯଶୋଭାଗ୍ୟ—ବ.(ଯଶଃ+ଭାଗ୍ୟ)ଯଶସ୍ୱୀ ହେବାର ଶୁଭଦୃଷ୍ଟ, ଯଶୋଲାଭରୂପ ସୌଭାଗ୍ୟ ।
ଯଶୋଭୃତ୍—ବି. ବିଂ. (ଯଶଃ+ଭୃ+କ୍ୱିପ୍) ଯଶସ୍ୱୀ ।
ଯଶୋମଣ୍ଡିତ—ପୁଂ.ବିଂ.(୩ତତ୍ପୁ)ଯଶସ୍ୱୀ, ପ୍ରାପ୍ତଯଶାଃ, ଗୌରବାନ୍ୱିତ, (ସ୍ତ୍ରୀ)

ଯଶୋମଣ୍ଡିତା ।

ଯଶୋମତୀ—ସ୍ତ୍ରୀ. ତ. (ଯଶସ୍+ମତୁ+ଈ) ଯଶୋଦା ରାଣୀ, ଶ୍ରୀକୃଷ୍ଣଙ୍କ ପାଳୟିତ୍ରୀ ମାତା, (ବି॰) ଯଶୋଶାଳିନୀ, କୀର୍ତ୍ତିଶାଳିନୀ ।

ଯଶୋମନ୍ଦର—ପୁଂ. ବ. (ରୂପ.କ.ଧା) କୀର୍ତ୍ତିରୂପ ମନ୍ଦର ବା ଗୃହ, ବ୍ୟକ୍ତିବିଶେଷଙ୍କ କୀର୍ତ୍ତିଚହ୍ନ ରୂପେ ନିର୍ମିତ ମନ୍ଦର ।

ଯଶୋମୟ—ପୁଂ. ବି॰. (ଯଶସ୍ + ମୟ) ଯଶୋମଣ୍ଡିତ, ଯଶସ୍ୱୀ, କୌଣସି ବ୍ୟକ୍ତିଙ୍କର କୀର୍ତ୍ତିଦ୍ୱାରା ପରିପୂରିତ (ସ୍ଥାନ), (ସ୍ତ୍ରୀ) ଯଶୋମୟୀ ।

ଯଶୋମାଧବ—ପୁଂ. ବ. ବିଷ୍ଣୁ ।

ଯଶୋରଶ୍ମି—ପୁଂ. ବ. (୬ତତ୍) ଯଶର ଦୀପ୍ତି, କୀର୍ତ୍ତିର ପ୍ରଭା ।

ଯଶୋରାଶି—ବ. (୬ତତ୍) ବହୁଖ୍ୟାତି, କୀର୍ତ୍ତିସମୂହ ।

ଯଶୋଲାଭ—ବ. (୬ତତ୍) କୀର୍ତ୍ତିଜନକ କାର୍ଯ୍ୟଦ୍ୱାରା ଯଶଃପ୍ରାପ୍ତି ।

ଯଶୋଲିପ୍ସା--ସ୍ତ୍ରୀ.ବ. (୬ତତ୍)ଯଶୋଲାଭ କରିବାର ଆକାଙ୍କ୍ଷା, (ବି॰) ଯଶୋଲିପ୍ସୁ ।

ଯଶୋଲିପ୍ସୁ—ତ୍ରି.ବି॰. (୬ତତ୍)ଯଶୋଲାଭର ଆକାଙ୍କ୍ଷୀ, କୀର୍ତ୍ତିଲାଭେଚ୍ଛୁ ।

ଯଶୋହା—ପୁଂ. ବି॰. (ଯଶଃ+ହନ୍+କ୍ୱିପ୍) ଯଶୋନାଶକ ।

ଯଶୋହର—ବଙ୍ଗପ୍ରଦେଶାଧୀନ ପ୍ରେସିଡେନ୍ସି ବିଭାଗର ଅନ୍ତର୍ଗତ ଜିଲ୍ଲା ଓ ସହର, (ବି॰) ଯଶୋନାଶକ ।

ଯଶୋହାନି—ବ.(୬ତତ୍) କୀର୍ତ୍ତିର ନାଶ, ଖ୍ୟାତିର ନାଶ ।

ଯଶୋହାନିକର—ବି॰. ଯାହାଦ୍ୱାରା କୌଣସି ବ୍ୟକ୍ତିର ଯଶ ନଷ୍ଟହୁଏ ।

ଯଷ୍ଟବ୍ୟ—ତ୍ରି. ବି॰. (ଯଜ୍+ର୍ମ.ତବ୍ୟ) ଯଜ୍ଞାର୍ହ, ଯାଗକରିବାର ଉପଯୁକ୍ତ, ଯଜନୀୟ ।

ଯଷ୍ଟା—ପୁଂ.ବ.(ଯଜ୍+କ.ତୃ) ଯଜମାନ, ଯାଗକର୍ତ୍ତା, ପୂଜକ, ଯଜ୍ଞକରିବା ପୁରୋହିତ, (ସ୍ତ୍ରୀ) ଯଷ୍ଟ୍ରୀ ।

ଯଷ୍ଟି(ଷ୍ଟୀ)—ପୁଂ.ସ୍ତ୍ରୀ. ବ. (ଯଜ୍+ର୍ମ.ତି. ସ୍ତ୍ରୀ) ଲଠୀ, ଠେଙ୍ଗା, ଦଣ୍ଡ, ବାଡ଼ୀ, ନଳୀଜଙ୍ଘ, କାନ୍ଧଠାରୁ ଆଣ୍ଠୁ ଶେଷ ପର୍ଯ୍ୟନ୍ତ କର, ତନ୍ତୁସୂତ୍ର, ସୂତାଦ୍ୱାର ସର ବା ସରୀ, ହାରଲତା, ବୃକ୍ଷର ସରୁ ଶାଖା, କ୍ଷୁଦ୍ର ଗଛର ଝାଟି, ବ୍ରାହ୍ମଣଯଷ୍ଟି, ଭାର୍ଗୀ, ଲତା, ଯଷ୍ଟିମଧୁ, ଆଖୁ, ଫଳ, ଫୁଲର ଡେମ୍ଫ, ଖୁଣ୍ଟ, ସରୁ ଓ ଲମ୍ବବସ୍ତୁ, କାଣ୍ଡଶର, ଧ୍ୱଜାଦଣ୍ଡ, ପୋଷା ପକ୍ଷୀଙ୍କ ବସିବା ପାଇଁ ବ୍ୟବହୃତ ଯୁକ୍ତଚହ୍ନସଦୃଶ କାଠି ।

ଯଷ୍ଟିକ—ପୁଂ. ବ. (ଯଷ୍ଟି+କ) ଜଳକୁକ୍କୁଟ, ଜଳକାକ, ପାଣିକୁଆ ପକ୍ଷୀ, ତିତିର ପକ୍ଷୀ, ମଞ୍ଜିଷ୍ଠା, ଦଣ୍ଡ, ବାଡ଼ି, ଭାର୍ଗୀ, ବ୍ରାହ୍ମଣଝାଟିଆ ଗୁଳ୍ମ ।

ଯଷ୍ଟିକା—ସ୍ତ୍ରୀ. ବ. ( ଯଷ୍ଟି+କ+ଆ ) ଏକସରିଆ ହାର, ଗୋପ, ବାପୀ, ବାମ୍ପୀ, ଦୀର୍ଘିକା, ଲମ୍ବଚତୁଷ୍କୋଣ ସରୋବର, ଯଷ୍ଟିମଧୁ, ଲଗୁଡ, ଲଠି, ଦଣ୍ଡ, ଠେଙ୍ଗୁଣି ।

ଯଷ୍ଟିକାଭ୍ରମଣ—କ୍ଳୀ.ବ. ଜଳର ଶୀତଳୀକରଣୋପାୟ ।

ଯଷ୍ଟିଗ୍ରହ—ପୁଂ. ବି॰. (ଯଷ୍ଟି + ଗ୍ରହ୍ + କ.ଅ)ଯଷ୍ଟିଧାରୀ, (ବି)ଲଠିଆଳ, ରାଜାଙ୍କ ଦଣ୍ଡବାହକ, (ସ୍ତ୍ରୀ) ଯଷ୍ଟିଗ୍ରହା ।

ଯଷ୍ଟିନିବାସ—ବ. (ପରିନିପାତ)ମୟୂରାଦି ପକ୍ଷୀଙ୍କ ବସିବା କାଠ, ଲମ୍ବଖୁଣ୍ଟଉପରେ ପାରିମାନେ ବସିବାପାଇଁ ପ୍ରସ୍ତୁତ ଖଡ଼ି ବା ଛତରୀ ।

ଯଷ୍ଟିପ୍ରହରଣ—ପୁଂ. ବି॰.(ବ.ବ୍ରୀ)ଠେଙ୍ଗା ଯାହାର ଅସ୍ତ୍ରଅଟେ, (ସ୍ତ୍ରୀ) ଯଷ୍ଟିପ୍ରହରଣ

ଯଷ୍ଟିପ୍ରହାର—ବ. ( ୩ତତ୍ ) ଯଷ୍ଟିଦ୍ୱାରା ଆଘାତ (ବି॰) ଯଷ୍ଟିପ୍ରହୃତ ।

ଯଷ୍ଟି(ଷ୍ଟୀ)ମଧୁ—କ୍ଳୀ. ବ. (ବ.ବ୍ରୀ) ଯାଠିମଧ, ଏକପ୍ରକାର ବୃକ୍ଷର କାଣ୍ଡିତ୍ ତିକ୍ତମିଠା ମୂଳ ।

ଯଷ୍ଟିମତ୍—ତ୍ରି. ବି॰. ଯଷ୍ଟିବିଶିଷ୍ଟ ।

ଯଷ୍ଟିମଧୁକା—ସ୍ତ୍ରୀ.ବ. ଯାଠିମଧ, ଯଷ୍ଟିମଧୁ ।

ଯଷ୍ଟିଯନ୍ତ୍ର—କ୍ଳୀ. ବ. ଯଷ୍ଟିର ଛାୟାଦ୍ୱାରା ସମୟ ଜାଣିବାପାଇଁ କେନ୍ଦ୍ରରେ ଗୋଟିଏ ଯଷ୍ଟି ପୋତାହୋଇଥିବା ସୂର୍ଯ୍ୟଘଡ଼ି ।

ଯଷ୍ଟିଲତା—ସ୍ତ୍ରୀ. ବ. ଭ୍ରମରାରିପୁଷ୍ପ ବୃକ୍ଷ, ଭ୍ରମରମାରୀ ବୃକ୍ଷ ।

ଯଷ୍ଟିବନ-ରାଜଗୃହର ପୂର୍ବଦିଗସ୍ଥ ଗୋଟିଏ ବନ, ଏହା ବୌଦ୍ଧମାନଙ୍କର ପ୍ରଧାନ ତୀର୍ଥ ।

ଯଷ୍ଟିସ୍—ଯା. ବ. ହାଇକୋର୍ଟର ଜଜ୍‌ମାନଙ୍କ ନାମ ପୂର୍ବରେ ଲଗିବା ଉପାଧି ।

ଯଷ୍ଟିସ୍‌ଅଫ୍‌ଦିପୀସ୍--ଯା.ବ. ଇଂରାଜଶାସିତ ରାଜ୍ୟରେ କେତେକ ବିଶିଷ୍ଟ କ୍ଷମତାପ୍ରାପ୍ତ ମାଜିଷ୍ଟ୍ରେଟ୍ ।

ଯଷ୍ଟୀ—ସ୍ତ୍ରୀ. ବ. ଯଷ୍ଟିମଧ, ଯାଠିମଧୁ, ହାର ବିଶେଷ । [ କୁଠ ।

ଯଷ୍ଟୀକର୍ଣ୍ଣ--ପୁଂ.ବ. ତନ୍ନାମକ କର୍ଣ୍ଣବନ୍ଧନୀ-

ଯଷ୍ଟୀପୁଷ୍ପ—ପୁଂ. ବ. ପୁତ୍ରଞ୍ଜୀବ ବୃକ୍ଷ ।

ଯଷ୍ଟିମଧୁ—କ୍ଳୀ.ବ. ଯଷ୍ଟିମଧୁ ଦେଖ ।

ଯଷ୍ଟ୍ୟାଘାତ—ବ. (୩ତତ୍) ଠେଙ୍ଗା ବା ବାଡ଼ିଦ୍ୱାରା ମାଡ଼ ।

ଯଷ୍ଟ୍ୟାହତ—ପୁଂ. ବି॰. (୩ତତ୍) ଯାହାକୁ ବାଡ଼ିଦ୍ୱାରା ପ୍ରହାର କରାଯାଇଅଛି, (ସ୍ତ୍ରୀ) ଯଷ୍ଟ୍ୟାହତା ।

ଯଷ୍ଟ୍ୟାହ୍ୱ—ବ. (ଯଷ୍ଟି+ଆ+ହ୍ୱେ+ର୍ମ.ଅ) ଯଷ୍ଟିମଧୁ ଦେଖ ।

ଯସ୍(ଧାତୁ)--ଚେଷ୍ଟାକରିବା, ଯତ୍ନ କରିବା, ପରିଶ୍ରମ କରିବା । [ପଥର ।

ଯସବ୍(ମ୍)--ଯା.ବ. ଏକପ୍ରକାର ଆମାଳ

ଯସମ—ଯା. ଅଳଙ୍କାରବିଶେଷ, ସବୁଜ ବର୍ଣ୍ଣ ପ୍ରସ୍ତର ପ୍ରକାର ବିଶେଷ ।

ଯସ୍କ—ପୁଂ. ବ. (ଯସ୍+କ.କ) ଗୋତ୍ରପ୍ରବର୍ତ୍ତକ ମୁନିବିଶେଷ ।

ଯସ୍ମାତ୍—ଅବ୍ୟ. ଯାହାଠାରୁ, ଯେହେତୁ ।

ଯସ୍ୟ—ତ୍ରି. ବି॰. (ଯସ୍ + ର୍ମ.ଯ)ଅଧ୍ୟବସାୟ ଦ୍ୱାରା କରଣୀୟ, (ଜସ୍ + ଯ)ହନନୀୟ ।

ଯସ୍ୟତ୍ୱ—କ୍ଳୀ. ବ. (ଯସ୍ୟ + ଭା.ତ୍ୱ)ଯତ୍ନ, ଉଦ୍ୟମ, ହତ୍ୟା, ମୃତ୍ୟୁ ।

ଯହିଁ—ପ୍ରା. (ଲରିଆ) ସର୍ବ. ଯହିଁ ଦେଖ ।

ଯହିଁତହିଁ—ପ୍ରା. (ଲରିଆ) ସର୍ବ. ଯହିଁତହିଁ ଦେଖ ।

ଯହିଁ-ପ୍ରା.(ସମ୍ବ)କ୍ରି.ବିଂ.ଯହିଁ, ଯେଉଁଠାରେ
ଯହିଁତହିଁ--ପ୍ରା.(ସମ୍ବ)କ୍ରି.ବିଂ.ଯହିଁତହିଁ, ଯେଉଁଠାରେ ଇଚ୍ଛା ସେଠାରେ ।
ଯହିଁ—ଗ୍ରା. ସର୍ବ. (ସଂ-ଯତ୍ର, ପ୍ରା.ଯହିଁ) ଯେଉଁଠାରେ, ଯାହା, ଯହିଁ, ଯାହା-ଉପରେ, ଯେଉଁ ବିଷୟରେ ।
ଯହିଁକି(କୁ)—ଗ୍ରା. ବି. ସର୍ବ. ଯାହିଁକି, ଯେଉଁ ସ୍ଥାନକୁ, ଯେଉଁଠାକୁ, ଯେଉଁ ବିଷୟପ୍ରତି, ଯେଉଁକଥାକୁ, ଯହାପାଇଁ ।
ଯହିଁକିଯେ—ଗ୍ରା.ବାକ୍ୟାଂଶ. ଯେଉଁ ବିଷୟ ବା ବସ୍ତୁ ପ୍ରତି ଯେଉଁ ବିଷୟ ବା ବସ୍ତୁ ଉପଯୋଗୀ ତାହା,ଯେଉଁ କାର୍ଯ୍ୟ ପ୍ରତି ଯେଉଁ ବ୍ୟକ୍ତି ଉପଯୁକ୍ତ ସେ ।
ଯହିଁତକ—ଗ୍ରା. ଅବ୍ୟ. ଯାହାଁତକ୍, ଯେ ପର୍ଯ୍ୟନ୍ତ,ଯେଉଁ ସମୟ ପର୍ଯ୍ୟନ୍ତ,ଯେଉଁ ସ୍ଥାନପର୍ଯ୍ୟନ୍ତ,ଯେଉଁ ଦୂରତ୍ୱ ପର୍ଯ୍ୟନ୍ତ ।
ଯହିଁତହିଁ—ଗ୍ରା.ସର୍ବ.ଯାହିଁତାହିଁ, ଯହିଁ ଇଚ୍ଛା ସେହିସ୍ଥାନରେ, ସ୍ଥାନ ନିର୍ବିଶେଷରେ, ଯାହିଁତାହିଁ ।
ଯହିଁତହିଁରେ—ଗ୍ରା. ସର୍ବ. ଯେକୌଣସି ବିଷୟରେ, ସମସ୍ତ ବିଷୟରେ ।
ଯହିଁଦ୍ୱାରା—ଗ୍ରା. ଅବ୍ୟ. (ସଂ-ଯଦ୍ଦ୍ୱାରା) ଯେଉଁ ବିଷୟ ବା ବସ୍ତୁ ଦ୍ୱାରା ।
ଯହିଁପାଇଁ—ଗ୍ରା. ଅବ୍ୟ. ଯେଉଁ ବିଷୟ ବା ବସ୍ତୁ ନିମନ୍ତେ ।
ଯହିଁର—ଗ୍ରା. ସର୍ବ. ଯେଉଁ ସ୍ଥାନର ବା ପଦାର୍ଥର ।
ଯହିଁରୁ—ଗ୍ରା. ସର୍ବ. ଯେଉଁଠାରୁ, ଯେଉଁ ସ୍ଥାନରୁ, ଯେଉଁ ବସ୍ତୁରୁ ବା ବିଷୟରୁ, ଯେଉଁ ହେତୁରୁ ।
ଯହିଁରେ—ଗ୍ରା. ସର୍ବ. ଯେଉଁ ସ୍ଥାନରେ, ଯେଉଁ ବିଷୟରେ,ଯହିଁଦ୍ୱାରା, ଯେଉଁ ବସ୍ତୁରେ ।
ଯହିଁରେକର—ଗ୍ରା. ଅବ୍ୟ. ଯେଉଁ ବସ୍ତୁ ବା ବିଷୟ ଦ୍ୱାରା, ଯଦ୍ଦ୍ୱାରା ।
ଯହୁଁ—ଗ୍ରା. ସର୍ବ. (ସଂ-ଯସ୍ମାତ୍) ଯହିଁରୁ ଦେଖ, ଯେଉଁକାଳରୁ, ଯେଉଁ ସ୍ଥାନରୁ, ଯେଉଁବିଷୟରୁ, (ଅବ୍ୟ) ଯେଉଁ ବିଷୟ ଘଟିବାପରେ,ଯେଉଁକାରଣରୁ,ଯେହେତୁ ।
ଯହୁଁଯହୁଁ—ଗ୍ରା. ଅବ୍ୟ. କ୍ରମଶଃ, ଯେଉଁ ପରେ, ଅନୁକ୍ରମେ,ଯଥାକ୍ରମେ, ଅନୁପାତକ୍ରମେ ।
ଯହ -ପୁଂ.ବି.ଜଳ,ଶକ୍ତି.ଗ୍ରା.ବହୁତ,ବେଶି ।
ଯହ୍ୱ—ବି.(ଯା+କ.ଉ)ପୁତ୍ର,ବିଂ.ମହତ୍ତ୍ୱ ।
ଯହ୍ୱ—ପୁଂ.ବି.(ଯା+କ.ବ.ନିପାତନ ହ) ଯଜମାନ, ଯାଜ୍ଞିକ ।
ଯହ୍ୱନ୍ତ—ବି. ବିଂ. ମହତ୍ତ୍ୱ ।
ଯା (ଧାତୁ)--ଯିବା,ଆକ୍ରମଣକରିବା, ଯାତ୍ରା କରିବା,ସ୍ଥାନ ତ୍ୟାଗକରିଯିବା,ଉଭେଇ ଯିବା,ଅତିକ୍ରାନ୍ତହେବା,ରହିବା, ଘଟିବା, ଫଳରେ ପରିଣତହେବା, କୌଣସି କାର୍ଯ୍ୟରେ ହାତଦେବା, ସଙ୍ଗମ ବା ମୈଥୁନ କରିବା, ଅନୁରୋଧକରିବା, ପାଇବା, ଆବିଷ୍କାରକରିବା, ଆଚରଣ କରିବା; କାର୍ଯ୍ୟକରିବା, ପରିବର୍ତ୍ତିତ ହେବା ।
ଯା—ସ୍ତ୍ରୀ.ବି.(ଯା+କ.ଅ+ସ୍ତ୍ରୀ.ଆ)ଲକ୍ଷ୍ମୀ, (ଯା+ମି.ଅ+ଆ)ଯୋନି, ଭଗ,(ଯା+ଭା.ଅ+ଆ)ପ୍ରାପ୍ତି,(ଗ୍ରା.କ୍ରି.)ରୁ ଗମନକର (ଗ୍ରାବି.) ଗମନ, ଯିବା, ସ୍ୱାମୀଙ୍କ ଭ୍ରାତୃଜାୟା, ( ଗ୍ରା.ସର୍ବ ) ଯାହା, ଯେଉଁ ବିଷୟ, ଯେଉଁ ପଦାର୍ଥ, (ଗ୍ରା.-ଅବ୍ୟ) ଯାହା,(ସଂ) ଯଦ୍‌ଶବ୍ଦ,(ଘୃଣା ବ ବିରକ୍ତି ସୂଚକ ଅବ୍ୟ.)ଦୂର୍,ଦୂର୍ ହୋ ।
ଯାଅ(ଆଁ)ଳା(ଳ)—ଗ୍ରା. ବି.(ସଂ-ଯାମଳ) ଯମଜସନ୍ତାନ, ( ଗ୍ରା.ବିଂ ) ଯୁଗ୍ମହୋଇ ଜନ୍ମିଥିବା ।
ଯାଆଆସ—ଗ୍ରା. ବି. ଯାଆସ ଦେଖ ।
ଯାଆଁବାଳ—ଗ୍ରା. ବି. (ସଂ-ଜନ୍ମ+ବାଳ) ଶିଶୁମୁଣ୍ଡର ପ୍ରଥମ ବାଳ ।
ଯାଆଁଳ—ଗ୍ରା. ବି. ବଡ଼ମାଛଙ୍କ ପିଲା, ଶିଶୁମାଛ, ମତ୍ସ୍ୟଶିଶୁଙ୍କ ଦଳ, ମାଛ ମାରିବା ଯନ୍ତ୍ରବିଶେଷ ।
ଯାଆଁଳଖେଳାଇବା—ଗ୍ରା. କ୍ରି. ମାଛର ଯାଆଁଳ ପାଣିଭିତରେ ଖେଳୁଥିବା-ବେଳେ ଗର୍ତ୍ତର ପାଣିମଧ୍ୟରେ ବୁଡ଼ିରହି ଉକ୍ତ ପିଲାଙ୍କୁ ଜଗିବା, (ଲ.ଅର୍ଥ) ବହୁତ ଗୁଡ଼ିଏ ସନ୍ତାନର ମାତାହେବା(ଲ.ଅର୍ଥ) ଅନେକ ଗୁଡ଼ିଏ କ୍ଷେତ୍ରଜ ସନ୍ତାନର ପିତା ହେବା ।
ଯାଆଁଳଗୁଡ଼ିବା--ଗ୍ରା.କ୍ରି.ମାଛର ଯାଆଁଳ ପୋଷଣମାନଙ୍କରେ ଗୁଡ଼ିବା,ବହୁସନ୍ତାନର ମାତା ପିତା ହେବା, (
ଯାଆତାଆ—ଗ୍ରା. ସର୍ବ. ( ସଂ-ଯଦ୍‌ତଦ୍ ) ଯାଇତାଇ ଦେଖ ।
ଯାଆନଣନ୍ଦ—ଗ୍ରା. ବି. (ସହଚର ଶବ୍ଦ; ସ୍ୱାମୀଙ୍କର ଭ୍ରାତୃଜାୟା ଓ ଭଗିନୀ ।
ଯାଆନ୍ତେ—ଗ୍ରା. ଅବ୍ୟ. (ସମୟ) ଗତ ହେବାରୁ ।
ଯାଆସେଉଲା—ଗ୍ରା. ସ୍ତ୍ରୀ. ବି. (ସହଚର ଶବ୍ଦ) ପତିଙ୍କ ଭ୍ରାତୃଜାୟା ଓ ପରିବାରସ୍ଥ ଅନ୍ୟ ସ୍ତ୍ରୀଗଣ ।
ଯାଆଳ(ଳା)—ଗ୍ରା.ବି. ଜାଲ(ଲା)ଦେଖ ।
ଯାଆଁଳ(ଇତ୍ୟାଦି)—ଗ୍ରା.ବି.(ସଂ-ଯାମଳ) ଯାଆଁଳା ଇତ୍ୟାଦି ଦେଖ ।
ଯାଆଁଳା(ଇତ୍ୟାଦି)—ଗ୍ରା. ବି ଓ ବିଂ. ଯାଆଳୀ ଦେଖ ।
ଯାଆସ—ଗ୍ରା. ବି. (ସଂ-ଯା ଧାତୁ+ଓ ଆସିବା) ଆସଯା, ଯିବା ଓ ଆସିବା, ଚଳାଚଳ, ଗମନାଗମନ କୌଣସି ସ୍ଥାନକୁ ଯାତାୟାତ କରିବା ।
ଯାଆସଉରୁଣୀ—ଗ୍ରା. ସ୍ତ୍ରୀ. ବି. (ସହଚର ଶବ୍ଦ) ଯାଆ ଓ ସଉରୁଣୀ ।
ଯାଇ(ଇତ୍ୟାଦି)—ଗ୍ରା.ବି. ଜାଇ ଇତ୍ୟାଦି ଦେଖ, (ଗ୍ରା.ସର୍ବ)ଯାହା,ଯତ୍‌ସାମାନ୍ୟ ।
ଯାଇକ(କି)ର—ଗ୍ରା.କ୍ରି. ଗମନକରି ସ୍ୱୀକାର, (ଗ୍ରା.ଅବ୍ୟ) ଅବଶେଷରେ,ତତ୍ପରେ, ଏବଂ ।
ଯାଇଚ୍ଛାତା—ଗ୍ରା.ସର୍ବ. (ମନ୍ଦାର୍ଥ)ଅତିମନ୍ଦ, ସ୍ୱେଚ୍ଛାଗୃହୀ, ଯଥେଚ୍ଛାଗୃହୀ ।
ଯାଇତା—ପ୍ରା.(ଯାସ୍ୱର)କ୍ରି.ଯାଆନ୍ତା ।
ଯାଇତାଇ—ଗ୍ରା. ବିଂ. ( ସଂ-ଯତ୍ତତ୍ ) ଯେନତେନ ପ୍ରକାରେ ସମ୍ପାଦିତ,କାମଚଳାଭଳି, ( କ୍ରି.ବିଂ ) କଷ୍ଟେମଷ୍ଟେ, ସାମାନ୍ୟ ପ୍ରକାରେ, କାମଚଳାଭଳି ।
ଯାଇଥିବା—ଗ୍ରା.ବିଂ.ନଷ୍ଟ, ଗତ,ଅତୀତ ।

ଯାଇ(ହି)ବା—ଗ୍ରା.ସର୍ବ. ଯାହାକିଛି,ଯାହା ସମସ୍ତ ।

ଯାଇ(ହି)ହଉ-ଗ୍ରା.ଅବ୍ୟ.(ସଂ-ଯଦ୍‌ଭବତୁ) ଯାହା ଘଟନା ଘଟୁ ପଛକେ,ପୂର୍ବକଥିତ ବିଷୟକୁ ଗ୍ରହଣ ଦେଲେ ମଧ୍ୟ,ପକ୍ଷାନ୍ତରେ

ଯାଉ(ଇତ୍ୟାଦି)—ଗ୍ରା.ବି. (ସଂ-ଯବାଗୂ) ଜାଉଇତ୍ୟାଦି ଦେଖ, (ଗ୍ରା.ଅବ୍ୟ) ଯାଉ ସେକଥା, (ଗ୍ରା.କ୍ରି) ସେ ଗମନ କରୁ ।

ଯାଉଆ—ଗ୍ରା.ବିଂ. ଜାଉଆ ଦେଖ ।

ଯାଉଁଳି—ଗ୍ରା.ବି. ( ସଂ-ଯୁଗଳ ) ଖଣ୍ଡେ ଲୁଗାର ଦୁଇ କାନରେ ବନ୍ଧାହେବା ଦୁଇଟି ଝୁଲା, ସମଶ୍ରେଣୀର ଦୁଇ-ଗୋଟି ବା ଯୋଡ଼ି, ଯୁଗ୍ମ ମଧ୍ୟରୁ ଏକ-ତର, (ବିଂ) ସମଶ୍ରେଣୀୟ,ଯୁଗ୍ମ, ଦୁଇ ।

ଯାଉଁଳିଆ—ଗ୍ରା.ବିଂ. ଯେ ଯାଉଁଳିରେ କୌଣସି ପଦାର୍ଥ ବହେ, (ବି) ଗଞ୍ଜାମରୁ ଏଦେଶକୁ ଆସି ବେପାର କରୁଥିବା ବ୍ରାହ୍ମଣ ମହାଜନ ।

ଯାଉଁଳିକବାଟ—ଗ୍ରା. ବି. (ସଂ-ଯୁଗଳ ଓ କପାଟ) ଦୁଆରମୁହଁରେ ଲଗିଥିବା ଯୋଡ଼ିକବାଟ ।

ଯାଉଁ(ଉ)ଳିଗୁଣା—ଗ୍ରା.ବି. ସ୍ତ୍ରୀମାନଙ୍କର ନାକପୁଡ଼ାରେ ପିନ୍ଧାଯିବା ଏକପ୍ରକାର ସୁନାର ଗୁଣା ।

ଯାଉଁଳିଜନ—ଗ୍ରା.ବି. ସ୍ତ୍ରୀପୁରୁଷ ଯୁଗଳ, ମିଥୁନ, ଜାଉଁଳିଜହ୍ନ ।

ଯାଉଁଳିଜହ୍ନ—ଗ୍ରା.ବି. ଆକାଶରେ ଏକ ସମୟରେ ଉଇଁବାରୂପେ କଳ୍ପିତ, ଦୁଇଗୋଟି ଚନ୍ଦ୍ର, ବାଳକାଙ୍କର ନାମ

ଯାଉଁଳିତାଡ଼-ଗ୍ରା.ବି.ବାହୁର ଅଳଙ୍କାର-ବିଶେଷ ।

ଯାଉଁଳିନୋଳି—ଗ୍ରା. ବି. ଦୁଇଟି ନୋଳି ବା ଚରୁଡ଼ା ଏକତ୍ର ଯୋଡ଼ାହୋଇ ତିଆରି କରାଯାଇଥିବା ନୋଳି ।

ଯାଉଁଳିପାଲି—ଗ୍ରା.ବି. ବାଦୀପାଲି ।

ଯାଉଁଳିଫାଶିଆ-ଗ୍ରା.ବି. କାନରେ ପିନ୍ଧା-ଯିବା ଯୋଡ଼ଫାଶିଆ ।

ଯାଉଁଳିବନ୍ଧା—ଗ୍ରା.ବିଂ. ଯେ ଯାଉଁଳି ବାନ୍ଧି କାନ୍ଧରେ ବହନ୍ତିଏ, (ବି)ଯାଉଁ-ଳିରେ ଦ୍ରବ୍ୟ ବାନ୍ଧିବା କର୍ମ ।

ଯାଉଁଳିବେତ—ଗ୍ରା.ବି. ଏକତ୍ର ବନ୍ଧା-ଯାଇଥିବା ଯୋଡ଼ିଏ ବେତ ।

ଯାଉଁଳିମୁଦି—ଗ୍ରା. ବି. ଗୋଟିଏ ଆଙ୍ଗୁଠିରେ ଏକତ୍ର ପିନ୍ଧାଯିବା ଦୁଇଟି ମୁଦି

ଯାଉଁଳିଶଙ୍ଖ—ଗ୍ରା.ବି. ଯୋଡ଼ଶଙ୍ଖ ।

ଯାଉସେକଥା--ଗ୍ରା.ଅବ୍ୟ.ସେକଥା ଗୁଡ଼ି, ଗଲ୍ପକଥା ଗଲାଣି ।

ଯାଏ(ଯ୍)—ଯା. (କଚେରିଆ); ତପସିଲ, ବିବରଣ, ମୁକାବିଲ ପରେ ଦିଆଯିବା ✓ ଚିହ୍ନ, ସମ୍ମତି,ଧନ, ନ୍ୟାୟସଙ୍ଗତ କାର୍ଯ୍ୟ, (ବିଂ) ନ୍ୟାୟସଙ୍ଗତ, ଶୁଦ୍ଧ, ଉଚିତ, (ଗ୍ରା.ଅବ୍ୟ) ଯାକେ, ପର୍ଯ୍ୟନ୍ତ, (ଗ୍ରା.କ୍ରି) ଗମନ କରେ ।

ଯାଏଁ—ଗ୍ରା.ଅବ୍ୟ. (ସଂ-ଯାବତ୍) ଯାବତ୍, ପର୍ଯ୍ୟନ୍ତ ।

ଯାଏକ—ଗ୍ରା.ଅବ୍ୟ. ପର୍ଯ୍ୟନ୍ତ ।

ଯାଏକେତେଆସେକେତେ-ଗ୍ରା.ବାକ୍ୟାଂଶ. ଏବିଷୟରେ ( ଅମୁକର ) ବ୍ୟକ୍ତିଗତ ଲାଭନାହିଁ ବା କ୍ଷତି ନାହିଁ, ଏବିଷୟ (ଅମୁକକୁ) ଗୁରୁତର ଭାବେ ସ୍ପର୍ଶ କରିନାହିଁ ।

ଯାଏଦେବା—ଗ୍ରା.କ୍ରି. (କଚେରିଆ).ହିସାବ ମୁକାବିଲ ଶେଷରେ / ବା ✓ ଚିହ୍ନ ଦେବା ।

ଯାଏବାଲ—ଯା.(ପୁଂ.ବିଂ) ସମ୍ପତ୍ତିବାନ୍ ।

ଯାଏ(ଯ୍)ବେଜାଏ(ଯ୍)--ଯା.ବି. ଓ ବିଂ. (କଚେରିଆ). ନ୍ୟାୟ ଓ ଅନ୍ୟାୟ ।

ଯାଏବେଜାଏବୁଝିବା--ଗ୍ରା.କ୍ରି. ନ୍ୟାୟା-ନ୍ୟାୟ ବିଚାର କରିବା ।

ଯାଏଁ—ଗ୍ରା.ଅବ୍ୟ. (ସଂ-ଯାବତ୍)ପର୍ଯ୍ୟନ୍ତ, (ଗ୍ରା.କ୍ରି) (ମୁଁ) ଗମନ କରେ ।

ଯାଁଚ୍—ଗ୍ରା.ବି.(କଚେରିଆ)ସେଟଲ୍‌ମେଣ୍ଟ କାଗଜ ଠିକ୍ ଅଛିକିନା ପରଖିବା, ସମୀକ୍ଷଣ, ତନଖି, ହିସାବାଦିର ପରୀକ୍ଷା, ମୁକାବିଲା, ତୁଳନା, ତଦାରଖ ।

ଯାଁଚ୍‌ଅଫିସର—ଗ୍ରା.ବି.(କଚେରିଆ).ଅଧ-ସ୍ତନ କର୍ମଚାରୀଙ୍କ କର୍ମକୁ ତନଖିବା ଊର୍ଦ୍ଧ୍ୱତନ କର୍ମଚାରୀ ।

ଯାଁଚ୍‌କରିବା—ଗ୍ରା. କ୍ରି. ( କଚେରିଆ ) କୌଣସି ବିଷୟ ବା ଲେଖା ଠିକ୍ ଅଛି କି ନାହିଁ ଦେଖିବା, ତୁଳନା କରିବା, ପରଖିବା ।

ଯାଁଚ୍‌ପଡ଼(ଚ୍)ତାଲ—ଗ୍ରା.ବି. (କଚେରିଆ). ହିସାବଆଦିର ପରୀକ୍ଷା ।

ଯାଁଚ୍‌ମୋହ(ହୋ)ର(ରି)ର୍—ଗ୍ରା. ବି. ଯେଉଁ ମୋହରର ଅନ୍ୟର ଲେଖା-ଆଦିକୁ ପରୀକ୍ଷା ବା ମୁକାବିଲ କରେ ।

ଯାଁଚ୍‌ରିପୋର୍ଟ—ଗ୍ରା. ବି. (କଚେରିଆ)ଯାଁଚ୍ କରିବା • ବ୍ୟକ୍ତି କର୍ତ୍ତୃପକ୍ଷଙ୍କୁ ଯେଉଁ ରିପୋର୍ଟ ଦିଅନ୍ତି ।

[ଦେଖ ।

ଯାଁଲା(ଲି)—ଗ୍ରା.ବି. ଓ ବିଂ.ଯାଅଲା (ଲି)

ଯାକ—ଗ୍ରା. ଅବ୍ୟ. (ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ) ସଂ-ଯାବତ୍; ସମସ୍ତ, ସମୁ-ଦାୟ, ତମାମ୍ (କାଳ)ବ୍ୟାପୀ, ବିବାକ୍, ମାନେ, ଗୁଡ଼ାକ, (ଗ୍ରା. ବିଂ) ଯାକସାର ଦେଖ ।

ଯାକସାର—-ଗ୍ରା. ବିଂ. ଯାହା ଦେହରେ କଣ୍ଟି ହୋଇ ଲଗିଯାଏ,ଯାକୁଆ,ସଂକୀର୍ଣ୍ଣ ।

ଯାକ(କେ)ଟ୍--ଯା.ବି.ଯାକେଟ୍ ଦେଖ ।

ଯାକିବା—(ଇତ୍ୟାଦି)ଗ୍ରା. କ୍ରି. ଜାକିବା ଇତ୍ୟାଦି ଦେଖ ।

ଯାକିଯୁକିହୋଇବସିବା—ଗ୍ରା.କ୍ରି. ହସ୍ତ-ପଦାଦିକୁ ସଂକୁଚିତ କରି ଉପବେଶନ କରିବା, (ଏକାଧିକ ବ୍ୟକ୍ତି) ଲଗାଲଗି ହୋଇ ବସିବା ।

ଯାକୁ—-ଗ୍ରା. ସର୍ବ. ( ସଂ-ଯଦ୍ ଶବ୍ଦ ) ଯାହାକୁ ।

ଯାକୁଆ—ଗ୍ରା.ବିଂ. ଜାକୁଆ ଦେଖ ।

ଯାକୁଇ(ଟି,ହି,ହିଁ)—ଗ୍ରା.ସର୍ବ. (ସଂ-ଯଂହି, ଯାଂହି,ଯଦ୍ଧି) ।

ଯାକୁଟି—ଗ୍ରା. ଅବ୍ୟ. ସମୁଦାୟ,ତମାମ ।

ଯାକୁସି—-ଗ୍ରା. ବି. ଜଙ୍ଘସନ୍ଧି, କାଖ ଓ ବେକ ସନ୍ଧିରେ ହେବା ଏକପ୍ରକାର ଚର୍ମରୋଗ, ବିଚର୍ଚ୍ଚିକା ।

ଯାକେ—ଗ୍ରା.ଅବ୍ୟ.(ସଂ-ଯାବତ୍)ପର୍ଯ୍ୟନ୍ତ, ଯାଏ, ତମାମ୍ ।

[ ସମ୍ବନ୍ଧୀୟ ।

ଯାକୃତ୍କ—ଜି.ବିଂ(ଯକୃତ୍ + ଅକ)ଯକୃତ୍

ଯାକୃଲ୍ଲୋତା—ବି.ବୀଂ. ଯକୃଲ୍ଲୋମ ଜନ-
ପଦସମ୍ବନ୍ଧୀୟ ।

ଯାଗ(ଇତ୍ୟାଦ)—ପୁଂ.ବ. (ଯଜ୍ + ଣ.ଅ)
ଯଜ୍ଞ ଇତ୍ୟାଦ ଦେଖ, ହୋମ ।

ଯାଗକକ—ଗ୍ରା.ବ.ବୀଂ(ସଂ-ଯାଜ୍ଞିକ)ଯଜ୍ଞ-
କର୍ତ୍ତା, ଯାଜ୍ଞିକ ଦେଖ ।

ଯାଗଘିଅକୁକୁରଖାଇବା—ଗ୍ରା.(ପ୍ରବଚନ,
ନ୍ୟାୟ) ଦେବୋଦ୍ଦିଷ୍ଟ ପଦାର୍ଥକୁ କୁକୁର
ପର ହୀନ ପ୍ରାଣୀ ଭୋଗକରିବା,(ଲ.ଅର୍ଥ)
ଉତ୍ତମ ପଦାର୍ଥର ଅପବ୍ୟବହାର ବା
ଅପାତ୍ରରେ ଦାନ ।

ଯାଗପୁର—ଯାଜପୁରର ନାମାନ୍ତର ।

ଯାଗଯଜ୍ଞ—ବି. (ଏକାର୍ଥ ସହଚର ଶବ୍ଦ)
ଯାଗ ।

ଯାଗସନ୍ତାନ—ପୁଂ.ବ. ଇନ୍ଦ୍ରପୁତ୍ର ଜୟନ୍ତ

ଯାଗସୂତ୍ର—କ୍ଲୀ.ବ.ଯଜ୍ଞସୂତ୍ର, ଯଜ୍ଞୋପବୀତ

ଯାଗିର୍(ଗ)ଇତ୍ୟାଦ—ଯା. ବ. ଜାଗିର୍
ଇତ୍ୟାଦ ଦେଖ ।

ଯାଗିର୍(ଗ)ମାହାଲ—ଯା. ବ. ଜାଗିର-
ଦାରଙ୍କୁ ଇଂରେଜଙ୍କ ପ୍ରଦତ୍ତ ନିଷ୍କର
ଜମି ।

ଯାଚେନ୍ତ—ଗ୍ରା. ଅବ୍ୟ. ଯାହାର ଯେଉଁ
କାରଣରୁ, ହେତୁରୁ, ଯହିଁ ଯୋଗୁଁ,
ଯାହା ପାଇବା ଉଦ୍ଦେଶ୍ୟରେ, ଯାହାର
ସାହାଯ୍ୟରେ ।

ଯାଙ୍କ—ଗ୍ରା.ସର୍ବ.(ପଦାର୍ଥରେ ବ୍ୟବହୃତ)
(ସମ୍ମାନାର୍ଥକ ଏକବଚନ)ଯେଉଁ ବ୍ୟକ୍ତି-
ଙ୍କର,(ବହୁବଚନ)ଯେଉଁମାନଙ୍କର ।

ଯାଚ୍—(ଧାତୁ)ଯାଚ୍ଞା କରିବା, ମାଗିବା,
ଭିକ୍ଷାକରିବା,ଅନୁରୋଧକରିବା,ଆବେ-
ଦନକରିବା, ପ୍ରାର୍ଥନାକରିବା, ସମର୍ପଣ
କରିବା, ବିବାହ ପାଇଁ ପ୍ରାର୍ଥନାକରିବା

ଯାଚ୍ଞା—ବି. (ଯାଚ୍ + ଭା + ନ + ଆ)
ମାଗିବା, ଭିକ୍ଷାକରିବା, ବିନୀତ ଅନୁ-
ରୋଧ, ପ୍ରାର୍ଥନା, କନ୍ୟାକୁ ବିବାହ
କରିବା ପ୍ରସ୍ତାବ ।

ଯାଚ—ଗ୍ରା. ବ. କୌଣସି ଦ୍ରବ୍ୟ ପ୍ରାପ୍ତି
ନିମନ୍ତେ ପ୍ରାର୍ଥନା ।

ଯାଚକ—ପୁଂ. ବୀଂ, (ଯାଚ୍+କ.ଅକ)
ଭିକ୍ଷାକାରୀ, ପ୍ରାର୍ଥନାକାରୀ, (ବ)ଭିକ୍ଷୁକ,
ଦରଖାସ୍ତକାରୀ ବ୍ୟକ୍ତି, କନ୍ୟାପ୍ରାର୍ଥୀ
ବ୍ୟକ୍ତି, (ଗ୍ରା.ବ) ମରହଟ୍ଟା ବ୍ରାହ୍ମଣଙ୍କ
ବଂଶୋପାଧିବିଶେଷ, (ପ୍ରା. ସମ୍ବଲ. ବ)
ଗଉଡ଼ମାନଙ୍କର ଶ୍ରେଣୀଭେଦ, (ସ୍ତ୍ରୀ)
ଯାଚକୀ ।

ଯାଚ(ଚ,ଚେ)ଙ୍କା—ଗ୍ରା.ବ. (ସଂ-ଯାଚ୍ଞା)
ପ୍ରାର୍ଥନା, ଭିକ୍ଷା ।

ଯାଚନ୍ତ୍ର—ବି. ବୀଂ. ଯାଚକ ।

ଯାଚନ—କ୍ଲୀ. ବ. (ଯାଚ୍+ଭା.ଅନ)
ପ୍ରାର୍ଥନା, ଭିକ୍ଷା, ଯାଚ୍ଞା ।

ଯାଚନକ—ପୁଂ.ବ. (ଯାଚ୍+କ.ଅନ+
କ) ଯାଚକ, ଭିକ୍ଷୁକ, ଦରଖାସ୍ତକାରୀ
ବ୍ୟକ୍ତି, ( କ୍ଲୀ. ଯାଚ୍ + ଭା.ଅନ+କ )
ପ୍ରାର୍ଥନା, (ସ୍ତ୍ରୀ) ଯାଚନିକା ।

ଯାଚନା—ସ୍ତ୍ରୀ.ବ. ( ଯାଚ୍ + ଭା.ଅନ+
ଆ)ପ୍ରାର୍ଥନା, ଭିକ୍ଷା, (ଯାଚ୍ + ଣ.ଅନ+
ଆ) ଦରଖାସ୍ତ ।

ଯାଚନୀୟ—ବି. ବୀଂ.(ଯାଚ୍ + ମଁ.ଅନୀୟ)
ପ୍ରାର୍ଥନୀୟ ।

ଯାଚମାନ—ପୁଂ.ବୀଂ. (ଯାଚ୍ + କ.ଆନ)
ଭିକ୍ଷା କରୁଥିବା, (ସ୍ତ୍ରୀ)ଯାଚମାନା ।

ଯାଚିତ—ବି.ବୀଂ(ଯାଚ୍+ମଁ.ତ)ପ୍ରାର୍ଥିତ,
ମୃତ, ଆବଶ୍ୟକ, (କ୍ଲୀ.ବ. ଯାଚ୍+ଭା.
ତ) ପ୍ରାର୍ଥନା, ଭିକ୍ଷୁକ ବୃତ୍ତି ।

ଯାଚିତକ—କ୍ଲୀ.ବ.(ଯାଚିତ+ନିର୍ବୃତ୍ତାର୍ଥେ-
କ) ପ୍ରାର୍ଥିତ ବସ୍ତୁ, ଭିକ୍ଷାଲବ୍ଧ ବସ୍ତୁ,
ଉଧାର ଦ୍ରବ୍ୟ ।

ଯାଚିତବ୍ୟ—ବୀଂ.ପ୍ରାର୍ଥିତବ୍ୟ, ମାଗିବାର
ଯୋଗ୍ୟ ।

ଯାଚିତା—ପୁଂ. ବୀଂ. (ଯାଚ୍+କ.ତୃ)
ଯାଚ୍ଞାକାରୀ, (ପୁଂ.ବ) ଭିକ୍ଷୁକ, ଦର-
ଖାସ୍ତକାରୀ ବ୍ୟକ୍ତି,କନ୍ୟାର ପାଣି ଗ୍ରହ-
ଣାର୍ଥ ପ୍ରାର୍ଥୟିତା ବ୍ୟକ୍ତି, (ସ୍ତ୍ରୀ)ଯାଚିତ୍ରୀ ।

ଯାଚିଦେବା—ଗ୍ରା.ବି(ସଂ-ଯାଚ୍ଧାତୁ)ମାଗୁ
ନଥିବା ବ୍ୟକ୍ତିକି କୌଣସି ଦ୍ରବ୍ୟ ଦେବା

ଯାଚିବା—ଗ୍ରା.ବି. (ସଂ-ଯାଚ୍ଧାତୁ) ମାଗୁ
ନ ଥିବା ବ୍ୟକ୍ତିକୁ ସ୍ୱେଚ୍ଛାରେ କୌଣସି
ଦ୍ରବ୍ୟ ଦେବାକୁ କହିବା, କୌଣସି
ପଦାର୍ଥ ପାଇବାକୁ ପ୍ରାର୍ଥନା କରିବା,
ବିପଦରେ ଠାକୁରଙ୍କୁ ଭୋଗ ମନାସିବା
ପରେ ଦେବାକୁ ଅଙ୍ଗୀକାର କରିବା ।

ଯାଚିଲପଦାର୍ଥ (ଦରବ) ଗ୍ରୁହିବନାହିଁ—
(ଗ୍ରା.) ପ୍ରବଚନ ଉପଦେଶ କେହି କିଛି
ଦ୍ରବ୍ୟ ଦେଲେ ଗ୍ରହଣ କରିବାକୁ ଅସ୍ୱୀ-
କାର କରିବ ନାହିଁ ।

ଯାଚିଷ୍ଣୁ—ବି.ବୀଂ. (ଯାଚ୍+ଇଷ୍ଣୁ)ମାଗି-
ବାରେ ଅଭ୍ୟସ୍ତ ବା ଅଭିଳାଷୀ ।

ଯାଚୀ—ପୁଂ. ବୀଂ. ଯାଚ୍ଞାକାରୀ ।

ଯାଚ୍ୟ—ବି.ବୀଂ(ଯାଚ୍ + ମଁ.ଯ)ପ୍ରାର୍ଥନୀୟ,
(ବ. ଯାଚ୍ + ଭା.ଯ)ଅନୁରୋଧକରିବା ।

ଯାଚ୍ୟମାନ—ବି. ବୀଂ. (ଯାଚ୍+ମଁ.ଆନ)
ପ୍ରାର୍ଥନାର ବଶୀଭୂତ ।

ଯାଚ୍ଛାତା—ଗ୍ରା.ବି.ବୀଂ. (ଯଦ୍+ଇଚ୍ଛା+
ତଦ୍) ଯାଇଚ୍ଛା ତା ଦେଖ ।

ଯାଜ୍—ପୁଂ. ବ. ଯଜ୍ଞକାରୀ, ଯାଜ୍ଞିକ ।

ଯାଜ—ପୁଂ. (ଯଜ୍+ଭା.ଅ)ଅନ୍ନ, ଭାତ,
ଖାଦ୍ୟଦ୍ରବ୍ୟ, (ଯଜ୍+କ.ଅ) ଯଜ୍ଞାନୁ-
ଷ୍ଠାତା ବ୍ୟକ୍ତି ।

ଯାଜକ—ପୁଂ. ବ. (ଯଜ୍+କ.ଅକ)
ହୋତା, ଯାଜ୍ଞିକ, ଋତ୍ୱିକ୍, ପୁରୋହିତ,
ରାଜହସ୍ତୀ, ମତ୍ତହସ୍ତୀ, (ଗ୍ରା. ବ) ଧର୍ମ-
ପ୍ରଚାରକ, (ସ୍ତ୍ରୀ) ଯାଜିକା ।

ଯାଜକତା(ତ୍ୱ)—ବି. (ଯାଜକ + ଭା.ତା)
ପୌରୋହିତ୍ୟ ।

ଯାଜତ୍ୟ—ପ୍ରା.(ଯାଜ)ବ. ଯାଜପୁରବାସୀ
କୁଳୀନ ବ୍ରାହ୍ମଣଙ୍କ ଶାଖାବିଶେଷ ।

ଯାଜନ—କ୍ଲୀ. (ଯଜ୍+ଣିଚ୍+ ଭା.ଅନ)
ଅନ୍ୟ ଦ୍ୱାରା ଯଜ୍ଞ କ୍ରିୟାର ସମ୍ପାଦନ,
ଯଜ୍ଞର ପୌରୋହିତ୍ୟ ।

ଯାଜନୀୟ—ବି. ବୀଂ. (ଯଜନ+ଅନୀୟ)
ଯାଜନାର୍ହ, ଯାଜନର ଯୋଗ୍ୟ ।

ଯାଜପୁର—ଗ୍ରା.ବ.କଟକଜିଲ୍ଲାର ଉତ୍ତର-
ଭାଗସ୍ଥ ଗୋଟିଏ ସବ୍‌ଡ଼ିଭିଜନ ଓ
ନଗର ।

ଯାଜମାନ—କ୍ଲୀ.ବ.(ଯଜମାନ+ଅ)ଯଜ-
ମାନଙ୍କ ଦ୍ୱାରା ସମ୍ପାଦନୀୟ ଯଜ୍ଞର ଅଂଶ

ଯାଜମାନିକ—ବି.ବୀଂ. ଯଜମାନସମ୍ବନ୍ଧୀୟ

ଯାଜୟିତା—ପୁଂ.ବ (ଯଜ୍+ଣିଚ୍+ତୃ) ଯଜ୍ଞର ପୁରୋଧା। [ ଦେଶ।
ଯାଜି(ଜୀ)—ପୁଂ.ବି.(ଯଜ୍+କ.ଇ) ଯାଜକ
ଯାଜିକା—ସ୍ତ୍ରୀ.ବି.ଯଜ୍ଞ, ପୂଜାକାଳ ପ୍ରଦତ୍ତ ଉପହାର।
ଯାଜପୁର—ବି.(ଚଳନ୍ତି) ଯାଜପୁର ଦେଖ।
ଯାଜପୁରଦେଶୀୟ—ପ୍ରା.(ଯାଜ)ବି.ଯାଜତ୍ୟ ଦେଖ।
ଯାଜୀ—ପୁଂ.ବିଂ.(ଯଜ୍+ଇନ୍) ଯଜ୍ଞକାରୀ।
ଯାଜୁକ—ପୁଂ.ବିଂ.ପୁନଃପୁନଃ ଯଜ୍ଞକାରୀ।
ଯାଜୁର୍ବେଦିକ—ତ୍ରି.ବିଂ. ଯଜୁର୍ବେଦସମ୍ବନ୍ଧୀୟ।
ଯାଜୁଷ—ତ୍ରି. ବିଂ. (ଯଜୁଷ୍+ଅ) ଯଜୁର୍ବେଦସମ୍ବନ୍ଧୀୟ, (ବି)ଯଜୁର୍ବେଦାଧ୍ୟାୟୀ ବ୍ରାହ୍ମଣ, (ସ୍ତ୍ରୀ) ଯାଜୁଷୀ।
ଯାଜୁଷୀଗାୟତ୍ରୀ—ବି. ଛଅବର୍ଣ୍ଣବିଶିଷ୍ଟ ଯଜୁର୍ବେଦର ଛନ୍ଦୋବିଶେଷ।
ଯାଜୁଷ୍ମତ—ବି. ଯଜ୍ଞବେଦୀ ନିର୍ମାଣାର୍ଥ ଇଷ୍ଟକବିଶେଷ। [ ଯଜ୍ଞୀୟ।
ଯାଜ୍ଞ—ତ୍ରି.ବିଂ (ଯଜ୍ଞ+ଅ) ଯଜ୍ଞସମ୍ବନ୍ଧୀୟ,
ଯାଜ୍ଞତୁର—ପୁଂ. ବି. ଋଷଭର ଗୋତ୍ରାପତ୍ୟ, (କ୍ଳୀ) ସାମବେଦାଂଶବିଶେଷ।
ଯାଜ୍ଞଦତ୍ତକ—ତ୍ରି.ବିଂ.ଯଜ୍ଞଦତ୍ତସମ୍ବନ୍ଧୀୟ।
ଯାଜ୍ଞଦତ୍ତି—ପୁଂ. ବି. (ଯଜ୍ଞଦତ୍ତ+ଇ) କୁବେର।
ଯାଜ୍ଞପତ—ବିଂ. ଯଜ୍ଞପତିର ଭାବ।
ଯାଜ୍ଞବଲ୍କ—ତ୍ରି.ବିଂ.ଯାଜ୍ଞବଲ୍କ୍ୟ ସଙ୍କଳିତ।
ଯାଜ୍ଞବଲ୍କୀୟ—ପୁଂ.ବି.ଯାଜ୍ଞବଲ୍କ୍ୟସମ୍ବନ୍ଧୀୟ
ଯାଜ୍ଞବଲ୍କ୍ୟ(ଲ୍କ)—ପୁଂ ବି (ଯଜ୍ଞବଲ୍କ+ଯ. ଅ) ଶୁକ୍ଳ ଯଜୁର୍ବେଦ ବା ବାଜସନେୟୀ ସଂହିତାର ଆଦ୍ୟଦ୍ରଷ୍ଟା ଋଷି।
ଯାଜ୍ଞସେନୀ—ସ୍ତ୍ରୀ. ବି. ( ଯଜ୍ଞସେନ+ଅ +ଈ) ଦ୍ରୌପଦୀ।
ଯାଜ୍ଞାୟନ—ପୁଂ.ବି.ଯଜ୍ଞର ଗୋତ୍ରାପତ୍ୟ।
ଯାଜ୍ଞିକ—ପୁଂ. ବି. (ଯଜ୍ଞ+ଇକ) ଯଜ୍ଞ କାର୍ଯ୍ୟରେ ପୁରୋହିତ,ଯଜ୍ଞକର୍ତ୍ତା,ଦର୍ଭ, କୁଶ, ଖଦିର ବୃକ୍ଷ, ପଳାଶବୃକ୍ଷ, ଅଶ୍ୱତ୍ଥ ବୃକ୍ଷ, ଯଜ୍ଞ ସାଧନ ଦ୍ରବ୍ୟାଦି,(ବିଂ)ଯଜ୍ଞସମ୍ବନ୍ଧୀୟ, (ସ୍ତ୍ରୀ) ଯାଜ୍ଞିକୀ।
ଯାଜ୍ଞିକାନ୍ତ—କ୍ଳୀ.ବି.(କ.ଧା)ଯଜ୍ଞୀୟ ତରୁ।
ଯାଜ୍ଞିକାଶ୍ରୟ—ବି. (ଚଳନ୍ତି) ବିଷ୍ଣୁ।
ଯାଜ୍ଞିକ୍ୟ—କ୍ଳୀ.ବି. ଯାଜ୍ଞିକର ଧର୍ମ,ଯଜ୍ଞ।
ଯାଜ୍ଞିୟ—ତ୍ରି.ବିଂ. (ଯଜ୍ଞ+ଇୟ) ଯଜ୍ଞସମ୍ବନ୍ଧୀୟ, ଯଜ୍ଞର ଉପଯୋଗୀ, ଯଜ୍ଞ କର୍ମରେ ପ୍ରଶସ୍ତ।
ଯାଜ୍ଞୀୟ—ଯଜ୍ଞ ଶବ୍ଦର ପ୍ରାମାଦିକ ପାଠ।
ଯାଜନ—ବି. ( ଯଜ୍ୱନ୍+ଅ ) ଯାଜ୍ଞିକ ବ୍ୟକ୍ତିଙ୍କ ପୁତ୍ର।
ଯାଜ୍ୟ—ତ୍ରି.ବିଂ.(ଯଜ୍+ର୍ମି.ଯ) ଯଜ୍ଞରେ ବଳି ରୂପେ ଦିଆଯିବା ଯୋଗ୍ୟ, ଯଜ୍ଞୀୟ ବଳି ନିମନ୍ତେ ଅଭିପ୍ରେତ, (କ୍ଳୀ.ବି) ଯାହାଙ୍କ ପାଇଁ ଯଜ୍ଞକରାଯାଏ, ଯଜମାନ, ଯଜ୍ଞର ପୁରୋଧା, ଯାଗଲବ୍ଧ ଦକ୍ଷିଣା, (ଯଜ୍+ଅଧି.ଯ) ଯଜ୍ଞସ୍ଥାନ-ଦେବତା, ପ୍ରତିମା, (ସ୍ତ୍ରୀ) ଯାଜ୍ୟା।
ଯାଜ୍ୟା—ସ୍ତ୍ରୀ. ବି. (ଯଜ୍+ଅଧି.ଯ+ଆ) ଯଜ୍ଞଭୂମି,(ର୍ମି.ଯ+ଆ) ଦେବ ପ୍ରତିମା, ଯଜ୍ଞରେ ହୋତାଙ୍କ ପଠିତ ଋକ୍ ବା ସ୍ତୋତ୍ର, ଗଙ୍ଗା।
ଯାଜ୍ୟତା—ସ୍ତ୍ରୀ. ବି. ଯାଜ୍ୟର ଭାବ ବା ଧର୍ମ, ଯାଜ୍ୟତ୍ୱ। [ ମନ୍ତ୍ରଯୁକ୍ତ
ଯାଜ୍ୟବତ୍—ତ୍ରି. ବିଂ. ଯାଜ୍ୟା ବା ଯଜ୍ଞୀୟ
ଯଠିମଧୁ—ଗ୍ରା. ବି. ଯଷ୍ଟିମଧୁ ଦେଖ।
ଯାତ—ତ୍ରି. ବିଂ. (ଯା+କ.ତ) ଗତ, ଅତୀତ, (ର୍ମି.ତ) ଲବ୍ଧ, ପ୍ରାପ୍ତ, ଜ୍ଞାତ, ବିଦିତ,(ବି.ଭା.ତ)ଗମନ, ଗତି,ପ୍ରାପଣ, ଜ୍ଞାନ; ଅଙ୍କୁଶ ଆଘାତ ଦ୍ୱାରା ହସ୍ତୀକୁ ତାଡ଼ନ, ଅତୀତକାଳ,(ଗ୍ରା.ବି.ସଂ-ଯାତ୍ରା, ଧର୍ମସମ୍ବନ୍ଧୀୟ ଉତ୍ସବ, ଦେବତାଙ୍କ ଉତ୍ସବ, ନୃତ୍ୟଗୀତାଦି ଉତ୍ସବ, ମେଳ; ଜନଗହଳି, ହୁଲ୍ଲୋଡ଼, ଗୋଳମାଳ, (ଲ.ଅର୍ଥ) କଳିକଜିଆ।
ଯାତ(ତ୍ରା)ଉ(ଓ)ପାସ—ଗ୍ରା.ବି.(ସଂ-ଯାତ୍ରା +ଉପବାସ) ଦେବ ଯାତ୍ରାମାନଙ୍କରେ ଉପବାସାଦି କରିବା।
ଯାତଥାଅ—ଗ୍ରା.ବି.(ସହଚରଶବ୍ଦ)ଯାତ୍ରା-ଆଦି।
ଯାତନ—କ୍ଳୀ. ବି. (ଯତ୍+ଣିଚ୍+ଭା. ଅନ)ଯନ୍ତ୍ରଣା, ତୀବ୍ର ବେଦନା,ବେଦନା, ବୈର ପ୍ରତିଶୋଧ,ଯମଯାତନା,ନରକ-ଯନ୍ତ୍ରଣା, ପାରିତୋଷିକ।
ଯାତନା—ସ୍ତ୍ରୀ. ବି. (ଯତ୍+ଣିଚ୍+ଭା. ଅନ+ଆ)ତୀବ୍ରବେଦନା,ଯନ୍ତ୍ରଣା,କଷ୍ଟ।
ଯାତନାଟ—ଗ୍ରା.ବି. (ସହଚରଶବ୍ଦ)ନୃତ୍ୟ ଗୀତାଦି ଉତ୍ସବ। [ ଶାଳୀ।
ଯାତନାର୍ଥୀୟ—ତ୍ରି.ବିଂ. ଯାତନା ଗ୍ରହଣ-
ଯାତନାଦେବା—ଗ୍ରା. କ୍ରି. ଦୁଃଖଦେବା, କଷ୍ଟଦେବା।
ଯାତନାକ୍ଷେତ୍ର-ବି.(ଚଳନ୍ତି)ଯନ୍ତ୍ରଣାକ୍ଷେତ୍ର।
ଯାତବ୍ୟ—ତ୍ରି.ବିଂ. ( ଯା+ର୍ମି.ତବ୍ୟ ) ଅଭିଗନ୍ତବ୍ୟ, ଅଭିଗମ୍ୟ, ଆକ୍ରମଣୀୟ।
ଯାତଯକ୍ଷନ—ବି. ସ୍ୱ ସ୍ୱ ବ୍ୟାପାରେ ନିୟୋଜିତ ଲୋକସମୂହ।
ଯାତଯାମ—ତ୍ରି.ବିଂ.(ବ.ବ୍ରୀ)ପର୍ଯ୍ୟୁଷିତ, ବାସି (ଖାଦ୍ୟଆଦି),ଜୀର୍ଣ୍ଣ, ଶୀର୍ଣ୍ଣ, ପୁନଃପୁନଃ ବ୍ୟବହୃତ, ପରଭୁକ୍ତ, ତ୍ୟକ୍ତ, ଉଚ୍ଛିଷ୍ଟ, ଅଇଁଠା, ହ୍ରାସପ୍ରାପ୍ତ,ଅପକ୍ୱ, କ୍ଳାନ୍ତ।
ଯାତଯାମତ୍ୱ—କ୍ଳୀ.ବି. ଯାତଯାମର ଭାବ ବା ଧର୍ମ। [ ଯାତ୍ରା।
ଯାତଧି—ଗ୍ରା.(ପଦ୍ୟ)ବି.(ସଂ-ଯାତ୍ରା) ଯାତ,
ଯାତଲଗାଇବା-ଗ୍ରା.କ୍ରି.କୌଣସି ସ୍ଥାନରେ କଳହ ବା ଗଣ୍ଡଗୋଳ ଉପୁଜାଇବା।
ଯାତସ୍ତ୍ରୁଚ-କ୍ଳୀ.ବି. ସାମବେଦାଂଶବିଶେଷ
ଯାତା—ପୁଂ.ବି.(ଯା+କ.ତୃ)ଗମନକାରୀ ବ୍ୟକ୍ତି, ବାଟୋଇ,ପଥିକ, ରଥଚାଳକ, ସାରଥି,ମାତଳି, ଘାତକ, (ସ୍ତ୍ରୀ) ଯାତ୍ରୀ, ସ୍ୱାମୀଙ୍କର ଭ୍ରାତୃଜାୟା ଯାଆ।
ଯାତାନପ୍ରସ୍ଥ—କ୍ଳୀ.ବି.ଜନପଦବିଶେଷ।
ଯାତାନୁଜାତ—କ୍ଳୀ. ବି. ଗମନାଗମନ, ଯାତାୟାତ।
ଯାତାୟାତ—କ୍ଳୀ.ବି(ଦ୍ୱନ୍ଦ୍ୱ)ଗମନାଗମନ, ଚଳପ୍ରଚଳ, ଯା ଆସ।
ଯାତାୟାତକରିବା-ଗ୍ରା.କ୍ରି.ଯା ଆସ କରିବା
ଯାତି—ସ୍ତ୍ରୀ.ବି. ପୁନଃପୁନଃ ଗମନଶୀଳ।
ଯାତିକ—ପୁଂ.ବି.(ଯା+କ.ଇକ) ପଥିକ, (ସ୍ତ୍ରୀ) ଯାତିକା।

ଯାରୁ—ପୁଂ.ବଂ. (ଯା+କ.ରୁ) ଗମନକାରୀ, (ପୁଂ.ବ) ରାକ୍ଷସ, ଉପଦେବତା, ଭୂତପ୍ରେତ, ସମୟ, ପଥିକ, ବାୟୁ,ଅସ୍ତ୍ରଶସ୍ତ୍ର ।

ଯାରୁଘ୍ନ—ପୁଂ. ବ. (ଯାରୁ+ହନ୍+କ. ଅ)ଗୁଗ୍ଗୁଳ । [କାରୀ ।

ଯାରୁଗୃତନ—ପୁଂ.ବଂ.ରାକ୍ଷସ ବିତାଡ଼ନ-

ଯାରୁଜମ୍ଭନ—ପୁଂ.ବଂ.ରାକ୍ଷସ ଧ୍ୱଂସକାରୀ

ଯାରୁଜ୍—ପୁଂ, ବ. ଯାରୁଧାନ, ରାକ୍ଷସ ।

ଯାରୁଧାନ—ପୁଂ. ବ. (ଯାରୁ+ଧା+କ. ଅନ) ନିଶାଚର, ରାକ୍ଷସ, ଭୂତପ୍ରେତ ।

ଯାରୁମନ୍ତ୍ର—ପୁଂ.ବଂ. ହିଂସାଯୁକ୍ତ, ହିଂସାବିଶିଷ୍ଟ, (ପୁଂ.ବ)ଯାତନାଦାୟକ ଆୟୁଧ ବା ରାକ୍ଷସବିଶେଷ ।

ଯାରୁମାବତ୍—ବ. ଅସୁର, ଯାରୁଧାନ ।

ଯାରୁବିଦ୍—ପୁଂ.ବଂ.ଐନ୍ଦ୍ରଜାଲିକ ବିଦ୍ୟାଭିଜ୍ଞ, ରାକ୍ଷସୀୟ ବ୍ୟାପାରଜ୍ଞ ।

ଯାରୁହା—ପୁଂ.ବଂ.ଐନ୍ଦ୍ରଜାଲ ବିଚ୍ଛିନ୍ନକାରୀ

ଯାତୃକ—ପୁଂ. ବ. (ଯାତୃ+ସ୍ୱାର୍ଥେ.କ) ପଥିକ ।

ଯାତୋପଯାତ୍ର—କ୍ଳୀ. ବ. ଗମନାଗମନ, କଥାବାର୍ତ୍ତା ।

ଯାତ୍ରିକ—ପୁଂ.ବ.ବୌଦ୍ଧମାନଙ୍କର ଶାଖାସମ୍ପ୍ରଦାୟବିଶେଷ ।

ଯାତ୍ୟ—ବି.ବଂ. (ଯତ୍+ଣିଚ୍+ମଂ.ଯ) ଯତ୍ନକରିବା ଯୋଗ୍ୟ, ଯତିତବ୍ୟ ।

ଯାତ୍ରା—ସ୍ତ୍ରୀ.ବ.(ଯା+ଷ୍ଟ୍ର.ତ୍ର+ଆ)ଭ୍ରମଣ, ଗମନ, ନିର୍ବାହ,ଅଭିଯାନ, ତୀର୍ଥଗମନ, ଯାତ, ଦେବତାଙ୍କ ଉତ୍ସବ, କୌଣସି ଉଦ୍ଦେଶ୍ୟରେ କୌଣସି ସ୍ଥାନକୁ ବାହାରିବା, ବ୍ୟବହାର, ଆଚାର, ପ୍ରଥା, ଧର୍ମସମ୍ବନ୍ଧୀୟ ମେଳା,ଶୋଭାଯାତ୍ରା,ନୌକାଦି ଦ୍ୱାରା ଯିବା, ସମୟ ଯାପନ, (କ.ତ୍ର+ଆ) ତୀର୍ଥଯାତ୍ରିଦଳ, ( ଅଧି.ତ୍ର+ଆ ) ପଥ, ବୃତ୍ତି, ଭରଣପୋଷଣ, ଜୀବନଯାତ୍ରା, ପେଷା, ଏକପ୍ରକାର ନାଟକାଭିନୟ, ସହବାସ,(ଣ.ତ୍ର+ଆ)ଉପାୟ, ଯାନ, (ଗ୍ରା.ବ) ଯାତରା, ନୃତ୍ୟଗୀତାଦି ଅଭିନୟ, ଏକସ୍ଥାନରେ ବହୁଲୋକଙ୍କ ସମାଗମ ।

ଯାତ୍ରାଅନୁକୂଳ—ଗ୍ରା.ବ.କୌଣସି କାର୍ଯ୍ୟ ପାଇଁ ନିର୍ଦ୍ଦିଷ୍ଟ ସ୍ଥାନକୁ ବାହାରିବା ।

ଯାତ୍ରାକରିବା—ଗ୍ରା. କ୍ରି. କୌଣସି ନିର୍ଦ୍ଦିଷ୍ଟ କାର୍ଯ୍ୟ କରିବା ପାଇଁ ଅନୁକୂଳକରିବା, ସାଧାରଣଙ୍କ ପରିଦର୍ଶନାର୍ଥ ନୃତ୍ୟଗୀତାଦିର ଅଭିନୟ କରିବା ।

ଯାତ୍ରାକାର—ପୁଂ.ବ (ଯାତ୍ରା+କୃ+ଅ) ଯାତ୍ରାର ଶୁଭାଶୁଭ ନିର୍ଣ୍ଣୟକାରୀ ମୁନିବିଶେଷ ।

ଯାତ୍ରାକାଳ--ବ.ଯାତ୍ରା କରିବାର ମୁହୂର୍ତ୍ତ, ଉତ୍ସବ ସମୟ ।

ଯାତ୍ରାକାଲି—ଗ୍ରା. ବ. ଯାତ୍ରା ଦେଖିବାକୁ ଆସିଥିବା ବ୍ୟକ୍ତି,(ଗ୍ରା.ବଂ)ଯାତ୍ରା ଦେଖିବାକୁ ସମାଗତ, ଉତ୍ସବକାଳୀନ ।

ଯାତ୍ରାକାଳିଭଗାରି---ଗ୍ରା. ବ. ଅକସ୍ମାତ୍ ଉପସ୍ଥିତ ପ୍ରତିଦ୍ୱନ୍ଦ୍ୱୀ ବା ସମ୍ପତ୍ତିରେ ଭାଗ ବସାଇବା ବ୍ୟକ୍ତି ।

ଯାତ୍ରାଖରଚ—ଗ୍ରା. ବ. ଚାକର ଓ ପିଲାମାନଙ୍କୁ ଉତ୍ସବରେ ଦିଆଯିବା ଧନ ।

ଯାତ୍ରାଗହଳ(ଳି)—ଗ୍ରା.ବ. ଉତ୍ସବାଦିରେ ରୁଣ୍ଡହୋଇଥିବା ଜନତା ବା ଗୋଳମାଳ

ଯାତ୍ରାଗୁରୁ—ଗ୍ରା.ବ. ନାଟର ଗୁରୁ, ନାଟୁଆଙ୍କ ଓସ୍ତାଦ୍ ।

ଯାତ୍ରାଜ(ଜୁ)ମକ—ଗ୍ରା.ବ.ଯାତ୍ରାରେ ବହୁଲୋକ ଗଦା ହେବା ଅବସ୍ଥା ।

ଯାତ୍ରାଜମାଇବା—ଗ୍ରା.କ୍ରି. ଏକସ୍ଥାନରେ ବହୁଲୋକ ଠୁଳ ହେବାପାଇଁ ଉପାୟ କରିବା, ଗୋଳମାଳ ଜନ୍ମାଇବା,ନାଟାଦିରେ ଯୁଆଙ୍ଗାଦି ଦ୍ୱାରା ଲୋକଠୁଳାଇବା

ଯାତ୍ରାତଥ—ଗ୍ରା. ବ. ଯାତ୍ରା ଉତ୍ସବାଦି ।

ଯାତ୍ରାତିଥି—ବ. ବିଶିଷ୍ଟ ଉତ୍ସବର ନିର୍ଦ୍ଦିଷ୍ଟ ଦିନ, ବିଦେଶ ଯିବାର ଅନୁକୂଳ ଦିନ ।

ଯାତ୍ରାଦଳ—ଗ୍ରା. ବ. ଯାତ୍ରା ବା ନାଟ-ଆଦି କରିବା ପାଇଁ ଗଠିତ ଦଳ ବା ପଞ୍ଚା ।

ଯାତ୍ରାନାଟ—ଗ୍ରା. ବ. (ସହଚର ଶବ୍ଦ); ଜନମୋହକର ଅଭିନୟାଦି ।

ଯାତ୍ରାପ୍ରସଙ୍ଗ—ବ. ତୀର୍ଥ ଦର୍ଶନାର୍ଥ ଯାତ୍ରା କରିବା କିମ୍ବା ବିଦେଶଯିବା ସମ୍ପର୍କ ।

ଯାତ୍ରାଫେରାଇବା—ଗ୍ରା.କ୍ରି. ଯାତ୍ରାକରିବା ସମୟରେ ଅଶୁଭ ଲକ୍ଷଣ ଦେଖିଲେ ସେଥର ଫେରି ଆସିବା ।

ଯାତ୍ରାବାଲା—ଗ୍ରା. ବ. ଯେ ଅଭିନୟ କରେ, ଯାତ୍ରାର ଅଭିନେତୃଦଳ, (ସ୍ତ୍ରୀ) ଯାତ୍ରାବାଲୀ ।

ଯାତ୍ରାବିଧି—ବ. (ଜ୍ୟୋତିଷ) ଦେଶାନ୍ତର ଗମନକାଳୀନ ବିଧାନ ।

ଯାତ୍ରାଭାଙ୍ଗିବା—ଗ୍ରା. ବ. ଯାତ୍ରାରେ ଠୁଳହୋଇଥିବା ଲୋକ କ୍ରମଶଃ କମିବା, ଯାତ୍ରାର ଅନୁକୂଳ ବିଗିଡ଼ିବା ।

ଯାତ୍ରାମହୋତ୍ସବ—ପୁଂ. ବ. ଯାତ୍ରାରୂପ ମହୋତ୍ସବ ।

ଯାତ୍ରାଲଗାଇବା—ଗ୍ରା. କ୍ରି. ( ଲ.ଅର୍ଥ ) କୌଣସି ସ୍ଥାନରେ ଗୋଳମାଳ ବା ଲୋକଠୁଳ ହେବା ।

ଯାତ୍ରାସୁଆଙ୍ଗ--ଗ୍ରା.ବ.ଯାତ୍ରାରେ କୌତୁକଜନକ ଅଭିନୟ ।

ଯାତ୍ରିକ—ବି. ବଂ. (ଯାତ୍ରା+ଇକ)ଯାତ୍ରାସମ୍ବନ୍ଧୀୟ, ପ୍ରଥାନୁଯାୟୀ,ଯାତ୍ରାର ଉପଯୋଗୀ, ଯେଉଁଠାକୁ ଯାତ୍ରା କରାଯାଇ ପାରେ,ଯେଉଁ ଯାନାଦିରେ ଯାତ୍ରା କରାଯାଏ, (ବ) ତୀର୍ଥଯାତ୍ରୀ, ପଥିକ, ପାନ୍ଥ, ଉତ୍ସବ,ଯାତ୍ରା, ଉପାୟ, (ସ୍ତ୍ରୀ) ଯାତ୍ରିକା ।

ଯାତ୍ରୀ—ପୁଂ. ବଂ. ( ଯାତ୍ରା+ଇନ୍ ) ଯାତ୍ରାକାରୀ, ଭ୍ରମଣକାରୀ, ତୀର୍ଥଯାତ୍ରାକାରୀ, (ବ) ତୀର୍ଥକୁ ଯିବା ବ୍ୟକ୍ତି, (ସ୍ତ୍ରୀ) ଯାତ୍ରିଣୀ ।

ଯାତ୍ରୀ—ସ୍ତ୍ରୀ. ବଂ. (ଯାତୃ+ଈ) ଗମନକର୍ତ୍ତ୍ରୀ, ଯାତା ଦେଖ ।

ଯାତ୍ରୀଆଣିବା—ଗ୍ରା. କ୍ରି. ଭାରତର ନାନା ସ୍ଥାନକୁ ଯାଇ ଯାତ୍ରୀମାନଙ୍କୁ ମନାଇ ଆଣିବା ।

ଯାତ୍ରୀଖାତା—ଗ୍ରା. ବ. ପଣ୍ଡାଙ୍କଠାରେ ଯାତ୍ରୀଙ୍କ ହାଲଚାଲ ଲେଖାଥିବା ଖାତା ।

ଯାତ୍ରୀଗାଡ଼ି—ଗ୍ରା. ବ. ଯେଉଁ ରେଲରେ ବା ଗାଡ଼ିରେ ଯାତ୍ରୀମାନେ ବସି ଯା ଆସ କରନ୍ତି ।

ଯାତ୍ରୀଗୁମାସ୍ତା—ଗ୍ରା. ବ. ପଣ୍ଡାମାନଙ୍କ ପ୍ରତିନିଧି, (ଏମାନେ ଯାତ୍ରୀଙ୍କୁ ନେଇଆଣ କରନ୍ତି)।

ଯାତ୍ରୀଘର—ଗ୍ରା.ବ. ଯାତ୍ରୀମାନଙ୍କ ବସା।

ଯାତ୍ରୀଟି(ଟା,ଟେ)କସ୍—ଗ୍ରା. ବ. ଯାତ୍ରୀମାନଙ୍କ ଠାରୁ ଆଦାୟ ହେବା ଶୁଳ୍କ।

ଯାତ୍ରୀତଣ୍ଡିଚପା—ଗ୍ରା. ବଂ. (ବ୍ୟଙ୍ଗ୍ୟ) ଯେଉଁ ପଣ୍ଡାମାନେ ନାନାଉପାୟରେ ଯାତ୍ରୀଙ୍କ ଠାରୁ ଜୁଲମ ପୂର୍ବକ ଅର୍ଥାଦି ନିଅନ୍ତି।

ଯାତ୍ରୀଦର୍ଶନ—ଗ୍ରା. ବ. ଯାତ୍ରୀମାନଙ୍କର ଦେବଦର୍ଶନ।

ଯାତ୍ରୀଦର୍ଶନକରାଇବା—ଗ୍ରା. କ୍ରି. ଯାତ୍ରୀମାନଙ୍କୁ ସୁବିଧାରେ ଦର୍ଶନ କରାଇଦେବା

ଯାତ୍ରୀଦାଣ୍ଡ—ଗ୍ରା. ବ. ବହୁସଂଖ୍ୟକଯାତ୍ରୀ ତୀର୍ଥକୁ ଆସିବା ଅବସ୍ଥା।

ଯାତ୍ରୀପତର—ଗ୍ରା. ବ. ଯାତ୍ରୀଆଦି।

ଯାତ୍ରୀବୃତ୍ତି(ତ୍ତି)—ଗ୍ରା. ବ. ପଣ୍ଡାଗିରି, ଯାତ୍ରୀଗୁମାସ୍ତାଗିରି, ଯାତ୍ରୀବ୍ୟବସାୟ।

ଯାତ୍ରୀଭିଡ଼—ଗ୍ରା. ବ. ଯାତ୍ରୀବହୁଳତା।

ଯାତ୍ରୋତ୍ସବ—ପୁଂ.ବ. ଯାତ୍ରାରୂପ ଉତ୍ସବ।

ଯାତ୍ସତ୍ର—କ୍ଲୀ. ବ. ବହୁଧନ ସାଧ୍ୟ ଯଜ୍ଞ, ସାରସ୍ୱତ ଯାଗ।

ଯାଥାକଥାଚ—ଅବ୍ୟ. ଯାହା ନିଶ୍ଚୟ ଘଟିବ, କେବେକେବେ ଘଟିବା।

ଯାଥାକାମୀ—ପୁଂ. ବଂ. (ଯଥା+କାମ+ଇନ୍)ସ୍ୱେଚ୍ଛାଚାରୀ,(ସ୍ତ୍ରୀ)ଯାଥାକାମିନୀ।

ଯାଥାକାମ୍ୟ—କ୍ଲୀ. ବ. କାମନାନୁରୂପ।

ଯାଥାତଥ୍ୟ—କ୍ଲୀ.ବ. (ଯଥାତଥା+ଷ୍ଣ.ଯ) ଯଥାର୍ଥତା, ଔଚିତ୍ୟ, ଠିକ୍ପଣ।

ଯାଥାତ୍ମ୍ୟ—କ୍ଲୀ. ବ. ଆତ୍ମାନୁରୂପତା।

ଯାଥାର୍ଥିକ—ବି. ବଂ. (ଯଥାର୍ଥ+ଇକ) ବାସ୍ତବିକ, ପ୍ରକୃତ, ସତ୍ୟ।

ଯାଥାର୍ଥ୍ୟ—କ୍ଲୀ. (ଯଥାର୍ଥ+ଷ୍ଣ.ଯ) ଯଥାର୍ଥତା, ସତ୍ୟତା, ପ୍ରକୃତତା, ଉପଯୋଗିତା, ସିଦ୍ଧି, ନ୍ୟାଯ୍ୟତା।

ଯାଥାସ୍ତରକ—ବି.ବଂ. ଅନୁରୂପ ଆସ୍ତରଣାନ୍ୱିତ।

ଯାଦ୍—ଯ. ସ୍ମୃତି।

ଯାଦଃ—କ୍ଲୀ. ବ. (ଯା+କ.ଅସ୍) ଜଳଚର ଜୀବ, ଜଳଜନ୍ତୁ, ଜଳ, ନଦୀ, ଶୁକ୍ର, ଇଚ୍ଛା। [ ବରୁଣ।

ଯାଦଃପତି—ପୁଂ. ବ. (୬ତତ୍) ସମୁଦ୍ର,

ଯାଦଈଶ—ପୁଂ. ବ. ୬ତତ୍ (ଯାଦଃ+ଈଶ) ସମୁଦ୍ର, ବରୁଣ।

ଯାଦବ—ପୁଂ. ବ. (ଯଦୁ+ଅ) ଯଦୁବଂଶୀୟ, ଯଦୁବଂଶ ସମ୍ବନ୍ଧୀୟ, (ବ) ଶ୍ରୀକୃଷ୍ଣ,ଗୋମହିଷାଦିରୂପ ଧନ, ଦ୍ୱାଦଶ ଗୋପାଳ ମଧ୍ୟରୁ ଏକତମ, (ଗ୍ରା.ବ) ଗଉଡ଼ମାନଙ୍କ ଶାଖାବିଶେଷ।

ଯାଦବକ—ପୁଂ.ବଂ. ଯଦୁବଂଶୋଦ୍ଭବ।

ଯାଦବଗିରି—ପୁଂ. ବ. ପର୍ବତବିଶେଷ।

ଯାଦବରାଜବଂଶ—ଦାକ୍ଷିଣାତ୍ୟର ଗୋଟିଏ ହିନ୍ଦୁ ରାଜବଂଶ।

ଯାଦବୀ—ସ୍ତ୍ରୀ. ବ. (ଯଦୁ+ଅ+ଈ) ବାସନ୍ତୀଦେବୀ, ଦୁର୍ଗା, ଗୋଧନ, ମଦିରା, କୁଣ୍ଠିନୀ।

ଯାଦବେନ୍ଦ୍ର—ପୁଂ. ବ. ଶ୍ରୀକୃଷ୍ଣ।

ଯାଦସାଂନାଥ—ପୁଂ. ବ.(୬ତତ୍)ବରୁଣ, ସମୁଦ୍ର। [ ବରୁଣ।

ଯାଦସାଂପତି—ପୁଂ.ବ. (୬ତତ୍) ସମୁଦ୍ର,

ଯା(ଯ୍ୟା)ଦା--ଯା.ବ.ଅତ୍ୟଧିକ,ଅପେକ୍ଷାକୃତ ଭଲ, ଅତିରିକ୍ତ, (ବିଂ. ର ବିଂ) ଅପେକ୍ଷାକୃତ ରୂପେ, ଅତ୍ୟଧିକରୂପେ।

ଯାଦୁ—ବ. ଜଳ, ତରଳପଦାର୍ଥ।

ଯାଦୁ(ଇତ୍ୟାଦି)—ଗ୍ରା. ଓ ଯା. ବ. ଜାଦୁ ଇତ୍ୟାଦି ଦେଖ।

ଯାଦୁକର—ପୁଂ.ବ ଓ ବଂ. ଇନ୍ଦ୍ରଜାଲିକ, ବଶୀକାରକ, କୁହୁକୀ, (ସ୍ତ୍ରୀ) ଜାଦୁକରୀ।

ଯାଦୁଘର—ଗ୍ରା.ବ.ଯେଉଁ ଗୃହରେ ପୁରାତତ୍ତ୍ୱ ବିଷୟକ ଓ ଅନ୍ୟାନ୍ୟ ଅଶେଷବିଧ ସ୍ୱାଭାବିକ ଓ ଶୈଳ୍ପିକ କୌତୂହଳ ଜନକ ବସ୍ତୁ ସଂରକ୍ଷିତ ହୋଇଥାଏ।

ଯାଦୁବଳ—କ୍ଲୀ. ବ. ବଶୀକରଣକ୍ଷମତା, ଭେଲ୍କୀ ପ୍ରଦର୍ଶନ ଶକ୍ତି।

ଯାଦୁବିଦ୍ୟା—ସ୍ତ୍ରୀ. ବ. ବଶୀକରଣବିଦ୍ୟା, ଭେଳକବିଦ୍ୟା।

ଯାଦୁମଣି—ଗ୍ରା. ବ. ଅତିସ୍ନେହର ପାତ୍ର।

ଯାଦୁର୍—ବି. ବଂ. ବହୁରେତୋଯୁକ୍ତ।

ଯାଦୃକ୍—ବି. ବଂ. (ଯଦ୍+ଦୃଶ୍+ମି. କ୍ୱିପ୍) ଯେ ରୂପ,ଯେପ୍ରକାର, ଯେପରି।

ଯାଦୃକ୍ଷ—ବି. ବଂ. (ଯାଦ୍+ଦୃଶ୍+ମି. ସକ୍) ଯାଦୃଶ, ଯେପ୍ରକାର, ଯେପରି, (ସ୍ତ୍ରୀ) ଯାଦୃକ୍ଷା।

ଯାଦୃଚ୍ଛିକ—ପୁଂ. ବଂ. (ଯଦୃଚ୍ଛା+ଇକ) ସ୍ୱେଚ୍ଛାଚାରୀ, ସ୍ୱାଧୀନ, ସ୍ୱେଚ୍ଛାକୃତ, ଆକସ୍ମିକ, (ପୁଂ.ବ)ସ୍ୱେଚ୍ଛାଚାରୀଯାଜକ, (ସ୍ତ୍ରୀ) ଯାଦୃଚ୍ଛିକୀ।

ଯାଦୃଶ୍(ଶ.ଷ)—ପୁଂ. ବ. (ଯତ୍+ଦୃଶ୍+କ୍ୱିପ୍+କ.ଅ+ସ)ଯେଉଁ ପ୍ରକାରର, (ସ୍ତ୍ରୀ) ଯାଦୃଶୀ, ଯାଦୃକ୍ଷୀ।

ଯାଦୋଗଣ—ପୁଂ. ବ. (ଯାଦଃ+ଗଣ) ୬ତତ୍; ଜଳଜନ୍ତୁ ସମୂହ।

ଯାଦୋଗଣେଶ୍ୱର—ପୁଂ.ବ. (୬ତତ୍) ସମୁଦ୍ର, ବରୁଣ।

ଯାଦୋନାଥ—ପୁଂ. ବ. (୬ତତ୍)ସମୁଦ୍ର, ବରୁଣ। [ ଜଳ।

ଯାଦୋନିବାସ—ପୁଂ.ବ.(୬ତତ୍) ସମୁଦ୍ର,

ଯାଦ୍ୱ—ପୁଂ. ବଂ. (ଯଦୁ+ଅ) ଯଦୁବଂଶୀୟ, ଯଦୁସମ୍ବନ୍ଧୀୟ, ମନୁଷ୍ୟ ମଧ୍ୟେ ପ୍ରସିଦ୍ଧ, (ସ୍ତ୍ରୀ) ଯାଦ୍ୱୀ।

ଯାଦ୍ରାଧ୍ୟ—ବି. ବଂ. ଗମନଶୀଳବ୍ୟକ୍ତିଙ୍କର ଆରାଧନୀୟ। [ ଦେଖ।

ଯାନ୍(ଇତ୍ୟାଦି)—ଯା.ବ.ଜାନ୍ ଇତ୍ୟାଦି

ଯାନ—କ୍ଲୀ. ବ. (ଯା+ଅନ) ହସ୍ତ୍ୟଶ୍ୱଶକଟାଦି (ବାହନ),(ଭା.ଅନ) ଗମନ, ଭ୍ରମଣ, ଗତି, ଯାତ୍ରା,ଦେଶାଟନ,ଶତ୍ରୁର ପ୍ରତିକୂଳରେ ଯାତ୍ରା, ଆକ୍ରମଣ, (ଅଧି. ଅନ) ଶୋଭାଯାତ୍ରା, (କ.ଅନ) ନୌକା, ଜାହାଜ, (ଗ୍ରା.ବ) ଆଗମନ, ନିକଟକୁ ଗମନ।

ଯାନକ—କ୍ଲୀ.ବ. (ଯାନ+ସ୍ୱାର୍ଥେ.କ) ଗାଡ଼ିଆଦି।

ଯାନକର—ପୁଂ. ବ. (ଯାନ+କୃ+କ.ଅ) ବଢ଼େଇ।

ଯାନକୀ—ବଂ.(ଯାନକ+ଇନ୍)ଯାନାରୂଢ଼, ଯାନଚଢ଼ିଥିବା।

ଯାନପାତ୍ର(କ)—କ୍ଳୀ.ବ.(୬ତତ୍ପୁ)ଅର୍ଣ୍ଣବ-ପୋତ, ବୋଇତ ।

ଯାନପାତ୍ରିକା—ସ୍ତ୍ରୀ.ବ. ଶ୍ରେଷ୍ଠ ଯାନପାତ୍ର ।

ଯାନବାହ—ପୁଂ. ବିଂ.(ଯାନ+ବହ୍+କ.ଅ)ଯେ ଯାନବହନକରେ ବା ଟାଣେ, (ବି) ଯାନବହନକାରୀ ବ୍ୟକ୍ତି ବା ଜୀବ ।

ଯାନବାହନ—ବି. (ଏକାର୍ଥସହଜାତଦ୍ୱନ୍ଦ୍ୱ) ଗମନାଗମନାର୍ଥ ବ୍ୟବହୃତ ନାନାପ୍ରକାର ବାହନ, ଜୀବଜନ୍ତୁ ଓ ନିର୍ଜ୍ଜୀବ ।

ଯାନଭଙ୍ଗ—ପୁଂ. ବି. (୬ତତ୍ପୁ) ଜାହାଜ ମାଡ଼ ଖାଇଯିବା । [ ଝୁରା ।

ଯାନମୁଖ—କ୍ଳୀ. ବି. ଶକଟାଦିର ଅଗ୍ରଭାଗ

ଯାନଯାନ—ପୁଂ. ବିଂ. ( ଯାନ+ଯା+କ.ଆନ ) ଗାଡ଼ିରେ ବସିଯାଉଥିବା, ଯାନାରୋହୀ, (ସ୍ତ୍ରୀ) ଯାନାଯାନା ।

ଯାନଶାଳା—କ୍ଳୀ. ବି. ଯେଉଁ ଘରେ ଗାଡ଼ି ଆଦି ରହେ ।

ଯାନାବରୋହଣ—ବି. (୫ତତ୍ପୁ) ଯାନରୁ ଓହ୍ଲାଇବା, (ବିଂ) ଯାନାବରୂଢ଼(ଢ଼ା) ।

ଯାନାରୋହଣ—ବି. (୭ତତ୍ପୁ) ଯାନରେ ଚଢ଼ିବା, (ପୁଂ) ଯାନାରୋହୀ, (ସ୍ତ୍ରୀ,ବିଂ) ଯାନାରୋହିଣୀ ।

ଯାନାସ(ସ୍ତା,ସ୍ଥା)ନ୍—ଯା. ବି. ଚଳନ୍ତ, ଅଚଳନ୍ତ ସମସ୍ତ ସମ୍ପତ୍ତି,ସର୍ବସ୍ୱ,ଜୀବନ ଓ ସମ୍ପତ୍ତି ।

ଯାନି—(ପ୍ରା-ଗଡ଼ଜାତ)ପୁଂ. ବି.ମଙ୍ଗଳା-ଠାକୁରାଣୀଙ୍କର ପୁରୁଷ ସେବକ ବା କାଳିଶୀ,କନ୍ଧଜାତିର ବଂଶାପାଧିବିଶେଷ (ସ୍ତ୍ରୀ) ଯାନିଆଣୀ ।

ଯାନିଯାତ୍ରା—ଗ୍ରା. ବି. (ସହଚର) ବ୍ରତ-ଉତ୍ସବ, ପୁଣ୍ୟପର୍ବ, ଦେବତାମାନଙ୍କର ଉତ୍ସବାଦି,ଦେବଙ୍କଉତ୍ସବ ଓ ଶୋଭାଯାତ୍ରା

ଯାନିଯୌତୁକ—ଗ୍ରା. ବି. (ସହଚର)ବନ୍ଧୁ-ବନ୍ଧୁ ଉପଢୌକନ, ବିବାହରେ ପ୍ରାପ୍ତ ସମ୍ପତ୍ତି ।

ଯାନ୍ତ—ପ୍ରା. (ସିଂହଭୂମ ଓ ଉତ୍ତରବାଲେଶ୍ୱର)ବି.ଗୁଆକାତି,(ଗ୍ରା.କ୍ରି)ଯିବାଯିବାର ଉଦ୍ୟମପ୍ରବୃତ୍ତ ବର୍ତ୍ତମାନ ।

ଯାନ୍ତ୍ରିକ—ତ୍ରି. ବିଂ. (ଯନ୍ତ୍ର+ଇକ) ଯନ୍ତ୍ର-ସମ୍ବନ୍ଧୀୟ, ଯନ୍ତ୍ରବିଶାରଦ ।

ଯାନୀ—ପୁଂ.ବିଂ.(ଯାନ+ଇନ୍)ଯାନବାହ ଦେଖ, (ସ୍ତ୍ରୀ) ଯାନିନୀ ।

ଯାନ୍ୟ—ପୁଂ.ବିଂ. (ଯାନ+ଯ)ଯାନବାହକ (ସ୍ତ୍ରୀ) ଯାନ୍ୟା ।

ଯାପକ—ପୁଂ. ବିଂ. (ଯା+ଣିଚ୍+କ.ଅକ)ଯେ ଗତକରାଏ,ଯାତା,(ସ୍ତ୍ରୀ)ଯାପିକା

ଯାପଟା—ଗ୍ରା.ବି.(ସଂ-ଯୃପ) ଦୃଢ଼ଭାବରେ ବାହୁରେ ଧରିବା, ଚାପିଧରିବା ।

ଯାପଟିବା(ଇତ୍ୟାଦି)—ଗ୍ରା.କ୍ରି. (ସଂ-ଯୃପ) ଜାପଟିବା (ଇତ୍ୟାଦି) ଦେଖ ।

ଯାପନ—କ୍ଳୀ. ବି. (ଯା+ଣିଚ୍+ଭା.ଅନ) ଅନ୍ୟକୁ ଗତ କରାଇବା, ଚଳାଇବା, କାଳକ୍ଷେପଣ, ସମୟ କଟାଇବା, ନିରସନ, ଦୂରୀକରଣ, ଉପଶାନ୍ତକରଣ, ରୋଗର ଦୂରୀକରଣ, ବିଳମ୍ବ, ବୃଥା କାଳକ୍ଷେପଣ,ଭରଣପୋଷଣ,ଅଭ୍ୟସନ, ନାକେଇବା ।

ଯାପନକରିବା—ଗ୍ରା.କ୍ରି.କଟାଇବା,(ସମୟ) ଅତିବାହନ କରିବା ।

ଯାପନା—ବି. (ଯା+ଣିଚ୍+ଭା.ଅନ+ଆ)ଯାପନ ଦେଖ, ( ଭା.ଅନ+ଆ ) ବ୍ୟବହାର, ଜୀବିକା ନିର୍ବାହ ସକାଶେ କୌଣସି ବ୍ୟକ୍ତିଙ୍କୁ ଦିଆଯିବା ଧନ ।

ଯାପନୀୟ—ତ୍ରି. ବିଂ.(ଯା.+ଣିଚ୍+ର୍ମ. ଅନୀୟ) କ୍ଷେପଣୀୟ,(ସ୍ତ୍ରୀ)ଯାପନୀୟା ।

ଯାପି(ଧାତୁ)—( ଯା + ଣିଚ୍ ); (କାଳ) କ୍ଷେପଣକରିବା, ଚଳାଇବା, ଗତ-କରାଇବା, ଡେରିବା ।

ଯାପିତ—ତ୍ରି. ବିଂ. (ଯାପି + ଣିଚ୍ + ର୍ମ. ତ) ଅତିବାହିତ (ସମୟ), ଅପସାରିତ, ଦୂରୀକୃତ, (ସ୍ତ୍ରୀ) ଯାପିତା ।

ଯାପିବା—ଗ୍ରା.କ୍ରି.(ସଂ-ଯାପିଧାତୁ) (କାଳ) ଯାପନକରିବା, ଗୃପିବା ।

ଯାପ୍ତା—ସ୍ତ୍ରୀ. ବି.( ଯାପି+ର୍ମ.ତ+ଆ ) ଜଟା ।

ଯାପ୍ୟ—ତ୍ରି.ବିଂ. (ଯାପି+ଣିଚ୍+ର୍ମ.ଯ) ଅଧମ,ନିନ୍ଦନୀୟ,ଦ୍ୱେଷ୍ୟ,ଘୃଣ୍ୟ,ଯାପନୀୟ, ଅତିବାହନୀୟ,ଗୋପନୀୟ,ଆବରଣୀୟ, ତାଡ଼ନୀୟ, ନଗଣ୍ୟ, (ସ୍ତ୍ରୀ) ଯାପ୍ୟା ।

ଯାପ୍ୟଯାନ—କ୍ଳୀ. ବି. (ଯାପ୍ୟ + ଯାନ) ଶିବିକା, ଡୋଲି, ଖଟିଆ ।

ଯାବ—ପୁଂ.ବିଂ.(ଯବ + ଅ)ଯବସମ୍ବନ୍ଧୀୟ, ବି. (ଯୁ + ର୍ମ.ଅ) ଅଲକ୍ତକ, ଅଳତା, ଯବାଗୁ, ଯାଉ,ଗବାଦିଙ୍କଖାଦ୍ୟ,ପିଡ଼ଆ-ମିଶା କୁଟା,ଯବଧାନର ଛତୁଆ, ଲୁଖ ।

ଯାବକ—ପୁଂ. ବି. (ଯବ + ସ୍ୱାର୍ଥେ.କ) ଅଲକ୍ତକ, ଅଳତା, ଅପକ୍ୱଯବ,ତୁଷ-ହୀନ ଯବ, ମୁଦ୍ଗବିଶେଷ, ମାଷ, ଗ୍ରୀହି, କୁଳତ୍ଥ, ଦାଲିଅଧାନ, ଯବାନ୍ନ, ଯବ-ଛତୁଆ, ଲଖ ।

ଯାବକ୍ଷାର— ବିଂ. (ଯବକ୍ଷାର+ଅ)ଯବ-କ୍ଷାରସମ୍ବନ୍ଧୀୟ । [ ଯାନ ।

ଯାବକ୍ଷାରଘ୍ନ—ବି. (ଆଧୁନିକ)-ଯବକ୍ଷାର-

ଯାବଚ୍ଚନ୍ଦ୍ରଦିବାକର—କ୍ରି.ବିଂ.(ଅବ୍ୟୟୀ-ଭାବ); ଚନ୍ଦ୍ରସୂର୍ଯ୍ୟ ଥିବା ପର୍ଯ୍ୟନ୍ତ,ପୃଥି-ବୀର ଶେଷପର୍ଯ୍ୟନ୍ତ, ଚିରକାଳପାଇଁ ।

ଯାବଚ୍ଚନ୍ଦ୍ରାର୍କେ—ଗ୍ରା.କ୍ରି.ବିଂ. ଚିରକାଳ-ପାଇଁ ।

ଯାବଚ୍ଛ(ତ)—ଗ୍ରା.କ୍ରି.ବିଂ. ଯଥେଚ୍ଛା ତା ଦେଖ, ଅତ୍ୟନ୍ତ, ନେଜାଏ ।

ଯାବଚ୍ଛକ୍ୟ—ଅବ୍ୟ. ଯଥାଶକ୍ତି, ଯେପରି ସାମର୍ଥ୍ୟ ।

ଯାବଚ୍ଛକ୍ତି—କ୍ରି.ବିଂ. ( ଯାବତ୍+ଶକ୍ତି ) ଯେତେଦୂରପର୍ଯ୍ୟନ୍ତ ବଳ ଅଛି ସେ ପର୍ଯ୍ୟନ୍ତ ।

ଯାବଚ୍ଛସ୍ତ୍ର—ଅବ୍ୟ. ଯେତେଦୂର ପର୍ଯ୍ୟନ୍ତ ଶସ୍ତ୍ର ଯାଏ ।

ଯାବଚ୍ଛେଷ—ଅବ୍ୟ. ଯାହା ଅବଶିଷ୍ଟ ଅଛି ।

ଯାବଚ୍ଛ୍ରେଷ୍ଠ—ତ୍ରି. ବିଂ. ଅତି ଉତ୍କୃଷ୍ଟ, ଯେତେଦୂର ଉତ୍କୃଷ୍ଟ ହୋଇପାରେ ।

ଯାବଜ୍ଜନ୍ମ—ଅବ୍ୟ. ଆଜୀବନ ।

ଯାବଜ୍ଜୀବ—ଅବ୍ୟ. (ଅବ୍ୟୟୀଭାବ);ଆମରଣ, ଆଜୀବନ,ବଞ୍ଚିଥିବା କାଳଯାଏ ।

ଯାବଜ୍ଜୀବକାରାଦଣ୍ଡ—ବି. ( ଆଧୁନିକ ); ବଞ୍ଚିଥିବା ପର୍ଯ୍ୟନ୍ତ ଜେଲ୍‌ଖାନାରେ ରହିବା ଦଣ୍ଡ ।

ଯାବଜ୍ଜୀବଦ୍ୱୀପାନ୍ତର—ବି. ( ଆଧୁନିକ );

ବନ୍ଦୀଥିବା ଯାଙ୍କେ କଳାପାଣି ବା ଅଣ୍ଡାମାନ୍ ଦ୍ୱୀପରେ ନିର୍ବାସନ ଦଣ୍ଡ ।

ଯାବଜ୍ଜୀବନ-ଅବ୍ୟ.ବା ବି.ବିଂ. (ଅବ୍ୟୟୀଭାବ); ଆଜୀବନ, ଜୀବନ କାଳପର୍ଯ୍ୟନ୍ତ

ଯାବଡ଼ରେ—ଗ୍ରା.ବି. ବିଂ. ( ସଂ-ଗୃପ ) ଶୀଘ୍ରଗତିରେ, ଦ୍ରୁତବେଗରେ, ଦଣ୍ଡରୂପେ, ଘନଭାବରେ, ଦୃଢ଼ଭାବରେ ।

ଯାବତ୍—ଅବ୍ୟ. (ଯଦ୍+ବତୁ)ଯେତେଦିନଯାଏ,ଯେତେକ୍ଷଣ ପର୍ଯ୍ୟନ୍ତ;ଯେତେ ସଂଖ୍ୟା ପର୍ଯ୍ୟନ୍ତ, ଯେତେକ ପରିମାଣ ପର୍ଯ୍ୟନ୍ତ,ଯେତେ ଆକାର ବା ଦୈର୍ଘ୍ୟପର୍ଯ୍ୟନ୍ତ, ଯେତେବଡ଼, ଯେତେକ, ସମୁଦାୟ, ଯାହାଁତକ, ଯେତେଦୂର ପର୍ଯ୍ୟନ୍ତ,ଯେଉଁ କ୍ଷଣିକା,ଯଦା, ଯେବେ, ଅବଧାରଣ, ପ୍ରଶଂସା, ସାକଲ୍ୟ, ପରିଚ୍ଛେଦ, ସମସ୍ତତ, ସ୍ଥାନର ବା ସଂଖ୍ୟାର ସୀମା ପର୍ଯ୍ୟନ୍ତ, ମାପ, ସମ୍ଭ୍ରମ, ପରିମାଣ, ପକ୍ଷାନ୍ତର, ଅଧିକାର, (ସର୍ବନାମ)ସମସ୍ତ, (ବିଂ) ଯେତେ, ଯେଉଁ ପରିମାଣରେ, ଯେତେବେଳି, ଯେତେବଡ଼,ସମୁଦାୟ (ଗ୍ରା.ବି) ସୀମା, (ସ୍ତ୍ରୀ) ଯାବତୀ ।

ଯାବନ୍ତକପାଳ—ଅବ୍ୟ. ପାହାନୁରୂପ

ଯାବତ୍କାଳ—ଅବ୍ୟ. ଯେତେଦିନ ପର୍ଯ୍ୟନ୍ତ, ଯାହାଁତକ୍ ।

ଯାବତ୍କୃତ୍ୟସ୍—ଅବ୍ୟ. ଯେତେବାର ଇଚ୍ଛା ତେତେବାର ।

ଯାବତ୍ପରିମାଣ-ଅବ୍ୟ. ଯେତେ ପରିମାଣ

ଯାବତ୍ପରିମିତ—ବିଂ, ଯେତେ ପରିମାଣବିଶିଷ୍ଟ ।

ଯାବତ୍ପ୍ରମାଣ—ବିଂ. ଅମୁକପରି ବଡ଼, ଯେତେ ପ୍ରମାଣ ଥାଏ ସେସବୁ ।

ଯାବତ୍ସମ୍ଭବ—ଅବ୍ୟ. ଯଥାବଳ, ଯଥାଶକ୍ତି

ଯାବତ—ଗ୍ରା.ଅବ୍ୟ. (ସଂ-ଯାବତ୍)ଯାବତ୍ ଦେଖ, ଯାକେ, ଯାଏ, ପର୍ଯ୍ୟନ୍ତ,(ବିଂ) ସମୁଦାୟ ।

ଯାବତୀୟ—ବି. ବିଂ.( ଯାବତ+ଇୟ ) ଯାବତ୍ପରିମିତ ।

ଯାବତୀୟ—ବି.ବିଂ. ( ଯାବତ୍+ଈୟ ) ସମୁଦାୟ, ପ୍ରତ୍ୟେକ ପ୍ରକାରର, (ସ୍ତ୍ରୀ) ଯାବତୀୟା ।

ଯାବତ୍ତାବତ୍—ଅବ୍ୟ.(ଯାବତ୍+ତାବତ୍) ଯେତେ ପରିମାଣ ତେତେ,(ବୀଜଗଣିତ) ଅଜ୍ଞାତ ରାଶିର ସହିତ ତାହାର ଗୁଣନୀୟକର ସମ୍ବନ୍ଧ,(ଗ୍ରା.ବି.ବିଂ) ଯାବତ୍ତାବତ୍ କର ।

ଯାବତ୍ତାବତ୍କର—ଗ୍ରା.ବି. ବିଂ. ଯେକୌଣସି ପ୍ରକାରେ, ଅତି କଷ୍ଟରେ ।

ଯାବଦନ୍ତ—ଅବ୍ୟ. ( ଯାବତ୍+ଅନ୍ତ ) ଶେଷପର୍ଯ୍ୟନ୍ତ, ଯେପର୍ଯ୍ୟନ୍ତ ଶେଷ ।

ଯାବଦର୍ଥ—ଅବ୍ୟ. ( ଯାବତ୍+ଅର୍ଥ ) ଯେତକ ଲୋଡ଼ା ସେତକ, ସବୁଅର୍ଥରେ ।

ଯାବଦହ—ଅବ୍ୟ. ଯେରୂପଦାନ ।

ଯାବଦାଭୂତସ୍ପ୍ଲବ—ଅବ୍ୟ. ପ୍ରଳୟ କାଳ ପର୍ଯ୍ୟନ୍ତ ।

ଯାବଦାୟୁଃ—ଅବ୍ୟ. ଆଜୀବନ ।

ଯାବଦିଷ୍ଟ—ଅବ୍ୟ. ( ଯାବତ୍+ଇଷ୍ଟ ) ଯେତକ ଲୋଡ଼ା ସେତକ ।

ଯାବଦୀପ୍ସିତ-ଅବ୍ୟ.(ଯାବତ୍+ଈପ୍ସିତ) ଯେତକ ଇଚ୍ଛା ସେତକ ।

ଯାବଦୁକ୍ତ—ଅବ୍ୟ. ( ଯାବତ୍+ଉକ୍ତ ) ଯେତକ କୁହାଯାଇଅଛି ସେତକ ।

ଯାବଦୁତ୍ତମ—ଅବ୍ୟ. ଶେଷସୀମାପର୍ଯ୍ୟନ୍ତ

ଯାବଦ୍ଦେଶ—ବି.ବିଂ.(ଯାବତ୍+ଦେଶ) ସର୍ବତ୍ର ।

ଯାବଦ୍ବେଦ-ଅବ୍ୟ.ଯେତେଦୂର ଜଣାଅଛି

ଯାବଦ୍ବ୍ୟାପ୍ତି—ଅବ୍ୟ. ଶେଷସୀମାପର୍ଯ୍ୟନ୍ତ

ଯାବନ—ବି.ବିଂ. (ଯବନ+ଅ)ଯବନସମ୍ବନ୍ଧୀୟ,ଗ୍ରୀକ୍, ଆୟୋନୀୟ.(ବି)ଗନ୍ଧଦ୍ରବ୍ୟବିଶେଷ,ଲୋବାନ୍ (ଯୁ+ଣିଚ୍+ଭା.ଅନ) ମିଶ୍ରଣ,ମିଶାଇବା,(ସ୍ତ୍ରୀ)ଯାବନୀ

ଯାବନକ—ପୁଂ.ବି. ରକ୍ତ ଏରଣ୍ଡ, ରଙ୍ଗ ନଡ଼ା ।

ଯାବନକଳ୍ପ—ପୁଂ.ବି. ଶିଳାରସ ।

ଯାବନାଳ—ପୁଂ.ବି. ( ଯବନାଳ+ଅ ) ଜୁଆରି, ଜନର ଦେଖ, ଏକପ୍ରକାର ଶରତୃଣ, ଶିମ୍ବିଧାନ୍ୟ, ମକ୍କା ଓ ଜୁଆରି, (ତା)ମକ୍କଶୋଲମ୍,(ତେ)ମକ୍କା,ଜୋନ୍ନଲୁ

ଯାବନାଳନିଭ—ପୁଂ.ବି. ଯାବନାଳ ।

ଯାବନାଳରସଜଗୁଡ଼—ପୁଂ.ବି.ଯାବନାଳ ରସଯୁକ୍ତ ଗୁଡ଼ ।

ଯାବନାଳଶର—ପୁଂ. ବି. ଶରବିଶେଷ, ନଧୀଜ,ଦୃଢ଼ତ୍ୱକ୍,ବାଣସମ୍ଭବ,ଖରପତ୍ର ।

ଯାବନାଳଶର୍କରା— ବି. ଯାବନାଳରୁ ପ୍ରସ୍ତୁତ ଚିନି ।

ଯାବନାଳୀ—ସ୍ତ୍ରୀ. ବି. ଯାବନାଳ ଶର୍କରା, ଯାବନାଳଚିନି, ହିମୋପଳା, ହିମାଣି, ହିମଶର୍କରା ।

ଯାବନିକ—ବିଂ. (ଯବନ+ଇକ) ଯବନ ସମ୍ବନ୍ଧୀୟ ।

ଯାବନୀ—ସ୍ତ୍ରୀ. ବି. (ଯାବନ+ଈ) ଯାବନର ସ୍ତ୍ରୀଲିଙ୍ଗ, (ବି) ଖୁରସାନୀ ଜୁଆଣି, ରସାଳଇକ୍ଷୁ, କରଙ୍କଶାଳୀଇକ୍ଷୁ ।

ଯାବନ୍ତ—ଗ୍ରା.ଅବ୍ୟ. (ସଂ-ଯାବତ୍)ଯାବତ୍ ଦେଖ, ଯେତେକାଳ ପର୍ଯ୍ୟନ୍ତ, ସମୁଦାୟ । [ କ୍ଷୁଦ୍ର ।

ଯାବନ୍ମାତ୍ର—ବି.ବିଂ.ମାତ୍ରାନୁରୂପ,ସାମାନ୍ୟ,

ଯାବଶୂକ—ପୁଂ. ବି. (ଯବଶୂକ+ସ୍ୱାର୍ଥେ ଅ) ଯବକ୍ଷାର, ସୋରା ।

ଯାବସ—ବି. (ଯବସ+ଅ) ଘାସଗଦା, ନଡ଼ା, କୁଟା, ରନ୍ଧାହୋଇ ନ ଥିବା ଖାଦ୍ୟସାମଗ୍ରୀ ।

ଯାବା(ଭା)—ଗ୍ରା. ବି. ଯବଦ୍ୱୀପ,ଭାରତୀୟ ଦ୍ୱୀପପୁଞ୍ଜର ଏକତମ ।

ଯାବା(ଭା)ଉପସାଗର—ଗ୍ରା.ବି. ବର୍ଣ୍ଣିଓ ଓ ଯାବାଦ୍ୱୀପ ମଧ୍ୟସ୍ଥ ଉପସାଗର ।

ଯାବାସ—ବି.ବିଂ. ଯବାସବିକାର,ଯବାସର ଅବୟବ । [ ଲତା ।

ଯାବ(ବୀ)—ସ୍ତ୍ରୀ. ବି. ଚଙ୍ଗିନୀ, ଯବତିକ୍ତା

ଯାବକ—ପୁଂ. ବି. ଯାବନାଳ, ମକ୍କା ।

ଯାବ(ବେ)ତା(ଇତ୍ୟାଦି)—(ଗ୍ରା.ଓ ପ୍ରା.)ବି. ଜାବତ ଇତ୍ୟାଦି ଦେଖ ।

ଯାଶା—ବି. ଯବତିକ୍ତା,ଭଦ୍ରତିକ୍ତା ଦେଖ, ଶଙ୍ଖିନୀ ଦେଖ । [ ରୋଗ ।

ଯାକ୍କୁ—ପ୍ରା. (ଗଞ୍ଜାମ) ବି. (ତେ, ଯାବୁ)

ଯାବ୍ୟ—ବି. ବିଂ. (ଯୁ+ର୍ମି.ଯ)ମିଶ୍ରଣୀୟ, ଯୋଜନୀୟ, ଯବକ୍ଷାର ।

ଯାଭ—ପୁଂ. ବି. (ଯଭ୍+ଭା.ଅ) ଜମ୍ଭକ,

ମୈଥୁନ, ରମଣ, ସୁରତକ୍ରିୟା ।
ଯାମ—ପୁଂ. ବ. (ଯା+କ.ମ) ଅହୋରାତ୍ରର ଏକଅଷ୍ଟମାଂଶ, ପ୍ରହର,୩ଘଣ୍ଟା କାଳ, (ଯମ+ଭା.ଅ) ସଂଯମ, ଜିତେନ୍ଦ୍ରିୟତା, ନିବୃତ୍ତି, (ଯା+କ.ମ) ସମୟ, (ଯମ+ର୍ମ.ଅ) ସମୟର ସୀମା,ମିଆଦ. (ଯା+କ.ମ)ଦେବଗଣବିଶେଷ,(ଯା+ଭା.ମ) ଗତ,ଗମନ, (ଯା+ଣ.ମ)ଯାନ, (ବିଂ-ଯମ୍+ଅ) ଯମସମ୍ବନ୍ଧୀୟ, (ଗ୍ରା.ବ) ଡାହାଣ ।
ଯାମଜ—ପୁଂ. ବ. ପୁନର୍ବସୁ ନକ୍ଷତ୍ର ।
ଯାମକିନୀ—ସ୍ତ୍ରୀ. ବ. (ଯାମ+କ+ଇନ୍+ଈ) କୁଳସ୍ତ୍ରୀ, ପୁତ୍ରବଧୂ, ଭଗିନୀ ।
ଯାମ(ମୁ)କୁଣ୍ଡା(ଣ୍ଡ)—ଗ୍ରା.ବ.ସୁବର୍ଣ୍ଣରେଖା ନଦୀର ଦକ୍ଷିଣ ତୀରରେ ଅବସ୍ଥିତ ବାଲେଶ୍ୱର ଜିଲ୍ଲାର ଗୋଟିଏ ପ୍ରାଚୀନ ଜମିଦାରୀ ।
ଯାମକୋଶ—ବି. ବିଂ. ମାର୍ଗପ୍ରତିବନ୍ଧକ (ରାକ୍ଷସ), ପଥ ପ୍ରତିରୋଧକ (ରାକ୍ଷସ) ।
ଯାମଘୋଷ—ପୁଂ. ବ. (ଉପ ବା ବ.ବ୍ରୀ) କୁକ୍କୁଟ, ଶୃଗାଳ, ଘଟିକାଯନ୍ତ୍ର, ପଟହବିଶେଷ, ଘଣ୍ଟା, (ସ୍ତ୍ରୀ) ଯାମଘୋଷା ।
ଯାମଘୋଷା—ସ୍ତ୍ରୀ.ବ.ଘଟିକାଯନ୍ତ୍ର,ବାଜିବା ଘଣ୍ଟା, ପିଟାଘଣ୍ଟା, ପଟହବିଶେଷ ।
ଯାମତୂର୍ଯ୍ୟ—କ୍ଳୀ. ବ. ଯାମଜ୍ଞାପକ ତୂର୍ଯ୍ୟଧ୍ୱନି ।
ଯାମଦୁନ୍ଦୁଭି—ପୁଂ.ବ.ବାଦ୍ୟଯନ୍ତ୍ରବିଶେଷ ।
ଯାମଦୂତ—ପୁଂ.ବ.ବର୍ଣ ବା କୁଳବିଶେଷ ।
ଯାମନ୍—କ୍ଳୀ. ବ. ଗମନ, ଗତ ।
ଯାମନ—ବି. ବିଂ. ଗତ, ଗମନ ।
ଯାମନାଳୀ—ସ୍ତ୍ରୀ.ବ. ଯାମଘୋଷା,ଘଟିକା ଯନ୍ତ୍ର ।
ଯାମନେମ—ପୁଂ. ବ. (ବ.ବ୍ରୀ) ଇନ୍ଦ୍ର ।
ଯାମବତୀ—ସ୍ତ୍ରୀ. ବ. (ଯାମ+ବତୁ+ଈ) ଯାମିନୀ, ରଜନୀ, ରାତ୍ରି ।
ଯାମବୃତ୍ତି—ସ୍ତ୍ରୀ. ବ. ପ୍ରହରୀ ।
ଯାମଯମ—ପୁଂ. ବ. ଚତୁଷ୍କାଳ କ୍ରୀଡ଼ାନିୟମ ।
ଯାମରଥ—କ୍ଳୀ. ବ. ଯମବ୍ରତ ।
ଯାମଲ—ପୁଂ. ବ. (ଯମଲ+ସ୍ୱାର୍ଥେ.ଅ) ଯୋଡ଼ା, ଯମକସନ୍ତାନ ଦ୍ୱୟ, ତନ୍ତ୍ରଶାସ୍ତ୍ର ବିଶେଷ, (ସ୍ତ୍ରୀ) ଯାମଳା ।
ଯାମଲା—ଗ୍ରା.ବି. ଯମଲ ଦେଖ,ଯାମଲାର୍ଜ୍ଜୁନ ଦେଖ, (ଗ୍ରା.ବିଂ) ଯୋଡ଼ିହୋଇ ଜନ୍ମିଥିବା, ଯୋଡ଼ିକିଆ ।
ଯାମଲାର୍ଜ୍ଜୁନ—ବି. ଯମଲାର୍ଜ୍ଜୁନ ଦେଖ ।
ଯାମଲାୟନ—ପୁଂ.ବ. ଯମଲଙ୍କ ଗୋତ୍ରାପତ୍ୟ ।
ଯାମଶ୍ରୁତ—ବି. ବିଂ. ଶୀଘ୍ରଗମନ ଦ୍ୱାରା ବିଶ୍ରୁତ ।
ଯାମହୂ—ବି. ବିଂ. ଗମନାର୍ଥ ଆହ୍ୱାନ ଯୋଗ୍ୟ, ଯଥା ସମସ୍ତେ ଆହୂତ ।
ଯାମହୂତ—ସ୍ତ୍ରୀ. ବ. ଯଜ୍ଞ ।
ଯାମାତା—ପୁଂ. ବ. (ଜାୟା+ମା+କ.ତୃ) ଜାମାତା ଦେଖ, ଦୁହିତୃପତି ।
ଯାମାତୃକ—ପୁଂ. ବ. ଜୁଆଇଁ ।
ଯାମାୟନ—ବ. ଓ ବିଂ (ଯମ+ଅୟନ) ଯମଙ୍କ ଗୋତ୍ରଜ (ବ୍ୟକ୍ତି) ।
ଯାମାର୍ଦ୍ଧ—ବି. ବିଂ. (୬ତତ୍) ଅର୍ଦ୍ଧପ୍ରହର ବା ଦେଢ଼ଘଣ୍ଟା ସମୟ ।
ଯାମି—ସ୍ତ୍ରୀ. ବ. (ଯା+କ.ମି) ଭଗିନୀ, ଝିଅ, କୁଳସ୍ତ୍ରୀ, ବଧୂ, ଧର୍ମପରାୟଣା ସ୍ତ୍ରୀ, ଧର୍ମଙ୍କ ପତ୍ନୀବିଶେଷ, ଦକ୍ଷଦୁହିତା ଓ ନାଗବୀଥିଙ୍କ ମାତା, (ଯାମ+ଇ) ରାତ୍ରି, ନିଶା,(ଯମ+ଇ)ଦକ୍ଷିଣଦିଗ,(ବୈଦିକ) ଯାଚ୍ଞା, (ପ୍ରା. ସମ୍ବ. ବି) (ମୁଁ) ଯିବି ।
ଯାମିକ—ବି. ବିଂ. (ଯାମ+ଇକ) ଯାମ ବା ପ୍ରହର ସମ୍ବନ୍ଧୀୟ, ପ୍ରହରକ ପାଇଁ ନିଯୁକ୍ତ, (ପୁଂ.ବ)ପ୍ରହରୀ,ରାତିଜଗୁଆଳି ।
ଯାମିକଭଟ--ପୁଂ.ବ.ପ୍ରହରୀ,ଚୌକିଦାର ।
ଯାମିକା—ସ୍ତ୍ରୀ.ବ.(ଯାମ+କ+ଆ)ଯାମିନୀ, ରାତ୍ରି, ହଳଦି ।
ଯାମିକାପତି—ବ.(୬ତତ୍)ଚନ୍ଦ୍ର,କର୍ପୂର ।
ଯାମିତ୍ର—କ୍ଳୀ.ବ. (ଯାମି+ତ୍ରୈ+କ.ଅ) ଜାମିତ୍ର ଇତ୍ୟାଦି ଦେଖ, ଲଗ୍ନର ସପ୍ତମ ରାଶି ।
ଯାମିତ୍ରଯୁତବେଧ—ଚନ୍ଦ୍ର ପାପଗ୍ରହର ସପ୍ତମ ହେଲେ ଯାମିତ୍ରବେଧ ଓ ପାପଯୁକ୍ତ ହେଲେ ଯୁତବେଧ ହୁଏ ।
ଯାମିତ୍ରବେଧ—ପୁଂ. ବ. କର୍ମକାଳୀନ ରାଶିର ସପ୍ତମେ ରବି, ଶନି ଓ ମଙ୍ଗଳ ଥିଲେ ଯାମିତ୍ରବେଧ ହୁଏ ।
ଯାମିତ୍ରବେଧପ୍ରତିପ୍ରସବ—ବି. (ଫଳିତଜ୍ୟୋତିଷ) ଯାମିତ୍ରବେଧ ଘଟିଲେ ଓ ଚନ୍ଦ୍ର ବୃଷରାଶିରେ କିମ୍ବା ପୂର୍ଣ୍ଣ ଅଥବା ମିତ୍ର ଗ୍ରହର ବା ଶୁଭଗ୍ରହର ଗୃହରେ ଥିଲେ କିମ୍ବା ମିତ୍ରଗ୍ରହ ବା ଶୁଭଗ୍ରହ କର୍ତ୍ତୃକ ଦୃଷ୍ଟ ହେଉଥିଲେ ଯାମିତ୍ରବେଧ ଦୋଷ ବିନାଶ କରି ଚନ୍ଦ୍ରଙ୍କର ସୁଖଦ ହେବା ଅବସ୍ଥା ।
ଯାମିତ୍ରସ୍ଥ--ବିଂ.(ଜ୍ୟୋତିଷ)ରାଶିଚକ୍ରରେ ଲଗ୍ନଠାରୁ ୭ମ ସ୍ଥାନରେ ସ୍ଥିତ (ଗ୍ରହ) ।
ଯାମିନୀ—ସ୍ତ୍ରୀ. ବ. (ଯାମ+ଇନ୍+ଈ) ରାତ୍ରି, ନିଶା, ହରିଦ୍ରା, ହଳଦୀ ।
ଯାମିନୀକାନ୍ତ—ବ. (୬ତତ୍) ନିଶାନାଥ, ଚନ୍ଦ୍ର, କର୍ପୂର, (ଗ୍ରା.ପୁଂ.ବ.) ଲୋକଙ୍କ ନାମ ।
ଯାମିନୀଚର—ପୁଂ.ବିଂ.(ଯାମିନୀ+ଚର୍+କ.ଅ) ରାତ୍ରିବିଚରଣକାରୀ, ନିଶାଚର, (ବ) ରାକ୍ଷସ,ପେଚା,ନିଶାଚର,ଗୁଗୁଲୁ ।
ଯାମିନୀପତି—ପୁଂ. ବ. (୬ତତ୍) ଚନ୍ଦ୍ର, କର୍ପୂର ।
ଯାମିନୀଭୂଷଣ—ପୁଂ. ବ.(୬ତତ୍),ନିଶାନାଥ, ଚନ୍ଦ୍ର ।
ଯାମିନୀଭୂଷଣରାୟ--କଲିକତାର ବିଖ୍ୟାତ କବିରାଜୀଚିକିତ୍ସକ ଓ ଅଷ୍ଟାଙ୍ଗଆୟୁର୍ବେଦ କଲେଜର ପ୍ରତିଷ୍ଠାତା ।
ଯାମିନୀଯୋଗେ—ଗ୍ରା. ବି. ବିଂ. ନିଶାଯୋଗେ, ରାତ୍ରିରେ, ରାତହୋଇଥିବାରୁ ସୁବିଧା ପାଇଥିବାରୁ ।
ଯାମୀ—ସ୍ତ୍ରୀ. ବ. (ଯମ+ଅ.ଈ) ଯାମି ଦେଖ, ଦକ୍ଷିଣଦିଗ,ନରକଯନ୍ତ୍ରଣା,ଦ୍ୱିଜା ଓ ଭରଣୀନକ୍ଷତ୍ର,କୁଳସ୍ତ୍ରୀ,ଧର୍ମପତ୍ନୀ,(ବିଂ) ଯମସମ୍ବନ୍ଧୀୟ ।
ଯାମୀର—ପୁଂ. ବ. (ଯାମୀ+ରା+ଅ) ଚନ୍ଦ୍ର, ରାତ୍ରି ।
ଯାମୀରା—ବ. (ଯାମୀର+ଆ) ରାତ୍ରି ।

**ଯାମୁନ**—ବି. ବଂ.(ଯମୁନା+ଅ)ଯମୁନା ସମ୍ବନ୍ଧୀୟ,(କ୍ଳୀ.ବ) ରସାଞ୍ଜନ, କଜ୍ଜଳ, ସୀସକ,ସୀସା, (ପୁଂ) ଯମୁନାକୂଳବାସୀ ବ୍ୟକ୍ତି,(ଗ୍ରା.ବ)ଜଣେ ବୈଷ୍ଣବ ଆଚାର୍ଯ୍ୟ, (ସ୍ତ୍ରୀ) ଯାମୁନୀ ।

**ଯାମୁନଗିରି**—ବ.ପର୍ବତବିଶେଷ,କଳନ୍ଦଗିରି, ଯମୁନାନଦୀର ଉତ୍ପତ୍ତି-ପର୍ବତ ।

**ଯାମୁନେଷ୍ଟକ**—କ୍ଳୀ.ବ.(ଯାମୁନ+ଇଷ୍ଟକ) ସୀସା, ସୀସକ ।

**ଯାମୃଛତ୍ରୁ**—ପ୍ରା. (ଜୟପୁର)ବ.ଏକପ୍ରକାର ଛତୁ ।

**ଯାମେୟ**—ପୁଂ. ବ. ( ଯାମୀ+ଏୟ ) ଭଣଜା, ଭଗିନେୟ,ଯାମିଙ୍କ ପୁତ୍ର,(ସ୍ତ୍ରୀ) ଯାମେୟୀ(ୟୀ) ।

**ଯାମୋତ୍ତର**—କ୍ଳୀ. ବ. ସାମବେଦାଂଶ ।

**ଯାମ୍ୟ-ସଂ**-ପୁଂ.ବ.(ଯମ+ଯ) ଯମରାଜାଧିକୃତ ଦିକ୍,ଦକ୍ଷିଣଦିଗ, ଯମଦୂତ,ଅଗସ୍ତ୍ୟ ମୁନି, (ଯା+କ.ମ୍ୟ) ଅନୁଚର, (ଯମି+ଯ) ତନୟ, ପୁତ୍ର, ଚନ୍ଦନ, ଶିବ, ବିଷ୍ଣୁ,ଦ୍ୱିତୀୟନକ୍ଷତ୍ର, (ବିଂ) ଦକ୍ଷିଣଦିକ୍ସମ୍ବନ୍ଧୀୟ, ଯମସମ୍ବନ୍ଧୀୟ, ଯମତୁଲ୍ୟ ।

**ଯାମ୍ୟଜ୍ୱର**—ପୁଂ. ବ. ବାତାଦି ସନ୍ନିପାତ ଜ୍ୱର ବିଶେଷ ।

**ଯାମ୍ୟତୀର୍ଥ**—କ୍ଳୀ. ବ. ତୀର୍ଥବିଶେଷ ।

**ଯାମ୍ୟଦିଗ୍‌ଭବା**—ସ୍ତ୍ରୀ. ବ. ତମାଲପତ୍ରୀ ।

**ଯାମ୍ୟଦ୍ରୁମ**—ବ. ଶାଲ୍ମଳି ବୃକ୍ଷ ।

**ଯାମ୍ୟଧ୍ରୁବ**—ବ. ଦକ୍ଷିଣ ମେରୁଉପରେ ଥିବା ଧ୍ରୁବତାରା ।

**ଯାମ୍ୟବୃତ୍ତ**—ବ. କୁମେରୁ, ଦକ୍ଷିଣମେରୁ, କୁମେରୁବୃତ୍ତ ।

**ଯାମ୍ୟା**—ସ୍ତ୍ରୀ.ବ.(ଯାମ୍ୟ+ଆ)ଦକ୍ଷିଣଦିଗ, ଭରଣୀନକ୍ଷତ୍ର, ଯାମିନୀ, ରାତ୍ରି ।

**ଯାମ୍ୟାୟନ**—କ୍ଳୀ. ବ.(୬ତତ୍)ଦକ୍ଷିଣାୟନ

**ଯାମ୍ୟୋତ୍ତର**—ବିଂ. (ବ.ବ୍ରୀ) ଦକ୍ଷିଣରୁ ଉତ୍ତରକୁ ଯାଇଥିବା ।

**ଯାମ୍ୟୋତ୍ତରବୃତ୍ତ**—ବ. (ଆଧୁନିକ)ଯେଉଁ କାଳ୍ପନିକ ବୃତ୍ତ ଦର୍ଶକର ମସ୍ତକୋପରି ଯାଇ ଉଭୟମେରୁକୁ ସ୍ପର୍ଶକରିଅଛି ।

**ଯାମ୍ୟୋତ୍ତରରେଖା**—ଉତ୍ତର ଦକ୍ଷିଣ ଭୂବୃତ୍ତ ।

ଯାମ୍ୟୋଦ୍ଭୂତ—ପୁଂ.ବ.ଶ୍ରୀତାଳ ବୃକ୍ଷ ।

ଯାୟଜ୍(ଜୂ)—(ଯାୟଜ୍+କ.ଊ) ଇଜ୍ୟାଶୀଳ, ଯେ ପୁନଃ ପୁନଃ ଯାଗକରେ ।

ଯାୟଜୂକ--ପୁଂ.ବିଂ.(ଯାୟଜ୍+ଶୀଳାର୍ଥେଊକ)ପୁନଃ ପୁନଃ ଯାଗଶୀଳ,ଯେ ପୁନଃ ପୁନଃ ଯାଗକରେ ।

ଯାଯା(ଯାଃ)—ଗ୍ରା. ଅବ୍ୟ. ଦୂର୍‌ହୋ ।

ଯାଯାବର—ପୁଂ.ବିଂ.(ଯାଯା+କ.ବର) ସଦାଭ୍ରମଣକାରୀ, ( ବ ) ଅଶ୍ୱମେଧ ଘୋଡ଼ା,ଜରତ୍କାରୁମୁନି,ନିୟତଭ୍ରମଣକାରୀ ବାସଶୂନ୍ୟ ତାପସ, ସନ୍ୟାସୀ. ସାଗ୍ନିକବ୍ରାହ୍ମଣ,ପର୍ଯ୍ୟଟକ,ମୁନିମାନଙ୍କର ଗୋତ୍ରବିଶେଷ, ଯାତ୍ରୀ, (ଯାଯା+ଭ.ବର) ନିୟତଭ୍ରମଣକାରୀ ସାଧୁଙ୍କ ଜୀବନ, (ସ୍ତ୍ରୀ) ଯାଯାବରୀ ।

ଯାୟୀ—ପୁଂ. ବିଂ. ( ଯା+କ.ଇନ୍ ) ଗମନକାରୀ, ଗତଶୀଳ, ଯାନଚଢ଼ି ଗମନ କରୁଥିବା, ଅମୁକସ୍ଥାନକୁ ପଳାଇଥିବା (ରାସ୍ତା),(ସ୍ତ୍ରୀ.) ଯାୟିନୀ ।

ଯାର—ଗ୍ରା. ସର୍ବ. (ସଂ-ଯସ୍ୟ) ଯାହାର ।

ଯାରି—ଯା. ପ୍ରଚୁର ।

ଯାଶୁ—କ୍ଳୀ. ବ. ସମ୍ଭୋଗ ।

ଯାଶୋଧରେୟ--ପୁଂ.ବ.ଶାକ୍ୟମୁନିପୁତ୍ର ।

ଯାଶୋଭଦ୍ର--ପୁଂ.ବ.କର୍ମମାସର ୪ର୍ଥଦିନ ।

ଯାଷ୍ଟି(ଷ୍ଟୀ)କ—ପୁଂ. ବ.(ଯଷ୍ଟି+ଇକ) ଲଠିଆଳ, ଯଷ୍ଟିଧାରୀ ଯୋଦ୍ଧା, (ବିଂ) ଯଷ୍ଟିଧାରୀ, (ସ୍ତ୍ରୀ) ଯାଷ୍ଟୀକୀ ।

ଯାଷ୍ଟିମଧୁ(ହୁ)—ଗ୍ରା. ବ. (ସଂ-ଯଷ୍ଟିମଧୁ) ଯଷ୍ଟିମଧୁ ।

ଯାସ—ପୁଂ. ବ. (ଯସ୍+ଣ.ଅ)ରକ୍ତବର୍ଣ୍ଣ ଦୁରାଲଭା,(ଯସ୍+ଭ.ଅ)ଚେଷ୍ଟା,ଉଦ୍ୟମ ।

ଯାସଶର୍କରା—ସ୍ତ୍ରୀ. ବ. ଯବାସଶର୍କରା ।

ଯାସା—ସ୍ତ୍ରୀ. ବ. ଶାରିକ, ବଣିଚଢ଼େଇ, ମଦନଶାରିକା, କୋଇଲି, କୋକିଳ ।

ଯାସ୍କ—ପୁଂ.ବ. ଯସ୍କଙ୍କ ଗୋତ୍ରାପତ୍ୟ, ବେଦର ପ୍ରସିଦ୍ଧ ନିରୁକ୍ତକାର ।

ଯାସ୍କାୟନ—ପୁଂ.ବ.(ଯସ୍କ+ଆୟନ)ଯସ୍କ ଋଷିଙ୍କ ଗୋତ୍ରୋତ୍ପନ୍ନ ପୁରୁଷ, (ସ୍ତ୍ରୀ) ଯାସ୍କାୟନୀ ।

ଯାସ୍କୀୟ—ପୁଂ.ବ. ଯାସ୍କମତାବଲମ୍ବୀ ।

ଯାସ୍ୟନ୍ —ପୁଂ. ବିଂ. (ଯା+ଭବିଷ୍ୟତ୍ ଶତୃ) ଯେ ଯିବ, ଯାହାର ଯିବାକୁ ଅଛି, (ସ୍ତ୍ରୀ) ଯାସ୍ୟତୀ, ଯାସ୍ୟନ୍ତୀ ।

ଯାହ(ହେ)ଉ-ଗ୍ରା.ଅବ୍ୟ.ଯାହାହଉ ଦେଖ

ଯାହା-ଗ୍ରା.ସର୍ବ. (ସଂ-ଯତ୍‌ଶବ୍ଦ,କ୍ଳୀବଲିଙ୍ଗ) ଯେଉଁ ବିଷୟ ବା ବସ୍ତୁ,ଯାହାର,(ଅବ୍ୟ) ଯେ ।

ଯାହାଇ—ଗ୍ରା.ସର୍ବ, ଯାହି ଦେଖ ।

ଯାହାଁ —ଗ୍ରା.ସର୍ବ. (ହିନ୍ଦୀରୁ ଗୃହୀତ)ଯହିଁ, ଯେଉଁ ଠାରେ ।

ଯାହାଁତକ୍—ଯା.(ଫା. ଓ ହି.) ଯେତେପର୍ଯ୍ୟନ୍ତ, ଯେତେକାଳ ପର୍ଯ୍ୟନ୍ତ ।

ଯାହାକୁଇଚ୍ଛାତାହାକୁ( ତାକୁ )—ଗ୍ରା. (ବାକ୍ୟାଂଶ--ସହଚରଶବ୍ଦ) ଯାଇଚ୍ଛାତା ଦେଖ, ଯେଉଁ ବ୍ୟକ୍ତିକୁ ଇଚ୍ଛା ସେହି ବ୍ୟକ୍ତିକୁ ।

**ଯାହାକୁବୋଲି**—ଗ୍ରା. ବିଂ. ଅସାଧାରଣ, ବହୁ ମଧ୍ୟରେ ବିଶିଷ୍ଟ, ଉତ୍କୃଷ୍ଟ ।

**ଯାହାକୁଯେ**—ଗ୍ରା. ଅବ୍ୟ. ଯେଉଁ ବ୍ୟକ୍ତି ବା ବସ୍ତୁ ପ୍ରତି ଯେ ବା ଯାହା ଉପଯୁକ୍ତ ।

**ଯାହାକୁଯେତେ**—ଗ୍ରା. ସର୍ବ. ଯେତେ ଲୋଡ଼ା ତେତେ, ଯଥେଷ୍ଟ, ବହୁତ, ପ୍ରଚୁର ।

ଯାହା(ହିଁ)ତାହା(ହିଁ)କରି—ଗ୍ରା.କ୍ରି. ବିଂ. ଯେକୌଣସି ପ୍ରକାରେ ।

ଯାହା(ହ)ହ(ହେ)ଉ-ଗ୍ରା.ଅବ୍ୟ.ଯେଉଁହେତୁ, ପକ୍ଷାନ୍ତରରେ,ଯତ୍‌ସାମାନ୍ୟ,ଯେନତେନ ପ୍ରକାରରେ ।

ଯାହି—ଗ୍ରା.ସର୍ବ. (ସଂ-ଯତ୍+ହି)ଯହିଁ, ଯହିଁ, ଯାହାମାନ ।

ଯାହିଁ(ଇତ୍ୟାଦି)--ଯହିଁ ଇତ୍ୟାଦି ଦେଖ ।

ଯାହିଚ୍ଛାତା--ଗ୍ରା.ସର୍ବ.ଯାଇଚ୍ଛାତା ଦେଖ ।

ଯାହୁଁ(ଇତ୍ୟାଦି)--ଯହୁଁ ଇତ୍ୟାଦି ଦେଖ ।

ଯିଅ—ଗ୍ରା.ଅବ୍ୟ. (ସଂ-ଜୀବ) (ପିଲାମାନେ ଛିଙ୍କିଲେ ବଡ଼ମାନେ ଉଚ୍ଚାରଣ କରିବା ଆଶୀର୍ବାଦ) ତୁ ଚିରଞ୍ଜୀବୀ ହୋ ।

ଯିଅ(ହ)ଲ(ଇତ୍ୟାଦି)—ଯା. ବି. ଜେଲ୍

ଇତ୍ୟାଦି ଦେଖ ।
ଯିଆଡ—ଗ୍ରା.ଅବ୍ୟ. (ସଂ-ଯତ୍ର + ଜାତ୍ୟାସ୍ତୁ) ଯେଉଁପର ।
ଯିଆଡକା—ଗ୍ରା.ବିଂ. ଯେଉଁ ପ୍ରକାରର, ଯେଉଁପରକା, ଯେଉଁଜାତୀୟ ।
ଯିଉ—ଗ୍ରା.ବି. ଯିହୁଦୀ ଦେଖ ।
ଯିଏ—ଗ୍ରା.ସର୍ବ. ଯେ ଦେଖ ।
ଯିଙ୍ଗିତ—ଗ୍ରା.ବି. ଜଗର ଦେଖ ।
ଯିଧା(ଦା)—ଗ୍ରା.(ସମ୍ବ) ବିଂ. ଏକଜିଦିଆ ଲୋକ ।
ଯିବ—ଗ୍ରା.କ୍ରି. (ସେ ବା ତୁମ୍ଭେ) ଗମନ କରିବ, ଲୁପ୍ତହେବ ।
ଯିବା—ଗ୍ରା. କ୍ରି. ( ସଂ-ଯାଧାତୁ ) ଗମନ କରିବା, ସ୍ଥାନତ୍ୟାଗ କରିବା, ନଷ୍ଟ-ହେବା, (ରୋଗାଦି) ପ୍ରଶମିତ ହେବା, ଆରୋଗ୍ୟହେବା, ମୃତହେବା, ଅତୀତ-ହେବା, ସହବାସ କରିବା, ପରିଣତ ହେବା, ଅତିବୃଦ୍ଧିହେବା, ପ୍ରବେଶ କରିବା, ଦୂରୀଭୂତହେବା, ଅଦୃଶ୍ୟ-ହେବା, ସହମାସ୍ତହେବା, ଛାଡ଼ିବା, ପ୍ରେରିତହେବା, ଚ୍ୟୁତହେବା, ଯାତ୍ରା କରିବା, ଉଦ୍ୟତହେବା, ଲଗ୍ନହେବା, ବହିବା, ଭଜିବା, (ବି) ସ୍ଖଳି, ଗମନ ।
ଯିବାଆସିବା—ଗ୍ରା.କ୍ରି. ଗମନ ଓ ଆଗ-ମନ କରିବା,(ବି)ଯାଆସ,ଗମନାଗମନ
ଯିବାର—ଗ୍ରା. ବି. ନଷ୍ଟି, ଚ୍ୟୁତି, ଯିବା ବିଷୟ, (ଗ୍ରା. ଗଞ୍ଜାମ. କ୍ରି) ଯାଉଛନ୍ତି, ଆପଣ, ସେ, ମୁଁ. ତୁମେ, ଯାଉଛି,ଯିବ ଯାଆନ୍ତି, ଯାଉଛ ।
ଯିଦ୍—ଯା.ବି. ଜିଗରପଣ ।
ଯିମନ୍ତ—ଗ୍ରା.ଅବ୍ୟ.(ସଂ-ଯଦ୍‌ବତ୍)ଯେଉଁ-ପରି, ଯେଉଁପ୍ରକାରେ, ଯେମନ୍ତେ, ଯେଉଁରୂପେ, ଯେଉଁଭଳି, ( ସର୍ବ ) ଯେମନ୍ତ ଯେଉଁ ପ୍ରକାରର । [ ଦେଖ ।
ଯିମିତିକଆ—ଗ୍ରା.ସର୍ବ ଓ ଅବ୍ୟ. ଯିମିତି
ଯିମିତିସିମିତି—ଗ୍ରା.କ୍ରି. ବିଂ. ଯଥାକଥା ହେଲ, (ବିଂ) ସାଧାରଣ ।
ଯିମିତିହ(ହେ)ଉ—ଗ୍ରା. ଅବ୍ୟ. ଯେ କୌଣସି ପ୍ରକାରେ, ଅବଶ୍ୟ, କଷ୍ଟେ ।
ଯିଯକ୍ଷମାଣ—ପୁଂ.ବିଂ. (ଯଜ୍ + ସନ୍ + କ.ଆନ)ଯିଯକ୍ଷୁ ଦେଖ,(ସ୍ତ୍ରୀ)ଯିଯକ୍ଷମାଣା
ଯିଯକ୍ଷା—ବି.(ଯଜ୍ + ସନ୍ + ଭା.ଅ + ଆ) ଯଜ୍ଞକରଣେଚ୍ଛା ।
ଯିଯକ୍ଷୁ—ବିଂ. ( ଯଜ୍ + ସନ୍ + କ.ଉ ) ଯଜ୍ଞକରଣେଚ୍ଛୁ,ଯଜ୍ଞ କରିବାକୁ ଇଚ୍ଛୁକ
ଯିଯବିଷା—ସ୍ତ୍ରୀ. ବି. (ଯୁ + ସନ୍ + ଭା.ଅ + ଆ) ଏକତ୍ର ମିଶାଇବାର ଇଚ୍ଛା,(ବିଂ) ଯିଯବିଷୁ ।
ଯିଯବିଷୁ—ତ୍ରି.ବିଂ. ( ଯୁ + ସନ୍ + ଉ ) ମିଶ୍ରଣ କରିବାକୁ ଇଚ୍ଛୁ ।
ଯିଯାସା—ବି (ଯା + ସନ୍ + ଭା.ଅ + ଆ) ଗମନ କରିବାର ଇଚ୍ଛା ।
ଯିଯାସୁ—ତ୍ରି.ବିଂ. (ଯା + ସନ୍ + କ.ଉ) ଗମନେଚ୍ଛୁ, ଗମନାଭିଲାଷୀ ।
ଯିଶୁଖ୍ରୀଷ୍ଟ—ଖ୍ରୀଷ୍ଟୀୟାନ୍ ଧର୍ମର ପ୍ରବର୍ତ୍ତକ ।
ଯିସ୍—ଗ୍ରା.ସର୍ବ. ଯାହା, ଯେଉଁ ।
ଯିହୋବାସ୍—ଯା. ୟିହୁଦୀ, ଯିହୁଦୀ ।
ଯୀଉ-ଯା.ବି.ଯୀହୁଦୀ ଦେଖ, ଜୀଉ ଦେଖ
ଯୀଶୁ—ଯା.ବିଂ.ଖ୍ରୀଷ୍ଟାନ୍ ଧର୍ମର ପ୍ରବର୍ତ୍ତକ ।
ଯୀହୁଦା—ଯା.ବି.ଯୀହୁଦୀମାନଙ୍କର ଆଦିମ ନିବାସ ସ୍ଥଳ, ଯୁଡ଼ିଆ ।
ଯୀହୁଦୀ—ଯା.ବିଂ. ଯୀଉ ବା "ୟିହୁଦୀ" ଧର୍ମ, ଖ୍ରୀଷ୍ଟ ଧର୍ମର ପୂର୍ବାକାର ଓ ମେଷ୍ଟ ଧର୍ମ ସମ୍ପ୍ରଦାୟ ଓ ବ୍ୟକ୍ତି ।
ଯୁ—(ଧାତୁ). ଯୋଗ କରିବା, ମିଶାଇବା, ବାନ୍ଧିବା, ପୃଥକ୍ କରିବା ।
ଯୁ—ଗ୍ରା.ସର୍ବ.(ସଂ-ଯତ୍ର)ଯେଉଁ,(ସଂ-ଅବ୍ୟ-ଯୁଗ) ଯୁଆଳରେ କାନ୍ଧଦେବାପାଇଁ ବଳଦଙ୍କୁ ଡାକିବା ।
ଯୁଆଡ଼—ଗ୍ରା. ସର୍ବ. ଯେଉଁଆଡ଼,ଯେଉଁ-ଦିଗ, ଯେଉଁପକ୍ଷ,ଯେଉଁଦେଶ,ଯେଉଁ-ଅଞ୍ଚଳ, ଯେଉଁ ଦିଗର ।
ଯୁଆଡ଼—ପ୍ରା. (ସମ୍ବ) ବି. ଲଙ୍ଗଳସୋରା ।
ଯୁଆଡ଼(ଡ଼)କା—ଗ୍ରା. ସର୍ବ.ଯେଉଁ ଦିଗର, ଯେଉଁ ପକ୍ଷର, ଯେଉଁ ଅଞ୍ଚଳର ।
ଯୁଆଡ଼କୁ—ଗ୍ରା. ଅବ୍ୟ. ଯେଉଁ ଆଡ଼କୁ, ଯେଉଁ ଦିଗକୁ ।
ଯୁଆଳ—ଗ୍ରା.ବି. ବଳଦ ଯୋଗୁହେବାର କାଷ୍ଠଖଣ୍ଡ ।
ଯୁଉଠି—ଗ୍ରା. ସର୍ବ. ଯେଉଁଠାରେ ।
ଯୁଉଠି(ଠି)କୁ—ଗ୍ରା. ଅବ୍ୟ. ଯେଉଁ-ସ୍ଥାନକୁ ।
ଯୁଉଁଠୁ—ଗ୍ରା.ଅବ୍ୟ. ଯେଉଁଠାରୁ,ଯେଉଁ-ସ୍ଥାନରୁ, ଯେଉଁ ବ୍ୟକ୍ତିଠାରୁ ବା ନିକ-ଟରୁ, ଯେଉଁ କାରଣରୁ ।
ଯୁଁ—ଗ୍ରା.ସର୍ବ.(ସଂ-ଯତ୍ର)ଯେଉଁ,ଯାହା ।
ଯୁକ୍—ବିଂ. ( ଯୁଜ୍ + ମଁ.କ୍ୱିପ୍ ) ମନ୍ଦ, ନିନ୍ଦିତ, ଘୃଣିତ, ସମାଧିରତ, ( ବି ) (ଯୁଜ୍ + ମଁ.କ୍ୱିପ୍) ଯୁଗଳ, ଯୁଗ୍ମ, ଏକ-ମାଇଲରୁ କିଛି ଦୂରତା,ଦୈର୍ଘ୍ୟପରିମାଣ-ବିଶେଷ, ଯୁଗ୍ ଦେଖ ।
ଯୁକ(ଇତ୍ୟାଦି)—ମିଶ୍ରିତ କରିବା, ପୃଥକ୍ କରିବା, ନିନ୍ଦା କରିବା,ତାଚ୍ଛଲ୍ୟକରିବା, ବନ୍ଧନ କରିବା ।
ଯୁକ(କ୍ତ)ତ—ଗ୍ରା. (ପଦ୍ୟ) ବିଂ. (ସଂ—ଯୁକ୍ତ) ଯୁକ୍ତ ଦେଖ ।
ଯୁକ(କ୍ତ)ତି(ଇତ୍ୟାଦି)—ଗ୍ରା. ବି. ଯୁକ୍ତି-(ଇତ୍ୟାଦି) ଦେଖ ।
ଯୁକତେ—ଗ୍ରା. (ପଦ୍ୟ) ଅବ୍ୟ. ଫଳତଃ, ପ୍ରକୃତରେ ।
ଯୁକ୍ତ—ତ୍ରି. ବିଂ. (ଯୁଜ୍ + ମଁ.ତ) ମିଳିତ, ସଂଲଗ୍ନ, ଜୋଡ଼ାହୋଇଥିବା, ଏକଗଣି ସଙ୍ଗେ ମିଶାଯିବା, ନ୍ୟାଯ୍ୟ,ନ୍ୟାୟାନୁ-ଗତ, ପ୍ରମାଣୀକୃତ, ଯୋଗ୍ୟ, ଭୂଷିତ, ଶୋଭିତ,ବ୍ୟାପୃତ, ପରିମିତ,ସାମାନ୍ୟ, ଅବଶିଷ୍ଟ, ଆସକ୍ତ,ଯୋଗାରୂଢ଼,ଯୋଗ-ନିରତ, ଅଧିକୃତ, ମିଶ୍ରିତ ଯୁଆଳରେ ଯୋଗୁହୋଇଥିବା, ବ୍ୟବସ୍ଥିତ, ସମଭି-ବ୍ୟାହାରରେ ଗତ, ନିଯୋଜିତ,ପ୍ରମା-ଣିତ, କର୍ମଠ, ଉପଯୁକ୍ତ, କୁଶଳ, ମୌଳିକ,ସଂଯୁକ୍ତ,(ପୁଂ.ବି)ଯେଉଁ ଯୋଗୀ ଭଗବତ୍ ସାକ୍ଷାତ୍କାର ଲାଭକରିଅଛନ୍ତି, ରୈବତମନୁପୁତ୍ର, ଯୁଗ, କାଷ୍ଠ,ଯୁଆଳି, ଯୋଗୁ ହୋଇଥିବା ଜୀବଦ୍ୱୟ, ନ୍ୟାୟ-ମାର୍ଗୋପାର୍ଜିତ ଧନ, ଗୃହଦ୍ୱାରର ଏକ ମାପ, (କ୍ରି.ବିଂ) ନ୍ୟାୟତଃ, ଉଚିତ ରୂପେ, (ସ୍ତ୍ରୀ)ଯୁକ୍ତା ।

ଯୁକ୍ତକର—ବି. (କ.ଧା) ଯୋଡ଼ହାତ, ହାତଯୋଡ଼ିବା, (ପୁଂ-ବ.ବ୍ରୀ) କୃତାଞ୍ଜଳି, (ସ୍ତ୍ରୀ) ଯୁକ୍ତକରା ।

ଯୁକ୍ତକରେ—କ୍ରି. ବିଂ. (ବ.ବ୍ରୀ) କୃତାଞ୍ଜଳିପୁଟେ, ଯୋଡ଼ହାତରେ ।

ଯୁକ୍ତକର୍ମା—ବିଂ. ( ବ.ବ୍ରୀ ) କୌଣସି କର୍ମରେ ନିଯୁକ୍ତ ।

ଯୁକ୍ତକାରୀ—ବି. ବିଂ. ଉପଯୁକ୍ତ କାର୍ଯ୍ୟକାରୀ, ଯେ ନ୍ୟାଯ୍ୟକାର୍ଯ୍ୟ କରେ ।

ଯୁକ୍ତକୃତ୍—ବି.ବିଂ.ଉପଯୁକ୍ତ କାର୍ଯ୍ୟକାରୀ।

ଯୁକ୍ତଗ୍ରାବ—ବି. ବିଂ. ଉଦ୍ଧୃତ ପ୍ରସ୍ତର ।

ଯୁକ୍ତଚିହ୍ନ—ଗ୍ରା. ବି. (ଗଣିତ) ଦୁଇଟି ରାଶି ଯୋଗ କରାଯାଇଥିବା ବିଷୟସୂଚକ ଚିହ୍ନ, "+" ।

ଯୁକ୍ତତ୍ୱ—କ୍ଳୀ. ବି. ଉପଯୁକ୍ତତ୍ୱ, ଯୁକ୍ତର ଭାବ ବା ଧର୍ମ ।

ଯୁକ୍ତଦଣ୍ଡ—ପୁଂ. ବିଂ. ( ବ.ବ୍ରୀ ) ଯେ ନ୍ୟାଯ୍ୟତଃ ଦଣ୍ଡ ଦିଏ,(ସ୍ତ୍ରୀ) ଯୁକ୍ତଦଣ୍ଡା ।

ଯୁକ୍ତନିଦ୍ରାବବୋଧ—ପୁଂ. ବିଂ. (ବ.ବ୍ରୀ) ଯେ ନିୟମିତ ସମୟରେ ନିଦ୍ରିତ ହୁଏ ଓ ନିଦ୍ରା ତ୍ୟାଗକରେ, (ସ୍ତ୍ରୀ) ଯୁକ୍ତନିଦ୍ରାବବୋଧା ।

ଯୁକ୍ତପ୍ରଦେଶ--ବି.ଉତ୍ତରଭାରତୀୟ ପ୍ରଦେଶବିଶେଷ ।

ଯୁକ୍ତପ୍ରାନ୍ତ—ଗ୍ରା. ବି. ଅଯୋଧ୍ୟା ଓ ଆଗ୍ରା ଅଞ୍ଚଳଦ୍ୱୟ ମିଳିତ ବ୍ରିଟିଶ୍ ଭାରତୀୟ ପ୍ରଦେଶବିଶେଷ ।

ଯୁକ୍ତବର୍ଣ୍ଣ—ବି. ଯୁକ୍ତାକ୍ଷର ।

ଯୁକ୍ତବତ୍—ଅ. ଯୁକ୍ତତୁଲ୍ୟ ।

ଯୁକ୍ତବେଣୀ—ସ୍ତ୍ରୀ.ବି.(କ.ଧା)ବଦ୍ଧବେଣୀ, ବନ୍ଧାବେଣୀ, ଦୁଇ ବା ତତୋଧିକ ନଦୀପ୍ରବାହର ସମ୍ମେଳନ, ତ୍ରିବେଣୀ।

ଯୁକ୍ତମନାଃ—ବି. ବିଂ. (ବ.ବ୍ରୀ) ମନୋଯୋଗୀ, ସଂଯତଚିତ୍ତ ।

ଯୁକ୍ତରଥ—ପୁଂ.ବି.ନିରୁହ ବସ୍ତିବିଶେଷ ।

ଯୁକ୍ତରସା—ସ୍ତ୍ରୀ. ବି. ଗନ୍ଧରାସ୍ନା, ସାମାନ୍ୟ ରାସ୍ନା, ରାସ୍ନା ।

ଯୁକ୍ତରାଜ୍ୟ--ବି. (ଆଧୁନିକ)ଆମେରିକାର ସମ୍ମିଳିତରାଜ୍ୟମାନ, ଇଂଲଣ୍ଡ, ସ୍କଟଲଣ୍ଡ ଓ ଆୟରଲଣ୍ଡ ।

ଯୁକ୍ତରୂପ—ବି. ବିଂ. (ବ.ବ୍ରୀ) ଉପଯୁକ୍ତ, ସମୁଚିତ, ଯୋଗ୍ୟ ।

ଯୁକ୍ତଶ୍ରେୟସୀ—ସ୍ତ୍ରୀ. ବି. ଗନ୍ଧରାସ୍ନା ।

ଯୁକ୍ତସେନ—ବି. ବିଂ. ଯାହାଙ୍କ ସେନା ଯୁଦ୍ଧପାଇଁ ଗମନୋଦ୍ୟୁକ୍ତ ।

ଯୁକ୍ତହେବା—ଗ୍ରା. କ୍ରି. ମିଶିବା, ଭୂଷିତହେବା ।

ଯୁକ୍ତା—ସ୍ତ୍ରୀ. ବି. ବୃକ୍ଷବିଶେଷ, ରାସ୍ନା ।

ଯୁକ୍ତାକ୍ଷର—ପୁଂ.ବି. (କ.ଧା) ସଂଯୁକ୍ତବର୍ଣ୍ଣ, ଏକତ୍ର ମିଳିତ ଏକାଧିକ ଅକ୍ଷର ।

ଯୁକ୍ତାୟଃ—କ୍ଳୀ. ବି. ଲୌହାସ୍ତ୍ରବିଶେଷ ।

ଯୁକ୍ତାର୍ଥ—ବି. ବିଂ. ଉପଯୁକ୍ତାର୍ଥ, ଜ୍ଞାନୀ ।

ଯୁକ୍ତାଶ୍ୱ—ବି. ବିଂ. ଅଶ୍ୱସହିତ ।

ଯୁକ୍ତାହାର—ପୁଂ. ବିଂ. (ବ.ବ୍ରୀ) ଆହାରରେ ଆସକ୍ତ, ପରିମିତାହାର, (ସ୍ତ୍ରୀ) ଯୁକ୍ତାହାରା, ( ବି.-କ.ଧା ) ପରିମିତ ଆହାର ।

ଯୁକ୍ତାହାରବିହାର—ପୁଂ. ବିଂ. (ବ.ବ୍ରୀ) ଯାହାର ଆହାର ଓ ବିହାର ପରିମିତ, (ସ୍ତ୍ରୀ) ଯୁକ୍ତାହାରବିହାରା ।

ଯୁକ୍ତି—ସ୍ତ୍ରୀ. ବି. (ଯୁଜ୍ + ଭା.ତି) ବାଦାନୁବାଦ, ନ୍ୟାୟ, ତର୍କ, ମନ୍ତ୍ରଣା, ଉପାୟ, ସମାପ୍ତି, ମିଳନ, ଅନୁମାନ, ଯୋଗ, ଘଟ, କାରଣ, ନାଟ୍ୟାଙ୍ଗ ବିଶେଷ, ଲୋକ ବ୍ୟବହାର, ଯୋଚିବା, ରଚନା, ଗୁଣି, ଘଟ, ପ୍ରଥା, ନିଯୁକ୍ତି ।

ଯୁକ୍ତିକର—ବି.ବିଂ. ଉପଯୋଗୀ, ପ୍ରମାଣିତ ।

ଯୁକ୍ତିକରିବା—ଗ୍ରା. କ୍ରି. ବାଦାନୁବାଦ କରିବା, ତର୍କକରିବା ।

ଯୁକ୍ତିଖଟା(ଟେ)ଇବା—ଗ୍ରା.କ୍ରି.କୌଣସି ବିଷୟର ମୀମାଂଶାର୍ଥ ତର୍କ ପ୍ରୟୋଗ କରିବା ।

ଯୁକ୍ତିଜ୍ଞ—ପୁଂ.ବିଂ. ଯେ ଯୁକ୍ତି ଅବଗତ ଅଛି, ଯୁକ୍ତିକୁଶଳ, (ସ୍ତ୍ରୀ) ଯୁକ୍ତିଜ୍ଞା ।

ଯୁକ୍ତିତଃ—କ୍ରି. ବିଂ. ( ଯୁକ୍ତି + ତସ୍ ) କୌଶଳକ୍ରମେ, ସମୁଚିତରୂପେ, ଯୁକ୍ତିଦ୍ୱାରା ।

ଯୁକ୍ତିତର୍କ—ବି. (ସହଚରଶବ୍ଦ) ଯୁକ୍ତି ଓ ତର୍କ, ବାଦାନୁବାଦ ।

ଯୁକ୍ତିଦାତା—ପୁଂ. ବିଂ. ପରାମର୍ଶଦାତା, ମନ୍ତ୍ରଣାଦାତା, (ସ୍ତ୍ରୀ) ଯୁକ୍ତିଦାତ୍ରୀ ।

ଯୁକ୍ତିଦେବା—ଗ୍ରା. କ୍ରି. କୌଣସି ପ୍ରଶ୍ନର ମୀମାଂସାପାଇଁ ଯୁକ୍ତିଯୁକ୍ତ ଉତ୍ତର ଦେବା

ଯୁକ୍ତିବିରୁଦ୍ଧ--ବିଂ.(୬ତତ୍)ଯୁକ୍ତି ବହିର୍ଭୂତ, ଅଯୌକ୍ତିକ । [ ଦେଖ ।

ଯୁକ୍ତିବିହୀନ—ବିଂ. (୩ତତ୍) ଯୁକ୍ତିଶୂନ୍ୟ

ଯୁକ୍ତିମାନ୍—ପୁଂ. ବିଂ.( ଯୁକ୍ତି + ମତ୍ ) ଚତୁର, ଉପାୟ ଉଦ୍ଭାବନରେ ଦକ୍ଷ, ଯୁକ୍ତି ଉପରେ ପ୍ରତିଷ୍ଠିତ, ସଂଯୁକ୍ତ, (ବି) ଯୁକ୍ତିମନ୍ତ,(ସ୍ତ୍ରୀ) ଯୁକ୍ତିମତୀ ।

ଯୁକ୍ତିମାର୍ଗ—ବି.(ରୂପକ)ଯୁକ୍ତିରୂପ ପନ୍ଥା, ନ୍ୟାୟମାର୍ଗ ।

ଯୁକ୍ତିମାର୍ଗାନୁସାରୀ—ପୁଂ.ବିଂ. (ରୂପକ ଓ ଉପପଦ ସମାସ) ଯୌକ୍ତିକ, ନ୍ୟାୟାନୁଗତ, ନ୍ୟାୟମାର୍ଗାବଲମ୍ବୀ,(ସ୍ତ୍ରୀ)ଯୁକ୍ତିମାର୍ଗାନୁସାରିଣୀ ।

ଯୁକ୍ତିଯୁକ୍ତ—ବି.ବିଂ. (୩ତତ୍) ଯୌକ୍ତିକ, ନ୍ୟାଯ୍ୟ,ନ୍ୟାୟାନୁମୋଦିତ,କୌଶଳୀ, ପ୍ରମାଣିତ, ଯୁକ୍ତିରେ ପ୍ରବୀଣ ।

ଯୁକ୍ତିଶୂନ୍ୟ—ବିଂ.( ୭ତତ୍ ) ଯୁକ୍ତିହୀନ ଦେଖ । [ ପ୍ରମାଣଶାସ୍ତ୍ର ।

ଯୁକ୍ତିଶାସ୍ତ୍ର—କ୍ଳୀ.ବି. ଯୁକ୍ତିପ୍ରଧାନ ଶାସ୍ତ୍ର,

ଯୁକ୍ତିସଙ୍ଗତ--ବି.ବିଂ. (୩ତତ୍)ଯୁକ୍ତିଯୁକ୍ତ, ଉପଯୁକ୍ତ, ନ୍ୟାଯ୍ୟ, ପରାମର୍ଶ ସିଦ୍ଧ ।

ଯୁକ୍ତିସିଦ୍ଧ—ବି.ବିଂ. ( ୩ତତ୍ ) ଯୁକ୍ତିଦ୍ୱାରା ନିଷ୍ପନ୍ନ, ମନ୍ତ୍ରଣାଦ୍ୱାରା ନିଷ୍ପନ୍ନ ଯୁକ୍ତି ଉପରେ ପ୍ରତିଷ୍ଠିତ ।

ଯୁକ୍ତିସମ୍ମତ—ବି.ବିଂ. (୩ତତ୍) ଯୁକ୍ତିଯୁକ୍ତ, ପରାମର୍ଶସିଦ୍ଧ, ନ୍ୟାଯ୍ୟ, ଉଚିତ ।

ଯୁକ୍ତିହୀନ—ବିଂ. (୩ତତ୍)ଅଯୌକ୍ତିକ, ଅନ୍ୟାଯ୍ୟ,ସଂଯୋଗ ବା ସମ୍ପର୍କବିହୀନ ।

ଯୁକ୍ତିହୀନବିଚାର—ବି.ଅଖାଡ଼ୁଆ ବୁଝାମଣା, ଅନ୍ୟାଯ୍ୟ ମୀମାଂସା ।

ଯୁଗ୍(ଧାତୁ)—ବର୍ଜନ କରିବା ।

ଯୁଗ—କ୍ଳୀ.ବି. (ଯୁ + କ.ଗ) ଯୁଆଳି,ଯୁଗ୍ମ, ଯୋଡ଼ା, ଯୁଗଳ, ଦ୍ୱାଦଶବର୍ଷ କାଳ,

ପଞ୍ଚବର୍ଷ ପରିମିତ କାଳ, ଋଦ୍ଧି ନାମକ ଔଷଧି, ଏକ ଧନୁ ପରିମାଣ,ଚାରିହାତ ଲମ୍ବ ପରିମାଣ,ଚାରିସଂଖ୍ୟା,ଦ୍ୱାଦଶସଂଖ୍ୟା ବହୁବର୍ଷ,ଅମଳ, ଜୀବନକାଳ, ସତ୍ୟାଦି ୪ ଯୁଗ ବା କାଳ ।

ଯୁଗ—ଗ୍ରା. ବି. ପଶାକାଠିରେ ପଡ଼ିବା ଦାନବିଶେଷ, ମିଳନ, (ପ୍ରା.ମେଦିନୀ-ପୁର. ବି.) ଯୋଡ଼ି ବଳଦ ।

ଯୁଗଆସିଲଟାରେପଶିଲଣି—ଗ୍ରା.(ବାକ୍ୟ) ସଂସାରକୁ ଅତି ଅଧର୍ମ ଓ ଘୋର ପାପ ଗ୍ରାସକଲାଣି ।

ଯୁଗକାଷ୍ଠ—ବି. (ମଧ୍ୟ-କ.ଧା) ଯୁଆଳି ।

ଯୁଗକୀଲକ—ପୁଂ.ବି. ବଳଦଙ୍କ କାନ୍ଧକୁ ଯୁଆଳିରେ ଅଟକାଇ ରଖିବାପାଇଁ ଯୁଆଳି ଅଗରେ ବ୍ୟବହୃତ ଖିଲ ବା କୀଳା ।

ଯୁଗକୁଯୁଗ—ଗ୍ରା. ଅବ୍ୟ. ବହୁଯୁଗପାଇଁ, ଯୁଗେଯୁଗେ, ପ୍ରତି ଯୁଗରେ ।

ଯୁଗକ୍ଷୟ—ପୁଂ.ବି. ( ୬ତତ୍ତ୍ୱ ) ଯୁଗାନ୍ତ ଦେଖ, ଯୁଗନାଶ ।

ଯୁଗଚ୍ଛଦ—ପୁଂ.ବି. ବୃକ୍ଷବିଶେଷ ।

ଯୁଗତ—ଗ୍ରା.ବିଂ.(ସଂ-ଯୁକ୍ତ) ଯୁକ୍ତ ଦେଖ, ଦୈବକ୍ରମେ ଘଟିଥିବା,(କ୍ରି.ବିଂ)ଯୁଗତେ, ଦୈବକ୍ରମେ, ଉଣସ୍ତ । [ ନ୍ୟାଯ୍ୟ ।

ଯୁଗତି—ଗ୍ରା.ବି. (ସଂ-ଯୁକ୍ତି)ଯୁକ୍ତି ଦେଖ,

ଯୁଗତେ—ଗ୍ରା.କ୍ରି.ବିଂ. ( ସଂ-ଯୁକ୍ତିତଃ ) ନ୍ୟାଯ୍ୟତଃ,ଯୁକ୍ତି କ୍ରମେ, ଘଟଣାଚକ୍ରରେ, ଉପଯୁକ୍ତ କ୍ରମେ, ବିଧିରେ, ପ୍ରକୃତରେ ।

ଯୁଗଧର୍ମ—ପୁଂ.ବି.(୬ତତ୍ତ୍ୱ ବା ମଧ୍ୟ-କ.ଧା) ଯୁଗଲକ୍ଷଣ ( ଦେଖ ), ଯୁଗୋଚିତ ଧର୍ମ, ଭିନ୍ନ ଭିନ୍ନ ଯୁଗରେ କରଣୀୟ ଧର୍ମ, (ଗ୍ରା.ବି) ସ୍ୱର୍ଗୀୟ ରାମଶଙ୍କର ରାୟଙ୍କ କୃତ ଓଡ଼ିଆ ନାଟକ ।

ଯୁଗନ୍ଧର—ପୁଂ. ବି. ( ଧୃ+କ.ଅ;ଉପ-ତତ୍ତ୍ୱ)ଯୁଆଳିରେ ସଂଲଗ୍ନ ଥିବା ଶକଟର ବା ଲଙ୍ଗଳାଦିର କାଷ୍ଠ,ଖୁରାମୁଣ୍ଡି,କୁବର, ଲଙ୍ଗଳଈଷ, ପର୍ବତବିଶେଷ, ଗାଡ଼ିର ବମ୍, ସାତ୍ୟକିଙ୍କ ପୌତ୍ର ।

ଯୁଗନ୍ଧରା-ସ୍ତ୍ରୀ.ବି. (ଯୁଗନ୍ଧର+ଆ)ପାର୍ବତୀ

ଯୁଗନ୍ଧରାମ୍ଳ—ବି. (ବୈଦ୍ୟକ) ଯାବନାଳ ବା ଯୁଆରି ( ଜନରା )ରୁ ପ୍ରସ୍ତୁତ ଏକ-ପ୍ରକାର କାଞ୍ଜି । [ ଗନ୍ଧର୍ବ ।

ଯୁଗପ—ପୁଂ.ବି. ( ଯୁଗ+ପା+କ.ଅ )

ଯୁଗପତ୍—ଅବ୍ୟ. (ଯୁଗ+ପଦ୍+କ. କ୍ୱିପ୍;ଅଧି) ଏକକାଳୀନ, ଏକସମୟରେ

ଯୁଗପତ୍ର—ପୁଂ.ବିଂ. (ବ.ବ୍ରୀ) ଯୁଗ୍ମପର୍ଣ୍ଣ-ବିଶିଷ୍ଟ,(ବି) ଯୁଗ୍ମପର୍ଣ୍ଣୀବୃକ୍ଷ,କୋବିଦାର, ରକ୍ତକାଞ୍ଚନ ।

ଯୁଗପତ୍ରିକା—ସ୍ତ୍ରୀ.ବି.ଶିଶୁଗଛ,ଶିଂଶପାବୃକ୍ଷ

ଯୁଗପଦ୍—ଅବ୍ୟ. ଯୁଗପତ୍ ଦେଖ ।

ଯୁଗପାର୍ଶ୍ୱଗ—ପୁଂ. ବି. (ଯୁଗ+ପାର୍ଶ୍ୱ+ଗମ୍+କ.ଅ) ( ୬ତତ୍ତ୍ୱ ଓ ଉପପଦ ) ଯୁଆଳି ପାଖରେ ବନ୍ଧାହୋଇ ମଣ ହେଉଥିବା ଦାମ୍ଭୁଡ଼ି ବଳଦ ।

ଯୁଗପୁରୁଷ—ବି. (ମଧ୍ୟ-କ.ଧା)ଯୁଗୋଚିତ ଭାବକୁ ବା ସଂସ୍କାରକୁ ଜନସମାଜରେ ଚଳାଇବା ଲୋକମାନଙ୍କର ମଧ୍ୟରେ ଯେ ଅଗ୍ରଣୀ ।

ଯୁଗପ୍ରବର୍ତ୍ତକ—ବି ଓ ବିଂ.ସମାଜରେ ବା ଜାତିରେ ବା ରାଜନୀତିରେ ନୂତନ ନୀତି ଓ ସଂସ୍କାରାଦି ଚଳାଇବା (ବ୍ୟକ୍ତି) ।

ଯୁଗବାହୁ—ବିଂ.(ବ.ବ୍ରୀ) ଯାହାର ବାହୁ ଲମ୍ବ, ଦୀର୍ଘବାହୁ ।

ଯୁଗ(ଗୁ)ବୁଡ଼(ଡ଼)—ଗ୍ରା. ବି. ଅତ୍ୟନ୍ତ ବିପନ୍ନ ବା ଆକ୍ରାନ୍ତ ଅବସ୍ଥା, ଅସମ୍ଭାଳ ଅବସ୍ଥା, ଯୁଗାନ୍ତ ଖଣ୍ଡପ୍ରଳୟ ।

ଯୁଗବୁଡ଼ା—ଗ୍ରା.ବିଂ. (ଗାଳି), ଅତ୍ୟନ୍ତ ଦୁଷ୍ଟ, ଅତି ଅନ୍ୟାୟୀ, (ବି) ଯୁଗବୁଡ଼ିବା ଦେଖ, (ସ୍ତ୍ରୀ) ଯୁଗବୁଡ଼େଇ ।

ଯୁଗବୁଡ଼ିବା—ଗ୍ରା. ବି. ଯୁଗାନ୍ତ ଖଣ୍ଡ-ପ୍ରଳୟ, ଯୁଗାନ୍ତ, ସର୍ବନାଶ ଘଟିବା ।

ଯୁଗମ—ଗ୍ରା. (ପଦ୍ୟ) ବିଂ ଓ ବି. (ସଂ—ଯୁଗ୍ମ) ଯୁଗ୍ମ ଦେଖ ।

ଯୁଗମାତ୍ର—କ୍ଲୀ. ବି. ଯୁଗପରିମାଣ, ହସ୍ତ-ଚତୁଷ୍କ, ଚାରିହସ୍ତ ପରିମାଣ ।

ଯୁଗଯୁଗ—ଗ୍ରା. କ୍ରି. ବିଂ. ଯୋଡ଼ଯୋଡ଼, ଯୁଗକାଳପାଇଁ ।

ଯୁଗଯୁଗକୁ—ଗ୍ରା. କ୍ରି. ବିଂ. ବହୁଯୁଗ ପର୍ଯ୍ୟନ୍ତ, କାଳକାଳକୁ, ବହୁକାଳକୁ ।

ଯୁଗଯୁଗାନ୍ତର—କ୍ଲୀ. ବି. (ଦ୍ୱନ୍ଦ୍ୱ) ଏକ-ଯୁଗ ଓ ଅନ୍ୟଯୁଗ, ବହୁଯୁଗ ।

ଯୁଗର ଗ(ଗ୍ନ)ତି—ଗ୍ରା.ବି. ଯୁଗର ଢଙ୍ଗ, ଯୁଗର ଲକ୍ଷଣ ।

ଯୁଗରାଇଜ—ଗ୍ରା. ବି. (ସଂ-ଯୁଗ+ରାଜ୍ୟ) ବହୁକାଳବ୍ୟାପୀ ରାଜ୍ୟଭୋଗ ।

ଯୁଗରାଇଜକରିବା—ଗ୍ରା.କ୍ରି.(ଆଶୀର୍ବାଦ) ବହୁକାଳ ରାଜ୍ୟଭୋଗ କରିବା, ସୁଖୀ-ହୋଇ ଚିରଞ୍ଜୀବୀ ହେବା ।

ଯୁଗଳ—କ୍ଲୀ. ବି. ( ଯୁଗ+ଲ ) ଯୁଗ୍ମ, ଯୋଡ଼ା, ଦ୍ୱୟ, ଦ୍ୱନ୍ଦ୍ୱ, ମିଥୁନ, (ବିଂ) ଯୁଗ୍ମ, ଯୋଡ଼ାଏ, (ଗ୍ରା.ପୁଂ.ବି) ଯୁଗଳ-କିଶୋରର ଡାକନାମ ।

ଯୁଗଳକ—କ୍ଲୀ. ବି. (ଯୁଗଳ+ସ୍ୱାର୍ଥେ.କ) ଯୁଗଳ ଦେଖ,ଯୁଗ୍ମକ,ଏକବାକ୍ୟ ବିଶିଷ୍ଟ ଦୁଇଟି ଶ୍ଳୋକ ।

ଯୁଗଳକିଶୋର—ବି.ଏକତ୍ରାବସ୍ଥିତ ଯୁବକ ଯୁବତୀଦ୍ୱୟ,ରାଧାକୃଷ୍ଣଙ୍କର ଯୁଗଳମୂର୍ତ୍ତି, ରାଧାଙ୍କୁ ଆଲିଙ୍ଗନ କରିଥିବା ଶ୍ରୀକୃଷ୍ଣଙ୍କ ରୂପ, (ଗ୍ରା. ପୁଂ. ବି) ଲୋକଙ୍କ ନାମ ।

ଯୁଗଳମନ୍ତ୍ର—ପୁଂ. ବି. ଏକତ୍ରୋଚ୍ଚାରିତ ଦେବତା ଯୁଗଳଙ୍କ ମନ୍ତ୍ର,ଲକ୍ଷ୍ମୀନାରାୟଣ ମନ୍ତ୍ର ।

ଯୁଗଳମୂର୍ତ୍ତି—ବି.(କ.ଧା) ଲକ୍ଷ୍ମୀନାରାୟଣ, ଶିବପାର୍ବତୀ, ରାଧାକୃଷ୍ଣ, ହରିହରମୂର୍ତ୍ତି, ଏକତ୍ରାବସ୍ଥିତ ସ୍ୱାମୀ ଓ ସ୍ତ୍ରୀ, ରାଧାକୃଷ୍ଣ-ଙ୍କର ଏକତ୍ର ଅବସ୍ଥିତ ମୂର୍ତ୍ତି ।

ଯୁଗଳୀ—ସ୍ତ୍ରୀ.ବିଂ.(ଯୁଗଳ+ଈ)ଯୋଡ଼ି ।

ଯୁଗଳାକ୍ଷ—ପୁଂ. ବି. କଙ୍କୁରକ ବୃକ୍ଷ, ଯୁଗ୍ମନାମକ ।

ଯୁଗସନ୍ଧି—ପୁଂ. ବି. (୬ତତ୍ତ୍ୱ)ଏକଯୁଗର ଶେଷ ଓ ଅନ୍ୟଯୁଗର ଆରମ୍ଭକାଳ ।

ଯୁଗାଂଶକ—ବି. (ଯୁଗାଂଶ+କ) କାଳ ବା ଯୁଗର ଅଂଶ, ବତ୍ସର ।

ଯୁଗାକ୍ଷିଗନ୍ଧା—ସ୍ତ୍ରୀ.ବି. ବୃଦ୍ଧଦାରକଲତା, ରାଜତାଡ଼ନ ।

ଯୁଗାଗମ—ବି. ୬ତତ୍ତ୍ୱ; ଯୁଗାଦି ଦେଖ ।

ଯୁଗାଡ଼—ପ୍ରା. ( ଉତ୍ତର ବାଲେ. ) ବି. ପରିବା ।

ଯୁଗାଢ଼ିବା—ପ୍ରା. (ଉତ୍ତର ବାଲେ.) କ୍ରି. ପଣିବା ବନାଇବା ।
ଯୁଗାଦି(ଦ୍ୟ)—ପୁଂ. ବ. (୬ତତ୍) କଳି-ଆଦି ଯୁଗର ପ୍ରଥମ ଉପସ୍ଥିତ, ଗୋଟିଏ ମହାଯୁଗର ଆରମ୍ଭତଥି,(ବିପ-ଯୁଗାନ୍ତ) ।
ଯୁଗାଦିକୃତ୍—ପୁଂ. ବ. ଶିବ ।
ଯୁଗାଦିଜିନ—ପୁଂ. ବ. ଯୁଗ ଆଦ୍ୟରେ ଯେ ଜିନ ଜନ୍ମଗ୍ରହଣ କରିଥିଲେ,ଋଷଭ ।
ଯୁଗାଦିଜିନଶ୍ରୀ—ଋଷଭଙ୍କ ନାମାନ୍ତର ।
ଯୁଗାଦୀଶ—ପୁଂ. ବ. ଋଷଭଦେବ ।
ଯୁଗାଦ୍ୟା—ସ୍ତ୍ରୀ.ବ. (୬ତତ୍) ଯୁଗ ଆରମ୍ଭ ହେବାର ତଥି,ଭଗବଜ୍ଜନ୍ମ ମୂର୍ତ୍ତିବିଶେଷ
ଯୁଗାଧ୍ୟକ୍ଷ—ପୁଂ. ବ. ପ୍ରଜାପତି, ଯୁଗାଧି-ପତି, ଶିବ ।
ଯୁଗାନ୍ତ—ପୁଂ. ବ. (୬ତତ୍) ଯୁଗକ୍ଷୟ, ମହାଯୁଗର ଶେଷ, ପ୍ରଳୟକାଳ ।
ଯୁଗାନ୍ତକ—ପୁଂ. ବ. ବିଷ୍ଣୁଙ୍କର ନାମା-ନ୍ତର, (ବିଂ) ଯୁଗାନ୍ତପ୍ରଳୟକାରୀ ।
ଯୁଗାନ୍ତଜୀବୀ—ପୁଂ. ବିଂ. (ଯୁଗାନ୍ତ+ଜୀବ୍ +କ.ଇନ୍) ଯେ ଯୁଗାନ୍ତ ପର୍ଯ୍ୟନ୍ତ ବଞ୍ଚି ରହେ ।
ଯୁଗାନ୍ତପ୍ରଳୟ—ବ. ମହାଯୁଗ ଶେଷରେ ଘଟିବା ଖଣ୍ଡପ୍ରଳୟ ।
ଯୁଗାନ୍ତବ୍ୟାପୀ—ବିଂ. ଏକ ଯୁଗାନ୍ତ ସମୟ ପର୍ଯ୍ୟନ୍ତ ରହିବା ବା ଘୋଟିବା (ପ୍ରଳୟ) ।
ଯୁଗାନ୍ତର—କ୍ଲୀ.ବ.(ନିତ୍ୟ) ଅନ୍ୟଯୁଗ ।
ଯୁଗାନ୍ତସ୍ଥାୟୀ—ବିଂ. ଯୁଗାନ୍ତ ପର୍ଯ୍ୟନ୍ତ ରହିଥିବା, ଚିରସ୍ଥାୟୀ ।
ଯୁଗାବତାର—ବ ଓ ବିଂ. ଯୁଗବିଶେଷେ ଆବିର୍ଭୂତ ମହାମାନବ ।
ଯୁଗାବଧି-ବ. (୬ତତ୍)ଯୁଗକ୍ଷୟ ଦେଖ, (କ୍ରି.ବିଂ) ବହୁକାଳ ହେଲା ।
ଯୁଗାଦି(ଦା)—ବ. (୬ତତ୍) କୌଣସି ଯୁଗରେ ଭୋଗହୋଇଥିବା ବରଷମାନ
ଯୁଗାରମ୍ଭ—ବ. ଯୁଗାଦି ଦେଖ ।
ଯୁଗୀ—ପ୍ରା.(ସିଂହଭୂମପ୍ରଭୃତି) ବ. ହିନ୍ଦୁ ଭିକ୍ଷୁକ, ଯୋଗୀଜାତିବିଶେଷ ।
ଯୁଗୁ-ଗ୍ରା.ଅବ୍ୟ. ହେତୁ, ପାଇଁ,ଯୋଗେ, ଦୁଇଙ୍କ ମଧ୍ୟରୁ । [ ଅତ୍ୟନ୍ତ ।
ଯୁଗେ—ପ୍ରା.(ଭିତରୀଖଣ୍ଡା)ବିଂ ଓ ବିଂ.
ଯୁଗେଯୁଗେ—ଅବ୍ୟ. ପ୍ରତିଯୁଗରେ ।
ଯୁଗେଶ—ପୁଂ.ବ. (ଜ୍ୟୋତିଷ) ଯୁଗର ଅଧିପତି ।
ଯୁଗୋରସ୍ୟ-ସୈନ୍ୟ ସମାବେଶବିଶେଷ
ଯୁଗ୍ମ—କ୍ଲୀ.ବ. (ଯୁଜ୍+ମିଁ.ମ) ଯୁଗଳ, ଯୋଡ଼ା, ମିଥୁନରାଶି, ଯାଆଁଳାପିଲା, ଏକତ୍ର ସମ୍ବନ୍ଧ ଯୋଡ଼ରାଶି, ୨ସଂଖ୍ୟା, ଦୁଇଟିଶ୍ଳୋକ, ଯୋଡ଼ରାଶି, ( ଯୁଜ୍+ ଭା.ମ) ସଂଯୋଗ, ମିଳନ, ଦୁଇଜଣଙ୍କ ଭେଟାଭେଟି,(ଯୁଜ୍+ଅଧି.ମ) ଦୁଇ-ନଦୀର ମିଳନସ୍ଥାନ, (ବିଂ) ଯୋଡ଼ାଏ, ଯୋଡ଼ିଏ, ଦୁଇରେ ହରିଲେ ଭାଗଶେଷ ନ ରହିବା ।
ଯୁଗ୍ମକ—କ୍ଲୀ.ବ. ( ଯୁଗ୍ମ+ସ୍ୱାର୍ଥେ କ ) ଏକତ୍ର ଅନ୍ୱିତ ଦୁଇଟି ଶ୍ଳୋକ ।
ଯୁଗ୍ମକଲା—ବ. ଇନ୍ଦ୍ରଚିର୍ଭଟୀ, ବୃଶ୍ଚିକାଳୀ, ବିଛୁଆତି ।
ଯୁଗ୍ମକଣ୍ଟକା—ସ୍ତ୍ରୀ. ବ. ବଦରୀବୃକ୍ଷ, ବରଁଗଛ ।
ଯୁଗ୍ମଜ—ପୁଂ.ବିଂ.(ଯୁଗ୍ମ+ଜନ୍+କ. ଅ) ଯାଆଁଳା, (ସ୍ତ୍ରୀ) ଯୁଗ୍ମଜା ।
ଯୁଗ୍ମତ୍—କ୍ରି.ବିଂ. ସମାନ ।
ଯୁଗ୍ମତଥି—ବ. ଏକାଦିନକେ ପଡ଼ିବା ଦୁଇଟି ତଥି ।
ଯୁଗ୍ମଧର୍ମ--କ୍ରି.ବିଂ.ମିଳନଶୀଳ,ମିଥୁନଧର୍ମୀ ।
ଯୁଗ୍ମପର୍ଣ୍ଣ—ପୁଂ. ବ. କୋବିଦାରବୃକ୍ଷ,ସପ୍ତ ପର୍ଣ୍ଣବୃକ୍ଷ, ଯୁଗଳପତ୍ର ।
ଯୁଗ୍ମପତ୍ର—ପୁଂ. ବ. ରକ୍ତକାଞ୍ଚନ ବୃକ୍ଷ, ଭୂର୍ଜବୃକ୍ଷ, ସପ୍ତପର୍ଣ୍ଣ ବୃକ୍ଷ,(କ୍ଲୀ) ଯୁଗଳ-ପର୍ଣ୍ଣ, ଯୁଗପତ୍ରକା ।
ଯୁଗ୍ମପତ୍ରିକା—ସ୍ତ୍ରୀ. ବ. ଶିଂଶପାବୃକ୍ଷ ।
ଯୁଗ୍ମଫଳା—ସ୍ତ୍ରୀ. ବିଂ.ଯୋଡ଼ାଫଳଯୁକ୍ତା ।
ଯୁଗ୍ମଫଳୋତ୍ତମ—ପୁଂ. ବ. ଫଳବିଶେଷ
ଯୁଗ୍ମବର୍ଣ୍ଣ—ବ.ଏକଅକ୍ଷର ଦୁଇଥର ଯୁକ୍ତ ହୋଇ ଉଚ୍ଚାରିତ ବର୍ଣ୍ଣ, (ଯଥା—କ୍କ, ଲ୍ଲ ଇତ୍ୟାଦି) ।
ଯୁଗ୍ମବିପୁଲା—ସ୍ତ୍ରୀ. ବ. ଛନ୍ଦୋବିଶେଷ ।
ଯୁଗ୍ମଯମକ—ବ. ଯମକବିଶେଷ ।
ଯୁଗ୍ମଯୁଗ—ଗ୍ରା. ବ.ଜୈନତୀର୍ଥଙ୍କରମାନଙ୍କ ସମୟରେ ଭୂମିଷ୍ଠ ହୋଇଥିବା ପ୍ରସିଦ୍ଧ ସ୍ତ୍ରୀ ପୁରୁଷ ।
ଯୁଗ୍ମସ୍ୱର—ବ. (ଯୋଗସାଧନ)ଚନ୍ଦ୍ର ଓ ରବିଙ୍କର ସ୍ୱର ପରସ୍ପର ଏକତ୍ରଥିବା ସ୍ୱର ଓ ଯୋଗ ।
ଯୁଗ୍ମାଞ୍ଜନ—କ୍ଲୀ. ବ. ଅଞ୍ଜନଦ୍ରବ୍ୟ ।
ଯୁଗ୍ମାଦର—ପୁଂ. ବ. ତଥିବିଶେଷ ।
ଯୁଗ୍ମାଦରଣ—କ୍ଲୀ.ବ. ଯୁଗ୍ମତଥି ପୂଜ୍ୟତା ।
ଯୁଗ୍ମାନ୍ତାନୁପ୍ରାସ—ବ.(ଅଳଙ୍କାର)ଅନୁପ୍ରାସ ବିଶେଷ ।
ଯୁଗ୍ୟ—କ୍ଲୀ. ବ. (ଯୁଗ୍+ଯ) ବାହନ, ଯାନ,(ବିଂ) ଯୁଗବାହୀ(ପଶୁ),ଯୁଆଳୀରେ ଯୋଗ୍ୟ(ପଶୁ) ।
ଯୁଗ୍ୟବାହ—ପୁଂ.ବ. (ଯୁଗ୍ୟ+ବହ୍+ କ.ଅ) ସାରଥି, ରଥଚାଳକ, କଚୁଆନ୍, (ସ୍ତ୍ରୀ) ଯୁଗ୍ୟବାହା ।
ଯୁଙ୍—ପୁଂ. ବ ବା ବିଂ.(ଯୁଜ୍+କ.କ୍ୱିପ୍) ଯୋଗକର୍ତ୍ତା, ଯୋଜକ, ମେଳନକର୍ତ୍ତା, ମେଳକ ।
ଯୁଙ୍ଗୀ-- ପୁଂ.ବ.ବର୍ଣ୍ଣସଙ୍କର ଜାତିବିଶେଷ ।
ଯୁଚ୍ଛ୍(ଧାତୁ)--ବ. ଅମନଯୋଗୀ ହେବା, ପ୍ରମାଦ ବା ଭୁଲ୍ କରିବା ।
ଯୁଚ୍ଛ—ପ୍ରମାଦ, ଅନବଧାନତା ।
ଯୁଜ୍(ଧାତୁ)—ଯୋଗକରିବା, ମିଳାଇବା, କନ୍ଧାକରିବା, ବାନ୍ଧିବା, ସଂଯମକରିବା, ଧ୍ୟାନକରିବା, ମନଯୋଗ ଦେବା, ଯୋଖିବା,ଯୋଡ଼ିବା,ଯୋତିବା,ପ୍ରୟୋଗ-କରିବା, ଲଗିବା, ଲାଗିବା, ଆଦେଶ କରିବା, (ଅନୁ+ଯୁଜ୍ଧାତୁ)ପଗ୍ଭରିବା, ଗାଳିଦେବା, (ଅଭି+ଯୁଜ୍ଧାତୁ)ଉଚ୍ଚା-ରଣକରିବା, ଦୋଷାରୋପ କରିବା, ଧାରଣକରିବା, ଅଧିକାରକରିବା,(ଉପ +ଯୁଜ୍ଧାତୁ) ଆକ୍ରମଣକରିବା, ଗ୍ରହଣ କରିବା, ଖାଇବା,(ଉତ୍+ଯୁଜ୍ଧାତୁ) ଚେଷ୍ଟାକରିବା,(ନି+ଯୁଜ୍.ଧାତୁ)ଆଦେଶ କରିବା, ବରିବା, ପ୍ରବନ୍ଧକରିବା, (ବି+ନି+ ଯୁଜ୍ ଧାତୁ)ଯୋଗକରିବା,ବ୍ୟୟକରିବା,

ପଠାଇବା, ବଳକ୍ରତ କରିବା, (ପ୍ର+ ଯୁଜ୍ ଧାତୁ)ପ୍ରୟୋଗକରିବା, ଅର୍ଥାତ୍କ୍ରମଭାବରେ ଖଟାଇବା, ଚେଷ୍ଟା କରିବା, ମିଳାଇବା,ବ୍ୟୁକ୍ତ କରିବା,ନିୟୁକ୍ତକରିବା.
ପୃଥକ୍କରିବା, (ବି+ଯୁଜ୍ଧାତୁ)ଫେଡ଼ିବା, (ସମ୍+ଯୁଜ୍ଧାତୁ)ଏକତ୍ରକରିବା ।
ଯୁକ୍ତାନ—ପୁଂ. ବି. ( ଯୁଜ୍+କ.ଆନ ) ସାରଥି, (ଗ୍ରା)ବି ଓ ବିଂ. ଯୁଞ୍ଜାନଦେଖ
ଯୁକ୍ତିର—ବି. ( ଯୁଜ୍+ମଁ.ଇର ) ଯୁଗ୍ମ, ଯୁଗଳ, (ଯୁଜ୍+କ.ଇର)ଯୋଗୀ ।
ଯୁଜ୍ଞ(କେ,ଞ୍ଚ,ଝୋଷ୍ଟି(ଷ୍ଠି)—ଗ୍ରା.ବି. (ସଂ- ଯୁଧିଷ୍ଠିର) ଯୁଧିଷ୍ଠିର ଦେଖ ।
ଯୁଜୁତ୍ସୁ—ଯା. ବି. (ଜାପାନୀଭାଷା)ଜାପାନ ଦେଶୀୟ କସ୍ରତ୍ ।
ଯୁଜ୍ୟ—ବି. ବିଂ. (ଯୁଜ୍+ମଁ.ଯ)ସଂଯୁକ୍ତ, ରକ୍ତସମ୍ପର୍କ, ଯୋଗ୍ୟ, ଉପଯୁକ୍ତ, ସମ-ଶ୍ରେଣୀସ୍ଥ. (ବି) କୁଟୁମ୍ବ, ସଗୋତ୍ରବ୍ୟକ୍ତି, (ଯୁଜ୍+ଭା.ଯ) ସଂଯୋଗ, ସମ୍ମେଳନ, ସାମବେଦାଂଶବିଶେଷ ।
ଯୁଜ୍ୟମାନ—ବିଂ.(ଯୁଜ୍+କ.ଆନ)ମିଳିତ ହେଉଥିବା, (ସ୍ତ୍ରୀ) ଯୁଜ୍ୟମାନା ।
ଯୁଜ୍ଝ(ଇତ୍ୟାଦି)—ଗ୍ରା. ବି.ଯୁଝ(ଇତ୍ୟାଦି) ଦେଖ ।
ଯୁଝ—ଗ୍ରା. ବି. ଯୁଦ୍ଧ ।
ଯୁଝଭୂଇଁ—ଗ୍ରା. ବି. ଯୁଦ୍ଧକ୍ଷେତ୍ର ।
ଯୁଝା(ଝୋ)ଇବା—ଗ୍ରା. କ୍ରି. ଜୁଝାଇବା ଦେଖ । [ କରିବା ।
ଯୁଝାଯୁଝି—ଗ୍ରା. ବି. ଅନ୍ୟୋନ୍ୟରେ ଯୁଦ୍ଧ
ଯୁଝିଇଚ୍ଛିବା—ଗ୍ରା.କ୍ରି.(ସଂ-ଯୁଦ୍ଧ+ଇଚ୍ଛା) ଯୁଦ୍ଧକରିବା, ଯୁଦ୍ଧକରିବାକୁ ଇଚ୍ଛା କରିବା ।
ଯୁଝିବା—ଗ୍ରା. କ୍ରି. (ସଂ-ଯୁଧ୍.ପ୍ରା ଜୁଝ୍) ଯୁଦ୍ଧକରିବା, ବାଗ୍ଯୁଦ୍ଧକରିବା, କଳିକରିବା, ଚେଷ୍ଟାକରିବା ।
ଯୁଝ୍ୟ(ଧ)—ଗ୍ରା. ବି. ଯୁଦ୍ଧ, ବାଗ୍ଯୁଦ୍ଧ ।
ଯୁଞ୍ଜକ—ବି. ବିଂ. ଯୁକ୍ତ, କାର୍ଯ୍ୟନିରତ ।
ଯୁଞ୍ଜବାନ୍—ପୁଂ. ବି. ପର୍ବତବିଶେଷ (ମାର୍କଣ୍ଡେୟପୁରାଣ) । [ ବୃକ୍ଷ ।
ଯୁଞ୍ଜ ତକ—ପୁଂ.ବି. ଏକପ୍ରକାର ଔଷଧ
ଯୁଞ୍ଜାନ—ପୁଂ. ବିଂ. (ଯୁଜ୍+କ.ଆନ) ଯୋଗାଭ୍ୟାସକାରୀ, ଯେ ଯୋଗକରେ, ଯେ ଯୋତେ, ଉପଯୋଗୀ,ସମ୍ପିନ୍ନଯୁକ୍ତ, କୃତକାର୍ଯ୍ୟ, (ବି) ସାରଥି, ବ୍ରାହ୍ମଣ, ସର୍ବଜ୍ଞବ୍ୟକ୍ତି, ଯେଉଁ ଯୋଗସାଧକ ଯୋଗାଭ୍ୟାସକରୁଥାନ୍ତି ମାତ୍ର ମୁକ୍ତହୋଇ ନ ଥାନ୍ତି,(ସ୍ତ୍ରୀ) ଯୁଞ୍ଜାନା ।
ଯୁଞ୍ଜାନକ—ପୁଂ. ବି. ଯୋଗୀବିଶେଷ ।
ଯୁଟ୍(ଧାତୁ)—ମିଳିତହେବା ।
ଯୁଟା—ଗ୍ରା. ବି. (ପାନବରଜଭାଷା) ପାନ ଗଛର ଯୋଡ଼ା, ଜୁଟାଇତ୍ୟାଦି ଦେଖ, (ଗ୍ରା.ବିଂ) ଜୁଟା ଦେଖ,(ଗ୍ରା.ସର୍ବ)ଯେଉଁ ଗୋଟାକ ।
ଯୁଟାଇବା—ଗ୍ରା. କ୍ରି.ଜୁଟାଇବା ଦେଖ ।
ଯୁଟି—ଗ୍ରା. ପରସ୍ପର ଏକତ୍ର ମିଳିତ ।
ଯୁଟିବା—ଗ୍ରା. କ୍ରି. ଜୁଟିବା ଦେଖ ।
ଯୁଡ଼ା—ଗ୍ରା. ବିଂ. ଏକତ୍ର ହୋଇଥିବା, ମିଳିଯାଇଥିବା, (ଯୋଡ଼ା)ଦେଖ ।
ଯୁଡ଼ି—ପ୍ରା.(ସମ୍ବଲପୁର ଓ ବାଲେଶ୍ୱର) ବି. ପାଣିର ଜୋଡ଼, ଲମ୍ବ ଅକୃତ୍ରିମ ଅଗଭୀର ଜଳାଧାର, ଜୁଡ଼ି ଦେଖ ।
ଯୁଡ଼ିବା—ପ୍ରା.(ବାଲେଶ୍ୱରଓ ସମ୍ବଲପୁର) ବି. ଯୋଡ଼ିବା ଦେଖ ।
ଯୁଡ଼େ—ପ୍ରା.(ବଉଦ)ବି ଓ ବିଂ.ଯୋଡ଼େ, ଦୁଇଟି, ଏକଦ୍ୱଳ ।
ଯୁଣ(ଇତ୍ୟାଦି)—ଗ୍ରା. ବି. ଜୁଣଇତ୍ୟାଦି ଦେଖ ।
ଯୁତ୍—କ୍ଲୀ. ବି. (ଯୁଧ୍+ଭା.କ୍ୱିପ୍)ଯୁଦ୍ଧ, ନିନ୍ଦା, (ଯୁଧ୍+କ.କ୍ୱିପ୍)(ଗ୍ରା) ଯୋଦ୍ଧା, ସୈନିକ(ଗ୍ରା.ବି. ଓ ବିଂ.)ଜୁତ୍ ଦେଖ ।
ଯୁତ(ଧାତୁ)--କିରଣଦେବା,ଦୀପ୍ତିକରିବା, ଜକ୍ଜକ୍ ହେବା ।
ଯୁତ—ବି. ବିଂ. (ଯୁ+ମଁ.ତ) ମିଶ୍ରିତ, ମିଳିତ, ଯୁକ୍ତ, ସଂଯୁକ୍ତ, ପୃଥକ୍କୃତ, ଶୋଭିତ, ଭୂଷିତ, ଅପୃଥଗ୍ଭୂତ,ପ୍ରଣ୍ଡି, ଆବୃତ, ବନ୍ଧାଯାଇଥିବା, ସଙ୍ଗେ ଥିବା, ବେଷ୍ଟିତ, ଯୋଗ୍ୟହୋଇଥିବା, ଦଶକନ୍ୟା, ଦୈର୍ଘ୍ୟପରିମାଣବିଶେଷ, (ଯୁ+ଭା.ତ) ଯୋଗ, ମିଳନ, ବିବାହ, (ଯୁ+ଣତ) ଯୋତ, ଗାଡ଼ିଆଦିରେ ପଶୁ ଯୋଗହେବାପାଇଁ ବ୍ୟବହୃତ ଦଉଡ଼ି, (ସ୍ତ୍ରୀ) ଯୁତା ।
ଯୁତକ—କ୍ଲୀ. ବି.( ଯୁତ+ସ୍ୱାର୍ଥେ କ ) ସନ୍ଦେହ,(ଯୁଜ୍+ମଁ.ତ+କ)ଯୋଡ଼ା, ଦ୍ୱନ୍ଦ୍ୱ, (ଯୁତ+କ) ମୈଥୁନ,ସଂଯୋଗ, ଯୌତୁକ, ଶାଢ଼ୀର କାନି ବା ଅଞ୍ଚଳ, ଶାଢ଼ୀ ଓ ଓଢ଼ଣା, ସୂର୍ପପାର୍ଶ୍ୱ, କୁଲାର ପାଖ ବା ଧାର, ଆଶ୍ରୟ,କ୍ଷମା,ଉତକ୍ଷା, ସଖ୍ୟ, ଆଳାପ, ବନ୍ଧୁତାବନ୍ଧନ, ଲୁଗା-ଯୋଡ଼, ପାଦର ଅଗ୍ରଭାଗ,ଶାଢ଼ୀର ଧଡ଼ି, ସମ୍ମେଳନ, ସଂଯୋଗ ।
ଯୁତବେଧ—ଯମିତଯୁତବେଧ ଦେଖ ।
ଯୁତା(ଇତ୍ୟାଦି)--ଗ୍ରା.ବି.ଜୋତାଇତ୍ୟାଦି ଦେଖ ।
ଯୁତା(ତେ)ଇବା—ଗ୍ରା.କ୍ରି.ଯୁତବାକ୍ରିୟାର ଣିଜନ୍ତରୂପ,ଜୋତାରେ ମାଡ଼ ମାରିବା ।
ଯୁତି—ସ୍ତ୍ରୀ. ବି. (ଯୁ+ଭା.ତି) ଯୋଗିବା, ଯୋଜନ,ଶକଟାଦିରେ ପଶୁ ଯୋଚିବା, (ଗଣିତ) ସଙ୍କଳନ, ଯୋଗକରଣ, ସଂକ୍ରମଣ, ବହୁସଂଖ୍ୟାର ଯୋଗଫଳ, ସଂଯୋଗ,(ଗ୍ରା.ବି)ଇତର,(ସଂ-ଜ୍ୟୋତି) ଔଜ୍ଜ୍ୱଲ୍ୟ, ଜ୍ୟୋତି ।
ଯୁତିବା—ଗ୍ରା. କ୍ରି. ଗୋରୁଆଦି ପଶୁଙ୍କୁ ଗାଡ଼ିଶଗଡ଼ରେ ଲଗାଇବା, (ପ୍ରା.ସମ୍ବ. କ୍ରି.) କର୍ଷଣ କରିବା ।
ଯୁତେ—ଗ୍ରା. (ପଦ୍ୟ) କ୍ରି. ବିଂ. ଅମୁକ-ସଙ୍ଗେ ଯୁକ୍ତହୋଇ ।
ଯୁତ୍କାର—ବି. ବିଂ. ଯୁଦ୍ଧକାରୀ ।
ଯୁଦ୍—ସ୍ତ୍ରୀ. ବି. (ଯୁଧ୍+ଭା.କ୍ୱିପ୍)ସଂଗ୍ରାମ, ଯୁଦ୍ଧ ।
ଯୁଦ୍ଧ—କ୍ଲୀ. ବି. (ଯୁଧ୍+ଭା.ତ) ସମର, ଲଢ଼ାଇ,ସଂଗ୍ରାମ, ବିବାଦ,ଗ୍ରହମାନଙ୍କର ପରସ୍ପର ବିରୁଦ୍ଧ ଅବସ୍ଥିତି ।
ଯୁଦ୍ଧଆଇନ୍—ଗ୍ରା. ବି. ସାମରିକବିଧି ।
ଯୁଦ୍ଧଂଦେହି—ବାକ୍ୟ. ବିପକ୍ଷକୁ ସମ୍ମୁଖ-ସମର କରିବାକୁ ଆହ୍ୱାନ ।
ଯୁଦ୍ଧକ—କ୍ଲୀ. ବି. ଯୁଦ୍ଧ ।
ଯୁଦ୍ଧକଣ୍ଡୂ—ବି.(ମଧ୍ୟ-କ.ଧା) ଯୁଦ୍ଧକରିବା ପାଇଁ ପ୍ରବଳ ବାସନା ।

ଯୁଦ୍ଧକରିବା—ଗ୍ରା.କ୍ରି. ଶତ୍ରୁସଙ୍ଗେ ଲଢ଼ାଇ କରିବା ।

ଯୁଦ୍ଧକର୍ତ୍ତା—ପୁଂ. ବି. ଯୋଦ୍ଧା, ବୀର, ସୈନିକ, (ବିଂ) ଯୁଦ୍ଧକାରକ ଦେଖ ।

ଯୁଦ୍ଧକାରକ—ପୁଂ. ବିଂ. ଯେ ଯୁଦ୍ଧରେ ପ୍ରବୃତ୍ତ ଥାଏ, (ସ୍ତ୍ରୀ) ଯୁଦ୍ଧକାରିକା ।

ଯୁଦ୍ଧକାରୀ—ତ୍ରି. ବିଂ. ଯୁଦ୍ଧକର୍ତ୍ତା, ଯେ ଯୁଦ୍ଧ କରେ ।

ଯୁଦ୍ଧକୀର୍ତ୍ତି—ପୁଂ. ବି. ଶଙ୍କରାଚାର୍ଯ୍ୟଙ୍କର ଶିଷ୍ୟବିଶେଷ ।

ଯୁଦ୍ଧକୁଶଳ—ପୁଂ. ବିଂ. (୭ତତ୍ପୁ) ଯୁଦ୍ଧକରିବାରେ ପଟୁ ବା ପାରଦର୍ଶୀ, (ସ୍ତ୍ରୀ) ଯୁଦ୍ଧକୁଶଳା ।

ଯୁଦ୍ଧକୌଶଳ—ବି.(୭ତତ୍ପୁ) ଯୁଦ୍ଧକରିବା ବିଷୟରେ ନୈପୁଣ୍ୟ ।

ଯୁଦ୍ଧକ୍ଷମ—ପୁଂ. ବିଂ. (୪ ବା ୭ତତ୍ପୁ) ଯୁଦ୍ଧକରିବାପାଇଁ ସମର୍ଥ ବା ବଳଶାଳୀ, (ସ୍ତ୍ରୀ) ଯୁଦ୍ଧକ୍ଷମା ।

ଯୁଦ୍ଧକ୍ଷୟ—ବି. (୬ତତ୍ପୁ) ଯୁଦ୍ଧର ଅବସାନ,(ମଧ୍ୟ-କ.ଧା)ଯୁଦ୍ଧଜନିତ ବଳାଦି-କ୍ଷୟ ।

ଯୁଦ୍ଧକ୍ଷାନ୍ତି—ବି.(୬ତତ୍ପୁ)ଯୁଦ୍ଧନିବୃତ୍ତି ଦେଖ ।

ଯୁଦ୍ଧକ୍ଷେତ୍ର—ବି. ଯୁଦ୍ଧସ୍ଥଳ, ଯେଉଁଠାରେ ଯୁଦ୍ଧ ହୁଏ । [ ଲଭ ।

ଯୁଦ୍ଧଜୟ—ବି. (୭ତତ୍ପୁ) ଯୁଦ୍ଧରେ ଜୟ-

ଯୁଦ୍ଧଜାହାଜ—ଗ୍ରା.ବି.ଯୁଦ୍ଧପୋତ ଦେଖ ।

ଯୁଦ୍ଧଜ୍ଞ—ପୁଂ.ବିଂ.ଯୁଦ୍ଧବିଦ୍ୟାରେ ପଣ୍ଡିତ, ଯୁଦ୍ଧକୁଶଳ, (ସ୍ତ୍ରୀ) ଯୁଦ୍ଧଜ୍ଞା ।

ଯୁଦ୍ଧଢକ୍କା—ବି. (ମଧ୍ୟ-କ.ଧା) ରଣଢକ୍କା, ରଣଢୋଲ ।

ଯୁଦ୍ଧତରୀ—ବି. ଯୁଦ୍ଧପୋତ ଦେଖ ।

ଯୁଦ୍ଧତଳ—ବି. ଯୁଦ୍ଧଭୂମି ।

ଯୁଦ୍ଧଦକ୍ଷ—ପୁଂ. ବିଂ. ଯୁଦ୍ଧକୁଶଳ ଦେଖ, (ସ୍ତ୍ରୀ) ଯୁଦ୍ଧଦକ୍ଷା ।

ଯୁଦ୍ଧଦାତା—ବିଂ. ଯେ ଯୁଦ୍ଧକରିବାକୁ ବାହାରେ ।

ଯୁଦ୍ଧଦାଣ୍ଡ—ଗ୍ରା. ବି. ଯୁଦ୍ଧସ୍ଥଳ ।

ଯୁଦ୍ଧଦେବା—ଗ୍ରା. କ୍ରି. ଯୁଦ୍ଧରେ ପ୍ରବୃତ୍ତ ହେବା ।

ଯୁଦ୍ଧଦ୍ୟୁତ—ବି. ( ରୂପକ ) ଜୁଆଖେଳ ସଙ୍ଗେ ତୁଳନୀୟ ଯୁଦ୍ଧ ।

ଯୁଦ୍ଧନିବୃତ୍ତି—ବି. (୬ତତ୍ପୁ) ଯୁଦ୍ଧ ବନ୍ଦ ହେବା, ସନ୍ଧି ।

ଯୁଦ୍ଧନୀତି—ସ୍ତ୍ରୀ. ବି. (ମଧ୍ୟ-କ.ଧା) ଯୁଦ୍ଧକରିବା ସମ୍ବନ୍ଧେ ନିୟମାଦି, ଯୁଦ୍ଧବିଦ୍ୟା ଦେଖ ।

ଯୁଦ୍ଧପରାଙ୍ମୁଖ—ପୁଂ. ବିଂ. (୭ତତ୍ପୁ) ଯେ ଯୁଦ୍ଧକରିବାକୁ କୁଣ୍ଠିତ, (ସ୍ତ୍ରୀ) ଯୁଦ୍ଧପରାଙ୍ମୁଖୀ ।

ଯୁଦ୍ଧପୁରୀ—ସ୍ତ୍ରୀ. ବି. ନଗରବିଶେଷ ।

ଯୁଦ୍ଧପୋତ—ପୁଂ. ବି. (୬ତତ୍ପୁ ବା ମଧ୍ୟ-କ.ଧା) ଯୁଦ୍ଧଜାହାଜ, ରଣତରୀ ।

ଯୁଦ୍ଧପୋଷାକ—ଗ୍ରା.ବି. ଯୁଦ୍ଧସଜ ଦେଖ ।

ଯୁଦ୍ଧପ୍ରତ୍ୟାଗତ—ପୁଂ. ବିଂ.(୫ତତ୍ପୁ)ଯୁଦ୍ଧକ୍ଷେତ୍ରରୁ ଯୁଦ୍ଧକରି ଫେରିଆସିଥିବା, (ସ୍ତ୍ରୀ) ଯୁଦ୍ଧପ୍ରତ୍ୟାଗତା ।

ଯୁଦ୍ଧପ୍ରାଙ୍ଗଣ—ବି. ଯୁଦ୍ଧକ୍ଷେତ୍ର ଦେଖ ।

ଯୁଦ୍ଧପ୍ରାପ୍ତ—ବିଂ. ( ୩ତତ୍ପୁ ) ଯୁଦ୍ଧରେ ବନ୍ଦୀକୃତ (ବ୍ୟକ୍ତି), ଯୁଦ୍ଧରେ ମିଳିଥିବା (ଧନାଦି) ।

ଯୁଦ୍ଧପ୍ରିୟ—ପୁଂ. ବିଂ. (ବ.ବ୍ରୀ) ଯେ ଯୁଦ୍ଧ କରିବାକୁ ସୁଖପାଏ, (ବି)ଯୁଦ୍ଧପ୍ରିୟତା, (ସ୍ତ୍ରୀ) ଯୁଦ୍ଧପ୍ରିୟା ।

ଯୁଦ୍ଧବତ୍—ତ୍ରି. ବିଂ. ଯୁଦ୍ଧବିଶିଷ୍ଟ ।

ଯୁଦ୍ଧବନ୍ଦୀ—ବି.ଯୁଦ୍ଧରେ ପରାଜିତହୋଇ ରଖାଯାଇଥିବା କଏଦୀ ।

ଯୁଦ୍ଧବସ୍ତ୍ର—କ୍ଲୀ. ବି. ଯୁଦ୍ଧଦ୍ରବ୍ୟ ।

ଯୁଦ୍ଧବିକ୍ରମ—ବି.(୭ତତ୍ପୁ) ଯୁଦ୍ଧରେ ପ୍ରଦର୍ଶିତ ସାହସ, (ପୁଂ.ବିଂ) ଯୁଦ୍ଧବିକ୍ରମୀ ।

ଯୁଦ୍ଧବିଗ୍ରହ—ପୁଂ.ବି. (ଦ୍ୱନ୍ଦ୍ୱ) ସଂଗ୍ରାମାଦି, ଯୁଦ୍ଧଲଢ଼ାଇ ।

ଯୁଦ୍ଧବିଜ୍ଞାନ—ବି. ଯୁଦ୍ଧସମ୍ବନ୍ଧୀୟ ବିବିଧ ନିୟମ ଓ କୌଶଳାଦି ଯେଉଁ ବିଦ୍ୟାରୁ ଶିକ୍ଷା କରାଯାଏ ।

ଯୁଦ୍ଧବିଦ୍ୟା—ସ୍ତ୍ରୀ. ବି. (ମଧ୍ୟ-କ.ଧା)ସମରଶାସ୍ତ୍ର, ଧନୁର୍ବେଦ, ଯୁଦ୍ଧସମ୍ବନ୍ଧୀୟ ଶାସ୍ତ୍ର, ସଂଗ୍ରାମକୌଶଳ ।

ଯୁଦ୍ଧବିଦ୍ୟାଳୟ—ବି. ଯେଉଁ ବିଦ୍ୟାଳୟରେ ଯୁଦ୍ଧବିଦ୍ୟା ଶିକ୍ଷା ଦିଆଯାଏ ।

ଯୁଦ୍ଧବିଭାଗ—ବି. ସରକାରଙ୍କ ପଲଟଣ ବିଭାଗ, ସୈନ୍ୟବିଭାଗ ।

ଯୁଦ୍ଧବିମୁଖ—ପୁଂ. ବିଂ. (୭ତତ୍ପୁ) ଯୁଦ୍ଧପରାଙ୍ମୁଖ ଦେଖ, (ବି) ଯୁଦ୍ଧବିମୁଖତା, (ସ୍ତ୍ରୀ) ଯୁଦ୍ଧବିମୁଖା ।

ଯୁଦ୍ଧବିରତି—ବି. (୬ତତ୍ପୁ) ଯୁଦ୍ଧନିବୃତ୍ତି ଦେଖ, (ପୁଂ.ବିଂ) ଯୁଦ୍ଧବିରତ ।

ଯୁଦ୍ଧବିଶାରଦ—ପୁଂ.ବିଂ.(୭ତତ୍ପୁ)ଯୁଦ୍ଧଜ୍ଞ ଦେଖ, ଯୁଦ୍ଧକୁଶଳ ଦେଖ, (ସ୍ତ୍ରୀ)ଯୁଦ୍ଧବିଶାରଦା ।

ଯୁଦ୍ଧବିଶ୍ରାମ—ବିଂ (୬ତତ୍ପୁ)ଯୁଦ୍ଧାଭ୍ୟନ୍ତର-ବିଶ୍ରାମ ଦେଖ । [ କୁଶଳ ।

ଯୁଦ୍ଧବୀର—ପୁଂ. ବିଂ. ରଣନିପୁଣ, ରଣ-

ଯୁଦ୍ଧବ୍ରୀଡ଼ା—ବି. (ମଧ୍ୟ-କ.ଧା) ପରାଜୟ-ଜନିତ ଲଜ୍ଜା ।

ଯୁଦ୍ଧଭଙ୍ଗ—ବି. (୬ତତ୍ପୁ) ଯୁଦ୍ଧନିବୃତ୍ତି ଦେଖ, (୫ତତ୍ପୁ) ରଣଭଙ୍ଗ, ଯୁଦ୍ଧରୁ ପଳାଇଯିବା, (୬ତତ୍ପୁ) ଶତ୍ରୁସୈନ୍ୟର ଶ୍ରେଣୀଭଙ୍ଗ ।

ଯୁଦ୍ଧଭୂ—ସ୍ତ୍ରୀ. ବି. ଯୁଦ୍ଧଭୂମି ।

ଯୁଦ୍ଧଭୂମି—ବି. (୬ତତ୍ପୁ) ଯୁଦ୍ଧକ୍ଷେତ୍ର,ରଣଭୂଇଁ ।

ଯୁଦ୍ଧମତ୍ତ—ପୁଂ.ବିଂ.(୩ତତ୍ପୁ ବା ୭ତତ୍ପୁ) ରଣମଦରେ ମାତିଥିବା,(ସ୍ତ୍ରୀ)ଯୁଦ୍ଧମତ୍ତା ।

ଯୁଦ୍ଧମଦ—ବି. (ମଧ୍ୟ-କ.ଧା) ରଣମଦ, ଯୁଦ୍ଧନିଶା । [ ସ୍ୱରୂପ ।

ଯୁଦ୍ଧମୟ—ତ୍ରି. ବିଂ.ରଣସମ୍ବନ୍ଧୀୟ,ଯୁଦ୍ଧ-

ଯୁଦ୍ଧମାଗିବା—ଗ୍ରା. କ୍ରି. ଯୁଦ୍ଧକରିବାକୁ ବିପକ୍ଷକୁ ଡାକିବା ।

ଯୁଦ୍ଧମାର୍ଗ—ବି.(୬ତତ୍ପୁ) ଯୁଦ୍ଧକୌଶଳ, (ରୂପକ) ଯୁଦ୍ଧରୂପ ମାର୍ଗ, ଅଭୀଷ୍ଟଲାଭାର୍ଥ ଅବଲମ୍ବିତ ଯୁଦ୍ଧରୂପ ଉପାୟ ।

ଯୁଦ୍ଧମୁଖ—ବି. (୬ତତ୍ପୁ) ଉଭୟ ସେନା ମିଳିତହେବା ସ୍ଥାନ, ଯୁଦ୍ଧର ସମ୍ମୁଖୀନ ସେନାଶ୍ରେଣୀ ।

ଯୁଦ୍ଧମୁଷ୍ଟି—ପୁଂ.ବି. ଉଗ୍ରସେନର ପୁତ୍ର ।

ଯୁଦ୍ଧମେଦିନୀ—ସ୍ତ୍ରୀ. ବି. ରଣଭୂମି ।

ଯୁଦ୍ଧଯନ୍ତ୍ର—ବି. ( ମଧ୍ୟ-କ.ଧା ) ଯୁଦ୍ଧାର୍ଥ

ବ୍ୟବହୃତ ଯନ୍ତ୍ର ବା କଳ ।
ଯୁଦ୍ଧଯାତ୍ରା—ସ୍ତ୍ରୀ. ବି. (୬ତତ୍ପୁ)ଅଭିଯାନ, ଯୁଦ୍ଧକରିବାପାଇଁ ବାହାରିବା ।
ଯୁଦ୍ଧଯାତ୍ରୀ—ବିଂ. ( ମଧ୍ୟ-କ.ଧା ) ଯୁଦ୍ଧ ନିମନ୍ତେ ଯାତ୍ରା କରୁଥିବା ।
ଯୁଦ୍ଧଯାନ—ବି. (ମଧ୍ୟ-କ.ଧା) ଯୁଦ୍ଧରେ ବ୍ୟବହୃତ ଯାନ ।
ଯୁଦ୍ଧରଙ୍ଗ—ପୁଂ. ବି. (ରୂପକ) ଯୁଦ୍ଧରୂପ ନାଟକର ଅଭିନୟ, (ବି.ସ୍ତ୍ରୀ) ଦେବ-ସେନାପତି, କାର୍ତ୍ତିକେୟ,(୭ତତ୍ପୁ)ଯୁଦ୍ଧ-ଭୂମି ।
ଯୁଦ୍ଧରଥ—ବି. (ମଧ୍ୟ-କ.ଧା) ଯୁଦ୍ଧରେ ବ୍ୟବହୃତ ରଥ ।
ଯୁଦ୍ଧରୀତି—ବି. (୬ତତ୍ପୁ) ଯୁଦ୍ଧକରିବାର ପଦ୍ଧତି ବା ପ୍ରଣାଳୀ ।
ଯୁଦ୍ଧଶାଳୀ—ପୁଂ. ବିଂ. (ଯୁଦ୍ଧ+ଶାଳିନ୍ ଯୁଦ୍ଧକର୍ମରେ ବ୍ୟାପୃତ, ଯୁଦ୍ଧରେ ବିକ୍ରମୀ,ଯୁଦ୍ଧପ୍ରିୟ ।
ଯୁଦ୍ଧଶୁନବାର—ଗ୍ରା. ବି. ବନ୍ଧୁଲୋକଙ୍କ ସହ କାଳ ଯୁଦ୍ଧ ।
ଯୁଦ୍ଧସଂବା(ମ୍ବା)ଦ—ବି. (୬ତତ୍ପୁ) ଯୁଦ୍ଧ-ବିଷୟକ ବିବରଣ ।
ଯୁଦ୍ଧସଚିବ—ବି. ରାଜାଙ୍କୁ ଯୁଦ୍ଧସମ୍ବନ୍ଧେ ପରାମର୍ଶ ଦେବା ମନ୍ତ୍ରୀ ।
ଯୁଦ୍ଧସଜ୍ଜା—ବି. (ମଧ୍ୟ-କ.ଧା) ରଣସଜ୍ଜା, ସଂଗ୍ରାମାର୍ଥ ବେଶଭୂଷା, ବର୍ମ, ସାଞ୍ଜୁ, ବ୍ୟୂହରଚନ, ଯୁଦ୍ଧପାଇଁ ସଜହେବା ।
ଯୁଦ୍ଧସ(ସା)ଜ—ଗ୍ରା. ବି. (ସଂ-ଯୁଦ୍ଧସଜ୍ଜା) ଯୁଦ୍ଧସଜ୍ଜା ଦେଖ ।
ଯୁଦ୍ଧସାଧନ—ବି. (୬ତତ୍ପୁ)ଯୁଦ୍ଧକରିବାର ଉପକରଣମାନ ।
ଯୁଦ୍ଧସାର—ପୁଂ. ବି. (ଯୁଦ୍ଧ+ସୃ+କ. ଅ) ଘୋଟକ, ଅଶ୍ୱ ।
ଯୁଦ୍ଧସୃଷ୍ଟି—ଗ୍ରା. ବି.ଯୁଦ୍ଧଭୂମି,ଯୁଦ୍ଧକ୍ଷେତ୍ର
ଯୁଦ୍ଧସ୍ଥଳ--କ୍ଲୀ.ବି.ଯୁଦ୍ଧର ସ୍ଥାନ,ଯୁଦ୍ଧକ୍ଷେତ୍ର
ଯୁଦ୍ଧହସ୍ତୀ—ବି. (ମଧ୍ୟ-କ.ଧା) ଯୁଦ୍ଧରେ ସାହାଯ୍ୟକାରୀ ହସ୍ତୀ ।
ଯୁଦ୍ଧା(ଦ୍ଧି)—ଗ୍ରା.ବି ଓ ବିଂ. (ସଂ-ଯୋଦ୍ଧା) ଯୋଦ୍ଧା ଦେଖ ।

ଯୁଦ୍ଧାକାଙ୍କ୍ଷା—ବି. (୬ତତ୍ପୁ)ଯୁଦ୍ଧକରିବାକୁ ଇଚ୍ଛା ।
ଯୁଦ୍ଧାକାଙ୍କ୍ଷୀ—ପୁଂ. ବିଂ. (୬ତତ୍ପୁ)ଯୁଦ୍ଧ କରିବାପାଇଁ ଇଚ୍ଛୁକ,(ସ୍ତ୍ରୀ)ଯୁଦ୍ଧାକାଙ୍କ୍ଷିଣୀ
ଯୁଦ୍ଧାଗ୍ରଣୀ—ପୁଂ. ବି. ( ମଧ୍ୟ-କ.ଧା ) ରଣଶିକ୍ଷାଦାତା ।
ଯୁଦ୍ଧାଜି—ପୁଂ.ବି. ଅଙ୍ଗିରାଙ୍କ ଗୋତ୍ରାପତ୍ୟ
ଯୁଦ୍ଧାଜୀବ—ବି. (ବି.ସ୍ତ୍ରୀ)ଯୋଦ୍ଧା,ସୈନ୍ୟ ରୂପେ ଜୀବିକାନିର୍ବାହ କରିବା ବ୍ୟକ୍ତି ।
ଯୁଦ୍ଧାଧ୍ୱାନ୍—ପୁଂ.ବି.ରଣେଗମନ,ଯୁଦ୍ଧ-ପଥ ।
ଯୁଦ୍ଧାନୁସନ୍ଧାନୀ—ପୁଂ. ବିଂ. ଯେ ଯୁଦ୍ଧ-କରିବା ପାଇଁ ସୁବିଧା ଖୋଜୁଥାଏ ।
ଯୁଦ୍ଧାବସର—ବି. (୭ତତ୍ପୁ) ଯୁଦ୍ଧମଧ୍ୟରେ ମିଳିବା ବିଶ୍ରାମ, (ମଧ୍ୟ-କ.ଧା) ଯୁଦ୍ଧ ହେବାପାଇଁ ସୁଯୋଗ ।
ଯୁଦ୍ଧାବସାନ—ବି. (୬ତତ୍ପୁ)ଯୁଦ୍ଧନିବୃତ୍ତି, ଯୁଦ୍ଧର ଶେଷ ।
ଯୁଦ୍ଧାଭିଳାଷ—ବି. ଯୁଦ୍ଧାକାଙ୍କ୍ଷା ଦେଖ ।
ଯୁଦ୍ଧାଭିଳାଷୀ—ପୁଂ. ବିଂ. ଯୁଦ୍ଧାକାଙ୍କ୍ଷୀ ଦେଖ, (ସ୍ତ୍ରୀ) ଯୁଦ୍ଧାଭିଳାଷିଣୀ ।
ଯୁଦ୍ଧାଭ୍ୟନ୍ତରବିଶ୍ରା(ରା)ମ—ବି. ଉଭୟପକ୍ଷ କିଛିକାଳପାଇଁ ଯୁଦ୍ଧରୁ ନେବା ବିଶ୍ରାମ ।
ଯୁଦ୍ଧାଭ୍ୟାସ—ବି.ଯୁଦ୍ଧବିଦ୍ୟା ଶିକ୍ଷା,କ୍ରୀଡ଼ା ଯୁଦ୍ଧଦ୍ୱାରା ଯୁଦ୍ଧବିଦ୍ୟା ଶିକ୍ଷା ।
ଯୁଦ୍ଧାୟୋଜନ—ବି. (ମଧ୍ୟ-କ.ଧା)ଯୁଦ୍ଧ-ପାଇଁ ଉଦ୍ୟମ ଓ ଉପକରଣାଦି ସଂଗ୍ରହ
ଯୁଦ୍ଧାରମ୍ଭ—ବି. (୬ତତ୍ପୁ) ଯୁଦ୍ଧର ପ୍ରଥମ ଚେଷ୍ଟା ବା ଅବସ୍ଥା ।
ଯୁଦ୍ଧାର୍ଥ(ର୍ଥେ)—ଗ୍ରା.ଅବ୍ୟ. (ସଂ-ଯୁଦ୍ଧାର୍ଥଂ) ଯୁଦ୍ଧକରିବାପାଇଁ ।
ଯୁଦ୍ଧାର୍ଥୀ—ପୁଂ. ବିଂ. (ଉପ-ତତ୍ପୁ) ଯୁଦ୍ଧା-କାଙ୍କ୍ଷୀ ଦେଖ, (ସ୍ତ୍ରୀ) ଯୁଦ୍ଧାର୍ଥିନୀ ।
ଯୁଦ୍ଧାଶ୍ୱ—ବି. ( ମଧ୍ୟ-କ.ଧା ) ଯୁଦ୍ଧରେ ନିୟୋଜିତ ଘୋଡ଼ା ।
ଯୁଦ୍ଧାସ୍ତ୍ର—ବି. ( ମଧ୍ୟ-କ.ଧା ) ଯୁଦ୍ଧରେ ବ୍ୟବହୃତ ଅସ୍ତ୍ରାଦି । [ ବାନ୍ ।
ଯୁଦ୍ଧୀନ୍—ପୁଂ. ବିଂ. ଯୁଦ୍ଧବିଶିଷ୍ଟ, ଯୁଦ୍ଧ-
ଯୁଦ୍ଧେଚ୍ଛା—ବି. ଯୁଦ୍ଧାକାଙ୍କ୍ଷା ଦେଖ,(ବିଂ)

ଯୁଦ୍ଧେଚ୍ଛୁ, ଯୁଦ୍ଧେଚ୍ଛୁକ ।
ଯୁଦ୍ଧୋଦ୍ୟତ—ପୁଂ. ବିଂ.(୭ତତ୍ପୁ) ଯୁଦ୍ଧ-କରିବାକୁ ପ୍ରସ୍ତୁତ, (ସ୍ତ୍ରୀ)ଯୁଦ୍ଧୋଦ୍ୟତା ।
ଯୁଦ୍ଧୋଦ୍ୟମ—ବି. (ମଧ୍ୟ-କ.ଧା) ଯୁଦ୍ଧ-ପାଇଁ ପ୍ରସ୍ତୁତ ହେବା ।
ଯୁଦ୍ଧୋନ୍ମତ୍ତ--ପୁଂବିଂ.ରଣମଦରେ ପାଗଳ, (ବି) ରାବଣର ଭାଇ ମହୋଦର ରାକ୍ଷ-ସର ନାମ, (ସ୍ତ୍ରୀ) ଯୁଦ୍ଧୋନ୍ମତ୍ତା ।
ଯୁଦ୍ଧୋନ୍ମତ୍ତା—ସ୍ତ୍ରୀ. ବିଂ. ଅତିଶୟ ଯୁଦ୍ଧ-ପରାୟଣା ।
ଯୁଦ୍ଧୋନ୍ମାଦ—ବି. (ମଧ୍ୟ-କ.ଧା) ଯୁଦ୍ଧର ନିଶା, ଯୁଦ୍ଧମଦ ।
ଯୁଦ୍ଧୋପକରଣ—କ୍ଲୀ.ବି. (୬ତତ୍ପୁ)ଯୁଦ୍ଧ-ପାଇଁ ପ୍ରୟୋଜନୀୟ ଅସ୍ତ୍ରଶସ୍ତ୍ରାଦି ଦ୍ରବ୍ୟ-ମାନ ।
ଯୁଦ୍ଧଭୂ—ସ୍ତ୍ରୀ. ବି. ରଣଭୂମି,ରଣକ୍ଷେତ୍ର ।
ଯୁଧ୍—ବି. (ଯୁଧ୍+ଭା.କ୍ୱିପ୍) ସଂଗ୍ରାମ, ଯୁଦ୍ଧ, ( ଯୁଧ୍+କ.କ୍ୱିପ୍ ) ଯୋଦ୍ଧା, ବୀର ।
ଯୁଧ୍—(ଧାତୁ) ଲଢ଼ାଇ କରିବା, ହତ୍ୟା କରିବା, ସଂହାର କରିବା ।
ଯୁଧା—ସ୍ତ୍ରୀ. ବି. ( ଯୁଦ୍ଧ+କ୍ୱିପ୍+ଆ ) ଯୁଦ୍ଧ, ସଂଗ୍ରାମ ।
ଯୁଧାଂଶ୍ରୌଷ୍ଟି—ପୁଂ.ବି. ଜନୈକ ଋଷି ।
ଯୁଧାଜି—ପୁଂ. ବି. ଅଙ୍ଗିରାଙ୍କ ବଂଶଧର ।
ଯୁଧାଜିତ୍—ପୁଂ. ବି. (ଯୁଦ୍ଧ+ଜି+କ. କ୍ୱିପ୍) କେକୟରାଜ ପୁତ୍ର, ଭରତଙ୍କ ମାମୁଁ ଓ କୈକେୟୀଙ୍କ ଭାଇ; ଯଦୁ-ବଂଶୀୟ ବୃଷ୍ଣିଙ୍କ ପୁତ୍ର,କୃଷ୍ଣଙ୍କର ଜନୈକ ପୁତ୍ର ।
ଯୁଧାନ—ପୁଂ. ବି. ( ଯୁଧ୍+କ.ଆନ ) ଯୋଦ୍ଧା, ସୈନିକ, କ୍ଷତ୍ରିୟ, ଶତ୍ରୁ,ରିପୁ, (ବିଂ) ଯୁଦ୍ଧକାରୀ । [ ପୁତ୍ର ।
ଯୁଧାମନ୍ୟୁ—ବି.ପଞ୍ଚାଳରାଜ ଯଜ୍ଞସେନଙ୍କ
ଯୁଧାସୁର--ପୁଂ.ବି. ରାଜା ନଳଙ୍କର ନାମ-ବିଶେଷ । [ ଯୋଦ୍ଧା ।
ଯୁଧି(ଦ୍ଧି)—ଗ୍ରା. ବି. (ସଂ-ଯୁଧିକ) ବୀର,
ଯୁଧିକ—ପୁଂ. ବି. ( ଯୁଧ୍+କ.ଇକ ) ଯୋଦ୍ଧା, (ବିଂ) ଯୁଦ୍ଧକାରୀ ।

ଯୁଦ୍ଧଙ୍ଗମ—ପୁଂ. ବ. ଯୁଦ୍ଧେଗମନ ।
ଯୁଧି(ଧେ)ଷ୍ଠି(ଷ୍ଠି)—ଗ୍ରା.ବ.(ସଂ-ଯୁଧିଷ୍ଠିର) ଯୁଧିଷ୍ଠିର ଦେଖ ।
ଯୁଧିଷ୍ଠିର—ପୁଂ. (ଯୁଧି+ସ୍ଥିର) ୭ତତ୍; ଜ୍ୟେଷ୍ଠ ପାଣ୍ଡବ, (ଗ୍ରା.ପୁଂ.ବ) ଲୋକଙ୍କ ନାମ, ଧର୍ମପ୍ରାଣ ବ୍ୟକ୍ତି ।
ଯୁଧେନ୍ୟ—ପୁଂ. ବ. ଯୋଧନାର୍ହ, ଯୁଦ୍ଧୋପଯୁକ୍ତ ।
ଯୁଧୀୟ—ବି. ବଂ. ( ଯୋଧ+ଈୟ ) ଯୋଦ୍ଧା, ଯୁଦ୍ଧସମ୍ବନ୍ଧୀୟ ।
ଯୁଧ୍ମ—ବ. (ଯୁଧ୍+ଭା.ମ)ଯୁଦ୍ଧ,ସଂଗ୍ରାମ, (ଯୁଧ୍+ଣ.ମ) ଧନୁ,ଧନୁକ,ତୀର,ଶର, ବାଣ, (ଯୁଧ୍+କ.ମ) ଯୋଦ୍ଧା,ଶେଷ-ଯୁଦ୍ଧ, ପୁରାଣୋକ୍ତ ଶରଭ, ଅଷ୍ଟପଦୀ ମୃଗବିଶେଷ ।
ଯୁଧ୍ମ—ପୁଂ. ବଂ. (ଯୁଧ୍+କ.ମ) ଯାହା ସଙ୍ଗେ ଯୁଦ୍ଧ କରିଯାଇପାରେ,ସ୍ତ୍ରୀ;ଯୁଧ୍ମା
ଯୁଧ୍ମମାନ—ପୁଂ. ବଂ. (ଯୁଧ୍+କ.ଆନ) ଯୁଦ୍ଧରେ ନିଯୁକ୍ତ ଥିବା ବ୍ୟକ୍ତି, ( ସ୍ତ୍ରୀ ) ଯୁଧ୍ମମାନା ।
ଯୁଧ୍ମମୁଷ୍ଟି—ବ. ଭୋଜବଂଶୀୟ ରାଜା ଉଗ୍ରସେନଙ୍କ ପୁତ୍ର । [ ସମ୍ପନ୍ନ ।
ଯୁଧାମନ୍ୟୁ—ପୁଂ. ବ. ଯୁଧାମନ୍ୟୁନାମକ
ଯୁଧ୍ୱାନ୍—ପୁଂ. ବଂ. ଯୁଦ୍ଧକାରୀ ।
ଯୁନା—ପ୍ରା. (ବାମଣ୍ଡା) ବଂ. (ସଂ-ଜୀର୍ଣ୍ଣ) ପୁରୁଣା ।
ଯୁନାନୀ—ବଂ. ଗ୍ରୀକ୍‌ଯବନଜାତି ସମ୍ବ-ନ୍ଧୀୟ, ଗ୍ରୀସ୍‌ଦେଶୀୟ, ଯାବନୀକ ।
ଯୁନାନୀଚିକିତ୍ସା—ବ. ଗ୍ରୀକ୍ ଆୟୁର୍ବେଦ-ମତେ ଚିକିତ୍ସା ।
ଯୁପ୍—(ଧାତୁ) ଲିଭାଇଦେବା, ପୋଛି-ଦେବା, କଷ୍ଟଦେବା, ସମତଳ କରିବା, ଚିକ୍କଣ କରିବା ।
ଯୁପ—ବିମୋହନ, ବ୍ୟାକୁଳୀକରଣ ।
ଯୁ(ଯୁଁ)ପରି—ଗ୍ରା. ଅବ୍ୟ. ଯେଉଁପରି, ଯେଉଁ ପ୍ରକାରେ ।
ଯୁବକ—ପୁଂ. ବଂ. (ଯୁବନ୍+ସ୍ୱାର୍ଥେ. କ) ତରୁଣ, ଯୁବା, ୧୬ଠାରୁ ୩୦ବର୍ଷ ବୟସ ମଧ୍ୟର (ଲୋକ) ।
ଯୁବକଯୁବତୀ—ବ. (ସହଚର) ତରୁଣ ଓ ତରୁଣୀ,ଯୁବାପୁରୁଷ ଓ ଯୁବତୀ ସ୍ତ୍ରୀ
ଯୁବଖଲତି—ପୁଂ. ଓ ସ୍ତ୍ରୀ. ବଂ. ଯୁବା-କାଳରେ ଯାହାର ମୁଣ୍ଡ ଟାଙ୍ଗରା ହୋଇଥାଏ ବା ଶିଆଳ ଖାଇଥାଏ,(ସ୍ତ୍ରୀ) ଯୁବଖଲତୀ ।
ଯୁବଗଣ୍ଡ—ପୁଂ. ବ. (ବ.ବ୍ରୀ) କାଠ-ବରୁଣ,ଯୁବକଙ୍କ ମୁଖବ୍ରଣ ବା ବୟସ-ବ୍ରଣ ।
ଯୁବଜରତୀ—ସ୍ତ୍ରୀ. ବ. ଯୁବତୀ ହୋଇ ବୃଦ୍ଧାବସ୍ଥାପ୍ରାପ୍ତ, ବୟସ ଥାଉଁ ଥାଉଁ ବୁଢ଼ିହେବା ।
ଯୁବ(ବା)ଜରନ୍—ପୁଂ. ବଂ. (ଯୁବନ୍+ଜୃ+କ.ଅ) ଅକାଳପକ୍ୱ,ଯୌବନରେ ବାର୍ଦ୍ଧକ୍ୟ ପ୍ରାପ୍ତ,(ସ୍ତ୍ରୀ) ଯୁବଜରତୀ ।
ଯୁବଜାନି—ପୁଂ. ବ. (ବ.ବ୍ରୀ) ଯୁବତୀର ସ୍ୱାମୀ, ଯାହାର ସ୍ତ୍ରୀ ଯୁବତୀ ।
ଯୁବଜାନି—ପୁଂ. ବ.(ଯୁବତୀ+ଜାୟା; ବ.ବ୍ରୀ)ସମାସରେ ଜାୟାଠାରେ ଜାନି ଆଦେଶ ହୁଏ) ଯୁବତୀର ପତି,ଯାହାର ସ୍ତ୍ରୀ ଯୁବତୀ ଅଟେ ।
ଯୁବତି—ସ୍ତ୍ରୀ.ବଂ. (ଯୁବନ୍+ତି) ପ୍ରାପ୍ତ-ଯୌବନା, (ବ) ପ୍ରାପ୍ତଯୌବନା ସ୍ତ୍ରୀ, ତରୁଣୀ, ହଳଦୀ, କନ୍ୟାରାଶି ।
ଯୁବତୀ—ସ୍ତ୍ରୀ.ବଂ. (ଯୁବତି+ଈ) ପ୍ରାପ୍ତ-ଯୌବନା, ଯୁବତି ଦେଖ ।
ଯୁବତୀଷ୍ଟା—ସ୍ତ୍ରୀ.ବ. (ଯୁବତୀ+ଇଷ୍ଟ+ଆ) ଯୁଇଫୁଲ, ସ୍ୱର୍ଣ୍ଣଯୂଥିକା ।
ଯୁବଦୈବତ୍ୟ—ବି.ବଂ. ଯାହାର ଦୁଇ ଜଣ ଦେବତା । [ ଲିଖିତ ।
ଯୁବଦ୍ରିକ୍—ବି. ବଂ. ଦୁଇଜଣପ୍ରତି ଅଭି-
ଯୁବଧିତ—ବି. ବଂ. ଦୁଇଜଣଙ୍କର ଉପ-ଯୋଗୀ । [ ଦେଖ ।
ଯୁବନ୍—ପୁଂ. ବଂ. (ଯୁ+ଅନ୍) ଯୁବା
ଯୁବନାଶ୍ୱ—ପୁଂ. ବ. ସୂର୍ଯ୍ୟବଂଶୀୟ ଜଣେ ରାଜା, ମାନଧାତାଙ୍କ ପିତା ।
ଯୁବନାଶ୍ୱଜ—ପୁଂ. ବ. ଯୁବନାଶ୍ୱଙ୍କପୁତ୍ର ସୂର୍ଯ୍ୟବଂଶୀୟ ମାନ୍ଧାତା ରଜା ।
ଯୁବନ୍ୟ—ବି.ବଂ(ଯୁବନ୍+ଯ)ଯୁବକ ।
ଯୁବ(ବା)ପଳିତ—ପୁଂ.ବଂ. ଯୌବନରେ ପକ୍ୱକେଶବିଶିଷ୍ଟ, (ବ) ଯୁବାପାଳିତ୍ୟ, (ସ୍ତ୍ରୀ) ଯୁବତୀପାଳିତା ।
ଯୁବଯୁ—ବି. ବଂ. ଯୁବକାମନାକାରୀ ।
ଯୁବରାଜ(ଜ)—ପୁଂ.ବ.(ଯୁବନ୍+ରାଜନ୍) କ.ଧା; ଗମ୍ଭିରୀ ସାଆନ୍ତ, ବୃଦ୍ଧବିଶେଷ, ରାଜାଙ୍କ ବଡପୁଅ, ଭାବୀବୃଦ୍ଧବିଶେଷ, ଅଜିତ, ମୈତ୍ରେୟ, ରାଜା ଥାଉଁ ଥାଉଁ ରାଜ୍ୟର ଭାବୀଉତ୍ତରାଧିକାରୀରୂପେ ରାଜାଙ୍କ ନିର୍ବାଚିତ ଶାସନ କର୍ମରେ ସାହାଯ୍ୟ-କାରୀ ରାଜପୁତ୍ର, (ସ୍ତ୍ରୀ) ଯୁବରାଜ୍ଞୀ ।
ଯୁବରାଜତ୍ୱ—କ୍ଳୀ. ବ. ଯୁବରାଜଙ୍କଭାବ ।
ଯୁବରାଜ୍ୟ—କ୍ଳୀ.ବ.ଯୌବରାଜ୍ୟ ଦେଖ ।
ଯୁବରାଣୀ—ଗ୍ରା.ସ୍ତ୍ରୀ.ବ.ଯୁବରାଜଙ୍କର ସ୍ତ୍ରୀ ।
ଯୁବବଳନ—ବି.ବଂ. ଯୌବନାବସ୍ଥାରେ ବଳୀଯୁକ୍ତ ।
ଯୁବଶ—ବି. ବଂ. ଯୁବା ।
ଯୁବା—ପୁଂ. ବଂ. (ଯୁବନ୍‌ଶବ୍ଦ) ତରୁଣ, ଶ୍ରେଷ୍ଠ, ଅତ୍ୟୁତ୍ତମ, ବଳିଷ୍ଠ, ନିସର୍ଗବଳ-ଶାଳୀ, ସୁନ୍ଦର, (ଗ୍ରା. ସ୍ତ୍ରୀ. ବଂ)ଯୁବତୀ ।
ଯୁବାକନ୍ୟା—ଗ୍ରା. ବ. ରଜସ୍ୱଳା କନ୍ୟା, ଯୁବତୀ କନ୍ୟା, ବଢ଼ିଲା ଝିଅ ।
ଯୁବାକାଳ-ବ.(ଯୁବନ୍+କାଳ)ଯୌବନ ।
ଯୁବାକାଳିଆ—ଗ୍ରା. ବଂ. ଯୁବକ ପିତା-ଠାରୁ ଜାତ, ଯୁବାକାଳ ସମ୍ବନ୍ଧୀୟ ।
ଯୁବାକୁ—ବି.ବଂ.ଦୁଇଜଣଙ୍କର ଅଧିକୃତ ।
ଯୁବାଦତ୍ତ—ବି. ବଂ. ଦୁଇଜଣଙ୍କୁ ଯାହା ଦିଆହୋଇଅଛି ।
ଯୁବାନ୍—ଗ୍ରା. ବ ଓ ବଂ.ଯୁଆନ, ଯୁବା, ଭେଣ୍ଡା,ଯୁବା ଓ ବଳିଷ୍ଠ,(ସ୍ତ୍ରୀ)ଯୁବାନୀ ।
ଯୁବାନପିଡ଼ିକା—ସ୍ତ୍ରୀ. ବ. ଯୌବନକୃତ ମୁଖବ୍ରଣ, ବୟସ ବରୁଣ ।
ଯୁବାବୟସିଆ—ଗ୍ରା.ବଂ.ଯୁବାବସ୍ଥାପ୍ରାପ୍ତ, ଯୁବାକାଳିଆ ଦେଖ, ( ସ୍ତ୍ରୀ ) ଯୁବା-ବୟସୀ ।
ଯୁବାବୟସ୍କ—ଗ୍ରା. ପୁଂ. ବଂ. (ଯୁବନ୍+ବୟଃ+କ) ଯୁବା,(ସ୍ତ୍ରୀ)ଯବାବୟସ୍କା ।
ଯୁବାବସ୍ଥା—ବ. ଯୌବନ ।
ଯୁବାହେବା—ଗ୍ରା. କ୍ରି. (ବାଳିକା) ରଜ-

ସ୍ଥଳା ହେବା, ଜ୍ଞାନପାଇବା, ବଢ଼ିବା ।
ଯୁମ୍—ଗ୍ରା. ବି. ଜୁମ୍ ଦେଖ ।
ଯୁମକ୍(ଇତ୍ୟାଦି)—ଗ୍ରା. ବି. ଜୁମକ୍ ଇତ୍ୟାଦି ଦେଖ ।
ଯୁଯ୍ମାନ—ଗ୍ରା. ବିଂ. ଯୁବା, ବଳବାନ୍, (ପ୍ରା-କ.ପ୍ର କ୍ରି.) ଯୋଗାଇବା, ନିର୍ଗତ ହେବା ।
ଯୁଯ୍ୟାସ୍ୟ-(ପ୍ରା-କ.ପ୍ର) ଯୋଗାଇବା, ନିର୍ଗତ ହେବା, ନିଃସୃତ ହେବା ।
ଯୁଯୁ—ପୁଂ. ବି. ଅଶ୍ୱ, ଘୋଟକ ।
ଯୁଯୁକ୍‌ଖୋର—ପୁଂ. ବି. (ବ.ଗ୍ରା) କ୍ଷୁଦ୍ର-ବ୍ୟାଘ୍ର, ହେଣ୍ଟାବାଘ ।
ଯୁଯୁକ୍ଷମାଣ—ପୁଂ. ବିଂ. (ଯୁଜ୍+ସନ୍+ +କ.ଆନ) ଯୋଗସାଧନ କରିବାକୁ ଅଭିଳାଷୀ,ମୁକ୍ତିପାଇଁ ଅଭିଳାଷୀ,ଧାର୍ମିକ. ମିଳନେଚ୍ଛୁ, (ସ୍ତ୍ରୀ) ଯୁଯୁକ୍ଷମାଣା ।
ଯୁଯୁକ୍ଷା—ବି. (ଯୁଜ୍+ସନ୍+ଭା.ଅ+ ଆ) ମିଳନେଚ୍ଛା ।
ଯୁଯୁକ୍ଷୁ—ବିଂ. ( ଯୁଜ୍+ସନ୍+କ.ଉ ) ଯୋଗାଭିଳାଷୀ, ମିଳନେଚ୍ଛୁ ।
ଯୁଯୁକ୍ତାନସପ୍ତି—ତ୍ରି.ବିଂ ଯୁଜ୍ୟମାନ ଅଶ୍ୱ ।
ଯୁଯୁତ୍ସା—ସ୍ତ୍ରୀ. ବି. (ଯୁଧ୍+ସନ୍+ଆ) ଯୁଦ୍ଧକରିବାର ଇଚ୍ଛା ।
ଯୁଯୁତ୍ସୁ—ତ୍ରି. ବିଂ. (ଯୁଧ୍+ସନ୍+ଭା. ଅ+ଉ) ରଣକରଣେଚ୍ଛୁ, ଶତ୍ରୁତା କରିବାକୁ ଇଚ୍ଛୁକ, ଦୁରାଶାନ୍ୱିତ, (ବି) ଯୋଦ୍ଧା,ଧୃତରାଷ୍ଟ୍ରଙ୍କ ଔରସେ ବୈଶ୍ୟା-ଗର୍ଭଜାତ ପୁତ୍ରବିଶେଷ ।
ଯୁଯୁଧାନ—ପୁଂ. ବିଂ. (ଯୁଧ୍+କ.ଆନ) ଯୁଦ୍ଧରେ ବ୍ୟାପୃତ, ( ବି ) ଯୋଦ୍ଧା, କ୍ଷତ୍ରିୟ, ଇନ୍ଦ୍ର, ସାତ୍ୟକି, (ସ୍ତ୍ରୀ) ଯୁଯୁଧାନା ।
ଯୁଷ୍ମଦ୍—ସର୍ବ. (ଯୁଷ୍+କ.ମଦ୍) ତୁମ୍ଭେ, ମଧ୍ୟମପୁରୁଷ ।
ଯୁଷ୍ମଦୀୟ-ତ୍ରି.ବିଂ.(ଯୁଷ୍ମଦ୍+ଈୟ)ତୁମ୍ଭର. ତୁମ୍ଭମାନଙ୍କର, ତୁମ୍ଭ ବା ତୁମ୍ଭମାନଙ୍କ ସମ୍ବନ୍ଧୀୟ, (ସ୍ତ୍ରୀ) ଯୁଷ୍ମଦୀୟା ।
ଯୁଷ୍ମଦ୍ବିଧ—ତ୍ରି.ବିଂ.ତୁମ୍ଭସଦୃଶ,ତୁମ୍ଭପରି ।
ଯୁଷ୍ମଦତ୍ତ—ତ୍ରି.ବିଂ. ତୁମ୍ଭ ଦତ୍ତ ।
ଯୁଷ୍ମାଦୃକ୍(ଶ୍)—ପୁଂ.ବିଂ. (ଯୁଷ୍ମଦ୍+ଦୃଶ୍ +କ.କ୍ୱିପ୍) ତୁମ୍ଭପରି,(ସ୍ତ୍ରୀ)ଯୁଷ୍ମାଦୃଶୀ ।
ଯୁଷ୍ମାନୀତ—ତ୍ରି.ବିଂ.ତୁମ୍ଭଦ୍ୱାରା ପରିଚାଳିତ
ଯୁଷ୍ମେଷ୍ଟ—ତ୍ରି.ବିଂ. ତୁମ୍ଭର ପ୍ରିୟ ।
ଯୂ(ଯୂଃ)—ବି.(ଯୁ + ମି.କ୍ୱିପ୍)ଯୂଷ୍,କ୍ୱାଥ ।
ଯୂ—ସ୍ତ୍ରୀ.ବି. ବୃକ୍ଷ । [ ବିଶେଷ ।
ଯୂଇ—ଗ୍ରା.ବି. ମଧୁର ସୁବାସଯୁକ୍ତ ପୁଷ୍ପ-
ଯୂଇପାଣି—ଗୁଳ୍ମବିଶେଷ ।
ଯୂକ—ପୁଂ.ବି. (ଯୁ+କ.କ୍ୱିପ୍ କ ଯୋଗ, ଉ ସ୍ଥାନରେ ଊ) ମତ୍କୁଣ, ଉକୁଣୀ, (ସ୍ତ୍ରୀ) ଯୂକା ।
ଯୂକଦେବୀ—ସ୍ତ୍ରୀ.ବି.ରାଜକନ୍ୟାବିଶେଷ ।
ଯୂକା—ସ୍ତ୍ରୀ.ବି. ( ଯୂକ+ଆ ) ଉକୁଣୀ, ସ୍ୱେଦଜ, ଷଟ୍‌ପଦ, ପାଲୀ, ବାଳକୃମି, କୃଷ୍ଣୋଦୁମ୍ବର ସମାଜ ।
ଯୂକାଣ୍ଡ—ପୁଂ.ବି. କ୍ଷୀଣଉକୁଣୀ ।
ଯୂକାର-ସ୍ତ୍ରୀ.ବି. ଲିଙ୍ଗଳିକା, ବିଷଲଙ୍ଗୁଳିଆ
ଯୂକାବାସ-ପୁଂ.ବି. ଶାହାଡ଼ାଗଛ,ଶାଖୋଟ ବୃକ୍ଷ ।
ଯୂତ—ବିଂ. (ଯୁ+ମି.ତ)ମିଶ୍ରିତ,(ଗ୍ରା.ବି) ଯୂଆଖେଳ ।
ଯୂତି—ସ୍ତ୍ରୀ.ବି.(ଯୁ+ଭା.ତି)ଏକତ୍ରୀକରଣ, ମିଶ୍ରଣ, ସଂଯୋଗ, (ଗଣିତ) ସଙ୍କଳନ. ଯୋଗ ।
ଯୂଥ—କ୍ଲୀ.ବି. (ଯୁ+କ.ଥ, ଉ ସ୍ଥାନରେ ଊ) ସ୍ୱଜାତୀୟ ପଶୁପକ୍ଷୀଆଦିଙ୍କ ଦଳ, ପଲ ।
ଯୂଥକ—ତ୍ରି. ବିଂ. ସମୂହଯୁକ୍ତ ।
ଯୂଥଗ—ପୁଂ.ବି.ଚାକ୍ଷୁଷ ମନ୍ୱନ୍ତର ଦେବ-ଗଣବିଶେଷ । [ ଦେଖ ।
ଯୂଥଚ୍ୟୁତ—ବିଂ. (କର୍ମୀତତ୍ତ୍ୱ) ଯୂଥଭ୍ରଷ୍ଟ
ଯୂଥନାଥ—ପୁଂ.ବି.(ଷଷ୍ଠୀତତ୍ତ୍ୱ)ଅରଣ୍ୟବାସୀ ଜୀବଦଳର ନେତା ବା ଦଳପତି,ବନ୍ୟ ଗଜଦଳପତି ।
ଯୂଥପ—ପୁଂ.ବି.( ଯୂଥ+ପା + କ.ଅ ) ଯୂଥନାଥ ଦେଖ ।
ଯୂଥପତି—ପୁଂ.ବି. ଯୂଥପ, ଦଳପତି ।
ଯୂଥପଶୁ—ପୁଂ.ବି. ଦଶାଂଶର ଏକଅଂଶ ରାଜକର ।
ଯୂଥପାଳ—ପୁଂ.ବି. ଯୂଥପ, ଯୂଥପତି ।
ଯୂଥବନ୍ଧା—ଗ୍ରା.ବିଂ. ଯୂଥଭ୍ରଷ୍ଟ ଦେଖ ।
ଯୂଥଭ୍ରଷ୍ଟ—ପୁଂ.ବିଂ. (କର୍ମୀତତ୍ତ୍ୱ)ଗୋଠ-ଛଡ଼ିଆ, ଦଳଚ୍ୟୁତ, (ସ୍ତ୍ରୀ) ଯୂଥଭ୍ରଷ୍ଟା ।
ଯୂଥମୁଖ୍ୟ—ପୁଂ.ବି. ସେନାପତି ।
ଯୂଥଗ—ତ୍ରି.ବିଂ.ଯୂଥ ଯେଉଁ ଦେଶରେ ଅଛି, ଯୂଥର ଅଦୂରଭବ ।
ଯୂଥଶଃ—ଅବ୍ୟ. ଦଳଦଳହୋଇ ।
ଯୂଥହତ—ତ୍ରି.ବିଂ. ଯୂଥଭ୍ରଷ୍ଟ ।
ଯୂଥାଗ୍ରଣୀ—ପୁଂ.ବି. ଦଳପତି, ଯୂଥର ଅଗ୍ରଣୀ ।
ଯୂଥି(ଥୀ)--ସ୍ତ୍ରୀ.ବି. ମାଗଧୀକୁସୁମ, ଯୂଥିକା, ଯୂଇ ଦେଖ, ଅକାନବନ୍ଧ ବା ପାଠା-ଲତା, ଅମ୍ଳାନକ ପୁଷ୍ପ ।
ଯୂଥିକା—ସ୍ତ୍ରୀ. ବି. (ଯୂଥୀ+କ+ଆ ) ମାଗଧୀକୁସୁମ, ଯୂଇଫୁଲ । [ ଦେଖ ।
ଯୂଥୀନ—ପୁଂ.ବିଂ. (ଷତତ୍ତ୍ୱ) ଯୂଥନାଥ
ଯୂଥ୍ୟ—ତ୍ରି.ବିଂ. ଯୂଥଭବ ।
ଯୂନ—କ୍ଲୀ.ବି. ବନ୍ଧନୀ, ରଜ୍ଜୁ,ଦଉଡ଼ି ।
ଯୂନ—ସ୍ତ୍ରୀ.ବି. ଯୋଗ, ମିଶ୍ରଣ ।
ଯୂନୀ—ସ୍ତ୍ରୀ.ବି. (ଯୁବନ୍+ଈ,ନିପାତନ) ଯୁବତୀ, ତରୁଣୀ ।
ଯୂପ—ପୁଂ ବା କ୍ଲୀ. ବି. (ଯୁ+ଅଧି.ପ) ଯଜ୍ଞରେ ପଶୁବନ୍ଧନ ଖୁଣ୍ଟି, ଜୟସ୍ତମ୍ଭ, ସ୍ତମ୍ଭ, ଯଜ୍ଞସ୍ତମ୍ଭ ।
ଯୂପକ—ପୁଂ.ବି. ପ୍ଲକ୍ଷବୃକ୍ଷ ।
ଯୂପକଟକ—ପୁଂ ବା କ୍ଲୀ. ବି. (ଷତତ୍ତ୍ୱ); ଯୂପର ମୂଳରେ ବା ଅଗରେ ଥିବା କାଷ୍ଠ ବା ଲୌହବଳୟ, ଯୂପର ଅଗ୍ରଭାଗରେ ଖୋଦିତ ଭୂମିରଙ୍ଗଳ ଘର ବା ବଳୟାକାର ଗୋଳକ ।
ଯୂପକର୍ଣ୍ଣ—ପୁଂ.ବି. ଘୃତାବଳୀ, ଯୂପର ଯେଉଁ ଅଂଶରେ ଘିଅ ଛିଞ୍ଚାଯାଏ ।
ଯୂପକାଷ୍ଠ—ବି. ଯଜ୍ଞରେ ପଶୁ ବନ୍ଧନାର୍ଥ. ଭୂମିରେ ପୋତାଯିବା ସଂସ୍କୃତ ସ୍ତମ୍ଭ ।
ଯୂପକେତୁ—ପୁଂ. ବି. ଭୂରିଶ୍ରବାଙ୍କ ନାମାନ୍ତର ।
ଯୂପଦାରୁ-କ୍ଲୀ.ବି.ଯୂପ ନିର୍ମାଣାର୍ଥ କାଷ୍ଠ ।
ଯୂପଦ୍ରୁ-ପୁଂ.ବି.(ମଧ୍ୟ-କ.ଧା)ଖଦିରବୃକ୍ଷ ।

ଯୂପଦ୍ରୁମ—ପୁଂ.ବ.(୬ତତ୍ପୁ) ଖଇରଗଛ ।
ଯୂପଧ୍ୱଜ—ପୁଂ.ଣ. (ବ.ବ୍ରୀ) ଯଜ୍ଞ ।
ଯୂପବାନ୍—ପୁଂ.ବଂ. ଯୂପବିଶିଷ୍ଟ ।
ଯୂପବାହ—ନି.ବଂ. ଯୂପ ବହନକାରୀ ।
ଯୂପବ୍ରସ୍କ—ନି.ବଂ.ଯେଉଁ ଲୋକ(ଧୋବା) ଯୂପପାଇଁ ଗଛ ବା ଡାଳ କାଟେ ।
ଯୂପାକ୍ଷ—ପୁଂ.ବି.ରାବଣର ରାକ୍ଷସ ସେନାପତିବିଶେଷ ।
ଯୂପାଗ୍ର—କ୍ଲୀ. ବ. ଯୂପର ଅଗ୍ରଭାଗ ।
ଯୂପାହୁତ—ସ୍ତ୍ରୀ.ତ.(ମଧ୍ଯ କ.ଧା)ଯୂପକାଷ୍ଠ ପୋତାଯିବା ସମୟରେ ଯେଉଁ ଆହୁତି ଦିଆଯାଏ ।
ଯୂପୋଲ୍ଲ୍ରୟ—ପୁଂ.ବ.ଯଜ୍ଞସ୍ତମ୍ଭ ସ୍ଥାପନର ଉତ୍ସବବିଶେଷ ।
ଯୂପ୍ୟ— ନି. ବଂ. ଯୂପଯୋଗ୍ୟ, (ବି) ପଲାଶବୃକ୍ଷ ।
ଯୂଯୂଷା—ନି.ବଂ.ସମସ୍ତଙ୍କର ପୃଥକ୍‌କର୍ତ୍ତା ।
ୟୁରୋପ—ଗୋଟିଏ ମହାଦେଶ ।
ଯୂଷ—ପୁଂ ବା କ୍ଲୀ. ବ. (ଯୁଷ୍+କ.ଥ) ଝୋଳ, କ୍ୱାଥ, ବ୍ରହ୍ମଦାରୁ, ତୁତବୃକ୍ଷ ।
ଯେ—ଗ୍ରା. ସର୍ବ. ଯେଉଁ ବ୍ୟକ୍ତି, ଯାହା, ଯେଉଁ ସ୍ଥାନ, ସମୟ, ବିଷୟ ବା ବସ୍ତୁ, (ବହୁବଚନ) ଯେଉଁ ମାନେ, (ଅବ୍ୟ) ପାଦପୂରଣାର୍ଥକ ଅବ୍ୟୟ, ନିଶ୍ଚୟାର୍ଥକ ଅବ୍ୟୟ, ଯେବେ, ପଦ୍ୟରେ ଅକ୍ଷର ପୂରଣାର୍ଥକ ନିରର୍ଥକ ଅବ୍ୟୟ ।
ଯେଅବଧି—ଗ୍ରା. ଅବ୍ୟ. ଯେଉଁ ସ୍ଥାନରୁ, ଯେଉଁ କାଳରୁ,ଯେଉଁ ସ୍ଥାନ ବା କାଳଯାଏ ।
ଯେଇ(ଇତ୍ୟାଦି)—ଗ୍ରା. ବ. (ସଂ-ଯଦ୍+ହି) ଯେଉଁ ଇତ୍ୟାଦି ଦେଖ ।
ଯେଇଛାସେ—ଗ୍ରା ସର୍ବ. ଯେ କୌଣସି ବ୍ୟକ୍ତି, ଯେ କୌଣସି ବ୍ୟକ୍ତି ଇଚ୍ଛାକଲେ
ଯେଉଁ—ଗ୍ରା. ସର୍ବ. ଯେ, ଅମୁକ ନିର୍ଦ୍ଦିଷ୍ଟ ବ୍ୟକ୍ତି, ବସ୍ତୁ, ସମୟ ବା ସ୍ଥାନ ।
ଯେଉ(ଉଁ)କ୍ଷଣି—ଗ୍ରା. ଅବ୍ୟ. ଯେଉଁ ମୁହୂର୍ତ୍ତରେ, ଯେତେବେଳେ, ଯେତିକି ବେଳେ, ମାତ୍ରକେ ।
ଯେଉଟ—ବି. ଫଳବିଶେଷ ।
ଯେଉ(ଉଁ)ଠା—ଗ୍ରା. ସର୍ବନାମ. ଯେଉଁ ସ୍ଥାନ, ଯେଉଁ ସ୍ଥାନର ।
ଯେଉ(ଉଁ)ଠି(ଠିଁ)—ଗ୍ରା. ସର୍ବ. ଯେଉଁ ସ୍ଥାନରେ, ଯେଉଁ ବିଷୟରେ, ଯେଉଁ-ସ୍ଥାନ ।
ଯେଉ(ଉଁ)ଠିକା—ଗ୍ରା.ସର୍ବ.ଯେଉଁସ୍ଥାନର
ଯେଉ(ଉଁ)ଠିକି(କୁ)—ଗ୍ରା. ସର୍ବ. ଯେଉଁ ସ୍ଥାନକୁ ।
ଯେଉ(ଉଁ)ଠୁ(ଠୁଁ)—ଗ୍ରା. ସର୍ବ. ଯେଉଁ-ସ୍ଥାନରୁ, ଯେଉଁ ସମୟରୁ.ଯେଉଁ ବ୍ୟକ୍ତି-ଠାରୁ, (ଗ୍ରା)ଅବ୍ୟ. ଯେହେତୁ,ଯେବେ, ଯେଣୁ, କାରଣ ।
ଯେଉ(ଉଁ)ଣ(ଣି)ସି—ଗ୍ରା. ସର୍ବ. ଯେ କୌଣସି, କୌଣସି ଅନିର୍ଦ୍ଦିଷ୍ଟ ।
ଯେଇଚ୍ଛାତା—ଗ୍ରା.ଅବ୍ୟ.ଯାଇଚ୍ଛା ତା ଦେଖ ।
ଯେଇଚ୍ଛାସେ—ଗ୍ରା.ସର୍ବ.ଯେକୌଣସି ବ୍ୟକ୍ତି ଯେ ଇଚ୍ଛାକରିବ ସେ ।
ଯେକେ(ଯେ)(ଇତ୍ୟାଦି)—ଗ୍ରା.ବ ଓ ବଂ. କେକେଇତ୍ୟାଦି ଦେଖ, (ସର୍ବ) ଯେଉଁ ଯେଉଁ,ଯାହା ଯାହା ।
ଯେଝା—ଗ୍ରା. ସର୍ବ. (ସଂ-ଯୋ ଯସ୍ୟ)ଯେ ଯାହାର, ପ୍ରତ୍ୟେକ ବ୍ୟକ୍ତିଙ୍କର ।
ଯେଟି—ଗ୍ରା. ବି.ଅବ୍ୟ. ଯେ କି,ଯେଉଁଟି ଯେ ଅଟେ ।
ଯେଠା—ଗ୍ରା. ସର୍ବ. ଯେଣୁ, ଯେଉଁ ସ୍ଥାନ, ଯେଠାର ଦେଖ ।
ଯେଠା(ଠୋ)ଇଁ ଗ୍ରା.ସର୍ବ.(ସଂ-ଯତ୍ରସ୍ଥାନେ) ଯେଣିକି,ଯେଉଁ ସ୍ଥାନକୁ,ଯେଉଁଠି ଦେଖ
ଯେଠା(ଠୋ)ଉଁ—ଗ୍ରା. ସର୍ବ. ଯେଠାରୁ, ଯେଉଁ ସ୍ଥାନରୁ,(ଅବ୍ୟ) ଯେଉଁଠୁ ଦେଖ
ଯେଠାଏ—ଗ୍ରା. ସର୍ବ. (ସଂ-ଯତ୍ରସ୍ଥାନେ) ଯେଉଁ ସ୍ଥାନରେ ।
ଯେଠାର—ଗ୍ରା. ସର୍ବ. ଯେଉଁ ସ୍ଥାନର ।
ଯେଠାରେ—ଗ୍ରା. ସର୍ବ. ଯେଉଁଠି ଦେଖ
ଯେଠି—ଗ୍ରା.ସର୍ବ.ଯେଠା ଦେଖ,ଯେଠାଇ ଦେଖ ।
ଯେଠିକି(କୁ)—ଗ୍ରା. ସର୍ବ.ଯେଠାଇଁ ଦେଖ
ଯେଡ଼ିକି—ଗ୍ରା.ବଂ.ଯେଉଁ ଆକୃତିବିଶିଷ୍ଟ
ଯେଡ଼ଇଚ୍ଛାତେ(ସେ)ଡ଼େ—ଗ୍ରା. ବଂ. ଅତିବଡ଼, ଯଥାସମ୍ଭବ ବଡ଼ ।
ଯେଣିକି—ଗ୍ରା. ଅବ୍ୟ. ଯେଉଁ ଆଡ଼କୁ, ଯେଉଁ ଦିଗକୁ ।
ଯେଣୁ(ଣୁଁ)—ଗ୍ରା. ଅବ୍ୟ. ଯେଉଁ ଆଡ଼ୁ, ଯେଉଁ ଦିଗରୁ, ଯେହେତୁ ।
ଯେଣୁକରି—ଗ୍ରା. ଅବ୍ୟ. ଯେହେତୁ ।
ଯେଣେ—ଗ୍ରା. ଅବ୍ୟ. ଯେଉଁ ଆଡ଼େ, ଯେଉଁ ପ୍ରକାରେ, ଯେଉଁ ପରି, ଯନ୍ଦିରେ, ଯନ୍ଦ୍ୱାବ୍ଧ,ଯେହେତୁ ଯନ୍ଦିର ଫଳରେ
ଯେଣେଇଚ୍ଛାତେ(ସେ)ଣେ—ଗ୍ରା. ଅବ୍ୟ. ଯେ କୌଣସି ସ୍ଥାନକୁ ବା ଦିଗକୁ ।
ଯେତ(ତେ)କ—ଗ୍ରା. ସର୍ବ. (ସଂ-ଯତ୍, ପ୍ରା.ଯେତ୍ତିକ) ଯାବତୀୟ, ସମୁଦାୟ ।
ଯେତିକି—ଗ୍ରା.ସର୍ବ ଓ ବଂ.(ପ୍ରା.କେତ୍ତିକ) ଯେତେପରିମାଣ ବା ପରିମିତ ।
ଯେତେ—ଗ୍ରା. ସର୍ବ. (ସଂ ଯତ୍.ପ୍ରା.ଜତ୍ତ) ଯାବତ୍ ପରିମିତ ।
ଯେତେଇଚ୍ଛା—ଗ୍ରା.ଅବ୍ୟ.(ସଂ-ଯଥେଚ୍ଛ) ଇଚ୍ଛାନୁରୂପ, ଯଥେଷ୍ଟ ।
ଯେତେଇଚ୍ଛାତେ(ସେ)ତେ—ଗ୍ରା. ଅବ୍ୟ. ଇଚ୍ଛାନୁରୂପ ପରିମାଣରେ,ଯଥେଷ୍ଟ ପରିମାଣରେ ।
ଯେତେ(ତୁ,ତୋ)ଟ (ଟି)—ଗ୍ରା. ସର୍ବ. ଯେତେ ସଂଖ୍ୟକ ।
ଯେତେଠଉଁ—ଗ୍ରା.ଅବ୍ୟ.ଯେତେସ୍ଥାନରୁ, ଯେତେବ୍ୟକ୍ତିଙ୍କଠାରୁ ।
ଯେତେଠ(ଠି)—ଗ୍ରା.ସର୍ବ. ଯେତେସ୍ଥାନ ।
ଯେତେଠା(ଠୋ)ଇଁ—ଗ୍ରା.ଅବ୍ୟ. ଯେତେ ସ୍ଥାନରେ,ଯେତେ ବ୍ୟକ୍ତିଙ୍କ ନିକଟରେ ।
ଯେତେଠାକୁ —ଗ୍ରା.ଅବ୍ୟ. ଯେତେସ୍ଥାନକୁ ଯେ ତଲୋକଙ୍କ ନିକଟକୁ ।
ଯେତେବେଳେ—ଗ୍ରା. ସର୍ବ. ଯେଉଁ ସମୟରେ, ଯେତେପରିମିତ,ଯଦି, ଯେହେତୁ
ଯେତେମନ୍ତେ—ଗ୍ରା. ଅବ୍ୟ. ଯେତେ ପ୍ରକାରେ ।
ଯେନ୍—ପ୍ର. (ସମ୍ବ) ବଂ. ଯେଉଁ ।
ଯେନତେନ୍ଟା—ପ୍ର. (ସମ୍ବ.)ସର୍ବ. ଯେ କୌଣସି, ଯା ଇଚ୍ଛା ତା
ଯେନକେ(ତେ)ନ—ନି.ବଂ. ଯେକୌଣସି

ଉପାୟରେ,ଅତି କଷ୍ଟରେ ।
ଯେନ୍ତା—ଗ୍ରା. (ସମ୍ବଲପୁର ଓ ଗଡ଼ଜାତ) ଅବ୍ୟ. ଯେପରି, ଯେଉଁଭଳି ।
ଯେନ୍ତାକେନ୍ତା—ଗ୍ରା. (ସମ୍ବ.)ଅବ୍ୟ. ଯେ କୌଣସି ପ୍ରକାରେ ।
ଯେନ୍ହେ—ଗ୍ରା. ଅବ୍ୟ. ଯେହ୍ନେ ଦେଖ ।
ଯେପରି—ଗ୍ରା.ଅବ୍ୟ.(ସଂ-ଯତ୍ପ୍ରକାରେଣ) ଯେଉଁ ପ୍ରକାରେ, ଯେଉଁ କ୍ଷଣରେ, ଫଳତଃ, ଯେଉଁ ପ୍ରକାରର, ଯଥା, ଉଦାହରଣ ସ୍ୱରୂପ ।
ଯେପାରି(ରୁ)ସେ—ଗ୍ରା.ସର୍ବ.ଯେ କୌଣସି ସମର୍ଥ ବ୍ୟକ୍ତି, ଯେ କୌଣସି ବ୍ୟକ୍ତି ।
ଯେବ—ଗ୍ରା. ସର୍ବ. ଯେଉଁ ସମୟ ।
ଯେବକା—ଗ୍ରା.ଅବ୍ୟ. ଯେଉଁ ସମୟର ।
ଯେବକୁ—ଗ୍ରା. ଅବ୍ୟ. ଯେଉଁ ସମୟକୁ, ଯେଉଁ ସମୟରେ, ଯେବେ ।
ଯେବଠଉଁ—ଗ୍ରା.ଅବ୍ୟ. ଯେଉଁ ସମୟରୁ ।
ଯେବଣ—ଗ୍ରା.(ପଦ୍ୟ)ସର୍ବ. ଯେଉଁ,ଯେ ।
ଯେବାଷ—ପୁଂ. ବି. ଯବାଷ । [ ଯଦି ।
ଯେବେ—ଗ୍ରା. ଅବ୍ୟ. ଯେଉଁ ସମୟରେ,
ଯେବେକେ—ଗ୍ରା. ଅବ୍ୟ. ଯଦି ।
ଯେବେକେବେ—ଗ୍ରା. ଅବ୍ୟ. ଯଦିବା କୌଣସି ସମୟରେ, ଯଦି ଅକସ୍ମାତ୍ ।
ଯେବେହିଁ(ବି,ଭି)—ଗ୍ରା. ଅ. (ସଂ-ଯଦ୍ୟପି) ଯେଉଁ ସମୟରେ ମଧ୍ୟ, ଯେ କୌଣସି ସମୟରେ, ଯଦି, ଯଦ୍ୟପି, ନଚେତ୍ ।
ଯେବେଯେବେ—ଗ୍ରା.ଅବ୍ୟ.ଯେ କୌଣସି ସମୟମାନଙ୍କରେ, ଯେଉଁ ଯେଉଁ ସମୟରେ ।
ଯେବେହେଲେ—ଗ୍ରା. ଅ. ଯେ କୌଣସି ସମୟରେ, ଯଦି ଅକସ୍ମାତ୍ ।
ଯେମନ୍ତ(ତି,ତେ,ନ୍ତ,ନ୍ତି,ନ୍ତେ)—ଗ୍ରା. ଅ. ଯେଉଁପରି, ଯେପରି, ଯେଉଁ ପ୍ରକାରେ, ଯଥା ।
ଯେରୂପେ—ଗ୍ରା. ଅ. (ସଂ-ଯଦ୍ରୂପ) ଯେଉଁ ପ୍ରକାରେ । [ ଦେଖ ।
ଯେଲ୍(ଇତ୍ୟାଦି)—ଯା.ବି.ଜେଲ୍ଇତ୍ୟାଦି
ଯେଷ—ଯତ୍ନ ।
ଯେଷ୍ଟ—ହି. ବଂ. ଅତିଶୟ ଗମନକାରୀ ।

ଯେସନ—ଗ୍ରା. ଅ. ଯେଉଁପରି, ଯଥା ।
ଯେସାକୁତେସା—ଗ୍ରା. ବାକ୍ୟ. ଯେ ଯେଉଁପରି ଲୋକ ତାକୁ ସେହିପରି ବ୍ୟବହାର,(ବି)ଯଥୋପଯୁକ୍ତ ବ୍ୟବହାର (ଅ)ଯଥୋପଯୁକ୍ତ ରୂପେ ।
ଯେ(ଯୈ)ସୁଆର୍(ଲ୍)—ଗ୍ରା. ବି. ପଶ୍ଚିମା ବୈଶ୍ୟଜାତିବିଶେଷ ।
ଯେସେଲୋକ—ଗ୍ରା. ବି. ଯେ କୌଣସି ଲୋକ, ଅନ୍ୟ କୌଣସି ବ୍ୟକ୍ତି, ସାଧାରଣ ବ୍ୟକ୍ତି ।
ଯେସେ—ସର୍ବ. ଯେ କୌଣସି ବ୍ୟକ୍ତି ।
ଯେହି(ହେ)ଉ—ଗ୍ରା. ଅବ୍ୟ. ଯାହା ଘଟୁ ପଛକେ, ଯାହାହେଉ, ଯେ କୌଣସି ପ୍ରକାରେ,ଯାହା ହେବାର ହେଉ ପଛକେ
ଯେହି(ହୁ)—ଗ୍ରା.ସର୍ବ.ଯେ, ଯେଉଁ ବ୍ୟକ୍ତି, ଯେବଣ ଲୋକ, ଯେଉଁ ପ୍ରାଣୀ ।
ଯେହେତୁ—ଗ୍ରା.ଅବ୍ୟ.ଯେଉଁ କାରଣରୁ ।
ଯେହ୍ନେ—ଗ୍ରା. ପଦ୍ୟ. ଅବ୍ୟ. ଯେଉଁପରି, ଯେପରି, ଯତେପରି, ଯତେଅବା ।
ଯେହ୍ନେକାର—ଗ୍ରା.ଅବ୍ୟ. ( ପ୍ରାଚୀନ ) ଯେହ୍ନେ ଦେଖ ।
ଯୋ—ଗ୍ରା.ସର୍ବ. (ସଂ-ଯତ୍)ଯେ,ଯେଉଁ, ଯାହା ।
ଯୋଆନ୍—ଗ୍ରା.ବି ଓ ବଂ. ( ସଂ-ଯୁବା ) ଜୁଆନ୍ ଦେଖ ।
ଯୋକ(କା)—ଗ୍ରା.ବି. ଜୋକ(କା) ଦେଖ
ଯୋକଆ—ଗ୍ରା.ବି. (ସଂ-ଯୋଗ)ଦୁଇମୁଣ୍ଡ ବନ୍ଧ ଓ ମୁନଆ ଲୁହାକଣ୍ଟା, ଜୋକଆ ଦେଖ ।
ଯୋକ୍ତବ୍ୟ—ବଂ. ( ଯୁଜ୍+ ସଂ.ତବ୍ୟ ) ଯୁକ୍ତହେବା ଯୋଗ୍ୟ, ସମ୍ପାଦ୍ୟ,ଯୋଗ ସାଧନଦ୍ୱାରା ଯୁକ୍ତହେବା ଯୋଗ୍ୟ, ଯୋଗୁଥିବା ଯୋଗ୍ୟ ।
ଯୋକ୍ତା—ପୁଂ.ବଂ. (ଯୁଜ୍+କ.ତୃ)ଯେ ଯୋଗ କରେ,(ବି)ରଥଆଦିର ଚାଳକ, ଯେ ପଶୁକୁ ଶକଟାଦିରେ ଯୋଚେ ।
ଯୋକ୍ତ୍ର—ବି. (ଯୁଜ୍+ଣ.ତ୍ର) ଯୋତ, ଲଙ୍ଗଳଦଣ୍ଡ, (ଅଧି.ତ୍ର) ଯୁଆଳି ।
ଯୋକ୍ତ୍ରକ—ବି. (ଯୋକ୍ତ୍ର+କ) ଯୋକ୍ତ୍ର ଦେଖ ।
ଯୋଖ—ଗ୍ରା.ବି. ଜୋଖ ଦେଖ ।
ଯୋଖା—ଗ୍ରା.ବି ଓ ବଂ.ଜୋଖା ଦେଖ ।
ଯୋଖାଇବା-ଗ୍ରା.କ୍ରି.ଜୋଖାଇବା ଦେଖ
ଯୋଖିବା—ଗ୍ରା.କ୍ରି. ଜୋଖିବା ଦେଖ ।
ଯୋଗ—ବି. ( ଯୁଜ୍+କ.ଅ ) ଧ୍ୟାନ ଓ ସାଧନାଦିଦ୍ୱାରା(ମନୁଷ୍ୟଶରୀରସ୍ଥ)ଜୀବାତ୍ମା ଓ ପରମାତ୍ମାଙ୍କର ଭଗବାନଙ୍କ ସଙ୍ଗେ ମିଳନ, ଯୁକ୍ତି, ମିଳନ, ଐକ୍ୟ, ଧ୍ୟାନ, ଦୃଢ଼ସମ୍ପର୍କ, କାର୍ଯ୍ୟକାରଣ ସମାବେଶ, ସୌଭାଗ୍ୟପ୍ରାପ୍ତି, ଏକାଧିକ ବସ୍ତୁର ବା ବ୍ୟକ୍ତିର ସଂଯୋଗ,ସଦ୍ଭାବ,ଯୋଗ୍ୟତା, (ବ୍ୟାକରଣ) ପ୍ରୟୋଗ, ସୂତ୍ର, ନିୟମ, ଦେହ ସ୍ଥୈର୍ଯ୍ୟ, ଚିତ୍ତବୃତ୍ତିର ନିରୋଧ, ଧନସମ୍ପତ୍ତିର ଉପାର୍ଜନ, ବର୍ଦ୍ଧନ ଓ ରକ୍ଷଣ, ବର୍ମାଦି ଧାରଣ, ସାମ, ଦାନ, ଭେଦ, ଦଣ୍ଡ ଚାରିପ୍ରକାର ଉପାୟ,ଲାଭ, ଭେଷଜ, ଔଷଧ, ଇନ୍ଦ୍ରଜାଲ, ଫଳ, ପରିଣାମ,ମୁଖ୍ୟଉଦ୍ଦେଶ୍ୟ,ଦ୍ରବ୍ୟ,ବିଷୟ, ଧନ, ଛଳ, ପ୍ରତାରଣା, ନୈୟାୟିକ, ଚର, ପ୍ରଣିଧି, ଯାନ, ବାହନ, ଶୁଭ-କାଳ, ଅନୁକୂଳ ଅବସର, ସୁଯୋଗ, (ଜ୍ୟୋତିଷ)ଯୋଗତାରା, ପ୍ରଧାନନକ୍ଷତ୍ର, ବୃହତ୍ତର ଅଣ୍ଡାକାର ବୃତ୍ତର ୨୭ଭାଗର ଏକଭାଗ, ବିଷ୍କୁମ୍ଭାଦି ୨୭ଟି ଯୋଗ, ପତଞ୍ଜଳି ପ୍ରଣୀତ ଦର୍ଶନଶାସ୍ତ୍ର, ଯାହା କରିବାରେ ମାହେନ୍ଦ୍ରାଦି ଗ୍ରହଗୋଷ୍ଠି ଯୋଗ, ଜାତକରେ ଥିବା ଶୁଭ ବା ଅଶୁଭ ଯୋଗ,ଘଟନା, ଉପାୟ,ପ୍ରକାର, ଯୁଆଳି, ସାଞ୍ଜୁ, ବ୍ୟବସାୟ, କୌଶଳ, ଚେଷ୍ଟା, ସୈନ୍ୟସଜ୍ଜା,ଶବ୍ଦର ବ୍ୟୁତ୍ପତ୍ତି, ନିୟମ, ଭକ୍ତି, ବିଶ୍ୱାସଘାତକ ବ୍ୟକ୍ତି, ଦୁଇ ବା ତତୋଽଧିକ ରାଶିର ସମଷ୍ଟୀକରଣ, ସଙ୍କଳନ, (ବଂ—ବ୍ୟଙ୍ଗାର୍ଥ) ଯେଉଁ ବ୍ୟକ୍ତି ଆପଣାର ଯୋଗ୍ୟତା ବା ବାହାଦୁରି ଦେଖାଇ ହୁଏ ।
ଯୋଗକନ୍ୟା—ବି. କୃଷ୍ଣ ଜନ୍ମ ସମୟରେ ଯଶୋଦା ଗର୍ଭରେ ଜାତ ହୋଇଥିବା କନ୍ୟାରୂପଧାରିଣୀ ଯୋଗମାୟା ।

ଯୋଗକର—ବି°.ଯୋଗକାରକ ଦେଖ ।
ଯୋଗକରଣ୍ଡକ—ପୁଂ. ବି. ରଜା ବ୍ରହ୍ମଦତ୍ତଙ୍କ ମନ୍ତ୍ରୀ ।
ଯୋଗକରିବା—ଗ୍ରା. କ୍ରି. (ଗଣିତ) ମିଶାଇବା, ଯୋଡ଼ିବା, ଉଦ୍‌ଯୋଗ କରିବା, ଯୋଗସାଧିବା ।
ଯୋଗକାରକ—ବି°. ଭାଗ୍ୟଜନକ, ଯେ ମିଳାଇ ଦିଏ ।
ଯୋଗକୁ—ଗ୍ରା. ଅବ୍ୟ. ଘଟଣାକ୍ରମରେ, ଭାଗ୍ୟକ୍ରମେ, ସୁଯୋଗକ୍ରମେ, ଦୈବାତ୍, ଘଟଣାକ୍ରମେ । [ ବିଶେଷ ।
ଯୋଗକୁଣ୍ଡଳିନୀ—ସ୍ତ୍ରୀ. ବି. ଉପନିଷଦ୍‌-
ଯୋଗକ୍ଷେମ—କ୍ଲୀ. ବି. (ଦ୍ୱନ୍ଦ୍ୱ) ଅଲବ୍ଧ ବସ୍ତୁର ଲାଭ ଓ ଲବ୍ଧବସ୍ତୁର ରକ୍ଷଣ, ଶରୀରର ସ୍ଥିତି ଓ ପାଳନ, ଜୀବିକାନିର୍ବାହ, (୬ତତ୍ପୁ) ଧନସମ୍ପତ୍ତିର ରକ୍ଷା, ପଣ୍ୟଦ୍ରବ୍ୟର ମୂଲ୍ୟ ନିର୍ଦ୍ଧାରଣ, ଲଭ୍ୟ, ଲାଭ,ମୁନାଫା,ଅଚଳଭଜ୍ୟ ସମ୍ପତ୍ତି,କୁଶଳ, ଶୁଭ, କାର୍ଯ୍ୟର ସମୃଦ୍ଧି, ରାଷ୍ଟ୍ରର ସୁବ୍ୟବସ୍ଥା ।
ଯୋଗକ୍ଷେମକର—ପୁଂ. ବି° ଓ ବି.ଯେ ଅନ୍ୟଲୋକର ସମ୍ପତ୍ତି ରକ୍ଷାକରେ, ରକ୍ଷକ, (ସ୍ତ୍ରୀ) ଯୋଗକ୍ଷେମକରୀ ।
ଯୋଗଗତି—ବି. (ମଧ୍ୟ-କ.ଧା) ମୌଳିକ ବା ଆଦିମ ଅବସ୍ଥା ।
ଯୋଗଚକ୍ଷୁଃ—ବି. (ବ.ବ୍ରୀ) ବ୍ରାହ୍ମଣ ।
ଯୋଗଚନ୍ଦ୍ରମୁନି—ଯୋଗସାର ପ୍ରଣେତା ।
ଯୋଗଚର—ପୁଂ.ବି. (ଯୋଗ + ଚର୍ + କ.ଅ,ଉପ) ହନୁମାନ୍ ।
ଯୋଗଚର୍ଯ୍ୟା—ସ୍ତ୍ରୀ. ବି. ଯୋଗାନୁଷ୍ଠାନ ।
ଯୋଗଚୂର୍ଣ୍ଣ—କ୍ଲୀ. ବି (ବ.ବ୍ରୀ) ମୋହଚୂର୍ଣ୍ଣ, ମନ୍ତ୍ରର ଧୂଳି ।
ଯୋଗଜ—କ୍ରି. ବି°. (ଯୋଗ + ଜନ୍ + କ.ଅ) ଯୌଗିକ, ଯୋଗଜାତ, (ବି) ଅଗୁରୁ, ପ୍ରତ୍ୟକ୍ଷସାଧନ ଅଲୌକିକ ସନ୍ନିକର୍ଷବିଶେଷ, ଯୋଗାଭ୍ୟାସଜନିତ ଧର୍ମ ।
ଯୋଗଜନ୍ମା—ପୁଂ. ବି°. (ଯୋଗ + ଜନ୍ମନ୍) କ୍ଷଣଜନ୍ମା, ସବିଶେଷ ଭାଗ୍ୟବାନ୍, କୀର୍ତ୍ତିଶାଳୀ, ଯଶସ୍ୱୀ ।
ଯୋଗଜଫଳ—ବି. ( କ.ଧା ) ଗଣିତ; ଏକାଧିକ ସଂଖ୍ୟାର ଯୋଗଫଳ ।
ଯୋଗଣ(ଇତ୍ୟାଦି)—ଗ୍ରା. ବି. (ସଂ—ଯୋଜନ) ଜୋଗଣ ଇତ୍ୟାଦି ଦେଖ ।
ଯୋଗଣାହାରି—ଗ୍ରା.ବି°. ଜୋଗଣାହାରି ଦେଖ ।
ଯୋଗଣିଆ(ଆଁ)—ଗ୍ରା. ବି. ଜୋଗଣାହାରି ଦେଖ ।
ଯୋଗଣୀ(ଇତ୍ୟାଦି)—ଗ୍ରା. ବି. (ସଂ—ଯୋଗିନୀ) ଯୋଗିନୀ ଇତ୍ୟାଦି ଦେଖ ।
ଯୋଗଣୀଖିଆ—ଗ୍ରା. ବି°. ଯୋଗନୀଖିଆ ଦେଖ ।
ଯୋଗତଃ—କ୍ରି. ବି°. ଉପଯୁକ୍ତରୂପେ, ସମଯ୍ୟାନୁରୂପ, ଯୋଗରେ, ଏକଯୋଗ ହୋଇ, ଯୋଗରୁ, ଯୋଗର ଫଳରୁ, କୁହୁକ ଦ୍ୱାରା, ଯୋଗାନୁସାରେ ।
ଯୋଗତନ୍ତ୍ର—କ୍ଲୀ. ବି. ଯୋଗର ତନ୍ତ୍ର, ଯୋଗବୃତ୍ତାନ୍ତ, ଉପନିଷଦ୍‌ବିଶେଷ ।
ଯୋଗତଲ୍ପ—ପୁଂ. ବି. ଯୋଗନିଦ୍ରା ।
ଯୋଗତାରକା—ସ୍ତ୍ରୀ. ବି. ଯୋଗତାରା ଦେଖ ।
ଯୋଗତାରା—ସ୍ତ୍ରୀ. ବି. ( ଜ୍ୟୋତିଷ ) କୌଣସି ନକ୍ଷତ୍ରପୁଞ୍ଜର ପ୍ରଧାନ ତାରା, ମିଳିତ ତାରାଗଣ ।
ଯୋଗତୀର୍ଥ—ତୀର୍ଥବିଶେଷ ।
ଯୋଗତ୍ୱ—କ୍ଲୀ. ବି. ଯୋଗର ଭାବ ।
ଯୋଗଦର୍ଶନ—ବି. ମହର୍ଷିପତଞ୍ଜଳି କୃତ ଯୋଗସୂତ୍ର । [ ବିଶେଷ ।
ଯୋଗଦା—ଆସାମର ଅନ୍ତର୍ଗତ ନଦୀ-
ଯୋଗଦାନ—କ୍ଲୀ. ବି. (୬ତତ୍ପୁ) ଯୋଗଦେବା,ସହଯୋଗିତା କରିବା, ମିଳିତ ହେବା, (୩ତତ୍ପୁ) ଛଳଦାନ, କପଟଦାନ, ଶିଷ୍ୟଙ୍କୁ ଯୋଗଶାସ୍ତ୍ରର ଦୀକ୍ଷାଦେବା ।
ଯୋଗଦାନକରିବା—ଗ୍ରା. କ୍ରି. ମିଶିବା ।
ଯୋଗଦାଲା—ପର୍ବତବିଶେଷ ।
ଯୋଗଦାନ—କ୍ଲୀ. ବି. ଯୋଗଶାସ୍ତ୍ରାନୁସାରେ ଉତ୍ତମ ଦାନ ।
ଯୋଗଧର୍ମୀ—ପୁଂ. ବି°. (ଯୋଗ + ଧର୍ମ + ଇନ୍) ଯୋଗାଭ୍ୟାସକାରୀ, ( ବି ) ଯୋଗୀ ।
ଯୋଗଧାରଣା—କ୍ଲୀ. ବି. (୭ତତ୍ପୁ) ଭକ୍ତି ବିଷୟରେ ଅଧ୍ୟବସାୟ ।
ଯୋଗଧାରା—ସ୍ତ୍ରୀ. ବି. ବ୍ରହ୍ମପୁତ୍ରର ଏକ ଉପନଦୀ ।
ଯୋଗଧାରୀ—ପୁଂ.ବି°. ଯୋଗରେ ମଗ୍ନ, ଧ୍ୟାନମଗ୍ନ, (ସ୍ତ୍ରୀ) ଯୋଗଧାରିଣୀ ।
ଯୋଗନନ୍ଦ—ପୁଂ.ବି.ନବ ନନ୍ଦରୁ ଜଣେ ।
ଯୋଗନାଡ଼ୀ—ସ୍ତ୍ରୀ. ବି. ନାଡ଼ୀର ଅବସ୍ଥାବିଶେଷ ।
ଯୋଗନାଥ—ପୁଂ. ବି. (୬ତତ୍ପୁ) ଶିବ ।
ଯୋଗନାମି—ଗ୍ରା. ସ୍ତ୍ରୀ. ବି. (ଶିଶୁଭାଷା, ବ୍ୟଙ୍ଗାର୍ଥ)ଶିଶୁମାନଙ୍କ ଦଳରେ ମୁରବୀପଣିଆ ଦେଖାଇହେବା ବାଳିକା ।
ଯୋଗନାଭକ—ବି. ମତ୍ସ୍ୟବିଶେଷ, ଗଣିଆତୋଡ଼ି ।
ଯୋଗନିଦ୍ରା—ସ୍ତ୍ରୀ. ବି. (କ.ଧା) ଯୋଗରୂପ ନିଦ୍ରା,ସମାଧି,ଭଗବାନଙ୍କ ଯୁଗାନ୍ତ ନିଦ୍ରା, (ବ.ବ୍ରୀ) ଦୁର୍ଗା, ଶ୍ରୀଇନିଦ୍ର,ରଣଭୂମିରେ ବୀରର ମୃତ୍ୟୁ, (ଗ୍ରା.ବି) ମୃତ୍ୟୁ, ମହାନିଦ୍ରା ।
ଯୋଗନିଦ୍ରାଳୁ—ପୁଂ. ବି.(ଯୋଗ + ନିଦ୍ରା + ଆଳୁ) ବିଷ୍ଣୁ, (ବି°) ଯୋଗନିଦ୍ରାରେ ନିଦ୍ରିତ ।
ଯୋଗନିରତ—ବି°. (୭ତତ୍ପୁ)ଯୋଗସାଧନରେ ରତ, (ସ୍ତ୍ରୀ) ଯୋଗନିରତା ।
ଯୋଗନିଳୟ—ପୁଂ. ବି. (୬ତତ୍ପୁ) ଶିବ ।
ଯୋଗନିଷ୍ଠ—କ୍ରି. ବି°. ( ବ.ବ୍ରୀ ) ଭଗବଦ୍ଧ୍ୟାନପରାୟଣ ।
ଯୋଗନୀ—ଗ୍ରା. ବି. ଯୋଗିନୀ ଦେଖ ।
ଯୋଗନ୍ଧର—ପୁଂ.ବି. ଅସ୍ତ୍ର ଶସ୍ତ୍ର ଶୋଧକ ମନ୍ତ୍ରବିଶେଷ ।
ଯୋଗପଟ୍ଟ—କ୍ଲୀ. ବି. ଯୋଗସାଧନ କାଳରେ ବ୍ୟବହୃତ ବସ୍ତ୍ରବିଶେଷ ।
ଯୋଗପଟ୍ଟିକା—ସ୍ତ୍ରୀ. ବି. (ଯୋଗ + ପଟ୍ଟ + କ.ଆ) ଯୋଗପଟ୍ଟ ଦେଖ ।
ଯୋଗପତି—ପୁଂ.ବି.(୬ତତ୍ପୁ) ବିଷ୍ଣୁ,ଶିବ ।

ଯୋଗପଟ୍ଟୀ—ସ୍ତ୍ରୀ. ବ. ଯୋଗା, ଯୋଗମଣ୍ଡା ।
ଯୋଗପଥ—ପୁଂ. ବ. ଯୋଗର ପଥ, ଯୋଗମାର୍ଗ ।
ଯୋଗପଦ—କ୍ଲୀ. ବ. ଯୋଗାବସ୍ଥା ।
ଯୋଗପଦକ—କ୍ଲୀ. ବ. ଯୋଗସାଧନା ଓ ପୂଜାକାଳରେ ଧାରଣୀୟ ସଙ୍କୀର୍ଣ୍ଣ ଉତ୍ତରୀୟବିଶେଷ ।
ଯୋଗପାତଞ୍ଜଳ(ଲ)—ପୁଂ.ବ. ପାତଞ୍ଜଳଶିଷ୍ୟ ସମ୍ପ୍ରଦାୟ ।
ଯୋଗପାଦୁକା—ବ. ଅସାଧାରଣ ଗୁଣବିଶିଷ୍ଟ ମନ୍ତ୍ରପ୍ରଭାବମୟ ପାଦୁକା ।
ଯୋଗପାରଗ—ପୁଂ.ବ.ଶିବ, ସିଦ୍ଧଯୋଗୀ, (ସ୍ତ୍ରୀ) ଯୋଗପାରଗା ।
ଯୋଗପୀଠ—କ୍ଲୀ.ବ.(୬ତତ୍ପୁ)ଯୋଗାସନ
ଯୋଗପ୍ରାପ୍ତ—ତ୍ରି.ବଂ. ଯୋଗଦ୍ୱାରା ଲବ୍ଧ
ଯୋଗଫଳ—ବ. ( ଗଣିତ ) ଏକାଧିକ ରାଶିର ସମଷ୍ଟି ।
ଯୋଗବତ୍—ତ୍ରି.ବଂ.ଯୋଗଯୁକ୍ତ,ଯୋଗୀ
ଯୋଗବର୍ତ୍ତିକା—ସ୍ତ୍ରୀ. ବ. ( ମଧ୍ୟ-କ.ଧା ) ଅସାଧାରଣ ଶକ୍ତିବିଶିଷ୍ଟ ବର୍ତ୍ତି ।
ଯୋଗବଳ—କ୍ଲୀ. ବ.(ମଧ୍ୟ କ.ଧା)ଯୋଗସାଧନ ଜନିତ ଅସାଧାରଣ ଶକ୍ତି ବା କ୍ଷମତା, ଐନ୍ଦ୍ରଜାଲିକଶକ୍ତି ।
ଯୋଗବହ—ତ୍ରି.ବଂ.ସହଯୋଗେ ସମ୍ପାଦକ ।
ଯୋଗବଶିଷ୍ଟ—ଆଧ୍ୟାତ୍ମିକ ତତ୍ତ୍ୱ ସମ୍ବନ୍ଧୀୟ ଗ୍ରନ୍ଥବିଶେଷ ।
ଯୋଗବଶିଷ୍ଠରାମାୟଣ— ବ. ନାମ. ( ଯୋଗ+ବଶିଷ୍ଠ+ଅ+ରାମାୟଣ ) ସଂସ୍କୃତରାମାୟଣ ଗ୍ରନ୍ଥବିଶେଷ ।
ଯୋଗବାହ—ପୁଂ. ବ. (ଯୋଗ+ବହ୍+ଣିଚ୍+ଅ ) ଜିହ୍ୱାମୂଳୀୟବର୍ଣ୍ଣ, ଅନୁସ୍ୱାର, ବିସର୍ଗ,ଏକଦ୍ରବ୍ୟ ଅନ୍ୟଦ୍ରବ୍ୟ ସହିତ ମିଳିତହେଲେ ଉକ୍ତଦ୍ରବ୍ୟ ନାନା ରୋଗ ନାଶକରିବା ଗୁଣ ।
ଯୋଗବାହୀ—ବଂ. ( ଯୋଗ+ବହ୍+କ. ଇନ୍ ) ଯୋଗଦ୍ୱାରା ବହନଶୀଳ, (ବ) ଔଷଧାଦିର ମିଶ୍ରଣର ମଧ୍ୟବର୍ତ୍ତୀ ଉପାଦାନବିଶେଷ,ଭେଷଜାଙ୍ଗବିଶେଷ, କ୍ଷାରବିଶେଷ, ସାଜିକ୍ଷାର, ପାରଦ,ପାରା, ମଧୁ, (ସ୍ତ୍ରୀ) ଯୋଗବାହିନୀ ।
ଯୋଗବାହ୍ୟ—ବ. ପାରଦ,ପାରା,କ୍ଷାର ।
ଯୋଗବିକ୍ରୟ—ବ. ( ମଧ୍ୟ-କ.ଧା ) ଛଳ ବା ପ୍ରତାରଣା ଦ୍ୱାରା ବିକ୍ରୟ. (ଗ୍ରା.ବ) ଯୋଗବିକ୍ରୀ, (ବଂ) ଯୋଗବିକ୍ରୀତ ।
ଯୋଗବିଦ୍(ତ୍)—ପୁଂ. ବଂ. (ଯୋଗ+ବିଦ୍+କ.କ୍ୱିପ୍) ଯୋଗାଭ୍ୟାସକାରୀ, ଯୋଗଶାସ୍ତ୍ରଜ୍ଞ, ପାରଙ୍ଗମ, ଚତୁର,(ବ) ଔଷଧାଦି ମିଶ୍ରିତ କରିବା ବ୍ୟକ୍ତି, ଯୋଗୀ, ତାପସ, ଯାଦୁଗର, ଶିବ ।
ଯୋଗବିଭାଗ—ପୁଂ. ବ. (୬ତତ୍ପୁ) ମିଶ୍ର ବସ୍ତୁର ପୃଥକ୍‌କରଣ,ସୂତ୍ରର ଶବ୍ଦମାନଙ୍କ ପୃଥକ୍‌କରଣ ।
ଯୋଗବିଯୋ( ସଂଯୋ )ଗ—ମିଶାଣ ଓ ଫେଡ଼ାଣ, ମିଳନ ଓ ବିଚ୍ଛେଦ ।
ଯୋଗବିବିକା—ସ୍ତ୍ରୀ. ବ. ରାଶିମାନଙ୍କର ଗୁଣଫଳର ସମଷ୍ଟିଦ୍ୱାରା ରାଶି ସ୍ଥାପନ ।
ଯୋଗଭ୍ରଂଶ—ପୁଂ. ବ. (୫ତତ୍ପୁ) ଯୋଗମାର୍ଗରୁ ସ୍ଖଳନ ।
ଯୋଗଭ୍ରଷ୍ଟ—ପୁଂ. ବଂ. (୫ତତ୍ପୁ)ଯୋଗମାର୍ଗରୁ ଚ୍ୟୁତ, (ସ୍ତ୍ରୀ) ଯୋଗଭ୍ରଷ୍ଟା ।
ଯୋଗମୟ—ପୁଂ. ବଂ. କୁହୁକପୂର୍ଣ୍ଣ, (ବ) ବିଷ୍ଣୁ । [ ବୁଦ୍ଧି ।
ଯୋଗମୟଜ୍ଞାନ—କ୍ଲୀ.ବ. ଯୋଗବଳଲବ୍ଧ
ଯୋଗମହିମା —ପୁଂ.ବ.ଯୋଗର କ୍ଷମତା, ଯୋଗପ୍ରଭାବ । [ ସ୍ତ୍ରୀ ।
ଯୋଗମାତା—ବ. ଦୁର୍ଗା,ପୀବରୀ, ଯୁବତୀ
ଯୋଗମାୟା—ସ୍ତ୍ରୀ. ବ. ଦୁର୍ଗା, ଭଗବତୀ, ସଂସାରର ମାୟା, ସନ୍ଦପନମୁନିଙ୍କ ମାତା
ଯୋଗମାର୍ଗ—ପୁଂ.ବ.(୬ତତ୍ପୁ)ଯୋଗପଥ, ଯୋଗର ଅନୁଷ୍ଠାନ ।
ଯୋଗମୂର୍ତ୍ତିଧର—ପୁଂ.ବ.ଶିବ, ପିତୃଗଣବିଶେଷ ।
ଯୋଗଯାତ୍ରା—ସ୍ତ୍ରୀ. ବ. ଜ୍ୟୋତିଷୋକ୍ତ ଉପଯୁକ୍ତ ଯାତ୍ରାକାଳ ।
ଯୋଗଯୁକ୍ତ—ତ୍ରି. ବଂ. ଯୋଗାନ୍ୱିତ, ଯୋଗାସନେ ଉପବିଷ୍ଟ ।
ଯୋଗଯୋଗୀ—ତ୍ରି. ବଂ.ଯୋଗ ସମନ୍ୱିତ, ଯୋଗାସନେ ଉପବିଷ୍ଟ,ଯୋଗୀ ।
ଯୋଗ(ଗା)ରଙ୍ଗ—ପୁଂ. ବ. ( ବ.ଗ୍ରୀ ) ନାରଙ୍ଗ, ନାରଙ୍ଗବୃକ୍ଷ ।
ଯୋଗରତ୍ନ—କ୍ଲୀ.ବ.(ମଧ୍ୟ-କ.ଧା)ଅଲୌକିକ ଶକ୍ତିବିଶିଷ୍ଟ ରତ୍ନ ।
ଯୋଗରଥ—ପୁଂ.ବ.ଯୋଗପ୍ରାପ୍ତି ସାଧନ
ଯୋଗରହସ୍ୟ—କ୍ଲୀ.ବ.ଯୋଗର ରହସ୍ୟ
ଯୋଗରାଜ—ପୁଂ.ବ.ଯୋଗସିଦ୍ଧ ବ୍ୟକ୍ତି, ଆୟୁର୍ବେଦୋକ୍ତ ଔଷଧବିଶେଷ, ଜଣେ କବି, ଯୋଗରେ ସିଦ୍ଧହସ୍ତ ବ୍ୟକ୍ତି ।
ଯୋଗରାଜଗୁଗ୍ଗୁଳୁ—ପୁଂ.ବ. ଔଷଧବିଶେଷ
ଯୋଗରୁ—ଗ୍ରା.ଅବ୍ୟ. ଯୋଗୁଁ ଦେଖ ।
ଯୋଗରୂଢ଼—ପୁଂ.ବ. (୬ତତ୍ପୁ)(ଯୋଗ+ରୁହ୍+କ.ତ) ଅବୟବ ଶକ୍ତି ଓ ଅର୍ଥଶକ୍ତି ଦ୍ୱାରା ଯେଉଁ ଶବ୍ଦର ଅର୍ଥବୋଧ ହୁଏ ।
ଯୋଗରୂଢ଼ି—ବ. ଯୋଗରୂଢ଼ଶବ୍ଦ ।
ଯୋଗରୋଚନା—ସ୍ତ୍ରୀ. ବ. (ମଧ୍ୟ-କ.ଧା) ଏକପ୍ରକାର ଐନ୍ଦ୍ରଜାଲିକ ଲେପ,ଯାହାକୁ ଦେହରେ ଲଗାଇଲେ ସାଧାରଣରେ ଅଦୃଶ୍ୟ ହୁଏ ବା ଅକାଟ୍ୟ ହୁଏ ।
ଯୋଗଶକ୍ତି—ବ. (ମଧ୍ୟ-କ.ଧା) ଯୋଗଦ୍ୱାରା ପ୍ରାପ୍ତ ଶକ୍ତି, ଯୋଗବଳ ।
ଯୋଗଶବ୍ଦ—ପୁଂ.ବ.(ମଧ୍ୟ-କ.ଧା)ବ୍ୟୁତ୍ପତ୍ତ୍ୟର୍ଥବୋଧକ ଶବ୍ଦ ।
ଯୋଗଶରୀର—ପୁଂ.ବଂ.ଯୋଗାର୍ଥ ଶରୀରଧାରୀ (ଯୋଗୀ) ।
ଯୋଗଶାୟୀ—ପୁଂ.ବଂ. ଅର୍ଦ୍ଧନିଦ୍ରିତ ଓ ଅର୍ଦ୍ଧ ଧର୍ମଚିନ୍ତା ବା ଯୋଗଅଭିଭୂତ ।
ଯୋଗଶାସ୍ତ୍ର—କ୍ଲୀ.ବ. (ମଧ୍ୟ-କ.ଧା)ଯେଉଁ ଶାସ୍ତ୍ରରେ ଯୋଗ ବିଷୟ ବର୍ଣ୍ଣିତ ହୋଇଅଛି ।
ଯୋଗସାଜ(ଜୋ)ସ(ସି)—ଗ୍ରା.ବ. ଜୋଗସଜସ ଦେଖ ।
ଯୋଗସାଧକ—ପୁଂ.ବଂ. ( ଉପ-ତତ୍ପୁ ) ଯୋଗାଭ୍ୟାସରତ,(ସ୍ତ୍ରୀ)ଯୋଗସାଧିକା ।
ଯୋଗସାଧନ(ନା)—କ୍ଲୀ ଓ ସ୍ତ୍ରୀ.ବ.(୬ତତ୍ପୁ) ଯୋଗାଭ୍ୟାସ, ସମାଧି ସାଧନ, ଯୋଗ-

ନଶବା । [ କରିବା ।
ଯୋଗସାଧିବା—ଗ୍ରା. କ୍ରି. ଯୋଗାଭ୍ୟାସ
ଯୋଗସାର—ବି. ସର୍ବରୋଗହର ଔଷଧ ବା ଉପାୟ ମହୌଷଧ,ଯେଉଁ ଉପାୟ ବା ସାଧନଦ୍ୱାରା ମନୁଷ୍ୟ ଚିରକାଳ-ପାଇଁ ରୋଗମୁକ୍ତ ହୁଏ ।
ଯୋଗସିଦ୍ଧ—ପୁଂ.ବିଂ.(ତତ୍ସ)ଯେ ଯୋଗ ସାଧନରେ କୃତକାର୍ଯ୍ୟ ହୋଇଅଛି. (ବି) ଯୋଗସିଦ୍ଧି,(ସ୍ତ୍ରୀ) ଯୋଗସିଦ୍ଧା ।
ଯୋଗସିଦ୍ଧା—ସ୍ତ୍ରୀ.ବି.ବାଚସ୍ପତିଙ୍କ ଭଗିନୀ-ବିଶେଷ । [ ଉପାୟ ।
ଯୋଗସିଦ୍ଧିଚନ୍ଦ୍ରିକା-ସ୍ତ୍ରୀ.ବି.ଯୋଗସିଦ୍ଧିର
ଯୋଗସିଦ୍ଧିମାନ୍-ପୁଂ.ବିଂ.ଯୋଗସିଦ୍ଧି ଯୁକ୍ତ
ଯୋଗସୂତ୍ର—କ୍ଲୀ.ବି.ପାତଞ୍ଜଳଙ୍କ ଯୋଗ-ଦର୍ଶନର ସୂତ୍ରଗଣ ।
ଯୋଗସେବା—ସ୍ତ୍ରୀ.ବି. (ତତ୍ସ) ଯୋଗ-ସାଧନା, ଯୋଗଚର୍ଯ୍ୟା ।
ଯୋଗସ୍ଥ—ପୁଂ. ବିଂ. ଯେ ଯୋଗ ଅବ-ଲମ୍ବନ କରିଅଛନ୍ତି ।
ଯୋଗା—ଗ୍ରା.ବିଂ.ଜୋଗା ଦେଖ,(ସ୍ତ୍ରୀ.ବି) ସୀତାଙ୍କ ସଖୀବିଶେଷ ।
ଯୋଗ (ଗେ)ଇବା—ଗ୍ରା. କ୍ରି. ଆବଶ୍ୟକ ବସ୍ତୁ ଆଣି ପହଞ୍ଚାଇବା,ଯୋଗ୍ୟହେବା ଜ୍ୟୋତିଷ ମତରେ ଶୁଭଯୋଗ ଯୁକ୍ତ ହେବା, ଉଚିତହେବା ।
ଯୋଗାକର୍ଷଣ—କ୍ଲୀ. ବି. ( ମଧ୍ୟ-କ.ଧା ) ପଦାର୍ଥସ୍ଥ ପରମାଣୁସମୂହର ପରସ୍ପର ଆକର୍ଷଣ,ପରମାଣୁସମୂହର ସମଷ୍ଟିକରଣ
ଯୋଗାଗ୍ନିମୟ—କ୍ରି.ବିଂ.ଯୋଗରୂପ ବହ୍ନି ବା ଶକ୍ତିସମନ୍ୱିତ ।
ଯୋଗାଙ୍ଗ—କ୍ଲୀ.ବି. (ତତ୍ସ) ଯୋଗ ସାଧନାର୍ଥ ଆବଶ୍ୟକ ଆଠଗୋଟି ଉପାୟ, ଯମ ନିୟମାଦି ।
ଯୋଗାଚରଣ—ବି. (ତତ୍ସ) ଯୋଗ-ସାଧନ ଦେଖ ।
ଯୋଗାଚାର—ପୁଂ.ବି. ବୌଦ୍ଧସମ୍ପ୍ରଦାୟ-ବିଶେଷ, ଯୋଗାନୁଷ୍ଠାନ ।
ଯୋଗାଚାର୍ଯ୍ୟ—ପୁଂ.ବି. (ତ ବା ତତ୍ସ) ଯୋଗଶାସ୍ତ୍ରର ଉପଦେଷ୍ଟା, ଇନ୍ଦ୍ରଜାଲ-ଶିକ୍ଷକ ।
ଯୋଗାଞ୍ଜନ—କ୍ଲୀ.ବି. (ମଧ୍ୟ-କ.ଧା) ଚକ୍ଷୁ ରୋଗନାଶକ ଅଞ୍ଜନବିଶେଷ ।
ଯୋଗାଡ଼—ଗ୍ରା. ବି. ଜୋଗାଡ଼ଇତ୍ୟାଦି ଦେଖ ।
ଯୋଗାଡ଼ଯନ୍ତ୍ର—ଗ୍ରା.ବି.ଉପକରଣ ସଂଗ୍ରହ ଓ ସାଧନୋପାୟ ନିରୂପଣ ।
ଯୋଗାଡ଼ିଆ—ଗ୍ରା. ବି ଓ ବିଂ. ଜୋଗା-ଡ଼ିଆ ଦେଖ ।
ଯୋଗାଡ଼ିବା--ଗ୍ରା.କ୍ରି.ଜୋଗାଡ଼ିବାଦେଖ ।
ଯୋଗାଣ—ଗ୍ରା. ବି. ଯୋଗାଇବା ।
ଯୋଗାତ୍ମା—ପୁଂ. ବିଂ. ଯୋଗୀ ।
ଯୋଗାଧମନ—କ୍ଲୀ.ବି. ଛଳପୂର୍ବକ ବନ୍ଧା-ଯିବା ବନ୍ଧକ । [ ଯୋଗାରୂଢ଼ ।
ଯୋଗାଧି—ଗ୍ରା. ବିଂ. ଯୋଗନିରତ,
ଯୋଗାନନ୍ଦ—ବିଂ. ଯୋଗାବଲମ୍ବନରେ ଯାହାର ଆନନ୍ଦ ହୁଏ । [ ଯୋଗ ।
ଯୋଗାନୁଯୋଗ—ବି. ଯୋଗ ଓ ଅନୁ-
ଯୋଗାନୁଶାସନ—ବି. ଯୋଗଶାସ୍ତ୍ର ।
ଯୋଗାନ୍ତ—ପୁଂ. ବି. ମଙ୍ଗଳଚନ୍ଦ୍ରକକ୍ଷାର ସପ୍ତମଭାଗର ଏକାଂଶ ।
ଯୋଗାନ୍ତର—ବି. ଭିନ୍ନ ଭିନ୍ନ ବସ୍ତୁର ସଂଯୋଗ ।
ଯୋଗାନ୍ତରାୟ—ବି.(ତତ୍ସ ବା ତତ୍ସ) ଯୋଗସାଧନରେ ବିଘ୍ନକୃତ୍ପାଦକ ଆଳ-ସ୍ୟାଦି ଦୋଷ ।
ଯୋଗାବଲମ୍ବନ—ବି. (ତତ୍ସ) ଯୋଗ-ସାଧନ ଦେଖ ।
ଯୋଗାଭ୍ୟାସ—ବି. (ତତ୍ସ) ଯୋଗ-ମାର୍ଗ ଅଭ୍ୟାସ କରିବା ।
ଯୋଗାମୃତ—ଗ୍ରା. ବିଂ. ଯୋଗପରାୟଣ, ଯୋଗନିରତ ।
ଯୋଗାଯୋଗ—ଗ୍ରା.ବି.ପରସ୍ପର ସଂଯୋଗ ବା ସଂଶ୍ରବ, ସାମଞ୍ଜସ୍ୟ, ଷଡ୍‌ଯନ୍ତ୍ର, ଚକ୍ରାନ୍ତ ।
ଯୋଗାରଙ୍ଗ—ବି. ନାରଙ୍ଗ ।
ଯୋଗାରୂଢ଼—ପୁଂ. ବିଂ. କାମନାଶୂନ୍ୟ କ୍ରିୟାହୀନ ଯୋଗିବିଶେଷ,(ସ୍ତ୍ରୀ)ଯୋଗା-ରୂଢ଼ା ।
ଯୋଗାସନ—ବି. (ମଧ୍ୟ-କ.ଧା) ଯୋଗ-ସାଧନାର୍ଥ ଆସନବିଶେଷ. ଧ୍ୟାନାସନ, ବ୍ରହ୍ମାସନ ।
ଯୋଗାସୀନ—ପୁଂ.ବିଂ.(ତତ୍ସ)ଯୋଗା-ସନରେ ଉପବିଷ୍ଟ, ଯୋଗକାରୀ, (ସ୍ତ୍ରୀ) ଯୋଗାସୀନା ।
ଯୋଗିତ—ପୁଂ. ବିଂ. ଯୋଗଯୁକ୍ତ, ମନ୍ତ୍ର-ମୁଗ୍ଧ,ଭୌତିକକ୍ରିୟା ବଳରେ ଉନ୍ମତ୍ତୀ-କୃତ । [ ଧର୍ମ ।
ଯୋଗିତା(ତ୍ୱ)—ବି. ଯୋଗୀର ଭାବ ବା
ଯୋଗିଦଣ୍ଡ—ବି.(ତତ୍ସ) ବେତ୍ର,ବେତ ।
ଯୋଗିନିଦ୍ରା—ବି. (ତତ୍ସ) ଅଳ୍ପନିଦ୍ରା, ତନ୍ଦ୍ରା, ଜାଗ୍ରତ ସୁପ୍ତାବସ୍ଥା ।
ଯୋଗିନୀ—ସ୍ତ୍ରୀ. ବି. ( ଯୋଗିନ୍ + ଈ ) ତପସ୍ୱିନୀ, ଯୋଗସାଧନକାରିଣୀ ନାରୀ, ନାରାୟଣୀ ପ୍ରଭୃତି ୬୪ ସଂଖ୍ୟକ ଦୁର୍ଗା-ଙ୍କର ଅନୁଚରୀ ଦେବୀବିଶେଷ, (ଜ୍ୟୋତିଷ) କାଳଯୋଗିନୀ,ତିଥିବିଶେ-ଷରେ ଦିଗବିଶେଷକୁ ଅଧିକାର କରିବା ଦେବୀଗଣ,ରଣପିଶାଚିନୀ,ଆଷାଢ଼ କୃଷ୍ଣା ଏକାଦଶୀ, ଡ଼ାହାଣୀ, ଡ଼ାକିନୀ, ଦୁର୍ଗା, (ଗ୍ରା.ବି) ହଇଜା, ବାଡ଼ି, ଅସ୍ଥିକଙ୍କାଳ-ବିଶିଷ୍ଟା ଓ ରୁକ୍ଷରୂପା ସ୍ତ୍ରୀ,ଯୋଗିନୀପରି ବିକଟରୂପଧାରିଣୀ ସ୍ତ୍ରୀ ।
ଯୋଗିନୀଖାଇବା—ଗ୍ରା. କ୍ରି. ଓଲଉଠା ଦ୍ୱାରା ଆକ୍ରାନ୍ତ ହୋଇ ମରିବା ।
ଯୋଗିନୀଖିଆ—ଗ୍ରା. ପୁଂ. ବିଂ.ଓଲଉଠା ଦେବୀଙ୍କର ଆସନ୍ନ ବଳି,(ସ୍ତ୍ରୀ) ଖାଇ ।
ଯୋଗିନୀଚକ୍ର-ବି.ତାନ୍ତ୍ରିକମାନଙ୍କ ଯେ ଗିନୀ-ସାଧନ କରିବା ଚକ୍ରବିଶେଷ,ଜ୍ୟୋତିଷ; ଯୋଗିନୀଙ୍କର ବିଭିନ୍ନ ଦିଗରେ ଅବ-ସ୍ଥିତି ଚକ୍ରବିଶେଷ ।
ଯୋଗିନୀପଶିବା—ଗ୍ରା,ବି.କୌଣସି ସ୍ଥାନର ଲୋକଙ୍କୁ ହଇଜା ଧରିବା ।
ଯୋଗିବେଶ—ବି. (ତତ୍ସ) ସନ୍ନ୍ୟାସୀର ପରିଚ୍ଛଦ ।
ଯୋଗିରାଜ—ପୁଂ. ବିଂ. ଯୋଗିଶ୍ରେଷ୍ଠ ।
ଯୋଗିଶ୍ୱର—ପୁଂ. ବି. ସିଦ୍ଧଯୋଗୀ, ମହାସିଦ୍ଧ ।

ଯୋଗୀ—ପୁଂ. ବି. ( ଯୁଜ୍ + କ.ଇନ୍ ) ଯୋଗସାଧକ ବ୍ୟକ୍ତି, ସନ୍ନ୍ୟାସୀ, ବ୍ରହ୍ମବିତ୍, ଐନ୍ଦ୍ରଜାଲିକ, ଅଲୌକିକ କ୍ଷମତାଶାଳୀ ବ୍ୟକ୍ତି, ଯାଜ୍ଞବଲ୍କ୍ୟ, ଶିବ, ବିଷ୍ଣୁ, ଅର୍ଜୁନ, ମିଶ୍ରଜାତିବିଶେଷ, (ବିଂ) ଯୋଗସାଧନକାରୀ, ସଂଯୁକ୍ତ, ଯୁକ୍ତ, (ଗ୍ରା.ବି) ଭିକ୍ଷୁକଜାତିବିଶେଷ ।

ଯୋଗୀଘରେଚିଙ୍କି—ଗ୍ରା. ବି. କୌଣସି ବ୍ୟକ୍ତିର ଅନାବଶ୍ୟକ ବସ୍ତୁକୁ ତା ଘରେ ପାଇବାର ଦୁରାଶା ।

ଯୋଗୀଥାଳ—ଗ୍ରା. ବି. ଯୋଗୀର ଭିକ୍ଷାପାତ୍ର, (ଲ.ଅର୍ଥ) ଆଶ୍ରୟସ୍ଥଳ ।

ଯୋଗୀନ୍ଦ୍ର—ପୁଂ.ବି.(ଷତତ୍)ଯୋଗୀଶ୍ୱର, ଯୋଗିଶ୍ରେଷ୍ଠ, ପ୍ରଧାନ ଯୋଗୀ ବା ମୁନି, ଯାଜ୍ଞବଲ୍କ୍ୟ, ଶିବ ।

ଯୋଗୀଭିକାରୀ--ଗ୍ରା.ବି.ସାଧାରଣ ଭିକ୍ଷୁକ ।

ଯୋଗୀଶ—ପୁଂ. ବି. ( ଯୋଗୀ+ଈଶ ) ଷତତ୍; ଯୋଗେଶ ଦେଖ ।

ଯୋଗୀଶ୍ୱର—ପୁଂ. ବି. ଯୋଗେଶ ଦେଖ

ଯୋଗୁ(ଗୁଁ)--ଗ୍ରା.ଅବ୍ୟ.(ଅମୁକ) ହେତୁରୁ, କାରଣରୁ ।

ଯୋଗେ—ଗ୍ରା. ଅବ୍ୟ.କାରଣରୁ, ପାଇଁ, ନିମିତ୍ତ, ହେବାରୁ, ସୁବିଧାପାଇବାରୁ, ଅବଲମ୍ବନ ପୂର୍ବକ ।

ଯୋଗେନ୍ଦ୍ର—ପୁଂ. ବି. ଯୋଗୀନ୍ଦ୍ର ଦେଖ ।

ଯୋଗେଶ—ପୁଂ. ବି. (ଷତତ୍) ଯାଜ୍ଞବଲ୍କ୍ୟମୁନି, ବିଷ୍ଣୁ, ଶ୍ରୀକୃଷ୍ଣ, ପ୍ରଧାନଯୋଗୀ, ଶିବ, ବ୍ରହ୍ମାଙ୍କ ରାଜଧାନୀ, ଐନ୍ଦ୍ରଜାଲିକ ।

ଯୋଗେଶ୍ୱର-ପୁଂ.ବି.(ଷତତ୍) ଯୋଗେଶ ଦେଖ ।

ଯୋଗେଶ୍ୱରୀ—ସ୍ତ୍ରୀ.ବି.ଶକ୍ତି ମୂର୍ତ୍ତିବିଶେଷ, ଦୁର୍ଗା, ବନ୍ଧ୍ୟାକର୍କୋଟକୀ, ଅଷାଢ଼ୁଆ ।

ଯୋଗେଷ୍ଟ—କ୍ଲୀ. ବି. ସୀସକ, ସୀସା, ଟିଣ, ରଙ୍ଗଧାତୁ ।

ଯୋଗ୍ୟ--ପୁଂ.ବିଂ.(ଯୁଜ୍+ମଁ.ଯ)ଉପଯୁକ୍ତ, ଉଚିତ, ସମର୍ଥ, ଦକ୍ଷ, ପ୍ରବୀଣ, ନିପୁଣ, ଗୁଣବାନ୍, ଯୋଗାର୍ହ, ପବିତ୍ର, ପ୍ରତ୍ୟକ୍ଷ, ଯୋଗ ଦେବାର ଉପଯୁକ୍ତ, ଦର୍ଶନୀୟ, ସୁନ୍ଦର, ମାନନୀୟ, ଯୋଡ଼ାହେବାର, ଉପଯୁକ୍ତ, ଇନ୍ଦ୍ରିୟ ଦ୍ୱାରା ଉପଭୋଗ୍ୟ, (ସ୍ତ୍ରୀ) ଯୋଗ୍ୟା,(ବି)ପୁଷ୍ୟାନକ୍ଷତ୍ର,ଶକଟାଦିରେ ଯୋଗହେବା ପଶୁ, ଚନ୍ଦନ, ପିଷ୍ଟକବିଶେଷ,ଋଦ୍ଧିନାମକ ମହୌଷଧି, (ଅଧି.ଯ) ରଥ, ଶକଟ,ଗାଡ଼ି, ଦୁଗ୍ଧ ।

ଯୋଗ୍ୟତା(ତ୍ୱ)—ବି.(ଯୋଗ୍ୟ+ଭା.ତା, ତ୍ୱ)ଉପଯୁକ୍ତତା,ଉପଯୋଗୀତା, ଦକ୍ଷତା, ସୁଗୁଣ, ପଦାର୍ଥ ସମୂହର ପରସ୍ପର ସମ୍ବନ୍ଧରେ ବାଧାର ଅଭାବ, ( ନ୍ୟାୟ ) ଔଚିତ୍ୟ, ଆବଶ୍ୟକତା, ପଦମାନଙ୍କର ଅର୍ଥର ଅନ୍ୱୟରେ ପରସ୍ପର ବାଧାର ଅଭାବ, ପଦାର୍ଥମାନଙ୍କର ପରସ୍ପର ସମ୍ବନ୍ଧରେ ବାଧାର ଅଭାବ, ପାତ୍ରତା ।

ଯୋଗ୍ୟତାଅନୁସାରେ(କ୍ରମେ)—ଗ୍ରା.କ୍ରି. ବିଂ. ଦକ୍ଷତା କ୍ରମରେ ।

ଯୋଗ୍ୟପାତ୍ର—ବି. (କ.ଧା) ଉପଯୁକ୍ତ-ଆଧାର, ଉପଯୁକ୍ତ ବ୍ୟକ୍ତି ।

ଯୋଗ୍ୟପୁତ୍ର—ବି. (କ.ଧା) ପରିବାରର ବା ପିତାଙ୍କର ଗୁଣବାନ୍ ବା ଉପଯୁକ୍ତ ପୁତ୍ର ।

ଯୋଗ୍ୟବ୍ୟକ୍ତି—ବି. (କ.ଧା) ଗୁଣବାନ୍ ବ୍ୟକ୍ତି, ଉପଯୁକ୍ତ ବ୍ୟକ୍ତି ।

ଯୋଗ୍ୟା—ସ୍ତ୍ରୀ. ବି. ( ଯୋଗ୍ୟ+ଆ ) ଅଭ୍ୟାସ,ଅନୁଶୀଳନ,ଯୁଦ୍ଧ ବିଦ୍ୟାଭ୍ୟାସ, ଯୁବତୀ, ସୂର୍ଯ୍ୟପତ୍ନୀ,(ବିଂ) ଉପଯୁକ୍ତା ।

ଯୋଗ୍ୟାନୁପଲବ୍ଧି—ସ୍ତ୍ରୀ.ବି. ଅଭାବ ଜ୍ଞାନ ସାଧନବିଶେଷ ।

ଯୋଚ—ଗ୍ରା. ବି. ରଥଆଦିରେ ପଶୁଙ୍କୁ ଯୋଚିବା କ୍ରିୟା, (ବିଂ) (ରଥ ବା ଶକଟାଦିରେ) ସଂଯୋଜିତ (ପଶୁ) ।

ଯୋଚିବା—ଗ୍ରା. କ୍ରି. ପଶୁଆଦିଙ୍କୁ ଯୁଆଳିରେ ବା ଯାନାଦିରେ ସଂଯୋଜିତ କରିବା ।

ଯୋଜକ—ବିଂ(ଯୁଜ୍+କ.ଅକ)ଯୋଜନାକାରୀ, ମେଳକ, ମିଳନକାରୀ, ଯୋଗକାରକ, ପଶୁଆଦିଙ୍କୁ ଯୋଚୁଥିବା, (ବି) ଯୋଜନକାରୀ ବ୍ୟକ୍ତି, ବିବାଦୀ ପକ୍ଷମାନଙ୍କୁ ମିଳାମିଶା କରାଇବା ବ୍ୟକ୍ତି, ମଧ୍ୟସ୍ଥ, ଯେଉଁ ସଙ୍କୀର୍ଣ୍ଣ ଭୂଭାଗ ଦୁଇ ବୃହତ୍ତର ଭୂଭାଗକୁ ସଂଯୁକ୍ତ କରେ ।

ଯୋଜନ—କ୍ଲୀ. ବି. ( ଯୁଜ୍+ଭା.ଅନ ) ଯୋଗ, ଏକତ୍ରକରଣ, ସଂଘଟନ, ମିଳାଇବା, ଯୋଚିବାକର୍ମ, ଯୋଗାଡ଼, ଚେଷ୍ଟା, ପ୍ରଯତ୍ନ, ମଠାଇବା, ବାକ୍ୟର ଅନ୍ୱୟ, ଗୃହାଦିର ରଚନ, (କ.ଅନ) ପରମାତ୍ମା, (ମଁ.ଅନ) ୪କ୍ରୋଶ ପରିମିତ ଦୂରତ୍ୱ, ପଥ, ମାର୍ଗ ।

ଯୋଜନଗନ୍ଧା—ସ୍ତ୍ରୀ. ବି. (ବ.ବ୍ରୀ)କସ୍ତୁରୀ, ସୀତା,ସତ୍ୟବତୀ,ବ୍ୟାସଦେବଙ୍କ ମାତା, ରୁଚକ ଋଷିଙ୍କ ପତ୍ନୀ, ବିଶ୍ୱାମିତ୍ରଙ୍କ ଭଉଣୀ ଓ ଶୁନଃଶେଫଙ୍କ ଜନନୀ ।

ଯୋଜନଗନ୍ଧିକା—ସ୍ତ୍ରୀ.ବି. ଯୋଜନଗନ୍ଧା ଦେଖ ।

ଯୋଜନପର୍ଣ୍ଣୀ--ସ୍ତ୍ରୀ.ବି. ମଞ୍ଜିଷ୍ଠା,ମଞ୍ଜୁଆତି ।

ଯୋଜନବଲ୍ଲିକା--ସ୍ତ୍ରୀ. ବି. ଯୋଜନବଲ୍ଲୀ, ମଞ୍ଜିଷ୍ଠା ।

ଯୋଜନବଲ୍ଲୀ—ସ୍ତ୍ରୀ. ବି. ମଞ୍ଜିଷ୍ଠା ।

ଯୋଜନା—ସ୍ତ୍ରୀ.ବି. (ଯୁଜ୍+ଅନ୍+ଆ) ଯୋଗକରଣ, ଏକତ୍ରକରଣ,ଯୋଚିବା, ଯୋଖିବା, ମିଶାଣ, ଯୋଗାଇବା,ସ୍ଥିରୀକୃତ ଉପାୟ, ସମ୍ମେଳନ, ଯୋଡ଼, ସମ୍ପର୍କ, ବାକ୍ୟର ଅନ୍ୱୟ, ବ୍ୟବସ୍ଥା ।

ଯୋଜନିକ—ବିଂ. (ଯୋଜନ+ଇକ) ଏତେ ଯୋଜନ ଦୂରତାବିଶିଷ୍ଟ ।

ଯୋଜନୀୟ—ବିଂ. ( ଯୁଜ୍+ଣିଚ୍+ମଁ. ଅନୀୟ) ଯୋଗାଇବା ଉପଯୋଗୀ, ଏକତ୍ରୀକରଣୀୟ, ମିଳନଯୋଗ୍ୟ, ବ୍ୟବହାର୍ଯ୍ୟ, ପ୍ରୟୋଜନୀୟ ।

ଯୋଜୟିତବ୍ୟ—ବିଂ. (ଯୁଜ୍+ଣିଚ୍+ତବ୍ୟ) ଯୋଜନର ଉପଯୁକ୍ତ ।

ଯୋଜୟିତା—ପୁଂ.ବିଂ. (ଯୁଜ୍+ଣିଚ୍+କ.ତୃ) ସଂଯୋଗକାରକ, ଯେ ଯୋଚେ, କାର୍ଯ୍ୟରେ ଲଗାଇବା (ବ୍ୟକ୍ତି), (ସ୍ତ୍ରୀ) ଯୋଜୟିତ୍ରୀ, (ବି) ଖାମିନ୍ଦ, କାର୍ଯ୍ୟରେ ନିଯୁକ୍ତକାରୀ ବ୍ୟକ୍ତି ।

ଯୋଜିତ—ବିଂ. (ଯୁଜ୍+ଣିଚ୍+ମଁ.ତ) ଯେ ଯୋଗ କରାଇଅଛି, ମେଳିତ, ନିଯୁମିତ,ଯୋଗ କରାଯାଇଥିବା,ମିଶ୍ରିତ,

ଯୋଗ୍ୟହୋଇଥିବା ।

ଯୋଜୟିତା—ପୁଂ. ବିଂ. (ଯୁଜ୍+ଣିଚ୍+ତୃଚ୍) ଯୋଜକ, ଯୋଗକାରକ, (ସ୍ତ୍ରୀ) ଯୋଜୟିତ୍ରୀ । [ ଦେଖ ।

ଯୋଜ୍ୟ—ବିଂ.(ଯୁଜ୍+ର୍ମ.ଯ)ଯୋଜନୀୟ

ଯୋଟକ—ପୁଂ.ବିଂ. (ଯୁଟ୍+ଣିଚ୍+କ. ଅକ) ଯେ ଯୋଗ କରାଏ ବା ଯୁଟାଏ, ମଧ୍ୟସ୍ଥ,ଯେ ମିଳାଇଦିଏ, (ବି. ଯୁଟ୍+ଭା.ଅକ) ବର କନ୍ୟାଙ୍କର ଜାତକରେ ଗ୍ରହନକ୍ଷତ୍ରାଦିଙ୍କର ଅନୁକୂଳତା,ଘଟୁଆ, ଦଲାଲ, ମଧ୍ୟସ୍ଥ ବ୍ୟକ୍ତି ।

ଯୋଟା—ଗ୍ରା.ବି.ବିଂ. ଯୋଟା ଦେଖ ।

ଯୋଡିବା—ଗ୍ରା.କ୍ରି. ଜୁଟିବା ଦେଖ, ଉପମାରେ ସମତୁଲ ହେବା ।

ଯୋଡ଼—ଗ୍ରା.ବି.ବିଂ. ଜୋଡ଼ ଦେଖ ।

ଯୋଡ଼ା—ଗ୍ରା.ବି.ବିଂ. ଜୋଡ଼ା ଦେଖ ।

ଯୋଢ଼—ଗ୍ରା.ବି.ବିଂ.ଜୋଢ଼ ଦେଖ, (ପ୍ରା. ବାଣପୁର)କାଞ୍ଜିହାଉସ୍ ।

ଯୋଢ଼ଆ—ପ୍ରା. (ସିଂହଭୂମ) ବି. ନାଳ, ପାଣି ମାହାଳ ।

ଯୋଢ଼ଏ(କ)—ଗ୍ରା.ବି. ବିଂ. ଦୁଇଖଣ୍ଡ, ଦୁଇଜଣ, ଦୁଇଟି, ଦୁଇଟିମାତ୍ର ।

ଯୋଢ଼ଘର—ପ୍ରା.(ଗଞ୍ଜାମ)ବି.କାଞ୍ଜିହାଉସ୍, ପଶୁଜେଲ୍ ।

ଯୋଢ଼ିବା—ଗ୍ରା. କ୍ରି. ଜୋଢ଼ିବା ଦେଖ ।

ଯୋଢ଼ଯମକ—ଗ୍ରା.ବି. ପଦ୍ୟ ରଚନାରେ ଆଦ୍ୟ ଓ ପ୍ରାନ୍ତ ଯମକଯୁକ୍ତ ପଦ୍ୟ,ଆଦ୍ୟ ଓ ପ୍ରାନ୍ତ ଯମକ ଦୁଇଟି ସଦୃଶ ବସ୍ତୁର ଏକତ୍ରାବସ୍ଥିତି ।

ଯୋତ୍ସ୍ୟମାନ—ବିଂ. (ଯୁଧ୍+ସ୍ୟମାନ) ଯୁଦ୍ଧକରିବାକୁ ଉଦ୍‌ଯୋଗୀ, (ସ୍ତ୍ରୀ) ଯୋତ୍ସ୍ୟମାନା ।

ଯୋତ—ଗ୍ରା.ବି.ଯୋତ୍ର, ଜୋତ ଦେଖ ।

ଯୋତଦାର—ଯା. ବି. କୃଷକ ।

ଯୋତା—ଗ୍ରା. ବି. ଜୁ(ଜୋ)ତା ଦେଖ ।

ଯୋତୁଃ—ବି. ପରିମାଣ, ପରିଷ୍କରଣ ।

ଯୋତ୍ର—କ୍ଳୀ. ବି. (ଯୁ ବା ଯୁଜ୍+ଣ.ତ୍ର) ଯୋତ ଦଉଡ଼ି, ଲଙ୍ଗଳ ଦଉଡ଼ା, ଯୁଆଳ, ସମ୍ପତ୍ତି ।

ଯୋତ୍ରସ୍ଥାନ—ବିଂ.(୭ତତ୍ତ୍)ସମ୍ପତ୍ତିବିହୀନ, ଦରିଦ୍ର ।

ଯୋଦ୍ଧବ୍ୟ—ବିଂ (ଯୁଧ୍+ତବ୍ୟ)ଯୁଦ୍ଧାର୍ହ, ଯୁଦ୍ଧଯୋଗ୍ୟ ।

ଯୋଦ୍ଧା—ପୁଂ.ବିଂ. (ଯୁଧ୍+କ.ତୃ)ଯୁଦ୍ଧକର୍ତ୍ତା, ରଣକୁଶଳ,(ସ୍ତ୍ରୀ) ଯୋଦ୍ଧ୍ରୀ, (ବି) ଯୁଦ୍ଧକାରୀ ବ୍ୟକ୍ତି, ସୈନିକ, ବୀର, ଭଟ. (ଗ୍ରା.ବି)ସାହସୀ ବ୍ୟକ୍ତି,ବଳବାନ୍ ବ୍ୟକ୍ତି

ଯୋଦ୍ଧୃଗଣ—ବି. ଯୋଦ୍ଧାମାନେ ।

ଯୋଦ୍ଧୃଜନ—ବି. ସୈନିକ ।

ଯୋଦ୍ଧୃଜାତି—ବି. ( ୬ତତ୍ତ୍ ) ଯୁଦ୍ଧପଟୁ ବ୍ୟକ୍ତିବହୁଳ ଜାତି ।

ଯୋଦ୍ଧୃପତି—ବି. (୬ତତ୍)ସେନାପତି ।

ଯୋଧ—ପୁଂ.ବି. (ଯୁଧ୍+କ.ଅ)ଯୋଦ୍ଧା, ଯୁଦ୍ଧକାରୀ, (ଭା.ଅ)ଯୁଦ୍ଧ ।

ଯୋଧକ—ପୁଂ. ବି. (ଯୁଧ୍+କ.ଅକ) ଯୋଦ୍ଧା, ସିପାହି, (ସ୍ତ୍ରୀ) ଯୋଧିକା ।

ଯୋଧଧର୍ମ—ବି. (୬ତତ୍ତ୍) ସୈନିକର କର୍ତ୍ତବ୍ୟ, ଯୁଦ୍ଧ ଆଇନ୍ ।

ଯୋଧନ—କ୍ଳୀ.ବି. (ଯୁଧ୍+ଭା.ଅନ)ଯୁଦ୍ଧ, (କ.ଅନ) ଯୋଦ୍ଧା, (ଣ.ଅନ)ଯୁଦ୍ଧାସ୍ତ୍ର ।

ଯୋଧପୁର—ଗ୍ରା.ବି. ରାଜପୁତାନାନ୍ତର୍ଗତ ସାମନ୍ତ ରାଜ୍ୟବିଶେଷ, ମାରବାଡ଼ରାଜ୍ୟ

ଯୋଧବୀର—ପୁଂ. ବି. (୬ତତ୍ତ୍) ପ୍ରଧାନ ଯୋଦ୍ଧା, ସେନାପତି ।

ଯୋଧୟତ୍—ପୁଂ. ବିଂ.(ଯୁଧ୍+କ.ଅତ୍) ଯୁଦ୍ଧରେ ନିଯୁକ୍ତ, ଯୁଦ୍ଧ କରୁଥିବା, (ସ୍ତ୍ରୀ) ଯୋଧୟନ୍ତୀ ।

ଯୋଧସଂରାବ—ପୁଂ.ବି.(୬ତତ୍ତ୍)ଯୋଦ୍ଧାମାନଙ୍କର ପରସ୍ପରକୁ ସ୍ପର୍ଦ୍ଧା ସହିତ ଯୁଦ୍ଧକୁ ଆହ୍ୱାନ, ସ୍ପନ୍ଦନ ।

ଯୋଧା—ଗ୍ରା, ବି. ଯୋଦ୍ଧା ଦେଖ ।

ଯୋଧାଗାର—ବି(୬ତତ୍)ଯୋଦ୍ଧାମାନଙ୍କ ଆଗାର, ସେନାନିବାସ ।

ଯୋଧୀ—ପୁଂ. ବିଂ. (ଯୁଧ୍+ଇନ୍) ଯୁଦ୍ଧକାରୀ, ବୀର, (ସ୍ତ୍ରୀ) ଯୋଧିନୀ ।

ଯୋଧୀୟାନ୍-ପୁଂ.ବିଂ. ଅତିଶୟ ଯୋଦ୍ଧା ।

ଯୋଧ୍ୟ—ବିଂ. (ଯୁଧ୍+ର୍ମ.ଯ)ଯୋଧନୀୟ, ଯୋଦ୍ଧାର୍ହ ।

ଯୋନଲ—ପୁଂ.ବି. ଶସ୍ୟବିଶେଷ. ଯବନାଳ, ଜନରା ଦେଖ, ଜୁଆରି ଦେଖ ।

ଯୋନି—ବି.(ଯୁ+କ.ନି+ଇ)ଆକର, କାରଣ, ଜଳ, ତନ୍ତ୍ରବିଶେଷ,ପ୍ରାଣୀଉତ୍ପତ୍ତି ସ୍ଥାନ, ଭଗ, ଉପସ୍ଥ,ରନ୍ଧ୍ରଗୃହ, ପ୍ରକୃତି, ପ୍ରାଣୀମାନଙ୍କ ବିଭାଗ, ଜାତି ବା ବର୍ଗ, ପୂର୍ବଫାଲ୍‌ଗୁନୀନକ୍ଷତ୍ର, ଅନ୍ତଃକରଣ, ଗର୍ଭାଶୟ, ଜନ୍ମ ।

ଯୋନିକନ୍ଦ-ପୁଂ.ବି. ଯୋନିରୋଗବିଶେଷ

ଯୋନିକପାଟ--ବି.ଯୋନିର ପାର୍ଶ୍ୱଦେଶସ୍ଥ ସ୍ଥିତିସ୍ଥାପକ ଆବରଣଦ୍ରବ୍ୟ ।

ଯୋନିକୀଟ-ବି.ଲମ୍ପଟ ବା କାମୁକ ବ୍ୟକ୍ତି ।

ଯୋନିକୁଣ୍ଡ—ବି. ଭଗଗର୍ତ୍ତ, ତନ୍ତ୍ରୋକ୍ତ ଚକ୍ରବିଶେଷ ।

ଯୋନିଗାତ୍ର—ବି. (୬ତତ୍ତ୍)ଭଗର ଅଙ୍ଗ ।

ଯୋନିଜ—ପୁଂ. ବିଂ. ଯୋନିରୁ ଜାତ, ଜରାୟୁଜ ଓ ଅଣ୍ଡଜ(ପ୍ରାଣୀ),ମାତୃଯୋନିନିଃସୃତ ଶରୀରବିଶିଷ୍ଟ,(ସ୍ତ୍ରୀ) ଯୋନିଜା ।

ଯୋନିତୀର୍ଥ—ବି. ହିନ୍ଦୁମାନଙ୍କର ତୀର୍ଥବିଶେଷ ।

ଯୋନିଦେବତା—ସ୍ତ୍ରୀ.ବି. (ବ.ବ୍ରୀ) ପୂର୍ବଫାଲ୍‌ଗୁନୀନକ୍ଷତ୍ର । [ ଯୋନିସ୍ଥାନ ।

ଯୋନିଦେଶ—ପୁଂ. ବି. ଜବାକୁସୁମ,

ଯୋନିଦୋଷ—ପୁଂ.ବି.ଉପଦଂଶରୋଗ, ସ୍ତ୍ରୀରୋଗ ।

ଯୋନିଦ୍ୱାର—କ୍ଳୀ.ବି. ଭଗଦ୍ୱାର, ଗୟାଧାମସ୍ଥ ତୀର୍ଥବିଶେଷ ।

ଯୋନିନାସା—ସ୍ତ୍ରୀ. ବି. ଜନନେନ୍ଦ୍ରିୟର ଉପରସ୍ଥ ନାସିକାକୃତି ମାଂସଖଣ୍ଡ ।

ଯୋନିପାର୍ଶ୍ୱ—ବି. ଭଗ କପାଟର ପାର୍ଶ୍ୱଭାଗ । [ ବିଶେଷ ।

ଯୋନିପୂଜା—ସ୍ତ୍ରୀ.ବି. ତାନ୍ତ୍ରିକ ପୂଜା-

ଯୋନିଭ୍ରଂଶ—ବି.(୬ତତ୍ତ୍) ଯୋନି ବହିର୍ଗମନରୋଗବିଶେଷ, ସ୍ତ୍ରୀମାନଙ୍କ ପଦ୍ମ ଖସିବା, ପେନ୍ଦ ।

ଯୋନିଭ୍ରମଣ—ବି. (୭ତତ୍ତ୍) ପୁନର୍ଜନ୍ମ, ପୁନଃପୁନଃ ଜନ୍ମଗ୍ରହଣ ।

ଯୋନିମୁକ୍ତ—ବିଂ. (୫ତତ୍ତ୍) ମୋକ୍ଷପ୍ରାପ୍ତ, ପୁନଃପୁନଃ ଜନ୍ମଗ୍ରହଣ କରିବାରୁ ମୁକ୍ତ ।

ଯୋନିମୁଖ—କ୍ଲୀ. ବି. ଯୋନିଦ୍ୱାର ।
ଯୋନିମୁଦ୍ରା—ସ୍ତ୍ରୀ. ବି. (ତନ୍ତ୍ର) ଦେବାରାଧନ କାଳରେ ପ୍ରଦର୍ଶନୀୟ କରତଳ ଓ ଅଙ୍ଗୁଳିମାନଙ୍କର ସନ୍ନିବେଶବିଶେଷ ।
ଯୋନିଯନ୍ତ୍ର—ବି. କାମାଖ୍ୟା ଗୟାଆଦି ତୀର୍ଥରେ ଥିବା ଏକ ସଙ୍କୀର୍ଣ୍ଣ ମାର୍ଗ ବା ଛିଦ୍ର, ଯହିଁରେ ଗଳିକରି ବାହାରିଥିବା ବ୍ୟକ୍ତିର ପୁନର୍ଜନ୍ମ ନାହିଁ ବୋଲି ବିଶ୍ୱାସ ଅଛି ।
ଯୋନିରଞ୍ଜନ—ବି. ସ୍ତ୍ରୀରଜଃ,ନେତ୍ର(ର)
ଯୋନିରୋଗ—ପୁଂ. ବି. ଭଗଣ୍ଡ,ଉଦାବର୍ତ୍ତାଦି ସ୍ତ୍ରୀରୋଗ ।
ଯୋନିଲିଙ୍ଗ—ବି. (୬ତତ୍ତ୍) ଯୋନିନାସା ସଂଲଗ୍ନ ଉଦ୍ରେକଶକ୍ତିଯୁକ୍ତ ମାଂସପିଣ୍ଡ, ଭଗାଙ୍କୁର, ଗୁହ୍ୟ ମଣି ।
ଯୋନିଶୂଳ—କ୍ଲୀ ବି.ଯୋନିରୋଗବିଶେଷ, ଯୋନିପୀଡ଼ା ।
ଯୋନିଶୈଲଘ୍ନୀ—ସ୍ତ୍ରୀ ବି.ଶତପୁଷ୍ପା,ଶଉପ ।
ଯୋନିସଂବରଣ—କ୍ଲୀ.ବି.ଯୋନିସଙ୍କୋଚ ଗର୍ଭରୋଗବିଶେଷ ।
ଯୋନିସଂବୃତ୍ତି—ସ୍ତ୍ରୀ.ବି.(୬ତତ୍ତ୍)ଜନନେନ୍ଦ୍ରିୟର ଆକୁଞ୍ଚନ ରୋଗ ।
ଯୋନିସଙ୍କର—ପୁଂ. ବି. ବର୍ଣ୍ଣସଙ୍କର, ମାତୃବଂଶର ହୀନତାନିବନ୍ଧନ ଜନ୍ମଦୋଷ
ଯୋନିସମ୍ବନ୍ଧ—ବି. (କ.ଧା) ବିବାହଦ୍ୱାରା ସ୍ଥାପିତ ସମ୍ବନ୍ଧ ।
ଯୋନିସମ୍ଭବ—ପୁଂ.ବିଂ. (ଯୋନି+ସମ୍ +ଭୂ+ଅ) ଯୋନିଜ ଦେଖ ।
ଯୋନୀ—ବି. ଯୋନି ଦେଖ ।
ଯୋନ୍ୟର୍ଶଃ—କ୍ଲୀ. ବି. ଯୋନିଜାତ ଅର୍ଶରୋଗ, ଯୋନିକନ୍ଦ, ରକ୍ତପ୍ରଦର ।
ଯୋପନ—କ୍ଲୀ. ବି. (ଯୁପ୍+ଅନ)ଚିହ୍ନଲୋପକରଣ, ପୀଡ଼ନ, ଉଓ କ୍ତକରଣ, ଅତ୍ୟାଗ୍ରହ ସହଯୋଗେ ନିଗୃହୀତକରଣ, ଯହିଁଦ୍ୱାରା ଲିଭିଇ ଦିଆଯାଏ, ଲିଭିଇଦେବା ।
ଯୋୟୁ - ଦ୍ରା. (ଭଗ୍ନୀସ୍ୱଖା) ବି. ନିଆଁ ।
ଯୋଷଣା—ସ୍ତ୍ରୀ.ବି.(ଯୁଷ୍+ କ.ଅନ+ଆ ଅସତୀ ସ୍ତ୍ରୀ,ଦୁଷ୍ଟରନ୍ଧା ସ୍ତ୍ରୀ,କୁମାରୀ,ଯୁବତୀ ।
ଯୋଷନ୍—ସ୍ତ୍ରୀ. ବି. ଗତଭର୍ତ୍ତୃକା ସ୍ତ୍ରୀ, ବିଧବା ସ୍ତ୍ରୀ ।
ଯୋଷା—ସ୍ତ୍ରୀ. ବି. (ଯୁଷ୍+କ.ଅ+ଆ) ନାରୀ, ସ୍ତ୍ରୀ, ପତ୍ନୀ, ଯୁବତୀ ।
ଯୋଷାପ୍ରିୟା—ବି. (୬ତତ୍ତ୍) ହଳଦୀ ।
ଯୋଷାବର—ସ୍ତ୍ରୀ. ବି. ଉତ୍କୃଷ୍ଟା ସ୍ତ୍ରୀ ।
ଯୋଷିତ୍—ସ୍ତ୍ରୀ.ବି.(ଯୁଷ୍+ଇତ୍)ନାରୀ,ସ୍ତ୍ରୀ
ଯୋଷିତ୍କୃତ୍—ବିଂ. (୩ତତ୍ତ୍)ନାରୀଦ୍ୱାରା ସମ୍ପାଦିତ ।
ଯୋଷିତ୍ପ୍ରିୟା—ସ୍ତ୍ରୀ. ବି. ହଳଦୀ ।
ଯୋଷିତ୍ବର୍ଗ—ବି.(୬ତତ୍ତ୍)ନାରୀସମୂହ ।
ଯୋଷିତା—ସ୍ତ୍ରୀ. ବି. ( ଯୋଷିତ୍+ଆ ) ସ୍ତ୍ରୀ, ନାରୀ ।
ଯୋଷିନ୍ମୟ—ବିଂ. ସ୍ତ୍ରୀ ସ୍ୱରୂପ, ସ୍ତ୍ରୀ ମୟ. ସ୍ତ୍ରୀ ବହୁଳ ।
ଯୌକ୍ତିକ—ପୁଂ.ବିଂ.(ଯୁକ୍ତି+ଇକ)ଯୁକ୍ତିଯୋଗ୍ୟ, ପ୍ରାମାଣିକ, ଯୁକ୍ତିକାରୀ, ଯୁକ୍ତିସିଦ୍ଧ, ଉପଯୁକ୍ତ ଯୁକ୍ତିଉପରେ ସ୍ଥାପିତ, ଚଳିତ,ଯୁକ୍ତ, ( ପୁଂ.ବି ) କର୍ମସଚିବ, ଆମୋଦସହଚର, (ସ୍ତ୍ରୀ) ଯୌକ୍ତିକୀ ।
ଯୌଗ—ପୁଂ. ବି.(ଯୋଗ+ଅ)ଯୋଗଦର୍ଶନମତାବଲମ୍ବୀ ବ୍ୟକ୍ତି,(ବିଂ)ଯୋଗସମ୍ବନ୍ଧୀୟ । [ ସମ୍ବନ୍ଧୀୟ ।
ଯୌଗକ—ବିଂ. (ଯୋଗ+କ) ଯୋଗ-
ଯୌଗପଦ୍ୟ—କ୍ଲୀ. ବି. (ଯୁଗପତ୍+ଯ) ଯୁଗପଦ୍ଭାବ,ସମକାଳୀନଘଟିବା ଅବସ୍ଥା
ଯୌଗିକ—ବିଂ.(ଯୋଗ+ଇକ)ଯୋଗସମ୍ବନ୍ଧୀୟ, ପ୍ରଚଳିତ,ଅଭ୍ୟସ୍ତ, ସାଧାରଣ, (ବ୍ୟାକରଣ) ପ୍ରକୃତିପ୍ରତ୍ୟୟ ସମ୍ବନ୍ଧୀୟ, ପ୍ରକୃତିପ୍ରତ୍ୟୟ ଅନୁସାରେ ଅର୍ଥବିଶିଷ୍ଟ (ବେ), ପ୍ରୟୋଜନୀୟ ପ୍ରତିକାର ସମ୍ବନ୍ଧୀୟ, ଯୋଗଜାତ, ( ସ୍ତ୍ରୀ ) ଯୌଗିକୀ ।
ଯୌଗିକରୂଢ଼—ବିଂ. (ଦ୍ୱନ୍ଦ୍ୱ) ବ୍ୟୁତ୍ପତ୍ତିଗତ ଓ ବ୍ୟବହାରଗତ ( ଅର୍ଥ ) ବା ଉକ୍ତ ଅର୍ଥରେ ବ୍ୟବହୃତ (ଶବ୍ଦ) ।
ଯୌଜନଶତିକ—ପୁଂ.ବିଂ. ଯୋଜନଶତ ଗମନକର୍ତ୍ତା, ଯୋଜନଶତବ୍ୟାପୀ,(ସ୍ତ୍ରୀ) ଯୌଜନଶତିକୀ ।
ଯୌଜନିକ—ବିଂ. ( ଯୋଜନ+ଇକ ) ଏକଯୋଜନ ପଥ ଗମନକ୍ଷମ,ଯୋଜନବ୍ୟାପୀ, (ସ୍ତ୍ରୀ) ଯୌଜନିକୀ । [ ଦେଖ ।
ଯୌତକ—ସ୍ତ୍ରୀ.ବି.(ଯୁତକ+ଅ)ଯୌତୁକ
ଯୌତବ—କ୍ଲୀ.ବି.(ଯୋତୁ+ଅ)ପରିମାଣ ।
ଯୌତୁକ—କ୍ଲୀ.ବି.ବିବାହକାଳେ ଦମ୍ପତୀଙ୍କର ଲବ୍ଧ ଧନସମ୍ପତ୍ତିଆଦି, ଅନ୍ନପ୍ରାଶନାଦି କାଳରେ ଶିଶୁକୁ ଦିଆଯିବା ଉପହାର ।
ଯୌଥ—ବି. (ଯୂଥ+ଅ) ଗୋଷ୍ଠୀ ବା ଦଳ ସମ୍ବନ୍ଧୀୟ,ଦଳର ଅଧିକାରଭୁକ୍ତ, ଇଜମାଲି ।
ଯୌଥିକ—ବିଂ. ( ଯୂଥ+ଇକ ) ଯୂଥସଂଘାତୀ, ଦଳ ସମ୍ବନ୍ଧୀୟ, ଦଳବଦ୍ଧ (ଜୀବ),(ସ୍ତ୍ରୀ) ଯୌଥିକୀ,(ପୁଂ.ବି)ସଙ୍ଗୀ ।
ଯୌଧ—ପୁଂ.ବିଂ.ଯୁଦ୍ଧପ୍ରିୟ,ସମରକୁଶଳ ।
ଯୌଧି—ପୁଂ. ବିଂ. ଯୁଦ୍ଧପ୍ରିୟ, (ପୁଂ.ବି) ଯୋଦ୍ଧା ।
ଯୌଧିକ—ବି. ଯୁଦ୍ଧପ୍ରକରଣବିଶେଷ ।
ଯୌଧିଷ୍ଠିର—ବିଂ. (ଯୁଧିଷ୍ଠିର+ଅ) ଯୁଧିଷ୍ଠିର ସମ୍ବନ୍ଧୀୟ ।
ଯୌଧିଷ୍ଠିରି—ପୁଂ.ବି.ଯୁଧିଷ୍ଠିରଙ୍କ ଅପତ୍ୟ ।
ଯୌଧେୟ—ପୁଂ. ବି. (ଯୋଧ+ଏୟ) ଯୋଦ୍ଧା, ଯୁଧିଷ୍ଠିରଙ୍କ ପୁତ୍ର, ଯୋଦ୍ଧାର ପୁତ୍ର, ଯୁଦ୍ଧପ୍ରିୟ ଜାତିବିଶେଷ ।
ଯୌନ—କ୍ଲୀ. ବି.(ଯୋନି+ଅ) ବିବାହ, ବିବାହସମ୍ବନ୍ଧ,ଯୋନିସମ୍ବନ୍ଧାଧୀନ ପାପ, ଉତ୍ପତ୍ତିକାରଣ,ମହାଭାରତୋକ୍ତ ଉତ୍ତରାପଥର ଏକ ପ୍ରାଚୀନ ଜାତି, ( ବିଂ ) ଯୋନି ସମ୍ବନ୍ଧୀୟ,ମାତୃଗର୍ଭ ସମ୍ବନ୍ଧୀୟ, ମାତୃଗର୍ଭଜାତ,ବିବାହ ସମ୍ବନ୍ଧୀୟ.(ସ୍ତ୍ରୀ) ଯୌନୀ ।
ଯୌନପାପ—ବି.(କ.ଧା)ନୀଚ ବା ନିଷିଦ୍ଧ ଯୋନିସଙ୍ଗମ ଜନିତ ପାପ ।
ଯୌନସମ୍ବନ୍ଧ—ବି. (କ.ଧା) ବୈବାହିକ ସମ୍ବନ୍ଧ, ଏକ ମାତାଙ୍କ ଗର୍ଭରୁ ଭିନ୍ନଭିନ୍ନ ପିତାଙ୍କ ଔରସରେ ଜାତଜନିତ ସମ୍ବନ୍ଧ ।
ଯୌବତ—କ୍ଲୀ.ବି. (ଯୁବତୀ+ଅ) ଯୁବତୀ ସମୂହ, ନୃତ୍ୟବିଶେଷ, ପରିମାଣ, ମାପ,

ଲାସ୍ୟ ନୃତ୍ୟର ପ୍ରକାରବିଶେଷ, ଯୁବତୀର ଭାବ ବା ଅବସ୍ଥା ।
ଯୌବତେୟ—ବି. ( ଯୁବତୀ+ଏୟ ) ଯୁବତୀର ପୁତ୍ର, (ସ୍ତ୍ରୀ) ଯୌବତେୟୀ ।
ଯୌବନ-କ୍ଲୀ.ବି.(ଯୁବନ୍+ଅ)ଯୁବାବସ୍ଥା, ତାରୁଣ୍ୟ,୧୬ବର୍ଷଠାରୁ ୭୦ ବର୍ଷ ପର୍ଯ୍ୟନ୍ତ ଜୀବିତ କାଳ, ଯୁବକଜନୋଚିତ କର୍ମ, ଯୁବକ ବା ଯୁବତୀଙ୍କ ଦଳ, ( ଗ୍ରା.ବି ) ଯୁବତୀ ସ୍ତ୍ରୀର କଠିନ ବର୍ତ୍ତୁଳ ସ୍ତନ ।
ଯୌବନକ—କ୍ଲୀ. ବି. (ଯୌବନ+କ) ଯୌବନ ।
ଯୌବନକଣ୍ଟକ—ବି. (କ.ଧା) ଯୁବଗଣ୍ଡ, ଯୌବନ କାଳରେ ମୁଖମଣ୍ଡଳରେ ହେବା ବ୍ରଣ ।
ଯୌବନଗର୍ବ—ବି.(କ.ଧା) ଯୁବାହୋଇଥିବା ଯୋଗୁଁ ଗର୍ବ ।
ଯୌବନଚଞ୍ଚଳ—ବି. (୬ତତ୍ପୁ)ଯୌବନ କାଳରେ ହେବା ସ୍ୱାଭାବିକ ଚଞ୍ଚଳତା ।
ଯୌବନଚିହ୍ନ—ବି. ଯୌବନ ଲକ୍ଷଣ ଦେଖ ।
ଯୌବନତାପ—ବି. (୬ତତ୍ପୁ) ଯୌବନଚଞ୍ଚଳ ଦେଖ ।
ଯୌବନଦଶା—ବି.ଯୌବନାବସ୍ଥା ଦେଖ
ଯୌବନପିଡ଼କା—ବି. ଯୌବନକଣ୍ଟକ ଦେଖ । [ ସମୟ ।
ଯୌବନପ୍ରାପ୍ତ—ବି. ଯୌବନର ଶେଷ
ଯୌବନଭର—ବି. (କ.ଧା)ଯୌବନର ପୂର୍ଣ୍ଣତାଜନିତ ରୂପାଦି ଗର୍ବର ଗୁରୁତ୍ୱ
ଯୌବନମତ୍ତ—ପୁଂ.ବି.ଯୌବନ ଗର୍ବିତ
ଯୌବନମନ୍ତ୍ର—ସ୍ତ୍ରୀ.ବି. ଛନ୍ଦୋବିଶେଷ ।
ଯୌବନଲକ୍ଷଣ—ବି. (୬ତତ୍ପୁ) ଲାବଣ୍ୟ, ତାରୁଣ୍ୟଚିହ୍ନ, ଯୁବତୀସ୍ତନ, ଯୌବନକାଳୀନ ଦୈହିକ ପରିବର୍ତ୍ତନାଦି ।
ଯୌବନବାନ୍—ପୁଂ.ବିଂ.ଯୌବନବିଶିଷ୍ଟ, ଯୁବା, ଯୁବକ, (ସ୍ତ୍ରୀ) ଯୌବନବତୀ ।
ଯୌବନଶ୍ରୀ—ବି.(୬ତତ୍ପୁ) ତରୁଣ ବୟସରେ ପୁରୁଷ ଓ ସ୍ତ୍ରୀଙ୍କଠାରେ ଜନ୍ମିବା ସ୍ୱାଭାବିକ ସୌନ୍ଦର୍ଯ୍ୟ ।
ଯୌବନସଙ୍ଗୀ—ପୁଂ. ବି. ଯୁବାକାଳର ସାଙ୍ଗ, (ସ୍ତ୍ରୀ) ଯୌବନସଙ୍ଗିନୀ ।
ଯୌବନସଞ୍ଚାର-ବି.(୬ତତ୍ପୁ)ଯୌବନୋଦୟ ଦେଖ ।
ଯୌବନସୁଲଭ—ବିଂ. (୭ତତ୍ପୁ) ଯୁବାବସ୍ଥାରେ ସ୍ୱାଭାବିକ ।
ଯୌବନସ୍ଥ—ବିଂ. ଯୌବନଯୁକ୍ତ, ଯୁବାବସ୍ଥା ପ୍ରାପ୍ତ, ବିବାହ କରିବା ଉପଯୁକ୍ତ. (ସ୍ତ୍ରୀ) ଯୌବନସ୍ଥା ।
ଯୌବନାବସ୍ଥା—ବି.ଯୁବାକାଳ,ଯୌବନ ଦଶା, ଯୁବାବସ୍ଥା ।
ଯୌବନାଶ୍ୱ—ବି. (ଯୁବନାଶ୍ୱ+ଅ) ଯୁବନାଶ୍ୱ ରାଜାଙ୍କ ପୁତ୍ର, ମାନ୍ଧାତା ।
ଯୌବନାଶ୍ୱକ-ପୁଂ.ବି. ଯୁବନାଶ୍ୱ ଦେଖ
ଯୌବନାଶ୍ୱି—ପୁଂ. ବି. ଯୁବନାଶ୍ୱ ବଂଶ ସମ୍ଭୂତ ମାନ୍ଧାତା ରାଜା ।
ଯୌବନିକ—ବିଂ. (ଯୌବନ+ଇକ) ଯୌବନସମ୍ବନ୍ଧୀୟ ।
ଯୌବନୋଦୟ—ବି. (୬ତତ୍ପୁ)ଯୌବନର ଆବିର୍ଭାବ, ନବଯୁବାବସ୍ଥା ।
ଯୌବନୋଦ୍ଭବ-ପୁଂ.ବିଂ. (ବ.ବ୍ରୀ)ଯୁବାବସ୍ଥାରୁ ଉତ୍ପନ୍ନ ।
ଯୌବନୋଦ୍ଭେଦ—ବି. (୬ତତ୍ପୁ)ଯୁବକ ସୁଲଭ ଔଦ୍ଧତ୍ୟ, (କ.ଧା)ସକାମପ୍ରବୃତ୍ତି, (ବ.ବ୍ରୀ) ମଦନ, କାମ ।
ଯୌବରାଜିକ—ପୁଂ. ବିଂ. (ଯୁବରାଜ+ଇକ) ଯୁବରାଜସମ୍ବନ୍ଧୀୟ ।
ଯୌବରାଜ୍ୟ—ବି. (ଯୁବରାଜ+ଷ୍ୟ) ପିତାଙ୍କର ଉପସ୍ଥିତିରେ ପୁତ୍ରଙ୍କର ଯୁବରାଜ ପଦ ଓ ଅଧିକାର ।
ଯୌବରାଜ୍ୟାଭିଷିକ୍ତ--ପୁଂ.ବିଂ.(୭ତତ୍ପୁ) ଯୁବରାଜରୂପେ ପିତାଙ୍କଦ୍ୱାରା ପ୍ରତିଷ୍ଠିତ
ଯୌବରାଜ୍ୟାଭିଷେକ-ବି.ଯୁବରାଜପଦରେ ପ୍ରତିଷ୍ଠିତ ହେବା ଉପଲକ୍ଷରେ କରଣୀୟ ଉତ୍ସବ ।
ଯୌବରାଜ୍ୟାଭିସେଚନ—ବି. ପିତାଙ୍କଦ୍ୱାରା ପୁତ୍ରଙ୍କର ଯୁବରାଜ ପଦରେ ପ୍ରତିଷ୍ଠାକରଣ ।
ଯୌଷିଣ୍ୟ—ବି.(ଯୋଷ+ଇଣ୍ୟ)ନାରୀତ୍ୱ, ସ୍ତ୍ରୀଜାତି, ରମଣୀତ୍ୱ ।
ଯୌଷ୍ମାକ—ବିଂ. (ଯୁଷ୍ମଦ୍+ଅ) ତୁମ୍ଭ ସମ୍ବନ୍ଧୀୟ,ଭବଦୀୟ, ତ୍ୱଦୀୟ, ତୁମ୍ଭର ।
ଯୌଷ୍ମାକୀଣ(ନ)—ବିଂ. (ଯୁଷ୍ମଦ୍+ଈନ) ତୁମ୍ଭ ସମ୍ବନ୍ଧୀୟ,ତୁମ୍ଭର ।
ଯ୍ୟ—'ଯ' ଅକ୍ଷରର ଯ ଅନ୍ୟରୂପ ଅଟେ ଓ ଏହା 'ଯ' ର ଉଚ୍ଚାରଣ ଭେଦମାତ୍ର ।
ୟା—ଗ୍ରା.ସର୍ବ. (ଫ-ଏତଦ୍) ଏହା, ଏହି (ବସ୍ତୁ) ।
ୟାକୁ—ଗ୍ରା.ସର୍ବ. ଏହାକୁ, ଏହି ବସ୍ତୁ ବା ବ୍ୟକ୍ତି ବା ଜନ୍ତୁକୁ ।
ୟାପେଇଁ(ପାଇଁ)—ଗ୍ରା.ଅବ୍ୟ.ଏହି ବ୍ୟକ୍ତି ବା ବସ୍ତୁ ବା ବିଷୟ ନିମନ୍ତେ ।
ୟାଙ୍କ—ଗ୍ରା. ସର୍ବ. ଏହି ବ୍ୟକ୍ତିଙ୍କର ବା ଏହି ବ୍ୟକ୍ତିମାନଙ୍କର ।
ୟାଙ୍କମାନଙ୍କ—ଗ୍ରା.ସର୍ବ. ଏମାନଙ୍କ, ଏହି ବ୍ୟକ୍ତିମାନଙ୍କର ।
ୟାଙ୍କୁ—ଗ୍ରା. ସର୍ବ. ଏହି ବ୍ୟକ୍ତିଙ୍କୁ ବା ବ୍ୟକ୍ତିମାନଙ୍କୁ ବା ଜୀବମାନଙ୍କୁ ।
ୟାଙ୍କେ—ଗ୍ରା (ଗଞ୍ଜାମ)ସର୍ବ. ଏ ବ୍ୟକ୍ତି, ଏ ବ୍ୟକ୍ତିମାନେ ।
ୟାଠଉଁ—ଗ୍ରା.ସର୍ବ. ଏହି ବ୍ୟକ୍ତିଙ୍କ ନିକଟରୁ, ଏହାଠାରୁ, ଏହା ଅପେକ୍ଷା ।
ୟାଠାକୁ—ଗ୍ରା.ସର୍ବ.ଏହି ବ୍ୟକ୍ତିର ନିକଟକୁ ।
ୟାଠି—ଗ୍ରା. ସର୍ବ. ଏଠାରେ ।
ୟାଡ଼େ—ଗ୍ରା. ଅବ୍ୟ. ଏହି ଦିଗର, ଏହି ଅଞ୍ଚଳର, ଏଆଡ଼େ, ଇଆଡ଼େ ।
ୟାତା—ଗ୍ରା.ସର୍ବ. ( ଫ଼.ଏତେ+ତଦ୍) ଏହା ଓ ତାହା ।
ୟାଦଦାସ୍ତ—ଯା.ବି. ଇଆଦଦାସ୍ତ ଦେଖ
ୟାପରେ-ଗ୍ରା.ବି.ଏହି ବସ୍ତୁ ବା ବ୍ୟକ୍ତିପର ।
ୟାର—ଗ୍ରା.ସର୍ବ.ଏହି ବ୍ୟକ୍ତି ବା ବସ୍ତୁର ।
ୟୁନାନ୍—ଯା.ବି. ଗ୍ରୀସ ଦେଶର ପଶ୍ଚିମ ଉପକୂଳ ନିକଟସ୍ଥ ଦ୍ୱୀପପୁଞ୍ଜ, ଅସିଆର ପଶ୍ଚିମକୁ ଲାଗିଥିବା ପ୍ରାଚୀନ କାଳର ଯୁରୋପୀୟ ଅଞ୍ଚଳ,ପ୍ରାଚୀନ ଗ୍ରୀସଦେଶ ।
ୟୁନାନୀ—ଯା.ବିଂ.ଗ୍ରୀସ ଦେଶୀୟ,ୟୁନାନ ଦ୍ୱୀପସମ୍ବନ୍ଧୀୟ, ୟୁନାନ୍‌ଦେଶୀୟ ।
ୟେ—ଗ୍ରା.ସର୍ବ. ଏ, ଏହି, ଇତ୍ୟାଦି ।

ଲାସ୍ୟ ନୃତ୍ୟର ପ୍ରକାରବିଶେଷ, ଯୁବ-ତୀର ଭାବ ବା ଅବସ୍ଥା ।

ଯୌବତେୟ—ବି. ( ଯୁବତୀ+ଏୟ ) ଯୁବତୀର ପୁତ୍ର, (ସ୍ତ୍ରୀ) ଯୌବତେୟୀ ।

ଯୌବନ-କ୍ଲୀ.ବି.(ଯୁବନ୍+ଅ)ଯୁବାବସ୍ଥା, ତାରୁଣ୍ୟ,୧୬ବର୍ଷଠାରୁ ୩୦ ବର୍ଷ ପର୍ଯ୍ୟନ୍ତ ଜୀବନ କାଳ, ଯୁବଜନୋଚିତ କର୍ମ, ଯୁବକ ବା ଯୁବତୀଙ୍କ ଦଳ, ( ଗ୍ରା.ବି ) ଯୁବତୀ ସ୍ତ୍ରୀର କଠିନ ବର୍ତ୍ତୁଳ ସ୍ତନ ।

ଯୌବନକ—କ୍ଲୀ. ବି. (ଯୌବନ+କ) ଯୌବନ ।

ଯୌବନକଣ୍ଟକ—ବି. (କ.ଧା) ଯୁବଗଣ୍ଡ, ଯୌବନ କାଳରେ ମୁଖମଣ୍ଡଳରେ ହେବା ବ୍ରଣ ।

ଯୌବନଗର୍ବ—ବି.(କ.ଧା) ଯୁବା ହୋଇ-ଥିବା ଯୋଗୁଁ ଗର୍ବ ।

ଯୌବନଚାଞ୍ଚଲ୍ୟ—ବି. (୬ତତ୍ପୁ)ଯୌବନ କାଳରେ ହେବା ସ୍ୱାଭାବିକ ଚଞ୍ଚଳତା ।

ଯୌବନଚିହ୍ନ—ବି. ଯୌବନ ଲକ୍ଷଣ ଦେଖ ।

ଯୌବନତାପ—ବି. (୬ତତ୍ପୁ) ଯୌବନ-ଚାଞ୍ଚଲ୍ୟ ଦେଖ ।

ଯୌବନଦଶା—ବି.ଯୌବନାବସ୍ଥା ଦେଖ

ଯୌବନପିଡ଼କା—ବି. ଯୌବନକଣ୍ଟକ ଦେଖ । [ ସମସ୍ତ ।

ଯୌବନପ୍ରାନ୍ତ—ବି. ଯୌବନର ଶେଷ

ଯୌବନଭର—ବି. (କ.ଧା)ଯୌବନର ପୂର୍ଣ୍ଣତାଜନିତ ରୂପାଦି ଗର୍ବର ଗୁରୁତ୍ୱ

ଯୌବନମତ୍ତ—ପୁଂ.ବି.ଯୌବନ ଗର୍ବିତ

ଯୌବନମଞ୍ଜୁ—ସ୍ତ୍ରୀ.ବି. ଛନ୍ଦୋବିଶେଷ ।

ଯୌବନଲକ୍ଷଣ—ବି. (୬ତତ୍ପୁ) ଲାବଣ୍ୟ, ତାରୁଣ୍ୟଚିହ୍ନ, ଯୁବତୀସ୍ତନ, ଯୌବନ-କାଳୀନ ଦୈହିକ ପରିବର୍ତ୍ତନାଦି ।

ଯୌବନବାନ୍—ପୁଂ.ବିଂ.ଯୌବନବିଶିଷ୍ଟ, ଯୁବା, ଯୁବକ, (ସ୍ତ୍ରୀ) ଯୌବନବତୀ ।

ଯୌବନଶ୍ରୀ—ବି.(୬ତତ୍ପୁ) ତରୁଣ ବୟ-ସରେ ପୁରୁଷ ଓ ସ୍ତ୍ରୀଙ୍କଠାରେ ଜନ୍ମିବା ସ୍ୱାଭାବିକ ସୌନ୍ଦର୍ଯ୍ୟ ।

ଯୌବନସଙ୍ଗୀ—ପୁଂ. ବି. ଯୁବାକାଳର ସାଙ୍ଗ, (ସ୍ତ୍ରୀ) ଯୌବନସଙ୍ଗିନୀ ।

ଯୌବନସଞ୍ଚାର-ବି.(୬ତତ୍ପୁ)ଯୌବନୋ-ଦୟ ଦେଖ ।

ଯୌବନସୁଲଭ—ବିଂ. (୭ତତ୍ପୁ) ଯୁବା-ବସ୍ଥାରେ ସ୍ୱାଭାବିକ ।

ଯୌବନସ୍ଥ—ବିଂ. ଯୌବନଯୁକ୍ତ, ଯୁବା-ବସ୍ଥା ପ୍ରାପ୍ତ, ବିବାହ କରିବା ଉପଯୁକ୍ତ. (ସ୍ତ୍ରୀ) ଯୌବନସ୍ଥା ।

ଯୌବନାବସ୍ଥା—ବି.ଯୁବାକାଳ,ଯୌବନ ଦଶା, ଯୁବାବସ୍ଥା ।

ଯୌବନାଶ୍ୱ—ବି. (ଯୁବନାଶ୍ୱ+ଅ) ଯୁବ-ନାଶ୍ୱ ରଜାଙ୍କ ପୁତ୍ର, ମାନ୍ଧାତା ।

ଯୌବନାଶ୍ୱକ-ପୁଂ.ବି. ଯୁବନାଶ୍ୱ ଦେଖ

ଯୌବନାଶ୍ୱି—ପୁଂ. ବି. ଯୁବନାଶ୍ୱ ବଂଶ ସମ୍ଭୂତ ମାନ୍ଧାତା ରଜା ।

ଯୌବନିକ—ବିଂ. (ଯୌବନ+ଇକ) ଯୌବନସମ୍ବନ୍ଧୀୟ ।

ଯୌବନୋଦୟ—ବି. (୬ତତ୍ପୁ)ଯୌବ-ନର ଆବିର୍ଭାବ, ନବଯୁବାବସ୍ଥା ।

ଯୌବନୋଦ୍ଭବ-ପୁଂ.ବିଂ. (ବ.ବ୍ରୀ)ଯୁବା-ବସ୍ଥାରୁ ଉତ୍ପନ୍ନ ।

ଯୌବନୋଦ୍ଭେଦ—ବି. (୬ତତ୍ପୁ)ଯୁବକ ସୁଲଭ ଔତ୍ସୁକ୍ୟ, (କ.ଧା)ସକାମପ୍ରଣୟ. (ବ ବ୍ରୀ) ମଦନ, କାମ ।

ଯୌବରାଜିକ—ପୁଂ. ବିଂ. (ଯୁବରାଜ+ଇକ) ଯୁବରାଜସମ୍ବନ୍ଧୀୟ ।

ଯୌବରାଜ୍ୟ—ବି. (ଯୁବରାଜ+ଷ୍ଣ.ଯ) ପିତାଙ୍କର ଉପସ୍ଥିତିରେ ପୁତ୍ରଙ୍କର ଯୁବରାଜ ପଦ ଓ ଅଧିକାର ।

ଯୌବରାଜ୍ୟାଭିଷିକ୍ତ—ପୁଂ.ବିଂ.(୭ତତ୍ପୁ) ଯୁବରାଜରୂପେ ପିତାଙ୍କଦ୍ୱାରା ପ୍ରତିଷ୍ଠିତ

ଯୌବରାଜ୍ୟାଭିଷେକ-ବି.ଯୁବରାଜପଦରେ ପ୍ରତିଷ୍ଠିତ ହେବା ଉପଲକ୍ଷରେ କରଣୀୟ ଉତ୍ସବ ।

ଯୌବରାଜ୍ୟାଭିଷେଚନ—ବି. ପିତାଙ୍କ-ଦ୍ୱାରା ପୁତ୍ରଙ୍କର ଯୁବରାଜ ପଦରେ ପ୍ରତିଷ୍ଠାକରଣ ।

ଯୌଷିଣ୍ୟ—ବି.(ଯୋଷ+ଇଣ୍ୟ)ନାରୀତ୍ୱ, ସ୍ତ୍ରୀଜାତି, ରମଣୀତ୍ୱ ।

ଯୌଷ୍ମାକ—ବିଂ. (ଯୁଷ୍ମଦ୍+ଅ) ତୁମ୍ଭ ସମ୍ବନ୍ଧୀୟ,ଭବଦୀୟ, ତ୍ୱଦୀୟ, ତୁମ୍ଭର ।

ଯୌଷ୍ମାକୀଣ(ନ)—ବିଂ. (ଯୁଷ୍ମଦ୍+ଈନ) ତୁମ୍ଭ ସମ୍ବନ୍ଧୀୟ,ତୁମ୍ଭର ।

ୟ—'ଯ' ଅକ୍ଷରର ଏକ ଅନ୍ୟରୂପ ଅଟେ ଓ ଏହା 'ଯ' ର ଉଚ୍ଚାରଣ ଭେଦମାତ୍ର ।

ୟା—ଗ୍ରା.ସର୍ବ. (ସଂ-ଏତଦ୍) ଏହା, ଏହି (ବସ୍ତୁ) ।

ୟାକୁ—ଗ୍ରା.ସର୍ବ. ଏହାକୁ, ଏହି ବସ୍ତୁ ବା ବ୍ୟକ୍ତି ବା ଜନ୍ତୁକୁ ।

ୟାପେଇଁ(ପାଇଁ)—ଗ୍ରା.ଅବ୍ୟ.ଏହି ବ୍ୟକ୍ତି ବା ବସ୍ତୁ ବା ବିଷୟ ନିମନ୍ତେ ।

ୟାଙ୍କ—ଗ୍ରା. ସର୍ବ. ଏହି ବ୍ୟକ୍ତିଙ୍କର ବା ଏହି ବ୍ୟକ୍ତିମାନଙ୍କର ।

ୟାଙ୍କମାନଙ୍କ—ଗ୍ରା.ସର୍ବ. ଏମାନଙ୍କ, ଏହି ବ୍ୟକ୍ତିମାନଙ୍କର ।

ୟାଙ୍କୁ—ଗ୍ରା. ସର୍ବ. ଏହି ବ୍ୟକ୍ତିଙ୍କୁ ବା ବ୍ୟକ୍ତିମାନଙ୍କୁ ବା ଜୀବମାନଙ୍କୁ ।

ୟାଙ୍କେ—ପ୍ରା (ଗଞ୍ଜାମ)ସର୍ବ. ଏ ବ୍ୟକ୍ତି, ଏ ବ୍ୟକ୍ତିମାନେ ।

ୟାଠୁଁ—ଗ୍ରା.ସର୍ବ. ଏହି ବ୍ୟକ୍ତିଙ୍କ ନିକ-ଟରୁ, ଏହାଠାରୁ, ଏହା ଅପେକ୍ଷା ।

ୟାଠାକୁ—ଗ୍ରା.ସର୍ବ.ଏହି ବ୍ୟକ୍ତିର ନିକ-ଟକୁ ।

ୟାଠି—ଗ୍ରା. ସର୍ବ. ଏଠାରେ ।

ୟାଡ଼େ—ଗ୍ରା. ଅବ୍ୟ. ଏହି ଦିଗର, ଏହି ଅଞ୍ଚଳର, ଏଆଡ଼େ, ଇଆଡ଼େ ।

ୟାତା—ଗ୍ରା.ସର୍ବ. ( ସଂ.ଏତେ+ତଦ୍ ) ଏହା ଓ ତାହା ।

ୟାଦଦାସ୍ତ—ଯ.ବି. ଇଆଦଦାସ୍ତ ଦେଖ

ୟାପରେ-ଗ୍ରା.ବି.ଏହି ବସ୍ତୁ ବା ବ୍ୟକ୍ତିପର ।

ୟାର—ଗ୍ରା.ସର୍ବ.ଏହି ବ୍ୟକ୍ତି ବା ବସ୍ତୁର ।

ୟୁନାନ୍—ଯା.ବି. ଗ୍ରୀସ ଦେଶର ପଶ୍ଚିମ ଉପକୂଳ ନିକଟସ୍ଥ ଦ୍ୱୀପପୁଞ୍ଜ, ଆସିଆର ପଶ୍ଚିମକୁ ଲାଗିଥିବା ପ୍ରାଚୀନ କାଳର ୟୁରୋପୀୟ ଅଞ୍ଚଳ,ପ୍ରାଚୀନ ଗ୍ରୀସଦେଶ ।

ୟୁନାନୀ—ଯା.ବିଂ.ଗ୍ରୀସ ଦେଶୀୟ,ୟୁନାନ ଦ୍ୱୀପସମ୍ବନ୍ଧୀୟ, ୟୁନାନ୍‌ଦେଶୀୟ ।

ୟେ—ଗ୍ରା.ସର୍ବ. ଏ, ଏହି, ଇତ୍ୟାଦି ।

# ର

ର—ରକାର, ଦନ୍ତ୍ୟବର୍ଗର ବ୍ୟଞ୍ଜନ-ବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ମୂର୍ଦ୍ଧା, ଅନ୍ତସ୍ଥବର୍ଣ୍ଣ ।

ର—ପୁଂ.ବି (ରା+କ.ଅ ବା ରମ୍+କ.ଅ) ପାବକ, ଅଗ୍ନି, ପ୍ରେମ, ପ୍ରଣୟ, ରଙ୍ଗ, ବର୍ଣ୍ଣ, ସ୍ୱର୍ଣ୍ଣ, କାମାଗ୍ନି, ବେଗ, ବାହନ, ଉତ୍ତାପ, (ବି°) ତୀକ୍ଷ୍ଣ, ପ୍ରଖର, (ଗ୍ରା.ପ୍ରତ୍ୟୟ)ଷଷ୍ଠୀ ବିଭକ୍ତିରେ ବିଶେଷ୍ୟ ପଦର ଶେଷରେ ଲାଗିବା ପ୍ରତ୍ୟୟ, ୧ମା ୨ୟା ୩ୟା ୫ମୀ ଓ ୭ମୀ ବିଭକ୍ତି-ସୂଚକ ଚିହ୍ନବିଶେଷ, ( ଯଥା—ସେ ରେଣୁକରିବାର ପ୍ରମାଣହେଲା ଇତ୍ୟାଦି)

ରଅଠଅ—ଗ୍ରା. ବି° ଓ କ୍ରି. ବି°. ଅଧା-ପାଠୁଆ, ଲେଖା ହୋଇଥିବା ଅକ୍ଷର-ମାନଙ୍କୁ ଅତି କଷ୍ଟରେ ପଢ଼ିବା ପ୍ରକାରେ, ଯେ କୌଣସି ପ୍ରକାରେ, ସମ୍ପୂର୍ଣ୍ଣ ପଢ଼ି-ଥିବା (ବ୍ୟକ୍ତି) ।

ରଅଣୀ—ଗ୍ରା.ପ୍ରାଚୀନ(ପଦ୍ୟ)ବି. ରଜନୀ, ରାତି, ରହୁଣୀ ଦେଖ,ରୟୁଣୀ ଦେଖ ।

ରଇ—ଗ୍ରା ବି. (ସଂ-ରବି)ଚିତାଗ୍ନି,ଶବ-ପାହାଗ୍ନି,ଜୁଇଗଡ଼, ପାଣି ଗଡ଼ିଯିବାର ପଧୂଣି ବା ନାଳ ।

ରଇଁସା—ଗ୍ରା. ବି. ଝୁଣ୍ଟଙ୍କ ଝୁଇଁ ।

ରଇକାଠ—ଗ୍ରା.ବି. ଚିତାଗ୍ନି ଜଳାଇବା ପାଇଁ ବ୍ୟବହୃତ କାଠ, ପୁଷ୍କରିଣୀ ପ୍ରତିଷ୍ଠା ଉପଲକ୍ଷରେ ବ୍ୟବହୃତ ଯୂପ ।

ରଇଜଳିବା—ଗ୍ରା.ବି.ଚିତାଗ୍ନିର ପ୍ରଜ୍ୱଳନ, (ଲ.ଅର୍ଥ) କୌଣସି ବ୍ୟକ୍ତିର ମନରେ (ଚିତାଗ୍ନି ପରି)କ୍ରୋଧାଗ୍ନି ଜଳିବା ।

ରଇ(ଏ)ତ—ଯା. ବି. ପ୍ରଜା, ଯେ ଜମି-ଦାରର ଜମି ଚଷେ ।

ରଇତଉଆର(ରି)—ଯା.ବି°.ରଇତସମ୍ବ-ନ୍ଧୀୟ, ରଇତ ଦ୍ୱାରା ଅଧିକୃତ ।

ରଇତାନ(ନି)—ଯା. ବି. ରଇତମାନେ, ରଇତମଣ୍ଡଳୀ, (ବି°) ରଇତ ଦ୍ୱାରା ଅଧିକୃତ(ଜମି),ରଇତି,ରଇତସମ୍ବନ୍ଧୀୟ

ରଇତି—ଗ୍ରା.ବି°. ରଇତସମ୍ବନ୍ଧୀୟ, (ବି) ରଇତ ଦଖଲ କରୁଥିବା ବୃତ୍ତି ।

ରଇବାର—ଗ୍ରା. ବି. ରବିବାର ।

ରଇଶୀତଳା—ଗ୍ରା. ବି. ଶବ ଦାହର ତୃତୀୟଦିନ ( ମତାନ୍ତରରେ ୪ର୍ଥ ଦିନ ) ଚିତାଗ୍ନିର ନିର୍ବାପନ କର୍ମ ।

ରଉ—ଗ୍ରା.ବି(ସଂ-ରଥ)ରଥବର ଦେଖ ।

ରଉଆଜ(ଦ୍)—ଯା.ବି. ରିବାଯ୍ୟା,ଅବସ୍ଥା, ସାମୟିକ ଅବସ୍ଥା, ହାଲ ସମୟ,କାଳ ।

ରଉ(ଓ)ଆନା—ଯା.ବି. ରମାନା, ଯାତ୍ରା, ଦ୍ରବ୍ୟାଦିର ସ୍ଥାନାନ୍ତର ପ୍ରେରଣ ।

ରଉ(ଓ)ଆବ୍—ଯା. ବି.ଗାମ୍ଭୀର୍ଯ୍ୟ, ଭୟ, ପ୍ରଭାବ ।

ରଂ—ବି. ବର୍ଣ୍ଣ, ରଙ୍ଗ ।

ରଂହଃ—କ୍ଲୀ.ବି.(ରମ୍+ଅସ୍,ହ ଆଗମ) ଶୀଘ୍ରତା, ବେଗ,(ପୁଂ)ମହାଦେବ,ବିଷ୍ଣୁ ।

ରଂହଣ—ବି.(ରଂହ+ଭା.ଅନ)ଶୀଘ୍ରଗତି

ରଂହତି—ବି. ( ରଂହ+ଭା.ତି ) ବେଗ, ଗତିର ଶୀଘ୍ରତା, ରଥର ବେଗ ।

ରଃ—ଗ୍ରା.ଅ. ରୁ ନିବୃତ୍ତ ହୋ, ବିରତ ହୋ, ଚୁପ୍ ହୋ, ରହ ।

ରଁଚେ—ଗ୍ରା.ବି°. ଟିକିଏ, ଅତି ସାମାନ୍ୟ, ଟୋପାଏ, ଖୁବ୍ ସରୁ, ବାରିକ୍ ।

ରକ୍—ଗ୍ରା.ଅବ୍ୟ. ଶରୀରର ହାଡ଼ର ଗଣ୍ଠି ଖସି ଯିବାରୁ ସ୍ୱାନୁଭୂତ ରକ୍‌ରକ୍ ଶବ୍ଦ, ରକା ପଶିବା ସ୍ଥାନରେ ବେଦନା ଅନୁ-ଭୂତ ।

ରକ୍ଠକ୍—ଗ୍ରା.ଅ.ରେକ୍‌ଠୋକ୍ ଦେଖ ।

ରକ୍‌ରକ୍—ଗ୍ରା.ଅ.ରକ୍ ଦେଖ, (ବି)ନଷ୍ଟ ଧନାଦିର ପୁନଃପ୍ରାପ୍ତି ଇଚ୍ଛା, କୌଣସି ପଦାର୍ଥ ଦେବାକୁ ସମ୍ପୂର୍ଣ୍ଣ ଅନିଚ୍ଛା ।

ରକ—ବି.(ରକ୍+ଅ)ଆତସମଣି, ସୂର୍ଯ୍ୟ-କାନ୍ତମଣି, ସ୍ଫଟିକ, ଘନବୃଷ୍ଟି ।

ରକଟା—ଗ୍ରା. ବି. ମଜା ହୋଇ ନ ଥିବା ଅଇଁଠା ବାସନରେ ଲାଗି ରହିଥିବା ଭୁକ୍ତ ଅନ୍ନାଦିର ଶୁଷ୍କ ଓ ଟାଣୁଆ କଣା ।

ରକଟିବା—ଗ୍ରା.କ୍ରି.କାକୁଡ଼ି ଓ ହାଡ଼ରେ ଲାଗିଥିବା ମାଂସଆଦିକୁ ଦାନ୍ତରେ ଛେଲେଇକାମୁଡ଼ି ଖାଇବା ।

ରକତ—ଗ୍ରା. ବି. ରକ୍ତ ଦେଖ ।

ରକବା—ଯା. ବି. ଭୂ ସଂକ୍ରାନ୍ତ କାଗଜ, ଜମିର କ୍ଷେତ୍ରଫଳ ।

ରକମ୍—ଯା.ବି.ପ୍ରକାର, ଶ୍ରେଣୀ, ଧରଣ, ରୀତି, କିସମତ୍, ହିସା, ଅଂଶ, ସାମଗ୍ରୀ, ଚିଜ ।

ରକମ୍‌ରକମ୍—ଯା. ବି°.ନାନାପ୍ରକାରର, (ବି) ନାନାପ୍ରକାର ।

ରକମା—ଯା. ବି°. ବିଭିନ୍ନ ପ୍ରକାରର, (ବି) ନାନାପ୍ରକାର ।

ରକା(କ୍ଳା)—ଗ୍ରା.ବି. କଙ୍କାଳ ବେକ ଦୁଇ-ଠିରେ ଅଟକି ଯାଇ ବେଦନା ଦେବା ଶରୀରସ୍ଥ କୁପିତ ବାୟୁ, ବାତ ରୋଗ-ବିଶେଷ । [ ଅକ୍ଷର ।

ରକାର—ପୁଂ. ବି. ରବର୍ଣ୍ଣ, କେବଳ ର

ରକ୍ତ—ବି. (ରନ୍‌ଜ+ଭା.ତ) କୁଙ୍କୁମ, ତାମ୍ର,ପାଣିଅଁଳା, ପଦ୍ମକାଠ, ସିନ୍ଦୁର, ହିଙ୍ଗୁଳ,ଶରୀରସ୍ଥ ଧାତୁବିଶେଷ,ଶୋଣିତ, ରୁଧିର, ଲୋହିତବର୍ଣ୍ଣ, କୁସୁମଫୁଲ, ହିଞ୍ଜଳଗଛ, ରକ୍ତଚନ୍ଦନ, ବକମକାଠ, ବଧୂଲିଫୁଲ, ରଡ଼ାମାଛ, ଏକପ୍ରକାର ବିଷାକ୍ତ ବେଙ୍ଗ, ଏକପ୍ରକାର ବସ୍ତ୍ର,ଶିବ, (ବି°. ମିଂ.ତ) ରଞ୍ଜିତ, (କ.ତ) ରତ, ଆସକ୍ତ, କ୍ରୀଡ଼ାରତ, ଶ୍ରୁତିମଧୁର, ରୋହିତ, ନାଲିଆ, ଶୋଧିତ, (ଗ୍ରା.ବି) ଆର୍ତ୍ତବ, ପ୍ରତି ମାସରେ ସ୍ତ୍ରୀ ଗର୍ଭରୁ ନିଃସୃତ ରଜଃ ।

ରକ୍ତକ—ବି.(ରକ୍ତ+କ) ଅମ୍ଳାନକବୃକ୍ଷ, ବଧୂଲିଗଛ ଓ ଫୁଲ, ରକ୍ତବସ୍ତ୍ର, ଅନୁ-ରାଗୀ ବ୍ୟକ୍ତି, କ୍ରୀଡ଼ାରତ ବ୍ୟକ୍ତି,କୁସୁମ-ଫୁଲ,ନାଲିସଜନା,ନାଲିଗବ, ରକ୍ତୋ-ତ୍ପଳ, ବକମଗଛ, କୁଙ୍କୁମ, କାମୁକବ୍ୟକ୍ତି, ରକ୍ତ,ଶୋଣିତ,(ବି°) ଅନୁରାଗୀ, ଅନୁ-ରକ୍ତ, ବିନୋଦୀ, ରକ୍ତବର୍ଣ୍ଣବିଶିଷ୍ଟ,ରକ୍ତ, ରଞ୍ଜିତ, ମନୋହର ।

ରକ୍ତକଇଁ—ଗ୍ରା.ବି.ରଙ୍ଗକଇଁ,କୋକନଦ

ରକ୍ତକଙ୍ଗୁ—ପୁଂ.ବି. ଧୂନକ, ଯେଉଁ ଶାଳ

ବୃକ୍ଷରୁ ନିର୍ଯ୍ୟାସ, ବାହାରେ ।
ରକ୍ତକଣ୍ଠା—ସ୍ତ୍ରୀ. ବ. (ବ.ଗ୍ରା) ବଙ୍କଙ୍କଡ ଗୁଳ୍ମ, ଭୂଇଁ ବଗଛ ।
ରକ୍ତକଣ୍ଠ—ପୁଂ,ବିଂ. (ବ.ଗ୍ରା)ମିଷ୍ଟ ସ୍ୱର-ବିଶିଷ୍ଟ, ମନୋହର କଣ୍ଠ,(ବ)କୋକିଳ, ବାଇଗଣ, ହରଡ଼ଚଢ଼େଇ ।
ରକ୍ତକଦମ୍ବ —ପୁଂ. ବ. ନାଲିଫୁଲବିଶିଷ୍ଟ କଦମ୍ବଗଛ ।
ରକ୍ତକଦଳୀ—ସ୍ତ୍ରୀ. ବ. କଦଳୀବିଶେଷ, ଚମ୍ପାକଦଳୀ ।
ରକ୍ତକନା—ଗ୍ରା. ବ. ରକ୍ତାକ୍ତ ବସ୍ତ୍ରଖଣ୍ଡ, ଋତୁ ସମୟରେ ବା ପ୍ରସବ କାଳରେ ସ୍ତ୍ରୀମାନଙ୍କର ପରିଧାନ ଯୋଗ୍ୟ ରକ୍ତାକ୍ତ ବସ୍ତ୍ରଖଣ୍ଡ, ତଳିକନା ।
ରକ୍ତକନ୍ଦ—ପୁଂ. ବ. (ବ.ଗ୍ରା) ବିଦ୍ରୁମ, ପିଆଜ, ନାଲିଆଳୁ, ରତ୍ନବିଶେଷ ।
ରକ୍ତକନ୍ଦକ—ବ.(ବ.ଗ୍ରା)ରକ୍ତକନ୍ଦ ଦେଖ ।
ରକ୍ତକନ୍ଦଳ—ପୁଂ.ବ.ପ୍ରବାଳ, ପୋହଳା, ରକ୍ତପ୍ରବାଳ ଦ୍ରୁମ । [ କନ୍ଦ ।
ରକ୍ତକମଳ—କ୍ଲୀ.ବ.ରକ୍ତୋତ୍ପଳ,କୋକ-
ରକ୍ତକମ୍ବଳ-କ୍ଲୀ.ବ.ରକ୍ତୋତ୍ପଳ,ନେଳିକଇଁ
ରକ୍ତକରବୀର—ପୁଂ. ବ. ଲୋହିତବର୍ଣ୍ଣ କରବୀର ପୁଷ୍ପବୃକ୍ଷ, ଲାଲ କନିଅର ।
ରକ୍ତକହ୍ଲାର—ବ. ନାଲିକଇଁ ।
ରକ୍ତକା—ସ୍ତ୍ରୀ.ବ. ପାଣି ଆମଳକ ।
ରକ୍ତକାଞ୍ଚନ—ପୁଂ. ବ. ନାଲିଫୁଲବିଶିଷ୍ଟ କାଞ୍ଚନଗଛ ।
ରକ୍ତକାଣ୍ଡ(ଣ୍ଡା,ଣ୍ଡୀ)-ବ.ନାଲି ପୁରୁଣୀଶାଗ
ରକ୍ତକାର୍ପାସ—ବ. ନାଲି କପା ।
ରକ୍ତକାର୍ପାସିକା—ବ. ନାଲି କପା ।
ରକ୍ତକାଶ—ବ. (କ.ଧା) ଯେଉଁ କାଶ ରୋଗରେ କଫସଙ୍ଗେ ରକ୍ତ ପଡ଼େ ।
ରକ୍ତକାଷ୍ଠ-କ୍ଲୀ.ବ.ବକମଗଛ, ରକ୍ତଚନ୍ଦନ
ରକ୍ତକୁମୁଦ—କ୍ଲୀ.ବ. ରକ୍ତକୈରବ,ଲାଲ-କଇଁ । [ ରେଣ୍ଟା ।
ରକ୍ତକୁରଣ୍ଟ(ଣ୍ଡ)କ—ବ.ନାଲି ଦାସକେ-
ରକ୍ତକୁଷ୍ଠ—ବ. ବିସର୍ପ ରୋଗବିଶେଷ ।
ରକ୍ତକୁସୁମ—ପୁଂ.ବ.(ବ.ଗ୍ରା)ଧନ୍ୱନବୃକ୍ଷ, ଡାମଣାଗଛ, ରକ୍ତକାଞ୍ଚନ, ପାରିଭଦ୍ର, ପାଳଧୁଆଗଛ, ରକ୍ତ ଅରଖଗଛ ।
ରକ୍ତକୁସୁମା—ବ. (ବ.ଗ୍ରା) ଡାଳିମ୍ବଗଛ ।
ରକ୍ତକୃମିଜା—ସ୍ତ୍ରୀ.ବ. ଲାକ୍ଷା, ଲାଖ ।
ରକ୍ତକେଶର—ପୁଂ. ବ. ପାଳଧୁଆଗଛ, ନାଗେଶ୍ୱରଗଛ ।
ରକ୍ତକେଶୀ--ବିଂ.(ରକ୍ତ+କେଶ+ଇନ୍) ଯାହାର କେଶ ଲୋହିତବର୍ଣ୍ଣ ଅଟେ, (ସ୍ତ୍ରୀ) ରକ୍ତକେଶିନୀ । [ କଇଁ ।
ରକ୍ତକୈରବ—କ୍ଲୀ.ବ. ରକ୍ତକୁମୁଦ,ଲାଲ
ରକ୍ତକୋକନଦ—କ୍ଲୀ. ବ. ରକ୍ତପଦ୍ମ, ରକ୍ତୋତ୍ପଳ ।
ରକ୍ତକ୍ଷୟ—ବ. (ଷତତ୍ପୁ) କ୍ଷତଆଦିରୁ ରକ୍ତ ଝରିବା, ରକ୍ତସ୍ରାବ ।
ରକ୍ତକ୍ଷରଣ-ବ.(ଷତତ୍ପୁ)ରକ୍ତକ୍ଷୟ ଦେଖ ।
ରକ୍ତଖଦିର—ବ.ରକ୍ତବର୍ଣ୍ଣ ନିର୍ଯ୍ୟାସସ୍ରାବୀ ଖଦିରବୃକ୍ଷ ।
ରକ୍ତଖାଇ—ଗ୍ରା.ବ.ଔଷଧ ଗୁଳ୍ମବିଶେଷ ।
ରକ୍ତଖାଡ଼(ଣ୍ଡ)ବ—ଏକପ୍ରକାରଖଜୁରିଗଛ
ରକ୍ତଖିଆ—ଗ୍ରା.ପୁଂ.ବିଂ. ଶୋଣିତଲିପ୍ସୁ, ଜୀବରରକ୍ତପାନକାରୀ, (ଗାଳି)ସ୍ତ୍ରୀରକ୍ତ-ପାନକାରୀ ।
ରକ୍ତଗଙ୍ଗା—ବ.(ଷତତ୍ପୁ)ରକ୍ତର ପ୍ରବାହ, ଶୋଣିତ ସ୍ରୋତ ।
ରକ୍ତଗଡ଼ିବା-ଗ୍ରା.ବ.ଗୋଡ଼ଆଦି ଗୋଦର ହେବା, ବାତଜର ହେତୁ ହାତ, ଗୋଡ଼, କୋଷଆଦି ବେଦନାଯୁକ୍ତ ହୋଇ ଫୁଲିଯିବା ।
ରକ୍ତଗତଜ୍ୱର—ପୁଂ.ବ. ରକ୍ତଧାତୁଗତ ଜ୍ୱର ରୋଗବିଶେଷ ।
ରକ୍ତଗନ୍ଧକ—କ୍ଲୀ.ବ.ଆରବ ଓ ଆଫ୍ରିକା ଦେଶୀଗତ ଗୁଗ୍ଗୁଳ ।
ରକ୍ତଗନ୍ଧା—ସ୍ତ୍ରୀ.ବ. ଅଶ୍ୱଗନ୍ଧା ।
ରକ୍ତଗରମହେବା—(ଲ.ଅର୍ଥ) ହଠାତ୍ କ୍ରୋଧରେ ଅସ୍ଥିର ହେବା, ବାତୁଳ ହୋଇଯିବା । [ ଗଛ ।
ରକ୍ତଗର୍ଭା-ସ୍ତ୍ରୀ.ବ.ନଖରଞ୍ଜନୀବୃକ୍ଷ,ମେଞ୍ଚାଡ଼ି-
ରକ୍ତଗୁଞ୍ଜା—ବ. (କ.ଧା) ନାଲିକାଇଁଚ ।
ରକ୍ତଗୁଳ୍ମ—ପୁଂ.ବ.ସ୍ତ୍ରୀରୋଗବିଶେଷ,ମୂଢ଼-ଗର୍ଭରୋଗ, କଇଞ୍ଛିଆ ଦେମାର ।
ରକ୍ତଗୈରିକ—କ୍ଲୀ.ବ.ସ୍ୱର୍ଣ୍ଣଗୈରିକ,ନାଲି ଗେରୁମାଟି ।
ରକ୍ତଗ୍ରନ୍ଥି—ପୁଂ. ବ. ରକ୍ତ ଲକ୍ଷ୍ମୀକଣ୍ଠ, ରୋଗବିଶେଷ
ରକ୍ତଗ୍ରୀବ—ପୁଂ.ବ. (ବ.ଗ୍ରା) କପୋତ, ପାରା, ରାକ୍ଷସ, (ବିଂ)ବ.ଗ୍ରା; ଯାହାର ବେକ ନାଲି ।
ରକ୍ତଘର୍ମନିଃସରଣ—ବ. ରୋଗବିଶେଷ, ଦେହରୁ ରକ୍ତବର୍ଣ୍ଣ ସ୍ୱେଦ ନିର୍ଗମନ ।
ରକ୍ତଘ୍ନ—ପୁଂ.ବ. ରୋହିତକବୃକ୍ଷ,(ବିଂ) ରକ୍ତନାଶକ, (ସ୍ତ୍ରୀ) ରକ୍ତଘ୍ନୀ ।
ରକ୍ତଘ୍ନୀ—ବ. ଗଣ୍ଡିଆଦୂବ ।
ରକ୍ତଚକ୍ଷୁ—ବ. ଆଖି ରକ୍ତବର୍ଣ୍ଣ ହେବା, ରଙ୍ଗଆଖି, (ବିଂ)ବ.ଗ୍ରା; କ୍ରୋଧହେତୁ ଯାହାର ଚକ୍ଷୁ ଲାଲ ହୋଇଅଛି ।
ରକ୍ତଚକ୍ଷୁଦେଖାଇବା—ଗ୍ରା.କ୍ରି. କୌଣସି ବ୍ୟକ୍ତି ଉପରେ ଅତି କ୍ରୁଦ୍ଧହେବା ।
ରକ୍ତଚଞ୍ଚୁ—ବ. (କ.ଧା) ନାଲିଥଣ୍ଟ,(ବିଂ) ବ.ଗ୍ରା; ନାଲିଥଣ୍ଟିଆ ।
ରକ୍ତଚନ୍ଦନ—ବ. ଏକପ୍ରକାର ରକ୍ତବର୍ଣ୍ଣ କାଷ୍ଠ, ବକମ ଗଛ, କାଫ୍ରାନ ।
ରକ୍ତଚୂଳଗ୍ରେବାଇବା—ଗ୍ରା.କ୍ରି.ଅତ୍ୟନ୍ତ କ୍ରୋଧରେ (ବାହାରେ ପ୍ରକାଶ ନ କରି) ମନେ ମନେ ଜର୍ଜରିତ ହେବା ।
ରକ୍ତଚାପ—ବ. ଦେହରେ ରକ୍ତସଞ୍ଚାରର ବେଗ ।
ରକ୍ତଚାପମାନଯନ୍ତ୍ର—ବ. ଯେଉଁଯନ୍ତ୍ର ଦ୍ୱାରା ଦେହାଭ୍ୟନ୍ତରରେ ସଞ୍ଚାରିତ ରକ୍ତର ଚାପର ପରିମାଣ ନିର୍ଣ୍ଣୀତ ହୁଏ ।
ରକ୍ତଚଟା—ଗ୍ରା. ବ. ରକ୍ତଚାଟକ ଦେଖ, ହତଜୀବର ରକ୍ତଦ୍ୱାରା ହତ୍ୟାକାରୀର ଲଲାଟରେ କରାଯିବା ତିଳକ ।
ରକ୍ତଚଟାଦିନବା—ଗ୍ରା. କ୍ରି. ହତବ୍ୟକ୍ତି ବା ଶତ୍ରୁର ରକ୍ତକୁ ଆଣି ଚଟାକାଟିବା ।
ରକ୍ତଚାଟକ—ପୁଂ.ବ. କ୍ଷୁପବିଶେଷ,ରଙ୍ଗ-ଚଟା, ନାଲିବଟା ଗୁଳ୍ମ ।
ରକ୍ତଚଳିକା—ସ୍ତ୍ରୀ. ବ. ମଧୁର ବାସ୍ତୁକ, ନାଲି ବଥୁଆ ଶାଗ ।
ରକ୍ତଚୂର୍ଣ୍ଣ—କ୍ଲୀ. ବ. ସିନ୍ଦୂର, ରକ୍ତବର୍ଣ୍ଣ

ଚୂର୍ଣ୍ଣ, ନାଲିଗୁଣ୍ଡା ।
ରକ୍ତଛଦ—ଗ୍ରା. ବି. ଦେହରେ ରକ୍ତର ମନ୍ଦା ମନ୍ଦା ଦାଗ ।
ରକ୍ତଛର୍ଦ୍ଦି—ସ୍ତ୍ରୀ.ବି.ରକ୍ତ ବମନ,ରକ୍ତବାନ୍ତି ।
ରକ୍ତଜ—ବି.ବିଂ.(ରକ୍ତ+ଜନ୍+କ.ଅ) ରକ୍ତରୁ ଜାତ ।
ରକ୍ତଜକୃମି—ପୁଂ.ବି.ରକ୍ତରୁ ଜାତ କୃମି ।
ରକ୍ତଜନକ—ବିଂ. (ରକ୍ତ+ଜନ+କ. ଅକ) ଶରୀରରେ ରକ୍ତଉତ୍ପାଦନକାରୀ (ଔଷଧାଦି) ।
ରକ୍ତଜନ୍ତୁକ—ପୁଂ.ବି.ଭୂନାଗ,ଜିଆନାଡ଼, କେଞ୍ଚୁଆ, ସୀସକ, ରକ୍ତବର୍ଣ୍ଣ ଜନ୍ତୁ ।
ରକ୍ତଜବା—ବି. ପୁଷ୍ପବୃକ୍ଷବିଶେଷ, ନାଲି ମନ୍ଦାର ଫୁଲ ।
ରକ୍ତଜିହ୍ୱ—ପୁଂ.ବି. (ବ.ବ୍ରୀ) ସିଂହ,(ବିଂ) ରକ୍ତବର୍ଣ୍ଣ ଜିହ୍ୱାଯୁକ୍ତ,(ସ୍ତ୍ରୀ) ରକ୍ତଜିହ୍ୱା ।
ରକ୍ତଜ୍ୱର—ବି. ଏକପ୍ରକାର ଜ୍ୱର ।
ରକ୍ତଜ୍ୱର—ଗ୍ରା. ବି. ରକ୍ତ ଦୂଷିତ ହେବା ଯୋଗୁଁ ଜାତହେବା ଦାରୁଣତାପଯୁକ୍ତ ଜ୍ୱରବିଶେଷ ।
ରକ୍ତଝାଡ଼ା—ଗ୍ରା. ବି. ରକ୍ତାତିସାର ।
ରକ୍ତଝିଣ୍ଟୀ—ସ୍ତ୍ରୀ. ବି. କୁରୁବକ, ନାଲି ଦାସକେରେଣ୍ଡା ଗୁଳ୍ମ ।
ରକ୍ତଟୋପା—ଗ୍ରା. ବି. ରକ୍ତର ବିନ୍ଦୁ ।
ରକ୍ତତର—କ୍ଳୀ. ବି. ସ୍ୱର୍ଣ୍ଣଗୈରିକ ।
ରକ୍ତତା—ସ୍ତ୍ରୀ. ବି. ରକ୍ତତ୍ୱ, ରକ୍ତବର୍ଣ୍ଣତ୍ୱ ।
ରକ୍ତତୁଣ୍ଡ—ବି. ଶୁକପକ୍ଷୀ, ଶୁଆ, (ବିଂ) ଲୋହିତବର୍ଣ୍ଣ ମୁଖଯୁକ୍ତ,(ସ୍ତ୍ରୀ)ରକ୍ତତୁଣ୍ଡା ।
ରକ୍ତତୁଣ୍ଡକ—ବି. ଭୂନାଗ, ଜିଆନାଡ଼, ରକ୍ତତୁଣ୍ଡାର୍ଥ ।
ରକ୍ତତୃଣ—କ୍ଳୀ. ବି. ତୃଣବିଶେଷ, ରକ୍ତ-ତୃଣ, ଗୋମୂର୍ତ୍ତିକା ତୃଣ,ଗୋରୁମୁଆ ।
ରକ୍ତତୃଷ୍ଣା—ବି. ( କ ଧା ) ରକ୍ତପିପାସା ଦେଖ ।
ରକ୍ତତେଜ—ଗ୍ରା. ବି. (ଲ.ଅର୍ଥ) ଶରୀ-ରରେ ବିଶୁଦ୍ଧ ରକ୍ତର ଉପସ୍ଥିତିଜନିତ ସ୍ୱାସ୍ଥ୍ୟ, ଯୌବନଜନିତ ବା ରକ୍ତର ସୁସ୍ଥାବସ୍ଥାଜନିତ ଆଭା ବା ସ୍ଫୂର୍ତ୍ତି ।
ରକ୍ତତେଜଃ—କ୍ଳୀ. ବି. ମାଂସ ।
ରକ୍ତତ୍ରିବୃତ୍—ସ୍ତ୍ରୀ. ବି. ରକ୍ତନିଶୁନ୍ଦ ଲତା, ମସୁର (ଡ଼ାଲି), ଖେସାରି (ଡ଼ାଲି) ।
ରକ୍ତଥୋପିପଡ଼ିବା—ଗ୍ରା. ବି. ସୁସ୍ଥ ଶରୀ-ରରେ ବିଶୁଦ୍ଧ ରକ୍ତର ଆଧିକ୍ୟ ଯୋଗୁଁ ମୁହଁ ଓ ଦେହ ରକ୍ତାଭ ଦେଖାଯିବା ।
ରକ୍ତଦନ୍ତି(ନ୍ତୀ)କା—ସ୍ତ୍ରୀ. ବି. (ରକ୍ତଦନ୍ତୀ +କ+ଆ) ଚଣ୍ଡିକା, ଦୁର୍ଗାଙ୍କ ରୂପ-ବିଶେଷ ।
ରକ୍ତଦଳା—ସ୍ତ୍ରୀ. ବି. ନଳିକା ନାମକ ଗନ୍ଧଦ୍ରବ୍ୟ, ନାଡ଼ି ।
ରକ୍ତଦାନ—ବି. (ଲ.ଅର୍ଥ) ଅନ୍ୟପାଇଁ ନିଜର ପ୍ରାଣ ଉତ୍ସର୍ଗ କରିବା ।
ରକ୍ତଦୁଷ୍ଟ(ଷ୍ଟି)—ବି.ରକ୍ତର ଦୂଷିତ ଅବସ୍ଥା ।
ରକ୍ତଦୂଷଣ—ବି. ବିଂ. ରକ୍ତଦୋଷକାରୀ, ଯଦ୍ଦ୍ୱାରା ରକ୍ତ ବିଷାକ୍ତ ହୁଏ ।
ରକ୍ତଦୃକ୍—ବି. (ରକ୍ତ+ଦୃଶ୍+କ୍ୱିପ୍) କପୋତ,ପାରା, (ବିଂ) ରକ୍ତବର୍ଣ୍ଣ ଚକ୍ଷୁ-ବିଶିଷ୍ଟ ।
ରକ୍ତଦୃଷ୍ଟି—ବି. ଆରକ୍ତନୟନ ।
ରକ୍ତଦ୍ରୁମ—ପୁଂ.ବି. ରକ୍ତବୀଜାସନ ବୃକ୍ଷ, ପିଆଳ ଗଛ ।
ରକ୍ତଧାରା—ସ୍ତ୍ରୀ. ବି. ମାଂସାଭ୍ୟନ୍ତରସ୍ଥ ଦ୍ୱିତୀୟତ୍ୱଚ୍ ।
ରକ୍ତଧାତୁ—ପୁଂ. ବି. (କ.ଧା) ଗୈରିକ, ତାମ୍ର, ରକ୍ତବର୍ଣ୍ଣ ଧାତୁ, ଶରୀରସ୍ଥ ରକ୍ତ-ଧାତୁ, ହରିତାଳ ।
ରକ୍ତଧାର—ବି. ରକ୍ତର ସ୍ରୋତ, ଧାରା-କାରରେ ବହିବା ରକ୍ତ ।
ରକ୍ତନଦୀ—ବି. ବହୁପରିମାଣରେ ରକ୍ତ-ପ୍ରବାହ, ପ୍ରଭୂତ ରକ୍ତସ୍ରାବ ।
ରକ୍ତନୟନ—ବି. (କ.ଧା) ଆରକ୍ତନେତ୍ର, ଲୋହିତଚକ୍ଷୁ, (ବ.ବ୍ରୀ) ଚକୋରପକ୍ଷୀ, (ପୁଂ.ବିଂ-ବ.ବ୍ରୀ) ରକ୍ତଚକ୍ଷୁ ବିଶିଷ୍ଟ,(ସ୍ତ୍ରୀ) ରକ୍ତନୟନା ।
ରକ୍ତନାଳ—ପୁଂ. ବି. ଜୀବଶାକ ।
ରକ୍ତନାସିକ—ପୁଂ. ବି. (ବ.ବ୍ରୀ)ପେଚକ, ପେଚା, (ପୁଂ.ବିଂ)ନାଲି ନାକଯୁକ୍ତ,(ସ୍ତ୍ରୀ) ରକ୍ତନାସିକା ।
ରକ୍ତନିଃସରଣ—କ୍ଳୀ. ବି. (୬ତତ୍ପୁ)ରକ୍ତ-ସ୍ରାବ ।
ରକ୍ତନିଃସାରକ—ବିଂ.ଯେଉଁ ଔଷଧଦ୍ୱାରା ଦେହରୁ ରକ୍ତସ୍ରାବ ହୁଏ ।
ରକ୍ତନିଃସାରଣ—ବି. ଦେହରୁ ରକ୍ତସ୍ରାବ କରାଇବା ।
ରକ୍ତନିର୍ମାଣ—ବି. ଶାରୀରିକ କ୍ରିୟାଦ୍ୱାରା ଖାଦ୍ୟାଦିରୁ ରକ୍ତ ପ୍ରସ୍ତୁତ ହେବା ।
ରକ୍ତନିର୍ଯାସ—ପୁଂ. ବି. ରକ୍ତବୀଜାସନ ବୃକ୍ଷ, ପିଆଳ ଗଛ ।
ରକ୍ତନୀଳ—ବି. ମହାବିଷ ବୃଶ୍ଚିକବିଶେଷ ।
ରକ୍ତନେତ୍ର—ପୁଂ. ବି. ସାରସପକ୍ଷୀ, କପୋତ, (କ୍ଳୀ.ବି) ରକ୍ତଚକ୍ଷୁ,(ପୁଂ.ବିଂ. ବ.ବ୍ରୀ) ରକ୍ତବର୍ଣ୍ଣ ନେତ୍ରଯୁକ୍ତ, ( ସ୍ତ୍ରୀ ) ରକ୍ତନେତ୍ରା ।
ରକ୍ତପ—ପୁଂ. ବି. ( ରକ୍ତ+ପା+ଅ ) ରାକ୍ଷସ, ( ପୁଂ.ବିଂ ) ରକ୍ତପାନକର୍ତ୍ତା, ରକ୍ତପାୟୀ, (ସ୍ତ୍ରୀ) ରକ୍ତପା ।
ରକ୍ତପକ୍ଷ—ପୁଂ. ବି. ( ବ.ବ୍ରୀ ) ଗରୁଡ଼, (କ.ଧା) ନାଲିଆ ଡେଣା, ( ପୁଂ.ବିଂ ) ରକ୍ତପକ୍ଷଯୁକ୍ତ ।
ରକ୍ତପକ୍ଷତି—ବି. (ବ.ବ୍ରୀ) ରୋହିମାଛ ।
ରକ୍ତପଟ—ବି.ବିଂ.ରକ୍ତବସ୍ତ୍ରଧାରୀ, ଶ୍ରମଣ, (ବି) ରକ୍ତବସ୍ତ୍ର ।
ରକ୍ତପଟାଜାଗିର—ଗ୍ରା.ବି.ଯୁଦ୍ଧରେ ରାଜାଙ୍କୁ ସାହାଯ୍ୟ କରିଥିବା ଯୋଦ୍ଧାଙ୍କ ନିହତ ଶତ୍ରୁର ରକ୍ତରେ ଲେଖାସନନ୍ଦ ଦ୍ୱାରା ଦିଆଯିବା ଜାଗିର ।
ରକ୍ତପଡ଼ିବା—ଗ୍ରା. କ୍ରି. ରୋଗଯୋଗୁଁ ଦେହରୁ ରକ୍ତ ବାହାରିବା, ରକ୍ତସ୍ରାବ, ମୁଖବାଟେ ବା ଗୁହ୍ୟବାଟେ ବା ପ୍ରସାବ ସଙ୍ଗେ ରକ୍ତସ୍ରାବ ହେବା ।
ରକ୍ତପତାକା—ବି.ନାଲିଆବର୍ଣ୍ଣର ପତାକା, (ଲ.ଅର୍ଥ) ଯୁଦ୍ଧରେ ବା ହତ୍ୟାରେ ରକ୍ତ କ୍ଷୟହେବାର ଆନ୍ଦୋଳନରେ ବା ଉଦ୍ୟମରେ ନେତୃତ୍ୱ ।
ରକ୍ତପତ୍ର—ବି. (କ.ଧା) ପିଣ୍ଡାଳୁ,ନାଲିଆ ପତ୍ର, (ବ.ବ୍ରୀ) ରକ୍ତକଇଁ,(ବିଂ-ବ.ବ୍ରୀ) ରକ୍ତବର୍ଣ୍ଣ ପତ୍ରବିଶିଷ୍ଟ,ନାଲିପାଟୁଡ଼ାଯୁକ୍ତ ।
ରକ୍ତପତ୍ରା-ସ୍ତ୍ରୀ.ବି.ରକ୍ତପୁନର୍ନବା,ନାକୁଳୀ ।
ରକ୍ତପତ୍ରିକା—ସ୍ତ୍ରୀ. ବି. ନାକୁଳୀ, ରକ୍ତ-

ପୁନର୍ନବା, ଲୋହିତପତ୍ର, ନାଲିକାଗଜରେ ଲେଖାଚିଠି ।
ରକ୍ତପଦୀ—ସ୍ତ୍ରୀ. ବ. କ୍ଷୁଦ୍ର ବୃକ୍ଷବିଶେଷ, ଲଜକୁଳିଲତା ।
ରକ୍ତପଦ୍ମ—କ୍ଲୀ. ବ. ରକ୍ତବର୍ଣ୍ଣ କମଳ, ରକ୍ତୋତ୍ପଳ ।
ରକ୍ତପରୀକ୍ଷା--ବି.(୬ତତ୍ରୁ)ରୋଗର ନିଦାନ ଆଦି ନିରୂପଣାର୍ଥ କୌଣସି ବ୍ୟକ୍ତିର ଦେହର ରକ୍ତର ବୈଜ୍ଞାନିକ ପରୀକ୍ଷା ।
ରକ୍ତପରିଷ୍କାରକ---ବିଂ. ରକ୍ତଦୁଷ୍ଟିକୁ ଆରୋଗ୍ୟ କରିବା (ଔଷଧାଦି) ।
ରକ୍ତପରିସ୍ରା—ଗ୍ରା. ବ. ରକ୍ତମୂତ୍ର ଦେଖ ।
ରକ୍ତପର୍ଣ୍ଣ—ପୁଂ. ବ. ରକ୍ତପୁନର୍ନବା, ନାଲିପୁରୁଣି, (ବିଂ) ରକ୍ତବର୍ଣ୍ଣପତ୍ରବିଶିଷ୍ଟ ।
ରକ୍ତପଲ୍ଲବ——ବ. ( ବ.ଗ୍ରା ) ଅଶୋକ ବୃକ୍ଷ, (କ.ଧା) ଲୋହିତ ପତ୍ର ।
ରକ୍ତପା—ସ୍ତ୍ରୀ. ବ. ( ରକ୍ତ+ପା+ଆ ) ଜଳୌକା, ଜୋକ, ରାକ୍ଷସୀ, ଡାକିନୀ ।
ରକ୍ତପାକୀ—ସ୍ତ୍ରୀ. ବ. ବୃହତୀ, ଅଙ୍କରାଢ଼ି ।
ରକ୍ତପାଣି—ଗ୍ରା. ବ. ରକ୍ତମିଶ୍ରିତ ଜଳ, ସ୍ତ୍ରୀଲୋକମାନଙ୍କ ରଜଃ ।
ରକ୍ତପାଣିହେବା—ଗ୍ରା. କ୍ରି. ( ଲ.ଅର୍ଥ ) ଭୟରେ ବା ଚିନ୍ତାରେ ଆତୁର ବା ଗୁନିଆ ହେବା ।
ରକ୍ତପାତ—ବି. ( ୬ତତ୍ରୁ ) ହତପ୍ରାଣୀର ଦେହରୁ ରକ୍ତ ବାହାରିବା,ରକ୍ତବାହାର କରିବା ଦ୍ୱାରା ହତ୍ୟା ବା ଗୁରୁତର ଆଘାତ, ରକ୍ତନିର୍ଗମନ,ରକ୍ତସ୍ରାବ,ଗର୍ଭରୁ ପ୍ରସବକାଳୀନ ରକ୍ତନିଃସରଣ ।
ରକ୍ତପାତା—ପୁଂ. ବିଂ. (ରକ୍ତ+ପା+ତୃ) ଶୋଣିତ ପାନକର୍ତ୍ତା, (ସ୍ତ୍ରୀ. ବ) ଜଳୌକା, ଜୋକ ।
ରକ୍ତପାଦ—ପୁଂ. ବ. (ବ.ଗ୍ରା) ଶୁକପକ୍ଷୀ, ଯୁଦ୍ଧରଥ, ହସ୍ତୀ, (ବ. କ.ଧା) ନାଲିଆ ଗୋଡ଼, (ବିଂ) ଲୋହିତ ଚରଣଯୁକ୍ତ ।
ରକ୍ତପାଦୀ—ସ୍ତ୍ରୀ. ବ. ଲଜକୁଳି ଲତା ।
ରକ୍ତପାନ—ବି. (୬ତତ୍ରୁ) ଅନ୍ୟ ଜୀବର ଦେହରୁ ରକ୍ତଶୋଷିବା, ରକ୍ତପିଇବା ।
ରକ୍ତପାୟିନୀ—ସ୍ତ୍ରୀ. ବ. (ରକ୍ତ+ପାୟିନ୍+ଈ) ଜୋକ, ମଙ୍କୁଣ, ଗୁରୁରପୋକ,ମଶା, (ବିଂ) ରୁଧିରପାନକାରିଣୀ ।
ରକ୍ତପାୟୀ—ପୁଂ. ବିଂ. (ରକ୍ତ+ପାୟିନ୍) ଯେଉଁ ଜୀବମାନେ ରକ୍ତପାନ କରନ୍ତି, (ବ) ଜୋକ, ଉକୁଣୀ, ଗୁରୁରପୋକ ।
ରକ୍ତପାରଦ—କ୍ଲୀ. ବ. ହିଙ୍ଗୁଳ ।
ରକ୍ତପାଷାଣ—କ୍ଲୀ.ବ.ଗିରିମୃତ୍ତିକା,ଗେରୁ-ମାଟି, ଛେଉ ପଥର ।
ରକ୍ତପିଇବା—ଗ୍ରା.କ୍ରି. ହତଜୀବ ଦେହରୁ ରକ୍ତପାନକରିବା, ଜୀବଦେହରୁ ରକ୍ତ ଶୋଷଣ କରିବା.(ଲ.ଅର୍ଥ) କୌଣସି ବ୍ୟକ୍ତିକୁ ହତ୍ୟାକରିବା, ମନୁଷ୍ୟକୁ ଅନ୍ତଃସାରଶୂନ୍ୟ ବା ହୀନବଳ କରିବା, (ଗାଳି) ଆର୍ତ୍ତବପାନ ରୂପକ ଘୃଣା ଜନକ କାର୍ଯ୍ୟ କରିବା ।
ରକ୍ତପିଚ୍ଛଳ—ଗ୍ରା. ବ. ଏକପ୍ରକାର ଔଷଧ ବୃକ୍ଷ ।
ରକ୍ତପିଟିକା—ସ୍ତ୍ରୀ. ବ.ରକ୍ତବର୍ଣ୍ଣସ୍ଫୋଟକ ।
ରକ୍ତପିଣ୍ଡ—କ୍ଲୀ. ବ.(ବ.ଗ୍ରା)ମନ୍ଦାରଫୁଲ, ବନ୍ୟବୃକ୍ଷବିଶେଷ, ଏକପ୍ରକାର ରକ୍ତ ପିତ୍ତବାରୋଗ, ନାଲିଆବଥ, କୁଷ୍ଠରୋଗ ବିଶେଷ, (କ.ଧା) ରକ୍ତବର୍ଣ୍ଣ ଗୋଲକ, (୬ତତ୍ରୁ) ପିଣ୍ଡୀକୃତ ରକ୍ତ ।
ରକ୍ତପିଣ୍ଡକ—ପୁଂ. ବ. ରକ୍ତାଳୁ, ନାଲି ପିଣ୍ଡଆଳୁ, ଜବାବୃକ୍ଷ ।
ରକ୍ତପିଣ୍ଡାଳୁ—ପୁଂ.ବ.ରକ୍ତବର୍ଣ୍ଣପିଣ୍ଡାଳୁ ।
ରକ୍ତପିଣ୍ଡୁଳା—ଗ୍ରା. ବ.ରକ୍ତପିଣ୍ଡ ଦେଖ ।
ରକ୍ତପିତ୍ତ—ପୁଂ. ବ. ପିତ୍ତପ୍ରକୋପଜନିତ ରକ୍ତଦୁଷ୍ଟି, ସହସା ରକ୍ତବମନ, ରକ୍ତ-ପିତ୍ତରୋଗ ।
ରକ୍ତପିତ୍ତଘ୍ନ—ବିଂ.ରକ୍ତପିତ୍ତରୋଗର ଉପ-ଶମକ, (ବ) ରକ୍ତଘ୍ନୀ ଦେଖ ।
ରକ୍ତପିତ୍ତହା—ସ୍ତ୍ରୀ. ବ. ରକ୍ତଘ୍ନୀ, ଗଣ୍ଡିଆ ଦୁବ, (ବିଂ)ରକ୍ତପିତ୍ତରୋଗର ଉପଶମକ ।
ରକ୍ତପିତ୍ତାନ୍ତକଲୌହ--ସ୍ତ୍ରୀ.ବ. ରକ୍ତନାଶକ ଔଷଧବିଶେଷ ।
ରକ୍ତପିତ୍ତାନ୍ତକରସ--ପୁଂ.ବ.ଔଷଧବିଶେଷ
ରକ୍ତପିତ୍ତୀ—ପୁଂ. ବିଂ. ରକ୍ତପିତ୍ତରୋଗୀ ।
ରକ୍ତପିପାସା—ସ୍ତ୍ରୀ.ବ. (୬ତତ୍ରୁ)ଶୋଣିତ-ତୃଷ୍ଣା, ରକ୍ତପାନ କରିବାର ଇଚ୍ଛା ।
ରକ୍ତପିପାସୁ—ବିଂ. (୬ତତ୍ରୁ) ଶୋଣିତ-ପାନେଚ୍ଛୁ, ନରହତ୍ୟା କରିବାକୁ ଅଗ୍ର-ସର, ଜିଘାଂସୁ ।
ରକ୍ତପୀଟିକାବର୍ଣ୍ଣନ--କ୍ଲୀ.ବ.ରକ୍ତଜ ବିକାର
ରକ୍ତପୀତଫଳା—ସ୍ତ୍ରୀ.ବ.ମଧୁର ବମ୍ଭିକା ।
ରକ୍ତପୁଚ୍ଛକ—ପୁଂ. ବିଂ. ରକ୍ତବର୍ଣ୍ଣ ପୁଚ୍ଛ-ବିଶିଷ୍ଟ, (ବ) ସରୀସୃପବିଶେଷ ।
ରକ୍ତପୁନର୍ନବା—ସ୍ତ୍ରୀ. ବ. ନାଲିପୁରୁଣିଶାଗ
ରକ୍ତପୁଷ୍ପ—ପୁଂ.ବ.(ବ.ଗ୍ରା) ରକ୍ତକରବୀର, ରୋହିତବୃକ୍ଷ, ରକ୍ତକାଞ୍ଚନ ବୃକ୍ଷ,ଡାଳିମ୍ବ ବୃକ୍ଷ, ବକବୃକ୍ଷ, ନାଲି ଅରଖଗଛ, ପୁନ୍ନାଗବୃକ୍ଷ,ବନ୍ଧୁକବୃକ୍ଷ ଓ ଫୁଲ,(ବିଂ) (ବ.ଗ୍ରା) ନାଲିଫୁଲଯୁକ୍ତ ।
ରକ୍ତପୁଷ୍ପକ—ପୁଂ. ବ. ପଳାଶବୃକ୍ଷ,ରୋହି-ତକ ବୃକ୍ଷ, ଶିମିଳିଗଛ, ନାଗେଶ୍ୱରବୃକ୍ଷ, ପର୍ପଟ, ପାଳଧୁଆଗଛ, ।
ରକ୍ତପୁଷ୍ପା—ସ୍ତ୍ରୀ. ବ. ( ରକ୍ତପୁଷ୍ପ+ଆ ) ଶାଲ୍ମଲୀବୃକ୍ଷ, ପୁନର୍ନବା, ସିନ୍ଦୂରୀ,ଚମ୍ପା-କଦଳୀ, ନାଗଦମନୀ ।
ରକ୍ତପୁଷ୍ପିକା—ସ୍ତ୍ରୀ. ବ. (ରକ୍ତ+ପୁଷ୍ପ+ଇକ+ଆ) ଲଜ୍ଜାଳୁ, ଭୂପାଟଳୀ, ରକ୍ତ-ପୁନର୍ନବା ।
ରକ୍ତପୁଷ୍ପୀ—ସ୍ତ୍ରୀ. ବ. ( ରକ୍ତପୁଷ୍ପ+ଈ ) ପାଟଳୀବୃକ୍ଷ, ଜବାଆବର୍ତ୍ତକୀଲତା,ନାଗ-ଦମନୀ, କରୁଣୀବୃକ୍ଷ,ଉଷ୍ଟ୍ରକାନ୍ତୀ,ଧାତକୀ, ମନ୍ଦାର, ରକ୍ତବର୍ଣ୍ଣ ପୁଷ୍ପବିଶିଷ୍ଟ ବୃକ୍ଷ, ବରୁଣବୃକ୍ଷ ।
ରକ୍ତପୂତିକା—ସ୍ତ୍ରୀ. ବ. ଲାଲପୁଇଶାଗ ।
ରକ୍ତପୂୟ—କ୍ଲୀ. ବ. ନରକବିଶେଷ,ରକ୍ତ ଓ ପୂଯ ।
ରକ୍ତପୂରକ—କ୍ଲୀ. ବ.(ରକ୍ତ+ପୂର+କ) ବୃକ୍ଷାମ୍ଳ, ତେନ୍ତୁଳି ।
ରକ୍ତପୈତ୍ତ—ବିଂ.ରକ୍ତପିତ୍ତରୋଗ ସମ୍ବନ୍ଧୀୟ
ରକ୍ତପୋସ୍ତ—ପୁଂ. ବ. (ରକ୍ତ+ପୂସ୍+ତ) ଲାଲପୋସ୍ତବୃକ୍ଷ ।
ରକ୍ତପ୍ରତିଶ୍ୟାୟ—ପୁଂ. ବ. ରୋଗବିଶେଷ
ରକ୍ତପ୍ରଦର--ପୁଂ.ବ.ପ୍ରଦର ରୋଗବିଶେଷ
ରକ୍ତପ୍ରଧାନଧାତୁ—ବି. ରକ୍ତପ୍ରାବଲ୍ୟଯୁକ୍ତ ଶାରୀରିକ ଅବସ୍ଥା ।

ରକ୍ତପ୍ରବନ୍ଧ—ବି. ଦେହରେ ଶିରଦ୍ୱାରା ପରଗ୍ରଳିତ ରକ୍ତସ୍ରୋତ ।
ରକ୍ତପ୍ରବାହ—ବି. ରକ୍ତର ସ୍ରୋତଃ ।
ରକ୍ତପ୍ରବାହିକାନାଡ଼ୀ—ବି. ଦେହର ଶିର, ନାଡ଼ୀ ।
ରକ୍ତପ୍ରବୃତ୍ତି—ସ୍ତ୍ରୀ. ବି. ପିତ୍ତଜରୋଗ ।
ରକ୍ତପ୍ରସବ—ପୁଂ. ବି. ରକ୍ତକରବୀର, ନାଲିକେଶବୃକ୍ଷ, ଅମ୍ଳାନକ, ମୁଚୁକୁନ୍ଦ ବୃକ୍ଷ, ନାଲିଦାସକେରେଣ୍ଡା ।
ରକ୍ତଫଳ—ପୁଂ. ବି. (ବି.ଗ୍ରା) ବଟବୃକ୍ଷ, ଶାଳ୍ମଳୀବୃକ୍ଷ ।
ରକ୍ତଫଳା—ସ୍ତ୍ରୀ. ବି. ( ରକ୍ତ+ଫଳ+ଆ) ବିମ୍ବିକା, କଇଁଚିକାକୁଡ଼,ଗୋଲୁଖିଆଫଳ, ସ୍ୱର୍ଣ୍ଣବଲ୍ଲୀନାମକ ଲତା ।
ରକ୍ତଫେନ—ପୁଂ.ବି.ବାମପାର୍ଶ୍ୱସ୍ଥକ୍ଲୋମ୍, ଫୁସ୍‌ଫୁସ୍ । [ ଫୁସ୍‌ଫୁସ୍ ।
ରକ୍ତଫେନଜ—ସ୍ତ୍ରୀ.ବି. ବାମପାର୍ଶ୍ୱସ୍ଥକ୍ଲୋମ୍,
ରକ୍ତଭବ—ବିଂ. (ରକ୍ତ+ଭୂ+କ.ଅ) ରକ୍ତରୁ ଜାତ, (ବି) ମାଂସ ।
ରକ୍ତଭସ୍ମ—କ୍ଳୀ. ବି. ରସସିନ୍ଦୂରାଦି କରଣ
ରକ୍ତଭାବ—ବି. ବିଂ. ପ୍ରଣୟାସକ୍ତ, କାମାତୁର, ଅନୁରାଗୀ, ନାଲିଆ ।
ରକ୍ତମଞ୍ଜର—ପୁଂ. ବି. ଜମ୍ବୁବୃକ୍ଷ, ବେତବୃକ୍ଷବିଶେଷ, ନିଚୁଳବୃକ୍ଷ ।
ରକ୍ତମଞ୍ଜରୀ—କ୍ଳୀ.ବି.ରକ୍ତକରବୀର,ନାଲିକନିଅର ।
ରକ୍ତମଣ୍ଡଳ—ପୁଂ. ବି. ମଣ୍ଡଳସର୍ପବିଶେଷ, ରକ୍ତପଦ୍ମ, ବିଷାକ୍ତପଶୁବିଶେଷ, (ବିଂ) ରକ୍ତମଣ୍ଡଳବିଶିଷ୍ଟ, ଅନୁରକ୍ତ ଭୃତ୍ୟସମନ୍ୱିତ ।
ରକ୍ତମଣ୍ଡଳତା—ସ୍ତ୍ରୀ.ବି.ରକ୍ତଦୁଷ୍ଟି ଜନିତ ଶରୀରରେ ମଣ୍ଡଳାକାର ରକ୍ତବର୍ଣ୍ଣ ଚିହ୍ନ
ରକ୍ତମଣ୍ଡଳିକା—ସ୍ତ୍ରୀ. ବି. ଲାଲ ଲଜକୁଳି ଲତା ।
ରକ୍ତମତ୍ତ—ପୁଂ. ବିଂ.ରକ୍ତପାନଦ୍ୱାରା ପରିତୃପ୍ତ. (ସ୍ତ୍ରୀ) ରକ୍ତମତ୍ତା ।
ରକ୍ତମତ୍ସ୍ୟ—ପୁଂ. ବି. ରକ୍ତବର୍ଣ୍ଣ ମତ୍ସ୍ୟବିଶେଷ, ରଡାମାଛ ।
ରକ୍ତମଗ୍ନ—ବିଂ. ରୁଧିରପୂର୍ଣ୍ଣ, ରକ୍ତରଞ୍ଜିତ, (ସ୍ତ୍ରୀ) ରକ୍ତମଗ୍ନା । [ ମରିଚ ।
ରକ୍ତମରିଚ—କ୍ଳୀ. ବି. ଲାଲବର୍ଣ୍ଣର ଲଙ୍କା-
ରକ୍ତମସ୍ତକ—ପୁଂ. ବିଂ. (ବି.ଗ୍ରା) ରକ୍ତବର୍ଣ୍ଣମସ୍ତକବିଶିଷ୍ଟ, (ବି) ସାରସ ପକ୍ଷୀ ।
ରକ୍ତମାଂସ—ବି.(ଦ୍ୱନ୍ଦ୍ୱ) ରକ୍ତ ଓ ମାଂସ ।
ରକ୍ତମାଂସଦେହ—ବିଂ. (ଦ୍ୱନ୍ଦ୍ୱ ଓ କ.ଧା) ରକ୍ତ ଓ ମାଂସରେ ନିର୍ମିତ ଜୀବଦେହ, ସାଧାରଣ ଜୀବଶରୀର ।
ରକ୍ତମାତୃକା—ସ୍ତ୍ରୀ. ବି. ରସଧାତୁ, ବାଧକରୋଗବିଶେଷ। [ ବାଧକ ।
ରକ୍ତମାଦ୍ରୀ—ସ୍ତ୍ରୀ. ବି. ସ୍ତ୍ରୀ ରୋଗବିଶେଷ,
ରକ୍ତମିଳାତକ—ପୁଂ. ବି. ରକ୍ତମ୍ଳାନ ପୁଷ୍ପବୃକ୍ଷ, ନାଲିଦାସକେରେଣ୍ଡା ।
ରକ୍ତମୁଖ -ପୁଂ.ବି.(ବି.ଗ୍ରା)ରୋହିତ ମତ୍ସ୍ୟ, ଷଷ୍ଟିକଧାନ୍ୟ, (ବିଂ ବି.ଗ୍ରା) ଯାହାର ମୁହଁ ନାଲିଆ,ରୁଧିରରକ୍ତ ମୁଖବିଶିଷ୍ଟ,(ସ୍ତ୍ରୀ) ରକ୍ତମୁଖା, (ଗ୍ରା.ବି) ରକ୍ତମୁହାଁ ଦେଖ ।
ରକ୍ତମୁଖା—ଗ୍ରା. ବିଂ. କୌଣସି ଜୀବର ରକ୍ତ ପିଇଥିବା ଯୋଗୁଁ ଯେଉଁ ହିଂସ୍ର-ଜନ୍ତୁର ମୁହଁ ରୁଧିରରକ୍ତ ହୋଇଥାଏ, ରକ୍ତଲୋଲୁପ ।
ରକ୍ତମୁଖୀ—ଗ୍ରା. ସ୍ତ୍ରୀ. ବିଂ. ରକ୍ତମୁଖାର ସ୍ତ୍ରୀଲିଙ୍ଗ, ଚିତ୍ରମତୀ (ସ୍ତ୍ରୀ) ।
ରକ୍ତମୁଣ୍ଡା—ଗ୍ରା. ବି. ରକ୍ତପିଣ୍ଡ ଦେଖ ।
ରକ୍ତମୁହାଁ— ଗ୍ରା. ପୁଂ. ବିଂ. ରୁଧିରରକ୍ତ ମୁଖଯୁକ୍ତ, ରକ୍ତମୁଖା ଦେଖ ।
ରକ୍ତମୁହାଁ— ଗ୍ରା. ସ୍ତ୍ରୀ. ବି. ରକ୍ତମୁହାଁର ସ୍ତ୍ରୀଲିଙ୍ଗ, (ବି) ରୁଧିରରକ୍ତମୁଖୀ କାଳୀ ବା ଦୁର୍ଗା ଦେବୀ, ଶାରଦୀୟ ଦୁର୍ଗାପୂଜାର ଷୋହଳପୂଜା ସମୟରେ ପଶୁବଳି ପାଇବାପାଇଁ ଉଦ୍‌ଗ୍ରୀବା ଚଣ୍ଡୀ ବା ଦୁର୍ଗାଦେବୀ, ଏହି ଷୋହଳଦିନକାଳ ।
ରକ୍ତମୁତିବା—ଗ୍ରା. କ୍ରି. ଦେହବିଶେଷ ଗରମହେବା ଯୋଗୁଁ ରକ୍ତପରି ନାଲି ପ୍ରସ୍ରାବ କରିବା, ପ୍ରମେହାଦି ଯୋଗୁଁ ମୂତ୍ରସହିତ ରକ୍ତପ୍ରସ୍ରାବ କରିବା ।
ରକ୍ତମୂତ୍ର—ବି.ମୂତ୍ରସହିତ ରକ୍ତ ନିଃସରଣ ରୋଗ ।
ରକ୍ତ... —ସ୍ତ୍ରୀ.ବି.ରକ୍ତପ୍ରସ୍ରାବ ରୋଗ ।
ରକ୍ତମୂର୍ଦ୍ଧା—ପୁଂ. ବି. ସାରସପକ୍ଷୀ ।
ରକ୍ତମୂଳକ—ପୁଂ.ବି. ଦେବସର୍ଷପବୃକ୍ଷ ।
ରକ୍ତମୂଳା—ସ୍ତ୍ରୀ. ବି. ଲଜ୍ଜାକୁଳିଲତା,ଲଜକୁଳିଲତା ।
ରକ୍ତମେହ—ପୁଂ.ବି.ପ୍ରମେହରୋଗବିଶେଷ
ରକ୍ତମେଧଯାଗ—ବି. ରକ୍ତ ଆହୁତିଦେଇ ସମ୍ପାଦନ କରିବା ଯାଗ ।
ରକ୍ତମୋକ୍ଷ—ବି.(୬ତତ୍ପୁ)ରକ୍ତସ୍ରାବ,ରକ୍ତମୋକ୍ଷଣ ଦେଖ ।
ରକ୍ତମୋକ୍ଷକ—ବିଂ. ରକ୍ତସ୍ରାବକାରୀ ।
ରକ୍ତମୋକ୍ଷଣ—କ୍ଳୀ. ବି. ଶୋଣିତ ସ୍ରାବ, ଅସ୍ତ୍ର ପ୍ରୟୋଗ ଦ୍ୱାରା ବା ଜୋକ ଲଗାଇ ଦେହରୁ ବଦରକ୍ତ ବାହାର କରିବା କ୍ରିୟା ।
ରକ୍ତଯଷ୍ଟି—ସ୍ତ୍ରୀ. ବି. (ବି.ଗ୍ରା)ମଞ୍ଜିଷ୍ଠା ।
ରକ୍ତଯଷ୍ଟିକା—ସ୍ତ୍ରୀ. ବି. ମଞ୍ଜିଷ୍ଠା ।
ରକ୍ତଯାବନାଳ—ପୁଂ.ବି.ରକ୍ତବର୍ଣ୍ଣ ଯାବନାଳ, ନାଲିଜନର ।
ରକ୍ତରଙ୍ଗା—ସ୍ତ୍ରୀ.ବି.ମେହଦୀ ନାମକ ବୃକ୍ଷବିଶେଷ ।
ରକ୍ତରଜଃ—କ୍ଳୀ. ବି. ସିନ୍ଦୂର ।
ରକ୍ତରଞ୍ଜିତ—ବିଂ. ରକ୍ତାକ୍ତ ଦେଖ ।
ରକ୍ତରସା—ସ୍ତ୍ରୀ. ବି. ରାସ୍ନା ।
ରକ୍ତରସୋନ--ପୁଂ.ବି.ନାଲିରସୁଣ,ଗାଜର
ରକ୍ତରାଜାଳୁକ—କ୍ଳୀ.ବି. ରକ୍ତବର୍ଣ୍ଣ ଆଳୁବିଶେଷ ।
ରକ୍ତରାଜି(ଜୀ)—ସ୍ତ୍ରୀ. ବି. ବାୟୁବୀ କୀଟବିଶେଷ,ସର୍ପିକା,ନେତ୍ରରୋଗବିଶେଷ
ରକ୍ତରେ ଚଡାଯିବା— ଗ୍ରା. କ୍ରି. ରକ୍ତଚଡା କରିବା ଦେଖ ।
ରକ୍ତରେଣୁ—ପୁଂ. ବି. (କ.ଧା) ସିନ୍ଦୂର, ନାଲିଗୁଣ୍ଡା, (ବି.ଗ୍ରା) ପଳାଶ କଳିକା, ପୁନ୍ନାଗବୃକ୍ଷ, କ୍ରୁଦ୍ଧବ୍ୟକ୍ତି ।
ରକ୍ତରେଣୁକା—ସ୍ତ୍ରୀ. ବି. (ରକ୍ତ+ରେଣୁ+କ+ଆ)ପଳାଶକଳିକା, ଅଙ୍ଗାରିକା ।
ରକ୍ତରେ ବୁଡ଼ିବା--ଗ୍ରା.କ୍ରି.ରକ୍ତାକ୍ତ ହେବା
ରକ୍ତରୈବତକ—କ୍ଳୀ.ବି.(ରକ୍ତ+ରୈବତକ) ମହାପାରେବତ, ଏକପ୍ରକାର ପିଣ୍ଡଖଜୁରି ବା ଖଜୁରି ।

ରକ୍ତରୋଗ—ବି. (କ.ଧା) ରକ୍ତଦୋଷ-
ଜନିତ ରୋଗ । [ କରିବା ।
ରକ୍ତରୋଧ(ନ)—ବି.ବହୁଥିବା ରକ୍ତ ବନ୍ଦ
ରକ୍ତରୋଧକ—ବି°.ଯାହା ଶୋଣିତ ସ୍ରାବ
ବନ୍ଦ କରେ ।
ରକ୍ତରୋହିତକ—ପୁ°. ବି. ନାଲରୋହିତ
ବୃକ୍ଷ, କୃଷ୍ଣୋଳୁଲୀ ।
ରକ୍ତଲଗା—ଗ୍ରା.ବି°.ରକ୍ତରଞ୍ଜିତ,(ଲ.ଅର୍ଥ
ମର୍ମଭେଦୀ ବାକ୍ୟ ପ୍ରୟୋଗକାରୀ ।
ରକ୍ତଲଗାକଥା—ଗ୍ରା. ବି. ମର୍ମଭେଦୀ
ବାକ୍ୟର ପ୍ରୟୋଗ, ଯାହା ଶୁଣିଲେ
ଲୋକ କଷ୍ଟସ୍ଥ କ୍ରୋଧ ହେବ ।
ରକ୍ତଲଶୁନ—ପୁ°. ବି. ରକ୍ତବର୍ଣ୍ଣ ମୂଳ-
ବିଶେଷ, ଲାଲରସୁଣ, ଗାଜର ।
ରକ୍ତଲା—ସ୍ତ୍ରୀ. ବି. କାକତୁଣ୍ଡୀ, କେନ୍ଦୁ,
କାକତିନ୍ଦୁକ, ନାଲକାଇଁଚ ।
ରକ୍ତଲୋଚନ—ପୁ°. ବି. (ବି.ଗ୍ର) ଶିବ,
କପୋତ,ପାରା, (କ.ଧା) ଆରକ୍ତନେତ୍ର,
ରୋଷକଷାୟିତ ଚକ୍ଷୁ, (ବି°) ଯାହାର
ଚକ୍ଷୁ ରକ୍ତବର୍ଣ୍ଣ ।
ରକ୍ତବଟୀ—ସ୍ତ୍ରୀ.ବି.ମସୂରିକା,ଇଚ୍ଛାବସନ୍ତ
ରକ୍ତବନ୍ଧ—ବି°. ରକ୍ତରୋଧକ ।
ରକ୍ତବନ୍ଦହ—ବି.ଶରୀରରେ ରକ୍ତ ପ୍ରବାହ
ବନ୍ଦ ହେବା ।
ରକ୍ତବନ୍ଦୀ—ବି. କ୍ଷତାଦିରୁ ବହୁଥିବା
ରକ୍ତର ପ୍ରବାହ ବନ୍ଦ କରିବା ।
ରକ୍ତବରଟୀ—ବି. ମସୂରିକା,ଇଚ୍ଛାବସନ୍ତ
ରକ୍ତବର୍ଗ—ବି. ଡାଳିମ୍ବ, ପଳାଶ, ଲାକ୍ଷା,
ବନ୍ଧୂକପୁଷ୍ପ, କୁସୁମଫୁଲ, ମଞ୍ଜିଷ୍ଠା,
ଗୋମେଦ,ରକ୍ତ, ଦାରୁହଳଦୀ, ପ୍ରବାଳ,
କମଳାଗୁଣ୍ଡି ।
ରକ୍ତବର୍ଣ୍ଣ—ପୁ°. ବି. ଇନ୍ଦ୍ରଗୋପକୀଟ,
ଗୋମେଦମଣି, ପ୍ରବାଳ, କମ୍ପିଲ୍ଲକ,
(କ.ଧା) ନାଲରଙ୍ଗ,ସ୍ୱର୍ଣ୍ଣ, (ବି°)ବି.ତ୍ର;
ରକ୍ତବର୍ଣ୍ଣବିଶିଷ୍ଟ, ନାଲିଆ ।
ରକ୍ତବର୍ତ୍ତିକ-ପୁ°.ବି.ନାଲବତର ଚଢ଼େଇ
ରକ୍ତବର୍ତ୍ମା-ପୁ°.ବି (ରକ୍ତ+ବର୍ତ୍ମନ୍)କୁକ୍କୁଟ
ରକ୍ତବର୍ଦ୍ଧକ—ବି°.ଯାହା ଦେହର ରକ୍ତ-
ପରିମାଣକୁ ବଢ଼ାଏ ।

ରକ୍ତବର୍ଦ୍ଧନ—ପୁ°.ବି.ବାର୍ତ୍ତାକୁ,ବାଇଗଣ,
(ବି°) ରକ୍ତବର୍ଦ୍ଧକ ଦେଖ ।
ରକ୍ତବର୍ଷାଭୂ—ସ୍ତ୍ରୀ. ବି. ରକ୍ତପୂନର୍ନବା,
ରକ୍ତକାଣ୍ଡା ଦେଖ ।
ରକ୍ତବଲ୍ଲୀ—ସ୍ତ୍ରୀ.ବି. ପୀତପୁଷ୍ପ,ଦଣ୍ଡୋତ୍ପଳ,
ମଞ୍ଜିଷ୍ଠା, ନକୁଲୀ ।
ରକ୍ତବସନ—ପୁ°.ବି. (ବି.ଗ୍ର) ସନ୍ନ୍ୟାସୀ,
(କ୍ଲୀ) ରକ୍ତବସ୍ତ୍ର, (କ.ଧା) ନାଲ ଲୁଗା,
(ପୁ°.ବି°) ନାଲ ବା ରଞ୍ଜିତ ବସ୍ତ୍ରଧାରୀ ।
ରକ୍ତବହ—ବି°. (ରକ୍ତ+ବହ+କ.ଅ)
ଶୋଣିତବାହକ, (ସ୍ତ୍ରୀ) ରକ୍ତବହା ।
ରକ୍ତବହିବା—ଗ୍ରା. କି. ଶରୀରସ୍ଥ କ୍ଷତରୁ
ରକ୍ତଧାରା ପ୍ରବାହିତ ହେବା ।
ରକ୍ତବର୍ଷଣ—ବି. ରକ୍ତବୃଷ୍ଟି ଦେଖ ।
ରକ୍ତବଟ୍ୟାଳକ—ବି°. ରକ୍ତବର୍ଣ୍ଣର ବାଡ଼ି-
ଅଁଳା । [ ବିଶେଷ ।
ରକ୍ତବାତ—ପୁ°. ବି. ବାତରକ୍ତ ରୋଗ-
ରକ୍ତବାନ୍—ଗ୍ରା.ପଦ୍ୟ.ବି°. ରକ୍ତାକ୍ତ ।
ରକ୍ତବାନ୍ତି—ଗ୍ରା.ବି. ରକ୍ତବମନ ।
ରକ୍ତବାରିଜ—ବି. କୋକନଦ,ରଙ୍ଗପଦ୍ମ
ରକ୍ତବାଳୁକ—କ୍ଲୀ. ବି. ସିନ୍ଦୂର ।
ରକ୍ତବାହୀ-ପୁ°.ବି°.(ରକ୍ତ+ବହ୍+ଇନ୍)
ଶୋଣିତବାହକ, (ସ୍ତ୍ରୀ) ରକ୍ତବାହିନୀ ।
ରକ୍ତବାହୁ—ପୁ°.ବି°. (ବି.ଗ୍ର) ରକ୍ତବର୍ଣ୍ଣ
ବାହୁବିଶିଷ୍ଟ,(ଗ୍ରା.ବି) ଖ୍ରୀଷ୍ଟ ୪ର୍ଥଶତା-
ବ୍ଦୀର ପ୍ରାରମ୍ଭରେ ସମୁଦ୍ରପଥରେ ଆସି
ଉତ୍କଳକୁ ଆକ୍ରମଣ କରିଥିବା ଯବନ-
ବିଶେଷ ।
ରକ୍ତବାସାଃ—ପୁ°.ବି°. ରକ୍ତବସ୍ତ୍ରଧାରୀ ।
ରକ୍ତବିକାର—ପୁ°.ବି. (ଷତତ୍ର) ରକ୍ତଜ
ରୋଗ, ରକ୍ତ ଦୂଷିତ ହେବା ଅବସ୍ଥା ।
ରକ୍ତବିକୃତ—ବି. (ଷତତ୍ର) ରକ୍ତବିକାର
ଦେଖ ।
ରକ୍ତବିନ୍ଦୁ—ବି. ନାଲ ଅପାମାର୍ଗ ଗୁଳ୍ମ ।
ରକ୍ତବିଦ୍ରଧି—ପୁ°. ବି. ରକ୍ତ ଦୁଷ୍ଟ ହେତୁ
ବିଦ୍ରଧି ରୋଗ ।
ରକ୍ତବିନ୍ଦୁ—ବି.(ଷତତ୍ର) ରକ୍ତର ଟୋପା,
ରତ୍ନରେ ଲୋହିତ ବର୍ଣ୍ଣର ଦାଗ ।
ରକ୍ତବୀଜ—ବି. (ବି.ଗ୍ର) ଦୁର୍ଗାଙ୍କ ସଙ୍ଗେ

ଯୁଦ୍ଧକରି ନିହତ ହୋଇଥିବା ଶୁମ୍ଭ
ନିଶୁମ୍ଭଙ୍କର ସେନାପତି ଅସୁରବିଶେଷ,
ଡାଳିମ୍ବ, ରଠା ।
ରକ୍ତବୀଜକ—ବି. ଡାଳିମ୍ବ ।
ରକ୍ତବୀଜକା—ବି. କରଟୀଲତା, ଏକ-
ପ୍ରକାର ନାଲ ମଞ୍ଜିଥିବା ତରଡ଼ାଲତା
ଓ ଫଳ ।
ରକ୍ତବୃକ୍ଷ—ପୁ°. ବି. ବୃକ୍ଷବିଶେଷ ।
ରକ୍ତବୃକ୍ଷକ—ପୁ°.ବି.(ବି.ଗ୍ର)ପୁନର୍ନବା ।
ରକ୍ତବୃନ୍ତା—ସ୍ତ୍ରୀ. ବି. ଶେଫାଳିକା,ଗଙ୍ଗ-
ଶିଉଳି ।
ରକ୍ତବୃଷ୍ଟି—ସ୍ତ୍ରୀ.ବି.(ଷତତ୍ର)ରୁଧିର ବର୍ଷଣ
ରକ୍ତବେଲା—ବି.ଅଜଗଲ୍ଲିକା, ଶିଶୁମାନ-
ଙ୍କର ମୁଣ୍ଡରେ ଓ ଦେହରେ ନାଲିଆ
ବ୍ରଣ ବା ବିସ୍ଫୋଟକ ବାହାରିବା ରୂପ
ଚର୍ମରୋଗ ।
ରକ୍ତବୋଳା—ଗ୍ରା.ବି°.ରକ୍ତରଞ୍ଜିତ,ରକ୍ତାକ୍ତ,
ନାଲରଙ୍ଗ କରିଯାଇଥିବା ।
ରକ୍ତବୋହିବା—ଗ୍ରା.ବି. କ୍ଷତଆଦିରୁ ରକ୍ତ
କ୍ଷରଣ ହେବା ।
ରକ୍ତବ୍ରଣ—ବି. ଯେଉଁ ବ୍ରଣରୁ ପୂଯ ପରି-
ବର୍ତ୍ତେ ରକ୍ତ ବାହାରେ ।
ରକ୍ତଶମନ—କ୍ଲୀ. ବି. କମ୍ପିଲ୍ଲକ, କମଳା-
ଗୁଣ୍ଡି ବୃକ୍ଷବିଶେଷ । [ କୋଣଲା ।
ରକ୍ତଶାକ—ବି. ଶାକବିଶେଷ, ନାଲ-
ରକ୍ତଶାଳି—ପୁ°. ବି. ରକ୍ତବର୍ଣ୍ଣର ନାଲ
ଶାରଦ ଧାନ ।
ରକ୍ତଶାଳୁକ—ପୁ°.ବି. ରକ୍ତପଦ୍ମର କନ୍ଦା,
କୋକନଦର ମୂଳପିଣ୍ଡ ।
ରକ୍ତଶାଲ୍ମଳି—ପୁ°. ବି. ନାଲ ଫୁଲବାଲା
ଶିମିଳି ଗଛ ।
ରକ୍ତଶାସନ—କ୍ଲୀ. ବି. ସିନ୍ଦୂର ।
ରକ୍ତଶିଗ୍ରୁ—ପୁ°.ବି.ରକ୍ତ ଶୋଭାଞ୍ଜନ ବୃକ୍ଷ,
ନାଲ ସଜନା ।
ରକ୍ତଶିମ୍ବୀ—ସ୍ତ୍ରୀ. ବି. ଲାଲ ଶିମ୍ବ ।
ରକ୍ତଶୀର୍ଷକ—ପୁ°.ବି. (ରକ୍ତ+ଶୀର୍ଷ+
କ) ସରଳ ଦ୍ରବ, ଦେବଦାରୁ ଗଛର
ନିର୍ଯ୍ୟାସ, ଗନ୍ଧବିରଜା, ସାରସପକ୍ଷୀ ।
ରକ୍ତଶୃଙ୍ଖଳା—ସ୍ତ୍ରୀ.ବି.ଛନ୍ଦର ରକ୍ତାକ୍ତ ଭାବ

ରକ୍ତଝୁଣିଯିବା—ଗ୍ରା. ବି. ଅତି ଦୁର୍ବଳ ହେବା, (ଲ.ଅର୍ଥ) ଅତ୍ୟନ୍ତ ଭୟରେ ବିବର୍ଣ୍ଣ ହୋଇଯିବା, ପିଳେହି ପାଣି ହୋଇଯିବା ।

ରକ୍ତଶୃଙ୍ଗ—ବି ହିମାଳୟ ପର୍ବତର ଶୃଙ୍ଗ-ବିଶେଷ । [ ମହୁରା ।

ରକ୍ତଶୃଙ୍ଗିକ—କ୍ଲୀ.ବି. ବିଷ, ମେଣ୍ଢାଶିଙ୍ଘା,

ରକ୍ତଶେଖର – ପୁଂ.ବି.ପୁନାଗବୃକ୍ଷ,ନାଗ-କେଶର, ନାଗେଶ୍ୱର ।

ରକ୍ତଶୋଭାଞ୍ଜନ—ବି. ନାଲିସଜନା ।

ରକ୍ତଶୋଷକ—ପୁଂ. ବିଂ. ଯେ ରକ୍ତ ଶୋଷିନିଏ, ଶରୀରରୁ ରକ୍ତକୁ ଶୁଖାଇ ଦେବା(ଔଷଧ), (ସ୍ତ୍ରୀ) ରକ୍ତଶୋଷିକା, (ପୁଂ.ବି) ରକ୍ତ ଶୋଷଣକାରୀ ଜୀବ ।

ରକ୍ତଶୋଷଣ—ବି. (୬ତତ୍) ରକ୍ତକୁ ଶୋଷିବା ।

ରକ୍ତଶୋଷା—ଗ୍ରା.ବିଂ.ଯେ ରକ୍ତ ଶୋଷଣ କରେ, (ଲ.ଅର୍ଥ) ଧନଶୋଷକ (ରାଜା ବା ମହାଜନ) ।

ରକ୍ତଶୋଷିବା—ଗ୍ରା.କ୍ରି.ପ୍ରାଣୀର ଦେହର ରକ୍ତ ଶୋଷିନେବା, (ଲ,ଅର୍ଥ)ମନୁଷ୍ୟକୁ ଅନ୍ତଃସାରଶୂନ୍ୟ କରିବା ।

ରକ୍ତଶୋଷୀ—ପୁଂ.ବିଂ. (ରକ୍ତ+ଶୋଷ୍+କ.ଇନ୍) ଶୋଣିତ ଶୋଷଣକାରୀ, ଯେ ରକ୍ତ ପର୍ଯ୍ୟନ୍ତ ଶୋଷିନିଏ, (ସ୍ତ୍ରୀ) ରକ୍ତଶୋଷିଣୀ ।

ରକ୍ତଶ୍ୟାମ—ତ୍ରି.ବିଂ.କୃଷ୍ଣାଭ ଗାଢ଼ଲାଲ ।

ରକ୍ତଶ୍ୱେତ—ପୁଂ. ବି. ବୃଶ୍ଚିକବିଶେଷ, (ବିଂ) ରକ୍ତ ଓ ଶ୍ୱେତବର୍ଣ୍ଣ, ନାଲି ଓ ଧଳାମିଶା ।

ରକ୍ତଷ୍ଠୀବନତା—ସ୍ତ୍ରୀ. ବି.ରକ୍ତମୟ ଥୁତ୍କାର କ୍ଷେପଣତା ।

ରକ୍ତଷ୍ଠୀବସନ୍ନିପାତ—ପୁଂ. ବି. ସନ୍ନିପାତ ରୋଗବିଶେଷ ।

ରକ୍ତଷ୍ଠୀବୀ—ସ୍ତ୍ରୀ. ବି. ଯକ୍ଷ୍ମାରୋଗ ହେତୁ ରକ୍ତୋଦ୍ଗୀରଣ, ମାରାତ୍ମକ ସନ୍ନିପାତ-ରୋଗବିଶେଷ ।

ରକ୍ତସଙ୍କୋଚ—ପୁଂ. ବି. କୁସୁମପୁଷ୍ପ ।

ରକ୍ତସଙ୍କୋଚକ—କ୍ଲୀ.ବି.ରକ୍ତପଦ୍ମ,ଇନ୍ଦୀବର, ନୀଳପଦ୍ମ ।

ରକ୍ତସଞ୍ଜ୍ଞ(କ)—କ୍ଲୀ.ବି. କୁଙ୍କୁମ,ଜାଫ୍ରାନ ।

ରକ୍ତସନ୍ଦଂଶିକା—ସ୍ତ୍ରୀ.ବି.ଜଳୌକା,ଜୋକ

ରକ୍ତସଞ୍ଚୟ—ବି. (୬ତତ୍) ଶରୀରର କୌଣସି ସ୍ଥାନରେ ରକ୍ତ ଜମା ହୋଇ-ଯିବା (ରୋଗ) ।

ରକ୍ତସଞ୍ଚାର—ବି. (୬ତତ୍) ଦେହାଭ୍ୟନ୍ତରସ୍ଥ ରକ୍ତ ସଞ୍ଚାରର ଗତି ।

ରକ୍ତସଞ୍ଚାଳନ—ବି. (୬ତତ୍)ରକ୍ତସଞ୍ଚାର ଦେଖ ।

ରକ୍ତସନ୍ଦେଶିକା—ବି.ଜଳୌକା,ଜୋକ ।

ରକ୍ତସନ୍ଧ୍ୟକ—ବି.ରକ୍ତକମଳ,ନାଲିପଦ୍ମ ।

ରକ୍ତସମ୍ପର୍କ—ବି.(କ.ଧା)ଜନ୍ମ ବା ବିବାହ ଦ୍ୱାରା ଦୁଇଜଣଙ୍କ ମଧ୍ୟରେ ଜାତ ସମ୍ପର୍କ

ରକ୍ତସମ୍ବରଣ—ବି. କୃଷ୍ଣାଞ୍ଜନ, ସୁରୁମା ।

ରକ୍ତସରସର—ଗ୍ରା. ବିଂ. ରକ୍ତରଞ୍ଜିତ, ଯେଉଁ ବସ୍ତ୍ରରୁ ଠୋପା ଠୋପା ହୋଇ ରକ୍ତ ବହୁଥାଏ ।

ରକ୍ତସରସିଜ—ବି. ରକ୍ତକମଳ ।

ରକ୍ତସରୋରୁହ—କ୍ଲୀ.ବି (ରକ୍ତ+ସରୋରୁହ) ରକ୍ତପଦ୍ମ,ନାଲିପଦ୍ମ,ନାଲିକଇଁ ।

ରକ୍ତସର୍ଷପ—ବି.(ରକ୍ତ+ସର୍ଷପ)ରକ୍ତବର୍ଣ୍ଣ ସର୍ଷପ, ସାଧାରଣ ସୋରିଷ ।

ରକ୍ତସହା—ସ୍ତ୍ରୀ. ବି. ରକ୍ତାମ୍ଳାନ ପୁଷ୍ପବୃକ୍ଷ ।

ରକ୍ତସାର—ବି. ରକ୍ତଚନ୍ଦନ, ପତଙ୍ଗ, ଦକମଗନ୍ଧ, ଅମ୍ଳବେତସ, ରକ୍ତଖଦିର, ବାରାହୀକନ୍ଦ,ରକ୍ତ ବୀଜାସନ ବୃକ୍ଷ, ରକ୍ତ-ଶିଂଶପା, (ବିଂ) ଶୋଣିତ ସାରଯୁକ୍ତ ।

ରକ୍ତସିକ୍ତ—ବିଂ. (୩ତତ୍) ଶୋଣିତାର୍ଦ୍ର, ରକ୍ତରେ ବୁଡ଼ିଥିବା ।

ରକ୍ତସିନ୍ଧୁ—ବି. ଯୁଦ୍ଧାଦିରେ ସମୁଦ୍ରପରି ବୋହିବା ରକ୍ତସ୍ରୋତ ।

ରକ୍ତସୂ—ସ୍ତ୍ରୀ.ବି. (ରକ୍ତ+ସୂ+କ୍ୱିପ୍)ଶରୀରସ୍ଥ ରସଧାତୁ ।

ରକ୍ତସୌଗନ୍ଧିକ—କ୍ଲୀ.ବି.(ରକ୍ତ+ସୌଗନ୍ଧିକ) ରକ୍ତପଦ୍ମ ।

ରକ୍ତସ୍ତମ୍ଭନ—ବି. (୬ତତ୍) ବହୁଥିବା ରକ୍ତର ବେଗ ବନ୍ଦ କରିବା ।

ରକ୍ତସ୍ରୁଜ୍ୱର—ବି. ରକ୍ତଗତ ଜ୍ୱରବିଶେଷ

ରକ୍ତମ୍ନାତ—ବିଂ. (୩ତତ୍) ଯେ ରକ୍ତରେ ଗାଧୋଇଲାଭଳି ରକ୍ତ ଜର୍ଜର ହୋଇ-ଅଛି, (ସ୍ତ୍ରୀ) ରକ୍ତମ୍ନାତା ।

ରକ୍ତସ୍ନାନ—ବି. (୩ତତ୍) ଦେହଯାକ ରକ୍ତାକ୍ତ ହେବା ଅବସ୍ଥା ।

ରକ୍ତସ୍ରାବ—ପୁଂ.ବି. (ରକ୍ତ+ସ୍ରୁ+ଅ) ବେତସାମ୍ଳ,ଅଶ୍ୱର ନେତ୍ରରୋଗବିଶେଷ, (୬ତତ୍)ଦେହରୁ ରକ୍ତଧାର ବୋହିବା, ରକ୍ତ ପତନ ।

ରକ୍ତସ୍ରୁତି—ସ୍ତ୍ରୀ.ବି. (୬ତତ୍) ରକ୍ତସ୍ରାବ ।

ରକ୍ତସ୍ରୋତଃ—ବି. (୬ତତ୍) ରକ୍ତନଦୀ, ସ୍ରୋତ ଆକାରରେ ପ୍ରବାହିତ ରକ୍ତ ।

ରକ୍ତହଂସା—ସ୍ତ୍ରୀ.ବି. ରାଗିଣୀବିଶେଷ ।

ରକ୍ତହଗା—ଗ୍ରା.ବି. ରକ୍ତଝାଡ଼ା ଦେଖ ।

ରକ୍ତହର-ପୁଂ.ବି.(ରକ୍ତ+ହୃ+ଅ)ଭଲ୍ଲାତକ, ଭାଲିଆ, (ବିଂ) ଯାହା ଦେହରୁ ରକ୍ତ ଶୁଖାଇଦିଏ, ରକ୍ତଘ୍ନ ଦ୍ରବ୍ୟମାତ୍ର ।

ରକ୍ତହୀନ-ବିଂ.(୩ତତ୍)ଯାହାର ଦେହରେ ରକ୍ତ ନାହିଁ, ନିରକ୍ତିଆ, ଯେଉଁ ବିପ୍ଳବାଦରେ ନରହତ୍ୟା ହୁଏ ନାହିଁ ।

ରକ୍ତହୀନତା-ବି. ଦେହରେ ପ୍ରୟୋଜନୀୟ ରକ୍ତର ପରିମାଣ କମିଯିବା ।

ରକ୍ତା—ସ୍ତ୍ରୀ. ବିଂ. (ରକ୍ତ+ଆ) ରକ୍ତ ଦେଖ, (ବି) ଗୁଞ୍ଜା, କାଇଁଚ, ଲକ୍ଷା, ମଞ୍ଜିଷ୍ଠା,ଲକ୍ଷଣାକନ୍ଦ,ବଧୂ, ଉଷ୍ଟ୍ର,କାଣ୍ଡୀ-ନାମକ ପୁଷ୍ପବିଶେଷ, କୃଚ୍ଛ୍ର ସାଧ୍ୟ ଲତା-ବିଶେଷ, ନାଲି ଦାସକେରେଣ୍ଟା, ରକ୍ତ-ପୁଷ୍ପୀ ଦେଖ, ନାଲିଟିମ୍ବ, ଏକପ୍ରକାର କୀଟ ବା ମାକଡସା, (ସଙ୍ଗୀତ) ୫ମ ସ୍ୱରର ୪ଟି ଶ୍ରୁତି ମଧ୍ୟରୁ ୨ୟ ଶ୍ରୁତି, କାନ ପାଖର ଏକ ଶିରା, (ରଞ୍ଜ୍+କ.ତ୍ତ) ଅନୁରକ୍ତ, ରଙ୍ଗ କରିବା ବ୍ୟକ୍ତି,(ସ୍ତ୍ରୀ) ରକ୍ତୀ ।

ରକ୍ତାକାର—ପୁଂ. ବି. (ରକ୍ତ+ଆକାର) ପ୍ରବାଳ, ପୋହଳା ।

ରକ୍ତାକ୍ତ—ବି(ରକ୍ତ+ଆକ୍ତ)ରକ୍ତଚନ୍ଦନ, (ବିଂ) ଶୋଣିତ ମିଶ୍ରିତ, ରକ୍ତରଞ୍ଜିତ, ନାଲିରଙ୍ଗ କରାଯାଇଥିବା ।

ରକ୍ତାକ୍ଷ—ପୁଂ. ବି. (ବ.ବ୍ରୀ) କପୋତ,

କ୍ରୂରବ୍ୟକ୍ତି, ସାରସପକ୍ଷୀ, ରୋହିମାଛ, ମହିଷ,ପାରାବତ, ଚକୋରପକ୍ଷୀ, ଅଜ-ବିଶେଷ, (ପୁଂ. ବିଂ) ରକ୍ତବର୍ଣ୍ଣ ଚକ୍ଷୁ-ବିଶିଷ୍ଟ,କ୍ରୂର, ଖଳ,ଅତ୍ୟାସକ୍ତ,ଅଭଦ୍ର, (ସ୍ତ୍ରୀ) ରକ୍ତାକ୍ଷୀ । [ ପୋହଳା ।

ରକ୍ତାଙ୍କ—ପୁଂ. ବି. ( ବି.ଗ୍ରା ) ପ୍ରବାଳ,

ରକ୍ତାଙ୍ଗ—ପୁଂ.ବି.(ରକ୍ତ+ଅଙ୍ଗ)ମଙ୍ଗଳ ଗ୍ରହ, ପ୍ରବାଳ, ମତ୍କୁଣ, ଢଳୁଣି, କୁଷ୍ଠରୋଗବିଶେଷ, ମଣ୍ଡଳ, ନାଗ-ବିଶେଷ, କୁଙ୍କୁମ, ରକ୍ତଚନ୍ଦନ, ଗ୍ଧର-ପୋକ, ସୂର୍ଯ୍ୟ ବା ଚନ୍ଦ୍ରଙ୍କ ମଣ୍ଡଳ, କମଲାଗୁଣ୍ଡି, (ପୁଂ. ବିଂ. ବି.ଗ୍ରା) ରକ୍ତ-ବର୍ଣ୍ଣ ଦେହବିଶିଷ୍ଟ, (ସ୍ତ୍ରୀ) ରକ୍ତାଙ୍ଗା(ଙ୍ଗୀ)

ରକ୍ତାଙ୍ଗୀ—ସ୍ତ୍ରୀ.ବି(ରକ୍ତାଙ୍ଗ+ଈ)ଜୀବନ୍ତୀ, କଣ୍ଟୁକୀ, ମଞ୍ଜିଷ୍ଠା, ନକୁଲା ।

ରକ୍ତାତକା—ସ୍ତ୍ରୀ. ବି. ନାଲି ହରଡ଼ ।

ରକ୍ତାଣ୍ଡ—ପୁଂ. ବି. ଅଶ୍ୱର ଅଣ୍ଡରୋଗ-ବିଶେଷ ।

ରକ୍ତାତ(ତି)ସାର—ପୁଂ. ବିଂ. (ରକ୍ତ+ଅତସାର) ନାଲରକ୍ତ ଝାଡ଼ା ରୋଗୀ, ଯେଉଁ ଉଦରାମୟ ରୋଗରେ ରକ୍ତମିଶ୍ରିତ ମଳ ବାହାରେ ।

ରକ୍ତାଧର—ବି.(କ.ଧା) ରକ୍ତବର୍ଣ୍ଣ ଓଠ, (ପୁଂ.ବିଂ.ବି.ଗ୍ରା) ଯାହାର ଓଠ ଲାଲ ।

ରକ୍ତାଧରା—ସ୍ତ୍ରୀ.ବି.କିନ୍ନରୀ,(ସ୍ତ୍ରୀ.ବିଂ)ରକ୍ତା-ଧରର ସ୍ତ୍ରୀଲିଙ୍ଗ ।

ରକ୍ତାଧାର—ପୁଂ. ବି. (ଷତତ୍ର)ଚର୍ମ ।

ରକ୍ତାଧିକ୍ୟ—ବି. ଦେହରେ ରକ୍ତର ବହୁଳତା, ମେଦୋବୃଦ୍ଧି ରୋଗ ।

ରକ୍ତାଧିମନ୍ଥ—ପୁଂ. ବି. (କ.ଧା) ରୋଗ-ବିଶେଷ, ଆଖିଧରା ରୋଗ ।

ରକ୍ତାନ୍ନ—ଗ୍ରା.ବି. ମୃତାହର ଦଶାହଦନ ମୃତ ବ୍ୟକ୍ତିର ଘରେ କୁଟୁମ୍ବମାନେ ଭୋଜନ କରିବା ଅନ୍ନ ।

ରକ୍ତାପରାଜିତା—ସ୍ତ୍ରୀ.ବି.(ରକ୍ତ+ଅପରା-ଜିତା) ଲାଲ ଅପରାଜିତା ।

ରକ୍ତାପହ—ବି. (ରକ୍ତ+ଅପ୍+ହା+କ.ଅ) ଗନ୍ଧବୋଲ, ଗୁଗ୍ଗୁଳ ।

ରକ୍ତାପାମାର୍ଗ—ପୁଂ.ବି(ରକ୍ତ+ଅପାମାର୍ଗ) ରଙ୍ଗ ଅପାମାର୍ଗ ଗୁଳ୍ମ ।

ରକ୍ତାବ୍ଜ—କ୍ଲୀ. ବି. (ରକ୍ତ+ଅବ୍ଜ) ରକ୍ତ-କମଳ, ନାଲିପଦ୍ମ ବା କଇଁ ।

ରକ୍ତାଭ—ତ୍ରି. ବିଂ. (ବି.ଗ୍ରା) ରକ୍ତପର ଆଭାବିଶିଷ୍ଟ,ଗୋଲପୀ,ଈଷତ୍ ନାଲିଆ. (ସ୍ତ୍ରୀ) ରକ୍ତାଭା, (ବି) ସାଧବାଣୀପୋକ, ଇନ୍ଦ୍ରଗୋପକୀଟ ।

ରକ୍ତାଭା—ବି.(ରକ୍ତ+ଆଭା)କ.ଧା; ରକ୍ତ-ବର୍ଣ୍ଣ, (ବି.ଗ୍ରା) ନାଲି ମନ୍ଦାର ।

ରକ୍ତାଭିଷ୍ୟନ୍ଦ—ପୁଂ. ବି. ନେତ୍ର ରୋଗ-ବିଶେଷ, ଅଶ୍ରୁ ବର୍ଷଣଜନିତ ନୟନ ଯୁଗଳର ରକ୍ତିମା ।

ରକ୍ତାଭ୍ର—କ୍ଲୀ. ବି.(କ.ଧା) ରଙ୍ଗଅଭ୍ର, ନାଲି ମେଘଜାଲ ।

ରକ୍ତାମାଶୟ—ବି. ରକ୍ତାତସାର ଦେଖ ।

ରକ୍ତାମ୍ବର—କ୍ଲୀ.ବି.(କ.ଧା) ରକ୍ତରଞ୍ଜିତ ବସ୍ତ୍ର, କଷାୟବସ୍ତ୍ର, କଷାୟ ବସନଧାରୀ ସନ୍ୟାସୀ,(ପୁଂ.ବିଂ)ରକ୍ତବସ୍ତ୍ର ପରିହିତ, (ସ୍ତ୍ରୀ) ରକ୍ତାମ୍ବରା । [ ପ୍ଲାବିତ ।

ରକ୍ତାମ୍ବୁପୂର—ବି.ରକ୍ତନଦୀ,ରକ୍ତସ୍ରୋତଃ-

ରକ୍ତାମ୍ବୁରୁହ—କ୍ଲୀ.ବି. ନାଲିପଦ୍ମ ବା କଇଁ ।

ରକ୍ତାମ୍ର—ପୁଂ.ବି(ରକ୍ତ+ଆମ୍ର)କୋଷାମ୍ର, କୁସୁମ, ଫଳବୃକ୍ଷବିଶେଷ ।

ରକ୍ତାମ୍ଳାତକ—ପୁଂ. ବି. ରକ୍ତଝିଣ୍ଟୀ କ୍ଷୁପ, ନାଲି ଦାସକେରେଣ୍ଟା ।

ରକ୍ତାମ୍ଳାନ—ବି. ନାଲି କେଶଦୁଦୁରା, ·ରକ୍ତଝିଣ୍ଟୀ ।

ରକ୍ତାରକ୍ତି—ଗ୍ରା. ବି. ପରସ୍ପର ରକ୍ତପାତ ପୂର୍ବକ ଦ୍ୱନ୍ଦ୍ୱ ଯୁଦ୍ଧ ।

ରକ୍ତାରୁଣ—ବିଂ. ରକ୍ତପର ଲାଲବର୍ଣ୍ଣ ।

ରକ୍ତାରୁ—ପୁଂ. ବି. ମହାରାଷ୍ଟ୍ରୀ କ୍ଷୁପ ।

ରକ୍ତାର୍କ—ପୁଂ.ବି. ଅରୁଣାର୍କ ବୃକ୍ଷ, ନାଲି ଅରଖଗଛ । [ ପୀଡ଼ା ।

ରକ୍ତାର୍ତ୍ତି—ସ୍ତ୍ରୀ.ବିଂ. ଶୋଣିତାମୟ,ରକ୍ତ-

ରକ୍ତାର୍ବୁଦ—ବି.ରକ୍ତ କ୍ଷରଣଜନିତ ମୁଷ୍କ-ସ୍ଫୀତି, ରକ୍ତସ୍ରାବୀ ଆବୁ ।

ରକ୍ତାର୍ମ—ବି(ରକ୍ତ+ଅର୍ମନ୍)ଆଖିଡ଼ୋଳା ଉପରେ ମାଂସ ଜମା ହୋଇ ନାଲି କଇଁପର ଦେଖାଯିବା ରୋଗ ।

ରକ୍ତାର୍ଶଃ—ବି. ଅର୍ଶରୋଗବିଶେଷ ।

ରକ୍ତାଲତା—ସ୍ତ୍ରୀ. ବି. ମଞ୍ଜିଷ୍ଠା ।

ରକ୍ତାଳୁ—ପୁଂ ବି. (ରକ୍ତ+ଆଳୁ) ରକ୍ତ-କନ୍ଦ, ନାଲିଆଳୁ ।

ରକ୍ତାଲ୍ପତା—ବି. (ଷତତ୍ର) ରକ୍ତସ୍ୱଳ୍ପତା, ଦେହରେ ରକ୍ତର ନ୍ୟୂନତା ବା ହ୍ରାସ ।

ରକ୍ତାବଶୋଧକ—ବିଂ. (ଷତତ୍ର) ରକ୍ତ ପ୍ରବାହକୁ ଶୋଧ କରିବାକୁ ସମର୍ଥ ।

ରକ୍ତାବସେଚନ—ବି(ରକ୍ତ+ଅବସେଚନ) ରକ୍ତମୋକ୍ଷଣ ଦେଖ ।

ରକ୍ତାଶୟ—ବି.(ଷତତ୍ର)ରକ୍ତର ଆଧାର-ସ୍ଥାନ, ହୃତ୍ପିଣ୍ଡ ।

ରକ୍ତାଶୋକ—ପୁଂ. ବି. ଅଶୋକବୃକ୍ଷ ।

ରକ୍ତାଶ୍ୱମାରପୁଷ୍ପ—କ୍ଲୀ.ବି. ରକ୍ତକରବୀର ପୁଷ୍ପ, ନାଲି କନିଅର ଫୁଲଗଛ ।

ରକ୍ତାଶ୍ୱାରି—ପୁଂ. ବି. ରକ୍ତାଶ୍ୱମାରପୁଷ୍ପ ଦେଖ ।

ରକ୍ତାସ୍ରାବ—ପୁଂ. ବି. (ରକ୍ତ+ଆସ୍ରାବ) ନେତ୍ରରୋଗବିଶେଷ, ରକ୍ତମୋକ୍ଷଣ, ରକ୍ତକ୍ଷରଣ ।

ରକ୍ତି—ସ୍ତ୍ରୀ.ବି. (ରଞ୍ଜ+ଭା.ତି) ଅନୁରାଗ, ସ୍ନେହ, ଭକ୍ତି, ଆସକ୍ତି,ପରିମାଣବିଶେଷ, ରତିଗୁଞ୍ଜା, କାଇଁଚ, ମନୋହାରିତା ।

ରକ୍ତିଆ—ଗ୍ରା. ବିଂ. ରକ୍ତାଭ, ରକ୍ତଯୁକ୍ତ, ରକ୍ତପୂର୍ଣ୍ଣ ।

ରକ୍ତିକା—ସ୍ତ୍ରୀ. ବି. (ରକ୍ତ+କ+ଆ) ଗୁଞ୍ଜିକା, ସର୍ଷପ, କାଇଁଚ ପରିମାଣ, ରତିଓଜନ ।

ରକ୍ତିମା—ପୁଂ.ବି(ରକ୍ତ+ଇମନ୍)ଶୋଣିତ ବର୍ଣ୍ଣତ୍ୱ, ନାଲିଆଭା, ନାଲିରଙ୍ଗ ।

ରକ୍ତିମାନ୍—ପୁଂ.ବିଂ. ମୋହକର, ପ୍ରିୟ, ଚିତ୍ତହର ।

ରକ୍ତେକ୍ଷଣ—ପୁଂ.ବିଂ. (ବି.ଗ୍ରା) ରକ୍ତବର୍ଣ୍ଣ ଚକ୍ଷୁବିଶିଷ୍ଟ, (ସ୍ତ୍ରୀ) ରକ୍ତେକ୍ଷଣା ।

ରକ୍ତେକ୍ଷୁ—ପୁଂ.ବି. (ରକ୍ତ+ଇକ୍ଷୁ)ଲାଲ ଆଖୁ, କଜଳା ଆଖୁ ।

ରକ୍ତୈରଣ୍ଡ—ପୁଂ. ବି. (ରକ୍ତ+ଏରଣ୍ଡ) ନାଲିଗବ ।

ରକ୍ତୈକାରୁ—ପୁଂ.ବି. (ରକ୍ତ+ଏକାରୁ)

ଇନ୍ଦ୍ରବାରୁଣୀଲତା, ମହାକାଳଲତା ।

**ରକ୍ତୋଚ୍ଚିଣ୍ଟା**—ସ୍ତ୍ରୀ. ବ. ଶ୍ୱେତଗୁଞ୍ଜା ।

**ରକ୍ତୋତ୍ପଳ**—ପୁଂ. ବ. (ରକ୍ତ+ଉତ୍ପଳ) ରକ୍ତମାଳ, କୋକନଦ, ଶାଳ୍ମଳୀବୃକ୍ଷ ।

**ରକ୍ତୋତ୍ପଳାଭ**—ପୁଂ.ବ.(ବ.ବ୍ରୀ)ଶୋଣବର୍ଣ୍ଣ, (ବିଂ) ରକ୍ତୋତ୍ପଳ ପରି କାନ୍ତିବିଶିଷ୍ଟ ।

**ରକ୍ତୋଦର**—ପୁଂ.ବ. (ବ.ବ୍ରୀ)ରୋହିତମତ୍ସ୍ୟ, ବଗୁଡ଼ିବିଶେଷ, (ବିଂ) ଯାହାର ପେଟ ନାଲିଆ (ସ୍ତ୍ରୀ) ରକ୍ତୋଦରୀ ।

**ରକ୍ତୋପଦଂଶ**—ବ.(କ.ଧା)ରକ୍ତ ବିକୃତି ଯୋଗୁଁ ଉତ୍ପନ୍ନ ଗରମି ରୋଗ ।

**ରକ୍ତୋପଳ**—କ୍ଲୀ. ବ. (ରକ୍ତ+ଉପଳ) ଗିରିମୃତ୍ତିକା, ଗେରୁମାଟି ।

**ରକ୍ତୌଦନ**—କ୍ଲୀ.ବ.ରକ୍ତ ଶାଳି ଧାନ ଭାତ, ଆସକ୍ତ କରଞ୍ଜିତ ଭାତ ।

ରକ୍ଷ—ପୁଂ. ବ. (ରକ୍ଷ+ଭା.ଅ) ପାଳନ, ପରିତ୍ରାଣ, ଜଗୁଆଳି, ଲକ୍ଷା, (ପୁଂ.ବିଂ. କ.ଅ) ରକ୍ଷାକର୍ତ୍ତା, ରକ୍ଷକ ।

ରକ୍ଷଈଶ—ପୁଂ. ବ. (୬ତତ୍) ରାବଣ ।

**ରକ୍ଷଃ**—ବ. (ରକ୍ଷ+ଅସ୍) ରାକ୍ଷସ ।

**ରକ୍ଷଃକୁଳ**—ବ. (୬ତତ୍) ରାକ୍ଷସବଂଶ, ରାକ୍ଷସସମୂହ । [ ଦେଖ ।

**ରକ୍ଷଃପତି**—ବ. ( ୬ତତ୍ ) ରକ୍ଷୋନାଥ

ରକ୍ଷଃପାଶ—ବ. (ରକ୍ଷ+ପାଶ) ଅଧମ ରାକ୍ଷସ ।

ରକ୍ଷଃସଭ—ବ. (୬ତତ୍) ରାକ୍ଷସସମୂହ ।

ରକ୍ଷକ—ପୁଂ. ବିଂ. ( ରକ୍ଷ+କ.ଅକ ) ରକ୍ଷାକର୍ତ୍ତା, ପାଳନକର୍ତ୍ତା, ତ୍ରାଣକର୍ତ୍ତା, (ସ୍ତ୍ରୀ) ରକ୍ଷିକା, (ବି)ଅଭିଭାବକ,ପାଳକ, ତ୍ରାଣକାରୀ ବ୍ୟକ୍ତି, ଜଗୁଆଳି, ମାରଫତଦାର୍, ଶାସକ ।

ରକ୍ଷକାମ୍ବା—ସ୍ତ୍ରୀ.ବ.ବେଦାନ୍ତ ଭାଷ୍ୟକାର ରାମାନୁଜଙ୍କ ପତ୍ନୀ ।

ରକ୍ଷଣ—କ୍ଲୀ.ବ. (ରକ୍ଷ+ଭା.ଅନ)ରକ୍ଷା, ପାଳନ, ପରିତ୍ରାଣ, ଆଶ୍ରୟଦାନ, ପାଖରେ ରଖିବା, ( କ.ଅନ ) ବିଷ୍ଣୁ, (ବିଂ) ରକ୍ଷକ । [ ଦେଖ ।

**ରକ୍ଷଣକର୍ତ୍ତା**—ପୁଂ. ବିଂ. ଓ ବ. ରକ୍ଷକ

ରକ୍ଷଣା—ବ. ( ରକ୍ଷ+ଭା.ଅନ+ଆ ) ରକ୍ଷଣ, ରକ୍ଷାକରିବା ।

ରକ୍ଷଣାବେକ୍ଷଣ—ବ. (ରକ୍ଷଣ+ଅବେକ୍ଷଣ) ପାଳନ ଓ ତତ୍ତ୍ୱାବଧାରଣ,ଜଗାରଖା ।

ରକ୍ଷଣାରକ—ପୁଂ. ବ. ମୂତ୍ରକୃଚ୍ଛ୍ର ରୋଗ ।

ରକ୍ଷଣାର୍ହ—ବିଂ.(ରକ୍ଷଣ+ଅର୍ହ) ରକ୍ଷିତ ହେବାର ଯୋଗ୍ୟ ।

ରକ୍ଷଣି(ଣୀ)—ସ୍ତ୍ରୀ. ବ. (ରକ୍ଷଣ+ଇ,ଈ) ତ୍ରାୟମାଣା ଲତା, ଲଗାମ ।

ରକ୍ଷଣୀୟ—ତ୍ରି. ବିଂ. (ରକ୍ଷ୍+ମ.ଅନୀୟ) ପାଳନୀୟ, ରକ୍ଷଣାର୍ହ, ଆଶ୍ରୟାର୍ହ ।

ରକ୍ଷତ୍—ପୁଂ. ବିଂ. (ରକ୍ଷ+କ.ଅତ୍)ଯେ ରକ୍ଷାକରେ, (ସ୍ତ୍ରୀ) ରକ୍ଷନ୍ତୀ ।

ରକ୍ଷନପୁଣ—ଗ୍ରା. ବ. ରାକ୍ଷସଶ୍ରେଷ୍ଠ ।

ରକ୍ଷପାଳ—ପୁଂ. ବ.(ରକ୍ଷ+ପାଳ+କ. ଅ) ରକ୍ଷାକର୍ତ୍ତା, ରକ୍ଷକ, ଜଗୁଆଳି

ରକ୍ଷଭଗବତୀ—ସ୍ତ୍ରୀ. ବ. ପ୍ରଜ୍ଞାପାରମିତା ।

ରକ୍ଷୟିତା—ପୁଂ. ବିଂ. ( ରକ୍ଷ+କ.ତୃ ) ରକ୍ଷକ ଦେଖ, ଜଗିବାବାଲା, (ସ୍ତ୍ରୀ)ରକ୍ଷୟିତ୍ରୀ । [ ମାତା ।

ରକ୍ଷରାଜା—ସ୍ତ୍ରୀ. ବ. ବାଳୀ ଓ ସୁଗ୍ରୀବଙ୍କ

ରକ୍ଷରାଜ—ଗ୍ରା.ବ. ଅସୁରମାନଙ୍କ ରାଜା ।

ରକ୍ଷସ୍—ବ. (ରକ୍ଷ+ଅପା.ଅସ୍)ରାକ୍ଷସ ।

ରକ୍ଷସୃଷ୍ଟି—ଗ୍ରା. ବ. ରାକ୍ଷସବଂଶ, ରାକ୍ଷସସମୂହ ।

ରକ୍ଷସ୍ତ୍ୱ—କ୍ଲୀ. ବ. (ରକ୍ଷସ+ତ୍ୱ)ରାକ୍ଷସଭାବ, ରାକ୍ଷସ ପ୍ରକୃତି, ରାକ୍ଷସଜନୋଚିତ ନିଷ୍ଠୁରତା ।

ରକ୍ଷସ୍ୟ—ତ୍ରି. ବିଂ. (ରକ୍ଷସ୍+ଯ) ରକ୍ଷସମ୍ବନ୍ଧୀୟ,ରାକ୍ଷସର ଉପଯୋଗୀ ।

ରକ୍ଷସ୍ୱୀ—ତ୍ରି. ବିଂ. ରାକ୍ଷସ ସମ୍ପର୍କ, ମନ୍ଦଭାବାପନ୍ନ,ଦୋଷଯୁକ୍ତ,ବଳବାନ୍,ଶକ୍ତିସମ୍ପନ୍ନ ।

ରକ୍ଷା—ସ୍ତ୍ରୀ. ବ. ( ରକ୍ଷ+ଭା.ଅ+ଆ ) ରକ୍ଷଣ, ଭସ୍ମ, ପାଉଁଶ, ପାଳନ, ଲକ୍ଷା, ଲାକ୍ଷ, (ଣ.ଅ) ରାଖୀ. ହାତରେ ବନ୍ଧାଯିବା ତାଗା, ଅବ୍ୟାହତି, ବିପଦାଦିରୁ ନିଷ୍କୃତି, ତ୍ରାଣ,ମୁକ୍ତି,ଜଗିବା, ଆଶ୍ରୟଦେବା, ତତ୍ତ୍ୱାବଧାରଣ, ରକ୍ଷାକବଚ ।

ରକ୍ଷାକବଚ—ବ. (କ.ଧା) ଶତ୍ରୁର ଆକ୍ରମଣରୁ ରକ୍ଷା ପାଇବା ପାଇଁ ବ୍ୟବହୃତ ସାଞ୍ଜୁ, ବ୍ୟାଧିଆଦିରୁ ରକ୍ଷା ପାଇବା ନିମନ୍ତେ ଧାରଣ କରାଯିବା ଅଭିମନ୍ତ୍ରିତ ତେଉଁରିଆ, ରାଖି ଦେଖ ।

ରକ୍ଷାକର—ପୁଂ.ବିଂ. (ରକ୍ଷା+କୃ+ଅ) ରକ୍ଷାକାରୀ ଦେଖ ।

ରକ୍ଷାକରଣ--ବ.ବିପଦରୁ ଉଦ୍ଧାରକରଣ ।

ରକ୍ଷାକରଣମନ୍ତ୍ର—ବ. (କ.ଧା) ରକ୍ଷାମନ୍ତ୍ର ଦେଖ ।

ରକ୍ଷାକରଣ୍ଡ(କ)—କ୍ଲୀ. ବ. ସୁବର୍ଣ୍ଣାଦି କବଚବିଶେଷ, ରକ୍ଷାକବଚ ଦେଖ ।

ରକ୍ଷାକରିବା—ଗ୍ରା.କ୍ରି.ବିପଦରୁ ବଞ୍ଚାଇବା, ଜଗିବା, ହେପାଜତକରିବା, ସାଇତିବା,(ଲ.ଅର୍ଥ)ଉତ୍ତମ ବା ମଙ୍ଗଳମୟ କାର୍ଯ୍ୟ କରିବା ।

ରକ୍ଷାକାଣ୍ଡ—ବ. ଅମଙ୍ଗଳରୁ ରକ୍ଷଣାର୍ଥ ଦୂର୍ବାଦି ଗୁଚ୍ଛ ।

ରକ୍ଷାକାରୀ—ପୁଂ. ବ. (ରକ୍ଷା+କୃ+କ. ଇନ୍) ରକ୍ଷକ, ତ୍ରାଣକର୍ତ୍ତା, ଯମ, (ପୁଂ. ବିଂ) ଯେ ରକ୍ଷାକରେ, (ସ୍ତ୍ରୀ)କାରିଣୀ ।

ରକ୍ଷାଗୃହ—କ୍ଲୀ. ବ. (୬ତତ୍) ସୂତିକାଗାର, ଅନ୍ତୁଡ଼ିଶାଳ ।

ରକ୍ଷାଧିକୃତ—ତ୍ରି. ବିଂ. ରକ୍ଷା କରିବାକୁ ରାଜାଙ୍କ ଅଧିକାର ପାଇଥିବା ଶାନ୍ତିରକ୍ଷକ, (ବି) ରାଜାଙ୍କ ନିଯୁକ୍ତ ଶାସନକର୍ତ୍ତା ।

ରକ୍ଷାପଞ୍ଚମୀ—ବ.(କ.ଧା) ରେଖା ପଞ୍ଚମୀ, ଭାଦ୍ରବ କୃଷ୍ଣପଞ୍ଚମୀ ।

ରକ୍ଷାପଟ୍ଟାଳିକା—ବ.ରକ୍ଷାକବଚ ଦେଖ ।

ରକ୍ଷାପତି—ପୁଂ. ବ. ରକ୍ଷାକର୍ତ୍ତା, ନଗର ନିବାସୀଙ୍କ ରକ୍ଷାର୍ଥ ନିଯୁକ୍ତ ରାଜକର୍ମଚାରୀବିଶେଷ ।

ରକ୍ଷାପତ୍ର—ବ.(କ.ଧା) ଭୂର୍ଜବୃକ୍ଷ ଓ ତ୍ୱକ୍, ଶ୍ୱେତ ସର୍ଷପ ।

ରକ୍ଷାପାଇବା—ଗ୍ରା.କ୍ରି.ବିପଦାଦିରୁ ଉଦ୍ଧାର ଲାଭକରିବା ।

ରକ୍ଷାପୁରୁଷ—ବ.(କ.ଧା) ପ୍ରହରୀ, ରକ୍ଷା-

ଜଗି, ଜଗୁଆଳ, ଚଉକିଦାର ।
ରକ୍ଷାପୂର୍ଣ୍ଣିମା—ବି. ଶ୍ରାବଣପୂର୍ଣ୍ଣିମା, ଗହ୍ମାପୂର୍ଣ୍ଣିମା ।
ରକ୍ଷାପେକ୍ଷକ—ପୁଂ.ବି.ପ୍ରହରୀ, ଅନ୍ତଃପୁର ରକ୍ଷୀ, ଅଭିନେତା, ନଟ, ଦ୍ୱାରୀ, ନପୁଂସକ ବ୍ୟକ୍ତି, ଷଣ୍ଢ, ଅପ୍ରାକୃତିକ ଉପାୟରେ ଇନ୍ଦ୍ରିୟ ବୃତ୍ତି ଚରିତାର୍ଥ କରିବା ପାଇଁ ରକ୍ଷିତ ବାଳକ ।
ରକ୍ଷାପ୍ରଦୀପ—ପୁଂ. ବି. (କ.ଧା) ଭୂତଯୋନିର ଶକ୍ତି ନାଶାର୍ଥ ରକ୍ଷିତ ବର୍ତ୍ତିକା ।
ରକ୍ଷାଭୂଷଣ—କ୍ଲୀ. ବି. (କ.ଧା)କବଚଗୁଟିକାଯୁକ୍ତ ଅଳଂକାର ବା ଧାରଣୀ ।
ରକ୍ଷାଭ୍ୟଧିକୃତ—ବି. ବିଂ. ରକ୍ଷାଧିକୃତ ଦେଖ ।
ରକ୍ଷାମଙ୍ଗଳ—କ୍ଲୀ.ବି(କ.ଧା)ଅପଦେବତା ପ୍ରକୋପ ନିବାରକ ମାଙ୍ଗଳିକ କ୍ରିୟାବିଶେଷ ।
ରକ୍ଷାମଣି—ପୁଂ. ବି. (କ.ଧା) ୧୦୦ ଗ୍ରହ ବା ଭୂତ ପ୍ରେତାଦିଙ୍କ ପ୍ରକୋପରୁ ରକ୍ଷା ପାଇବା ପାଇଁ ପରିହିତ ରତ୍ନ, ମଣିବିଶେଷ ।
ରକ୍ଷାମନ୍ତ୍ର—ବି. (କ.ଧା) ପ୍ରାଣ ରକ୍ଷାପାଇଁ ବ୍ୟବହୃତ ମନ୍ତ୍ର, ଯେଉଁ ମନ୍ତ୍ର ବଳରେ ଅନିଷ୍ଟରୁ ବା ଅମଙ୍ଗଳରୁ ରକ୍ଷା ମିଳେ ।
ରକ୍ଷାମିଳିବା—ଗ୍ରା. ବି. ବିପଦରୁ ଅବ୍ୟାହତି ଲାଭ । [ ଦେଖ ।
ରକ୍ଷାରତ୍ନ—କ୍ଲୀ. ବି. (କ.ଧା) ରକ୍ଷାମଣି
ରକ୍ଷାରତ୍ନପ୍ରଦୀପ—ବି. ରତ୍ନଖଚିତ ରକ୍ଷାପ୍ରଦୀପ । [ ରାଖି ଦେଖ ।
ରକ୍ଷାବନ୍ଧନ—ବି. ରକ୍ଷାକବଚ ଦେଖ,
ରକ୍ଷାସର୍ଷପ—ପୁଂ. ବି. ଭୂତପ୍ରେତାଦି ନିବାରକ ଅଭିମନ୍ତ୍ରିତ ସୋରିଷ ।
ରକ୍ଷାସୂତ୍ର—ବି. ( କ.ଧା ) ଆତ୍ମରକ୍ଷାର୍ଥ ହାତରେ ବନ୍ଧାଯିବା ଅଭିମନ୍ତ୍ରିତ ସୂତା ।
ରକ୍ଷାହେଲା—ଗ୍ରା. ଅ. ଈଶ୍ୱର ବିପଦରୁ ଉଦ୍ଧାର କଲେ, ମନୁଷ୍ୟଙ୍କୁ ଉପସ୍ଥିତ ବିପଦରୁ ମୁକ୍ତି ଲାଭ ମିଳିଲା ।
ରକ୍ଷି—ବିଂ. (ରକ୍ଷ+କ.ଇ) ରକ୍ଷାକାରୀ, ରକ୍ଷକ, (ବି) ପହରାବାଲା ।
ରକ୍ଷିକ—ପୁଂ. ବି. ପ୍ରହରୀ, ରକ୍ଷକ, ପରିଦର୍ଶକ, (ବିଂ) ରକ୍ଷାକାରୀ,(ସ୍ତ୍ରୀ)ରକ୍ଷିକା ।
ରକ୍ଷିକା—ସ୍ତ୍ରୀ.ବି ( ରକ୍ଷ+କ+ଆ)ରକ୍ଷାରକ୍ଷଣ,ରକ୍ଷାକବଚ ଦେଖ, ପହରାବାଲୀ ।
ରକ୍ଷିଣୀ—ସ୍ତ୍ରୀ.ବିଂ.(ରକ୍ଷିନ୍+ଈ) ରକ୍ଷୀର ସ୍ତ୍ରୀଲିଙ୍ଗ ।
ରକ୍ଷିତ—ବି. ବିଂ. (ରକ୍ଷି+ତ) ତ୍ରାତ, ପ୍ରତିପାଳିତ, ଅବିତ, ଗୁପ୍ତ, ଯାହାକୁ ରକ୍ଷା କରାଯାଇଅଛି, ଆଶ୍ରୟକୁ ନୀତ, (ସ୍ତ୍ରୀ) ରକ୍ଷିତା, (ବି) ବୈଦ୍ୟକ ଗ୍ରନ୍ଥବିଶେଷ, (ଗ୍ରା.ବି) କେତେକ ବଙ୍ଗୀୟଙ୍କର ବଂଶୋପାଧିବିଶେଷ ।
ରକ୍ଷିତକ—ବି. ବିଂ. ରକ୍ଷାକାରୀ ।
ରକ୍ଷିତଜଙ୍ଗଲ—ଗ୍ରା.ବି. ଅଟକ ଜଙ୍ଗଲ, ଶଳାର୍ଦ୍ଦ ଜଙ୍ଗଲ ।
ରକ୍ଷିତଫଳ—ବି. ଦ୍ରବ୍ୟ ଗୁଣଦ୍ୱାରା ବହୁକାଳ ଅବିକୃତ ଅବସ୍ଥାରେ ରଖାଯିବା ଫଳ, ଆଗୁର ।
ରକ୍ଷିତରାଜ୍ୟ—ବି. କୌଣସି ରାଜାଙ୍କର ଅଧିକାର ଭୁକ୍ତ ନ ହୋଇ ତାଙ୍କ ତତ୍ତ୍ୱାବଧାନରେ ଶାସିତ ରାଜ୍ୟ ।
ରକ୍ଷିତବ୍ୟ—ବିଂ(ରକ୍ଷ+ତବ୍ୟ)ରକ୍ଷଣୀୟ, ରକ୍ଷାର ଯୋଗ୍ୟ ।
ରକ୍ଷିତା—ପୁଂ.ବିଂ. (ରକ୍ଷ+କ.ତୃ)ରକ୍ଷା ଦେଖ, (ସ୍ତ୍ରୀ)ରକ୍ଷିତ୍ରୀ, (ସ୍ତ୍ରୀ.ବିଂ, ରକ୍ଷିତ +ଆ) ରକ୍ଷିତା, ପାଳିତା,(ବି)ପାଳିତା ବେଶ୍ୟା, ଉପପତ୍ନୀ,ଭୋଗିନୀ,ପୋଇଲୀ ।
ରକ୍ଷିତାସ୍ତ୍ରୀ—ସ୍ତ୍ରୀ. ବି. ଉପପତ୍ନୀ, ପୁରୁଷ ଯେଉଁ ସ୍ତ୍ରୀକୁ ବିବାହ ନ କରି ସ୍ତ୍ରୀରୂପେ ରଖିଥାଏ ।
ରକ୍ଷିବର୍ଗ—ପୁଂ.ବି.(୬ତତ୍) ରକ୍ଷକସମୂହ, ରାଜାଙ୍କ ରକ୍ଷକଗଣ ।
ରକ୍ଷିବୃନ୍ଦ—ବି.(୬ତତ୍)ରକ୍ଷିବର୍ଗ ଦେଖ ।
ରକ୍ଷିସୈନ୍ୟ—ବି. କୌଣସି ସ୍ଥାନ ଅଥବା କୌଣସି ଲୋକଙ୍କୁ ଶତ୍ରୁ ଆକ୍ରମଣରୁ ବା ଅନ୍ୟପ୍ରକାର ଅପକାରରୁ ରକ୍ଷା କରିବା ନିମିତ୍ତ ନିଯୋଜିତ ସୈନ୍ୟ,ପହରାବାଲା ।
ରକ୍ଷୀ—ପୁଂ.ବିଂ. (ରକ୍ଷ+କ.ଇନ୍)ରକ୍ଷାକାରୀ, ଯାହା ରକ୍ଷାକରେ, (ବି)ପ୍ରହରୀ ।
ରକ୍ଷୋଗଣ—ପୁଂ.ବି(୬ତତ୍)ରାକ୍ଷସସମୂହ ।
ରକ୍ଷୋଘ୍ନ—କ୍ଲୀ.ବି. (ରାକ୍ଷସ+ଘ୍ନ)ଭଲିଆ, କାଞ୍ଜିକ, ହିଙ୍ଗୁ, ଶ୍ୱେତସର୍ଷପ ବୃକ୍ଷ, ରାଇସୋରିଷ, (ବିଂ) ରାକ୍ଷସଘାତକ, (ସ୍ତ୍ରୀ) ରକ୍ଷୋଘ୍ନୀ ।
ରକ୍ଷୋଘ୍ନୀ—ସ୍ତ୍ରୀ.ବି (ରକ୍ଷୋଘ୍ନ+ଈ)ବଚ, ବଗ୍ର, ରକ୍ଷୋଘ୍ନର ସ୍ତ୍ରୀଲିଙ୍ଗ ।
ରକ୍ଷୋଜନନୀ—ସ୍ତ୍ରୀ. ବି. (୬ତତ୍) ରାତ୍ରି, ରାକ୍ଷସମାତା ।
ରକ୍ଷୋଽଧିଦେବତା—ସ୍ତ୍ରୀ. ବି ରକ୍ଷକୁଳଦେବତା । [ ଦେଖ ।
ରକ୍ଷୋନାଥ—ବି. (୬ତତ୍) ରକ୍ଷୋରାଜ
ରକ୍ଷୋଯୁଜ୍—ବି. ରାକ୍ଷସ ସହଚର ।
ରକ୍ଷୋରଥୀ—ପୁଂ. ବି. (୬ତତ୍) ରଥାରୋହୀ ରାକ୍ଷସବୀର । [ ରାଜା ।
ରକ୍ଷୋରାଜ—ବି(୬ତତ୍)ରାକ୍ଷସମାନଙ୍କର
ରକ୍ଷୋବଳ—ବି.(୬ତତ୍)ରାକ୍ଷସ ସେନା ।
ରକ୍ଷୋବାହ—ପୁଂ. ବି ଜାତିବିଶେଷ ।
ରକ୍ଷୋବିକ୍ଷୋଭିନୀ—ସ୍ତ୍ରୀ. ବି. ରାକ୍ଷସମାନଙ୍କର ଦେବୀମୂର୍ତ୍ତିବିଶେଷ ।
ରକ୍ଷୋହା—ପୁଂ. ବି. ( ରକ୍ଷ+ହନ୍+କ୍ୱିପ୍) ଗୁଗ୍ଗୁଳୁ, ଋଷିବିଶେଷ ( ବିଂ ) ରାକ୍ଷସହନ୍ତା ।
ରକ୍ଷ୍ମ(କ୍ଷ୍ମ)—ପୁଂ. ବି. (ରକ୍ଷ+ଔ.ମ.ନ) ରକ୍ଷଣ ଦେଖ ।
ରକ୍ଷ୍ୟ—ବି. ବିଂ. (ରକ୍ଷ୍+ଯ) ରକ୍ଷଣୀୟ, ରକ୍ଷାର ଯୋଗ୍ୟ, ରକ୍ଷିତ ହେବାରଯୋଗ୍ୟ, (ସ୍ତ୍ରୀ) ରକ୍ଷ୍ୟା ।
ରକ୍ଷ୍ୟମାଣ—ପୁଂ. ବିଂ. (ରକ୍ଷ୍ୟ+ର୍ମ.ଆନ) ରକ୍ଷିତ, ଯାହାକୁ ରକ୍ଷା କରାଯାଉଅଛି, (ସ୍ତ୍ରୀ) ରକ୍ଷ୍ୟମାଣା ।
ରଖ୍—ଗ୍ରା. କ୍ରି. (ତୁ) ରଖିବା କ୍ରିୟା କର, (ଗ୍ରା.ଅ) ଛାଡ଼, (ଅମୁକବିଷୟ ବା କଥା) ତ୍ୟାଗକର ।
ରଖ୍ନଆ—ପ୍ରା. (ସମ୍ବ)ପୁଂ. ବି. ରକ୍ଷିତ ଉପପତି,ଜାରପୁରୁଷ,(ପୁଂ.ବିଂ)ଜାରଜ ସନ୍ତାନ ।
ରଖ୍ନୀ—ପ୍ରା. (ସମ୍ବ)ସ୍ତ୍ରୀ. ବି. ରକ୍ଷିତା ସ୍ତ୍ରୀ, ଉପପତ୍ନୀ ।

**ରଖ୍‌ବା**—ଗ୍ରା.(ସମ୍ବ)କ୍ରି.ରଖିବା ଦେଖ ।

**ରଖାନ୍ତା**—ଗ୍ରା. ବିଂ. ରକ୍ଷାକାଙ୍କ୍ଷୀ ।

**ରଖା**—ଗ୍ରା. ବି. ରଖିବା, ଜଗିବା, (ବିଂ) ରକ୍ଷକ, ଜଗୁଆଳ, ରକ୍ଷିତ, ଯହିଁରେ କୌଣସି ବସ୍ତୁ ରଖାଯାଏ, ଯାହାଦ୍ୱାରା କୌଣସି ବିଷୟ ରଖାହୁଏ ।

**ରଖା(ଖେ)ଇଥୋଇନଦେବା**—ଗ୍ରା. କ୍ରି. ଅସ୍ଥିରକରି ପକାଇବା, ବ୍ୟତିବ୍ୟସ୍ତ କରିବା ।

**ରଖା(ଖେ)ଇବା**—ଗ୍ରା. କ୍ରି. ଅନ୍ୟବ୍ୟକ୍ତି ଦ୍ୱାରା ରଖିବା କ୍ରିୟା କରାଇବା,ଅପେକ୍ଷା କରାଇବା, ଜଗାଇବା ।

**ରଖା(ଖେ)ଇ**—ଗ୍ରା. ସ୍ତ୍ରୀ. ବିଂ. ରକ୍ଷିତା, ପାଳିତା, (ବି) ରକ୍ଷିତା ସ୍ତ୍ରୀ, କୌଣସି ଦ୍ରବ୍ୟକୁ ରଖିବାପାଇଁ ପ୍ରଦତ୍ତ ମଜୁରି ।

**ରଖାଥୁଆ**—ଗ୍ରା. ବି. ଜଗାରଖା, ହେପାଜତ, ସଂସାରରେ ନିରାପଦ ଅବସ୍ଥିତି, ସାଇତା କର୍ମ ।

**ରଖାରଖି**—ଗ୍ରା. ବି ଓ ବିଂ. ରଖିବା ଆଦି କର୍ମମାନ, ବହୁ ବସ୍ତୁ ସଜାଡ଼ିକରି ରଖିବା ପରସ୍ପରକୁ ରକ୍ଷାକରିବା ।

**ରଖିଆ**—ଗ୍ରା. ପୁଂ. ବି. ସ୍ତ୍ରୀଦ୍ୱାରା ସ୍ୱାମୀରୂପେ ବ୍ୟବହୃତ, ଉକ୍ତ ସ୍ତ୍ରୀକୁ ବିବାହ କରି ନଥିବା ବ୍ୟକ୍ତି, (ବିଂ) ରକ୍ଷାକର୍ତ୍ତା, ରକ୍ଷିତ ।

**ରଖିଦେବା**—ଗ୍ରା. କ୍ରି. ସଞ୍ଚିତ କରି ରଖିବା, ଯଥା ସ୍ଥାନରେ ସ୍ଥାପନ କରିବା, ନ କାଢ଼ିବା, ବ୍ୟବହାରରେ ନ ଲଗାଇବା, ଉଲ୍ଲେଖ ନ କରିବା ।

**ରଖିନେବା**—ଗ୍ରା. କ୍ରି. ଅର୍ପିତ ଦ୍ରବ୍ୟକୁ ଓ୍ୟାପସ ନଦେବା, କୌଣସି ବ୍ୟକ୍ତିକୁ ଚାକର ରୂପେ [illegible], ପୋଷିବା ।

**ରଖିପାରିବା**—ଗ୍ରା. କ୍ରି. ରଖିବାକୁ ସମର୍ଥ ହେବା ।

**ରଖିବା**—ଗ୍ରା. କ୍ରି. [illegible] ରକ୍ଷା କରିବା, ପାଳିବା, [illegible], ଭୃତ୍ୟ ରୂପେ ନିଯୁକ୍ତ କରିବା, ମାରିନ[illegible]ଇବା, (ପୁରୁଷପକ୍ଷରେ)କୌଣସି ସ୍ତ୍ରୀକୁ ବିବାହ ନକରି ସ୍ତ୍ରୀରୂପେ ବ୍ୟବହାର କରିବା, (ସ୍ତ୍ରୀପକ୍ଷରେ)କୌଣସି ପୁରୁଷକୁ ବିବାହ ନକରି ସ୍ୱାମୀରୂପେ ପାଖରେ ରଖିବା, ଜଗିବା, ମନରୁ ନଭୁଲିବା, ଅଟକାଇବା, ସ୍ଥାପନକରିବା, ଥୋଇବା, ସଞ୍ଚୟ କରିବା, ଗ୍ରହଣକରିବା,ନିଃଶେଷ ନକରିବା,ଆପଣାର ଅଧିକାରକୁ ନେବା, ଗଡ଼ାଇବା, ଛାଡ଼ିଦେଇଯିବା ।

**ରଖୁଆଳ**—ପୁଂ. ବିଂ. ରକ୍ଷକ, ପାଳକ ।

**ରଗ୍**—ଯା.ବି.ଏକପ୍ରକାର ଶ୍ରେଷ୍ଠ କମ୍ବଳ ।

**ରଗ୍‌ରଗ୍**—ଗ୍ରା.ଅବ୍ୟ.ଲାଲବର୍ଣ୍ଣର ଉଜ୍ଜ୍ୱଳ ଦୀପ୍ତି,ଗଲଗଲ,କଣ୍ଡୁ,(ଗ୍ରା.ବିଂ)କ୍ରୋଧରେ ଜର୍ଜର ।

**ରଗ**—ଯା. ବି. ଲଲାଟର ଦୁଇପାଖର ଶିରା, ଶିରା,(ଗ୍ରା.ବି)କ୍ରୋଧ, ରାଗ, ଗଲୁ, କଣ୍ଡୁ, ଅହଙ୍କାର, ସ୍ପୃହା ।

**ରଗଡ଼**—ଗ୍ରା. ବି. ଢୋଲ ବା ମୃଦଙ୍ଗକୁ ଜୋରରେ ବଜାଇବା ଶବ୍ଦ, କୌତୁକ, ମଉଜ, ଆମୋଦ ପ୍ରମୋଦ,ରାଗର ବା କଳିର ସ୍ପୃହା, କଠିନ ବସ୍ତୁର ଘର୍ଷଣ, କଠୋର ପରିଶ୍ରମ, ଜଗର, ପୌନଃପୁନ୍ୟ,(ବିଂ)ଟାଣ,ଦୃଢ଼ରେ ଗଢ଼ା,ଜଗରଦାର ।

**ରଗଡ଼କରିବା**—ଗ୍ରା.କ୍ରି.ଶୀଘ୍ରଶୀଘ୍ରଯାତାୟାତ କରିବା, ରଗଡ଼କରି ଗୁଳିବା, ମଉଜକରିବା ।

**ରଗଡ଼ା**—ଗ୍ରା. ବି.ଟାଣ ବସ୍ତୁ ଦ୍ୱୟର ପରସ୍ପର ଘର୍ଷଣ, ମୁଗ ଇତ୍ୟାଦିକୁ ଚକରେ ବା ଶିଳରେ ଦଳିବା, କାନମୋଡ଼ା, (ବିଂ) କଙ୍କରମୟ,ପେଷା ହୋଇଥିବା, ବଗଡ଼ା,ଖଦଡ଼ା,ମୋଟା,ଟାଣ, କର୍କଶ ।

**ରଗଡ଼ାବାଲି**—ଗ୍ରା. ବି. ଖଦଡାବାଲି, ଯେଉଁ ବାଲିର କଣାମାନ ବଡ଼ ବଡ଼ ।

**ରଗଡ଼ାରଗଡ଼ି**—ଗ୍ରା.ବି. ବହୁବାର ରଗଡ଼ିବା କର୍ମ,ଉତ୍ତମରୂପେ ମାଜିବା,ମଜାମଜି, ବାଦାନୁବାଦ, କଜିଆ ।

**ରଗଡ଼ି**—ଗ୍ରା. ବି. ଗୋଡ଼ି,କଙ୍କର,ଗୋଡ଼ି ପଥୁରିଆ ସ୍ଥାନ, (ବିଂ) କଙ୍କରମୟ ।

**ରଗଡ଼ିଆ**—ଗ୍ରା.ବିଂ.ରଗଡ଼ବାଜ,କୌତୁକପ୍ରିୟ, କଙ୍କରମୟ, ବଗଡ଼ା, ରଗଡ଼ା ।

**ରଗଡ଼ିବା**—ଗ୍ରା.କ୍ରି.ଚକରେ ବା ଶିଳରେ ମୁଗଆଦିକୁ ଦଳିବା, ପେଷିବା,ଘୋରାଇବା, କାନକୁ ମୋଡ଼ିବା, ଏକ ବିଷୟରେ ଦୀର୍ଘକାଳ ଆଲୋଚନା ।

**ରଗଣ**—ବି. ଛନ୍ଦରେ ବ୍ୟବହୃତ ୧ମ ଓ ୩ୟ ଅକ୍ଷର ଗୁରୁ ଏବଂ ୨ୟ ଅକ୍ଷର ଲଘୁ ହୋଇଥିବା ବର୍ଣ୍ଣତ୍ରୟ ।

**ରଗମରିଯିବା**—ଗ୍ରା. ବି. ଉପଯୁକ୍ତ ପ୍ରତିଘାତ ଦ୍ୱାରା ରାଗର ଶାନ୍ତି, ପରିଶ୍ରମାଦି ଦ୍ୱାରା ସ୍ଫୂର୍ତ୍ତିର ଶାନ୍ତି ।

**ରଗମାରିବା**—ଗ୍ରା.କ୍ରି. ରାଗଦ୍ୱାରା ଅନ୍ୟର ରାଗକୁ ଶାନ୍ତ କରାଇବା, କଠିନ ପରିଶ୍ରମାଦି କରାଇ କଣ୍ଡୁ ମାରିଦେବା, ଶିର ଦେଖି ଚଢ଼ୁଦେବା ।

**ରଗରଗ**—ଗ୍ରା. ଅବ୍ୟ. ରଗ୍‌ରଗ୍ ଦେଖ, ଅତ୍ୟନ୍ତ କ୍ରୋଧାନ୍ୱିତ, ରାଗରେ ତମତମ, (ବି) ଜ୍ୱଳନ, କଣ୍ଡୂୟନ ।

**ରଘୁ**—ବି. (ରଘ୍+କ.ଉ) ରଘୁବଂଶୀୟ ରାଜାଗଣ, ରଘୁରାଜାଙ୍କ ବଂଶ, ସୂର୍ଯ୍ୟବଂଶୀୟ ଜନୈକ ରାଜା, ଜନବିଶେଷ ।

**ରଘୁକାର**—ପୁଂ. ବି. (ରଘୁ+କୃ+ଅ) ରଘୁବଂଶ କାବ୍ୟର ପ୍ରଣେତା କାଳିଦାସ ।

**ରଘୁକୁଳ**—ବି. ରଘୁବଂଶ, (୬ତତ୍ପୁ)ଭାରତର ସୂର୍ଯ୍ୟବଂଶ ।

**ରଘୁକୁଳତିଳକ**—ବି. ଶ୍ରୀ ରାମଚନ୍ଦ୍ର ।

**ରଘୁକୁଳପ୍ରଦୀପ(ମଣି)**—ବି. ରାମଚନ୍ଦ୍ର ।

**ରଘୁଜ**—ବିଂ. (ରଘୁ+ଜନ୍+ଅ) ରଘୁବଂଶଜାତ ।

**ରଘୁତିଳକ**—ବି. (୬ତତ୍ପୁ) ଶ୍ରୀ ରାମଚନ୍ଦ୍ର ।

**ରଘୁନନ୍ଦନ**—ପୁଂ. ବି. (ରଘୁ+ନନ୍ଦନ) ଶ୍ରୀ ରାମଚନ୍ଦ୍ର ।

**ରଘୁନାଥ**—ପୁଂ. ବି. (ରଘୁ+ନାଥ) ଶ୍ରୀରାମଚନ୍ଦ୍ର ।

**ରଘୁନାଥିଆ**—ଗ୍ରା. ବି.ଏକଶ୍ରେଣୀୟ ବ୍ରାହ୍ମଣ

**ରଘୁନାୟକ**—ବି. (୬ତତ୍ପୁ)ଶ୍ରୀରାମଚନ୍ଦ୍ର ।

**ରଘୁନାହା**—ଗ୍ରା. ବି. ଶ୍ରୀରାମଚନ୍ଦ୍ର ।

**ରଘୁପତି**—ପୁଂ. ବି. (ରଘୁ+ପତି) ଶ୍ରୀରାମଚନ୍ଦ୍ର ।

**ରଘୁପୁଙ୍ଗବ**—ବି. (୬ତତ୍ପୁ) ଶ୍ରୀରାମଚନ୍ଦ୍ର ।

ରଘୁପ୍ରତିନିଧି—ବି. (୬ତତ୍ରୁ) ଅଜରାଜା ।
ରଘୁମଣି—ପୁଂ.ବି. (୬ତତ୍ରୁ) ଶ୍ରୀରାମଚନ୍ଦ୍ର ।
ରଘୁବଂଶ—ବି. କାଳିଦାସ କୃତ କାବ୍ୟ-ବିଶେଷ, ରଘୁଙ୍କ ବଂଶ, ଶ୍ରୀରାମଚନ୍ଦ୍ର ।
ରଘୁବଂଶତିଳକ—ବି.(୬ତତ୍ରୁ)ଶ୍ରୀରାମଚନ୍ଦ୍ର ।
ରଘୁବଂଶିକ—ପୁଂ. ବି. (ରଘୁବଂଶିନ୍+କ) ରଘୁବଂଶଜାତ ବ୍ୟକ୍ତି, ଶ୍ରୀରାମଚନ୍ଦ୍ର ।
ରଘୁବଂଶୀ—ବି.ଉତ୍ତରଭାରତବାସୀ କ୍ଷତ୍ରିୟ ଜାତିବିଶେଷ,ରଘୁବଂଶରେ ଜାତ ବ୍ୟକ୍ତି, ରାମଚନ୍ଦ୍ର ।
ରଘୁବଂଶୀୟ—ପୁଂ. ବିଂ. (ରଘୁବଂଶ+ଈୟ) ରଘୁବଂଶ ସମ୍ବନ୍ଧୀୟ, ରଘୁବଂଶଜାତ, (ସ୍ତ୍ରୀ) ରଘୁବଂଶୀୟା ।
ରଘୁବର—ପୁଂ. ବି. (୬ତତ୍ରୁ) ରଘୁବଂଶରେ ଶ୍ରେଷ୍ଠ, ଶ୍ରୀରାମଚନ୍ଦ୍ର ।
ରଘୁବୀର—ପୁଂ. ବି.(୬ତତ୍ରୁ)ଶ୍ରୀରାମଚନ୍ଦ୍ର ।
ରଘୁଦ୍ୱହ—ପୁଂ.ବି.(୬ତତ୍ରୁ) ଶ୍ରୀରାମଚନ୍ଦ୍ର ।
ରଘୁଶ୍ରେଷ୍ଠ (ସିଂହ)—ବି. ଶ୍ରୀରାମଚନ୍ଦ୍ର ।
ରଘୁଭବ—ପୁଂ.ବି.(୬ତତ୍ରୁ)ଶ୍ରୀରାମଚନ୍ଦ୍ର ।
ରଙ୍କ—ପୁଂ. ବିଂ. (ରମ୍+କ) କୃପଣ, ମନ୍ଦ, ଦରିଦ୍ର, ନୀଚ, କ୍ଷୁଦ୍ର, ଦୁଃଖୀ, (ପୁଂ.ବି) ଭିକ୍ଷୁକ, ଦୁର୍ଦ୍ଦଶାଗ୍ରସ୍ତ ବ୍ୟକ୍ତି, (ଗ୍ରା.ବିଂ) ଲୋଭୀ, ଲୁବ୍ଧ ।
ରଙ୍କଧନ—ଗ୍ରା.ବି ଦୁଃଖୀର ଧନ ଯେପରି ଆଦରଣୀୟ ସେହିପରି ପ୍ରିୟତମ ବ୍ୟକ୍ତି
ରଙ୍କନାଥ—ପୁଂ.ବି. ଦୀନନାଥ,ଭଗବାନ୍
ରଙ୍କନିଧି—ବି.ରଙ୍କନାଥ ଦେଖ,(ଗ୍ରା.ବି) ରଙ୍କଧନ ଦେଖ ।
ରଙ୍କପଣ—ଗ୍ରା.ବି. ଲୋଭୀପଣ,ଲାଳାୟିତ ହେବାର ଢଙ୍ଗ ।
ରଙ୍କରତନ—ଗ୍ରା.ବି. ରଙ୍କଧନ ଦେଖ ।
ରଙ୍କା—ଗ୍ରା.ବି.ଲାଳସା,ଝଙ୍କ,(ବିଂ)ଲୋଭୀ, ଲାଳାୟିତ ।
ରଙ୍କି—ଗ୍ରା.ପୁଂ.ବି ଓ ବିଂ. ରଙ୍କ ଦେଖ ।
ରଙ୍କୁ—ପୁଂ.ବି. (ରମ୍+କୁ)ମୃଗବିଶେଷ, ବାଘୁଟିଆ, ମତ୍ସ୍ୟରଙ୍କା ।
ରଙ୍କୁଈକ୍ଷଣୀ—ଗ୍ରା.ସ୍ତ୍ରୀ.ବିଂ.ମୃଗଲୋଚନା, ସୁଲୋଚନା (ସ୍ତ୍ରୀ) ।
ରଙ୍କୁଣା—ଗ୍ରା.ପୁଂ. ବିଂ. ଦରିଦ୍ର, କୃପଣ, ଲାଳାୟିତ, (ସ୍ତ୍ରୀ) ରଙ୍କୁଣୀ ।
ରଙ୍କୁଣୀ—ସ୍ତ୍ରୀ.ବିଂ.କୃପଣା(ସ୍ତ୍ରୀ),ଦରିଦ୍ରାଣୀ, ଦୁଃଖିନୀ ।
ରଙ୍କୁଣୀରତନ—ଗ୍ରା.ବି.(ଲ.ଅର୍ଥ)ପ୍ରିୟତମ ବ୍ୟକ୍ତି ।
ରଙ୍କୁମାଳୀ—ପୁଂ.ବି.ବାଦ୍ୟଧରବିଶେଷ ।
ରଙ୍ଗ—ବି. (ରଞ୍ଜ୍+ଅଧି.ଅ)ନାଟ୍ୟଶାଳା, ରଣସ୍ଥଳ,(ଣ.ଅ) ରଞ୍ଜକଦ୍ରବ୍ୟ, ନୃତ୍ୟ ଗୀତ ଓ ଅଭିନୟାଦି, ନାଟ, ରଙ୍ଗ ବା ଟିଣଧାତୁ, ବଙ୍ଗ, ଟାଙ୍କଣା,ଖଦିରସାର, ବିହାର, କ୍ରୀଡ଼ା, ଆମୋଦ, କୌତୁକ, ସୁଆଙ୍ଗ,ଭଙ୍ଗୀ,ଛଇ, ସଭାଗୃହ,ସଦସ୍ୟ-ବର୍ଗ,ସ୍ୱରବର୍ଣ୍ଣର ଅନୁନାସିକ ପରିବର୍ତ୍ତନ, (କ.ଅ) ଶୁକ୍ଳ ରକ୍ତାଦି ବର୍ଣ୍ଣ, ( ଗ୍ରା.ବି ) ରକ୍ତବର୍ଣ୍ଣ, ମନୋହର ବସ୍ତ୍ର, ଆନନ୍ଦ, ପରିହାସ, ତାମସା, ତାସ୍ ମୁଠାର ଭିନ୍ନ ଭିନ୍ନ ଗୃହେଟି ଚିହ୍ନ, ତାସଖେଳର ଗୃହଗୋଟି ରଙ୍ଗ ମଧ୍ୟରୁ ନିର୍ବାଚିତ ରଙ୍ଗର ତାସକୁ ସର୍ବୋଚ୍ଚସ୍ଥାନୀୟରୂପେ ଗଣନା କରି ଖେଳିବାର ଖେଳ,ନିର୍ବା-ଚିତ ରଙ୍ଗର ତାସ, ରକମ, ପ୍ରକାର, ଗଞ୍ଜପା ଖେଳର ଭିନ୍ନ ଭିନ୍ନ ଚିହ୍ନ, ସୀସା,କାମକ୍ରୀଡ଼ା,ଯୁଦ୍ଧ,ବୟସ୍ଥ,ଅବସ୍ଥା, ଗଢ଼, ଢଙ୍ଗ, ଦେହର ବର୍ଣ୍ଣ,ଆଚରଣ ।
ରଙ୍ଗକଇଁ—ଗ୍ରା.ବି.ରକ୍ତକମଳ, ରକ୍ତୋ-ତ୍ପଳ ।
ରଙ୍ଗକର—ବି. ଟଙ୍କର,(ବିଂ)ଚିତ୍ରକାରୀ
ରଙ୍ଗକରିବା—ଗ୍ରା.କ୍ରି. ରଞ୍ଜିତ କରିବା, ରଙ୍ଗାଇବା, ପରିହାସ କରିବା ।
ରଙ୍ଗକାଢ଼ିବା—ଗ୍ରା. କ୍ରି. ଛଇ ବାହାର କରିବା, ଭଙ୍ଗି ଦେଖାଇବା ।
ରଙ୍ଗକାର—ପୁଂ.ବି. ଚିତ୍ରକର,(ବିଂ)ଚିତ୍ର-କାରୀ, ରଙ୍ଗ ପ୍ରସ୍ତୁତକାରୀ ।
ରଙ୍ଗକାଷ୍ଠ—ବି. (ବି.ଗ୍ରା) ଚିତ୍ରିତକାଷ୍ଠ, ବକମଗଛ ।
ରଙ୍ଗକ୍ଷେତ୍ର—କ୍ଳୀ.ବି. ( ରଙ୍ଗ+କ୍ଷେତ୍ର ) ରଙ୍ଗସ୍ଥଳ, ରଙ୍ଗାଳୟ ।
ରଙ୍ଗଗୃହ—କ୍ଳୀ ବି(କ.ଧା) ନାଟ୍ୟଶାଳା, ରଙ୍ଗମଞ୍ଚ ।
ରଙ୍ଗଚଙ୍ଗ—ଗ୍ରା.ବିଂ. ସୁନ୍ଦର ରଙ୍ଗଯୁକ୍ତ, ସୁଦୃଶ୍ୟ, ଚକ୍‌ଚକିଆ, ରଙ୍ଗିଆ,ମଉଜିଆ ।
ରଙ୍ଗଚର—ପୁଂ. ବି. (ରଙ୍ଗ+ଚର୍+କ.ଅ) ଅଭିନେତା, ନଟ, ଅଭିନୟ-କାରୀ, ମଲ୍ଲଯୁଦ୍ଧକାରୀ । [ ସିନ୍ଦୂର ।
ରଙ୍ଗଜ—କ୍ଳୀ.ବି.(ରଙ୍ଗ+ଜନ୍+କ.ଅ)
ରଙ୍ଗଜନନୀ—ସ୍ତ୍ରୀ. ବି. (୬ତତ୍ରୁ)ଲାକ୍ଷା ।
ରଙ୍ଗଜୀବକ—ପୁଂ. ବି. (ରଙ୍ଗ+ଜୀବ+ଅକ) ଚିତ୍ରକାର, ନାଟ୍ୟକାରକ,ଅଭି-ନେତୃବର୍ଗ, ନଟ ।
ରଙ୍ଗଟହଟହ—ଗ୍ରା.ବିଂ.ଘୋର ରକ୍ତବର୍ଣ୍ଣ-ବିଶିଷ୍ଟ, ଖୁବ୍ ନାଲି ।
ରଙ୍ଗଢଙ୍ଗ—ଗ୍ରା. ବି. ଗୃହଚଳନ, ଆଚ-ରଣ, କୌତୁକ ଓ ଭଙ୍ଗି, ଆଡ଼ମ୍ବର, (ବିଂ) ରଙ୍ଗଚଙ୍ଗ ଦେଖ ।
ରଙ୍ଗଣ(ନ)—କ୍ଳୀ. ବି. (ରଙ୍ଗ+ଅନ) ନୃତ୍ୟ, ଖଦିରସାର, ଆମୋଦପ୍ରଦ କାର୍ଯ୍ୟ, ରଙ୍ଗାଇବା, ଚନ୍ଦନ ।
ରଙ୍ଗଣା—ପ୍ରା.(ଗଞ୍ଜାମ)ବି. ଗଞ୍ଜାମଜିଲାର ପାଟକବିଶେଷ ।
ରଙ୍ଗଣୀ—ଗ୍ରା.ବି.ପୁଷ୍ପବିଶେଷ, ତନ୍ତୁବାୟ ଜାତିବିଶେଷ, ଏକପ୍ରକାର ପୁଷ୍ପଗୁଳ୍ମ ଓ ଲତା ।
ରଙ୍ଗତା—ଗ୍ରା. ବି. ପନ, ରଙ୍ଗା ଧାତୁର ପତଳା ପଟ ।
ରଙ୍ଗତାକଣ୍ଡି—ଗ୍ରା. ବି, ନାନାବର୍ଣ୍ଣର କାଚକଣ୍ଡି ।
ରଙ୍ଗଦ—ପୁଂ.ବି. (ରଙ୍ଗ+ଦା+କ.ଅ) ଟାଙ୍କଣ, ମହରଗିରି, ଖଦିରସାର ।
ରଙ୍ଗଦଉଡ଼ିଆ—ଗ୍ରା.ବି.ଏକପ୍ରକାର ଘାସ ।
ରଙ୍ଗଦ(ଦା)ଲିକା—ସ୍ତ୍ରୀ. ବି. ନାଗବଲ୍ଲୀ ଲତା, ପାନଲତା ।
ରଙ୍ଗଦା—ସ୍ତ୍ରୀ. ବି. (ରଙ୍ଗଦ+ଆ)ଫିଟ୍‌କି-କାରୀ, ସ୍ଫଟିକାରୀ ।
ରଙ୍ଗଦାୟକ—କ୍ଳୀ.ବି. (ରଙ୍ଗ+ଦାୟକ) କଙ୍କୁଷ୍ଠ, ମୃତ୍ତିକାବିଶେଷ ।
ରଙ୍ଗଦୃଢ଼ା—ସ୍ତ୍ରୀ. ବି. ରଙ୍ଗଦା,ଫିଟିକିରି ।
ରଙ୍ଗଦେଖାଇବା—ଗ୍ରା.କ୍ରି. ରଙ୍ଗକାଢ଼ିବା ଦେଖ ।

ରଙ୍ଗଦେଖିବା—କ୍ରି.କ୍ରି-ଅନ୍ୟର ଦୁଃଖରେ ବା ପ୍ରମାଦରେ ବା କଳହରେ ଆମୋଦ ଉପଭୋଗ କରିବା ।

ରଙ୍ଗଦେବତା—ସ୍ତ୍ରୀ. ବି. ରଙ୍ଗାଧିଷ୍ଠାତ୍ରୀ ଦେବୀ.ରଙ୍ଗଭୂମିର ଅଧିଷ୍ଠାତ୍ରୀ ଦେବତା ।

ରଙ୍ଗଦ୍ୱାର—କ୍ଲୀ.ବି(୬ତତ୍ପୁ)ରଙ୍ଗାଳୟର ପ୍ରବେଶ ଦ୍ୱାର, ନାଟକର ପ୍ରସ୍ତାବନା ।

ରଙ୍ଗଦେବା—ଗ୍ରା. ବି. ରଞ୍ଜିତକରିବା, ରଙ୍ଗାଇବା ।

ରଙ୍ଗଦେବୀ—ସ୍ତ୍ରୀ. ବି. ରାଧାଙ୍କର ସଖୀ-ବିଶେଷ, ରଙ୍ଗଣିଭଳ ।

ରଙ୍ଗନ—ବି. (ରନ୍ଜ୍+ଣ.ଅନ)ବନ୍ଧୁଲି ଗୁଳ୍ମ,(ଭା.ଅନ)ରଙ୍ଗାଇବା,ଚନ୍ଦକରିବା

ରଙ୍ଗନାଥ—ଗ୍ରା.ବି.ଦାକ୍ଷିଣାତ୍ୟ ଶ୍ରୀରଙ୍ଗ-ପତ୍ତନରେ ବିରାଜିତ ବିଷ୍ଣୁ ମୂର୍ତ୍ତି ।

ରଙ୍ଗପତ୍ରୀ—ସ୍ତ୍ରୀ. ବି. ନୀଳୀବୃକ୍ଷ ।

ରଙ୍ଗପସରା—ଗ୍ରା. ବି. ଲୋଭନୀୟ ବର୍ଣ୍ଣ-ଯୁକ୍ତ ପଣ୍ୟ ସାମଗ୍ରୀ ପୂର୍ଣ୍ଣ ପସରା ବା ଡାଲା ।

ରଙ୍ଗ(ଙ୍ଗି)ପିମ୍ପୁଡ଼ି—ଗ୍ରା. ବି. ରକ୍ତବର୍ଣ୍ଣ ପିପୀଲିକା ।

ରଙ୍ଗପୀଠ—କ୍ଲୀ. ବି. ରଙ୍ଗାଳୟ ।

ରଙ୍ଗପୁଷ୍ପୀ—ସ୍ତ୍ରୀ. ବି. ନୀଳୀବୃକ୍ଷ ।

ରଙ୍ଗପ୍ରବେଶ—ପୁଂ. ବି. (୭ତତ୍ପୁ) ଅଭି-ନୟାର୍ଥ ରଙ୍ଗମଞ୍ଚକୁ ଆଗମନ ।

ରଙ୍ଗପ୍ରାଙ୍ଗଣ—ବି. (୬ତତ୍ପୁ) ରଙ୍ଗଭୂମି ଦେଖ ।

ରଙ୍ଗପ୍ରିୟ—ପୁଂ.ବିଂ.(ବ.ବ୍ରୀ) କୌତୁକ-ପ୍ରିୟ, (ସ୍ତ୍ରୀ) ରଙ୍ଗପ୍ରିୟା ।

ରଙ୍ଗଭଙ୍ଗ—ବି. ଆମୋଦପୂର୍ବକ ନାନା ଭାବଭଙ୍ଗୀ ପ୍ରକାଶ ।

ରଙ୍ଗଭଙ୍ଗି—ବି. (୬ତତ୍ପୁ) ନାନାପ୍ରକାର କୌତୁକମୟ ଭଙ୍ଗି । [ ଦେଖ ।

ରଙ୍ଗଭବନ—ବି.(କ.ଧା) ରଙ୍ଗ ମହଲ

ରଙ୍ଗଭୂତ—ସ୍ତ୍ରୀ.ବି(ବ.ବ୍ରୀ) କୋଜାଗର ପୂର୍ଣ୍ଣିମା, ଆଶ୍ୱିନପୂର୍ଣ୍ଣିମା, ଲକ୍ଷ୍ମୀପୂଜା ।

ରଙ୍ଗଭୂମି—ସ୍ତ୍ରୀ. ବି. ( ରଙ୍ଗ+ଭୂମି ) ମଲ୍ଲଭୂମି,କୁସ୍ତିର ସ୍ଥାନ,ରଣସ୍ଥଳ,ନାଟ୍ୟ-ଭୂମି, ଅଭିନୟସ୍ଥାନ, (ଲ.ଅର୍ଥ) ମନୁ-ଷ୍ୟର କର୍ମକ୍ଷେତ୍ର ।

ରଙ୍ଗମଞ୍ଚ(ଞ୍ଚ)—ବି. (କ.ଧା)ନାଟ୍ୟଶାଳା, ରଙ୍ଗଭୂମି ।

ରଙ୍ଗମଣ୍ଡପ—କ୍ଲୀ.ବି.ରଙ୍ଗାଳୟ, ଥେଟର-ଘର , ନାଚଘର ।

ରଙ୍ଗମଧ୍ୟ—କ୍ଲୀ. ବି. ରଙ୍ଗମଞ୍ଚ,କୌତୁକ-ପ୍ରଦର୍ଶନାର୍ଥ ପରିବେଷ୍ଟିତ ମଧ୍ୟସ୍ଥଳ ।

ରଙ୍ଗମଲ୍ଲୀ—ବି. ( ରଙ୍ଗ+ମଲ+କ.ଅ +ଈ) ବୀଣା ।

ରଙ୍ଗମହଲ—ଯା. ବି. ଦଳିସ୍ଥ ପ୍ରାସାଦ ବିଶେଷ,ରାଜପ୍ରାସାଦ, ରାଜପ୍ରାସାଦତୁଲ୍ୟ ଅଟ୍ଟାଳିକା, ବୈଠକଖାନା ।

ରଙ୍ଗମାଣିକ୍ୟ—କ୍ଲୀ. ବି. ମାଣିକ୍ୟରତ୍ନ ।

ରଙ୍ଗମାତା—ସ୍ତ୍ରୀ.ବି.(ରଙ୍ଗ+ମାତା)ଦୂତୀ, କୁଟ୍ଟନୀ, ଲକ୍ଷା, ଲକ୍ଷାକୀଟ ।

ରଙ୍ଗମାତୃକା—ସ୍ତ୍ରୀ.ବି. ରଙ୍ଗମାତାଦେଖ ।

ରଙ୍ଗମୁଣ୍ଡିଆ—ଗ୍ରା. ପୁଂ. ବି ଓ ବିଂ.ନାଲି ପଗଡ଼ିଧାରୀ (ପୁଲିସ୍) ।

ରଙ୍ଗଭଙ୍ଗିଆ—ଗ୍ରା. ପୁଂ. ବିଂ. ନାନା-ପ୍ରକାରର ରଙ୍ଗ ବା ବର୍ଣ୍ଣବିଶିଷ୍ଟ,ରଙ୍ଗିଆ ଦେଖ ।

ରଙ୍ଗରସ—ଗ୍ରା. ବି. କୌତୁକ,ରହସ୍ୟା-ଲାପ, ପରିହାସ, ଆମୋଦ ପ୍ରମୋଦ ।

ରଙ୍ଗରସିକ—ଗ୍ରା. ପୁଂ. ବିଂ. ରଙ୍ଗିଆ ଦେଖ । [ ତାମସା ।

ରଙ୍ଗରହସ୍ୟ—ଗ୍ରା. ବି. ଥଟ୍ଟା, ନାଟ-

ରଙ୍ଗରାଜ—ବି. ଷାଠିଏ ପ୍ରକାର ତାଳ ମଧ୍ୟରୁ ଏକ ।

ରଙ୍ଗରେଖା—ଗ୍ରା.ବିଂ. ରକ୍ତବର୍ଣ୍ଣ ରେଖା-ଯୁକ୍ତ, ସୁନ୍ଦର ବର୍ଣ୍ଣବିଶିଷ୍ଟ ।

ରଙ୍ଗରେଜ—ଯା. ବି. ଯେ ବସ୍ତ୍ରାଦି ରଙ୍ଗ କରେ, ଚନ୍ଦକାର ।

ରଙ୍ଗଲତା—ସ୍ତ୍ରୀ. ବି. ଆବର୍ତ୍ତକୀ ଲତା, ବନ୍ଧୁକାଦି ବର୍ଗର ବୃହତ୍ କ୍ଷୁପବିଶେଷ, (ଗ୍ରା.ବି) ପାଲାରେ ବର୍ଣ୍ଣିତ ମନୋହର-ଫାସିଆରର କନ୍ୟା ।

ରଙ୍ଗଲାଲ—ଗ୍ରା. ପୁଂ.ବି. ଶ୍ରୀକୃଷ୍ଣ ।

ରଙ୍ଗଲସିନୀ—ସ୍ତ୍ରୀ. ବି. ଶେଫାଳିକା. ରଙ୍ଗଣିଭଳି ଫୁଲ ।

ରଙ୍ଗବତୀ—ସ୍ତ୍ରୀ. ବି. ରସିକା ନାଗରୀ ।

ରଙ୍ଗବଲ୍ଲିକା—ସ୍ତ୍ରୀ.ବି. ନାଗବଲ୍ଲୀ ଦେଖ ।

ରଙ୍ଗବଲ୍ଲୀ—ବି. ନାଗବଲ୍ଲୀ ଦେଖ ।

ରଙ୍ଗବସ୍ତୁ—କ୍ଲୀ. ବି. ରଙ୍ଗ ।

ରଙ୍ଗବାଟ—କ୍ଲୀ. ବି. (କ.ଧା) ନାଟ୍ୟ-ପ୍ରଦର୍ଶନାର୍ଥ ବେଷ୍ଟିତ ସ୍ଥାନ, ରଙ୍ଗମଞ୍ଚ ।

ରଙ୍ଗବାଣ— ଗ୍ରା. ବି. ରଉଫଳ ବୃକ୍ଷ,ପୁଷ୍ପ ବିଶେଷ, ନାଲି ଗୋଡ଼ିବାଣ ।

ରଙ୍ଗ ବାତ—ଗ୍ରା. ବି. କୌଣସି କୌଣସି ଶିଶୁର ଜନ୍ମହେବା ପରେ ଗରମଜନକ ଦେହ ନାଲି ପଡ଼ିଯିବା ରୋଗବିଶେଷ, (ଅଣ୍ଡା ପ୍ରୟୋଗ ଏ ରୋଗର ପ୍ରଧାନ ଚିକିତ୍ସା)

ରଙ୍ଗବାରାଙ୍ଗନା-ସ୍ତ୍ରୀ.ବି.ନର୍ତ୍ତକୀ,ବେଶ୍ୟା ।

ରଙ୍ଗବିଦ୍ୟା—ବି. ନୃତ୍ୟଗୀତାଦି ବିଦ୍ୟା, ନାଟ୍ୟବୃତ୍ତି ।

ରଙ୍ଗବିଦ୍ୟାଧର—ପୁଂ. ବି. ନୃତ୍ୟକୁଶଳୀ ଅଭିନେତା, ନଟ, ଷାଠିଏ ତାଳମଧ୍ୟରୁ ଏକ ।

ରଙ୍ଗବୀଜ—କ୍ଲୀ.ବି.(ରଙ୍ଗ+ବୀଜ)ରୁପା ।

ରଙ୍ଗଶାଳା-ସ୍ତ୍ରୀ.ବି.ନାଟ୍ୟଗୃହ,ନାଚଘର ।

ରଙ୍ଗସଭା—ବି. ନୃତ୍ୟସଭା, ନାଚଖାନା, (ଗ୍ରା.ବି) କଂସ ଶ୍ରୀକୃଷ୍ଣଙ୍କୁ ନିମନ୍ତ୍ରଣ କରି ଦେଖାଇବାକୁ ନେଇଥିବା ନୃତ୍ୟଶାଳା ।

ରଙ୍ଗସାଜ—ଯା. ବି. ଚନ୍ଦକର ଜାତି-ବିଶେଷ, ରଞ୍ଜକ, ଚନ୍ଦକାର ।

ରଙ୍ଗସାଜୀ—ଯା.ବି. ଚନ୍ଦକର୍ମ,ଚନ୍ଦକରର ବୃତ୍ତି ।

ରଙ୍ଗସ୍ଥଳ—ବି. ରଙ୍ଗଭୂମି ଦେଖ ।

ରଙ୍ଗା—ଗ୍ରା.ବିଂ. ଲାଲ; ରଞ୍ଜିତ,ରକ୍ତାକ୍ତ, ରକ୍ତବର୍ଣ୍ଣବିଶିଷ୍ଟ, (ଗ୍ରା.ବି) ନାଲିଆବର୍ଣ୍ଣ, ରଙ୍ଗାଇବା କର୍ମ ।

ରଙ୍ଗାଅବତାର—ଗ୍ରା.ବି.ଶ୍ରୀକୃଷ୍ଣାବତାର ।

ରଙ୍ଗାଇବା—ଗ୍ରା. କ୍ରି. ରଞ୍ଜିତ କରିବା, ରକ୍ତବର୍ଣ୍ଣ କରିବା, ଅନ୍ୟଦ୍ୱାରା ରଞ୍ଜନ କର୍ମ କରାଇବା ।

ରଙ୍ଗାଙ୍ଗଣ—କ୍ଲୀ. ବି. ରଙ୍ଗସ୍ଥାନ, ରଙ୍ଗ-ଭୂମି ଦେଖ ।

ରଙ୍ଗାଙ୍ଗୀ—ସ୍ତ୍ରୀ. ବି. (ରଙ୍ଗ+ଅଙ୍ଗ+ଈ)

ଷ୍ଟଟୀ, ଫିଟିକିରି ।

**ରଙ୍ଗାଜୀବ**—ପୁଂ. ବଂ. (ରଙ୍ଗ+ଆଜୀବ) ଚିତ୍ରକାର, ନାଟ୍ୟକାର, ରଞ୍ଜନ ଦ୍ରବ୍ୟ ପ୍ରସ୍ତୁତକାରୀ, (ସ୍ତ୍ରୀ) ରଙ୍ଗାଜୀବା ।

**ରଙ୍ଗାଜୀବୀ**—ପୁଂ. ବଂ. (ରଙ୍ଗ+ଆଜୀବ+ଇନ୍) ଯେ ଚିତ୍ର ବା ରଙ୍ଗକରିବା ଦ୍ୱାରା ପେଟ ପୋଷେ, (ସ୍ତ୍ରୀ) ଜୀବନୀ ।

**ରଙ୍ଗାଟିଆ**—ଗ୍ରା. ବଂ. ରକ୍ତାଭ, ଈଷତ୍ ନାଲି ।

**ରଙ୍ଗାଧର**—ଗ୍ରା. ପୁଂ. ବଂ. ରକ୍ତବର୍ଣ୍ଣ ଅଧରବିଶିଷ୍ଟ ।

**ରଙ୍ଗାଯି(ହୋ)ବା**—ଗ୍ରା.କ୍ରି.ରଞ୍ଜିତହେବା ।

**ରଙ୍ଗାରଙ୍ଗା**—ଗ୍ରା. ବଂ. ରକ୍ତବର୍ଣ୍ଣବିଶିଷ୍ଟ (ଏକାଧିକ ବସ୍ତୁ) ।

**ରଙ୍ଗାରି**—ପୁଂ. ବ. କରଗରି ।

**ରଙ୍ଗାଳୟ**—ବି. (ଷତତ୍) ମଲ୍ଲକ୍ରୀଡ଼ା ଓ ନୃତ୍ୟାଦିର ଗୃହ, ନାଟ୍ୟଶାଳା ।

**ରଙ୍ଗାଳିଆ**—ଗ୍ରା. ବଂ. ଈଷତ୍ ରକ୍ତବର୍ଣ୍ଣ ବିଶିଷ୍ଟ ।

**ରଙ୍ଗାବତରଣ**—ବି. (ଷତତ୍) ଅଭିନୟ ବା ନାଚ କରିବାପାଇଁ ରଙ୍ଗଭୂମିରେ ଉପସ୍ଥିତ ହେବା, ନଟବୃତ୍ତି ।

**ରଙ୍ଗାବତାର**—ପୁଂ.ବି. ନଟ,ସୂତ୍ରଧାର ।

**ରଙ୍ଗାବତାରକ**—ପୁଂ. ବି. (ରଙ୍ଗ+ଅବତାରକ) ରଙ୍ଗାବତାରୀ, ନଟ,ଅଭିନେତା, (ସ୍ତ୍ରୀ) ରଙ୍ଗାବତାରିକା ।

**ରଙ୍ଗାବତାରୀ**—ପୁଂ.ବି. ନଟ,ଅଭିନେତା, (ସ୍ତ୍ରୀ) ରଙ୍ଗାବତାରିଣୀ ।

**ରଙ୍ଗିଆ**—ଗ୍ରା. ପୁଂ. ବଂ. କୌତୁକପ୍ରିୟ, ରସିକ, ଅନୁରାଗୀ,ପ୍ରଫୁଲ୍ଲ,ବାହ୍ୟସୁନ୍ଦର, ନାଲିଆ ।

**ରଙ୍ଗିଣ**—ଗ୍ରା. ବଂ. ରକ୍ତବର୍ଣ୍ଣ ବିଶିଷ୍ଟ, ଈଷତ୍ ନାଲି ।

**ରଙ୍ଗିଣୀ(ନୀ)**—ସ୍ତ୍ରୀ.ବଂ. (ରଙ୍ଗ+ଇନ୍+ଈ) ଅନୁରାଗିଣୀ, କେଳିସିନ୍ଧ କୌତୁକକାରିଣୀ, ରସିକା(ସ୍ତ୍ରୀ), (ବି)ଶତମୂଳୀ, କେଉଟିଆ ମୁଥା ।

**ରଙ୍ଗିତ**—ବଂ. (ରଙ୍ଗ+ଇତ) ରଞ୍ଜିତ ।

**ରଙ୍ଗିଣୀଛଟା**—ଗ୍ରା. ବି. ଦୁର୍ନାମର ହସ୍ତ ।

**ରଙ୍ଗିନ୍**—ଯା. ବଂ. ରଞ୍ଜିତବର୍ଣ୍ଣବିଶିଷ୍ଟ ଚିତ୍ରିତ ।

**ରଙ୍ଗିବା**—ଗ୍ରା. କ୍ରି. ସାପପରି ଭୂଇଁରେ ଭରାଦେଇ ଗୁଳିବା, ଗୁଳିବା ।

**ରଙ୍ଗିମା**—ଗ୍ରା. ବଂ. ରକ୍ତବର୍ଣ୍ଣଯୁକ୍ତ ।

**ରଙ୍ଗିଲ**—ଗ୍ରା. ପୁଂ. ବଂ. ରଙ୍ଗିଆ ଦେଖ, ରଙ୍ଗିନ୍ ଦେଖ ।

**ରଙ୍ଗୀ**—ପୁଂ.ବଂ.(ରଙ୍ଗ+ଇନ୍) ରଙ୍ଗିଆ ଦେଖ, (ଅମୁକ ପ୍ରତି) ଆସକ୍ତ, ରଞ୍ଜନକାରୀ,(ଅମୁକ ବିଷୟରେ) ପ୍ରିୟ,କ୍ରୋଧୀ, ଅଭିନୟକାରୀ ।

**ରଙ୍ଗୁନ୍**—ଗ୍ରା. ବ. ରେଙ୍ଗୁନ୍,ବ୍ରହ୍ମଦେଶର ପ୍ରଧାନ ବାଣିଜ୍ୟ କେନ୍ଦ୍ର ଓ ନଗର ।

**ରଙ୍ଗେ**—ଗ୍ରା. କ୍ରି. ବଂ. କୌତୁକରେ, ଆନନ୍ଦସହକାରେ, ନାନାପ୍ରକାରେ, ଅର୍ଥେ, ପାଇଁ ।

**ରଙ୍ଗେଇ**—ଗ୍ରା. ସ୍ତ୍ରୀ. ବଂ. ରଙ୍ଗଆର ସ୍ତ୍ରୀଲିଙ୍ଗ, ରସବତୀ ।

**ରଙ୍ଗେଷ୍ଟାଳୁକ**—କ୍ଲୀ. ବ. ଆଳୁବିଶେଷ, ଲାଲ ଆଳୁ ।

**ରଙ୍ଗୋପଜୀବୀ**—ପୁଂ. ବଂ. (ରଙ୍ଗ+ଉପ+ଜୀବ+ଇନ୍) ନଟ, ଅଭିନେତା,ଯେ ରଙ୍ଗଦ୍ୱାରା ଜୀବିକା ନିର୍ବାହ କରେ ।

**ରଙ୍ଗୋପଜୀବ୍ୟ**—ପୁଂ. ବଂ. ରଙ୍ଗୋପଜୀବୀ ଦେଖ ।

**ରଂହଃ**—କ୍ଲୀ.ବି. (ରଂହ+ଭା.ଅସ୍)ବେଗ, ଶୀଘ୍ରତା, ତ୍ୱରା । [ବି) ଝିଙ୍କା ।

**ରଚ୍‌କା**—ଗ୍ରା.ବଂ. ମଚକା, (ଗ୍ରା.ବାଲେ.

**ରଚ୍‌କିବା**—ଗ୍ରା.କ୍ରି. ମଚକିଯିବା ଦେଖ ।

**ରଚ୍‌ରଚ୍**—ଗ୍ରା. ଅବ୍ୟ. ଖାଦ୍ୟଦ୍ରବ୍ୟରେ ବାଲି ମିଶିଥିବା ହେତୁ ଖାଇବାବେଳକୁ ଦାନ୍ତକୁ କର୍କଶ ଲାଗିବା ଅବସ୍ଥା,କାକୁଡ଼ି ପଛୁଡ଼ି ଗ୍ରେବାଇବାର ଶବ୍ଦ ।

**ରଚକ**—ପୁଂ. ବଂ. (ରଚ୍+କ.ଅକ) ରଚନାକାରକ, ପ୍ରଣେତା,ଯେ ରଚନା କରେ. ଗ୍ରନ୍ଥକର୍ତ୍ତା. (ସ୍ତ୍ରୀ) ରଚିକା ।

**ରଚନ**—କ୍ଲୀ. ବ. (ରଚ୍+ଭା.ଅନ) ନିର୍ମାଣ, ସମାପ୍ତି, ଗ୍ରନ୍ଥନ, ରଚନା, ଗଢ଼ିବା, ସର୍ଜନ, ସମ୍ପାଦନ,ବିଭାବନ, ବିନ୍ୟାସ, ସଜାଇବା, ଉତ୍ପାଦନ ।

**ରଚନକର୍ତ୍ତା**—ପୁଂ. ବଂ.ରଚକ ଦେଖ ।

**ରଚନବିନ୍ୟାସ**—ବି.ସଜାଇବାର ଢଙ୍ଗ, (ଅନ୍ୟରୂପ- ରଚନକ୍ରମ,ରଚନପର୍ଯ୍ୟାୟ)

**ରଚନା**—ସ୍ତ୍ରୀ.(ରଚ୍+ଭା.ଅ+ଆ)ଶ୍ରେଣୀ ପୂର୍ବକ ବିନ୍ୟାସ, ସଜାଇବା, ନିର୍ମାଣ, ଗଠନ,ସ୍ଥାପନ,ନିବେଶ,ଗ୍ରନ୍ଥନ,ଭୂଷଣ, ଯଥା ନିୟମରେ ଗଦ୍ୟମୟ ବା ପଦ୍ୟମୟ ବାକ୍ୟବିନ୍ୟାସ, ଲିଖିତ ପ୍ରବନ୍ଧ, ପ୍ରସାଧନ, ଚମତ୍କାର, ସର୍ଜନ, ଆବିଷ୍କରଣ, ମିଥ୍ୟାକଥାକୁ ଫାନ୍ଦ ସତ୍ୟପରି ଉପସ୍ଥାପିତ କରିବା, ସୃଷ୍ଟବସ୍ତୁ, ରଚିତ ବ୍ୟୂହ, ବେଶ, କଳ୍ପିତ ବିଷୟ ।

**ରଚନାକରିବା**—ଗ୍ରା. କ୍ରି. ରଚିବା ଦେଖ ।

**ରଚନାକୁଶଳ**—ପୁଂ. ବଂ. (ଷତତ୍) ରଚନା କରିବାରେ ପଟୁ ବା ନିପୁଣ, (ସ୍ତ୍ରୀ) ରଚନାକୁଶଳା ।

**ରଚନାକୌଶଳ**—ବି. (ଷତତ୍) ରଚନା କରିବାରେ ଚତୁର୍ଯ୍ୟ ବା ନିପୁଣତା ।

**ରଚନାକ୍ରମ**—ବି. (ଷତତ୍) ରଚନାପଦ୍ଧତି ଦେଖ ।

**ରଚନାଚତୁର**—ପୁଂ. ବଂ. (ଷତତ୍) ରଚନା ବିଷୟରେ ପାରଙ୍ଗମ ।

**ରଚନାପଦ୍ଧତି**—ବି. (ଷତତ୍) ରଚନାର ରୀତି, ରଚନାପ୍ରଣାଳୀ,ଗଢ଼ିବାର ଢଙ୍ଗ ।

**ରଚନାପାଟବ**—ବି. (ଷତତ୍) ରଚନାକୌଶଳ ଦେଖ ।

**ରଚନାପ୍ରଣାଳୀ**—ବି. (ଷତତ୍) ରଚନାପଦ୍ଧତି ଦେଖ ।

**ରଚନାଭଙ୍ଗୀ**—ବି. (ଷତତ୍) ରଚନାପଦ୍ଧତି ଦେଖ ।

**ରଚନାବିଧି**—ବି. (ଷତତ୍)ରଚନା କରିବାର ନିୟମ ।

**ରଚନାସୌନ୍ଦର୍ଯ୍ୟ**—ବି. (ଷତତ୍) ରଚନାର ସୁନ୍ଦରତା ବା ସହଜତା ।

**ରଚନାସୌଷ୍ଠବ**—ବି. (ଷତତ୍) ରଚନାର ସୌନ୍ଦର୍ଯ୍ୟ ବା ଉତ୍କର୍ଷ ।

**ରଚନୀୟ**—କ୍ରି. ବଂ. (ରଚ୍+ର୍ମ.ଅନୀୟ) ରଚନାର ଯୋଗ୍ୟ, ରଚିତ ହେବାର

ଯୋଗ୍ୟ, ଯାହା ରଚିତ ହେବ ।

ରଚୟିତା—ପୁଂ. ବିଂ. ( ରଚ+କ.ତୃ ) ନିର୍ମାତା, ନିର୍ମାଣକର୍ତ୍ତା, ରଚନାକର୍ତ୍ତା, ରଚକ, (ସ୍ତ୍ରୀ) ରଚୟିତ୍ରୀ ।

ରଚ୍ଚ—ଗ୍ରା. ବି. (ସଂ-ରଚନ) ରଚିବାକର୍ମ ଦେଖ, (ଗ୍ରା.ବିଂ)ରଚିତ ଦେଖ,ରଙ୍ଗିନ ହୋଇଥିବା (ବସ୍ତ୍ରାଦି) ।

ରଚ୍ଚ(ଚେ)ଇବା—ଗ୍ରା.କ୍ରି. ରଚିବାକ୍ରିୟାର ଣିଜନ୍ତରୂପ, କଷାଇବା, ରଙ୍ଗେଇବା, ରଞ୍ଜିତ କରିବା ।

ରଚିତ—କ୍ରି. ବିଂ. (ରଚ୍+ର୍ମ.ତ) କୃତ, ନିର୍ମିତ, ଗଠିତ, ଗ୍ରଥିତ, ଲିଖିତ, ବିନ୍ୟସ୍ତ, ଅର୍ପିତ, ଶୋଭିତ, ପରିଷ୍କୃତ, କଳ୍ପନାସୃଷ୍ଟ, ସୃଷ୍ଟ ।

ରଚିତପୂର୍ବ—ବିଂ. ଯାହା ପୂର୍ବରୁ ରଚିତ ହୋଇଅଛି ।

ରଚିତବ୍ୟ—କ୍ରି. ବିଂ. ( ରଚ + ତବ୍ୟ ) ରଚନୀୟ, ରଚନାର ଯୋଗ୍ୟ ।

ରଚିତଶିଖର—ପୁଂ.ବିଂ.(ବ.ବ୍ରୀ)ଯାହାର ଶିରୋଦେଶ ଅଲଂକୃତ ହୋଇଅଛି ।

ରଚିତା—ଗ୍ରା. ବିଂ. ରଚିତ ଦେଖ ।

ରଚିତାତିଥ୍ୟ—ପୁଂ. ବିଂ. (ବ.ବ୍ରୀ) ଯେ ଅତିଥି ସତ୍କାର କରିଅଛି,(ସ୍ତ୍ରୀ)ରଚିତାତିଥ୍ୟା ।

ରଚିତାନତି—ପୁଂ. ବିଂ. (ବ.ବ୍ରୀ) ଯେ ନମସ୍କାର କରିଅଛି ।

ରଚିତାର୍ଥ—ପୁଂ. ବିଂ. (ବ.ବ୍ରୀ) ଯାହାର ଉଦ୍ଦେଶ୍ୟ ସମ୍ପାଦିତ ହୋଇଅଛି, (ସ୍ତ୍ରୀ) ରଚିତାର୍ଥା ।

ରଚିତୋତ୍ସବ—ପୁଂ. ବିଂ. (ବ.ବ୍ରୀ) ଯେ ଉତ୍ସବ ସମ୍ପାଦନ କରିଅଛି,(ସ୍ତ୍ରୀ)ରଚିତୋତ୍ସବା ।

ରଚିବା—ଗ୍ରା.କ୍ରି.ରଚନା କରିବା,ନିର୍ମାଣ କରିବା, ଗଢ଼ିବା,ବାକ୍ୟାଦିର ବିନ୍ୟାସ କରିବା, ସଜାଇବା କଳ୍ପନା ଶକ୍ତିଦ୍ୱାରା ଆବିଷ୍କାର କରିବା,ଘଟାଇବା,ଚିଙ୍ଗିବା ।

ରଚିଯିବା—ଗ୍ରା.କ୍ରି. ( ତେଲଆଦିଦ୍ୱାରା ) ଲୁଗା ଚଟ ହୋଇଯିବା, ଲୁଗାଆଦିରେ (ରଙ୍ଗ) ଲାଗିଯିବା, ରଞ୍ଜିତ ହେବା ।

ରଜ୍‌ରଜ୍—ଗ୍ରା.ଅବ୍ୟ.ଆଖିଆଦିରେ ବାଲି ପଡ଼ିଗଲେ ମକଚହେବା ଅବସ୍ଥା, ରର୍ ରର୍ ଦେଖ ।

ରଜ୍‌ରଜଆ--ଗ୍ରା.ବିଂ.ବାଲିମିଶ୍ରିତ(ଖାଦ୍ୟ) ବାଲି (ଗୁଡ଼) ।

ରଜ(ଜଃ)-କ୍ଲୀ.ବି.(ରନ୍‌ଜ୍+ଅ.ଅସ୍) ଧୂଳି, ରେଣୁ, ପୁଷ୍ପରେଣୁ, ପରାଗ, ଚୂର୍ଣ୍ଣ, ପ୍ରତି-ମାସରେ ସ୍ତ୍ରୀ ଯୋନିରୁ ନିଃସୃତ ରକ୍ତ,(ସ୍ତ୍ରୀ) ଋତୁସ୍ରାବ,ଦୁଃଖ ଓ ମୋହଜନକ ପ୍ରକୃତି, ଗୁଣବିଶେଷ(ତ୍ରିଗୁଣ), ସତ୍ତ୍ୱ ରଜଃ ତମ ମଧ୍ୟରୁ ଏକତମ,ଇଚ୍ଛା,(ଗ୍ରା.ବି)ପାଉଁଶ, ସ୍ତ୍ରୀଯୋନିରୁ ସଙ୍ଗମ କାଳରେ ସଞ୍ଜାତ ଜଳୀୟ ପଦାର୍ଥ, ପୃଥିବୀ ରଜସ୍ୱଳା ହେବାର ଦିବସତ୍ରୟ ( ମିଥୁନସଂକ୍ରାନ୍ତି ତତ୍ପୂର୍ବଦିନ ଓ ତତ୍ପରଦିନ ) ।

ରଜଃକଣ(ଣା)-ବି.(୬ତତ୍)ଧୂଳିର ରେଣୁ ।

ରଜଃପଟଳ—ବି.(୬ତତ୍) ଧୂଳିର ଆବରଣ, ଧୂଳିରାଶି ।

ରଜଃପୁତ୍ର—ପୁଂ.ବି. ରାଜପୁତ ଦେଖ ।

ରଜଃଶୟ୍ୟ-ପୁଂ.ବି.(ରଜସ୍+ଶୟ୍ୟ)କୁକୁର, ଗୃଦ୍ଧରୂପା,(ବିଂ)ଧୂଳିଶାୟୀ,ରଜତମୟ ।

ରଜଃଶୁଦ୍ଧି—ବି. (୬ତତ୍) ସ୍ତ୍ରୀରଜର ବିଶୁଦ୍ଧ ଅବସ୍ଥା ।

ରଜଃସାର—କ୍ଲୀ.ବି. କର୍ପୂର ।

ରଜଃସାରଥି—ପୁଂ. ବି. (ବ.ବ୍ରୀ) ବାୟୁ, ପବନ ।

ରଜଃସୁବାସିନୀ—ସ୍ତ୍ରୀ.ବି.ରଜସ୍ୱଳାହୋଇ ପିତୃ ଗୃହରେ ବାସ କରୁଥିବା କନ୍ୟା ।

ରଜଃସ୍ରାବ—ବି. ରଜସ୍ରାବ ଦେଖ ।

ରଜକ—ପୁଂ.ବିଂ. (ରଞ୍ଜ୍+କ.ଅକ)ଯେ ରଙ୍ଗକରେ, ରଞ୍ଜକ, (ପୁଂ.ବି)ଧୋବା, ରଙ୍ଗ କରିବା ବ୍ୟକ୍ତି, ତୀବର ପତ୍ନୀ-ଗର୍ଭଜାତ ଧୀବର ପୁତ୍ର, ବର୍ଣ୍ଣସଙ୍କର ନୀଚଜାତିବିଶେଷ; ଶୁକ, ଶୁଆ,ଅଂଶୁକ, (ସ୍ତ୍ରୀ) ରଜକୀ ।

ରଜକୀ—ସ୍ତ୍ରୀ.ବି.(ରଜକ+ଈ)ଧୋବଣୀ, ରଙ୍ଗକାରିଣୀ ସ୍ତ୍ରୀ ।

ରଜଘଷ—ଗ୍ରା.ବି. (ଅନ୍ୟର) ସମ୍ପର୍କରେ ଆସିବା, ଚଳପ୍ରଚଳ, ଅତି ପରିଚୟ, (ଗ୍ରା.ବିଂ) ଅଭ୍ୟସ୍ତ, ଯେ ସର୍ବଦା ଅନ୍ୟ-ସଙ୍ଗେ ଚଳପ୍ରଚଳ ହୁଏ ।

ରଜଡ଼ିଯିବା—ଗ୍ରା.(ଗଞ୍ଜାମ)କ୍ରି. କ୍ଷୀଣକାୟ ହେବା ।

ରଜତ—ବି. (ରନ୍‌ଜ+ଅତ) ରୌପ୍ୟ, ରୂପା,ସ୍ୱର୍ଣ୍ଣ, ହସ୍ତିଦନ୍ତ,ହାର,ଶୋଣିତ, କୈଳାଶପର୍ବତ, ହ୍ରଦ, ଧ୍ରୁବ ନକ୍ଷତ୍ର, ତାରାପୁଞ୍ଜ, ପର୍ବତ, (ବିଂ) ଶୁଷ୍କ, ରୂପାଲି, ଶୁଭ୍ର ।

ରଜତକାନ୍ତି—ବି. (୬ତତ୍)ରୂପାର ବର୍ଣ୍ଣ, (ବିଂ) ବ.ବ୍ରୀ; ରୂପାଲି ରଙ୍ଗବିଶିଷ୍ଟ ।

ରଜତକୁମ୍ଭ—ପୁଂ.ବି.ସ୍ୱର୍ଣ୍ଣ ବା ରୌପ୍ୟ-କଳସୀ ।

ରଜତକୂଟ—ପୁଂ.ବି.(ବ.ବ୍ରୀ)ରଜତଗିରି, ମଳୟ ପର୍ବତର ଶୃଙ୍ଗବିଶେଷ ।

ରଜତଖଣ୍ଡ—ବି.(୬ତତ୍) ଖଣ୍ଡେ ରୂପା ।

ରଜତଗିରି—ପୁଂ. ବି. ରଜତାଚଳ, କୈଳାଶ ପର୍ବତ ।

ରଜତଗିରିନିଭ—ବିଂ. ରଜତ ଗିରିପରି ଅତି ଶୁଭ୍ର ଓ ଚକଚକିଆ ।

ରଜତଗିରିସଂକାଶ—ବିଂ. ରଜତଗିରିନିଭ ଦେଖ ।

ରଜତଦଂଷ୍ଟ୍ର—ପୁଂ. ବି. ବିଦ୍ୟାଧରରାଜ ବଜ୍ରଦଂଷ୍ଟ୍ରଙ୍କ ପୁତ୍ର ।

ରଜତଦ୍ୟୁତି—ପୁଂ.ବି.(ବ.ବ୍ରୀ)ହନୁମାନ୍, (୬ତତ୍) ରଜତ ପରି ଆଭା,(ବିଂ)ରୂପା ପରି ଆଭାବିଶିଷ୍ଟ ।

ରଜତଧବଳ—ବିଂ. ରୂପାପରି ଧଳା ।

ରଜତନାଭ—ପୁଂ.ବି. ଯକ୍ଷୋଭେଦ ।

ରଜତନାଭି—ତ୍ରି.ବିଂ. ଶ୍ୱେତ ନାଭିଯୁକ୍ତ, (ବି) କୁବେରଙ୍କ ବଂଶଧରବିଶେଷ ।

ରଜତପର୍ବତ—ପୁଂ. ବି. ରଜତଗିରି, ରଜତାଚଳ ।

ରଜତପାତ୍ର—କ୍ଲୀ.ବି. (କ.ଧା)ରୂପାପାତ୍ର, ରୂପାବାସନ ।

ରଜତପ୍ରତିମା—ସ୍ତ୍ରୀ. ବି. ସ୍ୱର୍ଣ୍ଣରୌପ୍ୟାଦି ଧାତୁ ନିର୍ମିତ ଦେବମୂର୍ତ୍ତି ।

ରଜତପ୍ରସ୍ଥ—ପୁଂ.ବି. ( ରଜତ + ପ୍ରସ୍ଥ ) କୈଳାଶ ପର୍ବତ ।

ରଜତଭାଜନ—କ୍ଲୀ.ବି.ରଜତପାତ୍ର,ରୁପା-ବାସନ । [ ନିର୍ମିତ ।

ରଜତମୟ—ତ୍ରି.ବିଂ.ରଜତସ୍ୱରୂପ,ରଜତ-

ରଜତମୁଦ୍ରା—ବି.(କ.ଧା) ରୁପାର ମୁଦ୍ରା, ଟଙ୍କାଆଦି ।

ରଜତମୂଲ୍ୟ—ବି. ରୌପ୍ୟ ଆକାରରେ ଦିଆଯିବା ଧନ ।

ରଜତମୂଲ୍ୟୋପକଳ୍ପିତ—ବିଂ. (୩ତତ୍) ଯେଉଁ ପଦାର୍ଥ (ବ୍ରାହ୍ମଣଙ୍କୁ ଦିଆଯିବା ଦକ୍ଷିଣାଆଦି ) ର ମୂଲ୍ୟ ରୌପ୍ୟରୂପେ କଳ୍ପିତ ହୋଇଥାଏ ।

ରଜତଶୁଭ୍ର—ବି. ରୂପାପରି ଧଳା ।

ରଜତାକର—କ୍ଲୀ.ବି. (୬ତତ୍) ରୁପାର ଖଣି, ନଗରବିଶେଷ ।

ରଜତାଙ୍ଗୁଳ—ବି. (କ.ଧା) ରୁପାମୁଦି,

ରଜତାଙ୍ଗୁଳୀୟ(କ)-ବି.(କ.ଧା)ରୁପାମୁଦି,

ରଜତାଚଳ—ପୁଂ. ବି. କୈଳାସପର୍ବତ, ମହାଦାନର ଅନ୍ତର୍ଗତ ଦାନବିଶେଷ ।

ରଜତାଦ୍ରି—ପୁଂ. ବି. କୈଳାସପର୍ବତ ।

ରଜତାନ୍ୱିତ—ବିଂ. (୩ତତ୍) ରୁପାରେ ଛୁଆଣି ହୋଇଥିବା, ରୁପା ଅଳଙ୍କାର ପିନ୍ଧିଥିବା ।

ରଜତାଭ—ବିଂ.(ବ.ବ୍ରୀ)ରୂପାପରି ଆଭା-ବିଶିଷ୍ଟ, (ସ୍ତ୍ରୀ) ରଜତାଭା ।

ରଜତୋପମ—କ୍ଲୀ. ବି. ରୌପ୍ୟମାକ୍ଷିକ, ରୂପାଧାତୁବିଶେଷ, (ବିଂ.ବ-ବ୍ରୀ)ରଜତ ସଦୃଶ, ରୂପାପରି, ରୂପାସଙ୍ଗେ ତୁଳ-ନୀୟ ।

ରଜନ୍—ଯା. ବି. ବୃକ୍ଷର ଏକପ୍ରକାର କଠିନ ନିର୍ଯ୍ୟାସ, ବିଣ୍ଡି ଝୁଣା ।

ରଜନ—କ୍ଲୀ. ବି. (ରନ୍ଜ+ଅନ)ରାଗ, ରଷିବିଶେଷ, ରଙ୍ଗକରିବା,ରଙ୍ଗାଇବା, କୁସୁମଫୁଲ, କିରଣ ।

ରଜନକ—ପୁଂ. ବି. କମଳାଗୁଣ୍ଡି ।

ରଜନି(ନୀ)—ସ୍ତ୍ରୀ. ବି. (ରନ୍ଜ+ଅନି+ଈ) ରାତ୍ରି, ରାତି, ନୀଳୀଗୁଳ୍ମ, ବାମ୍ଭକ, ହଳଦୀ, ଜାତୁକାଲତା, ନୀଳ, ନଦୀ-ବିଶେଷ, ଦୁର୍ଗା, ଦାରୁହରିଦ୍ରା, ଲକ୍ଷା, ଲଦ୍ଧା ।

ରଜନି(ନୀ)କର—ପୁଂ.ବି.(ରଜନୀ+କର) ନିଶାକର, ଚନ୍ଦ୍ର, କର୍ପୂର, (ରଜ୍+ନିକର) ଧୂଳିସମୂହ ।

ରଜନି(ନୀ)କାନ୍ତ—ବି. (୬ତତ୍) ଚନ୍ଦ୍ର, କର୍ପୂର ।

ରଜନି(ନୀ)ଗନ୍ଧା—ସ୍ତ୍ରୀ. ବି. (ରଜନୀ+ଗନ୍ଧ+ଆ) ହସନ୍ ହେନା ଗଛ ଓ ଫୁଲ, ଶ୍ୱେତବର୍ଣ୍ଣ ପୁଷ୍ପବିଶେଷ ।

ରଜନି(ନୀ)ଚର—ପୁଂ. ବି. (ରଜନୀ+ଚର) ରାକ୍ଷସ, ଚୋର, ପ୍ରହରୀ, ଭୂତ-ପ୍ରେତ, ଚନ୍ଦ୍ରମା, ରାତ୍ରିଚର ଜୀବ,ରାତ୍ରି-ଚର, ନିଶାନ୍ଧ ପ୍ରାଣୀଗଣ ।

ରଜନି(ନୀ)ଜଳ—କ୍ଲୀ.ବି.(କ.ଧା) ନୀହାର, ଶିଶିର, କାକର, କୁହୁଡ଼ି ।

ରଜନି(ନୀ)ଦ୍ୱନ୍ଦ୍ୱ—ବି. (୬ତତ୍) ଏକାଦି-କ୍ରମେ ଦୁଇଟି ରାତ୍ରି ଓ ତନ୍ମଧ୍ୟବର୍ତ୍ତୀ ଦିବସ ।

ରଜନି(ନୀ)ଦ୍ୱୟ—କ୍ଲୀ. ବି. ହରିଦ୍ରା ଓ ଦାରୁହରିଦ୍ରା ।

ରଜନି(ନୀ)ନାଥ—ବି. (୬ତତ୍) ଚନ୍ଦ୍ର ।

ରଜନି(ନୀ)ପତି—ପୁଂ.ବି. (୬ତତ୍) ଚନ୍ଦ୍ର ।

ରଜନି(ନୀ)ପୁଷ୍ପ—କ୍ଲୀ.ବି.ରଜନୀଗନ୍ଧାଫୁଲ ।

ରଜନି(ନୀ)ମୁଖ—କ୍ଲୀ. ବି. ( ୬ତତ୍ ) ପ୍ରଦୋଷ. ନିଶାମୁଖ, ସନ୍ଧ୍ୟାବେଳ ।

ରଜନି(ନୀ)ଯୋଗରେ—ଗ୍ରା. କ୍ରି. ରାତ୍ରି-କାଳରେ, ରାତ୍ରିର ଅନ୍ଧାରରେ ।

ରଜନୀୟ—ତ୍ରି. ବିଂ. (ରଜ୍+ମି.ଅନୀୟ) ମୋହକର, ଭୋଗ୍ୟ,ସୁଖଦାୟକ,ପୂଜ-ନୀୟ ।

ରଜନୀରମଣ—ପୁଂ. ବି. (୬ତତ୍) ଚନ୍ଦ୍ର ।

ରଜନୀହାସ—ସ୍ତ୍ରୀ. ବି. (ବ.ବ୍ରୀ) ଶେଫା-ଲିକା ଗୁଳ୍ମ, ଗଙ୍ଗଶିଉଳି ପୁଷ୍ପ ।

ରଜପୁତ—ଗ୍ରା. ପୁଂ. ବି. କ୍ଷତ୍ରିୟ ଜାତି-ବିଶେଷ, କ୍ଷତ୍ରିୟ ଜାତିର ବର୍ଣ୍ଣସଙ୍କର ଜାତିବିଶେଷ ।

ରଜବ୍—ଯା.ବି.ମୁସଲମାନ ମାସବିଶେଷ ।

ରଜବତୀ—ସ୍ତ୍ରୀ.ବିଂ. ରଜସ୍ୱଳା (ସ୍ତ୍ରୀ) ।

ରଜବୀଜ—ଗ୍ରା. ବି. ସ୍ତ୍ରୀର ରଜ ଓ ପୁରୁ-ଷର ଶୁକ୍ର ।

ରଜୟିତ୍ରୀ—ସ୍ତ୍ରୀ. ବିଂ. ରଞ୍ଜନକାରିଣୀ ।

ରଜସ୍—କ୍ଲୀ. ବି. ରଜଃ ଦେଖ ।

ରଜସଂକ୍ରାନ୍ତି—ଗ୍ରା. ବି. ସୌର ଆଷାଢ଼, (ମିଥୁନ) ମାସର ପ୍ରଥମ ଦିନ ।

ରଜସ—ତ୍ରି. ବିଂ. ଅପବିତ୍ର,ମଇଳାଯୁକ୍ତ ।

ରଜସାଧିକ୍ୟ—ବି. ( ରଜସ୍+ଆଧିକ୍ୟ ) ରକ୍ତମାଦ୍ରୀ, ଅସୃଗ୍ଦର, ଅତ୍ୟଧିକ ଋତୁ-ସ୍ରାବ ରୋଗ ।

ରଜସାନୁ—ପୁଂ. ବି. (ରନ୍ଜ୍+ସାନୁ) ମେଘ, ଚିତ୍ତ,ରଜ,ଧୂଳି,ପରାଗ,ସ୍ତ୍ରୀରଜ, ଇଚ୍ଛା, ରଜୋଗୁଣ, ଆତ୍ମା ।

ରଜସ୍କ—ତ୍ରି. ବିଂ. (ରଜସ୍+କ) ରଜ-ସ୍ୱଳ ଦେଖ, (ସ୍ତ୍ରୀ) ରଜସ୍କା ।

ରଜସ୍ତମସ୍କ—ପୁଂ. ବିଂ.ରଜ ଓ ତମଗୁଣ-ବିଶିଷ୍ଟ, (ସ୍ତ୍ରୀ) ରଜସ୍ତମସ୍କା ।

ରଜସ୍ତମୋମୟ—ତ୍ରି.ବିଂ. ରଜ ଓ ତମ-ଗୁଣଯୁକ୍ତ ।

ରଜସ୍ତୋକ--ବି.(୬ତତ୍)ଗୃଧ୍ନୁତା,ଲୋଭ ।

ରଜସ୍ୟ—ପୁଂ.ବିଂ.(ରଜସ୍+ଯ)ପରାଗ-ମୟ, ଧୂଳିଯୁକ୍ତ, (ସ୍ତ୍ରୀ) ରଜସ୍ୟା ।

ରଜସ୍ୱଳ—ପୁଂ.ବି(ରଜସ୍+ବଳ)ମହିଷ, (ପୁଂ.ବିଂ) ଧୂଳିମୟ, ଧୂଳିରେ ଆବୃତ, ରଜୋଗୁଣବିଶିଷ୍ଟ, (ସ୍ତ୍ରୀ) ରଜସ୍ୱଳା ।

ରଜସ୍ୱଳା—ସ୍ତ୍ରୀ.ବି.(ରଜଃ+ବଳ+ଆ) ଋତୁମତୀ, ଦୃଷ୍ଟରଜା (ସ୍ତ୍ରୀ) ।

ରଜସ୍ୱୀ—ପୁଂ. ବିଂ. ( ରଜସ୍+ବିନ୍ ) ରଜୋପୂର୍ଣ୍ଣ, ଧୂଳିମୟ,(ସ୍ତ୍ରୀ)ରଜସ୍ୱିନୀ ।

ରଜା—ଗ୍ରା. ପୁଂ. ବି. ରାଜା, ନୃପତି, ଗଞ୍ଜିପାସାରର ୧୨ ସଂଖ୍ୟା ନିର୍ଦ୍ଦିଷ୍ଟ ସାର, ତାସ ଖେଳରେ ତେର ସଂଖ୍ୟକ ତାସ, ସାହେବ, ବହୁମଧ୍ୟରେ ପ୍ରଧାନ ।

ରଜାକୁ ରେକରିବା—ଗ୍ରା. କ୍ରି. ଅତ୍ୟନ୍ତ ଦୁର୍ବିନୀତ ହେବା ।

ରଜାରାଣୀଦେଉଳ—ଗ୍ରା. ବି. ଭୁବନେ-ଶ୍ୱରର କେଦାର କୁଣ୍ଡର ଅଦୂରରେ ଅବସ୍ଥିତ ମନ୍ଦିର ।

ରଜାଶୟ—ବି(ରଜ+ଆ+ଶୀ+କ.ଅ) ରୂପା, କୁକ୍କୁର, (ବିଂ) ରୌପ୍ୟନିର୍ମିତ ।

ରଜି—ପୁଂ.ବି.ଚନ୍ଦ୍ରବଂଶୀୟ ରାଜାବିଶେଷ ।

ରଜକା—ସ୍ତ୍ରୀ. ବ. (ରଜକ+ଆ)ଯେଉଁ ସ୍ତ୍ରୀଲୋକ ନିଜେ ଲୁଗା କାଚେ. ରଜକବଧୂ ହେଲା ଋତୁମତୀ ହୋଇଥିବା ନାରୀ ।

ରଜିତ—ପୁଂ. ବିଂ. (ରଞ୍ଜ+ଣିଚ୍+ର୍ମ. ତ) ଚମତ୍କୃତ, ମୁଗ୍ଧ, ପ୍ରଲୋଭିତ,(ସ୍ତ୍ରୀ) ରଜିତା ।

ରଜୀକୃତ—ବିଂ. ( ରଜ+ଚ୍ୱି+କୃତ ) ଧୂଳିରେ ପରିଣତ ।

ରଜେଷିତ—ତ୍ରି. ବିଂ. ହସ୍ତୀ ବା ଗର୍ଦ୍ଦଭ କର୍ତ୍ତୃକ ଆନୀତ ।

ରଜୋକୃଚ୍ଛ୍ର—ଗ୍ରା. ବ. ସ୍ତ୍ରୀଲୋକଙ୍କର ରୋଗବିଶେଷ, ରଜଃସ୍ରାବର ଅଭାବ, ବାଧକରୋଗ ।

ରଜୋଗାଙ୍ଗ—ପୁଂ.ବ.ବଳିଷ୍ଠ ପୁତ୍ରବିଶେଷ

ରଜୋଗୁଣ—କ୍ଲୀ. ବ. (ରଜଃ+ଗୁଣ) ପ୍ରକୃତିର ଗୁଣବିଶେଷ.ରଜୋରୂପ ଗୁଣ

ରଜୋଗ୍ରହି-–ପୁଂ.ବିଂ.ରଜୋଗ୍ରହଣକାରୀ ।

ରଜୋଜନିତ—ବିଂ.(୩ତତ୍)ଧୂଳିଜନ୍ୟ, ରଜୋଗୁଣଜାତ.ସ୍ତ୍ରୀ ଋତୁରୁ ଉତ୍ପାଦିତ ।

ରଜୋଦର୍ଶନ—କ୍ଲୀ. ବ. ସ୍ତ୍ରୀମାନଙ୍କର ଋତୁକାଳୀନ ରଜଃସ୍ରାବର ଆରମ୍ଭ, ଋତୁମତୀ ହେବା ।

ରଜୋଦ୍ଧାସା—ସ୍ତ୍ରୀ.ବ.ବିଂ.ରଜସ୍ୱଳା ସମୟରେ ପିନ୍ଧାଯାଇଥିବା ରଜୋରଞ୍ଜିତ ବସ୍ତ୍ରକୁ ପାଳିଥିବା ସ୍ତ୍ରୀ ।

ରଜୋଦ୍ଗମ—ବ.(୬ତତ୍) ରଜୋଦର୍ଶନ, ରଜସ୍ୱଳା ହେବା ।

ରଜୋଧର୍ମ— ବ. ସ୍ତ୍ରୀମାନଙ୍କର ମାସିକ ଋତୁ ସ୍ରାବ ।

ରଜୋଽଧିକ—ବିଂ. (ରଜଃ+ଅଧିକ) ଯେଉଁ ବ୍ୟକ୍ତିର ପ୍ରକୃତିରେ ରଜୋଗୁଣର ପ୍ରାବଲ୍ୟ ଥାଏ ।

ରଜୋନିବୃତ୍ତି—ବ. (୬ତତ୍) ନିୟମିତ ମାସିକ ରଜୋଦର୍ଶନ ରହିତ ହୋଇଯିବା । [ ସତ୍ତ୍ୱଗୁଣ ।

ରଜୋପମ—ବିଂ.(ବ.ବ୍ରୀ)ଧୂଳିପରି, ଧୂଳି-

ରଜୋମେଘ—ପୁଂ.ବ. (ରଜଃ+ମେଘ) ଶୂନ୍ୟକୁ ଅଚ୍ଛନ୍ନ କରିଥିବା ଧୂଳିପଟଳ, ଧୂଳିମେଘ ।

ରଜୋରସ—କ୍ଲୀ.ବ (ବ.ବ୍ରୀ)ଅନ୍ଧକାର ।

ରଜୋରୋଧ—କ୍ଲୀ. ବ. (୬ତତ୍)ରଜୋନିବୃତ୍ତି ଦେଖ । [ ଦେଖ ।

ରଜୋବନ୍ଧ—ବ.(୬ତତ୍) ରଜୋନିବୃତ୍ତି

ରଜୋବଳ—ବ. (ବ.ବ୍ରୀ) ଅନ୍ଧକାର ।

ରଜୋହର—ପୁଂ.ବ.(ରଜଃ+ହୃ+କ. ଅ) ଧୋବା, ରଜକ,(ସ୍ତ୍ରୀ)ରଜୋହରୀ ।

ରଜ୍ଜ୍ୱନ୍ୟ—କ୍ଲୀ. ବ. ରଜ୍ଜୁ ପ୍ରସ୍ତୁତକରଣ ପଦାର୍ଥ ।

ରଜ୍ଜୁ—ବ. (ସୃଜ୍+ର୍ମ.ଉ)ଦଉଡ଼ି,ବନ୍ଧନୀ, ବେଣୀ,ଘୋଡ଼ାର ବାଗ ଡ଼ୋର,ମେରୁଦଣ୍ଡରୁ ବାହାରିଥିବା ପେଶୀବିଶେଷ ।

ରଜ୍ଜୁଦାଳ—ପୁଂ. ବ. ବୃକ୍ଷବିଶେଷ ।

ରଜ୍ଜୁଦାଳକ—ପୁଂ. ବ. ଜଳଚର ପକ୍ଷୀବିଶେଷ, ଏକଜାତୀୟ ବନ୍ୟ କୁକ୍କୁଟ ।

ରଜ୍ଜୁଧାନ—ବ. ( ରଜ୍ଜୁ+ଧା+ଅଧି. ଅନ) ଗୋମେଷାଦି ପଶୁଙ୍କର ବେକର ଯେଉଁ ଅଂଶର ଗୁରିପାଖେ ପଘା ବନ୍ଧାଥାଏ ।

ରଜ୍ଜୁପେଟିକା—ବ. ରଜ୍ଜୁପେଡ଼ା ଦେଖ ।

ରଜ୍ଜୁପେଡ଼ା—ବ. ଦଉଡ଼ିରେ ବୁଣା ହୋଇଥିବା ଟୋକେଇ ବା ପେଡ଼ି ।

ରଜ୍ଜୁପିଠିକା—ବ. ଦଉଡ଼ି ଦ୍ୱାରା ଝୁଲାଯାଇଥିବା ଚୌକି ବା ପୀଢ଼ା ।

ରଜ୍ଜୁଭ୍ରମ—ବ.(କ.ଧା)ଭ୍ରମବଶତଃ ରଜ୍ଜୁ ଭିନ୍ନ କୌଣସି ବସ୍ତୁରେ ରଜ୍ଜୁ ଜ୍ଞାନ ।

ରଜ୍ଜୁରେ ସର୍ପଭ୍ରମ—ଗ୍ରା. ବ. ଦଉଡ଼ିକୁ ଦେଖି ସାପ ବୋଲି ବୋଧ କରିବା ।

ରଜ୍ଜୁବନ୍ଧ(ନ)—ବ. (୩ତତ୍) ଦଉଡ଼ି ଗୁଡ଼ାଇ ବାନ୍ଧିବା ।

ରଜ୍ଜୁବର୍ତ୍ତନ--ବ(୬ତତ୍)ଦଉଡ଼ି ବଳିବା ।

ରଜ୍ଜୁବାଳ—ପୁଂ. ବ. ଜଳଚର ପକ୍ଷୀବିଶେଷ, ଏକପ୍ରକାର ବନ୍ୟ କୁକ୍କୁଟ ।

ରଜ୍ଜୁଶାରଦ—ବ. ଉଦକ, ଜଳ ।

ରଜ୍ଜୁସନ୍ଦାନ—ବ. (ଦ୍ୱନ୍ଦ୍ୱ) ଦଉଡ଼ି ଓ ଗୋଡ଼ର ବେଡ଼ି ।

ରଜ୍ଜୁସର୍ଜ—ପୁଂ.ବ. (ରଜ୍ଜୁ+ସୃଜ୍+କ. ଅ) ରଜ୍ଜୁସ୍ରଷ୍ଟା, ରଜ୍ଜୁନିର୍ମାତା, ଯେ ଦଉଡ଼ି ତିଆରି କରେ ।

ରଜ୍ଜ୍ୱକୃତ—ବିଂ. ( ରଜ୍ଜୁ+ଚ୍ୱି+କୃତ ) ଦଉଡ଼ି ରୂପେ ବ୍ୟବହୃତ (କନାଧଡ଼ି, ଲତା) ।

ରଜ୍ଜୂତ—ବିଂ, (୩ତତ୍) ଦଉଡ଼ି ଦ୍ୱାରା ବଳାଯାଇଥିବା ।

ରଜ୍ଜୂଦ୍ଧୃତ—ବିଂ. (୩ତତ୍) ଦଉଡ଼ି ଦ୍ୱାରା ଉପରକୁ ଉଠାଯାଇଥିବା ।

ରଜ୍ଜ୍ୱବଲମ୍ବୀ—ପୁଂ.ବିଂ. (ରଜ୍ଜୁ+ଅବଲମ୍ବିନ୍) ଗୁଳିବା ପାଇଁ ବା ଉପରକୁ ଉଠିବା ପାଇଁ ଯେ ଦଉଡ଼ିକୁ ଧରିଥାଏ, ଦଉଡ଼ି ଦ୍ୱାରା ଝୁଲୁଥିବା ।

ରଞ୍ଚକ—ଗ୍ରା.ପୁଂ.ବ. ବିଂ. ରଚକ, ରଚନାକାରକ, (ଗ୍ରା.ବ) ରଞ୍ଜକ ଦେଖ ।

ରଞ୍ଚନ—ଗ୍ରା. ବ. ରଚନ ଦେଖ ।

ରଞ୍ଚନା—ଗ୍ରା.ବ.ବିଂ. ରଚନା ଦେଖ ।

ରଞ୍ଚିତ—ଗ୍ରା. ବିଂ. ରଚିତ ଦେଖ ।

ରଞ୍ଚିବା—ଗ୍ରା. କ୍ରି. ରଚିବା ଦେଖ ।

ରଞ୍ଜା—ଗ୍ରା. ବିଂ. ଶୋଭିତ, (ବ) ଏକପ୍ରକାର କୃଷ୍ଣଜୀରକ ।

ରଞ୍ଜ୍—ଯା. ବ. ରାଗ, କ୍ରୋଧ, ଅହଙ୍କାର, ମନୋଦୁଃଖ, ଶୋକ ।

ରଞ୍ଜ—ଗ୍ରା.ବ. ଲୋକଙ୍କ ମନୋମୋହନ ।

ରଞ୍ଜକ—ପୁଂ. ବିଂ. ( ରଞ୍ଜ୍+ଣିଚ୍+କ. ଅକ) ଯେ ରଙ୍ଗ କରେ, ଉତ୍ତେଜକ, ଅନୁରାଗଜନକ, ସନ୍ତୋଷଜନକ,(ପୁଂ. ବ) ରଜକ, ଚିତ୍ରକର, ଉତ୍ତେଜକ ଔଷଧ,ପୈତ୍ତିକ ରସବିଶେଷ. ହିଙ୍ଗୁଳ, ରକ୍ତଚନ୍ଦନ, ଉତ୍ତେଜକ ବ୍ୟକ୍ତି, ଉତ୍ତେଜକ ବସ୍ତୁ ବା ବିଷୟ, ଭଲିଆ, ମଞ୍ଜୁଆତି, କମ୍ପିଲ୍ଲକ, (ଗ୍ରା. ବ) ବନ୍ଧୁକର ବାରୁଦରେ ନିଆଁ ଲଗାଇବାର ପାର୍ଶ୍ୱସ୍ଥ ଛିଦ୍ର ।

ରଞ୍ଜନ—ବ. ( ରଞ୍ଜ+ଣିଚ୍+ଭା.ଅନ ) ରଙ୍ଗକରିବା, ସନ୍ତୋଷ ବିଧାନ, ଅନୁରାଗୋତ୍ପାଦନ,(କ.ଅନ) ହିଙ୍ଗୁଳ,ରକ୍ତଚନ୍ଦନ, ମୁଞ୍ଜତୃଣ, ଜାତିଫଳ, ସୁନା, କମଳାଗୁଣ୍ଡି ଗଛ, (ପୁଂ.ବିଂ. କ.ଅନ) ଅନୁରାଗଜନକ, ପ୍ରୀତିଜନକ, ଯେଉଁ ପଦାର୍ଥ ଦ୍ୱାରା ରଙ୍ଗ କରାଯାଏ, (ସ୍ତ୍ରୀ)

ରଞ୍ଜନୀ, (ଗ୍ରା.ବ°) ସୁନ୍ଦରି ।

ରଞ୍ଜନକ—ପୁଂ.ବ (ରଞ୍ଜନ+କ) କାଫଡ଼, କଟଫଳ, ପଦ୍ମକ ।

ରଞ୍ଜନକେଶୀ —ସ୍ତ୍ରୀ. ବ. ନୀଳୀବୃକ୍ଷ ।

ରଞ୍ଜନଗଣ—ପୁଂ. ବ. ରଞ୍ଜନ ଦ୍ରବ୍ୟଗଣ ବା ସମୂହ ।

ରଞ୍ଜନଦ୍ରୁ(ମ)—ପୁଂ. ବ. ଧୂନକବୃକ୍ଷ, ଆଚ୍ଛୁକବୃକ୍ଷ ।

ରଞ୍ଜନବଲ୍ଲୀ—ବ. କଳରାଳତା ।

ରଞ୍ଜନରଶ୍ମି—ଗ୍ରା.ବ. ରେଡ଼ିୟମରୁ ନିର୍ଗତ ଆଲୋକ ।

ରଞ୍ଜନୀ—ସ୍ତ୍ରୀ. ବ. (ରଞ୍ଜନ+ଈ) ଗୁଣ୍ଡା ରୋଚନିକା, କମଳାଗୁଣ୍ଡି, ନୀଳୀ, ମଞ୍ଜିଷ୍ଠା, ଶେଫାଳିକା, ହରିଦ୍ରା, ପର୍ପଟି, ନାଗବଲ୍ଲୀ, ଜଳୁକାନାମ୍ନୀ ବନ୍ୟଲତା, ଋଷଭ ସ୍ୱରର ତିନି ଶ୍ରୁତି ମଧ୍ୟରୁ ୨ୟ ଶ୍ରୁତି, (ଗ୍ରା.ବ) ନଣ୍ଡୁରୁଣୀ । [ କରଞ୍ଜ ।

ରଞ୍ଜନୀପୁଷ୍ପ—ପୁଂ.ବ. ପୂତିକରଞ୍ଜ, ନଟା-

ରଞ୍ଜନୀୟ—ବି. ବ°. ରଙ୍ଗ ଭରିବାର ଯୋଗ୍ୟ, ଆନନ୍ଦଦାୟକ, ପ୍ରୀତିପ୍ରଦ, ଯାହାକୁ ସନ୍ତୁଷ୍ଟ କରିବା ଉଚିତ, ମନୋହର ।

ରଞ୍ଜା—ଗ୍ରା. ବ. ଲତାର ଆଶ୍ରୟ, ଡାଳ ବା ଝାଟି, ରଞ୍ଜନ ଦେଖ, (ଗ୍ରା.ବ°) ରଞ୍ଜକ ଓ ରଞ୍ଜିତ ଦେଖ ।

ରଞ୍ଜାଇବା—ଗ୍ରା.କି. ରଞ୍ଜିତ କରିବା, ମୋହିତକରିବା, ସନ୍ତୁଷ୍ଟକରିବା, ବିରକ୍ତ କରାଇବା ।

ରଞ୍ଜାରଞ୍ଜି—ଗ୍ରା.ବ ଓ ବ°. ଅନ୍ୟୋନ୍ୟ ମନୋରଞ୍ଜନ, ଅନ୍ୟୋନ୍ୟ ପ୍ରତି ଅନୁରକ୍ତି, ପରସ୍ପର ପ୍ରତି କ୍ରୋଧାପନ୍ନ ।

ରଞ୍ଜାଳିଆ—ଗ୍ରା.ବ°. ରଞ୍ଜପତି, ପତିବହୀନ (ଶାଖାଦି), କ୍ଷୁଧାର୍ତ୍ତ, କାର୍ଯ୍ୟରେ ଅଚିବାଂସ୍ତ

ରଞ୍ଜିତ—ବି.ବ°. (ରଞ୍ଜ+ଣିଚ୍+ର୍ମ.କ୍ତ) ରାଗଯୁକ୍ତ, ବର୍ଣ୍ଣଯୁକ୍ତ, ରଙ୍ଗକରାଯାଇଥିବା, ରଞ୍ଜିତ, ସନ୍ତୋଷିତ, ତର୍ପିତ, ମୁଗ୍ଧ, ଅନୁରକ୍ତ, ଆଲୋଡିତ ।

ରଞ୍ଜିତଦୃଷ୍ଟି-ବ. ସମସ୍ତ ବସ୍ତୁ ରଙ୍ଗ ଦେଖାଯିବା ଚକ୍ଷୁରୋଗବିଶେଷ ।

ରଞ୍ଜିତବସ୍ତ୍ର—ବ. (କ.ଧା) ରଙ୍ଗାଯାଇଥିବା ଲୁଗା, ଛିଟଲୁଗା ।

ରଞ୍ଜିନୀ—ସ୍ତ୍ରୀ.ବ. (ରଞ୍ଜ+କ.ଇନ୍+ଈ) ନୀଳୀଗୁଳ୍ମ, ହଳଦୀ, ମଞ୍ଜିଷ୍ଠା ।

ରଞ୍ଜିବା—ଗ୍ରା. କି. ରଙ୍ଗାଇବା, ରଞ୍ଜିତ କରିବା, ରଙ୍ଗକରିବା, ସନ୍ତୁଷ୍ଟକରିବା, ମୁଗ୍ଧକରିବା, ମୁଗ୍ଧହେବା ।

ରଞ୍ଜୀ—ଗ୍ରା.ବ°. ରାଗୁଆ, ରାଗୀ, କୋପନସ୍ୱଭାବ ।

ରଟ୍‌କାନି(ରି)—ଗ୍ରା.କି. ବ°. ଝୁଣ୍ଟ୍ ନଳ ସନ୍ଧିକାରେ ଟଣାହେଲେ ଧଉଡ଼ି ଉଚ୍ଚ ଶବ୍ଦ କରି ଛିଣ୍ଡିଯିବା ପ୍ରକାରେ, ହଠାତ୍ ଜୋରପୂର୍ବକ କାମୁଡ଼ିବା ପ୍ରକାରେ ।

ରଟ୍‌ମଟ୍—ଗ୍ରା.ଅବ୍ୟ. ବିସ୍ତାରିତ ଦୃଷ୍ଟିରେ (ଗୃହ୍ନିବା), ଏକଦୃଷ୍ଟିରେ ଗୃହ୍ନିବା, ଦାନ୍ତ କାମୁଡ଼ିବାର ଶବ୍ଦ ।

ରଟମଟ—ଗ୍ରା କି. ବ°. କର୍କଶ ଭାବରେ ବିସ୍ଫାରିତ ନେତ୍ରରେ ।

ରଟ୍‌ରଟ୍—ଗ୍ରା.ଅବ୍ୟ. ଦାନ୍ତରେ ଧଉଡ଼ି ଆଦି ଟାଣ ପଦାର୍ଥ ଛିଣ୍ଡାଇବାର ଶବ୍ଦ, ଖଟ, ବାଉଁଶ ସବାର ବାଉଁଶଆଦିର ଉପରେ ବେଶି ଭାର ପଡ଼ିଲେ ତହିଁରୁ ଯେଉଁ ଶବ୍ଦ ହୁଏ ।

ରଟ୍‌ରାଟ୍—ଗ୍ରା.ଅବ୍ୟ. ଅନେକଥର ବା ଅନେକ ସ୍ଥରର ରଟ୍‌ରଟ୍ ଶବ୍ଦ ।

ରଟ—ଗ୍ରା.ବ. ଉଚ୍ଚଶବ୍ଦ ।

ରଟକା—ଗ୍ରା.ବ°. ମଟକା, ମଡକା, ଅନାୟାସରେ ଭାଙ୍ଗିବା (ବୃକ୍ଷାଦି) ।

ରଟଟ—ଗ୍ରା. ଅବ୍ୟ. ଦାନ୍ତ ରଗଡ଼ିବାର ଶବ୍ଦ, କଡମଡ଼ ।

ରଟତି-ଗ୍ରା.କି. (ସେ) ଉଚ୍ଚାରଣ କରୁଅଛି ।

ରଟନ୍—ପୁ. ବ°. (ରଟ୍+କ.ଅତ୍) ବାରମ୍ବାର ଉଚ୍ଚାରଣ କରୁଥିବା, (ସ୍ତ୍ରୀ) ରଟନ୍ତୀ ।

ରଟନ୍ତୀ—ସ୍ତ୍ରୀ.ବ. (ରଟ+କ.ଅତ୍+ଈ) ମାଘ କୃଷ୍ଣା ଚତୁର୍ଦ୍ଦଶୀ ।

ରଟନାକରିବା—ଗ୍ରା. କି. ଗୃହଆଡ଼େ ଜନରବ ଘୋଷଣା କରିବା ।

ରଟନାମୂଳକ—ବ°. (ବ.ବ୍ରୀ) ଜନରବ ଦ୍ୱାରା ପ୍ରଚାରିତ, ଅପବାଦଜନକ ।

ରଟନ୍ତ୍ୟାଚତୁର୍ଦ୍ଦଶୀ—ଗ୍ରା ବ. ମାଘ କୃଷ୍ଣା ଚତୁର୍ଦ୍ଦଶୀ ।

ରଟଉଟାୟମାନ—ପୁଂ.ବ°. ଯେ କଟକଟ ଶବ୍ଦ କରୁଅଛି, ଯାହା ରଟରଟ ଶବ୍ଦ କରୁଅଛି ।

ରଟା—ବ. (ରଟ୍+ଭା.ଅ+ଆ) ପ୍ରଚାରିତ ହେବା, ଘୋଷଣା, ବକ୍ତୃତା ।

ରଟା(ଟେ)ଇବା—ଗ୍ରା. କି. ଅନ୍ୟଦ୍ୱାରା ପ୍ରଚାରିତ କରାଇବା ।

ରଟିତ—ବି. ବ°. (ରଟ୍+ର୍ମ.କ୍ତ) କଥିତ, ଘୋଷିତ, ପ୍ରଚାରିତ, ଖ୍ୟାତ, ଉଚ୍ଚାରିତ, ( ବ-ଭା.କ୍ତ ) କଥନ, ଗର୍ଜନ, ଚିତ୍କାର, କୁହାଟ ।

ରଟିବା—ଗ୍ରା.କି. ଉଚ୍ଚୈଃସ୍ୱରରେ କହିବା, ରଡ଼ିକରିବା, ଘୋଷିବା, ପ୍ରଚାରକରିବା, ପ୍ରଚାରିତ ହେବା, (ପକ୍ଷୀଆଦି) ରାବକରିବା, ଶବ୍ଦ କରିବା ।

ରଡ଼—ଗ୍ରା. ବ. ଅଙ୍ଗାର, ଅଙ୍ଗାର, ଶଗଡ଼, କଙ୍କରମୟ ଜାଗାରେ ଗଡ଼ିବାର ଘଡ଼ଘଡ଼ ଶବ୍ଦ, ଜଳନ୍ତା ଅଙ୍ଗାର, ଜ୍ୱଳନ, (ଗ୍ରା.ବ°) ଜଳନ୍ତା ।

ରଡ଼ନିଆଁ—ଗ୍ରା. ବ. ଜଳନ୍ତା ଅଙ୍ଗାର, ଯେଉଁ ନିଆଁର ଧୂଆଁ ଲିଭି ନ ଥାଏ ।

ରଡ଼ମଡ଼—ଗ୍ରା.ଅ. ବଡ଼ ଡାଳଆଦି ଭାଙ୍ଗିବାର ଉଚ୍ଚଶବ୍ଦ, କଠିନ ପଦାର୍ଥକୁ ଚୋବାଇବାର ଶବ୍ଦ । [ ଶବ୍ଦ ।

ରଡ଼ମଡ଼—ଗ୍ରା. ବ. ଚୂର୍ଣ୍ଣଦାୟିତ୍ୱ, କର୍କଶ

ରଡ଼ି—ବ. ଚିତ୍କାର, (ଗ୍ରା.ବି) ଡାକ, ଚିତ୍କାର, ଡକା, କାନ୍ଦବୋବାଳି, ଉଚ୍ଚଶବ୍ଦ ।

ରଡ଼ିଗ୍ରାଡ଼ିବା—ଗ୍ରା. କି. ଗର୍ଜନ କରିବା, ଡକା ପକାଇବା ।

ରଡ଼ିପାଡ଼(ରି)ବା—ଗ୍ରା. କି. ପାଟିକରି କାନ୍ଦିବା, ବହୁକାଳଯାଏ ଚିତ୍କାରକରିବା

ରଡ଼ିବା—ଗ୍ରା. କି. ଉଚ୍ଚୈଃସ୍ୱରରେ ବହୁକ୍ଷଣ କାନ୍ଦିବା, ଡକା ପକାଇବା, ବ୍ୟାପିବା, ଘୋଟିବା, ପାଟିକରି କହିବା ।

ରଣ—କ୍ଳୀ. ବ. (ରଣ୍+ଅଧି.ଅ) ରଣକ୍ଷେତ୍ର, ବିବାଦ, ସଂଗ୍ରାମ, ଯୁଦ୍ଧ, (ଭା.ଅ) ଶବ୍ଦ, ଗର୍ଜନ, ଗତି, ଆନନ୍ଦ, ରମଣ

ଢୁମ୍ବା ମେଣ୍ଢ୍, (ଣ.ଅ) ଗାଣାର ଦଣ୍ଡ, (ଗ୍ରା.ବ) ମହାନଦୀର ଗୋଟିଏ ନଦୀ ।
ରଣକ—ପୁଂ. ବ. ଯୁଦ୍ଧ, ଶବ୍ଦ ।
ରଣକଣ୍ଡୂ—ବ. (କ.ଧା) ଯୁଦ୍ଧ କରିବାକୁ ଆଗ୍ରହ ।
ରଣକରଣ—ଗ୍ରା. ବ. କାମ, କନ୍ଦର୍ପ ।
ରଣକର୍ମ—ବ. (କ.ଧା) ଯୁଦ୍ଧ ।
ରଣକାତର—ପୁଂ. ବଂ. (୭ତତ୍) ଯୁଦ୍ଧ-କରିବାକୁ ପଶ୍ଚାତ୍ପଦ ।
ରଣକାମୀ—ପୁଂ. ବଂ. (ରଣ+କାମିନ୍) ଯୁଦ୍ଧ କରିବାକୁ ଇଚ୍ଛୁକ, (ସ୍ତ୍ରୀ) ରଣ-କାମିନୀ ।
ରଣକାଙ୍କ୍ଷୀ—ପୁଂ. ବଂ. ( ରଣ+କାଙ୍କ୍ଷୀ ) ଯୁଦ୍ଧକାଙ୍କ୍ଷୀ, ଯୋଦ୍ଧା, ଶବ୍ଦକାଙ୍କ୍ଷୀ ।
ରଣକୁଶଳ—ପୁଂ. ବଂ. (୭ତତ୍) ଯୁଦ୍ଧ ବିଦ୍ୟାରେ ପାରଗ ।
ରଣକୁହୁଡ଼ି—ଗ୍ରା. ବ. ବନରେ ମେଘାଚ୍ଛନ୍ନ ହୋଇ କୁହୁଡ଼ି ଘୋଟିବା ଯାଗ ।
ରଣକୃତ୍—ପୁଂ.ବଂ.(ରଣ+କୃ+କ୍ୱିପ୍) ରଣକର୍ତ୍ତା ।
ରଣକୃତୀ—ପୁଂ. ବଂ. ( ୭ତତ୍ ) ଯୁଦ୍ଧ-ବିଦ୍ୟାରେ ପାରଗ ।
ରଣକୌଶଳ—ବ. (୭ତତ୍) ଯୁଦ୍ଧବିଷୟରେ ନିପୁଣତା, (୬ତତ୍) ଯୁଦ୍ଧକରିବାର ଉତ୍କୃଷ୍ଟ ପ୍ରଣାଳୀ ।
ରଣକ୍ଷିତି—ସ୍ତ୍ରୀ. ବ. ଯୁଦ୍ଧଭୂମି ।
ରଣକ୍ଷେତ୍ର—କ୍ଲୀ. ବ. ( ରଣ+କ୍ଷେତ୍ର ) ରଣସ୍ଥଳ, ଯୁଦ୍ଧଭୂମି ।
ରଣକ୍ଷୋଣୀ—ସ୍ତ୍ରୀ. ବ. ଯୁଦ୍ଧଭୂମି ।
ରଣକ୍ଷ୍ମା—ବ. (୭ତତ୍) ରଣଭୂମି ।
ରଣଖଳ—ବ. ରଣଭୂମି, ରଣକ୍ଷେତ୍ର ।
ରଣଗୁଆ—ଗ୍ରା. ବ. ଗୁଆଜାତୀୟ ଏକ-ପ୍ରକାର ବନ୍ୟଫଳ ।
ରଣଗୋଚର—ପୁଂ. ବଂ. ଯୁଦ୍ଧରେ ପ୍ରବୃତ୍ତ, (ସ୍ତ୍ରୀ) ରଣଗୋଚରୀ ।
ରଣଘଣ୍ଟ—ପ୍ରା. (ଗଞ୍ଜାମ) ବ. ଗଞ୍ଜାମର ଉତ୍ତରପ୍ରାନ୍ତ ସ୍ଥାନମାନଙ୍କରେ ଦୋଳ-ପୂର୍ଣ୍ଣିମା ସମୟରେ ଇତର ଲୋକଙ୍କ ମଧ୍ୟରେ ହେଉଥିବା ଉତ୍ସବ, (ପ୍ରା.-ଜାମଣ୍ଡା. ବ) ବାଦ୍ୟବିଶେଷ ।
ରଣଘଣ୍ଟାସମାକୁଳ—ସ୍ତ୍ରୀ. ବ. ମହାଶଙ୍ଖ ।
ରଣଚଣ୍ଡ—ପୁଂ. ବଂ. (୭ତତ୍)ଯୁଦ୍ଧପ୍ରିୟ, (ସ୍ତ୍ରୀ) ରଣଚଣ୍ଡୀ ।
ରଣଚଣ୍ଡୀ—ସ୍ତ୍ରୀ. ବ. ଯୁଦ୍ଧକ୍ଷେତ୍ରର ଅଧିଷ୍ଠାତ୍ରୀ ଦେବୀ ।
ରଣଚୂଳ—ଗ୍ରା. ବ. ଆଙ୍ଗୁଳିର ଉପରେ ଥିବା ଛଣନିର୍ମିତ ଚୂଳ ।
ରଣଜୟ—ପୁଂ. ବ. (୭ତତ୍) ଯୁଦ୍ଧଜୟ, ରଣରେ ଜୟଲାଭ ।
ରଣଜୟୀ—ପୁଂ. ବଂ. (ରଣ+ଜୟିନ୍) ଯୁଦ୍ଧଜେତା, ଯୁଦ୍ଧରେ ଜୟଲାଭକାରୀ ।
ରଣଜିତ୍—ବଂ. (ରଣ+ଜି+କ.କ୍ୱିପ୍) ସମରବିଜୟୀ, ଯୁଦ୍ଧରେ ଜୟକାରୀ ।
ରଣଜିତ୍‌ସିଂହ—ଗ୍ରା. ବ. ଜନୈକଶିଖ ସର୍ଦ୍ଦାର ଓ ପଞ୍ଜାବର ରାଜା ।
ରଣଝଣ(ଣି)—ଗ୍ରା. ବ. ଧାତୁମୟ ଅଳଙ୍କାର ଆଦିର ପରସ୍ପର ଘର୍ଷଣ ଶବ୍ଦ, (ଗ୍ରା.ବ)ପ୍ରଚଣ୍ଡ ସୂର୍ଯ୍ୟକିରଣରେ ସମ୍ପୂର୍ଣ୍ଣ-ରୂପେ ଶୁଖିଯିବା ଅବସ୍ଥା ।
ରଣଝଣିଆଁ—ଗ୍ରା. ବଂ. ଖରତ୍ୱାପସମ୍ପୂର୍ଣ୍ଣ ରୂପେ ଶୁଷ୍କ ହୋଇଥିବା, ରଣଝଣ ଶବ୍ଦ କରୁଥିବା ।
ରଣଝାଇଁ—ଗ୍ରା. ଅ. ଧାତୁମୟ ପଦାର୍ଥର ଘର୍ଷଣ ଶବ୍ଦ, ରଣଝଣ ଶବ୍ଦ ।
ରଣଢକ୍କା—ବ. ( କ.ଧା ) ଯୁଦ୍ଧବାଦ୍ୟ, ଯୁଦ୍ଧକ୍ଷେତ୍ରରେ ବଜାଯିବା ଢୋଲ ।
ରଣତ୍—ବଂ. (ରଣ+କ.ଅତ)ଶବ୍ଦାୟ-ମାନ, ଗର୍ଜନକରୁଥିବା ।
ରଣତ୍କାର—ବ. ( ରଣତ୍+କୃ+ଭା. ଅ) ରଣରଣ ଶବ୍ଦ,ଝଣତ୍କାର ଶବ୍ଦ,ଗୁଣ୍‌ଗୁଣ୍ ସ୍ୱର, ଶବ୍ଦ ।
ରଣତରୀ—ସ୍ତ୍ରୀ.ବ.(କ.ଧା)ଯୁଦ୍ଧଜାହାଜ ।
ରଣତୁରୀ—ବ. (କ.ଧା)ସମରବାଦ୍ୟ,ଯୁଦ୍ଧ-ବାଦ୍ୟ, ଅଭୟ ଡିଣ୍ଡିମ ।
ରଣତୂର୍ଯ୍ୟ—ବ. ( କ.ଧା ) ଯୁଦ୍ଧବାଦ୍ୟ, ସଂଗ୍ରାମ ପଟହ, ଅଭୟଡିଣ୍ଡିମ ।
ରଣଦକ୍ଷ—ପୁଂ. ବଂ. (୭ତତ୍)ରଣନିପୁଣ ଦେଖ ।
ରଣଦାଣ୍ଡ—ଗ୍ରା. ବ. ଯୁଦ୍ଧଭୂମି ।
ରଣଦୁନ୍ଦୁଭି—ପୁଂ. ବ. ରଣଭେରୀ,ଯୁଦ୍ଧ ଭେରୀ ।
ରଣଦୁର୍ଗାଧାରଣଯନ୍ତ୍ର—କ୍ଲୀ.ବ.ରଣଦୁର୍ଗା-ଦେବୀଙ୍କର ଧାରଣଯନ୍ତ୍ର ।
ରଣଧୀର—ପୁଂ. ବଂ. (୭ତତ୍) ଯୁଦ୍ଧରେ ଅଚଳ ବା ସ୍ଥିର,(ସ୍ତ୍ରୀ)ରଣଧୀରା,(ଗ୍ରା.ବ) ବୀରପୁରୁଷଙ୍କୁ ରାଜଦତ୍ତ ଉପାଧିବିଶେଷ ।
ରଣଧୂରା—ବ. (୭ତତ୍) ଘମାଘୋଟ ଯୁଦ୍ଧ ଲାଗିଥିବା ସ୍ଥାନ ବା ଅବସ୍ଥା,(ଅନ୍ୟରୂପ, ରଣଧୂଃ) ।
ରଣଧ୍ୱଜ—ବ. ଯୁଦ୍ଧପତାକା,ଯୁଦ୍ଧବେଳେ ପକ୍ଷମାନଙ୍କ ବାହିତ ପତାକା ।
ରଣନ—ବ. (ରଣ+ଭା.ଅନ) ରଣରଣ ଶବ୍ଦ, ଶବ୍ଦ, ଧ୍ୱନି ।
ରଣନିପୁଣ—ପୁଂ.ବଂ.(୭ତତ୍)ରଣକୁଶଳ, ଯୁଦ୍ଧବିଦ୍ୟାରେ ପାରଗ ।
ରଣନୀତି—ବ. (୬ତତ୍) ଯୁଦ୍ଧଶାସ୍ତ୍ର,ଯୁଦ୍ଧ-ବିଦ୍ୟା,ଯୁଦ୍ଧରେ ପ୍ରଯୋଜ୍ୟ ନିୟମମାନ ।
ରଣନୈପୁଣ୍ୟ—ବ. (୭ତତ୍) ଯୁଦ୍ଧବିଷୟରେ ଦକ୍ଷତା, ସଂଗ୍ରାମଚାତୁରୀ ।
ରଣପକ୍ଷୀ—ବ. (କ.ଧା) ଛଞ୍ଚାଣ ।
ରଣପଟୁ—ପୁଂ.ବଂ.(୭ତତ୍)ଯୁଦ୍ଧବିଦ୍ୟାରେ ଦକ୍ଷ ।
ରଣପଣ୍ଡିତ—ପୁଂ. ବଂ. ରଣକୁଶଳ,ଯୁଦ୍ଧ-ବିଦ୍ୟାରେ ଅଭିଜ୍ଞ,(ପୁଂ.ବ)ଯୋଦ୍ଧା ।
ରଣପଦ୍ଧତି—ବ. (୬ତତ୍) ଯୁଦ୍ଧକରିବାର ଭିନ୍ନଭିନ୍ନ ରୀତି,ରଣକୌଶଳ ।
ରଣପା—ଗ୍ରା. ବ. କାଠ ବା ବାଉଁଶ ନିର୍ମିତ ଲମ୍ବ ପାଦୁକା, ଠେଙ୍ଗ ।
ରଣପୁର—ଗ୍ରା. ବ. ଓଡ଼ିଶାର ଗୋଟିଏ ସାମନ୍ତରାଜ୍ୟ ।
ରଣପୋତ—ବ. ଯୁଦ୍ଧଜାହାଜ ।
ରଣପ୍ରଣାଳୀ—ବ. ରଣପଦ୍ଧତି ଦେଖ ।
ରଣପ୍ରତ୍ୟାଗତ—ପୁଂ.ବଂ.(୫ତତ୍) କର୍ତ୍ତବ୍ୟ ସାଧନ ପୂର୍ବକ ଯୁଦ୍ଧକ୍ଷେତ୍ରରୁ ଫେରି ଆସିଥିବା (ଯୋଦ୍ଧା) ।
ରଣପ୍ରତ୍ୟାବୃତ୍ତ—ପୁଂ. ବଂ.(୫ତତ୍)ରଣ-ପ୍ରତ୍ୟାଗତ ଦେଖ ।

ରଣପ୍ରାଙ୍ଗଣ—ବି. ଯୁଦ୍ଧଭୂମି ।

ରଣପ୍ରିୟ—ପୁଂ.ବି.(ବି.ଗ୍ରା)ବେଣାଚେର. ହୁଆଣ, ବିଷ୍ଣୁ, ପୁଂ. ବିଂ.(ବି.ଗ୍ରା) ଯେ ଯୁଦ୍ଧକରିବାକୁ ଭଲପାଏ, ଯୁଦ୍ଧପ୍ରିୟ ।

ରଣଭଙ୍ଗ—ବି. ( ୬ତତ୍ପୁ ) ରଣରେ ପରାଭବ ଓ ପଳାୟନ,ସୈନ୍ୟମାନଙ୍କର ଛତ୍ରଭଙ୍ଗ,(୬ତତ୍ପୁ) ଯୁଦ୍ଧର ବିରତି,(ବିଂ) ରଣକ୍ଷେତ୍ରରୁ ପଳାୟିତ ବା ବିରତ ।

ରଣଭେଣ—ଗ୍ରା. ଅବ୍ୟ, ଅସ୍ତବ୍ୟସ୍ତ ହୋଇ ଏଣେତେଣେ ପଡ଼ିଥିବା, ଖାଦ୍ୟରେ ବା ଅନ୍ୟାପଦାର୍ଥରେ ବହୁ ପରିମାଣରେ ମ ଛି ବେଢ଼ିବାର ଅବସ୍ଥା, ଅସ୍ତବ୍ୟସ୍ତ,ବ୍ୟତି-ବ୍ୟସ୍ତ, ବିବ୍ରତ, ହଟହଟା ।

ରଣଭୀତ—ପୁଂ.ବିଂ.(୫ତତ୍ପୁ) ଯେ ଯୁଦ୍ଧକୁ ଡରେ, (ସ୍ତ୍ରୀ) ରଣଭୀତା ।

ରଣଭୀରୁ—ପୁଂ.ବିଂ.ଯେ ଯୁଦ୍ଧକୁ ଡରେ ।

ରଣଭୂ(ମି)—ସ୍ତ୍ରୀ. ବି. (କ.ଧା)ଯୁଦ୍ଧଭୂମି, ରଣପ୍ରାଙ୍ଗଣ ।

ରଣଭେରୀ(ରି)--ବି.(କ.ଧା) ରଣକ୍ଷେତ୍ରରେ ବ୍ୟବହୃତ ତୂରୀ, ଶିଙ୍ଗା, ବିଗୁଲ୍ ।

ରଣମତ୍ତ—ପୁଂ. ବି. (ରଣ+ମତ୍ତ)ହସ୍ତୀ, (ବିଂ) ଯୁଦ୍ଧମତ୍ତ, ଯୁଦ୍ଧରେ ମାତିଥିବା, (ସ୍ତ୍ରୀ) ରଣମତ୍ତା ।

ରଣମଦ—ବି. (କ.ଧା)ଯୁଦ୍ଧକରିବା ପୂର୍ବରୁ ଓ ଯୁଦ୍ଧସମୟରେ ଯୋଦ୍ଧାର ମନରେ ହେଉଥିବା ନିଶା ।

ରଣମାର୍ଗ—ବି. (୬ତତ୍ପୁ) ରଣକୌଶଳ, (ରୂପକ)ରଣରୂପ ବାଟ ।

ରଣମୁଖ—ବି. ଯୁଦ୍ଧାର୍ଥୀ ସେନାଦଳର ପରସ୍ପର ସମ୍ମୁଖଭାଗ, ଯେଉଁଠାରେ ତୁମୁଳ ସଂଗ୍ରାମ ଲାଗିଥାଏ,(ବିଂ-ବି.ଗ୍ରା ) ରଣ କରିବାପାଇଁ ଇଚ୍ଛୁକ,ରଣୋନ୍ମୁଖ ।

ରଣମୁଖା—ଗ୍ରା.ପୁଂ.ବିଂ. ଉଗ୍ରମୂର୍ତ୍ତିଧାରଣ-କାରୀ, ଉଗ୍ରଚଣ୍ଡ ।

ରଣମୁଷ୍ଟି—ପୁଂ. ବିଂ. ବିଷମୁଷ୍ଟି,କୁଚିଲା ଗଛ ।

ରଣମୁହାଁ—ଗ୍ରା. ବିଂ, ରଣୋନ୍ମୁଖ ।

ରଣମୁଛିକା--ସ୍ତ୍ରୀ.ବି.କର୍କଟଶୃଙ୍ଗୀ,କକଡ଼ା-ଶୃଙ୍ଗୀ ।

ରଣଯଜ୍ଞ—ବି.ଯଜ୍ଞରୂପେ କଳ୍ପିତ ଯୁଦ୍ଧ ।

ରଣଯାତ୍ରା-ବି.(୪ତତ୍ପୁ)ଯୁଦ୍ଧଯାତ୍ରା,ଅଭିଯାନ

ରଣରଙ୍କ—ପୁଂ.ବି. ରଣକାତର ହସ୍ତୀ, ଗଜର ଦନ୍ତଦ୍ୱୟ ମଧ୍ୟସ୍ଥ ଅଂଶ, (ବିଂ) ବି.ଗ୍ରା;ରଣକାତର;ରଣଭୀରୁ,ଯୁଦ୍ଧପ୍ରିୟ

ରଣରଙ୍କା—ଗ୍ରା.ବିଂ. ପୁଂ. ଓ ସ୍ତ୍ରୀ. ଯୁଦ୍ଧ କରିବାପାଇଁ ଇଚ୍ଛୁକ, ରଣଲୋଲୁପ ।

ରଣରଙ୍ଗ--ପୁଂ.ବି. (ରଣ+ରଙ୍ଗ)ଯୁଦ୍ଧ-କ୍ରୀଡ଼ା, ରଣସ୍ଥଳ, ଯୋଦ୍ଧା ମନରେ ଯୁଦ୍ଧଜନିତ ଆନନ୍ଦ,ରଣୋନ୍ମାଦ,ଯୁଦ୍ଧ-କୌଶଳ. ଯୁଦ୍ଧରୂପ ଆନନ୍ଦ ।

ରଣରଙ୍ଗିଣୀ(ନୀ)—ସ୍ତ୍ରୀ.ବିଂ. (ରଣରଙ୍ଗ+ଇନ୍+ଈ) ଯୁଦ୍ଧୋନ୍ମତ୍ତା, ଯୁଦ୍ଧରେ ବ୍ୟାପୃତା (ସ୍ତ୍ରୀ) ।

ରଣରଙ୍ଗୀ—ପୁଂ.ବିଂ.(ରଣରଙ୍ଗ+ଇନ୍) ରଣୋନ୍ମତ୍ତ, ଯୁଦ୍ଧରେ ବ୍ୟାପୃତ, (ବି) ଯୋଦ୍ଧା ।

ରଣରଣ—କ୍ଲୀ.ବି. ଉଦ୍ବାହନ, ମଶକ, ମଶା, କନ୍ଦର୍ପ, ପ୍ରେମ, ପ୍ରଣୟ, ଇଚ୍ଛା, ଦୁର୍ଭାବନା, ଉତ୍କଣ୍ଠା, ଅପହୃତ ବା ନଷ୍ଟ ବସ୍ତୁପାଇଁ ଅନୁଶୋଚନା, (ବିଂ)ବି.ଗ୍ରା; ରଣଗର୍ଜନଶୀଳ, (ଗ୍ରା.ଅବ୍ୟ) ରଣଝଣ ଶବ୍ଦ ।

ରଣରଣକ(କା)—ବି. କାମଦେବ, ରଣ-ରଣ ଦେଖ, ପ୍ରଣୟାସ୍ପଦ ବ୍ୟକ୍ତିପାଇଁ ମନ ଛନଛନ ହେବା, ପ୍ରେମଜନିତ କଷ୍ଟ ବା ବେଦନା ।

ରଣରଣି—ଗ୍ରା.ବି.ଯୁଦ୍ଧାସ୍ତ୍ରର ଝଣତ୍କାର, ଅଳଙ୍କାରର ଝଣଝଣ ଶବ୍ଦ ।

ରଣରଣିଆ-ଗ୍ରା.ବିଂ.ଟଣଟଣିଆ,ରୌଦ୍ରର ପ୍ରଖରତାଯୋଗୁଁ ଖୁବ୍ ଶୁଖିଯାଇଥିବା, ଅତି ପ୍ରଖର ଭାବରେ ହେଉଥିବା ଖରା ।

ରଣରାହୁ—ବିଂ. (୬ତତ୍ପୁ) ବୀର ।

ରଣଲକ୍ଷ୍ମୀ—ସ୍ତ୍ରୀ.ବି. (କ.ଧା)ବିଜୟଲକ୍ଷ୍ମୀ, ଯୁଦ୍ଧରେ ପକ୍ଷମାନଙ୍କ ଭାଗ୍ୟଫଳ ।

ରଣବାଦ୍ୟ—ବି. (କ.ଧା)ଯୁଦ୍ଧ ସମୟରେ ବଜାଯିବା ବାଜା, ଅଭୟ ଡିଣ୍ଡିମ ।

ରଣବିଦ୍ୟା—ବି. (କ.ଧା) ଯୁଦ୍ଧବିଦ୍ୟା, ଯେଉଁ ବିଦ୍ୟାରୁ ଯୁଦ୍ଧ ସମ୍ବନ୍ଧେ ଜ୍ଞାନ ଲାଭ ହୁଏ ।

ରଣବିଶାରଦ—ପୁଂ,ବିଂ. (୭ତତ୍ପୁ)ଯୁଦ୍ଧ-ବିଦ୍ୟାରେ ନିପୁଣ ।

ରଣବୀର—ବିଂ.ଯୁଦ୍ଧରେ ବୀରତ୍ୱ ଦେଖା-ଇବା (ଯୋଦ୍ଧା), (ଗ୍ରା.ବି) ଯୋଦ୍ଧାଙ୍କ ରାଜଦତ୍ତ ଉପାଧିବିଶେଷ ।

ରଣବୃତ୍ତି—ବି. (ରୂପକ) ଯୁଦ୍ଧ ବ୍ୟବ-ସାୟ, (ବିଂ) ଯୁଦ୍ଧ ଯାହାର ଜୀବିକା ।

ରଣବେଶ—ବି. (କ.ଧା) ଯୋଦ୍ଧାର ସାଜସଜ୍ଜା ।

ରଣଶଯ୍ୟା—ବି. (ରୂପକ) ସମରକ୍ଷେତ୍ର-ରୂପ ଶଯ୍ୟା,ଯେଉଁଠାରେ ଯୋଦ୍ଧାଗଣ ମୃତହୋଇ ଶୟନ କରନ୍ତି ।

ରଣଶଯ୍ୟାଶାୟୀ—ପୁଂ. ବିଂ. (୭ତତ୍ପୁ) ସମରକ୍ଷେତ୍ରରେ ହତ ।

ରଣଶାୟୀ—ପୁଂ.ବିଂ. (୭ତତ୍ପୁ) ସମର-କ୍ଷେତ୍ରରେ ହତ ।

ରଣଶିକ୍ଷକ—ବି. (୬ତତ୍ପୁ) ଯୁଦ୍ଧବିଦ୍ୟାର ଶିକ୍ଷାଦାତା ।

ରଣଶିକ୍ଷା—ସ୍ତ୍ରୀ.ବି. (୬ତତ୍ପୁ)ଯୁଦ୍ଧାଭ୍ୟାସ, ଯୁଦ୍ଧନୀତି, ରଣବିଦ୍ୟା ।

ରଣଶିଙ୍ଗା(ଙ୍ଘା)-ଗ୍ରା.ବି.ରଣଶୃଙ୍ଗା ଦେଖ ।

ରଣଶିରଃ—ବି. (୬ତତ୍ପୁ) ଦୁଇପକ୍ଷର ସାମନାସାମନି ଯେଉଁଠାରେ ଯୁଦ୍ଧ ଲାଗିଥାଏ ।

ରଣଶୂର-ପୁଂ.ବି.(ରଣ+ଶୂର)ଯୁଦ୍ଧବୀର ।

ରଣଶୃଙ୍ଗା—ବି. ଯୁଦ୍ଧ ସମୟରେ ବଜା-ଯିବା ଶୃଙ୍ଗନିର୍ମିତ ତୂରୀ, ବିଗୋଲ୍ ।

ରଣଶୌଣ୍ଡ—ବିଂ. ଯୁଦ୍ଧରେ ନିପୁଣ ।

ରଣଶ୍ରାନ୍ତ—ପୁଂ.ବିଂ. ଯୁଦ୍ଧକରିବାହେତୁ କ୍ଲାନ୍ତ, (ସ୍ତ୍ରୀ) ରଣଶ୍ରାନ୍ତା ।

ରଣସଙ୍କୁଳ—ବି.(୬ତତ୍ପୁ)ତୁମୁଳ ସଂଗ୍ରାମ, ଘୋରତର ଯୁଦ୍ଧ, ( ବିଂ—୩ତତ୍ପୁ ) ଯୁଦ୍ଧଦ୍ୱାରା ବ୍ୟାପ୍ତ ।

ରଣସଜ୍ଜା--ସ୍ତ୍ରୀ.ବି. (୪ ତତ୍ପୁ) ଯୁଦ୍ଧପାଇଁ ଆୟୋଜନ,ବୀରବେଶ,ଯୁଦ୍ଧର ବେଶ ।

ରଣସତ୍ର—କ୍ଲୀ.ବି. ରଣଯଜ୍ଞ ।

ରଣସହାୟ—ପୁଂ.ବିଂ. (୭ତତ୍ପୁ) ଯୁଦ୍ଧ ସମୟରେ ସାହାଯ୍ୟ କରିବା ମିତ୍ରଶକ୍ତି ।

ରଣସିଂହ—ବି. (୬ତତ୍ପୁ) ଯୁଦ୍ଧକ୍ଷେତ୍ରରେ ସିଂହପରି ବିକ୍ରମ ପ୍ରକାଶ କରିବା ବ୍ୟକ୍ତି, (ଗ୍ରା.ବି)କ୍ଷତ୍ରିୟମାନଙ୍କ ଉପାଧିବିଶେଷ।
ରଣସ୍ତମ୍ଭ—ବି. (କ.ଧା) ଜୟସ୍ତମ୍ଭ,ଯୁଦ୍ଧର ସ୍ମୃତି ଚିହ୍ନସ୍ୱରୂପ ପ୍ରୋଥିତ ସ୍ତମ୍ଭ, ନଗରବିଶେଷ, ଶତୋର।
ରଣସ୍ଥଳ—ବି. (୬ତତ୍ପୁ) ଯୁଦ୍ଧକ୍ଷେତ୍ର।
ରଣସ୍ଥାନ—ବି.(୬ତତ୍ପୁ) ଯୁଦ୍ଧସ୍ଥାନ,ରଣପ୍ରାଙ୍ଗଣ।
ରଣସ୍ୱାମୀ—ପୁଂ.ବି. ଶିବ, ଯୁଦ୍ଧର ପ୍ରଭୁ, ନେତା, (ଗ୍ରା.ବି) ଯୁଦ୍ଧର ପ୍ରଧାନ ସେନାପତି।
'ରଣହଂସ—ବି. ବର୍ଣ୍ଣବୃତ୍ତବିଶେଷ।
ରଣା—ଗ୍ରା.ବି. ଏକପ୍ରକାର ବିଷଧର ସର୍ପ, ମାଳଜାତିର ବଂଶୋପାଧିବିଶେଷ ଶୂଦ୍ରଜାତିବିଶେଷ, ଏକପ୍ରକାର ଓଡ଼ିଆ ପାଇକଜାତି.(ଗ୍ରା.ବିଂ) ଶ୍ରେଷ୍ଠ.ନିଷ୍କର୍ମା।
ରଣାଗ୍ନି—ପୁଂ.ବି. (ରଣ+ଅଗ୍ନି)ରଣରୂପ ଅଗ୍ନି, ଅଗ୍ନିପରି ସର୍ବନାଶକାରୀ ଯୁଦ୍ଧ।
ରଣାଗ୍ର-ବି. (୬ତତ୍ପୁ)ଯୁଦ୍ଧକ୍ଷେତ୍ରର ଯେଉଁ ସ୍ଥାନରେ ସମ୍ମୁଖ ଯୁଦ୍ଧ ଲାଗିଥାଏ।
ରଣାଙ୍ଗ—ବି. (୬ତତ୍ପୁ) ଯୁଦ୍ଧାସ୍ତ୍ର ପ୍ରଭୃତି, ଖଡ୍ଗ।
ରଣାଙ୍ଗଣ—ଗ୍ରା. ବି. ରଣାଙ୍ଗନ ଦେଖ।
ରଣାଙ୍ଗନ—କ୍ଲୀ.ବି. (୬ତତ୍ପୁ)ଯୁଦ୍ଧସ୍ଥାନ, ସମରକ୍ଷେତ୍ର।
ରଣାଜିର--କ୍ଲୀ.ବି.ରଣସ୍ଥଳ,ରଣପ୍ରାଙ୍ଗଣ।
ରଣାତୋଦ୍ୟ-କ୍ଲୀ.ବି.ଯୁଦ୍ଧବାଦ୍ୟବିଶେଷ।
ରଣାଦିତ୍ୟ—ପୁଂ.ବି. ଜନୈକ ରାଜା ଓ ଜନୈକ କବି।
ରଣାନ୍ତକୃତ୍—ପୁଂ.ବିଂ. (ରଣ+ଅନ୍ତ+କୃ+କ.କ୍ୱିପ୍)ରଣାନ୍ତକାରୀ, ଯେ ଯୁଦ୍ଧ ରହିତ କରେ,(ପୁଂ.ବି) ବିଷ୍ଣୁ।
ରଣାପେତ—ପୁଂ.ବିଂ.(୫ତତ୍ପୁ)ଯୁଦ୍ଧସ୍ଥାନରୁ ପଳାୟନକାରୀ, (ସ୍ତ୍ରୀ) ରଣାପେତା।
ରଣାଭିଯାନ—ବି.(୪ତତ୍ପୁ) ଯୁଦ୍ଧଯାତ୍ରା।
ରଣାଭିଯୋଗ—ପୁଂ.ବି. (୭ତତ୍ପୁ) ଯୁଦ୍ଧକରଣ, ବୀରପରି ଆକ୍ରମଣ, ରଣରେ ନିଯୋଗ। [ ଯୁଦ୍ଧାସ୍ତ୍ର।
ରଣାୟୁଧ—ବି. (ବ.ବ୍ରୀ)କୁକୁଡ଼ା,(କ.ଧା)
ରଣାଲଙ୍କରଣ—ପୁଂ.ବି. (ରଣ + ଅଳଙ୍କରଣ) କଙ୍କପକ୍ଷୀ।
ରଣାବନୀ—ସ୍ତ୍ରୀ.ବି. (୬ତତ୍ପୁ) ରଣଭୂମି, ସମରକ୍ଷେତ୍ର।
ରଣି—ଗ୍ରା.ବି. କଙ୍କପକ୍ଷୀ।
ରଣିତ—ବିଂ. (ରଣ+ଇତ)କୃତରଣ, (ମି.ତ) ଶବ୍ଦିତ, ବି. (ରଣ+ଭା.ତ) ଧ୍ୱନି, ଶବ୍ଦ, ରଣଝଣ ଶବ୍ଦ।
ରଣିତା—ପୁଂ.ବିଂ. ରମଣଶୀଳ।
ରଣେଚର—ପୁଂ.ବିଂ.(ରଣେ+ଚର୍+କ,ଅ) ଯୁଦ୍ଧଭୂମିରେ ଯୁଦ୍ଧବେଳେ ଯାଆସ କରୁଥିବା, (ପୁଂ.ବି) ବିଷ୍ଣୁ।
ରଣେଶ—ପୁଂ.ବି. ବିଷ୍ଣୁ, ଶିବ।
ରଣେଶ୍ୱର—ପୁଂ.ବି. ଶିବଲିଙ୍ଗବିଶେଷ, ବିଷ୍ଣୁ।
ରଣେସ୍ପୃଚ୍ଛ—ପୁଂ.ବି. କୁକ୍କୁଟ.କୁକୁଡ଼ା।
ରଣେଶୀ—ପୁଂ.ବିଂ. (ରଣ + ଈଶ + କ. ଇନ୍) ରଣେଚ୍ଛୁ,ଯୁଦ୍ଧକରିବାକୁ ଇଚ୍ଛୁକ, (ସ୍ତ୍ରୀ) ରଣେଶିଣୀ।
ରଣୋତ୍କଟ—ପୁଂ.ବିଂ. (୭ତତ୍ପୁ) ଉତ୍କଟରଣୋନ୍ମତ୍ତ. (ସ୍ତ୍ରୀ) ରଣୋତ୍କଟା, (ବି) ସ୍କନ୍ଦାନୁଚରବିଶେଷ, ଦୈତ୍ୟବିଶେଷ।
ରଣୋତ୍ସାହ—ବି. (୭ତତ୍ପୁ) ସମର ବିଷୟରେ ସାହସିକତା।
ରଣୋତ୍ସୁକ—ପୁଂ.ବିଂ.ରଣେଶୀ ଦେଖ।
ରଣୋଦ୍ଦାମ—ପୁଂ.ବିଂ. ରଣେଶୀ ଦେଖ।
ରଣ୍ଡ—ପୁଂ.ବିଂ. (ରମ୍+କ.ଡ଼) ଧୂର୍ତ୍ତ, ବିକଳାଙ୍ଗ, ଧର୍ମହୀନ, ଆଶ୍ରମବହିର୍ଗତ, ବନ୍ଧ୍ୟ,ଅଜାତପତ୍ୟ,ଅଜାତଫଳ(ବୃକ୍ଷ), ଅଣ୍ଡିରାଗଛ,ଅର୍ଦ୍ଧକର୍ମାବଚ୍ଛିନ୍ନ ଅବୟବଯୁକ୍ତ, ବର୍ମହୀନ, ଅସ୍ଥିର, (ସ୍ତ୍ରୀ) ରଣ୍ଡା, (ବି)ଅଣ୍ଡିରା ଗଛ,ନିଃସନ୍ତାନ ଅବସ୍ଥାରେ ମୃତ ବ୍ୟକ୍ତି।
ରଣ୍ଡକ—ପୁଂ.ବି. (ରଣ୍ଡ+କ) ଫଳହୀନ ବୃକ୍ଷ, ଅଣ୍ଡିରା ଗଛ, ମୂଷାକାନିଦଳ, ସଂସ୍କୃତ ଛନ୍ଦୋବିଶେଷ।
ରଣ୍ଡା—ସ୍ତ୍ରୀ.ବି.(ରମ୍+ଡ଼+ଆ)ବେଶ୍ୟା, ମୂଷିକପର୍ଣ୍ଣୀ, ବିଧବା, ରାଣ୍ଡି।
ରଣ୍ଡାଶ୍ରମୀ—ପୁଂ. ବିଂ. (ରଣ୍ଡ+ଆଶ୍ରମ+ଈ) ଯାହାର ବର୍ଷ୪୮ ପରେ ପତ୍ନୀ ବିୟୋଗ ହୋଇଅଛି।
ରଣ୍ଡୀ—ଗ୍ରା. ବି. ବିଧବା, ବେଶ୍ୟା, ସ୍ତ୍ରୀ, ପତ୍ନୀ।
ରଣ୍ଡୀବାଜ୍—ଯା. ବିଂ. ବେଶ୍ୟାସକ୍ତ, କାମୁକ, ସ୍ୱୈଣ, ଲମ୍ପଟ।
ରଣ୍ଡୀବାଜୀ—ଯା. ବି. ବେଶ୍ୟାସକ୍ତି,କାମୁକତା, ଲମ୍ପଟତା।
ରତ—କ୍ଲୀ. ବି. (ରମ୍+ଭା.ତ) ମୈଥୁନ, ରତି, ରମଣ, (ଅଧି.ତ) ଗୁହ୍ୟଦେଶ, ଯୋନି, ଲିଙ୍ଗ, (ମି.ତ) ପ୍ରେମ, ପ୍ରଣୟ, ଅନୁରାଗ, (ବିଂ) ବ୍ୟାପୃତ, ଅନୁରକ୍ତ, ନିଯୁକ୍ତ, ଆସକ୍ତ, ଲିପ୍ତ, (ଗ୍ରା.ବି)କେଳି, କୌତୁକ, ଆମୋଦପ୍ରମୋଦ, ଆସକ୍ତି।
ରତକୀଲ(କ)—ପୁଂ.ବି.(ବ.ବ୍ରୀ)କୁକ୍କୁର, ସୁରତକଣ୍ଡୂଳ।
ରତକୂଜିତ—ବି.(୭ତତ୍ପୁ)ମୈଥୁନକାଳୀନ ବାକ୍ୟ, ମଣିତ।
ରତଗୁରୁ—ପୁଂ.ବି. (୭ତତ୍ପୁ)ପତି,ସ୍ୱାମୀ।
ରତଗୃହ—ବି. ଯୋନି। [ ବାୟସ।
ରତଜ୍ୱର—ପୁଂ. ବି. ( ବ.ବ୍ରୀ ) କାକ,
ରତତାଳୀ—ପୁଂ. ବି. (ରତ+ତାଳ+କ.ଇନ୍) କାମୁକବ୍ୟକ୍ତି,ଲମ୍ପଟ,କୁଟ୍ଟନୀ, ରମଣଦୂତ,(ସ୍ତ୍ରୀ.ବି-ରତ+ତାଳ+ଈ) ଦୂତୀ, କୁଟ୍ଟଣୀ।
ରତନ—ଗ୍ରା. ବି. ରତ୍ନ ଦେଖ, ବନ୍ଧୁମଧ୍ୟରେ ଶ୍ରେଷ୍ଠବ୍ୟକ୍ତି, (ଗ୍ରା.ବିଂ) ଶ୍ରେଷ୍ଠ।
ରତନାରି(ରୀ)ଚ--ପୁଂ.ବି.ଇନ୍ଦ୍ରିୟସେବକ, କାମଦେବ, କୁକ୍କୁର, ଲମ୍ପଟ ବ୍ୟକ୍ତି, ରମଣଚୌର, ଶୀତ୍କାର, ମଣିତ।
ରତନିଧି—ପୁଂ. ବି. ଖଞ୍ଜନପକ୍ଷୀ,କଜ୍ଜଳପାଢ଼ି ଚଢ଼େଇ। [ ମନଃ।
ରତମାନସ—ପୁଂ. ବିଂ. (ବ.ବ୍ରୀ)ସନ୍ତୁଷ୍ଟ-
ରତରତ—ଗ୍ରା. ବିଂ. (ଫ-ଲ୍କେ) ଅସ୍ତାମୁଖ.ସୂର୍ଯ୍ୟ),ଶେଷହୋଇଥିବା(ଦିବସ), (ଗ୍ରା.ବି) ସୂର୍ଯ୍ୟର ଅସ୍ତୋନ୍ମୁଖ ଅବସ୍ଥା, ଦିବାବସାନ।

ରତବର୍ଦ୍ଧିକ—ବ. (ରତ+ବୃଦ୍ଧି+କୃ+କ.ଅ) ଦିବସ, ସୁପ୍ରସ୍ଥାନ, ଅଷ୍ଟମଙ୍ଗଳ, ଅଠଗୋଟି ଶୁଭସୂଚକ ବସ୍ତୁର ସମନ୍ୱୟ ଆଠପ୍ରକାର ମାଙ୍ଗଳ୍ୟ ଦ୍ରବ୍ୟ, (ଯଥା:— ବ୍ରାହ୍ମଣ, ଗୋ, ଅଗ୍ନି, ସ୍ୱର୍ଣ୍ଣ, ଘୃତ, ଆଦିତ୍ୟ, ଜଳ ଓ ରାଜା) ମତାନ୍ତରେ, ସିଂହ, ବୃଷ, ହସ୍ତୀ, ଜଳକୁମ୍ଭ, ବ୍ୟଜନ, ଧ୍ୱଜ, ଶଙ୍ଖ ଓ ଦୀପ; ଘୃତକ୍ଷୁର, ପୁଚ୍ଛ, ମୁଖ, ବକ୍ଷସ୍ଥଳ ଓ ପୃଷ୍ଠ ଏହି ଆଠଗୋଟି ସ୍ଥାନରେ ମଙ୍ଗଳସୂଚକ ଶ୍ୱେତଚିହ୍ନଯୁକ୍ତ ଅଶ୍ୱ ।

ରତବନ୍ଧ—ବ. (୬ତତ୍) ରମଣ, ରମଣ କରିବା ବିଷୟରେ ଭିନ୍ନ ଭିନ୍ନ ଅବସ୍ଥିତି ।

ରତବାନ୍—ପୁଂ. ବିଂ. ( ରତ+ବତ୍ ) ରମଣଯୁକ୍ତ, ସନ୍ତୁଷ୍ଟ, ସୁଖୀ, (ସ୍ତ୍ରୀ) ରତବତୀ ।

ରତବିଶେଷ—ବ. ରମଣ ସମୟରେ ଅବଲମ୍ବିତ ଭିନ୍ନ ଭିନ୍ନ ଅବସ୍ଥିତି ।

ରତବ୍ରଣ—ପୁଂ. ବ. (ବ.ବ୍ରୀ) କୁକ୍କୁର ।

ରତଶାୟୀ—ପୁଂ.ବ.(ରତ+ଶୀ+କ.ଇନ୍) କୁକ୍କୁର ।

ରତହିଣ୍ଡକ—ପୁଂ.ବ. ଲମ୍ପଟ, ସ୍ତ୍ରୀଚୌର, ବଳାତ୍କାର ପୂର୍ବକ ସ୍ତ୍ରୀରମଣକାରୀ ବ୍ୟକ୍ତି ।

ରତା—ଗ୍ରା.ବିଂ. ରକ୍ତବର୍ଣ୍ଣବିଶିଷ୍ଟ, ଆସକ୍ତ, ଅନୁରକ୍ତ, (ବି) ଏକପ୍ରକାର ଔଷଧ ରକ୍ତାଭ କାତି ନଥିବା ମାଛ, ଆସକ୍ତି, ମୂଷାରୋଗବିଶେଷ ।

ରତାନ୍ତ—ବ. (୬ତତ୍) ରତିର ସମାପ୍ତି ।

ରତାନ୍ଧୁକ—ପୁଂ. ବ. (ବ.ବ୍ରୀ) କୁକ୍କୁର ।

ରତାନ୍ଧ୍ରୀ—ସ୍ତ୍ରୀ. ବ. କୁଜ୍ଝଟିକା, କୁହୁଡ଼ି ।

ରତାମର୍ଦ୍ଦ—ପୁଂ. ବ. (ବ.ବ୍ରୀ) କୁକୁର, (ସ୍ତ୍ରୀ) ରତାମର୍ଦ୍ଦା । [ ଗହ୍ୱର ଦ୍ୱୟ ।

ରତାମୃକ—କ୍ଲୀ.ବ. ଉରୁସନ୍ଧିର ଉପରସ୍ଥ

ରତାୟନୀ—ସ୍ତ୍ରୀ. ବ.(ବ.ବ୍ରୀ) ବେଶ୍ୟା ।

ରତାରମ୍ଭ—ବ. (୬ତତ୍) ରତିକ୍ରିୟାର ଆରମ୍ଭ ।

ରତାର୍ଥୀ—ପୁଂ.ବିଂ.(ରତ+ଅର୍ଥୀ)କାମୁକ, ସୁରତକ୍ରୀଡ଼ାଭିଳାଷୀ, ମୈଥୁନାଭିଳାଷୀ. (ସ୍ତ୍ରୀ) ରତାର୍ଥିନୀ ।

ରତାବସାନ—ବ.(୬ତତ୍)ରତିର ସମାପ୍ତି

ରତାସକ୍ତ—ପୁଂ. ବିଂ. (୭ତତ୍) କାମୁକ, (ସ୍ତ୍ରୀ) ରତାସକ୍ତା ।

ରତି—ସ୍ତ୍ରୀ.ବ.(ରମ୍+କ.ତି)କାମଦେବଙ୍କ ପତ୍ନୀ, ସଙ୍ଗତି, ମିଳନ, ଇନ୍ଦ୍ରିୟ ସୁଖ, (ଅପ୍ର.ତି)ଯୋନି, ଗୁହ୍ୟଦେଶ,ଚନ୍ଦ୍ରଙ୍କର ଷଷ୍ଠକଳାର ନାମ, (ଭା.ତି) କ୍ରୀଡ଼ା, ଆସକ୍ତି, ଅନୁରାଗ,ପ୍ରେମ,ପ୍ରୀତି,ସନ୍ତୋଷ. ସମ୍ଭୋଗ, ମୈଥୁନ, (ଗ୍ରା.ବି)ଗୁଞ୍ଜା ଫଳ ଓଜନର ପରିମାଣବିଶେଷ; ଏକ ତୋଳାର ୮° ଭାଗରୁ ଏକଭାଗ ପରିମାଣ

ରତିଏ—ଗ୍ରା. ଅ. ଏକରତି ମାତ୍ର, ଅତି ସାମାନ୍ୟରେ ।

ରତିକର—ପୁଂ. ବିଂ.(ରତି+କୃ+କ. ଅ)ଆନନ୍ଦଦାୟକ, ପ୍ରଣୟବର୍ଦ୍ଧକ,କାମୀ, (ସ୍ତ୍ରୀ) ରତିକରୀ, (ବି) ସମାଧିବିଶେଷ ।

ରତିକରା—ସ୍ତ୍ରୀ. ବ. ( ରତିକର+ଆ) ଅପ୍ସରାବିଶେଷ ।

ରତିକରିବା—ଗ୍ରା. କ୍ରି. ମୈଥୁନ କରିବା ।

ରତିକର୍ମ—କ୍ଲୀ. ବ. ( ରତି + କର୍ମନ୍ ) ସ୍ତ୍ରୀସହବାସ, ମୈଥୁନ ରୂପ କାର୍ଯ୍ୟ ।

ରତିକଳା—ବ.(ରତି+କଳା)ରତିବିଦ୍ୟା

ରତିକାମ(ମୀ)—ପୁଂ. ବିଂ. (ରତି+କମିନ୍) ରମଣେଚ୍ଛୁ, କାମୁକ, ( ସ୍ତ୍ରୀ ) ରତିକାମିନୀ ।

ରତିକୁଶଳ—ପୁଂ. ବିଂ. (୭ତତ୍) ରମଣ କ୍ରିୟାରେ ବା ରତିଶାସ୍ତ୍ରରେ ପଟୁ ।

ରତିକୁହର—କ୍ଲୀ. ବ. (କ.ଧା) ଯୋନି, ସ୍ତ୍ରୀ ଚିହ୍ନ ।

ରତିକୂପ(ପିକା)—ବ. ଯୋନି, ସ୍ତ୍ରୀଚିହ୍ନ ।

ରତିକ୍ରିୟା—ସ୍ତ୍ରୀ.ବ. ମୈଥୁନ,ସଂବେଶନ ।

ରତିଖିନ୍ନ—ପୁଂ. ବିଂ. (୩ତତ୍)ଅତିରକ୍ତ ରତିକ୍ରିୟା ଦ୍ୱାରା ଅବସନ୍ନ, ରତିକ୍ଳାନ୍ତ, ରତିଶ୍ରାନ୍ତ, (ସ୍ତ୍ରୀ) ରତିଖିନ୍ନା ।

ରତିଖେଦ—ବ. ( କ.ଧା ) ରତିକ୍ରିୟା ଜନିତ ଅବସାଦ, ଶ୍ରାନ୍ତି, ଗ୍ଳାନି ।

ରତିଗୁଣ—ପୁଂ.ବ. ଦେବଗନ୍ଧର୍ବବିଶେଷ

ରତିଗୃହ—କ୍ଲୀ. ବ. (କ.ଧା) ଯୋନି, ସ୍ତ୍ରୀଚିହ୍ନ, କ୍ରୀଡ଼ାମନ୍ଦିର, ବେଶ୍ୟାଗୃହ ।

ରତିଚେଷ୍ଟା—ବ.(୬ତତ୍) କାମଚେଷ୍ଟା, ରମଣ ସମ୍ବନ୍ଧୀୟ ବିବିଧ ଆନୁଷଙ୍ଗିକ ଓ ଆନୁପୂର୍ବିକ କର୍ମ, (ଅନ୍ୟରୂପ) ରତିଚେଷ୍ଟିତ ।

ରତିଚୈର—ଗ୍ରା. ବିଂ. ରତିଚୌରଦେଖ

ରତିଚୈର୍ଯ୍ୟ—ଗ୍ରା. ବ. ଗୁପ୍ତପ୍ରଣୟ, ଗୋପ୍ୟ ପ୍ରୀତି ।

ରତିଚୌର—ପୁଂ. ବ. ( ୬ତତ୍ ) ଯେ ଚୌର୍ଯ୍ୟାବଲମ୍ବନ ପୂର୍ବକ ରତିକରେ ।

ରତିଜ୍ଞ—ପୁଂ. ବିଂ.(ରତି+ଜ୍ଞା+କ.ଅ) ରତିବିଷୟରେ ଅଭିଜ୍ଞ, ପ୍ରେମବିଷୟରେ ଅଭିଜ୍ଞ, (ସ୍ତ୍ରୀ) ରତିଜ୍ଞା ।

ରତିତସ୍କର—ପୁଂ. ବିଂ. ସତୀତ୍ୱନାଶକାରୀ, ରତିଚୌର ଦେଖ ।

ରତିଦାନ—ବ.(୬ତତ୍)କୌଣସି ବ୍ୟକ୍ତିକୁ ମୈଥୁନ ସୁଖଦେବା, ସହବାସକରଣ, ଆନନ୍ଦଉତ୍ପାଦନ ।

ରତିଦୂତ—ପୁଂ.ବ. (୬ତତ୍) ପ୍ରଣୟୀ ଓ ପ୍ରଣୟିନୀଙ୍କ ମଧ୍ୟରେ ସମ୍ବାଦବାହକ,(ସ୍ତ୍ରୀ) ରତିଦୂତୀ ।

ରତିନାଗ—ପୁଂ. ବ. କାମଶାସ୍ତ୍ରମତେ ଷୋଡ଼ଶ ବନ୍ଧ ମଧ୍ୟରୁ ପଞ୍ଚଦଶ ରତିବନ୍ଧ ।

ରତିନାଥ—ପୁଂ.ବ.(୬ତତ୍) କାମଦେବ, କନ୍ଦର୍ପ । [ ମଦନ ।

ରତିପତି—ପୁଂ.ବ. (୬ତତ୍) କାମଦେବ,

ରତିପଣ୍ଡିତ—ପୁଂ.ବିଂ(୭ତତ୍)ରତିକୁଶଳ ଦେଖ ।

ରତିପରଚୟ—ବ. ବହୁବାର ରମଣ ।

ରତିପାଶ—ପୁଂ. ବ. (୬ତତ୍) ରତିବନ୍ଧବିଶେଷ ।

ରତିପ୍ରାର୍ଥନା—ବ. (କ.ଧା) କାମାତୁର ପୁରୁଷର ସ୍ତ୍ରୀକୁ କିମ୍ବା କାମାତୁରା ନାରୀର ପୁରୁଷକୁ ସଂଯୋଗ କରିବା ପାଇଁ ଅନୁନୟ ।

ରତିପ୍ରିୟ—ପୁଂ. ବିଂ. (ବ.ବ୍ରୀ) କାମୁକ, ସୁରତପ୍ରିୟ, (ସ୍ତ୍ରୀ) ରତିପ୍ରିୟା, (ବି. ୬ତତ୍) କାମଦେବ, ମଦନ ।

ରତିପ୍ରୀତି—ବ.(ଦ୍ୱନ୍ଦ୍ୱ)କାମଦେବଙ୍କ ଦୁଇ ସ୍ତ୍ରୀ, ରତି ଓ ପ୍ରୀତି ।

ରତିଫଳ—ବି°.(ବ.ବ୍ରୀ) ରତିସୁଖ ଉତ୍ପାଦକ,(ଗ୍ରା.ବି)ଏକପ୍ରକାର ପୁଷ୍ପଧ ସାଗୁଲ୍ମ

ରତିଭବନ—କ୍ଲୀ. ବି. (ରତି+ଭବନ) ରତିଗୃହ, ଯୋନି, ରମଣମନ୍ଦିର ।

ରତିଭୋଗ—ବି.(୭ତତ୍)ରମଣ, ସଙ୍ଗମ ।

ରତିମଞ୍ଜରୀ(ରୀ)—ବି. ରତିବିଦ୍ୟାସମ୍ବନ୍ଧୀୟ ସଂସ୍କୃତ ଗ୍ରନ୍ଥବିଶେଷ ।

ରତିମଦା—ସ୍ତ୍ରୀ. ବି. (ରତି+ମଦ୍+ଆ) ଅପ୍ସରା, ସ୍ୱର୍ଗବିଦ୍ୟାଧରୀ, ସ୍ୱର୍ବେଶ୍ୟା ।

ରତିମନ୍ଦିର—କ୍ଲୀ. ବି. (ରତି+ମନ୍ଦିର) ଯୋନି, ରତିଗୃହ ।

ରତିମନ୍ତ୍ର—ପୁଂ. ବି°.(ରତି+ମନ୍ତ୍ର)ଅନୁରାଗବିଶିଷ୍ଟ, ରତିଯୁକ୍ତ, (ସ୍ତ୍ରୀ)ରତିମନ୍ତା ।

ରତିମିତ୍ର—ପୁଂ. ବି. ରତିବନ୍ଧବିଶେଷ ।

ରତିରଙ୍କ—ପୁଂ. ବି°. ସହବାସ ସୁଖରୁ ବଞ୍ଚିତ ହେବାଯୋଗୁଁ ଅତି କାମାତୁର, (ସ୍ତ୍ରୀ) ରତିରଙ୍କା ।

ରତିରଙ୍ଗ—ବି.ନାନାପ୍ରକାର ରତିକ୍ରିୟା ।

ରତିରଙ୍ଗୀ—ପୁଂ. ବି. ରତି ରଙ୍ଗରେ ଦକ୍ଷ, ରତିକୁଶଳ, ସୁରତରେ ମାତିଥିବା, (ସ୍ତ୍ରୀ) ରତିରଙ୍ଗିଣୀ ।

ରତିରମଣ—ପୁଂ.ବି.(୬ତତ୍)କାମଦେବ ।

ରତିରସ—ବି. (କ.ଧା) ସହବାସ ସୁଖ, ରତିଜନିତ ସୁଖ ।

ରତିରହସ୍ୟ—ବି(୬ତତ୍)ରତି ବା ପ୍ରେମ ସମ୍ବନ୍ଧୀୟ ଗୁପ୍ତକଥା, କୋକ୍କଙ୍କ ରଚିତ ରତିଶାସ୍ତ୍ରବିଶେଷ ।

ରତିଲକ୍ଷ—କ୍ଲୀ.ବି. (ରତି+ଲକ୍ଷ୍+ଅ) ନିଧୁବନ, ସଙ୍ଗମ, ମୈଥୁନ ।

ରତିଲମ୍ପଟ—ପୁଂ.ବି(୭ତତ୍)ରମଣେଚ୍ଛୁ, କାମାତୁର, (ସ୍ତ୍ରୀ) ରତିଲମ୍ପଟା ।

ରତିଲୋଲ—ପୁଂ. ବି. ରାକ୍ଷସବିଶେଷ ।

ରତିବନ୍ଧ—ବି. (କ.ଧା) ରମଣକାଳୀନ ସ୍ତ୍ରୀ ପୁରୁଷଙ୍କର ଆଲିଙ୍ଗନ ଭଙ୍ଗି ।

ରତିବନ୍ଧୁ—ବି. (୬ତତ୍) ସ୍ୱାମୀ ।

ରତିବର—ପୁଂ.ବି.(୬ତତ୍) କାମଦେବ, ରତି ଉଦ୍ଦେଶେ ପ୍ରଦତ୍ତ ଉପହାର ।

ରତିବର୍ଦ୍ଧକ(ନ)--ବି°.(୬ତତ୍)କାମବର୍ଦ୍ଧକ, ପ୍ରଣୟୋନ୍ମେଷକ, ପ୍ରେମବୃଦ୍ଧିକାରୀ ।

ରତିବଲ୍ଲୀ—ସ୍ତ୍ରୀ.ବି.ପ୍ରେମ,ଭଲପାଇବା ।

ରତିବିଦ୍ୟା—ବି. (କ.ଧା) ରତିଶାସ୍ତ୍ର ।

ରତିଶକ୍ତି—ସ୍ତ୍ରୀ. ବି. ରମଣକ୍ଷମତା ।

ରତିଶାସ୍ତ୍ର—ବି.(କ.ଧା) ରତିବିଦ୍ୟା, ରତିସମ୍ବନ୍ଧୀୟ ଗ୍ରନ୍ଥ ।

ରତିଶୂର—ପୁଂ.ବି. ପୁତ୍ରୋତ୍ପାଦନକ୍ଷମ- [ ବ୍ୟକ୍ତି ।

ରତିସଂଯୋଗ-ପୁଂ.ବି.ମୈଥୁନଲିପ୍ସି,ସଙ୍ଗମ

ରତିସଂହତି—ସ୍ତ୍ରୀ. ବି. ରମଣର କ୍ଷମତା ।

ରତିସର୍କ(କ୍ଳା)—ବି. ରତି କରିବା ଅଭିପ୍ରାୟରେ ସୁବେଶ ହେବା ।

ରତିସହସ୍ର--ସ୍ତ୍ରୀ.ବି.ଚିରଞ୍ଜୀବୀ,ପିଡ଼ଙ୍ଗଶାଗ

ରତିସାଧନ—କ୍ଲୀ. ବି. (ରତି+ସାଧନ) ଶିଶ୍ନ ।

ରତିସୁନ୍ଦର—ପୁଂ. ବି. ରତିବନ୍ଧବିଶେଷ

ରତୀଚ୍ଛା—ବି.(୬ତତ୍) ରମଣେଚ୍ଛା, ରମଣ କରିବା ପାଇଁ ଅଭିଳାଷ ।

ରତୁ—ସ୍ତ୍ରୀ. ବି. ଦେବନଦୀ, ସତ୍ୟବାଦୀ, ସତ୍ୟବାକ୍ ।

ରତୋଦ୍ୱହ—ପୁଂ. ବି. (ରତ+ଉତ୍+ବହ+ଅ) କୋକିଳ ।

ରତୋନ୍ମାଦ—ବି.(୭ତତ୍) ଅପୂର୍ଣ୍ଣ କାମବୃତ୍ତି ଯୁବକ ଯୁବତୀଙ୍କଠାରେ ଦେଖାଦିବା ଉନ୍ମାଦ ରୋଗବିଶେଷ, କାମୋନ୍ମାଦ, ରମଣେଚ୍ଛା ।

ରତ୍ତି(କା)—ବି(ରମ୍+ତି) ଗୁଞ୍ଜା, ନାଲି କାଇଞ୍ଚ, ମଣ୍ଡାକାଇଞ୍ଚ, ଏକରତି ପରିମାଣ ଓଜନ, ଅତି ସାମାନ୍ୟ ପରିମିତ ବସ୍ତୁ ।

ରତ୍ନ—କ୍ଲୀ.ବି (ରମ୍+ତ.ନ)ବଜ୍ର,ଅଶ୍ୱଜାତି, ମୁକ୍ତାଦି ମଣି, ସ୍ୱଜାତି ଶ୍ରେଷ୍ଠ, ସ୍ୱର୍ଣ୍ଣାଦି ବହୁମୂଲ୍ୟ ଦ୍ରବ୍ୟ ।

ରତ୍ନକଣ୍ଠ—ବି. ଜ୍ୟୋତିଷସାରଣୀ ଗ୍ରନ୍ଥର ରଚୟିତା ।

ରତ୍ନକଦଳୀ—ବି. ଏକପ୍ରକାର କଦଳୀ, ନାଲିକଦଳୀ ।

ରତ୍ନକନ୍ଦଳ—ପୁଂ.ବି.ପ୍ରବାଳ,ପୋହଳା ।

ରତ୍ନକମ୍ବଳ—ବି. ସ୍ୱର୍ଣ୍ଣାଦି ଖଚିତ ସାଲ ।

ରତ୍ନକର—ପୁଂ. ବି. କୁବେର ।

ରତ୍ନକଳସ—କ୍ଲୀ.ବି.ରତ୍ନନିର୍ମିତ କଳସୀ ।

ରତ୍ନକୂଟ—ପୁଂ.ବି. ପର୍ବତବିଶେଷ,ଯେଉଁ ପର୍ବତ ମଧ୍ୟରେ ରତ୍ନଥାଏ, ଦ୍ୱୀପବିଶେଷ ।

ରତ୍ନକୋଟି—ପୁଂ. ବି. ସମାଧିବିଶେଷ, ଅସଂଖ୍ୟ ରତ୍ନ ।

ରତ୍ନଖଚିତ—ବି°. (୩ତତ୍) ରତ୍ନମଣ୍ଡିତ, ମଣି ମୁକ୍ତାଦିରେ ଭୂଷିତ ।

ରତ୍ନଖଟ—ଗ୍ରା. ବି. ରତ୍ନ ଖଚିତ ଖଟ ।

ରତ୍ନଖଟ୍ୱା—ବି. ରତ୍ନଖଚିତ ଖଟ ।

ରତ୍ନଖଣି—ସ୍ତ୍ରୀ.ବି.ରତ୍ନର ଖଣି, ସମୁଦ୍ର ।

ରତ୍ନଗଜ—ବି. (କ.ଧା) ଯେଉଁ ହାତୀର ମୁଣ୍ଡରେ ରତ୍ନଥାଏ, ଶ୍ରେଷ୍ଠଗଜ ।

ରତ୍ନଗଡ଼—ଗ୍ରା. ବି. ବିକାନିର ନଗରର ପୂର୍ବରେ ଓ ବିକାନି ରାଜ୍ୟରେ ଥିବା ଗୋଟିଏ ନଗର ଓ ରେଲଷ୍ଟେସନ ।

ରତ୍ନଗର୍ଭ—ପୁଂ. ବି. (ବ.ବ୍ରୀ) କୁବେର, ସମୁଦ୍ର, (ବି°) ରତ୍ନଗର୍ଭବିଶିଷ୍ଟ, (ସ୍ତ୍ରୀ) ରତ୍ନଗର୍ଭା ।

ରତ୍ନଗର୍ଭା—ସ୍ତ୍ରୀ. ବି. ( ରତ୍ନଗର୍ଭ+ଆ ) ବ.ବ୍ରୀ; ପୃଥିବୀ, ସତ୍ପୁତ୍ରବତୀ ନାରୀ ।

ରତ୍ନଗିରି—ବି. ପର୍ବତବିଶେଷ ।

ରତ୍ନଚରା—ଗ୍ରା. ସ୍ତ୍ରୀ. ବି. ପୁରୀଜିଲ୍ଲାର ସତ୍ୟବାଦୀ ନିକଟଦେଇ ପ୍ରବାହିତ କ୍ଷୁଦ୍ର ନଦୀବିଶେଷ ।

ରତ୍ନଚୁଡ଼ି—ଗ୍ରା. ବି. ରତ୍ନଖଚିତ ହସ୍ତବଳୟବିଶେଷ ।

ରତ୍ନଚୂଡ଼—ପୁଂ. ବି°. (ବ.ବ୍ରୀ) ଯାହାର ଚୂଡ଼ାରେ ରତ୍ନଅଛି, (ସ୍ତ୍ରୀ) ରତ୍ନଚୂଡ଼ା ।

ରତ୍ନଜଡ଼ିତ—ବି°. (୩ତତ୍)ରତ୍ନଖଚିତ ।

ରତ୍ନଜୀବୀ—ବି.(ରତ୍ନ+ଜୀବ୍+ଇନ୍) ରତ୍ନ ବ୍ୟବସାୟୀ, ଜହୁରୀ ।

ରତ୍ନଜୋଡ଼—ପ୍ରା. ( କଟକ ) ରତ୍ନବଟ ନିକଟସ୍ଥ ଜଳାଶୟ ।

ରତ୍ନତ୍ରୟ—ବି.(୬ତତ୍)ସ୍ୱଦୃଷ୍ଟି ଜ୍ଞାନ ଓ ଚରିତ୍ରଧର୍ମ, ସଂଘ ଓ ବୁଦ୍ଧ, ବୌଦ୍ଧଧର୍ମର ଏ ତିନିଗୋଟି ଅମୂଲ୍ୟ ବସ୍ତୁ ।

ରତ୍ନଦର୍ପଣ—ପୁଂ.ବି.ରତ୍ନାଦିମଣ୍ଡିତ ଦର୍ପଣବିଶେଷ ।

ରତ୍ନଦୀପ—ବି. (କ.ଧା) ବହୁମୂଲ୍ୟ ମଣି-ଆଦିରେ ନିର୍ମିତ ପ୍ରଦୀପ,ପାତାଳସ୍ଥ ମଣି-ବିଶେଷ,ଯହିଁରୁ ଆଲୋକ ବିକୀର୍ଣ୍ଣ ହୁଏ ।

ରତ୍ନଦ୍ରୁମ—ପୁଂ. ବି. ପ୍ରବାଳ ।

ରତ୍ନଦ୍ରୁମମୟ—ବିଂ.ପ୍ରବାଳମଣ୍ଡିତ, ପ୍ରବାଳ ସଦୃଶ ।

ରତ୍ନଦ୍ୱୀପ—କ୍ଲୀ. ବି. ରତ୍ନନିର୍ମିତ ସ୍ଥାନ, ଦ୍ୱୀପବିଶେଷ ।

ରତ୍ନଧର—ପୁଂ. ବିଂ. ଧନବାନ୍ ।

ରତ୍ନଧା—ପୁଂ. ବିଂ. ଧନଶାଳୀ ।

ରତ୍ନଧେନୁ—ସ୍ତ୍ରୀ. ବି. ରତ୍ନନିର୍ମିତ ଧେନୁ-ଦାନରୂପ ମହାଦାନବିଶେଷ ।

ରତ୍ନଧେୟ—କ୍ଲୀ. ବି. ଧନଦାନ ।

ରତ୍ନନିଚୟ—ପୁଂ. ବି. (ରତ୍ନ+ନିଚୟ) ମଣିସମୂହ ।

ରତ୍ନନାଭ—ପୁଂ. ବି. ବିଷ୍ଣୁ ।

ରତ୍ନନିଧି—ପୁଂ. ବି. ଖଞ୍ଜନପକ୍ଷୀ, ସମୁଦ୍ର, ମେରୁ, ବିଷ୍ଣୁ, (ଗ୍ରା.ବି) ରତ୍ନସମୂହ ।

ରତ୍ନନ୍ୟାସ—କ୍ଲୀ. ବି. ରତ୍ନସ୍ଥାପନ ।

ରତ୍ନପରୀକ୍ଷା—ସ୍ତ୍ରୀ.ବି. ପ୍ରକୃତ ରତ୍ନ ନିର୍ବାଚନ ।

ରତ୍ନପର୍ବତ—ପୁଂ. ବି. ମେରୁ ପର୍ବତ ।

ରତ୍ନପଲଙ୍କ—ଗ୍ରା.ବି.ରତ୍ନଖଚିତ ପଲଙ୍କ ।

ରତ୍ନପାରାୟଣ—ବି. ଯେଉଁଠାରେ ସବୁପ୍ରକାର ରତ୍ନ ମିଳେ ।

ରତ୍ନପୁର—କ୍ଲୀ.ବି. ଦେଶବିଶେଷ,ଭାରତର ବିଳାସପୁରର ଉତ୍ତରରେ ଥିବା ଗୋଟିଏ ନଗର ।

ରତ୍ନପୁରୁଷ—ବି.ଏକପ୍ରକାର ଔଷଧ ଗଛ ।

ରତ୍ନପ୍ରତିମା—ବି. ରତ୍ନନିର୍ମିତ ପିତୁଳା ।

ରତ୍ନପ୍ରଦୀପ—ପୁଂ. ବି. ରତ୍ନଦୀପ ଦେଖ ।

ରତ୍ନପ୍ରଭ—ପୁଂ. ବି. (ରତ୍ନ+ପ୍ରଭା+ଅ) ଦେବତାବିଶେଷ, (ବିଂ)ରତ୍ନପରି ପ୍ରଭାବିଶିଷ୍ଟ, (ସ୍ତ୍ରୀ) ରତ୍ନପ୍ରଭା ।

ରତ୍ନପ୍ରଭା—ସ୍ତ୍ରୀ. ବି. ( ବ.ବ୍ରୀ ) ପୃଥିବୀ, ନାରୀବିଶେଷ,(୬ତତ୍)ରତ୍ନର ଔଜ୍ଜ୍ୱଲ୍ୟ, ଜୈନମାନଙ୍କର ନରକବିଶେଷ ।

ରତ୍ନପ୍ରସୂ—ସ୍ତ୍ରୀ. ବିଂ. ଯେ ରତ୍ନ ପ୍ରସବ କରେ, ରତ୍ନପ୍ରସବକାରୀ, ସୁସନ୍ତାନ ପ୍ରସବିନୀ(ସ୍ତ୍ରୀ), (ବି) ପୃଥିବୀ, ବସୁନ୍ଧରା ।

ରତ୍ନପ୍ରସୂତ—ବିଂ.(୫ତତ୍)ରତ୍ନରୁ ଉତ୍ପନ୍ନ, (ବ.ବ୍ରୀ) ରତ୍ନୋତ୍ପାଦକ ।

ରତ୍ନପ୍ରସୂତି—ସ୍ତ୍ରୀ.ବି. ଶୁକ୍ତି, ଶାମୁକା,(ବିଂ) ରତ୍ନପ୍ରସବକାରିଣୀ ।

ରତ୍ନପ୍ରସୂତା—ସ୍ତ୍ରୀ. ବି ଓ ବିଂ. ରତ୍ନପ୍ରସୂ ଦେଖ ।

ରତ୍ନଭାକ୍—କ୍ଲୀ. ବି. ଧନସଞ୍ଚୟୀ ।

ରତ୍ନମଞ୍ଜରୀ—ସ୍ତ୍ରୀ. ବି. ବିଦ୍ୟାଧରୀବିଶେଷ ।

ରତ୍ନମଣ୍ଡିତ—ବିଂ. (୩ତତ୍) ରତ୍ନଖଚିତ, ରତ୍ନଦ୍ୱାରା ଅଳଂକୃତ,(ସ୍ତ୍ରୀ) ରତ୍ନମଣ୍ଡିତା ।

ରତ୍ନମୟ—ବିଂ.(ରତ୍ନ+ମୟ) ରତ୍ନଖଚିତ, ରତ୍ନପୂର୍ଣ୍ଣ, ମଣିମୟ, (ସ୍ତ୍ରୀ) ରତ୍ନମୟୀ ।

ରତ୍ନମାଳା—ସ୍ତ୍ରୀ. ବି. ରତ୍ନମୟ ହାର ବା ମାଳ ।

ରତ୍ନମାଳାବାନ୍—ପୁଂ.ବିଂ.ରତ୍ନମାଳାଧାରୀ, ରତ୍ନମାଳାସଦୃଶ ।

ରତ୍ନମାଳିକା—ସ୍ତ୍ରୀ.ବି. ଶ୍ରେଷ୍ଠ ରତ୍ନହାର ।

ରତ୍ନମାଳୀ—ପୁଂ. ବିଂ. ରତ୍ନମାଳାଧାରୀ, (ବି) ଦେବତାବିଶେଷ ।

ରତ୍ନମୁଖ୍ୟ—କ୍ଲୀ. ବି. ( ରତ୍ନ + ମୁଖ୍ୟ ) ହୀରକ, ହୀରା ।

ରତ୍ନମୁଦ୍ରା—ସ୍ତ୍ରୀ. ବି. ସମାଧିବିଶେଷ ।

ରତ୍ନମୁଦ୍ରିକା—ବି. (କ.ଧା) ରତ୍ନଖଚିତ ଅଙ୍ଗୁରୀୟ ।

ରତ୍ନରାଜ—ପୁଂ. ବି. ହୀରକ, ହୀରା ।

ରତ୍ନରାଜି—ସ୍ତ୍ରୀ.ବି. (୬ତତ୍) ରତ୍ନସମୂହ ।

ରତ୍ନରାଟ୍— ବି. ( ରତ୍ନ+ରାଜ୍+କ୍ୱିପ୍ ) ଶ୍ରେଷ୍ଠରତ୍ନ, ମାଣିକ୍ୟ ।

ରତ୍ନରାଶି—ପୁଂ. ବି. ରତ୍ନସ୍ତୂପ, ରତ୍ନସମୂହ, ରତ୍ନସଙ୍ଘ, ସମୁଦ୍ର ।

ରତ୍ନଲିଙ୍ଗ—ବି. ରତ୍ନନିର୍ମିତ ଶିବଲିଙ୍ଗ ।

ରତ୍ନଲିଙ୍ଗେଶ୍ୱର—ପୁଂ. ବି. ଶିବଲିଙ୍ଗବିଶେଷ ।

ରତ୍ନବଟ—ପ୍ରା. (କଟକ)ବି. ଅଚ୍ୟୁତାନନ୍ଦ ଦାସଙ୍କ ଓଡ଼ିଆ ମାଳିକାରେ ବର୍ଣ୍ଣିତ କଟକ ସହରର ୧୩ ମାଇଲ ପୂର୍ବେ ସୁଙ୍ଗରୀର ଦେବମନ୍ଦିର ଗର୍ଭକ ରତ୍ନଜୋଡ଼ି ନାମକ ଜଳାଶୟ ତୀରରେ ଥିବା ବରଗଛ ।

ରତ୍ନବଣିକ୍—ବି. (କ.ଧା) ରତ୍ନଜୀବୀ,ରତ୍ନବ୍ୟବସାୟୀ ।

ରତ୍ନବତୀ—ସ୍ତ୍ରୀ. ବି. (ରତ୍ନ+ବତ୍+ଈ) ପୃଥିବୀ ।

ରତ୍ନବର୍ଗ—ପୁଂ. ବି. ଯକ୍ଷରାଜବିଶେଷ ।

ରତ୍ନବର୍ଷୁକ—କ୍ଲୀ. ବି. (ରତ୍ନ+ବର୍ଷୁକ) ପୁଷ୍ପକ ରଥ, କୁବେରଙ୍କ ରଥ, ( ବିଂ ) ରତ୍ନବର୍ଷଣଶୀଳ ।

ରତ୍ନବାହୁ—ପୁଂ. ବି. ବିଷ୍ଣୁ ।

ରତ୍ନବୃକ୍ଷ—ପୁଂ. ବି. (କ.ଧା) ପ୍ରବାଳ ।

ରତ୍ନବେଦି(ଦୀ)—ବି. ରତ୍ନଖଚିତ ମଣ୍ଡପ ବା ସ୍ତୂପ ।

ରତ୍ନଶଲାକା—ସ୍ତ୍ରୀ. ବି. ହୀରକାଦି ମୂଲ୍ୟବାନ୍ ପ୍ରସ୍ତର ନିର୍ମିତ ଶଲାକାବିଶେଷ ।

ରତ୍ନସଂଗ୍ରହ—ବି. ରତ୍ନସଞ୍ଚୟ ।

ରତ୍ନସଙ୍ଘାତ—ପୁଂ.ବି.ହୀରକାଦି ମଣିର ସ୍ତୂପ, ରତ୍ନସମୂହ ।

ରତ୍ନସାନୁ—ପୁଂ. ବି. (ବ.ବ୍ରୀ) ସୁମେରୁପର୍ବତ, ମେରୁଗିରି ।

ରତ୍ନସିଂହାସନ—ବି.(କ.ଧା)ମଣିମାଣିକ୍ୟଖଚିତ ସିଂହାସନ, ( ଗ୍ରା.ବି ) ମନ୍ଦିର ଭିତରେ ଯେଉଁ ବେଦୀଉପରେ ଦେବବିଗ୍ରହ ସ୍ଥାପିତ ଥାଆନ୍ତି ।

ରତ୍ନସୂ—ସ୍ତ୍ରୀ. ବି ଓ ବିଂ. ( ରତ୍ନ+ସୂ ) ରତ୍ନପ୍ରସୂ ଦେଖ ।

ରତ୍ନସୂତି—ସ୍ତ୍ରୀ. ବି. ପୃଥିବୀ ।

ରତ୍ନହାର—ବି.(କ.ଧା)ରତ୍ନଖଚିତ ମାଳା ।

ରତ୍ନା—ସ୍ତ୍ରୀ. ବି. ନଦୀବିଶେଷ ।

ରତ୍ନାକର—ପୁଂ. ବି. (୬ତତ୍) ସମୁଦ୍ର, ରତ୍ନର ଖଣି, ରତ୍ନୋତ୍ପତ୍ତି ସ୍ଥାନ,ବାଲ୍ମୀକିଙ୍କ ନାମାନ୍ତର, ଅଶ୍ୱବିଶେଷ, ନଗରବିଶେଷ, (ଗ୍ରା.ବି) ପୀତାମ୍ବର ଦାସଙ୍କ ରଚିତ ଓଡ଼ିଆ ନୃସିଂହପୁରାଣ ଗ୍ରନ୍ଥର ପ୍ରତ୍ୟେକ ଖଣ୍ଡର ନାମ ।

ରତ୍ନାକରଚମ୍ପୂ—ଗ୍ରା. ବି. କ ଠାରୁ କ୍ଷ ନିୟମରେ ଆଦ୍ୟ ଅକ୍ଷରମାନ ଥିବା ଗୀତଯୁକ୍ତ ବଳଦେବ ରଥ କବିସୂର୍ଯ୍ୟଙ୍କ ରଚିତ କୃଷ୍ଣକେଳି ବର୍ଣ୍ଣନାତ୍ମକ ସଙ୍ଗୀତ ପୁସ୍ତକ ।

ରତ୍ନାଙ୍କ—ପୁଂ. ବି. (ରତ୍ନ+ଅଙ୍କ)ବ.ବ୍ରୀ;

ବିଷ୍ଣୁରଥ, (କ.ଧା) ରତ୍ନଚକ୍ର ।
ରତ୍ନାଙ୍ଗୁରୀୟ(କ)—କ୍ଲୀ. ବି. ରତ୍ନମୁଦ୍ରିକା, ରତ୍ନଖଚିତ ମୁଦି ।
ରତ୍ନାଚଳ—ପୁଂ. ବି. ଦାନାର୍ଥ ପର୍ବତରୂପେ କଳ୍ପିତ ରତ୍ନସ୍ତୂପ, ସୁମେରୁପର୍ବତ, ରତ୍ନଗିରି ।
ରତ୍ନାଢ୍ୟ—ତ୍ରି. ବିଂ. ରତ୍ନମୟ, ରତ୍ନପୂର୍ଣ୍ଣ ।
ରତ୍ନାଦ୍ରି—ପୁଂ. ବି. ରତ୍ନଗିରି ଦେଖ ।
ରତ୍ନାଧିପତି—ପୁଂ.ବି. (୬ତତ୍) କୁବେର ।
ରତ୍ନାଭରଣ—କ୍ଲୀ. ବି. (କ.ଧା) ରତ୍ନାଳଙ୍କାର, ମଣିମୟ ଅଳଙ୍କାର ।
ରତ୍ନାର୍ଚ୍ଚିଃ—ପୁଂ. ବି. ବୁଦ୍ଧବିଶେଷ, ରତ୍ନମୟୂଖ ।
ରତ୍ନାଳଙ୍କାର—କ୍ଲୀ. ବି. ମଣିମୟ ଅଳଙ୍କାର, ରତ୍ନାଭରଣ ।
ରତ୍ନାଲୋକ—ବି. ( ରତ୍ନ+ଆଲୋକ ) ରତ୍ନଜ୍ୟୋତିଃ ।
ରତ୍ନାବତୀ—ସ୍ତ୍ରୀ. ବି. ନଗରବିଶେଷ ।
ରତ୍ନାବଳୀ—ସ୍ତ୍ରୀ.ବି. ମୁକ୍ତାମାଳା, ଛନ୍ଦୋଭେଦ, ନାୟିକାବିଶେଷ, ( ୬ତତ୍ ) ରତ୍ନର ଶ୍ରେଣୀ, ବତ୍ସରାଜପତ୍ନୀ, ଶ୍ରୀହର୍ଷ ପ୍ରଣୀତ ନାଟ୍ୟଗ୍ରନ୍ଥବିଶେଷ, ବାକ୍ୟାଳଂକାରବିଶେଷ ।
ରତ୍ନାସନ—କ୍ଲୀ. ବି. ( ରତ୍ନ+ଆସନ ) ରତ୍ନନିର୍ମିତ ଆସନ ।
ରତ୍ନି—ବି. (ଋ+ଅତ୍ନି) ଏକମୁଠିଣି ପରିମିତ ଲମ୍ବ ୨୧ ଅଙ୍ଗୁଳ, ମୁଠା, ମୁଷ୍ଟି ।
ରତ୍ନିପୁଷ୍ପକ—କ୍ଲୀ. ବି. କହ୍ଲଣି ।
ରତ୍ନେନ୍ଦ୍ର—ପୁଂ. ବି. ଶ୍ରେଷ୍ଠରତ୍ନ, ହୀରକ, ମାଣିକ୍ୟ ପ୍ରଭୃତି ।
ରତ୍ନେଶ—ପୁଂ.ବି.(୬ତତ୍) କୁବେର ।
ରତ୍ନେଶ୍ୱର—ବି.(୬ତତ୍) କାଶୀସ୍ଥ ଶିବଲିଙ୍ଗବିଶେଷ, କୁବେର । [ ବିଶେଷ ।
ରତ୍ନୋତ୍ତମା—ସ୍ତ୍ରୀ.ବି.ତନ୍ତ୍ରୋକ୍ତ ଦେବତା-
ରତ୍ନୋଦଧି—ଗ୍ରା. ବି. ଭାରତ ବିଖ୍ୟାତ ନାଳନ୍ଦବିଶ୍ୱବିଦ୍ୟାଳୟର ସୁବିଶାଳ ପୁସ୍ତକାଗାର ।
ରତ୍ନୋଲ୍କା—ସ୍ତ୍ରୀ. ବି. ତନ୍ତ୍ରୋକ୍ତ ଦେବୀମୂର୍ତ୍ତିବିଶେଷ ।

ରତ୍ୟଙ୍ଗ—କ୍ଲୀ.ବି. (ରତି+ଅଙ୍ଗ)କ.ଧା; ସ୍ତ୍ରୀଯୋନି, ପୁରୁଷଲିଙ୍ଗ ।
ରଥ—ପୁଂ.ବି.(ରମ୍+ଥ)କାୟ, ଦେହ. ଚରଣ, ବେତସ ବୃକ୍ଷ, ଚକ୍ରବିଶିଷ୍ଟ ଯୁଦ୍ଧାର୍ଥ ଯାନ, ଶତାଙ୍ଗ, ସ୍ୟନ୍ଦନ, ବାନ୍ଦଣ ଗଛ, ଅବୟବ, ବାହନ, ଜଳବେତସ, ଅଶୋକ, ବିମାନ, ଦେବଯାନ,(ଗ୍ରା.ବି) ବ୍ରାହ୍ମଣମାନଙ୍କ ବଂଶୋପାଧିବିଶେଷ ।
ରଥକ—ପୁଂ. ବି. ( ରଥ+କ ) ଦେବମନ୍ଦିରବିଶେଷ, ଦେବମନ୍ଦିରର ବିମାନ । [ ରଥଶ୍ରେଣୀ ।
ରଥକଟ୍ୟା—ସ୍ତ୍ରୀ.ବି. (୬ତତ୍) ରଥସମୂହ,
ରଥକର—ପୁଂ. ବି. (ରଥ+କୃ+ଅ) ରଥକାର, ରଥନିର୍ମାଣକାରୀ କାରିଗର, ବଢ଼େଇ ।
ରଥକଳ୍ପକ—ପୁଂ. ବି. ରଥାଦିର ପରିଦର୍ଶକ ରାଜକର୍ମଚାରୀବିଶେଷ, ଧନୀମାନଙ୍କର ଗୃହସଜ୍ଜା ବେଶଭୂଷାର ପରିରକ୍ଷକ । [ ଦଳ ।
ରଥକାୟ—ପୁଂ.ବି.ରଥାରୋହୀ ସେନା-
ରଥକାର—ପୁଂ. ବି. ରଥନିର୍ମାଣକର୍ତ୍ତା, ବଢ଼େଇ । [ ଦେଖ ।
ରଥକାରକ—ପୁଂ.ବି ସୂତ୍ରଧାର, ରଥକାର
ରଥକାରତ୍ୱ—କ୍ଲୀ. ବି. ରଥକାରର ଭାବ ବା ଧର୍ମ ବା କାର୍ଯ୍ୟ, ରଥ ପ୍ରସ୍ତୁତକରଣ ।
ରଥକୁଟୁମ୍ବିକ—ପୁଂ.ବି (ରଥ+କୁଟୁମ୍ବିକ) ସାରଥି, ରଥଚାଳକ ।
ରଥକୁଟୁମ୍ବୀ—ପୁଂ.ବି. (ରଥ+କୁଟୁମ୍ବିନ୍) ସାରଥି, ରଥଚାଳକ ।
ରଥକୂବର—କ୍ଲୀ. ବି. ରଥଚକ୍ର ମେରୁ ।
ରଥକୃତ୍—ପୁଂ.ବି. (ରଥ+କୃ+କ୍ୱିପ୍) ରଥକାର ଦେଖ, ଯକ୍ଷବିଶେଷ ।
ରଥକେତୁ—ପୁଂ.ବି.ରଥ ନିଶାଣ, ରଥଧ୍ୱଜ ।
ରଥକ୍ରାନ୍ତ—ପୁଂ. ବି. ପାତାଳବିଶେଷ ।
ରଥକ୍ରାନ୍ତା—ସ୍ତ୍ରୀ. ବି. ଜନପଦବିଶେଷ ।
ରଥକ୍ରୀତ—ବିଂ. ଯାହା ରଥ ମୂଲ୍ୟରେ କ୍ରୀତ ହୋଇଅଛି ।
ରଥକ୍ଷୋଭ—ପୁଂ. ବି. ରଥକମ୍ପନ ।
ରଥଗଣକ—ପୁଂ. ବି. ରଥ ସଂଖ୍ୟାକାରୀ ରାଜକର୍ମଚାରୀବିଶେଷ ।
ରଥଗର୍ଭକ—ବି. (ବ.ବ୍ରୀ) ଶିବିକାଦି ନରବାହ୍ୟ ଯାନ ।
ରଥଗୀତ—ଗ୍ରା. ବି. ପୁରୀଆଦି ରଥଯାତ୍ରା ସମୟରେ ମନୁଷ୍ୟମାନଙ୍କୁ ଉତ୍ସାହିତ କରିବାପାଇଁ ରଥ ଉପରେ ସାରଥି ବୋଲିବା ଅଶ୍ଳୀଳ ଗୀତ ।
ରଥଗୁପ୍ତି—ସ୍ତ୍ରୀ. ବି. ଶସ୍ତ୍ରାଦି ଓ ଶତ୍ରୁର ରକ୍ଷା ନିମିତ୍ତ ରଥ ମଧ୍ୟସ୍ଥ ଗୁପ୍ତସ୍ଥାନ ।
ରଥଗୋପନ—କ୍ଲୀ.ବି.ରଥଗୁପ୍ତି ଦେଖ ।
ରଥଘୋଷ—ପୁଂ.ବି.ରଥ ଚାଲିବାବେଳେ ହେବା ଶବ୍ଦ ।
ରଥଚକ୍ର—କ୍ଲୀ. ବି. ରଥର ଚକ, ଚକ୍ରବାକ ପକ୍ଷୀ । [ ସଞ୍ଚିତ ।
ରଥଚକ୍ରଚିତ୍—କ୍ଲୀ. ବି. ରଥଚକ୍ରପରି
ରଥଚରଣ—ପୁଂ. ବି. ଚକ୍ରବାକ ପକ୍ଷୀ, (ବି) ରଥଚକ୍ର ।
ରଥଚର୍ଯ୍ୟା—ସ୍ତ୍ରୀ. ବି. ରଥଚାଳନା ।
ରଥଚଳାଇବା—ଗ୍ରା.କ୍ରି.ରଥରେ ଯୋଗ ହୋଇଥିବା ପଶୁଆଦିଙ୍କୁ ପ୍ରବର୍ତ୍ତିତ କରି ରଥକୁ ଚାଳିତ କରିବା ।
ରଥଚଳିବା—ଗ୍ରା.କ୍ରି. ରଥ ଗତି କରିବା, (ଲ.ଅର୍ଥ) ଚଳପ୍ରଚଳ ହେବାକୁ ସମର୍ଥ ହେବା ।
ରଥଚାଳକ—ପୁଂ.ବି. (୬ତତ୍) ସାରଥି, (ସ୍ତ୍ରୀ) ଚାଳିକା ।
ରଥଚାଳନ—ବି.ସାରଥି ରୂପେ ରଥରେ ଲାଗିଥିବା ଅଶ୍ୱାଦିଙ୍କୁ ନିୟନ୍ତ୍ରିତ କରି ରଥକୁ ଚାଳିତ କରିବା ।
ରଥଚିତ୍ରା—ସ୍ତ୍ରୀ. ବି. ନଦୀବିଶେଷ ।
ରଥଜଙ୍ଘା—ସ୍ତ୍ରୀ.ବି. ରଥର ପଶ୍ଚାଦ୍ଭାଗ ।
ରଥଜିତ୍—ପୁଂ. ବି. ( ରଥ+ଜି+କ. କ୍ୱିପ୍) ରଥଜେତା, ରଥଜୟକାରୀ ।
ରଥଜୁତ—ବି. ରଥାରୋହଣ ପୂର୍ବକ ଆକ୍ରମଣ ।
ରଥଜ୍ଞାନ—କ୍ଲୀ.ବି.ରଥଚାଳନେ କୁଶଳ ।
ରଥଜ୍ଞାନ—ବି.ରଥ ଚାଳନର କୌଶଳ ।
ରଥଜ୍ଞାନୀ—ପୁଂ.ବି ସାରଥି, (ବିଂ) ରଥଚାଳନଶୀଳ, ରଥ ଚଳାଇବାରେ ନିପୁଣ

ରଥଟାଣିବା—ଗ୍ରା.କ୍ରି.ଗଡ଼ କରିବା ପାଇଁ ରଥକୁ ଓଟାରିବା । [କାଷ୍ଠ ।

ରଥଦାରୁ—କ୍ଳୀ.ବି. ରଥନିର୍ମାଣ ଯୋଗ୍ୟ

ରଥଦ୍ରୁ—ପୁଂ.ବି.ତାନ୍ଦିଶଗଛ,ବେତସବୃକ୍ଷ

ରଥଦ୍ରୁମ—ପୁଂ. ବି. ରଥଦ୍ରୁ ଦେଖ ।

ରଥଧୂଃ--ସ୍ତ୍ରୀ.ବି(ରଥ + ଧୂଃ)ରଥର ଭାର ।

ରଥନାଭି—ସ୍ତ୍ରୀ. ବି. ( ରଥ + ନାଭି ) ରଥଚକ୍ର ।

ରଥନ୍ତର—ବି. (ରଥଂ + ତୃ + ଣିଚ୍ + କ.ଅ) ସାରଥି, ସାମବେଦର ଶାଖାବିଶେଷ । [ପଥ ।

ରଥପଥ—ପୁଂ.ବି.ଶକଟାଦି ଗମନଯୋଗ୍ୟ

ରଥପର୍ଯ୍ୟାୟ – ପୁଂ. ବି. (ବି.ଗ୍ରା) ବୃକ୍ଷବିଶେଷ, ବାନ୍ଦିଶଗଛ, ବେଣଲତା ।

ରଥପାଦ—ପୁଂ.ବି.(୬ତତ୍) ଚକ୍ର, ରଥର ଚକ୍ର ।

ରଥପ୍ରଷ୍ଠ—ପୁଂ. ବି. ରଥର ଅଗ୍ରଗାମୀ ବ୍ୟକ୍ତି, ରଥଚାଳକ ।

ରଥପ୍ରା—ସ୍ତ୍ରୀ. ବି. ନଦୀବିଶେଷ ।

ରଥମଣ୍ଡଳ—ପୁଂ. ବି. ରଥସମୂହ ।

ରଥମହୋତ୍ସବ —ପୁଂ. ବି. ରଥୋତ୍ସବ, ରଥଯାତ୍ରା ।

ରଥମୁଖ—କ୍ଳୀ.ବି. ରଥର ସମ୍ମୁଖଦେଶ ।

ରଥଯାତ୍ରା—ସ୍ତ୍ରୀ. ବି. ଶ୍ରୀଗୁଣ୍ଡିଚା, ଆଷାଢ଼ ମାସ ପୁଷ୍ୟା ନକ୍ଷତ୍ରଯୁକ୍ତ ଶୁକ୍ଳ ଦ୍ୱିତୀୟା ଦିନ ବଳଭଦ୍ର, ଜଗନ୍ନାଥ, ସୁଭଦ୍ରା ଗୁଣ୍ଡିଚା ମନ୍ଦିରକୁ ରଥରେ ନୀତ ହେବା ରୂପ ଉତ୍ସବ ।

ରଥଯାନ—କ୍ଳୀ. ବି. (ରୂପ-କ.ଧା)ରଥ ।

ରଥଯୁକ୍—ବି. (ରଥ + ଯୁଜ୍ + କ.କ୍ୱିପ୍) ରଥଯୋଜୟିତା, ସାରଥି ।

ରଥଯୁଦ୍ଧ—କ୍ଳୀ. ବି. ରଥ ଦ୍ୱାରା ଯୁଦ୍ଧ ।

ରଥଯୂଥ—ପୁଂ. ବି. ରଥସମୂହ ।

ରଥଯୋଜକ—ପୁଂ. ବି. ରଥର ରଶ୍ମି ଯୋଜନକାରୀ, ସାରଥି ।

ରଥରହିବା—ଗ୍ରା.ବି.ରଥର ଗତିରହିତ୍ୟ, (ଲ.ଅର୍ଥ) ବାର୍ଦ୍ଧକ୍ୟ ଯୋଗୁଁ ଶରୀର ଚଳିବାକୁ ବା କାର୍ଯ୍ୟ କରିବାକୁ ଅକ୍ଷମ ହେବା ।

ରଥରାଜ—ପୁଂ.ବି. ଶାକ୍ୟ ମୁନିଙ୍କ ପୂର୍ବପୁରୁଷ ।

ରଥର୍ବୀ—ସ୍ତ୍ରୀ. ବି. ସର୍ପବିଶେଷ ।

ରଥବଂଶ—ପୁଂ. ବି. ରଥସମୂହ ।

ରଥବର—ପୁଂ. ବି. ଉତ୍କୃଷ୍ଟ ରଥ ।

ରଥବର୍ତ୍ମ(ନ)—କ୍ଳୀ. ବି. ରଥମାର୍ଗ, ରଥ ଚଳିବାର ରାସ୍ତା ।

ରଥବାହ—ପୁଂ.ବି (ରଥ + ବହ + ଣିଚ୍ + କ.ଅ) ଅଶ୍ୱାଦି, ସାରଥି, ଯାନାଦି ଚାଳକ, (ସ୍ତ୍ରୀ) ରଥବାହା ।

ରଥବାହକ—ପୁଂ. ବି.ରଥ ବହନକାରୀ ସାରଥି, (ସ୍ତ୍ରୀ) ରଥବାହିକା ।

ରଥବାହନ— କ୍ଳୀ. ବି. ଚକ୍ରଯୁକ୍ତ କାଷ୍ଠମଣ୍ଡପ, ଯାହା ଉପରେ ରଥ ରଖି ସ୍ଥାନାନ୍ତରକୁ ନିଆଯାଏ ।

ରଥବାହିବା—ଗ୍ରା. କ୍ରି. ରଥ ଚଳାଇବା ଦେଖ ।

ରଥବିଦ୍ୟା—ସ୍ତ୍ରୀ. ବି. ରଥଚାଳନ, ରଥ ଚଳାଇବାର ବୁଦ୍ଧି । [ ମୋଚନ ।

ରଥବିମୋଚନ—କ୍ଳୀ.ବି. ରଥରକ୍ଷୁ ଉନ୍-

ରଥବୀଥୀ—ସ୍ତ୍ରୀ. ବି. ରଥ ଚାଳନ ଯୋଗ୍ୟ ରାସ୍ତା ।

ରଥବୃନ୍ଦ—ଗ୍ରା. ବି. ରଥଚାଳନ ।

ରଥବେଗ—ପୁଂ. ବି. (୬ତତ୍) ରଥର ଗମନଶକ୍ତି, ରଥର ଗତିର ଦ୍ରୁତତା ।

ରଥବ୍ରଜ—ବି. ରଥସମୂହ ।

ରଥଶକ୍ତି—ସ୍ତ୍ରୀ. ବି. ଯୁଦ୍ଧୋପଯୋଗୀ ଯୁଦ୍ଧର ପତାକା ଦଣ୍ଡ ।

ରଥଶାଳା—ସ୍ତ୍ରୀ.ବି.ରଥ ରକ୍ଷାଗୃହ, ସ୍ତ୍ରା-ବଲ । [ କୌଶଳ ।

ରଥଶିକ୍ଷା—ସ୍ତ୍ରୀ. ବି. ରଥ ଚଳାଇବାର

ରଥଶୀର୍ଷ—କ୍ଳୀ. ବି. ରଥମୁଖ ।

ରଥଶ୍ରେଣି—ସ୍ତ୍ରୀ.ବି. ଏକତ୍ରଥିବା ଅନେକ ଗୁଡ଼ିଏ ରଥ ।

ରଥସପ୍ତମୀ—ସ୍ତ୍ରୀ. ବି. ମାଘଶୁକ୍ଳ ସପ୍ତମୀ ।

ରଥସୂତ୍ର—କ୍ଳୀ.ବି. ରଥ ନିର୍ମାଣପ୍ରଣାଳୀ ।

ରଥସ୍ଥ—ତ୍ରି. ବି°. ( ରଥ + ସ୍ଥା + କ ) ରଥସ୍ଥିତ, ରଥରେ ଅବସ୍ଥାନକାରୀ ।

ରଥସ୍ପତି—ପୁଂ.ବି. ସମସ୍ତଙ୍କର ପାଳକ ।

ରଥସ୍ୱନ—ପୁଂ.ବି. ରଥନିର୍ଘୋଷ, ଯକ୍ଷବିଶେଷ ।

ରଥସ୍ୱାମୀ—ବି. ରଥର ମାଲିକ, ରଥାରୋହୀ ବ୍ୟକ୍ତି, ସାରଥି ।

ରଥା—ଗ୍ରା. ବି. ରଥୀ, ବୀରପୁରୁଷ ।

ରଥାକ୍ଷ—ପୁଂ. ବି. ରଥ ଚକ୍ରଦ୍ୱୟର ସଂଯୋଜକ ଦଣ୍ଡ,ସ୍କନ୍ଦାନୁଚରବିଶେଷ ।

ରଥାଗ୍ର—ପୁଂ.ବି. ଶ୍ରେଷ୍ଠ ଯୋଦ୍ଧା ।

ରଥାଙ୍ଗ—କ୍ଳୀ.ବି. (୬ତତ୍) ଚକ୍ର,ରଥାବୟବ, ସୁଦର୍ଶନଚକ୍ର, (ପୁଂ.ବି) ଚକ୍ରବାକ ପକ୍ଷୀ ।

ରଥାଙ୍ଗତୁଲ୍ୟାହ୍ୱୟନ—ପୁଂ.ବି. (୬ତତ୍) ଚକ୍ରବାକ ପକ୍ଷୀ ।

ରଥାଙ୍ଗନାମା—ପୁଂ. ବି. (ରଥାଙ୍ଗ + ନାମନ୍) ଚକ୍ରବାକ, ଚକୁଆପକ୍ଷୀ ।

ରଥାଙ୍ଗନେମି—ସ୍ତ୍ରୀ.ବି.ରଥଚକ୍ରର ନେମି ବା ଧାର ।

ରଥାଙ୍ଗପାଣି—ପୁଂ.ବି.(ରଥାଙ୍ଗ + ପାଣି) ଚକ୍ରପାଣି, ବିଷ୍ଣୁ ।

ରଥାଙ୍ଗମିଥୁନ—ବି.(୬ତତ୍) ଚକ୍ରବାକଯୁଗଳ, ଚକୁଆ ଓ ଚକୁଇ ପକ୍ଷୀଦ୍ୱୟ ।

ରଥାଙ୍ଗଶ୍ରୋଣିବିମ୍ବା-ସ୍ତ୍ରୀ.ବି.ଅର୍ଦ୍ଧଗୋଲାକୃତି ନିତମ୍ବବିଶିଷ୍ଟା ସ୍ତ୍ରୀ । [ ପକ୍ଷୀ ।

ରଥାଙ୍ଗସଙ୍ଗ—ପୁଂ.ବି. (ବି.ଗ୍ରା)ଚକ୍ରବାକ

ରଥାଙ୍ଗସାହ୍ୱ—ପୁଂ.ବି.ଚକ୍ରବାକ ପକ୍ଷୀ ।

ରଥାଙ୍ଗାହ୍ୱୟ—ପୁଂ.ବି.ଚକ୍ରବାକ ପକ୍ଷୀ ।

ରଥାଙ୍ଗୀ—ପୁଂ.ବି. (ରଥାଙ୍ଗ + ଇନ୍) ବିଷ୍ଣୁ, ଚକ୍ରଧର, ଋଦ୍ଧିନାମକ ଔଷଧି, ବଦ୍ଧିବଦ୍ଧିକା ।

ରଥାଭ୍ରକ—ବି. ରଥାଭ୍ରକ ଦେଖ ।

ରଥାନୀକ—କ୍ଳୀ.ବି.ଶ୍ରେଣୀବଦ୍ଧ ରଥସୈନ୍ୟ

ରଥାନ୍ତର—ବି,(ରଥ + ଅନ୍ତର) ଅନ୍ୟରଥ, କଳ୍ପ ବା ବ୍ରହ୍ମାଙ୍କର ଦିବସବିଶେଷର ନାମ ।

ରଥାଭ୍ର-ପୁ .ବି.(ରଥ + ଅଭ୍ର)ବେତସବୃକ୍ଷ, ନଳତୃଣ ।

ରଥାଭ୍ରପୁଷ୍ପ—ପୁଂ. ବି.(ରଥାଭ୍ର + ପୁଷ୍ପ) ରଥାଭ୍ର ଦେଖ ।

ରଥାରଥି-ଅବ୍ୟ.ପରସ୍ପର ରଥଦ୍ୱାରା ଯୁଦ୍ଧ ।

ରଥାରୂଢ଼—ପୁଂ. ବିଂ. (୭ତତ୍ପୁ) ରଥେ ଉପବିଷ୍ଟ, ରଥରେ ଚଢ଼ିଥିବା, (ସ୍ତ୍ରୀ) ରଥାରୂଢ଼ୀ ।

ରଥାରୋହ—ବି. (୭ତତ୍ପୁ) ରଥାରୋହଣ, ରଥ ଉପରକୁ ଚଢ଼ିବା ।

ରଥାରୋହୀ—ପୁଂ ବିଂ. (ରଥ+ଆରୋହିନ୍) ରଥସ୍ଥ ଯୁଦ୍ଧକର୍ତ୍ତା, ଯେ ରଥରେ ଚଢ଼ିଥାଏ, ରଥସ୍ୱାମୀ, (ସ୍ତ୍ରୀ) ରଥାରୋହିଣୀ

ରଥାରୋହୀସେନା—ବି. ଯେଉଁ ସେନା ରଥରେ ଚଢ଼ି ଯୁଦ୍ଧ କରନ୍ତି ।

ରଥାର୍ଭକ—ପୁଂ. ବି. (୭ତତ୍ପୁ) କ୍ଷୁଦ୍ର ରଥ ।

ରଥାବୟବ—ପୁଂ. ବି. ଚକ୍ରାଦି ରଥାଙ୍ଗ ।

ରଥାବରୋହଣ—ବି. (୫ତତ୍ପୁ) ରଥରୁ ଓହ୍ଲାଇବା ।

ରଥାବରୋହୀ—ପୁଂ. ବିଂ. ରଥରୁ ଓହ୍ଲାଇଥିବା, ରଥସ୍ଥ ଯୁଦ୍ଧକର୍ତ୍ତା । [ ଘୋଡ଼ା ।

ରଥାଶ୍ୱ—ପୁଂ. ବି. (୬ତତ୍ପୁ) ରଥ ଟାଣିବା

ରଥାହ୍ନ—କ୍ରି. ବିଂ. ରଥାରୋହଣର ଗମନ ଦିବସ ବା ସମୟ, ରଥାହ୍ନ ।

ରଥିକ—ପୁଂ. ବି. (ରଥ+ଇକ) ରଥୀ, ସ୍ୱାମୀ, ରଥାରୂଢ଼ ଯୋଦ୍ଧା, ରଥାରୋହୀ ବ୍ୟକ୍ତି, ବାହ୍ମଣଗଛ ।

ରଥିତ—କ୍ରି. ବିଂ. ରଥଦ୍ୱାରା ସଜ୍ଜିତ ।

ରଥିନ—ପୁଂ. ବି. (ରଥ+ଇନ) ରଥିକ ଦେଖ ।

ରଥିର—ପୁଂ. ବି. (ରଥ+ଇର) ରଥିକଦେଖ

ରଥୀ—ପୁଂ. ବିଂ. (ରଥ+ଇନ୍) ରଥସ୍ୱାମୀ ରଥାରୋହୀ, ରଥସ୍ଥ ଯୋଦ୍ଧା, ସାରଥି, (ସ୍ତ୍ରୀ) ରଥିନୀ, (ଗ୍ରା. ବି) ବୀରପୁରୁଷ, ବଳୁଆ ଲୋକ ।

ରଥେଶ—ପୁଂ. ବି. ରଥର ଅଧିକାରୀ, ରଥସ୍ଥ ଯୋଦ୍ଧା, ରଥୀ, ରଥସ୍ୱାମୀ ।

ରଥେଷା—ସ୍ତ୍ରୀ. ବି. ରଥଚକର ସଂଯୋଜକ ଦଣ୍ଡ ।

ରଥେଷୁ—ପୁଂ. ବି. ବାଣବିଶେଷ ।

ରଥୋତ୍ତମ—ପୁଂ. ବି. ଉତ୍କୃଷ୍ଟ ରଥ ।

ରଥୋତ୍ସବ—ପୁଂ. ବି. (ରଥ+ଉତ୍ସବ) ରଥଯାତ୍ରା ଦେଖ ।

ରଥୋଦ୍ଧତ—ପୁଂ. ବିଂ. ରଥାରୋହଣେ ଉଦ୍ଧତ, ରଥରେ ଥିବାହେତୁ ଗର୍ବିତ ।

ରଥୋଦ୍ଧତା—ସ୍ତ୍ରୀ. ବି. ୧୧ ଅକ୍ଷରବିଶିଷ୍ଟ ଛନ୍ଦୋବିଶେଷ ।

ରଥୋଦ୍ୱହ—ପୁଂ. ବି. ରଥ ଚାଳକର ବା ସାରଥିର ଆସନ, ଘୋଡ଼ାର ବସିବାର ସ୍ଥାନ ।

ରଥୋପସ୍ଥ—ପୁଂ. ବି. (୬ତତ୍ପୁ) ରଥର ଊର୍ଦ୍ଧ୍ୱଭାଗ, ରଥ ମଧ୍ୟସ୍ଥାନ ।

ରଥୌଘ—ପୁଂ. ବି. (ରଥ+ଓଘ) ରଥବେଗ, ରଥର ଦ୍ରୁତଗତି ।

ରଥ୍ୟ—ପୁଂ. ବି. (ରଥ+ଯ) ରଥବାହୀ ଘୋଟକ, ରଥ ଶୁ, ଯୁଆଳି, ରଥର ନେତା, (ବିଂ) ରଥସଂକ୍ରାନ୍ତ, ରଥ ସମ୍ବନ୍ଧୀୟ ବା ବିଷୟକ ।

ରଥ୍ୟା—ସ୍ତ୍ରୀ. ବି. (ରଥ+ଯ+ଆ) ରଥସମୂହ, ରଥକକ୍ଷ୍ୟା, ଅଭ୍ୟନ୍ତର ମାର୍ଗ, ଆବର୍ତ୍ତିନୀ, ପନ୍ଥା, ମାର୍ଗ, ଚତ୍ୱର, ପ୍ରାଙ୍ଗଣ ।

ରଥ୍ୟାବାହୀ—ପୁଂ. ବି. (ରଥ୍ୟା+ବହ୍+ଇନ୍) ପଥିକ, (ସ୍ତ୍ରୀ) ରଥ୍ୟାବାହିନୀ ।

ରଦ(ଦ୍)—ଯା. ବି. ପରବର୍ତ୍ତୀ ଆଦେଶଦ୍ୱାରା ପୂର୍ବ ହୁକୁମଆଦିର ପରିବର୍ତ୍ତନ, ଖଣ୍ଡନ, ରହିତକରଣ, (ବିଂ) ପରିବର୍ତ୍ତିତ, ଖଣ୍ଡିତ ।

ରଦ୍‌କଦ୍—ଯା. ବି. ଉତ୍ତର ପ୍ରତ୍ୟୁତ୍ତରପୂର୍ବକ କୌଣସି ବିଷୟର ଆଲୋଚନା, ତର୍କବିତର୍କ ।

ରଦ—ପୁଂ. ବି. (ରଦ୍+ଣ. ଅ) ଦନ୍ତ, ଦାନ୍ତ, (ଭା. ଅ) ବିଭଞ୍ଜନ, ବିଲେଖନ, ଖଣ୍ଡନ, ଉତ୍ଖଳନ ।

ରଦଚ୍ଛଦ—ପୁଂ. ବି. (ରଦ୍+ଛଦ୍+କ. ଅ) ଓଷ୍ଠ, ଅଧର, ଦନ୍ତଚ୍ଛଦ ।

ରଦଚ୍ଛଦନ—ବି. (୬ତତ୍ପୁ) ଓଠ ।

ରଦନ—ପୁଂ. ବି. (ରଦ୍+ଣ. ଅନ) ଦନ୍ତ, ଦାନ୍ତ, (କ୍ଲୀ. ବି. ଭା. ଅନ) ଉତ୍ଖଳନ, ଛେଦନ, ଖଣ୍ଡନ ।

ରଦନଚ୍ଛଦ—ପୁଂ. ବି. (ରଦନ+ଛଦ+କ. ଅ) ଓଷ୍ଠ, ଅଧର ।

ରଦନାମ୍ବର—ବି. ଓଷ୍ଠ ।

ରଦନିକା—ସ୍ତ୍ରୀ. ବି. ନାୟିକାବିଶେଷ ।

ରଦନୀ—ପୁଂ. ବି. (ରଦନ+ଇନ୍) ଦନ୍ତୀ, ହସ୍ତୀ, (ସ୍ତ୍ରୀ) ରଦନିନୀ ।

ରଦପଦ—ବି. (୬ତତ୍ପୁ) ଦନ୍ତକ୍ଷତ ଚିହ୍ନ,

ରଦବାସ—ବି. ରଦଚ୍ଛଦ, ଅଧର, ଓଠ ।

ରଦା(ଦ୍ଦା)—ଯା. ବି. ଜୋରପୂର୍ବକ ଧକ୍କା, ଗଳାଧକ୍କା, କାନ୍ଥଅଧର ଧୂଆ ବା ସ୍ତର ।

ରଦ୍ଦି—ଯା. ବିଂ. ଅପକୃଷ୍ଟ (ଦ୍ରବ୍ୟ), ବ୍ୟବହାରର ଅଯୋଗ୍ୟ, ନଷ୍ଟ, ବିନଷ୍ଟ ।

ରଦ୍ଦିପଡ଼ିବା—ଗ୍ରା. କ୍ରି. ଅବ୍ୟବହାର୍ଯ୍ୟ ହୋଇ ରହିବା, ଅକ୍ଷମ ହେବା ।

ରଦ୍ଧ—ବିଂ. (ରଧ୍+ର୍ମ. ତ) ଆଘାତପ୍ରାପ୍ତ, ଆହତ, କ୍ଷତଗ୍ରସ୍ତ, (ସ୍ତ୍ରୀ) ରଦ୍ଧା ।

ରଦ୍ଧା—ପୁଂ. ବିଂ. (ରଧ୍+କ. ତୃ) ଆଘାତକାରୀ, କ୍ଷତକାରକ, (ସ୍ତ୍ରୀ) ରଦ୍ଧ୍ରୀ ।

ରଧିତ—ପୁଂ. ବିଂ. (ରଧ୍+ର୍ମ. ତ) କ୍ଷତଗ୍ରସ୍ତ, କ୍ଷତଯୁକ୍ତ, ଆହତ, (ସ୍ତ୍ରୀ) ରଧିତା ।

ରଧିତା—ପୁଂ. ବିଂ. (ରଧ୍+ତୃ) କ୍ଷତକାରୀ, ଆଘାତକାରୀ, ଅନିଷ୍ଟକାରକ, (ସ୍ତ୍ରୀ) ରଧିତ୍ରୀ

ରନ୍‌ଧନ୍—ପ୍ରା. (ସମ୍ବ) ବି. ବଡ଼ ବାଦୁଡ଼ି ।

ରନା—ପ୍ରା. (ସମ୍ବ) ବି. ରଣା (ସାପ) ।

ରନ୍ତବ୍ୟ—କ୍ରି. ବି. (ରମ୍+ତବ୍ୟ) ରମଣାର୍ହ, ରମଣଯୋଗ୍ୟ ।

ରନ୍ତି—ସ୍ତ୍ରୀ. ବି. (ରମ୍+ଭା. ତି) ଆମୋଦ, ସୁଖ, କ୍ରୀଡ଼ା, ଆନନ୍ଦ, ଆକାଙ୍କ୍ଷା, ଗବାଦି ପ୍ରତି ସ୍ନେହ, ବିରତ, (ବିଂ) ରମଣକାରୀ, କ୍ରୀଡ଼ାକାରୀ ।

ରନ୍ତିଦେବ—ପୁଂ. ବି. (କ. ଧା) ବିଷ୍ଣୁ, ଚନ୍ଦ୍ରବଂଶୀୟ ନୃପବିଶେଷ, କୁକୁର ।

ରନ୍ତୁ—ସ୍ତ୍ରୀ. ବି. (ରମ୍+ତ+ଉ) ବର୍ତ୍ମ, ପଥ, ନଦୀ ।

ରନ୍ଧାଳିଆ—ଗ୍ରା. ପୁଂ. ବିଂ. ଯେ କୌଣସି ଦ୍ରବ୍ୟ ପାଇବାପାଇଁ ବା ଖାଇବାପାଇଁ ଦର୍ଶିପକାଏ, ବିକଳିଆ ।

ରନ୍ଧ୍—ଯା. ବି. ପଳିକର ପଥରୋଧେବା ଉଦ୍ଦେଶ୍ୟରେ ବୁଲିବା, ରୁନ୍ଧ ।

ରନ୍ଧେଲା—ସ୍ତ୍ରୀ. ବି. ସୂର୍ଯ୍ୟପତ୍ନୀ ସଂଜ୍ଞାଙ୍କ ନାମାନ୍ତର ।

ରନ୍ଧା—ଗ୍ରା. ବି. କାଠକୁ ଚିକ୍କଣ କରିବାପାଇଁ ବ୍ୟବହୃତ ବଢ଼େଇମାନଙ୍କର

ଯନ୍ତ୍ରବିଶେଷ ।

ରନ୍ଧନୀ--ପ୍ରା.(ସମ୍ପ୍ର)ସ୍ତ୍ରୀ.ବ.ରାନ୍ଧୁଣୀ ପାଚିକା.

ରନ୍ଧକ—ପୁଂ.ବି. (ରଧ୍ + ଅକ)ପାଚକ, ହିଂସାକାରକ, (କ୍ଲୀ.ବି) ବଶୀକରଣ, ନାଶକରଣ ।

ରନ୍ଧଣା—ଗ୍ରା.ବି. ରନ୍ଧନ, ରାନ୍ଧଣା,ରନ୍ଧନୋତ୍ପନ୍ନ ଖାଦ୍ୟ ।

ରନ୍ଧନ—କ୍ଲୀ.ବି. (ରନ୍ଧ+ଭା.ଅନ)ପାକ, ରାନ୍ଧଣା, (ବିଂ-କ.ଅନ) ନାଶକ ।

ରନ୍ଧନକରିବା—ଗ୍ରା.କ୍ରି. ରାନ୍ଧିବା, ପାକକରିବା ।

ରନ୍ଧନକର୍ତ୍ତା—ପୁଂ.ବି ଓ ବିଂ. (୬ତତ୍) ପାଚକ, ଯେ ରାନ୍ଧେ,(ସ୍ତ୍ରୀ)ରନ୍ଧନକର୍ତ୍ତ୍ରୀ ।

ରନ୍ଧନକର୍ମ-ବି.ରନ୍ଧାବଢ଼ା,ରାନ୍ଧିବା କାର୍ଯ୍ୟ

ରନ୍ଧନକାରୀ--ପୁଂ.ବି.ପାଚକ,ଯେ ରାନ୍ଧେ, (ସ୍ତ୍ରୀ) ରନ୍ଧନକାରିଣୀ ।

ରନ୍ଧନଗୃହ—ବି. ପାକଶାଳା,ହାଣ୍ଡିଶାଳ ।

ରନ୍ଧନାଗାର—ବି. (୬ତତ୍) ରନ୍ଧାଘର, ହାଣ୍ଡିଶାଳ ।

ରନ୍ଧନୀୟ—ବିଂ. (ରଧ୍+ ମଁ.ଅନୀୟ)ରନ୍ଧା ହେବାର ଯୋଗ୍ୟ ।

ରନ୍ଧା—ଗ୍ରା.ବି.ରନ୍ଧନ, ରାନ୍ଧଣା,(ଗ୍ରା.ବିଂ) ପାକ କରାହୋଇଥିବା । [ ଶାଳ ।

ରନ୍ଧାଘର—ଗ୍ରା.ବି.ରୋଷେଇଘର,ହାଣ୍ଡି-

ରନ୍ଧାଜଡ଼ାତେଲ—ଗ୍ରା.ବି. ଜଡା ମଞ୍ଜିକୁ କୁଟି ବା ବାଟି ପାଣିରେ ସିଝାଇ ତହିଁରୁ ବାହାର କରିବା ତେଲ ।

ରନ୍ଧାବଢ଼ା—ଗ୍ରା.ବି. ଅନ୍ନାଦି ରାନ୍ଧିବା ଓ ପରିବେଷଣ କରିବା କ୍ରିୟା ।

ରନ୍ଧାରନ୍ଧି—ଗ୍ରା. ବି. ଅନ୍ନ ବ୍ୟଞ୍ଜନାଦି ରାନ୍ଧିବା, ଅନ୍ନାଦିର ରନ୍ଧନକାର୍ଯ୍ୟ ।

ରନ୍ଧି—ସ୍ତ୍ରୀ.ବି.ବଶୀକରଣ,ରନ୍ଧନ,ପାକ ।

ରନ୍ଧିତ—ବି.(ରନ୍ଧ+ ଇତ)ରନ୍ଧାହୋଇଥିବା, (ବିଂ) କୃତପାକ, ରନ୍ଧାହୋଇଥିବା ।

ରନ୍ଧ୍ର— କ୍ଲୀ.ବି. (ରମ୍+ କ୍ୱିପ୍+ ଧୃ+ ଅ) ଦୂଷଣ, ଯୋନି, ଛିଦ୍ର, ଗର୍ତ୍ତ, ବିବର, କୁକ୍ଷି,ପେଟ,ତ୍ରୁଟି,ଛଳ,କଣା,(ଜ୍ୟୋତିଷ) ଲଗ୍ନଠାରୁ ଅଷ୍ଟମସ୍ଥାନ, ନିଧନସ୍ଥାନ,ଜୀବଦେହରେ ସମୁଦାୟ ପୁରୁଷର ୧୦ଗୋଟି ଓ ସ୍ତ୍ରୀର ୧୩ଗୋଟି ଲେଖାଏଁ ରନ୍ଧ୍ର ଅଛି,(ଯଥା-୨ଚକ୍ଷୁ,+୨କର୍ଣ୍ଣ+୨ନାକ +୧ମୁଖ+୧ଶିଶ୍ନ+୧ଗୁହ୍ୟ+୧ମସ୍ତକ =୧୦ଟି ଓ ସ୍ତ୍ରୀଙ୍କର ଅଧିକା ୨ସ୍ତନ+ ୧ ଗର୍ଭପଥ=୧୩) । [ଟ୍ରୁଲ୍ ।

ରନ୍ଧ୍ରକଣ୍ଠ--ପୁଂ.ବି.ଜାଲ, ବର୍ବୁରକନାମକ

ରନ୍ଧ୍ରଗତ—ବିଂ. ଲଗ୍ନର ଅଷ୍ଟମସ୍ଥାନରେ ସ୍ଥିତ,ଗୋଚରସ୍ଥ,ନିଧନାଧିପତି (ଗ୍ରହ)

ରନ୍ଧ୍ରଗତଶନି—ବି. ଲଗ୍ନର ୮ମସ୍ଥାନରେ ଉପସ୍ଥିତ ଶନିଗ୍ରହ;ଆସନ୍ନ ବା ଅନିବାର୍ଯ୍ୟ ମୃତ୍ୟୁ ଅବସ୍ଥା ।

ରନ୍ଧ୍ରବଂଶ—ପୁଂ. ବି. ଛିଦ୍ରଯୁକ୍ତ ବଂଶ, ପୋଲବାଉଁଶ,ହକ୍‌ସାର,ବେଲିଙ୍ଗବାଉଁଶ

ରନ୍ଧ୍ରବଭ୍ରୁ—ବି. (କ.ଧା) ମୂଷିକ, ମୂଷା ।

ରନ୍ଧ୍ରାଗତ—କ୍ଲୀ. ବି. ଅଶ୍ୱଗଳ ରୋଗ ବିଶେଷ ।

ରନ୍ଧ୍ରାନ୍ୱେଷଣ—ବି.(୬ତତ୍)ଛିଦ୍ରାନ୍ୱେଷଣ, ଦୋଷ ବା ତ୍ରୁଟି ଖୋଜିବୁଲିବା ।

ରନ୍ଧ୍ରାନ୍ୱେଷୀ—ପୁଂ. ବିଂ.ଛିଦ୍ରାନ୍ୱେଷଣକାରୀ

ରପଟ୍—ଯା. ବି. ଗସ୍ତ, ଭ୍ରମଣ, ମିହନ୍ତ, ପରିଶ୍ରମ, ଅଭ୍ୟାସ ।

ରପ୍ତାନି—ଯା. ବି. ଜିନିଷର ଚଲାଣ,ମାଲ୍ ଚାଲଣି, ଗମନ, ରମାନା ।

ରଫରଫ୍--ଗ୍ରା. ଅ. କଣ୍ଡୁୟନ, ଦେହ କୁଣ୍ଡାଇହେବା, ଯାଦୁ ଓ କୁଣ୍ଡିଆକୁ ଘଷି ବା ବା କୁଣ୍ଡାଇବା ପ୍ରକାର ।

ରଫା—ଯା. ବି. ବିବାଦର ନିଷ୍ପତ୍ତି ବା ଆପୋସିରେ ମୀମାଂସା, ସମାପ୍ତି,ଶେଷ-ମୀମାଂସା ।

ରଫାନାମା—ଯା. ବି. ନିଷ୍ପତ୍ତିପତ୍ର,ବିବାଦ ନିଷ୍ପତ୍ତି ସୂଚକ ଲିପି ।

ରଫୁ—ଯା. ବି. ଏକପ୍ରକାର ସିଲାଇ କାମ, (ବିଂ.) ନିଷ୍ଫଳ, ପରାସ୍ତ ।

ରଫୁଗର—ଯା. ବି. ପୁରୁଣାଲୁଗାଆଦିର ଫାଟକୁ ଯେ ସୂତାବୁଣି ସିଲାଇ କରେ ।

ରଭସ—କ୍ଲୀ. ବି. (ରଭ୍+ ଅସ୍) ଯଜ୍ଞାଦିରେ ଆରମ୍ଭ, ଆହୁତି, ବେଗ,ଆଶକ୍ତି. ବଳକର ଖେଳ୍ୟ,ଶୀଘ୍ରତା, ହର୍ଷ, ହର୍ଷ, ପ୍ରମୋଷ୍ଟାହ, ସଂରଭ, ସମ୍ଭ୍ରମ,ପୌର୍ବାପର୍ଯ୍ୟ ବିଗ୍ରହ,ଔତ୍ସୁକ୍ୟ,ମହାନ୍‌,ବିଳାସ, ସୁଖ, ବଳାତ୍କାର, ଅନୁତାପ, ଶୋକ, କାର୍ଯ୍ୟକାରଣ ନିର୍ଣ୍ଣୟ,ଅଭିଧାନବିଶେଷ, (ଗ୍ରା.ବି) ଗୁପ୍ତମିଳନ, ରତି, ଥଟ୍ଟା,ରସିକତା, (ଗ୍ରା.ବିଂ) ଚଞ୍ଚଳ ।

ରଭସା—ଗ୍ରା. କ୍ରି. ବିଂ. ଶୀଘ୍ର ।

ରଭସି(ସେ)-ଗ୍ରା. କ୍ରିଂ. ବିଂ. ନିଜଇଚ୍ଛାରେ, ଗୋପନରେ, ହଠାତ୍, ବେଗସହିତ ।

ରଭସ୍ୱାନ୍—ପୁଂ. ବିଂ. ଉଦ୍‌ଯୋଗଯୁକ୍ତ ।

ରଭିତ୍ତି—ସ୍ତ୍ରୀ. ବି. ଆଭରଣୀୟା ।

ରଭିଷ୍ଠ—ତ୍ରି. ବିଂ. ଅତିଶୟ ବେଗଯୁକ୍ତ, ପ୍ରକୃଷ୍ଟ ବେଗବିଶିଷ୍ଟ ।

ରଭୀୟାନ୍—ପୁଂ. ବିଂ.ଅତ୍ୟନ୍ତବେଗବିଶିଷ୍ଟ

ରଭେଣକ—ପୁଂ. ବି. ସର୍ପାକୃତି ରାକ୍ଷସବିଶେଷ ।

ରଭ୍ୟସ୍—ତ୍ରି.ବିଂ. ଅତିଶୟ ବେଗଯୁକ୍ତ ।

ରଭ୍ୱୋଦା—ତ୍ରିଂ. ବିଂ. ବଳଦାତା ।

ରମ—ପୁଂ. ବି. (ରମ୍+କ.ଅ) କାନ୍ତ, ସ୍ୱାମୀ, ପତି, ନାୟକ, ପ୍ରେମିକ, କାମଦେବ, ରକ୍ତାଶୋକବୃକ୍ଷ, (ଭା.ଅ)କ୍ରୀଡ଼ା, ବିହାର,ରମଣ,(ବିଂ)ରମଣୀୟ, ଆହ୍ଲାଦକ, ପ୍ରିୟ ।

ରମକ—ପୁଂ. ବି. (ରମ୍+ଅକ) କାନ୍ତ, ଉପପତି, ଜାର, ପ୍ରେମିକ, (ପୁଂ.ବିଂ) ରମଣକାରୀ ।

ରମଜାନ—ଯା. ବି. ମୁସଲମାନ୍ ବର୍ଷର ନବମ ମାସ ।

ରମଠ—କ୍ଲୀ. ବି. (ରମ୍+ଅଠ) ହିଙ୍ଗୁ, ଜନପଦବିଶେଷ ।

ରମଠଧ୍ୱନି—କ୍ଲୀ. ବି. ହିଙ୍ଗୁ ।

ରମଣ—ବି. ( ରମ୍+ଭା.ଅନ ) କ୍ରୀଡ଼ା, ଖେଳ, ରତିକ୍ରୀଡ଼ା,ମୈଥୁନ, ରତିରସ, ବିହାର, (ଣ.ଅନ) ଜଘନ, ଜଙ୍ଘ, (କ.ଅନ) ମଦନ, ପତି, କାନ୍ତ, ଗଧ,ବୃଷଣ, ଅଣ୍ଡକୋଷ, ମହାନିମ୍ବ, ବନବିଶେଷ, (ବିଂ) ପ୍ରିୟ,ରମଣୀୟ ।

ରମଣକ—କ୍ଲୀ. ବି. (ରମଣ+କ)ପୌରାଣିକ, ଜମ୍ବୁଦ୍ୱୀପାନ୍ତର୍ଗତ ବର୍ଷ ବା ଦେଶ ବିଶେଷ ।

ରମଣକରିବା—ଗ୍ରା. କ୍ରି. ମୈଥୁନକରିବା ।

ରମଣା—ସ୍ତ୍ରୀ. ବି. (ରମଣ+ଆ)ରମଣୀ, ପୀଠସ୍ଥ ଶକ୍ତିବିଶେଷ, ସଂସ୍କୃତ ଅର୍ଦ୍ଧସମବୃତ୍ତବିଶେଷ, ପତ୍ନୀ, ସ୍ତ୍ରୀ, ନାରୀ, ବରନାରୀ, ପ୍ରିୟା ।

ରମଣୀ—ସ୍ତ୍ରୀ. ବି. (ରମଣ+ଈ) ନାରୀ, ଉତ୍କୃଷ୍ଟା ସ୍ତ୍ରୀ, ସୁନ୍ଦରୀ ସ୍ତ୍ରୀ, ପତ୍ନୀ; ବାଲ ନାମକ ଔଷଧି ବୃକ୍ଷ ବିଶେଷ,କୁରୁବେଳି ଫୁଲ ଓ ଗଛ, ସଂସ୍କୃତ ଅର୍ଦ୍ଧ ସମବୃତ୍ତ ବିଶେଷ । [ ନାରୀଜାତି ।

ରମଣୀକୁଳ—ବି. (୬ତତ୍) ନାରୀସମୂହ,

ରମଣୀକୁଳଦୁର୍ଲଭ--ବିଂ. ସ୍ତ୍ରୀମାନଙ୍କଠାରେ ଯାହା ମିଳିବା କଷ୍ଟ ।

ରମଣୀରତ୍ନ—ବି. (୬ତତ୍)ନାରୀସ୍ୱଭାବ ।

ରମଣୀଜନ—ବି.ସ୍ତ୍ରୀଲୋକ, ମାଇକିନିଆ ।

ରମଣୀଜନସୁଲଭ—ବିଂ.ସ୍ତ୍ରୀସୁଲଭ,ଯାହା ନାରୀଜାତିଠାରେ ସହଜରେ ପାଇହୁଏ ବା ଦେଖାଯାଏ, ସ୍ତ୍ରୀଲୋକ ପକ୍ଷରେ ସହଜ ବା ସ୍ୱାଭାବିକ ।

ରମଣୀପ୍ରିୟ—ପୁଂ.ବିଂ.(୬ତତ୍) ସ୍ତ୍ରୀଜାତିର ମନୋହରଣକାରୀ ।

ରମଣୀୟ—ବି. ବିଂ. (ରମ୍+ର୍ମ.ଅନୀୟ) ସୁନ୍ଦର, ରମ୍ୟ, ମନୋହର, ( ସ୍ତ୍ରୀ ) ରମଣୀୟା ।

ରମଣୀୟତା—ସ୍ତ୍ରୀ. ବି. ରମଣୀୟତ୍ୱ, ସୌନ୍ଦର୍ଯ୍ୟ, ମନୋହରତ୍ୱ ।

ରମଣୀରତ୍ନ—ବି. (୬ତତ୍) ବରବର୍ଣ୍ଣିନୀ, ଅନନ୍ୟସୁନ୍ଦରୀ, ଉତ୍କୃଷ୍ଟା ସ୍ତ୍ରୀ, (ରୂପକ) ସ୍ତ୍ରୀ ରୂପ ରତ୍ନ ।

ରମଣ୍ୟ—ବି.ବିଂ. (ରମଣ+ଯ)ରମଣୀୟ, ରମ୍ୟ, (ବି) ରତିରସ, ଭଙ୍ଗରସ ।

ରମଣ୍ୟକ—ବି. (ରମଣ୍ୟ+କ) ରମ୍ୟକ ଦେଖ ।

ରମତ—ପୁଂ. ବି.(ରମ୍+ଅତ) ନାୟକ, ପ୍ରେମିକ,ଧୂର୍ତ୍ତ,କାକ, କାଲ,କାମଦେବ ।

ରମମାନ—ପୁଂ. ବିଂ. (ରମ+କ.ଆନ) କ୍ରୀଡ଼ାକରୁଥିବା, (ସ୍ତ୍ରୀ) ରମମାନା ।

ରମନ୍ତୁନ୍ତି—ଗ୍ରା. କ୍ରି. ରମଣ କରୁଅଛନ୍ତି ।

ରମା—ସ୍ତ୍ରୀ. ବି. (ରମ+ଅ+ଆ)ଲକ୍ଷ୍ମୀ, କାନ୍ତି, ଶୋଭା,ଶ୍ରୀ, କଳ୍କିଦେବଙ୍କପତ୍ନୀ, ଶଶୀଧ୍ୱଜରାଜ ଙ୍କ କନ୍ୟା, (ସ୍ତ୍ରୀ) ପ୍ରିୟା, ଉପପତ୍ନୀ, (ସ୍ତ୍ରୀ. ବିଂ) ରମଣୀୟା,ରମ୍ୟା, ଆନନ୍ଦଦାୟିକା ।

ରମାକାନ୍ତ—ପୁଂ.ବି. (୬ତତ୍)ରମାପତି, ବିଷ୍ଣୁ । [ ଶ୍ରୀକୃଷ୍ଣ ।

ରମାଧବ—ପୁଂ. ବି. (୬ତତ୍) ବିଷ୍ଣୁ,

ରମାଧିପ—ପୁଂ. ବି. ( ରମା+ଅଧିପ ) ରମାପତି, ବିଷ୍ଣୁ ।

ରମାନା—ଯା. ବି. ଅନ୍ୟତ୍ର ଗମନାର୍ଥ କୌଣସି ସ୍ଥାନତ୍ୟାଗ, ଯାତ୍ରା, ଦ୍ରବ୍ୟାଦିର ପ୍ରେରଣ ।

ରମାନାଥ—ପୁଂ. ବି. ( ରମା+ନାଥ ) ବିଷ୍ଣୁ, ରାମଚନ୍ଦ୍ର, ଶ୍ରୀକୃଷ୍ଣ ।

ରମାପ୍ରିୟ—ବି. ( ରମା+ପ୍ରିୟ ) ପଦ୍ମ, ବିଷ୍ଣୁ, ଶ୍ରୀକୃଷ୍ଣ ।

ରମାବାଇ—ଗ୍ରା. ବି. ଦକ୍ଷିଣ ଭାରତର ସ୍ୱର୍ଗତା ପ୍ରସିଦ୍ଧା ବିଦୁଷୀ ।

ରମାବେଷ୍ଟ—ପୁଂ. ବି. (ରମା+ବେଷ୍ଟ) ଶ୍ରୀବାସଚନ୍ଦନ,ଗନ୍ଧବିରଜା,ତାରପିନ୍ ।

ରମାରମି—ଗ୍ରା. ବିଂ. ହାରିହାରି ।

ରମାଶ୍ରୟ—ପୁଂ. ବି. ( ୬ତତ୍ ) ବିଷ୍ଣୁ, ଶ୍ରୀକୃଷ୍ଣ ।

ରମିତ—ପୁଂ.ବିଂ.(ରମି+ର୍ମ.ତ)କ୍ରୀଡ଼ିତ, ଆନନ୍ଦିତ, ସୁଖପ୍ରାପ୍ତ, ପ୍ରଫୁଲ୍ଲ ।

ରମିତା—ସ୍ତ୍ରୀ. ବି. (ରମ୍+ଣିଚ୍+ତ+ଆ) ରତିପ୍ରାପିତା, ଉପଭୁକ୍ତା ସ୍ତ୍ରୀ, (ବିଂ) ଉପଭୁକ୍ତା (ସ୍ତ୍ରୀ) ।

ରମିବା—ଗ୍ର. କ୍ରି. କ୍ରୀଡ଼ା କରିବା,ରମଣ କରିବା, ତୋଷ କରିବା, ରତହେବା, ସୁଖପାଇବା, ହରଣ କରିବା ।

ରମେନ୍ଦ୍ର—ବି.(୬ତତ୍)ରମାରମଣ,ବିଷ୍ଣୁ ।

ରମେଶ—ପୁଂ. ବି. (୬ତତ୍) ରମାପତି, ବିଷ୍ଣୁ । [ ଶ୍ରୀକୃଷ୍ଣ ।

ରମେଶ୍ୱର—ପୁଂ. ବି. (୬ତତ୍) ବିଷ୍ଣୁ,

ରମ୍ପା—ଗ୍ରା. ବି. ରମ୍ପିବାକର୍ମ, କାଙ୍କ,ମାଟି ହାଣିବା ଯନ୍ତ୍ରବିଶେଷ,ଅସମତଳ ବିଲର ଖାଲକୁ ଢିପରୁ ମାଟିହାଣିନେଇ ତାହାକୁ ସମତଳ କରିବାରେ ବ୍ୟବହୃତ ମହିଷବାହ୍ୟ ପଟାମଇ, ( ଗ୍ରା.ବିଂ ) କୁଣ୍ଡାଇ ହେଉଥିବା, ପରଶ୍ରମୀ ।

ରମ୍ପା—ପ୍ରା. (ସମ୍ବ) ବି. କୋଡ଼ ।

ରମ୍ଭ—ପୁଂ.ବି. (ରନ୍ଭ+କ.ଅ)ବାନର ବିଶେଷ, ମହିଷାସୁରର ପିତା, ବେଣୁ, ବାଉଁଶ ।

ରମ୍ଭକ—ପୁଂ. ବିଂ. (ରନ୍ଭ+କ.ଅକ) ଶବ୍ଦକାରୀ, ଆରମ୍ଭକାରୀ, (ସ୍ତ୍ରୀ)ରମ୍ଭିକା ।

ରମ୍ଭା—ସ୍ତ୍ରୀ. ବି. ( ରନ୍ଭ+ଅ+ଆ ) କଦଳୀ, ଅପ୍ସରବିଶେଷ, ଗୌରୀ,ହମ୍ବାରବ,ଗୋ ଧ୍ୱନି,ବେଶ୍ୟା, ଉତ୍ତର ଦିଗ ।

ରମ୍ଭାଉରୁ—ଗ୍ରା.ସ୍ତ୍ରୀ.ବିଂ.ରମ୍ଭୋରୁ ଦେଖ ।

ରମ୍ଭାଉରୁବସୀ—ଗ୍ରା.ବି. ରମ୍ଭା ଓ ଉର୍ବଶୀ ନାମ୍ନୀ ଅପ୍ସରୀ ଦ୍ୱୟ ।

ରମ୍ଭାତୃତୀୟା—ସ୍ତ୍ରୀ.ବି. ମାଘ (ମତାନ୍ତରେ ମାର୍ଗଶିର ବା ଜ୍ୟେଷ୍ଠ) ଶୁକ୍ଳ ତୃତୀୟା ।

ରମ୍ଭାଫଳ—ବି. କଦଳୀ ଫଳ ।

ରମ୍ଭୀ—ପୁଂ. ବିଂ. (ରମ୍ଭ+ଇନ୍)ବେତ୍ରଧାରୀ, ବୃଦ୍ଧମନୁଷ୍ୟ, ଦ୍ୱାରବାନ୍,ଆମ୍ରବୃକ୍ଷବିଶେଷ ।

ରମ୍ଭୋରୁ(ରୂ)—ସ୍ତ୍ରୀ. ବି. (ରମ୍ଭା+ଉରୁ) ବ.ବ୍ରୀ, ରମ୍ଭା ବୃକ୍ଷପରି ଘନଜଘନା, ବର୍ତ୍ତୁଳଜଘନା ସ୍ତ୍ରୀ ।

ରମ୍ୟ—କ୍ଳୀ. ବି. (ରମ୍+ଯ) ପଟୋଳମୂଳ, ଶୁକ୍ର, ଚମ୍ପାଗଛ, ବକବୃକ୍ଷ,(ବିଂ) ବଳକର, ମନୋଜ୍ଞ,ରମଣୀୟ,ସୁନ୍ଦର, ରମଣ ଯୋଗ୍ୟ, ପୁରୁଷତ୍ୱପ୍ରଦ, (ସ୍ତ୍ରୀ) ରମ୍ୟା ।

ରମ୍ୟକ—କ୍ଳୀ. ବି. (ରମ୍ୟ+କ) ଜମ୍ବୁଦ୍ୱୀପାନ୍ତର୍ଗତ ନବବର୍ଷ ମଧ୍ୟରୁ ଗୋଟିଏ ବର୍ଷ ବା ଦେଶ, ପଟୋଳ ମୂଳ, ମହାନିମ୍ବ । [ ନିମ୍ବ ।

ରମ୍ୟକକ୍ଷୀର—ପୁଂ.ବି.ମହାନିମ୍ବ,ଘୋଡ଼ା-

ରମ୍ୟତା—ସ୍ତ୍ରୀ. ବି. ରମ୍ୟତ୍ୱ, ସୌନ୍ଦର୍ଯ୍ୟ, ରମଣୀୟତ୍ୱ, ମାଧୁର୍ଯ୍ୟ ।

ରମ୍ୟପୁଷ୍ପ—ପୁଂ. ବି. (ବ.ବ୍ରୀ) ଶାଳ୍ମଳୀ ବୃକ୍ଷ, (କ୍ଳୀ) ସୁନ୍ଦର ପୁଷ୍ପ ।

ରମ୍ୟଫଳ—ପୁଂ.ବି.(ବ.ବ୍ରୀ)କୁଶଳାଗଛ ।

ରମ୍ୟମୁଖ—ପୁଂ. ବିଂ. (ବ.ବ୍ରୀ) ସୁନ୍ଦର

ମୁଖଯୁକ୍ତ, (ସ୍ତ୍ରୀ) ରମ୍ୟମୁଖୀ।
ରମ୍ୟଶ୍ରୀ—ପୁଂ. ବ. ବିଷ୍ଣୁ।
ରମ୍ୟସାନୁ—କ୍ଲୀ. ବ. ପର୍ବତ ଶିଖରସ୍ଥ ରମଣୀୟ ସମତଳ ଭୂମି।
ରମ୍ୟା—ସ୍ତ୍ରୀ. ବ. (ରମ୍+ଯ+ଆ) ରାତ୍ରି, ସ୍ଥଳପଦ୍ମ, ଗଙ୍ଗାନଦୀ, ମହେନ୍ଦ୍ରବାରୁଣୀ ଲତା, ଲକ୍ଷଣା କନ୍ଦ, ରାଗିଣୀବିଶେଷ, ମହାକାଳ, (ସ୍ତ୍ରୀ.ବିଂ) ସୌନ୍ଦର୍ଯ୍ୟଯୁକ୍ତା, ରମଣୀୟା, ସୁନ୍ଦରୀ।
ରମ୍ୟାମଳୀ—ସ୍ତ୍ରୀ. ବ. ଭୁଇଁଅଁଳା।
ରମ୍ର—ପୁଂ. ବ. (ରମ୍+ର) ଅରୁଣବର୍ଣ୍ଣ, ଶୋଭା।
ରୟଣୀ—ଗ୍ରା. ବ. ରଜନୀ,ରାତ୍ରି, ରହିବା, ବିଶ୍ରାମସ୍ଥାନ, ଆଶ୍ରୟ, ଅବକାଶ।
ରୟାଟୀ—ବ. (ରୟ+ଅଟ୍+କ.ଈ) ଲଲାଟ।
ରୟିଷ୍ଠ—ବିଂ. (ରୟ+ଇଷ୍ଠ) ଅତିଦ୍ରୁତ, (ସ୍ତ୍ରୀ) ରୟିଷ୍ଠା, (ବ) କୁବେର, ବ୍ରହ୍ମା, ଅଗ୍ନି।
ରରଟ—କ୍ଲୀ. ବ. ଲଲାଟ।
ରରାଟୀ—ସ୍ତ୍ରୀ. ବ. ଲଲାଟଦେଶ,କପାଳ।
ରରାଟ୍ୟ—ବିଂ. ଲଲାଟ ସମ୍ବନ୍ଧୀୟ।
ରଲ୍ଲ—ସ୍ତ୍ରୀ. ବ. ପକ୍ଷୀବିଶେଷ, (ପ୍ରା.ଭଜି- ଭାଷା.)କ୍ରି. ଥଲ୍ଲ। [ କେଶ।
ରଲ୍ଲ—ଗ୍ରା. ବ. ଅଖିବାଳ, ଆଖିପତାର
ରଲ୍ଲକ—ପୁଂ. ବ. (ରମ୍+କ.କ୍ୱୁପ୍)ପକ୍ଷ୍ମ, ଆଖିପତାର ଲୋମ, ପଦ୍ମ, କମ୍ବଳ,ମୃଗ- ବିଶେଷ।
ରବ—ବ. (ରବ୍+ମି.ଅ) ଧ୍ୱନି, ଶବ୍ଦ, ଗୋଲମାଲ, ଗର୍ଜନ,ରବ, ଡାକ,କଣ୍ଠ- ଧ୍ୱନି।
ରବଣ—କ୍ଲୀ. ବ. (ରୁ+ଅନ) କାଂସ୍ୟ, କୋକିଳ, ଉଷ୍ଟ୍ର, ରବ, ଭଣ୍ଡ, ଅଚିଲ, ଗର୍ଦ୍ଦଭ, ଶବ୍ଦକରଣ, (ବିଂ) ଶବ୍ଦକାରକ, ତୀକ୍ଷ୍ଣ, ଚଞ୍ଚଳ, ଉଷ୍ଣ।
ରବଣକ—ପୁଂ.ବ. ବଂଶ ଓ ବେତ୍ରନିର୍ମିତ ଗୁଲୁଣି।
ରବଥ—ପୁଂ.ବ.(ରବ୍+କ.ଅଥ)କୋକିଳ
ରବସ୍ଥା—ଗ୍ରା. ବ. ଅବସ୍ଥା, ଦେଶକାଳ ପାତ୍ରଗତ ଅବସ୍ଥା ବା ଘଟନା, ଚଳନ, ଆଚରଣ।
ରବର—ଯା. ବ. ଏକପ୍ରକାର ଗଛର ଅଠା, ଯାହା ଶୁଖିଗଲେ ସ୍ଥିତିସ୍ଥାପକ ହୁଏ।
ରବା—ଯା.ବ.ଖାଣ୍ଡ ବା ସୀତାର ଜାତୀୟ ବାଦ୍ୟଯନ୍ତ୍ର ଧ୍ୱନି।
ରବାଜ୍—ଯା. ବ. ଆଗର ବ୍ୟବହାର, ଚାଲଚଲଣ, ରୀତି, ପ୍ରଥା, ଅଭ୍ୟାସ, ସାମୟିକ ଘଟନା। [ ଦେଖ।
ରବାନା—ଯା.ବ. ଯାତ୍ରା,ଗମନ, ରମାନା
ରବାବ୍—ଯା. ବ. ଭୟ, ପ୍ରଭାବ, ପରା- କ୍ରମ, ଶକ୍ତି, ଗାମ୍ଭୀର୍ଯ୍ୟ,ରବା ଓ ରବାଜ୍ ଦେଖ।
ରବାହୂତ—ବିଂ. (ଔତନ୍ତ୍ର) ରବ ବା ଶବ୍ଦଶୁଣି ଆଗତ ବା ଉପସ୍ଥିତ, (ସ୍ତ୍ରୀ) ରବାହୂତା।
ରବି—ପୁଂ. ବ. (ରୁ+କ.ଇ) ସୂର୍ଯ୍ୟ, ସୌରଜଗତର କେନ୍ଦ୍ର, ଅର୍କବୃକ୍ଷ, ନାୟକ, ରକ୍ତାଶୋକ ବୃକ୍ଷ, ରବିବାର, ଶରୀରର ନିଃଶ୍ୱାସ ଯିବାଆସିବା କରିବା ଦକ୍ଷିଣ ନାଡ଼ୀ।
ରବିଅନ୍ତର—ବ.(ଜ୍ୟୋତିଷ) ଜାତକର ଗଣନାନୁସାରେ ଅନ୍ୟାନ୍ୟ ଗ୍ରହମାନ- ଙ୍କର ଏବଂ ରବିଙ୍କର ମହାଦଶା ପଡ଼ିବା ସମୟ ମଧ୍ୟରେ ରବିଙ୍କର ଯୋଗକାଳୀନ ଅନ୍ତର୍ଦ୍ଦଶା।
ରବିଅଲ୍ଅଓ୍ୱଲ—ଯା. ବ. ମୁସଲମାନ- ମାନଙ୍କର ମହରମ ମାସର ପରବର୍ତ୍ତୀ ୨ୟ ମାସ।
ରବିଅସ୍ସାନି—ଯା. ବ. ରବିଅଲଅଓ୍ୱଲ ମାସର ପରବର୍ତ୍ତୀ ଓ ଜମାଦଅଲଅଓ୍ୱଲ ମାସର ପୂର୍ବବର୍ତ୍ତୀ ମୁସଲମାନ ମାସ।
ରବିକର—ଗ୍ରା.ବ. କବିସୂର୍ଯ୍ୟ ବଳଦେବ ରଥ।
ରବିକର—ପୁଂ.ବ.(ଌତନ୍ତ୍ର)ସୂର୍ଯ୍ୟକିରଣ।
ରବିକାନ୍ତ—ପୁଂ.ବ.(ବ.ସ୍ତ୍ରୀ)ସୂର୍ଯ୍ୟକାନ୍ତ- ମଣି।
ରବିକାଷ୍ଠାପ୍ରଦେଶ—ବ. ପୃଥିବୀର ବିଷୁବ ରେଖାର ଉତ୍ତର ଓ ଦକ୍ଷିଣ ପାର୍ଶ୍ୱରେ ବିସ୍ତୃତ ଗ୍ରୀଷ୍ମକଟିବନ୍ଧସ୍ଥ ସ୍ଥାନ।
ରବିଖନ୍ଦ—ଗ୍ରା. ବ. ଧାନ ଫସଲ ପରେ ଶୀତ ଓ ଖରାଦିନେ ହେବା ଫସଲ।
ରବିଗୋଚର—ବ. ମନୁଷ୍ୟର ଲଗ୍ନଠାରୁ ୧୨ ଘର ପର୍ଯ୍ୟନ୍ତ ରାଶିରେ ରବିଗ୍ରହର ଅବସ୍ଥାନ କରୁଥିବା ଅବସ୍ଥା। [ ଗ୍ରହ।
ରବିଗ୍ରହ—ବ. ସୌର ଜଗତର ପ୍ରଧାନ
ରବିଚକ୍ର—କ୍ଲୀ.ବ. ଜାତକରେ ସୌର- ଜଗତର ଫଳ ଗଣନାର୍ଥ ନରାକାର ସୂର୍ଯ୍ୟ ଚକ୍ରବିଶେଷ, ସଂକ୍ରାନ୍ତିଚକ୍ର,ଜାତ- ଚକ୍ର, କୂର୍ମଚକ୍ର।
ରବିଜ—ପୁଂ. ବ. (ରବି+ଜନ୍+ଅ) ସୂର୍ଯ୍ୟଙ୍କ ପୁତ୍ର,ଶନୈଶ୍ଚର, ଯମ,ସୁଗ୍ରୀବ, ସାବର୍ଣ୍ଣିମନୁ, ବୈବସ୍ୱତମନୁ, କର୍ଣ୍ଣ।
ରବିଜା—ସ୍ତ୍ରୀ. ବ. ଯମୁନାନଦୀ।
ରବିତନୟ—ପୁଂ. ବ. ରବିଜ ଦେଖ।
ରବିତନୟା—ସ୍ତ୍ରୀ. ବ. ଯମୁନାନଦୀ।
ରବିତଳ—ବ. (ଌତନ୍ତ୍ର) ପୃଥିବୀ।
ରବିତେଜ—କ୍ଲୀ. ବ. ସୂର୍ଯ୍ୟକିରଣ।
ରବିଦଶା—ବ.ଜାତକରେ ଗଣନାଅନୁ- ସାରେ ମନୁଷ୍ୟର ପରମାୟୁ କାଳରେ ଘଟିବା ରବିଗ୍ରହର ରାଜତ୍ୱ କାଳ।
ରବିଦିନ—ବ. ରବିବାର।
ରବିଦୀପ୍ତ—କ୍ରି.ବିଂ. ସୂର୍ଯ୍ୟକିରଣଶୋଭିତ
ରବିନନ୍ଦନ—ପୁଂ. ବ. ରବିଜ ଦେଖ।
ରବିନନ୍ଦିନୀ—ସ୍ତ୍ରୀ. ବ. ଯମୁନାନଦୀ।
ରବିନାଥ—ବ.(ବ.ସ୍ତ୍ରୀ) ପଦ୍ମବନ୍ଧୁକପୁଷ୍ପ।
ରବିନାରାୟଣବ୍ରତ—ବ. ରବିବାର ଦିନ ଏକାଦଶୀ ହେଲେ ସୂର୍ଯ୍ୟଙ୍କୁ ଓ ବିଷ୍ଣୁଙ୍କୁ ପୂଜା କରାଯିବା ବ୍ରତ।
ରବିନ୍ଦ—କ୍ଲୀ. ବ. ଅରବିନ୍ଦ, ପଦ୍ମ।
ରବିପତ୍ର—ପୁଂ. ବ. ଅର୍କବୃକ୍ଷ ଗଛ, ଖୁମ୍ପ, ନାଲି ଅରଖଗଛ। [ ଦେଖ।
ରବିପୁତ୍ର—ପୁଂ.ବ. (ରବି+ପୁତ୍ର)ରବିଜ
ରବିପ୍ରତ୍ୟନ୍ତର—ବ.ରବି ଓ ଅନ୍ୟ ଗ୍ରହ- ମାନଙ୍କ ମହାଦଶା ମଧ୍ୟସ୍ଥ ଅନ୍ତର୍ଦ୍ଦଶା- ମାନଙ୍କରେ ରବିର ପ୍ରତ୍ୟନ୍ତର୍ଦ୍ଦଶା ଭୋଗ- କାଳ।

ରବିପ୍ରିୟ—କ୍ଳୀ.ବି.(ଷ.ବି+ପ୍ରିୟ)ମାଣିକ୍ୟ, ନୀଳ ଅରଖଗଛ, କେଉଁଠଫଳ, ରକ୍ତ-ବରଗାର ।
ରବିପ୍ରୀତା—ବି.ସୂର୍ଯ୍ୟମୁଖୀ ଗଛ ଓ ଫୁଲ ।
ରବିଫସଲ—ଯ.ବି.ବିଲ, ହରଡ଼, ମୁଗ, ଗହମ, ଚଣାଆଦି ଫସଲ ।
ରବିମଣ୍ଡଳ—କ୍ଳୀ.ବି. ସୂର୍ଯ୍ୟଙ୍କର ଗୋଲାକାର ଚକ୍ରଚ୍ଛାୟା, ସୂର୍ଯ୍ୟମଣ୍ଡଳ ।
ରବିମାର୍ଗ—ବି.(୬ତତ୍) ସୂର୍ଯ୍ୟଙ୍କ ଭ୍ରମଣ-ପଥ, ପୃଥିବୀ, ସୂର୍ଯ୍ୟଙ୍କୁ ପରିଭ୍ରମଣ କରିବା ଅବସ୍ଥାରେ ପୃଥିବୀର ଲୋକେ ଯେଉଁ ବୃତ୍ତାଭାସ ରେଖାରେ ସୂର୍ଯ୍ୟଙ୍କୁ ଦେଖନ୍ତି, ଅୟନ ବୃତ୍ତ ।
ରବିମାର୍ଗଭଙ୍ଗ—ବିଂ.ରବିଙ୍କ ପଥରୋଧ-କାରୀ, ଅଖିଛ ।
ରବିରତ୍ନ—କ୍ଳୀ.ବି.(କ.ଧା) ସୂର୍ଯ୍ୟକାନ୍ତ-ମଣି, ମାଣିକ୍ୟ ।
ରବିରତ୍ନକ—ବି. ମାଣିକ୍ୟ ।
ରବିରଶ୍ମି—ବି. (୬ତତ୍) ସୂର୍ଯ୍ୟକିରଣ ।
ରବିଲୋଚନ—ପୁଂ. ବି. (ବି.ସ୍ତ୍ରୀ)ବିଷ୍ଣୁ ।
ରବିଲୋହ—କ୍ଳୀ.ବି(ରବି + ଲୋହ)ତାମ୍ର ।
ରବିବର୍ମା—ସ୍ତ୍ରୀ. ବି. ଦକ୍ଷିଣ ଭାରତର ତ୍ରିବାଙ୍କୁଡ଼ର ପୃଥିବୀ ପ୍ରସିଦ୍ଧ ସ୍ୱର୍ଗୀୟ ଚିତ୍ରକର ।
ରବିବାର—ବି. ରବି ଗ୍ରହର ଗୋଟିଏ ଦିନ, ସପ୍ତାହର ଗୋଟିଏ ବାର ।
ରବିବାସର—ପୁଂ.ବି.ରବିବାର ଦେଖ ।
ରବିବିମ୍ବ—କ୍ଳୀ.ବି. ମାଣିକ୍ୟ, ରବି ଚତୁ-ର୍ଦ୍ଦିଗସ୍ଥ ଆଲୋକ ଛଟା ।
ରବିବୁଧଯୋଗ—ସ୍ତ୍ରୀ. ବି. ଜାତକରେ ରବି ଓ ବୁଧଗ୍ରହ ଏକ ରାଶିରେ ଥିବା ଯୋଗ ।
ରବିଶସ୍ୟ—ବି. ରବି ଫସଲ ଦେଖ ।
ରବିଶୁଦ୍ଧି-ବି.(୬ତତ୍)ରବିଗ୍ରହର କୌଣସି ବ୍ୟକ୍ତିର ଜନ୍ମରାଶିଠାରୁ ୩ୟ ୬ଷ୍ଠ ୧୦ମ ବା ୧୧ଶ ସ୍ଥାନରେ ରହିବା ଅବସ୍ଥା ଏବଂ ସୌର ମାସର ୧୩ ଦିନ ପରେ ୨ୟ ୫ମ ଓ ୯ମ ସ୍ଥାନରେ ରହିବା ଅବସ୍ଥା ।
ରବିସଂକ୍ରମଣ (ସଂକ୍ରାନ୍ତି)—ସ୍ତ୍ରୀ.ବି.ସଂକ୍ରାନ୍ତି ଦେଖ ।
ରବିସଙ୍କ୍ରକ—କ୍ଳୀ. ବି. ତାମ୍ର ।
ରବିସାରଥି—ପୁଂ. ବି. (୬ତତ୍)ଅରୁଣ ।
ରବିସୁତ—ପୁଂ.ବି(୬ତତ୍)ରବିଜ ଦେଖ ।
ରବିସୂନୁ—ପୁଂ.ବି.(୬ତତ୍)ରବିଜ ଦେଖ ।
ରବୀନ୍ଦ୍ର—କ୍ଳୀ. ବି. ପଦ୍ମ ।
ରବୀନ୍ଦ୍ରନାଥ—ସ୍ତ୍ରୀ. ବି. ଅଧୁନା ଯୁଗର ଭାରତ ଓ ପୃଥିବୀବିଖ୍ୟାତ ବଙ୍ଗୀୟ କବୀନ୍ଦ୍ର ।
ରବୀଷୁ—ପୁଂ. ବି. କାମଦେବ ।
ରବେଇବେଇ—ସ୍ତ୍ରୀ. ବିଂ. ଅସୂୟାନ୍ୱିତ, ଅସୂୟାବଶତଃ ହୃଦୟରେ ଅଶାନ୍ତି ଭୋଗ କରୁଥିବା, ଅସ୍ଥିର, (ବି) ମନର ଅଶାନ୍ତି, ଅନ୍ୟର ଅନୁକରଣ କରିବାର ବଳବତୀ ଇଚ୍ଛା, ଅସୂୟା ।
ରବେଇବେଇହେବା—ସ୍ତ୍ରୀ. କ୍ରି. ଭାରି ବିଦାରି ହେବା, ଅତି ଅସ୍ଥିର ହେବା ।
ରବେୟା—ଯା.ବି. ରବୟା ଦେଖ,(ବିଂ) ଜବରଦସ୍ତ, କଡ଼ା ।
ରବ୍ଧ—ବିଂ. ( ରଭ୍+ର୍ମ.ତ ) ଆରବ୍ଧ, କୃତାରମ୍ଭ ।
ରବ୍ୟାର୍ଦ୍ରାଯୋଗ—ବି.ଆଷାଢ଼ ବା ସୌର ମିଥୁନ ମାସର ଆଠଦିନ ପଡ଼ିବା ଯୋଗ-ବିଶେଷ ।
ରଶ୍‌ମଶ୍—ସ୍ତ୍ରୀ.ଅବ୍ୟ.ବୋଝ୍ଯୋଡ଼ା ମାଡ଼ି ଚାଲିବାର ଶବ୍ଦ, ଜ୍ୱର ହେବା ପୂର୍ବରୁ ଦେହ ଭଡ଼ମୋଡ଼ି ହେବା, ରଶ୍‌ରଶ୍ ଦେଖ ।
ରଶ୍‌ରଶ୍—ସ୍ତ୍ରୀ.ଅବ୍ୟ. ଜୋତାର ଶବ୍ଦ ହେଉଥିବା ପ୍ରକାରେ, ଚଞ୍ଚଳ ଚାଲିବା ପ୍ରକାରେ, କଇଁକଇଁ ହୋଇ କାନ୍ଦିବା ପ୍ରକାରେ ।
ରଶ୍‌ରଶିଆ—ସ୍ତ୍ରୀ.ବିଂ. ରଶ୍‌ରଶ୍ ଶବ୍ଦକାରୀ
ରଶଦ—ଯା.ବି.ହାକିମମାନେ ମଫସଲକୁ ଗଲେ ପ୍ରଜାମାନେ ଯୋଗାଇବା ଦୈନିକ ଅପକ୍ୱ ଭୋଜ୍ୟବସ୍ତୁ ବା ବ୍ୟବହାରୀୟ ସରଞ୍ଜାମ ।
ରଶନ—ସ୍ତ୍ରୀ.ବି. ରଶନା ଦେଖ ।
ରଶନା—ସ୍ତ୍ରୀ.ବି. (ରଶ୍ + ଣ.ଅନ + ଆ) କାଞ୍ଚି, ଜିହ୍ୱା, ରଜ୍ଜୁ, ଆଙ୍ଗୁଳ, ସ୍ତ୍ରୀ କଟି-ଭୂଷଣ, ଅଣ୍ଟାସୂତା ।
ରଶନାକଲାପ—ପୁଂ.ବି. ସ୍ତ୍ରୀଲୋକମାନଙ୍କର ତାରକାସୂତ୍ର ନିର୍ମିତ କୋମର-ବନ୍ଧନୀବିଶେଷ ।
ରଶନାକୃତ—କ୍ରି.ବିଂ.ରଜ୍ଜୁଦ୍ୱାରା ଗ୍ରଥିତ ।
ରଶନାଗୁଣ—ପୁଂ.ବି. କମରବନ୍ଧର ସୂତ୍ର-ଗୁଚ୍ଛ ।
ରଶନେନ୍ଦ୍ରିୟ—ବି.ଜିଭ,ଚାଖିବାର ଇନ୍ଦ୍ରିୟ
ରଶନୋପମା—ସ୍ତ୍ରୀ. ବି. ଉପମାଲଙ୍କାର-ବିଶେଷ । [ ନାୟକ ।
ରଶଲ୍‌ଦାର୍—ଯା.ବି.ଅଶ୍ୱାରୋହୀ ସେନାର
ରଶି(ଶୀ)—ସ୍ତ୍ରୀ. ବି. ରଜ୍ଜୁ, ଦଉଡ଼ି, ୮୦ ହାତ ଲମ୍ବ ଦଉଡ଼ି ।
ରଶିଦ୍—ଯା. ବି. ପାଉତି, ପ୍ରାପ୍ତିସ୍ୱୀକାର-ପତ୍ର, ମୁସଲମାନମାନଙ୍କ ନାମବିଶେଷ ।
ରଶୁଣ—ସ୍ତ୍ରୀ. ବି. ପଲାଣ୍ଡୁ ସଦୃଶ, କିନ୍ତୁ ଶ୍ୱେତବର୍ଣ୍ଣ ଓ ପଲାଣ୍ଡୁଠାରୁ ଉଗ୍ରଗନ୍ଧ ଓ ଉଗ୍ରବୀର୍ଯ୍ୟ ମୂଳବିଶେଷ ।
ରଶୂଲ୍—ଯା. ବି. ପୃଥିବୀକୁ ପ୍ରେରିତ ଈଶ୍ୱରଙ୍କ ଦୂତ, ପଏଗମ୍ବର ଦୂତ, ମୁସଲମାନ ନାମବିଶେଷ ।
ରଶ୍ମି—ବି. ( ରଶ୍ + କ.ମି ) କିରଣ, ଲଗାମ, ଦଉଡ଼ି, ଡ଼େଣା, ପକ୍ଷ, ପକ୍ଷ, ଆଖିପତା ।
ରଶ୍ମିକଲାପ—ପୁଂ. ବି. ମୌକ୍ତିକ କଣ୍ଠ-ହାରବିଶେଷ ।
ରଶ୍ମିକେତୁ—ପୁଂ. ବି. ଗ୍ରହବିଶେଷ, ଧୂମକେତୁ ।
ରଶ୍ମିକେନ୍ଦ୍ର—ବି. (୬ତତ୍) ଅଧିଶ୍ରୟଣ, ଆଲୋକର କିରଣମାନ ଦୂରବୀକ୍ଷଣର ମୁକୁରର ବା କାଚର ମଧ୍ୟଦେଇ ଗମନ କରି ଯେଉଁଠାରେ ମିଳିତ ହୁଏ ।
ରଶ୍ମିଜାଲ—ବି. (୬ତତ୍) କିରଣସମୂହ, କିରଣମାଳ ।
ରଶ୍ମିପତି—ବିଂ. (୬ତତ୍) ରବିପତି, ଅର୍କବୃକ୍ଷ, ସୂର୍ଯ୍ୟ ।
ରଶ୍ମିପବିତ୍ର—ବିଂ. (୩ତତ୍) ସୂର୍ଯ୍ୟକିରଣ ଦ୍ୱାରା ପୂତ ।

ରଶ୍ମିପାତ—ବି. ( ୬ତତ୍ତ୍ୱ ) କୌଣସି ବସ୍ତୁରେ କିରଣ ପଡ଼ିବା,କିରଣପାତ ।
ରଶ୍ମିପ୍ରଭାସ—ପୁଂ. ବି. ବୃକ୍ଷବିଶେଷ ।
ରଶ୍ମିମଣ୍ଡଳ—ବି. କିରଣମାଳା । [ଯୁକ୍ତ ।
ରଶ୍ମିମସ୍ତ୍ୱ-ବି.ବିଂ.ରାଶ୍ମିମସ୍ତ୍ୱ, କିରଣଶୋଭା-
ରଶ୍ମିମାନ୍—ପୁଂ.ବି.ସୂର୍ଯ୍ୟ,(ବିଂ)ରଶ୍ମିଯୁକ୍ତ
ରଶ୍ମିମୁକ୍—ପୁଂ. ବି. ସୂର୍ଯ୍ୟ ।
ରସ—ବି. (ରସ୍+ମି.ଅ) ରସନେନ୍ଦ୍ରିୟ-ଗ୍ରାହ୍ୟ ଗୁଣ,କଟୁ.ତିକ୍ତ, କଷାୟ,ଲବଣ, ଅମ୍ଳ, ମଧୁର ଏହି ଛଅପ୍ରକାର ଆସ୍ୱାଦ, ଦ୍ରବଦ୍ରବ୍ୟ, ସ୍ନେହ, ଜଳ, ପଦାର୍ଥରୁ ଫଳାଦିରୁ ବୃକ୍ଷାଦିରୁ ନିର୍ଗତ ଜଳବତ୍ ତରଳସାର, ନିର୍ଯ୍ୟାସ, ବିଷ, ଗୁଗ୍ଗୁଳ, ଗନ୍ଧରସ, ଅନୁରାଗ, ଦେହସ୍ଥ ଧାତୁ-ବିଶେଷ, ଭୋଜ୍ୟବସ୍ତୁ, ପାରଦ,ସୁବର୍ଣ୍ଣ, ଶାରୀରିକ ସୁଖସମ୍ଭୋଗ, ଇନ୍ଦ୍ରିୟ ଦ୍ୱାରା ସୁଖାସ୍ୱାଦନ, ମର୍ମ, ଅଭିପ୍ରାୟ, ପାରଦ ଜାତୀୟ ଖନିଜ ପଦାର୍ଥ, କୌଣସି ପଦାର୍ଥର ସାରଭାଗ, ପ୍ରୟ, ନବସଂଖ୍ୟା, ହିଙ୍ଗୁଳ.କାବ୍ୟଶାସ୍ତ୍ରର ସାରଭୂତ ଆସ୍ୱାଦନ, ଶୃଙ୍ଗାର, ବୀର,କରୁଣ, ଅଦ୍ଭୁତ ହାସ୍ୟ,ଭୟାନକ ବୀଭତ୍ସ ରୌଦ୍ର, ଶାନ୍ତ ଏହି ନଅପ୍ରକାର ରସ,କାହାର କାହାର ମତରେ ବାତ୍ସଲ୍ୟ ମଧ୍ୟ ଗୋଟିଏ ରସ ଏହିପରି ଦଶଗୋଟି ରସ,ମାଧୁର୍ଯ୍ୟାଦି ଗୁଣ, ଆନନ୍ଦ, କୌତୁକ, ଶୁକ୍ରଧାତୁ,ପ୍ରକାର, ରଙ୍ଗ,(ଗ୍ରା.ବି)ରଙ୍ଗ,କୌତୁକ,ରସିକତା, ରୂପ, ଲାବଣ୍ୟ, ଟିଣଧାତୁ, ସୀସାଧାତୁ, ରଙ୍ଗଧାତୁ, ଯୂଷ, ତାଡ଼ି, ମଦ, ଗୁଡ଼, ମହୁଲଆଦିରୁ ଉତ୍ପନ୍ନ ମଦ,ଦୁଗ୍ଧ,ଗୋରସ, ମାଧୁର୍ଯ୍ୟ, ଶକ୍ତି, ତେଜ, ଅହଂକାର, ବିବାଦ, ବ୍ୟସନ, ସଙ୍ଗୀତ ରଚନା-ଦିରେ ଥିବା ଭାବ, ପଶାଆଦି ଖେଳ, (ପ୍ରା. ମେଦିନୀପୁର) ଆଖୁଦୋରୁଅ,(ଲ. ଅର୍ଥ) ଧନସମ୍ପତ୍ତି ।
ରସକ—ପୁଂ. ବି. (ରସ+କ)ଯୂଷରହିତ ସିଦ୍ଧ ମାଂସ, ଫିଟିକିରି, ଖପର, (ବିଂ) ରସଯୁକ୍ତ ।
ରସକର୍ପୂର—କ୍ଲୀ. ବି. ପାରଦ ଘଟିତ କର୍ପୂରାକାର ଔଷଧ ବିଶେଷ ।
ରସକଳା—ବି. ମୃଦୁମିଷ୍ଟ ସ୍ୱର, ପାନମତ୍ତ ବ୍ୟକ୍ତିର ଗାଳିରସ ବିଷୟରେ ଗୁରୁର୍ଯ୍ୟ. ( ଗ୍ରା.ବି ) ଖୋରଧାନିବାସୀ ଓଡ଼ିଆ ପ୍ରାଚୀନ କବି ଲୋକନାଥ ବିଦ୍ୟାଧରଙ୍କ ରଚିତ ଆଦିରସାତ୍ମକ କାବ୍ୟ ।
ରସକଳ୍ପନା—ସ୍ତ୍ରୀ. ବି.ପାରଦର ରୂପାନ୍ତରି-ନୟନ ।
ରସକଲ୍ପଲତା—ଗ୍ରା.ବି.ଉତ୍କଳର ପ୍ରାଚୀନ କବି ଗଦାଧର ପଟ୍ଟନାୟକଙ୍କ ରଚିତ ନାୟକନାୟିକାତ୍ମକ ଓଡ଼ିଆ କାବ୍ୟ ।
ରସକଲ୍ଲୋଳ—ଗ୍ରା. ବି. ଓଡ଼ିଆକବି ଦୀନ-କୃଷ୍ଣ ଦାସଙ୍କର ରାଧାକୃଷ୍ଣଲୀଳା ବର୍ଣ୍ଣନା-ତ୍ମକ ଗ୍ରନ୍ଥକାବ୍ୟ ।
ରସକାରକ—ବିଂ. ଦ୍ରବକାରକ, ଭାବ ଉତ୍ପାଦକ, ସ୍ୱାଦଦାନକାରୀ ।
ରସକୂପ—ବି. (୬ତତ୍ତ୍ୱ) ରସଭଣ୍ଡାର ।
ରସକୁଲ୍ୟା—ବି. ପୁରାଣ ବର୍ଣ୍ଣିତ କୁଶ-ଦ୍ୱୀପର ନଦୀବିଶେଷ,(ଗ୍ରା.ବି)ବାଣୀ ବା ରାଗିଣୀ ବିଶେଷ ।
ରସକେଦାର—ଗ୍ରା. ବି. ପଦ୍ୟବିଶେଷ ।
ରସକେଳି—ବି. ବିହାର, କ୍ରୀଡ଼ା,ମଉଜ, ମଜ୍ଜା କରିବା ।
ରସକେଶର—କ୍ଲୀ. ବି. କର୍ପୂର ।
ରସକୋମଳ-କ୍ଲୀ.ବି.ଖନିଜପଦାର୍ଥ ବିଶେଷ
ରସକୌତୁକ—ବି.ରସଯୁକ୍ତ କୌତୁକ ।
ରସକୌତୁକୀ—ବିଂ. ରସକ୍ରୀଡ଼ା ପ୍ରିୟ ।
ରସକ୍ରିୟା—ସ୍ତ୍ରୀ. ବି. ଦ୍ରବ୍ୟର ଘନୀଭୂତ ସାରକରଣ ।
ରସକ୍ରୀଡ଼ା—ବି. (କ.ଧା)ରସିକ ରସିକା-ଙ୍କର କେଳି ଓ କୌତୁକାଦି ରହସ୍ୟ ।
ରସଖର୍ପର—ବି.ଖପରନାମକ ଉପଧାତୁ ।
ରସଗନ୍ଧ—କ୍ଲୀ. ବି. ଗନ୍ଧରସ, ଗୁଗ୍ଗୁଳ, ଗନ୍ଧବୋଲ ।
ରସଗନ୍ଧକ—ବି. ଗନ୍ଧରସ, ଗନ୍ଧବୋଳ, ରସାଞ୍ଜନ, ହିଙ୍ଗୁଳ, ଗୁଗ୍ଗୁଳ, ଗନ୍ଧକ ।
ରସଗର୍ଭ—କ୍ଲୀ. ବି. ରସାଞ୍ଜନ, ହିଙ୍ଗୁଳ, (ବିଂ. ବି.ଗ୍ରୀ) ରସିକତା ବା ରସପୂର୍ଣ୍ଣ, କାବ୍ୟ ରସରେ ପୂର୍ଣ୍ଣ, ଯାହାର ମଧ୍ୟସ୍ଥଳ ରସରେ ପୂର୍ଣ୍ଣ ।
ରସଗୁଲା—ଗ୍ରା. ବି. ଦୁଧଛେନାରେ ପ୍ରସ୍ତୁତ ଓ ଚିନିରେ ପାକ କରାଯାଇଥିବା ମିଷ୍ଟାନ୍ନ
ରସଗ୍ରହ—ବି. ( ରସ + ଗ୍ରହ୍ + କ.ଅ ) ପ୍ରକୃତ ସ୍ୱାଦୁ ଅନୁଭବ,ମର୍ମଗ୍ରହ,ଜିହ୍ୱା ।
ରସଗ୍ରହଣ—ବି. (୬ତତ୍ତ୍ୱ) ବକ୍ତୃତା ଓ ବାକ୍ୟ.ଦିର ରସ ଆସ୍ୱାଦନ,ସ୍ୱାଦଗ୍ରହଣ, ସାରଗ୍ରହଣ ।
ରସଗ୍ରାହକ—ବିଂ. ରସାସ୍ୱାଦନ ଗ୍ରହଣ ଶକ୍ତିସମ୍ପନ୍ନ ।
ରସଗ୍ରାହୀ—ପୁଂ.ବିଂ.(ରସ+ଗ୍ରହ+ଇନ୍) ରସଗ୍ରାହକ ଦେଖ ।
ରସଘନ—ବି.ବିଂ. ପର୍ଯ୍ୟାପ୍ତ ରସବିଶିଷ୍ଟ ।
ରସଘ୍ନ—ପୁଂ.ବି. (ରସ + ହନ୍ + କ.ଅ) ଟଙ୍କଣ, ଟାଙ୍ଗଣା, (ବିଂ) ରସନାଶକ, (ସ୍ତ୍ରୀ) ରସଘ୍ନୀ । [ କରିବା ।
ରସଘୀଣିବା—ଗ୍ରା.କ୍ରି. ମାଧୁର୍ଯ୍ୟ ଆସ୍ୱାଦନ
ରସଚପୁଡ଼ିବା—ଗ୍ରା.କ୍ରି.କୌଣସି ଦ୍ରବ୍ୟକୁ ଦଳି ତହିଁରୁ ରସ ବାହାର କରିବା, (ଲ.ଅର୍ଥ)କୌଣସି ଦ୍ରବ୍ୟର ବା ବ୍ୟକ୍ତିର ଅନ୍ତର୍ଗତ ମାଧୁର୍ଯ୍ୟକୁ ବାହାର କରିବା ବା ଉପଭୋଗ କରିବା ।
ରସଚୁମ୍ବିବା—ଗ୍ରା.କ୍ରି. କୌଣସି ରସମୟ ଭାବକୁ ଆସ୍ୱାଦନ ବା ଉପଲବ୍ଧି କରିବା ।
ରସଜ—ପୁଂ. ବି. (ରସ+ଜ) ଜଳୀୟ ଦ୍ରବ୍ୟଜାତ କୀଟାଣୁ, ମଦ୍ୟକୀଟ, ରକ୍ତ, ଗୁଡ଼,ସୁରାର କାଣ୍ଟି, ରସାଞ୍ଜନ, (ବିଂ) ରସରୁ ଉତ୍ପନ୍ନ ।
ରସଜନ୍ୟ—ବିଂ.(୫ତତ୍ତ୍ୱ)ରସରୁ ଉତ୍ପନ୍ନ ।
ରସଜାତ—ବିଂ. (୫ତତ୍ତ୍ୱ)ରସରୁ ଉତ୍ପନ୍ନ, (ବି-୬ତତ୍ତ୍ୱ) ରସସମୂହ, ( ୫ତତ୍ତ୍ୱ ) ରସାଞ୍ଜନ ।
ରସଜ୍ଞ—ପୁଂ.ବିଂ. (ରସ+ଜ୍ଞା+କ.ଅ) ରସବେତ୍ତା, ସ୍ୱାଦଗ୍ରାହୀ, ରସିକ,ଭାବୁକ, ସାମାଜିକ ।
ରସଜ୍ଞତା—ସ୍ତ୍ରୀ. ବି.ରସଜ୍ଞର ଭାବ,ସ୍ୱାଦ-ଗ୍ରାହିତା, ରସିକତା ।
ରସଜ୍ଞା—ସ୍ତ୍ରୀ. ବି. (ରସ + ଜ୍ଞା + କ.ଅ+

ଆ) ଜିହ୍ୱା, ରସନା, ଗଙ୍ଗାନଦୀ ।
ରସଜ୍ଞାନ—କ୍ଳୀ. ବ. (୬ତତ୍)ରସବୋଧ, ରସାନୁଭବକୁଶଳତା, ରସସମ୍ବନ୍ଧେ ଜ୍ଞାନ ।
ରସଜ୍ୟେଷ୍ଠ—ପୁଂ. ବ.ମଧୁରରସ,ଶୃଙ୍ଗାର ରସ ।
ରସଜ୍ୱର—ବ.ଅପରିମିତ ପାନ ଓ ଖାଦ୍ୟ ଦୋଷରୁ ଜାତ ଜ୍ୱର, ବାତଜ୍ୱର ।
ରସତନ୍ମାତ୍ର—କ୍ଳୀ. ବ. ସୂକ୍ଷ୍ମଭୂତବିଶେଷ ତନ୍ମାତ୍ର ଦେଖ ।
ରସତମ—ପୁଂ. ବ. ଉତ୍କୃଷ୍ଟ ରସ ।
ରସତରଙ୍ଗ—ବ.ତରଙ୍ଗରୂପରେ ଖେଳୁଥିବା ରସିକତା,(ଗ୍ରା.ବ)ଉପେନ୍ଦ୍ରଭଞ୍ଜଙ୍କ ରଚିତ କ୍ଷୁଦ୍ର ପଦ୍ୟକାବ୍ୟବିଶେଷ ।
ରସତାନକ—ବ. ଶିଶୁର ମୂର୍ଚ୍ଛାରୋଗବିଶେଷ, ଦୁଅରୋଗ ।
ରସଦ—ପୁଂ. ବିଂ. (ରସ+ଦା+କ.ଅ) ସୁଖଦାୟକ, ସୁସ୍ୱାଦୁ, ରସିକ, (ସ୍ତ୍ରୀ) ରସଦା, (ପୁଂ.ବ) ଚିକିତ୍ସକ, (ଯା.ବ) ରଶଦ ଦେଖ ।
ରସଦାତା—ପୁଂ. ବିଂ. ଯେ ହୃଦୟରେ • ରସମୟ ଭାବ ବା ଅନୁରାଗ ଜାତ କରାଏ, (ସ୍ତ୍ରୀ) ରସଦାତ୍ରୀ ।
ରସଦାନ—ବ. (୬ତତ୍) ରସମୟ ଭାବ ବା ପ୍ରେମ ହୃଦୟରେ ଜାତ କରିବା ।
ରସଦାମୀ—ଗ୍ରା. ପୁଂ. ବିଂ ଓ ସ୍ତ୍ରୀ. ରସଦାତା ଦେଖ । [ ଦେଖ ।
ରସଦାୟୀ(ୟିନୀ)—ଗ୍ରା. ବ . ରସଦାତା
ରସଦା—ସ୍ତ୍ରୀ.ବିଂ. ଶ୍ୱେତକାଗୁଣ୍ଡି, ଶ୍ୱେତନିସିନ୍ଦା ।
ରସଦାଳିକା—ସ୍ତ୍ରୀ. ବ. (ରସ+ଦଳ+ ମି.ଇକ+ଆ) ପୁଣ୍ଡ୍ର କେଷ୍ଟୁ,ଏକପ୍ରକାର ଆଖୁ ।
ରସଦୃଷ୍ଟି—ବ. (୬ତତ୍) ଶରୀରସ୍ଥ ରସ ଉତ୍ତମରୂପେ ପାକ ନ ହେବାଜନିତ ଦୋଷ ।
ରସଦୋଷ—ବ. ( ୬ତତ୍ ) ଶୃଙ୍ଗାରାଦି ରସର ଅପକର୍ଷତା,ରଚନାର ଅପକର୍ଷ ବିଶେଷ ।
ରସଦ୍ରାବୀ—ପୁଂ. ବ. ମଧୁର ଜମ୍ବୀର ।
ରସଧାତୁ—ପୁଂ. ବ. ପାରଦ, ଶରୀରସ୍ଥ ୨ୟ ଧାତୁ ।
ରସଧେନୁ—ସ୍ତ୍ରୀ. ବ. ଦାନାର୍ଥ ଇକ୍ଷୁରସ ନିର୍ମିତ ଧେନୁ ।
ରସନ—କ୍ଳୀ. ବ. (ରସ୍+ଅନ) ଆସ୍ୱାଦନ, ଚାଖିବା, କଫ, ଧ୍ୱନି, ଜିହ୍ୱା,ରସଗ୍ରହଣ, ଶବ୍ଦ, ଧ୍ୱନି, ଧ୍ୱନନ ।
ରସନଦୀ—ବ. ନଦୀରୂପରେ ବହୁଥିବା ରସ ।
ରସନା—ସ୍ତ୍ରୀ. ବ. (ରସ+ଅନ+ଆ) ଜିହ୍ୱା, ରାସ୍ନା, ଗନ୍ଧଭଦ୍ରା, କାଞ୍ଚୀ, ଚନ୍ଦ୍ରହାର,ରଜ୍ଜୁ , ଫାଶ,ଲଗାମ,ଜ୍ୟୋତ୍ସ୍ନା, ପସାରୁଣୀ ଲତା, ଅଣ୍ଟା, ( ଗ୍ରା.ବ ) ସପ୍ତକ୍ଷୀ, ବାଦ୍ୟଯନ୍ତ୍ରବିଶେଷ ।
ରସନାଗ୍ର—ବ.(୬ତତ୍)ଜିହ୍ୱାର ଅଗ୍ରଭାଗ ।
ରସନାଗ୍ରପଲ୍ଲୀ—ବ. ( ୬ତତ୍ ) ବାକ୍ଦେବୀ, ଗୃପଲ୍ୟ ।
ରସନାଥ—ପୁଂ. ବ. (୬ତତ୍) ପାରଦ ।
ରସନାପଦ—କ୍ଳୀ. ବ. (୬ତତ୍) ନତମ୍ବଦେଶ ।
ରସନାଭ—କ୍ଳୀ ବ. ରସାଞ୍ଜନ ।
ରସନାୟକ—ପୁଂ.ବ. (ରସ+ନାୟକ) ୬ତତ୍; ଶିବ, (୬ତତ୍) ପାରଦ ।
ରସନାରଦ—ପୁଂ. ବ. (ବ.ବ୍ରୀ) ପକ୍ଷୀ ।
ରସନାର ସ୍ୱନ—ଗ୍ରା. ବ. ହୁଲହୁଳି ।
ରସନାଲିଟ୍—ପୁଂ. ବ. (ରସନା+ଲିହ୍ +କ୍ୱିପ୍) କୁକ୍କୁର, (ବିଂ) ଜିହ୍ୱା ଦ୍ୱାରା ଲେହନକାରୀ ।
ରସନିଗ(ଗା)ଡ଼ିବା—ଗ୍ରା.କ୍ରି. ରସ ଚପୁଡ଼ିବା ଦେଖ ।
ରସନିକଳିବା—ଗ୍ରା.ବ. ଆଘାତାଦି ଦ୍ୱାରା ଦେହରୁ ରକ୍ତ ବୋହିବା ।
ରସନିଗିଡ଼ିବା—ଗ୍ରା. ବ. ରସ ନିଃଶେଷ ରୂପେ କ୍ଷରିବା ।
ରସନିଧି—ବ. ସୁରସିକ, ରସିକତା ପୂର୍ଣ୍ଣ ବ୍ୟକ୍ତି, (ଗ୍ରା.ବ) ଉପେନ୍ଦ୍ରଭଞ୍ଜଙ୍କ ସମସାମୟିକ କବି ଘନଭଞ୍ଜଙ୍କ ରଚିତ ଓଡ଼ିଆ କାବ୍ୟ ।
ରସନିବୃତ୍ତି ସ୍ତ୍ରୀ.ବ.ଆସ୍ୱାଦନ କ୍ରିୟାହୀନତା ।
ରସନିବେଦନ—ବ.(୬ତତ୍)ଅନ୍ୟ ବ୍ୟକ୍ତି ନିକଟରେ ରସମୟ ବାକ୍ୟାଦିର ପ୍ରକାଶ ।
ରସନିର୍ଗମ(ନ)—ବ. (୬ତତ୍) କୌଣସି ଦ୍ରବ୍ୟରୁ ରସ ନିଗିଡ଼ିବା ।
ରସନୀୟ—ବିଂ.(ରସ+ମି.ଅନୀୟ)ଚାଖି ହେବାର ଉପଯୁକ୍ତ, ସୁସ୍ୱାଦୁ, ରସନାର ତୃପ୍ତିକର ।
ରସନେତ୍ରିକା—ସ୍ତ୍ରୀ. ବ. ମନଃଶିଳା ।
ରସନେନ୍ଦ୍ରିୟ—କ୍ଳୀ.ବ(ରସନା+ଇନ୍ଦ୍ରିୟ) ରସନା, ଜିହ୍ୱା ।
ରସନେଷ୍ଟ—ବ.(ରସନା + ଇଷ୍ଟ)୬ତତ୍; ଇକ୍ଷୁ, ଆଖୁ ।
ରସପଞ୍ଚକ— ବ. ପାଞ୍ଚଗୋଟି ରସର ସମାହାର, ( ଗ୍ରା. ବ ) ଉପେନ୍ଦ୍ରଭଞ୍ଜଙ୍କ ରଚିତ କାବ୍ୟବିଶେଷ ।
ରସପତି—ବ(୬ତତ୍)ଓଷଧୀଶ, ଚନ୍ଦ୍ରମା, ରାଜା, ପାରଦ, ଶୃଙ୍ଗାର ରସ ।
ରସପର୍ପଟୀ—ସ୍ତ୍ରୀ. ବ. ଔଷଧବିଶେଷ ।
ରସପାକ—ବ. (୬ତତ୍) ରସକୁ ଅଗ୍ନି ଦ୍ୱାରା ସିଝାଇବା, ଖାଦ୍ୟଜାତ ରସ ଜୀର୍ଣ୍ଣ ହୋଇ ରକ୍ତରେ ପରିଣତ ହେବା ।
ରସପାକଜ—ବ. ଗୁଡ଼, ଶର୍କରା, ଚିନି ।
ରସପାଚକ—ପୁଂ. ବ. ଯେ ରସ ପାକ କରେ, ପାଚକ, ରନ୍ଧନକାରୀ ।
ରସପାତାଳ—ଯା.ବ. ଦାତବ୍ୟ ଚିକିତ୍ସାଳୟ, ଡାକ୍ତରଖାନା ।
ରସପାନ—ବ.(୬ତତ୍)ମଦ୍ୟପାନ, ଭ୍ରମରର ପୁଷ୍ପରୁ ମଧୁପାନ ।
ରସପୂର—ଗ୍ରା.ବିଂ.ସରସ, ଯହିଁରେ ରସ ଭରିଥାଏ ।
ରସପୁଷ୍ପ—କ୍ଳୀ. ବ. ଟଙ୍କଣ, ପାରଦରୁ ପ୍ରସ୍ତୁତ ଦ୍ରବ୍ୟବିଶେଷ ।
ରସପୂର୍ଣ୍ଣ—ବିଂ. (୩ତତ୍) ଯହିଁରେ ରସ ଭରି ଥାଏ,ରସମୟ ।
ରସପୂରିକା—ସ୍ତ୍ରୀ ବ.ଜ୍ୟୋତିଷ୍ମତୀ ଲତା-ଫଟ୍କୀ, ଫୁଟ୍‌ପୁଟିକା ଲତା ।
ରସପ୍ରଚୁର—ବିଂ.(ବ.ବ୍ରୀ) ସରସ, ରସମୟ, (ସ୍ତ୍ରୀ) ରସପ୍ରଚୁରା ।
ରସପ୍ରୟୋଗ—ବ. ରସୌଷଧ ସେବନ-

ବ୍ୟବସ୍ଥା ।
ରସପ୍ରବନ୍ଧ—ବ. ନାଟକ, କବିତା ।
ରସପ୍ରାଚୁର୍ଯ୍ୟ—ବି°.(ବ.ଗ୍ରା) ମଦ୍ଦରପ୍ରିୟ, ରସିକ, (ସ୍ତ୍ରୀ) ରସପ୍ରିୟା ।
ରସଫଳ—ବି.(ରସ+ଫଳ)ନାରିକେଳ, (ବ.ଗ୍ରା) ନଡ଼ିଆଗଛ, ଅଁଳାଗଛ ।
ରସଫେଣା—ଗ୍ରା.ବ.ଏକପ୍ରକାର ମିଷ୍ଟାନ୍ନ ।
ରସବଟିକା—ଗ୍ରା. ବ. ପାରଦ ବା ରସଘଟିତ ବଟିକା ।
ରସବତ୍—ବି°. (ରସ+ବତ୍) ଗୌଣ ବା ଅପ୍ରଧାନ ରସ ବା ଭାବବିଶିଷ୍ଟ,ରସପୂର୍ଣ୍ଣ, ସୁସ୍ୱାଦୁ, ଭାବବିଶିଷ୍ଟ,(ବି)କାବ୍ୟାଲଙ୍କାରବିଶେଷ ।
ରସବତୀ—ସ୍ତ୍ରୀ.ବି°.(ରସବତ୍+ଈ)ରସବିଶିଷ୍ଟା, ପ୍ରେମମୟୀ,ଲାବଣ୍ୟବତୀ,ସୁନ୍ଦରୀ, (ସ୍ତ୍ରୀ.ବ)ରସିକା ସ୍ତ୍ରୀ, ପାକଶାଳା, ରସବନ୍ତା ଦେଖ ।
ରସବନ୍ତ—ଗ୍ରା. ବି°. ରସିକ, ରସପୂର୍ଣ୍ଣ, ସୁସ୍ୱାଦୁ ।
ରସବର୍ଦ୍ଧକର—ବ. ସୋମଲତା ।
ରସବନ୍ଧନ—କ୍ଳୀ.ବ.ଦେହ ମଧ୍ୟସ୍ଥ ନାଡ଼ୀର ଅଂଶବିଶେଷ ।
ରସବଳିତା—ଗ୍ରା. ବ. ବାଣଆଦିରେ ଢ଼ଆଁ ଧରାଇବା ପାଇଁ ଭିତରେ ବାରୁଦ ଭରାଯାଇ ବଳାଯାଇଥିବା ଲମ୍ବ ବର୍ତ୍ତିକା ।
ରସଭଗ୍ନ—ଗ୍ରା. ବ. ରସଭଙ୍ଗ ଦେଖ ।
ରସଭଙ୍ଗ—ବ. (୬ତତ୍) ରସ ସମ୍ବନ୍ଧେ ବ୍ୟାଘାତ ବା ପ୍ରତିବନ୍ଧ, ଏକପ୍ରକାର (କାବ୍ୟାଦି)ରସ ସମ୍ବନ୍ଧେ ଆଲୋଚନା ହେଉଥିବା ସମୟରେ ତଦ୍ବିପରୀତ ରସର ଅବତାରଣାରୂ କାବ୍ୟ ରଚନାର ଦୋଷବିଶେଷ, (ସୁଶ୍ରୁତ ଅନୁସାରେ ) ରସନାଭୋଗ୍ୟ ଏକ ରସର ଆସ୍ୱାଦନ କାଳରେ ଅନ୍ୟ ବିରୋଧୀ ରସର ଅବତାରଣା ।
ରସଭବ—କ୍ଳୀ. ବ. (ରସ+ଭୂ+ଅ) ରକ୍ତ, ରୁଧିର, (ବି°) ରସରୁ ଉତ୍ପନ୍ନ, ରସଜାତ । [ ରସାଳ ।
ରସଭରା—ଗ୍ରା.ବି°. ରସପୂର୍ଣ୍ଣ, ରସମୟ,

ରସଭସ୍ମ—କ୍ଳୀ.ବ. (ରସ+ଭସ୍ମ)୬ତତ୍; ପାରଦଭସ୍ମ, ପାରାଭସ୍ମ ।
ରସଭାବ—ବ. ( ରସ+ଭାବ ) ୬ତତ୍; ରସଧର୍ମ, ସ୍ନିଗ୍ଧତ୍ୱ ପ୍ରଭୃତି ।
ରସଭାଷ—ବ. ( କ.ଧା ) ସରସଭାଷ, ରସିକତାପୂର୍ଣ୍ଣ ବାକ୍ୟ ।
ରସଭେଦ—ବ. ପାରଦଘଟିତ ଔଷଧ ବିଶେଷ, ରସାସ୍ୱାଦ ।
ରସଭେଦୀ—ବି°.ରସନିର୍ଗମନକାରୀ, ଯେ ସମସ୍ତ ପକ୍ୱଫଳରୁ ରସ ବାହାର କରେ ।
ରସଭୋଗ—ବ.(୬ତତ୍)ରସର ଆସ୍ୱାଦ ।
ରସଭୋଜନ—ବ. ତରଳ ଦ୍ରବ୍ୟ ପାନ, ଆମ୍ର ଭୋଜନର ଉତ୍ସବବିଶେଷ ।
ରସଭୋଳ—ଗ୍ରା. ବ. ରସାସ୍ୱାଦନ କରୁଥିବା ବ୍ୟକ୍ତିର ଭ୍ରାନ୍ତି ବା ଉନ୍ମତ୍ତତା, (ବି°) ରସାସ୍ୱାଦନରେ ଉନ୍ମତ୍ତ ।
ରସମଞ୍ଜରୀ—ବ. ଭିନ୍ନ ଭିନ୍ନ ଶ୍ରେଣୀର ନାୟକ ନାୟିକା ବିଷୟକ ସଂସ୍କୃତ ଗ୍ରନ୍ଥବିଶେଷ, (ଗ୍ରା.ବ) ଉପେନ୍ଦ୍ରଭଞ୍ଜଙ୍କ ପ୍ରଣୀତ ଅପ୍ରକାଶିତ ପଦ୍ୟଗ୍ରନ୍ଥ,ବୈଷ୍ଣବମାନଙ୍କର ବାଦ୍ୟଯନ୍ତ୍ରବିଶେଷ ।
ରସମନ୍ଦୂର—କ୍ଳୀ.ବ.ଶୂଳରୋଗର ଔଷଧ ବିଶେଷ ।
ରସମୟ—ବି°. (ରସ+ମୟ)ରସସ୍ୱରୂପ, ରସାଳ, ରସପୂର୍ଣ୍ଣ, ପ୍ରେମମୟ, (ସ୍ତ୍ରୀ) ରସମୟୀ ।
ରସମର୍ଦ୍ଦନ—କ୍ଳୀ. ବ. ପାରଦମାରଣ, ପାରାକୁ କଜ୍ଜଳୀରୂପେ ପରିଣତକରଣ ।
ରସମଳ—କ୍ଳୀ. ବ. (୬ତତ୍) ଶାରୀରିକ ରସର ମଳ, ବିଷ୍ଠା, ମୂତ୍ର, ଘର୍ମାଦି ।
ରସମାଣିକ୍ୟ—କ୍ଳୀ. ବ. କୁଷ୍ଠରୋଗର ଔଷଧବିଶେଷ ।
ରସମାତୃକା—ସ୍ତ୍ରୀ. ବ. (୬ତତ୍)ଜିହ୍ୱା ।
ରସମାରକଦ୍ରବ୍ୟ—କ୍ଳୀ.ବ. ପାରାମାରିବା ଦ୍ରବ୍ୟ ।
ରସମାରଣ—କ୍ଳୀ.ବ.ପାରାମାରଣ, ପାରାଶୋଧନ, ପାରଦରୁ ପ୍ରସ୍ତୁତ ଏକପ୍ରକାର ଔଷଧ ।

ରସମାଳା—ବ. ଶିଳାରସ ।
ରସମୂର୍ଚ୍ଛନା—ବ. (ରସ+ମୂର୍ଚ୍ଛନ+ଆ) ପାରଦ ଶୋଧନକରଣ,ପାରଦମାରଣ ।
ରସମୂଳା—ସ୍ତ୍ରୀ.ବ.ପ୍ରାକୃତ ଛନ୍ଦୋବିଶେଷ
ରସମୈତ୍ରୀ—ବ. ଦୁଇ ରସର ଉପଯୁକ୍ତ ମିଳନ, ଯଦ୍ଦ୍ୱାରା ସ୍ୱାଦର ସୁଖ ବୃଦ୍ଧିହୁଏ,(ଯଥା—ଖଟା ସଙ୍ଗେ ମିଠାର, ଓ ଖଟା ସଙ୍ଗେ ଲୁଣର ମିଳନ) ।
ରସଯୁତ—ବ. ଆସ୍ୱାଦନ । [ ସୁମିଷ୍ଟ ।
ରସୟିତବ୍ୟ—ବି°. ଆସ୍ୱାଦନଯୋଗ୍ୟ,
ରସୟିତା—ପୁଂ.ବି°.ଆସ୍ୱାଦ ଗ୍ରହଣକାରୀ ।
ରସଯୋଗ—ବ(ରସ+ଯୋଗ) ଔଷଧର ପ୍ରକାଶବିଶେଷ ।
ରସରଙ୍ଗ—ବ.ସରସ ଆମୋଦ ଆହ୍ଲାଦ, ରଙ୍ଗ କୌତୁକ, ବ୍ୟଙ୍ଗ୍ୟ ।
ରସରଞ୍ଜନ—କ୍ଳୀ. ବ. (ରସ+ରଞ୍ଜନ) ପାରଦର ରକ୍ତତା ଉତ୍ପାଦନ ।
ରସରତ୍ନାକର—ଗ୍ରା. ବ. ଅଯୁର୍ବେଦୋକ୍ତ ରତିସୁଖକର ଔଷଧବିଶେଷ, ଅତ୍ୟଧିକ ରତି ସୁଖ ।
ରସରହସ୍ୟ—ବ.ପାରଦ ମାରଣ ଜାରଣାଦିର କୌଶଳ,ରସସମ୍ବନ୍ଧୀୟ ଗୂଢ଼ମର୍ମ ବା ଜ୍ଞାନ,ରସ ଓ ରହସ୍ୟ, ରଙ୍ଗ ଓ ରହସ୍ୟ, ବିଳାସକୌତୁକ ।
ରସରାଜ—ବ. (ରସ+ରାଜନ୍)ଔଷଧବିଶେଷ, ପାରଦ, ରସାଞ୍ଜନ, (୬ତତ୍) ଶୃଙ୍ଗାର ରସ,(ଗ୍ରା.ବ) ଶ୍ରୀକୃଷ୍ଣ, ରସିକଚୂଡ଼ାମଣି, ରସିକବର । [ ବିଶେଷ ।
ରସରାକରସ—ବ.ବାତବ୍ୟାଧିର ଔଷଧ-
ରସରାଜେନ୍ଦ୍ର—ବ. ସାନ୍ନିପାତିକ ରୋଗର ଔଷଧବିଶେଷ ।
ରସରୂପ—ବି°. ରସିକ ଦେଖ ।
ରସଲ୍‌ଦାର-ଯା.ବ. ଅଶ୍ୱାରୋହୀ ସେନାଙ୍କ ନାୟକ ।
ରସଲିଙ୍ଗ—ବ. (କ.ଧା) ପାରଦରେ ବା ସ୍ୱର୍ଣ୍ଣରେ ପ୍ରସ୍ତୁତ ଶିବଲିଙ୍ଗ ।
ରସଲୀଳା—ବ. ରସାସ୍ୱାଦନ, ସୁଖରେ ସମୟ କଟାଇବା, (ଗ୍ରା.ବ) ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ଲିଖିତଥିବା

ଗଞ୍ଜାମର ଭୁବନେଶ୍ୱର କବିଚନ୍ଦ୍ର ବିର-
ଚିତ ଓଡ଼ିଆ ଖଣ୍ଡକାବ୍ୟ ।
ରସଲୁବ୍ଧ—ବିଂ. (୩ତତ୍ପୁ) ରସଦ୍ୱାରା
ଆକୃଷ୍ଟ, ରସଲୋଭୀ, (ସ୍ତ୍ରୀ) ରସଲୁବ୍ଧା ।
ରସଲୁବ୍ଧକ—ବି. ଭ୍ରମର, ମହୁମାଛି ।
ରସଲେଖା—ଗ୍ରା.ବି. କବି ଉପେନ୍ଦ୍ରଭଞ୍ଜ-
ଙ୍କର ଆଦିରସାତ୍ମକ କାବ୍ୟ ।
ରସଲେହ--ବି. (ରସ+ଲେହ)ପାରଦ,
ପାରା ।
ରସଲୋଭୀ—ବି. ଭ୍ରମର, ମହୁମାଛି ।
ରସବତ୍ତା—ସ୍ତ୍ରୀ.ବି. (ରସ+ବତ୍+ତା)
ରସବିଶିଷ୍ଟର ଭାବ, ରସ, ସୌନ୍ଦର୍ଯ୍ୟ,
ମିଷ୍ଟତା ।
ରସବର୍ଜ୍ଜ—ବି. ଆସ୍ୱାଦନେଚ୍ଛା ତ୍ୟାଗ ।
ରସବର୍ଦ୍ଧକ-ବି.ଦାଡ଼ିମ୍ବପୁଷ୍ପାଦି ଦ୍ରବ୍ୟଗଣ ।
ରସବହ—ବିଂ. (ରସ+ବହ୍+ଅ)ରସ-
ବାହି ସ୍ରୋତ ।
ରସବହସ୍ରୋତ--ବି.ଯେଉଁ ସବୁ ଧମନୀରେ
ରସ ଯାଏ ।
ରସବହୁଳ—ବିଂ. (ବ.ବ୍ରୀ)ଯହିଁରେ ରସ
ଅଧିକ ଥାଏ, (ସ୍ତ୍ରୀ) ରସବହୁଳା ।
ରସବାତ—ବି. (କ.ଧା) ଆମବାତ,
ଦେହରେ ରସାଧିକ୍ୟଜନିତ ବେଦନା,
ବାତ ।
ରସବାଦ—ବି. (କ.ଧା) ରସିକତାମୟ
କଥୋପକଥନ ।
ରସବାନ୍—ପୁଂ.ବିଂ.(ରସ+ବତ୍)ରସ-
ବିଶିଷ୍ଟ, ରସମୟ, ରସିକ, ସତ୍ୟବାକ୍ୟ,
ସରସ, ମଧୁର, (ସ୍ତ୍ରୀ) ରସବତୀ ।
ରସବିକ୍ରୟ—ବି. (୬ତତ୍) ମଦ୍ୟବିକ୍ରୟ,
ତାଡ଼ି ବିକିବା ।
ରସବିକ୍ରୟୀ—ପୁଂ.ବି.ମଦ୍ୟ ବିକ୍ରୟକାରୀ,
ତାଡ଼ିବିକ୍ରେତା, (ସ୍ତ୍ରୀ) ରସବିକ୍ରୟିଣୀ ।
ରସବିଚ୍ଛେଦ—ବି. ରସଭଙ୍ଗ ଦେଖ ।
ରସବିଦ୍—ପୁଂ.ବିଂ.(ରସ+ବିଦ୍+କ୍ୱିପ୍)
ରସଜ୍ଞ ।
ରସବିନୋଦ-ବି.ରସଲୀଳା ଦେଖ,(ଗ୍ରା.ବି)
କବି ଦୀନକୃଷ୍ଣ ଦାସଙ୍କ ବିରଚିତ ରାଧା-
କୃଷ୍ଣଲୀଳା ବିଷୟକ ପଦ୍ୟଗ୍ରନ୍ଥ ।

ରସବିନୋଦିଆ—ଗ୍ରା.ବିଂ. ଯେ ରସରେ
ବିନୋଦ କରେ, ରସିକ, (ବି)ଶ୍ରୀକୃଷ୍ଣ ।
ରସବିଶେଷ—ବି. ଉତ୍କୃଷ୍ଟ ରସ ।
ରସବିରୋଧ—ବି. ( ରସ+ବିରୋଧ )
ରସର ବିରୋଧ, ( ଯଥା—ତିକ୍ତମଧୁର,
ଲବଣମଧୁର) ।
ରସବୃଦ୍ଧି--ବି.(୬ତତ୍)ରସାଧିକ୍ୟ ଦେଖ ।
ରସବେଣୀ—ଗ୍ରା.ବି.ଏକପ୍ରକାର ବାଦ୍ୟ-
ଯନ୍ତ୍ର ।
ରସବେତ୍ତା--ପୁଂ.ବିଂ. (ରସ+ବିଦ୍+
କ.ତୃ) ରସଜ୍ଞ, (ସ୍ତ୍ରୀ) ରସବେତ୍ତ୍ରୀ ।
ରସବେଧକ—କ୍ଲୀ.ବି. (ରସ+ବିଧ୍+
କ.ଅକ) ସ୍ୱର୍ଣ୍ଣ, ସୁନା ।
ରସବୋଧ--ବି. ( ୬ତତ୍ ) ରସଜ୍ଞାନ,
ରସାନୁଭବ, ରସାନୁଭବକତା ।
ରସଶାଳା—ବି.ରାସାୟନିକ ପରୀକ୍ଷାଗାର,
ପାକଶାଳା ।
ରସଶାସ୍ତ୍ର—କ୍ଲୀ.ବି.(କ.ଧା)ରସାୟନଶାସ୍ତ୍ର ।
ରସଶେଖର—ବି. ରସୌଷଧବିଶେଷ ।
ରସଶେଷ—ବି. ଭୁକ୍ତଦ୍ରବ୍ୟ ଜୀର୍ଣ୍ଣ ପରେ
ଯାହା ରସ ରୂପେ ରହେ ।
ରସଶେଷାଜୀର୍ଣ୍ଣ—କ୍ଲୀ. ବି. ରସ ଶେଷ
ହେତୁ ଅଜୀର୍ଣ୍ଣ ରୋଗବିଶେଷ ।
ରସଶୋଣିତସମ୍ଭବ—କ୍ଲୀ.ବି.ମାଂସଧାତୁ ।
ରସଶୋଧନ—କ୍ଲୀ.ବି. (ରସ+ଶୋଧନ)
୬ତତ୍; ଟାଙ୍କଣା, ପାରଶୋଧନ ।
ରସଶୋଷକ—ପୁଂ. ବିଂ. ରସଶୋଷଣ-
କାରୀ; (ସ୍ତ୍ରୀ) ରସଶୋଷିକା ।
ରସଶୋଷଣ—କ୍ଲୀ. ବି. (୬ତତ୍) ରସକୁ
ଶୋଷିବା । •
ରସସଂରକ୍ଷଣ—କ୍ଲୀ.ବି.ପାରଦର ଶୋଧନ,
ମୂର୍ଚ୍ଛନ, ବନ୍ଧନ ଓ ମାରଣରୂପ କର୍ମ-
ଚତୁଷ୍ଟୟ ।
ରସସମ୍ଭବ—କ୍ଲୀ. ବି. (ବ.ବ୍ରୀ) ରକ୍ତ ।
ରସସାଗର—ବି. (ରୂ-କ.ଧା)କାବ୍ୟରସ
ରୂପ ସାଗର, (୬ତତ୍) ରସିକବର ।
ରସସାମ୍ୟ—ବି.ଶାରୀରିକ ରସର ନ୍ୟୂନା-
ଧିକ୍ୟ ନିର୍ଣ୍ଣୟ ।
ରସସାର—ବି. (୬ତତ୍) ପାରଦ, ଶ୍ରେଷ୍ଠ

ରସ, (୬ତତ୍) ରସର ମର୍ମ, ମଧୁ ।
ରସସାରଜ୍ଞ—ପୁଂ. ବିଂ. (ରସସାର+ଜ୍ଞା
+ଅ) ରସଜ୍ଞ, ରସରୁ ସାରଗ୍ରହଣ କରି-
ବାକୁ ସମର୍ଥ, (ସ୍ତ୍ରୀ) ରସସାରଜ୍ଞା ।
ରସସିଦ୍ଧ—ବି. ( ୭ତତ୍ ) ଯେଉଁ ବ୍ୟକ୍ତି
ନିକୃଷ୍ଟଧାତୁକୁ ଦ୍ରବ୍ୟଗୁଣ ସାହାଯ୍ୟରେ
ଉତ୍କୃଷ୍ଟତର ଧାତୁରେ ପରିଣତ କରି-
ପାରେ, ରସାୟନ ବିଦ୍ୟାରେ ପାର-
ଦର୍ଶୀ, (ପୁଂ.ବିଂ)ରସଶାସ୍ତ୍ରରେ ପାରଦର୍ଶୀ ।
ରସସିଦ୍ଧି—ବି. (୭ତତ୍) ଦ୍ରବ୍ୟଗୁଣ ବିଷ-
ୟକ ରାସାୟନିକ ଶାସ୍ତ୍ରାଦିରେ ବିଶେଷ
ବ୍ୟୁତ୍ପତ୍ତି ବା ଜ୍ଞାନ, ଭେଷଜାଦିରୁ ରୋଗ-
ନାଶକ ରସାୟନ ପ୍ରସ୍ତୁତ କରଣରେ
ପାରଦର୍ଶିତା, ଗୁପ୍ତଶାସ୍ତ୍ର ଓ ଐନ୍ଦ୍ରଜାଲିକ
ଆଦିର ବିଶେଷର ଅନୁଷ୍ଠାନ ଦ୍ୱାରା ବା
ରାସାୟନିକ ପ୍ରକ୍ରିୟା ବଳରେ ଲବ୍ଧ
ପାରଦ ସମ୍ବନ୍ଧେ ବିଶେଷ ଜ୍ଞାନ, ଯାହା
ଜାଣିଲେ ଅଧିକାରୀ ସୁଖ ସ୍ୱାସ୍ଥ୍ୟ ଧନାଦି
ଓ ଦୀର୍ଘଜୀବନ ଏବଂ ଶକ୍ତି ଲାଭ କରେ ।
ରସସିନ୍ଦୂର—କ୍ଲୀ. ବି. ( କ.ଧା ) ଗନ୍ଧକ
ସହିତ ପାରଦ ଭସ୍ମ କରି ତହିଁରୁ ପ୍ରାପ୍ତ
ରସାୟନ ଦ୍ରବ୍ୟ ।
ରସସୂ—ବି. ( ରସ+ସୂ+କ୍ୱିପ୍ )ରସ-
ଧାତୁ, ରସ ।
ରସସ୍ଥ—ବିଂ. (ରସ+ସ୍ଥା+କ.ଅ)ରସ-
ଯୁକ୍ତ, ରସାଳ, ସରସ, ରସମଧ୍ୟରେ
ଥିବା, ରସବୃଦ୍ଧି ବଶତଃ ଭାରଭାର ବା
ଅସୁସ୍ଥ (ଶରୀର) ।
ରସସ୍ଥଜ୍ୱର—ବି. ରସଧାତୁଗତ ଜ୍ୱର ।
ରସସ୍ଥାନ—କ୍ଲୀ. ବି. ହିଙ୍ଗୁଳ, ଶରୀରର
ରସସ୍ଥଳ, ରସର ଆଧାର ।
ରସହାନି—ବି. (୬ତତ୍) ରସର କ୍ଷତି,
ରସଭଙ୍ଗ ଦେଖ ।
ରସହୀନ—ବିଂ. (୩ତତ୍) ନୀରସ ।
ରସା—ସ୍ତ୍ରୀ.ବି.(ରସ୍+ଅ+ଆ) ପୃଥିବୀ,
ରସନା, ଜିହ୍ୱା, ଅକାନବିନ୍ଧି ଲତା,
ଶଲ୍ଲକୀ, କାଙ୍ଗୁ, ଦ୍ରାକ୍ଷା, କାକୋଳୀ,
ରସାତଳ, ନଦୀ, କୁନ୍ଦୁରୁଖୋଟି, ଶୁଆଁ,
କୁଆମଉଡ଼ା ଲତା, ରାସ୍ନା, ମେଦା,

ଶିଳାରସ, ଲେଞ୍ଚନ୍, ଆମ୍ବ ।
ରସାଇବା—କ୍ରି. କ୍ରି. ରସରେ ଅନୁରକ୍ତ କରିବା, ମନୋରଞ୍ଜନ କରିବା, ସନ୍ତୁଷ୍ଟ କରାଇବା, ପୂଯଯୁକ୍ତ ହେବା ।
ରସାଖନ—ପୁଂ. ବି. (ରସା+ଖନ୍+କ.ଅ) କୁକ୍କୁଟ ।
ରସାଗମ—ବି. ରସୋଦ୍ଭବ ଦେଖ ।
ରସାଗ୍ରଜ—କ୍ଲୀ. ବି. ( ରସ+ଅଗ୍ରଜ ) ରସାଞ୍ଜନ ।
ରସାଗ୍ର୍ୟ—କ୍ଲୀ. ବି. ରସାଞ୍ଜନ, ପାରଦ ।
ରସାଙ୍ଗଅତିବସ୍ତୃତ—ବି. ରସଦୋଷ-ବିଶେଷ ।
ରସାଙ୍ଗକ—ପୁଂ. ବି. ଶ୍ରୀବେଷ୍ଟ ନାମକ ସୁଗନ୍ଧ କାଷ୍ଠ, ଚନ୍ଦନ ।
ରସାଞ୍ଜନ—କ୍ଲୀ. ବି. ( ରସ+ଅଞ୍ଜନ ) ରସକ ଧାତୁ,କଜ୍ଜଳବିଶେଷ, ସୁରୁମା ।
ରସାଢ୍ୟ—ବି. ଆମ୍ରାତକ,ଆମ୍ବଡ଼ା,ରସ୍ନା, (ବିଂ) ରସମୟ, (ସ୍ତ୍ରୀ) ରସାଢ୍ୟା ।
ରସାଣ—କ୍ରି. ବି. ରସରେ ସିକ୍ତକରିବା, ଧାତୁଦ୍ରବ୍ୟକୁ ଲେପଦ୍ୱାରା ଉଜ୍ଜ୍ୱଳୀକରଣ, ଉଜ୍ଜ୍ୱଳୀକରଣ, ଲେପ, ମାଜିବା,ପାଲିସ କରିବା, ରସାୟନ, ଅଳଙ୍କାରକୁ ଘଷି ଉଜ୍ଜ୍ୱଳ କରିବା ପଥର, ଆର୍ଦ୍ରୀକରଣ, (ବିଂ) ରସାଣିତ, ଶାଣିତ, ରସୁଆ, ରସମୟ ।
ରସାଣି—କ୍ରି. ବି. (ଫ-ରସାୟନ) ଗିଲ୍ଟି-କରିବା ଲେପ, କ୍ଲେଦ, ପୂଯବିଶେଷ ।
ରସାଣିବା—କ୍ରି. କ୍ରି. ଶାଣ ଯନ୍ତ୍ରରେ ଉଜ୍ଜ୍ୱଳ କରିବା, ଗିଲ୍ଟି କରିବା, ପୁଟ ଚଢ଼ାଇବା, ରସାଣ ପଥରରେ ଅଳଂ-କାରକୁ ଘଷିବା ।
ରସାତଳ—କ୍ଲୀ. ବି. ( ରସା+ତଳ ) ଧରାତଳ, ପାତାଳ,ଅତି ନିମ୍ନ ପ୍ରଦେଶ ।
ରସାତ୍ମକ—ବିଂ. (ରସ+ଆତ୍ମନ୍+କ) ରସସ୍ୱରୂପ, ରସଗର୍ଭ, ରସାଳ, ରସ-ମୟ, ସରସ, ସ୍ଥାୟୀଭାବ ପୂର୍ଣ୍ଣ, (ସ୍ତ୍ରୀ) ରସାତ୍ମିକା ।
ରସାଦାନ—କ୍ଲୀ. ବି. ( ୬ତତ୍ତ୍ୱ ) ରସ-ଶୋଷଣ, ରସଗ୍ରହଣ, ସ୍ତନ୍ୟପାନ, (ରସା+ଦାନ)ଭୂମିଦାନ । [ କରିବା ।
ରସାଧାନ—ବି. ( ୬ତତ୍ତ୍ୱ ) ରସସଞ୍ଚୟ
ରସାଧାର—ବି. (ରସ+ଆଧାର)୬ତତ୍ତ୍ୱ; ସୂର୍ଯ୍ୟ, ରସର ଆଧାର, ରସ ରଖିବା ପାତ୍ର ।
ରସାଧିକ-ବି.(ବି.ସ୍ତ୍ରୀ)ଟାଙ୍ଗଣା,ଅଧିକ ରସ
ରସାଧିକା—ସ୍ତ୍ରୀ. ବି. (ରସ+ଅଧିକ+ଆ) କାକୋଳୀଦ୍ରାକ୍ଷା ।
ରସାଧିପତ୍ୟ—କ୍ଲୀ. ବି. (୬ତତ୍ତ୍ୱ) ପୃଥିବୀ ବା ରାଜ୍ୟଶାସନ ।
ରସାଧ୍ୟକ୍ଷ--ବି. ମଦ୍ୟାଦି, ମାଦକର ସାର, ପରିରକ୍ଷକ ରାଜକର୍ମଚାରୀ ବିଶେଷ ।
ରସାନନ୍ଦ—କ୍ରି. ପୁଂ. ବି. ସପ୍ତଦଶ ଶତା-ବ୍ଦୀର ଭକ୍ତ ଓଡ଼ିଆକବି ।
ରସାନ୍ତ—କ୍ରି. ବି. ପତଳା ପୂଯ, କ୍ଷତ ବାଟେ ଦେହ ନିର୍ଗତ ରସ ।
ରସାନୁଗ--ବିଂ.ରସଦୂଷକ,ରସାନୁସାରୀ ।
ରସାନୁପ୍ରଦାନ—କ୍ଲୀ. ବି. ଜଳୀୟ କଣା ବିକ୍ଷାରଣ ।
ରସାନ୍ତର—କ୍ଲୀ. ବି. ଭିନ୍ନରସ ।
ରସାପାୟୀ—ପୁଂ. ବିଂ. ( ରସା+ପା+କ.ଇନ୍) ଜିହ୍ୱାଦ୍ୱାରା ପାନକାରୀ, (ସ୍ତ୍ରୀ) ରସାପାୟିନୀ (ବି) କୁକ୍କୁର ।
ରସାଭାସ—ବି. ( ରସ+ଆଭାସ ) ରସ ସମ୍ବନ୍ଧେ ମନର ବାସ୍ତବଭାବର ଗୋପନ, ପ୍ରକୃତକାରଣ ଛଡ଼ା ଅନ୍ୟ କାରଣରେ ରସର ଆରୋପ, ନୀଚ ରସ ସୁଲଭ କାବ୍ୟ, ଅଶିଷ୍ଟ ବଚନ, ରସରଙ୍ଗ,ରସ-ଭୁକ୍ତ ନୀଚ ରସ, ଅନୌଚିତ୍ୟ ବିଶିଷ୍ଟ ରସ ।
ରସାଭିନବେଶ—ବି. ( ୬ତତ୍ତ୍ୱ ) ରସର ବର୍ଣ୍ଣନା, ରସୋଦ୍ଗମ ।
ରସାମୃତ—ବି. (ରୂ-କ.ଧା) ଅମୃତପରି ମଧୁର କାବ୍ୟରସ, ପାରା, ଗନ୍ଧକ,ଶିଳା-ଜତୁ,ଚନ୍ଦନ, ଗୁଳୁଚ,ଧନିଆଁ,ଇନ୍ଦ୍ରଯବ, ଯଷ୍ଟିମଧୁ ଆଦିରେ ପ୍ରସ୍ତୁତ ଔଷଧବିଶେଷ
ରସାମ୍ଳ—କ୍ଲୀ. ବି. (ରସ+ଅମ୍ଳ) ଚୁକ୍ର, ଖଟାପାଳଙ୍ଗ, ଅମ୍ଳୁଳ ।
ରସାମ୍ଳକ—ବି. ତୃଣବିଶେଷ ।
ରସାମ୍ଳା—ବି. ପଲାଶୀଲତା ।
ରସାୟକ—ବି. ତୃଣବିଶେଷ ।
ରସାୟନ—କ୍ଲୀ. ବି. ( ରସ+ଅୟନ ) ଯେ ଜରାବ୍ୟାଧି, କଟି, ଅଣ୍ଟା, ବାତଙ୍ଗ,ବିଷ, ବଂଶପରମ୍ପରାଗତ, ଜରାବ୍ୟାଧି ନାଶକ ଔଷଧ, ଔଷଧରେ ପାରଦର ପ୍ରୟୋଗ-କରଣ, ରସାୟନବିଦ୍ୟା ଦେଖ, ପକ୍ଷୀ, ଜଟ, ରୋଗବିଶେଷ, ଗରୁଡ଼,ରସାୟନ ଶାସ୍ତ୍ରବିତ୍, ରସର ସ୍ଥାନ, ରଙ୍ଗ ।
ରସାୟନଜ୍ଞ—ପୁଂ.ବି ଓ ବିଂ.(ରସାୟନ+ଜ୍ଞା+କ.ଅ)ରସାୟନ ବିଷୟରେଅଭିଜ୍ଞ, (ସ୍ତ୍ରୀ) ରସାୟନଜ୍ଞା ।
ରସାୟନତନ୍ତ୍ର-କ୍ଲୀ. ବି.ରସାୟନାଧିକାର ।
ରସାୟନଫଳା--ସ୍ତ୍ରୀ.ବି.ହରିତକୀ,ହରିଡ଼ା ।
ରସାୟନବର—ବି.ପାରଦ,ରସୁଣ,କାଙ୍ଗୁ-ଧାନ୍ୟ, କାକଜଙ୍ଘା । [ ଜ୍ଞାନ ।
ରସାୟନବିଜ୍ଞାନ—ବି.ରସାୟନ ସମ୍ବନ୍ଧୀୟ
ରସାୟନବିଦ୍ୟା—ବି.ଯେଉଁ ବିଦ୍ୟା ଅଧ୍ୟ-ୟନକଲେ ରୂଢ଼ପଦାର୍ଥ ସମୂହର ଗୁଣ ଏବଂ ସେମାନଙ୍କର ପରସ୍ପର ସଂଯୋଗ ଓ ବିୟୋଗ ବିଷୟରେ ଜ୍ଞାନ ହୁଏ ।
ରସାୟନଶ୍ରେଷ୍ଠ—ବି. (ରସାୟନ+ଶ୍ରେଷ୍ଠ) ୬ତତ୍ତ୍ୱ; ପାରଦ, ପାରା ।
ରସାୟନାଚାର୍ଯ୍ୟ—ବି.ରସାୟନ ବିଦ୍ୟାରେ ଅଧ୍ୟାପକ ।
ରସାୟନୀ—ସ୍ତ୍ରୀ.ବି.ଗୁଳୁଚୀ, ଲୁଣ୍ଡୁଲୁଣିଆ, କାକମାଚି, ମହାକରଞ୍ଜ, ନାଗବଲା, ଗରଗଡ଼, ଗୋରକ୍ଷଦୁଗ୍ଧ, ମାଂସଚ୍ଛେଦା, ମଞ୍ଜିଷ୍ଠା,କର୍ଣ୍ଣସ୍ଫୋଟା,ଧଳାଅପ୍ରାଜିତା,ଶଙ୍ଖ-ପୁଷ୍ପୀ, ନାଡ଼ୀ, କନ୍ଦଗୁଡୁଚି, ବାଇଡଙ୍କ, ନଗ୍ନବାରକ ଔଷଧ ।
ରସାୟ୍ୟ—ବିଂ.ରସଯୁକ୍ତ,ସୁମିଷ୍ଟ,ସୁସ୍ୱାଦୁ ।
ରସାରୁହ—ବି. (ରସ+ରୁହ+କ.ଅ) ବୃକ୍ଷ । [ ରସସାଗର ।
ରସାର୍ଣ୍ଣବ—ବି.(ରସ+ଅର୍ଣ୍ଣବ)ରସସମୁଦ୍ର,
ରସାଳ—କ୍ଲୀ. ବି. (ରସ+ଆ+ଲା+ଅ) ଶିହ୍ଲକ, ଲେମ୍ବୁ, ବୋଲ, ଆଖୁ, ଆମ୍ବ, ପଣସ, କୁନ୍ଦୁରୁଖୋଟି, ଲେମ୍ବୁ ଗଛ, ଗହମ, ଅମ୍ଳବେତସ, ଗନ୍ଧରସ

ଗୁଗ୍ଗୁଳ ।
ରସାଳସ୍ଥ—ବ. (ରସ+ଆଳସ୍ଥ) ରସର ବଦ୍ଧିଷ୍ଣୁ ସ୍ଥାନ, ଆମୋଦସ୍ଥାନ,ଆମ୍ରଗଛ ।
ରସାଳସା—ସ୍ତ୍ରୀ. ବ. (ରସ+ ଅଳସା) ଗଦ୍ଧମ, ରକ୍ତବାହୀନାଡ଼ୀ, ଧମନୀ, ଆଖୁ, (ବଂ. ୫ତନ୍ତ୍ର) ରସମୁଗ୍ଧା, ମଦାଳସା, ରସିକତା ଯୋଗୁଁ ଅଳସଗମନା ।
ରସାଳସୀ—ଗ୍ରା.ସ୍ତ୍ରୀ.ବଂ. କାମରସଯୋଗୁଁ ଅଳସଗମନା, ମଦାଳସା ।
ରସାଳା—ସ୍ତ୍ରୀ.ବ. ରସନା, ଜିହ୍ୱା,ଦୂବା, ବିଦାରୀ, ଦ୍ରାକ୍ଷା, ଶିଖରିଣୀ, କାମୋଦ୍ଦୀପକପାନୀୟବିଶେଷ,ଶାଳପର୍ଣ୍ଣୀ, ସୁମଧୁର ଲେହ୍ୟବିଶେଷ, ଚଟଣି, ଭୂଇଁକଖାରୁ, (ସ୍ତ୍ରୀ.ବଂ)ରସଯୁକ୍ତା, ସରସା, ମାର୍ଜିତା ।
ରସାଳାପ—ବ. (କ.ଧା) ରସପୂର୍ଣ୍ଣ ବା ରସିକତାଯୁକ୍ତ କଥୋପକଥନ, ସରସ ଆଳାପ । [ ଆମ୍ର ।
ରସାଳାମ୍ର—ପୁଂ.ବ. ମହାରାଜାମ୍ର, ଉତ୍ତମ
ରସାଳିକା—ସ୍ତ୍ରୀ. ବ. ସପୁଲା, ସାଉଳା ।
ରସାଲିହା—ସ୍ତ୍ରୀ.ବ.ପୃଶ୍ନିପର୍ଣ୍ଣୀ,ଶୀର୍ଣ୍ଣନାସା
ରସାଳୀ—ବ. (ରସାଳ+ଇନ୍) କୃଷ୍ଣଚଣକ, (ରସାଳ+ଈ)ଏକପ୍ରକାର ରସବହୁଳ ଆଖୁ ।
ରସାଳେକ୍ଷୁ—ବ.ବିଶେଷ ରସବିଶିଷ୍ଟ ଆଖୁ
ରସାବଳୀ—ଗ୍ରା.ବ.ଏକପ୍ରକାର ମିଷ୍ଟାନ୍ନ ।
ରସାବେଷ୍ଟ—ପୁଂ. ବ. ଶ୍ରୀବେଷ୍ଟ ନାମକ ସୁଗନ୍ଧ ଦ୍ରବ୍ୟ ।
ରସାଶ—ବ. (ରସ+ଅଶ୍+ଘ.ଅ)ମଦ୍ୟପାନ, ଢାଳିପିଇବା ।
ରସାଶୀ—ପୁଂ. ବଂ. (ରସ+ଅଶ୍+କ. ଇନ୍) ମଦ୍ୟପାୟୀ,ମଦ୍ୟପାନକାରୀ,(ସ୍ତ୍ରୀ) ରସାଶିନୀ ।
ରସାଶ୍ୱାସା—ସ୍ତ୍ରୀ. ବ. ପଲଶୀଲତା,ଗନ୍ଧଶୁଣ୍ଠୀଲତା ।
ରସାଷ୍ଟକ—କ୍ଲୀ.ବ.(ରସ+ଅଷ୍ଟକ)ପାରଦାଦି ଆଠପ୍ରକାର ରସ ।
ରସାସ୍ୱାଦ—ବ. (ରସ+ଆସ୍ୱାଦ)୬ତତ୍; ରସଗ୍ରହଣ,ରସବୋଧ, (ଯୋଗଦର୍ଶନ) ଅଖଣ୍ଡ ବସ୍ତୁର ଅବଲମ୍ବନ ହେବାରୁ ଚିତ୍ତବୃତ୍ତିର ସବିକଳ୍ପ ଆନନ୍ଦ ଆସ୍ୱାଦନ ।
ରସାସ୍ୱାଦୀ—ପୁଂ. ବଂ. ( ରସ+ଆସ୍ୱାଦ +ଇନ୍) ରସାସ୍ୱାଦବିଶିଷ୍ଟ, ଯେ ରସ ଗ୍ରହଣ କରୁଥାଏ, ରସର ଆସ୍ୱାଦନକାରୀ,ମଉଜିଆ, (ସ୍ତ୍ରୀ) ରସାସ୍ୱାଦିନୀ, (ବ)ଭ୍ରମର, ମଧୁମାଛି ।
ରସାହ୍ୱ—ବ.ଲଘୁଶତାବରୀ, ରାସ୍ନା,ଗନ୍ଧବିରୋଜା, ତାର୍ପିନ୍ ତେଲ, ଝୁଣା ।
ରସି—ଗ୍ରା. ବ. ଦଉଡ଼ି, (ପ୍ରା.ସିଂହ)ବ. ମଦ୍ୟସାର ।
ରସିଆ—ଗ୍ରା.ପୁଂ.ବଂ.(ସଂ-ରସିକ)ରସିକନାଗର, ରସପ୍ରିୟ,ରସପୂର୍ଣ୍ଣ,ସଉକୀନ ଆଁ ।
ରସିଆନାଗର—ଗ୍ରା.ପୁଂ.ବ.ରସିକବ୍ୟକ୍ତି ।
ରସିକ—ପୁଂ.ବ. (ରସ + ଇକ)ସାରସପକ୍ଷୀ, ତୁରଙ୍ଗ, ଘୋଡ଼ା, ହସ୍ତୀ,ରହସ୍ୟପ୍ରିୟ ବ୍ୟକ୍ତି, ଲମ୍ପଟବ୍ୟକ୍ତି, (ବଂ)ସରସ, ରସଜ୍ଞ, ସ୍ୱାଦଗ୍ରାହୀ, କୌତୁକପ୍ରିୟ, ଆମୋଦପ୍ରିୟ, ଗୁଣଗ୍ରାହୀ, ସୁରୁଚିଯୁକ୍ତ, ସୁନ୍ଦର, କାବ୍ୟପ୍ରିୟ, ହୃଦୟାର୍ଦ୍ରକାରୀ, ସରକ୍ତ,(ଗ୍ରା.ପୁଂ.ବ)ବିଳାସ ଓ ବେଶାଦିପ୍ରିୟ ବ୍ୟକ୍ତି, (ଗ୍ରା.ବଂ) ନାରୀରେ ପ୍ରତି ଅନୁରକ୍ତ, ଆଦରସପ୍ରିୟ ।
ରସିକଚନ୍ଦ୍ର—ପୁଂ. ବ. ଶ୍ରେଷ୍ଠରସିକ, ଶ୍ରୀକୃଷ୍ଣଙ୍କ ବିଶେଷଣ ।
ରସିକତା—ସ୍ତ୍ରୀ. ବ. (ରସିକ+ଭ.ତା) ରସିକର ଭାବ, ଥଟ୍ଟା, ପରିହାସ, ଗୁଣଗ୍ରାହିତା, ଆଦରସପ୍ରିୟତା, ସ୍ତ୍ରୀମାନଙ୍କ ପ୍ରତି ଅନୁରକ୍ତି ।
ରସିକନାଗର—ବ. ନାଗରିକ ରୁଚିପ୍ରିୟ ରସିକ, ନାରୀପ୍ରିୟ ବ୍ୟକ୍ତି ।
ରସିକା—ସ୍ତ୍ରୀ. ବ. ରସାଳା, ଇକ୍ଷୁରସ, କାଞ୍ଚୀ, ଅଣ୍ଟାସୂତା, ରସନା, ଜିହ୍ୱା, ଦୋରୁଅ, ରସାଳା, ଶର୍କରା, ଶିଖରିଣୀ, ଦହି ଓ ମସଲାଯୁକ୍ତ ପେୟବିଶେଷ, ଗୁଡ଼, ବିଳାସପ୍ରିୟା ରମଣୀ ।
ରସିକାନାରୀ—ସ୍ତ୍ରୀ.ବ. ବିଳାସପ୍ରିୟାରମଣୀ, ରସିକାନାଗରୀ ବା ରମଣୀ ।
ରସିକାବର—ସ୍ତ୍ରୀ. ବ. (୬ତତ୍) ଶ୍ରେଷ୍ଠ ରସିକା,(ଅନ୍ୟରୂପ, ରସିକାରତ୍ନ,ମଣି, ଶିରୋମଣି ଇତ୍ୟାଦି) ।
ରସିକିନୀ—ଗ୍ରା.ସ୍ତ୍ରୀ.ବ. ରସିକା ଦେଖ ।
ରସିକେଶ(ଶ୍ୱର)—ପୁଂ. ବ. ଶ୍ରୀକୃଷ୍ଣ ।
ରସିତ—ବଂ. (ରସ+ସଂ.ତ) ଆସ୍ୱାଦିତ, ସ୍ୱର୍ଣ୍ଣାଦି ଆଚ୍ଛାଦିତ, ରସଯୁକ୍ତ,ଶୋଣିତ, ଗିଲ୍ଟିକରାଯାଇଥିବା, (ବ) ମେଘଶବ୍ଦ, ଘଡ଼ଘଡ଼ି, ମଦ, ଦ୍ରାକ୍ଷାମଦ୍ୟ, ମାଦକଦ୍ରବ୍ୟ, ଶବ୍ଦ ।
ରସିତବାନ୍—ପୁଂ.ବଂ. (ରସିତ + ବତ୍) ଆସ୍ୱାଦନ କରିଥିବା,ଗ୍ରହଣିଥିବା,(ବ୍ୟକ୍ତି) ଶବ୍ଦକାରୀ, (ସ୍ତ୍ରୀ) ରସିତବତୀ ।
ରସିତା—ପୁଂ.ବଂ. (ରସ+କ.ତୃ)ରସୟିତା, ଆସ୍ୱାଦନକାରୀ, ଶବ୍ଦକାରୀ,(ସ୍ତ୍ରୀ) ରସିତ୍ରୀ ।
ରସିତାଶୀ—ପୁଂ. ବଂ. (ରସିତ+ଅଶ୍ + କ.ଇନ୍)ଯେ ଶବ୍ଦପୂର୍ବକ ଖାଏ,ଖାଇଲା ବେଳେ ଯେ ଗର୍ଜନ କରେ, ମଦ୍ୟପାନକାରୀ, (ସ୍ତ୍ରୀ) ରସିତାଶିନୀ ।
ରସିଦ୍—ପା. ବ. ପ୍ରାପ୍ତିସ୍ୱୀକାର ପତ୍ର ।
ରସିବା—ଗ୍ରା.କ୍ରି.ରସଯୁକ୍ତ ହେବା, ଫଳଆଦି ପାଚିବାରୁ ଲତପତ ହେବା, ଜଳଯୁକ୍ତହେବା, ଆର୍ଦ୍ରହେବା, ଅନୁରାଗୀହେବା, ଆସକ୍ତହେବା, ରସିବା, ରମଣକରିବା, ଆନନ୍ଦିତହେବା,ପସନ୍ଦକରିବା, ଲିପ୍ତହେବା ।
ରସିୟା—ଗ୍ରା.ବ.ଆସିଆ ଓ ଇଉରୋପର ଉତ୍ତରାଂଶସ୍ଥ ରାଜ୍ୟବିଶେଷ ।
ରସୀ—ପୁଂ. ବଂ. (ରସ + ଇନ୍) ରସିକ ଦେଖ,ଅନୁରକ୍ତ,ଆସ୍ୱାଦନକାରୀ,(ଗ୍ରା.ବ) ଦଉଡ଼ି, ବସ୍ତ୍ରଗୁଣିତ ସୁପକ୍ୱଆମ୍ରାଦି ରସ ।
ରସୁଆ—ଗ୍ରା. ପୁଂ. ବ. ( ସଂ-ରସିକ ) ରସୁଆଳ, ରସାଳ, ରସଯୁକ୍ତ,ରସମସ୍ତ, ରସିକ,ରସ ସମ୍ବନ୍ଧୀୟ,ଯାହା ବୀଡ଼ାରେ ବ୍ୟବହୃତ ହୁଏ, ରସ୍ ରସ୍ ଶବ୍ଦ କରୁଥିବା, (ସ୍ତ୍ରୀ) ରସେଇ ।
ରସୁଆଳ—ଗ୍ରା. ବଂ. (ସଂ-ରସାଳ) ରସଯୁକ୍ତ, ରସାଳ ଦେଖ, ରସିକ ।
ରସୁଣ(ନ)—ଗ୍ରା. ବ. ( ସଂ-ରସୋନ )

ରଶୁଣ ଦେଖ ।
ରସୁଣିଆ—ଗ୍ରା. ବ. ରସୁଣପରି ମୂଳ ଓ ଗନ୍ଧଯୁକ୍ତ ଶାକବିଶେଷ, ଏକପ୍ରକାର ରତ୍ନ, ବୈଦୂର୍ଯ୍ୟମଣି, (ଗ୍ରା.ବି°)ରସୁଣ-ପରି ଗନ୍ଧ ବା ସ୍ୱାଦ ଓ ଆକୃତିବିଶିଷ୍ଟ, ଅତିରକ୍ତ ରସଯୁକ୍ତ ।
ରସୁମ୍—ଯା.ବ. ମାହାସୁଲ,ଫିସ୍,ତାଦାଦ୍ ଅନୁସାରେ ପଡ଼ିବା ଫିସ ।
ରସୁଲ୍—ଯା. ବ. ଜଗତକୁ ପ୍ରେରିତ ଈଶ୍ୱରଙ୍କ ଦୂତ, ପୈଗମ୍ବର ।
ରସୁଲ୍ଆଲ—ଯା. ବ. ଈଶ୍ୱର ପ୍ରେରିତ ଦୂତ, ହଜରତ୍ ମହମଦ୍ ।
ରସେନ୍ଦ୍ର—ବ. ( ରସ+ଇନ୍ଦ୍ର ) ୬ତତ୍; ପାରଦ, ରାଜମାଷ, ବରଗୁଣ୍ଡ, ସ୍ୱର୍ଣ୍ଣମଣି, ପରଶୁ ପଥର, ଔଷଧବିଶେଷ ।
ରସେନ୍ଦ୍ରବେଧକ—କ୍ଲୀ. ବି. ସ୍ୱର୍ଣ୍ଣ, ସୁନା ।
ରସୋ(ସୌ)ତ—ଗ୍ରା.ବ. ସୁରୁମା,ଦାରୁ-ହରିଦ୍ରା ମୂଳରୁ ତିଆରି କରାଯିବା ଚୂର୍ଣ୍ଣୌଷଧ ।
ରସୋତ୍ତମ—ବ. (୭ତତ୍) ମୁଦ୍ଗ, ମୁଗ, ଶ୍ରେଷ୍ଠ ରସ,ରସାଞ୍ଜନ, ପାରଦ, ଘୃତ ।
ରସୋତ୍ପତ୍ତି—ବ. ଶାରୀରିକ ରସର ପରି-ବୃଦ୍ଧି, କାମୋଦ୍ରେକ, ଦ୍ରବ୍ୟବିଶେଷର ଯୋଗେ ସୁମିଷ୍ଟ ରସାଦିର ଉଦ୍ଭବ ।
ରସୋତ୍ପନ୍ନ—ବି°.(୫ତତ୍)ରସରୁ ଜାତ ।
ରସୋଦୟ—ବ.(୬ତତ୍) ରସର ଆବି-ର୍ଭାବ ।
ରସୋଦର—ବ. (ବ.ବ୍ରୀ) ହିଙ୍ଗୁଳ ।
ରସୋଦ୍ଗାର—ବ. ( ୬ତତ୍ ) ରସବାନ୍ତି କରିବା ।
ରସୋଦ୍ଗୀରଣ—ବ. (୬ତତ୍)ରସୋଦ୍ଗାର ଦେଖ ।
ରସୋଦ୍ଭବ—ବ. (ବ.ବ୍ରୀ) ହିଙ୍ଗୁଳମୁକ୍ତା, (ବି°)ବ.ବ୍ରୀ, ରସଜାତ, (ବି-୬ତତ୍) ରସୋଦୟ ଦେଖ ।
ରସୋଦ୍ଭୂତ—ବି°.(୫ତତ୍)ରସରୁ ଜାତ (ସ୍ତ୍ରୀ) ରସୋଦ୍ଭୂତା ।
ରସୋନ—ବ. ( ରସ+ଊନ ) ରଶୁଣ ଦେଖ ।
ରସୋନକ—ବ. (ରସୋନ+କ)ରଶୁଣ ଦେଖ । [ ମୁକ୍ତା ।
ରସୋପଳ—କ୍ଲୀ.ବ. (କ.ଧା) ମୌକ୍ତିକ,
ରସୋଲ୍ଲାସ—ବ.ଶାରୀରିକ ରସର ଉତ୍-କ୍ଷେପଣ, ଅଷ୍ଟସିଦ୍ଧିର ଅନ୍ତର୍ଗତ ସିଦ୍ଧି-ବିଶେଷ, ବାସନାର ବିକାଶ, କାମୋ-ଦ୍ଦୀପନ, ଆକାଂକ୍ଷାର ବୃଦ୍ଧି ।
ରସୌକଃ—କ୍ଲୀ.ବ. ରସଧାମ,ବ୍ରଜମଣ୍ଡଳ
ରସୌଦନ--ବ.ମାଂସରସ ସହିତ ଓଦନ, ଏହା ଶ୍ରମାଦି ଜ୍ୱରରେ ହିତକର ।
ରସ୍ତୋରା-ଯା.ବ.ଭୋଜନାଳୟ,ହୋଟେଲ
ରସ୍ନ--କ୍ଲୀ.ବ.(ରସ୍+ମଁ.ନ) ଦ୍ରବ୍ୟ,ବସ୍ତୁ ।
ରସ୍ୟ—କ୍ଲୀ.ବ. (ରସ+ଯ) ରକ୍ତ,ମାଂସ, ଆସ୍ୱାଦନ, (ବି°) ରସଯୁକ୍ତ, ସୁସ୍ୱାଦୁ, ରସମୟ, ଆସ୍ୱାଦନୀୟ,(ସ୍ତ୍ରୀ)ରସ୍ୟା ।
ରସ୍ୟା—ସ୍ତ୍ରୀ.ବ. ରାସ୍ନା, ପାଠା, ଆକାନ-ବନ୍ଧି, (ବି°) ରସ୍ୟର ସ୍ତ୍ରୀଲିଙ୍ଗ ।
ରହ୍—ଗ୍ରା.କି. (ରୁ) ରହିବା କିମ୍ବା କର ରହିଯା, ଅପେକ୍ଷା କର ।
ରଂହଃ—କ୍ଲୀ.ବ. ବେଗ ।
ରହ—ବ. ( ରହ+ମଁ.ଅ ) ମୈଥୁନ, ଶୃଙ୍ଗାର, ଗୋପନୀୟ ବିଷୟ, ଗୋପ-ନୀୟ ଧର୍ମତତ୍ତ୍ୱ, ନିର୍ଜନତା, ଏକାନ୍ତ, ଗୋପନ, ଗୁହ୍ୟ, କ୍ରୀଡ଼ା, କୌତୁକ, ଆନନ୍ଦ, ସୁଖ, (ଗ୍ରା.କି) ତୁମେ ବିରତ ହୁଅ, ଅପେକ୍ଷାକର, ଅବସ୍ଥାନ କର, (ଅବ୍ୟ) ରହିରହି ଦେଖ ।
ରହିଁଟା—ପ୍ରା.(ସମ୍ୱ)ବ. ଅରଟ ।
ରହଃ—ବ. (ରହ+ଅସ୍)ରହ ଦେଖ, (ବି°)ଗୁପ୍ତ,ଗୋପନୀୟ,ବିଜନ,(କ୍ରି.ବି°) ଗୋପନରେ, ଏକାନ୍ତରେ ।
ରହଟ—ଗ୍ରା.ବ.ଜଳଦ, ଅଳ, ଅରଟ,(ବି°) ରହଟା ।
ରହଣ—କ୍ଲୀ.ବ. ନିର୍ଜନରେ କ୍ଷେପଣ, ସଙ୍ଗତ୍ୟାଗ,ସମ୍ୟକ୍ ବିଯୋଜନ,(ଗ୍ରା.ବି-ଅ-ରକ୍ଷଣ) ଅବସ୍ଥାନ, ସ୍ଥିତି, ରହଣି, (ଯା.ବ) ଋଣକାରୀ ଋଣଦାତାଙ୍କ ନିକ-ଟରେ ଋଣ ଶୋଧର ପ୍ରତିଭୂସ୍ୱରୂପ ରଖିବା ସମ୍ପତ୍ତି,ବନ୍ଧକ, ସମ୍ପତ୍ତି ବନ୍ଧକ ଦେଇ ଋଣ ଗ୍ରହଣ କରିବା ଘଟ ।
ରହଣି—ଗ୍ରା.ବ. ରହିବା ।
ରହଣିଆ—ଗ୍ରା. ବି°. ଦୁର୍ଗନ୍ଧଯୁକ୍ତ, ପଗୁ, ବହୁକାଳ ରହିଯିବାରୁ ଦୁର୍ଗନ୍ଧଯୁକ୍ତ ।
ରହରୂଢ଼ଗବ—ବ. ସାଂସାରିକ ଗୋଳ ଯୋଗରୁ ନିର୍ଜନେ ଅପସରଣ,ଗୋପନେ ଅବସ୍ଥାନ, ଲବ୍ଧାବସର ।
ରହସୂ—ସ୍ତ୍ରୀ.ବ. ବ୍ୟଭିଚାରିଣୀ ସ୍ତ୍ରୀ, ଯେ ସ୍ତ୍ରୀସ୍ୱ ପୁତ୍ରଜନନ ଗୋପନ କରେ ।
ରହସ୍କର—ପୁଂ.ବି°.ରହସ୍ୟ କାର୍ଯ୍ୟକାରୀ ।
ରହସ୍ୟ—ବି°.(ରହସ୍+ଯ)ଗୋପନୀୟ, (ବି) ଗୂଢ଼ତତ୍ତ୍ୱ, ପରିହାସ କୌତୁକ, ତାତ୍ପର୍ଯ୍ୟ ।
ରହସ୍ୟଜ୍ଞ—ପୁଂ.ବି°. (ରହସ୍ୟ+ଜ୍ଞା+କ.ଅ)ଗୂଢ଼ତତ୍ତ୍ୱଜ୍ଞ,ଯଥାର୍ଥ ତତ୍ତ୍ୱଅଭିଜ୍ଞ ।
ରହସ୍ୟଭେଦ—ବ. (୬ତତ୍)ଗୂଢ଼ତତ୍ତ୍ୱର ପ୍ରକଟ,ଗୋପନୀୟ ବିଷୟ ଜାଣିନେବା ।
ରହସ୍ୟା—ସ୍ତ୍ରୀ.ବ. (ରହସଂ+ଆ)ନଦୀ-ବିଶେଷ, ରାସ୍ନା, ପାଠା, ଅକାନବନ୍ଧି ।
ରହସ୍ୟାଲାପ—ବ. (କ.ଧା)ପରିହାସପୂର୍ଣ୍ଣ ଆଲାପ,କୌତୁକଜନକ କଥୋପକଥନ, ଗୋପନୀୟ କଥାବାର୍ତ୍ତା ।
ରହସ୍ଥ—ବି°. ନିର୍ଜନେ ସ୍ଥିତ, ଏକାକୀ, ସଙ୍ଗରହିତ ।
ରହାଟ—ପୁଂ.ବ. ମନ୍ତ୍ରୀ, ପରାମର୍ଶଦାତା, ପ୍ରେତାତ୍ମା, ପ୍ରସ୍ରବଣ ।
ରହିତ—ବି°. (ରହ+ମଁ.ତ) ବର୍ଜିତ, ତ୍ୟକ୍ତ, ବିହୀନ ।
ରହିମ—ଯା.ବ.ପରମ କୃପାମୟ ଈଶ୍ୱର ।
ରହିବା—ଗ୍ରା.କି.ସ୍ଥିରହେବା, ଅବସ୍ଥାନ କରିବା ।
ରହୋଭୂତ-ବି°.ନିର୍ଜନେ ଅପସୃତ,କାର୍ଯ୍ୟା-ଦିର ଲବ୍ଧାବସର ।
ରହୁରହିବର—ଗ୍ରା.ବ. ରଥ, ସ୍ୟନ୍ଦନ ।
ରହୂଗଣ—ପୁଂ. ବ. ଋକ୍‌ବେଦୋକ୍ତ ଅଙ୍ଗୀରସ ଗୋତ୍ରୀୟ ବଂଶବିଶେଷ ।
ରହୋଗତ—ବି°.ନିର୍ଜନରେ ଅବସ୍ଥିତ ।
ରା—ସ୍ତ୍ରୀ.ବ. ( ରା+ଭା.କ୍ୱିପ୍ ) ବିଭ୍ରମ, ଭ୍ରାନ୍ତି, ଭୁଲ୍, ସ୍ୱର୍ଣ୍ଣ, କାଞ୍ଚନ, ଧନ,

ଢଢ଼, ଶ୍ରୀ, ଗ୍ରହଣ, ଧ୍ୱନ, (ଯା.ବି)ରାସ୍ତ. ରା୯,ମତ,ମନ୍ତବ୍ୟ. ନିଷ୍ପତ୍ତି,ବାଟ,ରାସ୍ତା, ସ୍ଥାନ, ଜାଗା,(ଲ.ଅର୍ଥ)ସ୍ୱତନ୍ତ୍ର ବନ୍ଦୋ-ବସ୍ତ, ଗହ୍ୱା ।

ରଆ—ଗ୍ରା.ବି. କୁଆମାନଙ୍କ ଏକାଧିକଥର ବୋବାଇବାର ଶବ୍ଦ,( ଯା.ବି ) ରା ଦେଖ, (ଫା ସମ୍ଭ.ବି) ଖୁସି, ଆନନ୍ଦ, (ବିଂ) ସୁଖକର ।

ରଆସ—ଯା.ବି. ଘୋଡ଼ାର ଲଗାମ ।

ରଇ(ଈ)—ଗ୍ରା.ବି. (ସଂ-ରଜିକା) ରଇ-ସୋରିଷ, ବଡ଼ାସୋରିଷ, ବେସର, ବେସରଦିଆ ବ୍ୟଞ୍ଜନବିଶେଷ, ଏକ-ପ୍ରକାର ଜଙ୍ଗଲି କାଠଗଛ ।

ରଇଆ—ଗ୍ରା.ବିଂ. ସାଙ୍ଗେସାଙ୍ଗେ ବଟା-ହୋଇଥିବାରୁ ଉଗ୍ର ଗନ୍ଧଯୁକ୍ତ (ବଟା-ସୋରିଷ) ।

ରଇଂନା—ଯା.ବି. ସ୍ତ୍ରୀମାନଙ୍କର ପିନ୍ଧିବା ଜାକେଟ୍ ।

ରଇ(ଏ)ଗୁରୁ—ଗ୍ରା. ବି. (ସଂ-ରାଜଗୁରୁ) ରାଜାଙ୍କର ମନ୍ତ୍ରଗୁରୁ, ବ୍ରାହ୍ମଣମାନଙ୍କର ରାଜପ୍ରଦତ୍ତ ଉପାଧିବିଶେଷ ।

ରଇଜ—ଗ୍ରା.ବି. ରାଜ୍ୟ ଦେଖ ।

ରଇତା—ଗ୍ରା.ବି.(ସଂ-ରଜିକାନ୍ନ)ପରିବା-ସଙ୍ଗେ ରାଇବେସର ଦହି ଖଟା ଓ ମିଠା ଦିଆଯାଇ ପ୍ରସ୍ତୁତ ଏକପ୍ରକାର ଅମ୍ଳବ୍ୟଞ୍ଜନ ।

ରଇତାପିଠା—ଗ୍ରା.ବି. ଖଟାସଙ୍ଗେ ଲମ୍ବ ଆକାର ପିଠା ମିଶିଥିବା ପରିବା ତର-କାରି । [ ତେଲ ।

ରଇତେଲ ପ୍ରା.(ଝୁଃବାଲେ)ବି. ସୋରିଷ-

ରଇଦାମୋଦର—ଗ୍ରା. ବି. (ସଂ-ରାଧା-ଦାମୋଦର ) ରାଧାକୃଷ୍ଣ, ବିଷ୍ଣୁଙ୍କର ଯୁଗଳ ମୂର୍ତ୍ତି, କାର୍ତ୍ତିକବ୍ରତ ।

ରଇଫଲ୍—ଯା.ବି. ଏକପ୍ରକାର ବନ୍ଧୁକ ।

ରଇବା—ଗ୍ରା.କ୍ରି.ଡାକିବା,ଡେକିରବା ।

ରଇ(ୟ)ବାର—ଗ୍ରା. ବି. ରାଜାଙ୍କଠାରୁ ଅନ୍ୟ ରାଜା ନିକଟକୁ ପ୍ରେରିତ ଦୂତ ଓ ମୌଖିକ ସମ୍ବାଦ, ରାଜାଙ୍କ ଚିଠି ।

ରଇସୋରିଷ—ଗ୍ରା. ବି. (ସଂ-ରାଜସର୍ଷପ) ଶ୍ୱେତସର୍ଷପ, ଧଳାସୋରିଷ ।

ରଉ—ଗ୍ରା.ସ୍ତ୍ରୀ.ବି.ରାଧିକା, ରାଧା,ସୁନ୍ଦରୀ ।

ରଉଟି—ଗ୍ରା. ବି. ତମ୍ବୁ, ବସ୍ତ୍ରଗୃହ ।

ରଉତ—ଗ୍ରା. ବି. (ସଂ-ରାଜପୁତ୍ର) ଗ୍ରାମ-ମଣ୍ଡଳ, ଅଶ୍ୱାରୋହୀ ସେନା, କ୍ଷତ୍ରିୟ ଜାତିର ଶାଖାବିଶେଷ,ସୈନ୍ୟ,ବଂଶୋ-ପାଧିବିଶେଷ, (ପ୍ରା.ବସ୍ତର)ବି.ଗଉଡ଼ ।

ରଉତ(ତ୍ତ)ରା—ଗ୍ରା. ବି. ଖଣ୍ଡାଏତ ଓ କ୍ଷତ୍ରିୟଙ୍କ ବଂଶୋପାଧିବିଶେଷ, ରାଜ-ପୁତ୍ରମାନଙ୍କ ଶ୍ରେଣୀବିଭାଗ, ଉପାଧି-ବିଶେଷ, ଘୋର ପୁରୁଷକୁ ଦିଆ ରାଜୋ-ପାଧିବିଶେଷ, ଅଶ୍ୱାରୋହୀ ସୈନ୍ୟ ଓ ତଦ୍ଧର୍ମର ଅଧ୍ୟକ୍ଷ ।

ରଉତା(ତ୍ତ)ସାହେବ—ଗ୍ରା. ବି. ରାଜାଙ୍କ ୨ୟ ବା ୩ୟ ପୁତ୍ରଙ୍କ ଡାକ ନାମ ।

ରଉତିଆ—ଗ୍ରା.ବିଂ. ରଉତସମ୍ବନ୍ଧୀୟ ।

ରଉନା—ପ୍ରା. (ବସ୍ତର) ଶାଗୁଣା ।

ରଉରା—ଗ୍ରା. ବି. ଖଣ୍ଡାଏତଙ୍କ ବଂଶୋ-ପାଧିବିଶେଷ ।

ରଉରଉ—ଗ୍ରା. ଅବ୍ୟ. ଡାମରାକୁଆଙ୍କ ଧ୍ୱନି,ବଡ଼ପାଟି କରି ପୁନଃପୁନଃ କହିବା, ବଡ଼ ପାଟି କରିବା ।

ରଉଲ—ଗ୍ରା. ବି. (ସଂ-ରାଜକୁଳ)ଦେବୀ-ପୂଜକ ଶୂଦ୍ରଜାତିବିଶେଷ, କେଳାଙ୍କ ବଂଶୋପାଧିବିଶେଷ, ଖଣ୍ଡାଏତ ଓ କ୍ଷତ୍ରିୟ ଜାତିବିଶେଷ ।

ରଉଲା(ଳ)—ଗ୍ରା. ବି. ଗର୍ଜନ, ରଡ଼ି, ଉଚ୍ଚୈଃସ୍ୱରରେ କ୍ରନ୍ଦନ ।

ରଉଳଆ—ଗ୍ରା.ବିଂ.ଗର୍ଜନକାରୀ,ଉଚ୍ଚୈଃ-ସ୍ୱରଯୁକ୍ତ, ବଡ଼ପାଟିଆ, (ବି) ଗୁଣିଆ, କେଳାଜାତି ।

ରଏ(ୟ)—ଯା. ବି.ଅଦାଲତଙ୍କ ମକଦ୍ଦମା ମୀମାଂସାର ହୁକୁମ, ମତ, ରାସ୍ତା,ସ୍ୱତନ୍ତ୍ର ବନ୍ଦୋବସ୍ତ, (ଗ୍ରା.ବି) ରାଜା, ରାଜଦତ୍ତ ଉପାଧିବିଶେଷ, କ୍ଷତ୍ରିୟଙ୍କ ବଂଶୋପାଧି ବିଶେଷ,ବଙ୍ଗୀୟକାୟସ୍ଥମାନଙ୍କ ବଂଶୋ-ପାଧିବିଶେଷ ।

ରଏତ୍ତ—ପ୍ରା. (ସମ୍ବ) ବି. ରାତି ।

ରଏପିତାମ୍—ଗ୍ରା.ବି.କ୍ଷତ୍ରିୟମାନଙ୍କବଂଶୋ-ପାଧିବିଶେଷ ।

ରଏ(ୟ)ବାହାଦୁର—ଗ୍ରା. ବି. ବଡ଼ଲାଟଙ୍କ ଦ୍ୱାରା ଭାରତୀୟ ହିନ୍ଦୁବ୍ୟକ୍ତିଙ୍କୁ ସାଧାରଣ କାର୍ଯ୍ୟରେ ମମତା ଦେଖାଇବା ଯୋଗୁ ଦିଆଯିବା ବ୍ୟକ୍ତିଗତ ପ୍ରତିଷ୍ଠା ସୂଚକ ପଦବୀ ।

ରଏସାହେବ—ଗ୍ରା.ବି.ଭାରତବଡ଼ଲାଟଙ୍କ-ଠାରୁ ବିଶିଷ୍ଟ ହିନ୍ଦୁବ୍ୟକ୍ତିଙ୍କୁ ମିଳିବା ସମ୍ମାନ-ସୂଚକ ଉପାଧିବିଶେଷ ।

ରୟସିଂହ—ଗ୍ରା. ବି. କ୍ଷତ୍ରିୟଙ୍କ ଉପାଧି ବିଶେଷ ।

ରଓ—ଗ୍ରା.ବି.ମରହଟ୍ଟା ବ୍ରାହ୍ମଣ ଓ କ୍ଷତ୍ରିୟ-ମାନଙ୍କ ବଂଶୋପାଧିବିଶେଷ, ତେଲଙ୍ଗୀ ବ୍ରାହ୍ମଣ ଓ ନାଇଡୁ ବା ଶୂଦ୍ରମାନଙ୍କ ବଂଶୋପାଧି ।

ରଁଡ଼—ପ୍ରା. (ସମ୍ବ) ବି. ରଣ୍ଡ ।

ରଁଧା—ପ୍ରା. (ଭତ୍ରୀଭାଷା) ବି. ଭେକ ।

ରକା—ସ୍ତ୍ରୀ. ବି. (ର+ଅକ+ଆ) ନଦୀବିଶେଷ, ପୂର୍ଣ୍ଣିମାତିଥି, ନବଋତୁମତୀ ସ୍ତ୍ରୀ, ରାଗଣୀବିଶେଷ,କୁଣ୍ଡିଆକାଙ୍କୁ, ଅଙ୍ଗୀରସ ମୁନିଙ୍କ କନ୍ୟା ।

ରକାଚନ୍ଦ୍ର—ପୁଂ. ବି. ( ରକା+ଚନ୍ଦ୍ର ) ପୂର୍ଣ୍ଣିମାର ଚନ୍ଦ୍ର ।

ରକାନିଶା—ସ୍ତ୍ରୀ. ବି. ପୂର୍ଣ୍ଣିମାର ରାତ୍ରି ।

ରକାପତି—ପୁଂ. ବି. (୬ତତ୍ପୁ) ଚନ୍ଦ୍ର ।

ରକାରଜନୀ—ସ୍ତ୍ରୀ.ବି.(୬ତତ୍ପୁ)ପୂର୍ଣ୍ଣିମାରାତ୍ରି ।

ରକାରମଣ—ପୁଂ. ବି.(୬ତତ୍ପୁ)ପୂର୍ଣ୍ଣଚନ୍ଦ୍ର ।

ରକାବିଭାବରୀ—ସ୍ତ୍ରୀ.ବି.(୬ତତ୍ପୁ)ପୂର୍ଣ୍ଣିମାର ରାତ୍ରି, ରକାରଜନୀ ।

ରକାଶଶାଙ୍କ—ପୁଂ. ବି. ପୂର୍ଣ୍ଣିମାର ଚନ୍ଦ୍ର, ରକାଶଶୀ ।

ରକାଶଶୀ—ପୁଂ. ବି. ପୂର୍ଣ୍ଣଚନ୍ଦ୍ର ।

ରକିଣୀ—ସ୍ତ୍ରୀ. ବି. ଦେବୀଙ୍କ ଶକ୍ତିବିଶେଷ ଯୋଗିନୀବିଶେଷ ।

ରକବ—ଗ୍ରା. ବି. ଚିରସ୍ଥାୟୀ ରୂପେ ଛିଡ଼ା-କୃତ କାର୍ଯ୍ୟ ବା ବଧ, (ବିଂ) ଚିରସ୍ଥାୟୀ ରୂପେ ଧାର୍ଯ୍ୟହୋଇଥିବା (ବିଷୟ) ।

ରକେଟ୍—ଯା.ବି.ପାଶ୍ଚାତ୍ୟଟେନିସ୍‌ଖେଳ-ବାର ବ୍ୟାଟ୍ ବା ଚର୍ମତନ୍ତ୍ରୀ ସଂଯୁକ୍ତ ପଟା,

ହାବଳୀ ବାଣ ।
ରାକେନ୍ଦୀବରବନ୍ଧୁ—ପୁଂ. ବି. ପୂର୍ଣ୍ଣଚନ୍ଦ୍ର ।
ରାକେଶ--ପୁଂ.ବି.(ରାକା+ଈଶ)ପୂର୍ଣ୍ଣଚନ୍ଦ୍ର
ରାକ୍ୟ—ବିଂ. ରାକାପ୍ରିୟ, ପୂର୍ଣ୍ଣିମାଯାହାର ଅଭିମତ ।
ରାକ୍ଷସ—ପୁଂ. ବି. (ରକ୍ଷସ୍+ଅ) ଦେବଯୋନିବିଶେଷ, ଅସୁର, ନିଶାଚର, ଭୂତପ୍ରେତ, କ୍ରୂରକର୍ମା ବ୍ୟକ୍ତି, ନରଖାଦକ ବ୍ୟକ୍ତି, କୁବେରଙ୍କ ଧନରକ୍ଷକ ଭୃତ୍ୟ ବା ଜୀବବିଶେଷ, ଯକ୍ଷ, ହିନ୍ଦୁଶାସ୍ତ୍ରୋକ୍ତ ବିବାହବିଶେଷ,କନ୍ୟାକୁ ବଳପୂର୍ବକ ହରଣକରି ବିବାହ ବା ସଙ୍ଗମ କରିବା, ହିନ୍ଦୁଶାସ୍ତ୍ରୋକ୍ତ ଚିକିତ୍ସା ବିଶେଷ, ଅସ୍ତ୍ରଚିକିତ୍ସା, (ବିଂ-ରକ୍ଷସ+ଅ) ରକ୍ଷଃସମ୍ବନ୍ଧୀୟ, ଆସୁରିକ, ଅତିନିଷ୍ଠୁର, ( ଗ୍ରା.ବି ) ପକ୍ଷୀ, (ବିଂ) ଅତିଭୋଜୀ, ପେଟୁକ, (ସ୍ତ୍ରୀ) ରାକ୍ଷସୀ ।
ରାକ୍ଷସଗ୍ରହ—ବି.ଉନ୍ମାଦ ରୋଗବିଶେଷ ।
ରାକ୍ଷସ(ସୀ)ଚିକିତ୍ସା—ବି. ଅସ୍ତ୍ରଚିକିତ୍ସା ।
ରାକ୍ଷସଦେଶ—ବି. ରାକ୍ଷସମାନେ ବାସକରୁଥିବା ଦେଶ ।
ରାକ୍ଷସନାରୀ—ସ୍ତ୍ରୀ. ବି. ରାକ୍ଷସୀ ଦେଖ, (ରାକ୍ଷସ ପତ୍ନୀ, ଯୋଷା, ସ୍ତ୍ରୀ ଇତ୍ୟାଦି ଅନ୍ୟରୂପ) ।
ରାକ୍ଷସବିବାହ—ବି. ହିନ୍ଦୁଶାସ୍ତ୍ର ବର୍ଣ୍ଣିତ ଆଠପ୍ରକାର ବିବାହ ମଧ୍ୟରୁ ନିକୃଷ୍ଟତମ ବିବାହ ।
ରାକ୍ଷସଭୋଜନ—କ୍ଲୀ. ବି. ରାକ୍ଷସଯୋଗ୍ୟ ଖାଦ୍ୟ ଖାଇବା, ମାଂସାଦି ଅମେଧ୍ୟ ବସ୍ତୁର ଓ ପରମାଣାତିରିକ୍ତ ଭୋଜନ, ଅମେଧ୍ୟ ଖାଦ୍ୟ । [ ଗ୍ରହଣ ।
ରାକ୍ଷସଯୋନି—ବି.ରାକ୍ଷସ ଗର୍ଭରେ ଜନ୍ମ-
ରାକ୍ଷସରାଜ—ବି. (୬ତତ୍ପୁ) ରକ୍ଷୋରାଜ, ରାକ୍ଷସମାନଙ୍କର ରାଜା ।
ରାକ୍ଷସରାଜ୍ୟ—ବି.(୬ତତ୍ପୁ) ରାକ୍ଷସରାଜଶାସିତ ଦେଶ ।
ରାକ୍ଷସୀ--ସ୍ତ୍ରୀ. ବି. (ରାକ୍ଷସ+ଈ)ରାକ୍ଷସଜାତୀୟା ସ୍ତ୍ରୀ, ସନ୍ଧ୍ୟାକାଳ, ମୁହୂର୍ତ୍ତସନ୍ଧ୍ୟାବେଳ,ସାୟଂକାଳର ତିନିମୁହୂର୍ତ୍ତ କାଳ, ଦନ୍ତୀଔଷଧ, (ସ୍ତ୍ରୀ.ବିଂ-ରକ୍ଷସ୍+ଅ+ଈ) ରାକ୍ଷସଯୋଗ୍ୟା, ରାକ୍ଷସ ସୁଲଭ, ରାକ୍ଷସ ସମ୍ବନ୍ଧୀୟା (ସ୍ତ୍ରୀ) ।
ରାକ୍ଷସୀବେଳା—ବି.ସନ୍ଧ୍ୟାକାଳର ଅବ୍ୟବହିତ ତିନିମୁହୂର୍ତ୍ତ କାଳ ।
ରାକ୍ଷସୀମାୟା—ସ୍ତ୍ରୀ. ବି. ରାକ୍ଷସମାନଙ୍କ ରଚିତ ମାୟା ।
ରାକ୍ଷସେନ୍ଦ୍ର—ପୁଂ. ବି. (ରାକ୍ଷସ+ଇନ୍ଦ୍ର) ୬ତତ୍ପୁ; ରାବଣ,ରାକ୍ଷସପତି,କୁବେର ।
ରାକ୍ଷସେଶ୍ୱର—ପୁଂ. ବି. (୬ତତ୍ପୁ) ରାକ୍ଷସେନ୍ଦ୍ର ଦେଖ ।
ରାକ୍ଷା—ସ୍ତ୍ରୀ. ବି. ଲାକ୍ଷା, ଲାହା, ଅଳତା ।
ରାକ୍ଷାସ—ଗ୍ରା. ପୁଂ. ବିଂ ଓ ବି. ରାକ୍ଷସ ଦେଖ ।
ରାକ୍ଷାସୀ—ଗ୍ରା. ସ୍ତ୍ରୀ. ବି. ରାକ୍ଷସଜାତୀୟା ସ୍ତ୍ରୀ, ଅସାଧାରଣ ବିକଟରୂପ ଗ୍ରହଣପୂର୍ବକ ଜନ୍ମହୋଇଥିବା ମୂର୍ତ୍ତି, (ବିଂ) ନିଷ୍ଠୁରା ସ୍ତ୍ରୀ ।
ରାକ୍ଷୋଽସୁର—ପୁଂ.ବି.ରାକ୍ଷସ ଓ ଅସୁର ।
ରାଖସ୍—ପ୍ରା. (ସମ୍ବ) ବି ଓ ବିଂ. ରାକ୍ଷସ ଦେଖ ।
ରାଖାଲ୍—ପ୍ରା. (ବଙ୍ଗ) ଗ୍ରା. ବି. ଗଉଡ଼, ଗୋରୁ ରଖୁଆଳ ।
ରାଖି—ଗ୍ରା. ବି. ( ସଂ-ରକ୍ଷୀ ) ରକ୍ଷସୂତ୍ର, ରାଖିବନ୍ଧନ ଦେଖ,ସୂତ୍ରନିର୍ମିତ ତାଗ ।
ରାଖିପୂର୍ଣ୍ଣିମା—ଗ୍ରା.ବି. ମାସପୂର୍ଣ୍ଣିମା,ଶ୍ରାବଣ ପୂର୍ଣ୍ଣିମୀ, ଗହ୍ମାପୂର୍ଣ୍ଣିମୀ ।
ରାଖିବନ୍ଧନ—ଗ୍ରା. ବି. ଗହ୍ମାପୂର୍ଣ୍ଣିମା ଦିନ ବନ୍ଧୁବାନ୍ଧବମାନେ ପରସ୍ପର ଶୁଭକାମନାର୍ଥ କଟିରେ ବାନ୍ଧିବା ରଞ୍ଜିତ ସୂତ୍ର, ଗହ୍ମାପୂର୍ଣ୍ଣିମା ଦିନ ହାତରେ ରାଖିବାନ୍ଧିବା କର୍ମ ।
ରାଗ୍ରିକୁମୁଡ଼ା—ପ୍ରା.(ବସ୍ତର) ବି. ପାଣିକଖାରୁ ।
ରାଗ—ବି. ( ରନ୍ଜ୍+କ.ଅ ) କୋପ, କ୍ରୋଧ, ବିରାଗ,ବିରକ୍ତି,ମାତ୍ସର୍ଯ୍ୟ,ଦ୍ୱେଷ, ବର୍ଣ୍ଣ, ରଙ୍ଗ, ରକ୍ତିମା,ଆସକ୍ତି,ଅନୁରାଗ, ମାୟା, କ୍ଷମତା,ମନର ଉଦ୍ବେଗ,କ୍ଲେଶ, ଲକ୍ଷା,ମାନସିକ ଭାବ,(ଯଥା:—ମନୋଦୁଃଖ, କ୍ଲେଶ, ସ୍ନେହ), ଇଚ୍ଛା, ବିଷୟସ୍ପୃହା, ରଞ୍ଜକଦ୍ରବ୍ୟ, (ଭା.ଅ) ରଞ୍ଜନ, ରଙ୍ଗାଇବା, ଉତ୍ସାହ, (ରଞ୍ଜ୍+କ.ଅ) ଚନ୍ଦ୍ର, ସୂର୍ଯ୍ୟ, ରାଜା, ନୃପତି, ଲାଳସା, ରକୋଗୁଣ, ଔତ୍କଣ୍ଠା, ପ୍ରେମ,ସନ୍ତୋଷ, ଶ୍ରୋତାର ଚିତ୍ତରଞ୍ଜନକାରୀ ସଙ୍ଗୀତର ସ୍ୱରବିଶେଷ, ସୁର୍,(ଗ୍ରା.ବି) କଟୁସ୍ୱାଦ, ଦ୍ରବ୍ୟର ସ୍ୱାଦବିଶେଷ,କଡ଼ାଗୁଣ,କଟୁତା, ଦୁଃସହତା, (ବିଂ) କଟୁସ୍ୱାଦଯୁକ୍ତ,କଡ଼ା, ଦୁଃସହ, ତୀବ୍ର ।
ରାଗକରିବା—ଗ୍ରା. କ୍ରି. କୌଣସି ବ୍ୟକ୍ତିପ୍ରତି କ୍ରୁଦ୍ଧ ହେବା ।
ରାଗଚଣା—ପ୍ରା. (ଗଞ୍ଜାମ) ବି. ଖଟା ରାଗ ଦିଆଯାଇଥିବା ବୁଟ ବା ଚଣାର ସିଦ୍ଧ ଖାଦ୍ୟବିଶେଷ ।
ରାଗଚୂର୍ଣ୍ଣ—ପୁଂ.ବିଂ. (ରାଗ+ଚୂର୍ଣ୍ଣ)କ.ଧା; କାମଦେବ, ଖଦିରବୃକ୍ଷ,ଫଗୁ, ଅବିର, ସିନ୍ଦୂର, ଲକ୍ଷା ।
ରାଗଚ୍ଛନ୍ନ—ପୁଂ.ବି. (ବ.ବ୍ରୀ) କାମଦେବ, ରାମଚନ୍ଦ୍ର,(ବିଂ)ରାଗ ଦ୍ୱାରା ଆଚ୍ଛନ୍ନ ।
ରାଗଜିର—ଗ୍ରା.ବି. ପରିଚ୍ଛଦ, ପୋଷାକବିଶେଷ ।
ରାଗତଃ—ଗ୍ରା.କ୍ରି.ବିଂ. କ୍ରୋଧ ବା ରାଗହେତୁରୁ ।
ରାଗତାନ(ଲ)—ଗ୍ରା.ବି. ସଙ୍ଗୀତର ରାଗ ତାନ ଓ ତାଳ ।
ରାଗତାନଲୟ—ବି. (ଦ୍ୱନ୍ଦ୍ୱ) ସଙ୍ଗୀତରେ ରାଗ ତାଳ ଓ ଗୀତ ବାଦ୍ୟର ସମତା ।
ରାଗଦ—ପୁଂ. ବିଂ. (ରାଗ+ଦା+ଅ) କ୍ରୋଧୋଦ୍ଦୀପକ ।
ରାଗ(ଦା)ଲି—କ୍ଲୀ. ବି. ମସୂର ଡ଼ାଲି ।
ରାଗଦୃକ୍—ବି. ମାଣିକ୍ୟ ।
ରାଗଦ୍ରବ୍ୟ—କ୍ଲୀ.ବି.ରଞ୍ଜନଦ୍ରବ୍ୟ, ରଙ୍ଗ ।
ରାଗଦ୍ୱେଷ—ବି. କ୍ରୋଧ ଓ ଈର୍ଷା ।
ରାଗପଟ୍ଟ—କ୍ଲୀ. ବି. ମୂଲ୍ୟବାନ୍ ପ୍ରସ୍ତରବିଶେଷ ।
ରାଗପଡ଼ିବା—ପ୍ରା.(ଗଞ୍ଜା)କ୍ରି. ରାଗିବା ।
ରାଗପାଣି -ପ୍ରା.(ପୁରୀ)ବି.ଭାଙ୍ଗ,ଭାଙ୍ଗପାଣି ।
ରାଗପୁଷ୍ପ—ବି.ବନ୍ଧୁଜୀବପୁଷ୍ପ,ବଧୁଲୀଫୁଲ ।

ରାଗପୁଷ୍ପୀ—ସ୍ତ୍ରୀ.ବ. (ରାଗ+ପୁଷ୍ପ+ଈ) ଜବା, ମନ୍ଦାର ।

ରାଗପ୍ରସବ—ପୁଂ.ବ.ବନ୍ଧୁକ, ରକ୍ତାମ୍ଳାନ, ବଧୂଲି ।

ରାଗଭଞ୍ଜନ—ବି. ଛନ୍ଦୋଧରବିଶେଷ, କ୍ରୋଧର ଅପନୋଦନ ।

ରାଗଭରେ—ଗ୍ରା. ବିଂ. କ୍ରୋଧାନ୍ୱିତ ।

ରାଗମଞ୍ଜରୀ—ସ୍ତ୍ରୀ. ବ. ନାୟିକାବିଶେଷ ।

ରାଗମୟ—ତ୍ରି.ବିଂ.(ରାଗ+ମୟ)ଲାଲ-ବର୍ଣ୍ଣବିଶିଷ୍ଟ, ପ୍ରିୟ ।

ରାଗମାରିବା—ଗ୍ରା.କ୍ରି. ନିଜର କ୍ରୋଧକୁ ଶାନ୍ତ କରିବା ।

ରାଗମାର୍ଗ—ବି. (ରାଗ+ମାର୍ଗ)ନିଃସ୍ୱାର୍ଥ ଈଶ୍ୱର ପ୍ରେମ, ସାତ୍ତ୍ୱିକ ଭକ୍ତି ।

ରାଗମାଳା—ବି. ରାଗସମୂହ ।

ରାଗଯୁକ୍—ବି. (ରାଗ+ଯୁଜ୍+କ୍ୱିପ୍) ମାଣିକ୍ୟ ।

ରାଗରକ୍ତ—ବିଂ(ଅତନ୍ତ୍ର) କୌଣସି ରଙ୍ଗ ବୋଲା ହୋଇଥିବା ।

ରାଗରଖିବା—ଗ୍ରା. କ୍ରି. ମନରେ ଅହମ୍ମା ଭାବକୁ ପୋଷଣ କରିବା ।

ରାଗରଙ୍ଗ—ବି.(କ,ଧା)ଅନୁରାଗଜନିତ ଆନନ୍ଦକର ଭଙ୍ଗୀ । [ କନ୍ଦର୍ପ ।

ରାଗରଜ୍ଜୁ—ପୁଂ.ବି. (ବ.ସ୍ତ୍ରୀ)କାମଦେବ,

ରାଗରାଗିଣୀ—ସ୍ତ୍ରୀ. ବ. ବସନ୍ତାଦି ରାଗ ଓ ଭୈରବୀ ରାମକେଲୀ ପ୍ରଭୃତି ରାଗପତ୍ନୀ ।

ରାଗରୂପ—ଗ୍ରା. ବ. କ୍ରୋଧ ଓ ଈର୍ଷା ।

ରାଗରେ ତମତମହେବା—ଗ୍ରା. କ୍ରି. ରାଗ ବା କ୍ରୋଧରେ ଜର୍ଜ୍ଜରିତ ହେବା ।

ରାଗଲତା—ସ୍ତ୍ରୀ. ବ. (ରାଗ+ଲତା) କ.ଧା; କାମପତ୍ନୀ, ରତିଦେବୀ ।

ରାଗଲେଖା—ସ୍ତ୍ରୀ. ବ. ଚନ୍ଦନାଦି ଚିହ୍ନ ବା ରେଖା ।

ରାଗବନ୍ଧ—ବି. ଅନୁରାଗ ଚିହ୍ନ, ସଙ୍ଗୀତୋକ୍ତ ରାଗର ସମନ୍ୱୟ ।

ରାଗବନ୍ଧିବା—ଗ୍ରା.କ୍ରି.କ୍ରୁଦ୍ଧ ଭାବକୁ କିଛିକାଳ ପାଇଁ ମନରେ ସ୍ଥାନ ଦେବା ।

ରାଗବାନ୍—ପୁଂ.ବିଂ(ରାଗ+ବତ୍)ରାଗଯୁକ୍ତ, ଅନୁରାଗବିଶିଷ୍ଟ,(ସ୍ତ୍ରୀ)ରାଗବତୀ, (ଗ୍ରା.ବିଂ) ଅଧିକଲାଲ ।

ରାଗବୃନ୍ତ—ପୁଂ.ବ.(ବ.ସ୍ତ୍ରୀ)କାମଦେବ ।

ରାଗବେଳ(ଳା)—ଗ୍ରା. ବ. ମନୁଷ୍ୟର କ୍ରୋଧାନ୍ୱିତ ହୋଇଥିବା ସମୟ ।

ରାଗଷାଡ଼ବ—ବି.ମୁଗର ଯୂଷରେ ଡ଼ାଳିମ୍ବର ଓ ଦ୍ରାକ୍ଷାର ରସମିଶ୍ରିତ ସୁଖକର ପାନୀୟବିଶେଷ ।

ରାଗଷାଣ୍ଡବ—ବି. ରାଗଷାଡ଼ବ ଦେଖ. କଞ୍ଚା ଆମ୍ବର ମୋରବ୍ବା ।

ରାଗସମ୍ବରଣକରିବା—ଗ୍ରା.କ୍ରି. କ୍ରୋଧକୁ ଉପଶମ କରିବା, ରାଗସମ୍ଭାଳିବା ।

ରାଗସାରା—ସ୍ତ୍ରୀ. ବ. ମନଃଶିଳା ।

ରାଗସୂତ୍ର—କ୍ଳୀ.ବ.(ରାଗ+ସୂତ୍ର)ରଙ୍ଗିନ-ସୂତ୍ର, ପାଟସୂତା, ନିକିଧର ସୂତା ।

ରାଗହେବା—ଗ୍ରା.କ୍ରି ରାଗାନ୍ୱିତହେବା, ରାଗିବା, ରୋଷକରିବା ।

ରାଗା—ଗ୍ରା. ବିଂ. କଟୁସ୍ୱାଦଯୁକ୍ତ ।

ରାଗାଙ୍ଗୀ—ସ୍ତ୍ରୀ.ବ (ରାଗ+ଅଙ୍ଗ+ଈ) ମଞ୍ଜିଷ୍ଠା ।

ରାଗାଢ୍ୟା—ସ୍ତ୍ରୀ. ବ. (ଅତନ୍ତ୍ର) ମଞ୍ଜିଷ୍ଠା ।

ରାଗାତ୍ମକ—ବି. ରାଗସମନ୍ୱିତ, (ସ୍ତ୍ରୀ) ରାଗାତ୍ମିକା ।

ରାଗାନୁଗ—ବିଂ.ଅପରାଗର ଅନୁଗାମୀ ।

ରାଗାନ୍ତ—ଗ୍ରା.ବିଂ. ରାଗୀ, କୋପନ-ସ୍ୱଭାବ, କ୍ରୋଧୀ ।

ରାଗାନ୍ଧ—ପୁଂ.ବିଂ. (ଅତନ୍ତ୍ର)କ୍ରୋଧାନ୍ଧ, କ୍ରୋଧ ବା ଅନୁରାଗ ଯୋଗୁଁ ବିବେଚନାଶୂନ୍ୟ, (ସ୍ତ୍ରୀ) ରାଗାନ୍ଧା ।

ରାଗାନ୍ୱିତ—ପୁଂ. ବିଂ. (ଅତନ୍ତ୍ର) କ୍ରୁଦ୍ଧ, ରାଗଯୁକ୍ତ, କୁପିତ,(ସ୍ତ୍ରୀ) ରାଗାନ୍ୱିତା ।

ରାଗାରାଗି—ଗ୍ରା. ବ. ପରସ୍ପର କ୍ରୋଧ ପ୍ରକାଶପୂର୍ବକ କଥୋପକଥନ ।

ରାଗାରୁ—ବିଂ.(ରାଗ+ଅରୁ)ଯେ ଆଶା ଦେଇ ଭଣ୍ଡାଏ ।

ରାଗାର୍ହ—ବିଂ. (ରାଗ+ଅର୍ହ)ଯେ ଆଶା ଦେଇ ଆଶା ପୂର୍ଣ୍ଣ କରେ ନାହିଁ, (ସ୍ତ୍ରୀ) ରାଗାର୍ହା ।

ରାଗାଲାପ—ପୁଂ.ବ. ସଙ୍ଗୀତ ଶାସ୍ତ୍ରୋକ୍ତ ରାଗର ଆଳାପ ।

ରାଗାଶନ—ପୁଂ. ବ. (ରାଗ+ଅଶନ) ବୁଦ୍ଧଦେବ ।

ରାଗିଆ—ଗ୍ରା.ବିଂ.ରାଗା, କଟୁ. କ୍ରୋଧୀ ।

ରାଗିଣୀ—ସ୍ତ୍ରୀ. ବ. (ରାଗ+ଇନ୍+ଈ) ବିଦଗ୍ଧା ନାରୀ,ରାଗପତ୍ନୀ, ସଙ୍ଗୀତରେ ଛଅଗୋଟି ରାଗର ପରିବର୍ତ୍ତନ ବା ମିଶ୍ରଣାଦିଜନିତ ମିଶ୍ରସ୍ୱର,ମେନକା ଅପ୍ସରାଙ୍କ ଜ୍ୟେଷ୍ଠା କନ୍ୟା,ବିଂ.ଅନୁରାଗିଣୀ ।

ରାଗିବା—ଗ୍ରା. କ୍ରି. କ୍ରୁଦ୍ଧହେବା, ରାଗାନ୍ୱିତ ହେବା, ବିରକ୍ତହେବା ।

ରାଗୀ—ପୁଂ.ବିଂ(ରାଗ+ଇନ୍)ଅନୁରକ୍ତ, ରାଗଯୁକ୍ତ, କାମୁକ, ରଞ୍ଜନକାରୀ, (ସ୍ତ୍ରୀ) ରାଗିଣୀ, (ବୈଦ୍ୟକ) ବ. ଏକପ୍ରକାର ତୃଣଧାନ୍ୟ, ମାଣ୍ଡିଆ ।

ରାଗୁଆ—ଗ୍ରା.ପୁଂ. ବିଂ. କୋପନସ୍ୱଭାବ, କଟୁ ସ୍ୱାଦଯୁକ୍ତ ।

ରାଘବ—ପୁଂ. ବ. (ରଘୁ+ଅ) ରଘୁବଂଶୀୟ ରାଜା,ସମୁଦ୍ର, ରାମଚନ୍ଦ୍ର,ଅଜ, ଦଶରଥ ପ୍ରଭୃତି, ସମୁଦ୍ର ମତ୍ସ୍ୟବିଶେଷ, ଅଷ୍ଟାଦଶ ଶତାବ୍ଦୀର ଖାନ୍ଦେଶର ଜାତକ ଗ୍ରନ୍ଥ ରଚୟିତା ଜନୈକ ଜ୍ୟୋତିଷୀ, (ଗ୍ରା.ବ) ପେଟୁ ଲୋକ,ଅର୍ଥଗୃଧ୍ନୁ ବ୍ୟକ୍ତି, କାର୍ଯ୍ୟ ଧୁରନ୍ଧର ବ୍ୟକ୍ତି ।

ରାଘବବାଞ୍ଛା—ସ୍ତ୍ରୀ.ବ(ବ.ସ୍ତ୍ରୀ)ରାମପ୍ରିୟା, ସୀତା ।

ରାଘବାନନ୍ଦ—ପୁଂ. ବ. ରାମଚନ୍ଦ୍ର, ବଙ୍ଗଦେଶର ଜନୈକ ଜ୍ୟୋତିଷୀ ।

ରାଘବାୟନ—କ୍ଳୀ.ବ.(ରାଘବ+ଅୟନ) ରାମାୟଣ ଗ୍ରନ୍ଥ ।

ରାଘବୀୟ—କ୍ଳୀ. ବ. ( ରାଘବ+ଈୟ ) ରାଘବର ଛନ୍ଦଗ୍ରନ୍ଥ ।

ରାଘବେଶ୍ୱର—ବି. ଶିବଲିଙ୍ଗ ବିଶେଷ ।

ରାଙ୍କଲ—ବି. ବୃକ୍ଷକଣ୍ଟକ, ଗଛର କଣ୍ଟା ।

ରାଙ୍କବ—ବି.(ରଙ୍କୁ+ଅ)ମୃଗରୋମଜ ବସ୍ତ୍ର, ପଶୁଲୋମନିର୍ମିତ ବସ୍ତ୍ର, (ବିଂ) ରଙ୍କୁ ସମ୍ବନ୍ଧୀୟ, ଲୋମନିର୍ମିତ, (ସ୍ତ୍ରୀ) ରାଙ୍କବୀ ।

ରାଙ୍କବକ—ପୁଂ. ବ. ମନୁଷ୍ୟ ।

ରାଙ୍କବାୟନ—ବି. ( ରାଙ୍କବ+ଆୟନ )

ରଙ୍ଗୁଠାରୁ ଜାତ ।

ରାଙ୍ଗ—ବି. (ରଙ୍ଗ + ଅ) ଟିଣ ଧାତୁ ।

ରାଙ୍ଗଣ(ନ)-ବି.ପୁଷ୍ପବିଶେଷ,ରଙ୍ଗଣୀଫୁଲ ।

ରାଚ୍‌ଚିଡ଼ିଆ—ଗ୍ରା. ବି°. ରାଡ଼ୁରାଡ଼ୁଆ, ହାତକୁ ଯାହା କର୍କଶ ଲାଗେ, ଯାହା ଖାଇବାକୁ କର୍କଶ ଲାଗେ ।

ରାଜ୍—ବି. (ରାଜ୍+କ.କ୍ୱିପ୍)ରାଜା,(ବି°) ଶୋଭମାନ, ସୁନ୍ଦର, (ଯା.ବି) ସମ୍ମତ, (ବି°) ସମ୍ମତ,(ପ୍ରା-ଭର୍ତ୍ତୀଶାଖା)ବି.ରାଜ୍ୟ, ଦେଶ ।

**ରାଜ**—ବି°. (ରାଜନ୍, ବହୁମଧ୍ୟରେ)ଶ୍ରେଷ୍ଠ, ପ୍ରଧାନ, ଶୋଭମାନ, ରାଜକୀୟ, (ବି) ରାଜ୍ୟଶାସକ, ରାଜା, (ଗ୍ରା.ବି) ଶ୍ରେଷ୍ଠ, (ଗ୍ରା.ବି) ସ୍ଥପତି, କୋଠାଆଦି କରିବା କାରିଗର, ମିସ୍ତ୍ରୀ, ରାଜ୍ୟ, ରାଜତ୍ୱ.ରାଜଧାନୀ, ଦରବାର, (ପ୍ରା.ପୁରୀ.ବି) ପୁରୀଜିଲ୍ଲା ବ୍ରାହ୍ମଣ ଶାସନର ଦାନାଧ୍ୟକ୍ଷଙ୍କର କେତେକ ବିଶିଷ୍ଟ ଅଧିକାର ।

**ରାଜଅଁଳା**-ପ୍ରା.(ବସ୍ତ୍ର)ବି.ନରକୋଳି ।

**ରାଜଆଜ୍ଞା**—ଗ୍ରା. ବି. ରାଜାଜ୍ଞା, ରାଜାଙ୍କ ଆଦେଶ ।

**ରାଜକ**—ପୁଂ. ବି°. (ରାଜ୍+କ+ଅକ) ଦୀପକ,ଦୀପ୍ତିଶାଳୀ,ଶାସକ,(ସ୍ତ୍ରୀ)ରାଜିକା, କ୍ଲୀ. ବି. (ରାଜନ୍+କ) ରାଜ୍ୟସମୂହ, ନୃପସମୂହ, (ପୁଂ.ବି)ରାଜା,କୃଷ୍ଣାଗୁରୁ ।

**ରାଜକଇଁ**—ଗ୍ରା. ବି. ଏକପ୍ରକାର ଈଷତ୍ ନାଲିକଇଁ ଫୁଲ ।

**ରାଜକଦମ୍ବ**—ବି. କଦମ୍ବ ବୃକ୍ଷବିଶେଷ ।

**ରାଜକନ୍ୟକା**--ସ୍ତ୍ରୀ.ବି.(ରାଜନ୍+କନ୍ୟକା) ରାଜକନ୍ୟା, ରାଜଝିଅ ।

**ରାଜକନ୍ୟା**—ସ୍ତ୍ରୀ. ବି.କେତକୀଫୁଲ,କିଆଫୁଲ, ନୃପସୁତା ।

**ରାଜକର**- ବି.(ଷତତ୍)ରାଜସ୍ୱ,ଖଜଣାଦି ।

**ରାଜକର୍କଟୀ**—ସ୍ତ୍ରୀ.ବି.ଚୀନାକର୍କଟୀ, ଏକ-ପ୍ରକାର କାକୁଡ଼ି ।

**ରାଜକର୍ଣ୍ଣ**—ପୁଂ. ବି. ହସ୍ତୀର ଶୁଣ୍ଢ ।

**ରାଜକର୍ତ୍ତା**—ପୁଂ. ବି. ଅଭିଷେକକାଳେ ରାଜାଙ୍କ ସାହାଯ୍ୟକାରୀ, ଯେଉଁ ବ୍ୟକ୍ତି ରାଜାଙ୍କୁ ସିଂହାସନରେ ବସାଏ ।

ରାଜକର୍ମ—କ୍ଲୀ. ବି. (ରାଜନ୍+କର୍ମ) ରାଜାଙ୍କର କାର୍ଯ୍ୟ, ସରକାରକାର୍ଯ୍ୟ, ରାଜ୍ୟଶାସନକାର୍ଯ୍ୟ ।

ରାଜକର୍ମପୁରୁଷ—(ଷତତ୍) ରାଜପୁରୁଷ, ରାଜକାର୍ଯ୍ୟ ନିର୍ବାହକ ବ୍ୟକ୍ତି ।

ରାଜକଳା—ବି.ଚନ୍ଦ୍ରଙ୍କର ଷୋଡ଼ଶ କଳା ମଧ୍ୟରୁ ଏକତମ ।

ରାଜକବି--ବି.ରାଜସଭାସଦ୍ କବି,କବିତା-ରଚକ ରାଜା ।

ରାଜକଶେରୁ—ପୁଂ. ବି. ଭଦ୍ରମୁସ୍ତା ।

ରାଜକାମ—ଗ୍ରା.ବି.ଇଟା ପଥର ଚୂନଆଦି ଦ୍ୱାରା କୋଠାଆଦି କରିବା କର୍ମ ।

ରାଜକାର୍ଯ୍ୟ—କ୍ଲୀ. ବି.(ରାଜନ୍+କାର୍ଯ୍ୟ) ରାଜକର୍ମ ଦେଖ ।

ରାଜକିନେୟ—ପୁଂ.ବି.ରଜକୀର ପୁତ୍ର ।

ରାଜକିଶୋର—ପୁଂ. ବି. ଯୁବକରାଜା, ଶ୍ରୀକୃଷ୍ଣଙ୍କନାମାନ୍ତର,(ସ୍ତ୍ରୀ)ରାଜକିଶୋରୀ ।

ରାଜକୀୟ—ବି°.(ରାଜନ୍+ଈୟ)ରାଜ-ସମ୍ବନ୍ଧୀୟ, ରାଜ୍ୟଶାସନ ସମ୍ବନ୍ଧୀୟ ।

ରାଜକୁମାର--ପୁଂ.ବି.(ଷତତ୍)ରାଜପୁତ୍ର ।

ରାଜକୁମାରିକା—ସ୍ତ୍ରୀ. ବି. ରାଜକନ୍ୟା ।

ରାଜକୁଳ—କ୍ଲୀ. ବି. (ରାଜନ୍+କୁଳ) ଷତତ୍; ରାଜବଂଶ, ରାଜପରିବାର ।

ରାଜକୁଳଭଟ୍ଟ—ବି. ରାଜସଭାପଣ୍ଡିତ ।

ରାଜଭଟ୍ଟ--ଯେ ରାଜବଂଶର ପ୍ରଶସ୍ତି ବର୍ଣ୍ଣନ କରେ ।

ରାଜକୁଲକ—ବି. ପଟୋଳଲତା ।

ରାଜକୁଷ୍ମାଣ୍ଡ—ବି.ବାର୍ତ୍ତାକୀ, ବାଇଗଣ ।

ରାଜକୃତ୍—ବି. ( ରାଜ+କୃ+କ୍ୱିପ୍ ) ରାଜକର୍ତ୍ତା ।

ରାଜକୃତ—ବି. (ରାଜନ୍+କୃତ)ରାଜକର୍ତ୍ତୃକ ଅନୁଷ୍ଠିତ । [କାର୍ଯ୍ୟ ।

ରାଜକୃତ୍ୟ—କ୍ଲୀ.ବି. (ଷତତ୍) ରାଜାଙ୍କ

ରାଜକୃତ୍ୱା—ପୁଂ. ବି. ରାଜକର୍ତ୍ତା ।

ରାଜକୋଳି ବି.ରାଜବଦର,ନରକୋଳି

ରାଜକୋଷ-ବି.(ଷତତ୍)ରାଜକୀୟ ଧନାଗାର ।

ରାଜକୋଷାତକ-କ୍ଲୀ.ବି.ଜହ୍ନି,ନଅରଜହ୍ନି ।

ରାଜକୋଷାତକୀ—ବି.ଲତାଫଳବିଶେଷ, ବଡ଼ଜହ୍ନି, ପିତାତରଡ଼ା ।

ରାଜକ୍ରିୟା—ସ୍ତ୍ରୀ. ବି. ରାଜକାର୍ଯ୍ୟ ।

ରାଜକ୍ଷବକ-ବି.ରାଜସର୍ଷପ,ରାଇସୋରିଷ

ରାଜଖର୍ଜୁରୀ—ସ୍ତ୍ରୀ.ବି.ଶ୍ରେଷ୍ଠଖର୍ଜୁରୀ,ପିଣ୍ଡଖର୍ଜୁରିକା ।

ରାଜଗଣ୍ଡ—ଗ୍ରା.ବି.ପେଟରେ ବାହାରିବା ମାରାତ୍ମକ ବ୍ରଣବିଶେଷ ।

ରାଜଗ(ଗା)ଦି—ଗ୍ରା.ବି.ରାଜସିଂହାସନ ।

ରାଜଗବୀ—ସ୍ତ୍ରୀ.ବି.ଏକପ୍ରକାର ଗୋରୁ ।

ରାଜଗାମୀ—ପୁଂ. ବି°. ( ରାଜନ୍+ଗମ୍+ଇନ୍) ରାଜସମ୍ବନ୍ଧୀୟ, ଯାହାର କେହି ଉତ୍ତରାଧିକାରୀ ନଥିବାରୁ ତାହାର ସମ୍ପତ୍ତି ରାଜାଙ୍କ ଅଧିକାରରେ ଆସେ ।

ରାଜଗିର—ବି.ଏକପ୍ରକାର ଶାଗ,ମଗଧସ୍ଥ ପର୍ବତବିଶେଷ ।

ରାଜଗୀ—ଯା. ବି. ରାଜା, ରାଜ୍ୟଶାସନ, ରାଜପଦ, (ଗ୍ରା.ବି°) ରାଜଯୋଗ୍ୟ ।

ରାଜଗୁରୁ--ପୁଂ.ବି.ରାଜାଙ୍କ ଗୁରୁ.ରାଜାଙ୍କ ମନ୍ତ୍ରଗୁରୁ. ବ୍ରାହ୍ମଣମାନଙ୍କର ରାଜପ୍ରଦତ୍ତ ଉପାଧିବିଶେଷ ।

ରାଜଗୁହ୍ୟ—ବି ଭଗବଦ୍‌ଗୀତାର ୯ମଅଧ୍ୟାୟରେ ବର୍ଣ୍ଣିତ ଈଶ୍ୱରଙ୍କ ସର୍ବବ୍ୟାପକ ସମ୍ବନ୍ଧେ ଉପଦେଶ ।

ରାଜଗୃହ—ବି.ରାଜପ୍ରାସାଦ,ପାଟଲୀପୁତ୍ରଠାରୁ ୮୦ କ୍ରୋଶ ଦୂରରେ ଥିବା ମଗଧର ନଗର ବିଶେଷ ।

ରାଜଗୃହକ—ବି°.(ରାଜଗୃହ+କ)ରାଜଗୃହ ସମ୍ବନ୍ଧୀୟ ।

ରାଜଗେହ—କ୍ଲୀ. ବି. ରାଜଭବନ ।

ରାଜଗ୍ରୀବ—ପୁଂ. ବି. (ରାଜନ୍+ଗ୍ରୀବା) ବ.ବ୍ରୀ; ମତ୍ସ୍ୟବିଶେଷ, ଫଳିମାଛ ।

ରାଜଘ—ପୁଂ. ବି°. (ରାଜନ୍+ହନ୍+କ.ଅ) ରାଜହନ୍ତା, ତୀକ୍ଷ୍ଣ,ରାଜଶ୍ରେଷ୍ଠ ।

ରାଜଚକ୍ରବର୍ତ୍ତୀ—ପୁଂ. ବି. (ରାଜଚକ୍ର+ବୃତ୍+କ.ଇନ୍) ନରଶ୍ରେଷ୍ଠ, ସମ୍ରାଟ୍, ସାର୍ବଭୌମ ।

ରାଜଚମ୍ପକ—ପୁଂ. ବି. ପୁନ୍ନାଗ ପୁଷ୍ପ ।

ରାଜଚିକିତ୍ସକ—ପୁଂ.ବି.ରାଜବୈଦ୍ୟ ଦେଖ ।

ରାଜଚିହ୍ନ—ବି. ରାଜାଙ୍କର ବିଶିଷ୍ଟତା-

ଜ୍ଞାପକ ଚିହ୍ନ, ରାଜଲକ୍ଷଣ ଦେଖ ।

ରାଜଚିହ୍ନକ—କ୍ଲୀ. ବ.ଉପସ୍ଥ, ପୁରୁଷ ଓ ସ୍ତ୍ରୀ ଚିହ୍ନ ।

ରାଜଛତ୍ର—ବ.ରାଜାଙ୍କ ଉପରେ ଧରାଯିବା ଛତ୍ର ।

ରାଜଯକ୍ଷ୍ମା—ବ. କ୍ଷୟରୋଗ ।

ରାଜଜମ୍ବୁ—ବ. ପିଣ୍ଡଖର୍ଜୁର,ମହାଜମ୍ବୁ, ବଡ଼ଜାମୁ, ଗୋଲପଜାମୁ ।

ରାଜଜୀରକ—ବ. ଏକପ୍ରକାର ଜୀରା ।

ରାଜଜେମା—ଗ୍ରା. ବ.ସ୍ତ୍ରୀ.ରାଜକନ୍ୟା ।

ରାଜଜୋଟକ—ବ.ଜ୍ୟୋତିଷୋକ୍ତ ବରକନ୍ୟାଙ୍କ ଜାତକରେ ଥିବା ପରସ୍ପରର ଶୁଭସୂଚକ ଯୋଗବିଶେଷ ।

ରାଜଟୀକା—ବ. (ମଧ୍ୟ-କ.ଧା) ରାଜ୍ୟାଭିଷେକ କାଳରେ ରାଜାଙ୍କ ଲଲାଟରେ ପ୍ରଦତ୍ତ ତିଳକ, ରାଜସୂଚକ ଟୀକା ।

ରାଜତ—ବିଂ. ( ରଜତ + ଅ ) ରଜତନିର୍ମିତ, ରୌପ୍ୟପର, (ସ୍ତ୍ରୀ) ରାଜତୀ ।

ରାଜତନୟ—ବ. ( ରାଜ + ତନୟ ) ରାଜପୁତ୍ର ।

ରାଜତନ୍ତ୍ର—କ୍ଲୀ. ବ. ରାଜାଙ୍କ ହସ୍ତଗତ ରାଜ୍ୟଶାସନ, ରାଜାଙ୍କ ଇଚ୍ଛାମତ ରାଜ୍ୟଶାସନ ।

ରାଜତରଙ୍ଗିଣୀ—ସ୍ତ୍ରୀ. ବ. କାଶ୍ମୀରର ଇତିହାସବିଶେଷ ।

ରାଜତରଣୀ—ସ୍ତ୍ରୀ. ବ. ପୁଷ୍ପବିଶେଷ,ବଡ଼ ସେବତୀ ଫୁଲ ।

ରାଜତରୁ—ବ. କନିଅର ଗଛ,ଆରଗ୍ୱଧ, ସୁନାରିଗଛ ।

ରାଜତରୁଣୀ—ସ୍ତ୍ରୀ.ବ.(ରାଜନ୍ + ତରୁଣୀ) ବଡ଼ ସେବତୀ ଫୁଲଗଛ, ମହାସହା ।

ରାଜତା—ବ. ବଡ଼ପଣିଆ, ରାଜତ୍ୱ, ରାଜ୍ୟ, ରାଜପଦ ।

ରାଜତାମ୍ବୃତ—ବିଂ. ( ୩ତତ୍ ) ରୂପା ଛୁଆଣି ହୋଇଥିବା ।

ରାଜତାଲ—ବ. ଗୁବାକ ବୃକ୍ଷ,ଗୁଆଗଛ ।

ରାଜତିମିଣ—ବ. ତରଭୁଜ, କାକୁଡ଼ି, ଫୁଟିକାକୁଡ଼ି ।

ରାଜତିଲକ—ବ. ରାଜଟୀକା ।

ରାଜତେଜଃ—ବ.ରାଜକୀୟ ଗୌରବ ।

ରାଜତେମିଣ-ବ.ଫୁଟୀକାକୁଡ଼ି,ତରଭୁଜ ।

ରାଜତ୍ୱ—କ୍ଲୀ. ବ. (ରାଜ + ତ୍ୱ) ରାଜତା, ରାଜପଦ,ରାଜ୍ୟ,ରାଜ୍ୟଶାସନ,ରାଜକାର୍ଯ୍ୟ ।

ରାଜତ୍ୱକରିବା—ଗ୍ରା. କ୍ରି. ରାଜ୍ୟଶାସନ [ କରିବା ।

ରାଜତ୍ୱକାଳ—ବ. (୬ତତ୍) କୌଣସି ରାଜା ଯେଉଁ ନିର୍ଦ୍ଦିଷ୍ଟ କାଳ ରାଜତ୍ୱ କରନ୍ତି ।

ରାଜଦଣ୍ଡ—ବ.(ରାଜନ୍ + ଦଣ୍ଡ) କ.ଧା; ରାଜଶାସନ,ରାଜଚିହ୍ନସ୍ୱରୂପ ରାଜାଙ୍କ ହାତରେ ଧରାଯିବା ଯଷ୍ଟି,ଅପରାଧୀକୁ ରାଜାଙ୍କ ପ୍ରଦତ୍ତ ଦଣ୍ଡ, ଲଲାଟସ୍ଥ ଊର୍ଦ୍ଧ୍ୱରେଖା ଚିହ୍ନ ।

ରାଜଦତ୍ତ—ବିଂ. (୩ତତ୍) ଯାହା ରାଜା ଦେଇଥାଆନ୍ତି ।

ରାଜଦନ୍ତ—ବ.ଉପରିସ୍ଥ ମଧ୍ୟବର୍ତ୍ତୀ ଦନ୍ତଦ୍ୱୟ,ସମ୍ମୁଖସ୍ଥ ଦନ୍ତଚତୁଷ୍ଟୟ,ଗ୍ରାମୁଦାନ୍ତ

ରାଜଦମ୍ପତି-ବ.(୬ତତ୍)ରାଜା ଓ ରାଣୀ ।

ରାଜଦରବାର—ଗ୍ରା. ବ. ରାଜସଭା, ବିଚାରଅଦାଲତ, ଧର୍ମାଧିକରଣ ।

ରାଜଦର୍ଶନ—କ୍ଲୀ. ବ. ରାଜାଙ୍କ ଦର୍ଶନ, ରାଜାଙ୍କୁ ସାକ୍ଷାତ୍ କରିବା, ରାଜାଙ୍କର ସାକ୍ଷାତ୍କାର ଲାଭ ।

ରାଜଦାଣ୍ଡ—ଗ୍ରା.ବ.ରାଜପଥ,ରାଜମାର୍ଗ ।

ରାଜଦାର—ବ. ( ରାଜନ୍ + ଦାରା ) ରାଜପତ୍ନୀ ।

ରାଜଦୁଲାଲ—ପୁଂ. ବ. ରାଜକୁମାର, (ସ୍ତ୍ରୀ) ରାଜଦୁଲାଲୀ ।

ରାଜଦୁହିତା—ସ୍ତ୍ରୀ. ବ. (ରାଜ + ଦୁହିତୃ) ରାଜକନ୍ୟା, ଜେମା ।

ରାଜଦୂତ—ବ. ( ୬ତତ୍ ) ରାଜାଙ୍କ ପ୍ରେରିତ ବାର୍ତ୍ତାବହ ।

ରାଜଦୂର୍ବା—ସ୍ତ୍ରୀ. ବ. ବଡ଼ ଦୂବଘାସ ।

ରାଜଦୃଷଦ୍—ସ୍ତ୍ରୀ. ବ. ପଥର ଜନ୍ତା ।

ରାଜଦୃଷ୍ଟି—ବ. ( ୬ତତ୍ ) ରାଜାଙ୍କର ଅନୁଗ୍ରହ ଦୃଷ୍ଟି.କୌଣସି ପଦାର୍ଥ ଉପରେ ପଡ଼ିବା ରାଜାଙ୍କର କୁଦୃଷ୍ଟି ।

ରାଜଦେଶୀୟ—ପୁଂ. ବ. (ରାଜନ୍ + ଦେଶୀୟ) ଶ୍ରେଷ୍ଠରାଜା,ସାମନ୍ତରାଜା, (ରାଜଦେଶ୍ୟ-ଅନ୍ୟରୂପ) ।

ରାଜଦ୍ରୁମ—ବ. ସୁନାରିଗଛ ।

ରାଜଦ୍ରୋହ—ବ. ( ୬ତତ୍ ) ରାଜାଙ୍କ ବିରୁଦ୍ଧାଚରଣ, ରାଜଶକ୍ତିର ପ୍ରତିକୂଳତା

ରାଜଦ୍ରୋହିତା—ବ. ରାଜାଙ୍କ ବିରୁଦ୍ଧାଚରଣ,ରାଜବିଧିର ଅମର୍ଯ୍ୟାଦାକରଣ ।

ରାଜଦ୍ରୋହୀ—ପୁଂ.ବିଂ.(ରାଜନ୍ + ଦ୍ରୁହ୍ + କ.ଇନ୍)ରାଜବିରୋଧୀ,ରାଜଶକ୍ତିର ପ୍ରତିକୂଳତାଚରଣକାରୀ, ରାଜବିଧିର ଉଲ୍ଲଙ୍ଘନକାରୀ, (ସ୍ତ୍ରୀ) ରାଜଦ୍ରୋହିଣୀ ।

ରାଜଦ୍ୱାର—ବ. (୬ତତ୍)ରାଜାଙ୍କ ସିଂହଦ୍ୱାର, ରାଜସାନ୍ନିଧ୍ୟ, ରାଜାଙ୍କ ଗ୍ରାମ, ରାଜସଭା, ବିଚାରାଳୟ ।

ରାଜଧତ୍ତୂରକ--ବ. ପୀତଧାତୁରା,କନକଧାତୁରା ।

ରାଜଧର୍ମ--ବ.(୬ତତ୍)ରାଜାଙ୍କର କର୍ତ୍ତବ୍ୟ କର୍ମ, (ଯଥା—ପ୍ରଜାପାଳନାଦି), ରାଜନୀତି ଦେଖ ।

ରାଜଧର୍ମବିଦ୍—ବ ଓ ବିଂ. (ରାଜଧର୍ମ + ବିଦ୍ + କ. କ୍ୱିପ୍) ରାଜନୀତିବିଶାରଦ ।

ରାଜଧାନକ—କ୍ଲୀ.ବ.ରାଜପୁର,ରାଜ୍ୟର ପ୍ରଧାନ ନଗର, ଯେଉଁଠି ରାଜା ବାସ କରନ୍ତି, ସ୍କନ୍ଧାବାର,(ଅନ୍ୟରୂପ, ରାଜଧାନିକା) ।

ରାଜଧାନୀ—ବ. (ରାଜନ୍ + ଧା + ଅନ + ଈ) ରାଜଧାନକ ଦେଖ ।

ରାଜଧାନ୍ୟ-ବ. ରାଜଭୋଗ୍ୟ ଧାନବିଶେଷ, ସୁବାସିତ ସରୁ ଧାନ ।

ରାଜଧାମ—କ୍ଲୀ. ବ. ରାଜପ୍ରାସାଦ,ରାଜ- [ ନଅର ।

ରାଜଧୁର—ବ. ରାଜ୍ୟଭାର,ରାଜ୍ୟଶାସନରୂପ ଭାର ।

ରାଜଧୁସ୍ତୂରକ—ପୁଂ. ବ. ବୃହତ୍ଧୁସ୍ତୂର, କନକ ଧୁତୁରା ।

ରାଜନ୍—ପୁଂ. ବ. ପ୍ରଭୁ, ନୃପତି, ହେ ମହାରାଜ ! ସମ୍ବୋଧନ ପଦ ।

ରାଜନ—ଗ୍ରା. ପୁଂ. ବ. ( ସମ୍ବୋଧନ ) ହେ ରାଜା ! ରାଜା ।

ରାଜନଅ(ବ)ର—ଗ୍ରା.ବ.ରାଜାଙ୍କ ଉଆସ,

ରାଜପ୍ରାସାଦ ।
ରାଜନଗର—ବି. ରାଜଧାନୀକ ଦେଖ, ଓଡ଼ିଶାର କନକା ରାଜ୍ୟର ରାଜଧାନୀ ।
ରାଜନନ୍ଦନ—ପୁଂ. ବି. (୬ତତ୍) ରାଜପୁତ୍ର, ରାଜାଙ୍କ ପୁଅ,(ସ୍ତ୍ରୀ)ରାଜନନ୍ଦିନୀ ।
ରାଜନୟ—ବି. (ରାଜନ୍+ନୟ) ରାଜନୀତି ଦେଖ ।
ରାଜନାପିତ—ପୁଂ. ବି. ଶ୍ରେଷ୍ଠନାପିତ ।
ରାଜନାମା—ପୁଂ. ବି. ପଟୋଳ ।
ରାଜନୀତ—ଗ୍ରା. ବି. ରାଜାଙ୍କର ନିତ୍ୟକର୍ମ, ରାଜାଙ୍କର ପ୍ରାତ୍ୟାହିକ ଦୈହିକ କର୍ମମାନ, ରାଜାଙ୍କ ନୀତିପର ଆଡ଼ମ୍ବରଯୁକ୍ତ କାର୍ଯ୍ୟ ।
ରାଜନିୟମ—ପୁଂ. ବି. (୬ତତ୍) ରାଜବିଧି, ରାଜାଙ୍କ ରାଜ୍ୟଶାସନପ୍ରଣାଳୀ, ଆଇନ୍ ।
ରାଜନିବେଶନ—କ୍ଳୀ.ବି. ରାଜପ୍ରାସାଦ ।
ରାଜନୀତି—ବି. (୬ତତ୍) ରାଜ୍ୟଶାସନ ବିଷୟକ ନୀତିଶାସ୍ତ୍ର, ସାମ ଦାନ ଭେଦ ଦଣ୍ଡ ଏହି ଚତୁର୍ବିଧ ଉପାୟ, ରାଜ୍ୟଶାସନ ସମ୍ବନ୍ଧୀୟ ନିୟମାବଳୀ ।
ରାଜନୀତିକ—ବିଂ. ( ରାଜନୀତି+କ ) ରାଜନୈତିକ,ରାଜନୀତି ଘଟିତ,ରାଜନୀତି ସମ୍ବନ୍ଧୀୟ ।
ରାଜନୀତିଜ୍ଞ—ପୁଂ.ବିଂ. (ରାଜନୀତି+ଜ୍ଞା+କ.ଅ)ରାଜନୀତି ବିଷୟରେ ଅଭିଜ୍ଞ, ସାମ ଦାନ ଭେଦ ଦଣ୍ଡ ଉପାୟବିତ୍ ।
ରାଜନୀଳ—କ୍ଳୀ. ବି. ମରକତମଣି,ଇନ୍ଦ୍ରନୀଳମଣି ।
ରାଜନୈତିକ—ପୁଂ.ବିଂ. (ରାଜନୀତି+ଇକ) ରାଜନୀତି ସମ୍ବନ୍ଧୀୟ ବା ବିଷୟକ, ରାଜନୀତିଜ୍ଞ ।
ରାଜନ୍ୟ—ବି. (ରାଜନ୍+ଯ) ରାଜବଂଶଜ ବ୍ୟକ୍ତି, କ୍ଷତ୍ରିୟ, ରାଜା, କ୍ଷୀରିକା ବୃକ୍ଷ, କ୍ଷୀରକୋଳି ଗଛ, ଅଗ୍ନି, ବଟ, ଅଶ୍ୱତ୍ଥ, ଯଜ୍ଞଡୁମ୍ବୁର, ପାରିଶ ଓ ପାର୍କଟ ବୃକ୍ଷ ।
ରାଜନ୍ୟକ—କ୍ଳୀ. ବି. କ୍ଷତ୍ରିୟ ରାଜ୍ୟସମୂହ, କ୍ଷତ୍ରିୟ ବେଶ ଓ ଦେଶ ।

ରାଜନ୍ୟତ୍ୱ—କ୍ଳୀ. ବି. (ରାଜନ୍ୟ+ତ୍ୱ) କ୍ଷତ୍ରିୟପଣିଆଁ ।
ରାଜନ୍ୟବନ୍ଧୁ—ବି. (ରାଜନ୍ୟ+ବନ୍ଧୁ) ରାଜକୁଟୁମ୍ବ । [ ବର୍ଗ ।
ରାଜନ୍ୟବର୍ଗ—ବି. ରାଜାସମୂହ,କ୍ଷତ୍ରିୟ-
ରାଜନ୍ୟବାନ୍—ପୁଂ. ବିଂ. (ରାଜନ୍ୟ+ବତ୍)ରାଜପୁତ୍ରାଦି ସହିତ ସମ୍ବନ୍ଧଶାଳୀ ।
ରାଜନ୍ୱାନ୍—ପୁଂ.ବିଂ.(ରାଜନ୍+ବତ୍) ଉତ୍ତମ ରାଜା କର୍ତ୍ତୃକ ଶାସିତ ଦେଶ, (ସ୍ତ୍ରୀ) ରାଜନ୍ୱତୀ ।
ରାଜପଟ—ଗ୍ରା.ବି.ନୀଳଶାଢ଼ି,ସୁନ୍ଦର ବସ୍ତ୍ର
ରାଜପଟୋଳ—ବି.ମଧୁର ପଟୋଳ,ଏକପ୍ରକାର କାକୁଡ଼ି ।
ରାଜପଟ୍ଟ—ବି. (ରାଜନ୍+ପଟ୍ଟ)ରାଜାଙ୍କ ପଗଡ଼ି, ରାଜମୁକୁଟ, ରାଜସିଂହାସନ, ରାଜସନନ୍ଦ, ଚୁମ୍ବକ ପଥର ।
ରାଜପଟ୍ଟିକା—ସ୍ତ୍ରୀ.ବି. ଗୃତକପକ୍ଷୀ ।
ରାଜପଣ—ଗ୍ରା.ବି. ରାଜତ୍ୱ ଦେଖ ।
ରାଜପତି—ବି.(ରାଜନ୍+ପତି)ସମ୍ରାଟ୍ ।
ରାଜପତ୍ନୀ—ସ୍ତ୍ରୀ.ବି. ରାଜମହିଷୀ,ପିତ୍ତଳ ।
ରାଜପଥ-ବି. (ରାଜନ୍+ପଥ)ରାଜମାର୍ଗ, ପ୍ରଶସ୍ତମାର୍ଗ, ସଡ଼କ ।
ରାଜପଦ(ବୀ)—ବି. (୬ତତ୍) ରାଜତ୍ୱ, ରାଜାରୂପେଅଧିଷ୍ଠାନ ବା ରାଜ୍ୟଶାସନ, ରାଜତ୍ୱ, ଆଧିପତ୍ୟ, ରାଜଦତ୍ତ ପଦ ।
ରାଜପଦ୍ଧତି—ସ୍ତ୍ରୀ.ବି. (ରାଜନ୍+ପଦ୍ଧତି) ପ୍ରଧାନ ପଥ, ରାଜପଥ, ରାଜନୀତି ।
ରାଜପରିଚ୍ଛଦ—ବି. ( ୬ତତ୍ ) ମହାର୍ଘ ରାଜାଙ୍କ ପୋଷାକ, (କ.ଧା) ରାଜଦତ୍ତ ପୋଷାକ, ଖିଲତ୍, ରାଜକର୍ମଚାରୀଙ୍କ ପରିଚୟ ପୋଷାକ, ରାଜଦରବାରରେ ପରିଧେୟ ପୋଷାକ ।
ରାଜପରିବାର—ବି. (୬ତତ୍) ରାଜବଂଶ, ରାଜକୁଳ ।
ରାଜପର୍ଣ୍ଣୀ—ସ୍ତ୍ରୀ.ବି. ପ୍ରସାରଣୀ ଲତା ।
ରାଜପଲାଣ୍ଡୁ—ବି. ରକ୍ତବର୍ଣ୍ଣ ପଲାଣ୍ଡୁ, ଲାଲବର୍ଣ୍ଣ ପିଆଜ ।
ରାଜପାଟ—ଗ୍ରା.ବି. ରାଜସିଂହାସନ ।
ରାଜପିତ୍ତଳ—ବି. ବେଙ୍ଗୀପିତ୍ତଳ,ପିତ୍ତଳ, ତମ୍ବା ଓ ଦସ୍ତାମିଶ୍ରିତ ଧାତୁ ।
ରାଜପୁତ—ଗ୍ରା.ବି.(ସଂ-ରାଜପୁତ୍ର)ମଧ୍ୟଭାରତର ରାଜପୁତାନା ଅଧିବାସୀ କ୍ଷତ୍ରିୟ ଜାତିବିଶେଷ, ରଜପୁତ ।
ରାଜପୁତାନା—ଗ୍ରା.ବି.ବିନ୍ଧ୍ୟାଚଳର ଉତ୍ତରରେ ଓ ସିନ୍ଧୁନଦୀର ଦକ୍ଷିଣ ଓ ପୂର୍ବଦିଗରେ ଅବସ୍ଥିତ କ୍ଷତ୍ରିୟ ରାଜ୍ୟମଣ୍ଡଳ ।
ରାଜପୁତ୍ର—ବି. (୬ତତ୍) ରାଜନନ୍ଦନ, ରାଜକୁମାର, ଯୁବରାଜ, ରାଜପୁତ (ଜାତି),କରଣ କନ୍ୟାଠାରୁ କ୍ଷାତ୍ରଜାତ ଜାତିବିଶେଷ, ଅମ୍ବଷ୍ଠ କନ୍ୟାଠାରୁ ବୈଶ୍ୟଜାତ ଜାତିବିଶେଷ, ମହାରାଜଚୂତ, କ୍ଷୀରିକାବୃକ୍ଷ, ( ରାଜା + ପୁତ୍ର ) ବୁଧଗ୍ରହ ।
ରାଜପୁତ୍ରକ—ପୁଂ.ବି. (ରାଜପୁତ୍ର+କ) ରାଜପୁତ୍ର ଦେଖ,ରାଜାମ୍ର, ରାଇଗଛ, (ସ୍ତ୍ରୀ) ରାଜପୁତ୍ରିକା ।
ରାଜପୁତ୍ରା—ସ୍ତ୍ରୀ. ବି. (ବ.ବ୍ରୀ) ରାଜାଙ୍କ ମାତା, ରାଜା ଯାହାର ପୁଅ ଅଟେ ।
ରାଜପୁତ୍ରିକା—ସ୍ତ୍ରୀ.ବି.(ରାଜପୁତ୍ରକ+ଆ) ଶରାଳିପକ୍ଷୀ, ରାଜକନ୍ୟା, ଜେମା, ଧଳା ଯୂଇଫୁଲ,କାଞ୍ଚିପୁଷ୍ପ,ପିତ୍ତଳ,ଏକପ୍ରକାର ପିତାଳିଆ, କଟୁତୁମ୍ବୀ ।
ରାଜପୁତ୍ରୀ—ସ୍ତ୍ରୀ.ବି. (୬ତତ୍) କଟୁତୁମ୍ବୀ, ରେଣୁକା, ଜାଈ, ରାଜରୀତି,ଛୁଚୁନ୍ଦରୀ, ମାଳତୀଲତା ।
ରାଜପୁର—କ୍ଳୀ.ବି.ରାଜନଗରୀ,ରାଜଧାନୀ, ରାଜପ୍ରାସାଦ, ନ୍ୟାୟବିଶେଷ ।
ରାଜପୁରୀ— ବି. (୬ତତ୍) ରାଜଭବନ, ରାଜବାଟି ।
ରାଜପୁରୁଷ--ବି. (୬ତତ୍)ରାଜକର୍ମଚାରୀ, ରାଜବଂଶୀୟ ପୁରୁଷ, ଶାନ୍ତିରକ୍ଷକ ।
ରାଜପୁରୋଧା—ବି.ରାଜାଙ୍କର ପୁରୋହିତ । [ ଫୁଲ ।
ରାଜପୁଷ୍ପ—ବି.ନାଗକେଶର,ନାଗେଶ୍ୱର
ରାଜପୁଷ୍ପୀ—ସ୍ତ୍ରୀ.ବି. କରୁଣୀବୃକ୍ଷ, ବନମଲ୍ଲିକା, ଜାତିପୁଷ୍ପ ।
ରାଜପୂଜା—ବି.ରାଜାଙ୍କୁ ଲୋକେ ଯେଉଁପରି ପୂଜା କରନ୍ତି ।

ରାଜପୂଜିତ—ପୁଂ.ବିଂ. (୬ତତ୍ପୁ)ଯାହାଙ୍କୁ ରାଜା ପୂଜା କରନ୍ତି,(ସ୍ତ୍ରୀ)ରାଜପୂଜିତା ।
ରାଜପୂଜ୍ୟ—କ୍ଲୀ. ବି. ସ୍ୱର୍ଣ୍ଣ, (ପୁଂ. ବିଂ. ୬ତତ୍ପୁ) ରାଜାଙ୍କ ପୂଜନୀୟ ।
ରାଜପ୍ରକୃତି—ସ୍ତ୍ରୀ.ବି.ରାଜପୁରୁଷ ଦେଖ ।
ରାଜପ୍ରତିନିଧି—ବି. ରାଜାଙ୍କ ପରିବର୍ତ୍ତେ ରାଜ୍ୟ ଶାସନ କରିବା ନିମନ୍ତେ ରାଜାଙ୍କ ଦ୍ୱାରା ନିଯୁକ୍ତ କର୍ମଚାରୀ । [ ଗୃହ ।
ରାଜପ୍ରସାଦ—ବି.(୬ତତ୍ପୁ)ରାଜାଙ୍କ ଅନୁ-
ରାଜପ୍ରାସାଦ—ବି.(୬ତତ୍ପୁ) ରାଜଭବନ, ରାଜନଅର, ରାଜାଙ୍କ ଅଟ୍ଟାଳିକା ।
ରାଜପ୍ରିୟ—ବି.ରାଜପଲାଣ୍ଡୁ, କରୁଣୀପୁଷ୍ପ-ବୃକ୍ଷ, (ବିଂ) ରାଜାଙ୍କର ପ୍ରିୟ (ପାତ୍ର ବା ବସ୍ତୁ) ।
ରାଜପ୍ରେଷ୍ୟ—ପୁଂ.ବି. ରାଜଦୂତ, ରାଜ-କର୍ମଚାରୀ ।
ରାଜଫଣିଜ୍ଝକ—ପୁଂ.ବି.ନାଗରଙ୍ଗବୃକ୍ଷ ।
ରାଜଫଳ—କ୍ଲୀ. ବି. ପଟୋଳ, ରାଜାମ୍ର ବୃକ୍ଷ, ରାଜାଦନୀ ବୃକ୍ଷ ।
ରାଜଫଳା—ସ୍ତ୍ରୀ. ବି. ଜମ୍ବୁ, ଜାମୁ ।
ରାଜଫଲ୍‌ଗୁ—ବି. କାକୋଦୁମ୍ବର ।
ରାଜଭକ୍ତ—କ୍ଲୀ. ବି. ନୃପଭୋଜ୍ୟ ଅନ୍ନ-ପାନାଦି, (ପୁଂ. ବିଂ. ୬ତତ୍ପୁ) ରାଜାଙ୍କ ପ୍ରତି ଭକ୍ତିଯୁକ୍ତ, ରାଜାଙ୍କ ପ୍ରତି ଅନୁ-ରକ୍ତ, ଯେ ରାଜବିଦ୍ରୋହୀ ନୁହେ,(ସ୍ତ୍ରୀ) ରାଜଭକ୍ତା ।
ରାଜଭକ୍ତି—ସ୍ତ୍ରୀ.ବି. ରାଜାଙ୍କ ପ୍ରତି ଭକ୍ତି, ରାଜାଙ୍କ ପ୍ରତି ଅନୁରାଗ ।
ରାଜଭଙ୍ଗ--ବି.ରାଜ୍ୟନାଶ,ଅରାଜକତା ।
ରାଜଭଟ—ପୁଂ. ବି. ରାଜସୈନିକ ।
ରାଜଭଟିକା—ସ୍ତ୍ରୀ. ବି. ହାପୁଣୀବୃକ୍ଷ ।
ରାଜଭଦ୍ରକ—ପୁଂ. ବି. ପାରିଭଦ୍ର ବୃକ୍ଷ, ପାଲଧୁଆଗଛ, ନିମ୍ବଗଛ, କୁଡ଼, କୁନ୍ଦୁ-ରୁକ, ଧଳା ଅରଖଗଛ ।
ରାଜଭୟ—ବି. (୬ତତ୍ପୁ) ରାଜଭୀତି, ରାଜାଙ୍କ ଭୟ, ରାଜାଙ୍କ ନିକଟର ଶଙ୍କା ବା ତ୍ରାସ, (୫ତତ୍ପୁ) ରାଜାଙ୍କୁ ଭୟ, ରାଜାଙ୍କ ଠାରୁ ପ୍ରାପ୍ତ ଭୟ ।
ରାଜଭବନ—କ୍ଲୀ.ବି. ରାଜାଙ୍କର ଉଆସ, ରାଜବାଟି ।
ରାଜଭାଗ—ବି.ରାଜାଙ୍କୁ ଦେୟ ରାଜସ୍ୱ-ଆଦି, ( ପ୍ରା.ପୁସ୍ତ.ବ ) ଦାନାଧ୍ୟକ୍ଷଙ୍କର କେତେକ ବିଶିଷ୍ଟ ଅଧିକାର ।
ରାଜଭାଷା—ସ୍ତ୍ରୀ.ବି.(୬ତତ୍ପୁ) ରାଜାଙ୍କର ମାତୃଭାଷା ।
ରାଜଭୂୟ—କ୍ଲୀ.ବି.(ରାଜନ୍ + ଭୂ + ଯ) ରାଜ୍ୟ, ରାଜତ୍ୱ, ରାଜାଙ୍କର କାର୍ଯ୍ୟ ।
ରାଜଭୂଷା—ବି.ରାଜାଙ୍କର ପରିଚ୍ଛଦାଦି ।
ରାଜଭୃତ—ପୁଂ.ବି.ରାଜାଙ୍କର ବେତନ-ଭୋଗ୍ୟ ଭୃତ୍ୟ ।
ରାଜଭୃତ୍ୟ —ପୁଂ.ବି. (ରାଜନ୍+ଭୃତ୍ୟ) ରାଜାଙ୍କ ଚାକର ।
ରାଜଭୋଗ— ବି. ଶାଳିଧାନ୍ୟବିଶେଷ, ରାଜୋଚିତସୁଖ, ଅତୁଳ ଐଶ୍ୱର୍ଯ୍ୟ, ରାଜାଙ୍କ ଉପଭୋଗ୍ୟ ସାମଗ୍ରୀ, ରାଜାଙ୍କ ପରି ସୁଖସ୍ୱାଚ୍ଛନ୍ଦ୍ୟ ଉପଭୋଗ, (ଗ୍ରା.ବ) ମିଷ୍ଟାନ୍ନବିଶେଷ ।
ରାଜଭୋଗୀନ--ବିଂ.ରାଜଭୋଗ ଯୋଗ୍ୟ, ଉତ୍କୃଷ୍ଟ ଭୋଜ୍ୟ ଆହାରକାରୀ, ରାଜାଙ୍କ ଭୋଜନର ଉପଯୁକ୍ତ ।
ରାଜଭୋଗ୍ୟ—ବିଂ. ରାଜାଙ୍କର ଭୋଜନ ବା ଉପଭୋଗର ଯୋଗ୍ୟ, (ସ୍ତ୍ରୀ)ରାଜ-ଭୋଗ୍ୟା, (ବି)ଜାଇଫଳ, ପ୍ରିୟାଳବୃକ୍ଷ, ଚିରଞ୍ଜିବୃକ୍ଷ ।
ରାଜଭୋଜନ—କ୍ଲୀ. ବି. ରାଜାଙ୍କର ମନୋଜ୍ଞ ବା ଭୋଜନ ବା ଠାଆ ।
ରାଜଭ୍ରାତା—ପୁଂ.ବି.(୬ତତ୍ପୁ)ରାଜାଙ୍କର ଭାଇ । [ ବୃକ୍ଷ ।
ରାଜମଇ—ଗ୍ରା. ବି. ଏକପ୍ରକାର ବନ୍ୟ
ରାଜମଣି-ବି.ମଣିଶ୍ରେଷ୍ଠ, ମୁକ୍ତାବାନ୍‌ମଣି ।
ରାଜମଣ୍ଡଳ—ବି. ରାଜସମୂହ, ଦ୍ୱାଦଶ-ବିଧ ରାଜା,(ଯଥା—ଅରି, ମିତ୍ର,ଅରିର ମିତ୍ର, ମିତ୍ରର ମିତ୍ର, ଅରିମିତ୍ରର ମିତ୍ର, ବିଜିଗୀଷୁର ପୁରଃସର ଏହିପାଞ୍ଚ ଓ ପାର୍ଷ୍ଣିଗ୍ରାହ, ଆକ୍ରନ୍ଦ, ପାର୍ଷ୍ଣିଗ୍ରାହାସାର, ଆକ୍ରନ୍ଦାସାର ଏହି ଚାରି, ବିଜିଗୀଷୁର ପଶ୍ଚାଦ୍‌ବର୍ତ୍ତୀ ଏବଂ ମଧ୍ୟବର୍ତ୍ତୀ ଓ ଉଦା-ସୀନ ଏହି ତିନି—ସମୁଦାୟ ଦ୍ୱାଦଶ) ।
ରାଜମଣ୍ଡୁକ—ପୁଂ.ବି.ବଡ଼ବେଙ୍ଗ,ସୁନା-ବେଙ୍ଗ । [ ସଚିବ ।
ରାଜମନ୍ତ୍ରୀ—ପୁଂ. ବି. (୬ତତ୍ପୁ) ରାଜାଙ୍କ
ରାଜମନ୍ଦିର—ବି. (୬ତତ୍ପୁ) ରାଜଗୃହ, ରାଜପ୍ରାସାଦ, ରାଜନଅର ।
ରାଜମର୍ଯ୍ୟାଦା—ବି. ରାଜାଙ୍କ ଉପଯୁକ୍ତ ସମ୍ମାନ, ରାଜବିଧି ।
ରାଜମଲ୍ଲ—ପୁଂ. ବି. ରାଜଗଣଙ୍କ ମଲ୍ଲ ।
ରାଜମଲ୍ଲୀ—ବି. ଏକପ୍ରକାର ବଡ଼ ମଲ୍ଲୀ-ଫୁଲ ।
ରାଜମହଲ—ଗ୍ରା. ବି. ରାଜପ୍ରାସାଦ, ରାଜାନ୍ତଃପୁର, ବିହାର ପ୍ରଦେଶର ଶାନ୍ତାଲପରଗନ୍ନା ନିକଟସ୍ଥ ପର୍ବତ ମାଳା-ବିଶେଷ ।
ରାଜମହିଷୀ—ସ୍ତ୍ରୀ.ବି. (୬ତତ୍ପୁ) ରାଜାଙ୍କ କୃତାଭିଷେକା ପତ୍ନୀ,ପାଟରାଣୀ,ରାଣୀ, ରାଣୀମାନେ । [ ମାତା ।
ରାଜମାତା—ସ୍ତ୍ରୀ. ବି. (୬ତତ୍ପୁ) ରାଜାଙ୍କ
ରାଜମାନ—ବି. ରାଜୋଚିତ ସମ୍ମାନ, ରାଜାଙ୍କଦ୍ୱାରା ପ୍ରଦତ୍ତ ସମ୍ମାନ ।
ରାଜମାନତ୍ୱ—କ୍ଲୀ.ବି. ଦ୍ୱୀପ୍ୟମାନତ୍ୱ, ଦୀପ୍ତି, ଔଜ୍ଜ୍ୱଲ୍ୟ ।
ରାଜମାର୍ଗ—ବି. (ରାଜନ୍+ମାର୍ଗ)ରାଜ-ପଥ, ସର୍ବସାଧାରଣ ଅବାଧରେ ବ୍ୟବ-ହାର କରିବା ରାସ୍ତା, ବଡ଼ଦାଣ୍ଡ, ୪୦ ହାତ ଚଉଡ଼ା ରାସ୍ତା, (୬ତତ୍ପୁ)ରାଜ-ପଦ୍ଧତି । [ ମାଷ ।
ରାଜମାଷ—ବି. (୬ତତ୍ପୁ) ବରଗୁଡ଼,ମହା-
ରାଜମାଷ୍ୟ—ବିଂ. (ରାଜମାଷ+ଯ)ରାଜ-ମାଷ=ବରଗଡ଼ା ହେବାର ଉପଯୁକ୍ତ ( ଭୂମି ) ।
ରାଜମିସ୍ତ୍ରୀ—ଗ୍ରା. ବି. ସ୍ଥପତି, ବାସ୍ତୁଶିଳ୍ପୀ, କୋଠାକାମ କରନ୍ତା କାରିଗର ।
ରାଜମୁକୁଟ—ବି. ରାଜାଙ୍କ ମସ୍ତକସ୍ଥ ମୁକୁଟ ।
ରାଜମୁଆ—ଗ୍ରା.ବି.ଭଦ୍ରମୁସ୍ତକ,ବଡ଼ମୁଥା ।
ରାଜମୁଦ୍ଗ—ବି. (ରାଜ+ମୁଦ୍ଗ) ଉତ୍ତମ ମୁଗ ।
ରାଜମୁଦ୍ରା—ବି. ରାଜାଙ୍କ ନାମାଙ୍କିତ ଦେଶ ପ୍ରଚଳିତ ମୁଦ୍ରା ।

ରାଜମୁନି—ପୁଂ.ବି. (ରାଜ+ମୁନି)ରାଜର୍ଷି ।
ରାଜମେଳକ—ବି. ରାଜକୋଟକ ଦେଖ ।
ରାଜଯକ୍ଷ୍ମା—ବି. କ୍ଷୟରୋଗ, ମାରାତ୍ମକ ଶ୍ୱାସରୋଗବିଶେଷ, ରୋଗରାଟ୍ ।
ରାଜଯକ୍ଷ୍ମୀ—ପୁଂ.ବିଂ. (ରାଜଯକ୍ଷ୍ମା+ଇନ୍) କ୍ଷୟରୋଗୀ, ଯକ୍ଷ୍ମାରୋଗଗ୍ରସ୍ତ ।
ରାଜଯଜ୍ଞ—ପୁଂ. ବି. ( ରାଜନ୍+ଯଜ୍ଞ ) ରାଜକୃତ ଯଜ୍ଞ ।
ରାଜଯାନ—ବି. ପାଲଙ୍କୀ ।
ରାଜଯୋଗ—ପୁଂ.ବି. (ରାଜ+ଯୋଗ) ଜ୍ୟୋତିଷୋକ୍ତ ଯୋଗବିଶେଷ, ଯୋଗ ସାଧନର ମାର୍ଗବିଶେଷ, ରାଜବିଦ୍ୟା, କର୍ମଯୋଗର ଚରମ ଅବସ୍ଥା ।
ରାଜଯୋଗ୍ୟ—ବିଂ. (ରାଜନ୍+ଯୋଗ୍ୟ) ରାଜାର୍ହ, ନୃପୋଚିତ, ମହତ୍ତ୍ୱ, (ବି) ଚନ୍ଦନ ।
ରାଜଯୋଟକ—ବି.ରାଜକୋଟକ ଦେଖ ।
ରାଜଯୋଷିତ୍—ସ୍ତ୍ରୀ.ବି.(ରାଜନ୍+ଯୋଷିତ୍) ରାଜସ୍ତ୍ରୀ, ରାଜନାରୀ । [ ରକ୍ତ ।
ରାଜରକ୍ତ—ବି. (୬ତତ୍) ରାଜାଙ୍କର
ରାଜରଙ୍ଗ—ବି. ରଜତ,ରୌପ୍ୟ,ରୁପା ।
ରାଜରତ୍ନ—ବି. ମାଣିକ୍ୟ ।
ରାଜରଥ—ବି.ରାଜଯାନ, ରାଜା ଯେଉଁ ଯାନରେ ଚଢ଼ନ୍ତି, ମଟରଗାଡ଼ିପ୍ରଭୃତି ।
ରାଜରାଜ—ବି. ( ରାଜନ୍—ରାଜା ) ଅଧିରାଜ, ଏକଚ୍ଛତ୍ର ରାଜା, ଚନ୍ଦ୍ର, କୁବେର, ସମ୍ରାଟ୍ ।
ରାଜରାଜଭୂତିଦାୟୀ—ଗ୍ରା.ବି. କୁବେର, ସମ୍ପତ୍ତିଦାୟକ ।
ରାଜରାଜେଶ୍ୱର—ପୁଂ.ବି. ରାଜାଧିରାଜ, ସମ୍ରାଟ୍, ଯକୃତ୍ ଓ କୁଷ୍ଠରୋଗର ଔଷଧବିଶେଷ ।
ରାଜରାଜେଶ୍ୱରୀ—ସ୍ତ୍ରୀ.ବି. ଦଶମହାବିଦ୍ୟାନ୍ତର୍ଗତ ଦେବୀବିଶେଷ, ଭୁବନେଶ୍ୱରୀ, ସାମ୍ରାଜ୍ଞୀ ।
ରାଜରାଜେଶ୍ୱରୀଭିକ୍ଟୋରିୟା—ଗ୍ରା.ସ୍ତ୍ରୀ. ବି. ଭାରତ ସମ୍ରାଟ୍ ୮ମ ଏଡ଼୍‌ଓ୍ୱାର୍ଡଙ୍କ ପ୍ରପିତାମହୀ, ୫ମ ଜର୍ଜଙ୍କ ପିତାମହୀ,୭ମ ଏଡ଼୍‌ଓ୍ୱାର୍ଡଙ୍କ ମାତା ।

ରାଜରାଜତା( ରାଜ୍ୟ )—ବି. ସାମ୍ରାଜ୍ୟ, ସମ୍ରାଟଙ୍କ ପଦ ।
ରାଜରାଣୀ—ଗ୍ରା.ସ୍ତ୍ରୀ.ବି. ରାଜ୍ଞୀ, ରାଜମହିଷୀ, ଅତୁଳ ଐଶ୍ୱର୍ଯ୍ୟଶାଳିନୀ ସ୍ତ୍ରୀ ।
ରାଜରୀତି—ସ୍ତ୍ରୀ. ବି. ପିତ୍ତଳବିଶେଷ, (୬ତତ୍) ରାଜାଙ୍କ ପଦ୍ଧତି ବା ପ୍ରଥା ।
ରାଜର୍ଷି—ପୁଂ.ବି. (ରାଜା+ଋଷି)କ.ଧା; ରାଜଶ୍ରେଷ୍ଠ, ଯେ ରାଜପଦରେ ଅଭିଷିକ୍ତ ହୋଇମଧ୍ୟ ଋଷିପରି ଜ୍ଞାନାଲୋଚନା କରନ୍ତି ଏବଂ ସାଂସାରିକ ମାୟା ବନ୍ଧନକୁ ଏଡ଼ାଇଥାଆନ୍ତି ।
ରାଜଲକ୍ଷଣ—କ୍ଲୀ. ବି. ମନୁଷ୍ୟଠାରେ ଦେଖାଯିବା ସମସ୍ତ ରାଜୋଚିତ ଚିହ୍ନ, (ସାମୁଦ୍ରିକ) ରାଜଚିହ୍ନ ।
ରାଜଲକ୍ଷ୍ମୀ—ସ୍ତ୍ରୀ.ବି. ( ୬ତତ୍ ) ରାଜଶ୍ରୀ, ରାଜ୍ୟର ଅଧିଷ୍ଠାତ୍ରୀ ରୂପେ ଗଣ୍ୟ ଲକ୍ଷ୍ମୀ, ରାଜଶୋଭା ।
ରାଜଲଖ୍—ଗ୍ରା.ବିଂ. ରାଜଯୋଗ୍ୟ ।
ରାଜବଂଶ—ବି. (ରାଜନ୍+ବଂଶ)ରାଜାଙ୍କର ବଂଶ, ରାଜକୁଳ ।
ରାଜବଂଶଜ—ବିଂ. (ରାଜ+ବଂଶ+ଜନ୍+ଅ) ରାଜାକୁଳଜାତ, (ସ୍ତ୍ରୀ) ରାଜବଂଶଜା ।
ରାଜବଂଶୀ—ଗ୍ରା.ପୁଂ.ବିଂ. ରାଜବଂଶରୁ ଜାତ, (ବି) କ୍ଷତ୍ରିୟଜାତିବିଶେଷ ।
ରାଜବଂଶୀୟ—ବିଂ. (ରାଜବଂଶ+ଈୟ) ରାଜବଂଶ ସମ୍ବନ୍ଧୀୟ,ରାଜବଂଶରୁ ଜାତ, (ସ୍ତ୍ରୀ) ରାଜବଂଶୀୟା ।
ରାଜବଂଶ୍ୟ—ବିଂ.(ରାଜବଂଶ+ଯ)ରାଜବଂଶୋଦ୍ଭବ,(ବି)ଜାତିବିଶେଷ, ରାଜବଂଶୀ, (ସ୍ତ୍ରୀ)ବଂଶ୍ୟା । [ ଚଢ଼େଇ ।
ରାଜବଣି—ଗ୍ରା. ବି. ଏକପ୍ରକାର ବଣି-
ରାଜବତ୍—ଅବ୍ୟ. ରାଜତୁଲ୍ୟ ।
ରାଜବଦର—ବି. ବରକୋଳି, ଲୁଣଅଁଳା, ଲବଣ ।
ରାଜବଧୂ—ସ୍ତ୍ରୀ.ବି. ରାଜବଂଶୀୟା ସ୍ତ୍ରୀ ।
ରାଜବନିତା—ସ୍ତ୍ରୀ.ବି.ରାଜବଂଶୀୟା ସ୍ତ୍ରୀ ।
ରାଜବନ୍ଦୀ—ପୁଂ.ବି. ରାଜଭଟ, (ଗ୍ରା.ବି) ରାଜନୈତିକ ଅପରାଧରେ ଦଣ୍ଡିତ ବ୍ୟକ୍ତି

ରାଜବର୍ଚ୍ଚସ୍—କ୍ଲୀ.ବି.ରାଜଶକ୍ତି,ରାଜପଦ ।
ରାଜବର୍ତ୍ତି—ଗ୍ରା.ବି. ମଣିବିଶେଷ ।
ରାଜବର୍ତ୍ମ—କ୍ଲୀ.ବି. ରାଜମାର୍ଗ ଦେଖ ।
ରାଜବଲା—ସ୍ତ୍ରୀ.ବି. ଭଦ୍ରବଲା, ପ୍ରସାରଣୀ ଲତା ।
ରାଜବଲ୍ଲଭ—ପୁଂ.ବି. (ରାଜନ୍+ବଲ୍ଲଭ) ରାଜବଦର ଦେଖ, (ବିଂ) ନୃପପ୍ରିୟ, ରାଜାଙ୍କର ପ୍ରୀତିପାତ୍ର ।
ରାଜବଲ୍ଲୀ-ସ୍ତ୍ରୀ.ବି.କଲରା(ଲତା ଓ ଫଳ)
ରାଜବଶୀକରଣ—ବି. (୬ତତ୍)ରାଜାଙ୍କୁ ନିଜର ବଶରେ ରଖିବା, ତନ୍ତ୍ରୋକ୍ତ ପ୍ରୟୋଗବିଶେଷ,ଯଦ୍ୱାରା ରାଜାମାନେ ସାଧକର ବଶୀଭୂତ ହୁଅନ୍ତି ।
ରାଜବସତି—ସ୍ତ୍ରୀ.ବି. ରାଜଭବନ ।
ରାଜବସ୍ତ୍ର—ବି. ରାଜପରିଚ୍ଛଦ ଦେଖ ।
ରାଜବାଟୀ—ଗ୍ରା.ବି. (୬ତତ୍) ରାଜପୁର, ରାଜଭବନ, ରାଜାଙ୍କ ଆବାସ ।
ରାଜବାନ୍—ବିଂ. (ରାଜନ୍+ବତ୍)ଯେଉଁ ଦେଶରେ ରାଜା ଥାଆନ୍ତି,(ସ୍ତ୍ରୀ)ରାଜବତୀ
ରାଜବାଳା—ସ୍ତ୍ରୀ.ବି.(୬ତତ୍)ରାଜକନ୍ୟା, ନୃପନନ୍ଦିନୀ ।
ରାଜବାହ—ପୁଂ.ବି. (ରାଜନ୍+ବହ୍+କ.ଅ) ଘୋଟକ, ଅଶ୍ୱ, ଘୋଡ଼ା,ରାଜବାହୀ ଦେଖ ।
ରାଜବାହନ—ପୁଂ.ବି.ରାଜହଂସ ରାଜାଙ୍କ ପୁଷ୍ପବିଶେଷ ।
ରାଜବାହୀ—ବି. (ରାଜନ୍+ବହ୍+କ. ଇନ୍)ରାଜାଙ୍କ ପାଟହାତୀ,(ବିଂ)ରାଜାଙ୍କୁ ଯେ ବହନ କରେ ।
ରାଜବାହ୍ୟ—ପୁଂ. ବି. (ରାଜନ୍+ବହ୍+ଘ୍ୟ) ରାଜବାହକ ହସ୍ତୀ, ଗଜେନ୍ଦ୍ର-କୁଞ୍ଜର, ପାଟହାତୀ. (ବିଂ) ରାଜାଙ୍କ ଦ୍ୱାରା ବହନଯୋଗ୍ୟ । [ ପକ୍ଷୀ ।
ରାଜବି—ପୁଂ. ବି. ରାଜପକ୍ଷୀ, ନୀଳକଣ୍ଠ
ରାଜବିଚାରାଳୟ—ବି. ଧର୍ମାଧିକରଣ, ରାଜଦରବାର ।
ରାଜବିଦ୍ୟା—ସ୍ତ୍ରୀ. ବି. ରାଜନୀତି, ରାଜଯୋଗ ଦେଖ, ଶ୍ରେଷ୍ଠବିଦ୍ୟା ।
ରାଜବିଦ୍ୟାରାଜଗୁହ୍ୟ—ବି. ଶ୍ରୀମଦ୍ଭଗବଦ୍

ଗୀତାର ନବମ ଅଧ୍ୟାୟରେ ବର୍ଣ୍ଣିତ ଭଗବାନଙ୍କର ସର୍ବବ୍ୟାପିତ୍ୱ ସମ୍ବନ୍ଧେ ଉପଦେଶ ।

ରାଜବଦ୍ରୋହ—ବି. ( ୬ତତ୍ତ୍ୱ ) ରାଜାଙ୍କ ବିରୁଦ୍ଧାଚରଣ, ରାଜବିରୁଦ୍ଧରେ ଅସ୍ତ୍ରଧାରଣ ।

ରାଜବଦ୍ରୋହୀ—ପୁଂ. ବିଂ. ( ୬ତତ୍ତ୍ୱ ) ରାଜାଙ୍କ ବିରୁଦ୍ଧାଚାରୀ, ରାଜାଙ୍କ ବିରୁଦ୍ଧରେ ଅସ୍ତ୍ରଧାରୀ ।

ରାଜବିଧାନ—ବି. ରାଜବଂଶ ପ୍ରଚଳିତ ନିୟମ, ରାଜାଙ୍କ ପ୍ରବର୍ତ୍ତିତ ଆଇନ ।

ରାଜବିଧି—ବି. (କ.ଧା) ରାଜାଙ୍କ ନିୟମ, ଆଇନ ।

ରାଜବିପ୍ଳବ—ବି. ( ୬ତତ୍ତ୍ୱ ) ପ୍ରଚଳିତ ରାଜ୍ୟଶାସନ ପ୍ରଣାଳୀର ପରିବର୍ତ୍ତନ, ରାଜବିଦ୍ରୋହ, ରାଜ୍ୟବିପ୍ଳବ ।

ରାଜବିଦ୍ୱେଷ—ବି. ରାଜାଙ୍କ ବିରୁଦ୍ଧରେ ଦ୍ୱେଷ । [ ବା ଭାଗ୍ୟ ।

ରାଜବିରାଦର—ଗ୍ରା. ବି. ରାଜାଙ୍କ କୁଟୁମ୍ବ

ରାଜବିରାଦରାନ୍—ଗ୍ରା.ବି. ରାଜପରିବାର କୁଟୁମ୍ବିତା ଦ୍ୱାରା ଆବଦ୍ଧ ବ୍ୟକ୍ତିଗଣ ।

ରାଜବିରୋଧ-ବି.ରାଜାଙ୍କ ସଙ୍ଗେ ଶତ୍ରୁତା, ରାଜବିଦ୍ରୋହ ।

ରାଜବିହାର—ବି. ରାଜାଙ୍କ ବାସଯୋଗ୍ୟ ବୌଦ୍ଧାଶ୍ରମ ।

ରାଜବଂଶୀ—ବିଂ. ( ରାଜବଂଶ+ଇନ୍ ) ରାଜବଂଶୀୟ ।

ରାଜବୀଥୀ—ସ୍ତ୍ରୀ. ବି. ରାଜପଥ, ରାଜମାର୍ଗ, ପ୍ରଶସ୍ତ ମାର୍ଗ ।

ରାଜବୃକ୍ଷ—ପୁଂ. ବି. ସୁନାରିଗଛ,ପିଆଲ ବୃକ୍ଷ, ଲଙ୍କାସିଜୁ, ଫଣଫଣା ଗଛ ।

ରାଜବୃତ୍ତ—କ୍ଳୀ. ବି. (୬ତତ୍ତ୍ୱ) ରାଜୋଚିତ ଆଚରଣ, ରାଜାଙ୍କ ଚରିତ୍ର, ନ୍ୟାୟାର୍ଜିତ ଧନର ରକ୍ଷଣ,ବୃଦ୍ଧିକରଣ, ସତ୍ପାତ୍ରରେ ଦାନ ଓ ସତ୍କାର୍ଯ୍ୟରେ ବ୍ୟୟ ।

ରାଜବେଶ—ବି. ( ୬ତତ୍ତ୍ୱ ) ରାଜାଙ୍କ ପୋଷାକ,ରାଜାଙ୍କ ଉପଯୁକ୍ତ ସାଜସଜ୍ଜା

ରାଜବେଶ୍ମ—କ୍ଳୀ. ବି. (୬ତତ୍ତ୍ୱ) ରାଜଗୃହ, ରାଜଭବନ, ରାଜବାଟୀ ।

ରାଜବୈଦ୍ୟ—ପୁଂ ବି. (୬ତତ୍ତ୍ୱ)ରାଜାଙ୍କୁ ଚିକିତ୍ସା କରିବା ବୈଦ୍ୟ, ରାଜାନୁଗ୍ରହପ୍ରାପ୍ତ ଚିକିତ୍ସକ ।

ରାଜଶକ୍ତି—ବି. ରାଜକୀୟ ସୈନ୍ୟାଦିଜନିତ କ୍ଷମତା ।

ରାଜଶଣ—ବି.(ରାଜ+ଶଣ)ପଟ,ଝୋଟ ।

ରାଜଶଫର—ବି. ଇଲିଶ ମାଛ ।

ରାଜଶଯ୍ୟା—ବି. ରାଜାଙ୍କର ଶେଯ, ରାଜୋଚିତ ବିଛଣା ।

ରାଜଶାକ—ବି. ବାସ୍ତୁକଶାକ, ବଥୁଆଶାଗ ।

ରାଜଶାକନିକା—ସ୍ତ୍ରୀ. ବି. ବଥୁଆଶାଗ ।

ରାଜଶାକିନୀ—ବି. ରାଜଗିରା, ବାସ୍ତୁକ ଶାକ ।

ରାଜଶାଲି—ବି. ରାଜଭୋଗ ଯୋଗ୍ୟ ଶାରଦ ଧାନ ।

ରାଜଶାସନ—ବି. ରାଜାଙ୍କ ଦ୍ୱାରା ପରିଗୃହୀତ କ୍ଷମତା ବା ନିୟମ,ରାଜାଦେଶ ।

ରାଜଶିମ୍ବୀ—ସ୍ତ୍ରୀ.ବି. ଶ୍ୱେତଶିମ୍ବ,ସଫେତ ଶିମ୍ବ ।

ରାଜଶୁକ—ପୁଂ. ବି. ( ରାଜ+ଶୁକ ) ସାରୀ ଚଢ଼େଇ ।

ରାଜଶୃଙ୍ଗ—ପୁଂ.ବି. ମାଗୁର ମାଛ, (କ୍ଳୀବ) ରାଜଛତ୍ର, କନକଦଣ୍ଡକ ।

ରାଜଶୈଳ—ପୁଂ. ବି. ରାଜଗିରି ।

ରାଜଶ୍ୟାମଲୋପାସକ—ବି. ଧର୍ମସମ୍ପ୍ରଦାୟ ବିଶେଷ ।

ରାଜଶ୍ରୀ—ସ୍ତ୍ରୀ. ବି. ରାଜଲକ୍ଷ୍ମୀ ଦେଖ ।

ରାଜଶ୍ରୀବାଞ୍ଛିତଶୁଭାଶୀର୍ବାଦ—ଗ୍ରା. ବି. ଯାହାଙ୍କୁ ଆଶୀର୍ବାଦ କରାଯାଏ ତାଙ୍କର ରାଜଲକ୍ଷ୍ମୀ ଲାଭ ପାଇଁ ମଙ୍ଗଳକାମନା ।

ରାଜସ—ବିଂ. (ରଜସ୍+ଅ) ରଜୋଗୁଣମୟ,ରଜୋଗୁଣ ସମ୍ବନ୍ଧୀୟ, ରଜୋଗୁଣୋଦ୍ଭବ, ସମ୍ମାନ ଲାଭ ବା ପୂଜା ପାଇବା ପାଇଁ ବିଖ୍ୟାତ ଲାଭାର୍ଥ କରାଯିବା (କର୍ମ),(ସ୍ତ୍ରୀ)ରାଜସୀ ।

ରାଜସଂସଦ୍—ବି. ରାଜସଭା, ରାଜାଙ୍କ ଧର୍ମାଧିକରଣ, ରାଜଦରବାର ।

ରାଜସଂସ୍କରଣ—ବି.ରାଜା ଓ ବଡ଼ଲୋକମାନଙ୍କ ବ୍ୟବହାର ନିମନ୍ତେ ଉତ୍କୃଷ୍ଟ କାଗଜରେ ଛାପାହୋଇଥିବା ପୁସ୍ତକର ସଂସ୍କରଣ । [ ଯଜ୍ଞ ।

ରାଜସତ୍ର—ବି. ରାଜକର୍ତ୍ତୃକ ଅନୁଷ୍ଠେୟ

ରାଜସତ୍ତ୍ୱ—ବି. ରାଜଶକ୍ତି ।

ରାଜସଦନ—କ୍ଳୀ. ବି. (୬ତତ୍ତ୍ୱ) ରାଜଗୃହ, ରାଜଭବନ, ରାଜାଙ୍କ ଉଆସ ।

ରାଜସଦ୍ମ—କ୍ଳୀ. ବି. (୬ତତ୍ତ୍ୱ)ରାଜସଦନ ଦେଖ ।

ରାଜସଭା—ବି. ( ୬ତତ୍ତ୍ୱ ) ନୃପସମାଜ, ରାଜଦରବାର ।

ରାଜସମ୍ପତ୍ତି—ବି. ରାଜାଙ୍କ ଐଶ୍ୱର୍ଯ୍ୟ, ରାଜ ନ୍ୟାୟ ମାର୍ଗରେ ଆଦାୟ କରିଥିବା ଧନ ।

ରାଜସରକାର—ଗ୍ରା. ବି. ରାଜସଭା,ରାଜଦରବାର, ରାଜାଙ୍କଗୁମ୍ଫା ବା ସନ୍ନିଧି, ରଜା ସ୍ୱୟଂ ।

ରାଜସର୍ପ—ପୁଂ. ବି. ସର୍ପବିଶେଷ, ରଣାସାପ, ଶଙ୍ଖଚୂଡ଼ ।

ରାଜସର୍ଷପ—ପୁଂ.ବି. ରାଇସୋରିଷ,ପରିମାଣବିଶେଷ ।

ରାଜସାକ୍ଷିକ—ବି. ବିଷ୍ଣୁସଂହିତା ବର୍ଣ୍ଣିତ ତିନିପ୍ରକାର ଦଲିଲ ମଧ୍ୟରୁ ଏକତମ, ବ୍ୟାବହାରିକ ଲେଖ୍ୟବିଶେଷ, ରାଜା ବା ରାଜପ୍ରତିନିଧିଙ୍କ ସାକ୍ଷରିତ ଦଲିଲ ବା ଦସ୍ତାବିଜ ।

ରାଜସାତ୍—ଅ. ରାଜାଙ୍କ ଅଧିକାରରେ ।

ରାଜସାୟୁଜ୍ୟ—କ୍ଳୀ.ବି.(ରାଜନ୍+ସାୟୁଜ୍ୟ) ୬ତତ୍ତ୍ୱ; ରାଜତ୍ୱ ଦେଖ ।

ରାଜସାରସ—ପୁଂ. ବି. ମୟୂର ।

ରାଜସାହି—ଗ୍ରା. ବି.ବଙ୍ଗଦେଶର ବିଭାଗ ବିଶେଷ ।

ରାଜସିଂହ—ଗ୍ରା.ବି.ପ୍ରସିଦ୍ଧ ରାଜପୁତରାଜା, ରାଜାଲକ୍ଷ୍ମଣ ସିଂହଙ୍କପୁତ୍ର, ସିଂହତୁଲ୍ୟ ବିକ୍ରମଶାଳୀ ରାଜା, ଅତିପରାକ୍ରାନ୍ତ ନରପତି ।

ରାଜସିଂହାସନ—ବି.ରାଜସଭାରେ ରାଜାଙ୍କ ବସିବା ଆସନ, ଅଭିଷେକବେଳେ

ଯେଉଁ ଆସନରେ ବସି ଅଭିଷେକ ହୁଅନ୍ତି ।
ରାଜସିକ—ବଂ.(ରାଜସ+ଇକ)ରାଜସ ଦେଖ, (ସ୍ତ୍ରୀ) ରାଜସିକୀ ।
ରାଜସୀ—ସ୍ତ୍ରୀ. ବ. ( ରଜସ୍+ଅ+ଈ ) ଦୁର୍ଗା,(ସ୍ତ୍ରୀ.ବଂ) ରଜୋଗୁଣମୟୀ,ରଜୋଗୁଣସମ୍ବନ୍ଧୀନୀ, (ଗ୍ରା.ବ) ରାଜକୀୟ ।
ରାଜସୁଖ—କ୍ଲୀ. ବ. ରାଜାଙ୍କସୁଖ,ରାଜ୍ୟଭୋଗଜନିତ ସୁଖ ।
ରାଜସୁତ—ପୁଂ. ବ. ( ରାଜନ୍+ସୁତ ) ୬ତତ୍;ରାଜପୁତ୍ର ଦେଖ,(ସ୍ତ୍ରୀ)ରାଜସୁତା ।
ରାଜସୂ—ବଂ.(ରାଜ+ସୂ+କ୍ୱିପ୍)ରାଜକର୍ତ୍ତା, ରାଜକାରୀ ।
ରାଜସୂୟ—ପୁଂ. ବ. ( ରାଜନ୍+ସୂ+ଅଧି.ଯ) ଯଜ୍ଞବିଶେଷ,ରାଜମାର୍ଗ,ଧାନ୍ୟବିଶେଷ, ପର୍ବତବିଶେଷ, ସାମବେଦବିହିତ ସମ୍ରାଟଙ୍କ କର୍ତ୍ତବ୍ୟ ଯଜ୍ଞବିଶେଷ ।
ରାଜସୂୟିକ—ବଂ. ( ରାଜସୂୟ + ଇକ ) ରାଜସୂୟଯଜ୍ଞସମ୍ବନ୍ଧୀୟ ।
ରାଜସୂୟୀ—ପୁଂ.ବ. ରାଜସୂୟ ଯଜ୍ଞକାରୀ ପୁରୋହିତ ।
ରାଜସୂୟେଷ୍ଟି—ସ୍ତ୍ରୀ. ବ. ରାଜସୂୟଯଜ୍ଞ ।
ରାଜସେବକ—ପୁଂ. ବ.(୬ତତ୍)ରାଜାଙ୍କ ସେବକ ବା ଚାକର,(ସ୍ତ୍ରୀ) ରାଜସେବିକା ।
ରାଜସେବା—ସ୍ତ୍ରୀ. ବ. ରାଜାଙ୍କ ସେବା, ରାଜାଙ୍କ ପାଖରେ ଚାକିରି ।
ରାଜସେବୀ—ପୁଂ. ବ. (ରାଜସେବା+ଇନ୍) ରାଜଭୃତ୍ୟ, ରାଜାନୁଚର, (ସ୍ତ୍ରୀ) ରାଜସେବିନୀ ।
ରାଜସ୍କନ୍ଧ-ପୁଂ.ବ.(ରାଜ+ସ୍କନ୍ଧ)ଘୋଟକ ।
ରାଜସ୍ତ୍ରୀ—ସ୍ତ୍ରୀ. ବ. (୬ତତ୍) ରାଣୀ,ରାଜମହିଷୀ, ରାଜବଂଶୀୟା ସ୍ତ୍ରୀ ।
ରାଜସ୍ଥଲକ—କ୍ଲୀ. ବ. ସ୍ଥାନବିଶେଷ ।
ରାଜସ୍ଥଲୀ—ବ. ଜନପଦବିଶେଷ ।
ରାଜସ୍ଥାନ—ଗ୍ରା.ବ. ରାଜପୁତନା ଦେଖ, ରାଜପୁତନା ଅନ୍ତର୍ଗତ ୫ଗୋଟି ରାଜ୍ୟ, (ମେବାର, ମାରବାଡ଼, ଯଶଲମିର, କୋଟା ଓ ବୁନ୍ଦି)ରାଜପୁତାନାର ରାଜବଂଶୀୟ ରାଜାମାନଙ୍କ ଇତିହାସ ଓ ପୁରାତତ୍ତ୍ୱ ସଂଗ୍ରହପୂର୍ବକ କର୍ଣ୍ଣେଲ୍‌ଟଡ଼୍ ସାହେବ ରଚିତ ଇଂରାଜି ଗ୍ରନ୍ଥ ।
ରାଜସ୍ୱ--ବ.ରାଜଧନ, ରାଜକର ପ୍ରଜାଙ୍କଠାରୁ ରାଜାଙ୍କ ପ୍ରାପ୍ୟ ଧନ ବା କର ଖଜଣାଦି ।
ରାଜସ୍ୱର୍ଣ୍ଣ—ବ. ରାଜଧୁସ୍ତୂରକ ।
ରାଜହଂସ—ପୁଂ. ବ. ରକ୍ତବର୍ଣ୍ଣ ଚଞ୍ଚୁ ଚରଣ ଓ ଚଞ୍ଚୁବିଶିଷ୍ଟ ଶୁକ୍ଳହଂସ, ରାଜଶ୍ରେଷ୍ଠ, ଯେଉଁ ରାଜା ରାଜହଂସ ପରି ଦୋଷ ତ୍ୟାଗକରି (ଅର୍ଥାତ୍ ରାଜହଂସ ଜଳମିଶ୍ରିତ ଦୁଗ୍ଧରୁ କେବଳ ଦୁଗ୍ଧ ପାନକରି ଜଳକୁ ପରିତ୍ୟାଗ କରେ) କେବଳ ଗୁଣ ଗ୍ରହଣ କରନ୍ତି ।
ରାଜହତ୍ୟା—ବ. ରାଜାଙ୍କ ନିଧନ ।
ରାଜହନ୍ତା—ପୁଂ. ବଂ. (୬ତତ୍)ରାଜାଙ୍କ ପ୍ରାଣନାଶକ, (ସ୍ତ୍ରୀ) ରାଜହନ୍ତ୍ରୀ ।
ରାଜହର୍ମ୍ୟ—କ୍ଲୀ.ବ.(୬ତତ୍) ରାଜଭବନ, ରାଜପ୍ରାସାଦ ।
ରାଜହର୍ଷଣ—କ୍ଲୀ. ବ. ତଗରପୁଷ୍ପ ।
ରାଜହସ୍ତୀ—ପୁଂ.ବ. (୬ତତ୍) ରାଜାଙ୍କ ପାଟହାତୀ, ମଦୋତ୍କଟ ଗଜ ।
ରାଜା—ବ.(ରାଜ୍+କ.ଅନ) ନରପତି, ଉପାଧିବିଶେଷ, ଇନ୍ଦ୍ର, କ୍ଷତ୍ରିୟ, ଚନ୍ଦ୍ର, ପ୍ରଭୁ, ଏକଶ୍ରେଣୀର ବହୁ ବସ୍ତୁ ବା ବ୍ୟକ୍ତିଙ୍କ ମଧ୍ୟରେ ଶ୍ରେଷ୍ଠ ବସ୍ତୁ ବା ବ୍ୟକ୍ତି, (ଜ୍ୟୋତିଷ) ଗଣନା କ୍ରମେ ଭିନ୍ନ ଭିନ୍ନ ବର୍ଷରେ ପୃଥିବୀର ଶୁଭାଶୁଭ ଉପରେ ଅଧିପତି ରୂପେ କଳ୍ପିତ ହେବା ଗ୍ରହ, ଯକ୍ଷ, (ସ୍ତ୍ରୀ) ରାଜ୍ଞୀ ।
ରାଜାଗ୍ନି—ପୁଂ.ବ(ରାଜ+ଅଗ୍ନି)ରାଜାଙ୍କର ରୋଷ ବା କ୍ରୋଧ ।
ରାଜାଙ୍ଗଣ(ନ)—କ୍ଲୀ.ବ. ରାଜପ୍ରାସାଦସ୍ଥ ପ୍ରାଙ୍ଗଣ, ରାଜଗୃହ ।
ରାଜାଜୟସିଂହ—ବ.ଜୟପୁର ନଗରର ପ୍ରତିଷ୍ଠାତା ରାଜା ।
ରାଜାଜ୍ଞା—ବ.(୬ତତ୍) ରାଜାଙ୍କ ଆଦେଶ ବା ହୁକୁମ ।
ରାଜାତନ—ପୁଂ. ବ. ପିଆଲବୃକ୍ଷ ।
ରାଜାତ୍ୟାବର୍ତ୍ତିକ--ବ.ରାଜାବର୍ତ୍ତ ଦେଖ ।
ରାଜାଦନ—କ୍ଲୀ.ବ.କ୍ଷୀରିକା, ପିଆଲଗଛ, କିଂଶୁକବୃକ୍ଷ ।
ରାଜାଦନଫଳ—ବ(ବ.ଗ୍ରା)କ୍ଷିରିଣୀବୃକ୍ଷ, କ୍ଷୀରକୋଲି ଗଛ ।
ରାଜାଦନୀ—ସ୍ତ୍ରୀ.ବ. କ୍ଷୀରକୋଲି ଗଛ ।
ରାଜାଦେଶ—ପୁଂ.ବ. (୬ତତ୍)ରାଜାଙ୍କ ହୁକୁମ ।
ରାଜାଦ୍ରି-ବ,ରାଜଗିରି, ଉଦ୍ଭିଦ୍‌ବିଶେଷ ।
ରାଜାଧିକରଣ—ବ. ରାଜାଙ୍କ ସ୍ଥାପିତ ଅଦାଲତ ।
ରାଜାଧିକରଣିକ—ପୁଂ. ବ. ଅଦାଲତର ବିଚାରପତି ।
ରାଜାଧିକାରୀ—ପୁଂ. ବ. ବିଚାରପତି ।
ରାଜାଧିକୃତ—ପୁଂ.ବଂ. ଯାହା ରାଜାଙ୍କ ବିଚାରରେ ଅଛିଅଛି,(ବ)ବିଚାରପତି ।
ରାଜାଧିରାଜ—ପୁଂ.ବ. (ରାଜନ୍+ଅଧିରାଜ)୬ତତ୍;ସମ୍ରାଟ୍, ରାଜଚକ୍ରବର୍ତ୍ତୀ ।
ରାଜାଧିଷ୍ଠାନ—ବ. (ରାଜ+ଅଧିଷ୍ଠାନ) ରାଜଧାନୀ, ଯେଉଁ ନଗରରେ ରାଜା ବାସ କରନ୍ତି ।
ରାଜାଧ୍ୱା—ପୁଂ.ବ. ( ରାଜନ+ଅଧ୍ୱନ ) ରାଜପଥ ।
ରାଜାନକ--ବ.କ୍ଷୁଦ୍ର ରାଜା,ସାମନ୍ତରାଜା।
ରାଜାନୁଗତ(ମତ)-ବଂ.ରାଜାଙ୍କ ଅଧୀନ, (ସ୍ତ୍ରୀ) ରାଜାନୁଗତା ।
ରାଜାନୁଗତଧର୍ମ—ବ.(ପ୍ରଚଳନ)ଦେଶର ଧର୍ମକୁ ରାଜା ରକ୍ଷାକରନ୍ତି,ଧର୍ମ ରାଜାଙ୍କ ଅଧୀନ ଅଟେ ।
ରାଜାନୁଗୃହୀତ—ବଂ. ରାଜାଙ୍କ ଦ୍ୱାରା ଆପ୍ୟାୟିତ ।
ରାଜାନୁଗ୍ରହ—ବ. ରାଜାଙ୍କର ଦୟା ।
ରାଜାନୁଚର—ପୁଂ. ବ. (୬ତତ୍)ରାଜଭୃତ୍ୟ, ରାଜାଙ୍କ ଅନୁଗାମୀ ଲୋକ ।
ରାଜାନୁଜୀବୀ—ପୁଂ.ବଂ. (ରାଜନ୍+ଅନୁଜୀବିନ୍) ୬ତତ୍; ରାଜାନୁଚର, ରାଜଭକ୍ତ, ରାଜାଙ୍କ ଅନୁଗ୍ରହରେ ଜୀବନଧାରଣକାରୀ, (ସ୍ତ୍ରୀ) ରାଜାନୁଜୀବିନୀ ।
ରାଜାନ୍ତଃପୁର—କ୍ଲୀ.ବ.(୬ତତ୍)ରାଜାଙ୍କ ଅନ୍ଦରମହଲ ।

ରାଜାନ୍ନ—କ୍ଲୀ. ବ. ଶାଳଧାନ୍ୟବିଶେଷ, ଏକପ୍ରକାର ସୁବାସିତ ସରୁଧାନ ।

ରାଜାପ୍ରଜା—ଗ୍ରା. ବ. ରାଜା ଓ ପ୍ରଜା ।

ରାଜାଭିଷେକ—ପୁଂ. ବ. (ରାଜନ୍+ଅଭିଷେକ) ରାଜାମାନଙ୍କର ଅଭିଷେକ କ୍ରିୟା ।

ରାଜାମାନସିଂହ—ଗ୍ରା.ବ. ମୋଗଲ ସମ୍ରାଟ୍ ଆକବରଙ୍କ ରାଜସଭାର ଏକତମ ରତ୍ନ

ରାଜାମ୍ର—ବ. ଆମ୍ରବିଶେଷ, ରାଜଫଳ, ବନବୃକ୍ଷବିଶେଷ, ରାଇଗଛ ।

ରାଜାମ୍ଳ—ବି.ଅମ୍ଳବେତସ,ଖଟାପାଳଙ୍ଗ ।

ରାଜାର୍କ—ପୁଂ. ବ. (ରାଜ+ଅର୍କ) ଶ୍ୱେତାର୍କ ବୃକ୍ଷ, ଧଳା ଅରଖ ଗଛ ।

ରାଜାର୍ହ—ବିଂ. (ରାଜନ୍+ଅର୍ହ)୬ତତ୍; ରାଜଯୋଗ୍ୟ, ରାଜୋଚିତ, (ସ୍ତ୍ରୀ) ରାଜାର୍ହା, (ବି) ଅଗୁରୁ,କର୍ପୂର,ଶାଳଧାନ୍ୟ, ଜମ୍ବୁବୃକ୍ଷ ।

ରାଜାର୍ହଣ—କ୍ଲୀ. ବ. ସମ୍ଭ୍ରମସୂଚକ ଉପହାର, ରାଜାଙ୍କ ଦାନ ।

ରାଜାର୍ହା—ବି. ଜମ୍ବୁ, ଜାମୁ ।

ରାଜାଲାବୁ—ବି. ସ୍ୱାଦୁତୁମ୍ବୀ,ମିଠାଲାଉ ।

ରାଜାଲୁକ—ବି.(ରାଜ+ଆଲୁକ)ମହାକନ୍ଦ, ବଡ଼ଆଳୁ, ଶ୍ରେଷ୍ଠ ଆଳୁ ।

ରାଜାବର୍ତ୍ତ—ବ. (ରାଜ+ଆବର୍ତ୍ତ)ଉପରତ୍ନବିଶେଷ, ନୃପାବର୍ତ୍ତ ।

ରାଜାବଳୀ-ବି.ରାଜବଂଶାବଳୀ,ରାଜେତିହାସ, ରାଜବଂଶର କୁଷିନାମା ।

ରାଜାବାହାଦୁର ଗ୍ରା.ବ ଭାରତ ଗଭର୍ଣ୍ଣମେଣ୍ଟଙ୍କ ପ୍ରଦତ୍ତ ଉପାଧିବିଶେଷ ।

ରାଜାଶ୍ରୟ—ବି. (୬ତତ୍) ରାଜାଙ୍କର ଆଶ୍ରୟ ।

ରାଜାଶ୍ୱ—ପୁଂ.ବି. ବୈଦିକ ଯୁଗ ପ୍ରସିଦ୍ଧ ତେଜସ୍ୱୀ ଅଶ୍ୱବିଶେଷ ।

ରାଜାସନ—ବି. (୬ତତ୍) ସିଂହାସନ, ରାଜା ବସିବାର ପୀଠ ।

ରାଜାସାମନ୍ତସିଂହାର—ଗ୍ରା. ବ. ପ୍ରାଚୀନ ଓଡ଼ିଆ କବିବିଶେଷ ।

ରାଜାସାହେବ—ଗ୍ରା. ବ. ରାଜାଙ୍କୁ ବନ୍ଧୁଭାବରେ ସମ୍ବୋଧନ ।

ରାଜାହି—ପୁଂ. ବ. ଦ୍ୱିମୁଖସର୍ପ, ରଣାସାପ, ଦୁଇମୁହାଁ ।

ରାଜାହ୍ୱ--ବି.ଚୀନକରଗା ଫଳ,ରାଜାଦନ ବୃକ୍ଷ, ଶ୍ୱେତାର୍କ ବୃକ୍ଷ ।

ରାଜି—ସ୍ତ୍ରୀ. ବ. (ରାଜ୍+କ.ଇ)ଶ୍ରେଣୀ, ରେଖା, ଧାଡ଼ି, ସମୂହ,(ବିଂ)ଶୋଭିତ, ପ୍ରଦୀପ୍ତ, (ଯା.ବ) ସମ୍ମତ,ସ୍ୱୀକାର, (ବିଂ) ସମ୍ମତ, ସ୍ୱୀକୃତ ।

ରାଜିକା—ସ୍ତ୍ରୀ. ବ. (ରାଜ+କ+ଆ) କେଦାର, କ୍ଷେତ୍ର, ରେଖା, ପଂକ୍ତି, ରାଇସୋରିଷ । [ ସୋରିଷ ।

ରାଜିକାଫଳ—ବି. ଗୌରସର୍ଷପ,ରାଇ-

ରାଜିକାଖ୍ୟା—ବି. ରାଜିକା ନାମକ କ୍ଷୁଦ୍ର ରୋଗବିଶେଷ ।

ରାଜିଡ଼ଙ୍ଗୀ—ଯା.ବ.ବାଦୀ ଓ ପ୍ରତିବାଦୀଙ୍କ ସମ୍ମତିକ୍ରମେ ଅଦାଲତଙ୍କର ମକଦ୍ଦମା ମୀମାଂସା ।

ରାଜିତ—ବିଂ. (ରାଜ+କ.ତ)ଶୋଭିତ, ପ୍ରଦୀପ୍ତ, ପ୍ରକାଶିତ, (ସ୍ତ୍ରୀ) ରାଜିତା ।

ରାଜିତମାନ—ବିଂ. ଶୋଭମାନ ।

ରାଜିନାମା— ଯା. ବ. ରଫାନାମା,ବାଦୀପ୍ରତିବାଦୀଙ୍କର ରଫାନାମା,ସମ୍ମତିସୂଚକ ଲିପି ।

ରାଜିଫଳା—ବି. (ରାଜି+ଫଳ+ଆ) ଚୀନାକର୍କଟୀ, ଏକପ୍ରକାର କାକୁଡ଼ି ।

ରାଜିବେରାଜି—ଯା.ବ. ସମ୍ମତ ଓ ଅସମ୍ମତ ।

ରାଜିମତ୍ଫଳା-ବି.କନ୍ଧି,ରାଜକୋଷାତକୀ ।

ରାଜିଲ—ପୁଂ. ବ. (ରାଜି+ଇଲ) ଡୁଣ୍ଡୁଭ ସର୍ପ, ଧଣ୍ଡସାପ ।

ରାଜୀ—ସ୍ତ୍ରୀ. ବ. (ରାଜ+ଈ) ବହୁଚ୍ଛିଦ୍ର ପଂକ୍ତି,ଶ୍ରେଣୀ,ରକ୍ତସର୍ଷପ,ରାଜି ଦେଖ, ରାଜିକା ଦେଖ, (ଯା. ବିଂ ଓ ବି)ରାଜି ଦେଖ ।

ରାଜୀଫଳ—ବି.(ରାଜୀ+ଫଳ)ପଟୋଳ. ତିକ୍ତ ପଟୋଳ ।

ରାଜୀମତୀ—ସ୍ତ୍ରୀ.ବି. ଲିଙ୍ଗନାଶ ରୋଗର ଉପଦ୍ରବବିଶେଷ ।

ରାଜୀଲ—ବି.ରାଜସର୍ଷପ,ରାଇସୋରିଷ ।

ରାଜୀବ—କ୍ଲୀ. ବ. (ରାଜୀ+ବ) ପଦ୍ମ, (ପୁଂ.ବି) ହରିଣବିଶେଷ, ସାରସପକ୍ଷୀ, ହସ୍ତୀ,ମତ୍ସ୍ୟବିଶେଷ,(ବିଂ)ରାଜୋପଜୀବୀ, ରାଜାନୁଚର, (ସ୍ତ୍ରୀ) ରାଜୀବା ।

ରାଜୀବନୟନ (ଲୋଚନ)—ପୁଂ. ବିଂ. (ବ.ବ୍ରୀ) ପଦ୍ମପରି ସୁନ୍ଦର ଚକ୍ଷୁର୍ବିଶିଷ୍ଟ, (ସ୍ତ୍ରୀ) ରାଜୀବଲୋଚନା-ନୟନା,(ପୁଂ.ବି) ଶ୍ରୀ ରାମଚନ୍ଦ୍ର ।

ରାଜୀବପତ୍ରାକ୍ଷ—ପୁଂ.ବିଂ. (ବ.ବ୍ରୀ)ପଦ୍ମଫୁଲର ପାଖୁଡ଼ାପରି ସୁନ୍ଦର ଚକ୍ଷୁର୍ବିଶିଷ୍ଟ, (ସ୍ତ୍ରୀ) ରାଜୀବପତ୍ରାକ୍ଷୀ ।

ରାଜୀବରାଜ--ବି. ଉତ୍କୃଷ୍ଟ ପଦ୍ମଫୁଲ, ରକ୍ତପଦ୍ମ ।

ରାଜୀବିନୀ—ସ୍ତ୍ରୀ.ବି. ଟୁଲ୍ଳବିଶେଷ ।

ରାଜୁ—ଗ୍ରା.ବ.ହିନ୍ଦୁ କ୍ଷତ୍ରିୟଜାତିବିଶେଷ ।

ରାଜୁଡ଼ା—ଗ୍ରା.ବ. ରାଜାଙ୍କ ଦ୍ୱାରା ଶାସିତ ରାଜ୍ୟ, ଗଡ଼ଜାତ, ସାମନ୍ତ ରାଜା, ରାଜପୁତ୍ର, ରାଜବଂଶଜ ବ୍ୟକ୍ତି, ରାଜାଙ୍କ ପରି ବ୍ୟକ୍ତି, (ବିଂ) ରାଜାଙ୍କ ଶାସିତ ।

ରାଜୁତ—ଗ୍ରା. ବ. (ସଂ-ରାଜତ୍ୱ)ରାଜତ୍ୱ ।

ରାଜୁସି—ଗ୍ରା. ବ. ରାଜସୂୟ ଦେଖ, ରାଜସ୍ୱ ଦେଖ,(ବିଂ)ରାଜସିକ, ରାଜକୀୟ ।

ରାଜେ—ଗ୍ରା. ବ. ରାଜାଙ୍କ ନାମ ପୂର୍ବେ ବ୍ୟବହୃତ(ଯଥା—ରାଜେ ଶ୍ରୀ ରାମଚନ୍ଦ୍ର ଶରବର ହରିଚନ୍ଦନ) ।

ରାଜେକ୍ଷୁ—ବି. କୋଇଲଖିଆ ।

ରାଜେନ୍ଦ୍ର—ପୁଂ.ବି.(ରାଜ+ଇନ୍ଦ୍ର)ରାଜଶ୍ରେଷ୍ଠ, ପ୍ରଧାନ ରାଜା, ସମ୍ରାଟ୍ ।

ରାଜେୟ—ବି. ପଟୋଳ ।

ରାଜେଶ୍ୱର—ପୁଂ.ବି. (ରାଜ+ଈଶ୍ୱର) ଶ୍ରେଷ୍ଠ ରାଜା ।

ରାଜେଷ୍ଟ—କ୍ଲୀ. ବ. ନୃପାନ୍ନ, ରାଜାନ୍ନ, ରାଜଯୋଗ୍ୟ ଶାଳଧାନ୍ୟ,ରାଜପଲାଣ୍ଡୁ ।

ରାଜେଷ୍ଟା-ସ୍ତ୍ରୀ.ବି. କଦଳୀ, ପିଣ୍ଡଖର୍ଜ୍ଜୁରୀ ।

ରାଜୋଡ଼ା—ଗ୍ରା.ବ.ବିଂ.ର ଜୁଡ଼ା ଦେଖ ।

ରାଜୋତ୍ତେଜନସଞ୍ଜ୍ଞକ—ବି. ଭୂତାଙ୍କୁଶ ବୃକ୍ଷ ।

ରାଜୋପକରଣ—କ୍ଲୀ. ବ. ରାଜଚିହ୍ନ,

ରାଜଟିକା, ରାଜୋଚିତ ସାମଗ୍ରୀ ।
ରାଜୋପଜୀବୀ—ବି. ପ୍ରଜାମଣ୍ଡଳୀ, (ବିଂ) ରାଜାନୁଜୀବୀ ଦେଖ,(ସ୍ତ୍ରୀ)ରାଜୋପଜୀବିନୀ
ରାଜୋପସେବା--ସ୍ତ୍ରୀ.ବି.ରାଜାଙ୍କସେବା ।
ରାଜୋପସେବୀ—ପୁଂ. ବିଂ.ଯେ ରାଜାଙ୍କ ସେବା କରେ,(ବି)ରାଜଭୃତ୍ୟବିଶେଷ ।
ରାଜୋପାଧି—ବି. (କ.ଧା) ରାଜପ୍ରଦତ୍ତ ଉପାଧି ।
ରାଜୋପାଧିକ—ପୁଂ.ବିଂ. ରାଜା ଉପାଧି ପାଇଥିବା (ବ୍ୟକ୍ତି) ।
ରାଜ୍ଞୀ—ସ୍ତ୍ରୀ.ବି.ରାଜପତ୍ନୀ, ରାଣୀ,ସୂର୍ଯ୍ୟ-ପତ୍ନୀ, କାଂସ୍ୟ, ନୀଳୀ, ପ୍ରଜାପତୀ ଢଗ ।
ରାଜ୍ୟ—କ୍ଳୀ.ବି (ରାଜନ୍+ଯ)ରାଜତ୍ୱ, ରାଜାଙ୍କ ଅଧିକାର, ରାଜତ୍ୱ, ମୁଲକ, ଦେଶ, ପ୍ରଦେଶ, ବିଷୟ, ରାଷ୍ଟ୍ର,ରାଜ୍ୟ-ଶାସନ କାର୍ଯ୍ୟ, ଲକ୍ଷ ଗ୍ରାମ ଉପରେ ଆଧିପତ୍ୟ, ପୃଥିବୀ, ସମଗ୍ରଦେଶ, (ଗ୍ରା. ବିଂ)ରାଜ୍ୟର ଅଧିବାସୀ,"ରାଜ୍ୟଯାକର, ବହୁସଂଖ୍ୟକ ।
ରାଜ୍ୟକଟ-ବି.ଏକାଧିକ ରାଜ୍ୟର କେନ୍ଦ୍ର ।
ରାଜ୍ୟକର—ବି.ରାଜଶାସନ, ରାଜସ୍ୱ ।
ରାଜ୍ୟକର୍ତ୍ତା—ପୁଂ. ବି. ରାଜା, ରାଜ୍ୟ-ଶାସନବିଭାଗୀୟ କର୍ମଚାରୀ ।
ରାଜ୍ୟକୃତ୍—ବିଂ. (ରାଜ୍ୟ+କୃ+କ୍ୱିପ୍) ରାଜକାର୍ଯ୍ୟ ପରିଚାଳକ, ରାଜ୍ୟଶାସନ-କାରୀ ।
ରାଜକ୍ତା—ବି. ରାଇତା, ଲାଉର କ୍ଷୁଦ୍ର କ୍ଷୁଦ୍ର ଖଣ୍ଡମାନଙ୍କ ସଙ୍ଗେ ଦହି ଲୁଣ ବେସର ଓ ମସଲା ଗୁଣ୍ଡା ମିଶାଯାଇ କରାଯିବା ଚଟଣି ।
ରାଜ୍ୟକ୍ଷୟ—ବି. ରାଜ୍ୟନାଶ, ରାଜାଙ୍କ ହାତରୁ ରାଜ୍ୟ ବାହାରିଯିବା ।
ରାଜ୍ୟଚ୍ୟୁତ—ବିଂ.(୫ତତ୍) ରାଜ୍ୟଭ୍ରଷ୍ଟ, ରାଜ୍ୟ ଶାସନ ରୂପ ଅଧିକାରରୁ ବଞ୍ଚିତ, (ସ୍ତ୍ରୀ) ରାଜ୍ୟଚ୍ୟୁତା ।
ରାଜ୍ୟଛଡ଼ା—ଗ୍ରା.ବିଂ. ଲୋକ ବହିର୍ଭୂତ, ଯେଉଁ ବିଷୟ ସମଗ୍ର ରାଜ୍ୟରେ ଦେଖା ବା ଶୁଣାନାହିଁ, ସୃଷ୍ଟିଛଡ଼ା, ଅସାଧାରଣ, ରାଜ୍ୟରୁ ବିତାଡ଼ିତ ।
ରାଜ୍ୟତନ୍ତ୍ର—କ୍ଳୀ. ବି. (୬ତତ୍) ରାଜ୍ୟ-ଶାସନ ପ୍ରଣାଳୀ ।
ରାଜ୍ୟଦେବୀ—ସ୍ତ୍ରୀ. ବି. ରାଜକୁଳ ଲକ୍ଷ୍ମୀ, ବାଣ ରାଜାଙ୍କ ମାତା ।
ରାଜ୍ୟଦ୍ରବ୍ୟ—କ୍ଳୀ. ବି. ରାଜ୍ୟ ଶାସନର ଉପାଦାନ, ରାଜାଭିଷେକର ନିର୍ଦ୍ଦିଷ୍ଟ ଉପକରଣ । [ ରାଜା ।
ରାଜ୍ୟଧର—ବି.ରାଜ୍ୟପାଳନ ବା ଶାସନ,
ରାଜ୍ୟଧୁରା—ବି. ରାଜ ଶାସନ ।
ରାଜ୍ୟପରିଭ୍ରଷ୍ଟ--ବିଂ.ରାଜ୍ୟଚ୍ୟୁତ ଦେଖ ।
ରାଜ୍ୟପାଟ—ଗ୍ରା. ବି. ରାଜସିଂହାସନ, ରାଜତ୍ୱ ।
ରାଜ୍ୟପାଳ—ବି. ରାଜା, ରାଜବିଶେଷ ।
ରାଜ୍ୟପ୍ରଦ—ବିଂ. ରାଜଦାନାର୍ହ ।
ରାଜ୍ୟଭଙ୍ଗ—ବି. ରାଜ୍ୟର ଧ୍ୱଂସ ବା ତପର୍ଯ୍ୟୟ ।
ରାଜ୍ୟଭୁକ୍—ପୁଂ. ବି. ରାଜା ।
ରାଜ୍ୟଭାର—ବି.(୬ତତ୍) ରାଜ୍ୟ ଶାସନ ରୂପ ଭାର ବା ଦାୟିତ୍ୱ,(ରାଜାଙ୍କ ଦ୍ୱାରା ଅନ୍ୟ ଉପରେ ନ୍ୟସ୍ତ) ରାଜ୍ୟ ଶାସନ କାର୍ଯ୍ୟ ଚଳାଇବାର ଦାୟିତ୍ୱ ।
ରାଜ୍ୟଭେଦକର—ବିଂ.ଶାସନ ଶୈଥିଲ୍ୟ-କାରୀ, ବିଶୃଙ୍ଖଳା ଉତ୍ପାଦକ, ରାଜ୍ୟ-ନାଶକାରୀ ।
ରାଜ୍ୟଭୋଗ—ବି. ରାଜ୍ୟରୂପ ସମ୍ପତ୍ତିର ଉପଭୋଗ, ରାଜ୍ୟଶାସନ ।
ରାଜ୍ୟଭ୍ରଂଶ—ବି.(୬ତତ୍) ରାଜ୍ୟନାଶ ।
ରାଜ୍ୟଭ୍ରଷ୍ଟ—ବିଂ. (୫ତତ୍)ରାଜ୍ୟଚ୍ୟୁତ ।
ରାଜ୍ୟରକ୍ଷା—ବି. ଶତ୍ରୁ ଓ ଦୁର୍ଭିକ୍ଷାଦି ଆକ୍ରମଣରୁ ରାଜ୍ୟକୁ ସମ୍ଭାଳିବା ।
ରାଜ୍ୟଲକ୍ଷ୍ମୀ—ସ୍ତ୍ରୀ.ବି.(୬ତତ୍)ରାଜଲକ୍ଷ୍ମୀ, ବିଜୟ ଗୌରବ, ରାଜ୍ୟର ଅଧିଷ୍ଠାତ୍ରୀ ଦେବତା, ରାଜ୍ୟଶ୍ରୀ ।
ରାଜ୍ୟଲାଭ(ପ୍ରାପ୍ତି)—ବି(୬ତତ୍)କୌଣସି ବ୍ୟକ୍ତିକୁ ରାଜ୍ୟ ମିଳିବା ।
ରାଜ୍ୟଲୋକ—ଗ୍ରା ବି. ରାଜ୍ୟବାସୀ ବ୍ୟକ୍ତିଗଣ, ଅସଂଖ୍ୟ ଲୋକ ।
ରାଜ୍ୟଲୋପ—ବି.(୬ତତ୍)ଅନ୍ୟ ରାଜାଙ୍କ ଦ୍ୱାରା ଅଧିକୃତ ହେବା ଯୋଗୁଁ କୌଣସି ରାଜ୍ୟର ଅସ୍ତିତ୍ୱର ବିନାଶ ।
ରାଜ୍ୟଲୋଭ — ବି.(୬ତତ୍) ରାଜ୍ୟପ୍ରାପ୍ତିର ଆଗ୍ରହ, ଉଚ୍ଚାଶା ।
ରାଜ୍ୟବର୍ଦ୍ଧନ—ପୁଂ. ବିଂ. (ରାଜ୍ୟ+ବୃଧ୍ +କ.ଅନ)ଯେ ରାଜ୍ୟର ସୀମା ବଢ଼ାଏ, ବି.(ଭା.ଅନ. ୬ତତ୍) ରାଜ୍ୟର ବିସ୍ତାର, ରାଜ୍ୟର ସୀମା ବଢ଼ାଇବା ।
ରାଜ୍ୟବିପ୍ଳବ—ବି. ରାଜାଙ୍କ ବିରୁଦ୍ଧରେ ପ୍ରଜାମେଳି, ଅରାଜକତା ।
ରାଜ୍ୟବିସ୍ତାର--ବି.(୬ତତ୍)ସେନା ଦ୍ୱାରା ଶତ୍ରୁ ଜୟ ଓ ଦେଶ ଜୟାଦି କ୍ରମେ ରାଜ୍ୟର ସୀମା ବୃଦ୍ଧିକରଣ ।
ରାଜ୍ୟବ୍ୟବହାର—ବି. ରାଜକାର୍ଯ୍ୟ ।
ରାଜ୍ୟଶାସନ—ବି. (୬ତତ୍) ଦୁଷ୍ଟଦମନ ଓ ଶିଷ୍ଟପାଳନାଦିରୂପ କର୍ମଦ୍ୱାରା ରାଜ୍ୟ ପରିଚାଳନ ।
ରାଜ୍ୟଶ୍ରୀ—ବି.ରାଜଲକ୍ଷ୍ମୀ, ହର୍ଷବର୍ଦ୍ଧନଙ୍କ ଭଗିନୀ ।
ରାଜ୍ୟସଂସ୍ଥିତି—ସ୍ତ୍ରୀ. ବି. (୬ତତ୍)ରାଜ୍ୟର ସୁଶୃଙ୍ଖଳା ବିଧାନ ।
ରାଜ୍ୟସୁଖ—କ୍ଳୀ. ବି. ରାଜତ୍ୱ ଜନ୍ୟସୁଖ
ରାଜ୍ୟସ୍ଥ—ବିଂ.(ରାଜ୍ୟ+ସ୍ଥା+ଅ)ରାଜ୍ୟ ସ୍ଥିତ । [ ରାଜା ।
ରାଜ୍ୟସ୍ଥାୟୀ—ପୁଂ.ବି.ରାଜ୍ୟଶାସନକାରୀ,
ରାଜ୍ୟସ୍ଥିତି—ବି. ରାଜପଦରେ ଅବସ୍ଥାନ, ଶାସନ ରକ୍ଷୁହସ୍ତ ।
ରାଜ୍ୟହାର—ବିଂ. (ରାଜ୍ୟ+ହୃ+ଅ) ରାଜ୍ୟନାଶକ, ରାଜ୍ୟଉଚ୍ଛେଦନକାରୀ ।
ରାଜ୍ୟାଙ୍ଗ—ବି. (୬ତତ୍) ରାଜ୍ୟଶାସନ କ୍ରମରେ ପ୍ରୟୋଜନୀୟ ଉପକରଣ ବା ପ୍ରଧାନ ଅଙ୍ଗ, (ଯଥା--ହିନ୍ଦୁନୀତିଶାସ୍ତ୍ରରେ ରାଜ୍ୟାଙ୍ଗ ୮ଗୋଟି,ମତାନ୍ତରେ ୯ଗୋଟି =ସ୍ୱାମୀ, ଅଧିପତି, ମନ୍ତ୍ରୀ, ମିତ୍ର, ଧନ, ଦେଶ, ଦୁର୍ଗ,ସୈନ୍ୟ,ପ୍ରକୃତି ବା ପ୍ରଜା, ପୁରୋହିତ ।
ରାଜ୍ୟାଧିକାର—ବି. ( ୬ତତ୍ ) ସପ୍ତାଙ୍ଗ ରାଜ୍ୟର ଅଧିକାର, ରାଜ୍ୟର ଦଖଲ, ରାଜତ୍ୱର ଅଧିକାର ।
ରାଜ୍ୟାଧିପତି—ପୁଂ. ବି. (୬ତତ୍)ରାଜା,

ରାଜ୍ୟର ଅଧିପତି ।
ରାଜ୍ୟାପହରଣ—କ୍ଲୀ. ବି. ଛଳ ବଳ କୌଶଳଦ୍ୱାରା ପରରାଜ୍ୟକୁ ଅଧିକାର କରିବା ।
ରାଜ୍ୟାପହାରକ—ପୁଂ. ବିଂ. ( ୬ତତ୍ର ) ରାଜ୍ୟର ଅପହରଣକାରୀ ।
ରାଜ୍ୟାଭିଷିକ୍ତ—ପୁଂ.ବିଂ.(୭ତତ୍ର) ରାଜକାର୍ଯ୍ୟରେ ବା ପଦରେ ଅଭିଷିକ୍ତ, ଯାହାରରାଜ୍ୟାଭିଷେକ ହୋଇଅଛି ।
ରାଜ୍ୟାଭିଷେକ—ବି. (୬ତତ୍ର)ରାଜାଙ୍କର ରାଜଗାଦିରେ ରାଜାରୂପେ ବସିବା ଅନୁଷ୍ଠାନ ।
ରାଜ୍ୟାଶ୍ରମମୁନି—ପୁଂ.ବି.ରାଜା,ନରପତି ।
ରାଜ୍ୟେଶ୍ୱର—ପୁଂ. ବି. (୬ତତ୍ର)ରାଜା, ରାଜାଧିପତି, (ସ୍ତ୍ରୀ) ରାଜ୍ୟେଶ୍ୱରୀ ।
ରାଜୈଶ୍ୱର୍ଯ୍ୟ—କ୍ଲୀ.ବି.ରାଜରୂପ ଐଶ୍ୱର୍ଯ୍ୟ ।
ରାଜ୍ୟୋପକରଣ-କ୍ଲୀ.ବି. ରାଜ୍ୟଶାସନୋପାଦାନ, ରାଜଚହ୍ନାଦି ।
ରାଡ଼ିଆଲି—ଗ୍ରା. ବି. (ସଂ-ରାଢ଼) ନାନା କଥା କହି ଗୋଳମାଳ କରିବା,ଘୋଷା ।
ରାଞ୍ଚି—ଗ୍ରା. ବି. ବିହାରପ୍ରଦେଶର ଛୋଟ ନାଗପୁରର ରାଜଧାନୀ ।
ରାଞ୍ଜିବା—ଗ୍ରା. ବି. ନଖଦ୍ୱାରା ରାମ୍ପିବା ।
ରାଞ୍ଜୁଡ଼ା—ଗ୍ରା. ବି. ନଖଦ୍ୱାରା ରାମ୍ପି ରେଖାକାରରେ କ୍ଷତବିକ୍ଷତ କରିବା, ଛୋଟ କଣ୍ଟାଦ୍ୱାରା ରାମ୍ପିବା, ରାମ୍ପୁଡ଼ା ଚିହ୍ନ, (ବିଂ) ନଖଦ୍ୱାରା କ୍ଷତବିକ୍ଷତ ।
ରାଞ୍ଜୁଡ଼ିବା—ଗ୍ରା. କି. ରାଞ୍ଜିବା ଦେଖ ।
ରାଞ୍ଜ—ଗ୍ରା. ବି. ରଞ୍ଜା ଦେଖ ।
ରାଟ୍—ପୁଂ.ବିଂ.(ରାଜ+କ.କ୍ୱିପ୍)ସମ୍ୟକ୍ ଶୋଭମାନ, ଶ୍ରେଷ୍ଠ,(ବି)ରାଜା,ରାଜ୍ୟ ।
ରାଟ—ଗ୍ରା. ବି. ରାଜା ।
ରାଟଲ୍—ଯା. ବି. ଆମେରିକାର ବିଷଧର ବଡ଼ସାପବିଶେଷ ।
ରାଟହିଦ୍ର—ଗ୍ରା. ବି. କ୍ଷତ୍ରିୟଙ୍କବଂଶୋପାଧି ବିଶେଷ,ପୁଟ୍ଟଜଲ୍ଲ କୋଠଦେଶର ନିମାପଡ଼ାବାସୀ ପୂର୍ବତନ ଜମିଦାରଙ୍କ ବଂଶୋପାଧି ।
ରାଟି—ବି. (ରଟ୍+ଇ) ଯୁଦ୍ଧ, ଶରାଳି ପକ୍ଷୀ, ହାଡ଼ଗିଲାଚଢ଼େଇ,ଚରଳପକ୍ଷୀ ।
ରାଟିକା—ବି. ହରିଣର ଚକ୍କାର ଶବ୍ଦ ।
ରାଠ—ବି. ମଦନବୃକ୍ଷ, (ଗ୍ରା.ପୁଂ.ବିଂ.) କୃପଣ, ନିଷ୍ଠୁର, (ବି) କୃପଣବ୍ୟକ୍ତି ।
ରାଠୋର—ଗ୍ରା.ବି.(ସଂ-ରାଷ୍ଟ୍ରକୂଟ) ରାଜପୁତ ଜାତିର ଶାଖାବିଶେଷ ।
ରାଡ଼ରାଡ଼ୁଆ—ଗ୍ରା. ବିଂ. ଚୋବାଇବା ପାଇଁ କଠିନ (ବସ୍ତୁବସ୍ତୁ);ଯଥା—ଗୁଆ ପ୍ରଭୃତି) ।
ରାଡ଼ି—ବି. ଶରାଳୀପକ୍ଷୀ ।
ରାଡ଼ୁରାଡ଼ୁ—ଗ୍ରା. ଅବ୍ୟ. ହାଡ଼ଆଦିକୁ ଚୋବାଇବାର ଶବ୍ଦ ।
ରାଢ଼—ବି. (ରହ୍+ ମି.ତ) ଗଙ୍ଗାନଦୀର ପଶ୍ଚିମରେ ଥିବା ବଙ୍ଗଦେଶର ଅଂଶ, ଗଙ୍ଗରାଷ୍ଟ୍ର,ସୌନ୍ଦର୍ଯ୍ୟ(ଗ୍ରା.ବିଂ) ବର୍ବର, ଅସଭ୍ୟ, ଅଶିଷ୍ଟ, ନିଷ୍ଠୁର, ମୂଢ଼,କୃପଣ, (ପ୍ରା. ବାଲେ.ବି) ସାନ୍ତାଳ ପ୍ରଭୃତି ନୀଚ ଜାତି । [ ଦେଶ ।
ରାଢ଼କ—ବି.ସ୍ୱନାମ ପ୍ରସିଦ୍ଧଦେଶ, ରାଢ଼ରାଢ଼ଦେଶ—ବି.ଗଙ୍ଗାନଦୀର ପଶ୍ଚିମରେ ଥିବା ବଙ୍ଗଦେଶର ଅଂଶ ।
ରାଢ଼ା(ଢ଼ୀ)—ସ୍ତ୍ରୀ. ବି. ଶୋଭା, ସୌନ୍ଦର୍ଯ୍ୟ ରାଢ଼ଦେଶ, ପୁଷ୍ପବିଶେଷ ।
ରାଢ଼ି—ଗ୍ରା. ବି. ଏକପ୍ରକାର କୈବର୍ତ୍ତ, (କେଉଟ) ଜାତି;ଏମାନେ ମାଛମାରନ୍ତି ନାହିଁ; ଚୁଡ଼ାଆଦି କୁଟନ୍ତି ।
ରାଢ଼ି(ଢ଼ୁ)ଣୀ—ଗ୍ରା. ସ୍ତ୍ରୀ.ବିଂ.ଦୁଷ୍ଟା (ସ୍ତ୍ରୀ), ମୂଢ଼ା, ହୀନା, ମାଗୁ, ଅଧମା, ନିଷ୍ଠୁରା, କୃପଣା, ଭାଗ୍ୟହୀନା (ସ୍ତ୍ରୀ) ।
ରାଢ଼ୀ—ବିଂ. (ରାଢ଼+ଇନ୍)ରାଢ଼ଦେଶବାସୀ, ରାଢ଼ଦେଶୀୟ, ବଙ୍ଗୀୟବ୍ରାହ୍ମଣ ଓ କାୟସ୍ଥମାନଙ୍କ ଶାଖାବିଶେଷ, ରୂଢ଼, କର୍କଶ ।
ରାଢ଼ୀୟ—ବିଂ. (ରାଢ଼+ଇୟ) ରାଢ଼ଦେଶୋଦ୍ଭବ, ରାଢ଼ଦେଶୀୟ, ( ସ୍ତ୍ରୀ ) ରାଢ଼ୀୟା ।
ରାଣ—ବି. ( ରଣ+ଅ ) ମୟୂରପୁଚ୍ଛ, (ଗ୍ରା.ବି) ଶ୍ରେଷ୍ଠବ୍ୟକ୍ତି, ରାଜା, ଅଧିପତି, ଶପଥ ।
ରାଣଦେଇପକା—ଗ୍ରା. କି. ବିଂ. ଦେବତାଙ୍କ ନାମଧରି କୌଣସି ବ୍ୟକ୍ତିକୁ କୌଣସି ବିଷୟରୁ ନିବର୍ତ୍ତାଇଲେ ସେ ଉକ୍ତ ରାଣ ମାନିକରି ନିବୃତ୍ତ ହେବା ।
ରାଣନିୟମ—ଗ୍ରା. ବି. ଶପଥ ।
ରାଣପକା(କେ)ଇବା—ଗ୍ରା. କି. କୌଣସି ବ୍ୟକ୍ତି ବା ଦେବତାଙ୍କ ନାମ ଉଚ୍ଚାରଣପୂର୍ବକ ଶପଥ କରିବା, ଶପଥ ପୂର୍ବକ କାର୍ଯ୍ୟ କରିବାକୁ ଅନୁରୋଧ କରିବା ।
ରାଣା—ଗ୍ରା.ବି (ସଂ-ରାଜନ୍) ରାଜପୁତରାଜାମାନଙ୍କର ଉପାଧିବିଶେଷ, ରାଜପୁତନାନ୍ତର୍ଗତ ମିବାର ରାଜବଂଶର ଉପାଧି, (ସ୍ତ୍ରୀ) ରାଣୀ ।
ରାଣିକା—ସ୍ତ୍ରୀ. ବି. ଅଶ୍ୱରଜ୍ଜୁ, ବାଗ ।
ରାଣୀ—ସ୍ତ୍ରୀ. ବି. (ସଂ-ରାଜ୍ଞୀ)ରାଜମହିଷୀ, ରାଜପତ୍ନୀ,ରାଜ୍ଞୀଙ୍କପରି ଐଶ୍ୱର୍ଯ୍ୟଶାଳିନୀ (ସ୍ତ୍ରୀ) ।
ରାଣୀଗଞ୍ଜ—ଗ୍ରା. ବି. ବର୍ଦ୍ଧମାନ ଜିଲ୍ଲାର ସବ୍‌ଡିଭିଜନ୍ ଓ ନଗର, ଏଠାରେ କୋଇଲାଖଣି ଅଛି ।
ରାଣୀଗୁମ୍ଫା—ଗ୍ରା. ବି. ଭୁବନେଶ୍ୱର ନିକଟସ୍ଥ ଉଦୟଗିରି ପାହାଡ଼ରେ ବହୁ ପ୍ରକୋଷ୍ଠମୟ ଦ୍ୱିତଳବିଶିଷ୍ଟ ଖୋଦିତ ଗୁମ୍ଫା ।
ରାଣୀଦାନ୍ତକାଠି—ଗ୍ରା. ବି. ସିଧା ସଳଖ ଦାନ୍ତକାଠିର ଉପଯୁକ୍ତ ବନ୍ୟଗୁଳ୍ମବିଶେଷ ।
ରାଣୀହଂସପୁର—ଗ୍ରା.ବି. ଉଆସ,ଯେଉଁଠାରେ ରାଣୀ ରହନ୍ତି ।
ରାଣ୍ଡ—ଗ୍ରା. ସ୍ତ୍ରୀ. ବି. (ସଂ-ରଣ୍ଡା) ବିଧବା ସ୍ତ୍ରୀ, ବେଶ୍ୟା, ରକ୍ଷିତାସ୍ତ୍ରୀ,ଆଶ୍ରୟବିହୀନା ସ୍ତ୍ରୀ, (ବିଂ) ଯାହାର ସ୍ୱାମୀବିୟୋଗ ଘଟିଅଛି, ରାଣ୍ଡପରି ଅଳଙ୍କାର ବିହୀନା (ସ୍ତ୍ରୀ) ।
ରାଣ୍ଡଆଣ୍ଡୁକୁଡ଼ି—ଗ୍ରା. ସ୍ତ୍ରୀ. ବିଂ. ଅନାଥ, ପତି ଓ ସନ୍ତାନବିହୀନା(ସ୍ତ୍ରୀ), ସ୍ତ୍ରୀସୁଲଭ ଗାଳି ।
ରାଣ୍ଡଉପରେଷେଣ୍ଡିହେବା (ନ୍ୟାୟ)—ଗ୍ରା. (ପ୍ରବଚନ) ନିରାଶ୍ରୟ ବିଧବା ଉପରେ ଅତ୍ୟାଚାରପୂର୍ବକ ଆପଣାର ପରାକ୍ରମ

ଦେଖାଇବା (ନ୍ୟାୟ) ।

ରାଣ୍ଡକରିବା—ଗ୍ରା.କ୍ରି.ଆପେ ମୃତ ହେବା ଦ୍ୱାରା ଆପଣା ସ୍ତ୍ରୀର ବୈଧବ୍ୟ ଘଟାଇବା, ସ୍ୱାମୀର ମୃତ୍ୟୁର କାରଣ ହୋଇ ସ୍ତ୍ରୀକୁ ବିଧବା କରାଇବା, ସ୍ୱାମୀ ମୃତ ହେବା ପରେ ସ୍ତ୍ରୀ ହାତରୁ ଖଡୁଆଦି କାଢ଼ିବା,ରୁ ରାଣ୍ଡ ହୋ ବୋଲି ସଧବାକୁ ଗାଳିଦେବା, ( ଲ.ଅର୍ଥ ) କୌଣସି ଲୋକର ସର୍ବସ୍ୱ ହରଣ କରିବା ।

ରାଣ୍ଡଛେଉଣ୍ଡ—ଗ୍ରା. ବି. ପିତୃମାତୃହୀନ ବିଧବା,ନିରାଶ୍ରୟ ପିତୃମାତୃହୀନ ବ୍ୟକ୍ତି ।

ରାଣ୍ଡମାଇପ—ଗ୍ରା.ବି. ବିଧବା ସ୍ତ୍ରୀ, ନିରାଶ୍ରୟା ବିଧବା ।

ରାଣ୍ଡର କିଆଁ ଆଇଁଷରେ ଚିନ୍ତା—ଗ୍ରା. (ପ୍ରବଚନ);(ବିଧବା ସ୍ତ୍ରୀ ପକ୍ଷରେ ଆମିଷ ଭୋଜନ ନିଷିଦ୍ଧ ଏପରି ସ୍ଥଳରେ ବିଧବାର ଆମିଷ ସମ୍ବନ୍ଧରେ ଚିନ୍ତା କରିବା ଅନାବଶ୍ୟକ, ଯେଉଁ ବିଷୟରେ କାହାର ସ୍ୱାର୍ଥ ବା ସମ୍ପର୍କ ନ ଥାଏ ସେ ବିଷୟରେ ସେ ଚର୍ଚ୍ଚା କଲେ ଏ ପ୍ରବଚନ ବୋଲିଯାଏ); ନିଜର ସ୍ୱାର୍ଥ ବା ସମ୍ପର୍କ ନ ଥିବା ବିଷୟରେ ଚିନ୍ତା କରିବା ।

ରାଣ୍ଡରଖିବା—ଗ୍ରା. କ୍ରି. ବିବାହ ନ କରି କୌଣସି ସ୍ତ୍ରୀକୁ ପତ୍ନୀ ରୂପେ ଭୋଗ କରିବା, ବେଶ୍ୟା ରଖିବା, ସ୍ୱାମୀ ମରିଯିବା ହେତୁରୁ ସ୍ତ୍ରୀକୁ ରାଣ୍ଡ କରି ଛାଡ଼ିଯିବା ।

ରାଣ୍ଡର ପୁଅ—ଗ୍ରା.ପୁଂ.ବି.ନିରାଶ୍ରୟା ବିଧବାର ସନ୍ତାନ, ବିଧବା ସ୍ତ୍ରୀର ଅବୈଧ ସନ୍ତାନ ।

ରାଣ୍ଡହାତ—ଗ୍ରା.ବି.ବଳୟ ଓ ଭୂଷଣହୀନ (ସ୍ତ୍ରୀ ଲୋକର) ହାତ ।

ରାଣ୍ଡହେବା—ଗ୍ରା.କ୍ରି. ସ୍ୱାମୀର ମୃତ୍ୟୁ ଘଟିବାରୁ ବିଧବା ହେବା ।

ରାଣ୍ଡୀ—ଗ୍ରା. ସ୍ତ୍ରୀ. ବି. (ସଂ-ରଣ୍ଡା) ରାଣ୍ଡ, ବିଧବା,ବେଶ୍ୟା,ରକ୍ଷିତା ସ୍ତ୍ରୀ, ସ୍ତ୍ରୀଲୋକଙ୍କ ପ୍ରତି ଗାଳିବିଶେଷ, ନିରାଶ୍ରୟା ବିଧବା ।

ରାଣ୍ଡୀଖଣ୍ଡୀ—ଗ୍ରା. ସ୍ତ୍ରୀ. ବି. ନିରାଶ୍ରୟା ଓ ମାତୃ ପିତୃହୀନା ବାଳିକା, ବିଧବା ଓ ମାତୃହୀନା ବାଳିକା,ଅନାଥ ସ୍ତ୍ରୀ, ଅପତ୍ୟହୀନା ବିଧବା ସ୍ତ୍ରୀ ।

ରାଣ୍ଡୀପୁଅ ଅନନ୍ତା—ଗ୍ରା.ବି. କାହାଣୀରେ କଥିତ ବିଧବା ବ୍ରାହ୍ମଣୀର ଏକମାତ୍ର ଅଯୋଗ୍ୟ ସନ୍ତାନ, ଯେଉଁ ଲୋକର ଘରେ ପୋଷ୍ୟବର୍ଗ କେହି ନ ଥିବାରୁ ସେ ନିଶ୍ଚିନ୍ତ ହୋଇ ବୁଲୁଥାଏ ।

ରାଣ୍ଡୁଲା—ଗ୍ରା. ପୁଂ. ବି. ଯାହାର ସ୍ତ୍ରୀ ନଷ୍ଟ ହୋଇଅଛି, (ବି) ଏକପ୍ରକାର ଲୁଣିମାଛ ।

ରାତ୍‌କାରାତ—ଗ୍ରା. କ୍ରି. ବିଂ. ଏକରାତ ମଧ୍ୟରେ, ରାତ୍ରିତମାମ୍, ରାତ୍ରିର ସୁବିଧା ପାଇ । [ ପ୍ରଦତ୍ତ

ରାତ—ବିଂ. (ରା+ମ୍.କ୍ତ)ଦତ୍ତ, ଅନୁଗ୍ରହ

ରାତମନାଃ—ପୁଂ. ବିଂ. ଦେବାର ଇଚ୍ଛା ଯାହାର ଅଛି । [ ଦେଖ ।

ରାତାରାତ—ଗ୍ରା.ଅ.କ୍ରି.ବିଂ.ରାତ୍‌କାରାତ

ରାତ—ସ୍ତ୍ରୀ. ବି. ଦାତବ୍ୟ ଦ୍ରବ୍ୟ, (ଗ୍ରା.ବି. ସଂ-ରାତ୍ରି) ରାତ୍ରି, ରଜନୀ ।

ରାତଅଧ--ଗ୍ରା.ବି.(ସଂ-ରାତ୍ର୍ୟର୍ଦ୍ଧ)ଅର୍ଦ୍ଧରାତ୍ରି ।

ରାତଅଧିଆ-ଗ୍ରା.ବିଂ,ରାତଅଧରେ ଘଟୁଥିବା

ରାତଅନିଦ୍ରା-ଗ୍ରା.ବି.ରାତ୍ରିରେ ନଶୋଇବା, (ବିଂ) ରାତ୍ରିରେ ଉନ୍ନିଦ୍ର ।

ରାତଅନ୍ଧାର-ଗ୍ରା.ବି.ରାତ୍ରିଜନିତ ଅନ୍ଧକାର

ରାତଏ(କ)--ଗ୍ରା.କ୍ରି.ବିଂ.ଏକରାତ୍ରିସମୟ । ଏକରାତ୍ରମାତ୍ର ।

ରାତଏଗଲେହାତଏଆଣିବା-ଗ୍ରା.ପ୍ରବଚନ. (ଚୋରମାନଙ୍କ ବ୍ୟବସାୟପ୍ରତି ଲକ୍ଷ୍ୟକରି) ଏକରାତ ମଧ୍ୟରେ ଚୋରକର ହାତରେ ଲଭାହେବା ବୋଝ, ପରିମିତ ଧନ ଆଣିବା ।

ରାତକରାତ—ଗ୍ରା.କ୍ରି.ବିଂ.ଏକାଦିକ୍ରମେ ବହୁରାତ୍ରି ।

ରାତକାଙ୍ଗୁଲୁକାଙ୍ଗୁଲୁ—ଗ୍ରା.ବି.ବଡ଼ଭୋର, ଅତି ପ୍ରତ୍ୟୁଷ, ରାତ୍ରି ପାହିବାର ପୂର୍ବସମୟ ।

ରାତଝିଟିଝିଟିପାହିବାବେଳ—ଗ୍ରା.ବି.ବଡ଼ଭୋର,ସମ୍ପୂର୍ଣ୍ଣରୂପେ ଅନ୍ଧାର ଛାଡ଼ିନଥିବା ସମୟ, ଫସରଫାଟିବା ବେଳ ।

ରାତଥାଉଁ—ଗ୍ରା. କ୍ରି. ବିଂ. ଭୋର ନ ହେଉଣୁ ।

ରାତଦିନ-ଗ୍ରା.କ୍ରି.ବିଂ.ଅହର୍ନିଶ,ଦିବାରାତ୍ର

ରାତପାହୁଣୁ—ଗ୍ରା.କ୍ରି.ବିଂ. ରାତ ଥାଉଁ ଥାଉଁ, ଭୋର ନ ହେଉଣୁ ।

ରାତପାହିବା—ଗ୍ରା.ବି. ରାତର ଅବସାନ ବେଳା, ଭୋର, ଉଷାକାଳ, ସକାଳ ହେବା ସମୟ । [ ଲୁଗା ।

ରାତପିନ୍ଧା—ଗ୍ରା. ବି. ରାତ୍ରିରେ ପିନ୍ଧିବା

ରାତବକାଳ—ଗ୍ରା.କ୍ରି. ବିଂ. ରାତ୍ରିରେ ଅସମୟରେ ।

ରାତବକାଳିଆ-ଗ୍ରା.ବିଂ.ରାତରେ ଘଟିବା

ରାତରାତ—ଗ୍ରା.କ୍ରି. ବିଂ. ରାତାରାତ୍ର, ରାତ୍ରିତମାମ୍, ପ୍ରତି ରାତ୍ରିରେ ।

ରାତରାତନାହିଁକିଦିନଦିନନାହିଁ—ଗ୍ରା.କ୍ରି. ବିଂ.ଅହର୍ନିଶ,ସର୍ବଦା, ୨୪ଘଣ୍ଟା ଯାକ, ଅବିଶ୍ରାନ୍ତରୂପେ ।

ରାତଶେଷ--ଗ୍ରା.ବି. ରାତ୍ରିର ଅବସାନ ।

ରାତହେବା—ଗ୍ରା. ବି. ରାତ୍ରିର ଅଧିକ ବେଳ ହୋଇଯିବା, ସନ୍ଧ୍ୟାବୁଡ଼ିବା ।

ରାତ୍ର—କ୍ଲୀ.ବି, ଜ୍ଞାନ, ରାତ୍ରି, ସମୟ ।

ରାତ୍ରକ—ବି. ପଞ୍ଚରାତ୍ରକ, ଏକବର୍ଷ ବେଶ୍ୟାଗୃହବାସୀ ବ୍ୟକ୍ତି,(ଗ୍ରା.ବି)ଏକରାତ୍ରି ସମୟ । [ ୨୪ଘଣ୍ଟା ।

ରାତ୍ରଦିନ—ଗ୍ରା.ବି.ଦିବାନିଶି, ଅହର୍ନିଶ,

ରାତ୍ରଦିବା—ଗ୍ରା.ବି. ରାତ୍ରଦିନ ଦେଖ ।

ରାତ୍ରି—ବି. (ରା+ତ୍ରି) ହରିଦ୍ରା, ହଳଦୀ, ରଜନୀ, ଏକସୂର୍ଯ୍ୟୋଦୟଠାରୁ ପୂର୍ବବର୍ତ୍ତୀ ସୂର୍ଯ୍ୟାସ୍ତର ମଧ୍ୟବର୍ତ୍ତୀ କାଳ ।

ରାତ୍ରିକ—ବି.(ରାତ୍ରି+କ)ରାତ୍ରକ ଦେଖ, ଏକପ୍ରକାର ବସ୍ତ୍ର, (ଗ୍ରା.କ୍ରି.ବିଂ.) ଏକରାତ୍ରିମାତ୍ର ।

ରାତ୍ରିକର—ବି. (ରାତ୍ରି+କୃ+ଅ)ଚନ୍ଦ୍ର, କର୍ପୂର ।

ରାତ୍ରିକାଣ—ପୁଂ. ବିଂ. ଅନ୍ଧାରକଣା, ରାତକଣା, (ସ୍ତ୍ରୀ) ରାତ୍ରିକାଣୀ ।

ରାତ୍ରିକାଳ—ବି. ରଜନୀ, ରାତସମୟ ।

ରାତ୍ରିକୃତ୍ୟ—ବିଂ. (ରାତ୍ରି+କୃତ୍+ଯ)

ରାତ୍ରିରେ ଆଚରଣୀୟ (ବିଷୟ) ।
**ରାତ୍ରିଚର**—ବି. (ରାତ୍ରି+ଚର୍+ଅ) ରାକ୍ଷସ, ଚୋର, ରାତ୍ରିରେ ଆହାର ଅନ୍ୱେଷଣକାରୀ ଜୀବ (ବାଘ, ଭାଲୁ, ବାଦୁଡ଼ି, ପେଚା ପ୍ରଭୃତି), ରାତିରେ ପହରା ଦେବା ଲୋକ, ଭୂତପ୍ରେତପିଶାଚାଦି, (ବିଂ) ରାତ୍ରିରେ ବିଚରଣକାରୀ, (ସ୍ତ୍ରୀ) ରାତ୍ରିଚରୀ ।
**ରାତ୍ରିଚର୍ଯ୍ୟା**—ସ୍ତ୍ରୀ.ବି. ରାତ୍ରିରେ କର୍ତ୍ତବ୍ୟ କର୍ମ, ସ୍ୱାସ୍ଥ୍ୟକାମୀ ବ୍ୟକ୍ତିର ସୂର୍ଯ୍ୟାସ୍ତଠାରୁ ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ ଆହାର ଓ ନିଦ୍ରାଦିବିଷୟରେ ବୈଦ୍ୟଶାସ୍ତ୍ରାନୁମୋଦିତ ବିଧି ପାଳନ ।
**ରାତ୍ରିଜ**—କ୍ଲୀ.ବିଂ. (ରାତ୍ରି+ଜନ୍+ଡ. ଅ) ରାତ୍ରିକାଳେ ଜାତ, (ବି) ନକ୍ଷତ୍ର, ତାରା ।
**ରାତ୍ରିଜଳ**—କ୍ଲୀ.ବି. (ରାତ୍ରି+ଜଳ)କୁଜ୍ଝଟିକା, କୁହୁଡ଼ି, ଶିଶିର ।
**ରାତ୍ରିଜାଗର**—ପୁଂ.ବି. (ରାତ୍ରି+ଜାଗୃ+ଡ.ଅ) କୁକୁର, (ବିଂ) ରାତ୍ରିଜାଗରଣଶୀଳ ।
**ରାତ୍ରିଜାଗରଣ**—ବି. (ରାତ୍ରି+ଜାଗୃ+ଣିଚ୍.ଅନ) ରାତ୍ରିରେ ନଶୋଇ ଚେଇଁବା
**ରାତ୍ରିଜାଗରଦ**—ବି. ମଶା ।
**ରାତ୍ରିଞ୍ଚର**—ପୁଂ.ବି ଓ ବିଂ. ରାତ୍ରିଚର ଦେଖ ।
**ରାତ୍ରିତରା**—ସ୍ତ୍ରୀ.ବି. ଗଭୀର ରଜନୀ ।
**ରାତ୍ରିତିଥି**—ସ୍ତ୍ରୀ.ବି. ଶୁକ୍ଳପକ୍ଷୀୟ ରାତ୍ରି ।
**ରାତ୍ରିଦଣ୍ଡ**—ବି. (ଜ୍ୟୋତିଷ) ରାତ୍ରିକାଳମଧ୍ୟସ୍ଥ ଦଣ୍ଡ (ଯାହା ଜ୍ୟୋତିଷ ମତରେ ଶୁଭ ବା ଅଶୁଭବୋଲି ବିବେଚିତ) ।
**ରାତ୍ରିନ୍ଦିବ**—ଅବ୍ୟ. ଦିବାରାତ୍ରି ମଧ୍ୟରେ ।
**ରାତ୍ରିନାଶନ**—ପୁଂ.ବି. (ରାତ୍ରି+ନାଶନ) ସୂର୍ଯ୍ୟ ।
**ରାତ୍ରିନ୍ଦିବ**—କ୍ଲୀ.ବି. ଦିବାରାତ୍ର ।
**ରାତ୍ରିପରିଶିଷ୍ଟ**—କ୍ଲୀ.ବି. ରାତ୍ରିସୂକ୍ତ ଦେଖ
**ରାତ୍ରିପାଳନ**--ବି.ନିଶାପାଳନ, ଅମାବାସ୍ୟା ପୂର୍ଣ୍ଣିମା ଓ ଏକାଦଶୀ ତିଥିଆଦିରେ ରାତ୍ରିରେ ଭୋଜନ ସ୍ତ୍ରୀ ସହବାସ ଦି ନକରିବା ଜପାଦି କରିବାଆଦି କେତେଗୁଡ଼ିଏ ନିୟମ ।
**ରାତ୍ରିପୁଷ୍ପ**—କ୍ଲୀ.ବି.ଉତ୍ପଳ, କଇଁ ।
**ରାତ୍ରିପୂଜା**—ବି. ରାତ୍ରିକାଳୀନ ପୂଜା, ପର୍ବୋପଲକ୍ଷେ ରାତ୍ରିରେ କରିବା ଦେବଦେବୀଙ୍କ ପୂଜା ।
**ରାତ୍ରିଭୋଜନ**—ବି. ରାତିରେ ଖାଇବା ।
**ରାତ୍ରିମଟ**—ପୁଂ.ବି ଓ ବିଂ. (ରାତ୍ରି+ଅଟ୍+ଡ.ଅ) ରାତ୍ରିଚର ଦେଖ ।
**ରାତ୍ରିମଣି**—ପୁଂ.ବିଂ. (ରାତ୍ରି+ମଣି) ଚନ୍ଦ୍ର ।
**ରାତ୍ରିମୁଖେ**—କ୍ରି.ବି.ବିଂ.ରାତ୍ରିଯୋଗେ, ରାତ୍ରିରେ ।
**ରାତ୍ରିଯାପନ**—ବି. ରାତି ବିତାଇବା ।
**ରାତ୍ରିଯୋଗ**—ବି. ରାତ୍ରିର ଆଗମନ, ସନ୍ଧ୍ୟାବେଳ, (ଜ୍ୟୋତିଷ) ରାତିରେ ଘଟିବା ଶୁଭବେଳ ।
**ରାତ୍ରିଯୋଗରେ**—କ୍ରି.ବି.ବିଂ.ସନ୍ଧ୍ୟାପରେ ରାତ୍ରିମଧ୍ୟରେ, ରାତ୍ରିକାଳରେ ।
**ରାତ୍ରିଲଗ୍ନ**—ବି. (ଜ୍ୟୋତିଷ) ବିବାହାଦି ଶୁଭକର୍ମପାଇଁ ରାତ୍ରିକାଳରେ ପଡ଼ିବା ଲଗ୍ନ ବା ମୁହୂର୍ତ୍ତ ।
**ରାତ୍ରିବଳ**—ବିଂ.ରାକ୍ଷସ,(ବିଂ)ରାତ୍ରିରେ ବଳଶାଳୀ ।
**ରାତ୍ରିବାସ**—ବି. କୌଣସି ସ୍ଥାନରେ ରାତ୍ରିରେ ଅବସ୍ଥାନ, ରାତ୍ରିଯାପନ, ରାତିପିନ୍ଧା ଲୁଗା, ଶୋଇବାବେଳେ ବ୍ୟବହୃତ ଶେଯ ଓ ବସ୍ତ୍ରାଦି,ଅନ୍ଧକାର ।
**ରାତ୍ରିବିଗମ**-ବି. (ରାତ୍ରି+ବିଗମ)ପ୍ରଭାତ ।
**ରାତ୍ରିକ୍ଷିରା**—ବି. ପ୍ରଭାତ ।
**ରାତ୍ରିବିଶ୍ଳେଷଗାମୀ**—ବି.(ରାତ୍ରି+ବିଶ୍ଳେଷ+ଗମ୍+ଇନ୍) ଚକ୍ରବାକପକ୍ଷୀ,(ବିଂ) ରାତ୍ରିରେ ବିଚ୍ଛେଦପ୍ରାପ୍ତ ।
**ରାତ୍ରିବେଦ**—ପୁଂ.ବି. (ରାତ୍ରି+ବିଦ୍+ଡ.ଅ) କୁକ୍କୁଟ ।
**ରାତ୍ରିବେଦୀ**—ପୁଂ.ବି. (ରାତ୍ରି+ବିଦ୍+ଇନ୍) କୁକ୍କୁଟ, କୁକୁଡ଼ା ।
**ରାତ୍ରିଶେଷ**—ବି. (ତତ୍ପୁ) ରାତିର ଶେଷଭାଗ ।
**ରାତ୍ରିସୂକ୍ତ**—କ୍ଲୀ. ବି. ଚଣ୍ଡୀ ସ୍ତୋତ୍ରର ଅନ୍ତର୍ଗତ ଋକ୍‌ବେଦୋକ୍ତ ସୂକ୍ତବିଶେଷ
**ରାତ୍ରିହାସ**—ବି.ଶ୍ୱେତୋତ୍ପଳ,କଇଁଫୁଲ ।
**ରାତ୍ରିହିଣ୍ଡକ**—ବି. (ରାତ୍ରି+ହିଣ୍ଡ୍+ଅକ) ଅନ୍ତଃପୁରରକ୍ଷକ ଭୃତ୍ୟ ।
**ରାତ୍ରୀ**—ସ୍ତ୍ରୀ.ବି. (ରାତ୍ରି+ଈ) ନିଶା, ହରିଦ୍ରା, ହଳଦୀ ।
**ରାତ୍ର୍ୟଂଶ**—ବି.(ତତ୍ପୁ) ରାତ୍ରିର ଅଂଶ ବା ଭାଗ ।
**ରାତ୍ର୍ୟଟ**—ପୁଂ.ବି ଓ ବିଂ. ରାତ୍ରିଚର ଦେଖ, (ସ୍ତ୍ରୀ) ରାତ୍ର୍ୟଟା ।
**ରାତ୍ର୍ୟନ୍ଧ**—ପୁଂ.ବିଂ. ଅନ୍ଧାରକଣା, (ବି) ରାତ୍ରିରେ ସ୍ୱାଭାବିକ ଦୃଷ୍ଟିହୀନ ପକ୍ଷୀ (କାକାଦି) ।
**ରାତ୍ର୍ୟନ୍ଧତା**—ବି.(ରାତ୍ର୍ୟନ୍ଧ+ତା)ଅନ୍ଧାରକଣା ରୋଗ ।
**ରାତ୍ର୍ୟାନ୍ଧ୍ୟ**—ବି. ରାତିକଣକା ରୋଗ ।
**ରାଥକାରେୟ**—ବି. ରଥକାର ନାମକ ଅପ୍ସରୋଗଣବିଶେଷ ।
**ରାଦ୍ଧ**—ବିଂ. (ରାଧ୍+ର୍ମ.ତ) ପକ୍ୱ, ସିଦ୍ଧ, ରନ୍ଧାହୋଇଥିବା, ଫଳିତ, ନିଷ୍ପନ୍ନ, ସମ୍ପନ୍ନ ।
**ରାଦ୍ଧାନ୍ତ**—ବିଂ. (ରାଦ୍ଧ+ଅନ୍ତ) ବି.ସ୍ତ୍ରୀ; ସିଦ୍ଧାନ୍ତ, ମୀମାଂସିତ ।
**ରାଦ୍ଧାନ୍ତିତ**—ବିଂ. ସିଦ୍ଧାନ୍ତୀକୃତ, ନ୍ୟାୟସୂତ୍ର ପରୀକ୍ଷା ଦ୍ୱାରା ପ୍ରତିଷ୍ଠିତ ।
**ରାଦ୍ଧି**—ବି. ସମୃଦ୍ଧି, ସାଫଲ୍ୟ, ଉନ୍ନତି, ଶୁଭାଦୃଷ୍ଟ ।
**ରାଧ**—ପୁଂ. ବି. (ରାଧା+ଅ) ବୈଶାଖମାସ, ଧନ ।
**ରାଧନ**—କ୍ଲୀ.ବି. (ରାଧ+ଅନ) ସାଧନ, ପ୍ରାପ୍ତି,ତୋଷ,ଆରାଧନା,ପୂଜା,କଥନ ।
**ରାଧନା**—ବି. (ରାଧନ+ଆ) ବାକ୍ୟ, କଥନ, ରାଧନ ଦେଖ ।
**ରାଧରଙ୍କ**—ବି. (ରାଧଃ+ଅଙ୍କ)ଲଙ୍ଗଳ, ସ୍ୱଳ୍ପବୃଷ୍ଟି ବା ତୁଷାରପାତ ।
**ରାଧରଙ୍କୁ**—ବି. ସାର, ଶୀକର,ଜଳଦୋପଳ, କୁଆପଥର ।
**ରାଧସ୍**—କ୍ଲୀ. ବି. ଅନୁଗ୍ରହ,ସହାନୁଭୂତି,

ଦସ୍ୟୁ, ଦାନ ।
ରାଧସ୍ପତ-ପୁଂ.ବ. ଧନାଧିପତି,ଶ୍ରେଷ୍ଠଦାନୀ ।
ରାଧା—ସ୍ତ୍ରୀ. ବ. ( ରାଧ୍+କ.ଅ+ଆ ) ଶ୍ରୀକୃଷ୍ଣଙ୍କ ପ୍ରେୟସୀ, କୃଷ୍ଣ ପ୍ରେମରେ ସର୍ବତ୍ୟାଗିନୀ ବୃଷଭାନୁକନ୍ୟା,ରାଧିକା, ଧୃତରାଷ୍ଟ୍ରଙ୍କ ସାରଥି ଅଧିରଥଙ୍କ ପତ୍ନୀ, କର୍ଣ୍ଣଙ୍କର ପାଳୟିତ୍ରୀ ଜନନୀ, ବିଦ୍ୟୁତ୍, ଅମଳକୀ, ବସ୍ତ୍ରଦ୍ଧାନ୍ତ ଦେଶ, ଅପରାଜିତା ଲତା ଓ ଫୁଲ, ବାଣମୋକ୍ଷଣକାଳୀନ ଅବସ୍ଥାନବିଶେଷ, ବିଶାଖା ନକ୍ଷତ୍ର, ଗୋବର୍ଦ୍ଧନ ମଲ୍ଲଙ୍କ ସ୍ତ୍ରୀ,ଚନ୍ଦ୍ରାବଳୀ, ପ୍ରୀତି, ପ୍ରେମ, (ଅଧି+ଅ+ଆ) ବୈଶାଖ ପୂର୍ଣ୍ଣିମା, ବର୍ଣ୍ଣବୃତ୍ତବିଶେଷ ।
ରାଧାକାନ୍ତ—ପୁଂ. ବ. (ରାଧା+କାନ୍ତ) ୬ତତ୍; ଶ୍ରୀକୃଷ୍ଣ ।
ରାଧାକାନ୍ତଦେବ—ଗ୍ରା.ବ. ଶବ୍ଦକଳ୍ପଦ୍ରୁମ ସଂସ୍କୃତ ଅଭିଧାନର ପ୍ରଣେତା ସ୍ୱର୍ଗୀୟ ରାଜା ସର୍ ରାଧାକାନ୍ତଦେବ ।
ରାଧାକାନ୍ତମଠ—ଗ୍ରା.ବ.ପୁରୀର ଗୌଡ଼ୀୟ ପ୍ରସିଦ୍ଧ ବୈଷ୍ଣବ ମଠ ।
ରାଧାକୁଣ୍ଡ—ବ.ବୃନ୍ଦାବନସ୍ଥ ତୀର୍ଥବିଶେଷ ।
ରାଧାକୃଷ୍ଣ—ପୁଂ. ବ. (ଦ୍ୱନ୍ଦ୍ୱ) ରାଧା ଓ କୃଷ୍ଣ, ଶ୍ରୀରାଧା ଓ ଶ୍ରୀକୃଷ୍ଣ ।
ରାଧାଚକ୍ର—ବ. (କ.ଧା) ସୁଦର୍ଶନ ଚକ୍ର ।
ରାଧାଚଡ଼କ—ଗ୍ରା. ବ. (ଗାଳ) ମନୁଷ୍ୟ ଉପରେ ପଡ଼ି ମୁଣ୍ଡ ଘଷାଇବା ଚଡ଼ଚଡ଼ ବା ବଜ୍ରସୂଚୀ ।
ରାଧାଜନ୍ମ—ବ. ରାଧାଷ୍ଟମୀ ଦେଖ ।
ରାଧାତନୟ—ପୁଂ. ବ. (୬ତତ୍) କର୍ଣ୍ଣ, ଅଙ୍ଗରାଜ ।
ରାଧା ତନ୍ତ୍ର—କ୍ଲୀ. ବ. ତନ୍ତ୍ରବିଶେଷ ।
ରାଧାତାପିନୀ—ବ. ଅଥର୍ବ ବେଦର ଉପନିଷଦ୍ ଅନ୍ତର୍ଗତ ବୈଷ୍ଣବଧର୍ମ ଗ୍ରନ୍ଥବିଶେଷ ।
ରାଧାଦାମୋଦର—ବ. ରାଧା ଓ ଶ୍ରୀକୃଷ୍ଣ, ରାଈଦାମୋଦର ଦେଖ, ଜପିବା ମନ୍ତ୍ର ଓ ବ୍ରତବିଶେଷ ।
ରାଧାନାଥ—ପୁଂ. ବ. (୬ତତ୍) ଶ୍ରୀକୃଷ୍ଣ, (ଗ୍ରା.ବ) ସ୍ୱର୍ଗୀୟ କବିବର ରାଧାନାଥ ରାୟ ବାହାଦୁର ।
ରାଧାନୁରାଧୀୟ—ବିଂ.(ରାଧା+ଅନୁରାଧା+ଈୟ) ବିଶାଖା ଓ ଅନୁରାଧା ନକ୍ଷତ୍ର ସମ୍ବନ୍ଧୀୟ ।
ରାଧାପଦ୍ମ—କ୍ଲୀ. ବ. ଶ୍ୱେତପଦ୍ମ, ସୂର୍ଯ୍ୟମୁଖୀ ଫୁଲ ।
ରାଧାପ୍ରିୟା—ସ୍ତ୍ରୀ.ବ. (୬ତତ୍) ରାଧିକାଙ୍କ ପ୍ରିୟସଖୀ ।
ରାଧାଭେଦୀ—ପୁଂ. ବ. (ରାଧା+ଭିଦ୍+କ.ଇନ୍) ଅର୍ଜୁନ ।
ରାଧାମାଧବ—ପୁଂ.ବ. (ଦ୍ୱନ୍ଦ୍ୱ) ରାଧାକୃଷ୍ଣ ।
ରାଧାମୋହନ—ପୁଂ.ବ.(୬ତତ୍)ଶ୍ରୀକୃଷ୍ଣ ।
ରାଧାରମଣ—ପୁଂ.ବ. (୬ତତ୍) ଶ୍ରୀକୃଷ୍ଣ ।
ରାଧାରମଣଦାସ—ଗ୍ରା. ବ. ସ୍ୱନାମଧନ୍ୟ ବୈଷ୍ଣବ ପୁରୀର ବଡ଼ ବାବାଜୀ ।
ରାଧାବାନ୍—ପୁଂ. ବିଂ. (ରାଧା+ବତ୍) ଧନଯୁକ୍ତ, ଐଶ୍ୱର୍ଯ୍ୟଶାଳୀ ।
ରାଧାବିନୋଦ—ପୁଂ. ବ. ଶ୍ରୀକୃଷ୍ଣ ।
ରାଧାବେଧୀ—ପୁଂ. ବ. ଅର୍ଜୁନ ।
ରାଧାଶ୍ୟାମ—ବ.(ଦ୍ୱନ୍ଦ୍ୱ)ରାଧା ଓ ଶ୍ରୀକୃଷ୍ଣ ।
ରାଧାଶ୍ୟାମନରେନ୍ଦ୍ର--ଗ୍ରା.ବ. କେନ୍ଦ୍ରାପଡ଼ାର ପ୍ରସିଦ୍ଧ ଜମିଦାର ।
ରାଧାଷ୍ଟମୀ—ବ. ( କ.ଧା ) ଭାଦ୍ରମାସର ଶୁକ୍ଳାଷ୍ଟମୀ, ରାଧା ଏ ଦିନ ଜନ୍ମଗ୍ରହଣ କରିଥିଲେ ।
ରାଧାଷ୍ଟମୀବ୍ରତ—କ୍ଲୀ. ବ. ହିନ୍ଦୁମାନଙ୍କର କର୍ତ୍ତବ୍ୟ ବ୍ରତବିଶେଷ ।
ରାଧାସଖୀ—ବ.ରାଧାଙ୍କର ସାଙ୍ଗ,ରାଧାଙ୍କର ପ୍ରିୟ ଅଷ୍ଟସଖୀ ।
ରାଧାସୁତ—ପୁଂ. ବ. ( ରାଧା+ସୁତ ) ୬ତତ୍; କର୍ଣ୍ଣ, ଅଙ୍ଗରାଜ ।
ରାଧି—ବ. (ରାଧ୍+ଇ) ଧନୀ ।
ରାଧିକା—ସ୍ତ୍ରୀ.ବ. (ରାଧ୍+କ.ଅକ+ଆ) ରାଧା ଦେଖ, ବୃଷଭାନୁନନ୍ଦିନୀ ।
ରାଧିକାକାନ୍ତ—ପୁଂ.ବ. (୬ତତ୍)ଶ୍ରୀକୃଷ୍ଣ ।
ରାଧିକାଗୋପିକାଗଣ—ବ. ରାଧା ଓ ଗୋପୀମାନେ ।
ରାଧିକାଦୂତିକା—ବ. ରାଧା ଓ ତାଙ୍କ ପ୍ରିୟସଖୀ ଲଳିତା, (ଗ୍ରା.ବ) ସମବୟସ୍କା ଯୁବତୀ ସଖୀଦ୍ୱୟ ।
ରାଧିକାରଞ୍ଜନ(ରମଣ,ବଲ୍ଲଭ)—ପୁଂ. ବ. (୬ତତ୍) ଶ୍ରୀକୃଷ୍ଣ ।
ରାଧିକାବିନୋଦ—ପୁଂ. ବ. ( ୬ତତ୍ ) ଶ୍ରୀକୃଷ୍ଣ ।
ରାଧିକେ—ବ.(ରାଧା ଶବ୍ଦର ସମ୍ବୋଧନ) ହେ ରାଧିକା !
ରାଧୀ—ସ୍ତ୍ରୀ. ବ. ( ରାଧ୍+ଅଧି+ଈ ) ବୈଶାଖ ପୂର୍ଣ୍ଣିମା ।
ରାଧେ—ବ. (ସମ୍ବୋଧନ) ହେ ରାଧା !
ରାଧେକୃଷ୍ଣ—ଗ୍ରା. ବ. ବୈଷ୍ଣବମାନେ ଜପିବା ରାଧାକୃଷ୍ଣ ନାମ ।
ରାଧେୟ—ପୁଂ. ବ. ( ରାଧା+ଏୟ ) କର୍ଣ୍ଣବୀର, ଅଙ୍ଗରାଜ ।
ରାଧେଶ(ଶ୍ୱର)—ପୁଂ. ବ. ଶ୍ରୀକୃଷ୍ଣ ।
ରାଧୋଦେୟ—କ୍ଲୀ ବ. ଧନସହିତ ଦାନର ଯୋଗ୍ୟ ଉପହାର ।
ରାଧ୍ୟ—ବିଂ. (ରାଧ୍+ଯ) ଆରାଧନୀୟ, ପୂଜନୀୟ ।
ରାନୁ—ପ୍ରା. (ସମ୍ବଲ) ବ. ହାଣ୍ଡିଆ ମଦ ତିଆରି କରିବା ପାଇଁ ଭାତରେ ମିଶାଯିବା ଔଷଧ ବଟିକା ।
ରାନ୍ଧୁନୀ—ପ୍ରା. (ସମ୍ବ) ସ୍ତ୍ରୀ. ବ. ରାନ୍ଧୁଣୀ, ପାଚିକା ।
ରାନ୍ଧଣା—ଗ୍ରା. ବ. (ସଂ-ରନ୍ଧନ) ରନ୍ଧା, ଖାଦ୍ୟାଦିର ରନ୍ଧନ,ରାନ୍ଧିଥିବା ଦ୍ରବ୍ୟର ପ୍ରକାର, (ବିଂ) ରନ୍ଧାହୋଇଥିବା ।
ରାନ୍ଧବାଢ଼—ଗ୍ରା. ବ. ରାନ୍ଧିବା ଓ ବାଢ଼ିବା କ୍ରିୟା,ରନ୍ଧନର ସମସ୍ତ ଆନୁଷଙ୍ଗିକ କର୍ମ
ରାନ୍ଧିବା—ଗ୍ରା.କ୍ରି.ରନ୍ଧନ କରିବା,ଖାଦ୍ୟାଦି ପାକକରିବା, ତେଲିମାନଙ୍କ କୁଟି ବା ବାଟି ନିଆଁରେ ବସାଇ ତେଲ ପ୍ରସ୍ତୁତ କରିବା ।
ରାନ୍ଧୁଣୀ—ଗ୍ରା.ବ. (ପୁଂ ଓ ସ୍ତ୍ରୀ) ପାଚକ, ଯେ ପାକ କରେ ।
ରାନ୍ଧୁଣିଆ—ଗ୍ରା. ପୁଂ. ବିଂ. ପାକକାରୀ, ରନ୍ଧନକାରୀ, (ବ) ପାଚକ, ସୁଆରେ ।
ରାପା—ପ୍ରା.(ବସ୍ତର)ବ. କୋଡ଼ି ।
ରାପ୍ୟ—ବିଂ. (ରପ୍+ଯ)କଥନୀୟ ।

ରାଭସିକ—ପୁଂ. ବିଂ. (ରଭସ୍+ଇକ) ଯେ ଆଗପଛ ବିଚାର ନକରି ହଠାତ୍ କାମକରେ, (ସ୍ତ୍ରୀ)ରାଭସିକା ।

ରାଭସ୍ୟ—କ୍ଲୀ. ବି. ଦ୍ରୁତଗତି, ଆଗ୍ରହ, ଆନନ୍ଦ ।

ରାମ୍-ଗ୍ରା.ଅବ୍ୟ.ଆବର୍ଜନୀୟବସ୍ତୁ ଦେଖିଲେ ବା ଅକଥ୍ୟ ଭାଷା ଶୁଣିଲେ ବା କହି-ପକାଇଲେ ଉକ୍ତ ପାପ ଖଣ୍ଡନାର୍ଥ ଉଚ୍ଚାରଣ କରାଯିବା ରାମନାମ,(ଘୃଣାର୍ଥକ) ଛିଃ ।

ରାମ୍‌ନାମସତ୍ୟ—ଗ୍ରା.ବି.ଶବବାହକମାନେ ଶବବହନ କରି ନେଲାବେଳେ ଉଚ୍ଚାରଣ କରିବା ବାକ୍ୟ ।

ରାମ୍‌ରାମ୍—ଗ୍ରା.ଅବ୍ୟ. ବିରକ୍ତି, ଘୃଣା, ବିସ୍ମୟ, ଅନୁତାପସୂଚକ ରାମଙ୍କ ନାମ ଉଚ୍ଚାରଣ, ପାପକ୍ଷୟାର୍ଥ ରାମଙ୍କ ନାମ ଉଚ୍ଚାରଣ, ମାରବାଡ଼ିମାନଙ୍କର ପରସ୍ପରକୁ ନମସ୍କାର ବା ଅଭିବାଦନପୂର୍ବକ ରାମନାମ ଉଚ୍ଚାରଣ ।

ରାମ—ପୁଂ. ବି. (ରମ୍+ଣିଚ୍+କ.ଅ) ଶ୍ରୀରାମଚନ୍ଦ୍ର, ତ୍ରେତାଯୁଗରେ ଅଯୋଧ୍ୟାରେ ଦଶରଥଙ୍କ ଜ୍ୟେଷ୍ଠ ପୁତ୍ରରୂପେ ଜନ୍ମଗ୍ରହଣ କରିଥିବା ଅବତାର,ବିଷ୍ଣୁଙ୍କ ଦଶଅବତାର ମଧ୍ୟରୁ ସପ୍ତମ,ପର୍ଶୁରାମ, ଜମଦଗ୍ନି ନାମକ ବ୍ରାହ୍ମଣ ଋଷିଙ୍କ ପୁତ୍ର, ବିଷ୍ଣୁଙ୍କର ଷଷ୍ଠ ଅବତାର, ଦ୍ୱାପରଯୁଗରେ ଶ୍ରୀକୃଷ୍ଣଙ୍କ ବଡ଼ଭାଇ ରୂପେ ଜନ୍ମିଥିବା ବିଷ୍ଣୁଙ୍କର ଅଷ୍ଟମ ଅବତାର, ବଳରାମ, ହରିଣବିଶେଷ, ବରୁଣ, ଘୋଟକ, ଭଗବାନ୍, ବିଷ୍ଣୁ,ତିନିସଂଖ୍ୟା, ଏକମାତ୍ରିକ ଛନ୍ଦ, ଅଶୋକବୃକ୍ଷ, ରତି, ରମଣ, ଅନ୍ଧକାର,ବଥୁଆଶାଗ,ତମାଳପତ୍ର, ତେଜପତ୍ର, (ବିଂ) ରମଣୀୟ, ମନୋହର, ଶୁଭ୍ର; କୃଷ୍ଣ, କଳା, ନୀଳବର୍ଣ୍ଣବିଶିଷ୍ଟ, (ସ୍ତ୍ରୀ) ରାମା ।

ରାମକ—ପୁଂ.ବି.(ରାମ+କ) ଜଳାପାମାର୍ଗ, ରାମ ଦେଖ ।

ରାମକଦଳୀ—ସ୍ତ୍ରୀ.ବି.ଏକପ୍ରକାର ଉତ୍କୃଷ୍ଟ କଦଳୀ ।

ରାମକର୍ପୂର—ବି. ସୁଗନ୍ଧ ତୃଣବିଶେଷ ।

ରାମକଣ୍ଡ—ବି. ରାମଶର ତୃଣ, ଇକ୍ଷୁବିଶେଷ ।

ରାମକାନ୍ତ—ବି. ରାମଶର ଦେଖ ।

ରାମକାଣ୍ଡଆ-ଗ୍ରା.ବି. (ଛତିଶଗଡ଼)ଭେଣ୍ଡି ।

ରାମକାର୍ଯ୍ୟ—ଗ୍ରା.ବି.ରାମଦୂତ ବା ରାମସେବକ ହନୂମାନ୍ ।

ରାମକ(କ୍ରୀ)ରୀ(ରି)—ବି.ରାଗିଣୀବିଶେଷ ।

ରାମକୁମାର—ପୁଂ.ବି.ରାମଚନ୍ଦ୍ରଙ୍କ ଯମଜପୁତ୍ର ଲବ ଓ କୁଶ ।

ରାମକୃଷ୍ଣ—ପୁଂ.ବି.ବଳରାମ ଓ ଶ୍ରୀକୃଷ୍ଣ, ଶ୍ରୀରାମ ଓ ଶ୍ରୀକୃଷ୍ଣ ।

ରାମକୃଷ୍ଣପରମହଂସ—ଗ୍ରା. ବି. ଜନୈକ ଋଷିକଳ୍ପ ଧର୍ମବୀର ।

ରାମକେଦାର--ଗ୍ରା.ବି.ଏକପ୍ରକାର ଗଦ ।

ରାମକେଳୀ—ସ୍ତ୍ରୀ.ବି. ରାଗିଣୀବିଶେଷ ।

ରାମକ୍ଷେତ୍ର—କ୍ଲୀ. ବି. ତୀର୍ଥବିଶେଷ ।

ରାମଖଡ଼ି—ଗ୍ରା.ବି. ଉତ୍କୃଷ୍ଟ ଖଡ଼ି, ଧଳାଖଡ଼ି ।

ରାମଗଡ଼—ଗ୍ରା. ବି. ରାଜପୁତାନାର ଜୟପୁର ରାଜ୍ୟର ନଗରବିଶେଷ ।

ରାମଗାୟତ୍ରୀ—ସ୍ତ୍ରୀ. ବି. ରାମଚନ୍ଦ୍ରଙ୍କ ଗାୟତ୍ରୀ ।

ରାମଗିରି—ପୁଂ.ବି.(ରାମ+ଗିରି)ପର୍ବତବିଶେଷ, ଚିତ୍ରକୂଟ ପର୍ବତ ।

ରାମଗୀତା—ବି. ଅଧ୍ୟାତ୍ମରାମାୟଣର ଉତ୍ତରାକାଣ୍ଡ ୫ମ ସର୍ଗରେ ଥିବା ରାମଚନ୍ଦ୍ରଙ୍କ ସ୍ତବାତ୍ମକ ଅଂଶ ବା ଅଧ୍ୟାୟ ।

ରାମଗୀତୋପନିଷଦ୍—ସ୍ତ୍ରୀ.ବି.ଉପନିଷଦ୍ ବିଶେଷ ।

ରାମଚକ୍ର--କ୍ଲୀ.ବି.ମନ୍ତ୍ରାତ୍ମକ ଚକ୍ରବିଶେଷ ।

ରାମଚଣ୍ଡୀ—ଗ୍ରା.ସ୍ତ୍ରୀ.ବି.ଠାକୁରାଣୀ ପ୍ରତିମାଙ୍କ ନାମ, ପୁରୀର ତନ୍ନାମିକା ଦେବୀ ପ୍ରତିମା, ଢେଙ୍କାନାଳ ଲଧରା ଗ୍ରାମ ନିକଟରେ ବ୍ରାହ୍ମଣୀ ନଦୀ କୂଳରେ ଥିବା ପ୍ରସିଦ୍ଧ ଦେବୀମୂର୍ତ୍ତି ।

ରାମଚନ୍ଦ୍ର—ପୁଂ. ବି. ଦଶରଥଙ୍କ ଜ୍ୟେଷ୍ଠ ପୁତ୍ର, ରଘୁବୀର ଶ୍ରୀରାମ, (ଗ୍ରା.ବି)ରମଣୀୟ ଚନ୍ଦ୍ର ।

ରାମଚନ୍ଦ୍ରଦାସ—ଗ୍ରା. ବି.୧୮ଶ ଶତାବ୍ଦୀର ମଧ୍ୟଭାଗର ଓଡ଼ିଆ କବି ।

ରାମଚନ୍ଦ୍ରଦେବ—ଗ୍ରା. ପୁଂ. ବି. ପୁରୀର ଗଜପତି ରାଜାମାନଙ୍କ ଉପାଧିବିଶେଷ ।

ରାମଚନ୍ଦ୍ରପଟ୍ଟନାୟକ—ଗ୍ରା. ବି. ଓଡ଼ିଆ ପ୍ରାଚୀନ କବି ( ହାରାବଳୀ ନାମକ କାବ୍ୟର ରଚୟିତା )।

ରାମଚନ୍ଦ୍ରମହାପ୍ରଭୁ—ବି.ବିଷ୍ଣୁଙ୍କ ଅବତାର ରୂପେ ଆବିର୍ଭୂତ ଅଯୋଧ୍ୟାର ରାମଚନ୍ଦ୍ର ।

ରାମଚନ୍ଦ୍ରରଥ—ଗ୍ରା. ବି. ଉତ୍କଳୀୟ ଅଳଙ୍କାର ଶାସ୍ତ୍ରପ୍ରଣେତା ।

ରାମଚନ୍ଦ୍ରରାଜଗୁରୁ—ଗ୍ରା. ବି. ଜନୈକ ଉତ୍କଳୀୟ ଗୂଢ଼ଶାସ୍ତ୍ର ପ୍ରଣେତା ।

ରାମଚର—ପୁଂ. ବି. ବଳରାମ ।

ରାମଚରିତ-ବି. ଶ୍ରୀରାମଚନ୍ଦ୍ରଙ୍କ ଜୀବନୀ ।

ରାମଚ୍ଛର୍ଦ୍ଦନକ—ପୁଂ. ବି. ମଦନବୃକ୍ଷ ।

ରାମଜ—ପୁଂ. ବି. (ରାମ+ଜନ୍+ଅ) ରାମପୁତ୍ର ।

ରାମଜନନୀ—ସ୍ତ୍ରୀ. ବି.(୬ତତ୍ପୁ)ରାମଚନ୍ଦ୍ରଙ୍କ ମାତା କୌଶଲ୍ୟା, ବଳଦେବଙ୍କ ମାତା ରୋହିଣୀ,ପର୍ଶୁରାମଙ୍କ ମାତା ରେଣୁକା ।

ରାମଜନ୍ମ—ବି. ରାମନବମୀ ଦେଖ ।

ରାମଝୁଙ୍କି—ଗ୍ରା.ବି. ଗ୍ରାମର ପ୍ରାନ୍ତଭାଗରେ ଅବସ୍ଥିତ କ୍ଷୁଦ୍ର ଭଜନାଳୟ ।

ରାମଠ—କ୍ଲୀ. ବି. (ରମଠ+ଅ) ହିଙ୍ଗୁ, ଅପାମାର୍ଗ, ମଦନଫଳ, ବୃହତ୍ସଂହିତା ମତରେ ପଶ୍ଚିମସ୍ଥ ଦେଶବିଶେଷ, ଉକ୍ତ ଦେଶବାସୀ ବ୍ୟକ୍ତି, ଆଖୋରୋଟ୍‌ଗଛ, ଛଚିନ୍ଦାଲତା ଓ ଫଳ ।

ରାମଠୀ—ସ୍ତ୍ରୀ.ବି. ନାଡ଼ୀହିଙ୍ଗୁ, ଏକପ୍ରକାର ହିଙ୍ଗୁ ।

ରାମଣ-ପୁଂ.ବି.ଗିରିନମ୍ବ, ତିନ୍ଦୁକ,କେନ୍ଦୁ ।

ରାମଣୀୟକ—କ୍ଲୀ. ବି. (ରମଣୀୟ+କ) ଶୋଭା, ମନୋଜ୍ଞତା, ମନୋହାରିତ୍ୱ, ରମଣୀୟତା ।

ରାମତରୁଣୀ—ସ୍ତ୍ରୀ. ତରୁଣୀପୁଷ୍ପ, ସେବତୀ ଫୁଲ, (୬ତତ୍ପୁ) ସୀତା, ଜାନକୀ ।

ରାମତାରକମନ୍ତ୍ର—ବି. ରାମଭକ୍ତମାନଙ୍କ

ଜପିବା ରାମନାମଯୁକ୍ତ ମନ୍ତ୍ର (ରାଂ ରାମାୟ ନମଃ) ।

**ରାମତାଳ(ଳୀ)**—ଗ୍ରା. ବି. ହାତରେ ଧରି ଠିକ୍ ଠିକ୍ ବଜାଇବା ଗୀତର ତାଳ ପକାଇବା ପାଇଁ ବ୍ୟବହୃତ କାଠପଟା ଦୁଇ ଖଣ୍ଡି ।

**ରାମଢଲ(ଳା)**—ଗ୍ରା. ବି. ଏକପ୍ରକାର ଖରା ବା ଢଲ ।

**ରାମତିଳକ**—ଗ୍ରା. ବି. ତିଳକରୂପେ ବ୍ୟବହୃତ ଏକପ୍ରକାର ହଳଦିଆ ମାଟି, ରାମରଜ, ରାମାନନ୍ଦ ଚିତା ।

**ରାମତୀର୍ଥ**—ବି. ତୀର୍ଥବିଶେଷ, ଚିତ୍ରକୂଟ ପର୍ବତ ।

**ରାମତୁଳସୀ**—ବି. ଧଳାତୁଳସୀ ।

**ରାମଦାସ**—ପୁଂ. ବି. (୬ତତ୍ପୁ) ହନୁମାନ୍, ରାମଭକ୍ତ, (ଗ୍ରା. ବି) ଦାର୍ଢ୍ୟତାଭକ୍ତିରସାମୃତ ଓ ରାମରସାମୃତ ଗ୍ରନ୍ଥପ୍ରଣେତା ଗଞ୍ଜାମ ଜିଲ୍ଲା ମହୁରୀ ରାଜ୍ୟର ତୁରାଗ୍ରାମ ବାସୀ ବ୍ରାହ୍ମଣ, ଦକ୍ଷିଣଭାରତର ପ୍ରସିଦ୍ଧ ମହାତ୍ମା ଓ ଶିବାଜୀଙ୍କ ଗୁରୁ ।

**ରାମଦୂତ**—ପୁଂ. ବି. (୬ତତ୍ପୁ) ହନୁମାନ୍ ।

**ରାମଦୂତିକା(ଦୂତୀ)**—ସ୍ତ୍ରୀ. ବି. ତୁଳସୀ ବିଶେଷ, ନାଗଦନ୍ତୀ ଦେଖ, ଏକପ୍ରକାର ପୁଷ୍ପବୃକ୍ଷ ବିରେଚକ ଔଷଧ ।

**ରାମଦେବ**—ପୁଂ. ବି. ଶ୍ରୀରାମଚନ୍ଦ୍ର ।

**ରାମଦ୍ୱାଦଶୀ**—ବି. ଜ୍ୟେଷ୍ଠଶୁକ୍ଳ ଦ୍ୱାଦଶୀ ।

**ରାମଧନୁ**—ବି. ଇନ୍ଦ୍ରଧନୁ ।

**ରାମଧର**—ପୁଂ. ବି. ବାସବଦତ୍ତା ବର୍ଣ୍ଣିତ ଜନୈକ ନାୟକ ।

**ରାମନଗର**—ଗ୍ରା. ବି. ମଧ୍ୟଭାରତର ବଘେଲ ଖଣ୍ଡ ଅଞ୍ଚଳର ରେୱାରାଜ୍ୟର ଏକ ନଗର, ମଧ୍ୟପ୍ରଦେଶର ମଣ୍ଡଲାରାଜ୍ୟର ନଗର ବିଶେଷ, ଚେନାବ (ଚର୍ମଣ୍ୱତୀ) ନଦୀତୀରସ୍ଥ ପଞ୍ଜାବର ଏକ ନଗର, କାଶ୍ମୀରରାଜ୍ୟର ଏକ ପାର୍ବତ୍ୟ ନଗର, କାଶୀର ଅପରପାର୍ଶ୍ୱରେ ଗଙ୍ଗାକୂଳରେ ଥିବା କାଶୀରାଜାଙ୍କ ରାଜଧାନୀ ।

**ରାମନଦ**—ଗ୍ରା. ବି. ଦକ୍ଷିଣଭାରତର ଗୋଟିଏ ଜମିଦାରୀ ଓ ସେତୁବନ୍ଧରାମେଶ୍ୱରର ପଶ୍ଚିମରେ ଥିବା ଏକନଗର ।

**ରାମନବମୀ**—ବି. ଚୈତ୍ର ଶୁକ୍ଳନବମୀ, ରାମଚନ୍ଦ୍ରଙ୍କ ଜନ୍ମତିଥି ।

**ରାମନବମୀବ୍ରତ**—ବି. ରାମଜନ୍ମ ବି. ରାମନବମୀରେ ରାମଚନ୍ଦ୍ରଙ୍କୁ ଆରାଧନା ପୂର୍ବକ କରାଯିବା ବ୍ରତ ବା ଉପବାସ ।

**ରାମନାଥ**—ବି. ରାମଚନ୍ଦ୍ର, ସେତୁବନ୍ଧ ରାମେଶ୍ୱର ନିକଟରେ ପ୍ରତିଷ୍ଠିତ ରାମଚନ୍ଦ୍ରଙ୍କ ପୂଜିତ ଶିବଲିଙ୍ଗ, (ଏହା ଭାରତର ୪ଶ୍ରେଣୀ ବା ତୀର୍ଥମଧ୍ୟରୁ ଏକତମ) ।

**ରାମନେତ୍ରୀ**—ଗ୍ରା. ସ୍ତ୍ରୀ. ବି. ମୃଗନୟନା(ସ୍ତ୍ରୀ) ।

**ରାମପୁର**—ଗ୍ରା. ବି. କାଶ୍ମୀର ଦେଶର ଗୋଟିଏ ନଗର, ଯୁକ୍ତପ୍ରଦେଶର ଗୋଟିଏ ଜିଲ୍ଲା ଓ ନଗର ଓ ରେଲ୍ ଷ୍ଟେସନ, ରେଢ଼ାଖୋଲ ରାଜ୍ୟର ଏକ ନଗର ।

**ରାମପୂଗ**—ବି. (ରାମ+ପୂଗ) ଗୁବାକବିଶେଷ, ରାମଗୁଆ ।

**ରାମପୂର୍ବତାପନୀୟ**—କ୍ଳୀ. ବି. ରାମତାପନୀୟ ଉପନିଷଦ୍‌ର ପୂର୍ବାଂଶ ।

**ରାମଫଳ**—ଗ୍ରା. (ଧୁମୁଷର) ବି. ମସୃଣ ତ୍ୱେଗ୍‌ବିଶିଷ୍ଟ ଆତଫଳ, ନେଉଆ ।

**ରାମଭକ୍ତ**—ପୁଂ. ବି. ରାମପୂଜକ, ରାମସେବାନୁରାଗୀ ।

**ରାମଭଦ୍ର**—ପୁଂ. ବି (ରାମ+ଭଦ୍ର) ଶ୍ରୀରାମ, ରାମଚନ୍ଦ୍ର ଦେଖ ।

**ରାମମନ୍ତ୍ର**—ପୁଂ. ବି. ରାମଚନ୍ଦ୍ରଙ୍କ ବୀଜମନ୍ତ୍ର ।

**ରାମମୋହନରାୟ**—ଗ୍ରା. ବି. ବ୍ରାହ୍ମଧର୍ମ ପ୍ରତିଷ୍ଠାତା ରାଜା ରାମମୋହନ ରାୟ ।

**ରାମରାଜ**—ଗ୍ରା. ବି. ରାମତିଳକ ଦେଖ ।

**ରାମରାଜ୍ୟ**—ବି. (୬ତତ୍ପୁ) ରାମଚନ୍ଦ୍ରଙ୍କ ଦ୍ୱାରା ଶାସିତ ଅଯୋଧ୍ୟା ରାଜ୍ୟ, (ଲ. ଅର୍ଥ) ସୁଖ ଓ ଶାନ୍ତି ସମନ୍ୱିତ ରାଜ୍ୟ, ଧର୍ମପାଳିତ ରାଜ୍ୟ ।

**ରାମଲକ୍ଷ୍ମଣ**—ବି. (ଦ୍ୱନ୍ଦ୍ୱ) ରାମଚନ୍ଦ୍ର ଓ ତାହାଙ୍କ ଅନୁଜ ଲକ୍ଷ୍ମଣ, (ରାମ=ମୃଗ+ଲକ୍ଷଣ ଯାହାଙ୍କର) ବି. ବ୍ରୀ; ଶଶାଙ୍କ, ଚନ୍ଦ୍ର ।

**ରାମଲବଣ**—କ୍ଳୀ. ବି. (ରାମ+ଲବଣ) ଶାମ୍ଭର ଲବଣ ।

**ରାମଲିଙ୍ଗ**—ପୁଂ. ବି. ରାମଚନ୍ଦ୍ର ।

**ରାମଲୀଳା**—ବି. (୬ତତ୍ପୁ) ରାମଚନ୍ଦ୍ର ଅବତାର ହୋଇ ଦଶରଥଙ୍କ ପୁତ୍ର ରୂପେ ଅଯୋଧ୍ୟାରେ ଜନ୍ମ ହୋଇ ସଂସାରରେ ଯେଉଁ ଲୀଳା ବା କର୍ମମାନ କରିଥିଲେ, (ଗ୍ରା. ବି) ରାମଚନ୍ଦ୍ରଙ୍କର ଜନ୍ମାବଧି ସ୍ୱର୍ଗାରୋହଣ ପର୍ଯ୍ୟନ୍ତ ଘଟଣାଚୟର ଅଭିନୟ, ଓଡ଼ିଆ ପଦ୍ୟ ଗ୍ରନ୍ଥବିଶେଷ ।

**ରାମବଜ୍ରପଞ୍ଜର କବଚ**—ବି. ମନ୍ତ୍ରାତ୍ମକ ଧାରଣୀୟ କବଚବିଶେଷ ।

**ରାମବନବାସ**—ବି. (୬ତତ୍ପୁ) ପିତୃ ସତ୍ୟ ପାଳନାର୍ଥ ରାମଙ୍କର ଅରଣ୍ୟରେ ବାସ ।

**ରାମବର୍ଦ୍ଧନ**—ପୁଂ. ବି. କାଶ୍ମୀରର ଜନୈକ ରାଜା ।

**ରାମବଲ୍ଲଭ**—କ୍ଳୀ. ବି (ରାମ+ବଲ୍ଲଭ) ତ୍ୱଚ, ଗୁଡ଼ତ୍ୱକ୍, ଭୂର୍ଜପତ୍ର, (ବିଂ) ରାମପ୍ରିୟ ।

**ରାମବଲ୍ଲଭୀ**—ବି. ବୈଷ୍ଣବ ଧର୍ମସମ୍ପ୍ରଦାୟବିଶେଷ ।

**ରାମବାଣ**—ପୁଂ. ବି (୬ତତ୍ପୁ) ଇକ୍ଷୁବିଶେଷ, ରାମଚନ୍ଦ୍ରଙ୍କ ଶର ।

**ରାମବୀଣା**—ସ୍ତ୍ରୀ. ବି. (ରାମ+ବୀଣା) ବୀଣା- [ ବିଶେଷ ।

**ରାମବ୍ରତୀ**—ପୁଂ. ବି. ରାମବ୍ରତଧାରୀ, ଧର୍ମସମ୍ପ୍ରଦାୟବିଶେଷ ।

**ରାମଶଙ୍କର**—ପୁଂ. ବି. ରାମ ଓ ମହାଦେବ, ହରିହର ।

**ରାମଶର**—ପୁଂ. ବି. (ରାମ+ଶର) ଶରବୃକ୍ଷବିଶେଷ ।

**ରାମଶରଣ**—ବି. ରାମଙ୍କର ଆଶ୍ରୟ, (ବିଂ) ରାମଙ୍କ ଆଶ୍ରିତ ।

**ରାମଶିଆଳ(ଳି)**—ଗ୍ରା. ବି. ଏକପ୍ରକାର ବଡ଼ ବିଲୁଆ ।

**ରାମଶିଙ୍ଘା**—ଗ୍ରା. ବି. ମହିଷଶୃଙ୍ଗ ଆକାରର ବଡ଼ ତୂରୀ ।

**ରାମଶିଳା**—ଗ୍ରା. ବି. ତୀର୍ଥବିଶେଷ, ଗୟାର ଏକ ପାହାଡ଼, ସୁନ୍ଦର ପଥର ।

**ରାମଶୀତଳା**—ସ୍ତ୍ରୀ. ବି. ଆରାମଶୀତଳା, ପତ୍ରଶାକବିଶେଷ ।

**ରାମଶ୍ରୀ**—ବି. ହିନ୍ଦୋଳ ରାଗର ପୁତ୍ର

ରାଗିଣୀବିଶେଷ ।

**ରାମଷଡ଼କ୍ଷରମନ୍ତ୍ରରାଜ**—ବି. ରାମଚନ୍ଦ୍ରଙ୍କର ଛଅଅକ୍ଷରବିଶିଷ୍ଟ ମନ୍ତ୍ର ।

**ରାମସଖା**—ପୁଂ.ବି.(ରାମ+ସଖା) ରାମଙ୍କ ମିତ୍ର, ବାନରରାଜ ସୁଗ୍ରୀବ ।

**ରାମସନେହୀ**—ବି.ବୈଷ୍ଣବ ଧର୍ମସମ୍ପ୍ରଦାୟବିଶେଷ ।

**ରାମସରଃ**—କ୍ଲୀ. ବି. ତୀର୍ଥବିଶେଷ ।

**ରାମସହସ୍ରନାମସ୍ତୋତ୍ର**—କ୍ଲୀ.ବି. ଶ୍ରୀରାମଚନ୍ଦ୍ରଙ୍କର ସହସ୍ର ନାମାତ୍ମକ ଶ୍ଳୋକ ।

**ରାମସାଗର**—ବି. ତୀର୍ଥବିଶେଷ ।

**ରାମସାରସ**—ଗ୍ରା.ବି. କୂଳେଚର ଦୀର୍ଘପଦ ଦୀର୍ଘଚଞ୍ଚୁ ପକ୍ଷୀ, ବଡ଼ିଆକାଙ୍କ ।

**ରାମସୂକ୍ତ**—କ୍ଲୀ. ବି. ରାମସ୍ତୋତ୍ର ।

**ରାମସେତୁ**—ପୁଂ.ବି.ରାମ ନିର୍ମିତ ସେତୁ ।

**ରାମସେନକ**—ପୁଂ. ବି. ଭୂନିମ୍ବ, କଣ୍ଟଫଳ, ଚିରେଇତା । [ ସକ ।

**ରାମସେବକ**—ପୁଂ.ବି.ରାମଚନ୍ଦ୍ରଙ୍କ ଉପା-

**ରାମସ୍ତୁତି**—ସ୍ତ୍ରୀ. ବି. ରାମସ୍ତୋତ୍ର ।

**ରାମହୃଦୟ**—ପୁଂ.ବି.ଅଧ୍ୟାତ୍ମ ରାମାୟଣର ଏକ ପରିଚ୍ଛେଦ ।

**ରାମହ୍ରଦ**—ପୁଂ. ବି. ତୀର୍ଥବିଶେଷ ।

**ରାମା**—ସ୍ତ୍ରୀ. ବି. ( ରମ୍+କ.ଅ+ଆ ) ନାରୀ, ସୁନ୍ଦରୀ ସ୍ତ୍ରୀ, ଗାନ କଳାରେ ପ୍ରବୀଣା ସ୍ତ୍ରୀ, କାର୍ତ୍ତିକ କୃଷ୍ଣା ଏକାଦଶୀ, ହେଙ୍ଗୁ, ହିଙ୍ଗୁଳ, ନଦୀ, ଶୁକ୍ଳତ୍ରିଶିରୀ, ଘିଅକୁଆଁରି, ଶୀତଳା, ବସନ୍ତରୋଗ, ଅଶୋକ, ଗୋରଚନା, ସୁଗନ୍ଧବାଳା, କୁରୁବେଲ, ଗେରୁମାଟି, ଜାୟମାଣା ଲତା, ତମାଲପତ୍ର, ଲକ୍ଷ୍ମୀ, ସୀତା, ରୁକ୍ମିଣୀ, ରାଧା, ପ୍ରଥମ ଦୁଇ ଚରଣ ଇନ୍ଦ୍ରବଜ୍ରା ଓ ଶେଷ ଦୁଇ ଚରଣ ଉପେନ୍ଦ୍ରବଜ୍ରା ବୃତ୍ତରେ ରଚିତ ଉପଜାତି ବୃତ୍ତବିଶେଷ, ୮ ଅକ୍ଷରର ବୃତ୍ତବିଶେଷ, ଶ୍ୱେତକଣ୍ଟକାରୀ ।

**ରାମାଉତ(ତ)**—ଗ୍ରା.ବି. ରାମାନୁଜ ସମ୍ପ୍ରଦାୟର ରାମଭକ୍ତ ବୈଷ୍ଣବ, ରାମୋପାସକ ବୈଷ୍ଣବ, ରାମାନନ୍ଦ ପ୍ରବର୍ତ୍ତିତ ସମ୍ପ୍ରଦାୟର ବୈଷ୍ଣବ ।

**ରାମାଙ୍କ**—ବି. ଚନ୍ଦ୍ର ।

**ରାମାଡ଼ିମା**—ଗ୍ରା.ବିଂ. ବନ୍ଧାଟଙ୍କା, ଅଶୃଙ୍ଖଳା ସହିତ କରାଯିବା (କାର୍ଯ୍ୟ), (କ୍ରି.ବିଂ) ଅଶୃଙ୍ଖଳିତ ରୂପେ ।

**ରାମାଦେବୀ**—ସ୍ତ୍ରୀ. ବି. ଗୀତଗୋବିନ୍ଦ ପ୍ରଣେତା ଜୟଦେବ କବିଙ୍କ ମାତା ।

**ରାମାଦ୍ୱୟ**—ପୁଂ.ବି. ବେଦାନ୍ତ କୌମୁଦୀ ପ୍ରଣେତା ।

**ରାମାନନ୍ଦ**—ଗ୍ରା. ପୁଂ. ବି. ଖ୍ରୀଷ୍ଟୀୟ ୧୪ଶ ଶତାବ୍ଦୀରେ ଭାରତର ଉ: ପ: ପ୍ରଦେଶରେ ଆବିର୍ଭୂତ ବୈଷ୍ଣବ ଧର୍ମସଂସ୍କାରକ ଓ ପ୍ରଚାରକ ରାମାନନ୍ଦ ପ୍ରବର୍ତ୍ତିତ ରାମୋପାସକ ବୈଷ୍ଣବସମ୍ପ୍ରଦାୟ ।

**ରାମାନନ୍ଦସ୍ୱାମୀ**—ଗ୍ରା. ବି. ବଙ୍ଗୀୟ ଧର୍ମପ୍ରଚାରକ ।

**ରାମାନନ୍ଦୀ**—ଗ୍ରା.ବିଂ. ରାମାନନ୍ଦ ସମ୍ପ୍ରଦାୟ ଅନୁଯାୟୀ, (ଗ୍ରା.ବି) ରାମାନନ୍ଦ ମତାବଲମ୍ବୀ ବୈଷ୍ଣବ ସମ୍ପ୍ରଦାୟ ।

**ରାମାନନ୍ଦୀକାଟିବା**—ଗ୍ରା. କ୍ରି. ଆପଣା ମୁଣ୍ଡରେ ରାମାନନ୍ଦୀ ତିଳକ ଅଙ୍କିତ କରିବା, (ଲ.ଅର୍ଥ) ଧପାଇବା, ଠକିବା ।

**ରାମାନୁଗ୍ରହ**—ବି (୬ତତ୍) ରାମଚନ୍ଦ୍ରଙ୍କର ଅନୁଗ୍ରହ, ଈଶ୍ୱରାନୁଗ୍ରହ ।

**ରାମାନୁଜ**—ପୁଂ. ବି. (୬ତତ୍) ରାମଙ୍କ ସାନଭାଇ, ଲକ୍ଷ୍ମଣ, (ଗ୍ରା.ବି) ଦାକ୍ଷିଣାତ୍ୟ ପ୍ରଦେଶରେ ୧୨ଶ ଶତାବ୍ଦୀରେ ଆବିର୍ଭୂତ ସୁପ୍ରସିଦ୍ଧ ବିଷ୍ଣୁଭକ୍ତ ଓ ଧର୍ମପ୍ରଚାରକ ।

**ରାମାନୁଜୀ**—ଗ୍ରା.ବିଂ.ରାମାନୁଜ ସମ୍ପ୍ରଦାୟଭୁକ୍ତ, ରାମାନୁଜ ସମ୍ପ୍ରଦାୟଙ୍କ ଦ୍ୱାରା ବ୍ୟବହୃତ, ରାମାନୁଜସମ୍ବନ୍ଧୀୟ, ରାମାନୁଜ ଧର୍ମମତାବଲମ୍ବୀ ।

**ରାମାନୁଜୀୟ**—ବିଂ. ରାମାନୁଜସମ୍ବନ୍ଧୀୟ ।

**ରାମାନୁଷ୍ଟୁଭ୍**—ସ୍ତ୍ରୀ.ବି. ରାମସ୍ତୋତ୍ରବିଶେଷ ।

**ରାମାପ୍ରିୟ**—ପୁଂ, ବି. ଦାରୁଚିନି ।

**ରାମାଭିଷେକ**—ବି. (୬ତତ୍) ବନବାସ ପରେ ଅଯୋଧ୍ୟା ରାଜସିଂହାସନରେ ରାମଙ୍କର ରାଜପଦରେ ପ୍ରତିଷ୍ଠାରୂପ ଉତ୍ସବ ।

**ରାମାଭିଷେକୀମୁଦ୍ରା**—ଗ୍ରା. ବି. ରାମଚନ୍ଦ୍ରଙ୍କର ଅଭିଷେକକାଳୀନ ଚିହ୍ନାଙ୍କିତ ସ୍ୱର୍ଣ୍ଣମୁଦ୍ରା ।

**ରାମାଭ୍ୟୁଦୟ**—ପୁଂ. ବି. (ରାମ+ଅଭ୍ୟୁଦୟ) ରାମଚନ୍ଦ୍ର ଅବତାର ରୂପେ ପ୍ରକଟନ ।

**ରାମାୟଣ**—କ୍ଲୀ.ବି(ରାମ+ଅୟନ)ବ.ବ୍ରୀ, ରାମଚରିତ ବର୍ଣ୍ଣିତ ହୋଇଥିବା ଗ୍ରନ୍ଥ, ବାଲ୍ମୀକି ଋଷିପ୍ରଣୀତ ରାମଚରିତ ବର୍ଣ୍ଣନାତ୍ମକ ସଂସ୍କୃତ ମହାକାବ୍ୟ ।

**ରାମାୟଣୀୟ**—ବିଂ.ରାମାୟଣସମ୍ବନ୍ଧୀୟ ।

**ରାମାୟୁଧ**—ବି. (ରାମ+ଆୟୁଧ)୬ତତ୍; ଧନୁ ।

**ରାମାଲିଙ୍ଗନକାମ**—ବି. ରକ୍ତାମ୍ଲାନ ପୁଷ୍ପବୃକ୍ଷ, ରକ୍ତତ୍ରିଶିରୀ, ନାଲି ଦାସକେରେଣ୍ଡା ।

**ରାମାବକ୍ଷୋଜୋପମ**—ପୁଂ. ବି. ( ରାମା+ବକ୍ଷୋଜ+ଉପମା)ବ.ବ୍ରୀ, ଚକ୍ରବାକ ।

**ରାମାବତାର**—ବି. ବିଷ୍ଣୁଙ୍କର ତ୍ରେତାଯୁଗରେ ଅଯୋଧ୍ୟାରାଜ ଦଶରଥଙ୍କ ଜ୍ୟେଷ୍ଠପୁତ୍ର ରୂପେ ଜାତ ହୋଇ ରାବଣାଦି ରାକ୍ଷସମାନଙ୍କୁ ନିଧନ କରିଥିବା ଅବତାର, ବିଷ୍ଣୁଙ୍କର ୭ମ ଅବତାର, ବିଷ୍ଣୁଙ୍କର ୬ଷ୍ଠ ଅବତାର, ପରଶୁରାମ, ବିଷ୍ଣୁଙ୍କର ୮ମ ଅବତାର, ବଳରାମ ଅବତାର । [ ବୃକ୍ଷ ।

**ରାମାବାମାଙ୍ଘ୍ରିଘାତକ**—ପୁଂ.ବି.ଅଶୋକ

**ରାମାଶ୍ରୟ**—ବି.ଅମରକୋଷର ଟୀକାକାର ପଣ୍ଡିତ ।

**ରାମାଶ୍ୱମେଧ**—ପୁଂ. ବି. ରାମକୃତ ଅଶ୍ୱମେଧଯାଗ, ପଦ୍ମପୁରାଣାଂଶବିଶେଷ ।

**ରାମିଲ**—ପୁଂ. ବି. (ରମ୍+ଇଲ)ରମେଶ, କାମଦେବ, ସ୍ୱାମୀ, ପ୍ରଣୟପାତ୍ର, ପ୍ରେମିକ ।

**ରାମୀ**—ପୁଂ. ବିଂ. ରମଣ ବିଷୟରେ ପ୍ରମୋଦୀ, (ସ୍ତ୍ରୀ. ବି) ରାତ୍ରି, ଅନ୍ଧକାର ।

**ରାମେକ୍ଷ**—ବି. ଏକପ୍ରକାର ଶରତୃଣ, ମୁଞ୍ଜ ।

**ରାମେଶ୍ୱର**—ବି.(କ.ଧା) ରାମନାଥ ଦେଖ, ସେତୁବନ୍ଧରାମେଶ୍ୱର ।

**ରାମେଷ୍ଟୁ**—ପୁଂ, ବି. ରାମଶରତୃଣ, ମୁଞ୍ଜ, ଇକ୍ଷୁବିଶେଷ ।

ରାମୋତ୍ତରତାପନୀୟ—ବି.ରାମତାପନୀୟ ଉପନିଷଦ୍‌ର ୨ୟ ଖଣ୍ଡ ।

ରାମୋଦ—ପୁଂ. ବି. ଋଷିବିଶେଷ ।

ରାମୋପନିଷଦ୍—ସ୍ତ୍ରୀ. ବି. ଅଥର୍ବବେଦର ଉପନିଷଦ୍‌ବିଶେଷ । [ ଦାୟ ।

ରାମୋପାସକ--ବି.ରାମମନ୍ତ୍ରଉପାସକ ସମ୍ପ୍ର-

ରାମ୍ପି—ଗ୍ରା. ବି. କାନ୍ଥରୁ ବୋଲାହୋଇ ଥିବା ଚୂନକୁ ପଳସ୍ତରା କରିବାପାଇଁ ରାମ୍ପି ସମାନକରିବାରେ ବ୍ୟବହୃତ କାଷ୍ଠ ଯନ୍ତ୍ର, ଗଜ, ଡମଡ଼ାରାମ୍ପିବାର ମୋଚି-ମାନଙ୍କର ଖୁରପି ।

ରାମ୍ପିବା—ଗ୍ରା. କ୍ରି. ରାମ୍ପୁଡ଼ିବା,ନଖରେ ଚିରିବା, ପାନଆଦ୍ୱାରା ମୁଣ୍ଡକୁଣ୍ଡାଇବା ।

ରାମ୍ପିହେବା—ଗ୍ରା. କ୍ରି. ନଖଆଦିଦ୍ୱାରା ଶରୀରକୁ କୁଣ୍ଡାଇବା, (ଲ.ଅର୍ଥ) ଧନ ପାଇଁ ବିଶେଷ ପରିଶ୍ରମ କରିବା ।

ରାମ୍ପୁଡ଼ା—ଗ୍ରା. ବି. ରାମ୍ପୁଡ଼ିବାକ୍ରିୟା, ରାମ୍ପୁଡ଼ିବା ଯୋଗୁଁ କ୍ଷତବିକ୍ଷତ ଚିହ୍ନ, (ଗ୍ରା.ବିଂ)ଯେ ରାମ୍ପୁଡ଼େ ।

ରାମ୍ପୁଡ଼ିବା--ଗ୍ରା.କ୍ରି.ନଖଦ୍ୱାରା ବିଦାରିବା

ରାମ୍ଭ—ବି. (ରମ୍ଭ+ଅ) ବ୍ରତାର୍ଥ ଧୃତ ବଂଶଯଷ୍ଟି ।

ରାୟ—ଗ୍ରା. ପୁଂ. ବି.(ସଂ-ରାଜନ୍)ରାଜା, ଭୂପ, ରାଜପୁତ୍ର,ସମ୍ମାନସୂଚକ ଉପାଧି, ଓଡ଼ିଆକରଣ ବିଶେଷଙ୍କ ବଂଶୋପାଧି, ବଙ୍ଗୀୟକାୟସ୍ଥଙ୍କ ବଂଶୋପାଧି,କ୍ଷତ୍ରିୟଙ୍କ ବଂଶଗତ ଉପାଧି, (ଯା.ବି) ମତ, ମକଦ୍ଦମାର ଶେଷ ମୀମାଂସା ।

ରାୟଗଡ଼—ଗ୍ରା.ବି.ମଧ୍ୟପ୍ରଦେଶର ଛତିଶଗଡ଼ ବିଭାଗର ଗୋଟିଏ ନଗର ।

ରାୟଗୁରୁ—ଗ୍ରା. ବି. ରାଜଗୁରୁ ଦେଖ ।

ରାୟଚୌଧୁରୀ—ବି. ବଙ୍ଗୀୟବ୍ରାହ୍ମଣ ଜମିଦାରଙ୍କ ବଂଶୋପାଧି,ରାଜପ୍ରଦତ୍ତ ଉପାଧି ବିଶେଷ ।

ରାୟଣ—କ୍ଳୀ. ବି.(ରୈ+ଭା.ଅନ)ପୀଡ଼ା, କ୍ରନ୍ଦନ, ଚିତ୍କାର, କ୍ଳେଶ,ଶବ୍ଦକରଣ ।

ରାୟପୁର—ଗ୍ରା. ବି.ମଧ୍ୟପ୍ରଦେଶର ଛତିଶଗଡ଼ ବିଭାଗର ରାଜଧାନୀ ।

ରାୟବାଘିନୀ—ସ୍ତ୍ରୀ.ବି.ଉଗ୍ରପ୍ରକୃତି,ପ୍ରଚଣ୍ଡା ଓ କଳହପ୍ରିୟା ରମଣୀ ।

ରାୟବାହାଦୁର—ଗ୍ରା. ବି. ରାଏବାହାଦୁର ଦେଖ । [ ବିଶେଷ ।

ରାୟସିଂହ—ଗ୍ରା. ବି.କ୍ଷତ୍ରିୟମାନଙ୍କଉପାଧି

ରାୟସ୍କାମ—ପୁଂ. ବିଂ. ଧନକାମୀ, ଯେ ଧନକାମନା କରେ ।

ରାୟସ୍ପୋଷ—ପୁଂ. ବି. ଧନପୁଷ୍ଟି, (ବିଂ) ଧନପୁଷ୍ଟ ।

ରାୟସ୍ପୋଷକ—ପୁଂ.ବିଂ. ଧନପୁଷ୍ଟିଯୁକ୍ତ ।

ରାୟସ୍ପୋଷଦା—ସ୍ତ୍ରୀ.ବିଂ.ଧନପୁଷ୍ଟିଦାୟିନୀ

ରାରା—ପୁଂ. ବି. ସୌନ୍ଦର୍ଯ୍ୟ, ଆଲୋକ, ଜ୍ୟୋତିଃ ।

ରାଳ—ବି. ସର୍ଜ୍ଜତରୁ, ଶାଳବୃକ୍ଷ, ଝୁଣା ବା ଧୂନା, ଝୁଣାବାହାରିବା ଏକପ୍ରକାର ଗଛ ।

ରାଳକାର୍ଯ୍ୟ--ବି.(ରାଳ+କାର୍ଯ୍ୟ)ସାଲବୃକ୍ଷ

ରାଳତୈଳ--ବି.ସର୍ଜରସୋଦ୍ଭୂତ ତୈଳ ।

ରାଳୀ—ଗ୍ରା. ବି. ମଣ୍ଡୁରାଳୀମାଛ ।

ରାବ୍(ଓ୍ୱ)—ପ୍ରା. ସମ୍ବ. ବି. କାଞ୍ଜି ।

ରାବ୍(ବ)ଡ଼ି—ଗ୍ରା.ବି.(ସଂ-ଦ୍ରାବକ) ପାକ ଦ୍ୱାରା ଘନୀଭୂତ ଦୁଗ୍ଧ ।

ରାବ—ବି. (ରୁ+ଭା.ଅ) ଶବ୍ଦ, ରବ, ଧ୍ୱନି,ନାଦ,ଗର୍ଜନ,ପଶୁପକ୍ଷୀଙ୍କ ବୋବାଳି

ରାବଣ—ପୁଂ. ବି. (ରୁ=ଶବ୍ଦକରିବା+କ.ଅନ=ଯେ ନିଜେ ରାବକରେ)କିମ୍ବା (ରୁ=ଣିଚ୍=ରାବି+ଶବ୍ଦକରାଇବା+କ.ଅନ=ଯେ ଅନ୍ୟକୁ ଉଚ୍ଚସ୍ୱରରେ କନ୍ଦାଏ)ଲଙ୍କାଧିପତି,ଦଶାନନ,ମୂର୍ତ୍ତି, ପୌଲସ୍ତ୍ୟ,(ପୁଂ.ବିଂ.ଯେ ଅନ୍ୟବ୍ୟକ୍ତିକୁ ଉଚ୍ଚସ୍ୱରରେ କନ୍ଦାଏ), (ଗ୍ରା.ବିଂ. ଯେ ବଡ଼ପାଟିକରେ), ଉଚ୍ଚଶବ୍ଦ ପୂର୍ବକ କ୍ରନ୍ଦନକାରୀ । [ ବିଶେଷ ।

ରାବଣଗଙ୍ଗା—ବି. ସିଂହଳ ଦ୍ୱୀପସ୍ଥ ନଦୀ

ରାବଣଛାୟା—ଗ୍ରା.ବି. ରାତିରେ ପରଦା ଭିତରେ ଆଲୋକ ସାହାଯ୍ୟରେ ଦେଖାଇବା ରାମଚରିତାତ୍ମକାଦି ଛାୟାଚିତ୍ର ।

ରାବଣପୁରୀ—ବି. (ଷତତ୍) ଲଙ୍କାପୁରୀ ।

ରାବଣବଧ—ବି. (ଷତତ୍) ରାମଚନ୍ଦ୍ରଙ୍କ ଦ୍ୱାରା ରାବଣର ମୃତ୍ୟୁ ଘଟନ ।

ରାବଣଶ୍ୱର—ଗ୍ରା. ବି. ରାବଣେଶ୍ୱର, ଦଶାନନ, ଲଙ୍କାଧିପ ।

ରାବଣହସ୍ତ—ବି. ତାରଯୁକ୍ତ ବାଦ୍ୟଯନ୍ତ୍ର ବିଶେଷ ।

ରାବଣହ୍ରଦ—ବି. ହିମାଳୟର ଉତ୍ତର ପାର୍ଶ୍ୱସ୍ଥ ହ୍ରଦବିଶେଷ ।

ରାବଣା—ଗ୍ରା. ବିଂ. ଅତ୍ୟାର୍ଯ୍ୟକାରୀ, (ବି) ଏକପ୍ରକାର ମୋଟା ଶାରଦ ଧାନ(ଏଧାନ ବେଣିପାଣିହେବା କିଆରିରେ ମଧ୍ୟ ହୁଏ) ପ୍ରା. (ବଉଦ)ବି. ଶାଗୁଣା ।

ରାବଣାରି-ପୁଂ.ବି.(ରାବଣ+ଅରି) ଷତତ୍, ଶ୍ରୀ ରାମଚନ୍ଦ୍ର ।

ରାବଣାସୁର—ବି. ରାବଣ ଦେଖ ।

ରାବଣାହତା—ଗ୍ରା.ବି. ଏକପ୍ରକାର ନାଗଫେଣିଆ ଗଛ ।

ରାବଣି—ପୁଂ.ବି. (ରାବଣି+ଇ) ରାବଣ ପୁତ୍ର ଇନ୍ଦ୍ରଜିତ, ରାବଣପୁତ୍ର ।

ରାବଣେଶ୍ୱର—ବି. (ରୂପକ), ଦେଵଘର (ବୈଦ୍ୟନାଥରେ) ପ୍ରତିଷ୍ଠିତ ରାବଣପୂଜିତ ଶିବଲିଙ୍ଗ, ( ଗ୍ରା.ବି ) ରାବଣ, ରାକ୍ଷସେଶ୍ୱର ।

ରାବତନ୍‌କଡ଼ି—ପ୍ରା. (ବସ୍ତର) ବି. ଗଉଡ଼ୁଣୀ ପୋକ ।

ରାବନ—ପ୍ରା. (ସମ୍ବ) ବି. ଶାଗୁଣା,ଗୃଧ୍ର ।

ରାବାଡ଼ି—ପ୍ରା. (ଗଞ୍ଜାମ) ବି. ରାହାବାଡ଼ି ଦେଖ, ଭୂମିରୁ ଆଦାୟହେବା ଶସ୍ୟର ପରିମାଣ । [ କରିବା ।

ରାବିବା—ଗ୍ରା. କ୍ରି. ରାବକରିବା, ଧ୍ୱନି-

ରାବିଶ୍—ଯା.ବି.ଆବର୍ଜନା,ଭଙ୍ଗାକୋଠାରୁ ବାହାରିବା ଅକର୍ମଣ୍ୟ ଚୂନ ଗୋଡ଼ି ଭଙ୍ଗା ଇଟାଆଦି, (ବିଂ) ଅକର୍ମଣ୍ୟ, ନିକୃଷ୍ଟ (ବସ୍ତୁ) ।

ରାଶ—ପୁଂ. ବି. ମେଘନିର୍ଘୋଷ, ମେଘଦୁନ୍ଦୁଭି, (ବିଂ) ଟଙ୍କାର ନିନାଦକାରୀ ।

ରାଶ୍—ଯା. ବି. ରାହାସ, ଅଶ୍ୱରଜ୍ଜୁ, ଲଗାମ, ବ ଗ ।

ରାଶ୍‌କଡ଼ାକରିବା—ଗ୍ରା. କ୍ରି. ଘୋଡ଼ାର ଲଗାମକୁ ଟାଣିଧରିବାଦ୍ୱାରା ଘୋଡ଼ାକୁ ସଂଯତ କରିବା, ( ଲ.ଅର୍ଥ ) କୌଣସି

ବ୍ୟକ୍ତିକୁ ବଶୀଭୂତ କରିବା ।

ରାଶ୍‌ଗୁଡ଼ବା—ଗ୍ରା. କ୍ରି. ଘୋଡ଼ାର ଲଗାମକୁ ଶ୍ଳଥ କରିବାଦ୍ୱାରା ଘୋଡ଼ାକୁ ଚାଲିବାକୁ ସ୍ୱାଧୀନତା ଦେବା, (ଲ.ଅର୍ଥ) କୌଣସି ବ୍ୟକ୍ତିକୁ ନିୟନ୍ତ୍ରିତ ନ କରିବା ।

ରାଶ୍‌ରୁଫାରି—ପା.ବି.ଆବିସିନିଆର ସମ୍ରାଟ ହେଲ୍ଲାସେଲସୀ ଦେଖ ।

ରାଶ୍‌ଭାରୀ—ଗ୍ରା.ପୁଂ.ବିଂ. ସଂଯମୀ(ଲୋକ), ଗମ୍ଭୀର ପ୍ରକୃତିକ ।

ରାଶ୍‌ହାଲୁକା—ପା. ବିଂ. ଚପଳ, ତରତରିଆ, ଲଘୁଚିତ୍ତ ।

ରାଶି—ଗ୍ରା. ବି. ରାଶ୍ ଦେଖ ।

ରାଶି—ପୁଂ. ବି. (ଅଶ୍+କ.ଇ) ସ୍ତୂପ, ଧାନ୍ୟାଦି ସମୂହ, ପୁଞ୍ଜ, କୂଟ,ସମୁଚ୍ଚୟ, ସମାହାର,ସଂଖ୍ୟା,ଭଗ୍ନାଂଶ,(ଜ୍ୟୋତିଷ) ମେଷାଦି ଦ୍ୱାଦଶ ରାଶି, (ଗ୍ରା.ବି) ଢଳ, ଖସା ।

ରାଶିଆ—ଗ୍ରା.ବିଂ. ଅମୁକ ରାଶିରେ ଜନ୍ମ ହୋଇଥିବା (ବ୍ୟକ୍ତି), ଶ୍ରେଷ୍ଠ (ପାନ) ।

ରାଶିକ—ବିଂ. ରାଶିବିଶିଷ୍ଟ, ରାଶିସମ୍ବନ୍ଧୀୟ, ରାଶିଯୁକ୍ତ ।

ରାଶିଗୁଣ୍ଡି—ଗ୍ରା.ବି.ଏକପ୍ରକାର ସରୁଧାନ ।

ରାଶିଗୃହ—ବି. ରାଶିଚକ୍ରରେ ସ୍ଥିତ ପ୍ରତ୍ୟେକ ରାଶିର ସ୍ୱତନ୍ତ୍ର ଗୃହ ବା ସ୍ଥାନ ।

ରାଶିଚକ୍ର—କ୍ଳୀ. ବି. ମେଷାଦି ଦ୍ୱାଦଶ ରାଶ୍ୟାଦିଯୁକ୍ତ ବୃତ୍ତ ।

ରାଶିତେଲ—ଗ୍ରା. ବି. ଢଳତେଲ ।

ରାଶିତ୍ରୟ—କ୍ଳୀ. ବି. ତିନୋଟି ରାଶିର ଗୁଣାତ୍ମକ ଅଙ୍କସଜ୍ଞାବିଶେଷ,ତ୍ରୈରାଶିକ ଦେଖ ।

ରାଶିନକ୍ଷତ୍ର—ବି. ମେଷାଦି ରାଶି ଓ ଅଶ୍ୱିନୀଆଦି ନକ୍ଷତ୍ର,ମନୁଷ୍ୟ ଜନ୍ମହେବା ସମୟରେ ଚନ୍ଦ୍ର ଯେଉଁ ନକ୍ଷତ୍ରରେ ଥାଆନ୍ତି ।

ରାଶିନାମ—କ୍ଳୀ. ବି. ଜାତକସ୍ଥ ନାମ, ରାଶି ଅନୁସାରେ ଦିଆଯିବା ନାମ ।

ରାଶିପ—ପୁଂ. ବି. ରାଶ୍ୟାଧିପ ।

ରାଶିପାନ—ଗ୍ରା. ବି. ଅତି ଶ୍ରେଷ୍ଠପାନ ।

ରାଶିଫଳ—ବି. ଜନ୍ମକାଳରେ ଚନ୍ଦ୍ର କୌଣସି ରାଶିରେ ଅବସ୍ଥିତ ଯୋଗୁଁ ଜାତ ବ୍ୟକ୍ତିର ସ୍ୱଭାବାଦି ।

ରାଶିବଢ଼ି—ଗ୍ରା. ବି. ଢଳମିଶ୍ରିତ ବଢ଼ି ।

ରାଶିଭାଗ—ପୁଂ. ବି. ଭଗ୍ନାଂଶ ।

ରାଶିଭାଗାନୁବନ୍ଧ—ପୁଂ. ବି. ଭଗ୍ନାଂଶର ସଂକଳନ ।

ରାଶିଭାଗାପବାହ—ପୁଂ. ବି. ଭଗ୍ନାଂଶର ବ୍ୟବକଳନ ।

ରାଶିଭୋଗ—ବି. ସୂର୍ଯ୍ୟଚନ୍ଦ୍ରାଦି ଗ୍ରହଙ୍କର ଗ୍ରହଚକ୍ରରେ ଭ୍ରମଣ କାଳରେ ନିର୍ଦ୍ଦିଷ୍ଟ ରାଶିଚକ୍ରସ୍ଥିତ ଗୃହରେ ଅବସ୍ଥିତି ।

ରାଶିମଣ୍ଡଳ—ବି. ରାଶିଚକ୍ର ଦେଖ ।

ରାଶିରାଶି—ଗ୍ରା. ବି ଓ ବିଂ. ବହୁସ୍ତୂପାକାରରେ ସ୍ତୂପୀକୃତ, ଅସଂଖ୍ୟ ।

ରାଶିସ୍ଥ—କ୍ରି.ବିଂ. (ରାଶି+ସ୍ଥା+କ.ଅ) କୌଣସି ରାଶିରେ ଥିବା ।

ରାଶୀକରଣ—ବି. (ରାଶି+ଚ୍ୱି+କରଣ) ଗଦା କରିବା ।

ରାଶୀକୃତ—ବିଂ. (ରାଶି+ଚ୍ୱି+କୃତ) ପୁଞ୍ଜୀକୃତ, ସ୍ତୂପୀକୃତ ।

ରାଶୀୟ—ବିଂ. (ରାଶି+ଈୟ) ରାଶିସମ୍ବନ୍ଧୀୟ ।

ରାଷ୍ଟ୍ର—ବି. (ରାଜ୍+କ.ଷ୍ଟ୍ର) ରାଜ୍ୟ, ଜନପଦ, ସାମ୍ରାଜ୍ୟ, ପ୍ରକାଶ, ପ୍ରଖର, ବିଷୟ, ମରକ,ଉପଦ୍ରବ, (ବିଂ)ଖ୍ୟାତ, ପ୍ରଚୁରିତ, ପ୍ରସିଦ୍ଧ ।

ରାଷ୍ଟ୍ରକ—ବି. ରାଜ୍ୟ,ରାଜ୍ୟବାସ, (ବିଂ) ରାଜ୍ୟ ସମ୍ବନ୍ଧୀୟ ।

ରାଷ୍ଟ୍ରକରିବା—ଗ୍ରା.କ୍ରି. ଦେଶଯାକ ପ୍ରଚୁରିତ କରିବା ।

ରାଷ୍ଟ୍ରକର୍ଷଣ—କ୍ଳୀ. ବି. ରାଜ୍ୟପୀଡ଼ନ, ପ୍ରଜାମାନଙ୍କ ପ୍ରତି ଅତ୍ୟାଚାରକରଣ ।

ରାଷ୍ଟ୍ରକାମ—ବି. ରାଜ୍ୟପ୍ରାପ୍ତିର ଇଚ୍ଛା, ରାଜ୍ୟାଭିଳାଷୀ ।

ରାଷ୍ଟ୍ରକୂଟ—ବି. ଦକ୍ଷିଣ ଭାରତର ରାଜ୍ୟବିଶେଷ, ବହୁତ ରାଜ୍ୟର ସମାହାର ।

ରାଷ୍ଟ୍ରଗୁପ୍ତି—ସ୍ତ୍ରୀ.ବି.(୬ତତ୍) ରାଜ୍ୟରକ୍ଷା ।

ରାଷ୍ଟ୍ରଗୋପ—ପୁଂ. ବି. ରାଜ,ରାଜପ୍ରତିନିଧି, ରାଜ୍ୟର ରକ୍ଷାକାରୀ ବ୍ୟକ୍ତିଗଣ ।

ରାଷ୍ଟ୍ରତନ୍ତ୍ର—କ୍ଳୀ.ବି.ରାଜ୍ୟଶାସନ ପଦ୍ଧତି ।

ରାଷ୍ଟ୍ରଦା—ସ୍ତ୍ରୀ.ବିଂ. ରାଜ୍ୟଦାନକାରିଣୀ ।

ରାଷ୍ଟ୍ରଦସ୍ୟୁ—ପୁଂ.ବିଂ. ରାଜ୍ୟନାଶକାରୀ, ପ୍ରଜାର ଉଚ୍ଛେଦକାରୀ ।

ରାଷ୍ଟ୍ରନାୟକ—ପୁଂ.ବି ଓ ବି. (୬ତତ୍) ରାଜ୍ୟନେତା, ରାଜ୍ୟର ସର୍ବପ୍ରଧାନ ପରିଚାଳକ ।

ରାଷ୍ଟ୍ରନିବାସୀ—ପୁଂ.ବି. ଜନପଦ,ଦେଶବାସୀ ।

ରାଷ୍ଟ୍ରନୀତି—ସ୍ତ୍ରୀ. ବି. (୬ତତ୍) ରାଜ୍ୟର ନିୟମ, ରାଜ୍ୟନୀତି ।

ରାଷ୍ଟ୍ରପତି—ପୁଂ. ବି. (୬ତତ୍) ରାଷ୍ଟ୍ରିକ, ରାଜା, ସମ୍ରାଟ୍ ।

ରାଷ୍ଟ୍ରପାଳ—ପୁଂ. ବି. (ରାଷ୍ଟ୍ର+ପାଳ) ରାଜା, ସମ୍ରାଟ୍, ଉଗ୍ରସେନ ପୁତ୍ର ।

ରାଷ୍ଟ୍ରପାଳିକା—ସ୍ତ୍ରୀ. ବି. ଉଗ୍ରସେନଙ୍କ କନ୍ୟାବିଶେଷ ।

ରାଷ୍ଟ୍ରଭଙ୍ଗ—ପୁଂ. ବି. ରାଜ୍ୟନାଶ ବା ଉଚ୍ଛେଦ, ରାଷ୍ଟ୍ରବିପ୍ଳବ ଦେଖ ।

ରାଷ୍ଟ୍ରଭୟ—କ୍ଳୀ. ବି. ଶତ୍ରୁ ଆକ୍ରମଣରୂପ ରାଜ୍ୟର ବିପଦ ।

ରାଷ୍ଟ୍ରଭର୍ତ୍ତୃ—ପୁଂ. ବି. ରାଜା, ରାଜ୍ୟପାଳକାରୀ,ପ୍ରଜା,ମୋକ୍ଷ ।

ରାଷ୍ଟ୍ରଭୃତି—ସ୍ତ୍ରୀ. ବି. ରାଜ୍ୟପାଳନବା, ରାଜ୍ୟପାଳନର ଉପାୟ ।

ରାଷ୍ଟ୍ରଭୃତ୍ୟ—କ୍ଳୀ. ବି. ରାଜ୍ୟପୋଷକ, ରାଜାନୁଚର, ପ୍ରଜା ।

ରାଷ୍ଟ୍ରଭେଦ—ପୁଂ. ବି. ରାଜ୍ୟବିଭାଗ, ରାଜ୍ୟବିପ୍ଳବ ଉତ୍ଥାପନ ଦ୍ୱାରା ରାଜ୍ୟବିଚ୍ଛେଦ ସାଧନ ।

ରାଷ୍ଟ୍ରବର୍ଦ୍ଧନ—ବି. ରାଜ୍ୟବୃଦ୍ଧି,ଦଶରଥ ଓ ରାମଚନ୍ଦ୍ରଙ୍କ ମନ୍ତ୍ରୀ ।

ରାଷ୍ଟ୍ରବାସୀ—ପୁଂ.ବି.ରାଷ୍ଟ୍ରନିବାସୀ,ରାଜ୍ୟବାସୀ, ଦେଶବାସୀ ।

ରାଷ୍ଟ୍ରବିପ୍ଳବ—ପୁଂ. ବି. (୬ତତ୍) ରାଜବିଦ୍ରୋହ,ଶାସନପ୍ରଣାଳୀର ପରିବର୍ତ୍ତନ ।

ରାଷ୍ଟ୍ରହେବା—ଗ୍ରା.କ୍ରି. (କୌଣସି ବିଷୟ) ଦେଶତମାମ୍ ପ୍ରଚୁରିତ ହେବା ।

ରାଷ୍ଟ୍ରାନ୍ତପାଳ—ପୁଂ. ବି. ସୀମାନ୍ତ ରାଜା, ଘାଟବାଲ୍ ।

ରାଷ୍ଟ୍ରି—ସ୍ତ୍ରୀ. ବ. ରାଜ୍ୟେଶ୍ୱରୀ, ରାଣୀ ।

ରାଷ୍ଟ୍ରିକ—ବିଂ. (ରାଷ୍ଟ୍ର+ଇକ) ରାଜ୍ୟ-ବାସୀ ବା ରାଜ୍ୟସମ୍ବନ୍ଧୀୟ, ରାଷ୍ଟ୍ର ବା ଦେଶବାସୀ, (ବି) ପ୍ରଜା, ଶାସନକର୍ତ୍ତା, ରାଜା ।

ରାଷ୍ଟ୍ରିକା—ସ୍ତ୍ରୀ. ବ. (ରାଷ୍ଟ୍ର+ଅକ+ଆ) ରାଷ୍ଟ୍ରବାସୀ, ଜନପଦ,ଭେଳିକବାଇଗଣ, କଣ୍ଟକାରୀ ।

ରାଷ୍ଟ୍ରି(ଷ୍ଟ୍ରୀ)ୟ—ବ.(ରାଷ୍ଟ୍ର+ଇୟ)ରାଜ୍ୟ-ସମ୍ବନ୍ଧୀୟ, ( ବି-ନାଟ୍ୟୋକ୍ତି ) ରାଜ-ଶ୍ୟାଳକ,ରାଜାଙ୍କ ସମ୍ବନ୍ଧୀ ବା ଶ୍ୟାଳକ ।

ରାଷ୍ଟ୍ରୀ—ବ. ମହାରୁଣା ଦେଶ,ରାଜ୍ୟାଧୀ-ଶ୍ୱରୀ ।

ରାଷ୍ଟ୍ରୀୟ—ପୁଂ. ବ ଓ ବିଂ.ରାଷ୍ଟ୍ରିୟ ଦେଖ ।

ରାସ୍—ଗ୍ରା. ବ. ରାଶ୍ ଦେଖ ।

ରାସ—ପୁଂ.ବ. (ରସ+ଅ) କୋଲାହଳ, ଧ୍ୱନି, ଭାଷାଶୃଙ୍ଖଳକ,ଗୋପନାରୀ ମଣ୍ଡଳ ପରିବେଷ୍ଟିତ ରାଧାକୃଷ୍ଣଙ୍କ ଯୁଗଳନୃତ୍ୟ-ଲୀଳା, ପ୍ରେମୋଦ୍ଦୀପକ ନୃତ୍ୟବିଶେଷ, (ଗ୍ରା.ବି) କାର୍ତ୍ତିକମାସର ଶୁକ୍ଳଏକାଦଶୀ ଠାରୁ ଆରମ୍ଭ କରି ପୂର୍ଣ୍ଣିମା ପର୍ଯ୍ୟନ୍ତ ରାଧାକୃଷ୍ଣ ଲୀଳା ବିଷୟକ ଅନୁଷ୍ଠିତ ଉତ୍ସବବିଶେଷ ।

ରାସକ—ବ. ହାସ୍ୟରସୋଦ୍ଦୀପକ ନାଟକ ବିଶେଷ ।

ରାସକେଳି—ବ. ରାସଲୀଳା ।

ରାସକ୍ରୀଡ଼ା—ବ. ରାସଲୀଳା ।

ରାସଣା—ଗ୍ରା. ବ. ରାସ୍ନା ଦେଖ ।

ରାସନ—ବିଂ. ( ରସନା+ଅ ) ରସନା ସମ୍ବନ୍ଧୀୟ, ସୁସ୍ୱାଦୁ,(ବି) ରସନେନ୍ଦ୍ରିୟ-ଜନ୍ୟ ସ୍ୱାଦଜ୍ଞାନ ।

ରାସନପ୍ରତ୍ୟକ୍ଷ—ବ. ରସନେନ୍ଦ୍ରିୟ ଦ୍ୱାରା ସ୍ୱାଦବୋଧ ।

ରାସନା—ସ୍ତ୍ରୀ. ବିଂ. (ରସନା+ଅ+ଆ) ରସନା ସମ୍ବନ୍ଧୀୟା, (ବି) ରସନେନ୍ଦ୍ରିୟ ଜନ୍ୟ ସ୍ୱାଦଜ୍ଞାନ ।

ରାସନୀ—ସ୍ତ୍ରୀ, ବିଂ. ରାସନର ସ୍ତ୍ରୀଲିଙ୍ଗ ।

ରାସନୀମାଡ—ବ. କହ୍ଲାର ଧର୍ମ, ସର୍ବଦା ଉପକାର କରିବା ଅଭ୍ୟାସ ।

ରାସପର୍ବ—ବ. କାର୍ତ୍ତିକ ପୂର୍ଣ୍ଣିମା ।

ରାସପୂର୍ଣ୍ଣିମା—ସ୍ତ୍ରୀ.ବ କାର୍ତ୍ତିକପୂର୍ଣ୍ଣିମା ତିଥି ।

ରାସବିହାରୀ—ପୁଂ. ବ. (ରାସ+ବି+ହୃ+କ.ଇନ୍) ଶ୍ରୀକୃଷ୍ଣ । [ ଦେଖ ।

ରାସବେଢକା(ବେଢା)—ବ. ରାସମଣ୍ଡପ

ରାସଭ—ପୁଂ. ବ. (ରା+କ.ଅଭ)ଗର୍ଦ୍ଦଭ, ଗଧ, ଅଶ୍ୱତର, ଖଚର, ବ୍ରଜନଗରର ତାଳ ବନରେ ବଳଦେବଙ୍କ ଦ୍ୱାରା ନିହତ ଗର୍ଦ୍ଦଭ ରୂପଧାରୀ ଦୈତ୍ୟ, (ସ୍ତ୍ରୀ) ରାସଭୀ ।

ରାସଭଧୂସର—ପୁଂ.ବିଂ. (ବ.ବ୍ରୀ)ଗର୍ଦ୍ଦଭ-ପରି ବର୍ଣ୍ଣବିଶିଷ୍ଟ ।

ରାସଭବନ୍ଦନୀ—ସ୍ତ୍ରୀ. ବ. ଆରବଦେଶୀୟ ଯୂଇଫୁଲ ।

ରାସଭାରୁଣ—ବିଂ.ଗର୍ଦ୍ଦଭପରି ଅରୁଣବର୍ଣ୍ଣ ।

ରାସଭୀ—ସ୍ତ୍ରୀ.ବ. (ରାସଭ+ଈ)ଗର୍ଦ୍ଦଭୀ ।

ରାସମଣ୍ଡପ—ବ.ଶ୍ରୀକୃଷ୍ଣଙ୍କର ରାସଲୀଳାର ମଣ୍ଡପ, ଯେଉଁ ମଣ୍ଡପରେ ରାସଯାତ୍ରା ହୁଏ ।

ରାସମଣ୍ଡଳ(ଳୀ)—କ୍ଳୀ. ବ. ରାଧାକୃଷ୍ଣଙ୍କ ଯୁଗଳମୂର୍ତ୍ତିକୁ ଘେରିପାଖ ବେଢ଼ି ନାଚୁ-ଥିବା ଷୋହଳସହସ୍ର ଗୋପୀଙ୍କ ମଣ୍ଡଳ, ଗୋଲକଧାମରେ ଭଗବାନ କରୁଥିବା ରାସକ୍ରୀଡ଼ାର ପରିଧି ବା ସୀମା, ଶ୍ରୀକୃ-ଷ୍ଣଙ୍କ ରାସକ୍ରୀଡ଼ା ସ୍ଥଳ ।

ରାସଯାତ୍ରା—ସ୍ତ୍ରୀ.ବ. କାର୍ତ୍ତିକ ପୂର୍ଣ୍ଣିମାରେ ରାସଲୀଳାର ଅଭିନୟ ।

ରାସରଙ୍ଗ—ବ.ରାସକ୍ରୀଡ଼ା,ରାସଲୀଳା ।

ରାସରଙ୍ଗିଣୀ—ସ୍ତ୍ରୀ.ବ. ଶ୍ରୀରାଧିକା, ରାସ-କ୍ରୀଡ଼ାରେ ସଙ୍ଗିନୀ ।

ରାସରସ—ବ.(କ.ଧା) ରାସଲୀଳାଜନିତ ଭାବବିଶେଷ,ରାସକ୍ରୀଡ଼ାଜନ୍ୟ ଆନନ୍ଦ ।

ରାସରସମୟ—ପୁଂ.ବ. ଶ୍ରୀକୃଷ୍ଣ ।

ରାସରସମୟୀ—ସ୍ତ୍ରୀ.ବ. ଶ୍ରୀରାଧିକା ।

ରାସରସିକ—ପୁଂ.ବ. ଶ୍ରୀକୃଷ୍ଣ ।

ରାସଲୀଳା—ବ. (କ.ଧା) ରାସ ଦେଖ ।

ରାସାଙ୍ଗତ--ଗ୍ରା.ବିଂ.ସମ୍ପୂର୍ଣ୍ଣରୂପେ ନିର୍ମୂଳ, ରସାତଳଗତ ।

ରାସାତଳ—ଗ୍ରା.ବ. ରସାତଳ, ପାତାଳ, (ବିଂ) ଅଧୋଗତ ।

ରାସାୟନ—ବିଂ. ( ରସାୟନ+ଅ ) ରସାୟନ ସମ୍ବନ୍ଧୀୟ ।

ରାସାୟନିକ—ବିଂ. (ରସାୟନ+ଇକ) ରସାୟନ ସମ୍ବନ୍ଧୀୟ, ଦୁଇଦ୍ରବ୍ୟର ପରମାଣୁର ଘନିଷ୍ଠ ମିଳନ ସମ୍ବନ୍ଧୀୟ ।

ରାସାୟନିକଆକର୍ଷଣ—ବ. ଯେଉଁ ଗୁଣ-ଦ୍ୱାରା ଦୁଇପଦାର୍ଥର ଭିନ୍ନଭିନ୍ନ ପ୍ରକା-ରର ପରମାଣୁମାନ ମିଳିତ ହୋଇ ଗୋଟିଏ ସ୍ୱତନ୍ତ୍ର ଗୁଣବିଶିଷ୍ଟପଦାର୍ଥରେ ପରିଣତ ହୁଏ ।

ରାସାୟନିକକ୍ରିୟା—ବ.ଦୁଇପଦାର୍ଥ ପର-ସ୍ପର ମିଳିତ ହେବାଦ୍ୱାରା ରାସାୟନିକ ଆକର୍ଷଣ ବଳରେ ସମ୍ପାଦିତ ହେବା କାର୍ଯ୍ୟ ।

ରାସାୟନିକଗବେଷଣା—ବ. ରସାୟନ ବିଦ୍ୟା ସମ୍ବନ୍ଧେ ତତ୍ତ୍ୱ ଅନୁସନ୍ଧାନ ।

ରାସାୟନିକପରିବର୍ତ୍ତନ—ବ. ଦୁଇପଦା-ର୍ଥର ମିଳନଦ୍ୱାରା ପରମାଣୁମାନଙ୍କର ପ୍ରକୃତିର ପରିବର୍ତ୍ତନ ।

ରାସାୟନିକପରୀକ୍ଷା—ବ. ରସାୟନଶାସ୍ତ୍ର ସମ୍ବନ୍ଧୀୟ ତତ୍ତ୍ୱମାନଙ୍କ ନିର୍ଣ୍ଣୟାର୍ଥ କରାଯିବା ପରୀକ୍ଷା ।

ରାସାୟନିକବିକାର—ବ. ରାସାୟନିକ-ପରିବର୍ତ୍ତନ ଦେଖ ।

ରାସାୟନିକବିଶ୍ଳେଷଣ—ବ.ରାସାୟନିକ ଆକର୍ଷଣଦ୍ୱାରା ମିଳିତ ଉପାଦାନମାନ-ଙ୍କର ପୃଥକ୍କରଣ ।

ରାସାୟନିକମିଳନ—ବ. ରାସାୟନିକ ସମ୍ମିଳନ ଦେଖ ।

ରାସାୟନିକସମ୍ବନ୍ଧ—ବ. ଦୁଇପଦାର୍ଥର ରାସାୟନିକ ମିଳନପାଇଁ ଅନୁକୂଳ ସମ୍ପର୍କ ।

ରାସାୟନିକସମ୍ମିଳନ—ବ, ଦୁଇଟି ବସ୍ତୁ ପରସ୍ପର ମିଳିତହେବାଦ୍ୱାରା ଉଭୟ ପରମାଣୁମାନଙ୍କର ପ୍ରକୃତି ପରିବର୍ତ୍ତନ-ଜନିତ ମିଶ୍ରଣ ।

ରାସାୟନିକସଂଶ୍ଳେଷଣ—ବ.ରାସାୟନିକ ସମ୍ମିଳନ ଦେଖ ।

ରାସେରସ—ପୁଂ.ବି. ( ରାସ+ରସ ) ଗୋଷ୍ଠି ରାସ, ଶୃଙ୍ଗାର, ରସସିଦ୍ଧି, ଷଷ୍ଠି ଜାଗରକ, ରସାବାସ ଉତ୍ସବ, ପରିହାସ,ସଭା, ମଣ୍ଡଳ, କ୍ରୀଡ଼ା ।

ରାସେଶ୍ୱର—ପୁଂ.ବି. (୬ତତ୍ପୁ)ଶ୍ରୀକୃଷ୍ଣ ।

ରାସେଶ୍ୱରୀ—ସ୍ତ୍ରୀ.ବି. (୬ତତ୍ପୁ) ଶ୍ରୀରାଧା

ରାସୋତ୍ସବ—ବି. ରାସରୂପ ଲୀଳା, ରାସ ଦେଖ ।

ରାସ୍ତା—ଯା.ବି.ପଥ, ମାର୍ଗ, ସଡ଼କ,ରାଜଦାଣ୍ଡ, ଦୂରତ୍ୱ,(ଲ.ଅର୍ଥ) କାର୍ଯ୍ୟ ସାଧନର ଉପାୟ ।

ରାସ୍ତାଦାଣ୍ଡ—ଗ୍ରା.ବି. ସାଧାରଣ ରାସ୍ତା, ରାଜପଥ ।

ରାସ୍ତାଦେଖିବା—ଗ୍ରା.କ୍ରି. (ଲ.ଅର୍ଥ) ପର ଉପରେ ନିର୍ଭର ନକରି ଆପଣାର ଉପାୟ ଆପେ କରିବା ।

ରାସ୍ତାଧରିବା—ଗ୍ରା. କ୍ରି. ନିର୍ଦ୍ଦିଷ୍ଟ ପଥରେ ଯିବା, (ଲ.ଅର୍ଥ) କୌଣସି ନିର୍ଦ୍ଦିଷ୍ଟ କାର୍ଯ୍ୟ ସାଧନାର୍ଥ ପନ୍ଥା ବା ମାର୍ଗ ଅବଲମ୍ବନ କରିବା ।

ରାସ୍ତାମାରିବା—ଗ୍ରା.କ୍ରି.ରାସ୍ତାକୁ ଅବରୋଧ କରି ଲୋକଙ୍କ ଗମନାଗମନ ବନ୍ଦକରିବା

ରାସ୍ତାରଖିବା—ଗ୍ରା.କ୍ରି. (ଲ.ଅର୍ଥ) ଭବିଷ୍ୟତରେ କୌଣସି କାର୍ଯ୍ୟ ସାଧନ ହେବାପାଇଁ ଉପାୟ ରଖିବା ।

ରାସ୍ନା—ବି.(ରସ୍+ଅନ୍+ଆ)ଏକପ୍ରକାର ମଲଙ୍ଗ ବା ପରବୃକ୍ଷଲାଗି ଶାକୌଷଧିବିଶେଷ ।

ରାସ୍ନାବ—ବିଂ. ବେଷ୍ଟିତ, ବନ୍ଧନଯୁକ୍ତ ।

ରାସ୍ନିକା—ବି. ରାସ୍ନା ।

ରାସ୍ୟ—ବି.ବିଂ.ରାସଯୋଗ୍ୟ,(ବି)ଶ୍ରୀକୃଷ୍ଣ ।

ରାହା—ଯା. ବି. ରାସ୍ତା, ପଥ, (ଲ.ଅର୍ଥ) ଉପାୟ, ରହିବା ପାଇଁ ସ୍ଥାନ, ଆଶ୍ରୟ, ବଙ୍ଗଦେଶର ବଂଶୋପାଧିବିଶେଷ,(ଗ୍ରା.ବି) ଉଚ୍ଚ ସ୍ୱରରେ କାନ୍ଦ ।

ରାହାଏନ୍—ପ୍ରା. (ସମ୍ବ)ବି. ରାସ୍ତା, ପଥ ।

ରାହାଗର—ଯା.ବି. ଭ୍ରମଣ, ଭ୍ରମଣକାରୀ, ପଥିକ ।

ରାହାଗିରି—ଯା. ବି. ଭ୍ରମଣ, ପର୍ଯ୍ୟଟନ, ପଥିକ, ବାଟୋଇ ।

ରାହାଙ୍ଗ—ଗ୍ରା. ବି. ମୁଗଲବନ୍ଦି ସଦର ଥାନାନ୍ତର୍ଗତ ଗୋଟିଏ ପ୍ରଗନ୍ନାର ନାମ ।

ରାହାଜାନି—ଯା.ବି.ଲୁଣ୍ଠନ, ଡକାୟତି ।

ରାହାଡ଼—ଗ୍ରା. ବି. ନୀବାର ଧାନ୍ୟଗଛ, ହରଡ଼ ।

ରାହାଦାର୍—ଯା.ବି.ପଥକର ସଂଗ୍ରାହକ ।

ରାହାଦାରି—ଯା.ବି.ପଥକର ସଂଗ୍ରାହକର କାର୍ଯ୍ୟ, ରାଜଦାଣ୍ଡରେ ଯିବାର ଛାଡ଼ପତ୍ର ବା ରାଜାଙ୍କ ଅନୁମତି ପତ୍ର, ରାଜମାର୍ଗରେ ଚଳାଚଳ ବ୍ୟକ୍ତିମାନଙ୍କଠାରୁ ଆଦାୟ କରି ନିବା ଶୁଳ୍କ, ପଥକର ।

ରାହାରବସ୍ଥା—ଯା. ବି. ସ୍ଥିତ, ଅସ୍ତିତ୍ୱ ।

ରାହାସ—ଗ୍ରା. ବି. ରାସ ଦେଖ ।

ରାହି(ହୀ)-ଗ୍ରା.ସ୍ତ୍ରୀ.ବି.ରାଧା.(ଯା.ବି)ପଥିକ ।

ରାହିତ୍ୟ—ବି. ( ରହିତ+ଯ ) ମୁକ୍ତି, ନିବୃତ୍ତି, ଅଭାବ, ଅନୁପସ୍ଥିତି ।

ରାହିମ୍—ଯା. ବି. ସମ୍ପତ୍ତି ବନ୍ଧକଦାତା ।

ରାହୁ—ପୁଂ.ବି(ରହ+କ.ଉ) ଅଷ୍ଟମଗ୍ରହ, ସିଂହିକାର ପୁତ୍ର, କେତୁର ମସ୍ତକଭାଗ, ଚନ୍ଦ୍ରଗ୍ରହଣ ସମୟରେ ଚନ୍ଦ୍ରଙ୍କୁ ଆଚ୍ଛାଦନ କରିବା ପୃଥିବୀର ଛାୟା,(ଭା.ଉ)ତ୍ୟାଗ, ବର୍ଜନ, (ଲ.ଅର୍ଥ)ଅତ୍ୟାଚାରୀ ବା ପରପୀଡ଼କ ବ୍ୟକ୍ତି ।

ରାହୁଗ୍ରସନ—କ୍ଲୀ.ବି.ରାହୁଗ୍ରାସ,ରାହୁତ୍ୟ, ଚନ୍ଦ୍ରସୂର୍ଯ୍ୟଙ୍କ ଗ୍ରହଣ ।

ରାହୁଗ୍ରସ୍ତ—ବିଂ. (୩ତତ୍ପୁ) ରାହୁକୃତ ଧୃତ ବା ଭକ୍ଷିତ,ରାହୁକର୍ତ୍ତୃକ ଆକ୍ରାନ୍ତ(ଗ୍ରହଣକାଳୀନ ଚନ୍ଦ୍ର ବା ସୂର୍ଯ୍ୟ) ।

ରାହୁଗ୍ରହ—ବି. ଗ୍ରହରୂପେ କଳ୍ପିତ ହିନ୍ଦୁ ଜ୍ୟୋତିଷର ନବଗ୍ରହ ମଧ୍ୟରୁ ଅଷ୍ଟମଗ୍ରହ ।

ରାହୁଗ୍ରହଣ—ବି. (୩ତତ୍ପୁ) ରାହୁ କର୍ତ୍ତୃକ ଗ୍ରାସ, ରାହୁଙ୍କ ଦ୍ୱାରା ଚନ୍ଦ୍ର ବା ସୂର୍ଯ୍ୟଙ୍କର ଗ୍ରହଣ ।

ରାହୁଗ୍ରାସ—ପୁଂ.ବି.ରାହୁ ଦ୍ୱାରା ଚନ୍ଦ୍ର ବା ସୂର୍ଯ୍ୟଙ୍କର ଆକ୍ରମଣ, ଚନ୍ଦ୍ର ଗ୍ରହଣ ବା [illegible] ପରାଗ ।

[illegible]—ପୁଂ.ବି. (୩ତତ୍ପୁ)ଚନ୍ଦ୍ର ସୂର୍ଯ୍ୟ- [illegible] ଗ୍ରହଣ, ଉପରାଗ ।

ରାହୁଚକ୍ର—କ୍ଲୀ. ବି. ରାହୁ ଭ୍ରମଣଚକ୍ର ।

ରାହୁଚ୍ଛନ୍ନ—ବି. (୬ତତ୍ପୁ) ଆର୍ଦ୍ରକ, ଅଦା ।

ରାହୁତ—ଗ୍ରା. ବି. ରାଉତ, ଅଶ୍ୱାରୋହୀ, ଅଶ୍ୱାରୋହୀ ବୀର ।

ରାହୁଦଶା—ବି. ମନୁଷ୍ୟର ପରମାୟୁ କାଳରେ ପଡ଼ିବା ରାହୁ ଗ୍ରହର ଦଶା ବା ଭୋଗକାଳ ।

ରାହୁଦର୍ଶନ—ବି. ରାହୁର ଗୃହୁଷ ଜ୍ଞାନ, ଗ୍ରହଣପରିଗାଢ଼, ଗ୍ରହଣ ସମୟରେ ଚନ୍ଦ୍ର ସୂର୍ଯ୍ୟଙ୍କୁ ଦେଖିବା ।

ରାହୁଭୂତ—ବି. (୬ତତ୍ପୁ) ଶିରଚ୍ଛେଦ ।

ରାହୁଭେଦୀ—ପୁଂ.ବି. (ରାହୁ+ଭେଦନ୍) ବିଷ୍ଣୁ ।

ରାହୁମଣି—ବି. (କ.ଧା) ଗୋମେଦମଣି, ପିଙ୍ଗଳ ବା ପୀତବର୍ଣ୍ଣ ମଣିବିଶେଷ ।

ରାହୁମୁକ୍ତ—ବିଂ. (୫ତତ୍ପୁ) ରାହୁ ଗ୍ରାସରୁ ମୁକ୍ତିପ୍ରାପ୍ତ (ଚନ୍ଦ୍ର ବା ସୂର୍ଯ୍ୟ) ।

ରାହୁମୂର୍ଦ୍ଧଭିତ୍—ପୁଂ.ବି. (୬ତତ୍ପୁ) ବିଷ୍ଣୁ ।

ରାହୁମୂର୍ଦ୍ଧହର—ପୁଂ. ବି. ବିଷ୍ଣୁ ।

ରାହୁମୋକ୍ଷ—ବି. ଚନ୍ଦ୍ର ବା ସୂର୍ଯ୍ୟଙ୍କଠାରୁ ଗ୍ରହଣ ଛାଡ଼ିଯିବା ।

ରାହୁରତ୍ନ—କ୍ଲୀ. ବି. ରାହୁମଣି ଦେଖ ।

ରାହୁରେଖା—ଗ୍ରା. ବି. କପାଳର ମଧ୍ୟଭାଗରେ ପିନ୍ଧାଯିବା ଅଳଙ୍କାରବିଶେଷ ।

ରାହୁଲ—ପୁଂ. ବି. ବୁଦ୍ଧଦେବଙ୍କ ପୁତ୍ର ।

ରାହୁଲସୂ—ପୁଂ. ବି. ବୁଦ୍ଧଦେବ ।

ରାହୁବୃହସ୍ପତିଯୋଗ—ବି.ଏକ ରାଶିସ୍ଥିତ ଗୁରୁ ଓ ରାହୁ, ଜ୍ୟୋତିଷୋକ୍ତ ଅନିଷ୍ଟକର ଯୋଗବିଶେଷ ।

ରାହୁସଂସ୍ପର୍ଶ—ବି.(୬ତତ୍ପୁ)ଚନ୍ଦ୍ର ବା ସୂର୍ଯ୍ୟଗ୍ରହଣ ।

ରାହୁସଂସ୍ପୃଷ୍ଟ—ବି. (୩ତତ୍ପୁ) ରାହୁ ଦ୍ୱାରା ଆକ୍ରାନ୍ତ (ଚନ୍ଦ୍ର ବା ସୂର୍ଯ୍ୟ) ।

ରାହୁସ୍ପର୍ଶ—ପୁଂ.ବି. ଉପରାଗ, ସୂର୍ଯ୍ୟ ଓ ଚନ୍ଦ୍ର ଗ୍ରହଣ ।

ରାହୁସୂତକ—ବି. ଗ୍ରହଣ ବା ଉପରାଗ, ଚନ୍ଦ୍ର ବା ସୂର୍ଯ୍ୟ ପରାଗ ।

ରାହୁହା—ପୁଂ. ବି. (ରାହୁ+ହନ୍+କ. କ୍ୱିପ୍) ବିଷ୍ଣୁ ।

ରାହୂଚ୍ଛିଷ୍ଟ—ପୁଂ. ବ. (ରାହୁ+ଉଚ୍ଛିଷ୍ଟ) ଲଶୁନ, ରସୁଣ ।

ରାହୂତ୍ସୃଷ୍ଟ—ପୁଂ.ବ. (ରାହୁ+ଉତ୍ସୃଷ୍ଟ) ଲଶୁନ, ରସୁଣ ।

ରି—ବ. ଋଷଭ ସ୍ୱର, ସଙ୍ଗୀତର ୨ୟ ସ୍ୱର, ଅନୁକାର ଶବ୍ଦ, (ଗ୍ରା.ଅବ୍ୟ)ଷଷ୍ଠୀ ବିଭକ୍ତିର ଚିହ୍ନବିଶେଷ,(ଯଥା-ଭୂମିର) ।

ରିଆତ(ତି)—ଯା. ବ. ମୁକ୍ତି, ନିସ୍କୃତି, ଅନୁଗ୍ରହ ।

ରିକ୍ସା—ଯା.ବ.ମନୁଷ୍ୟଙ୍କୁ ବସାଇ ଟାଣିବା ଦୁଇଚକିଆ ଗାଡ଼ି ।

ରିକା—ଗ୍ରା.ବିଂ. ରିକ୍ତ ଦେଖ ।

ରିକାବ—ଯା.ବ. ରେକାବ୍ ଦେଖ ।

ରିକୀ—ଗ୍ରା.ବିଂ.ଉତ୍ତରାଧିକାରୀ ।

ରିକ୍ତ—ବିଂ. (ରିଚ୍+ର୍ମ.ତ) ଖାଲି,ଶୂନ୍ୟ, ଫମ୍ପା, ଫୋପଲ, ଦରିଦ୍ର, ନିଷ୍ଫଳ, (ବ) ଅବକାଶ, ଶୂନ୍ୟସ୍ଥାନ, ଶୂନ୍ୟ, ଆକାଶ, ବନଜଙ୍ଗଲ, (ସ୍ତ୍ରୀ) ରିକ୍ତା ।

ରିକ୍ତକ—ବିଂ. (ରିକ୍ତ+କ)ଶୂନ୍ୟ ।

ରିକ୍ତକୁମ୍ଭ—କ୍ଳୀ.ବ. ଶୂନ୍ୟକଳସ ସମୁଦ୍ଭୂତ ଶବ୍ଦ,ଢେଣ୍ଟର ଶବ୍ଦ,ଦୁର୍ବୋଧ ଭାଷା ।

ରିକ୍ତକୃତ—ବିଂ. ଖାଲି କରାଯାଇଥିବା ।

ରିକ୍ତଗୃହ-ବ.ଯେଉଁ ଘରେ କେହି ନ ଥାଏ

ରିକ୍ତପାତ୍ର—କ୍ଳୀ. ବ. ଖାଲିପାତ୍ର, କିଛି ପଦାର୍ଥ ନ ଥିବା ପାତ୍ର । [ ନ ଥାଏ ।

ରିକ୍ତଭବନ—କ୍ଳୀ.ବ.ଯେଉଁ ଘରେ କେହି

ରିକ୍ତଭାଣ୍ଡ—ବ. (କ.ଧା)ଶୂନ୍ୟ ପାତ୍ର,(ବିଂ. ବ.ବ୍ରୀ) ଭାଣ୍ଡବିହୀନ, ବୁଦ୍ଧିଶୂନ୍ୟ ।

ରିକ୍ତମତି—ବି.ବିଂ.ଶୂନ୍ୟମନ,ଚିନ୍ତାନ୍ୱିତ ।

ରିକ୍ତହସ୍ତ—ବିଂ. ( ବ.ବ୍ରୀ ) ଖାଲିହାତ, ଶୂନ୍ୟହସ୍ତ,(ବ.କ.ଧା)ତୁଚ୍ଛାହାତ, ଯେଉଁ ହାତରେ କିଛି ଧନ ନ ଥାଏ,ଶୂନ୍ୟ ହସ୍ତ ।

ରିକ୍ତା—ସ୍ତ୍ରୀ. ବ. (ରିଚ୍+ତା) ଚତୁର୍ଥୀ, ନବମୀ ଓ ଚତୁର୍ଦ୍ଦଶୀ ତିଥିମାନ ।

ରିକ୍ତାର୍କ—ପୁଂ. ବ. (ରିକ୍ତା+ଅର୍କ)ରିକ୍ତା-ତିଥିରେ ପଡ଼ିବା ରବିବାର ।

ରିକ୍ଥ—କ୍ଳୀ. ବ. ( ରିଚ୍+ର୍ମ.ଥ ) ଧନ, ସମ୍ପତ୍ତି, ଦାୟ, ସ୍ଥାବର ଅସ୍ଥାବରସମ୍ପତ୍ତି

ରିକ୍ଥଗ୍ରାହୀ—ପୁଂ.ବିଂ. (ରିକ୍ଥ+ଗ୍ରହ+କ.ଇନ୍) ଧନଗ୍ରହଣକାରୀ, ଅର୍ଥଗ୍ରାହୀ, (ସ୍ତ୍ରୀ)ଗ୍ରାହିଣୀ, (ବ) ସମ୍ପତ୍ତିର ଉତ୍ତରାଧିକାରୀ, ଦାୟାଦ ।

ରିକ୍ଥଜାତ—କ୍ଳୀ.ବ. (ମୃତବ୍ୟକ୍ତିର)ସମୁଦାୟ ସମ୍ପତ୍ତି ।

ରିକ୍ଥଭାକ୍—ପୁଂ.ବିଂ. ଧନଭାଗୀ ।

ରିକ୍ଥଭାଗୀ—ପୁଂ.ବିଂ. (ରିକ୍ଥ+ଭାଗିନ୍) ଧନଭାଗୀ ।

ରିକ୍ଥହର—ପୁଂ. ବିଂ. (ରିକ୍ଥ+ହର) ଧନହାରକ, ଧନଭାଗୀ ।

ରିକ୍ଥହାର—ପୁଂ. ବିଂ. ଧନାଧିକାରୀ, ଉତ୍ତରାଧିକାରୀ ।

ରିକ୍ଥହାରୀ—ପୁଂ. ବିଂ. (ରିକ୍ଥ+ହୃ+କ.ଇନ୍) ଧନାପହାରୀ, (ବ) ଦାୟାଦ, ଉତ୍ତରାଧିକାରୀ, ମାତୁଳ,ମାମୁଁ ।

ରିକ୍ଥାଦ—ପୁଂ.ବ. ପୁତ୍ର,ଉତ୍ତରାଧିକାରୀ, ଧନାହାରୀ ।

ରିକ୍ଥୀ—ପୁଂ.ବିଂ. (ରିକ୍ଥ+ଇନ୍)ଧନହାରୀ,ଧନୀ,ଉତ୍ତରାଧିକାରୀ,(ସ୍ତ୍ରୀ)ରିକ୍ଥିନୀ ।

ରିକ୍ଥୀୟ—ବି.ବିଂ. ଉତ୍ତରାଧିକାରୀ ସମ୍ବନ୍ଧୀୟ ।

ରିକ୍ଷା—ସ୍ତ୍ରୀ.ବ.ସୂର୍ଯ୍ୟକିରଣଗତ ଧୂଳିକଣା ବା ଅଣୁ, ଲିଖ, ଗ୍ରେଟ ଉକୁଣୀ ।

ରିଙ୍ଖଣ—କ୍ଳୀ.ବ.(ରିଙ୍ଖ+ଅନ)ସ୍ଖଳନ, ଗୁରୁଣ୍ଡିବା, ସ୍ଥାନରୁ ପତନ, ବିଚଳିତ ହେବା । [ ଦେଖ ।

ରିଙ୍ଗଣ—କ୍ଳୀ.ବ. (ରିଙ୍ଗ+ଅନ)ରିଙ୍ଖଣ

ରିଙ୍ଗିତ—କ୍ଳୀ.ବ. (ରିଙ୍ଗ+ଭା.ତ)ଗମନ, ସ୍ଖଳନ, (ବିଂ-କ.ତ) ଗତ, ସ୍ଖଳିତ, (ସ୍ତ୍ରୀ) ରିଙ୍ଗିତା ।

ରିଝିବା—ପ୍ରା.(ସମ୍ବ)କ୍ରି. ଆକୃଷ୍ଟହେବା, ରସିବା, ସନ୍ତୁଷ୍ଟହେବା ।

ରିଝି—ଗ୍ରା.ବ. ମନୋରଞ୍ଜନ,ବିନୋଦନ, ମନର ଆନନ୍ଦ, ମନ,(ବିଂ)ମନୋମତ ।

ରିଝା—ଗ୍ରା. ବ. ମନୋରଞ୍ଜନ, (ବିଂ) ମନୋମତ ।

ରିଝାଇବା—ଗ୍ରା.କ୍ରି.ଭୁଲାଇବା,ମଣାଇବା, ତୋଷିବା, ରଞ୍ଜାଇବା ।

ରିଟି—ସ୍ତ୍ରୀ. ବ. ଅଗ୍ନି ଦାହର ଚଡ଼ଚଡ଼ ଶବ୍ଦ, ବାଦ୍ୟଯନ୍ତ୍ରବିଶେଷ,କୃଷ୍ଣଲବଣ ।

ରିଠା—ଗ୍ରା.ବ.ବସ୍ତ୍ର ପରିଷ୍କାରଣାର୍ଥ ବ୍ୟବହୃତ ଫଳବିଶେଷ ଓ ତାହାର ଗଛ ।

ରିଡ଼—ଗ୍ରା.ବ. ଡାଳ ନଡ଼ିଆପତ୍ରଆଦିର ଟାଣୁଆ ଶିରା ।

ରିଢ଼ା—ପ୍ରା.(ବାଲେ)ବ. ଦାନ୍ତପାଟି ।

ରିଢି(ଢୁ)ଆ—ଗ୍ରା.ବିଂ. ରେଢ଼ା,ଶ୍ରେଷ୍ଠ ଓ ବନ୍ଧୁର (ପଦାର୍ଥ) ।

ରିଣ—ଗ୍ରା.ବ. ଋଣ ।

ରିତୁ—ଗ୍ରା.ବ. ଋତୁ, ସ୍ତ୍ରୀଙ୍କ ଋତୁସ୍ରାବ, ସ୍ତ୍ରୀଙ୍କ ଋତୁକାଳ ।

ରିଦ୍ଧ—ବି.ବିଂ. ପକ୍ୱ (ଶସ୍ୟାଦି) ।

ରିଧମ—ପୁଂ.ବ.(ରିଧ+ଅମ)କାମଦେବ, ବସନ୍ତ ।

ରିଧୋ—ପ୍ରା.(ସମ୍ବ)ବ. ରସିକତା ।

ରିପନ୍—ଯା.ବ.ଭାରତର ସୁପ୍ରସିଦ୍ଧ ଗଭର୍ଣ୍ଣର ଜେନେରାଲ ।

ରିପୁ—ବ. (ରପ୍+କ.ଉ) ଶତ୍ରୁ, ବିପକ୍ଷ, ଲଗ୍ନଠାରୁ ଷଷ୍ଠ ସ୍ଥାନ, କାମ କ୍ରୋଧ ଲୋଭ ମୋହ ମଦ ମାତ୍ସର୍ଯ୍ୟ—ଶରୀରସ୍ଥ ଏହି ଛଅ ଶତ୍ରୁ ।

ରିପୁକ୍ଷୟ—ବ. (୬ତତ୍ପୁ)ଶତ୍ରୁର ବିନାଶ,

ରିପୁଘାତୀ—ପୁଂ.ବିଂ.(ରିପୁ+ହନ୍+ଇନ୍) ଶତ୍ରୁଘାତୀ, ଶତ୍ରୁହନ୍ତା ।

ରିପୁଘ୍ନ—ବିଂ. ( ରିପୁ+ହନ୍+କ.ଅ ) ଶତ୍ରୁର ବିନାଶକ, (ସ୍ତ୍ରୀ) ରିପୁଘ୍ନୀ ।

ରିପୁଜୟ—ବ. (୬ତତ୍ପୁ) ଶତ୍ରୁକୁ ପରାଜୟ କରିବା, କାମକ୍ରୋଧାଦିକୁ ବଶ କରିବା ।

ରିପୁତା—ସ୍ତ୍ରୀ.ବ. (ରିପୁ+ତା) ଶତ୍ରୁତା, ବୈରିତା । [ ଦେଖ ।

ରିପୁଦମନ—ବ. ( ୬ତତ୍ପୁ ) ରିପୁଜୟ

ରିପୁପରତନ୍ତ୍ର—ପୁଂ.ବିଂ. (୬ତତ୍ପୁ)ଶତ୍ରୁର ଅଧୀନ, କାମକ୍ରୋଧାଦିର ବଶୀଭୂତ, ଅଜିତେନ୍ଦ୍ରିୟ ।

ରିପୁପୀଡ଼ା—ବ.(କ.ଧା)ଶତ୍ରୁକୃତ ଅତ୍ୟାଚାର, ଶରୀରସ୍ଥ ରିପୁଙ୍କ ପ୍ରଭାବ ।

ରିପୁବଳ—ବ. (୬ତତ୍ପୁ)ଶତ୍ରୁର ପରାକ୍ରମ ବା କ୍ଷମତା, ଶତ୍ରୁପକ୍ଷର ସେନା ।

ରିପୁବଶ—ବିଂ. (୬ତତ୍) ଶତ୍ରୁର ବଶୀଭୂତ, କାମକ୍ରୋଧାଦି ଦେହସ୍ଥ ରିପୁର ଅଧୀନ ।

ରିପୁଶକ୍ତି—ବି. (୬ତତ୍) ଶତ୍ରୁର ବଳ, ଶତ୍ରୁ ରାଜା ।

ରିପୋର୍ଟ—ଯା.ବି. କୌଣସି ଘଟଣାର ଲିଖିତ ବିବରଣୀ ବା ବୃତ୍ତାନ୍ତ ।

ରିପ୍ର—ପୁଂ.ବିଂ.(ରିପ୍+କ.ର)ଅଧମ,ନୀଚ, (ବି.ଣ.ପ୍ର)ପାପ, ପାତକ ।

ରିପ୍ରବାହ—ପୁଂ. ବିଂ. (ରିପ୍ର+ବହ+କ.ଅ) ପାପହାରକ,ପାପନାଶକାରୀ ।

ରିପ୍ଫ—କ୍ଳୀ. ବି. ଲଗ୍ନର ଦ୍ୱାଦଶରାଶି, ଲଗ୍ନଠାରୁ ଦ୍ୱାଦଶସ୍ଥାନ ।

ରିବ୍ରିବ୍—ଗ୍ରା. ଅ. ରିବ୍ରିବ୍,କ୍ଷୁଦ୍ର କ୍ଷୁଦ୍ର ଢିମିରି ଦେହରେ ବାହାରିବା ପ୍ରକାରେ ।

ରିମ୍—ଯା. ବି. ୨୦ଦିସ୍ତା ବା ୪୮୦ଫର୍ଦ୍ଦ କାଗଜ ।

ରିମ୍ରିମ୍—ଗ୍ରା. ଅ. ଟିପ୍‌ଟିପି (ବର୍ଷା) ।

ରିମା—ଗ୍ରା. ବି. ମଧ୍ୟଭାରତର ଗୋଟିଏ କରଦରାଜ୍ୟ, କ୍ରୋଧ ।

ରିମି—ଗ୍ରା. ବି. ବ୍ୟାଘ୍ରାଦି ବନ୍ୟଜନ୍ତୁ ଦ୍ୱାରା ହତ ମୃଗାଦି ପଶୁ । (ବରଷା) ।

ରିମିରିମି—ଗ୍ରା. ବିଂ ଓ କ୍ରି. ବିଂ. ଟିପିଟିପି

ରିମେଦ—ପୁଂ. ବି. ଅରିମେଦ ।

ରିମ୍ଫ—ବି. ରାଶିଚକ୍ର ।

ରିରଂସା—ସ୍ତ୍ରୀ. ବି. (ରମ୍+ସନ୍+ଭା.ଅ+ଆ) ରମଣକରିବାକୁ ଇଚ୍ଛା,କ୍ରୀଡ଼ା କରିବାକୁ ଇଚ୍ଛା ।

ରିରଂସୁ—ପୁଂ. ବି.(ରମ୍+ସନ୍+କ.ଉ) ରମଣକରିବାକୁ ଇଚ୍ଛୁକ,କ୍ରୀଡ଼ନେଚ୍ଛୁ ।

ରିରକ୍ଷା—ସ୍ତ୍ରୀ. ବି. ରକ୍ଷାକରିବାର ଇଚ୍ଛା ।

ରିରକ୍ଷିଷା—ସ୍ତ୍ରୀ. ବି. (ରକ୍ଷ+ସନ୍+ଅ+ଆ) ରକ୍ଷାକରିବାର ଇଚ୍ଛା ।

ରିରକ୍ଷିଷୁ—ପୁଂ.ବିଂ. (ରକ୍ଷ+ସନ୍+କ.ଉ) ରକ୍ଷାକରିବାକୁ ଅଭିଳାଷୀ ।

ରିରକ୍ଷୁ—କ୍ରି.ବିଂ. ରକ୍ଷାକରିବାକୁ ଇଚ୍ଛୁକ ।

ରିରମୟିଷୁ—ପୁଂ. ବିଂ.(ରମ୍+ଣିଚ୍+ସନ.ଉ) ରମଣ କରାଇବାକୁ ଇଚ୍ଛୁକ ।

ରିରିକ୍ଷୁ—ପୁଂ.ବିଂ.(ରିଶ୍+ସନ୍+ଉ)ହନନ କରିବାକୁ ଇଚ୍ଛୁକ ।

ରିରୀ—ସ୍ତ୍ରୀ. ବି. (ରି+କ.ରୀ)ପିତ୍ତଳ ।

ରିଶପ(ବ)ତ—ଯା.ବି. ଲାଞ୍ଚ, ଉତ୍କୋଚ ।

ରିଶ୍ୟ—ପୁଂ. ବି. (ରିଶ୍+ଯ) ମୃଗ ।

ରିଷ—ବି. କ୍ଷତକରଣ (?) ।

ରିଷା—ଗ୍ରା. ବି.(ଫା-ଈର୍ଷା) କ୍ରୋଧ,ରାଗ, ରୋଷ, ହିଂସା, ଦ୍ୱେଷ ।

ରିଷଭ—ଗ୍ରା. ବି. ସୌର ଜ୍ୟେଷ୍ଠମାସ ।

ରିଷାଲ୍ଦାର୍—ଯା.ବି.ଭାରତୀୟ ଘୋଡ଼ାସବାର ସୈନ୍ୟଦଳର ଅଧ୍ୟକ୍ଷ ।

ରିଷାଲି—ଯା.ବି.ଧନକୁ ସ୍ଥାନାନ୍ତରପ୍ରେରଣ

ରିଷି—ପୁଂ.ବି.(ରିଷ+କ.ଇ)ଋଷି,ମୁନି ।

ରିଷୀକ—କ୍ରି. ବିଂ. ହିଂସାକାରୀ, (ପୁଂ.ବି) ଶିବ ।

ରିଷେଇହେବା—ଗ୍ରା. କ୍ରି. ରୋଷଦୃଷ୍ଟିରେ ଦେଖିବା, ଈର୍ଷାନ୍ୱିତ ହେବା ।

ରିଷ୍ଟ—ବି. (ରିଷ୍+ତ) କ୍ଷେମ, କଲ୍ୟାଣ, ଅଭାବ, ନାଶ, ପାପ, ରିଠା ( ଫଳ ଓ ବୃକ୍ଷ). ପାରଦ, ଅଶୁଭଶକୁନ,ଗ୍ରହ ଓ ନକ୍ଷତ୍ରାଦିଙ୍କ ବିଶିଷ୍ଟ ଅବସ୍ଥାନ ଯୋଗୁଁ ବ୍ୟକ୍ତିବିଶେଷର ଜୀବନରେ ଆଶଙ୍କିତ ଅମଙ୍ଗଳ, (ବିଂ) ପାପଜନକ, ଅଶୁଭସୂଚକ, ଅମଙ୍ଗଳକର, ନଷ୍ଟ ।

ରିଷ୍ଟକ୍ଷୟ—ବି.(୬ତତ୍)ପାପକ୍ଷୟ,ଅଶୁଭର ବିନାଶ ।

ରିଷ୍ଟଖଣ୍ଡନ—ବି. (୬ତତ୍) ଧର୍ମାଧିକ୍ୟରୁ ପାପ ବା ଅଶୁଭ କଟିଯିବା, ଶାସ୍ତ୍ରୋକ୍ତ ଦାନାଦି ଦ୍ୱାରା ଜ୍ୟୋତିଷୋକ୍ତ ରିଷ୍ଟର ବାରଣ ।

ରିଷ୍ଟଗ୍ରହ—ବି. ଗ୍ରହମାନଙ୍କର ଅମଙ୍ଗଳ ଅବସ୍ଥିତି, ପାପଗ୍ରହ, ମନ୍ଦଗ୍ରହ ।

ରିଷ୍ଟଭଙ୍ଗ—ବି. ରିଷ୍ଟଖଣ୍ଡନ ଦେଖ ।

ରିଷ୍ଟଭଦ୍ର—ବି ଓ ବିଂ. (ରିଷ୍ଟ+ଭଦ୍ର)ଭଲ ଓ ମନ୍ଦ ।

ରିଷ୍ଟଯୋଗ—ବି. ଗ୍ରହମାନଙ୍କର ଅଶୁଭକର ଅବସ୍ଥିତି ।

ରିଷ୍ଟି—ସ୍ତ୍ରୀ. ବି.(ରିଷ୍+ତି) ଖଡ୍ଗ,ଅଶୁଭ, ଅମଙ୍ଗଳ, ଅସୌଭାଗ୍ୟ, ରିଷ୍ଟ, ଗ୍ରହଦୋଷ, ଶୁଭ ।

ରିଷ୍ଫ—କ୍ଳୀ. ବି. (ରିଷ+ଫ) ଲଗ୍ନଠାରୁ ଦ୍ୱାଦଶ ସ୍ଥାନ । [ ହରିଣ ।

ରିଷ୍ୟ—ପୁଂ.ବି. (ରିଷ୍+ଯ)ମୃଗବିଶେଷ,

ରିଷ୍ୟମୂକ—ପୁଂ. ବି. ଋଷ୍ୟମୂକ ପର୍ବତ ।

ରିସବଗୁ(ଗୋ)ଲ—ଯା.ଡ.ଇସବଗୁଲ ।

ରିସିମ୍—ଗ୍ରା. ବି. ତେଜପଣ ।

ରିସିମ୍ଦାର୍—ଗ୍ରା. ବିଂ. ତେଜସ୍ୱୀ ।

ରିହ—ଗ୍ରା. ବି. (ଫା-ଈର୍ଷ୍ୟା) ଅଦୌତ (?), ହିଂସା,ରୋଷ, କ୍ରୋଧ । [ପ୍ରକାର ।

ରିହତ୍—ଅ. ଲେହନ କରିବା, ଗୁଣ୍ଡିବା

ରିହାଇ(ତ,ତି)—ଯା. ବି. ମୁକ୍ତି,ଦୋଷର ମାଫ୍ ।

ରିହାଣ—ବି. ସେବାକରଣ, ପଦସେବା, ଆନୁଗତ୍ୟ ସ୍ୱୀକାର ।

ରିହାସ୍ତସ—ପୁଂ. ବି.ଦସ୍ୟୁ, ଚୋର ।

ରୀ—ସ୍ତ୍ରୀ. ବି. (ରୀ+କ୍ୱିପ୍) ଗତି, ରବ, ରୋଦନ, ବଧ ।

ରୀଜ୍ୟା—ସ୍ତ୍ରୀ. ବି. (ହ୍ରୀ+ଅ+ଆ) ଲଜ୍ଜା, ଘୃଣା, ତର୍ଜନ, ଭର୍ତ୍ସନା, କୁତ୍ସା, ନିନ୍ଦା ।

ରୀଠା—ସ୍ତ୍ରୀ. ବି. ( ରୀ+କ.ଠ+ଆ ) ରିଠାକରଞ୍ଜ, ରିଠା ଦେଖ ।

ରୀଠାକରଞ୍ଜ—ପୁଂ. ବି. ରିଠା ଦେଖ ।

ରୀଢ଼—ଗ୍ରା. ବି. ଅନାଦର, ଘୃଣା ।

ରୀଢ଼କ—ପୁଂ. ବି. (ରିହ୍+କ.ତ+କ) ପୃଷ୍ଠବଂଶ, ମେରୁଦଣ୍ଡ, ବେଁଣିରା ହାଡ଼ ।

ରୀଢ଼ା—ସ୍ତ୍ରୀ. ବି. ( ରିହ+ଭା.ତ+ଆ ) ଅବଜ୍ଞା, ଘୃଣା ।

ରୀଣ—କ୍ରି.ବିଂ.(ରୀ+ତ)ସ୍ରୁତ(ଜଳାଦି), ଦ୍ରବଗତ;ଝରୁଥିବା, କ୍ଷରିତ,(ସ୍ତ୍ରୀ) ରୀଣା ।

ରୀତି—ସ୍ତ୍ରୀ. ବି. (ରୀ+କ.ତି) ପିତ୍ତଳ, (ଭା.ତି) କ୍ରମ, ପ୍ରଥା,ଗୁଣ, ଧର୍ମ,ପଦ୍ଧତି, ଧାରା, ଗତି, ସ୍ୱଭାବ, ଗତିକ, ଧରଣ, ଆଚରଣ,କ୍ଷରଣ, ସ୍ୱଭାବ, ଲୌହକିଟ୍ଟ, ଲୁହାମଳ, ସୀମା,କାବ୍ୟର ପଦସଂଘଟନ ପ୍ରଣାଳୀ, ଦଗ୍ଧସ୍ୱର୍ଣ୍ଣାଦିର ମଳ ।

ରୀତିକ—କ୍ଳୀ.ବି. (ରୀତି+କ) ପୁଷ୍ପାଞ୍ଜନ, ପିତ୍ତଳ ଧାତୁ ।

ରୀତିକା—ସ୍ତ୍ରୀ. ବି. (ରୀତିକ+ଆ)କୁସୁମାଞ୍ଜନ, ପିତ୍ତଳ, ଦସ୍ତାର ଭସ୍ମ ।

**ରୀତିଗତ**—ବିଂ. ପ୍ରଥାଅନୁସାରେ ଯାହା ଚଳି ଆସୁଅଛି, ପ୍ରକୃତିଗତ, ଅଭ୍ୟାସଗତ ।

**ରୀତିଗ୍ରାହୀ**—ପୁଂ. ବିଂ. ପ୍ରଥା ବା ନିୟମକୁ ସ୍ୱୀକାର କରି ତଦନୁସାରେ କାର୍ଯ୍ୟ କରୁଥିବା, (ସ୍ତ୍ରୀ) ରୀତିଗ୍ରାହିଣୀ ।

**ରୀତିଚରିତ୍ର**—କ୍ଲୀ. ବି. (ଦ୍ୱନ୍ଦ୍ୱ) ସ୍ୱଭାବ ଓ ଆଚରଣ ।

**ରୀତିଜ୍ଞ**—ପୁଂ. ବିଂ. ଯେ ନିୟମ ବା ପ୍ରଥା ଜାଣେ, (ସ୍ତ୍ରୀ) ରୀତିଜ୍ଞା ।

**ରୀତିଧରିବା**—ଗ୍ରା. କ୍ରି. କୌଣସି ଆଚାର ବା ବ୍ୟବହାରକୁ କାର୍ଯ୍ୟରେ ପରିଣତ କରିବା ।

**ରୀତିନୀତି**—ଗ୍ରା.ବି. ମନୁଷ୍ୟର ଚାଲିଚଳନ, ଦେଶପ୍ରଚଳିତ ଆଚାର ବ୍ୟବହାର, ଧାରା, ପଦ୍ଧତି, ସ୍ୱଭାବ ଓ ବିବେଚନା, ଆହାର ବ୍ୟବହାର ।

**ରୀତିପୁଷ୍ପ**—କ୍ଲୀ. ବି. କୁସୁମାଞ୍ଜନ ।

**ରୀତିବହିର୍ଭୂତ**—ବିଂ. ପ୍ରଥାବିରୁଦ୍ଧ, ଭାଷାଗତ ରୀତିର ବିରୁଦ୍ଧ, ପ୍ରାକୃତି ରୀତିର ବହିର୍ଭୂତ ।

**ରୀତିବିଗର୍ହିତ**-ବିଂ.ରୀତିବହିର୍ଭୂତ ଦେଖ ।

**ରୀତିବିରୁଦ୍ଧ**—ବିଂ. (୬ତତ୍) ନିୟମ ବହିର୍ଭୂତ, ସ୍ୱଭାବ ବିରୋଧୀ ।

**ରୀତିମତ୍(ତେ)**--କ୍ରି.ବିଂ.ନିୟମାନୁସାରେ, ଦସ୍ତୁର୍‌ମାଫିକେ ।

**ରୀତିସଙ୍ଗତ**—ବିଂ. ଆଚାରସଙ୍ଗତ,ରୀତିଅନୁସାରେ କରାଯାଇଥିବା, ଯାହା ଭାଷାର ପ୍ରାକୃତିରୀତି ଅନୁସାରେ କଥିତ ବା ଲିଖିତ ।

**ରୀତିସମ୍ମତ**—ବିଂ. ରୀତିସଙ୍ଗତ ଦେଖ ।

**ରୀତିସିଦ୍ଧ**—ବିଂ. ରୀତିସଙ୍ଗତ, ରୀତି ବା ବହୁକାଳ ବ୍ୟବହାର ଦ୍ୱାରା ଯାହା ଚଳିଲାଣି ବା ପ୍ରତିଷ୍ଠିତ ହେଲାଣି ।

**ରୀତ୍ୟନୁମୋଦିତ**-ବିଂ.ରୀତିସଙ୍ଗତ ଦେଖ ।

**ରୀର**—ପୁଂ. ବି. ଶିବ ।

**ରୀରୀ**—ସ୍ତ୍ରୀ. ବି. ପିତ୍ତଳ ।

**ରୀବ୍**—ବି. ଗ୍ରହଣ, ଆଚ୍ଛାଦନ ।

**ରୀସ**-ପ୍ରା.(ଭବିଷ୍ୟତ୍‌ଭାଷା)ବି. ରାଗ,କ୍ରୋଧ ।

ରୁ—ପୁଂ.ବି. ଶବ୍ଦ, (ଏକାକ୍ଷର କୋଷ) (ଗ୍ରା.ଅବ୍ୟ) ୫ମୀ ବିଭକ୍ତିର ପ୍ରତ୍ୟୟ, ବ୍ୟତିରେକେ, ଆରମ୍ଭକରି, ନିକଟରୁ, ଅପେକ୍ଷା, ଅନୁସାରେ,ଯୋଗୁଁ,ହେତୁରୁ ଅଭ୍ୟନ୍ତରରୁ, ଦ୍ୱାରା ।

ରୁଂଶିତ—ବିଂ. (ରୁନ୍ଶ୍+ର୍ମ.ତ)ରଞ୍ଜିତ, ଚର୍ଚ୍ଚିତ, ବୋଲାହୋଇଥିବା ।

ରୁଅ—ଗ୍ରା.ବି. ଚାଳଘରର ମଥାନଠାରୁ ଚାଳର ତଳପର୍ଯ୍ୟନ୍ତ ଶେଣିମାନଙ୍କ ଉପରେ ଆଡ଼ବାଗରେ ଲମ୍ବିତ କାଠ ବା ବାଉଁଶ, ଚଣ୍ଡୀ, ରୁଦ୍ରାଭିଷେକଆଦି ସ୍ତୋତ୍ରର ଥରେ ଆବୃତ୍ତି ।

ରୁଆ—ଗ୍ରା.ବି.ଧାନ୍ୟାଦିର ତଳି ରୋଇବା କର୍ମ, ପରାଗ, ରେଣୁ, ଆରୋଗ୍ୟୋନ୍ମୁଖ, ଘାଆରେ କଅଁଳୁଥିବା ନୂତନ ମାଂସର ଗୋଟିକା,ଅଲଙ୍କାରରେ ଖଚିତ ହେବା ସ୍ୱର୍ଣ୍ଣାଦିର ଗୋଲାକାର କ୍ଷୁଦ୍ର କ୍ଷୁଦ୍ର ବୁନ୍ଦାମାନ, ପ୍ରାଚୀନ କଳିଙ୍ଗରେ ପ୍ରଚଳିତ ଏକ ରୌପ୍ୟ ମୁଦ୍ରା, (ବିଂ) ରୋପିତ ହୋଇଥିବା (ଧାନଗଛଆଦି), (ପ୍ରା.ସମ୍ଭ.ସିନ୍ଧୁ) ତୁଳା ।

ରୁଆବିହୁଡ଼ା—ଗ୍ରା.ବି. ଧାନ ଫସଲର କମଣର ଦୁଇଟି ପ୍ରକ୍ରିୟା, ରୋଇବା ଓ ବିହୁଡ଼ିବା । [ କୃଷିକର୍ମ ।

ରୁଆରୁଆ—ଗ୍ରା.କ୍ରି.ବିଂ.କ୍ଷୁଦ୍ର କ୍ଷୁଦ୍ର ରୁଆମାନ ଉଠିବା ପ୍ରକାରେ, (ଗ୍ରା.ବିଂ)କ୍ଷୁଦ୍ର କ୍ଷୁଦ୍ର ଅଂଶଯୁକ୍ତ ।

ରୁଆରୋଇ—ଗ୍ରା.ବି.ଧାନ ରୋଇବାଆଦି

ରୁଆଳି(ଳୀ)—ଗ୍ରା. ବିଂ. ରୁଆଯୁକ୍ତ,କ୍ଷୁଦ୍ର ଓ ଗୋଲାକାର ଅଂଶୁମୟ,(ବି)ଯେଉଁମାନେ ଧାନ ରୁଅନ୍ତି ।

ରୁଇ—ଗ୍ରା. ବି. ରୋଇ ଦେଖ, (ପ୍ରାଦେ. ଲାରଆ. ବି) ତୁଳା, ତୁଇ ।

ରୁଇ(ଏ)ଦାଡ଼(ଦ)—ଯା. ବି. କୌଣସି ମକଦ୍ଦମା ବା ବିଷୟ ସମ୍ବନ୍ଧରେ ବିବରଣଯୁକ୍ତ ଅଦାଲତଙ୍କ ଲିପି, ଯୁକ୍ତିସମ୍ବଳିତ ମକଦ୍ଦମାର ରାୟ ।

ରୁଇବା—ଗ୍ରା. କ୍ରି. ରୋଇବା ଦେଖ ।

ରୁଏ—ଗ୍ରା. ବି. ଏକରୁଅ ବା ଥର ।

ରୁକ୍—ସ୍ତ୍ରୀ.ବି. (ରୁଚ୍+ଭା.କ୍ୱିପ୍)ଶୋଭା, ଦୀପ୍ତି, ଇଚ୍ଛା, (ରୁଜ୍+ଭା.କ୍ୱିପ୍)ପୀଡ଼ା, ରୋଗ, ରୁଜା ଦେଖ, (ରୁଚ+କ. କ୍ୱିପ୍) ବିଦ୍ୟୁତ୍,ଭଙ୍ଗ,(ଗ୍ରା.ବି)ରୁଗ୍ବେଦ ।

ରୁକ୍‌କର—ବିଂ. (ରୁଜ୍+କୃ+କ.ଅ) ପୀଡ଼ାଦାୟକ, ବି-(ଭା.ଅ) ରୋଗ ।

ରୁକ୍‌ପ୍ରତିକ୍ରିୟା—ବି. (୬ତତ୍) ରୋଗର ଚିକିତ୍ସା ବା ପ୍ରତିକାର ।

ରୁକ୍‌ସଦ୍ମା—ବି. (୬ତତ୍) ବିଷ୍ଠା ।

ରୁକ--ପୁଂ. ବିଂ. ବହୁପ୍ରଦ, ଅତିଶୟ ଦାତା, ଦାନଶୀଳ, (ସ୍ତ୍ରୀ) ରୁକା ।

ରୁକରି—ଗ୍ରା.ଅ. ଯୋଗୁଁ,ହେତୁ,ଉତ୍ତାରୁ, ପରେ ।

ରୁକା—ଗ୍ରା. ବି. ରୋକା ଦେଖ ।

ରୁକିବା—ଗ୍ରା. କ୍ରି. ରୋକିବା ଦେଖ ।

ରୁକୁ—ଯା. ବି. କୋରାନର କୌଣସି ମନ୍ତ୍ରର ବା ସୁରାର ଗୋଟିଏ ଅଂଶ ।

ରୁକୁଣା(ଣୀ)ରଥ—ଗ୍ରା.ବି. ଅଶୋକାଷ୍ଟମୀ ସମୟରେ ଲିଙ୍ଗରାଜ ମହାପ୍ରଭୁଙ୍କ ଚଳନ୍ତି ପ୍ରତିମାଙ୍କୁ ଯେଉଁ ରଥରେ ବସାଇ ରାମେଶ୍ୱର ମନ୍ଦିରକୁ ନିଆଯାଏ ।

ରୁକୁଣୀହାତଚୋପା—ଗ୍ରା.ବି. ତୁଳସ୍ୟାଦି ବର୍ଗର ଶାକବିଶେଷ ।

ରୁକ୍ମ—କ୍ଲୀ. ବି. (ରୁଚ୍+କ.ମ) ସ୍ୱର୍ଣ୍ଣ, ଧୁସ୍ତୁର, ଲୌହ, ନାଗକେଶର,ବର୍ଣ୍ଣ, (ପୁଂ) ରୁକ୍ମିଣୀଙ୍କର ଏକ ଭାଇ ।

ରୁକ୍ମ(କବଚ)—ପୁଂ. ବି. ଯଦୁବଂଶୀୟ ରାଜାବିଶେଷ ।

ରୁକ୍ମକାର(କ)—ପୁଂ. ବି. (ରୁକ୍ମ+କୃ +ଅ) ସ୍ୱର୍ଣ୍ଣକାର । [ ପୁରବିଶେଷ ।

ରୁକ୍ମକେଶ—ପୁଂ. ବି. ଭୀଷ୍ମକ ରାଜାଙ୍କ

ରୁକ୍ମପାଶ—ପୁଂ. ବି. ଯେଉଁ ସୂତାରେ ସୁନା ଅଲଂକାର ଗୁନ୍ଥାଯାଇ ପିନ୍ଧାଯାଏ ।

ରୁକ୍ମପୁର—କ୍ଲୀ. ବି.ଗରୁଡ଼ ବାସ କରୁଥିବା ପୌରାଣିକ ନଗର ।

ରୁକ୍ମପ୍ରସ୍ତରଣ—ବି. ସୁନାଜରିର କାରୁକାର୍ଯ୍ୟବିଶିଷ୍ଟ ବସ୍ତ୍ର, ବନାରସୀ ବସ୍ତ୍ର ।

ରୁକ୍ମମୟ—କ୍ରି. ବିଂ. ସ୍ୱର୍ଣ୍ଣନିର୍ମିତ, ସ୍ୱର୍ଣ୍ଣମଣ୍ଡିତ ।

ରୁକ୍ମମାଳୀ—ପୁଂ.ବି.ଭୀଷ୍ମକ ପୁତ୍ରବିଶେଷ ।

ରୁକ୍ମରଥ—ବି. ସ୍ୱର୍ଣ୍ଣନିର୍ମିତ ରଥ,ଦ୍ରୋଣ-ରଥ,ଦ୍ରୋଣ,ଶଲ୍ୟଙ୍କପୁତ୍ର,ଭୀଷ୍ମକଙ୍କପୁତ୍ର ।

ରୁକ୍ମବତ୍—ବି. ବିଂ. ସ୍ୱର୍ଣ୍ଣାଭରଣ ଯୁକ୍ତ, ସ୍ୱର୍ଣ୍ଣଯୁକ୍ତ ।

ରୁକ୍ମବାହନ—ବି. ସ୍ୱର୍ଣ୍ଣରଥଯୁକ୍ତ,(ପୁଂ.ବି) ଦ୍ରୋଣାଚାର୍ଯ୍ୟ ।

ରୁକ୍ମସ୍ରେୟ—ବି. ସ୍ୱର୍ଣ୍ଣରେର ।

ରୁକ୍ମାଙ୍ଗଦ—ପୁଂ. ବି (ବି.ସ୍ତ୍ରୀ) କଳିଙ୍ଗ-ଦେଶ ନୃପତିବିଶେଷ,(ପୁଂ.ବିଂ)ସୁନାର ବାଜୁ ପିନ୍ଧିଥିବା (ବ୍ୟକ୍ତି), (ସ୍ତ୍ରୀ)ରୁକ୍ମା-ଙ୍ଗଦା ।

ରୁକ୍ମାବତୀ—ସ୍ତ୍ରୀ. ବି. ବିଦର୍ଭ ରାଜତନୟ ରୁକ୍ମୀଙ୍କର କନ୍ୟା ।

ରୁକ୍ମାଭ—ପୁଂ. ବିଂ. (ବି.ସ୍ତ୍ରୀ) ସ୍ୱର୍ଣ୍ଣାଭ, ସୁନାପରି ଉଜ୍ଜ୍ୱଳ ।

ରୁକ୍ମିଣୀ—ସ୍ତ୍ରୀ.ବି. (ରୁକ୍ମ+ଇନ୍+ଈ) ଶ୍ରୀକୃଷ୍ଣଙ୍କ ପତ୍ନୀବିଶେଷ, ସ୍ୱର୍ଣ୍ଣକ୍ଷୀରୀବୃକ୍ଷ, (ବିଂ) ସ୍ୱର୍ଣ୍ଣଯୁକ୍ତା ।

ରୁକ୍ମିଣୀକାନ୍ତ—ପୁଂ.ବି.(୬ତତ୍) ଶ୍ରୀକୃଷ୍ଣ ।

ରୁକ୍ମିଣୀଦ୍ୱାଦଶୀ—ବି. ବୈଶାଖ ଶୁକ୍ଳ ଦ୍ୱାଦଶୀ, ରୁକ୍ମିଣୀବ୍ରତ ।

ରୁକ୍ମିଣୀନାଥ—ବି.(୬ତତ୍)ଶ୍ରୀକୃଷ୍ଣ ।

ରୁକ୍ମିଦର୍ପ—ପୁଂ. ବି. (ବି.ସ୍ତ୍ରୀ) ଶ୍ରୀକୃଷ୍ଣଙ୍କ ଅଗ୍ରଜ ବଳରାମ ।

ରୁକ୍ମିଦର୍ପହା—ପୁଂ. ବି. ବଳରାମ ।

ରୁକ୍ମିଦାରଣ—ପୁଂ.ବି.(ବି.ସ୍ତ୍ରୀ) ବଳରାମ ।

ରୁକ୍ମିଦାରୀ—ପୁଂ. ବି. (ରୁକ୍ମି+ଦାରିନ୍) ବଳରାମ ।

ରୁକ୍ମିଭିଦ୍—ପୁଂ. ବିଂ (ରୁକ୍ମି+ଭିଦ୍+କ୍ୱିପ୍) ବଳରାମ ।

ରୁକ୍ମୀ—ପୁଂ. ବି. (ରୁକ୍ମ+ଇନ୍) ନୃପତି ବିଶେଷ,ଭୀଷ୍ମକ ରାଜାଙ୍କର ଜ୍ୟେଷ୍ଠପୁତ୍ର, (ବିଂ) ସ୍ୱର୍ଣ୍ଣସ୍ୱାମୀ, ସ୍ୱର୍ଣ୍ଣଯୁକ୍ତ ।

ରୂକ୍ଷ—ବିଂ. (ରୁହ+ସ) ଅପ୍ରେମ,ଅଚିକ୍କଣ, ନୀରସ, କର୍କଶ, କଠୋର, ଶୁଷ୍କ, ତୀବ୍ର, ଉଗ୍ର, ଲୁଖୁରା, ଶତ୍ରୁତାପନ୍ନ,ଅନନୁକୂଳ, ନିର୍ଦ୍ଦୟ, ଝାଉଁଶା,ବେଗବାନ୍, ଉଜ୍ଜ୍ୱଳ, (ସ୍ତ୍ରୀ) ରୂକ୍ଷା, (ପୁଂ.ବି) ବୃକ୍ଷ ।

ରୂକ୍ଷକେଶ—ବି. (କ.ଧା) ଲୁଖୁରା ବାଳ, (ପୁଂ.ବିଂ-ବି.ସ୍ତ୍ରୀ) ଯାହାର କେଶରେ ମାଳିପା ଲଗି ନ ଥାଏ,ଝାଉଁଶାବାଳିଆ, (ସ୍ତ୍ରୀ) ରୂକ୍ଷକେଶୀ ।

ରୂକ୍ଷତା(ତ୍ୱ)—ବି.(ରୂକ୍ଷ+ତା)କର୍କଶତା, କଠୋରତା ।

ରୂକ୍ଷପତ୍ର—ବି. (ବି.ସ୍ତ୍ରୀ)ଶାହାଡ଼ାଗଛ ।

ରୂକ୍ଷପ୍ରକୃତି--ବି(କ.ଧା)କଠୋର ପ୍ରକୃତି, (ପୁଂ.ସ୍ତ୍ରୀ.ବିଂ.ବି.ସ୍ତ୍ରୀ)ରୂକ୍ଷ ପ୍ରକୃତିବିଶିଷ୍ଟ ।

ରୂକ୍ଷପ୍ରକୃତିକ—ପୁଂ.ବିଂ. (ବି.ସ୍ତ୍ରୀ) କର୍କଶ ସ୍ୱଭାବଯୁକ୍ତ, (ସ୍ତ୍ରୀ) ରୂକ୍ଷପ୍ରକୃତିକା ।

ରୂକ୍ଷଭାଷୀ—ପୁଂ. ବିଂ. (ରୂକ୍ଷ+ଭାଷ୍+କ.ଇନ୍)ଯେ କଠୋର ବାକ୍ୟ କହେ, (ସ୍ତ୍ରୀ) ରୂକ୍ଷଭାଷିଣୀ ।

ରୂକ୍ଷସ୍ୱାଦୁଫଳ—ବି. ଧନ୍ୱଙ୍ଗବୃକ୍ଷ, ଧାମଣ [ଗଛ ।

ରୂକ୍ଷୀ—ବି. ଦନ୍ତୀବୃକ୍ଷ ।

ରୂଖ—ବିଂ. (ରୁକ୍+କ.ଅ)ଶୂନ୍ୟ, ଖାଲି, ଚୁଚ୍ଚା, କ୍ଷୀଣ, ରୋଗା, ଦୁର୍ବଳ, (ଗ୍ରା. ବି) ଛେଣିଆଦିରେ ହଣା ହୋଇଥିବା ତାଆଆଦିର କ୍ଷୁଦ୍ର କ୍ଷୁଦ୍ର ଦାନ୍ତପରି ଦାନ୍ତ, ଉହାଆଦିରେ କଟା ହୋଇଥିବା ଲୁହାଆଦି ଧାତୁର ଗୁଣ୍ଡ ।

ରୂଖା—ଗ୍ରା. ବି. ଦୀପାଧାର, ପିଲସଜ, (ବିଂ) ରୂକ୍ଷ, କର୍କଶ ।

ରୂଖିଆ—ଗ୍ରା.ବି. ଏକପ୍ରକାର କ୍ଷୁଦ୍ର କୀଟ, ଯେ ରାତିରେ ଜଙ୍ଗଲ ସୀମାକୁ ଜଗି ଶିକାରୀମାନଙ୍କୁ ବାଘଆଦି ଜନ୍ତୁର ଖବର ଦିଅନ୍ତି, ଚୋରମାନଙ୍କ ମଧ୍ୟରେ ଚୋରି-ବେଳେ ସାବଧାନକାରୀ ଚୋର ।

ରୁଗ୍—ପ୍ରା. (ସମ୍ବ)ବି. ରୋଗ ।

ରୁଗ୍‌ରୁଗ୍—ଗ୍ରା.ଅ.ସାମାନ୍ୟ ଜଳାପୋଡ଼ା, ଲଙ୍କାମରିଚଆଦି କଟୁଦ୍ରବ୍ୟର ଆସ୍ୱାଦନରେ ଅନୁଭୂତ ଭାବ ।

ରୁଗ୍‌ଦାହ—ପୁଂ. ବି. ( ରୁଜା+ଦାହ ) ରୋଗଦାହ ।

ରୁଗ୍‌ଭେଷଜ-ବି(୬ତତ୍)ରୋଗର ଔଷଧ ।

ରୁଗ୍‌ନିର୍ଣ୍ଣୟ—ବି. ମାଧବକର ନିଦାନ ଗ୍ରନ୍ଥ, ରୁଗ୍‌ବିନିଶ୍ଚୟ ଦେଖ ।

ରୁଗ୍‌ବିନିଶ୍ଚୟ—ବି. (୬ତତ୍) ରୋଗର ନିଦାନ, ରୋଗକୁ ପରୀକ୍ଷା ଦ୍ୱାରା ଚିହ୍ନିବା ।

ରୁଗ—ଗ୍ରା. ବି. ରୋଗ ।

ରୁଗନ୍ୱିତ—ବି. ବିଂ. (ରୁଜା+ଅନ୍ୱିତ) ପୀଡ଼ାଯୁକ୍ତ, ରୋଗଗ୍ରସ୍ତ ।

ରୁଗା—ଗ୍ରା. ବିଂ. ରୁଗ୍ଣ, ପୀଡ଼ିତ ।

ରୁଗୁଡ଼—ଗ୍ରା.ବି.କଙ୍କରମୟ ସ୍ଥାନ, ଗ୍ରେଟ୍‌ ପାହାଡ଼ ।

ରୁଗୁଡ଼ିଆ—ଗ୍ରା.ବିଂ.କଙ୍କରମୟ (ସ୍ଥାନ), ପାହାଡ଼ିଆ ।

ରୁଗୁରୁଗୁ— ଗ୍ରା. ଅ. ରୁଗ୍‌ରୁଗ୍ ଦେଖ ।

ରୁଗ୍ଣ—ପୁଂ ବିଂ.(ରୁଜ୍+କ.ତ)ପୀଡ଼ିତ, ଭଗ୍ନସ୍ୱାସ୍ଥ୍ୟ, ଚିରରୋଗୀ, ବାଧାପ୍ରାପ୍ତ, ଭଗ୍ନ, ବକ୍ର, ଆହତ, (ସ୍ତ୍ରୀ) ରୁଗ୍ଣା ।

ରୁଗ୍ଣରଯ୍ୟ—ପୁଂ.ବିଂ(ବି.ସ୍ତ୍ରୀ)ଆକ୍ରମଣରେ ବାଧାପ୍ରାପ୍ତ, (ସ୍ତ୍ରୀ) ରୁଗ୍ଣରଯ୍ୟା ।

ରୁଗ୍ଣଲିପି—ବି.ଚିକିତ୍ସା ବିଜ୍ଞାନର ରୋଗୀ-ଚର୍ଯ୍ୟା ଶାଖା ।

ରୁଗ୍ଣସେବା—ବି. ରୁଗ୍ଣଲିପି ଦେଖ ।

ରୁଗ୍‌ବେଦ—ଗ୍ରା. ବି. ଋକ୍ ନାମକ ପ୍ରଥମ ବେଦ ।

ରୁଘା—ପ୍ରା. (ସମ୍ବ)ବିଂ. ରୋଗା, ରୁଗ୍ଣ ।

ରୁଚ୍—ବି.(ରୁଚ୍+ଭା.କ୍ୱିପ୍) ଦୀପ୍ତି,ଅଭି-ପ୍ରୀତି, ଅଭିଲାଷ, ପ୍ରୀତି,ପ୍ରକାଶ,ଶୋଭା, କାନ୍ତି, ସୌନ୍ଦର୍ଯ୍ୟ, ରୁଚି, (କ.କ୍ୱିପ୍) ବିଦ୍ୟୁତ୍, ଶୁଆଶାରୀଙ୍କ ଧ୍ୱନି, ବର୍ଣ୍ଣ, ଚେହେରା ।

ରୁଚ୍‌ରୁଚ୍—ଗ୍ରା. ଅ. ରଡ଼ରଡ଼ ଅପେକ୍ଷା କ୍ଷୁଦ୍ରତର ଅନୁଭୂତି ।

ରୁଚ—ବି.ବିଂ.(ରୁଚ୍+କ.ଅ) ଉଜ୍ଜ୍ୱଳ, ଦୀପ୍ତିମନ୍ତ, (ଗ୍ରା.ବି) ଟାଭାଫଳ ।

ରୁଚକ—ବି. ( ରୁଚ+କ.ଅକ) ଅଙ୍ଗା-ଭରଣ, କଣ୍ଠାଭରଣବିଶେଷ, ଦନ୍ତ, ମାଲ୍ୟ, ପାରା, କପୋତ, ଲବଣ, ଗନ୍ଧ-ଦ୍ରବ୍ୟ, ସ୍ୱର୍ଣ୍ଣ ପାତ୍ରବିଶେଷ, ଔଷଧ-ବିଶେଷ, ମାଙ୍ଗଲ୍ୟଦ୍ରବ୍ୟ, ଘରର ଚୂର-କୋଣିଆ ଖୁଣ୍ଟ, ସର୍ଜିକାକ୍ଷାର, ସଚଳ ଲବଣ, ଗୋରୋଚନା, ବାଇବିଡ଼ଙ୍ଗ, ବୀଜପୂରକ, ଟଭା, ପ୍ରାଚୀନ କାଳର ନିଷ୍କ ନାମକ ସ୍ୱର୍ଣ୍ଣ ମୁଦ୍ରା, ସୁମେରୁ ନିକ-

ଟସ୍ଥ ପୌରାଣିକ ପର୍ବତ, ଦକ୍ଷିଣ ଦଗ, ମୃଦ୍ଧିକା, ମଧୁର ରସ, ବୃକ୍ଷବିଶେଷ, ( ବାସ୍ତୁବିଦ୍ୟା ) ଯେଉଁ ଘରର ଉତ୍ତର ପାଖ ଛଡ଼ା ଅନ୍ୟ ତିନିପାଖ ପିଣ୍ଡା ହୋଇଥାଏ,(ବି°)ମୁଖ ରୋଚକ,ମଧୁର, ସୁସ୍ୱାଦୁ, ସନ୍ତୋଷ ବିଧାୟକ, କଡ଼ୁଆ, ଅତି ବଡ଼, ଉଦରର ହିତକର ।

ରୁଚ୍ୟ—ସ୍ତ୍ରୀ.ବି. (ରୁଚ+କ୍ୱିପ୍+ଆ)ଦୀପ୍ତି, ଆଭା, ଇଚ୍ଛା, କାନ୍ତି, ସୌନ୍ଦର୍ଯ୍ୟ,ଶୁଆର କଣ୍ଠସ୍ୱର, ଟଭାଫଳ ।

ରୁଚି—ସ୍ତ୍ରୀ. ବି.(ରୁଚ୍+ଇ) ଅଭିସଙ୍ଗ, ଅନୁରାଗ, ଆସକ୍ତି, ଗୋରୋଚନା,ଅଭି-ଳାଷ, କିରଣ,ଶୋଭା, ବୁଭୁକ୍ଷା, ଦ୍ୟୁତି, କ୍ଷୁଧା, ଲାବଣ୍ୟ, ଲାବଣ୍ୟ, ଭୋଜନ - ସ୍ପୃହା, ସାହିତ୍ୟ ପ୍ରତି ଅନୁରାଗ, ସ୍ୱାଦ, ନାୟକ ନାୟିକାଙ୍କର ଆଲିଙ୍ଗନବିଶେଷ, ଅପ୍ସରାବିଶେଷ, ପ୍ରଜାପତିବିଶେଷ, ବଶିଷ୍ଠଙ୍କ ଏକ ପୁତ୍ର, ମନୁବିଶେଷ, ଗଭସ୍ତି, (ବି°) ସୁନ୍ଦର, ରୁଚିକର ।

ରୁଚିକ—ବି. ଅଳଙ୍କାରବିଶେଷ ।

ରୁଚିକର—ବି. ବି°. (ରୁଚି+କୃ+ଅ) ପ୍ରୀତିକର,ଅନୁରାଗଜନକ, ସ୍ପୃହାବର୍ଦ୍ଧକ, କ୍ଷୁଧାବର୍ଦ୍ଧକ, (ସ୍ତ୍ରୀ) ରୁଚିକରୀ ।

ରୁଚିକାରକ—ବି°. (ରୁଚି+କୃ+ଅକ) ରୁଚିକର ଦେଖ ।

ରୁଚିକାରୀ—ବି°. ରୁଚିକର ଦେଖ, (ସ୍ତ୍ରୀ) ରୁଚିକାରିଣୀ ।

ରୁଚିକୃତ୍—ବି°. ରୁଚିକାରକ ଦେଖ ।

ରୁଚିଜନକ-ବି°.କ୍ଷୁଧାବର୍ଦ୍ଧକ,ରୁଚିପ୍ରଦ ।

ରୁଚିତ—ବି°. ( ରୁଚ୍+କ.ତ ) ମିଷ୍ଟ, ସୁସ୍ୱାଦୁ, ଉଜ୍ଜ୍ୱଳ, ପରିପକ୍ୱ, (ମି.ତ) ସନ୍ତୁଷ୍ଟ, ଅଭିଳଷିତ, (ବି.ଭା.ତ) ଇଚ୍ଛା, (ଜ.ତ) ମିଷ୍ଟଦ୍ରବ୍ୟ ।

ରୁଚିତା—ସ୍ତ୍ରୀ. ବି. ( ରୁଚ୍+ତ+ଆ ) ରୁଚିତ୍ୱ,ରୋଚକତା,ଅନୁରାଗ,ସୌନ୍ଦର୍ଯ୍ୟ

ରୁଚିଧାମା—କ୍ଲୀ. ବି. (୬ତତ୍ପୁ, ରୁଚି+ଧାମନ୍) ସୂର୍ଯ୍ୟ ।

ରୁଚିପତ୍ର—ଗ୍ରା. ବି. କେତକୀଫୁଲ ।

ରୁଚିପ୍ରଦ—ବି°. କ୍ଷୁଧାବର୍ଦ୍ଧକ ।

ରୁଚିପ୍ରିୟ—ବି°. ପ୍ରୀତିକର, ସୁରୋଚକ, (ସ୍ତ୍ରୀ) ରୁଚିପ୍ରିୟା ।

ରୁଚିଫଳ—କ୍ଲୀ. ବି. (ରୁଚି+ଫଳ) ଅମୃତାହ୍ୱ, ନାସପାତିଫଳ ।

ରୁଚିଭର୍ତ୍ତା—ପୁଂ. ବି. (୬ତତ୍ପୁ) ସୂର୍ଯ୍ୟ, (ବି°) ଆନନ୍ଦବର୍ଦ୍ଧନକର୍ତ୍ତା, ସ୍ୱାମୀ ।

ରୁଚିଭେଦ—ବି.(୬ତତ୍ପୁ) ରୁଚିର ବିଭିନ୍ନତା,ଇଚ୍ଛାର ପ୍ରଭେଦ,ମତର ପାର୍ଥକ୍ୟ

ରୁଚିମତୀ—ସ୍ତ୍ରୀ. ବି. ଉଗ୍ରସେନଙ୍କ ରାଣୀ, ଦେବକୀଙ୍କ ମାତା, ଶ୍ରୀକୃଷ୍ଣଙ୍କର ଆଈ ।

ରୁଚିମାନ୍ଦ୍ୟ—ବି. (୬ତତ୍ପୁ) କ୍ଷୁଧାମାନ୍ଦ୍ୟ ।

ରୁଚିର—ବି°(ରୁଚ୍+କ.ଇର)ମନୋହର, ସୁନ୍ଦର, ଉଜ୍ଜ୍ୱଳ, ମିଷ୍ଟ, ରୁଚିକର,କ୍ଷୁଧା-ବର୍ଦ୍ଧକ,(ବି°)ଲବଙ୍ଗ ପୁଷ୍ପ,କୁଙ୍କୁମ,ଶୋଭା, ମୂଳା,ସେବତୀଙ୍କ ପୁତ୍ର,(ସ୍ତ୍ରୀ)ରୁଚିରା ।

ରୁଚିରଦନ୍ତ—ପୁଂ. ବି°. (ବ.ବ୍ରୀ) ସୁନ୍ଦର ଦନ୍ତବିଶିଷ୍ଟ ।

ରୁଚିରବନ୍ତୀ—ସ୍ତ୍ରୀ. ବି°. (ରୁଚିରବତ୍+ଈ) ପରମା ସୁନ୍ଦରୀ ।

ରୁଚିରବଦନ—ପୁଂ.ବି°.(ବ.ବ୍ରୀ)ସୁନ୍ଦର-ମୁଖଶ୍ରୀସମ୍ପନ୍ନ, (ସ୍ତ୍ରୀ) ରୁଚିରବଦନା, (ବି.କ.ଧା) ସୁନ୍ଦର ମୁଖ ।

ରୁଚିରବାକ୍—ପୁଂ.ବି°.ବାଗ୍ମୀ,ସୁବକ୍ତା ।

ରୁଚିରବୃତ୍ତି—ବି. ଅସ୍ତ୍ରର ଏକପ୍ରକାର ସଂହାର ।

ରୁଚିରମୃଦ୍—ବି°. ( ରୁଚିର+ମୃଦ୍+କ୍ୱିପ୍) ଅତି ସୁନ୍ଦର ବା ମନୋହର ।

ରୁଚିରମୂର୍ତ୍ତି—ପୁଂ. ସ୍ତ୍ରୀ. ବି°. (ବ.ବ୍ରୀ) ସୁନ୍ଦର ରୂପବିଶିଷ୍ଟ, (ବି.କ.ଧା) ସୁନ୍ଦର ରୂପ ।

ରୁଚିରା—ସ୍ତ୍ରୀ. ବି. (ରୁଚ୍+ଇର+ଆ) ଗୋରୋଚନା, ମୂଳା, ଲବଙ୍ଗ, ନଦୀ-ବିଶେଷ, କୁଙ୍କୁମ, ଛନ୍ଦୋବିଶେଷ,(ସ୍ତ୍ରୀ. ବି°) ମନୋହାରିଣୀ, ମନୋଜ୍ଞା ।

ରୁଚିରାଙ୍ଗ—ପୁଂ.ବି°. (ବ.ବ୍ରୀ) ଶୋଭ-ନାଙ୍ଗବିଶିଷ୍ଟ, (ସ୍ତ୍ରୀ) ରୁଚିରାଙ୍ଗୀ, (ବି. କ.ଧା) ଶୋଭାଯୁକ୍ତ ଶରୀରାବୟବ ।

ରୁଚିରାଞ୍ଜନ—ବି. ( ରୁଚିର+ଅଞ୍ଜନ ) ଶୋଭାଞ୍ଜନ, ସଜନା ।

ରୁଚିରାଧିକା-ଗ୍ରା.ସ୍ତ୍ରୀ.ବି°.ଅତ୍ୟନ୍ତ ସୁନ୍ଦରୀ ।

ରୁଚିରାନନ—ପୁଂ.ବି°.ବି. ରୁଚିରବଦନ ଦେଖ ।

ରୁଚିରାପାଙ୍ଗୀ—ସ୍ତ୍ରୀ.ବି°.ସୁନ୍ଦର କଟାକ୍ଷନା-ପାଙ୍ଗବିଶିଷ୍ଟା (ସ୍ତ୍ରୀ) ।

ରୁଚିରାଶ୍ୱ—ପୁଂ.ବି ରାଜାବିଶେଷ,ସୁନ୍ଦର ଘୋଟକ ।

ରୁଚିଲଗିବା—ଗ୍ରା.କ୍ରି.ଖାଇବାକୁ ରୁଚିକର ବୋଧ ହେବା । [ କାଶୀ ।

ରୁଚିବର୍ଦ୍ଧ—ପୁଂ.ବି°.ଆଲୋକ ଆନୟନ-

ରୁଚିବା—ଗ୍ରା.କ୍ରି. ସ୍ୱାଦୁଲଗିବା, ଜିହ୍ୱାକୁ ତୃପ୍ତିକର ବୋଧ ହେବା,ମନକୁପାଇବା ।

ରୁଚିବର୍ଦ୍ଧକ—ବି°.ଅପ୍ରୀତିକର,ଅରୁଚି-କର । [ ଅତିପ୍ରିୟତା ।

ରୁଚିବିରୋଧ—ବି(୬ତତ୍ପୁ)ସ୍ୱାଦ ସମ୍ବନ୍ଧେ

ରୁଚିଷ୍ୟ—କ୍ରି. ବି°. (ରୁଚ୍+କ.ଷ୍ୟ) ରୁଚିର ଦେଖ, (ସ୍ତ୍ରୀ) ରୁଚିଷ୍ୟା, (ବି) ଧଳାଲୁଣ ।

ରୁଚିହେବା—ଗ୍ରା. କ୍ରି. ରୁଚିବା ଦେଖ ।

ରୁଚୀ—ସ୍ତ୍ରୀ. ବି. ରୁଚି ଦେଖ ।

ରୁଚୀକ—ଗ୍ରା. ବି. ଭୃଗୁମୁନିଙ୍କ ପୁତ୍ର ।

ରୁଚୁ—ବି. (ରୁଚ୍+କ.ଉ ) କଳାଶିଙ୍ଘ-ବିଶିଷ୍ଟ ଧଳା ବା ହଳଦିଆ ହରିଣ ।

ରୁଚ୍ୟ—ବି°. (ରୁଚ୍+କ.ଯ) ସୁନ୍ଦର, ମନୋଜ୍ଞ, ରୁଚିକର,ସୁସ୍ୱାଦୁ, ଇପ୍ସିତ, (ବି) ପତି, ସ୍ୱାମୀ, ଚନ୍ଦ୍ର, ଶାରଦଧାନ, କତକବୃକ୍ଷ, ସଚଳ ଲବଣ, ସୈନ୍ଧବ ଲୁଣ, କ୍ଷୁଧାବର୍ଦ୍ଧକ ଦ୍ରବ୍ୟ, ବେଲ, ଗୁଡ଼ଲ, କଳାଜୀରା,ଏକପ୍ରକାର କାକୁଡ଼ି ।

ରୁଚ୍ୟକନ୍ଦ-ପୁଂ.ବି.(କ.ଧା)ଶୂରଣ;ଓଲୁଅ ।

ରୁଚ୍ୟବାହନ—ପୁଂ.ବି. ହବ୍ୟବାହନ ।

ରୁଜ୍—ବି.ରୁଜ୍+କ.କ୍ୱିପ୍)ରୁଜାଦେଖ ।

ରୁଜ—ବି.(ରୁଜ୍+କ.ଅ)ଉଜ୍ଜ୍ୱଳ, ଭଞ୍ଜନ, ଭଙ୍ଗ,ଘାଆ,କ୍ଷତ,ବେଦନା,କୁଷ୍ଠ,ବ୍ୟାଧି, ପୀଡ଼ା, ହାନି, ଦୁଃଖ, କ୍ଲେଶ, ଭଙ୍ଗ ।

ରୁଜସ୍କର—ବି°. (ରୁଜ୍+କୃ+କ.ଅ) ପୀଡ଼ାଦାୟକ, ରୋଗକାରକ ।

ରୁଜା—ସ୍ତ୍ରୀ.ବି. (ରୁଜ୍+କ.କ୍ୱିପ୍+ଆ) ରୋଗ,ହାନି, ଭଙ୍ଗ, କ୍ଲେଶ, ପୀଡ଼ା,

ଅସ୍ଥିଭଙ୍ଗ, କୁଷ୍ଠରୋଗ,କ୍ଳାନ୍ତି, ମେଣ୍ଢା,
ଭଙ୍ଗ, କୁଡ଼ ।
ରୁଜାକର—ବି. (ରୁଜା+କୃ+ଅ)କର-
ମଙ୍ଗାଫଳ, ବ୍ୟାଧି,(ବି°)ବ୍ୟାଧିକାରକ,
ପୀଡ଼ାଜନକ ।
ରୁଜାଗ୍ରସ୍ତ—ପୁଂ. ବି°. (୩ତତ୍) ପୀଡ଼ିତ,
ରୋଗାକ୍ରାନ୍ତ, (ସ୍ତ୍ରୀ) ରୁଜାଗ୍ରସ୍ତା ।
ରୁଜାପହ—ବି°. (ରୁଜା+ଅପ+ହନ୍
ଅ) ପୀଡ଼ାନାଶକ, ରୋଗହର, (ସ୍ତ୍ରୀ)
ରୁଜାପହା । [ ଛକଣ୍ଡା ।
ରୁଜାପ୍ରତିକ୍ରିୟା—ବି. (୬ତତ୍) ରୋଗର
ରୁଜାବନ୍ତ—ବି°. (ରୁଜା+ବନ୍ତ)ପୀଡ଼ା-
ଯୁକ୍ତ, ପୀଡ଼ିତ କ୍ଳେଶମସ୍ତ ।
ରୁଜାବାନ୍—ବି°.(ରୁଜା+ବାନ୍)ରୁଜାବନ୍ତ
ଦେଖ ।
ରୁଜାଳୀ—ବି. (୬ତତ୍) ରୋଗସମୂହ ।
ରୁଜାସଦ୍ମ—ବି. (୬ତତ୍) ବିଷ୍ଠା ।
ରୁଜାସହ—ପୁଂ.ବି.ଧନ୍ୱନବୃକ୍ଷ,ଧାମଣଗଛ
ରୁଞ୍ଜ—ଯା. ବି. ଦୁଇଜଣଙ୍କର ମୁକାବିଲା,
ମୁଆଳା, ଗଜାହେବା ।
ରୁଜୁ—ଯା. ବି.ସୂତ୍ରପାତ, ଆରମ୍ଭକରିବା,
ଉପସ୍ଥିତ, (ବି°) ଆରବ୍ଧ, ସୂତ୍ରପାତ
କରାଯାଇଥିବା, ଉପସ୍ଥାପିତ, ଦଣ୍ଡାୟ-
ମାନ, ଉପସ୍ଥିତ ।
ରୁଞ୍ଜା—ଗ୍ରା. ବି°. ମନୋହର, ସୁନ୍ଦର ।
ରୁଟ୍—ବି.(ରୁଷ+କ୍ୱିପ୍) ରୋଷ,କ୍ରୋଧ,
କୋପ,(ଗ୍ରା.ବି) ଘୋଡ଼ାମୁହାଁ ଓ ଟାପୁ-
ବିଶିଷ୍ଟ ମୃଗବିଶେଷ, ଘୁଡ଼ୁଆଁ ।
ରୁଟ୍‌କିନା(କରି)—ଗ୍ରା. କ୍ରି. ବି°. କନ୍ଦା
ଆଦି ହଠାତ୍ କାମୁଡ଼ିବା ପ୍ରକାରରେ ।
ରୁଟ୍‌ରୁଟ୍—ଗ୍ରା. ଅ. ମୂଷା ଦାନ୍ତଦ୍ୱାରା
କାଟିବା ପ୍ରକାରେ, ଅସ୍ଫୁଟଶବ୍ଦବିଶେଷ ।
ରୁଟ—ଗ୍ରା. ବି. ରୋଷ, ରାଗ ।
ରୁଟି—ଯା. ବି. ଗହମଚୂନାଦିରେ ପ୍ରସ୍ତୁତ
ଏକପ୍ରକାର ନିଆଁସେକା ପିଠା ।
ରୁଟିନ୍—ଯା. ବି. ସମସ୍ତ ବିଭାଗ ସୂଚକ
କାର୍ଯ୍ୟର ନିର୍ଘଣ୍ଟ ।
ରୁଠା—ଗ୍ରା. ବି°. କର୍କଶ, ଅମସୃଣ,ରୁକ୍ଷ,
ଶୁଷ୍କ, ଅନୁର୍ବର ।

ରୁଡ଼ୁମୁଡ଼ୁ—ଗ୍ରା. ଅ. ମୁଢ଼ି ଚଣାଆଦି
ଚୋବାଇବାର ଶବ୍ଦ ।
ରୁଡ଼ୁରୁଡ଼ୁ—ଗ୍ରା. ଅ.ରୁଡ଼ୁମୁଡ଼ୁଠାରୁ ଉଚ୍ଚ-
ତର ଚର୍ବଣ ଶବ୍ଦ ।
ରୁଢ଼—ଗ୍ରା.ବି.କ୍ଷୌରହୋଇଥିବା ସ୍ଥାନର
ବଢ଼ିଥିବା କେଶମୂଳ ।
ରୁଢ଼ିଆ—ଗ୍ରା. ବି°. କ୍ଷୌର ନହେବା
ଯୋଗୁଁ ଯାହାର ରୁଢ଼ ବଢ଼ିଥାଏ ।
ରୁଣ୍‌ଝୁଣ୍—ଗ୍ରା. ଅ.ନୂପୁରାଦିର ଧ୍ୱନି,ଅନୁ-
କରଣ ଶବ୍ଦ, ରୁଣ୍‌ଝୁଣ୍ ଦେଖ ।
ରୁଣସ୍କରା—ସ୍ତ୍ରୀ. ବି. ସୁଖ ସନ୍ଦୋହ୍ୟଗାଭୀ,
ସୁଧାର ଗାଈ ।
ରୁଣା—ସ୍ତ୍ରୀ. ବି. ସରସ୍ୱତୀନଦୀର ଶାଖା-
ବିଶେଷ ।
ରୁଣୁଝୁ(ରୁ)ଣୁ—ଗ୍ରା. ଅ. କିଙ୍କିଣୀନାଦ,
ଘଣ୍ଟିଯୁକ୍ତ ଅଳଙ୍କାରର ମଧୁର କ୍ୱଣନ,
ବୀଣାଦିର ମଧୁର ଝଙ୍କାର ଶବ୍ଦ ।
ରୁଣ୍ଡା—ଗ୍ରା. ବି°. ପୁଂ ଓ ସ୍ତ୍ରୀ.ଅତିକୃପଣ,
ନୀରସ, କ୍ଷୀଣ, ଖର୍ବକାୟ, ଖାଣ୍ଟି,
ନ୍ୟାୟବନ୍ତ ।
ରୁଣ୍ଡ—ବି. ( ରୁନଡ଼+କ.ଅ ) କବନ୍ଧ,
ମସ୍ତକଶୂନ୍ୟ ଦେହ, ଗଣ୍ଡି, (ବି°)
ବିକଳାଙ୍ଗୀକୃତ,(ଗ୍ରା.ବି°)ଏକତ୍ରୀଭୂତ,
ଏକସ୍ଥାନରେ ରାଶୀକୃତ, ସମୂହ ।
ରୁଣ୍ଡକରିବା—ଗ୍ରା.କ୍ରି.ଏକସ୍ଥାନରେ ଜମା
କରିବା ।
ରୁଣ୍ଡହେବା—ଗ୍ରା. କ୍ରି. (ବହୁଲୋକ)ଏକ-
ସ୍ଥାନରେ ଜମାହେବା ।
ରୁଣ୍ଡାଇବା—ଗ୍ରା. କ୍ରି. ଗୋଟାଇବା,
ଜମାକରିବା, ଗଦାକରିବା ।
ରୁଣ୍ଡିକା—ସ୍ତ୍ରୀ. ବି. (ରୁଣ୍ଡ+କ+ଆ)
ଯୁଦ୍ଧଭୂମି, ଦ୍ୱାରପିଣ୍ଡିକା, ଦ୍ୱାରବନ୍ଧ,
ଚଉକାଠ, କୁଟ୍ଟନୀ, କାମଦୂତୀ,ଦୈବୀ-
ଶକ୍ତି,ଅମାନୁଷୀ କ୍ଷମତା,ବିଭୂତି,ହୋମା-
ଗ୍ନିର ପାଉଁଶ ।
ରୁଣ୍ଡିଭୂତ—ଗ୍ରା. ବି°. ଏକତ୍ରୀଭୂତ ।
ରୁତ୍—ବି.(ରୁ+ଭା.+କ୍ୱିପ୍)ରୁତ,ଧ୍ୱନି,ରବ
ରୁତୁକ(ନା)ର—ଗ୍ରା. ଅ. ହଠାତ୍ ଖଡ଼୍ଗ
ଆଦିରେ ଆଘାତକରିବା ପ୍ରକାରେ ।

ରୁତ—କ୍ଳୀ. ବି. (ରୁ+ଭା.ତ) ପଶୁପକ୍ଷୀ
ପ୍ରଭୃତିର ଶବ୍ଦ, କୂଜନ,ରୋଦନ,ରବ,
ବି°.(ରୁ+କତ) ଧ୍ୱନିତ, ରୋଦନକରୁ-
ଥିବା ।
ରୁଦ୍—ବି. କ୍ରନ୍ଦନ, ଶୋକ, ଚିତ୍କାରଶବ୍ଦ,
ବ୍ୟଥା, ପୀଡ଼ା । [ ଶିଶୁ ।
ରୁଦଥ—ପୁଂ. ବି. (ରୁଦ+ଅଥ)କୁକୁର,
ରୁଦନ—କ୍ଳୀ. ବି.କ୍ରନ୍ଦନ,ଶୋକକରଣ ।
ରୁଦନା—ଗ୍ରା. ବି. ପୋଦନାପରି ଏକ-
ପ୍ରକାର ସୁବାସ ପତ୍ରଯୁକ୍ତ ଗୁଳ୍ମ ।
ରୁଦନ୍ତିକା(ରୁଦନ୍ତୀ)--ସ୍ତ୍ରୀ.ବି.(ରୁଦ୍+କ.
ଅତ+କ+ଆ) କ୍ଷୁଦ୍ର କ୍ଷୁପବିଶେଷ,
ଏକପ୍ରକାର ଗୁଳ୍ମ ।
ରୁଦିତ—କ୍ଳୀ. ବି. (ରୁଦ୍+ଭା.ତ)କ୍ରନ୍ଦନ,
ରୋଦନ, ପୁଂ.ବି° (କ.ତ) ରୋଦନ-
କାରୀ, କାନ୍ଦୁଥିବା ।
ରୁଦ୍ଧ—କ୍ରି. ବି°. ( ରୁଧ୍+ତ ) ଆବୃତ,
ବେଷ୍ଟିତ, ପ୍ରତିବନ୍ଧ, ବାଧିତ, ବ୍ୟାପ୍ତ,
ବାରିତ, ବନ୍ଦ,ସ୍ତମ୍ଭିତ,ପ୍ରତିହତ,ଅଟକା-
ଯାଇଥିବା, (ସ୍ତ୍ରୀ) ରୁଦ୍ଧା ।
ରୁଦ୍ଧକ—କ୍ଳୀ. ବି. ଲବଣ ।
ରୁଦ୍ଧଗତି—ପୁଂ. ବି° ଓ ସ୍ତ୍ରୀ. ( ବ.ବ୍ରୀ )
ଯାହାର ଗତିକୁ ଅଟକା ଯାଇଥାଏ ।
ରୁଦ୍ଧଦ୍ୱାର—ବି.(କ.ଧା)କିଳା ହୋଇଥିବା
କବାଟ, ବି°. (ବ.ବ୍ରୀ) ଯେଉଁ ଘରର
କବାଟ ବନ୍ଦ କରାଯାଇଅଛି ।
ରୁଦ୍ଧନିଶ୍ୱାସ—ବି.(କ.ଧା)ବନ୍ଧଶ୍ୱାସ ବାୟୁ,
ବି°. (ବ.ବ୍ରୀ)ଯାହାର ଶ୍ୱାସ ବନ୍ଦହୋଇ
ଅଛି ।
ରୁଦ୍ଧବାକ୍—ପୁଂ. ବି° ଓ ସ୍ତ୍ରୀ. ଯାହାର
କଥା କହିବା ଶକ୍ତି ବନ୍ଦହୋଇଅଛି ।
ରୁଦ୍ଧଶ୍ୱାସ—ପୁଂ. ବି°. ବ.ବ୍ରୀ; ଯାହାର
ଶ୍ୱାସଅଟକି ଯାଏ ।
ରୁଦ୍ଧସ୍ୱର—ପୁଂ. ବି°. (ବ.ବ୍ରୀ) ଯାହାର
ସ୍ୱର ବନ୍ଦ ହୋଇଯାଇଅଛି ।
ରୁଦ୍ର—ପୁଂ. ବି. (ରୁଦ୍+ଣିଚ୍+କ.ର)
ଯେ ପ୍ରଳୟରେ ସମସ୍ତଙ୍କୁ କନ୍ଦାନ୍ତି,ମହା-
ଦେବ, ଶିବ, ସଂହାର ମୂର୍ତ୍ତି, ଶିବଙ୍କର
ଅଷ୍ଟମୂର୍ତ୍ତି ମଧ୍ୟରୁ ଅଗ୍ନିମୟ ମୂର୍ତ୍ତି,ସୂର୍ଯ୍ୟ,

ବ୍ରହ୍ମାଙ୍କ କପାଳରୁ ଉତ୍ପନ୍ନ ୧୧ ଟି ଗଣ ଦେବତା, ୯କେଡ଼ାକଉଡ଼ିର ଏଗାରଭାଗରୁ ଏକଭାଗ, ଆର୍ଦ୍ରା ନକ୍ଷତ୍ର, ଅଣ-ସୋରିଷିଆ, ଏଗାରସଂଖ୍ୟା, ବିଶ୍ୱକର୍ମାଙ୍କ ଏକ ପୁତ୍ରଙ୍କ ନାମ, ପ୍ରାଚୀନକାଳର ବାଦ୍ୟବିଶେଷ, ଅର୍କଗୁଳ୍ମ, ରୌଦ୍ରରସ, ରୁଦ୍ରଗଣ ଦେଖ, ବିଂ.(ଅଧା-ର)ଭୀଷଣ, ଚଣ୍ଡ, ଭୟଙ୍କର, ଉଗ୍ର,(ସ୍ତ୍ରୀ) ଉଗ୍ରା ।

ରୁଦ୍ରକ—ବି. (ରୁଦ୍ର+କ) ରୁଦ୍ରାକ୍ଷ ଦେଖ ।

ରୁଦ୍ରକବଚ—ବି.ରୁଦ୍ରଙ୍କ କବଚ, ଶିବଙ୍କ ନାମସମୂହ ଦ୍ୱାରା ସର୍ବାଙ୍ଗରକ୍ଷକ ।

ରୁଦ୍ରକଳସ-କ୍ଲୀ.ବି.ଗ୍ରହାଦି ଶାନ୍ତିକାର୍ଯ୍ୟେ ବ୍ୟବହୃତ କଳସବିଶେଷ ।

ରୁଦ୍ରକାଳାନଳ—ବି. ରୁଦ୍ରସ୍ତୋତ୍ରଗ୍ରନ୍ଥ ବିଶେଷ ।

ରୁଦ୍ରକାଳୀ—ସ୍ତ୍ରୀ.ବି. ଦୁର୍ଗାଦେବୀ, ଶକ୍ତି-ମୂର୍ତ୍ତିବିଶେଷ।

ରୁଦ୍ରକୁଣ୍ଡ—ବି.ବୃନ୍ଦାବନସ୍ଥିତ ଗୋଟିଏ ତୀର୍ଥର ନାମ।

ରୁଦ୍ରକୋଟି—ସ୍ତ୍ରୀ. ବି. ତୀର୍ଥବିଶେଷ ।

ରୁଦ୍ରଗଣ—ପୁଂ. ବି. ଶିବଙ୍କ ପାରିଷଦ-ଗଣ, ରୁଦ୍ରଶ୍ରେଣୀଭୁକ୍ତ ୧୧ ଗୋଟି ଦେବତା ।

ରୁଦ୍ରଗର୍ଭ—ପୁଂ. ବି. ଅଗ୍ନି ।

ରୁଦ୍ରଗୀତ—କ୍ଲୀ. ବି. ଅଗସ୍ତ୍ୟ କର୍ତ୍ତୃକ ରୁଦ୍ରସ୍ତବ ।

ରୁଦ୍ରଗୀତା—ସ୍ତ୍ରୀ. ବି. ଅଗସ୍ତ୍ୟ ରୁଦ୍ର-ସଂବାଦ ।

ରୁଦ୍ରଚଣ୍ଡୀ—ସ୍ତ୍ରୀ. ବି. ରୁଦ୍ରଯାମଳୋକ୍ତ ଦେବୀମାହାତ୍ମ୍ୟ, ଦେବୀ ଚଣ୍ଡୀଙ୍କର ମୂର୍ତ୍ତି ବିଶେଷ ।

ରୁଦ୍ରଜ—ପୁଂ. ବି. (ରୁଦ୍ର+ଜନ୍+ ଡ.ଅ) ପାରଦ, ପାରା, କାର୍ତ୍ତିକେୟ, ଗଣେଶ ।

ରୁଦ୍ରଜଟା—ସ୍ତ୍ରୀ. ବି. (ବ.ବ୍ରୀ) ଶଙ୍କର-ଜଟା ନାମକ ପିଙ୍ଗଳବର୍ଣ୍ଣ ଚୂଳବିଶିଷ୍ଟ ଲତା, ଶରପ, ଶତପୁଷ୍ପା ।

ରୁଦ୍ରଜପନ—କ୍ଲୀ.ବି.ନିମ୍ନସ୍ୱରେ ରୁଦ୍ର-ସ୍ତବ ପାଠ ।

ରୁଦ୍ରଜାପକ—ପୁଂ. ବିଂ. ରୁଦ୍ରସ୍ତବ ପାଠକାରୀ ।

ରୁଦ୍ରଜାପୀ—ପୁଂ. ବିଂ. ଯେ ରୁଦ୍ରସ୍ତବ ଜପ କରେ ।

ରୁଦ୍ରତନୟ—ପୁଂ. ବି. ଜୈନ ହରି-ବଂଶୋକ୍ତ ତୃତୀୟ ଶ୍ରୀକୃଷ୍ଣ ।

ରୁଦ୍ରତାଳ—ବି. ଶିବଙ୍କ ତାଣ୍ଡବନୃତ୍ୟର ତାଳ, ଷୋହଳ ମାତ୍ରାଯୁକ୍ତ ମୃଦଙ୍ଗର ତାଳବିଶେଷ ।

ରୁଦ୍ରତେଜଃ—ବି.(ଷତତ୍)କାର୍ତ୍ତିକେୟ ।

ରୁଦ୍ରନାରାୟଣ—ବି. ଶିବ ଓ ହରି ।

ରୁଦ୍ରନିଧି—ବି. ହିମାଳୟସ୍ଥ ଦେବସ୍ଥାନ ବିଶେଷ ।

ରୁଦ୍ରପତି—ବି. (ଷତତ୍) ଶିବ ।

ରୁଦ୍ରପତ୍ନୀ—ସ୍ତ୍ରୀ. ବି. ଦୁର୍ଗା, ପାର୍ବତୀ, ଅତସୀ, ତିସି । [ ସାବର୍ଣ୍ଣି ।

ରୁଦ୍ରପୁତ୍ର—ପୁଂ.ବି. ଦ୍ୱାଦଶମନୁ, ରୁଦ୍ର-

ରୁଦ୍ରପୂଜା—କ୍ଲୀ. ବି. ଶିବଙ୍କ ପୂଜା ।

ରୁଦ୍ରପ୍ରମୋକ୍ଷ—ତ୍ରିପୁରାସୁର ଉପରକୁ ଯେଉଁ ସ୍ଥାନରୁ ଶିବ ବାଣଚଳାଇଥିବା ପୁରାଣରେ କଥିତ ।

ରୁଦ୍ରପ୍ରୟାଗ-ବି.ହିମାଳୟସ୍ଥ ତୀର୍ଥବିଶେଷ ।

ରୁଦ୍ରପ୍ରିୟା—ସ୍ତ୍ରୀ. ବି. ପାର୍ବତୀ, ଦୁର୍ଗା, ହରୀତକୀ, ହରଡ଼ା ।

ରୁଦ୍ରଭଟ୍ଟ—ପ୍ରା. ବି. ସଂସ୍କୃତ କାବ୍ୟା-ଲଙ୍କାର ଗ୍ରନ୍ଥରଚୟିତା ପ୍ରସିଦ୍ଧ ସାହିତ୍ୟା-ଚାର୍ଯ୍ୟ ।

ରୁଦ୍ରଭାବ—ବି. ଶିବଙ୍କର ରୁଦ୍ରମୂର୍ତ୍ତିର ପ୍ରଚଣ୍ଡ ଭାବ, ଉଗ୍ରତା ।

ରୁଦ୍ରଭୂ(ମି)—ସ୍ତ୍ରୀ. ବି. ଶ୍ମଶାନ ।

ରୁଦ୍ରଭୂମି—ସ୍ତ୍ରୀ. ବି. ଶ୍ମଶାନ ।

ରୁଦ୍ରଭୈରବୀ-ସ୍ତ୍ରୀ.ବି.ଦୁର୍ଗାମୂର୍ତ୍ତିବିଶେଷ

ରୁଦ୍ରମୟ—ତ୍ରି. ବିଂ. ରୁଦ୍ରସ୍ୱରୂପ, ରୁଦ୍ରରୂପ ।

ରୁଦ୍ରମୂର୍ତ୍ତି—ବି. (କ.ଧା)ଭୟଙ୍କରରୂପ, ମହାଦେବଙ୍କର ଅଗ୍ନିମୂର୍ତ୍ତି,(ବିଂ-ବ.ବ୍ରୀ) ଭୟଙ୍କର ଆକୃତିବିଶିଷ୍ଟ, କ୍ରୋଧଦ୍ୱାରା ଉଗ୍ରମୂର୍ତ୍ତି ।

ରୁଦ୍ରଯାମଳ—କ୍ଲୀ.ବି.ତନ୍ତ୍ରଗ୍ରନ୍ଥବିଶେଷ ।

ରୁଦ୍ରଯଜ୍ଞ—ପୁଂ.ବି. ଶିବଙ୍କ ଉଦ୍ଦେଶ୍ୟ କୃତ ଯାଗବିଶେଷ ।

ରୁଦ୍ରରସ-ବି.ସାହିତ୍ୟରେ ଭୟାନକ ରସ ।

ରୁଦ୍ରରୋଦନ—କ୍ଲୀ. ବି. ସ୍ୱର୍ଣ୍ଣ, ସୁନା ।

ରୁଦ୍ରରୋମା—ବି. କାର୍ତ୍ତିକେୟଙ୍କର ଏକ ମାତୃକା ।

ରୁଦ୍ରଲତା—ବି. ରୁଦ୍ରଜଟା ଦେଖ ।

ରୁଦ୍ରଲୋକ—ବି. ରୁଦ୍ରମାନଙ୍କର ବାସ-ଭୂମି, ଶିବଲୋକ ।

ରୁଦ୍ରବଟ—କ୍ଲୀ. ବି. ମହାଭାରତୋକ୍ତ ପ୍ରାଚୀନ ତୀର୍ଥବିଶେଷ ।

ରୁଦ୍ରବର୍ତ୍ତ୍ମ—ବିଂ.ରୁଦ୍ରଗଣ ପରିବେଷ୍ଟିତ ।

ରୁଦ୍ରବାନ୍—ପୁଂ. ବିଂ. (ରୁଦ୍ର+ବତ୍) ରୁଦ୍ରସଦୃଶ, ରୁଦ୍ରଗଣଯୁକ୍ତ,(ପୁଂ.ବି) ଇନ୍ଦ୍ର, ଅଗ୍ନି, ସୋମ ।

ରୁଦ୍ରବୀଣା—ବି. ପ୍ରାଚୀନ କାଳର ଏକ-ପ୍ରକାର ବୀଣା ।

ରୁଦ୍ରସରଃ-କ୍ଲୀ.ବି. ପ୍ରାଚୀନ ତୀର୍ଥବିଶେଷ ।

ରୁଦ୍ରସର୍ଗ—ପୁଂ. ବି. ରୁଦ୍ରକର୍ତ୍ତୃକ ସୃଷ୍ଟି, ରୁଦ୍ରଙ୍କ ଠାରୁ ଯାହାର ଉତ୍ପତ୍ତି ।

ରୁଦ୍ରସାବର୍ଣ୍ଣି—ପୁଂ. ବି. ଦ୍ୱାଦଶମନୁ, ରୁଦ୍ରପୁତ୍ର ।

ରୁଦ୍ରସୂ—ସ୍ତ୍ରୀ. ବି. (ରୁଦ୍ର+ସୂ+କ.କ୍ୱିପ୍) ଯେଉଁ ସ୍ତ୍ରୀ ଏଗାରଗୋଟି ସନ୍ତାନ ଜନ୍ମ କରିଅଛନ୍ତି ।

ରୁଦ୍ରସ୍ୱର୍ଗ—ପୁଂ. ବି. ରୁଦ୍ରଲୋକ ।

ରୁଦ୍ରହିମାଳୟ—ବି. ହିମାଳୟର ଶୃଙ୍ଗ-ବିଶେଷ ।

ରୁଦ୍ରହୃଦୟ—ପୁଂ.ବି.ଉପନିଷଦ୍‌ବିଶେଷ ।

ରୁଦ୍ରା—ସ୍ତ୍ରୀ. ବି. ରୁଦ୍ରଜଟା, ମୁକ୍ତାବର୍ଚ୍ଚଃ, ମୁକ୍ତବର୍ଷୀ ନାମକ ବନଶାକବିଶେଷ, ହିମାଳୟସ୍ଥ ନଦୀବିଶେଷ, ନଳନାମକ ଗନ୍ଧଦ୍ରବ୍ୟ ।

ରୁଦ୍ରାକ୍ରୀଡ଼(ଡା)—ବି. (ଷତତ୍) ପ୍ରେତ-ଭୂମି, ଶ୍ମଶାନ ।

ରୁଦ୍ରାକ୍ଷ—କ୍ଲୀ.ବି. (ଷତତ୍) ବୃକ୍ଷବିଶେଷ, ଯାହାର ଅର୍ବୁଦମୟ ଶୁଷ୍କ ବୀଜଦ୍ୱାରା ଜପମାଳା ପ୍ରସ୍ତୁତ ହୁଏ ।

ରୁଦ୍ରାକ୍ଷମାଳା—ସ୍ତ୍ରୀ.ବି. ରୁଦ୍ରାକ୍ଷ ବୀଜ-ଦ୍ୱାରା ପ୍ରସ୍ତୁତ ଜପମାଳା ବା ଧାରଣମାଳା।
ରୁଦ୍ରାଣୀ—ସ୍ତ୍ରୀ.ବି. (ରୁଦ୍ର+ଆନୀ)ଦୁର୍ଗା, ରୁଦ୍ରଜଟା, ଏକାଦଶବର୍ଷୀୟ କନ୍ୟା, ଶଙ୍କର ରାଗିଣୀବିଶେଷ।
ରୁଦ୍ରାଧ୍ୟାୟୀ—ବିଂ. ରୁଦ୍ର ସ୍ତବପାଠକାରୀ
ରୁଦ୍ରାୟଣୀ—ଗ୍ରା.ବି. ରୁଦ୍ରାଣୀ ଦେଖ।
ରୁଦ୍ରାରି—ପୁଂ.ବି. (ରୁଦ୍ର+ଅରି)କାମ-ଦେବ, କନ୍ଦର୍ପ।
ରୁଦ୍ରାବତାର—ବି. ରୁଦ୍ରଙ୍କ ଅଂଶରେ ଜାତ ମହାବୀର ହନୁମାନ।
ରୁଦ୍ରାବର୍ତ୍ତ—ପୁଂ.ବି.ତୀର୍ଥବିଶେଷ।
ରୁଦ୍ରାବସୃଷ୍ଟ--ବିଂ.ରୁଦ୍ର କର୍ତ୍ତୃକ ବିନଷ୍ଟ।
ରୁଦ୍ରାବାସ—ପୁଂ.ବି. (ରୁଦ୍ର+ଆବାସ) ବାରାଣସୀ, କୈଳାଶଗିରି, ଶିବକ୍ଷେତ୍ର, ଶ୍ମଶାନ।
ରୁଦ୍ରୀୟ—ବିଂ. (ରୁଦ୍ର+ଇୟ) ରୁଦ୍ର ସମ୍ବନ୍ଧୀୟ, ଭୟଙ୍କର, ଆନନ୍ଦଦାୟକ, (ବି) ଆନନ୍ଦ, ରୁଦ୍ରଶକ୍ତି।
ରୁଦ୍ରୀ—ସ୍ତ୍ରୀ.ବି. (ରୁଦ୍ର+ଈ) ବୀଣା-ବିଶେଷ, ରୁଦ୍ରବୀଣା, ବେଦର ଅଘମର୍ଷଣ ସୂକ୍ତର ୧୧ଥର ଆବୃତ୍ତି।
ରୁଦ୍ରୈକାଦଶିନୀ—ବି.ଏକାଦଶ ରୁଦ୍ରା-ନୁବାଦକ ଜପ, ଅର୍ଥାତ୍ ୧୧ଥର ଅଘ-ମର୍ଷଣ ସୂକ୍ତ ଜପ।
ରୁଧିର—କ୍ଲୀ.ବି. (ରୁଧ୍+କ.ଇର)ରକ୍ତ, ଶୋଣିତ, କୁଙ୍କୁମ, ପ୍ରବାଳ, ରୁଧିରାଖ୍ୟ (ଦେଖ); ମଙ୍ଗଳଗ୍ରହ,ରକ୍ତବର୍ଣ୍ଣ, (ବିଂ) ରକ୍ତବର୍ଣ୍ଣବିଶିଷ୍ଟ,ନାଲିଆ,(ସ୍ତ୍ରୀ)ରୁଧିରା।
ରୁଧିରଗୁଲ୍ମ—ବି. ସ୍ତ୍ରୀରୋଗବିଶେଷ।
ରୁଧିରତାମ୍ରାକ୍ଷ—ବିଂ. ରକ୍ତବର୍ଣ୍ଣ ଚକ୍ଷୁ-ବିଶିଷ୍ଟ।
ରୁଧିରଧାରା—ବି. (ଭତତ୍)ଧାରାକାରରେ ପତିତ ରକ୍ତ। [ ରକ୍ତ।
ରୁଧିରନଦୀ—ବି. ନଦୀରୂପେ ବହୁଥିବା
ରୁଧିରପାୟୀ—ପୁଂ.ବିଂ. (ରୁଧିର+ପା+କ.ଇନ୍) ରକ୍ତପାନକାରୀ, (ସ୍ତ୍ରୀ) ରୁଧିରପାୟିନୀ, (ପୁଂ.ବି) ରାକ୍ଷସ।
ରୁଧିରପିତ୍ତ—ବି. ରକ୍ତପିତ୍ତରୋଗ ଦେଖ
ରୁଧିରପ୍ରଦିଗ୍ଧ—ବିଂ.ରକ୍ତାକ୍ତ,ରକ୍ତମ୍ରକ୍ଷିତ।
ରୁଧିରପ୍ଲାବିତ—ବିଂ.(ତତତ୍)ରକ୍ତାପ୍ଲୁତ, ଅତ୍ୟନ୍ତ ରକ୍ତାକ୍ତ।
ରୁଧିରମଣି—ବି. ପ୍ରବାଳ, ପୋହଳା।
ରୁଧିରରୂଷିତ—ବିଂ. ରକ୍ତାଚ୍ଛାଦିତ।
ରୁଧିରଲେଶ—ପୁଂ.ବି. ରକ୍ତଚିହ୍ନ ରକ୍ତର ଦାଗ।
ରୁଧିରବିନ୍ଦୁ—ପୁଂ.ବି. ରକ୍ତଟୋପା।
ରୁଧିରସ୍ରୋତଃ—ବି.ସ୍ରୋତ ଆକାରରେ ପ୍ରବାହିତ ରକ୍ତ। [ ରକ୍ତାକ୍ତ।
ରୁଧିରାକ୍ତ—ବିଂ.(ତତତ୍)ରକ୍ତ ଜର୍ଜରିତ,
ରୁଧିରାକ୍ତକଳେବର—ବି.(କ.ଧା)ରକ୍ତାକ୍ତ ଶରୀର, ( ପୁଂ.ବିଂ. ବ.ବ୍ରୀ ) ଯାହାର ଶରୀରରେ ରକ୍ତ ବୋଳା ହୋଇଥାଏ।
ରୁଧିରାଖ୍ୟ—ବି. ରକ୍ତବର୍ଣ୍ଣ ମଣିବିଶେଷ।
ରୁଧିରାନନ—କ୍ଲୀ. ବି. ମଙ୍ଗଳ ଗ୍ରହର ବକ୍ରଗତିବିଶେଷ।
ରୁଧିରାନ୍ଧ—ପୁଂ.ବି. ନରକବିଶେଷ।
ରୁଧିରାମୟ—ପୁଂ.ବି. ରକ୍ତ ନିର୍ଗମନରୂପ ବ୍ୟାଧି, ରକ୍ତପିତ୍ତ ରୋଗ।
ରୁଧିରାବିଲ—ବିଂ. ରକ୍ତମୟ।
ରୁଧିରାଶନ—ପୁଂ.ବିଂ.(ବ.ବ୍ରୀ)ଯେ ରକ୍ତ ଖାଏ, ରକ୍ତପାୟୀ, (ବି) ରାକ୍ଷସ, ରାମ-ଚନ୍ଦ୍ରଙ୍କ ଦ୍ୱାରା ହତ ଖର ରାକ୍ଷସର ସେନାପତି।
ରୁଧିରୋଦ୍ଗାରୀ—ବିଂ. ରକ୍ତ ବମନକାରୀ।
ରୁନ୍ଧା—ଗ୍ରା.ବି. ପ୍ରତିରୋଧ, ବ୍ୟଥା।
ରୁନ୍ଧିବା—ଗ୍ରା.କ୍ରି. ଅବରୋଧ କରିବା, ରୁନ୍ଧକରିବା,ଅଟକାଇବା,ରୁନ୍ଧହେବା
ରୁନ୍ଧିବନ୍ଧିହେବା—ଗ୍ରା. ବି. ବାତଜନିତ ଶରୀର ବ୍ୟଥାଯୁକ୍ତ ହେବା।
ରୁନ୍ଧିହେବା—ଗ୍ରା.କ୍ରି. ଅବରୁଦ୍ଧ ହେବା, ଅଟକିବା, ଆକ୍ରାନ୍ତହେବା।
ରୁପ—ଗ୍ରା.ବି. ରୂପ ଦେଖ, ଚେହେରା, ଚିତ୍ର, ଛବି, ପ୍ରକାର, ଶୁଆ।
ରୁପକରିବା--ଗ୍ରା.କ୍ରି.ଚିତ୍ର ଅଙ୍କନକରିବା, ଛଇ ବାହାର କରିବା, ରୁପକାଢ଼ିବା।
ରୁପଦେଖାଇବା—ଗ୍ରା. କ୍ରି. ଅବଲମ୍ବ କରିବା, ଭଙ୍ଗୀ ଦେଖାଇବା, ଛଇ ବାହାର କରିବା।
ରୁପବନ୍ତ--ଗ୍ରା.ପୁଂ.ବିଂ.ରୂପବାନ୍,ସୁନ୍ଦର।
ରୁପୟା—ଯା.ବି. ଟଙ୍କା, ରୌପ୍ୟମୁଦ୍ରା।
ରୁପରେଖ—ଗ୍ରା.ବି.ରୂପରେଖ ଦେଖ।
ରୁପା—ଗ୍ରା.ବି. ରୌପ୍ୟଧାତୁ, ରଜତ।
ରୁପ୍ରି—ଗ୍ରା.ବି. ମୁଣ୍ଡର କେଶ ମୂଳରେ ଜନ୍ମିବା ମଳ ଚମ।
ରୁପିଆ—ଯା.ବି. ରୌପ୍ୟମୁଦ୍ରା,ଟଙ୍କା, ନଗଦ ଧନ।
ରୁପିବା—ଗ୍ରା, କ୍ରି. ବୃକ୍ଷାଦିକୁ ରୋପଣ କରିବା, ରୁଣିବା।
ରୁପୁ—ପ୍ରା.(କଟକ)ବି. ଶୁଆ।
ରୁପେଲି—ଗ୍ରା.ବିଂ. ରୌପ୍ୟନିର୍ମିତ,ରଜ-ତାଭ, ରୌପ୍ୟ ସମ୍ବନ୍ଧୀୟ, ରୁପାରେ କୁଆଣି ହୋଇଥିବା, (ବି) ଜର୍ମାନ ସିଲ୍‌ଭର, ଟିଣ, କୃତ୍ରିମ ରୁପା, ରଜ-ତାଭ କାଗଜ।
ରୁଭବ—ଗ୍ରା.ବି. ଦେବତା।
ରୁମ୍—ଯା.ବି. ଗ୍ରୀସ୍ ଇଟାଲି ଓ ତୁରସ୍କ ଆଦିର ଫାରସୀ ନାମ।
ରୁମଦ୍ଧା—ପ୍ରା.(ସିଂହଭୂମ) ବି. ବରଟୁଙ୍କ ଶସ୍ୟ, ବରବଟୀ।
ରୁମ—ଗ୍ରା. ବି. ପଶୁପକ୍ଷୀଆଦିଙ୍କ ରୋମ, ଲୋମ, ମୁଣ୍ଡଛଡ଼ା ଦେହର କେଶ,ଅତି ସାମାନ୍ୟ ପରିମାଣ।
ରୁମଉଖା(ପା)ଡ଼ିବା—ଗ୍ରା.କ୍ରି. ଦେହର ଲୋମ ଉତ୍ପାଟନ କରିବା, ( ଲ.ଅର୍ଥ ) କୌଣସି ବ୍ୟକ୍ତିର ସାମାନ୍ୟ ଅନିଷ୍ଟ କରିବା।
ରୁମଟାଙ୍କୁରିବା—ଗ୍ରା.ବି. (ଶୀତ, ଭୟ, ବିସ୍ମୟ, ଓ ପ୍ରେମର ଆଧିକ୍ୟହେତୁ) ରୋମାଞ୍ଚ ଜାତହେବା, ରୋମହର୍ଷଣ।
ରୁମଲୁଚିବା—ଗ୍ରା.ବି. ଅନ୍ଧକାରଯୋଗୁଁ ଦେହସ୍ଥ ଲୋମ ଆଖିକୁ ଦେଖା ନଦିବା।
ରୁମବଙ୍କାକରିବା—ଗ୍ରା. କ୍ରି. (ଲ.ଅର୍ଥ) କୌଣସି ବ୍ୟକ୍ତିର ସାମାନ୍ୟମାତ୍ର ଅନିଷ୍ଟ କରିବା।
ରୁମମୂଳ—ଗ୍ରା.ବି. ଲୋମକୂପ।
ରୁମରୁମିଆ—ଗ୍ରା.ବିଂ. ଲୋମଶ।

ରୁମା—ସ୍ତ୍ରୀ.ବି.(ରୁ+କ.ମ+ଆ)ରାମାୟଣ ବର୍ଣ୍ଣିତା ସୁଗ୍ରୀବଙ୍କ ପତ୍ନୀ, ରାଜପୁତାନା ଅଞ୍ଚଳର ସାମ୍ଭର ପ୍ରଦେଶର ଲୁଣର ଖଣି, ଶୁକ ଦେଖ । [ବିଶେଷ ।

ରୁମାବତୀ—ବି.ରାଜପୁତାନାନ୍ତର୍ଗତ ନଦୀ ।

ରୁମାଭବ—ବି°. ରୁମାନାମକ ଲବଣାକର ଜାତ ।

ରୁମାଲ୍—ଯା. ବି. ମୁଖମାର୍ଜନୀ, ଛୋଟ ଗାମୁଛା ।

ରୁମାଲ—ଗ୍ରା.ପୁଂ.ବି°. ଲୋମମୟ ।

ରୁମାଲି—ଗ୍ରା. ବି. ଭାରତରେ ପୂର୍ବେ ଅତ୍ୟାଚାର କରୁଥିବା ଦଳବଦ୍ଧ ଏକଶ୍ରେଣୀର ନରହନ୍ତା ଦସ୍ୟୁ,ଠଗ ।

ରୁମି—ଗ୍ରା.ପୁଂ.ବି°.ରୋମମୟ, ଲୋମଶ ।

ରୁମିବା—ଗ୍ରା. କ୍ରି. ଚଢ଼େଇ ଦେହରୁ ଲୋମ ଉପାଡ଼ିବା ।

ରୁମୁଝୁମୁ—ଗ୍ରା.ଅବ୍ୟ. ରୁଣୁଝୁଣୁ, ଅଳଙ୍କାରାଦିର ମଧୁର କ୍ୱଣନ, ବୀଣାଆଦିର ସୁମଧୁର ଝଙ୍କାର ।

ରୁମେ—ଗ୍ରା.କ୍ରି. ବି°. ଗୋଟିଏ ଲୋମ ସୁଦ୍ଧା, ତିଳେମାତ୍ର, ସରଳ ରେଖା ଅପେକ୍ଷା ଟିକିଏମାତ୍ର ବଙ୍କା ନ ହୋଇ ।

ରୁମ୍ର—ପୁଂ.ବି.(ରୁମ୍+କ.ର) ଅରୁଣ, ସୂର୍ଯ୍ୟ ସାରଥି,(ପୁଂ.ବି°)ପାଣ୍ଡୁର,ରକ୍ତପିଙ୍ଗଳ, ଉଜ୍ଜ୍ୱଳ, (ସ୍ତ୍ରୀ) ରୁମ୍ରା ।

ରୁରୁ—ପୁଂ.ବି. (ରୁ+ରୁ)ମୃଗବିଶେଷ, କସ୍ତୁରୀମୃଗ, ଦୈତ୍ୟବିଶେଷ, ମୁନିବିଶେଷ, ଭୈରବବିଶେଷ, ଫଳବୃକ୍ଷବିଶେଷ, ପୁରାଣାନୁସାରେ କ୍ରୂର ଜନ୍ତୁବିଶେଷ, ବିଶ୍ୱେଦେବାନ୍ତର୍ଗତ ଗଣଦେବତାବିଶେଷ, ସାବର୍ଣ୍ଣି ମନୁଙ୍କ ଅମଳର ସପ୍ତର୍ଷିଙ୍କ ମଧ୍ୟରୁ ଏକ ଋଷିଙ୍କ ନାମ ।

ରୁରୁକ-ପୁଂ.ବି.ସୂର୍ଯ୍ୟବଂଶୀୟ ରାଜାବିଶେଷ

ରୁରୁକ୍ଷୁ—ବି°. ରୁକ୍ଷ, ଅଚିକ୍କଣ ।

ରୁରୁତ୍ସୁ—ପୁଂ.ବି°. ବନ୍ଧନେଚ୍ଛୁ,ବାଧାଦାନେଚ୍ଛୁ ।

ରୁରୁଦିଷା—ବି. ( ରୁଦ୍+ସନ୍+ଆ ) ରୋଦନ କରିବା ଇଚ୍ଛା ।

ରୁରୁଦିଷୁ—ପୁଂ. ବି°. (ରୁଦ୍+ସନ୍+କ.ଉ) ରୋଦନ କରିବାକୁ ଇଚ୍ଛୁକ ।

ରୁରୁଭୈରବ—ପୁଂ.ବି.ଭୈରବବିଶେଷ ।

ରୁରୁମୁଣ୍ଡ—ପୁଂ.ବି. ପର୍ବତବିଶେଷ ।

ରୁଲ୍—ଯା.ବି. ରେଖା ବା ଲାଇନ୍, ରେଖା ଟାଣିବାର ଦଣ୍ଡ, କର୍ତ୍ତୃପକ୍ଷଙ୍କ ପ୍ରବର୍ତ୍ତିତ ନିୟମ ।

ରୁଲା—ଗ୍ରା.ବି. ରୋଲା, ନୋଲା, ଲମ୍ବ ସରଳ ରେଖା,ଲମ୍ବ ଲମ୍ବ ଦାଗ,ଲମ୍ବା ଶାଳଆଦି, ଶ୍ରେଣୀ ।

ରୁଲିଙ୍ଗ୍—ଯା.ବି. ନଜୀର, ଉଚ୍ଚ ଅଦାଲତଙ୍କ ମୀମାଂସା ।

ରୁଲିଙ୍ଗଚୀଫ୍-ଯା.ବି.ରାଜ୍ୟଶାସନାର୍ଥ ପୂର୍ଣ୍ଣ କ୍ଷମତାପ୍ରାପ୍ତ ଦେଶୀୟ ରାଜା ।

ରୁକୁରୁବା—ଗ୍ରା.ବି.ଅନ୍ତର୍ଦାହ, ମନୋଦୁଃଖ

ରୁବକାର—ଯା.ବି°. ବ୍ୟସ୍ତ, ବ୍ୟଗ୍ର ।

ରୁବକାରୀ—ଯା.ବି.ଅଦାଲତଙ୍କ କୌଣସି ମକଦ୍ଦମା ବିଚାରସମ୍ବନ୍ଧୀୟ କର୍ମ ବା କାର୍ଯ୍ୟାବଳୀ ।

ରୁବଣା—ପ୍ରା. (ଗଞ୍ଜାମ) ବି. ପଥରର ପେଷଣଯନ୍ତ୍ର ।

ରୁବଥ—ପୁଂ.ବି. କୁକ୍କୁର ।

ରୁବା—ପ୍ରା.(ଗଞ୍ଜାମ)ବି.ପେଷା, ପେଷଣ, ରୁବିବା କର୍ମ, ରଗଡ଼ିବା ।

ରୁବାବ୍—ଯା.ବି.ଅଭ୍ୟାସ, ମନ୍ଦଅଭ୍ୟାସ ।

ରୁବି—ଯା. ବି. ମାଣିକ, ଛୋଟ ଛୋଟ ଲାଲବର୍ଣ୍ଣର ରତ୍ନ, ଛାପା ହେବାର ଛୋଟ ଅକ୍ଷର ବା ଟାଇପ୍ ।

ରୁବିବା—ଗ୍ରା. କ୍ରି. କାନ୍ଦିବା, ପେଷଣ କରିବା ।

ରୁବୁ(ବୂ)—ବି. (ରୁ+କ.ଉ)ଧଳା ଗବଗଛ ।

ରୁବୁକ—ପୁଂ.ବି. ଜଡ଼ାଗଛ, ରଙ୍ଗଜଡ଼ା ।

ରୁଶନା—ସ୍ତ୍ରୀ.ବି. ରୁଦ୍ର ପତ୍ନୀବିଶେଷ ।

ରୁଷ(ଷା)—ବି. (ରୁଷ୍+ଭା.କ୍ୱିପ୍+ଆ) ରୋଷ, କ୍ରୋଧ, ରାଗ, (ଗ୍ରା.ବି)ରୁଷିଆ ଦେଶର ଅଧିବାସୀ ବ୍ୟକ୍ତି ।

ରୁଷଣି—ଗ୍ରା.ବି. ରୁଷାଣି ଦେଖ ।

ରୁଷଭକ—ଗ୍ରା.ବି.ହିମାଳୟଜାତ ବୃକ୍ଷର କନ୍ଦ ବା ମୂଳ ।

ରୁଷା—ସ୍ତ୍ରୀ.ବି.( ରୁଷ୍+କ୍ୱିପ୍+ଆ ) ଅମର୍ଷ, କ୍ରୋଧ, (ଗ୍ରା.ବି) ଅଭିମାନ, ବାକ୍ୟହୀନ କ୍ରୋଧ ।

ରୁଷା(ଷେ)ଇ—ଗ୍ରା.ବି.ଖାଦ୍ୟାଦିର ପାକ, ରାନ୍ଧଣା ।

ରୁଷାଇବା—ଗ୍ରା. କ୍ରି. ଅଭିମାନ ଜାତ କରାଇବା, କ୍ରୁଦ୍ଧକରାଇବା ।

ରୁଷାଇବାସ—ଗ୍ରା.ବି. ଅନ୍ନାଦିର ପାକକରଣ ।

ରୁଷା(ଷୁ)ଣି—ଗ୍ରା.ବି. ରୁଷିବା, କ୍ରୋଧ କରିବା, ଅଭିମାନ, ବ୍ରତହେବା ଦ୍ୱିଜ ଉପନୟନ ପରେ ବ୍ରହ୍ମଚାରୀ ବେଶରେ ବ୍ରତବେଦୀରୁ ଗ୍ରାମମୁଣ୍ଡକୁ ଶୋଭାଯାତ୍ରା କରିଯିବା ଓ ଫେରିଆସିବା, (ଗ୍ରା.ବି) ରାତିରେ ଆଲୋକଯୁକ୍ତ ଶୋଭାଯାତ୍ରା ।

ରୁଷାରୁଷି—ଗ୍ରା. ବି. ରୁଷିବା କର୍ମ ।

ରୁଷିକା—ବି. କୁଆମଇଠା ଦେଖ ।

ରୁଷିତ—କ୍ରି.ବି°. (ରୁଷ୍+ତ)କ୍ରୋଧଯୁକ୍ତ, ରୁଷ୍ଟ, କ୍ରୁଦ୍ଧ ।

ରୁଷିବା—ଗ୍ରା. କ୍ରି. ଅଭିମାନ କରିବା, ରାଗିବା, କ୍ରୁଦ୍ଧହେବା ।

ରୁଷିଯିବା—ଗ୍ରା. କ୍ରି. କ୍ରୁଦ୍ଧ ହୋଇ କୌଣସି ସ୍ଥାନରୁ ଚାଲିଯିବା, ବ୍ରତ ହୋଇ ବ୍ରହ୍ମଚାରୀ ବେଶରେ ଘର ରୁଷିଆଣି କରିଯିବା ।

ରୁଷେଇଆ—ଗ୍ରା.ପୁଂ.ବି. ପାଚକ ।

ରୁଷ୍ଟ—ପୁଂ.ବି°.(ରୁଷ୍+କ.ତ)ରୋଷଯୁକ୍ତ, କୁପିତ, ବିରକ୍ତ, (ସ୍ତ୍ରୀ) ରୁଷ୍ଟା ।

ରୁଷ୍ଟି—ସ୍ତ୍ରୀ.ବି. (ରୁଷ୍+ଭା.ତି) କ୍ରୋଧ, କୋପ, ବିରକ୍ତି ।

ରୁଷ୍ୟପ୍ରୋକ୍ତା—ବି. ଅତିବଳା, ପେଣ୍ଡୁପେଣ୍ଡୁଆଗଛ ।

ରୁସ-ଯା.ବି.ରୁଷିଆ ଦେଶବାସୀ ବ୍ୟକ୍ତି ।

ରୁସନା(ନେ)ଇ—ଯା. ବି. ଆଲୋକ, ଆଲୋକପୁଞ୍ଜ, ଉଜ୍ଜ୍ୱଳ, ଆଲୋକମୟ ଶୋଭାଯାତ୍ରା ।

ରୁସିଆ—ଯା.ବି. ଇଉରୋପ ଓ ଏସିଆର ଉତ୍ତରସ୍ଥ ଦେଶ ।

ରୁସୁମାତ୍ର—ଯା.ବି. ଭୂମ୍ୟଧିକାରୀ ପ୍ରଜାଗଣଠାରୁ ଆଦାୟ କରିବା ଅନ୍ୟାଯ୍ୟକର ।

ରୁହ—ବି. ବିଂ. (ରୁହ୍+କ.ଅ) ଜାତ, ଉତ୍ପନ୍ନ, ଆରୂଢ଼,(ସ୍ତ୍ରୀ)ରୁହା,(ବି)ଦୂବା, ଦୂବ,(ଗ୍ରା.କ୍ରି) (ରୁମ୍ଭ) ଅବସ୍ଥାନ କର, ଅପେକ୍ଷା କର ।

ରୁହକ—କ୍ଲୀ.ବି.(ରୁହ+କ.ଅକ)ଛିଦ୍ର, ଗର୍ତ୍ତ, ଗୁହା ।

ରୁହା—ସ୍ତ୍ରୀ. ବି. (ରୁହ+କ.ଅ+ଆ) ଦୂବା, ଦୁବଘାସ, ପାନଆ, ମାଂସରୋହିଣୀ ନାମକ ବୃକ୍ଷ, ଲଜ୍ଜାଳୁଲତା ।

ରୁହାଇବା—ଗ୍ରା. କ୍ରି. ସ୍ଥାପିତ କରିବା, ରଖାଇବା, ସ୍ଥିରକରିବା, ନବଢ଼ାଇବା, ଅଟକାଇବା, ରୋପଣ କରିବା ।

ରୁହିତନ୍—ଗ୍ରା.ବି. ତାସ୍‌ଖେଳରେ ନାଲି ଛାପିଯିକ୍ ଚଉକୋଣିଆ ରଙ୍ଗ ।

ରୁହିର,ରୁହିକା—ସ୍ତ୍ରୀ. ବି. ଉତ୍କଣ୍ଠା ।

ରୁହୁ—ଯା. ବି. ଆମ୍ବ । [ ଗଛ ।

ରୁହ୍ମା—ପୁଂ.ବି.(ରୁହ୍+କ.ଅନ)ବୃକ୍ଷ,

ରୁକ୍ଷ—ବି.ବିଂ. (ରୁକ୍ଷ+କ.ଅ) କର୍କଶ, କଠିନ, ନିର୍ଦ୍ଦୟ, ବନ୍ଧୁର, ଅପ୍ରେମ, ଅଚିକ୍କଣ, କଠୋର ବ୍ରତଧାରୀ, ଅନନୁକୂଳ, ସ୍ନେହଶୂନ୍ୟ, ଶୁଷ୍କ, ତୈଳହୀନ, (ବି) ବୃକ୍ଷ ।

ରୁକ୍ଷଗନ୍ଧକ—ପୁଂ. ବି. ଗୁଗ୍ଗୁଳ ।

ରୁକ୍ଷଣ—ବି. ବିଂ. ଶୁଷ୍କକରଣ ।

ରୁକ୍ଷତା—ସ୍ତ୍ରୀ. ବି. (ରୁକ୍ଷ+ତା) ରୁକ୍ଷତ୍ୱ, କର୍କଶତା, କାର୍କଶ୍ୟ ।

ରୁକ୍ଷଦର୍ଭ—ପୁଂ. ବି. (ରୁକ୍ଷ+ଦର୍ଭ)ହରିଦର୍ଭ, ଶରପତ୍ରଦର୍ଭ ।

ରୁକ୍ଷପତ୍ର—ବି. (ବ.ବ୍ରୀ) ଶାହାଡ଼ାଗଛ ।

ରୁକ୍ଷପ୍ରିୟ—ବି. (ରୁକ୍ଷ+ପ୍ରିୟ) ଋଷଭୌଷଧି ।

ରୁକ୍ଷସ୍ୱାଦୁଫଳ—ବି.(ବ.ବ୍ରୀ) ଧନ୍ୱନ ବୃକ୍ଷ, ଧାମଣାଗଛ । [ ବୃକ୍ଷ ।

ରୁକ୍ଷା—ସ୍ତ୍ରୀ.ବି. (ରୁକ୍ଷ+ଅ+ଆ)ଦନ୍ତୀ-

ରୂଢ଼—ବି.ବିଂ. (ରୁହ+କ.ତ) କର୍କଶ, କଠୋର, କଠିନ, ଅବିଭାଜ୍ୟ, ଜାତ, ଉତ୍ପନ୍ନ, ପ୍ରସିଦ୍ଧ, ଆରୂଢ଼, ଚଢ଼ିଥିବା, ବିରକ୍ତିକର, ଅପ୍ରିୟ, ଅଭଦ୍ର, ସାଧାରଣତଃ ଜ୍ଞାତ, ସ୍ୱୀକୃତ, ବୃହତ୍, ମୌଳିକ, (ବ୍ୟାକରଣ) ବ୍ୟୁତ୍ପତ୍ତିଲଭ୍ୟ ଅର୍ଥ ପ୍ରକାଶ ନ କରି ବ୍ୟବହାର କ୍ରମେ ଅନ୍ୟାର୍ଥର ପ୍ରକାଶକ (ଶବ୍ଦ), (ଗ୍ରା.ବି) କେଶର ଖୁଣ୍ଟି, (ସ୍ତ୍ରୀ) ରୂଢ଼ା ।

ରୂଢ଼ପଦାର୍ଥ—ବିଂ.ଅବିମିଶ୍ର ପଦାର୍ଥ,ଯେଉଁ ସବୁ ବସ୍ତୁ ସ୍ୱଜାତୀୟ ପରମାଣୁ ଛଡ଼ା ଅନ୍ୟ ପଦାର୍ଥର ପରମାଣୁ ଯୋଗରେ ଉତ୍ପନ୍ନ ହୁଏ ନାହିଁ ।

ରୂଢ଼ପ୍ରଣୟ—ବି.(ରୂଢ଼+ପ୍ରଣୟ)ପ୍ରଗାଢ଼ ପ୍ରଣୟ, ଅତିଶୟ ପ୍ରଣୟ ।

ରୂଢ଼ଭାଷୀ—ପୁଂ. ବିଂ. ଯେ କର୍କଶ କଥା କହେ, (ସ୍ତ୍ରୀ) ରୂଢ଼ଭାଷିଣୀ ।

ରୂଢ଼ଯୌବନ—ପୁଂ.ବିଂ. (ବ.ବ୍ରୀ)ଯେଉଁ ବ୍ୟକ୍ତି ଯୌବନପ୍ରାପ୍ତ ହୋଇଅଛି, ଆରୂଢ଼ଯୌବନ ।

ରୂଢ଼ବଂଶ—ବି. (ରୂଢ଼+ବଂଶ) ପ୍ରସିଦ୍ଧ ବଂଶ, ଖ୍ୟାତବଂଶ ।

ରୂଢ଼ବଚନ—ବି.(କ.ଧା) କର୍କଶ ବାକ୍ୟ, ଅଶିଷ୍ଟ ବଚନ, (ପୁଂ.ବିଂ) ରୂଢ଼ଭାଷୀ ଦେଖ, (ସ୍ତ୍ରୀ) ରୂଢ଼ବଚନା ।

ରୂଢ଼ବାକ୍ୟ—ବି. କର୍କଶ କଥା ।

ରୂଢ଼ମୂଳ—ବି. (ବ.ବ୍ରୀ) ବଦ୍ଧମୂଳ ।

ରୂଢ଼ସୌହୃଦ—ପୁଂ.ବିଂ(ବ.ବ୍ରୀ)ଯାହାର ବନ୍ଧୁତା ଦୃଢ଼ ଓ ଗଭୀର ଅଟେ ।

ରୂଢ଼ା—ସ୍ତ୍ରୀ. ବିଂ.ରୂଢ଼ର ସ୍ତ୍ରୀଲିଙ୍ଗ ।

ରୂଢ଼ି—ସ୍ତ୍ରୀ.ବି. (ରୁହ+ତି) ଜନ୍ମ, ପ୍ରାଦୁର୍ଭାବ, ପ୍ରସିଦ୍ଧି,ଆରୋହଣ, ବୃଦ୍ଧି,ଉତ୍ଥାନ, ପ୍ରଥା, ରୀତି, ନିଶ୍ଚୟ,(ବ୍ୟାକରଣ)ଶବ୍ଦର ଅର୍ଥବୋଧକ ଶକ୍ତିବିଶେଷ, ପ୍ରକୃତି ପ୍ରତ୍ୟୟ ଅର୍ଥ ଛଡ଼ା ଅନ୍ୟ ଅର୍ଥ ବୁଝାଇବା ଶକ୍ତି,ଶବ୍ଦର ସାଧାରଣତଃ ସ୍ୱୀକୃତ ଅର୍ଥ ।

ରୂପ—କ୍ଲୀ. ବି. ( ରୂପ୍+ଅ ) ସ୍ୱଭାବ, ସୌନ୍ଦର୍ଯ୍ୟ, ନାମ,ପଶୁ, ଶବ୍ଦ, ଆକାର, ମୁଦ୍ରା, ଉପମାନ, ବିଭକ୍ତିଯୁକ୍ତ ଶବ୍ଦ ବା କୃଦନ୍ତ ଧାତୁ, ଏକସଂଖ୍ୟା, ପ୍ରକାର, ଦୃଶ୍ୟ କାବ୍ୟ, ଅବତାର, ବର୍ଣ୍ଣ, ଶରୀର, ଦଶା, ଅବସ୍ଥା, ବିକାର, ଭେଦ,ଲକ୍ଷଣ, ରୂପକ ଦେଖ, ରୂପା, ଶ୍ଳୋକ, ମୂର୍ତ୍ତି, ଗ୍ରନ୍ଥାଦିର ଆବୃତ୍ତି,(ଗ୍ରା.ବି) ଛନ୍ଦ, ଛବି, ଅଙ୍କା, ବେଶ, ଶୁଆ,(ବିଂ)ସଦୃଶ, ତୁଲ୍ୟ, ପରି ।

ରୂପକ—ବି. ( ରୂପ+ଣିଚ୍+କ.ଅକ ) ଆକୃତି, ଗଠନ,ଶୁକ୍ଳାଦି ବର୍ଣ୍ଣ,ରୌପ୍ୟ, ରୌପ୍ୟମୁଦ୍ରା, କାବ୍ୟାଲଙ୍କାରବିଶେଷ, ଦୃଶ୍ୟ କାବ୍ୟ, ନାଟକ, (ବିଂ) ମୂର୍ତ୍ତି, ଅଲଂକାରଯୁକ୍ତ (ବାକ୍ୟ) ।

ରୂପକତାଳ—ପୁଂ. ବି. ବାଦ୍ୟର ତାଳବିଶେଷ । [ ବାକ୍ୟ ।

ରୂପକବାକ୍ୟ—ବି.ରୂପକ ଅଲଙ୍କାରଯୁକ୍ତ

ରୂପକରିବା—ଗ୍ରା.କ୍ରି.ବିଶେଷ୍ୟ ଓ କ୍ରିୟାର ଭିନ୍ନ ଭିନ୍ନ ବିଭକ୍ତି ବଚନ ଆଦିରେ ହେବା ପଦମାନ ସଂଗଠନ କରିବା, ରୂପ କରିବା ଦେଖ ।

ରୂପକର୍ତ୍ତା—ପୁଂ.ବି. (ରୂପ+କର୍ତ୍ତା)ବିଶ୍ୱକର୍ତ୍ତା, ରୂପ ଯେ କରେ, ବିଶ୍ୱକର୍ମା ।

ରୂପକଶବ୍ଦ—ଗ୍ରା.ବି. ରୂପକ ଅଲଙ୍କାରଯୁକ୍ତ ଶବ୍ଦ । [ ବିଶେଷ ।

ରୂପକଶ୍ଳେଷ—ବି. କାବ୍ୟର ଅଲଙ୍କାର-

ରୂପକସମାସ—ବି. ଯେଉଁ ସମସ୍ତ ପଦ ରୂପକ ଅଳଙ୍କାର ଯୁକ୍ତ ହୋଇଥାଏ ।

ରୂପକାତିଶୟୋକ୍ତି—ବି. ଏକପ୍ରକାର ଅତିଶୟୋକ୍ତି ଅଲଙ୍କାର ।

ରୂପକାର—ପୁଂ. ବି. ଭାସ୍କର,ମୂର୍ତ୍ତିକାର, ଚିତ୍ରକାର ।

ରୂପକୃତ୍—ବି. ତ୍ୱଷ୍ଟା, ବିଶ୍ୱକର୍ମା ।

ରୂପକାନ୍ତା—ବି.୧୭ ଅକ୍ଷର ବିଶିଷ୍ଟ ଏକବର୍ଣ୍ଣବୃତ୍ତ । [ ବାସନା ।

ରୂପଗନ୍ଧ—ବି. (ଦ୍ୱନ୍ଦ୍ୱ) ବସ୍ତୁର ଆକାର ଓ

ରୂପଗରିମା—ବି.(ଷତତ୍ପୁ)ରୂପର ଆଧିକ୍ୟ, ଅତି ସୁନ୍ଦର ରୂପ ।

ରୂପଗର୍ବ—ବି.ଆପଣାର ରୂପ ବା ସୁନ୍ଦରପଣ ଯୋଗୁଁ ମନରେ ଜାତ ଗର୍ବ ।

ରୂପଗର୍ବିତା—ସ୍ତ୍ରୀ. ବି. ଗର୍ବିତା ନାୟିକାର ଏକ ଭେଦ ।

ରୂପଗୁଣ—ବି. (ଦ୍ୱନ୍ଦ୍ୱ) ଆକୃତି ଓ ଗୁଣ, ସୌନ୍ଦର୍ଯ୍ୟ ଓ ଉତ୍ତମ ଗୁଣ ।

ରୂପଗୋସ୍ୱାମୀ—ଗ୍ରା. ବି. ଚୈତନ୍ୟଙ୍କ ସମସାମୟିକ ପ୍ରସିଦ୍ଧ ବୈଷ୍ଣବଭକ୍ତ ସାଧକ ।

ରୂପଚତୁର୍ଦ୍ଦଶୀ—ବି. କାର୍ତ୍ତିକ କୃଷ୍ଣଚତୁର୍ଦ୍ଦଶୀ, ନରକ ଚତୁର୍ଦ୍ଦଶୀ ।

ରୂପଚିତ୍ରଣ-ବି. (୬ତତ୍) ଗୋଟିଏ ଆକାର ଆଙ୍କିବା ।

ରୂପଜ—ବି.ବିଂ. (ରୂପ + ଜନ + କ.ଅ) ରୂପଜାତ,ରୂପରୁ ଜାତ,ସୌନ୍ଦର୍ଯ୍ୟରୁ ଉତ୍ପନ୍ନ ।

ରୂପଜୀବନୀ—ସ୍ତ୍ରୀ.ବି. (ରୂପ + ଜୀବ + କ. ଇନ୍ + ଈ) ରୂପାଜୀବା, ବେଶ୍ୟା ।

ରୂପଣ—କ୍ଲୀ.ବି. (ରୂପ + ଅନ) ଆରୋପକରଣ, ପ୍ରମାଣ, ପରୀକ୍ଷା, ବର୍ଣ୍ଣନ,ନିରୂପଣ, ଅଭିନୟ । [ ସ୍ୱଭାବ ।

ରୂପତତ୍ତ୍ୱ—କ୍ଲୀ.ବି. (ରୂପ + ତତ୍ତ୍ୱ)ଶୀଳ,

ରୂପତା—ସ୍ତ୍ରୀ. ବି. (ରୂପ + ତା) ରୂପତ୍ୱ, ସୌନ୍ଦର୍ଯ୍ୟ ।

ରୂପତୃଷ୍ଣା—ବି. ସୌନ୍ଦର୍ଯ୍ୟ ଉପଭୋଗ କରିବା ପାଇଁ ଲୋଭ, ସୁନ୍ଦର ବସ୍ତୁକୁ ଭୋଗ କରିବାର ଇଚ୍ଛା ।

ରୂପଧର—ପୁଂ.ବିଂ. (ରୂପ + ଧର)ରୂପବିଶିଷ୍ଟ,ସୌନ୍ଦର୍ଯ୍ୟବିଶିଷ୍ଟ,(ସ୍ତ୍ରୀ)ରୂପଧରା ।

ରୂପଧାରୀ—ପୁଂ.ବିଂ. ରୂପବାନ୍,ସାକାର, ବେଶଧାରୀ, ସୌନ୍ଦର୍ଯ୍ୟଶାଳୀ, ( ସ୍ତ୍ରୀ ) ରୂପଧାରିଣୀ । [ ବିଶିଷ୍ଟ ।

ରୂପଧୃତ୍—ବି.ବିଂ.ରୂପବାନ୍,ସୌନ୍ଦର୍ଯ୍ୟ-

ରୂପଧେୟ—କ୍ଲୀ.ବି.ବାହ୍ୟରୂପ,ସୌନ୍ଦର୍ଯ୍ୟ, ଶୋଭା ।

ରୂପଧ୍ୟାନ—କ୍ଲୀ.ବି. (୬ତତ୍) ସୌନ୍ଦର୍ଯ୍ୟଚିନ୍ତା, ସ୍ୱରୂପଚିନ୍ତା ।

ରୂପନାଶକ—ବିଂ. ଯାହା ସୌନ୍ଦର୍ଯ୍ୟକୁ ନାଶକରେ, (ବି) ପେଚକ ।

ରୂପନାଶନ--ବି.(ରୂପ + ନାଶନ)ପେଚକ ।

ରୂପପତି—ପୁଂ. ବି. ତ୍ୱଷ୍ଟା ।

ରୂପପସରା—ଗ୍ରା. ବି. ପଣ୍ୟଦ୍ରବ୍ୟ ସମ୍ଭାର ସଙ୍ଗେ ତୁଳନା କରାଯିବା ସୌନ୍ଦର୍ଯ୍ୟ ।

ରୂପପ୍ରତିମା—ଗ୍ରା. ବି. ସୁନ୍ଦରମୂର୍ତ୍ତି,ସୁନ୍ଦର ବ୍ୟକ୍ତି ।

ରୂପଭାଗ--ଗ୍ରା.ବି.ରାଶିଆଦିର ଲଘୁକରଣ-ପ୍ରକ୍ରିୟା, ପୂର୍ଣ୍ଣରାଶିର ଭଗ୍ନାଂଶ ।

ରୂପଭାଗାନୁବନ୍ଧ—ପୁଂ.ବି.ମୂଳରାଶି ସହିତ ଭଗ୍ନାଂଶ ସଂକଳନ ।

ରୂପଭେକ—ଗ୍ରା. ବି. ରୂପ ଓ ବେଶ, ଚେହେରା ଓ ପୋଷାକ ।

ରୂପଭେଦ—ପୁଂ. ବି. (୬ତତ୍) ବିଭିନ୍ନ ରୂପ,ରୂପାନ୍ତର,ରୂପର ବିଭିନ୍ନତା, ତନ୍ତ୍ରବିଶେଷ ।

ରୂପଭୋଗ—ବି.(୬ତତ୍)କୌଣସି ବସ୍ତୁର ବା ବ୍ୟକ୍ତିର ସୌନ୍ଦର୍ଯ୍ୟକୁ ଅନୁଭବକରି ସୁଖଭୋଗ କରିବା ।

ରୂପଭୋଗବାସନା— ବି. ସୌନ୍ଦର୍ଯ୍ୟ ଉପଭୋଗ କରିବାର ଇଚ୍ଛା ।

ରୂପମଞ୍ଜରୀ—ସ୍ତ୍ରୀ. ବି. ଶ୍ରୀରାଧାଙ୍କର ସଖୀବିଶେଷ ।

ରୂପମଧୁର—ପୁଂ.ବିଂ. ମୋହକର ରୂପବିଶିଷ୍ଟ, (ସ୍ତ୍ରୀ) ରୂପମଧୁରା ।

ରୂପମୟ—ବିଂ.(ରୂପ + ମୟ)ଅତି ସୁନ୍ଦର, ଆକାରବିଶିଷ୍ଟ, (ସ୍ତ୍ରୀ) ରୂପମୟୀ ।

ରୂପମାଧୁର୍ଯ୍ୟ—ବି. (୬ତତ୍)ଆକାରର ବା ସୌନ୍ଦର୍ଯ୍ୟର ମଧୁରତା ।

ରୂପମୋହ—ବି. ସୌନ୍ଦର୍ଯ୍ୟଦ୍ୱାରା ମୁଗ୍ଧ ହେବା ଅବସ୍ଥା ।

ରୂପଯୁକ୍ତ—ପୁଂ.ବିଂ.ଆକାରବିଶିଷ୍ଟ, (ସ୍ତ୍ରୀ) ରୂପଯୁକ୍ତା ।

ରୂପଯୌବନ—କ୍ଲୀ.ବି.ରୂପ ଓ ଯୌବନ, ସୌନ୍ଦର୍ଯ୍ୟ ଓ ଯୁବାବସ୍ଥା ।

ରୂପଯୌବନସମ୍ପନ୍ନ—ପୁଂ. ବି. (୩ତତ୍) ଯାହାର ଯୌବନ ଓ ଯୁବାବସ୍ଥା ଉଭୟ ଅଛି, (ସ୍ତ୍ରୀ) ସମ୍ପନ୍ନା ।

ରୂପରଙ୍ଗ—ଗ୍ରା. ବି. ରୂପ ଓ ବର୍ଣ୍ଣ ।

ରୂପରସ—ବି.(ଦ୍ୱନ୍ଦ୍ୱ) ବସ୍ତୁର ଆକାର ଓ ସ୍ୱାଦ ।

ରୂପରାଶି—ବି. (୬ତତ୍) ଏକତ୍ର ଅବସ୍ଥିତ ରୂପ ସମୂହ, ରୂପର ଆଧିକ୍ୟ,(ଗଣିତ) ଯେଉଁ ରାଶିର ମୂଳ ପୂର୍ଣ୍ଣ ସଂଖ୍ୟାରେ ବାହାର କରାଯାଇପାରେ ।

ରୂପରେଖ—ଗ୍ରା.ବି.ଆକାର ଓ ଆକାରର ସୀମାରେଖା, ରୂପର ଅଭିବ୍ୟକ୍ତି (ବିଂ) ସର୍ବାଙ୍ଗ ସୁନ୍ଦର, ପରିପାଟି ଯୁକ୍ତ ।

ରୂପରେଖା—ସ୍ତ୍ରୀ. ବି. (୬ତତ୍) ରୂପର ଅଭିବ୍ୟକ୍ତି ।

ରୂପଲାବଣ୍ୟ—ବି. (୬ତତ୍) ସୁନ୍ଦର ବା ମୋହନରୂପ ।

ରୂପଲାବଣ୍ୟବାନ୍—ପୁଂ. ବିଂ.ଲାବଣ୍ୟମୟ ରୂପବିଶିଷ୍ଟ, (ସ୍ତ୍ରୀ) ରୂପଲାବଣ୍ୟବତୀ ।

ରୂପବତୀ—ସ୍ତ୍ରୀ.ବିଂ. (ରୂପ + ବତ୍ + ଈ) ସୁରୂପା, ସୁନ୍ଦରୀ, (ବି) ସଂସ୍କୃତ ଚମ୍ପକମାଳାବୃତ୍ତି ।

ରୂପବନ୍ତ—ଗ୍ରା. ପୁଂ.ବିଂ.ସୁମୂର୍ତ୍ତି,ସ୍ୱରୂପ, ସୁନ୍ଦର ।

ରୂପବର୍ଣ୍ଣ—ବି. ( ଦ୍ୱନ୍ଦ୍ୱ ) ରୂପ ଓ ବର୍ଣ୍ଣ, ଆକାର ଓ ରଙ୍ଗ ।

ରୂପବାନ୍—ପୁଂ. ବିଂ. ( ରୂପ + ବତ୍ ) ଆକାରବିଶିଷ୍ଟ,ସୌନ୍ଦର୍ଯ୍ୟଯୁକ୍ତ,ସୁରୂପ, ସୁନ୍ଦର, (ସ୍ତ୍ରୀ) ରୂପବତୀ ।

ରୂପବିପର୍ଯ୍ୟୟ—ବି. (ରୂପ + ବିପର୍ଯ୍ୟୟ) ରୂପର ବୈପରୀତ୍ୟ ।

ରୂପବିଶିଷ୍ଟ—ବିଂ.(୩ତତ୍)ଆକାରବିଶିଷ୍ଟ, ସୌନ୍ଦର୍ଯ୍ୟବିଶିଷ୍ଟ, (ସ୍ତ୍ରୀ) ରୂପବିଶିଷ୍ଟା ।

ରୂପବିହୀନ—ପୁଂ.ବିଂ.(୩ତତ୍)ନିରାକାର, (ସ୍ତ୍ରୀ) ରୂପବିହୀନା ।

ରୂପବେଶ-ବି.(ଦ୍ୱନ୍ଦ୍ୱ)ଆକାର ଓ ପୋଷାକ

ରୂପବୈଶିଷ୍ଟ୍ୟ—ବି. (୬ତତ୍) ଆକାରର ବିଶିଷ୍ଟତା, ଅତିଶୟ ସୁନ୍ଦରତା ।

ରୂପଶାଳୀ—ପୁଂ. ବିଂ. ସୌନ୍ଦର୍ଯ୍ୟବିଶିଷ୍ଟ, ସୌନ୍ଦର୍ଯ୍ୟଶାଳୀ, ରୂପବାନ୍, ( ସ୍ତ୍ରୀ ) ରୂପଶାଳିନୀ ।

ରୂପଶୂନ୍ୟ—ବିଂ. ( ୩ତତ୍ ) ନିରାକାର, କଦାକାର । [ ସୁଶ୍ରୀ ।

ରୂପସ—ଯା.ପୁଂ. ବିଂ.ରୂପବାନ୍,ସୁନ୍ଦର,

ରୂପସମୃଦ୍ଧ—ପୁଂ.ବିଂ. ରୂପଶାଳୀ,ଯାହାର ରୂପରେ କୌଣସି ତ୍ରୁଟି ନାହିଁ ।

ରୂପସମୃଦ୍ଧି—ସ୍ତ୍ରୀ. ବି. ସୌନ୍ଦର୍ଯ୍ୟାତିଶଯ୍ୟ ।

ରୂପସମ୍ପଦ୍(ତ୍ତି)—ସ୍ତ୍ରୀ. ବି. ଉତ୍ତମରୂପ-ସୌନ୍ଦର୍ଯ୍ୟ, କମନୀୟତା, ସୌନ୍ଦର୍ଯ୍ୟ-

ରୂପ ଧନ ।
ରୂପସାଗର—ବି. ସାଗର ସଙ୍ଗେ ତୁଳନା କରାଯିବା ରୂପ ।
ରୂପସୀ-ଯା.ସ୍ତ୍ରୀ.ବିଂ.ସୁନ୍ଦରୀ,ରୂପବତୀ(ସ୍ତ୍ରୀ) ।
ରୂପସୁନ୍ଦର—ବିଂ. (ତତ୍ପୁ) ସୁନ୍ଦର ରୂପ ବିଶିଷ୍ଟ ।
ରୂପସ୍ଥ—ବିଂ. ରୂପଯୁକ୍ତ । [ ବିଶିଷ୍ଟ ।
ରୂପସ୍ୱୀ—ପୁଂ.ବିଂ. ରୂପବାନ୍,ସୌନ୍ଦର୍ଯ୍ୟ
ରୂପହାନି—ସ୍ତ୍ରୀ. ବି. ରୂପନାଶ, ନ୍ୟାୟମତେ ବିରୋଧ ବାକ୍ୟ ବିନ୍ୟାସର ପ୍ରକାର ବିଶେଷ ।
ରୂପହୀନ—ପୁଂ. ବିଂ. (ତତ୍ପୁ)ନିରାକାର, କୁରୂପ, (ସ୍ତ୍ରୀ) ରୂପହୀନା ।
ରୂପା—ଗ୍ରା. ବି. ରୌପ୍ୟ, ରୂପ୍ୟ ।
ରୂପାଜୀବା—ସ୍ତ୍ରୀ. ବି. (ବ.ବ୍ରୀ) ବେଶ୍ୟା, ଦାସୀ, ନଟୀ, ମହାସୀ ।
ରୂପାଧିବୋଧ—ପୁଂ. ବି. (୬ତତ୍) ଦୃଶ୍ୟ ବସ୍ତୁର ଜ୍ଞାନ ଇନ୍ଦ୍ରିୟ ଦ୍ୱାରା ଉପଲବ୍ଧି ।
ରୂପାନ୍ତର—ବି. (ରୂପ+ଅନ୍ତର) ଭିନ୍ନରୂପ, ବିଭିନ୍ନ ଆକାର, ଅବସ୍ଥାନ୍ତର, ନୂତନ ଅବସ୍ଥା ବା ଭାବ, ଭିନ୍ନବେଶ ।
ରୂପାନ୍ତରିତ—ବିଂ. ଭିନ୍ନ ଆକାରରେ ପରିଣତ,ନୂତନ ଅବସ୍ଥା ବା ଭାବପ୍ରାପ୍ତ ।
ରୂପାଭସ୍ମ—ଗ୍ରା. ବି. ଆୟୁର୍ବେଦୋକ୍ତ ପ୍ରକ୍ରିୟାରେ ରୂପାକୁ ପୋଡ଼ି କରାଯିବା ପାଉଁଶ ।
ରୂପାଳିଆ—ଗ୍ରା. ବିଂ. ରୌପ୍ୟମିଶ୍ରିତ, ରୂପାପରି ଦେଖାଯିବା, ଶୁକ୍ଳ ।
ରୂପାବଳୀ-ସ୍ତ୍ରୀ.ବି.ଶବ୍ଦର ବିଭକ୍ତି ବର୍ଣ୍ଣନା ।
ରୂପାଶ୍ରୟ—ପୁଂ.ବି.ସୁନ୍ଦର ପୁରୁଷ,ଯାହାକୁ ରୂପ ଆଶ୍ରୟ କରିଅଛି । [ ମଦନ ।
ରୂପାସ୍ତ୍ର—ପୁଂ. ବିଂ. (ବ.ବ୍ରୀ) କାମଦେବ,
ରୂପିକା—ସ୍ତ୍ରୀ. ବି. ଧଳା ଅରଖ ଗଛ ।
ରୂପିଣୀ—ସ୍ତ୍ରୀ. ବିଂ. (ରୂପ+ଇନ୍+ଈ) ରୂପବିଶିଷ୍ଟା(ସ୍ତ୍ରୀ),ସୁନ୍ଦରୀ,ରୂପଧାରିଣୀ ।
ରୂପିତ—ପୁଂ.ବିଂ. (ରୂପ+ଇତ)ରୂପଯୁକ୍ତ, ରଚିତ, ବର୍ଣ୍ଣିତ, (ବି) ଏକପ୍ରକାର ଉପନ୍ୟାସ,ଯହିଁରେ ଜ୍ଞାନ ବୈରାଗ୍ୟାଦି ପ୍ରାଣୀର ରୂପେ କଳ୍ପିତ ହୁଅନ୍ତି ।

ରୂପିବା—ଗ୍ରା. କ୍ରି. ପଠାଇବା, ଆଗରେ ଦେଖାଇବା ।
ରୂପୀ—ପୁଂ. ବିଂ. (ରୂପ+ଇନ୍) ରୂପଯୁକ୍ତ, ରୂପବିଶିଷ୍ଟ, ସାକାର, ମୂର୍ତ୍ତିବିଶିଷ୍ଟ, (ସ୍ତ୍ରୀ)ରୂପିଣୀ । [ ଟଙ୍କା ।
ରୂପୀ—ଯା. ବି. ବାନ୍ଦର, ରୌପ୍ୟ ମୁଦ୍ରା.
ରୂପେ—ଗ୍ରା. ଅ. ପରି ।
ରୂପେନ୍ଦ୍ରିୟ—ପୁଂ. ବି. ( କ.ଧା ) ରୂପଗ୍ରହଣୋପଯୋଗୀ ଇନ୍ଦ୍ରିୟ, ଚକ୍ଷୁ ।
ରୂପୋପଜୀବନ—ବି. ବହୁରୂପୀ, ସୁନ୍ଦର ମୂର୍ତ୍ତି ଦେଖାଇ ଜୀବିକାର୍ଜ୍ଜନକାରୀ ।
ରୂପୋପଜୀବିନୀ—ସ୍ତ୍ରୀ ବି. ବେଶ୍ୟା ।
ରୂପୋପଜୀବୀ—ବି. (ରୂପ+ଉପଜୀବନ୍) ବହୁରୂପୀ ।
ରୂପ୍ୟ—ପୁଂ.ବିଂ.(ରୂପ+ଯ) ରୂପବାନ୍. ସୁନ୍ଦର, ଉପମେୟ, (ସ୍ତ୍ରୀ) ରୂପ୍ୟା,(ବି) ସ୍ୱର୍ଣ୍ଣ, ରୌପ୍ୟ, ରୂପା ।
ରୂପ୍ୟକ—ବି. (ରୂପ୍ୟ+କ) ଟଙ୍କା ।
ରୂପ୍ୟମୟ—ବିଂ. ରୂପାରେ ତିଆରି ।
ରୂପ୍ୟମୁଦ୍ରା--ବି.ରଜତମୁଦ୍ରା,ରୂପାଟଙ୍କା ।
ରୂପ୍ୟାଧ୍ୟକ୍ଷ—ପୁଂ. ବି. (ରୂପ୍ୟ+ଅଧ୍ୟକ୍ଷ) ଟାଙ୍କଶାଳାର ଅଧ୍ୟକ୍ଷ ।
ରୂମ—କ୍ଲୀ. ବି. ଜନପଦବିଶେଷ ।
ରୂମାଲ—ଯା. ବି. ମୁଖମାର୍ଜନୀ ।
ରୂର—ନି. ବିଂ. ଉତ୍ତପ୍ତ, ଅଗ୍ନିଦଗ୍ଧ ।
ରୂରୁକ—ପୁଂ. ବି. ଜଡ଼ାଗଛ, ଗବଗଛ ।
ରୂଷକ—ପୁଂ. ବି. ବାସକ, ବାସଙ୍ଗ ।
ରୂଷଣ—କ୍ଲୀ.ବି. ସଜ୍ଜା, ଶୋଭିତକରଣ, ଅନୁଲେପନ, ଆଚ୍ଛାଦନ, ଅଳଂକରଣ, ମ୍ରକ୍ଷଣ, ବୋଳିବା ।
ରୂଷିତ—ବିଂ.(ରୂଷ୍+ମି.ତ)ଅଳଂକୃତ, ଭୂଷିତ, ଚୂର୍ଣ୍ଣିତ, ମ୍ରକ୍ଷିତ, ଲେପିତ, ଖଣ୍ଡିତ, ଭଗ୍ନ ।
ରେ—ଅ. (ରୁ+ଭା.ଏ) ସମ୍ବୋଧନ, ନୀଚ ସମ୍ବୋଧନବିଶେଷ, ରେ, ହଇରେ ।
ରେ—ଗ୍ରା. ଅ. ୭ମୀ ବିଭକ୍ତିର ଚିହ୍ନ, ଭିତରେ, ଠାରେ, ନିକଟରେ, (ପ୍ରାଚୀନ ପଦ୍ୟ) ୨ୟା ବିଭକ୍ତିର "କୁ" ୩ୟା ବିଭକ୍ତିର ଚିହ୍ନ ଦ୍ୱାରା, ରେ ।

ରେଅତ୍—ଯା. ବି. ପ୍ରଜା ।
ରେଆତ୍—ଯା.ବି. ସ୍ୱତ୍ୱତ୍ୟାଗ, ମାର୍ଜନା, ଅନୁଗ୍ରହ, ଛାଡ଼, ମାଫ୍ ।
ରେକ—ପୁଂ. ବି. (ରେକ୍+ଅ) ଶଙ୍କା, ନୀଚତା, ସନ୍ଦେହ, ବିରେଚନ, ପତଳା ଝାଡ଼ା, ଭେକ ।
ରେକଣସ୍—କ୍ଲୀ. ବି. ସ୍ୱର୍ଣ୍ଣ ।
ରେକକଣ୍ଟି—ଗ୍ରା.ସ୍ତ୍ରୀ.ବିଂ.କୃଶକଟି, ଯେଉଁ ସ୍ତ୍ରୀର ଅଣ୍ଟା ଖୁବ୍ ସରୁଆ ।
ରେକଟା—ଗ୍ରା.ବି. ମଜା ହୋଇ ନଥିବା ଅଇଣ୍ଠା ବାସନରେ ଲାଗି ରହିଥିବା ଭୁକ୍ତ ଅନ୍ନାଦିର ଶୁଷ୍କ ଓ ଟାଣୁଆ କଣା ।
ରେକ(କା,କେ)ଟିବା—ଗ୍ରା.କ୍ରି. ହାଡ଼ଆଦି ଟାଣୁଆ ପଦାର୍ଥରେ ଲାଗିଥିବା ମାଂସଆଦିକୁ ଦାନ୍ତ ଦ୍ୱାରା ପୁନଃପୁନଃ ଦଂଶନ କରିବା ।
ରେକର୍ଡ଼(ର୍ଡ଼)—ଯା. ବି. ମକଦ୍ଦମାଆଦିର ନଥି, ଗ୍ରାମୋଫନ ବାଜାରେ ଖଞ୍ଜାଯିବା ଗୋଲ ଚକ୍ର ପଟା, ଯହିଁରେ ଗୀତମାନଙ୍କର ଦାଗ ଅଙ୍କିତ ଥାଏ ଓ କଣ୍ଟା ଘଷି ହେଲାରୁ ଗୀତର ସ୍ୱର ବାହାରେ ।
ରେକରେ—ଗ୍ରା. ଅ. ଦ୍ୱାରା, ସାହାଯ୍ୟରେ, ଯୋଗୁଁ, ହେତୁ ।
ରେକା—ସ୍ତ୍ରୀ.ବି.ସନ୍ଦେହ,ଭେକ,ବେଙ୍ଗ ।
ରେକାବ୍—ଯା.ବି. କ୍ଷୁଦ୍ର ଭୋଜନ ପାତ୍ର, ଘୋଡ଼ାର ଜିନ୍ ସଲଗ୍ନ ପାଉଁଦାନ, ଅଶ୍ୱଚଢିବାରେ ପଦ ରଖିବାର ଲୌହବଳୟ ।
ରେକାବି-ଯା. ବି. ଭୋଜନ ପାତ୍ରବିଶେଷ, ଥାଳିଆ ।
ରେକୁ—କ୍ରି. ବିଂ. ଶୂନ୍ୟ, ସ୍ୱଜନ ପରିତ୍ୟକ୍ତ, ନିର୍ଜନ, ଗୁପ୍ତ ।
ରେକେ—ଗ୍ରା.ବି.ବିଂ.ଏକ ରେକା ପରିମାଣ ମାତ୍ର, ବୁଢ଼ାଆଙ୍ଗୁଠି ଓ ମଝିଆଙ୍ଗୁଠି ଦ୍ୱାରା ବେଷ୍ଟିତ ହୋଇ ଧରାଯିବା ଗୁଚ୍ଛ ପରିମିତ, ବେକେ ।
ରେଖ—ଗ୍ରା. ବି. ରେଖା, ଚିହ୍ନ, ସିନ୍ଦୂର, କଜ୍ଜ୍ୱଳଆଦିର ଅଙ୍କିତ ରେଖା, ଚର୍ମର

ରେଖା, କେଶ ମଧ୍ୟସ୍ଥ ରେଖା, ଟେର, କଲଙ୍କ ।

ରେଖନ—ବି(ରେଖ୍+ଭା.ଅନ)ଲେଖିବା, ରେଖା ଟାଣିବା ।

ରେଖା—ସ୍ତ୍ରୀ.ବି(ଲିଖ୍+ଅ+ଆ)ଦେହରେ ଥିବା ଶୁଭାଶୁଭ ସୂଚକ ଚିହ୍ନ, ଗାର, ଶ୍ରେଣୀ, ଧାଡ଼ି, ବିସ୍ତାରବିହୀନ ଦୈର୍ଘ୍ୟ, ଲିମ୍ବାକୃତ ଚିହ୍ନ,ଆଭୋଗ, ପରିପୂର୍ଣ୍ଣତା, ଧୂର୍ତ୍ତତା, ଛଳ, ଉଲ୍ଲେଖ, ସୂକ୍ଷ୍ମ ଗାର, ଗଣନା, ସୁମାର, ଆକୃତି, ଆକାର, ହାତଆଦି ଅଙ୍ଗରେ ଦେଖାଯିବା ଗାର, ଚନ୍ଦ୍ରାଦିର ସୀମାରେଖା ।

ରେଖା(ଖେ)ଇବା—କ୍ରି. କ୍ରି. ରେଖା କାଟିବା, ଅଙ୍କିତକରିବା, ଚିହ୍ନଦେବା ।

ରେଖାଂଶ—ପୁଂ.ବି.ଦ୍ରାଘିମାଂଶ,ଯାମ୍ୟୋତ୍ତର ବୃତ୍ତର ଏକ ଏକ ଡିଗ୍ରୀ ।

ରେଖାକ୍ଷରବର୍ଣ୍ଣମାଳା—ବି.ସଂକ୍ଷିପ୍ତ ଅକ୍ଷରର ସାଙ୍କେତିକ ଚିହ୍ନଯୁକ୍ତ ଶବ୍ଦମାନ, ଯେଉଁ ଶବ୍ଦ ବା ଅକ୍ଷର ଚିହ୍ନ ମାନଙ୍କରୁ ଜଣାଯାଏ ।

ରେଖାଗଣିତ—ବି.(କ.ଧା)ଗଣିତ ଗ୍ରନ୍ଥବିଶେଷ, ଜ୍ୟାମିତି କ୍ଷେତ୍ରତତ୍ତ୍ୱ ।

ରେଖାଙ୍କନ—ବି(୬ତତ୍ପୁ)ରେଖାକାଟିବା ।

ରେଖାଙ୍କିତ—ବିଂ.(୩ତତ୍ପୁ)ଯାହା ରେଖା ଦ୍ୱାରା ଚିହ୍ନିତ କରାଯାଇଅଛି ।

ରେଖାଚିହ୍ନ—ବି. (ରୂପ-କ.ଧା) ରେଖାରୂପ ଗୋଟିଏ ଚିହ୍ନ ।

ରେଖାଚିହ୍ନିତ—ବିଂ.(୩ତତ୍ପୁ)ରେଖାଙ୍କିତ ଦେଖ ।

ରେଖାନ୍ତର—କ୍ଳୀ. ବି. ଦ୍ରାଘିମାନ୍ତର, ଭୂମଣ୍ଡଳରେ କୌଣସି ସ୍ଥାନର ଅବସ୍ଥିତି ନିର୍ଣ୍ଣୟାର୍ଥ ଅକ୍ଷାଂଶ ଓ ଦ୍ରାଘିମାକ୍ରମେ ଦୂରତ୍ୱ ।

ରେଖାପଞ୍ଚମୀ—ଗ୍ରା.ବି.ଭାଦ୍ର କୃଷ୍ଣପଞ୍ଚମୀ ।

ରେଖାପାତ—ବି. (୬ତତ୍ପୁ) ରେଖାଙ୍କନ, ରେଖାଚିହ୍ନ, ରେଖା ଟାଣିବା ।

ରେଖାଭୂମି—ସ୍ତ୍ରୀ.ବି. ଲଙ୍କା ଓ ସୁମେରୁ ପର୍ବତର ମଧ୍ୟଗତ ଅଂଶ ।

ରେଖାମାଳ—ଗ୍ରା.ବି.ହାତର ଆଙ୍ଗୁଠିରେ ଥିବା ରେଖାଦ୍ୱାରା ଜପ,କରମାଳା ଜପ ।

ରେଖାଲଗି—ଗ୍ରା. ବି. ରକ୍ଷାପଞ୍ଚମୀ ଦିନ ରାଖି ବନ୍ଧନରୂପ ଉତ୍ସବ ।

ରେଖିବା—ଗ୍ରା. କ୍ରି. ରେଖା କାଟିବା, ଅଙ୍କିତକରିବା, ରେଖା ଦ୍ୱାରା ଚିହ୍ନିତ କରିବା ।

ରେଖୀ—ପୁଂ.ବିଂ(ରେଖା+ଇନ୍)ରେଖାଯୁକ୍ତ, ରେଖାବିଶିଷ୍ଟ ।

ରେଖୁ—ଯା.ବି.ଟିଣର ବା ଲୁହାର ପଟି ।

ରେଖେ—ଗ୍ରା.ଅ. ଟିକେମାତ୍ର, ସାମାନ୍ୟ ମାତ୍ର ।

ରେଖେରେଖେ—ଗ୍ରା.କ୍ରି.ବିଂ. ପ୍ରତ୍ୟେକ ଅଂଶରେ ।

ରେଗଡ଼ା—ଗ୍ରା. ବିଂ. କର୍କଶ, ମୋଟା; ଖଦଡ଼ା, ବନ୍ଧୁର, କଙ୍କରମୟ ।

ରେଗଡ଼ାବାଲି—ଗ୍ରା. ବି. ଖଦଡ଼ଆ ବା ବଡ଼ ବଡ଼ ଦାନାବିଶିଷ୍ଟ ବାଲି ।

ରେଗିସ୍ତାନ୍—ଯା. ବି. ମରୁଦେଶ, ମାରବାଡ଼ ଦେଶ ।

ରେଙ୍ଗାଲ୍—ପ୍ରା.(ସମ୍ବ)ବି. ଶାଳୁଆକାଠ ।

ରେଙ୍ଗାଲି—ଗ୍ରା. ବି. କାଠର ମଞ୍ଜି, ମଞ୍ଜିକାଠ ।

ରେଙ୍ଗୁନ୍—ଯା.ବି.ବ୍ରହ୍ମଦେଶର ରାଜଧାନୀ ଓ ବନ୍ଦର ।

ରେଚ—ପୁଂ.ବି. ଫୁସ୍‌ଫୁସ୍ ବାୟୁ ନିର୍ମୁକ୍ତୀକରଣ ରୂପ ଯୋଗ ପ୍ରକ୍ରିୟାବିଶେଷ ।

ରେଚକ—ବି. ( ରିଚ+ଣିଚ୍+ଅକ ) ଯବକ୍ଷାର,କ୍ରୀଡ଼ାର୍ଥ ଜଳ ନିକ୍ଷେପ ଯନ୍ତ୍ର, ପିଚକାରି, କଙ୍କୁଷ୍ଠ ମୃତ୍ତିକା, ତିଳକବୃକ୍ଷ, ଜୁଲାପ,ମଳଭେଦକାରକ ଔଷଧ, କନକାଗଛ, (ଯୋଗଶାସ୍ତ୍ର) ପ୍ରାଣାୟାମ କାଳରେ ପେଟ ମଧ୍ୟରେ ପୂରକ ଦ୍ୱାରା ସଂଗୃହୀତ ବାୟୁକୁ ନାକର ଡାହାଣ ପୁଡ଼ା ବାଟେ ଆସ୍ତେ ଆସ୍ତେ ତ୍ୟାଗ କରିବା, (ବିଂ) ମଳଭେଦକ, ଯାହା ଝାଡ଼ା କରାଏ ।

ରେଚନ—କ୍ଳୀ. ବି. (ରେଚ+ଭା.ଅନ) ମଳଭେଦନ, ଝାଡ଼ାକରାଇବା, ପରିତ୍ୟାଗ,ପତଳା ଝାଡ଼ା; ରେଚକ ଔଷଧ ।

ରେଚନକ—ପୁଂ. ବି. (ରେଚନ+କ) କମଳାଗୁଣ୍ଡି ।

ରେଚନା—ସ୍ତ୍ରୀ. ବି. କାମ୍ପିଲ୍ଲ ।

ରେଚନୀ—ସ୍ତ୍ରୀ.ବି(ରେଚନ+ଈ)ସୁନାମୁଖୀ କେଇ, ଧଳାତିହୁଡ଼ି, କମଳାଗୁଣ୍ଡି, ଦନ୍ତୀ, ବଟପତ୍ରୀ ।

ରେଚିତ—ବିଂ. (ରେଚ+ମ.ତ)ତ୍ୟକ୍ତ, ନିଃସାରିତ, ଝାଡ଼ା ଦ୍ୱାରା ବାହାର କରାଯିବା, (ବି) ଘୋଡ଼ାଙ୍କର ଏକପ୍ରକାର ଗତି, ନୃତ୍ୟରେ ହାତ ହଲାଇବାର ଏକ ରୀତି ।

ରେଚୀ—ସ୍ତ୍ରୀ. ବି. ( ରେଚ+ଅ+ଈ ) ଆଙ୍କୋଷ୍ଟ, କମ୍ପିଲ୍ଲକ ।

ରେଚ୍ୟ—ପୁଂ. ବି. ପ୍ରାଣାୟାମାଙ୍ଗ ମୁଚ୍ୟମାନ ବାୟୁ, (ବିଂ) ଭେଦକ ।

ରେଜ୍‌କି—ଯା.ବି. ଟଙ୍କା ଅପେକ୍ଷା କ୍ଷୁଦ୍ର ଅଳ୍ପ ମୂଲ୍ୟର ମୁଦ୍ରା, (ପଇସା ବ୍ୟତୀତ) ଦୋଣି, ସୁକି, ଅଧୁଲି, ଅଣି, (ବିଂ) ଖୁଚୁରା, ଅଳ୍ପ ମୂଲ୍ୟର (ମୁଦ୍ରା) ।

ରେଜା—ଯା.ବିଂ. ଖୁଚୁରା, ଅଳ୍ପ ମୂଲ୍ୟର (ମୁଦ୍ରା), ବ୍ୟବହାରରୁ ବଳି ପଡ଼ିଥିବା କ୍ଷୁଦ୍ର କ୍ଷୁଦ୍ର (ଖଣ୍ଡ), ବାଜେ,(ବି) ଖୁଚୁରା ଜିନିଷ, (ପ୍ରା. ସମ୍ବ. ସ୍ତ୍ରୀ. ବି) ଟୋକା ମୂଲିଆଣୀ ।

ରେଜିଆ(ୟା)—ଯା. ବି. ଭାରତର ୧୩ଶ ଶତାବ୍ଦୀର ପ୍ରଥମଭାଗରେ ରାଜତ୍ୱ କରୁଥିବା ଦାସବଂଶୀୟ ମୁସଲମାନ ରାଜବଂଶର ଜଣେ ରାଣୀ ।

ରେଜିମେଣ୍ଟ—ଯା.ବି.ସେନାର ଏକଭାଗ ।

ରେଜିଷ୍ଟ୍ରର—ଯା. ବି. ଦଲିଲଆଦିକୁ ଚିହ୍ନିତ କରିବା ପାଇଁ ନିଯୁକ୍ତ ରାଜକର୍ମଚାରୀ, ହାଇକୋର୍ଟର ପ୍ରଧାନ ଅଧସ୍ତନ କର୍ମଚାରୀ,ବିଶ୍ୱବିଦ୍ୟାଳୟର ପ୍ରଧାନ ଅଧସ୍ତନ କର୍ମଚାରୀ ।

ରେଜିଷ୍ଟ୍ରୀ—ଯା.ବି.ନିର୍ଦ୍ଧାରିତ ନିୟମାନୁସାରେ ନିର୍ଦ୍ଧାରିତ ସମ୍ବାଦ ଲିପିବଦ୍ଧ ହେବା ନିମନ୍ତେ ବ୍ୟବହୃତ ବହି ନିର୍ଦ୍ଧାରିତ ନିୟମାନୁସାରେ ନିର୍ଦ୍ଧାରିତ ବିଷୟମାନ ଲିପିବଦ୍ଧ କରିବା କାର୍ଯ୍ୟ ଓ

ପକ୍ଷମାନଙ୍କ ସ୍ୱାକ୍ଷରିତ ବା ସମ୍ପାଦିତ କରିବା ଦଲିଲମାନଙ୍କୁ ଚିହ୍ନିତ କରିବା ପ୍ରକ୍ରିୟା ।
ରେକେଇ—ଯା.ବି. ତୋଷକ, ଭିତରେ ତୁଳାଦିଆ ପତଳା ଶେଯ ।
ରେଞ୍ଜ—ଯା. ବି. ସହକାରୀ ବନବିଭାଗ ଓ ଅନ୍ୟାନ୍ୟ ବିଭାଗର ଶାସନ ସୌକର୍ଯ୍ୟାର୍ଥ ବିଭକ୍ତ ହୋଇଥିବା ଜିଲ୍ଲାର ବା ଅଞ୍ଚଳର ଭିନ୍ନ ଭିନ୍ନ ଖଣ୍ଡ ।
ରେଞ୍ଜର—ଯା.ବି. ରକ୍ଷିତ ଜଙ୍ଗଲମାନଙ୍କର ତତ୍ତ୍ୱାବଧାରକ ରାଜକର୍ମଚାରୀ ।
ରେଣ୍ଡି—ପ୍ରା. (କଳାହାଣ୍ଡି)ବି. ଦଉଡ଼ି ।
ରେଟ୍—ଯା. ବି. ଭାଉ, ଦର, ମୂଲ୍ୟର ନିର୍ଦ୍ଦିଷ୍ଟତା,ନିୟମ,ହାରଦର,ଅନୁପାତ ।
ରେଡ଼ା(ଢ଼ା)ଖୋଲ—ଗ୍ରା.ବି. ସମ୍ବଲପୁର ନିକଟବର୍ତ୍ତୀ ଗୋଟିଏ ଓଡ଼ିଆ ଗଡ଼ଜାତ ରାଜ୍ୟ ।
ରେଡ଼ି—ଯା. ବିଂ. ପ୍ରସ୍ତୁତ, କୌଣସି କାର୍ଯ୍ୟ କରିବା ପାଇଁ ପ୍ରସ୍ତୁତ ।
ରେଡ଼ି—ଗ୍ରା.ବି. ଗବ, ଏରଣ୍ଡ, (ଯା.ବି) ଗୋଡ଼ର ଗୋଇଠି, ଗୋଇଠା ।
ରେଡ଼ିଅମ୍—ଯା. ବି. ଖ୍ରୀଷ୍ଟ ୧୮୯୮ ରେ ଆବିଷ୍କୃତ ଅଦ୍ଭୁତ ଶକ୍ତିବିଶିଷ୍ଟ ମୌଳିକ ଧାତୁବିଶେଷ ।
ରେଡ଼ିଓ—ଯା.ବି. ବହୁ ଦୂରରେ ଉଚ୍ଚାରିତ ଶବ୍ଦ ଓ ଗୀତଆଦି ଶୁଣିବା ପାଇଁ ବ୍ୟବହୃତ ବେତାର ବୈଦ୍ୟୁତିକ ଯନ୍ତ୍ର ।
ରେଡ୍ଡି—ଗ୍ରା. ବି.ମାନ୍ଦ୍ରାଜ ପ୍ରଦେଶର ଧନୀ ଅବ୍ରାହ୍ମଣ ଜାତିବିଶେଷ ।
ରେଣୁ—ପୁଂ.ବି.(ରି+କ.ନୁ)ଧୂଳି,ପାଂଶୁ, ପରାଗ, ଗୁଣ୍ଡ, ଚୂର୍ଣ୍ଣ, ଅଣୁ, ରେଣୁକା, ବିଡ଼ଙ୍ଗ, ଅତିସୂକ୍ଷ୍ମ ପରିମାଣ, ବାଲି,ଏକ କଡ଼ା କଉଡ଼ିର ୩୨୦ଭାଗରୁ ଏକଭାଗ, କଣିକା ।
ରେଣୁକ—ଗ୍ରା. ବି. ଔଷଧରେ ବ୍ୟବହୃତ ମରିଚାକୃତି ସୁଗନ୍ଧ ଫଳବିଶେଷ ।
ରେଣୁକଦମ୍ବକ—ପୁଂ. ବି. ଧୂଳିକଦମ୍ବ ।
ରେଣୁକା—ସ୍ତ୍ରୀ. (ରେଣୁ+କ+ଆ)ବାଲି, ଧୂଳି, ରେଣୁକ ଦେଖ, ରେଣୁକାନାମ୍ନୀ ତୀର୍ଥ, ପରଶୁରାମଙ୍କ ମାତା ।
ରେଣୁକାସୁତ—ପୁଂ.ବି.(ରେଣୁକା+ସୁତ) ପରଶୁରାମ ।
ରେଣୁଗର୍ଭ—ପୁଂ. ବି. ଜ୍ୟୋତିଶାସ୍ତ୍ରୋକ୍ତ ହୋରାନିର୍ଣ୍ଣାୟକ ଯନ୍ତ୍ରବିଶେଷ,ବାଲୁକାପୂର୍ଣ୍ଣ ଘଣ୍ଟାଦି ଓ ପୁଷ୍ପାଦି ।
ରେଣୁପଦବୀ—ସ୍ତ୍ରୀ. ବି. ଧୂଳିମୟ ପଥ ।
ରେଣୁପାଲକ—ପୁଂ. ବି. ପ୍ରବରାଧ୍ୟାୟୋକ୍ତ ଋଷିବିଶେଷ ।
ରେଣୁରୂଷିତ—ପୁଂ.ବି.ଗର୍ଦ୍ଦଭ,ଗଧ, (ବିଂ) ଧୂଳିମ୍ରକ୍ଷିତ, ଧୂଳିସରସର ।
ରେଣୁବାସ—ପୁଂ. ବି. (ବ.ବ୍ରୀ)ଭ୍ରମର ।
ରେଣୁସାର—ପୁଂ. ବି. (ବ.ବ୍ରୀ)କର୍ପୂର ।
ରେଣୁସାରକ—ପୁଂ. ବି. (ରେଣୁସାର+କ) କର୍ପୂର ।
ରେଣ୍ଟ—ଗ୍ରା. ବି.ଜମିଦାରୀର ସୀମା,ବୁଢ଼ାଆଙ୍ଗୁଠିଅଗରୁ ତର୍ଜନୀର ଅଗ୍ରଭାଗପର୍ଯ୍ୟନ୍ତ ବିସ୍ତୃତ ସ୍ଥାନର ପରିମାଣ ।
ରେଣ୍ଡି—ଗ୍ରା.ବି. ଏକଜିଦ୍,ଜିଦମାରିବା, ରୂକ୍ଷ କଥା ।
ରେଣ୍ଡିଆ—ପ୍ରା. ବିଂ. ଏକଜିଦିଆ, ବିଷମ (ଜମିଆଦି) ।
ରେଣ୍ଡୀ—ଗ୍ରା. ବିଂ. ରଣ୍ଡୀ ଦେଖ ।
ରେତଃ—ବି. (ରୀ+ଅସ୍) ଶୁକ୍ର, ବୀର୍ଯ୍ୟ, ପାରଦ, ପାରା, ଧୂଳି,ସନ୍ତାନ,(ବୈଦିକ) ପାପ, ସ୍ରୋତ, ଜଳ ।
ରେତଃକୁଲ୍ୟା—ସ୍ତ୍ରୀ. ବି. ନରକବିଶେଷ ।
ରେତଃକୁଣ୍ଡ—ହିମାଳୟୋପରିସ୍ଥ ତୀର୍ଥବିଶେଷ ।
ରେତଃକ୍ଷରଣ—ବି.(୬ତତ୍ପୁ)ଶୁକ୍ରର ପତନ
ରେତଃପତନ(ପାତ)—ବି.(୬ତତ୍ପୁ)ଶୁକ୍ରର ପତନ । [ କ୍ଷରଣ ।
ରେତଃସ୍ଖଳନ(ସ୍ରାବ)—ବି.(୬ତତ୍ପୁ) ଶୁକ୍ର-
ରେତ—ବି. (ରି+କ.ଅ)ରେତଃ ଦେଖ
ରେତଜଃ—ପୁଂ. ବିଂ. (ରେତ+ଜନ୍+ଅ) ରେତୋଜାତ, (ସ୍ତ୍ରୀ) ରେତଜା, (ବି) ସନ୍ତାନ, ପୁଅ ।
ରେତଜା—ସ୍ତ୍ରୀ. ବି. ବାଲୁକା, ବାଲି,ମରୁଭୂମି, କନ୍ୟା ।
ରେତନ—କ୍ଲୀ. ବି.(ରୀ+କ.ଅନ)ବୀର୍ଯ୍ୟ, ଶୁକ୍ର ।
ରେତପ୍ରଣାଳୀ—ବି.(୬ତତ୍ପୁ)ବୀର୍ଯ୍ୟବାହିନୀନଳୀ, ପୁରୁଷର ଲିଙ୍ଗ ।
ରେତ(ତୋ)ମାର୍ଗ—ବି.ବୀର୍ଯ୍ୟବାହିନୀନଳୀ, ପୁରୁଷର ଲିଙ୍ଗ ।
ରେତସ—ପୁଂ.ବି.ଶୁକ୍ର,ରେତଃ ଦେଖ ।
ରେତସେକ—ବି.(ମୈଥୁନ ଦ୍ୱାରା ସ୍ତ୍ରୀର) ଗର୍ଭରେ ବୀର୍ଯ୍ୟ ସ୍ଥାପନ ।
ରେତସ୍ୟ—ପୁଂ. ବିଂ. ବୀଜ ବହନକାରୀ, ବହିଷ୍ପବମାନ ସ୍ତୋତ୍ରର ୧ମ ଶ୍ଳୋକ ।
ରେତସ୍ୱାନ୍—ପୁଂ.ବିଂ.ବୀଜଯୁକ୍ତ,ଗର୍ଭିତ ।
ରେତସ୍ୱୀ—ପୁଂ. ବିଂ. ଉର୍ବର, ଉତ୍ପାଦକଶକ୍ତି ପୂର୍ଣ୍ଣ, ବୀଜାପ୍ଳୁତ ।
ରେତି—ଗ୍ରା. ବି. ଉହା ।
ରେତୀ—ପୁଂ.ବିଂ.ରେତୋଧାରୀ,ଗର୍ଭିତ ।
ରେତୋଧା—ସ୍ତ୍ରୀ. ବିଂ. ଗର୍ଭିଣୀ, ଶୁକ୍ରଧାରଣ କରି ଯାହାର ଗର୍ଭ ହୋଇଅଛି ।
ରେତୋଧେୟ—କ୍ଲୀ. ବି. ଗର୍ଭଧାରଣ ।
ରେତୋଭକ୍ଷଣ—ବି. ଶୁକ୍ର ରୂପ ଅପେୟ ଦ୍ରବ୍ୟ ଭକ୍ଷଣ । [ ଲିଙ୍ଗ ।
ରେତୋମାର୍ଗ—ପୁଂ.ବି.ଶୁକ୍ରନିର୍ଗମନ ପଥ,
ରେତ୍ୟ—କ୍ଲୀ. ବି. (ରୀ+କ.ଯ)ପିତ୍ତଳ ।
ରେବ—କ୍ଲୀ. ବି. (ରୀ+କ.ର) ରେତ, ପୀୟୂଷ, ପଟ୍ଟବାସ, ସୂତକ, ପାରଦ, ସୁବାସିତ ଚୂର୍ଣ୍ଣ ।
ରେନ୍ଦା—ଗ୍ରା. ବି.ଘଷା, ମଳା ।
ରେନ୍ଦିବା—ଗ୍ରା. କ୍ରି. ଘଷିବା, ଘଷି ମଳି ଆଦି ଛଡ଼ାଇବା, ମାଜିବା ।
ରେପ—ପୁଂ. ବିଂ. (ରପ୍+କ.ଅ)ନିନ୍ଦିତ, କ୍ରୂର, ନୀଚ, କୃପଣ, (ସ୍ତ୍ରୀ) ରେପା ।
ରେପସ—ବିଂ.ଅବଦ୍ୟ,ଅନିନ୍ଦନୀୟ,ଅଧମ, କ୍ରୂର, କୃପଣ ।
ରେଫ—ପୁଂ. ବି. ( ର+ଇଫ ) ରବର୍ଣ୍ଣ, ରକାର, ହଲନ୍ତ, 'ର'ଅକ୍ଷର କୌଣସି ବର୍ଣ୍ଣ ପୂର୍ବରେ ରହିଲେ ତାହାର ଚିହ୍ନରୂପେ ସେହି ବର୍ଣ୍ଣର ମୁଣ୍ଡଉପରେ ଡାହାଣ ପାଖରେ ଦିଆଯିବା ' ' ଚିହ୍ନ, ଭ୍ରମରର ରେଫାକୃତି ଦୁଇଟି କଣ,

(ରଫ+ଘ.ଅ) ରାଗ, କ୍ରୋଧ, ସ୍ନେହ, ଶବ୍ଦ, ବିଂ. (ରିପ+ର୍ମି.ଅ) ପଶ୍ଚାତ୍‌ସ୍ଥ, ନୀଚ, ଅଧମ, କୃପଣ, କ୍ରୂର,(ପ୍ରା. ଯଜପୁର) କପର୍ଦ୍ଦକ ମାତ୍ର ।

ରେଫଣ—ବି.(ରେଭ+ଘ.ଅନ) ହମ୍ବାଲ. ଗୋରୁମାନଙ୍କର ହମ୍ବାରବ ।

ରେଫଜାନ୍--ପୁଂ.ବିଂ.ରେଫଯୁକ୍ତ,ରେଫବିଶିଷ୍ଟ ।

ରେଫାଃ—ପୁଂ. ବିଂ. (ରଫ+କ.ଅସ୍) କ୍ରୂର, ଅଧମ, ଦୁଷ୍ଟ,ନୀଚ,ହୀନ,କୃପଣ ।

ରେଫୀ—ପୁଂ. ବିଂ. (ରେଫ+ଇନ୍) ରେଫଯୁକ୍ତ ।

ରେଭ—ପୁଂ.ବିଂ.କର୍କଶ ଶବ୍ଦକାରୀ,ପ୍ରତିବାଦକ, ବୃଥା ବାକ୍ୟ ବ୍ୟୟକାରୀ, (ବି) ଋଷିବିଶେଷ ।

ରେଭଣ—କ୍ଲୀ.ବି. ଗୋଧ୍ୱନି, ହମ୍ବାରଡ଼ି ।

ରେଭନ୍ୟୁ—ଯା. ବି.ଖଜଣା, ଭୂମିକର ।

ରେରା—ଗ୍ରା. ବି. ଉଚ୍ଚରବରେ ଲୋକଙ୍କୁ ଡାକିବା, ଉଚ୍ଚରବ, ଉକାର, ଉ ତା, ରେ ରା ।

ରେରିହ—ବି. ଜିହ୍ୱାଦ୍ୱାରା ପୁନଃ ପୁନଃ ଲେହନ ।

ରେରିହାଣ—ପୁଂ.ବି.ଶିବ,ଅସୁର, ଚୌର

ରେରେ—ଗ୍ରା.ଅ.ଶତ୍ରୁ ପ୍ରତି ଆକ୍ରମଣକାରୀ ବୀରର ତର୍ଜନ ଧ୍ୱନି, ସମ୍ବୋଧନ ସୂଚକ ଶବ୍ଦ ।

ରେରେକାର—-ଗ୍ରା. ବି. ଶତ୍ରୁଆକ୍ରମଣକାରୀର ଆସ୍ଫାଳନ ଶବ୍ଦ ।

ରେଲ(ଲ)-ଯା.ବି.ଲୌହବର୍ତ୍ମ, ଲୌହବର୍ତ୍ମରେ ବାଷ୍ପ ଚାଳିତ ଗାଡ଼ି ।

ରେଲଓ୍ୱେ-ଯା. ବି.ଲୌହବର୍ତ୍ମ, ରେଲ ସଡ଼କ ବା ରାସ୍ତା ।

ରେଲି—ପ୍ରା. (ଗଞ୍ଜାମ)ବି. ଗଞ୍ଜାମ ଅଞ୍ଚଳରେ ବାସ କରୁଥିବା ଅସ୍ପୃଶ୍ୟ ଜାତିବିଶେଷ ।

ରେବଟ—ବି. (ରେବ+କ.ଅଟ)ଦକ୍ଷିଣାବର୍ତ୍ତି ଶଙ୍ଖ, ଶୂକର, ଧୂଳି, ରେଣୁ, ବିଷବୈଦ୍ୟ, କଦଳୀଗଛ, ଦୂର୍ଣ୍ଣିବାୟୁ.ଯାଦୁବିଦ୍ୟା, ସାପୁଆକେଳା,ବେଣୁ,ବାଉଁଶ, ବାତୁଳ ବ୍ୟକ୍ତି ।

ରେବନ୍ତ--ପୁଂ.ବି.(ରେବ୍+ଅନ୍ତ)ଜମ୍ବୀର, ସୁନାରିଗଛ, ବଳରାମଙ୍କ ସ୍ତ୍ରୀ ରେବତୀଙ୍କ ପିତା, ପିଜୁଳି (ଗଛ ଓ ଫଳ), ବର୍ଷବିଶେଷ ।

ରେବତକ—ବି. (ରେବନ୍ତ + କ) ପାରାବତ, ପିଜୁଳି (ଗଛ ଓ ଫଳ) ।

ରେବତି—ସ୍ତ୍ରୀ. ବି. କାମପତ୍ନୀ, ରତି ।

ରେବତୀ—ସ୍ତ୍ରୀ.ବି. (ରେବତ+ଅ+ଈ) ନକ୍ଷତ୍ରବିଶେଷ, ମାତୃକାବିଶେଷ,ବଳଦେବଙ୍କ ପତ୍ନୀ, ଦୁର୍ଗା, ବାଳଗ୍ରହବିଶେଷ, ରୈବତମନୁଙ୍କ ମାତା,ଚନ୍ଦ୍ରଙ୍କ ପତ୍ନୀ ।

ରେବତୀକାନ୍ତ—ପୁଂ.ବି.(ବ.ବ୍ରୀ)ରେବତୀରମଣ ଦେଖ ।

ରେବତୀଭବ—ପୁଂ. ବି. (ରେବତୀ+ଭୂ+କ.ଅ) ରେବତୀଜାତ ଶନିଗ୍ରହ ।

ରେବତୀରମଣ—ପୁଂ.ବି. (୬ତତ୍ପୁ)ବଳରାମ, ବିଷ୍ଣୁ, ଚନ୍ଦ୍ର ।

ରେବତୀଶ—ପୁଂ. ବି. (ରେବତୀ+ଈଶ) ବଳରାମ ବିଷ୍ଣୁ, ଚନ୍ଦ୍ର ।

ରେବତ୍ୟ—ବିଂ. ପ୍ରସିଦ୍ଧ, ସୁନ୍ଦର ।

ରେବନ୍ତ-ପୁଂ.ବି. ସୂର୍ଯ୍ୟଙ୍କ ପୁତ୍ରବିଶେଷ ।

ରେବନ୍ତମନୁସୂ—ସ୍ତ୍ରୀ. ବି. (ରେବନ୍ତ+ମନୁସୂ) ସଂଜ୍ଞା ।

ରେବା—ସ୍ତ୍ରୀ. ବି. (ରେବ+ଅ+ଆ) ନର୍ମଦା ନଦୀ, କାମପତ୍ନୀ, ରତି, ନୀଳୀବୃକ୍ଷ, ଦୁର୍ଗା ।

ରେବାଜ୍(ଦ୍)—ଯା. ବି. ରୀତି,ଅଭ୍ୟାସ ।

ରେଶମ—ଯା. ବି. ଉର୍ଣ୍ଣା, ପଶମ, ପାଟ, ଏକପ୍ରକାର ପୋକର ଗୋଟିରୁ ବାହାରିବା ମସୃଣ ସୂତା ।

ରେଶମୀ—ଯା. ବିଂ. ରେଶମରୁ ଉତ୍ପନ୍ନ, ରେଶମ ସୂତ୍ରନିର୍ମିତ, ରେଶମ ପରି କୋମଳ ଓ ଚିକ୍କଣ,ରେଶମ ସମ୍ବନ୍ଧୀୟ ।

ରେଶ୍ୟଦାରୀ—-ପୁଂ. ବିଂ. ହିଂସିତର ପ୍ରତିହିଂସାକାରୀ ।

ରେଷ—ପୁଂ. ବି. କ୍ଷତି, ହାନି, ହିଂସା ।

ରେଷଣ—କ୍ଲୀ. ବି. (ରେଷ+ଅନ) ଅଶ୍ୱଶବ୍ଦ, ହ୍ରେଷାରବ,ବ୍ୟାଘ୍ର ଚିତ୍କାର, ସିଂହର ଗର୍ଜନ,ହିଂସନ,ଆଘାତକରଣ, କ୍ଷତି. ହିଂସା ।

ରେଷା—ସ୍ତ୍ରୀ. ବି. ବ୍ୟାଘ୍ରନିନାଦ, ଅଶ୍ୱର ହ୍ରେଷାରବ, (ଗ୍ରା.ବି) ଲକ୍ଷ, ଈର୍ଷା, କ୍ରୋଧ, ହିଂସା, ଦସ୍ତୁର ।

ରେଷୀ—ପୁଂ. ବିଂ. ହିଂସାଶୀଳ ।

ରେଷ୍ଟ—ପୁଂ. ବିଂ. କ୍ଷତିକାରକ, ହିଂସାକାରୀ, ଦ୍ୱେଷୀ, ଦ୍ୱେଷ୍ଟା ।

ରେଷ୍ମଚ୍ଛିନ୍ନ—ତ୍ରି.ବିଂ. ପ୍ରଳୟଙ୍କର ଝଞ୍ଜା ପବନରେ ଛିନ୍ନଭିନ୍ନ ବା ବିଦୀର୍ଣ୍ଣ ।

ରେଷ୍ମମଥିତ—ତ୍ରି. ବିଂ. ପ୍ରଳୟ ପବନରେ ବିଧ୍ୱସ୍ତ ।

ରେଷ୍ମା—ପୁଂ. ବି. ପ୍ରଳୟକାଳ ।

ରେଷ୍ମ୍ୟ—ତ୍ରି. ବିଂ. ପ୍ରଳୟକାଳେ ଯେ ବିଦ୍ୟମାନ ଥାଏ ।

ରେସାଲ୍(ଲ)—ଯା. ବି. ତୁର୍କିସର୍ଦ୍ଦାର ।

ରେସିଡ଼େଣ୍ଟ—ଯା.ବି.ମିତ୍ରରାଜାଙ୍କ ସଭାରେ ସମ୍ରାଟଙ୍କ ପକ୍ଷରୁ ପ୍ରତିନିଧିଭାବେ ନିଯୁକ୍ତ ରାଜକର୍ମଚାରୀ ।

ରେସ୍ପାଡ଼େଣ୍ଟ୍—ଯା. ବି. ଅପିଲ ମକଦ୍ଦମା ଦାଏର କରିଥିବା ପକ୍ଷର ବିପକ୍ଷ ପକ୍ଷ, (ବିପରୀତ-ଅପିଲାଣ୍ଟ) ।

ରେହ(ହା)—ଗ୍ରା.ବି.(ଫ-ରେଖା)ରେଖା, ଗାର, ରେଖାଚିହ୍ନ, ଲମ୍ବାଚିହ୍ନ ।

ରେହେଁଟି—ପ୍ରା. (ସମ୍ବ) ବି. ଅରଟ ।

ରୈ—(ରା+ଐ) ଧନ,ସ୍ୱର୍ଣ୍ଣ,ଶବ୍ଦ, ରବ ।

ରୈଖିକ—ବିଂ. (ରେଖା + ଇକ) ରେଖା ସମ୍ବନ୍ଧୀୟ ।

ରୈଣୁକେୟ—ପୁଂ. ବି. ରେଣୁକା ଗର୍ଭଜାତ ପଶୁରାମ ।

ରୈତସ—ତ୍ରି. ବିଂ. ରେତଃ ସମ୍ବନ୍ଧୀୟ ।

ରୈତିକ—ତ୍ରି. ବିଂ. ରୀତି ବା ପିତ୍ତଳ ସମ୍ବନ୍ଧୀୟ ବା ତଦ୍ଘଟିତ ।

ରୈତ୍ୟ—ତ୍ରି. ବିଂ. (ରୀତି+ଯ) ପିତ୍ତଳନିର୍ମିତ, ରୀତିଜନିତ, ପିତ୍ତଳଜାତ,(ସ୍ତ୍ରୀ) ରୈତ୍ୟା ।

ରୈବତ—ବି. (ରେବତୀ+ଅ) ବିନ୍ଧ୍ୟପର୍ବତର ପଶ୍ଚିମସ୍ଥ ପର୍ବତବିଶେଷ, ଦୈତ୍ୟ

ବିଶେଷ, ଶିବ, ଚତୁର୍ଦ୍ଦଶ ମନୁଙ୍କ ମଧ୍ୟରୁ ପଞ୍ଚମମନୁ,ପିଜୁଳି(ଗଛ ଓ ଫଳ),ମେଘ ।

**ରୈରୈ**—ଗ୍ରା.ବି. ରେରେକାର ଦେଖ ।

**ରୈବତକ**—ପୁଂ. ବି. ରୈବତ ପର୍ବତ, ପିଜୁଳି (ଗଛ ଓ ଫଳ) ।

**ରୈବତକ**—ପୁଂ.ବିଂ.(ରେବତୀ+ଇକ) ରେବତୀ ପୁତ୍ର ।

**ରୋ**—ଗ୍ରା. ଅ. ଲୋ ଦେଖ ।

**ରୋଇବା**—ଗ୍ରା. କ୍ରି. ରୋପଣ କରିବା ।

**ରୋକ୍**—ଗ୍ରା. ବି. ନିଷେଧ କରିବା,ବାଧା-ଦେବା, ନଗଦ ଦାମ୍‌ରେ ବିକିଖରିଦ୍ ଆଦି କାରବାର ।

**ରୋକ୍‌ଠୋକ୍**—ଗ୍ରା. କ୍ରି. ବିଂ. ନଗଦା-ନଗଦ, ଠଣଠାଣ, ହାତେ ହାତେ (ଟଙ୍କାଦେବା), ନଗଦ ଦାମ୍ ଆଦାନ-ପ୍ରଦାନ ପୂର୍ବକ,ସାଙ୍ଗେସାଙ୍ଗେ ମୀମାଂସା କରିବା ପ୍ରକାରେ,(ବି)ନଗଦ ଦିଆଯିବା (ଧନ), ସଙ୍ଗେ ସଙ୍ଗେ ମୀମାଂସିତ ବା କୃତ(କର୍ମ) ।

**ରୋକ**—ବି. (ରୁଚ୍+ଭା.ଅ) ଦୀପ୍ତି,ପ୍ରଭା, (ଅଧି.କ) ବିବର, ଗର୍ତ୍ତ, ଛିଦ୍ର, ପୀଡ଼ା, ନଗଦ ଖରିଦ, (ରୁ+କ.କ) ନୌକା, (ଗ୍ରା.ବି) ରୋକ୍ ଦେଖ, ବିକ୍ରମ, ବଳ, ସାହସ ।

**ରୋକଡ଼**—ଯା.ବି. ଆୟବ୍ୟୟ କମ୍ବା ଜମା ଖରଚ ଲେଖିବାର ବହି, ନଗଦ ଧନ, ସଞ୍ଚିତ ଧନ, ପାଣ୍ଠି ।

**ରୋକେସୋଡ଼୍**—ଯା.ବି. ବିଦାୟ,ମେଲାଣି, (ବିଂ) ବିଦାୟପ୍ରାପ୍ତ ।

**ରୋକସୋଢ**—ଯା. ବି. ବିଦାକ ।

**ରୋକା**—ଯା. ବି. ହାତଚିଠି, ରସିଦ୍, ଗୋଜା, ହେଣ୍ଡନୋଟ୍, ହୁଣ୍ଡୀ ।

**ରୋକିବା**—ଗ୍ରା. କ୍ରି. ଗତି ରୋଧକରିବା, ଅଟକାଇବା, ସ୍ଥଗିତ କରିବା, ମନା-କରିବା,(ଲ:ଅର୍ଥ)ଅନ୍ୟବ୍ୟକ୍ତିର ସ୍ୱାଧୀନ ଚଳଚଲଣିକୁ ନିୟନ୍ତ୍ରିତ କରିବା, (ପ୍ରା. ଖଡ଼ିଆଲ. କ୍ରି) ଢାଳିଦେବା ।

**ରୋଗ**—ବି. ( ରୁଜ୍+ଭା.ଅ ) ଆମୟ, ବ୍ୟାଧି, ପୀଡ଼ା, ସ୍ୱାସ୍ଥ୍ୟହାନି,( ଲ.ଅର୍ଥ ) ମନ୍ଦଅଭ୍ୟାସ ।

**ରୋଗକାରକ**—ବିଂ. ପୀଡ଼ାଉତ୍ପାଦକ ।

**ରୋଗକାଷ୍ଠ**—କ୍ଲୀ. ବି. ପଦ୍ମାଙ୍କ ଚନ୍ଦନ, ବକମ କାଠ ।

**ରୋଗକୃତ୍**—ବିଂ. (ରୋଗ+କୃ+କ୍ୱିପ୍) ପୀଡ଼ାଉତ୍ପାଦକ ।

**ରୋଗକ୍ଲିଷ୍ଟ**—ବିଂ. (୩ତତ୍ପୁ)ରୋଗାକ୍ରାନ୍ତ, ପୀଡ଼ିତ ।

**ରୋଗକ୍ଷୟ**—ବି. (୬ତତ୍ପୁ) ସମ୍ପୂର୍ଣ୍ଣରୂପେ ଆରୋଗ୍ୟଲାଭ ।

**ରୋଗଖାଇବା**—ଗ୍ରା. କ୍ରି. ବି. ରୋଗ ପ୍ରବଳଭାବରେ ଆକ୍ରମଣ କରିବା ।

**ରୋଗଗ୍ରସ୍ତ**—ବିଂ. ( ୩ତତ୍ପୁ ) ଜ୍ୱରଯୁକ୍ତ, ପୀଡ଼ିତ, ପୀଡ଼ାଗ୍ରସ୍ତ ।

**ରୋଗଘ୍ନ**—କ୍ରି. ବିଂ. ରୋଗନାଶକ,ଯାହା ରୋଗନାଶକରେ,(ବି)ଔଷଧ,ବୈଦ୍ୟ ।

**ରୋଗଚର୍ଯ୍ୟା**—ବି. ( ୬ତତ୍ପୁ ) ରୋଗକୁ ଆରୋଗ୍ୟ କରିବା ପାଇଁ ଅବଲମ୍ବିତ ନାନାଉପାୟ ।

**ରୋଗଚିହ୍ନିବା**—ଗ୍ରା. କ୍ରି. ଲକ୍ଷଣମାନଙ୍କୁ ଦେଖି ପ୍ରକୃତ ରୋଗକୁ ସ୍ଥିରକରିବା ।

**ରୋଗଜନକ**—ବିଂ. (ରୋଗ+ଜନ୍+ କ.ଅକ) ଯାହା ରୋଗ ଜାତକରେ ।

**ରୋଗଜ୍ଞ**—ପୁଂ.ବି.(ରୋଗ+ଜ୍ଞା)ବୈଦ୍ୟ ।

**ରୋଗଜ୍ଞାନ**—କ୍ଲୀ. ବି. ରୋଗ ବିଷୟରେ ଅଭିଜ୍ଞତା ।

**ରୋଗଡେଇଁବା**—ଗ୍ରା କ୍ରି. ଏକବ୍ୟକ୍ତି-ଠାରୁ ଅନ୍ୟବ୍ୟକ୍ତିକୁ ରୋଗର ସଂକ୍ରମଣ ।

**ରୋଗଣଚକ୍ର**—ଗ୍ରା. ବି. ଯେଉଁ ଚକ୍ର ଉପରେ ବାର୍ନିସ୍ ଲିପା ହୋଇଥିବାରୁ ଚକ୍‌ଚକ୍ କରୁଥାଏ ।

**ରୋଗଦ**—କ୍ରି. ବିଂ. ପୀଡ଼ାଦାୟକ ।

**ରୋଗନ୍**—ଯା. ବି. ବାର୍ନିସ୍, ଜିନ୍‌ଆଦି ଚମଡ଼ାକୁ ଚକ୍‌ଚକ୍ କରିବା ନିମନ୍ତେ ବ୍ୟବହୃତ ସ୍ନେହପଦାର୍ଥ ।

**ରୋଗନାଶ**—ବି. ( ୬ତତ୍ପୁ ) ରୋଗକ୍ଷୟ ଦେଖ ।

**ରୋଗନାଶକ**—କ୍ରି. ବିଂ. ରୋଗହର, ଯାହା ରୋଗ ନାଶକରେ ।

**ରୋଗନିଦାନ**—କ୍ଲୀ.ବି. (୬ତତ୍ପୁ)ବ୍ୟାଧିର କାରଣ, ପୀଡ଼ାର ହେତୁ ।

**ରୋଗନିବୃତ୍ତି**—ବି. (୬ତତ୍ପୁ)ରୋଗଶାନ୍ତି ଦେଖ ।

**ରୋଗନିର୍ଣ୍ଣୟ**—ବି. (୬ତତ୍ପୁ) ଲକ୍ଷଣାଦି ପରୀକ୍ଷା ପୂର୍ବକ ପ୍ରକୃତ ରୋଗର ସ୍ଥିରୀ-କରଣ ।

**ରୋଗପତି**—ପୁଂ. ବି. (୬ତତ୍ପୁ) ଜ୍ୱର ।

**ରୋଗପରୀକ୍ଷା**—ବି.(୬ତତ୍ପୁ)ରୋଗନିର୍ଣ୍ଣୟ କରିବାପାଇଁ ରୋଗୀକୁ କରିବା ପରୀକ୍ଷା ।

**ରୋଗପୀଡ଼ା**—ବି.(କ.ଧା)ରୋଗର ଯନ୍ତ୍ରଣା ବା କଷ୍ଟ, ରୋଗଜନିତ କଷ୍ଟ ।

**ରୋଗପ୍ରକୋପ**—ବି. (କ.ଧା)ରୋଗପୀଡ଼ା ଦେଖ ।

**ରୋଗପ୍ରଦ**—ପୁଂ. ବିଂ. ଜ୍ୱରଦାୟକ ।

**ରୋଗଭାକ୍**—ପୁଂ.ବିଂ.ରୋଗଯୁକ୍ତ,ରୋଗୀ ।

**ରୋଗଭୂ**—ସ୍ତ୍ରୀ. ବି. ( ୬ତତ୍ପୁ ) ଦେହ, ଶରୀର ।

**ରୋଗବେଗ**—ବି.ରୋଗର ଯନ୍ତ୍ରଣାବେଗ, ରୋଗର ବ୍ୟାପ୍ତି ।

**ରୋଗମୁକ୍ତ**—ପୁଂ.ବିଂ. (୫ତତ୍ପୁ)ରୋଗରୁ ଭଲହୋଇଥିବା, ଆରୋଗ୍ୟପ୍ରାପ୍ତ ।

**ରୋଗମୁକ୍ତି**—ବି.(୫ତତ୍ପୁ)ଆରୋଗ୍ୟଲାଭ ।

**ରୋଗଯନ୍ତ୍ରଣା**—ବି.(କ.ଧା) ରୋଗଜନିତ କ୍ଲେଶ ।

**ରୋଗର ଘର**—ଗ୍ରା.ବି. ରୋଗଜନ୍ମିବାର ଅସଲ କାରଣ ।

**ରୋଗରାଉଳ**—ଗ୍ରା.ବି. ରୋଗ ଓ ମନ୍ତ୍ର-ଯନ୍ତ୍ରାଦିର ପ୍ରୟୋଗଜନିତ ବିପଦ ।

**ରୋଗରାଜ**—ପୁଂ.ବି.(୬ତତ୍ପୁ)ରାଜଯକ୍ଷ୍ମା, କ୍ଷୟରୋଗ ।

**ରୋଗଲକ୍ଷଣ**—ବି. ( ୬ତତ୍ପୁ ) ନିଦାନ, ରୋଗବ୍ୟଞ୍ଜକ ଚିହ୍ନ ।

**ରୋଗବାସ**-ଗ୍ରା.ବି.ଦୁର୍ବଳଭାବରେ ରୋଗର ଆକ୍ରମଣ ।

**ରୋଗବିଜ୍ଞାନ**—ବି. (ରୋଗ+ବିଜ୍ଞାନ) ରୋଗଜାଣିବାର ବିଶେଷ ଜ୍ଞାନ ।

**ରୋଗବିନିଶ୍ଚୟ**—ପୁଂ.ବି. ରୋଗନିଶ୍ଚୟ, ରୋଗନିର୍ଣ୍ଣୟ-ଗ୍ରନ୍ଥବିଶେଷ ।

ରୋଗବିଶିଷ୍ଟ—ପୁଂ.ବିଂ. (୬ତତ୍)ବ୍ୟାଧି-
ଯୁକ୍ତ, (ସ୍ତ୍ରୀ) ରୋଗବିଶିଷ୍ଟା । [ ସୁସ୍ଥ ।
ରୋଗବିହୀନ--ପୁଂ.ବିଂ.(୬ତତ୍)ନୀରୋଗ,
ରୋଗବୃଦ୍ଧି—ବି.(୬ତତ୍)ପୀଡ଼ାର ବୃଦ୍ଧି ।
ରୋଗଶାନ୍ତକ--ପୁଂ.ବି. (ରୋଗ+ଶାନ୍ତକ)
ବୈଦ୍ୟ,ଚିକିତ୍ସକ,(ବିଂ) ରୋଗନାଶକ ।
ରୋଗଶାନ୍ତି—ସ୍ତ୍ରୀ. ବି. (୬ତତ୍) ରୋଗ-
ମୁକ୍ତି,ପୀଡ଼ାର ଅପନୋଦନ,ଆରୋଗ୍ୟ
ଲାଭ ।
ରୋଗଶିଳା—ସ୍ତ୍ରୀ. ବି. ମନଃଶିଳା ।
ରୋଗଶୀର୍ଣ୍ଣ—ବିଂ.(୬ତତ୍) ରୋଗହେତୁ
ଦୁର୍ବଳ ।
ରୋଗଶୋକ—ବି. ଶାରୀରିକ ବ୍ୟାଧି ଓ
ମାନସିକ ଦୁଃଖ । [ ଜ୍ୱର ।
ରୋଗଶ୍ରେଷ୍ଠ—ପୁଂ. ବି.(ରୋଗ+ଶ୍ରେଷ୍ଠ)
ରୋଗହୃ(ହା)—ବି. (ରୋଗ+ହନ୍+
କ୍ୱିପ୍+ଆ) ଔଷଧ, ବୈଦ୍ୟ, (ବିଂ)
ରୋଗଘ୍ନ, ରୋଗନାଶକ । [ ବସ୍ତୁ ।
ରୋଗହରଦ୍ରବ୍ୟ—କ୍ଲୀ. ବି. ରୋଗନାଶକ
ରୋଗହାନି-ବି.(୬ତତ୍)ରୋଗକ୍ଷୟ ଦେଖ
ରୋଗହାରୀ—ପୁଂ.ବି.(ରୋଗ + ହାରିନ୍)
ବୈଦ୍ୟ, ଚିକିତ୍ସକ, (ପୁଂ.ବିଂ) ରୋଗ-
ନାଶକ, (ସ୍ତ୍ରୀ) ରୋଗହାରିଣୀ ।
ରୋଗହୃତ—ବିଂ. (ରୋଗ + ହୃ + କ୍ୱିପ୍)
ରୋଗନାଶକ ।
ରୋଗହେତୁ— ପୁଂ.ବି.(୬ତତ୍) ରୋଗର
କାରଣ । [ ଶମ ।
ରୋଗହ୍ରାସ—ବି. (୬ତତ୍)ପୀଡ଼ାର ଉପ-
ରୋଗା—ଗ୍ରା. ପୁଂ.ବିଂ.ପୀଡ଼ିତ, ରୁଗ୍‌ଣ,
ଭଗ୍ନସ୍ୱାସ୍ଥ୍ୟ, ରୋଗଯୋଗୁଁ କୃଶ ।
ରୋଗା(ଗେ)ଇବା—ଗ୍ରା.କ୍ରି.ରୋଗରେ
ଆକ୍ରାନ୍ତ ହେବା ।
ରୋଗାକ୍ରମଣ—ବି. ୬ତତ୍(ମନୁଷ୍ୟାଦିଙ୍କୁ)
ରୋଗଧରିବା ।
ରୋଗାକ୍ରାନ୍ତ—ପୁଂ. ବିଂ.(୬ତତ୍)ରୋଗ
ଗ୍ରସ୍ତ ଦେଖ,(ସ୍ତ୍ରୀ) ରୋଗାକ୍ରାନ୍ତା ।
ରୋଗାତୁର--ପୁଂ.ବିଂ.(୬ତତ୍)ରୋଗରେ
ବ୍ୟସ୍ତ ବା ଅସୁସ୍ଥ, (ସ୍ତ୍ରୀ) ରୋଗାତୁରା ।
ରୋଗାଧୀଶ—ପୁଂ.ବି. (ରୋଗ+ଅଧୀଶ)
ରାଜଯକ୍ଷ୍ମା, କ୍ଷୟରୋଗ ।
ରୋଗାପନୟନ—ବି. (୬ତତ୍)ରୋଗର
ଦୂରୀକରଣ ।
ରୋଗାପନୋଦନ—ବି.(୬ତତ୍)ରୋଗର
ଦୂରୀକରଣ ।
ରୋଗାବସାନ—ବି. (୬ତତ୍) ରୋଗର
ଶାନ୍ତି ବା ଉପଶମ ।
ରୋଗାର୍ତ୍ତ—ପୁଂ.ବିଂ. (୬ତତ୍)ରୋଗା-
କ୍ରାନ୍ତ, ରୋଗଗ୍ରସ୍ତ ।
ରୋଗିଆଳ--ପ୍ରା.(ସମ୍ବ)ବି.ବାୟାବିଲୁଆ ।
ରୋଗାସନ—ପୁଂ.ବି. ଜ୍ୱର ।
ରୋଗାହ୍ୱୟ—ପୁଂ.ବି. କୁଷ୍ଠୌଷଧି, କୁଡ଼
ରୋଗିଆ—ଗ୍ରା.ପୁଂ.ବିଂ. ବ୍ୟାଧିଗ୍ରସ୍ତ,ଭଗ୍ନ-
ସ୍ୱାସ୍ଥ୍ୟ ।
ରୋଗିଚର୍ଯ୍ୟା—ବି. (୬ତତ୍) ରୋଗୀର
ରୋଗକୁ ଆରୋଗ୍ୟ କରିବାପାଇଁ
ଅବଲମ୍ବିତ ନାନା ପ୍ରକ୍ରିୟା ।
ରୋଗିଣୀ—ସ୍ତ୍ରୀ.ବିଂ. ( ରୋଗିନ୍ + ଈ )
ବ୍ୟାଧିଗ୍ରସ୍ତା, ଚିରରୁଗ୍ଣା ।
ରୋଗିତ—କ୍ରି.ବିଂ. ରୋଗଯୁକ୍ତ,ପୀଡ଼ିତ,
(ବି) କୁକ୍କୁରର ଉନ୍ମାଦ ରୋଗ ।
ରୋଗିତରୁ—ପୁଂ.ବି. ଅଶୋକବୃକ୍ଷ ।
ରୋଗିବଲ୍ଲଭ—ବି.ଔଷଧ, (ବିଂ)ରୋଗୀ-
ପ୍ରିୟ । [ ଦେଖ ।
ରୋଗିଶୁଶ୍ରୂଷା-ବି. (୬ତତ୍)ରୋଗିଚର୍ଯ୍ୟା
ରୋଗୀ—ପୁଂ. ବିଂ. ( ରୋଗ+ଇନ୍ )
ରୋଗଯୁକ୍ତ, ବ୍ୟାଧିତ, ବ୍ୟାଧିଗ୍ରସ୍ତ,
ପୀଡ଼ିତ ।
ରୋଗୋଦକ—କ୍ଲୀ. ବି. ମଳିନ ଦୁର୍ଗ-
ନ୍ଧାଦିଯୁକ୍ତ ରୋଗଜନକ ଜଳ ।
ରୋଗୋପଶମ—ବି. (୬ତତ୍) ରୋଗ-
ନିବୃତ୍ତି ଦେଖ ।
ରୋଗୋପଶମନ--ବି.(୬ତତ୍)ଆରୋଗ୍ୟ-
କରଣ । [ ପଶମ ।
ରୋଗୋପଶାନ୍ତି—ବି. (୬ତତ୍)ରୋଗୋ-
ରୋଗ୍ୟ—କ୍ରି.ବିଂ. (ରୋଗ + ଯ)ଅପଥ୍ୟ,
ଅହିତ, ରୋଗଜନକ,ରୋଗସମ୍ବନ୍ଧୀୟ ।
ରୋଚ—କ୍ରି.ବିଂ.(ରୁଚ୍+ଅ)ରୁଚିକର,
ଆଲୋକିତ ।
ରୋଚକ—ପୁଂ.ବି. (ରୁଚ୍+ଣିଚ୍+କଃ
ଅ) କ୍ଷୁଧା, ଚଟଣି, ଗଣ୍ଠିଅନା ଗୁଳ୍ମ,
ଗ୍ରନ୍ଥିପର୍ଣ୍ଣାଦି, ରୁଚି, କଦଳୀ, ପିଆଜ,
ଅବଦଂଶ, (ବିଂ) ରୁଚିକାରକ, ଦୀପ୍ତି-
ପ୍ରଦ, ପ୍ରୀତିଜନକ, (ସ୍ତ୍ରୀ) ରୋଚକା ।
ରୋଚକଦ୍ରବ୍ୟ—କ୍ଲୀ.ବି. ବିଟ୍ ଓ ସୈନ୍ଧବ
ଲବଣଦ୍ରବ୍ୟ ।
ରୋଚକୀ-ପୁଂ.ବିଂ. କ୍ଷୁଧାଯୁକ୍ତ,ଇଚ୍ଛାଶୀଳ ।
ରୋଚନ—ବିଂ. ( ରୋଚ + କ.ଅନ )
ରୋଚକ ଦେଖ, (ବି) କୂଟଶାଳ୍ମଳୀ,
ଡାଳିମ୍ବ,କମଳାଗୁଣ୍ଡି,କରିପୋଲ ଫଳ,
କରନ୍ଦାକୋଳି, କାର୍ପାସ ବୃକ୍ଷବିଶେଷ,
ପଲାଣ୍ଡୁ,ଶ୍ୱେତ ସଜନାଗଛ,ସୁନାରିଗଛ,
କରଞ୍ଜ, ବାୟୁରେଚକ ଔଷଧ ।
ରୋଚନକ—ପୁଂ. ବି. (ରୋଚନ+କ)
ଟାଭାଲେମ୍ବୁଗଛ,ବଂଶଲୋଚନା,ରୋଚନ
ଦେଖ ।
ରୋଚନଫଳ—ପୁଂ.ବି. (ବ.ବ୍ରୀ) ବୀଜ-
ପୂରକ, ଟାଭାଲେମ୍ବୁଗଛ । [ କାକୁଡ଼ି ।
ରୋଚନଫଳା—ସ୍ତ୍ରୀ. ବି. ଚର୍ଭିଟା, ଫୁଟି-
ରୋଚନସ୍ଥା—ସ୍ତ୍ରୀ.ବି. ଆଲୋକରେ ଅବ-
ସ୍ଥାନକାରୀ, ଆକାଶରେ ବାସକାରୀ ।
ରୋଚନା—ସ୍ତ୍ରୀ.ବି. ( ରୁଚ୍+ଅନ+ଆ )
ରକ୍ତକହ୍ଲାର,ଗୋପିତ୍ତ,ଗୋରୋଚନା,
ବଂଶଲୋଚନା, ପର୍ବତବିଶେଷ, କୃଷ୍ଣ-
ଶାଳ୍ମଳୀ, ସ୍ୱର୍ଗ, ବସୁଦେବଙ୍କ ପତ୍ନୀ,
ଉତ୍ତମା ସ୍ତ୍ରୀ, ନିର୍ମଳ ଆକାଶ ।
ରୋଚନାବାନ୍—ପୁଂ.ବିଂ. ଆଲୋକଯୁକ୍ତ,
ଉଜ୍ଜ୍ୱଳ, ଦୀପ୍ତିମାନ୍ ।
ରୋଚନିକା—ସ୍ତ୍ରୀ.ବି. (ରୋଚନା+କ+
ଆ) ବଂଶଲୋଚନା, ଗୁଣ୍ଡାରୋଚନୀ,
କମଳାଗୁଣ୍ଡି ।
ରୋଚନୀ—ସ୍ତ୍ରୀ.ବି.(ରୋଚନ+ଈ)ଚୂନା,
ଖଟାପାଳଙ୍ଗ, ପୋଦନାଶାଗ,ଅଁଳା-
କୋଳି, ଗୋରୋଚନା, ମନଃଶିଳା,
ଶ୍ୱେତ ନିଶୁଣ୍ଡି, ଦନ୍ତୀ, ଦୀପ୍ତିମାନ୍
ଆକାଶ, ତାରକା ।
ରୋଚମାନ—ପୁଂ.ବି. (ରୁଚ୍+କ.ଆନ)
ଅଶ୍ୱ ଗ୍ରୀବାସ୍ଥ ରୋମାବର୍ତ୍ତବିଶେଷ,(ବିଂ)

ଦୀପ୍ୟମାନ, ଉଜ୍ଜ୍ୱଳ ।
ରୋଚଃ—ବି. (ରୁଚ୍+ଭା.ଇସ୍) ଆଭା, ଦୀପ୍ତି, କାନ୍ତି,ସୌନ୍ଦର୍ଯ୍ୟ,ଲାବଣ୍ୟ, ଛବି ।
ରୋଚବା—ଗ୍ରା.କ୍ରି.ରୁଚିବା ଦେଖ.ଖାଇବାକୁ ଯୋଗାଇବା ।
ରୋଚିଷ୍ଣୁ—ବିଂ. (ରୁଚ୍+ଇଷ୍ଣୁ) ଅଲଙ୍କାରାଦି ଦ୍ୱାରା ଦୀପ୍ତିଶାଳୀ, ଉଜ୍ଜ୍ୱଳ, କାନ୍ତିବିଶିଷ୍ଟ ।
ରୋଚିସ୍—କ୍ଲୀ.ବି.(ରୋଚ+ଇସ୍)ପ୍ରଭା, ଦୀପ୍ତି, ଛବି, କାନ୍ତି,ସୌନ୍ଦର୍ଯ୍ୟ,ଲାବଣ୍ୟ ।
ରୋଚ୍ୟ—ତ୍ରି.ବିଂ. (ରୁଚ୍+ର୍ମି.ଯ)ରୁଚିକର ଦେଖ, ରୋଚକ ଦେଖ, (ସ୍ତ୍ରୀ) ରୋଚ୍ୟା ।
ରୋଜ୍‌ନା—ଯ.ତ୍ରି.ବିଂ.ପ୍ରତିଦିନ,ଦିନକୁ, ଦିନ ହିସାବରେ ।
ରୋଜ୍‌ନାମଚ୍—ଯା.ବି.ଦୈନିକ ହିସାବର ବହି, ଡାଇରି, ଦୈନିକ ହାଜିରା ବହି, ଯେଉଁ ବହିରେ ଦୈନିକ ବିବରଣ ଲେଖାହୁଏ, ଦିନଲିପି ।
ରୋଜ—ଯା.ବି.ପ୍ରତିଦିନ,ନିତ୍ୟ,ତାରିଖ, ଦିବସ, (ବିଂ) ଦୈନିକ ।
ରୋଜଗାର—ଯା.ବି. ଆୟ, ଉପାର୍ଜନ ।
ରୋଜଗାରି—ପ୍ରା.(ବସ୍ତ୍ର)ବି. ଦୋକାନଦାର ।
ରୋଜଗାରି—ଗ୍ରା. ବିଂ. ଅର୍ଜନକାରୀଆ, ଅର୍ଜନକାରୀ । [ ବିଶେଷ ।
ରୋଜା—ଯା.ବି.ମୁସଲମାନମାନଙ୍କ ପର୍ବ-
ରୋଜାନା—ପ୍ରା.(ବାମଣ୍ଡା)ସ୍ତ୍ରୀ. ବି. ମାଲଗାଈଜାତୀୟ ପଶୁ ।
ରୋଜି—ଯା.କ୍ରି.ବିଂ. ପ୍ରତ୍ୟହ,ପ୍ରତିଦିନ ।
ରୋଜିନା—ଯା.ବିଂ. ପ୍ରତ୍ୟହ କର୍ତ୍ତବ୍ୟ, ଦୈନିକ, (ବି) ଦୈନିକ ଝଞ୍ଜା ।
ରୋଟ୍—ତ୍ରି.ବିଂ.(ରୁଟ୍+ଅ)ହିଂସ୍ର,ବଧକ ।
ରୋଟକବ୍ରତ—କ୍ଲୀ.ବି. ବ୍ରତବିଶେଷ ।
ରୋଟ(ଟା)—ଗ୍ରା.ବିଂ. ମୋଟ, ମୋଟା, ସ୍ଥୂଳ, ବଗଡ଼ା, କଠୋର, ଉଚ୍ଚ ସ୍ୱରଯୁକ୍ତ, ସ୍ଫୀତ ।
ରୋଟି—ସ୍ତ୍ରୀ.ବି. (ରୁଟ୍+କ.ଇ)ପିଷ୍ଟକବିଶେଷ, ରୁଟି, ପର୍ପଟିକା ।
ରୋଟିଆ—ଗ୍ରା.ବିଂ.ରୋଟ,ମୋଟା,ସ୍ଥୂଳ ।
ରୋଟିକା—ସ୍ତ୍ରୀ.ବି.(ରୁଟ୍+କ.ଅକ+ଆ) ରୁଟି, ଗହମ ଚୂନାରେ ପ୍ରସ୍ତୁତ କରାଯିବା ପିଠା ।
ରୋଟିନ୍—ଯା.ବି. ରୁଟିନ୍ ଦେଖ ।
ରୋଡ଼—ବିଂ. ସନ୍ତୁଷ୍ଟ, (ସ୍ତ୍ରୀ)ରୋଡ଼ା,(ବି) ଚୂରିବା, ରଗଡ଼ିବା ।
ରୋଡ଼ଙ୍ଗ—ଗ୍ରା.ବି. ପୁଷୁରିଜଲର ଗୋଟିଏ ଜମିଦାରୀ ।
ରୋଢ଼ା-ପୁଂ.ବିଂ.ଉଦ୍ଗମନଶୀଳ,ଅଙ୍କୁରିତ ।
ରୋଦ—ପୁଂ.ବି.(ରୁଦ୍+ଭା.ଅ)କ୍ରନ୍ଦନ, ଶୋକ ପ୍ରକାଶକରଣ, (ଣ.ଅ)ଅଶ୍ରୁ ।
ରୋଦଃ—ବି.(ରୁଦ୍+ଅଧି.ଅସ୍)ପୃଥିବୀ, ସ୍ୱର୍ଗ, ଆକାଶ ।
ରୋଦଃକୁହର—କ୍ଲୀ. ବି. ସ୍ୱର୍ଗମଣ୍ଡଳ, ଆକାଶରୂପ ଚନ୍ଦ୍ରାତପ ।
ରୋଦନ—କ୍ଲୀ.ବି. ( ରୁଦ୍+ଭା.ଅନ ) କ୍ରନ୍ଦନ, କାନ୍ଦଣା, (ଣ.ଅନ) ଲୋତକ ।
ରୋଦନକାରୀ—ପୁଂ.ବିଂ. (ରୋଦନ+କୃ+କ.ଇନ୍) କ୍ରନ୍ଦନକାରୀ,ଯେ କାନ୍ଦୁଥାଏ ।
ରୋଦନସମ୍ବଳ—ପୁଂ.ବିଂ.(ବ.ବ୍ରୀ)କାନ୍ଦିବା ହିଁ ଯାହାର ପ୍ରଧାନ ସହାୟ, (ସ୍ତ୍ରୀ) ସମ୍ବଳା, (ବି) ଶିଶୁ ।
ରୋଦ(ଧ)ନା—ଗ୍ରା. ବି. ଏକପ୍ରକାର ପୋଦିନାଶାଗ ।
ରୋଦନିକା—ସ୍ତ୍ରୀ.ବି. ଯବାସ ।
ରୋଦନୀ—ସ୍ତ୍ରୀ. ବି. ( ରୋଦନ+ଈ ) ଦୁରାଲଭା ।
ରୋଦନୀୟ—ପୁଂ. ବିଂ. (ରୁଦ୍+ଣିଚ୍+ର୍ମି.ଅନୀୟ)ଯାହା ନିମନ୍ତେ ଲୋକେ କାନ୍ଦନ୍ତି, (ସ୍ତ୍ରୀ) ରୋଦନୀୟା ।
ରୋଦନୋଦ୍ୟତ—ପୁଂ.ବିଂ. (ତତ୍ପୁ) କାନ୍ଦିବାକୁ ଉଦ୍ୟତ ।
ରୋଦନୋନ୍ମୁଖ—ପୁଂ.ବିଂ. ( ତତ୍ପୁ ) କାନ୍ଦିବାକୁ ଉଦ୍ୟତ ।
ରୋଦନ୍ତି—ଗ୍ରା.କ୍ରି. ରୋଦନ କରନ୍ତି ।
ରୋଦର—ବି. (ର+ଉଦର)ଚକ୍ରବାକପକ୍ଷୀ ।
ରୋଦସ—କ୍ଲୀ.ବି. (ରୁଦ୍+ଅସ୍)ସ୍ୱର୍ଗ, ଭୂମି, ଆକାଶ ।
ରୋଦସୀ—ସ୍ତ୍ରୀ.ବି.(ରୋଦସ୍+ଈ)ସ୍ୱର୍ଗ, ଭୂମି, ଆକାଶ, ପୃଥିବୀ ଓ ଆକାଶ ଉଭୟ ।
ରୋଦସ୍କନ୍ଦରକୁହର—ବି. ଆକାଶ ଓ ପୃଥିବୀ ମଧ୍ୟରେ ଥିବା ଶୂନ୍ୟସ୍ଥାନ ।
ରୋଦିତବ୍ୟ—କ୍ଲୀ.ବି. (ରୁଦ୍+ତବ୍ୟ) ରୋଦନୀୟ ଦେଖ ।
ରୋଦିବା—ଗ୍ରା.(ପଦ୍ୟ)କ୍ରି. କାନ୍ଦିବା ।
ରୋଦ୍ଧବ୍ୟ—ତ୍ରି.ବିଂ.(ରୁଧ୍+ର୍ମି.ତବ୍ୟ) ରୋଧନୀୟ ଦେଖ ।
ରୋଦ୍ଧା—ପୁଂ. ବି. ( ରୁଧ୍+କ.ତୃ ) ରୋଧକାରୀ, ପ୍ରତିରୋଧକ, (ସ୍ତ୍ରୀ) ରୋଦ୍ଧ୍ରୀ ।
ରୋଧଃ—ବି.(ରୁଧ୍+କ.ଅସ୍)ନଦୀଆଦିର କୂଳ, ପର୍ବତର ଢାଲୁ,କୂପତଡ଼ାଗାଦିର ଦାଢ଼, ଅଡଡ଼ା, କଡ଼, ପାର୍ଶ୍ୱ, ନିତମ୍ବ ।
ରୋଧଃପତନକଳୁଷ—ବିଂ. ( ତତ୍ପୁ ) ତଟର ଅଡଡ଼ା ଖସିପଡ଼ିବାରୁ ଯହିଁର ପାଣି ଗୋଳିଆ ହୋଇଅଛି ।
ରୋଧକ—ବିଂ.(ରୁଧ୍+କ.ଅକ)ନିବାରଣ କର୍ତ୍ତା, ଯେ ଅଟକାଏ, ଘୋଡ଼ାଇ ରଖିଦିବା ।
ରୋଧକରିବା—ଗ୍ରା. କ୍ରି. ବାଧାଦେବା, ନିବାରଣ କରିବା,ଅବରୋଧ କରିବା, ଅଟକାଇବା, ଆବରଣକରିବା ।
ରୋଧନ-ବି. (ରୁଧ୍+ଭା.ଅନ)କୌଣସି ସ୍ଥାନର ଗୃହଆଡ଼େ ଘେରାଇ ରଖିବା, ବାଧାଦେବା, ଅବରୋଧ, (କ.ଅନ) ବୁଧଗ୍ରହ,(ବିଂ)ରୋଧକାରକ ।
ରୋଧନୀୟ—ବିଂ. (ରୁଧ୍+ର୍ମି.ଅନୀୟ) ଅବରୋଧକରାଯିବାର ଯୋଗ୍ୟ,ଯାହା ରୁକାଯିବ ।
ରୋଧବକ୍ରା—ସ୍ତ୍ରୀ.ବି. (ବ.ବ୍ରୀ) ନଦୀ ।
ରୋଧବତୀ—ବି. (ରୋଧ+ବତ୍+ଈ) ନଦୀ ।
ରୋଧୋବେଦୀ—ବି. (ରୋଧ+ବିଦ୍+କ.ଅ+ଈ) ନଦୀ ।
ରୋଧସ୍—କ୍ଲୀ.ବି. ରୋଧଃ ଦେଖ ।

ରୋଧସ୍ଥ—ବି°. ( ରୋଧ+ସ୍ଥା + କ.ଅ ) ନଦ୍ୟାଦିର ତୀରରେ ଅବସ୍ଥିତ ।

ରୋଧାର୍ହ—ବି°. (ରୋଧ+ଅର୍ହ)ଅଟକ କରାଯିବାର ଉପଯୁକ୍ତ, ଅବରୋଧନୀୟ, ବାଧା ଦିଆଯିବାର ଉପଯୁକ୍ତ, (ସ୍ତ୍ରୀ) ରୋଧାର୍ହା ।

ରୋଧିତ—ବି°. (ରୁଧ୍+ଣିଚ୍+ର୍ମ.ତ) ଆବଦ୍ଧ, ଯାହାକୁ ବାଧା ଦିଆଯାଇଥାଏ, ଆବୃତ, ଅବରୋଧିତ ।

ରୋଧିବା—ଗ୍ରା.କ୍ରି. ଅବରୋଧ କରିବା, ବନ୍ଦକରିବା,ବାଧାଦେବା,ଆବୃତକରିବା

ରୋଧୀ—ପୁଂ. ବି°. ( ରୁଧ୍+କ.ଇନ୍ ) ରୋଧକର୍ତ୍ତା, (ସ୍ତ୍ରୀ) ରୋଧିନୀ ।

ରୋଧବକ୍ରା—ସ୍ତ୍ରୀ.ବି. (ରୋଧସ୍+ବକ୍ରା) ନଦୀ ।

ରୋଧୋବତୀ—ସ୍ତ୍ରୀ. ବି. ନଦୀ ।

ରୋଧୋବପ୍ର—ପୁଂ.ବି. ବେଗବାନ୍ ନଦ, (ସ୍ତ୍ରୀ) ରୋଧୋବପ୍ରା ।

ରୋଧୋବପ୍ରା—ସ୍ତ୍ରୀ.ବି.ସ୍ରୋତସ୍ୱତୀ ନଦୀ, ଯେଉଁ ନଦୀ ଗର୍ଭରେ ବହୁ ବୃକ୍ଷମାନ ଥାଏ ।

ରୋଧ୍ୟ—ବି.ବି°. (ରୁଧ୍+ର୍ମ.ଯ)ରୋଧନୀୟ ଦେଖ ।

ରୋଧ୍ର—ବି. (ରୁଧ୍+ଣିଚ୍+ର)ଅପରାଧ, ପାପ, ଲୋଧ୍ରଗଛ ।

ରୋଧ୍ରପୁଷ୍ପ—ବି.ମହୁଲଗଛ, ଲୋଧ୍ରଫୁଲ, ଚକ୍ରଯୁକ୍ତ ସର୍ପ ।

ରୋଧ୍ରପୁଷ୍ପକ—ବି. ଲୋଧ୍ରଫୁଲ,ଶାଳିଧାନ, ସର୍ପଜାତିବିଶେଷ ।

ରୋଧ୍ରପୁଷ୍ପିଣୀ—ସ୍ତ୍ରୀ. ବି. ଧାତକୀବୃକ୍ଷ ।

ରୋଧ୍ରଯୁଗ୍ମ—କ୍ଲୀ. ବି.ଶାବର ଓ ପଟ୍ଟିକା ନାମକ ଦୁଇପ୍ରକାର ଲୋଧ୍ର ।

ରୋପ—ବି. ( ରୁହ୍ + ଣିଚ୍ + ଭା.ଅ ) ରୋପଣ, ବାଣ, ଶର, ଛିଦ୍ର, (ବି°) ଯାହା ଗୋଳାଇଦିଏ, ଯାହା ଧନ୍ଦାଳି ଦିଏ ।

ରୋପକ—ପୁଂ. ବି°. ( ରୁହ୍ +ଣିଚ୍+ କ.ଅକ) ରୋପଣକାରୀ, (ବି) କୃଷକ, ଧାତୁର ବଟକରା ବା ମୁଦ୍ରା, ଗଛ ରୋଇବା ବ୍ୟକ୍ତି,ମଞ୍ଜି ବୁଣିବା ବ୍ୟକ୍ତି ।

ରୋପଣ—କ୍ଲୀ. ବି. ( ରୁହ୍ +ଣିଚ୍= ରୋପି+ଭା.ଅନ) ଗଛପୋତିବା,ତଳି ରୋଇବା, ବୀଜବପନ, ସ୍ଥାପନ, ମୁଦ୍ରା କରିବା, ଭୂମିରେ ବାଡ଼ିଆଦି ଠିଆକରାଇବା,କ୍ଷତ ଆଦିକୁ ଶୁଖାଇବା,(ର୍ମ.ଅନ) ଆଖିରେ ଦେବା ଅଞ୍ଜନବିଶେଷ, ଶର. ବାଣ, (ଣ.ଅନ) କ୍ଷତରେ ମାଂସ ପୂରି ଆସିବା ପ୍ରୟୋଗ ।

ରୋପଣକାରୀ—ପୁଂ. ବି°. ଯେ ରୋପଣ କରେ, (ସ୍ତ୍ରୀ) ରୋପଣକାରିଣୀ ।

ରୋପଣଚୂର୍ଣ୍ଣ—କ୍ଲୀ.ବି.ନେତ୍ରାଞ୍ଜନବିଶେଷ

ରୋପଣୀ—ସ୍ତ୍ରୀ. ବି.ନେତ୍ରାଞ୍ଜନବିଶେଷ ।

ରୋପଣୀବଟୀ-ସ୍ତ୍ରୀ.ବି.ନେତ୍ରାଞ୍ଜନବିଶେଷ

ରୋପଣୀବର୍ତ୍ତି—ସ୍ତ୍ରୀ. ବି. ବର୍ତ୍ତିବିଶେଷ ।

ରୋପଣୀୟ—ବି. ବି°. (ରୁହ୍+ଣିଚ୍+ ଅନୀୟ) ରୋପଣ ଯୋଗ୍ୟ, ଯାହା ବୁଣାଯିବାର ଯୋଗ୍ୟ, ଘାଆଆଦିରେ ମାଂସ କଅଁଳିବା ପାଇଁ ଲୋଡ଼ା (ଦ୍ରବ୍ୟ) ।

ରୋପୟିତା—ପୁଂ.ବି°. (ରୋପି+କ.ତୃ) ଯେ ରୋପଣ କରେ,(ସ୍ତ୍ରୀ)ରୋପୟିତ୍ରୀ ।

ରୋପିତ—ବି°. ( ରୁହ୍ + ଣିଚ୍ + ଇତ ) ଅର୍ପିତ, ପ୍ରୋଥିତ, ପ୍ରୋତ, ଆରୋପିତ, ପୋତା ହୋଇଥିବା, କୃତରୋପଣ, ଆବାଦ କରାଯାଇଥିବା, ଲକ୍ଷ ଉଦ୍ଦେଶ୍ୟରେ ପ୍ରଯୁକ୍ତ (ଶର), ଖଚିତ ।

ରୋପିବା—ଗ୍ରା.କ୍ରି. ଗଛଆଦି ପୋତିବା, ରୋଇବା ।

ରୋପୀ—ପୁଂ.ବି°. (ରୁହ୍+ଣିଚ୍+ ଇନ୍) ସ୍ଥାପନକାରୀ,ଆରୋପଣକାରୀ, ପ୍ରତିଷ୍ଠାକାରୀ, (ସ୍ତ୍ରୀ) ରୋପିଣୀ ।

ରୋପ୍ୟ—ବି.ବି°.(ରୁହ୍+ଣିଚ୍+ର୍ମ.ଯ) ରୋପଣଯୋଗ୍ୟ,ରୋପଣର ଉପଯୁକ୍ତ ।

ରୋପ୍ୟାତିରୋପ୍ୟ—ପୁଂ.ବି.ରୁଆ ଶାରଦ ଧାନ, ରୋପ୍ୟଶାଳି ।

ରୋବା—ପ୍ରା. (ବସ୍ତ୍ରର)ବି. କାନ୍ଦିବା ।

ରୋମ୍—ଗ୍ରା.ବି.ଇଟାଲିର ପ୍ରଧାନ ନଗର, ପ୍ରାଚୀନ ରୋମ ସାମ୍ରାଜ୍ୟ ।

ରୋମ—କ୍ଲୀ.ବି.(ରୁ + ମନ୍)ଜଳ, ତେଜପତ୍ର, ଲୋମ,ପଶମ, ପଶୁଲୋମ, ଗର୍ତ୍ତ, ରୋମ୍ ନଗର ।

ରୋମକ—କ୍ଲୀ.ବି. (ରୋମ + କ) ପାଂଶୁଲବଣ,ସଚଳ ଲବଣ, ମହାନିମ୍ବ,ଅୟସ୍କାନ୍ତମଣି, ପ୍ରାଚୀନ ରୋମ୍‌ନଗର, ପ୍ରାଚୀନ ଗ୍ରୀସ୍ ସାମ୍ରାଜ୍ୟ, ରୋମ୍‌ନଗର ଅଧିବାସୀ, ଜ୍ୟୋତିଷର ସିଦ୍ଧାନ୍ତ ଗ୍ରନ୍ଥବିଶେଷ, ରୋମକ ସିଦ୍ଧାନ୍ତର ସଂକଳୟିତା ।

ରୋମକନ୍ଦ—ପୁଂ.ବି.ପିଣ୍ଡାଳୁ, ଖଣ୍ଡିଆଳୁ ।

ରୋମକପତ୍ତନ—ବି. ନଗରବିଶେଷ ।

ରୋମକର୍ଣ୍ଣକ—ପୁଂ. ବି. (ବ.ବ୍ରୀ) ଶଶକ, ଠେକୁଆ ।

ରୋମକଲବଣ—ବି. ଶାମ୍ବର ଲବଣ ।

ରୋମକସିଦ୍ଧାନ୍ତ—ପୁଂ. ବି. ଜ୍ୟୋତିର୍ଗ୍ରନ୍ଥବିଶେଷ ।

ରୋମକୂପ-ପୁଂ.ବି.(୬ତତ୍)ଲୋମବିବର ।

ରୋମକେ—ଗ୍ରା.କ୍ରି.ବି°.ପ୍ରତି ରୋମରେ ।

ରୋମକେଶର—କ୍ଲୀ. ବି. ( ରୋମନ୍+ କେଶର) ଚାମର, କେଶଗୁଚ୍ଛ ।

ରୋମଗର୍ତ୍ତ—ପୁଂ. ବି. ରୋମକୂପ ।

ରୋମଗୁଚ୍ଛ—ପୁଂ. ବି. ଚାମର, କେଶଗୁଚ୍ଛ ଚମରୀ ଗାଈର ପୁଚ୍ଛ ।

ରୋମଜ—ବି°. (ରୋମ + ଜନ୍ + କ.ଅ) ପଶୁ ଲୋମରୁ ଜାତ,ଲୋମ ଦ୍ୱାରା ପ୍ରସ୍ତୁତ, ପଶମୀ, (ବି) ଏକପ୍ରକାର ଲୁଗା ।

ରୋମତରଙ୍ଗ—ସ୍ତ୍ରୀ. ବି. ଅତିରୋମା ସ୍ତ୍ରୀ ।

ରୋମତ୍ୟଜ୍—ବି. ବି°. ଲୋମନାଶକ ।

ରୋମଦ୍ୱୀପ—ପୁଂ. ବି. କୃମି ।

ରୋମନ୍ଥ—ପୁଂ.ବି.(ରୋଗ + ମଥ୍ + ଭା. ଅ ) ପଶୁମାନଙ୍କର ଚର୍ବିତଚର୍ବଣ, ଉଦ୍ଗୀର୍ଯ୍ୟ ଚର୍ବଣ, ପାକୁଳି କରିବା ।

ରୋମନ୍ଥ(ନ୍ଥି)କ—ପୁଂ. ବି. ବି°. ଯେଉଁ ଜନ୍ତୁମାନେ ପାକୁଳି କରନ୍ତି ।

ରୋମନ୍ଥକରିବା—ଗ୍ରା.କ୍ରି.ପାକୁଳିକରିବା ।

ରୋମନ୍ଥକ—କ୍ଲୀ. ବି. ରୋମନ୍ଥ ଦେଖ ।

ରୋମନ୍ୱାନ୍—ପୁଂ.ବି°.(ରୋମନ୍+ବନ୍) ରୋମଶ ।

ରୋମପାଦ—ପୁଂ.ବି.ଲୋମପାଦ ରାଜା ।

ରୋମପୁଲକ--ବି.ରୋମାଞ୍ଚ, ରୋମହର୍ଷ ।
ରୋମଭୂମି—ସ୍ତ୍ରୀ. ବି. ଚର୍ମ, ଚମ ।
ରୋମମୂର୍ଦ୍ଧା—ପୁଂ.ବିଂ.ରୋମଯୁକ୍ତ ମସ୍ତକବିଶିଷ୍ଟ ।
ରୋମନ୍ତୋସାର—ପୁଂ. ବି. ଉଦର ।
ରୋମରନ୍ଧ୍ର—କ୍ଲୀ. ବି. ରୋମକୂପ ।
ରୋମରାଜି—ସ୍ତ୍ରୀ.ବି. (ରୋମ+ରାଜି) ରୋମସମୂହ, ରୋମପଂକ୍ତି ।
ରୋମରାଜିପଥ--ବି.(୬ତତ୍ପୁ)କଟି,ଅଣ୍ଟା ।
ରୋମଲତା(ତିକା)—ବି.(୬ତତ୍ପୁ)ରୋମସମୂହ ।
ରୋମଲବଣ—କ୍ଲୀ. ବି. ବର୍ଚ୍ଚଲ ଲବଣ, ଶାମ୍ବର ଲବଣ ।
ରୋମଲତିକା—ସ୍ତ୍ରୀ.ବି.ସ୍ତ୍ରୀମାନଙ୍କର ନାଭି ଉପରସ୍ଥ ଲୋମଶ୍ରେଣୀ ।
ରୋମବଙ୍କାକରିବା—ଗ୍ରା. କ୍ରି. (ଲ.ଅର୍ଥ) କୌଣସି ବ୍ୟକ୍ତିର ସାମାନ୍ୟମାତ୍ର ଅନିଷ୍ଟ ଘଟାଇବା ।
ରୋମବଦ୍ଧ—ତ୍ରି.ବିଂ. ରୋମରେ ବୁଣା-ହୋଇଥିବା ।
ରୋମବନ୍ଧ—ବି. ଲୋମ ବା ପଶମରେ ବୁଣା ହେବା ଲୁଗାର ଦେହ ।
ରୋମବଲ୍ଲୀ—ସ୍ତ୍ରୀ. ବି. କାଇଚଙ୍କ ।
ରୋମବାନ୍—ପୁଂ.ବିଂ. (ରୋମ+ବତ୍) ରୋମବିଶିଷ୍ଟ,ରୋମଶ, (ସ୍ତ୍ରୀ)ରୋମାବତୀ
ରୋମବାହ୍ୟ—ତ୍ରି. ବିଂ. ଲୋମକର୍ତ୍ତନ-ଯୋଗ୍ୟ, ସୁତୀକ୍ଷ୍ଣ ଧାରବିଶିଷ୍ଟ, ବାଲକଣ୍ଟା,(କଉଁଆ) ।
ରୋମବିକାର—ପୁଂ. ବି. ରୋମାଞ୍ଚ ।
ରୋମବିକ୍ରିୟା-ସ୍ତ୍ରୀ.ବି.(୬ତତ୍ପୁ)ରୋମାଞ୍ଚ ।
ରୋମବିଧ୍ୱଂସ—ପୁଂ. ବିଂ. ଲୋମନାଶକାରୀ, (ବି)ଉକୁଣି ।
ରୋମବିଭେଦ—ବି.(୬ତତ୍ପୁ) ରୋମାଞ୍ଚ. ରୋମୋଦ୍ଗମ ।
ରୋମବିବର— କ୍ଲୀ. ବି, ଲୋମକୂପ ।
ରୋମବେଧ—ପୁଂ ବି.ଶସ୍ତ୍ରକାରବିଶେଷ ।
ରୋମଶ—ବି. (ରୋମନ୍+ଶ) ମେଷ, ପିଣ୍ଡାଳୁ, କୁମ୍ଭୀ, ଶୂକର, ଋଷି, ଅଙ୍କରାନ୍ତ, ବିଦର୍ଭିକା,ଉପସ୍ଥ,(ବିଂ)ରୋମ-
ବିଶିଷ୍ଟ, (ସ୍ତ୍ରୀ) ରୋମଶା ।
ରୋମଶପତ୍ରା—ସ୍ତ୍ରୀ.ବି.ଦେବଦାରୁ ଗଛ ।
ରୋମଶଫଳ—ପୁଂ ବି. ହିଙ୍ଗୁଳ, ଭେଣ୍ଡି ।
ରୋମଶମୂଳିକା-ସ୍ତ୍ରୀ.ବି. ହରିଦ୍ରା, ହଳଦୀ ।
ରୋମଶା—ସ୍ତ୍ରୀ.ବି.ଦଗ୍ଧାବୃକ୍ଷ, ଅଙ୍କରାନ୍ତ. ଲୋମଶା, କାକୁଡ଼, ବୃହସ୍ପତି କନ୍ୟା ।
ରୋମଶାତନ--କ୍ଲୀ.ବି(ରୋମ+ଶାତନ) ଲୋମନାଶକ ଦ୍ରବ୍ୟ ।
ରୋମଶୂକ—କ୍ଲୀ. ବି. (ରୋମ+ଶୂକ) ସ୍ଥୌଣେୟକ, ଏକପ୍ରକାର ଗଣ୍ଠିଥିବା ଗୁଳ୍ମ ।
ରୋମଶ୍ରେଣୀ—ବି.(୬ତତ୍ପୁ)ରୋମରାଜି ।
ରୋମହର୍ଷଜନକ--ବି.(୬ତତ୍ପୁ)ରୋମାଞ୍ଚ ।
ରୋମସୂଚୀ—ବି. ଝିଙ୍କକାଠି ।
ରୋମହରଣ—କ୍ଲୀ. ବି. ହରିତାଳ ।
ରୋମହର୍ଷ—ପୁଂ. ବି. (ରୋମ+ହର୍ଷ) ରୋମାଞ୍ଚ, ରୋମ ଟାଙ୍କୁରିବା ।
ରୋମହର୍ଷକ—ବିଂ.(ରୋମ+ହୃଷ୍+ଣ-ଅକ) ଯାହା ରୋମାଞ୍ଚ ଜାତ କରାଏ. ଅତି ଭୀତିଜନକ, ଅତି ଅଦ୍ଭୁତ, ଅତି ଭକ୍ତିଜନକ ।
ରୋମହର୍ଷଣ—ବି. (ରୋମ+ହୃଷ୍+ଣି-ଅନ) ରୋମହର୍ଷ,ରୋମାଞ୍ଚ,ମୂର୍ଖଧାର, ବଢ଼େଇ, ବାହାଡ଼ା ଗଛ,ବ୍ୟାସମୁନିଙ୍କ ପ୍ରିୟଶିଷ୍ୟ,ମୁନିବିଶେଷ, (ବିଂ-କ.ଅନ) ରୋମହର୍ଷକ ଦେଖ । [ ଦେଖ ।
ରୋମହର୍ଷଣକ(କାରୀ)—ବିଂ.ରୋମହର୍ଷ
ରୋମହର୍ଷିତ—ପୁଂ. ବିଂ. (ରୋମହର୍ଷ+ଇତ) ସଞ୍ଜାତପୁଲକ, ରୋମାଞ୍ଚିତ, ହୃଷ୍ଟରୋମା ।
ରୋମହର୍ଷୀ-ପୁଂ.ବିଂ. ରୋମହର୍ଷିତ ଦେଖ ।
ରୋମା—ପୁଂ. ବିଂ. ରୋମଶ ଦେଖ ।
ରୋମାଖ୍ୟ—କ୍ଲୀ. ବି. (ବ.ବ୍ରୀ) ଶାମ୍ବର-ଲବଣ ।
ରୋମାଙ୍କୁର—ବି. (୬ତତ୍ପୁ) ଭୟରେ ବା ହର୍ଷରେ ଠିଆହୋଇଥିବା ରୋମ ।
ରୋମାଞ୍ଚ—ପୁଂ. ବି. (ରୋମ+ଅନ୍‌ଚ୍+ଣ.ଅ) ରୋମହର୍ଷଣ, ରୋମ ଟାଙ୍କୁରି ଉଠିବା, ଉତ୍କଣ୍ଠିତ ପ୍ରେମିକପ୍ରେମିକାଙ୍କ-
ଠାରେ ଲକ୍ଷିତ ଅଷ୍ଟାଦଶ ମଧ୍ୟରୁ ଏକତମ ଅବସ୍ଥା ।
ରୋମାଞ୍ଚକ—ପୁଂ. ବି. ନାଗବିଶେଷ ।
ରୋମାଞ୍ଚିକା—ସ୍ତ୍ରୀ. ବି. ରୁଦନ୍ତୀବୃକ୍ଷ ।
ରୋମାଞ୍ଚିତ—ପୁଂ. ବିଂ. (ରୋମାଞ୍ଚ+ଇତ ) ପୁଲକିତ, ରୋମାଞ୍ଚବିଶିଷ୍ଟ, ହୃଷ୍ଟରୋମା, (ସ୍ତ୍ରୀ) ରୋମାଞ୍ଚିତା ।
ରୋମାଞ୍ଚିତତନୁ—ପୁଂ. ବିଂ. ( ବ.ବ୍ରୀ ) ଯାହାର ଦେହ ପୁଲକିତ ହୋଇଥାଏ, (ବି-କ.ଧା) ରୋମାଞ୍ଚଯୁକ୍ତ ଦେହ ।
ରୋମାଞ୍ଚୀ—ପୁଂ.ବିଂ. (ରୋମାଞ୍ଚ+ଇନ୍) ପୁଲକିତ, ରୋମାଞ୍ଚଯୁକ୍ତ ।
ରୋମାନ୍—ଯା. ବିଂ. ରୋମ୍‌ଦେଶୀୟ ।
ରୋମାନ୍‌କାଥଲିକ୍—ଯା. ବି. ଖ୍ରୀଷ୍ଟିୟାନମାନଙ୍କର ସମ୍ପ୍ରଦାୟବିଶେଷ ।
ରୋମାନ୍ତ—ପୁଂ.ବି. ହସ୍ତର ଉପରିଭାଗ ।
ରୋମାଳୀ—ସ୍ତ୍ରୀ. ବି. (ରୋମ+ଆଳୀ) ବୟଃସନ୍ଧି, ରୋମାବଳୀ ଦେଖ ।
ରୋମାଳୁ—ପୁଂ.ବିଂ. ରୋମବିଶିଷ୍ଟ, (ବି) ପିଣ୍ଡାଳୁ ।
ରୋମାଳୁବିଟପୀ—ପୁଂ. ବି. କୁମ୍ଭୀବୃକ୍ଷ ।
ରୋମାବଳୀ—ସ୍ତ୍ରୀ. ବି. (୬ତତ୍ପୁ) ନାଭିର ଊର୍ଦ୍ଧ୍ୱ ଲୋମଶ୍ରେଣୀ, ରୋମଲତା ।
ରୋମେ—ଗ୍ରା. ଅ. ରୁମେ ଦେଖ ।
ରୋମୋଦ୍ଗତ—ବିଂ.ରୋମାଞ୍ଚିତ ଦେଖ ।
ରୋମୋଦ୍ଗତି—ସ୍ତ୍ରୀ.ବି. ରୋମାଞ୍ଚ ଦେଖ ।
ରୋମୋଦ୍ଗମ—ପୁଂ.ବି. ରୋମାଞ୍ଚ,ରୋମ ଟାଙ୍କୁରିବା ।
ରୋମୋଭେଦ—ପୁଂ. ବି. ( ୬ତତ୍ପୁ ) ରୋମାଞ୍ଚ, ପୁଲକ ।
ରୋରବଣ—କ୍ଲୀ.ବି. ଅତିଶୟ ଶବ୍ଦ,ଉଚ୍ଚ ଗର୍ଜନ, ଭୀଷଣ ଶବ୍ଦ ।
ରୋରୁଦା—ସ୍ତ୍ରୀ. ବି. ଅତିଶୟ ରୋଦନ, ବାହୁନି କାନ୍ଦିବା ।
ରୋରୁଦାବାନ୍—ପୁଂ. ବିଂ. (ରୋରୁଦା+ବତ୍)ବାହୁନିକରି କାନ୍ଦୁଥିବା, (ସ୍ତ୍ରୀ) ରୋରୁଦାବତୀ ।
ରୋରୁଦ୍ୟମାନ—ପୁଂ.ବିଂ. (ରୁଦ୍+ଆନ) ଅତିଶୟ ରୋଦନଶୀଳ, ବାହୁନିକରି

କାନ୍ଦୁଥିବା, (ସ୍ତ୍ରୀ) ରୋରୁଦ୍ୟମାନା ।
ରୋଲ—ଯା.ବ. କାଗଜ ଉପରେ ସରଳ ରେଖା ଟାଣିବାର ଗ୍ରେଟ ଠେଙ୍ଗୁଣୀ ।
ରୋଲ—ବ. (ରୁ+ଭା.ଓଲ) ଷୋଭ, ଅବ୍ୟକ୍ତ ଶବ୍ଦ, ଧ୍ୱନି,(କ.ଓଲ) ଆର୍ଦ୍ରକ, ଭୁଇଁଚମ୍ପୁକ,ତାଳଶପତ୍ର,ପାଣିଅଁଳା, (ଗ୍ରା.ବ) ଯୁଦ୍ଧ, ଉଚ୍ଛୃଙ୍ଖଳ, ଜନତା, ଅନେକ ଲୋକଙ୍କର ଏକତ୍ର କ୍ରନ୍ଦନ-ଜନିତ ସ୍ୱର,ଗୋଲମାଲ, ଗର୍ଜନ,କଳି, କାସୁଣୀ, ଝଗଡ଼ା ।
ରୋଲମ୍ବ—ପୁଂ.ବ.(ରୋ+ଲମ୍ବ+ଅ) ଭ୍ରମର, ଶୁଷ୍କଭୂମି, (ବ୍ୟ) ଅବଶ୍ୱାସୀ ।
ରୋଲମ୍ବକଦମ୍ବ—ବ. (୬ତତ୍) ମହୁମାଛିଙ୍କ ଦଳ ।
ରୋଲମ୍ବରାଜ—ବ. (୬ତତ୍) ମହୁମାଛିଙ୍କ ଦଳ ।
ରୋଳା—ଗ୍ରା. ବ. ନୋଳା, ଦେହରେ ଅଙ୍କିତ ବେତମାଡ଼ର ଲମ୍ବ ଲମ୍ବ ଚିହ୍ନ, (ପ୍ରା. ସିଂହଭୂମ. ବ) ଗୁଳପଘରର ଚୁଲି ।
ରୋଶଂସା—ସ୍ତ୍ରୀ. ବ. ଇଚ୍ଛା ।
ରୋଶନାଇ—ଯା. ବ. ଆଲୋକମାଳା ସମନ୍ୱିତ ଶୋଭାଯାତ୍ରା,ଚନ୍ଦ୍ରିକା,ଜୋସ୍ନା, ଆଲୋକତୁଲ୍ୟ ଉଜ୍ଜ୍ୱଳବସ୍ତୁ, ମସୀ, କାଳି, ଆଲୋକ, ଉତ୍ସବ ।
ରୋଶନଚୌକି—ଯା.ବ. ଢୋଲକ ବା ପଖୋଜ, କୁରୁଜ, ଝଞ୍ଜ ଓ ବଂଶୀ ଏହି ତିନଗୋଟି ଯନ୍ତ୍ରକୁ ଏକତାଳରେ ବଜାଇବା ବାଦକ ସମ୍ପ୍ରଦାୟ, ମହୁରୀ ।
ରୋଶେନୀୟା—ମୁସଲମାନ ଧର୍ମସମ୍ପ୍ରଦାୟ ବିଶେଷ ।
ରୋଷ—ପୁଂ.ବ. (ରୁଷ୍+ଭା.ଅ)କ୍ରୋଧ, ରାଗ, (ଗ୍ରା.ବ) ପାକଶାଳା ।
ରୋଷକ—ବିଂ. କ୍ରୁଦ୍ଧ ।
ରୋଷକର୍କଶ—ବିଂ. (୩ତତ୍) କ୍ରୋଧ ଜନ୍ମିବାରୁ ଆରକ୍ତବର୍ଣ୍ଣ ଧାରଣକରିଥିବା (ଅକ୍ଷି) ।
ରୋଷକଷାୟିତଲୋଚନ—ବ. (କ.ଧା) ରାଗଯୋଗୁଁ ଆରକ୍ତ ହୋଇଥିବା ଚକ୍ଷୁ ।
ରୋଷକାରୀ—ପୁଂ. ବିଂ. (ରୋଷ+କୃ+କ.ଇନ୍) ରାଗାନ୍ୱିତ, (ସ୍ତ୍ରୀ)ରୋଷକାରିଣୀ ।
ରୋଷଜନକ—ବିଂ. ଯାହା ମନରେ ରାଗ ଜନ୍ମାଏ ।
ରୋଷଜନିତ—ବିଂ. ରାଗରୁ ଜନ୍ମିଥିବା ।
ରୋଷଜନ୍ମ—ବ.ମନକୁ ବୁଝାଇ କ୍ରୋଧକୁ ଥଣ୍ଡା କରିବା ।
ରୋଷଜର୍ଜର—ପୁଂ.ବିଂ.(୩ତତ୍)କ୍ରୋଧଦ୍ୱାରା ଜର୍ଜରିତ ।
ରୋଷଣ—ପୁଂ. ବ. (ରୁଷ+କ.ଅନ) ଉଷରଭୂମି, ପାରଦ, କଷଟି ପଥର, (ପୁଂ.ବିଂ) କ୍ରୋଧନଶୀଳ,କ୍ରୋଧୀ,(ସ୍ତ୍ରୀ) ରୋଷଣୀ ।
ରୋଷଣି—ଯା.ବ. ବହୁ ଆଲୋକସଜ୍ଜିତ ଓ ଆଡ଼ମ୍ବରଯୁକ୍ତ ଶୋଭାଯାତ୍ରା ।
ରୋଷଦାହ—ବ. (କ.ଧା) କ୍ରୋଧଜନିତ ସନ୍ତାପ ।
ରୋଷଦୃଷ୍ଟି--ବ.(କ.ଧା)ରୋଷପୂର୍ଣ୍ଣ ଦୃଷ୍ଟି ।
ରୋଷନ୍—ଯା. ବ. ମୁସଲମାନମାନଙ୍କ ନାମ ।
ରୋଷପରାୟଣ—ପୁଂ.ବିଂ. କ୍ରୋଧପରାୟଣ, ରାଗୀ ।
ରୋଷପ୍ରଦୀପନ—ବ. (୬ତତ୍) ମନୁଷ୍ୟ ମନରେ ଜନ୍ମିଥିବା କ୍ରୋଧର ଉଦ୍ଦୀପନ କରିବା ।
ରୋଷପ୍ରଦୀପ୍ତ—ବିଂ. (୩ତତ୍) କ୍ରୋଧଯୋଗୁଁ ଜଳିଲପରି ହେଉଥିବା(ଲ.ଅର୍ଥ)
ରୋଷଭର-ଗ୍ରା.ବିଂ.ରୋଷାନ୍ୱିତ, କ୍ରୁଦ୍ଧ ।
ରୋଷଭରେ—ଗ୍ରା.କ୍ରି.ବିଂ. କ୍ରୋଧଦ୍ୱାରା ଉତ୍ତେଜିତ ହୋଇ, କ୍ରୋଧର ଉତ୍ତେଜନାରେ ଅନ୍ଧହୋଇ ।
ରୋଷଭାଷଣ—ବ. (କ.ଧା) କ୍ରୋଧପୂର୍ଣ୍ଣ ବାକ୍ୟ ।
ରୋଷମ୍—ଯା.ବ.ଜମିଦାର ବା ରାଜାଙ୍କୁ ବିଶେଷ ଉପଲକ୍ଷ (ବିବାହ ଦାଖଲଖାରଜଆଦି) ରେ ଦିଆଯିବା ଶୁଳ୍କ ବା ଫିସ୍, ପୁରସ୍କାର, ବକଶିସ୍ ।
ରୋଷମୟ-କ୍ରି.ବିଂ.ରାଗଯୁକ୍ତ,କ୍ରୋଧପୂର୍ଣ୍ଣ ।
ରୋଷବହ୍ନି--ବ.(ରୂପକ)ରୋଷାଗ୍ନି ଦେଖ ।
ରୋଷବିସ୍ଫାରିତ—ବିଂ. (୩ତତ୍)କ୍ରୋଧଯୋଗୁଁ ବିସ୍ଫାରିତ ହୋଇଥିବା(ଚକ୍ଷୁ) ।
ରୋଷସଞ୍ଚାର—ବ.(୬ତତ୍) କ୍ରୋଧଜାତ ହେବା, ରାଗ ଉପୁଜିବା ।
ରୋଷସେବକ—ଗ୍ରା. ବ. ଦେବତା ବା ରାଜାଙ୍କ ସୁପକାର, ସୁଆର ।
ରୋଷା—ଗ୍ରା. ବ. କ୍ରୋଧ, ରାଗ ।
ରୋଷା(ଷେ)ଇ—ଗ୍ରା.ବ. ରନ୍ଧନ,ଖାଦ୍ୟଦ୍ରବ୍ୟାଦିର ପାକକ୍ରିୟା ।
ରୋଷା(ଷେ)ଇଘର—ଗ୍ରା. ବ. ରନ୍ଧନଶାଳା, ରନ୍ଧାଘର ।
ରୋଷା(ଷେ)ଇବାସ--ଗ୍ରା.ବ.ରନ୍ଧାବଢ଼ା ।
ରୋଷାକୁଳିତ—ବିଂ. (୩ତତ୍) କ୍ରୋଧଦ୍ୱାରା ଉତ୍ତେଜିତ ।
ରୋଷାକ୍ଷେପ—ବ.(କ.ଧା) ଭୀତିପ୍ରଦର୍ଶନ, ପୂର୍ଣ୍ଣ ଅସମ୍ମତି ସୂଚକ ବଚନ, କ୍ରୋଧମୟ ବ୍ୟଙ୍ଗୋକ୍ତି ।
ରୋଷାଗ୍ନି-ବ.(ରୂପକ) କ୍ରୋଧାଗ୍ନି, ଅଗ୍ନିରେ ଭୀଷଣ କ୍ରୋଧ ।
ରୋଷାଣ—ପୁଂ. ବିଂ. (ରୋଷ+ଆନ) କ୍ରୁଦ୍ଧ, (ବ) କଷଟିପଥର, ପାରଦ ।
ରୋଷାନ୍ଧ—ପୁଂ. ବିଂ. (୩ତତ୍) କ୍ରୋଧହେତୁ ହିତାହିତ ଜ୍ଞାନଶୂନ୍ୟ, (ସ୍ତ୍ରୀ) ରୋଷାନ୍ଧା ।
ରୋଷାନ୍ୱିତ—ବି .(୩ତତ୍) ରୋଷପୂର୍ଣ୍ଣ, (ସ୍ତ୍ରୀ) ରୋଷାନ୍ୱିତା ।
ରୋଷାଳ—ଗ୍ରା.ପୁଂ.ବିଂ.ରୋଷପରାୟଣ ।
ରୋଷାଳାପ—ବ. (କ.ଧା) କ୍ରୋଧପୂର୍ଣ୍ଣ କଥୋପକଥନ ।
ରୋଷିତ—ପୁଂ. ବିଂ. (ରୁଷ୍+ଣିଚ୍+ର୍ମ.ତ) ରୁଷ୍ଟ, କୁପିତ, ଯାହାକୁ କୁପିତ କରାଯାଇଥାଏ ।
ରୋଷିବା—ଗ୍ରା. କ୍ରି. ରୋଷ କରିବା, ମାନ କରିବା, କ୍ରୁଦ୍ଧହେବା ।
ରୋଷୀ—ପୁଂ. ବିଂ. (ରୋଷ+ଇନ୍) ରୋଷଯୁକ୍ତ,ରୁଷ୍ଟ,କ୍ରୋଧସ୍ୱଭାବ,ରାଗୀ, (ସ୍ତ୍ରୀ) ରୋଷିଣୀ ।
ରୋଷେଇଆ—ଗ୍ରା.ପୁଂ. ବ. ସୁପକାର, ପାଚକ, ସୁଆର ।

ରୋଷୋତ୍ପତ୍ତି—ବି. ( ୬ତତ୍ ) ରୋଷ-ସଞ୍ଚାର, କ୍ରୋଧ ଉପୁଜିବା ।
ରୋଷୋତ୍ପାଦକ—ପୁଂ. ବିଂ. ( ବି.ଗ୍ର ) ଯାହା ରୋଷ ବଢ଼ାଏ,(ସ୍ତ୍ରୀ)ଉତ୍ପାଦିକା ।
ରୋଷୋତ୍ପାଦନ—ବି. (୬ତତ୍) ମନୁଷ୍ୟ ମନରେ କ୍ରୋଧ ଉପୁଜାଇବା ।
ରୋଷ୍ଟା—ପୁଂ. ବିଂ. (ରୋଷ+କ.ତୃ) ରୋଷଯୁକ୍ତ, କ୍ରୁଦ୍ଧ, (ସ୍ତ୍ରୀ) ରୋଷ୍ଟ୍ରୀ ।
ରୋହ—ପୁଂ.ବି.(ରୁହ୍+ଭା.ଅ)ଆରୋହଣ, ଗଜୁରିବା, (କ.ଅ) ଅଙ୍କୁର,ଗଜା, କଢ଼ି, (ବିଂ) ଆରୋହଣକାରୀ, (ସ୍ତ୍ରୀ) ରୋହା ।
ରୋହକ—ପୁଂ. ବି. (ରୁହ+କ)ପ୍ରେତବିଶେଷ, ଆରୋହୀ ବ୍ୟକ୍ତି, (ବିଂ-ରୁହ୍+କ.ଅକ) ଆରୋହଣକାରୀ, ଯାହା ବଢ଼ୁଥାଏ ।
ରୋହଗ—ପୁଂ. ବି. ପର୍ବତବିଶେଷ ।
ରୋହଣ—ବି.( ରୁହ+ଅନ ) ଶୁକ୍ର,ଜନ୍ମ, ପ୍ରାଦୁର୍ଭାବ,ପର୍ବତ,ବିଦୁରାଦ୍ରିନାମକବନ, ଆରୋହଣ, ଲଙ୍କାର ପର୍ବତବିଶେଷ, କ୍ଷତଆଦିର ମାଂସ ପୂରିଆସିବା ।
ରୋହଣବୃକ୍ଷ--ପୁଂ.ବି.ଚନ୍ଦନବୃକ୍ଷ,ମଳୟାଗୁରୁ ।
ରୋହତ୍ପର୍ବା—ସ୍ତ୍ରୀ. ବି. ବଲ୍ଲୀଦୁବା ।
ରୋହନ୍—ପୁଂ. ବି. (ରୁହ+ଅତ୍) ବୃକ୍ଷ, ଲତା,(ପୁଂ.ବିଂ) ଆରୋହଣ କରୁଥିବା, (ସ୍ତ୍ରୀ) ରୋହନ୍ତୀ ।
ରୋହନ୍ତ—ପୁଂ. ବି. ( ରୁହ+କ.ଅନ୍ତ ) ବୃକ୍ଷମାତ୍ର, ବୃକ୍ଷବିଶେଷ ।
ରୋହନ୍ତୀ—ସ୍ତ୍ରୀ. ବି. (ରୁହ+ଅନ୍ତ+ଈ) ଲତାବିଶେଷ, ଲତାମାତ୍ର ।
ରୋହି—ପୁଂ. ବି. (ରୁହ+କ.ଇ) ବୀଜ, ବୃକ୍ଷ, ଧାର୍ମିକବ୍ୟକ୍ତି,ମୃଗବିଶେଷ,(ଗ୍ରା.ବି) ରୋହିମାଛ, ଇନ୍ଦ୍ରଧନୁ ।
ରୋହିକ—ପୁଂ. ବି. ବନରୋହି ନାମକ ମୃଗ, ବନରୋହି ।
ରୋହିଣ—ପୁଂ. ବି. ( ରୁହ+କ.ଇନ ) ଦିବସର ନବମ ମୁହୂର୍ତ୍ତି, ଚନ୍ଦନଗଛ, ଭୂତୃଣ, ବଟବୃକ୍ଷ, ରୋହିତକ ବୃକ୍ଷ, ପର୍ବତବିଶେଷ, ବଟଫଳ ଗଛ, ବିଂ. (ରୋହିଣୀ+ଅ) ରୋହିଣୀ ନକ୍ଷତ୍ରରେ ଜାତ ।
ରୋହିଣୀ—ସ୍ତ୍ରୀ. ବି. ରୋହିଣୀନକ୍ଷତ୍ର ।
ରୋହିଣିକା—ସ୍ତ୍ରୀ. ବି. କୋପାଦି ଦ୍ୱାରା ରକ୍ତବର୍ଣ୍ଣ ସ୍ତ୍ରୀ ।
ରୋହିଣିନନ୍ଦନ—ପୁଂ. ବି. ରୋହିଣୀପୁତ୍ର ବଳରାମ ।
ରୋହିଣୀସେନ—ପୁଂ. ବି.ରୋହିଣୀନକ୍ଷତ୍ରର ଚତୁର୍ଦ୍ଦିଗସ୍ଥ ତାରକାମଣ୍ଡଳୀ ।
ରୋହିଣୀ—ସ୍ତ୍ରୀ. ବି. (ରୁହ+କ.ଇନ୍+ଈ) ୪ର୍ଥ ନକ୍ଷତ୍ର, ବିଦ୍ୟାଧରୀବିଶେଷ, ହରିତାଳ, ନବବର୍ଷ ବୟସ୍କା କନ୍ୟା (ନଅବର୍ଷ ପଶିବାଠାରୁ ଦଶବର୍ଷପର୍ଯ୍ୟନ୍ତ), ଗାଈ, ବଳରାମଙ୍କ ମାତା,ବସୁଦେବଙ୍କ ଏକ ସ୍ତ୍ରୀ, ହରିତକୀ, କଟୁକୀ, ମଞ୍ଜିଷ୍ଠା, ବିଦ୍ୟୁତ୍, ଗଳରୋଗବିଶେଷ, ସୁରଭିକନ୍ୟା, ପଞ୍ଚାଙ୍ଗ, ନାଲିଗାଈ,ଅଳ୍ପବନ ହୋଇଥିବା ଋତୁମତୀ ବାଳିକା, ହିରଣ୍ୟକଶିପୁର ଏକ କନ୍ୟା,ହରିବଂଶୋକ୍ତ ଶ୍ରୀକୃଷ୍ଣଙ୍କ ଏକ ସ୍ତ୍ରୀ,ଚନ୍ଦ୍ରଙ୍କ ପତ୍ନୀ,(ସ୍ତ୍ରୀ.ବିଂ)ଉତ୍ପତ୍ତିଶୀଳା, ଆରୋହିଣୀ, ରକ୍ତବର୍ଣ୍ଣା ।
ରୋହିଣୀକାନ୍ତ--ପୁଂ.ବି. (୬ତତ୍)ରୋହିଣୀପତି ଚନ୍ଦ୍ର ।
ରୋହିଣୀକୁଣ୍ଡ—ଗ୍ରା.ବି. ଶ୍ରୀକ୍ଷେତ୍ରସ୍ଥ କୁଣ୍ଡବିଶେଷ, ଏହା କଳ୍ପବଟର ପଶ୍ଚିମ ପାର୍ଶ୍ୱରେ ଅବସ୍ଥିତ ।
ରୋହିଣୀତନୟ--ପୁଂ.ବି.(୬ତତ୍)ବଳରାମ
ରୋହିଣୀପତି—ପୁଂ. ବି. (୬ତତ୍) ଚନ୍ଦ୍ର, ବସୁଦେବ, ବୃଷଭ ।
ରୋହିଣୀପ୍ରିୟ--ପୁଂ.ବି.(୬ତତ୍)ରୋହିଣୀପତି ଦେଖ ।
ରୋହିଣୀଭବ—ପୁଂ.ବି.ବଳରାମ, ବୁଧଗ୍ରହ ।
ରୋହିଣୀଯୋଗ—ପୁଂ. ବି. ଜନ୍ମାଷ୍ଟମୀରେ ରୋହିଣୀନକ୍ଷତ୍ର ଯୋଗ ।
ରୋହିଣୀରମଣ—ପୁଂ. ବି. (ରୋହିଣୀ+ରମଣ) ବୃଷଭ, ବସୁଦେବ, ଚନ୍ଦ୍ର ।
ରୋହିଣୀବଲ୍ଲଭ—ପୁଂ. ବି.(ରୋହିଣୀ+ବଲ୍ଲଭ) ଚନ୍ଦ୍ର, ବସୁଦେବ ।
ରୋହିଣୀଶ—ପୁଂ.ବି. (ରୋହିଣୀ+ଈଶ) ଚନ୍ଦ୍ର, ବସୁଦେବ ।
ରୋହିଣୀଶକଟ — ବି. ଶକଟାକୃତି ରୋହିଣୀନକ୍ଷତ୍ର ।
ରୋହିଣୀସୁତ—ପୁଂ. ବି. ରୋହିଣୀପୁତ୍ର ବଳରାମ, ବୁଧଗ୍ରହ ।
ରୋହିଣ୍ୟଷ୍ଟମୀ—ସ୍ତ୍ରୀ. ବି. ଭାଦ୍ରମାସର କୃଷ୍ଣାଷ୍ଟମୀ, ରୋହିଣୀଯୁକ୍ତାଷ୍ଟମୀ ।
ରୋହିତ୍-ବି.(ରୁହ+ଇତ୍)ରୋହିତମତ୍ସ୍ୟ, ସୂର୍ଯ୍ୟ, ବଡ଼ବା,ନାଲିଘୋଡ଼ୀ,ନାଲିମୃଗୀ, ଋତୁମତୀ ସ୍ତ୍ରୀ, ଆଙ୍ଗୁଠି, ଲତାବିଶେଷ, (ବିଂ) ନାଲି ।
ରୋହିତବାନ୍—ପୁଂ.ବିଂ.ରକ୍ତାକ୍ତଯୁକ୍ତ ।
ରୋହିତ—ପୁଂ. ବିଂ. ( ରୁହ+କ.ତ ) ଲୋହିତ,ରକ୍ତବର୍ଣ୍ଣବିଶିଷ୍ଟ,(ବି) ରୋହିତ ମତ୍ସ୍ୟ, ଲୋହିତବର୍ଣ୍ଣ, ସୁଆମଗଛ,ନାଲିଆ ହରିଣ, ପଦ୍ମରାଗବିଶେଷ, କୁଙ୍କୁମ, ରୁଜୁ ଇନ୍ଦ୍ରଧନୁ, ରକ୍ତ ।
ରୋହିତକ—ବି.( ରୁହ+କ.ତ+କ ) ଆରଣ୍ୟ ବୃକ୍ଷବିଶେଷ, ସୁଆମଗଛ ।
ରୋହିତମତ୍ସ୍ୟ—ବି. ରୋହିମାଛ,ବୃକ୍ଷ ।
ରୋହିତା--ସ୍ତ୍ରୀ.ବି.ରାଗାଦିଦ୍ୱାରା ରକ୍ତବର୍ଣ୍ଣ
ରୋହିତାକ୍ଷ—ପୁଂ. ବିଂ. (ବି.ଗ୍ର) ରକ୍ତବର୍ଣ୍ଣ ଚକ୍ଷୁବିଶିଷ୍ଟ, (ସ୍ତ୍ରୀ) ରୋହିତାକ୍ଷୀ ।
ରୋହିତାଙ୍ଗି—ତ୍ରି.ବିଂ.ରକ୍ତଚକ୍ଷୁବିଶିଷ୍ଟ ।
ରୋହିତାଶ୍ୱ—ପୁଂ. ବି. (ବି.ଗ୍ର) ଅଗ୍ନି, ରାଜାହରିଶ୍ଚନ୍ଦ୍ରଙ୍କ ପୁତ୍ର,(ପୁଂ.ବିଂ)ଯାହାର ନାଲିଆ ଘୋଡ଼ାଥାଏ ।
ରୋହିତିକା—ସ୍ତ୍ରୀ. ବି. ରାଗାଦି ଦ୍ୱାରା ରକ୍ତବର୍ଣ୍ଣ ।
ରୋହିତେୟ—ପୁଂ. ବି. ରୋହିତ ବୃକ୍ଷ, ସୁଆମଗଛ ।
ରୋହିଦଶ୍ୱ—ପୁଂ. ବି. ଅଗ୍ନି ।
ରୋହିନ୍—ପୁଂ. ବି. ରୋହିତକ ବୃକ୍ଷ, ଅଶ୍ୱତ୍ଥବୃକ୍ଷ, ବଟବୃକ୍ଷ ।
ରୋହିପିତ୍ତ—ଗ୍ରା. ବି.ରୋହିମାଛର ପିତ୍ତ ।
ରୋହିଲ—ଗ୍ରା. ବି.ଭାରତର ଉତ୍ତରପଶ୍ଚିମ ପ୍ରଦେଶବାସୀ ମୁସଲମାନଜାତିବିଶେଷ ।

**ରୋହଲଖଣ୍ଡ**—ସ୍ତ୍ରୀ. ବ.ଭାରତର ଅଯୋଧ୍ୟାର ଉତ୍ତରପଶ୍ଚିମସ୍ଥ ଅଞ୍ଚଳବିଶେଷ ।

**ରୋହିଷ**—ବ. ଗନ୍ଧତୃଣ,ଧନ୍ୱନ୍ତରୀ, ରୋହିତକ ମୃଗ, ରୋହିମାଛ, ରକ୍ତଚନ୍ଦନ ।

**ରୋହୀ**—ବି°. (ରୁହ+କ.ଇନ୍) ଉତ୍ପତ୍ତିଶୀଳ, ଆରୋହଣକାରୀ, ଡେଙ୍ଗା,ଲମ୍ବା, ଅନ୍ୟାରେ ବଢ଼ୁଥିବା, (ସ୍ତ୍ରୀ)ରୋହିଣୀ ।

**ରୋହୀ**—ବ.ବଟବୃକ୍ଷ,ଅଶ୍ୱତ୍ଥବୃକ୍ଷ,ରୋହିତକ ଦେଶ, ମୃଗୀ ।

**ରୌକ୍ମ**—ତ୍ରି. ବି°. (ରୁକ୍ମ+ଅ)ସୁବର୍ଣ୍ଣନିର୍ମିତ, ସ୍ୱର୍ଣ୍ଣମୟ, (ସ୍ତ୍ରୀ) ରୌକ୍ମୀ ।

**ରୌକ୍ମିଣେୟ**—ପୁଂ. ବ.(ରୁକ୍ମିଣୀ+ଏୟ) ରୁକ୍ମିଣୀଗର୍ଭସମ୍ଭବ, ପ୍ରଦ୍ୟୁମ୍ନ, (ସ୍ତ୍ରୀ) ରୌକ୍ମିଣେୟୀ ।

**ରୌକ୍ଷ୍ୟ**—କ୍ଲୀ ବ.(ରୁକ୍ଷ+ଭା.ଯ) ରୁକ୍ଷତା, କାର୍କଶ୍ୟ, କାଠିନ୍ୟ,ଶୁଷ୍କତା,ନିଷ୍ଠୁରତା ।

**ରୌଚନିକ**—ବି°. ( ରୋଚନ+ଇକ ) ରଙ୍ଗାଯାଇଥିବା, ଗୋରୋଚନାରଞ୍ଜିତ, (ବ) ଦାନ୍ତଉପରେ ବେଳେବେଳେ ପଡ଼ିଥିବା ଟାଣୁଆ ସ୍ତର ।

**ରୌଚ୍ୟ**—ପୁଂ.ବ. ମନୁବିଶେଷ,ତ୍ରୟୋଦଶମନୁ, ବିଲ୍ୱଦଣ୍ଡ ।

**ରୌଦ୍ର**—ବି°. (ରୁଦ୍ର+ଅ) ରୁଦ୍ରସମ୍ବନ୍ଧୀୟ, ଉଗ୍ର, ପ୍ରଚଣ୍ଡ, ଭୀଷଣ,ଅତିକ୍ରୁଦ୍ଧ, ଅଶୁଭସୂଚକ, (ସ୍ତ୍ରୀ) ରୌଦ୍ରୀ, (ବ) ସୂର୍ଯ୍ୟକିରଣ, ଖରା, କ୍ରୋଧ, ଯମ, କାବ୍ୟର ରସବିଶେଷ, କ୍ରୋଧଜନକ ରସ, ରୁଦ୍ରଦେବତାଙ୍କ ପୂଜକ, ଶୀତଋତୁ, ଉତ୍ତାପ,ଭୀଷଣତା ।

**ରୌଦ୍ରକ**—ବି°. ରୁଦ୍ରକର୍ତ୍ତୃକ କୃତ ।

**ରୌଦ୍ରକର୍ମା**—ପୁଂ. ବି°. ଭୀଷଣକର୍ମା, ରୌଦ୍ରକର୍ମକାରୀ, (ବ)କୌଣସି ଭୀଷଣ ଉଦ୍ଦେଶ୍ୟରେ ଅନୁଷ୍ଠିତ ତାନ୍ତ୍ରିକ ଐନ୍ଦ୍ରଜାଲିକ ଉପଚାର । [ ଉତ୍ତପ୍ତ ।

**ରୌଦ୍ରତପ୍ତ**—ବି°.(୩ତତ୍) ଖରାତାପରେ

**ରୌଦ୍ରଦଂଷ୍ଟ୍ର**—ପୁଂ. ବି°. ( ବ.ବ୍ରୀ ) ଭୟଙ୍କର ଦନ୍ତବିଶିଷ୍ଟ ।

**ରୌଦ୍ରଦଗ୍ଧ**—ପୁଂ.ବି°.(୩ତତ୍) ରୌଦ୍ରତାପିତ, ଖରାରେ ଅତିଶୟ ଉତ୍ତପ୍ତ, (ସ୍ତ୍ରୀ) ରୌଦ୍ରଦଗ୍ଧା ।

**ରୌଦ୍ରଦର୍ଶନ**—ପୁଂ.ବି°(ବ.ବ୍ରୀ)ଭୀଷଣାକୃତି,ଯେ ଦେଖିବାକୁ ଭୟଙ୍କର,(ସ୍ତ୍ରୀ) ରୌଦ୍ରଦର୍ଶନା ।

**ରୌଦ୍ରନେତ୍ର**—ପୁଂ. ବି°. (ବ.ବ୍ରୀ)ଭୟଙ୍କର ଚକ୍ଷୁର୍ଯୁକ୍ତ, କ୍ରୋଧାରକ୍ତ ନୟନଯୁକ୍ତ, (ସ୍ତ୍ରୀ) ରୌଦ୍ରନେତ୍ରା ।

**ରୌଦ୍ରପଦ**—ବ. ହିନ୍ଦୁମାନଙ୍କର ତୀର୍ଥବିଶେଷ ।

**ରୌଦ୍ରପାଦ**—କ୍ଲୀ. ବ. ଆର୍ଦ୍ରା ନକ୍ଷତ୍ର ।

**ରୌଦ୍ରମନାଃ**—ପୁଂ.ବି° (ବ.ବ୍ରୀ)ନିଷ୍ଠୁରଚିତ୍ତ, କ୍ରୂର ।

**ରୌଦ୍ରମୂର୍ତ୍ତି**—ବ.(କ.ଧା)ଭୟଙ୍କର ରୂପ, କ୍ରୋଧମୟ ମୂର୍ତ୍ତି, (ପୁଂ. ବି°. ବ.ବ୍ରୀ) ଭୀଷଣ ରୂପବିଶିଷ୍ଟ, କୋପନ ମୂର୍ତ୍ତି ।

**ରୌଦ୍ରରସ**—ବ. କାବ୍ୟର ରସବିଶେଷ, କ୍ରୋଧୋତ୍ପାଦକ ରସ ।

**ରୌଦ୍ରର୍କ୍ଷ**—ବ. (ବ.ବ୍ରୀ)ଆର୍ଦ୍ରା ନକ୍ଷତ୍ର ।

**ରୌଦ୍ରାକ୍ଷ**—ବି°(ରୁଦ୍ରାକ୍ଷ+ଅ) ରୁଦ୍ରାକ୍ଷସମ୍ବନ୍ଧୀୟ ବା ରୁଦ୍ରାକ୍ଷରେ ପ୍ରସ୍ତୁତ ।

**ରୌଦ୍ରାଗ୍ନ**—ତ୍ରି.ବି°. ରୁଦ୍ର ଓ ଅଗ୍ନିସମ୍ବନ୍ଧୀୟ ।

**ରୌଦ୍ରୀ**—ସ୍ତ୍ରୀ. ବ. ( ରୁଦ୍ର+ଅ+ଈ ) ରୁଦ୍ରଜଟା, ଚଣ୍ଡୀ, ଦୁର୍ଗା ।

**ରୌଦ୍ରୀକରଣ**—ବ. (ରୌଦ୍ର+ଚ୍ୱି+କରଣ) ଭୀଷଣ କର୍ମସାଧନ ।

**ରୌଦ୍ରୀଭାବ**—ବ.(ରୌଦ୍ର+ଚ୍ୱି+ଭାବ) ରୁଦ୍ର ବା ଶିବଙ୍କ ଭାବ, ରୌଦ୍ରତା, ପ୍ରଚଣ୍ଡତା, ଭୀଷଣତା ।

**ରୌଦ୍ରୀଭୂତ**—ବି°.(ରୌଦ୍ର+ଚ୍ୱି+ଭୂତ) ଯାହା ପ୍ରଚଣ୍ଡ ନଥିଲା ବର୍ତ୍ତମାନ ପ୍ରଚଣ୍ଡ ହୋଇଅଛି ।

**ରୌଦ୍ରୀଜ୍ୱଳ**—ବି°.(୩ତତ୍)ସୂର୍ଯ୍ୟକିରଣ ଦ୍ୱାରା ଦୀପ୍ତିମାନ୍,ଭୀଷଣ ଏବଂ ଦୀପ୍ତିଶାଳୀ, (ଅନ୍ୟରୂପ, ରୌଦ୍ରଦୀପ୍ତ ବା ଦୀପିତ) ।

**ରୌଧିର**—ବି°. (ରୁଧିର+ଅ) ରୁଧିରସମ୍ବନ୍ଧୀୟ, ରକ୍ତାକ୍ତ, ରକ୍ତମୟ, ରକ୍ତଜନିତ, ରକ୍ତବିଶିଷ୍ଟ ।

**ରୌପ୍ୟ**—କ୍ଲୀ. ବ. (ରୂପ୍ୟ+ଅ) ରୂପା, ରଜତ, ଖନିଜ ଲବଣ, ଶାମ୍ବରଲବଣ

**ରୌପ୍ୟକ**—ବି°(ରୌପ୍ୟ+କ)ରୂପାରେ ତିଆରି, ରୂପାପରି ।

**ରୌପ୍ୟଚକ୍ର**—କ୍ଲୀ.ବ. (କ.ଧା) ରୂପାର ଚକା, ଟଙ୍କା ।

**ରୌପ୍ୟନିର୍ମିତ**—ବି°. (୩ତତ୍)ରୂପାରେ ତିଆରି ।

**ରୌପ୍ୟମୟ**—ବି°. (ରୌପ୍ୟ+ମୟଟ୍) ରୌପ୍ୟସ୍ୱରୂପ, ରୂପାନିର୍ମିତ,ରଜତାଭ ।

**ରୌପ୍ୟମାଷକ**—ବ. (୬ତତ୍) ଏକମଷା ପରିମିତ ରୂପା ।

**ରୌପ୍ୟମୁଦ୍ରା**—ବ(କ.ଧା)ରୂପାର ଟଙ୍କା, ରୂପାର ମୁଦ୍ରା ।

**ରୌପ୍ୟମୁଦ୍ରିକା**—ବି°. (କ.ଧା) ରୂପାର ତିଆରି ମୁଦି ।

**ରୌପ୍ୟରୁକ୍ମମୟ**—ବ.ରୂପାର ଓ ସୁନାର ତିଆରି । [ ଲବଣ ।

**ରୌମ**—କ୍ଲୀ. ବ. (ରୁମ୍+ଅ) ଶାମ୍ବର

**ରୌମକ**—କ୍ଲୀ.ବ.(ରୁମ+ଅକ)ଶାମ୍ବର ଲବଣ, (ବି°)ରୋମ୍ ସାମ୍ରାଜ୍ୟବାସୀଙ୍କ ଦ୍ୱାରା ଜାତ, ରୋମ୍‌ସମ୍ବନ୍ଧୀୟ ।

**ରୌମକୀୟ**—ତ୍ରି. ବି°. ରୋମକ ଦେଶବାସୀ, ରୋମକ ଦେଶସମ୍ବନ୍ଧୀୟ ।

**ରୌମହର୍ଷଣକ**—ତ୍ରି. ବି°. ରୋମହର୍ଷଣସଂଯୁକ୍ତ ।

**ରୌମହର୍ଷଣି**—ପୁଂ. ବ. ରୋମହର୍ଷଣଙ୍କ ଗୋତ୍ରାପତ୍ୟ, ସୂତପୁତ୍ର ।

**ରୌମ୍ୟ**—ପୁଂ. ବ. ମହାଦେବ ।

**ରୌରବ**—ବ.( ରୁଦ୍+ଅଧ୍+ଅବ— ଯେଉଁଠାରେ ପଡ଼ିଥିବା ପାପୀମାନେ ସର୍ବଦା କାନ୍ଦୁଥାଆନ୍ତି ), ନରକାଂଶବିଶେଷ, (ବି°. ରୁରୁ+ଅ)ରୁରୁ ମୃଗସମ୍ବନ୍ଧୀୟ,ରୁରୁ ମୃଗଚର୍ମ ନିର୍ମିତ,ଘୋର, ଭୟଙ୍କର, ଧୂର୍ତ୍ତ, ଚଞ୍ଚଳ, ଚପଳ ।

**ରୌଷନ୍**—ଯା. ବ. ଆଲୋକ ।

**ରୌହିଣ**—ବ.(ରୌହିଣ+ଅ) ଦିବସର ନବମ ମୁହୂର୍ତ୍ତ, ଚନ୍ଦନବୃକ୍ଷ, ବଟବୃକ୍ଷ, ଗନ୍ଧତୃଣ, ଅଗ୍ନିଙ୍କ ନାମ, ଇନ୍ଦ୍ରଙ୍କ ଦ୍ୱାରା ନିହତ ଅସୁରବିଶେଷ, ପ୍ରବର୍ଗ୍ୟ ନାମକ

ଯଜ୍ଞରେ ବ୍ୟବହୃତ ପୁରୋଡ଼ାଶବିଶେଷ, (ସଂ. ରୋହିଣୀ+ଅ)ରୋହିଣୀ ନକ୍ଷତ୍ରରେ ଜାତ ।

ରୌହିଣୀକ—ବି. ମଣିରତ୍ନ ।

ରୌହିଣେୟ—ବି. (ରୋହିଣୀ+ଏୟ) ବଳରାମ, ବୁଧଗ୍ରହ, ପୁରୁଷୋତ୍ତମସ୍ଥ ତୀର୍ଥବିଶେଷ ।

ରୌହିତ—ବି. ସଂ. ( ରୋହିତ+ଅ ) ରୋହିମାଛ ସମ୍ବନ୍ଧୀୟ, ରୋହିତ ସମ୍ବନ୍ଧୀୟ,(ବି)ହରିବଂଶୋକ୍ତ କୃଷ୍ଣଙ୍କ ପୁତ୍ରବିଶେଷ ।

ରୌହିଷ—ବି.(ରୁହ+କ.ଇଷ)ରୋହିମାଛ, ମୃଗବିଶେଷ, ଧନ୍ୱନ୍ତରୀତୃଣ,ଦୂବଘାସ, (ସ୍ତ୍ରୀ) ରୌହିଷୀ ।

ରୌହିଷୀ—ସ୍ତ୍ରୀ.ବି. ( ରୌହିଷ+ଈ ) ଦୂର୍ବା, ମୃଗୀବିଶେଷ ।

ରୌହୀ—ସ୍ତ୍ରୀ.ବି. (ରୌହ+ଈ) ମୃଗୀ, ରୌହିତମୃଗୀ ।

# ଲ ଓ ଲ

ଲ—ବ୍ୟଞ୍ଜନବର୍ଣ୍ଣମାଳାର ଅଷ୍ଟାବିଂଶ ବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ଦନ୍ତ ।

ଲ 'ଲ'—ବି. (ଲା+ଅ) ଇନ୍ଦ୍ର, ଶକ୍ରୁ, ଗ୍ରହଣ,ଦାନ, ପୃଥିବୀର ବୀଜମନ୍ତ୍ର,(ଯା. ବି) ଆଇନ୍, ରାଜବିଧି ।

ଲଅ—ଗ୍ରା.ବି. ଲତା, ଲଇ, ସାପ ।

ଲଅକଲକ୍—ଗ୍ରା. ଅବ୍ୟ, ଲକଲକ, ଲହଲହ । [ କରିବା ।

ଲଅଚ୍ଛୁଇଁବା—ଗ୍ରା. କ୍ରି. ସର୍ପ ଦଂଶନ

ଲଅପଳାଶ—ଗ୍ରା.ବି.ଖୁବ୍ ସାନସାନ ପତ୍ରବିଶିଷ୍ଟ ଲଟାଳିଆ ପଳାଶଗଛ ।

ଲଅବର—ଗ୍ରା.ବି. ଏକପ୍ରକାର ବର ।

ଲଅଲୁଆଣି—ଗ୍ରା. ବି. ସର୍ପାଦି ଜନ୍ତୁ, ସରୀସୃପ, ଅତି ଅବନତ ।

ଲଇ—ଗ୍ରା.ବି.ଲତା,ଗଛର ଗୁଳରୁ ବାହାର ଜରିଯିବା ପତଳା ତନ୍ତୁ, ବଉଡ଼ରୂପେ ବ୍ୟବହୃତ କେତେକ ଗଛର ଗୁଳ, ଶିଅ, ଓହଳଆଦି ।

ଲଇଁ—ଗ୍ରା.ଅବ୍ୟ.କ୍ରି.ନତହୋଇ, ନଇଁ, (ଗ୍ରା.ବିଂ)ନତଶରୀର,ନତପୃଷ୍ଠ, କୁଜା ।

ଲଇଁଗୁଳିବା—ଗ୍ରା. କ୍ରି. ଗୁଳିଲୁଚେବଲେ ଲଇଁବା ।

ଲଇଁପଡ଼ିବା—ଗ୍ରା.କ୍ରି. ଅବନତହେବା ।

ଲଇଁବା—ଗ୍ରା.କ୍ରି.ଅବନତହେବା,ନମ୍ରକୁ ବଙ୍କହେବା,(ଲ.ଅର୍ଥ)କୌଣସି ବ୍ୟକ୍ତିର ବଶ୍ୟତା ସ୍ୱୀକାର କରିବା,ବଙ୍କହେବା, ବିନୀତହେବା, (ପଦ୍ୟ)ଗ୍ରହଣ କରିବା ।

ଲଇକାନ—ପ୍ରା. ( ଲରଆ. ସମ୍ବ ) ବି. ନୋଳିକାନ ।

ଲଇବା—ଗ୍ରା. କ୍ରି. ଧାରଣ କରିବା, ଘେନିବା,ନେବା,ଅବଲମ୍ବନ କରିବା ।

ଲଇବାହାର—ଗ୍ରା.ବି. ଲତାବିଶେଷ ।

ଲଉ—ଗ୍ରା.ବି.ଲହୁ ଦେଖ,(ଇତରଭାଷା) କବେସଂଖ୍ୟା ।

ଲଉଡ଼ି—ଗ୍ରା.ବି. (ସଂ-ଲଗୁଡ଼)ବାଡ଼ି,ଯଷ୍ଟି, ଗୋରୁମାନଙ୍କସଂଖ୍ୟାବିଶେଷ,ଦଶକୋଟି ଗୋରୁଙ୍କ ସମଷ୍ଟି । [ ଉତ୍ସବ ।

ଲଉଣୀବନ୍ଧ—ପ୍ରା.(ଗଞ୍ଜାମ)ବି. ବିବାହାଦି

ଲଉଣୀଗଜପତି—ଗ୍ରା.ବି. ନଉଣୀ ଗଜପତି ଉତ୍କଳର ପ୍ରାଚୀନ ନନ୍ଦପୁର ( ଆଧୁନିକ ଜୟପୁର ) ର କେତେକ ରାଜାଙ୍କ ଉପାଧି ।

ଲଉଁଳୀ—ଗ୍ରା.ସ୍ତ୍ରୀ. ବିଂ. ନବୀନା ( ସ୍ତ୍ରୀ ), କୋମଳା (ସ୍ତ୍ରୀ),ପତଳା (ସ୍ତ୍ରୀ), ଯୁବତୀ, ସୁକୁମାରୀ ।

ଲଉଳୀବୟସ-ଗ୍ରା.ବି. (ସ୍ତ୍ରୀମାନଙ୍କପକ୍ଷରେ) ଯୁବାବୟସ । [ ବୟସୀ ।

ଲଉଳୀବୟସୀ-ଗ୍ରା.ସ୍ତ୍ରୀ.ବିଂ.ଯୁବତୀ,ଯୁବା-

ଲଉଳୀ—ଗ୍ରା.ବି. ଲୌଳୀ ଦେଖ ।

ଲଏ—ଗ୍ରା.ବି. ଲୟ ଦେଖ ।

ଲଂ-ବି.(ତନ୍ତ୍ର) ପୃଥିବୀଦେବୀଙ୍କ ବୀଜମନ୍ତ୍ର ।

ଲଂଟା—ପ୍ରା.(ସମ୍ବ)ବି. ଗଧିଆ ।

ଲକ୍ରା—ପ୍ରା. (ବାମଣ୍ଡା) ବି. ପେଣ୍ଡରା, ହେଟାବାଘ ।

ଲକ୍ଲକ୍—ଗ୍ରା.ବି.ପତଳା ଓ ସରୁ ଜନ୍ତୁ ସବୁ ହଲାଇଲେ ତାହାର ଏପାଖରୁ ସେପାଖକୁ ନଇଁଯିବା ଅବସ୍ଥା, ଖିଆ ବା ତଅଣ ସିଝିଯିବା ପରେ ପାଣି କମିଗଲେ ଯେଉଁ ଶବ୍ଦ ହୁଏ ।

ଲକ୍—ଯା.ବି.ଗୁଡ଼ି ଉଡ଼ାଇବାର ସୂତା ।

ଲକଚ—ପୁଂ.ବି. (ଲକ୍+ଅଚ) ଲକୁଚ ଦେଖ ।

ଲକଟ— ଯା. ବି. ଗୋଲାପଜାମୁବର୍ଗର ଶ୍ରେଷ୍ଠ ଫଳତରୁବିଶେଷ, ଲୋକଟ ।

ଲକଡ଼ି—ଯା.ବି. କାଠ, (ବିଂ) କାଠପରି ଶୁଷ୍କ ।

ଲକମାରିଚ—ଗ୍ରା.ବି.ଲଙ୍କାମରିଚ ଦେଖ ।

ଲକରେଲକର—ଗ୍ରା.ଅବ୍ୟ.ଲକ୍ଲକ୍ଦେଖ

ଲକଲକିଆ—ଗ୍ରା. ବିଂ. ଖୁବ୍ ପତଳା ଓ ସରୁ (ପଟାଆଡ଼) ।

ଲକସ୍ତକ—ଗ୍ରା.ବିଂ.ଧାନଭିବାପନ୍ନ,ବିନୀତ, ଲାଳାସ୍ନିତ ।

ଲକାଆମ୍ବ—ଗ୍ରା.ବି. ଲଙ୍କାଆମ୍ବ ଦେଖ ।

ଲକାର—ବି. 'ଲ' ଅକ୍ଷର ।

ଲକା—ପ୍ରା.(ସମ୍ବ)ବି. ପିତଳର ବଡ଼ପାତ୍ର, ତସଲା ।

ଲକୁଚ—ପୁଂ.ବି. (ଲକ୍+ମି.ଉଚ୍)ବୃକ୍ଷବିଶେଷ,ମନ୍ଦାରବୃକ୍ଷ, କେଉଟ ଦେଖ ।

ଲକୁଚକୁଚ—ସ୍ତ୍ରୀ.ବିଂ. (ବି.ଗ୍ରୀ)କେଉଟ ପରି ବର୍ତ୍ତୁଳ ସ୍ତନବିଶିଷ୍ଟା (ସ୍ତ୍ରୀ) ।

ଲକୁଟ—ପୁଂ.ବି. ବାଡ଼ି, ଲଗୁଡ଼ ।

ଲକୁଟୀ—ପୁଂ. ବିଂ. ( ଲକୁଟ+ଇନ୍ ) ଲଗୁଡ଼ହସ୍ତ, ଯେ ବାଡ଼ି ଧରି ଚାଲେ ।

ଲକ୍ତ—ବି.ବିଂ. ରକ୍ତବର୍ଣ୍ଣ, ଲାଲ ।

ଲକ୍ତକ—ପୁଂ.ବି. ( ଲକ୍+ତ+କ ) ଅଲକ୍ତକ, ଅଳତା, ଜୀର୍ଣ୍ଣବସ୍ତ୍ର ବସ୍ତ୍ର, ଛିଣ୍ଡାକନା ।

ଲକ୍ତକର୍ମ—ପୁଂ. ବି. (ଲକ୍ତ+କୃ+ଅ) ରକ୍ତବର୍ଣ୍ଣ ଲୋଧ୍ର ।

ଲକ୍ତିକା—ବି. ଝିଟିପିଟି, ଗୃହଗୋଧିକା ।

ଲକ୍ଷ—କ୍ଲୀ.ବି. (ଲକ୍ଷ୍+ଅ) ଅଙ୍କ,ଲକ୍ଷ୍ୟ, ଶରବ୍ୟ, ଲକ୍ଷୀଭୂତ, ପଦ, ଚିହ୍ନ, ଶତସହସ୍ର ସଂଖ୍ୟା, ପ୍ରବଞ୍ଚନା, ଛଳନା, ଭୁରୁରୁ, ବ୍ୟାଖ୍ୟା, ଦୃଷ୍ଟି, ଗୋଡ଼,ଅକ୍ଷର

ଯଜ୍ଞରେ ବ୍ୟବହୃତ ପୁରୋଡ଼ାଶବିଶେଷ, (ବଂ. ରୋହିଣୀ+ଅ)ରୋହିଣୀ ନକ୍ଷତ୍ରରେ ଜାତ ।
ରୌହିଣିକ—ବି. ମଣିରତ୍ନ ।
ରୌହିଣେୟ—ବି. (ରୋହିଣୀ+ଏୟ) ବଳରାମ, ବୁଧଗ୍ରହ, ପୁରୁଷୋତ୍ତମସ୍ଥ ତୀର୍ଥବିଶେଷ ।
ରୌହିତ—ବି. ବଂ. ( ରୋହିତ+ଅ ) ରୋହିମାଛ ସମ୍ବନ୍ଧୀୟ, ରୋହିତ ସମ୍ବନ୍ଧୀୟ,(ବି)ହରିବଂଶୋକ୍ତ କୃଷ୍ଣଙ୍କ ପୁତ୍ରବିଶେଷ ।
ରୌହିଷ—ବି.(ରୁହ୍+କ.ଇଷ)ରୋହିମାଛ, ମୃଗବିଶେଷ, ଧନ୍ୱନ୍ତରିତୃଣ,ଦୂବଘାସ, (ସ୍ତ୍ରୀ) ରୌହିଷୀ ।
ରୌହିଷୀ—ସ୍ତ୍ରୀ.ବି. ( ରୌହିଷ+ଈ ) ଦୂର୍ବା, ମୃଗୀବିଶେଷ ।
ରୌହୀ—ସ୍ତ୍ରୀ.ବି. (ରୌହ+ଈ) ମୃଗୀ, ରୌହିତମୃଗୀ ।

# ଲ ଓ ଳ

ଲ—ବ୍ୟଞ୍ଜନବର୍ଣ୍ଣ ମାଳାର ଅଷ୍ଟାବିଂଶ ବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ଦନ୍ତ ।
ଲ 'ଲ'—ବି. (ଲା+ଅ) ଇନ୍ଦ୍ର, ଶବ୍ଦ, ଗ୍ରହଣ,ଦାନ, ପୃଥିବୀର ବୀଜମନ୍ତ୍ର,(ଯା. ବି) ଆଇନ୍, ରାଜବଧୂ ।
ଲଅ—ଗ୍ରା.ବି. ଲତା, ଲଇ, ସାପ ।
ଲଅକଲକ୍—ଗ୍ରା. ଅବ୍ୟ, ଲକଲକ, ଲହଲହ । [ କରିବା ।
ଲଅଛୁଇଁବା—ଗ୍ରା. କ୍ରି. ସର୍ପ ଦଂଶନ
ଲଅପଲାଶ—ଗ୍ରା.ବି.ଖୁବ୍ ସାନସାନ ପତ୍ରବିଶିଷ୍ଟ ଲଟାଳିଆ ପଲାଶଗଛ ।
ଲଅବର—ଗ୍ରା.ବି. ଏକପ୍ରକାର ବର ।
ଲଅଲୁଆଣି—ଗ୍ରା. ବି. ସର୍ପାଦି ଜନ୍ତୁ, ସରୀସୃପ, ଅତି ଅବନତ ।
ଲଇ—ଗ୍ରା.ବି.ଲତା,ଗଛର ଗୁଳ୍ମରୁ ବାହାର ହୋଇଥିବା ପତଳା ତନ୍ତୁ, ଦଉଡ଼ିରୂପେ ବ୍ୟବହୃତ କେତେକ ଗଛର ଗୁଳ, ଶିଅ, ଓହଳଆଦି ।
ଲଇଁ—ଗ୍ରା.ଅବ୍ୟ.କ୍ରି.ନତହୋଇ, ନଇଁ, (ଗ୍ରା.ବଂ)ନତଶରୀର,ନତପୃଷ୍ଠ, କୁଜା ।
ଲଇଁଗୁଳିବା—ଗ୍ରା. କ୍ରି. ଗୁଳିଲୁଚିବାଲେ ଲଇଁବା ।
ଲଇଁପଡ଼ିବା—ଗ୍ରା.କ୍ରି. ଅବନତ ହେବା ।
ଲଇଁବା—ଗ୍ରା.କ୍ରି.ଅବନତହେବା,ନମ୍ରକୁ ବଙ୍କହେବା,(ଲ.ଅର୍ଥ)କୌଣସି ବ୍ୟକ୍ତିର ବଶ୍ୟତା ସ୍ୱୀକାର କରିବା,ବଙ୍କହେବା, ବିନୀତହେବା, (ପଦ୍ୟ)ଗ୍ରହଣ କରିବା ।
ଲଇକାନ—ପ୍ରା. ( ଲଗିଆ. ସମ୍ବ ) ବି. ନୋଳକାନ ।
ଲଇବା—ଗ୍ରା. କ୍ରି. ଧାରଣ କରିବା, ଘେନିବା,ନେବା,ଅବଲମ୍ବନ କରିବା ।
ଲଇବାହାଗ—ଗ୍ରା.ବି. ଲତାବିଶେଷ ।
ଲଉ—ଗ୍ରା.ବି.ଲହୁ ଦେଖ,(ଇତରଭାଷା) ନବେସଂଖ୍ୟା ।
ଲଉଡ଼ି—ଗ୍ରା.ବି. (ସଂ-ଲଗୁଡ଼)ବାଡ଼ି,ଯଷ୍ଟି, ଗୋରୁମାନଙ୍କସଂଖ୍ୟାବିଶେଷ,ଦଶକୋଡ଼ି ଗୋରୁଙ୍କ ସମଷ୍ଟି । [ ଉତ୍ସବ ।
ଲଉଣୀବନ୍ଧା—ପ୍ରା.(ଗଞ୍ଜାମ)ବି. ବିବାହାଦି
ଲଉଣୀରାଜପଥ—ଗ୍ରା.ବି. ନଉଣୀ ରାଜପଥ ଉତ୍କଳର ପ୍ରାଚୀନ ନନ୍ଦପୁର ( ଆଧୁନିକ ଜୟପୁର ) ର କେତେକ ରାଜାଙ୍କ ଉପାଧି ।
ଲଉଁନୀ—ଗ୍ରା.ସ୍ତ୍ରୀ. ବଂ. ନବୀନା ( ସ୍ତ୍ରୀ ), କୋମଳା(ସ୍ତ୍ରୀ),ପତଳା (ସ୍ତ୍ରୀ), ଯୁବତୀ, ସୁକୁମାରୀ ।
ଲଉଣୀବୟସ-ଗ୍ରା.ବି. (ସ୍ତ୍ରୀମାନଙ୍କପକ୍ଷରେ) ଯୁବାବୟସ । [ ବୟସୀ ।
ଲଉଣୀବୟସୀ-ଗ୍ରା.ସ୍ତ୍ରୀ.ବଂ.ଯୁବତୀ,ଯୁବା-
ଲଉଲୀ—ଗ୍ରା.ବି. ଲୌଲୀ ଦେଖ ।
ଲଏ—ଗ୍ରା.ବି. ଲୟ ଦେଖ ।
ଲଂ-ବି.(ତନ୍ତ୍ର)ପୃଥିବୀଦେବୀଙ୍କ ବୀଜମନ୍ତ୍ର ।
ଲଂଟା—ପ୍ରା.(ସମ୍ବ)ବି. ଗଧିଆ ।
ଲକ୍ଷ—ପ୍ରା. (ବାମଣ୍ଡା) ବି. ପେଣ୍ଡରା, ହେଟାବାଘ ।
ଲକ୍‌ଲକ୍—ଗ୍ରା.ବି.ପତଳା ଓ ସରୁ ଜନ୍ତୁ ସବୁ ହଲାଇଲେ ତାହାର ଏପାଖକୁ ସେପାଖକୁ ନଇଁଯିବା ଅବସ୍ଥା, ଘୃତ ବା ତରଳ ଜିନିଷ ପରେ ପାଣି କମିଗଲେ ଯେଉଁ ଶବ୍ଦ ହୁଏ ।
ଲକ୍—ଯା.ବି.ଗୁଡ଼ି ଉଡ଼ାଇବାର ସୂତା ।
ଲକଚ—ପୁଂ.ବି. (ଲକ୍+ଅଚ) ଲକୁଚ ଦେଖ ।
ଲକଟ— ଯା. ବି. ଗୋଲାପଜାମୁବର୍ଗର ଶ୍ରେଷ୍ଠ ଫଳତରୁବିଶେଷ, ଲୋକଟ ।
ଲକଡ଼ି—ଯା.ବି. କାଠ, (ବଂ) କାଠପରି ଶୁଷ୍କ ।
ଲକମାରଚ—ଗ୍ରା.ବି.ଲଙ୍କାମରିଚ ଦେଖ ।
ଲକଲେକର—ଗ୍ରା.ଅବ୍ୟ.ଲକ୍‌ଲକ୍‌ଦେଖ
ଲକଲକିଆ—ଗ୍ରା. ବଂ. ଖୁବ୍ ପତଳା ଓ ସରୁ (ପଟାଆଡ)।
ଲକସ୍ତକ—ଗ୍ରା.ବଂ.ଧାନଭାବାପନ୍ନ,ବିନୀତ, ଲଜ୍ଜାସ୍ୱିତ ।
ଲକାଆମ୍ବ—ଗ୍ରା.ବି. ଲଙ୍କାଆମ୍ବ ଦେଖ ।
ଲକାର—ବି. 'ଲ' ଅକ୍ଷର ।
ଲକି—ପ୍ରା.(ସମ୍ବ)ବି. ପିତଳର ବଡ଼ପାତ୍ର, ତସଲା ।
ଲକୁଚ—ପୁଂ.ବି. (ଲକ୍+ଗଁ.ଉଚ୍)ବୃକ୍ଷବିଶେଷ,ମନ୍ଦାରବୃକ୍ଷ, କେଉଟ ଦେଖ ।
ଲକୁଚକୁଚ୍ଛ—ସ୍ତ୍ରୀ.ବଂ. (ବ.ବ୍ରୀ)କେଉଟ ପରି ବର୍ତ୍ତୁଳ ସ୍ତନବିଶିଷ୍ଟା (ସ୍ତ୍ରୀ) ।
ଲକୁଟ—ପୁଂ.ବି. ବାଡ଼ି, ଲଗୁଡ଼ ।
ଲକୁଟୀ—ପୁଂ. ବଂ. ( ଲକୁଟ+ଇନ୍ ) ଲଗୁଡ଼ହସ୍ତ, ଯେ ବାଡ଼ି ଧରି ଚାଲେ ।
ଲକ୍ତ—ବି.ବଂ. ରକ୍ତବର୍ଣ୍ଣ, ଲାଲ ।
ଲକ୍ତକ—ପୁଂ.ବି. ( ଲକ୍+ତ+କ ) ଅଲକ୍ତକ, ଅଳତା, ଜୀର୍ଣ୍ଣବସ୍ତ୍ର ଖଣ୍ଡ, ଛିନ୍ନାକନା ।
ଲକ୍ତକର୍ମ—ପୁଂ. ବି. (ଲକ୍ତ+କୃ+ଅ) ରକ୍ତବର୍ଣ୍ଣ ଲୋଧ୍ର ।
ଲକ୍ତିକା—ବି. ଟିକଟିକି, ଗୃହଗୋଧିକା ।
ଲକ୍ଷ—କ୍ଳୀ.ବି. (ଲକ୍ଷ୍+ଅ) ଅଙ୍କ,ଲକ୍ଷ୍ୟ, ଶରବ୍ୟ, ଲକ୍ଷୀଭୂତ, ପଦ, ଚିହ୍ନ, ଶତସହସ୍ର ସଂଖ୍ୟା, ପ୍ରବଞ୍ଚନା, ଛଳନା, ସୁରୁର, ବ୍ୟାଖ୍ୟା, ଦୃଷ୍ଟି, ଗୋଡ଼,ଅକ୍ଷର

ସଙ୍କ୍ରରେ ବ୍ୟବହୃତ ପୁରୋଡ଼ାଶବିଶେଷ, (ବି°. ରୋହିଣୀ+ଅ)ରୋହିଣୀ ନକ୍ଷତ୍ରରେ ଜାତ ।
ରୌହିଣିକ—ବି. ମଣିରତ୍ନ ।
ରୌହିଣେୟ—ବି. (ରୋହିଣୀ+ଏୟ) ବଳରାମ, ବୁଧଗ୍ରହ, ପୁରୁଷୋତ୍ତମସ୍ଥ ତୀର୍ଥବିଶେଷ ।
ରୌହିତ—ବି. ବି°. (ରୋହିତ+ଅ) ରୋହିମାଛ ସମ୍ବନ୍ଧୀୟ, ରୋହିତ ସମ୍ବନ୍ଧୀୟ,(ବି)ହରିବଂଶୋକ୍ତ କୃଷ୍ଣଙ୍କ ପୁତ୍ରବିଶେଷ ।
ରୌହିଷ—ବି.(ରୁହ୍+କ.ଇଷ)ରୋହିମାଛ, ମୃଗବିଶେଷ, ଧନନ୍ତରିତୃଣ,ଦୂବଘାସ, (ସ୍ତ୍ରୀ) ରୌହିଷୀ ।
ରୌହିଷୀ—ସ୍ତ୍ରୀ.ବି. (ରୌହିଷ+ଈ) ଦୂବ୍ୱା, ମୃଗୀବିଶେଷ ।
ରୌହୀ—ସ୍ତ୍ରୀ.ବି. (ରୌହ+ଈ) ମୃଗୀ, ରୌହିତମୃଗୀ ।

# ଲ ଓ ଲ

ଲ--ବ୍ୟଞ୍ଜନବର୍ଣ୍ଣ ମାଳାର ଅଷ୍ଟାବିଂଶ ବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ଦନ୍ତ ।
ଲ 'ଲ'—ବି. (ଲା+ଅ) ଇନ୍ଦ୍ର, ଶବ୍ଦ, ଗ୍ରହଣ,ଦାନ, ପୃଥିବୀର ବୀଜମନ୍ତ୍ର,(ଯା. ବି) ଆଇନ୍, ରାଜବିଧି ।
ଲଅ—ଗ୍ରା.ବି. ଲତା, ଲଇ, ସାପ ।
ଲଅକଲକ୍—ଗ୍ରା. ଅବ୍ୟ, ଲକଲକ, ଲହଲହ । [ କରିବା ।
ଲଅଛୁଇଁବା—ଗ୍ରା. କ୍ରି. ସର୍ପ ଦଂଶନ
ଲଅପଲାଶ—ଗ୍ରା.ବି.ଖୁବ୍ ସାନସାନ ପତ୍ରବିଶିଷ୍ଟ ଲଟାଳିଆ ପଲାଶଗଛ ।
ଲଅବର—ଗ୍ରା.ବି. ଏକପ୍ରକାର ବର ।
ଲଅଲୁଆଣି—ଗ୍ରା. ବି. ସର୍ପାଦି ଜନ୍ତୁ, ସରୀସୃପ, ଅତି ଅବନତ ।
ଲଇ-ଗ୍ରା.ବି.ଲତା,ଗଛର ଗୁଳିରୁ ବାହାର ଜନ୍ମିବା ପତଳା ତନ୍ତୁ, ଦଉଡ଼ିରୂପେ ବ୍ୟବହୃତ କେତେକ ଗଛର ଗୁଳି, ଶିଅ, ଓହଳଆଦି ।
ଲଇଁ—ଗ୍ରା.ଅବ୍ୟ.କ୍ରି.ନତହୋଇ, ନଇଁ, (ଗ୍ରା.ବି°)ନତଶରୀର,ନତପୃଷ୍ଠ, କୁଜା ।
ଲଇଁଗୁଲିବା—ଗ୍ରା. କ୍ରି. ଗୁଲିଲ୍ ବାଲେ ଲଇଁବା ।
ଲଇଁପଡ଼ିବା—ଗ୍ରା.କ୍ରି. ଅବନତ ହେବା ।
ଲଇଁବା—ଗ୍ରା.କ୍ରି.ଅବନତହେବା,ନମ୍ରକୁ ବଙ୍କହେବା,(ଲ.ଅର୍ଥ)କୌଣସି ବ୍ୟକ୍ତିର ବଶ୍ୟତା ସ୍ୱୀକାର କରିବା,ବଙ୍କହେବା, ବିନୀତହେବା, (ପଦ୍ୟ)ଗ୍ରହଣ କରିବା ।
ଲଇକାନ—ପ୍ରା. (ଲଗିଆ. ସମ୍ବ) ବି. ନୋଳିକାନ ।
ଲଇବା—ଗ୍ରା. କ୍ରି. ଧାରଣ କରିବା, ଘେନିବା,ନେବା,ଅବଲମ୍ବନ କରିବା ।
ଲଇବାହାଗ—ଗ୍ରା.ବି. ଲତାବିଶେଷ ।
ଲଉ—ଗ୍ରା.ବି.ଲହୁ ଦେଖ,(ଇତରଭାଷା) ନବେସଂଖ୍ୟା ।
ଲଉଡ଼ି—ଗ୍ରା.ବି. (ସଂ-ଲଗୁଡ଼)ବାଡ଼ି,ଯଷ୍ଟି, ଗୋରୁମାନଙ୍କସଂଖ୍ୟାବିଶେଷ,ଦଶକୋଡ଼ି ଗୋରୁଙ୍କ ସମଷ୍ଟି । [ ଉତ୍ସବ ।
ଲଉଣୀବନ୍ଧ—ପ୍ରା.(ଗଞ୍ଜାମ)ବି. ବିବାହାଦି
ଲଉଣୀଗଜପତି—ଗ୍ରା.ବି. ନଉଣୀ ଗଜପତି ଉତ୍କଳର ପ୍ରାଚୀନ ନନ୍ଦପୁର (ଆଧୁନିକ ଜୟପୁର) ର କେତେକ ରାଜାଙ୍କ ଉପାଧି ।
ଲଉନ୍ଲି—ଗ୍ରା.ସ୍ତ୍ରୀ. ବି°. ନବୀନା (ସ୍ତ୍ରୀ), କୋମଳା(ସ୍ତ୍ରୀ),ପତଳା (ସ୍ତ୍ରୀ), ଯୁବତୀ, ସୁକୁମାରୀ ।
ଲଉନ୍ଲିବୟସ-ଗ୍ରା.ବି. (ସ୍ତ୍ରୀମାନଙ୍କପକ୍ଷରେ) ଯୁବାବୟସ୍ । [ ବୟସୀ ।
ଲଉନ୍ଲାବୟସୀ-ଗ୍ରା.ସ୍ତ୍ରୀ.ବି°.ଯୁବତୀ,ଯୁବା-
ଲଉଲ୍ଲା—ଗ୍ରା.ବି. ଲୌଲ୍ଲା ଦେଖ ।
ଲଏ—ଗ୍ରା.ବି. ଲୟ ଦେଖ ।
ଲଂ-ବି.(ତନ୍ତ୍ର)ପୃଥିବୀଦେବୀଙ୍କ ବୀଜମନ୍ତ୍ର ।
ଲଂଟା—ପ୍ରା.(ସମ୍ବ)ବି. ଗଧିଆ ।
ଲକ୍ସ—ପ୍ରା. (ବାମଣ୍ଡା) ବି. ପେଣ୍ଡରା, ହେଟାବାଘ ।
ଲକ୍‌ଲକ୍—ଗ୍ରା.ବି.ପତଳା ଓ ସରୁ ଜନସକୁ ହଲାଇଲେ ତାହାର ଏପାଖରୁ ସେପାଖକୁ ନଇଁଯିବା ଅବସ୍ଥା, ଭାତ ବା ତିଅଣ ସିଝିଯିବା ପରେ ପାଣି କମିଗଲେ ଯେଉଁ ଶବ୍ଦ ହୁଏ ।
ଲକ୍—ଯା.ବି.ଗୁଡ଼ି ଉଡ଼ାଇବାର ସୂତା ।
ଲକଚ—ପୁଂ.ବି. (ଲକ୍+ଅଚ) ଲକୁଚ ଦେଖ ।
ଲକଟ— ଯା. ବି. ଗୋଲାପଜାମୁବର୍ଗର ଶ୍ରେଷ୍ଠ ଫଳତରୁବିଶେଷ, ଲୋକାଟ ।
ଲକଡ଼ି—ଯା.ବି. କାଠ, (ବି°) କାଠପରି ଶୁଷ୍କ ।
ଲକମାରିଚ—ଗ୍ରା.ବି.ଲଙ୍କାମରିଚ ଦେଖ ।
ଲକଲକର—ଗ୍ରା.ଅବ୍ୟ.ଲକ୍‌ଲକ୍ ଦେଖ
ଲକଲକିଆ—ଗ୍ରା. ବି°. ଖୁବ୍ ପତଳା ଓ ସରୁ (ପଟାଆଡ) ।
ଲକସ୍ତକ—ଗ୍ରା.ବି°.ଧାନଭାବାପନ୍ନ,ବିନୀତ, ଲାଳାସ୍ଥିତ ।
ଲକାଆମ୍ବ—ଗ୍ରା.ବି. ଲଙ୍କାଆମ୍ବ ଦେଖ ।
ଲକାର—ବି. 'ଲ' ଅକ୍ଷର ।
ଲକି—ପ୍ରା.(ସମ୍ବ)ବି. ପିତଳର ବଡ଼ପାତ୍ର, ତସଲା ।
ଲକୁଚ—ପୁଂ.ବି. (ଲକ୍+ମି.ଉଚ୍)ବୃକ୍ଷବିଶେଷ,ମନ୍ଦାରବୃକ୍ଷ, କେଉଟ ଦେଖ ।
ଲକୁଚକୁଚ—ସ୍ତ୍ରୀ.ବି°. (ବି.ଗ୍ରା)କେଉଟ ପରି ବର୍ତ୍ତୁଳ ସ୍ତନବିଶିଷ୍ଟା (ସ୍ତ୍ରୀ) ।
ଲକୁଟ—ପୁଂ.ବି. ବାଡ଼ି, ଲଗୁଡ଼ ।
ଲକୁଟୀ—ପୁଂ. ବି°. (ଲକୁଟ+ଇନ୍) ଲଗୁଡ଼ହସ୍ତ, ଯେ ବାଡ଼ି ଧରି ଚାଲେ ।
ଲକ୍ତ—ବି.ବି°. ରକ୍ତବର୍ଣ୍ଣ, ଲାଲ ।
ଲକ୍ତକ—ପୁଂ.ବି. (ଲକ୍+ତ+କ) ଅଲକ୍ତକ, ଅଳତା, ଜୀର୍ଣ୍ଣବସ୍ତ୍ର ଖଣ୍ଡ, ଛିଣ୍ଡାକନା ।
ଲକ୍ତକର୍ମ—ପୁଂ. ବି. (ଲକ୍ତ+କୃ+ଅ) ରକ୍ତବର୍ଣ୍ଣ ଲୋଧ୍ର ।
ଲକ୍ତିକା—ବି. ଟିକଟିକି, ଗୃହଗୋଧିକା ।
ଲକ୍ଷ—କ୍ଲୀ.ବି. (ଲକ୍ଷ୍+ଅ) ଅଙ୍କ,ଲକ୍ଷ୍ୟ, ଶରବ୍ୟ, ଲକ୍ଷୀଭୂତ, ପଦ, ଚିହ୍ନ, ଶତସହସ୍ର ସଂଖ୍ୟା, ପ୍ରବଞ୍ଚନା, ଛଳନା, ଗୁରୁର୍, ବ୍ୟାଖ୍ୟା, ଦୃଷ୍ଟି, ଗୋଡ଼,ଅକ୍ଷର

ଏକପ୍ରକାର ସଂହାର, ଉଦ୍ଦେଶ୍ୟ, ଅନୁମେୟ (ବସ୍ତୁ ବା ବିଷୟ), ଲକ୍ଷଣାର୍ଥ, (ବିଂ)ଲକ୍ଷସଂଖ୍ୟକ,ବହୁସଂଖ୍ୟକ,(ଗ୍ରା.ବି) ତୁଳନା, ଉପମା, ମାଳାକୁ ଚଉଷଠି ଥର ଫେରାଇ ଜପିବା, (ବିଂ)ତୁଳନୀୟ, ସମକକ୍ଷ, ସମାନ ।

ଲକ୍ଷକ—ବିଂ. ( ଲକ୍ଷ + ଣିଚ୍ + ଅକ ) ଲକ୍ଷଣଦ୍ୱାରା ଅର୍ଥବୋଧକ (ଶବ୍ଦ),ଚିହ୍ନିତ (ବ୍ୟକ୍ତି) ।

ଲକ୍ଷକରିବା—ଗ୍ରା.କ୍ରି. ଦୃଷ୍ଟିକରିବା, ଅଭିନିବେଶପୂର୍ବକ ଗୃହିବା, ଲକ୍ଷ୍ୟପ୍ରତି ରେଖାଦି ଗୁଡ଼ିବା, ତୁଳନା କରିବା ।

ଲକ୍ଷଚ୍ୟୁତ—ବିଂ. (୫ତତ୍) ଲକ୍ଷ୍ୟଚ୍ୟୁତ ଦେଖ ।

ଲକ୍ଷଣ—ବି. (ଲକ୍ଷ+ଅନ)ନାମ, ପରିଚୟ, ଦର୍ଶନ, ଲକ୍ଷ୍ମଣ, ସାରସପକ୍ଷୀ, ଗୃମତ, ରୋଗ ନିର୍ଣ୍ଣୟସୂଚକ ଶାରୀରିକ ଚିହ୍ନାଦି, ବିଶିଷ୍ଟ ଚିହ୍ନ, ସ୍ୱରୂପ, ବ୍ୟାକରଣ ସୂତ୍ର, ପ୍ରକୃତ, ସଜାତୀୟ ବ୍ୟବଚ୍ଛେଦ ବା ଜାତି ଜ୍ଞାପକ ଚିହ୍ନ,ମଙ୍ଗଳାଗ୍ରର ପରିଚ୍ଛେଦ କରଣ, ପରିଭାଷା, ବିଶିଷ୍ଟାର୍ଥବୋଧକ ସଙ୍କେତ, (ବିଂ) ଶ୍ରୀମାନ୍, ସୁନ୍ଦର ।

ଲକ୍ଷଣକ—ପୁଂ.ବିଂ. ଲକ୍ଷଣଯୁକ୍ତ ।

ଲକ୍ଷଣକାର—ବିଂ.(ଲକ୍ଷଣ+କୃ+କ.ଅ) ଯେ ସୂତ୍ରାଦି ରଚନା କରନ୍ତି ।

ଲକ୍ଷଣଭ୍ରଷ୍ଟ—ପୁଂ.ବିଂ.ଦୁର୍ଭାଗ୍ୟ,ସ୍ୱାଜକପାଳିଆ, (ସ୍ତ୍ରୀ) ଲକ୍ଷଣଭ୍ରଷ୍ଟା ।

ଲକ୍ଷଣଯୁକ୍ତ-ବିଂ. (୩ତତ୍)ଶୁଭଲକ୍ଷଣଯୁକ୍ତ, ସୁଲକ୍ଷଣ, (ସ୍ତ୍ରୀ) ଲକ୍ଷଯୁକ୍ତା ।

ଲକ୍ଷଣଲକ୍ଷଣା—ସ୍ତ୍ରୀ.ବି. ଲକ୍ଷଣାବିଶେଷ, ଲକ୍ଷଣା ଦେଖ ।

ଲକ୍ଷଣବ(ମ)ନ୍ତ—ଗ୍ରା.ପୁଂ.ବିଂ. ସୁଲକ୍ଷଣ, ସୁନ୍ଦର ।

ଲକ୍ଷଣବାନ୍—ପୁଂ.ବିଂ. (ଲକ୍ଷଣ+ବତ୍) ଲକ୍ଷଣବିଶିଷ୍ଟ ଦେଖ ।

ଲକ୍ଷଣବିଶିଷ୍ଟ—ବିଂ.(୩ତତ୍)ଯାହାଠାରେ ଲକ୍ଷଣ ଥାଏ, ସୁଲକ୍ଷଣ,(ସ୍ତ୍ରୀ) ବିଶିଷ୍ଟା ।

ଲକ୍ଷଣସନ୍ନିପାତ—ବି. ଅଙ୍କପାତ, ଦ୍ରବ୍ୟ ବିଶେଷରେ କୌଣସି ଚିହ୍ନ ବା ନିଶାନା, ଅଙ୍କିତକରଣ ।

ଲକ୍ଷଣା—ସ୍ତ୍ରୀ.ବି. ( ଲକ୍ଷ୍+ଅନ+ଆ ) ତୁଳନା,ହଂସୀ,ସାରସୀ, ଅପ୍ସରାବିଶେଷ, ଶବ୍ଦର ବୃତ୍ତି ବା ଶକ୍ତିବିଶେଷ, ଯେଉଁ ଶକ୍ତିଦ୍ୱାରା ଶବ୍ଦର ତାତ୍ପର୍ଯ୍ୟାର୍ଥ ଛଡ଼ା ପ୍ରୟୋଜନ ପ୍ରୟୋଗ ବା ଉଦ୍ଦେଶ୍ୟ ଅନୁସାରେ ଭାବାର୍ଥର ବୋଧହୁଏ, ଉପମାଦ୍ୱାରା ଅର୍ଥର ବା ଭାବର ପ୍ରକାଶ ରଚନାରେ ଉଦ୍ଧୃତ ଶବ୍ଦ ବା ବାକ୍ୟ, କାବ୍ୟାଳଙ୍କାରବିଶେଷ, ଉପମା(ଗ୍ରା.ବି) ଲକ୍ଷଣାମୂଳ ଦେଖ ।

ଲକ୍ଷଣାକ—ଗ୍ରା.ସ୍ତ୍ରୀ.ବି. ସ୍ତ୍ରୀ ।

ଲକ୍ଷଣାକ୍ରାନ୍ତ—ବିଂ. (୩ତତ୍)ଲକ୍ଷଣଯୁକ୍ତ, ସୁଲକ୍ଷଣ, ଲକ୍ଷଣାର୍ଥଯୁକ୍ତ ।

ଲକ୍ଷଣାତର୍କ—ବି. କାବ୍ୟାଳଙ୍କାରବିଶେଷ,

ଲକ୍ଷଣାନ୍ୱିତ—ବିଂ. (୩ତତ୍) ଲକ୍ଷଣୋପେତ ଦେଖ ।

ଲକ୍ଷଣାବୃତ୍ତି—ବି.ଶବ୍ଦର ବୃତ୍ତି ବା ଶକ୍ତିବିଶେଷ,ଯେଉଁ ଶକ୍ତିଦ୍ୱାରା ଶବ୍ଦର ତାତ୍ପର୍ଯ୍ୟାର୍ଥ ଛଡ଼ା ପ୍ରୟୋଜନ ପ୍ରୟୋଗ ବା ଉଦ୍ଦେଶ୍ୟ ଅନୁସାରେ ଭାବାର୍ଥର ବୋଧହୁଏ ।

ଲକ୍ଷଣାମୂଳ—ଗ୍ରା. ବି. ଔଷଧରେ ବ୍ୟବହୃତ ମୂଳବିଶେଷ ।

ଲକ୍ଷଣାମୂଳାବ୍ୟଞ୍ଜନା—ବି. ଲକ୍ଷଣାଦ୍ୱାରା ଶବ୍ଦର ଯେଉଁ ବ୍ୟଙ୍ଗ୍ୟାର୍ଥ ପ୍ରତୀତ ହୁଏ ।

ଲକ୍ଷଣାର୍ଥ—ବି.କୌଣସି ଶବ୍ଦର ଆକ୍ଷରିକ ଅର୍ଥ ପରିବର୍ତ୍ତିରେ ବୁଝାଯିବା ଆରୋପିତ ଅର୍ଥ, ଲେଖକଙ୍କର ଉଦ୍ଦିଷ୍ଟ ଅର୍ଥ ।

ଲକ୍ଷଣାଶକ୍ତି—ବି. ବାକ୍ୟର ଶକ୍ତିବିଶେଷ, ଯଦ୍ଦ୍ୱାରା ବାଚ୍ୟାର୍ଥବୋଧ୍ୟ ଅର୍ଥ ଅସଙ୍ଗତ ହେବାରୁ ପ୍ରୟୋଜନବଶତଃ ଅନ୍ୟ ଲକ୍ଷଣାର୍ଥ ପ୍ରକାଶିତ ହୁଏ ।

ଲକ୍ଷଣାଶ୍ଳେଷ— ବି. ବାକ୍ୟାଳଙ୍କାର ବିଶେଷ ।

ଲକ୍ଷଣୀ—ପୁଂ.ବିଂ.ଲକ୍ଷଣ ବା ଚିହ୍ନଯୁକ୍ତ, ଲକ୍ଷଣଜ୍ଞ ।

ଲକ୍ଷଣୀୟ—କ୍ରି.ବିଂ. (ଲକ୍ଷ+ମିଂ.ଅନୀୟ) ଲକ୍ଷଣଦ୍ୱାରା ଜ୍ଞାତବ୍ୟ, ଦର୍ଶନୀୟ, ଅନୁଭବନୀୟ ।

ଲକ୍ଷଣୋପେତ—ବିଂ. (୩ତତ୍)ସୁଲକ୍ଷଣଯୁକ୍ତ, ଶୁଭ ଚିହ୍ନଯୁକ୍ତ, (ସ୍ତ୍ରୀ) ପେତା ।

ଲକ୍ଷଣ୍ୟ—କ୍ରି.ବିଂ.ଲକ୍ଷଣଯୁକ୍ତ, ଲକ୍ଷଣାର୍ହ, ଦୈବଶକ୍ତି ସମ୍ପନ୍ନ ଆଦର୍ଶ ପୁରୁଷ ।

ଲକ୍ଷଦେବା—ଗ୍ରା. କ୍ରି. ତୁଳନା କରିବା, ଉପମା କରିବା ।

ଲକ୍ଷପତି—ଗ୍ରା. ବି. (୬ତତ୍) ବହୁଧନବିଶିଷ୍ଟ ବ୍ୟକ୍ତି ।

ଲକ୍ଷପୋଷା(ଷୀ)—ଗ୍ରା. ପୁଂ.ସ୍ତ୍ରୀ.ବିଂ.ଯେ ଅସଂଖ୍ୟ ବ୍ୟକ୍ତିଙ୍କ ଅନ୍ନ ସଂସ୍ଥାନ କରେ ।

ଲକ୍ଷଲକ୍ଷ-ଗ୍ରା.ବିଂ.ବହୁସଂଖ୍ୟକ, ଅସଂଖ୍ୟ ।

ଲକ୍ଷା—ସ୍ତ୍ରୀ.ବି. (ଲକ୍ଷ୍+ଆ)ଲକ୍ଷ, ଶତସହସ୍ର ସଂଖ୍ୟା ।

ଲକ୍ଷାବଧି—ବିଂ(ବ.ଗ୍ରା)ଏକଲକ୍ଷ ପର୍ଯ୍ୟନ୍ତ, ପ୍ରାୟ ଏକଲକ୍ଷ ପରିମିତ ।

ଲକ୍ଷାଭ୍ରଷ୍ଟ—ବିଂ. (୫ତତ୍) ଲକ୍ଷ୍ୟଚ୍ୟୁତ ଦେଖ ।

ଲକ୍ଷିତ —କ୍ରି.ବିଂ. (ଲକ୍ଷ୍+ମିଂ.ତ)କୃତଲକ୍ଷ, ଉଦ୍ଦିଷ୍ଟ, ଅନୁଭୂତ, ଲକ୍ଷଣାବୃତ୍ତି ଦ୍ୱାରା ବିଶେଷିତ, ଆଲୋଚିତ, ଦୃଷ୍ଟ, ଅଙ୍କିତ,ଲକ୍ଷଣାଶ୍ରୟ, ଅନୁମିତ, ସୂଚିତ, ଚିହ୍ନିତ, ପରୀକ୍ଷିତ, ବିବେଚିତ, ଜ୍ଞାତ ।

ଲକ୍ଷିତବ୍ୟ—ସ୍ତ୍ରୀ.ବିଂ. ( ଲକ୍ଷି+ତବ୍ୟ ) ନିର୍ଦ୍ଦେଶ୍ୟ ।

ଲକ୍ଷିତଲକ୍ଷଣା—ସ୍ତ୍ରୀ.ବି. ଶବ୍ଦର ଲକ୍ଷଣାଶକ୍ତିବିଶେଷ,ଯେଉଁ ଶକ୍ତି ଦ୍ୱାରା ବ୍ୟୁତ୍ପତ୍ତିଗତ ଅର୍ଥରୁ ଲକ୍ଷଣାର୍ଥ ଦ୍ୱାରା ବିଶେଷ ପଦାର୍ଥର ଜ୍ଞାନ ହୁଏ ।

ଲକ୍ଷିତା—ସ୍ତ୍ରୀ. ବି. ( ଲକ୍ଷ+ତ+ଆ ) ପରକୀୟାନ୍ତର୍ଗତ ନାୟିକାବିଶେଷ ।

ଲକ୍ଷିତୋପଲକ୍ଷଣା—ବି. ଅର୍ଥାଲଙ୍କାରବିଶେଷ ।

ଲକ୍ଷିବା—ଗ୍ରା. (ପଦ୍ୟ) କ୍ରି. ଲକ୍ଷକରିବା, ତୁଳନା କରିବା, ସ୍ଥିରକରିବା,ଚହ୍ନିବା ।

ଲକ୍ଷେ—ଗ୍ରା. ବି. ଏକଲକ୍ଷ, (ବିଂ) ଏକଲକ୍ଷ ସଂଖ୍ୟକ, ଅସଂଖ୍ୟ ।

ଲକ୍ଷେଶ—ପୁଂ. ବି. ୬ତତ୍; ଲକ୍ଷ ଲକ୍ଷ

ପରମିତ ଧନର ବା ମୁଦ୍ରାର ଅଧିକାଂଶ ।
ଲକ୍ଷେଶ୍ୱର—ପୁଂ. ବ. (୬ତତ୍)ଲକ୍ଷେଶ ଦେଖ ।
ଲକ୍ଷ୍ମ—କ୍ଳୀ. ବ.(ଲକ୍ଷ + ମନ୍)ଚିହ୍ନ,ଲକ୍ଷଣ ।
ଲକ୍ଷ୍ମଣ—ପୁଂ. ବ. (ଲକ୍ଷ୍ମନ୍+ଅ) ଚିହ୍ନ, ଦାଗ, ଭାବ, ଗଡ଼, ସ୍ୱରୂପ, ନାମ, ସୌଭାଗ୍ୟ, ଶ୍ରୀ, ଶୋଭା, ଫଳ୍କା, ବିଶିଷ୍ଟତା, ପ୍ରଧାନବ୍ୟକ୍ତି, ସାରସ, ସୁମିତ୍ରା-ଗର୍ଭଜାତ ଦଶରଥଙ୍କ ପୁତ୍ର, ଦୁର୍ଯ୍ୟୋଧନଙ୍କ ପୁତ୍ର, (ବିଂ) ଶୋଭାଯୁକ୍ତ,ଚିହ୍ନଯୁକ୍ତ, ଶ୍ରୀଯୁକ୍ତ, ଶୁଭସୂଚକ,ଭାଗ୍ୟବାନ୍, ଶ୍ରେଷ୍ଠ(ବ୍ୟକ୍ତି), (ସ୍ତ୍ରୀ) ଲକ୍ଷ୍ମଣା ।
ଲକ୍ଷ୍ମଣପ୍ରସ—ସ୍ତ୍ରୀ. ବ. (୬ତତ୍) ସୁମିତ୍ରା ।
ଲକ୍ଷ୍ମଣଫଳ—ବ. ବୃକ୍ଷବିଶେଷ ।
ଲକ୍ଷ୍ମଣସେନ-ଗ୍ରା.ବ.ବଙ୍ଗଦେଶର ରାଜା ।
ଲକ୍ଷ୍ମଣା—ସ୍ତ୍ରୀ.ବ. (ଲକ୍ଷ୍ମଣ+ଆ)ସାରସୀ, ହଂସୀ, ଦୁର୍ଯ୍ୟୋଧନଙ୍କ ଏକ କନ୍ୟା, ଶ୍ରୀକୃଷ୍ଣଙ୍କ ଅଷ୍ଟ ପଟ୍ଟମହିଷୀଙ୍କ ମଧ୍ୟରୁ ଏକତମା, ଲକ୍ଷଣାମୂଳ, ଅଙ୍କରାନ୍ତ, (ସ୍ତ୍ରୀ.ବିଂ) ସୁଲକ୍ଷଣଯୁକ୍ତା ।
ଲକ୍ଷ୍ମଣାକନ୍ଦ—ସ୍ତ୍ରୀ. ବ. ଲକ୍ଷଣାମୂଳ ।
ଲକ୍ଷ୍ମଣାମୂଳ—ବ. ଲକ୍ଷଣାମୂଳ,ମୂଳୌଷଧି ବିଶେଷ ।
ଲକ୍ଷ୍ମୀ--ସ୍ତ୍ରୀ.ବ.(ଲକ୍ଷ+ମିଁ.ଈ=ମ.ଆଗମ) ବିଷ୍ଣୁଙ୍କର ଦୁଇପତ୍ନୀ ମଧ୍ୟରୁ ଏକ, ମହାଲକ୍ଷ୍ମୀ,ଶ୍ରୀରାମଚନ୍ଦ୍ରଙ୍କ ପତ୍ନୀ,ସୀତା, ଶ୍ରୀ,ଶୋଭା,ଐଶ୍ୱର୍ଯ୍ୟ,ସମ୍ପତ୍ତି,ସୌଭାଗ୍ୟ, ଦୁର୍ଗା, ରାଜଶ୍ରୀ,ଫଳମିବୃକ୍ଷ,ଶମୀ,ସ୍ଥଳପଦ୍ମିନୀ, ସାରପତ୍ନୀ,ହରିଦ୍ରା,ଋଦ୍ଧି ନାମକ ମହୌଷଧି, ପ୍ରିୟଙ୍ଗୁ ବୃକ୍ଷ,ମୁକ୍ତା,ମୋକ୍ଷପ୍ରାପ୍ତି, ଏକବର୍ଣ୍ଣବୃତ୍ତି,ବୃଦ୍ଧି ନାମୌଷଧ, ସାରା ରମଣୀ,ଗୃହସ୍ୱାମିନୀ, ପଦ୍ମ, ଧଳା ତୁଳସୀ, ମେଣ୍ଢାଶିଙ୍ଗା ।
ଲକ୍ଷ୍ମୀକ—ପୁଂ.ବିଂ. (ଲକ୍ଷ୍ମୀ+କ) ଲକ୍ଷ୍ମୀବନ୍ତ, ସୌଭାଗ୍ୟଯୁକ୍ତ,ଧନବାନ୍, (ସ୍ତ୍ରୀ) ଲକ୍ଷ୍ମୀକା ।
ଲକ୍ଷ୍ମୀକର—ଗ୍ରା. ବିଂ. ସୌଭାଗ୍ୟଯୁକ୍ତ ।
ଲକ୍ଷ୍ମୀକାନ୍ତ—ପୁଂ.ବ. (୬ତତ୍)ନାରାୟଣ, ରାଜା ।
ଲକ୍ଷ୍ମୀକାନ୍ଧରୁ ଖସିବା—ଗ୍ରା.ବ.ସୌଭାଗ୍ୟ-ହାନ ହେବା ।
ଲକ୍ଷ୍ମୀକାନ୍ଧରେ ବସିବା--ଗ୍ରା.ବ.ସୌଭାଗ୍ୟ ଦ୍ୱାରା ବେଷ୍ଟିତ ହେବା ।
ଲକ୍ଷ୍ମୀଗୃହ—କ୍ଳୀ. ବ. (୬ତତ୍) ରକ୍ତୋତ୍ପଳ, ଲକ୍ଷ୍ମୀବେଶ୍ମ, ଲକ୍ଷ୍ମୀଙ୍କ ଆଳୟ ।
ଲକ୍ଷ୍ମୀଙ୍କ ବରପୁତ୍ର—ଗ୍ରା.ପୁଂ. ବ. ଲକ୍ଷ୍ମୀଙ୍କ ଦ୍ୱାରା ବିଶେଷ ଅନୁଗୃହୀତ ବ୍ୟକ୍ତି,ଅତି ଧନୀବ୍ୟକ୍ତି ।
ଲକ୍ଷ୍ମୀଚ୍ୟୁତ—ବିଂ. ( ୫ତତ୍ ) ଶ୍ରୀଭ୍ରଷ୍ଟ, ଲକ୍ଷ୍ମୀଛଡ଼ା ।
ଲକ୍ଷ୍ମୀଛଡ଼ା—ଗ୍ରା.ବିଂ. ହତଭାଗ୍ୟ,ହତଶ୍ରୀ, ଅତିଦରିଦ୍ର ।
ଲକ୍ଷ୍ମୀଛୁଡ଼ିବା—ଗ୍ରା.ବ.ଦୁର୍ଭାଗ୍ୟ ଓ ଦାରିଦ୍ର୍ୟ ଘୋଟିବା ।
ଲକ୍ଷ୍ମୀଜନାର୍ଦ୍ଦନ—ପୁଂ.ବ. ଲକ୍ଷ୍ମୀ ଓ ବିଷ୍ଣୁଙ୍କର ଯୁଗଳମୂର୍ତ୍ତି, ଶାଳଗ୍ରାମ ଶିଳାବିଶେଷ ।
ଲକ୍ଷ୍ମୀଠାକୁରାଣୀ—ଗ୍ରା. ସ୍ତ୍ରୀ.ବ.ମହାଲକ୍ଷ୍ମୀ, ଲକ୍ଷ୍ମୀଦେବୀ ।
ଲକ୍ଷ୍ମୀତନୟ—ବ. ( ଲକ୍ଷ୍ମୀ+ତନୟ ) କାମଦେବ, ଅଶ୍ୱ, ରାମଚନ୍ଦ୍ରଙ୍କ ପୁତ୍ରଦ୍ୱୟ, ଲବ କୁଶ, ଧନୀବ୍ୟକ୍ତି, ଗନ୍ଧଦ୍ରବ୍ୟବିଶେଷ ।
ଲକ୍ଷ୍ମୀତାତ—ପୁଂ. ବ. (୬ତତ୍) ସମୁଦ୍ର, ଭୃଗୁଋଷି ।
ଲକ୍ଷ୍ମୀତାଳ—ପୁଂ.ବ.ଶ୍ରୀତାଳବୃକ୍ଷ,ସଙ୍ଗୀତର ୧୯ ମାତ୍ରାର ଏକ ତାଳ ।
ଲକ୍ଷ୍ମୀତ୍ୟାଗ—ବ. (୬ତତ୍) ସୌଭାଗ୍ୟର ବିନାଶ । [ ଐଶ୍ୱର୍ଯ୍ୟ ।
ଲକ୍ଷ୍ମୀତ୍ୱ—କ୍ଳୀ.ବ. ଲକ୍ଷ୍ମୀଭାବ,ସୌନ୍ଦର୍ଯ୍ୟ,
ଲକ୍ଷ୍ମୀଦାସ—ବ.ସୂର୍ଯ୍ୟସିଦ୍ଧାନ୍ତର ଟୀକା ଓ ଗୃହ୍ନମାନ ନାମକ ଜ୍ୟୋତିର୍ଗ୍ରନ୍ଥପ୍ରଣେତା ।
ଲକ୍ଷ୍ମୀଦେବୀ—ବ. ଲକ୍ଷ୍ମୀ ଦେଖ ।
ଲକ୍ଷ୍ମୀଧର—ବ. ( ଲକ୍ଷ୍ମୀ+ଧୃ+କ.ଅ ) ବିଷ୍ଣୁ, ସ୍ରଗ୍ଧିଣୀ ଛନ୍ଦର ନାମାନ୍ତର ।
ଲକ୍ଷ୍ମୀଧରଦାସ—ଗ୍ରା. ବ. ଅଙ୍ଗଦପଡ଼ ଗ୍ରନ୍ଥର ରଚୟିତା ଉତ୍କଳୀୟ କବିବିଶେଷ ।
ଲକ୍ଷ୍ମୀଧରମିଶ୍ର—ଗ୍ରା. ବ. ଜଣେ ପ୍ରାଚୀନ ଓଡ଼ିଆ କବି । [ ଶୁକ୍ଳ ନବମୀ ।
ଲକ୍ଷ୍ମୀନବମୀ--ବ.ସୀତାନବମୀ, ବୈଶାଖ-
ଲକ୍ଷ୍ମୀନରସିଂହ—ବ. ( ଦ୍ୱନ୍ଦ୍ୱ ) ଲକ୍ଷ୍ମୀ ଓ କୃଷ୍ଣଙ୍କର ଯୁଗଳମୂର୍ତ୍ତି,ବିଶେଷ ଲକ୍ଷଣଯୁକ୍ତ ଶାଳଗ୍ରାମଶିଳା ।
ଲକ୍ଷ୍ମୀନାଥ—ପୁଂ.ବ.(ଲକ୍ଷ୍ମୀ+ନାଥ)ବିଷ୍ଣୁ ।
ଲକ୍ଷ୍ମୀନାରାୟଣ-ବ.ଶାଳଗ୍ରାମଶିଳାବିଶେଷ, ଲକ୍ଷ୍ମୀ ଓ ନାରାୟଣଙ୍କର ଯୁଗଳମୂର୍ତ୍ତି ।
ଲକ୍ଷ୍ମୀନାରାୟଣପୂଜା-ବ.ଶୁକ୍ଳ ଏକାଦଶୀରେ ଗୁରୁବାର ପଡ଼ିଲେ ସେଦିନ କରାଯିବା ଲକ୍ଷ୍ମୀ ଓ ନାରାୟଣଙ୍କର ପୂଜା ।
ଲକ୍ଷ୍ମୀନିଧି—ବ. ରାଜା ଜନକଙ୍କ ପୁତ୍ର ।
ଲକ୍ଷ୍ମୀନିବାସ—ପୁଂ.ବ.(୬ତତ୍)ଲକ୍ଷ୍ମୀଙ୍କର ବାସସ୍ଥାନ ।
ଲକ୍ଷ୍ମୀପତି—ପୁଂ. ବ. ( ୬ତତ୍ ) ବିଷ୍ଣୁ, ବାସୁଦେବ, ରାଜା, ଲବଙ୍ଗ, ବୃକ୍ଷ, ଗୁବାକ ବୃକ୍ଷ ।
ଲକ୍ଷ୍ମୀପାକ—ବ.(୬ତତ୍)ଲକ୍ଷ୍ମୀଠାକୁରାଣୀ ନାରାୟଣଙ୍କ ପାଇଁ ରାନ୍ଧିଥିବା ପାକସାମଗ୍ରୀ ପରି ବହୁଉପାଦେୟ ସୁଖାଦ୍ୟମାନ ।
ଲକ୍ଷ୍ମୀପାଟ—ଗ୍ରା.ବ.ଦେଉଳର ଦ୍ୱାରବନ୍ଧ ଉପରେ ପ୍ରଥମେ ପଡ଼ିବା ଲମ୍ବା ପଥର ।
ଲକ୍ଷ୍ମୀପାଦ—ଗ୍ରା.ବ.ପିଠଉପାଣି ଆଦିରେ ଅଙ୍କିତ କରିବା ଲକ୍ଷ୍ମୀଙ୍କର କଳିତ ପାଦଚିହ୍ନ ଦ୍ୱୟ,ସୁଲକ୍ଷଣଯୁକ୍ତ ଓ ସୁନ୍ଦର ପାଦ ।
ଲକ୍ଷ୍ମୀପାଦୁକା—ଗ୍ରା. ବ. ବନ୍ୟ ଝାମ୍ପୁଡ଼ାବୃକ୍ଷବିଶେଷ, ଗୋଡ଼ବାଣ ଗଛ ।
ଲକ୍ଷ୍ମୀପୁତ୍ର—ପୁଂ.ବ.ଲକ୍ଷ୍ମୀତନୟ ଦେଖ ।
ଲକ୍ଷ୍ମୀପୁରୁଷ—ଗ୍ରା. ବ. ସୌଭାଗ୍ୟଶାଳୀ ବ୍ୟକ୍ତି, ସୁଲକ୍ଷଣଯୁକ୍ତ ବ୍ୟକ୍ତି ।
ଲକ୍ଷ୍ମୀପୁଷ୍ପ—ବ. ପଦ୍ମରାଗମଣି, ପଦ୍ମ ।
ଲକ୍ଷ୍ମୀପୂଜା—ବ. ସୁଦଶାବ୍ରତ,ଗୁରୁପଞ୍ଚମୀ, ମାର୍ଗଶିର ଗୁରୁବାର, କୁମାରପୂର୍ଣ୍ଣିମା ଆଦି ତିଥିମାନଙ୍କରେ ସୌଭାଗ୍ୟବୃଦ୍ଧ୍ୟର୍ଥ ଲକ୍ଷ୍ମୀଙ୍କୁ କରାଯିବା ପୂଜା ।
ଲକ୍ଷ୍ମୀପେଚ୍ଚ—ବ. ପେଚକଜାତୀୟ କ୍ଷୁଦ୍ର ପକ୍ଷୀବିଶେଷ ।

ଲକ୍ଷ୍ମୀପ୍ରସନ୍ନହେବା—ଗ୍ରା.କ୍ରି. ଲକ୍ଷ୍ମୀବୃଦ୍ଧି-ହେବା ।
ଲକ୍ଷ୍ମୀଫଳ--ବି.ବିଲ୍ୱବୃକ୍ଷ ଓ ଫଳ,ଶ୍ରୀଫଳ ।
ଲକ୍ଷ୍ମୀଭଣ୍ଡାର—ଗ୍ରା. ବି. ଲକ୍ଷ୍ମୀଦେବୀଙ୍କ ଧନାଗାର ବା ଖାଦ୍ୟଭଣ୍ଡାର,ଅସରନ୍ତି ଭଣ୍ଡାର ।
ଲକ୍ଷ୍ମୀମାଡ଼ିଯିବା-ଗ୍ରା.କ୍ରି.ଲକ୍ଷ୍ମୀବୃଦ୍ଧି ଦେଖ ।
ଲକ୍ଷ୍ମୀରମଣ—ପୁଂ. ବି. ନାରାୟଣ ।
ଲକ୍ଷ୍ମୀବର—ବି. (୬ତତ୍) ବିଷ୍ଣୁ,ଲକ୍ଷ୍ମୀଙ୍କ ପ୍ରଦତ୍ତ ବର ।
ଲକ୍ଷ୍ମୀବଲ୍ଲଭ—ପୁଂ. ବି. (୬ତତ୍) ବିଷ୍ଣୁ ।
ଲକ୍ଷ୍ମୀବସତି—ସ୍ତ୍ରୀ. ବି. ପଦ୍ମପୁଷ୍ପ ।
ଲକ୍ଷ୍ମୀବହିଷ୍କୃତ —ବି. ବିଂ. ଧନହୀନ, ଲକ୍ଷ୍ମୀଛଡ଼ା ।
ଲକ୍ଷ୍ମୀବାନ୍—ପୁଂ. ବିଂ. (ଲକ୍ଷ୍ମୀ+ବତ୍) ଶ୍ରୀମାନ୍, ଭାଗ୍ୟବାନ୍, ସୁଲକ୍ଷଣଯୁକ୍ତ, ସମ୍ପତ୍ତିଶାଳୀ,(ପୁଂ.ବି)ପଣସବୃକ୍ଷ,ବିଷ୍ଣୁ, ଅଶ୍ୱତ୍ଥ ବୃକ୍ଷ, ରୋହିତ ବୃକ୍ଷ ।
ଲକ୍ଷ୍ମୀବାର—ବି. ଗୁରୁବାର ।
ଲକ୍ଷ୍ମୀବାସର—ବି. ଗୁରୁବାର ।
ଲକ୍ଷ୍ମୀବାହନ—ବି. (୬ତତ୍) ପେଚକ ।
ଲକ୍ଷ୍ମୀବିହୀନ—ବିଂ. ( ୩ତତ୍ ) ଶ୍ରୀହୀନ, ଶୋଭାହୀନ, ହତଭାଗ୍ୟ, ନିର୍ଦ୍ଧନ ।
ଲକ୍ଷ୍ମୀବୃଦ୍ଧି--ବି.(୬ତତ୍)ଶ୍ରୀବୃଦ୍ଧି,ସୌଭାଗ୍ୟ-ବୃଦ୍ଧି ।
ଲକ୍ଷ୍ମୀବେଷ୍ଟ—ପୁଂ. ବି. ଶ୍ରୀବେଷ୍ଟ ନାମକ ସୁଗନ୍ଧଦ୍ରବ୍ୟ, ତାର୍ପିନ୍ ।
ଲକ୍ଷ୍ମୀବ୍ରତ—ବି.ଲକ୍ଷ୍ମୀପୂଜା ଦେଖ,ସୁଦଶା-ବ୍ରତ ଗୁରୁପଞ୍ଚମୀ ବ୍ରତାଦି ।
ଲକ୍ଷ୍ମୀଶ—ପୁଂ. ବି. ( ୬ତତ୍ ) ବିଷ୍ଣୁ, (ବି.ବ୍ରୀ) ଆମ୍ରବୃକ୍ଷ, ଧନପତି, ରାଜା ।
ଲକ୍ଷ୍ମୀଶୀଳ—ପୁଂ. ବିଂ. ( ଲକ୍ଷ୍ମୀ+ଶୀଳ) ଲକ୍ଷ୍ମୀବନ୍ତ ଦେଖ ।
ଲକ୍ଷ୍ମୀଶ୍ରୀ—ସ୍ତ୍ରୀ. ବି. (କ.ଧା) ଲକ୍ଷ୍ମୀଙ୍କର ଆବିର୍ଭାବ ଜନକ ସୌନ୍ଦର୍ଯ୍ୟ,ସୌଭାଗ୍ୟ ସମ୍ପଦ, ସମୃଦ୍ଧି, ଶୋଭା ।
ଲକ୍ଷ୍ମୀଶ୍ରେଷ୍ଠା—ସ୍ତ୍ରୀ. ବି. ସ୍ଥଳପଦ୍ମିନୀ ।
ଲକ୍ଷ୍ମୀସଖ—ପୁଂ. ବି. ( ବି.ବ୍ରୀ ) ଲକ୍ଷ୍ମୀଙ୍କ ପ୍ରିୟପାତ୍ର, ରାଜା ବା ଧର୍ମବ୍ୟକ୍ତି ।

ଲକ୍ଷ୍ମୀସନାଥ—ବି.ବିଂ. ରୂପ ଓ ଐଶ୍ୱର୍ଯ୍ୟ-ଶାଳୀ ।
ଲକ୍ଷ୍ମୀସମାହ୍ୱୟା—ସ୍ତ୍ରୀ.ବି.ସୀତା,ଜାନକୀ ।
ଲକ୍ଷ୍ମୀସରସ୍ୱତୀ—ବି. (ଦ୍ୱନ୍ଦ୍ୱ) ବିଷ୍ଣୁଙ୍କର ଦୁଇ ପତ୍ନୀ ।
ଲକ୍ଷ୍ମୀସହଜ—ପୁଂ. ବି. (ଲକ୍ଷ୍ମୀ+ସହ+ଜନ୍+କ.ଅ)ଚନ୍ଦ୍ର, ଉଚ୍ଚୈଃଶ୍ରବା ଅଶ୍ୱ, କର୍ପୂର ।
ଲକ୍ଷ୍ମୀସହୋଦର-ବି.ଲକ୍ଷ୍ମୀସହଜ ଦେଖ ।
ଲକ୍ଷ୍ମୀସୂକ୍ତ—କ୍ଲୀ. ବି. ଶ୍ରୀସୂକ୍ତ ।
ଲକ୍ଷ୍ମୀସ୍ୱଭାବା—ସ୍ତ୍ରୀ. ବିଂ. (ବି.ବ୍ରୀ)ଲକ୍ଷ୍ମୀଙ୍କ ପରି ପ୍ରକୃତିବିଶିଷ୍ଟା ବା ଦାନଶୀଳା ।
ଲକ୍ଷ୍ମୀସ୍ୱରୂପା—ସ୍ତ୍ରୀ.ବିଂ. (ବି.ବ୍ରୀ) ଲକ୍ଷ୍ମୀଙ୍କ ପରି ଗୁଣ ଓ ସ୍ୱଭାବବିଶିଷ୍ଟା (ସ୍ତ୍ରୀ) ।
ଲକ୍ଷ୍ମୀସ୍ୱରୂପିଣୀ—ସ୍ତ୍ରୀ.ବିଂ.(୬ତତ୍)ଲକ୍ଷ୍ମୀଙ୍କ ଗୁଣସମ୍ପନ୍ନା, ସାତଶହ ଗୁଣବତୀ ।
ଲକ୍ଷ୍ମୀସ୍ତୋତ୍ର—କ୍ଲୀ. ବି. ଲକ୍ଷ୍ମୀସ୍ତବ ।
ଲକ୍ଷ୍ୟ—ବିଂ. ( ଲକ୍ଷ୍+ର୍ମ.ଯ ) ଦର୍ଶନ-ଯୋଗ୍ୟ, ଅନୁଭବ ଯୋଗ୍ୟ, ତୁଳନୀୟ, କଳନୀୟ,ଲକ୍ଷଣା ଦ୍ୱାରା ଜ୍ଞେୟ(ଅର୍ଥ), ଅନୁସନ୍ଧେୟ, ଉଦ୍ଦେଶ୍ୟ, ଅଭିଧେୟ, ଜ୍ଞେୟ, ବାଞ୍ଛନୀୟ,(ବି) ଶରବ୍ୟ, ଛଳ, ଚିହ୍ନ, ଆଦର୍ଶ, ଉଦ୍ଦେଶ୍ୟ, ଶତସହସ୍ର ସଂଖ୍ୟା, ଲକ୍ଷଣାର୍ଥ, ଦୃଷ୍ଟାନ୍ତ, ନିଶାନା, (ସ୍ତ୍ରୀ) ଲକ୍ଷ୍ୟା,(ଗ୍ରା.ବି) ଅନୁମାନ, (ବିଂ) ସମାନ ।
ଲକ୍ଷ୍ୟକରିବା-ଗ୍ରା.କ୍ରି.ଲକ୍ଷକରିବା ଦେଖ ।
ଲକ୍ଷ୍ୟକ୍ରମ—ଯେଉଁ ଅଙ୍କିତ ପ୍ରଣାଳୀ ଦ୍ୱାରା ଉଦ୍ଦିଷ୍ଟ ବସ୍ତୁର ଆକାର ଓ ଇଙ୍ଗିତ ଉପ-ଲବ୍ଧ ହୁଏ ।
ଲକ୍ଷ୍ୟଚ୍ୟୁତ—ବିଂ(୫ତତ୍)ଲକ୍ଷ୍ୟ ସ୍ଥଳରେ ପହଞ୍ଚି ପାରି ନଥିବା ।
ଲକ୍ଷ୍ୟଭେଦ—ବି.ଚିହ୍ନିତ ସ୍ଥାନ, ବିଚ୍ଛିନ୍ନ-କରଣ, ଲକ୍ଷ୍ୟବେଧନ ଦେଖ ।
ଲକ୍ଷ୍ୟଭେଦୀ—ପୁଂ.ବିଂ(ଲକ୍ଷ୍ୟ+ଭିଦ୍+କ.ଇନ୍) ଲକ୍ଷ୍ୟବେଧୀ ଦେଖ ।
ଲକ୍ଷ୍ୟଭ୍ରଷ୍ଟ—ବିଂ. (୫ତତ୍) ଲକ୍ଷ୍ୟଚ୍ୟୁତ ଦେଖ ।
ଲକ୍ଷ୍ୟରଖିବା—ଗ୍ରା.କ୍ରି.କୌଣସି ଉଦ୍ଦେଶ୍ୟ ପ୍ରତି ଦୃଷ୍ଟି ରଖିବା, ନିର୍ଦ୍ଦିଷ୍ଟ ଶରବ୍ୟ ପ୍ରତି ଦୃଷ୍ଟି ରଖିବା ।

ଲକ୍ଷ୍ୟଗାମୀ—ସ୍ତ୍ରୀ. ବି. ମନୁଷ୍ୟ ଜୀବନର ଉଦ୍ଦେଶ୍ୟ ସାଧନ ପନ୍ଥା, ବ୍ରହ୍ମଲୋକ ମାର୍ଗ, ଦେବଯାନ ପଥ ।
ଲକ୍ଷ୍ୟବେଧନ—ବି. (ଲକ୍ଷ୍ୟ+ବେଧନ) ଲାଖବିନ୍ଧା, ଶରଆଦି ଦ୍ୱାରା ଲକ୍ଷ୍ୟର ଆଘାତକରଣ ।
ଲକ୍ଷ୍ୟବେଧୀ—ପୁଂ. ବିଂ. (ଲକ୍ଷ+ବ୍ୟଧ୍+କ.ଇନ୍)ଚିହ୍ନ ବିନ୍ଧକାରୀ,ଯେ ଲକ୍ଷ୍ୟ-ଭେଦ କରେ ।
ଲକ୍ଷ୍ୟସ୍ଥଳ—ବି.(କ.ଧା) ସଙ୍କଳ୍ପିତ ସ୍ଥାନ ବା ବସ୍ତୁ, ଶରବ୍ୟ, ଉଦ୍ଦିଷ୍ଟ ସ୍ଥାନ ।
ଲକ୍ଷ୍ୟହା—ପୁଂ. ବିଂ. ଲକ୍ଷ୍ୟଭେଦକାରୀ (ଶର) ।
ଲକ୍ଷ୍ୟହୀନ—ବିଂ.(୩ତତ୍) ଉଦ୍ଦେଶ୍ୟହୀନ, ଅଭିପ୍ରାୟଶୂନ୍ୟ ।
ଲକ୍ଷ୍ୟାର୍ଥ--ବି.(କ.ଧା)ଶବ୍ଦର ବା ବାକ୍ୟର ଲକ୍ଷଣାର୍ଥ, ଲେଖକର ବା କଥକର ଉଦ୍ଦିଷ୍ଟ ଅର୍ଥ ।
ଲକ୍ଷ୍ୟାସନ—ବି.(ତନ୍ତ୍ର) ରୁଦ୍ରଯାମଳୋକ୍ତ ଆସନବିଶେଷ ।
ଲଖ୍‌ନଉ—ଗ୍ରା. ବି. ଅଯୋଧ୍ୟା ପ୍ରଦେଶସ୍ଥ ନଗରବିଶେଷ, କ୍ଷୁଦ୍ର ପକ୍ଷିବିଶେଷ ।
ଲଖାଇବା—ଗ୍ରା.କ୍ରି. ଅଟକାଇବା, ଲକ୍ଷ୍ୟ କରିବା, କୌଣସି ବସ୍ତୁକୁ କୌଣସି ପଦାର୍ଥରେ ବା ସ୍ଥାନରେ ସଂଲଗ୍ନ କରା-ଇବା ।
ଲଖାଲଖି—ଗ୍ରା.ବି. ଓ ବିଂ.ପରସ୍ପରରେ ବନ୍ଧାବନ୍ଧି ହେବା ।
ଲଖିବା—ଗ୍ରା. କ୍ରି. ଲକ୍ଷ୍ୟକରିବା, ଦୃଷ୍ଟି-କରିବା, ତୁଳନାକରିବା ।
ଲଖେ—ଗ୍ରା. ବିଂ. ଏକଲକ୍ଷ ସଂଖ୍ୟକ, ଅସଂଖ୍ୟ ।
ଲଗଡ଼—ବି.ବିଂ(ଲଗ୍+କ.ଅଲ)ସୁନ୍ଦର, ମନୋହର ।
ଲଗା—ଗ୍ରା.ବି.ବୃକ୍ଷାଦି ଲଗାଇବା,ସମ୍ପର୍କ, ସମ୍ବନ୍ଧ, ଦାୟିତ୍ୱ, ଜମିନ୍‌ଦାର, ପ୍ରଭୃତି, ସଂଲଗ୍ନ ହେବା, ସ୍ପର୍ଶକରିବା, ସଂଲଗ୍ନ-

କରଣ, ଆବଶ୍ୟକତା, ମଧ୍ୟସ୍ଥ, ଗଳାରେ ଦଉଡ଼ି ଦେବା ପ୍ରଭୃତି ଦ୍ୱାରା ମୃତ୍ୟୁ, (ଗ୍ରା.ବିଂ) ଲଗ୍ନ, ସଂଲଗ୍ନ, ଅବିଚ୍ଛିନ୍ନ, ଦାୟୀ, ଅନ୍ୟ ପାଇଁ ଜାମିନ୍ ହୋଇଥିବା, ଖରଚ, ଜଡ଼ିତ, ପରିଶ୍ରମୀ ।

**ଲଗାଇ**—ଗ୍ରା. ଅ. ଲଗାଏତ୍, ମିଶାଇ ।

**ଲଗାଇବା**—ଗ୍ରା. କ୍ରି. ଏକ ବସ୍ତୁ ସଙ୍ଗେ ଅନ୍ୟ ବସ୍ତୁକୁ ସଂଲଗ୍ନ କରିବା, ଯୁକ୍ତ କରିବା, ଅଳଂକାରାଦି ପିନ୍ଧିବା, ବୋଲ ହେବା, ନିଯୋଜିତକରିବା, ଜାଳିବା, ଗଛଆଦି ରୋଇବା, ଦୋଷାଦି ଆରୋପ କରିବା, ପେଡିବା, ପ୍ରେକ୍ଷଣକରିବା, ଲେପନ କରିବା, ଖାଦ୍ୟାଦି ପରିବେଷଣ କରିବା, ଠକେଇହବା, ଅଟକାଇବା, ଯୋଡ଼ିବା ।

**ଲଗାଏତ୍**—ଗ୍ରା. କ୍ରି. ବିଂ. ଠାରୁ, ଆରମ୍ଭ କରି, ଅବିଚ୍ଛିନ୍ନ ଭାବରେ, କ୍ରମାନ୍ୱୟରେ ।

**ଲଗାଣ**—ଗ୍ରା. ବି. ବହୁଦିନ ବ୍ୟାପୀ ଝଡ଼ ଓ ବୃଷ୍ଟି, ସଙ୍କୀର୍ତ୍ତନର ଆରମ୍ଭରେ ରାଗର ଆଳାପ ।

**ଲଗାଣି**—ଗ୍ରା. ବି. ଖର୍ଚ୍ଚ, ଗୋପନରେ ଦୋଷାରୋପ ।

**ଲଗାଣିଆ**—ଗ୍ରା.ବିଂ. ଲଗାଣଯୁକ୍ତ (ପାଗ), ଅବିଚ୍ଛିନ୍ନ, ଖର୍ଚୁଆ, (ଗ୍ରା.ବି) ପିଆଦା ।

**ଲଗାପଗା**—ଗ୍ରା. ବି. କୌଣସି କାର୍ଯ୍ୟ ସମ୍ବନ୍ଧରେ ଦାୟିତ୍ୱ ବା ପ୍ରତିଶ୍ରୁତି, ଦୂର ବା ନିକଟ ସମ୍ପର୍କ, ସଂସାରର ବନ୍ଧନ ।

**ଲଗାମ**—ଯା.ବି. ଘୋଡ଼ାର ବାଗ, ଅଶ୍ୱ ବଲ୍ଗା, ସ୍ୱକ୍କଣୀରେ ହେବା ଘାଆ ।

**ଲଗାଲଗି**—ଗ୍ରା.ବି.ଓ ବିଂ. ପରସ୍ପର ସଂଲଗ୍ନ, ଲଗାଇବାଆଦି କ୍ରିୟା, ପ୍ରାପ୍ତ ।

**ଲଗାହାର**—ଗ୍ରା. ବିଂ. ଜମିନ୍‌ଦାର୍ ।

**ଲଗାହେବା**—ଗ୍ରା. କ୍ରି. ଦାୟୀ ହେବା, ଅନ୍ୟ ପାଇଁ ଜାମିନ୍ ହେବା ।

**ଲଗି**—ଗ୍ରା. ବି. ଉଚ୍ଚ ସ୍ଥାନରୁ ଫଳଆଦି ତୋଳିବା ପାଇଁ ଅଙ୍କୁଶଯୁକ୍ତାଗ୍ର ବଂଶଦଣ୍ଡ, ଆଙ୍କୁଡ଼ି, ଆଙ୍କୁଶାବାଲା କାଠ ।

**ଲଗିତ**—କ୍ରି. ବିଂ. (ଲଗ୍+କ.ତ) ସଙ୍ଗଯୁକ୍ତ, ସଂଯୁକ୍ତ, ପ୍ରାପ୍ତ ।

ଲଗୁଆର—ଗ୍ରା.(ସମ୍ଭ)ବିଂ. ଋଣଗ୍ରସ୍ତ, (ବି) ଖାତକ ।

ଲଗୁଡ଼—ପୁଂ. ବି. (ଲଗ୍+ଉଡ଼) ଦଣ୍ଡ, ବାଡ଼ି, ଗଦା, ମୁଦ୍ଗର, ବାଉଁଶ ଠେଙ୍ଗା ।

ଲଗୁଡ଼ଧାରୀ—ପୁଂ.ବିଂ. ଯେ ଲଗୁଡ଼ ରୂପ ପ୍ରହରଣାସ୍ତ୍ର ଧରିଥାଏ, (ସ୍ତ୍ରୀ) ଧାରିଣୀ ।

ଲଗୁଡ଼ବାହୀ—ପୁଂ.ବିଂ. (ଲଗୁଡ଼+ବହ୍+କ.ଇନ୍) ଲଗୁଡ଼ଧାରୀ ଦେଖ ।

ଲଗୁଡ଼ଘାତ—ବି.(ତତ୍ପୁ) ଠେଙ୍ଗା ବା ବାଡ଼ି ଦ୍ୱାରା ପ୍ରହାର ।

ଲଗ୍ନ—ବିଂ.(ଲଗ୍+କ.ତ) ସ୍ପର୍ଶ କରିଥିବା, ଲାଗିଥିବା, ମିଳିତ, ସଂଯୁକ୍ତ, (ଲଜ୍ଜ୍+କ.ତ) ଲଜ୍ଜିତ, ଲାଗିଥିବା, ଅବ୍ୟବହିତ ପରେ ଘଟିବା, ଶୁଭସୂଚକ, (ବି) ବନ୍ଦୀ, ସ୍ତୁତିପାଠକ, ମଦମତ୍ତ ହସ୍ତୀ, ଗ୍ରହମାନଙ୍କ କକ୍ଷ ଯେଉଁ ବିନ୍ଦୁରେ ଦିଗ୍‌ବଳୟ ସଙ୍ଗେ ମିଳିତ ହୁଏ, ସୂର୍ଯ୍ୟ ବା ଅନ୍ୟ ଗ୍ରହର ଉଦୟ, (ଅଧି.ତ) ସୂର୍ଯ୍ୟଙ୍କର ଏକ ରାଶିରୁ ଅନ୍ୟ ରାଶିକୁ ସଂକ୍ରମଣ କାଳ, ମେଷାଦି ରାଶିର ଉଦୟ କାଳ, ଜନ୍ମଲଗ୍ନ, ଜନ୍ମ ସମୟରେ ଉଦିତ ହୋଇଥିବା ରାଶି, ଶୁଭମୁହୂର୍ତ୍ତ, ଉପଯୁକ୍ତ ସମୟ, ବିବାହ ।

ଲଗ୍ନକ—ବି.(ଲଗ୍ନ+କ) ଜାମିନ୍, ପ୍ରତିଭୂ ।

ଲଗ୍ନକଗ୍ରହଣ—ବି. କୌଣସି ବ୍ୟକ୍ତିକୁ ଅନ୍ୟ ବ୍ୟକ୍ତିପାଇଁ ଜାମିନ୍ ରୂପେ ସ୍ୱୀକାର କରିବା ।

ଲଗ୍ନକଙ୍କଣ—ବି. କୌତୁକ ସୂତ୍ର, ବିବାହ ପୂର୍ବରୁ ବର କନ୍ୟାଙ୍କ ହାତରେ ବନ୍ଧାଯିବା ମଙ୍ଗଳସୂତ୍ର ବା କଙ୍କଣ ।

ଲଗ୍ନକାଳ—ପୁଂ. ବି. ( ଲଗ୍ନ+କାଳ ) ଜ୍ୟୋତିଷ ଗଣନା କ୍ରମେ ନିର୍ଦ୍ଧାରିତ ଶୁଭ ସମୟ ।

ଲଗ୍ନକୁଣ୍ଡଳୀ—ବି. ଫଳିତ ଜ୍ୟୋତିଷର ଯେଉଁ ଚକ୍ରରୁ ଜନ୍ମ ସମୟର ଗ୍ରହମାନଙ୍କର ଭିନ୍ନଭିନ୍ନ ରାଶିରେ ଅବସ୍ଥାନ କଥା ଜଣାପଡ଼େ ।

ଲଗ୍ନଗ୍ରହ—ବିଂ. (ଲଗ୍ନ+ଗ୍ରହ+କ.ଅ) କିଗରଦାର, ଜିଦବାଜ୍, ଦୃଢ଼ସଂଶ୍ଳିଷ୍ଟ, (ବି) ଲଗ୍ନସ୍ଥିତ ଗ୍ରହ ।

ଲଗ୍ନଜତା—ସ୍ତ୍ରୀ. ବି. ଶ୍ରୀକୃଷ୍ଣଙ୍କର ଜଣେ ପଟ୍ଟମହିଷୀ ।

ଲଗ୍ନଜ୍ୟା—ବି. ସ୍ପର୍ଶିଣୀ, ଯେଉଁ ସରଳ ରେଖା ବୃତ୍ତ ଭେଦ ନ କରି ପରିଧିକୁ ସ୍ପର୍ଶମାତ୍ର କରିଥାଏ ।

ଲଗ୍ନଦିନ—କ୍ଲୀ.ବି.(କ.ଧା) ଶୁଭ କର୍ମାନୁଷ୍ଠାନ ପାଇଁ ନିର୍ଦ୍ଧାରିତ ଶୁଭଦିନ ।

ଲଗ୍ନଦିବସ—ବି.(କ.ଧା) ଲଗ୍ନଦିନ ଦେଖ ।

ଲଗ୍ନଦେଶୀ—ସ୍ତ୍ରୀ.ବି. ପୁରାଣବର୍ଣ୍ଣିତ ପ୍ରସ୍ତରମୟ ଗାଭୀ ।

ଲଗ୍ନଧରିବା—ଗ୍ରା.କ୍ରି. ବିବାହାଦି ପାଇଁ ଶୁଭାଶୁଭ ସ୍ଥିର କରିବା ।

ଲଗ୍ନନିରୂପଣ—ବି. (ତତ୍ପୁ) କୌଣସି ନିର୍ଦ୍ଦିଷ୍ଟ ବେଳାରେ ନିର୍ଦ୍ଦିଷ୍ଟ ଦେଶରେ କେଉଁ ଲଗ୍ନ ହୋଇଅଛି, ତାହାର ସ୍ଥିରୀକରଣ ।

ଲଗ୍ନପତ୍ର—କ୍ଲୀ.ବି. ବିବାହ ଦିନ ସ୍ଥିରୀକରଣ

ଲଗ୍ନପ(ପା)ଦ—ପୁଂ.ବିଂ. (ବ.ବ୍ରୀ) ଯେଉଁ ଜୀବର ପାଦ ଆଙ୍ଗୁଠିମାନ ଏକାଠେଇଁ ଲାଗିଥାଏ, ଲିପ୍ତପାଦ ।

ଲଗ୍ନଫଳ—ବି. ଲଗ୍ନର ଶୁଭାଶୁଭ ଫଳ ।

ଲଗ୍ନବେଳା—ସ୍ତ୍ରୀ. ବି. ଲଗ୍ନକାଳ ।

ଲଗ୍ନଭ୍ରଂଶ—ବି. (ତତ୍ପୁ) ବିବାହାଦି ପାଇଁ ନିର୍ଦ୍ଧାରିତ ଲଗ୍ନର ବେଳା ଅତିକ୍ରାନ୍ତ ହୋଇଯିବା ।

ଲଗ୍ନମଣ୍ଡଳ—ବି. (ତତ୍ପୁ) ରାଶିଚକ୍ର ।

ଲଗ୍ନମାନ—ବି. ( ତତ୍ପୁ ) ପ୍ରତ୍ୟେକ ନାକ୍ଷତ୍ରିକ ଅହୋରାତ୍ର ମଧ୍ୟରେ ମେଷ ବୃଷାଦି ପ୍ରତ୍ୟେକ ରାଶିର ଉଦୟର ପରିମାଣ କାଳ ।

ଲଗ୍ନଶୁଦ୍ଧି—ସ୍ତ୍ରୀ.(ତତ୍ପୁ) କୌଣସି ଶୁଭ କର୍ମାନୁଷ୍ଠାନ ପାଇଁ ରାଶିମାନଙ୍କ ଶୁଭାବସ୍ଥାନ ।

ଲଗ୍ନସ୍ଫୁଟ—ବି. ଭିନ୍ନ ଭିନ୍ନ ସ୍ଥାନର ଲଗ୍ନମାନଙ୍କୁ ଅବଲମ୍ବନ କରି ରାଶିର ଭୋଗ୍ୟ କାଳର ସୂକ୍ଷ୍ମଗଣନା ।

ଲଗ୍ନାୟୁ—କ୍ଲୀ.ବି. ଲଗ୍ନ ପରିମାଣାନୁସାରେ ନିର୍ଦ୍ଦିଷ୍ଟ ଆୟୁ ।

**ଲଗ୍ନାହ୍ନ**—ପୁଂ.ବି.ଲଗ୍ନଦିନ, ବିବାହଦିନ ।

**ଲଗ୍ନିକ**—ତ୍ରି.ବି.ବିଂ. ନିକଟ ସମ୍ପର୍କୀୟ (ବନ୍ଧୁକୁଟୁମ୍ବାଦି),ବି.ଜାମିନ୍‌ଦାର, ପ୍ରତିଭୂ

**ଲଗ୍ନିକା**—ସ୍ତ୍ରୀ. ବି. ନିଜ ସମ୍ପର୍କୀୟ ସ୍ତ୍ରୀବିଶେଷ, ଅଜାତରଜସ୍କା ବାଳିକା, ଦଶବର୍ଷୀୟା ବାଳିକା ।

**ଲଗ୍ନିକାଶ୍ରମ**—ବି. ମଠବିଶେଷ ।

**ଲଘଟ**—ପୁଂ. ବି. ( ଲନ୍‌ଘ + କ.ଅଟ ) ଅନିଳ, ପବନ ।

**ଲଘଟି**—ପୁଂ.ବି (ଲନ୍‌ଘ୍+ଅଟି)ବାୟୁ ।

**ଲଘିମା**—ପୁଂ.ବି. (ଲଘୁ+ଇମନ୍)ଲଘୁତ୍ୱ, ଅଳ୍ପତ୍ୱ, କମିଯିବା,ଅଗୌରବ,ହ୍ରସ୍ୱତ୍ୱ, ଅଷ୍ଟସିଦ୍ଧି ମଧ୍ୟରୁ ଏକତମ, ଅଷ୍ଟୈଶ୍ୱର୍ଯ୍ୟ ମଧ୍ୟରୁ ଏକତମ, ଚଞ୍ଚଳଚିତ୍ତତା, ଅବିଶ୍ୱାସନା, ଅଣ୍ଣାଂଶ ।

**ଲଘିଷ୍ଠ**—ତ୍ରି. ବିଂ. (ଲଘୁ+ଇଷ୍ଠ) ଅତି-ଲଘୁ, ଅତି କ୍ଷୁଦ୍ର, ନିମ୍ନତମ, ଅତିଶୟ ହାଲୁକା । [ ସଂଖ୍ୟା ।

**ଲଘିଷ୍ଠସଂଖ୍ୟା**—ବି. (କ.ଧା) ସବନିମ୍ନ-

**ଲଘିଷ୍ଠସାଧାରଣଗୁଣନୀୟକ**—ବି. ଯେଉଁ ଲଘୁତମ ସଂଖ୍ୟା ନିର୍ଦ୍ଦିଷ୍ଟ ଦୁଇ ବା ତତୋଧିକ ସଂଖ୍ୟା ଦ୍ୱାରା ବିଭାଜ୍ୟ, ଲ: ସା: ଗୁ: ।

**ଲଘୀକରଣ**—ତ୍ରି.ବି. ଗୁରୁ ବସ୍ତୁକୁ ଲଘୁ କରିବା, ବଡ ବସ୍ତୁକୁ ଛୋଟ କରିବା, ବଡ଼ ସଂଖ୍ୟାକୁ ଛୋଟ କରିବା ।

**ଲଘୀୟାନ୍**—ପୁଂ. ବିଂ. (ଲଘୁ+ଈୟସ୍) ଅତ୍ୟନ୍ତ ଲଘୁ, ଲଘୁତର, କ୍ଷୁଦ୍ରତର, (ସ୍ତ୍ରୀ) ଲଘୀୟସୀ ।

**ଲଘୁ**—ପୁଂ.ବିଂ.(ଲଙ୍ଘ୍+ଣ.ଉ)ହାଲୁକା, ସାମାନ୍ୟ, ତୁଚ୍ଛ,ଅସାର.ଛୋଟ,ପତଳା, ଖର୍ବ, ସୂକ୍ଷ୍ମ, କୃଶ, ସମ୍ମାନହୀନ, ଅନାଦୃତ, ଇଷ୍ଟ, ମୃଦୁ, ଶୀଘ୍ର,ସୁନ୍ଦର,ଶୁଷ୍କ, ଅଳ୍ପାୟାସସାଧ୍ୟ, ନଗଣ୍ୟ, ନୀଚ, ଦୁର୍ବଳ, ଏକମାତ୍ରାଯୁକ୍ତ (ସ୍ୱର, ତାଳ), ଯେଉଁ ବର୍ଣ୍ଣର ଉଚ୍ଚାରଣକାଳ, ଅଳ୍ପ, (ବି) କୃଷ୍ଣାଗୁରୁ, ବେଣାଚେର, ଲଘୁଗଣର ନକ୍ଷତ୍ରତ୍ରୟ, ହସ୍ତା ଅଶ୍ୱିନୀ ଓ ପୁଷ୍ୟା, ପନ୍ଦରକ୍ଷଣ ପରିମିତ ସମୟ, ପ୍ରାଣାୟାମବିଶେଷ,ଏକମାତ୍ରାଯୁକ୍ତ ସ୍ୱର ବଂଶୀର ଦୈର୍ଘ୍ୟ ଛୋଟହେବା ରୂପ ଦୋଷ, ଗୃଦ୍ଧ, ପିଡ଼ଙ୍ଗଶାଗ, ଗନ୍ଧ-ବେଣା,କପାଗଛ,ଲଘୁସ୍ୱରଯୁକ୍ତ ଅକ୍ଷର

**ଲଘୁକଙ୍କୋଲ**—ପୁଂ. ବି. ବୃକ୍ଷବିଶେଷ ।

**ଲଘୁକଣ**—ପୁଂ. ବି. (ବ.ବ୍ରୀ) ସଫେଦ୍ ଜୀରା, ଶୁକ୍ଳ ଜୀରା ।

**ଲଘୁକଣ୍ଟକା**—ସ୍ତ୍ରୀ. ବି. ଲଜ୍ଜାଳୁ,ଲାଜକୁଳି ଲତା ।

**ଲଘୁକର୍କନ୍ଧୁ**—ପୁଂ. ବି. ଲଟାବଅଁଚ, ଭୂଇଁବରକୋଳି ।

**ଲଘୁକର୍ଣ୍ଣୀ**—ସ୍ତ୍ରୀ. ବି. ମୂର୍ଗା, ମୂର୍ବା ।

**ଲଘୁକାମୋଦୀ**—ସ୍ତ୍ରୀ. ବି. ରାଗବିଶେଷ ।

**ଲଘୁକାୟ**—ପୁଂ.ବି.(କ.ଧା) କ୍ଷୁଦ୍ରଦେହ, (ବ.ବ୍ରୀ)ଗ୍ରାଗ,ଛେଳି,(ବିଂ)କ୍ଷୁଦ୍ରଶରୀର-ବିଶିଷ୍ଟ । [ ପଣସଗଛ ।

**ଲଘୁକାଶ୍ମର୍ଯ୍ୟ**—ପୁଂ.ବି.କଟଫଳ,କାଫଳ,

**ଲଘୁକାନ୍ନସି**—ବି. ତନ୍ତ୍ରୋକ୍ତ ଏକପ୍ରକାର ପ୍ରାଚୀନକାଳର ବାଦ୍ୟ ।

**ଲଘୁକୌମୁଦୀ**—ସ୍ତ୍ରୀ.ବି. ସଂସ୍କୃତ ବ୍ୟାକରଣ ଗ୍ରନ୍ଥବିଶେଷ ।

**ଲଘୁକ୍ରମ**—ବି. ( କ.ଧା ) ଦ୍ରୁତଗତି, (ପୁଂ.ବିଂ-ବ.ବ୍ରୀ) ଦ୍ରୁତଗତିବିଶିଷ୍ଟ ।

**ଲଘୁକ୍ରିୟ**—ପୁଂ. ବିଂ. (ବ.ବ୍ରୀ) ଯେଉଁ ବ୍ୟକ୍ତି ଅଳ୍ପ କାର୍ଯ୍ୟକରେ, (ସ୍ତ୍ରୀ) ଲଘୁ-କ୍ରିୟା ।

**ଲଘୁକ୍ରିୟା**—ସ୍ତ୍ରୀ. ବି. ପ୍ରସ୍ତାବ କରିବା, କ୍ଷୁଦ୍ର ବା ତୁଚ୍ଛ କାର୍ଯ୍ୟ,ସାମାନ୍ୟ ଆୟାସ-ସାଧ୍ୟ କର୍ମ ।

**ଲଘୁଗଣ**—ପୁଂ. ବି. ଅଶ୍ୱିନୀ ପୁଷ୍ୟା ଓ ହସ୍ତାନକ୍ଷତ୍ର ।

**ଲଘୁଗମନ**—ବି. ( କ.ଧା ) ଦ୍ରୁତଗତି, ବେଗଯୁକ୍ତ ଚାଲି ।

**ଲଘୁଗର୍ଗ**—ପୁଂ. ବିଂ. ହିଲ୍‌ସାଜାତୀୟ ମତ୍ସ୍ୟ, ଗର୍ଗରମତ୍ସ୍ୟ ।

**ଲଘୁଗାମୀ**—ପୁଂ. ବିଂ. (ଲଘୁ+ଗମ୍+କ.ଇନ୍) ଦ୍ରୁତଗତିବିଶିଷ୍ଟ, ( ସ୍ତ୍ରୀ ) ଲଘୁଗାମିନୀ ।

**ଲଘୁଗୁରୁ**—ବି. କାବ୍ୟାଲଙ୍କାରବିଶେଷ, (ବିଂ) ଲଘୁ ଓ ଗୁରୁ ।

**ଲଘୁଗୋଧୂମ**—ପୁଂ. ବି. ହ୍ରସ୍ୱଗୋଧୂମ, ଛୋଟ ଗହମ ।

**ଲଘୁଚତୁଷ୍ପଦୀ**—ସ୍ତ୍ରୀ. ବି. ଚୌଖିରାଗ, ୨୯ ଅକ୍ଷରଯୁକ୍ତ ଛନ୍ଦୋବିଶେଷ ।

**ଲଘୁଚନ୍ଦନ**—କ୍ଲୀ.ବି. କାଷ୍ଠାଗୁରୁ,ଅଗୁରୁ-କାଷ୍ଠ ।

**ଲଘୁଚିତ୍ତ**—ପୁଂ.ବିଂ.ଲଘୁଚେତାଃ ଦେଖ ।

**ଲଘୁଚିତ୍ତତା**—ସ୍ତ୍ରୀ. ବି. ଚଞ୍ଚଳ ମନର ଭାବ ବା ଧର୍ମ,ଚିତ୍ତର ସ୍ଥୈର୍ଯ୍ୟହୀନତା ।

**ଲଘୁଚିର୍ଭିଟା**—ସ୍ତ୍ରୀ. ବି. ଛୋଟ କାକୁଡ଼ି ।

**ଲଘୁଚେତାଃ**—ପୁଂ.ବିଂ. (ବ.ବ୍ରୀ)କ୍ଷୁଦ୍ର-ଚିତ୍ତ, ନୀଚାଶୟ, ସଙ୍କୀର୍ଣ୍ଣମନାଃ, ନୀଚମନାଃ, ଅସ୍ଥିର ଚିତ୍ତ ।

**ଲଘୁଚ୍ଛଦା**—ସ୍ତ୍ରୀ. ବି. ମହାଶତାବରୀ ।

**ଲଘୁଚ୍ଛନ୍ଦ**—ବି. ସରଳ ବା ସହଜରେ ଉଚ୍ଚାର୍ଯ୍ୟ ଛନ୍ଦ ।

**ଲଘୁଚ୍ଛେଦ୍ୟ**—ତ୍ରି. ବିଂ. ଯାହାକୁ ସହଜରେ ଧ୍ୱଂସ ବା କଟାଯାଇପାରେ ।

**ଲଘୁଜାଙ୍ଗଲ**—ପୁଂ. ବି. ଲାବକ ପକ୍ଷୀ ।

**ଲଘୁଜ୍ଞାନ**—ବି. ହୀନବୋଧ, ଘୃଣା, ହେୟଜ୍ଞାନ ।

**ଲଘୁତମ**—ବିଂ. (ଲଘୁ+ତମ)ଅତ୍ୟନ୍ତ ଲଘୁ, ସମସ୍ତଙ୍କଠାରୁ ଲଘୁ ।

**ଲଘୁତର**—ତ୍ରି.ବିଂ. ଅତି ଲଘୁ,ହାଲୁକା, ଅପେକ୍ଷାକୃତ ଲଘୁ ।

**ଲଘୁତମାପବର୍ତ୍ତ୍ୟ**—ବି.ଲଘିଷ୍ଠ ସାଧାରଣ ଗୁଣିତକ ।

**ଲଘୁତା**—ସ୍ତ୍ରୀ.ବି.(ଲଘୁ+ତା)ଲଘୁତ୍ୱ, ହୀନତା, କ୍ଷୁଦ୍ରତ୍ୱ, ଲଘୁଭାବ, ଗୌରବ-ହୀନତା, ତୁଚ୍ଛତା ।

**ଲଘୁତୁମ୍ବକ**—ବି. ପିତ୍ତଳ ।

**ଲଘୁତେଜାଃ**—ବିଂ. (ବ.ବ୍ରୀ) କ୍ଷୀଣପ୍ରଭ, ସ୍ୱଳ୍ପତେଜୋବିଶିଷ୍ଟ ।

**ଲଘୁତ୍ରିପଦୀ**—ସ୍ତ୍ରୀ. ବି. ଛନ୍ଦୋବିଶେଷ ।

**ଲଘୁତ୍ରୈରାଶିକ**—ବି.ତିନୋଟି ଲଘୁରାଶି-ଯୁକ୍ତ ସମସ୍ୟା ।

**ଲଘୁଦଣ୍ଡ**—ବି. (କ.ଧା) ସାମାନ୍ୟଦଣ୍ଡ, ଅଳ୍ପଶାସ୍ତି, ଛୋଟ ଶାସ୍ତି ।

ଲଘୁଦନ୍ତୀ—ସ୍ତ୍ରୀ. ବି. ଶ୍ରେଷ୍ଠଦନ୍ତୀ, କ୍ଷୁଦ୍ର ଦନ୍ତୀବୃକ୍ଷ । [ ଡ଼ିଗି ।
ଲଘୁଦୁନ୍ଦୁଭି—ବି.(କ.ଧା)ବାଦ୍ୟବିଶେଷ,
ଲଘୁଦୋଷ—ବି.(କ.ଧା)ସାମାନ୍ୟ ଦୋଷ, ସାମାନ୍ୟ ପାପ ।
ଲଘୁଦ୍ରବ୍ୟ—ବି. ହାଲୁକା ପଦାର୍ଥ,ଲଘୁପାକଦ୍ରବ୍ୟ ।
ଲଘୁଦ୍ରାକ୍ଷା-ସ୍ତ୍ରୀ.ବି.କିସ୍‌ମିସ୍,କାକଳିଦ୍ରାକ୍ଷା ।
ଲଘୁଧାନ—ଗ୍ରା.ବି.ଶାରଦଧାନ୍ୟବିଶେଷ ।
ଲଘୁନାଭମଣ୍ଡଳ—ବି. ମଣ୍ଡଳାତ୍ମକ ଚକ୍ରବିଶେଷ ।
ଲଘୁନାମା—କ୍ଲୀ. ବି. (ଲଘୁ+ନାମନ୍) ଅଗୁରୁକାଷ୍ଠ । [ ବିଶେଷ ।
ଲଘୁନାରାୟଣୋପନିଷଦ୍--ବି. ଉପନିଷଦ୍
ଲଘୁପଞ୍ଚମୂଳ—କ୍ଲୀ. ବି. କ୍ଷୁଦ୍ର ପଞ୍ଚମୂଳ ପାଚନ, (ବୃହତୀ,ଶାଳପର୍ଣ୍ଣୀ,କୃଷ୍ଣପର୍ଣ୍ଣୀ, ଅଙ୍କରାନ୍ତ, ଗୋଖୁରା) ।
ଲଘୁପତନକ—ପୁଂ.ବି. ଦ୍ରୁତଗମନଶୀଳ ହିତୋପଦେଶ ବର୍ଣ୍ଣିତ କାକ ।
ଲଘୁପତ୍ର—ବି.(ବ.ଗ୍ରା) କମଳାଗୁଣ୍ଡିଗଛ ।
ଲଘୁପତ୍ରକ—ପୁଂ. ବି. ରୋଚନୀଗୁଣ୍ଡା, କମଳାଗୁଣ୍ଡି ।
ଲଘୁପତ୍ରଫଳା—ସ୍ତ୍ରୀ.ବି.ଲଘୁଉଦୁମ୍ବରିକା ।
ଲଘୁପତ୍ରା—ବି.ହିମାଳୟରେ ଜାତ ବୃକ୍ଷ ବିଶେଷ ।
ଲଘୁପତ୍ରୀ—ସ୍ତ୍ରୀ.ବି. (ବ.ଗ୍ରା)ଅଶ୍ୱତ୍ଥବୃକ୍ଷ ।
ଲଘୁପରାଶର—ପୁଂ.ବି.ସ୍ମୃତିଶାସ୍ତ୍ରବିଶେଷ. ଜ୍ୟୋତିଃଶାସ୍ତ୍ରବିଶେଷ ।
ଲଘୁପର୍ଣ୍ଣୀ—ସ୍ତ୍ରୀ. ବି. ମୂର୍ବା, ଶତମୂଳୀ ।
ଲଘୁପାକ—ପୁଂ.ବି. (କ.ଧା) ଅଳ୍ପକାଳ ଦେଇ ସିଝାଇବା, (ବିଂ-ବ.ଗ୍ରା) ଯେଉଁ ଖାଦ୍ୟ ଶୀଘ୍ର ଜୀର୍ଣ୍ଣହୁଏ ।
ଲଘୁପାକୀ—ବି.ଚୀନାଧାନ୍ୟ, ଚୀନାଶସ୍ୟ
ଲଘୁପାତୀ—ପୁଂ. ବିଂ. ଶୀଘ୍ରପତନଶୀଳ କାକ, କୁଆ ।
ଲଘୁପାଣ୍ଡୁରପୁଷ୍ପକ—ପୁଂ. ବି. ଦ୍ୱୀପାନ୍ତର ଶର୍କରିକା ।
ଲଘୁପାପ—ବି. ସାମାନ୍ୟ ପାପ, (ବିଂ-ବ.ଗ୍ରା) ସାମାନ୍ୟ ପାପଯୁକ୍ତ ।

ଲଘୁପିଚ୍ଛିଳ—ପୁଂ. ବି. (ଲଘୁ+ପିଚ୍ଛିଳ) କାଞ୍ଚନ ଗଛ ।
ଲଘୁପୁଲସ୍ତ୍ୟ—ପୁଂ. ବି. ପୁଲସ୍ତ୍ୟକୃତ ଧର୍ମଶାସ୍ତ୍ରବିଶେଷ ।
ଲଘୁପୁଷ୍ପ—ପୁଂ.ବି. (ବ.ଗ୍ରା) ଭୂମିକଦମ୍ବ ।
ଲଘୁପୁଷ୍ପା—ବି. ସୁବର୍ଣ୍ଣକେତକୀ,କେତକୀ ଫୁଲଗଛ ।
ଲଘୁପ୍ରକୃତି--ବି.(କ.ଧା)ମୃଦୁ ବା କୋମଳ ପ୍ରକୃତି,(ବିଂ-ବ.ଗ୍ରା)ମୃଦୁସ୍ୱଭାବବିଶିଷ୍ଟ ।
ଲଘୁପ୍ରଯତ୍ନ—ପୁଂ.ବିଂ. (ବ.ଗ୍ରା)ଆଳସ୍ୟପ୍ରିୟ, ଅଳ୍ପଚେଷ୍ଟ, ଅଳସୁଆ, ଯେଉଁ ବର୍ଣ୍ଣ ଅଳ୍ପପ୍ରୟାସରେ ଉଚ୍ଚାରିତ ହୁଏ, (ସ୍ତ୍ରୀ) ପ୍ରଯତ୍ନା, ( ବି-କ.ଧା ) ସାମାନ୍ୟ ଚେଷ୍ଟା ବା ପରିଶ୍ରମ ।
ଲଘୁଫଳ--ପୁଂ.ବି.(ବ.ଗ୍ରା)ଲଘୁଉଦୁମ୍ବର ଶ୍ରେଷ୍ଠ ଡିମିରି ।
ଲଘୁବଦର—ପୁଂ.ବି. ଭୁଇଁବରକୋଳି, ଲଟାବଇଁର, କର୍କନ୍ଧୁ ।
ଲଘୁବଦରୀ—ସ୍ତ୍ରୀ.ବି.ଲଟାବଇଁର,କର୍କନ୍ଧୁ ।
ଲଘୁଭବ—ପୁଂ.ବି.ନିମ୍ନପଦ,ନିକୃଷ୍ଟଜନ୍ମ ।
ଲଘୁଭାଗବତ—ବି. ଭାଗବତ ପୁରାଣର ଖଣ୍ଡିଏ ଚୂର୍ଣ୍ଣିକ ଗ୍ରନ୍ଥ ।
ଲଘୁଭାବ—ବି.ଲଘୁତା,କ୍ଷୁଦ୍ରତା,ନମ୍ରତା. ଗୁରୁତ୍ୱହୀନତା ।
ଲଘୁଭାର—ବି. ( କ.ଧା ) ଅଳ୍ପଓଜନ, ସାମାନ୍ୟ ଦାୟିତ୍ୱ, (ବିଂ)ଯାହାର ଓଜନ ଅଳ୍ପ, ହାଲୁକା ।
ଲଘୁଭୁକ୍—ପୁଂ. ବିଂ. (ଲଘୁ+ଭୁଜ୍+କ୍ୱିପ୍) ଲଘୁଦ୍ରବ୍ୟ ଭୋଜନକାରୀ,ଅଳ୍ପଭୋଜୀ ।
ଲଘୁଭୋଜନ—କ୍ଲୀ. ବି. (କ.ଧା) ସହଜ ପରିପାକ ଦ୍ରବ୍ୟର ଭୋଜନ, ଜଳଖିଆ, ପରିମିତାହାର,(ବିଂ)ଲଘୁଭୋଜୀ ଦେଖ ।
ଲଘୁଭୋଜୀ—ପୁଂ.ବିଂ. (ଲଘୁ+ଭୋଜିନ୍) ପରିମିତାହାରୀ, ଯେ ଅଳ୍ପମାତ୍ର ଖାଦ୍ୟ ଖାଏ,ଯେ ଲଘୁପାକ ଦ୍ରବ୍ୟ ଖାଏ,(ସ୍ତ୍ରୀ) ଲଘୁଭୋଜିନୀ ।
ଲଘୁମନ୍ଥ—ପୁଂ. ବି. ( ଲଘୁ+ମନ୍ଥ ) କ୍ଷୁଦ୍ରାଗ୍ନିମନ୍ଥ, ଶ୍ରେଷ୍ଠ ଅଗବଥୁ ଗଛ ।

ଲଘୁମତି—ବିଂ. ( ବ.ଗ୍ରା ) ନିର୍ବୋଧ, ଲଘୁଚିତ୍ତ ।
ଲଘୁମାଂସ—ବି. (ବ.ଗ୍ରା) ତିତିରିପକ୍ଷୀ ।
ଲଘୁମାଂସୀ—ସ୍ତ୍ରୀ. ବି. ଗନ୍ଧମାଂସୀ, ସୂକ୍ଷ୍ମ ଜଟାମାଂସୀ ।
ଲଘୁମାନ—ବି.(କ.ଧା) ନାୟକକୁ ଅନ୍ୟ ସ୍ତ୍ରୀସଙ୍ଗେ କଥୋପକଥନ କରିବା ଦେଖି ନାୟିକାର ମନରେ ଉତ୍ପନ୍ନ ସାମାନ୍ୟ କ୍ରୋଧ ବା ଅଭିମାନ ।
ଲଘୁମଣ୍ଡିଆ—ଗ୍ରା.ବି. ମାଣ୍ଡିଆର ପ୍ରକାରଭେଦ ।
ଲଘୁମୂଳ—କ୍ଲୀ.ବି. ବୀଜଗଣିତରେ ସମୀକରଣରେ ସର୍ବାପେକ୍ଷା କ୍ଷୁଦ୍ରତମ ସଂଖ୍ୟା । [ ମୂଳକ ।
ଲଘୁମୂଳକ--କ୍ଲୀ.ବି. ହ୍ରସ୍ୱମୂଳକ,ନେପାଳ-
ଲଘୁମୂଲ୍ୟ—ବି. (କ.ଧା) ଅଳ୍ପଦାମ୍,ସସ୍ତା ଦର, (ବିଂ-ବ.ଗ୍ରା) ଯହିଁର ମୂଲ୍ୟ କମ୍, ସସ୍ତା ।
ଲଘୁରାଶି—ପୁଂ.ବି. (କ.ଧା) ଅଳ୍ପସଂଖ୍ୟା, ଯୁକ୍ତରାଶି, ଅଙ୍କଶାସ୍ତ୍ରୋକ୍ତ ରାଶିବିଶେଷ ।
ଲଘୁଲତା—ସ୍ତ୍ରୀ.ବି. ଅନନ୍ତମୂଳ, କଳସି ଲତା, ଶାରିବା । [ ମୂଳ ।
ଲଘୁଲୟ—କ୍ଲୀ.ବି.ବେଣାଚେର,ବେଣା-
ଲଘୁଲଳିତ—ବିଂ. (ଦ୍ୱନ୍ଦ୍ୱ) କ୍ଷୁଦ୍ର ଅଥଚ ସୁନ୍ଦର, କ୍ଷୁଦ୍ର ଓ ସୁଶ୍ରାବ୍ୟ (ସ୍ୱର) ।
ଲଘୁଲଳିତଚତୁଷ୍ପଦୀ—ବି. ଯେଉଁ ଚତୁଷ୍ପଦୀର ପ୍ରଥମ ତିନି ଚରଣରେ ଆଠ ଅକ୍ଷର ଲେଖାଏଁ ଥାଏ ଓ ଶେଷ ଚରଣରେ ସାତ ଅକ୍ଷର ଥାଏ ।
ଲଘୁଲୋଣିକା—ବି. ବାର୍ଷିକ ଶାକତରୁବିଶେଷ, ଲୁଣୁଲୁଣିଆ ଶାଗ ।
ଲଘୁବଦରୀ—ବି. ଶ୍ରେଷ୍ଠ ବରକୋଳି, ଭୁଇଁବରକୋଳି, କର୍କନ୍ଧୁ ।
ଲଘୁବର୍ଣ୍ଣ—ବି. (କ.ଧା) ଯେଉଁ ବର୍ଣ୍ଣର ଉଚ୍ଚାରଣ କାଳ ଅଳ୍ପ ।
ଲଘୁବଲ୍ଲୀ—ବି. (ବୈଦ୍ୟକ)ତେଜୋବଳୀନାମକ ବୃକ୍ଷ ।
ଲଘୁବାସାଃ— ପୁଂ. ବିଂ. ସୂକ୍ଷ୍ମବାସ ପରିଧାନକାରୀ ।

ଲଘୁବିକ୍ରମ—ପୁଂ.ବି. ଦ୍ରୁତଗମନ ।
ଲଘୁବିଷ୍ଣୁ—ପୁଂ. ବି. ବିଷ୍ଣୁକଥିତ ସ୍ମୃତିବିଶେଷ ।
ଲଘୁବୃତ୍ତି—ପୁଂ.ବିଂ.(ବି.ଗ୍ରା)ନୀଚକାର୍ଯ୍ୟାବଲମ୍ବୀ,ଯାହାର ବ୍ୟବସାୟ ନୀଚ ଅଟେ, ନୀଚ ବ୍ୟବହାରକାରୀ, ଅବିବେଚକ (ବ୍ୟକ୍ତି),ମନ୍ଦରୂପେ ପରିଗୃହୀତ (କର୍ମ), (ବି-କ.ଧା) ନୀଚକର୍ମ,ନୀଚ ବ୍ୟବସାୟ ।
ଲଘୁବେଧୀ—ପୁଂ.ବିଂ. (ଲଘୁ+ବିଧ୍+କ.ଇନ୍)ଯେ ଠିକ୍‌ମତେ ଲକ୍ଷ୍ୟକୁ ଭେଦ କରିପାରେ ।
ଲଘୁବ୍ୟୟ—ବି. (କ.ଧା) ଅଳପ ଖରଚ, ପରିମିତ ବ୍ୟୟ,(ପୁଂ.ବିଂ) ପରିମିତବ୍ୟୟୀ. (ସ୍ତ୍ରୀ) ଲଘୁବ୍ୟୟା ।
ଲଘୁବ୍ରାହ୍ମୀ—ବି. ଏକପ୍ରକାର ଶ୍ରେଷ୍ଠ ବ୍ରାହ୍ମୀଶାକ ।
ଲଘୁଶଙ୍କା—ବି. ମୂତ୍ରୋତ୍ସର୍ଗ, ପ୍ରସ୍ରାବବେଗ ବୋଧହେବା, ମୂତମାଡ଼ିବା ।
ଲଘୁଶଙ୍ଖ—ବି. କ୍ଷୁଦ୍ର ଶଙ୍ଖ, ଗେଣ୍ଡା ।
ଲଘୁଶମୀ—ସ୍ତ୍ରୀ ବି. ଶମୀବୃକ୍ଷବିଶେଷ ।
ଲଘୁଶୀତ—ବି. ଗର୍ଭଣୀଗଛ । [ଚିତ୍ତ ।
ଲଘୁସତ୍ତ୍ୱ—ପୁଂ.ବିଂ. ଲଘୁପ୍ରକୃତିକ,ଲଘୁ-
ଲଘୁସଦାଫଳା—ସ୍ତ୍ରୀ.ବି. (ବି.ଗ୍ରା) ଲଘୁଦୁମ୍ବରିକା, ଶ୍ରେଷ୍ଠ ଡିମିରି । [ଯୁଦ୍ଧ ।
ଲଘୁସମର—ବି. (ଲଘୁ+ସମର)ସାମାନ୍ୟ
ଲଘୁସାର—ପୁଂ.ବିଂ. ( ବି.ଗ୍ରା ) ଅଳ୍ପ ସାରଯୁକ୍ତ ।
ଲଘୁସିଦ୍ଧାନ୍ତକୌମୁଦୀ—ବି. ସଂସ୍କୃତ ବ୍ୟାକରଣ ଗ୍ରନ୍ଥବିଶେଷ ।
ଲଘୁସ୍ୱଭାବ—ପୁଂ. ବିଂ. (ଲଘୁ+ସ୍ୱଭାବ) ଲଘୁଚିତ୍ତ ଦେଖ ।
ଲଘୁସ୍ୱର—ବି. (କ.ଧା) ହ୍ରସ୍ୱସ୍ୱର,ଯେଉଁ ସ୍ୱରର ଉଚ୍ଚାରଣ କାଳ ଅଳ୍ପ, ମୃଦୁସ୍ୱର, କ୍ଷୀଣ ଗଳାର ଶବ୍ଦ, (ପୁଂ.ବିଂ) ବି.ଗ୍ରା;ମୃଦୁସ୍ୱରବିଶିଷ୍ଟ,(ସ୍ତ୍ରୀ) ଲଘୁସ୍ୱରା ।
ଲଘୁହସ୍ତ—ପୁଂ.ବିଂ.(ବି.ଗ୍ରା)ଶୀଘ୍ରବେଧୀ, କ୍ଷିପ୍ରହସ୍ତ, ପଟୁ, ଦକ୍ଷ, ଅଭରହସ୍ତ, ଶୀଘ୍ର ବାଣତ୍ୟାଗୀ, (ପୁଂ.ବିଂ) କ୍ଷିପ୍ରହସ୍ତ ଧନୁର୍ଦ୍ଧର ।

ଲଘୁହସ୍ତତା—ସ୍ତ୍ରୀ.ବି. ଲଘୁହସ୍ତତ୍ୱ, ଲଘୁହସ୍ତ ଭାବ ।
ଲଘୁହାରୀତ—ବି. ସ୍ମୃତିଶାସ୍ତ୍ରବିଶେଷ ।
ଲଘୁହୃଦୟ—ପୁଂ.ବିଂ.ଚଞ୍ଚଳଚିତ୍ତ,ଅସ୍ଥିରମତି, ଲଘୁଚିତ୍ତ ଦେଖ ।
ଲଘୁହେମଦୁଗ୍ଧା—ସ୍ତ୍ରୀ.ବି. ଲଘୂଦୁମ୍ବରିକା, ଶ୍ରେଷ୍ଠ ଡିମିରି ।
ଲଘୂ—ବି ଓ ବିଂ. (ସ୍ତ୍ରୀ) ଲଘ୍ୱୀ ଦେଖ ।
ଲଘୂକରଣ—କ୍ଲୀ.ବି.(ଲଘୁ+ଚ୍ୱି+କରଣ) ହ୍ରସ୍ୱୀକରଣ, ହାଲୁକା କରିବା, ହ୍ରାସକରଣ, ନିମ୍ନଶ୍ରେଣୀସ୍ଥ ରାଶିକୁ ଉଚ୍ଚ ଶ୍ରେଣୀର ରାଶିରେ ଓ ଉଚ୍ଚଶ୍ରେଣୀସ୍ଥ ରାଶିକୁ ନିମ୍ନଶ୍ରେଣୀର ରାଶିରେ ପରିଣତ କରିବା ।
ଲଘୂକୃତ—ବିଂ. ( ଲଘୁ+ଚ୍ୱି+କୃତ ) ଲଘୁ ବା ହ୍ରସ୍ୱ କରାଯାଇଥିବା (ଲଘୁପଦାର୍ଥ) ।
ଲଘୂକ୍ତି—ସ୍ତ୍ରୀ.ବି.(ଲଘୁ+ଉକ୍ତି)ଲଘୁକଥନ ଅଳ୍ପକଥନ ।
ଲଘୂଦୁମ୍ବରିକା—ସ୍ତ୍ରୀ.ବି. ଶ୍ରେଷ୍ଠ ଡିମିରି ।
ଲଘ୍ୱତ୍ରି—ପୁଂ. ବି. ଅତ୍ରି ଋଷି ପ୍ରବର୍ତ୍ତିତ ସ୍ମୃତିବିଶେଷ ।
ଲଘ୍ୱଶନ-ବି ଓ ବିଂ.ଲଘୁଭୋଜନ ଦେଖ ।
ଲଘ୍ୱାଶୀ—ପୁଂ.ବିଂ. (ଲଘୁ+ଅଶ୍+କ.ଇନ୍) ଲଘୁଭୋଜୀ, ଯେ ଲଘୁପାକ ଦ୍ରବ୍ୟ ଖାଏ, (ସ୍ତ୍ରୀ) ଲଘ୍ୱାଶିନୀ ।
ଲଘ୍ୱାହାର—ବି ଓ ବିଂ.(ଲଘୁ+ଆହାର) ଲଘୁଭୋଜନ ଦେଖ ।
ଲଘ୍ୱୀ—ସ୍ତ୍ରୀ. ବିଂ. ( ଲଘୁ+ଈ ) ଲଘୁର ସ୍ତ୍ରୀଲିଙ୍ଗ,(ବି)ସୁକୁମାରୀ ସ୍ତ୍ରୀ,ବଦରୀଫଳ, ପିଡ଼ଙ୍ଗଶାଗ, ହାଲୁକା, ଶ୍ରେଷ୍ଠ ଶଗଡ଼, ସ୍ତ୍ରୀବାହକ ଯାନବିଶେଷ, ଖଟିଆ, ଡୋଲି ।
ଲଘ୍ୱୀଶଙ୍କା—ବି. ଲଘୁଶଙ୍କା ।
ଲଙ୍କଜଡ଼ା—ଗ୍ରା.ବି. ବାଇଗବା ଦେଖ ।
ଲଙ୍କଦେବତା—ଗ୍ରା.ସ୍ତ୍ରୀ. ବି. ଲଙ୍କେଶ୍ୱରୀ ଦେଖ ।
ଲଙ୍କନାଥ-ପୁଂ.ବି.ଲଙ୍କାର ରାଜା ରାବଣ ।
ଲଙ୍କପତି—ଗ୍ରା.ବି. ଲଙ୍କାପତି, ରାବଣ ।

ଲଙ୍କପାଳ—ଗ୍ରା.ବି. ରାବଣ ।
ଲଙ୍କମରିଚ— ଗ୍ରା.ବି. ଲଙ୍କାମରିଚ ।
ଲଙ୍କମୁହଁ—ଗ୍ରା.ବି. ଘରର ଦ୍ୱାରମୁହଁରେ ଦିଆଯାଇଥିବା ଅଧାକାନ୍ଥର ଆଡ଼ୁଆଳ ।
ଲଙ୍କା—ସ୍ତ୍ରୀ.ବି. ( ଲକ୍+ଅଧି.ଅ+ଆ ) ରକ୍ଷପୁରୀ, ରାବଣ ରାକ୍ଷସର ରାଜଧାନୀ, ସିଂହଳଦ୍ୱୀପ, କୁଳଟା ସ୍ତ୍ରୀ, ଶାଖା, ଶାକିନୀ, ସ୍ତ୍ରୀଭୂତ, ଦୁର୍ଗାଙ୍କ ଅନୁଚରୀ ପିଶାଚୀବିଶେଷ, ଡାକିନୀ, ଖେସାରିଜାତୀୟ ଶିମ୍ବୀଧାନ୍ୟବିଶେଷ, ଲଙ୍କୋଭବ ମରିଚ, ପିଡ଼ଙ୍ଗଶାଗ,କୃଷ୍ଣଚଣକ, (ଗ୍ରା.ବି) ଲଙ୍କାମରିଚ, ଦଳୁଆ ଶୂଦ୍ରଙ୍କର ବଂଶୋପାଧିବିଶେଷ, (ବିଂ)ଯଥେଷ୍ଟ ।
ଲଙ୍କାଆମ୍ବ--ଗ୍ରା.ବି. ଫଳବିଶେଷ,ପିଜୁଳି ।
ଲଙ୍କାକାଣ୍ଡ—ଗ୍ରା.ବି. ( ଲଙ୍କା+କାଣ୍ଡ ) ରାମାୟଣ ଗ୍ରନ୍ଥର ସାତକାଣ୍ଡ ମଧ୍ୟରୁ ଷଷ୍ଠକାଣ୍ଡ, ( ଲ.ଅର୍ଥ ) ତୁମୁଳ ବ୍ୟାପାର, ଭୟଙ୍କର ଅଗ୍ନ୍ୟୁତ୍ପାତ ।
ଲଙ୍କାକାଳ—ଗ୍ରା.ବି. ବାଇଗବା ଦେଖ ।
ଲଙ୍କାଗଡ଼—ଗ୍ରା.ବି. ରାବଣର ରାଜଧାନୀ ।
ଲଙ୍କାଗବ—ଗ୍ରା.ବି. ବାଇଗବା ଦେଖ ।
ଲଙ୍କାଦଳୁଆ—ପ୍ରା.(ଗଞ୍ଜାମ) ବି. ଦଳୁଆନାମକ ଶୂଦ୍ରଜାତିର ଶାଖାବିଶେଷ
ଲଙ୍କାଦହନ—ବି. ( ୬ତତ୍ପୁ ) ହନୂମାନ ଦ୍ୱାରା ଲଙ୍କାନଗରର ଧ୍ୱଂସ ।
ଲଙ୍କାଦାହୀ—ପୁଂ. ବି. (ଲଙ୍କା+ଦହ୍+କ.ଇନ୍) ହନୂମାନ, (ପୁଂ.ବିଂ) ଲଙ୍କାଦହନକାରୀ ।
ଲଙ୍କାଦ୍ୱୀପ—ବି. ଭାରତ ମହାସାଗରସ୍ଥ ଦ୍ୱୀପବିଶେଷ, ସିଂହଳଦ୍ୱୀପ ।
ଲଙ୍କାନାଥ—ପୁଂ.ବି.( ୬ତତ୍ପୁ ) ରାବଣ, ବିଭୀଷଣ ।
ଲଙ୍କାନାୟକ—ପୁଂ.ବି. (୬ତତ୍ପୁ)ରାବଣ ।
ଲଙ୍କାପଣସ—ଗ୍ରା.ବି. ସପୁରୀ ।
ଲଙ୍କାପତି—ପୁଂ.ବି. ( ୬ତତ୍ପୁ ) ରାବଣ, ବିଭୀଷଣ ।
ଲଙ୍କାପାଣ୍ଡୁ—ପ୍ରା.(ଗଞ୍ଜାମ)ବି.ଲଙ୍କାଆମ୍ବ ।
ଲଙ୍କାପିକା(ପ୍ପିକା)— ବି. ପିଡ଼ଙ୍ଗଶାଗ ।
ଲଙ୍କାପୁର(ରୀ)—ବି. ରାବଣର ରାଜଧାନୀ

ସ୍ୱର୍ଣ୍ଣମୟୀ ଲଙ୍କା ।
ଲଙ୍କାପୋଡ଼ା—ଗ୍ରା. ବିଂ. ଲଙ୍କା ଦହନକାରୀ(ଶ୍ରୀରାମହନୁମାନ୍) ।
ଲଙ୍କାପୋଡ଼ାବାନର(ନ୍ଦ)ର—ଗ୍ରା.ବି. ହନୁମାନଙ୍କ,(ଲ.ଅର୍ଥ)ଯେଉଁ ଲୋକ ଅବିବେକ ଅବୋଧ ଅନିଷ୍ଟ ପାଦପାତ କରି ସେ ସ୍ଥାନକୁ ବା ବଂଶକୁ ଛାରଖାର ବା ଶ୍ରୀଭ୍ରଷ୍ଟ କରେ ।
ଲଙ୍କାଭାଲିଆ—ଗ୍ରା.ବି. ଲଙ୍କାଆମ୍ବ, ଏକପ୍ରକାର ଫଳ ଓ ତାହାର ମଞ୍ଜି ।
ଲଙ୍କାମରିଚ—ଗ୍ରା.ବି. ସ୍ୱନାମପ୍ରସିଦ୍ଧ କ୍ଷୁପବିଶେଷ, କଞ୍ଚାମରିଚ,ଲଙ୍କାଆଦି ବର୍ଗର କୃଷିଜାତ ଶାକ ବିଶେଷର ଫଳ ।
ଲଙ୍କାଯୁଦ୍ଧ—ବି.ରାମାୟଣବର୍ଣ୍ଣିତ ଲଙ୍କାରେ ହୋଇଥିବା ରାମରାବଣ ଯୁଦ୍ଧ ।
ଲଙ୍କାରି—ପୁଂ.ବି. (୬ତତ୍ପୁ) ରାମଚନ୍ଦ୍ର ।
ଲଙ୍କାରିକା—ସ୍ତ୍ରୀ.ବି. ପିଚ୍ଛଙ୍ଗଶାଗ ।
ଲଙ୍କାସିଝୁ—ଗ୍ରା. ବି. ସ୍ନୁହୀଆଦି ବର୍ଗର କ୍ଷୀରୀ ବୃକ୍ଷବିଶେଷ, ଖଡ଼ୁସିଝୁ ।
ଲଙ୍କାସ୍ଥାୟୀ—ପୁଂ.ବି. ବୃକ୍ଷବିଶେଷ,ଲଙ୍କାସିଝୁ, (ପୁଂ.ବିଂ) ଲଙ୍କାବାସୀ ।
ଲଙ୍କିଣୀ—ଗ୍ରା.ସ୍ତ୍ରୀ. ବି. ଲଙ୍କାର ପୂଜିତା ଗ୍ରାମଦେବତା ।
ଲଙ୍କିନୀ—ସ୍ତ୍ରୀ. ବି. (ଲଙ୍କା+ଇନ୍+ଈ) ଲଙ୍କେଶ୍ୱରୀ ।
ଲଙ୍କିଲଟ୍—ଯା.ବି. ଶୁକ୍ଳୀକୃତ ବା ଧୁଲାଇ ହୋଇଥିବା ମାରକିନ୍ ଥାନ, ନୟୁନ୍କିଲଟ୍ [ ବିଭୀଷଣ ।
ଲଙ୍କେଶ—ପୁଂ. ବି. ( ୬ତତ୍ପୁ ) ରାବଣ,
ଲଙ୍କେଶବନାରିକେତୁ—ପୁଂ.ବି. ଅର୍ଜୁନ ।
ଲଙ୍କେଶ୍ୱର—ପୁଂ. ବି. (୬ତତ୍ପୁ) ରାବଣ, ବିଭୀଷଣ ।
ଲଙ୍କେଶ୍ୱରୀ—ସ୍ତ୍ରୀ. ବି. (ଲଙ୍କା+ଈଶ୍ୱରୀ) ରାବଣାଧିଷ୍ଠିତ ଲଙ୍କା ନଗରୀର ଅଧିଷ୍ଠାତ୍ରୀ ଦେବୀ ।
ଲଙ୍ଗପଙ୍ଗହେବା—ଗ୍ରା. କ୍ରି କୌଣସି ସ୍ଥାନରେ କୌଣସି ଗୂଢ଼ ଉଦ୍ଦେଶ୍ୟରେ ଇତସ୍ତତଃ ବୁଲିବା ।
ଲଙ୍ଗ—ପୁଂ.ବି. (ଲଙ୍ଗ+ଭା.ଅ) ସଙ୍ଗ, ମିଳନ, ଭେଟ, ଖଞ୍ଜତା, (କ.ଅ)ଜାର, ଉପପତି । [ ଜାର ।
ଲଙ୍ଗକ—ପୁଂ.ବି. (ଲଙ୍ଗ+କ)ଉପପତି,
ଲଙ୍ଗର—ଯା.ବି. ଜାହାଜାଦି ଅଟକାଇବାର ଲୌହାଦି ନିର୍ମିତ ଲଙ୍ଗଳାକୃତି ଅଙ୍କୁଶ । [ ଶାଳା ।
ଲଙ୍ଗରଖାନା—ଯା.ବି.ଧର୍ମଶାଳା,ଦରିଦ୍ର
ଲଙ୍ଗରଗା—ଯା. ବି. ବନ୍ଦର ।
ଲଙ୍ଗରପଙ୍ଗରହେବା—ଗ୍ରା. କ୍ରି.ଲଙ୍ଗ୍ପଙ୍ଗ୍ ହେବା ଦେଖ ।
ଲଙ୍ଗଳ—ବି.(ସଂ-ଲାଙ୍ଗଳ) ଭୂମି ଚଷିବାର ଲୌହମୁଖ ଯନ୍ତ୍ର ।
ଲଙ୍ଗଳକଣ୍ଠି—ଗ୍ରା.ବି. (ସଂ-କୁଟକ)ବକଗ୍ରୀବାପରି ଲଙ୍ଗଳର ଯେଉଁ ଲମ୍ବ କାଷ୍ଠର ଊର୍ଦ୍ଧ୍ୱଭାଗସ୍ଥ ବେଣ୍ଟକୁ ହଳିଆ ହାତରେ ଧରି ହଳ କରେ ।
ଲଙ୍ଗଳମୁଣ୍ଡା—ଗ୍ରା. ବି. ଯେଉଁ କାଠ ଗଣ୍ଡିରୁ ଲଙ୍ଗଳ ପ୍ରସ୍ତୁତ ହୁଏ ।
ଲଙ୍ଗଳଶୋଭା—ପ୍ରା. (ସ୍ୱପ୍ନ)ବି. ଯୁଆଳି ।
ଲଙ୍ଗଳା—ଗ୍ରା.ପୁଂ.ସ୍ତ୍ରୀ.ବିଂ. ଉଲଙ୍ଗ, ଯେ ଲୁଗା ପିନ୍ଧି ନଥାଏ,ଅଲଙ୍କାରାଦିବର୍ଜିତ, ଆବରଣହୀନ,(ଲ.ଅର୍ଥ)ନିର୍ଲଜ୍ଜ,ଯାହାର ସ୍ତ୍ରୀ ପୁତ୍ରାଦି ପୋଷ୍ୟବର୍ଗ କେହି ନ ଥାଏ
ଲଙ୍ଗଳାକରିବା—ଗ୍ରା.କ୍ରି.ବିବସ୍ତ୍ର କରିବା, ଅଳଙ୍କାରବିହୀନ କରିବା, (ଲ.ଅର୍ଥ) ସର୍ବସ୍ୱାନ୍ତକରିବା, ନିଃସ୍ୱକରିବା ।
ଲଙ୍ଗଳାକୌତ୍ସ—ଗ୍ରା. ବି. କୌତ୍ସଗୋତ୍ର ସମ୍ଭୂତ ବୈଦିକ ବ୍ରାହ୍ମଣଙ୍କ ଶ୍ରେଣୀବିଶେଷ ।
ଲଙ୍ଗଳାଗାଣ୍ଡି—ଗ୍ରା.ବି.ବସ୍ତ୍ରହୀନ ଶରୀର ।
ଲଙ୍ଗଳାପଣ—ଗ୍ରା. ବି. ନିର୍ଲଜ୍ଜପଣିଆ, ନଗ୍ନତା ।
ଲଙ୍ଗଳାମୁକୁଳା(ମୁଣ୍ଡୁରା)—ଗ୍ରା.ବିଂ.ଯେଉଁ ବ୍ୟକ୍ତିର ଦେହରୁ ଲୁଗା ଖସି ପଡ଼ିଥାଏ ଓ କେଶ ଫିଟି ପଡ଼ିଥାଏ, (ଲ.ଅର୍ଥ) ଯାହାର କେଶବାସ ଅସମ୍ଭାଳ ହୋଇଥାଏ ।
ଲଙ୍ଗିମ(ମ୍ୟ)—କ୍ରି.ବିଂ.ସଂଯୋଗର ଉପଯୁକ୍ତ
ଲଙ୍ଗୁଟି—ଗ୍ରା. ବି. ଲେଙ୍ଗୁଟି ।
ଲଙ୍ଗୁଳ—ବି. (ଲନ୍ଗ୍+ଉଲ) ଲାଙ୍ଗୁଳ ବା ଲାଞ୍ଜି, ପୁଚ୍ଛ ।
ଲଙ୍ଗୁଳ—ଗ୍ରା. ବିଂ. ଲଙ୍ଗଳା ଦେଖ ।
ଲଙ୍ଗୁଳିଆ—ଗ୍ରା. ବିଂ. ଲଙ୍ଗଳା ଦେଖ ।
ଲଙ୍ଗୁଳିବଇଷ୍ଣମ—ଗ୍ରା.ବି. ଯେଉଁ ବୈରାଗୀ ବସ୍ତ୍ର ପିନ୍ଧନ୍ତି ନାହିଁ, ନାଗା ।
ଲଙ୍ଗୁଲୀ—ଗ୍ରା.ସ୍ତ୍ରୀ.ବିଂ.ଲଙ୍ଗୁଳାର ସ୍ତ୍ରୀଲିଙ୍ଗ ।
ଲଙ୍ଗୋଟ—ଯା.ବି.ଲେଙ୍ଗୁଟି, କୌପୀନ ।
ଲଙ୍ଘକ—ପୁଂ.ବିଂ. (ଲଙ୍ଘ୍+କ.ଅକ)ଯେ ଲଙ୍ଘନ କରେ, ଅତିକ୍ରମକାରୀ,ନିୟମଭଙ୍ଗକାରୀ, ସୀମା ବହିର୍ଗାମୀ, (ସ୍ତ୍ରୀ) ଲଙ୍ଘିକା ।
ଲଙ୍ଘନ—କ୍ଳୀ. ବି. (ଲନ୍ଘ୍+ଭା.ଅନ) ଉପବାସ, ସୀମାତିକ୍ରମଣ, ଆକ୍ରମଣ, ଦଂଶନ, ଅତିକ୍ରମ, ଅଶ୍ୱ ଗତିବିଶେଷ, ଅବମାନନା, (ଣ.ଅନ) ଯେଉଁ ଉପାୟରେ କୌଣସି କାର୍ଯ୍ୟର ଲାଘବ ବା ସୁବିଧା ହୁଏ, (ନଦୀଆଦି) ପାରହେବା, ଆଘାତ
ଲଙ୍ଘନକ—କ୍ରି.ବିଂ (ଲଙ୍ଘନ+କ)ଯଦ୍ଦ୍ୱାରା ଲଙ୍ଘନ କରାଯାଏ,(ବି)ସେତୁ, ପୋଲ ।
ଲଙ୍ଘନୀୟ—କ୍ରି.ବିଂ. (ଲଙ୍ଘ+ର୍ମ.ଅନୀୟ) ଲଙ୍ଘନଯୋଗ୍ୟ, ଲଙ୍ଘନାର୍ହ, ଅତିକ୍ରମଣୀୟ ।
ଲଙ୍ଘନୀୟତା—ସ୍ତ୍ରୀ.ବି.ଲଙ୍ଘନ,ଲଙ୍ଘନୀୟତ୍ୱ ।
ଲଙ୍ଘନେଚ୍ଛା—ବି.(୬ତତ୍ପୁ) ଲଙ୍ଘନ କରିବାର ଇଚ୍ଛା ।
ଲଙ୍ଘା—ଗ୍ରା.ପୁଂ.ବିଂ. ସଂସାର ବନ୍ଧନରୁ ନିର୍ଲିପ୍ତ (ବ୍ୟକ୍ତି) ।
ଲଙ୍ଘାପାରିକ—ଗ୍ରା.ବି. ଉନ୍ମୁକ୍ତ ଅସ୍ତ୍ରଧାରୀ ପଦାତିକ ବା ଯୋଦ୍ଧା ।
ଲଙ୍ଘାଲଙ୍ଘି—ଗ୍ରା.ବି. ଡ଼ିଆଁଡ଼େଇ, ପୁନଃ ପୁନଃ ପ୍ରାଚୀରାଦି ଉଲ୍ଲଙ୍ଘନ ।
ଲଙ୍ଘିତ—ବିଂ.(ଲଙ୍ଘ+ର୍ମ.ତ)ଅତିକ୍ରାନ୍ତ ।
ଲଙ୍ଘିବା—ଗ୍ରା. କ୍ରି. ଲଙ୍ଘନକରିବା, ଅତିକ୍ରମ କରିବା,ଆକ୍ରମଣ କରିବା,ହଇରାଣ କରିବା । [ ଦେଖ ।
ଲଙ୍ଘ୍ୟ—କ୍ରି. ବିଂ.(ଲଙ୍ଘ+ଯ) ଲଙ୍ଘନୀୟ
ଲଛମନ୍—ଗ୍ରା.ପୁଂ.ବି.ଲକ୍ଷ୍ମଣ, ରାମଚନ୍ଦ୍ରଙ୍କର କନିଷ୍ଠ ଭ୍ରାତା ।

ଲଛମନ୍‌ଝୁଲ୍—ଗ୍ରା. ବି. ହରଦ୍ୱାରଠାରୁ ବଦରିକାଶ୍ରମକୁ ଯିବା ପଥରେ ଗଙ୍ଗାନଦୀ ଉପରେ ଥିବା ଶିକୁଳିର ଦୋଲାୟମାନ ପୋଲ ।

ଲଛମା—ଗ୍ରା.ବି.ଫକୀରମୋହନ ସେନାପତିଙ୍କ କୃତ ଉପନ୍ୟାସବିଶେଷ ।

ଲଚ୍ଛ—ଗ୍ରା. ବି. (ସଂ-ଲକ୍ଷ୍ୟ) ତୁଳନା, ସାଦୃଶ୍ୟ, ନମୁନା, ବଳଦଆଦିଙ୍କ ଦେହରେ ତପ୍ତ ଲୌହଶଳାକାର ଦାଗଦେବା, ବନ୍ଧୁକ ମାରିବା, ଚୁଧ ଉପରେ ପଡ଼ିବା ଶର, (ଗ୍ରା.ବିଂ) ସଦୃଶ ।

ଲଛଲଛ—ଗ୍ରା.ବି.ଲଛିବା କର୍ମ, ଲଛିବାକ୍ରିୟା ।

ଲଛିବା—ଗ୍ରା.କ୍ରି. ତୁଳନାକରିବା, ଉପଲକ୍ଷ୍ୟଦେବା, ଅନୁମାନକରିବା ।

ଲଜକାରିକା—ସ୍ତ୍ରୀ.ବି. ଲଜକୁଳୀ ଲତା ।

ଲଜ(ଜ୍ଜ)ତ୍—ଯା. ବିଂ. ସୁସ୍ୱାଦୁ, ମୁଖରୋଚକ, ରସଯୁକ୍ତ, ଅଠାଳିଆ, ଆର୍ଦ୍ର, (ସ୍ତ୍ରୀ.ବି)ସୁସ୍ୱାଦ, ଝୋଠା, ଆର୍ଦ୍ରତା,ରସ ।

ଲଜ୍ଜକା—ସ୍ତ୍ରୀ.ବି. ବନକାର୍ପାସୀ, ବ୍ରାହ୍ମଣଶ୍ରେଣୀବିଶେଷ ।

ଲଜ୍ଜମାନ—ପୁଂ. ବିଂ. (ଲଜ୍ଜ+କ.ଆନ) ଲଜ୍ଜାଶୀଳ, ଲାଜୁକ, ଲଜ୍ଜାଯୁକ୍ତ, (ସ୍ତ୍ରୀ) ଲଜ୍ଜମାନା ।

ଲଜ୍ଜରୀ—ସ୍ତ୍ରୀ. ବି. ଲାଜକୁଳୀ ।

ଲଜ୍ଜା—ବି. (ଲସ୍ଜ୍+ଭା.ଅ+ଆ)ହୃଦୟସ୍ଥ କୋମଳ ବୃତ୍ତିବିଶେଷ, ଯେଉଁ ବୃତ୍ତି ଯୋଗୁଁ ଅନ୍ୟର ସମକ୍ଷରେ ବା ଜ୍ଞାତସାରରେ କେତେକ କାର୍ଯ୍ୟ କରିବାକୁ ମନରେ ସଙ୍କୋଚ ଉପସ୍ଥିତ ହୁଏ, ବ୍ରୀଡ଼ା, ଶରମ, ଅନୁଚିତ କାର୍ଯ୍ୟଜନିତ ଅନ୍ତରରେ ସଙ୍କୋଚବୋଧ, ଲଜ୍ଜାଳୁଲତା ।

ଲଜ୍ଜାକର—ବି.ବିଂ.ଲଜ୍ଜାଜନକ ଦେଖ ।

ଲଜ୍ଜାକୁଳ—ପୁଂ. ବିଂ. (୩ତତ୍) ଲଜ୍ଜିତ, ଲାଜକୁଣ, (ସ୍ତ୍ରୀ) ଲଜ୍ଜାକୁଳା ।

ଲଜ୍ଜାକୁଳା—ସ୍ତ୍ରୀ. ବି. ଲାଜକୁଳି ଲତା ।

ଲଜ୍ଜାଜନକ—ବିଂ.(ଲଜ୍ଜା+ଜନକ)ଲଜ୍ଜା ଉତ୍ପାଦକ, ଲଜ୍ଜାକର ।

ଲଜ୍ଜାଜାତ—ବିଂ(୩ତତ୍)ଲଜ୍ଜାରୁ ଜାତ ।

ଲଜ୍ଜାତ୍ୟାଗ—ବି. (୬ତତ୍) ମନରୁ ଲଜ୍ଜା ଭାବକୁ ଛାଡ଼ିବା ।

ଲଜ୍ଜାତ୍ୟାଗୀ—ପୁଂ. ବିଂ. (ଲଜ୍ଜା+ତ୍ୟଜ୍ କ.ଇନ୍) ନିର୍ଲଜ୍ଜ, ତ୍ୟକ୍ତଲଜ୍ଜ, (ସ୍ତ୍ରୀ) ଲଜ୍ଜାତ୍ୟାଗିନୀ ।

ଲଜ୍ଜାଦାତା—ପୁଂ. ବିଂ. ଯେଉଁ ବ୍ୟକ୍ତି ଅନ୍ୟକୁ ଲଜ୍ଜିତ କରାଏ, (ସ୍ତ୍ରୀ)ଦାତ୍ରୀ ।

ଲଜ୍ଜାଦୂରକରିବା—ଗ୍ରା.କ୍ରି. (ନିଜେ)ଲଜ୍ଜା ତ୍ୟାଗ କରିବା, (ଅନ୍ୟର)ଲଜ୍ଜା ନିବାରଣ କରିବା ।

ଲଜ୍ଜାଦେବା—ଗ୍ରା. କ୍ରି. ଅନ୍ୟ ବ୍ୟକ୍ତିକୁ ଲୋକ ସମାଜରେ ଲଜ୍ଜିତ କରାଇବା ।

ଲଜ୍ଜାଧର୍ମ—ବି. (ରୂପକ) ଲଜ୍ଜାଶୀଳତା, ଲଜ୍ଜାଯୁକ୍ତ ସ୍ୱଭାବ ।

ଲଜ୍ଜାଧ୍ୱଂସ—ବି. (୬ତତ୍) ମନରୁ ଲଜ୍ଜାରୂପ ଭାବର ସମ୍ପୂର୍ଣ୍ଣ ବିନାଶ ।

ଲଜ୍ଜାନତ(ମ୍ର)—ବିଂ(୩ତତ୍)ଲଜ୍ଜା ଯୋଗୁଁ ତଳକୁ ହୋଇଥିବା (ମୁଣ୍ଡ ବା ମୁଖ) ।

ଲଜ୍ଜାନିବାରକ—ପୁଂ.ବିଂ. ଯେ ବା ଯାହା ମନୁଷ୍ୟକୁ ଲଜ୍ଜାରୁ ରକ୍ଷାକରେ, (ସ୍ତ୍ରୀ) ନିବାରିକା ।

ଲଜ୍ଜାନିବାରଣ—ବି. (୬ତତ୍) ଲଜ୍ଜାରୁ ମନୁଷ୍ୟକୁ ରକ୍ଷା କରିବା,(ବିଂ. ଲଜ୍ଜା+ନି+ବୃ+ଣିଚ୍+କ.ଅନ) ଲଜ୍ଜା ନିବାରକ ଦେଖ, (ଗ୍ରା.ବି) ତନ୍ତ୍ର ଜାତିର ଉପାଧିବିଶେଷ ।

ଲଜ୍ଜାନ୍ୱିତ—ବିଂ. (୩ତତ୍) ଲଜ୍ଜାଯୁକ୍ତ, ଲଜ୍ଜିତ, (ସ୍ତ୍ରୀ) ଲଜ୍ଜାନ୍ୱିତା ।

ଲଜ୍ଜାପାଇବା—ଗ୍ରା. କ୍ରି. ଲଜ୍ଜିତ ହେବା, ଅପମାନିତ ହେବା ।

ଲଜ୍ଜାପ୍ରଦ—ପୁଂ.ବିଂ. (ଲଜ୍ଜା+ପ୍ର+ଦା+କ.ଅ)ଲଜ୍ଜାଦାନକାରୀ, ଲଜ୍ଜାଜନକ, (ସ୍ତ୍ରୀ) ଲଜ୍ଜାପ୍ରଦା ।

ଲଜ୍ଜାଭ୍ରମ—ବି. ଲଜ୍ଜା ଓ ସମ୍ମାନ, ଲଜ୍ଜାସମ୍ଭ୍ରମ ।

ଲଜ୍ଜାରହିତ—ବିଂ. (୫ତତ୍) ଲଜ୍ଜାଶୂନ୍ୟ ଦେଖ ।

ଲଜ୍ଜାଳୁ—ବିଂ. (ଲଜ୍ଜା+ଆଳୁ)ଲଜ୍ଜାଶୀଳ ଦେଖ, (ବି) ଲାଜକୁଳୀ ଲତା ।

ଲଜ୍ଜାବତୀ—ସ୍ତ୍ରୀ. ବି. ଲଜ୍ଜାଳୁ ଦେଖ ।

ଲଜ୍ଜାବନତ—ବିଂ.(୩ତତ୍) ଲଜ୍ଜା ହେତୁ ନତ ।

ଲଜ୍ଜାବନତମୁଖ—ପୁଂ.ବିଂ (ବ.ବ୍ରୀ)ଲଜ୍ଜା ଯୋଗୁଁ ଅଧୋମୁଖ ।

ଲଜ୍ଜାବନ୍ତ—ଗ୍ରା.ପୁଂ.ବିଂ.ଲଜ୍ଜାଶୀଳ ।

ଲଜ୍ଜାବହ—ବିଂ. (ଲଜ୍ଜା+ଆବହ) ଲଜ୍ଜାକର ଦେଖ ।

ଲଜ୍ଜାବାନ୍—ପୁଂ. ବିଂ.(ଲଜ୍ଜା+ବତ୍)ଲଜ୍ଜାଯୁକ୍ତ, ଲଜ୍ଜାଶୀଳ, (ସ୍ତ୍ରୀ) ଲଜ୍ଜାବତୀ ।

ଲଜ୍ଜାଶରମ—ଗ୍ରା. ବି. ଲଜ୍ଜା ।

ଲଜ୍ଜାଶୀଳ—ପୁଂ.ବିଂ.(ବ.ବ୍ରୀ)ଲଜ୍ଜାଯୁକ୍ତ, ଯେ ଲାଜକରେ, (ସ୍ତ୍ରୀ) ଲଜ୍ଜାଶୀଳା ।

ଲଜ୍ଜାଶୀଳତା—ସ୍ତ୍ରୀ.ବି. (ଲଜ୍ଜାଶୀଳ+ତା) ଲଜ୍ଜାଳୁତା, ଲାଜୁକଭାବ ।

ଲଜ୍ଜାଶୂନ୍ୟ—ପୁଂ. ବିଂ. (୩ତତ୍) ନିର୍ଲଜ୍ଜ, ଅଲାଜୁକ ।

ଲଜ୍ଜାସମ୍ଭ୍ରମ—ବି. ଲଜ୍ଜା ଓ ସମ୍ମାନ ।

ଲଜ୍ଜାସ୍ପର୍ଶ—ବି. (ବ.ବ୍ରୀ) ଲଜ୍ଜାଳୁ ଦେଖ ।

ଲଜ୍ଜାହୀନ—ବିଂ. (୩ତତ୍) ଲଜ୍ଜାଶୂନ୍ୟ, ବେହିଆ, ନିର୍ଲଜ୍ଜ, (ସ୍ତ୍ରୀ) ଲଜ୍ଜାହୀନା ।

ଲଜ୍ଜିତ—କ୍ରି.ବିଂ.(ଲଜ୍ଜା+ଇତ)ଲଜ୍ଜାଯୁକ୍ତ, ଲଜ୍ଜାଶୀଳ, (ସ୍ତ୍ରୀ) ଲଜ୍ଜିତା ।

ଲଜ୍ଜିତଭାବ—ବି. ଗ୍ରହମାନଙ୍କର ଭାବ ବା ଅବସ୍ଥାବିଶେଷ ।

ଲଜ୍ଜିରୀ—ସ୍ତ୍ରୀ.ବି.ଲଜ୍ଜାଳୁକା,ଲାଜକୁଳି ଲତା ।

ଲଜ୍ଜ୍ୟା—ସ୍ତ୍ରୀ.ବି. (ଲସ୍ଜ୍+ଯ+ଆ)ଲଜ୍ଜା ଦେଖ ।

ଲ(ଲା)ଞ୍ଚ—ସ୍ତ୍ରୀ.ବି. ଉପହାର, ଉତ୍କୋଚ ।

ଲ(ଲା)ଞ୍ଜ—ବି. (ଲନ୍ଜ୍+ଅ)ସ୍ତ୍ରୀ, ଲକ୍ଷ୍ମୀ, ପାଦ, ଚରଣ, ଲଞ୍ଜ, ପୁଚ୍ଛ, ଅନିଦ୍ରା, ଲମ୍ପଟ୍ୟ, ସ୍ରୋତଃ, କଚ୍ଛା,କଚ୍ଛ ।

ଲଞ୍ଜା—ସ୍ତ୍ରୀ.ବି. (ଲଞ୍ଜ+ଆ)ଲାଙ୍ଗୁଳ, ପୁଚ୍ଛ, ସ୍ରୋତଃ, ଲକ୍ଷ୍ମୀ, ନିଦ୍ରା, କୁଳଟା ସ୍ତ୍ରୀ, (ଗ୍ରା.ବି) ଜନ୍ମତାର, ଧୂମକେତୁ ।

ଲଞ୍ଜାକୁକୁଡ଼ା—ଗ୍ରା.ବି.ଆମେରିକାଦେଶୀୟ ବଡ଼ପୁଚ୍ଛଯୁକ୍ତ ଏକପ୍ରକାର କୁକୁଡ଼ା ।

ଲଞ୍ଜାତାରା—ଗ୍ରା.ବି. ଧୂମକେତୁ ।

ଲଞ୍ଜିକା—ସ୍ତ୍ରୀ.ବି. (ଲନ୍‌ଜ୍+ଅକ+ଆ) ଗଣିକା,ବେଶ୍ୟା ।

ଲଟ୍—ଗ୍ରା.ବି.ଲଟ୍ ଦେଖ,(ପ୍ରା.ଯାଜପୁର.ବି) ଥର ।

ଲଟ୍‌ପଟ୍—ଗ୍ରା. ଅବ୍ୟ. ଅତି କଷ୍ଟରେ, ଗୋଲମାଲ ।

ଲଟ୍‌ପଟି—ପ୍ରା.(ସମ୍ବ)ବି. ଗାମୁଛା ।

ଲଟ—ବି. (ଲଟ୍+ଅ) ଅପରାଧ,ଅନିଷ୍ଟ, ଅନର୍ଥ, ଅନବହିତ ହୋଇ କଥା କହିବା, ପ୍ରମାଦ ବଚନ, ଦୋଷ, ପାଗଳ ବ୍ୟକ୍ତି, ନିର୍ବୋଧ ବ୍ୟକ୍ତି, ଚୌର,(ବିଂ)ଲମ୍ପଟ, (ଗ୍ରା.ବି)ଦୁର୍ଜନ ବ୍ୟକ୍ତି,ଅଡ଼ୁଆ,କୌତୁକ, ହଟ, ସଂସାର ଲୀଳା ।

ଲଟକ—ପୁଂ.ବି. (ଲଟ୍+କ.ଅକ)ଦୁର୍ଜନ ବ୍ୟକ୍ତି, ଅସାଧୁ ବ୍ୟକ୍ତି ।

ଲଟକଣ(ନ)—ଗ୍ରା.ବି. ଶୁକଜାତୀୟ ପକ୍ଷୀବିଶେଷ, ବିମାନରେ ଝୁଲୁଥିବା କାରୁକାର୍ଯ୍ୟ କାଷ୍ଠଖଣ୍ଡ, ଲୁଡ଼ୁକ ଝୁଲୁଥିବା ଅଳଙ୍କାର,ବୃକ୍ଷବିଶେଷ ।

ଲଟକା—ଗ୍ରା.ବି. ଝୁଲିବା,ଲଟକିବା କର୍ମ ବା ଭାବ ।

ଲଟକାଇବା—ଗ୍ରା.କ୍ରି. ଟାଙ୍ଗିବା, ଟଙ୍ଗାଇବା, ଉଲୁଗ୍ରଇବା, ଝୁଲାଇବା,ଓହଳାଇବା ।

ଲଟକିବା—ଗ୍ରା. କ୍ରି. କୌଣସି ଲତାପରି ତଳକୁ ଲମ୍ବିବା, ଓହଳିବା,ଝୁଲିବା ।

ଲଟଘଟ—ଗ୍ରା. ବି. କଳିକଜିଆ,ଅନର୍ଥ, ପାପପ୍ରଣୟ, ବ୍ୟଭିଚାର ।

ଲଟଘଟିଆ—ଗ୍ରା.ପୁଂ.ବିଂ. ବ୍ୟଭିଚାରସକ୍ତ ଅବୈଧ ପ୍ରଣୟଲିପ୍ତ ।

ଲଟପଟ—ଗ୍ରା.ବିଂ. ଧୂଳି ବା କାଦୁଅ ଆଦିରେ ବୋଳିହୋଇଥିବା,ସରସର, ଜଡ଼ିତ, ସଂଯୁକ୍ତ, ଗଡ଼େଇତଡ଼େଇ ହୋଇଥିବା ।

ଲଟପଟିଆ—ଗ୍ରା.ବିଂ.କାଦୁଅ,ଅଠା,ପଙ୍କ ବା ଧୂଳି ବୋଳିହୋଇଥିବା, ଗୋଳମାଳିଆ, ଅଠାଳିଆ, ନାଳୁଆ, ବହଳିଆ (ଦ୍ରବପଦାର୍ଥ) ।

ଲଟପର୍ଣ୍ଣ--କ୍ଳୀ.ବି.(ଲଟ + ପର୍ଣ୍ଣ) ଗୁଡ଼ତ୍ୱକ୍

ଲଟଭ—ପୁଂ.ବିଂ. ସୁନ୍ଦରବର୍ଣ୍ଣ, ସୁନ୍ଦର, (ସ୍ତ୍ରୀ) ଲଟଭା ।

ଲଟରପଟର—ଗ୍ରା.ବିଂ. ଗଡ଼େଇତଡ଼େଇ ହୋଇଥିବା, ସଂଯୁକ୍ତ, ଲଟପଟ, ଲଟପଟିଆ ଦେଖ ।

ଲଟରି—ଗ୍ରା.ବିଂ. ଗୋଲମାଲିଆ,ଜଟିଳ, ଅଡ଼ୁଆ ।

ଲଟରି—ଯା.ବି. ଯୁକ୍ତି, ଅଦୃଷ୍ଟ ଉପରେ ନିର୍ଭର କରି ପଣ ରଖି ଖେଳିବା ।

ଲଟରେ ପଡ଼ିବା—ଗ୍ରା. କ୍ରି. ଅଡ଼ୁଆରେ ପଶିବା, ଗୋଲମାଳରେ ପଡ଼ିବା ।

ଲଟଲଗାଇବା—ଗ୍ରା.କ୍ରି.କୌଣସି ଗୋଲମାଲ ଆରମ୍ଭ କରିବା, ସମ୍ପର୍କ ଆରମ୍ଭ କରିବା ।

ଲଟା--ବି.(ଲଟ୍+କ.ଅ+ଆ)ଚୂର୍ଣ୍ଣକୁନ୍ତଳ, କୁସୁମଫୁଲ, ଲଟାକରଞ୍ଜ, କାମୁକୀ(ସ୍ତ୍ରୀ), ଘରଚଟିଆ ପକ୍ଷୀ, (ଗ୍ରା.ବି)ଲତା,ନିବିଡ଼ ଜଙ୍ଗଲ, ଅନର୍ଥ, ଅନିଷ୍ଟ, ଅତ୍ୟାଚାର, ସଂଯୋଗକରଣ, (ଗ୍ରା.ବିଂ) ସଂଯୁକ୍ତ, (ପ୍ରା.ସମ୍ବ) ଘାସ ।

ଲଟାଆମ୍ବ—ଗ୍ରା. ବି. ଆମ୍ରବୃକ୍ଷବିଶେଷ, ଆମ୍ରଜାତୀୟ ଲଟାଳିଆ ଗୁଳ୍ମବିଶେଷ ।

ଲଟାଇବା—ଗ୍ରା.କ୍ରି. ( ଲତା ) ମାଡ଼ିବା, ବୃଦ୍ଧିପାଇଁ ବିସ୍ତୃତହେବା, ଦୁଇବସ୍ତୁକୁ ମିଳିତ କରାଇବା, ଯୁଟାଇବା,ବୋଝାଇ କରିବା, ବୋଝ ଲଦିବା ।

ଲଟାଏ—ପ୍ରା.(ଯାଜପୁର)ବି. ଏକ ବଡ଼ା ବନ୍ଧା ହୋଇଥିବା ।

ଲଟାକନିଅର—ଗ୍ରା.ବି. ଲଟାଳିଆ ଗୁଳ୍ମବିଶେଷ ।

ଲଟାକରଞ୍ଜ—ଗ୍ରା.ବି. ଲତାକରଞ୍ଜ, ବିରିପୋଲ, ଗିଲି ।

ଲଟାପତର—ଗ୍ରା.ବି. ଲଟାଆଦି ।

ଲଟାବଅଁର(ବରକୋଳି)—ଗ୍ରା.ବି.ଭୂଇଁ ବରକୋଳି ।

ଲଟାବେଏଁକୋଳି—ଗ୍ରା. ବି. ବହୁକଣ୍ଟକ, ବାଇଗଣଜାତୀୟ କଣ୍ଟକମୟ ଲତାବିଶେଷ ।

ଲଟାଲଟିହେବା—ଗ୍ରା. କ୍ରି. (ସଂ-ଲୁଣ୍ଠିତ) ପରସ୍ପର ଧରାଧରି ହୋଇ ଭୂମିଉପରେ ଲୋଟିଯିବା ।

ଲଟି—ଗ୍ରା.ବି. କ୍ଷୁଦ୍ର ଲତା, ଘଞ୍ଚଜଙ୍ଗଲ ।

ଲଟିକା—ଗ୍ରା. ବି. ଏକାଧିକ ଗର୍ଜନ, ବୋରେଇ ।

ଲଟିକାଲ—ଗ୍ରା.ବି. ନଡ଼ିଆ ।

ଲଟିପତ୍ର—ଗ୍ରା.ବି. ଲତାପତ୍ର ।

ଲଟୁ—ଗ୍ରା.ବି.କ୍ରୀଡ଼ନକବିଶେଷ,ଖେଳନା, କନ୍ଦୁକ, ଖେଳିବାର ପେଣ୍ଡୁ ।

ଲଟୁଆ--ଗ୍ରା.ପୁଂ.ବିଂ.ଲମ୍ପଟ, ଅନର୍ଥକାରୀ ।

ଲଟୁକ—ବି. ଲେଉଟିଆଶାଗ ।

ଲଟୁଚୋରି—ଗ୍ରା. ବି. ହରିବଂଶନାମକ ଶ୍ରୀକୃଷ୍ଣ ଲୀଳାତ୍ମକ ଗ୍ରନ୍ଥରେ ବର୍ଣ୍ଣିତ ଶ୍ରୀକୃଷ୍ଣଙ୍କର ଦୁଇଟି ପେଣ୍ଡୁକୁ ରାଧା ଚୋରାଇ ନେଇଥିବା ଅଭିଯୋଗରେ ଶ୍ରୀକୃଷ୍ଣ କୌତୁକ କରିଥିବା ଘଟଣା ଓ ତଦବଲମ୍ବନରେ ଲିଖିତ ଓଡ଼ିଆକବି ଗୋପୀକୃଷ୍ଣ ଦାସଙ୍କର ପଦ୍ୟଗ୍ରନ୍ଥ ।

ଲଟେଇ—ଗ୍ରା.ବି.ସୂତା ଗୁଡ଼ାଇବା ଯନ୍ତ୍ରବିଶେଷ, ନଟେଇ ।

ଲଟେଇହେବା—ଗ୍ରା.କ୍ରି. ଅନ୍ୟଉପରେ ଲଦିହେବା ।

ଲଟୋରା—ଗ୍ରା. ବି. ଶାଖାଶ୍ରୟୀ ବର୍ଗର ପକ୍ଷୀବିଶେଷ ।

ଲଟ୍ଟ—ପୁଂ.ବି. ଲଟକ ଦେଖ ।

ଲଟ୍ୱ—ପୁଂ.ବି.(ଲଟ୍+ବ) ଲମ୍ପଟ ବ୍ୟକ୍ତି, ବର୍ଣ୍ଣସଙ୍କରଜାତିବିଶେଷ, ରାଗବିଶେଷ, ତୁରଙ୍ଗମ, ଘୋଡ଼ା, ଲଟୁ ( ପୁଂ.ବିଂ ) ଦୁଷ୍ଟରିତ୍ର (ବ୍ୟକ୍ତି), (ସ୍ତ୍ରୀ) ଲଟ୍ୱା ।

ଲଟ୍ୱକା—ସ୍ତ୍ରୀ.ବି. ଲଟ୍ୱା ଦେଖ ।

ଲଟ୍ୱା—ସ୍ତ୍ରୀ.ବି.(ଲଟ୍ୱ+ଆ)କରଞ୍ଜବିଶେଷ, ବାଦ୍ୟବିଶେଷ, ଘରଚଟିଆ ଚଢ଼େଇ, କୁସୁମଫୁଲ, ମିଷ୍ଟ ଖାଦ୍ୟଦ୍ରବ୍ୟବିଶେଷ, ଭ୍ରମର, ଶିଳୀ, ତୂଳିକା, ଦ୍ୟୂତ, ଚୂର୍ଣ୍ଣକୁନ୍ତଳ, ଦୁଷ୍ଟରିତ୍ରା ସ୍ତ୍ରୀ, (ସ୍ତ୍ରୀ.ବିଂ) ଦୁଷ୍ଟରିତ୍ରା ।

ଲଠ୍‌ଲଠ୍—ଗ୍ରା. ଅବ୍ୟ. ହଠାତ୍ ଭୂମିରେ ଲମ୍ବଭାବରେ ଶୋଇବା ବା ପଡ଼ିବା ପ୍ରକାରରେ ।

ଲଠା—ଗ୍ରା.ବି. (ସଂ-ଯଷ୍ଟି) ଲମ୍ବଯଷ୍ଟି,ଜମି ମାପ କରିବାର ପଦିକା, ଲଠା,ଅଠା ।

ଲଡ଼୍କା—ଯା.ବି. ପୁତ୍ର,ସନ୍ତାନ,(ଗ୍ରା.ବିଂ) ଲଡ଼ଲଡ଼ ହେଉଥିବା, ଶ୍ଳଥ ଭାବରେ ଗାତରେ ବସାଯାଇଥିବା ବା ଝୁଲୁଥିବା ।

ଲଡ଼୍କପଡ଼ିବା—ଗ୍ରା. କ୍ରି. ଓହ୍ଳାଇବା,ଶ୍ଳଥ-ହେବା, ନଇଁପଡ଼ିବା ।

ଲଡ଼ନ—କ୍ଲୀ. ବି. (ଲଡ଼୍+ଅନ)ସ୍ପନ୍ଦନ, ଦୋଳନ ।

ଲଡ଼ବଡ଼—ଗ୍ରା. ଅ. ନଡ଼ବଡ଼ ଦେଖ ।

ଲଡ଼ବଡ଼—ଗ୍ରା. ବିଂ. ନଡ଼ବଡ଼ ଦେଖ ।

ଲଡ଼ଲଡ଼—ଗ୍ରା. ଅ. ନଡ଼ନଡ଼ ଦେଖ ।

ଲଡ଼ହ—ତ୍ରି.ବିଂ. (ଲଡ଼୍+ଅହ୍+ଅ) ମନୋଜ୍ଞ, ସୁନ୍ଦର, ଲୋଲ ।

ଲଢ଼ା—ଗ୍ରା.ବିଂ.ଲଢ଼ିବାକର୍ମ,ଯୁଦ୍ଧକାର୍ଯ୍ୟ, କମ୍ପନ ।

ଲଢ଼ା(ଢ଼େ)ଇ—ଗ୍ରା. ବି.ଯୁଦ୍ଧ, ଲଢ଼ାଇ ।

ଲଢ଼ାଲଢ଼—ଗ୍ରା. ବି. ପରସ୍ପର ଯୁଦ୍ଧ ।

ଲଢ଼ିତ—ବିଂ. ଇତସ୍ତତଃ ଚଳୁଥିବା, ହଲୁଥିବା ।

ଲଡୁ—ଗ୍ରା.ବି ମିଷ୍ଟାନ୍ନ ଗୋଲକବିଶେଷ ।

ଲଡୁବାବା—ଗ୍ରା. ବି. ନୂଆଗଡ଼ ରାଜ୍ୟର କୁସୁମୀ ନଦୀକୂଳ ଓ ଭଣ୍ଡାର ପର୍ବତ ନାସିରେ ପ୍ରତିଷ୍ଠିତ ଛତ୍ରାକାର ଶିବଲିଙ୍ଗ ।

ଲଡ୍ଡୁ—ପୁଂ. ବିଂ. ଲଟକ ଦେଖ ।

ଲଡ୍ଡୁ(କ)—କ୍ଲୀ.ବି. (ଲଡ଼୍+ଡୁ) ମିଷ୍ଟାନ୍ନ ଗୋଲକ, ମୋଦକ, ମିଠେଇ ।

ଲଢ଼ା—ଗ୍ରା. ବି. ଲଢ଼ିବା, (ଗ୍ରା.ବିଂ) ଯେ ଲଢ଼େ, ଯୁଦ୍ଧକାରୀ ।

ଲଢ଼ା(ଢ଼େ)ଇ—ଗ୍ରା. ବି. ଯୁଦ୍ଧ, ରଣ, ସଂଘର୍ଷ, ପରସ୍ପର ପ୍ରତିଘାତ,ବାକ୍ୟୁଦ୍ଧ ।

ଲଢ଼ା(ଢ଼େ)ଇବା—ଗ୍ରା.କ୍ରି.ଲଢ଼ିବାକ୍ରିୟାର ଣିଜନ୍ତରୂପ,ଦୁଇଜଣଙ୍କୁ ପ୍ରତିଦ୍ୱନ୍ଦ୍ୱୀରୂପେ ଠିଆ କରାଇବା, ଲଢ଼ାଇରେ ପ୍ରବୃତ୍ତ କରାଇବା ।

ଲଢ଼ାଲଢ଼ି—ଗ୍ରା. ବି. ପରସ୍ପର ସଂଘର୍ଷ, ପରସ୍ପର ଯୁଦ୍ଧ,ପରସ୍ପର ଘାତପ୍ରତିଘାତ ।

ଲଢ଼ିବା—ଗ୍ରା. କ୍ରି. ଯୁଦ୍ଧକରିବା, ଶତ୍ରୁକୁ ଆଘାତ କରିବା, ବାକ୍ୟୁଦ୍ଧ କରିବା ।

ଲଢ଼େଇପାଲି—ଗ୍ରା.ବି. ବାଗୀପାଲି,ଯେଉଁ ପାଲିରେ ଏକାଧିକ ପାଲିବାଲା ଦଳ ଆପଣା ଆପଣାର ଯୋଗ୍ୟତା ଦେଖାନ୍ତି

ଲଣ୍ଠ(ଣ୍ଠ)ଣ(ନ)—ଯା. ବି. କାଚଆବରଣ ବେଷ୍ଟିତ ପ୍ରଦୀପ (ଯାହାକୁ ହାତରେ ଝୁଲାଇକରି ନିଆଯାଇପାରେ) ।

ଲଣ୍ଠଣଫିତା—ଗ୍ରା.ବି.ଲଣ୍ଠନରେ ଜାଳିବାର ବତି ।

ଲଣ୍ଡ—ସ୍ତ୍ରୀ. ବି. (ଲନ୍ଡ଼୍+ଅ) କଠିନ ଲମ୍ବାକୃତ ବିଷ୍ଠା,ଉତ୍କ୍ଷେପଣ,ଇତସ୍ତତ ଫୋପାଡ଼ିବା ।

ଲଣ୍ଡନ୍—ଯା. ବି. ଇଂରାଜମାନଙ୍କ ଜନ୍ମ-ଭୂମି, ଇଂଲଣ୍ଡଦେଶର ପ୍ରଧାନ ନଗର, ଟ୍ଲଣ୍ଡ ।

ଲଣ୍ଡଭଣ୍ଡ—ଗ୍ରା. ବିଂ. ଉଚ୍ଛିନ୍ନ, ପ୍ରଚ୍ଛିନ୍ନ, ବ୍ୟତବ୍ୟସ୍ତ, ଲେଉଟପାଉଟ,ତରତର, ଚପଳ, ଅସ୍ଥିର, ଅସ୍ଥିରୀକୃତ, (ବି)ହରବର, ଅସ୍ଥିରତା,ଅତ୍ୟାଗ୍ରହ,ହେଲେ ମେଲେ ।

ଲଣ୍ଡରଭଣ୍ଡର—ଗ୍ରା. ବି.ଓବିଂ. ଲଣ୍ଡଭଣ୍ଡ ଦେଖ ।

ଲଣ୍ଡସଣ୍ଡ—ଗ୍ରା.ବିଂ.ଲଣ୍ଡଭଣ୍ଡ ଦେଖ,(ଅ) ସଟାବଟା,ଯାହାତାହା,ଅନୁପଯୁକ୍ତଭାବରେ

ଲଣ୍ଡା—ଗ୍ରା. ବିଂ. କେଶଶୂନ୍ୟ (ମସ୍ତକ), ଶାଖାଶୂନ୍ୟ, ମୁଣ୍ଡିତ, (ବି) ମୁସଲମାନ, (ସଂ-ବି.ଲଣ୍ଡ+ମି.ଅ+ଆ)ଗୁହ୍ୟଲେଣ୍ଡ ।

ଲଣ୍ଡାବାଗୁଲ—ଗ୍ରା.ବି. ବଣତୁଳସୀବିଶେଷ

ଲଣ୍ଡାମୁଣ୍ଡ—ଗ୍ରା. ବି. ମୁଣ୍ଡିତ ମସ୍ତକ ।

ଲଣ୍ଡି—ଗ୍ରା. ବି. କଠିନ ବିଷ୍ଠାର କ୍ଷୁଦ୍ର-କ୍ଷୁଦ୍ର ଗୋଲକ ।

ଲଣ୍ଡିତ—ବିଂ. ମୁଣ୍ଡିତ ।

ଲଣ୍ଡିତମୁଣ୍ଡ—ଗ୍ରା.ବି.ମୁଣ୍ଡିତଶିଖ ମସ୍ତକ ।

ଲଣ୍ଡିତମୁଣ୍ଡା—ଗ୍ରା.ପୁଂ.ବିଂ. ମୁଣ୍ଡିତଶିଖା ।

ଲଣ୍ଡୁଆ—ପ୍ରା. (ସମ୍ବ) ବିଂ. ଅକର୍ମଣ୍ୟ, ଅକାମିକା, (ଗ୍ରା.ବି) ଆବର୍ଜନା ।

ଲଣ୍ଡ୍ର—ବି. ଲଣ୍ଡନ୍ ଦେଖ ।

ଲଣ୍ଡ୍ରଜ—ବିଂ. ( ଲଣ୍ଡ୍ର+ଜନ୍+ଅ ) ଲଣ୍ଡ୍ରନ ଦେଶଜାତ, (ସ୍ତ୍ରୀ) ଲଣ୍ଡ୍ରଜା, (ବି) ଇଂରାଜ ଜାତି ।

ଲତ୍ତ—ପ୍ରା. (ସମ୍ବ) ବି. ଗତି, (ଗ୍ରା.ବି) ମନ୍ଦ ଅଭ୍ୟାସ ।

ଲତପ(ଲ)ତ—ଗ୍ରା. ବିଂ. କଅଁଳ,ଯାହା ଚିପିଦେଲେ ନଇଁ ଯାଏ, ଲୁଗୁପୁଗୁ (ପାଚିଲା ଫଳ), ଛୁଆରେ ଅଛି ।

ଲତପ(ଲ)ତିଆ—ଗ୍ରା.ବିଂ. ଲତରା,କଅଁ-ଳିଆ, ପତଳା, ଲହକିଆ ।

ଲତା—ସ୍ତ୍ରୀ. ବି. ( ଲତ୍+କ.ଅ+ଆ ) ଶାଖାବିଶିଷ୍ଟ ମୃଦୁବଲ୍ଲୀ, ଯେଉଁ ଉଦ୍ଭିଦ ସିଧା ଠିଆହୋଇ ନ ପାରି ଭୂମିରେ ଅନ୍ୟ ଆଶ୍ରୟ ଅବଲମ୍ବନକରି ମାଡ଼େ,କୋମଳ କାଣ୍ଡ ବା ଶାଖା, ( ସ୍ତ୍ରୀ ) ସୁନ୍ଦରୀ ସ୍ତ୍ରୀ, ଦ୍ରାକ୍ଷାଲତା,ପିଡ଼ଙ୍ଗଶାଗ,ଦୁବ,କେଉ-ଟିଆ ମୁଥାଘାସ, ଫୁଟିଫୁଟିକା,ଜ୍ୟୋତି-ଷ୍ମତୀ ଲତା, ପ୍ରିୟଙ୍ଗୁ,ଶୁଆଁଲଇ,ଅନନ୍ତ-ମୂଳ, ଚେରମାରୁ, ତୃଣଧାନ୍ୟବିଶେଷ, ଶୁଆଁ, କାଙ୍ଗୁ, ମାଧବୀଲତା, ଜାତୀଫୁଲ ଗଛ, ସୁକୁମାରୀ ସ୍ତ୍ରୀ,ଗୁରୁଜନର ବନ୍ଧଭାବ, ମୁକ୍ତାମାଳା,ଏକପ୍ରକାର ସୁବାସିତ ଲତା-କସ୍ତୂରିକା, ସରଳରେଖା, ଅପ୍ସରା-ବିଶେଷ,ଛନ୍ଦୋବିଶେଷ,ଶାଖା,(ଗ୍ରା.ବି) ରକ୍ତବିବାହ ସମ୍ପର୍କଜନିତ ବନ୍ଧୁତା ।

ଲତାକଣ୍ଟକୀ—ବି. ଫୁଟିଫୁଟିକା ।

ଲତାକଦମ୍ବ—ବି.ଲତାବିଶେଷ,କେଶର-ଯୁକ୍ତ ଫଳଧାରୀ କଣ୍ଟକୀ ଲତା ।

ଲତାକର—ପୁଂ. ବି. ନର୍ତ୍ତକୀର ହସ୍ତ-ବିନ୍ୟାସବିଶେଷ ।

ଲତାକରଞ୍ଜ—ପୁଂ. ବି. କରଞ୍ଜବିଶେଷ, ବରପୋଲ, ଗିଲ ।

ଲତାକସ୍ତୂରିକା—ସ୍ତ୍ରୀ. ବି. ଲତାକସ୍ତୂରୀ ଦେଖ ।

ଲତାକସ୍ତୂରୀ—ସ୍ତ୍ରୀ. ବି. ଜବାନ୍ଦ ବର୍ଗର ପ୍ରାୟ ଦୁଇହାତଉଚ୍ଚ ଶାକଗୁଳ୍ମବିଶେଷ ।

ଲତାକୁଞ୍ଜ—ବି. (କ.ଧା) ଲତାବେଷ୍ଟିତ କୁଞ୍ଜବନ ।

ଲତାଗଣ—ବି.(ଷତତ୍ପୁ)ବୈଦ୍ୟକମତରେ ଲଟାଇବା ଉଦ୍ଭିଦ୍‌ବର୍ଗ ।

ଲତାଗହଳ—ଗ୍ରା. ବିଂ. ଯେଉଁ ସ୍ଥାନରେ ବହୁତ ଲତାଅଛି, ଲତାପୂର୍ଣ୍ଣ(ସ୍ଥଳ) ।

ଲତାଗୁଳ୍ମ—ବି.(ଲତା+ଗୁଳ୍ମ)ଲତାଳିଆ

କ୍ଷୁଦ୍ର ଗଛ, ଲତା ଓ ଗୁଳ୍ମ ।
ଲତାଗୃହ—ବି.(କ.ଧା) ଲତାଦ୍ୱାରା ପ୍ରସ୍ତୁତ ଗୃହ, କୁଞ୍ଜ ।
ଲତାଙ୍ଗୀ-ସ୍ତ୍ରୀ.ବି.କର୍କଟଶୃଙ୍ଗୀ,କକଡ଼ାଶୃଙ୍ଗୀ
ଲତାଜିହ୍ୱ—ପୁଂ.ବି. (ବ.ବ୍ରୀ)ସର୍ପ,ସାପ ।
ଲତାଡ଼ମ୍ବିର—ଗ୍ରା.ବି.ଡ଼ମ୍ବିରବୃକ୍ଷବିଶେଷ ।
ଲତାତରୁ—ପୁଂ. ବି. ( ଲତା+ତରୁ ) ନାରଙ୍ଗବୃକ୍ଷ,ତାଳବୃକ୍ଷ, ଶାଳବୃକ୍ଷ,ପୁଷ୍ପ-ଲତିକାବିଶେଷ, କମଳାଲେମ୍ବୁ ଗଛ ।
ଲତାତାଳ—ପୁଂ. ବି. ହିନ୍ତାଳବୃକ୍ଷ ।
ଲତାଦ୍ରୁମ—ପୁଂ. ବି. ( ଲତା + ଦ୍ରୁମ ) ଲତାତାଳ (ଅନ୍ତ ଡେଙ୍ଗାହେତୁ) ।
ଲତାନନ—ପୁଂ.ବି.ନନ୍ଦିକେଶ୍ୱରଙ୍କର ହସ୍ତବିନ୍ୟାସ ବିଶେଷ ।
ଲତାନ୍ତ—କ୍ଲୀ. ବି. ପୁଷ୍ପ ।
ଲତାପନସ—ପୁଂ. ବି. (ଲତା+ପନସ) ଫଳଲତାବିଶେଷ, ତରଭୁଜ ।
ଲତାପର୍ଣ୍ଣ—ପୁଂ. ବି. ବିଷ୍ଣୁ ।
ଲତାପର୍ଣ୍ଣୀ—ସ୍ତ୍ରୀ. ବି. ତାଳମୂଳୀ, ମଧୁ-ରିକା, ପାନମହୁରୀ ।
ଲତାପାଶ—ବି. (ଲତା+ପାଶ) ଲତା-ସମୂହ, ବୃକ୍ଷାଦିକୁ ଛନ୍ଦିବା ଲତାମାନ ।
ଲତାପୁଟ୍କୀ—ସ୍ତ୍ରୀ. ବି. (ଲତା+ପୁଟ୍କୀ) ସମୁଦ୍ରାନ୍ତା, ପିଡ଼ଙ୍ଗଶାଗ ।
ଲତାପ୍ରତାନ—ବି. (ଷତତ୍ପୁ) ଲତାରୁ ବାହାରିବା ତନ୍ତୁ,ଦଉଡ଼ି ରୂପେ ବ୍ୟବ-ହୃତ ଲତା, ଲଇ ।
ଲତାପ୍ରତାନିନୀ—ସ୍ତ୍ରୀ.ବି.ଶାଖାଯୁକ୍ତ ଲତା, ଗୁଳ୍ମିନୀ,ବହୁଶାଖା ଦ୍ୱାରା ବିସ୍ତୃତ ଲତା ।
ଲତାଫଳ—କ୍ଲୀ. ବି. ପଟୋଳ, ଲତାରୁ ଉତ୍ପନ୍ନ ଫଳ ।
ଲତାଭଦ୍ରା—ସ୍ତ୍ରୀ. ବି. ଭଦ୍ରାଳୀବୃକ୍ଷ ।
ଲତାଭବନ—କ୍ଲୀ.ବି(କ.ଧା) ଲତାଗୃହ, କୁଞ୍ଜ ।
ଲତାମଣି—ବି.(କ.ଧା)ପ୍ରବାଳ,ପୋହଳା ।
ଲତାମଣ୍ଡପ—ବି.(କ.ଧା)ଲତାଗୃହ,କୁଞ୍ଜ ।
ଲତାମରୁତ୍—ସ୍ତ୍ରୀ.ବି.ପୃକ୍କା,ପିଡ଼ଙ୍ଗଶାଗ ।
ଲତାମାଧବୀ—ସ୍ତ୍ରୀ. ବି. ମାଧବୀଲତା ।
ଲତାମୃଗ—ବି. ଶାଖାମୃଗ, ବାନର ।

ଲତାଯଷ୍ଟି—ସ୍ତ୍ରୀ. ବି. ମଞ୍ଜିଷ୍ଠା ।
ଲତାଯାବକ—ପୁଂ.ବି.ପ୍ରବାଳ,ପୋହଳା ।
ଲତାରସନ—ବି. (ବ.ବ୍ରୀ)ସର୍ପ, ସାପ ।
ଲତାର୍କ—ପୁଂ. ବି. (ଲତା+ଅର୍କ+ଅ) ହରିଦ୍ୱର୍ଣ୍ଣ ପଳାଣ୍ଡୁ ।
ଲତାଳକ—ପୁଂ. ବି. ( ଲତା+ଅଳକ; ବ.ବ୍ରୀ) ହସ୍ତୀ ।
ଲତାଳୟ—ବି (ଲତା+ଆଳୟ)ଲତା-ଗୃହ, କୁଞ୍ଜ ।
ଲତାଳିଆ—ଗ୍ରା.ବିଂ.ଲତାମୟ,ଲତାପରି
ଲତାବଳୟ—ପୁଂ. ବି. ଲତାଗୃହ ।
ଲତାବୃକ୍ଷ—ପୁଂ. ବି. ଶଙ୍ଖୀବୃକ୍ଷ, ଗୁଳ୍ମ, କୁନ୍ଦୁରୁଖୋଣ୍ଟି ଗୁଳ୍ମ ।
ଲତାବୃତ—ବିଂ. (୩ତତ୍ପୁ) ଲତାଦ୍ୱାରା ବେଷ୍ଟିତ ।
ଲତାବେଷ୍ଟ—ପୁଂ.ବି.ଆଲିଙ୍ଗନବିଶେଷ, ଦୃତୀୟ ରତିବନ୍ଧ, ପର୍ବତବିଶେଷ, ଦେଶବିଶେଷ ।
ଲତାବେଷ୍ଟନ-କ୍ଲୀ.ବି.ଲତାବେଷ୍ଟ ଦେଖ, ଭୁଜବଲ୍ଲୀ ଦ୍ୱାରା ବନ୍ଧନ ।
ଲତାବେଷ୍ଟିତ—ପୁଂ. ବି. ଲତାବେଷ୍ଟ ଦେଖ, (ବିଂ) ଲତା ଦ୍ୱାରା ବେଷ୍ଟିତ ।
ଲତାବେଷ୍ଟିତକ—ବି.ଲତାବେଷ୍ଟ ଦେଖ ।
ଲତାଶଙ୍ଖତରୁ—ପୁଂ.ବି.ଲତାଶାଳବୃକ୍ଷ ।
ଲତାଶଙ୍ଖ—ପୁଂ. ବି. ଶାଳବୃକ୍ଷ ।
ଲତାସାଧନ—କ୍ଲୀ.ବି.ତାନ୍ତ୍ରିକ ବୀରାଚାର ବା ବାମମାର୍ଗର ସାଧନାବିଶେଷ ।
ଲତାଆମ୍ବ—ଗ୍ରା. ବି. ଲତାପରି ମାଡ଼ିବା ଆମ୍ବବିଶେଷ ।
ଲତିକା—ସ୍ତ୍ରୀ.ବି.(ଲତା + କ.ଆ)ଲତା, ଲତାଳିଆଗଛ,ଦ୍ରାକ୍ଷାଲତା,ସ୍ତୋଟଲତା
ଲତୋଦ୍ଗମ—ବି.(ଲତା+ଉଦ୍ଗମ)ଅବ-ରୋହ ।
ଲଉଙ୍କ—ବି.(ଲତ୍+ମି.ଉକ)ଛୁଣ୍ଡାକନା ।
ଲତ୍ତା—ବି. (ଲତ+କ.ତ+ଆ) ଟିଟି-ପିଟି, କୃକଳାସ, ଏଣ୍ଡୁଅ, ଗୋଧିସାପ ।
ଲତ୍ତିକା—ବି.(ଲତ୍+ଇକ+ଆ) ଗୋଧି, ଏଣ୍ଡୁଅ, ଟିଟିପିଟି, କୃକଳାସ ।
ଲଥକର(କନ,କର)—ଗ୍ରା.କ୍ରି.ବିଂ. ଠିଆ

ହୋଇଥିବା ବ୍ୟକ୍ତି ହଠାତ୍ ପିଚ୍ଛମାଡ଼ ଭୂମିରେ ବସିଯିବା ପ୍ରକାରେ, ଭାରି କୋମଳ ପଦାର୍ଥ ପଡ଼ି ଭୂମିରେ ବସି-ଯିବା ପ୍ରକାରେ ।
ଲଥ୍ଲ(ଲ୍)ଥ୍—ଗ୍ରା. କ୍ରି. ବିଂ. ( ଅନେକ ବସ୍ତୁ ବା ବ୍ୟକ୍ତି)ଭୂମିରେ ହଠାତ୍ ବସି-ଯିବା ପ୍ରକାରେ ।
ଲଥ—ଗ୍ରା.ବି. ନଥ, ସ୍ତ୍ରୀମାନଙ୍କ ବାମ-ନାକ ପୁଡ଼ାରେ ପିନ୍ଧିବା ଚକ୍ରାକୃତ କାରୁକାର୍ଯ୍ୟବିଶିଷ୍ଟ ସ୍ୱର୍ଣ୍ଣବଳୟ ।
ଲଥା—ଗ୍ରା.ବି.ଉପକଥା, କଥାର ଲତା, ଶବ ଲୁଗାରେ ପଡ଼ିବା ତାଳି ।
ଲଦନ—ଗ୍ରା.ବି. ବୋଝ, ହାତୀ ଉପରେ ପକାଯିବା ବାଡ଼ ନ ଥିବା ଗଦି, ବଳ-ଦଙ୍କ ଉପରେ ପକାଯିବା ଥୋଇ ପଲାଣ, ଗୁଳର ଉପକରଣ, ବୋଝ ।
ଲଦ(ର)ବଦ(ର)—ଗ୍ରା. ବି. ଲୁଦୁ-ବୁଦୁ, (ପଣସ ଫଳଆଦି) ପାଚି ଲଇଁ ଯାଉଥିବା ଅବସ୍ଥା ।
ଲଦା—ଗ୍ରା. ବି. ଭାର, ନୌକା, ଯାନ ବାହାନାଦିରେ କୋଝ ଲଦିବା କର୍ମ, ଗୁଳଘରର ଗୁଳରୁ ନଡ଼ା ଉଡ଼ି ନ ଯିବା ପାଇଁ ପକାଯିବା ଲମ୍ବ କାଷ୍ଠ ଖଣ୍ଡମାନ ।
ଲଦାଲଦି—ଗ୍ରା.ବି.ଅନେକ ବସ୍ତୁ ଲଦିବା କର୍ମ ।
ଲଦି—ଗ୍ରା.ବି. ହାତୀ ଘୋଡ଼ାଙ୍କ ବିଷ୍ଠା ।
ଲଦିହେବା—ଗ୍ରା.କ୍ରି.ଅନ୍ୟ ବ୍ୟକ୍ତି ଉପରେ ଆପଣାର ଶରୀରର ବୋଝକୁ ଚପାଇବା ।
ଲଦ୍ଫଦ୍—ଗ୍ରା.ବିଂ.ଅପରିଚ୍ଛନ୍ନ, ଅପ୍ରସ୍ତୁତ ।
ଲଦ୍ଫଦିଆ—ଗ୍ରା.ବିଂ. ଜଟିଳ, ଗୋଳ-ମାଳିଆ ।
ଲପ୍ଟିବା—ଗ୍ରା. କ୍ରି. ଛପିକରି ରହିବା, ଲୁଚି କରି ଜଗିବା,(ଗ୍ରା.କ୍ରି)କୁଣ୍ଢେଇବା ।
ଲପଟା—ଗ୍ରା. ବି. ବଡ଼ ଲମ୍ବା ପଗଡ଼ି ।
ଲପଟିବା—ଗ୍ରା. କ୍ରି. ଲପ୍ତହେବା, ଆଲି-ଙ୍ଗନକରିବା, ଛପିକରି ବସିବା, ଲଇଁ-ଲଇଁ ଗୁଳିବା ।
ଲପନ—କ୍ଲୀ.ବି.(ଲପ୍+ଭା.ଅନ)ଭାଷଣ, କଥନ, (ଣ.ଅନ) ମୁଖ, ମୁହଁ ।

ଲପିତ—କ୍ଳୀ.ବି.(ଲପ୍+ଭା ତ) ବଚନ, କଣ୍ଠସ୍ୱର, କଥନ, (ବିଂ.ମୈ.ଭି) କଥିତ, ବଚନଯୁକ୍ତ, (ସ୍ତ୍ରୀ) ଲପିତା ।
ଲପିତା—ସ୍ତ୍ରୀ.ବି. ଶାର୍ଙ୍ଗିକା ନାମକ ପକ୍ଷୀବିଶେଷ ।
ଲପିବା—ଗ୍ରା. (ପଦ୍ୟ)କ୍ରି. କହିବା ।
ଲପେତ—ପୁଂ.ବି.ବାଳରୋଗ ଅଧିଷ୍ଠାତ୍ରୀ ଦେବତାବିଶେଷ ।
ଫ୍ଟନ—ବି. ବେଷ୍ଟନ, ଗୁଡ଼ାଇବା ।
ଲପ୍ସିକା—ସ୍ତ୍ରୀ. ବି. ଖାଦ୍ୟଦ୍ରବ୍ୟବିଶେଷ, ମହନଭୋଗର ପ୍ରକାର ଭେଦ ।
ଲପ୍‌ଲପ୍—ଗ୍ରା. ଅ. ଆହାର ସମୟରେ ଚର୍ବଣ ଓ ଲେହନ କରିବାର ଜିହ୍ୱା ବ୍ୟାପାରଜନିତ ଶବ୍ଦ ।
ଲଫଙ୍ଗା—ଗ୍ରା. ପୁଂ. ବିଂ. ବ୍ୟଭିଚାରୀ ଓ ଦୁଶ୍ଚରିତ୍ର (ବ୍ୟକ୍ତି), ଯେ ଅର୍ଥହୀନ ଓ ଆଶ୍ରୟହୀନ ହୋଇ ବୁଲୁଥାଏ ।
ଲଫା—ଯା.ବି.ବ୍ୟବସାୟରୁ ପ୍ରାପ୍ତ ଲଭ ।
ଲଫାଫା—ଯା.ବି. ଚିଠିର ବହିରାବରଣ, ଘୁଲିଦା ।
ଲଭନ—କ୍ଳୀ.ବି.(ଲଭ+ଭା.ଅନ)ପ୍ରାପଣ, ପ୍ରାପ୍ତି, ପାଇବା ।
ଲଭସ—ପୁଂ. ବି. (ଲଭ+ଅସ) ଧନଯାଚକ, ଭିକ୍ଷୁକ,ଘୋଡ଼ାର ପାଦବନ୍ଧନ ରଜ୍ଜୁ, ଛେପା ।
ଲଭା(ଭେ)ଇବା—ଗ୍ରା.କ୍ରି.ଲଭିବା କ୍ରିୟାର ଣିଜନ୍ତରୂପ, ଲଭିବା ଦେଖ ।
ଲଭିତ—ଗ୍ରା.ବିଂ.ଲାଭ କରିଥିବା,ଧାରଣ କରିଥିବା ।
ଲଭିବା—ଗ୍ରା.କ୍ରି.ପାଇବା, ଲାଭକରିବା, ଅର୍ଜନକରିବା, ଅନୁଭବ କରିବା ।
ଲଭ୍ୟ—କ୍ରି.ବିଂ (ଲଭ୍+ମୈ.ଯ)ନ୍ୟାଯ୍ୟ, ଯାହା ମିଳିବା ଉଚିତ, ପ୍ରାପ୍ୟ, ଲବ୍ଧବ୍ୟ, (ସ୍ତ୍ରୀ) ଲଭ୍ୟା, (ଗ୍ରା.ବି) ଲାଭ, ପ୍ରାପ୍ତି, ସୁଧ,(ଗଣିତ)ଭାଗଫଳ, ପାଉଣା,ଆୟ ।
ଲଭ୍ୟକ—ଗ୍ରା. ବିଂ. ପ୍ରାପ୍ତ ।
ଲଭ୍ୟାଂଶ—ବି. (କ.ଧା) ପ୍ରାପ୍ୟଧନାଦିର ଅଂଶ, ଭାଗଫଳ ।
ଲଭ୍ୟାର୍ଥ—ବି.( କ.ଧା ) ପ୍ରାପ୍ୟଧନ,(ବିଂ ବ.ବ୍ରୀ)ଧନ ପାଇବାର ଉପଯୁକ୍ତ(ବ୍ୟକ୍ତି), (ସ୍ତ୍ରୀ) ଲଭ୍ୟାର୍ଥା ।
ଲମକ—ପୁଂ.ବି. (ରମ୍+କ.ଅକ)ଜାର, ଉପପତି, ଲମ୍ପଟ ବ୍ୟକ୍ତି, ଅର୍ଥଶୋଷକ ବ୍ୟକ୍ତି, ବିଳାସୀ ବ୍ୟକ୍ତି ।
ଲମତା—ପ୍ରା. (ଜୟପୁର) ବି. ରଜାଙ୍କ, ଶ୍ରୀଅଙ୍ଗରେ ତୈଳମର୍ଦ୍ଦନକାରୀ ଶୂଦ୍ରଜାତି ।                [ ଯିବା ।
ଲମିବା—ପ୍ରା. (ସମ୍ବ) କ୍ରି. ଯାତ୍ରା କରିବା.
ଲମ୍ପକ—ପୁଂ.ବି.ଜୈନସମ୍ପ୍ରଦାୟବିଶେଷ
ଲମ୍ପଟ—ପୁଂ. ବିଂ. (ରମ୍+ଅଟ) ସ୍ତ୍ରୈଣ, ଅନୁରାଗୀ. ଲୋଭୀ, ଉତ୍ସୁକ, ପରସ୍ତ୍ରୀଲୋଲୁପ, ଆସକ୍ତ, କାମୁକ, ( ପୁଂ.ବି ) କାମୁକ ବ୍ୟକ୍ତି, ପରସ୍ତ୍ରୀଲୋଲୁପ ବ୍ୟକ୍ତି. ଜାର, ଉପପତି ।
ଲମ୍ପଟତା(ତ୍ୱ)—ବି.(ଲମ୍ପଟ+ଭା.ତା,ତ୍ୱ) ଲମ୍ପଟ୍ୟ, କାମୁକତା, ପରସ୍ତ୍ରୀ ପ୍ରତି ଅନୁରକ୍ତି ।
ଲମ୍ପଠା—ସ୍ତ୍ରୀ. ବିଂ. ଲାଳସୀ, ଲାଳସୃତ୍ରୀ ।
ଲମ୍ପଟାଗୁରୁ—ବି. (ଷତତ୍) ଲମ୍ପଟତା ।
ଲମ୍ପଟ୍ଟାଗ୍ରସ୍ତ—ପୁଂ. ବିଂ. ପରସ୍ତ୍ରୀ ପ୍ରତି ଅନୁରକ୍ତ ।
ଲମ୍ପଟୀ—ଗ୍ରା.ପୁଂ. ବିଂ. ଲମ୍ପଟ,ପ୍ରତାରକୀ, ମାୟାବୀ, କୁଟିଳପ୍ରକୃତିକ, ଲମ୍ପଟିଆ ।
ଲମ୍ପାକ—ପୁଂ.ବି.(ରମ୍+କ.ଅକ) ଲମ୍ପଟ ବ୍ୟକ୍ତି, କାବୁଲ ବା ଆଫଗାନସ୍ଥାନର ପୌରାଣିକ ପ୍ରାଚୀନ ଦେଶବିଶେଷ ।
ଲମ୍ପାଟହ—ପୁଂ. ବି. ( ଲମ୍ବ+ପଟହ ) ପଟହବାଦ୍ୟ, ବଡ଼ ଢୋଲ,ବଡ଼କାଠ ।
ଲମ୍ଫ—ପୁଂ.ବି. (ରନ୍ଫ୍+ଅ) ପ୍ଲୁତଗତି, ଡେଇଁବା, କୁଦା, ଡ଼ିଆଁ ।
ଲମ୍ଫଝମ୍ପ—ଗ୍ରା. ବି. ଡ଼ିଆଁଡେଇଁ,କୁଦାକୁଦି, ମାଙ୍କଡ଼ଚିତି ।
ଲମ୍ଫଦାନ—ବି. ଡ଼ିଆଁମାରିବା, ଡେଇଁପଡ଼ିବା ।
ଲମ୍ଫନ—କ୍ଳୀ. ବି. ( ଲମ୍ଫ+ଭା.ଅନ ) ଡ଼ିଆଁଡେଇଁ, କୁଦିବା, ଡ଼ିଆଁ ।
ଲମ୍ବ—ବିଂ. ( ଲମ୍ବ+କ.ଅ ) ଲମ୍ବିତ, ତଳକୁ ଓହଳିଥିବା,ଲମ୍ବା, ଦୀର୍ଘ,ପ୍ରସାରିତ, ସରଳ, ଡେଙ୍ଗା,ଦୋଳାୟମାନ, ଦୁଇପାଖେ ଦୁଇଟି ସମକୋଣ ସୃଷ୍ଟିକରି ଅନ୍ୟ ରେଖା ସଙ୍ଗେ ମିଳିତ (ରେଖା); ଲମ୍ବଭାବରେ ନ୍ୟସ୍ତ,ବୃହତ୍, ବଡ଼,(ବି) ଦୈର୍ଘ୍ୟ, ବିସ୍ତାର, ଡେଙ୍ଗ, ଉଚ୍ଚତା, (କ.ଅ) ନଟ, ନର୍ତ୍ତକ, କାନ୍ତ, ସ୍ୱାମୀ, (ମୈ.ଅ) ଉତ୍କୋଚ, ଅଂଶ, ପଶାକାଠି; (ଭା.ଅ) ଅବଲମ୍ବନ, ଆଶ୍ରୟ,(ଜ୍ୟାମିତି) ଏକରେଖା ଉପରେ ଋଜୁଭାବରେ ଦଣ୍ଡାୟମାନ ରେଖା, ତ୍ରିଭୁଜର ଲମ୍ବିତ ବାହୁଦ୍ୱୟ, (ଗଣିତ) ବିଷୁବ ରେଖାର ସମାନାନ୍ତର ରେଖାବିଶେଷ, ପ୍ରଲମ୍ବାସୁର, ଶୁଦ୍ଧରାଗବିଶେଷ, ମୁଦ୍ରାବିଶେଷ, ଅଙ୍ଗ, ଗ୍ରହମାନଙ୍କର ଏକପ୍ରକାର ଗତି, କୌଣସି ସ୍ଥାନର ଶିରୋବିନ୍ଦୁଠାରୁ ମେରୁ ପର୍ଯ୍ୟନ୍ତ କଳ୍ପିତ ବୃତ୍ତଖଣ୍ଡ ।
ଲମ୍ବକ—ପୁଂ.ବି.(ଲମ୍ବ+କ)ଏକ ରେଖା ଉପରେ ଋଜୁଭାବରେ ଦଣ୍ଡାୟମାନ ରେଖା, ବିଷୁବରେଖାର ସମାନାନ୍ତର ରେଖାବିଶେଷ,ପୁସ୍ତକର ଏକ ଅଧ୍ୟାୟ, ମୁଖରୋଗବିଶେଷ,ଜ୍ୟୋତିଷୋକ୍ତ ପଞ୍ଚଦଶ ଯୋଗ ।
ଲମ୍ବକର୍ଣ୍ଣ—ବି. ( କ.ଧା ) ଦୀର୍ଘକାନ, ଓହଳାକାନ, (ବ.ବ୍ରୀ) ଛେଳି, ହାତୀ, ଠେକୁଆ, ଗଧ,ଗଣ୍ଡଶିରା,ରାକ୍ଷସ,ଛଞ୍ଚାଣ, ଅଙ୍କୋଟ ବୃକ୍ଷ, (ପୁଂ.ବିଂ-ବ.ବ୍ରୀ) ଲମ୍ବ ବା ଦୀର୍ଘକର୍ଣ୍ଣବିଶିଷ୍ଟ ।
ଲମ୍ବକାନ—ଗ୍ରା.ବି. ଲମ୍ବକର୍ଣ୍ଣ,ଦୀର୍ଘକର୍ଣ୍ଣ, (ବିଂ) ଲମ୍ବକାନା ।
ଲମ୍ବକାନ—ଗ୍ରା.ବି.ଜଳଜ ଶାକବିଶେଷ ।
ଲମ୍ବକାୟ—ବିଂ. (ବ.ବ୍ରୀ) ଦୀର୍ଘଦେହ, ଲମ୍ବା ଶରୀରବିଶିଷ୍ଟ ।
ଲମ୍ବକେଶ—ବି.(ଲମ୍ବ+କେଶ)ଦୀର୍ଘାଗ୍ରଯୁକ୍ତ କୁଶମୟ ବିସ୍ତର ବା ଆସନ, (ବିଂ.ବ.ବ୍ରୀ) ଦୀର୍ଘକେଶଯୁକ୍ତ ।
ଲମ୍ବକେଶୀ—ପୁଂ.ବିଂ.ଦୀର୍ଘକେଶବିଶିଷ୍ଟ ।
ଲମ୍ବଗ୍ରୀବ—ପୁଂ.ବିଂ.(ବ.ବ୍ରୀ) ଦୀର୍ଘଗ୍ରୀବ, ଯାହାର ବେକ ଲମ୍ବା,(ସ୍ତ୍ରୀ)ଲମ୍ବଗ୍ରୀବା, (ବି) ଉଷ୍ଟ୍ର, ଓଟ ।

ଲମ୍ବଜଠର—ବି°.(ବ.ବ୍ରୀ) ଲମ୍ବୋଦର, ଲମ୍ବପେଟିଆ।

ଲମ୍ବଜନ୍ତୁ—ଗ୍ରା. ବି. ସର୍ପ, ସାପ।

ଲମ୍ବଜିହ୍ୱ—ପୁଂ.ବି°.(ବ.ବ୍ରୀ)ଯାହାର ଜିଭ ଲମ୍ବା ବା ଓହଳଥାଏ, (ସ୍ତ୍ରୀ) ଲମ୍ବଜିହ୍ୱା (ବି)ରାକ୍ଷସ ବିଶେଷ।

ଲମ୍ବଡ଼ା—ଗ୍ରା. ବି°. ଲମ୍ବ, ଖୁବ ଲମ୍ବା, ଲମ୍ବିତ, ଯେଉଁ ବସ୍ତୁର ଦୈର୍ଘ୍ୟ ପ୍ରସ୍ଥଠାରୁ ବେଶି।

ଲମ୍ବତା(ତ୍ୱ)—ବି. ଦୀର୍ଘତା, ଦୈର୍ଘ୍ୟ, (ଗ୍ରା. ଜୟପୁର. ବି) ପାଖଲୋକ।

ଲମ୍ବଦନ୍ତ—ପୁଂ.ବି°.(ବ.ବ୍ରୀ) ଦୀର୍ଘଦନ୍ତବିଶିଷ୍ଟ।

ଲମ୍ବଦନ୍ତା—ସ୍ତ୍ରୀ. ବି. ସୈଂହଳୀ,ପିପ୍ପଳୀ।

ଲମ୍ବଦାଢ଼ି—ଗ୍ରା. ବି. ଦୀର୍ଘଶ୍ମଶ୍ରୁ।

ଲମ୍ବଦାଢ଼ିଆ—ଗ୍ରା. ପୁଂ. ବି°. ଦୀର୍ଘଶ୍ମଶ୍ରୁବିଶିଷ୍ଟ।

ଲମ୍ବନ—କ୍ଲୀ. ବି. (ଲମ୍ବ+ଭା.ଅନ) ଲମ୍ବମାନ ହେବା, ଝୁଲିବା, (ଲମ୍ବ+ଣିଚ୍+ଭା.ଅନ) ଝୁଲାଇବା,ଅବଲମ୍ବନ, ଆଶ୍ରୟଗ୍ରହଣ, ନାଭିପର୍ଯ୍ୟନ୍ତ ଲମ୍ବିବା ହାର, (ର୍ମ.ଅନ) ଆଶ୍ରୟ, ଅବଲମ୍ବ, ସହାୟ, ଶିବ, ଧଡ଼, (କ.ଅନ) କଫ, ଏକପ୍ରକାର ଯୁଦ୍ଧ।

ଲମ୍ବପୟୋଧରା—ସ୍ତ୍ରୀ.ବି°.(ବ.ବ୍ରୀ) ଯେଉଁ ସ୍ତ୍ରୀର ସ୍ତନ ଓହଳ ପଡ଼ିଥାଏ, (ସ୍ତ୍ରୀ.ବି) ସ୍କନ୍ଦାନୁଚର ମାତୃବିଶେଷ।

ଲମ୍ବବାଟରେ—ଗ୍ରା. କ୍ରି. ବି°. ଦୀର୍ଘଭାବରେ, ଲମ୍ବଅନୁସାରେ।

ଲମ୍ବବାଳ—ବି. ଦୀର୍ଘକେଶ।

ଲମ୍ବବୀଜା—ସ୍ତ୍ରୀ. ବି. ସୈଂହଳୀ, ପିପ୍ପଳୀ।

ଲମ୍ବମାନ—କ୍ରି. ବି°. (ଲମ୍ବ+ଆନ) ଲମ୍ବାୟମାନ, ଝୁଲୁଥିବା, ଲମ୍ବଭାବରେ ସ୍ଥାପିତ, (ସ୍ତ୍ରୀ) ଲମ୍ବମାନା।

ଲମ୍ବମୁଖ—ବି. (କ.ଧା) ଲମ୍ବ ବା ଦୀର୍ଘମୁଖ, (ପୁଂ.ବି°) ଦୀର୍ଘମୁଖଯୁକ୍ତ, (ସ୍ତ୍ରୀ) ଲମ୍ବମୁଖା।

ଲମ୍ବର—ବି. (ଲମ୍ବ+ର+କ.ଅ)ଏକପ୍ରକାର ବାଦ୍ୟ।

ଲମ୍ବଲମ୍ବ—ଗ୍ରା. ବି°. ଅନେକ ଗୁଡ଼ାଏ ଲମ୍ବ (ବସ୍ତୁ), (କ୍ରି.ବି°) ଲମ୍ବଭାବରେ ପଡ଼ିବା ପ୍ରକାରେ।

ଲମ୍ବଲଞ୍ଜିଆ—ଗ୍ରା. ବି°. ଯେଉଁ ଜନ୍ତୁର ଲାଞ୍ଜ ଲମ୍ବ ଅଛି।

ଲମ୍ବସ୍ତନା(ନୀ)—ଗ୍ରା.ସ୍ତ୍ରୀ.ବି°. ଯେଉଁ ସ୍ତ୍ରୀର ସ୍ତନ ଲମ୍ବି ଯାଇଥାଏ।

ଲମ୍ବସ୍ଫିଚ—ତ୍ରି.ବି°.ଲିଗାଲ ନିତମ୍ବବିଶିଷ୍ଟ, ଯାହାର ପିଚୁ ଲମ୍ବା ଅଛି।

ଲମ୍ବହତା—ଗ୍ରା.ବି ପ୍ରାଚୀରବେଷ୍ଟିତ ସ୍ଥାନ, ରାଜକର୍ମଗୃହବିଶେଷ।

ଲମ୍ବହେବା—ଗ୍ରା. କ୍ରି. ବଢ଼ିବା, ଲମ୍ବିବା।

ଲମ୍ବା—ସ୍ତ୍ରୀ.ବି.(ଲମ୍ବ୍+ଅ+ଆ)ଲକ୍ଷ୍ମୀ, ଦୁର୍ଗା, ପିତାଳିଉ, ଲାଞ୍ଚ, ଉପହାର, (ଗ୍ରା.ବି°)ଦୀର୍ଘ,ଧରାଶାୟୀ,(ବି)ଦୈର୍ଘ୍ୟ।

ଲମ୍ବା(ମ୍ବେ)ଇବା—ଗ୍ରା. କ୍ରି. କୌଣସି ବସ୍ତୁକୁ ଲମ୍ବିତ କରାଇବା, କ୍ଷୁଦ୍ର ବସ୍ତୁକୁ ଦୀର୍ଘ କରିବା, ସ୍ଫୀତ କରିବା, ଲମ୍ବାଭାବରେ ଥୋଇବା, ଝୁଲାଇବା, ଓହଳାଇବା।

ଲମ୍ବାଂଶ—ବି. ଜ୍ୟୋତଷୋକ୍ତ ଅକ୍ଷାଂଶ ରେଖାବିଶେଷ।

ଲମ୍ବାକଥା—ଗ୍ରା. ବି. ଦୀର୍ଘବାକ୍ୟମାନ, ଗର୍ବସ୍ଫୀତ ବାକ୍ୟ।

ଲମ୍ବାକରିବା—ଗ୍ରା. କ୍ରି. କୌଣସି ବସ୍ତୁକୁ ଦୀର୍ଘ କରିବା।

ଲମ୍ବାଚଉଡ଼ା—ଗ୍ରା.ବି°.ଦୀର୍ଘ ଓ ପ୍ରସ୍ଥରେ ବିସ୍ତୃତ ବା ବର୍ଦ୍ଧିତ, ଦୀର୍ଘ ଓ ପ୍ରଶସ୍ତ, ବିସ୍ତୃତ, (ଗ୍ରା.ବି) ଦୈର୍ଘ୍ୟ ଓ ପ୍ରସ୍ଥ।

ଲମ୍ବାଲମ୍ବା—ଗ୍ରା.ବି°. ଲମ୍ବଲମ୍ବ ଦେଖ।

ଲମ୍ବାଲମ୍ବାକଥା—ଗ୍ରା.ବି. ଆଡ଼ମ୍ବରପୂର୍ଣ୍ଣ କଥାମାନ।

ଲମ୍ବାଲମ୍ବି—ଗ୍ରା.କ୍ରି. ବି°. ସମାନ ଲମ୍ବମାନଭାବେ,ଲମ୍ବେଲମ୍ବେ,ଲମ୍ବ ବାଟରେ, (ଗ୍ରା.ବି) ଲମ୍ବାଇବା ଆଦି କ୍ରିୟା,(ବି°) ବହୁତ ଲମ୍ବା।

ଲମ୍ବିକା—ସ୍ତ୍ରୀ. ବି. (ଲମ୍ବ+କ+ଆ) ତାଳୁର୍ଦ୍ଧ୍ୱସ୍ଥ ସୂକ୍ଷ୍ମଜିହ୍ୱା, ଘଣ୍ଟିକା।

ଲମ୍ବିତ—କ୍ରି.ବି°. (ଲମ୍ବ+ତ) ସ୍ରଂସିତ, ଦୋଳିତ, ଶଢିତ, ଅବଲମ୍ବିତ,ଆଶ୍ରିତ, ଲମ୍ବହୋଇ ଝୁଲୁଥିବା।

ଲମ୍ବିବା—ଗ୍ରା. କ୍ରି. ଝୁଲିବା, ଓହଳିବା, ଲମ୍ବହୋଇ ଶୋଇବା, ଲମ୍ବଭାବରେ ବୃଦ୍ଧିପାଇବା। [ କରିବା ]

ଲମ୍ବିଯିବା—ଗ୍ରା. କ୍ରି.ଲମ୍ବେଲମ୍ବେ ଗଢ଼-

ଲମ୍ବୀ—ପୁଂ. ବି°. ଲମ୍ବଯୁକ୍ତ, ଲମ୍ବିତ, (ଗ୍ରା. ସ୍ତ୍ରୀ. ବି°) ଡେଙ୍ଗେଇ ସ୍ତ୍ରୀ।

ଲମ୍ବୁକ—ପୁଂ.ବି.ନାଗବିଶେଷ,ଜ୍ୟୋତିଷୋକ୍ତ ପଞ୍ଚଦଶଯୋଗ।

ଲମ୍ବେଲମ୍ବେ—ଗ୍ରା. କ୍ରି. ବି°. ସଳଖେ ସଳଖେ,ସିଧାଏ ସିଧାଏ ଲମ୍ବଭାଗରେ।

ଲମ୍ବୋଦର—ପୁଂ.ବି. (ବ.ବ୍ରୀ)ଗଣେଶ, ନୃପବିଶେଷ, (ବି°-ବ.ବ୍ରୀ)ସ୍ଥୂଳୋଦର, ଦୀର୍ଘୋଦରବିଶିଷ୍ଟ, ପେଟୁ, (ସ୍ତ୍ରୀ) ଲମ୍ବୋଦରୀ।

ଲମ୍ବୋ(ମ୍ବୌ)ଷ୍ଠ—ପୁଂ.ବି.(ଲମ୍ବ+ଓଷ୍ଠ) ଉଷ୍ଟ୍ର, ଓଟ, କ୍ଷେତ୍ରପାଳ ଦେବତାବିଶେଷ, (ବି°) ଯାହାର ଓଠ ବଡ଼।

ଲମ୍ଭ—ପୁଂ. ବି. ଲାଭ।

ଲମ୍ଭକ—କ୍ରି. ବି°. ପ୍ରାପକ।

ଲମ୍ଭନ—କ୍ଲୀ. ବି. (ଲମ୍ଭ୍+ଭା.ଅନ) ଧ୍ୱନି, ଲାଞ୍ଛନା, ପ୍ରାପଣ, ନିନ୍ଦା, ପ୍ରାପ୍ତି, ଅବମାନନା, ଗାଳି।

ଲମ୍ଭା—ସ୍ତ୍ରୀ. ବି. (ଲମ୍ଭ୍+ଆ) ବାଡ଼, ଶୃଙ୍ଖଳା, (ଗ୍ରା.ବି°) ଯେଉଁ ଗଛ ମନକୁ ମଞ୍ଜି ପଡ଼ି ବିନାଯତ୍ନରେ ଉଠିଥାଏ।

ଲମ୍ଭିତ—ବି°. (ଲମ୍ଭ୍+ର୍ମ.ତ)ପ୍ରାପିତ, ନିନ୍ଦିତ, ନିୟୋଜିତ, ବର୍ଦ୍ଧିତ, ଉକ୍ତ, ପୋଷିତ, ଅପମାନିତ, ତିରସ୍କୃତ, ବିସ୍ତାରିତ।

ଲମ୍ଭୁକ—କ୍ରି. ବି°. ଜାତ୍ୟଗ୍ରାହ୍ୟ, ଯେ ପ୍ରତିଦିନ ଗ୍ରହଣ କରେ।

ଲୟ—ପୁଂ. ବି. (ଲୀ+ଅ) ବିନାଶ, ସଂଶ୍ଳେଷ, ପ୍ରଳୟ, ଗୀତ ବାଦ୍ୟାଦିର ତାଳ, ଆବାସ, ଗୃହ, କ୍ରୀଡ଼ା, ଲୀନ ହେବା, ମିଳେଇଯିବା, ଅଭିନୟ, ବିଳାସ,ସୁଖଭୋଗ, ଗାନର ଅବଚ୍ଛେଦ ଗତି,ଈଶ୍ୱର,ଭୋଗର ଅନୁରାଗ,ଏକାଗ୍ର-

ଚିତ୍ତରେ ଧ୍ୟାନ, କାର୍ଯ୍ୟର କାରଣରେ ପ୍ରବିଷ୍ଟ ହେବା ଓ ପୁଣି କାରଣ ରୂପେ ପରିଣତ, ସ୍ଥିରତା, ବିଶ୍ରାମ, ମୂର୍ଚ୍ଛା, (ସଙ୍ଗୀତ) କୌଣସି ସ୍ୱରକୁ ବାହାର କରିବାକୁ ଯେତେ ସମୟ ଲାଗେ, ବୈଦିକଯୁଗର ଗୃହକର୍ମିକୁ ସମତଳ କରିବାର ମଇ ।

ଲୟକରିବା—ଗ୍ରା.କ୍ରି. ଧ୍ୟାନ ବା ମନୋ-ଯୋଗ ଦେବା, ଧ୍ୱଂସ କରିବା ।

ଲୟକ୍ରିୟା—ବି. ପ୍ରଳୟକାଳରେ (ଶିବ ରୂପରେ ବିଷ୍ଣୁଙ୍କ ଦ୍ୱାରା)ସୃଷ୍ଟିର ସଂହାର କ୍ରିୟା ।

ଲୟଗତ—ବିଂ.ମିଶ୍ରିତ,ମିଳାଇଯାଇଥିବା, ଧ୍ୱଂସପ୍ରାପ୍ତ ।

ଲୟନ—କ୍ଲୀ. ବି. (ଲୀ+ଅନ) ବିଶ୍ରାମ, ଶାନ୍ତି,ବିଶ୍ରାମସ୍ଥାନ,ଆଶ୍ରୟଗ୍ରହଣ,ଭବନ, ଗୃହ ।

ଲୟପୁତ୍ରୀ—ସ୍ତ୍ରୀ. ବି. (ଲୟ+ପୁତ୍ରୀ) ନର୍ତ୍ତକୀ, ନଟୀ ।

ଲୟଯୋଗ—ପୁଂ. ବି. ତନ୍ତ୍ରୋକ୍ତ ସାଧନ ଯୋଗବିଶେଷ ।

ଲୟରହିବା—ଗ୍ରା. ବି. କୌଣସି ବିଷୟ ପ୍ରତି ମନୋଯୋଗ ସ୍ଥିର ରହିବା ।

ଲୟାରମ୍ଭ—ପୁଂ.ବି.(ବ.ବ୍ରୀ) ନଟ,ନର୍ତ୍ତକ, ଯାହାଠାରୁ ଲୟର ଆରମ୍ଭ ।

ଲୟରେ—ଗ୍ରା.କ୍ରି.ବିଂ.ଖୁବ୍ ମନୋଯୋଗ ସହିତ ।

ଲୟାଲମ୍ବ—ପୁଂ.ବି. (ଲୟ+ଆ+ଲମ୍ବ +ଅ) ନଟ, ନର୍ତ୍ତକ ।

ଲରି—ଗ୍ରା. ବି. ବହୁଲୋକ ବସିବାପାଇଁ ବ୍ୟବହୃତ ଯନ୍ତ୍ରଚାଳିତ ଚଢ଼ଯାନ ।

ଲରିଆ(ହା)—ଗ୍ରା.ବି.ଏକପ୍ରକାର ବିକୃତ ହିନ୍ଦୁସ୍ଥାନୀ ଓ ଓଡ଼ିଆମିଶା କଥ୍ୟଭାଷା, ନୀଚଜାତିବିଶେଷ ।

ଲଲ—ବି. (ଲଲ୍+ଭା.ଅ) ପ୍ରାପ୍ତୀଚ୍ଛା, ହଲଇବା, (କ.ଅ) ରଜା, (ଅଧି.ଅ) ବଗିଚା, (ବିଂ) କ୍ରୀଡ଼ାପ୍ରିୟ, ଇଚ୍ଛୁକ ।

ଲଲଜିହ୍ୱ—ପୁଂ.ବି.(ଲଲ୍+ଜିହ୍ୱା)ଉଷ୍ଟ୍ର, ଓଟ, କୁକ୍କୁର, (ବିଂ) ହିଂସ୍ର (ଜନ୍ତୁ), ଯାହାର ଜିହ୍ୱା ଲହଲହ ହେଉଥାଏ, ଭୟଙ୍କର ।

ଲଲତ୍—ବିଂ.(ଲଲ୍+କ.ଅତ୍)କମ୍ପମାନ, ଦୋଲାୟମାନ, ଲେହନକାରୀ,ବିଳାସ-ଯୁକ୍ତ, ଲୋଲୁପ, (ସ୍ତ୍ରୀ) ଲଲନ୍ତୀ ।

ଲଲତ୍କର୍ଣ୍ଣ—ପୁଂ.ବିଂ. (ବ.ବ୍ରୀ)ଯାହାର କାନ ଲଡ଼ୁଥାଏ, ଲଡ଼କାକାନିଆଁ ।

ଲଲନ—କ୍ଲୀ.ବି.(ଲଲ+କ.ଅନ) କେଳି-ଚାଳନ,ଅସ୍ଥିରତା, ଦୋଳନ, କମ୍ପନ, ବିଳାସ, (ପୁଂ-ମି.ଅନ)ବାଳକ, ଗେହ୍ଲା ବାଳକ,ଅସନଗଛ,ଶାଳଗଛ, ପ୍ରିୟପତି ବା ନାୟକ ।

ଲଲନା—ସ୍ତ୍ରୀ.ବି. (ଲଲ+ଅନ+ଆ) କାମିନୀ, ନାରୀ, ସ୍ତ୍ରୀ ପତ୍ନୀ, ଜିହ୍ୱା, ଛନ୍ଦୋବିଶେଷ,ସୁକୁମାରାଙ୍ଗୀ ସ୍ତ୍ରୀ,ଗାଥା-ବିଶେଷ ।

ଲଲନାପ୍ରିୟ—ବି. (ଲଲନା+ପ୍ରିୟ) ହ୍ରୀବେର, କୁରୁବେଲ,ପ୍ରସାରଣୀଲତା, କଦମ୍ବ, ବାଡ଼ଅଁଳା, (ବିଂ.ବ.ବ୍ରୀ) ରମଣୀ ପ୍ରତି ପ୍ରୀତିପରାୟଣ, ନାରୀପ୍ରିୟ, (୬ତତ୍) ରମଣୀର ପ୍ରୀତିକର,ରସନାର ତୃପ୍ତିଜନକ, ରୁଚିକର, ସ୍ୱାଦୁ ।

ଲଲନିକା—ସ୍ତ୍ରୀ.ବି. (ଲଲନା+କ+ଆ) ଲଲନା, ସ୍ତ୍ରୀ ।

ଲଲନ୍ତିକା—ସ୍ତ୍ରୀ.ବି. (ଲଲତ୍+କ+ଆ) ନାଭିଦେଶ ପର୍ଯ୍ୟନ୍ତ ଲମ୍ବିଥିବା ହାର, ଏଣ୍ଡୁଅ, ଗୋଧି ।

ଲଲା—ପ୍ରା.(ସମ୍ବ) ବିଂ. ଅତ୍ୟନ୍ତ ଅତୃପ୍ତ, ଅତ୍ୟନ୍ତ ଲାଳାୟିତ ।

ଲଲାକ—ବି.(ଲଲ+ଭା.ଆକ)ମୋହନ, ମୁଗ୍ଧକରିବା, (କ.ଆକ) ଶିଶ୍ନ, ଲିଙ୍ଗ, (ପୁଂ.ବିଂ)ମୋହକାରୀ, (ସ୍ତ୍ରୀ) ଲଲାକା ।

ଲଲାଟ—କ୍ଲୀ. ବି.( ଲଲ୍+ଅଟ+ଅ ) ଅବୟବବିଶେଷ,କପାଳ,ଭାଲ, ଅଦୃଷ୍ଟ, ଭାଗ୍ୟ, କର୍ମ ।

ଲଲାଟକ—କ୍ଲୀ.ବି.(ଲଲାଟ+କ)ଲଲାଟ, ପ୍ରଶସ୍ତ ଲଲାଟ ।

ଲଲାଟତଟ—ବି. (୬ତତ୍) ଲଲାଟର ଗଡ଼ାଣିଆ ଅଂଶ ।

ଲଲାଟଦେଶ—ବି. (କ.ଧା) ଲଲାଟ, କପାଳ ।

ଲଲାଟନ୍ତପ—ବିଂ.(ଲଲାଟଂ+ତପ୍+ଅ) ଯାହା କପାଳକୁ ସନ୍ତପ୍ତ କରେ, (ବି) ସୂର୍ଯ୍ୟ । [କପାଳ ।

ଲଲାଟପଟଳ—ବି. (ରୂପକ) ଲଲାଟ,

ଲଲାଟପଟ୍ଟ—ବି. (ରୂପକ) ଭାଲପଟ୍ଟ ।

ଲଲାଟଫଳକ—କ୍ଲୀ.ବି.କପାଳ,ଭାଲପଟ୍ଟ ।

ଲଲାଟ(ରେ)ଲେଖା—ସ୍ତ୍ରୀ.ବି. (୬ତତ୍) କପାଳଲେଖା,ଲଲାଟଲିଖନ ଦେଖ ।

ଲଲାଟଲିଖନ—ବି କପାଳଲିଖନ,ଅଦୃଷ୍ଟ-ଲିପି, ଯାହା ଅବଶ୍ୟ ଘଟିବ, ଅବଶ୍ୟ-ମ୍ଭାବୀ ଘଟଣା ।

ଲଲାଟଲିଖିତ—ବିଂ. (୭ତତ୍) ମନୁଷ୍ୟର କପାଳରେ ବ୍ରହ୍ମାଙ୍କଦ୍ୱାରା ଲିଖିତ(ମନୁ-ଷ୍ୟର ଭାବୀ ଜୀବନର ଶୁଭାଶୁଭ) ।

ଲଲାଟଲିପି—ବି.(୬ତତ୍)ଲଲାଟଲିଖନ ।

ଲଲାଟାକ୍ଷ—ପୁଂ.ବି. (ବ.ବ୍ରୀ)ଶିବ, (ପୁଂ. ବିଂ) ଯାହାର ଲଲାଟରେ ଆଖି ଥାଏ, (ସ୍ତ୍ରୀ) ଲଲାଟାକ୍ଷୀ ।

ଲଲାଟାକ୍ଷୀ—ସ୍ତ୍ରୀ.ବି. (ବ.ବ୍ରୀ) ଦୁର୍ଗା ।

ଲଲାଟାସ୍ଥି—ବି.କପାଳର ସମ୍ମୁଖସ୍ଥ ହାଡ଼ ।

ଲଲାଟିକା—ସ୍ତ୍ରୀ. ବି. (ଲଲାଟକ+ଆ) ଲଲାଟାଭରଣ, ତିଳକ, ଚିତା, ଅଳକା, ଚୂର୍ଣ୍ଣକୁନ୍ତଳ ।

ଲଲାଟୂଲ—ପୁଂ.ବିଂ. (ଲଲାଟ+ଊଲ)ଉଚ୍ଚ କପାଳଯୁକ୍ତ, (ସ୍ତ୍ରୀ) ଲଲାଟୂଳା ।

ଲଲାଟ୍ୟ—ତ୍ରି.ବିଂ.(ଲଲାଟ+ଯ)ଲଲାଟ-ସମ୍ବନ୍ଧୀୟ,ଲଲାଟରେ ପେନାସିବାପାଇଁ ଉପଯୁକ୍ତ ।

ଲଲାମ—ବି. (ଲଲ+ଆମ)ଲଲାଟଭୂଷଣ, ଲଲାଟସ୍ଥିତ ତିଳକଚିହ୍ନ, ପୁଣ୍ଡ୍ର, ଅଶ୍ୱର ବା ବୃଷଭର ଲଲାଟସ୍ଥିତ ରଞ୍ଜିତ ଚିହ୍ନ, ଚିହ୍ନ, ଶୃଙ୍ଗ, ପୁଚ୍ଛ, ଧ୍ୱଜ, ପତାକା, ପ୍ରଭାବ, ନାମ, ଶ୍ରେଣୀ, ହାତୀର ଶୁଣ୍ଢ, ପ୍ରଧାନ ବ୍ୟକ୍ତି, ରତ୍ନ, ଘୋଡ଼ା,ଘୋଡ଼ାର ସାଜ, ଘୋଡ଼ା ଓ ସିଂହର ବେକ ଉପ-ରର କେଶ, କେଶର, (ବିଂ) ଶ୍ରେଷ୍ଠ, ସୁନ୍ଦର,ନାଲିଆ,ଲଲାଟରେ ଚିହ୍ନଯୁକ୍ତ ।

ଲଲ୍ଲମକ—କ୍ଳୀ.ବି. ଲଲାଟୋପରି ଲମ୍ବମାନ ମାଳ୍ୟ, ଲଲ୍ଲମ ଦେଖ ।

ଲଲ୍ଲମଗୁ—ବି. ଚିହ୍ନ, ଲିଙ୍ଗ ।

ଲଲ୍ଲମଭୂତ—ବିଂ. ଯେ ଲଲ୍ଲମ (ଶ୍ରେଷ୍ଠ ବା ସୁନ୍ଦର)ହୋଇଅଛି,(ସ୍ତ୍ରୀ)ଲଲ୍ଲମଭୂତା

ଲଲ୍ଲମବାନ୍—ତ୍ରି.ବିଂ.ସୁନ୍ଦର,ଅଳଂକୃତ ।

ଲଲ୍ଲମୀ—ସ୍ତ୍ରୀ.ବି. (ଲଲ୍+କ.ଅମ୍+ଈ) ଦୋଲାୟମାନ ଓ କର୍ଣ୍ଣଭୂଷଣବିଶେଷ, କୁଣ୍ଡୁଳ, ନୁଡ଼ୁକ, ସୌନ୍ଦର୍ଯ୍ୟ, ନାଲିରଙ୍ଗ, (ସ୍ତ୍ରୀ.ବିଂ--ଲଲ୍ଲମ+ଈ)ଲଲ୍ଲମର ସ୍ତ୍ରୀଲିଙ୍ଗ ।

ଲଳିତ—ବିଂ. (ଲଲ୍+ତ) ନିର୍ଦ୍ଦୋଷ, ସୁନ୍ଦର, ଇପ୍ସିତ, ଚଳିତ, କୋମଳ, ପ୍ରିୟ, ସୁକୁମାର, ଦୋଲାୟମାନ, (ବି) ବିଳାସ,କ୍ରୀଡ଼ା,ଲସ୍ୟ=ସ୍ତ୍ରୀ ନୃତ୍ୟ,ଗତି, ଚଳନ, ହାରବିଶେଷ, ସ୍ତ୍ରୀଗୃହ, ଅନ୍ଦରମହଲ, ଷାଡ଼ବଜାତୀୟ ରାଗିଣୀବିଶେଷ, ଏକବର୍ଣ୍ଣ ବୃତ୍ତ, ସୌନ୍ଦର୍ଯ୍ୟ, ଛଳହୀନ କର୍ମ, ସରଳତା, ନିର୍ଦ୍ଦୋଷତା, ସ୍ତ୍ରୀମାନଙ୍କର ଶୃଙ୍ଗାରଭାବଜ କ୍ରିୟାବିଶେଷ (ଭଙ୍ଗି, କଟାକ୍ଷପାତାଦି) ।

ଲଳିତକ—କ୍ଳୀ.ବି. ପ୍ରାଚୀନ ତୀର୍ଥବିଶେଷ

ଲଳିତକଳା—ବି. ସୂକ୍ଷ୍ମକଳା ଦେଖ ।

ଲଳିତକାନ୍ତା—ସ୍ତ୍ରୀ. ବି. ମଙ୍ଗଳଚଣ୍ଡିକା, ଦୁର୍ଗାଙ୍କ ଅବତାରବିଶେଷ ।

ଲଳିତକାମୋଦୀ—ବି. ସଙ୍ଗୀତର ରାଗବିଶେଷ ।

ଲଳିତଚତୁଷ୍ପଦୀ—ବି. ଛନ୍ଦୋବିଶେଷ ।

ଲଳିତତାଳ—ପୁଂ.ବି.ସଙ୍ଗୀତର ତାଳବିଶେଷ ।

ଲଳିତପଦ—ବିଂ.(ବି.ଗ୍ରା)ସୁନ୍ଦର ପଦଯୁକ୍ତ, ଯହିଁରେ ସୁନ୍ଦର ପଦ ବା ଶବ୍ଦ ଥାଏ । [ବିଶେଷ ।

ଲଳିତପୁରାଣ—କ୍ଳୀ. ବି. ବୌଦ୍ଧପୁରାଣ-

ଲଳିତପ୍ରହାର—ପୁଂ.ବି. ଅଳ୍ପପ୍ରହାର ।

ଲଳିତରେ—କ୍ରି.ବି.ବିଂ. ମଧୁରଭାବରେ

ଲଳିତା—ସ୍ତ୍ରୀ.ବିଂ. ଲଳିତର ସ୍ତ୍ରୀଲିଙ୍ଗ, (ବି) ଦୁର୍ଗା, ରାଧାଙ୍କ ଅଷ୍ଟ ସହଚରୀ ମଧ୍ୟରୁ ପ୍ରଧାନ ସଖୀ, କସ୍ତୁରୀ, ନଦୀବିଶେଷ,ଲଳନା,ନାରୀ,ରାଗିଣୀବିଶେଷ, ବର୍ଣ୍ଣବୃତ୍ତବିଶେଷ ।

ଲଳିତାଙ୍ଗ—ପୁଂ. ବିଂ. ସୁନ୍ଦର ଅବୟବଯୁକ୍ତ, (ସ୍ତ୍ରୀ)ଲଳିତାଙ୍ଗୀ ।

ଲଳିତାତନ୍ତ୍ର—କ୍ଳୀ.ବି. ତନ୍ତ୍ରବିଶେଷ ।

ଲଳିତାତୃତୀୟାବ୍ରତ—କ୍ଳୀ.ବି.ସ୍ତ୍ରୀମାନଙ୍କର କର୍ତ୍ତବ୍ୟ ବ୍ରତବିଶେଷ ।

ଲଳିତାପଞ୍ଚମୀ—ସ୍ତ୍ରୀ. ବି. ଆଶ୍ୱିନ ଶୁକ୍ଳା ପଞ୍ଚମୀ ।

ଲଳିତାଭିନୟ—ବି. (କ.ଧା) ପ୍ରେମସମ୍ବନ୍ଧୀୟ ଅଭିନୟ ।

ଲଳିତାଷଷ୍ଠୀ—ବି. ଭାଦ୍ରବ କୃଷ୍ଣା ଷଷ୍ଠୀ ।

ଲଳିତାସପ୍ତମୀ--ସ୍ତ୍ରୀ.ବି. ଭାଦ୍ର ଶୁକ୍ଳାସପ୍ତମୀ ଦିନ ଅନୁଷ୍ଠେୟ ବ୍ରତ ।

ଲଳିତାସ୍ୟ—ପୁଂ. ବିଂ. (ବି.ଗ୍ରା)ସୁନ୍ଦର ମୁଖଯୁକ୍ତ । [ବିଶେଷ ।

ଲଳିତୋପମା—ବି. ଉପମାଳଂକାର-

ଲଲେଇ—ଗ୍ରା.ବିଂ.ଅତ୍ୟନ୍ତ ଲାଳାୟିତ ।

ଲଲ୍ଲ—ପୁଂ. ବି.ପ୍ରାଚୀନ ଭାରତର ଜଣେ ପ୍ରଧାନ ଜ୍ୟୋତିଷୀ ।

ଲଲ୍ଲର—ପୁଂ.ବିଂ. ଖଞ୍ଜ, (ସ୍ତ୍ରୀ) ଲଲ୍ଲରା ।

ଲଲ୍ଲସିଦ୍ଧାନ୍ତ—ବି.ପ୍ରସିଦ୍ଧ ହିନ୍ଦୁ ଜ୍ୟୋତିଷୀ ଲଲ୍ଲଙ୍କ ରଚିତ ଜ୍ୟୋତିଷ ଗ୍ରନ୍ଥବିଶେଷ ।

ଲବ—ବି. (ଲୂ+ଭା.ଅ) ଛେଦନ, ଶସ୍ୟ ବୃକ୍ଷର ଛେଦନ, ବିଳାସ, ବିନାଶ, (ର୍ମ.ଅ) ଚମରୀ, ଗୋପୁଚ୍ଛର ଲୋମ, କଣା, କଣିକା, ଅଣୁ, ସୂକ୍ଷ୍ମ କାଳ, ଚକ୍ଷୁର ନିମେଷର ୬୦ ଭାଗରୁ ଏକଭାଗ, ରାମଚନ୍ଦ୍ରଙ୍କ ପୁତ୍ରବିଶେଷ,ରେଣୁ ପୁଷ୍ପରେଣୁ. (ଗଣିତ) ଭଗ୍ନାଂଶର ବିଭାଜ୍ୟ ରାଶି, ଜାଇଫଳ, ଲବଙ୍ଗ, ଲବଣ, ଦତ୍ତରପକ୍ଷୀ, ଲାମଜ୍ଜକ, ଗନ୍ଧବେଣା, ଊର୍ଣ୍ଣା.ପଶମ । [ବିଶେଷ ।

ଲବକ—ବି.(ଲୂ+ଅକ)ଛେଦକ ଦ୍ରବ୍ୟ-

ଲବକୁଶ—ଗ୍ରା.ବି. ରାମଚନ୍ଦ୍ରଙ୍କର ଯମଜ ପୁତ୍ରଦ୍ୱୟ ।

ଲବଙ୍ଗ—କ୍ଳୀ.ବି. (ଲୂ+ଅଙ୍ଗ) ବଣିକ୍ଦ୍ରବ୍ୟବିଶେଷ, ଲବଙ୍ଗ ବୃକ୍ଷର ଶୁଷ୍କ ପୁଷ୍ପମୁକୁଳ, ଦେବକୁସୁମ, ଜମ୍ବୁକାଦିବର୍ଗର ତରୁବିଶେଷ, ଜାର, ଉପପତି ।

ଲବଙ୍ଗକ—କ୍ଳୀ.ବି (ଲବଙ୍ଗ+କ)ଲବଙ୍ଗ ଦେଖ । [ପତ୍ର ।

ଲବଙ୍ଗକନ୍ଦପତ୍ରୀ—ସ୍ତ୍ରୀ.ବି. ଲଘୁତାଳୀଶ-

ଲବଙ୍ଗକଳିକା—ସ୍ତ୍ରୀ.ବି. ଲବଙ୍ଗ ଗଛର ଶୁଷ୍କ ପୁଷ୍ପମୁକୁଳ ।

ଲବଙ୍ଗତୈଳ—ବି. ଲବଙ୍ଗରୁ ପ୍ରସ୍ତୁତ ତୈଳ ।

ଲବଙ୍ଗଲତା—ସ୍ତ୍ରୀ.ବି. ନାରଙ୍ଗାଦିବର୍ଗର ଲଟାଳିଆ ଏକପ୍ରକାର କଣ୍ଟାଗଛ, ରାଧିକାଙ୍କର ଏକ ସଖୀର ନାମ ।

ଲବଙ୍ଗଲତିକା-ସ୍ତ୍ରୀ.ବି.ଲବଙ୍ଗଲତା ଦେଖ

ଲବଙ୍ଗାଦିଚୂର୍ଣ୍ଣ—ବି.ଗ୍ରହଣୀ ଓ ଅତିସାର ରୋଗର ଚୂର୍ଣ୍ଣୌଷଧବିଶେଷ ।

ଲବଜ୍—ଯା.ବି. ଅକ୍ଷର, ବୋଲି, କଥା, ଭାଷା, ବାକ୍ୟ,ଶବ୍ଦ, ଥଟ୍ଟା, କୌତୁକ ।

ଲବଣ—କ୍ଳୀ.ବି. (ଲୂ+କ.ଆନ)କ୍ଷାର, ରସଯୁକ୍ତ ଦ୍ରବ୍ୟ, ଲୁଣ, ଦୀପ୍ତି, ଲବଣ ସମୁଦ୍ର, ଲବଣାସୁର, ଷଡ଼ରସ ମଧ୍ୟରୁ ଲୁଣିଆ ରସ, (ବିଂ) କ୍ଷାର ରସଯୁକ୍ତ, ଲୁଣିଆ, ଲାବଣ୍ୟଯୁକ୍ତ ।

ଲବଣକିଂଶୁକା—ସ୍ତ୍ରୀ.ବି. ମହାଜ୍ୟୋତିଷ୍ମତୀ ଲତା, ଏକପ୍ରକାର ବଡ଼ ଫୁଟିଫୁଟିକା ।

ଲବଣଖଣି—ପୁଂ.ବି. (୬ତତ୍) ଲବଣାକର, ଲୁଣଖଣି ।

ଲବଣଗ୍ରମଣ୍ଡ—ଗ୍ରା.ବି.ବିବାହରେ କନ୍ୟା ନିଜ ପତିର (ଅର୍ଥାତ୍ ବରର) ଆୟୁଃବୃଦ୍ଧ୍ୟାଦି ଶୁଭକାମନା ପୂର୍ବକ ଦୁର୍ଗାଙ୍କୁ ପ୍ରାର୍ଥନା କରି ବର ଉପରକୁ ସୋରିଷ ମିଶ୍ରିତ ଲବଣକ୍ଷେପଣ କରିବା କ୍ରିୟା ।

ଲବଣଜଳ—ବି. (ବି.ଗ୍ରା) ଲବଣସମୁଦ୍ର, (କ.ଧା) ଲୁଣିଆଁ ପାଣି ।

ଲବଣଜଳଧି—ପୁଂ.ବି. ଲବଣ ସମୁଦ୍ର ।

ଲବଣଜଳନିଧି—ପୁଂ.ବି.ଲବଣ ସମୁଦ୍ର ।

ଲବଣତା—ସ୍ତ୍ରୀ. ବି. ଲବଣତ୍ୱ, ଲବଣାକ୍ତତା, ଲବଣଯୁକ୍ତତା ।

ଲବଣତୃଣ—କ୍ଳୀ. ବି. ଏକପ୍ରକାର ଲୁଣା ତୃଣ, ଲେଣି ।

ଲବଣତୋୟ—ବ. (ବ.ବ୍ରୀ) ଲବଣ ସମୁଦ୍ର, (କ.ଧା) ଲୁଣିଆ ପାଣି ।
ଲବଣତ୍ରୟ—କ୍ଲୀ. ବ. ତ୍ରିବିଧ ଲବଣ, ସୈନ୍ଧବ ବିଟ୍ ଓ ସଚଳ ଲବଣ ।
ଲବଣଦ୍ୱୟ—କ୍ଲୀ. ବ. ଦ୍ୱିବିଧ ଲବଣ, ସଚଳ ଓ ସୈନ୍ଧବ ।
ଲବଣଧେନୁ—ସ୍ତ୍ରୀ.ବ. (କ.ଧା) ଦାନାର୍ଥ କଳ୍ପିତ ଲବଣନିର୍ମିତ ଧେନୁ ।
ଲବଣନିତ୍ୟ—ବି°. ପ୍ରତିଦିନ ଲବଣ ରସାସ୍ୱାଦନଶୀଳ ।
ଲବଣପାଟଳିକା—ସ୍ତ୍ରୀ.ବ. ଲବଣ ଥଳି ।
ଲବଣଭାସ୍କର-ବ.ଅଗ୍ନିବୃଦ୍ଧିର ଔଷଧବିଶେଷ
ଲବଣଭେଦ—ବ. ଲବଣକ୍ଷାର, ସାଧାରଣ ଲୁଣ ।
ଲବଣମଦ—ବ.ଲୁଣକ୍ଷାର,ସାଧାରଣ ଲୁଣ
ଲବଣମନ୍ତ୍ର—ପୁଂ.ବ.ଲୁଣ ଉତ୍ସର୍ଗକାଳୀନ ମନ୍ତ୍ରବିଶେଷ, (ଗ୍ରା.ବ) ଲୁଣମନ୍ତ୍ର ଦେଖ ।
ଲବଣମେଦି—ବ. ସାଧାରଣ ଲୁଣ ।
ଲବଣମେହ—ବ. ମେହରୋଗବିଶେଷ ।
ଲବଣଯନ୍ତ୍ର—କ୍ଲୀ.ବ.ଔଷଧ ପାକ ନିମିତ୍ତ ଲବଣପୂର୍ଣ୍ଣ ଯନ୍ତ୍ରବିଶେଷ ।
ଲବଣବର୍ଷ—ବ. କୁଶ ଦ୍ୱୀପାନ୍ତର୍ଗତ ବର୍ଷ ବା ଦେଶବିଶେଷ ।
ଲବଣବାରି—ବ. (କ.ଧା) ଲୁଣିଜଳ, (ବ.ବ୍ରୀ) ଲବଣ ସମୁଦ୍ର ।
ଲବଣସମୁଦ୍ର—ପୁଂ. ବ. ଲୁଣି ସମୁଦ୍ର ।
ଲବଣା—ସ୍ତ୍ରୀ. ବ. ନଦୀବିଶେଷ, ଦୀପ୍ତି, ଲାବଣ୍ୟ, ମହାଜ୍ୟୋତିଷ୍ମତୀ, ନିହତ ଶତ୍ରୁକ ବ୍ୟକ୍ତି, ଆମ୍ବଆଦି ଖଟା ଫଳର ରସରେ ଲୁଣ ଦେଇ ପ୍ରସ୍ତୁତ କରାଯିବା ପାଚକ ପଦାର୍ଥ, ଅମ୍ଳଲୋଣି ଶାଗ ।
ଲବଣାକର—ବ. (୬ତତ୍ପୁ) ଲୁଣଖଣି ।
ଲବଣାକ୍ତ—ବି°. (୩ତତ୍ପୁ) ଲୁଣମିଶ୍ରିତ, ଲୁଣିଆ ।
ଲବଣାଚଳ—ବ.ମତ୍ସ୍ୟ ପୁରାଣୋକ୍ତ ଲୁଣ ପର୍ବତର ଦାନ ।
ଲବଣାତ୍ମକ—ବି°. (ବ.ବ୍ରୀ) ଲବଣମୟ, ଲୁଣିଆ ।
ଲବଣାନ୍ତକ—ପୁଂ.ବ. (୬ତତ୍ପୁ) ଶତ୍ରୁଘ୍ନ (ଏ ଲବଣାସୁରଙ୍କୁ ବଧକରିଥିଲେ) ।
ଲବଣାବ୍ଧି—ପୁଂ. ବ. ଲବଣ ସମୁଦ୍ର ।
ଲବଣାବ୍ଧିଜ—କ୍ଲୀ. ବ. ସାମୁଦ୍ର ଲବଣ ।
ଲବଣାମ୍ବୁ(ମ୍ଭଃ)—ବ(କ.ଧା)ଲବଣ ଜଳ, ଲୁଣିପାଣି, (ବ.ବ୍ରୀ) ସମୁଦ୍ର ।
ଲବଣାମ୍ବୁରାଶି—ବ (ଲବଣ+ଅମ୍ବୁରାଶି) ଲୁଣିସମୁଦ୍ର,ଜଳସମୂହ ।
ଲବଣାମ୍ବୁଧି—ବ.(କ.ଧା)ଲବଣ ସମୁଦ୍ର ।
ଲବଣାମ୍ଭଃ—ବ.(କ.ଧା)ଲବଣାମ୍ବୁ ଦେଖ ।
ଲବଣାର—କ୍ଲୀ.ବ.ଲବଣ କ୍ଷାର, ସାଧାରଣ ଲୁଣ ।
ଲବଣାରଜ—କ୍ଲୀ. ବ. ଲବଣ କ୍ଷାର, ସାଧାରଣ ଲୁଣ ।
ଲବଣାର୍ଣ୍ଣବ—ପୁଂ. ବ. ଲବଣ ସମୁଦ୍ର ।
ଲବଣାଳୟ—ବ. ( ଲବଣ + ଆଳୟ ) ଲବଣାସୁରର ଘର, ମଧୁପୁରୀ (ଯାହା ଅରେ ମଥୁରା ନାମରେ ପ୍ରସିଦ୍ଧ ହେଲା)
ଲବଣାଶ୍ୱ—ପୁଂ.ବ.ମହାଭାରତ ବର୍ଣ୍ଣିତ ଜନୈକ ବ୍ରାହ୍ମଣ ।
ଲବଣାସୁର—ବ.(କ.ଧା)ରାକ୍ଷସବିଶେଷ ।
ଲବଣିଆଁ—ଗ୍ରା.ବ.ଲୁଣିଆ,ଲବଣଯୁକ୍ତ ।
ଲବଣିକା—ବ.ଲୁଣଲୁଣିଆଁ ଦେଖ ।
ଲବଣୀ—ସ୍ତ୍ରୀ. ବ. ଲଭ୍ରୁଣୀ, ଏକପ୍ରକାର ଆତଫଳ, ବଡ଼ିଆଳ ।
ଲବଣୀପିତୁଳା—ଗ୍ରା.ବ. ନବନୀତ ନିର୍ମିତ ପ୍ରତିମା,(ଲ.ଅର୍ଥ)ଅତି କୋମଳ ଶରୀର ବିଶିଷ୍ଟ ବ୍ୟକ୍ତି ।
ଲବଣୋତ୍ତମ—ବ. (ଲବଣ+ଉତ୍ତମ) ସୈନ୍ଧବ ଲବଣ ।
ଲବଣୋତ୍ଥ—କ୍ଲୀ.ବ. ଲୁଣକ୍ଷାର, ସାଧାରଣ ଲୁଣ ।
ଲବଣୋତ୍ଥା-ସ୍ତ୍ରୀ.ବ.ଜ୍ୟୋତିଷ୍ମତୀ ଲତା, ଶ୍ଳେଷ୍ମ ଫୁଟିଫୁଟିକା ।
ଲବଣୋଦ—ପୁଂ. ବ. (ଲବଣ+ଉଦ) ଲବଣ ସମୁଦ୍ର, ଲୁଣିପାଣି ।
ଲବଣୋଦକ—ବ. ଲବଣମିଶ୍ରିତ ଜଳ, ସମୁଦ୍ର ।
ଲବଣୋଦଧି—ପୁଂ.ବ. ଲବଣ ସମୁଦ୍ର ।
ଲବନ—କ୍ଲୀ.ବ. (ଲୂ+ଭା.ଅନ)ଶସ୍ୟ-ଗଛ କାଟିବା, ଛେଦନ, କର୍ତ୍ତନ,ଶସ୍ୟ କାଟିବା ମୂଲଆକୁ ଦିଆଯିବା ମୂଲ, (କ.ଅନ) ଖଡ୍ଗାଦି ଛେଦନ ଅସ୍ତ୍ର ।
ଲବନି—ସ୍ତ୍ରୀ.ବ. (ଲୂ+ଅନ+ଇ) ଆତ ଫଳ ଓ ଗଛ ।
ଲବନୀୟ—ବି.ବି°.(ଲୂ+ଅନୀୟ)ଛେଦନୀୟ, ଛେଦନଯୋଗ୍ୟ ।
ଲବମାତ୍ର—ଗ୍ରା.କ୍ରି.ବି°.ଅଣୁମାତ୍ର,ଲେଶମାତ୍ର, କ୍ଷଣମାତ୍ର ।
ଲବରା—ଗ୍ରା.ବି°. ଖେଚଡ଼ା ।
ଲବଲୀ—ସ୍ତ୍ରୀ.ବ. ନଥରକୋଳି ।
ଲବଲେଶ—ଅବ୍ୟ. ସାମାନ୍ୟମାତ୍ର,କ୍ଷଣମାତ୍ର, ଅତ୍ୟଳ୍ପ ସଂସର୍ଗ ।
ଲବବାନ୍-ପୁଂ.ବି°.(ଲବ+ବତ୍)କ୍ଷଣସ୍ଥାୟୀ
ଲବଶଃ—ଅବ୍ୟ.ଖଣ୍ଡଖଣ୍ଡ,ମୁହୂର୍ତ୍ତିକ ପାଇଁ ।
ଲବାକ—ବ.(ଲବ+ଅକ+ଅ)ଛେଦନ ଦ୍ରବ୍ୟ ।
ଲବାକି—ଯା. ବ. ବାକ୍‌ଗୃତୁଶ ।
ଲବାଣକ—ପୁଂ.ବ. ( ଲୂ+ଣ.ଆଣକ ) ଖଡ୍ଗାଦି ଛେଦନାସ୍ତ୍ର, ଦାଆ, କଟୁରି ।
ଲବାଦା—ଯା.ବ.ବର୍ଷାରୁ ରକ୍ଷାପାଇବାର ପୋଷାକ, ବର୍ଷାତି ।
ଲବାଲବ୍—ଯା.ଅବ୍ୟ.ମୁହଁପର୍ଯ୍ୟନ୍ତ ଭର୍ତ୍ତି ହୋଇଥିବା ।
ଲବି—ବି.ବି°.(ଲୂ+ମି.ଇ)ଛିନ୍ନ,ଛିଣ୍ଡା, ଭିନ୍ନ, ଜୀର୍ଣ୍ଣ, ଛିଦ୍ରୀକୃତ ।
ଲବିକା—ବ. (ଲବ+କ+ଆ) ଛେପ, ପାଟିର ଲାଳ, ଶରୀରର ବର୍ଣ୍ଣହୀନ ରସ, ନସା ।
ଲବିତ୍ର—କ୍ଲୀ.ବ. ( ଲୂ+ଇତ୍ର ) କଟୁରି ଦାଆଆଦି ଛେଦନାସ୍ତ୍ର, (ବି°-କ.ଇତ୍ର) ଛେଦନକାରକ ।
ଲବେ—ଗ୍ରା.କ୍ରି.ବି°. ଲବମାତ୍ର,କିଛିମାତ୍ର, ତିଳମାତ୍ର । [ କୋଳ ।
ଲବେଙ୍କୁଡ଼—ପ୍ରା.(ଙ୍କ୍ଷୋମ)ବ.ଲଟାବେଏଁ-
ଲବେଜାନ୍—ଯା.ବି°. ହଗାଲଗା,ପ୍ରାଣାନ୍ତକ କଷ୍ଟ ପାଉଥିବା, ବ୍ୟାକୁଳ ।
ଲବେଦାର—ଯା.ବି°.ଫିଟ୍‌ଫାଟ୍ ପୋଷାକ ଦ୍ୱାରା ଭୂଷିତ ।

ଲବେମାଣ—ଗ୍ରା.ଅବ୍ୟ. ଲବମାଣ ଦେଖ

ଲବ୍ୟ—ବି.ବଂ, (ଲବ୍+ଯ) ଛେଦନ-ଯୋଗ୍ୟ ।

ଲବ୍ଧ—ବି.ବଂ. (ଲଭ୍+ମି.ତ) ପ୍ରାପ୍ତ, ଉପାର୍ଜିତ, ଗୃହୀତ, (ସ୍ତ୍ରୀ) ଲବ୍ଧା, ବ. (ଗଣିତ) ଭାଗଫଳ,(ହିନ୍ଦୁସ୍ମୃତି) ପନ୍ଦର ପ୍ରକାର ଦାସଙ୍କ ମଧ୍ୟରୁ ଏକଶ୍ରେଣୀ ।

ଲବ୍ଧକ—ବି.ବଂ.(ଲବ୍ଧ+କ)ପ୍ରାପକ,ଯେ ପାଇଅଛି ।

ଲବ୍ଧକାମ—ପୁଂ. ବଂ. (ବ.ଗ୍ରା) ଯାହାର ଇଚ୍ଛା ପୂର୍ଣ୍ଣ ହୋଇଅଛି,(ସ୍ତ୍ରୀ)ଲବ୍ଧକାମା

ଲବ୍ଧକୀର୍ତ୍ତି—ପୁଂ.ବଂ. (ବ.ଗ୍ରା) ଯଶସ୍ୱୀ, ପ୍ରତିଷ୍ଠାବାନ୍, ବିଖ୍ୟାତ ।

ଲବ୍ଧଚେତାଃ—ପୁଂ.ବଂ. (ବ.ଗ୍ରା)ପୁନଃ-ପ୍ରାପ୍ତଚିତ୍ତ, ଯେ ସଂଜ୍ଞା ବା ଚେତା ଲାଭ କରିଅଛି ।

ଲବ୍ଧଜନ୍ମା—ପୁଂ.ବଂ.(ବ.ଗ୍ରା) ଯେ ଜନ୍ମ ଲାଭ କରିଅଛି, ଜାତ ।

ଲବ୍ଧଧନ—ପୁଂ.ବଂ. (ବ.ଗ୍ରା) ଧନବାନ୍, ଯେ ଧନ ଲାଭ କରିଅଛି ।

ଲବ୍ଧନାମା—ପୁଂ.ବଂ. (ବ.ଗ୍ରା) ଖ୍ୟାତ-ନାମା, ବିଖ୍ୟାତ, ପ୍ରସିଦ୍ଧ ।

ଲବ୍ଧନାଶ—ପୁଂ.ବ.(୬ତତ୍ପୁ)ପ୍ରାପ୍ତ ବସ୍ତୁର ନାଶ, ମିଳିଥିବା ବସ୍ତୁର ନାଶ ।

ଲବ୍ଧପୁତ୍ର—ପୁଂ.ବଂ. (ବ.ଗ୍ରା) ଏକପୁତ୍ର-ବିଶିଷ୍ଟ, (ସ୍ତ୍ରୀ) ଲବ୍ଧପୁତ୍ରୀ ।

ଲବ୍ଧପ୍ରତିଷ୍ଠ—ପୁଂ. ବଂ. ( ବ.ଗ୍ରା ) ଯେ ପ୍ରତିଷ୍ଠା ଲାଭ କରିଅଛି, ବିଖ୍ୟାତ,ସମ୍ମା-ନିତ, (ସ୍ତ୍ରୀ) ଲବ୍ଧପ୍ରତିଷ୍ଠା ।

ଲବ୍ଧପ୍ରବେଶ—ବଂ. (ବ.ଗ୍ରା) ପ୍ରବେଶର ଅନୁମତିପ୍ରାପ୍ତ, କୃତପ୍ରବେଶ, ପ୍ରବିଷ୍ଟ ।

ଲବ୍ଧପ୍ରଣମନ—ବ. (୬ତତ୍ପୁ)ଲବ୍ଧ ପଦା-ର୍ଥକୁ ନିରାପଦରେ ରଖିବା,ଲବ୍ଧ ପଦା-ର୍ଥର ସତ୍ପାତ୍ରରେ ଅର୍ପଣ ।

ଲବ୍ଧଲକ୍ଷ—ପୁଂ.ବଂ. (ବ.ଗ୍ରା)ଯେ ନିଶାନ ବା ଲକ୍ଷ ବିଦ୍ଧ କରିଅଛି,ଯାହାକୁ ଅଭି-ପ୍ରେତ ବସ୍ତୁ ମିଳିଅଛି,ବାଣ ବିଦ୍ଧ କରିବା ବିଷୟରେ ଦକ୍ଷ ।

ଲବ୍ଧବର—ପୁଂ.ବଂ.(ବ.ଗ୍ରା) ବରପ୍ରାପ୍ତ, ଯେ ବର ପାଇଅଛି ।

ଲବ୍ଧବର୍ଣ୍ଣ—ପୁଂ. ବଂ. (ବ.ଗ୍ରା) ପଣ୍ଡିତ. ଜ୍ଞାନୀ, ବିଚକ୍ଷଣ, ବିଖ୍ୟାତ, ଲବ୍ଧପ୍ରତିଷ୍ଠ, ଶିକ୍ଷିତ,(ସ୍ତ୍ରୀ) ଲବ୍ଧବର୍ଣ୍ଣା ।

ଲବ୍ଧବିଦ୍ୟ—ପୁଂ.ବଂ. (ବ.ଗ୍ରା) ପଣ୍ଡିତ, ଯେ କୌଣସି ବିଦ୍ୟାକୁ ଆୟତ୍ତ କରି-ଅଛନ୍ତି, ବିଦ୍ୱାନ୍, ଶିକ୍ଷିତ,(ସ୍ତ୍ରୀ) ବିଦ୍ୟା ।

ଲବ୍ଧବ୍ୟ—ବି.ବଂ.(ଲଭ୍+ତବ୍ୟ)ଲାଭାର୍ହ, ଲାଭର ଉପଯୁକ୍ତ । [ ବିଖ୍ୟାତ ।

ଲବ୍ଧଶବ୍ଦ—ପୁଂ.ବଂ. (ବ.ଗ୍ରା)ଲବ୍ଧନାମା,

ଲବ୍ଧସିଦ୍ଧି—ପୁଂ.ବଂ. (ବ.ଗ୍ରା) ଯେ ସିଦ୍ଧି ଲାଭ କରିଅଛନ୍ତି, ସଫଳକାମ ।

ଲବ୍ଧସୁଖ—ପୁଂ.ବଂ. ( ବ.ଗ୍ରା )ଯେ ସୁଖ ପାଇଅଛି, ସୁଖୀ, (ସ୍ତ୍ରୀ) ଲବ୍ଧସୁଖା ।

ଲବ୍ଧା—ସ୍ତ୍ରୀ.ବ.(ଲଭ୍+ତ+ଆ)ନାୟିକା-ବିଶେଷ, ବିପ୍ରଲବ୍ଧା ନାୟିକା, ଦୁର୍ଗା, (ବଂ) ଗୃହୀତା, ପ୍ରାପ୍ତା, ଅର୍ଜିତା ।

ଲବ୍ଧାଂଶ—ବ. ଭାଗଫଳ । [ ସଂଖ୍ୟା ।

ଲବ୍ଧାଙ୍କ—ବ. ଗଣନାଫଳରେ ପ୍ରାପ୍ତ

ଲବ୍ଧାନୁଜ୍ଞ—ପୁଂ.ବଂ.(ବ.ଗ୍ରା)ଯେ ଅନୁଜ୍ଞା ଲାଭ କରିଅଛି ।

ଲବ୍ଧାର୍ଥ—ବ. (କ.ଧା) ମିଳିଥିବା ଧନ, (ପୁଂ.ବଂ.ବ.ଗ୍ରା)ଯେ ଧନ ଲାଭ କରିଅଛି ଯେ ଅର୍ଥ ବୁଝିପାରିଅଛି, ଲବ୍ଧକାମ ଦେଖ,(ସ୍ତ୍ରୀ) ଲବ୍ଧାର୍ଥା । [ ପାଇଅଛି ।

ଲବ୍ଧାବକାଶ—ପୁଂ. ବଂ. ଯେ ଅବକାଶ

ଲବ୍ଧାବସର—ପୁଂ.ବଂ. ( ବ.ଗ୍ରା ) ଯେ କାର୍ଯ୍ୟରୁ ଅବସର ଗ୍ରହଣ କରିଅଛି, ପେନସନ୍ ପ୍ରାପ୍ତ ।

ଲବ୍ଧି—ସ୍ତ୍ରୀ.ବ. (ଲଭ୍+ତି)ଲାଭ,ପ୍ରାପ୍ତି, ଗ୍ରହଣ,ଆୟ,ଭାଗଫଳ,ଲବ୍ଧାଙ୍କ ଦେଖ ।

ଲବ୍ଧୋଦୟ—ପୁଂ. ବଂ. (ବ.ଗ୍ରା) ଜାତ, ଉତ୍ପନ୍ନ, ସମୁତ୍ପନ୍ନ, ଉଦ୍ଭୂତ, ଉଦିତ ହୋଇଥିବା । [ ଲବ୍ଧ ।

ଲବ୍ଧିମ—ବି.ବଂ.(ଲଭ୍+ମି.ଡିମ)ପ୍ରାପ୍ତ,

ଲଲ୍ପଣ୍—ଗ୍ରା.ବ. ହାଇଁ ପାଇଁ,କୌଣସି ବସ୍ତୁକୁ ଧରିବାର ବା ପାଇବାର ଅଭି-ଳାଷ,ଲୁଚ୍‌ପୁଚ୍ ଦେଖ । [ଗଛ ।

ଲଶଡ଼ା—ଗ୍ରା.ବ.(ସଂ-ଶ୍ଳେଷ୍ମାନ୍ତକ)ଗର୍ଭିଣୀ-

ଲଶମ—ଗ୍ରା.ବ.(ସଂ-ଶ୍ଳେଷ୍ମା)ଶ୍ଳେଷ୍ମାରୋଗ, ନାକରୁ ପାଣି ବାହାରିବାଆଦି,ଆର୍ଦ୍ରତା ।

ଲଶମା—ଗ୍ରା. ପୁଂ. ବଂ. ଶ୍ଳେଷ୍ମା ରୋଗା-କ୍ରାନ୍ତ,ଶ୍ଳେଷ୍ମାପ୍ରକୃତିକ, ମାନ୍ଦା,ଲେଶମା, ଯାହାର ଚଞ୍ଚଳତା ବା ସ୍ଫୁର୍ତ୍ତି ନ ଥାଏ ।

ଲଶୁନ—ବ. (ଅଶ୍+ମି.ଉନ) ରଶୁଣ ଦେଖ । [ ବୈଦୂର୍ଯ୍ୟ ।

ଲଶୁନା—ବ (ଲଶୁନ+ଆ)ରତ୍ନବିଶେଷ,

ଲଷିତ—ବଂ. (ଲଷ୍+ମି.ତ) ବାଞ୍ଛିତ, ଅଭିଲଷିତ ।

ଲସ—ବ.(ଲସ୍+ଭା.ଅ) ଅନ୍ୟ ବସ୍ତୁରେ ଲାଗିଯିବା ଗୁଣ, ଅଠାଳିଆପଣ, (କ.ଅ) ଅଠା, ଶକ୍ତ ଆକର୍ଷଣ ।

ଲସକ—ପୁଂ.ବ.(ଲସ୍+କ.ଅକ)ନର୍ତ୍ତକ, ନଟ, (ସ୍ତ୍ରୀ) ଲସିକା ।

ଲସଡ଼ିବା—ଗ୍ରା. ବି. ଲୋସଡ଼ିବା, ଲଡ-ପଡହେବା, ସ୍ଥୌଲ୍ୟକ୍ଷୀଣ ଭାବକୁ ପାଇବା, କମିଯିବା, ଦବିଯିବା, ଅବ-ନତହେବା ।

ଲସତ୍(ନ୍)—ବଂ. ( ଲସ୍+କ.ଅତ୍ ) ଶୋଭମାନ, ପ୍ରକାଶମାନ, ଉଜ୍ଜ୍ୱଳ, ବିଳାସକାରୀ, ଉଲ୍ଲସିତ, ଚେଷ୍ଟମାନ, (ସ୍ତ୍ରୀ) ଲସନ୍ତୀ ।

ଲସରପସର—ଗ୍ରା.ବଂ.ଲଣ୍ଡଭଣ୍ଡ, ଚଞ୍ଚଳ ଚଞ୍ଚଳ ଗୁଳୁଥିବା, (କ୍ରି.ବଂ) ଲଣ୍ଡଭଣ୍ଡ ବା ଅସ୍ଥିର ଭାବରେ, ଚଞ୍ଚଳ ଚଞ୍ଚଳ ଗୁଳିବା ପ୍ରକାରେ ।

ଲସଲସ—ଗ୍ରା. ବଂ. ପୁଷ୍ଟ ଓ କଅଁଳିଆ (ଶାଗଆଦି) ।

ଲସା—ସ୍ତ୍ରୀ.,ବ. (ଲସ୍+ମି.ଆ) ହରିଦ୍ରା, ହଳଦୀ, ଲସି ଦେଖ, (ଗ୍ରା.ବ) ଶସ୍ୟରସ୍ଥ ବର୍ଣ୍ଣହୀନ ରସ, ଘାଆର ପୂଜପାଣି ।

ଲସି—ଗ୍ରା.ବ. ଆମ୍ବଆଦି ଫଳର ଭୃଣ୍ଟିରୁ ବୋହିବା ରସ, ସ୍ତନାଗ୍ର,ଚୁଚୁକ,ନାଳ ।

ଲସିଆ—ଗ୍ରା.ବଂ. ଯେଉଁ ଫଳରୁ ବେଶି ଲସି ବାହାରେ, ଅଠାଳିଆ ।

ଲସିକା—ସ୍ତ୍ରୀ.ବ (ରସ+କ.ଇକ+ଆ) ଇକ୍ଷୁରସ,ଶରୀରସ୍ଥ ପୀତାଭ ସ୍ୱଚ୍ଛ ତରଳ ରସ, ଘାଆଆଦିରୁ ବହିବା ଜାଲିସ୍ଥ

ପଦାଥ, ଜଳ, ପାଚିଲ ନାଳ ।

**ଲସିତ**—କ୍ଳୀ. ବ. (ଲସ୍+ତ) ବିଳାସ, ଉଲ୍ଲାସ, ସ୍ଫୂର୍ତ୍ତି, ଚେଷ୍ଟା, ନୃତ୍ୟ, (ବି°) ଶୋଭିତ, ଚେଷ୍ଟିତ, ବିଳାସିତ, ଦୀପ୍ତିମାନ୍, ହୃଷ୍ଟ, (ଗ୍ରା.ଦ) ଦବିଯିବା ।

**ଲସିଫିଟା(ଟେ)ଇବା**—ଗ୍ରା. କ୍ରି. ନବପ୍ରସୂତାର ସ୍ତନାଗ୍ରଚୂଚୁକରେ ଥିବା ମାଂସଳ ଖିଲକୁ ଚିପିକରି ବାହାର କରିଦେବା ଦ୍ୱାରା ଚୁଚୁକରୁ ସ୍ତନ୍ୟର ସ୍ରୋତ ବହିବାର ଉପାୟ କରିବା,(ଲ.ଅର୍ଥ)କୌଣସି କାର୍ଯ୍ୟର ପ୍ରଥମ ଆରମ୍ଭ କରିବା, କୌଣସି ବ୍ୟକ୍ତିକୁ କୌଣସି ଅନୁଭବରେ ନୂତନ ସାକ୍ଷାତହେବା ।

**ଲସିଫିଟିବା**—ଗ୍ରା.ବ ନବପ୍ରସୂତାର ସ୍ତନାଗ୍ର ଚୂଚୁକର ମୁହଁ ଖୋଲିବା, (ଲ.ଅର୍ଥ) କୌଣସି କାର୍ଯ୍ୟର ସ୍ରୋତ ଆରମ୍ଭ ହେବା ।

**ଲସୀକା**—ସ୍ତ୍ରୀ.ବ.(ଲସ୍+କ.ଇକ+ଆ) ଇକ୍ଷୁରସ, ଦୋଳୁଅ, ଶରୀରସ୍ଥ ରସ, ଜଳବତ୍ ତରଳ ପଦାର୍ଥ,ରକ୍ତର ଶିରା, ପଥରେ ପ୍ରବିଷ୍ଟ ହେବା ପୂର୍ବର ଅବସ୍ଥା ।

**ଲସ୍କର**—ଯା.ବ.ସେନା,ଫଉଜ,ପିଆଦା, ଦାସ,ସ୍ଟୋକର,ପଦାତିକ ସେନା,ଅର୍ଣ୍ଣବପୋତାଦି ପରିଚାଳକ କର୍ମଚାରୀବିଶେଷ, ଜାହାଜଖଲାସି ।

**ଲସ୍କର**—ଯା. ବ. ଲସ୍କରବୃତ୍ତି, ଦାସତ୍ୱ, ଜାହାଜିଆଭାଷା ବା ବେଦ ।

**ଲସ୍ତ**—ତ୍ରି. ବି°. (ଲସ୍+ତ) କ୍ରୀଡ଼ିତ, ଆଲିଙ୍ଗିତ, ବିଳାସୀ, ଶିଳ୍ପନୈପୁଣ୍ୟ ପ୍ରଦର୍ଶନକାରୀ (ବ୍ୟକ୍ତି), ଶୋଭାଯୁକ୍ତ ।

**ଲସ୍ତକ**—ପୁଂ. ବ. (ଲସ୍+ଣିଚ୍+କ) ଧନୁର ମଧ୍ୟଭାଗ, ଧନୁର ମୁଠା ।

**ଲସ୍ତକୀ**—ପୁଂ. ବ. (ଲସ୍ତକ+ଇନ୍)ଧନୁ, ଧନୁକ ।

**ଲହ**—ଗ୍ରା. ବ.(ସଂ-ଲତା) ସାପ, (ବି°) ଲତାଳିଆ ।

**ଲହଁକାନ**—ପ୍ରା. (ସମ୍ବ.ବ) ଲୋକେ ନଦୀଆଦିର ଯେଉଁ ପାଣିରେ ପଶି ପାରହୋଇପାରନ୍ତି, ଲଙ୍ଘ୍ୟ ପାଣି ।

ଲହଁକିବା—ପ୍ରା.(ସମ୍ବ)କ୍ରି.(ନଦୀକୁ)ପାରହେବା, ଅତିକ୍ରମକରିବା ।

ଲହଁପିବା—ଗ୍ରା.କ୍ରି. କୌଣସି ପଦାର୍ଥକୁ ହାତ ବଢ଼ାଇ ଆଣିବା ।

ଲହକ—ଗ୍ରା. ବ. ଲହସ ଦେଖ ।

ଲହଙ୍ଗ—ଗ୍ରା. ବି°. ଯାହା ସହଜରେ ଲଇଁଯାଏ, ଲକ୍‌ଲକିଆ, ପତଳିଆ ।

ଲହଙ୍ଗା—ଗ୍ରା. ବ. ( ସଂ ଲତାକରଞ୍ଜ ) ନହଙ୍ଗା, ଏକପ୍ରକାର ବନ୍ୟ କୋଳି, ଏକପ୍ରକାର ତୃଣ,ବର୍ଷାୟୁ ଶାକବିଶେଷ, (ବି°) ଲଙ୍ଗଳା ।

ଲହଡ଼ା—ଗ୍ରା. ବ. (ସଂ-ଲହରୀ) ଢେଉ, ତରଙ୍ଗ, ଓଡ଼ିଶାର ଗଡ଼ଜାତବିଶେଷ, ପାଲଲହଡ଼ା ।

ଲହଡ଼ି—ଗ୍ରା. ବ.ଲହରୀ, ସମୁଦ୍ରଆଦିର ଢେଉ ।

ଲହଡ଼ିବା—ଗ୍ରା.କ୍ରି.(ସମୁଦ୍ର ନଦୀଆଦିର) ଜଳ ପବନଦ୍ୱାରା ଆନ୍ଦୋଳିତ ହୋଇ ଲହରୀମୟ ହେବା, ଉତ୍ପାତହୋଇ ବଢ଼ିବା ।

ଲହଡ଼ିଭାଙ୍ଗିବା—ଗ୍ରା.କ୍ରି.ସମୁଦ୍ରରୁ ଅଗ୍ରସର ହେଉଥିବା ଢେଉକୁ ଛୁଡ଼ପତାଇ ସମ୍ଭାଳିବା ବା ମୁଣ୍ଡଉପର ଦେଇ ଗଳିଯିବାପାଇଁ ମୁଣ୍ଡପତାଇବା ।

ଲହଣ୍ଡା—ଗ୍ରା.ବ.ପଞ୍ଜାବପ୍ରଦେଶର କଥିତ ଭାରତର ଭାଷାବିଶେଷ ।

ଲହପିଆ—ଗ୍ରା.ବି°. ଡେଙ୍ଗା,ପତଳିଆ ।

ଲହମା—ଗ୍ରା.ବ.ନିମିଷ,କ୍ଷଣକାଳ,ମୁହୂର୍ତ୍ତ ।

ଲହର—ଗ୍ରା. ବ. ଜଳପ୍ରଣାଳୀ, ପ୍ରବାହ, ସ୍ରୋତ, ଲହରୀ,କଥାର ତରଙ୍ଗ,ଲହରୀ ପରି ବାକ୍ୟସ୍ରୋତ,ମନୋଯୋଗ,ବାରମ୍ବାର ଶ୍ୱାସରୋଧ ପୂର୍ବକ ଅନୁଚ୍ଚକ୍ରନ୍ଦନ ।

ଲହରପହର—ଗ୍ରା. ବି°. ଇତଃସ୍ତତଃ ଗମନ କରୁଥିବା, ପରଦ୍ରବ୍ୟରେ ପ୍ରଚଳିତ ହେଉଥିବା ଏକସ୍ଥାନରେ ସାତେଠାପରେ ଯିବା ଆସିବା କରୁଥିବା,ପିନ୍ଧିବା ବ୍ୟକ୍ତିର ମାପରୁ ବଳାଉଥିବା (ପୋଷାକ ବା ଲୁଗା) ।

ଲହରାଇ ରୋଇବା—ଗ୍ରା.କ୍ରି. ଲହରୀପରି ଧାରାବାହିକ ରୂପେ କଥା କହିବା, ଏକ କଥାକୁ ଉପର୍ଯ୍ୟୁପରି କହିବା ।

ଲହରି(ରୀ)—ବ. (ଲ+ହୃ+କ.ଇ.ଈ) ଜଳାଦିର ତରଙ୍ଗ, ଢେଉ, (ଲ.ଅର୍ଥ) ତରଙ୍ଗପରି ଉଠିବା କୌଣସି ବିଷୟର ସ୍ପୃହା ।

[ କ୍ରୀଡ଼ା ।

ଲହରି(ରୀ)ଲୀଳା—ବ (ଷତତ୍ପୁ)ତରଙ୍ଗର

ଲହଲହ—ଗ୍ରା.ଅ.ଜିହ୍ୱା ବା ସର୍ପାଦି ସରୁ ଲମ୍ବ ବସ୍ତୁ ଇତସ୍ତତଃ ସଞ୍ଚାଳିତହେବା, ଯାହା ସ୍ୱତଃ ନଇଁଯାଏ ।

ଲହଲହକା—ଗ୍ରା.ବି°. ଇତସ୍ତତଃ ସଞ୍ଚାଳିତ (ସରୁ ବସ୍ତୁ) ।

ଲହଲଙ୍ଗୁଳିଆ—ଗ୍ରା.ବ. ବିଷ ଲଙ୍ଗୁଳିଆ ।

ଲହଳିବା—ଗ୍ରା.କ୍ରି.ଲହରୀ ପରି ଅବିଚ୍ଛିନ୍ନ କଥା କହିବା ବା ଗୀତ ବୋଲିବା ।

ଲହସ—ଗ୍ରା. ବ. ଲୟ, ମନୋଯୋଗ, ଖିଆଲ, କଥାର ସ୍ରୋତ, କାର୍ଯ୍ୟର ସ୍ରୋତ, ଧାରା, ପ୍ରଣାଳୀ, ଝୁଙ୍କ ।

ଲହସା—ଗ୍ରା.ବ. କଦଳୀ ଗଛର ରୋଗବିଶେଷ, ଗୋରୁ ମହିଷାଦିଙ୍କୁ ଧରିବା (କୃମି ବସନ୍ତାଦି) ମାରାତ୍ମକ ରୋଗ ।

ଲହସିବା—ଗ୍ରା. କ୍ରି. ବି°. କଦଳୀଆଦି ଗଛ ଫଳ ଭରରେ ବା ପବନରେ ଏକ ପାଖକୁ ନଇଁ ପଡ଼ିବା, ଶ୍ଲଥ ଯୋଗୁଁ ବାଡ଼ଆଦି ଖୁବ୍ ନଇଁଯିବା ।

ଲହୁ—ଗ୍ରା. ବ. ରକ୍ତ, ଶୋଣିତ ।

ଲହୁଣୀ—ଗ୍ରା.ବ. (ସଂ-ନବନୀତ) ନହୁଣୀ ଦେଖ ।

ଲହୁରୁଣୀ—ଗ୍ରା. ବ. (ସଂ-ନଖରଞ୍ଜନୀ) ନଖାଗ୍ର ଛେଦନ କରିବାର ଅସ୍ତ୍ର ।

ଲହୁଳୀ—ଗ୍ରା.ବି°. ଅତି କୋମଳ, ସୁକୁମାର, (ଗ୍ରା.ସ୍ତ୍ରୀ.ବି°) ଲହୁଳୀ ଦେଖ ।

ଲହୁଳୀବୟସ—ଗ୍ରା. ବ. ଯୁବା ବୟସ ।

ଲହୁଳୀବୟସୀ—ଗ୍ରା. ସ୍ତ୍ରୀ. ବି°. ଲହୁଳୀବୟସୀ ଦେଖ ।

ଲା—ବ.(ଲା+କ.ଅ+ଆ)ଦାନ, ଗ୍ରହଣ ।

ଲାଇନ୍—ଯା.ବ. ରେଖା, ଶ୍ରେଣୀ, ଧାଡ଼ି, ରେଳପଥ ।

ଲାଇବା—ଗ୍ରା.କ୍ରି ସ୍ଥାପନକରିବା,ଧରିବା,

ନାଇବା ଦେଖ । [ ଭଣ୍ଡାର ।
**ଲାଇବ୍ରେରି**--ଯା.ବି.ପୁସ୍ତକାଗାର, ପୁସ୍ତକ-
**ଲାଇସେନ୍‌ସ**—ଯା. ବି. କୌଣସି ବିଶିଷ୍ଟ କାର୍ଯ୍ୟ କରିବାକୁ ରାଜସରକାରଙ୍କ ବା କର୍ତ୍ତୃପକ୍ଷଙ୍କ ପ୍ରଦତ୍ତ ଅନୁମତି ।
**ଲାଉ**—ଗ୍ରା. ବି. କୁଷ୍ମାଣ୍ଡାଦିବର୍ଗଭୁକ୍ତ କୃଷିଜାତ ଲତା ଓ ତାହାର ଫଳ, ଶିଶୁ ଓ ଅକ୍ଷମମାନଙ୍କୁ ଦୁଇ ହାତକୁ କାନ୍ଧବାଡେ ଧରି ବୟସ୍କ ବ୍ୟକ୍ତିମାନେ ତାଙ୍କୁ ପିଠିରେ ବହନ କରିବା ପ୍ରଣାଳୀ ।
**ଲାଉଆ**—ଗ୍ରା. ବିଂ. ଲାଉପରି ଧଳା, ଲାଉ ଆକୃତିବିଶିଷ୍ଟ,ଯେ କଷ୍ଟ ସହି ନ ପାରେ ।
**ଲାଉଡ଼ଙ୍କିଆସାପ**—ଗ୍ରା.ବି. ଲାଉଡଙ୍କ ପରି ଶାଗୁଆ ବର୍ଣ୍ଣ ଓ ଆକାରଯୁକ୍ତ ଏକପ୍ରକାର ସରୁ ସାପ ।
**ଲାଉତୁମ୍ବା**—ଗ୍ରା. ବି. ବୁଢ଼ା ଲାଉ ଭିତରୁ ଶସ କୋରି ପ୍ରସ୍ତୁତ କରାଯିବା ପାତ୍ର ।
**ଲାଉଥାଳ**—ଗ୍ରା. ବି. ବୁଢ଼ା ଲାଉକୁ ମୁଣ୍ଡି ପାଖରୁ କାଟି ତା ଭିତର ଶସକୁ କାଢ଼ି କରାଯିବା ପାତ୍ର ।
**ଲାଏକ**—ଗ୍ରା. ବିଂ. ଉପଯୁକ୍ତ, ଗୁଣବାନ୍, ଉର୍ବର, କୃଷିଯୋଗ୍ୟ, ଉତ୍କୃଷ୍ଟ,ସମର୍ଥ ।
**ଲାଏକପଡ଼ିଆ(ପଡ଼ିତ)**—ଗ୍ରା. ବି. କୃଷି ହେବାର ଉପଯୁକ୍ତ ପଡ଼ିଆ ଜମି ।
**ଲାକିନୀ**—ସ୍ତ୍ରୀ. ବି. ଯୋଗିନୀବିଶେଷ ।
**ଲାକୁଟିକ**—ପୁଂ. ବିଂ. (ଲକୁଟ+ଇକ) ଲଗୁଡ଼ଧାରୀ, (ସ୍ତ୍ରୀ) ଲାକୁଟିକୀ, (ପୁଂ.ବି) ପହରୀବାଲା ।
**ଲାକ୍ଷକୀ**—ସ୍ତ୍ରୀ.ବି.(ଲକ୍ଷ+କ+ଈ)ସୀତା, ଜାନକୀ । [ ବହୁ ।
**ଲାକ୍ଷଣ**—ବି.ବିଂ.ଲକ୍ଷଣସମ୍ବନ୍ଧୀୟ,ଲକ୍ଷଣ-
**ଲାକ୍ଷଣିକ**—ବିଂ.(ଲକ୍ଷଣା+ଇକ)ଲକ୍ଷଣା ସମ୍ବନ୍ଧୀୟ, ଲକ୍ଷଣା ଦ୍ୱାରା ବୋଧିତ (ଅର୍ଥ).(ଲକ୍ଷଣ+ଇକ)ଲକ୍ଷଣସମ୍ବନ୍ଧୀୟ, ଲକ୍ଷଣଜ୍ଞ, ଦୈବଜ୍ଞ, ଲକ୍ଷଣଯୁକ୍ତ, (ସ୍ତ୍ରୀ) ଲାକ୍ଷଣିକୀ, (ବି) ଛନ୍ଦୋବିଶେଷ ।
**ଲାକ୍ଷଣ୍ୟ**—ବିଂ.(ଲକ୍ଷଣ+ଯ) ଲକ୍ଷଣବେତ୍ତା, ଲକ୍ଷଣସମ୍ବନ୍ଧୀୟ,ଲକ୍ଷଣଯୁକ୍ତ, ଦୈବଜ୍ଞ ।
**ଲାକ୍ଷା**—ସ୍ତ୍ରୀ.ବି. (ଲକ୍ଷ୍+ଣ.ଅ+ଆ)ଲାଖ, ଜଉ, ଅଶ୍ୱତ୍ଥାଦି କେତେକ ବୃକ୍ଷମାନଙ୍କ ଶାଖାରେ ପୁଞ୍ଜୀଭୂତ କ୍ଷୁଦ୍ର କୀଟବିଶେଷଙ୍କ ଦେହନିର୍ଗତ ନିର୍ଯ୍ୟାସ, ଅଳତା,ଶତପଦୀ,ଲାଖପୋକ,ସେବତୀ ।
**ଲାକ୍ଷାକୀଟ**—ବି.ଜଉପୋକ, ଲାଖପୋକ ।
**ଲାକ୍ଷାଗୃହ**—ବି.(କ.ଧା) ଜତୁଗୃହ, ଜଉଘର ।
**ଲାକ୍ଷାତରୁ**—ବି. ପଳାଶବୃକ୍ଷ, ସତ୍ୟାମ୍ବା, କୋଶାମ୍ର, କୁସୁମଗଛ ।
**ଲାକ୍ଷାଦ୍ୱୀପ**—ବି. ଭାରତ ମହାସାଗରର ଆରବସାଗରର ଦ୍ୱୀପପୁଞ୍ଜ ।
**ଲାକ୍ଷାପ୍ରସାଦ**--ବି.(ଲାକ୍ଷା+ପ୍ରସାଦ)ପଟ୍ଟିକାଲୋଧ୍ର । [ ଲୋଧ୍ର ।
**ଲାକ୍ଷାପ୍ରସାଦନ**—ବି. ପଟ୍ଟିକାଲୋଧ୍ର, ରକ୍ତ-
**ଲାକ୍ଷାରଞ୍ଜିତ**—ବିଂ. (୩ତତ୍ପୁ) ଅଳତାରଙ୍ଗ ଦ୍ୱାରା ରଙ୍ଗ କରାଯାଇଥିବା ।
**ଲାକ୍ଷାରସ**— ବି. ଲାକ୍ଷାଜଳ ବା କ୍ୱାଥ, ଅଳତା ।
**ଲାକ୍ଷାରାଗ**-ବି.ଅଳତାରୁ ବାହାରିବା ରଙ୍ଗ ।
**ଲାକ୍ଷାବୃକ୍ଷ**—ବି. ଲାକ୍ଷାତରୁ ଦେଖ ।
**ଲାକ୍ଷିକ**—ବି. ବିଂ. (ଲାକ୍ଷା+ଇକ) ଲାକ୍ଷାସମ୍ବନ୍ଧୀୟ,(ଲକ୍ଷ+ଇକ) ଲକ୍ଷ ସଂଖ୍ୟାପରିମିତ ।
**ଲାକ୍ଷ୍ମଣ**—ପୁଂ.ବି.(ଲକ୍ଷ୍ମଣ+ଅ) ଲକ୍ଷ୍ମଣଙ୍କ ଗୋତ୍ରାପତ୍ୟ,(ବିଂ) ଲକ୍ଷ୍ମଣାବୃକ୍ଷ ସମ୍ବନ୍ଧୀୟ ।
**ଲାକ୍ଷ୍ୟିକ**—ପୁଂ. ବିଂ. (ଲକ୍ଷ୍ୟ+ଇକ)ଯେ ଲକ୍ଷ୍ୟଭେଦ କରିପାରେ ।
**ଲାଖ୍**— ଗ୍ରା. ବି. ଲକ୍ଷସଂଖ୍ୟା, ତୁଳନା ।
**ଲାଖ୍‌ପତି**—ଗ୍ରା.ବି. ଖୁବ୍ ଧନୀ ବ୍ୟକ୍ତି,ଲକ୍ଷ ପରିମିତ ନଗଦ ମୁଦ୍ରା ରଖିଥିବା ବ୍ୟକ୍ତି ।
**ଲାଖ୍‌ଲାଖ୍**—ଗ୍ରା. ବି. ଓ ବିଂ. ଲକ୍ଷ ଲକ୍ଷ ସଂଖ୍ୟକ, ଅସଂଖ୍ୟ ।
**ଲାଖ**—ଗ୍ରା.ବି. ଜଉ,ଲାକ୍ଷା,ଲକ୍ଷ୍ୟ,ଶରବ୍ୟ, ତୁଳନା, ପ୍ରଭେଦ, ବିକ୍ଷେପକ ଚିହ୍ନ, ଶହେ ହଜାର ସଂଖ୍ୟା ।
**ଲାଖବନ୍ଧା**—ଗ୍ରା. ବି. ଲକ୍ଷ୍ୟଭେଦକ ।
**ଲାଖବିନ୍ଧିବା**--ଗ୍ରା. କ୍ରି. ଲକ୍ଷ୍ୟ ବା ଶରବ୍ୟକୁ ବାଣ ବା ଗୁଳି ଦ୍ୱାରା ଭେଦକରିବା ।
**ଲାଖରା**—ଗ୍ରା.ବି.ହାତରେ ପିନ୍ଧିବା ଶଙ୍ଖା ଆଦି ତିଆରି କରିବା ଲାଖବ୍ୟବସାୟୀ ଜାତିବିଶେଷ ।
**ଲାଖରାଜ(ଜୀ)**—ଯା.ବି.ନିଷ୍କରଜମି,ଯେଉଁ ଜମିର ରାଜସ୍ୱ ମାଫ୍ କରାଯାଇଅଛି ।
**ଲାଖରାଜଦାର୍**—ଯା. ବି. ନିଷ୍କର ଜମିର ଅଧିକାରୀ ।
**ଲାଖି**—ଗ୍ରା.ବି. ତୁଳନା, ଆସକ୍ତି, (ବିଂ) ତୁଳନୀୟ, ସମକକ୍ଷ, ଉପଯୁକ୍ତ ।
**ଲାଖିବା**—ଗ୍ରା. କ୍ରି. ତୁଳନା କରାଯିବା, ପ୍ରେମଦ୍ୱାରା ଆସକ୍ତହେବା, ପ୍ରଯୋଜ୍ୟ ହେବା, ଆଶାନୁରୂପ ଫଳପ୍ରଦ ହେବା, ଲାଗିବା, ଦୃଢ଼ରୂପେ ସଂଲଗ୍ନ ହେବା ।
**ଲାଖିରହିବା**—ଗ୍ରା. କ୍ରି. ଦୃଢ଼ରୂପେ ଲାଗି ରହିବା, ପ୍ରୀତି ବା ଶ୍ରଦ୍ଧାରେ ଆସକ୍ତ ହେବା ।
**ଲାଗ୍**—ଗ୍ରା. ଅବ୍ୟ. (ରୁ) ସଂଲଗ୍ନ ହୋ (ପ୍ରା. ସମ୍ବ. ବ) ଋଣ ।
**ଲାଗ୍‌ଲାଗ୍**—ଗ୍ରା. କ୍ରି. ବିଂ. ଲାଗେ ଲାଗେ, ପରେ ପରେ, ପୁନଃ ପୁନଃ, ଗୋଟିକ ପଛରେ ଗୋଟିଏ ।
**ଲାଗ**—ଗ୍ରା.ବି. ଲଗ୍ନ, କ୍ଷଣ, ମୁହୂର୍ତ୍ତ,ଋଣ, ନୈକଟ୍ୟ, ସମ୍ପର୍କ ।
**ଲାଗଣ**—ଗ୍ରା. ବିଂ. ଦକ୍ଷ, ପଟୁ ।
**ଲାଗପାଟ**—ଗ୍ରା.ବି. ନିକଟ,ନିକଟବର୍ତ୍ତୀ ।
**ଲାଗି**—ଗ୍ରା. ଅ. ହେତୁରୁ, କାରଣରୁ, ନିମିତ୍ତ, ପାଇଁ,ଉପସ୍ଥିତ,ଯୋଗୁଁ,ପକ୍ଷରୁ, ପରବର୍ତ୍ତିରେ, ପ୍ରତିନିଧିରୂପେ,(କ୍ରି.ବିଂ) ସଂଲଗ୍ନହୋଇ,ଅଧ୍ୟବସାୟ ସହକାରେ, (ଗ୍ରା.ବିଂ) ଗୃହୀତ, ଉପଭୁକ୍ତ, ପରହିତ, ନିକଟବର୍ତ୍ତୀ, ସଂଲଗ୍ନ, ଅର୍ପିତ, ( ବି ) ଧାରଣ, ପିନ୍ଧିବା, ମାଦକତା ।
**ଲାଗିଆସିବା**—ଗ୍ରା.କ୍ରି. ଲାଗିବାକୁ ଆରମ୍ଭ କରିବା ।
**ଲାଗିକରିବା**—ଗ୍ରା.କ୍ରି. ଦେବତାଙ୍କଠାରେ ପୁଷ୍ପାଦି ଅର୍ପଣ କରିବା
**ଲାଗିଖାଇବା**—ଗ୍ରା. କ୍ରି. ପରିଶ୍ରମ କରି ପେଟ ପୋଷିବା ।

ଲଗିପଡ଼ି(କୌଣସି କାର୍ଯ୍ୟକରିବା)—ଗ୍ରା. କ୍ରି. ବି°. ପ୍ରାଣପଣେ, ବହୁ ପରିଶ୍ରମ ସହକାରେ, ଏକାଗ୍ରଚିତ୍ତ ମନ ଓ ଦେହକୁ ଲଗାଇ, ଅବିଚ୍ଛିନ୍ନରୂପେ ।

ଲଗିବା—ଗ୍ରା.ବି. ଲାଗିବା କାର୍ଯ୍ୟ,(ଯଥା-ଜକ ଲାଗିବା), (ବି°) ଯାହା ବା ଯେ ଲାଗିଥାଏ, (ଯଥା—ଘର ଛାଆରେ ଲାଗିବା ବ୍ୟସ୍ତ),(ଗ୍ରା.କ୍ରି) ଯୁକ୍ତହେବା, ମିଶିବା, ପହଞ୍ଚିବା, ଲାଗିବା, ବୋଲାଯିବା, ବ୍ୟାପିବା, ବୋଧହେବା, ରୁଚ୍ଚ-ହେବା, ସ୍ପଷ୍ଟରୂପେ, ବାକ୍ୟାଦି ଉଚ୍ଚାରଣ କରି ନ ପାରିବା, ଅଟକିବା, ଏକାଦି-କ୍ରମେ ଜଳିବା(ନିଆଁ),ଜଳିବା,ବ୍ୟସ୍ଥିତ ହେବା, ଆବଶ୍ୟକ ହେବା, ସେପିତ ହେବା, ଉପୁଜିବା, ଫଳବନ୍ତ ହେବା, କାର୍ଯ୍ୟରେ ମୁତୟନ ହେବା, ବିବାଦ ଆରମ୍ଭ କରିବା,ପରିବେଷଣ କରାଯିବା, ଆସକ୍ତ ହେବା, ମଜ୍ଜିବା,ଆରମ୍ଭହେବା, ସଂଲଗ୍ନ ହେବା, ଆବଦ୍ଧହେବା,ନିକଟ-ବର୍ତ୍ତୀ ହେବା ।

ଲଗିଯିବା—ଗ୍ରା. କ୍ରି. ସଂଲଗ୍ନ ହେବା, ଜୋଡ଼ିହୋଇଯିବା ।

ଲଗିରହିବା—ଗ୍ରା. କ୍ରି. ବହୁକାଳପାଇଁ ସଂଲଗ୍ନ ହେବା, ବ୍ୟାପିବା ।

ଲଗିହେବା—ଗ୍ରା. କ୍ରି. ଦେହରେ ବସ୍ତ୍ର ଅଳଙ୍କାର ଆଦି ପିନ୍ଧିବା ।

ଲଗୁଆ—ଗ୍ରା.ବି.ନିଯୁମିତ ଅପକ୍ୱ ଖାଦ୍ୟ-ସାମଗ୍ରୀ ଆଦି ଯୋଗାଇବା ପାଇଁ କୌଣସି ବ୍ୟକ୍ତିସଙ୍ଗେ କରାଯିବା ବନ୍ଦୋବସ୍ତ, (ବି°) ନିଯୁମିତ ରୂପେ ଯୋଗାଇବା ପାଇଁ କୌଣସି ବ୍ୟକ୍ତି-ସଙ୍ଗେ ବନ୍ଦୋବସ୍ତ କରାଯାଇଥିବା(ବସ୍ତୁ), ଯେଉଁ ବ୍ୟକ୍ତି ପ୍ରତିଦିନ ଲାଗୁଆ ଜିନିଷ ଯୋଗାଏ ।

ଲଗୁଆଣି—ଗ୍ରା. ବି. ପ୍ରଥମେ ଚୁଲିରେ ନିଆଁ ଲଗାଇବା ପାଇଁ ଯେଉଁ ସହଜ ଦାହ୍ୟପଦାର୍ଥ ବ୍ୟବହୃତ ହୁଏ ।

ଲଗୁଆକରିବା—ଗ୍ରା.କ୍ରି.ପ୍ରତିଦିନ ନିଯୁ-ମିତ ରୂପେ ଦୁଗ୍ଧାଦି ଖାଦ୍ୟସାମଗ୍ରୀ ମିଳିବାପାଇଁ କୌଣସି ବେପାରୀସଙ୍ଗେ ବନ୍ଦୋବସ୍ତ କରିବା ।

ଲଗୁଆଦେବା-ଗ୍ରା.କ୍ରି.ବେପାରୀ କୌଣସି ବ୍ୟକ୍ତିଙ୍କୁ ନିଯୁମିତ ରୂପେ କୌଣସି ବସ୍ତୁ ଯୋଗାଇବା ।

ଲଗୁଡ଼ିକ—ପୁଂ. ବି. ଓ ବି° (ଲଗୁଡ଼+ଇକ) ଲାକୁଟିକ ଦେଖ, (ସ୍ତ୍ରୀ) ଲାଗୁ-ଡ଼ିକୀ ।

ଲଗୁଲଗୁ—ଗ୍ରା. ଅ. ଅନୁଭୂତ ହେବାର ବା ଲାଗିବାର ଆରମ୍ଭରେ, ଆରମ୍ଭ ହେଉହେଉ ।

ଲଗେ—ଗ୍ରା. କ୍ରି. ବି°. କ୍ଷଣରେ, (ଅ) ନିକଟରେ,ପାଖରେ,ସଙ୍ଗେ,ଦେହରେ ଲାଗଇ ।

ଲଗେଲାଗେ—ଗ୍ରା. କ୍ରି. ବି°. ଉପର୍ଯ୍ୟୁ-ପରି,ଅବିଶ୍ରାନ୍ତ ଭାବରେ, ତତ୍‌କ୍ଷଣାତ୍, ସଙ୍ଗେ ସଙ୍ଗେ, ପାଖେ ପାଖେ ।

ଲାଘବ—କ୍ଲୀ.ବି. (ଲଘୁ+ଅ)ଆରୋଗ୍ୟ, ଲଘୁତ୍ୱ, ଅଲ୍ପତ୍ୱ, ଅପମାନ କ୍ଲୈବ୍ୟ, ଲଘୁଭାବ, କ୍ଷିପ୍ରତା, ଶୀଘ୍ରତା ।

ଲାଘବକାରୀ-ବି°. ଯାହା ହାଲୁକା କରେ, ଆରୋଗ୍ୟକାରୀ ।

ଲାଘବିକ—ବି. ବି°. (ଲଘୁ+ଇକ) ସଂକ୍ଷିପ୍ତ ।

ଲାଘବୀ—ପୁଂ. ବି°. (ଲାଘବ+ଇନ୍) ମିତବ୍ୟୟୀ, କଠିନ ।

ଲାଙ୍କିଆ—ଗ୍ରା. (ପ୍ରାଚୀନ)ବି.ଶସ୍ତ୍ରବିଶେଷ,

ଲାଙ୍ଗ୍‌ଲାଙ୍ଗ୍—ଗ୍ରା. କ୍ରି. ବି°. ଲମ୍ବ ଲମ୍ବ ହୋଇ ଶୋଇବା ।

ଲାଙ୍ଗ—ଗ୍ରା. ବି. ଶାଖାଗ୍ରନ ସଳଖ ସ୍ୱଳ୍ପ ମୋଟଯୁକ୍ତ ଲମ୍ବ କାଷ୍ଠଖଣ୍ଡ ।

ଲାଙ୍ଗଳୀ—ବି. ପୃଷ୍ଣିପର୍ଣ୍ଣୀ ଦେଖ ।

ଲାଙ୍ଗଳ—ପୁଂ. ବି. (ଲଙ୍ଗ୍+କ.ଅଲ) ଭୂମିକର୍ଷଣ ଯନ୍ତ୍ରବିଶେଷ, ହଳ, ସୀର, ଲିଙ୍ଗ, ଶିଶ୍ନ, ଲହଲାଙ୍ଗଳିଆ,ଲଙ୍ଗଳା-କୃତ ଯୁଦ୍ଧାସ୍ତ୍ରବିଶେଷ, ପୁଷ୍ପବିଶେଷ, ତାଳବୃକ୍ଷ, ଗୃହଦ୍ୱାରୁବିଶେଷ,ଚନ୍ଦ୍ରଙ୍କର ଅର୍ଦ୍ଧକଠାରୁ କମିହେବା ଖଣ୍ଡିତାବସ୍ଥା ।

ଲାଙ୍ଗଳକ—ବି. ସୁଶ୍ରୁତ ମତରେ ଭଗନ୍ଦର ରୋଗରେ ଗୁହ୍ୟ ଦ୍ୱାରରେ ଶସ୍ତ୍ର-ଚିକିତ୍ସା ଦ୍ୱାରା କରାଯିବା କ୍ଷତ ।

ଲାଙ୍ଗଳଗ୍ରୀ—ସ୍ତ୍ରୀ.ବି.ବିଷଲାଙ୍ଗଳିଆ ଗୁଳ୍ମ ।

ଲାଙ୍ଗଳଗ୍ରହ—ପୁଂ.ବି. (ଲାଙ୍ଗଳ+ଗ୍ରହ) ହଳଗ୍ରାହକ, କୃଷକ, ଚଷା ।

ଲାଙ୍ଗଳଗ୍ରହଣ—କ୍ଲୀ.ବି.ଲାଙ୍ଗଳ ଧାରଣ ।

ଲାଙ୍ଗଳଚକ୍ର—ବି.(ଜ୍ୟୋତିଷୋକ୍ତ)କୃଷି କାର୍ଯ୍ୟର ଶୁଭାଶୁଭଜ୍ଞାପକ ଲଙ୍ଗଳାକାର ଚକ୍ରବିଶେଷ ।

ଲାଙ୍ଗଳଦଣ୍ଡ—ପୁଂ.ବି.(ଲାଙ୍ଗଳ+ଦଣ୍ଡ) ଈଷ, ଲଙ୍ଗଳର ଈଷ ।

ଲାଙ୍ଗଳଧ୍ୱଜ—ପୁଂ.ବି.(ବି.ଗ୍ରା) ବଳରାମ, (ବି.ବି°) ଲଙ୍ଗଳ ଯାହାର ବଂଶଚିହ୍ନ ।

ଲାଙ୍ଗଳପଦ୍ଧତି—ସ୍ତ୍ରୀ. ବି. (ଲାଙ୍ଗଳ+ପଦ୍ଧତି) ଲଙ୍ଗଳରେଖା,ଶୀତା, ଲଙ୍ଗଳ-ଗାର ।

ଲାଙ୍ଗଳଫାଳ—ବି.ଲଙ୍ଗଳର ଅଗ୍ରଭାଗସ୍ଥ ଲୌହଫଳକ, ଲଙ୍ଗଳରେ ପଡ଼ିବା ଲୁହା ।

ଲାଙ୍ଗଳାଖ୍ୟ—ବି. (ବି.ଗ୍ରା) ବିଷଲାଙ୍ଗ-ଳିଆ, ଲହଲାଙ୍ଗଳିଆ ।

ଲାଙ୍ଗଳାପକର୍ଷୀ—ପୁଂ. ବି°. ଲାଙ୍ଗଳ-ଅପକର୍ଷଣକାରୀ,(ବି) ଲଙ୍ଗଳ ଟାଣୁଥିବା ବଳଦ ।

ଲାଙ୍ଗଳାସ୍ତ୍ର—ବି. ପ୍ରାଚୀନ ଭାରତରେ ବ୍ୟବହୃତ ଲାଙ୍ଗଳାକୃତ ଯୁଦ୍ଧାସ୍ତ୍ର ।

ଲାଙ୍ଗଳାହ୍ୱା—ସ୍ତ୍ରୀ.ବି. ଲହଲାଙ୍ଗୁଳିଆ ।

ଲାଙ୍ଗଳି—ପୁଂ. ବି. (ଲାଙ୍ଗଳ+ଇ) ହଳୁଆ, କୃଷକ, ଶ୍ରେଷ୍ଠ ଈଷଯୁକ୍ତ ଲଙ୍ଗଳ, ମଞ୍ଜିଷ୍ଠା, ଜଳପିପ୍ପଳୀ, ପୃଶ୍ନି-ପର୍ଣ୍ଣୀ, ଗଜପିପ୍ପଳୀ, ଗୁଇଁକାଠ, ମହା-ଦ୍ରୋଣୀ ନାମକ ଲତା, ଋଷଭକ ନାମକ ଔଷଧି ।

ଲାଙ୍ଗଳିକ—ପୁଂ. ବି. (ଲାଙ୍ଗଳ+ଇକ) ବିଷବିଶେଷ, ହଳୁଆ, ହଳଗ୍ରାହକ, (ପୁଂ.ବି°)ଲାଙ୍ଗଳ ସମ୍ବନ୍ଧୀୟ,ଲାଙ୍ଗଳ-ଯୁକ୍ତ, (ସ୍ତ୍ରୀ) ଲାଙ୍ଗଳିକୀ ।

ଲାଙ୍ଗଳିକା-ସ୍ତ୍ରୀ.ବି.(ଲଙ୍ଗଳ+ଇକ+ଆ) ଲାଙ୍ଗଳୀବୃକ୍ଷ, ରକ୍ତିକା, ନାଲି କାଇଞ୍ଚ,

ମୟୂରଚୂଳ, ଲଙ୍ଗଳଲୁହା, ଫଳସା ।
ଲାଙ୍ଗଳକା—ସ୍ତ୍ରୀ. ବ ଓ ବଂ. ଲାଙ୍ଗଳକର ସ୍ତ୍ରୀଲିଙ୍ଗ, (ବ) ଲହଲାଙ୍ଗଳିଆ ବୃକ୍ଷ ।
ଲାଙ୍ଗଳୀ—ପୁଂ. ବ. (ଲାଙ୍ଗଳ + ଇନ୍) ଲଙ୍ଗଳଧାରୀ, ହଳୁଆ, କୃଷକ, ବଳରାମ, ସର୍ପ, ଲହଲାଙ୍ଗଳିଆ ବୃକ୍ଷ, ଜଳପିପ୍ପଳୀ, କଳମଶାଗ, ନଡ଼ିଆ, ବାଇଡ଼ଙ୍କ, ଈଶର ଜଟାମୂଳ, ପୌରାଣିକ ନଦୀବିଶେଷ, ମଞ୍ଜିଷ୍ଠା, ଜଳପିପ୍ପଳୀ, ପୃଶ୍ନିପର୍ଣ୍ଣୀ, ଗଜପିପ୍ପଳୀ, ଗୁଇଁ କାଠ, ମହାଶ୍ରଷ୍ଟୀ ନାମକ ଲତା, ଋଷଭକ ।
ଲାଙ୍ଗଳୀ—ସ୍ତ୍ରୀ.ବ.(ଲାଙ୍ଗଳ + ଅ + ଈ) ଲାଙ୍ଗଳାକାର ପୁଷ୍ପ, ଜଳଜ ଶାକବିଶେଷ ।
ଲାଙ୍ଗଳୀଶାକ—ବ. ଜଳପିପ୍ପଳୀ, ଏକପ୍ରକାର କଳମଶାଗ ।
ଲାଙ୍ଗଳୀଷା—ସ୍ତ୍ରୀ.ବ.(ଲାଙ୍ଗଳ + ଈଷା) ଲାଙ୍ଗଳଦଣ୍ଡ, ଈଶ ।
ଲାଙ୍ଗଳେଶ୍ୱର—ଗ୍ରା.ବ.ମହାଦେବ ଲିଙ୍ଗବିଶେଷ, ବାଲେଶ୍ୱର ଜିଲାରେ ଥିବା ସ୍ୱନାମ ପ୍ରସିଦ୍ଧ ଶିବଲିଙ୍ଗଙ୍କ ନାମରେ ନାମିତ ସ୍ଥାନ ।
ଲାଙ୍ଗୁଡ଼—ଗ୍ରା. ବ. ଲାଙ୍ଗୁଳ, ପଶୁଆଦିଙ୍କର ପୁଚ୍ଛ, ଲାଞ୍ଜ ।
ଲାଙ୍ଗୁଡ଼ଖଣ୍ଡି—ଗ୍ରା.ବ. ଓ ବଂ.ଖଣ୍ଡିତପୁଚ୍ଛ (ଜନ୍ତୁ), ଯେଉଁ ପଶୁର ଲାଙ୍ଗୁଳରୁ ଖଣ୍ଡେ ଛିଣ୍ଡିଯାଇଥାଏ । [ ହେବା ।
ଲାଙ୍ଗୁଡ଼ଗୁଞ୍ଜିବା—ଗ୍ରା. କ୍ରି. ଭୟଭୀତ
ଲାଙ୍ଗୁଡ଼ଟେକିବା—ଗ୍ରା. କ୍ରି. ଦଉଡ଼ିବା ସମୟରେ (ପଶୁ) ନିଜର ଲାଙ୍ଗୁଡ଼କୁ ଊର୍ଦ୍ଧ୍ୱକୁ ଉଠାଇବା, (ଲ.ଅର୍ଥ ଉଦ୍‌ବେଗ ସହିତ ପ୍ରସ୍ତୁତ ରହିବା, ଆନନ୍ଦରେ ମତ୍ତ ହେବା ।
ଲାଙ୍ଗୁଡ଼ା—ଗ୍ରା. ବଂ. ଲାଙ୍ଗୁଳଯୁକ୍ତ, (ବ) ଏକପ୍ରକାର କୃମି ବା ପୋକ ।
ଲାଙ୍ଗୁଳ—କ୍ଳୀ. ବ. (ଲଙ୍ଗ୍ + କ.ଉଳ) ପୁଚ୍ଛ, ଲାଞ୍ଜ, ଶିଶ୍ନ ।
ଲାଙ୍ଗୁଳାନରସିଂହଦେବ—ଗ୍ରା.ବ. ଖ୍ରୀଷ୍ଟୀୟ ତ୍ରୟୋଦଶ ଶତାବ୍ଦୀର ଉତ୍କଳର ଗଙ୍ଗବଂଶୀୟ ଜନୈକ ରାଜା ।
ଲାଙ୍ଗୂଳ—ବ. (ଲଙ୍ଗ୍ + କ.ଉଳ) ପଶୁଆଦିଙ୍କର ପୁଚ୍ଛ, ଲାଞ୍ଜ, ଲୋମଶ ପୁଚ୍ଛ. ଶସ୍ୟାଗାର, ଅମାର, ଶିଶ୍ନ, ଲିଙ୍ଗ ।
ଲାଙ୍ଗୂଳସ୍ତାନ—ପୁଂ. ବଂ. (ଷତତ୍ପୁ) ପୁଚ୍ଛବିସ୍ତାନ, ଲାଙ୍ଗୁଡ଼ଖଣ୍ଡି, (ସ୍ତ୍ରୀ) ଲାଙ୍ଗୂଳସ୍ତାନା ।
ଲାଙ୍ଗୂଳା—ବ. ପୃଶ୍ନିପର୍ଣ୍ଣୀ, କପିକଚ୍ଛୁ, ବାଇଡ଼ଙ୍କ ।
ଲାଙ୍ଗୂଳିକା—ସ୍ତ୍ରୀ. ବ. (ଲାଙ୍ଗୂଳ + ଇକ + ଆ) ପୃଶ୍ନିପର୍ଣ୍ଣୀ ।
ଲାଙ୍ଗୂଳୀ—ପୁଂ. ବ. (ଲାଙ୍ଗୂଳ + ଇନ୍) ବାନର, ଋଷଭ ନାମୌଷଧି, ପୃଶ୍ନିପର୍ଣ୍ଣୀ, ବାଇଡ଼ଙ୍କ, (ବଂ) ପୁଚ୍ଛବିଶିଷ୍ଟ, (ସ୍ତ୍ରୀ) ଲାଙ୍ଗୂଳିନୀ ।
ଲାଛ—ଗ୍ରା. ବ. ତୁଳନା, ଉପମା, ପଶୁମାନଙ୍କ ଦେହରେ ତପ୍ତଲୌହ ଦ୍ୱାରା ଦାଗ, ନଳି ବା ବନ୍ଧୁକ ଲାଛିବା, ଶାପରେ ଶଳିତା ଲଗାଇବା, ଶଗଡ଼ଆଦିର ଦଣ୍ଡା
ଲାଛିବା—ଗ୍ରା. କ୍ରି. ତାତିଲା ଲୁହାରେ ଦାଗିବା, ବନ୍ଧୁକ ଫୁଟାଇବା ବା ମାରିବା, ବତୀରେ ଅଗ୍ନି ସଂଯୋଗ କରିବା ।
ଲାଜ—ବ. (ଲାଜ୍ + ର୍ମ.ଅ) ଖଇ, ଲିଆ, ଭଜା ଶସ୍ୟ, ଉଆ ଚାଉଳ, ବରୁଡ଼ି ଚାଉଳ ବା ଶସ୍ୟ, ଶସ୍ୟ, ବେଣାମୂଳ, (ଗ୍ରା.ବ) ଲଜ୍ଜା, ଦୁର୍ନାମ, ଲଜ୍ଜାଜନକ ବିଷୟ, (ବଂ) ଲଜ୍ଜାଜନକ ।
ଲାଜକଥା—ଗ୍ରା. ବ. ଲଜ୍ଜାଜନକ ବିଷୟ, ଅଶ୍ଳୀଳ ବାକ୍ୟ ।
ଲାଜକରିବା—ଗ୍ରା. କ୍ରି. କୌଣସିବ୍ୟକ୍ତିଙ୍କ ଆଗରେ ଛିଡ଼ାହେବାପାଇଁ ବା ମୁହଁ ଦେଖାଇବା ପାଇଁ ବା କଥାକହିବା ପାଇଁ ଲଜ୍ଜାବୋଧ କରିବା ।
ଲାଜକୁଳି(ଳୀ)—ଗ୍ରା. ପୁଂ.ବଂ. ଲଜ୍ଜାଶୀଳ, ଯେ ଅନ୍ୟ ସାମନାରେ କଥାଆଦି କହିବାକୁ ଲଜ୍ଜାକରେ ।
ଲାଜକୁ—ଗ୍ରା.କ୍ରି.ବଂ.ଲୋକଲଜ୍ଜାକୁ ଭୟକରି (କୌଣସି କାର୍ଯ୍ୟ କରିବା ବା ନକରିବା) ।
ଲାଜକୁଳୀ(ଳୀ)—ଗ୍ରା.ସ୍ତ୍ରୀ.ବଂ. ଲାଜକୁଳିର ସ୍ତ୍ରୀଲିଙ୍ଗ, (ବ) ଲଜ୍ଜାକୁଳିଲତା ।
ଲାଜକୁଳିବଦନ—ଗ୍ରା. ବ. ଏକପ୍ରକାର ସୁବାସଯୁକ୍ତ ସରୁ ଧାନ ।
ଲାଜଟାଇବା—ଗ୍ରା.ବ.ଲଜ୍ଜାବୋଧହେବା ।
ଲାଜଗୁଡ଼ିବା—ଗ୍ରା. କ୍ରି. କୌଣସି କାର୍ଯ୍ୟ କରିବାକୁ ମନରୁ ଲଜ୍ଜା ତ୍ୟାଗକରିବା, ନିର୍ଲଜ୍ଜହେବା ।
ଲାଜପାଇବା—ଗ୍ରା. କ୍ରି. ବହୁଲୋକଙ୍କ ମଧ୍ୟରେ ଅବମାନିତ ହେବା । [ମଣ୍ଡ ।
ଲାଜପେୟା—ବ. ଖାଇବା ଲିଆର ପତଳା
ଲାଜବର୍ଦ୍ଧ—ଯା. ବ. ବୈଦୂର୍ଯ୍ୟମଣିପରି ଭୁରସ୍କଦେଶର ମଣିବିଶେଷ ।
ଲାଜଭକ୍ତ—ବ.ଖଇସିଝା, ଖଇଭାତ, ଗରମ ପାଣିରେ ସିଦ୍ଧ ଖାଇବା ଲିଆ ।
ଲାଜଭରା—ଗ୍ରା. ବଂ. ଲଜ୍ଜିତ, ଲଜ୍ଜାପୂର୍ଣ୍ଣ ।
ଲାଜମାଡ଼ିବା—ଗ୍ରା. ବ. ଲଜ୍ଜିତହେବା, ଲଜ୍ଜାବୋଧକରିବା । [ ଲିଆ ।
ଲାଜମୁଷ୍ଟି—ବ. (ଷତତ୍ପୁ) ମୁଠାଏଖାଇବା
ଲାଜଲାଜ-ଗ୍ରା.କ୍ରି.ବଂ.ଈଷତ୍‌ଲଜ୍ଜିତଭାବରେ
ଲାଜଶରମ—ଗ୍ରା. ବ. ଲଜ୍ଜା ।
ଲାଜ(ଜା)ହୋମ—ବ. ବିବାହବେଦୀରେ ଘୃତ ହୋମପରେ ଓ ଦୁର୍ବାକ୍ଷତପରେ (ଗର୍ଭାଧାନ ବା ଦ୍ୱିରାଗମନ) ଦିନ କରାଯିବା ହୋମରେ ବରକୋଡ଼ରେ କନ୍ୟା ଠିଆହୋଇ ଦୁହେଁଯାକ ଏକତ୍ର ଅଞ୍ଜଳି ବନ୍ଧକରି ସେହି ସଂଯୁକ୍ତ ଅଞ୍ଜୁଳାରେ ଅଞ୍ଜୁଳାଏ ଲେଖାଏ ଲିଆ ଅଗ୍ନିରେ ଆହୁତିଦେବା ରୂପ ବିଧି ।
ଲାଜା—ସ୍ତ୍ରୀ. ବ. (ଲାଜ + ର୍ମ.ଅ + ଆ) ଅକ୍ଷତ, ଭୃଷ୍ଟଧାନ୍ୟ, ଖଇ, ଲିଆ ।
ଲାଜାମଣ୍ଡ—ବ. ଖଇମଣ୍ଡ ଗରମପାଣିରେ ଛିଟାଇ ଖଇକୁ ଚକଟି ତାହା କପଡ଼ାରେ ଛାଣି ପ୍ରସ୍ତୁତ କରାଯିବା ପାନୀୟ ।
ଲାଜୁଆ—ଗ୍ରା. ପୁଂ.ବଂ. ଲାଜକୁଳା, ଲଜ୍ଜାଶୀଳ ।
ଲାଜୁକ—ଗ୍ରା.ପୁଂ.ବଂ.ଲଜ୍ଜାଶୀଳ ।
ଲାଜେ—ଗ୍ରା.କ୍ରି.ବଂ.ଲୋକଲଜ୍ଜାକୁ ଡରି ।
ଲାଞ୍ଚ—ଗ୍ରା. ବ. ଘୁଷ୍, ଘୁଷ୍ଟ, ଉତ୍କୋଚ, ପୁରସ୍କାର ।

ଲଞ୍ଚମିଛ—ଗ୍ରା. ବି. ଉତ୍କୋଚ ଗ୍ରହଣ ଓ ମିଥ୍ୟାବାଦିତା ।

ଲଞ୍ଚୁଆ—ଗ୍ରା. ପୁଂ. ବିଂ. ଉତ୍କୋଚଗ୍ରାହୀ, ଉତ୍କୋଚଦାତା ।

ଲାଞ୍ଛନ—କ୍ଲୀ. ବି. (ଲାନ୍ଛ + ଅନ)ଚିହ୍ନ, ଦାଗ, କଳଙ୍କ, ନାମ,ଉପାଧି, ଧ୍ୱଜପତାକାଦି ଉପରେ ଅଙ୍କିତ ବିଶିଷ୍ଟଚିହ୍ନ,ରବିଫସଲ, ଅଙ୍କନ ।

ଲାଞ୍ଛନା—ବି. ( ଲାଞ୍ଛନ + ଆ ) ଲାଞ୍ଛନ ଦେଖ, (ଗ୍ରା.ବି) ଅପମାନ, ଭର୍ତ୍ସନା, ଦୋଷାରୋପ । [ ହେବା ।

ଲାଞ୍ଛନାଭୋଗ—ବି. (୬ତତ୍) ଅପମାନିତ

ଲାଞ୍ଛିତ—ତ୍ରି. ବିଂ. ( ଲାନ୍ଛ୍+ମ.ତ ) ଚିହ୍ନିତ, କଳଙ୍କିତ, ନାମଯୁକ୍ତ, (ସ୍ତ୍ରୀ) ଲାଞ୍ଛିତା,(ଗ୍ରା.ବିଂ)ଭର୍ତ୍ସିତ,ଅପମାନିତ ।

ଲାଞ୍ଜ—ଗ୍ରା. ବି. ଲାଙ୍ଗୁଡ଼ ଦେଖ ।

ଲାଞ୍ଜି—ଗ୍ରା. ବି. ଢିଙ୍କିପୁଚ୍ଛ, ସୂକ୍ଷ୍ମରେଖା. ସୂକ୍ଷ୍ମମୁଣ୍ଡ ବା ଶେଷଭାଗ, ପାଗର ବା ପିନ୍ଧାଲୁଗାର ତଳକୁ ଓହଳି ଥିବା ଲମ୍ବ ଅଂଶ ।

ଲାଞ୍ଜିଆ—ଗ୍ରା. ବିଂ. ବେଙ୍ଗଲାର ଶେଷ ମୁଣ୍ଡରେ ବନ୍ଧାହୋଇଥିବା ( ବଳଦ ), ଶେଷମୁଣ୍ଡରେ ଥିବା ।

ଲାଞ୍ଜିକା—ଗ୍ରା. ବି. ଜୁଳୁଜୁଳିଆପୋକ ।

ଲାଞ୍ଜୁଆ—ଗ୍ରା. ବିଂ. ପୁଚ୍ଛଯୁକ୍ତ ।

ଲାଟ୍—ଯା. ବି.ଇଂରାଜ ଶାସିତ କୌଣସି ପ୍ରଦେଶର ବା ଭାରତବର୍ଷର ଉଚ୍ଚତମ ଶାସନକର୍ତ୍ତା, ପୁଞ୍ଜ, ଅଂଶ, ଗୋଟିଗୋଟି କରି ନିଲାମ କରାଯିବା ଗଡ଼ ।

ଲାଟ୍‌ବନ୍ଦ—ଗ୍ରା.ବି. ବର୍ଷକମଧ୍ୟରେ ସରକାରରେ ଖଜଣା ଦାଖଲକରିବାର ନିର୍ଦ୍ଧାରିତ ଦିବସ ।

ଲାଟ୍‌ସାହେବ—ଯା. ବି. ଇଂରାଜଶାସିତ କୌଣସି ପ୍ରଦେଶର ବା ଭାରତର ଉଚ୍ଚତମ ଶାସନକର୍ତ୍ତା ।

ଲାଟ—ବି. (ଲଟ୍ + ଅଧି.ଅ)ପ୍ରାଚୀନଦେଶବିଶେଷ, ଆଧୁନିକ ଗୁଜରାଟର ଅଂଶ, ଉକ୍ତଦେଶ ପ୍ରଚଳିତରୀତି, ଦୋଷ, ବୃଥାବାକ୍ୟ, ବସ୍ତ୍ର, ପୋଷାକ, ଜୀର୍ଣ୍ଣ ବସ୍ତ୍ରାଭରଣାଦି, ପଣ୍ଡିତ ବା ରସିକ ବ୍ୟକ୍ତି, ଲାଟ୍‌ଦେଶବାସୀ ବ୍ୟକ୍ତି, ଲାଟାନୁପ୍ରାସ ଅଳଂକାର, ବର୍ଷାଜଳକୁ ପଡ଼ିଆରେ ଅଟକାଇ ରଖିବାର ବନ୍ଧ, ଲାଟ୍‌ଦେଶର ରାଜା, ପାଲଟାଲୁଗା ବା ଅଳଂକାର, ଶିଶୁଭାଷା, (ବିଂ) ବ୍ୟବହୃତ, ଉପଭୁକ୍ତ, ପାଲଟା(ଲୁଗା),ପୁରୁଣା, ଜୀର୍ଣ୍ଣ, ମଳିନ, ବିଶ୍ରୀ, ଶିଶୁଜନୋଚିତ ।

ଲାଟବ—ବିଂ. ଲାଟ୍‌ଦେଶ ସମ୍ବନ୍ଧୀୟ ।

ଲାଟଲିପି—ଗ୍ରା. ବି. ଭାରତର ଭିନ୍ନଭିନ୍ନ ସ୍ଥାନରେ ଅବସ୍ଥିତ ପ୍ରସ୍ତର ସ୍ତମ୍ଭମାନଙ୍କ ଦେହରେ ପାଲି ଓ ସଂସ୍କୃତଭାଷାର ମିଶ୍ରଣରେ ଖୋଦିତ ଅକ୍ଷରମାନ ।

ଲାଟାନୁପ୍ରାସ—ପୁଂ.ବି. ଅନୁପ୍ରାସବିଶେଷ, ଶବ୍ଦାଳଂକାରବିଶେଷ । [ ଦେଖ ।

ଲାଟିକା—ବି. (ଲାଟ + କ.ଆ) ଲାଟୀରୀତି

ଲାଟିନ୍—ଯା.ବି. ପ୍ରାଚୀନ ରୂମ ବା ଇଟାଲିରେ ପ୍ରଚଳିତ ଭାଷା ।

ଲାଟିମ—ଗ୍ରା. ବି. କ୍ରୀଡ଼ନକବିଶେଷ ।

ଲାଟୀ—ବିଂ. ( ଲାଟ+ଅ+ଈ ) ଲାଟଦେଶ ପ୍ରଚଳିତ,(ବି)ଲାଟୀରୀତି ଦେଖ, ପ୍ରାକୃତ ଭାଷାବିଶେଷ ।

ଲାଟୀରୀତି— ବି. ଲାଟଦେଶ ପ୍ରଚଳିତ ପଦ୍ଧତି, ସଂସ୍କୃତ ରଚନାରୀତିବିଶେଷ ।

ଲାଟୁ—ଗ୍ରା. ବି. ଲଟୁ ଦେଖ ।

ଲାଠି—ଗ୍ରା. ବି. ବାଡ଼ି, ବାଉଁଶବାଡ଼ି,ଦଣ୍ଡ. ଠେଙ୍ଗା, ଧାନରୁଆ ସମୟରେ ବିଲର ଧାନଗଛକୁ ଏକଆଡ଼କୁ ମୁହାଁଇବା ନିମନ୍ତେ ବ୍ୟବହୃତ ଲମ୍ବ ବାଉଁଶଖଣ୍ଡ

ଲାଠିଆଳ—ଗ୍ରା. ବିଂ. ଯେ ଲାଠିଧରେ ବା ଖେଳେ, ପ୍ରହରଣରୂପେ ଯଷ୍ଟିଧାରୀ (ବ୍ୟକ୍ତି) ।

ଲାଠ୍ୟୌଷଧ—ଗ୍ରା. ବି. ମୂର୍ଖର ମୂର୍ଖପଣରୂପ ରୋଗର ଉପଶମନାର୍ଥ ତତ୍ପ୍ରତି ପ୍ରଯୁକ୍ତ ଲାଠି ବା ଯଷ୍ଟ୍ୟାଘାତ ରୂପ ଔଷଧ ।

ଲାଣ୍ଡଣୀ(ନୀ)—ସ୍ତ୍ରୀ. ବି. କୁଳଟା ସ୍ତ୍ରୀ ।

ଲାଣ୍ଡିଆ—ଗ୍ରା. ପୁଂ. ବିଂ. ଅସୁନ୍ଦର,ବିକୃତାଙ୍ଗ,ସୌଷ୍ଠବହୀନ, ଶାଖାହୀନ(ବୃକ୍ଷ), ଅଳଙ୍କାର ବିହୀନ, (ଗ୍ରା.ବି) ଫୋପଡ଼, ଯେଉଁ ସ୍ଥୂଳଯଷ୍ଟି ଫିଙ୍ଗି ଗଛରୁ ଫଳ ଝଡ଼ାଇବାକୁ ହୁଏ ।

ଲାଣ୍ଡୀ—ଗ୍ରା. ସ୍ତ୍ରୀ. ବିଂ. ମୁଣ୍ଡିତ କେଶା (ସ୍ତ୍ରୀ),ଅଳଙ୍କାରବିହୀନା,ପୁଚ୍ଛହୀନା,ଶାଖାହୀନ (ବୃକ୍ଷ) ।

ଲାଣ୍ଡିମୁଣ୍ଡୀ-ଗ୍ରା.ସ୍ତ୍ରୀ.ବିଂ.ମୁଣ୍ଡିତକେଶା(ସ୍ତ୍ରୀ) ।

ଲାଣ୍ଡୁ—ଗ୍ରା. ପୁଂ. ବିଂ. ଲାଣ୍ଡୀ ଦେଖ, ଲାଣ୍ଡିଆ ଦେଖ, ଅଣ୍ଟୁକୁଡ଼ା, ସ୍ଥାଣୁ (ବୃକ୍ଷ) ।

ଲାତ—ଗ୍ରା. ବି. ପାଦ ପ୍ରହାର, ଗୋଇଠା, (ସଂ-ବିଂ. ଲା+ମ.ତ) ଗୃହୀତ ।

ଲାତି—ବି. (ଲା+ଭା.ତି) ଗ୍ରହଣ ।

ଲାତୁଆ—ଗ୍ରା.ବିଂ. ଯେ ପାଦ ପ୍ରହାର ବା ଗୋଇଠା ମାରେ ।

ଲାଥୁଲାଥୁ—ଗ୍ରା. ବିଂ. ମାଂସଳ, ମାଂସାଧିକ୍ୟ ଯୋଗୁଁ ଥଲଥଲ ।

ଲାଦାନ୍(ନ)—ଯା.ବିଂ. ଅତି ଗରିବ ।

ଲାଦାନଇଅବସ୍ଥା—ଗ୍ରା. ବି. ଅତି ଗରିବ ଅବସ୍ଥା ।

ଲାଦିବା—ଗ୍ରା.କ୍ରି.ଲଦିବା ଦେଖ, ବୋଝ ଚପାଇବା, ଅତ୍ୟଧିକ ଭାବରେ ବୃଷ୍ଟି କରିବା ।

ଲାପ—ପୁଂ. ବି. (ଲାପ୍ + ଅ) କଥନ, ଲପନ, ଭାଷଣ, କହିବା ।

ଲାପନୀୟ—ବିଂ. ( ଲପ୍+ମ.ଅନୀୟ ) କଥନୀୟ ।

ଲାପିକା—ବି. (ଲାପ୍+ମ.ଅକ+ଆ) ଏକପ୍ରକାର ପ୍ରହେଳିକା ।

ଲାପୀ—ପୁଂ.ବିଂ(ଲପ୍+କ.ଇନ୍)କଥନଶୀଳ, (ସ୍ତ୍ରୀ) ଲାପିନୀ ।

ଲାପୁ—ବି. ରୁଦନ୍ତୀ ଦେଖ ।

ଲାପେ—ପ୍ରା. (ଉଦୀଭାଷା)ବିଂ. ଅନେକ, ବେଶି, ବହୁତ ।

ଲାପ୍ୟ—ତ୍ରି.ବିଂ.(ଲପ୍+ମ.ଯ) କଥନୀୟ, (ସ୍ତ୍ରୀ) ଲାପ୍ୟା । [ କୁଦା ।

ଲାଫ୍—ପ୍ରା (ଜଃ ବାଲେ)ବି.ଲମ୍ଫ,ଡ଼ିଆଁ,

ଲାଭ—ପୁଂ. ବି. (ଲଭ୍+ଭା.ଅ) ପ୍ରାପ୍ତି, ପାଇବା, ମିଳିବା, ଉପାର୍ଜନ, (ମ.ଅ)

ମୁନାଫା, ସୁଦ, ବୃଦ୍ଧି, ଉପସ୍ୱତ୍ୱ, ଆୟ ।

ଲଭଃପରଂଗୋବଧଃ—(ସଂ-ପ୍ରବଚନ) ଯେଉଁ ସ୍ଥଳରେ କିଛିମାତ୍ର ଲାଭ ନ ହୋଇ ଓଲଟି ଶେଷକୁ ପାପଭାଗୀ ବା କ୍ଷତିଗ୍ରସ୍ତ ହେବାକୁ ହୁଏ ସେ ସ୍ଥଳରେ ଏ ପ୍ରବଚନ ବୋଲାଯାଏ ।

ଲଭକ—ବି. (ଲାଭ+କ) ଲାଭ ।

ଲଭକର—ବିଂ. (ଲାଭ+କୃ+କ.ଅ) ଲାଭଜନକ,ସୁବିଧାଜନକ,ମଙ୍ଗଳକର, (ସ୍ତ୍ରୀ) ଲାଭକରୀ ।

ଲଭକରିବା—ଗ୍ରା. କ୍ରି. ଅର୍ଜନକରିବା, ପାଇବା, ଧନାଦି ଆୟ କରିବା ।

ଲଭକ୍ଷତି—ବି. ବ୍ୟବସାୟର ଆୟ ଓ ଲୋକସାନ ।

ଲଭଖାଇବା—ଗ୍ରା. କ୍ରି. ବାଣିଜ୍ୟାଦିର ଆୟକୁ ଭୋଗକରିବା ।

ଲଭଜନକ—ବିଂ. ଯହିଁରୁ ଲାଭହୁଏ, ଆୟକର, ହିତକର, ସୁବିଧାଜନକ, (ସ୍ତ୍ରୀ) ଲାଭଜନକା ।

ଲଭଜନ୍ୟ—ବିଂ. (୫ତତ୍) ଲାଭରୁ ଜନ୍ମିବା, ଲାଭଜାତ ।

ଲଭଦାୟକ—ବିଂ.ଯାହା ଲାଭ କରାଏ ଲାଭକର, (ସ୍ତ୍ରୀ) ଲାଭଦାୟିକା ।

ଲଭପ୍ରଦ—ବିଂ. ଲାଭଜନକ, (ସ୍ତ୍ରୀ) ଲାଭପ୍ରଦା ।

ଲଭମୂଳ—ଗ୍ରା.ବି. ବାଣିଜ୍ୟାଦିରୁ ଉତ୍ପନ୍ନ ଲାଭ ଓ ମୂଳଧନ ।

ଲଭମୂଳକ—ବିଂ. (ବ.ବ୍ରୀ) ଯହିଁର ମୂଳରେ ଲାଭ ଅଛି, ଲାଭରୁ ଉତ୍ପନ୍ନ

ଲଭର ପିଆସ-ଗ୍ରା.ବିଂ.ଯେ ଲାଭ ହେଉ ଥିବାବେଳେ କେବଳ ମନୁଷ୍ୟକୁ ସୁଖ ପାଏ। [ ଇଚ୍ଛୁକ ।

ଲଭଲିପ୍ସୁ—ପୁଂ. ବିଂ. ଲାଭ କରିବାକୁ

ଲଭଲେଶ—ଗ୍ରା.ବି.ସାମାନ୍ୟମାତ୍ର ଲାଭ, କିଛିମାତ୍ର ଲାଭ, ବିକ୍ରେତାଠାରୁ ମୂଲ୍ୟାନୁଯାୟୀ ଦ୍ରବ୍ୟ କିଣିବା ପରେ କ୍ରେତାର ଆଣିବା ସାମାନ୍ୟମାତ୍ର ଅଧିକା ଦ୍ରବ୍ୟ ।

ଲଭଲୋକସାନ—ଗ୍ରା.ବି.ଲାଭ ଓ କ୍ଷତି, ଲାଭାଲାଭ ।

ଲାଭବାନ୍—ପୁଂ. ବିଂ. (ଲାଭ+ବତ୍) ଲାଭଯୁକ୍ତ, ଲାଭବିଶିଷ୍ଟ ।

ଲାଭସ୍ଥାନ—କ୍ଲୀ.ବି.ଜାତକର ଲଗ୍ନଠାରୁ ଏକାଦଶ ସ୍ଥାନ, ଲାଭଗୃହ ।

ଲାଭହେତୁକ—ବିଂ.(ବ.ବ୍ରୀ)ଲାଭମୂଳକ ଦେଖ ।

ଲାଭ୍ୟ—କ୍ଲୀ.ବି. (ଲାଭ+ଯ)ଲାଭ ।

ଲାଭାଡ଼ି—ଗ୍ରା. ବିଂ. (ସଂ-ଲାଭଲୋଲୁପ) ଅତିଲୋଭୀ, ଲାଭ ପାଇବା ପାଇଁ ବ୍ୟଗ୍ର (ବ୍ୟକ୍ତି) ।

ଲାଭାଧିପ—ବି. ଲଗ୍ନଠାରୁ ଏକାଦଶ ସ୍ଥାନର ଅଧିପତି,ଲାଭାଧିପତି,ଲାଭାଧୀଶ

ଲାଭାର୍ଥୀ—ପୁଂ.ବିଂ. ଯେ ଲାଭ କରିବାକୁ ଇଚ୍ଛୁକ (ସ୍ତ୍ରୀ) ଲାଭାର୍ଥିନୀ ।

ଲାଭାର୍ହ—ପୁଂ. ବିଂ. ଲାଭ କରାଯିବାର ଉପଯୁକ୍ତ, ପ୍ରାପ୍ତିଯୋଗ୍ୟ, (ସ୍ତ୍ରୀ)ଲାଭାର୍ହା

ଲାଭାଲାଭ—ବି. (ଲାଭ+ଅଲାଭ)ଲାଭ ଓ କ୍ଷତି । [ ଇଚ୍ଛା ।

ଲାଭେଚ୍ଛା—ବି.(୬ତତ୍)ଲାଭ କରିବାର

ଲାଭେଚ୍ଛୁ—ପୁଂ. ବିଂ. ଲାଭ କରିବାକୁ ଅଭିଳାଷୀ ।

ଲାଭେଷୀ—ପୁଂ. ବିଂ. (ଲାଭ+ଇଷୀ) ଲାଭ କରିବାକୁ ଇଚ୍ଛୁକ, (ସ୍ତ୍ରୀ)ଲାଭେଷିଣୀ ।

ଲାଭଜ୍ଜକ-.କ୍ଲୀ.ବି.ବେଣାମୂଳ,ଗନ୍ଧବେଣା, ଉଶୀର ।

ଲାମ୍ପଟ୍ୟ—ବି, (ଲମ୍ପଟ+ଯ)ଲମ୍ପଟତା, କାମୁକତା, ରଣ୍ଡିବାଜ, ବ୍ୟଭିଚାର ।

ଲାୟାର—ଯା.(ଇଂରାଜୀ)ବି.ଇଟାଲିରେ ପ୍ରଚଳିତ ମୁଦ୍ରାବିଶେଷ ।

ଲାର—ପ୍ରା.(ସମ୍ବ)ବି. ଲୁଡ଼ୁଆଘର ।

ଲାର୍ଖାନି—ଗ୍ରା.ବି. ରାଜପୁତାନାସ୍ଥ ପ୍ରସିଦ୍ଧ ଦସ୍ୟୁସମ୍ପ୍ରଦାୟ ।

ଲାଲ୍—ଯା.ବିଂ.ରକ୍ତବର୍ଣ୍ଣବିଶିଷ୍ଟ,ନାଲିଆ, (ବି) ଏକପ୍ରକାର କ୍ଷୁଦ୍ର ଗାୟକ ପକ୍ଷୀ, ରକ୍ତବର୍ଣ୍ଣ ରତ୍ନବିଶେଷ,ମାଣିକ୍ୟ,ନାଲିରଙ୍ଗ, ରକ୍ତବର୍ଣ୍ଣ, ନାଲିକାଇଞ୍ଚ,(ଗ୍ରା.ବି) ରାଜାଙ୍କର ୩ୟ ୪ର୍ଥ ରାଜକୁମାରଙ୍କ ଉପାଧି,ବିହାରର ଲାଲାକାୟସ୍ଥମାନଙ୍କ

ବଂଶୋପାଧି ।

ଲାଲ୍ଗୁଲ୍ଗୁଲ୍—ପ୍ରା.(ଧର୍ମ)ବିଂ.ଲାଲ୍ଗୁଲାଲ୍ ଦେଖ ।

ଲାଲ୍ଗୁଲାଲ୍—ଯା.ବିଂ.ରକ୍ତ ରଞ୍ଜିତ ଓ ମନୋହର, ରଙ୍ଗଟହଟହ ।

ଲାଲ୍ପଗଡ଼ି--ଗ୍ରା.ବି.ମୁଣ୍ଡର ନାଲି ପାଗ ।

ଲାଲ୍ପଗଡ଼ିଆ—ଗ୍ରା.ବିଂ. ଯେ ମୁଣ୍ଡରେ ନାଲିପଗଡ଼ି ବାନ୍ଧିଥାଏ, (ବି)ପୁଲିସ୍ ।

ଲାଲ୍ପୋଷ୍—ଯା.ବିଂ. ରକ୍ତବର୍ଣ୍ଣ ପରିଚ୍ଛଦଧାରୀ ।

ଲାଲ୍ବନ୍ଦ—ଯା. ବି. ନାଲ୍ବନ୍ଦ, ଯେଉଁ ବ୍ୟକ୍ତି ଘୋଡ଼ାଆଦିଙ୍କ ଗୋଡ଼ରେ ନାଲ ମାରେ ।

ଲାଲ୍ବନ୍ଦି—ଯା. ବି. ଘୋଡ଼ାଆଦିଙ୍କ ଗୋଡ଼ରେ ନାଲ ମାରିବା କ୍ରିୟା ।

ଲାଲ୍ବାଗ୍—ଯା.ବି. (ନାମ) କଟକରେ କାଠଯୋଡ଼ି କୂଳରେ ଓଡ଼ିଶା ପ୍ରଦେଶର ରେଭିନ୍ୟୁ କମିଶନରଙ୍କ କୋଠି ।

ଲାଲ୍ଭଜା—ପ୍ରା.(ବସ୍ତ୍ର)ବି. କୋଶଳାଶାକ, ମାଂସଭଜା,ଖାଦ୍ୟାର୍ଥ ବ୍ୟବହୃତ ମାଂସ ।

ଲାଲ୍ଲାଲୁଆ—ଗ୍ରା.ବିଂ. ଲାଲାମୟ ।

ଲାଲ୍ସାହେବ—ଯା.ଓ ଗ୍ରା.ବି.ରାଜାଙ୍କର ୩ୟ ୪ର୍ଥ ରାଜକୁମାରଙ୍କ ଉପାଧି ।

ଲାଲ—ଗ୍ରା.ବି. (ସଂ-ଲାଲା)ଲାଳା,ପାଟିରୁ ବୋହିବା ଅଠାଳିଆ ଛେପ, ମୁଖର ସ୍ରାବ,ଆମ, ପେଟ ମଧ୍ୟରେ ଥିବା ଆମ, ପିଚ୍ଛିଳ ରସ । [ କାରକ ।

ଲାଲକ—ପୁଂ.ବିଂ. ଲାଳନକାରୀ, ଯତ୍ନ-

ଲାଲଗୁଳ—ଗ୍ରା.ବି.ବୋମ୍ବାଇ ପ୍ରଦେଶର ଟେଲ୍ଲାପୁର ଉପବିଭାଗର ଗୋଟିଏ ପ୍ରସିଦ୍ଧ ଜଳପ୍ରପାତ ।

ଲାଲଚ--ଗ୍ରା.ବି.ଲାଲସା,ସ୍ପୃହା,ଲୋଭ ।

ଲାଲଚୁ—ଗ୍ରା. ପୁଂ. ବିଂ. ଲାଲସାଯୁକ୍ତ, ଲାଳାସ୍ୱିତ, ଖାଦ୍ୟଦ୍ରବ୍ୟ ପ୍ରତି ବିଶେଷ ଲୋଭୀ, ଖୋସାମଦିଆ, ଲାଳୁଆ,(ଯା. ବିଂ) ଈଷତ୍ ରକ୍ତବର୍ଣ୍ଣବିଶିଷ୍ଟ, (ଲାଲଚିଆ, ଲାଲଚୀ-ଅନ୍ୟରୂପ) ।

ଲାଲଚନ୍ଦା—ଗ୍ରା.ବି. ( ସଂ-ରକ୍ତଚନ୍ଦନ )

ରକ୍ତଚତା ଗୁଳ୍ମ ।
ଲାଲନ—କ୍ଲୀ.ବି. (ଲାଲି+ଅନ)ଅତ୍ୟନ୍ତ ସ୍ନେହକରଣ, ଅତିଶୟ ଯତ୍ନର ସହିତ ପାଳନ, ରକ୍ଷଣ ।
ଲାଳନପାଳନ—ବି.(ଲାଲନ+ପାଳନ) ଯତ୍ନପୂର୍ବକ ପ୍ରତିପାଳନ, ଶିଶୁମାନଙ୍କୁ ଆଦର ଓ ଯତ୍ନସହିତ ପାଳିବା,ଭରଣ-ପୋଷଣ ।
ଲାଲନା—ବି. (ଲାଲନ+ଆ) ଆଦର, ସ୍ନେହ ।
ଲାଲନୀୟ—ବିଂ. ( ଲାଲି + ମି.ଅନୀୟ ) ଲାଲନାର୍ହ, ଲାଲନର ଯୋଗ୍ୟ ।
ଲାଲପଚପଚ(ବଚବଚ)—ଗ୍ରା.ବିଂ.ଲାଳ-ଦ୍ୱାରା ଜଜଳିତ, ଲାଳୁଆ, ଲାଳମୟ ।
ଲାଲ(ଲ)ପ୍ୟମାନ—ବିଂ. (ଲପ୍+ଯଙ-ଲୁଗନ୍ତ+ମି.ଆନ)ପୁନଃପୁନଃ କଥିତ ।
ଲାଲମାଟି—ଯା. ବି. ରକ୍ତବର୍ଣ୍ଣ ମୃତ୍ତିକା-ବିଶେଷ, ଗେରୁମାଟି, ରଙ୍ଗମାଟି ।
ଲାଲମୋହନ—ଗ୍ରା.ବି. ଦୁଧଛେନାରେ ପ୍ରସ୍ତୁତ ଘୃତପକ୍ୱ ରକ୍ତାବରଣବିଶିଷ୍ଟ ରସଗୋଲା ।
ଲାଲୟିତବ୍ୟ—ବିଂ. (ଲାଲ+ଣିଚ୍+ତବ୍ୟ) ଲାଲନଯୋଗ୍ୟ ।
ଲାଲସ—ପୁଂ. ବିଂ. ( ଲାଲସା+ଅ ) ଲୋଲୁପ, ଅତିଲୋଭୀ, (ସ୍ତ୍ରୀ)ଲାଲସୀ ।
ଲାଲସରସର—ଗ୍ରା. ବିଂ. ଲାଲପଚପଚ ଦେଖ ।
ଲାଲସା—ବି. (ଲସ୍+ଯଙଲୁଗନ୍ତ+ଅ+ଆ) ଅଭିଲାଷ,ଔତ୍ସୁକ୍ୟ, ଯାଚ୍ଞା, ଆଶା, ସ୍ପୃହା, ଲୋଭ, ଶୋଚନା, ଗର୍ଭିଣୀର ଦୋହଦ,ମନସ୍ଧ,ଗର୍ଭିଣୀର ଅଭିଲାଷ, ଆଳଙ୍ଗନେଚ୍ଛା ।
ଲାଲସୀ—ପୁଂ. ବିଂ. (ଲାଲସା+ଇନ୍) ଲାଲାୟିତ, ଇଚ୍ଛୁକ, (ସ୍ତ୍ରୀ)ଲାଲସିନୀ ।
ଲାଲସୀକ—ବିଂ, ପିଚ୍ଛିଳ, ବାଞ୍ଛିତ, ଇପ୍ସିତ,(ବି) ଚଟଣି,ମାଂସର ସୁରୁଆ ।
ଲାଲା—ସ୍ତ୍ରୀ.ବି. (ଲାଲ+ଅ+ଆ)ନାଳ, ମୁଖରୁ ନିର୍ଗତ ପିଚ୍ଛିଳ ଦ୍ରବପଦାର୍ଥ ।
ଲାଲା—ଯା.ବି.ବିହାରର ଜଃପଃ ଦେଶୀୟ କାୟସ୍ଥ ଜାତିର ବଂଶୋପାଧି ।
ଲାଲାଟ—ବିଂ. (ଲଲାଟ+ଅ)ଲଲାଟ-ସମ୍ବନ୍ଧୀୟ ।
ଲାଲାଟିକ—ପୁଂ.ବିଂ. (ଲଲାଟ+ଇକ) ଅଦୃଷ୍ଟବାଦୀ,କାର୍ଯ୍ୟାକ୍ଷମ, ଲଲାଟ ସମ୍ବ-ନ୍ଧୀୟ,ଅଳସୁଆ,ଭାଗ୍ୟଲବ୍ଧ,(ସ୍ତ୍ରୀ)ଲାଲା-ଟିକୀ, (ବି) ଲଲାଟର ଅଳଙ୍କାର ।
ଲାଲାଟୀ—ସ୍ତ୍ରୀ.ବି.(ଲଲାଟ+ଈ)ଲଲାଟ, କପାଳ ।
ଲାଲାଭକ୍ଷ—ବିଂ. ଲାଲ ଭକ୍ଷଣକାରୀ, (ବି) ନରକବିଶେଷ, (ଦେବ ପିତୃ ଓ ଅତିଥିମାନଙ୍କୁ ଭୋଜ୍ୟବସ୍ତୁ ନଦେଇ ଯେ ଭୋଜନ କରେ ସେ ଏହି ନରକରେ ପଡ଼େ) । [ ଗାଥା ।
ଲାଲାମିକ—ବିଂ.ଲଲାମଗାମୀ, ସୌନ୍ଦର୍ଯ୍ୟ-
ଲାଲାମେହ—ପୁଂ.ବି.ପ୍ରମେହ ରୋଗବିଶେଷ ।
ଲାଲାୟମାନ—ପୁଂ.ବିଂ. (ଲାଲ+ନାମ-ଧାତୁ+କ.ଆନ) ଯାହାର ପାଟିରୁ ବା ଯହିଁରୁ ଲାଳ ବହୁଥାଏ, (ସ୍ତ୍ରୀ)ଲାଲାୟ-ମାନା ।
ଲାଲାୟିତ—ବିଂ. (ଲାଲା+ତ) ଲାଲା-ବିଶିଷ୍ଟ, ଯାହାଠାରୁ ଲାଳ ବହୁଥାଏ, ଇଚ୍ଛୁକ, ଲାଲସୀ ।
ଲାଲାଲଜପତରାୟ—ଗ୍ରା. ବି. ଭାରତର ସ୍ୱର୍ଗୀୟ ପ୍ରସିଦ୍ଧ ରାଜନୀତିଜ୍ଞ ବୀର (ଏ ମହାତ୍ମାଗାନ୍ଧିଙ୍କର ସହକର୍ମୀ ଥିଲେ) ।
ଲାଲାଳୁ—ଗ୍ରା.ବିଂ. (ଲାଲା+ଆଳୁ)ଯହିଁରୁ ଲାଳ ବହୁଥାଏ ।
ଲାଲାବିଷ—ବି. (ବ.ବ୍ରୀ)ଯାହାର ଲାଳରେ ବିଷଥାଏ, ମାକଡ଼ସା ପ୍ରଭୃତି ।
ଲାଲାସ୍ରବ—ବି. (ଲାଲା+ସ୍ରବ)ଲୂତା, ମାଙ୍କଡ଼ସା ।
ଲାଲାସ୍ରାବ—ବି(ଲାଲା+ସ୍ରାବ)ଊର୍ଣ୍ଣନାଭ, ମାକଡ଼ସା ।
ଲାଲାସ୍ରାବୀ—ପୁଂ.ବିଂ. (ଲାଲା+ସ୍ରାବିନ୍) ଲାଳା ନିଃସରଣକାରୀ ।
ଲାଲି(ଆ)—ଯା.ବି.ବିଂ. ନାଲି ଦେଖ ।
ଲାଲି—ଗ୍ରା.ବି. ଲାଲସା, ପାଞ୍ଚ ଆଙ୍ଗୁଳିଆ ପରେ ପାଚୁଡ଼ା ହୋଇ ନଥିବା ଧାନରେ ଥିବା ସୂକ୍ଷ୍ମ ସୂକ୍ଷ୍ମ କୁଟା ଅଗାଡ଼ିଆଦି ।
ଲାଲିକ—ପୁଂ.ବି.(ଲାଲା+ଇକ)ମହିଷ ।
ଲାଲିକା—ବି. ( ଲଲ୍+ଣ.ଅକ+ଆ ) ଆମୋଦଜନକ ଉତ୍ତର, ରହସ୍ୟପୂର୍ଣ୍ଣ ଉତ୍ତର, ସୋପହାସ ଉତ୍ତର, ଦୁଇ ଅର୍ଥଯୁକ୍ତ ରହସ୍ୟ ।
ଲାଲିତ—ପୁଂ.ବିଂ (ଲଲ+ଣି.ତ)ଯତ୍ନରେ ପ୍ରତିପାଳିତ, ସେବିତ, ଫୁସୁଲାଇ କରି ନିଆଯାଇଥିବା, ଅତ୍ୟନ୍ତ ଗେହ୍ଲା, ଅତ୍ୟନ୍ତ ସ୍ନେହପାଳିତ, (ବି. ଭା.ତ) ପ୍ରେମ, ସୁଖ, ଆନନ୍ଦ,ଉଲ୍ଲାସ ।
ଲାଲିତକ—ପୁଂ.ବି(ଲାଲିତ+କ)ଗେହ୍ଲା-ପୁଅ, (ସ୍ତ୍ରୀ) ଲାଲିତକା ।
ଲାଲିତପାଳିତ—ପୁଂ. ବିଂ. ବାଲ୍ୟକାଳରୁ ଯତ୍ନସହିତ ବର୍ଦ୍ଧିତ,(ସ୍ତ୍ରୀ)ଲାଲିତପାଳିତା ।
ଲାଲିତ୍ୟ—କ୍ଲୀ. ବି. (ଲଳିତ+ଯ)ଲଳି-ତର ଭାବ, ମଧୁରତା, କୋମଳତା, ଲାବଣ୍ୟ, ସୌନ୍ଦର୍ଯ୍ୟ, କମନୀୟତା ।
ଲାଲିନୀ—ସ୍ତ୍ରୀ. ବି. ( ଲଲିନ୍+ଈ ) ଅସଚ୍ଚରିତ୍ରା ସ୍ତ୍ରୀ ।
ଲାଲୀ(ଳୀ)—ପୁଂ. ବିଂ. (ଲଡ଼+କ.ଇନ୍) ଯେ ଫୁସୁଲାଇ କରି ଲୋକକୁ ନେଇ-ଯାଏ, (ବି) ଭୂତପ୍ରେତାଦିଙ୍କ ଆବେଶ ।
ଲାଲୀ—ଗ୍ରା.ବିଂ. ଈଷତ୍ ଲାଲବର୍ଣ୍ଣବିଶିଷ୍ଟ ।
ଲାଲୀଲ—ବି. (ଲଲ୍+କ.ଇଲ)ଅଗ୍ନି ।
ଲାଲୁ—ଗ୍ରା. ବି. ଲାଲସାହେବ, ୩ୟ ୪ର୍ଥ ରାଜକୁମାରଙ୍କ ଡାକ ନାମ ।
ଲାଲୁଆ—ଗ୍ରା.ବିଂ (ସଂ-ଲାଲାମୟ)ନାଳୁଆ ଦେଖ ।
ଲାଲୁକା—ସ୍ତ୍ରୀ. ବି. କଣ୍ଠହାରବିଶେଷ ।
ଲାଲେଇବା—ଗ୍ରା.କ୍ରି. (କୌଣସି ବ୍ୟକ୍ତି) ଦେହରୁ ଲାଳା ନିର୍ଗତ କରିବା,ଲାଲା-ମୟ ହେବା, ଲାଲାୟିତ ହେବା, ଜିଭ ଦ୍ୱାରା ଚଞ୍ଚଳ ଗୃତି ଖାଇବା, ମୁହଁରୁ ଲାଲ ବୁହାଇବା ।
ଲାଲ୍ୟ—ବିଂ. (ଲାଲ+ଯ) ଲାଲନୀୟ, ଲାଲନାର୍ହ ।
ଲାବ—ବି. ( ଲାବ+ଣ.ଅ ) ଛେଦନ, (କ.ଅ)ବର୍ତ୍ତିର ବର୍ଗ, ପକ୍ଷିବିଶେଷ,ବତର

ଚଢ଼େଇ, ଲବଙ୍ଗ ।

ଲାବକ—ପୁଂ.ବ (ଲାବ+କ)ଲାବପକ୍ଷୀ, ବତରଚଢ଼େଇ, (ପୁଂ.ବଂ. ଲୂ+ଅକ) ଛେଦକ ।

ଲାବଜ—ଗ୍ରା.ବି.ପ୍ରାଚୀନ କାଳର ଆନଦ୍ଧ-ବାଦ୍ୟବିଶେଷ ।

ଲାବଡ଼(ଡ଼ା)—ଗ୍ରା.ବଂ.ଲାବାଡ଼ ଦେଖ ।

ଲାବଣ(କ)—ବଂ. (ଲବଣ+ଅ+କ) ଲବଣ ଦ୍ୱାରା ସଂସ୍କୃତ, ଲବଣମିଶ୍ରିତ, ଲବଣସମ୍ବନ୍ଧୀୟ, (ବି) ଜଣ୍ୟ, ଲଙ୍କା-ଆଦି ଦେଶ ।

ଲାବଣିକ—ବଂ (ଲବଣ+ଇକ)ଲବଣ ଦ୍ୱାରା ସଂସ୍କୃତ, ଲବଣଯୁକ୍ତ, ଲବଣ-ସମ୍ବନ୍ଧୀୟ, (ସ୍ତ୍ରୀ) ଲାବଣିକୀ, (ପୁଂ.ବି) ଲବଣ ବିକ୍ରେତା ବା ବ୍ୟବସାୟୀ,(କ୍ଲୀ. ବି) ଲବଣପାତ୍ର, ଲୁଣରଖା ଜାଗା ।

ଲାବଣ୍ୟ—କ୍ଲୀ. ବି. (ଲବଣ+ଯ)ଲବ-ଣତ୍ୱ, ଲୁଣିଆବ, ସୌନ୍ଦର୍ଯ୍ୟବିଶେଷ, ରୂପର ମାଧୁରୀ, ଦୀପ୍ତି, କାନ୍ତି, ଶୀଳ-ନୈପୁଣ୍ୟାଦି, ଚାକଚକ୍ୟ, କୋମଳତା ।

ଲାବଣ୍ୟଗର୍ବିତ—ପୁଂ.ବଂ(୩ତତ୍ର)ନିଜର ସୌନ୍ଦର୍ଯ୍ୟ ହେତୁ ଗର୍ବଯୁକ୍ତ, (ସ୍ତ୍ରୀ) ଲାବଣ୍ୟଗର୍ବିତା ।

ଲାବଣ୍ୟଜନକ—ବଂ (ଉପ-ତତ୍ପୁରୁଷ) ସୌନ୍ଦର୍ଯ୍ୟର ଉତ୍ପାଦକ ।

ଲାବଣ୍ୟଧାମା—ପୁଂ. ସ୍ତ୍ରୀ. ବଂ. (ବ.ବ୍ରୀ) ଲାବଣ୍ୟମୟ, ଲାବଣ୍ୟର ସ୍ଥାନସ୍ୱରୂପ ।

ଲାବଣ୍ୟନିଧି—ବି. ମୋତି, ମୁକ୍ତା, (ଗ୍ରା. ସ୍ତ୍ରୀ.ବି) ସୁନ୍ଦରୀ ସ୍ତ୍ରୀ, ରାଧିକା ।

ଲାବଣ୍ୟପିତୁଳା—ଗ୍ରା.ବି. ସୁନ୍ଦର ପ୍ରତିମା, ଲାବଣ୍ୟବତୀ ସ୍ତ୍ରୀ ।

ଲାବଣ୍ୟବତୀ—ସ୍ତ୍ରୀ.ବଂ.(ଲାବଣ୍ୟ+ବତ୍ +ଈ)ସୁନ୍ଦରୀ, ଲାବଣ୍ୟମୟୀ ସ୍ତ୍ରୀ, (ଗ୍ରା. ବି) କବିବର ଉପେନ୍ଦ୍ରଭଞ୍ଜଙ୍କ ରଚିତ ଓଡ଼ିଆ କାବ୍ୟବିଶେଷ ।

ଲାବଣ୍ୟବର୍ଜିତ—ପୁଂ. ବଂ. (୩ତତ୍ର) ଲାବଣ୍ୟହୀନ, ସୌନ୍ଦର୍ଯ୍ୟହୀନ, (ସ୍ତ୍ରୀ) ଲାବଣ୍ୟବର୍ଜିତା ।

ଲାବଣ୍ୟମୟ—ପୁଂ.ବଂ (ଲାବଣ୍ୟ+ମୟ) ସୌନ୍ଦର୍ଯ୍ୟଶାଳୀ, (ସ୍ତ୍ରୀ) ଲାବଣ୍ୟମୟୀ ।

ଲାବଣ୍ୟମୂର୍ତ୍ତି—ବି. (କ.ଧା) ସୁନ୍ଦରରୂପ, (ପୁଂ.ବଂ. ବ.ବ୍ରୀ) ସୁନ୍ଦର ମୂର୍ତ୍ତିବିଶିଷ୍ଟ ।

ଲାବଣ୍ୟରହିତ—ପୁଂ.ବଂ.(୩ତତ୍ର)ଅସୁ-ନ୍ଦର,କଦାକାର,(ସ୍ତ୍ରୀ)ଲାବଣ୍ୟରହିତା ।

ଲାବଣ୍ୟରୂପ—ବି. (କ.ଧା) ସୁନ୍ଦରରୂପ, (ପୁଂ.ବଂ.ବ.ବ୍ରୀ)ସୁନ୍ଦର ରୂପଯୁକ୍ତ, (ସ୍ତ୍ରୀ) ଲାବଣ୍ୟରୂପା ।

ଲାବଣ୍ୟସଦନା—ସ୍ତ୍ରୀ.ବଂ.ଯାହାର ସର୍ବା-ଙ୍ଗରେ ଲାବଣ୍ୟ ବିଦ୍ୟୋତିତ ହେଉ-ଥାଏ, ଲାବଣ୍ୟବତୀ । [ ହୀନ ।

ଲାବଣ୍ୟହୀନ—ବି.(୭ତତ୍ର) ସୌନ୍ଦର୍ଯ୍ୟ-

ଲାବଣ୍ୟା—ବି. ବ୍ରାହ୍ମୀଶାକ ।

ଲାବଣ୍ୟାର୍ଜିତ—କ୍ଲୀ.ବି.ବିବାହ କାଳରେ ନବବଧୂକୁ ଶାଶୁଶ୍ୱଶୁର ଦେବା ଉପହାର ।

ଲାବା—ସ୍ତ୍ରୀ.ବି.(ଲାବ+ଆ)ମାଈ ବତର ଚଢ଼େଇ, ଲାବପକ୍ଷିଣୀ ।

ଲାବାକ୍ଷକ—ବି. ଧାନ୍ୟବିଶେଷ, ଏକ-ପ୍ରକାର ଧାନ ।

ଲାବାଡ଼—ଗ୍ରା.ବଂ. ଲମ୍ପଟ, ଶଠ,ନିର୍ଲଜ୍ଜ, ଦୁଷ୍ଟ, ନିର୍ବୋଧ, ମିଥ୍ୟାବାଦୀ, କୃପଣ, ବ୍ୟସ୍ତକୁଣ୍ଠ ।

ଲାବାଣକ—ବି. ମଗଧ ନିକଟସ୍ଥ ପ୍ରାଚୀନ ଦେଶବିଶେଷ ।

ଲାବିକ—ପୁଂ.ବି. (ଲୂ+କ.ଇକ)ମହିଷ, ମଇଁଷି ।

ଲାବିକା—ବି. (ଲାବ+କ+ଆ)ଲାବପକ୍ଷୀ

ଲାବୀ—ପୁଂ.ବଂ. (ଲୂ+ଇନ୍) ଛେଦକ, ଚୟନକାରୀ ।

ଲାବୁ(ବୂ)—ସ୍ତ୍ରୀ.ବି.(ଲୂ+ମଂ.ଉ,ଊ) ଲାଉ ଅଲାବୁ, ତୁମ୍ବୀ ।

ଲାବୁକ—ବି. (ଲାବୁ+କ)ଲାଉ ।

ଲାବୁକୀ—ସ୍ତ୍ରୀ.ବି. (ଲାବୁକ+ଈ) ଏକ-ପ୍ରକାର ବୀଣା ।

ଲାବୁକେଶ୍ୱର—ବି. ଭୁବନେଶ୍ୱର ବିନ୍ଦୁ-ସାଗର କୂଳସ୍ଥ ଶିବଲିଙ୍ଗବିଶେଷ ।

ଲାବ୍ୟ—ବଂ. (ଲୂ+ଯ)ଛେଦ୍ୟ,ଛେଦନ-ଯୋଗ୍ୟ ।

ଲାଶ—ଯା.ବି.ମୃତଦେହ,ଶବ, ମୁର୍ଦ୍ଦାର, ଶରୀର, ଦେହ ।

ଲାଷୁକ—ପୁଂ. ବଂ. (ଲାଷ୍+କ.ଉକ) ଲୋଭୀ, ଗୃଧ୍ନୁ, ଉଦରମ୍ଭରୀ, (ସ୍ତ୍ରୀ) ଲାଷୁକା ।

ଲାସ—ପୁଂ. ବି. (ଲସ୍+ଭା.ଅ) ନୃତ୍ୟ, କ୍ରୀଡ଼ା, ବିଳାସ, ଛଇ, (ଣ.ଅ)ମୋପ୍, ମୋରୁଆଁ, ଯୂଷ, ଲାଳ,(ଗ୍ରା.ବି) ଲାଶ୍ ଦେଖ, (ଯା.ବି) ନିକୃଷ୍ଟ ଜମି ।

ଲାସକ—କ୍ଲୀ.ବି. (ଲସ୍+କ) ମଟକା, (ପୁଂ.ବି) ଲାସ୍ୟକାରୀ, ନାଟୁଆ,ମୟୂର, ନଟ,(ପୁଂ.ବଂ)ନୃତ୍ୟକାରୀ, କ୍ରୀଡ଼ାକାରୀ, (ସ୍ତ୍ରୀ) ଲାସିକା ।

ଲାସନ—ପୁଂ. ବଂ. ( ଲସ୍+କ.ଅନ ) ଇତସ୍ତତଃ ଚଳୁଥିବା, (ବି) ଗମନ, ଚଳନ ।

ଲାସବେଶ—ବି. (ମଧ୍ୟ-କ.ଧା)ନାଟୁଆର ବେଶ ବା ସାଜସଜ୍ଜା, ବିଳାସବେଶ, ରସିକ ରସିକାଙ୍କର ସାଜସଜ୍ଜା ।

ଲାସା—ଯା. ବି. ତିବ୍ବତ ରାଜ୍ୟର ରାଜ-ଧାନୀ,ଚଟକା ଚୂନର ଅଠାଳିଆ ଅବସ୍ଥା, ଅଠା, ଚଟ, ଲାହା, ବଟାବିର, ସାର, ରସ ।

ଲାସିକ—ପୁଂ.ବି. (ଲାସ+ଇକ)ନର୍ତ୍ତକ, ନାଟୁଆ, ନଟ, (ସ୍ତ୍ରୀ) ଲାସିକା ।

ଲାସିକା—ସ୍ତ୍ରୀ. ବି. (ଲାସ୍+ଅକ+ଆ) ନର୍ତ୍ତକୀ, ବେଶ୍ୟା,ଅସତୀ ସ୍ତ୍ରୀ, (ଭା.ଅକ +ଆ) ଏକପ୍ରକାର ନାଟକାଭିନୟ ।

ଲାସୀ—ପୁଂ. ବି. (ଲାସ+ଇନ୍)ନର୍ତ୍ତକ, ଇତସ୍ତତଃ ଚଳିବା, (ସ୍ତ୍ରୀ) ଲାସିନୀ ।

ଲାସ୍ଫୋଟନୀ—ବି. ଆସ୍ଫୋଟନୀ, ବେଧକ ଯନ୍ତ୍ର, ଫୋଡ଼ଣି, ଛୁଞ୍ଚି, ଭଅଁର ଯନ୍ତ୍ର ।

ଲାସ୍ୟ—କ୍ଲୀ. ବି. (ଲସ୍+ଯ) ନୃତ୍ୟ, ନାଚ, ତାଳଲୟାଶ୍ରିତ ନୃତ୍ୟ ।

ଲାସ୍ୟକ—କ୍ଲୀ. ବି. ନୃତ୍ୟ, ସ୍ତ୍ରୀମାନଙ୍କର ନୃତ୍ୟ ।

ଲାସ୍ୟବେଶ—ବି. ଲାସବେଶ ଦେଖ ।

ଲାସ୍ୟହାସ—ବି. ନୃତ୍ୟ ଓ ହାସ୍ୟ ।

ଲାସ୍ୟା—ସ୍ତ୍ରୀ. ବି. ( ଲାସ୍+ଯ+ଆ ) ନର୍ତ୍ତକୀ ।

**ଲାହା**—ଗ୍ରା. ବି. (ସଂ-ଲାକ୍ଷା)ଲାକ୍ଷା,ଲାଖ, ଜଉ, ଲାସା ଦେଖ, ବଙ୍ଗୀୟ ଶୂଦ୍ର ଜାତିର ବଂଶୋପାଧି, ଦେହର ବଳ, ଅଠା, (ପ୍ରା. କଟକ. ବି) କୌଳା,(ପ୍ରା. ଗଞ୍ଜାମ) ନିୟମ, ଆଇନ ।

**ଲାହୁ**—ଗ୍ରା. ବି. (ସଂ-ନାଭି)ନାଭି,ନାହୁ ।

**ଲାହୁଆ**—ଗ୍ରା. ବିଂ. ବଡ଼ନାଭିଯୁକ୍ତ, (ବି) ଶଗଡ଼ର ତୁମ୍ବ, ନାହୁଆ ଦେଖ ।

**ଲାହୁଡ଼**—ଗ୍ରା. ବି. ବସ୍ତୁଆଦିଙ୍କର ବିଷାକ୍ତ ଅଗ୍ରଯୁକ୍ତ ପୁଚ୍ଛ, ନାହୁଡ଼ ।

**ଲାହୋର**—ଗ୍ରା. ବି. ଭାରତର ପଞ୍ଜାବ ପ୍ରଦେଶର ଜିଲ୍ଲା ଓ ରାଜଧାନୀ ।

**ଲାହ୍ୱା**—ବି. ପେଚକ, ଉଲୂକ ।

**ଲି**—ବି. ଶ୍ରାନ୍ତ,କ୍ଲାନ୍ତ,କ୍ଷତ, ଧ୍ୱଂସ,ଶେଷ, ସମତା, ହସ୍ତାଲଙ୍କାରବିଶେଷ, ଚୀନ-ଦେଶୀୟ ମୁଦ୍ରାବିଶେଷ, ନଦୀବିଶେଷ, (ଗ୍ରା)ଲିଖିତ ଶବ୍ଦର ସାଙ୍କେତିକ ଚିହ୍ନ "ଲି" । [ ଧାନ୍ୟାଦି ।

**ଲିଆ**—ଗ୍ରା. ବି. (ସଂ-ଲାଜା) ଖଇ,ଭୃଷ୍ଟ-

**ଲିଆଖିଆ**—ଗ୍ରା. ବି. ଲିଆଖାଇବା, କୋଣାର୍କର ଅଦୂରରେ ସମୁଦ୍ରରେ ପଡ଼ୁଥିବା କ୍ଷୁଦ୍ର ନଦୀ ।

**ଲିଆକେଲା**—ଗ୍ରା.ବି. ଲିଆରୁ ଖଇ ଛଡ଼ା-ଇବାପାଇଁ ଯେଉଁ ଖଡ଼ିକାରେ ଉଥାର ବୋଝରେ ଲିଆକୁ ରଖି ଇତସ୍ତତଃ ଚାଳନ କରନ୍ତି, ଝଙ୍କା ।

**ଲିଆଧାନ**—ଗ୍ରା. ବି. ଯେଉଁ ଧାନକୁ ଭାଜିଲେ ଭଲ ଲିଆ ଫୁଟେ ।

**ଲିଆରି**—ପ୍ରା. (ଗଞ୍ଜାମ) ବି. ଗଞ୍ଜାମରେ ଥିବା ଓଡ଼ିଆ ଶୂଦ୍ର ଜାତିବିଶେଷ ।

**ଲିକୁଚ**—ବି. ଲକୁଚ ଦେଖ ।

**ଲିକ୍ଷା**—ବି. ଲିକ୍ଷା ।

**ଲି(କ୍ଷ)କ୍ଷା**—ବି. ( ଲିକ୍ଷ୍+କ.ଅ+ଆ ) କ୍ଷୁଦ୍ର ଉକୁଣୀ, ଉକୁଣିଙ୍କ ଡ଼ିମ୍ବ, ପର-ମାଣୁବିଶେଷ ।

**ଲିକ୍ଷିକା**—ବି. ଲିକ୍ଷା ଦେଖ ।

**ଲିଖ**—ଗ୍ରା. ବି. ଉକୁଣିଙ୍କ ଡ଼ିମ୍ବ, ଶ୍ରେଷ୍ଠ ଉକୁଣୀ, ଅତି କ୍ଷୁଦ୍ର ପଦାର୍ଥ, (ଗ୍ରା.ବିଂ) ଅତି କ୍ଷୁଦ୍ର ।

**ଲିଖଣ**—ଗ୍ରା. ବି. କହାଣ, ଲିହଣ ।

**ଲିଖନ**—କ୍ଲୀ. ବି. ( ଲିଖ୍+ଭା.ଅନ ) ଲେଖନ, ଲିପି,ଅକ୍ଷର ବିନ୍ୟାସକରଣ, ରେଖା ଟାଣିବା, ଚିତ୍ରକରଣ,(ର୍ମ.ଅନ) ଲେଖା, ଲେଖାଯିବା ବିଷୟ ପତ୍ର, (ଅଧି.ଅନ) ଦଲିଲ, ଭାଗ୍ୟଲେଖା ।

**ଲିଖନପଠନ**—ବି. ଲେଖିବା ପଢ଼ିବା, ଲେଖାପଢ଼ା, ବିଦ୍ୟାଭ୍ୟାସ । [ ଚିତ୍ର ।

**ଲିଖନପଦ୍ଧତି**—ବି. (୬ତତ୍ପୁ) ଲେଖିବାର

**ଲିଖନଯୋଗ୍ୟ**—ବିଂ.(୬ତତ୍ପୁ) ଲେଖିବାର ଉପଯୁକ୍ତ । [ ଯୁକ୍ତ ।

**ଲିଖନାର୍ହ**—ବିଂ. (୬ତତ୍ପୁ)ଲେଖାର ଉପ-

**ଲିଖନୀୟ**—ବିଂ. ଲିଖନାର୍ହ ଦେଖ ।

**ଲିଖିଖିଲ୍ଲ**—ପୁଂ. ବି. ମୟୂର ।

**ଲିଖିତ**—ବି.(ଲିଖ୍+ଭା ତ)ଲିପି,ଲେଖନ, ଲେଖା, ଅଙ୍କନ,(ର୍ମ.ଅ)ଦଲିଲ,ଲେଖ୍ୟ ପତ୍ରାଦି, (ବିଂ)ଯାହା ଲେଖାହୋଇଅଛି, ଅଙ୍କିତ, ଚିତ୍ରିତ,(ବି) ଧର୍ମଶାସ୍ତ୍ରପ୍ରଣେତା ମୁନିବିଶେଷ ।

**ଲିଖିତଂ**—ଗ୍ରା. ବିଂ. ଏହା ଅମୁକଙ୍କଦ୍ୱାରା ଲେଖାହେଲା, ଅମୁକ ଏହି ଦଲିଲ ସମ୍ପର୍କ କରୁଅଛନ୍ତି ।

**ଲିଖିତଜବାବ**—ଗ୍ରା.ବି.ପ୍ରତିବାଦୀର ଦାଖଲ କରିବା ଲିଖିତ ବର୍ଣ୍ଣନାପତ୍ର, ଲିଖିତ ଉତ୍ତର ।

**ଲିଖିତବ୍ୟ**—ବିଂ. (ଲିଖ୍+ର୍ମ.ତବ୍ୟ)ଲେଖା-ଯିବାର ଉପଯୁକ୍ତ, ଯାହା ଲେଖାଯିବ ।

**ଲିଖିତସ୍ତମ୍ଭ**—ବି. ପ୍ରାଚୀନ ସ୍ତମ୍ଭବିଶେଷ ।

**ଲିଖ୍ୟା**—ବି.ଉକୁଣିଙ୍କ ଡିମ୍ବ, ଶ୍ରେଷ୍ଠ ଉକୁଣି, ପରିମାଣବିଶେଷ ।

**ଲିଗ୍**—ଯା. ବି. ଭୂମିର ଦୂରତ୍ୱ ଜ୍ଞାପକ ପରିମାଣବିଶେଷ (୨୪ଠାରୁ ୪ମାଇଲ୍), ଦଳ, ଗୋଷ୍ଠୀ ।

**ଲିଗୁ**—କ୍ଲୀ. ବି. (ଲିଗ୍+ଉ) ମନ,(ପୁଂ. ବି) ମୂର୍ଖବ୍ୟକ୍ତି, ଭୂପ୍ରଦେଶ, ମୃଗ ।

**ଲିଙ୍ଗ୍‌ଲିଙ୍ଗିଆ**—ପ୍ରା. (ସମ୍ବ)ବିଂ. ଅତି କ୍ଷୀଣ-କାୟ ।

**ଲିଙ୍ଗ**—ବି. (ଲିନ୍‌ଗ୍+ଅ) ଚିହ୍ନ, ନିଦ-ର୍ଶନ, ସୂଚନ, ପଦାର୍ଥର ବା ଜୀବାଦି-ଙ୍କର ପୁରୁଷ ସ୍ତ୍ରୀ ନପୁଂସକ ଥିବାର ସୂଚକ, ଅନୁମାନ, ସନ୍ୟାସୀ,ସନ୍ୟାସୀର ଭେକ, ଲିଙ୍ଗଶରୀର ଦେଖ, ଶିଶ୍ନ,ପୁରୁ-ଷର ଉପସ୍ଥ, ମଦନାଙ୍କୁଶ,ହେତୁ, ଶିବ-ମୂର୍ତ୍ତିବିଶେଷ, (ମୀମାଂସାଦର୍ଶନ) ଛଅ-ଲକ୍ଷଣ,ଯହିଁ ଅନୁସାରେ ଲିଙ୍ଗ ନିର୍ଣ୍ଣିତ ହୁଏ, (ଗ୍ରା.ବି)ବସ୍ତ୍ରାଦିର ଧଡ଼ିରେ ଅଙ୍କିତ ରଙ୍ଗିନ୍ ଚିହ୍ନ ବା ରେଖା ।

**ଲିଙ୍ଗକ**—ବି. କପିତ୍ଥବୃକ୍ଷ, କଇଥଗଛ ।

**ଲିଙ୍ଗଚକ୍ର**—ବି. (ତନ୍ତ୍ର) ତନ୍ତ୍ରସାଧନାର୍ଥ ଶରୀରମଧ୍ୟରେ କଳ୍ପିତ ଛଅଟିଗୋଟି ଚକ୍ର ମଧ୍ୟରୁ ଏକତମ ।

**ଲିଙ୍ଗଚ୍ଛେଦ**—ବି. ( ୬ତତ୍ପୁ ) ଶିଶ୍ନଚ୍ଛେଦ, ଖାସିକରିବା ।

**ଲିଙ୍ଗଜା**—ସ୍ତ୍ରୀ. ବି. ଲିଙ୍ଗିନୀଲତା ।

**ଲିଙ୍ଗଜ୍ଞାନ**—ବି.ଶବ୍ଦର ବା ବସ୍ତୁର ପୁଂସ୍ତ୍ୱାଦି ଲିଙ୍ଗ ସମ୍ବନ୍ଧରେ ଅଭିଜ୍ଞତା ।

**ଲିଙ୍ଗତୋଭଦ୍ର**—ବି. ତନ୍ତ୍ରୋକ୍ତ ମନ୍ତ୍ରାତ୍ମକ ଚକ୍ରବିଶେଷ, ପୀଠବିଶେଷ ।

**ଲିଙ୍ଗଦେହ**—ବି.ସୂକ୍ଷ୍ମଦେହ, ଆତ୍ମାଅବସ୍ଥାନ କରୁଥିବା ଜୀବର ସୂକ୍ଷ୍ମଦେହ ।

**ଲିଙ୍ଗଧର**—ବିଂ. ( ଲିଙ୍ଗ+ଧୃ+କ.ଅ ) ଚିହ୍ନଧାରଣକାରୀ, ଗୁଣବାନ୍ ।

**ଲିଙ୍ଗଧାରଣ**—ବି. ବଂଶ ବା ଧର୍ମ ସମ୍ପ୍ର-ଦାୟର ପ୍ରାର୍ଥକ୍ୟ ସୂଚକ ଚିହ୍ନାଦିଧାରଣ ।

**ଲିଙ୍ଗଧାରୀ**—ବିଂ. ଚିହ୍ନଧାରୀମାତ୍ର ।

**ଲିଙ୍ଗଧାରିଣୀ**—ସ୍ତ୍ରୀ. ବି. ନୈମିଷସ୍ଥ ଦାକ୍ଷାୟଣୀମୂର୍ତ୍ତିବିଶେଷ ।

**ଲିଙ୍ଗନ**—ବି. (ଲିଙ୍ଗ+ଭା.ଅନ) ଆଲି-ଙ୍ଗନ, କୁଣ୍ଢାଇବା ।

**ଲିଙ୍ଗନାଶ**—ବି. ନେତ୍ରରୋଗବିଶେଷ, ଧ୍ୱଜଭଙ୍ଗରୋଗ, ପରିଧୂତ ମର୍ଯ୍ୟାଦାର ଚିହ୍ନାଦିର ବଳୟ, ଶିଶ୍ନୋତ୍ଥାନ ଶକ୍ତି-ରହିତ୍ୟ, ସୂକ୍ଷ୍ମଦେହର ବିନାଶ ।

**ଲିଙ୍ଗପରାମର୍ଶ**—ବି.(ନ୍ୟାୟଦର୍ଶନ) ପ୍ରସ୍ତାବ ବା ପକ୍ଷ ମଧ୍ୟରେ ଲିଙ୍ଗକୁ ଚିହ୍ନିବା ।

**ଲିଙ୍ଗପାଠ**—ବି. ମନ୍ଦିର ମଧ୍ୟରେ ଯେଉଁ ଚତୁଷ୍କୋଣ ଦେବଲିଙ୍ଗ ପ୍ରତିଷ୍ଠିତ ଥାଏ, ଏହାକୁ ଗର୍ଭପୀଠ ମଧ୍ୟ କହନ୍ତି ।

ଲିଙ୍ଗପୁରାଣ—ବି. ବ୍ୟାସ ପ୍ରଣୀତ ମହାପୁରାଣବିଶେଷ ।

ଲିଙ୍ଗଭେଦ—ବି.ସ୍ତ୍ରୀ ପୁରୁଷ ଓ କ୍ଲୀବଲିଙ୍ଗ ମଧ୍ୟରେ ପ୍ରଭେଦ ।

ଲିଙ୍ଗମୂର୍ତ୍ତି—ବି. (ଲିଙ୍ଗ + ମୂର୍ତ୍ତି) ଶିବ ।

ଲିଙ୍ଗରାଜ—ବି. ଭୁବନେଶ୍ୱରସ୍ଥ ଶିବଲିଙ୍ଗଙ୍କ ନାମ ।

ଲିଙ୍ଗରାଜଙ୍କଚତୁର୍ଦ୍ଦଶ ଯାତ୍ରା-ବି.ଭୁବନେଶ୍ୱରସ୍ଥ ଲିଙ୍ଗରାଜମହାପ୍ରଭୁଙ୍କ ନିକଟରେ ବର୍ଷମଧ୍ୟରେ ହେଉଥିବା ଚଉଦଟି ଯାତ୍ରା ବା ଉତ୍ସବ ।

ଲିଙ୍ଗରୋଗ—ବି.ଲିଙ୍ଗରେ ହେବା ରୋଗ, ଉପଦଂଶ ରୋଗ ।

ଲିଙ୍ଗଲେପ—ବି.ଲିଙ୍ଗର ରୋଗବିଶେଷ ।

ଲିଙ୍ଗବଚନପୁରୁଷକାରକ—ବି. (ବ୍ୟାକରଣ)ବିଶେଷ୍ୟପଦର ବିଶିଷ୍ଟ ଚିହ୍ନମାନ ।

ଲିଙ୍ଗବର୍ଦ୍ଧ—ବି. କପିତ୍ଥବୃକ୍ଷ, ଲିଙ୍ଗବୃଦ୍ଧିକରଣ ।

ଲିଙ୍ଗବର୍ଦ୍ଧକ—ବି. କପିତ୍ଥ, କଇଥ ।

ଲିଙ୍ଗବର୍ଦ୍ଧନ—ବି.(ଷତତ୍ପୁ) ଶିଶ୍ନର ବୃଦ୍ଧିକରଣ,(ବିଂ)ଯାହା ଦ୍ୱାରା ଲିଙ୍ଗ ଉଦ୍ରିକ୍ତ ହୁଏ ।

ଲିଙ୍ଗବର୍ଦ୍ଧିନୀ—ବି.(ଲିଙ୍ଗ+ବର୍ଦ୍ଧି+ଇନ୍ +ଈ) ଅପାମାର୍ଗ ।

ଲିଙ୍ଗବର୍ଦ୍ଧୀ—ବିଂ.(ଲିଙ୍ଗ+ବର୍ଦ୍ଧି+ଇନ୍) ଯେ ଲିଙ୍ଗ ବୃଦ୍ଧି ବା ଉଦ୍ରିକ୍ତ କରେ, (ବି) ଲତାବିଶେଷ ।

ଲିଙ୍ଗବସ୍ତି—ବି. ଲିଙ୍ଗାର୍ଶ ନାମକ ରୋଗ ।

ଲିଙ୍ଗବାନ୍—ପୁଂ. ବିଂ. (ଲିଙ୍ଗ + ବତ୍) ଲକ୍ଷଣଯୁକ୍ତ, ଚିହ୍ନଯୁକ୍ତ,(ସ୍ତ୍ରୀ)ଲିଙ୍ଗବତୀ ।

ଲିଙ୍ଗବିପର୍ଯ୍ୟୟ—ବି.ଚିହ୍ନର ବୈପରୀତ୍ୟ, ବ୍ୟାକରଣୋକ୍ତ ପୁଂସ୍ତ୍ର୍ୟାଦି ଲିଙ୍ଗର ପରିବର୍ତ୍ତନ ।

ଲିଙ୍ଗବୃତ୍ତି—ବି.(କ.ଧା)ଜୀବିକାର୍ଥ ଜଟାଦି ଚିହ୍ନ ଧାରଣ, (ବିଂ.ବ.ବ୍ରୀ) ବୈଡ଼ାଲବ୍ରତୀ, ଧର୍ମଧ୍ୱଜୀ, କପଟ ସନ୍ନ୍ୟାସୀ ।

ଲିଙ୍ଗବେଦୀ—ବି. ଶିବଲିଙ୍ଗର ମୂଳଭାଗ, ଦେବମୂର୍ତ୍ତି ସ୍ଥାପନର ଚବୁତ୍ର ।

ଲିଙ୍ଗଶରୀର—କ୍ଲୀ.ବି. ଲିଙ୍ଗଦେହ, ସୂକ୍ଷ୍ମଶରୀର ।

ଲିଙ୍ଗଶାସ୍ତ୍ର-କ୍ଲୀ.ବି.ବ୍ୟାକରଣ ଗ୍ରନ୍ଥବିଶେଷ

ଲିଙ୍ଗସମ୍ଭୂତା—ବି.ଲତାବିଶେଷ,ଲିଙ୍ଗିନୀ ଲତା ।

ଲିଙ୍ଗସ୍ଥ—ବି.(ଲିଙ୍ଗ+ସ୍ଥା+ଅ)ବ୍ରହ୍ମଚାରୀ ।

ଲିଙ୍ଗହରୀ—ସ୍ତ୍ରୀ. ବି. ମୂର୍ବା ।

ଲିଙ୍ଗାଗ୍ର—କ୍ଲୀ.ବି.(ଷତତ୍ପୁ) ଲିଙ୍ଗର ଅଗ୍ରଭାଗ, ଲିଙ୍ଗର ଗୁଆଘର ।

ଲିଙ୍ଗାଙ୍କିତ—ବିଂ. (ତତତ୍ପୁ) ଚିହ୍ନ ଦ୍ୱାରା ଚିହ୍ନିତ, (ବି) ଲିଙ୍ଗାୟତ ଦେଖ ।

ଲିଙ୍ଗାନୁଶାସନ—ବି. ଲିଙ୍ଗ ସମ୍ବନ୍ଧେ ବ୍ୟାକରଣର ନିୟମମାନ, ଲିଙ୍ଗ ବ୍ୟବହାର ପ୍ରଣାଳୀ ।

ଲିଙ୍ଗାୟତ—ବି. ଦାକ୍ଷିଣାତ୍ୟର ଶୈବସମ୍ପ୍ରଦାୟବିଶେଷ ।

ଲିଙ୍ଗାର୍ଚ୍ଚକ—ପୁଂ.ବି.ପୌତ୍ତଳିକ, ଲିଙ୍ଗୋପାସକ, ଶୈବ ।

ଲିଙ୍ଗାର୍ଚ୍ଚନ—ବି(ଷତତ୍ପୁ)ଲିଙ୍ଗପୂଜା,ଶିବଲିଙ୍ଗ ପୂଜା ।

ଲିଙ୍ଗାର୍ଶ—ବି.(ଷତତ୍ପୁ) ଲିଙ୍ଗରୁ ରକ୍ତସ୍ରାବ ରୋଗ, ଉପଦଂଶ ରୋଗ ।

ଲିଙ୍ଗାଳିକା—ସ୍ତ୍ରୀ. ବି. (ଲିଙ୍ଗ+ଆଳ+କ+ଆ) କ୍ଷୁଦ୍ର ମୂଷିକ,ଛୁଚୁଙ୍ଗଇମୂଷା ।

ଲିଙ୍ଗିକା(ନୀ)—ସ୍ତ୍ରୀ.ବି. ଶିବଲିଙ୍ଗୀ ଲତା, ଧର୍ମଧ୍ୱଜିନୀ ସ୍ତ୍ରୀ, ହସ୍ତିନୀ ।

ଲିଙ୍ଗିବେଶ—ବି.ଅଜିନ, ଦଣ୍ଡ ଓ ପାଦୁକାଦି ସନ୍ନ୍ୟାସାଶ୍ରମୀଗ୍ରାହ୍ୟର ଚିହ୍ନ ।

ଲିଙ୍ଗୀ—ପୁଂ. ବି. (ଲିଙ୍ଗ + ଇନ୍) ହସ୍ତୀ, (ବି)ଧର୍ମଧ୍ୱଜୀ, କପଟଧାର୍ମିକ, ସନ୍ନ୍ୟାସାଦି ଚିହ୍ନଧାରୀ । [ ମୂତ୍ରେନ୍ଦ୍ରିୟ ।

ଲିଙ୍ଗେନ୍ଦ୍ରିୟ—ବି. ପୁରୁଷର ଶିଶ୍ନ ବା

ଲିଙ୍ଗୋତ୍ଥାନ—ବି.(ଷତତ୍ପୁ)କାମପ୍ରବୃତ୍ତିର ଉତ୍ତେଜନାଜନିତ ଶିଶ୍ନର କାଠିନ୍ୟ ।

ଲିଙ୍ଗୋଦ୍ଧାର—ବି.(ଷତତ୍ପୁ)ଲିଙ୍ଗଚ୍ଛେଦନ

ଲିଙ୍ଗୋପଦଂଶ—ବି. ଲିଙ୍ଗାର୍ଶ ଦେଖ ।

ଲିଙ୍ଗୋପାସକ—ବି. ଶୈବ, ଶିବଲିଙ୍ଗ ପୂଜକ, (ସ୍ତ୍ରୀ) ପାସିକା ।

ଲିଚୁ—ଗ୍ରା.ବି. ଏକପ୍ରକାର ସୁମିଷ୍ଟ ଫଳ (ଏହା ପ୍ରଥମେ ଚୀନ ଦେଶରୁ ଆସିଥିଲା)

ଲିଟ୍—ବିଭକ୍ତି ସଂଜ୍ଞାବିଶେଷ,(ବ୍ୟାକରଣ) କ୍ରିୟାର ଅତୀତ କାଳ । [ ନ୍ତ ।

ଲିଟ୍—ବିଂ(ଲିହ୍ + କ୍ୱିପ୍)ଲେହ,ଲାଳସା-

ଲିଠି—ପ୍ରା. (ବସ୍ତ୍ର)ବି. ଶାଢ଼ୀଡ଼ାଗଛ ।

ଲିଡ଼ର—ସା. ବି. ଦଳପତି, ନେତା ।

ଲିଣ୍ଡୁ—ବିଂ. ପିଚ୍ଛିଳ ।

ଲିତା—ଗ୍ରା. ବି. ( ସଂ-ଲିପ୍ତା ) ଦଣ୍ଡର ଷାଠିଏ ଭାଗରୁ ଏକଭାଗ,କ୍ଷଣମାତ୍ର,ଲବମାତ୍ର, (ଗ୍ରା. ସମ୍ବ.ବ) ସଙ୍କୁଡ଼ି,ଅଇଣ୍ଠା, ଅଇଣ୍ଠା ବାସନ ।

ଲିତାଏ-ଗ୍ରା.କ୍ରି.ବିଂ. କ୍ଷଣମାତ୍ର,କିଞ୍ଚିନ୍ମାତ୍ର ।

ଲିଥ(ଥୋ)—ସା.ବି. ଶିଳ୍ପକଳାବିଶେଷ, ଯେଉଁ ବିଦ୍ୟା ଦ୍ୱାରା ଚିତ୍ରକୁ ବା ଅକ୍ଷରମାନଙ୍କୁ ପଥର ଉପରେ ଖୋଳି ସେହି ଖୋଦିତ ପଥରରୁ କାଗଜ ଉପରେ ଛାପା ଉଠାଯାଏ ।

ଲିପ—ବି. ( ଲିପ୍+ଭା.ଅ ) ଆଲିଙ୍ଗନ, ଲିପିବା. (ଗ୍ରା.କ୍ରି) (ତୁମ୍ଭେ) ଲିପିବା କର୍ମ କର ।

ଲିପାପୋଛା—ଗ୍ରା.ବି.ଗୃହଆଦିକୁ ମାର୍ଜନା କରିବା, ଲିପିବା କର୍ମ,(ଗ୍ରା.ବିଂ)ମାର୍ଜିତ ଓ ଲେପିତ (ଗୃହାଦି) ।

ଲିପି(ପୀ)—ବି(ଲିପ୍+ଭା.ଇ.ଈ)ଲେଖନ, ଲେଖା, (ମି.ଇ)ଲିଖିତପଦାଦି,ଦଲିଲ, ଅକ୍ଷର, (ଭା.ଇ)ଅଙ୍କନ , ଚିତ୍ରଣ,(ଣ.ଇ) ବର୍ଣ୍ଣମାଳା ଅଙ୍କିତ କରିବା ପ୍ରଣାଳୀ ।

ଲିପିକର—ପୁଂ.ବି. (ଲିପି+କୃ+କ.ଅ) ଲେଖକ, ଲେପକ, ଚିତ୍ରକର, ନକଲନବିସ, ଯେ କାନ୍ଥଆଦି ଲିପେ ବା ଶଫେଦ କରେ, (ସ୍ତ୍ରୀ) ଲିପିକରୀ, (ଗ୍ରା. ବି) ଯେ ଛାପା ଅକ୍ଷରମାନଙ୍କୁ ଏକତ୍ର ବସାଏ, ଯେ ଅକ୍ଷରକୁ ମୁଦ୍ରାଯନ୍ତ୍ର ଦ୍ୱାରା କାଗଜ ଉପରେ ଛାପେ ।

ଲିପିକରପ୍ରମାଦ—ବି. ଲେଖିବା ଲୋକର ଲେଖିବା ବେଳେ ହେବା ଭୁଲ୍, (ଗ୍ରା. ବି) ଛାପାଖାନାର ଅକ୍ଷର ଯୋଡ଼ିବା ବାଲାର ଦୋଷ ବା ଭ୍ରମ ।

ଲିପିକଳା—ବି. ଲିପିବିଦ୍ୟା ଦେଖ ।

ଲିପିକା—ବି.(ଲିପି+କ+ଆ) ଲେଖା,

ଦଲିଲ । [ ଲିପିକାଗ୍ର ।
ଲିପିକାର—ବି. ଲିପିକର ଦେଖ, (ସ୍ତ୍ରୀ)
ଲିପିକୁଶଳ—ପୁଂ.ବି. (୭ତତ୍ପୁ) ଲେଖିବା ବିଷୟରେ ପଟୁ, ଚିତ୍ରବିଦ୍ୟାରେ ଦକ୍ଷ ।
ଲିପିକୌଶଳ—ବି. (୬ବା୭ତତ୍ପୁ) ଲେଖିବାରେ ବାହାଦୁରି, ଲିଖନ ପଟୁତା ।
ଲିପିଚାତୁର୍ଯ୍ୟ—ବି. (୭ତତ୍ପୁ) ଲିଖନନୈପୁଣ୍ୟ,ମନୋହର ଛବିପୂର୍ଣ୍ଣ ଲେଖା ।
ଲିପିଜ୍ଞ—ପୁଂ. ବିଂ. ସୁଲେଖକ ।
ଲିପିତ—ଗ୍ରା. ବିଂ. ଲିପ୍ତ, ଜଡ଼ିତ ।
ଲିପିନ୍ୟାସ—ବି(୭ତତ୍ପୁ)ପତ୍ରାଦିରେ ବର୍ଣ୍ଣବିନ୍ୟାସ,ଲେଖିବାର କଳା ବା କୌଶଳ
ଲିପିଫଳକ—ବି.(କ.ଧା) ଯେଉଁ ପତ୍ରରେ ଲେଖାଯାଏ, ଲେଖିବା ପାଇଁ ବ୍ୟବହୃତ ପଟା, କଳାପଟା, ବ୍ଲାକ୍‌ବୋର୍ଡ୍, ସ୍ଲେଟ୍ ।
ଲିପିବଦ୍ଧ—ବିଂ. (୩ତତ୍ପୁ) ଅକ୍ଷର ଦ୍ୱାରା ବିନ୍ୟସ୍ତ ଲିଖିତ, ଲେଖା ହୋଇ ରଖାଯିବା ।
ଲିପିବା,ଲେପିବା—ଗ୍ରା. କ୍ରି. ଲେପନକରିବା, ତରଳ ବସ୍ତୁକୁ ପତଳା କରି ବୋଳିବା । [ ଆଧିକ୍ୟ ।
ଲିପିବାହୁଲ୍ୟ—ବି. (୭ତତ୍ପୁ) ଲେଖାର
ଲିପିବିଦ୍ୟା—ବି. (କ.ଧା) ଲିଖନ ବିଦ୍ୟା, ଚିତ୍ରବିଦ୍ୟା, ଲେଖିବାର କଳା ।
ଲିପିଶାଳା-ବି.ଲିପିଗୃହ, ଚିତ୍ରବିଦ୍ୟାଳୟ ।
ଲିପିସଜ୍ଜା—ବି.ଲେଖିବାର ସାମଗ୍ରୀ (କଲମ କାଳିଆଦି) ।
ଲିପ୍ତ—ବିଂ.(ଲିପ୍+ର୍ମ.ତ)ରଞ୍ଜିତ,କୃତଲେପନ, ଦଗ୍ଧ, ଚର୍ଚ୍ଚିତ, ମିଶ୍ରିତ, ସଂଯୁକ୍ତ, ଦୃଢ଼ ଭାବରେ ସମ୍ବନ୍ଧଯୁକ୍ତ, ବିଲିମ୍ପିତ, ବିଷଦିଗ୍ଧ ।
ଲିପ୍ତକ—ବି.(ଲିପ୍ତ+କ) ବିଷାକ୍ତ ବାଣ, ବିଷଦିଗ୍ଧ ଶର ।
ଲିପ୍ତପ(ପା)ଦ—ପୁଂ.ବିଂ(ବ.ବ୍ରୀ) ଯାହାର ପାଦର ଅଙ୍ଗୁଳିମାନ ଚର୍ମ ଦ୍ୱାରା ପରସ୍ପର ସମ୍ବଦ୍ଧ, (ବି) ହଂସପଦୀ ପ୍ରାଣୀ, (ସ୍ତ୍ରୀ) ଲିପ୍ତପଦା ।
ଲିପ୍ତହସ୍ତ—ପୁଂ.ବିଂ. ରକ୍ତାକ୍ତ ବା ପ୍ରକ୍ଷିତହସ୍ତ, ଯାହାର ହାତରେ ରଙ୍ଗଆଦି ବୋଳା ଯାଇଅଛି, ଯାହାର ହାତର ଅଙ୍ଗୁଳିମାନ ଚର୍ମ ଦ୍ୱାରା ଆବଦ୍ଧ, (ସ୍ତ୍ରୀ) ଲିପ୍ତହସ୍ତା ।
ଲିପ୍ତା—ବି.ଏକଲିପ୍ତା ସମସ୍ତ, ଏକଦଣ୍ଡର ୬୦ ଭାଗରୁ ଏକଭାଗ, ଅତି ସୂକ୍ଷ୍ମକାଳ, ଏକପଲ, ୨୪ ସେକଣ୍ଡ ।
ଲିପ୍ତାଙ୍ଗ—ବିଂ. ଯାହାର ଶରୀର ସୁଗନ୍ଧ ଦ୍ରବ୍ୟାଦି ଦ୍ୱାରା ବୋଳା ହୋଇଅଛି ।
ଲିପ୍ତିକା—ବି. ଲିପ୍ତ ଦେଖ ।
ଲିପ୍ସା—ବି. (ଲଭ୍+ସନ୍+ଭା.ଅ+ଆ) ଅଭିଳାଷ, ଲଭିବାର ଇଚ୍ଛା, ଲୋଭ, ଲାଳସା, କାମନା, ଲାଭେଚ୍ଛା ।
ଲିପ୍ସିତ—ବିଂ.(ଲିପ୍ସା+ଇତ)ବାଞ୍ଛିତ, ଅଭିଳଷିତ,ଅଭିଳାଷ ବିଶିଷ୍ଟ,ଲାଳାୟିତ ।
ଲିପ୍ସିତବ୍ୟ—ବିଂ. ଲାଭାର୍ହ,ଲାଭକରିବାର ଉପଯୁକ୍ତ ।
ଲିପ୍ସୁ—ପୁଂ. ବିଂ. (ଲଭ୍+ସନ୍+କ.ଉ) ଲାଭେଚ୍ଛୁ, ଲୋଭୀ,ଲୁବ୍ଧ,ଲୋଲୁଭ, ଗୃଧ୍ନୁ ।
ଲିପ୍ସ୍ୟ—ବିଂ. ପାଇବା ବାଞ୍ଛନୀୟ,ଯାହା ଲାଭ କରିବାକୁ ସ୍ୱତଃ ଇଚ୍ଛା ହୁଏ ।
ଲିଫିଲିଫି—ଗ୍ରା.ବି. ଝିପିଝିପି ବର୍ଷା,ଗ୍ରୋଟ ଛୋଟ ଟୋପାରେ ବର୍ଷା, (ଗ୍ରା. ବିଂ) ଝିପୁରୁଝିପୁରୁ (ବର୍ଷା), ଟିପୁରୁଟିପୁରୁ (ବର୍ଷା) । [ ଦେଖ ।
ଲିବ(ବୀ)—ବି. (ଲିପ୍+ଭା.ଇ,ଈ) ଲିପି
ଲିବବା—ଗ୍ରା. କ୍ରି. ଲିଭିବା ଦେଖ ।
ଲିବୁଜା—ସ୍ତ୍ରୀ. ବି. ଲତିକା, ଲତା ।
ଲିଭା—ଗ୍ରା. ବି. (ସଂ-ନିର୍ବାହ) ନିର୍ବାହ, ଅଗ୍ନି ବା ଆଲୋକକୁ ନିର୍ବାପିତ କରିବା କର୍ମ ।
ଲିଭେଇବା—ଗ୍ରା. କ୍ରି. (ସଂ-ନିର୍ବାପ) ଲିଭିବାକିସ୍ୱାର ଣିଜନ୍ତରୂପ,ନିଭାଇବା, (ଲ.ଅର୍ଥ) ଲୋପ କରିବା, ଅଗ୍ନି ବା ଆଲୋକକୁ ନିର୍ବାପିତ କରିବା, ଲେଖା ଆଦିକୁ ପୋଛିଦେବା, (କାର୍ଯ୍ୟାଦି) ନିର୍ବାହିତ କରିବା, ଅନୁଭବ କରିବା, ପାଳିବା ।
ଲିଭିବା—ଗ୍ରା. କ୍ରି. ନିର୍ବାପିତ ହେବା, (ଲେଖାଆଦି) ପୋଛିହୋଇ ଅଦୃଶ୍ୟ ହେବା,ଆଲୋକାଦି ନିର୍ବାପିତ ହେବା, ଜୀବନଯାତ୍ରା ନିର୍ବାହ କରିବା ।
ଲିଭିଯିବା—ଗ୍ରା.କ୍ରି. ମୃତ୍ୟୁଗତହୋଇଯିବା, ବୁଜିଦେବା, ଦୀପ (ମନକୁ) ନିର୍ବାପିତ ହେବା ।
ଲିଲି—ଗ୍ରା. ବିଂ. ଝିଭିଲି ଦେଖ ।
ଲିମ୍ପ—ବିଂ.(ଲିପ୍+କ.ଅ) ଲେପନକର୍ତ୍ତା, (ବି-ଭା.ଅ) ଲେପନ ।
ଲିମ୍ପଟ—ପୁଂ. ବିଂ. (ଲିପ୍+କ.ଅଟ) ଲମ୍ପଟ, କାମୁକ, (ବି) ଲମ୍ପଟ ବ୍ୟକ୍ତି ।
ଲିମ୍ପକ—ବି. (ଲିପ୍+ଣ.ଅକ) କାଗଜି ଲେମ୍ବୁ ।
ଲିମ୍ପାଫଳ—ବି. ଲେମ୍ବୁ ।
ଲିମ୍ପି—ବି.(ଲିପ୍+ଭା.ମି.ଇ)ଲିପିଦେଖ ।
ଲିମ୍ବୁ—ଗ୍ରା.ବି. ବୃକ୍ଷବିଶେଷ,ନିମ୍ବ ଦେଖ ।
ଲିଶୁଣୀ—ଗ୍ରା.ବି. (ସଂ-ନିଃଶ୍ରେଣୀ)ନିଶୁଣୀ ଦେଖ ।
ଲିଷ୍ଟ୍—ଇଂ. ବି. ତାଲିକା, ଫର୍ଦ୍ଦ, ଧାରା, ନିୟମ, ନିର୍ଦ୍ଦିଷ୍ଟ ନିୟମ ।
ଲିଷ୍ୱ—ବି. (ଲିଷ୍+କ.ବମ୍)ନର୍ତ୍ତକ,ନଟ, ନୃତ୍ୟ ବ୍ୟବସାୟୀ, (ସ୍ତ୍ରୀ) ଲିଷ୍ୱା ।
ଲିସ୍‌ବନ୍—ଯା. ବି. ପର୍ତ୍ତୁଗାଲ ରାଜ୍ୟର ପ୍ରଧାନ ନଗର ।
ଲିହ(ହା)ଣ—ଗ୍ରା.ବି. (ସଂ-ଲିଖନ)ବାଟାଲି, ବଢ଼େଇଙ୍କ ହତିଆରବିଶେଷ ।
ଲିହାଜ—ଯା.ବି. ଲିଆଜ ଦେଖ,ସ୍ମରଣ, ଦୃଷ୍ଟି, ଖବର ।
ଲିହତ—ଗ୍ରା.ବିଂ. (ସଂ-ଲିଖିତ) ଲିଖିତ ।
ଲିହବା—ଗ୍ରା. କ୍ରି. ଲେଖିବା, ଗୁଡିବା ।
ଲିହମା—ପ୍ରା. (ଯାଜ) ଗ୍ରା. ବି. ନିମିଷ, କ୍ଷଣମାତ୍ର ।
ଲୀ—ବି. (ଲୀ+ଭା.ଅ+ଈ) ଅଶ୍ଳେଷ ।
ଲୀକା—ବି. ହ୍ରସ୍ୱମକ୍ଷିକା ମାଛି ।
ଲୀକ୍ଷା(କ୍ଷା)—ବି. (ଲିଷ୍+ମଁ.ଅ+ଆ) ଲିଖ, ଉକୁଣିଙ୍କ ଡିମ୍ବ ।
ଲୀଡ—ବିଂ. (ଲିହ+ର୍ମ.ତ) ଗୁଡିବାଦ୍ୱାରା ଆସ୍ୱାଦିତ, ଯାହା ଚଟା ହୋଇଅଛି,

ଭୂଷିତ, ସୁସ୍ପଷ୍ଟ, ବିନାଶିତ ।
ଲୀନ—ବି°. (ଲୀ+କ.ତ) ଲୟପ୍ରାପ୍ତ, ଶ୍ଳିଷ୍ଟ, ମଗ୍ନ, ସଂଯୁକ୍ତ,ମିଳାଇଯାଇଥିବା, ଅନୁପ୍ରବିଷ୍ଟ, ମୃତ, ଧ୍ୱଂସପ୍ରାପ୍ତ, ଲୁପ୍ତ, ତନ୍ମୟ, ଆଲିଙ୍ଗିତ, ଶାୟିତ, ଲଗ୍ନ ।
ଲୀୟମାନ—ପୁଂ. ବି°. (ଲୀ+କ.ଆନ) ଲୟପ୍ରାପ୍ତ ହେଉଥିବା,(ସ୍ତ୍ରୀ)ଲୀୟମାନା ।
ଲୀଳା—ବି.(ଲୀ+ଲ+ଅ+ଆ) କେଳି, ବିଳାସ, ଶୃଙ୍ଗାରଜନିତ ଚେଷ୍ଟା,ଖେଳା, ଶୋଭା, ଭଙ୍ଗୀ, ଅଭିନୟ, ନାନାବିଧ କାର୍ଯ୍ୟକଳାପ ଓ ବ୍ୟାପାର,କୌତୁକ, କ୍ଷଣସ୍ଥାୟୀ କ୍ରିୟା, ସଂସାରର ମନୁଷ୍ୟର ବା ଅବତାରଙ୍କର କାର୍ଯ୍ୟକଳାପ,(ଗ୍ରା.ବି) ମହାଭାରତାଦି ଚରିତ ବର୍ଣ୍ଣନାତ୍ମକ ନୃତ୍ୟଗୀତାଦି ଓ ଅଭିନୟ ।
ଲୀଳାଏ—ଗ୍ରା. ଅବ୍ୟ. ଅବଲୀଳା କ୍ରମେ, ଅକ୍ଳେଶରେ, ସହଜରେ ।
ଲୀଳାକମଳ—କ୍ଳୀ.ବି. (କ.ଧା)କ୍ରୀଡ଼ାପଦ୍ମ, ଖେଳାର ପଦ୍ମଫୁଲ, ଶୋଭାକର ପଦ୍ମ ।
ଲୀଳାକର—ବି. ଛନ୍ଦୋବିଶେଷ, (ବି°) (ଲୀଳା+କୃ+କ.ଅ) କ୍ରୀଡ଼ାକାରକ ।
ଲୀଳାକଳହ—ବି. ଛଳନାକଳହ ।
ଲୀଳାକଳ୍ପ—ଗ୍ରା.ବି. ଚେଷ୍ଟାସମୂହ,(ବି°) ଲୀଳାଯୋଗ୍ୟ କଳ୍ପିତ ।
ଲୀଳାକାନନ—ବି.(କ.ଧା)ବିଳାସକାନନ, ଉପବନ, ବିହାରୋଦ୍ୟାନ ।
ଲୀଳାକ୍ରମେ—ଗ୍ରା.କ୍ରି. ବି°. (ସ-ଲୀଳା-କ୍ରମେଣ) ଅନାୟାସରେ ।
ଲୀଳାକ୍ଷେତ୍ର(ଭୂମି)—ବି. (୬ତତ୍ପୁ) କ୍ରୀଡ଼ାସ୍ଥାନ, କ୍ରୀଡ଼ାର୍ଥ ବ୍ୟବହୃତ ଭୂମି ।
ଲୀଳାଖେଳ—ପୁଂ ବି°.(ବ.ବ୍ରୀ)ବିଳାସୀ, କ୍ରୀଡ଼ାଶୀଳ, (ବି) ୧୬ ଅକ୍ଷରବିଶିଷ୍ଟ ସଂସ୍କୃତଛନ୍ଦ ।
ଲୀଳାଖେଳା—ଗ୍ରା.ବି. ଲୀଳା ଓ କ୍ରୀଡ଼ା, ଆମୋଦପ୍ରମୋଦ, ଜୀବନଯାତ୍ରା,ଇହଲୀଳା ।
ଲୀଳାଗତି—ବି. (କ.ଧା) ନାନା ମନୋହର ଭଙ୍ଗୀ ସହିତ ଗମନ ।
ଲୀଳାଗାର—ବି. ( ୬ତତ୍ପୁ ) ଲୀଳାଗୃହ, କ୍ରୀଡ଼ାସ୍ଥାନ, ଖେଳଘର ।
ଲୀଳାଗୃହ—ବି. ଲୀଳାଗାର ଦେଖ ।
ଲୀଳାଗେହ—ବି. ଲୀଳାଗାର ଦେଖ ।
ଲୀଳାଙ୍ଗ—ପୁଂ. ବି°. ( ଲୀଳା+ଅଙ୍ଗ ) ବ.ବ୍ରୀ; ନିରନ୍ତର କ୍ରୀଡ଼େଚ୍ଛୁ ଅଙ୍ଗଯୁକ୍ତ (ବୃଷାଦି) ।
ଲୀଳାଚଳ—ବି.ଜନପଦବିଶେଷ,କ୍ରୀଡ଼ା- [ ପର୍ବତ ।
ଲୀଳାତନୁ—ବି. ଲୀଳା ପ୍ରକଟନାର୍ଥ ଧୃତଦେହ ।
ଲୀଳାତାମରସ—ବି.ଲୀଳାକମଳ ଦେଖ ।
ଲୀଳାଦଗ୍ଧ—ବି°. ସ୍ୱେଚ୍ଛାରେ ଭସ୍ମୀଭୂତ ।
ଲୀଳାଦ୍ରି—ବି.ଲୀଳାଚଳ, କ୍ରୀଡ଼ାପର୍ବତ ।
ଲୀଳାଧାମ—ବି. (୬ତତ୍ପୁ) କ୍ରୀଡ଼ାଭବନ, ଲୀଳାସ୍ଥାନ, ବିଳାସଗୃହ ।
ଲୀଳାନଟନ—ବି. କ୍ରୀଡ଼ାକୌତୁକଯୁକ୍ତ ନୃତ୍ୟ, କୌତୁକାବହ ନୃତ୍ୟ ।
ଲୀଳାନିବୃତ୍ତି—ବି.(୬ତତ୍ପୁ)ଲୀଳାସମାପନ ଦେଖ ।
ଲୀଳାପଦ୍ମ—ବି.(ଲୀଳା+ପଦ୍ମ)ଲୀଳାକମଳ [ ଦେଖ ।
ଲୀଳାପର୍ବତ—ବି. ଲୀଳାଚଳ ଦେଖ ।
ଲୀଳାପୁରୁଷୋତ୍ତମ—ବି. ଶ୍ରୀକୃଷ୍ଣ ।
ଲୀଳାଭରଣ—ବି. ପଦ୍ମମାଳାଦ୍ୱାରା ନିର୍ମିତ ଅଳଙ୍କାର ।
ଲୀଳାଭୂମି—ବି. ଲୀଳାକ୍ଷେତ୍ର, କ୍ରୀଡ଼ାସ୍ଥାନ, [ ରଙ୍ଗମଞ୍ଚ ।
ଲୀଳାମନୁଷ୍ୟ—ବି. ଛଦ୍ମବେଶୀ ମନୁଷ୍ୟ ।
ଲୀଳାମୟ—ବି°.ଲୀଳାସ୍ୱରୂପ,କେଳିପୂର୍ଣ୍ଣ, କ୍ରୀଡ଼ାତ୍ମକ,କ୍ରୀଡ଼ାଯୁକ୍ତ,(ସ୍ତ୍ରୀ)ଲୀଳାମୟୀ ।
ଲୀଳାମ୍ବୁଜ—ବି. ଲୀଳାପଦ୍ମ ।
ଲୀଳାୟମାନ—ବି°. (ଲୀଳାୟ+କ.ଆନ) କ୍ରୀଡ଼ାକରୁଥିବା, (ସ୍ତ୍ରୀ) ଲୀଳାୟମାନା ।
ଲୀଳାଯାତ୍ରା—ଗ୍ରା. ବି. ମହାଭାରତାଦି ଆଖ୍ୟାୟିକା ଅବଲମ୍ବନରେ କରାଯିବା ନାଟ ଓ ସୁଆଙ୍ଗ ।
ଲୀଳାଯାନ—ବି. (ଲୀଳା+ଯାନ)ସଲୀଳ-ଗମନ, ଧୀରମନ୍ଥର ଗମନ ।
ଲୀଳାୟିତ—ବି°.(ଲୀଳାୟ+ମ.ତ)କ୍ରୀଡ଼ିତ, ଲୀଳାଯୁକ୍ତ, ଶୋଭନଭଙ୍ଗୀଯୁକ୍ତ, (ସ୍ତ୍ରୀ) ଲୀଳାୟିତା ।
ଲୀଳାରତି—ବି. କ୍ରୀଡ଼ା ।
ଲୀଳାରବିନ୍ଦ—ବି.ଲୀଳାପଦ୍ମ,କ୍ରୀଡ଼ାର୍ଥ ପଦ୍ମ ।
ଲୀଳାରେ—ଗ୍ରା.କ୍ରି. ବି°.ଅବଲୀଳାକ୍ରମେ, ଅନାୟାସରେ ।
ଲୀଳାବକ୍ର—ବି. ବକ୍ରାକାର ଶସ୍ତ୍ରବିଶେଷ ।
ଲୀଳାବତାର—ବି. ଲୀଳାପ୍ରକଟନାର୍ଥ ବିଷ୍ଣୁଙ୍କ ଅବତାର ।
ଲୀଳାବତୀ—ସ୍ତ୍ରୀ.ବି°. ( ଲୀଳା+ବତ୍+ଈ) କେଳିଯୁକ୍ତା, ବିଳାସବତୀ, ଶୃଙ୍ଗାରଭାବଚେଷ୍ଟାନ୍ୱିତା,(ବି)ପ୍ରସିଦ୍ଧଜ୍ୟୋତିଷାଚାର୍ଯ୍ୟ ଭାସ୍କରାଚାର୍ଯ୍ୟଙ୍କ କନ୍ୟା, (ମତାନ୍ତରେ) ତାହାଙ୍କ ପତ୍ନୀ ଓ ତାଙ୍କରଚିତ ପାଟୀଗଣିତ ଓ ବୀଜଗଣିତ ସମ୍ବନ୍ଧୀୟ ପ୍ରସିଦ୍ଧ ଗ୍ରନ୍ଥ ସିଦ୍ଧାନ୍ତ ଶିରୋମଣିର ୧ମ ଅଧ୍ୟାୟର ନାମ, ନ୍ୟାୟଗ୍ରନ୍ଥବିଶେଷ, ଏକଜାତୀୟ ବେଶ୍ୟା, ସମ୍ପୂର୍ଣ୍ଣ ଜାତିର ଏକରାଗିଣୀ, ସଂ-ଛନ୍ଦୋବିଶେଷ ।
ଲୀଳାବଧୂତ—ପୁଂ.ବି°. ସ୍ୱଚ୍ଛନ୍ଦରେ ବିଚରଣଶୀଳ ।
ଲୀଳାବାନ୍—ପୁଂ. ବି°. (ଲୀଳା+ବତ୍) ଲୀଳାବିଶିଷ୍ଟ,କ୍ରୀଡ଼ାଯୁକ୍ତ,(ସ୍ତ୍ରୀ)ଲୀଳାବତୀ ।
ଲୀଳାବାପୀ—ସ୍ତ୍ରୀ. ବି. ଜଳକ୍ରୀଡ଼ାର୍ଥ ପୁଷ୍କରିଣୀ ।
ଲୀଳାବେଶ୍ମ—କ୍ଳୀ. ବି. ଲୀଳାଗୃହ ।
ଲୀଳାଶୁକ—ପୁଂ.ବି.ଭକ୍ତକବି ବିଲ୍ୱମଙ୍ଗଳଙ୍କ ନାମାନ୍ତର ।
ଲୀଳାସଂବରଣ—କ୍ଳୀ. ବି. (୬ତତ୍ପୁ)ଲୀଳା-ନିବୃତ୍ତି,କ୍ରୀଡ଼ାସମାପ୍ତି,ମୃତ୍ୟୁ,ଖେଳାଶେଷ
ଲୀଳାସମାପନ—ବି. (୬ତତ୍ପୁ) ଖେଳର ଶେଷ,କ୍ରୀଡ଼ା ସମାପ୍ତି,(ଲ.ଅର୍ଥ)ମୃତ୍ୟୁ ।
ଲୀଳାସାଙ୍ଗ—ବି. ଖେଳାଶେଷ, ମୃତ୍ୟୁ ।
ଲୀଳାସୌଧ—ବି. କେଳିମନ୍ଦିର ।
ଲୀଳାସ୍ଥାନ—ବି. ଲୀଳାକ୍ଷେତ୍ର ଦେଖ ।
ଲୀଳାସାଧ୍ୟ—ବି°.ସହଜସାଧ୍ୟ, ଅନାୟାସସାଧ୍ୟ ।
ଲୀଳୋଦ୍ୟାନ—ବି.(୬ତତ୍ପୁ)କେଳିକାନନ, କ୍ରୀଡ଼ାର୍ଥ ଉପବନ, ପ୍ରମୋଦକାନନ, ଦେବବନ ।
ଲୁ—ଗ୍ରା.ବି. ଅତୀତକାଳର କ୍ରିୟାହରେ ମଧ୍ୟମପୁରୁଷ ଅନାଦରାର୍ଥ ବା ଅଜ୍ଞ

ସ୍ନେହାର୍ଥ ଏକବଚନ(ଉ) ପରେ ଯୁକ୍ତ ଅକ୍ଷର (ଯଥା—ଲୁ—କଲୁ, ଗଲୁ ଇତ୍ୟାଦି)।

ଲୁଆଁଇବା—ଗ୍ରା. କ୍ରି. ଲଇଁବା କ୍ରିୟାର ଣିଜନ୍ତ ରୂପ,ନତକରାଇବା।

ଲୁଆଁଣ—ଗ୍ରା. ବିଂ. ଈଷତ୍ ନତ।

ଲୁଇ—ପ୍ରା.(ସମ୍ବ) ବି. କଅଁଳାବାଳୁଆ, (ଗ୍ରା.ବି)ଲୋମଦ୍ୱାରା ପ୍ରସ୍ତୁତ ବସ୍ତ୍ରବିଶେଷ।

ଲୁକ୍—ବି.(ଲୁକ୍+ଭା.କ୍ୱିପ୍)ବ୍ୟାକରଣର ସଜ୍ଞାବିଶେଷ,ଲୋପ,ଲୁଚିବା,ପ୍ରଚ୍ଛନ୍ନତା।

ଲୁକ୍‌ଡ଼ି—ପ୍ରା.(ସମ୍ବ)ବିଂ.ଜକୁଟିମହୁମାଛି।

ଲୁକ୍‌ବା—ପ୍ରା. (ସମ୍ବ) କ୍ରି. ଲୁଚିବା।

ଲୁକ୍‌ଲ(ଲୁ)କାନ—ପ୍ରା. (ସମ୍ବ)ବି. ଲୁଚକାଳି ଖେଳ।

ଲୁକ୍‌ଶାନ୍(ନ)—ଯା.ବି. ନୋକସାନ,କ୍ଷତି।

ଲୁକ—ଗ୍ରା. ବି. ଲୋକ।

ଲୁକାଇବା—ପ୍ରା. (ବାଲେ. ଓ ଜୟପୁର) କ୍ରି. ଲୁଗୁଇବା, ଗୋପନକରିବା।

ଲୁକାଲୁକି—ପ୍ରା.(ବାଲେ.)ବି.ପୁନଃ ପୁନଃ ଗୋପନର ଛଳନା, ଲୁଗୁଲୁଚି।

ଲୁକଦେବା—ପ୍ରା. ( ସମ୍ବ-ବାଲେ. ) କ୍ରି. ନିଜେ ଲୁଚିଯିବା। [ ଲୁଚିବା।

ଲୁକିବା—ପ୍ରା. (ବାଲେ-ସମ୍ବ-ଗଞ୍ଜା)ବି.କ୍ରି.

ଲୁକିବିଦ୍ୟା—ସ୍ତ୍ରୀ. ବି. ଗୁପ୍ତବିଦ୍ୟା,ରହସ୍ୟ ପୂର୍ଣ୍ଣ ଭୌତିକ ପ୍ରକ୍ରିୟା।

ଲୁକ୍କାୟିତ—ବିଂ. (ଲୁକ୍+କାୟ+ମଁ.ତ) ଦୃଷ୍ଟିପଥରୁ ଅନ୍ତର୍ହିତ, ଗୁପ୍ତ, ଅଦୃଷ୍ଟ, ଲୁପ୍ତ। [ ଲୁଖୁରା।

ଲୁଖୁରା—ଗ୍ରା. ବିଂ. ନୁଖୁରା ଦେଖ, (ସ୍ତ୍ରୀ)

ଲୁଗଡ଼ା—ପ୍ରା. (ବସ୍ତର) ବି. ଶାଢ଼ୀ।

ଲୁଗା—ଗ୍ରା. ବି. (ସଂ ଲଗ୍ନ) ବସ୍ତ୍ର, ବାସ, ଅଧୋବାସ, ପୋଷାକ।

ଲୁଗାକଚା—ଗ୍ରା.ବି. ବସ୍ତ୍ରକୁ ଖାରଆଦିରେ ସିଝାଇ ଧୋଇ ପରିଷ୍କାର କରିବା କର୍ମ।

ଲୁଗାକାଚିବା—ଗ୍ରା. କ୍ରି. ମଇଳାଲୁଗାକୁ ସଫାକରିବାପାଇଁ ଖାରଆଦିରେ ସିଝାଇ କାଠ ବା ପଥରଆଦିରେ ବାରମ୍ବାର ବାଡ଼େଇବା।

ଲୁଗାଦୋକାନ—ଗ୍ରା. ବି. ଯେଉଁଠାରେ ଲୁଗା ବିକ୍ରି ହୁଏ।

ଲୁଗାପଟା—ଗ୍ରା. ବି. ସବୁପ୍ରକାର ପରିଧେୟ ବସ୍ତ୍ର।

ଲୁଗାପାଲଟିବା—ଗ୍ରା. କ୍ରି.ବସ୍ତ୍ରାନ୍ତର ପରିଧାନ କରିବାପାଇଁ ପରିହୃତ ବସ୍ତ୍ର ତ୍ୟାଗ କରିବା,ଲୁଗା ବଦଳାଇବା। [କରିବା।

ଲୁଗାପିନ୍ଧିବା—ଗ୍ରା. କ୍ରି. ବସ୍ତ୍ର ପରିଧାନ

ଲୁଗାରେଛେରି(ଝିଗି)ପକାଇବା—ଗ୍ରା.କ୍ରି. (ଲ.ଅର୍ଥ) ଅତିଭୟତ୍ରସ୍ତ ହେବା।

ଲୁଙ୍ଗ—ବି. ମାତୁଳୁଙ୍ଗ ବୃକ୍ଷ।

ଲୁଙ୍ଗମାଂସ—କ୍ଲୀ. ବି. ମାତୁଳୁଙ୍ଗମାଂସ।

ଲୁଙ୍ଗା(ଙ୍ଘା)—ଗ୍ରା. ବିଂ. ମାନସିକ ବଳହୀନ, କ୍ଷୁଦ୍ର ପଦାର୍ଥ ଅପହରଣକାରୀ, ଲୁଙ୍ଗୁଡ଼ା ଦେଖ।

ଲୁଙ୍ଗାମ୍ଳ—କ୍ଲୀ. ବି. ମାତୁଳୁଙ୍ଗାମ୍ଳ।

ଲୁଙ୍ଗି—ଯା. ବି. ମୁସଲମାନ୍ ପୁରୁଷମାନେ ବେଢ଼େଇ ପିନ୍ଧିବା ଅନତିଲମ୍ବ ରଞ୍ଜିତ ବସ୍ତ୍ର।

ଲୁଙ୍ଗୁରା(ଡ଼ା)—ଗ୍ରା. ବି. ଚୋରବିଶେଷ, ଲମ୍ପଟବିଶେଷ, (ବିଂ) ଯେ ସାମାନ୍ୟ ବସ୍ତୁ ଚୋରିକରେ, ଲମ୍ପଟ, ଦୁଷ୍ଟ, ନୀଚମନା, ମଇଳା, ଅପରିଷ୍କୃତ।

ଲୁଙ୍ଗୁଷ—ବି.ଲେମ୍ବୁବିଶେଷ, ମାତୁଳୁଙ୍ଗ।

ଲୁଚକାଳି—ଗ୍ରା.ବି. ପିଲାମାନଙ୍କର ଏକପ୍ରକାର ଖେଳ।

ଲୁଚପୁଚ୍ହେବା—ଗ୍ରା.କ୍ରି.ଛକ୍‌ପକ୍ ହେବା, ହାଇଁପାଇଁ ହେବା, ଲାଳାୟିତ ହେବା, ଭୟରେ କମ୍ପିବା, ସନ୍ଦେହାନ୍ୱିତ ହୋଇ ଇତସ୍ତତଃ ହେବା।

ଲୁଚୁପୁଚୁଆ—ଗ୍ରା. ବିଂ. ଭୟାତୁର, (ସନ୍ଦେହାନ୍ୱିତ,)ଅସ୍ଥିରମନାଃ,ପତଳା ଓ କୋମଳ (ଖାଦ୍ୟ)।

ଲୁଗୁ—ଗ୍ରା.ବି. ଲୁଗୁଇବା, ଲୁଚିବା,(ବିଂ) ଗୁପ୍ତ, ଅପ୍ରକାଶ୍ୟ, ଲୁଚା ଦେଖ।

ଲୁଗୁଇବା—ଗ୍ରା. କ୍ରି. ପ୍ରଚ୍ଛନ୍ନ କରିବା, ଗୋପନ କରିବା, ଘୋଡ଼ାଇବା, ଗୁପ୍ତ ରଖିବା।

ଲୁଗୁଏ—ଗ୍ରା.ବି. ଗୁଡ଼ାଏ, କେତେକ।

ଲୁଗୁଜୁଗୁ—ଗ୍ରା.ବିଂ. ସଙ୍କୁଚିତ, ପିଣ୍ଡୀକୃତ ଶରୀର, ଯାହାର ସମସ୍ତ ଅବୟବ ସଙ୍କୁଚିତ ହୋଇଥାଏ।

ଲୁଗୁଗୁପ୍ତ—ଗ୍ରା.ବିଂ.ଗୁପ୍ତ.ସାଧାରଣରେ ଅପ୍ରକାଶିତ,ସାଧାରଙ୍କ ଦୃଷ୍ଟିରେ ଅଗୋଚର, (ଗ୍ରା.ବି) ଗୋପନ।

ଲୁଗୁଛପା—ଗ୍ରା. ବି. ଓ ବିଂ ଲୁଗୁଗୁପ୍ତ ଦେଖ।

ଲୁଗୁପ୍ରୀତି-ଗ୍ରା.ବି.ଗୁପ୍ତପ୍ରଣୟ,ଗୋପପ୍ରୀତି।

ଲୁଗୁଲୁଚି—ଗ୍ରା. ବି. ଅନ୍ୟୋନ୍ୟରେ ଲୁଗୁଇବା କ୍ରିୟା, ବହୁବହୁ ଲୁଗୁଇବା କର୍ମ, (ବିଂ) ଲୁକ୍କାୟିତ, ଲୁଗୁହେବା।

ଲୁଚି—ଗ୍ରା. ବି. (ସଂ-ଲୋପ୍ତ୍ରୀ) ଘିଅଛଣା ମଇଦାର ପତଳା ରୁଟି ବା ପିଠା।

ଲୁଚିବା—ଗ୍ରା. କ୍ରି. ଲୁକ୍କାୟିତ ହେବା, ଦେଖା ନ ଯିବା,ଛପି ରହିବା, ଲୋପପାଇବା।

ଲୁଚିଯିବା—ଗ୍ରା. କ୍ରି. ପ୍ରଥମେ ଦେଖାଦେଇ ପରେ ଦୃଷ୍ଟିପଥରୁ ଅନ୍ତରହେବା, ସମ୍ପୂର୍ଣ୍ଣରୂପେ ଅଦୃଶ୍ୟ ହେବା, ଲୁଚିବା ଦେଖ।

ଲୁଚା—ଗ୍ରା. ବିଂ. କାମୁକ,ଲମ୍ପଟ,ପରସ୍ତ୍ରୀଗାମୀ, ବେଶାଦି ଦ୍ୱାରା ରମଣୀ ଚିତ୍ତ ହରଣକାରୀ, ଚୋରିକରିବା ସ୍ୱଭାବଯୁକ୍ତ, ଆକୁଞ୍ଚିତ, ସଙ୍କୁଚିତ, କୁଞ୍ଚିତ।

ଲୁଛିବା(ଯିବା)—ଗ୍ରା. କ୍ରି. ଶୋଭାସୌନ୍ଦର୍ଯ୍ୟାଦିରେ ମୁଗ୍ଧହେବା, ଲଜ୍ଜିତହେବା, ସମ୍ପୂର୍ଣ୍ଣରୂପେ ଆସକ୍ତ ହେବା, ଦୁଃଖରେ ଅଭିଭୂତ ହେବା, ଅନ୍ୟସଙ୍ଗେ ସମ୍ପୂର୍ଣ୍ଣରୂପେ ସମାନ ହେବା।

ଲୁଛିଯାଏ—ଗ୍ରା. ଅବ୍ୟ. (ଶିଶୁଆଦିଙ୍କ ରୂପଗୁଣାଦିରେ ମୁଗ୍ଧହୋଇଯିବା ବୟସ୍କ ମାନଙ୍କର ସସ୍ନେହ ବାକ୍ୟ) ଆହା ମୁଁ ମରିଯାଏଟି।

ଲୁଞ୍ଚନ—ବି.(ଲୁଞ୍ଚ+ଭା.ଅନ)ଆଙ୍ଗୁଠିରେ ଧରି ବଳପୂର୍ବକ ଉତ୍ପାଟନ, କାଟିବା, ଛଣ୍ଡାଇବା, ଚୋପା ଛଡ଼ାଇବା।

ଲୁଞ୍ଚିତ—ବିଂ. (ଲୁନ୍ଚ୍+ମଁ.ତ) ଛିନ୍ନ, ଉତ୍ପାଟିତ, ଚୋପା ଛଡ଼ାଯାଇଥିବା, ବିଲୁଣ୍ଠିତ, ପରିତ୍ୟକ୍ତ, ଦୂରୀକୃତ, ଭଗ୍ନ,

ବିଷ୍ଣୁ, (ଗ୍ରା.ଅ) ହଂସ, ଗଡ, ( ସ୍ତ୍ରୀ ) ଶଙ୍କାଣୀ ।
ଶଙ୍କକ—ପୁଂ. ବ. ମୁନିବିଶେଷ ।
ଶଙ୍କପତ୍ନୀ--ସ୍ତ୍ରୀ. ବ. (୬ତତ୍) ପାର୍ବତୀ ।
ଶଙ୍କପର୍ବତ—ପୁଂ. ବ. କୈଳାସପର୍ବତ ।
ଶଙ୍କର—କ୍ଲୀ.ବ.(ଶୃ+ଅଧି.ଅର)ଅନ୍ଧାର, ସନ୍ଧ୍ୟା,(କ.ଅର)କାମଦେବ,ନାଗିକାଢ଼ ।
ଶଙ୍କରୀ—ପୁଂ. ବ. ( ଶଙ୍କର+ଇନ୍ ) ବାର୍ହସ୍ପତ୍ୟ ସମ୍ବତ୍ସରବିଶେଷ, (ସ୍ତ୍ରୀ.ବ-ଶୃ +ଅଧି.ବର+ଈ) ରାତ୍ରି, ସନ୍ଧ୍ୟା, (କ.ବର.ଈ) ହରିଦ୍ରା, ନାରୀ ।
ଶଙ୍କରୀକ—ତ୍ରି. ବଂ. କ୍ଷତକାରକ ।
ଶଙ୍କରୀକର—ପୁଂ. ବ. ବିଷ୍ଣୁ ।
ଶଙ୍କରୀଦୀପକ—ପୁଂ.ବ. (୬ତତ୍) ଚନ୍ଦ୍ର ।
ଶଙ୍କରୀଦ୍ୱୟ—କ୍ଲୀ.ବ. ହରିଦ୍ରା ଓ ଦାରୁହରିଦ୍ରା ଦ୍ୱୟ ।
ଶଙ୍କରୀପତି—ପୁଂ.ବ.(୬ତତ୍)ଶିବ,ଚନ୍ଦ୍ର ।
ଶଙ୍କରୀଶ—ପୁଂ. ବ. (୬ତତ୍) ଚନ୍ଦ୍ର ।
ଶଙ୍କଳା—ସ୍ତ୍ରୀ.ବ. (ଶବ + ଣ.ଅଲ+ଆ) ତୋମରାଖ୍ୟ ଅସ୍ତ୍ର, ଶାବଲ ।
ଶଙ୍କାଚଳ—ପୁଂ. ବ. କୈଳାସପର୍ବତ ।
ଶଙ୍କାଣୀ—ସ୍ତ୍ରୀ. ବ. ପାର୍ବତୀ, ଗୌରୀ ।
ଶର୍ଶରୀକ—ପୁଂ. ବଂ. (ଶୃ + ଇକ)ହିଂସ୍ର, ଖଳ, ଦୁଷ୍ଟ, (ସ୍ତ୍ରୀ) ଶର୍ଶରୀକା, ( ବ ) ମଙ୍ଗଳାଭରଣ,ଅଗ୍ନି, ଖଳବ୍ୟକ୍ତି,ଅଶ୍ୱ ।
ଶର୍ଷପ—ବ.ସୋରିଷ (ଶବ୍ଦ ରତ୍ନାବଳୀ) ।
ଶଲ(ଲ)—ବ.(ଶଲ୍ + କ.ଅ) ଝିଙ୍କକାଠି, ଶଲ୍ଲକୀଲୋମ, ବ୍ରହ୍ମା, ଉଷ୍ଟ୍ର, କୁନ୍ତଅସ୍ତ୍ର, କ୍ଷେତ୍ରବିଶେଷ, ବୃକ୍ଷବିଶେଷ, କଂସର ଜଣେ ମଲ୍ଲର ନାମ, କଂସର ଅମାତ୍ୟ-ବିଶେଷ, ବାସୁକିବଂଶୀୟ ନାଗବିଶେଷ, ଶାନ୍ତନୁରାଜପୁତ୍ର, ଶଲ୍ୟରାଜ,ତାଳବୃକ୍ଷ, ଶିବାନୁଚର ଭୃଙ୍ଗୀ, ଧୃତରାଷ୍ଟ୍ରଙ୍କ ଏକ-ପୁତ୍ର, ସୋମଦତ୍ତଙ୍କ ପୁତ୍ର, (ଗ୍ରା.ବ ସଂ-ଶଲ୍ୟ)ବାଧା, ବିଘ୍ନ ଅନିଷ୍ଟକାରୀ ବ୍ୟକ୍ତି, ମନ୍ଦ, କଣ୍ଟା,ଶତ୍ରୁ, (ବଂ) ଅନିଷ୍ଟକାରୀ, ମନ୍ଦ, ଶତ୍ରୁଭାବାପନ୍ନ ।
ଶଲକ—ପୁଂ. ବ. ମାଙ୍କଡ଼ସା, ତାଳବୃକ୍ଷ, ଝିଙ୍କକାଠି ।

ଶଲଙ୍କା—ଗ୍ରା. ବ. ଝିଙ୍କ ।
ଶଲଙ୍କାଟ—ପୁଂ. ବ. ଋଷିଭେଦ ।
ଶଲଙ୍ଗ—ପୁଂ. ବ. ( ଶଲ + କ.ଅଙ୍ଗ ) ଲୋକପାଳ, ରାଜା, ଲବଣବିଶେଷ ।
ଶଲଭ—ପୁଂ. ବ. (ଶଲ୍+କ.ଅଭ)କୀଟ ବିଶେଷ, ପଙ୍ଗପାଳ, ଝିଣ୍ଟିକା,ପତଙ୍ଗ ।
ଶଲମ୍ଭୋଲ—ପୁଂ. ବ. ଓଟ, ଉଷ୍ଟ୍ର ।
ଶଲସ—ଗ୍ରା. ବ. ଏକପ୍ରକାର ପଟୋଳ ଜାତୀୟ ଲମ୍ବ ଲତାଫଳବିଶେଷ, ଗସ୍ତା-କଲସ ।
ଶଲଲ—ବ.(ଶଲ + ମ.ଅଲ)ଝିଙ୍କକାଠି ।
ଶଲଲଚଞ୍ଚୁ—ବ. ଝିଙ୍କକାଠି ।
ଶଲଳିତ—ବଂ.କଣ୍ଟକଯୁକ୍ତ,ଶରଳ କଣ୍ଟକ ବିଶିଷ୍ଟ । [ କାଠି ।
ଶଲଲୀ--ବ.(ଶଲ୍+କ.ଅଲ୍+ଈ)ଝିଙ୍କ-
ଶଲା—ବ. (ଶଲ୍+କ.ଅ+ଆ)ଶଲାକା, ଖଡ଼ିକା, ସରୁକାଠି,(ଗ୍ରା.ବ-ସଂ-ଶ୍ୟାଲକ) ଶ୍ୟାଲକ,ଆପଣା ସ୍ତ୍ରୀର ଭାଇ,ଗାଳିବିଶେଷ
ଶଲ୍—ଗ୍ରା. ବ. ଶଲଇ ଦେଖ ।
ଶଲ୍(ଲେ)ଇ—ଗ୍ରା.ବ.ଯନ୍ତ୍ର, କର୍ଣ୍ଣବେଧନ ଯନ୍ତ୍ର, କାନକୁଣ୍ଡାଇବାରେ ବ୍ୟବହୃତ କାଠି, ଲେବାନ୍,ସୁଗନ୍ଧିବୃକ୍ଷ ନିର୍ଯ୍ୟାସ-ବିଶେଷ । [ ଦେଖ ।
ଶଲାକ—ପୁଂ.ବ.(ଶଲ+କ.ଆକ)ଶଲାକା
ଶଲାକଧୂର୍ତ୍ତ—ପୁଂ.ବ. ନଳୁଆକେଲା, ଯେ ନଳଆଦି ଦ୍ୱାରା ପକ୍ଷୀ ଧରେ ।
ଶଲାକା—ସ୍ତ୍ରୀ. ବ. ( ଶଲ୍+କ.ଆକ+ ଆ) ଶଲ୍ୟ, ଷୁଦ୍ର, ଯଷ୍ଟି, ବୃନ୍ତାର କାଠି, ସରୁକାଠି, ମଦନବୃକ୍ଷ,ଶର,ବାଣ,ଛତ୍ର-କରର ଭୁଜ, ଦାନ୍ତକାଠି, କାଷ୍ଠଖଣ୍ଡ, ଘାଆଆଦିରେ ଦିଆଯିବା ସନ୍ଥା,ଖଡ଼ିକା, କୀଳା, ଖିଲ, ନଳ, କଣ୍ଟା ବର୍ଚ୍ଛା,ନଳି-ହାଡ଼, ସରୁହାଡ଼, କଲମ, ମାଛକଣ୍ଟା ପେନସିଲ୍, ଦିଆସିଲାଇକାଠି, ବତ, ଶାରିକାପକ୍ଷୀ,ଝିଙ୍କକାଠି,ଅସ୍ଥି,ତୃଣ,କୁଟା, ଶଲ୍ଲକୀବୃକ୍ଷ,ଆଖିରେ ଅଞ୍ଜନ ବା ସୁରୁମା ଲଗାଇବାର କାଠି, ପଶାକାଠି, ରମା-ଯଣୋକ୍ତ ପ୍ରାଚୀନ ନଦୀବିଶେଷ, ମୂତ୍ର-ମାର୍ଗ ଶୋଧନାର୍ଥ ବ୍ୟବହୃତ ଯନ୍ତ୍ର,ଅଙ୍କୁର,

ଶଲାକାପୁରୁଷ—(ବ.), ବୌଦ୍ଧମାନଙ୍କର ତ୍ରିଷଷ୍ଟି ଦେବପୁରୁଷ ।
ଶଲାକାଯନ୍ତ୍ର--ବ.ଶରୀରର ନାନାସ୍ଥାନରେ ବିଦ୍ଧ ଶଲ୍ୟ ସମୂହର ଅନ୍ୱେଷଣୋଦ୍ଧାର-ଣାଦି କାର୍ଯ୍ୟରେ ବ୍ୟବହୃତ ଯନ୍ତ୍ର ।
ଶଲାକକା—ସ୍ତ୍ରୀ. ବ. ଶଲାକା ଦେଖ ।
ଶଲାଟ—ବ. (ଶଲ୍+କ.ଆଟ) ଏକଭଡ଼ା ଜିଷନ, ଏକଶଗଡ଼ ପରିମିତ ବସ୍ତୁ ।
ଶଲାଟୁ—ବ.(ଶଲା+କ.ଆଟ)ଆମ୍ବଫଳ, କଞ୍ଚାଫଳ, ମୂଳବିଶେଷ, ବିଲ୍ୱବୃକ୍ଷ ।
ଶଲାତୁର—ପୁଂ. ବ. ପ୍ରସିଦ୍ଧ ବୈୟାକରଣ ପାଣିନିଙ୍କ ବାସଭୂମି ।
ଶଲାବନ୍ଧା—ଗ୍ରା. ବ. ବିବାହ ସମୟରେ ବରକୁ ଶଳାର ମାଗିବା(ଅଟକାରେ)ବନ୍ଧା
ଶଲାଭଉଜ—ଗ୍ରା.ସ୍ତ୍ରୀ. ବ. ଶ୍ୟାଲକପତ୍ନୀ ।
ଶଲାଭଣୋଇ—ଗ୍ରା. ପୁଂ. ବ. ଶ୍ୟାଲକ ଓ ଭଗିନୀପତି ।
ଶଲାମ୍ଭୋଲ—ପୁଂ. ବ. ଓଟ, ଉଷ୍ଟ୍ର ।
ଶଲାମଉଲା—ଗ୍ରା.ବ.ଶ୍ୟାଲକ ଓ ମାମୁଁ ।
ଶଲାଲୁ—ପୁଂ. ବ. ସୁଗନ୍ଧିଦ୍ରବ୍ୟବିଶେଷ ।
ଶଲତା—ଗ୍ରା. ବ.ଦୀପର ବଳିତା, ବସ୍ତ୍ର ଖଣ୍ଡ ବଳାହୋଇ ଦିଆଣ ହୋଇଥିବା ବର୍ତ୍ତୀ । [ ହେବା ।
ଶଲହେବା—ଗ୍ରା. ବ.(କାନଆଦି)କୁଣ୍ଡେଇ
ଶଲୀ—ସ୍ତ୍ରୀ. ବ. (ଶଲା+ଈ) ଝିଙ୍କ,କ୍ଷୁଦ୍ର-ଶଲାକା, ଧାନଗୁଡ଼ିଲର ପରିମାଣବିଶେଷ (ପ୍ରାୟ ଦୁଇମହଣ) ।
ଶଲୁକା—ବ. ( ଶଲ୍+କ.ଉକ+ଆ ) ଦେଉପନାମକ ମସଲ ।
ଶଲ୍କ—କ୍ଲୀ. ବ. (ଶଲ୍ + କ)କାତି, ମାଛ ଓ ସାପଆଦିଙ୍କ ଦେହର ଶ୍ଳଥ ଆବରଣ, ଗଛର ଗ୍ଳୁଲି, ବଲ୍କଲ ।
ଶଲ୍କଦେହ—ପୁଂ. ବଂ. ( ବ.ଗ୍ରୀ ) ଯାହା ଦେହରେ କାତି ଥାଏ,(ସ୍ତ୍ରୀ)ଶଲ୍କଦେହା ।
ଶଲ୍କଦେହୀ—ପୁଂ.ବଂ. (ଶଲ୍କଦେହ+ଇନ୍) ଯାହା ଦେହରେ କାତି ଥାଏ,(ବ)କାତି-ଥିବା ମାଛ, ଶାଳ ଭେଦ ଇତ୍ୟାଦି ।
ଶଲ୍କଲ—କ୍ଲୀ. ବ. ( ଶଲ୍କ+ଲା+କ.ଅ ) ମାଛକାତି, ଗଛର ଗ୍ଳୁଲି ।

ଶଲ୍କଲୀ—ପୁଂ. ବ. (ଶଲ୍କଲ+ଇନ୍) ମତ୍ସ୍ୟ, (ବିଂ) ବଲ୍କଲବିଶିଷ୍ଟ, କାଣ୍ଡବିଶିଷ୍ଟ, (ସ୍ତ୍ରୀ) ଶଲ୍କଲିନୀ ।

ଶଲ୍କୀ—ବ ଓ ବିଂ.(ଶଲ୍କ+ଇନ୍) ଶଲ୍କଲୀ ଦେଖ ।

ଶଲ୍ଲଦା—ସ୍ତ୍ରୀ. ବ. ମେଦା ।

ଶଲ୍ଲପର୍ଣ୍ଣିକା—ବ. ମେଦା ।

ଶଲ୍ଲକୀ—ସ୍ତ୍ରୀ.ବ. ଶାଲ୍ଲକୀଗଛ, ଶିମିଳିଗଛ

ଶଲ୍ୟ—କ୍ଳୀ.ବ.(ଶଲ୍+ର୍ମି.ଯ)ବାଣ,ଶର, ଦୁର୍ବାକ୍ୟ, ଶାଳ, ପାପ, ଖୁଣ୍ଟା, ଖିଲ, ଶୂଳୀ, ଶଳାକା, କଣ୍ଟା, ତୀକ୍ଷ୍ଣପଦାର୍ଥ, ଶଲେଇ, ସନ୍ଥା, ଶାବଳ, ମଦନବୃକ୍ଷ, ହାଡ଼, ମୁନିଆ ଅସ୍ତ୍ର,ବିଷ, ଗରଳ,ଝିଙ୍କ-ଜନ୍ତୁ, ଚକ୍ରାସ୍ତ୍ର, ସୀମା, ମଦ୍ରଦେଶର ରଜା, ପାଳିଡ଼ା ଖଇର, ଶିଳିନ୍ଧ ମାଛ, ଲୋଧ୍ର ବୃକ୍ଷ, ବିଲ୍ୱବୃକ୍ଷ, ଭୂମି ଗର୍ଭରେ ଥିବା ଅସ୍ଥି, ଝିଙ୍କକାଠି ।

ଶଲ୍ୟକ—ପୁଂ. ବ.(ଶଲ୍ୟ+କ)ମଦନବୃକ୍ଷ, ଲୋଧଗଛ, ବିଲ୍ୱବୃକ୍ଷ, ଖଇର, ଝିଙ୍କ, କଣ୍ଟାଗଛ, ଜଳଙ୍ଗମାଛ ।

ଶଲ୍ୟକଣ୍ଠ—ପୁଂ. ବ. (ବ.ବ୍ରୀ) ଝିଙ୍କ ।

ଶଲ୍ୟକମାଂସ—ବ. ଝିଙ୍କର ମାଂସ ।

ଶଲ୍ୟକର୍ତ୍ତା—ପୁଂ. ବ. ଶଲ୍ୟଉଦ୍ଧାରଣକାରୀ (ଡାକ୍ତର),ଶସ୍ତ୍ରଚିକିତ୍ସକ ।

ଶଲ୍ୟକୃନ୍ତ—ପୁଂ. ବ. ଶସ୍ତ୍ରଚିକିତ୍ସକ ।

ଶଲ୍ୟକୈଟର୍ଯ୍ୟ—ପୁଂ. ବ. ମଦନବୃକ୍ଷ ।

ଶଲ୍ୟକ୍ରିୟା—ସ୍ତ୍ରୀ.ବ.ଶରୀର ଭିତରେ କଣ୍ଟା ପ୍ରଭୃତି ପଶିଲେ ଯେ ପ୍ରକାର ଶସ୍ତ୍ର ପ୍ରୟୋଗ ଦ୍ୱାରା ଏହା ବାହାର କରାଯାଏ

ଶଲ୍ୟଜନାଡ଼ୀବ୍ରଣ—ବ. ଦେହରେ ଶଲ୍ୟ ପଶିବା ଫଳରେ ଜାତ ନାଳଘାଆ ।

ଶଲ୍ୟଦା—ସ୍ତ୍ରୀ. ବ. ମେଦା ଔଷଧି ।

ଶଲ୍ୟପର୍ଣ୍ଣିକା—ସ୍ତ୍ରୀ. ବ. ମେଦା ଔଷଧି ।

ଶଲ୍ୟପଶୁ—ବ. (କ.ଧା)ଝିଙ୍କ,ବଜ୍ରକାବଚା ନାମକ ଜୀବ ।

ଶଲ୍ୟଭେଦ—ବ.(୬ତତ୍ପୁ)ଦେହରେ କଣ୍ଟା ବା ଶର ପ୍ରବେଶ କରିବା ।

ଶଲ୍ୟଲୋମ—କ୍ଳୀ. ବ. (୬ତତ୍ପୁ)ସଜାରୁର କଣ୍ଟା, ଝିଙ୍କକାଠି ।

ଶଲ୍ୟବାନ୍—ପୁଂ.ବିଂ.ଶରଯୁକ୍ତ,ବାଣବିଶିଷ୍ଟ, ଚପଦବିଭ୍ରାନ୍ତ ।

ଶଲ୍ୟବାରଙ୍ଗ—ବାଣ ବା ଅନ୍ୟାନ୍ୟ ଶଲ୍ୟର ପଶ୍ଚାଦ୍ଭାଗ, ଶସ୍ତ୍ର ପ୍ରୟୋଗ କାଳରେ ଶଲ୍ୟର ଯେଉଁସ୍ଥାନ ଧରି ଶରୀରରୁ ଶଲ୍ୟୋଦ୍ଧାର କରାଯାଏ ।

ଶଲ୍ୟବିଦ୍ୟା(ତନ୍ତ୍ର)—ବ. ଶବ୍ୟବଚ୍ଛେଦ ବିଦ୍ୟା,ଦେହରେ ଅସ୍ତ୍ର ଉପଚାର ବିଦ୍ୟା ।

ଶଲ୍ୟବିଦ୍ଧ—ବିଂ. (୩ତତ୍ପୁ) ଶର ବା କଣ୍ଟା ଦ୍ୱାରା ବିଦ୍ଧ । [ ଜନ୍ସାଣନ ।

ଶଲ୍ୟସ୍ରଂସନ-କ୍ଳୀ.ବ.କଣ୍ଟକୋଦ୍ଧାର,ଶଲ୍ୟ-

ଶଲ୍ୟହର୍ତ୍ତା—ପୁଂ.ବ.ଶଲ୍ୟ ଉଦ୍ଧାରକର୍ତ୍ତା ।

ଶଲ୍ୟହୃତ୍—ପୁଂ. ବ. ଶଲ୍ୟହରଣକାରୀ ।

ଶଲ୍ୟା—ସ୍ତ୍ରୀ. ବ. (ଶଲ୍ୟ+ଆ) ମେଦା, ଭୁଇଁଚବୃକ୍ଷ,ନାଗଦନ୍ତୀ ଲତା ।

ଶଲ୍ୟାରି—ପୁଂ. ବ. ଯୁଧିଷ୍ଠିର, ଜ୍ୟେଷ୍ଠ ପାଣ୍ଡବ ।

ଶଲ୍ୟୋତ୍ପାଟନ—ବ. (୬ତତ୍ପୁ)ଦେହରେ ପ୍ରବେଶ କରିଥିବା କଣ୍ଟା ବା ଶରକୁ କାଢ଼ିବା, ଗୃହର ବାସ୍ତୁର ତଳୁ ପୋତା-ଥିବା ମନୁଷ୍ୟ ଆଦିଙ୍କ ଅସ୍ଥିକୁ ବାହାର କରିବା ରୂପ ସଂସ୍କାର ।

ଶଲ୍ୟୋଦ୍ଧାରଣ—ବ. (୬ତତ୍ପୁ) ଶଲ୍ୟୋ-ତ୍ପାଟନ ଦେଖ ।

ଶଲ୍ଲ—ବ. (ଶଲ୍ଲ+କ.ଅ)କାଣ୍ଡ, ବଲ୍କଲ, ଗୁଳ୍ମ, ବେଙ୍ଗ, ଶଳଗ ।

ଶଲ୍ଲକ—ବ. (ଶଲ୍ଲ+କ.ଅକ) ବଲ୍କଲ, ତ୍ୱକ୍, ଛଣପଟ ଗଛ,ଝିଙ୍କ, ଝିଙ୍କକାଠି ।

ଶଲ୍ଲକୀ—ସ୍ତ୍ରୀ. ବ. (ଶଲ୍ଲକ+ଇନ୍) ଝିଙ୍କ, ସଜାରୁ, ଶାଳବୃକ୍ଷବିଶେଷ, କଣ୍ଟାବବୁରି ଗଛ ।

ଶଲ୍ଲକୀତ୍ୱକ୍—ସ୍ତ୍ରୀ. ବ. ଶଲ୍ଲକୀଗଛର ଗୁଳ୍ମ ।

ଶଲ୍ଲକୀଦ୍ରବ—ପୁଂ.ବ. କୁନ୍ଦୁରୁଖୋଟି,ଶିଳା-ରସ, ଲୋବାନ୍ । [ ଶିଳାରସ ।

ଶଲ୍ଲକୀନିର୍ଯ୍ୟାସ—ବ.କୁନ୍ଦୁରୁଖୋଟି,ଲୋବାନ୍,

ଶଲ୍ଲିକା—ସ୍ତ୍ରୀ. ବ. ନାବ, ନୌକା ।

ଶଲ୍ଲିତ—ବିଂ. (ଶଲ୍ଲ+କ.ତ) ଗତ, ସ୍ଥଗିତ ।

ଶଲ୍ଲୀ—ସ୍ତ୍ରୀ.ବ. (ଶଲ୍ଲ+ଈ)ଶଲ୍ଲକୀଦେଖ ।

ଶଲ୍ୱ—ପୁଂ. ବ. ଶାଲ୍ୱଦେଶ ।

ଶବ—କ୍ଳୀ.ବ. (ଶବ୍+କ.ଅ) ଜଳ, ମୃତ-ଶରୀର, ମଡ଼ା, ମୁର୍ଦ୍ଦାର ।

ଶବକାମ୍ୟ—ପୁଂ. ବ. (ବ.ବ୍ରୀ)କୁକ୍କୁର ।

ଶବକୃତ୍—ବ. କୃଷ୍ଣଙ୍କର ଅନ୍ୟ ନାମ ।

ଶବଦ—ଗ୍ରା. ବ. (ସଂ-ଶବ୍ଦ)ଶବ୍ଦ ଦେଖ ।

ଶବଦହନ—ବ. ମୁର୍ଦ୍ଦାର ପୋଡ଼ା,ମୃତ-ବ୍ୟକ୍ତିର ଦେହକୁ ପୋଡ଼ିବାରୂପ ସଂସ୍କାର ।

ଶବଦହନାଶୌଚ—ବ.ଶବଦାହକ୍ରିୟାରେ ନିଯୁକ୍ତ ବ୍ୟକ୍ତିମାନଙ୍କର ଦହକ ଅଶୁଦ୍ଧି ।

ଶବଦାହ—ବ.(୬ତତ୍ପୁ)ଶବଦହନ ଦେଖ ।

ଶବଦାହକ—ପୁଂ.ବିଂ.(ଶବ+ଦହ୍+କ.ଅକ) ଯେ ମୁର୍ଦ୍ଦାର ପୋଡ଼େ, (ସ୍ତ୍ରୀ) ଶବଦାହିକା ।

ଶବଦାହସ୍ଥାନ—ବ. ଶ୍ମଶାନ, ମଶାଣି ।

ଶବଦାହୀ—ପୁଂ. ବିଂ. (ଶବ+ଦହ୍+କ.ଇନ୍) ଯେ ମୁର୍ଦ୍ଦାର ପୋଡ଼େ, (ସ୍ତ୍ରୀ) ଶବଦାହିନୀ ।

ଶବଦେହ—ବ. ମୃତଦେହ, ମୁର୍ଦ୍ଦାର ।

ଶବଧାନ—ପୁଂ. ବ. ଦେଶବିଶେଷ ।

ଶବପରୀକ୍ଷା—ବ. ମୃତ୍ୟୁର କାରଣ ଓ ଲକ୍ଷଣ ନିର୍ଣ୍ଣୟାର୍ଥେ ମୃତଦେହର ବୈଜ୍ଞାନିକ ପରୀକ୍ଷା ।

ଶବପ୍ରୋଥନ—ବ. (୬ତତ୍ପୁ)ମୃତବ୍ୟକ୍ତିର ଶରୀରକୁ ପୋତିବା ।

ଶବଭସ୍ମ—ବ. ଚତାଭସ୍ମ ।

ଶବମନ୍ଦିର—କ୍ଳୀ. ବ. ଶ୍ମଶାନ, ମଶାଣି ।

ଶବଯାନ(ରଥ)—କ୍ଳୀ.ବ. ଶବ ବୋହିବା ନିମନ୍ତେ ବ୍ୟବହୃତ ଖଟ ପ୍ରଭୃତି ।

ଶବର—ପୁଂ. ବ. (ଶବ+ର୍+କ.ଅ) ମ୍ଳେଚ୍ଛଜାତିବିଶେଷ, ଶବର, ବ୍ୟାଧ, କିରାତ, ଶିବ, ଶାସ୍ତ୍ରବିଶେଷ, ହସ୍ତ, ଶବର ଚନ୍ଦନ, ଜଳ, ମୀମାଂସା ସୂତ୍ରର ପ୍ରସିଦ୍ଧ ଭାଷ୍ୟରଚୟିତା ପଣ୍ଡିତ, ଶବର ସ୍ୱାମୀ, ପ୍ରାକୃତ ଭାଷାବିଶେଷ, ଶାବରୀ ଭାଷା, ଲୋଧ୍ର ବୃକ୍ଷ,(ବିଂ)ଗୁପ୍ତପତ୍ରିକାଆ ।

ଶବରକ—ପୁଂ.ବ.ଜଙ୍ଗଲବାସୀ ଅସଭ୍ୟ ଜାତିବିଶେଷ, (ସ୍ତ୍ରୀ) ଶବରିକା ।

ଶବରଚନ୍ଦନ—ବି. ଏକପ୍ରକାର ଚନ୍ଦନ ଗଛ ।
ଶବରଥ—ବି. ଶବଯାନ ଦେଖ ।
ଶବରପଲ୍ଲୀ—ବି. ଶବରମାନଙ୍କ ଗ୍ରାମ ।
ଶବରଲୋଧ୍ର—ପୁଂ. ବି. ଶ୍ୱେତ ଲୋଧ୍ର ।
ଶବରସ୍ୱାମୀ—ବି.ମୀମାଂସା ସୂତ୍ରର ପ୍ରସିଦ୍ଧ ଭାଷ୍ୟ ରଚୟିତା ପଣ୍ଡିତ ।
ଶବରାଲୟ—ପୁଂ. ବି. ଶବରଗୃହ ।
ଶବରୀ—ସ୍ତ୍ରୀ. ବି. (ଶବର+ଈ) ଶବର ପତ୍ନୀ,ତ୍ରିକାଳଦର୍ଶିନୀ ତାପସୀବିଶେଷ ।
ଶବରୁଣୀ-ଗ୍ରା.ସ୍ତ୍ରୀ.ବି. ଶବରଜାତୀୟା ସ୍ତ୍ରୀ ।
ଶବଳ—ବିଂ. (ଶବ+କ.ଅଳ) କର୍ବୁର ବର୍ଣ୍ଣ, ନାନାବର୍ଣ୍ଣବିଶିଷ୍ଟ, ହରରଙ୍ଗୀ, (ସ୍ତ୍ରୀ) ଶବଳା, (ବି) ନାନାବର୍ଣ୍ଣର ସମାବେଶ, ନାଗବିଶେଷ, ଗନ୍ଧତୃଣ, ଶୈବାଳଯୁକ୍ତ ଜଳ ।
ଶବଳଚେତନ—ପୁଂ.ବିଂ.(ବ.ବ୍ରୀ) ପୀଡ଼ା ବା କଷ୍ଟଆଦି କାରଣରୁ ବିଶେଷ ଅସ୍ଥିରମତି,ଅନ୍ୟମନସ୍କ,(ସ୍ତ୍ରୀ)ଶବଳଚେତନା ।
ଶବଳା—ସ୍ତ୍ରୀ.ବି. (ଶବଳ+ଆ) ବଶିଷ୍ଠଙ୍କ କାମଧେନୁ, ନାନାବର୍ଣ୍ଣଯୁକ୍ତା ଗାଈ, (ବିଂ) ନାନାବର୍ଣ୍ଣ ଚିହ୍ନିତା (ସ୍ତ୍ରୀ) ।
ଶବଳିତ—ବିଂ.(ଶବଳ+ଇତ) ମିଶ୍ରିତ, କର୍ବୁର ବର୍ଣ୍ଣବିଶିଷ୍ଟ ।
ଶବଳୀ—ସ୍ତ୍ରୀ.ବି.ବିଂ. ଶବଳା ଦେଖ ।
ଶବବାହ—ପୁଂ.ବିଂ.(ଶବ+ବହ+ଅ) ଶବବହନକାରୀ, ଯେ ଶବ ବହେ ।
ଶବବାହକ—ପୁଂ.ବିଂ. (ଶବ+ବହ+କ.ଅକ)ଶବବହନକାରୀ,ମଡ଼ାସାଙ୍ଗିଆ, (ସ୍ତ୍ରୀ) ଶବବାହିକା ।
ଶବବାହୀ—ପୁଂ.ବିଂ. (ଶବବାହ+ଇନ୍) ଶବବାହକ ଦେଖ, (ସ୍ତ୍ରୀ) ଶବବାହିନୀ ।
ଶବବ୍ୟବଚ୍ଛେଦ—ବି. ଶରୀର ବିଜ୍ଞାନ ଶିକ୍ଷାର୍ଥେ କିମ୍ବା ମୃତ୍ୟୁର କାରଣ ନିର୍ଣ୍ଣୟାର୍ଥେ ମୃତ ଦେହକୁ ଅସ୍ତ୍ର ଦ୍ୱାରା କାଟିବା ।
ଶବଶକଟ—ବି. (ଷତତ୍) ମୃତ ଦେହ ବହନର ଗାଡ଼ି । [ ସ୍ଥାନ ।
ଶବଶୟନ—ବି.(ବ.ବ୍ରୀ) ଶ୍ମଶାନ, କବର
ଶବସତ୍କାର—ବି. (ଷତତ୍)ମୃତ ଦେହର ଅଗ୍ନି ସଂସ୍କାରାଦି ଅନ୍ତ୍ୟେଷ୍ଟି କ୍ରିୟା ।
ଶବସମାଧି—ବି. (ଷତତ୍) ମୃତ ଦେହର ଭୂଗର୍ଭ ନିବାସ ।
ଶବସାଧନ—ବି. ଅପଘାତ ମୃତ୍ୟୁ ଦ୍ୱାରା ମୃତ ହୋଇଥିବା ବ୍ୟକ୍ତିର ମଡ଼ା ଉପରେ ବସି ତାନ୍ତ୍ରିକ ପ୍ରକ୍ରିୟା ଦ୍ୱାରା ମନ୍ତ୍ରଜପରୂପ କ୍ରିୟା [ ରୂପ ବିଧି ।
ଶବସଂସ୍କାର—ବି. ମୁର୍ଦ୍ଦାରକୁ ପୋଡ଼ିବା
ଶବାକାର—ବିଂ(ବ.ବ୍ରୀ)ଶବପରି ଆକୃତି ବିଶିଷ୍ଟ । [ ଚିତାଗ୍ନି ।
ଶବାଗ୍ନି—ପୁଂ. ବି. ଶବଦାହର ଅଗ୍ନି,
ଶବାଚ୍ଛାଦନ(ନୀ)—ବି.ମୃତଦେହ ଉପରେ ଘୋଡ଼ାଇବା ଆସ୍ତରଣ ।
ଶବାଧାର—ପୁଂ.ବି.(ଷତତ୍) ଶବନିଧାନ ପାତ୍ର, କଫିନ୍,ଯେଉଁ ବାକ୍ସରେ ଶବକୁ ରଖି କବର ଦେବାକୁ ହୁଏ ।
ଶବାନୁଯାନିକ—ପୁଂ.ବି. (ଷତତ୍) ଶବବାହକ ବ୍ୟକ୍ତି, ଯେଉଁ ବ୍ୟକ୍ତିମାନେ ଶବକୁ ଶ୍ମଶାନକୁ ନିଅନ୍ତି ।
ଶବାନୁଯାୟୀ—ପୁଂ.ବି. (ଷତତ୍)ଶବାନୁଯାନିକ ଦେଖ ।
ଶବାନ୍ନ—ବି. ନଷ୍ଟଅନ୍ନ, ଖାଦ୍ୟ ରୂପେ ବ୍ୟବହୃତ ଶବ ମାଂସ ।
ଶବାରୂଢ଼—ପୁଂ:ବିଂ(ଷତତ୍)ଶବ ଉପରେ ବସିଥିବା, (ସ୍ତ୍ରୀ) ଶବାରୂଢ଼ା ।
ଶବାରୂଢ଼ା--ସ୍ତ୍ରୀ.ବି.କାଳୀ । [ଶୃଗାଳାଦି ।
ଶବାଶ—ବି.(ଶବ+ଅଶ୍+ଅ)ଶବଭକ୍ଷକ,
ଶବାସନ—ବି.(ରୂପକ) ତନ୍ତ୍ରସାଧନାର୍ଥେ ଆସନ ରୂପେ ବ୍ୟବହୃତ ଶବ. (ପୁଂ. ବିଂ.ବ.ବ୍ରୀ) ଶବ ଉପରେ ବସି ଜପ କରୁଥିବା (ବ୍ୟକ୍ତି) ।
ଶବାସନା-ସ୍ତ୍ରୀ.ବି.(ବ.ବ୍ରୀ)କାଳୀ,କାଳିକା ।
ଶବାସୀନ—ପୁଂ. ବିଂ. (ଷତତ୍) ଶବ ଉପରେ ବସିଥିବା, (ସ୍ତ୍ରୀ)ଶବାସୀନା ।
ଶବୋଦ୍ୱହ—ପୁଂ. ବିଂ. ଶବବାହୀ ।
ଶବ୍ଦ—ବି. (ଶବ୍ଦ+ଭା.ଅ) ଧ୍ୱନି, ରବ, ଶ୍ରବଣେନ୍ଦ୍ରିୟଗ୍ରାହ୍ୟ ବିଷୟ, (ର୍ମ.ଅ) ଅର୍ଥବୋଧକ ଧ୍ୱନି, ଖ୍ୟାତି, ଯଶଃ, ବିଭକ୍ତିରହିତ ନାମ, ବିଶେଷ୍ୟ, ଅର୍ଥବାଚକ ଏକ ବା ତତୋଽଧିକ ଅକ୍ଷର, ବାକ୍ୟର ଅଙ୍ଗ, ବର୍ଣ୍ଣ, ଅକ୍ଷର, ନାମ, ବେଦ, ସ୍ମୃତି, ଓଁ,ଜଡ଼ ପଦାର୍ଥର ଗୁଣବିଶେଷ, ଯଦ୍ଦ୍ୱାରା ଏହା ଶ୍ରବଣେନ୍ଦ୍ରିୟ ଦ୍ୱାରା ଅନୁଭୂତ ହୁଏ ।
ଶବ୍ଦକର—ପୁଂ.ବିଂ.(ଶବ୍ଦ+କୃ+କ.ଅ) ଧ୍ୱନିକାରକ, ଯେ ଶବ୍ଦ କରେ ।
ଶବ୍ଦକରିବା—ଗ୍ରା. କ୍ରି. (ଜାତ) କଣ୍ଠ ବା ଅବୟବାଦି ଦ୍ୱାରା ଧ୍ୱନି ଉତ୍ପାଦନ କରିବା, ପାଟିକରିବା, (ଜଡ଼ ପଦାର୍ଥ) ଅନ୍ୟ ବସ୍ତୁର ପ୍ରତିଘାତ ବା ଘର୍ଷଣ ଦ୍ୱାରା ଶବ୍ଦାୟମାନ ହେବା ।
ଶବ୍ଦକାଣ୍ଡ—ପୁଂ ବି(ଷତତ୍)କୋଲାହଳ, ଗୋଳମାଳ, ଶବ୍ଦାଧାୟ ।
ଶବ୍ଦକାର—ତ୍ରି.ବିଂ. (ଶବ୍ଦ+କୃ+କ.ଅ) ଶବ୍ଦକର୍ତ୍ତା,ଧ୍ୱନିକାରକ,(ସ୍ତ୍ରୀ)ଶବ୍ଦକାରୀ ।
ଶବ୍ଦକାରୀ—ପୁଂ.ବିଂ(ଶବ୍ଦ+କୃ+ଇନ୍) ଧ୍ୱନିକାରକ, ଯେ ଶବ୍ଦ କରେ, (ସ୍ତ୍ରୀ) ଶବ୍ଦକାରିଣୀ ।
ଶବ୍ଦକୋଷ—ବି. (ଷତତ୍)ଶବ୍ଦାର୍ଥ ପ୍ରକାଶକ ଗ୍ରନ୍ଥ, ଅଭିଧାନ ।
ଶବ୍ଦକୋଷକାର—ପୁଂ. ବି. ଅଭିଧାନର ସଂଗ୍ରାହକ, ଅଭିଧାନ ଗ୍ରନ୍ଥକାର ।
ଶବ୍ଦଗ—ବି. (ଶବ୍ଦ+ଗମ୍+ଅ) ଶ୍ରୋତ୍ର, କର୍ଣ୍ଣ, ବାୟୁ ।
ଶବ୍ଦଗତି—ସ୍ତ୍ରୀ. ବି. ଶବ୍ଦସ୍ରୋତ, ଗତି, କର୍ଣ୍ଣ, ବାୟୁ । [ ଜ୍ଞାତବ୍ୟ ।
ଶବ୍ଦଗୋଚର—ପୁଂ.ବିଂ.ବେଦାନ୍ତ ଦ୍ୱାରା
ଶବ୍ଦଗ୍ରହ—ପୁଂ. ବି. (ଶବ୍ଦ+ଗ୍ରହ+କ.ଅ) କାନ, କର୍ଣ୍ଣ, (ଭା.ଅ) ଶବ୍ଦବୋଧ, ଶବ୍ଦଜ୍ଞାନ, (ବିଂ) ଶବ୍ଦକୁ ଗ୍ରହଣକାରୀ ।
ଶବ୍ଦଗ୍ରାମ—ପୁଂ.ବି. ଶବ୍ଦସମୂହ, ସ୍ୱରଗ୍ରାମ ।
ଶବ୍ଦଚାତୁର୍ଯ୍ୟ—ବି. (ଷତତ୍) ଶବ୍ଦମାନଙ୍କ ପ୍ରୟୋଗରେ ଚତୁରତା, ବାଗ୍ମିତା ।
ଶବ୍ଦଚିତ୍ର—ବି. ଏକପ୍ରକାର ନୃତ୍ୟ ।
ଶବ୍ଦଚିତ୍ର—ପୁଂ.ବି.ଶବ୍ଦାନୁପ୍ରାସ ଅଳଙ୍କାର ।
ଶବ୍ଦଚୋର—ବି.ଯେଉଁ ଗ୍ରନ୍ଥକାର ଅନ୍ୟ ଗ୍ରନ୍ଥକାରଙ୍କ ରଚିତ ବା ବ୍ୟବହୃତ ଶବ୍ଦମାନ ଚୋରି କରେ,ଗ୍ରନ୍ଥତସ୍କର ।

ଶବ୍ଦଚୌର୍ଯ୍ୟ—ବି. ଅପର ଗ୍ରନ୍ଥକାର ବା ଲେଖକଙ୍କ ରଚିତ ଶବ୍ଦକୁ ଆପଣାର ବୋଲି ପ୍ରକାଶ କରିବା ପାଇଁ ଆପଣା ଲେଖାରେ ଉକ୍ତ ଶବ୍ଦର ବ୍ୟବହାର ।
ଶବ୍ଦଜ୍ଞ—ପୁଂ. ବିଂ. (ଶବ୍ଦ+ଜ୍ଞା+କ.ଅ) ଯେ ଶବ୍ଦମାନଙ୍କ ବିଷୟରେ ଉତ୍ତମ ରୂପେ ଅଭିଜ୍ଞ, (ସ୍ତ୍ରୀ) ଶବ୍ଦଜ୍ଞା ।
ଶବ୍ଦତରଙ୍ଗ—ବି(୬ତତ୍ପୁ)ଶବ୍ଦ ବା ଧ୍ୱନିର ଢେଉ, ଉପର୍ଯ୍ୟୁପରି ନିଃସୃତ ଶବ୍ଦ, ଅନର୍ଗଳ ଧ୍ୱନି ।
ଶବ୍ଦନ—ବି.(ଶବ୍ଦ+ଭା.ଅନ) ଶବ୍ଦ,ଧ୍ୱନି, ଶବ୍ଦକରିବା, (ବିଂ) ଶବ୍ଦାୟମାନ ।
ଶବ୍ଦନୃତ୍ୟ—ବି. ଏକପ୍ରକାର ନୃତ୍ୟ ।
ଶବ୍ଦପତି—ପୁଂ. ବି. ନାମମାତ୍ର ନେତା, ଯେଉଁ ନେତାଙ୍କର କେହି ଅନୁଗାମୀ ବ୍ୟକ୍ତି ନ ଥାନ୍ତି ।
ଶବ୍ଦପାତୀ—ପୁଂ. ବିଂ. ଶବ୍ଦ ସହକାରେ ଗମନକାରୀ,(ଶର)ଶବ୍ଦସହ ନିପତିତ ।
ଶବ୍ଦପ୍ରକାଶ—ପୁଂ.ବି. ଶବ୍ଦୋତ୍ଥାନ,ଶବ୍ଦର ଉଦ୍‌ବୋଧନ ।
ଶବ୍ଦପ୍ରବୃତ୍ତି—ବି.ଶବ୍ଦର ଉତ୍ପତ୍ତି,ବୈଖରୀ, ମଧ୍ୟମା, ପଶ୍ୟନ୍ତୀ ଏବଂ ସୂକ୍ଷ୍ମା ବା ପରା. ଏହି ଚତୁର୍ବିଧ ବାକ୍ ନିଷ୍ପତ୍ତି ।
ଶବ୍ଦପ୍ରଭେଦ—ବି. ଶବ୍ଦର ବିଭିନ୍ନତା ।
ଶବ୍ଦପ୍ରମାଣ—କ୍ଳୀ.ବି.(ସ୍ମୃତିଶାସ୍ତ୍ର)କୌଣସି ବ୍ୟକ୍ତିର ଶବ୍ଦ ବା କଥନ ଉପରେ ପ୍ରତିଷ୍ଠିତ ପ୍ରମାଣ, ମୌଖିକ ପ୍ରମାଣ ।
ଶବ୍ଦପ୍ରଚ୍ଛ—ତ୍ରି.ବିଂ. (ଶବ୍ଦ+ପ୍ରଚ୍ଛ+କ୍ୱିପ୍) ଶବ୍ଦଜିଜ୍ଞାସୁ, ଯେ ଶବ୍ଦ ଜିଜ୍ଞାସା କରେ ।
ଶବ୍ଦପ୍ରମାଣ୍ୟବାଦ—ପୁଂ. ବି. ଶବ୍ଦ ବିଚାର ସମ୍ବନ୍ଧୀୟ ନ୍ୟାୟ ଗ୍ରନ୍ଥଭେଦ ।
ଶବ୍ଦପ୍ରାଣ—ବି.ଶବ୍ଦର ଅର୍ଥର ଅନୁସନ୍ଧାନ, ଶବ୍ଦାର୍ଥର ଜିଜ୍ଞାସା ।
ଶବ୍ଦଭୃତ୍—ତ୍ରି. ବିଂ. (ଶବ୍ଦ+ଭୃ+କ୍ୱିପ୍) ଶବ୍ଦମାତ୍ର ପାଳନ କରିବା, ଧର୍ମାର୍ଥ ଶବ୍ଦ ମାତ୍ର ଧାରଣ କରିବା ।
ଶବ୍ଦଭେଦୀ—ପୁଂ. ବିଂ. (ଶବ୍ଦ+ଭିଦ୍+କ.ଇନ୍) ଲକ୍ଷ୍ୟ ବସ୍ତୁର ଶବ୍ଦକୁ ବାରି ଯେ ଲକ୍ଷ୍ୟକୁ ବିଦ୍ଧକରି ପାରନ୍ତି, (ବି) ରାଜା ଦଶରଥ, ଅର୍ଜୁନ, ଶବ୍ଦକୁ ବାରି ଲକ୍ଷ୍ୟ ଭେଦକାରୀ ବାଣ, ପାୟୁ, ଗୁହ୍ୟଦ୍ୱାର, (ସ୍ତ୍ରୀ) ଶବ୍ଦଭେଦିନୀ ।
ଶବ୍ଦଭେଦୀବାଣ—ବି.ଶବ୍ଦକାରକ ଅଦୃଶ୍ୟ ବ୍ୟକ୍ତି ବା ବସ୍ତୁକୁ ବିଦ୍ଧ କରିବାକୁ ସମର୍ଥ ବାଣ ।
ଶବ୍ଦମୟ—ତ୍ରି.ବିଂ(ଶବ୍ଦ+ମୟଟ୍)ଶବ୍ଦଯୁକ୍ତ, ଶବ୍ଦବିଶିଷ୍ଟ, ଶବ୍ଦପୂର୍ଣ୍ଣ, ଧ୍ୱନିବ୍ୟାପ୍ତ,(ସ୍ତ୍ରୀ) ଶବ୍ଦମୟୀ ।
ଶବ୍ଦମହେଶ୍ୱର—ପୁଂ. ବି. ଶିବ ।
ଶବ୍ଦମାତ୍ର—କ୍ଳୀ. ବି. କେବଳ ଶବ୍ଦ ।
ଶବ୍ଦମାଳ—ପୁଂ. ବି. ପୋଲ ବାଉଁଶ ।
ଶବ୍ଦମାଳା—ସ୍ତ୍ରୀ. ବି. ଶବ୍ଦସମୂହ, ରାମେଶ୍ୱର ଶର୍ମା ବିରଚିତ ଅଭିଧାନ ।
ଶବ୍ଦଯୋନି—ବି.(୬ତତ୍ପୁ) ଶବ୍ଦର ଉତ୍ପତ୍ତି ସ୍ଥାନ, ( ବ୍ୟାକରଣ ) ଶବ୍ଦର ମୂଳ ବା ପ୍ରକୃତି ଧାତୁ, ବେଦକର୍ତ୍ତା ।
ଶବ୍ଦରହିତ—ତ୍ରି.ବିଂ. ନିଃଶବ୍ଦ,ଶବ୍ଦଶୂନ୍ୟ ।
ଶବ୍ଦରାଶିମହେଶ୍ୱର—ପୁଂ. ବି. ଶିବଙ୍କର ନାମାନ୍ତର ।
ଶବ୍ଦରୂପ—ବି. ( ଶବ୍ଦ+ରୂପ ) ୬ତତ୍ପୁ; (ବ୍ୟାକରଣ)ଭିନ୍ନଭିନ୍ନ ବିଭକ୍ତି, ବଚନ, ଲିଙ୍ଗ ଓ କାରକରେ ଶବ୍ଦର ଭିନ୍ନଭିନ୍ନ ଆକୃତି ।
ଶବ୍ଦରେଚନ—କ୍ଳୀ.ବି. (ବୈଦ୍ୟକ)ଛିଙ୍କ ।
ଶବ୍ଦଲହରୀ-ବି.(୬ତତ୍ପୁ)ଶବ୍ଦତରଙ୍ଗ ଦେଖ ।
ଶବ୍ଦବତ୍—ତ୍ରି.ବିଂ.ଶବ୍ଦବିଶିଷ୍ଟ, ଶବ୍ଦଶାଳୀ, ଯହିଁରେ ଶବ୍ଦ ଅଛି,(ଅ)ଶବ୍ଦତୁଲ୍ୟ,ଶବ୍ଦପର ।
ଶବ୍ଦବହ—ବିଂ. (ଶବ୍ଦ+ବହ+କ.ଅ) ଶବ୍ଦକୁ ଯେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ବହି ନିଏ,(ବି) ଆକାଶ, ବାୟୁ ।
ଶବ୍ଦବହୁଳ—ବିଂ.ଯହିଁରେ ଅନେକ ଶବ୍ଦ ଥାଏ, ବହୁ ଧ୍ୱନିଯୁକ୍ତ ।
ଶବ୍ଦବାରିଧି—ପୁଂ. ବି. ଶବ୍ଦ ସମୁଦ୍ର ।
ଶବ୍ଦବିଜ୍ଞାନ—ବି.ଶବ୍ଦଶାସ୍ତ୍ର, ଶବ୍ଦ ସମ୍ବନ୍ଧେ ଧାରାବାହିକ ଜ୍ଞାନ(ବ୍ୟାକରଣ) ।
ଶବ୍ଦବିଦ୍ୟା—ବି. ଶବ୍ଦ ବିଷୟକ ଶାସ୍ତ୍ର, ବ୍ୟାକରଣାଦି ।
ଶବ୍ଦବିନ୍ୟାସ—ବି. ଅର୍ଥବୋଧକ ଶବ୍ଦମାନଙ୍କୁ ଯଥାସ୍ଥାନରେ ବସାଇବା, ଶବ୍ଦମାନଙ୍କର ଶୃଙ୍ଖଳାପୂର୍ବକ ସ୍ଥାପନ ।
ଶବ୍ଦବିରୋଧ—ପୁଂ.ବି. ଯେଉଁ ବିରୋଧ ବାସ୍ତବ ବା ଭାବଗତ ନୁହେ, କିନ୍ତୁ ଶବ୍ଦରୁ ଜଣାପଡ଼େ ।
ଶବ୍ଦବିଶେଷ—ପୁଂ.ବି. ବିଶିଷ୍ଟଶବ୍ଦ, ବହୁବଚନରେ ବିଭିନ୍ନ ଶବ୍ଦ ପର୍ଯ୍ୟାୟକୁ ବୁଝାଏ ।
ଶବ୍ଦବୃତ୍ତି—ସ୍ତ୍ରୀ.ବି.ଶବ୍ଦର କାର୍ଯ୍ୟ ।
ଶବ୍ଦବେଧ—ପୁଂ.ବି.ଶବ୍ଦଶୁଣି ସେହି ଶବ୍ଦ ଅନୁସାରେ ଶବ୍ଦକାରୀ ଅଦୃଶ୍ୟ ବସ୍ତୁକୁ ବିନ୍ଧିବା ।
ଶବ୍ଦବେଧିତ୍ୱ—କ୍ଳୀ.ବି. ଶ୍ରୁତଶବ୍ଦାନୁସରଣ ଦ୍ୱାରା (ଅଦୃଶ୍ୟବସ୍ତୁକୁ) ବିନ୍ଧିବାର ଭାବ ବା ଧର୍ମ ।
ଶବ୍ଦବେଧୀ—ପୁଂ.ବିଂ. (ଶବ୍ଦ+ବ୍ୟଧ୍+କ.ଇନ୍) ଶବ୍ଦଭେଦୀ ଦେଖ, (ବି)ରାଜା ଦଶରଥ, ଅର୍ଜୁନ, ଶବ୍ଦଭେଦୀ ବାଣ, ଯେଉଁ ବ୍ୟକ୍ତିର ବା ବାଣର ଶବ୍ଦରେ ଶତ୍ରୁର ମୃତ୍ୟୁ ଜନ୍ମେ ।
ଶବ୍ଦବେଧ୍ୟ—ବିଂ.ଶବ୍ଦମାତ୍ର ଶୁଣି ଯାହାକୁ ବିନ୍ଧାଯାଏ ।
ଶବ୍ଦବୋଦ୍ଧା—ପୁଂ.ବିଂ. (ଶବ୍ଦ+ବୁଧ୍+କ ତୃ) ଶବ୍ଦଜ୍ଞ, (ସ୍ତ୍ରୀ) ଶବ୍ଦବୋଦ୍ଧ୍ରୀ ।
ଶବ୍ଦବୋଧ—ବି. ( ୬ତତ୍ପୁ ) ଶବ୍ଦର ବା ଧ୍ୱନିର ଜ୍ଞାନ, ଶବ୍ଦର ଅର୍ଥ ବୁଝିବା, ( ସ୍ମୃତିଶାସ୍ତ୍ର ) ସାକ୍ଷୀଦ୍ୱାରା ପ୍ରାପ୍ତ ଜ୍ଞାନ, ଯେଉଁ ଜ୍ଞାନ ସାକ୍ଷୀର ପ୍ରମାଣରୁ ମିଳେ ।
ଶବ୍ଦବ୍ରହ୍ମ—ବି. ( ରୂପକ.କର୍ମଧାରୟ ) ଶବ୍ଦାତ୍ମକ ବ୍ରହ୍ମ ଓଁକାରାଦି,ଶ୍ରୁତି,ବେଦ ।
ଶବ୍ଦଶକ୍ତି—ବି. (୬ତତ୍ପୁ) ଶବ୍ଦର କ୍ଷମତା ବା ଅର୍ଥ, ଶବ୍ଦର ଅଭିଧା, ଲକ୍ଷଣା, ବ୍ୟଞ୍ଜନାଆଦି ଅର୍ଥବୋଧକ ବୃତ୍ତିତ୍ରୟ ।
ଶବ୍ଦଶାସ୍ତ୍ର—ବି. ବ୍ୟାକରଣଶାସ୍ତ୍ର,ଧ୍ୱନିଶାସ୍ତ୍ର
ଶବ୍ଦଶୂନ୍ୟ—ବିଂ. (୩ତତ୍ପୁ)ନିଃଶବ୍ଦ,ନୀରବ, (ସ୍ତ୍ରୀ) ଶବ୍ଦଶୂନ୍ୟା ।
ଶବ୍ଦଶେଷ—ବିଂ. ଶବ୍ଦର ଶେଷାଂଶ ।
ଶବ୍ଦଶ୍ଳେଷ—ବି. ଯେଉଁ ଶବ୍ଦ ଦୁଇ ବା

ତତୋଽଧିକ ଅର୍ଥରେ ପ୍ରଯୁକ୍ତ ହୁଏ ।
ଶବ୍ଦସଂଗ୍ରହ—ବି. (ଷତତ୍) ଗୁଡ଼ିଏ ଶବ୍ଦର ଏକତ୍ର ଲିଖନ,ଅଭିଧାନ, ଶବ୍ଦକୋଷ ।
ଶବ୍ଦସଂଜ୍ଞା—ସ୍ତ୍ରୀ.ବି.ଶବ୍ଦର ଏକ ପର୍ଯ୍ୟାୟସୂଚକ ନାମ ।
ଶବ୍ଦସମ୍ଭବ—ବି.ବିଂ. ଯାହାଠାରୁ ଶବ୍ଦର ଉତ୍ପତ୍ତି ହୁଏ, (ବି.ବି.ସ୍ତ୍ରୀ) ବାୟୁ ।
ଶବ୍ଦସାଗର—ବି. (ରୂ-କ.ଧା) ସମୁଦ୍ରବତ୍ ଅପରମେୟ ବା ଅସୀମ ଶବ୍ଦସମୂହ, (ଗ୍ରା.ବି) ଶବ୍ଦକୋଷ ।
ଶବ୍ଦସାଧନ—ବି. (ବ୍ୟାକରଣ) ଯେଉଁ ଅଙ୍ଗରେ ଶବ୍ଦମାନଙ୍କର ବ୍ୟୁତ୍ପତ୍ତି,ଭେଦ ଓ ରୂପାନ୍ତରଆଦି ଆଲୋଚିତ ହୋଇଥାଏ ।
ଶବ୍ଦସାହ—ବି.ବିଂ. ଶବ୍ଦବାଧା ନିବାରକ, ଶବ୍ଦବେଧୀ ।
ଶବ୍ଦସିଦ୍ଧି—ସ୍ତ୍ରୀ.ବି.ଶବ୍ଦର ପୂର୍ଣ୍ଣ ବ୍ୟବହାର, କାବ୍ୟକଳ୍ପଲତା ବୃତ୍ତିପରିମଳ ନାମକ ଗ୍ରନ୍ଥର ଏକାଂଶ ।
ଶବ୍ଦସୌନ୍ଦର୍ଯ୍ୟ—ବି.(ଷତତ୍) ଶବ୍ଦମାନଙ୍କ ଉଚ୍ଚାରଣର ସୁଗମତା ।
ଶବ୍ଦସୌଷ୍ଠବ—ବି. (ଷତତ୍) କୌଣସି ଲେଖାରେ ବା ଶୈଳୀରେ ପ୍ରଯୁକ୍ତ ଶବ୍ଦମାନଙ୍କ କୋମଳତା ବା ସୁନ୍ଦରତା ।
ଶବ୍ଦସ୍ଫୋଟ— ପୁଂ. ବି. ବାକ୍ୟସ୍ଫୋଟ, ବାହ୍ୟାଡ଼ମ୍ବର ।
ଶବ୍ଦସ୍ୱାନ—ବିଂ. (ଷତତ୍)ମିରବ,ନିଃଶବ୍ଦ, ଶବ୍ଦଶୂନ୍ୟ, (ବି) ଶବ୍ଦମାନଙ୍କର ଏପରି ପ୍ରୟୋଗ ଯାହା ପୂର୍ବାଗୁର୍ଯ୍ୟମାନେ ପ୍ରୟୋଗ କରି ନାହାନ୍ତି ।
ଶବ୍ଦହେତୁକ—ବିଂ.(ବି.ସ୍ତ୍ରୀ)ଶବ୍ଦରୁ ଜାତ
ଶବ୍ଦାକର—ବି. (ଷତତ୍) (ବ୍ୟାକରଣ) ଶବ୍ଦଯୋନି, ଧାତୁ, ଶବ୍ଦକୋଷ ।
ଶବ୍ଦାକ୍ଷର—କ୍ଲୀ.ବି. ଧ୍ୱନିମୂଳକ ଉଚ୍ଚାରିତ ଓଁ ଶବ୍ଦ, ଶବ୍ଦ ଓ ଅକ୍ଷର, ଶବ୍ଦଜ୍ଞାପକ ଅକ୍ଷର ।
ଶବ୍ଦାକ୍ଷେପ—ବି. ଉଚ୍ଚୈଃସ୍ୱରରେ ବା ଜୋର୍ ସହିତ କଥିତ ଶବ୍ଦ ।
ଶବ୍ଦାଖ୍ୟେୟ—ବି. ବିଂ. ଶବ୍ଦଦ୍ୱାରା କଥନର ଉପଯୁକ୍ତ ।
ଶବ୍ଦାଡ଼ମ୍ବର—କ୍ଲୀ. ବି. ବାଗାଡ଼ମ୍ବର, ଆଡ଼ମ୍ବରଯୁକ୍ତ ଶବ୍ଦ ।
ଶବ୍ଦାଢ୍ୟ—କ୍ଲୀ. ବି. କଂସାନାମକ ଧାତୁ ।
ଶବ୍ଦାତିଗ—ପୁଂ. ବି. ବିଷ୍ଣୁ, (ବିଂ-ଶବ୍ଦ+ଅତି+ଗମ୍+କ.ଅ) ଯାହା ଶବ୍ଦର ଗତିଠାରୁ ଚଞ୍ଚଳତର, ଶବ୍ଦାତୀତ ।
ଶବ୍ଦାତୀତ—ବିଂ.(ଷତତ୍) ଶବ୍ଦଦ୍ୱାରା ଅପ୍ରକାଶ୍ୟ, ବାକ୍ୟାତୀତ, (ବି)ଭଗବାନଙ୍କର ନାମାନ୍ତର । [ କାନ ।
ଶବ୍ଦାଧିଷ୍ଠାନ—ବି. (ଷତତ୍)ଶ୍ରବଣେନ୍ଦ୍ରିୟ,
ଶବ୍ଦାଧ୍ୟାହାର—ବି.ଅସମ୍ପୂର୍ଣ୍ଣ ବାକ୍ୟକୁ ପୂର୍ଣ୍ଣ କରିବା ପାଇଁ ଉହ୍ୟରେ ଅନ୍ୟ ଶବ୍ଦର ଯୋଜନ ।
ଶବ୍ଦାନୁକରଣ—କ୍ଲୀ. ବି. ଶବ୍ଦର ଅନୁକରଣ, ଶବ୍ଦ ନକଲ କରିବା ।
ଶବ୍ଦାନୁକୃତି—ସ୍ତ୍ରୀ. ବି. ଶବ୍ଦାନୁକରଣ ।
ଶବ୍ଦାନୁଶାସନ—ବି. ବ୍ୟାକରଣ ଶାସ୍ତ୍ର, ଶବ୍ଦ ସମ୍ବନ୍ଧରେ ନିୟମ ।
ଶବ୍ଦାନୁସନ୍ଧାନ—ବି.ଶବ୍ଦର ଉତ୍ପତ୍ତି ବିଷୟରେ ଅନୁସନ୍ଧାନ ।
ଶବ୍ଦାନୁସୃଷ୍ଟି—ସ୍ତ୍ରୀ. ବି. ଶବ୍ଦାନୁଶାସନ ।
ଶବ୍ଦାମ୍ବୁଧି-ବି.(ଶବ୍ଦ+ଅମ୍ବୁଧି) ଶବ୍ଦସାଗର ।
ଶବ୍ଦାଭିବନ୍ଧ—ବି. ବିଂ. ଶବ୍ଦବାଧୀ, ଶବ୍ଦ ବନ୍ଧନକାରୀ ଶିରପ୍ରଭୃତି ।
ଶବ୍ଦାୟମାନ—ବି. ବିଂ. ଶବ୍ଦକାରୀ, ଯାହା ଶବ୍ଦ କରୁଅଛି,ଯହିଁରୁ ଶବ୍ଦ ବାହାରୁଛି ।
ଶବ୍ଦାର୍ଥ—ପୁଂ.ବି. (ଦ୍ୱନ୍ଦ୍ୱ) ଶବ୍ଦ ଓ ଅର୍ଥ, (ଷତତ୍) ଶବ୍ଦର ଅର୍ଥ, ଧ୍ୱନିର ଅର୍ଥ, ଧ୍ୱନିର ଉଦ୍ଦେଶ୍ୟ ।
ଶବ୍ଦାର୍ଥକୋଷ—ବି. (ଦ୍ୱନ୍ଦ୍ୱ) ( ଷତତ୍ ) ଅଭିଧାନ । [ କରଣ ।
ଶବ୍ଦାର୍ଥପ୍ରକାଶ—ବି.ଶବ୍ଦର ଅର୍ଥକୁ ପ୍ରକଟୀ-
ଶବ୍ଦାର୍ଥପ୍ରକାଶକ—ବି ଓ ବିଂ.ଯେଉଁବ୍ୟକ୍ତି ଶବ୍ଦର ଅର୍ଥକୁ ବୁଝାଇ ଦିଏ, ଅଭିଧାନକାର, ଅଭିଧାନ ।
ଶବ୍ଦାର୍ଥସଂଗ୍ରହ—ବି. ଶବ୍ଦର ଅର୍ଥମାନଙ୍କୁ ଏକତ୍ରକରିବା ।
ଶବ୍ଦାଲଙ୍କାର—ବି. ଶବ୍ଦର ଶୋଭା ସମ୍ପାଦନକାରୀ କାବ୍ୟାଙ୍ଗବିଶେଷ ।
ଶବ୍ଦିତ—ବି.ବିଂ. (ଶବ୍ଦ+ଇତ) ଧ୍ୱନିତ, ନିନାଦିତ, ଆହୂତ ।
ଶବ୍ଦୀ—ବି.ବିଂ. ଶବ୍ଦବିଶିଷ୍ଟ ।
ଶବ୍ଦେନ୍ଦ୍ରିୟ—କ୍ଲୀ. ବି. (କ.ଧା) ଶ୍ରବଣେନ୍ଦ୍ରିୟ, କାନ ।
ଶଶ—ପୁଂ. ବି. (ଶଶ୍+କ.ଅ)ଠେକୁଆ, ବିଳେଶୟ ଜାତୀୟ କ୍ଷୁଦ୍ର ପଶୁ,ଖରିଆ, କାମଶାସ୍ତ୍ର ବର୍ଣ୍ଣିତ ଶଶଜାତୀୟ ପୁରୁଷ, ଝୁଣା,ଚନ୍ଦ୍ରଙ୍କ ଦେହରେ ଲକ୍ଷିତ କୃଷ୍ଣବର୍ଣ୍ଣ ଦାଗ, ଲୋଧ୍ର ।
ଶଶକ-ପୁଂ.ବି.(ଶଶ୍+କ.ଅକ)ଶଶ ଦେଖ ।
ଶଶକନ୍ଦ—ବି.କ୍ଷୀରକଣ୍ଟକ୍ଲା,କ୍ଷୀରି ଦେଖ ।
ଶଶକର୍ଣ୍ଣ—ପୁଂ. ବି. ଋଷିଭେଦ ।
ଶଶକବିଷାଣ—କ୍ଲୀ.ବି. ଠେକୁଆର ଶିଙ୍ଘ-ପରି ଅତଶୟ ଅସମ୍ଭବ ବା ଅଲୀକ ବିଷୟରେ ଉଦାହରଣ ଦେବାରେ ଏହି ଶବ୍ଦ ପ୍ରଯୁକ୍ତ ହୋଇଥାଏ ।
ଶଶଘାତକ—ବି. ବାଜ,ଶ୍ୟେନ,ଛଞ୍ଚାଣ
ଶଶଘାତୀ—ପୁଂ.ବି.ବାଜ,ଶ୍ୟେନ,ଛଞ୍ଚାଣ ।
ଶଶଘ୍ନ—ପୁଂ. ବି. ଶଶଘାତକ ଦେଖ ।
ଶଶଧର—ପୁଂ. ବି. (ଶଶ+ଧୃ+କ.ଅ) ଚନ୍ଦ୍ର, କର୍ପୂର ।
ଶଶପ୍ଲୁତକ—କ୍ଲୀ.ବି.ପ୍ରେମିକ ପ୍ରେମିକାଙ୍କର ରତି ସମୟରେ ପରସ୍ପର ଅଙ୍ଗରେ କରିବା ନଖାଘାତ ।
ଶଶବିନ୍ଦୁ—ପୁଂ. ବି. ( ବି.ସ୍ତ୍ରୀ ) ବିଷ୍ଣୁ, ଶଶାଙ୍କ, ଚନ୍ଦ୍ର, ନୃପବିଶେଷ, ଚିତ୍ରରେଖାଙ୍କ ପୁତ୍ର ।
ଶଶଭୃତ୍—ପୁଂ. ବି. (ଶଶ+ଭୃ+କ୍ୱିପ୍) ଚନ୍ଦ୍ର, ଶଶାଙ୍କ, କର୍ପୂର ।
ଶଶଭୃଦ୍ଭୃତ୍—ପୁଂ. ବି. (ଶଶଭୃତ୍+ଭୃ+କ୍ୱିପ୍) ଶିବ, ମହାଦେବ ।
ଶଶଯାନ—କ୍ଲୀ. ବି. ତୀର୍ଥବିଶେଷ ।
ଶଶୟୁ—ବିଂ. ଶୟନଶୀଳ । [ ଶଶାଙ୍କ ।
ଶଶଲକ୍ଷଣ—ପୁଂ. ବି. (ବି.ସ୍ତ୍ରୀ) ଚନ୍ଦ୍ର,
ଶଶଲାଞ୍ଛନ—ପୁଂ.ବି.(ବି.ସ୍ତ୍ରୀ)ଚନ୍ଦ୍ର,କର୍ପୂର ।
ଶଶବିଷାଣ—ବି. ଶଶକବିଷାଣ ଦେଖ ।
ଶଶବ୍ୟସ୍ତ—ବିଂ. ଅତ୍ୟନ୍ତ ବ୍ୟସ୍ତ,

ଅତ୍ୟନ୍ତ ଯସ୍ତ, କିଂକର୍ତ୍ତବ୍ୟ ବିମୂଢ଼ ।
ଶଶବ୍ୟସ୍ତତା—ବି.ଅତ୍ୟନ୍ତ ଯସ୍ତ ଓ ଭ୍ରାନ୍ତ-ହେବା ଅବସ୍ଥା ।
ଶଶବ୍ୟସ୍ତେ—ଗ୍ରା.କ୍ରି. ବିଂ. ଅତ୍ୟନ୍ତ ବ୍ୟଗ୍ର-ଚିତ୍ତ ଭାବରେ, ସମ୍ଭ୍ରମେ ।
ଶଶଶିମ୍ବିକା—ସ୍ତ୍ରୀ ବି. ଛାଗଳନ୍ତ୍ରୀ ଲତା ।
ଶଶସ୍ଥଳୀ—ବି.ଗଙ୍ଗା ଯମୁନାର ମଧ୍ୟବର୍ତ୍ତୀ ଦେଶ ।
ଶଶା—ଗ୍ରା. ବି. (ସଂ-ଶଶକ) ଠେକୁଆ, (ସଂ-ତ୍ରପୁଷୀ)କାକୁଡ଼ି,କଣ୍ଟିଆଳ କାକୁଡ଼ି।
ଶଶାଙ୍କ—ପୁଂ.ବି.(ବ.ବ୍ରୀ)ଚନ୍ଦ୍ର,କର୍ପୂର ।
ଶଶାଙ୍କକୁଳ—ବି. (୬ତତ୍) ଚନ୍ଦ୍ରବଂଶ ।
ଶଶାଙ୍କଜ—ପୁଂ.ବି. (ଶଶାଙ୍କ+ଜନ୍+ଅ) ଚନ୍ଦ୍ରପୁତ୍ର, ବୁଧ ।
ଶଶାଙ୍କମୁକୁଟ—ପୁଂ. ବି. (ବ ବ୍ରୀ) ଶିବ ।
ଶଶାଙ୍କମୌଳି—ପୁଂ.ବି. (ବ.ବ୍ରୀ) ଶିବ ।
ଶଶାଙ୍କରେ(ଲେ)ଖା—ବି. କ୍ଷୀଣଚନ୍ଦ୍ର, ଖଣ୍ଡଚନ୍ଦ୍ର ।
ଶଶାଙ୍କଶେଖର—ପୁଂ.ବି. (ବ.ବ୍ରୀ)ଶିବ ।
ଶଶାଙ୍କସୁତ—ପୁଂ.ବି.(୬ତତ୍) ଚନ୍ଦ୍ରଙ୍କର ପୁତ୍ର ବୁଧ ।
ଶଶାଙ୍କାର୍ଦ୍ଧ—ପୁଂ. ବି. ଅର୍ଦ୍ଧଚନ୍ଦ୍ର,ଶିବ ।
ଶଶାଙ୍କୋପଳ—ପୁଂ. ବି.ଚନ୍ଦ୍ରକାନ୍ତମଣି ।
ଶଶାଣ୍ଡୁଳ-ସ୍ତ୍ରୀ.ବି.ପ୍ରସିଦ୍ଧ ଫଳଶାକବିଶେଷ, କାକୁଡ଼ି, କଣ୍ଟିଆଳ କାକୁଡ଼ି ।
ଶଶାଦ—ପୁଂ. ବି. (ଶଶ୍+ଅଦ୍+କ.ଅ) ଶ୍ୟେନପକ୍ଷୀ, ଛଞ୍ଚାଣ,ଇକ୍ଷ୍ୱାକୁଙ୍କ ପୁତ୍ର ।
ଶଶାଦନ—ପୁଂ. ବି. (ଶଶ୍+ଅଦ୍+କ. ଅନ) ଶ୍ୟେନପକ୍ଷୀ, ବାଜପକ୍ଷୀ,ଛଞ୍ଚାଣ ।
ଶଶିକର—ବି. (୬ତତ୍)ଜ୍ୟୋତ୍ସ୍ନା,ଚନ୍ଦ୍ର-କିରଣ ।
ଶଶିକରାଲୋକିତ—ବିଂ. (୩ତତ୍)ଚନ୍ଦ୍ର-କିରଣଦ୍ୱାରା ଆଲୋକିତ ବା ଉଜ୍ଜ୍ୱଳ ହୋଇଥିବା ।
ଶଶିକଳା—ସ୍ତ୍ରୀ. ବି. (୬ତତ୍) ଚନ୍ଦ୍ରକଳା, ଚନ୍ଦ୍ରଙ୍କର ଅଂଶ ୧୫ଗୋଟି, ପଞ୍ଚଦଶା-କ୍ଷର ସଂସ୍କୃତ ଛନ୍ଦୋବିଶେଷ ।
ଶଶିକାନ୍ତ—ବି. (ବ.ବ୍ରୀ) କୁମୁଦ, କଇଁ, ଚନ୍ଦ୍ରକାନ୍ତମଣି ।

ଶଶିକେତୁ—ପୁଂ. ବି. ବୁଦ୍ଧଭେଦ ।
ଶଶିକୋଟି—ବି. (୬ତତ୍) ଖଣ୍ଡଚନ୍ଦ୍ରର ଦୁଇଟି ଅଗ୍ର ବା ଶୃଙ୍ଗ ।
ଶଶିଖଣ୍ଡ—ବି. ଶିବ, ବିଦ୍ୟାଧରଭେଦ, ଚନ୍ଦ୍ରର କଳା, ଚନ୍ଦ୍ରର ଅଂଶ ।
ଶଶିଗୁହ୍ୟା—ସ୍ତ୍ରୀ.ବି.ଯଷ୍ଟିମଧୁ, ଯାଠିମଧୁ ।
ଶଶିଗ୍ରହ—ପୁଂ.ବି. ଚନ୍ଦ୍ରଗ୍ରହ ।
ଶଶିଜ—ପୁଂ. ବି. ( ଶଶି+ଜନ୍+ଅ ) ବୁଧଗ୍ରହ । [ ଔଷଧି ।
ଶଶିଖାଦନ—ବି. (ବ.ବ୍ରୀ) କୁମୁଦ,କଇଁ,
ଶଶିଠାର—ଗ୍ରା.ବି. ଓଡ଼ିଆର ଏକପ୍ରକାର ଠାର । [ଚନ୍ଦ୍ର ପୁତ୍ର ।
ଶଶିତନୟ—ପୁଂ. ବି. ( ୬ତତ୍ ) ବୁଧ,
ଶଶିଦେବ—ପୁଂ.ବି. ରନ୍ତିଦେବ ରାଜା ।
ଶଶିଦୈବ—କ୍ଳୀ.ବି. (ବ.ବ୍ରୀ) ମୃଗଶିରା-ନକ୍ଷତ୍ର ।
ଶଶିଧର—ପୁଂ.ବି. ଶିବ ।
ଶଶିପୁତ୍ର—ପୁଂ.ବି. (୬ତତ୍) ବୁଧ ।
ଶଶିପ୍ରଭ—କ୍ଳୀ.ବି. (ଶଶିନ୍+ପ୍ରଭା)କୁମୁଦ, କଇଁ, ମୁକ୍ତା, ଚନ୍ଦ୍ରକାନ୍ତମଣି, (ବିଂ) ଚନ୍ଦ୍ରଙ୍କପରି ଦୀପ୍ତିମାନ୍,ଚନ୍ଦ୍ରକିରଣସଦୃଶ ଶୁଭ୍ରବର୍ଣ୍ଣବିଶିଷ୍ଟ, (ସ୍ତ୍ରୀ) ଶଶିପ୍ରଭା ।
ଶଶିପ୍ରଭା—ସ୍ତ୍ରୀ.ବି. (୬ତତ୍) ଜ୍ୟୋତ୍ସ୍ନା, ଚନ୍ଦ୍ରକିରଣ, (ବ.ବ୍ରୀ)କୁମୁଦ, କଇଁ ।
ଶଶିପ୍ରିୟା—ସ୍ତ୍ରୀ. ବି. ୨୭ଟି ନକ୍ଷତ୍ର,୨୭ଟି ନକ୍ଷତ୍ର ଚନ୍ଦ୍ରଙ୍କ ପତ୍ନୀ ।
ଶଶିଭାଲ—ବି. (ବ.ବ୍ରୀ) ମହାଦେବ, (ପୁଂ.ବିଂ)ଯାହାଙ୍କ ଭାଲରେ ଚନ୍ଦ୍ର ଅଛି, (ସ୍ତ୍ରୀ) ଶଶିଭାଲା ।
ଶଶିଭାଲନୀ—ସ୍ତ୍ରୀ.ବିଂ. (ଶଶିନ୍+ଭାଲ+ଇନ୍+ଈ) ଯାହାଙ୍କ ଲଲାଟରେ ଚନ୍ଦ୍ର-ଅଛି, (ବି) ଦୁର୍ଗା ।
ଶଶିଭାଲୀ—ପୁଂ.ବି(ଶଶିନ୍+ଭାଲ+ଇନ୍) ଶିବ, ମହାଦେବ, (ପୁଂ.ବିଂ) ଯାହାଙ୍କ ମସ୍ତକରେ ଚନ୍ଦ୍ର ଅଛି ।
ଶଶିଭୂଷଣ—ପୁଂ.ବି. (ବ.ବ୍ରୀ)ଶିବ, ଚନ୍ଦ୍ର-ଚୂଡ଼, ( ପୁଂ.ବିଂ-ବ.ବ୍ରୀ ) ଚନ୍ଦ୍ର ଯାହା-ଙ୍କର ଅଳଙ୍କାର, (ସ୍ତ୍ରୀ) ଶଶିଭୂଷଣା ।
ଶଶିଭୃତ୍—ପୁଂ.ବି.(ଶଶିନ୍+ଭୃ+କ୍ୱିପ୍) ଶିବ, ମହାଦେବ, (ବିଂ) ଶଶିଭୂଷଣ ଦେଖ ।
ଶଶିମଣି—ପୁଂ. ବି. ଚନ୍ଦ୍ରକାନ୍ତମଣି ।
ଶଶିମଣ୍ଡଳ—ବି. (୬ତତ୍) ଚନ୍ଦ୍ରମଣ୍ଡଳ ।
ଶଶିମାନ୍—ପୁଂ.ବିଂ(ଶଶିନ୍+ମତ୍)ଚନ୍ଦ୍ର-ଯୁକ୍ତ । [ ଚନ୍ଦ୍ରବଦନା ।
ଶଶିମୁଖୀ—ସ୍ତ୍ରୀ.ବିଂ.(ଶଶିନ୍+ମୁଖ+ଈ)
ଶଶିମୌଳି—ପୁଂ. ବି. (ବ.ବ୍ରୀ)ଶିବ ।
ଶଶିରେଖା—ସ୍ତ୍ରୀ. ବି. ଶଶାଙ୍କ ରେଖା ଦେଖ, ଉପେନ୍ଦ୍ରଭଞ୍ଜଙ୍କ ଅପ୍ରକାଶିତ କ୍ଷୁଦ୍ର କାବ୍ୟ ଓ ତହିଁର ନାୟିକା, ବାଙ୍କିର ରାଜା ପଦ୍ମନାଭ ହରିଚନ୍ଦନଙ୍କ ପ୍ରଣୀତ କାବ୍ୟ ଓ ତଦ୍ବର୍ଣ୍ଣିତ ନାୟିକାର ନାମ ।
ଶଶିଲେଖା-ସ୍ତ୍ରୀ.ବି.ଶଶାଙ୍କ ରେଖା ଦେଖ, ବାକୁଚୀ, ଗୁଳୁଚୀ,ଛନ୍ଦୋବିଶେଷ ।
ଶଶିବଂଶ—ପୁଂ. ବି. ଚନ୍ଦ୍ରବଂଶ ।
ଶଶିବଦନ—ପୁଂ. ବିଂ. (ବ.ବ୍ରୀ) ଚନ୍ଦ୍ରଙ୍କୁ ଦେଖିଲା ପରି ଯାହା ମୁହଁ ଦେଖିଲେ ଆନନ୍ଦ ଆସେ, ସୁନ୍ଦର ମୁଖବିଶିଷ୍ଟ ।
ଶଶିବଦନା—ସ୍ତ୍ରୀ.ବିଂ. (ବ.ବ୍ରୀ)ଶଶିମୁଖୀ, ଚନ୍ଦ୍ରାନନା, (ସ୍ତ୍ରୀ.ବି) ଛନ୍ଦୋଭେଦ ।
ଶଶିବାଟିକା—ସ୍ତ୍ରୀ.ବି.ପୁନର୍ନବା,ପୁରୁଣୀ ।
ଶଶିବିମଳ—ତ୍ରି.ବିଂ.ଚନ୍ଦ୍ରତୁଲ୍ୟ ନିର୍ମଳ ।
ଶଶିଶିଖାମଣି—ପୁଂ. ବି. ଶିବ ।
ଶଶିଶେଖର—ପୁଂ. ବି. (ବ.ବ୍ରୀ) ଶିବ, ମହାଦେବ ।
ଶଶିସେଣା—ଗ୍ରା.ବି.ଓଡ଼ିଆ କବି ପ୍ରତାପ-ରାଜଙ୍କ ପ୍ରଣୀତ କାବ୍ୟ ଓ ତାହାର ନାୟିକାର ନାମ ।
ଶଶିସୁତ—ପୁଂ. ବି. ଚନ୍ଦ୍ରପୁତ୍ର, ବୁଧ ।
ଶଶୀ—ପୁଂ. ବି. (ଶଶ+ଇନ୍) ଶଶାଙ୍କ, ଚନ୍ଦ୍ର, କର୍ପୂର ।
ଶଶୀଶ—ପୁଂ ବି. ଶିବ, କାର୍ତ୍ତିକେୟ ।
ଶଶୁର—ଗ୍ରା.ପୁଂ.ବି. (ସଂ-ଶ୍ୱଶୁର)ଅପଣା ସ୍ୱାମୀ ବା ସ୍ତ୍ରୀଙ୍କର ପିତା ।
ଶଶୋର୍ଣ୍ଣ-କ୍ଳୀ.ବି(୬ତତ୍)ଠେକୁଆଲୋମ ।
ଶଶୋଲକମୁଖୀ—ସ୍ତ୍ରୀ. ବି. ସ୍କନ୍ଦାନୁଚର ମାତୃଭେଦ ।

ଶଶ୍ୱତ୍—ଅ.(ଶଶ୍+କ.ବତ୍) ପୁନଃପୁନଃ, ବାରମ୍ବାର, ସର୍ବଦା, ଚିରସ୍ଥାୟୀଭାବରେ ।
ଶଷ୍କଣ୍ଡୀ—ସ୍ତ୍ରୀ. ବି. ବୃକ୍ଷବିଶେଷ, ଉକ୍ତ ବୃକ୍ଷର ଫଳ ।
ଶଷ୍କୁ(ଷ୍କୂ)ଳ—ବି. (ଶଷ(ସ)+କ.କୁଳ) ଶୋଉଳମାଛ, ଶାଳୁକ ମାଛ, ବୃକ୍ଷବିଶେଷ, କରଞ୍ଜ, ଚକୁଳିପିଠା, କର୍ଣ୍ଣର ଛିଦ୍ର ।
ଶଷ୍କୁ(ଷ୍କୂ)ଳା—ବି(ଶଷ(ସ)+କୁଳ+ଆ) ତଣ୍ଡୁଳାଦି ମିଶ୍ରିତ ଯବାଗୁ ।
ଶଷ୍କୁ(ଷ୍କୂ)ଲୀ—ବି.(ଶଷ୍କୁଳ+ଈ) କର୍ଣ୍ଣରନ୍ଧ୍ର, ଲୁଚି, ଚକୁଳିପିଠା, ଶାଳମାଛ, ଶଷ୍କୁଲା ଦେଖ ।
ଶଷ୍କୁ(ଷ୍କୂ)ଲୀ—ବି. ଶଷ୍କୁଲୀ ଦେଖ ।
ଶଷ୍ପ(ଷ୍ପ)—କ୍ଲୀ.ବି. (ଶଷ୍+ମି.ପ) କଅଁଳ ଘାସ, ନାଳ ଦୁବ, ବୁଦ୍ଧିର ନାଶ, ବିଶ୍ୱାସହାନି, ପ୍ରତିଭାର ନାଶ ।
ଶଷ୍ପ(ଷ୍ପ)ଭୁକ୍—ପୁଂ. ବି. (ଶଷ୍ପ+ଭୁଜ୍+କ୍ୱିପ୍) ବାଳତୃଣ ଭକ୍ଷଣକାରୀ ।
ଶଷ୍ପ(ଷ୍ପ)ଭୋଜନ—ପୁଂ. ବି. ତୃଣଭକ୍ଷଣ ।
ଶଷ୍ପ(ଷ୍ପ)ଶଯ୍ୟା—ବି. (କ.ଧା) କଅଁଳ ଘାସରେ ରଚିତ ଶେଯ ବା ବିଛଣା ।
ଶଷ୍ପ(ଷ୍ପ)ଶ୍ୟାମ—ବିଂ. ଘାସ ଯୋଗୁଁ ଶାଗୁଆ ବର୍ଣ୍ଣ ଦେଖାଯାଉଥିବା ଭୂମି ।
ଶଷ୍ପ(ଷ୍ପ)ସମନ୍ୱିତ—ବିଂ. (୩ତତ୍) ନବତୃଣଦ୍ୱାରା ଆଚ୍ଛାଦିତ (ସ୍ଥାନ) ।
ଶସ—ଗ୍ରା.ବି. (ସଂ-ଶସ୍ୟ) ମଞ୍ଜି ଭିତରର କୋମଳ ଦ୍ରବ୍ୟ ।
ଶସନ—କ୍ଲୀ. ବି. (ଶସ+ଭା.ଅନ) ଯଜ୍ଞ ନିମନ୍ତେ ପଶୁହତ୍ୟା, ମାରଣ, ବଧ, ବିନାଶ. (ଅଧି.ଅନ) ପଶୁଙ୍କ ବଳିଦାନ ସ୍ଥାନ ।
ଶସ୍ତ—କ୍ଲୀ.ବି. (ଶନ୍ସ୍+ମି.ତ) ସୁଖ, କଲ୍ୟାଣ, ଦେହ, ଶରୀର, (ବିଂ) ସୁଖୀ, ଆନନ୍ଦିତ, କଲ୍ୟାଣଯୁକ୍ତ, ପ୍ରଶସ୍ତ, ସ୍ତୁତ, ଉତ୍କୃଷ୍ଟ । [ ଦସ୍ତାନା ।
ଶସ୍ତକ—କ୍ଲୀ.ବି. (ଶସ୍ତ+କ) ଅଙ୍ଗୁଳିତ୍ର,
ଶସ୍ତକେଶକ—ବିଂ. (ବ.ବ୍ରୀ) ପ୍ରଶସ୍ତ କେଶଯୁକ୍ତ ।
ଶସ୍ତା—ଗ୍ରା.ବିଂ. (ସଂ-ଶସ୍ତ) ସୁଲଭମୂଲ୍ୟ, ସୁଲଭ, (ବି) ସୁଲଭ ମୂଲ୍ୟ ।

ଶସ୍ତି—ବି. (ଶନ୍ସ୍+ଭା.ତି) ପ୍ରଶଂସା, ସ୍ତୁତି ।
ଶସ୍ତ୍ର—କ୍ଲୀ.ବି. (ଶସ୍+ଣ.ତ୍ର) ଲୌହ, ବଢ଼େଇ କମାରଆଦିଙ୍କ ଯନ୍ତ୍ର ବା ହତିଆର, ପ୍ରହରଣ, ଆୟୁଧ, ଖଡ୍ଗାଦି ।
ଶସ୍ତ୍ରକ—କ୍ଲୀ.ବି.(ଶସ୍ତ୍ର+କ) ଲୌହ, ଲୁହା ।
ଶସ୍ତ୍ରକର୍ମ—କ୍ଲୀ.ବି.ଚିକିତ୍ସାର୍ଥ ସୁଶ୍ରୁତୋକ୍ତ ଆଠପ୍ରକାର ଶସ୍ତ୍ରସଂସ୍କାର
ଶସ୍ତ୍ରକଳ—ପୁଂ.ବି. ଶସ୍ତ୍ରଯୁକ୍ତ ।
ଶସ୍ତ୍ରକାରକ—ବିଂ. ଯେଉଁ ଲୋକ ଶସ୍ତ୍ର ନିର୍ମାଣ କରେ, ଶସ୍ତ୍ରନିର୍ମାତା ।
ଶସ୍ତ୍ରକୋଷତରୁ—ବି. ମହାପିଣ୍ଡୀବୃକ୍ଷ ।
ଶସ୍ତ୍ରକ୍ଷତ—ବି. ଶସ୍ତ୍ରାଘାତଯୋଗୁଁ କ୍ଷତ ।
ଶସ୍ତ୍ରଗୃହ—ବି. (କ.ଧା) ବହୁ ଶସ୍ତ୍ର ଥିବା ଘର ।
ଶସ୍ତ୍ରଗ୍ରହଣ—ବି. (୬ତତ୍) ଯୁଦ୍ଧାର୍ଥ ଶସ୍ତ୍ରକୁ ହାତରେ ଧରିବା ।
ଶସ୍ତ୍ରଗ୍ରାହକ—ପୁଂ.ବିଂ. ଯେ ଯୁଦ୍ଧାର୍ଥ ଶସ୍ତ୍ର ଧରେ, (ସ୍ତ୍ରୀ) ଶସ୍ତ୍ରଗ୍ରାହିକା ।
ଶସ୍ତ୍ରଗ୍ରାହୀ—ପୁଂ.ବିଂ. ଶସ୍ତ୍ରଗ୍ରାହକ ଦେଖ, (ସ୍ତ୍ରୀ) ଶସ୍ତ୍ରଗ୍ରାହିଣୀ ।
ଶସ୍ତ୍ରଚାଳନ(ନା)—ବି. (୬ତତ୍) ଯୁଦ୍ଧାର୍ଥ ଶସ୍ତ୍ରକୁ ପ୍ରୟୋଗ କରିବା ।
ଶସ୍ତ୍ରଜୀବୀ—ପୁଂ.ବିଂ. (ଶସ୍ତ୍ର+ଜୀବ୍+ଇନ୍) ଯେଉଁ ବ୍ୟକ୍ତି ଶସ୍ତ୍ର ବ୍ୟବହାର କରି ଜୀବିକା ନିର୍ବାହ କରେ, ଶସ୍ତ୍ର ବ୍ୟବସାୟୀ
ଶସ୍ତ୍ରତ୍ୟାଗ—ବି.(୬ତତ୍) ଯୁଦ୍ଧରୁ ବିରତ ହେବାପାଇଁ ଶସ୍ତ୍ରକୁ ପରିତ୍ୟାଗ କରିବା
ଶସ୍ତ୍ରତ୍ୟାଗୀ—ପୁଂ.ବିଂ. ଶସ୍ତ୍ର ତ୍ୟାଗ କରୁଥିବା (ବ୍ୟକ୍ତି), (ସ୍ତ୍ରୀ) ଶସ୍ତ୍ରତ୍ୟାଗିନୀ ।
ଶସ୍ତ୍ରଧର—ପୁଂ.ବିଂ. ଶସ୍ତ୍ରଧାରକ ଦେଖ, (ବି) ସୈନିକ, ସିପାହି ।
ଶସ୍ତ୍ରଧାରକ—ପୁଂ. ବିଂ.ଶସ୍ତ୍ରଦ୍ୱାରା ସଜ୍ଜିତ, ଯେ ହାତରେ ହତିଆର ଧରିଥାଏ, (ସ୍ତ୍ରୀ) ଶସ୍ତ୍ରଧାରିକା ।
ଶସ୍ତ୍ରଧାରଣ—କ୍ଲୀ.ବି. (୬ତତ୍) ଯୁଦ୍ଧାର୍ଥ ଶସ୍ତ୍ରକୁ ଧରିବା ।
ଶସ୍ତ୍ରଧାରୀ—ପୁଂ. ବିଂ. (ଶସ୍ତ୍ର+ଧୃ+କ. ଇନ୍) ଆୟୁଧଧାରୀ, ଶସ୍ତ୍ରଧାରଣକାରୀ, (ସ୍ତ୍ରୀ) ଶସ୍ତ୍ରଧାରିଣୀ ।

ଶସ୍ତ୍ରପାଣି-ପୁଂ.ବିଂ. (ବ.ବ୍ରୀ) ଯେ ହାତରେ ଶସ୍ତ୍ର ଧରିଥାଏ ।
ଶସ୍ତ୍ରପ୍ରୟୋଗ—ବି.(୬ତତ୍) ଯୁଦ୍ଧାର୍ଥ ବିପକ୍ଷ ବିରୁଦ୍ଧରେ ଅସ୍ତ୍ରର ବ୍ୟବହାର, ଚିକିତ୍ସାର୍ଥ ରୋଗୀ ଦେହରେ ଶସ୍ତ୍ର ଚଳାଇବା
ଶସ୍ତ୍ରପ୍ରହାର—ପୁଂ. ବି. ଖଡ୍ଗାଦି ଶସ୍ତ୍ରର ଆଘାତ ।
ଶସ୍ତ୍ରଭୃତ୍—ବିଂ. (ଶସ୍ତ୍ର+ଭୃ+କ୍ୱିପ୍) ଶସ୍ତ୍ରଧାରୀ, ଆୟୁଧଧାରୀ ।
ଶସ୍ତ୍ରମାର୍ଜ(କ)—ପୁଂ. ବି. (ଶସ୍ତ୍ର+ମୃଜ୍+କ.ଅ) ଶସ୍ତ୍ରକୁ ମାଜି ସଫା କରିବା ବ୍ୟକ୍ତି, ଶସ୍ତ୍ରମାର୍ଜନକର୍ତ୍ତା ।
ଶସ୍ତ୍ରମାର୍ଜନ—ବି. (୬ତତ୍) ଶସ୍ତ୍ରକୁ ମାଜି ସଫାକରିବା ।
ଶସ୍ତ୍ରବଦ୍ଧ—ବିଂ.(୩ତତ୍) ଶସ୍ତ୍ରଦ୍ୱାରା ଆହତ
ଶସ୍ତ୍ରବିଜ୍ଞାନ—ବି. ଯୁଦ୍ଧାର୍ଥ ଶସ୍ତ୍ରଚାଳନ ବିଦ୍ୟା, ଚିକିତ୍ସାର୍ଥ ଶସ୍ତ୍ରପ୍ରୟୋଗ ବିଦ୍ୟା ।
ଶସ୍ତ୍ରବିନ୍ଦୁ—ବି. (ବୈଦ୍ୟକ) କ୍ଷୁଦ୍ର ଗୁଳ୍ମବିଶେଷ । [ ଜୀବିକା ।
ଶସ୍ତ୍ରବୃତ୍ତି—ବିଂ. (ବ.ବ୍ରୀ) ଶସ୍ତ୍ର ଯାହାର
ଶସ୍ତ୍ରସାଧନ-ବି.ଶସ୍ତ୍ରାଭ୍ୟାସ, ଶସ୍ତ୍ର ବିଦ୍ୟାରେ ସିଦ୍ଧିଲାଭ । [ ମୃତ ।
ଶସ୍ତ୍ରହତ—ବିଂ. (୩ତତ୍) ଶସ୍ତ୍ରାଘାତଦ୍ୱାରା
ଶସ୍ତ୍ରହତଚତୁର୍ଦ୍ଦଶୀ—ବି. ଗୌଣ ଆଶ୍ୱିନ କୃଷ୍ଣା ଚତୁର୍ଦ୍ଦଶୀ ଓ ଗୌଣ କାର୍ତ୍ତିକ କୃଷ୍ଣା ଚତୁର୍ଦ୍ଦଶୀ । [ ଦେଖ ।
ଶସ୍ତ୍ରହସ୍ତ—ପୁଂ.ବିଂ. (ବ.ବ୍ରୀ) ଶସ୍ତ୍ରପାଣି
ଶସ୍ତ୍ରାଗାର—ବି. (୬ତତ୍) ଶସ୍ତ୍ରଶାଳା ।
ଶସ୍ତ୍ରାଘାତ-ବି.(୩ତତ୍)ଶସ୍ତ୍ରଦ୍ୱାରା ପ୍ରହାର ।
ଶସ୍ତ୍ରାଙ୍ଗା—ସ୍ତ୍ରୀ.ବି. ଅମ୍ଳଲୋଣିଶାଗ ।
ଶସ୍ତ୍ରାଜୀବ—ପୁଂ.ବିଂ. (ଶସ୍ତ୍ର+ଆ+ଜୀବ+ଅ) ଶସ୍ତ୍ରଜୀବୀ ଦେଖ । [ ଶିକ୍ଷା ।
ଶସ୍ତ୍ରାଭ୍ୟାସ—ପୁଂ.ବି. ଅସ୍ତ୍ରଶିକ୍ଷା, ଯୁଦ୍ଧବିଦ୍ୟା
ଶସ୍ତ୍ରାଭ୍ୟାସୀ—ପୁଂ. ବିଂ. ଶସ୍ତ୍ର ପରିଚାଳନ କରୁଥିବା ବ୍ୟକ୍ତି, (ସ୍ତ୍ରୀ) ଶସ୍ତ୍ରାଭ୍ୟାସିନୀ ।
ଶସ୍ତ୍ରାୟସ—କ୍ଲୀ.ବି. (କ.ଧା) ଲୌହ, ଯେଉଁ ଉତ୍କୃଷ୍ଟ ଲୌହରେ ଶସ୍ତ୍ର ନିର୍ମିତ ହୁଏ ।

**ଶସ୍ତ୍ରାୟୁଧ**—ବିଂ (ବ.ବ୍ରୀ) ଶସ୍ତ୍ରଧାରୀ, ଶସ୍ତ୍ରବିଶିଷ୍ଟ ।

**ଶସ୍ତ୍ରାସ୍ତ୍ର**—ବି. ଶତ୍ରୁ ଦେହରେ ଲଗାଇବାର ଓ ଦୂରରୁ ଫୋପାଡ଼ିବାର ହତିଆର ମାନ ।

**ଶସ୍ତ୍ରାହତ**—ପୁଂ.ବିଂ. (୩ ତତ୍) ଶସ୍ତ୍ରଦ୍ୱାରା ଆଘାତପ୍ରାପ୍ତ, (ସ୍ତ୍ରୀ) ଶସ୍ତ୍ରାହତା ।

**ଶସ୍ତ୍ରୀ**—ପୁଂ.ବିଂ. (ଶସ୍ତ୍ର + ଇନ୍)ଶସ୍ତ୍ରଧାରୀ, (ସ୍ତ୍ରୀ) ଶସ୍ତ୍ରିଣୀ, (ସ୍ତ୍ରୀ.ବି -ଶସ୍ତ୍ର + ଈ) ଛୁରୀ ।

**ଶସ୍ତ୍ରୋତ୍ଥାପନ**--ବି.ହତିଆର ଉଞ୍ଚେଇବା ।

**ଶସ୍ତ୍ରୋପଜୀବୀ**—ପୁଂ. ବିଂ.ଶସ୍ତ୍ରାଜୀବ ଦେଖ, (ସ୍ତ୍ରୀ) ଜୀବନୀ ।

**ଶସ୍ପ**—ବି. ଶଷ୍ପ ଇତ୍ୟାଦି ଦେଖ ।

**ଶସ୍ୟ**—ବି. ( ଶସ୍ + ର୍ମ.ଯ ) କୃଷିକର୍ମ ଦ୍ୱାରା ଉତ୍ପନ୍ନ ଫସଲ,ବୃକ୍ଷ ଓ ଲତାଦିର ଫଳ, ଫଳର ସାରାଂଶ, ସଦ୍‌ଗୁଣ, ଘରତଳର ଦାନ,ନୂତନ ଘାସ,(ବିଂ-ଶଂସ୍ + ର୍ମ.ଯ) ପ୍ରଶସ୍ୟ, ପ୍ରଶଂସାର୍ହ, (ସ୍ତ୍ରୀ) ଶସ୍ୟା ।

**ଶସ୍ୟକ**—ବି. ଏକପ୍ରକାର ରତ୍ନ ।

**ଶସ୍ୟକୂଳ**—ବି. ଶସ୍ୟସମୂହ ।

**ଶସ୍ୟକ୍ଷେତ୍ର**—ବି. ଫସଲ ହୋଇଥିବା ଜମି, ଶସ୍ୟୋତ୍ପାଦିକା ଭୂମି ।

**ଶସ୍ୟଘ୍ନୀ**—ସ୍ତ୍ରୀ. ବି. (ଶସ୍ୟ+ହନ୍ + କ. ଅ + ଈ) ଗୈରପୁଷ୍ପୀ, ଗୁଗୁଚିଆ ।

**ଶସ୍ୟଜନକ**—ବିଂ. (ଶସ୍ୟ+ଜନ + କ. ଅକ) ଶସ୍ୟୋତ୍ପାଦକ, ଯେଉଁ ଭୂମି ବା ଯାହା ଫସଲଉତ୍ପାଦନ କରେ ।

**ଶସ୍ୟଧ୍ୱଂସ**—ବି.(୬ତତ୍)ଫସଲର କ୍ଷୟ ।

**ଶସ୍ୟଧ୍ୱଂସକ**—ବି ଓ ବିଂ. ଧାନ୍ୟାଦି ଫସଲର କ୍ଷୟକାରୀ, ଯେ ଫସଲ ନାଶକରେ, (ସ୍ତ୍ରୀ) ଶସ୍ୟଧ୍ୱଂସିକା ।

**ଶସ୍ୟଧ୍ୱଂସୀ**--ପୁଂ.ବିଂ.ଶସ୍ୟଧ୍ୱଂସକ ଦେଖ, (ସ୍ତ୍ରୀ) ଶସ୍ୟଧ୍ୱଂସିନୀ, (ବି)ଉଦୁମ୍ବରଗଛ, ଡୁମ୍ବୁରି ବୃକ୍ଷ । [ ଶସ୍ୟରୁ ଜାତ ।

**ଶସ୍ୟନିମିତ୍ତକ**—ବି.(ଶସ୍ୟ + ନିମିତ୍ତ+କ)

**ଶସ୍ୟବୃଦ୍ଧି**—ବି.(୬ତତ୍)ଫସଲର ବୃଦ୍ଧି ।

**ଶସ୍ୟଭକ୍ଷକ**—ବିଂ.ଯେଉଁ ଜୀବ ଶସ୍ୟ ଖାଇ ପ୍ରାଣଧାରଣ କରେ । [ ବା କେଣ୍ଡା ।

**ଶସ୍ୟମଞ୍ଜରୀ**—ସ୍ତ୍ରୀ.ବି. ଧାନପ୍ରଭୃତିର ଶିଷା

**ଶସ୍ୟରକ୍ଷଣ**—ବି.(୬ତତ୍)ଧାନ୍ୟାଦି ଫସଲକୁ (ମରୁଡ଼ି,ରୋଗ ଓ ବନ୍ୟଜନ୍ତୁଙ୍କ କର୍ତ୍ତୃକ) ଧ୍ୱଂସରୁ ରକ୍ଷାକରିବା ।

**ଶସ୍ୟଳ**—ପୁଂ. ବିଂ. (ଶସ୍ୟ + ଲା + କ.ଅ) ଶସ୍ୟପୂର୍ଣ୍ଣ, ଶସ୍ୟଶାଳୀ, (ସ୍ତ୍ରୀ)ଶସ୍ୟଳା ।

**ଶସ୍ୟଶାଳା**—ବି.ଶସ୍ୟାଗାର,ଅମାର, ଖଳା

**ଶସ୍ୟଶାଳୀ**—ବିଂ. ( ଶସ୍ୟ+ଶାଳିନ୍ ) ଧାନ୍ୟାଦି ଶସ୍ୟରେ ପରିପୂର୍ଣ୍ଣ,(ସ୍ତ୍ରୀ)ଶସ୍ୟଶାଳିନୀ ।

**ଶସ୍ୟଶୂକ**—କ୍ଳୀ. ବି. ଧାନ୍ୟାଦିଫସଲର ଶୁଙ୍କ, ଶସ୍ୟର ତୀକ୍ଷ୍ଣ ଅଗ୍ର ।

**ଶସ୍ୟଶ୍ୟାମଳ**—ପୁଂ. ବିଂ. (୩ତତ୍)ଶସ୍ୟ ଯୋଗୁଁ ଶାଗୁଆବର୍ଣ୍ଣ ଦେଖାଯାଉଥିବା (ଭୂମି) ।

**ଶସ୍ୟସଂଗ୍ରହ**—ବି. (୬ତତ୍) ଫସଲକୁ ଆଣି ଅମଳ କରିବା ।

**ଶସ୍ୟସଂଗ୍ରାହକ**—ବି.ବିଂ. ପାଚିଥିବା ଧାନ ଆଦି ଫସଲକୁ ଅମଳ କରିବା ବ୍ୟକ୍ତି, (ସ୍ତ୍ରୀ) ଶସ୍ୟସଂଗ୍ରାହିକା ।

**ଶସ୍ୟସଂସ୍ଥାନ**—ବି. କ୍ଷେତ୍ରରୁ ଧାନଆଦି ଫସଲକୁ ଅମଳ କରି ଅମାରରେ ସାଇତିବା ।

**ଶସ୍ୟସଂସ୍ଥାପକ**—ପୁଂ.ବି. ବିଂ. ବଡ଼ଚାଷୀ, ଯେ ଧାନଆଦି ଜମାକରି ରଖେ ।

**ଶସ୍ୟସମ୍ବର**—ପୁଂ. ବି. (ଶସ୍ୟ+ସମ୍+ ବୃ+କ.ଅ) ବୃକ୍ଷବିଶେଷ, ଶାଳବୃକ୍ଷ, ଅଶ୍ୱକର୍ଣ୍ଣ ନାମକ ଲତାଶାଳ ।

**ଶସ୍ୟସମ୍ଭାର**—ବି. (୬ତତ୍) ଶସ୍ୟରାଶି, ପ୍ରଚୁର ଶସ୍ୟ ।

**ଶସ୍ୟାଗାର**—ବି. (୬ତତ୍) ଅମାର ।

**ଶସ୍ୟାଦ୍**—ତ୍ରି.ବିଂ.(ଶସ୍ୟ+ଅଦ୍+କ୍ୱିପ୍) ଶସ୍ୟଭକ୍ଷକ, ଶସ୍ୟ ଭୋଜନକାରୀ ।

**ଶସ୍ୟାଧାର**—ବି. (୬ତତ୍) ଶସ୍ୟ ରଖିବା ପାତ୍ର, ବୋଝ ଡୋଲିଆଦି ।

**ଶସ୍ୟାରୁ**—ପୁଂ. ବି. କ୍ଷୁଦ୍ର ଶମୀବୃକ୍ଷ ।

**ଶସ୍ତ୍ର**—ଗ୍ରା. ବି. (ସଂ-ଶସ୍ତ୍ର) ଶସ୍ତ୍ରଦେଖ ।

**ଶହ**—ଗ୍ରା.ବି.ବିଂ. (ସଂ-ଶତ) ଶତସଂଖ୍ୟା, ଶହେ. ଶତସଂଖ୍ୟକ, ବହୁ, ଅନେକ, (ପ୍ରା. ପୃଷ୍ଠା. ବି) ନଡ଼ିଆର ଗଣତିର ପରିମାଣବିଶେଷ,ତିନି ଏକ ବାରଗଣ୍ଡା ।

**ଶହକ**—ଗ୍ରା.ବି.ବିଂ. (ସଂ-ଶତକ) ଏକଶତ ମାତ୍ର ।

**ଶହକେ**—ଗ୍ରା.କ୍ରି.ବିଂ.ଶତସଂଖ୍ୟା ମଧ୍ୟରେ, ଅନେକଙ୍କ ମଧ୍ୟରେ ।

**ଶହର**—ଗ୍ରା. ବି. (ସଂ-ଶବର) ପାର୍ବତ୍ୟ ଅନାର୍ଯ୍ୟ ଅସଭ୍ୟ ବ୍ୟାଧଜାତିବିଶେଷ ।

**ଶହରୁଣୀ**—ଗ୍ରା.ସ୍ତ୍ରୀ.ବି(ସଂ-ଶବରୀ)ଶବରପତ୍ନୀ, ଶହର ଜାତୀୟା ସ୍ତ୍ରୀ ।

**ଶହଲ**—ଗ୍ରା.ବି. (ସଂ-ଶଲ୍ୟ)ଶଲ ଦେଖ, (ଗ୍ରା.ବି.ବିଂ) ଶସ୍ତା ଦେଖ ।

**ଶହେ**—ଗ୍ରା.ବି.ବିଂ. ଏକଶତ ।

**ଶାଇଁ**—ଗ୍ରା.ବି.(ସଂ-ଶମୀ)ଶମୀବୃକ୍ଷ, ବୁଢ଼ା ମୂଳାର ମଝିରେ ଥିବା ଚମଡ଼ା ତନ୍ତୁ ।

**ଶାଉଁଳା**—ଗ୍ରା.ବିଂ.ଶ୍ୟାମଳ ବର୍ଣ୍ଣବିଶିଷ୍ଟ ।

**ଶାକ**—ବି.(ଶକ + ଣ.ଅ)ଶାଗ, ବ୍ୟଞ୍ଜନ ରୂପେ ବ୍ୟବହୃତ ବୃକ୍ଷାଦିର ଫଳ, ଫୁଲ, ବୃନ୍ତ, ମୂଳ ପତ୍ରାଦି, ନିରାମିଷ ତରକାରି, ଭାରତର ରାଜବଂଶବିଶେଷ, (ଶକ+ଅ) ଶାକଦ୍ୱୀପ, ଆର୍ଯ୍ୟାବର୍ତ୍ତର ଅନ୍ତର୍ଗତ ୬ଷ୍ଠ ଦ୍ୱୀପ, ସାଗୁଆନଗଛ, ସମ୍ବତ୍ସର, ଶକାବ୍ଦ, ଶାଳିବାହାନାବ୍ଦ, ଭୂର୍ଜବୃକ୍ଷ, ଶିରୀଷବୃକ୍ଷ, ଶକ୍ତି,ବଳ,(ବିଂ. ଶକ + ଅ) ଶକସମ୍ବନ୍ଧୀୟ ।

**ଶାକକଳମ୍ବ**—ବି. ପିଆଜ, ରସୁଣ ।

**ଶାକଚୁକ୍ରିକା**—ସ୍ତ୍ରୀ. ବି. ତେନ୍ତୁଳି, ଅମ୍ଳଲୋଣିଶାକ ।

**ଶାକଜମ୍ଭ**—ତ୍ରି. ବିଂ. ଶାକଭକ୍ଷକ ।

**ଶାକଟ**—ତ୍ରି.ବିଂ. (ଶକଟ+ଅ) ଶକଟସମ୍ବନ୍ଧୀୟ, (ବି. ଶକଟ+ବହନାର୍ଥେ ଅ) ଯୁଗ୍ୟ, ଯୁଗବାହ୍ୟ ପଶୁ, ଶ୍ଳେଷ୍ମାତକ ବୃକ୍ଷ, ଗରଭଣା, ଓଉ,ଉଦ୍ଦାଳକ, ଗାଡ଼ିର ବୋଝ, ଧବବୃକ୍ଷ ।

**ଶାକଟମୁଖ**—କ୍ଳୀ.ବି.ପଟବାସ, ଗନ୍ଧଚୂର୍ଣ୍ଣ ।

**ଶାକଟାଖ୍ୟ**—ପୁଂ.ବି.ଧବବୃକ୍ଷ, ଧଅଗଛ ।

**ଶାକଟାୟନ(ନ)**—ପୁଂ. ବି. ଆଠଜଣ ଶାବ୍ଦିକ ମଧ୍ୟରେ ଜଣେ ପ୍ରସିଦ୍ଧ ବୈୟା-

କରଣିକ ।

ଶାକଟିକ— ବି°.(ଶକଟ + ଇକ) ଶକଟ-ସମ୍ବନ୍ଧୀୟ,ଶକଟାରୋହୀ,ଶକଟଚାଳକ ।

ଶାକଟୀନ—ବି°. (ଶକଟ+ଈନ)ଶକଟ-ସମ୍ବନ୍ଧୀୟ, (ବି) ଖଣ୍ଡିଏ ଗାଡ଼ିରେ ବୋଝାଇହେବା ପରିମିତ ଦ୍ରବ୍ୟ,ବିଂଶତି ତୁଳା ପରିମାଣ,୨୦୦୦ ପଲ ପରିମାଣ, ୨୯୦୦ ଆଉନ୍ସ । [ ଗଛ ।

ଶାକତରୁ—ପୁଂ.ବି.ସାଗୁଆନଗଛ,ବରୁଣ

ଶାକଦ୍ୱୀପ—ବି. ସପ୍ତ ମହାଦ୍ୱୀପ ମଧ୍ୟରୁ ଦ୍ୱୀପଭେଦ ।

ଶାକଦ୍ୱୀପୀ—ବି.(ଶାକଦ୍ୱୀପ + ଇନ୍)ମଗ ବ୍ରାହ୍ମଣ, ଶାକ ଦ୍ୱୀପବାସୀ ବ୍ରାହ୍ମଣ ।

ଶାକଦ୍ୱୀପୀୟ—ବି°. ଶାକଦ୍ୱୀପସମ୍ବନ୍ଧୀୟ, ଶାକ ଦ୍ୱୀପବାସୀ ।

ଶାକଦ୍ରୁମ--ବି.ବରୁଣଗଛ,ସାଗୁଆନ ଗଛ ।

ଶାକନାଳ— ଗ୍ରା.ବି. ହଂସାଦିବର୍ଗର ବଡ଼ ଜଳଚର ପକ୍ଷୀ ।

ଶାକପତ୍ର—ପୁଂ.ବି.(ବ.ଗ୍ରା) ସଜନାଗଛ, ତରକାରୀ ରୂପେ ବ୍ୟବହୃତ ବୃକ୍ଷାଦିର ପତ୍ର ।

ଶାକପାର୍ଥିବ—ପୁଂ. ବି. (କ.ଧା) ନିଜ ନାମରେ ଅଙ୍କ (ସନ) ଚଳାଇବାର ପ୍ରିୟ ରାଜା, ନିରାମିଷ ଭୋଜନପ୍ରିୟ ରାଜା ।

ଶାକଭଜା—ଗ୍ରା. ବି. ଘୃତ ବା ତୈଳାଦି ଦ୍ୱାରା ଭର୍ଜିତ ଶାକପତ୍ର ।

ଶାକଭୁକ୍—ବି°. ( ଶାକ + ଭୁଜ୍ + କ. କ୍ୱିପ୍)ଯେ କେବଳ ଶାଗ ଖାଇ ବଞ୍ଚେ ।

ଶାକଭୋଜୀ—ପୁଂ,ବି°. ଶାକଭୁକ୍ ଦେଖ ।

ଶାକମତ୍ସ୍ୟ—କ୍ଲୀ.ବି(କ.ଧା) ମତ୍ସ୍ୟବ୍ୟଞ୍ଜନ ବିଶେଷ, ମାଛ ମହୁର ।

ଶାକମ୍ଭରୀ—ସ୍ତ୍ରୀ.ବି. (ଶାକ° + ଭୃ + କ.ଅ + ଈ) ଶାକ ଜାତିର ଇଷ୍ଟଦେବୀ, ଶିବା, ଦୁର୍ଗା, ସ୍ୱନାମଖ୍ୟାତ ତୀର୍ଥ, ଅଜମିର ଅନ୍ତର୍ଗତ ନଗରୀବିଶେଷ, ଶମ୍ବର ହ୍ରଦଜାତ ଲବଣ ।

ଶାକମ୍ଭରୀୟ—ବି. (ଶାକମ୍ଭରୀ+ଈୟ) ଶାମ୍ଭରିଲବଣ,ଶମ୍ବର ହ୍ରଦଜାତଲବଣ, (ବି°)ଶମ୍ବର ହ୍ରଦଜାତ ।

ଶାକମ୍ଭରୀଭବ—କ୍ଲୀ. ବି. ଲବଣଭେଦ, ରୋମକ ଲବଣ, ଶାମ୍ବର ଲବଣ ।

ଶାକଯୋଗ୍ୟ—ପୁଂ. ବି. ଧନିଆଁ ।

ଶାକର—ଗ୍ରା. ବି. (ସଂ-ଶର୍କରା) ଶର୍କରା, ଗୁଡ଼, କନ୍ଦଆଦି, ଖଣ୍ଡ, ଖଟା ଓ ମିଠା-ଦିଆ ତରକାରୀ ।

ଶାକରକନ୍ଦ—ଗ୍ରା.ବି.ଶକର କନ୍ଦ ଦେଖ ।

ଶାକରାଜ(ଟ)—ପୁଂ.ବି. ବାସ୍ତୁକ,,ବଥୁଆ-ଶାଗ, ନୃପତିବିଶେଷ ।

ଶାକରୀ— ବି.(ଶକାର + ଅ+ ଈ)ପ୍ରାକୃତ ଭାଷା, ଇତର ଜନ ଭାଷା ।

ଶାକଲ—ପୁଂ. ବି (ଶାକ+ଲା+ଅଧି. ଅ) ପ୍ରାଚୀନ ମଦ୍ର ଦେଶର ନଗର-ବିଶେଷ, ( ଶକଲ+ଅ ) ଖଣ୍ଡ ସର୍ପ-ବିଶେଷ, ଋଗ୍‌ବେଦର ଏକ ଶାଖା ବା ସଂହିତା, କାଠର ତିଆରି ତାବିଜ, ହୋମର ସାମଗ୍ରୀ, (ବି°)ଶକଲ ନାମକ ଦ୍ରବ୍ୟରେ ରଞ୍ଜିତ, ଖଣ୍ଡସମ୍ବନ୍ଧୀୟ ।

ଶାକଲକ--ତ୍ରି.ବି°.ଚନ୍ଦ ବା ଖଣ୍ଡସମ୍ବନ୍ଧୀୟ

ଶାକବଂଶ—ବି. ପ୍ରାଚୀନ ଭାରତର ରାଜ-ବଂଶବିଶେଷ (ଏହି ବଂଶରେ ବୁଦ୍ଧଦେବ ଜନ୍ମିଥିଲେ) ।

ଶାକବର—ପୁଂ. ବି. ଜୀବଶାକ ।

ଶାକବରା—ବି. ଜୀବନ୍ତୀଲତା ।

ଶାକବଲ୍ଲୀ—ବି. ଲତାକରଞ୍ଜ ଦେଖ ।

ଶାକବାଟ—ପୁଂ. ବି. ଶାଗକିଆରି ।

ଶାକବାଟିକା—ସ୍ତ୍ରୀ. ବି. ଶାଗକିଆରି,ଶାଗ ବଗିଚା ।

ଶାକବାଲେୟ—ବି. ବ୍ରାହ୍ମଣଯଷ୍ଟି ।

ଶାକବନ୍ଧକ—ବି. ବେଲଗଛ ।

ଶାକବିଲ୍ୱ(କ)—ପୁଂ. ବି. ବାଇଗଣ ।

ଶାକବୀଜ—କ୍ଲୀ. ବି. ଶାକବୃକ୍ଷର ବୀଜ, ଶାଗମଞ୍ଜି ।

ଶାକବୀର—ବି.ବାସ୍ତୁକ,ବଥୁଆଶାଗ, ଜୀବ ଶାଗ, ପୁରୁଣୀଶାଗ ।

ଶାକବୃକ୍ଷ—ପୁଂ. ବି. ଶାକତରୁ ଦେଖ ।

ଶାକଶାକଟ—କ୍ଲୀ. ବି. (ଶାକ+ଶାକଟ) ଶାଗକିଆରି ।

ଶାକଶାକିନ—କ୍ଲୀ. ବି. ଶାଗକିଆରି ।

ଶାକଶାଲ—ପୁଂ. ବି. ମହାନିମ୍ବ, ମାହାଲ ଗଛ ।

ଶାକଶ୍ରେଷ୍ଠ-ପୁଂ.ବି. ବାସ୍ତୁକ, ବଥୁଆଶାଗ ।

ଶାକଶ୍ରେଷ୍ଠା-ବି.ଜୀବନ୍ତୀଲତା, ବାଇଗଣ, କୁଷ୍ମାଣ୍ଡଲତା, ତରଭୁଜ, ବୋଇତି-କଖାରୁ ।

ଶାକସବଜ—ଗ୍ରା. ବି. ତରକାରୀ ପାଇଁ ଆହାର୍ଯ୍ୟ ଶାକାଦି, ପରିବାପତ୍ର ।

ଶାକା—ସ୍ତ୍ରୀ. ବି. (ଶାକ+ଆ)ହରିଡ଼ା ।

ଶାକାଖ୍ୟ—ବି. (ବ.ଗ୍ରା) ବ୍ୟଞ୍ଜନଯୋଗ୍ୟ ପତ୍ର ପୁଷ୍ପ ଓ ଫଳ ଫୁଲ୍‌ଦି, ଶାଗୁଆନ ଗଛ ।

ଶାକାଙ୍ଗ--କ୍ଲୀ.ବି.(୬ତତ୍ପୁ)ଗୋଲମରିଚ ।

ଶାକାଦ—ପୁଂ.ବି°. (ଶାକ + ଅଦ୍ + ଅ) ଶାକଭକ୍ଷକ,ଶାକଭୋଜୀ ।

ଶାକାନ୍ନ—ବି.(କ.ଧା) ଶାଗଭାତ,ନିରାମିଷ ଖାଦ୍ୟ, ଅନାଡ଼ମ୍ବର ଓ ସହଜଲଭ୍ୟ ସାଧାରଣ ଖାଦ୍ୟ ।

ଶାକାନ୍ନଭୁକ୍—ବି ଓ ବି°. ନିରାମିଷାଶୀ, ଯେ କେବଳ ଶାଗଭାତ ଖାଏ ।

ଶାକାନ୍ନଭୋଜୀ—ପୁଂ. ବି°. (ଶାକାନ୍ନ+ଭୁଜ୍+କ.ଇନ୍)ଶାଗଭାତ ମାତ୍ର ଭୋଜନକାରୀ, (ସ୍ତ୍ରୀ) ଭୋଜନୀ ।

ଶାକାମ୍ଳ—କ୍ଲୀ. ବି. ତେନ୍ତୁଳି ।

ଶାକାରକୀ—ବି. (ଶାକାର+ଇକ + ଈ) ଅପଭ୍ରଂଷା, ଅଶ୍ଳୀଳଭାଷା, ପ୍ରାକୃତ ଭାଷା-ବିଶେଷ ।

ଶାକାରୀ—ସ୍ତ୍ରୀ. ବି. ଶାକାରକୀ ଦେଖ ।

ଶାକାଲାବୁ— ସ୍ତ୍ରୀ. ବି. ବଡ଼ ଲାଉ ଗଛ, ରାଜାଲାବୁ ।

ଶାକାଷ୍ଟକା—ବି. (ଏହିଦିନ ପିତୃଲୋକଙ୍କୁ ଶାକ ଅର୍ପଣକର (ଶ୍ରାଦ୍ଧକରୁଥିବାରୁ) ଶ୍ରାଦ୍ଧୀୟଦିନବିଶେଷ, ଗୌଣଚାନ୍ଦ୍ରମାନ ଫାଲ୍ଗୁନ କୃଷ୍ଣାଷ୍ଟମୀ ।

ଶାକାଷ୍ଟମୀ—ବି. ଶାକାଷ୍ଟକା ଦେଖ ।

ଶାକାହାର—ବି. (୬ତତ୍ପୁ) ଶାକଆଦିର ଭୋଜନ ।

ଶାକାହାରୀ—ବି ଓ ବି°.ପୁଂ.,ଯେ କେବଳ-

ଫଳମୂଳ ଶାକାଦି ଭକ୍ଷଣ କରି ଜୀବନ ଧାରଣ କରନ୍ତି. (ସ୍ତ୍ରୀ) ଶାକାହାରିଣୀ ।
ଶାକନନ୍ଦା—ସ୍ତ୍ରୀ. ବ.ଶାଗକଅଁାର, ଦୁର୍ଗାଙ୍କ ଅନୁଚରୀ ଦେବୀବିଶେଷ ।
ଶାକିନୀ—ସ୍ତ୍ରୀ. ବ. ଶାକନନ୍ଦା ଦେଖ ।
ଶାକୀ—ପୁଂ. ବ. (ଶାକ+ଇନ୍)କାଳଣ କରିନା ବ୍ୟକ୍ତି, ଶାଗକଅଁାର, (ପୁଂ.ବିଂ) ଚୁଗୁଲିଆ ।
ଶାକୁଣ—ତ୍ରି. ବିଂ.ଅନ୍ୟର ପୀଡ଼ାଦାୟକ, ପକ୍ଷିସମ୍ବନ୍ଧୀୟ ।
ଶାକୁନ—ପୁଂ. ବ. (ଶକୁନ+ଅ) ଶକୁନ ଶାସ୍ତ୍ର, କାକଚରିତ୍ର ଗ୍ରନ୍ଥ, ଭବିଷ୍ୟତ୍‌ବକ୍ତା, ଚଢ଼େଇମାରୁ, (ବିଂ) ନିମିତ୍ତଜ୍ଞ, ପକ୍ଷି-ସମ୍ବନ୍ଧୀୟ, ପରପୀଡ଼କ, ଶୁଭାଶୁଭଲକ୍ଷଣ ସମ୍ବନ୍ଧୀୟ, (ସ୍ତ୍ରୀ) ଶାକୁନୀ ।
ଶାକୁନବିଦ୍ୟା—ବ.କାକଚରିତ୍ର ବିଦ୍ୟା ।
ଶାକୁନି—ପୁଂ. ବ. (ଶକୁନ+ଅ+ଇ) ଚଢ଼େଇମାରୁ ।
ଶାକୁନିକ—ପୁଂ.ବ.(ଶକୁନ+ଇକ)ଭବି-ଷ୍ୟତ୍‌ବକ୍ତା, ଗୃଧ୍ରସମୂହ, ଚଢ଼େଇମାରୁ, ବ୍ୟାଧ ।
ଶାକୁନୀ—ପୁଂ. ବ. (ଶକୁନ+ଇନ୍) ଶାକୁନିକ,ଯେ ପକ୍ଷିମାରେ, ଯେ ମାଛ-ଧରେ, ମାଛୁଆ, ଏକପ୍ରକାର ପ୍ରେତ, ଶକୁନ ବିଚାରକ ବ୍ୟକ୍ତି ।
ଶାକୁନେୟ—ପୁଂ.ବ.ଉଲ୍ଲୁକ ପକ୍ଷୀ, ଶକୁନି ପୁତ୍ର ବୃକାସୁର, (ବିଂ) ଶକୁନସମ୍ବନ୍ଧୀୟ
ଶାକୁନ୍ତଳେୟ—ପୁଂ. ବ. (ଶକୁନ୍ତଳା+ଏୟ)ଶକୁନ୍ତଳାଙ୍କପୁତ୍ର ମହାରାଜ ଭରତ, (ବିଂ) ଶକୁନ୍ତଳା ସମ୍ବନ୍ଧୀୟ ।
ଶାକୁନ୍ତିକ—ପୁଂ. ବ. (ଶକୁନ୍ତ+ଇକ) ଯୋଦ୍ଧା ଜାତିବିଶେଷ, ଚଢ଼େଇମାରୁ, ଦେଶଭେଦ ।
ଶାକୁଳିକ—ପୁଂ. ବ. (ଶକୁଳ+ଇକ) ଧୀବର, ମତ୍ସ୍ୟଜୀବୀ, ମତ୍ସ୍ୟସମୂହ,(ସ୍ତ୍ରୀ) ଶାକୁଳିକା ।
ଶାକେକ୍ଷୁ—ପୁଂ. ବ. ଏକପ୍ରକାର ଆଖୁ ।
ଶାକେଶ୍ୱର—ବ.ଯେଉଁ ରାଜାଙ୍କ ନାମରେ ସମ୍ବତ୍ ଚଳେ ।
ଶାକ୍ୱର—ପୁଂ. ବ. (ଶକ୍ୱର+ଅ) ବୃଷ, ଷଣ୍ଢ, ସଂସ୍କୃତ ଛନ୍ଦୋବିଶେଷ ।
ଶାକ୍ତ—ପୁଂ. ବିଂ. (ଶକ୍ତି+ଅ) ଦୁର୍ଗାଉପା-ସକ, ଶକ୍ତିସମ୍ବନ୍ଧୀୟ, ତନ୍ତ୍ରସାଧନଶକ୍ତି-ମନ୍ତ୍ରରେ ଦୀକ୍ଷିତ ।
ଶାକ୍ତାଗମ—ବ. (କ.ଧା) ତନ୍ତ୍ରଶାସ୍ତ୍ର ।
ଶାକ୍ତାନନ୍ଦତରଙ୍ଗିଣୀ—ସ୍ତ୍ରୀ.ବ.ତନ୍ତ୍ରଭେଦ ।
ଶାକ୍ତିକ—ପୁଂ. ବିଂ. (ଶକ୍ତି+ଇକ)ଶକ୍ତି ସମ୍ବନ୍ଧୀୟ, ଶକ୍ତି ଅସ୍ତ୍ର ଦ୍ୱାରା ସଜ୍ଜିତ, ଶକ୍ତିଉପାସକ,ଶାକ୍ତ ।
ଶାକ୍ତୀକ—ବିଂ. (ଶକ୍ତି+ଈକ)ଶକ୍ତି ଅସ୍ତ୍ର ସମ୍ବନ୍ଧୀୟ, (ବ)ଶକ୍ତି ଅସ୍ତ୍ରଧାରୀଯୋଦ୍ଧା ।
ଶାକ୍ତେୟ—ବିଂ. ଶାକ୍ତିକ ଦେଖ,(ପୁଂ.ବ) ଶାକ୍ତ, ପରାଶର ଋଷି । [ ଋଷି ।
ଶାକ୍ତ୍ୟ—ବିଂ.ଶାକ୍ତିକ ଦେଖ,(ବ)ପରାଶର
ଶାକ୍ମ—କ୍ଲୀ. ବ. ବଳ ।
ଶାକ୍ୟ—ପୁଂ.ବ.(ଶାକ+ଯ)ବୁଦ୍ଧଦେବ, ନେପାଳତରାଇ ପ୍ରଦେଶବାସୀ ପ୍ରାଚୀନ କ୍ଷତ୍ରିୟଜାତି । [ ଶାକ୍ୟମୁନି ।
ଶାକ୍ୟପୁଙ୍ଗବ—ପୁଂ. ବ. ଶାକ୍ୟସିଂହ,
ଶାକ୍ୟବୁଦ୍ଧ--ପୁଂ.ବ.ବୁଦ୍ଧଦେବ, ଶାକ୍ୟମୁନି
ଶାକ୍ୟବୁଦ୍ଧୋପଜୀବୀ—ପୁଂ. ବିଂ.ଶାକ୍ୟବୁଦ୍ଧ ମତାବଲମ୍ବୀ ।
ଶାକ୍ୟବୋଧିସତ୍ତ୍ୱ—ପୁଂ. ବ. ବୁଦ୍ଧଦେବ, ଶାକ୍ୟମୁନି ।
ଶାକ୍ୟଭିକ୍ଷୁ—ବିଂ. ବୌଦ୍ଧଧର୍ମାବଲମ୍ବୀ ।
ଶାକ୍ୟଭିକ୍ଷୁକୀ—ସ୍ତ୍ରୀ.ବ.ବୌଦ୍ଧଭିକ୍ଷୁକୀ ସ୍ତ୍ରୀ ।
ଶାକ୍ୟମୁନି—ପୁଂ. ବ. ବୁଦ୍ଧଦେବ ।
ଶାକ୍ୟସିଂହ—ପୁଂ. ବ. ବୁଦ୍ଧଦେବ ।
ଶାକ୍ର—ବିଂ. (ଶକ୍ର+ଅ) ଇନ୍ଦ୍ରସମ୍ବନ୍ଧୀୟ, (ବ) ଜ୍ୟେଷ୍ଠାନକ୍ଷତ୍ର ।
ଶାକ୍ରୀ—ସ୍ତ୍ରୀ. ବ. ଦୁର୍ଗା, ଇନ୍ଦ୍ରାଣୀ,ଶଚୀ ।
ଶାକ୍ରୀୟ—ବିଂ. ଶକ୍ରସମ୍ବନ୍ଧୀୟ ।
ଶାକ୍ୱର—ପୁଂ. ବିଂ. (ଶକ୍+କ.ବର)ଶକ୍ତି-ଶାଳୀ, (ବ) ଇନ୍ଦ୍ର, ଇନ୍ଦ୍ରଙ୍କ ବଜ୍ର, ଷଣ୍ଢ, ପ୍ରାଚୀନ କାଳର ସଂସ୍କାରବିଶେଷ ।
ଶାଖ—ପୁଂ. ବ. (ଶାଖ+କ.ଅ)କାର୍ତ୍ତି-କେୟ, ଅଂଶ, ଭାଗ, କରଞ୍ଜ ।
ଶାଖା—ବ. (ଶାଖ+ଅ+ଆ) ବୃକ୍ଷର ଅଙ୍ଗବିଶେଷ, ଗଛର ଡାଳ, ଅଂଶ, ବେଦର ଅଂଶବିଶେଷ, ବାହୁ, କର, ଗ୍ରନ୍ଥର ପରିଚ୍ଛେଦ, ଅଧ୍ୟାୟ, ଦେଶାଂଶ, ସାମୀପ୍ୟ, ପକ୍ଷାନ୍ତର, ଏକ ଜାତିର ବା ଧର୍ମର ବିଭିନ୍ନ ସମ୍ପ୍ରଦାୟ, ଶରୀରର ଅବୟବ, ହାତଗୋଡ଼ଆଦି, ଚଉକାଠ, ବିଭାଗ, ହଂସା, ବିଶିଷ୍ଟ ମତବାଦୀ ଦଳ ।
ଶାଖାକଣ୍ଟ—ପୁଂ.ବ.ସ୍ନୁହୀବୃକ୍ଷ,ସିଜୁଗଛ ।
ଶାଖାଗ୍ର—କ୍ଲୀ. ବ. (ଷତତ୍ପୁ) ଶାଖାର ଅଗ୍ରଭାଗ, ଅଙ୍ଗୁଳି ।
ଶାଖାଙ୍ଗ—କ୍ଲୀ. ବ. ଅଙ୍ଗର ହସ୍ତପଦାଦି ଦେହାବୟବ ।
ଶାଖାଚଙ୍କ୍ରମଣ—ବ. ଏକ ଡାଳରୁ ଅନ୍ୟ ଡାଳକୁ ଡେଇଁବା, କରୁଥିବା କାର୍ଯ୍ୟକୁ ଛାଡ଼ି ଅନ୍ୟ କାର୍ଯ୍ୟରେ ହାତ ଦେବା ।
ଶାଖାଚ୍ୟୁତ—ବିଂ. (ପତତ୍ପୁ) ଡାଳରୁ ଖସି ପଡ଼ିଥିବା ।
ଶାଖାଦ—ବ. (ଶାଖା+ଅଦ୍+କ.ଅ) ଗଛର ଡାଳ ଖାଇବା ପଶୁ ।
ଶାଖାନଗର—କ୍ଲୀ. ବ. (ଷତତ୍ପୁ) ଉପ-ନଗର,ନଗରର ଉପକଣ୍ଠସ୍ଥିତ ବସତି ।
ଶାଖାନଦୀ—ବ.ବଡ଼ ନଦୀରୁ ବାହାରିଥିବା କ୍ଷୁଦ୍ର ନଦୀ ।
ଶାଖାନାଳ--ଗ୍ରା.ବ.କେନାଲରୁ ବାହାରି-ଥିବା ଶାଖା, କର୍ଣ୍ଣାଳୀ । [ ଶାଖା ।
ଶାଖାନ୍ତର—ବ(କ.ଧା)ଅନ୍ୟ ଶାଖା, ଭିନ୍ନ
ଶାଖାନ୍ତରାଳ—ବ. (ଷତତ୍ପୁ)ଶାଖାମାନଙ୍କ ଅନ୍ତରାଳ ବା ବ୍ୟବଧାନ ।
ଶାଖାପଥ—ବ. ଶାଖାରଥ୍ୟା ଦେଖ ।
ଶାଖାପିତ୍ତ—ବ.ଦେହର ଶେଷ ମୁଣ୍ଡରେ ଥିବା ଅବୟବ (ହାତଗୋଡ଼ ଲିଙ୍ଗ-ମାନଙ୍କର ସ୍ଫୀତି) ।
ଶାଖାପୁର—କ୍ଲୀ.ବ.ଶାଖାନଗର ଦେଖ ।
ଶାଖାଭୃତ୍—ପୁଂ. ବ (ଶାଖା+ଭୃ+କ.କ୍ୱିପ୍) ବୃକ୍ଷ ।
ଶାଖାଭ୍ରଷ୍ଟ—ବିଂ. (ପତତ୍ପୁ) ଶାଖାଚ୍ୟୁତ ଦେଖ ।
ଶାଖାମୃଗ—ବ.(କ.ଧା)ମାଙ୍କଡ଼, ବାନର, ଗୁଣ୍ଡୁଚିମୂଷା ।

ଶାଖାମ୍ଳ—ବି. ବାଆଁର, ଜଳବେତସ ।
ଶାଖାମ୍ଳା—ବି. ତେନ୍ତୁଳି ।
ଶାଖାରଣ୍ଡ—ପୁଂ.ବି. (ଶାଖା+ରମ୍+ଡ଼) ସ୍ୱାବଲମ୍ବିତ ବେଦାଂଶ ପରିତ୍ୟାଗ କରି ଶାଖାନ୍ତର ଅଧ୍ୟୟନକାରୀ ବ୍ରାହ୍ମଣ ।
ଶାଖାରଥ୍ୟା—ସ୍ତ୍ରୀ. ବି. ବଡ଼ ରାସ୍ତାରୁ ଶାଖାରୂପେ ବାହାରିଥିବା ଶ୍ରେଷ୍ଟ ରାସ୍ତା, ଷୋହଳହସ୍ତପରିସ୍ତ ପଥ । [ ମଧୁ ।
ଶାଖାରସ—ବି.ମକରନ୍ଦ, ପୁଷ୍ପରସ,ପୁଷ୍ପ-
ଶାଖାଲ—ପୁଂ.ବି. (ଶାଖା + ଲା+କ.ଅ) ବାଆଁରବୃକ୍ଷ, ଜଳବେତସ ।
ଶାଖାବର୍ତ୍ମ—ବି. ଶାଖାରଥ୍ୟା ଦେଖ ।
ଶାଖାବାତ—ପୁଂ. ବି. ( କ.ଧା ) ହାତ-ଗୋଡ଼ରେ ହେବା ବାତ ।
ଶାଖାଶିକ୍ୟା(ଫା)—ବି. (ଶାଖା+ଅଣ୍+କ.ଅକ+ଆ) ବଟାଦି ବୃକ୍ଷର ଓହଳ, ଅବରୋହ । [ ଦେଖ ।
ଶାଖାସ୍ଖଳିତ—ବିଂ. (୫ତତ୍) ଶାଖାଚ୍ୟୁତ
ଶାଖାସ୍ଥି—କ୍ଲୀ.ବି. ହାତର ହାଡ଼ ।
ଶାଖି—ପୁଂ.ବି.ତୁର୍କିସ୍ଥାନ,ତୁରସ୍କଦେଶ ।
ଶାଖୀ—ପୁଂ.ବିଂ. (ଶାଖା+ଇନ୍)ଶାଖା-ଯୁକ୍ତ, ବେଦର କୌଣସି ଶାଖାର ଅନୁ-ଯାୟୀ, (ସ୍ତ୍ରୀ) ଶାଖିନୀ,(ବି) ବୃକ୍ଷ,ବେଦ, ନୃପବିଶେଷ, ତୁରସ୍କଦେଶୀୟ ଲୋକ, ବେଦର କୌଣସି ଶାଖାଧ୍ୟାୟୀ ବ୍ୟକ୍ତି ।
ଶାଖୋଚ୍ଚାର—ବି. (୬ତତ୍) ବିବାହରେ ମହା ବାକ୍ୟାଦିରେ ବଂଶାବଳୀର କଥନ
ଶାଖୋଟ—ପୁଂ.ବି.(ଶାଖା+ଓଟ)ଭୂତ-ବୃକ୍ଷ, ଶାହାଡ଼ାଗଛ । [ ସମ୍ବନ୍ଧୀୟ ।
ଶାଖ୍ୟ—ତ୍ରି.ବିଂ. ( ଶାଖା + ଯ ) ଶାଖା-
ଶାଗ—ଗ୍ରା.ବି. (ସଂ-ଶାକ)ଶାକ ଦେଖ ।
ଶାଗଖରଡ଼ା—ଗ୍ରା. ବି. ଅଗ୍ନିଉତ୍ତାପରେ ସିଦ୍ଧ ଶାକ, ଶାଗଭଜା ।
ଶାଗପେଜ—ଗ୍ରା.ବି. ଶାକ ଓ ଅମ୍ଳମଣ୍ଡ ।
ଶାଗଭଜା—ଗ୍ରା.ବି. ତୈଳ ବା ଘୃତଦ୍ୱାରା ଭର୍ଜିତ ଶାକ, ଶାଗଖରଡ଼ା ଓ ଫଳ-ମୂଳାଦିର ଭଜା ।
ଶାଗଭାତ—ଗ୍ରା.ବି. ଶାକାନ୍ନ ଦେଖ ।
ଶାଗୁଆ—ଗ୍ରା.ବିଂ.ଶାକପରି ହରିଦ୍ବର୍ଣ୍ଣ ।
ଶାଗୁଆନ—ଗ୍ରା.ବି. ଶାକତରୁ ଦେଖ ।
ଶାଗୁଣା—ଗ୍ରା.ବି. ମାଂସାଶୀ ପକ୍ଷିବିଶେଷ, ଗୃଧ୍ର ।
ଶାଙ୍କର—ବି.(ଶଙ୍କର+ଅ)ଆର୍ଦ୍ରାନକ୍ଷତ୍ର, ଏକପ୍ରକାର ସୋମଲତା, ବଳଦ,ବୃଷ, ଛନ୍ଦୋଭେଦ, (ବିଂ) ଶଙ୍କର ବା ଶିବ ସମ୍ବନ୍ଧୀୟ, ଶଙ୍କରାଚାର୍ଯ୍ୟ ସମ୍ବନ୍ଧୀୟ ।
ଶାଙ୍କରଭାଷ୍ୟ—ବି.(କ.ଧା) ଶଙ୍କରାଚାର୍ଯ୍ୟ ପ୍ରଣୀତ ବେଦାନ୍ତଦର୍ଶନ; ଗୀତା ଓ ଉପନିଷଦ୍ ସମୂହର ଭାଷ୍ୟ ବା ଟୀକା ।
ଶାଙ୍କରି—ପୁଂ. ବି. (ଶଙ୍କର+ଇ)କାର୍ତ୍ତି-କେୟ, ଗଣେଶ, ଅଗ୍ନି, ମୁନିବିଶେଷ, ଶମୀବୃକ୍ଷ ।
ଶାଙ୍କରୀ—ବି.(ଶଙ୍କର+ଅ+ଈ)ଶିବଙ୍କ ଦ୍ୱାରା ନିର୍ଦ୍ଧାରିତ ଅକ୍ଷରମାନଙ୍କ କ୍ରମ, (ସଂ-ବ୍ୟାକରଣ)ଅକ୍ଷରସମ୍ବନ୍ଧୀୟ ୧୪ଟି ସୂତ୍ର ।
ଶାଙ୍କିତ—ବି. ଗୈରକାତ୍ମକ ଗନ୍ଧଦ୍ରବ୍ୟ ।
ଶାଙ୍କୁଚ—ଗ୍ରା.ବି.ସାମୁଦ୍ରିକ ମତ୍ସ୍ୟବିଶେଷ ।
ଶାଙ୍କୁଚୀ—ବି. ଶାଙ୍କୁଚମାଛ ।
ଶାଙ୍କୁଳି—ଗ୍ରା.ବି. (ସଂ-ଶୃଙ୍ଖଳ)ଧାତୁଆଦିର ମୁଦ୍ରିକାଯୁକ୍ତ ଶୃଙ୍ଖଳ, ବେଡ଼ି, ଖଡ଼ୁ, ବଳୟ, ରୋଗଯୋଗୁଁ ଦାନ୍ତପାଟି ଓ ହାତମୁଠାଆଦିର ଦୃଢ଼ବଦ୍ଧ ହେବା ଅବସ୍ଥା ।
ଶାଙ୍ଖ—ତ୍ରି.ବିଂ. (ଶଙ୍ଖ+ଅ) ଶଙ୍ଖସମ୍ବ-ନ୍ଧୀୟ,ଶଙ୍ଖରେ ନିର୍ମିତ,(ବି) ଶଙ୍ଖଧ୍ୱନି ।
ଶାଙ୍ଖାରି—ବି. ଶଙ୍ଖ ତିଆରିକାରୀ ଜାତି ।
ଶାଙ୍ଖିକ—ପୁଂ.ବି. (ଶଙ୍ଖ+ଇକ)ଶଙ୍ଖାରି ଜାତି, ଶଙ୍ଖବଣିକ, ଶଙ୍ଖ ବଜାଇବା ବ୍ୟକ୍ତି, (ବିଂ)ଶଙ୍ଖସମ୍ବନ୍ଧୀୟ,ଶଙ୍ଖନିର୍ମିତ, (ସ୍ତ୍ରୀ) ଶାଙ୍ଖିକୀ ।
ଶାଙ୍ଖ୍ୟ—ପୁଂ. ବି. ଶଙ୍ଖର ଗୋତ୍ରାପତ୍ୟ, (ବିଂ)(ଶଙ୍ଖ+ଯ)ଶଙ୍ଖସମ୍ବନ୍ଧୀୟ,ଶଙ୍ଖ-ନିର୍ମିତ ।
ଶାଙ୍ଗୁଷ୍ଠା—ବି. ଗୁଞ୍ଜା, କାଇଁଚ ।
ଶାଚ—ପୁଂ,ବି. ସକ୍ତୁସମୂହ,ଦଳାହୋଇ ଭୁଷି ବାହାରକରାଯାଇଥିବା ଯବଧାନ
ଶାଞ୍ଚୀ—ସ୍ତ୍ରୀ.ବି. ଶାକଞ୍ଚଶାକ ।
ଶାଟ—ପୁଂ.ବି. ( ଶଟ୍+କ.ଅ ) ଶାଢ଼ୀ ଦେଖ, ଏକପ୍ରକାର ଶ୍ରେଷ୍ଟ କୁରୁତା, ଧୋତିଲୁଗା,ବସ୍ତ୍ରଖଣ୍ଡ, ଢିଲା ପରିଧେୟ ବସ୍ତ୍ର ।
ଶାଟକ—ବି. (ଶାଟ+କ) ଶାଟ ଦେଖ ।
ଶାଟପଟ—ବି ଲୁଗା ଓ ପାଟ ଖଣ୍ଡ ।
ଶାଟିକା—ସ୍ତ୍ରୀ.ବି. (ଶାଟକ+ଆ) ଶାଢ଼ୀ, ସଧବା ସ୍ତ୍ରୀମାନଙ୍କ ପରିଧେୟ ବସ୍ତ୍ର,ଶାଟୀ
ଶାଟୀ—ସ୍ତ୍ରୀ.ବି.(ଶାଟ+ଈ)ଶାଢ଼ୀ ଦେଖ ।
ଶାଟ୍ୟାୟନ—ବି. (ଶଟ + ଯ + ଅୟନ) ଯଜ୍ଞ କାର୍ଯ୍ୟରେ ପ୍ରକୃତ କର୍ମର ବୈଗୁଣ୍ୟ ପ୍ରଶମନାର୍ଥ ହୋମ, ଜଣେ ମୁନି ।
ଶାଟ୍ୟାୟନି—ପୁଂ.ବି. ଶାଟ୍ୟାୟନ ମୁନିଙ୍କ ପୁତ୍ର ।
ଶାଠ—ଗ୍ରା.ବି. ସାଠ ଦେଖ ।
ଶାଠ୍ୟ—କ୍ଲୀ.ବି. ( ଶଠ + ଯ ) ଶଠତା, ଧୂର୍ତ୍ତତା, କପଟତା, ଛଳ, ପ୍ରବଞ୍ଚନା ।
ଶାଠ୍ୟାଚରଣ—ବି. (୬ତତ୍)ଶଠତାଯୁକ୍ତ ବ୍ୟବହାର ।
ଶାଠ୍ୟାଶ୍ରୟୀ—ପୁଂ.ବିଂ.ଖଳ ବ୍ୟବହାର-ଯୁକ୍ତ, (ସ୍ତ୍ରୀ) ଶାଠ୍ୟାଶ୍ରୟିଣୀ ।
ଶାଡ୍ୱଲ—ବି. ଶାଦ୍ୱଳ ଦେଖ ।
ଶାଢ଼ୀ—ଗ୍ରା.ବି.ସଧବା ସ୍ତ୍ରୀମାନଙ୍କର ପରି-ଧେୟ ବସ୍ତ୍ର ।
ଶାଢ଼ୀଶିରପା—ଗ୍ରା. ବି. ସମ୍ମାନସୂଚକ ଶାଢ଼ୀ ଓ ପଗଡ଼ି ।
ଶାଣ—ବି. (ଶୋ + ଣ.ଣ) ଅସ୍ତ୍ରାଦି ଘଷି ଦାଢ଼ କରିବାର ଯନ୍ତ୍ର, ଘର୍ଷଣଯନ୍ତ୍ର, କରତ, ପାଷାଣ, କଷଟିପଥର, ଅନୁ-ଭୂତି, (ଶଣ+ଭାବାର୍ଥେ,ଅ) ଶଣସୂତ୍ର ନିର୍ମିତ ବସ୍ତ୍ର, ଗୁରୁମଶା ଓଜନ, (ବିଂ) ଶଣନିର୍ମିତ, ଛଣପଟସମ୍ବନ୍ଧୀୟ ।
ଶାଣକ—ପୁଂ.ବି. ଶଣନିର୍ମିତ ବସ୍ତ୍ର ।
ଶାଣକବାସ—ପୁଂ.ବି. ଶଣରେ ତିଆରି ଲୁଗା । [ ଦିଏ ।
ଶାଣକାର—ବି. ଯେ ଅସ୍ତ୍ରଶସ୍ତ୍ରାଦିକୁ ଶାଣ
ଶାଣଦଆ—ଗ୍ରା.ବିଂ. ଶାଣିତ, (ଲ.ଅର୍ଥ) ଅପ୍ରିୟବାଦୀ ।
ଶାଣଦଆଉଣ୍ଡ—ଗ୍ରା.ବି. (ଲ.ଅର୍ଥ)ଯେଉଁ

ବ୍ୟକ୍ତିର ମୁଖ ର କଥା ଅଟକେନାହିଁ, ଛକ୍କୁଡବାଦୀ ବ୍ୟକ୍ତି, ଅପ୍ରିୟବାଦୀ ବ୍ୟକ୍ତି ।
ଶଣପାଦ—ପୁଂ.ବି. ପର୍ବତବିଶେଷ,ମାଷ ପରିମାଣ. ପରିମାଣବିଶେଷ ।
ଶଣବାସାଃ—ପୁଂ.ବିଂ. (ବ.ବ୍ରୀ)ଛଣପଟ ବସ୍ତ୍ର ପରିଧାନକାରୀ,(ବି)ଅର୍ହତବିଶେଷ
ଶାଣାଜୀବ—ପୁଂ. ବିଂ. (ଶାଣ+ଆଜୀବ) ବ.ବ୍ରୀ; ଯେ ଅସ୍ତ୍ରରେ ଶାଣ ଦେଇ ଜୀବିକା ନିର୍ବାହ କରେ ।
ଶାଣି—ପୁଂ.ବି. ଛଣପଟ ।
ଶାଣିତ—ତ୍ରି.ବିଂ. (ଶାଣି + ମଁ.ତ)କଷଟି ପଥରରେ କଷାଯାଇଥିବା, ଶାଣଦିଆ-ଯାଇ ଧାର୍ଚ୍ଚୁଆକରାଯାଇଥିବା ।
ଶାଣୀ—ବି. (ଶଣ + ଅ.ଇ) ଶ୍ରେଷ୍ଠ ବସ୍ତ୍ରା-ବାସ, ତମ୍ବୁ,ଛିନ୍ନବସ୍ତ୍ର, କନ୍ଥା, ଇସାର, ଇଙ୍ଗିତ, ଛଣପଟନିର୍ମିତ ବସ୍ତ୍ର, ଶାଣ-ଯନ୍ତ୍ର, କଷଟି ପଥର । [ ନାମ ।
ଶାଣୋଉଶାସ୍ୱ—ପୁଂ.ବି. ପାଣିନି ମୁନିଙ୍କ
ଶାଣ୍ଡୁ—ଗ୍ରା.ବି. (ଫ-ସସ୍ଥାନ) ବହୁ ପଦାର୍ଥର ଏକତ୍ର ମିଶ୍ରିତ ବା ଫେଣ୍ଟାହେବା ଅବସ୍ଥା, ମୂଳଧନ, ସମ୍ପତ୍ତି, ମୂଲ୍ୟବାନ୍ ବସ୍ତୁ, ଶକ୍ତି, ବଳ ।
ଶାଣ୍ଡିକ—ପୁଂ.ବି. ଏକପ୍ରକାର ହରିଣ ।
ଶାଣ୍ଡିଲ—ବି. ଶାଣ୍ଡିଲ୍ୟ ଦେଖ ।
ଶାଣ୍ଡିଲ୍ୟ—ପୁଂ. ବି. (ଶଣ୍ଡିଲ+ଯ) ଅଗ୍ନି-ଦେବଙ୍କ ମୂର୍ତ୍ତିବିଶେଷ,ଶ୍ରୀଫଳ, ବେଲ, ଗୋତ୍ରକାର ମୁନିବିଶେଷ, ଶାଣ୍ଡିଲ ଗୋତ୍ରଜ ବ୍ୟକ୍ତି, ବ୍ରାହ୍ମଣଙ୍କ ଗୋତ୍ର-ବିଶେଷ ।
ଶାଣ୍ଡିଲ୍ୟାୟନ—ପୁଂ. ବି. ଶାଣ୍ଡିଲ୍ୟମୁନିଙ୍କ ଗୋତ୍ରାପତ୍ୟ ।
ଶାତ—ବିଂ. (ଶୋ+ମଁ.ତ) ତୀକ୍ଷ୍ଣୀକୃତ, ଶାଣିତ, ଉଜ୍ଜ୍ୱଳ, ସୁନ୍ଦର, କ୍ଷୀଣ, ସରୁ, ସୁଖୀ, ପତିତ, ( ବି ) ସୁଖ, ପତନ, ପାତନ, ଧାତୁରା ।
ଶାତକର୍ଣ୍ଣି—ପୁଂ. ବି. ମୁନିବିଶେଷ ।
ଶାତକୁମ୍ଭ—ବି. (ଶତକୁମ୍ଭ+ଅ) ସୁବର୍ଣ୍ଣ, ଧୂତୁରାବୃକ୍ଷ,କାଞ୍ଚନଗଛ,କରବୀର ଫୁଲ ।
ଶାତକୁମ୍ଭମୟ—ତ୍ରି. ବିଂ. ସୁବର୍ଣ୍ଣ ନିର୍ମିତ ଅଳଙ୍କାରାଦି ।
ଶାତକୌମ୍ଭ—କ୍ଲୀ. ବି. (ଶତକୁମ୍ଭ+ଅ) ସୁବର୍ଣ୍ଣ, (ବିଂ) ସୁବର୍ଣ୍ଣ ନିର୍ମିତ (ବସ୍ତୁ) ।
ଶାତନ—କ୍ଲୀ.ବି. (ଶଦ୍+ଣି.ଅନ)ବିନା-ଶନ,ନାଶ, କୌଣସି ଗୋଟିଏ ମୋଟା ଜିନିଷ କ୍ଷୀଣ କରିବା,ଚାଞ୍ଛିବା,ଛେଦନ, ହତିଆରକୁ ଧାର୍ଆ କରିବା, ଋନ୍ଦା-ମାରିବା, (ବିଂ) ଛେଦକ ।
ଶାତପତ୍ର—ବିଂ. (ଶତପତ୍ର+ଅ) ପଦ୍ମ-ତୁଲ୍ୟ, ପଦ୍ମସଦୃଶ ।
ଶାତପତ୍ରକ—ବି. ଚନ୍ଦ୍ରିକା,ଚନ୍ଦ୍ରକିରଣ ।
ଶାତପଥ—ତ୍ରି. ବିଂ. ( ଶତପଥ+ଅ ) ଶତପଥ, ବ୍ରାହ୍ମଣ ସମ୍ବନ୍ଧୀୟ, ଶ୍ରୁତି-ସମ୍ବନ୍ଧୀୟ । [ ଅଧେତା ।
ଶାତପଥିକ—ପୁଂ. ବି. ଶତପଥ ବ୍ରାହ୍ମଣ
ଶାତପୁତ୍ରକ—କ୍ଲୀ. ବି. ଶତପୁତ୍ରର କର୍ମ ବା ଭାବ ।
ଶାତପୁରଶୈଳ—ବି. ସାତପୁରା ପର୍ବତ, ମଧ୍ୟଭାରତର ଗୋଟିଏ ଗିରିମାଳା ।
ଶାତଭିଷ—ତ୍ରି. ବିଂ. (ଶତଭିଷା + ଅ) ଶତଭିଷା ନକ୍ଷତ୍ର ସମ୍ବନ୍ଧୀୟ ।
ଶାତଭୀରୁ—ପୁଂ. ବି. ( ଶତଭୀରୁ + ଅ ) ଭଦ୍ରବଲ୍ଲୀ ଗୁଳ୍ମ ଓ ଫୁଲ ।
ଶାତମନ୍ୟବ—ବିଂ. ( ଶତମନ୍ୟୁ+ଅ ) ଶତମନ୍ୟୁ ସମ୍ବନ୍ଧୀୟ, ଇନ୍ଦ୍ର ସମ୍ବନ୍ଧୀୟ ।
ଶାତଗ୍ରନ୍ଥିକ—ତ୍ରି.ବିଂ.(ଶତଗ୍ରନ୍ଥ+ଇକ) ଯାହା ଶହେ ଗଣ୍ଠି ବ୍ୟାପୀ ହୁଏ ।
ଶାତବାହନ—ବି. ଶାଳିବାହନ ଦେଖ ।
ଶାତଶୃଙ୍ଗୀ—ପୁଂ. ବି. ମେରୁର ଉତ୍ତର-ଦିଗରେ ଥିବା ପର୍ବତବିଶେଷ ।
ଶାତଦ୍ରୁଦ—ତ୍ରି. ବିଂ. (ଶତଦ୍ରୁଦ+ଅ) ବିଦ୍ୟୁତ୍ ସମ୍ବନ୍ଧୀୟ ।
ଶାତାତପ—ପୁଂ. ବି. (ଶତାତପ+ଅ) ଧର୍ମଶାସ୍ତ୍ର ପ୍ରଣେତା ମୁନିବିଶେଷ ।
ଶାତି—ପୁଂ.ବି. ଛେଦକ,ଛେଦନକାରୀ ।
ଶାତୋଦର—ପୁଂ. ବିଂ. (ବ.ବ୍ରୀ) କ୍ଷୀଣ-କଟିବିଶିଷ୍ଟ, କ୍ଷୀଣ, ପତଳା, ( ସ୍ତ୍ରୀ ) ଶାତୋଦରୀ ।
ଶାଦ୍ରବ—ବି. (ଶଦ୍ରୁ+ଅ) ଶଦ୍ରୁସମୂହ, ଶଦ୍ରୁତା, ଶଦ୍ରୁ, (ବିଂ) ଶଦ୍ରୁସମ୍ବନ୍ଧୀୟ ।
ଶାଦ—ପୁଂ. ବି. (ଶୋ+କ.ଦ) କର୍ଦ୍ଦମ, କାଦୁଅ, ପତନ, ନୂତନ ଘାସ ।
ଶାଦନ—କ୍ଲୀ. ବି. ପତନ ।
ଶାଦହରିତ—ବିଂ ଓ ବି.ଶାଦ୍ୱଳ ଦେଖ ।
ଶାଦା—ଗ୍ରା.ବିଂ.ଧଳାବର୍ଣ୍ଣ,ଶୁକ୍ଳ,ବର୍ଣ୍ଣହୀନ, ସାଧାରଣ, ଶକ୍ତ, ଖାଲି, ଅଲିଖିତ, ଅକପଟ, ଆଡ଼ମ୍ବରବିହୀନ ।
ଶାଦ୍ୱଳ—ବିଂ. (ଶାଦ+ବଳ) ନବତୃଣ-ପରି ଶ୍ୟାମଳ, (ବି) ଶ୍ୟାମଳ ତୃଣାଚ୍ଛା-ଦିତ ସ୍ଥାନ, ନବ ତୃଣ ପୂର୍ଣ୍ଣସ୍ଥାନ, ଷଣ୍ଢ, ବଳଦ । [ ବୃଶ୍ଚିକ ।
ଶାଦ୍ୱଳାଭ—ପୁଂ. ବି. (ବ.ବ୍ରୀ) ମଦନବିଷ
ଶାଧ—ଗ୍ରା. ବି. (ଫ-ଶ୍ରଦ୍ଧା) ଶ୍ରଦ୍ଧା, ସ୍ପୃହା, ଆକାଙ୍କ୍ଷା, ଶଧ, ଆଦର, ଗର୍ଭିଣୀର ଦୋହଦ ବା ଇଚ୍ଛା ।
ଶାଧା—ଗ୍ରା. ବିଂ. ଶାଦା ଦେଖ ।
ଶାଧାଶିଧା—ଗ୍ରା. ବିଂ. ସରଳ ବା ନିଷ୍କ-ପଟ (ବ୍ୟକ୍ତି) ।
ଶାନ—ବି. (ଶୋ +ଣି.ଅନ)ତୀକ୍ଷ୍ଣୀକରଣ, (ଣି.ଅନ) ଶାଣଯନ୍ତ୍ର, (ଅଧି.ଅନ) କଷଟି ପଥର ।
ଶାନପାଦ—ପୁଂ. ବି. ( ଶାନ+ପାଦ ) ଚନ୍ଦନପେଣ୍ଡି, ବିନ୍ଧ୍ୟାଚଳର ପଶ୍ଚିମସ୍ଥ ପର୍ବତବିଶେଷ, ପାରିପାତ୍ର ପର୍ବତ ।
ଶାନ୍ମୀ—ସ୍ତ୍ରୀ. ବି. ଇନ୍ଦ୍ରବାରୁଣୀ,ମହାକାଳ ।
ଶାନୈଶ୍ଚର—ବିଂ.(ଶନୈଶ୍ଚର+ଅ)ଶନି-ଗ୍ରହ ସମ୍ବନ୍ଧୀୟ ।
ଶାନ୍ତ—ବି. ବିଂ. (ଶମ୍+କ.ତ) ସମଗୁଣ ଯୁକ୍ତ, ସ୍ଥିରମନାଃ, ସୌମ୍ୟ, ଜିତେ-ନ୍ଦ୍ରିୟ, ଶିଷ୍ଟ, ଅନୁଦ୍ଧତ, ଧୀର, ଅଣ୍ଡ୍ରା, ନିବୃତ୍ତ, ନିର୍ମୋଚ, ମୃତ, ଶାନ୍ତ ପ୍ରାପିତ, ଦମିତ, ବିନଷ୍ଟ, ନିନ୍ଦିତ, ବଶୀକୃତ, ପରିଷ୍କୃତ,ମଳଯୁକ୍ତ, ତୃଷ୍ଣୀଭୂତ, ଶିଥିଳ, ନିର୍ବାପିତ, ବାଧାରହିତ, ସୁସ୍ଥଚିତ୍ତ, ଅପ୍ରଜ୍ୱଳିତ, ( ଶ+ଅନ୍ତ ) ଶେଷରେ 'ଶ' ଅକ୍ଷର ବିଶିଷ୍ଟ (ଶବ୍ଦ), (ବି-ଶମ୍+ଣିଚ୍+ମଁ.ତ) କାବ୍ୟର ନବରସ ମଧ୍ୟରୁ ଶାନ୍ତରସ, ରସବିଶେଷ ।

ଶାନ୍ତକ—ବି. ବିଂ. (ଶମ୍+ତ) ଶାନ୍ତ, ଶମତାକାରୀ ।

ଶାନ୍ତଗୁଣ—ବିଂ.(ବ.ବ୍ରୀ) ଶମଗୁଣବିଶିଷ୍ଟ, ଧୀରସ୍ଥିର ସ୍ୱଭାବ ।

ଶାନ୍ତତା—ସ୍ତ୍ରୀ. ବି. ନମ୍ରତା, ଧୀରତା ।

ଶାନ୍ତଦାନ୍ତ—ବିଂ. ସମଗୁଣଯୁକ୍ତ ଓ ଜିତେନ୍ଦ୍ରିୟ ।

ଶାନ୍ତନବ—ପୁଂ. ବି. (ଶାନ୍ତନୁ+ଅ) ଶାନ୍ତନୁପୁତ୍ର ଭୀଷ୍ମଦେବ, ମେଧାତିଥିଙ୍କ ପୁତ୍ର, (ସ୍ତ୍ରୀ) ଶାନ୍ତନବୀ ।

ଶାନ୍ତନୁ—ପୁଂ.ବି. (ଶଂ+ତନୁ+କ.ଉ) ଦ୍ୱାପରଯୁଗର ଚନ୍ଦ୍ରବଂଶୀୟ ରାଜା ପ୍ରତୀପଙ୍କ ପୁତ୍ର ଓ ଭୀଷ୍ମଙ୍କ ପିତା ।

ଶାନ୍ତପ୍ରକୃତି—ବି.(କ.ଧା) ଶାନ୍ତ ସ୍ୱଭାବ, ଧୀର ସ୍ୱଭାବ,(ବିଂ-ବ.ବ୍ରୀ)ଶାନ୍ତସ୍ୱଭାବବିଶିଷ୍ଟ ।

ଶାନ୍ତଭାବ—ବି.(କ.ଧା)ବିନୀତଭାବ,ସମତା

ଶାନ୍ତଭାବାପନ୍ନ—ପୁଂ.ବିଂ(୭ତତ୍)ଶମତାପ୍ରାପ୍ତ, ଧୀରସ୍ୱଭାବଯୁକ୍ତ, (ସ୍ତ୍ରୀ) ଶାନ୍ତଭାବାପନ୍ନା ।

ଶାନ୍ତଂ—ଅବ୍ୟ. ବାରଣ,ନିବୃତ୍ତି, ଶମତାପ୍ରାପ୍ତ ।

ଶାନ୍ତମତି—ପୁଂ. ବି. ଦେବପୁତ୍ର ଭେଦ, (ବିଂ-ବ.ବ୍ରୀ) ଶାନ୍ତବୁଦ୍ଧି,ଶିଷ୍ଟପ୍ରକୃତିକ ।

ଶାନ୍ତମୂର୍ତ୍ତି—ବି. (କ.ଧା) ସୌମ୍ୟରୂପ, ଅନୁଦ୍ଧତ ଆକୃତି, ଧୀରମୂର୍ତ୍ତି, (ବିଂ-ବ.ବ୍ରୀ) ଅନୁଦ୍ଧତ ଆକୃତିବିଶିଷ୍ଟ ।

ଶାନ୍ତରସ—ବି. (କ.ଧା) କାବ୍ୟର ନବରସ ମଧ୍ୟରୁ ଏକତମ ।

ଶାନ୍ତଶିଷ୍ଟ—ପୁଂ.ବିଂ. ଧୀର ଓ ଭଦ୍ର,(ସ୍ତ୍ରୀ) ଶାନ୍ତଶିଷ୍ଟା ।

ଶାନ୍ତଶୀଳ—ବି. (କ.ଧା) ଧୀରସ୍ୱଭାବ, ସତ୍ତ୍ୱପ୍ରକୃତି,(ପୁଂ.ବିଂ-ବ.ବ୍ରୀ)ସତ୍ତ୍ୱସ୍ୱଭାବସମ୍ପନ୍ନ,ଧୀରପ୍ରକୃତିକ,(ସ୍ତ୍ରୀ)ଶାନ୍ତଶୀଳା ।

ଶାନ୍ତସ୍ୱଭାବ—ବି. (କ.ଧା) ଧୀରପ୍ରକୃତି (ପୁଂ.ବିଂ-ବ.ବ୍ରୀ)ଅନୁଦ୍ଧତ ପ୍ରକୃତିବିଶିଷ୍ଟ, ଧୀରପ୍ରକୃତିକ, (ସ୍ତ୍ରୀ) ଶାନ୍ତସ୍ୱଭାବା ।

ଶାନ୍ତା—ସ୍ତ୍ରୀ. ବିଂ. (ଶାନ୍ତ+ଆ) ଶାନ୍ତର ସ୍ତ୍ରୀଲିଙ୍ଗ, (ବି) ଦଶରଥଙ୍କ କନ୍ୟା, ଋଷ୍ୟଶୃଙ୍ଗ ମୁନିଙ୍କ ପତ୍ନୀ, ରେଣୁକା ନାମକ ଗନ୍ଧଦ୍ରବ୍ୟ, ଶମୀ, ଅଁଳା, ସଙ୍ଗୀତର ଶ୍ରୁତିବିଶେଷ ।

ଶାନ୍ତାତ୍ମା—ବିଂ. (ବ.ବ୍ରୀ) ସାଧୁପ୍ରକୃତି, ଶାନ୍ତସ୍ୱଭାବ, ଶିଷ୍ଟ ।

ଶାନ୍ତି—ବି. (ଶମ୍+ଭା.ତି) ସଂସାରର ଅନିତ୍ୟତା ଓ ଜାଗତିକ ସମସ୍ତ ବସ୍ତୁର ବିନଶ୍ୱରତାର ଜ୍ଞାନହେଲେ ଚିତ୍ତର ଯେଉଁ ନିଶ୍ଚେଷ୍ଟାବସ୍ଥା ହୁଏ,ସେହି ଅବସ୍ଥାରେ ଅନୁଭୂତ ଆତ୍ମବିଶ୍ରାମ,ଉଦ୍‌ବେଗର ବା କ୍ଷୋଭର ବା କ୍ରିୟାର ଅଭାବ,ମନର ସ୍ଥିରତା, ନିରୁପଦ୍ରବ, ବିଶ୍ରାମ, ଚିତ୍ତର ଆନନ୍ଦ, ମୁକ୍ତି, ସୌଭାଗ୍ୟ, ନିବୃତ୍ତି, ବିଷୟାଦିରୁ ଇନ୍ଦ୍ରିୟର ନିବୃତ୍ତି, ବିଘ୍ନନାଶ, ତୃଷ୍ଣାକ୍ଷୟ, ବିନାଶ, ଯୁଦ୍ଧ ପରେ ସନ୍ଧି, ଅନିଷ୍ଟ ଗ୍ରହଦୋଷାଦିର ଦୂରୀକରଣାର୍ଥ ପ୍ରାୟଶ୍ଚିତ୍ତାଦି ଉପଚାର, ନୀରବତା, ମରଣ, ଏକ ଗୋପୀଙ୍କ ନାମ, ଦୁର୍ଗା ।

ଶାନ୍ତିକ—ବି. (ଶାନ୍ତି+କ) ଶାନ୍ତିକର୍ମ ଦେଖ, (ବିଂ) ଶାନ୍ତି ସମ୍ବନ୍ଧୀୟ ।

ଶାନ୍ତିକର—ପୁଂ. ବିଂ. (ଶାନ୍ତି+କୃ+କ. ଅ) ଆନନ୍ଦକାରକ, ଯାହା ଶାନ୍ତି ବା ମନରେ ସୁଖ ଜନ୍ମାଏ, ତୃପ୍ତିକର, ଶାନ୍ତିପ୍ରଦ,ଚିତ୍ତସ୍ଥୈର୍ଯ୍ୟ ସମ୍ପାଦନକାରୀ, ବିଘ୍ନବିନାଶକ ।

ଶାନ୍ତିକରଣ—କ୍ଲୀ. ବି. ଶାନ୍ତିକାର୍ଯ୍ୟ ।

ଶାନ୍ତିକରଦେବ—ଐ. ବି. ଉତ୍କଳର ଭୌମବଂଶର ଜନୈକ ରାଜା ।

ଶାନ୍ତିକରିବା—ଗ୍ରା. କ୍ରି. ଶାନ୍ତି ଦେବା, ତୃପ୍ତିକରିବା, ସ୍ଥିରକରିବା ।

ଶାନ୍ତିକର୍ମ—ବି. ସ୍ୱସ୍ତ୍ୟୟନ, ବିଘ୍ନ, ପାପ, ଗ୍ରହଦୋଷାଦିର ଦୂରୀକରଣାର୍ଥ ପ୍ରାୟଶ୍ଚିତ୍ତାଦିର ଉପଚାର, ଦୈବାନୁଷ୍ଠାନାଦି ।

ଶାନ୍ତିକୃତ୍—ବିଂ. (ଶାନ୍ତି+କୃ+କ୍ୱିପ୍) ଶାନ୍ତିକାରକ ।

ଶାନ୍ତିଗୃହ—ବି.(କ.ଧା)ଯଜ୍ଞର ଶେଷରେ ପାପ ଓ ଅଶୁଭାଦିର ଶାନ୍ତିପାଇଁ ଯେଉଁ ଘରେ ସ୍ନାନ କରାଯାଏ ।

ଶାନ୍ତିଜନକ—ବିଂ. (ଶାନ୍ତି+ଜନ୍+କ. ଅକ) ଯାହା ଶାନ୍ତି ଜନ୍ମାଏ ।

ଶାନ୍ତିଜଳ—ବି. (ମଧ୍ୟ-କ.ଧା) ପୂଜା, ଯଜ୍ଞ, ହୋମାଦି କର୍ମ ଶେଷରେ ଏବଂ ମୃତାହାର ୧୧ଶ ଦିନ ଯେଉଁ ମନ୍ତ୍ରପୂତ ଜଳ କର୍ମକର୍ତ୍ତା ଓ ପାରିବାରିକ ବ୍ୟକ୍ତିମାନଙ୍କ ଉପରେ ସେଚନ କରାଯାଏ ।

ଶାନ୍ତିଦ—ପୁଂ.ବିଂ. (ଶାନ୍ତି+ଦା+କ.ଅ) ଶାନ୍ତିଦାୟକ, ଶାନ୍ତିଦାନକାରୀ, (ସ୍ତ୍ରୀ) ଶାନ୍ତିଦା, (ବି) ବିଷ୍ଣୁ ।

ଶାନ୍ତିଦାତା—ପୁଂ. ବିଂ. ଶାନ୍ତିଦ ଦେଖ, (ସ୍ତ୍ରୀ) ଶାନ୍ତିଦାତ୍ରୀ ।

ଶାନ୍ତିଦାୟକ—ପୁଂ.ବିଂ. ଶାନ୍ତିଦ ଦେଖ, (ସ୍ତ୍ରୀ) ଶାନ୍ତିଦାୟିକା ।

ଶାନ୍ତିଦାୟୀ—ପୁଂ. ବିଂ. ଶାନ୍ତିଦ ଦେଖ, (ସ୍ତ୍ରୀ) ଶାନ୍ତିଦାୟିନୀ ।

ଶାନ୍ତିନାଶ—ବି.(୬ତତ୍)ଶାନ୍ତିଭଙ୍ଗ ଦେଖ ।

ଶାନ୍ତିନିକେତନ—ବି. ଶାନ୍ତିର ଆଳୟ, ଶାନ୍ତିମୟ ସ୍ଥାନ ।

ଶାନ୍ତିନିବାସ—ବି.ଶାନ୍ତିନିକେତନ ଦେଖ ।

ଶାନ୍ତିପର୍ବ—ବି. (କ.ଧା) ମହାଭାରତରେ ବର୍ଣ୍ଣିତହେବା ଦ୍ୱାଦଶ ଓ ବୃହତ୍ତମ ପର୍ବ ।

ଶାନ୍ତିପାତ୍ର—ବି.(କ.ଧା) ଯେଉଁ ପାତ୍ରରେ ଶାନ୍ତିଜଳ ରଖାଯାଏ ।

ଶାନ୍ତିପୁର—ଗ୍ରା. ବି. ପୂର୍ବବଙ୍ଗର ଗ୍ରାମବିଶେଷ, (ଅତ୍ରତ୍ୟ ତନ୍ତୀମାନେ ସରୁ ସୂତାର ଲୁଗା ବୁଣିବାରେ ବିଖ୍ୟାତ), (ସଂ-ବି) ଶାନ୍ତିନିକେତନ ।

ଶାନ୍ତିପୁରୀ—ଗ୍ରା.ବିଂ. ଶାନ୍ତିପୁରରେ ବୁଣାଯାଇଥିବା (ବସ୍ତ୍ରାଦି) ।

ଶାନ୍ତିପୂର୍ଣ୍ଣ—ବିଂ. ଶାନ୍ତିମୟ ଦେଖ ।

ଶାନ୍ତିପ୍ରଦ—ବିଂ. ଶାନ୍ତିଦ ଦେଖ ।

ଶାନ୍ତିପ୍ରିୟ—ବିଂ. (ବ.ବ୍ରୀ) ଯେଉଁ ବ୍ୟକ୍ତି ଶାନ୍ତିକୁ ସୁଖପାଏ, (ସ୍ତ୍ରୀ) ଶାନ୍ତିପ୍ରିୟା ।

ଶାନ୍ତିଭଙ୍ଗ—ବି.(୬ତତ୍)ଶାନ୍ତି ବିଷୟରେ ବିଘ୍ନ ଉପସ୍ଥିତ ହେବା, ଅଶାନ୍ତି ଉତ୍ପାଦନ, ଉପଦ୍ରବକରଣ ।

ଶାନ୍ତିମୟ—ବିଂ. (ଶାନ୍ତି+ମୟ)ଶାନ୍ତିଗୁଣାତ୍ମକ, ଶାନ୍ତିପୂର୍ଣ୍ଣ, ମଙ୍ଗଳମୟ,ଶାନ୍ତ, (ସ୍ତ୍ରୀ) ଶାନ୍ତିମୟୀ ।

ଶାନ୍ତରକ୍ଷକ—ପୁଂ.ବ.(୬ତତ୍ପ)ଶାନ୍ତରକ୍ଷା-କାରୀ ରକ୍ଷାଧିକୃତ ପୁରୁଷ, ଗୋଳ ଯୋଗ ନିବାରଣକାରୀ ପୁଲିଶ କର୍ମଚାରୀ।
ଶାନ୍ତରକ୍ଷା—ବି. (୬ତତ୍ପ)ଉପଦ୍ରବ ନିବାରଣ, ଗୋଳଯୋଗ ଦୂରୀକରଣ, ବିଘ୍ନ ନାଶ କରିବା।
ଶାନ୍ତିବାଚନ--ବି.ବୈଦିକ କର୍ମାଦିର ଅନୁଷ୍ଠାନ ସମାପ୍ତବେଳେ ଶାନ୍ତ୍ୟୁଦକ ସେଚନ ସମୟରେ ଯେଉଁ ବୈଦିକ ମନ୍ତ୍ର ପାଠ କରାଯାଏ, ଗ୍ରହ,ପ୍ରେତବାଧା,ପାପଆଦିରୁ ଉତ୍ପନ୍ନ ଅନିଷ୍ଟକୁ ଦୂରୀକରଣାର୍ଥ ମନ୍ତ୍ର-ପାଠ, 'ଶାନ୍ତି' ଶବ୍ଦ ଉଚ୍ଚାରଣ।
ଶାନ୍ତିବାରି—ବି.(କ.ଧା)ଶାନ୍ତିଜଳ ଦେଖ।
ଶାନ୍ତିଶତକ—ବି. ଶାନ୍ତି ବିଷୟକ ଏକ-ଶତ ଶ୍ଳୋକ ସମ୍ବଳିତ ଗ୍ରନ୍ଥ।
ଶାନ୍ତିସଦ୍ମ—କ୍ଲୀ. ବି. ଶାନ୍ତିଗୃହ ଦେଖ।
ଶାନ୍ତିସ୍ଥାପନ—ବି(୬ତତ୍ପ) ଅଶାନ୍ତି ଦୂରୀ-କରଣ, ଯୁଦ୍ଧ ପରେ ସନ୍ଧି ସ୍ଥାପନ, ଅରାଜକ ଦେଶରେ ଶାନ୍ତି ସ୍ଥାପନ।
ଶାନ୍ତିସ୍ୱସ୍ତ୍ୟୟନ—ବି.ଗ୍ରହପୀଡ଼ାଆଦି ନିବା-ରଣାର୍ଥ ଯଜ୍ଞ ହୋମାଦି କ୍ରିୟା।
ଶାନ୍ତିହୀନ—ବିଂ.(୩ତତ୍ପ)ଅଶାନ୍ତ, ଶାନ୍ତି-ବରହିତ, (ସ୍ତ୍ରୀ) ଶାନ୍ତିହୀନା।
ଶାନ୍ତିହୋମ—ପୁଂ.ବି. ଗ୍ରହ ବୈଗୁଣ୍ୟ ଓ ଉପଦ୍ରବାଦି ନିବାରଣାର୍ଥ ଅନୁଷ୍ଠିତ ଯଜ୍ଞକର୍ମାଦି। [ ଦେଖ।
ଶାନ୍ତ୍ୟୁଦ—ବି. (ମଧ୍ୟ-କ.ଧା) ଶାନ୍ତିଜଳ
ଶାନ୍ତ୍ୟୁଦକୁମ୍ଭ--ବି.ଶାନ୍ତି ଜଳପୂର୍ଣ୍ଣ ମାଠିଆ, ଶାନ୍ତ୍ୟୁଦ ଘଟ।
ଶାନ୍ତ୍ୱ—କ୍ଲୀ. ବି. ଅତି ମଧୁର, ସାନ୍ତ୍ୱ।
ଶାନ୍ତ୍ୱତ—ସ୍ତ୍ରୀ.ବି.ବ୍ରାହ୍ମଣଯଷ୍ଟିକା,ବ୍ରାହ୍ମଣ-ଝାଟିଆ ଗୁଳ୍ମ।
ଶାପ—ପୁଂ.ବି.(ଶପ୍+ଭା.ଅ) ଆକ୍ରୋଶ, ଅଭିଶାପ,(ଣ.ଅ)ଶପଥ, ଗାଳି, ଧିକ୍କାର, ଦିବ୍ୟ, ଉପଦ୍ରବ।
ଶାପଗ୍ରସ୍ତ—ପୁଂ. ବିଂ. (୩ତତ୍ପ) ଯାହାକୁ ଅଭିଶାପ ଦିଆଯାଇଅଛି, ଅଭିଶପ୍ତ,(ସ୍ତ୍ରୀ) ଶାପଗ୍ରସ୍ତା।
ଶାପଜ୍ୱର—ବି. (କ.ଧା) ମାତା, ପିତା, ଗୁରୁଆଦିଙ୍କ ଅଭିଶାପଜନିତ ଜ୍ୱର।
ଶାପଟିକ—ପୁଂ. ବି. ମୟୂର।
ଶାପଦାତା—ପୁଂ. ବି. ଓ ବିଂ.ଯେ ଅନ୍ୟ ବ୍ୟକ୍ତିଙ୍କୁ ଅଭିଶାପ ଦିଏ, (ସ୍ତ୍ରୀ) ଦାତ୍ରୀ।
ଶାପଦେବା—ଗ୍ରା. କ୍ରି କୌଣସି ବ୍ୟକ୍ତିର ଅନିଷ୍ଟ ଘଟିବ ବୋଲି କହି ଅଭିସମ୍ପାତ କରିବା। [ ଶାପପ୍ରାପ୍ତା।
ଶାପପ୍ରାପ୍ତ—ବିଂ.(୨ତତ୍ପ)ଅଭିଶପ୍ତ, (ସ୍ତ୍ରୀ)
ଶାପପ୍ରଭାବ—ବି.(୬ତତ୍ପ)କୌଣସି ବ୍ୟକ୍ତି ପ୍ରତି ଉଚ୍ଚାରିତ ହୋଇଥିବା ଅଭିଶାପର କ୍ଷମତା। [ ଫଳଭୋଗ।
ଶାପଭୋଗ—ବି. (୬ତତ୍ପ) ଅଭିଶାପର
ଶାପଭ୍ରଷ୍ଟ—ପୁଂ.ବିଂ.(୫ତତ୍ପ)ଅଭିଶାପର ଫଳରେ ହୀନଦଶା ପ୍ରାପ୍ତ ବା ସ୍ୱସ୍ଥାନ-ଚ୍ୟୁତ, (ସ୍ତ୍ରୀ) ଶାପଭ୍ରଷ୍ଟା।
ଶାପମୁକ୍ତ—ପୁଂ. ବିଂ. (୫ତତ୍ପ)ଅଭିଶାପ ଦେବା ବ୍ୟକ୍ତିଙ୍କୁ ଶାନ୍ତ କରାଇ ଅଭି-ଶାପ ଫଳରୁ ମୁକ୍ତିପ୍ରାପ୍ତ (ବ୍ୟକ୍ତି), ଶାପ ଭୋଗରୁ ଅବ୍ୟାହତି ପ୍ରାପ୍ତି।
ଶାପମୋଚନ—ବି(୫ତତ୍ପ)ଶାପୋଦ୍ଧାର, ମନ୍ତ୍ର ଓ ଉପାସନାଦି ଦ୍ୱାରା ଅଭିଶପ୍ତ ବ୍ୟକ୍ତିର ଶାପର ଫଳ ଭୋଗରୁ ଅବ୍ୟା-ହତି ପ୍ରାପ୍ତି।
ଶାପାନ୍ତ—ବି.(୬ତତ୍ପ) ଅଭିଶାପର ଫଳ ଭୋଗ କରିବା ସମୟର ସୀମା ଅତି-କ୍ରାନ୍ତହେବା, (ଗ୍ରା.ବି) ଧ୍ୱଂସ, ନାଶ।
ଶାପାମ୍ବୁ—ବି. (କ.ଧା) ଯେଉଁ ଜଳକୁ ଶାପଦାତା ହାତରେ ଧରି ଶାପବାକ୍ୟ ଉଚ୍ଚାରଣ କରନ୍ତି।
ଶାପାସ୍ତ୍ର—ପୁଂ.ବି.(ବ.ବ୍ରୀ) ମୁନି ଓ ଋଷି, ଯେ ରୁଷ୍ଟ ହେଲେ ଶାପରୂପକ ଅସ୍ତ୍ର ପ୍ରୟୋଗ କରନ୍ତି, (ରୂପ-କ.ଧା) ବିପକ୍ଷ ପ୍ରତି ଅସ୍ତ୍ର ରୂପେ ବ୍ୟବହୃତ ଅଭିଶାପ।
ଶାପିତ—ପୁଂ.ବିଂ(ଶପି+ର୍ମ.ତ)ନିନ୍ଦିତ, ତିରସ୍କୃତ, ଶାପଗ୍ରସ୍ତ, (ସ୍ତ୍ରୀ) ଶାପିତା।
ଶାପେଟ—ପୁଂ. ବି. କୁଶଜାତୀୟ ତୃଣ-ବିଶେଷ।
ଶାପୋତ୍ସର୍ଗ—ବି. (୬ତତ୍ପ)ଶାପଦେବା।
ଶାପୋଦ୍ଧାର—ବି.(୫ତତ୍ପ)ଶାପମୋଚନ, କୌଣସି ଦେବତାଙ୍କ ସ୍ତୋତ୍ରାଦି ପ୍ରତି ପୂର୍ବରୁ ଦିଆଯାଇଥିବା ଶାପର ମନ୍ଦ ଫଳରୁ ଉକ୍ତ ସ୍ତୋତ୍ରାଦିକୁ ମନ୍ତ୍ର ପ୍ରୟୋଗ ପୂର୍ବକ ମୁକ୍ତ କରିବା।
ଶାଫରିକ—ପୁଂ.ବି. (ଶଫର+ଇକ)ଯେ ମାଛ ଧରେ, ମାଛୁଆ, କେଉଟ, ଧୀବର।
ଶାମ—ତ୍ରି.ବିଂ. (ଶମ୍+ଅ)ଶମସମ୍ବନ୍ଧୀୟ, (ବି-ଶମ+ଶୀର୍+ଭା.ଅନ) ମେଳ, ସଦ୍ଭାବ, ବନ୍ଧୁତା, ସାମଗାନ।
ଶାମଣୀ—ଗ୍ରା.ବି.ବିଲରେ ହେବା ଜଳଜ ତୃଣବିଶେଷ।
ଶାମଦାନଦଣ୍ଡଭେଦ—ବି. ରାଜନୀତିସମ୍ବ-ନ୍ଧୀୟ ପ୍ରକ୍ରିୟା ଚତୁଷ୍ଟୟ, ଯଦ୍ଦ୍ୱାରା ରାଜା-ମାନେ ଶତ୍ରୁକୁ ବଶ କରନ୍ତି।
ଶାମନ—କ୍ଲୀ.ବି(ଶାମି+ଭା.ଅନ)ମାରଣ, ଶାନ୍ତି, ଶାନ୍ତ, ଦଣ୍ଡ,(କ.ଅନ)ଯମ, (ବିଂ-ଶମନ+ଅ)ଯମସମ୍ବନ୍ଧୀୟ,(ସ୍ତ୍ରୀ)ଶାମନୀ।
ଶାମନୀ—ସ୍ତ୍ରୀ. ବି. (ଶାମନ+ଅ+ଈ) ଦକ୍ଷିଣଦିଗ,(ଶମନ+ଈ)ଶାନ୍ତି,ସ୍ୱସ୍ଥତା, ଅନ୍ତ, ବଧ।
ଶାମିତ୍ର—ବି. (ଶାମି+ଣ.ଇତ୍ର) ଯଜ୍ଞରେ ମାଂସ ପାକାର୍ଥ ପ୍ରଜ୍ୱାଳିତ ଅଗ୍ନି, (ଅଧି. ଇତ୍ର) ଯଜ୍ଞାଗ୍ନି ପ୍ରଜ୍ୱଳିତ ହେବା ସ୍ଥାନ, ଯଜ୍ଞୀୟ ପଶୁମାରଣ ସ୍ଥାନ, (ଭା.ଇତ୍ର) ଯଜ୍ଞ, ଯଜ୍ଞପାତ୍ର, ଯଜ୍ଞାର୍ଥ ପଶୁ ବଧ।
ଶାମୀଲ—ବି.ଭସ୍ମ, ପାଉଁଶ, ସ୍ରକ୍,ମାଳା।
ଶାମୁକା—ଗ୍ରା. ବି. (ସଂ-ଶମ୍ବୁକ) ଶମ୍ବୁକ, ଶୁକ୍ତି, ଗ୍ରେଟ ଜଳାଶୟ, ଗାଡ଼ିଆ।
ଶାମୁଲ୍ଲା—ବି.ବେକରେ ପିନ୍ଧାଯିବା ଊର୍ଣ୍ଣା-ବସ୍ତ୍ର, କମ୍ଫର୍ଟର।
ଶାମୂଲ—କ୍ଲୀ.ବି. ପୁରାତନ ପଶମୀ ବସ୍ତ୍ର, ଊର୍ଣ୍ଣାବସ୍ତ୍ର।
ଶାମ୍ବ—ପୁଂ. ବି. ଜାମ୍ବବତୀଙ୍କ ଗର୍ଭଜାତ ଶ୍ରୀକୃଷ୍ଣଙ୍କ ପୁତ୍ର।
ଶାମ୍ବଦଶମୀ—ବି. ପୌଷ ଶୁକ୍ଳଦଶମୀ।
ଶାମ୍ବପୁରାଣ—ବି. ଉପପୁରାଣବିଶେଷ।
ଶାମ୍ବର—ତ୍ରି.ବିଂ. (ଶମ୍ବର+ଅ)ଶମ୍ବର-ନାମକ ଅସୁରଠାରୁ ଆଗତ, ଶମ୍ବର-ସମ୍ବନ୍ଧୀୟ, (ବି) ଶାମ୍ବରଲବଣ,

ଲୋଧ୍ରବୃକ୍ଷ ।
ଶାମ୍ବରଶିଳ୍ପ—ବି. ଇନ୍ଦ୍ରଜାଲ ।
ଶାମ୍ବର—ଗ୍ରା. ବି. ଶାମ୍ବରଲବଣ, ଶମ୍ବର ମୃଗଚର୍ମ ।
ଶାମ୍ବରିକ—ବି.(ଶାମ୍ବର + ଇକ)ଐନ୍ଦ୍ରଜାଲିକ, ଯାଦୁଗର ।
ଶାମ୍ବରୀ—ସ୍ତ୍ରୀ.ବି. ( ଶମ୍ବର + ଅ + ଈ ) ଶମ୍ବର ଦୈତ୍ୟନିର୍ମିତ ମାୟା, କୁହୁକବିଦ୍ୟା, ଯାଦୁଗରର ସ୍ତ୍ରୀ, କୁହୁକିନୀ, ଶାମ୍ବରଚନ୍ଦନ, ଲୋଧ,ମୂଷାକାନିଲତା ।
ଶାମ୍ବବିକ—ବି. (ଶମ୍ବୁ + ଇକ)ଶଙ୍ଖାର ।
ଶାମ୍ବୁକ—ବି. ( ଶମ୍ବୁକ + ଅ ) ଶମ୍ବୁକ, ଶାମୁକା ।
ଶାମ୍ଭର—ବି. ରାଜପୁତାନାର ଲବଣ ଉତ୍ପାଦକ ଶମ୍ଭର ହ୍ରଦ ଓ ତତ୍ତୀରବର୍ତ୍ତୀ ନଗରବାସୀ ଲୋକ,ଶାମ୍ଭରଲବଣ
ଶାମ୍ଭବ—ପୁଂ.ବିଂ. (ଶମ୍ଭୁ+ଅ)ଶିବସମ୍ବନ୍ଧୀୟ, (ସ୍ତ୍ରୀ) ଶାମ୍ଭବୀ, (ବି) ଶୈବ, ଶିବଉପାସକ. ଶମ୍ଭୁପୁତ୍ର, ଦେବଦାରୁବୃକ୍ଷ, ଗୁଗ୍ଗୁଲ, କର୍ପୂର, ବିଷବିଶେଷ, ଅଗସ୍ତି ଗଛ, ଶିବମଲ୍ଲୀ ।
ଶାମ୍ଭବକ୍ଷେତ୍ର—ବି. ଉତ୍କଳର ଅନ୍ତର୍ଗତ ଗୋଟିଏ ଶୈବ ତୀର୍ଥ,ଭୁବନେଶ୍ୱର ।
ଶାମ୍ଭବୀ—ସ୍ତ୍ରୀ.ବି. (ଶମ୍ଭୁ+ଈ) ପାର୍ବତୀ, ଦୁର୍ଗା, ନୀଳଦୂର୍ବା । [ ଶାନ୍ତ ।
ଶାମ୍ୟ—ବି. (ଶମ୍ + ଯ) ଶମତା, ବନ୍ଧୁତ୍ୱ,
ଶାମ୍ୟକର-ଗ୍ରା.ବିଂ.ଶୀତଳକର,ଶାନ୍ତକର ।
ଶାମ୍ୟପ୍ରାସ—କ୍ଲୀ.ବି. ଯଜ୍ଞର ବଳି ।
ଶାମ୍ରାଣୀ—ପ୍ରା.(ଗଞ୍ଜାମ)ବି. ଝୁଣା ।
ଶାୟ—ବି.ବିଂ. ନିଦ୍ରିତ ।
ଶାୟକ—ପୁଂ.ବି.(ଶୋ + ର୍ଣ.ଅକ)ଶର, ବାଣ, ଖଡ୍ଗ ।
ଶାୟିକ-ପୁଂ.ବି. ଯେ ଶଯ୍ୟାଦ୍ୱାରା ଆପଣା ଜୀବିକା ନିର୍ବାହ କରେ ।
ଶାୟିତ—ବି. ବିଂ. ( ଶୀ + ଣିଚ୍ + ତ ) ଯାହାକୁ ଶୁଆଇଦିଆଯାଇଅଛି,ଭୂମିରେ ନିପାତିତ, (ସ୍ତ୍ରୀ) ଶାୟିତା ।
ଶାୟିତା—ସ୍ତ୍ରୀ.ବି.(ଶାୟିତ + ଆ)ଶୟନକାରୀର ଭାବ ବା ଧର୍ମ,ଶୟନ,ଶୋଇବା ।
ଶାୟୀ—ପୁଂ.ବିଂ. (ଶୀ + କ୍ର.ଇନ୍)ଶୟନକାରୀ, ଯେ ଶୁଏ, (ସ୍ତ୍ରୀ) ଶାୟିନୀ ।
ଶାୟ୍ୟିକ—ବି.ବିଂ.(ଶଯ୍ୟା + ଇକ)ଶଯ୍ୟାଦ୍ୱାରା ଯେ ଜୀବିକା ନିର୍ବାହ କରେ,(ସ୍ତ୍ରୀ) ଶାୟ୍ୟିକା ।
ଶାର—ବିଂ. (ଶୃ + କ.ଅ) କୃଷ୍ଣ ରକ୍ତ ଓ ଶୁକ୍ଳ ଏହି ତିନ ବର୍ଣ୍ଣମିଶ୍ରିତ, ନୀଳ ଓ ପୀତବର୍ଣ୍ଣମିଶ୍ରିତ, ନାନା ବର୍ଣ୍ଣଯୁକ୍ତ,(ବି) ଶାଗୁଆ ରଙ୍ଗ,ପୀତବର୍ଣ୍ଣ,ବାୟୁ, ହଂସ, ଏକପ୍ରକାର ପଶା, ସାର,(ପୁଂ)ମଇନାପକ୍ଷୀ ।
ଶାରଗୁଣା—ଗ୍ରା.ପୁଂ.ବିଂ.(ସଂ—ଶକୁନ) ଶକୁନପକ୍ଷୀ, ଗୃଧ୍ରପକ୍ଷୀ
ଶାରଙ୍ଗ—ବି.(ଶାର = ନାନା ବର୍ଣ୍ଣବିଶିଷ୍ଟ + ଅଙ୍ଗ, ଯାହାର) ସାରଙ୍ଗ ଦେଖ, ମୟୂର, ପଦ୍ମ, ଚନ୍ଦ୍ର, ହଂସ, ଚାତକ, ହସ୍ତୀ, ମୃଗ, ଭୃଙ୍ଗ, ଶୁକ୍ଳପକ୍ଷ ରାତ୍ରି. ଶୋଭା, ସୂର୍ଯ୍ୟକାନ୍ତ, ଗୃହ,ବାସ, କୁସୁମ, ସିଂହ, କୋକିଳ,ସାରସ ପକ୍ଷୀ,କର୍ପୂର. ଅଗୁରୁ, ସୁବର୍ଣ୍ଣ, ରତ୍ନ, ବସୁଧା, ବୀଣା, ମେଘ, ଖଞ୍ଜନ ପକ୍ଷୀ, ଶଙ୍ଖ, କାମଧେନୁ, ବସ୍ତ୍ର, (ବିଂ) କଠିନ, ନାନା ବର୍ଣ୍ଣଯୁକ୍ତ, (ସ୍ତ୍ରୀ) ଶାରଙ୍ଗୀ, (ଗ୍ରା.ବି)ବିଷ୍ଣୁଙ୍କ ଧନୁ ।
ଶାରଙ୍ଗକ—ବି. ଏକପ୍ରକାର ପକ୍ଷୀ ।
ଶାରଙ୍ଗଧର-ଗ୍ରା.ବି.ସାରଙ୍ଗଧର ଦେଖ ।
ଶାରଙ୍ଗଷ୍ଠା—ବି. କାକଜଙ୍ଘା, ଗୁଞ୍ଜା ।
ଶାରଙ୍ଗାକ୍ଷୀ—ସ୍ତ୍ରୀ.ବିଂ.ଏଣୀନୟନା,ମୃଗଲୋଚନା (ସ୍ତ୍ରୀ) ।
ଶାରଙ୍ଗୀ—ସ୍ତ୍ରୀ.ବି.(ଶାରଙ୍ଗ + ଈ)ମାଈହରିଣ, ବାଦ୍ୟଯନ୍ତ୍ରବିଶେଷ,ଏକପ୍ରକାର ବେହେଲା ।
ଶାରଣିକ—ବି.ବିଂ.ରକ୍ଷାକର୍ତ୍ତା, ରକ୍ଷକ ।
ଶାରତଳ୍ପିକ—ବିଂ.ଶରଶାୟୀ, ଯେ ଶରଶଯ୍ୟାରେ ଶୟନ କରେ ।
ଶାରତ୍କ—ବି.ବିଂ. ଶରତ୍କାଳେ ଅଧ୍ୟୟନକାରୀ ।
ଶାରଦ—ବିଂ. (ଶରଦ + ଅ) ଶରତ୍କାଳୀନ, ଶାରଦୀୟ,ଅପ୍ରତିଭ, ବିନୀତ, ନବୀନ, ପ୍ରଶସ୍ତ, ସାମ୍ବତ୍ସରିକ, ଲଜ୍ଜାଳୁ, (ସ୍ତ୍ରୀ) ଶାରଦା,(ବି)ଶରତ୍କାଳ, ବର୍ଷ, ପୀଡ଼ା, ରୋଗ, ଶରତ୍କାଳୀନ ଧାନ୍ୟ, ଶରତ୍କାଳୀନ ଶସ୍ୟବିଶେଷ, ଶସ୍ୟ, ମେଥିମୁଗ, ଶ୍ୱେତପଦ୍ମ, ବକୁଳ, ଛତିଆନାଗଛ, ମେଘ, କାଶତୃଣ ।
ଶାରଦଚନ୍ଦ୍ର—ବି.(କ.ଧା) ଶରତ୍କାଳୀନ ନିର୍ମଳ ଚନ୍ଦ୍ର ।
ଶାରଦଧାନ—ଗ୍ରା. ବି. ଶରତ୍କାଳରେ ବାହାର ଶୀତକାଳରେ କଟାଯିବା ଧାନ, ଶାଳଧାନ ।
ଶାରଦନିଶା—ବି. ଶରତ୍କାଳୀନ ନିର୍ମଳାକାଶଯୁକ୍ତ ରାତ୍ରି ।
ଶାରଦମଲ୍ଲିକା—ସ୍ତ୍ରୀ. ବି. ଶରତ୍କାଳରେ ଜନ୍ମିବା ମଲ୍ଲି ।
ଶାରଦମୃଦ୍ଗ—ବି. ହରିତମୁଦ୍ଗ ।
ଶାରଦଯାବନାଳ—ବି. ଶରତ୍କାଳରେ ଉତ୍ପନ୍ନ ବାଜରା ।
ଶାରଦା—ସ୍ତ୍ରୀ.ବି. (ଶାରଦ + ଆ) ବାଗ୍ଦେବୀ, ସରସ୍ୱତୀ, ଦୁର୍ଗା, ସୁଆଁଲଇ, ବ୍ରାହ୍ମୀ, ମଣ୍ଡୂକପର୍ଣ୍ଣୀ, ହରିମିଗୁଣାଗ, ସ୍ଥଳକମଳ, ବୀଣାବିଶେଷ, ପ୍ରାଚୀନ କାଳର ଲିପିବିଶେଷ । [ ପଣ୍ଡିତ ।
ଶାରଦାକୁମାର—ପୁଂ.ବି. ସରସ୍ୱତୀ ପୁତ୍ର,
ଶାରଦାବିଲ୍—ଯା. ବି. ହରବିଲାସ ଶାରଦାଙ୍କ ପ୍ରଣୀତ ୧୯୨୮ର ବାଲ୍ୟବିବାହ ନିରୋଧ ଆଇନ୍ ।
ଶାରଦାମ୍ବା—ସ୍ତ୍ରୀ.ବି. ସରସ୍ୱତୀ ।
ଶାରଦିକ—କ୍ଲୀ.ବି.(ଶରତ୍ + ଇକ)ଶ୍ରାଦ୍ଧ, ଶରତ୍ ଋତୁରେ ହେବା ଜ୍ୱର, ରୋଗ, ଖରା ।
ଶାରଦୀ—ବି. ( ଶାରଦ + ଈ ) କୁମାରପୂର୍ଣ୍ଣିମୀ, ଜଳପିପ୍ପଳୀ, ଛତିଆନାଗଛ, (ଶରଦ + ଈ) ଅପରାଜିତା, ଶ୍ୱେତକମଳ,ଅନ୍ନ ଓ ଫଳଆଦ,(ବିଂ)ଶରତ୍କାଳୀନ, ସମ୍ବତ୍ସର ବତ୍ସର ସମ୍ବନ୍ଧୀୟ ।
ଶାରଦୀୟ—ବିଂ.(ଶରଦ + ଈୟ)ଶରତ୍କାଳୀନ, (ସ୍ତ୍ରୀ) ଶାରଦୀୟା ।
ଶାରଦୀୟଉତ୍ସବ—ବି. ଶରତ୍କାଳରେ ଅନୁଷ୍ଠେୟ ଉତ୍ସବ ।

ଶାରଦୀୟପୂଜା—ବ. ଶରତ୍‌କାଳୀନ ଦୁର୍ଗାପୂଜା ।

ଶାରଦୀୟପୂର୍ଣ୍ଣିମା—ବ. କୁମାରପୂର୍ଣ୍ଣିମା, ଆଶ୍ୱିନର ପୂର୍ଣ୍ଣିମା ।

ଶାରଦୀୟମହାପୂଜା-ସ୍ତ୍ରୀ.ବ.ଶରତ୍‌କାଳୀନ ଦୁର୍ଗାପୂଜା ।

ଶାରଦ୍ୱତ—ପୁଂ. ବ. କୃପୀଗର୍ଭ୍ୟ, ଶରଦ୍ୱତର ଗୋତ୍ରାପତ୍ୟ ।

ଶାରଦ୍ୟ—ବି.ବଂ.(ଶରଦ୍+ଯ) ଶରତ୍‌କାଳସମ୍ବନ୍ଧୀୟ, ଶରତ୍‌କାଳୀନ ।

ଶାରଭ—ବି.ବଂ. (ଶରଭ+ଅ)ଶରଭସମ୍ବନ୍ଧୀୟ ।

ଶାରମ୍ବର—କ୍ଲୀ.ବ. ଜନପଦଭେଦ ।

ଶାର(ରି)—ବ. (ଶୃ+କ.ଇ,ଇ) ପଶାଖେଳର ଗୋଟି, ପାଶକ୍ରୀଡ଼ାର ବଳ, ମଇନା, ଶାରୀପକ୍ଷୀ, ବୀଣା ବଜାଇବାର ଯଷ୍ଟି, (ମୀ.ଇ) ଯୁଦ୍ଧ ସମୟରେ ହାତୀ ଉପରେ ପକାଯିବା ପଲାଣ, ପ୍ରତାରଣା, ଛଳ, ଜନାବାଦ ଏକପ୍ରକାର ଗୀତ ।

ଶାରକା—ବ. (ଶାର+କ+ଆ) ମଇନା ପକ୍ଷୀ, ଶତରଞ୍ଜ ବା ପଶାଖେଳ,ଶାରଙ୍ଗୀ ଆଦି ବଜାଇବା କମାଣୀ, ବୀଣା ବା ଶାରଙ୍ଗୀ ଆଦି ବାଦନ କର୍ମ, ଦୁର୍ଗା ।

ଶାରକାକବଚ—ବ. ରୁଦ୍ରଯାମଳୋକ୍ତ ଦୁର୍ଗାନାମୀୟ ଧାରଣୀୟ କବଚ ଭେଦ ।

ଶାରକାକୂଟ—କ୍ଲୀ. ବ. ନଗରବିଶେଷ ।

ଶାରକାପୀଠ—କ୍ଲୀ. ବ. ତୀର୍ଥବିଶେଷ ।

ଶାରକୁକ୍ଷ—ବି. ବଂ. ଶାରତୁଲ୍ୟ କୁକ୍ଷିଦେଶବିଶିଷ୍ଟ ।

ଶାରଡ—ବଂ. ରଙ୍ଗିନ୍ ଚିତ୍ରବିଚିତ୍ର ।

ଶାରପଟ(ଫଳ)—ବ. ପଶାଖେଳିବାର ଛକ, ପଶାପାଲି ।

ଶାରିବା—ବ. ଶୁଆଁଲଇ, ଶ୍ୟାମାଲତା, କୃଷ୍ଣଶାରିବା,ଟେମିଡ଼ାଲଇ,ଶୁକ୍ଳଶାରିବା, ଅନନ୍ତମୂଳ, କବାସ, ଦୁରାଲଭା ।

ଶାରିଶୃଙ୍ଖଳା—ସ୍ତ୍ରୀ. ବ. ପାଶକବିଶେଷ, ଏକପ୍ରକାର ପଶାଖେଳ ।

ଶାରିଶୃଙ୍ଗ—ବ. ପଶାଖେଳିବା ଗୋଟି ।

ଶାରୀ—ସ୍ତ୍ରୀ. ବ. (ଶୃ+ଇ) ଶାରି ଦେଖ, କୁଶତୃଣ, ମୁଞ୍ଜତୃଣ, ଖେଳିବାର ପେଣ୍ଡୁ ।

ଶାରୀର—କ୍ଲୀ. ବ. ଜୀବାତ୍ମା, ବେଦାନ୍ତ ସୂତ୍ର, ବୃଷ, ଷଣ୍ଢ, ଶରୀରପ୍ରଭବ ହେବା ଦୁଃଖ, (ବଂ) ଦୈହିକ,ଶରୀର ସମ୍ବନ୍ଧୀୟ, ଶରୀରଜାତ ।

ଶାରୀରକ—ବଂ. (ଶରୀର+କ) ଶରୀରରୁ ଉତ୍ପନ୍ନ, (ବ) ବେଦାନ୍ତ ମୀମାଂସା ସମ୍ବନ୍ଧୀୟ ଶଙ୍କରଭାଷ୍ୟ ।

ଶାରୀରକଭାଷ୍ୟ—ବ. ଶାରୀରକ ଦେଖ ।

ଶାରୀରକସୂତ୍ର—ବ. ବେଦବ୍ୟାସଙ୍କ ରଚିତ ବେଦାନ୍ତ ସୂତ୍ର । [ ବିଷୟ ।

ଶାରୀରତତ୍ତ୍ୱ-ବ.ଶରୀର ସମ୍ବନ୍ଧୀୟ ଜ୍ଞାତବ୍ୟ

ଶାରୀରବିଜ୍ଞାନ—ବ.ଜୀବ ଶରୀର ସମ୍ବନ୍ଧୀୟ ତତ୍ତ୍ୱଜ୍ଞାପକ ଶାସ୍ତ୍ର ।

ଶାରୀରସ୍ଥାନ—ବ. ଦୈହିକ ତତ୍ତ୍ୱନିର୍ଣ୍ଣାୟକ ଶାସ୍ତ୍ର, ଦେହର ଭିନ୍ନ ଭିନ୍ନ ଅଂଶ ସମ୍ବନ୍ଧୀୟ ଶାସ୍ତ୍ର,ଦେହାଂଶ ସଂସ୍ଥାନବିଦ୍ୟା

ଶାରୀରିକ—ବି. ବଂ. (ଶରୀର+ଇକ) କାୟିକ,ଶରୀରସମ୍ବନ୍ଧୀୟ,ଶରୀରଜାତ, (ବ) ଜୀବାତ୍ମା,ବେଦାନ୍ତ ସୂତ୍ର ।

ଶାରୁକ—ପୁଂ. ବଂ.(ଶୃ+କ.ଉକ)ହିଂସ୍ର. ହିଂସାକର, ଘାତୁକ, (ସ୍ତ୍ରୀ) ଶାରୁକା ।

ଶାର୍କ—ପୁଂ. ବ. ଶର୍କରା, ଚିନି, ଗୋତ୍ର ପ୍ରବର୍ତ୍ତକ ଋଷିବିଶେଷ ।

ଶାର୍କକ—ପୁଂ. ବ. ଦୁଗ୍ଧର ଫେଣ,ଚିନିର ଖଣ୍ଡ, ମାଂସର ଖଣ୍ଡ ।

ଶାର୍କର—ପୁଂ.ବ. ଲୋଧ୍ରବୃକ୍ଷ, ଦୁଗ୍ଧଫେନ, ଗୋଡ଼ିଆଭୂମି, (ବଂ-ଶର୍କରା+ଅ)ଶର୍କରାରୁ ଜାତ,କେଁରାମିଶ୍ରିତ,କଙ୍କରମିଶ୍ରିତ, ଦାନାଦାର, (ସ୍ତ୍ରୀ) ଶାର୍କରୀ ।

ଶାର୍କରକ—ପୁଂ.ବ.(ଶାର୍କର+କ)ଶର୍କରା ବହୁଳଦେଶ, କଙ୍କରମୟ ସ୍ଥାନ,(ବଂ) କଙ୍କରମୟ ।

ଶାର୍କରମଦ୍ୟ—କ୍ଲୀ. ବ. ଚିନି ଓ ଧାଇ ଫୁଲରୁ ପ୍ରସ୍ତୁତ ମଦ୍ୟ ।

ଶାର୍କରାକ୍ଷି—ପୁଂ. ବ. ଶର୍କରାକ୍ଷର ପ୍ରବର୍ତ୍ତିତ ଗୋତ୍ର । [ ପତ୍ୟ ।

ଶାର୍କରାକ୍ଷ୍ୟ—ପୁଂ. ବ.ଶର୍କରାକ୍ଷର ଗୋତ୍ରା-

ଶାର୍କରିକ—ପୁଂ.ବ.ଯେଉଁଦେଶରେ ଅଧିକ ଶର୍କରା ଚିନି ଅଛି ।

ଶାର୍କରିଲ—ବି. ବଂ.ଶର୍କରାଯୁକ୍ତ ଭୂମିରେ ଯାହା ଉତ୍ପନ୍ନ ହୁଏ ।

ଶାର୍କରୀଧାନ—ବ. ଉତ୍ତର ଦିଗରେ ଥିବା ଦେଶଭେଦ ।

ଶାର୍କରୀୟ—ବି.ବଂ.ଶର୍କରାଯୁକ୍ତ (ଦେଶ) ।

ଶାର୍କୋଟ—ବି. ବଂ. ବିଷସମ୍ବନ୍ଧୀୟ ।

ଶାର୍ଙ୍ଗ—କ୍ଲୀ.ବ. (ଶୃଙ୍ଗ+ଅ)ବିଷ୍ଣୁଙ୍କ ଧନୁ, ଧନୁ, ଅଦା, ସାମଗାନଭେଦ, (ବଂ) ଶୃଙ୍ଗ ସମ୍ବନ୍ଧୀୟ, ଶୃଙ୍ଗନିର୍ମିତ ।

ଶାର୍ଙ୍ଗକ—ପୁଂ. ବ. (ଶାର୍ଙ୍ଗ+କ) ପକ୍ଷୀ, ଧନୁର୍ଦ୍ଧାରୀ ବ୍ୟକ୍ତି । [ ୟିତା ।

ଶାର୍ଙ୍ଗଦତ୍ତ—ପୁଂ. ବ. ଧନୁର୍ବେଦ ରଚ-

ଶାର୍ଙ୍ଗଦେବ—ପୁଂ.ବଂ. ସଙ୍ଗୀତରତ୍ନାକର ପ୍ରଣେତା ।

ଶାର୍ଙ୍ଗଧନ୍ୱା—ପୁଂ. ବ. ବିଷ୍ଣୁ, ଶ୍ରୀକୃଷ୍ଣ, ଧନୁର୍ଦ୍ଧାରୀ ମାତ୍ର ।

ଶାର୍ଙ୍ଗଧର—ପୁଂ.ବ.ବିଷ୍ଣୁ, ଶ୍ରୀକୃଷ୍ଣ,ଧନୁର୍ଦ୍ଧାରୀ ବ୍ୟକ୍ତି, ସ୍ୱନାମଖ୍ୟାତ ଚିକିତ୍ସାଗ୍ରନ୍ଥକାର ।

ଶାର୍ଙ୍ଗପାଣି—ପୁଂ. ବଂ. ଧନୁର୍ଦ୍ଧାରୀ, (ପୁଂ. ବ) ବିଷ୍ଣୁ, ଶ୍ରୀକୃଷ୍ଣ ।

ଶାର୍ଙ୍ଗପୁର—ବ. ଗୁଜରାଟ ପ୍ରାନ୍ତସ୍ଥ ମାଳବ ରାଜ୍ୟର ଅନ୍ତର୍ଗତ ଗୋଟିଏ ନଗର ।

ଶାର୍ଙ୍ଗଭୃତ୍—ପୁଂ. ବ ଓ ବଂ. ଶାର୍ଙ୍ଗଧର ଦେଖ ।

ଶାର୍ଙ୍ଗରବ—ପୁଂ. ବ. (ଶୃଙ୍ଗରବ+ଅ) ଶୃଙ୍ଗରବ ଋଷିଙ୍କ ଗୋତ୍ରଜ ବ୍ୟକ୍ତି ।

ଶାର୍ଙ୍ଗବେରକ—ପୁଂ.ବ. ଶୁଣ୍ଠୀସମାନବର୍ଣ୍ଣ ସ୍ଥାବର ବିଷଭେଦ ।

ଶାର୍ଙ୍ଗଷ୍ଟା—ସ୍ତ୍ରୀ.ବ. କାକମାଚି, କାକଜଙ୍ଘା, ଲତାକରଞ୍ଜ, ମହାକରଞ୍ଜ,ଗୁଞ୍ଜା ।

ଶାର୍ଙ୍ଗଷ୍ଠା—ସ୍ତ୍ରୀ. ବ. ଶାର୍ଙ୍ଗଷ୍ଟା ଦେଖ ।

ଶାର୍ଙ୍ଗାୟୁଧ—ପୁଂ. ବ. ଶ୍ରୀକୃଷ୍ଣ,(ବଂ)ଧନୁରାୟୁଧବିଶିଷ୍ଟ । [ ବିଶେଷ ।

ଶାର୍ଙ୍ଗିକ—ପୁଂ. ବ.ଶାର୍ଙ୍ଗକ ନାମକ ପକ୍ଷି-

ଶାର୍ଙ୍ଗୀ—ପୁଂ.ବ. (ଶାର୍ଙ୍ଗ+ଇନ୍)ବିଷ୍ଣୁ, ଶ୍ରୀକୃଷ୍ଣ, ଧନୁର୍ଦ୍ଧାରୀବ୍ୟକ୍ତି, (ବଂ) ଧନୁର୍ଦ୍ଧାରୀ, (ସ୍ତ୍ରୀ) ଶାର୍ଙ୍ଗିଣୀ ।

ଶାର୍ଦ୍ଦୂଳ—ପୁଂ. ବ.(ଶୃ+କ.ଦୂଳ)ବ୍ୟାଘ୍ର, ମୃଗଶ୍ରେଷ୍ଠ, ରାକ୍ଷସ, ଶରଭ, ଅଷ୍ଟପାଦ କାଳ୍ପନିକ ମୃଗବିଶେଷ, ପକ୍ଷିବିଶେଷ, ଚିତ୍ରକବୃକ୍ଷ,ରାଜଭେଦ,(ଲ.ଅର୍ଥ)ଶ୍ରେଷ୍ଠ।

ଶାର୍ଦ୍ଦୂଳକନ୍ଦ—ବି. ବନ୍ୟ ପଳାଣ୍ଡୁ।

ଶାର୍ଦ୍ଦୂଳକର୍ଣ୍ଣ—ପୁଂ. ବ. ତ୍ରିଶଙ୍କୁଙ୍କ ପୁତ୍ରବିଶେଷ।

ଶାର୍ଦ୍ଦୂଳଲଳିତ—କ୍ଲୀ,ବ.ଛନ୍ଦୋବିଶେଷ।

ଶାର୍ଦ୍ଦୂଳବାହନ—ପୁଂ. ବ. ପଞ୍ଚବିଂଶତି ଯୁଗଜିନାନ୍ତର୍ଗତ ଜିନବିଶେଷ।

ଶାର୍ଦ୍ଦୂଳବିକ୍ରୀଡ଼ିତ—ବି.ଊନବିଂଶତ୍ୟକ୍ଷରଯୁକ୍ତ ସଂସ୍କୃତ ଛନ୍ଦୋବିଶେଷ, ବାଘର ଖେଳ।

ଶାର୍ଦ୍ଦୂଳୀ—ଗ୍ରା. ବ. କବାଟର ଚଉକାଠ ଉପରେ ଦିଆଯିବା ଚେଡ଼ା ପଟା,ଶଗଡ଼ର କନ୍ଧଳ। [ ନ୍ଧୀୟ।

ଶାର୍ବ—ତ୍ରି. ବିଂ. (ଶର୍ବ+ଅ) ଶିବ ସମ୍ବ-

ଶାର୍ବର—ବି. (ଶର୍ବରୀ+ଅ)ଗାଢ଼ ଅନ୍ଧକାର, (ବିଂ)ରାତ୍ରିସମ୍ବନ୍ଧୀୟ,ରାତ୍ରିକାଳୀନ, ଘାତୁକ। [ ସମ୍ବନ୍ଧୀୟ।

ଶାର୍ବରିକ—ବିଂ. (ଶର୍ବରୀ+ଇକ) ରାତ୍ରି-

ଶାର୍ବରୀ—ବି. (ଶାର୍ବର+ଈ)ରାତ୍ରି,ରଜନୀ, ଲୋଧ୍ର, (ଶାର୍ବର+ଇନ୍) ବୃହସ୍ପତିଙ୍କ ୬୦ସମ୍ବତ୍ସର ମଧ୍ୟରୁ ୩୪ଶ ସମ୍ବତ୍ସର।

ଶାଲ୍—ପ୍ରା. (ସମ୍ବ) ବ. ଶିଳ।

ଶାଲ୍ପୁଆ—ପ୍ରା. (ସମ୍ବ)ବ ଶିଳପୁଆ।

ଶାଳ—ବି. (ଶାଲ୍+ର୍ମ,ଅ) ସର୍ପମୁଣ୍ଡୀ ଶକଳୀ କର୍ଦ୍ଦମଚର ମତ୍ସ୍ୟବିଶେଷ,ଶାଳିବାହନ ରାଜା, ପ୍ରାଚୀର, ପ୍ରାକାର, ବୃହତ୍ ଆରଣ୍ୟ ତରୁ,ସର୍ଜବୃକ୍ଷ, ଶାଳୁଆଣିଗଛ, ନଦୀବିଶେଷ, ଅସ୍ତ୍ରବିଶେଷ, ଅପରାଧୀକୁ ଦଣ୍ଡ ଦେବାପାଇଁ ବ୍ୟବହୃତ ଶୂଳବିଶେଷ, ମୂର୍ଖ, ବ୍ୟଥା,ବୃକ୍ଷ,ବୃକାସୁରର ଏକପୁତ୍ର,ଝୁଣା,ପୀତଶାଳ,ପିଆଶାଳଗଛ, (ଗ୍ରା.ବି-ସଂ-ଶାଳା) ଅଶ୍ୱାଦିଙ୍କ ରହିବାର ଘର, କମାର,କୁମ୍ଭାର ଆଦିଙ୍କ ଅଗ୍ନିଶାଳା ବା କାରଖାନା,ଆଖୁପେଡ଼ାଯିବାର ସ୍ଥାନ।

ଶାଳକ—ବି, ନଳିତାଶାଗ, ଝୁଠାକଥା, ଶ୍ରେଷ୍ଠଗଛ।

ଶାଳକଣ୍ଟଙ୍କଟ—ପୁଂ, ବ. ରାକ୍ଷସଭେଦ, ଶାଳ ଓ କଣ୍ଟଙ୍କଟ ମନ୍ତ୍ରବିଶେଷ।

ଶାଳକଲ୍ୟାଣି—ସ୍ତ୍ରୀ.ବ.ପତ୍ରଶାକବିଶେଷ।

ଶାଳଗ୍ରାମ—ପୁଂ.ବ(ଶାଳ+ଗ୍ରାମ)ଦେଶବିଶେଷ, ବିଷ୍ଣୁ ମୂର୍ତ୍ତିବିଶେଷ, ବଜ୍ରକୀଟ ଦ୍ୱାରା ଛିଦ୍ରଯୁକ୍ତ ହୋଇଥିବା ଚକ୍ର ଓ ଛିଦ୍ରବିଶିଷ୍ଟ ଗଣ୍ଡକୀନଦୀ ଗର୍ଭସ୍ଥ ନାନାବର୍ଣ୍ଣର ଶିଳପିଣ୍ଡବିଶେଷ।

ଶାଳଗ୍ରାମଗିରି—ପୁଂ. ବ. ଶାଳ ଗ୍ରାମୋତ୍ପାଦକ ପର୍ବତବିଶେଷ।

ଶାଳଗ୍ରାମଶିଳା—ବି. ଶାଳଗ୍ରାମ, ଗଣ୍ଡକୀ ନଦୀଗର୍ଭରୁ ପ୍ରାପ୍ତ ଉପଳ ଖଣ୍ଡ।

ଶାଳଗ୍ରାମୋଦକ—ବି. ଯେଉଁ ଜଳରେ ଶାଳଗ୍ରାମ ଶିଳାକୁ ସ୍ନାନ କରାଯାଏ ସେହି ପବିତ୍ର ଜଳ।

ଶାଳଘର—ଗ୍ରା.ବି. କମାର କୁମ୍ଭାରଆଦି ଶିଳ୍ପୀଙ୍କ କର୍ମଗୃହ, ଆଖୁପେଡ଼ା ଓ ଗୁଡ଼ରନ୍ଧା ସ୍ଥାନ।

ଶାଳଙ୍କଟାଙ୍କଟ—ପୁଂ.ବ, (ଶାଳଙ୍କଟଙ୍କଟ+ଅ) ସୁକେଶୀ ରାକ୍ଷସ।

ଶାଳଙ୍କାୟନ—ପୁଂ, ବ. ମୁନିବିଶେଷ, ବିଶ୍ୱାମିତ୍ରଙ୍କ ଏକପୁତ୍ର ଶିବାନୁଚର ନନ୍ଦୀ।

ଶାଳଙ୍କାୟନକ—ପୁଂ. ବ. ଶାଳଙ୍କାୟନ ମୁନିମାନଙ୍କ ଅଧିଷ୍ଠିତ ଦେଶ, ଶାଳଙ୍କାୟନ ଦେଖ।

ଶାଳଙ୍କାୟନଜା—ସ୍ତ୍ରୀ. ବ. ସତ୍ୟବତୀ, ବ୍ୟାସଦେବଙ୍କ ମାତା।

ଶାଳଙ୍କାୟନଜାବସୂ—ସ୍ତ୍ରୀ. ବ. ସତ୍ୟବତୀ, ବ୍ୟାସଙ୍କ ମାତା।

ଶାଳଙ୍କି—ପୁଂ.ବ. ପାଣିନି ମୁନିଙ୍କ ନାମ।

ଶାଳଙ୍କୀ—ବି. ପୁଡ଼ି, କାଠପିତୁଳା।

ଶାଳଜ—ପୁଂ. ବ. (ଶାଳ+ଜନ୍+ଅ) ଶାଳମାଛ, ଶାଳ ଦେଖ।

ଶାଳ(ଳି)ଞ୍ଚ—ବି. ମଦରଙ୍ଗା ଶାଗ।

ଶାଳତରୁ—ବି. ଆରଣ୍ୟ ତରୁବିଶେଷ, ଶାଳଗଛ।

ଶାଳଡୁ—ବି. ଶାଳ କାଠରେ ନିର୍ମିତ କ୍ଷୁଦ୍ର ନୌକାବିଶେଷ।

ଶାଳନ—କ୍ଲୀ. ବ. ଶାକଶବଳ।

ଶାଳନିର୍ଯ୍ୟାସ—ପୁଂ. ବ. (୬ତତ୍ପୁ) ଝୁଣା, ଝୁଣା, ସର୍ଜରସ, ସାଳଗଛର ଅଠା।

ଶାଳପତ୍ରସମପତ୍ରୀ—ବି. ଶାଳପର୍ଣ୍ଣୀ।

ଶାଳପର୍ଣ୍ଣୀ—ବି(ଶାଳପର୍ଣ୍ଣ+ଇନ୍)ଶିମ୍ବାଦିବର୍ଗର ବନ୍ୟ କ୍ଷୁପବିଶେଷ, ଦଶମୂଳ ଔଷଧ ମଧ୍ୟରୁ ଏକ।

ଶାଳଭଞ୍ଜି(ଭଞ୍ଜିକା,ଭଞ୍ଜୀ)—ସ୍ତ୍ରୀ ବ.(ଶାଳ+ଭଞ୍ଜ+ଇକ୍+ଆ+ଈ) କାଷ୍ଠ ପୁତ୍ତଳିକା, କାଠକଣ୍ଢେଇ, ଗଣିକା, ବେଶ୍ୟା, କ୍ରୀଡ଼ାବିଶେଷ।

ଶାଳମୟ—ତ୍ରି,ବିଂ. ଶାଳଗଛ ପରିପୂର୍ଣ୍ଣ, ଶାଳ କାଠରେ ନିର୍ମିତ।

ଶାଳମର୍କଟ(କ)—ପୁଂ.ବି. ତାଳମୂଳଗଛ।

ଶାଳରସ—ପୁଂ.ବ.ଶାଳନିର୍ଯ୍ୟାସ ଦେଖ।

ଶାଳବ—ପୁଂ. ବ. ଲୋଧ୍ର।

ଶାଳବେଷ୍ଟ—ପୁଂ.ବ.ଶାଳନିର୍ଯ୍ୟାସ ଦେଖ।

ଶାଳଶାକ—ବି. ନଳିତା ଶାଗ।

ଶାଳସାର—ପୁଂ, ବ. ଶାଳଗଛ, ହିଙ୍ଗୁ, ଝୁଣାଗଛ।

ଶାଳା—ବି. (ଶାଳ+ର୍ମ.ଅ+ଆ) ଗୃହ, ଗୃହର ଅଂଶ, ନିର୍ଦ୍ଦିଷ୍ଟ କାର୍ଯ୍ୟରେ ବା ଉଦ୍ଦେଶ୍ୟରେ ବ୍ୟବହୃତ ଗୃହ, ଘରର ଶାହାଳ, ବଡ଼ଡ଼ାଳ, ବୃକ୍ଷବିଶେଷ।

ଶାଳୀ—ବି. ଶାଳା ଦେଖ, (ଯା.ବ)ଶଳା, ଭାର୍ଯ୍ୟାର ଭାଇ।

ଶାଳାକ—ବି. ଚକ୍ଷୁରୋଗରେ ବ୍ୟବହୃତ ଅସ୍ତ୍ର, ଜଙ୍ଗଲ, ଜଙ୍ଗଲ ଜାଳି ଉତ୍ପାଦନ କରିବା ନିଆଁ।

ଶାଳାକୀ—ପୁଂ. ବ. (ଶାଳାକ+ଇନ୍) ଅସ୍ତ୍ର ଚିକିତ୍ସକ, ଅସ୍ତ୍ରବୈଦ୍ୟ, ନାପିତ, ଭଣ୍ଡାରି, (ସ୍ତ୍ରୀ) ଶାଳାକିନୀ।

ଶାଳାକ୍ୟ—ପୁଂ. ବ. ଶଲାକାର ପୁତ୍ର, (କ୍ଲୀ.ବ) ଆୟୁର୍ବେଦୋକ୍ତ ଅଷ୍ଟପ୍ରକାର ତନ୍ତ୍ର ମଧ୍ୟରୁ ଗୋଟିଏ।

ଶାଳାଗ୍ନି—ପୁଂ. ବ. ଶାଳାସ୍ଥିତ ଅଗ୍ନି, ଗୃହର ନିଆଁ।

ଶାଳାଙ୍କୀ—ପୁଂ. ବ. (ଶାଳା+ଅଙ୍କ+ଅପା.ଅ+ଈ)କଣ୍ଢେଇ,କାଠର ପିତୁଳା।

ଶାଲାଙ୍ଗାର—ପୁଂ. ବି. କମାର, କମାର-ଶାଳରେ ଜଳା,ଶାଳ କାଠର ଅଙ୍ଗାର ।
ଶାଲାଜର—ପୁଂ. ବି. ଶଗ, ଶରାବ ।
ଶାଲାଞ୍ଜ—ସ୍ତ୍ରୀ.ବି.ଶାକଭେଦ, ମନ୍ଦରଙ୍ଗା ଶାଗ ।
ଶାଲାତୁଙ୍ଗ—ଗ୍ରା. ବି. ପ୍ରାଚୀନ ଉତ୍କଳର ତୁଙ୍ଗବଂଶୀୟ ଜନୈକ ରାଜା ।
ଶାଲାତୁର—ବି. ବର୍ତ୍ତମାନ ଲାହୋର ।
ଶାଲାତୁରୀୟ—ବି. ମୁନିଭେଦ, ପାଣିନି ମୁନିଙ୍କ ଅନ୍ୟ ନାମ ।
ଶାଲାଦ୍ୱାର—ବି.(୬ତତ୍ପୁ)ଗୃହର ଦ୍ୱାର ।
ଶାଲାନି—ସ୍ତ୍ରୀ. ବି. ବିଦାରି, ଶାଳପର୍ଣ୍ଣୀ ।
ଶାଲାପତି—ପୁଂ.ବି. (୬ତତ୍ପୁ) ଗୃହପତି, ଘରର ମାଲିକ ।
ଶାଲାମର୍କଟକ—କ୍ଳୀ. ବି. ମୂଳକ୍ୟ ମୂଳ, ବାଳମୂଳକ ।
ଶାଲାମୃଗ—ପୁଂ. ବି. ଶୃଗାଳ, ବିଲୁଆ ।
ଶାଲାର—କ୍ଳୀ.ବି. (ଶାଲା + ର + ଣ.ଅ) ହସ୍ତିନଖ, ସୋପାନ, ନିଶୁଣି, ପକ୍ଷି-ପିଞ୍ଜର, କାନ୍ଥରେ ଲଗାଯିବା ଖୁଣ୍ଟି ।
ଶାଲାବୃକ—ପୁଂ. ବି. (ଶାଲା + ବୃକ) ବାନର, କୁକୁର, ଶିଆଳ,ମୃଗ,ବିଲେଇ, ଶାଲଆପଟନ, କୋକଶିଆଳ ।
ଶାଲି—ବି. (ଶାଲ+ମି.ଇ) ହୈମନ୍ତିକ ଧାନ, ଗନ୍ଧମାର୍ଜାର, ଶାଳଆପଟନ, ସିଂହ, ବାସନା ଧାନର ଗୁଣ୍ଡଳ, ରସାଳେକ୍ଷୁ, ପକ୍ଷୀ, କୃଷ୍ଣଜୀରା ।
ଶାଲିଆପଟନ—ଗ୍ରା. ବି. ଗନ୍ଧମାର୍ଜାର, ଖଟାଶ ।
ଶାଲିକ—ବି.(ଶାଲା+ଇକ)ତନ୍ତୀ,ଟିକସ, ତନ୍ତୀମାନଙ୍କ ଗ୍ରାମ, ଶୁଆପକ୍ଷୀ, (ବିଂ. ଶାଲି + କ) ଚାଉଳରୁ ପ୍ରସ୍ତୁତ ।
ଶାଲିକପିଷ୍ଟ—ବି. ଚାଉଳ ଚୂନା ।
ଶାଲିକା—ବି.(ଶଲା+କ+ଆ)ଆଧାର, ସାଙ୍ଗଚଢ଼େଇ, ବଡାଗା, କନ୍ଦ, ଦେଶୀ-ଆଳୁ, ଗୃହ, ଶାଲପର୍ଣ୍ଣୀ ।
ଶାଲିଗୋପ—ବି. (ଶାଲି + ଗୁପ୍+କ.ଅ) ଧାନ୍ୟ କ୍ଷେତରକ୍ଷକ,(ସ୍ତ୍ରୀ)ଶାଲିଗୋପୀ ।
ଶାଲିଞ୍ଚ(ଞ୍ଚି)—ପୁଂ. ବି. ଶାକବିଶେଷ, ଶାଲଞ୍ଚ ଦେଶ ।
ଶାଲିତ—ତ୍ରି. ବିଂ. (ଶାଲା+ଇତ)ଶାଲ-ଯୁକ୍ତ, (ଗ୍ରା.ବିଂ.ସଂ-ଶବଳିତ)ଚର୍ଚ୍ଚିତ ।
ଶାଲିନୀ—ସ୍ତ୍ରୀ. ବିଂ. ଯୁକ୍ତା,ବଶିଷ୍ଟା, (ବି. ଶାଲିନ୍ + ଈ) ଏକାଦଶାକ୍ଷର ଛନ୍ଦୋ-ବିଶେଷ ।
ଶାଲିନୀକରଣ—ବି. ଗାଳି, ଭର୍ତ୍ସନା, ଧିକ୍‌କାର ।
ଶାଲିପର୍ଣ୍ଣୀ—ସ୍ତ୍ରୀ. ବି. ମାଷପର୍ଣ୍ଣୀ, ମେଦା ନାମକ ଔଷଧ,ପୃଶ୍ନିପର୍ଣ୍ଣୀ,ଶାଲପର୍ଣ୍ଣୀ ।
ଶାଲିପିଷ୍ଟ—ପୁଂ. ବି. ସ୍ଫଟିକମଣି ।
ଶାଲିମୂଳ—ବି. ହୈମନ୍ତିକ ଧାନ୍ୟ ମୂଳ ।
ଶାଲିବର୍ଦ୍ଧ—ପୁଂ.ବି.(ଶାଲି+ବର୍ଦ୍ଧ୍+କ. ଅ) ଧାନ୍ୟ ବର୍ଦ୍ଧନକାରୀ ବ୍ୟକ୍ତି ।
ଶାଲିବାହ—ପୁଂ.ବି.(ଶାଲି + ବହ୍ + କ. ଅ) ଧାନ ବହନକାରୀ ବଳଦ ।
ଶାଲିବା—ଗ୍ରା. ବି. ଚନ୍ଦନବଟିବା, ରଙ୍ଗା-ଇବା, ଡାଣ୍ଡି ସମାନ କରିବା ।
ଶାଲିବାହନ—ପୁଂ.ବି. ଶକାବ୍ଦ ପ୍ରବର୍ତ୍ତକ ରାଜାବିଶେଷ ।
ଶାଲିଶକ୍ତୁ—ବି. ଶାଲିଧାନ୍ୟକୃତ ଶକ୍ତୁ, ଶାରଦ ଧାନର ଚାଉଳଭଜା ଚୂନା ।
ଶାଲିହୋତ୍ର—ପୁଂ. ବି. ଘୋଡ଼ା, ମୁନି ପ୍ରବର୍ତ୍ତିକ ମୁନିଭେଦ, ଭୋଜରାଜକୃତ ଅଶ୍ୱ ବୈଦ୍ୟକଗ୍ରନ୍ଥ, ନକୁଳକୃତ ଅଶ୍ୱ-ଶାସ୍ତ୍ରବିଶେଷ ।
ଶାଲିହୋତ୍ରୀ—ପୁଂ. ବି. (ଶାଲିହୋତ୍ର+ଇନ୍) ଅଶ୍ୱବୈଦ୍ୟ, ପଶୁ ଚିକିତ୍ସକ ।
ଶାଲୀ—ପୁଂ.ବିଂ. (ଶାଲିନ୍+ଈ) ବଶିଷ୍ଟ, ଯୁକ୍ତ, (ସ୍ତ୍ରୀ) ଶାଳିନୀ, (ସ୍ତ୍ରୀ.ବି.ଶାଳ+ଈ) କୃଷ୍ଣଜୀରକ, ମେଥୀ, ଶାଲପର୍ଣ୍ଣୀ, ଦୁବଲଘ, (ଗ୍ରା.ସ୍ତ୍ରୀ.ବି) ଆପଣା ସ୍ତ୍ରୀଙ୍କ କନିଷ୍ଠା ଭଗିନୀ, ସ୍ତ୍ରୀଙ୍କ ପ୍ରତି ବ୍ୟବହୃତ ଗାଳି ।
ଶାଲୀନ—ପୁଂ.ବିଂ.(ଶାଲା+ଈନ)ବିନୀତ ଭଦ୍ର, ନମ୍ର, ସଲଜ୍ଜ, ସଦୃଶ, ତୁଲ୍ୟ, ଶାଲାସମ୍ବନ୍ଧୀୟ, ଧନବାନ୍,ଦକ୍ଷ,ଚତୁର, (ସ୍ତ୍ରୀ) ଶାଲୀନା,(ବି-ଶାଲି+ଈନ)ଉତ୍କୃଷ୍ଟ ଧାନ୍ୟ ।
ଶାଲୀନତା(ତ୍ୱ)—ବି. ଶାନ୍ତଭାବ,ନମ୍ରତା, ଅଧୃଷ୍ଟତା, ଲଜ୍ଜାଶୀଳତା ।
ଶାଲୀନା—ସ୍ତ୍ରୀ. ବି. ଶତପୁଷ୍ପା, ଶତଦ୍ରୁ, ପାନମଧୁର ।
ଶାଲୀପରହାସ—ଗ୍ରା. ବି. ଶ୍ୟାଳିକା ଓ ଭଗ୍ନୀପତିଙ୍କ ମଧ୍ୟରେ ପ୍ରଚଳିତ ଥଟ୍ଟା ପରିହାସ ବା ଥଟ୍ଟା ।
ଶାଲୀୟ—ତ୍ରି.ବିଂ. (ଶାଲା+ଈୟ)ଗୃହ-ସମ୍ବନ୍ଧୀୟ, ଶାଲାସମ୍ବନ୍ଧୀୟ, ଶାଳବୃକ୍ଷ-ସମ୍ବନ୍ଧୀୟ(ବି)ଜନୈକ ବୈଦିକ ଆଚାର୍ଯ୍ୟ ।
ଶାଲୁ—କ୍ଳୀ.ବି.(ଶ + କ.ଉ)କଷାୟଦ୍ରବ୍ୟ, ବେଙ୍ଗ, ଗନ୍ଧଦ୍ରବ୍ୟବିଶେଷ, ଶାଲୁକ,ପଦ୍ମ-ମୂଳ, ଚୈରକ ନାମକ ଔଷଧ, ଫଳ-ବିଶେଷ, ପଦ୍ମକନ୍ଦ ।
ଶାଲୁଆ—ଗ୍ରା.ବି. ବାଉଁଶକାଠିରେ ବୁଣା ମାଛ ଧରିବାର ବାଡ଼ଯୁକ୍ତ ଯନ୍ତ୍ର,ଶାଳ-ଗଛ, ଶାଳଗଛନିର୍ମିତ ଶ୍ରେଷ୍ଠ ଡଙ୍ଗା ।
ଶାଲୁଆଗଛା—ଗ୍ରା.ବି. ଶ୍ରେଷ୍ଠ ବା କଅଁ-ଳିଆ ଶାଳୁଆ ଗଛ ।
ଶାଲୁକ—କ୍ଳୀ.ବି.(ଶଲ+ମି.ଉକ)କୁମୁଦ, କଇଁ, ପଦ୍ମମୂଳ, କଇଁମୂଳ ।
ଶାଲୂକ—ବି. ପଦ୍ମାଦିର ମୂଳ, ବେଙ୍ଗ, ମଣ୍ଡୂକ, ଜାଇଫଳ ।
ଶାଲୂର—ପୁଂ.ବି. ( ଶଲ୍ + କ.ଊର ) ବେଙ୍ଗ, ଛନ୍ଦୋଭେଦ ।
ଶାଲେୟ—ପୁଂ.ବି.(ଶାଲି+ଏୟ)ଯେଉଁ ଭୂମିରେ ଶାରଦଧାନ ହୁଏ, ଶ୍ରେଷ୍ଠ ମୂଳା, ପାନମଧୁର, ସଉଫ, (ବିଂ-ଶାଲି +ଏୟ) ଶାଳବୃକ୍ଷସମ୍ବନ୍ଧୀୟ, (ଶାଲା +ଏୟ) ଶାଲାସମ୍ବନ୍ଧୀୟ ।
ଶାଲେୟା—ବି. ମେଥୀ ।
ଶାଲୋତ୍ତର—ବି. ( ଶାଲା+ଉତ୍ତର ) ମୁନିବିଶେଷ,ପାଣିନିମୁନିଙ୍କ ଗୁରୁ,ପାଣିନି ମୁନିଙ୍କ ଆଶ୍ରମ ।
ଶାଲୋତ୍ତରୀୟ—ପୁଂ.ବି. (ଶାଲୋତ୍ତର+ଈୟ)ଶାଲୋତ୍ତରମୁନିଙ୍କ ଶିଷ୍ୟ,ପାଣିନି-ମୁନି ।
ଶାଲ୍ମଳ—ପୁଂ.ବି. (ଶାଲ + କ ମଲ)ଶିମିଳି ଗଛ, ଶାଲ୍ମଳୀଦ୍ୱୀପ, ମୋଚରସ ।

ଶାଲ୍ମଳ(ଳୀ)—ବ. ଶିମିଳି ଗଛ, ଦ୍ୱୀପ-ବିଶେଷ, ମୋଚରସ, ନରକବିଶେଷ ।
ଶାଲ୍ମଳକ—ପୁଂ. ବ. ରୋହିତକ ବୃକ୍ଷ ।
ଶାଲ୍ମଳିକନ୍ଦ—ବ. ଶିମିଳି ଗଛର ମୂଳ, ଶିମିଳିକନ୍ଦା ।
ଶାଲ୍ମଳଦ୍ୱୀପ—ବ. ସପ୍ତଦ୍ୱୀପର ଅନ୍ତର୍ଗତ ଦ୍ୱୀପବିଶେଷ।
ଶାଲ୍ମଳକମ—ସ୍ତ୍ରୀ. ବ. ଶିମିଳି ଗଛ ।
ଶାଲ୍ମଳପତ୍ରକ—ବ. ସପ୍ତଚ୍ଛଦ, ଛତିଆନା ଗଛ ।
ଶାଲ୍ମଳଫଳ—ବ. ତେଜବତୀ ନାମକ ବୃକ୍ଷ ।
ଶାଲ୍ମଳଫଳକ—ବ. ସୁଶ୍ରୁତୋକ୍ତ କାଠର ପଟା; ଯହିଁ ଉପରେ ଛୁରୀଆଦିକୁ ଘଷି ଦାଢ଼ କରାଯାଏ ।
ଶାଲ୍ମଳସ୍ଥ—ପୁଂ. ବ. ଗରୁଡ଼ ।
ଶାଲ୍ମଳୀ—ସ୍ତ୍ରୀ. ବ. ଶାଲ୍ମଳୀ ବୃକ୍ଷ ।
ଶାଲ୍ମଳୀକଣ୍ଟକ—ବ. ଶିମିଳିଗଛର କଣ୍ଟା ।
ଶାଲ୍ମଳୀଫଳ—ବ. ଶିମିଳିଫଳ, ତେଜଃଫଳ ବୃକ୍ଷ ।
ଶାଲ୍ମଳୀବେଷ୍ଟ—ପୁଂ. ବ. ଶିମିଳିଅଠା, ମୋଚରସ ।
ଶାଲ୍ମଳୀସତ୍ତ୍ୱନିର୍ଯ୍ୟାସ—ବ. ଶିମିଳିଅଠା, ମୋଚରସ ।
ଶାଲ୍ମଳୀସ୍ଥଳ—ବ. ଶାଲ୍ମଳୀ ଦ୍ୱୀପ ।
ଶାଲ୍ୱ—ପୁଂ. ବ. (ଶାଲ+ବ) ଦେଶ-ବିଶେଷ, ଶାଲ୍ୱଦେଶ,ପ୍ରାଚୀନ ସୌଭ-ରାଜ୍ୟର ଅଧୀଶ୍ୱର ।
ଶାଲ୍ୱଣ—ବ. ବଥକୁ ପଗ୍ଭଇବା ପାଇଁ ତା ଉପରେ ଦିଆଯିବା ଲେପ, ଫଳ-ଆଦିର ପୋଡ଼ା ଓ ଚକଟା, ଭରତା ।
ଶାଲୁକ-ପୁଂ.ବ. କ୍ଷୁଦ୍ର ଚୁଡ଼ ନାମକ ପକ୍ଷୀ
ଶାଲ୍ୱେୟ—ପୁଂ. ବ. ଦେଶଭେଦ, ଉକ୍ତ ଦେଶର ରାଜା,ଉକ୍ତଦେଶବାସୀ ଲୋକ ।
ଶାଲ୍ୱେୟକ—ପୁଂ. ବ. ଶାଲ୍ୱେୟ ଦେଶ ବାସୀ ଲୋକ ।
ଶାବ—ପୁଂ.ବ.(ଶବ+ଅ) ଶିଶୁ,ଶ୍ମଶାନ, ଶାବକ ଦେଖ, ମୂର୍ଚ୍ଛାର, ମାଟିଆ ବର୍ଣ୍ଣ, ମୃତକାଶୌଚ, (ବିଂ) ଶବସମ୍ବନ୍ଧୀୟ, (ସ୍ତ୍ରୀ) ଶାବୀ ।

ଶାବକ—ବ. (ଶବ+କ.ଅକ)ଶିଶୁ,ପଶୁ, ପକ୍ଷୀଆଦିଙ୍କ ଛୁଆ, ଝାଉଁ ଗଛ ।
ଶାବନ(ନା,ନ)—ବିଂ.ସାବନା(ନ)ଦେଖ ।
ଶାବର—ବିଂ.(ଶବର+ଅ) ଶବର ସମ୍ବନ୍ଧୀୟ, ବ୍ୟାଧ ସମ୍ବନ୍ଧୀୟ,ଦୁଷ୍ଟ, କପଟୀ, (ବ)ପଣ୍ଡିତ ଶବରସ୍ୱାମୀଙ୍କ କୃତ ଭାଷ୍ୟ-ଗ୍ରନ୍ଥବିଶେଷ, ମୃଗଚର୍ମ, ପାପ, ଦୋଷ, ଅପରାଧ, ଲୋଧଗଛ, ତମ୍ବା,ଅନ୍ଧକାର, ଶବରଚନ୍ଦନ, ମନ୍ଦ, ଅମଙ୍ଗଳ,ତନ୍ତ୍ରଗ୍ରନ୍ଥ ବିଶେଷ, (ସ୍ତ୍ରୀ) ଶାବରୀ ।
ଶାବରଚନ୍ଦନ—ବ. ଏକପ୍ରକାର ଚନ୍ଦନ ।
ଶାବରଭାଷ୍ୟ—ବ. ଶବରସ୍ୱାମୀଙ୍କ କୃତ ମୀମାଂସାଶାସ୍ତ୍ରର ପ୍ରସିଦ୍ଧ ଟୀକା ।
ଶାବରଭେଦାଖ୍ୟ—ବ. ତାମ୍ର, ତମ୍ବା ।
ଶାବରଲୋଧ୍ର—ବ. ପାଟକିଆ ଲୋଧ୍ର ।
ଶାବରିକା—ବ. ଏକପ୍ରକାର ଜୋକ ।
ଶାବରୀ—ସ୍ତ୍ରୀ.ବ. ଶାବରୀଭାଷା, ଶୁକଶିମ୍ବୀ, ବାଇଡଙ୍କ, ଶାବରୀବିଦ୍ୟା ଦେଖ ।
ଶାବରୀଭାଷା—ବ. ଶବରଜାତିଙ୍କ କଥିତ ଅନାର୍ଯ୍ୟ ପ୍ରାକୃତଭାଷାବିଶେଷ ।
ଶାବରୀବିଦ୍ୟା—ବ. ଇନ୍ଦ୍ରଜାଲ ବିଦ୍ୟା ।
ଶାବଲ—ଗ୍ରା. ବ. (ଫ-ଶବ୍‌ଲା) ତୀକ୍ଷ୍ଣାଗ୍ର ସ୍ଥୂଳ ଲୌହଦଣ୍ଡ, ତୋମରାସ୍ତ୍ର, ଖନିତ୍ର, ଖଣତି ।
ଶାବ(ବୋ)ଳ—ଗ୍ରା. ବ. ଶ୍ରେଷ୍ଠ ଶାବଲ, ଚିକ୍କଣକାଠି ।
ଶାବଲ୍ୟ—ବ. (ଶବଳ+ଭା.ଯ)ନାନାବର୍ଣ୍ଣ-ବିଶିଷ୍ଟତା, ଏକସଙ୍ଗେ ବିଭିନ୍ନ ବର୍ଣ୍ଣର ମେଳ ।
ଶାବସ୍ତ—ବ.ରାଜା ଯୁବନାଶ୍ୱଙ୍କର ଏକପୁତ୍ର ।
ଶାବସ୍ତୀ—ବ. (ଶାବସ୍ତ+ଈ) ଶ୍ରାବସ୍ତୀ-ନଗର ।
ଶାଶ୍—ପ୍ରା. (ସଂ) ବ. ଶାଶୁ ।
ଶାଶ-ବି.ବିଂ. (ଶଶ୍+ଅ)ଶଶସମ୍ବନ୍ଧୀୟ ।
ଶାଶକ—ବି.ବିଂ. (ଶଶକ+ଅ) ଶଶକ-ସମ୍ବନ୍ଧୀୟ ।
ଶାଶୁ—ଗ୍ରା.ସ୍ତ୍ରୀ. ବ. (ସ ଶ୍ୱଶ୍ରୂ) ଆପଣାର ସ୍ୱାମୀଙ୍କର ବା ସ୍ତ୍ରୀଙ୍କର ମାତା ।
ଶାଶୁଘର—ଗ୍ରା. ବ. (କୌଣସି ସ୍ତ୍ରୀର) ଶ୍ୱଶୁରାଳୟ ବା ସ୍ୱାମୀଗୃହ ।
ଶାଶୁଘରକୁ ଯିବା—ଗ୍ରା. କ୍ରି. (ବିବାହିତା କନ୍ୟା)ବୟଃପ୍ରାପ୍ତ ହେବା ପରେ ସ୍ୱାମି-ଗୃହକୁ ବାସ କରିବାକୁ ଯିବା ।
ଶାଶୁବୋହୂ—ଗ୍ରା. ବ. ଶ୍ୱଶ୍ରୂ ଓ ବଧୂ ।
ଶାଶୁଶଶୁର—ଗ୍ରା. ବ. ଆପଣାର ଶ ଶ୍ରୂ ଓ ଶ୍ୱଶୁର ।
ଶାଶ୍ୱତ—ପୁଂ.ବିଂ. (ଶଶ୍ୱତ + ଅ)ନିତ୍ୟ, ଚିରସ୍ଥାୟୀ, ସନାତନ, (ସ୍ତ୍ରୀ) ଶାଶ୍ୱତୀ, (ବ) ଭଗବାନ୍,ଈଶ୍ୱର, ବେଦବ୍ୟାସ-ମୁନି, ଶିବ,ସ୍ୱର୍ଗ, ଅନ୍ତରୀକ୍ଷ ।
ଶାଶ୍ୱତିକ—ପୁଂ. ବିଂ. (ଶଶ୍ୱତ+ଇକ) ଶାଶ୍ୱତ ଦେଖ, (ସ୍ତ୍ରୀ) ଶାଶ୍ୱତିକୀ ।
ଶାଶ୍ୱତୀ—ସ୍ତ୍ରୀ.ବ. (ଶାଶ୍ୱତ+ଈ)ପୃଥିବୀ ।
ଶାଷ୍କୁଲ—ପୁଂ. ବିଂ. ( ଶଷ୍କୁଲୀ+ଅ ) ମାଂସାଶୀ, ମତ୍ସ୍ୟ ବା ମାଂସାହାରୀ, (ସ୍ତ୍ରୀ) ଶାଷ୍କୁଲା ।
ଶାଷ୍କୁଲିକ—କ୍ଲୀ. ବ. ଶଷ୍କୁଲୀ ସମୂହ ।
ଶାଷ୍ପିକ—ତ୍ରି. ବିଂ. ଶଷ୍ପବହୁଳ (ଦେଶ), ଶଷ୍ପବହୁଳ ଦେଶସ୍ଥିତ ।
ଶାସ୍—ସ୍ତ୍ରୀ. ବ. ଶାସନ, ଅସ୍ତ୍ରବିଶେଷ ।
ଶାସ—ପୁଂ. ବ. (ଶାସ୍+ଭା.ଅ) ଅନୁ-ଶାସନ, ସ୍ତବ, ସ୍ତୁତି ।
ଶାସକ—ପୁଂ. ବିଂ. ( ଶାସ୍+କ.ଅକ ) ଶାସନକର୍ତ୍ତା, ଉପଦେଷ୍ଟା,ଦମନକାରୀ, ଦଣ୍ଡଦାତା, (ସ୍ତ୍ରୀ) ଶାସିକା ।
ଶାସନ—ବ. (ଶାସ୍+ଭା.ଅନ) ଆଜ୍ଞା, ଆଦେଶ, ଉପଦେଶ, ଦମନ, ରାଜ୍ୟ-ପାଳନ, ପ୍ରଜାପାଳନ,ବଶରେ ରଖିବା, ବଧ, ଶାସ୍ତ୍ର, ଇନ୍ଦ୍ରିୟନିଗ୍ରହ, ନିଯନ୍ତ୍ରଣ, (କ.ଅନ) ଅନୁଶାସନ, ସନନ୍ଦ, ଆଜ୍ଞା, ପତ୍ରିକା, ଲିଖିତ ପତ୍ର, କୂଟଲିଖିତ, ଠାରରେ ଲେଖା, ଦଣ୍ଡ, ( ଅଁ.ଅନ ) ରାଜଦତ୍ତ ଭୂମି, (ଗ୍ରା.ବ) ବ୍ରାହ୍ମଣମାନଙ୍କୁ ସନନ୍ଦ ଦ୍ୱାରା ଦିଆଯାଇଥିବା ନିଷ୍କର ଭୂମି, ସମ୍ପୃକ୍ତ ଗ୍ରାମ ।
ଶାସନତନ୍ତ୍ର—ବ. ଶାସନପଦ୍ଧତି ।
ଶାସନଦଣ୍ଡ—ବ.ରାଜ୍ୟଶାସନ କରିବାର ଚିହ୍ନରୂପେ ରାଜାଙ୍କ ଧୃତ ଦଣ୍ଡ ବା ଯଷ୍ଟି ।

ଶାସନଦେବତା(ଦେବୀ)—ସ୍ତ୍ରୀ.ବି. ଅର୍ହତ ଦେବୀବିଶେଷ ।
ଶାସନଧର—ପୁଂ. ବି.ରାଜଦୂତ,ଶାସକ ।
ଶାସନପତ୍ର(ପତ୍ରିକା)—ବି. ଆଜ୍ଞାପତ୍ରିକା, ଲିଖିତ ଆଜ୍ଞା,ରାଜାଜ୍ଞା,ଲିପିବଦ୍ଧ ହୋଇଥିବା ଧାତୁପତ୍ର ବା ଶିଳା ।
ଶାସନପଦ୍ଧତି—ବି.ରାଜ୍ୟକୁ ଶାସନ କରିବାର ରୀତି ।
ଶାସନପ୍ରଣାଳୀ—ସ୍ତ୍ରୀ. ବି. (୬ତତ୍) ଶାସନର ରୀତି,ରାଜକାର୍ଯ୍ୟ ନିର୍ବାହର ପଦ୍ଧତି
ଶାସନବାହକ—ପୁଂ. ବି. (୬ତତ୍)ରାଜଦୂତ, ଆଜ୍ଞାବାହକ ।
ଶାସନମହାଜନ—ଗ୍ରା. ବି. ରାଜପ୍ରତିଷ୍ଠିତ ବ୍ରାହ୍ମଣଶାସନର ଅଧିବାସୀ ଓ ଗ୍ରାମର ଭୂସମ୍ପତ୍ତିରେ ଅଧିକାରୀ ବୈଦିକବ୍ରାହ୍ମଣ ।
ଶାସନଶିଳା—ବି. (କ.ଧା) ଯେଉଁ ଶିଳା ଉପରେ ରାଜାଙ୍କ ଖୋଦିତ ହୋଇଥାଏ
ଶାସନହର—ପୁଂ. ବି. (ଶାସନ+ହୃ+ଅ) ପିଆଦା, ରାଜଦୂତ, ଆଜ୍ଞାବାହକ ।
ଶାସନହାରୀ—ପୁଂ. ବି.ଶାସନହରଦେଖ
ଶାସନା—ବି. ( ଶାସନ+ଆ ) ଶାସନ, ଦମନ, ନିୟମାଧୀନତା ।
ଶାସନାଧୀନ—ପୁଂ. ବିଂ. (୬ତତ୍)ଶାସନର ବଶୀଭୂତ, ଆଜ୍ଞାର ବଶବର୍ତ୍ତୀ, ଅଧିକାର ଭୁକ୍ତ, (ସ୍ତ୍ରୀ) ଶାସନାଧୀନା ।
ଶାସନାର୍ହ—ପୁଂ. ବିଂ. ଶାସିତ ହେବାର ଯୋଗ୍ୟ, ଦଣ୍ଡାର୍ହ,(ସ୍ତ୍ରୀ) ଶାସନାର୍ହା ।
ଶାସନୀ—ସ୍ତ୍ରୀ. ବି.ଲୋକଙ୍କୁ ଧର୍ମୋପଦେଶ ପ୍ରଦାନକାରିଣୀ ସ୍ତ୍ରୀ, (ଗ୍ରା.ବିଂ)ଦାନୁଆଁ-ବ୍ରାହ୍ମଣ, ବ୍ରାହ୍ମଣ ଶାସନବାସୀ କୁଳୀନ ବ୍ରାହ୍ମଣ ।
ଶାସନୀୟ—ବି. ବିଂ. (ଶାସ୍+ଅନୀୟ) ଶାସ୍ୟ,ଦଣ୍ଡ୍ୟ,ଶିକ୍ଷଣୀୟ,(ସ୍ତ୍ରୀ)ଶାସନୀୟା ।
ଶାସିତ—ବି. ବିଂ. (ଶାସ୍+ଣିଚ୍+ର୍ମ.ତ) ଦଣ୍ଡିତ, ଦମିତ, ଶିକ୍ଷିତ, ପାଳିତ (ରାଜ୍ୟ),ବି. ପ୍ରଜାନିଗ୍ରହ, ସଂଯମ, (ସ୍ତ୍ରୀ) ଶାସିତା ।
ଶାସିତ୍ରୀ—ସ୍ତ୍ରୀ. ବିଂ.(ଶାସିତୃ+ଈ)ଶାସିତାର ସ୍ତ୍ରୀଲିଙ୍ଗ, ଶାସନକର୍ତ୍ତ୍ରୀ ।

ଶାସିବା—ଗ୍ରା. କ୍ରି. ଶାସନକରିବା,ଦଣ୍ଡଦେବା ।
ଶାସୀ—ପୁଂ. ବିଂ. (ଶାସ୍+ଇନ୍)ଶାସନକାରୀ, (ସ୍ତ୍ରୀ) ଶାସିନୀ ।
ଶାସ୍ତା—ବି ଓ ବିଂ. ପୁଂ. (ଶାସ୍+କ.ତୃ) ରାଜା, ଶାସକ, ଶିକ୍ଷାଦାତା, ପରିଚାଳକ, ଶାସ୍ତିଦାତା,ବୁଦ୍ଧଦେବ,ପିତା, (ସ୍ତ୍ରୀ)ଶାସ୍ତ୍ରୀ
ଶାସ୍ତି—ସ୍ତ୍ରୀ.ବି. (ଶାସ୍+ଭା.ତି)ଶାସନଦଣ୍ଡ, ନିଗ୍ରହ, ଯନ୍ତ୍ରଣା,ନିୟମ, ଦମନ, ଶାସନ ।
ଶାସ୍ତିଦାତା—ପୁଂ.ବିଂ. ଦଣ୍ଡୟିତା, ଯେ ଦଣ୍ଡ ଦିଏ, (ସ୍ତ୍ରୀ) ଶାସ୍ତିଦାତ୍ରୀ ।
ଶାସ୍ତିଦାନ—ବି. (୬ତତ୍)ଦଣ୍ଡଦେବା ।
ଶାସ୍ତିଦେବା—ଗ୍ରା.କ୍ରି. ଦଣ୍ଡଦେବା ।
ଶାସ୍ତିବିଧାନ—ବି. (୬ତତ୍)ଦଣ୍ଡବିଧାନ, ଦଣ୍ଡଦାନ ।
ଶାସ୍ତିଯୋଗ୍ୟ—ପୁଂ.ବିଂ. (୬ତତ୍)ଦଣ୍ଡ ପାଇବା ଉପଯୁକ୍ତ,(ସ୍ତ୍ରୀ)ଶାସ୍ତିଯୋଗ୍ୟା ।
ଶାସ୍ତ୍ୟର୍ହ—ପୁଂ.ବି. (୬ତତ୍)ଶାସ୍ତିଯୋଗ୍ୟ ଦେଖ, (ସ୍ତ୍ରୀ) ଶାସ୍ତ୍ୟର୍ହା ।
ଶାସ୍ତ୍ର—ବି.(ଶାସ୍+କ.ତ୍ର) ବେଦ, ତନ୍ତ୍ର, ସ୍ମୃତି, ପୁରାଣାଦି ଧର୍ମଗ୍ରନ୍ଥ, ଦେବତା ବା ମୁନି ପ୍ରଣୀତ ଗ୍ରନ୍ଥ,ବିଜ୍ଞାନ,କୌଣସି ବିଶିଷ୍ଟ ବିଷୟ ବା ପଦାର୍ଥ ସମ୍ବନ୍ଧେ ଧାରାବାହିକ ରୂପେ ସଂଗୃହୀତ ଜ୍ଞାନ, (ଭା.ତ୍ର) ଶାସନ, ଆଜ୍ଞା ।
ଶାସ୍ତ୍ରଇକ୍ଷା—ଗ୍ରା. ବିଂ. (ସଂ-ଶାସ୍ତ୍ରେକ୍ଷା) ବେଦ ଯାହାର ଚକ୍ଷୁ ।
ଶାସ୍ତ୍ରକର୍ତ୍ତା—ପୁଂ.ବି. ଶାସ୍ତ୍ରଗ୍ରନ୍ଥର ଲେଖକ, ଶାସ୍ତ୍ରପ୍ରଣେତା ।
ଶାସ୍ତ୍ରକହୁଛି—ଗ୍ରା. (ବାକ୍ୟ) (ଏ ବିଷୟ) ଶାସ୍ତ୍ରରେ ଲେଖାଅଛି ।
ଶାସ୍ତ୍ରକାର-ପୁଂ.ବି.ଶାସ୍ତ୍ରକର୍ତ୍ତା,ଶାସ୍ତ୍ରପ୍ରଣେତା
ଶାସ୍ତ୍ରକୃତ୍—ପୁଂ.ବି. (ଶାସ୍ତ୍ର+କୃ+କ୍ୱିପ୍) ଋଷି, ଆଚାର୍ଯ୍ୟ,ଶାସ୍ତ୍ରକର୍ତ୍ତା,ଶାସ୍ତ୍ରପ୍ରଣେତା
ଶାସ୍ତ୍ରକୋବିଦ—ପୁଂ. ବି. ବିଂ. (୭ତତ୍) ଧର୍ମଗ୍ରନ୍ଥ ସମ୍ବନ୍ଧେ ପଣ୍ଡିତ, (ସ୍ତ୍ରୀ) ଶାସ୍ତ୍ରକୋବିଦା ।
ଶାସ୍ତ୍ରଗଣ୍ଡ—ବିଂ. (ଶାସ୍ତ୍ର+ଗଣ୍ଡ) ଯେଉଁ ବ୍ୟକ୍ତି ସକଳ ଶାସ୍ତ୍ରକୁ କିଛିକିଛି ଉପର ଠାଉରିଆ ଭାବରେ ଜାଣେ ।
ଶାସ୍ତ୍ରଚକ୍ଷୁଃ—କ୍ଲୀ.ବି.(ରୂପକ).ବ୍ୟାକରଣ, (ବ.ବ୍ରୀ) ପଣ୍ଡିତ, ଜ୍ଞାନୀ ବ୍ୟକ୍ତି ।
ଶାସ୍ତ୍ରଚର୍ଚ୍ଚା-ବି.ଶାସ୍ତ୍ରସମ୍ବନ୍ଧେ ଆଲୋଚନା ।
ଶାସ୍ତ୍ରଚାରଣ—ପୁଂ.ବି. ବିଂ. (ଶାସ୍ତ୍ର+ଚର୍+ଣିଚ୍+ଅନ) ଶାସ୍ତ୍ରଜ୍ଞ ଦେଖ ।
ଶାସ୍ତ୍ରଚାଳକ—ପୁଂ.ବିଂ.ଯେ ଶାସ୍ତ୍ର ଆଲୋଚନା କରେ, ଶାସ୍ତ୍ରଚାଳନାକାରୀ ।
ଶାସ୍ତ୍ରଚିନ୍ତନ—ବି. (୬ତତ୍) ଧର୍ମଶାସ୍ତ୍ର ସମ୍ବନ୍ଧରେ ମାନସିକ ଆଲୋଚନା ।
ଶାସ୍ତ୍ରଚୌର—ପୁଂ.ବି.ଶାସ୍ତ୍ରଜ୍ଞ ଆଚାର୍ଯ୍ୟ ।
ଶାସ୍ତ୍ରଜାଲ(ଳ)—ବି (୬ତତ୍)ଶାସ୍ତ୍ରସମୂହ, (ଉପମିତ) କୃଷ୍ଣଧର୍ମଶାସ୍ତ୍ର ।
ଶାସ୍ତ୍ରଜ୍ଞ—ପୁଂ. ବିଂ. (ଶାସ୍ତ୍ର+ଜ୍ଞା+ଅ) ଶାସ୍ତ୍ରବେତ୍ତା, ପଣ୍ଡିତ, ଶାସ୍ତ୍ରଦର୍ଶୀ, (ସ୍ତ୍ରୀ) ଶାସ୍ତ୍ରଜ୍ଞା । [ଅଭିଜ୍ଞତା ।
ଶାସ୍ତ୍ରଜ୍ଞାନ—ବି. (୬ତତ୍)ଶାସ୍ତ୍ର ସମ୍ବନ୍ଧରେ
ଶାସ୍ତ୍ରତତ୍ତ୍ୱ—ବି. (୬ତତ୍) ଶାସ୍ତ୍ରବିହିତ ରହସ୍ୟ, ଶାସ୍ତ୍ରରେ ଥିବା ଗୂଢ଼ ବିଷୟ ।
ଶାସ୍ତ୍ରତତ୍ତ୍ୱଜ୍ଞ—ପୁଂ. ବିଂ. ପଣ୍ଡିତ, ଜ୍ଞାନୀ, (ପୁଂ.ବି) ଗଣକ, ଜ୍ୟୋତିଷୀ ।
ଶାସ୍ତ୍ରତଃ—ଅ. ଶାସ୍ତ୍ରାନୁସାରେ, ଶାସ୍ତ୍ରରୁ ।
ଶାସ୍ତ୍ରତ୍ୱ—କ୍ଲୀ.ବି. ଶାସ୍ତ୍ରର ଭାବ ବା ଧର୍ମ ।
ଶାସ୍ତ୍ରଦର୍ଶୀ—ପୁଂ. ବିଂ. ଶାସ୍ତ୍ରଜ୍ଞ, ପଣ୍ଡିତ, ଶାସ୍ତ୍ରଦ୍ରଷ୍ଟା, (ସ୍ତ୍ରୀ)ଶାସ୍ତ୍ରଦର୍ଶିନୀ ।
ଶାସ୍ତ୍ରଦୃଷ୍ଟ-କ୍ରି.ବିଂ.ଯାହା ଶାସ୍ତ୍ରରେ ଦେଖାଯାଇଅଛି, ଶାସ୍ତ୍ରରୂପନିର୍ଦ୍ଦିଷ୍ଟ ।
ଶାସ୍ତ୍ରଦୃଷ୍ଟି—ପୁଂ. ବିଂ. (ବ.ବ୍ରୀ) ଶାସ୍ତ୍ରଜ୍ଞ ଦେଖ, (ବି-୬ତତ୍)ଶାସ୍ତ୍ରବିଚାରରୁ ବିଚାର ।
ଶାସ୍ତ୍ରନେତ୍ର—ଶାସ୍ତ୍ରଚକ୍ଷୁଃ ।
ଶାସ୍ତ୍ରପାରଦର୍ଶୀ—ପୁଂ.ବିଂ.(୭ତତ୍)ଶାସ୍ତ୍ରଜ୍ଞ, (ସ୍ତ୍ରୀ)ଦର୍ଶିନୀ ।
ଶାସ୍ତ୍ରପ୍ରଚାର—ବି. (୬ତତ୍) ସର୍ବସାଧାରଣରେ ଶାସ୍ତ୍ରଜ୍ଞାନ ପ୍ରକଟନ ।
ଶାସ୍ତ୍ରପ୍ରଣୟନ—ବି. ଶାସ୍ତ୍ରଗ୍ରନ୍ଥ ଲେଖିବା ।
ଶାସ୍ତ୍ରପ୍ରଣେତା--ପୁଂ.ବିଂ.ଶାସ୍ତ୍ରଗ୍ରନ୍ଥ ଲେଖକ, (ସ୍ତ୍ରୀ) ପ୍ରଣେତ୍ରୀ ।
ଶାସ୍ତ୍ରପ୍ରସଙ୍ଗ—ବି. (୬ତତ୍) ଶାସ୍ତ୍ର ସମ୍ବନ୍ଧେ

ଚର୍ଚ୍ଚା ବା ଆଲୋଚନା ।

ଶାସ୍ତ୍ରମତ—ବି. ଶାସ୍ତ୍ରଲିଖିତ ମତ, (ବିଂ) ଶାସ୍ତ୍ରସଙ୍ଗତ ଦେଖ ।

ଶାସ୍ତ୍ରମତି—ପୁଂ.ବିଂ. (ବ.ବ୍ରୀ)ଶାସ୍ତ୍ରବୁଦ୍ଧି ।

ଶାସ୍ତ୍ରମର୍ମ—ବି.(୬ତତ୍) ଶାସ୍ତ୍ରର ତାତ୍ପର୍ଯ୍ୟ, ଶାସ୍ତ୍ରର ଗୂଢ଼ ରହସ୍ୟ ।

ଶାସ୍ତ୍ରମର୍ମଜ୍ଞ—ପୁଂ.ବିଂ. ଶାସ୍ତ୍ରର ତାତ୍ପର୍ଯ୍ୟ-ଗ୍ରାହୀ, (ସ୍ତ୍ରୀ) ମର୍ମଜ୍ଞା ।

ଶାସ୍ତ୍ରମୂଳକ—ବିଂ. ଶାସ୍ତ୍ରରୁ ଉତ୍ପନ୍ନ, ଶାସ୍ତ୍ର-ଲିଖିତ (ବିଧାନ) ।

ଶାସ୍ତ୍ରବକ୍ତା—ପୁଂ. ବିଂ. (ଶାସ୍ତ୍ର+ବଚ୍+କ.ତୃ) ଯେ ଶାସ୍ତ୍ର ବ୍ୟାଖ୍ୟାକରେ, (ସ୍ତ୍ରୀ) ଶାସ୍ତ୍ରବକ୍ତ୍ରୀ ।

ଶାସ୍ତ୍ରବର୍ଜିତ—ପୁଂ. ବିଂ. (୩ତତ୍) ଶାସ୍ତ୍ର-ଜ୍ଞାନଶୂନ୍ୟ, ଅଶାସ୍ତ୍ରୀୟ ।

ଶାସ୍ତ୍ରବଳ—ବି. (ରୂପକ) ଶାସ୍ତ୍ରଜ୍ଞାନ ରୂପ ଶକ୍ତି, (୬ତତ୍)ଶାସ୍ତ୍ରର ପ୍ରଭାବ, (କ.ଧା) ଶାସ୍ତ୍ର ଜ୍ଞାନଜନିତ ଶକ୍ତି ।

ଶାସ୍ତ୍ରବହିର୍ଭୂତ—ବି.(୫ତତ୍)ଶାସ୍ତ୍ର ଲିଖିତ ନିୟମରୁ ବିରୁଦ୍ଧ ।

ଶାସ୍ତ୍ରବିଦ୍—ପୁଂ.ବିଂ. (ଶାସ୍ତ୍ର+ବିଦ୍+କ. କ୍ୱିପ୍) ଶାସ୍ତ୍ରଜ୍ଞ ଦେଖ ।

ଶାସ୍ତ୍ରବିଧି(ବିଧାନ)—ବି.(୬ତତ୍)ଶାସ୍ତ୍ରର ନିର୍ଦ୍ଧାରିତ ନିୟମ ।

ଶାସ୍ତ୍ରବିପ୍ରତିଷିଦ୍ଧ—ବିଂ.ଶାସ୍ତ୍ରନିଷିଦ୍ଧ, ଯାହା ଶାସ୍ତ୍ରରେ ମନା ଅଛି ।

ଶାସ୍ତ୍ରବିରୋଧ—ବି. (୬ତତ୍) ଶାସ୍ତ୍ରୋକ୍ତ ବିଧିର ଲଙ୍ଘନ, (୬ତତ୍)ଅନେକ ଶାସ୍ତ୍ର ମଧ୍ୟରେ କୌଣସି ବିଷୟରେ ମତଭେଦ ।

ଶାସ୍ତ୍ରବିଶାରଦ—ପୁଂ.ବିଂ. (୭ତତ୍)ଶାସ୍ତ୍ରଜ୍ଞ ଦେଖ,(ସ୍ତ୍ରୀ) ଶାସ୍ତ୍ରବିଶାରଦା ।

ଶାସ୍ତ୍ରବିହିତ—ବିଂ. ଶାସ୍ତ୍ରସଙ୍ଗତ ଦେଖ ।

ଶାସ୍ତ୍ରବୋଧ—ବି. ଶାସ୍ତ୍ରଜ୍ଞାନ ଦେଖ ।

ଶାସ୍ତ୍ରବ୍ୟାଖ୍ୟା—ବି.ଶାସ୍ତ୍ରଲିଖିତ ବିଷୟମାନ ଶ୍ରୋତାଙ୍କୁ ବୁଝାଇବା ।

ଶାସ୍ତ୍ରବ୍ୟୁତ୍ପତ୍ତି—ବି (୭ତତ୍) ଶାସ୍ତ୍ରଜ୍ଞାନରେ ପାରଙ୍ଗମତା ।

ଶାସ୍ତ୍ରଶିଳ୍ପୀ—ପୁଂ.ବି. କାଶ୍ମୀରଦେଶ, ଉକ୍ତ ଦେଶବାସୀ ବ୍ୟକ୍ତି, ଜମି, ଭୂମି ।

ଶାସ୍ତ୍ରସଙ୍ଗତ(ସମ୍ମତ)--ବିଂ.ଶାସ୍ତ୍ରର ନିୟମ-ସଙ୍ଗତ, ଶାସ୍ତ୍ରାନୁମୋଦିତ, ଶାସ୍ତ୍ରରେ ନିର୍ଦ୍ଦିଷ୍ଟ,ଆଇନ୍ ବା ବିଧିସଙ୍ଗତ ।

ଶାସ୍ତ୍ରସିଦ୍ଧ—ବିଂ. (୩ତତ୍) ଶାସ୍ତ୍ରସଙ୍ଗତ ।

ଶାସ୍ତ୍ରହୀନ—ବିଂ. (୩ତତ୍) ଶାସ୍ତ୍ରବର୍ଜିତ, ଶାସ୍ତ୍ର ଜ୍ଞାନଶୂନ୍ୟ, ଅଶାସ୍ତ୍ରୀୟ ।

ଶାସ୍ତ୍ରାନୁମୋଦିତ—ବିଂ. (୩ତତ୍) ଶାସ୍ତ୍ର-ସଙ୍ଗତ ଦେଖ ।

ଶାସ୍ତ୍ରାନୁଶୀଳନ—ବି. (୬ତତ୍)ଶାସ୍ତ୍ରଚର୍ଚ୍ଚା, ଶାସ୍ତ୍ରର ଆଲୋଚନା ।

ଶାସ୍ତ୍ରାବର୍ତ୍ତିଲିପି—ବି.ଲଳିତ ବିସ୍ତର ଅନୁ-ସାରେ ପ୍ରାଚୀନ କାଳର ଲିପିବିଶେଷ ।

ଶାସ୍ତ୍ରାର୍ଥ—ବି. (୬ତତ୍) ଶାସ୍ତ୍ରର ବ୍ୟାଖ୍ୟା, ଶାସ୍ତ୍ର ବାକ୍ୟର ତାତ୍ପର୍ଯ୍ୟ । [ କଥନ

ଶାସ୍ତ୍ରାଲାପ—ବି.ଶାସ୍ତ୍ର ସମ୍ବନ୍ଧେ କଥୋପ-

ଶାସ୍ତ୍ରାଲୋଚନ(ନା)—ବି.ଶାସ୍ତ୍ରଚର୍ଚ୍ଚା ଦେଖ

ଶାସ୍ତ୍ରିତ—ବି. ବିଂ. ଶାସ୍ତ୍ରଯୁକ୍ତ ।

ଶାସ୍ତ୍ରୀ—ପୁଂ. ବିଂ,(ଶାସ୍ତ୍ର+ଇନ୍)ଶାସ୍ତ୍ରଜ୍ଞ, ଶାସ୍ତ୍ରବେତ୍ତା, (ପୁଂ.ବି) ପଣ୍ଡିତ ବ୍ରାହ୍ମଣ-ମାନଙ୍କ ବଂଶୋପାଧି, ପଣ୍ଡିତମାନଙ୍କ ସମ୍ମାନସୂଚକ ଉପାଧିବିଶେଷ ।

ଶାସ୍ତ୍ରୀୟ—ବିଂ. (ଶାସ୍ତ୍ର+ଈୟ)ଶାସ୍ତ୍ରସମ୍ବ-ନ୍ଧୀୟ, (ସ୍ତ୍ରୀ) ଶାସ୍ତ୍ରୀୟା ।

ଶାସ୍ତ୍ରୀୟତା—ବି. ଶାସ୍ତ୍ରବିହିତ ଅବସ୍ଥା ।

ଶାସ୍ତ୍ରୋକ୍ତ—ବିଂ. (୭ତତ୍) ଶାସ୍ତ୍ରକଥିତ, ଶାସ୍ତ୍ରରେ ଲିଖିତ ।

ଶାସ୍ତ୍ରୋପଦେଶ—ବି. (କ.ଧା) ଶାସ୍ତ୍ର-ନିର୍ଦ୍ଦିଷ୍ଟ ଉପଦେଶ ବା ନିୟମ, (୭ତତ୍) ଶାସ୍ତ୍ର ସମ୍ବନ୍ଧେ ଶିକ୍ଷାଦାନ ।

ଶାସ୍ତ୍ରୋପଦେଶକ—ପୁଂ.ବି. ବିଂ. ଶାସ୍ତ୍ରୀୟ ଉପଦେଶ ଦାତା ଗୁରୁ, (ସ୍ତ୍ରୀ)ଦେଶିକା ।

ଶାସ୍ତ୍ରୋପଦେଷ୍ଟା—ପୁଂ.ବି.ବିଂ. ଶାସ୍ତ୍ରୋପ-ଦେଶକ ଦେଖ ।

ଶାସ୍ୟ—ବିଂ. (ଶାସ୍+ଯ) ଶାସନୀୟ, ଶାସନର ଉପଯୁକ୍ତ, ଶିକ୍ଷଣୀୟ, ଦଣ୍ଡନୀୟ, (ସ୍ତ୍ରୀ) ଶାସ୍ୟା ।

ଶାହ—ଯା. ବି. ରାଜା, ସମ୍ଭ୍ରାନ୍ତ ମୁସଲ-ମାନ ରାଜପୁରୁଷ ବା ଧନୀ ବ୍ୟକ୍ତିର ଉପାଧି ।

ଶାହଜାଦା—ଯା.ବି.ରାଜପୁତ୍ର,ରାଜକୁମାର

ଶାହଜାଦୀ—ଯା. ସ୍ତ୍ରୀ.ବି. ରାଜକନ୍ୟା ।

ଶାହଜାହାନ୍—ଗ୍ରା ବି.ଭାରତର ସୁବିଖ୍ୟାତ ୫ମ ମୋଗଲ ସମ୍ରାଟ୍ ।

ଶାହା—ଗ୍ରା. ବି. (ସଂ-ଶାଖା)ଶାଖା, ଶିଙ୍ଗୁଡ଼ର ଫଳ, ଜୀବନ, ଜୀବନୀଶକ୍ତି, ପ୍ରାଣ-ବାୟୁ. ସହାୟ ।

ଶାହାଉଡ଼ିଯିବା—ଗ୍ରା.କ୍ରି. ଦେହରୁ ପ୍ରାଣ-ବାୟୁ ବିନିର୍ଗତ ହେବା । [ ବୃକ୍ଷ ।

ଶାହାଖୋଟ—ଗ୍ରା.ବି(ସଂ-ଶାଖୋଟ)ଶାଖୋଟ

ଶାହାଣ—ଗ୍ରା.ବି. (ସଂ-ଶାଣ)ଶାଣଦେଖ, ସାହାଣ ଦେଖ ।

ଶାହି—ଗ୍ରା.ବି. (ସଂ-ଶାଖା) ଏକ ଶ୍ରେଣୀସ୍ଥ ବା ଜାତୀୟ ବହୁ ପରିବାର ବସତି କରୁଥିବା ଗ୍ରାମର ବା ସହରର ଅଂଶ, ପଡ଼ା, ଶ୍ରେଣୀ, ଧାଡ଼ି ।

ଶାହିପଡ଼ିଶା—ଗ୍ରା. ବି. ପଡ଼ୋଶୀମାନେ ।

ଶାହିଭାଇ—ଗ୍ରା. ବି. ଏକ ସାହିରେ ବାସ କରୁଥିବା ଯୋଗୁଁ ଭାଇ ସମ୍ପର୍କରେ ସମ୍ପର୍କିତ ବ୍ୟକ୍ତିଗଣ ।

ଶାହିଶାହି—ଗ୍ରା. ଅ. ଏକ ଶାହିରୁ ଅନ୍ୟ ଶାହିକୁ, ପ୍ରତି ଶାହିରେ ।

ଶି—ବି. ଶିବ, ସୁଖ, ସୌଭାଗ୍ୟ, ଶାନ୍ତି, ଧୈର୍ଯ୍ୟ ।

ଶିଅ—ଗ୍ରା.ବି.(ସଂ-ଶିଫ) ଗଛର ଚେର ।

ଶିଅକାଟିବା—ଗ୍ରା.କ୍ରି. (ଲ.ଅର୍ଥ)କୌଣସି ବ୍ୟକ୍ତିର ଅନିଷ୍ଟ ଘଟାଇବା ।

ଶିଅଳ—ଗ୍ରା. ବି. (ସଂ-ଶୃଙ୍ଖଳ)ନୀଚ ହିନ୍ଦୁ ଜାତିବିଶେଷ, ଚେମାର, (ଖଜୁରିଆ-ମାନେ ତାଳ ଖଜୁରଗଛ କାଟି ତାଡ଼ି ବାହାର କରନ୍ତି), ଯୁଗଳାଳକ ।

ଶିଆର—ଗ୍ରା. ବି. (ସଂ-ଶୀତା) ଲଙ୍ଗଳ-କର୍ଷିତ ରେଖା, ମସ୍ତକର କେଶ ମଧ୍ୟସ୍ଥ ରେଖା, ଚେର, ମାଙ୍ଗ ।

ଶିଆରି—ଗ୍ରା.ବି. ଶାଳଗଛରେ ମାଡ଼ିଥିବା ବନ୍ୟ ମୋଟ ଲତାବିଶେଷ ।

ଶିଆଳ—ଗ୍ରା. ବି. (ସଂ-ଶୃଗାଳ)ବିଲୁଆ ।

ଶିଆଲ୍ଦନା—ଗ୍ରା.ବି. ଶିଆର ପଣରେ ଉଆଳି ପଲଙ୍କା ।

ଶିଆଳ—ଗ୍ରା. ବି. ଶୃଗାଳ, ବିଲୁଆ, ମାଇ ଶିଆଳ ।
ଶିଆଲୀ—ଗ୍ରା. ବି. ମାଈ ବିଲୁଆ ।
ଶିଉଳ—ଗ୍ରା.ବି. (ସଂ-ଶୈବାଳ)ଜଳଜାତ ଅତି କ୍ଷୁଦ୍ର ଉଦ୍ଭିଦ ।
ଶିଂଘାଣ—ବି. ସିଂହାଣ ଦେଖ ।
ଶିଂଘାଣୀ—ବି.(ଶିଂଘାଣ+ଇନ୍) ନାକ ।
ଶିଂଘିତ—ବିଂ. ଆଘ୍ରାତ ।
ଶିଂଶପା—ବି. (ଶୀଘ୍ର ବା ଶୀର୍ଷ+ପା+କ.ଅ+ଆ) ଶିଶୁବୃକ୍ଷ, ଅଶୋକ ବୃକ୍ଷ ।
ଶିକ୍ଲ(ଳ)—ପ୍ରା. (ସମ୍ବ) ବି. ଶିଙ୍କୁଳ ।
ଶିକ—ପ୍ରା. (ତାମଣ୍ଡା) ବି. ଅଗ୍ରଭାଗ ।
ଶିକଡ଼—ପ୍ରା. (ମେଦନୀ) ବି. ଶିଅ, ଗଛର ଚେର ।
ଶିକା—ଗ୍ରା. ବି. (ସଂ-ଶିକ୍ୟା) ହାଣ୍ଡି,ପଡ଼ିଆ ଆଦି ଝୁଲାଇ ରଖିବା ନିମନ୍ତେ ବ୍ୟବହୃତ ରଜ୍ଜୁମୟ ଆଧାର, ଭାର ବୋହିବା ନିମନ୍ତେ ବାହୁଙ୍ଗିର ଦୁଇପାଖରେ ଝୁଲୁଥିବା ରଜ୍ଜୁମୟ ଆଧାର ।
ଶିକାର—ଗ୍ରା ଓ ଯା.ବି.ମୃଗୟା,ମୃଗୟାଲବ୍ଧ ମାଂସ, ମାଂସ,ମୃଗୟାହୃତ ଜନ୍ତୁ ।
ଶିକାରି—ଗ୍ରା. ବି. ମୃଗୟୁ, (ବିଂ)ମୃଗୟାପ୍ରିୟ, ମୃଗୟାପଟୁ(କୁକ୍କୁରାଦି) ।
ଶିକୁଳା(ଳ)—ଗ୍ରା.ବି.(ସଂ-ଶୃଙ୍ଖଳ)ଜଞ୍ଜିର, ଶୃଙ୍ଖଳ । [ ଘାସ ।
ଶିକୁଳାଘାସ—ଗ୍ରା.ବି. ଏକପ୍ରକାର ବନ୍ୟ
ଶିକ୍ଥ—ବି. (ଶିଚ୍+ଣ.ଥ) ମହଣ, ମହୁଣିଠା, ଏକଗ୍ରାସ ଅନ୍ନ,ଝୁଣିଲା ଅଠା ।
ଶିକ୍ୟ(କ୍ୟା)—ବି. (ଶିକ+କ.ଯ) ଶିକା, ଦ୍ରବ୍ୟ ଝୁଲାଇ ରଖିବାପାଇଁ ବ୍ୟବହୃତ ଦଉଡ଼ିର ଫାଶ ।
ଶିକ୍ୟିତ—ବିଂ. (ଶିକ୍ୟ+ଇତ) ଶିକାରେ ରଖାଯାଇଥିବା ।
ଶିକ୍ଷକ—ପୁଂ.ବି. (ଶିକ୍ଷ+ଣିଚ୍+କ.ଅକ ବା ଶିକ୍ଷା+କ) ଯେ ପାଠ ପଢ଼ାନ୍ତି, ଶିକ୍ଷାଗୁରୁ,ଶାସକ, (ବିଂ) ଶିକ୍ଷାଦାନକାରୀ (ବ୍ୟକ୍ତି) ।
ଶିକ୍ଷଣ—ବି. (ଶିକ୍ଷି+ଭା.ଅନ) ଅଧ୍ୟାପନା, (ଶିକ୍ଷ+ଭା.ଅନ) ଶିକ୍ଷିବା, ଅଧ୍ୟୟନ, ଅଭ୍ୟାସ, ଉପଦେଶ, ଦମନ ।
ଶିକ୍ଷଣୀୟ—ବିଂ. (ଶିକ୍ଷ+ମିଂ.ଅନୀୟ) ଶିଖାଇବାର ଯୋଗ୍ୟ,ଶିକ୍ଷାଦିଆଯିବାର ଉପଯୁକ୍ତ(ବିଷୟ), ଶିଖିବାର ଉପଯୁକ୍ତ, (ସ୍ତ୍ରୀ) ଶିକ୍ଷଣୀୟା ।
ଶିକ୍ଷୟିତା—ପୁଂ. ବିଂ. (ଶିକ୍ଷି+କ.ତୃ) ଶିକ୍ଷକ, ଶିକ୍ଷାଦାତା, (ସ୍ତ୍ରୀ) ଶିକ୍ଷୟିତ୍ରୀ ।
ଶିକ୍ଷା—ବି.(ଶିକ୍ଷ+ଭା.ଅ+ଆ)ଅଧ୍ୟୟନ, ବିଦ୍ୟାଭ୍ୟାସ, ଦମନ,ଶାସନ,ଜ୍ଞାନଲାଭ, ଉପଦେଶ,ଅନୁଶୀଳନ,ଅଭ୍ୟାସ,ବିନୟ, ଦକ୍ଷତା, କର୍ମସାଧନାର୍ଥ ଇଚ୍ଛା, ଦଣ୍ଡ, ଉଚ୍ଚାରଣବୋଧକ ବେଦାଙ୍ଗବିଶେଷ, ବୃକ୍ଷବିଶେଷ, ଫଣଫଣା ।
ଶିକ୍ଷାକର—ବି. (ଶିକ୍ଷା+କୃ+କ.ଅ) ଶିକ୍ଷକ, ବ୍ୟାସଙ୍କର ଏକ ନାମ ।
ଶିକ୍ଷାକାଙ୍କ୍ଷା—ବି.କୌଣସି ବିଷୟ ଶିଖିବା ପାଇଁ ଇଚ୍ଛା ।
ଶିକ୍ଷାକାଙ୍କ୍ଷୀ—ପୁଂ. ବିଂ. (ଶିକ୍ଷା+ଆ+କାଙ୍କ୍ଷ+କ.ଇନ୍)ଶିକ୍ଷାକରିବାକୁ ଇଚ୍ଛୁକ, (ସ୍ତ୍ରୀ) ଶିକ୍ଷାକାଙ୍କ୍ଷିଣୀ ।
ଶିକ୍ଷାକାର—ବି.ଅନ୍ୟକୁ ଶିକ୍ଷାଦେବାପାଇଁ ଉପଯୁକ୍ତ ଗାୟକ ।
ଶିକ୍ଷାକାରୀ—ପୁଂ. ବିଂ ଓ ବି. ଯେ ଶିକ୍ଷା କରେ, (ସ୍ତ୍ରୀ) ଶିକ୍ଷାକାରିଣୀ ।
ଶିକ୍ଷାକ୍ରମ—ବି. (ଷତତ୍) ଜ୍ଞାନାର୍ଜନ କରିବାର କ୍ରମୋଚ୍ଚ ପଦ୍ଧତି ।
ଶିକ୍ଷାକ୍ଷର—ବି.ଶିକ୍ଷା (ବେଦାଙ୍ଗ)ର ନିୟମ ଅନୁସାରେ ଉଚ୍ଚାରିତ ଧ୍ୱନି ।
ଶିକ୍ଷାଗୁରୁ—ବି.(ଷତତ୍)ଶିକ୍ଷାଦାତା,ଶିକ୍ଷକ, ଧର୍ମଗୁରୁ, ଦୀକ୍ଷାଗୁରୁ ।
ଶିକ୍ଷାଗ୍ରହଣ—ବି. (ଷତତ୍) ଗୁରୁଙ୍କ ଠାରୁ ଶିକ୍ଷାଲାଭ କରିବା ।
ଶିକ୍ଷାଗ୍ରାହକ—ପୁଂ. ବି. ଶିଷ୍ୟ, ଛାତ୍ର ।
ଶିକ୍ଷାଗୃହ—ବି.ଶିକ୍ଷା ଓ ଆଗୃହ,ଅଭ୍ୟସ୍ତାଗ୍ରହ ।
ଶିକ୍ଷାଦଣ୍ଡ—ବି.(କ.ଧା)କୌଣସି ବ୍ୟକ୍ତିକୁ ଶିକ୍ଷାଦେବା ଉଦ୍ଦେଶ୍ୟରେ ପ୍ରଦତ୍ତ ଦଣ୍ଡ, ମନ୍ଦ ଅଭ୍ୟାସକୁ ଛଡ଼ାଇବା ପାଇଁ ଦିଆଯିବା ଦଣ୍ଡ ।
ଶିକ୍ଷାଦାତା-ପୁଂ.ବି.ଶିକ୍ଷକ,(ସ୍ତ୍ରୀ)ଶିକ୍ଷାଦାତ୍ରୀ ।
ଶିକ୍ଷାଦାନ—ବି. ବିଦ୍ୟାଦାନ ।
ଶିକ୍ଷାଦାୟକ—ପୁଂ.ବିଂ ଓ ବି.ଶିକ୍ଷାଦାତା, ଯହିଁରୁ ଶିକ୍ଷାଲାଭ ହୁଏ,(ସ୍ତ୍ରୀ)ଶିକ୍ଷାଦାୟିକା ।
ଶିକ୍ଷାଦୀକ୍ଷା—ବି. ଶିକ୍ଷା ଓ ମନ୍ତ୍ରାଦି ଗ୍ରହଣ, (ଗ୍ରା.ବି) ଶିକ୍ଷାର ପରିପାଟିତା ।
ଶିକ୍ଷାଦେବା—ଗ୍ରା. କ୍ରି. ଛାତ୍ରାଦିଙ୍କୁ ଶିଖାଇବା, ଦଣ୍ଡଦେବା, ମନ୍ତ୍ରଣା ଦେବା, କୁପରାମର୍ଶ ଦେବା ।
ଶିକ୍ଷାନର—ପୁଂ.ବି. ଇନ୍ଦ୍ର (ଋକ୍‌ବେଦ) ।
ଶିକ୍ଷାନବିଶ୍—ଗ୍ରା.ବି.ଯେଉଁବ୍ୟକ୍ତି କୌଣସି ବିଷୟ ଶିକ୍ଷାକରିବାପାଇଁ ଅଭିଜ୍ଞବ୍ୟକ୍ତିଙ୍କ ନିକଟରେ କାର୍ଯ୍ୟ କରେ ।
ଶିକ୍ଷାପଦ—ବି. ଉପଦେଶ । [ ରୀତି ।
ଶିକ୍ଷାପଦ୍ଧତି—ଗ୍ରା. ବି. ପାଠ ପଢ଼ିବାର
ଶିକ୍ଷାପରିଷଦ୍ ବି. ଏକଋଷି ବା ଆଚାର୍ଯ୍ୟଙ୍କ ଅଧୀନ ଓ ତାଙ୍କ ନାମରେ ପ୍ରସିଦ୍ଧ ବୈଦିକ କାଳର ବିଦ୍ୟାଳୟ, ଆଧୁନିକ ଶିକ୍ଷାର ବ୍ୟବସ୍ଥାକାରୀ ସଭା ବା ସମିତି ।
ଶିକ୍ଷାପ୍ରଣାଳୀ—ବି. ଶିକ୍ଷାପଦ୍ଧତି ଦେଖ ।
ଶିକ୍ଷାପ୍ରଦ—ବିଂ.(ଶିକ୍ଷା+ପ୍ର+ଦା+କ.ଅ) ଯହିଁରୁ ଶିକ୍ଷାଲାଭ ହୁଏ, (ସ୍ତ୍ରୀ)ଶିକ୍ଷାପ୍ରଦା ।
ଶିକ୍ଷାପ୍ରାପ୍ତ—ପୁଂ. ବିଂ. (୨ତତ୍) ଶିକ୍ଷିତ, (ସ୍ତ୍ରୀ) ଶିକ୍ଷାପ୍ରାପ୍ତା ।
ଶିକ୍ଷାବାନ୍—ପୁଂ.ବିଂ ବିଦ୍ୱାନ୍,ଉପଦେଶପ୍ରଦ(ଗଳ୍ପ), (ସ୍ତ୍ରୀ) ଶିକ୍ଷାବତୀ ।
ଶିକ୍ଷାବିଭାଗ—ବି. ଶିକ୍ଷାବିଧାୟକ ବିଭାଗ, ଯେଉଁ ବିଭାଗରେ ଶିକ୍ଷାବିଷୟକ ଆଲୋଚନା ହୋଇଥାଏ ।
ଶିକ୍ଷାବିସ୍ତାର—ବି.(ଷତତ୍) ବିଦ୍ୟାଚର୍ଚ୍ଚାର ପ୍ରସାର ।
ଶିକ୍ଷାଭଙ୍ଗ—ବି. (ଷତତ୍) ପାଠ ପଢ଼ିବା ପୂର୍ଣ୍ଣ ନ ହେବା ପୂର୍ବରୁ ଉପୁଜିବା ବାଧା
ଶିକ୍ଷାଭିଳାଷ—ବି. ଶିକ୍ଷାକାଙ୍କ୍ଷା ଦେଖ ।
ଶିକ୍ଷାଭିଳାଷୀ—ପୁଂ. ବିଂ. ଶିକ୍ଷାକାଙ୍କ୍ଷୀ ଦେଖ, (ସ୍ତ୍ରୀ) ଶିକ୍ଷାଭିଳାଷିଣୀ ।
ଶିକ୍ଷାରେପଡ଼ିବା—ଗ୍ରା. କ୍ରି. ଅନ୍ୟର କୁପରାମର୍ଶ ଦ୍ୱାରା ପରିଚାଳିତ ହେବା ।
ଶିକ୍ଷାର୍ଥୀ-ପୁଂ.ବିଂ.(ଷତତ୍) ଶିକ୍ଷାଲାଭେଚ୍ଛୁ,

ପାଠାର୍ଥୀ, ଉପଦେଶପ୍ରାର୍ଥୀ, ( ସ୍ତ୍ରୀ ) ଶିକ୍ଷାର୍ଥିନୀ ।

ଶିକ୍ଷାର୍ହ—ବିଂ. ( ଶିକ୍ଷା + ଅର୍ହ + କ.ଅ ) ଯେ ଶିକ୍ଷା ପାଇବାର ଉପଯୁକ୍ତ, (ସ୍ତ୍ରୀ) ଶିକ୍ଷାର୍ହା ।

ଶିକ୍ଷାଲଭ୍ୟ—ବିଂ. (୩ତତ୍ପୁ) ଯାହା ଶିକ୍ଷାଦ୍ୱାରା ମିଳେ ।

ଶିକ୍ଷାଲାଭ—ବି. (୬ତତ୍ପୁ) ଜ୍ଞାନଲାଭ ।

ଶିକ୍ଷାଲୋକ—ପୁଂ. ବି. (କ.ଧା) ଜ୍ଞାନର ଆଲୋକ, ଶିକ୍ଷାରୂପ ଆଲୋକ ।

ଶିକ୍ଷାଶୁଳ୍କ—ବି. ଶିକ୍ଷାକର, ସ୍କୁଲଚନ୍ଦା ।

ଶିକ୍ଷାସଂଘ—ବି.ଶିକ୍ଷାସମ୍ବନ୍ଧେ ଆଲୋଚନା କରିବା ପାଇଁ ଆହୂତ ସଭା ।

ଶିକ୍ଷାସଂସ୍କାର—ବି. (୬ତତ୍ପୁ) ଶିକ୍ଷାବିଧାନ ବିଷୟର ସଂଶୋଧନ ।

ଶିକ୍ଷାସମାପ୍ତି—ବି.(୬ତତ୍ପୁ) ଶିକ୍ଷାବିଷୟରେ ନିର୍ଦ୍ଦିଷ୍ଟ ସୀମାରେ ପହଞ୍ଚିଥିବା ଅବସ୍ଥା ।

ଶିକ୍ଷାସମିତି—ବି.(କ.ଧା) ଶିକ୍ଷା ବିଧାୟକ ସଭା, ଯେଉଁ ସଭାରୁ ଶିକ୍ଷାସମ୍ବନ୍ଧୀୟ ନିୟମମାନ ପ୍ରବର୍ତ୍ତିତ ହୁଏ । [ଦେଖ ।

ଶିକ୍ଷାସୋପାନ—ବି. (୬ତତ୍ପୁ) ଶିକ୍ଷାକ୍ରମ

ଶିକ୍ଷାହୀନ—ପୁଂ.ବିଂ. (୩ତତ୍ପୁ)ଅଶିକ୍ଷିତ ।

ଶିକ୍ଷିତ—ପୁଂ.ବିଂ. (ଶିକ୍ଷା + ଇତ)ଶିକ୍ଷାପ୍ରାପ୍ତ, ବିଜ୍ଞ, ନିପୁଣ, ଉପଦିଷ୍ଟ,ବଶ୍ୟ,ବିନୀତ, ଅଭ୍ୟସ୍ତ, ଅଧୀତ, (ସ୍ତ୍ରୀ) ଶିକ୍ଷିତା ।

ଶିକ୍ଷିତବ୍ୟ—ବିଂ. (ଶିକ୍ଷା + ତବ୍ୟ) ଶିକ୍ଷଣୀୟ,ଶିକ୍ଷାର ଯୋଗ୍ୟ,ଶିକ୍ଷାର ଉପଯୁକ୍ତ

ଶିକ୍ଷିତସମାଜ—ବି. (୬ତତ୍ପୁ) କୃତବିଦ୍ୟ ବ୍ୟକ୍ତିଗଣ, ପଣ୍ଡିତସମୂହ ।

ଶିକ୍ଷିତସମ୍ପ୍ରଦାୟ—ବି. ଶିକ୍ଷିତସମାଜ ।

ଶିକ୍ଷିତାକ୍ଷର—ପୁଂ.ବିଂ. (ବ.ବ୍ରୀ) ଶିକ୍ଷିତ, ବିଦ୍ୱାନ୍, (ସ୍ତ୍ରୀ) ଶିକ୍ଷିତାକ୍ଷରା, (ବି) ଶିକ୍ଷାକାରୀ ଗୁରୁ ।

ଶିକ୍ଷିତୁକାମ—ପୁଂ.ବିଂ. (ଶିକ୍ଷିତୁଂ + କାମ) ଶିକ୍ଷା କରିବାକୁ ଇଚ୍ଛୁକ, (ସ୍ତ୍ରୀ)ଶିକ୍ଷିତୁକାମା, (ପୁଂ.ବି) କୌଣସି ବିଦ୍ୟାକୁ ପ୍ରଥମେ ଶିକ୍ଷିଥିବା ବ୍ୟକ୍ତି ।

ଶିକ୍ଷ୍ୟ—ବିଂ. (ଶିକ୍ଷ + ର୍ମ.ଯ)ଶିକ୍ଷଣୀୟ ।

ଶିଖ୍(ଖ)—ଗ୍ରା.ବି.ପଞ୍ଜାବର ଗୁରୁ ନାନକମତାବଲମ୍ବୀ ଧର୍ମସମ୍ପ୍ରଦାୟବିଶେଷ ।

ଶିଖ୍(ଖ)ସମର—ଗ୍ରା. ବି. ଶିଖମାନଙ୍କ ସଙ୍ଗେ ଇଂରେଜଙ୍କର ୧୮୪୫ ଓ ୧୮୪୮ ସାଲରେ ଘଟିଥିବା ଯୁଦ୍ଧ ।

ଶିଖ—ପୁଂ.ବିଂ. ଶିକ୍ଷାଯୁକ୍ତ, ( ଗ୍ରା.ବି ) ( ସଂ-ଶିଖର ) ଶିଖର, ଅଗ୍ରଭାଗ, ପର୍ବତର ଅଗ୍ରଭାଗ,ଉଚ୍ଚତା,(ବିଂ)ଶ୍ରେଷ୍ଠ. ପ୍ରଧାନ, ଉଚ୍ଚ ।

ଶିଖକ—ପୁଂ.ବି. ଲେଖକ,ମୋହରର ।

ଶିଖଣ୍ଡ—ପୁଂ.ବି. (ଶିଖିନ୍ + ଗମ୍ + କ. ଅ)ମୟୂରପୁଚ୍ଛ, ଚୂଡ଼ା,ଶିଖା,କାକପକ୍ଷ, ଝୁଲୁପି, ବଗୁରବାଳ ।

ଶିଖଣ୍ଡକ—ପୁଂ.ବି. ଶିଖଣ୍ଡ ଦେଖ ।

ଶିଖଣ୍ଡିକ—ବି.(ଶିଖଣ୍ଡ + ଇକ)କୁକୁଡ଼ା, ଶିଖା,ଚୂଡ଼ା,ଶିଖଣ୍ଡ ଦେଖ,ଏକପ୍ରକାର ରତ୍ନ ।

ଶିଖଣ୍ଡିକା—ସ୍ତ୍ରୀ.ବି.କୁକ୍କୁଟୀ,ଶିଖା,ଚୂଡ଼ା ।

ଶିଖଣ୍ଡିନୀ—ସ୍ତ୍ରୀ.ବିଂ. (ଶିଖଣ୍ଡିନ୍ + ଈ) ଶିଖାଧାରିଣୀ, (ବି) ଦ୍ରୁପଦ ରାଜାଙ୍କର ପୁରୁଷ ବେଶଧାରୀ କନ୍ୟା, ଶିଖଣ୍ଡୀ, ମୟୂରୀ, କୁକ୍କୁଟୀ,ଗୁଞ୍ଜା, ମଲ୍ଲିକାବିଶେଷ, ଯୂଥିକା,କଶ୍ୟପପୁତ୍ରୀ ଦୁଇଜଣ ଅପ୍ସରା ।

ଶିଖଣ୍ଡୀ—ପୁଂ.ବି(ଶିଖଣ୍ଡ + ଇନ୍)କୁକ୍କୁଟ, ମୟୂର, ଶର, ବାଣ, ଗୁଞ୍ଜା, ବିଷ୍ଣୁ, ଶିବ, ମୟୂରପୁଚ୍ଛ, ଦ୍ରୁପଦ ରାଜପୁତ୍ର, ସ୍ୱର୍ଣ୍ଣଯୂଥିକା, ଖଣ୍ଡୁଆ, ସ୍ତ୍ରୀମାନଙ୍କର ପାଟର ଉପରଣ, ବୃହସ୍ପତି, ରାମଚନ୍ଦ୍ରଙ୍କର କପି ସେନାର ଏକ କପି, (ବିଂ) ଶିଖାଯୁକ୍ତ, (ସ୍ତ୍ରୀ) ଶିଖଣ୍ଡିନୀ ।

ଶିଖଣ୍ଡୀମାନ୍—ପୁଂ. ବିଂ. ଚୂଡ଼ାବିଶିଷ୍ଟ ଶିଖାଯୁକ୍ତ ।

ଶିଖର—ବି. (ଶିଖା + ର) ପର୍ବତ ଶୃଙ୍ଗ, ବୃକ୍ଷାଗ୍ର, ଖଣ୍ଡାର ଅଗ୍ରଭାଗ, ଅଗ୍ରଭାଗ, ରୋମାଞ୍ଚ, ପକ୍ୱ ଦାଡ଼ିମ ବୀଜପରି ଆଭାବିଶିଷ୍ଟ ରତ୍ନବିଶେଷ, କୋଠରି, ଶୁଷ୍କ ତୃଣ, ମନ୍ଦିରର ଚୂଡ଼ା, ଗମ୍ବୁଜ, ଅସ୍ତ୍ରବିଶେଷ, କୁନ୍ଦକଳିକା, ଲବଙ୍ଗ, କାଖ, ତାନ୍ତ୍ରିକ ମୁଦ୍ରାବିଶେଷ, (ବିଂ)ଶ୍ରେଷ୍ଠ ।

ଶିଖରଦଶନା—ସ୍ତ୍ରୀ. ବିଂ. (ବ.ବ୍ରୀ) ପକ୍ୱ ଦାଡ଼ିମ ବୀଜବତ୍ ଦନ୍ତବିଶିଷ୍ଟା (ସ୍ତ୍ରୀ), ସୂକ୍ଷ୍ମାଗ୍ର ଭାଗବିଶିଷ୍ଟ ଦନ୍ତଯୁକ୍ତା (ସ୍ତ୍ରୀ) ।

ଶିଖରପତ୍ରିକା—ବି.ଶଙ୍କର ପଟା ଦେଖ ।

ଶିଖରବାସିନୀ—ସ୍ତ୍ରୀ.ବି (ଶିଖର + ବସ୍ + ଇନ୍ + ଈ)ଦୁର୍ଗା,(ବିଂ)ଶିଖର ଦେଶରେ ବାସକାରିଣୀ (ସ୍ତ୍ରୀ) ।

ଶିଖରବାସୀ—ପୁଂ. ବିଂ. ଯେ ଶିଖରରେ ବାସ କରେ, (ପୁଂ.ବି) ମହାଦେବ ।

ଶିଖରା—ବି. (ଶିଖର + ଆ)ମୂର୍ବା, ବିଶ୍ୱାମିତ୍ରଙ୍କ ଦ୍ୱାରା ରାମଚନ୍ଦ୍ରଙ୍କୁ ପ୍ରଦତ୍ତ ଗଦା ।

ଶିଖରାଦ୍ରି—ପୁଂ.ବି. ତ୍ରିକୂଟ, ତ୍ରିଶୃଙ୍ଗବିଶିଷ୍ଟ ପୌରାଣିକ ପର୍ବତବିଶେଷ ।

ଶିଖରିଣୀ—ସ୍ତ୍ରୀ. ବିଂ. (ଶିଖର + ଇନ୍ + ଈ) ଶିଖରଯୁକ୍ତା, (ବି) ଉତ୍ତମା ସ୍ତ୍ରୀ, ମଲ୍ଲିକାଫୁଲ, ରସାଳା, ଦୁଗ୍ଧସର ଦହି ଓ ଚିନିମିଶ୍ରିତ ଘନ ପାନୀୟବିଶେଷ, ରୋମାବଳୀ, ସପ୍ତଦଶାକ୍ଷର ଛନ୍ଦୋବିଶେଷ, ନଆଳୀଫୁଲ,କିସ୍‌ମିସ୍,ମୂର୍ବା ।

ଶିଖରୀ—ପୁଂ. ବି. (ଶିଖର + ଇନ୍) ଶିଖରଯୁକ୍ତ,(ସ୍ତ୍ରୀ)ଶିଖରିଣୀ, (ବି)ପର୍ବତ, ବୃକ୍ଷ, ଅପାମାର୍ଗ, ଦୁର୍ଗ, ଟିଟ୍ଟିଭପକ୍ଷୀ, ମଲଙ୍ଗ, କୁନ୍ଦୁରୁକ, ବାନର, ଲୋବାନ୍, କକଡ଼ାଶୃଙ୍ଗୀ, ମୃଗବିଶେଷ ।

ଶିଖଲୋହିତ—ପୁଂ. ବି. (ବ.ବ୍ରୀ)ପୋକଶୁଙ୍ଘା ଗୁଳ୍ମ ।

ଶିଖା—ବି. (ଶି + ଖ + ଆ) ଚୂଡ଼ା, ଅଗ୍ରଭାଗ, ଶିଖିମୌଳି, କେଶପାଶ, ଚୁଟି, ପର୍ବତର ଶିଖର, କିରୀଟ, ମୁକୁଟ,ଶିଫ, ମୂଳ, ଜଳୁଥିବାର ନିଆଁର ଶୀର୍ଷ, ଅର୍ଚ୍ଚିଃ, ଶାଖା, କାମଜ୍ୱର, ତୁଳସୀ, ଲହଲଙ୍ଗିଳିଆ, ମୟୂର କୁକୁଡ଼ା ଆଦି ପକ୍ଷୀଙ୍କ ମସ୍ତକରେ ଉଠିଥିବା ଚୂଳ ବା ଜଟ, କିରଣ, କାନି, ଗୋଡ଼ଆଙ୍ଗୁଠିର ଅଗ୍ରଭାଗ, ସ୍ତନାଗ୍ର, ଗଛର ଚେର,ଅଧିପତି, ନାୟକ,ଶ୍ରେଷ୍ଠ ବ୍ୟକ୍ତି,ମୂର୍ବା,ଜଟାମାଂସୀ, ବଚ, ଏକ ବର୍ଣ୍ଣ ବୃତ୍ତ,(ବିଂ)ଶିଖାଯୁକ୍ତା ।

ଶିଖା(ଖୋ)ଇବା—ଗ୍ରା. କ୍ରି. କୌଣସି ବ୍ୟକ୍ତିକୁ ଶିକ୍ଷାଦେବା, ବତାଇବା, ଉପଦେଶଦେବା, ମନ୍ତ୍ରଣାଦେବା, କୁପରା-

ମର୍ଶ ଦେବା ।
ଶିଖାକନ୍ଦ(ମୂଳ)—ବି. (ବି.ଗ୍ରା)ସାଲଗମ୍, ଗାଜର ।
ଶିଖାଚୂଳ—ବି. ମୟୂର ।
ଶିଖାଣ—ଗ୍ରା. ବି. ବତାଇବା, ଅଧ୍ୟାପନା, ଶିକ୍ଷା, ଉପଦେଶ ।
ଶିଖାତରୁ—ବି. ପିଲସଜ, ଦୀପରୁଖା ।
ଶିଖାଦାମ—କ୍ଲୀ. ବି. ମସ୍ତକସ୍ଥ ମାଳା ।
ଶିଖାଧର—ପୁଂ. ବି. (ଶିଖା+ଧୃ+କ.ଅ) ମୟୂର, ମଞ୍ଜୁଘୋଷ, (ପୁଂ.ବିଂ)ଯାହାର ଶିଖା ଅଛି, (ସ୍ତ୍ରୀ) ଶିଖାଧରୀ ।
ଶିଖାଧାର—ପୁଂ. ବି. (ଶିଖା+ଧୃ+ଅ) ମୟୂର ।
ଶିଖାଧାରଣ—ବି. (୬ତତ୍)ଚୁଟିରଖିବା ।
ଶିଖାପାଶ—ବି. (ଶିଖା+ପାଶ) ଚୁଟି ।
ଶିଖାଭରଣ—କ୍ଲୀ. ବି. ଅଳଙ୍କାରବିଶେଷ, ମୁକୁଟ,ଶ୍ରେଷ୍ଠ ବ୍ୟକ୍ତି ।
ଶିଖାମଣି—ପୁଂ. ବି. ମୁକୁଟ ।
ଶିଖାମଣ୍ଡନ—ବି. (୬ତତ୍)ମୁଣ୍ଡର କେଶକୁ ନିଃଶେଷ ରୂପେ କ୍ଷୌରହେବା ।
ଶିଖାମୂଳ—କ୍ଲୀ. ବି. ଗାଜର, ଗୃଞ୍ଜନ ।
ଶିଖାଲ—ପୁଂ. ବି.(ଶିଖା+ଲ)ମୟୂର ।
ଶିଖାଳୁ—ପୁଂ. ବି. ମୟୂର, ଶିଖା ।
ଶିଖାବତୀ—ସ୍ତ୍ରୀ. ବିଂ. (ଶିଖାବତ୍+ଈ) ଶିଖାବାନ୍‌ର ସ୍ତ୍ରୀଲିଙ୍ଗ, (ବି) ମୂର୍ବା ।
ଶିଖାବର—ବି.(ଶିଖା+ବର)ପଣସଗଛ
ଶିଖାବଳ—ବି. (ଶିଖା+ବଳ)ମୟୂର, ଶିଖୀ, ପଣସଗଛ ।
ଶିଖାବଳା—ସ୍ତ୍ରୀ. ବି. ମୟୂରଶିଖା ।
ଶିଖାବଳୀ—ସ୍ତ୍ରୀ. ବି. ଅଗ୍ନିଶିଖା ସମୂହ, ଶିଖାସମୂହ ।
ଶିଖାବାନ୍—ପୁଂ. ବି. (ଶିଖା+ବତ୍) ଅଗ୍ନି, ଚିତ୍ରକବୃକ୍ଷ, କେତୁଗ୍ରହ, ମୟୂର, (ପୁଂ.ବିଂ) ଶିଖାଯୁକ୍ତ, ଶାଖାବିଶିଷ୍ଟ, (ସ୍ତ୍ରୀ) ଶିଖାବତୀ ।
ଶିଖାବୃକ୍ଷ—ପୁଂ. ବି.ଦୀପବୃକ୍ଷ,ପିଲସଜ ।
ଶିଖାବୃଦ୍ଧି—ବି. (ବି.ଗ୍ରା) ପ୍ରତିଦିନ ବଢ଼ୁଥିବା ସୁଧ,ଚକ୍ରବୃଦ୍ଧି ସୁଧ, କାୟିକା ବୃଦ୍ଧି, ମୂଳଧନ ନଷ୍ଟ ନହୋଇ ପ୍ରତିଦିନ ଯେଉଁ ସୁଧ ଲଭ୍ୟହୁଏ ।
ଶିଖାଶିଖି—ଗ୍ରା. ବି. (ଫ-ଶିକ୍ଷା)ନାନା ବିଦ୍ୟା ଶିଖାଇବା କର୍ମ, ବହୁବାର ଶିକ୍ଷାଦେବା କର୍ମ, ତୁଗୁଲ, କୁଶିକ୍ଷା ଦେବା ।
ଶିଖିକଣ୍ଠ—ବି. ( ୬ତତ୍ ) ମୟୂରକଣ୍ଠ, (ବି.ଗ୍ରା) ତୁତିଆ, (ବିଂ) ମୟୂରର କଣ୍ଠ ସଦୃଶ ।
ଶିଖିଗ୍ରୀବ—ପୁଂ. ବିଂ.(ବି.ଗ୍ରା)ମୟୂରକଣ୍ଠସଦୃଶ, (ସ୍ତ୍ରୀ) ଶିଖିଗ୍ରୀବା, (ବି) ତୁତିଆ, ଏକପ୍ରକାର ନୀଳମଣି ।
ଶିଖିଦିକ୍—ସ୍ତ୍ରୀ. ବି. ଅଗ୍ନିକୋଣ ।
ଶିଖିଧ୍ୱଜ—ପୁଂ.ବି.(୬ତତ୍)ଧୂମ,(ବି.ଗ୍ରା) କାର୍ତ୍ତିକେୟ, (ବିଂ) ଯହିଁରେ ମୟୂରର ବା ଅଗ୍ନିର ଚିହ୍ନଅଛି ।
ଶିଖିନୀ—ସ୍ତ୍ରୀ. ବି.(ଶିଖିନ୍+ଈ) ମୟୂରୀ, ମୟୂରଶିଖା ଗୁଳ୍ମ, ମାଈ କୁକୁଡ଼ା ।
ଶିଖିପୁଚ୍ଛ—କ୍ଲୀ. ବି. (୬ତତ୍) ମୟୂରର ଲାଞ୍ଜ ।
ଶିଖିପ୍ରିୟ—ପୁଂ.ବି.(୬ତତ୍)ଗ୍ଲେଷ୍ଟକୋଳି, ଜଙ୍ଗଲି ବରକୋଳି ।
ଶିଖିମଣ୍ଡଳ—ପୁଂ. ବି. ବରୁଣଗଛ ।
ଶିଖିଯୂପ—ପୁଂ.ବି. ଶ୍ରୀକାସ୍ତ ମୃଗ ।
ଶିଖିବୃନ୍ତ—ବି. ସୁନୁସୁନୁନିଆଶାଗ ।
ଶିଖିବର୍ଦ୍ଧକ—ବି. ପୁଂ. କୁଷ୍ମାଣ୍ଡ, ପାଣିକଖାରୁ ।
ଶିଖିବର୍ହ—ବି.(୬ତତ୍) ମୟୂରର ଲାଞ୍ଜ ।
ଶିଖିବା-ଗ୍ରା.କ୍ରି.କୌଣସି ବିଷୟରେ ଜ୍ଞାନଲାଭ କରିବା, ଶିକ୍ଷାପାଇବା, ବିଦ୍ୟାଦି ଆୟତ୍ତକରିବା, ଅଭ୍ୟାସକରିବା ।
ଶିଖିବାହନ—ପୁଂ. ବି.(ବି.ଗ୍ରା) ମୟୂରବାହନ, କାର୍ତ୍ତିକେୟ, (ପୁଂ.ବିଂ)ମୟୂରାରୋହୀ, (ସ୍ତ୍ରୀ) ଶିଖିବାହନା ।
ଶିଖିଶିଖା—ବି.(୬ତତ୍)ମୟୂରର ଶିଖା ବା ମୁଣ୍ଡରେ ଥିବା ପକ୍ଷଗୁଚ୍ଛ,ଅଗ୍ନିଶିଖା ।
ଶିଖିଶୃଙ୍ଗ—ବି. (ବି.ଗ୍ରା) ଚିତ୍ରହରିଣ ।
ଶିଖୀ—ପୁଂ. ବିଂ. (ଶିଖା+ଇନ୍)ଶିଖାବିଶିଷ୍ଟ, ଚୂଳଆ, ଚୁଟିଆ, (ସ୍ତ୍ରୀ) ଶିଖିନୀ, (ବି) ଅଗ୍ନି, ମୟୂର, ବ୍ରାହ୍ମଣ, ଷଣ୍ଢ,ଅଶ୍ୱ, ପର୍ବତ, ଶର, ବୃକ୍ଷ, କୁକୁଡ଼ା, ମେଷ, ସୁନୁସୁନିଆଶାଗ, ଚିତ୍ରକଗୁଳ୍ମ, କେତୁଗ୍ରହ, ଏକପ୍ରକାର ସାରସପକ୍ଷୀ, ତିନି ସଂଖ୍ୟା, ଦୀପ, ପିଉ,ଧୂମକେତୁ, ଶତାବରୀ, ଜଟାଧାରୀ ସାଧୁ, ନାଗବିଶେଷ, ଇନ୍ଦ୍ର, ବକପକ୍ଷୀ, ଅପାମାର୍ଗ, ବାଇଡ଼ଙ୍କ, ବୃକ୍ଷବିଶେଷ । [ ଶାକ ।
ଶିଗ୍ରୁ—ପୁଂ. ବି.(ଶି + କ.ରୁ)ସଜନାଗଛ,
ଶିଗ୍ରୁକ—ପୁଂ. ବି. ସଜନା ।
ଶିଗ୍ରୁଜ—ବି. ସଜନାମଞ୍ଜି ।
ଶିଗ୍ରୁବୀଜ—ବି. ସଜନାମଞ୍ଜି ।
ଶିଗ୍ରୁଶାକ—ବି.ସଜନାଶାକ । [ ଶୃଙ୍ଗ ।
ଶିଙ୍ଗ(ଘ)—ଗ୍ରା. ବି. (ଫ-ଶୃଙ୍ଗ)ବିଷାଣ,
ଶିଙ୍ଗଡ଼ା—ଗ୍ରା.ବି.(ଫ-ଶୃଙ୍ଗାଟକ)ଜଳୀୟ ଲତା ଫଳବିଶେଷ, ପାଣିଫଳ, ତାଳଚେରରେ ପ୍ରବାହିତ ବ୍ରାହ୍ମୀନଦୀର ଉପନଦୀବିଶେଷ ।
ଶିଙ୍ଗା(ଘା)—ଗ୍ରା. ବି. ଗଣ୍ଡୂଳ ଶିଙ୍ଘନିର୍ମିତ ସୁଷିର ବାଦ୍ୟ ।
ଶିଙ୍ଘାଣ—ବି. (ଶିଙ୍ଘ + ମି.ଆନ)ନାସାମଳ, ଶିଙ୍ଘାଣି, ଲୌହମଳ,କାଚପାତ୍ର, ଶ୍ମଶ୍ରୁ, ସ୍ଫୀତ ଅଣ୍ଡକୋଷ ।
ଶିଙ୍ଘାଣକ—ବି. ଶ୍ଳେଷ୍ମା, ଶିଙ୍ଘାଣି, ଅଶ୍ୱ ସମୂହର ନାସାଗତ ରୋଗବିଶେଷ ।
ଶିଙ୍ଘାଣି—ଗ୍ରା.ବି. ନାସିକା ନିଃସୃତ କଫ ବା ଶ୍ଳେଷ୍ମା, ନାସାମଳ ।
ଶିଙ୍ଘାଣିକା—ସ୍ତ୍ରୀ. ବି.କାଚପାତ୍ର,ଲୌହମଳ, ନାକର ମଳ ।
ଶିଙ୍ଘାର—ଗ୍ରା.ବି.(ଫ-ଶୃଙ୍ଗାର) ରାଜା ଓ ଦେବତାଙ୍କର ବେଶ ବିନ୍ୟାସ,ଭୂଷଣ, ବେଶ, ପରିପାଟି, (ବିଂ)ଶ୍ରେଷ୍ଠ, ସୁନ୍ଦର ।
ଶିଙ୍ଘାରୀ—ଗ୍ରା. ବି. ପୁଂ ଓ ସ୍ତ୍ରୀ. ରାଜା ବା ରାଣୀଙ୍କର ବେଶକାରୀ ଭୃତ୍ୟ ବା ଭୃତ୍ୟା, ଦେବତାଙ୍କର ବେଶକାରୀ ସେବକ, ନର୍ତ୍ତକୀ, ବେଶ୍ୟା ।
ଶିଙ୍ଘାଲ—ଗ୍ରା. ବିଂ. ଶୃଙ୍ଗବିଶିଷ୍ଟ(ହରିଣ ବା ଶମ୍ବର) ।
ଶିଙ୍ଘିଣୀ—ସ୍ତ୍ରୀ. ବି. (ଶିଙ୍ଘ+ଣ+ଇନ୍ ଈ) ନାକର ଛିଦ୍ର, ନାକପୁଡା, ନାକ ।

ଶିଙ୍ଘିତ—ବିଂ.(ଶିଙ୍ଘ+ମଁ.ତ)ଆଘ୍ରାତ ।
ଶିଞ୍ଜ(ଞ୍ଜା)—ବି.(ଶଞ୍ଜ+ଅ+ଆ)ଶିଞ୍ଜିତ *ଦେଖ ।
ଶିଞ୍ଜିକା—ବି. ଅଣ୍ଟାସୂତା ।
ଶିଞ୍ଜନ—ବି. (ଶିଞ୍ଜ+ଭା.ଅନ) ଅବ୍ୟକ୍ତ ମଧୁର ଧ୍ୱନି, ଅଳଙ୍କାରର ମଧୁର ଧ୍ୱନି ।
ଶିଞ୍ଜିତ—ବିଂ. (ଶିଞ୍ଜ+କ.ତ) ମୁଖର, ଧ୍ୱନିଯୁକ୍ତ, ମଧୁର ଝଣଝଣ ଶବ୍ଦକାରୀ, (ବି-ଭା.ତ) ଅବ୍ୟକ୍ତ ମଧୁର ଧ୍ୱନି,ଅଳଂକାରାଦିର ରୁଣୁଝୁଣୁ ଶବ୍ଦ, (କ.ତ)ଧନୁର୍ଗୁଣ, ନୂପୁର, ବଳୟ ।
ଶିଞ୍ଜିନୀ—ସ୍ତ୍ରୀ.ବି.(ଶିଞ୍ଜ+କ.ଇନ୍+ଈ) ଧନୁର୍ଗୁଣ, ନୂପୁର, ମୁଦି ।
ଶିଞ୍ଜୀ—ପୁଂ. ବିଂ. (ଶିଞ୍ଜ+କ.ଇନ୍) ଅବ୍ୟକ୍ତ ଧ୍ୱନିକାରକ, ଅଳଙ୍କାର ଧ୍ୱନିଯୁକ୍ତ, (ସ୍ତ୍ରୀ) ଶିଞ୍ଜିନୀ ।
ଶିଠ—ଗ୍ରା. ବି. ଶିଠା ଦେଖ, ରଜାଙ୍କ ଭଣ୍ଡାର ଓ ଖମାରର ତତ୍ତ୍ୱାବଧାରକ କର୍ମଚାରୀ, ଦୂତ.(ପ୍ରା. କନ୍ଧମାଳ)ଓଡ଼ିଆ ଭାଷା ।
ଶିଠା—ଗ୍ରା.ବି. (ଫ-ଶିଷ୍ଟ) ତେଲଆଦିର କାଣ୍ଟି, ମହୁଶିଠା, ମହଣ, ଦ୍ରବ୍ୟାଦିର ବର୍ଜନୀୟ ଅଂଶ,(ଗ୍ରା.ବିଂ) ମହୁଶିଠାପରି ନିବର୍ଣ୍ଣ ଅସାର (ବସ୍ତୁ) ।
ଶିଣ୍ଡାକୀ—ବି.ମୂଳାପତ୍ରର ରସରେ ପିଠଉପାଣି କେଶରଆଦି ମିଶାଇ ପ୍ରସ୍ତୁତ କରାଯିବା କାଞ୍ଜି ।
ଶିତିପୁଟ—ବି.ବୋଉଡ଼ଜାତୀୟ ପକ୍ଷୀବିଶେଷ, କୃଷ୍ଣଭ୍ରମର, ହରିଣ, ପଶୁ ।
ଶିତ—ପୁଂ. ବିଂ. (ଶି+ମଁ.ତ) ଦୁର୍ବଳ, ତୀକ୍ଷ୍ଣ, ଶାଣିତ, ପତଳା, ମୁନିଆ, କ୍ଷୟପ୍ରାପ୍ତ, (ବି) ବିଶ୍ୱାମିତ୍ର ଗୋତ୍ରୀୟ ଜଣେ ଋଷି,ଷଣ୍ଢ, ରଜତ, ରୁପା, (ସ୍ତ୍ରୀ) ଶିତା ।
ଶିତକର—ପୁଂ. ବି. କର୍ପୂର ।
ଶିତକର୍ଣ୍ଣୀ—ସ୍ତ୍ରୀ. ବି. ବାସକ ଗଛ ।
ଶିତଖଣ୍ଡ—ବି. ସାଚକନ୍ଦ ।
ଶିତଛଦା—ସ୍ତ୍ରୀ. ବି. ଶତାହ୍ୱା ।
ଶିତଭା—ସ୍ତ୍ରୀ. ବି. ତୀକ୍ଷ୍ଣତା ।
ଶିତଦ୍ରୁ—ସ୍ତ୍ରୀ. ବି. ଶତଦ୍ରୁ ନଦୀ ।
ଶିତନିର୍ଗୁଣ୍ଡୀ—ସ୍ତ୍ରୀ.ବି. କଳାବେଗୁନିଆ, ଶେଫାଳିକା ।
ଶିତପର୍ଣ୍ଣ-ପୁଂ.ବି.(ବ.ବ୍ରୀ)କ୍ଷୁଦ୍ର ମୂଥା,ମୁଥା ।
ଶିତପୁଷ୍ପ—ପୁଂ. ବି. ଶିରୀଷ ବୃକ୍ଷ ।
ଶିତପୁଷ୍ପକ—କ୍ଲୀ. ବି. କାଶତୃଣ ।
ଶିତବ(ବା)ର—ବି. ଶତାବରୀ ।
ଶିତଲମ୍ମା—ପ୍ରା.(ସମ୍ବ)ବି. ବସନ୍ତରୋଗ ।
ଶିତଶାକ—ବି. ଶାଳଞ୍ଚ ବା ମଦରଙ୍ଗା ଶାଗ । [ ଶତାହ୍ୱା ।
ଶିତଶିବ—ବି. ସୈନ୍ଧବଲୁଣ, ମିଶ୍ରେୟା,
ଶିତଶୂକ—ପୁଂ. ବି. (ବ.ବ୍ରୀ) ଯବ, ଗୋଧୂମ, ଗହମ ।
ଶିତସାର—ପୁଂ.ବି.(ବ.ବ୍ରୀ)କେନ୍ଦୁଗଛ, ମଦରଙ୍ଗା ଶାଗ ।
ଶିତା—ବି. ନବାତ, ଖଣ୍ଡ, କନ୍ଦ ।
ଶିତାଦ୍ରକର୍ଣ୍ଣୀ—ସ୍ତ୍ରୀ.ବି.ଧଳା ଅପରାଜିତା ଲତା ।
ଶିତାଫଳ—ବି. ଆତ ।
ଶିତାବର—ବି. ସୋମରାଜ୍ଜ, ସୁନୁସୁନିଆ ଶାଗ, ଶତାବରୀ ।
ଶିତି—ତ୍ରି. ବିଂ. (ଶି+ମଁ.ତି) ଧଳା, କଳା,କୃଷ୍ଣବର୍ଣ୍ଣଯୁକ୍ତ, (ପୁଂ.ବି)କୃଷ୍ଣବର୍ଣ୍ଣ, ଧଳାରଙ୍ଗ, ଭୂର୍ଜବୃକ୍ଷ ।
ଶିତିକଣ୍ଠ—ପୁଂ. ବି. (ବ.ବ୍ରୀ) ଶିବ, ଗୃତକ, ଡାହୁକପକ୍ଷୀ, ମୟୂର, ନାଗଦେବତା ।
ଶିତିକଣ୍ଠକ—ପୁଂ. ବି. (ଶିତିକଣ୍ଠ+କ) ମୟୂର, (ବିଂ) କୃଷ୍ଣବର୍ଣ୍ଣ କଣ୍ଠଯୁକ୍ତ ।
ଶିତିକେଶ—ବି. କାର୍ତ୍ତିକେୟଙ୍କର ଅନୁଚରବିଶେଷ ।
ଶିତିଚନ୍ଦନ—ବି. କସ୍ତୁରୀ ।
ଶିତିଗୁର—ପୁଂ. ବି. ଶାକବିଶେଷ,ସୁନୁସୁନିଆ ଶାଗ ।
ଶିତିଚ୍ଛଦ—ପୁଂ. ବି. (ବ.ବ୍ରୀ) ହଂସ ।
ଶିତିପ୍ରଭ—ପୁଂ. ବି. ବସ୍ତୁ ।
ଶିତିମାଂସ—କ୍ଲୀ.ବି.ମେଦ, ମେଦଧାତୁ ।
ଶିତିମୂଳକ—କ୍ଲୀ. ବି. ବେଣା, ଉଶୀର ।
ଶିତିରତ୍ନ—ବି. ନୀଳା ।
ଶିତିରନ୍ଧ୍ର—ବି. ଶୁଭ୍ରବର୍ଣ୍ଣ କର୍ଣ୍ଣରନ୍ଧ୍ର ।
ଶିତିବ(ବା)ର—ବି. ସୁନୁସୁନିଆ ଶାଗ ।
ଶିତିବାଳ—ବି. ସୁନୁସୁନିଆ ଶାଗ ।
ଶିତିବାସାଃ—ପୁଂ.ବି. (ବ.ବ୍ରୀ)ନୀଳାମ୍ବର, ବଳଦେବ ।
ଶିତିସାର(କ)-ପୁଂ.ବି.(ବ.ବ୍ରୀ)କେନ୍ଦୁଗଛ ।
ଶିଉଳିଆ—ଗ୍ରା. ବି. ଅଣ୍ଟାଜଙ୍ଘ ଦାନ୍ତମୂଳ ଫୁଲି ପୀଡ଼ାହେବା ରୋଗବିଶେଷ, ପିରୁଳ (ପିରୁଳିଆ), ଦେହରେ ବିଶେଷତଃ ମୁଣ୍ଡରେ ଏକାଦିକ୍ରମେ ବାହାରିବା ବହୁ କଷ୍ଟପ୍ରଦ ବ୍ରଣ ।
ଶିଥିଳ—ବିଂ. (ଶ୍ଲଥ+କ.ଇଳ) ଶ୍ଲଥ, କ୍ଲାନ୍ତ, ଅବସନ୍ନ, କ୍ଷୀଣ, ଢିଲା, ଢୁଗୁଳା, ଅଳସ, ଅବହେଳିତ,ପରିତ୍ୟକ୍ତ, ଜଡ଼, ଆଲୁଳାୟିତ, ଅଡୁଆ, ଅଦୃଢ଼ ବାକ୍ୟ, ଅସ୍ପଷ୍ଟରୂପେ ଶୁଣାଯିବା ।
ଶିଥିଳତା(ତ୍ୱ)—ବି.(ଶିଥିଳ+ଭା.ତା,ତ୍ୱ) ଶ୍ଲଥଭାବ, କ୍ଷୀଣତା, ଶ୍ରାନ୍ତି, ଆଳସ୍ୟ, ନିୟମ ପାଳନରେ ଅଦୃଢ଼ତା,ସାମର୍ଥ୍ୟର ହାନି, (ବ୍ୟାକରଣ) ବାକ୍ୟରେ ଶବ୍ଦମାନଙ୍କର ଅର୍ଥସମ୍ବନ୍ଧରେ ଅଭାବ,(ନ୍ୟାୟ) ତର୍କରେ କୌଣସି ଅବୟବର ଅଭାବ ।
ଶିଥିଳୀଭୂତ—ବିଂ. ଢିଲାହୋଇଯିବା, ଅଶିଥିଳ(ବସ୍ତୁ) ।
ଶିନା—ଗ୍ରା. ଭୁଇଁଅଁଳା ।
ଶିନି—ପୁଂ.ବି. (ଶି+କ.ନି)ଗର୍ଗଋଷିଙ୍କ ପୁତ୍ର,ଯଦୁବଂଶୀୟ ନୃପବିଶେଷ,ଅକ୍ରୂରଙ୍କ ପିତା, କ୍ଷତ୍ରିୟବିଶେଷ ।
ଶିପ—ଗ୍ରା. ବି. (ଫ-ଶୁକ୍ତି)ଶାମୁକା,ଶୁକ୍ତିର ଖୋଳ,ନଡ଼ିଆ ଫୁଲ ଓ ଗଛକୁ ଆବଦ୍ଧ କରିଥିବା ଖୋଳ ।
ଶିପଚୂନ—ଗ୍ରା. ବି. ଶାମୁକାକୁ ପୋଡ଼ି ପ୍ରସ୍ତୁତ କରାଯିବା ଚୂନ ।
ଶିପା—ଗ୍ରା. ବିଂ. ସଙ୍କୁଚିତ, ଶୀର୍ଣ୍ଣ ଓ ଦୀର୍ଘ, କ୍ଷୀଣ ।
ଶିପି—ବି. ରଶ୍ମି,ତେଜଃ,ମେଢ଼ା,ଗୁଳି ।
ଶିପିବିଷ୍ଟ—ପୁଂ. ବିଂ. (ଶିପ୍+ବିଶ୍+ଅପା.ତ)ଦୁଷ୍ଟଚର୍ମୀ,କୁଷ୍ଠରୋଗଗ୍ରସ୍ତ,ଜନ୍ମତଃ ଅନାବୃତ ମେଢ୍ର, ଟାଙ୍ଗରା, (ପୁଂ.ବି)

ବସ୍ତୁଙ୍କ ନାମାନ୍ତର, ଶିବ।
ଶିପ୍ର—ବି. ଶିପ୍ରାନଦୀର ଉତ୍ପତ୍ତିସ୍ଥଳ, ହିମାଳୟସ୍ଥ ଦେବକ୍ରୀଡ଼ାସ୍ଥଳୀ ସରୋବର ବିଶେଷ।
ଶିପ୍ରା—ସ୍ତ୍ରୀ. ବି. ନଦୀବିଶେଷ।
ଶିଫ(ଫା)—ସ୍ତ୍ରୀ.ବି. (ଶି + କ.ଫ + ଆ) ବଉଆଦିର ଉଦ୍ଦାଳ, କୋରଡ଼ାରେ ପ୍ରହାର, ବୃକ୍ଷର ମୂଳ, ନଦୀଭେଦ, ମାତା, ଶତପୁଷ୍ପା, ହରିଦ୍ରା, ପଦ୍ମକନ୍ଦ, ଲତା, ଜଟାମାଂସୀ, ଶିଖା, ଚୁଟି।
ଶିଫାକ—ପୁଂ. ବି. ପଦ୍ମମୂଳ।
ଶିଫାକନ୍ଦ—ପୁଂ. ବି. ପଦ୍ମମୂଳ।
ଶିଫାଧର—ପୁଂ. ବି. ଶାଖା, ଡାଳ।
ଶିଫାରୁହ—ପୁଂ. ବି. (ଶିଫା + ରୁହ୍ + ଅ) ବଟବୃକ୍ଷ।
ଶିଫାଲ(ଲୀ)—ବି. (ଶି + କ.ଫ + ଅଲ, ଲୀ) ଶେଫାଳୀ ଦେଖ।
ଶିଫାଲିକା—ବି. ଶେଫାଳି ଦେଖ।
ଶିମ(ମି)—ବି. ଶିମ୍ବୀ, ଶିମ୍ବ।
ଶିମସ୍ଥାନ—ବି. ଶିରୋଦେଶ, ମୁଣ୍ଡ, ତଳଆ, ମଣ୍ଡି।
ଶିମସ୍ଥାନମ୍—ଗ୍ରା.(ଗଞ୍ଜାମ)ବି. ରାଜଧାନୀ।
ଶିମି(ମୁ)ଳ—ଗ୍ରା.ବି. (ସଂ-ଶାଲ୍ମଲ)ଶାଲ୍ମଳ ଦେଖ।
ଶିମିଳଅଠା—ଗ୍ରା. ବି. ମୋଚରସ।
ଶିମିଳଖାର—ଗ୍ରା.ବି ଶୃଙ୍ଗବିଷ, ଶଙ୍ଖୁଆ।
ଶିମିଳପାଳ—ଗ୍ରା.ବି.ମୟୂରଭଞ୍ଜର ପର୍ବତ ବିଶେଷ।
ଶିମ୍ବ—ପୁଂ.ବି. (ଶମ୍ + କ.ଇମ୍ବ)କୃଷିଜାତ ଲତା ଓ ତହିଁର ଛୁଇଁ, ଛୁଇଁ।
ଶିମ୍ବଳ—ବି. ଶାଲ୍ମଳଫୁଲ।
ଶିମ୍ବା—ସ୍ତ୍ରୀ. ବି. ଶିମ୍ବ ଦେଖ।
ଶିମ୍ବି—ବି. ଶିମ୍ବ ଦେଖ, ବାଇତଙ୍କ, ବନ୍ୟମୁଦ୍ଗ।
ଶିମ୍ବିକ—ବି. କୃଷ୍ଣମୁଦ୍ଗ, ମୁଗଫଳ।
ଶିମ୍ବିକା—ସ୍ତ୍ରୀ. ବି. (ଶିମ୍ବି + କ + ଆ) ଶିମ୍ବ ଦେଖ, ଛୁଇଁ।
ଶିମ୍ବିଜ—ପୁଂ. ବି. (ଶିମ୍ବି + ଜନ୍ + ଅ) ଶିମ୍ବଜାତୀୟ ଉଦ୍ଭିଦର ଛୁଇଁ, ବୈଦଳିକ ଶିମ୍ବ, ମୁଗ, ଶିମ୍ବ ଓ ମଟରଆଦିର ଛୁଇଁ, ଦ୍ୱିଦଳ ଅନ୍ନ।
ଶିମ୍ବିଧାନ୍ୟ—ବି. ଶିମ୍ବିଜ ଦେଖ।
ଶିମ୍ବିନୀ—ସ୍ତ୍ରୀ. ବି. ବଡ଼ଶିମ୍ବ, ଶ୍ୟାମପକ୍ଷୀ, କୃଷ୍ଣଚଟକ। [ ପର୍ଣ୍ଣୀ।
ଶିମ୍ବିପର୍ଣ୍ଣିକା—ସ୍ତ୍ରୀ. ବି. ବନ୍ୟମୁଦ୍ଗ, ମୁଦ୍ଗ-
ଶିମ୍ବିପର୍ଣ୍ଣୀ—ବି. ବନ୍ୟମୁଦ୍ଗ, ମୁଦ୍ଗପର୍ଣ୍ଣୀ।
ଶିମ୍ବିରଙ୍ଗଣୀ—ସ୍ତ୍ରୀ.ବି. ବନମୁଦ୍ଗ।
ଶିମ୍ବିଘଟିକା—ସ୍ତ୍ରୀ.ବି. ସ୍ୱର୍ଣ୍ଣକ୍ଷୀରବଲ୍ଲୀ।
ଶିମ୍ବୀ—ସ୍ତ୍ରୀ.ବି. ଶିମ୍ବି ଦେଖ।
ଶିମ୍ବୀଭବ—ପୁଂ.ବି. ଶିମ୍ବିଜ ଦେଖ।
ଶିର—ପୁଂ.ବି. (ଶ୍ରି + ମି.ଅ)ପିପ୍ପଳୀମୂଳ, ଶିର, ମସ୍ତକ, ସର୍ବୋଚ୍ଚ ଭାଗ, ଶିଖର, ବୃକ୍ଷାଗ୍ର, ଶଯ୍ୟା, ଅଜଗର, ସୈନ୍ୟର ଅଗ୍ରବର୍ତ୍ତୀ ଦଳ, ମୁଣ୍ଡର ଖପୁରି, ପଦ୍ୟର ଚରଣର ଆରମ୍ଭ, ମୁଖ୍ୟବ୍ୟକ୍ତି, ନେତା, ପର୍ବତାଗ୍ର, ସମ୍ମୁଖଭାଗ, (ଗ୍ରା.ବି) (ସଂ-ଶିରା) ରକ୍ତବାହିନୀ ନାଡ଼ି।
ଶିରଉଣ୍ଡି ଚଢ଼ୁଦେବା—ଗ୍ରା.(ବାକ୍ୟ-ଲ. ଅର୍ଥ) କୌଣସି କାର୍ଯ୍ୟ ସାଧନାର୍ଥ ଯଥୋପଯୁକ୍ତ ଉପାୟ ଅବଲମ୍ବନ କରିବା।
ଶିରଃ—ବି. (ଶ୍ରି + ମି.ଅସ୍) ଶିର ଦେଖ
ଶିରଃକପାଳ—କ୍ଲୀ.ବି. ନରମସ୍ତକ।
ଶିରଃକପାଳୀ—(ଶିରସ୍ + କପାଳ + ଇନ୍) ନରମୁଣ୍ଡଧାରୀ ସନ୍ନ୍ୟାସୀ, କାପାଳିକ।
ଶିରଃକମ୍ପ(ନ)—ବି. (ଷତତ୍ପୁ) ମସ୍ତକକମ୍ପନ, ମୁଣ୍ଡ ଥରିବା।
ଶିରଃକମ୍ପୀ—ପୁଂ.ବିଂ. ଯାହାର ମୁଣ୍ଡ ବାର୍ଦ୍ଧକ୍ୟଯୋଗୁଁ ବା ରୋଗହେତୁରୁ କମ୍ପେ ବା ଥରେ। [ କର୍ତ୍ତନ।
ଶିରଃକୃନ୍ତନ—ବି.ମୁଣ୍ଡକାଟିବା, ମସ୍ତକ-
ଶିରଃଖଣ୍ଡ—ବି.ମୁଣ୍ଡର ହାଡ଼, କପାଳାସ୍ଥି।
ଶିରଃପଟ୍ଟ—ପୁଂ.ବି. ଉଷ୍ଣୀଷ, ପଗଡ଼ି।
ଶିରଃପାକ—ପୁଂ.ବି.ଶିରରୋଗବିଶେଷ
ଶିରଃପୀଡ଼ା—ସ୍ତ୍ରୀ.ବି. (ଷତତ୍ପୁ)ମୁଣ୍ଡବ୍ୟଥା, ମୁଣ୍ଡବିନ୍ଧା। [ ମୁଣ୍ଡଦେବା।
ଶିରଃପ୍ରଦାନ—ବି.(ଷତତ୍ପୁ) ମସ୍ତକଦାନ,
ଶିରଃଫଳ—ପୁଂ.ବି. (ବ.ବ୍ରୀ)ନଡ଼ିଆଗଛ
ଶିରଃଶୂଳ—କ୍ଲୀ.ବି. ମୁଣ୍ଡବ୍ୟଥା, ମୁଣ୍ଡବିନ୍ଧା।
ଶିରଃସ୍ନାନ—ବି. କାକସ୍ନାନ, ମୁଣ୍ଡବୁଡ଼ାଇ ଗାଧୋଇବା।
ଶିରଃସ୍ଥ—ବିଂ. (ଶିର + ସ୍ଥା + କ.ଅ) ଅଗ୍ରରେ ଅବସ୍ଥିତ, (ପୁ.ବି) ନେତା।
ଶିରକମଳ—ବି. (ରୂପକ) ଆପଣାର ମସ୍ତକ।
ଶିରକାଟ—ଗ୍ରା.ବି. ମୁଣ୍ଡକାଟ, ଶିରଶ୍ଛେଦ, (ଗ୍ରା.ବିଂ) ଛିନ୍ନମସ୍ତକ, ଯାହାର ମୁଣ୍ଡ କଟା ହୋଇଅଛି।
ଶିରଚ୍ଛେଦନ—ବି. (ଶିର + ଛେଦନ) ମୁଣ୍ଡକାଟ।
ଶିରଜ—ପୁଂ.ବି. (ଶିର + ଜନ୍ + କ.ଅ) କେଶ, ମୁଣ୍ଡର ବାଳ, (ବିଂ) ମସ୍ତକୋତ୍ପନ୍ନ। [ ଲନ କରିବା।
ଶିରଟାଣିବା—ଗ୍ରା.କ୍ରି. (ଲ.ଅର୍ଥ) ଆସ୍ଫାଳନ
ଶିରନାମା—ଯା.ବି.ଶିରୋନାମା, ଚିଠିର ଆଦ୍ୟରେ ଲେଖାଯିବା ନାମାଦି।
ଶିରପା—ଗ୍ରା. ବି. ପାରିତୋଷିକରୂପେ ଦିଆଯିବା ବସ୍ତ୍ର, ମୁଣ୍ଡରେ ବନ୍ଧାଯିବା ପାଗ, ମୁକୁଟ, ପୁରସ୍କାର, ଅଶ୍ୱର ଅଗ୍ରପଦ ଉତ୍ତୋଳନ, ଖିଲ୍ଲତ, ମୁଣ୍ଡରୁ ଗୋଡ଼ପର୍ଯ୍ୟନ୍ତ ଆବୃତକରିବା ପୋଷାକ।
ଶିରବ୍ୟଥା—ବି.ଶିରୋବ୍ୟଥା, ମୁଣ୍ଡବ୍ୟଥା।
ଶିରଶ୍ଚନ୍ଦ୍ର—ବି. (ବ.ବ୍ରୀ) ମହାଦେବ, ଶିବ।
ଶିରଶ୍ଚାଳନ—ବି.(ଷତତ୍ପୁ)ମୁଣ୍ଡକୁ ଇତସ୍ତତଃ ହଲାଇବା।
ଶିରଶ୍ଚୁମ୍ବନ—ବି. (ଷତତ୍ପୁ) ସ୍ନେହର ନିଦର୍ଶନସ୍ୱରୂପ ମାତା ପିତା ସନ୍ତାନର ଓ ଗୁରୁ ଶିଷ୍ୟର ମୁଣ୍ଡକୁ ଚୁମ୍ବନ କରିବା।
ଶିରଶ୍ଛେଦ—ବି. (ଷତତ୍ପୁ) ମୁଣ୍ଡକାଟ।
ଶିରସ୍—କ୍ଲୀ.ବି. (ଶ୍ରି + ମି.ଅସ୍ ମସ୍ତକ, ଶିର ଦେଖ।
ଶିରସ—ଗ୍ରା.(ପଦ୍ୟ)ବି. ମସ୍ତକ, ମୁଣ୍ଡ।
ଶିରସି—ବି. (ଷତତ୍ପୁ)ଶିରଶବ୍ଦର ସପ୍ତମୀ-

ତତ୍ର, ମସ୍ତକରେ ।
ଶିରସିଜ—ପୁଂ.ବ. (ଶିରସି+ଜନ୍+ କ.ଅ) କେଶ, ମୁଣ୍ଡବାଳ ।
ଶିରସିରୁହ—ପୁଂ.ବ. (ଶିରସି+ରୁହ+ ଅ) କେଶ, ମୁଣ୍ଡର ବାଳ ।
ଶିରସ୍କ—କ୍ଲୀ.ବ. (ଶିରସ୍+କୈ+କ. ଅ)ଶିରସ୍ତ୍ରାଣ, ପଗଡ଼ି,(ପୁଂ.ବିଂ)ମସ୍ତକ-ସମ୍ବନ୍ଧୀୟ, ମସ୍ତକଯୁକ୍ତ, (ସ୍ତ୍ରୀ)ଶିରସ୍କା ।
ଶିରସ୍କା—ବ. ପାଲିଙ୍କି ।
ଶିରସ୍ତ—କ୍ଲୀ.ବ. (ଶିରସ୍+ତ୍ରୈ+କ. ଅ) ଉଷ୍ଣୀଷ, ଟୋପି, ପଗଡ଼ି ।
ଶିରସ୍ତ୍ରାଣ—ବ. (ଶିରସ୍+ତ୍ରୈ+ଅ+ ଅନ) ଶିରସ୍ତ, ପଗଡ଼ି, ଟୋପି ।
ଶିରସ୍ୟ—ବ. ( ଶିରସ୍+ଯ ) ନିର୍ମଳ କେଶ, (ବିଂ) ମସ୍ତକସମ୍ବନ୍ଧୀୟ,ମସ୍ତକ-ଜାତ ।
ଶିରା—ସ୍ତ୍ରୀ. ବ. (ଶୃ+ଅଧି+ଅ+ଆ) ଧମନୀ,ରକ୍ତବାହୀ ନାଡ଼ି,ପାଣିର ସ୍ରୋତ, ଜାଲପରି ଛନ୍ଦାହୋଇଥିବା ରେଖାମାନ, ପାଣି ଉଠାଇବା ବାଲତି, ପୃଥିବୀର ଅଭ୍ୟନ୍ତରରେ ଥିବା ଜଳସ୍ରୋତ, (ଯା.ବ)କାଳି,ସ୍ୟାହି, (ଗ୍ରା.ବ)ପଦ୍ମଫଳ ଶସ୍ୟାଦି ଉପରେ ଥିବା ସରୁ ଉଚ୍ଚ ରେଖା।
ଶିରାଃ—ବିଂ. (ବ.ସ୍ତ୍ରୀ) ଶିରୋଯୁକ୍ତ ।
ଶିରା(ରେ)ଇଅଣ୍ଟା—ଗ୍ରା.ବ. ସୂର୍ଯ୍ୟମୁଖୀ ଦେଖ ।
ଶିରାଜାଲ—ପୁଂ.ବ.ସ୍ରୋତ ନାଡ଼ିମାନଙ୍କ ସମୂହ, ଚକ୍ଷୁରୋଗବିଶେଷ,ଯାହାଯୋଗୁଁ ଆଖିର ଧଳାଅଂଶରେ ନାଲିଆ ରେଖା ମାନ ପଡ଼ିଯାଏ ।
ଶିରାପତ୍ର—ପୁଂ.ବ.କପିତ୍ଥବୃକ୍ଷ, ହିନ୍ତାଳ-ବୃକ୍ଷ, ଅଶ୍ୱତ୍ଥବୃକ୍ଷ ।
ଶିରାପୀଡ଼ିକା—ବ.ଆଖିର ରୋଗ,ଯହିଁରେ ପିଉଳା ପାଖରେ ଗୋଟିଏ ବଥ ବାହାରେ ।
ଶିରାପ୍ରଶିରା—ବ.ଦେହସ୍ଥ ବଡ଼ ଓ ସାନ ସମସ୍ତ ଶିରା । [ରୋଗ ।
ଶିରାପ୍ରହର୍ଷ—ପୁଂ.ବ. ଏକପ୍ରକାର ଚକ୍ଷୁ-
ଶିରାଫଳ—ପୁଂ.ବ.(ବ.ସ୍ତ୍ରୀ)ନଡ଼ିଆଗଛ, ଏକପ୍ରକାର ଟଗ୍ପ, ଅଞ୍ଜୀର ।
ଶିରାମଇ—ଗ୍ରା.ବ. ହଇଜା ରୋଗୀର ଝାଡ଼ାବାନ୍ତି ହେବା ସମୟରେ ଯେଉଁ ଭୀଷଣ ଗୋଡ଼ବନ୍ଧା ହୁଏ । [ବିଶେଷ ।
ଶିରାମଳକ—ପୁଂ.ବ.ସ୍ୱନାମଖ୍ୟାତ ବୃକ୍ଷ-
ଶିରାଳୁ—ପୁଂ.ବ. ଭଲ୍ଲୁକ, ଭାଲୁ ।
ଶିରାଲ—କ୍ଲୀ.ବ. (ଶିରା+ଲ)କରମଙ୍ଗା ଫଳ, (ବିଂ) ଶିରାଯୁକ୍ତ, ଶିରାବହୁଳ, ଯହିଁରେ ଶିରାମାନ ବାହାରକୁ ଦେଖାଯାଏ ।
ଶିରାଲପତ୍ର—ପୁଂ.ବ. ତାଳବୃକ୍ଷ ।
ଶିରାବୁଡ଼ି—ପ୍ରା. (ଗଞ୍ଜାମ) ବ. ଦୁଆତ, କାଳିଘଡ଼ି ।
ଶିରାବୃତ୍ତ—କ୍ଲୀ.ବ.ସୀସା,ସୀସକ ।
ଶିରାବେଧ—ପୁଂ. ବ. ଶିରା ବିନ୍ଧିକରି ଦୂଷିତ ରକ୍ତ ବାହାର କରିବା ।
ଶିରାଶିରା—ଗ୍ରା.କ୍ରି. ବିଂ. ଶିରେଣିରେ ଦେଖ ।
ଶିରି—ବ. (ଶୃ+କ.ଇ) ଖଡ୍ଗ,ଶର, ବାଣ, ହିଂସକ ବ୍ୟକ୍ତି,ଶଳଭ, ଝିଣ୍ଟିକା ।
ଶିରି(ରୀ)—ଗ୍ରା.ବ. (ସଂ-ଶ୍ରୀ) ଶ୍ରୀ,ଶୋଭା, ସୌନ୍ଦର୍ଯ୍ୟ, ଭାଗ୍ୟୋଦୟ, ଲକ୍ଷ୍ମୀ, ବିଭବ, ସମ୍ପତ୍ତି, ସମାଜର ବୈଷ୍ଣବ-ମାନେ ସିନ୍ଦୂରପରି ଯେଉଁ ଗୁଣ୍ଡାକୁ ପାଣିରେ ଗୋଳି ଚିତା କରନ୍ତି ।
ଶିରି(ରୀ)ଛୁଡ଼ିବା—ଗ୍ରା. ବ. ସୌନ୍ଦର୍ଯ୍ୟ ନାଶହେବା, ଲକ୍ଷ୍ମୀ ନାଶହେବା,ସମ୍ପତ୍ତି ନାଶହେବା ।
ଶିରିଣି(ନି)—ଗ୍ରା.ବ. ମୁସଲମାନମାନଙ୍କ ପୂଜିତ ପୀରଙ୍କୁ ଦେୟ ନୈବେଦ୍ୟ, ପାଲାରେ ସତ୍ୟନାରାୟଣଙ୍କୁ ଦେବା ଅମୃତକୁଣ୍ଡ ମିଷ୍ଟାନ୍ନ କଦଳୀଆଦି ଭୋଗ ।
ଶିରିଶିରିଉଠିବା—ଗ୍ରା.କ୍ରି. (ଦେହ) ଶିର୍‌ଶିର୍‌ହେବା, ରୋମାଞ୍ଚିତ ହେବା, ଜରଜର ବୋଧହେବା ।
ଶିରୀଷ—ବ. ( ଶୃ+କ.ଈଶ ) ନାତି-ବୃହତ୍ ବନ୍ୟତରୁବିଶେଷ ।
ଶିରୀଷକ—ପୁଂ.ବ. ନାଗବିଶେଷ ।
ଶିରୀଷକୋମଳ—ବିଂ. ଶିରୀଷଫୁଲପରି ଅତ୍ୟନ୍ତ କୋମଳ ।
ଶିରୀଷକୋମଳାଙ୍ଗୀ—ସ୍ତ୍ରୀ.ବିଂ. (ବ.ସ୍ତ୍ରୀ) ଶିରୀଷଫୁଲପରି ସୁକୁମାରୀ ।
ଶିରୀଷପତ୍ରା—ସ୍ତ୍ରୀ.ବ. ଶ୍ୱେତକଣ୍ଟକୀ ବୃକ୍ଷ, କଣାଶିରୀଷ ।
ଶିରୀଷପତ୍ରିକା—ସ୍ତ୍ରୀ.ବ.ଶ୍ୱେତକଣ୍ଟକୀ ବୃକ୍ଷ।
ଶିରୀଷମାଳା—ବ.ଶିରୀଷଫୁଲର ମାଳ ବା ହାର ।
ଶିରେଇ—ପ୍ରା. (ଗଞ୍ଜାମ) ବ. ଅଧାପାଇ-ଜାମା, ଜଙ୍ଘିଆ ।
ଶିରୋଗର୍ଭକ—ବ. କେଶ ।
ଶିରୋଗୃହ(ଗେହ)—ବ.ଚନ୍ଦ୍ରଶାଳା,ଅଟ୍ଟା-ଳିକା, ଉପରିସ୍ଥ ଗୃହ ।
ଶିରୋଗ୍ରହ—ବ. (ଶିରସ୍+ଗ୍ରହ+କ. ଅ) ମୁଣ୍ଡର ଏକ ବାତରୋଗ ।
ଶିରୋଘୂର୍ଣ୍ଣନ-ବ.(ଷତତ୍ର)ମୁଣ୍ଡ ବୁଲାଇବା ।
ଶିରୋଜ—ବ. (ଶିରସ୍+ଜନ୍+କ.ଅ) ବାଳ, କେଶ ।
ଶିରୋଦାମ—ବ.(ଶିରସ୍+ଦାମନ୍)ପଗଡ଼ି, ମସ୍ତକର ମାଳା ।
ଶିରୋଦେଶ—ବ.ମସ୍ତକଦେଶ,ଅଗ୍ରଭାଗ ।
ଶିରୋଧର(ରା)—ବ. (ଶିରସ୍+ଧୃ+ କ.ଅ+ଆ) ବେକ, ଗ୍ରୀବା ।
ଶିରୋଧାନ—ବ. (ଶିରସ୍+ଧା+ଅଧି. ଅନ) ଖଟ ବା ପଲଙ୍କର ମୁଣ୍ଡ ରଖିବା ସ୍ଥାନ ।
ଶିରୋଧାର୍ଯ୍ୟ—ବିଂ. (୭ତତ୍ର) ମସ୍ତକରେ ଧାରଣ କରିବା ଯୋଗ୍ୟ, ଅବଶ୍ୟ ପାଳନୀୟ, ସାଦର ଅଙ୍ଗୀକରଣୀୟ, ଅତିମାନ୍ୟ ।
ଶିରୋଧି—ସ୍ତ୍ରୀ.ବ.(ଶିରସ୍+ଧା+କ.ଇ) ବେକ, ଗ୍ରୀବା ।
ଶିରୋଧିଜା—ବ(ଶିରୋଧି+ଜନ୍+କ. ଆ) ଶିରା, ନାଡ଼ୀ ।
ଶିରୋଧିନା—ସ୍ତ୍ରୀ. ବ, ଶିରା, ନାଡ଼ୀ ।
ଶିରୋଧୂନନ—କ୍ଲୀ. ବ. (୬ତତ୍ର)ମସ୍ତକ-କମ୍ପନ, ମୁଣ୍ଡ ଥରିବା ।
ଶିରୋଧ୍ର—ପୁଂ.ବ. ବେକ,ଗ୍ରୀବା,କନ୍ଧର ।
ଶିରୋନାମା—ଗ୍ରା.ବ.ଶିରନାମା ଦେଖ ।

ଶିରୋପା—ସ୍ତ୍ରୀ.ବ. (ଶିରସ୍+ପା+କ.ଅ+ଆ) ଉଷ୍ଣୀଷ, ପଗଡ଼ି ।

ଶିରୋଭାଗ—ପୁଂ.ବ.ମସ୍ତକଭାଗ,ଅଗ୍ରଭାଗ ।

ଶିରୋଽଭିତାପ—ପୁଂ. ବ. ଶିରୋରୋଗ, ମୁଣ୍ଡ ଗରମ ।

ଶିରୋଭୂଷଣ—କ୍ଲୀ.ବ. ମସ୍ତକରେ ପିନ୍ଧାଯିବା ଅଲଙ୍କାରାଦି, ମୁକୁଟ, ଉଷ୍ଣୀଷ, ଶିରୋମଣି, ଶ୍ରେଷ୍ଠ ବ୍ୟକ୍ତି ।

ଶିରୋଽଭ୍ୟଙ୍ଗ—ପୁଂ.ବ. ମୁଣ୍ଡରେ ତୈଳ ମର୍ଦ୍ଦନ ।

ଶିରୋମଣି—ବ. (କ.ଧା) ମସ୍ତକ ଧାର୍ଯ୍ୟ ରତ୍ନ, ଶ୍ରେଷ୍ଠ ବ୍ୟକ୍ତି, ମାଳାର ମେରୁ, ପଣ୍ଡିତମାନଙ୍କର ଉପାଧିବିଶେଷ ।

ଶିରୋମର୍ମା—ପୁଂ. ବ. (ବ.ବ୍ରୀ) ଶୂକର, ବାରାହା ।

ଶିରୋମାତ୍ରାବଶେଷ—ବ (ବ.ବ୍ରୀ)ରାହୁ-ଗ୍ରହ, (ବି°) ମସ୍ତକ ମାତ୍ର ଅବଶେଷ-ବିଶିଷ୍ଟ ।

ଶିରୋମାଳା—ବ. (କ.ଧା) ଶିରରେ ପିନ୍ଧାଯିବା ମାଳା, ନର ମୁଣ୍ଡମାନଙ୍କରେ ଗୁନ୍ଥା ମାଳା ।

ଶିରୋମାଳିନୀ—ସ୍ତ୍ରୀ.ବି° (ଶିରୋମାଳା+ଇନ୍+ଈ) ନରମୁଣ୍ଡ ମାଳାଧାରିଣୀ, ନୃମୁଣ୍ଡମାଳିନୀ, ମୁଣ୍ଡରେ ଯେ ମାଳା ପିନ୍ଧିଥାଏ, (ବି) କାଳୀ ।

ଶିରୋମାଳୀ—ପୁଂ. ବି°. ମୁଣ୍ଡରେ ଯେ ମାଳା ପିନ୍ଧିଥାଏ, ନରମୁଣ୍ଡ ମାଳାଧାରୀ, (ବି) ମହାଦେବ ।

ଶିରୋମୁକୁଟ—ବ. (କ.ଧା) ମସ୍ତକରେ ପିନ୍ଧା ଯାଇଥିବା ମୁକୁଟ ।

ଶିରୋମୌଳ(ଳି)—ପୁଂ ବ. ମୁକୁଟ, ଶିରୋଭୂଷଣ ।

ଶିରୋରତ୍ନ—ବ. ଶିରୋମଣି ଦେଖ ।

ଶିରୋରୁଜା—ସ୍ତ୍ରୀ. ବ. ସପ୍ତପର୍ଣ୍ଣ ବୃକ୍ଷ, ଛତିଆନାଗଛ, ମୁଣ୍ଡବ୍ୟଥା ।

ଶିରୋରୁହ୍—ପୁଂ.ବ. (ଶିର+ରୁହ୍+କ୍ୱିପ୍) କେଶ, ବାଳ ।

ଶିରୋରୁହ—ପୁଂ. ବ.(ଶିରଃ+ରୁହ୍+କ.ଅ)କେଶ, ମୁଣ୍ଡର ବାଳ ।

ଶିରୋରୋଗ—ପୁଂ. ବ. (୬ତତ୍ପୁ) ଶିରଃ ପୀଡ଼ା, ମୁଣ୍ଡର ବ୍ୟଥାଆଦି ନାନାପ୍ରକାର ରୋଗ ।

ଶିରୋର୍ତ୍ତି—ସ୍ତ୍ରୀ.ବ. ଶିରଃପୀଡ଼ା, ମୁଣ୍ଡ-ବ୍ୟଥା ।

ଶିରୋବର୍ତ୍ତୀ—ବି°.ମସ୍ତକବର୍ତ୍ତୀ,ଅଗ୍ରବର୍ତ୍ତୀ

ଶିରୋବଲ୍ଲୀ—ବ. (ଶିରସ୍+ବଲ୍ଲୀ)ମୟୂରର ବା କୁକ୍କୁଡ଼ାର ଚୂଳ ।

ଶିରୋବସ୍ତି—ବ.ବାତଜ ଶିରୋବ୍ୟଥାର ଉପଚାରବିଶେଷ ।

ଶିରୋବୃତ୍ତ—କ୍ଲୀ. ବ. (ବ.ବ୍ରୀ) ମରିଚ ।

ଶିରୋବୃତ୍ତଫଳ—ପୁଂ.ବ. ରକ୍ତଅପାମାର୍ଗ ବୃକ୍ଷ । [ ଟୋପି ।

ଶିରୋବେଷ୍ଟ(ନ)—କ୍ଲୀ.ବ.ଉଷ୍ଣୀଷ,ପଗଡ଼ି.

ଶିରୋବ୍ୟଥା—ବ. (୬ତତ୍ପୁ) ମୁଣ୍ଡବ୍ୟଥା ।

ଶିରୋଽସ୍ଥି—ବ. ମୁଣ୍ଡର ହାଡ଼, ଖପୁରି, କପାଳ ।

ଶିର୍କା—ଗ୍ରା.ବ.ମଦର କାଞ୍ଜି,ସଢ଼ାଗୁଡ଼ରୁ ବା ଅନ୍ୟ ମିଷ୍ଟ ରସରୁ ଉତ୍ପନ୍ନ ଅମ୍ଳ ।

ଶିଲ୍—ପ୍ରା. (ସମ୍ପ) ବ. ଶିଳ ଦେଖ ।

ଶିଳ—ବ.(ଶିଳ+ଭା.ଅ)ଉଞ୍ଛ,କ୍ଷେତ୍ରରେ ପଡ଼ିଥିବା ଧାନକେଣ୍ଡାଦିକୁ ଗୋଟାଇ ନେବା, ପରପାତ୍ରଙ୍କ ଏକପୁତ୍ର,(ଗ୍ରା.ବ-ସଂ-ଶିଳା) ପିଠଉ ଆଦି ବାଟିବାର ଚଟକା ପଥର ଖଣ୍ଡ, ପଥର ।

ଶିଲ୍—ଗ୍ରା. ବ. (ସଂ-ଶ୍ରେୟ)ହିତ,ମଙ୍ଗଳ, ଉପକାର,ହିତକାମନା,ଅନୁମତି,ଆଦାୟ

ଶିଳଗର୍ଭଜ—ପୁଂ. ବ. ପାଷାଣଭେଦୀ ।

ଶିଲଙ୍ଗ—ଗ୍ରା. ବ. ଆସାମର ଗୋଟିଏ ନଗର ।

ଶିଳଜ—କ୍ଲୀ. ବ. ଶୈଳଜ ନାମକ ଗନ୍ଧ ଦ୍ରବ୍ୟବିଶେଷ ।

ଶିଳନ୍ଦ(ନ୍ଧ)—ବ. ଶିଳନ୍ଦ ଦେଖ ।

ଶିଳ(ଳ)ପା(ପୁତା)—ଗ୍ରା. ବ.(ସଂ-ଶିଳା-ପୁତ୍ର) ଯେଉଁ କ୍ଷୁଦ୍ର, ଲମ୍ବ ଓ ଗୋଲ ପଥର ଖଣ୍ଡ ଧରି ଶିଳଉପରେ ପିଠଉ ଆଦି ବାଟିବାକୁ ହୁଏ ।

ଶିଳରତ—ପୁଂ. ବି°. (ବ.ବ୍ରୀ)ଶିଳବୃତ୍ତି ଦ୍ୱାରା ଜୀବିକା ନିର୍ବାହକାରୀ ।

ଶିଳବୃତ୍ତି—ବ. ଉଞ୍ଛବୃତ୍ତି,କ୍ଷେତ୍ରରୁ ଧାନ କାଟିନେବା ପରେ ପଡ଼ିଥିବା ଧାନ କେଣ୍ଡା ଗୋଟାଇନେଇ ତଦ୍ଦ୍ୱାରା ଜୀବିକା ନିର୍ବାହ, (ପୁଂ.ବି°-ବ.ବ୍ରୀ) ଶିଳରତ ଦେଖ ।

ଶିଳା—ସ୍ତ୍ରୀ. ବ. (ଶିଳ+ଣ.ଅ+ଆ) ପଥର, ପାଷାଣ, କର୍ପୂର, ଗୈରିକ, କୁଆପଥର,ହଡ଼ତାଳ,ଗୋରଚନା,ଦୂବା, ମନଃଶିଳା, ଦ୍ୱାରବନ୍ଧର ନିମ୍ନସ୍ଥ କାଷ୍ଠ, ଏରୁଣ୍ଡିବନ୍ଧ, ସ୍ତମ୍ଭଶୀର୍ଷ, ପଥରର ବଡ଼ ଖଣ୍ଡ,ଶିଳାଜତୁ,ମାଳଗୁଳ୍ମ, ଢିମାପଥର, ଶିଳବୃତ୍ତି ଦେଖ ।

ଶିଳା(ଳେ)ଇବା—ଗ୍ରା. କ୍ରି. ଖୁରଆଦି ଧାର କରିବାପାଇଁ ପଥରରେ ଘଷିବା ।

ଶିଳାକର୍ଣ୍ଣୀ—ସ୍ତ୍ରୀ. ବ. ଶଲ୍ଲକୀବୃକ୍ଷ ।

ଶିଳାକୁଟ୍ଟକ—ପୁଂ. ବ. (ଶିଳ+କୁଟ୍+ଣ.ଅକ) ପାଷାଣଭେଦନାସ୍ତ୍ର ।

ଶିଳାକୁସୁମ—କ୍ଲୀ.ବ. ଶିଳୋଦ୍ଭବ, ଶିଳାଜତୁ । [ ଅକ୍ଷର ।

ଶିଳାକ୍ଷର—କ୍ଲୀ.ବ.ଶିଳାପଟ୍ଟରେ ଲିଖିତ

ଶିଳାକ୍ଷେପଣ—ବ. (୬ତତ୍ପୁ) ପଥର ଫୋପାଡ଼ିବା ।

ଶିଳାଖଣ୍ଡ—ବ. ପ୍ରସ୍ତରଖଣ୍ଡ ।

ଶିଳାଗୃହ—କ୍ଲୀ. ବ. ପଥରର ଘର ।

ଶିଳାଚକ୍ର—କ୍ଲୀ. ବ. ଶାଳଗ୍ରାମ ଶିଳା ।

ଶିଳାଚୟ—ବ. (୬ତତ୍ପୁ) ପର୍ବତ ।

ଶିଳାଜ—କ୍ଲୀ. ବ. ଶୈଳଜ, ଶିଳାଜତୁ, ଲୌହ ।

ଶିଳାଜତୁ—କ୍ଲୀ. ବ. ପର୍ବତଜାତ ତରଳ ଉପଧାତୁବିଶେଷ ।

ଶିଳାଜିତ୍—ଗ୍ରା. ବ. ଶିଳାଜତୁ ଦେଖ ।

ଶିଳାଞ୍ଜନୀ—ସ୍ତ୍ରୀ. ବ. କାଳାଞ୍ଜନୀବୃକ୍ଷ ।

ଶିଳାଟକ—ପୁଂ.ବ. (ଶିଳା+ଅଟ୍+କ.ଅକ) ଚନ୍ଦ୍ରଶାଳା, କୋଠାଘର, ଅଟ୍ଟାଳିକା, କୋଠା ଗୃହପାଖେ ଉଆସ ପାଚେରି ।

ଶିଳାଟିକା—ବ. ନାଲି ପୁରୁଣିଶାଗ ।

ଶିଳାତଳ—କ୍ଲୀ. ବ. (୬ତତ୍ପୁ) ଶିଳାର ଉପରିଭାଗ ।

ଶିଳାସ୍ୱଜ—ବି. (୬ତତ୍ତ୍ୱ) ଲୌହ ।
ଶିଳାସ୍ୱିକା—ସ୍ତ୍ରୀ.ବି.ସୁନା ବା ରୁପା ତର-
କାଇବାର କୋଇ ।
ଶିଳାଦ—ପୁଂ.ବି.(ଶିଳା+ଅଦ୍+କ.ଅ)
ଶିବାନୁଚର ନନ୍ଦୀଙ୍କ ପିତା, ଜଣେ
ପ୍ରାଚୀନ ଋଷି ।
ଶିଳାଦଦ୍ରୁ—ପୁଂ. ବି. ଶୈଳେୟ ନାମକ
ଗନ୍ଧଦ୍ରବ୍ୟ, ଶିଳାଜତୁ ।
ଶିଳାଦାନ—ବି. ଶାଳଗ୍ରାମଶିଳାଦାନ ।
ଶିଳାଦତ୍ୟ—ପୁଂ. ବି. ରାଜା ହର୍ଷବର୍ଦ୍ଧନ
ବା ଶ୍ରୀହର୍ଷ ।
ଶିଳାଦ୍ୱନ୍ଦ୍ୱ--କ୍ଲୀ.ବି.ଶୈଳେୟ, ଶିଳାଜତୁ ।
ଶିଳାଧାତୁ—ପୁଂ. ବି. ଗୈରିକଭେଦ,
ସ୍ୱର୍ଣ୍ଣଗୈରିକ, ଖଡ଼ୀ, ଚନ ।
ଶିଳାନର୍ଯ୍ୟାସ—ପୁଂ. ବି. ଶିଳାଜତୁ ।
ଶିଳାନୀଡ଼—ବି. (ବ.ଗ୍ରା) ଗରୁଡ଼ ।
ଶିଳାନ୍ତ—ପୁଂ. ବି. ଅଶ୍ମାନ୍ତକ ବୃକ୍ଷ ।
ଶିଳାନ୍ନ—ବି.ଶିଳବୃତ୍ତି ଦ୍ୱାରା ପ୍ରାପ୍ତ ଅନ୍ନ ।
ଶିଳାପଟ୍ଟ—ପୁଂ.ବି.ବାଟିବା ଶିଳ,ପଥର
ଚଟାଣ ।
ଶିଳାପୁତ୍ର—ପୁଂ. ବି. ଶିଳପୁଅ ଦେଖ ।
ଶିଳାପୁଷ୍ପ—କ୍ଲୀ. ବି. ଔଷଧବିଶେଷ,
ଶିଳାଜତୁ ।
ଶିଳାପ୍ରସୂନ—କ୍ଲୀ. ବି. ଔଷଧବିଶେଷ,
ଶିଳାଜତୁ ।
ଶିଳାବନ୍ଧ—ବି. ପଥର ଦ୍ୱାରା ନିର୍ମିତ
ପାଚେରି ପ୍ରଭୃତି ।
ଶିଳାଭବ—କ୍ଲୀ.ବି.ଶୈଳଜ,ଶିଳାଜତୁ ।
ଶିଳାଭିଷ୍ୟନ୍ଦ—ବି. ଶିଳାଜତୁ ।
ଶିଳାଭେଦ—ବି. ପାଷାଣଭେଦୀ ବୃକ୍ଷ,
ପଥର କାଟିବା ଅସ୍ତ୍ର ।
ଶିଳାମୟ—ବିଂ. ପଥର ନିର୍ମିତ (ଦ୍ରବ୍ୟ).
(ବି. ଶିଳା+ଆମୟ)ଶିଳାଜତୁ ।
ଶିଳାମଳ—ବି. ଶିଳାଜତୁ ।
ଶିଳାୟୁ—ବି. ଗଳରୋଗବିଶେଷ ।
ଶିଳାରମ୍ଭା—ସ୍ତ୍ରୀ. ବି. କାଠ କଦଳୀ ।
ଶିଳାରସ—ପୁଂ.ବି.ପ୍ରସିଦ୍ଧ ଖନିଜ ଦ୍ରବ୍ୟ-
ବିଶେଷ, ଶିହ୍ଲକ ।
ଶିଳାଳ--ବି.ନୃତ୍ୟଗୀତାଦି ଶାସ୍ତ୍ର,ନୃତ୍ୟାଦି
ଶାସ୍ତ୍ର ପ୍ରଣେତା ମୁନିବିଶେଷ ।
ଶିଳାଲିପି—ସ୍ତ୍ରୀ. ବି. (କ.ଧା) ପଥରରେ
ଖୋଦିତ ହୋଇଥିବା ଅକ୍ଷରମାଳା ।
ଶିଳାବନ୍ଧ-ବି.ପଥରରେ ତିଆରି ପାଚେରି-
ଆଦି ।
ଶିଳାବଲ୍କା--ସ୍ତ୍ରୀ.ବି. ଔଷଧଦ୍ରବ୍ୟବିଶେଷ ।
ଶିଳାବୃ—ପୁଂ.ବି. ଦେଶବିଶେଷ,ଉକ୍ତ
ଦେଶବାସୀ ବ୍ୟକ୍ତି ।
ଶିଳାବୃଷ୍ଟି—ସ୍ତ୍ରୀ.ବି. ତୁଷାରବୃଷ୍ଟି,କରକା-
ପାତ, ଶତ୍ରୁକୁ ପଥର ଫିଙ୍ଗିବା ।
ଶିଳାବେଶ୍ମ—କ୍ଲୀ. ବି. ପଥରକୋଠା,
ଗୁମ୍ଫା, ଗୁହା ।
ଶିଳାବ୍ୟାଧି—ପୁଂ. ବି. ଶିଳାଜତୁ ।
ଶିଳାଶସ୍ତ୍ର-କ୍ଲୀ.ବି.ପଥରରେ ତିଆରି ଅସ୍ତ୍ର ।
ଶିଳାସନ—କ୍ଲୀ.ବି.ପ୍ରସ୍ତରନିର୍ମିତ ଆସନ,
ଶିଳାଜତୁ ।
ଶିଳାସାର—କ୍ଲୀ. ବି. (୬ତତ୍ତ୍ୱ) ଲୌହ ।
ଶିଳାସ୍ଥି—କ୍ଲୀ.ବି.ଯେଉଁ ଅସ୍ଥି ଖଣ୍ଡ ଉପରେ
ମସ୍ତକ ଅବସ୍ଥିତ ।
ଶିଳାସ୍ତମ୍ଭ—ପୁଂ. ବି. ପ୍ରସ୍ତର ସ୍ତମ୍ଭ ।
ଶିଳାସ୍ୱେଦ—ପୁଂ. ବି. ଶିଳାଜତୁ ।
ଶିଳାହର—ବି. ଶାଳଗ୍ରାମ ଦେଖ ।
ଶିଳାହସ୍ତୀ —ପୁଂ.ବିଂ. ଶିଳାରଥ ଦେଖ ।
ଶିଳାହାରୀ—ପୁଂ. ବିଂ. (ଶିଳ+ଆ+
ହୃ+ଇନ୍)ଶିଳବୃତ୍ତିଦ୍ୱାରା ଯେ ଜୀବିକା
ନିର୍ବାହ କରେ ।
ଶିଳାହ୍ୱ—କ୍ଲୀ. ବି. ଶିଳାଜତୁ ।
ଶିଳି(ଳୀ)-ବି.(ଶିଲ୍+ନିଂ.ଇ,ଈ)ଛତ୍ରକ-
ପୁଷ୍ପ, ଶଲ୍ୟ,ଚଉକାଠର ନିମ୍ନସ୍ଥ କାଷ୍ଠ,
ଭୂର୍ଜପତ୍ର ଓ ବୃକ୍ଷ ।
ଶିଲିଙ୍ଗ— ଯା. ବି. ଇଂରାଜଦେଶ
ପ୍ରଚଳିତ ରୌପ୍ୟମୁଦ୍ରାବିଶେଷ ।
ଶିଳିନ୍ଦ—ପୁଂ.ବି. ମତ୍ସ୍ୟବିଶେଷ, ଜଳଙ୍ଗ-
ମାଛ ।
ଶିଳିନ୍ଧା—ବି. ପାତାଳଗରୁଡ଼ ଗଛ ।
ଶିଳିନ୍ଧ୍ର—ବି.(ଶିଳ+ଧୃ+ନିଂ.ଅ)ଶିଳୀନ୍ଧ୍ର
ଦେଖ ।
ଶିଳୀ—ବି. (ଶିଳ+ଈ) ଛତ୍ରକପୁଷ୍ପ,
ଛତୁ, ଶଲ୍ଲ,ଏକୁଣ୍ଡିବନ୍ଧ,ଜିଆ,କେଞ୍ଚୁଆ,
ବେଙ୍ଗୁଲି, ଭୂର୍ଜପତ୍ର,ବାଣ,ଖିଲ,ବର୍ଚ୍ଛା ।
ଶିଳୀନ୍ଧ୍ର—କ୍ଲୀ. ବି. (ଶିଳନ୍+ଧୃ+କ.
ଅ) ଛତ୍ରାକ, ଛତୁ, କରକା, କଦଳୀ-
ଗଛ, କାଠକଦଳୀ,ଭଣ୍ଡା,ଜଳଙ୍ଗମାଛ ।
ଶିଳୀନ୍ଧ୍ରପୁଷ୍ପ—କ୍ଲୀ. ବି. କଦଳୀଫୁଲ ।
ଶିଳୀନ୍ଧ୍ରା—ବି. (ଶିଳୀନ୍ଧ୍ର+ଆ) ପକ୍ଷିଣୀ
ବିଶେଷ, କଦଳୀ, ଖାଦ୍ୟକନ୍ଦବିଶେଷ,
ମୃତ୍ତିକା, ଭେକ ।
ଶିଳୀନ୍ଧ୍ରୀ—ସ୍ତ୍ରୀ. ବି. (ଶିଳୀନ୍ଧ୍ର+ଈ)
ମାଟି, ପକ୍ଷୀଭେଦ, କେଞ୍ଚୁଆ, ଭେଙ୍ଗା ।
ଶିଳୀପଦ—ପୁଂ.ବି.ପାଦସ୍ଫୀତି,ଗୋଦର,
ଶ୍ଳୀପଦ ।
ଶିଳୀପୃଷ୍ଠ—ବି. ବାଣ, ଅସ୍ତ୍ର, ଖଡ୍ଗ ।
ଶିଳୀମୁଖ—ପୁଂ. ବି. (ବ.ଗ୍ରା) ଭ୍ରମର,
ବାଣ,ଯୁଦ୍ଧ, ମୂର୍ଖ ବ୍ୟକ୍ତି ।
ଶିଳୁ—ପୁଂ. ବି. ବହୁବାର ବୃକ୍ଷ, ଓଉ,
ଗରଭଣା ଗଛ ।
ଶିଳୂଷ—ପୁଂ. ବି. ଋଷିବିଶେଷ, ବେଲ-
ଗଛ, ଶୈଲୁଷ ଦେଖ ।
ଶିଳେୟ—କ୍ଲୀ.ବି. ଶୈଳଜ,ଶିଳାଜତୁ,
(ବିଂ) ପଥର ସମ୍ବନ୍ଧୀୟ, ପଥର ପରି
ଟାଣୁଆ ।
ଶିଳୋଚ୍ଚୟ—ବି.(୬ତତ୍ତ୍ୱ) ପର୍ବତ,ଗିରି-
ଶୃଙ୍ଗ, ପର୍ବତଚୂଡ଼ା ।
ଶିଳୋଞ୍ଛ—ବି. (କ.ଧା) ଉଞ୍ଛବୃତ୍ତି ।
ଶିଳୋତ୍ଥ—ବି. (ଶିଳା+ଉତ୍+ସ୍ଥା+
କ.ଅ) ଶିଳାଜତୁ ।
ଶିଳୋଦ୍ଭବ—ବି. (ବ.ଗ୍ରା) ଶିଳାଜତୁ,
ଚନ୍ଦନବିଶେଷ, ପୀତଚନ୍ଦନ ।
ଶିଳୋଦ୍ଭିଦା—ସ୍ତ୍ରୀ. ବି. ପାଷାଣଭେଦୀ ।
ଶିଳୌକାଃ—ପୁଂ. ବି. (ବ.ଗ୍ରା) ଗରୁଡ଼,
(ବିଂ) ପାର୍ବତ୍ୟ, ପର୍ବତବାସୀ ।
ଶିଳ୍ପ—କ୍ଲୀ. ବି. (ଶିଲ୍+ଭା.ପ) କାରି-
ଗରି, ବସ୍ତୁନିର୍ମାଣ କାର୍ଯ୍ୟ, କାରୁକର୍ମ,
ବେଣୁ, ବୀଣାଦି ବାଦ୍ୟ, ନୃତ୍ୟଗୀତ-
ବାଦ୍ୟାଦି, ଚିତ୍ରବିଦ୍ୟାଦି,କଳାବିଦ୍ୟାର
ବ୍ୟବସାୟ, ଶିଳ୍ପଜାତ ଦ୍ରବ୍ୟ ।
ଶିଳ୍ପକ—କ୍ଲୀ. ବି. (ଶିଳ୍ପ+କ) ଶିଳ୍ପ
ଦେଖ ।

ଶିଳ୍ପକ(କା)ର—ବି.(ଶିଳ୍ପ+କୃ+ଅ) ଶିଳ୍ପୀ, କାରିଗର, ଶିଳ୍ପବିଦ୍ୟା ବ୍ୟବସାୟୀ, ରାଜ, ମିସ୍ତ୍ରୀ ।

ଶିଳ୍ପକର୍ମ—ବି.(ରୂପକ) ଚିତ୍ରାଦି ଅଙ୍କନ ବା ନିର୍ମାଣାଦି କାର୍ଯ୍ୟ,ଶିଳ୍ପବ୍ୟବସାୟ ।

ଶିଳ୍ପକଳା—ବି. ସୂକ୍ଷ୍ମଶିଳ୍ପ, କାରିଗରି, ଶିଳ୍ପଚାତୁରୀ । [ କର୍ମକାରୀ ।

ଶିଳ୍ପକାରକ—ପୁଂ. ବି. ଶିଳ୍ପିକ,ଶିଳ୍ପ-

ଶିଳ୍ପକାରୀ—ପୁଂ.ବିଂ.ଶିଳ୍ପକର ଦେଖ ।

ଶିଳ୍ପକୁଶଳ—ପୁଂ. ବିଂ. (୭ତତ୍ପୁ)ଶିଳ୍ପକାର୍ଯ୍ୟରେ ପାରଙ୍ଗମ ।

ଶିଳ୍ପକୌଶଳ—ବି. (୬ତତ୍ପୁ) ଶିଳ୍ପ କାର୍ଯ୍ୟରେ ଦକ୍ଷତା, ଶିଳ୍ପଚାତୁରୀ ।

ଶିଳ୍ପଗୃହ(ଗେହ)—କ୍ଲୀ. ବି.(କ.ଧା)ଶିଳ୍ପଶାଳା,ଶିଳ୍ପୀମାନଙ୍କ କାରଖାନା ।

ଶିଳ୍ପଚାତୁରୀ(ଚାତୁର୍ଯ୍ୟ)—ବି.(୭ତତ୍ପୁ) ଶିଳ୍ପ କାର୍ଯ୍ୟରେ ଦକ୍ଷତା ।

ଶିଳ୍ପଜ—ବିଂ. (ଶିଳ୍ପ+ଜନ୍+କ.ଅ) ଶିଳ୍ପକର୍ମ ଦ୍ୱାରା ଉତ୍ପନ୍ନ ।

ଶିଳ୍ପଜାତଦ୍ରବ୍ୟ—ବି.(୫ତତ୍ପୁ)ଶିଳ୍ପକର୍ମ ଦ୍ୱାରା ପ୍ରସ୍ତୁତ ବସ୍ତୁ ।

ଶିଳ୍ପଜୀବିକା—ସ୍ତ୍ରୀ. ବି. ଶିଳ୍ପକର୍ମଦ୍ୱାରା ଜୀବିକା ବା ପେଟପୋଷା ।

ଶିଳ୍ପଜୀବୀ—ପୁଂ. ବିଂ. (ଶିଳ୍ପ+ଜୀବ+ଇନ୍)ଯେ ଶିଳ୍ପବିଦ୍ୟା ଦ୍ୱାରା ଜୀବିକା ନିର୍ବାହକରେ, କାରିଗର ।

ଶିଳ୍ପପ୍ରଜାପତି—ପୁଂ.ବି. ଶିଳ୍ପକର୍ମ ସ୍ରଷ୍ଟା, ବିଶ୍ୱକର୍ମା । [ ହତିଆର ।

ଶିଳ୍ପଯନ୍ତ୍ର—କ୍ଲୀ. ବି.(କ.ଧା)କଳ,ଶିଳ୍ପର

ଶିଳ୍ପଲବ୍ଧ—ବିଂ. (୩ତତ୍ପୁ) ଶିଳ୍ପକାର୍ଯ୍ୟ ଦ୍ୱାରା ପ୍ରାପ୍ତ,ଶିଳ୍ପଜାତ ।

ଶିଳ୍ପଲିପି—ସ୍ତ୍ରୀ. ବି. (କ.ଧା)ପଥର ପ୍ରଭୃତିରେ ଖୋଦିତ ଲିପି । [ ବିଶିଷ୍ଟ ।

ଶିଳ୍ପବାନ୍—ପୁଂ.ବିଂ. ଶିଳ୍ପଯୁକ୍ତ,ଶିଳ୍ପ-

ଶିଳ୍ପବିଜ୍ଞାନ--ବି.(ଦ୍ୱନ୍ଦ୍ୱ)ଶିଳ୍ପ ଓ ବିଜ୍ଞାନ, (ରୂପକ) ଶିଳ୍ପବିଦ୍ୟା ।

ଶିଳ୍ପବିଦ୍ୟା—ସ୍ତ୍ରୀ. ବି. ଶିଳ୍ପବିଷୟକ ବିଦ୍ୟା, ଚିତ୍ରଅଙ୍କନାଦି ଓ ଶିଳ୍ପ ନିର୍ମାଣ ବିଦ୍ୟା, କାରିଗରି ବିଦ୍ୟା ।

ଶିଳ୍ପବିଦ୍ୟାଳୟ—ବି. ଯେଉଁ ବିଦ୍ୟାଳୟରେ ଶିଳ୍ପକର୍ମ ଶିକ୍ଷା ଦିଆଯାଏ ।

ଶିଳ୍ପଶାଳ(ଳା)—ବି. (୬ତତ୍ପୁ) ଶିଳ୍ପାଗାର, କାରଖାନା,ଯେଉଁଠାରେ ଶିଳ୍ପ କାର୍ଯ୍ୟର ନମୁନାମାନ ସଂଗୃହୀତ ହୋଇଥାଏ ।

ଶିଳ୍ପଶାସ୍ତ୍ର—ବି.(କ.ଧା) ଶିଳ୍ପକର୍ମ ବିଷୟକ ଗ୍ରନ୍ଥ, ଶିଳ୍ପବିଦ୍ୟା । [ ଶିଖିବା ।

ଶିଳ୍ପଶିକ୍ଷା—ବି. (୬ତତ୍ପୁ) ଶିଳ୍ପକର୍ମ

ଶିଳ୍ପସମ୍ପଦ୍(ତ୍ତି)—ବି. (ରୂପକ-କ.ଧା) ଶିଳ୍ପରୂପ ଅମୂଲ୍ୟ ଧନ ।

ଶିଳ୍ପସାହିତ୍ୟ—ବି. (ଦ୍ୱନ୍ଦ୍ୱ) ଶିଳ୍ପ ଓ ସାହିତ୍ୟ,(କ.ଧା)ଶିଳ୍ପସମ୍ବନ୍ଧୀୟ ସାହିତ୍ୟ

ଶିଳ୍ପାଗାର—ବି. (ଶିଳ୍ପ+ଆଗାର) ଶିଳ୍ପଶାଳା ।

ଶିଳ୍ପାନୁରାଗ—ବି. (୭ତତ୍ପୁ) ଶିଳ୍ପକାର୍ଯ୍ୟ ପ୍ରତି ଆସକ୍ତି ।

ଶିଳ୍ପିକ—ପୁଂ.ବିଂ. ଶିଳ୍ପୀ ଦେଖ,(ସ୍ତ୍ରୀ) ଶିଳ୍ପିକା, (ବି) ନାଟକଭେଦ ।

ଶିଳ୍ପିକା—ବି. ମହାରାଷ୍ଟ୍ରଦେଶୀୟ ତୃଣବିଶେଷ ।

ଶିଳ୍ପିଶାଳା—ବି. ଶିଳ୍ପଶାଳା ଦେଖ ।

ଶିଳ୍ପୀ—ପୁଂ. ବିଂ.(ଶିଳ୍ପ+ଇନ୍)ଶିଳ୍ପ କର୍ମକାରୀ, କାରିଗର, ଶିଳ୍ପକାର୍ଯ୍ୟର ନିର୍ମାଣକର୍ତ୍ତା, (ସ୍ତ୍ରୀ) ଶିଳ୍ପିନୀ, (ପୁଂ.ବି) ରାଜମିସ୍ତ୍ରୀ,ଚିତ୍ରକର, ନଖୀନାମକ ଗନ୍ଧଦ୍ରବ୍ୟ ।

ଶିଳ୍ପୋନ୍ନତି—ବି. (୭ତତ୍ପୁ) ଶିଳ୍ପକର୍ମ ସମ୍ବନ୍ଧେ ଉତ୍କର୍ଷ, (୬ତତ୍ପୁ) ଶିଳ୍ପର ଶ୍ରୀବୃଦ୍ଧି ।

ଶିଳ୍ପୋପଜୀବୀ—ପୁଂ.ବିଂ.ଯେ ଶିଳ୍ପକର୍ମ ଦ୍ୱାରା ଜୀବିକା ନିର୍ବାହକରେ, (ସ୍ତ୍ରୀ) ଶିଳ୍ପୋପଜୀବିନୀ ।

ଶିଳହ—ବି. ଶିଳାରସ ଦେଖ ।

ଶିବ—ପୁଂ. ବି. (ଶୀ=ଅଣିମାଦିଗୁଣ=ଶୋଇବା+ଅଧି.ଅ ବା ଶୋ=ଅଶୁଭ ନାଶକରିବା+କ.ବ) ଯେ ଅନିଷ୍ଟ ନାଶ କରନ୍ତି, ମହାଦେବ,ଶଙ୍କର, ଈଶ୍ୱରଙ୍କର ତ୍ରିମୂର୍ତ୍ତି ମଧ୍ୟରୁ ଏକତମ,ବେଦ,ଜ୍ୟୋତିଷୋକ୍ତ ବିଷ୍କୁମ୍ଭାଦି ଅନ୍ତର୍ଗତ ଯୋଗ ବିଶେଷ, ମୋକ୍ଷ, ପାରଦ, ଶିବଲିଙ୍ଗ, ସୈନ୍ଧବଲବଣ, ଜଳ, ମଙ୍ଗଳ, ଶୁଭ, ସୁଖ, ଶଙ୍ଖ, ଖୁଣ୍ଟି,ଗୁଗ୍ଗୁଳ,ବୃକ୍ଷବିଶେଷ, କଳାଧାତୁରା, ବେଦ, ଶୁଭଗ୍ରହ, ରୁଦ୍ର, କାଳ, ବସୁଦେବ, ମୃଗବିଶେଷ, ଏକ ପ୍ରକାର ଗୌଡ଼ୀମଦିରା, ପ୍ଲକ୍ଷଦ୍ୱୀପ ବା ଜମ୍ବୁଦ୍ୱୀପର ଏକବର୍ଷର ନାମ, ନୃତ୍ୟବିଶେଷ, ଛନ୍ଦୋବିଶେଷ,ପରମେଶ୍ୱର, ଭଗବାନ୍, ପଶୁବନ୍ଧନ ସ୍ତମ୍ଭ, ଲିଙ୍ଗ, ମେଢ୍ର,ଟାଙ୍ଗଣା,କ୍ଷାର,ଅଁଳା,କଦମ୍ବ, ପିଚ୍ଛିକରି,ସିନ୍ଦୂର, ମରିଚ, ଛଳଫୁଲ, ଚନ୍ଦନ, ଲୁହା, ରୁପା, ବାଲି, ନୀଳକଣ୍ଠ ପକ୍ଷୀ, କାକ, ବଉଳଗଛ, କୁନ୍ଦପୁଷ୍ପ, ଅଦ୍ୱୈତବ୍ରହ୍ମ, ବାଲୁଆ, (ପୁଂ.ବିଂ) ଶୁଭଦ, ରମ୍ୟ, ସୁନ୍ଦର,ସୁଖପ୍ରଦ, (ସ୍ତ୍ରୀ) ଶିବା ।

ଶିବକ—ବି. କଣ୍ଟା,ଖୁଲା, ଗୋରୁମାନଙ୍କ ଗାଦ କଣ୍ଡୁୟନ ନିମିତ୍ତ ଗୋଠରେ ପୋତାହୋଇଥିବା ଖୁଲା ।

ଶିବକର—ପୁଂ.ବି.ଜିନବିଶେଷ,(ପୁଂ.ବିଂ) ମଙ୍ଗଳକାରକ ।

ଶିବକରଦେବ-ଗ୍ରା.ବି.ଭୌମବଂଶର ରାଜା ।

ଶିବକର୍ଣ୍ଣୀ—ସ୍ତ୍ରୀ. ବି. ସ୍କନ୍ଦମାତୃକାଭେଦ ।

ଶିବକାଞ୍ଚୀ—ସ୍ତ୍ରୀ.ବି. ଦାକ୍ଷିଣାତ୍ୟର କାଞ୍ଚୀ ନଗରର ଏକ ଅଂଶ ।

ଶିବକାନ୍ତା—ସ୍ତ୍ରୀ. ବି. ଶିବପତ୍ନୀ, ଦୁର୍ଗା ।

ଶିବକାରୀ—ପୁଂ.ବିଂ.(ଶିବ+କୃ+ଇନ୍) ମଙ୍ଗଳକାରୀ, ମଙ୍ଗଳବିଧାତା, (ସ୍ତ୍ରୀ) ଶିବକାରିଣୀ ।

ଶିବକୀର୍ତ୍ତନ—ପୁଂ.ବି. (ବ.ବ୍ରୀ)ଭୃଙ୍ଗରାଜ, ବିଷ୍ଣୁ, ଶୈବ,(୬ତତ୍ପୁ) ଶିବଙ୍କର ସ୍ତୁତିଗାନ ।

ଶିବକ୍ଷେତ୍ର—କ୍ଲୀ.ବି. (କ.ଧା) କୈଳାସ, କାଶୀ, ବାରାଣସୀ, ଶ୍ମଶାନ ।

ଶିବଗଙ୍ଗା—ସ୍ତ୍ରୀ.ବି.ଶିବଙ୍କ ମନ୍ଦିର ସନ୍ନିକଟସ୍ଥ ନଦୀ ବା ତୀର୍ଥ, ମାନ୍ଦ୍ରାଜ ପ୍ରେସିଡେନ୍ସୀର ମଦୁରାଜିଲ୍ଲାର ଅନ୍ତର୍ଗତ ଗୋଟିଏ ଜମିଦାରୀ ।

ଶିବଗଣ—ପୁଂ. ବି. ଶିବଙ୍କର ଅନୁଚର ପ୍ରମଥଗଣ ।
ଶିବଗିରି—ବି. (କ.ଧା)କୈଳାସ ।
ଶିବଗୁରୁ—ଗ୍ରା.ପୁଂ.ବି. ଶଙ୍କରାଚାର୍ଯ୍ୟଙ୍କର ପିତା ଓ ବିଦ୍ୟାଧିରାଜଙ୍କ ପୁତ୍ର ।
ଶିବଘର୍ମଜ—ପୁଂ. ବି. (ଶିବ+ଘର୍ମ+ଜନ୍+ଅ) ମଙ୍ଗଳଗ୍ରହ ।
ଶିବଙ୍କର—ପୁଂ.ବିଂ. (ଶିବ+କୃ+କ. ଅ) କ୍ଷେମଙ୍କର, ମଙ୍ଗଳକାରକ, (ସ୍ତ୍ରୀ) ଶିବଙ୍କରୀ, (ପୁଂ.ବି) ବାଳଗ୍ରହବିଶେଷ ।
ଶିବଚତୁର୍ଦ୍ଦଶୀ—ବି.ଶିବରାତ୍ରି, ଫାଲ୍ଗୁନ କୃଷ୍ଣଚତୁର୍ଦ୍ଦଶୀ ଓ ପ୍ରତିମାସର କୃଷ୍ଣଚତୁର୍ଦ୍ଦଶୀ ।
ଶିବଜା—ସ୍ତ୍ରୀ. ବି. ଶିବଲିଙ୍ଗିନୀ ଦେଖ ।
ଶିବଜ୍ଞାନ—ବି.(ବି.ଗ୍ରା) ଶୁଭାଶୁଭ କାଳବୋଧକ ଶାସ୍ତ୍ରବିଶେଷ, ମଙ୍ଗଳ ବା ଶୁଭସମ୍ବନ୍ଧୀୟ ଜ୍ଞାନ ।
ଶିବତାତି—ସ୍ତ୍ରୀ. ବିଂ. କଲ୍ୟାଣକାରିଣୀ, ମଙ୍ଗଳଦାୟିକା ।
ଶିବତୀର୍ଥ—କ୍ଳୀ. ବି. (କ.ଧା)କାଶୀ ।
ଶିବତେଜଃ—ବି. (୬ତତ୍ପୁ) ପାରଦ ।
ଶିବତ୍ୱ(ତା)—ବି. ଶିବପାଦ, ଶିବସାଯୁଜ୍ୟ ଦେଖ ।
ଶିବଦ—ବି.(ଶିବ+ଦୈ+କ.ଅ)ଶିବପୂଜାର୍ଥ ଦତ୍ତ ହୋଇଥିବା ନିଷ୍କର ବୃତ୍ତି
ଶିବଦ—ପୁଂ. ବିଂ. ମଙ୍ଗଳବିଧାୟକ, ଶୁଭଦାତା ।
ଶିବଦତ୍ତ—ପୁଂ.ବି.ଶିବକୋଷ ପ୍ରଣେତା, (ପୁଂ.ବି) ଶିବଙ୍କ ସୁଦର୍ଶନ ଚକ୍ର ।
ଶିବଦର୍ଶନ-ବି.ମହାଦେବଙ୍କୁ ଦେଖିବା ।
ଶିବଦାତା—ପୁଂ. ବିଂ.(୬ତତ୍ପୁ)ମଙ୍ଗଳଦାତା, ସୁଖଦାୟକ,(ସ୍ତ୍ରୀ) ଶିବଦାତ୍ରୀ ।
ଶିବଦାରୁ—ବି.ଦେବଦାରୁ ବୃକ୍ଷ ।
ଶିବଦିଶ—ସ୍ତ୍ରୀ. ବି. ଈଶାନ କୋଣ ।
ଶିବଦୂତିକା—ସ୍ତ୍ରୀ. ବି. ମାତୃକାବିଶେଷ, ଦୁର୍ଗା, ଦୁର୍ଗାଙ୍କର ରୂପାନ୍ତରଧାରିଣୀ ଯୋଗିନୀବିଶେଷ ।
ଶିବଦୂତୀ—ସ୍ତ୍ରୀ. ବି. ଦୁର୍ଗା, ଯୋଗିନୀବିଶେଷ, ଦେବୀବିଶେଷ ।
ଶିବଦୈବ—ବି. ଆର୍ଦ୍ରା ନକ୍ଷତ୍ର ।
ଶିବଦ୍ରୁମ—ପୁଂ. ବି. ବେଲଗଛ ।
ଶିବଦ୍ୱିଷ୍ଟା—ସ୍ତ୍ରୀ.ବି.କେତକୀ, କିଆଫୁଲ ।
ଶିବଧନୁଃ—ବି. (୬ତତ୍ପୁ)ଶିବଙ୍କ ବ୍ୟବହୃତ ଧନୁ, ପିନାକ । [ ବିଶେଷ ।
ଶିବଧର୍ମ—ବି. ଚଳିଶାସ୍ତ୍ର, ଉପପୁରାଣ-
ଶିବଧାତୁ—ପୁଂ. ବି. ପାରଦ, ଗୋଦନ୍ତୀ ନାମକ ମଣି ।
ଶିବନାଥ—ପୁଂ. ବି. ଶିବ ।
ଶିବନାଭି—ପୁଂ.ବି.ଶିବଲିଙ୍ଗବିଶେଷ ।
ଶିବନାରାୟଣ—ପୁଂ. ବି. ମହାଦେବ ଓ ବିଷ୍ଣୁ ।
ଶିବନିର୍ମାଲ୍ୟ—ବି.(୬ତତ୍ପୁ) ମହାଦେବଙ୍କ ଅର୍ପିତ ନୈବେଦ୍ୟ,ଗଙ୍ଗାଜଳ,(ଲ.ଅର୍ଥ) ଶିବଙ୍କ ନିର୍ମାଲ୍ୟ ପରି ଅଗ୍ରାହ୍ୟ ବସ୍ତୁ ।
ଶିବପଞ୍ଚାକ୍ଷର—ବି. ପାଞ୍ଚଗୋଟି ଅକ୍ଷର ସମନ୍ୱିତ ମହାଦେବଙ୍କୁ ପୂଜା କରିବାର ମନ୍ତ୍ର, ନମଃଶିବାୟ ।
ଶିବପତ୍ର—କ୍ଳୀ.ବି. ରକ୍ତପଦ୍ମ । [କେସୁ ।
ଶିବପୁତ୍ର—ବି.ପାରଦ, ଗଣେଶ, କାର୍ତ୍ତି-
ଶିବପୁର—ବି. ନେପାଳର ଗୋଟିଏ ସହର । [ ଏକତମ ।
ଶିବପୁରାଣ—ବି.ଅଷ୍ଟାଦଶ ପୁରାଣ ମଧ୍ୟରୁ
ଶିବପୁରୀ—ସ୍ତ୍ରୀ. ବି. କାଶୀ, ବାରାଣସୀ ।
ଶିବପୁଷ୍ପକ—ବି. ଅର୍କଗଚ୍ଛ ।
ଶିବପୂଜକ—ପୁଂ.ବି. ଶିବଭକ୍ତ ଦେଖ ।
ଶିବପୂଜନ—ବି.ମହାଦେବଙ୍କ ଆରାଧନା
ଶିବପ୍ରିୟ—ବି. (୬ତତ୍ପୁ) ମହାଦେବଙ୍କ ପ୍ରିୟ ଦ୍ରବ୍ୟମାତ୍ର, ରୁଦ୍ରାକ୍ଷ, ବିଲ୍ୱପତ୍ର, ଅଗସ୍ତିଗଛ, ଧାତୁରା, ସ୍ଫଟିକ, ଭାଙ୍ଗ ।
ଶିବପ୍ରିୟା—ସ୍ତ୍ରୀ.ବି. ଦୁର୍ଗା, ପାର୍ବତୀ ।
ଶିବପ୍ରୀତ—ବି. (ବି.ଗ୍ରା) ବେଲଗଛ ।
ଶିବଭକ୍ତ—ପୁଂ.ବି. (୬ତତ୍ପୁ) ଶୈବ, ଯେ ଶିବଙ୍କୁ ପୂଜା କରେ,(ସ୍ତ୍ରୀ)ଶିବଭକ୍ତା ।
ଶିବଭକ୍ତି—ସ୍ତ୍ରୀ.ବି. ଶିବଙ୍କଠାରେ ଭକ୍ତି ।
ଶିବଭାଗବତ—ପୁଂ.ବି. ଶିବଭକ୍ତ ।
ଶିବଭାସ୍କର—ପୁଂ.ବି.(ଦ୍ୱନ୍ଦ୍ୱ) ମହାଦେବ ଓ ସୂର୍ଯ୍ୟ ।
ଶିବମନ୍ଦିର—ବି.(କ ଧା) ଯେଉଁ ଦେଉଳରେ ମହାଦେବଙ୍କ ପ୍ରତିମା ବା ଲିଙ୍ଗ ପ୍ରତିଷ୍ଠିତ ହୋଇ ପୂଜିତ ହୁଅନ୍ତି ।
ଶିବମଲ୍ଲକ—ପୁଂ.ବି. ଅର୍ଜୁନବୃକ୍ଷ ।
ଶିବମଲ୍ଲିକା—ସ୍ତ୍ରୀ.ବି. ବକୁଳବୃକ୍ଷ, ଶିବଲିଙ୍ଗିନୀ ଲତା, ବାସଙ୍ଗଗଛ, ବକବୃକ୍ଷ, ଶ୍ରୀବଲ୍ଲୀ ନାମକ କଣ୍ଟାକାବୃକ୍ଷ, ଶ୍ୱେତ ଓ ରକ୍ତାର୍କବୃକ୍ଷ, ବସୁବୃକ୍ଷ (ଏ ଗଛ ଅଗସ୍ତିଗଛପରି) ।
ଶିବମଲ୍ଲୀ—ସ୍ତ୍ରୀ.ବି. ଶିବମଲ୍ଲିକା ଦେଖ ।
ଶିବଯୋଗ—ବି. ଶିବରାତ୍ରି (ମାଘ କୃଷ୍ଣ ଚତୁର୍ଦ୍ଦଶୀ)ରବିବାର ବା ମଙ୍ଗଳବାରଦିନ ପଡ଼ିବା ଯୋଗ । [ ପାର୍ବତୀ ।
ଶିବଯୋଷିତ୍—ସ୍ତ୍ରୀ.ବି. (୬ତତ୍ପୁ) ଦୁର୍ଗା,
ଶିବରସ—ବି. ଉଦ୍ଧଦନରୁ ବେଶି ପର୍ଯ୍ୟୁଷିତ ଅନ୍ନୋଦକଜାତ ରସ,କାଞ୍ଜି ।
ଶିବରାଜଧାନୀ-ସ୍ତ୍ରୀ.ବି.କାଶୀ,ବାରାଣସୀ ।
ଶିବରାତ୍ରି—ସ୍ତ୍ରୀ. ବି. ଶିବଚତୁର୍ଦ୍ଦଶୀ, ଫାଲ୍ଗୁନ କୃଷ୍ଣ ଚତୁର୍ଦ୍ଦଶୀ ।
ଶିବରାମ—ପୁଂ.ବି. ମହାଦେବ ଓ ବିଷ୍ଣୁ ।
ଶିବରୋହିଣୀ—ସ୍ତ୍ରୀ. ବି. (ଶିବରୁହ+କ.ଇନ୍+ଈ) କାଳୀ । [ ମୂର୍ତ୍ତି ।
ଶିବଲିଙ୍ଗ—ବି.ଲିଙ୍ଗରୂପେ ପୂଜିତ ଶିବ-
ଶିବଲିଙ୍ଗିନୀ—ବି. ଶକ୍ତି ସମନ୍ୱିତ ଶିବଲିଙ୍ଗ ଆକୃତବିଶିଷ୍ଟ କ୍ଷୁଦ୍ର ବୀଜଯୁକ୍ତ ଆରଣ୍ୟ ଲତାବିଶେଷ ।
ଶିବଲୋକ—ବି. ମହାଦେବଙ୍କ ଅଧିଷ୍ଠିତ ସ୍ୱର୍ଲୋକବିଶେଷ, କୈଳାସ ପର୍ବତ ।
ଶିବବଲ୍ଲଭ—ପୁଂ.ବି. (୬ତତ୍ପୁ)ଶିବପ୍ରିୟ ଦେଖ ।
ଶିବବଲ୍ଲଭା—ସ୍ତ୍ରୀ. ବି. ଶିବପ୍ରିୟା, ଦୁର୍ଗା, ଶତପତ୍ରୀ, ସେବତୀଫୁଲ । [ ଲତା ।
ଶିବବଲ୍ଲୀ—ସ୍ତ୍ରୀ.ବି.ଶ୍ରୀବଲ୍ଲୀବୃକ୍ଷ, ଲିଙ୍ଗିନୀ-
ଶିବବଲ୍ଲିକା—ସ୍ତ୍ରୀ.ବି. ଲିଙ୍ଗିନୀଲତା ।
ଶିବବାହନ—ପୁଂ.ବି. ବୃଷ, ଷଣ୍ଢ ।
ଶିବବୀର୍ଯ୍ୟ—ବି. (୬ତତ୍ପୁ) ପାରଦ ।
ଶିବଶକ୍ତି—ବି. ଶିବ ଓ ଶକ୍ତି,ମହାଦେବ ଓ ପାର୍ବତୀ ।
ଶିବଶକ୍ତିମୟ—ବିଂ. ଶିବ ଓ ଶକ୍ତିସ୍ୱରୂପ ।
ଶିବଶୟନ—ବି.ଆଷାଢ଼ ଶୁକ୍ଳ ଚତୁର୍ଦ୍ଦଶୀ ।

ଶିବଶେଖର—ପୁଂ.ବି.ବକବୃକ୍ଷ,ଧତୁରା-ଗଛ,ଶିବଙ୍କର ମସ୍ତକ,ଧଳା ଅର୍କଗୁଳ୍ମ ।

ଶିବଶୈଳ—ବି. କୈଳାସପର୍ବତ ।

ଶିବସାଗର—ବି. ଆସାମ ଦେଶର ଗୋଟିଏ ଜିଲ୍ଲା ଓ ତହିଁର ପ୍ରଧାନ ନଗର ।

ଶିବସାୟୁଜ୍ୟ—କ୍ଲୀ. ବି. ମୋକ୍ଷବିଶେଷ, ଯହିଁରେ ମନୁଷ୍ୟ ଶିବଙ୍କଠାରେ ଲୀନ ହୁଏ, ମୃତ୍ୟୁ,ମୃତ୍ୟୁପରେ ଶିବଲୋକରେ ଅବସ୍ଥାନ ।

ଶିବସୁନ୍ଦରୀ—ସ୍ତ୍ରୀ.ବି. ଦୁର୍ଗା ।

ଶିବସୂତ୍ର—କ୍ଲୀ.ବି.ଦର୍ଶନ ଓ ବ୍ୟାକରଣ

ଶିବା—ସ୍ତ୍ରୀ.ବି.(ଶିବ+ଆ)ଦୁର୍ଗା, ମୁକ୍ତି, ଶମୀବୃକ୍ଷ, ଶୃଗାଳୀ,ହରଡ଼ା,ଆମଳକୀ, ଧବଗଛ, ସୌଭାଗ୍ୟବତୀ ସ୍ତ୍ରୀ, ବୁଦ୍ଧି-ଶକ୍ତିବିଶେଷ, ଦୂବ, ଗୋରୋଚନା. ଆମ୍ବଡ଼ାଗଛ,ଶ୍ୟାମାଲତା,ଭୂଇଁଅଁଳା, ମେଥି, ହଳଦୀ, ନଦୀବିଶେଷ ।

ଶିବାଇସାଆନ୍ତରା—ଗ୍ରା. ବି. କୋଣାର୍କ ଦେଉଳ ନିର୍ମାଣ କରିବାରେ ଓଡ଼ିଶାର ରାଜା ଲାଙ୍ଗୁଳାନରସିଂହଙ୍କଦ୍ୱାରା ନିଯୁକ୍ତ ଜନୈକ ମନ୍ତ୍ରୀ ।

ଶିବାକ୍ଷ—କ୍ଲୀ.ବି. (ବ.ଗ୍ରା)ରୁଦ୍ରାକ୍ଷ ବୀଜ ।

ଶିବାଖ୍ୟା—ସ୍ତ୍ରୀ. ବି. ବଳୀଦୂବ, ଶିବା ଦେଖ ।

ଶିବାଗଣ—ବି. ଦୁର୍ଗାଙ୍କ ଅନୁଚରୀ ଯୋଗିନୀବିଶେଷ, ଶୃଗାଳୀମାନେ ।

ଶିବାଗମ—ପୁଂ. ବି. ଶିବପୂଜାବିଷୟକ ଶାସ୍ତ୍ରବିଶେଷ ।

ଶିବାଗୌରୀ—ବି. ପାର୍ବତୀ ।

ଶିବାଗୌରୀଯାତ୍ରା—ଗ୍ରା.ବି. ଯାତ୍ରାପାଇଁ ଶୁଭଦିନ ନ ମିଳିଲେ ଜ୍ୟୋତିଃସାର-ସଂଗ୍ରହ ଗ୍ରନ୍ଥ ମତରେ ଶିବଙ୍କୀନ ଅନୁ-ସାରେ କରାଯିବା ଯାତ୍ରା ।

ଶିବାଙ୍କ—ପୁଂ.ବି. ଅଗସ୍ତିବୃକ୍ଷ, ଶ୍ରେଷ୍ଠ ବାସଙ୍କ ବୃକ୍ଷ ।

ଶିବାଚୀ—ସ୍ତ୍ରୀ.ବି. ବଂଶପତ୍ରୀ ।

ଶିବାଜୀ—ଗ୍ରା. ବି. ଭୋନ୍‌ସଲବଂଶୀୟ ସୁବିଖ୍ୟାତ ମହାରାଷ୍ଟ୍ର ଦଳପତି, ମହା-ରାଷ୍ଟ୍ର ରାଜ୍ୟର ପ୍ରତିଷ୍ଠାତା ।

ଶିବାଣ୍ଟିକା—ସ୍ତ୍ରୀ.ବି.ବଂଶପତ୍ରୀତୃଣ,ଜଙ୍ଗଲି ଡିମିରି,ହିଙ୍ଗୁପତ୍ରୀ,ଶ୍ୱେତ ଓ ରକ୍ତ ପୁନ-ର୍ନବା ।

ଶିବାତ୍ମକ—କ୍ଲୀ.ବି.ସୈନ୍ଧବଲବଣ,(ବିଂ) ଶିବମୟ, ଶିବସ୍ୱରୂପ ।

ଶିବାନୀ—ସ୍ତ୍ରୀ.ବି.(ଶିବ+ଆନୀ)ଭବାନୀ, ଦୁର୍ଗା, ଜୟନ୍ତୀବୃକ୍ଷ ।

ଶିବାପର—ବିଂ.ଅମଙ୍ଗଳ, ଶିବେତର ।

ଶିବାପୀଡ଼—ପୁଂ.ବି. ଅଗସ୍ତିବୃକ୍ଷ,ବକବୃକ୍ଷ ।

ଶିବାପ୍ରିୟ—ପୁଂ.ବି. (ଷତତ୍) ଗୁଗୁଳ, ଶିବାଙ୍କର ପ୍ରିୟବସ୍ତୁ,(ଶିବା + ଅପ୍ରିୟ) ଶିବପ୍ରିୟାଙ୍କର ଅପ୍ରିୟ ବସ୍ତୁ ।

ଶିବାଫଳା—ସ୍ତ୍ରୀ.ବି. ଶମୀବୃକ୍ଷ ।

ଶିବାବଳି—ପୁଂ.ବି. ରାତ୍ରିକାଳରେ ଦୁର୍ଗା-ଦେବୀଙ୍କ ଉଦ୍ଦେଶ୍ୟରେ ଦିଆଯିବା ମାଂସପ୍ରଧାନ ବଳି ବା ନୈବେଦ୍ୟ ।

ଶିବାୟତନ—କ୍ଲୀ.ବି.(ଷତତ୍)ଶିବାଳୟ, ଶିବମନ୍ଦିର ।

ଶିବାରତି—ପୁଂ.ବି. (ଷତତ୍)କୁକ୍କୁର ।

ଶିବାରାଧନ(ନା)—ବି. ଶିବପୂଜା ।

ଶିବାରି—ପୁଂ.ବି. (ଶିବା+ଅରି) କୁକ୍କୁର, ଦୁର୍ଗା ଓ ଶିବଙ୍କର ଶତ୍ରୁ ।

ଶିବାରୁତ—କ୍ଲୀ. ବି. ( ଷତତ୍ )ଶିଆଳ-ବୋବାଳି, ଶୃଗାଳର ଧ୍ୱନି ।

ଶିବାଳୟ—ବି. (ଶିବ + ଆଳୟ)ରକ୍ତ-ତୁଳସୀ, ଶ୍ମଶାନ,(ଷତତ୍)ଶିବମନ୍ଦିର ।

ଶିବାଳୁ—ପୁଂ.ବି. ଶୃଗାଳ, ବିଲୁଆ ।

ଶିବାହ୍ଲାଦ—ପୁଂ.ବି. ଅଗସ୍ତିଗଛ,ଶିବ-ଙ୍କର ଆନନ୍ଦ ।

ଶିବାହ୍ୱୟ—ପୁଂ.ବି. ପାରଦ, ଶ୍ୱେତ ଅର୍କବୃକ୍ଷ, ବଟବୃକ୍ଷ ।

ଶିବାହ୍ୱା—ସ୍ତ୍ରୀ. ବି. ରୁଦ୍ରଜଟା, (ବିଂ) ଶିବନାମକ ।

ଶିବି—ବି. (ଶି+ବି) ହିଂସ୍ରଜନ୍ତୁ,ଭୂର୍ଜ-ବୃକ୍ଷ, ଦେଶବିଶେଷ, ଜନୈକ ନୃପ, ଉଶୀନର ରାଜାଙ୍କ ପୁତ୍ର ଓ ଯଯାତିଙ୍କ ଦୌହିତ୍ର (ଏ ଦୟାଳୁ ଥିଲେ) ।

ଶିବିକା—ସ୍ତ୍ରୀ.ବି.(ଶିବ+କ+ଆ)ନର-ବାହ୍ୟଯାନବିଶେଷ, ଡୁଲି, ପାଲିଙ୍କି ।

ଶିବିପିଷ୍ଟ—ପୁଂ.ବି. ମହାଦେବ, ଶିପି-ବିଷ୍ଟ ଦେଖ ।

ଶିବିର—କ୍ଲୀ. ବି. ( ଶୀ+ଅଧି.ଇର ) ନିବେଶ, ସେନାନିବାସ, ଛାଉଣି,ପଟ୍ଟ-ବାସ, ଗଡ଼, କିଲ୍ଲା, ଚରକମତରେ ଏକପ୍ରକାର ତୃଣଧାନ୍ୟ ।

ଶିବିରସନ୍ନିବେଶ—ବି. (ଷତତ୍)ଶିବିର ସ୍ଥାପନ, ତମ୍ବୁ ଗାଡ଼ିବା ।

ଶିବିରଥ—ପୁଂ.ବି. ଶିବିକା, ପାଲିଙ୍କି ।

ଶିବେତର—ବିଂ. ( ଶିବ + ଇତର ) ଅମଙ୍ଗଳ, ଅଶୁଭ ।

ଶିବେଶ—ବି. (ଶିବା + ଈଶ)ଶୃଗାଳ ।

ଶିବେଷ୍ଟ—ପୁଂ.ବି. ବକବୃକ୍ଷ, ଶ୍ରୀଫଳ, ବେଲ, (ବିଂ) ଶିବପ୍ରିୟ ।

ଶିବେଷ୍ଟା—ବି. ( ଶିବା+ଇଷ୍ଟ+ଆ ) ଦୂବ ।

ଶିବୋପନିଷଦ୍—ସ୍ତ୍ରୀ. ବି. ଉପନିଷଦ୍-ବିଶେଷ ।

ଶିଶୟ—ତ୍ରି. ବିଂ. ଅତିଶୟ ଦାନଶୀଳ ।

ଶିଶୟିଷା—ସ୍ତ୍ରୀ.ବି.(ଶୀ + ସନ୍+ଅ + ଆ) ଶୋଇବାର ଇଚ୍ଛା ।

ଶିଶୟିଷୁ—ପୁଂ.ବିଂ. (ଶୀ+ସନ୍+ଭା.ଅ ଉ) ଶୟନ କରିବାକୁ ଇଚ୍ଛୁକ ।

ଶିଶି—ଯା. ବି. କାଚର କ୍ଷୁଦ୍ର ବୋତଲ, (ଗ୍ରା.ପୁଂ.ବି) ପୁତ୍ର, ଶିଷ୍ୟ ।

ଶିଶିର—ବି. (ଶିଶ + ଣ.ଇର) ଋତୁ-ବିଶେଷ,ଶିଶିରଋତୁ, ପୌଷ ଓ ମାଘ-ମାସ, ତୁଷାର, କାକର, ରାମାୟଣ ବର୍ଣ୍ଣିତ ପର୍ବତବିଶେଷ, (ବିଂ) ଶୀତଳ, ଜଡ଼ ।

ଶିଶିରକର—ପୁଂ.ବି(ବ.ଗ୍ରା) ଶିତରଶ୍ମି, ଚନ୍ଦ୍ର, କର୍ପୂର, (କ.ଧା) ଚନ୍ଦ୍ରକିରଣ ।

ଶିଶିରକିରଣ—ପୁଂ.ବି. ଚନ୍ଦ୍ର, ହିମାଂଶୁ ।

ଶିଶିରଗଭସ୍ତି—ପୁଂ. ବି. ଚନ୍ଦ୍ର ।

ଶିଶିରଗୁ—ପୁଂ. ବି. ଚନ୍ଦ୍ର ।

ଶିଶିରତା—ବି.ଶିଶିରର ଭାବ ବା ଧର୍ମ, ଶୈତ୍ୟ ।

ଶିଶିରମୟୂଖ—ପୁଂ. ବି. (ବ ବ୍ରୀ)ଚନ୍ଦ୍ର ।
ଶିଶିରଧୌତ—ବିଂ(୩ତତ୍ପୁ)କାକରରେ ଧୋଇହୋଇ ଓଦାହୋଇ ଯାଇଥିବା ।
ଶିଶିରମୟୂଖ—ପୁଂ. ବି. (ବ.ବ୍ରୀ)ଚନ୍ଦ୍ର ।
ଶିଶିରସିକ୍ତ—ବିଂ. (୩ତତ୍ପୁ) ହିମାର୍ଦ୍ର, ଶିଶିରରେ ଭିଜିଥିବା,(ସ୍ତ୍ରୀ)ଶିଶିରସିକ୍ତା ।
ଶିଶିରସ୍ନାତ—ବିଂ. (୩ତତ୍ପୁ) ହିମଦ୍ୱାରା ଅଭିଷିକ୍ତ ଶିଶିର ଧୌତ,(ସ୍ତ୍ରୀ)ଶିଶିରସ୍ନାତା ।
ଶିଶିରାଂଶୁ—ବି.(ବ.ବ୍ରୀ)ଚନ୍ଦ୍ର, କର୍ପୂର ।
ଶିଶିରାତ୍ୟୟ—ପୁଂ.ବି.(୬ତତ୍ପୁ)ଶିଶିରବିଗମ, ଶିଶିରାପଗମ ।
ଶିଶୁ—ବି.(ଶିଶ୍+କ.ଉ)ଜୀବ ଶାବକ, ବର୍ଷ (ମତାନ୍ତରରେ ୧୬ ବର୍ଷ) ରୁ ନିମ୍ନ ବୟସ୍କ ବାଳକ ବାଳିକା, ଦୁଗ୍ଧପୋଷ୍ୟ ପିଲା, ଯାହାର ଅନ୍ନପ୍ରାଶନ ହୋଇ ନ ଥାଏ, କାର୍ତ୍ତିକେୟ, ଡିମ୍ବ, ଅଣ୍ଡା, (ବିଂ) ଅତି ଅଳ୍ପବୟସ୍କ,(ସ୍ତ୍ରୀ.ବି- ସଂ-ଶିଂଶପା) ସାରବାନ୍ କଠିନ କାଷ୍ଠବିଶିଷ୍ଟ ଆରଣ୍ୟ ତରୁବିଶେଷ, କରଣକୈବର୍ତ୍ତମାନଙ୍କର ବଂଶୋପାଧିବିଶେଷ ।
ଶିଶୁକ—ପୁଂ. ବି. (ଶିଶୁ+କ)ଜଳଜନ୍ତୁବିଶେଷ, ଶିଶୁମାର, ଶାବକ, ବାଳକ, ଶିଶୁଗଛ, ମଣ୍ଡଳି ସର୍ପବିଶେଷ ।
ଶିଶୁକାଳ—ପୁଂ.ବି.ବାଲ୍ୟସମୟ,ଶୈଶବ ।
ଶିଶୁକୃଚ୍ଛ୍ର—କ୍ଲୀ. ବି. ସହଜ ସାଧ୍ୟ ଚାନ୍ଦ୍ରାୟଣ ବ୍ରତବିଶେଷ ।
ଶିଶୁକ୍ରନ୍ଦ—ପୁଂ. ବି. (୬ତତ୍ପୁ) ବାଳକମାନଙ୍କର ରୋଦନ ।
ଶିଶୁକ୍ରୀଡ଼ା—ବି. ପିଲାମାନଙ୍କ ଖେଳ ।
ଶିଶୁଗନ୍ଧା—ସ୍ତ୍ରୀ.ବି.(ବ.ବ୍ରୀ)ମଲ୍ଲିକାବିଶେଷ ।
ଶିଶୁଗୀତ—ବି. ଶିଶୁମାନଙ୍କ ବୋଲିବା ଗୀତ, ଶିଶୁରଞ୍ଜନ ଗୀତ ।
ଶିଶୁଚର୍ଯ୍ୟା—ବି. ଶିଶୁପାଳନ ଦେଖ ।
ଶିଶୁଚାନ୍ଦ୍ରାୟଣ—କ୍ଲୀ.ବି.ଶିଶୁକୃଚ୍ଛ୍ର ଦେଖ ।
ଶିଶୁତେଲ—ଗ୍ରା.ବି.ଶିଶୁକାଠରୁ ବାହାର କରଯିବା ତେଲ ।
ଶିଶୁତ୍ୱ—କ୍ଲୀ. ବି. ଶିଶୁଭାବ, ବାଲ୍ୟଚପଳତା, ଶୈଶବ ।
ଶିଶୁଦେଶ୍ୟ—ବିଂ. ପ୍ରାୟ ଶିଶୁସଦୃଶ ।
ଶିଶୁନାମା—ପୁଂ. ବି. ଓଟ, ଉଷ୍ଟ୍ର ।
ଶିଶୁପା—ଗ୍ରା.ବି. (ସଂ-ଶିଂଶପା) ସାରବାନ୍ କଠିନ କାଷ୍ଠବିଶିଷ୍ଟ ଆରଣ୍ୟ ତରୁବିଶେଷ
ଶିଶୁପାଠ—ବି.(୬ତତ୍ପୁ)ଶିଶୁମାନେ ପଢ଼ିବା ନିମନ୍ତେ ଅଭିପ୍ରେତ ପୁସ୍ତକ ।
ଶିଶୁପାଠ୍ୟ—ବିଂ.(୩ତତ୍ପୁ) ଶିଶୁମାନଙ୍କର ପଢ଼ିବା ଉପଯୋଗୀ ।
ଶିଶୁପାଳ—ପୁଂ. ବି. ଚେଦିରାଜ ଦମଘୋଷଙ୍କ ଔରସରେ ବସୁଦେବଙ୍କ ଭଗ୍ନୀ ଶ୍ରୁତଶ୍ରବାଙ୍କ ଗର୍ଭଜାତ ପୁତ୍ର ।
ଶିଶୁପାଳକ—ପୁଂ. ବି. (ଶିଶୁପାଳ+କ) ଶିଶୁପାଳ ଦେଖ, କେଳିକଦମ୍ବ ବୃକ୍ଷ, (ପୁଂ.ବିଂ. ୬ତତ୍ପୁ)ଯେ ବାଳକ ପାଳନ କରେ, (ସ୍ତ୍ରୀ) ଶିଶୁପାଳିକା ।
ଶିଶୁପାଳନ—ବି. (୬ତତ୍ପୁ) ପିଲାମାନଙ୍କୁ ଯତ୍ନ ସହକାରେ ବଢ଼ାଇବା ।
ଶିଶୁପାଳବଧ—ବି. (୬ତତ୍ପୁ) ଶ୍ରୀକୃଷ୍ଣଙ୍କ ଦ୍ୱାରା ପାଣ୍ଡବମାନଙ୍କ ରାଜସୂୟ ଯଜ୍ଞରେ ଶିଶୁପାଳର ବିନାଶ, ମାଘ କବିଙ୍କ ରଚିତ ପ୍ରସିଦ୍ଧ ସଂସ୍କୃତ କାବ୍ୟ ।
ଶିଶୁପାଳହା—ପୁଂ. ବି. ଶିଶୁପାଳହନ୍ତା ଶ୍ରୀକୃଷ୍ଣ ।
ଶିଶୁପାଳିଆ—ଗ୍ରା. ବିଂ. ଶିଶୁପାଳ ପରି ଅବମାନିତ ଲଜ୍ଜିତ ଓ ବ୍ୟର୍ଥ ମନୋରଥ
ଶିଶୁପ୍ରକୃତି—ବି. ବିଂ. (୬ତତ୍ପୁ, ବ.ବ୍ରୀ) ଶିଶୁସ୍ୱଭାବ ଦେଖ ।
ଶିଶୁଭାବ—ପୁଂ.ବି.ଶିଶୁତ୍ୱ, ଶିଶୁର ଭାବ ।
ଶିଶୁମଙ୍ଗଳ—ବି. ଶିଶୁଜୀବନର ସର୍ବବିଧ ଉନ୍ନତି ବିଧାନୋପାୟ ।
ଶିଶୁମାରଚକ୍ର—ବି.ଶିଶୁମାରପୁଞ୍ଜ ଦେଖ ।
ଶିଶୁମାରପୁଞ୍ଜ—ବି. ଧ୍ରୁବମଣ୍ଡଳ ନକ୍ଷତ୍ର ।
ଶିଶୁର—ପ୍ରା. (ମେଦନୀ)ବି. ଶିଶି, ଶ୍ଲେଟ ବୋତଲ ।
ଶିଶୁରଞ୍ଜନ—ବି. ଶିଶୁମାନଙ୍କର ମନକୁ ଆନନ୍ଦିତ କରାଇବା, (ବିଂ)ଶିଶୁମାନଙ୍କ ଚିତ୍ତାକର୍ଷକ ।
ଶିଶୁରନ୍ଧ୍ର—ଗ୍ରା.ବି.ସୁଷୁମ୍ନା ନାଡ଼ୀ ମଧ୍ୟରେ ଥିବା ଛିଦ୍ର ।
ଶିଶୁରୋମା—ପୁଂ. ବି. ନାଗବିଶେଷ ।
ଶିଶୁବାହକ—ପୁଂ.ବି.ବନ ଛାଗଳ, (ବିଂ) ଶିଶୁ ବହନକାରୀ ।
ଶିଶୁବୁଦ୍ଧି—ବି. (୬ତତ୍ପୁ) ପିଲାର ବୁଦ୍ଧି, ପିଲାଳିଆ ବୁଦ୍ଧି, (ପୁଂ. ସ୍ତ୍ରୀ.ବିଂ.ବ.ବ୍ରୀ) ଶିଶୁପରି ଅପରିପକ୍ୱ ବୁଦ୍ଧିବିଶିଷ୍ଟ ।
ଶିଶୁବେଦ—ଗ୍ରା. ବି. ଅଣାକାର ମତାବଲମ୍ବୀମାନଙ୍କର ପଞ୍ଚମ ବେଦ,ନବବେଦ, ସୁଷୁମ୍ନା ଦେଖ ।
ଶିଶୁବୋଧ—ଗ୍ରା. ବି. ଶିଶୁମାନଙ୍କର ବୁଝି ପାରିବା ଭଳି ବିଷୟ ବା ପାଠ୍ୟବିଷୟ ।
ଶିଶୁବୋଧ୍ୟ—ବି. (୩ତତ୍ପୁ) ପିଲାମାନେ ଯାହା ସହଜରେ ବୁଝି ପାରିବେ ।
ଶିଶୁଶଙ୍କରଦାସ—ଗ୍ରା.ବି. ଉପେନ୍ଦ୍ରଭଞ୍ଜଙ୍କ ପୂର୍ବଯୁଗର ଓଡ଼ିଆ କବି ।
ଶିଶୁସୁଲଭ—ବି. (୬ତତ୍ପୁ) ଯାହା ଶିଶୁଠାରେ ଦେଖାଯାଏ, ଶିଶୁ ପକ୍ଷରେ ସହଜ ।
ଶିଶୁସ୍ୱଭାବ—ବି. (୬ତତ୍ପୁ) ଶିଶୁର ସ୍ୱଭାବ, ଶିଶୁପରି ସରଳ କୁଟିଳ.କୋମଳ ସ୍ୱଭାବ, (ପୁଂ.ବିଂ-ବ.ବ୍ରୀ)ଶିଶୁର ସ୍ୱଭାବବିଶିଷ୍ଟ ।
ଶିଶୁହତ୍ୟା—ବି. (୬ତତ୍ପୁ) ଶିଶୁମାନଙ୍କୁ ବିନାଶ କରିବା ।
ଶିଶୁହୃଦୟ—ବି.(୬ତତ୍ପୁ)ଶିଶୁର କୋମଳ ମନ, ଶିଶୁପରି କୋମଳ ଓ ସରଳ ମନ।
ଶିଶୋପାସ୍—ବି. ରାଜପୁତମାନଙ୍କର ଶାଖାବିଶେଷ ।
ଶିଶ୍ନ—ପୁଂ. ବି. (ଶିଶ୍+କ.ନ)ଲିଙ୍ଗ, ଉପସ୍ଥ, ମେଢ୍ର ।
ଶିଶ୍ନୋଦରପରାୟଣ—ପୁଂ.ବିଂ. ଆହାର ଓ ମୈଥୁନାସକ୍ତ ।
ଶିଶ୍ୱିଦାନ—ପୁଂ. ବିଂ. ( ଶ୍ୱିତ୍+ଆନ ) ନିର୍ଦ୍ଦୋଷ,ଧାର୍ମିକ,ପାପକର୍ମୀ,ଦୁରାଗ୍ରହ ।
ଶିଷ(ଷି)—ଗ୍ରା. ପୁଂ. ବି. ( ସଂ-ଶିଷ୍ୟ ) ଶିଷ୍ୟ, ଛାତ୍ର,ଚୁଆ, ସାଙ୍ଗପିଲା ।
ଶିଷୀ—ଗ୍ରା. ସ୍ତ୍ରୀ. ବି. ଶିଷ୍ୟା,କନ୍ୟା,ଝିଅ, ଗୁରୁମନ୍ତ୍ରଦୀକ୍ଷିତା ସ୍ତ୍ରୀ ।
ଶିଷ୍ଟ—ପୁଂ. ବିଂ. (ଶାସ୍+ର୍ମି.ତ) ଶାନ୍ତ, ନମ୍ର, ବିନୀତ, ଧୀର, ସୁବୋଧ,ଶିକ୍ଷିତ,

ବଦ୍ୱାନ୍, ସଭ୍ୟ, ସୁଶୀଲ, ବଶୀଭୂତ, ଆଜ୍ଞାଧୀନ, (ଶିଷ୍+କ.ତ) ଅବଶିଷ୍ଟ, (ବ-ଶାସ୍+କ.ତ) ମନ୍ତ୍ରୀ, ସର୍ଦ୍ଦାର ।

ଶିଷ୍ଟତା(ତ୍ୱ)—ବ. ସାଧୁତ୍ୱ, ସୁଶୀଲତା, ଭଦ୍ରତା, ଆଦବକାଏଦା,ସଂସ୍କୃତ ସମାଜରେ ପ୍ରଚଳିତ ଆଚାର ।

ଶିଷ୍ଟତାନୁମତ—ବଂ. (୩ତତ୍ପୁ) ଭଦ୍ରତା ଦ୍ୱାରା ଅନୁମୋଦିତ, ଭଦ୍ରୋଚିତ ।

ଶିଷ୍ଟପ୍ରୟୋଗ—ବ. (ମଧ୍ୟ-କ.ଧା) ଭଦ୍ର ବା ସଭ୍ୟ ବା ଶିକ୍ଷିତ ବ୍ୟକ୍ତିମାନଙ୍କଦ୍ୱାରା ବ୍ୟବହୃତ ଶବ୍ଦ ବା ବାକ୍ୟାଦି, ଭାଷାର ରୀତିସଙ୍ଗତ ବାକ୍ୟାଦି,ପ୍ରସିଦ୍ଧ ଲେଖକମାନଙ୍କ ଦ୍ୱାରା ବ୍ୟବହୃତ ବାକ୍ୟାଦି ।

ଶିଷ୍ଟସମ୍ବୋଧନ—ବ(କ.ଧା)ଭଦ୍ରବ୍ୟକ୍ତିଙ୍କ ଦ୍ୱାରା ବ୍ୟବହୃତ ସମ୍ବୋଧନ ।

ଶିଷ୍ଟାଚରଣ—ବ. ( କ.ଧା ) ସଦାଚାର, ଭଦ୍ରବ୍ୟବହାର, ଭଦ୍ରତା, (ପୁଂ.ବଂ-ବ.ବ୍ରୀ) ଶିଷ୍ଟାଚାରୀ ଦେଖ ।

ଶିଷ୍ଟାଚାର—ପୁଂ. ବ. ସାଧୁବ୍ୟବହାର, ସଦାଚାର, ଭଦ୍ରତା ।

ଶିଷ୍ଟାଚାରବହିର୍ଭୂତ—ବଂ.ଭଦ୍ରତାବିରୁଦ୍ଧ ।

ଶିଷ୍ଟାଚାରସମ୍ପନ୍ନ—ପୁଂ. ବଂ. ( ୩ତତ୍ପୁ ) ଭଦ୍ରତାବିଶିଷ୍ଟ ।

ଶିଷ୍ଟାଚାରୀ—ପୁଂ.ବଂ. ସଦାଚାରପରାୟଣ, ଭଦ୍ର, (ସ୍ତ୍ରୀ) ଶିଷ୍ଟାଚାରିଣୀ ।

ଶିଷ୍ଟି—ସ୍ତ୍ରୀ. ବ. ( ଶିସ୍+ଭା.ତି ) ଆଜ୍ଞା, ଶାସନ, ବନ୍ଦୋବସ୍ତ, ଦମନ, ତାଡ଼ନ, ଶୋଧନ ।

ଶିଷ୍ୟ—ବ. (ଶାସ୍+ମ.ଯ)ଛାତ୍ର,ଅନ୍ତେବାସୀ,ଯାହାକୁ ଇଷ୍ଟମନ୍ତ୍ରାଦି ଦିଆଯାଏ, ଚେଲା, (ବଂ) ଶାସନୀୟ, ଉପଦେଶ୍ୟ, ଶିକ୍ଷଣୀୟ, (ସ୍ତ୍ରୀ) ଶିଷ୍ୟା, (ଗ୍ରା.ବ) ପୁତ୍ର ।

ଶିଷ୍ୟାନୁଶିଷ୍ୟ—ପୁଂ.ବ.ଶିଷ୍ୟ ଓ ଶିଷ୍ୟର ଶିଷ୍ୟ ।

ଶିସ୍ତ—ପ୍ରା. (ଚଟ୍ଟଗ୍ରାମ) ବ. କର, ରାଜସ୍ୱ ।

ଶିହ୍ଲ—ବ.ଶିଳାରସ ଦେଖ,ବଲ୍କଳଚୂର୍ଣ୍ଣ ।

ଶିହ୍ଲକ—ପୁଂ.ବ.ଜନୈକ ପ୍ରସିଦ୍ଧ ସଂସ୍କୃତ କବି ।

ଶୀ—ସ୍ତ୍ରୀ.ବ.(ଶୀ+ଭା.କ୍ୱିପ୍)ଶାନ୍ତି,ଶୟନ ।

ଶୀକର—ବ.(ଶୀକ୍+କ.ଅର)ବାୟୁବାହିତ କ୍ଷୁଦ୍ର ଜଳକଣା,ସୂକ୍ଷ୍ମବୃଷ୍ଟି,ବାମ୍ଫ,ତୁଷାର, ସରଳବୃକ୍ଷ ନିର୍ଯ୍ୟାସ ।

ଶୀକରଶୀତବାୟୁ—ବ. (୩ତତ୍ପୁ) ଜଳକଣା ମିଶ୍ରିତ ଥଣ୍ଡାପବନ । [ ବିଶିଷ୍ଟ ।

ଶୀକରୀ—ପୁଂ.ବଂ. ଶୀକରଯୁକ୍ତଜଳକଣା-

ଶୀଘ୍ର—କ୍ରି.ବଂ.(ଶିଙ୍ଘ୍+ଅଧି.ର) ବେଗି, ଚଞ୍ଚଳ, ସତ୍ୱର, ଅବିଳମ୍ବେ, ( ବଂ ) ତ୍ୱରାନ୍ୱିତ, ତ୍ୱରିତ, କ୍ଷିପ୍ର, ତରତର ।

ଶୀଘ୍ରକାରୀ—ପୁଂ. ବଂ. (ଶୀଘ୍ର + କୃ + ଇନ୍) କ୍ଷିପ୍ରକାରୀ, ଯେ ଶୀଘ୍ର କାର୍ଯ୍ୟ କରିପାରେ, (ସ୍ତ୍ରୀ) ଶୀଘ୍ରକାରିଣୀ, (ବ) ସନ୍ନିପାତ ରୋଗବିଶେଷ ।

ଶୀଘ୍ରକୃତ୍—କ୍ରି. ବଂ. (ଶୀଘ୍ର+କୃ+କ୍ୱିପ୍) ଶୀଘ୍ରକାରକ ।

ଶୀଘ୍ରକୃତ୍ୟ—କ୍ରି.ବଂ.ହଠାତ୍ କରଣୀୟ ।

ଶୀଘ୍ରଗ—ପୁଂ.ବଂ.(ଶୀଘ୍ର+ଗମ୍+କ.ଅ) ତ୍ୱରିତ ଗତିବିଶିଷ୍ଟ, ଦ୍ରୁତଗାମୀ, (ସ୍ତ୍ରୀ) ଶୀଘ୍ରଗା, (ପୁଂ.ବ) ବାୟୁ ।

ଶୀଘ୍ରଗତି—ସ୍ତ୍ରୀ. ବ. (କ.ଧା) ଦ୍ରୁତଗତି, କ୍ଷିପ୍ରଗତି, (ପୁଂ.ବଂ-ବ.ବ୍ରୀ) ଶୀଘ୍ରଗତିବିଶିଷ୍ଟ, କ୍ଷିପ୍ରଗାମୀ ।

ଶୀଘ୍ରଗାମୀ—ପୁଂ. ବଂ. ଯେ ଶୀଘ୍ର ଗମନ କରେ, ଦ୍ରୁତଗମନକାରୀ, (ସ୍ତ୍ରୀ) ଶୀଘ୍ରଗାମିନୀ ।

ଶୀଘ୍ରଚେତନ—ପୁଂ.ବ(ଶୀଘ୍ର+ଚେତନା +ଅ) କୁକ୍କୁର, (ପୁଂ.ବଂ) ଯେ ଶୀଘ୍ର ଚେତନାଲାଭକରେ ବା ଚେଇଁଉଠେ

ଶୀଘ୍ରଜନ୍ମା—ପୁଂ. ବ. (ବ.ବ୍ରୀ) କରଞ୍ଜବିଶେଷ, ଗିଲ । [ ଚଞ୍ଚଳଗତି ।

ଶୀଘ୍ରଜବ—ପୁଂ. ବଂ. ଶୀଘ୍ରଗତି ବିଶିଷ୍ଟ,

ଶୀଘ୍ରତା—ସ୍ତ୍ରୀ.ବ.(ଶୀଘ୍ର+ତା)ଚଞ୍ଚଳତା, ତ୍ୱରା, ସତ୍ୱରତା ।

ଶୀଘ୍ରପାତୀ—ପୁଂ. ବଂ. ଶୀଘ୍ରପତନଯୁକ୍ତ ।

ଶୀଘ୍ରପୁଷ୍ପ—ପୁଂ. ବ. ଅଗସ୍ତ୍ୟବୃକ୍ଷ, ଗ୍ରେଚ ବାସଙ୍ଗ ଫୁଲ ।

ଶୀଘ୍ରବେଧୀ—ପୁଂ. ବଂ. (ଶୀଘ୍ର + ବିଧ୍+ କ.ଇନ୍) ଦ୍ରୁତବେଧକାରୀ, ଲଘୁହସ୍ତ, କ୍ଷିପ୍ରକାରୀ, (ସ୍ତ୍ରୀ) ଶୀଘ୍ରବେଧିନୀ ।

ଶୀଘ୍ରବହ—ପୁଂ.ବଂ.ଚଞ୍ଚଳ ବହନକାରୀ ।

ଶୀଘ୍ରବାହୀ—ପୁଂ. ବଂ. (ଶୀଘ୍ର+ବହ୍+ ଇନ୍) ଶୀଘ୍ରବହନକାରୀ, (ସ୍ତ୍ରୀ) ଶୀଘ୍ରବାହିନୀ । [ ଘୋଡ଼ା ।

ଶୀଘ୍ରଶୀଘ୍ର—ଗ୍ରା.କ୍ରି.ବଂ.ତରାତର,ଚଞ୍ଚଳ,

ଶୀଘ୍ରସଞ୍ଚାରୀ—ପୁଂ.ବଂ. ଶୀଘ୍ରଗାମୀ, (ସ୍ତ୍ରୀ) ଶୀଘ୍ରସଞ୍ଚାରିଣୀ ।

ଶୀଘ୍ରା—ବ. ଦନ୍ତୀନାମକ ଔଷଧି ବୃକ୍ଷ ।

ଶୀଘ୍ରାୟମାନ—ପୁଂ. ବଂ. (ଶୀଘ୍ର+ଅୟ୍ +କ.ଆନ) ସତ୍ୱରଗାମୀ,(ସ୍ତ୍ରୀ)ଶୀଘ୍ରାୟମାନା ।

ଶୀଘ୍ରାସ୍ତ୍ର—ପୁଂ.ବଂ. ଯେ ଶୀଘ୍ର ଶୀଘ୍ର ଅସ୍ତ୍ର ପ୍ରୟୋଗ କରିପାରେ ।

ଶୀଘ୍ରୀ—ପୁଂ. ବଂ. ତ୍ୱରାନ୍ୱିତ ।

ଶୀଘ୍ରୀୟ—ପୁଂ. ବଂ. ଶୀଘ୍ରସମ୍ବନ୍ଧୀ, ଶୀଘ୍ରଜାତ, (ବ) ବିଷ୍ଣୁ, ମହାଦେବ ।

ଶୀଘ୍ରେ—ଗ୍ରା. କ୍ରି. ବଂ. କ୍ଷିପ୍ରତା ସହକାରେ, ଅତି ଚଞ୍ଚଳ ।

ଶୀଘ୍ରେଣ—ଗ୍ରା. କ୍ରି. ବଂ. ଶୀଘ୍ରେ ଦେଖ ।

ଶୀତ୍କାର—ପୁଂ. ବ. (ଶୀତ୍+କୃ+ଭା. ଅ) ଶୁଶୁ ଶବ୍ଦ, ଅବ୍ୟକ୍ତ ମଧୁର ଶବ୍ଦ, ସୁରସିକା ସ୍ତ୍ରୀମାନଙ୍କର ରତିକାଳୀନ ମଧୁର ଧ୍ୱନି ।

ଶୀତ୍କୃତ୍—ବଂ. ଶୀତ୍କାର ଧ୍ୱନିଯୁକ୍ତ ।

ଶୀତ୍କୃତି—ବ. ( ଶୀତ୍ + କୃ + ଭା.ତି ) ଶୀତ୍କାର ଦେଖ ।

ଶୀତ—କ୍ଳୀ. ବ. (ଶୈ+କ.ତ) ଥଣ୍ଡା, ଜଡ଼, ଶୀତଳ, ଅଳସ, ( ବ ) ଜଳ, ବରଫ, ବହୁବାରଦ୍ରୁମ, ବେତସବୃକ୍ଷ, ଅଶନପର୍ଣ୍ଣୀ, ଶୀତଳତା, ଥଣ୍ଡା ଗୁଣ, କମ୍ପ, ଶୀତକାଳ, ହେମନ୍ତଋତୁ, ଦୁର୍ଗନ୍ଧ ତୃଣ, ବବରଚନ୍ଦନ, ଦେହରେ ଥଣ୍ଡା ଲାଗିବାର ଅନୁଭୂତି, ଜାଡ଼ ।

ଶୀତଋତୁ—ବ. ଶୈଶିରକାଳ, ପୌଷ ଓ ମାଘମାସ ଦ୍ୱୟ ।

ଶୀତକ—ପୁଂ. ବ. (ଶୀତ+କ) ଶୀତକାଳ, ଅଶନପର୍ଣ୍ଣୀ,ଦେଶବିଶେଷ, ବିଛା, ସୁଖୀମନୁଷ୍ୟ,(ବଂ)ଦୀର୍ଘସୂତ୍ରୀ,କଷ୍ଟେଷ୍ଟ ।

ଶୀତକଟିବନ୍ଧ—ବ. ଭୂମଣ୍ଡଳର ମେରୁ

ମାନଙ୍କୁ ଲାଗିଥିବା ଶୀତପ୍ରଧାନ କଟିବନ୍ଧ
ଶୀତକଟିବା-ଗ୍ରା.ବି.ଶୀତଋତୁ ଗତ ହେବା ।
ଶୀତକମ୍ପ—ବି. (୬ତତ୍) ଶୀତପ୍ରକୋପରୁ ଦେହ ଥରିବା ।
ଶୀତକର—ପୁଂ.ବି.(ବ.ବ୍ରୀ) ଚନ୍ଦ୍ର,କର୍ପୂର (ବିଂ)ଶୀତଳ ପାଣିଯୁକ୍ତ,ଶୀତଳକାରକ, ଯାହା ଶୀତଳ କରେ ।
ଶୀତକରିବା—ଗ୍ରା.ବି.ଶୀତବୋଧ ହେବା, ଜାଡ଼ କରିବା ।
ଶୀତକଷାୟ—ବି. (କ.ଧା) ଏକତୋଳା କୁଚ୍ଛିତ ଦ୍ରବ୍ୟକୁ ଛଅତୋଳା ଉଷ୍ଣଜଳରେ ଏକରାତି ବତୁରାଇ ସକାଳେ ଛାଣିନେଇ ଯେଉଁ ପାନୀୟ ପ୍ରସ୍ତୁତ ହୁଏ ।
ଶୀତକାଳ—ପୁଂ. ବି. ଶୀତଋତୁ, ପୌଷ ଓ ମାଘମାସ ଦ୍ୱୟ ।
ଶୀତକାଳୀନ—ବିଂ. (ଶୀତ+କାଳ+ଈନ) ଶୀତଦିନଆ,ଯାହା ଶୀତଦିନରେ ଘଟେ ।
ଶୀତକିରଣ—ପୁଂ. ବି. ଚନ୍ଦ୍ର, କର୍ପୂର ।
ଶୀତକୁମ୍ଭ—ପୁଂ.ବି. କନିଅର,କରବୀର ।
ଶୀତକୁମ୍ଭିକା—ସ୍ତ୍ରୀ. ବି. କୁମ୍ଭିରିକା ଲତା ।
ଶୀତକୁମ୍ଭୀ—ସ୍ତ୍ରୀ. ବି. ଜଳଜବୃକ୍ଷବିଶେଷ, ବୋରଝାଙ୍ଗି, ଶିଉଳି ।
ଶୀତକ୍ରିୟା—ସ୍ତ୍ରୀ. ବି.ଶୈତ୍ୟକ୍ରିୟା, ଯେଉଁ କାର୍ଯ୍ୟଦ୍ୱାରା ଶୈତ୍ୟଗୁଣ ହୁଏ ।
ଶୀତକ୍ଷାର—କ୍ଲୀ. ବି. ଶ୍ୱେତ ଟଙ୍କଣ, ଟାଙ୍ଗଣା ।
ଶୀତଗନ୍ଧ—( ଶୀତ+ଗନ୍ଧ ) ବ.ବ୍ରୀ; ଶ୍ୱେତ ଚନ୍ଦନ ।
ଶୀତଗାତ୍ର—ପୁଂ. ବି. ସନ୍ନିପାତ ରୋଗ-ବିଶେଷ ।
ଶୀତଗୁ—ପୁଂ.ବି.(ବ.ବ୍ରୀ) ଚନ୍ଦ୍ର,କର୍ପୂର ।
ଶୀତଚମ୍ପକ—ପୁଂ. ବି. ଦର୍ପଣ, ପ୍ରଦୀପ ।
ଶୀତଚ୍ଛାୟ—ପୁଂ. ବି. ( ଶୀତ+ଛାୟା ) ବ.ବ୍ରୀ; ବଟବୃକ୍ଷ,(ବିଂ) ଶୀତଳ ଛାୟା-ବିଶିଷ୍ଟ ।
ଶୀତତା-ସ୍ତ୍ରୀ.ବି.ଶୀତଗୁଣ,ଶୀତତ୍ୱ,ଶୈତ୍ୟ ।
ଶୀତଦନ୍ତ—ପୁଂ. ବି. ଦାଲନ ନାମକ ଦନ୍ତରୋଗ ବିଶେଷ ।

ଶୀତଦନ୍ତିକା—ସ୍ତ୍ରୀ. ବି. ନାଗଦନ୍ତୀ ।
ଶୀତଦିନ—ଗ୍ରା.ବି.ଶୀତଋତୁ,ଶୀତକାଳୀନ ଦିବସ ।
ଶୀତଦୀଧିତି—ପୁଂ.ବି.ଶୀତକିରଣ,ଚନ୍ଦ୍ର ।
ଶୀତଦୀପ୍ୟ—କ୍ଲୀ.ବି. ଶ୍ୱେତଜୀରକ, ଧଳା ଜୀରା ।
ଶୀତଦୂର୍ବା—ସ୍ତ୍ରୀ. ବି. ଶ୍ୱେତ ଦୂର୍ବା ।
ଶୀତଦ୍ୟୁତି—ପୁଂ. ବି. (ବ.ବ୍ରୀ) ଚନ୍ଦ୍ର ।
ଶୀତପତ୍ରା-ସ୍ତ୍ରୀ.ବି.ଶ୍ୱେତ ଲଜ୍ଜାବତୀ ଲତା ।
ଶୀତପଲ୍ଲବା—ସ୍ତ୍ରୀ.ବି.(ବ.ବ୍ରୀ)ଭୂମିଜମ୍ବୁ ।
ଶୀତପାକୀ—ସ୍ତ୍ରୀ. ବି. କାକୋଲୀ, ଗୁଞ୍ଜା, ବାଡ଼ିଅଅଁଳା ।
ଶୀତପିତ୍ତ—ବି. ଚର୍ମରୋଗବିଶେଷ,ଏହା ହଠାତ୍ ଜନ୍ମେ ଓ ହଠାତ୍ ଅନ୍ତର୍ହିତ ହୁଏ, ଶିତୁରା ।
ଶୀତପୁଷ୍ପ—କ୍ଲୀ. ବି. (ବ.ବ୍ରୀ) ପରିଦଳ-ତୃଣ,ଶୈଳେୟ, (ପୁଂ.ବି) ଶିରୀଷବୃକ୍ଷ ।
ଶୀତପୁଷ୍ପକ—ବି. ଶୈଳେୟ, ଅର୍କବୃକ୍ଷ ।
ଶୀତପୁଷ୍ପା—ସ୍ତ୍ରୀ. ବି. (ବ.ବ୍ରୀ)ଅତିବଳା ।
ଶୀତପୂତନା—ସ୍ତ୍ରୀ. ବି. ବାଳଗ୍ରହ ଭେଦ ।
ଶୀତପ୍ରକୋପ—ବି. ( ୬ତତ୍ ) ଶୀତର ଆଧିକ୍ୟ, ଶୀତଜନିତ କଷ୍ଟ ।
ଶୀତପ୍ରଧାନ—ବିଂ.(ବ.ବ୍ରୀ) ଅଧିକଶୈତ୍ୟ-ବିଶିଷ୍ଟ, ଅତିରିକ୍ତ ଶୀତଳ,, ଯେଉଁଠାରେ ଶୀତକାଳ ଅଧିକ ସ୍ଥାୟୀ ।
ଶୀତପ୍ରଭ—ପୁଂ. ବି. (ବ.ବ୍ରୀ) କର୍ପୂର ।
ଶୀତପ୍ରିୟ—ପୁଂ.ବି. (ବ.ବ୍ରୀ) ପର୍ପଟ ।
ଶୀତଫଳ—ପୁଂ. ବି. ( ବ.ବ୍ରୀ ) ଶୀତ-କାଳରେ ଯାହାର ଫଳ ହୁଏ,ଗୁଡ଼ଫଳ ବୃକ୍ଷ, ପୀଲୁବୃକ୍ଷ, ଆମଳକ, ବହୁବାର ବୃକ୍ଷ ।
ଶୀତଭାନୁ—ପୁଂ. ବି. (ବ.ବ୍ରୀ) ଚନ୍ଦ୍ର ।
ଶୀତଭୀତ—ପୁଂ.ବିଂ.(୫ତତ୍)ଯେ ଶୀତକୁ ଡରେ, (ସ୍ତ୍ରୀ) ଶୀତଭୀତା ।
ଶୀତଭୀରୁ-ପୁଂ.ବିଂ.ଶୀତଯୋଗୁଁ ଭୟଶୀଳ, (ବି) ଭଦ୍ରବଲ୍ଲୀ ନାମକ ମଲ୍ଲୀ ଜାତୀୟ ଫୁଲ ଓ ତାହାର ଗଛ, ମଲ୍ଲିକା, ଶତ-ଦଳ ମଲ୍ଲୀ, ମୁଗୁର ମଲ୍ଲୀ, କାଠମଲ୍ଲୀ ।
ଶୀତଭୀରୁକ—ପୁଂ. ବି. ଶାରଦ ମଲ୍ଲିକା, ଶାଳିଧାନ୍ୟ ଭେଦ, କଳାବେଗୁନିଆ, (ପୁଂ.ବିଂ) ଶୀତଭୀତ ଦେଖ ।
ଶୀତଭୋଜୀ—ପୁଂ. ବିଂ. (ଶୀତ+ଭୁଜ୍+ଇନ୍) ଶୀତଭୋଗକାରୀ ।
ଶୀତମଞ୍ଜରୀ—ସ୍ତ୍ରୀ. ବି.ଶେଫାଳିକା, ଗଙ୍ଗ-ଶିଉଳି(ଫୁଲ ଓ ଗଛ) ।
ଶୀତମୟୂଖ—ପୁଂ. ବି. ଚନ୍ଦ୍ର, କର୍ପୂର ।
ଶୀତମୟୂଖମାଳୀ—ପୁଂ. ବି. ଚନ୍ଦ୍ର ।
ଶୀତମରୀଚି-ପୁଂ.ବି.(ବ.ବ୍ରୀ)ଚନ୍ଦ୍ର,କର୍ପୂର ।
ଶୀତମୂଳକ—କ୍ଲୀ. ବି. (ବ.ବ୍ରୀ) ଉଶୀର, ବେଣାମୂଳ, (ବିଂ) ଶୀତଳ ମୂଳଯୁକ୍ତ ।
ଶୀତରମ୍ୟ—ପୁଂ. ବି. (ବ.ବ୍ରୀ ) ପ୍ରଦୀପ, (ବିଂ) ଶୀତକାଳେ ଯାହା ସୁନ୍ଦର ।
ଶୀତରଶ୍ମି--ପୁଂ.ବି.(ବ.ବ୍ରୀ)ଚନ୍ଦ୍ର,ଶୀତକର
ଶୀତରସ-ବି.ଅପକ୍ୱ ଇକ୍ଷୁରସଜାତ ମଦିରା ।
ଶୀତରୁକ୍—ପୁଂ. ବି. (ବ.ବ୍ରୀ)ଚନ୍ଦ୍ର ।
ଶୀତର୍ତ୍ତୁ—ବି. (୬ତତ୍)ଶୀତଋତୁ,ଶିଶିର-କାଳ ।
ଶୀତଳ—ବିଂ. (ଶୀତ+ଲ+ଅ)ଶୈତ୍ୟ ଗୁଣବିଶିଷ୍ଟ, ଥଣ୍ଡା, ଧୀର, ଶାନ୍ତ, ନିରୁ-ଦ୍ୱେଗ, ତୃପ୍ତ, ଦୁଃଖରହିତ, ( ବି ) ମୌକ୍ତିକ,କର୍ପୂର,ଚନ୍ଦନ,ଚନ୍ଦ୍ର,ବେଣା-ମୂଳ, ଶିଳାପୁଷ୍ପ,ଶୈଳେୟ ଔଷଧ ଦ୍ରବ୍ୟ ବିଶେଷ, ଅଚଳପର୍ଣ୍ଣୀ ନାମକ ଗୁଳ୍ମ, ଝୁଣା, ଚମ୍ପାଗଛ, ସର୍ଜତରୁ, (ଗ୍ରା.ବି) ମୃତାହର ୪ଥ ୭ମ ଓ ୯ମ ଦିନରେ କରାଯିବା ବ୍ରାହ୍ମଣଭୋଜନ ।
ଶୀତଳକ—ବି. (ଶୀତଳ+କ) ଧଳାପଦ୍ମ, ଗନ୍ଧତୁଳସୀ, ଶୀତଳପଦାର୍ଥ ।
ଶୀତଳଚ୍ଛଦ—ପୁଂ. ବି. ଚମ୍ପା,ସ୍ୱର୍ଣ୍ଣଚମ୍ପକ ବୃକ୍ଷ, ଶୀତଳପତ୍ର । [ ପାଣି ।
ଶୀତଳଜଳ—କ୍ଲୀ. ବି.ଥଣ୍ଡାପାଣି,କାକର
ଶୀତଳତା—ସ୍ତ୍ରୀ.ବି. ଶୈତ୍ୟ, ଥଣ୍ଡାଭାବ ।
ଶୀତଳତୁଣ୍ଡି-ଗ୍ରା.ବି.ବିବାହ କର୍ମଶେଷରେ ବେଦିରୁ (ବରକନ୍ୟା) ଘରକୁ ଯାଇ ସ୍ତ୍ରୀ-ମାନଙ୍କର ବନ୍ଦାପନା ଶେଷରେ ବର-କନ୍ୟା ଦୁହିଙ୍କର ଏକତ୍ର ଜଳଯୋଗ ।
ଶୀତଳତ୍ୱ—କ୍ଲୀ. ବି. ଜଡ଼ତା,ଶୀତଳତା, ଥଣ୍ଡାଭାବ ।

ଶୀତଳପ୍ରଦ—ପୁଂ. ବ. (ଶୀତଳ+ପ୍ର+ଦା+ଅ)ଚନ୍ଦନ,(ବିଂ) ଶୀତଳପ୍ରଦାନକାରୀ, ଯାହା ଥଣ୍ଡା ଆଣେ ।

ଶୀତଳମଣୋହି—ଗ୍ରା.ବ.ଜଳଖିଆ,ଘକାଙ୍କର ଜଳଯୋଗ ।

ଶୀତଳମରଚ—ଗ୍ରା. ଦ. କବାବଚିନି ।

ଶୀତଳଷଷ୍ଠୀ—ବ ଜ୍ୟେଷ୍ଠ ଶୁକ୍ଳଷଷ୍ଠୀ ।

ଶୀତଳା—ସ୍ତ୍ରୀ. ବ. (ଶୀତଳ+ଆ)ବସନ୍ତାଦ ବସ୍ଫୋଟକ ରୋଗର ଅଧିଷ୍ଠାତ୍ରୀ ଦେବୀ, ଦୁର୍ଗାଙ୍କର ମୂର୍ତ୍ତିବିଶେଷ, ବାଲି, ଶାତଳୀ ବୃକ୍ଷ, ମାଳଦୂବା,କୁଟ୍ଟୁମ୍ବିନୀଲତା, (ବିଂ) ଶୈତ୍ୟଗୁଣଯୁକ୍ତା ।

ଶୀତଳୀ—ସ୍ତ୍ରୀ. ବ. (ଶୀତଳ+ଈ)ପାଣିଶିଉଳୀ, ଜଳଜ ବୃକ୍ଷଭେଦ ।

ଶୀତଳେଇବା—ଗ୍ରା.କ୍ରି. ଗରମ ଜିନିଷକୁ ଥଣ୍ଡା କରିବା ।

ଶୀତଲୁଗା—ଗ୍ରା. ବ. ଶୀତବସ୍ତ୍ର ।

ଶୀତବଲ୍ଲ—ପୁଂ. ବ. ଯଜ୍ଞଡୁମ୍ବିର ।

ଶୀତବଲ୍ଲଭ—ପୁଂ. ବ. କ୍ଷେତପାପଡ଼ା, ପର୍ପଟକ ।

ଶୀତବଲ୍ଲୀ—ସ୍ତ୍ରୀ. ବ. ମାଳଦୂବା ।

ଶୀତବସ୍ତ୍ର—ବ. (କ.ଧା)ଶୀତଲୁଗା,ଯେଉଁ ଲୁଗାକୁ ଘୋଡ଼ାଇହେଲେ ଦେହକୁ ଶୀତବାଧା ହୁଏ ନାହିଁ ।

ଶୀତବାତ—ବ. (କ.ଧା) ଥଣ୍ଡାପବନ ।

ଶୀତବାସା—ସ୍ତ୍ରୀ.ବ. ଯୂଇଗଛ, ଯୂଥିକା ।

ଶୀତବାତୋଷ୍ଣବେତାଳୀ—ସ୍ତ୍ରୀ. ବ.ଭୂତଯୋନିବିଶେଷ ।

ଶୀତଶାକ—ବ. (ବ.ବ୍ରୀ) ଇସବଗୁଲ ।

ଶୀତବୀର୍ଯ୍ୟ—କ୍ଲୀ. ବ. ସ୍ୱାଭାବିକ ଶୀତଳ ଗୁଣବିଶିଷ୍ଟ ( ଦ୍ରବ୍ୟ ), ଯାହା ସେବନ କଲେ ଦେହ ଶୀତଳ ହୁଏ ।

ଶୀତବୀର୍ଯ୍ୟକ—ପୁଂ. ବ. ପ୍ଲକ୍ଷବୃକ୍ଷ, (ବିଂ) ଶୀତ ବୀର୍ଯ୍ୟଯୁକ୍ତ ।

ଶୀତଶିବ—ବ. ମଧୁରିକା, ପାନମହୁରି, ଶକ୍ତୁଫଳାବୃକ୍ଷ, ସୈନ୍ଧବଲବଣ,କର୍ପୂର, ଶୈଳେୟନାମକ ଗନ୍ଧଦ୍ରବ୍ୟ ।

ଶୀତଶିବା—ସ୍ତ୍ରୀ.ବ.ଶମୀବୃକ୍ଷ,ଶୁଲ୍ଫା,ଶତପ ।

ଶୀତଶୂକ—ବ. (ବ.ବ୍ରୀ) ଯବଧାନ ।

ଶୀତଶୈଳ—ପୁଂ.ବ. ହିମାଳୟପର୍ବତ ।

ଶୀତସ୍ପର୍ଶ—ବ. (ବ.ବ୍ରୀ) ବାୟୁ ।

ଶୀତସହ—ବ. ପିଲୁବୃକ୍ଷ ।

ଶୀତସହା—ସ୍ତ୍ରୀ. ବ. ବାସନ୍ତୀଫୁଲ ଗଛ, ମଲ୍ଲିକାଭେଦ, ମାଲବେଗୁନିଆ, ଜଇ ଗଛ, ପିଲୁ ବୃକ୍ଷ ।

ଶୀତା—ସ୍ତ୍ରୀ. ବ. ( ଶ୍ୟୈ+କ.ତ+ଆ ) ଲଙ୍ଗଳଗାର, ଜନକଦୁହିତା ସୀତା, ତେଜୋବତୀ ନାମକ ଔଷଧ ବୃକ୍ଷ,ସୀତ ଦେଖ ।

ଶୀତାଂଶୁ—ପୁଂ.ବ.(ବ.ବ୍ରୀ)କର୍ପୂର,ଚନ୍ଦ୍ର

ଶୀତାଂଶୁମାନ୍—ପୁଂ.ବ.ଶୀତ କିରଣଯୁକ୍ତ ଚନ୍ଦ୍ର ।

ଶୀତାଂଶୁବଦନା—ସ୍ତ୍ରୀ. ବିଂ. (ବ.ବ୍ରୀ) ଚନ୍ଦ୍ରବଦନା, ଚନ୍ଦ୍ରମୁଖୀ ।

ଶୀତାଗମ—ବ. ( ୬ତତ୍ପୁ ) ହିମଋତୁର ଆବିର୍ଭାବ ।

ଶୀତାତପ—ବ. (ଦ୍ୱନ୍ଦ୍ୱ) ଶୀତଳତା ଓ ଉଷ୍ଣତା, ଶୀତ ଓ ଖରା ।

ଶୀତାତପତ୍ର—କ୍ଲୀ. ବ. ଛତ୍ର, ଛତା ।

ଶୀତାତପସହ—ପୁଂ. ବିଂ. ଯେ ଶୀତ ଓ ଖରା ସହିପାରେ । [ ପର୍ବତ ।

ଶୀତାଦ୍ରି—ପୁଂ. ବ. (କ.ଧା) ହିମାଳୟ

ଶୀତାଭ—ବ. କର୍ପୂର ।

ଶୀତାମ୍ବୁ—ବ. ଶୀତଳ ଜଳ ।

ଶୀତାର୍ତ୍ତ—ପୁଂ. ବିଂ. (୩ତତ୍ପୁ)ଶୀତଦ୍ୱାରା ପୀଡ଼ିତ, ଶୀତଯୋଗୁ କାତର, (ସ୍ତ୍ରୀ) ଶୀତାର୍ତ୍ତା ।

ଶୀତାର୍ତ୍ତି—ବ.ଶୀତଯୋଗୁଁ ଉତ୍ପନ୍ନ କଷ୍ଟ ।

ଶୀତାଳୁ—ପୁଂ.ବିଂ.(ଶୀତ+ଆଳୁ)ଶୀତାର୍ତ୍ତ, ଯେ ଶୀତକୁ ଭାରି ଡରେ ।

ଶୀତାଶ୍ମା—ପୁଂ.ବ.(କ.ଧା)ଚନ୍ଦ୍ରକାନ୍ତମଣି ।

ଶୀତିମା—ବ. ଶୀତର ଭାବ, ଶୈତ୍ୟ ।

ଶୀତୀକରଣ—ବ. ( ଶୀତ+କୃ+ଅନ ) ଦ୍ରବଦ୍ରବ୍ୟର ବିଶେଷଭାବେ ଶୀତଳକରିବା ଉପାୟ ।

ଶୀତୀଭାବ—ପୁଂ.ବ.( ଶୀତ+ଚ୍ୱି+ଭୂ+ଅ) ମୋକ୍ଷ, ଶୀତଳତ୍ୱ, ଶୈତ୍ୟ ।

ଶୀତୁଳ—ଗ୍ରା.ବ.ଗ୍ରୀଷ୍ମ ଋତୁର ଦ୍ୱିପ୍ରହରର ପ୍ରଚଣ୍ଡ ରୌଦ୍ର କମିଗିବା ପରେ ଅପରାହ୍ଣରେ ଅନୁଭୂତ ଆପେକ୍ଷିକ ଶୈତ୍ୟ ।

ଶୀତେତର—ବିଂ. ଗରମ, ଉଷ୍ଣ ।

ଶୀତୋତ୍ତମ—ବ. (୭ତତ୍ପୁ)ଜଳ, ପାଣି ।

ଶୀତୋତ୍ଥ—ବ.ଶ୍ୱେତମରିଚ,ସଜନାମଞ୍ଜି ।

ଶୀତୋଦ(କ)—ବ. (କ.ଧା)ଥଣ୍ଡାପାଣି ।

ଶୀତୋଷ୍ଣ—ବିଂ. ଥଣ୍ଡା ଓ ଗରମ ।

ଶୀତ୍କାର—ବ. ( ଶୀତ + କୃ + ଭା.ଅ ) ଶୀତ୍କାର ଦେଖ ।

ଶୀତ୍କୃତ—ବ ଓ ବିଂ.ଶୀତ୍କାର ଦେଖ ।

ଶୀଥ୍ୟ—ବ. (ଶୀତା+ଯ)କୃଷ୍ଟ, ଚଷାହୋଇଥିବା ।

ଶୀଧୁ(ଧୂ)—ବ. (ଶୀ+କ,ଧୁ,ଧୂ) ମଦ୍ୟ, ପକ୍ୱ ଇକ୍ଷୁ ରସରୁ ପ୍ରସ୍ତୁତ ମଦ ।

ଶୀଧୁ(ଧୂ)ଗନ୍ଧ—ପୁଂ.ବ. (ବ.ବ୍ରୀ)ବଉଳଗଛ, (୬ତତ୍ପୁ) ମଦ୍ୟଗନ୍ଧ ।

ଶୀଧୁପ—ପୁଂ.ବିଂ. (ଶୀ+ଧୂ+ପା+ଅ) ମଦ୍ୟପାୟୀ ।

ଶୀନ—କ୍ରି.ବିଂ. (ଶ୍ୟୈ+କ.ନ) ଘନୀଭୂତ (ଘୃତାଦ),ମୂର୍ଖ,(ବ.ଶୀ+କ.ତ)ଅଜଗର

ଶୀପାଲ—ପୁଂ. ବ. ଶୈବାଳ ।

ଶୀଫର—ପୁଂ. ବିଂ. ( ଶୀ+ଫର+କ. ଅ)ସ୍ଫୀତ, ଫୁଲ ଉଠିଥିବା, ସୁନ୍ଦର,(ସ୍ତ୍ରୀ) ଶୀଫରା ।

ଶୀଫାଳିକା—ସ୍ତ୍ରୀ. ବ. ଶେଫାଳିକା ।

ଶୀମୂଳ--ପୁଂ.ବ. ଶିମିଳିଗଛ, ଶାଲ୍ମଳୀବୃକ୍ଷ

ଶୀର—ପୁଂ. ବ. (ଶୀ+କ.ର) ଅଜଗର ସର୍ପ, ନାଗରଙ୍ଗ ବୃକ୍ଷ ।

ଶୀରକର—ଗ୍ରା. ପୁଂ. ବ. ବଳରାମ ।

ଶୀରିକା—ସ୍ତ୍ରୀ.ବ. ବଂଶପତ୍ରୀ ତୃଣବିଶେଷ ।

ଶୀର୍ଣ୍ଣ—ପୁଂ.ବିଂ.(ଶୃ+ମି.ତ)କ୍ଷୀଣ,କୃଶ, ଦୁର୍ବଳ, ଆହତ, ଶୁଷ୍କ, କ୍ଷୟପ୍ରାପ୍ତ,ଛିନ୍ନ, ପତିତ ।

ଶୀର୍ଣ୍ଣକାୟ—ପୁଂ. ବିଂ. (ବ.ବ୍ରୀ) କୃଶଶରୀରବିଶିଷ୍ଟ, (ସ୍ତ୍ରୀ) ଶୀର୍ଣ୍ଣକାୟା, (ବ. କ.ଧା) କ୍ଷୀଣଶରୀର ।

ଶୀର୍ଣ୍ଣତା(ତ୍ୱ)—ବ. କ୍ଷୀଣତା, ଦୁର୍ବଳତା, କୃଶତା, କାର୍ଶ୍ୟ ।

ଶୀର୍ଣ୍ଣଦଳ—ପୁଂ.ବ. (ବ.ବ୍ରୀ)ନିମ୍ବବୃକ୍ଷ

ଶୀର୍ଣ୍ଣଦେହ—ପୁଂ. ବି. ଓ ବିଂ. ଶୀର୍ଣ୍ଣକାୟ ଦେଖ, (ସ୍ତ୍ରୀ) ଶୀର୍ଣ୍ଣଦେହା ।
ଶୀର୍ଣ୍ଣପତ୍ର--ପୁଂ.ବି.(ବୈ.ଶା)କର୍ଣ୍ଣଅର ଗଛ. ନିମ୍ବ ବୃକ୍ଷ ।
ଶୀର୍ଣ୍ଣପର୍ଣ୍ଣ—ପୁଂ.ବି. (ବୈ.ଶା)ନିମ୍ବ ବୃକ୍ଷ ।
ଶୀର୍ଣ୍ଣପାଦ—ପୁଂ.ବି. (ବୈ.ଶା) ଯମ ।
ଶୀର୍ଣ୍ଣପୁଷ୍ପିକା—ସ୍ତ୍ରୀ.ବି. ପାନମହୁରି.ଶଉପ ।
ଶୀର୍ଣ୍ଣବୃନ୍ତ—ବି (ବୈ.ଶା)ଫୁଟିକାକୁଡ଼ି ।
ଶୀର୍ଣ୍ଣାଙ୍ଘ୍ରି—ପୁଂ.ବି. (ବୈ.ଶା) ଯମ ।
ଶୀର୍ଷ—କ୍ଳୀ. ବି. ମସ୍ତକ ଶିଖର, ଚୂଡ଼ା, ଅଗ୍ରଭାଗ, କୃଷ୍ଣାଗୁରୁ ।
ଶୀର୍ଷକ—କ୍ଳୀ.ବି. ମୁଣ୍ଡରେ ପିନ୍ଧାଯିବା, ଅଳଙ୍କାର ବା ମୁକୁଟପ୍ରଭୃତି, ଟୋପି, ପଗଡ଼ି, କରୋଟି, ଖପୁରି, ଜୟ ପରାଜୟର ନିଦର୍ଶନ ପତ୍ର,ରାହୁଗ୍ରହ,ମସ୍ତକ, ମୁଣ୍ଡ ।
ଶୀର୍ଷକପାଲ—କ୍ଳୀ.ବି. ଖପୁରି, କରୋଟି ।
ଶୀର୍ଷଚ୍ଛେଦ—ବି. ମୁଣ୍ଡକାଟ, ଶିରଚ୍ଛେଦ ।
ଶୀର୍ଷଚ୍ଛେଦ୍ୟ—ପୁଂ. ବିଂ. (ବୈ.ଶା) ଶିରଶ୍ଛେଦନଯୋଗ୍ୟ, ବଧ୍ୟ ।
ଶୀର୍ଷଣ୍ୟ—ବିଂ. (ଶିରସ୍ + ଯ)ମସ୍ତକରେ ପିନ୍ଧାଯାଇଥିବା,ମସ୍ତକୋଦ୍ଭୂତ,ମୁଣ୍ଡରେ ଅବସ୍ଥିତ, (ବି) ପରିଷ୍କୃତ କେଶ, ଶିରସ୍ତ୍ରାଣ, ପଗଡ଼ି ।
ଶୀର୍ଷଣ୍ୱାନ୍—ପୁଂ.ବିଂ. ମସ୍ତକଯୁକ୍ତ,ମସ୍ତକବିଶିଷ୍ଟ । [ କରେ ।
ଶୀର୍ଷତଃ—ଅବ୍ୟ. ମସ୍ତକଠାରୁ ବା ମସ୍ତ-
ଶୀର୍ଷପର୍ଣ୍ଣୀ—ସ୍ତ୍ରୀ.ବି. ଶୀର୍ଣ୍ଣପର୍ଣ୍ଣୀ ଦେଖ ।
ଶୀର୍ଷରକ୍ଷଣ—କ୍ଳୀ.ବି.ଶିରସ୍ତ୍ରାଣ, ଉଷ୍ଣୀଷ ।
ଶୀର୍ଷବ୍ୟଥା—ସ୍ତ୍ରୀ.ବି. ମୁଣ୍ଡବ୍ୟଥା ।
ଶୀର୍ଷସ୍ଥାନ—ବି. ମସ୍ତକ, ଉଚ୍ଚତମ ସ୍ଥାନ, ସର୍ବୋପରି ଅବସ୍ଥିତ ।
ଶୀର୍ଷସ୍ଥାନୀୟ—ବିଂ.(ଶୀର୍ଷ+ସ୍ଥାନ+ଈୟ ଶୀର୍ଷସ୍ଥାନ ଅଧିକାର କରିବାର ଯୋଗ୍ୟ. ସର୍ବପ୍ରଧାନ (ବ୍ୟକ୍ତି),(ସ୍ତ୍ରୀ) ସ୍ଥାନୀୟା ।
ଶୀର୍ଷୋଦୟ—ପୁଂ.ବି. (ବୈ.ଶା) ରାଶି ଓ ଲଗ୍ନବିଶେଷ, (ଯଥା: ମିଥୁନ, ସିଂହ, କନ୍ୟା, ତୁଳା, ବୃଶ୍ଚିକ, କୁମ୍ଭ ଓ ମୀନ; ଏହି ସମସ୍ତ ରାଶି ଓ ଲଗ୍ନ ) ।

ଶୀଳ—ବି. (ଶୀଲ୍+ଅ)ଆଚରଣ,ସ୍ୱଭାବ, ଅଭ୍ୟାସ, ସଚ୍ଚରିତ୍ରତା, ଅଜଗର ସାପ, (ପୁଂ.ବିଂ--ସମାସଯୁକ୍ତହେଲେ)ପ୍ରକୃତିବିଶିଷ୍ଟ ।
ଶୀଳକ—ବି ଓ ବିଂ.(ଶୀଳ + ସ୍ୱାର୍ଥେ.କ) ଶୀଳ ଦେଖ,ଅଜଗର ସାପ ।
ଶୀଳତା—ସ୍ତ୍ରୀ.ବି. ସାଧୁତା, ସଚ୍ଚରିତ୍ରତା, ସଦାଚରଣ, ସୁଶୀଳତା ।
ଶୀଳତ୍ୟାଗ--ପୁଂ.ବି.ସାଧୁତା ପରିତ୍ୟାଗ ।
ଶୀଳଧର—ପୁଂ.ବିଂ. (ଶୀଳ + ଧୃ + ଅ) ସୁସ୍ୱଭାବ, ସଚ୍ଚରିତ୍ର ।
ଶୀଳନ—କ୍ଳୀ. ବି. ( ଶୀଲ+ଭା.ଅନ ) ଆଲୋଚନା, ପର୍ଯ୍ୟବେକ୍ଷଣ, ଅଭ୍ୟାସ, ପ୍ରବର୍ତ୍ତନ ।
ଶୀଳଭଞ୍ଜ(ଜ୍)—ପୁଂ.ବିଂ. (ଶୀଳ + ଭଜ୍ +କ୍ୱିପ୍) ସୁଶୀଳ,ସଚ୍ଚରିତ୍ର, ସୁସ୍ୱଭାବ ।
ଶୀଳବତୀ—ସ୍ତ୍ରୀ.ବିଂ. ସାଧ୍ୱୀ, ସତୀ (ସ୍ତ୍ରୀ) ।
ଶୀଳବାନ୍—ପୁଂ. ବିଂ. ( ଶୀଳ+ବତ୍ ) ସୁଶୀଳ, ଚରିତ୍ରବାନ୍ ।
ଶୀଳବିପ୍ଲବ--ପୁଂ.ବି.ସାଧୁତାର ବିପର୍ଯ୍ୟୟ. ଶୀଳତା ପରିତ୍ୟାଗ ।
ଶୀଳବିଲୟ—ପୁଂ.ବି. ସାଧୁତା ତ୍ୟାଗ ।
ଶୀଳବୃକ୍ଷ—ବି. କ୍ଷୀରବୃକ୍ଷ ଦେଖ ।
ଶୀଳବୃତ୍ତ—ପୁଂ. ବିଂ, (ବୈ.ଶା) ସୁଶୀଳ, ସାଧୁ ।
ଶୀଳା—ସ୍ତ୍ରୀ. ବିଂ. (ଶୀଳ + ଆ) ସୁଶୀଳା, ସଚ୍ଚରିତ୍ରା,(ବି)କୌଣ୍ଡିନ୍ୟମୁନିଙ୍କ ପତ୍ନୀ ।
ଶୀଳିତ—ବିଂ. (ଶୀଳ+ମ୍ପି.ତ)ଅଭ୍ୟସ୍ତ, ପ୍ରବର୍ତ୍ତିତ, ଶିକ୍ଷିତ, ଆଲୋଚିତ ।
ଶୀବଲ—କ୍ଳୀ.ବି. (ଶୀ + ବଲ)ଶୈଳେୟ, ଶୈବାଳ ।
ଶୀବା—-ବି. (ଶୀ + କ.ବନ୍) ଅଜଗର ସାପ, ବୋଡ଼ାସାପ ।
ଶୁ—ଗ୍ରା. ଅ. ବେଗରେ ପବନ ବହିବା ଶବ୍ଦ,ସାଇଁ ସାଇଁ , ସାପ ଗର୍ଜିବାର ଶବ୍ଦ
ଶୁଅର—ଯା. ଗ୍ରା. ବି. ଘୁଷୁରି, ଘୁଷୁରିପରି ଘୃଣ୍ୟ ବ୍ୟକ୍ତି ।
ଶୁଆ—ଗ୍ରା.ବି. ଶୁକପକ୍ଷୀ,ଶୋଇବାକ୍ରିୟା ।
ଶୁଆଁ—ଗ୍ରା. ବି. (ସଂ-ଶ୍ୟାମା) ଶାରିବା, ଶୁଆଁଲଇ, ଧାନ୍ୟାଦିବର୍ଗର ବନ୍ୟଘାସ, ଶସ୍ୟଶୂକ, ତୃଣଧାନ୍ୟବିଶେଷ ।
ଶୁଆଁଲଇ—ଗ୍ରା.ବି.କୃଷ୍ଣଶାରିବା, ଶ୍ୟାମାଲତା । [ ଶାଗୁଆ ।
ଶୁଆପକ୍ଷିଆ—ଗ୍ରା. ବିଂ. ଶୁଆର ପକ୍ଷପରି
ଶୁଆବସା—ଗ୍ରା.ବି.ଶୋଇବା ଓ ବସିବା, ସହବାସ । [ ସାଙ୍ଗ ପକ୍ଷୀ ।
ଶୁଆସାଙ୍ଗ—ଗ୍ରା.ବି. ଗୃହପାଳିତ ଶୁଆ ଓ
ଶୁଇନ୍—ପ୍ରା. (ପାଟନା)ବିଂ. ଶୂନ୍ୟ ।
ଶୁଇବା—ଗ୍ରା.କ୍ରି.ଶୋଇବା,ଶୟନକରିବା
ଶୁଉବା—ପ୍ରା. (ପାଟନା)କ୍ରି. ଶୋଇବା ।
ଶୁକ୍—ଗ୍ରା. ବିଂ. ଶୁଷ୍କ, ନିର୍ଜଳ ।
ଶୁକ୍ତ(ତା)ଲୁ-ଗ୍ରା.ବି.କୋତାର ଭିତରେ, ପଡ଼ିବା ପାଦାକୃତି ଚମଡ଼ା ।
ଶୁକ୍ତ—ଗ୍ରା. ବି. ଶୁକୁତ ଦେଖ ।
ଶୁକ୍ଶୁକ୍—ଗ୍ରା.ବିଂ.(ସଂ-ଶୁଷ୍କ) ଶୁଷ୍କପ୍ରାୟ, ମୃତକଳ୍ପ, ମୁମୂର୍ଷୁ ।
ଶୁକ-ପୁଂ.ବି.(ଶୁଭ+କ.କ)ବା ଶୁକ୍+କ. କ) ଶୁଆପକ୍ଷୀ, ରାବଣର ମନ୍ତ୍ରୀ, ବ୍ୟାସଦେବଙ୍କ ପୁତ୍ର, ଶିରୀଷବୃକ୍ଷ, ବସ୍ତ୍ର,କାନ୍ଧ, ଉଷ୍ଣୀଷ, ପଗଡ଼ି, ଲୋଧ୍ର, ତାଳୀଶପତ୍ର ।
ଶୁକଚ୍ଛଦ—କ୍ଳୀ.ବି. ତେଜପତ୍ର, ଗ୍ରନ୍ଥିପର୍ଣ୍ଣ, ତୂଳକ, ଶୁକବର୍ହ ଦେଖ ।
ଶୁକତରୁ—ପୁଂ. ବି. ଶିରୀଷ ବୃକ୍ଷ ।
ଶୁକତାରି—ଗ୍ରା. ବି. ଶୁକଗ୍ରହ, ପାହାନ୍ତି ତାରା, ପହରକିଆ ତାରା ।
ଶୁକଦେବ—ପୁଂ. ବି. ବ୍ୟାସଦେବଙ୍କର ପୁତ୍ର, ମୁନିବିଶେଷ ।
ଶୁକଦ୍ରୁମ—ପୁଂ. ବି. ଶିରୀଷ ବୃକ୍ଷ ।
ଶୁକନସା—ସ୍ତ୍ରୀ.ବି.ଶ୍ୟୋନାକ,ଫଣଫଣା
ଶୁକନାଶ(ସ)—ପୁଂ. ବି. ଫଣଫଣାବୃକ୍ଷ, ଅଗସ୍ତିବୃକ୍ଷ ।
ଶୁକନାଶନ—ପୁଂ. ବି. (ଶୁକ+ନଶ୍+ଣିଚ୍+ଅନ) ଦଦ୍ରୁଘ୍ନ, ଗୁଳୁଣ୍ଡା ଗଛ ।
ଶୁକନାସ—-ପୁଂ. ବିଂ. ଶୁକପକ୍ଷୀର ଉପର ଥଣ୍ଟପରି ବକ୍ର ନାସିକାଯୁକ୍ତ (ବ୍ୟକ୍ତି), (ପୁଂ. ବି) କାଦମ୍ବରୀ ବର୍ଣ୍ଣିତ ରାଜା ତାରାପୀଡ଼ଙ୍କ ମନ୍ତ୍ରୀ, ଫଣଫଣା ଗଛ, ଗମ୍ଭାରି, ବାଇଡ଼ଙ୍କ ।

ଶୁକନାସା—ସ୍ତ୍ରୀ.ବି.ଶୁକଶିମ୍ବୀ, ବାଇଡ଼ଙ୍କ, ଗମ୍ଭାର ।

ଶୁକନାସିକା—ସ୍ତ୍ରୀ. ବି. ଫଣଫଣାଗଛ ।

ଶୁକପକ୍ଷୀ—ବି. ଶୁଆ ଚଢ଼େଇ ।

ଶୁକପତ୍ର—ପୁଂ.ବି.ଗନ୍ଧକ, ଗ୍ରନ୍ଥିପର୍ଣ୍ଣବୃକ୍ଷ ।

ଶୁକପିଚ୍ଛ—ପୁଂ. ବି. ଗନ୍ଧକ, ଗ୍ରନ୍ଥିପର୍ଣ୍ଣ, ଗଣ୍ଠିଅନା ।

ଶୁକପିଣ୍ଡି—ପୁଂ.ବି.ଶୁକଶିମ୍ବୀ,ବାଇଡ଼ଙ୍କ ।

ଶୁକପୁଚ୍ଛ—ବି. ଗନ୍ଧକ, (୬ତତ୍) ଶୁଆର ଲାଞ୍ଜ । [ ଗଣ୍ଠିଅନା ।

ଶୁକପୁଷ୍ପ—ପୁଂ. ବି. (ବ.ଗ୍ରୀ) ଶିରୀଷ ବୃକ୍ଷ,

ଶୁକପ୍ରିୟ—ପୁଂ. ବି. ଶିରୀଷ ବୃକ୍ଷ, (ବିଂ) ଶୁକ ପକ୍ଷୀର ପ୍ରିୟ (ବସ୍ତୁ) ।

ଶୁକପ୍ରିୟା—ବି. ଜମ୍ବୁ, ଜାମୁ ।

ଶୁକଫଳ—ପୁଂ. ବି. (ବ.ଗ୍ରୀ)ଅର୍କବୃକ୍ଷ ।

ଶୁକମ୍—ଅ. ଶୀଘ୍ର, ଚଞ୍ଚଳ ।

ଶୁକରହସ୍ୟ—କ୍ଲୀ.ବି. ଉପନିଷଦ୍‌ଭେଦ ।

ଶୁକଲ—ଗ୍ରା.ବିଂ.(ସଂ-ଶୁକ୍ଳ)ଶୁକ୍ଳ ଦେଖ ।

ଶୁକବଲ୍ଲଭ—ପୁଂ.ବି. (୬ତତ୍) ଡାଳିମ୍ବ ଗଛ, (ବିଂ) ଶୁକର ପ୍ରିୟ (ବସ୍ତୁ) ।

ଶୁକବାବୁ—ପୁଂ. ବି. ବ୍ୟାସଦେବ ।

ଶୁକବାହ—ପୁଂ. ବି. କାମଦେବ ।

ଶୁକବୃକ୍ଷ—ପୁଂ. ବି. ଶିରୀଷ ବୃକ୍ଷ ।

ଶୁକଶାରୀ—ଗ୍ରା.ବି.ଶୁଆ ଓ ଶାରୀଚଢ଼େଇ ।

ଶୁକଶାଲକ—ପୁଂ. ବି. ମହାନିମ୍ବ ।

ଶୁକଶିମ୍ବା(ମ୍ବୀ)—ସ୍ତ୍ରୀ. ବି. (କ.ଧା) ବାଇଡ଼ଙ୍କ, କପିକଚ୍ଛୁ ।

ଶୁକଶୀର୍ଷା—ସ୍ତ୍ରୀ. ବି. ତାଳୀଶପତ୍ର, ଗଣ୍ଠିଅନା, ତେଜପତ୍ର ।

ଶୁକସାରଣ—ବି. ରାବଣର ମନ୍ତ୍ରିଦ୍ୱୟ ।

ଶୁକା—ଗ୍ରା. ବିଂ. ଶୁଷ୍କ, ନିର୍ଜଳ ।

ଶୁକାଖ୍ୟ—ପୁଂ. ବି. (ବ.ଗ୍ରୀ) ଶିରୀଷବୃକ୍ଷ, ବାଇଡ଼ଙ୍କ ।

ଶୁକାଦନ—ପୁଂ. ବି. (୬ତତ୍) ଡାଳିମ୍ବ

ଶୁକାହ୍ୱୟ--ବି.(ବ.ଗ୍ରୀ)କେଉଟିଆ ମୁଥା ।

ଶୁକିଲ—ଗ୍ରା. ବି ଓ ବିଂ.ଶୁଖିଲ ଦେଖ ।

ଶୁକୀ—ସ୍ତ୍ରୀ. ବି. (ଶୁକ+ଈ)କଶ୍ୟପପତ୍ନୀ, ଶୁକପକ୍ଷିଣୀ ।

ଶୁକୁଟ—ଗ୍ରା. ବି. ତାଣ୍ଡବ, କଳକଳିଆ, ଅନର୍ଥ,ଦ୍ୱନ୍ଦ୍ୱ,ଅଭିନୟ,ଲାଞ୍ଛନା,ହଟହଟ ।

ଶୁକୁଟା—ଗ୍ରା. ବିଂ. ଶୁଷ୍କ ଶୁଷ୍କତାଯୁକ୍ତ, ଶୁଷ୍କହେବା ଯୋଗୁଁ କ୍ଷୀଣ(ପଦାର୍ଥ),ଶୀର୍ଣ୍ଣ, ଦୁର୍ବଳ, (ସ୍ତ୍ରୀ) ଶୁକୁଟୀ ।

ଶୁକୁଶୁକୁ—ଗ୍ରା. ଅ. ଶୁକ୍ ଶୁକ୍ ଦେଖ ।

ଶୁକେଷ୍ଟ—ପୁଂ.ବି.(୬ତତ୍) ଶିରୀଷ ବୃକ୍ଷ ।

ଶୁକୋଦର--କ୍ଲୀ.ବି.ତାଳୀଶପତ୍ର,(୬ତତ୍) ଶୁଆର ପେଟ ।

ଶୁକ୍ତ—କ୍ଲୀ.ବି.(ଶୁଚ୍+ତ)ମାଂସ, କାଞ୍ଜି, ଅମ୍ଳ ବ୍ୟଞ୍ଜନବିଶେଷ, କଟୂକ୍ତି, ଅମ୍ଳ, ମଦର କାଞ୍ଜି, ଶିର୍କା, (ବିଂ) ପରିଷ୍କୃତ, ପବିତ୍ରୀକୃତ,ପବିତ୍ର, ବାସିହେବା ଯୋଗୁଁ ଅମ୍ଳରସଯୁକ୍ତ, କଷ୍ଟୁର,ନିର୍ଜନ,(ସ୍ତ୍ରୀ)ଶୁକ୍ତା

ଶୁକ୍ତକ—ବି. ଅମ୍ଳୋଦ୍ଗାର, ଭୁକ୍ତାନ୍ନ ଜୀର୍ଣ୍ଣ ନ ହେବାରୁ ଉଠିବା ଅମ୍ଳୋଦ୍ଗାର ।

ଶୁକ୍ତା—ଗ୍ରା. ବି. ଶୁଖିଲ ନଳିତାପତର ।

ଶୁକ୍ତାମ୍ଳ—କ୍ଲୀ. ବି. ଅମ୍ଳପାକ ।

ଶୁକ୍ତି--ବି.(ଶୁଚ୍+ଣ.ତି)ଗେଣ୍ଡା,ଶାମୁକା, ଶଙ୍ଖ, ମୁଣ୍ଡର ଖପୁର, ଅଶ୍ୱର ବକ୍ଷସ୍ଥଳରେ ଲୋମାବଳୀ କୃତ ଆବର୍ତ୍ତ ବିଶେଷ, ଚକ୍ଷୁରୋଗବିଶେଷ,ମୋତିଆବିନ୍ଦୁ,ଗୁରୁ-ତୋଳା ପରିମାଣ, କୋଳଗଛ,(ଗ୍ରା.ବି) ଜଳଯୁକ୍ତ ବା କଞ୍ଚା ପଣ୍ୟଦ୍ରବ୍ୟାଦ ଶୁଖି ଗଲେ ତହିଁରୁ ଯେଉଁ ଓଜନ କମିଯାଏ ।

ଶୁକ୍ତିକ—ପୁଂ. ବି. ଗନ୍ଧକ, ଶୁକ୍ତିରୋଗ, ଶାମୁକା, ଗେଣ୍ଡା, ଖଟାପାଳଙ୍ଗ ।

ଶୁକ୍ତିଜ—ବି. (ଶୁକ୍ତି+ଜନ୍+ଅ) ମୁକ୍ତା, (ବିଂ) ଶୁକ୍ତିରୁ ଜାତ,(ସ୍ତ୍ରୀ) ଶୁକ୍ତିଜା ।

ଶୁକ୍ତିପର୍ଣ୍ଣ—ବି. ଛତିଅନା ଗଛ ।

ଶୁକ୍ତିପତ୍ର—ପୁଂ. ବି. ଛତିଅନା ଗଛ ।

ଶୁକ୍ତିପୁଟୋପମ—ବି. (ବ.ଗ୍ରୀ) ବାଦାମ ।

ଶୁକ୍ତିମଣି—ପୁଂ. ବି. ମୁକ୍ତା ।

ଶୁକ୍ତିବୀଜ—ବି. (୬ତତ୍) ମୁକ୍ତା ।

ଶୁକ୍ର—ବି. (ଶୁଚ୍+କ.ର) ଶୁକ୍ରଗ୍ରହ,ଶୁକ୍ରାଚାର୍ଯ୍ୟ,ଶରୀରସ୍ଥ ଧାତୁବିଶେଷ, ପୁରୁଷର ବୀର୍ଯ୍ୟ, ରେତଃ, ତେଜଃ, ଅଗ୍ନି, ଧଳାଚିତାଗଛ, ଜ୍ୟେଷ୍ଠମାସ, ଯୋଗବିଶେଷ, ଚକ୍ଷୁରୋଗବିଶେଷ,(ଲ୍.ଅର୍ଥ)କଣାବ୍ୟକ୍ତି

ଶୁକ୍ରକର—ପୁଂ. ବି.(ଶୁକ୍ର+କୃ+ଅ)ମଜ୍ଜା, (ବିଂ) ବୀର୍ଯ୍ୟକାରକ, ଶୁକ୍ରବର୍ଦ୍ଧକ,(ସ୍ତ୍ରୀ) ଶୁକ୍ରକରୀ ।

ଶୁକ୍ରକ୍ଷୟ—ବି. (୬ତତ୍) ଅନିଚ୍ଛା ସତ୍ତ୍ୱେ ବିନା ରତିରେ ଶୁକ୍ର ପତନରୂପ ରୋଗ ।

ଶୁକ୍ରକ୍ଷରଣ—ବି. (୬ତତ୍) ବୀର୍ଯ୍ୟପତନ ।

ଶୁକ୍ରଗତଜ୍ୱର—ବି. ଶୁକ୍ର ଧାତୁକୁ ଆଶ୍ରୟ କରି ଯେଉଁ ଜ୍ୱର ହୁଏ ।

ଶୁକ୍ରଜ—ପୁଂ. ବିଂ. (ଶୁକ୍ର+ଜନ୍+ଅ) ଯାହା ଶୁକ୍ରରୁ ଜନ୍ମେ,(ବି)ଗର୍ଭ,ସନ୍ତାନ, ମେହରୋଗ ବିଶେଷ ।

ଶୁକ୍ରତାରଲ୍ୟ—ବି. (୬ତତ୍) ରୋଗ, ଦୁର୍ବଳତା ଓ ବାର୍ଦ୍ଧକ୍ୟ ଯୋଗୁଁ ଶୁକ୍ରର ଅଗାଢ଼ତା ।

ଶୁକ୍ରତାରା—ବି. ଶୁକ୍ରଗ୍ରହ ।

ଶୁକ୍ରଦ--ପୁଂ. ବିଂ. ( ଶୁକ୍ର+ଦା+ଅ ) ଶୁକ୍ରଜନକ, ଶୁକ୍ରକାରକ, ( ପୁଂ.ବି ) ଗୋଧୂମ ।

ଶୁକ୍ରଦଶା—ବି. ଶୁକ୍ରମହାଦଶା ଦେଖ ।

ଶୁକ୍ରଧାରଣ—ବି. (୬ତତ୍) ବ୍ରହ୍ମଚର୍ଯ୍ୟ ।

ଶୁକ୍ରନୀତ—ବି. ଶୁକ୍ରାଚାର୍ଯ୍ୟଙ୍କ ପ୍ରବର୍ତ୍ତିତ ନୀତିଶାସ୍ତ୍ର ।

ଶୁକ୍ରପୁଷ୍ପ—ବି.କୁରୁବକଶାକ,(ସ୍ତ୍ରୀ.ବି)ଶୁକ୍ରପୁଷ୍ପା, ଶ୍ୱେତଅପରାଜିତା ।

ଶୁକ୍ରଭୁକ୍—ପୁଂ. ବି. (ଶୁକ୍ର+ଭୁଜ୍+କ୍ୱିପ୍) ମୟୂର, (ପୁଂ.ବିଂ.) ଶୁକ୍ରଖାଦକ ।

ଶୁକ୍ରଭୂ—ପୁଂ. ବି. (ବ.ଗ୍ରୀ) ମଜ୍ଜା ।

ଶୁକ୍ରମହାଦଶା—ବି. ମନୁଷ୍ୟ ଜୀବନର ପରମାୟୁ ୧୨୦ବର୍ଷ ମଧ୍ୟରୁ କେତୁଦଶା ପରେ ପଡ଼ିବା ୨୦ବର୍ଷ କାଳ ।

ଶୁକ୍ରମାତୃ—ସ୍ତ୍ରୀ. ବି. ଭାର୍ଗୀ,ବ୍ରାହ୍ମଣଯଷ୍ଟି ।

ଶୁକ୍ରମେହ—ପୁଂ.ବି.ପ୍ରମେହ ରୋଗବିଶେଷ

ଶୁକ୍ରରୁହ—ପୁଂ. ବି. (ବ.ଗ୍ରୀ) ଅଗ୍ନି ।

ଶୁକ୍ରଳ—ପୁଂ.ବିଂ.(ଶୁକ୍ର+ଲ)ବୀର୍ଯ୍ୟବର୍ଦ୍ଧକ, ଅଧିକ ଶୁକ୍ରବିଶିଷ୍ଟ,(ସ୍ତ୍ରୀ) ଶୁକ୍ରଳା ।

ଶୁକ୍ରଳା—ସ୍ତ୍ରୀ. ବି. ଧଳାକାଇଁଚ,ଅଇଁଲା ଗଛ ।

ଶୁକ୍ରବର୍ତ୍ତ—ବି. ଉଜ୍ଜ୍ୱଳ ବର୍ତ୍ତି ।

ଶୁକ୍ରବର୍ଦ୍ଧକ—ବିଂ. ଯାହାଖାଇଲେ ଶୁକ୍ର

ବୃଦ୍ଧି ହୁଏ ।

ଶୁକ୍ରବହ—ବି.ଶୁକ୍ରବହନକାରୀ ସ୍ରୋତଃ ।

ଶୁକ୍ରବାର—ବି. ଶୁକ୍ରଗ୍ରହଭୋଗ୍ୟ ଦିନ. ଶନିବାରର ପୂର୍ବ ଓ ଗୁରୁବାରର ପରଦିବସ ।

ଶୁକ୍ରବ୍ୟୟ—ବି. (୬ତତ୍ପୁ)ରମଣାଦି ଦ୍ୱାରା ଶୁକ୍ରପତନ ।

ଶୁକ୍ରବୃଦ୍ଧି—ବି. (୬ତତ୍ପୁ)ଦେହରେ ଶୁକ୍ର-ଧାତୁର ଆଧିକ୍ୟ ।

ଶୁକ୍ରଶିଷ୍ୟ—ପୁଂ.ବି.ଦୈତ୍ୟ,ଦୈତ୍ୟମାନେ

ଶୁକ୍ରସ୍ଖଳନ—ବି.(୬ତତ୍ପୁ)ରୋଗ ବା ସ୍ୱପ୍ନ-ଦୋଷରୁ ଅନିଚ୍ଛା ସତ୍ତ୍ୱେ ଶୁକ୍ରପତନ ।

ଶୁକ୍ରସ୍ରାବ—ବି. (୬ତତ୍ପୁ) ଅଧିକ ମାତ୍ରାରେ ଶୁକ୍ରକ୍ଷରଣ ।

ଶୁକ୍ରହରଣ—ବି. ଶୁକ୍ରନାଶ, ଶୁକ୍ରକ୍ଷୟ ।

ଶୁକ୍ରା—ସ୍ତ୍ରୀ. ବି. ବଂଶଲୋଚନା, ବାଉଁଶ ଚୁଣ ।

ଶୁକ୍ରାଙ୍ଗ—ପୁଂ. ବି. (ବ.ବ୍ରୀ) ମୟୂର ।

ଶୁକ୍ରାଚାର୍ଯ୍ୟ—ପୁଂ. ବି. (କ.ଧା) ଭୃଗୁଙ୍କ ପୁତ୍ର,ପୌରାଣିକ ଋଷି,ଭାର୍ଗବ,ଦୈତ୍ୟ-ଗୁରୁ ।

ଶୁକ୍ରାନ୍ତର—ବି.ଶୁକ୍ର ଓ ଅନ୍ୟ ମହାଦଶା-ମାନଙ୍କ ମଧ୍ୟରେ ଶୁକ୍ରଗ୍ରହଙ୍କ ମହାଦଶା କାଳ ।

ଶୁକ୍ରିୟ—ପୁଂ. ବିଂ.(ଶୁକ୍ର+ଇୟ)ଶୁକ୍ର-ସମ୍ବନ୍ଧୀୟ, ଶୁକ୍ରବିଶିଷ୍ଟ,(ସ୍ତ୍ରୀ)ଶୁକ୍ରିୟା ।

ଶୁକ୍ଲ—ବିଂ.(ଶୁଚ୍+କ.ଲ) ଶ୍ୱେତବର୍ଣ୍ଣ-ବିଶିଷ୍ଟ,ଧଳା,ପବିତ୍ର,ପରିଷ୍କୃତ,ନିର୍ଦ୍ଦୋଷ, ଜ୍ୟୋତ୍ସ୍ନାଯୁକ୍ତ, (ବି) ଶ୍ୱେତବର୍ଣ୍ଣ, ରୌପ୍ୟ, ନବନୀ, ଚକ୍ଷୁରୋଗବିଶେଷ, ଯୋଗବିଶେଷ, ବିଷ୍ଣୁ, (ସ୍ତ୍ରୀ) ଶୁକ୍ଲା ।

ଶୁକ୍ଲକ—ପୁଂ ବିଂ. (ଶୁକ୍ଲ+କ) ଶ୍ୱେତ, ଧଳା, (ବି) ଧଳାବର୍ଣ୍ଣ, ଶୁକ୍ଲପକ୍ଷ ।

ଶୁକ୍ଲକଣ୍ଠକ—ପୁଂ.ବି.ଡାହୁକପକ୍ଷୀ, (ପୁଂ. ବିଂ) ଶ୍ୱେତବର୍ଣ୍ଣ ଗଳାଯୁକ୍ତ ।

ଶୁକ୍ଲକନ୍ଦ—ବି. ମହିଷକନ୍ଦ, ଶ୍ୱେତମୂଳ, ଧଳା ଆଳୁ ।

ଶୁକ୍ଲକନ୍ଦା—ସ୍ତ୍ରୀ. ବି. ଅତିବିଷା, ଅତୁଷୀ, ଭୂମିକୁଷ୍ମାଣ୍ଡ ।

ଶୁକ୍ଲକର୍ମା—ପୁଂ. ବିଂ. (ଶୁକ୍ଲ+କର୍ମନ୍) ସତ୍କର୍ମକାରୀ, ବିଶୁଦ୍ଧଚରିତ୍ର ।

ଶୁକ୍ଲକ୍ଷୀରି—ସ୍ତ୍ରୀ.ବି.(ବ.ବ୍ରୀ)କାକୋଲୀ ।

ଶୁକ୍ଲକ୍ଷେତ୍ର—କ୍ଲୀ.ବି. ପବିତ୍ରସ୍ଥାନ, ପୁଣ୍ୟ-କ୍ଷେତ୍ର ।

ଶୁକ୍ଲଜୀରକ—ବି. ସାଦା ଜୀରା ।

ଶୁକ୍ଲତା(ତ୍ୱ)—ବି.ଶୁକ୍ଲିମା, ଶୁକ୍ଲଅବସ୍ଥା ।

ଶୁକ୍ଲତିଥି—ବି. ଅମାବାସ୍ୟା ପର ପ୍ରତି-ପଦାଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ପନ୍ଦର-ଗୋଟି ତିଥି, ମଘା ।

ଶୁକ୍ଲଦୁଗ୍ଧ—ପୁଂ. ବି. (ଶୁକ୍ଲ+ଦୁଗ୍ଧ= ନିର୍ଯ୍ୟାସ)ବ.ବ୍ରୀ; ଶିଙ୍ଗଡ଼ା ।

ଶୁକ୍ଲଧାତୁ—ପୁଂ. ବି. ଖଡ଼ିମାଟି ।

ଶୁକ୍ଲଧାନ୍ୟ—କ୍ଲୀ. ବି. ଧଳାଧାନ ।

ଶୁକ୍ଲପକ୍ଷ—ବି. ଯେଉଁ ପକ୍ଷରେ ଚନ୍ଦ୍ରଙ୍କର ବୃଦ୍ଧି ହୁଏ ।

ଶୁକ୍ଲପୁଷ୍ପ—ପୁଂ.ବି. ଛତ୍ରକବୃକ୍ଷ, କୁନ୍ଦଗଛ. ମରୁବକବୃକ୍ଷ, (ବିଂ) ଶ୍ୱେତ ପୁଷ୍ପଯୁକ୍ତ ।

ଶୁକ୍ଲପୁଷ୍ପା(ଷ୍ପୀ)—ସ୍ତ୍ରୀ.ବି.ନାଗଦନ୍ତୀ, ହସ୍ତି-ଶୁଣ୍ଡା ବୃକ୍ଷ ।

ଶୁକ୍ଲପୃଷ୍ପକ—ବି. ସିନ୍ଦୁବାରବୃକ୍ଷ, (ବିଂ) ଶ୍ୱେତବର୍ଣ୍ଣ ପୁଷ୍ପଯୁକ୍ତ ।

ଶୁକ୍ଲଫଲ—ବି. ଧଳା ଅରଖଗଛ ।

ଶୁକ୍ଲଫଲା—ସ୍ତ୍ରୀ. ବି. ଶମୀବୃକ୍ଷ ।

ଶୁକ୍ଲଫେନ—ପୁଂ. ବି. ସମୁଦ୍ର ଫେନ ।

ଶୁକ୍ଲଭଣ୍ଡୀ—ସ୍ତ୍ରୀ. ବି. ଧଳା ଭିଣ୍ଡୀ ।

ଶୁକ୍ଲମଞ୍ଜରୀ—ସ୍ତ୍ରୀ.ବି.ଶ୍ୱେତ ନିସିନ୍ଦା,ଧଳା ବେଗୁନିଆ ।

ଶୁକ୍ଲମଣ୍ଡଳ—କ୍ଲୀ.ବି. ଆଖି ମଝିରେ ଥିବା ସାଦା ସ୍ଥାନ, ଶ୍ୱେତବର୍ଣ୍ଣ ଗୋଲ ବସ୍ତୁ ।

ଶୁକ୍ଲମେହ-ପୁଂ.ବି.ପ୍ରମେହରୋଗବିଶେଷ ।

ଶୁକ୍ଲଯଜୁଃ—ବି. ଯଜୁର୍ବେଦର ଅଂଶ-ବିଶେଷ ।

ଶୁକ୍ଲବଂଶ—ବି. ଧଳା ବାଉଁଶ ।

ଶୁକ୍ଲବଚ—ସ୍ତ୍ରୀ.ବି.ଧଳାବଚ,ଘୋଡ଼ାବଚ ।

ଶୁକ୍ଲବର୍ଗ—ପୁଂ, ବି. ଶଙ୍ଖ, ଶୁକ୍ତି,କପର୍ଦ୍ଦକ ପ୍ରଭୃତି ।

ଶୁକ୍ଲବର୍ବରା—ସ୍ତ୍ରୀ. ବି. ଧଳା ତୁଳସୀ ।

ଶୁକ୍ଲବାୟସ—ବି. ବକ, ଶୁକ୍ଲବର୍ଣ୍ଣ କାକ ।

ଶୁକ୍ଲବୃକ୍ଷ—ପୁଂ. ବି. ଧବବୃକ୍ଷ ।

ଶୁକ୍ଲଶାଳବା— ବି. ଚେମିଣ୍ଡଲଇ, ଚେରମାରୁ ।

ଶୁକ୍ଲସାରଙ୍ଗ—ପୁଂ. ବି. ଶୁକ୍ଲ ଚାତକ ।

ଶୁକ୍ଲା—ବି. (ଶୁକ୍ଲ+ଆ) ବାଗ୍‌ଦେବୀ, ସରସ୍ୱତୀ, ଚିନି, ମିଶ୍ରି,ଗୌରବର୍ଣ୍ଣା ସ୍ତ୍ରୀ, କାକୋଲୀ ଗୁଳ୍ମ, ଗଙ୍ଗଶିଉଳି ।

ଶୁକ୍ଲାଗୁରୁ--ବି.ଅଗୁରୁଭେଦ,ଧଳାଅଗୁରୁ ।

ଶୁକ୍ଲାଙ୍ଗ—ପୁଂ. ବିଂ. (ବ.ବ୍ରୀ) ଶୁକ୍ଲବର୍ଣ୍ଣ ଅବୟବବିଶିଷ୍ଟ, (ସ୍ତ୍ରୀ) ଶୁକ୍ଲାଙ୍ଗୀ, (ବି) ମୟୂର, ତୋପଚିନି ।

ଶୁକ୍ଲାଙ୍ଗୀ—ସ୍ତ୍ରୀ. ବି. ଶେଫାଳିକା, ଗଙ୍ଗ-ଶିଉଳୀ, ବେଗୁନିଆ ।

ଶୁକ୍ଲାପାଙ୍ଗ—ପୁଂ. ବି, (ବ.ବ୍ରୀ) ମୟୂର, (ବିଂ) ଶ୍ୱେତବର୍ଣ୍ଣ ନେତ୍ରପ୍ରାନ୍ତ ଯାହାର ।

ଶୁକ୍ଲାଭିସାରୀ—ଗ୍ରା.ସ୍ତ୍ରୀ.ବି.ନାୟିକାବିଶେଷ

ଶୁକ୍ଲାମ୍ବର—ବି.(କ.ଧା)ଧଳାଲୁଗା, (ପୁଂ. ବିଂ.ବ.ବ୍ରୀ)ଯେ ଧଳା ଲୁଗା ପିନ୍ଧିଥାଏ, (ସ୍ତ୍ରୀ) ଶୁକ୍ଲାମ୍ବରା ।

ଶୁକ୍ଲାମ୍ବରଧର—ପୁଂ. ବିଂ. (ଶୁକ୍ଲାମ୍ବର+ ଧୃ+କ.ଅ) ଯେ ଧଳା ଲୁଗା ପିନ୍ଧିଥାଏ, (ସ୍ତ୍ରୀ) ଶୁକ୍ଲାମ୍ବରଧରା ।

ଶୁକ୍ଲାମ୍ଳ—କ୍ଲୀ. ବି. ଅମ୍ଳଶାକ ।

ଶୁକ୍ଲାର୍କ—ପୁଂ. ବି.ଧଳା ଅରଖ ଗଛ ।

ଶୁକ୍ଲାହିଫେନ--ବି.ଶ୍ୱେତ ପୋସ୍ତଦାନାର ଗଛ । [ ଧଳାରଙ୍ଗ ।

ଶୁକ୍ଲିମା—ପୁଂ.ବି.(ଶୁକ୍ଲ+ଇମନ୍)ଶୁକ୍ଲତା,

ଶୁକ୍ଲେତର—ବିଂ.ଧଳାବର୍ଣ୍ଣରୁ ଭିନ୍ନ,ନୀଳ, କୃଷ୍ଣ ଇତ୍ୟାଦି ।

ଶୁକ୍ଲୋପଲ—ବି. ଧଳାରଙ୍ଗର ପଥର ।

ଶୁକ୍ଲୋପଲା—ସ୍ତ୍ରୀ.ବି (କ.ଧା)ଶର୍କରା,ଚିନି ।

ଶୁକ୍ଲୌଦନ—ବି.ଆତପ ତଣ୍ଡୁଳ,ଅରୁଆ ଚାଉଳ । [ ଚିନି ।

ଶୁକ୍ଷି—ପୁଂ.ବି(ଶୁଷ୍+କ.ସି)ବାୟୁ, ତେଜଃ,

ଶୁଖା—ଗ୍ରା. ବିଂ. ଶୁଖିଲା, ନିର୍ଜଳ, (ବି) ଶୁଷ୍କକରିବା କ୍ରିୟା, (କ୍ରି) ଶୁଖାଇବା କ୍ରିୟାକୁ (ତୁ) କର ।

ଶୁଖା(ଖୋ)ଇବା—ଗ୍ରା.କ୍ରି ନିର୍ଜଳକରିବା, ଖରା;ପବନଆଦିର ସାହାଯ୍ୟରେ ଆର୍ଦ୍ର ପଦାର୍ଥକୁ ଜଳଶୂନ୍ୟ କରିବା, ଜଳ-

ଉତ୍ତୋଳନ କରିବା ଦ୍ୱାରା ଜଳାଶୟକୁ ଜଳଶୂନ୍ୟ କରିବା, (ଲ.ଅର୍ଥ) ଶୀର୍ଣ୍ଣ କରିବା, ଅନ୍ତଃସାର ଶୂନ୍ୟ କରିବା, ନିରସ କରିବା, ଉପବାସରେ ରଖାଇବା।

ଶୁଖିବା—ଗ୍ରା. କ୍ରି. ଶୁଷ୍କହେବା, ନିର୍ଜଳ ହେବା,(ମୁଖ)ମ୍ଳାନହେବା,ଶୀର୍ଣ୍ଣହେବା, ସ୍ତନ୍ୟ ଶେଷ ପାଇବା।

ଶୁଖିଲା—ଗ୍ରା.ବି°.ଶୁଷ୍କ,ଶୁଷ୍କୀକୃତ,ନିର୍ଜଳ, ନୀରସ, ବିଷଣ୍ଣ, ସ୍ନେହହୀନ, (ଲ.ଅର୍ଥ) ଆନ୍ତରିକତା ହୀନ,ଅତି କ୍ଷୀଣ,ଅନାର୍ଦ୍ର, ଜଳ ମିଶାଯାଇ ନ ଥିବା,ଉପବାସକ୍ଲିଷ୍ଟ।

ଶୁଖିଲାରେ ନାଆ ଚଲାଇବା ନ୍ୟାୟ— ଗ୍ରା. (ପ୍ରବଚନ)ବିନା ମୂଳଧନରେ ବ୍ୟବସାୟ କରିବା ଓ କୌଶଳ ଅବଲମ୍ବନ ପୂର୍ବକ ଜୀବିକା ନିର୍ବାହ କରିବା,ବିନା ସୂତାରେ ହାଟ କରିବା।

ଶୁଖୁଆ—ଗ୍ରା. ବି. ଶୁଖିଲା ମାଛ, ବିଶେଷ ଭାବରେ ଶୁଷ୍କ କିମ୍ବା ଶୀର୍ଣ୍ଣହୋଇଥିବା ପଦାର୍ଥ।

ଶୁଖୁଆପୋଡ଼ା—ଗ୍ରା. ବି. ପୋଡ଼ାହୋଇଥିବା ଶୁଖୁଆ,(ଲ.ଅର୍ଥ)କୌଣସି ହୀନକର୍ମ।

ଶୁଙ୍କ—ଗ୍ରା. ବି. (ସଂ-ଶୂଙ୍ଗ) ବାଲୁଙ୍ଗା ଓ ଯବଧାନ ଆଦିର ବାହାରେ ଥିବା ଶୂକ।

ଶୁଙ୍ଗ—ପୁଂ. ବି. (ଶମ୍+ଗ) ବଟବୃକ୍ଷ, ଆମ୍ବଡ଼ା ଗଛ, ଶୁଙ୍ଗ,ପର୍ପଟୀ ବୃକ୍ଷ,ନବପଲ୍ଲବ।

ଶୁଙ୍ଗା—ସ୍ତ୍ରୀ. ବି. (ଶୁଙ୍ଗ+ଆ) ଧାନ୍ୟାଦିର ଶୂକ।

ଶୁଙ୍ଗାକର୍ମ-ବି.ପୁଂସବନ ସଂସ୍କାରବିଶେଷ।

ଶୁଙ୍ଗୀ—ପୁଂ.ବି.(ଶୁଙ୍ଗା+ଇନ୍)ପ୍ଳକ୍ଷବୃକ୍ଷ; ବଟବୃକ୍ଷ, (ବି°) ଶୁଙ୍ଗଥିବା।

ଶୁଙ୍ଘା—ଗ୍ରା.ବି.ଆଘ୍ରାଣ,(ବି°)ଯେ ଶୁଙ୍ଘେ

ଶୁଙ୍ଘା(ଘେ)ଇବା—ଗ୍ରା. କ୍ରି. ଅନ୍ୟବ୍ୟକ୍ତିକୁ ଆଘ୍ରାଣ କରାଇବା।

ଶୁଙ୍ଘିବା—ଗ୍ରା. କ୍ରି. ଆଘ୍ରାଣ କରିବା, (ଲ.ଅର୍ଥ) ସାମାନ୍ୟ ମାତ୍ର ବା ନାମମାତ୍ର ଖାଦ୍ୟ ଖାଇବା।

ଶୁଚ୍—ବି. ( ଶୁଚ୍+ଭା.କ୍ୱିପ୍ ) ଶୋକ, ମନସ୍ତାପ, ପଶ୍ଚାତ୍ତାପ।

ଶୁଚଦ୍ରଥ—ପୁଂ.ବି°. ଉଜ୍ଜ୍ୱଳ ରଥବିଶିଷ୍ଟ।

ଶୁଚା—ସ୍ତ୍ରୀ. ବି. (ଶୁଚ୍+ଭା.କ୍ୱିପ୍+ଆ) ଶୋକ, ମନସ୍ତାପ।

ଶୁଚି—ବି. (ଶୁଚ୍+କ.ଇ)ଅଗ୍ନି, ଚିତ୍ରକ ବୃକ୍ଷ, ଶୃଙ୍ଗାରରସ, ଶୁଦ୍ଧମନ୍ତ୍ରୀ, ସୂର୍ଯ୍ୟ, ଚନ୍ଦ୍ର, ଶୁକ୍ର, ବ୍ରାହ୍ମଣ, କାର୍ତ୍ତିକେୟ, ଶୁଦ୍ଧତା, ନିର୍ମଳତା,ନିର୍ଦ୍ଦୋଷତା,ଶୁକ୍ଳବର୍ଣ୍ଣ, ସଦାଚାର, ବୃହସ୍ପତି,ମହାଦେବ, ଗ୍ରୀଷ୍ମକାଳ, ଜ୍ୟେଷ୍ଠ, ଆଷାଢ଼ ମାସ, ସୌରାଗ୍ନି, ଅନ୍ନପ୍ରାଶନକାଳୀନ ହୋମ, କଶ୍ୟପଋଷିଙ୍କ ପତ୍ନୀ,(ବି°) ଶୁଦ୍ଧ,ଶୁକ୍ଳ, ପବିତ୍ର, ନିର୍ମଳ, ନିର୍ଦ୍ଦୋଷ, ଶୁଦ୍ଧାନ୍ତଃକରଣ, ଶୁଭ୍ର, ଅନାହତ, ଅନୁକୂଳ।

ଶୁଚିକା—ସ୍ତ୍ରୀ. ବି. ଅପ୍ସରାଭେଦ।

ଶୁଚିତା(ତ୍ୱ)—ବି. ବିଶୁଦ୍ଧତା, ପବିତ୍ରତା, ନିର୍ମଳତା, ନିର୍ଦ୍ଦୋଷତା।

ଶୁଚିଦ୍ରୁମ—ପୁଂ. ବି. (କ.ଧା) ଅଶ୍ୱତ୍ଥବୃକ୍ଷ, ଶୁଦ୍ଧବୃକ୍ଷ।

ଶୁଚିପ୍ରଣୀ- ବି. (ଶୁଚି+ପ୍ରଣୀ)ଆଚମନ, ଆଞ୍ଚୋଇବା।

ଶୁଚିପ୍ରଜ୍ଞକ—ବି°. ସୁନ୍ଦର ଶରୀର, (ବି) ଶୋଭନ ଜ୍ୱାଳାଯୁକ୍ତ ଅଗ୍ନି।

ଶୁଚିମଲ୍ଲିକା—ସ୍ତ୍ରୀ.ବି. ନବମଲ୍ଲିକା,ନିଆଳୀ।

ଶୁଚିରୋଚିସ—ପୁଂ. ବି. ଚନ୍ଦ୍ର, ( ବି° ) ଶୁକ୍ଳକିରଣ ଯାହାର।

ଶୁଚିବନ—ବି°. ଶୁଷ୍କ।

ଶୁଚିବନ୍ତ—ଗ୍ରା.ବି°. ପବିତ୍ର, ଶୁଦ୍ଧପୂତ।

ଶୁଚିବହ୍ନି—ପୁଂ. ବି. ଅତି ତେଜୋଯୁକ୍ତ ଅଗ୍ନି।

ଶୁଚିବର୍ଚ୍ଚାଃ—ବି°.ଉଜ୍ଜ୍ୱଳ ତେଜୋଯୁକ୍ତ।

ଶୁଚିବାକ୍—ପୁଂ.ବି. ପର୍ବତଭେଦ,(ପୁଂ. ବି°) ବିଶୁଦ୍ଧ ବାକ୍ୟଯୁକ୍ତ।

ଶୁଚିବାସାଃ—ପୁଂ. ବି°. (ବ.ବ୍ରୀ)ବିଶୁଦ୍ଧ ବସ୍ତ୍ରବିଶିଷ୍ଟ, ଯେ ଧୌତବସ୍ତ୍ର ପରିଧାନ କରିଥାଏ।

ଶୁଚିଶ୍ରବାଃ—ବି°. ( ବ.ବ୍ରୀ ) ବିଶୁଦ୍ଧ ଯଶୋଯୁକ୍ତ, (ବି) ବିଷ୍ଣୁ, ଶ୍ରୀକୃଷ୍ଣ।

ଶୁଚିସଂକ୍ଷୟ—ବି.ଗ୍ରୀଷ୍ମଋତୁ ଶେଷ,ବର୍ଷାର ଆରମ୍ଭ।

ଶୁଚିସ୍ମିତ—କ୍ଳୀ. ବି. (କ.ଧା) ବିଶୁଦ୍ଧହାସ୍ୟ,(ପୁଂ.ବି°-ବ.ବ୍ରୀ)ବିଶୁଦ୍ଧ ହାସ୍ୟଯୁକ୍ତ, ଉଜ୍ଜ୍ୱଳ, ଜ୍ୟୋତିର୍ମୟ, ( ସ୍ତ୍ରୀ ) ଶୁଚିସ୍ମିତା।

ଶୁଚୀରତା—ବି. ଧୈର୍ଯ୍ୟ।

ଶୁଚୀର୍ଯ୍ୟ—ବି. ଧୈର୍ଯ୍ୟ।

ଶୁଜ୍ଜ—ପ୍ରା. (ସମ୍ଭ) ବି. (ସଂ-ଶୁଚୀ)ଛୁଞ୍ଚି।

ଶୁଝ—ଗ୍ରା.ବି. ଋଣାଦିର ଶୋଧନ,ଭ୍ରମଶୋଧନ, ସଂଶୟଚ୍ଛେଦନ।

ଶୁଝା—ଗ୍ରା. ବି. (ଋଣାଦି) ଶୁଝିବା କ୍ରିୟା, (ବି°) ପରିଶୋଧ କରାଯାଇଥିବା।

ଶୁଝା(ଝୋ)ଇବା—ଗ୍ରା. କ୍ରି. ଅନ୍ୟବ୍ୟକ୍ତି ଦ୍ୱାରା (ଋଣାଦି) ପରିଶୋଧକ୍ରିୟା କରାଯିବା, ସମ୍ଭାଳାଇବା,ପ୍ରତିହିଂସା ନେବା, ବୈର ଶୋଧ କରିବା।

ଶୁଝିବା—ଗ୍ରା.କ୍ରି. (ସକର୍ମକ) ଋଣ ପରିଶୋଧ କରିବା, ଧାର ଶୁଝିବା, ଗଣନା ଦ୍ୱାରା ମେଳ ବା ଅନୁକୂଳ ଅବସ୍ଥା ଦେଖାଯିବା, କୌଣସି ବିଷୟ ଉତ୍ତମରୂପେ ହୃଦୟଙ୍ଗମ କରିବା, ପ୍ରତିହିଂସା ନେବା।

ଶୁଟୀର—ପୁଂ. ବି°. (ଶୁଟ୍+ର୍ମ.ଈର) ବୀର, ପରାକ୍ରମୀ, (ସ୍ତ୍ରୀ) ଶୁଟୀରା।

ଶୁଣ୍—ଗ୍ରା. କ୍ରି. (ଅନାଦରାର୍ଥକ) ତୁ ଶୁଣିବାକ୍ରିୟା କର।

ଶୁଣନ୍ତା—ଗ୍ରା. ବି°. ଶୁଣୁଥିବା (ବ୍ୟକ୍ତି)।

ଶୁଣା—ଗ୍ରା. ବି. ( ସଂ-ଶ୍ରୁ )ଶୁଣିବାକର୍ମ, ଲୋକ ମୁଖରେ ଶୁଣାଯିବା, ସୁଜ୍ଞାତ।

ଶୁଣା(ଣେ)ଇବା—ଗ୍ରା. କ୍ରି. ଶ୍ରବଣ କରାଇବା, ପ୍ରଚାର କରାଇବା।

ଶୁଣାଣି—ଗ୍ରା. ବି. ମକଦ୍ଦମାରେ ପକ୍ଷମାନଙ୍କ ଠାରୁ ପ୍ରମାଣାଦି ବିଚାରପତିଙ୍କ ଦ୍ୱାରା ଶୁଣାଯିବା ଅବସ୍ଥା, ହାକିମଙ୍କ ଆଗରେ ମକଦ୍ଦମାର ବିଚାର।

ଶୁଣାଶୁଣି—ଗ୍ରା.ବି. ଜନଶ୍ରୁତି,ଜନରବ, (ଗ୍ରା.ବି°) ଶୁଣିବା ଦ୍ୱାରା ଶ୍ରୁତ।

ଶୁଣିବା—ଗ୍ରା. କ୍ରି. ଶ୍ରବଣ କରିବା,କର୍ଣ୍ଣଶ୍ରୁତିକୁ ଅବଗତ ହେବା, ( ଲ.ଅର୍ଥ )

ମନଯୋଗ ଦେବା, ଆଦେଶ ପାଳିବା ।
ଶୁଣିବାରେ—ଗ୍ରା. ଅବ୍ୟ. ଜନରବରେ, ଶୁଣାଶୁଣିରେ ।
ଶୁଣୁକା—ଗ୍ରା. ବି°. ଫୁଲା, ଶୋଥଯୁକ୍ତ ।
ଶୁଣ୍ଠା—ଗ୍ରା.ବି. ଶୁଖାଯାଇ ନିର୍ଜଳ କରାଯାଇଥିବା ପଦାର୍ଥ, ଠେଙ୍ଗା, (ବି°) ଶୁଣ୍ଠିଆ ଦେଖ, ଶୁଷ୍କୀକୃତ ।
ଶୁଣ୍ଠି(ଣ୍ଠୀ)—ସ୍ତ୍ରୀ.ବି. (ଶୁଣ୍ଠ+ଅପା.ଇ,ଈ) ଶୁଷ୍କଆଦ୍ରକ ବିଶେଷ(ଏହା ଔଷଧରୂପେ ବ୍ୟବହୃତ ହୁଏ) ।
ଶୁଣ୍ଠିଆ—ଗ୍ରା.ବି.ବିଧବା ସ୍ତ୍ରୀ ପିନ୍ଧିବା ଭୁକ୍ତଲୁଗା,ମୃଣ୍ଡିକାଠ ଠାରୁ ମୋଟରେ ସାନ ଓ ଲମ୍ବ ଶୁଷ୍କ ମସ୍ତକାଠ, (ବି°) କୃପଣ (ବ୍ୟକ୍ତି) ।
ଶୁଣ୍ଡ—ବି. (ଶୁଣ୍+କ.ଡ଼) କର, ଶୁଣ୍ଢ, ହାତୀର ଶୁଣ୍ଢ ।
ଶୁଣ୍ଡଧର—ପୁଂ. ବି. (ଶୁଣ୍ଡ+ଧୃ+କ.ଅ) ହସ୍ତୀ, ହାତୀ ।
ଶୁଣ୍ଡା—ସ୍ତ୍ରୀ. ବି. ( ଶୁଣ୍+କ.ଡ଼+ଆ ) ମଦଖଟି, ଜଳହସ୍ତିନୀ, ବେଶ୍ୟା, ମଦ, ହାତୀର ଶୁଣ୍ଢ, ପଦ୍ମିନୀ, ହସ୍ତିହସ୍ତ ।
ଶୁଣ୍ଡାପାନ—କ୍ଲୀ. ବି. (ଶୁଣ୍ଡା+ଆପାନ) ମଦ ଖାଇବାର ସ୍ଥାନ, ମଦଖଟି ।
ଶୁଣ୍ଡାର—ପୁଂ. ବି. (ଶୁଣ୍ଡା+ର) ହାତୀଶୁଣ୍ଢ, ନକୁଷ୍ଟମଦ୍ୟ, ଶୁଣ୍ଡୀ ।
ଶୁଣ୍ଡାରୋଚନିକା—ସ୍ତ୍ରୀ. ବି. ନାଗବଲ୍ଲୀ ଲତା, ଆଲି, ମଞ୍ଜିଷ୍ଠା, ଶେଫାଳିକା, ପର୍ପଟୀ, ହିଳମ୍ବା ।
ଶୁଣ୍ଡାଲ—ପୁଂ. ବି. (ଶୁଣ୍ଡା+ଲ) ହସ୍ତୀ ।
ଶୁଣ୍ଡି—ପ୍ରା. (ସମ୍ବ) ବି. କଇଁ, କମଳ ।
ଶୁଣ୍ଡିଆ—ଗ୍ରା. ବି°. ଶୁଣ୍ଡା, ଶୁଣ୍ଡବିଶିଷ୍ଟ ।
ଶୁଣ୍ଡିକା—ବି. ଅଳଜିହ୍ୱା, ଘଣ୍ଟିକା, ଶୁଣ୍ଡା ଦେଖ ।
ଶୁଣ୍ଡିନୀ—ସ୍ତ୍ରୀ.ବି. (ଶୁଣ୍ଡିନ୍+ଈ)ଶୁଣ୍ଡିଆଣୀ ।
ଶୁଣ୍ଡୀ—ପୁଂ.ବି°. (ଶୁଣ୍ଡ+ଇନ୍)ଯାହାର ଶୁଣ୍ଡଅଛି, ଶୌଣ୍ଡିକ, ଯେ ମଦ୍ୟ ପ୍ରସ୍ତୁତ ବା ବିକ୍ରୟ କରେ ।
ଶୁଣ୍ଢ—ଗ୍ରା. ବି, ଶୁଣ୍ଡ ଦେଖ ।
ଶୁଣ୍ଢୀ—ଗ୍ରା. ବି. ଶୁଣ୍ଡୀ ଦେଖ ।

ଶୁତିବା—ଗ୍ରା. କ୍ରି. ଶୋଇବା ।
ଶୁତୁଦ୍ରୁ—ସ୍ତ୍ରୀ. ବି. ଶତଦ୍ରୁ ନଦୀ ।
ଶୁଦ୍ରୁଦ୍ରୁ—ସ୍ତ୍ରୀ. ବି. ଶତଦ୍ରୁ ନଦୀ ।
ଶୁଦ୍(ଦ)—ଗ୍ରା. ବି. (ସଂ-ଶୂଦ୍ର) ଶୂଦ୍ର ଜାତିବିଶେଷ, ( ବି° ) ଶୂଦ୍ରଜାତୀୟ, (ଗ୍ରା. କ୍ରି. ବି°)ବିବାକ୍,କେବଳ,ସମ୍ପୂର୍ଣ୍ଣରୂପେ ।
ଶୁଦ—ଗ୍ରା. ବି. ଶୁଦ୍ଧ, ବୃଦ୍ଧି,କଳନ୍ତର ।
ଶୁଦ—ଯା. ବି. ଶୁକ୍ଳପକ୍ଷ ।
ଶୁଦ୍ଧ—କ୍ଲୀ. ବି.(ଶୁଧ୍+କ.ତ)ସୈନ୍ଧବ, ମରିଚ, ( ବି° ) କେବଳ, ନିର୍ଦୋଷ, ନିଷ୍ପାପ, ପବିତ୍ର, ବିଶୁଦ୍ଧ, ଶୁକ୍ଳ, ଆନନ୍ଦିତ, ନିର୍ମଳ, ପବିତ୍ରକାରୀ, ଉଜ୍ଜ୍ୱଳ, ସ୍ୱଚ୍ଛ, ଖାଣ୍ଟି,ଭ୍ରମଶୂନ୍ୟ,(ଗ୍ରା.ବି)ଅଶୌଚାନ୍ତେ କର୍ତ୍ତବ୍ୟ ଶୁଦ୍ଧିକ୍ରିୟା, ପାଠକ ଜାତିବିଶେଷ ।
ଶୁଦ୍ଧଗୃହିଣୀ—ସ୍ତ୍ରୀ. ବି°. (ଶୁଦ୍ଧଗୃହିନ୍+ଈ) ନିଷ୍କଳଙ୍କ ଚରିତ୍ରବିଶିଷ୍ଟା (ସ୍ତ୍ରୀ) ।
ଶୁଦ୍ଧଚରିତା—ବି.( ଶୁଦ୍ଧଚରିନ୍+ତା ) ପବିତ୍ରଚରିତ୍ର ।
ଶୁଦ୍ଧଚରିତ—ପୁଂ. ବି°. (ଶୁଦ୍ଧଚର+କ. ଇନ୍) ନିଷ୍କଳଙ୍କ ଚରିତ୍ରବିଶିଷ୍ଟ, (ସ୍ତ୍ରୀ) ଶୁଦ୍ଧଚରିଣୀ ।
ଶୁଦ୍ଧଜଙ୍ଘ-ପୁଂ.ବି. (ଶୁଦ୍ଧ+ଜଙ୍ଘ ବ.ବ୍ରୀ), ଗଧ, ଗର୍ଦ୍ଦଭ, (ପୁଂ.ବି°) ପବିତ୍ର ଜଙ୍ଘଯୁକ୍ତ ।
ଶୁଦ୍ଧତା—ସ୍ତ୍ରୀ.ବି.ପବିତ୍ରତା,ଶୌଚ,ଶୁଚି ।
ଶୁଦ୍ଧଦନ୍ତ—ପୁଂ.ବି°. (ବ.ବ୍ରୀ) ଶୁକ୍ଳ ବା ଶୁଭ୍ର ଦନ୍ତବିଶିଷ୍ଟ, (ସ୍ତ୍ରୀ) ଶୁଦ୍ଧଦନ୍ତୀ ।
ଶୁଦ୍ଧଧୀ—ପୁଂ.ବି°. (ଶୁଦ୍ଧ+ଧୀ) ବ.ବ୍ରୀ; ଶୁଦ୍ଧମତ, ବିଶୁଦ୍ଧ ବୁଦ୍ଧିଯୁକ୍ତ ।
ଶୁଦ୍ଧପକ୍ଷ—ପୁଂ.ବି. ଶୁକ୍ଳପକ୍ଷ ।
ଶୁଦ୍ଧପୂତ—ବି°. ଶୁଦ୍ଧ ଓ ପବିତ୍ର, (ସ୍ତ୍ରୀ) ଶୁଦ୍ଧପୂତା ।
ଶୁଦ୍ଧପ୍ରେମରୂପା—ବି. କାବ୍ୟୋକ୍ତ ନାୟିକାବିଶେଷ ।
ଶୁଦ୍ଧପ୍ରେମା—ବି°.ଶୁଦ୍ଧପ୍ରେମରୂପା ଦେଖ ।
ଶୁଦ୍ଧମତି—ପୁଂ.ବି°.(ବ.ବ୍ରୀ) ଶୁଦ୍ଧ ବୁଦ୍ଧିବିଶିଷ୍ଟ, ପବିତ୍ରଚେତାଃ,(ସ୍ତ୍ରୀ,ବି-କ.ଧା)

ପବିତ୍ର ବୁଦ୍ଧି, ପବିତ୍ର ଚିତ୍ତ ବା ମନ ।
ଶୁଦ୍ଧମାଂସ—କ୍ଲୀ.ବି. ଅଗ୍ନିସ୍ୱାନ ପକ୍ୱ ଛାଗାଦିର ମାଂସ, ଯଜ୍ଞ ଓ ବଳିରେ ଦେବଦେବୀ ଉଦ୍ଦେଶ୍ୟରେ ଉତ୍ସୃଷ୍ଟ ମାଂସ । [ ଦେଖ ।
ଶୁଦ୍ଧମୁଖ—ବି. ସୁଶିକ୍ଷିତ ଅଶ୍ୱ, ସୁଖାସୃତ
ଶୁଦ୍ଧରୂପୀ—ପୁଂ.ବି°. ଶୁଦ୍ଧ ରୂପଯୁକ୍ତ, ଉଜ୍ଜ୍ୱଳ ରୂପବିଶିଷ୍ଟ ।
ଶୁଦ୍ଧବଲ୍ଲିକା—ସ୍ତ୍ରୀ.ବି. ଗୁଡ଼ୁଚୀ, ପବିତ୍ର ଲତା । [ ସର୍ବଜ୍ଞ ।
ଶୁଦ୍ଧବୁଦ୍ଧ—ପୁଂ. ବି°. ମାୟାବିରହିତ,
ଶୁଦ୍ଧଶ୍ରାଦ୍ଧ—ଗ୍ରା.ବି.ହିନ୍ଦୁ ସମାଜରେ ମୃତ୍ୟୁପରେ ପିଣ୍ଡଦାନାଦି ଓ ଜାତିର ଶୌଚାନ୍ତ ରୂପ କର୍ମ ।
ଶୁଦ୍ଧସତ୍ତ୍ୱ—ପୁଂ.ବି°. (ବ.ବ୍ରୀ) ପବିତ୍ରାତ୍ମା, ପବିତ୍ରଚେତାଃ ।
ଶୁଦ୍ଧସାଧ୍ୟବସାନା—ସ୍ତ୍ରୀ.ବି.ଶବ୍ଦର ଲକ୍ଷଣା ଶକ୍ତିଭେଦ ।
ଶୁଦ୍ଧସାରୋପଲକ୍ଷଣା-ସ୍ତ୍ରୀ.ବି.ଲକ୍ଷଣାଭେଦ ।
ଶୁଦ୍ଧସୁବର୍ଣ୍ଣ—ବି. (କ.ଧା) ଖାଣ୍ଟି ସୁନା, (ଲ.ଅର୍ଥ) ପବିତ୍ରାତ୍ମା ।
ଶୁଦ୍ଧସ୍ନାତ—ପୁଂ.ବି°. ଶୁଦ୍ଧିସ୍ନାତ ଦେଖ, (ସ୍ତ୍ରୀ) ଶୁଦ୍ଧସ୍ନାତା ।
ଶୁଦ୍ଧସ୍ନାନ—ବି. ଶୁଦ୍ଧିସ୍ନାନ ଦେଖ ।
ଶୁଦ୍ଧସ୍ଫଟିକ—ବି. (କ.ଧା) ସ୍ୱଚ୍ଛ ବା ଶୁଭ୍ର ସ୍ଫଟିକ । [ ହସ୍ତବିଶିଷ୍ଟ ।
ଶୁଦ୍ଧହସ୍ତ—ପୁଂ.ବି°. ( ବ.ବ୍ରୀ ) ବିଶୁଦ୍ଧ
ଶୁଦ୍ଧା—ସ୍ତ୍ରୀ.ବି. ଇନ୍ଦ୍ରଯବ, କୁଟଜବୀଜ ।
ଶୁଦ୍ଧାଚାର—ବି. (କ.ଧା)ପବିତ୍ର ଆଚାର, (ପୁଂ.ବି°.ବ.ବ୍ରୀ); ପବିତ୍ର ଆଚାରଯୁକ୍ତ, (ସ୍ତ୍ରୀ) ଶୁଦ୍ଧାଚାରା ।
ଶୁଦ୍ଧାଚାରୀ—ପୁଂ.ବି°. (ଶୁଦ୍ଧ+ଆଚାର+ଇନ୍) ପବିତ୍ର ଆଚାର ଯୁକ୍ତ, (ସ୍ତ୍ରୀ) ଶୁଦ୍ଧାଚାରିଣୀ ।
ଶୁଦ୍ଧାତ୍ମା—ପୁଂ.ବି°.(ବ.ବ୍ରୀ)ପବିତ୍ରସ୍ୱଭାବ ।
ଶୁଦ୍ଧାନୁମାନ—କ୍ଲୀ.ବି.ଯେଉଁ ଅନୁମାନରେ କୌଣସି ଦୋଷ ନାହିଁ ।
ଶୁଦ୍ଧାନ୍ତ—ପୁଂ.ବି. (ବ.ବ୍ରୀ) ଅନ୍ତଃପୁର, ଉଆସ, ଅଶୌଚାନ୍ତ, ଅନ୍ତଃପୁର ନାରୀ,

ପରଦା ନସୀନ ସ୍ତ୍ରୀ ।
ଶୁଦ୍ଧାନ୍ତଚର—ପୁଂ. ବି. ଅନ୍ତଃପୁରରେ ଚଳପ୍ରଚଳ ଭୃତ୍ୟ, (ସ୍ତ୍ରୀ) ଶୁଦ୍ଧାନ୍ତଚରୀ ।
ଶୁଦ୍ଧାନ୍ତବାସିନୀ—ବିଂ.ପରଦାନସୀନ (ସ୍ତ୍ରୀ), ଅନ୍ତଃପୁରବାସିନୀ ।
ଶୁଦ୍ଧାନ୍ତରକ୍ଷକ—ପୁଂ.ବି.ଅନ୍ତଃପୁର ଜଗିବା ଭୃତ୍ୟ, (ସ୍ତ୍ରୀ) ଶୁଦ୍ଧାନ୍ତରକ୍ଷିକା ।
ଶୁଦ୍ଧାନ୍ତା—ସ୍ତ୍ରୀ.ବି.(ଶୁଦ୍ଧାନ୍ତ+ଆ)ରାଣୀ, ରାଜପତ୍ନୀ,ରାଜାଙ୍କ ରକ୍ଷିତା ସ୍ତ୍ରୀ, ରାଜାଙ୍କ ପୋଇଲୀ ବା ଘରଝିଅ ।
ଶୁଦ୍ଧାନ୍ତଃକରଣ—ବି. (କ.ଧା)ପବିତ୍ର ବା ନିର୍ମଳ ହୃଦୟ, (ପୁଂ.ବିଂ.ବ.ବ୍ରୀ)ପବିତ୍ର-ହୃଦୟ (ବ୍ୟକ୍ତି),(ସ୍ତ୍ରୀ) କରଣା ।
ଶୁଦ୍ଧାପହ୍ନୁତି—ସ୍ତ୍ରୀ.ବି.ଅଳଙ୍କାରବିଶେଷ ।
ଶୁଦ୍ଧାଭ—ବି.ବିଂ. (ଶୁଦ୍ଧ+ଆ+ଭା+ଅ) ବିଶୁଦ୍ଧ, ନିର୍ମଳ, ଶୁଦ୍ଧତୁଲ୍ୟ ଆଭା-ଯୁକ୍ତ ।
ଶୁଦ୍ଧାଭକ୍ତି—ବି. ଫଳ କାମନା ବିରହିତ ବା ନିଷ୍କାମ ଭକ୍ତି ।
ଶୁଦ୍ଧାବର୍ତ୍ତ—ପୁଂ. ବିଂ. ପ୍ରଦକ୍ଷିଣାବର୍ତ୍ତି (ଦଣ୍ଡାଦି),ପେଚପର ଗୁଣା କଟାଥିବା (ଲୌହଦଣ୍ଡାଦି) । [ ସ୍ୱର୍ଗ ।
ଶୁଦ୍ଧାବାସ—ପୁଂ. ବି. ବିଶୁଦ୍ଧ ଉଆସ,
ଶୁଦ୍ଧାଶୟ—ପୁଂ.ବିଂ. (ଶୁଦ୍ଧ+ଆଶୟ) ବ.ବ୍ରୀ; ବିଶୁଦ୍ଧ ଆଶୟଯୁକ୍ତ,ଶୁଦ୍ଧ ଚିତ୍ତ-ବିଶିଷ୍ଟ,(ସ୍ତ୍ରୀ)ଶୁଦ୍ଧାଶୟା,(ବି)ବିଶୁଦ୍ଧଚିତ୍ତ
ଶୁଦ୍ଧାଶୁଦ୍ଧ—ବିଂ. ଶୁଦ୍ଧ ଓ ଅଶୁଦ୍ଧ ।
ଶୁଦ୍ଧି—ସ୍ତ୍ରୀ.ବି. (ଶୁଧ୍+ଭା.ତି) ଦୁର୍ଗା, ମାର୍ଜନା, ପବିତ୍ରତା, ଶୋଧନ, ସଂସ୍କାର, ଶୁଦ୍ଧତା, ନିର୍ମଳତା, ଭ୍ରମଶୂନ୍ୟତା, ଭୁଲ ସଂଶୋଧନ, ସଂସ୍କାରବିଶେଷ, ପ୍ରାୟଶ୍ଚିତ୍ତ, ଅଶୌଚାନ୍ତ ପ୍ରାୟଶ୍ଚିତ୍ତ ।
ଶୁଦ୍ଧିକର—ବିଂ. ପବିତ୍ରତା ବିଧାୟକ ।
ଶୁଦ୍ଧିକର୍ମ—ବି. ମୃତାହ କର୍ତ୍ତବ୍ୟ ଶୁଦ୍ଧି କ୍ରିୟା, ପ୍ରାୟଶ୍ଚିତ୍ତାଦି ।
ଶୁଦ୍ଧିକୃତ୍—ପୁଂ. ବିଂ. (ଶୁଦ୍ଧି+କୃ+କ୍ୱିପ୍) ଶୁଦ୍ଧିକାରକ ।
ଶୁଦ୍ଧିତମ—ପୁଂ.ବିଂ. ( ଶୁଦ୍ଧି+ତମ ) ଅତି ବିଶୁଦ୍ଧ ।
ଶୁଦ୍ଧିତତ୍ତ୍ୱ—ରଘୁନନ୍ଦନକୃତ ସ୍ମୃତିତତ୍ତ୍ୱର ଚତୁର୍ଥ ଖଣ୍ଡ ।
ଶୁଦ୍ଧିମାନ୍—ପୁଂ.ବିଂ. ବିଶୁଦ୍ଧ,ଶୁଦ୍ଧିଯୁକ୍ତ ।
ଶୁଦ୍ଧିଶ୍ରାଦ୍ଧ—ବି.(ଦ୍ୱନ୍ଦ୍ୱ)ଶୁଦ୍ଧଶ୍ରାଦ୍ଧ ଦେଖ ।
ଶୁଦ୍ଧିସ୍ନାତ—ପୁଂ.ବିଂ. (କ.ଧା) ଅଶୌଚାନ୍ତେ ଯେ ସ୍ନାନ କରଯାଏ, (ସ୍ତ୍ରୀ) ଶୁଦ୍ଧିସ୍ନାତା ।
ଶୁଦ୍ଧିସ୍ନାତା—ସ୍ତ୍ରୀ. ବିଂ. ରଜୋଦର୍ଶନ ପରେ ଋତୁସ୍ନାତା ।
ଶୁଦ୍ଧିସ୍ନାନ—ବି. ( କ.ଧା ) ଅଶୌଚାନ୍ତ ସ୍ନାନ, ସ୍ତ୍ରୀମାନଙ୍କର ଋତୁସ୍ନାନ ।
ଶୁଦ୍ଧୀକୃତ—ବିଂ. (ଶୁଦ୍ଧି+ଚ୍ୱି+କୃତ) ବିଶୁଦ୍ଧୀକୃତ,ଯେଉଁ ଅଶୁଦ୍ଧ ବସ୍ତ୍ରାଦିକୁ ଶୁଦ୍ଧ କରଯାଇଥାଏ ।
ଶୁଦ୍ଧୋଦ—ପୁଂ.ବିଂ. କେବଳ ଜଳଯୁକ୍ତ, (ପୁଂ.ବି) ସମୁଦ୍ର ।
ଶୁଦ୍ଧୋଦନ—ପୁଂ.ବି.ବୁଦ୍ଧଦେବଙ୍କ ପିତା ଓ ମତାନ୍ତରେ ପିତାମହ ।
ଶୁଦ୍ଧୋଦନସୁତ—ପୁଂ.ବି.ଶୁଦ୍ଧୋଦନଙ୍କ ପୁତ୍ର, ବୁଦ୍ଧଦେବ ।
ଶୁଦ୍ଧୋଦନି—ପୁଂ.ବି. ବିଷ୍ଣୁ ।
ଶୁଧ୍—ଗ୍ରା.ବିଂ.କେବଳ,ଅମିଶ୍ରିତ,ଖାଣ୍ଟି ।
ଶୁଧ—ଗ୍ରା.ବି. (ସଂ-ଶୁଦ୍ଧ) ଅଶୌଚାନ୍ତ, ଅନ୍ତ୍ୟେଷ୍ଟି କ୍ରିୟାର ଶେଷରେ କର୍ତ୍ତବ୍ୟ କର୍ମ, ଶୁଦ୍ଧିକ୍ରିୟା, ତନ୍ତୀମାନଙ୍କର ଶ୍ରେଣୀଭେଦ, (ଯା.ବି) ସୁଦ, କୁସୀଦ ।
ଶୁଧାର—ଗ୍ରା.ବିଂ. ରୋଗମୁକ୍ତ (ଦେହ), ନିୟମିତ ସୁସ୍ଥତାପ୍ରାପ୍ତ, ଶାନ୍ତ,ନିର୍ଦ୍ଦୋଷ
ଶୁନ—ପୁଂ.ବି. (ଶୁନ+କ.ଅ) କୁକ୍କୁର, ସୁଖ, ବାୟୁ, ( ଗ୍ରା.ବି ) ଶୂନ୍ୟସଂଖ୍ୟା, ଚାହାଲରେ ପ୍ରଥମରୁ ଶେଷପର୍ଯ୍ୟନ୍ତ କ୍ରମିକ ଆସିଥିବା ବାଳକମାନେ ଅବ-ଧାନଙ୍କଠାରୁ ଏକରୁ ଆରମ୍ଭକରି ଯଥା-କ୍ରମେ ପାଇବା କୋମଳ ବେତ୍ରାଘାତ ।
ଶୁନଃଶେଫ—ପୁଂ.ବି. ( ବ.ବ୍ରୀ ) ମୁନି-ବିଶେଷ ।
ଶୁନକ—ପୁଂ.ବି. (ଶୁନ+କ) କୁକ୍କୁର, କୁକୁରଛୁଆ, ଗୋତ୍ରପ୍ରବର୍ତ୍ତକ ଋଷି-ବିଶେଷ ।
ଶୁନକଚଞ୍ଚୁ—ସ୍ତ୍ରୀ. ବି. ବଥୁଆଶାଗପରି ଏକପ୍ରକାର ଶାଗ ।
ଶୁନହୋତ୍ର—ପୁଂ.ବି. ଋଷିଭେଦ, ଭର-ଦ୍ୱାଜଙ୍କ ପୁତ୍ର ।
ଶୁନାଶୀର—ପୁଂ.ବି. ଇନ୍ଦ୍ର, ପେଚକ ।
ଶୁନି—ପୁଂ. ବି. ( ଶୁନ+ଇ ) ଶ୍ୱାନ, କୁକ୍କୁର ।
ଶୁନନ୍ଧମ—ପୁଂ. ବି. ( ଶୁନ+ଧ୍ମା+ଅ ) କୁକ୍କୁରକୁ ଅଗ୍ନି ଉତ୍ତାପ ଦାନକାରୀ ।
ଶୁନନ୍ଧୟ—ପୁଂ.ବିଂ.ଯେ କୁକ୍କୁରକୁ ପାନ କରାଏ । [ କୁଷ୍ମାଣ୍ଡୀ ।
ଶୁନୀ—ସ୍ତ୍ରୀ.ବି.(ଶୁନ+ଈ)କୁତ୍ତୀ,କୁକ୍କୁରୀ,
ଶୁନୀର—ବି. କୁକ୍କୁରୀସମୂହ ।
ଶୁନ୍ଧନ—ବି.ବିଂ. ଶୁଦ୍ଧ, ପରିଷ୍କୃତ ।
ଶୁନ୍ଧ୍ୟୁ—ପୁଂ.ବି. (ଶୁନ୍ଧ+କ.ଯୁ) ଅଗ୍ନି, ସୂର୍ଯ୍ୟ,ବାୟୁ,ଶ୍ୱେତବର୍ଣ୍ଣ ପକ୍ଷିବିଶେଷ ।
ଶୁନ୍ୟ—କ୍ଲୀ.ବି. ( ଶୁନ+ଯ ) କୁକ୍କୁର-ସମୂହ, (ବିଂ)ରିକ୍ତ,ଖାଲି, (ସ୍ତ୍ରୀ)ଶୁନ୍ୟା ।
ଶୁଭ—କ୍ଲୀ.ବି. (ଶୁଭ+କ.ଅ) ମଙ୍ଗଳ, ପଦ୍ମକାଷ୍ଠ,ଜଳ,ସୁଖ,କଲ୍ୟାଣ,ସୌଭାଗ୍ୟ, ଅଳଙ୍କାର,(ଜ୍ୟୋତିଷ)ଯୋଗବିଶେଷ, (ବିଂ) ମଙ୍ଗଳଦାୟକ, ସୁଖୀ, କୁଶଳୀ, ସୁନ୍ଦର, ମନୋହର, ବିଦ୍ୱାନ୍, ଭାଗ୍ୟ, (ଗ୍ରା.ବି)ଗୃହର ଭିତ୍ତିସ୍ଥାପନରୂପ ମାଙ୍ଗଳ୍ୟ କର୍ମ, ନୂଆଘର ତୋଳା ଆରମ୍ଭରେ ମଙ୍ଗଳକର୍ମ ସହିତ ପୋତାଯିବା ପ୍ରଥମ ଖୁଣ୍ଟ ।
ଶୁଭଂକର—ବିଂ. (ଶୁଭଂ+କୃ+କ.ଅ) ମଙ୍ଗଳକର, ଶୁଭଜନକ, ( ଗ୍ରା.ବି. ) ସ୍ୱନାମଖ୍ୟାତ ମାନସାଙ୍କ ସୂତ୍ର ପ୍ରଣେତା ।
ଶୁଭଂକରୀ—ବି. ପାର୍ବତୀ, ଦୁର୍ଗା,(ଗ୍ରା.ବି) ସୂତ୍ରାନୁସାରେ କଷାଯିବା ଏକପ୍ରକାର ଗାଣିତିକ ସମସ୍ୟା । [ ସୁଖୀ ।
ଶୁଭଂଶୁ—ପୁଂ.ବିଂ. ମଙ୍ଗଳାନ୍ୱିତ,କୁଶଳୀ,
ଶୁଭକର—ପୁଂ.ବିଂ.(ଶୁଭ+କୃ+କ.ଅ) ମଙ୍ଗଳକର, ମଙ୍ଗଳଜନକ, ସୁଖପ୍ରଦ, ସୁଖକର, (ସ୍ତ୍ରୀ) ଶୁଭକରୀ । [ କର୍ମ ।
ଶୁଭକର୍ମ—କ୍ଲୀ.ବି. (କ.ଧା)ମଙ୍ଗଳଜନକ
ଶୁଭକାମନା—ବି.(କ.ଧା)ମଙ୍ଗଳକାମନା

ଶୁଭକୃତ୍—ବି. ବିଂ. (ଶୁଭ + କୃ + କ୍ୱିପ୍) ମଙ୍ଗଳକର, ଶୁଭଜନକ ।

ଶୁଭକ୍ଷଣ—କ୍ଳୀ.ବି. (କ.ଧା) ଶୁଭମୁହୂର୍ତ୍ତ ଦେଖ ।

ଶୁଭଖବର—ଗ୍ରା.ବି.ଶୁଭ ସମ୍ବାଦ ଦେଖ, କନ୍ୟାର ବାଲ ବିବାହିତା ସ୍ତ୍ରୀଙ୍କର ପ୍ରଥମ ରଜୋଦର୍ଶନ ସମ୍ବାଦ ।

ଶୁଭଗ୍ରହ—ପୁଂ.ବି. ସୌମ୍ୟଗ୍ରହ, ଶୁଭକାରକ ବା ଶୁଭଫଳଜନକ ଗ୍ରହ ।

ଶୁଭଙ୍କର—ବି. ବିଂ. (ଶଭଂ+କୃ+ଅ) ଶୁଭଙ୍କର ଦେଖ ।

ଶୁଭଙ୍କଷ୍ଟ—ବି. ଶୁଭଂକଷ୍ଟ ଦେଖ ।

ଶୁଭଚନ୍ତକ--ପୁଂ.ବିଂ.ଯେ ଅନ୍ୟ ବ୍ୟକ୍ତିର ମଙ୍ଗଳ ଚନ୍ତା କରେ,(ସ୍ତ୍ରୀ)ଶୁଭଚନ୍ତିକା ।

ଶୁଭଚନ୍ତନ—ବି. ମଙ୍ଗଳ ବିଷୟ ଚନ୍ତା କରିବା ।

ଶୁଭଚନ୍ତା--ବି.କୌଣସି ବ୍ୟକ୍ତିର ମଙ୍ଗଳ ପାଇଁ କାମନା ।

ଶୁଭଜନକ—ପୁଂ.ବିଂ. ଶୁଭଦ ଦେଖ ।

ଶୁଭଦ—ପୁଂ.ବିଂ (ଶୁଭ + ଦା+କ.ଅ) ଯାହା ଶୁଭ ପ୍ରଦାନ କରେ, ସୌଭାଗ୍ୟପ୍ରଦ, (ସ୍ତ୍ରୀ) ଶୁଭଦା,(ବି)ଅଶ୍ୱତ୍ଥବୃକ୍ଷ ।

ଶୁଭଦଣ୍ଡ—ବି. ଶୁଭମୁହୂର୍ତ୍ତ ଦେଖ ।

ଶୁଭଦନ୍ତ—ପୁଂ. ବିଂ. (ବ.ବ୍ରୀ) ସୁନ୍ଦର ଦନ୍ତବିଶିଷ୍ଟ, (ସ୍ତ୍ରୀ) ଶୁଭଦନ୍ତୀ ।

ଶୁଭଦର୍ଶନ—ପୁଂ.ବିଂ. (ବ.ବ୍ରୀ)ଯାହାକୁ ଦେଖିଲେ ଦର୍ଶନର ଶୁଭ ହୁଏ,ସୁନ୍ଦର, ସୁଶ୍ରୀ, (ସ୍ତ୍ରୀ) ଶୁଭଦର୍ଶନା ।

ଶୁଭଦାୟୀ—ପୁଂ. ବିଂ. ଶୁଭକାରୀ, ଯେ ଶୁଭବିଧାନ କରେ ।

ଶୁଭଦୃଷ୍ଟି—ବି. (କ.ଧା) ମଙ୍ଗଳଜନକ ଦୃଷ୍ଟି, ଅନୁକୂଳ ଦୃଷ୍ଟି ।

ଶୁଭଦେବା—ଗ୍ରା.କି. ନୂଆ ଘରର ମୂଳଦୁଆ ସ୍ଥାପନ ବା ପ୍ରଥମ ଖୁଣ୍ଟ ପକାଇବା

ଶୁଭଦ୍ୱେଷ—ବି. ( ୬ତତ୍ ) ପରଶ୍ରୀକାତରତା ।

ଶୁଭଦ୍ୱେଷକ---ପୁଂ. ବିଂ. ଯେ ପରର ଉନ୍ନତରେ ହିଂସା କରେ, ପରଶ୍ରୀକାତର; (ସ୍ତ୍ରୀ) ଦ୍ୱେଷିକା ।

ଶୁଭଧ୍ୟାନ—ବି.(୬ତତ୍)ଶୁ ଭଚନ୍ତା ଦେଖ

ଶୁଭଧ୍ୟାତା—ପୁଂ.ବିଂ. (ଶୁଭ + ଧ୍ୟୈ + କ.ତୃ) ଶୁଭଚନ୍ତକ ଦେଖ ।

ଶୁଭନାମା—ସ୍ତ୍ରୀ.ବି. ଶୁକ୍ଳପକ୍ଷର ପଞ୍ଚମୀ ଦଶମୀ ଓ ପୂର୍ଣ୍ଣିମା ତିଥି ।

ଶୁଭପତ୍ରିକା—ସ୍ତ୍ରୀ.ବି. ଶାଳପର୍ଣ୍ଣୀ ଦେଖ, ବାଳିକାର ପ୍ରଥମ ରଜୋଦର୍ଶନରେ ବାପଘରୁ ସ୍ୱାମୀ ଘରକୁ ଆସିବା ଖବର ଲେଖା ଥିବା ପତ୍ରିକା ।

ଶୁଭପୃଷ୍ଟିତବୁଦ୍ଧି—ପୁଂ. ବି. ସମାଧି ।

ଶୁଭପ୍ରଦ—ପୁଂ. ବିଂ. (ଶୁଭ+ପ୍ର+ଦା ଅ)ଶୁଭଦ,ଯେ ମଙ୍ଗଳ ପ୍ରଦାନ କରେ ।

ଶୁଭଭାବନା—ସ୍ତ୍ରୀ. ବି. ମଙ୍ଗଳ ବିଷୟକ ଚନ୍ତା । [ ସ୍ୱରୂପ ।

ଶୁଭମୟ—ବି. ବିଂ. ମଙ୍ଗଳମୟ, ଶୁଭ-

ଶୁଭମୁହୂର୍ତ୍ତ—ବି. (କ.ଧା) ଶୁଭକ୍ଷଣ, ମଙ୍ଗଳସୂଚକ ଅତ୍ୟଳ୍ପ ମାନ ସମୟ, ଯେଉଁ ମୁହୂର୍ତ୍ତରେ ବିବାହାଦି କଲେ ଶୁଭହୁଏ ।

ଶୁଭଯୁକ୍ତ(ତ)--ବିଂ.(୩ତତ୍)ମଙ୍ଗଳମୟ ।

ଶୁଭଯୋଗ---ବି. (କ.ଧା) ମଙ୍ଗଳମୟ ଯୋଗ ବା ସୁଯୋଗ ।

ଶୁଭଲକ୍ଷଣ---ବି. ( କ.ଧା ) ମଙ୍ଗଳମୟ ଚିହ୍ନ,(ପୁଂ.ବିଂ.ବ.ବ୍ରୀ) ସୁଲକ୍ଷଣ,ଶୁଭଲକ୍ଷଣଯୁକ୍ତ, (ସ୍ତ୍ରୀ) ଲକ୍ଷଣା ।

ଶୁଭବସ୍ତୁ—କ୍ଳୀ. ବି. ମାଙ୍ଗଳିକ ଦ୍ରବ୍ୟ ।

ଶୁଭବାଚକ—ବିଂ.ଅଶୁଭ ବା ଅମଙ୍ଗଳସୂଚକ ଶବ୍ଦ ବା ବାକ୍ୟ ଦ୍ୱାରା ପ୍ରକାଶିତ ନ ହୋଇ ଶୁଭସୂଚକ ବାକ୍ୟ ଦ୍ୱାରା କୌଣସି ବିଷୟର ପ୍ରକାଶକ (ବାକ୍ୟ ବା ଭାଷା) ।

ଶୁଭବାଚନ—ବି. କଠୋର ବା ଅଶୁଭ ବିଷୟର କୋମଳ ବା ଶୁଭସୂଚକ ବାକ୍ୟ ଦ୍ୱାରା ପ୍ରକାଶ ।

ଶୁଭବାନ୍---ପୁଂ. ବିଂ. (ଶୁଭ + ବତ୍) ଶୁଭବିଶିଷ୍ଟ, ମଙ୍ଗଳଯୁକ୍ତ ।

ଶୁଭବାସନ—ପୁଂ. ବି. (ଶୁଭ + ବସ୍+ ଣିଚ୍+ଅନ)ମୁଖର ସୁଗନ୍ଧିଜନକ ଦ୍ରବ୍ୟ

ଶୁଭଶଂସୀ—ପୁଂ.ବିଂ. (ଶୁଭ + ଶଂସ୍+ ଇନ୍) ଶୁଭସୂଚକ, ଯାହା ମଙ୍ଗଳସୂଚନା କରେ, (ସ୍ତ୍ରୀ)ଶୁଭଶଂସିନୀ ।

ଶୁଭସଙ୍କଳ୍ପ—ବି. (କ.ଧା) ମଙ୍ଗଳମୟ ସଙ୍କଳ୍ପ, ଶୁଭେଚ୍ଛା ।

ଶୁଭସଯୁତ—ବି. ବିଂ. (୩ତତ୍) ଶୁଭବିଶିଷ୍ଟ, ଶୁଭସଯୁକ୍ତ ।

ଶୁଭସମ୍ବାଦ—ବି. (କ.ଧା) ମଙ୍ଗଳମୟ ବା ଶୁଭକର ଖବର ।

ଶୁଭସୂଚକ—ବିଂ.ମଙ୍ଗଳ ଜ୍ଞାପନ, (ସ୍ତ୍ରୀ) ଶୁଭସୂଚିକା ।

ଶୁଭସୂଚନ(ନା)—ବି. ମଙ୍ଗଳ ଜ୍ଞାପନ ।

ଶୁଭସୂଚନୀ—ସ୍ତ୍ରୀ. ବି. ( ଶୁଭ + ସୂଚ୍ + ଅନ୍ + ଈ ) ଦେବୀବିଶେଷ, ଦୁର୍ଗା, ମଙ୍ଗଳା ।

ଶୁଭସ୍ୟଶୀଘ୍ରଂ—(ପ୍ରବଚନ)ଶୁଭକାର୍ଯ୍ୟକୁ ଅନର୍ଥ ବିଳମ୍ବେ କରିବା ବିଧେୟ ।

ଶୁଭସ୍ତମ୍ଭ—ବି.ଯାଜପୁରର ବିରଜାଦେବୀ ଓ ଦଧିବାହନାଥଙ୍କ ଦେଉଳର ମଧ୍ୟବର୍ତ୍ତୀ ସ୍ଥାନରେ ସ୍ଥାପିତ ସ୍ତମ୍ଭ, ନୂଆ ଘରରେ ପକାଯିବା ପ୍ରଥମ ଖୁମ୍ବ, କୌଣସି ଶୁଭକର୍ମ ଉପଲକ୍ଷ୍ୟରେ ପୋତାଯିବା ଖୁଣ୍ଟ ।

ଶୁଭସ୍ଥଳୀ--ସ୍ତ୍ରୀ.ବି.ଯଜ୍ଞଭୂମି,ମଙ୍ଗଳଭୂମି ।

ଶୁଭ୍ରା—ସ୍ତ୍ରୀ.ବି (ଶୁଭ୍ +ଅ+ଆ)ଶୋଭା, କାନ୍ତି, ଇଚ୍ଛା, ଗୋରୋଚନା, ଶମୀ, ପ୍ରିୟଙ୍ଗୁ,ଦେବସଭା, ଶ୍ୱେତବଚ, ସ୍ଥଗଦୁଗ୍ଧ, ନଦୀଭେଦ, ପାର୍ବତୀଙ୍କ ସଖୀବିଶେଷ, ଅଙ୍ଗିର ଋଷିଙ୍କ ସ୍ତ୍ରୀ, ବଂଶଲୋଚନା, ଶ୍ୱେତ ଦୂର୍ବା, ପିଡ଼ଙ୍ଗଶାଗ, ଅକାନବନ୍ଧ, ଶରପ ।

ଶୁଭାକାଙ୍କ୍ଷା—ବି. (କ.ଧା)କଲ୍ୟାଣକାମନା ।

ଶୁଭାକାଙ୍କ୍ଷୀ—ପୁଂ.ବିଂ.ଯେ ଶୁଭ କାମନା କରେ, (ସ୍ତ୍ରୀ) ଶୁଭାକାଙ୍କ୍ଷିଣୀ ।

ଶୁଭାକମା—ସ୍ତ୍ରୀ. ବି. ଭୂଇ ଅଁଳା ।

ଶୁଭାଗମ—( ଶୁଭ + ଆ + ଗମ୍ + ଅ ) ହିତକର ବିଷୟରେ ସମାଗମ ।

ଶୁଭାଗମନ—ବି. (କ.ଧା) ମଙ୍ଗଳଜନକ ଆଗମନ ।

ଶୁଭାଙ୍ଗ—ବି. (କ.ଧା) ସୁନ୍ଦର ଅବୟବ, (ପୁଂ.ବିଂ. ବ.ବ୍ରୀ) ସୁନ୍ଦରଅବୟବବିଶିଷ୍ଟ

(ବ୍ୟକ୍ତି), (ସ୍ତ୍ରୀ) ଶୁଭଙ୍ଗୀ ।
ଶୁଭଙ୍ଗୀ—ପୁଂ. ବଂ. (ଶୁଭଙ୍ଗ + ଇନ୍) ସୁନ୍ଦର ଅବୟବବିଶିଷ୍ଟ, (ସ୍ତ୍ରୀ)ଶୁଭଙ୍ଗିନୀ, (ସ୍ତ୍ରୀ.ବି.-ଶୁଭଙ୍ଗ+ଈ) କୁବେରପତ୍ନୀ, ସୁନ୍ଦରୀ ସ୍ତ୍ରୀ, ରତିଦେବୀ । [ ଗଛ ।
ଶୁଭଞ୍ଜନ—ବି.ଋକ୍ଷ ଶିଗ୍ରୁ, ଲାଲ ସଜନା
ଶୁଭଦୃଷ୍ଟ—ବି. (କ.ଧା)ସୌଭାଗ୍ୟ, (ପୁଂ. ବଂ.ବ.ବ୍ରୀ)ଭାଗ୍ୟବାନ୍, (ସ୍ତ୍ରୀ) ଶୁଭଦୃଷ୍ଟା
ଶୁଭାନୁଧ୍ୟାନ—ବି.(୬ତତ୍ପୁ) ମଙ୍ଗଳଚିନ୍ତା, କଲ୍ୟାଣକାମନା ।
ଶୁଭାନୁଧ୍ୟାତା(ସ୍ତ୍ରୀ)—ପୁଂ. ବଂ.(ଶୁଭ+ ଅନୁ + ଧ୍ୟୈ+କ.ତୃ+ଇନ୍) ଯେ ଶୁଭ ଚିନ୍ତା କରେ, (ସ୍ତ୍ରୀ)ଶୁଭାନୁଧ୍ୟାୟିନୀ ।
ଶୁଭାନୁଷ୍ଠାନ—ବି. (କ.ଧା) କଲ୍ୟାଣକର କାର୍ଯ୍ୟ ।
ଶୁଭାନ୍ୱିତ—ବଂ(ଶୁଭ+ଅନ୍ୱିତ)୩ତତ୍ପୁ, ମଙ୍ଗଳଯୁକ୍ତ, ଶୁଭବିଶିଷ୍ଟ ।
ଶୁଭାର୍ଥୀ—ପୁଂ. ବଂ. (ଶୁଭ+ ଅର୍ଥ+ ଇନ୍)ଶୁଭପ୍ରାର୍ଥୀ, ଯେ ମଙ୍ଗଳ ପ୍ରାର୍ଥନା କରେ ।
ଶୁଭାବହ—ବଂ. ମଙ୍ଗଳଜନକ ।
ଶୁଭାଶୟ—ପୁଂ.ବଂ.ବନ୍ଧୁ,ଧାର୍ମିକ,ବିଶୁଦ୍ଧଚିତ୍ତ ।
ଶୁଭାଶୀର୍ବାଦ—ବି.(କ.ଧା) କଲ୍ୟାଣକର, ଆଶୀଷ ବାକ୍ୟ ।
ଶୁଭାଶୁଭ—ବଂ ବା ବି. ମଙ୍ଗଳାମଙ୍ଗଳ, ହିତାହିତ, ଭଲମନ୍ଦ ।
ଶୁଭିବା—ଗ୍ରା.କ୍ରି.ଶ୍ରୁତହେବା,ଶୁଣାଯିବା ।
ଶୁଭୁଅଛି—ଗ୍ରା. କ୍ରି. ଶୁଣାଯାଉଅଛି ।
ଶୁଭେଚ୍ଛା—ବି. (କ.ଧା) ଶୁଭକାମନା ।
ଶୁଭୈକଦୃକ୍—ପୁଂ.ବଂ.(ବ.ବ୍ରୀ)ମଙ୍ଗଳକାମୀ ।
ଶୁଭ୍ର—ବଂ. (ଶୁଭ୍+କ.ର) ଉଦ୍ଦୀପ୍ତ, ଉଜ୍ଜ୍ୱଳ, ଶ୍ୱେତ, ଧଳା, (ସ୍ତ୍ରୀ) ଶୁଭ୍ରା, (ବି) ଶ୍ୱେତବର୍ଣ୍ଣ, ରୌପ୍ୟ, ଶ୍ୱେତଚନ୍ଦନ, ମେଘନାଲ, ଶାମ୍ଭରଲବଣ, ସ୍ୱାବକସ, ପଦ୍ମକାଷ୍ଠ, ରୌପ୍ୟମାକ୍ଷିକ, ମେଦୋଧାତୁ, ସୈନ୍ଧବଲବଣ ।
ଶୁଭ୍ରକାନ୍ତ—ବି. (କ.ଧା) ଶ୍ୱେତବର୍ଣ୍ଣ ଦୀପ୍ତି,ଉଜ୍ଜ୍ୱଳଦୀପ୍ତି,(ବଂ-ବ.ବ୍ରୀ)ସୁକାନ୍ତିବିଶିଷ୍ଟ ।
ଶୁଭ୍ରକାୟ—ବି. (କ.ଧା) ଶ୍ୱେତଶରୀର, ଗୌରବର୍ଣ୍ଣ ଦେହ, (ପୁଂ.ବଂ-ବ.ବ୍ରୀ) ଉଜ୍ଜ୍ୱଳଦେହବିଶିଷ୍ଟ,(ସ୍ତ୍ରୀ)ଶୁଭ୍ରକାୟା ।
ଶୁଭ୍ରକେଶ—ବି. (କ.ଧା) ଧଳାକେଶ, ପାଚିଲା ବାଳ, (ପୁଂ.ବଂ) ଶୁଭ୍ରକେଶଯୁକ୍ତ, (ସ୍ତ୍ରୀ) ଶୁଭ୍ରକେଶା ।
ଶୁଭ୍ରତରୁ—ପୁଂ. ବି. ଶିରୀଷ ବୃକ୍ଷ ।
ଶୁଭ୍ରତା(ତ୍ୱ)—ବି. ( ଶୁଭ୍ର+ତା.ତ୍ୱ ) ଉଜ୍ଜ୍ୱଳତା, ଶ୍ୱେତବର୍ଣ୍ଣ ।
ଶୁଭ୍ରଦନ୍ତ—ପୁଂ. ବଂ. (ବ.ବ୍ରୀ) ଶୁଭ୍ରଦନ୍ତବିଶିଷ୍ଟ,(ବି-କ.ଧା) ସୁନ୍ଦରଦାନ୍ତ, ଧଳାରଙ୍ଗର ଦାନ୍ତ ।
ଶୁଭ୍ରଦନ୍ତୀ—ସ୍ତ୍ରୀ. ବି. ପୁଷ୍ପଦନ୍ତ ନାମକ ବାୟୁକୋଣର ଦିଗ୍ଗଜପତ୍ନୀ, ( ବଂ ) ଶୁଭ୍ରଦନ୍ତ ବିଶିଷ୍ଟା(ସ୍ତ୍ରୀ) । [ କାଇଁଣି ।
ଶୁଭ୍ରପୁଷ୍ପ—କ୍ଲୀ. ବି. ( ବ.ବ୍ରୀ ) ବେଣା,
ଶୁଭ୍ରଭାନୁ—ପୁଂ.ବି.(ବ.ବ୍ରୀ)ଚନ୍ଦ୍ର,କର୍ପୂର, (କ.ଧା) ଉଜ୍ଜ୍ୱଳ କିରଣ, ଧଳା କିରଣ ।
ଶୁଭ୍ରରଶ୍ମି—ପୁଂ. ବି. (ବ.ବ୍ରୀ) ଚନ୍ଦ୍ର, କର୍ପୂର, (କ.ଧା) ଉଜ୍ଜ୍ୱଳ କିରଣ ।
ଶୁଭ୍ରବସନ—ବି. (କ.ଧା) ଧଳାଲୁଗା, (ପୁଂ.ବଂ) ଧଳାଲୁଗା ପିନ୍ଧିଥିବା, (ସ୍ତ୍ରୀ) ଶୁଭ୍ରବସନା ।
ଶୁଭ୍ରବେଷ୍ଟ—ବି. ଧଳା ଶିମିଳି ଗଛ ।
ଶୁଭ୍ରଶରୀର—ବି ଓ ବଂ. (କ.ଧା ଓ ବ.ବ୍ରୀ) ଶୁଭ୍ରକାୟ ଦେଖ ।
ଶୁଭ୍ରଶ୍ମଶ୍ରୁ—ବି. (କ.ଧା)ପାଚିଲା ଦାଢ଼ି, (ବଂ-ବ.ବ୍ରୀ) ଧଳା ଦାଢ଼ିବାଲା ।
ଶୁଭ୍ରା—ସ୍ତ୍ରୀ.ବଂ. (ଶୁଭ୍ର+ଆ) ଶୁଭ୍ରର ସ୍ତ୍ରୀଲିଙ୍ଗ, (ସ୍ତ୍ରୀ.ବି) ବଂଶଲୋଚନା,ଫିଟିକିରି, ଗୋରୋଚନା, ଚିନି, ଶ୍ୱେତ ବୃଦ୍ଧଦାରକ ।
ଶୁଭ୍ରାଂଶୁ—ପୁଂ. ବି. ଚନ୍ଦ୍ର, କର୍ପୂର ।
ଶୁଭ୍ରାଳୁ—ପୁଂ.ବି.ମହୌଷଧକନ୍ଦ,ଧଳାଆଳୁ ।
ଶୁଭ୍ରି—ପୁଂ. ବି. (ଶୁଭ୍+ରି) ବ୍ରହ୍ମା ।
ଶୁଭ୍ରିକା—ସ୍ତ୍ରୀ. ବି. ମଧୁଶର୍କରା, ମହୁରୁ ଉତ୍ପନ୍ନ ଚିନି ।
ଶୁମ୍ଭ—ପୁଂ.ବି.(ଶୁନ୍ଭ୍+କ୍ତ.ଅ)ଦାନବ ବିଶେଷ ।
ଶୁମ୍ଭଘାତିନୀ—ସ୍ତ୍ରୀ. ବି. (ଶୁମ୍ଭ+ହନ୍+ କ.ଇନ୍+ଈ) ଦୁର୍ଗା । [ ଦକ୍ଷିଣାଂଶ ।
ଶୁମ୍ଭଦେଶ—ପୁଂ. ବି. ଅଙ୍ଗ ଓ ବଙ୍ଗର
ଶୁମ୍ଭନିଶୁମ୍ଭ—ବି.(ଦ୍ୱନ୍ଦ୍ୱ)ଶୁମ୍ଭ ଓ ନିଶୁମ୍ଭ ନାମକ ଅସୁରଭାଇ ଦ୍ୱୟ ।
ଶୁମ୍ଭପୁର—ବି.ଶୁମ୍ଭଦୈତ୍ୟର ପୁରୀ,ଏକଚକ୍ର (ଅଧୁନା—ସମ୍ବଲପୁର) ।
ଶୁମ୍ଭମର୍ଦ୍ଦିନୀ—ସ୍ତ୍ରୀ. ବି. (ଶୁମ୍ଭ+ମୃଦ୍+ ଇନ୍+ଈ) ଦୁର୍ଗା ।
ଶୁରୁଗୁଡ଼ିଆ—ଗ୍ରା.ପୁଂ. ବଂ. ଶୁଷ୍କ,କ୍ଷୀଣ, ଅତି କ୍ଷୀଣକାୟ ।
ଶୁରପୋକ-ପ୍ରା.(ସମ୍ବ)ବି.ଉଲୁଣିଆ ପୋକ.
ଶୁଳ—ଗ୍ରା. ବି. ଧାନବଡ଼ା ବୋହିବାର ବାହାଙ୍ଗି, ପୁଡ଼ୁଗ ବାନ୍ଧିଲାବେଳେ ଧାନ ଶିହିଣିବାର ଗୋଜିଆ ମୋଟା କାଠ ।
ଶୁଲ୍କ—ବି.(ଶୁଲ୍କ+ମି.ଅ)କର,ଯୌତୁକ, ମୂଲ୍ୟ, ପଣ, ଦାଣ, ମାସୁଲ,ବିବାହରେ ବରପକ୍ଷ କନ୍ୟାପକ୍ଷକୁ ଦେବା ଧନ ।
ଶୁଲ୍କଗୃହ—ବି.(କ.ଧା)ଶୁଲ୍କାଳୟ ଦେଖ ।
ଶୁଲ୍କଗ୍ରାହକ—ପୁଂ. ବି. (ଶୁଲ୍କ+ଗ୍ରହ୍ +କ.ଅକ)ଯେ ଶୁଲ୍କ ଆଦାୟ କରେ ।
ଶୁଲ୍କଗ୍ରାହୀ—ପୁଂ. ବଂ. (ଶୁଲ୍କ+ଗ୍ରହ୍ +କ.ଇନ୍)ଶୁଲ୍କ ଗ୍ରହଣକାରୀ (କନ୍ୟାପିତା) ।
ଶୁଲ୍କଶାଳା—ସ୍ତ୍ରୀ. ବି. ଯେଉଁ ଘରେ ଶୁଲ୍କ ଆଦାୟ କରାଯାଏ ।
ଶୁଲ୍କସ୍ଥାନ—ବି.(କ.ଧା) ଯେଉଁ ସ୍ଥାନରେ ଶୁଲ୍କ ଆଦାୟ ହୁଏ ।
ଶୁଲ୍କାଳୟ—ଗ୍ରା. ବି. ଯେଉଁ ଘରେ ଶୁଲ୍କ ଆଦାୟ କରାଯାଏ ।
ଶୁଲ୍କି—ଗ୍ରା. ବି. ଉତ୍କଳର ପ୍ରାଚୀନ ରାଜବଂଶବିଶେଷ ।
ଶୁଲ୍କିକା—ସ୍ତ୍ରୀ. ବି. ଦେଶବିଶେଷ ।
ଶୁଲ୍ୱ—କ୍ଲୀ. ବି. (ଶୁଲ୍ୱ+ଣ.ଅ) ତାମ୍ର, ରଜ୍ଜୁ, ଯଜ୍ଞକର୍ମ, ଘାଟ,ଆଗ୍ରୁର,ଜଳାଶୟର କୂଳ, ଜଳସନ୍ନିଧି ।
ଶୁଲ୍ୱାର—ପୁଂ. ବି. (୬ତତ୍ପୁ) ଗନ୍ଧକ ।

ଶୁଲ୍ଲ—ବି. (ଶୁଲ୍ + ଣି.ଲ) ରଜ୍ଜୁ, ଡମ୍ବା ।

ଶୁଶୁକ—ବି. (ଶୁଶୁ + କ) ଜଳଜନ୍ତୁ-ବିଶେଷ, ଶିଶୁମାର ।

ଶୁଶୁମା—ସ୍ତ୍ରୀ. ବି. ମାଈ ଶୁଶୁକ ।

ଶୁଶ୍ରୁବାନ୍—ପୁଂ. ବିଂ. (ଶ୍ରୁ + କ.ବତ୍) ଯେ ଶୁଣିଅଛି, (ସ୍ତ୍ରୀ) ଶୁଶ୍ରୁଷୀ ।

ଶୁଶ୍ରୂ—ସ୍ତ୍ରୀ. ବି. (ଶ୍ରୁ + ସନ୍ + କ.ଊତ୍) ମାତା, ଜନନୀ ।

ଶୁଶ୍ରୂଷକ—ପୁଂ.ବିଂ. (ଶ୍ରୁ + ସନ୍ + କ ଅକ) ଶୁଶ୍ରୂଷାକାଂକ୍ଷୀ, ସେବାକାଂକ୍ଷୀ, ମନୋଯୋଗକାଂକ୍ଷୀ, ଆଜ୍ଞାପାଳକ, (ସ୍ତ୍ରୀ) ଶୁଶ୍ରୂଷିକା, (ପୁଂ.ବି) ସେବକ ।

ଶୁଶ୍ରୂଷଣ(ଣା)—ବି.(ଶ୍ରୁ + ସନ୍ + ଅନ + ଆ) ସେବା, ପରିଚର୍ଯ୍ୟା, ଶୁଣିବାର ଇଚ୍ଛା ।

ଶୁଶ୍ରୂଷା—ସ୍ତ୍ରୀ. ବି. (ଶ୍ରୁ + ସନ୍ + ଅ + ଆ) ସେବା, ପରିଚର୍ଯ୍ୟା, ଶୁଣିବାର ଇଚ୍ଛା, କଥନ ।

ଶୁଶ୍ରୂଷିତ—ପୁଂ. ବିଂ. (ଶ୍ରୁ + ସନ୍ + ମିଂ. ତ) ପରିଚର୍ଯ୍ୟାପ୍ରାପ୍ତ, ସେବିତ, ( ସ୍ତ୍ରୀ ) ଶୁଶ୍ରୂଷିତା ।

ଶୁଶ୍ରୂଷିତବ୍ୟ—ପୁଂ. ବିଂ. (ଶ୍ରୁ + ସନ୍ + ମିଂ.ତବ୍ୟ ) ଶୁଶ୍ରୂଷାଯୋଗ୍ୟ, ( ସ୍ତ୍ରୀ ) ଶୁଶ୍ରୂଷିତବ୍ୟା ।

ଶୁଶ୍ରୂଷିତା—ପୁଂ. ବିଂ. (ଶ୍ରୁ + ସନ୍ + କ.ତୃ) ଶୁଶ୍ରୂଷାକାଂକ୍ଷୀ,ସେବାକାଂକ୍ଷୀ,(ସ୍ତ୍ରୀ) ଶୁଶ୍ରୂଷିତ୍ରୀ ।

ଶୁଶ୍ରୂଷୀ—ପୁଂ. ବିଂ. (ଶୁଶ୍ରୂଷ + ଇନ୍) ସେବାକାଂକ୍ଷୀ, ଶୁଶ୍ରୂଷାକାଂକ୍ଷୀ, ( ସ୍ତ୍ରୀ ) ଶୁଶ୍ରୂଷିଣୀ ।

ଶୁଶ୍ରୂଷୁ—ପୁଂ. ବିଂ. ( ଶୁଶ୍ରୂଷ + କ.ଉ ) ସେବା କରିବାକୁ ଇଚ୍ଛୁକ, ଶୁଣିବାକୁ ଇଚ୍ଛୁକ, ଆଜ୍ଞାପାଳକ ।

ଶୁଶ୍ରୂଷେଣ୍ୟ—ବି .ମନୁଷ୍ୟ ଯାହା ଆଦରର ସହିତ ଶୁଣେ, ଶୁଶ୍ରୂଷାର୍ହ ।

ଶୁଶ୍ରୂଷ୍ୟ—ପୁଂ. ବିଂ. (ଶୁଶ୍ରୂଷ + ମିଂ.ଯ) ସେବାର ଯୋଗ୍ୟ, ସେବିତବ୍ୟ, (ସ୍ତ୍ରୀ) ଶୁଶ୍ରୂଷ୍ୟା ।

ଶୁଷ—ଗ୍ରା. ବି. ଶୋଷ, ତୃଷା ।

ଶୁଷ(ଷୀ)—ବି.(ଶୁଷ + ଭା.ଅ,ଇ)ଶୋଷଣ, (କ.ଅ,ଈ) ଗର୍ତ୍ତ, ଛିଦ୍ର, ବିଲ, ଗୁହା, ଶୁଖିଯିବା ।

ଶୁଷଣୀ—ସ୍ତ୍ରୀ.ବି. ଶୁନୁଶୁନିଆ ଶାଗ ।

ଶୁଷାଇବା—ଗ୍ରା.କ୍ରି.ଶୋଷାଇବା ଦେଖ ।

ଶୁଷି—ସ୍ତ୍ରୀ. ବି. (ଶୁଷ୍ + କ.ଇ) ଶୋଷ, ଦନ୍ତ ମଧ୍ୟସ୍ଥ ଛିଦ୍ର ।

ଶୁଷିର—କ୍ଳୀ.ବି.(ଶୁଷ + କ.ଇର) ଗାତ, ବିବର, ରନ୍ଧ୍ର, ବଂଶୀପ୍ରଭୃତି ବାଦ୍ୟ, ଅଗ୍ନି, ମୂଷିକ, ବାୟୁ, (ବିଂ)ଛିଦ୍ରଯୁକ୍ତ ।

ଶୁଷିରା—ସ୍ତ୍ରୀ. ବି. (ଶୁଷିର + ଆ) ନଦୀ-ବିଶେଷ, ନଳୀନାମକ ଗନ୍ଧଦ୍ରବ୍ୟ ।

ଶୁଷିଲ—ପୁଂ.ବି.(ଶୁଷ୍ + କ.ଇଲ)ବାୟୁ. ପବନ ।

ଶୁଷିବା—ଗ୍ରା. କ୍ରି. ଶୋଷିବା ଦେଖ ।

ଶୁଷ୍କ—ବିଂ.(ଶୁଷ୍ + କ.ତ)ନିର୍ଜଳ,ଶୁଖିଲା କ୍ଷୀଣ, ନୀରସ, ଶୀର୍ଣ୍ଣ, ରୁକ୍ଷ, (ଲ.ଅର୍ଥ) ଅହେତୁକ, ନିଷ୍ଫଳ, ନିରର୍ଥକ, ବିରସ, ଅପ୍ରୟୋଜନୀୟ, (ସ୍ତ୍ରୀ) ଶୁଷ୍କା, (କ୍ଳୀ.ବି) କୃଷ୍ଣାଗୁରୁ ।

ଶୁଷ୍କକଣ୍ଠ—ବିଂ.ଶୁଷ୍କକଣ୍ଠଯୁକ୍ତ, ପିପାସାତୁର, (ବି-କ.ଧା)ଯେଉଁ କଣ୍ଠରୁ ଲେପ ଆଦି ଶୁଖିଯାଇଥାଏ ।

ଶୁଷ୍କକଳହ—ବି.(କ.ଧା)ବୃଥା ବା ଅହେତୁକ କଳହ ବା ବିବାଦ ।

ଶୁଷ୍କଗୋମୟ—ବି.ଘଷି,ଶୁଖିଲାଗୋବର ।

ଶୁଷ୍କତର୍କ—ବି. (କ.ଧା) ବୃଥା, ବିତଣ୍ଡା ।

ଶୁଷ୍କତା(ତ୍ୱ)—ବି. (ଶୁଷ୍କ + ତା) ଶୁଷ୍କଭାବ, ଶୁଷ୍କାବସ୍ଥା । [ ପ୍ରଭୃତି ।

ଶୁଷ୍କପାକ—ବି. ଜଳଶୂନ୍ୟ ତରକାରି

ଶୁଷ୍କପ୍ରାୟ—ବିଂ.ପ୍ରାୟତଃ ଶୁଷ୍କ,ପ୍ରାୟ ନୀରସ

ଶୁଷ୍କମତ୍ସ୍ୟ—ବି. ଶୁଖିଲାମାଛ, ଶୁଖୁଆ ।

ଶୁଷ୍କମାଂସ—କ୍ଳୀ. ବି. ଶୁଖିଲାମାଂସ ।

ଶୁଷ୍କରେବତୀ—ସ୍ତ୍ରୀ. ବି. ମାତୃକାବିଶେଷ, ବାଳଗ୍ରହବିଶେଷ ।

ଶୁଷ୍କଲ—ବି. (ଶୁଷ୍କ + ଲ) ଆମିଷ,ମାଂସ, ଶୁଖିଲା ମାଂସ,(ପୁଂ.ବିଂ) ଆମିଷଭୋଜୀ, (ସ୍ତ୍ରୀ) ଶୁଷ୍କଲା ।

ଶୁଷ୍କଲୀ—ସ୍ତ୍ରୀ. ବି. (ଶୁଷ୍କଲ + ଈ) ଶୁଷ୍କ ମାଂସ, ଶୁଖିଲା ମାଂସ ।

ଶୁଷ୍କବୃକ୍ଷ—ବି. ଧଅଗଛ, ଶୁଖିଲା ଗଛ ।

ଶୁଷ୍କବୈର—ବି. ଉଦ୍ଦେଶ୍ୟଶୂନ୍ୟ କଳହ, ଆହେତୁକ ଶତ୍ରୁତା ।

ଶୁଷ୍କବ୍ରଣ—ବି. କ୍ଷତ, ଚିଣ୍ଡି ।

ଶୁଷ୍କାଙ୍ଗ—ପୁଂ.ବିଂ.(ବ.ବ୍ରୀ)ସ୍ନେହ ଶୂନ୍ୟ ଅବୟବ ବିଶିଷ୍ଟ. ନୀରସ ଦେହ.ଶୀର୍ଣ୍ଣକାୟ, (ସ୍ତ୍ରୀ) ଶୁଷ୍କାଙ୍ଗୀ,(ବି-କ.ଧା)ଧବ ବୃକ୍ଷ,ଶୀର୍ଣ୍ଣଦେହ,ସ୍ନେହଶୂନ୍ୟ ଅବୟବ ।

ଶୁଷ୍କାଙ୍ଗୀ— ସ୍ତ୍ରୀ.ବି. (ଶୁଷ୍କ + ଅଙ୍ଗ + ଈ) ବ.ବ୍ରୀ ; ଗୋଧିକା, ଗୋଧିସାପ ।

ଶୁଷ୍କାର୍ଦ୍ର—କ୍ଳୀ.ବି. (ଶୁଷ୍କ + ଆର୍ଦ୍ର )ଶୁଣ୍ଠି, (ବିଂ) ଶୁଖିଲା ଓ ଓଦା ।

ଶୁଷ୍କାଶୁଦ୍ଧ—ପୁଂ.ବି. ସମୁଦ୍ରଫେନ,(ବିଂ) ଶୁଷ୍କ ଓ ଅଶୁଦ୍ଧ ।

ଶୁଷ୍କୀକୃତ—ବିଂ. (ଶୁଷ୍କ + ଚ୍ୱି + କୃତ) ଶୁଖାଯାଇଥିବା ଓଦା (ପଦାର୍ଥ) ।

ଶୁଷ୍ଣ—ବି. (ଶୁଷ୍ + କ.ଣ) ସୂର୍ଯ୍ୟ, ଅଗ୍ନି, ବଳ ।

ଶୁଷ୍ମ—ବି. (ଶୁଷ୍ + କ.ମ)ତେଜ, ପରାକ୍ରମ, ବଳ, ଅଗ୍ନି, ସୂର୍ଯ୍ୟ,ବାୟୁ,ଚିତ୍ରକ ବୃକ୍ଷ, ପକ୍ଷୀ, ଅର୍ଚ୍ଚିଃ ।

ଶୁଷ୍ମା—ବି.(ଶୁଷ୍ + କ.ମନ୍)ଶୁଷ୍ମ ଦେଖ ।

ଶୂକ—ବି. (ଶୀ + କ.ଉକ, ଶସ୍ୟାଦିର ସୂକ୍ଷ୍ମାଗ୍ରଭାଗ, ଶୁଙ୍ଗ, ତୀକ୍ଷ୍ଣାଗ୍ର, ଧାନ୍ୟାଦିର ଶୁଙ୍ଗ, ଦୟାଶିଖା, କେଶଶିଖା ।

ଶୂକକ—ବି. (ଶୂକ + କ)ଯବ,ଯଅଧାନ, ବର୍ଷାଋତୁ, ରସ, ଶରୀରସ୍ଥ ଜଳୀୟପଦାର୍ଥବିଶେଷ, ରସଧାତୁ ।

ଶୂକକୀଟ—ବି.(ଶୂକ + କୀଟ)ଶମ୍ବାଳୁଆ ।

ଶୂକଜ—ବି. ଯବକ୍ଷାର ।

ଶୂକଧାନ୍ୟ—କ୍ଳୀ. ବି. ତୀକ୍ଷ୍ଣାଗ୍ରଶୂକ ଶସ୍ୟ, ଯେଉଁ ଶସ୍ୟର ଅଗରେ ତୀକ୍ଷ୍ଣ ଶୁଙ୍ଗ ଥାଏ ।

ଶୂକପତ୍ର—ବି. ନିର୍ବିଷ ସାପ ।

ଶୂକପାକ୍ୟ—ବି. ଯବକ୍ଷାର ।

ଶୂକପିଣ୍ଡି(ଣ୍ଡୀ)—ସ୍ତ୍ରୀ. ବି. ଶୂକଶିମ୍ବୀ, ବାଇଡଙ୍କ ।

ଶୂକର—ପୁଂ.ବି. ( ଶୂ + କୃ + କ.ଅ )

ବରାହ, ଘୁଷୁରି, (ସ୍ତ୍ରୀ) ଶୂକରୀ ।
ଶୂକରକନ୍ଦ—ବି. ବାରାହୀକନ୍ଦ ।
ଶୂକରଦଂଷ୍ଟ୍ର—ପୁଂ. ବି. କ୍ଷୁଦ୍ର ରୋଗ-ବିଶେଷ, ଚର୍ମରୋଗବିଶେଷ,ବାରହା-ଦାଢ଼ ବ୍ରଣ ।
ଶୂକରୀ—ସ୍ତ୍ରୀ.ବି. (ଶୂକର+ଈ)ବାରାହୀ-କନ୍ଦ, ବୃଦ୍ଧଦାରକ, ମାଈ ବାରହା ବା ଘୁଷୁରି ।
·ଶୂକରେଷ୍ଟ—ପୁଂ.ବି. (୬ତତ୍)କେଶୁର, ମୁଥା, ଟାଙ୍କିମୂଳ, (ବିଂ) ଶୂକରପ୍ରିୟ ଦ୍ରବ୍ୟମାତ୍ର ।
ଶୂକଲ—ପୁଂ. ବି.( ଶୂକ+ଲା+ଅ ) ଦୁର୍ବିନୀତାଶ୍ୱ, ଦୁଷ୍ଟ ଘୋଡ଼ା ।
ଶୂକବତୀ—ସ୍ତ୍ରୀ.ବିଂ. (ଶୂକ+ବତ୍+ଈ) ଶୂକଯୁକ୍ତା, (ବି) ବାଇଡ଼ଙ୍କ ।
ଶୂକଶିମ୍ବା(ମ୍ବି,ମ୍ବୀ)--ବି.(କ.ଧା)ବାଇଡ଼ଙ୍କ
ଶୂକାର—ପୁଂ.ବିଂ. (ଶୂ+କୃ+ଅ)ସ୍ପୀତି-କାରକ, ଯେ ବର୍ଦ୍ଧିତ କରେ ।
ଶୂକ୍ଷ୍ମ—ବିଂ. (ସୂଚ୍+ମ) ଅତିକ୍ଷୁଦ୍ର,ସରୁ, ଅତି ଅଳ୍ପ,ପତଳା,କୃତ୍ରିମ,ପାରମାର୍ଥିକ. (ସ୍ତ୍ରୀ) ଶୂକ୍ଷ୍ମା, (ପୁଂ.ବି) କୃତକ, ଅଧ୍ୟାତ୍ମ
ଶୂଚିପର୍ଣ୍ଣୀ—ବି. ସୁନାରିଗଛ ।
ଶୂଦ୍ର—ବି. (ଶୁଚ୍+କ.ର) ହିନ୍ଦୁମାନଙ୍କ ମଧ୍ୟରେ ନୀଚତମ ବା ଚତୁର୍ଥବର୍ଣ୍ଣ ଦାସ ।
ଶୂଦ୍ରକ—ଗ୍ରା.ବି.ରାମଚନ୍ଦ୍ରଙ୍କଦ୍ୱାରା ନିହତ ଜଣେ ଶୂଦ୍ର ମୁନି, ଶମ୍ବୁକ, (ସଂ-ବି) ମୃଚ୍ଛକଟିକନାମକ ସଂସ୍କୃତ ନାଟକର ପ୍ରଣେତା ରାଜାଙ୍କ ନାମ, କାଦମ୍ବରୀ ଉପନ୍ୟାସ ବର୍ଣ୍ଣିତ ଉଜ୍ଜୟିନୀର ରାଜା ।
ଶୂଦ୍ରକଣ୍ଟକ—ବି. ନୋଗରହ ।
ଶୂଦ୍ରକର୍ମ—ବି. (୬ତତ୍) ଶାସ୍ତ୍ରନିର୍ଦ୍ଦିଷ୍ଟ ଶୂଦ୍ରର କର୍ତ୍ତବ୍ୟକାର୍ଯ୍ୟ (ଯଥା-ବ୍ରାହ୍ମଣ ଆଦି ଦ୍ୱିଜାତିଙ୍କ ସେବା) ।
ଶୂଦ୍ରକୃତ୍ୟ—କ୍ଳୀ.ବି. (୬ତତ୍) ଶୂଦ୍ରର କର୍ତ୍ତବ୍ୟକର୍ମ ।
ଶୂଦ୍ରଜନ୍ମା—ପୁଂ. ବି. ଶୂଦ୍ରବର୍ଣ୍ଣରେ ଯାହାର ଜନ୍ମ, ଯେ ପରଜନ୍ମରେ ଶୂଦ୍ର ହୋଇ ଜନ୍ମି ଅଛି,ନିକୃଷ୍ଟଜନ୍ମା ।
ଶୂଦ୍ରଧର୍ମ—ବି. ଶୂଦ୍ରକର୍ମ ଦେଖ ।
ଶୂଦ୍ରପ୍ରିୟ—ପୁଂ.ବି. (୬ତତ୍) ପଲାଣ୍ଡୁ, ପିଆଜ, (ବିଂ) ଶୂଦ୍ରର ପ୍ରିୟ ଦ୍ରବ୍ୟମାତ୍ର ।
ଶୂଦ୍ରଭାର୍ଯ୍ୟ—ପୁଂ. ବିଂ. (ବ.ବ୍ରୀ)ଶୂଦ୍ରା-ପତ୍ନୀର ସ୍ୱାମୀ ।
ଶୂଦ୍ରଭୂୟିଷ୍ଠ—ବିଂ. (ବ.ବ୍ରୀ) ଯହିଁରେ ଅଧିକାଂଶ ଶୂଦ୍ର ଥାଆନ୍ତି ।
ଶୂଦ୍ରମୁନି—ବି. ତପସ୍ୟାରେ ନିରତ ଶୂଦ୍ର,ମୁନିବତ୍ ତପୋନିରତ ଶୂଦ୍ର ।
ଶୂଦ୍ରଯାଜକ—ପୁଂ.ବି. (୬ତତ୍) ଯେଉଁ ବ୍ରାହ୍ମଣ ଶୂଦ୍ରର ପୌରୋହିତ୍ୟ କରେ ।
ଶୂଦ୍ରସେବନ—ବି. ( ୬ତତ୍ ) ଶୂଦ୍ରର ଚାକିରି କରିବା ।
ଶୂଦ୍ରା—ସ୍ତ୍ରୀ.ବି. (ଶୂଦ୍ର+ଆ) ଶୂଦ୍ର-ଜାତୀୟା ସ୍ତ୍ରୀ ।
ଶୂଦ୍ରାଣୀ—ସ୍ତ୍ରୀ. ବି. ( ଶୂଦ୍ର+ଆନୀ ) ଶୂଦ୍ରପତ୍ନୀ ।		[ ଅନ୍ନ ।
ଶୂଦ୍ରାନ୍ନ—ବି. ( ୬ତତ୍ ) ଶୂଦ୍ରସ୍ୱାମିକ
ଶୂଦ୍ରାଭାର୍ଯ୍ୟ—ପୁଂ. ବିଂ. ଶୂଦ୍ରାବେଦୀ ଦେଖ ।
ଶୂଦ୍ରାହ୍ୱ—ସ୍ତ୍ରୀ.ବି. ପ୍ରିୟଙ୍ଗୁବୃକ୍ଷ ।
ଶୂଦ୍ରାବେଦନ—ବି. (ଶୂଦ୍ରା+ଆବେ-ଦନ) ଶୂଦ୍ରାକୁ ବିବାହ କରିବା ।
ଶୂଦ୍ରାବେଦୀ—ପୁଂ.ବିଂ. (ଶୂଦ୍ର+ଆ+ବିଦ୍+କ.ଇନ୍) ଶୂଦ୍ରା ବିବାହକାରୀ (ଦ୍ୱିଜାତିପୁରୁଷ) ।
ଶୂଦ୍ରାସୁତ—ପୁଂ.ବି. ଦ୍ୱିଜାତି କର୍ତ୍ତୃକ ପରିଣୀତା ଶୂଦ୍ରା ଗର୍ଭଜାତ ସୁତ ।
ଶୂଦ୍ରୀ—ସ୍ତ୍ରୀ.ବି. (ଶୂଦ୍ର+ଈ) ଶୂଦ୍ରର ଭାର୍ଯ୍ୟା, ଶୂଦ୍ରପତ୍ନୀ ।
ଶୂନ୍—ଗ୍ରା.ବିଂ. ଶୂନ୍ୟ, ଫମ୍ପା,କାରଣ-ରହିତ, ନିଷ୍ଫଳ, ମିଥ୍ୟା, ନିର୍ଜନ, (ବି) ଶୂନ୍ୟରାଶି, ଭିତରେ କିଛି ନ ଥିବା ଅବସ୍ଥା ।
ଶୂନ—ବିଂ. ( ଶ୍ୱି+କ.ତ ) ଫୁଲିଥିବା, ବୃଦ୍ଧିପ୍ରାପ୍ତ ।
ଶୂନ(ନା)—ବି. (ଶ୍ୱି+ଅଧି.ତ)ମାଂସର ହାଟ, କଂସେଇ ଦୋକାନ,ପ୍ରାଣୀବଧ, ଘଣ୍ଟିକା, ଜୀବହିଂସା ସ୍ଥାନ, ଯେଉଁ ବସ୍ତୁଦ୍ୱାରା ଜୀବହତ୍ୟାର ସମ୍ଭାବନା ଥାଏ-(ଯଥା-ଢେଙ୍କି, ଶିଳ, ଚୁଲ୍ଲୀ, ଚୁଲି ଜଳକୁମ୍ଭଆଦି) ।		[ ବର୍ଦ୍ଧିତ ।
ଶୂନବତ୍—ତ୍ରି. ବିଂ. ( ଶ୍ୱି+ତ.ବତ୍ )
ଶୂନା—ସ୍ତ୍ରୀ.ବି. ଶୂନ(ନା) ଦେଖ ।
ଶୂନାବାନ୍—ପୁଂ.ବି. ( ଶୂନା+ବତ୍ ) କଂସେଇ ।
ଶୂନ୍ୟ—ବି. (ଶୂ+ଉନ+ଯ)ଆକାଶ, ବାୟୁ, ବାୟୁ ବା ଅନ୍ୟ ବସ୍ତୁରହିତ ରିକ୍ତ ସ୍ଥାନ, ରିକ୍ତତାସୂଚକ ବିନ୍ଦୁ, '୦', ସଂଖ୍ୟା ନଥିବାର ପରିଚାୟକ ମଣ୍ଡଳ, ଅଭାବ, ରିକ୍ତତା, ନିର୍ଜନସ୍ଥାନ, ବ୍ରହ୍ମା, ଅନବସ୍ଥିତ, ସ୍ୱର୍ଗ, (ବିଂ) ରିକ୍ତ, ଖାଲି, ଫମ୍ପା, ନିର୍ଜନ, ନିସ୍ତବ୍ଧ, ତୁଚ୍ଛ, ଅନବ-ସ୍ଥିତ, ବିଷଣ୍ଣ, ଅପକ୍ଷପାତ, କପଟତା-ହୀନ, ନିରର୍ଥକ, (ଗ୍ରା.ବି) ବିନ୍ଦୁ ।
ଶୂନ୍ୟକ—ବି ଓ ବିଂ. (ଶୂନ୍ୟ+ସ୍ୱାର୍ଥେ. କ) ଶୂନ୍ୟ ଦେଖ ।
ଶୂନ୍ୟକୁମ୍ଭ—ବି. (କ.ଧା) ଜଳ ନ ଥିବା କଳଶ, ତୁଚ୍ଛା ମାଠିଆ ।
ଶୂନ୍ୟଗର୍ଭ—ପୁଂ.ବିଂ. (ବ.ବ୍ରୀ) ଯାହାର ଭିତର ଫମ୍ପା, ତୁଚ୍ଛା,ମୂର୍ଖଲୋକ, (ସ୍ତ୍ରୀ) ଶୂନ୍ୟଗର୍ଭା ।
ଶୂନ୍ୟଗୃହ—ବି. ଖାଲିଘର, ସ୍ୱଜନ ବା ପରିବାରହୀନ ଗୃହ, ପତ୍ନୀହୀନ ଗୃହ, ଜନହୀନ ଗୃହ ।
ଶୂନ୍ୟଚର—ପୁଂ. ବିଂ. (ଶୂନ୍ୟ+ଚର୍+କ.ଅ ) ଶୂନ୍ୟଚାରୀ ଦେଖ, (ସ୍ତ୍ରୀ) ଶୂନ୍ୟଚରୀ ।
ଶୂନ୍ୟଚାରୀ—ପୁଂ. ବିଂ. (ଶୂନ୍ୟ+ଚର୍+ଇନ୍) ଆକାଶବିହାରୀ, ଯେ ଆକା-ଶରେ ବିଚରଣକରେ, (ସ୍ତ୍ରୀ) ଚାରିଣୀ, (ବି) ପକ୍ଷୀ, ଦେବତା, ରାକ୍ଷସ ।
ଶୂନ୍ୟଚାଡ଼--ଗ୍ରା.ବି.ମଲ୍ଲମାନଙ୍କର ବ୍ୟାୟାମ ବିଶେଷ, ମାକଡ଼ଚାଡ଼ ।
ଶୂନ୍ୟତା(ତ୍ୱ)—ବି. ଶୂନ୍ୟଭାବ, ଜଗତ୍-କର୍ତ୍ତାଙ୍କ ଅସ୍ତିତ୍ୱହୀନତା, ରିକ୍ତତା,ପଞ୍ଚ-ଭୂତ ବର୍ଜିତର ଭାବ ।
ଶୂନ୍ୟଦୃଷ୍ଟି—ବି. (କ.ଧା) ଉଦ୍ଦେଶ୍ୟହୀନ

ଦୃଷ୍ଟି, ଆକାଶରେ ସ୍ଥାପିତ ଦୃଷ୍ଟି ।
ଶୂନ୍ୟପଥ—ବି. (୬ତତ୍) ଆକାଶମାର୍ଗ, ଆକାଶ ।
ଶୂନ୍ୟପାଳ—ପୁଂ. ବିଂ. ସହଯୋଗୀ,ଯେ ଅସ୍ଥାୟୀ ଭାବେ ପରର କାର୍ଯ୍ୟ କରେ ।
ଶୂନ୍ୟମଣ୍ଡଳ—ବି. ଆକାଶମଣ୍ଡଳ ।
ଶୂନ୍ୟମଧ୍ୟ—ବିଂ. ଶୂନ୍ୟଗର୍ଭ ଦେଖ, (ବି) ନଳତୃଣ ।
ଶୂନ୍ୟମନସ୍କ—ପୁଂ.ବିଂ. ଅମନୋଯୋଗୀ, (ସ୍ତ୍ରୀ) ଶୂନ୍ୟମନସ୍କା ।
ଶୂନ୍ୟମୟ—ଗ୍ରା.ବିଂ. ଏକବାରକେ ଶୂନ୍ୟ, ସମ୍ପୂର୍ଣ୍ଣ ରୂପେ ନିର୍ଜନ ।
ଶୂନ୍ୟମାର୍ଗ—ବି. (୬ତତ୍) ଶୂନ୍ୟପଥ, ଆକାଶମାର୍ଗ ।
ଶୂନ୍ୟମୁଖ—ବି. (କ.ଧା) ବିଷଣ୍ଣ ବଦନ, (ପୁଂ.ବିଂ-ବ.ବ୍ରୀ)ବିଷଣ୍ଣ ବଦନବିଶିଷ୍ଟ, (ସ୍ତ୍ରୀ) ଶୂନ୍ୟମୁଖୀ ।
ଶୂନ୍ୟମୂଳ—ବିଂ.ଭିତ୍ତିହୀନ, (ବି)ସେନା-ସଜ୍ଜାବିଶେଷ ।
ଶୂନ୍ୟରାସ—ଗ୍ରା. ବି. ଯୋଗ ସାଧକର ଭ୍ରୂମଧ୍ୟରେ କଳ୍ପିତ ନୃତ୍ୟ ।
ଶୂନ୍ୟବାଦ—ବି.(ନ୍ୟାୟ)ଏ ଜଗତ ଶୂନ୍ୟ ଅଟେ ଅର୍ଥାତ୍ ଏଥିରେ କିଛିମାତ୍ର ସତ୍ତା-ନାହିଁ ଏବଂଭୂତ ମତ, ନାସ୍ତିକତା ।
ଶୂନ୍ୟବାଦୀ—ପୁଂ. ବିଂ. ନାସ୍ତିକବିଶେଷ ମହାଯାନ ସମ୍ପ୍ରଦାୟ,ମାଧ୍ୟମିକ,ବୌଦ୍ଧ-ମତାବଲମ୍ବୀ । [ ଯାନ ।
ଶୂନ୍ୟବିମାନ—ବି.ଆକାଶଯାନ, ବ୍ୟୋମ-
ଶୂନ୍ୟବିହାର—ବି.ଆକାଶ ମାର୍ଗରେ ଭ୍ରମଣ
ଶୂନ୍ୟଶବ୍ଦ—ବି. ଆକାଶରୁ ଜାତ ଶବ୍ଦ ବା ଧ୍ୱନି । [ ସ୍ଥାନ ।
ଶୂନ୍ୟସ୍ଥାନ—ବି.(କ.ଧା) ଖାଲି ବା ରିକ୍ତ-
ଶୂନ୍ୟହର—ବିଂ. ଶୂନ୍ୟନାଶକ, (ବି) ଆଲୋକ, ସ୍ୱର୍ଣ୍ଣ ।
ଶୂନ୍ୟହସ୍ତ—ବି.(କ.ଧା) ରିକ୍ତହସ୍ତ, (ପୁଂ. ବିଂ-ବ.ବ୍ରୀ) ନିର୍ଦ୍ଧନ, ରିକ୍ତହସ୍ତ, (ସ୍ତ୍ରୀ) ରିକ୍ତହସ୍ତା ।
ଶୂନ୍ୟହୃଦୟ—ବି(କ.ଧା)ଅମନୋଯୋଗ, ବିଷଣ୍ଣମନ, (ପୁଂ.ବିଂ-ବ.ବ୍ରୀ)ଅମନୋ-ଯୋଗୀ, ଅତି ଦୁଃଖାତୁର, ଅସନ୍ଦିଗ୍ଧ, ନିଷ୍କପଟ, (ସ୍ତ୍ରୀ) ଶୂନ୍ୟହୃଦୟା ।
ଶୂନ୍ୟା—ସ୍ତ୍ରୀ. ବିଂ. (ଶୂନ୍ୟ+ଆ) ଶୂନ୍ୟର ସ୍ତ୍ରୀଲିଙ୍ଗ,ବନ୍ଧ୍ୟା,(ବି)ନଳତୃଣ,ବନ୍ଧ୍ୟା ସ୍ତ୍ରୀ, ନାଗଫେଣିଆ ଗଛ ।
ଶୂନ୍ୟାଳୟ—ପୁଂ. ବି. ନିର୍ଜନଗୃହ ।
ଶୂନ୍ୟାଗାର—ବି. ଶୂନ୍ୟଗୃହ ଦେଖ ।
ଶୂନ୍ୟେଶୂନ୍ୟେ—ଗ୍ରା. କ୍ରି. ବିଂ. ବିନା ନିର୍ଦ୍ଦିଷ୍ଟ ବା ପରିଦୃଶ୍ୟମାନ କାରଣରେ, ଭୂମି ସ୍ପର୍ଶ ନ କରି, ଆକାଶ ମାର୍ଗରେ ।
ଶୂପ—ବି. ସୂପ ଦେଖ, ଡାଲି ।
ଶୂପକାର—ପୁଂ. ବି. (ଶୂପ+କୃ+ଅ) ପାଚକ,ଶୁଆର,ପୂଜାହାରି,ରୋଷେୟା ।
ଶୂମ—ଯା. ବିଂ. ଲୋଭୀ, କୃପଣ, ବ୍ୟୟକୁଣ୍ଠ ।
ଶୂୟମାନ—ବିଂ. (ଶ୍ୱି+କ.ମାନ) ଯାହା ସ୍ଫୀତ ହୋଇଅଛି, (ସ୍ତ୍ରୀ) ଶୂୟମାନା ।
ଶୂର—ବି. (ଶୂର+କ.ଅ)ସୂର୍ଯ୍ୟ, ବସୁ-ଦେବଙ୍କ ପିତା, ଶୂରସେନ, ସାହସିକ ବ୍ୟକ୍ତି, ସିଂହ, ଶୂକର, ଧଳା ଚିତା, ଶାଳଗଛ, କେଉଁଠ, ମୟୂର, ଅର୍କବୃକ୍ଷ, (ପୁଂ.ବିଂ) ବୀର, ସାହସୀ, ବଳବାନ୍, (ସ୍ତ୍ରୀ) ଶୂରା ।
ଶୂରଣ—ପୁଂ. ବି. ( ଶୂର+କ.ଅନ ) ଓଲୁଅ, ଫଣଫଣା ଗଛ ।
ଶୂରତା(ତ୍ୱ)—ବି. ବୀରତ୍ୱ, ପରାକ୍ରମ, ବଳ, ସାହସ ।
ଶୂରଦେଓ—ଗ୍ରା. ବି. କ୍ଷତ୍ରିୟମାନଙ୍କର ବଂଶୋପାଧିବିଶେଷ ।
ଶୂରପତ୍ନୀ—ସ୍ତ୍ରୀ.ବି.(୬ତତ୍)ବୀର ଭାର୍ଯ୍ୟା ।
ଶୂରପୁତ୍ରା—ସ୍ତ୍ରୀ. ବି. ଅଦିତି ।
ଶୂରପ୍ରତାପମହେନ୍ଦ୍ର ବାହାଦୁର—ଗ୍ରା. ବି. ଢେଙ୍କାନାଳର ଭୂତପୂର୍ବ ସ୍ୱର୍ଗୀୟ ରାଜା
ଶୂରଭୂ(ମି)--ସ୍ତ୍ରୀ.ବି.ଉଗ୍ରସେନଙ୍କ କନ୍ୟା ।
ଶୂରମାନୀ—ପୁଂ. ବିଂ. (ଶୂର+ମନ୍+ଇନ୍) ଯେ ନିଜକୁ ବୀର ବୋଲି ମନେ କରେ । [ ରାଜବଂଶ ।
ଶୂରବଂଶ—ଦିଲ୍ଲୀର ଗୋଟିଏ ପଠାଣ
ଶୂରବନ୍ତ—ଗ୍ରା.ବିଂ.ବଳିଷ୍ଠ, ବଳଶାଳୀ ।
ଶୂରବାକ୍ୟ—କ୍ଲୀ.ବି. ବୀରୋଚିତ ବାକ୍ୟ, ବୀରତ୍ୱ ପ୍ରକାଶକ ଉକ୍ତି ।
ଶୂରବାଣେଶ୍ୱର—ପୁଂ. ବି. ବିଷ୍ଣୁ ।
ଶୂରବିଦ୍ୟା—ସ୍ତ୍ରୀ. ବି. ବୀରର ଶିକ୍ଷଣୀୟ ଯୁଦ୍ଧ କୌଶଳାଦି ।
ଶୂରବୀର—ପୁଂ. ବିଂ. ଅତିଶୟ ଯୋଦ୍ଧା, (ବି) କୀଟବିଶେଷ ।
ଶୂରଶ୍ଳୋକ—ପୁଂ. ବି. ବୀରଗାଥା ।
ଶୂରସେନ—ବି. (ବ.ବ୍ରୀ) ଯଦୁବଂଶୀୟ ରାଜା, ଶ୍ରୀକୃଷ୍ଣଙ୍କ ପିତାମହ ଓ ବସୁ-ଦେବଙ୍କ ପିତା, ମଥୁରାପୁରୀ ଓ ତତ୍ସ-ନ୍ନିହିତ ଦେଶର ପ୍ରାଚୀନ ନାମ ।
ଶୂରସେନକ—ପୁଂ. ବି. ଦେଶବିଶେଷ, ମଥୁରା ଓ ତତ୍ସନ୍ନିହିତ ଦେଶ ।
ଶୂରସେନଜ—ପୁଂ.ବି.ମଥୁରାଦେଶବାସୀ
ଶୂରା—ସ୍ତ୍ରୀ. ବି. କ୍ଷୀରକାକୋଲୀ ।
ଶୂରୋଚିତ—ବିଂ. (୬ତତ୍)ବୀରର ଉପ-ଯୁକ୍ତ (କର୍ମ), ବୀରଯୋଗ୍ୟ ।
ଶୂର୍ପ—ବି.(ଶୂର୍ପ+ଣ.ଅ)କୁଲା, ଦ୍ରୋଣ-ଦ୍ୱୟ ପରିମାଣ, (ପ୍ରାୟ କଟକୀ ସେର, ବାଲେଶ୍ୱରୀ ୧୦ ସେର) ।
ଶୂର୍ପକ—ବି. (ଶୂର୍ପ+କ)କନ୍ଦର୍ପର ଶତ୍ରୁ, ଅସୁରବିଶେଷ ।
ଶୂର୍ପକର୍ଣ୍ଣ—ପୁଂ. ବି. (ବ.ବ୍ରୀ) ହସ୍ତୀ, ଗଣେଶ, (ବିଂ) ଯାହାର କାନ କୁଲା-ପରି, କୁଲାକାନିଆ ।
ଶୂର୍ପକାରାତି-ପୁଂ.ବି.(୬ତତ୍)କାମଦେବ ।
ଶୂର୍ପଣଖା(ଖୀ)-ସ୍ତ୍ରୀ. ବି.(ବ.ବ୍ରୀ) ରାବଣର ଭଗିନୀ ।
ଶୂର୍ପପର୍ଣ୍ଣୀ—ସ୍ତ୍ରୀ.ବି(ବ.ବ୍ରୀ)ଶିମ୍ବିବିଶେଷ ।
ଶୂର୍ପବାତ—ବି.କୁଲାର ପବନ,କୁଲାବାଆ
ଶୂର୍ପଶ୍ରୁତି—ପୁଂ. ବି. (ବ.ବ୍ରୀ) ହସ୍ତୀ ।
ଶୂର୍ପୀ—ସ୍ତ୍ରୀ. ବି. (ଶୂର୍ପ+ଈ) କ୍ଷୁଦ୍ର କୁଲା, କୁଲେଇ ।
ଶୂର୍ମ—ପୁଂ. ବି. ଲୌହପ୍ରତିମା ।
ଶୂର୍ମି—ସ୍ତ୍ରୀ. ବି. ଲୌହପ୍ରତିମା, କର୍ଣ୍ଣ-ଭୂଷଣବିଶେଷ ।
ଶୂଳ—ବି. (ଶୂଳ+କ.ଅ) ଉଦରଜାତ ରୋଗବିଶେଷ,ପେଟମରା,ମୃତ୍ୟୁ,ପତାକା,

ତ୍ରିଶୂଳ, ବ୍ୟଥା, ଗର୍ଭ ଯନ୍ତ୍ରଣା, ପ୍ରସବ-ବେଦନା, ତୀକ୍ଷ୍ଣାଗ୍ର ଶଲାକାବିଶିଷ୍ଟ ବେଧନାସ୍ତ୍ରବିଶେଷ, ଲୁହାର ଖିଲା, ଲୌହଶଲାକା,ବର୍ଚ୍ଛା, ଏକମୁନାଆଦି, ଅଶୁଭକର ଯୋଗବିଶେଷ, ଦିକ୍‌ଶୂଳ ଚିହ୍ନ, ମୁଦ୍ରାବିଶେଷ, ଜ୍ୟୋତିଷୋକ୍ତ ବିଷ୍କୁମ୍ଭାଦି ଯୋଗ ମଧ୍ୟରୁ ୯ମ ଯୋଗ, (ବିଂ) ଅପ୍ରୀତିକର ବା ବାଧାଜନକ।

ଶୂଳକ—ବି.(ଶୂଳ+କ)ଦୁଷ୍ଟ ଘୋଡ଼ା।

ଶୂଳଗବ—ବିଂ. ଶୂଳ ଓ ଗୋବିଶିଷ୍ଟ, (ବି) ଶିବ।

ଶୂଳଗ୍ରହ—ପୁଂ. ବି. ଶିବ।

ଶୂଳଗ୍ରାହୀ—ପୁଂ. ବି. ମହାଦେବ।

ଶୂଳଘାତନ—କ୍ଲୀ. ବି. ମଣ୍ଡୁର, ଲୁହା ମଳର ଚୂନା, ଲୁହା ଚୂନା।

ଶୂଳଘ୍ନ—ବିଂ. (ଶୂଳ+ହନ୍+କ.ଅ) ଶୂଳରୋଗନାଶକ, ଶୂଳ ନିବାରକ, (ସ୍ତ୍ରୀ) ଶୂଳଘ୍ନୀ, (ବି) ତୁମ୍ବୁରୁବୃକ୍ଷ।

ଶୂଳଘ୍ନୀ—ସ୍ତ୍ରୀ.ବି.ସର୍ଜକ୍ଷାର, ସାଜିମାଟି।

ଶୂଳଦଣ୍ଡ—ବି. ଶୂଳୀରେ ବସି ମରିବା ପାଇଁ ଅପରାଧୀକୁ ଦିଆଯିବା ରାଜଦଣ୍ଡ।

ଶୂଳଦ୍ୱିଟ୍—ପୁଂ. ବି. (ଶୂଳ+ଦ୍ୱିଷ୍+କ.କ୍ୱିପ୍) ହିଙ୍ଗୁ।

ଶୂଳଧନ୍ୱା—ପୁଂ.ବି. ମହାଦେବ, ଶିବ।

ଶୂଳଧର—ପୁଂ.ବି.ବିଂ.ଶୂଳପାଣି ଦେଖ, (ସ୍ତ୍ରୀ) ଶୂଳଧରା।

ଶୂଳଧାରୀ—ପୁଂ. ବିଂ. (ଶୂଳ+ଧୃ+ଇନ୍) ଶୂଳପାଣି ଦେଖ, (ସ୍ତ୍ରୀ)ଧାରିଣୀ।

ଶୂଳଧୃକ୍—ସ୍ତ୍ରୀ. ବି. (ଶୂଳ+ଧୃଷ୍+କ.କ୍ୱିପ୍)ଦୁର୍ଗା,(ପୁଂ.ବି)ଶିବ,(ପୁଂ.ସ୍ତ୍ରୀ.ବିଂ) ଶୂଳଧାରୀ ଦେଖ।

ଶୂଳନାଶନ—କ୍ଲୀ. ବି. (ଶୂଳ+ନାଶି++ଅନ) ସୌବର୍ଚ୍ଚଲବଣ,ହିଙ୍ଗୁ,ପୁଷ୍କର ମୂଳ। [ (ବି) ହିଙ୍ଗୁ।

ଶୂଳନାଶୀ—ପୁଂ.ବିଂ.ଶୂଳରୋଗ ନାଶକ,

ଶୂଳପାଣି—ପୁଂ ଓ ସ୍ତ୍ରୀ. ବିଂ. (ବ.ବ୍ରୀ) ତ୍ରିଶୂଳଧାରୀ,(ପୁଂ.ବି) ମହାଦେବ,ଶିବ, (ସ୍ତ୍ରୀ.ବି) ଦୁର୍ଗା।

ଶୂଳଭୃତ୍—ପୁଂ ଓ ସ୍ତ୍ରୀ. ବିଂ. (ଶୂଳ+ଭୃ+କ୍ୱିପ୍) ଶୂଳଧାରୀ, (ପୁଂ.ବି) ଶିବ, (ସ୍ତ୍ରୀ.ବି) ଦୁର୍ଗା।

ଶୂଳମାରିବା—ଗ୍ରା. ବି. ପେଟମରା ରୋଗ ଆକ୍ରମଣ କରିବା। [ ବିଶେଷ।

ଶୂଳଯୋଗ—ବି. ଜ୍ୟୋତିଷୋକ୍ତ ଯୋଗ

ଶୂଳରୋଗ—ବି. ଉଦର ରୋଗବିଶେଷ, ପେଟମରା ରୋଗ।

ଶୂଳବିଦ୍ଧ—ବିଂ.(୩ତତ୍)ଶୂଳଦ୍ୱାରା ବିଦ୍ଧ।

ଶୂଳବେଦନା—ସ୍ତ୍ରୀ.ବି(କ.ଧା)ଶୂଳରୋଗ, ଗର୍ଭବେଦନା, ଅତ୍ୟନ୍ତ କଷ୍ଟଦାୟକ ବ୍ୟଥା। [ ଦେଖ।

ଶୂଳବ୍ୟଥା—ସ୍ତ୍ରୀ.ବି.(କ.ଧା)ଶୂଳବେଦନା

ଶୂଳଶତ୍ରୁ—ପୁଂ. ବି. (୬ତତ୍)ଏରଣ୍ଡବୃକ୍ଷ, ଗବଗଛ।

ଶୂଳହନ୍ତ୍ରୀ—ବି. ଏକପ୍ରକାର ଯବଧାନ।

ଶୂଳହର—କ୍ଲୀ. ବି. ପୁଷ୍କରମୂଳ।

ଶୂଳହସ୍ତ—ପୁଂ.ବି.(ବ.ବ୍ରୀ) ମହାଦେବ, ଶିବ, (ପୁଂ.ବିଂ) ଯାହାର ହାତରେ ଶୂଳ ଅଛି, (ସ୍ତ୍ରୀ) ଶୂଳହସ୍ତା।

ଶୂଳହୃତ୍—ବି.(ଶୂଳ+ହୃ+କ୍ୱିପ୍)ହିଙ୍ଗୁ।

ଶୂଳା—ସ୍ତ୍ରୀ. ବି. ଯେଉଁ ଖିଳା ଉପରେ ବସାଇ ଦୁଷ୍ଟଲୋକମାନଙ୍କୁ ବଧ କରଯାଏ, ଲୌହଶଲାକାବିଶେଷ, ବେଶ୍ୟା, ଶଙ୍କୁ, ଖିଳା, ୧୨ ଆଙ୍ଗୁଳ ଲମ୍ବାର ତୀକ୍ଷ୍ଣାଗ୍ର କାଠି,(ଗ୍ରା.ବି)ଆମାଶୟ ଝାଡ଼ା।

ଶୂଳାକୃତ—ବିଂ. (ଶୂଳ+କୃତ୍)ଶଲାକା ବିଦ୍ଧହୋଇ ସିଦ୍ଧହୋଇଥିବା (ମାଂସ)।

ଶୂଳାଗ୍ର-କ୍ଲୀ.ବି.(୬ତତ୍)ଶୂଳର ଅଗ୍ରଭାଗ।

ଶୂଳାଘାତ—ବି. (୩ତତ୍) ଶୂଳାଗ୍ର ଦ୍ୱାରା ଆଘାତ।

ଶୂଳାଙ୍କ—ବି. (ଶୂଳ+ଅଙ୍କ) ବ.ବ୍ରୀ; ଶିବ, ମହାଦେବ।

ଶୂଳାଝାଡ଼ା—ଗ୍ରା. ବି. ଆମାଶୟ ଝାଡ଼ା, ନାଳରକ୍ତ ଝାଡ଼ା।

ଶୂଳାପାଳ—ପୁଂ. ବି. ବେଶ୍ୟାପାଳ, ଯେ ବେଶ୍ୟାଙ୍କୁ ପାଳନ କରେ।

ଶୂଳି—ପୁଂ. ବି. ଶିବ, ମହାଦେବ, (ଗ୍ରା. ବି) ଅପରାଧୀକୁ ତହିଁ ଉପରେ ବସାଇ ଗୁହ୍ୟଦ୍ୱାର ବାଟେ ଫୁଟାଇ ବଧକରିବା ନିମନ୍ତେ ବ୍ୟବହୃତ ଭୂମିରେ ପ୍ରୋଥିତ ତୀକ୍ଷ୍ଣାଗ୍ର ଲୌହଶଲାକାବିଶେଷ,ପକ୍ଷୀ ବାଉଁଳ୍‌ବେଳେ ଧାନ୍ୟାଦି ଶସ୍ୟକୁ ଶିହ୍ନିବାର ତୀକ୍ଷ୍ଣାଗ୍ର ବିଶିଷ୍ଟ କାଷ୍ଠ-ଦଣ୍ଡ।

ଶୂଳିଆପଦା—ଗ୍ରା.ବି.ଶୂଳଦଣ୍ଡରେ ଦଣ୍ଡିତ ବ୍ୟକ୍ତିମାନଙ୍କ ବଧଭୂମି।

ଶୂଳିକ—ପୁଂ. ବି. (ଶୂଳ+ଇକ)ଶଶକ, ଠେକୁଆ, ଶଲାକା ବିଦ୍ଧହୋଇ ସିଦ୍ଧ ହୋଇଥିବା ମାଂସ, (ବିଂ) ଲୌହ-ଶଲାକାବିଦ୍ଧ(ମାଂସଖଣ୍ଡ),ଶୂଳବିଶିଷ୍ଟ।

ଶୂଳିକାପ୍ରୋତ—ପୁଂ.ବି.ଲୌହଶଲାକା-ବିଦ୍ଧ ମାଂସାଦି।

ଶୂଳିନ—ପୁଂ. ବି. କ୍ଷୀରୀର ବୃକ୍ଷ, ଯଜ୍ଞ-ଡିମ୍ବିରି ଗଛ।

ଶୂଳିନୀ—ସ୍ତ୍ରୀ. ବି. (ଶୂଳ+ଇନ୍+ଈ) ଦୁର୍ଗା, ନାଗବଲ୍ଲୀ ଲତା।

ଶୂଳିମୁଖ--ବି.ନରକଭେଦ (ମାତୃହତ୍ୟା-କାରୀ ଏହି ନରକରେ ଶତବର୍ଷର ବାସ କରେ)।

ଶୂଳୀ—ପୁଂ. ବି. (ଶୂଳ+ଇନ୍) ଶିବ, ଶଶକ, ଛଣପଟ, (ପୁଂ.ବିଂ) ଶୂଳାସ୍ତ୍ର-ଧାରୀ, ଶୂଳରୋଗଗ୍ରସ୍ତ, (ସ୍ତ୍ରୀ.ବି-ଶୂଳ+ଈ) ଜଳଜ ଶାକବିଶେଷ, ପାଣିଲଜ-କୁଳୀ, (ସ୍ତ୍ରୀ) ଶୂଳିନୀ।

ଶୂଳେଇ—ଗ୍ରା. ବି. ଏକପ୍ରକାର ସରୁଆ ଗୁଡ଼ ବଣା,ରାଜାଙ୍କର ମଳତ୍ୟାଗ କର୍ମ

ଶୂଳ୍ୟ—ବି.(ଶୂଳ+ଯ)ଶୂଳାକୃତଦେଖ, (ବିଂ) ଶୂଳାକୃତ, ଶୂଳରେ ଦଣ୍ଡିତ-ହେବା ଯୋଗ୍ୟ।

ଶୃକା(ଗା)ଳ—ପୁଂ. ବି. (ଅସୃକ୍+ଆ+ଲା+କ.ଅ=ରକ୍ତମାଂସ ଗ୍ରହଣକରିବା, କିମ୍ବା ସୃଜ୍=ସୃଷ୍ଟି କରିବା+କ.ଅ=ରୁତୁରା ସୃଷ୍ଟି କରିବା ଭାବରୁ କିମ୍ବା ଶୃଙ୍ଗ+ଅ+ଆ+ଲା+କ.ଅ; ଶୃଙ୍ଗ-ନଥିବାରୁ)ଶିଆଳ, ବିଲୁଆ, ଗୋମାୟୁ, ନୃପବିଶେଷ, ଦୈତ୍ୟବିଶେଷ, କଟୁଭାଷୀ ବ୍ୟକ୍ତି, ପ୍ରତାରକ ବ୍ୟକ୍ତି, ଖଳବ୍ୟକ୍ତି,

ଖାରୁବ୍ୟକ୍ତି, କୃଷ୍ଣଙ୍କ ନାମ, ( ପୁଂ.ବିଂ. ) ନିଷ୍ଠୁର, ଖଳ,ଶତ୍ରୁ ଗୀର, କଟୁଭାଷୀ ।
ଶୃଗାଳକଣ୍ଟକ—ବି. ଶିଆଳକଣ୍ଟାଗଛ ।
ଶୃଗାଳକୋଳି—ବି.ଶିଆଳକୋଳି ଦେଖ, କ୍ଷୁଦ୍ର କୋଳି ।
ଶୃଗାଳମାଂସ—ବି. ବିଲୁଆମାଂସ ।
ଶୃଗାଳିକା-ବି.(ଶୃଗାଳ+କ+ଆ) ଶୃଗାଳୀ, କୋକିଶିଆଳୀ, ଭୁଇଁକଖାରୁ,ଭୟରେ ପଳାୟନ ।
ଶୃଗାଳୀ—ସ୍ତ୍ରୀ. ବି. (ଶୃଗାଳ + ଈ) ମାଈ ବିଲୁଆ, କୋକ୍ଶି ।
ଶୃଙ୍ଖଳ—ବି. ( ଶୃଙ୍ଗ+ ଖଳ+କ.ଅ ) ଶିକୁଳି,ନିଗଡ଼,ଲୌହମୟ ପଦବନ୍ଧନୀ, ବନ୍ଧନ, ପୁରୁଷର ଅଣ୍ଟାଦୃଡ଼ା, ନିୟମ, କ୍ଷତ, ହସ୍ତୀର ପାଦବନ୍ଧନ ଶିକୁଳି, ଲେଖାରେ ବ୍ୟବହୃତ ବନ୍ଧନୀ ଚିହ୍ନ ।
ଶୃଙ୍ଖଳକ—ବି. (ଶୃଙ୍ଖଳ+କ) ଓଟ ଶିକୁଳି, କାଷ୍ଠନିର୍ମିତ ପାଦବନ୍ଧନୀ ଦ୍ୱାରା ବଦ୍ଧ କରଣାବକ, ଉଷ୍ଟ୍ର, ଘୋଡ଼ରେ ଚିଙ୍କିଆ ଲଗାଯାଇଥିବା ପଶୁ ।
ଶୃଙ୍ଖଳତା(ତ୍ୱ)—ବି. ନିୟମିତତା,ନିୟମ-ବଦ୍ଧତା ।
ଶୃଙ୍ଖଳଯମକ—ବି. ଶୃଙ୍ଖଳାଯମକ ଦେଖ ।
ଶୃଙ୍ଖଳା—ବି. ( ଶୃଙ୍ଖଳ+ଆ ) ଶୃଙ୍ଖଳ ଦେଖ, କ୍ଷତ, ନିୟମ, ଧାରା,ଅଳଂକାର ବିଶେଷ,ରଚନାରେ ଅକ୍ଷରନିୟମରକ୍ଷା-ବିଶେଷ ।
ଶୃଙ୍ଖଳାବଦ୍ଧ—ପୁଂ. ବିଂ. (୩ତତ୍)ଶିକୁଳି ଦ୍ୱାରା ବନ୍ଧା ହୋଇଥିବା, ନିୟମବଦ୍ଧ ।
ଶୃଙ୍ଖଳାଯମକ—ଗ୍ରା. ବି. ଯେଉଁ ରଚନାରେ ଯମକ ରକ୍ଷିତ ହୋଇଥାଏ ।
ଶୃଙ୍ଖଳିତ--ବିଂ.(ଶୃଙ୍ଖଳ+ଇତ) ଶୃଙ୍ଖଳା-ବଦ୍ଧ, ବନ୍ଧନୀ ଦ୍ୱାରା ଆବଦ୍ଧ (ବାକ୍ୟ) ।
ଶୃଙ୍ଗ—ବି. (ଶୃ+କ.ଗ) ପଶୁଙ୍କ ଶିଙ୍ଗ, ବିଷାଣ,ପର୍ବତର ଚୂଡ଼ା,ଧନୁର ଅଗ୍ରଭାଗ, ଚିହ୍ନ, ପ୍ରଭୁତ୍ୱ, ପିଚକାରୀ ଯନ୍ତ୍ର, ଶୃଙ୍ଗ ନିର୍ମିତ ବାଦ୍ୟ, ତୀକ୍ଷ୍ଣ ଅଗ୍ରଭାଗ, ପଦ୍ମ, କାମୋଦ୍ରେକ,କୃତ୍ରିମ ଉତ୍ସ,ମୁନିବିଶେଷ, କଙ୍କୁଆଗଛ, ଋଷଭ ନାମକ ଔଷଧ,ଖଣ୍ଡ, ଚନ୍ଦ୍ରର ଶୃଙ୍ଗ, ପ୍ରାସାଦର ଶିଖର, ଉଚ୍ଚତା, ଊର୍ଦ୍ଧ୍ୱ ।
ଶୃଙ୍ଗକ—ବି. (ଶୃଙ୍ଗ + ସ୍ୱାର୍ଥେ.କ) ଶୃଙ୍ଗ ଦେଖ । [ ଟକ ।
ଶୃଙ୍ଗକନ୍ଦ—ବି.(ବ.ବ୍ରୀ)ଶିଙ୍ଗଡ଼ା,ଶୃଙ୍ଗା-
ଶୃଙ୍ଗଗିରି—ପୁଂ. ବି. ଶୃଙ୍ଗେରୀ ଦେଖ ।
ଶୃଙ୍ଗଜ—ବିଂ. (ଶୃଙ୍ଗ + ଜନ୍ + କ.ଅ) ଶୃଙ୍ଗନିର୍ମିତ, ଶୃଙ୍ଗଜାତ, (ବି)ଅଗୁରୁ, ବାଣ, ଶର । [ ମୂଳଭାଗ ।
ଶୃଙ୍ଗଜାହ—ବି. (ଶୃଙ୍ଗ + ଜାହ) ଶିଙ୍ଗର
ଶୃଙ୍ଗଟ—ବି. ଶିଙ୍ଘିଟାଳମାଛ ।
ଶୃଙ୍ଗଧର—ବି. (ଶୃଙ୍ଗ+ଧୃ+କ.ଅ) ପର୍ବତ ।
ଶୃଙ୍ଗନାଭ—ବି. ଏକପ୍ରକାର ବିଷ ।
ଶୃଙ୍ଗମୟ—ବିଂ. ଶୃଙ୍ଗଦ୍ୱାରା ନିର୍ମିତ, ଶୃଙ୍ଗସ୍ୱରୂପ ।
ଶୃଙ୍ଗମୂଳ—କ୍ଲୀ. ବି. (ବ.ବ୍ରୀ) ଶୃଙ୍ଗାଟକ, ଶିଙ୍ଗଡ଼ା ।
ଶୃଙ୍ଗମୋହୀ—ବି. ( ଶୃଙ୍ଗ+ମୁହ୍+କ. ଇନ୍) ଚମ୍ପକବୃକ୍ଷ ।
ଶୃଙ୍ଗରୁହ—ବି. ଶୃଙ୍ଗାଟକ, ଶିଙ୍ଗଡ଼ା ।
ଶୃଙ୍ଗରୋହସ୍—କ୍ଲୀ. ବି. ସୁଗନ୍ଧ ତୃଣ ବିଶେଷ, ରାମକର୍ପୂର ।
ଶୃଙ୍ଗବାନ୍—ବି. (ଶୃଙ୍ଗ+ବତୁ) ପର୍ବତ. (ବିଂ) ଶୃଙ୍ଗବିଶିଷ୍ଟ,ଯାହାର ଶୃଙ୍ଗଅଛି, (ସ୍ତ୍ରୀ) ଶୃଙ୍ଗବତୀ ।
ଶୃଙ୍ଗବେର—କ୍ଲୀ.ବି.ଅଦା, ଶୁଣ୍ଠି,ଗୁହକ, ଚଣ୍ଡାଳର ପୁରୀ (ଏହା ଗଙ୍ଗା କୂଳରେ ଅବସ୍ଥିତ) ।
ଶୃଙ୍ଗବେରପୁର—ବି. ଗୁହକ ଚଣ୍ଡାଳର ନଗରୀ(ଏହା ଗଙ୍ଗା କୂଳରେ ଅବସ୍ଥିତ) ।
ଶୃଙ୍ଗବେରକା-ବି.ଗୋଜିହ୍ୱାଶାକ,କୋବି ।
ଶୃଙ୍ଗସୁଖ—ବି.ଶିଙ୍ଗା ନାମକ ବାଦ୍ୟଯନ୍ତ୍ରର ବାଜଣା ।
ଶୃଙ୍ଗାଟ—ବି(ଶୃଙ୍ଗ+ଅଟ୍+କ.ଅ)ଚତୁ-ଷ୍ପଥ, ଜଳକଣ୍ଟକ, ଶିଙ୍ଗଡ଼ା, ଜଳଜ ଲତାର ଫଳ ।
ଶୃଙ୍ଗାଟ(ଟି)କ—ବି.(ଶୃଙ୍ଗାଟ+କ)ଚତୁ-ଷ୍ପଥ, ଚତୁରସ୍ତା ଛକ,ଶିଙ୍ଗଡ଼ା,ଶିଙ୍ଗଡ଼ା-ଆକାର ଖାଦ୍ୟବିଶେଷ, ଖାଦ୍ୟ ଶାକ-ବିଶେଷ, ଶରୀରର ମର୍ମସ୍ଥଳବିଶେଷ ।
ଶୃଙ୍ଗାନ୍ତର—ବି. ଉଭୟ ଶୃଙ୍ଗର ମଧ୍ୟ-ବର୍ତ୍ତୀ ବ୍ୟବଧାନ,ଶିଙ୍ଗଦ୍ୱୟର ମଧ୍ୟଭାଗ ।
ଶୃଙ୍ଗାର—ବି. ( ଶୃଙ୍ଗ + ଋ + କ.ଅ ) ସିନ୍ଦୂର, ଲବଙ୍ଗ,ଅଦା,ସୁବର୍ଣ୍ଣ,ମୈଥୁନ, ରତିକ୍ରିୟା, ରମଣ, କୃଷ୍ଣାଗୁରୁ, ଆଦ୍ୟ-(ଶୃଙ୍ଗାର)ରସ, ହାତୀ ମୁଣ୍ଡରେ ସିନ୍ଦୂ-ରାଦି ରଞ୍ଜନରୂପ ସଜ୍ଜା, ଲବଣ, ନାଟ୍ୟ-ରସ, ସୁବାସ ଚୂର୍ଣ୍ଣଯୁକ୍ତ ଅଙ୍ଗରାଗ ।
ଶୃଙ୍ଗାରକ—ବି. (ଶୃଙ୍ଗାର + କ)ସିନ୍ଦୂର, ସୁରତ, ମୈଥୁନ, ଗଜଭୂଷଣ, (ବିଂ. ଶୃଙ୍ଗ+ଆରକ)ଶୃଙ୍ଗବିଶିଷ୍ଟ ।
ଶୃଙ୍ଗାରଜନ୍ମା—ପୁଂ. ବି. (ବ.ବ୍ରୀ) କାମ-ଦେବ, ମଦନ ।
ଶୃଙ୍ଗାରଣ—ବି. ରୂପଯୌବନସମ୍ପନ୍ନା କାମିନୀକୁ ଅବଲୋକନ କରି ବିଳାସ-ବିଭ୍ରମ ଦ୍ୱାରା ପୁରୁଷର କାମୁକତ୍ୱ ପ୍ରଦର୍ଶନ ।
ଶୃଙ୍ଗାରପ୍ରିୟ-ପୁଂ.ବିଂ.ରତିପ୍ରିୟ, କାମୁକ, ବେଶ ସୌଧନପ୍ରିୟ, (ସ୍ତ୍ରୀ) ପ୍ରିୟା ।
ଶୃଙ୍ଗାରଭୂଷଣ—କ୍ଲୀ. ବି. ସିନ୍ଦୂର ।
ଶୃଙ୍ଗାରମଣ୍ଡପ—କ୍ଲୀ. ବି. ରତିଗୃହ ।
ଶୃଙ୍ଗାରଯୋନି—ପୁଂ.ବି.(ବ.ବ୍ରୀ) ମଦନ, କାମଦେବ ।
ଶୃଙ୍ଗାରରସ—ବି. ଆଦ୍ୟରସ ।
ଶୃଙ୍ଗାରବାନ୍—ପୁଂ.ବିଂ(ଶୃଙ୍ଗାର+ବତୁ) ଶୃଙ୍ଗାରବିଶିଷ୍ଟ, ମୈଥୁନାସକ୍ତ ।
ଶୃଙ୍ଗାରବେଶ—ବି. (କ.ଧା) ରତକ୍ରୀଡ଼ା ନିମନ୍ତେ ସୁବେଶ,ଦେବ ପ୍ରତିମାଙ୍କର ସୁନ୍ଦର ବେଶ ଧାରଣ, ବଡ଼ଶିଙ୍ଗାର ବେଶ ।
ଶୃଙ୍ଗାରହାର—ବି.ଶିଙ୍ଗଡ଼ାହାର,ଶେଫା-ଳିକା, ଗଙ୍ଗଶିଉଳି ଫୁଲ ।
ଶୃଙ୍ଗାରହାରଧବଳ—ବିଂ. ଗଙ୍ଗଶିଉଳି ଫୁଲପରି ଧଳା, (ସ୍ତ୍ରୀ) ଧବଳା ।
ଶୃଙ୍ଗାରାଭ୍ରବଟିକା—ବି. ଆୟୁର୍ବେଦୋକ୍ତ ବଟିକା ଔଷଧବିଶେଷ ।
ଶୃଙ୍ଗାରୀ—ବି. (ଶୃଙ୍ଗାର+ଇନ୍) ଗଜ,

ହାର୍ତ୍ତ, ଗୁଆଗଛ, ସୁବେଶ, ମାଣିକ୍ୟ, (ବିଂ) ଶୃଙ୍ଗାରବିଶିଷ୍ଟ ।

ଶୃଙ୍ଗାରୁହା—ବି. ଶୃଙ୍ଗାଟକ, ଶିଙ୍ଗଡ଼ା ।

ଶୃଙ୍ଗି—ବି. (ଶୃଙ୍ଗ+ଇ) ମତ୍ସ୍ୟବିଶେଷ, ସ୍ୱର୍ଣ୍ଣ, ଲତାବିଶେଷ ।

ଶୃଙ୍ଗିକ—ବି.ମେଣ୍ଢାଶିଙ୍ଘା ମହୁରା,ଅତିବିଷା ।

ଶୃଙ୍ଗିକା—ବି. କାକଡ଼ାଶୃଙ୍ଗୀ, ପିପ୍ପଳୀ, ଅତିବିଷା ।

[ ମେଣ୍ଢା ।

ଶୃଙ୍ଗିଣ(ନ)—ବି. (ଶୃଙ୍ଗ+ଇନ) ମେଷ,

ଶୃଙ୍ଗିଣୀ—ସ୍ତ୍ରୀ. ବି. (ଶୃଙ୍ଗିନ୍+ଈ)ଗାଈ, ମଲ୍ଲିକା,ଅତିବିଷା,କାକଡ଼ାଶୃଙ୍ଗୀ,ପୋଇ, ଅଅଁଲା,ମଞ୍ଜିଷ୍ଠା,(ବିଂ)ଶୃଙ୍ଗୀର ସ୍ତ୍ରୀଲିଙ୍ଗ ।

ଶୃଙ୍ଗୀ—ପୁଂ.ବିଂ. (ଶୃଙ୍ଗ+ଇନ୍)ଶୃଙ୍ଗବିଶିଷ୍ଟ, (ବି) ପର୍ବତ, ବୃକ୍ଷ, ବରଗଛ, ଲତାବିଶେଷ, ମୁନିବିଶେଷ, ହସ୍ତୀ, ଅତିବିଷା, ବୃଷ, ଆମ୍ବଡ଼ାଗଛ, ମହିଷ, ମତ୍ସ୍ୟବିଶେଷ, ଋଷଭକ, ଜୀବକ, ପ୍ଲକ୍ଷବୃକ୍ଷ, ମେଣ୍ଢା, ଅଳଙ୍କାର ସୁବର୍ଣ୍ଣ ।

ଶୃଙ୍ଗୀକନକ—କ୍ଲୀ. ବି. ଅଳଙ୍କାରାର୍ଥ ବ୍ୟବହୃତ ସୁବର୍ଣ୍ଣ ।

ଶୃଙ୍ଗେର—ଗ୍ରା.ବି.(ସଂ-ଶୃଙ୍ଗଗିରି)ଦାକ୍ଷିଣାତ୍ୟର ମହୀସୁର ରାଜ୍ୟର ଗୋଟିଏ ଗ୍ରାମ ।

ଶୃଙ୍ଗେରମଠ—ଗ୍ରା.ବି. ଶୃଙ୍ଗେରପୁରରେ ଶଙ୍କରାଚାର୍ଯ୍ୟଙ୍କ ଦ୍ୱାରା ପ୍ରତିଷ୍ଠିତ ପ୍ରସିଦ୍ଧ ମଠ ।

ଶୃଙ୍ଗୋଚ୍ଛ୍ରୟ—ବି. ଉଚ୍ଚଶୃଙ୍ଗ ।

ଶୃଙ୍ଗୋନ୍ନତ—ବି. ଗ୍ରହନକ୍ଷତ୍ରାଦିଙ୍କର ଗତିବିଶେଷ ।

ଶୃଙ୍ଗୋଷ୍ଣୀଷ—ପୁଂ. ବି. ସିଂହ ।

ଶୃଙ୍ଗ୍ୟ—ବିଂ. (ଶୃଙ୍ଗ+ଯ) ଶୃଙ୍ଗତୁଲ୍ୟ, ଶୃଙ୍ଗସଦୃଶ ।

ଶୃଣି—ବି. (ଶୃ+ଣି.ନି) ଅଙ୍କୁଶ ।

ଶୃଣ୍ୱନ୍—ପୁଂ. ବିଂ. (ଶ୍ରୁ+କ.ଅତ୍ରି)ଯେ ଶୁଣୁଅଛି, ଶ୍ରୋତା (ସ୍ତ୍ରୀ) ଶୃଣ୍ୱତୀ ।

ଶୃତ—ବିଂ(ଶ୍ରା+ର୍ମି.ତ)ପାକ କରାଯାଇଥିବା (ଦୁଗ୍ଧଘୃତାଦି), (ବି) କ୍ୱାଥ ।

ଶୃତକଷାୟ—ବି. କ୍ୱାଥ ।

ଶୃତକାମ-ପୁଂ.ବିଂ.ପାକ କରିବାକୁ ଇଚ୍ଛୁକ

ଶୃତଙ୍କର—ବି. (ଶୃତଂ+କୃ+କ.ଅ) ପାଚକ ।

ଶୃତଙ୍କର୍ତ୍ତା—ପୁଂ.ବି.ସିଦ୍ଧକାରକ,ପାଚକ ।

ଶୃତକୃତ୍ୟ—ବି. ପାକକାର୍ଯ୍ୟ ।

ଶୃତଶୀତ—ବିଂ. ପାକ କରାଯାଇ ଶୀତଳ ହୋଇଥିବା (ଜଳାଦି) ।

[ କରିବା ।

ଶୃତାତଙ୍କ୍ୟ—ବି.ପାକକର ଦୁଗ୍ଧକୁ ଘନ-

ଶୃତୋଷ୍ଣ-ବିଂ.ପାକ ଦ୍ୱାରା ଉତ୍ତପ୍ତ(ଖାଦ୍ୟାଦି)

ଶୃଧୁ—ପୁଂ.ବି.(ଶୃଧ୍+କ.ଉ)ବୁଦ୍ଧି,ଗୁହ୍ୟଦ୍ୱାର, (ବିଂ) କୁତ୍ସିତ ।

[ ମାଛ ।

ଶେଉଳ—ଗ୍ରା.ବି. (ସଂ-ଶକୁଲ)ଶେଉଲ-

ଶେଖର—ବି. (ଶିଖ୍+କ.ଅର) ଶିଖା, ଚୂଡ଼ା, ମସ୍ତକ, କିରୀଟ, ମୁକୁଟ, କିରୀଟସ୍ଥ ପୁଷ୍ପ, ଶିଖାସ୍ଥିତ ମାଳା, ଶିରୋଭୂଷଣ, ଶୃଙ୍ଗ, ଲବଙ୍ଗ, ସଜନା ମୂଳ, (ବିଂ) ଶ୍ରେଷ୍ଠ ।

ଶେଖରିତ—ବିଂ. ମୁକୁଟଯୁକ୍ତ ।

ଶେଖରୀ—ବି. (ଶେଖର+ଈ) ମଲ୍ଲଙ୍ଗ ।

ଶେଜ(ଯ)—ଗ୍ରା. ବି. (ସଂ-ଶଯ୍ୟା)ଶଯ୍ୟା, ଲେପ, ତୁଳାପୂର୍ଣ୍ଣ ବିଛଣା, (ଯା. ବି) କାଚର ପ୍ରଦୀପ ।

ଶେଠ—ଗ୍ରା. ବିଂ. (ସଂ-ଶ୍ରେଷ୍ଠ) ଶ୍ରେଷ୍ଠ, ପ୍ରଧାନ, (ଗ୍ରା.ପୁଂ.ବି) (ସଂ-ଶ୍ରେଷ୍ଠୀ) ବଡ଼ ବଣିକ୍, ବୈଶ୍ୟମାନଙ୍କ ବଂଶୋପାଧିବିଶେଷ, ଧନୀ, ଲକ୍ଷପତି ।

ଶେଠକରଣ—ଗ୍ରା. ବି. ଗଞ୍ଜାମ କୋରାପୁଟ ଓ ଭିଶାଖାପଟଣା ଜିଲ୍ଲାର ହିନ୍ଦୁ ଜାତିବିଶେଷ ।

ଶେଠି—ଗ୍ରା. ବି. (ସଂ-ଶ୍ରେଷ୍ଠୀ)ଧୋବାଙ୍କ ବଂଶୋପାଧି ।

ଶେଢୁଆ—ଗ୍ରା. ବି. କାଠଯୋଡ଼ି ନଦୀରୁ କଟକର ୧ମାଃ ପୂର୍ବରେ ବାହାରିଥିବା ଶାଖାନଦୀ ।

ଶେଣ—ଗ୍ରା.ବି. ମେଦିନୀପୁର ଓ ବାଲେଶ୍ୱରଆଦି ଅଞ୍ଚଳର ରାଜସମ୍ପ୍ରଦାୟର ବଂଶୋପାଧିବିଶେଷ ।

ଶେଣଗୀ—ସ୍ତ୍ରୀ. ବି. ବୁଦ୍ଧି, ଜ୍ଞାନ ।

ଶେଣା—ଗ୍ରା. ବି. (ସଂ- ସେଚନୀ) ପାଣିବାହିବାରେ ବ୍ୟବହୃତ ବାଉଁଶନିର୍ମିତ ପାତ୍ରବିଶେଷ ।

ଶେଣି—ଗ୍ରା. ବି. (ସଂ-ଶ୍ରେଣୀ) ଘରଲଘରର ଖୁଣ୍ଟ ଉପରେ ଲମ୍ବବାଗରେ ଦିଆଯିବା ଲମ୍ବକାଠ, ଯାହାଉପରେ ରୁଅମାନ ରହେ ।

ଶେତ—ଗ୍ରା.ବିଂ.(ସଂ-ଶ୍ୱେତ)ଶ୍ୱେତ,ଧଳା ।

ଶେପ(ଫ)—ବି. (ଶୀ+କ.ପ,ଫ) ପୁଚ୍ଛ, ଲିଙ୍ଗ, ଶିଶ୍ନ, (ବିଂ) ଶୟନକାରୀ,ଶାୟିତ ।

ଶେପହର୍ଷଣ—ବି. (୬ତତ୍ପୁ)ଲିଙ୍ଗୋଦ୍ରେକ ।

ଶେପାଳ—ବି.(ଶୀ+କ+ପାଲ)ଶୈବାଳ, ଶିଉଳି ।

ଶେଫାଳ(ଳୀ)—ବି. ସ୍ତ୍ରୀ. ( ଶୀ+ଅଧି +ଫ+ଅଳ+ଈ) ବେଗୁନିଆଗଛ ଓ ଫୁଲ, ଶେଫାଳିକା,ଗଙ୍ଗଶିଉଳୀ ଫୁଲ ଓ ଗଛ, ଶୃଙ୍ଗାରହାର ଦେଖ ।

ଶେଫାଳିକା—ବି. ଗଙ୍ଗଶିଉଳୀଗଛ ଓ ଫୁଲ ।

ଶେମୁଷୀ—ବି. (ଶେ+ମୁଷ୍+କ.ଅ+ଈ) ବୁଦ୍ଧି, ମତି ।

ଶେମ୍ବି—ପ୍ରା. (ସମ୍ବି) ବି. ଶିମ୍ବ ।

ଶେୟ—ବିଂ.(ଶୀ+ର୍ମି.ତବ୍ୟ) ଶୋଇବାକୁ ଉପଯୁକ୍ତ, ଶୟନାର୍ହ, ଶେତବ୍ୟ ।

ଶେର୍—ଯା. ବି. ବ୍ୟାଘ୍ର, ସିଂହ ।

ଶେର୍ଶାହ—ଯା. ବି. ଜଣେ ମୁସଲମାନ ଯୋଦ୍ଧା ।

ଶେର୍ସିଂହ—ଗ୍ରା. ବି. ପଞ୍ଜାବକେଶରୀ ରଣଜିତ୍‌ସିଂହଙ୍କର ନାତି ଓ ମହାରାଜ ଖଡ୍ଗସିଂହଙ୍କର ୨ୟ ପୁତ୍ର ।

ଶେର—ଗ୍ରା.ବି.(ସଂ-ଶରବ)ଶେର,କୁଞ୍ଜବଦ୍ରବ୍ୟ ପରିମାଣ, ୬୪ତୋଳା ପରିମାଣ, କଟକୀସେର ୧୦୫ତୋଳା ଓଜନ, ବାଲେଶ୍ୱରସେର ୮୦ତୋଳା ପରିମାଣ, ପାଟଲୁଗା ଓଜନ କରିବାର ସେର୧୬ତୋଳା, ଗୌଣୀର ୧୨ ଭାଗରୁ ୧ଭାଗ ପରିମିତ ପାତ୍ର ।

ଶେରକ—ଗ୍ରା. ବି. ଏକସେର ମାପ ।

ଶେରକିଆ—ଗ୍ରା. ବିଂ. ଏକସେର ମାପ ଓଜନ ବିଶିଷ୍ଟ,ଯହିଁରେ ଏକସେର ମାପ ଜିନିଷ ରହେ, ଯହିଁରେ ସେରେ ଜିନିଷର ଭିତରହୁଏ ।

ଶେରଦରଆ—ଗ୍ରା. ବି°. ଯାହା ଥରକେ ବା ତତୋଧିକ ଥର ଶେରପରିମାଣରେ ବିକି କରାଯାଏ, ଶେରର ଦାମ୍ ଅନୁସାରେ ନିର୍ଣ୍ଣିତ (ପଣ୍ୟ) ।

ଶେରି—ଗ୍ରା. ବି°. (ଏତେ) ସେରପରିମିତ

ଶେଲ—ଗ୍ରା. ବି. (ଫ-ଶଲ୍ଲ)ତୀର, ବାଣ, ଶୂଳ ।

ଶେଲକ—ପୁଂ.ବି.ବହୁବାରବୃକ୍ଷ,ଗର୍ଭିଣୀ ଗଛ, ଓଉଗଛ ।   [ ଦେଖ ।

ଶେଲୁ—ଗ୍ରା. ବି. (ଶେଲ+ଉ) ଶେଲକ

ଶେବ—ବି. (ଶୀ+କ.ବ) ଶେଫ,ଲିଙ୍ଗ, ସର୍ପ, ସୁଖ, (ବି°) ସୁଖକର, ଉନ୍ନତ ।

ଶେବଧି—ବି. (ଶେବ+ଧା+କ.ଇ)ନିଧି, ରତ୍ନ, କୁବେରଙ୍କ ନିଧି ।

ଶେବଧିପ—ପୁଂ.ବି°.ଧନାଧିପତି,ନିଧିପତି, (ବି) କୁବେର ।   [ ଶିଉଳି ।

ଶେବଳ—ବି. (ଶୀ+କ.ବଳ)ଶୈବାଳ,

ଶେବଳିନୀ—ସ୍ତ୍ରୀ. ବି. ( ଶେବଳ+ଇନ୍ +ଈ) ନଦୀ ।   [ ଶିଉଳି ।

ଶେବାଳ—ବି. (ଶୀ+କ.ବାଳ) ଶୈବାଳ,

ଶେବାଳୀ—ବି. ସୂକ୍ଷ୍ମଜଟାମାଂସୀ ।

ଶେଶ୍ୱିୟମାନ—ପୁଂ. ବି°. ( ଶ୍ୱି+ଯଙ୍ ଲୁଗନ୍ତ+କ.ଆନ) ଅତିଶୟ ସ୍ଫୀତ ।

ଶେଷ—ପୁଂ.ବି.(ଶିଷ୍+କ.ଅ)ବଳଦେବ, ଅନନ୍ତନାଗ, ଭଗବାନଙ୍କର ଅବତାରବିଶେଷ, (ଭା.ଅ)ଧ୍ୱଂସ, ବିନାଶ,ପ୍ରସାଦ, ସ୍ୱୀକୃତେତର ବସ୍ତୁ, ନୈବେଦ୍ୟ, ହସ୍ତୀ, (ବି°) ଅବଶିଷ୍ଟ, ଅନ୍ତେସ୍ଥିତ, ସମସ୍ତଙ୍କ ଅନ୍ତେ ଘଟିବା, ପରିତ୍ୟକ୍ତ, ଉଚ୍ଛିଷ୍ଟ, (ସ୍ତ୍ରୀ) ଶେଷା ।

ଶେଷକ—ବି. ( ଶେଷ+ସ୍ୱାର୍ଥେ,କ ) ଶେଷ ଦେଖ ।

ଶେଷକରଣ—କ୍ଲୀ. ବି. ଶେଷକରିଦେବା. ଅସମ୍ପନ୍ନ କାର୍ଯ୍ୟର ସମ୍ପାଦନ ।

ଶେଷକରିବା—ଗ୍ରା. କ୍ରି. ସମାପ୍ତକରିବା, ବିନଷ୍ଟକରିବା, (ସମସ୍ତ) ସରାଇବା ।

ଶେଷକାନ୍ତ—ବି°. ଶେଷରେ ସମ୍ପାଦିତ

ଶେଷକାଳ—ବି. ଶେଷସମୟ, ମୃତ୍ୟୁର ପୂର୍ବସମୟ, ବୃଦ୍ଧାବସ୍ଥା, ପରବର୍ତ୍ତୀସମୟ, ଭବିଷ୍ୟତ୍‌କାଳ ।

ଶେଷକୁ—ଗ୍ରା. କ୍ରି. ବି°. ଅନ୍ତକାଳକୁ, ଅବଶେଷରେ ।

ଶେଷଜାତ—ବି.ଭଗ୍ନାଂଶର ହରର ସମୀକରଣ ବା ଲଘୂକରଣ ରୂପ ଅଙ୍କପ୍ରକ୍ରିୟା

ଶେଷଜୀବନ—ବି. ଜୀବନର ବାକିଥିବା ସମୟ, ବୃଦ୍ଧାବସ୍ଥା ।

ଶେଷଥର(ଦଫା)—ଗ୍ରା. ବି.ଅନ୍ତିମଥର ।

ଶେଷଦଶା—ବି. ଶେଷକାଳ ଦେଖ ।

ଶେଷଦେବ—ବି. ଅନନ୍ତଦେବ, ବିଷ୍ଣୁଙ୍କର ଏକ ଅବତାର,ବାସୁକି, ସର୍ପରାଜ ।

ଶେଷନାଗ—ପୁଂ. ବି.ଶେଷଦେବ ଦେଖ ।

ଶେଷପତି—ପୁଂ. ବି. ଅନନ୍ତଦେବ,ରାଜ୍ୟଶାସକ, ଅଧ୍ୟକ୍ଷ, ସର୍ବପରିଦର୍ଶକ ।

ଶେଷଭାଗ—ପୁଂ. ବି. ଅବଶିଷ୍ଟ ଅଂଶ ।

ଶେଷଭୁକ୍—ପୁଂ. ବି°. (ଶେଷ+ଭୁଜ୍+କ.କ୍ୱିପ୍) ସମସ୍ତଙ୍କ ଶେଷରେ ଭୋଜନକାରୀ ।

ଶେଷଭୂତ—ବି°. ଅବଶିଷ୍ଟ, ବାକି ।

ଶେଷଭୂଷଣ—ପୁଂ. ବି. ବିଷ୍ଣୁ ।

ଶେଷଭୋକ୍ତା—ପୁଂ. ବି°. (ଶେଷ+ଭୋକ୍ତୃ) ଯେ ପରିବାରର ସର୍ବଶେଷରେ ଭୋଜନ କରେ ।

ଶେଷଭୋଜନ—ବି. ନିମନ୍ତ୍ରିତ ବ୍ୟକ୍ତିଙ୍କୁ ଭୋଜନ ଦେଇ ଶେଷରେ ଭୋଜନ କରିବା, ପାନ୍ଧାବଶେଷଭୋଜନ ।

ଶେଷରକ୍ଷଣ—ବି. କାର୍ଯ୍ୟ ଆରମ୍ଭକରି ଶେଷପର୍ଯ୍ୟନ୍ତ ତାହା ପ୍ରତିପାଳନ ।

ଶେଷରାତ୍ରି—ବି. ରାତ୍ରିର ଶେଷପହର, ପାହାନ୍ତିଆ ।   [ (ଭଗବାନ୍) ।

ଶେଷରୂପୀ—ପୁଂ. ବି°. ଶେଷରୂପଧାରୀ

ଶେଷରେ—ଗ୍ରା.କ୍ରି. ବି°. ଶେଷକାଳରେ, ସମସ୍ତଙ୍କପରେ ।

ଶେଷବତ୍‌ଅନୁମାନ—ବି. (ନ୍ୟାୟ)କାର୍ଯ୍ୟ ଦେଖି କାରଣର ଅନୁମାନ ।

ଶେଷଶୟନ—ବି.(ତତ୍ତ୍ୱ)କଳ୍ପାନ୍ତ ପ୍ରଳୟରେ ବିଷ୍ଣୁଙ୍କର ଅନନ୍ତନାଗ ଉପରେ ଶୟନ ।

ଶେଷଶାୟୀ—ପୁଂ. ବି°. (ଶେଷ+ଶୀ+କ.ଇନ୍) ଶେଷ ନାଗଉପରେ ଶୟନ କରିଥିବା (ବିଷ୍ଣୁ),(ପୁଂ.ବି) ବିଷ୍ଣୁ ।

ଶେଷା—ବି. (ଶିଷ୍+ଣ.ଅ+ଆ) ପାରିତୋଷିକ ମାଳା, ଭକ୍ତମାନଙ୍କ ମଧ୍ୟରେ ବଣ୍ଟାଯିବା ଦେବତାଙ୍କ ପ୍ରସାଦ ପାଦୁକା ଓ ମାଳା,(ସ୍ତ୍ରୀ.ବି°) ଅବଶିଷ୍ଟା,ଉଚ୍ଛିଷ୍ଟା ।

ଶେଷାଂଶ—ବି. (ଶେଷ+ଅଂଶ) ଶେଷଭାଗ ଦେଖ ।

ଶେଷାଚଳମ୍—ମାନ୍ଦ୍ରାଜପ୍ରଦେଶର କଡ଼ାପା ଜିଲ୍ଲାନ୍ତର୍ଗତ ଗୋଟିଏ ଶୈଳ ଶ୍ରେଣୀ ।

ଶେଷାନ୍ନ—ବି. ଉଚ୍ଛିଷ୍ଟାନ୍ନ,ଅବଶିଷ୍ଟାନ୍ନ ।

ଶେଷାବସ୍ଥା—ବି. ( କ.ଧା ) ବୃଦ୍ଧାବସ୍ଥା, ମୁମୂର୍ଷୁ ଅବସ୍ଥା ।

ଶେଷାଶେଷୀ—ଗ୍ରା. ବି°. ପ୍ରାୟ ଶେଷ, ଶେଷପ୍ରାୟ, (ବି) ଶେଷହେବାର ପୂର୍ବ ଅବସ୍ଥା ।

ଶେଷୀ—ବି. ପ୍ରଧାନବସ୍ତୁ ।

ଶେଷେ—କ୍ରି.ବି°.ଅବଶେଷରେ,ଅନ୍ୟାନ୍ୟ ଘଟନାରେ, ଶେଷରେ ଦେଖ ।

ଶେଷେଚ୍ଛା—ବି. (କ.ଧା) ଅନ୍ତିମକାଳର ଅଭିଳାଷ ।

ଶେଷୋକ୍ତ—ବି°. ଯେଉଁ ବିଷୟ ସର୍ବଶେଷରେ ବୋଲାଯାଇଅଛି, ( ସ୍ତ୍ରୀ ) ଶେଷୋକ୍ତା ।

ଶେଷ୍ୟ—ବି°. (ଶେଷ+ଯ) ଶେଷଦର ବା ମୂଲ୍ୟ, ଯାହା ଅପେକ୍ଷା ଆଉ ଅଧିକ ମୂଲ୍ୟ ନାହିଁ ।

ଶୈକ୍ୟ—ବି°. (ଶିକ୍ୟ+ଯ) ଶିକାରେ ରଖାଯାଇ ଟଙ୍ଗାହୋଇଥିବା, ଶିଖାବିଶିଷ୍ଟ, ମୁନିଆ ।

ଶୈକ୍ଷ—ବି. (ଶିକ୍ଷା+ଅ)ପ୍ରଥମ ଶିକ୍ଷଣୀୟ ଶାସ୍ତ୍ରାଧ୍ୟୟନକାରୀ ଛାତ୍ର,ନବଛାତ୍ର ।

ଶୈକ୍ଷିକ—ପୁଂ. ବି°. ( ଶିକ୍ଷା+ଇକ ) ବେଦୋଚାରଣ ନିୟମବୋଧକ ଶିକ୍ଷାଶାସ୍ତ୍ରବେତ୍ତା ।

ଶୈଖ—ବି. ବ୍ରାତ୍ୟ ବ୍ରାହ୍ମଣର ସବର୍ଣ୍ଣା ସ୍ତ୍ରୀଜାତ ପୁତ୍ରର ସଂଜ୍ଞାବିଶେଷ (ମନୁ) ।

ଶୈଖରକ—ବି.(ଶିଖର+ଇକ)ଅପାମାର୍ଗ ଗୁଳ୍ମ ।

ଶୈଖରେୟ—ବ୍. ଅପାମାର୍ଗ ଗୁଳ୍ମ ।
ଶୈଗ୍ରବ—କ୍ଲୀ.ବ.ସଜନାମଞ୍ଜି,ସଜନାଫଳ
ଶୈଙ୍ଘାଣକ୍—ବ. ନାସାରନ୍ଧ୍ର ମଧ୍ୟସ୍ଥ ଆର୍ଦ୍ର ପରଦା ।
ଶୈତ୍ୟ—କ୍ଲୀ.ବ.(ଶୀତ + ଘ)ଶୀତଗୁଣ, ଜାଡ୍ୟ, ଶୀତଳତ୍ୱ ।
ଶୈତ୍ୟଗାଜ— ବ. ଇଷବ୍‌ଗୋଲ, ଶୀତଗାଜ ଦେଖ ।
ଶୈଥିଲ୍ୟ—କ୍ଲୀ. ବ. ( ଶିଥିଳ+ଭା.ଯ ) ଶିଥିଳତ୍ୱ, ଶ୍ଳଥତା, ତ୍ରୁଟି, ହେଳା, ଅଦୃଢ଼ ସଂଯୋଗ, ଅମନୋଯୋଗ ।
ଶୈନେୟ—ପୁଂ. ବ. ( ଶିନ+ଏୟ ) ସାତ୍ୟକ,ଶ୍ରୀକୃଷ୍ଣଙ୍କ ସାରଥି ।
ଶୈର—ବଂ.(ଶିର+ଅ)ଶିରସମ୍ବନ୍ଧୀୟ ।
ଶୈରଜ୍ଞାନ—ବ. ଶିରଦ୍ୱାରା ଉପଲବ୍ଧ ଜ୍ଞାନ ।
ଶୈଳ—କ୍ଲୀ.ବ.(ଶିଳା+ଅ)ଶୈଳେୟ, ଶିଳାଜତୁ, (ପୁଂ.ବ) ପର୍ବତ, ଭୂଧର, (ବଂ) ଶିଳାସମ୍ବନ୍ଧୀୟ, ପାର୍ବତ୍ୟ ।
ଶୈଳକ—ବ. (ଶିଳା + ଅକ)ଶୈଳଜ ଦେଖ ।
ଶୈଳକନ୍ୟା—ସ୍ତ୍ରୀ.ବ.(୬ତତ୍ତ୍ର)ହିମାଳୟ କନ୍ୟା, ପାର୍ବତୀ ।
ଶୈଳଗନ୍ଧ—କ୍ଲୀ. ବ. ଈଷତ୍ ପୀତବର୍ଣ୍ଣ ଚନ୍ଦନ, ଶାବର ଚନ୍ଦନ ।
ଶୈଳଗୁରୁ—ପୁଂ.ବ. (୬ତତ୍ତ୍ର)ହିମାଳୟ ପର୍ବତ ।
ଶୈଳଜ—ବ. (ଶୈଳ+ଜନ୍+କ.ଅ) ଓଦା ପଥର ଓ ଇଟାଉପରେ ବର୍ଷାଦିନେ ପଡ଼ୁଥିବା ଶିଉଳ, ଶୈଳେୟ, ଗନ୍ଧଦ୍ରବ୍ୟବିଶେଷ, ଶିଳାପୁଷ୍ପ, ଏକପ୍ରକାର ଶିଉଳ, ( ବଂ—୫ତତ୍ତ୍ର ) ପର୍ବତରୁ ଜାତ ।
ଶୈଳଜା—ସ୍ତ୍ରୀ. ବ. ( ଶୈଳଜ+ଆ ) ସୈଂହଳୀ ପିପ୍ପଳୀ,ଗଜପିପ୍ପଳୀ, ପାର୍ବତୀ, ଦୁର୍ଗା । [ ପାର୍ବତୀ ।
ଶୈଳତନୟା—ସ୍ତ୍ରୀ. ବ. ପର୍ବତକନ୍ୟା,
ଶୈଳଦୁହିତା—ସ୍ତ୍ରୀ.ବ. (୬ତତ୍ତ୍ର)ପାର୍ବତୀ, ଗିରିସୁତା ।
ଶୈଳଧନ୍ୱା—ପୁଂ.ବ. (ଶୈଳ+ଧନୁସ୍ + ବତ୍ତ୍ର) ମହାଦେବ, ଶିବ ।
ଶୈଳଧର—ପୁଂ. ବ. (ଶୈଳ + ଧୃ+ କ.ଅ) ଶ୍ରୀକୃଷ୍ଣ, ଗିରିଧାରୀ ।
ଶୈଳଧାତୁ—ବ. ଗୈରିକ, ଗେରୁମାଟି ।
ଶୈଳଧାତୁଜ—କ୍ଲୀ.ବ. ଶିଳାଜତୁ ।
ଶୈଳପତି—ପୁଂ.ବ. (୬ତତ୍ତ୍ର)ହିମାଳୟ ପର୍ବତ ।
ଶୈଳପତ୍ର—ବ.(ବ.ବ୍ରୀ)ବେଲଗଛ,ବିଲ୍ୱ ।
ଶୈଳପଥ—ବ. ପର୍ବତମାର୍ଗ, ପାହାଡ଼ର ରାସ୍ତା । [ ଗଙ୍ଗାନଦୀ ।
ଶୈଳପୁତ୍ରୀ—ସ୍ତ୍ରୀ. ବ. (୬ତତ୍ତ୍ର) ପାର୍ବତୀ,
ଶୈଳପ୍ରତିମା—ସ୍ତ୍ରୀ.ବ. ପ୍ରସ୍ତର ପ୍ରତିମୂର୍ତ୍ତି ।
ଶୈଳପ୍ରସ୍ଥ—ବ. ଅଧିତ୍ୟକା ।
ଶୈଳରନ୍ଧ୍ର-ବ.ପର୍ବତର ଗୁହା,ଗିରିଗୁହା ।
ଶୈଳରାଜ—ପୁଂ. ବ. (୬ତତ୍ତ୍ର) ହିମାଳୟ ପର୍ବତ, ନଗରାଜ ।
ଶୈଳରାଜଦୁହିତା(ତନୟା,ସୁତା)—ସ୍ତ୍ରୀ.ବ. ପାର୍ବତୀ, ଗଙ୍ଗାନଦୀ ।
ଶୈଳବର—ପୁଂ.ବ. ଶୈଳଶ୍ରେଷ୍ଠ ହିମାଳୟ ପର୍ବତ ।
ଶୈଳବଲ୍କଲା—ବ. ଶୈଳଜ, ଶ୍ୱେତ ପାଷାଣବିଶେଷ ।
ଶୈଳବାଳା—ସ୍ତ୍ରୀ. ବ. (୬ତତ୍ତ୍ର)ଶୈଳପୁତ୍ରୀ, ପାର୍ବତୀ,ହିମାଳୟ ପତ୍ନୀ,ମେନା ।
ଶୈଳବୀଜ—ବ. ଭଲିଆଗଛ ।
ଶୈଳଶିଖର—ବ. (୬ତତ୍ତ୍ର) ଗିରିଶୃଙ୍ଗ ।
ଶୈଳଶିବିର—ବ. ସମୁଦ୍ର ।
ଶୈଳଶୃଙ୍ଗ—ବ. ପର୍ବତଶିଖର ।
ଶୈଳସନ୍ଧି—ବ. (୬ତତ୍ତ୍ର) ଉପତ୍ୟକା ।
ଶୈଳସମ୍ଭବ—ବ. ଶୈଳଜ,ସୁଗନ୍ଧ ତୃଣବିଶେଷ ।
ଶୈଳସମ୍ଭୂତ—ବ. ଗିରିମୃତ୍ତିକା,ଗୈରିକ, ଗେରୁମାଟି ।
ଶୈଳସାର—ବଂ. (ବ.ବ୍ରୀ) ପର୍ବତତୁଲ୍ୟ ଦୃଢ଼, (ସ୍ତ୍ରୀ) ଶୈଳସାରା ।
ଶୈଳସୁତା—ସ୍ତ୍ରୀ.ବ(୬ତତ୍ତ୍ର)ଦୁର୍ଗା,ପାର୍ବତୀ, ଜ୍ୟୋତିଷ୍ମତୀ ଲତା, ଗଙ୍ଗାନଦୀ ।
ଶୈଳସୁତାସପତ୍ନୀ—ସ୍ତ୍ରୀ. ବ. ( ୬ତତ୍ତ୍ର ) (ପାର୍ବତୀଙ୍କ ସପତ୍ନୀ) ଗଙ୍ଗାନଦୀ ।
ଶୈଳସେତୁ-ବ.ପଥରରେ ତିଆରି ପୋଲ ।
ଶୈଳାଖ୍ୟ—କ୍ଲୀ. ବ. (ବ.ବ୍ରୀ) ଶୈଳଜ, ଶିଳାଜତୁ, ସୁଗନ୍ଧ ତୃଣବିଶେଷ ।
ଶୈଳାଗ୍ର—କ୍ଲୀ. ବ. (୬ତତ୍ତ୍ର) ପର୍ବତର ଉପରଭାଗ, ପର୍ବତ ଶିଖର ।
ଶୈଳାଜ—ବ. (ଶୈଳ+ଆ+ଜନ୍+ କ.ଅ) ଶୈଳେୟ ଦେଖ ।
ଶୈଳାଟ—ବ. (ଶୈଳ+ଅଟ୍+କ.ଅ) ସିଂହ, ପାର୍ବତ୍ୟଜାତି, କିରାତ, ସ୍ଫଟିକ, ଶୁଭ୍ରକାଚ ।
ଶୈଳାତ୍ମଜା—ସ୍ତ୍ରୀ.ବ. (୬ତତ୍ତ୍ର) ପାର୍ବତୀ ।
ଶୈଳାଦି—ପୁଂ. ବ. ( ଶିଳାଦ+ଇ ) ଶିଳାଦଙ୍କ ପୁତ୍ର ନନ୍ଦୀ, ଶିବାନୁଚର ।
ଶୈଳାଧିପ—ପୁଂ.ବ.(୬ତତ୍ତ୍ର ବା ୭ତତ୍ତ୍ର) ଗିରିରାଜ, ହିମାଳୟ ପର୍ବତ ।
ଶୈଳାଧିରାଜ-ପୁଂ.ବ.ଗିରିରାଜ,ହିମାଳୟ ।
ଶୈଳାଧୀଶ—ପୁଂ.ବ.ଗିରିରାଜ,ହିମାଳୟ ।
ଶୈଳାରୋହଣ—ବ. (୭ତତ୍ତ୍ର) ପର୍ବତ ଉପରକୁ ଉଠିବା ।
ଶୈଳାଳୀ—ପୁଂ. ବ. (ଶିଳାଳ+ଇନ୍) ଯେ ଶିଳାଲ ବା ନୃତ୍ୟଗୀତ ଶାସ୍ତ୍ରଦ୍ୱାରା ଜୀବିକା ନିର୍ବାହ କରେ, ନର୍ତ୍ତକ, ନଟ, (ସ୍ତ୍ରୀ) ଶୈଳାଳିନୀ ।
ଶୈଳାସା—ସ୍ତ୍ରୀ. ବ. ପାର୍ବତୀ, ଦୁର୍ଗା ।
ଶୈଳାହ୍ୱ—ବ.(ବ.ବ୍ରୀ) ଶୈଳଜ,ଶିଳାଜତୁ ।
ଶୈଳିକ୍ୟ—ପୁଂ. ବଂ.(ଶିଳ+ଇକ+ ଯ) ଧୂର୍ତ୍ତ, ଚତୁର, ସର୍ବଲିଙ୍ଗୀ, ଯେ ଲୋକଙ୍କୁ ଠକିବାକୁ ନାନାପ୍ରକାର ବେଶ ଧରେ ।
ଶୈଳୀ—ବ. (ଶିଳ+ଈ)ସ୍ୱଭାବ,ଆଚରଣ, ପ୍ରଣାଳୀ, ସଂକ୍ଷିପ୍ତ ପ୍ରଣାଳୀ, ସଦ୍‌ବ୍ୟବହାର,ସଦ୍ଭାବ, କୌଶଳ,ରଚନାପରିପାଟୀବିଶେଷ, ସଙ୍କେତ, (ଶିଳା+ ଅ+ଈ) ପଥରର ମୂର୍ତ୍ତି ।
ଶୈଳୀଭବନ—ବ. (ଶୈଳ+ଚ୍ୱି+ ଭବନ)କୋମଳ ପଦାର୍ଥ ପଥର ପାଲଟି ଯିବା ।

ଶୈଳୀଭୂତ—ବି°.(ଶୈଳ+ଚ୍ୱି+ଭୂତ) ପ୍ରସ୍ତରୀଭୂତ, ପଥର ପାଲଟି ଯାଇଥିବା, ପ୍ରସ୍ତରରେ ପରିଣତ ହୋଇଥିବା(ପଦାର୍ଥ

ଶୈଲୂଷ—ପୁଂ.ବି.(ଶୈଲୂଷ+ଅ)ନର୍ତ୍ତକ, (ଶୈଳ+ବସ୍+ଅ)ଭଲ୍ଲଆଦି ପାର୍ବତ୍ୟ ଜାତି,(ଶିଲ + ଊଷ)ଧୂର୍ତ୍ତ ବ୍ୟକ୍ତି,ଠକ, ବିଲ୍ୱବୃକ୍ଷ, (ଶିଳୂଷ+ଅ) ଗନ୍ଧର୍ବରାଜ।

ଶୈଲୂଷିକ—ପୁଂ. ବି°. (ଶିଳୂଷ+ଇକ) ନଟବୃତ୍ତି ଅନ୍ୱେଷଣକାରୀ, (ସ୍ତ୍ରୀ)ଶୈଳୂଷିକା, (ବି) ନଟ, ନର୍ତ୍ତକ।

ଶୈଲୂଷିକା—ସ୍ତ୍ରୀ. ବି. ନଟଜାତିର ସ୍ତ୍ରୀ।

ଶୈଳେନ୍ଦ୍ର—ପୁଂ.ବି. (୬ତତ୍) ଶୈଳରାଜ, ହିମାଳୟ।

ଶୈଳେନ୍ଦ୍ରସ୍ଥ—ପୁଂ. ବି. (ଶୈଳେନ୍ଦ୍ର+ସ୍ଥା+ଅ) ଭୂର୍ଜବୃକ୍ଷ, (ବି°)ହିମାଳୟସ୍ଥ।

ଶୈଳେୟ—ବି°.(ଶୈଳ+ଏୟ)ପର୍ବତ ସମ୍ବନ୍ଧୀୟ, ପର୍ବତଜାତ, (ଶିଳା+ଏୟ) ଶିଳାସଦୃଶ, (ବି) ଶୈଳଜ, ପାର୍ବତ୍ୟ ଗନ୍ଧଦ୍ରବ୍ୟବିଶେଷ, ହିଙ୍ଗୁ, ସୈନ୍ଧବଲବଣ, ମଧୁମାଛି, ଭ୍ରମର, ତାଳପର୍ଣ୍ଣୀ, ମୁରମାଂସୀ।

ଶୈଳେୟକ—ବି. ( ଶୈଳେୟ + କ ) ଶୈଳେୟ ଦେଖ।

ଶୈଳେୟୀ—ସ୍ତ୍ରୀ.ବି. (ଶୈଳ + ଏୟ + ଈ) ପାର୍ବତୀ।

ଶୈଳେଶ—ପୁଂ. ବି. ( ଶୈଳ+ଈଶ ) ୬ତତ୍; ହିମାଳୟ ପର୍ବତ।

ଶୈଳେଶ୍ୱର—ବି. କାଶୀସ୍ଥ ଶିବଲିଙ୍ଗବିଶେଷ। [ଜନ୍ୟ ବିଷ।

ଶୈଳୋଦ୍ଭଗରଳ—ବି.ପାଷାଣ ସଂଘାତ-

ଶୈଳୋଦ୍ଭବ—ବି°. (୫ତତ୍) ପର୍ବତରୁ ଜାତ, (ସ୍ତ୍ରୀ) ଶୈଳୋଦ୍ଭବା।

ଶୈଳୋଦ୍ଭବା—ସ୍ତ୍ରୀ. ବି. କ୍ଷୁଦ୍ର ପାଷାଣଭେଦୀ ଗୁଳ୍ମ, ହେମସାଗର (ରୁକୁଣୀହାତପୋଗ୍ଧ ଗୁଳ୍ମ)।

ଶୈଳ୍ୟ—ବି°.(ଶିଳା + ଯ)ଶିଳାସମ୍ବନ୍ଧୀୟ।

ଶୈବ—କ୍ଲୀ.ବି. (ଶିବ+ଅ)ଶିବପୁରାଣ, (ବି°) ଶିବସମ୍ବନ୍ଧୀୟ,ଶିବଭକ୍ତ, ଶିବପୂଜକ, (ବି) ଧାତୁରା, ଆଗ୍ରବିଶେଷ, ( ଶୀ+କ.ବ ) ଶୈବାଳ, ଶିଉଳ, ବକପୁଷ୍ପ। [ ଶାସ୍ତ୍ରବିଶେଷ।

ଶୈବଚନ୍ତାମଣି—ବି.ଶିବପୂଜା ବିଷୟକ

ଶୈବଲ—ବି. ପଦ୍ମକାଷ୍ଠ, ଶୈବାଳ, ଦେଶଭେଦ, ଗ୍ରାମାସ୍ତ୍ରଣ ବର୍ଜ୍ଜିତ ଏକ ପର୍ବତ।

ଶୈବଳିତ—ବି°. (ଶୈବଲ+ଇତ) ଶୈବାଳ ବିଶିଷ୍ଟ,ଯେଉଁଠାରେ ବେଶି ଶିଉଳ ଜନ୍ମିଅଛି।

ଶୈବଳିନୀ—ସ୍ତ୍ରୀ. ବି. (ଶୈବଲ + ଇନ୍ + ଈ) ତଟିନୀ, ନଦୀ। [ ଯୁକ୍ତ।

ଶୈବଲ୍ୟ-ବି°.(ଶୈବଲ+ଯ)ଶୈବାଳ-

ଶୈବାଗମ—ପୁଂ.ବି.ଶିବପୂଜା ବିଷୟକ ଶାସ୍ତ୍ରବିଶେଷ।

ଶୈବାଗ୍ନି—ବି. ଯଜ୍ଞାଗ୍ନି ବିଶେଷ।

ଶୈବାଳ—ବି. (ଶୀ+କ.ବାଳ) ଜଳଜ ଉଦ୍ଭିଦବିଶେଷ, ଶିଉଳ, ବୋରଝାଙ୍କି, କୁମ୍ଭିକା।

ଶୈବାଳକ—ବି. ( ଶୈବାଳ+କ ) ଶୈବାଳ ଦେଖ।

ଶୈବାଳବଜ୍ର—ବି. ଇସ୍ପାତଲୁହା।

ଶୈବ୍ୟ—ବି. (ଶିବ+ଯ) ଶ୍ରୀକୃଷ୍ଣଙ୍କର ଘୋଟକବିଶେଷ, ପାଣ୍ଡବ ସେନାପତି ନୃପବିଶେଷ, (ବି°)ଶିବସମ୍ବନ୍ଧୀୟ,(ସ୍ତ୍ରୀ) ଶୈବ୍ୟା।

ଶୈବ୍ୟା—ସ୍ତ୍ରୀ. ବି. ରାଜା ହରିଶ୍ଚନ୍ଦ୍ରଙ୍କ ପତ୍ନୀ,ରାଜା ସଗରଙ୍କ ଏକ ରାଣୀ,ମହାଭାରତୋକ୍ତ ପ୍ରତାପରାଜାଙ୍କ ପତ୍ନୀ।

ଶୈଶବ—ବି. (ଶିଶୁ+ଅ) ବାଲ୍ୟକାଳ, ବାଲ୍ୟାବସ୍ଥା।

ଶୈଶବଲୀଳା—ବି. (କ.ଧା)ବାଲ୍ୟକ୍ରୀଡ଼ା।

ଶୈଶବସ୍ମୃତି—ବି.ବାଲ୍ୟକାଳର ଘଟନାମାନ ମନେପଡ଼ିବା।

ଶୈଶବ୍ୟ-ବି.(ଶୈଶବ+ଯ)ବାଲ୍ୟାବସ୍ଥା।

ଶୈଶିର—ବି. (ଶିଶିର+ଅ) ଶ୍ୟାମବର୍ଣ୍ଣ ଚଟକପକ୍ଷୀ,(ବି°)ଶିଶିରଋତୁସମ୍ବନ୍ଧୀୟ, ଶୀତକାଳୀନ।

ଶୈଶିରକ—ପୁଂ. ବି°. (ଶିଶିର+ଇକ) ଶିଶିର ଋତୁରେ ପଠନକାରୀ, (ବି) ଇକ୍ଷବ୍ଚୋଲ. ଶୀତରାଜ।

ଶୈଶୁମାର—କ୍ଲୀ.ବି. ( ଶିଶୁମାର + ଅ ) ଶିଶୁମାରପୁଞ୍ଜ ଦେଖ।

ଶୈଶ୍ନ୍ୟ—ବି. ( ଶିଶ୍ନ+ଯ ) ଶିଶ୍ନରୋଗ, ପରାୟଣ। [ ଶେଷାଂଶ।

ଶୈଷ—ବି. ( ଶେଷ+ଅ ) ଅବଶିଷ୍ଟ,

ଶୈଷିକ—ବି°. (ଶେଷ+ଇକ) ଶେଷସମ୍ବନ୍ଧୀୟ।

ଶୈକ୍ଷୋପାଧ୍ୟାୟିକା—ସ୍ତ୍ରୀ. ବି. ଗୁରୁଙ୍କୁ ପଢ଼ାଇବା, ଅଧ୍ୟାପନା।

ଶୋ—ଗ୍ରା.କ୍ରି. (ଭୁ) ଶୟନ କର।

ଶୋଇବା—ଗ୍ରା.କ୍ରି. ଶୟନକରିବା, ପଡ଼ୁଂଥିବା, ଭୂପତିତହେବା, ଅଧୋମୁଖ ହେବା, ଓହଳିବା, ରଚକରିବା, (ଗ୍ରା ବି°) ଶୋଇଥିବା, ଶୟିତ, କ୍ଷିପ୍ତ, ସୁପ୍ତ, ଶୟନାର୍ଥ ବ୍ୟବହୃତ।

ଶୋଇବା(ଲା)ପୁଅର ଭାତନାହିଁ—ଗ୍ରା. (ପ୍ରବଚନ)ଅନୁପସ୍ଥିତ ବ୍ୟକ୍ତି କୌଣସି ଲାଭରୁ ବଞ୍ଚିତ ହେବାସ୍ଥଳରେ ଏ ପ୍ରବଚନ ବ୍ୟବହୃତ ହୁଏ।

ଶୋକ—ବି. (ଶୁଚ୍ + ଘ.ଅ) ଦୁଃଖ,କଷ୍ଟ, କ୍ରନ୍ଦନ, ଇଷ୍ଟବିୟୋଗ ବା ଅନିଷ୍ଟ ସଂଯୋଗଜନିତ ଦୁଃଖ, ଦୁଃଖଜନିତ ଚିତ୍ତବୈକଲ୍ୟ, ମନସ୍ତାପ।

ଶୋକକର—ବି°. (ଶୋକ+କୃ+କ.ଅ) ଦୁଃଖଜନକ, ଶୋକଜନକ, (ସ୍ତ୍ରୀ) ଶୋକକରୀ।

ଶୋକକାତର—ପୁଂ. ବି°. ( ୫ତତ୍ ) ଶୋକାକୁଳ ଦେଖ,(ସ୍ତ୍ରୀ)ଶୋକକାତରା।

ଶୋକକ୍ଲିଷ୍ଟ—ବି°. (୩ତତ୍) ଶୋକଦ୍ୱାରା ଅଭିଭୂତ, ମନୋଦୁଃଖଦ୍ୱାରା ଆକ୍ରାନ୍ତ, (ସ୍ତ୍ରୀ) ଶୋକକ୍ଲିଷ୍ଟା।

ଶୋକଜନକ—ବି°. (ଶୋକ+ଜନ୍+ଣିଚ୍+କ.ଅକ)ଯାହା ବା ଯେ ଶୋକ ଜାତ କରେ, (ସ୍ତ୍ରୀ) ଶୋକଜନିକା।

ଶୋକଜନିତ—ବି°. (୩ତତ୍) ଶୋକରୁ ଉତ୍ପନ୍ନ ବା ଜାତ।

ଶୋକଜର୍ଜର—ପୁଂ. ବି°. ( ୩ତତ୍ ) ଶୋକଦ୍ୱାରା ବିଶେଷଭାବରେ କ୍ଲିଷ୍ଟ,

(ସ୍ତ୍ରୀ) ଶୋକଜର୍ଜରା ।
ଶୋକଜର୍ଜରିତ—ବି°. (୩ତତ୍ତ୍ୱ)ଶୋକ-ଶୀର୍ଣ୍ଣ, ଅତିଶକ୍ତ ଶୋକରେ ଜର୍ଜରୀଭୂତ (ସ୍ତ୍ରୀ) ଶୋକଜର୍ଜରିତା ।
ଶୋକତପ୍ତ-ପୁ°.ବି°. (୩ତତ୍ତ୍ୱ)ଶୋକକ୍ଲିଷ୍ଟ ଦେଖ ।
ଶୋକତାପ—ବି. (କ.ଧା) ଶୋକଜନିତ ମନଃପୀଡ଼ା, ମନୋବେଦନା, (ଦ୍ୱନ୍ଦ୍ୱ) ଶୋକ ଓ ଆଧ୍ୟାତ୍ମିକାଦି ତ୍ରିବିଧ ଦୁଃଖ ।
ଶୋକତାପିତ—ବି°. (୩ତତ୍ତ୍ୱ)ଶୋକକ୍ଲିଷ୍ଟ ଦେଖ, (ସ୍ତ୍ରୀ) ଶୋକତାପିତା ।
ଶୋକଦାୟକ—ପୁ°.ବି°. ଶୋକଜନକ ଦେଖ, (ସ୍ତ୍ରୀ) ଶୋକଦାୟିକା ।
ଶୋକନଦୀ—ବି.(ରୂ-କ.ଧା) ନଦୀସଙ୍ଗେ ତୁଳନା କରାଯିବା ଶୋକ ।
ଶୋକନାଶ—ବି.(ବ.ବ୍ରୀ) ଅଶୋକବୃକ୍ଷ, (୬ତତ୍ତ୍ୱ) ଶୋକର ନିବୃତ୍ତି, (ବି°) ଶୋକବିନାଶକ ।
ଶୋକନାଶକ—ପୁ°. ବି°. ( ଶୋକ+ନଶ୍+ଣିଚ୍+ କ.ଅକ ) ଶୋକ-ଦୂରକାରୀ, (ସ୍ତ୍ରୀ) ନାଶିକା ।
ଶୋକପାରାବାର—ବି.(ରୂ-କ.ଧା)ଶୋକ-ସାଗର ଦେଖ ।
ଶୋକପ୍ରବାହ—ବି. (ରୂ-କ.ଧା)ଶୋକ-ନଦୀ ଦେଖ, (୬ତତ୍ତ୍ୱ)ବହୁକାଳବ୍ୟାପୀ ଶୋକ ।
ଶୋକବର୍ଦ୍ଧକ—ବି°. ( ୬ତତ୍ତ୍ୱ ) ଯାହା ବା ଯେ ଶୋକକୁ ବଢ଼ାଏ ।
ଶୋକବର୍ଦ୍ଧନ—ବି. (୬ତତ୍ତ୍ୱ) ଶୋକର ବେଗ ବଢ଼ିଯିବା, ଶୋକର ଉଦ୍ରେକ ।
ଶୋକବହ୍ନି—ବି. ( ରୂପ.କ.ଧା) ବହ୍ନି ପରିଦାହକ ଶୋକ, ଗଭୀର ଶୋକ ।
ଶୋକବର୍ଜ୍ଜିତ—ପୁ°.ବି°.(ଶୋକ+ବର୍ଜ୍ଜିତ) ୩ତତ୍ତ୍ୱ; ଶୋକଶୂନ୍ୟ ଦେଖ, (ସ୍ତ୍ରୀ) ଶୋକବର୍ଜ୍ଜିତା ।
ଶୋକବ୍ୟଞ୍ଜକ—ବି. ( ଉପପଦତତ୍ତ୍ୱ ) ଶୋକସୂଚକ, ଯାହା ଅନ୍ୟ ମନରେ ଶୋକର ଭାବ ଉପୁଜାଏ ।
ଶୋକଭାଗୀ—ପୁ°.ବି°. ଅନ୍ୟ ବ୍ୟକ୍ତିର ଶୋକର ଅଂଶ ଗ୍ରହଣକାରୀ, (ସ୍ତ୍ରୀ) ଶୋକଭାଗିନୀ ।
ଶୋକରହିତ—ପୁ°. ବି°. ( ୩ତତ୍ତ୍ୱ ) ଗତଶୋକ, (ସ୍ତ୍ରୀ) ଶୋକରହିତା ।
ଶୋକରୁଦ୍ଧ—ବି°.(୩ତତ୍ତ୍ୱ)ଶୋକଯୋଗୁଁ ବନ୍ଦହୋଇଯିବା (କଣ୍ଠ ବା ଶ୍ୱାସ ବା ବାକ୍ୟ),ଶୋକଯୋଗୁଁ ଜଡ଼ୀଭୂତ ।
ଶୋକଶୂନ୍ୟ—ବି°. (୩ତତ୍ତ୍ୱ)ଗତଶୋକ ଯାହାର ଶୋକ ନାହିଁ,(ସ୍ତ୍ରୀ) ଶୂନ୍ୟା ।
ଶୋକସଙ୍ଗୀ—ପୁ°.ବି°. ସମାନଭାବରେ ଶୋକକ୍ଲିଷ୍ଟ, (ସ୍ତ୍ରୀ)ଶୋକସଙ୍ଗିନୀ ।
ଶୋକସଙ୍ଗୀତ—ବି. (କ.ଧା) ଶୋକୋ-ଦ୍ଦୀପକ ଗୀତ,ଶୋକାର୍ତ୍ତ ବ୍ୟକ୍ତିର ଗୀତ ।
ଶୋକସନ୍ତପ୍ତ—ବି°.(୩ତତ୍ତ୍ୱ) ଶୋକତପ୍ତ ଦେଖ, (ସ୍ତ୍ରୀ) ଶୋକସନ୍ତପ୍ତା ।
ଶୋକସନ୍ତାପ—ବି.(କ.ଧା)ଶୋକଜନିତ ମନୋବେଦନା, (ଦ୍ୱନ୍ଦ୍ୱ) ଶୋକ ଓ ମନୋଦୁଃଖ ।
ଶୋକସମୁଦ୍ର—ବି. (ରୂ-କ.ଧା) ସମୁଦ୍ର-ପରି ଅସୀମ ଶୋକ ।
ଶୋକସମ୍ବରଣ—ବି. (୬ତତ୍ତ୍ୱ) ଶୋକକୁ ସମ୍ଭାଳିବା ।
ଶୋକହରଣ—ବି.ଶୋକର ବିନାଶକରଣ
ଶୋକହାରକ—ପୁ°. ବି°. ଶୋକର ବିନାଶକାରୀ, (ସ୍ତ୍ରୀ) ଶୋକହାରିକା ।
ଶୋକହାରୀ—ପୁ°. ବି°. (ଶୋକ+ହୃ+କ.ଇନ୍)ଶୋକହରଣକାରୀ,(ସ୍ତ୍ରୀ)ଶୋକ-ହାରିଣୀ,(ସ୍ତ୍ରୀ.ବି.-ଶୋକ+ହୃ+କ.ଇ) ଗନ୍ଧତୁଳସୀ, ବନଜାତ ଏକପ୍ରକାର ତୁଳସୀ, ବନବର୍ବରିକା ।
ଶୋକହୀନ—ପୁ°.ବି°.ଶୋକଶୂନ୍ୟ, (ସ୍ତ୍ରୀ) ଶୋକହୀନା ।
ଶୋକାକୁଳ—ପୁ°. ବି°. (୩ତତ୍ତ୍ୱ)ଶୋକ ଜର୍ଜରିତ ଦେଖ, (ସ୍ତ୍ରୀ) ଶୋକାକୁଳା ।
ଶୋକାଗାର—କ୍ଲୀ.ବି(କ.ଧା) ଦୁଃଖଘର, ରାଜପ୍ରାସାଦରେ ଯେଉଁ ଘରେ ରାଜ-ପରିବାରମାନେ ଶୋକ କରନ୍ତି ।
ଶୋକାଗ୍ନି—ବି. (ରୂ-କ.ଧା) ଶୋକବହ୍ନି ଦେଖ ।
ଶୋକାତୁର—ପୁ°. ବି°. (୫ତତ୍ତ୍ୱ) ଶୋକ ଯୋଗୁଁ କାତର, ଶୋକକ୍ଲିଷ୍ଟ, (ସ୍ତ୍ରୀ) ଶୋକାତୁରା ।
ଶୋକାନଳ—ବି.(ରୂ-କ.ଧା)ଶୋକବହ୍ନି, ଇଷ୍ଟ ବିୟୋଗଜନ୍ୟ ଦୁଃଖରୂପ ଅଗ୍ନି ।
ଶୋକାପନୟନ—ବି. (୬ତତ୍ତ୍ୱ)ଶୋକର କାରଣକୁ ଦୂର କରିବା ।
ଶୋକାପନୋଦନ—ବି.(୬ତତ୍ତ୍ୱ) ଶୋକ-ଦୂରୀକରଣ, ଶୋକ ନିବାରଣ ।
ଶୋକାବିଷ୍ଟ—ପୁ°. ବି°. (୩ତତ୍ତ୍ୱ)ଶୋକ କାତର, (ସ୍ତ୍ରୀ) ଶୋକାବିଷ୍ଟା ।
ଶୋକାବେଗ—ବି. (୬ତତ୍ତ୍ୱ) ଶୋକର ପ୍ରତାପ, ଶୋକବୈକଲ୍ୟ ।
ଶୋକାରି—ବି. (୬ତତ୍ତ୍ୱ) କଦମ୍ବଗଛ ।
ଶୋକାର୍ଣ୍ଣବ—ବି. (ରୂପ-କ.ଧା) ଶୋକ-ସମୁଦ୍ର ଦେଖ ।
ଶୋକାର୍ତ୍ତ—ପୁ°. ବି°. ଶୋକକାତର ଦେଖ, (ସ୍ତ୍ରୀ) ଶୋକାର୍ତ୍ତା । [ ଯୁକ୍ତ ।
ଶୋକିତ—ବି°.(ଶୋକ+ଇତ)ଶୋକ-
ଶୋକୋଚ୍ଛ୍ୱାସ—ବି. (୬ତତ୍ତ୍ୱ) ଶୋକ-ପ୍ରବାହ, ( ମଧ୍ୟ-କ.ଧା ) ଶୋକଜନିତ ଘାଢ଼ ନିଶ୍ୱାସ ।
ଶୋକୋଚ୍ଛ୍ୱସିତ—ପୁ°. ବି°. (୩ତତ୍ତ୍ୱ) ଶୋକସ୍ଫୀତ, ଶୋକରେ ଅଧୀର ।
ଶୋକୋତ୍ପାଦକ—ବି°. (୩ତତ୍ତ୍ୱ) ଯାହା ଶୋକ ଜନ୍ମାଏ, (ସ୍ତ୍ରୀ) ଶୋକୋତ୍ପାଦକା ।
ଶୋକୋଦ୍ଦୀପକ—ବି°. ଯାହା ଶୋକର ବେଗକୁ ବଢ଼ାଏ, (ସ୍ତ୍ରୀ) ଦ୍ଦୀପିକା ।
ଶୋକୋଦ୍ଦୀପନ(ନା)—ବି. ( ୬ତତ୍ତ୍ୱ ) ଶୋକବୃଦ୍ଧି, ମନରେ ଶୋକ ଜାତ ହେବା ।
ଶୋକୋଦ୍ଦୀପ୍ତ—ବି°. (୩ତତ୍ତ୍ୱ) ଶୋକ ହେତୁ ଜଳି ଉଠିବା (ଶୋକ ଜର୍ଜ-ରିତ ହୃଦୟ) ।
ଶୋକୋଦ୍ଭବ—ବି. (୫ତତ୍ତ୍ୱ) ମନରେ ଶୋକ ଜନ୍ମିବା, ଶୋକରୁ ଜାତହେବା ।
ଶୋକୋଦ୍ଭୂ—ବି°(୫ତତ୍ତ୍ୱ)ଶୋକରୁ ଜାତ
ଶୋଚନ—କ୍ଲୀ. ବି. (ଶୁଚ୍+ଭା.ଅନ) ଶୋକ, ଦୁଃଖ, ଅନୁତାପ, ଅନୁକମ୍ପା,

ଶୋକପ୍ରକାଶ,(ବି°.କ.ଅନ)ଶୋକଶୀଳ
ଶୋଚନା—ସ୍ତ୍ରୀ. ବି. (ଶୁଚ୍+ଭା.ଅନ+ଆ) ଶୋଚନ, ଦୁଃଖ, ଦୁଃଖପ୍ରକାଶ ।
ଶୋଚନୀୟ—ବି°. (ଶୁଚ୍+ମଁ.ଅନୀୟ) ଯାହାପାଇଁ ଦୁଃଖ ପ୍ରକାଶ କରାଯାଏ, ଶୋକର ବିଷୟୀଭୂତ, ଅନୁକମ୍ପନୀୟ, ଦୟାର ପାତ୍ର ।
ଶୋଚୟିତବ୍ୟ—ବି°. (ଶୁଚ୍+ଣିଚ୍+ତବ୍ୟ)ଶୋଚନୀୟ,ଦୁଃଖଜାତ ହେବାର ଯୋଗ୍ୟ । [ ଶିଖା ।
ଶୋଚିଃ—ବି. (ଶୁଚ୍+ଇସ୍)ପ୍ରଭା,ଜ୍ୱାଳା,
ଶୋଚିତ—ବି°.(ଶୋଚ+ମଁ,ତ)ଶୋକପ୍ରାପ୍ତ,ଯାହାପାଇଁ ଶୋକ ବା ଅନୁତାପ କରାହୋଇଅଛି ।
ଶୋଚିତବ୍ୟ—ବି°. (ଶୁଚ୍+ଣିଚ୍+ମଁ.ତବ୍ୟ) ଶୋଚନୀୟ ଦେଖ ।
ଶୋଚିଷ୍କେଶ—ପୁଂ. ବି. (ବ.ବ୍ରୀ) ଅଗ୍ନି, ଚିତ୍ରକବୃକ୍ଷ ।
ଶୋଚିଷ୍ମା—ବି°. ଅତିଶୟ ଦୀପ୍ତିମାନ୍ ।
ଶୋଚ୍ୟ—ବି°. (ଶୁଚ୍+ମଁ,ଯ) ଶୋଚନୀୟ,ଯାହାଲାଗି ଶୋକ କରାଯାଏ,ଅନୁକମ୍ପନୀୟ, (ସ୍ତ୍ରୀ) ଶୋଚ୍ୟା ।
ଶୋଚ୍ୟକ—ବି°. (ଶୋଚ୍ୟ+କ) ନୀଚ, କନିଷ୍ଠ, ଅପବିତ୍ର ।
ଶୋଚ୍ୟଦେଶ—ବି°. ଅପବିତ୍ର ।
ଶୌଣ୍ଡୀର୍ଯ୍ୟ—ବି.(ଶୁଣ୍ଡୀର+ଭା.ଯ)ବୀର୍ଯ୍ୟ, ବଳ, ପରାକ୍ରମ, ସାହସ, ଦମ୍ଭ, ଗର୍ବ, ଅଭିମାନ ।
ଶୋଠ—ବି°. (ଶୁଠ୍+କ.ଅ) ମୂର୍ଖ,ନୀଚ, ଧୂର୍ତ୍ତ, ପାପରତ, ଅଳସୁଆ ।
ଶୋଣ—ବି°. (ଶୋଣ୍+ମଁ.ଅ)ରକ୍ତବର୍ଣ୍ଣବିଶିଷ୍ଟ, (ସ୍ତ୍ରୀ) ଶୋଣା, (ବି) ରକ୍ତବର୍ଣ୍ଣ, ଅଗ୍ନି, ମଙ୍ଗଳଗ୍ରହ, ରକ୍ତବର୍ଣ୍ଣଘୋଟକ, ସମୁଦ୍ର, ଗଙ୍ଗାନଦୀର ଉପନଦୀବିଶେଷ, ନାଲିଆଖୁ, ସୁନାମକେଇ, ବେଗୁନିଆ, ଫଣଫଣା,ମାଣିକ୍ୟ, ରକ୍ତ,ସିନ୍ଦୂର,ନାଲିପୁରୁଣି ।
ଶୋଣକ—ବି. (ଶୋଣ+ସ୍ୱାର୍ଥେ.କ) ଶୋଣ ଦେଖ ।

ଶୋଣଝିଣ୍ଟୀ—ବି. କୁରୁବକ, ନାଲି ଦାସକେରେଣ୍ଟା ।
ଶୋଣନଦ(ଦୀ)—ବି. ଗଙ୍ଗାନଦୀର ଉପନଦୀବିଶେଷ । [ ପୁରୁଣୀ ।
ଶୋଣପତ୍ର—ପୁଂ.ବି.ରକ୍ତପୁନର୍ନବା,ନାଳି-
ଶୋଣପଦ୍ମ(କ)—ବି. ରକ୍ତପଦ୍ମ ।
ଶୋଣପୁଷ୍ପକ—ବି. କୋବିଦାର ।
ଶୋଣପୁଷ୍ପୀ—ସ୍ତ୍ରୀ. ବି. ସିନ୍ଦୂରପୁଷ୍ପୀ ।
ଶୋଣଫଳନୀ—ବି.ପୀତପୁଷ୍ପା କାଞ୍ଚନବୃକ୍ଷ ।
ଶୋଣଭଦ୍ର—ବି.ଶୋଣନଦୀ,ଗଙ୍ଗାନଦୀର ଉପନଦୀବିଶେଷ ।
ଶୋଣମଣି—ବି. ପଦ୍ମରାଗମଣି,ମାଣିକ୍ୟ ।
ଶୋଣରତ୍ନ—ବି. ପଦ୍ମରାଗମଣି,ମାଣିକ୍ୟ ।
ଶୋଣବଜ୍ର—ବି. ଲୌହବିଶେଷ,ଇସ୍ପାତ ।
ଶୋଣା—ସ୍ତ୍ରୀ. ବି°. (ଶୋଣ+ଆ) ଶୋଣବର୍ଣ୍ଣଯୁକ୍ତା, ରକ୍ତବର୍ଣ୍ଣବିଶିଷ୍ଟା,(ବି) ରକ୍ତଝିଣ୍ଟୀ । [ ଗଛ ।
ଶୋଣାକ—ବି. ବୃକ୍ଷବିଶେଷ, ଫଣଫଣା
ଶୋଣାମ୍ବୁ—ବି ରକ୍ତବର୍ଣ୍ଣ ଜଳ,ନାଲିପାଣି
ଶୋଣିତ—ବି. (ଶୋଣ+ଇତ) ରକ୍ତ, ହଳଦୀ, ଅଠା, ନିର୍ଯ୍ୟାସ, ତମ୍ବା,ହିଙ୍ଗୁଳ. କୁଙ୍କୁମ, ତୃଣକୁଙ୍କୁମ,(ବି°)ଲୋହିତ,ଲାଲ, ରକ୍ତବର୍ଣ୍ଣବିଶିଷ୍ଟ ।
ଶୋଣିତଚନ୍ଦନ—ବି. ରକ୍ତଚନ୍ଦନ ।
ଶୋଣିତଧାରା—ବି.(୬ତତ୍)ରୁଧିରପ୍ରବାହ, ଧାରାକାରରେ ପ୍ରବାହିତ ରକ୍ତ ।
ଶୋଣିତପାତ—ବି. (୬ତତ୍) ରକ୍ତପାତ ।
ଶୋଣିତପାନ—ବି.(୬ତତ୍)ରକ୍ତପାନ ।
ଶୋଣିତପାୟୀ—ପୁଂ.ବି°. (ଶୋଣିତ+ପା+କ.ଇନ୍) ରକ୍ତପାନକାରୀ, (ସ୍ତ୍ରୀ) ଶୋଣିତପାୟିନୀ ।
ଶୋଣିତପିତ୍ତ—ବି. ରକ୍ତପିତ୍ତ ।
ଶୋଣିତପୁର—ବି.ବାଣପୁର,ବାଣାସୁରର ରାଜଧାନୀ ।
ଶୋଣିତମେହ—ବି. ରକ୍ତପ୍ରମେହ, ପିତ୍ତବଶତଃ ପ୍ରମେହଭେଦ ।
ଶୋଣିତମେହୀ—ପୁଂ.ବି°.ରକ୍ତମେହ ରୋଗୀ
ଶୋଣିତରଞ୍ଜିତ—ବି°. (୩ତତ୍) ରକ୍ତରଞ୍ଜିତ, (ସ୍ତ୍ରୀ) ଶୋଣିତରଞ୍ଜିତା ।

ଶୋଣିତବର୍ଷୀ—ବି°. ଯହିଁରୁ ବର୍ଷାପରି ରୁଧିର ସ୍ରବୁଥାଏ, (ସ୍ତ୍ରୀ) ବର୍ଷିଣୀ ।
ଶୋଣିତବହସ୍ରୋତଃ—ବି. ରକ୍ତବାହିନୀ ନାଡ଼ୀ ।
ଶୋଣିତବିନ୍ଦୁ—ବି(୬ତତ୍)ରକ୍ତଟୋପା ।
ଶୋଣିତଶର୍କରା—ବି. ମଧୁଶର୍କରା ।
ଶୋଣିତଶୋଧନ—ବି°. (୬ତତ୍) ରକ୍ତପରିଷ୍କାରକ, ରକ୍ତଦୋଷନାଶକ ।
ଶୋଣିତଶୋଷକ—ବି°. ଯେ ରକ୍ତକୁ ଶୋଷି ନିଏ,ରକ୍ତକୁ ଶୁଖାଇଦେବା(ଔଷଧ)
ଶୋଣିତସମ୍ଭବ—ବି. ମାଂସଧାତୁ ।
ଶୋଣିତସ୍ରାବ—ବି. (୬ତତ୍) ରକ୍ତସ୍ରାବ ।
ଶୋଣିତାକ୍ତ—ବି°. (୩ତତ୍) ରକ୍ତାକ୍ତ, ରକ୍ତସିକ୍ତ, (ସ୍ତ୍ରୀ) ଶୋଣିତାକ୍ତା ।
ଶୋଣିତାକ୍ଷ-ବି.ରାକ୍ଷସଭେଦ (ରାମାୟଣ) ।
ଶୋଣିତାଭିଧ—ବି. କୁଙ୍କୁମ ।
ଶୋଣିତାର୍ଦ୍ର—ବି°. (୩ତତ୍) ରକ୍ତରେ ବୁଡ଼ିଯାଇଥିବା, ରକ୍ତସରସର ।
ଶୋଣିତାର୍ବୁଦ—ବି. ଶୂଳରୋଗ ଭେଦ, ରକ୍ତଜ ଆବୁ ।
ଶୋଣିତାହ୍ୱୟ—ବି. କୁଙ୍କୁମ ।
ଶୋଣିତୋପଳ-ବି.ମାଣିକ୍ୟ,ପଦ୍ମରାଗମଣି ।
ଶୋଣିମା—ପୁଂ. ବି. (ଶୋଣ+ଇମନ୍) ରକ୍ତିମା, ରକ୍ତବର୍ଣ୍ଣ ।
ଶୋଣୀ—ସ୍ତ୍ରୀ. ବି. (ଶୋଣ+ଈ) ରକ୍ତପଦ୍ମବର୍ଣ୍ଣା ସ୍ତ୍ରୀ, ବଡ଼ବା ।
ଶୋଣୋପଳ—ପୁଂ. ବି. ମାଣିକ୍ୟ ।
ଶୋଥ—ବି.(ଶୁ+ଥ)ଦେହଫୁଲା ରୋଗ ।
ଶୋଥକ—ବି. ଶୋଥରୋଗ, ଫୁଲାରୋଗ, ଗୈରିକଧାତୁ ।
ଶୋଥକୃତ୍—ବି°. (୩ତତ୍)ଯାହା ଶୋଥ ଜନ୍ମାଏ ବା ଦେହ ଫୁଲାଏ,(ବି)ଭାଲିଆ ।
ଶୋଥଘ୍ନ—ବି°.ଯାହା ଶୋଥରୋଗ ନାଶ କରେ, (ସ୍ତ୍ରୀ) ଶୋଥଘ୍ନୀ ।
ଶୋଥଘ୍ନୀ—ସ୍ତ୍ରୀ. ବି. ପୁନର୍ନବା, ପୁରୁଣୀ, ଶାଳପର୍ଣ୍ଣୀ ।
ଶୋଥଜିତ୍—ବି. (ଶୋଥ+ଜି+କ୍ୱିପ୍) ଭାଲିଆ ଗଛ, ପୁରୁଣୀଶାଗ ।
ଶୋଥହୃତ୍—ବି. (ଶୋଥ+ହୃ+କ୍ୱିପ୍)

ଭାଲଆଗଛ ।

ଶୋଧ—ବି. (ଶୁଧ୍+ଭା.ଅ) ଶୋଧନ, ପରିଷ୍କାରକରିବା, ଋଣ ପରିଶୋଧ, (ଗ୍ରା.ବି) କୌଣସି ସ୍ଥାନରୁ ସମସ୍ତଙ୍କୁ ବାହାର କରିଦେଇ ନିର୍ଜନ କରିଦେବା ଅବସ୍ଥା ।

ଶୋଧକ—ବିଂ.(ଶୁଧ୍+ଣିଚ୍+କ.ଅକ) ଶୁଦ୍ଧିକାରକ, ପବିତ୍ରକାରକ,(ବି-ଅଙ୍କଶାସ୍ତ୍ର) ବୃହତ୍ତର ରାଶିରୁ ଫେଡ଼ାଯିବା କ୍ଷୁଦ୍ରତର ରାଶି ।

ଶୋଧନ—ବି.(ଶୁଧ୍+ଣିଚ୍+ଭା.ଅନ) ନିର୍ଦ୍ଦୋଷକରଣ, ସଂଶୋଧନ, ସଂସ୍କାର, ଶୁଦ୍ଧୀକରଣ, ଋଣଶୋଧ, ଉପକାରର ପ୍ରତିଶୋଧ, ଅପକାରର ପ୍ରତିଶୋଧ, ପରିଷ୍କାରକରଣ, ହରଣ, ଭାଗକରଣ, ଧାତୁଆଦିକୁ ନିର୍ଦ୍ଦୋଷକରଣ, ବିରେଚନ, ବିଷଆଦିରୁ ଦୋଷ ଦୂରୀକରଣ, ଝାଡ଼ନ, ଉଡ଼ିଆ, ମଳ, ବିଷ୍ଠା, ପ୍ରାୟଶ୍ଚିତ୍ତ, ବ୍ରଣ କ୍ଷତାଦିର ପରିଷ୍କରଣ, (ସ୍ମୃତି) ଲିଖିତ ପତ୍ରାଦିର ପ୍ରମାଣୀକରଣ, ଅପହୃତ ଦ୍ରବ୍ୟର ସଂଖ୍ୟା ନିର୍ଣ୍ଣୟ, କାସୀସ, ହୀରାକଷ, ବହିତାବହିତ ମାସ ତଥ୍ୟାଦିର ବିଚାରଣ, ନିମ୍ବୁକ, (ବିଂ) ଶୁଦ୍ଧିକାରକ, (ଗ୍ରା.ବି) ଗାଳି, ଶୋଧା, ବକା ।

ଶୋଧନକ—ପୁଂ.ବି. ଭୃତ୍ୟ, ଗୁଳକର, (ବିଂ) ଶୋଧନକାରୀ ।

ଶୋଧନବିଧି—ବି. ବୈଦ୍ୟଶାସ୍ତ୍ରାନୁସାରେ ଭିନ୍ନଭିନ୍ନ ବସ୍ତୁ (ବିଷ ଉପଧାତୁଆଦି) କୁ ଦୋଷ ଓ ଦୁର୍ଗୁଣମାନ ଦୂରକରିବା ନିମନ୍ତେ ନିର୍ଦ୍ଦିଷ୍ଟ ବିଧାନ ।

ଶୋଧନୀ—ବି. (ଶୁଧ୍+ଣିଚ୍+ଅନ+ଈ) ତାମ୍ରବଲ୍ଲୀଲତା, ନୀଳୀ, ଝାଡୁ, ସମ୍ମାର୍ଜନୀ, ଗ୍ରନ୍ଥୁଣି । [ କନକା ।

ଶୋଧନୀବୀଜ—ବି. (ବ.ଗ୍ରା) ଜୟପାଳ,

ଶୋଧନୀୟ—ବିଂ. (ଶୁଧ୍+ଣିଚ୍+ମିଂ. ଅନୀୟ) ଯାହା ଶୋଧନ କରିବାର ଉପଯୁକ୍ତ, ପରିଶୋଧ୍ୟ, (ସ୍ତ୍ରୀ)ନୀୟା ।

ଶୋଧୟିତବ୍ୟ—ବିଂ. ( ଶୁଧ୍+ଣିଚ୍+ତବ୍ୟ) ଶୋଧିତ ହେବାର ଯୋଗ୍ୟ ।

ଶୋଧୟିତା—ପୁଂ.ବିଂ. (ଶୁଧ୍+ଣିଚ୍+କ.ତୃ)ଶୋଧକ, ଶୋଧନକାରୀ, ପରିଷ୍କାରକ, (ସ୍ତ୍ରୀ) ଶୋଧୟିତ୍ରୀ ।

ଶୋଧା—ଗ୍ରା. ବି. (ସଂ-ଶୋଧ) ଶୋଧ ଦେଖ, ଶୋଧିବା କ୍ରିୟା, ଗାଳି, ସ୍ପୃହା, ଯଥାର୍ଥ ବିଷୟ ।

ଶୋଧାଶୋଧି—ଗ୍ରା. ବି. ପରସ୍ପର ବକାବକି ହେବା, ବାରମ୍ବାର ଶୋଧନ କର୍ମ ।

ଶୋଧି—ଗ୍ରା. ବି. ଅଙ୍କପାଠବିଶେଷ, ଫେଡ଼ାଣ ଶିଖିବା ପାଠ, ଶିଶୁମାନେ ଶୂନ୍ୟଠାରୁ ଦଶପର୍ଯ୍ୟନ୍ତ ଯୋଗବିଯୋଗ ଶିଖିବା ପାଇଁ ମୁଖସ୍ଥ କରିବା ଧାଡ଼ିଦ୍ୱୟ—

ଯଥା:—

| | | | | | | | | | | |
|---|---|---|---|---|---|---|---|---|---|---|
| ୦ | ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୧୦ |
| ୧୦ | ୯ | ୮ | ୭ | ୬ | ୫ | ୪ | ୩ | ୨ | ୧ | ୦ |

ଶୋଧିତ—ବିଂ(ଶୁଧ୍+ଣିଚ୍+ତ)ବୈଦ୍ୟଶାସ୍ତ୍ରବିଧି ଦ୍ୱାରା ପରିଶୁଦ୍ଧ, ଶୁଦ୍ଧୀକୃତ, ମାର୍ଜିତ, ପରିଷ୍କୃତ, ଅପନୀତ ।

ଶୋଧିବା—ଗ୍ରା. କ୍ରି. ଶୋଧନକରିବା, ଗାଳିଦେବା, ସମୂଳେ ବିନାଶ କରିବା ।

ଶୋଧ୍ୟ—ବିଂ. ( ଶୁଧ୍+ଣିଚ୍+ମିଂ.ଯ ) ଶୋଧନୀୟ ଦେଖ ।

ଶୋଫ—ବି.(ଶୁ+ଭା.ଫ)ଶୋଥ ଦେଖ ।

ଶୋଫଘ୍ନୀ—ବି.ଶାଳପର୍ଣ୍ଣୀ,ନାଲପୁରୁଣି ।

ଶୋଫନାଶନ—ବି. (ଶୋଫ୍+ନଶ୍+ଣିଚ୍+ଅନ) ନୀଳୀବୃକ୍ଷ, (ବିଂ) ଶୋଥନାଶକ ।

ଶୋଫହାରୀ—ବି. ( ଶୋଫ + ହୃ + କ. ଇନ୍ ବନତୁଳସୀ,(ବିଂ)ଶୋଥନାଶକ ।

ଶୋଫହୃତ୍—ବି. ( ଶୋଫ + ହୃ + କ. କ୍ୱିପ୍)ଭଲଆତକ । [ ହସ୍ତୀକନ୍ଦ ।

ଶୋଫାରି—ବି. (ଶୋଫ+ଅରି)୬ତତ୍;

ଶୋଫୀ—ପୁଂ. ବିଂ. (ଶୋଫ+ଇନ୍) ଶୋଥରୋଗୀ, (ସ୍ତ୍ରୀ) ଶୋଫିନୀ ।

ଶୋଭ—ବି. (ଶୁଭ୍+କ.ଅ) ଶୋଭା, ସୌନ୍ଦର୍ଯ୍ୟ, (ବିଂ) ଶୋଭନଶୀଳ ।

ଶୋଭକୃତ୍—ପୁଂ. ବିଂ.(ଶୋଭ+କୃ+କ.କ୍ୱିପ୍) ଶୋଭନକାରକ, ସୁନ୍ଦର ।

ଶୋଭନ—ବିଂ(ଶୁଭ୍+କ.ଅନ)ଉଜ୍ଜ୍ୱଳ, ଦୀପ୍ତିଶୀଳ, ଶୋଭନୀୟ, ସୁନ୍ଦର,ଶୋଭାଯୁକ୍ତ, ଶୋଭାଜନକ, (ବି) ଜ୍ୟୋତିଷୋକ୍ତ ଯୋଗବିଶେଷ, ଗ୍ରହ, ପଦ୍ମ, (ସ୍ତ୍ରୀ) ଶୋଭନା ।

ଶୋଭନକ—ବି.ସଜନାଗଛ, (ବିଂ)ଯାହା ଶୋଭା ଜନ୍ମାଏ, ସୁନ୍ଦର ଶବ୍ଦକାରୀ,(ସ୍ତ୍ରୀ) ଶୋଭନିକା ।

ଶୋଭନତା—ବି. ସୌନ୍ଦର୍ଯ୍ୟ ।

ଶୋଭନଦେବ—ବି. ପ୍ରାଚୀନ ଉତ୍କଳର କେଶରୀ ରାଜା ।

ଶୋଭନା—ସ୍ତ୍ରୀ. ବି. ହରିଦ୍ରା, ହଳଦୀ, ଗୋରଚନା,(ବିଂ) ଶୋଭନର ସ୍ତ୍ରୀଲିଙ୍ଗ ।

ଶୋଭନାନନ—ପୁଂ. ବିଂ. (ଶୋଭନ+ଆନନ)ବ.ବ୍ରୀ, ସୁନ୍ଦର ମୁଖବିଶିଷ୍ଟ ।

ଶୋଭନୀୟ—ବିଂ. (ଶୁଭ୍+କ.ଅନୀୟ) ଶୋଭାର ଉପଯୁକ୍ତ, ଅତି ସୁନ୍ଦର ।

ଶୋଭନୀୟା—ସ୍ତ୍ରୀ. ବି. ଗୋରକ୍ଷମୁଣ୍ଡୀ, (ବିଂ) ଶୋଭନଯୋଗ୍ୟା ।

ଶୋଭୟିତା—ପୁଂ.ବି .ଶୋଭା ସମ୍ପାଦନକାରୀ, (ସ୍ତ୍ରୀ) ଶୋଭୟିତ୍ରୀ ।

ଶୋଭା—ସ୍ତ୍ରୀ. ବି. ( ଶୁଭ୍+ଣ.ଅ+ଆ ) ଦୀପ୍ତି, କାନ୍ତି, ସୌନ୍ଦର୍ଯ୍ୟ, ହଳଦୀ, ଗୋରୋଚନା,ଧଳା ଜାଇଫୁଲ.ଗୋପୀବିଶେଷ, (ବିଂ) ଶୋଭାମୟ, ସୁନ୍ଦର ।

ଶୋଭାକର—ବିଂ. (ଶୋଭା+କୃ+ଅ) ଶୋଭନୀୟ, ସୁନ୍ଦର, ଦୀପ୍ତିଶାଳୀ, ସୌନ୍ଦର୍ଯ୍ୟକାରକ, (ଶୋଭା+ଆକର) ୬ତତ୍; ଶୋଭାମୟ, ଅତିଶୋଭାଯୁକ୍ତ ।

ଶୋଭାଙ୍ଗୀ-ଗ୍ରା.ସ୍ତ୍ରୀ.ବି ରୂପବତୀ,ସୁନ୍ଦରୀ ।

ଶୋଭାଜନକ—ବିଂ. ଦୀପ୍ତି ଉତ୍ପାଦକ,

ସୌନ୍ଦର୍ଯ୍ୟ ଉତ୍ପାଦକ; (ସ୍ତ୍ରୀ)ଜନକା ।
ଶୋଭାଜାତ—ବି° (୫ତତ୍ପୁ) ସୌନ୍ଦର୍ଯ୍ୟରୁ ଉତ୍ପନ୍ନ ।
ଶୋଭାଞ୍ଜନ—ବି. (ବ.ଗ୍ରା)ସଜନାଗଛ ।
ଶୋଭାନୁଭାବକତା—ବି. ମନର ଯେଉଁ ବୃତ୍ତି ଦ୍ୱାରା ଶୋଭାର ଅନୁଭବ କରାଯାଇପାରେ ।
ଶୋଭାନ୍ୱିତ—ବି°. (୩ତତ୍ପୁ)ଶୋଭାଯୁକ୍ତ, ଅତିଶୟ ସୁନ୍ଦର ।
ଶୋଭାବତୀ—ସ୍ତ୍ରୀ.ବି°.(ଶୋଭାବତ୍+ଈ) ଶୋଭାବାନ୍‌ର ସ୍ତ୍ରୀଲିଙ୍ଗ, (ବି) ଛନ୍ଦୋବିଶେଷ,(ଗ୍ରା.ବି)ଉନବିଂଶଶତାବ୍ଦୀର ମଧ୍ୟଭାଗରେ ନବଦୁର୍ଗ ରାଜ୍ୟର ରାଜା କବି ପୁରୁଷୋତ୍ତମ ମାନଧାତାଙ୍କ ରଚିତ ଚମ୍ପୂକାବ୍ୟ ଓ ଚମ୍ପୂର ନାୟିକା, ଭଞ୍ଜ କବିଙ୍କର ଅପ୍ରକାଶିତ ପଦ୍ୟକାବ୍ୟବିଶେଷ । [ ବିଶିଷ୍ଟ ।
ଶୋଭାବନ—ଗ୍ରା ବି°.ଶୋଭାମୟ,ଶୋଭା-
ଶୋଭାବନ୍ତ—ଗ୍ରା. ବି°. ଶୋଭାଯୁକ୍ତ ।
ଶୋଭାବର୍ଦ୍ଧକ—ବି°. ଯାହା ସୌନ୍ଦର୍ଯ୍ୟ ବୃଦ୍ଧି କରେ ।
ଶୋଭାବାନ୍—ପୁଂ.ବି°. (ଶୋଭା+ବତ୍) ଦୀପ୍ତିଶାଳୀ,ଶୋଭାଯୁକ୍ତ(ସ୍ତ୍ରୀ)ଶୋଭାବତୀ ।
ଶୋଭାମୟ—ବି°. ଶୋଭାବିଶିଷ୍ଟ, ସୁନ୍ଦର, (ସ୍ତ୍ରୀ) ଶୋଭାମୟୀ ।
ଶୋଭାଯାତ୍ରା—ବି. (କ.ଧା) ସମାରୋହ (ବାଣ ବା ସାଜସଜ୍ଜାଦି) ସହିତ ବନ୍ଧୁ ଲୋକଙ୍କର ଶୃଙ୍ଖଳାବଦ୍ଧ ଗମନ,ପଞ୍ଚୁଆତ
ଶୋଭାସମ୍ପତ୍ତି—ବି(ବୁ-କ.ଧା)ସୌନ୍ଦର୍ଯ୍ୟ ରୂପ ସମ୍ପତ୍ତି ।
ଶୋଭାହୀନ—ବି°. ସୌନ୍ଦର୍ଯ୍ୟରହିତ, କାନ୍ତିହୀନ, (ସ୍ତ୍ରୀ) ଶୋଭାହୀନା ।
ଶୋଭିକ—ପୁଂ. ବି°. (ଶୋଭା+ଇକ) ଶୋଭାଶାଳୀ, ସୁନ୍ଦର, (ସ୍ତ୍ରୀ) ଶୋଭିକା ।
ଶୋଭିତ—ବି°.(ଶୋଭା+ଇତ)ଭୂଷିତ, ମଣ୍ଡିତ, ଶୋଭାଯୁକ୍ତ, ସୁନ୍ଦରୀକୃତ,(ସ୍ତ୍ରୀ) ଶୋଭିତା, (ବି. ଶୁଭ୍+ଭା.ତ)ଶୋଭା ।
ଶୋଭିତା—ସ୍ତ୍ରୀ. ବି°. (ଶୋଭିତ+ଆ) ଶୋଭାବିଶିଷ୍ଟା, ସୁନ୍ଦରୀ ।

ଶୋଭିବା—ଗ୍ରା. କ୍ରି. ଶୋଭା ପାଇବା ।
ଶୋଭିଷ୍ଠ—ବି°.(ଶୋଭା+ଇଷ୍ଠ)ଅତିଶୟ ଶୋଭାଯୁକ୍ତ ।
ଶୋଭୀ—ପୁଂ. ବି°. (ଶୋଭା+କ.ଇନ୍) ଶୋଭାଯୁକ୍ତ, ସୁନ୍ଦର, (ସ୍ତ୍ରୀ)ଶୋଭିନୀ ।
ଶୋଭୀ—ପୁଂ. ବି°. (ଶୋଭା+କ.ଇନ୍) ଶୋଭାଯୁକ୍ତ, ସୁନ୍ଦର, (ସ୍ତ୍ରୀ)ଶୋଭିନୀ ।
ଶୋଲ(ହ୍ଲ,ଲ୍ହ)—ଗ୍ରା.ବି(ସଂ-ଅଳମ୍ବୁଷା) ଶିମ୍ବାଦିବର୍ଗର ଜଳଜ ଶାକଲତାବିଶେଷ
ଶୋଲଙ୍କି—ବି.ରାଜପୁତାନାର ଅଣହିଲବାଡ଼ର ସୁପ୍ରସିଦ୍ଧ ରାଜପୁତ ବଂଶବିଶେଷ
ଶୋଳକା—ସ୍ତ୍ରୀ. ବି. ବଣହଳଦୀ ।
ଶୋଶୁଚ୍ୟମାନ—ବି°(ଶୁଚ୍+ଯଙ୍‌ଲୁଗନ୍ତ =ଶୋଶୁଚ+କ.ଆନ)ଅତିଶୟ ଶୋକକାରୀ, ଅତି ବିଳାପକାରୀ ।
ଶୋଷ—ବି.(ଶୁଷ୍+ଣିଚ୍+ଅ) ଶୋଷଣ, ଶୁଷ୍କତା, ନୀରସତା, ରସାକର୍ଷଣ, ଯକ୍ଷ୍ମାରୋଗ, କ୍ଷୁଧା, ତୃଷ୍ଣା, ପିପାସା, (ଗ୍ରା.ବି. ଲ.ଅର୍ଥ) ଅଭିଳାଷ, ଲୋଭ ।
ଶୋଷକ—ବି°( ଶୁଷ୍+ଣିଚ୍+କ.ଅକ ) ଶୋଷଣକାରୀ, ରସାକର୍ଷକ, ଯାହା ଶୁଷ୍କ କରେ,ଯାହା ଦେହକୁ ଶୀର୍ଣ୍ଣ କରେ ।
ଶୋଷକରିବା—ଗ୍ରା. କ୍ରି. ତୃଷ୍ଣାଲାଗିବା ।
ଶୋଷଣ—ବି (ଶୁଷ୍+ଭା.ଅନ)ଶୋଷିବା କ୍ରିୟା, ଶୁଷ୍କକରିବା, ରସାକର୍ଷଣ,ସ୍ନେହରାହିତ୍ୟକରଣ,(କ.ଅନ) କାମଦେବଙ୍କ ପଞ୍ଚବାଣ ମଧ୍ୟରୁ ଏକତମ,ଶୁଣ୍ଠି,ପିପ୍ପଳୀ, ଫଣଫଣାଗଛ,(ଅଧି.ଅନ) ଷୋଡ଼ଶାଂଶ ବିଶିଷ୍ଟ କଷାୟ, ଷୋହଳ ଭାଗରୁ ଏକଭାଗ ଥାଇ ନିଆଁ ଉପରୁ ଓହ୍ଲା ଯାଇଥିବା କ୍ୱାଥ, (ଲ.ଅର୍ଥ) ପରଠାରୁ ବଳପୂର୍ବକ ଅଧିକ ଧନ ଗ୍ରହଣ, (ବି°) ଶୋଷକ ଦେଖ ।
ଶୋଷଣୀୟ—ବି°. ( ଶୁଷ୍+ମି.ଅନୀୟ ) ଶୋଷା ହେବାର ଉପଯୁକ୍ତ, ନିର୍ଜଳୀକୃତ ହେବାର ଉପଯୁକ୍ତ, (ସ୍ତ୍ରୀ)ଶୋଷଣୀୟା ।
ଶୋଷମରିବା—ଗ୍ରା.ବି. ପାଣି ନ ପିଇବା ଦ୍ୱାରା ମନକୁ ତୃଷ୍ଣାକୃତ କରିବା ।

ଶୋଷମାରିବା—ଗ୍ରା.କ୍ରି. ଜଳପାନଦ୍ୱାରା ବା ନ କରିବା ଦ୍ୱାରା ତୃଷ୍ଣା ନିବୃତ୍ତି ହେବା
ଶୋଷୟିତା—ପୁଂ. ବି°.(ଶୁଷ୍+ଣିଚ୍+କ.ତୃ) ଶୋଷଣକର୍ତ୍ତା,ଯେ ରସ ଶୋଷିନିଏ,ଯେ ଶୁଖାଇଦିଏ,(ସ୍ତ୍ରୀ)ଶୋଷୟିତ୍ରୀ ।
ଶୋଷସମ୍ଭବ—କ୍ଲୀ. ବି. (୯ତତ୍ପୁ)ପିପ୍ପଳୀମୂଳ ।
ଶୋଷହା—ବି. (ଶୋଷ+ହନ୍+କ.କ୍ୱିପ୍) ଜଳଅପାମାର୍ଗ, (ବି°) ଶୋଷନାଶକ ।
ଶୋଷୀ—ଗ୍ରା. ବି°. ଶୁଷ୍କ, ରସହୀନ,ଧନଲୋଭୀ, (ସ୍ତ୍ରୀ) ଶୋଷୀ, (ବି) ଶୋଷିବାକ୍ରିୟା, ଅତିରିକ୍ତ ଦାହ ଓ ତୃଷ୍ଣାରୋଗ, ଅତ୍ୟନ୍ତ ତୃଷା, ଗାଲପାଛି ଫୁଲିବା ରୂପ ଗୋରୁମାନଙ୍କର ରୋଗବିଶେଷ, କାଠ ମଧ୍ୟରେ ପୋଲ ।
ଶୋଷା(ଷେ)ଇବା—ଗ୍ରା. କ୍ରି. ଶୋଷିବା କ୍ରିୟାର ଣିଜନ୍ତରୂପ, ତୃଷାର୍ତ୍ତ ହେବା ।
ଶୋଷାପହା—ବି.ଜଳାପାମାର୍ଗ,(ବି°)ଶୋଷନାଶକ ।
ଶୋଷିତ—ବି°. (ଶୁଷ୍+ଣିଚ୍+ମି.ତ) ନୀରସୀକୃତ, କୃତଶୋଷଣ, ଯହିଁରୁ ଚର୍ବି ବା ଜଳଆଦି ଶୋଷାଯାଇଅଛି, ଶୁଷ୍କୀକୃତ ।
ଶୋଷିବା—ଗ୍ରା. କ୍ରି. ପଦାର୍ଥରୁ ଜଳାଦି ଶୋଷଣ କରିବା,(ମୁହଁଦ୍ୱାରା)ଚୋଷିବା ।
ଶୋଷୀ—ବି°. (ଶୋଷ+ଇନ୍)ଶୋଷଣକାରୀ, ତୃଷାର୍ତ୍ତ, ( ଗ୍ରା.ବି° ) ତୃଷିତ (ବ୍ୟକ୍ତି) ।
ଶୋଷ୍ୟ—ବି°. (ଶୁଷ୍+ମି.ଯ) ଶୋଷଣୀୟ ଦେଖ ।
ଶୋହିବା—ଗ୍ରା. କ୍ରି. ଶୋଭାପାଇବା, ସୁନ୍ଦର ରୂପେ ବିରାଜିତ ହେବା ।
ଶୌକ୍—ଯା. ବି. ଇଚ୍ଛା, ଆଗ୍ରହ, ଉପଭୋଗଇଚ୍ଛା ।
ଶୌକ—ବି. (ଶୁକ+ଅ) ଶୁକସମୂହ,ସ୍ତ୍ରୀମାନଙ୍କର କରଣବିଶେଷ, ଶୋକ ।
ଶୌକର—ବି.(ଶୂକର+ଅ) ତୀର୍ଥବିଶେଷ, (ବି°) ଶୂକରସମ୍ବନ୍ଧୀୟ । [ କନ୍ଦ ।
ଶୌକରୀ—ବି. (ଶୌକର+ଈ)ବାରାହୀ-

ଶୌକ—ବ.ଗୋତ୍ରପ୍ରବର୍ତ୍ତକ ଋଷିବିଶେଷ
ଶୌକ୍ତିକ—ବ. ( ଶୁକ୍ତି+ଅକ ) ମୁକ୍ତା, ମୌକ୍ତିକ ।
ଶୌକ୍ତିକା—ସ୍ତ୍ରୀ. ବ. (ଶୌକ୍ତିକ+ଆ) ଯେଉଁ ଶାମୁକାରୁ ମୁକ୍ତା ବାହାରେ ।
ଶୌକ୍ତିକେୟ—ବ. (ଶୁକ୍ତିକା+ଏୟ) ମୁକ୍ତା, (ବି°) ଶୁକ୍ତିଜାତ ।
ଶୌକ୍ତେୟ—ବ. (ଶୁକ୍ତି+ଏୟ) ମୁକ୍ତା, (ବି°) ଶୁକ୍ତିସମ୍ବନ୍ଧୀୟ, ଶୁକ୍ତିଜାତ ।
ଶୌକ୍ର—ବି°.(ଶୁକ୍ର+ଅ)ଶୁକ୍ରଗ୍ରହ ସମ୍ବନ୍ଧୀୟ ।
ଶୌକ୍ରାୟଣ—ବ. ଶୁକ୍ରଙ୍କର ଗୋତ୍ରାପତ୍ୟ
ଶୌକ୍ରି—ବି°. ଶୁକ୍ରସମ୍ବନ୍ଧୀୟ,ଶୁକ୍ରଭବ ।
ଶୌକ୍ଲ—ବ. (ଶୁକ୍ଲ+ଭା.ଅ) ଶୁକ୍ଲତା ।
ଶୌକ୍ଲ୍ୟ—କ୍ଲୀ. ବ. (ଶୁକ୍ଲ+ଯ) ଶୁକ୍ଲତା ।
ଶୌଙ୍ଗେୟ—ପୁଂ. ବ. (ଶୁଙ୍ଗା+ଏୟ) ଗରୁଡ଼,ଶିକାରୀ ପକ୍ଷୀ ।
ଶୌଚ—କ୍ଲୀ. ବ. (ଶୁଚି+ଅ) ଶୁଚିତା, ନିର୍ମଳତା, ଶୁଦ୍ଧି, ପବିତ୍ରତା, କୁଟୁମ୍ବରେ ମୃତ୍ୟୁ ବା ଜନ୍ମ ଘଟିଲେ ନିର୍ଦ୍ଦିଷ୍ଟ ଦିବସରେ ଶୁଦ୍ଧି ନିୟମ,ମଳତ୍ୟାଗ ପରେ ଜଳଦ୍ୱାରା ଗୁହ୍ୟାଦିର ପ୍ରକ୍ଷାଳନ । [ ଦେଖ ।
ଶୌଚକ—କ୍ଲୀ.ବ.(ଶୌଚ+କ)ଶୌଚ
ଶୌଚକରିବା—ଗ୍ରା. କି. ଛୁଇଁବା,ଝାଡ଼ା ଯିବାପରେ ପାଣିନେବା ।
ଶୌଚକର୍ମ—ବ. ଦେହ ଶୁଦ୍ଧିରୂପ କର୍ମ, (ଗ୍ରା.ବ) ମଳତ୍ୟାଗ ।
ଶୌଚବିଧାନ—ବ. ଦେହ ଶୁଦ୍ଧି ନିମନ୍ତେ ନିର୍ଦ୍ଦିଷ୍ଟ ଶାସ୍ତ୍ରବିଧି ।
ଶୌଚହୀନ-ପୁଂ.ବି°.ଶୁଦ୍ଧିରହିତ,ମଇଳା, ଅପରିଷ୍କୃତ,ଯେ ଦେହକୁ ଶୁଦ୍ଧ ଓ ପବିତ୍ର ରଖେ ନାହିଁ, (ସ୍ତ୍ରୀ) ଶୌଚହୀନା ।
ଶୌଚାଚାର—ବ. ଶୁଦ୍ଧିକର୍ମ ।
ଶୌଚାଧାନ—କ୍ଲୀ.ବ.ପବିତ୍ରତା ଅନୁଷ୍ଠାନ
ଶୌଚିକ-ବ.(ଶୁଚି+ଇକ)ଶୁଣ୍ଡି ଔରସରେ କୈବର୍ତ୍ତ କନ୍ୟାର ଓ କୈବର୍ତ୍ତ ଔରସରେ ଗାନ୍ଧିକ କନ୍ୟାର ଗର୍ଭଜାତ ବର୍ଣ୍ଣସଙ୍କର ଜାତିବିଶେଷ ।
ଶୌଚେୟ--ପୁଂ.ବ.(ଶୁଚି+ଏୟ) ରଜକ, ଧୋବା, (ସ୍ତ୍ରୀ) ଶୌଚେୟୀ ।
ଶୌଚୋଦକ—କ୍ଲୀ. ବ. (କ.ଧା)ଶୌଚକାର୍ଯ୍ୟ ନିମନ୍ତେ ଅଣାଯିବା ପାଣି ।
ଶୌଟୀର—ପୁଂ. ବି°. ( ଶୁଟୀର+ଅ ) ବୀର, ଅହଂକାରୀ,ତ୍ୟାଗୀ, ଗର୍ବୀ, (ସ୍ତ୍ରୀ) ଶୌଟୀରୀ ।
ଶୌଟୀରତା—ସ୍ତ୍ରୀ.ବ.(ଶୌଟୀର+ତା) ଗର୍ବ, ଅହଂକାର ।
ଶୌଟୀର୍ଯ୍ୟ—କ୍ଲୀ.ବ.(ଶୁଟୀର+ଯ) ବୀର୍ଯ୍ୟ, ବୀରତ୍ୱ, ଗର୍ବ, ଅହଂକାର ।
ଶୌଣ୍ଡ—ପୁଂ. ବି°. (ଶୁଣ୍ଡା+ଅ) ମତ୍ତ, ଧୃଷ୍ଟ, ଅତ୍ୟାସକ୍ତ, ବିଖ୍ୟାତ, ପ୍ରଗଲ୍ଭ, ପରାଭିଭବସମର୍ଥ, (ବ) ଦେବଧାନ୍ୟ, କୁକ୍କୁଟ ।
ଶୌଣ୍ଡତା—ବ.(ଶୌଣ୍ଡ+ତା)ମତ୍ତତା ।
ଶୌଣ୍ଡି—ପୁଂ.ବି°. ପ୍ରଗଲ୍ଭ, ଧୃଷ୍ଟ, ମତ୍ତ ।
ଶୌଣ୍ଡିକ—ପୁଂ.ବ. (ଶୁଣ୍ଡା+ଇକ)ଶୁଣ୍ଡି, ମଦ୍ୟପ୍ରସ୍ତୁତକାରୀ ଓ ବିକ୍ରୟକାରୀ, ନୀଚଜାତିବିଶେଷ, (ବି°)ଶୁଣ୍ଡିକାସମ୍ବନ୍ଧୀୟ ।
ଶୌଣ୍ଡିକା(ନୀ)—ସ୍ତ୍ରୀ. ବ.(ଶୌଣ୍ଡିକ+ଆ, ଶୌଣ୍ଡିନ୍+ଈ) ଶୁଣ୍ଡିଆଣୀ ।
ଶୌଣ୍ଡିକାଳୟ-ବ.(୬ତତ୍)ମଦ୍ୟବିକ୍ରୟର ସ୍ଥାନ, ଶୁଣ୍ଡିଦୋକାନ,ମଦଭାଟିର ସ୍ଥାନ
ଶୌଣ୍ଡିକେୟ—ପୁଂ. ବ. ( ଶୁଣ୍ଡିକା+ଏୟ) ଶୁଣ୍ଡିକାନାମ୍ନୀ ରାକ୍ଷସୀର ପୁତ୍ର ।
ଶୌଣ୍ଡି(ଣ୍ଡୀ)ର--ପୁଂ.ବି°.(ଶୁଣ୍ଡା+ଇର) ଅହଂକାରୀ, ଗର୍ବୀ, ଗର୍ବିତ, ତେଜସ୍ୱୀ, (ସ୍ତ୍ରୀ) ଶୌଣ୍ଡିରୀ ।
ଶୌଣ୍ଡୀ—ବ. (ଶୁଣ୍ଡା+ଇନ୍) ପିପ୍ପଳୀ, ଚବ୍ୟ, କଣ୍ଟୁ ବାଇ,ଲଙ୍କାମରିଚ, ଶୁଣ୍ଠି-ଜାତି । [ ଦେଖ ।
ଶୌଣ୍ଡୀର୍ଯ୍ୟ-ବ.(ଶୁଣ୍ଡୀର+ଯ)ଶୌଟୀର୍ଯ୍ୟ
ଶୌଦ୍ଧୋଦନି—ପୁଂ. ବ. (ଶୁଦ୍ଧୋଦନ+ଇ) ବୁଦ୍ଧଦେବ ।
ଶୌଦ୍ର—ପୁଂ. ବି°. (ଶୂଦ୍ର+ଅ) ଶୂଦ୍ରସମ୍ବନ୍ଧୀୟ,(ଶୂଦ୍ରା+ଅ)ଶୂଦ୍ରାଗର୍ଭଜାତ, (ବ) ବ୍ରାହ୍ମଣାଦି ଦ୍ୱିଜାତି ଔରସରେ ଶୂଦ୍ରାଗର୍ଭଜାତ ସନ୍ତାନ,(ସ୍ତ୍ରୀ) ଶୌଦ୍ରୀ ।
ଶୌଧିକା—ବ. ନାଲି କାଙ୍ଗୁ ।
ଶୌନ—ବି°. (ଶୁନା+ଅ)କୁକ୍କୁର ସମ୍ବନ୍ଧୀୟ, (କ୍ଲୀ.ବ)ବିକ୍ରୟାର୍ଥ ରକ୍ଷିତ ମାଂସ ।
ଶୌନକ—ପୁଂ.ବ. (ଶୁନକ+ଅ)ମୁନିବିଶେଷ ।
ଶୌନିକ—ପୁଂ.ବ.(ଶୁନା+ଇକ)ମାଂସବିକ୍ରେତା, କଂସେଇ, ମୃଗୟା,ଶିକାର ।
ଶୌନିକଶାସ୍ତ୍ର—ବ.ମୃଗୟାବିଷୟକ ଶାସ୍ତ୍ରବିଶେଷ ।
ଶୌଭ—ବ. ( ଶୋଭା+ଅ ) ରାଜା-ହରିଶ୍ଚନ୍ଦ୍ରଙ୍କ ନଗରୀ (ଏହାର ଅନ୍ୟ ନାମ ବ୍ୟୋମଗୃହ ପୁର,(ପୁଂ.ବ) ଦେବତା, ଗୁଆଗଛ ।
ଶୌଭନେୟ—ବି°. ଶୋଭନସମ୍ବନ୍ଧୀୟ, ସୁନ୍ଦରୀ ସ୍ତ୍ରୀ ଗର୍ଭଜାତ ।
ଶୌଭାଞ୍ଜନ—ବ. ସଜନାଗଛ ।
ଶୌଭାୟନ—ବ. ଯୋଦ୍ଧୃଜାତିବିଶେଷ ।
ଶୌଭିକ—ବ. (ଶୋଭା+ଇକ) ଐନ୍ଦ୍ର-ଜାଲିକ, କୁହକୀ, (ବି°) ମାୟାବୀ, (ସ୍ତ୍ରୀ) ଶୌଭିକା ।
ଶୌର—ବି°.(ଶୂର+ଅ)ବୀରସମ୍ବନ୍ଧୀୟ ।
ଶୌରସେନ—ବି°. ( ଶୂରସେନ+ଅ ) ଶୂରସେନସମ୍ବନ୍ଧୀୟ, ଶୂରସେନଜାତ ।
ଶୌରସେନିକା(ସେନୀ)—ବି°. (ଶୂରସେନ+ଅ+ଈ ) ମଥୁରା ଦେଶସମ୍ବନ୍ଧୀୟ, (ବ)ମଥୁରା ପ୍ରଚଳିତ ଭାଷା-ବିଶେଷ, ତଦ୍ଦେଶବାସୀ ବ୍ୟକ୍ତି, ବ୍ରଜ-ବୋଲି,ପ୍ରାଚୀନ ପ୍ରାକୃତ ଭାଷାବିଶେଷ ।
ଶୌରା-ଗ୍ରା.ବ.(ସଂ-ଶବର)ଶବର ଦେଖ ।
ଶୌରି—ପୁଂ. ବ. (ଶୂର+ଇ) ବିଷ୍ଣୁ, ଶନିଗ୍ରହ,ବସୁଦେବ,ବଳଦେବ,ଶ୍ରୀକୃଷ୍ଣ, ରାମାୟଣ ବର୍ଣ୍ଣିତ ମର୍କଟ ଯୂଥପତି, ଶୂରବଂଶୀୟ ମାତ୍ର ।
ଶୌରିବାସର—ବ. ଶନିବାର ।
ଶୌର୍ପ—ବି°.(ଶୂର୍ପ+ଅ) ଶୂର୍ପ ପରିମିତ, ଏକକୋଲ ପରିମିତ, କୋଲଏ,ଦ୍ରୋଣ-ଦ୍ୱୟ ପରିମିତ । [ ଦେଖ ।
ଶୌର୍ପିକ—ବି°. (ଶୂର୍ପ+ଇକ) ଶୌର୍ପ
ଶୌର୍ପ୍ୟ--ବି°(ଶୂର୍ପ+ଯ) ଶୌର୍ପ ଦେଖ ।
ଶୌର୍ଯ୍ୟ—କ୍ଲୀ. ବ. (ଶୂର+ଭା.ଯ) ଶକ୍ତି,

ସାହସ, ଶୂରତ୍ୱ, ଶାର୍ଯ୍ୟ, ବଳ, ନାଟ୍ୟ କ୍ରୀଡ଼ା ବିଶେଷ ।

ଶୌର୍ଯ୍ୟପ୍ରକାଶ—ବି.(୬ତତ୍) ଶୂରତ୍ୱ ବା ବିକ୍ରମ ଦେଖାଇବା ।

ଶୌର୍ଯ୍ୟବାନ୍—ପୁଂ.ବିଂ(ଶୌର୍ଯ୍ୟ+ବତ୍) ଶୂର, ବୀର, ସାହସିକ, (ସ୍ତ୍ରୀ) ବତୀ ।

ଶୌର୍ଯ୍ୟବିଶିଷ୍ଟ—ପୁଂ.ବିଂ. (୩ତତ୍)ସାହସିକ (ବ୍ୟକ୍ତି ଓ କର୍ମ) ।

ଶୌର୍ଯ୍ୟବିହୀନ-ପୁଂ.ବିଂ.(୩ତତ୍) ସାହସଶୂନ୍ୟ, ଭୀରୁ, (ସ୍ତ୍ରୀ) ଶୌର୍ଯ୍ୟବିହୀନା ।

ଶୌର୍ଯ୍ୟବୀର୍ଯ୍ୟ—ବି. ଶୂରତ୍ୱ ଓ ବଳ ।

ଶୌର୍ଯ୍ୟଲବ୍ଧ—ବିଂ. (୩ତତ୍) ଶୂରତ୍ୱ ଦ୍ୱାରା ପ୍ରାପ୍ତ ।

ଶୌର୍ଯ୍ୟଶାଳୀ—ପୁଂ. ବିଂ. (ଶୌର୍ଯ୍ୟ+ଶାଳିନ୍) ବୀର୍ଯ୍ୟସମ୍ପନ୍ନ, ସାହସିକ, (ସ୍ତ୍ରୀ) ଶୌର୍ଯ୍ୟଶାଳିନୀ ।

ଶୌର୍ଯ୍ୟସମ୍ପନ୍ନ—ପୁଂ.ବିଂ(୩ତତ୍)ଶୂରତ୍ୱଯୁକ୍ତ, ବିକ୍ରମୀ, (ସ୍ତ୍ରୀ) ଶୌର୍ଯ୍ୟସମ୍ପନ୍ନା ।

ଶୌର୍ଯ୍ୟାର୍ଜିତ—ବିଂ. (୩ତତ୍) ଶୌର୍ଯ୍ୟଲବ୍ଧ, ବିକ୍ରମଲବ୍ଧ ।

ଶୌଲ—ବି. (ଶୂଳ+ଅ)ଲଙ୍ଗଳ ଲୁହା ।

ଶୌଲ୍କ—ବିଂ. (ଶୁଳ୍କ+ଅ) ଶୁଳ୍କସମ୍ବନ୍ଧୀୟ, (ପୁଂ. ବି) ଶୁଳ୍କ ଆଦାୟକାରୀ କର୍ମଚାରୀ ।

ଶୌଲ୍କିକ—ପୁଂ. ବି. (ଶୁଳ୍କ+ଇକ)ଶୁଳ୍କ ଆଦାୟକାରୀମାନଙ୍କର ଅଧ୍ୟକ୍ଷ ।

ଶୌଲ୍କିକେୟ—ବି. ଏକପ୍ରକାର ବିଷ ।

ଶୌଲ୍ପ—ବି. ଶାକବିଶେଷ, ଶଉପ ।

ଶୌଲ୍ବିକ—ବି.ବର୍ଣ୍ଣସଙ୍କର ଜାତିବିଶେଷ, କାଂସ୍ୟକାର, କଂସାରି ।

ଶୌବ—ବି. କୁକୁରରସମୂହ ।

ଶୌବଦଂଷ୍ଟ୍ର—ବିଂ.ଶ୍ୱଦଂଷ୍ଟ୍ରା ସମ୍ବନ୍ଧୀୟ ।

ଶୌବନ—ବି.କୁକୁରର ଭାବ,କୁକୁରୁଆ, କୁକୁରମାଂସ,କୁକୁରସମୂହ,(ବିଂ) କୁକୁର ସମ୍ବନ୍ଧୀୟ ।

ଶୌବନଦନ୍ତ—ବି. ଶ୍ୱଦନ୍ତ, ଉପର ଓ ତଳପାଟିରେ ଥିବା ଦୁଇଟି ଲେଖାଏ ୪ଟି ଲମ୍ବଦାନ୍ତ ।

ଶୌବନ—ବିଂ. କୁକୁର ସମ୍ବନ୍ଧୀୟ ।

ଶୌବାପଦ—ବି. (ଶ୍ୱାପଦ+ଅ) ହିଂସ୍ର-ଜନ୍ତୁ ସମ୍ବନ୍ଧୀୟ ।

ଶୌଷ୍କ(ଷ୍କୂ)ଲ—ବି. (ଶୁଷ୍କଲ+ଅ)ଶୁଷ୍କ ମାଂସର ବା ଶୁଖୁଆର ମୂଲ୍ୟ, (ବିଂ) ମତ୍ସ୍ୟମାଂସ ଭୋକ୍ତା, ମାଂସାଶୀ ।

ଶୌଷ୍କାସ୍ୟ—ବି. ମୁଖର ଶୁଷ୍କଭାବ ।

ଶ୍ଚାଣ୍ଡକଫଳା—ବି. ଫଣଫଣା ।

ଶ୍ଚୋ(ଶ୍ଚ୍ୟୋ)ତ—ବି. (ଶ୍ଚୁ;ଶ୍ଚ୍ୟୁତ + ଭା.ଅ) ପ୍ରାଗ୍ଧାର, କ୍ଷରିବା, ଟୋପାଟୋପାହୋଇ ପଡ଼ିବା, ପ୍ରୋକ୍ଷଣ, ଜଳସେଚନ ।

ଶ୍ଚୋ(ଶ୍ଚ୍ୟୋ)ତନ୍—ପୁଂ. ବିଂ. (ଶ୍ଚୁତ୍+କ. ଅନ୍) କ୍ଷରଣଶୀଳ, ଝରୁଥିବା, (ସ୍ତ୍ରୀ) ଶ୍ଚୋ(ଶ୍ଚ୍ୟୋ)ତନୀ ।

ଶ୍ମ—ବି. (ଶୀ+ମନ୍) ମୁଖ, ଶରୀର,ଶବ, ମଡ଼ା ।

ଶ୍ମଶାନ—ବି.(ଶ୍ମନ୍+ଶୀ+ଅଧି.ଅନ) ଶବଦାହସ୍ଥାନ, ପ୍ରେତଭୂମି, କବରଖାନା, ମଶାଣି ।

ଶ୍ମଶାନକାଳୀ—ସ୍ତ୍ରୀ. ବି. (କ.ଧା) ମୂର୍ଦ୍ଧାର-ଶ୍ରେଣୀ, ଶ୍ମଶାନବାସିନୀ ଦେବୀବିଶେଷ ।

ଶ୍ମଶାନକ୍ଷେତ୍ର—ବି. ଶ୍ମଶାନଭୂମି, ପ୍ରେତଭୂମି ।

ଶ୍ମଶାନନିଳୟ—ପୁଂ. ବି (ବ.ବ୍ରୀ)ଶ୍ମଶାନବାସୀ ଶିବ ।

ଶ୍ମଶାନବାସ—ବି. (୭ତତ୍) ମଶାଣିରେ ବାସକରିବା ।

ଶ୍ମଶାନନିବାସିନୀ—ସ୍ତ୍ରୀ. ବି. ଚଣ୍ଡୀ,କାଳୀ ।

ଶ୍ମଶାନନିବାସୀ—ପୁଂ.ବିଂ.ଯେ ଶ୍ମଶାନରେ ବାସକରେ, (ସ୍ତ୍ରୀ) ନିବାସିନୀ, (ପୁଂ.ବି) ମହାଦେବ ।

ଶ୍ମଶାନପତି—ପୁଂ. ବି. (୬ତତ୍) ଶିବ ।

ଶ୍ମଶାନପାଳ—ପୁଂ.ବି.ଶ୍ମଶାନରକ୍ଷକ ଚଣ୍ଡାଳ

ଶ୍ମଶାନଭସ୍ମ—ବି. ମଶାଣିର ଚିତାଭସ୍ମ ।

ଶ୍ମଶାନଭୂମି—ବି. (୬ତତ୍) ମଶାଣିଭୂଇଁ, ପ୍ରେତଭୂମି ।

ଶ୍ମଶାନଭୈରବୀ—ସ୍ତ୍ରୀ. ବି. ଶ୍ମଶାନସ୍ଥିତା ଦେବୀ ସମୂହ, ଶ୍ମଶାନଚଣ୍ଡୀ ପ୍ରଭୃତି ।

ଶ୍ମଶାନବର୍ତ୍ତୀ—ପୁଂ.ବିଂ.(ଶ୍ମଶାନ+ବୃତ୍ କ.ଇନ୍)ଶ୍ମଶାନନିବାସୀ, ଶ୍ମଶାନସ୍ଥ,ଶ୍ମଶାନରେ ଥିବା,(ସ୍ତ୍ରୀ) ଶ୍ମଶାନବର୍ତ୍ତିନୀ ।

ଶ୍ମଶାନବାସିନୀ—ସ୍ତ୍ରୀ.ବି. (ଶ୍ମଶାନ+ବାସିନ୍ +ଈ) କାଳୀ,(ବିଂ) ଶ୍ମଶାନରେ ବାସକାରିଣୀ ।

ଶ୍ମଶାନବାସୀ—ପୁଂ. ବିଂ. (ଶ୍ମଶାନ+ବସ୍ +କ.ଇନ୍) ପ୍ରେତଭୂମିରେ ବାସକାରୀ, (ସ୍ତ୍ରୀ) ବାସିନୀ,(ପୁଂ.ବି) ମହାଦେବ,ଶିବ, ଚଣ୍ଡାଳ ।

ଶ୍ମଶାନବେତାଳ—ପୁଂ. ବି. ଭୂତଯୋନି-ବିଶେଷ ।

ଶ୍ମଶାନବେଶ୍ମ—ପୁଂ.ବି. (ବ.ବ୍ରୀ)ମହାଦେବ, (ପୁଂ.ବିଂ)ଶ୍ମଶାନବାସୀ ଦେଖ ।

ଶ୍ମଶାନବୈରାଗ୍ୟ—ବି. (କ.ଧା) କ୍ଷଣିକ ବୈରାଗ୍ୟ,ଶବଦାହ ବା ଶ୍ମଶାନକୁ ଦେଖି ମନରେ ଜାତହେବା କ୍ଷଣିକ ବୈରାଗ୍ୟ ।

ଶ୍ମଶ୍ରୁ—ବି.(ଶ୍ମନ୍+ଶ୍ରି+କ.ଡୁ)ମୁଖରୋମ, ଦାଢ଼ି, ମୁଛ ।

ଶ୍ମଶ୍ରୁକର—ପୁଂ.ବି. କ୍ଷୌରକାର,ନାପିତ, ଭଣ୍ଡାରି ।

ଶ୍ମଶ୍ରୁକର୍ମ—କ୍ଲୀ.ବି.ଶ୍ମଶ୍ରୁଛେଦନ କର୍ମ,ଦାଢ଼ି କମାଇବା ।

ଶ୍ମଶ୍ରୁଣ—ପୁଂ. ବିଂ.ଶ୍ମଶ୍ରୁବିଶିଷ୍ଟ,ଦାଢ଼ିଯୁକ୍ତ ।

ଶ୍ମଶ୍ରୁମଣ୍ଡିତ—ପୁଂ. ବିଂ.(୩ତତ୍)ଦାଢ଼ିଦ୍ୱାରା ଶୋଭିତ(ମୁଖ),ଶ୍ମଶ୍ରୁଳ ।

ଶ୍ମଶ୍ରୁମୁଖ—ପୁଂ. ବିଂ. (ବ.ବ୍ରୀ) ଦାଢ଼ିଆ, (ସ୍ତ୍ରୀ), ମୁଖୀ ।

ଶ୍ମଶ୍ରୁରାଜି—ବି. (୬ତତ୍) ଦାଢ଼ିସବୁ ବା ଗୁଡ଼ାଏ ଦାଢ଼ି ।

ଶ୍ମଶ୍ରୁଳ—ପୁଂ. ବିଂ.(ଶ୍ମଶ୍ରୁ+ଲ)ଦାଢ଼ିଯୁକ୍ତ, ଦାଢ଼ିଆ, ଘନ ଓ ଲମ୍ବ ଶ୍ମଶ୍ରୁଯୁକ୍ତ,(ସ୍ତ୍ରୀ) ଶ୍ମଶ୍ରୁଳା ।

ଶ୍ମଶ୍ରୁବର୍ଦ୍ଧକ—ପୁଂ. ବି. (ଶ୍ମଶ୍ରୁ+ବର୍ଦ୍ଧକ— ଛେଦନକାରୀ) ଭଣ୍ଡାରି, ନାପିତ ।

ଶ୍ମଶ୍ରୁବର୍ଦ୍ଧନ—ବି. (୬ତତ୍) ଦାଢ଼ିବଢ଼ାଇବା, ଦାଢ଼ି କାଟିବା ।

ଶ୍ମଶ୍ରୁଶେଖର—ବି. ନଡ଼ିଆଗଛ ।

ଶ୍ମଶ୍ରୁହୀନ—ପୁଂ. ବିଂ. (୩ତତ୍) ଯାହାର ଦାଢ଼ି ନ ଥାଏ, ମାଖୁନା ।

ଶ୍ମା—ପୁଂ.ବି. (ଶୀ+କ.ମନ୍) ଶବ,ମୃତ-ଦେହ ।

ଶ୍ମୀଳନ—ବି. (ଶ୍ମୀଲ+ଭା.ଅନ) ଅକ୍ଷି-ବୁଜିବା ।

ଶ୍ୟାନ—ବି°. (ଶ୍ୟୈ+କ.ତ)ଗତ, ଯେ ଗମନ କରିଅଛି,ପ୍ରାପ୍ତ,ଶୁଷ୍କ, ଘନୀଭୂତ, (ସ୍ତ୍ରୀ) ଶ୍ୟାନା, (ବି) ଧୂମ, ଧୂଆଁ ।

ଶ୍ୟାମ—ବି°. (ଶ୍ୟୈ+କ.ମ) କୃଷ୍ଣବର୍ଣ୍ଣବିଶିଷ୍ଟ, ନୀଳକୃଷ୍ଣ, ମେଘବର୍ଣ୍ଣବିଶିଷ୍ଟ, ଶ୍ୟାମଳ, ଶାଗୁଆ, (ସ୍ତ୍ରୀ) ଶ୍ୟାମା, (ବି) ପ୍ରୟାଗସ୍ଥ ବଟବୃକ୍ଷବିଶେଷ, କୋକିଳ, କୃଷ୍ଣବର୍ଣ୍ଣ, ନୀଳକୃଷ୍ଣବର୍ଣ୍ଣ, ହରିଦ୍ବର୍ଣ୍ଣ, ଶ୍ୟାମଳବର୍ଣ୍ଣ, ଧୁସ୍ତୁର, ପୀଲୁବୃକ୍ଷ, ଦଅଣାଗୁଳ୍ମ, ଗନ୍ଧତୃଣ,ଧନଶୀ,ଗୋଲମରିଚ,ସୈନ୍ଧବଲବଣ, ମେଘ,ଶ୍ୟାମକ, ଶୁଆଁ,ଖୁରସାନୀ ଯୁଆଣୀ, ବୃନ୍ଦାରକଲତା, ଶ୍ରୀକୃଷ୍ଣ ।

ଶ୍ୟାମକ—ବି. ଗନ୍ଧତୃଣ ବା ରାମକର୍ପୂର, କୃଷ୍ଣବର୍ଣ୍ଣ, ତୃଣଧାନ୍ୟବିଶେଷ, ଶୁଆଁ, ବସୁଦେବଙ୍କ ଭାଇ ।

ଶ୍ୟାମକଣ୍ଠ—ପୁ°.ବି. ( ବ.ବ୍ରୀ ) ମୟୂର, ଶିବ, ନୀଳକଣ୍ଠ, ପକ୍ଷିବିଶେଷ ।

ଶ୍ୟାମକଲା—ବି, ଅତିବିଷା, ଅତୁଷୀ ।

ଶ୍ୟାମକାଣ୍ଡୀ—ବି. ନୀଳଦୂବା ।

ଶ୍ୟାମକାନ୍ତ—ବି. ( କ.ଧା ) ଶ୍ୟାମବର୍ଣ୍ଣ ଆଭା,(ବି°, ବ.ବ୍ରୀ) ଶ୍ୟାମଳ ଶୋଭାଯୁକ୍ତ

ଶ୍ୟାମକୁଣ୍ଡ--ବି.ବୃନ୍ଦାବନସ୍ଥ ତୀର୍ଥବିଶେଷ ।

ଶ୍ୟାମଗ୍ରନ୍ଥି—ବି, ଗଣ୍ଡଦୂବା ।

ଶ୍ୟାମଚଟକ—ବି. ଶ୍ୟାମାପକ୍ଷୀ ।

ଶ୍ୟାମଚକ୍ଷୁଷ—ବି°.ଚକ୍ଷୁଷକୃଷ୍ଣ ବା ଚକ୍ଷୁଷ ନୀଳବର୍ଣ୍ଣବିଶିଷ୍ଟ ।

ଶ୍ୟାମତା(ତ୍ୱ)—ବି.(ଶ୍ୟାମ+ତା,ତ୍ୱ)କୃଷ୍ଣତା, କାଳିମା, ଶାଗୁଆବର୍ଣ୍ଣ ।

ଶ୍ୟାମଦେଶ—ବି. ଏସିଆର ଦକ୍ଷିଣସ୍ଥ ପୂର୍ବ ଉପଦ୍ୱୀପର ଅନ୍ତର୍ଗତ ଗୋଟିଏ ସ୍ୱାଧୀନ ରାଜ୍ୟ ।

ଶ୍ୟାମନଗର—ବି, ଶ୍ରୀକୃଷ୍ଣ ।

ଶ୍ୟାମପତ୍ର—ବି. ( ବ.ବ୍ରୀ ) ତମାଲବୃକ୍ଷ, ଜମ୍ବୁବୃକ୍ଷ ।

ଶ୍ୟାମପର୍ଣ୍ଣ—ବି. (ବ.ବ୍ରୀ) ଟିକୋଷବୃକ୍ଷ ।

ଶ୍ୟାମପର୍ଣ୍ଣୀ—ବି. ଚୂହା, ଚୂ ।

ଶ୍ୟାମଭୂଷଣ—ବି.ମୂଚେ,କଳାପୋଷାକ, କୃଷ୍ଣବର୍ଣ୍ଣ ଭୂଷଣ ।

ଶ୍ୟାମମୃଗ—ବି. କୃଷ୍ଣବର୍ଣ୍ଣ ହରିଣ ।

ଶ୍ୟାମଳ—ବି°. (ଶ୍ୟାମ+ଲ)ଶ୍ୟାମବର୍ଣ୍ଣବିଶିଷ୍ଟ, ଯାହାର ଦେହର ବର୍ଣ୍ଣ କଳା, କେଳୀ, ଶାଗୁଆ, (ସ୍ତ୍ରୀ) ଶାମଳା, (ବି) କୃଷ୍ଣବର୍ଣ୍ଣ,ଗାଢ଼ ନୀଳବର୍ଣ୍ଣ,କେଳୀରଙ୍ଗ, ଶାଗୁଆବର୍ଣ୍ଣ, (ଗ୍ରା.ବି) ଶୁକପକ୍ଷୀ,କାମଦେବ, ଶ୍ୟାମାପକ୍ଷୀ ।

ଶ୍ୟାମଳଚୂଡ଼ା—ବି. (ବ.ବ୍ରୀ)ଗୁଞ୍ଜା,କାଇଞ୍ଚ

ଶ୍ୟାମଳତା(ତ୍ୱ)—ବି. (ଶ୍ୟାମଳ+ତା,ତ୍ୱ) କାଳିମା, ଶ୍ୟାମଳିମା ।

ଶ୍ୟାମଲତା—ବି. କୃଷ୍ଣବର୍ଣ୍ଣ ଲତାବିଶେଷ

ଶ୍ୟାମଳବର୍ଣ୍ଣ—ବି. ଶ୍ୟାମବର୍ଣ୍ଣ ଦେଖ ।

ଶ୍ୟାମଳଶାଳ—ବି. ଶ୍ୟାମଶାଳ ଦେଖ ।

ଶ୍ୟାମଳା—ସ୍ତ୍ରୀ.ବି.(ଶ୍ୟାମଳ+ଆ)ପାର୍ବତୀ, ଦୁର୍ଗା, କାଳୀ,ଅଶ୍ୱଗନ୍ଧା, ଜମ୍ବୁ, କସ୍ତୁରୀ

ଶ୍ୟାମଳିକା—ସ୍ତ୍ରୀ.ବି. (ଶ୍ୟାମଳ+କ+ଆ) ନୀଳୀ, ନୀଳଗୁଳ୍ମ ।

ଶ୍ୟାମଳିତ—ବି°.ଯାହା ଶ୍ୟାମବର୍ଣ୍ଣ କରାଯାଇଅଛି ।

ଶ୍ୟାମଳିମା—ବି°. ଅତ୍ୟନ୍ତ ଶ୍ୟାମବର୍ଣ୍ଣ, ଅତିଶୟ ଶ୍ୟାମଳ ।

ଶ୍ୟାମଳୀ—ସ୍ତ୍ରୀ.ବି.କାଳୀ ସ୍ତ୍ରୀ,କାଳୀଗାଈ ।

ଶ୍ୟାମଳେକ୍ଷୁ—ବି. କଜଳା ଆଖୁ ।

ଶ୍ୟାମବନ୍ଧୁ—ଗ୍ରା.ପୁ°.ବି. ଶ୍ରୀକୃଷ୍ଣଙ୍କ ନାମ

ଶ୍ୟାମବର୍ଣ୍ଣ—ବି. (କ.ଧା) କୃଷ୍ଣବର୍ଣ୍ଣ,(ବି°-ବ.ବ୍ରୀ) କୃଷ୍ଣ ବା ସବୁଜବର୍ଣ୍ଣବିଶିଷ୍ଟ, ଶ୍ୟାମଳ, (ସ୍ତ୍ରୀ) ଶ୍ୟାମବର୍ଣ୍ଣା । [ ଲତା ।

ଶ୍ୟାମଶାଳ—ବି,କଳାଦାନା,ନୀଳ କଳମ-

ଶ୍ୟାମଶବଲ—ବି. ଯମାନୁଚର କୁକ୍କୁରଦ୍ୱୟ ।

ଶ୍ୟାମଶବଲବ୍ରତ—ବି.ଯମ କୁକ୍କୁରଦ୍ୱୟର ତୃପ୍ତିସାଧକ ବ୍ରତବିଶେଷ ।

ଶ୍ୟାମଶାଳି—ବି. କଳାବର୍ଣ୍ଣ ଧାନ ।

ଶ୍ୟାମଶୋଭା—ସ୍ତ୍ରୀ.ବି.(କ.ଧା)ଶ୍ୟାମବର୍ଣ୍ଣଯୁକ୍ତ ସୌନ୍ଦର୍ଯ୍ୟ ।

ଶ୍ୟାମଶ୍ରୀ—ବି. ( କ.ଧା ) ଶ୍ୟାମକାନ୍ତ, ଶ୍ୟାମବର୍ଣ୍ଣର ସୌନ୍ଦର୍ଯ୍ୟ ।

ଶ୍ୟାମସର୍ପ—ପୁ°,ବି. କୃଷ୍ଣସର୍ପ ।

ଶ୍ୟାମସଲିଳ—ପୁ°.ବି°. (ବ,ବ୍ରୀ) ଶ୍ୟାମବର୍ଣ୍ଣ ଜଳବିଶିଷ୍ଟ,(ବି) ଯମୁନାନଦୀ,(ସ୍ତ୍ରୀ) ସଲିଳା ।

ଶ୍ୟାମସାର—ବି.କୃଷ୍ଣଖଦିର,କଳାଖଇର,

ଶ୍ୟାମସୁନ୍ଦର—ପୁ .ବି. (କ.ଧା)ଶ୍ରୀକୃଷ୍ଣ ।

ଶ୍ୟାମା—ସ୍ତ୍ରୀ,ବି. (ଶ୍ୟାମ+ଆ) ଅପ୍ରସୂତାଙ୍ଗନା, ଯେଉଁ ସ୍ତ୍ରୀ ସନ୍ତାନ ଜନ୍ମ କରିନାହିଁ, ପ୍ରିୟଙ୍ଗୁଲତା, ଯମୁନାନଦୀ,ରାତ୍ରି, ନୀଳିମା, ଗୁଗ୍ଗୁଳ, ସୋମଲତା, କୃଷ୍ଣା, ଦ୍ରୌପଦୀ, ଅମ୍ବିକା, କସ୍ତୁରୀ, ବଟପତ୍ରୀ, ନୀଳିକା, ନୀଳପୁନର୍ନବା, ପିପ୍ପଳୀ, ପଦ୍ମବୀଜ, ଗାଈ, ସ୍ତ୍ରୀ, ଗୁଡ଼ୂଚି, ଶିମ୍ବୁଗଛ, ହଳଦୀ, ନୀଳଦୂବା,ତୁଳସୀଗୁଳ୍ମ,ଶ୍ୟାମାପକ୍ଷୀ, ଗୋରୋଚନା, ହରିଦ୍ରା, କାଳୀ, ଦୁର୍ଗାଙ୍କର ଅବତାରବିଶେଷ, ତପ୍ତକାଞ୍ଚନ ବର୍ଣ୍ଣାଭା,ସୁଖ ସ୍ପର୍ଶାଙ୍ଗୀ ଯୁବତୀ, କାଳୀ ସ୍ତ୍ରୀ, ଶୁକ୍ଳଶାରିବା,ଡେମିଡ଼ିଲଇ, ଶୁଆଁଲଇ, କଳାଡହୁଡ଼ି ଲତା,ଶୁଆଁ ଧାନ, ନୀଳିକାଗୁଳ୍ମ,ଗୁଳୁଚୀ, ବୃଷ୍ଟାଭ୍ରିବା ମଧ୍ୟବୟସ୍କା ସ୍ତ୍ରୀ, ବୃନ୍ଦାରକ ।

ଶ୍ୟାମାକ—ବି.ତୃଣଧାନ୍ୟବିଶେଷ,ଶୁଆଁ ।

ଶ୍ୟାମାକାନ୍ତ-ପୁ°.ବି.(୬ତତ୍)ମହାଦେବ ।

ଶ୍ୟାମାଙ୍ଗ—ବି. (ବ.ବ୍ରୀ) ବୁଧଗ୍ରହ(କ.ଧା) ଶ୍ୟାମବର୍ଣ୍ଣବିଶିଷ୍ଟ ଦେହ, (ବି°)କୃଷ୍ଣବର୍ଣ୍ଣ ଦେହବିଶିଷ୍ଟ, (ସ୍ତ୍ରୀ) ଶ୍ୟାମାଙ୍ଗୀ ।

ଶ୍ୟାମାଡ଼କା—ବି. କଳାହରଡ଼, ଯେଉଁ ହରଡ଼ର ଫୁଲ ଶ୍ୟାମବର୍ଣ୍ଣ ।

ଶ୍ୟାମାନିବୃତ୍—ବି. କଳାଡହୁଡ଼ି, କୃଷ୍ଣନିବୃତ୍ତଲତା ।  [ ପକ୍ଷୀ ।

ଶ୍ୟାମାପକ୍ଷୀ—ବି. ଏକପ୍ରକାର ଗାନକାରି

ଶ୍ୟାମାପୂଜା—ବି. କାର୍ତ୍ତିକ ଅମାବାସ୍ୟା ରାତ୍ରିରେ କାଳୀଙ୍କର ଅର୍ଚ୍ଚନା ।

ଶ୍ୟାମାୟମାନ—ବି°(ଶ୍ୟାମ+ଯ+କ.ଆନ) ଶ୍ୟାମ ବର୍ଣ୍ଣରେ ପରିଣତ,(ସ୍ତ୍ରୀ)ମାନା ।

ଶ୍ୟାମାଲତା-ସ୍ତ୍ରୀ.ବି.ଅନନ୍ତମୂଳ,ଶୁଆଁଲଇ ।

ଶ୍ୟାମାଶାକ—କ୍ଲୀ.ବି. ବୃନ୍ଦାରକ ଶାକ ।

ଶ୍ୟାମାସୁନ୍ଦରୀ—ସ୍ତ୍ରୀ.ବି°. ଶ୍ୟାମବର୍ଣ୍ଣା ଓ ସୁନ୍ଦରୀ (ସ୍ତ୍ରୀ) ।

ଶ୍ୟାମାହ୍ୱା—ସ୍ତ୍ରୀ.ବି. (ବ.ବ୍ରୀ) ପିପ୍ପଳୀ ।

ଶ୍ୟାମିକା—ବି. (ଶ୍ୟାମ+କ.ଆ) ଶ୍ୟାମ୍‌

ଲର୍ଗୀ, ମାଳିନ୍ୟ, କୃଷ୍ଣତ୍ୱ, ଧାତୁଆଦିର ଖାଦ, ଭେଲ, ଧାତୁଆଦିର ମଳ ।
ଶ୍ୟାମିତ—ବିଂ. ଶ୍ୟାମଳବର୍ଣ୍ଣବିଶିଷ୍ଟ, ଶାଗୁଆ ।
ଶ୍ୟାମୀ—ଗ୍ରା.ବିଂ. ଶ୍ୟାମଦେଶୀୟ ।
ଶ୍ୟାମେକ୍ଷୁ-ବି.(ଶ୍ୟାମ+ଇକ୍ଷୁ)କଳଳାଆଖୁ ।
ଶ୍ୟାଳ—ପୁଂ.ବି.(ଶ୍ୟୈ+କ.ଆଳ)ଭାର୍ଯ୍ୟାର ଭାଇ, ଶଳା, ଭଗିନୀପତି, ଭଣେଇ ।
ଶ୍ୟାଳକ—ପୁଂ.ବି.( ଶ୍ୟାଳ+କ )ଶ୍ୟାଳ ଦେଖ ।
ଶ୍ୟାଳକୀ—ସ୍ତ୍ରୀ.ବି. (ଶ୍ୟାଳକ+ଈ)ଶାଳୀ, ଭାର୍ଯ୍ୟାର ସାନଭଉଣୀ ।
ଶ୍ୟାଳଜା—ସ୍ତ୍ରୀ.ବି. (୬ତତ୍) ଶଳାର ସ୍ତ୍ରୀ, ଶଳାଭାଉଜ ।
ଶ୍ୟାଳିକା—ସ୍ତ୍ରୀ.ବି. ପତ୍ନୀଙ୍କ ଭଉଣୀ ।
ଶ୍ୟାଳୀ—ସ୍ତ୍ରୀ.ବି. (ଶ୍ୟାଳ+ଈ)ଶ୍ୟାଳିକା ଦେଖ ।
ଶ୍ୟାଳୀପତି—ପୁଂ.ବି. (୬ତତ୍) ସଢ଼ୁ ।
ଶ୍ୟାବ—ପୁଂ.ବି. (ଶ୍ୟୈ+କ.ବ)କୃଷ୍ଣ ଓ ପୀତବର୍ଣ୍ଣ, କପିଶବର୍ଣ୍ଣ, ମଧ୍ୟବିଷ ବୃଶ୍ଚିକବିଶେଷ, (ବିଂ) କୃଷ୍ଣପୀତମିଶ୍ରିତ, କପିଶ, ମାଟିଆ,(ସ୍ତ୍ରୀ) ଶ୍ୟାବା ।
ଶ୍ୟାବଦନ୍ତ-ପୁଂ.ବିଂ. (ବ.ବ୍ରୀ)ତେଢ଼େଢ଼ା ବା ବାହାଡ଼ା ଦାନ୍ତବିଶିଷ୍ଟ ବା ଦାନ୍ତୁଆ, (ବି) ତେଢ଼େଢ଼ା ବା ବାହାଡ଼ା ଦାନ୍ତ ।
ଶ୍ୟାବଦନ୍ତୀ—ବିଂ. (ଶ୍ୟାବଦନ୍ତ+ଇନ୍) ଶାବଦନ୍ତ ଦେଖ ।
ଶ୍ୟାବାଶ୍ୱ—ପୁଂ.ବି. ଋଷିବିଶେଷ ।
ଶ୍ୟାବାଶ୍ୱି—ପୁଂ. ବି. ଶ୍ୟାବାଶ୍ୱଋଷିଙ୍କ ଗୋତ୍ରାପତ୍ୟ ।
ଶ୍ୟେତ—ବି.ଶୁକ୍ଳବର୍ଣ୍ଣ, ଧଳାରଙ୍ଗ, (ବିଂ) ଶୁକ୍ଳବର୍ଣ୍ଣଯୁକ୍ତ ।
ଶ୍ୟେତକୋଲକ—ବି. ମତ୍ସ୍ୟବିଶେଷ, ଶଫର, କେରଣ୍ଡି ମାଛ ।
ଶ୍ୟେନ—ପୁଂ.ବି.(ଶ୍ୟୈ + କ.ଇନ)ପକ୍ଷିବିଶେଷ, ବାଜପକ୍ଷୀ, ଛଞ୍ଚାଣ, ଦନ୍ତୀବୃକ୍ଷ ।
ଶ୍ୟେନଦୃଷ୍ଟି—ବି. (କ.ଧା) ବାଜପକ୍ଷୀପରି ତୀକ୍ଷ୍ଣ ଦୃଷ୍ଟି, (ପୁଂ.ସ୍ତ୍ରୀ.ବିଂ-ବ.ବ୍ରୀ) ଶ୍ୟେନ ପକ୍ଷୀପରି ତୀକ୍ଷ୍ଣ ଦୃଷ୍ଟିସମ୍ପନ୍ନ ।
ଶ୍ୟେନମ୍ପାତ(ତା)—ବି ( ଶ୍ୟେନ + ପତ୍ +ଅ+ ଆ)ଛଞ୍ଚାଣ ଦ୍ୱାରା ପକ୍ଷି ଶିକାର, ଶିକାର, ମୃଗୟା ।
ଶ୍ୟେନାଖ୍ୟ—ବି. (ବ.ବ୍ରୀ) ଛଞ୍ଚାଣ ବା ବାଜପକ୍ଷୀ ।
ଶ୍ୟେନୀ—ସ୍ତ୍ରୀ. ବି. ( ଶ୍ୟେନ + ଈ )ମାଈ ଛଞ୍ଚାଣ, ବାଜପକ୍ଷିଣୀ ।
ଶ୍ୟେନୋପଦେଶ—ବି.ସ୍ତ୍ରୀ ଲୋକମାନଙ୍କର ଚିତାନଳରେ ଦେହଦଗ୍ଧ କରିବାର ବିଧାନ ବା ଶାସ୍ତ୍ରୋପଦେଶ ।
ଶ୍ୟୈଣାକ—ବି. (ଶ୍ୟୈ+କ.ଆକ)ଫଣଫଣାଗଛ ।
ଶ୍ୟୈନମ୍ପାତା—ସ୍ତ୍ରୀ.ବି. ମୃଗୟା, ଶିକାର, ଏହା ବାଜପକ୍ଷୀ ଦ୍ୱାରା କରାଯାଏ ।
ଶ୍ୟୈନେୟ—ପୁଂ. ବି. ଜଟାୟୁ ।
ଶ୍ୟୋଣାକ—ବି. ଫଣଫଣାଗଛ ।
ଶ୍ରତ୍—ଅବ୍ୟ. ( ଶ୍ରୁ+କ.ଅତ୍ ) ସତ୍ୟ, ଶ୍ରଦ୍ଧା, ଭକ୍ତି, ସ୍ନେହ, ବିଶ୍ୱାସ ।
ଶ୍ରଥନ—ବି (ଶ୍ରଥ୍ + ଭା.ଅନ)ବଧ, ଯତ୍ନ. ବନ୍ଧନ, ମୋକ୍ଷ,ବନ୍ଧନମୋଚନ,ଗ୍ରନ୍ଥନ, ଗୁନ୍ଥିବା, ଅଲଗାକରିବା, ଶିଥିଳତା, ବିଳମ୍ବ,ବ୍ୟାହନନ,ଅଧଃକରଣ,ଚେଷ୍ଟା, ପୁନଃବାର ଦୃଷ୍ଟିକରଣ ।
ଶ୍ରଦ୍ଦଧାନ—ପୁଂ.ବି.ବିଂ. (ଶ୍ରତ୍ + ଧା + କ.ଆନ)ଶ୍ରଦ୍ଧାଯୁକ୍ତ,ଭକ୍ତିମାନ୍, ବିଶ୍ୱାସଯୁକ୍ତ, ବିଶ୍ୱାସ କରୁଥିବା, (ସ୍ତ୍ରୀ)ଧାନା ।
ଶ୍ରଦ୍ଧା—ସ୍ତ୍ରୀ. ବି. (ଶ୍ରତ୍+ଧା+ଭା.ଅ+ଆ)ସ୍ପୃହା, ଆଦର, ଭକ୍ତି, ଧର୍ମକାର୍ଯ୍ୟାଦିରେ ଦୃଢ଼ ବିଶ୍ୱାସ, ଚିତ୍ତ ପ୍ରସନ୍ନତା, ମନର ନିର୍ମଳତା, ବିଶ୍ୱାସ, ପ୍ରତ୍ୟୟ, ସ୍ନେହ, ଗର୍ଭିଣୀର ମନସାଧ, ଶୁଦ୍ଧି ।
ଶ୍ରଦ୍ଧାକର—ବିଂ. (ଶ୍ରଦ୍ଧା + କୃ + କ.ଅ) ଶ୍ରଦ୍ଧାଜନକ ଦେଖ, (ସ୍ତ୍ରୀ) ଶ୍ରଦ୍ଧାକରୀ ।
ଶ୍ରଦ୍ଧାକରିବା—ଗ୍ରା. କ୍ରି. ଭକ୍ତିକରିବା, ସ୍ନେହକରିବା, ସମ୍ମାନକରିବା ।
ଶ୍ରଦ୍ଧାକାରକ—ପୁଂ.ବିଂ. (ଶ୍ରଦ୍ଧା + କୃ+ କ.ଅକ)ଯେ ଭକ୍ତି କରେ, (ସ୍ତ୍ରୀ)ଶ୍ରଦ୍ଧାକାରିକା ।
ଶ୍ରଦ୍ଧାଜନକ—ବିଂ. (ଶ୍ରଦ୍ଧା + ଜନ + କ.ଅକ) ଶ୍ରଦ୍ଧା ଉତ୍ପାଦକ, ମନରେ ଯାହା ଭକ୍ତି ଜନ୍ମାଏ, (ସ୍ତ୍ରୀ) ଶ୍ରଦ୍ଧାଜନିକା ।
ଶ୍ରଦ୍ଧାଜନ୍ୟ—ବିଂ. ଶ୍ରଦ୍ଧାରୁ ଉତ୍ପନ୍ନ ।
ଶ୍ରଦ୍ଧାତା—ପୁଂ. ବିଂ. (ଶ୍ରତ୍+ଧା+କ.ତୃ) ଶ୍ରଦ୍ଧାକାରକ, (ସ୍ତ୍ରୀ) ଶ୍ରଦ୍ଧାତ୍ରୀ ।
ଶ୍ରଦ୍ଧାତବ୍ୟ—ବିଂ. (ଶ୍ରତ୍+ଧା+ତବ୍ୟ) ଶ୍ରଦ୍ଧାର ଉପଯୁକ୍ତ, ଶ୍ରଦ୍ଧାର ଯୋଗ୍ୟ ।
ଶ୍ରଦ୍ଧାଦେୟ—ବିଂ. ଶ୍ରଦ୍ଧାପୂର୍ବକ ଦେୟ ।
ଶ୍ରଦ୍ଧାନ—ବି (ଶ୍ରତ୍+ଧା+ଭା.ଅନ)ଶ୍ରଦ୍ଧା ।
ଶ୍ରଦ୍ଧାନ୍ୱିତ—ପୁଂ.ବିଂ (୩ତତ୍)ଶ୍ରଦ୍ଧାଯୁକ୍ତ, ଭକ୍ତିମାନ୍, (ସ୍ତ୍ରୀ) ଶ୍ରଦ୍ଧାନ୍ୱିତା ।
ଶ୍ରଦ୍ଧାଭକ୍ତି—ବି. (ଦ୍ୱନ୍ଦ୍ୱ)ଶ୍ରଦ୍ଧା ଓ ଭକ୍ତି ।
ଶ୍ରଦ୍ଧାଭାଜନ-ବିଂ.(୬ତତ୍)ଶ୍ରଦ୍ଧାର୍ହ ଦେଖ ।
ଶ୍ରଦ୍ଧାମୟ—ବିଂ. ଶ୍ରଦ୍ଧାଯୁକ୍ତ (ବ୍ୟକ୍ତି ବା କାର୍ଯ୍ୟ),(ସ୍ତ୍ରୀ) ଶ୍ରଦ୍ଧାମୟୀ । [ ଦେଖ ।
ଶ୍ରଦ୍ଧାମୂଳକ—ବିଂ. (ବ.ବ୍ରୀ) ଶ୍ରଦ୍ଧାଜନ୍ୟ
ଶ୍ରଦ୍ଧାଯୁକ୍ତ—ବିଂ. (୩ତତ୍)ସଶ୍ରଦ୍ଧ, ଭକ୍ତିପୂର୍ଣ୍ଣ (କାର୍ଯ୍ୟ ଓ ବ୍ୟକ୍ତି), (ସ୍ତ୍ରୀ)ଯୁକ୍ତା ।
ଶ୍ରଦ୍ଧାରହିତ—ବିଂ.ଶ୍ରଦ୍ଧାବିରହିତ ଦେଖ ।
ଶ୍ରଦ୍ଧାର୍ହ—ପୁଂ.ବିଂ.ଶ୍ରଦ୍ଧାସ୍ପଦ, ଅନ୍ୟଠାରୁ ଶ୍ରଦ୍ଧା ବା ସମ୍ମାନ ପାଇବାର ଯୋଗ୍ୟ, ଯାହାଙ୍କୁ ଭକ୍ତି କରିବା ଉଚିତ, (ସ୍ତ୍ରୀ) ଶ୍ରଦ୍ଧାର୍ହା ।
ଶ୍ରଦ୍ଧାଳୁ—ପୁଂ. ସ୍ତ୍ରୀ. ବିଂ. (ଶ୍ରଦ୍ଧା+ଆଳୁ) ଶ୍ରଦ୍ଧାନ୍ୱିତ, ଶ୍ରଦ୍ଧାଶୀଳ,ଭକ୍ତିମାନ୍ ବ୍ୟକ୍ତି, (ସ୍ତ୍ରୀ.ବି) କୌଣସି ଖାଦ୍ୟାଦି ଦ୍ରବ୍ୟରେ ସ୍ପୃହାବତୀ ଗର୍ଭିଣୀ ।
ଶ୍ରଦ୍ଧାବାନ୍—ପୁଂ. ବିଂ. (ଶ୍ରଦ୍ଧା+ବତ୍) ଶ୍ରଦ୍ଧାଯୁକ୍ତ, ଶ୍ରଦ୍ଧାଳୁ, ଭକ୍ତିମାନ୍, ବିଶ୍ୱାସପୂର୍ଣ୍ଣ, (ସ୍ତ୍ରୀ) ଶ୍ରଦ୍ଧାବତୀ ।
ଶ୍ରଦ୍ଧାବିରହିତ—ବିଂ. (୩ତତ୍) ଭକ୍ତିହୀନ ( ବ୍ୟବହାର ବା କାର୍ଯ୍ୟ ), ଭକ୍ତିହୀନ (ବ୍ୟକ୍ତି), (ସ୍ତ୍ରୀ)ଶ୍ରଦ୍ଧାବିରହିତା ।
ଶ୍ରଦ୍ଧାଶୂନ୍ୟ—ବିଂ. ଶ୍ରଦ୍ଧାବିରହିତ ଦେଖ ।
ଶ୍ରଦ୍ଧାସ୍ପଦ—ବିଂ.(୬ତତ୍)ଶ୍ରଦ୍ଧାର୍ହ ଦେଖ, ଯାହାକୁ ଶ୍ରଦ୍ଧା କରାଯାଏ ।
ଶ୍ରଦ୍ଧୀ—ପୁଂ.ବିଂ (ଶ୍ରତ୍ + ଧା + କ.ଇନ୍) ଶ୍ରଦ୍ଧାଯୁକ୍ତ, ଶ୍ରଦ୍ଧାବିଶିଷ୍ଟ ।
ଶ୍ରଦ୍ଧେୟ—ବିଂ. ( ଶ୍ରତ୍+ଧା+ମି.ଯ)

ଶ୍ରଦ୍ଧାର ପାତ୍ର, ଯାହାଙ୍କୁ ଶ୍ରଦ୍ଧା କରାଯିବା ଉଚିତ, (ସ୍ତ୍ରୀ) ଶ୍ରଦ୍ଧେୟା ।

ଶ୍ରନ୍ଥ—ବି(ଶ୍ରନ୍ଥ୍+ଭା.ଅ)ମୋଚନ,ଗୁମ୍ଫନ, ଗ୍ରନ୍ଥନ, ଶିଥିଳୀକରଣ, (କ.ଅ) ବସ୍ତ୍ର ।

ଶ୍ରନ୍ଥନ—ବି. (ଶ୍ରନ୍ଥ୍+ଭା.ଅନ) ଶ୍ରଥନ ଦେଖ ।

ଶ୍ରନ୍ଥିତ—ବିଂ. ( ଶ୍ରନ୍ଥ+ର୍ମ.ତ ) ଗ୍ରଥିତ, ଗୁମ୍ଫିତ, ବଦ୍ଧ, ମୁକ୍ତ, ହର୍ଷିତ, ହୃତ, ଶିଥିଳୀକୃତ ।

ଶ୍ରପଣ—ବି. (ଶ୍ରପ୍+ଅନ)ସିଦ୍ଧକରଣ ।

ଶ୍ରପଣୀୟ—ବିଂ. ରନ୍ଧନଯୋଗ୍ୟ ।

ଶ୍ରପୟିତା--ପୁଂ.ବିଂ.ରନ୍ଧନକାରୀ,ପାଚକ ।

ଶ୍ରପିତ—ବିଂ.( ଶ୍ରପ୍+ତ ) ପକ୍ୱ,(ଘୃତ, ଦୁଗ୍ଧ ଓ ଜଳଭିନ୍ନ) ପାକ କରାଯାଇ-ଥିବା (ଦ୍ରବ୍ୟ) ।

ଶ୍ରପିତା—ସ୍ତ୍ରୀ.ବି (ଶ୍ରପ୍+ତ+ଆ)କାଞ୍ଜି, କାଞ୍ଜିକ ।

ଶ୍ରମ—ପୁଂ. ବି. (ଶ୍ରମ+ଭା.ଅ) ତପସ୍ୟା, ଖେଦ, ଶ୍ରାନ୍ତି, କ୍ଲାନ୍ତି, ଶାସ୍ତ୍ରାଭ୍ୟାସ, ଚକସା, ଶାରୀରିକ ଚେଷ୍ଟା, ପରିଶ୍ରମ, ମିହନ୍ତ, ଚେଷ୍ଟା, ଅଭ୍ୟାସ ।

ଶ୍ରମକର—ବିଂ. ( ଶ୍ରମ+କୃ+କ.ଅ ) ଶ୍ରମଜନକ ।

ଶ୍ରମଘର୍ମ—ବି. (କ.ଧା) ଶ୍ରମଜଳ ଦେଖ ।

ଶ୍ରମଘ୍ନ—ବିଂ. (ଶ୍ରମ+ହନ୍+ଅ) ଶ୍ରମ-ନାଶକ, ଯଦ୍ଦ୍ୱାରା କ୍ଲାନ୍ତି ଦୂରହୁଏ ।

ଶ୍ରମଜ—ବିଂ.(ଶ୍ରମ+ଜନ୍+କ.ଅ)ପରି-ଶ୍ରମ କରିବା ଯୋଗୁଁ ଜାତ ।

ଶ୍ରମଜନକ—ବିଂ. କ୍ଲାନ୍ତିଉତ୍ପାଦକ ।

ଶ୍ରମଜଳ—ବି. (କ.ଧା)ଘର୍ମ,ସ୍ୱେଦ,କ୍ଲାନ୍ତି ଯୋଗୁଁ ଦେହରୁ ବୋହିବା ଝାଳ ।

ଶ୍ରମଜୀବୀ—ବିଂ.(ଶ୍ରମ୍+ଜୀବ୍+କ.ଇନ୍) ଶ୍ରମ ବା କାୟିକ ପରିଶ୍ରମ ଦ୍ୱାରା ଜୀବିକା ନିର୍ବାହକାରୀ, (ସ୍ତ୍ରୀ) ଜୀବିନୀ, (ପୁଂ.ବି) ମୂଲିଆ ।

ଶ୍ରମଝାଳ—ଗ୍ରା.ବି. ଶ୍ରମଜଳ ଦେଖ ।

ଶ୍ରମଣ—ପୁଂ.ବି.(ଶ୍ରମ+କ.ଅନ) ବୌଦ୍ଧ ଯତିବିଶେଷ,ସାଧାରଣ ଯତି,ସନ୍ନ୍ୟାସୀ, ଭିକ୍ଷୁକ, ନୀଚ ବ୍ୟବସାୟୀ ବ୍ୟକ୍ତି, ଶ୍ରମ-ଜୀବୀ ବ୍ୟକ୍ତି, (ବିଂ) ଘୃଣିତ; ଅପକୃଷ୍ଟ ।

ଶ୍ରମଣକ—ପୁଂ.ବି. (ଶ୍ରମଣ+କ) ଶ୍ରମଣ ଦେଖ ।

ଶ୍ରମଣା—ସ୍ତ୍ରୀ.ବି(ଶ୍ରମଣ+ଆ)ଜଟାମାଂସୀ, ଶବରୀବିଶେଷ, ବୌଦ୍ଧ ସନ୍ନ୍ୟାସିନୀ, ଭିକ୍ଷୁଣୀ ।

ଶ୍ରମନିବାରକ—ବିଂ. ଶ୍ରମହାରକ ଦେଖ

ଶ୍ରମନିବାରଣ—ବି. ପରିଶ୍ରମର କ୍ଲାନ୍ତି-ହରଣ ।

ଶ୍ରମନୁଦ୍—ବିଂ. ( ଶ୍ରମ+ନୁଦ୍+କ୍ୱିପ୍ ) ଶ୍ରମନାଶକ, ଶ୍ରମାପହାରକ ।

ଶ୍ରମପୀଡ଼ା—ବି.(କ.ଧା)ଶ୍ରମଜନିତ କଷ୍ଟ ।

ଶ୍ରମଲବ୍ଧ--ବିଂ.(୩ତତ୍) ଶ୍ରମଦ୍ୱାରା ପ୍ରାପ୍ତ ।

ଶ୍ରମଲଭ୍ୟ—ବିଂ. (୩ତତ୍) ଯାହା ପରିଶ୍ରମ କଲେ ମିଳିପାରେ ।

ଶ୍ରମଲାଘବ—ବି.(୬ତତ୍)ପରିଶ୍ରମର ପରି-ମାଣ କମିହେବା ।

ଶ୍ରମବାନ୍—ପୁଂ. ବିଂ. ( ଶ୍ରମ+ବତ୍ ) ଶ୍ରମଯୁକ୍ତ, ପରିଶ୍ରମୀ ।

ଶ୍ରମବାରି—କ୍ଲୀ. ବି. (କ.ଧା) ସ୍ୱେଦଜଳ, ଝାଳ, ଘର୍ମ ।

ଶ୍ରମବିନୟନ—କ୍ଲୀ. ବି. ଶ୍ରମଦୂର, ଶ୍ରମା-ପନୋଦନ,(ବିଂ)ଶ୍ରମାପନୋଦନକାରକ

ଶ୍ରମବିନୋଦ—ବି. ପରିଶ୍ରମ ଜନିତ ସୁଖ

ଶ୍ରମବିନୋଦନ—ବି. ପରିଶ୍ରମର କ୍ଲାନ୍ତିକୁ ଭୁଲିଯିବା ।

ଶ୍ରମବିଭାଗ—ବି.ପରିଶ୍ରମର ବିଭାଗ,ଗୋଟିଏ କାର୍ଯ୍ୟର ଏକ ଏକ ଅଂଶରେ ଭିନ୍ନ ଭିନ୍ନବ୍ୟକ୍ତିର ପରିଶ୍ରମ,କୌଣସି ଗୋଟିଏ ବୃହତ୍ କାର୍ଯ୍ୟ ସମ୍ପାଦନ ପାଇଁ କେବଳ ଏକ ବ୍ୟକ୍ତିର ପରିଶ୍ରମ ନ ହୋଇ ତାହାର ଗୋଟିଏ ଗୋଟିଏ ଅଂଶ ଏକ ଏକ ବ୍ୟକ୍ତି ଦ୍ୱାରା ସମ୍ପାଦନ ।

ଶ୍ରମଶୀକର—ବି.ଶ୍ରମବାରି,ଝାଳ,ସ୍ୱେଦ ।

ଶ୍ରମଶୀଳ—ପୁଂ. ବିଂ. (ବ.ବ୍ରୀ) ପରିଶ୍ରମୀ, ସ୍ୱଭାବତଃ ପରିଶ୍ରମୀ, (ସ୍ତ୍ରୀ) ଶ୍ରମଶୀଳା ।

ଶ୍ରମସହ—ପୁଂ. ବିଂ. (ଶ୍ରମ+ସହ+କ. ଅ) ଯେ ପରିଶ୍ରମର କଷ୍ଟ ସହିପାରେ ।

ଶ୍ରମସହିଷ୍ଣୁ—ବିଂ. ( ୬ତତ୍ ) ପରିଶ୍ରମର କଷ୍ଟ ସହ୍ୟକାରୀ, ଯେ ପରିଶ୍ରମକାତର ନୁହେ ।

ଶ୍ରମସାଧ୍ୟ—ବିଂ. (୩ତତ୍) ଯାହା ପରିଶ୍ରମ ଦ୍ୱାରା ସମ୍ପାଦିତ ହୁଏ ।

ଶ୍ରମସିଦ୍ଧ—ବିଂ. (୩ତତ୍) ପରିଶ୍ରମଦ୍ୱାରା ନିଷ୍ପାଦିତ ।

ଶ୍ରମସ୍ଥାନ—ବି.କାର୍ଯ୍ୟକ୍ଷେତ୍ର, କାରଖାନା, ସେନାମାନଙ୍କର ପରେଡ୍‌କରିବା ସ୍ଥାନ ।

ଶ୍ରମସ୍ୱୀକାର—ବି. (୬ତତ୍) ପରିଶ୍ରମରେ ପ୍ରବୃତ୍ତହେବା, ଶ୍ରମରେ ଅକାତରତା ।

ଶ୍ରମହାରକ—ବିଂ. ଯାହା ଶ୍ରମର କ୍ଲାନ୍ତି ଦୂରକରେ, ଶ୍ରାନ୍ତିନାଶକ, (ସ୍ତ୍ରୀ) ଶ୍ରମ-ହାରିକା ।

ଶ୍ରମହାରୀ—ପୁଂ. ବିଂ. ( ଶ୍ରମ+ହୃ+କ. ଇନ୍) ଶ୍ରାନ୍ତିନାଶକ,ପରିଶ୍ରମଜନିତ କଷ୍ଟ ନିବାରକ ।

ଶ୍ରମାଧାୟୀ-ବିଂ.କ୍ଲେଶଦାୟକ,କ୍ଲାନ୍ତିଜନକ, ଯାହାକଷ୍ଟରେ ଘଟେ ।

ଶ୍ରମାପନୋଦନ—ବି. ( ୬ତତ୍ ) ଶ୍ରାନ୍ତି ଦୂରୀକରଣ, କ୍ଲାନ୍ତିନାଶ, ବିଶ୍ରାମ ।

ଶ୍ରମାପହାରକ—ବିଂ. ଶ୍ରମହାରକ ଦେଖ, (ସ୍ତ୍ରୀ) ଶ୍ରମାପହାରିକା ।

ଶ୍ରମାମ୍ବୁ—ବି. ଶ୍ରମଜଳ, ଝାଳ, ଘର୍ମ ।

ଶ୍ରମାର୍ତ୍ତି—ବିଂ.(ଶ୍ରମ+ଆର୍ତ୍ତି)ଶ୍ରମକାତର, କ୍ଲାନ୍ତ ।

ଶ୍ରମାସକ୍ତ—ପୁଂ. ବିଂ. (୭ତତ୍) ପରିଶ୍ରମୀ ବ୍ୟକ୍ତି, (ସ୍ତ୍ରୀ) ଶ୍ରମାସକ୍ତା ।

ଶ୍ରମିକ—ପୁଂ. ବି. ବା ବିଂ. (ଶ୍ରମ+ଇକ) ଶ୍ରମଜୀବୀ, ମଜୁରିଦାର୍, ମୂଲିଆ ।

ଶ୍ରମିଣୀ—ସ୍ତ୍ରୀ.ବିଂ. (ଶ୍ରମିନ୍+ଈ) ପରିଶ୍ରମ କାରିଣୀ, (ସ୍ତ୍ରୀ) ଶ୍ରମଶୀଳା ।

ଶ୍ରମିତ—ଗ୍ରା. ବିଂ. ଶ୍ରାନ୍ତ । [ ହେବା ।

ଶ୍ରମିବା—ଗ୍ରା. କ୍ରି.ପରିଶ୍ରମ କରିବା,କ୍ଲାନ୍ତ-

ଶ୍ରମୀ—ପୁଂ. ବିଂ. (ଶ୍ରମ+ଇନ୍) ଶ୍ରମ-ବିଶିଷ୍ଟ, ପରିଶ୍ରମକାରୀ, ଶ୍ରମଶୀଳ,(ସ୍ତ୍ରୀ) ଶ୍ରମିଣୀ ।

ଶ୍ରମୋପଜୀବୀ—ପୁଂ. ବି ଓ ବିଂ ଶ୍ରମଜୀବୀ ଦେଖ, (ସ୍ତ୍ରୀ) ଶ୍ରମୋପଜୀବିନୀ ।

ଶ୍ରୟ—ବି. (ଶ୍ରି+ଭା.ଅ) ଆଶ୍ରୟ, ଅବ-

ଲମ୍ବନ, ବାସ, ସମକୋଣୀ ତ୍ରିଭୁଜର କୋଟୀ ।

ଶ୍ରୟଣ—କ୍ଲୀ.ବ.(ଶ୍ରି+ଭା.ଅନ)ଶ୍ରୟଦେଖ

ଶ୍ରବ(ବଃ)-ବ. (ଶ୍ରୁ+ଭା.ଅ,ଅସ୍) ଶ୍ରବଣ, ଶୁଣିବା, ସ୍ରବ, କ୍ଷରଣ,ଖ୍ୟାତି, ପ୍ରସିଦ୍ଧି. ଯଶଃ, (ଣ.ଅ) ଶ୍ରବଣେନ୍ଦ୍ରିୟ, କର୍ଣ୍ଣ ।

ଶ୍ରବଣ—କ୍ଲୀ.ବ (ଶ୍ରୁ+ଭା.ଅନ)ଶୁଣିବା, ଶ୍ରବଣା ନକ୍ଷତ୍ର, ନବଧା ଭକ୍ତି ମଧ୍ୟରୁ ଏକ; (ଣ.ଅନ)କର୍ଣ୍ଣ, କାନ ।

ଶ୍ରବଣକ—ବ. ( ଶ୍ରବଣ+ସ୍ୱାର୍ଥେ.କ ) ଶ୍ରବଣ ଦେଖ ।

ଶ୍ରବଣକର୍ତ୍ତା—ପୁଂ. ବିଂ. ଯେ ଶୁଣେ, ଶ୍ରୋତା, (ସ୍ତ୍ରୀ) କର୍ତ୍ତ୍ରୀ, (ବ) ଶ୍ରୋତା ବ୍ୟକ୍ତି ।

ଶ୍ରବଣକୁହର—ବ.(୬ତତ୍ପୁ)ଶ୍ରବଣବିବର [ ଦେଖ ।

ଶ୍ରବଣଗୋଚର—ବିଂ. କର୍ଣ୍ଣଗୋଚର (ଶବ୍ଦାଦି); ଯାହା ଶୁଣାଯାଏ ।

ଶ୍ରବଣଦ୍ୱାଦଶୀ—ବ. ଶ୍ରବଣା ନକ୍ଷତ୍ରଯୁକ୍ତ ଭାଦ୍ର ଶୁକ୍ଳ ଦ୍ୱାଦଶୀ (ଏଦିନ ବିଷ୍ଣୁ ପୂଜା କଲେ ମହା ଫଳ ହୁଏ) ।

ଶ୍ରବଣପଥ(ମାର୍ଗ)—ବ.କର୍ଣ୍ଣପଥ, କାନରେ ଶବ୍ଦାଦି ପ୍ରବେଶ କରିବା ମାର୍ଗ ।

ଶ୍ରବଣପଥାରୂଢ଼—ବିଂ. (୭ତତ୍ପୁ) ଯାହା ଶୁଣାଗଲା, ଶ୍ରୁତ ।

ଶ୍ରବଣମଧୁର—ବିଂ. ଶ୍ରୁତିମଧୁର, ଯାହା ଶୁଣିବାକୁ ଭଲଲାଗେ ।

ଶ୍ରବଣଯୋଗ୍ୟ—ବିଂ. ଶୁଣିବାର ଉପଯୁକ୍ତ (ବିଷୟ) ।

ଶ୍ରବଣବିବର(ରନ୍ଧ୍ର)— ବ. (୬ତତ୍ପୁ) କର୍ଣ୍ଣକୁହର,କାନର ଛିଦ୍ର, ଯେଉଁ ଛିଦ୍ରଦେଇ ପ୍ରାଣୀ ଶବ୍ଦ ଶୁଣିପାରେ ।

ଶ୍ରବଣବେଧ—ବ. (୬ତତ୍ପୁ) କର୍ଣ୍ଣବେଧ, କାନଫୋଡ଼ା ।

ଶ୍ରବଣବ୍ୟାଧି—ବ. କର୍ଣ୍ଣରୋଗ ।

ଶ୍ରବଣଶୀର୍ଷକ—ବ.ମୁଣ୍ଡିତିକା ଗୁଳ୍ମ,ମୁଣ୍ଡୀ

ଶ୍ରବଣଶୀର୍ଷିକା—ବ.ଶ୍ରାବଣୀବୃକ୍ଷ,ମୁଣ୍ଡିତିକା

ଶ୍ରବଣସର୍ବାବୟବୀ—ଗ୍ରା. ବ. ଯାହାର ସମସ୍ତ ଅବୟବରେ କାନ ଆକୃତିର ମନ୍ଦା ମନ୍ଦା ଦାଗ ବା ଛିଉଥାଏ ।

ଶ୍ରବଣହାରୀ—ପୁଂ. ବିଂ. (ଶ୍ରବଣ+ହୃ+ଇନ୍) ଶ୍ରବଣ ହରଣକାରୀ, କର୍ଣ୍ଣସୁଖକର ।

ଶ୍ରବଣା—ବ(ଶ୍ରବଣ+ଆ)ନକ୍ଷତ୍ରବିଶେଷ, ଦ୍ୱାବିଂଶ ନକ୍ଷତ୍ର, ମୁଣ୍ଡିତିକା ଗୁଳ୍ମ, ଶ୍ରାବଣୀ ।

ଶ୍ରବଣାତିକ୍ରାନ୍ତ—ବିଂ. (୨ତତ୍ପୁ) ଶ୍ରୁତିପଥର ଅତୀତ.ଯାହା ଶୁଣାଯାଏନାହିଁ ।

ଶ୍ରବଣାତୀତ—ବିଂ. (୫ତତ୍ପୁ) ଦୂରତା ଯୋଗୁଁ ଯାହା ଶୁଣାଯାଇ ପାରେ ନାହିଁ

ଶ୍ରାବଣାନକ୍ଷତ୍ର—ବ. ଦ୍ୱାବିଂଶ ନକ୍ଷତ୍ର ।

ଶ୍ରବଣାହ୍ୱା—ବ.(ବ.ବ୍ରୀ)ମୁଣ୍ଡିତିକା ଗୁଳ୍ମ ।

ଶ୍ରବଣିକା—ସ୍ତ୍ରୀ. ବ. ଶ୍ରବଣା ନକ୍ଷତ୍ର ।

ଶ୍ରବଣେନ୍ଦ୍ରିୟ—ବ.(୬ତତ୍ପୁ)କାନ, କର୍ଣ୍ଣ ।

ଶ୍ରବସ୍କାମ—ପୁଂ.ବିଂ. ଅନ୍ନାଭିଳାଷୀ, ଧନକାମୀ, ସୁଖକାମୀ ।

ଶ୍ରବାଚ୍ୟ(ଜ୍ୟ)—ବ.(ଶ୍ରବ+ଆଚ୍ୟ.ଜ୍ୟ) ଯଜ୍ଞରେ ବଳି ଦିଆଯିବା ଯୋଗ୍ୟ ପଶୁ

ଶ୍ରବିବା—ଗ୍ରା. କ୍ରି. କ୍ଷରିବା ।

ଶ୍ରବିଷ୍ଠା—ସ୍ତ୍ରୀ. ବ. (ଶ୍ରବବାନ୍+ଇଷ୍ଠ+ଆ) ଧନିଷ୍ଠା ନକ୍ଷତ୍ର, ଶଫରର କନ୍ୟା, ବୁଧଗ୍ରହଙ୍କ ମାତା ।

ଶ୍ରବିଷ୍ଠାଜ—ପୁଂ. ବ. (ଶ୍ରବିଷ୍ଠା+ଜନ୍+କ.ଅ) ବୁଧଗ୍ରହ, (ବିଂ) ଧନିଷ୍ଠା ନକ୍ଷତ୍ରଜାତ, (ସ୍ତ୍ରୀ) ଶ୍ରବିଷ୍ଠାଜା ।

ଶ୍ରବିଷ୍ଠାଭୂ—ପୁଂ. ବ. ବୁଧଗ୍ରହ ।

ଶ୍ରବିଷ୍ଠାରମଣ—ପୁଂ. ବ. (୬ତତ୍ପୁ)ଚନ୍ଦ୍ର ।

ଶ୍ରବ୍ୟ—ବିଂ. (ଶ୍ରୁ+ର୍ମ.ଯ) ଶୁଣିବାର ଯୋଗ୍ୟ, ଶ୍ରାବ୍ୟ, ଶ୍ରବଣୀୟ ।

ଶ୍ରବ୍ୟକାବ୍ୟ—ବ. (କ.ଧା) ନାଟକ ଭିନ୍ନ ଅନ୍ୟ କାବ୍ୟ, (ଯେଉଁ କାବ୍ୟ ନାଟ୍ୟ ନୁହେ) ।

ଶ୍ରାଣ—ବିଂ. (ଶ୍ରା+ର୍ମ.ତ) ପକ୍ୱ, ଘୃତ ଦୁଗ୍ଧ ଜଳ ଭିନ୍ନ ପକ୍ୱ(ଦ୍ରବ୍ୟ),ପାକକରାଯାଇଥିବା(ଦ୍ରବ୍ୟ),ସର୍ମାକ୍ତ,ସିକ୍ତ,ଓଦା ।

ଶ୍ରାଣକ—ବ. (ଶ୍ରଣ୍+ଣିଚ୍+ଭା.ଅକ) ଦାନ, ବିତରଣ, ଅର୍ପଣ ।

ଶ୍ରାଣା—ସ୍ତ୍ରୀ. ବ. ଯବାଗୁ, ଯାଉ ।

ଶ୍ରାଦ୍ଧ—ବ. ( ଶ୍ରଦ୍ଧା+ଅ ) ପିତୃକୃତ୍ୟ, ଶାସ୍ତ୍ରବିଧାନାନୁସାରେ ପିତୃଗଣ ଉଦ୍ଦେଶ୍ୟରେ କରାଯିବା ପିଣ୍ଡଦାନାଦି ଅନୁଷ୍ଠାନ, (ଗ୍ରା.ବି-ଲ.ଅର୍ଥ) ପୂର୍ବପୁରୁଷଙ୍କ ନାମୋଚ୍ଚାରଣପୂର୍ବକ ଗାଳି, (ବ୍ୟଙ୍ଗ୍ୟ) ଅପଚୟ, ସମ୍ପତ୍ତିର ନିରର୍ଥ, ଦକ୍ଷଯଜ୍ଞପର ବିଶୃଙ୍ଖଳା କାଣ୍ଡ ।

ଶ୍ରାଦ୍ଧକରିବା—ଗ୍ରା. କ୍ରି. ମାତୃପିତୃଗଣଙ୍କୁ ପିଣ୍ଡଦାନ କରିବା,(ଲ.ଅର୍ଥ) କୌଣସି ବ୍ୟକ୍ତିର ପୂର୍ବପୁରୁଷଙ୍କ ନାମଧରି ଗାଳିଦେବା, କୌଣସି ବିଷୟକୁ ଶେଷଥର ପାଇଁ ତ୍ୟାଗ କରିବା,ଜଳାଞ୍ଜଳିଦେବା ।

ଶ୍ରାଦ୍ଧକାଳ—ବ. ଶ୍ରାଦ୍ଧସମୟ, ଦିନ ଦଶଘଡ଼ି ବେଳ, କୁତପକାଳ ।

ଶ୍ରାଦ୍ଧକୃତ୍—ବି.ବିଂ. ( ଶ୍ରାଦ୍ଧ+କୃ+କ.କ୍ୱିପ୍) ଯେ ଶ୍ରାଦ୍ଧ କରନ୍ତି ।

ଶ୍ରାଦ୍ଧକ୍ରିୟା(କର୍ମ)—ବ.ପିଣ୍ଡଦାନରୂପକ୍ରିୟା ।

ଶ୍ରାଦ୍ଧଦିବସ—ବ.ଶ୍ରାଦ୍ଧ କରାଯିବାର ତିଥି, (ମୃତ ପିତୃପୁରୁଷଙ୍କ ମୃତାହ) ।

ଶ୍ରାଦ୍ଧଦେବ—ପୁଂ.ବ. ଯମ, ପିତୃଲୋକ, ବୈବସ୍ୱତମନୁ, ୭ମମନୁ, ବିଶ୍ୱଦେବ ।

ଶ୍ରାଦ୍ଧଦେବତା—ବ.ଶ୍ରାଦ୍ଧଦେବ ଦେଖ ।

ଶ୍ରାଦ୍ଧଭୁକ୍(ଭୋକ୍ତା)—ପୁଂ. ବ. (ଶ୍ରାଦ୍ଧ+ଭୁଜ୍+କ.କ୍ୱିପ୍-କ.ତୃ ) ଶ୍ରାଦ୍ଧଭୋଜୀ ବ୍ରାହ୍ମଣ, ପିତୃପୁରୁଷ, ଯାହାଙ୍କ ଉଦ୍ଦେଶ୍ୟରେ ଶ୍ରାଦ୍ଧ କରାଯାଏ ।

ଶ୍ରାଦ୍ଧବ୍ରାହ୍ମଣ—ବ. ଯେଉଁ ନିମନ୍ତ୍ରିତ ବ୍ରାହ୍ମଣ ଶ୍ରାଦ୍ଧ ପଙ୍କ୍ତିରେ ବସି ଭୋଜନ କରେ ।

ଶ୍ରାଦ୍ଧସୂତକ—ବ. ଶ୍ରାଦ୍ଧ ପାଇଁ ପ୍ରସ୍ତୁତ [ ଅନ୍ନାଦି ।

ଶ୍ରାଦ୍ଧାନ୍ନ—ବ. (କ.ଧା) ଶ୍ରାଦ୍ଧ ନିମନ୍ତେ ପାକ କରାଯାଇଥିବା ଅନ୍ନ ।

ଶ୍ରାଦ୍ଧିକ—ବିଂ(ଶ୍ରାଦ୍ଧ+ଇକ)ଶ୍ରାଦ୍ଧଭୋକ୍ତା, ଶ୍ରାଦ୍ଧସମ୍ବନ୍ଧୀୟ(ଦ୍ରବ୍ୟାଦି),(ସ୍ତ୍ରୀ)ଶ୍ରାଦ୍ଧିକୀ, (ବି) ଶ୍ରାଦ୍ଧ ବ୍ରାହ୍ମଣ, ଶ୍ରାଦ୍ଧରେ ଦେୟ ବସ୍ତୁ, ପିତୃଗଣ ।

ଶ୍ରାଦ୍ଧୀୟ—ବିଂ.(ଶ୍ରାଦ୍ଧ+ଈୟ) ଶ୍ରାଦ୍ଧସମ୍ବନ୍ଧୀୟ (ଦ୍ରବ୍ୟାଦି), (ସ୍ତ୍ରୀ)ଶ୍ରାଦ୍ଧୀୟା ।

ଶ୍ରାଦ୍ଧେୟ—ବିଂ. (ଶ୍ରାଦ୍ଧ+ଏୟ) ଶ୍ରାଦ୍ଧ ଅନ୍ନସମ୍ବନ୍ଧୀୟ ।

ଶ୍ରାନ୍ତ—ପୁଂ.ବି°.(ଶ୍ରମ୍+କ.ତ)କ୍ଷୟିତ, ନିବୃତ୍ତ,ଭୋଗତୃପ୍ତ, ଜିତେନ୍ଦ୍ରିୟ, ଶ୍ରମଯୁକ୍ତ, କ୍ଳାନ୍ତ, ଦୁଃଖିତ, (ସ୍ତ୍ରୀ) ଶ୍ରାନ୍ତା, (ପୁଂ.ବି) ବୈରାଗୀ, ସନ୍ନ୍ୟାସୀ ।

ଶ୍ରାନ୍ତକାୟ—ବି. (କ.ଧା) କ୍ଳାନ୍ତ ଶରୀର, (ପୁଂ.ବି°-ବ.ବ୍ରୀ) ଯାହାର ଶରୀର କ୍ଳାନ୍ତ ହୋଇଅଛି, (ସ୍ତ୍ରୀ) ଶ୍ରାନ୍ତକାୟା ।

ଶ୍ରାନ୍ତଗତି—ବି. ( କ.ଧା ) ଧୀରଗମନ, (ପୁଂ.ସ୍ତ୍ରୀ.ବି°) ଧୀରଗତିବିଶିଷ୍ଟ ।

ଶ୍ରାନ୍ତଶୟାନ—ବି°. କ୍ଳାନ୍ତ ଭାବରେ ଶୟନକାରୀ,ଶ୍ରମଯୁକ୍ତ ହୋଇ ଶୋଇଥିବା

ଶ୍ରାନ୍ତସଂବାହନ—କ୍ଳୀ. ବି. (୬ତତ୍ପୁ)କ୍ଳାନ୍ତ ବ୍ୟକ୍ତିର ଶୁଶ୍ରୂଷା ଓ ଗୋଡ଼ଘଷାଦି ।

ଶ୍ରାନ୍ତି—ବି. (ଶ୍ରମ+ଭା.ତି) ପରିଶ୍ରମଜନିତ ଅବସାଦ, ଭୋଗତୃପ୍ତି, କ୍ଳାନ୍ତି, ବିଶ୍ରାମ,ନିବୃତ୍ତି, ଶ୍ରମ, କ୍ଳେଶ, ଖେଦ ।

ଶ୍ରାନ୍ତିକର—ବି°. ଯାହା କ୍ଳାନ୍ତ କରାଏ, ଶ୍ରାନ୍ତିକାରକ ବା ଜନକ ।

ଶ୍ରାନ୍ତିଦୂରକରିବା—ଗ୍ରା.କ୍ରି.ବିଶ୍ରାମ ଦ୍ୱାରା ଶ୍ରମର ଖେଦକୁ କମାଇବା ।

ଶ୍ରାନ୍ତିହର—ବି°.(୬ତତ୍) କ୍ଳାନ୍ତିନାଶକ, ଶ୍ରମଜନ୍ୟ କଷ୍ଟନିବାରକ, (ସ୍ତ୍ରୀ) ହରା ।

ଶ୍ରାନ୍ତୋପଚାର—ବି. ପରିଶ୍ରାନ୍ତ ଅଶ୍ୱର ଶୁଶ୍ରୂଷା ।

ଶ୍ରାପୀ—ପୁଂ. ବି° (ଶ୍ରା+ଣିଚ୍+ଇନ୍) ଯେ ପାକ କରେ ।

ଶ୍ରାମ—ପୁଂ.ବି.(ଶ୍ରମ+ଅ) ମାସ, ଗୃହ, ମଣ୍ଡପ, କାଳ, ସମୟ ।

ଶ୍ରାମଣ—କ୍ଳୀ.ବି. ସାଧାରଣ ଯତିର ଭାବ ବା କର୍ମ ।

ଶ୍ରାମଣେର—ପୁଂ. ବି. (ଶ୍ରମଣ+ଏର) ପ୍ରବ୍ରଜିତ ଜୈନ ଭିକ୍ଷୁ, ଜୈନ ଭିକ୍ଷୁଙ୍କ ଶିଷ୍ୟ ।

ଶ୍ରାମିକ—ବି. (ଶ୍ରମ+କ.ଇକ) ମୂଲିଆ, ମଜୁରିଆ, (ବି°) ଶ୍ରମଶୀଳ, ଶ୍ରମକାରୀ, (ସ୍ତ୍ରୀ) ଶ୍ରାମିକା ।

ଶ୍ରାୟ—ବି(ଶ୍ରି+ଅ)ଆଶ୍ରୟଣ, ଆଶ୍ରୟକରିବା, ଆଶ୍ରୟଅବଲମ୍ବନ, ଅବସ୍ଥିତସ୍ଥାନ, (ବି°-ଶ୍ରୀ+ଅ) ଲକ୍ଷ୍ମୀସମ୍ବନ୍ଧୀୟ, (ସ୍ତ୍ରୀ) ଶ୍ରାୟୀ ।

ଶ୍ରାୟସ—ବି°.(ଶ୍ରେୟସ୍+ଅ) ମଙ୍ଗଳଜନକ, ମଙ୍ଗଳାର୍ଥ ଉତ୍ପନ୍ନ ।

ଶ୍ରାବ—ପୁଂ.ବି. (ଶ୍ରୁ+ଭା.ଅ) ଶ୍ରବଣ, ଶୁଣିବା, ଇକ୍ଷ୍ୱାକୁବଂଶୀୟ ରାଜବିଶେଷ, ଶ୍ରୀବାସ, ସରଳ ବୃକ୍ଷର ଅଠା, କ୍ଷରଣ, ସ୍ରାବ ।

ଶ୍ରାବକ—ବି.(ଶ୍ରୁ+କ.ଅକ)ଶାକ୍ୟ ମୁନିଙ୍କର ଶିଷ୍ୟ ସମ୍ପ୍ରଦାୟବିଶେଷ, ଜୈନସତିବିଶେଷ, କୁଆ, ବେଦବିରୁଦ୍ଧ ମତବାଦୀ ବ୍ୟକ୍ତି, ଦୂରର ଶବ୍ଦ, ଶିଷ୍ୟ, ଶୁଦ୍ର, (ପୁଂ.ବି°)ଶ୍ରବଣକର୍ତ୍ତା,ଶ୍ରୋତା, (ସ୍ତ୍ରୀ) ଶ୍ରାବିକା ।

ଶ୍ରାବଣ—ବି. (ଶ୍ରବଣ+ଅ) ବୈଶାଖାଦି ଦ୍ୱାଦଶ ମାସର ଅନ୍ତର୍ଗତ ଚତୁର୍ଥ ମାସ, ଶ୍ରାବଣମାସ, ଶ୍ରାବଣ ମାସର ପୌର୍ଣ୍ଣମାସୀ ତିଥି, ଧୂର୍ତ୍ତବ୍ୟକ୍ତି, ଦଶରଥଙ୍କଦ୍ୱାରା ଅଜାଣତରେ ଶରହତ ଓ ମୃତ ବୈଶ୍ୟ ସନ୍ତ,ଶ୍ରବଣେନ୍ଦ୍ରିୟଜନିତ ଜ୍ଞାନ, ( ବି°—ଶ୍ରବଣା+ଅ) ଶ୍ରବଣାନକ୍ଷତ୍ର ସମ୍ବନ୍ଧୀୟ, ଶ୍ରବଣା ନକ୍ଷତ୍ରରେ ଜାତ (ବ୍ୟକ୍ତି),ବେଦବିରୁଦ୍ଧ ମତବାଦୀ,ପାପିଷ୍ଠ, ଶ୍ରବଣେନ୍ଦ୍ରିୟଗ୍ରାହ୍ୟ (ଜ୍ଞାନ),କର୍ଣ୍ଣସମ୍ବନ୍ଧୀୟ ।

ଶ୍ରାବଣା—ବି. ଦଧାଳକବୃକ୍ଷ,ଦହିଦହିକା ଗୁଳ୍ମ, ଦହିଆଗୁଳ୍ମ, ଭୂକଦମ୍ବ ।

ଶ୍ରାବଣିକ—ବି. (ଶ୍ରାବଣୀ+ଇକ)ଶ୍ରାବଣ ମାସ, (ବି°) (ଶ୍ରବଣା+ଇକ)ଶ୍ରାବଣମାସସମ୍ବନ୍ଧୀୟ ।

ଶ୍ରାବଣିକା—ସ୍ତ୍ରୀ.ବି. (ଶ୍ରବଣ+ଇକ+ଆ) ଶ୍ରାବଣମାସର ପୂର୍ଣ୍ଣିମା, ମଣ୍ଡୂକପର୍ଣ୍ଣୀବୃକ୍ଷ, ମହୌଷଧି, ଋଦ୍ଧି ଓ ବୃଦ୍ଧିନାମକ ଔଷଧି, ଦହିଦହିକା ଗୁଳ୍ମ, ମୁଣ୍ଡିତିକା ବୃକ୍ଷ, ମୋଡାଫଳ ଗଛ, ଭୂକଦମ୍ବ ।

ଶ୍ରାବଣୀ—ବି. (ଶ୍ରାବଣ+ଈ)ଶ୍ରାବଣିକା ଦେଖ ।

ଶ୍ରାବଣୀୟ—ବି°. (ଶ୍ରୁ+ଣିଚ୍+ମି. ଅନୀୟ) ଅନ୍ୟକୁ ଶୁଣାଇବା ଯୋଗ୍ୟ, ଶୁଣିବାର ଉପଯୁକ୍ତ ।

ଶ୍ରାବନ୍ତୀ—ବି. ରାମାୟଣୋକ୍ତ ନଗରବିଶେଷ, ଉତ୍ତର କୋଶଳସ୍ଥ ଲବଙ୍କ ରାଜଧାନୀ,ଧର୍ମପତନ ନାମକ ନଗରର ନାମାନ୍ତର ।

ଶ୍ରାବୟିତବ୍ୟ—ବି°.ଅନ୍ୟକୁ ଶୁଣାଇବାର ଉପଯୁକ୍ତ ।

ଶ୍ରାବସ୍ତ—ବି. (ଶ୍ରାବ+ସ୍ତ) ଶ୍ରାବନାମକ ରାଜାଙ୍କ ପୁତ୍ର ଓ ଶ୍ରାବସ୍ତିନଗରର ପ୍ରତିଷ୍ଠାତା ।

ଶ୍ରାବସ୍ତକ—ବି. ଶ୍ରାବସ୍ତନାମକ ରାଜଗଣ ।

ଶ୍ରାବସ୍ତୀ—ବି. (ଶ୍ରାବସ୍ତ+ଈ) ଗୋଟିଏ ପ୍ରାଚୀନ ଦେଶ ଓ ତାହାର ରାଜଧାନୀ ।

ଶ୍ରାବସ୍ତେୟ—ବି°. ଶ୍ରାବସ୍ତୀ ଦେଶଜାତ ।

ଶ୍ରାବା—ବି. ଅନ୍ନମଣ୍ଡ, ପେଜ ।

ଶ୍ରାବିତ—ବି°. ( ଶ୍ରୁ+ଣିଚ୍+ମି.ତ ) ଯାହା କର୍ଣ୍ଣଗୋଚର କରାଯାଇଅଛି, ଜ୍ଞାପିତ, ବର୍ଣ୍ଣିତ ।

ଶ୍ରାବିତା—ବି°. ( ଶ୍ରୁ+ଣିଚ୍+କ.ତୃ ) ଶ୍ରୋତା, ଯେ ଶୁଣାଏ ।

ଶ୍ରାବୀ—ବି. ସାଜିମାଟି, ସର୍ଜକାକ୍ଷାର ।

ଶ୍ରାବ୍ୟ—ବି°. ( ଶ୍ରୁ+ଣିଚ୍+ମି.ଯ ) ଶ୍ରବଣଯୋଗ୍ୟ, ଶୁଣାଇବାର ଉପଯୁକ୍ତ ।

ଶ୍ରାବ୍ୟକାବ୍ୟ-ବି. ପଠନ ବା ଶ୍ରବଣଯୋଗ୍ୟ କାବ୍ୟ ।

ଶ୍ରାହ୍ନ-ଯା.ବି.ମୁସଲମାନମାନଙ୍କ ଗଣନାରେ ହିଜରୀ ବର୍ଷର ସଂଖ୍ୟାର ପରେ ଲେଖାଯିବା ଶବ୍ଦ । [ ଦେଖ ।

ଶ୍ରିଅ—ଗ୍ରା.ବି. (ସଂ-ଶ୍ରେୟଃ) ଶ୍ରେୟଃ

ଶ୍ରିଆଦେବୀ—ଗ୍ରା.ବି. ଶ୍ରୀ, ମହାଲକ୍ଷ୍ମୀ ।

ଶ୍ରିତ—ପୁଂ.ବି°. (ଶ୍ରି+ତ) ସେବିତ, ଆଶ୍ରିତ,ପକ୍ୱ,ଶରଣାର୍ଥ ଯାହା ନିକଟରେ କେହି ପହୁଞ୍ଚେ, ଉପଜୀବିତ, ଜୀବିକା ନିର୍ବାହାର୍ଥ ଅନ୍ୟବ୍ୟକ୍ତି ନିକଟରେ ଅବସ୍ଥିତ, (ଅମୁକଉପରେ) ଭର ଦେଇଥିବା, ସଂଯୁକ୍ତ, ସଂଯୋଜିତ, ରକ୍ଷିତ, ସମ୍ମାନିତ, ପୂଜିତ, ଆବୃତ,ପୃଷ୍ଠ ଚଢ଼ାଯାଇଥିବା, ସହାୟକ, ସଂଗୃହୀତ, ଅଧିକାରୀ, (ସ୍ତ୍ରୀ) ଶ୍ରିତା ।

ଶ୍ରିତବାନ୍—ପୁଂ. ବିଂ. (ଶ୍ରି + ତବତ୍) ସେବାକାରକ, ଆଶ୍ରିତ, ଶରଣାପନ୍ନ, (ସ୍ତ୍ରୀ) ଶ୍ରିତବତୀ ।

ଶ୍ରିୟଂମନ୍ୟ—ବି. ଯେ ନିଜକୁ ଲକ୍ଷ୍ମୀ ବୋଲି ମନେକରେ ।

ଶ୍ରିୟା—ବି. ବିଷ୍ଣୁଙ୍କ ପତ୍ନୀ, ଲକ୍ଷ୍ମୀ ।

ଶ୍ରିୟାବାସ—ପୁଂ. ବିଂ. ଲକ୍ଷ୍ମୀଯୁକ୍ତ, ଶ୍ରୀସମ୍ପନ୍ନ ।

ଶ୍ରିୟାବାସୀ—ପୁଂ.ବି. ମହାଦେବ ।

ଶ୍ରୀ—ସ୍ତ୍ରୀ.ବି. (ଶ୍ରି + କ୍ୱିପ୍)ବିଷ୍ଣୁଙ୍କ ପତ୍ନୀ, ଲକ୍ଷ୍ମୀ, ଆଲୋକ, ଔଜ୍ଜ୍ୱଲ୍ୟ, ଲାବଣ୍ୟ, ଲବଙ୍ଗ,ବେଶରଚନା,ଶୋଭା,ସରସ୍ୱତୀ, ଦେବଦାରୁଗଛ, ( ଧର୍ମାର୍ଥକାମ ) ତ୍ରିବର୍ଗ, ସମ୍ପତ୍ତି, ପ୍ରକାର, ଉପକରଣ, ବିଭୂତି, ସୌଭାଗ୍ୟ, ମତି, ଅଧିକାର, ପ୍ରଭା, ଯଶଃ, କାନ୍ତି, ବୃଦ୍ଧି, ସିଦ୍ଧି, ବିଲ୍ୱ ବୃକ୍ଷ,ବୁଦ୍ଧି,ଲବଙ୍ଗଲତାନାମକ କସ୍ତୁରୀ ଗଛ, ପଦ୍ମ, ଋଦ୍ଧି ନାମକ ଔଷଧି, ବେଷ, ରାଜଶ୍ରୀ, ବସ୍ତ୍ରର ବର୍ଣ୍ଣ, ଉତ୍କର୍ଷ, ଅତି-ମାନୁଷ ଶକ୍ତି, ଚନ୍ଦ୍ରଙ୍କର ଦ୍ୱାଦଶକଳା, ବାକ୍, ଅଳଙ୍କାର, ବିଦ୍ୟାରମ୍ଭାଦିବେଳେ ଲେଖିବା ବା ଉଚ୍ଚାରଣ କରିବା 'ଶ୍ରୀ' ଅକ୍ଷର ବା ଶବ୍ଦ, ରାଗବିଶେଷ, ଏକାକ୍ଷର ଛନ୍ଦୋବିଶେଷ,(ପୁଂ.ବିଂ) ଶ୍ରୀଳ-ଶ୍ରୀଯୁକ୍ତ, ( ଗ୍ରା.ବି ) ଖ୍ୟାତ ବ୍ୟକ୍ତିର ନାମର ପୂର୍ବେ ବସିବା 'ଶ୍ରୀ' ଶବ୍ଦ, ଦେବତା ଓ ଗୁରୁଜନ ବା ପବିତ୍ରବସ୍ତୁର ନାମର ପୂର୍ବେ ବସିବା 'ଶ୍ରୀ'ଶବ୍ଦ ।

ଶ୍ରୀଅଙ୍ଗ—ଗ୍ରା. ବି. ଦେବତା, ରାଜା, ଗୁରୁଜନ ଓ ସମ୍ମାନାସ୍ପଦ ବ୍ୟକ୍ତିଙ୍କ ଅଙ୍ଗ ବା ଦେହ, ସୁକୁମାର ଦେହ ।

ଶ୍ରୀଅଙ୍ଗଆଲସ୍ୟ—ଗ୍ରା. ବି. ରାଜାଙ୍କ ଅସୁସ୍ଥତା, ରାଜାଦିଙ୍କୁ ନିଦ୍ରା ଆକର୍ଷଣ ।

ଶ୍ରୀଅଙ୍ଗରେ ଘାଉଡ଼କରିବା—ଗ୍ରା. କ୍ରି. (ଲ.ଅର୍ଥ) ପ୍ରଧାନ ବ୍ୟକ୍ତି, ଗୃହର କର୍ତ୍ତା ବା କର୍ତ୍ତ୍ରୀଙ୍କର ଅନିଷ୍ଟ କରିବା, ଗୃହକର୍ତ୍ତା ବା କର୍ତ୍ତ୍ରୀଙ୍କୁ କଳଙ୍କିତ କରିବା, ରାଜା ବା ପ୍ରଧାନ ବ୍ୟକ୍ତିଙ୍କ ପରିବାରସ୍ଥ ସ୍ତ୍ରୀଲୋକମାନଙ୍କ ସଙ୍ଗେ ପାପାଚରଣାଦି କରିବା ।

ଶ୍ରୀଅଙ୍ଗସଙ୍ଗ—ବି. ଶ୍ରୀଅଙ୍ଗରେ ମିଶିବା, ଦେହରେ ଲଗ୍ନହେବା ।

ଶ୍ରୀଆ—ଗ୍ରା.ବି. ଶ୍ରୀ, ମହାଲକ୍ଷ୍ମୀ ।

ଶ୍ରୀକ—ବି. ପକ୍ଷିବିଶେଷ, ଶ୍ରୀକଣ୍ଠ ବା ଶ୍ରୀବାସକ ନାମକ ପକ୍ଷୀ ।

ଶ୍ରୀକଣ୍ଠ—ପୁଂ.ବି. (ବ.ବ୍ରୀ) ମହାଦେବ, ପକ୍ଷିବିଶେଷ, ଉତ୍ତରରାମଚରିତ ଓ ମାଲତୀମାଧବ ନାଟକ ରଚୟିତା ଭବଭୂତିଙ୍କ ଉପନାମ, ହସ୍ତିନାର ଉଃ ପଃ ସ୍ଥ କୁରୁଜାଙ୍ଗଲ ଦେଶ ।

ଶ୍ରୀକଣ୍ଠକଣ୍ଠ—ପୁଂ.ବି. ଶିବଙ୍କର କଣ୍ଠ, ମୟୂରର କଣ୍ଠ ।

ଶ୍ରୀକଣ୍ଠନିଲୟ—ପୁଂ.ବି. ଶିବ ।

ଶ୍ରୀକଣ୍ଠପଦଲାଞ୍ଛନ—ପୁଂ. ବି. କବି ଭବଭୂତିଙ୍କ ଉପନାମ,ଉଃ ଭାରତର ପ୍ରାଚୀନ ଦେଶବିଶେଷ ।

ଶ୍ରୀକଣ୍ଠସଖ—ପୁଂ.ବି. (ବ.ବ୍ରୀ)କୁବେର ।

ଶ୍ରୀକଣ୍ଠୀୟ—ବିଂ. ଶ୍ରୀକଣ୍ଠସମ୍ବନ୍ଧୀୟ ।

ଶ୍ରୀକନ୍ଦା—ବି. ବନ୍ଧ୍ୟାକର୍କୋଟକୀ, ଅଷାଢ଼ୁଆ ଫଳ ।

ଶ୍ରୀକର—କ୍ଲୀ. ବି. ( ବ.ବ୍ରୀ ) ରକ୍ତପଦ୍ମ, କୋକନଦ, ନାଲିକଇଁ, (ପୁଂ.ବି)ବିଷ୍ଣୁ, ଜନୈକ କବି,(କ.ଧା)ଶ୍ରୀହସ୍ତ,ଦେବତା ଓ ରାଜାଙ୍କ ହସ୍ତ, (ବିଂ-ଶ୍ରୀ + କୃ + ଅ) ଶୋଭାଜନକ, (ସ୍ତ୍ରୀ) ଶ୍ରୀକରୀ ।

ଶ୍ରୀକରଣ—ବି. (ଶ୍ରୀ + କୃ + ଅନ)କଲମ, ଲେଖନୀ ଆଦି,(ଗ୍ରା ବି) କରଣମାନଙ୍କର ଶାଖାବିଶେଷ, ଶେଠକରଣ ଦେଖ ।

ଶ୍ରୀକରଶାସ୍ତ୍ରୀ—ଗ୍ରା.ବି. ଉତ୍କଳର ଜନୈକ ବିଖ୍ୟାତ ସ୍ୱର୍ଗୀୟ ପଣ୍ଡିତ ।

ଶ୍ରୀକଣ୍ଠି-ପୁଂ.ବି.ପକ୍ଷିବିଶେଷ, ଶ୍ରୀବାସପକ୍ଷୀ ।

ଶ୍ରୀକର୍ପୂର-ବି.ବାଷ୍ପୀଭୂତ ହୋଇ ଶୋଧିତ ହୋଇଥିବା କର୍ପୂର ।

ଶ୍ରୀକାକୋଲ—ଗ୍ରା. ବି. ଆଧୁନିକ ଶିକାକୋଲର ପ୍ରାଚୀନ ନାମ ।

ଶ୍ରୀକାତର—ପୁଂ. ବିଂ. (୭ତତ୍) ଅପରର ସୌଭାଗ୍ୟ ଦେଖି ଅସନ୍ତୁଷ୍ଟ, ମତ୍ସର, ପରଶ୍ରୀକାତର ।

ଶ୍ରୀକାନ୍ତ-ପୁଂ.ବି.(୬ତତ୍)ବିଷ୍ଣୁ,ଲକ୍ଷ୍ମୀପତି ।

ଶ୍ରୀକାପଡ଼ା—ଗ୍ରା.ବି.ପୁରୀରେଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀଅଙ୍ଗଲାଗି ବସ୍ତ୍ରଖଣ୍ଡ ।

ଶ୍ରୀକାମ—ପୁଂ. ବିଂ. ସମ୍ପତ୍ତିକାମନାକାରୀ ।

ଶ୍ରୀକାରୀ—ପୁଂ. ବି. (ଶ୍ରୀ + କୃ + କ.ଇନ୍) ମୃଗବିଶେଷ, ମୃଗୟାବିଶେଷ ।

ଶ୍ରୀକୁଞ୍ଜ-ବି.ସରସ୍ୱତୀ ତୀରସ୍ଥ ତୀର୍ଥବିଶେଷ ।

ଶ୍ରୀକୁଣ୍ଡ—କ୍ଲୀ. ବି. ତୀର୍ଥଭେଦ ।

ଶ୍ରୀକୂର୍ମ—ଗ୍ରା. ବି. ଗଞ୍ଜାମର ଦକ୍ଷିଣ ଶିକାକୋଲ ତାଲୁକାର ଅନ୍ତର୍ଗତ ପ୍ରାଚୀନ ତୀର୍ଥ ।

ଶ୍ରୀକୃଷ୍ଣ—ପୁଂ. ବି. ବାସୁଦେବ, ଦେବକୀ ଓ ବସୁଦେବଙ୍କ ପୁତ୍ର, ନନ୍ଦ ଓ ଯଶୋଦାଙ୍କ ପାଳିତ ପୁତ୍ର, ବିଷ୍ଣୁଙ୍କର ଦ୍ୱାପରଯୁଗରେ ଗୋପରେ ଆବିର୍ଭୂତ ଶ୍ରୀକୃଷ୍ଣାବତାର, ନାରାୟଣ, ବିଷ୍ଣୁ ।

ଶ୍ରୀକୃଷ୍ଣଚୈତନ୍ୟ—ଶ୍ରୀଚୈତନ୍ୟଦେବଙ୍କ ନାମାନ୍ତର ।

ଶ୍ରୀକୃଷ୍ଣଜନ୍ମାଷ୍ଟମୀ—ବି. ଶ୍ରୀକୃଷ୍ଣଙ୍କର ଜନ୍ମଦିନ, ଭାଦ୍ରକୃଷ୍ଣ ଅଷ୍ଟମୀ ତିଥି ।

ଶ୍ରୀକ୍ରିୟାରୂପିଣୀ—ସ୍ତ୍ରୀ. ବି. ରାଧା ।

ଶ୍ରୀକ୍ଷେତ୍ର—ବି. ( କ.ଧା ) ପ୍ରସିଦ୍ଧ ତୀର୍ଥ, ଜଗନ୍ନାଥଧାମ,ପୁରୀ,ପୁରୁଷୋତ୍ତମ,କଳିଯୁଗର ବୌଦ୍ଧାବତାରଙ୍କ ଅଧିଷ୍ଠିତ ତୀର୍ଥ

ଶ୍ରୀଖଣ୍ଡ—ବି. ହରିଚନ୍ଦନ, ଶ୍ୱେତଚନ୍ଦନ, ବାସିଚନ୍ଦନ ।

ଶ୍ରୀଖଣ୍ଡଶୈଳ—ପୁଂ. ବି. ମଳୟାଚଳ, ମଳୟପର୍ବତ ।

ଶ୍ରୀଖଣ୍ଡି--ପ୍ରା.ମେଦି.ବି.ବସ୍ତ୍ରବିଶେଷ,ଖଣ୍ଡୁଆ, ଚିତ୍ରିତ ଆସନବିଶେଷ, ଚଟାଦେବା, ଆଲିପଣା, ବେଦୀ । [ ନାମା ।

ଶ୍ରୀଗଣେଶା—ସ୍ତ୍ରୀ. ବି. ଶ୍ରୀରାଧାଙ୍କର ଅନ୍ୟ

ଶ୍ରୀଗନ୍ଧ—କ୍ଲୀ. ବି. ଶ୍ୱେତଚନ୍ଦନ ।

ଶ୍ରୀଗର୍ଭ—ପୁଂ. ବି. ବିଷ୍ଣୁ, ଖଡ୍ଗ, କାଶ୍ମୀରର ଜନୈକ ରାଜକବି ।

ଶ୍ରୀଗର୍ଭରତ୍ନ—ବି. ମୂଲ୍ୟବାନ୍ ପ୍ରସ୍ତର ।

ଶ୍ରୀଗିରି—ପୁଂ. ବି. ଗୁରୁଶୈଳ,ଶ୍ରୀଶୈଳ ।

ଶ୍ରୀଗୁପ୍ତ—ମଗଧର ଗୁପ୍ତରାଜବଂଶର ପ୍ରତିଷ୍ଠାତା ।

ଶ୍ରୀଗୁରୁ—ବି. ମନ୍ତ୍ର ବା ଜ୍ଞାନଦାତା ଗୁରୁ, ଭଗବାନ୍, ବିଷ୍ଣୁ ।

ଶ୍ରୀଗୋପାଳ—ବି. ଶ୍ରୀକୃଷ୍ଣ, (ଗ୍ରା.ବି) ପୁରୀ-ଜିଲ୍ଲା ସତ୍ୟବାଦୀରେ ପ୍ରତିଷ୍ଠିତ ଶ୍ରୀକୃଷ୍ଣ-ବିଗ୍ରହ, ବାଲେଶ୍ୱର ରେମୁଣାର କ୍ଷୀରଚୋରା ଗୋପୀନାଥ ମୂର୍ତ୍ତି ।

ଶ୍ରୀଗୋପାଳଚୂଡ଼ାମଣି—ପୁଂ.ବି.ଶ୍ରୀକୃଷ୍ଣ ।

ଶ୍ରୀଗୋପୀନାଥ—ବି. ଶ୍ରୀକୃଷ୍ଣ ।

ଶ୍ରୀଗୌର—ଗ୍ରା. ବି. ଚୈତନ୍ୟଦେବ ।

ଶ୍ରୀଗ୍ରହ—ବି. ଶକୁନଗ୍ରହ,ପ୍ରପା, ପକ୍ଷିମାନ-ଙ୍କର ପାନୀୟଶାଳା ।

ଶ୍ରୀଘନ—ପୁଂ.ବି.ବୁଦ୍ଧଦେବ,ବୌଦ୍ଧଯତି, (କ୍ଲୀ.ବି) ଦଧି, ଦହି ।

ଶ୍ରୀଚକ୍ର—ବି. ପୃଥିବୀ, ଭୂଚକ୍ର, ଇନ୍ଦ୍ରଙ୍କ ରଥଚକ, ତ୍ରିପୁରସୁନ୍ଦରୀର ପୂଜାଯନ୍ତ୍ର ବିଶେଷ ।

ଶ୍ରୀଚନ୍ଦନ—ବି. ଶ୍ୱେତଚନ୍ଦନ, ଶ୍ରୀଖଣ୍ଡ ଦେଖ, ଅଗୁରୁଚନ୍ଦନ, (ଗ୍ରା.ବି) କ୍ଷତ୍ରିୟ ରାଜବଂଶୀୟମାନଙ୍କ ଉପାଧିବିଶେଷ ।

ଶ୍ରୀଚନ୍ଦ୍ର—ବି. ପ୍ରଥମଚନ୍ଦ୍ର, ଜନ୍ମଚନ୍ଦ୍ର ।

ଶ୍ରୀଚରଣ—ବି. ( କ.ଧା ) ଦେବତା ଓ ଗୁରୁଜନଙ୍କର ଚରଣ, ଦେବତା ଓ ଗୁରୁଜନଙ୍କ ସନ୍ନିଧି ।

ଶ୍ରୀଚରଣକମଳ—ବି. ଦେବତା ଓ ଗୁରୁ-ଜନଙ୍କ ପାଦପଦ୍ମ ।

ଶ୍ରୀଚରଣକମଳେଷୁ-ଗ୍ରା. ଅବ୍ୟ.ପତ୍ରାଦିରେ ଲେଖାଯିବା ସମ୍ମାନସୂଚକ ଶବ୍ଦ ।

ଶ୍ରୀଚୈତନ୍ୟ—ଗ୍ରା. ବି. ଚୈତନ୍ୟଦେବ ।

ଶ୍ରୀଚ୍ୟୁତ—ବିଂ. (୫ତତ୍) ଯାହାଠାରୁ ଶ୍ରୀ (ଲକ୍ଷ୍ମୀ,ଶୋଭା,ସମ୍ପଦ୍) କାଢ଼ିନିଆଯାଇ-ଅଛି, (ସ୍ତ୍ରୀ) ଶ୍ରୀଚ୍ୟୁତା ।

ଶ୍ରୀଜ—ପୁଂ. ବି. ( ଶ୍ରୀ+ଜନ୍+କ.ଅ ) କାମଦେବ, ଶାମ୍ବ ।

ଶ୍ରୀଣା—ସ୍ତ୍ରୀ. ବି. ରାତ୍ରି ।

ଶ୍ରୀତରୁ—ବି. ଶାଳଗଛ ।

ଶ୍ରୀତାଳ—ବି. ମଳୟଦେଶ ପ୍ରସିଦ୍ଧ ତାଳ ବୃକ୍ଷ ସଦୃଶ ବୃକ୍ଷବିଶେଷ ।

ଶ୍ରୀତେଜାଃ—ପୁଂ. ବି. ବୁଦ୍ଧଦେବ ।

ଶ୍ରୀଦ—ପୁଂ. ବି.(ଶ୍ରୀ+ଦା+ଅ)କୁବେର, ବିଷ୍ଣୁଙ୍କ ନାମ, (ପୁଂ.ବିଂ)ଯେ ସୌନ୍ଦର୍ଯ୍ୟ ଦାନକରେ,ସୌଭାଗ୍ୟଦାତା,ଧନଦାତା, (ସ୍ତ୍ରୀ) ଶ୍ରୀଦା ।

ଶ୍ରୀଦାମ—ପୁଂ. ବି. ଶ୍ରୀକୃଷ୍ଣଙ୍କର ପ୍ରିୟସଖା ଗୋପାଳବାଳକ ।

ଶ୍ରୀଦେବା—ସ୍ତ୍ରୀ. ବି. ବସୁଦେବଙ୍କ ପତ୍ନୀ ବିଶେଷ ।

ଶ୍ରୀଧର—ପୁଂ. ବି. ( ଶ୍ରୀ+ଧୃ+କ.ଅ ) ବିଷ୍ଣୁ, ଶାଳଗ୍ରାମ ଶିଳା ।

ଶ୍ରୀଧରକଥକ—ଗ୍ରା. ବି. ବଙ୍ଗଦେଶର ଜଣେ ପ୍ରାଚୀନ ପୁରାଣକଥକ ।

ଶ୍ରୀଧରଦାସ—ଗ୍ରା. ପୁଂ. ବି. ଉତ୍କଳୀୟ କବିବିଶେଷ, ଏହାଙ୍କ ଘର ବାଙ୍କିରେ, ଏ କୃଷ୍ଣଙ୍କ ବାଲ୍ୟଲୀଳା ବର୍ଣ୍ଣନାତ୍ମକ କାଞ୍ଚନଲତା ନାମକ ଖଣ୍ଡିଏ ଗ୍ରନ୍ଥ ଲେଖି-ଥିଲେ ।

ଶ୍ରୀଧରସ୍ୱାମୀ—ସୁପ୍ରସିଦ୍ଧ ପୁରାଣାଦିର ପ୍ରସିଦ୍ଧ ଟୀକାକାର ।

ଶ୍ରୀଧାତ୍ରୀ—ସ୍ତ୍ରୀ. ବି. ଶିରୀମଲକ୍ଷ୍ମୀ ।

ଶ୍ରୀଧାମ—କ୍ଲୀ.ବି.ଲକ୍ଷ୍ମୀଙ୍କ ବାସସ୍ଥାନ(ପଦ୍ମ)

ଶ୍ରୀନଗର—କାଶ୍ମୀରରାଜ୍ୟର ରାଜଧାନୀ, କାନପୁର ନିକଟବର୍ତ୍ତୀ ଗୋଟିଏ ନଗର, ବୁନ୍ଦେଲଖଣ୍ଡର ଅନ୍ତର୍ଗତ ଗୋଟିଏ ନଗର

ଶ୍ରୀନନ୍ଦନ—ପୁଂ. ବି. ( ୬ତତ୍ ) ଲକ୍ଷ୍ମୀଙ୍କ ପୁତ୍ର, କାମଦେବ ।

ଶ୍ରୀନନ୍ଦନନନ୍ଦନ—ପୁଂ. ବି. ଶ୍ରୀକୃଷ୍ଣ ।

ଶ୍ରୀନାଥ—ପୁଂ. ବି. (ଶ୍ରୀ + ନାଥ) ୬ତତ୍; ବିଷ୍ଣୁ ।

ଶ୍ରୀନାଶ—ବି. (୬ତତ୍)ସୌଭାଗ୍ୟର ଧ୍ୱଂସ, ସୌନ୍ଦର୍ଯ୍ୟନାଶ ।

ଶ୍ରୀନାଶକ—ବିଂ. (ଶ୍ରୀ+ନାଶି+କ.ଅକ) ସୌଭାଗ୍ୟ ନାଶକାରୀ,ଶୋଭାଧ୍ୱଂସକାରୀ (ସ୍ତ୍ରୀ) ନାଶିକା ।

ଶ୍ରୀନିକେତ—ବି.ରକ୍ତପଦ୍ମ,ସୁବର୍ଣ୍ଣ,ଶ୍ରୀବାସ, ସରଳନିର୍ଯ୍ୟାସ, ନବନୀତ ଧୂପ,ତାର୍ପିନ୍

ଶ୍ରୀନିକେତନ—ପୁଂ.ବି.(ଶ୍ରୀ+ନିକେତନ) ବ.ବ୍ରୀ; ବିଷ୍ଣୁ, (୬ତତ୍)ଲକ୍ଷ୍ମୀଙ୍କର ବାସ-ସ୍ଥାନ, ପଦ୍ମ, ବୈକୁଣ୍ଠ ।

ଶ୍ରୀନିତମ୍ବା—ସ୍ତ୍ରୀ. ବି. (ବ.ବ୍ରୀ)ରାଧା,(ବିଂ) ସୁଶ୍ରୋଣୀ, ସୁନ୍ଦରନିତମ୍ବବିଶିଷ୍ଟା(ସ୍ତ୍ରୀ) ।

ଶ୍ରୀନିଧି—ପୁଂ. ବି. (୬ତତ୍)ବିଷ୍ଣୁ, ଲକ୍ଷ୍ମୀ-ଙ୍କର ବାସସ୍ଥାନ ବୈକୁଣ୍ଠ ।

ଶ୍ରୀନିବାସ—ପୁଂ. ବି. ବିଷ୍ଣୁ ।

ଶ୍ରୀନିବାସକ—ପୁଂ. ବି. କୁରୁଣ୍ଟକ ବୃକ୍ଷ ।

ଶ୍ରୀନିବାସଦୀପିକା—ବି. ଜ୍ୟୋତିଷ ଗ୍ରନ୍ଥ-ବିଶେଷ ।

ଶ୍ରୀପଞ୍ଚମୀ—ବି. ମାଘ ଶୁକ୍ଳପଞ୍ଚମୀ, ଏଦିନ ସରସ୍ୱତୀଙ୍କୁ ପୂଜା କରାଯାଏ ।

ଶ୍ରୀପତି—ପୁଂ.ବି.(୬ତତ୍) ବିଷ୍ଣୁ , ପୃଥିବୀ-ପତି,ରାଜା ।

ଶ୍ରୀପତିଦାସ—ଗ୍ରା.ବି. ଜନୈକ ଉତ୍କଳୀୟ ସଂସ୍କୃତ ଜ୍ୟୋତିଷ ଗ୍ରନ୍ଥକାର, ଏ ଶ୍ରୀପତିଜାତକ ନାମକ ଗ୍ରନ୍ଥ ପ୍ରଣୟନ କରିଥିଲେ ।

ଶ୍ରୀପଥ—ବି. ରାଜପଥ ।

ଶ୍ରୀପଦ—ବି. ଶ୍ରୀଚରଣ ଦେଖ ।

ଶ୍ରୀପଦ୍ମା—ସ୍ତ୍ରୀ.ବି. ବାର୍ଷିକ ମଲ୍ଲୀ (ଫୁଲ ଓ ଗଛ) ।

ଶ୍ରୀପଦ୍ମ—ପୁଂ. ବି. ଶ୍ରୀକୃଷ୍ଣ ।

ଶ୍ରୀପର୍ଣ୍ଣ—ବି.(ବ.ବ୍ରୀ)ପଦ୍ମ, ଅଗ୍ନିମନ୍ଥବୃକ୍ଷ, ଅଗବଥୁଗଛ ।

ଶ୍ରୀପର୍ଣ୍ଣିକା(ପର୍ଣ୍ଣୀ)—ସ୍ତ୍ରୀ.ବି.କଟଫଳବୃକ୍ଷ, ଗମ୍ଭାରୀଗଛ, ଶିମିଳିଗଛ, ଅଗ୍ନିମନ୍ଥ ବୃକ୍ଷ, ପୃଶ୍ନିପର୍ଣ୍ଣୀ ।

ଶ୍ରୀପର୍ବତ—ପୁଂ.ବି.ଶ୍ରୀଗିରି, ଶ୍ରୀଶୈଳ ।

ଶ୍ରୀପା—ପୁଂ. ବିଂ. (ଶ୍ରୀ+ପା+କ୍ୱିପ୍) ସୌଭାଗ୍ୟଶାଳୀ, ଐଶ୍ୱର୍ଯ୍ୟ ବା ଶ୍ରୀରକ୍ଷା-କାରୀ ।

ଶ୍ରୀପାଦ—ପୁଂ.ବିଂ. (ବ.ବ୍ରୀ) ପୂଜ୍ୟପାଦ, ଶ୍ରେଷ୍ଠପାଦ, ଭାଗ୍ୟବାନ୍, ଲକ୍ଷ୍ମୀବନ୍ତ ।

ଶ୍ରୀପିଷ୍ଟ—ପୁଂ.ବି.ସରଳ ବୃକ୍ଷର ନିର୍ଯ୍ୟାସ, ତାର୍ପିନ୍ । [ଅଣୁ ।

ଶ୍ରୀପୁତ୍ର—ପୁଂ. ବି. (୬ତତ୍) କାମଦେବ,

ଶ୍ରୀପୁଷ୍ପ-କ୍ଲୀ.ବି.ଲବଙ୍ଗ, ପଦ୍ମକାଷ୍ଠ, ଶ୍ୱେତ-ପଦ୍ମ, ପ୍ରପୌଣ୍ଡରିକ ।

ଶ୍ରୀପ୍ରସୂନକ—ବି. ଲବଙ୍ଗ ।

ଶ୍ରୀପ୍ରିୟ—ବି.ଲକ୍ଷ୍ମୀପ୍ରିୟ ଦ୍ରବ୍ୟ,ହରିତାଳ ।

ଶ୍ରୀଫଳ—ପୁଂ. ବି. (ବ.ବ୍ରୀ) ବେଲଗଛ,

ରକାଦମ୍ବୀବୃକ୍ଷ, କ୍ଷୀରକୋଳି ଗଛ, (କ୍ଲୀ. ବି) ବେଲଫଳ, ନଡ଼ିଆ, କଞ୍ଚାଗୁଆ, ଅଁଳା ।

ଶ୍ରୀଫଳଶଲାଟୁ—ବି. କଞ୍ଚା ବେଲଫଳ, ବେଲଶୁଣ୍ଠା ।

ଶ୍ରୀଫଳା—ସ୍ତ୍ରୀ. ବି. ନୀଳୀବୃକ୍ଷ, ଆମଳକୀ, ଝୁଷିକଲତା ।

ଶ୍ରୀଫଳିକା-ବି.ମହାନୀଲୀବୃକ୍ଷ,ଝୁଷିକଲତା ।

ଶ୍ରୀଫଳୀ—ବି. ଅଁଳାଗଛ, ନୀଳୀବୃକ୍ଷ, ମହାଜ୍ୟୋତିଷ୍ମତୀ, ବଡ଼ ଫୁଟିଫୁଟିକା ।

ଶ୍ରୀଭକ୍ଷ—ବି. ମଧୁପର୍କ ।

ଶ୍ରୀଭଦ୍ର(ଦ୍ରା)--ବି.ଭଦ୍ରମୁସ୍ତକ,ନାଗରମୁଥା ।

ଶ୍ରୀଭାଗବତ—ବି. (କ.ଧା) ଅଷ୍ଟାଦଶ ପୁରାଣ ଅନ୍ତର୍ଗତ ମହାପୁରାଣବିଶେଷ ।

ଶ୍ରୀଭାନୁ—ପୁଂ. ବି. ଶ୍ରୀକୃଷ୍ଣଙ୍କର ପୁତ୍ର, ଏ ସତ୍ୟଭାମାଙ୍କ ଗର୍ଭରେ ଜନ୍ମିଥିଲେ ।

ଶ୍ରୀଭୁକ୍—ପୁଂ. ବିଂ. (ଶ୍ରୀ+ଭୁଜ୍+କ୍ୱିପ୍) ଲକ୍ଷ୍ମୀବାନ୍ ।

ଶ୍ରୀଭୁଜ—ବି(କ.ଧା)ସୌନ୍ଦର୍ଯ୍ୟବାନ୍ୱିତ ବାହୁ ।

ଶ୍ରୀଭ୍ରଷ୍ଟ—ବିଂ(ବତତ୍ପୁ)ଯାହାର ସୌଭାଗ୍ୟ ନଷ୍ଟ ହୋଇଅଛି, ଶୋଭାଭ୍ରଷ୍ଟ, ଲକ୍ଷ୍ମୀ ବା ସମ୍ପତ୍ତିହୀନ,ମଳିନ ।

ଶ୍ରୀଭ୍ରାତା—ପୁଂ. ବି. ( ୬ତତ୍ପୁ ) ଅଶ୍ୱ, ଐରାବତ ହସ୍ତୀ, ଚନ୍ଦ୍ର ।

ଶ୍ରୀମଞ୍ଜରୀ—ସ୍ତ୍ରୀ. ବି. ତୁଳସୀବୃକ୍ଷ ।

ଶ୍ରୀମଞ୍ଜୁ—ପୁଂ. ବି. ପର୍ବତଭେଦ ।

ଶ୍ରୀମଣ୍ଡପ—ପୁଂ. ବି. ପର୍ବତବିଶେଷ ।

ଶ୍ରୀମଚ୍ଛଙ୍କରାଚାର୍ଯ୍ୟ—ବି.ଶଙ୍କରାଚାର୍ଯ୍ୟ ଦେଖ ।

ଶ୍ରୀମତ୍କୁମ୍ଭ—ବି. ସ୍ୱର୍ଣ୍ଣ, ସୁନା ।

ଶ୍ରୀମତ—ସ୍ତ୍ରୀ. ବି. ରାଧା, ରାଧିକା ।

ଶ୍ରୀମତୀ—ସ୍ତ୍ରୀ.ବିଂ. (ଶ୍ରୀମତ୍+ଈ)ଶ୍ରୀଯୁକ୍ତା, ଶ୍ରୀସମ୍ପନ୍ନା, (ବି) ଲକ୍ଷ୍ମୀ,ରାଧିକା,ମୁଣ୍ଡିରୀ ।

ଶ୍ରୀମତୀମହାରାଣୀ—ଗ୍ରା.ସ୍ତ୍ରୀ. ବି. ସ୍ୱର୍ଗୀୟା ଭାରତ ସାମ୍ରାଜ୍ଞୀ ଭିକ୍ଟୋରିୟାଙ୍କୁ ଭାରତୀୟମାନଙ୍କ ଦ୍ୱାରା ପ୍ରଦତ୍ତ ନାମ ।

ଶ୍ରୀମତ୍ତ୍ୱ(ତ୍ୱ)—ବି(ଶ୍ରୀମତ୍+ତା.ତ୍ୱ)ଶ୍ରୀଯୁକ୍ତ ହେବା ଅବସ୍ଥା ।

ଶ୍ରୀମଦ୍ଭାଗବତ—ବି. ପୂଜାର୍ହ ଭାଗବତ ପୁରାଣ ।

ଶ୍ରୀମନ୍ତ—ଗ୍ରା.ପୁଂ.ବିଂ. ଭାଗ୍ୟବାନ୍ ।

ଶ୍ରୀମନ୍ତସୌଦାଗର—ଗ୍ରା.ପୁଂ. ବି. ବଙ୍ଗଳାର ଜନୈକ ପ୍ରସିଦ୍ଧ ବଣିକ ।

ଶ୍ରୀମନ୍ମନ୍ୟ— ପୁଂ.ବିଂ. ଯେ ନିଜକୁ ଲକ୍ଷ୍ମୀଯୁକ୍ତ ବୋଲି ମନେ କରେ, (ସ୍ତ୍ରୀ) ଶ୍ରୀମନ୍ମନ୍ୟା ।

ଶ୍ରୀମନ୍ଦିର—ବି. ଦେବମନ୍ଦିର, ( ଗ୍ରା.ବି ) ପୁରୀ ଜଗନ୍ନାଥ ମନ୍ଦିର,(ବ୍ୟଙ୍ଗ୍ୟ)ଜେଲଖାନା, କାରାଗାର ।

ଶ୍ରୀମୟୂ—ପୁଂ. ବିଂ. (ଶ୍ରୀ+ମୟୂ)ଶ୍ରୀଯୁକ୍ତ, (ବି) ବିଷ୍ଣୁ ।

ଶ୍ରୀମଳାପହା—ବି. ଧୂମପହା, ଧୂଆଁପଦ, ଢୋକଡ଼ା ।

ଶ୍ରୀମସ୍ତକ—ବି.ଲକ୍ଷ୍ମୀଙ୍କ ମସ୍ତକ,ରସୋନ, ରଶୁଣ । [ ମାତା ।

ଶ୍ରୀମହାଦେବୀ—ସ୍ତ୍ରୀ. ବି. ଶଙ୍କରାଚାର୍ଯ୍ୟଙ୍କ

ଶ୍ରୀମହିମା—ପୁଂ. ବି. ମହାଦେବ ।

ଶ୍ରୀମାନ୍—ପୁଂ. ବିଂ. (ଶ୍ରୀ+ମତ୍)ଭାଗ୍ୟବାନ୍, ଶ୍ରୀଯୁକ୍ତ, ଐଶ୍ୱର୍ଯ୍ୟଶାଳୀ, ସୁଶ୍ରୀ, (ବି) ତିଳକବୃକ୍ଷ, ବିଷ୍ଣୁ, କୁବେର, ଅଶ୍ୱତ୍ଥବୃକ୍ଷ, ଶିବ,ହଳଦୀଗଛ, ଋଷଭକ ଔଷଧି, (ସ୍ତ୍ରୀ) ଶ୍ରୀମତୀ,(ଗ୍ରା.ବି)ଆପଣାର ଶିଷ୍ୟ ସ୍ଥାନୀୟ ବ୍ୟକ୍ତିର ନାମ ପୂର୍ବରେ ବ୍ୟବହାର କରିବା ଶବ୍ଦ, ପୁରୁଷଙ୍କ ନାମ ପୂର୍ବରେ ବ୍ୟବହୃତ ଶବ୍ଦ ।

ଶ୍ରୀମୁଖ—ବି.(କ.ଧା) କାଳଚକ୍ରର ସପ୍ତମ ବର୍ଷ, (ଗ୍ରା.ବି)ରାଜା ଦେବତାଆଦିଙ୍କର ମୁଖ,ଚିଠିର ଶିରୋନାମାରେ ଲେଖାଯିବା ଶ୍ରୀଶବ୍ଦ, ଚିଠି, ଦୁଇ ବ୍ୟକ୍ତିଙ୍କ ମଧ୍ୟରେ ହେବା ବନ୍ଧୁତା ।

ଶ୍ରୀମୁଖପଖାଳା—ଗ୍ରା.ବି.ରାଜା ଓ ଦେବତାଙ୍କର ଶଯ୍ୟାତ୍ୟାଗ ପରେ ମୁହଁଧୋଇବା ନୀତି ।

ଶ୍ରୀମୂର୍ତ୍ତି—ସ୍ତ୍ରୀ. ବି. (କ.ଧା) ଦେବମୂର୍ତ୍ତି, ବିଷ୍ଣୁ ପ୍ରତିମା,(୬ତତ୍ପୁ)ଲକ୍ଷ୍ମୀଙ୍କ ପ୍ରତିମା ।

ଶ୍ରୀଯାମଳ—କ୍ଲୀ. ବି. ତନ୍ତ୍ରବିଶେଷ ।

ଶ୍ରୀଯୁକ୍ତ(ତ)—ପୁଂ. ବିଂ. (୩ତତ୍ପୁ) ଲକ୍ଷ୍ମୀବିଶିଷ୍ଟ, ଶୋଭାସମ୍ପନ୍ନ, ଭାଗ୍ୟବାନ୍, (ଗ୍ରା. ବି) ମାନ୍ୟାର୍ହ ଜୀବିତ ବ୍ୟକ୍ତିଙ୍କ ନାମ ପୂର୍ବରେ ବ୍ୟବହୃତ ବିଶେଷଣ ।

ଶ୍ରୀର(ଲ)—ପୁଂ.ବିଂ.ଶ୍ରୀଲ, ଶ୍ରୀଯୁକ୍ତ ।

ଶ୍ରୀରଙ୍ଗ—ବି. ( ଶ୍ରୀ+ରନ୍ଜ୍+କ.ଅ ) ଦେଶବିଶେଷ, ଶ୍ରୀରଙ୍ଗପତ୍ତନ, ବିଷ୍ଣୁ ।

ଶ୍ରୀରଙ୍ଗନାଥସ୍ୱାମୀ—ଗ୍ରା. ବି. ଦାକ୍ଷିଣାତ୍ୟ ଶ୍ରୀରଙ୍ଗପତ୍ତନ ନଗରରେ ପ୍ରତିଷ୍ଠିତ ବିଷ୍ଣୁମୂର୍ତ୍ତି ।

ଶ୍ରୀରଙ୍ଗପତ୍ତନ—ଗ୍ରା. ବି. ଦକ୍ଷିଣଭାରତର ଶ୍ରୀରଙ୍ଗପଟ୍ଟଣା ନାମକ ନଗର ।

ଶ୍ରୀରଙ୍ଗମ୍—ଗ୍ରା.ବି.ଶ୍ରୀରଙ୍ଗପତ୍ତନ ଦେଖ ।

ଶ୍ରୀରଙ୍ଗା—ଗ୍ରା. ବିଂ. ମନୋହର ନାଲିରଙ୍ଗବିଶିଷ୍ଟ ।

ଶ୍ରୀରମଣ—ପୁଂ. ବି.(୬ତତ୍ପୁ)ହିନ୍ଦୁସଙ୍ଗୀତରେ ମିଶ୍ରସ୍ୱର ବା ରାଗିଣୀବିଶେଷ ।

ଶ୍ରୀରସ—ବି. ଶ୍ରୀପିଷ୍ଟ ଦେଖ ।

ଶ୍ରୀରହିତ—ବିଂ.(୩ତତ୍ପୁ)ଶ୍ରୀହୀନ ଦେଖ ।

ଶ୍ରୀରାଗ—ବି.ଷଡ଼ରାଗର ଅନ୍ତର୍ଗତ ତୃତୀୟ ରାଗ ।

ଶ୍ରୀରାଧାବଲ୍ଲଭ—ପୁଂ. ବି. ଶ୍ରୀକୃଷ୍ଣ, ବିଷ୍ଣୁମୂର୍ତ୍ତିବିଶେଷ ।

ଶ୍ରୀରାମ—ପୁଂ.ବି.ଶ୍ରୀରାମଚନ୍ଦ୍ର, ଦଶରଥଙ୍କ ଜ୍ୟେଷ୍ଠ ପୁତ୍ର,ବିଷ୍ଣୁ ।

ଶ୍ରୀରାମନବମୀ—ବି. ଚୈତ୍ରମାସର ଶୁକ୍ଳାନବମୀ, ଏଦିନ ରାମଚନ୍ଦ୍ର ଜନ୍ମିଥିଲେ ।

ଶ୍ରୀରାମପୁର—ଗ୍ରା. ବି. ବଙ୍ଗଳାର ହୁଗୁଳୀ ଜିଲ୍ଲାର ଗୋଟିଏ ଉପବିଭାଗ ଓ ତାହାର ପ୍ରଧାନ ନଗର ।

ଶ୍ରୀରାମପୁରୀକାଗଜ-ଗ୍ରା.ବି. ଶ୍ରୀରାମପୁରରେ ହେବା କଳଦ୍ୱାରା ଧଳାକାଗଜ ।

ଶ୍ରୀରୂପା—ସ୍ତ୍ରୀ. ବି. ରାଧା ।

ଶ୍ରୀଲକ୍ଷ୍ମ—ପୁଂ.ବିଂ. ଶ୍ରୀଲକ୍ଷ୍ମଣ, ଲକ୍ଷ୍ମୀଯୁକ୍ତ, ଲକ୍ଷ୍ମୀଧର ।

ଶ୍ରୀଲ—ପୁଂ. ବିଂ. ( ଶ୍ରୀ+ଲା+କ.ଅ ) ଶ୍ରୀଯୁକ୍ତ, ଶୋଭାଯୁକ୍ତ, ଲକ୍ଷ୍ମୀବାନ୍, (ସ୍ତ୍ରୀ) ଶ୍ରୀଲା ।

ଶ୍ରୀଲତା—ସ୍ତ୍ରୀ. ବି.ମହାଜ୍ୟୋତିଷ୍ମତୀଲତା, ବଡ଼ ଫୁଟିଫୁଟିକାଲତା ।

ଶ୍ରୀଲାଭ—ବି. (୬ତତ୍ପୁ) ସୌଭାଗ୍ୟବୃଦ୍ଧି ।

ଶ୍ରୀବସ୍ତ—ବି. (୬ତତ୍ପୁ) ଲକ୍ଷ୍ମୀଙ୍କ ହିସ୍ତ ବା

(ଶ୍ରୀ+ବକ୍ଷ) ବ.ବ୍ରୀ; ବିଷ୍ଣୁ, ବିଷ୍ଣୁଙ୍କ ବକ୍ଷସ୍ଥଳସ୍ଥ ଦକ୍ଷିଣାବର୍ତ୍ତ ଶୁକ୍ଳ ରୋମାବଳୀ, ଭୃଗୁପଦଚିହ୍ନ, ଗୃହବିଶେଷ, ଜନୈକ ନୃପ, ସୁଡ଼ଙ୍ଗବିଶେଷ ।

ଶ୍ରୀବତ୍ସଙ୍କୀ—ପୁଂ. ବି. (ଶ୍ରୀବତ୍ସ+କ.ଇନ୍) ଶ୍ରୀବତ୍ସ ଚିହ୍ନଯୁକ୍ତ, ଚିହ୍ନଯୁକ୍ତ ଘୋଡ଼ା, ଯେଉଁ ଘୋଡ଼ାର ବକ୍ଷଦେଶରେ ଦକ୍ଷିଣାବର୍ତ୍ତ ରୋମାବଳୀ ଥାଏ ।

ଶ୍ରୀବତ୍ସଭୃତ୍—ପୁଂ. ବି. (ଶ୍ରୀବତ୍ସ+ଭୃ କ୍ୱିପ୍) ଶ୍ରୀବତ୍ସଚିହ୍ନଧାରୀ ବିଷ୍ଣୁ ।

ଶ୍ରୀବତ୍ସଲାଞ୍ଛନ—ପୁଂ. ବି. (ବ.ବ୍ରୀ)ବିଷ୍ଣୁ, ନାରାୟଣ ।

ଶ୍ରୀବତ୍ସାଙ୍କ—ପୁଂ. ବି. (ବ.ବ୍ରୀ) ବିଷ୍ଣୁ ।

ଶ୍ରୀବଦ—ବି ଓ ବିଂ. (ଶ୍ରୀ+ବଦ୍+କ. ଅ) ସ୍ୱାମୀ ଶୁଭଫଳବକ୍ତା (ପକ୍ଷୀ) ।

ଶ୍ରୀବନ୍ତ—ଗ୍ରା. ବିଂ. (ସଂ-ଶ୍ରୀମତ୍)ଶ୍ରୀଯୁକ୍ତ, ସୁନ୍ଦର, (ସ୍ତ୍ରୀ) ଶ୍ରୀବନ୍ତୀ ।

ଶ୍ରୀବରାହ—ପୁଂ. ବି. (କ.ଧା) ବିଷ୍ଣୁଙ୍କର ବରାହାବତାର ।

ଶ୍ରୀବର୍ଜିତ—ବିଂ. (୩ତତ୍) ଶ୍ରୀଭ୍ରଷ୍ଟ, (ସ୍ତ୍ରୀ) ଶ୍ରୀବର୍ଜିତା ।

ଶ୍ରୀବଲ୍ଲଭ—ପୁଂ. ବି. (୬ତତ୍) ବିଷ୍ଣୁ ।

ଶ୍ରୀବଲ୍ଲୀ—ସ୍ତ୍ରୀ. ବି. (କ.ଧା) ଶିବଲିଙ୍ଗିନୀ ଲତା ।

ଶ୍ରୀବାଟୀ—ବି. ନାଗବଲ୍ଲୀଲତାବିଶେଷ, ପାନଲତାବିଶେଷ ।

ଶ୍ରୀବାରକ—ବି. (ଶ୍ରୀ+ବୃ+ଣିଚ୍+କ. ଅକ) ଶୁନୁଶୁନିଆଁ ଶାଗ ।

ଶ୍ରୀବାସ(କ)—ବି. (ଶ୍ରୀ+ବସ୍+ଣିଚ୍+ଅ) ସରଳବୃକ୍ଷରସ, ତାର୍ପିନ୍, ଗୁଗ୍ଗୁଲ, ପଦ୍ମ,ବିଷ୍ଣୁ,ଶିବ,ଧୂପ,(ଗ୍ରା.ବି)ଚୈତନ୍ୟଦେବଙ୍କର ପ୍ରିୟ ସହଚର ।

ଶ୍ରୀବାସାଃ—ବି. ଶ୍ରୀପିଷ୍ଟ ଦେଖ ।

ଶ୍ରୀବିଗ୍ରହ—ବି. ଦେବତାଙ୍କ ପ୍ରତିମା ।

ଶ୍ରୀବିଚ୍ୟୁତ—ବିଂ. (୫ତତ୍) ଯାହାଠାରୁ ଶ୍ରୀ(ଲକ୍ଷ୍ମୀ,ଶୋଭା,ସମ୍ପତ୍ତି) କାଢ଼ି ନିଆଯାଇଅଛି, (ସ୍ତ୍ରୀ) ଶ୍ରୀବିଚ୍ୟୁତା ।

ଶ୍ରୀବିଦ୍ୟା—ବି. ମହାବିଦ୍ୟାବିଶେଷ,ତ୍ରିପୁରସୁନ୍ଦରୀ ଦେଖ ।

ଶ୍ରୀବିବର୍ଜିତ—ବିଂ. ଶ୍ରୀଭ୍ରଷ୍ଟ ଦେଖ ।

ଶ୍ରୀବିଶିଷ୍ଟ—ବିଂ. ଶୋଭାଯୁକ୍ତ, ଲକ୍ଷ୍ମୀଯୁକ୍ତ, (ସ୍ତ୍ରୀ) ଶ୍ରୀବିଶିଷ୍ଟା ।

ଶ୍ରୀବୀଜ—ପୁଂ. ବି. ତାଳବୃକ୍ଷ ।

ଶ୍ରୀବୃକ୍ଷ—ବି. (କ.ଧା) ଅଶ୍ୱତ୍ଥବୃକ୍ଷ, ବେଲଗଛ, ବିଷ୍ଣୁଙ୍କର ବକ୍ଷଃସ୍ଥଳସ୍ଥ ରୋମାବର୍ତ୍ତବିଶେଷ, ଅଶ୍ୱର ହୃଦୟାଦିସ୍ଥିତ ଶ୍ୱେତ ରୋମାବର୍ତ୍ତ । [ ଦେଖ ।

ଶ୍ରୀବୃକ୍ଷକ—ବି. (ଶ୍ରୀବୃକ୍ଷ+କ) ଶ୍ରୀବୃକ୍ଷ

ଶ୍ରୀବୃକ୍ଷକୀ—ପୁଂ. ବିଂ.(ଶ୍ରୀବୃକ୍ଷକ+ଇନ୍) ଶ୍ରୀବତ୍ସ ଚିହ୍ନଯୁକ୍ତ (ଅଶ୍ୱ) ।

ଶ୍ରୀବୃଦ୍ଧି—ବି. (୬ତତ୍) ସୌଭାଗ୍ୟ ବା ସମ୍ପଦବୃଦ୍ଧି, ବୋଧିବୃକ୍ଷ, ଦେବତାବିଶେଷ ।

ଶ୍ରୀବେଷ୍ଟ—ବି. (ଶ୍ରୀ+ବେଷ୍ଟ) ଶ୍ରୀପିଷ୍ଟ ଦେଖ ।

ଶ୍ରୀବୈକୁଣ୍ଠ—ଗ୍ରା. ବି. ମାନ୍ଦ୍ରାଜପ୍ରଦେଶର ହିନ୍ଦୁତୀର୍ଥ ଓ ନଗର ।

ଶ୍ରୀବୈଷ୍ଣବ—ବି. ବୈଷ୍ଣବସମ୍ପ୍ରଦାୟବିଶେଷ ।

ଶ୍ରୀଶ—ପୁଂ. ବି. (ଶ୍ରୀ+ଈଶ) ୬ତତ୍; ବିଷ୍ଣୁ, ଶ୍ରୀରାମ, ଶ୍ରୀପତି ।

ଶ୍ରୀଶୂନ୍ୟ—ବିଂ. (୩ତତ୍)ଶ୍ରୀହୀନ ଦେଖ ।

ଶ୍ରୀଶ୍ରୀ—ଗ୍ରା. ବିଂ. ମାନ୍ୟବ୍ୟକ୍ତିଙ୍କ ନାମ ପୂର୍ବରେ ସମ୍ମାନାର୍ଥଯୁକ୍ତ ଶ୍ରୀଶବ୍ଦର ଦ୍ୱିତ୍ୱ ବା ବହୁତ୍ୱ ।

ଶ୍ରୀସଂଜ୍ଞ—ବି. (ବ.ବ୍ରୀ) ଲବଙ୍ଗ ।

ଶ୍ରୀସମ୍ପ୍ରଦାୟ—ଗ୍ରା. ବି. ଶ୍ରୀରାମାନୁଜମତାବଲମ୍ବୀ ବୈଷ୍ଣବ ସମ୍ପ୍ରଦାୟ ।

ଶ୍ରୀସମ୍ଭୂତା—ବି. କର୍ମମାସର ଷଷ୍ଠରାତ୍ରି ।

ଶ୍ରୀସହୋଦର—ପୁଂ. ବି. (୬ତତ୍)ଚନ୍ଦ୍ର ।

ଶ୍ରୀସୁନ୍ଦରୀ—ସ୍ତ୍ରୀ.ବି.ତନ୍ତ୍ରୋକ୍ତ ଦେବୀବିଶେଷ ।

ଶ୍ରୀସୂକ୍ତ—ବି. ଲକ୍ଷ୍ମୀ ସମ୍ବନ୍ଧୀୟ ପୂଜାଙ୍ଗମନ୍ତ୍ର (ସୂକ୍ତ)ବିଶେଷ ।

ଶ୍ରୀସ୍ଥଳ—ବି. ଦାକ୍ଷିଣାତ୍ୟର ମଦୁରାରାଜଧାନୀର ନିକଟବର୍ତ୍ତୀ ଗୋଟିଏ ପ୍ରସିଦ୍ଧ ଶୈବତୀର୍ଥ ।

ଶ୍ରୀସ୍ୱରୂପ—ବି. ଶ୍ରୀଚୈତନ୍ୟଦେବଙ୍କର ପ୍ରଧାନ ଶିଷ୍ୟ ।

ଶ୍ରୀସ୍ୱରୂପିଣୀ—ସ୍ତ୍ରୀ. ବି. ରାଧା ।

ଶ୍ରୀହଟ୍ଟ—ଗ୍ରା.ବି.ପୂର୍ବ ବଙ୍ଗଆସାମର ଅନ୍ତର୍ଗତ ଗୋଟିଏ ଜିଲ୍ଲା, ଶିଲଟ ।

ଶ୍ରୀହଟ୍ଟପଟଣା—ଗ୍ରା. ବି. ଅଣାକାର ମତବାଦୀଙ୍କ ମତରେ ଦେହ ମଧ୍ୟରେ କାଉଁରି, ମଣ୍ଡଳ ଉପରେ ଥିବା ସ୍ଥାନ, ବ୍ରହ୍ମର ଅବସ୍ଥିତି ସ୍ଥାନ ।

ଶ୍ରୀହର—ପୁଂ. ବିଂ. (ଶ୍ରୀ+ହୃ+କ.ଅ) ସମଗ୍ରଶ୍ରୀ (ସୌନ୍ଦର୍ଯ୍ୟ) ହରଣକାରୀ, ସାତିଶୟ ଶ୍ରୀସମ୍ପନ୍ନ, (ସ୍ତ୍ରୀ) ଶ୍ରୀହରା=ରାଧା ।

ଶ୍ରୀହରି—ପୁଂ. ବି. ବିଷ୍ଣୁ, ନାରାୟଣ ।

ଶ୍ରୀହରିଦାସ—ଗ୍ରା. ବି. ୧୭ଶ ଶତାବ୍ଦୀର ଜନୈକ ଉତ୍କଳୀୟ କବି ।

ଶ୍ରୀହର୍ଷ—ଗ୍ରା. ବି. ସଂ-କାବ୍ୟ; ନୈଷଧଚରିତ ପ୍ରଣେତା କବି ।

ଶ୍ରୀହସ୍ତ—ବି. ଦେବତା ଓ ରାଜାଆଦିଙ୍କ ହସ୍ତ, ମାନ୍ୟ ବ୍ୟକ୍ତିଙ୍କ ହସ୍ତ ।

ଶ୍ରୀହସ୍ତପଦ୍ମ—ବି. ଭୁଜପଦ୍ମ, ଶ୍ରୀହସ୍ତଲିପି ଦେଖ ।

ଶ୍ରୀହସ୍ତମୁଦ୍ରିକା—ବି. ରାଜାଆଦିଙ୍କ ହସ୍ତରେ ପିନ୍ଧାଯାଇଥିବା ମୁଦି ।

ଶ୍ରୀହସ୍ତଲିପି(ଲେଖ)—ବି.ସମ୍ମାନିତବ୍ୟକ୍ତିଙ୍କ ସ୍ୱହସ୍ତାକ୍ଷର ।

ଶ୍ରୀହସ୍ତାଙ୍କିତ—ବିଂ.(୩ତତ୍)ମାନ୍ୟବ୍ୟକ୍ତିଙ୍କ ହସ୍ତଦ୍ୱାରା ଲିଖିତ ।

ଶ୍ରୀହସ୍ତିନୀ—ବି. ବୃକ୍ଷବିଶେଷ, ହାତୀଶୁଣ୍ଢ଼ୀ ଗଛ । [ ହାନି ।

ଶ୍ରୀହାନି—ବି.(୬ତତ୍) ଲକ୍ଷ୍ମୀହାନି,ଶୋଭା-

ଶ୍ରୀହୀନ—ପୁଂ. ବିଂ. (୩ତତ୍) ଶୋଭାହୀନ, ଅସୁନ୍ଦର, ଶ୍ରୀଭ୍ରଷ୍ଟ,ଲକ୍ଷ୍ମୀହୀନ,ଧନହୀନ, ଭାଗ୍ୟହୀନ, (ସ୍ତ୍ରୀ) ଶ୍ରୀହୀନା ।

ଶ୍ରୀହ୍ୱାରୁ—ବି. (ବୈଦ୍ୟକ)ବିକଙ୍କତ ଗୁଳ୍ମ, ଭୁଇଁଅଁଳା ଗଛ ।

ଶ୍ରୁତ୍—ପୁଂ. ବିଂ. ଶ୍ରୋତା ଯେ ଶୁଣେ ।

ଶ୍ରୁତ—ବିଂ. (ଶ୍ରୁ+ର୍ମ.ତ) ଯାହା ଶୁଣାଯାଇଅଛି, ଶ୍ରବଣଗୋଚର, ଜ୍ଞାତ, ବିଖ୍ୟାତ, ଅବଧୃତ, (ବି) ଅଧ୍ୟୟନ, ଶ୍ରୁତି, ବେଦ, ଶାସ୍ତ୍ର, ଶାସ୍ତ୍ରଜ୍ଞାନ, କାଳିନ୍ଦୀଗର୍ଭଜାତ ଶ୍ରୀକୃଷ୍ଣଙ୍କର ପୁତ୍ର ।

**ଶ୍ରୁତକୀର୍ତ୍ତି**—ପୁଂ.ସ୍ତ୍ରୀ.ବିଂ (ବ.ବ୍ରୀ)ପ୍ରଥିତ-ଯଶାଃ, କୀର୍ତ୍ତିଶାଳୀ, (ପୁଂ.ବି)ଦ୍ରୌପଦୀ ଗର୍ଭଜାତ ଅର୍ଜୁନଙ୍କର ପୁତ୍ର. ଦେବର୍ଷି-ବିଶେଷ, (ସ୍ତ୍ରୀ)କୁଶଧ୍ୱଜ ରାଜାଙ୍କ କନ୍ୟା, ଶତ୍ରୁଘ୍ନଙ୍କ ପତ୍ନୀ, ବସୁଦେବଙ୍କ ଭଗିନୀ ଓ ଧୃଷ୍ଟକେତୁଙ୍କ ପତ୍ନୀ ।

**ଶ୍ରୁତଦେବ**—ପୁଂ.ବି. ଶ୍ରୀକୃଷ୍ଣଙ୍କର ପୁତ୍ର-ବିଶେଷ । [ ସରସ୍ୱତୀ ।

**ଶ୍ରୁତଦେବୀ(ବୀ)**—ସ୍ତ୍ରୀ. ବି. ବାଗ୍‌ଦେବୀ.

**ଶ୍ରୁତଧର**—ପୁଂ.ବି. ବିଂ. (ଶ୍ରୁତ+ଧୃ+କ.ଅ) ଶ୍ରୁତିଧର ଦେଖ, (ଗ୍ରା.ବି)ଜୟ-ଦେବଙ୍କ ଗୀତଗୋବିନ୍ଦରେ ଉଲ୍ଲିଖିତ ଜନୈକ କବି ।

**ଶ୍ରୁତଧାରଣ**—ପୁଂ. ବିଂ. ଶୁଣିବା ମାତ୍ରେ ଯେ ସ୍ମରଣ ରଖିପାରେ, ଭଗବାନଙ୍କ ଠାରେ ମନଃସଂଯମକାରୀ ।

**ଶ୍ରୁତଲେଖନ**—ଗ୍ରା.ବି.ଶୁଣିକରି ଲେଖାଯିବା ବିଷୟ ।

**ଶ୍ରୁତବାନ୍**—ପୁଂ.ବିଂ. (ଶ୍ରୁ+କ.ତବତ୍) ଶାସ୍ତ୍ରଜ୍ଞ,ଯେ ଶୁଣିଅଛି,ବିଦ୍ୱାନ୍,ବେଦଜ୍ଞ

**ଶ୍ରୁତବିଦ୍**—ବିଂ. (ଶ୍ରୁତ+ବିଦ୍+କ୍ୱିପ୍) ଶାସ୍ତ୍ରବେତ୍ତା ।

**ଶ୍ରୁତବୋଧ**—ବି. ମହାକବି କାଳିଦାସ-କୃତ ସଂସ୍କୃତ ଛନ୍ଦୋଗ୍ରନ୍ଥ ।

**ଶ୍ରୁତଶାଳୀ**—ପୁଂ.ବି. (ଶ୍ରୁତ+ଶାଳିନ୍) ପଣ୍ଡିତ, (ବିଂ) ବିଦ୍ୱାନ୍, (ସ୍ତ୍ରୀ)ଶାଳିନୀ ।

**ଶ୍ରୁତଶୀଳ**—ବି. (ଦ୍ୱନ୍ଦ୍ୱ) ଶାସ୍ତ୍ରଜ୍ଞାନ ଓ ଆଚାର ବା ସ୍ୱଭାବ ।

**ଶ୍ରୁତଶ୍ରବାଃ**—ପୁଂ. ବି. (ଶ୍ରୁତ+ଶ୍ରବସ୍) ବ.ବ୍ରୀ, ଚେଦିରାଜ ଶିଶୁପାଳଙ୍କ ପିତା, ସୂର୍ଯ୍ୟପୁତ୍ର, (ସ୍ତ୍ରୀ.ବି)ଶିଶୁପାଳଙ୍କ ମାତା ।

**ଶ୍ରୁତଶ୍ରବୋଽନୁଜ**—ପୁଂ. ବି. (୬ତତ୍) ସୂର୍ଯ୍ୟଙ୍କ ପୁତ୍ର ମଧ୍ୟରେ କନିଷ୍ଠ ପୁତ୍ର, ଶନୈଶ୍ଚର ଗ୍ରହ ।

**ଶ୍ରୁତଶ୍ରେଣୀ**—ବି. ଦ୍ରବନ୍ତୀ, ବୃହଦନ୍ତୀ ନାମକ ଔଷଧି ବୀଜ ଓ ତହିଁର ଗୁଳ୍ମ ।

**ଶ୍ରୁତସଦ୍**—ବି. ବକ୍ତୃତାଗୃହ ଓ ତତ୍ରତ୍ୟ ଶ୍ରୋତୃମଣ୍ଡଳୀ ।

**ଶ୍ରୁତସେନ**—ପୁଂ. ବି. ନାଗବିଶେଷ, ଦୈତ୍ୟବିଶେଷ,ଜନମେଜୟଙ୍କ ଭ୍ରାତା, ସହଦେବଙ୍କ ପୁତ୍ର, ବୃକୋଦରଙ୍କ ପୁତ୍ରବିଶେଷ, ଶତ୍ରୁଘ୍ନଙ୍କ ପୁତ୍ର,ଗୋକର୍ଣ୍ଣ ରାଜାବିଶେଷ ।

ଶ୍ରୁତସେନା—ସ୍ତ୍ରୀ. ବି. ଶ୍ରୀକୃଷ୍ଣଙ୍କର ପତ୍ନୀ-ବିଶେଷ । [ପୁତ୍ର ।

ଶ୍ରୁତସୋମ—ପୁଂ.ବି. ଭୀମସେନଙ୍କ ଏକ

ଶ୍ରୁତାଦାନ—କ୍ଲୀ. ବି. (ଶ୍ରୁତ+ଆଦାନ) ବ୍ରହ୍ମବାଦ ।

ଶ୍ରୁତାଧ୍ୟୟନ—ବି. (୬ତତ୍) ବେଦ ଓ ଶାସ୍ତ୍ରାଧ୍ୟୟନ ।

ଶ୍ରୁତାଧ୍ୟୟନସମ୍ପନ୍ନ—ପୁଂ.ବିଂ.ଧର୍ମଶାସ୍ତ୍ରଜ୍ଞ

ଶ୍ରୁତାନ୍ୱିତ—ପୁଂ.ବିଂ (୩ତତ୍)ବେଦଜ୍ଞ, ଶାସ୍ତ୍ରଜ୍ଞ,ପଣ୍ଡିତ,ବିଦ୍ୱାନ୍,(ସ୍ତ୍ରୀ)ଶ୍ରୁତାନ୍ୱିତା ।

ଶ୍ରୁତାୟୁ—ପୁଂ. ବି. ସୂର୍ଯ୍ୟବଂଶୀୟ ରାଜା-ବିଶେଷ, ଅନ୍ୟ ନାମ ଶ୍ରୁତାୟୁଧ ।

ଶ୍ରୁତାର୍ଥ—ପୁଂ. ବିଂ. ଶୁଣିବା ମାତ୍ରେ ଯାହା ବୁଝାଯାଏ । [ଭେଦ ।

ଶ୍ରୁତାବତୀ—ସ୍ତ୍ରୀ.ବି.ଭରଦ୍ୱାଜଙ୍କର କନ୍ୟା-

ଶ୍ରୁତି—ବି(ଶ୍ରୁ+ମଂ.ତି)ବେଦ,କିମ୍ବଦନ୍ତୀ, ପ୍ରବାଦ, ବାର୍ତ୍ତା,ପ୍ରବଚନ, ଶ୍ରୁତୀନ୍ଦ୍ରିୟ-ଗ୍ରାହ୍ୟ ଶବ୍ଦ, ବାଚକ ଶବ୍ଦ ବା ଧ୍ୱନି, ଶ୍ରବଣ ଯୋଗ୍ୟ ନାଦ, (ସଙ୍ଗୀତ) ସୂକ୍ଷ୍ମ-ସ୍ୱର, (ଣ.ତି) ଶ୍ରବଣେନ୍ଦ୍ରିୟ, କର୍ଣ୍ଣ, କାନ,(ଭା.ତି)ଶ୍ରବଣ, ଶୁଣିବା, (ମଂ.ତି) ଉଡ଼ାଖବର, ବାର୍ତ୍ତା, ଶ୍ରବଣାନକ୍ଷତ୍ର ।

ଶ୍ରୁତିକଟ—ବି. ପ୍ରାୟଶ୍ଚିତ୍ତ, ଅସ୍ତ୍ର, ସର୍ପ. ପାପଶୋଧନ, ପ୍ରାୟଶ୍ଚିତ୍ତ ।

ଶ୍ରୁତିକଟୁ—ବିଂ.(୭ତତ୍) କଠୋର ଶବ୍ଦ-ବିଶିଷ୍ଟ, ଦୁଃଶ୍ରବ, ଶୁଣିବାକୁ ଅପ୍ରିୟ ବା କର୍କଶ, (ବି) ଅଳଂକାରୋକ୍ତ ଦୋଷ-ବିଶେଷ ।

ଶ୍ରୁତିକଟୁତା—ବି, ରଚନାଦିରେ ଦୁଃଶ୍ରା-ବ୍ୟତା ଦୋଷ, କର୍କଶ ଶବ୍ଦ ପ୍ରୟୋଗ-ରୂପ ଦୋଷ ।

ଶ୍ରୁତିକଠୋର—ବିଂ.ଶ୍ରୁତିକଟୁ ଦେଖ ।

ଶ୍ରୁତିକଥିତ—ବିଂ. (୭ତତ୍)ବେଦୋକ୍ତ ।

ଶ୍ରୁତିକୁଶଳ—ପୁଂ.ବିଂ (୭ତତ୍)ବେଦଜ୍ଞ, ଶାସ୍ତ୍ରଜ୍ଞ ।

ଶ୍ରୁତିକୁହର—ବି. (୬ତତ୍)କର୍ଣ୍ଣର ଛିଦ୍ର ।

ଶ୍ରୁତିଖେଳ-ଗ୍ରା.ବି.ଯେଉଁ ଜୁଆଖେଳରେ ଜିଣିବା ଲୋକ ନିର୍ଦ୍ଦିଷ୍ଟ ଧନ ବା ବସ୍ତୁ ପାଇବାର ସ୍ଥିର ହୋଇଥାଏ ।

ଶ୍ରୁତିଗମ୍ୟ—ବିଂ.(୩ତତ୍) ଶ୍ରାବ୍ୟ,ଶ୍ରୁତି-ଗୋଚର ଦେଖ ।

ଶ୍ରୁତିଗୋଚର—ବିଂ(୭ତତ୍) ଶୁଣାଯିବା, ଶ୍ରବଣର ବିଷୟୀଭୂତ, ଯାହା ଶୁଣା-ଗଲା, ଶ୍ରୁତ, ଶ୍ରୁତିପଥାରୂଢ଼ ।

ଶ୍ରୁତିଜ୍ଞ-ପୁଂ.ବିଂ.ଶ୍ରୁତିକୁଶଳ, ବେଦଜ୍ଞ, ଶାସ୍ତ୍ରଜ୍ଞ, (ସ୍ତ୍ରୀ) ଶ୍ରୁତିଜ୍ଞା ।

ଶ୍ରୁତିତତ୍ପର —ପୁଂ.ବିଂ. ବେଦ ଅଭ୍ୟାସ-ରତ, ସକର୍ଣ୍ଣ ।

ଶ୍ରୁତିଧର—ପୁଂ.ବିଂ.(ଶ୍ରୁତି+ଧୃ+କ.ଅ) ଅତି ମେଧାବୀ, ଯେ ଶୁଣିବା ମାତ୍ରେ ସ୍ମରଣ ରଖିପାରେ ,(ସ୍ତ୍ରୀ)ଶ୍ରୁତିଧରୀ ।

ଶ୍ରୁତିପାଠ—ବି (୬ତତ୍)ବେଦାଧ୍ୟୟନ ।

ଶ୍ରୁତିପାନ—ଗ୍ରା.ବି.ପିଇବାପରି କାନରେ ଶ୍ରବଣ ।

ଶ୍ରୁତିପାଶ—ବି. ସୁନ୍ଦର କର୍ଣ୍ଣ ।

ଶ୍ରୁତିମଧୁର—ବିଂ. (୭ତତ୍) ଶ୍ରବଣ ମନୋହର, ଶୁଣିବାକୁ ମିଷ୍ଟ,(ସ୍ତ୍ରୀ)ଶ୍ରୁତି-ମଧୁରା ।

ଶ୍ରୁତିମାନ୍—ପୁଂ. ବିଂ. (ଶ୍ରୁତି+ମତ୍) ଶ୍ରୁତିବିଶିଷ୍ଟ,ଶାସ୍ତ୍ରଜ୍ଞ, କର୍ଣ୍ଣବିଶିଷ୍ଟ,(ସ୍ତ୍ରୀ) ଶ୍ରୁତିମତୀ ।

ଶ୍ରୁତିମଣ୍ଡଳ—ବି. କର୍ଣ୍ଣ, କାନ ।

ଶ୍ରୁତିମାର୍ଗ—ବି. ବେଦପଥ ।

ଶ୍ରୁତିମୁଖ—ଗ୍ରା. ବି. କର୍ଣ୍ଣକୁହର ।

ଶ୍ରୁତିମୂଳ—ବି (୬ତତ୍)କର୍ଣ୍ଣମୂଳ, କାନ-ମୁଣ୍ଡା, (ବ.ବ୍ରୀ)ଯଜ୍ଞ ।

ଶ୍ରୁତିମୂଳକ—ବିଂ. ବେଦାତ୍ମକ ।

ଶ୍ରୁତିବଧିର—ପୁଂ. ବିଂ. ଶ୍ରବଣଶକ୍ତିହୀନ, କାଲ, ବଧିର, ବେଦରହିତ ।

ଶ୍ରୁତିବର୍ଜିତ—ପୁଂ. ବିଂ. ଶ୍ରୁତିବଧିର, ବେଦରହିତ ।

ଶ୍ରୁତିବତ୍-ପୁଂ.ବିଂ.ଶ୍ରୁତିକୁଶଳ, ଶାସ୍ତ୍ରଜ୍ଞ, ବେଦଜ୍ଞ ।

**ଶ୍ରୁତିବିବର**—ବି.କର୍ଣ୍ଣବିବର,କର୍ଣ୍ଣକୁହର ।

ଶ୍ରୁତିବିରୁଦ୍ଧ—ବିଂ. ଶାସ୍ତ୍ରବିରୁଦ୍ଧ ।
ଶ୍ରୁତିବିହିତ—ବିଂ. (୭ତତ୍ ବା ୩ତତ୍) ବେଦବିହିତ, ଶାସ୍ତ୍ରସମ୍ମତ ।
ଶ୍ରୁତିବେଧ—ବି. (୭ତତ୍) କର୍ଣ୍ଣବେଧ, କାନଫୋଡ଼ା ।
ଶ୍ରୁତିଶୀଳବାନ୍—ପୁଂ. ବିଂ. (ଶ୍ରୁତି+ଶୀଳ+ବତ୍) ଶାସ୍ତ୍ରଜ୍ଞ ଓ ଆଚାରବିଶିଷ୍ଟ ।
ଶ୍ରୁତିସଙ୍ଗତ—ବିଂ. ଶାସ୍ତ୍ରସଙ୍ଗତ ।
ଶ୍ରୁତିସାଗର—ବି.ବିଷ୍ଣୁଙ୍କର ଅନ୍ୟନାମ ।
ଶ୍ରୁତିସୁଖ—ବି. (୭ତତ୍)କର୍ଣ୍ଣତୃପ୍ତି ।
ଶ୍ରୁତିସୁଖକର—ବିଂ. ଶ୍ରୁତିମଧୁର ।
ଶ୍ରୁତିସ୍ମୃତି—ବି.ବେଦ ଓ ମନ୍ୱାଦି ପ୍ରଣୀତ ଧର୍ମଶାସ୍ତ୍ର ।
ଶ୍ରୁତିହାରୀ—ପୁଂ.ବିଂ.(ଶ୍ରୁତି+ହୃ+କ. ଇନ୍) ଯାହା ଶୁଣିଲେ ମନ ମୁଗ୍ଧହୁଏ, (ସ୍ତ୍ରୀ) ଶ୍ରୁତିହାରିଣୀ ।
ଶ୍ରୁତ୍ତି—ବି. ବେଦ ।
ଶ୍ରୁତ୍ୟ—ବିଂ. (ଶ୍ରୁତ+ଯ) ଶ୍ରବଣୀୟ ।
ଶ୍ରୁତ୍ୟନୁପ୍ରାସ—ବି. ଅନୁପ୍ରାସ ଅଳଙ୍କାରଭେଦ ।
ଶ୍ରୁବ—ବି. (ଶ୍ରୁ+ଅଧି.ବ) ଯାଗ,ଯଜ୍ଞ, (ଅପା—ଅ) ଯଜ୍ଞରେ ଅଗ୍ନିରେ ଘୃତାହୁତି ଦେବାର ପାତ୍ର, ସ୍ରୁବ ।
ଶ୍ରୁବା—ସ୍ତ୍ରୀ.ବି. ମୂର୍ବା ।
ଶ୍ରୁବାବୃକ୍ଷ—ପୁଂ. ବି. ବିକଙ୍କତ ବୃକ୍ଷ, ଭୁଇଁଅଁଚ ।
ଶ୍ରୂୟମାଣ—ବିଂ. (ଶ୍ରୁ+ମ୍.ଆନ)ଯାହା ଶୁଣାଯାଉଅଛି, (ସ୍ତ୍ରୀ) ଶ୍ରୂୟମାଣା ।
ଶ୍ରେଢ଼ୀ—ବି. (ଶ୍ରେଣୀ+ଢୌକ+କ. ଅ+ଈ)ଅଙ୍କଶାସ୍ତ୍ରର ଗଣନାର ପ୍ରକାର ବା ଧାରବିଶେଷ ।
ଶ୍ରେଣି(ଣୀ)—ବି. (ଶ୍ରି+କ.ନି, ଙୀ) ଧାଡ଼ି, ପଂକ୍ତି, ଦଳ, ରେଖା, ସମୂହ, ସମଧର୍ମୀ ବା କର୍ମୀଙ୍କ ସମ୍ପ୍ରଦାୟ,କ୍ଲାସ, ବିଦ୍ୟାଳୟରେ ସହପାଠୀଙ୍କ ଦଳ,ଜଳସେଚନ ପାତ୍ର,ସେଚମା, ସେଣା, ଗୃହଘରର ଶେଣୀ, ଏକ ବର୍ଣ୍ଣ ବା ଜାତି ।
ଶ୍ରେଣିକ-ବି.ମଗଧଦେଶୀୟ ରାଜବିଶେଷ, ଛନ୍ଦୋବିଶେଷ, ଶ୍ରେଣି ଦେଖ ।
ଶ୍ରେଣିକା—ବି. (ଶ୍ରେଣିକ+ଆ)ପଟ୍ଟବାସ. ତମ୍ବୁ ।
ଶ୍ରେଣି(ଣୀ)କୃତ—ବିଂ. ଶେଣୀବଦ୍ଧଭାବେ ରହିଥିବା, ଧାଡ଼ିଧାଡ଼ି, ପଂକ୍ତିବଦ୍ଧ ହୋଇଥିବା ।
ଶ୍ରେଣି(ଣୀ)ଭୁକ୍ତ-ବିଂ.ଭିନ୍ନଭିନ୍ନ ଶ୍ରେଣୀରେ ବିଭକ୍ତ, କୌଣସି ଶ୍ରେଣୀର ଅନ୍ତର୍ଗତ
ଶ୍ରେଣି(ଣୀ)ଭୂତ—ବିଂ. (ଶ୍ରେଣି+ଚ୍ୱି+ଭୂ+ତ) ଶ୍ରେଣୀବଦ୍ଧ ଦେଖ ।
ଶ୍ରେଣି(ଣୀ)ମାନ୍—ପୁଂ. ବି. (ଶ୍ରେଣୀ+ମତ୍) ସେନାପତି, ଦଳପତି, ବଣିକ୍ଦଳର ନେତା ।
ଶ୍ରେଣି(ଣୀ)ବଦ୍ଧ—ବିଂ. ଧାଡ଼ିହୋଇ ରହିଥିବା, ସଜ୍ଜିତ, ଶ୍ରେଣିକୃତ ଦେଖ ।
ଶ୍ରେଣି(ଣୀ)ବନ୍ଧନ—ବି. ଧାଡ଼ି ବାନ୍ଧିବା ।
ଶ୍ରେଣି(ଣୀ)ବିଭାଗ—ବି.ବହୁ ବସ୍ତୁକୁ ଭିନ୍ନଭିନ୍ନ ଶ୍ରେଣୀରେ ପୃଥକ୍‌କରିବା ।
ଶ୍ରେଣୀଧର୍ମ—ପୁଂ.ବି.ବ୍ୟବସାୟ ନିୟମାଦି
ଶ୍ରେଣ୍ୟ—ବି.ମଗଧବଂଶୀୟ ରାଜବିଶେଷ, ଛନ୍ଦୋବିଶେଷ ।
ଶ୍ରେତା—ପୁଂ.ବିଂ. (ଶ୍ରି+ତୃ) ଆଶ୍ରୟଗ୍ରହଣକାରୀ, ସେବାକାରୀ ।
ଶ୍ରେଧି—ବି. ଶ୍ରେଢ଼ୀ ଦେଖ ।
ଶ୍ରେୟଃ—ବିଂ.(ପ୍ରଶସ୍ୟ+ଇୟସ୍)ଉତ୍ତମ, ସଙ୍ଗତ, ପ୍ରଶସ୍ତ, ହିତକର, ଉପଯୁକ୍ତ, ଶ୍ରେଷ୍ଠ, ଶୁଭଯୁକ୍ତ, (ବି) ଧର୍ମ, ମୁକ୍ତି, ଅପବର୍ଗ, ସୌଭାଗ୍ୟ, ମଙ୍ଗଳ, ସୁଖ, ପୁଣ୍ୟ, ଉପକାର, (ସ୍ତ୍ରୀ) ଶ୍ରେୟସୀ ।
ଶ୍ରେୟଃକଳ୍ପ—ବିଂ. (ଶ୍ରେୟସ୍+କଳ୍ପ) ଅପେକ୍ଷାକୃତ ଶ୍ରେୟଃ, ଶ୍ରେଷ୍ଠତୁଲ୍ୟ ।
ଶ୍ରେୟଃପରିଶ୍ରମ—ପୁଂ.ବିଂ. ମୁକ୍ତିନିମନ୍ତେ ଶ୍ରମ ବା କାମନାକାରୀ ।
ଶ୍ରେୟସୀ—ସ୍ତ୍ରୀ.ବି.(ଶ୍ରେୟସ୍+ଈ)ହରଡ଼ା, ଗଜପିପ୍ପଳୀ, ରାସ୍ନା, (ବିଂ) ଶୁଭଂକରୀ, ମଙ୍ଗଳକାରୀ, ହିତକାରୀ ।
ଶ୍ରେୟସ୍କର—ବିଂ. (ଶ୍ରେୟସ୍+କୃ+ଅ) ମଙ୍ଗଳଜନକ, ଶୁଭଦାୟକ, (ସ୍ତ୍ରୀ)ସ୍କରୀ ।
ଶ୍ରେୟସ୍କାମ—ପୁଂ.ବିଂ.(ଶ୍ରେୟସ୍+କାମ) ବି.ଗ୍ରା; ଶୁଭକାମନାବିଶିଷ୍ଟ, (ସ୍ତ୍ରୀ)ସ୍କାମା ।
ଶ୍ରେୟସ୍କୃତ୍-ବିଂ.(ଶ୍ରେୟଃ+କୃ+କ୍ୱିପ୍) ମଙ୍ଗଳଜନକ, ଶୁଭକର ।
ଶ୍ରେୟସ୍ତ୍ୱ—କ୍ଲୀ.ବି. ଶ୍ରେଷ୍ଠତ୍ୱ, ଶୁଭତ୍ୱ ।
ଶ୍ରେୟାନ୍—ପୁଂ. ବି. (ପ୍ରଶସ୍ୟ+ଇୟସ୍) ଧର୍ମ, ପୁଣ୍ୟ, ମୁକ୍ତି, ଅପବର୍ଗ, ମଙ୍ଗଳ, ଶୁଭ, ସୁଖ, ସୌଭାଗ୍ୟ, ହିତ, (ପୁଂ. ବିଂ) ଶ୍ରେଷ୍ଠ, ମଙ୍ଗଳକର, ଶୁଭଯୁକ୍ତ, ହିତକର, ଅତି ପ୍ରଶସ୍ତ, ପ୍ରଶସ୍ୟ, (ସ୍ତ୍ରୀ) ଶ୍ରେୟସୀ ।
ଶ୍ରେୟୋଜନକ—ବିଂ. (ଶ୍ରେୟଃ+ଜନ୍+କ.ଅକ)ମଙ୍ଗଳକର,ହିତକର,(ସ୍ତ୍ରୀ) ଶ୍ରେୟୋଜନିକା ।
ଶ୍ରେୟୋମୟ—ବିଂ. (ଶ୍ରେୟଃ+ମୟ) ମଙ୍ଗଳମୟ, (ସ୍ତ୍ରୀ) ଶ୍ରେୟୋମୟୀ ।
ଶ୍ରେୟୋବୃଦ୍ଧି—ବି. (୬ତତ୍) ମଙ୍ଗଳ ବା ଶୁଭର ବୃଦ୍ଧି ।
ଶ୍ରେଷ୍ଠ—ବି. (ପ୍ରଶସ୍ୟ+ଇଷ୍ଠ) ଗାଈର ଦୁଗ୍ଧ, କୁବେର, ରାଜା,ବ୍ରାହ୍ମଣ, ବିଷ୍ଣୁ, ମହାଦେବ, (ବିଂ) ପ୍ରଧାନ, ଉତ୍କୃଷ୍ଟ, ଉଚ୍ଚତମ, ବୃଦ୍ଧ, ଜ୍ୟେଷ୍ଠ । [ କାଠ ।
ଶ୍ରେଷ୍ଠକାଷ୍ଠ—ବି. ଶାଳବୃକ୍ଷ, ଶାଗୁଆନ
ଶ୍ରେଷ୍ଠତମ—ବିଂ.(ଶ୍ରେଷ୍ଠ+ତମ)ଅନେକଙ୍କ ମଧ୍ୟରେ ଯେ ପ୍ରଧାନ,(ସ୍ତ୍ରୀ) ଶ୍ରେଷ୍ଠତମା ।
ଶ୍ରେଷ୍ଠତର—ବିଂ. (ଶ୍ରେଷ୍ଠ+ତର)ଦୁଇଜଣଙ୍କ ମଧ୍ୟରେ ଯେ ପ୍ରଧାନ ଅଟେ, (ସ୍ତ୍ରୀ) ଶ୍ରେଷ୍ଠତରା ।
ଶ୍ରେଷ୍ଠତଃ—ଅବ୍ୟ. ଶ୍ରେଷ୍ଠ ଠାରୁ ।
ଶ୍ରେଷ୍ଠତା(ତ୍ୱ)—ବି. (ଶ୍ରେଷ୍ଠ+ତା.ତ୍ୱ) ପ୍ରଧାନତା, ଉତ୍କୃଷ୍ଟତା, ଜ୍ୟେଷ୍ଠତ୍ୱ, ଉତ୍କର୍ଷ ।
ଶ୍ରେଷ୍ଠମଲ୍ଲିକା—ସ୍ତ୍ରୀ.ବି. ଶତଦଳମଲ୍ଲୀ ।
ଶ୍ରେଷ୍ଠଲବଣ—କ୍ଲୀ.ବି. ସୈନ୍ଧବଲବଣ ।
ଶ୍ରେଷ୍ଠବର୍ଚ୍ଚାଃ—ପୁଂ.ବିଂ. ପ୍ରଶସ୍ତ ତେଜୋଯୁକ୍ତ ।
ଶ୍ରେଷ୍ଠବାକ୍—ପୁଂ.ବିଂ. ଉତ୍ତମ ବାକ୍ୟବିଶିଷ୍ଟ, ଶ୍ରେଷ୍ଠ ବାକ୍ୟଯୁକ୍ତ ।
ଶ୍ରେଷ୍ଠବୃକ୍ଷ—ପୁଂ.ବି. ବରୁଣବୃକ୍ଷ, କୃଷ୍ଣାଗୁରୁ ବୃକ୍ଷ । [ ନାଭି ।
ଶ୍ରେଷ୍ଠବେଧିକା—ସ୍ତ୍ରୀ.ବି. କସ୍ତୁରୀ, ମୃଗ-

ଶ୍ରେଷ୍ଠା—ସ୍ତ୍ରୀ.ବ. (ଶ୍ରେଷ୍ଠ+ଆ)ସ୍ଥଳପଦ୍ମ, ତ୍ରିଫଳା,ଉତ୍ତମା ସ୍ତ୍ରୀ,(ବିଂ)ମେଧା,ଶ୍ରେଷ୍ଠର ସ୍ତ୍ରୀଲିଙ୍ଗ । [ ପାଲଙ୍ଗ ।

ଶ୍ରେଷ୍ଠାମ୍ଳ—ବ. ବୃକ୍ଷାମ୍ଳ, ତନ୍ତୁଳ, ଖଟା-

ଶ୍ରେଷ୍ଠାମ୍ବୁ—ବ. ଉତ୍କୃଷ୍ଟ ଜଳ, ଗୁଡ଼ଳ-ଧୁଆପାଣି ।

ଶ୍ରେଷ୍ଠାଶ୍ରମ—ବ. (କ.ଧା) ଗୃହସ୍ଥାଶ୍ରମ ।

ଶ୍ରେଷ୍ଠୀ—ପୁଂ.ବ. (ଶ୍ରେଷ୍ଠ+ଇନ୍)ବଣିକ୍-ବିଶେଷ, କୁଳୋତ୍ତମ ବ୍ୟକ୍ତି ।

ଶ୍ରୋଣ—ବିଂ. (ଶ୍ରୋଣ୍+କ.ଅ) ପଙ୍ଗୁ, (ସ୍ତ୍ରୀ) ଶ୍ରୋଣା ।

ଶ୍ରୋଣା—ସ୍ତ୍ରୀ.ବ. (ଶ୍ରୋଣ+କ.ଅ+ଆ) ଶ୍ରବଣାନକ୍ଷତ୍ର, କାଞ୍ଜି, (ବିଂ)ପଙ୍ଗୁ. (ସ୍ତ୍ରୀ.ବିଂ) ଶ୍ରୋଣର ସ୍ତ୍ରୀଲିଙ୍ଗ ।

ଶ୍ରୋଣି-ବ.(ଶ୍ରୋଣ+କ.ଇ) କଟିଦେଶ, ନିତମ୍ବ, ପିଚ୍ଛ, ପଥ, ରାସ୍ତା, ( ଗ୍ରା.ବ ) ଶୋଣିତ, ରକ୍ତ ।

ଶ୍ରୋଣିକପାଳ-କ୍ଲୀ.ବ. (୬ତତ୍ର)କଟାସ୍ଥି ।

ଶ୍ରୋଣିତ—ଗ୍ରା.ବ. ଶୋଣିତ, ରକ୍ତ ।

ଶ୍ରୋଣିଫଳ—କ୍ଲୀ.ବ. କଟିଦେଶ ।

ଶ୍ରୋଣିଫଳକ—ବ. କଟିପାର୍ଶ୍ୱ, ପିଚ୍ଛ, କଟିହାଡ଼ ।

ଶ୍ରୋଣିବିମ୍ବ—ବ. କଟିସୂତ୍ର, ଅଣ୍ଟାସୂତା ।

ଶ୍ରୋଣିସୂତ୍ର—ବ. ଖଡ୍ଗବନ୍ଧନ ସୂତ୍ର,କଟି-ବନ୍ଧନ ସୂତ୍ର, ଅଣ୍ଟାସୂତା, ମେଖଳା ।

ଶ୍ରୋଣୀ—ବ. ଶ୍ରୋଣି ଦେଖ ।

ଶ୍ରୋଣୀକା—ବ. ନିତମ୍ବ, ପିଚ୍ଛ ।

ଶ୍ରୋଣୀଫଳ—ବ. କଟିଦେଶ ।

ଶ୍ରୋତଃ—ବ. (ଶ୍ରୁ+କ.ଅସ୍) ନଦ୍ୟା-ଦିର ବେଗ, ସ୍ରୋତଃ, (ଣ.ଅସ୍)ଜ୍ଞାନେ-ନ୍ଦ୍ରିୟ, ଜ୍ଞାନ,ଶ୍ରବଣ, କର୍ଣ୍ଣ ।

ଶ୍ରୋତବ୍ୟ—ବିଂ.(ଶ୍ରୁ+ମି.ତବ୍ୟ)ଶ୍ରବ-ଣୀୟ, ଶୁଣିବାର ଯୋଗ୍ୟ ।

ଶ୍ରୋତରେ-ଗ୍ରା.କ୍ରି.ଶୁଣନ୍ତେ, ଶୁଣିବାରୁ ।

ଶ୍ରୋତା—ପୁଂ. ବିଂ. ( ଶ୍ରୁ+କ.ତୃ ) ଶ୍ରବଣକର୍ତ୍ତା, ଯେ ଶୁଣେ,(ସ୍ତ୍ରୀ)ଶ୍ରୋତ୍ରୀ, (ଗ୍ରା.ବ) ସ୍ପୃହା, ସ୍ନେହ ।

ଶ୍ରୋତାଞ୍ଜନ—ବ. ବୈଦ୍ୟଶାସ୍ତ୍ରୋକ୍ତ ଗୁର-ପ୍ରକାର ଅଞ୍ଜନ ମଧ୍ୟରୁ ଏକ ।

ଶ୍ରୋତ୍ର—କ୍ଲୀ. ବ. (ଶ୍ରୁ+ଣ.ତ୍ର) କାନ, କର୍ଣ୍ଣ(+ମି.ତ୍ର) ଶ୍ରୁତି, ବେଦ ।

ଶ୍ରୋତ୍ରକ୍ଷ—ବିଂ. ( ଶ୍ରୋତ୍ର+ଜ୍ଞା+ଅ ) ଶ୍ରବଣପଟୁ, ଶୁଣିବାରେ ଅଭିଜ୍ଞ ।

ଶ୍ରୋତ୍ରଜ୍ଞତା —ସ୍ତ୍ରୀ. ବ. ( ଶ୍ରୋତ୍ରଜ୍ଞ+ତ +ଆ) ଶ୍ରବଣେନ୍ଦ୍ରିୟ, କାନ ।

ଶ୍ରୋତ୍ରତଃ—ଅବ୍ୟ.(ଶ୍ରୋତ୍ର+ତସ୍)କାନ-ବିଷୟରେ, କାନଠାରୁ, କାନରୁ ।

ଶ୍ରୋତ୍ରପଟୁ—ବିଂ. (୭ତ) ଶୁଣିବା ବିଷୟରେ ପଟୁ ।

ଶ୍ରୋତ୍ରପଦବୀ-ବ.କର୍ଣ୍ଣପଥ,କାନ,ଶ୍ରୁତିପଥ ।

ଶ୍ରୋତ୍ରପାଳ—ବ. କର୍ଣ୍ଣପାଳି ।

ଶ୍ରୋତ୍ରପେୟ—ବିଂ. (୩ତତ୍ର)ସମ୍ମାନସହିତ ଶୁଣାଯିବା ଯୋଗ୍ୟ, କର୍ଣ୍ଣମଧୁର ।

ଶ୍ରୋତ୍ରଭିଦ୍—ବିଂ. ( ଶ୍ରୋତ୍ର+ଭିଦ୍+କ୍ୱିପ୍) କର୍ଣ୍ଣଭେଦକାରୀ ।

ଶ୍ରୋତ୍ରମାର୍ଗ—ବ. ଶ୍ରବଣପଥ, କର୍ଣ୍ଣପଥ ।

ଶ୍ରୋତ୍ରମୂଳ—ବ. କର୍ଣ୍ଣମୂଳ,କାନମୂଳ ।

ଶ୍ରୋତ୍ରବାସୀ-ପୁଂ.ବିଂ.ଇଚ୍ଛୁକ, ପ୍ରଶସ୍ତମନା ।

ଶ୍ରୋତ୍ରବାନ୍—ପୁଂ. ବିଂ. (ଶ୍ରୋତ୍ର+ବତ୍) ଶ୍ରବଣଶକ୍ତିବିଶିଷ୍ଟ,ଶ୍ରବଣେନ୍ଦ୍ରିୟବିଶିଷ୍ଟ ।

ଶ୍ରୋତ୍ରହୀନ—ପୁଂ. ବିଂ. (୩ତତ୍ର)ଶ୍ରବଣ-ଶକ୍ତିହୀନ,ଯାହାର କାନ ନାହିଁ, ( ସ୍ତ୍ରୀ ) ହୀନା ।

ଶ୍ରୋତ୍ରିୟ—ପୁଂ. ବ. ( ଶ୍ରୋତ୍ର+ଇୟ ) ବେଦବିଦ୍‌ବ୍ରାହ୍ମଣ, ବେଦାଧ୍ୟାୟୀ କୁଳ-ଶୀଳସମ୍ପନ୍ନ ବ୍ରାହ୍ମଣ ।

ଶ୍ରୋତ୍ରିୟସାତ୍—ଅବ୍ୟ. ବେଦବିଦ୍ ବ୍ରାହ୍ମ-ଣକୁ ଯାହା ଦିଆଯାଏ ବା ଦତ୍ତ ।

ଶ୍ରୋତ୍ରେନ୍ଦ୍ରିୟ—କ୍ଲୀ. ବ. ଶ୍ରବଣେନ୍ଦ୍ରିୟ, କାନ, କର୍ଣ୍ଣ ।

ଶ୍ରୌତ—ବିଂ. (ଶ୍ରୁତି+ଅ) ଶ୍ରୁତି ବା ବେଦବିହିତ, (ବ) ଯଜ୍ଞାଗ୍ନି ତ୍ରୟ(ଗାର୍ହ-ପତ୍ୟ,ଆହବନୀୟ ଓ ଦକ୍ଷିଣାଗ୍ନି),ବେଦ-ବିହିତ ଧର୍ମାଦି ।

ଶ୍ରୌତଶ୍ରବ—ପୁଂ. ବ. (ଶ୍ରୁତଶ୍ରବା+ଅ)ଶିଶୁପାଳ,ଶ୍ରୁତଶ୍ରବାର ଅପତ୍ୟ ।

ଶ୍ରୌତ୍ର—ବ.(ଶ୍ରୋତ୍ର+ଅ)କର୍ଣ୍ଣ ବୈଦିକ କର୍ମ, ଶ୍ରୋତ୍ରସମୂହ ।

ଶ୍ଲକ୍ଷ୍ଣ—ବିଂ(ଶ୍ଳିଷ୍+ମି.କ.ଣ)କ୍ଷୀଣ,କୃଶ, ମଧୁର ବାକ୍ୟ, ଅଳ୍ପ, ସୂକ୍ଷ୍ମ, ସ୍ନିଗ୍ଧ, ଚିକ୍କଣ, ମନୋହର, (ସ୍ତ୍ରୀ)ଶ୍ଲକ୍ଷ୍ଣା ।

ଶ୍ଲକ୍ଷ୍ଣକ—ବିଂ. (ଶ୍ଲକ୍ଷ୍ଣ+କ)ଶ୍ଲକ୍ଷ୍ଣ ଦେଖ, (କ୍ଲୀ.ବ) ଗୁଆ (ଫଳ ଓ ବୃକ୍ଷ) ।

ଶ୍ଲକ୍ଷ୍ଣତ୍ୱକ୍—ପୁଂ. ବ. (ବ.ଗ୍ରୀ) ଅଶ୍ମନ୍ତକ ଶାକ, (କ.ଧା) ସୁନ୍ଦର ବଲ୍କଳ ।

ଶ୍ଲକ୍ଷ୍ଣନ—ବିଂ. ମସୃଣ, ଚିକ୍କଣ ।

ଶ୍ଲଥ —ବିଂ ( ଶ୍ଲଥ୍+କ.ଅ ) ଶିଥିଳ, ଅଦୃଢ଼, ଢିଲା, ଦୁର୍ବଳ, ଫୁଗୁଲା, (ସ୍ତ୍ରୀ) ଶ୍ଲଥା ।

ଶ୍ଲଥଚର୍ମ—ବ. (କ.ଧା) ଲୁଳିତ ଚର୍ମ ।

ଶ୍ଲଥଚର୍ମା—ବିଂ. (ବ.ଗ୍ରୀ) ଯେଉଁ ବୃଦ୍ଧ ବ୍ୟକ୍ତିର ଚମଡ଼ା ଓହଳି ପଡ଼ିଅଛି ।

ଶ୍ଲଥତା(ତ୍ୱ)—ବ. (ଶ୍ଲଥ+ତା.ତ୍ୱ) ଶିଥି-ଳତା, ଶୈଥିଲ୍ୟ ।

ଶ୍ଲଥବନ୍ଧନ—ପୁଂ. ବିଂ. (ବ.ଗ୍ରୀ)ଯାହାର ବନ୍ଧା ଗଣ୍ଠି ଫୁଗୁଳି ଯାଇଅଛି,(ସ୍ତ୍ରୀ)ଶ୍ଲଥ-ବନ୍ଧନା ।

ଶ୍ଲଥବୃନ୍ତ—ବିଂ. (ବ.ଗ୍ରୀ) ଶିଥିଳ ବୃନ୍ତ, (ସ୍ତ୍ରୀ) ଶ୍ଲଥବୃନ୍ତା ।

ଶ୍ଲବଣ—ବ. ଶ୍ରବଣ ।

ଶ୍ଲାଘ—ଗ୍ରା.ବ. ଆତ୍ମପ୍ରଶଂସା ।

ଶ୍ଲାଘନ—ପୁଂ. ବିଂ. (ଶ୍ଲାଘ+କ.ଅନ) ଆତ୍ମପ୍ରଶଂସାକାରୀ, (ବ.ଭା.ଅନ) ଆତ୍ମ-ପ୍ରଶଂସା ।

ଶ୍ଲାଘନୀୟ—ବିଂ. ( ଶ୍ଲାଘ+ମି.ଅନୀୟ ) ଶ୍ଲାଘ୍ୟ ଦେଖ, (ସ୍ତ୍ରୀ)ଶ୍ଲାଘନୀୟା ।

ଶ୍ଲାଘା—ସ୍ତ୍ରୀ, ବ. (ଶ୍ଲାଘ+ଭା.ଅ+ଆ) ପ୍ରଶଂସା, ଅଭିଳାଷ, ଇଚ୍ଛା, ନିଜଗୁଣ ଖ୍ୟାପନ, ପରିଚର୍ଯ୍ୟା, ସେବା ।

ଶ୍ଲାଘାରହିତ—ପୁଂ ବିଂ. (୩ତତ୍ର)ଆତ୍ମ-ପ୍ରଶଂସାଶୂନ୍ୟ, (ସ୍ତ୍ରୀ) ଶ୍ଲାଘାରହିତା ।

ଶ୍ଲାଘୀ—ପୁଂ.ବିଂ(ଶ୍ଲାଘା+ଇନ୍)ପ୍ରଶଂସା-କାଂକ୍ଷୀ, ଆତ୍ମପ୍ରଶଂସାକାରୀ,(ସ୍ତ୍ରୀ)ଶ୍ଲାଘିନୀ ।

ଶ୍ଲାଘ୍ୟ—ପୁଂ.ବିଂ.(ଶ୍ଲାଘ+ମି.ଯ)ପ୍ରଶସ୍ତ, ସ୍ପୃହଣୀୟ, ବାଞ୍ଛିତ, ପ୍ରଶଂସ୍ୟ, ପ୍ରଶଂ-ସାର୍ହ, (ସ୍ତ୍ରୀ) ଶ୍ଲାଘ୍ୟା ।

ଶ୍ଲିଷ୍ଟ—କ୍ଲୀ.ବ. (ଶ୍ଲିଷ୍+କ.ତ) ଭୂତ୍ୟ,

ଲମ୍ପଟ, (ମିଂ.ଉ) ଜ୍ୟୋତିଃଶାସ୍ତ୍ର ।
ଶ୍ଲିଷା—ସ୍ତ୍ରୀ. ବି. (ଶ୍ଲିଷ୍+ଭା.ଅ+ଆ) ଆଲିଙ୍ଗନ ।
ଶ୍ଲିଷ୍ଟ—ବିଂ. (ଶ୍ଲିଷ୍+ତ)ଶ୍ଳେଷଯୁକ୍ତ ( ଶବ୍ଦାଦି ),ଅନେକାର୍ଥବାଚକ (ଶବ୍ଦ), ସଂଶ୍ଲିଷ୍ଟ, ସଂଯୁକ୍ତ, ଆଲିଙ୍ଗିତ, (ସ୍ତ୍ରୀ) ଶ୍ଲିଷ୍ଟା, (ବି.ଭା.ତ) ଆଲିଙ୍ଗନ, ଶ୍ଳେଷଯୁକ୍ତ ବାକ୍ୟ, ଅନେକାର୍ଥକ ଏକରୂପାନ୍ୱିତ ବାକ୍ୟ । [ ଭେଦ ।
ଶ୍ଲିଷ୍ଟରୂପକ—କ୍ଲୀ. ବି. ରୂପକ ଅଲଙ୍କାର
ଶ୍ଲିଷ୍ଟବର୍ତ୍ମ—ବି.(କ.ଧା)ପରିଷ୍କାର ପଥ ।
ଶ୍ଲିଷ୍ଟାକ୍ଷେପ—ବି. (କ.ଧା) ଆକ୍ଷେପ ଅଲଙ୍କାରବିଶେଷ ।
ଶ୍ଲିଷ୍ଟାର୍ଥ—ବି. ଶ୍ଳେଷାର୍ଥ ଦେଖ ।
ଶ୍ଲିଷ୍ଟି—ପୁଂ.ବି. ମିଳନ, ସଂଯୋଗ, ଭାବ, ଧ୍ରୁବଙ୍କ ପୁତ୍ରଭେଦ,ବ୍ୟଙ୍ଗୋକ୍ତି,ସାଧୂକ୍ତି
ଶ୍ଲିଷ୍ଟୋକ୍ତି—ସ୍ତ୍ରୀ.ବି. ଶ୍ଳେଷଯୁକ୍ତ ବାକ୍ୟକଥନ ।
ଶ୍ଲୀପଦ—କ୍ଲୀ.ବି(କ.ଧା)ଗୋଦର ରୋଗ ।
ଶ୍ଲୀପଦପ୍ରଭବ—ପୁଂ.ବି. (ଶ୍ଲୀପଦ+ପ୍ର+ଭୂ+ଅ) ଆମ୍ବଗଛ ।
ଶ୍ଲୀପଦାପହ—ପୁଂ.ବି.(ଶ୍ଲୀପଦ+ଅପ୍+ହନ୍+ଅ) ପୁତ୍ରଂଜୀବ ବୃକ୍ଷ, ପୋଇ-ଗୃନ୍ଧଆଗଛ ।
ଶ୍ଲୀପଦୀ—ପୁଂ. ବିଂ. ( ଶ୍ଲୀପଦ+ଇନ୍ ) ଗୋଦର ରୋଗଗ୍ରସ୍ତ, କୋରଣ୍ଡିଆ,(ସ୍ତ୍ରୀ) ଶ୍ଲୀପଦିନୀ ।
ଶ୍ଲୀଳ—ପୁଂ. ବିଂ. ( ଶ୍ରୀ+ଳ ) ଶିଷ୍ଟ, ଭଦ୍ର, ଶ୍ରୀଯୁକ୍ତ, ଲକ୍ଷ୍ମୀବିଶିଷ୍ଟ,ସୌଭାଗ୍ୟବାନ୍, ସୁଖୀ । [ ସାଧୁତା ।
ଶ୍ଲୀଳତା—ବି. ( ଶ୍ଲୀଳ+ତା ) ଭଦ୍ରତା,
ଶ୍ଳେଷ—ପୁଂ.ବି(ଶ୍ଲିଷ୍+ଭା.ଅ)ସଂଯୋଗ, ଦାହ, ଆଲିଙ୍ଗନ, ସମ୍ବନ୍ଧ, ଆଶ୍ଳେଷ ଶବ୍ଦର ଅନେକାର୍ଥରେ ପ୍ରୟୋଗ, ଏକ ଶବ୍ଦର ଦ୍ୱିବିଧାର୍ଥରେ ପ୍ରୟୋଗ, ସନ୍ଧିଗ୍ଧାର୍ଥତା,ପ୍ରହେଳିକା,ଶବ୍ଦାଲଙ୍କାରବିଶେଷ, (ଗ୍ରା.ବି) ପରିହାସ ।
ଶ୍ଳେଷକ—ବିଂ.(ଶ୍ଲିଷ୍+କ.ଅକ)ସଂଲଗ୍ନ ।
ଶ୍ଳେଷକଟୂ—ବିଂ. (କ.ଧା) ପରିହାସାତ୍ମକ ଓ ମର୍ମଭେଦୀ ବା କର୍କଶ (ବାକ୍ୟ) ।
ଶ୍ଳେଷଣ—କ୍ଲୀ.ବି(ଶ୍ଲିଷ୍+ଭା.ଅନ)ମିଳନ
ଶ୍ଳେଷବଚନ—ବି. (କ.ଧା) ଦ୍ୱିବିଧାର୍ଥବୋଧକ ବାକ୍ୟ, (ଗ୍ରା.ବି)ବ୍ୟଙ୍ଗୋକ୍ତି, ପରିହାସ, ଥଟ୍ଟା ।
ଶ୍ଳେଷଭକ୍ତିକ—ବିଂ. ସଂଲଗ୍ନଗତ, ସଂଶ୍ଲିଷ୍ଟତା ପ୍ରାପ୍ତ ।
ଶ୍ଳେଷାର୍ଥ—ପୁଂ. ବି. ସ୍ତୁତି, ନିନ୍ଦାବାଦ ।
ଶ୍ଳେଷୋକ୍ତି—ବି. (କ.ଧା) ଶ୍ଳେଷବଚନ ଦେଖ ।
ଶ୍ଳେଷ୍ମକ—ପୁଂ. ବି. ( ଶ୍ଳେଷ୍ମନ୍+କ ) ଶ୍ଳେଷ୍ମା ଦେଖ ।
ଶ୍ଳେଷ୍ମଘ୍ନ—ତ୍ରି.ବିଂ. (ଶ୍ଳେଷ୍ମନ୍+ହନ୍+କ.ଅ) ଯେଉଁ ଦ୍ରବ୍ୟ ଶ୍ଳେଷ୍ମା ବା କଫକୁ କମାଏ, (ସ୍ତ୍ରୀ) ଶ୍ଳେଷ୍ମଘ୍ନୀ ।
ଶ୍ଳେଷ୍ମଘ୍ନା—ସ୍ତ୍ରୀ. ବି. ମଲ୍ଲିକା, କେତକୀ ।
ଶ୍ଳେଷ୍ମଘ୍ନୀ—ସ୍ତ୍ରୀ.ବି. (ଶ୍ଳେଷ୍ମ+ହନ୍+ଈ) ଜ୍ୟୋତିଷ୍ମତୀ, ଫୁଟିଫୁଟିକା, ମଲ୍ଲିକା, ତ୍ରିକଟୁ (ଶୁଣ୍ଠି,ପିପ୍ପଳୀ, ଗୋଲମରିଚ) ।
ଶ୍ଳେଷ୍ମଜ୍ୱର—ବି.(କ.ଧା)କଫଜନିତ ଜ୍ୱର
ଶ୍ଳେଷ୍ମଣ—ପୁଂ.ବିଂ. (ଶ୍ଳେଷ୍ମନ୍+ଅ)କଫଯୁକ୍ତ, କଫରୋଗବିଶିଷ୍ଟ, (ସ୍ତ୍ରୀ)ଶ୍ଳେଷ୍ମଣା, (ବି) କଫ ।
ଶ୍ଳେଷ୍ମନାଡ଼ୀ—ସ୍ତ୍ରୀ.ବି.ଦନ୍ତମୂଳଗତ ରୋଗ, ଦନ୍ତନାଳୀ ।
ଶ୍ଳେଷ୍ମପ୍ରକୃତି—ବିଂ. ( ବ.ବ୍ରୀ ) ଯେଉଁ ମନୁଷ୍ୟ ଦେହରେ କଫଧାତୁର ଆଧିକ୍ୟ ଥାଏ ।
ଶ୍ଳେଷ୍ମପ୍ରଧାନ—ପୁଂ. ବିଂ. (ବ.ବ୍ରୀ) କଫ ଯେଉଁ ଲୋକର ପ୍ରଧାନ ଦୈହିକ ଧାତୁ ବା ଉପାଦାନ ।
ଶ୍ଳେଷ୍ମଳ—ବିଂ.(ଶ୍ଳେଷ୍ମନ୍+ଳ)କଫଯୁକ୍ତ, ଶ୍ଳେଷ୍ମାଯୁକ୍ତ, କଫପ୍ରଧାନ,(ସ୍ତ୍ରୀ)ଶ୍ଳେଷ୍ମଳା, (ବି) ବହୁବାର ବୃକ୍ଷ ।
ଶ୍ଳେଷ୍ମଳଫଳ—ପୁଂ. ବି.ବହୁବାରବୃକ୍ଷ ।
ଶ୍ଳେଷ୍ମବର୍ଦ୍ଧକ—ବିଂ. ଯେଉଁ ଦ୍ରବ୍ୟ ଶରୀରରେ କଫକୁ ବଢ଼ାଏ ।
ଶ୍ଳେଷ୍ମବାନ୍—ପୁଂ.ବିଂ.(ଶ୍ଳେଷ୍ମନ୍+ବତ୍) ଶ୍ଳେଷ୍ମଯୁକ୍ତ ।
ଶ୍ଳେଷ୍ମସ୍ରାବ-ପୁଂ.ବି.ନେତ୍ରସନ୍ଧିଗତ ରୋଗ ।
ଶ୍ଳେଷ୍ମହ—ପୁଂ.ବି. (ଶ୍ଳେଷ୍ମନ୍+ହନ୍+ଅ) କଟଫଳ, କାଫଡ଼, ପଣସବୃକ୍ଷ, (ବିଂ) କଫନାଶକ ।
ଶ୍ଳେଷ୍ମହନ୍ତ୍ରୀ—ସ୍ତ୍ରୀ.ବି.ଦେବଦାଳୀଲତା ।
ଶ୍ଳେଷ୍ମା—ବି. ( ଶ୍ଲିଷ୍+କ.ମନ୍ ) କଫ, ଶିଙ୍ଘାଣି, ଶରଦ୍ଧି ।
ଶ୍ଳେଷ୍ମାଟ(ତ)—ପୁଂ.ବି.ଶ୍ଳେଷ୍ମାତକବୃକ୍ଷ, ଔଡ଼, ବହୁବାର ବୃକ୍ଷ,ଲେସରା କୋଳିଗଛ ।
ଶ୍ଳେଷ୍ମାତକ—ପୁଂ.ବି. ଶ୍ଳେଷ୍ମାତ ଦେଖ ।
ଶ୍ଳେଷ୍ମାନ୍ତକ—ପୁଂ.ବି.ଶ୍ଳେଷ୍ମାତ ଦେଖ ।
ଶ୍ଳେଷ୍ମାଭିଷ୍ୟନ୍ଦ—ପୁଂ. ବି. ଆଖି ଫୁଲି ତହିଁରୁ ପିଚ୍ଛିଳ ରସ ବୋହିବା ରୋଗବିଶେଷ ।
ଶ୍ଳେଷ୍ମାର—ବି. ଶ୍ଳେଷ୍ମାନ୍ତକ ଦେଖ ।
ଶ୍ଳେଷ୍ମୋତ୍ପାଦକ-ବିଂ.ଯାହା କଫ ଜନ୍ମାଏ, କଫକାରକ ।
ଶ୍ଳୈଷ୍ମିକ—ବିଂ.(ଶ୍ଳେଷ୍ମନ୍+ଇକ)କଫନାଶକ,କଫବର୍ଦ୍ଧକ,ଶ୍ଳେଷ୍ମାସମ୍ବନ୍ଧୀୟ ।
ଶ୍ଳୈଷ୍ମିକଅନ୍ତସ୍ତ୍ୱକ—ବି. କଫର ସ୍ରାବକୃତ ଚମଡ଼ାର ପତଳା ପଟି ।
ଶ୍ଲୋକ—ବି. (ଶ୍ଲୋକ+ମିଂ.ଅ) ଛନ୍ଦୋବଦ୍ଧ ରଚନା, ପଦ୍ୟ, କବିତା, ଦୁଇ ବା ଚାରିପାଦବିଶିଷ୍ଟ ପଦ୍ୟ, (ଶ୍ଲୋକ+କ.ଅ) ସୁଖ୍ୟାତି, ପ୍ରଶଂସା, ପ୍ରସିଦ୍ଧି, ଯଶଃ, କୀର୍ତ୍ତି, ବାକ୍ୟ ।
ଶ୍ଲୋକକୃତ୍—ବିଂ. (ଶ୍ଲୋକ+କୃ+କ୍ୱିପ୍) ଶ୍ଲୋକକାରକ, ଶ୍ଲୋକ ରଚୟିତା ।
ଶ୍ଲୋକଚୌର—ପୁଂ.ବି. ଅନ୍ୟର ରଚିତ ଶ୍ଲୋକକୁ ଆପଣାର ରଚନା ବୋଲି ଲୋକଙ୍କୁ ଭଣ୍ଡାଇବା ବ୍ୟକ୍ତି, ସାମାନ୍ୟ କବି ।
ଶ୍ଲୋକଚୌର୍ଯ୍ୟ-ବି.ଅନ୍ୟ ବ୍ୟକ୍ତିଙ୍କ ରଚିତ ଶ୍ଲୋକକୁ ଆପଣାର ରଚନା ରୂପେ ବ୍ୟବହାର କରିବା ।
ଶ୍ଲୋକମୟ-ବିଂ.ଯାହା ଶ୍ଲୋକରେ ରଚିତ ବା ପ୍ରକାଶିତ, ଛନ୍ଦୋବଦ୍ଧ ଶ୍ଲୋକବିଶିଷ୍ଟ, (ସ୍ତ୍ରୀ) ଶ୍ଲୋକମୟୀ ।

ଶ୍ଳୋକଯୁଗ୍ମକ—ବ.(ଶ୍ଳୋକ+ଯୁଗ୍ମ+କ) ଏକଅ ଅନ୍ୱୟାଦ ଦ୍ୱାରା ସମ୍ବଦ୍ଧ ଦୁଇଟି ଶ୍ଳୋକ ।
ଶ୍ଳୋକରଚନ(ନା)—ବ.(୬ତତ୍ତ୍ୱ)ସଂସ୍କୃତରେ ଛନ୍ଦୋବଦ୍ଧ କବିତା ରଚନା ।
ଶ୍ଳୋକାତ୍ମକ—ବିଂ. (ଶ୍ଳୋକ+ଆତ୍ମନ୍+କ) ଶ୍ଳୋକମୟ ଦେଖ ।
ଶ୍ଳୋକାନ୍ତ—ବ. ଏକାଧିକ ଗ୍ରନ୍ଥ ବା ବ୍ୟକ୍ତିଙ୍କ ମଧ୍ୟରେ ଶ୍ଳୋକ ବୋଲିବାର ପ୍ରତଯୋଗିତା (ଯହିଁରେ ପ୍ରଥମ ବ୍ୟକ୍ତି ବୋଲିବା ଶ୍ଳୋକର ଶେଷ ଅକ୍ଷର ଯାହା ହୁଏ ୨ୟ ବ୍ୟକ୍ତି ସେହି ଅକ୍ଷର ଆଦ୍ୟରେ ଥିବା ଶ୍ଳୋକ ବୋଲି ପ୍ରତ-ଯୋଗିତା କରେ) ।
ଶ୍ଳୋକାନ୍ୱୟ—ବ.(୬ତତ୍ତ୍ୱ)ଶ୍ଳୋକସ୍ଥ ପଦମାନଙ୍କୁ ବ୍ୟାକରଣ ନିୟମବଦ୍ଧବାକ୍ୟରେ ପରିବର୍ତ୍ତିତ କରିବା ।
ଶ୍ଳୋକାନ୍ୱିତ—ପୁଂ.ବିଂ.(୩ତତ୍ତ୍ୱ)ଯଶସ୍ୱୀ ।
ଶ୍ଳୋକାବୃତ୍ତି—ବ. (୬ତତ୍ତ୍ୱ)ଶ୍ଳୋକ ପାଠ-କରିବା ।
ଶ୍ଳୋକୋଚ୍ଚାରଣ—ବ (୬ତତ୍ତ୍ୱ)ଶ୍ଳୋକକୁ ଛନ୍ଦ ଅନୁସାରେ ବୋଲିବା ।
ଶ୍ଳୋପା—ଯା. ବ. ଶ୍ରେଷ୍ଠ ଜାହାଜ ।
ଶ୍ୱଃ—ଅ. ଆଗାମୀ କାଲି,(ବିଂ.-ସୁ+ଅ) ସୁନ୍ଦର, ଶୋଭନ, ଆଗାମୀ ।
ଶ୍ୱଃକାଲ—ବ. ପରଦିନ, ଆଗାମୀ କାଲି ।
ଶ୍ୱଃଶ୍ରେୟଃ—ବ. (କ.ଧା)ମଙ୍ଗଳ, ଶୁଭ, କଲ୍ୟାଣ, ସୁଖ, ସୌଭାଗ୍ୟ, ପରମାତ୍ମା ।
ଶ୍ୱଃଶ୍ରେୟସ—ବିଂ. ( ଶ୍ୱଃଶ୍ରେୟସ୍+ଅ ) କଲ୍ୟାଣୀ, ସୌଭାଗ୍ୟଯୁକ୍ତ, ସୁଖୀ, (ସ୍ତ୍ରୀ) ଶ୍ୱଃଶ୍ରେୟସୀ ।
ଶ୍ୱକଷ୍ଟୀ—ବ. ରାକ୍ଷସ, ଐନ୍ଦ୍ରଜାଲିକ ।
ଶ୍ୱକ୍ରୀଡ଼ୀ—ପୁଂ. ବିଂ.(ଶ୍ୱ+କ୍ରୀଡ଼+ଇନ୍) କୁକୁରଦ୍ୱାରା କ୍ରୀଡ଼ାକାରୀ, ଖେଳ ବା ଶିକାର ନିମନ୍ତେ ଯେ କୁକୁର ପୋଷେ ।
ଶ୍ୱଗଣ—ପୁଂ. ବ. (୬ତତ୍ତ୍ୱ)କୁକୁରସମୂହ, କୁକୁରପଲ ।
ଶ୍ୱଗଣିକ—ପୁଂ. ବିଂ. (ଶ୍ୱଗଣ+ଇକ) କୁକୁର ସମୂହସମ୍ବନ୍ଧୀୟ, ( ବ ) ବ୍ୟାଧ, ଶିକାରୀ ।
ଶ୍ୱଗଣୀ—ପୁଂ. ବ. ବ୍ୟାଧ, କୁକୁର ଦ୍ୱାରା ଶିକାରକାରୀ ।
ଶ୍ୱଗ୍ରହ—ପୁଂ. ବ. ବାଳଗ୍ରହବିଶେଷ ।
ଶ୍ୱଘ୍ନୀ—ପୁଂ. ବିଂ. ଜୁଆଖେଳର,ପ୍ରତାରକ. କିତବ ।
ଶ୍ୱଜୀବିକା—ବ.ଶ୍ୱବୃତ୍ତି,କୁକୁରତୁଲ୍ୟପରର ଦାସତ୍ୱବୃତ୍ତି ।
ଶ୍ୱଦଂଷ୍ଟ୍ରକ—ପୁଂ.ବ.ଗୋକ୍ଷୁରକ,ଗୋଖୁରା
ଶ୍ୱଦଂଷ୍ଟ୍ରା—ବ. ଗୋକ୍ଷୁରକ, ଗୋଖରା, ଶ୍ୱଦନ୍ତକ ଦେଖ ।
ଶ୍ୱଦନ୍ତକ—ବ.(୬ତତ୍ତ୍ୱ) ମନୁଷ୍ୟାଦ ପ୍ରାଣୀଙ୍କର ଉପର ଓ ତଳପାଟିରେ ଥିବା ମୂଳିଆ ଦାନ୍ତ, ଶୌବନ ଦନ୍ତ ।
ଶ୍ୱଦାସ୍ରିତ—ବ. କୁକ୍କୁରୀ, ଅସ୍ଥି ।
ଶ୍ୱଧୂର୍ତ୍ତି—ପୁଂ. ବ. (ଶ୍ୱନ୍+ଧୂର୍ତ୍ତି)ଶୃଗାଳ, ବିଲୁଆ, (ସ୍ତ୍ରୀ) ଶ୍ୱଧୂର୍ତ୍ତୀ ।
ଶ୍ୱନ୍—ପୁଂ. ବ. (ଶ୍ୱି+ଅନ୍) କୁକ୍କୁର ।
ଶ୍ୱନକ—ପୁଂ. ବ. କୁକ୍କୁର ।
ଶ୍ୱନର—ପୁଂ. ବ. (ଶ୍ୱନ୍+ନର) ଚଣ୍ଡଲ ଲୋକ ।
ଶ୍ୱନଣ(ଣା)—ବ.(କ.ଧା)ଯେଉଁ ଗଳିରେ କୁକୁର ମତ୍ତ ହୋଇ ଚତ୍କାର କରନ୍ତି ।
ଶ୍ୱନୀ—ପୁଂ.ବିଂ.ଯେ କୁକ୍କୁର ଦ୍ୱାରା ଶିକାର କରେ, ଶ୍ୱଗଣୀ ।
ଶ୍ୱମ—ପୁଂ. ବିଂ. କୁକ୍କୁରପାଳନକାରୀ ।
ଶ୍ୱପକ୍(ଚ୍)—ପୁଂ. ବ. (ଶ୍ୱ+ପଚ୍+କ୍ୱିପ୍) ଚଣ୍ଡାଳ, ଡୋମ୍ବ, ବ୍ୟାଧ, ନୀଚ ଅସ୍ପୃଶ୍ୟ ବ୍ୟକ୍ତି, ବ୍ରାହ୍ମଣୀ ଗର୍ଭରୁ ଶୂଦ୍ର ଔରସରେ ଜାତ ସନ୍ତାନ ।
ଶ୍ୱପଚ—ପୁଂ.ବ. (ଶ୍ୱ+ପଚ୍+ଅ)ଶ୍ୱପଚ୍ ଦେଖ ।
ଶ୍ୱପଚତା—ସ୍ତ୍ରୀ. ବ. ଚଣ୍ଡାଳତା,ଚଣ୍ଡାଳର କାର୍ଯ୍ୟ ।
ଶ୍ୱପଚବଳି—ବ. ହିନ୍ଦୁଗୃହସ୍ଥର ପ୍ରତିଦିନ କର୍ତ୍ତବ୍ୟ ବୈଶ୍ୱଦେବ ବେଳେ ଚଣ୍ଡାଳମାନଙ୍କୁ ଦିଆଯିବା ଅନ୍ନବଳି ।
ଶ୍ୱପତି—ପୁଂ.ବ.କିରାତବେଶଧାରୀ ରୁଦ୍ରଙ୍କ ଅନୁଚର ।
ଶ୍ୱପଦ୍—ପୁଂ. ବ. (ବ.ଗ୍ରା) ବୃକ, ଶୃଗାଳ ପ୍ରଭୃତି ଦୁଷ୍ଟ ଅରଣ୍ୟ ଜନ୍ତୁ ।
ଶ୍ୱପଦ—କ୍ଳୀ. ବ. (୬ତତ୍) କୁକୁର ପାଦ ଆକାରର ଚିହ୍ନ ।
ଶ୍ୱପାକ—ପୁଂ.ବ.(ଶ୍ୱନ୍+ପାକ)ଚଣ୍ଡାଳ, ବ୍ୟାଧ ।
ଶ୍ୱପାଦ—କ୍ଳୀ. ବ. କୁକୁରର ପାଦ ଆକାରର ଚିହ୍ନ ।
ଶ୍ୱପୁଚ୍ଛ—ବ. (ବ.ଗ୍ରା) ବର୍ଗ, (୬ତତ୍) କୁକୁରର ଲଞ୍ଜ ।
ଶ୍ୱପୁଚ୍ଛା—ବ. ପୃଶ୍ନିପର୍ଣ୍ଣୀ ।
ଶ୍ୱଫଲ—ବ. କାଗଜଲେମ୍ବୁ, ବାଜପୂର, ଚୂନ ।
ଶ୍ୱଫଲକ—ପୁଂ.ବ. ଅକ୍ରୂରଙ୍କ ପିତା,ଯଦୁବଂଶୀୟ ବୃଷ୍ଣିପୁତ୍ର ।
ଶ୍ୱଭକ୍ଷ—ପୁଂ.ବିଂ.କୁକୁର ମାଂସଭକ୍ଷଣକାରୀ
ଶ୍ୱଭୀରୁ—ପୁଂ.ବ.(୫ତତ୍)ଶୃଗାଳ,ବିଲୁଆ ।
ଶ୍ୱଭୋଜନ—କ୍ଳୀ. ବ. (ଶ୍ୱନ୍+ଭୋଜନ) କୁକୁର ମାଂସ ଭୋଜନ ।
ଶ୍ୱଭ୍ର—କ୍ଳୀ. ବ.(ଶ୍ୱଭ୍ର+ମ.ଅ) ଛିଦ୍ର,ଗର୍ତ୍ତ, କଣା, ଗହ୍ୱର ।
ଶ୍ୱଭ୍ରପତି—ପୁଂ. ବ. ରସାତଳପତି ।
ଶ୍ୱମାଂସ—କ୍ଳୀ. ବ. ( ୬ତତ୍ ) କୁକୁରର ମାଂସ ।
ଶ୍ୱୟଥ—ବ. ଫୁଲା, ସ୍ଫୀତହେବା ।
ଶ୍ୱୟଥୁ—ପୁଂ. ବ.(ଶ୍ୱି+ଭା.ଯଥୁ) ଶୋଥ, ସ୍ଫୀତି, ଗୋଦର, ପୁରୁଣୀ ( ଶାଗ ଓ ଲତା) ।
ଶ୍ୱୟନ—କ୍ଳୀ. ବ. ଫୁଲା, ଶୋଥ ।
ଶ୍ୱଯୂଥ—ବ. (୬ତତ୍ତ୍ୱ) କୁକୁରଦଳ ।
ଶ୍ୱରଣ—ବ. ଓଲୁଅ ।
ଶ୍ୱଲିଟ୍—ବିଂ. କୁକୁର ଯାହା ଚାଟିଅଛି ।
ଶ୍ୱଲେହ୍ୟ—ବିଂ.(ଶ୍ୱ+ଲିହ୍+ଯ)କୁକୁର ଦ୍ୱାରା ଲେହ୍ୟ ।
ଶ୍ୱବାନ୍—ପୁଂ. ବିଂ. (ଶ୍ୱନ୍+ବତ୍) କ୍ରୀଡ଼ା ନିମନ୍ତେ ଯେ କୁକୁର ପୋଷେ ।
ଶ୍ୱବିଷ୍ଠା—ସ୍ତ୍ରୀ. ବ.(୬ତତ୍)କୁକୁରର ବିଷ୍ଠା
ଶ୍ୱବୃତ୍ତି—ସ୍ତ୍ରୀ. ବ. (ଶ୍ୱନ୍+ବୃତ୍ତି) ପରପାଖରେ ଚାକିରି,ପରାନ୍ନୋପଜୀବୀ,ସେବା, ଦାସବୃତ୍ତି, କୁକ୍କୁରବୃତ୍ତି ।
ଶ୍ୱବ୍ୟାଘ୍ର—ପୁଂ.ବ.(ଶ୍ୱନ୍+ବ୍ୟାଘ୍ର)ଚିତା-

ବାଘ, କେନ୍ଦୁଆ, ପେଣ୍ଡରା ।

ଶ୍ୱଶୁର—ପୁଂ.ବ. (ଶୁ+ଅଶ୍+କ.ଉର) ଆପଣାର ସ୍ୱାମୀ ବା ସ୍ତ୍ରୀଙ୍କର ପିତା,ପୂଜ୍ୟ ବା ମାନ୍ୟବ୍ୟକ୍ତି,(ସ୍ତ୍ରୀ)ଶ୍ୱଶ୍ରୂ ।

ଶ୍ୱଶୁରକ—ପୁଂ. ବ.(ଶ୍ୱଶୁର+ସ୍ୱାର୍ଥେ-କ) ଶ୍ୱଶୁର ଦେଖ ।

ଶ୍ୱଶୁରାଳୟ—ବ. (୬ତତ୍) ପୁରୁଷପକ୍ଷରେ ଆପଣାଭାର୍ଯ୍ୟାର ପିତ୍ରାଳୟ, ସ୍ତ୍ରୀପକ୍ଷରେ ନିଜର ପତିଙ୍କ ଘର ।

ଶ୍ୱଶୁର୍ଯ୍ୟ—ପୁଂ.ବ.(ଶ୍ୱଶୁର+ଯ) ପୁରୁଷ ପକ୍ଷେ ଶଳା, ଶ୍ୟାଳକ, ସ୍ତ୍ରୀ ପକ୍ଷେ ଦିଅର ବା ଦେଢ଼ଶୁର ।

ଶ୍ୱଶୁର୍ଯ୍ୟା—ସ୍ତ୍ରୀ. ବ.(ଶ୍ୱଶୁର୍ଯ୍ୟ+ଆ)ପୁରୁଷ ପକ୍ଷେ ଶାଳୀ ବା ଦେଢ଼ଶାଶୁ, ସ୍ତ୍ରୀ ପକ୍ଷେ ନଣନ୍ଦ ବା ଦେଢ଼ଶାଶୁ ।

ଶ୍ୱଶ୍ରୂ—ସ୍ତ୍ରୀ. ବ. (ଶ୍ୱଶୁର+ଊ) ପୁରୁଷ ପକ୍ଷେ ପତ୍ନୀର ମାତା, ସ୍ତ୍ରୀ ପକ୍ଷେ ପତିର ମାତା ।

ଶ୍ୱସଖ—ପୁଂ. ବ. ଶଙ୍ଖ, ବନ୍ୟବୃକ୍ଷ ।

ଶ୍ୱସନ—ବ. (ଶ୍ୱସ୍+ଭା.ଅନ) ନିଶ୍ୱାସ, ନିଶ୍ୱାସମାରିବା, ଶ୍ୱାସଗ୍ରହଣ ଓ ତ୍ୟାଗ, (ଣ.ଅନ) ଜୀବନ, ପବନ, ସ୍ପର୍ଶନ,ମଦନ ବୃକ୍ଷ, ନାସିକା, ନାକ ।

ଶ୍ୱସନରନ୍ଧ୍ର—କ୍ଳୀ. ବ. ନାକପୋଡ଼ା ।

ଶ୍ୱସନସୁତ—ବ. (୬ତତ୍) ହନୁମାନ୍ ।

ଶ୍ୱସନାଶନ—ପୁଂ. ବ.(ବ.ବ୍ରୀ)ସର୍ପ,(ପୁଂ. ବଂ) ପବନାହାରୀ ।

ଶ୍ୱସମାନ—ପୁଂ. ବଂ. (ଶ୍ୱସ୍+କ.ଆନ) ଯେ ନିଶ୍ୱାସ ମାରୁଅଛି, ଜୀବିତ ।

ଶ୍ୱସନେଶ୍ୱର—ପୁଂ.ବ.(ବ.ବ୍ରୀ)ଅର୍ଜୁନବୃକ୍ଷ

ଶ୍ୱସନୋତ୍ସୁକ—ପୁଂ.ବ.(୭ତତ୍)ସର୍ପ ।

ଶ୍ୱସିତ—କ୍ଳୀ. ବ.(ଶ୍ୱସ୍+ଭା.ତ)ନିଶ୍ୱାସ, ଜୀବନ, (ବଂ-କ.ତ) ଜୀବିତ ।

ଶ୍ୱସୁନ—ପୁଂ.ବ.ଷଟ୍‌ପଦ୍ମ ଗୁଳ୍ମ,ପୋକଶୁଙ୍ଘା

ଶ୍ୱସ୍ତନ—ବି. ବଂ. (ଶ୍ୱଃ+ତନ) ଯାହା କାଲି ଘଟିବ, ଭବିଷ୍ୟତ୍‌କାଳୀନ, (କ୍ଳୀ. ବ) ଭବିଷ୍ୟତ୍‌କାଳ ।

ଶ୍ୱସ୍ତନକ—ପୁଂ. ବଂ. ଯାହାର ଧନଆଦି ଆଗାମୀ କାଲି ପର୍ଯ୍ୟନ୍ତ ଥାଏ ।

ଶ୍ୱା—ପୁଂ. ବ. (ଶ୍ୱି+କ.ଅନ୍) କୁକ୍କୁର ।

ଶ୍ୱାଗଣିକ—ପୁଂ. ବ. (ଶ୍ୱଗଣ+ଇକ) ବ୍ୟାଧ, ଶିକାରୀ, ଯେଉଁମାନେ କୁକୁର ଦ୍ୱାରା ଶିକାର କରନ୍ତି ।

ଶ୍ୱାଦ—ପୁଂ. ବ. (ଶ୍ୱନ୍+ଅଦ୍+କ.ଅ) ଚଣ୍ଡାଳ, ଶ୍ୱପଚ । [ ଦାନ୍ତ ।

ଶ୍ୱାଦଂଷ୍ଟ୍ରା—ସ୍ତ୍ରୀ. ବ. (୬ତତ୍) କୁକୁରର

ଶ୍ୱାଦନ୍ତ—ପୁଂ. ବ. (୬ତତ୍) କୁକୁରର ଦାନ୍ତ, (ବିଂ-ବ.ବ୍ରୀ) କୁକୁରଦାନ୍ତ ପରି ଯାହାର ଦାନ୍ତ ।

ଶ୍ୱାନ—ବ. (ଶ୍ୱନ୍+ଅ) କୁକୁର,କୁକୁର-ସମ୍ବନ୍ଧ, (ସ୍ତ୍ରୀ) ଶ୍ୱାନୀ ।

ଶ୍ୱାନୀ—ସ୍ତ୍ରୀ. ବ. ( ଶ୍ୱାନ+ଈ) କୁକୁରୀ, ମାଈକୁକୁର, କୁତ୍ତୀ ।

ଶ୍ୱାପଦ—ବ. (ଶ୍ୱନ୍+ପଦ୍-ବ.ବ୍ରୀ)ହିଂସ୍ର ଜନ୍ତୁ, ବ୍ୟାଘ୍ରାଦି ଶିକାରୀ ଜନ୍ତୁ, (ବିଂ) ହିଂସ୍ର, ହିଂସ୍ରଜନ୍ତୁସମ୍ବନ୍ଧୀୟ ।

ଶ୍ୱାପଦମୟ—ବିଂ. (୩ତତ୍) ହିଂସ୍ରଜନ୍ତୁ ସମାକୀର୍ଣ୍ଣ, ବ୍ୟାଘ୍ରାଦି ହିଂସ୍ରଜନ୍ତୁପୂର୍ଣ୍ଣ ।

ଶ୍ୱାପଦସଂକୁଳ—ବିଂ. (୩ତତ୍)ଶ୍ୱାପଦମୟ ଦେଖ ।

ଶ୍ୱାପାକକ—ବିଂ. ଚଣ୍ଡାଳ ଦ୍ୱାରା ଯାହା କରାଯାଇଅଛି ।

ଶ୍ୱାପୁଚ୍ଛ—ବ. (୬ତତ୍) କୁକୁରର ଲାଞ୍ଜ ।

ଶ୍ୱାଫଲ୍କ(ଧ)—ବ. ( ଶ୍ୱନ୍+ଅ+ଫଲ୍ +କ.କ୍ୱିପ୍) ଅକ୍ରୂର, ଝିଙ୍କ ।

ଶ୍ୱାଶୁର—ବି. ବଂ. (ଶ୍ୱଶୁର+ଅ)ଶ୍ୱଶୁର ସମ୍ବନ୍ଧୀୟ ।

ଶ୍ୱାଶୁରି—ପୁଂ. ବ. (ଶ୍ୱଶୁର+ଇ)ପୁରୁଷର ଶଳା, ସ୍ତ୍ରୀଲୋକର ଦିଅର ।

ଶ୍ୱାଶୁର୍ଯ୍ୟ—ବ. (ଶ୍ୱଶୁର+ଯ) ଶ୍ୱଶୁରର ପୁତ୍ର, ପୁରୁଷ ପକ୍ଷେ ଶଳା, ସ୍ତ୍ରୀପକ୍ଷେ ଦିଅର ।

ଶ୍ୱାଶ୍ୱ—ବ.(ବ.ବ୍ରୀ)ଶିବାନୁଚର ଭୈରବ

ଶ୍ୱାସ—ପୁଂ. ବ. (ଶ୍ୱାସ୍+ଭା.ଅ)ନିଶ୍ୱାସ, ନାସାଗତ ବାୟୁ, ପ୍ରାଣବାୟୁ. (ଣ.ଅ) ପବନ, ବାୟୁ, ଶ୍ୱାସରୋଗ । [ ରୋଗ

ଶ୍ୱାସକାସ—ବ. (କ.ଧା) ଶ୍ୱାସଯୁକ୍ତ କାଶ

ଶ୍ୱାସକ୍ରିୟା—ସ୍ତ୍ରୀ. ବ. (୬ତତ୍) ନିଶ୍ୱାସ ମାରିବା କର୍ମ,ନାକବାଟେ ପବନ ଦେହ ଭିତରକୁ ନେବା ଓ ଛାଡ଼ିବା ।

ଶ୍ୱାସଘ୍ନ(ଘ୍ନୀ,ଘ୍ନୀ)—ବିଂ.ଶ୍ୱାସରୋଗ ନାଶକ କାରକ (ଔଷଧ) ।

ଶ୍ୱାସଜନକ—ବିଂ. ଯାହା ଶ୍ୱାସଜନ୍ମାଏ ।

ଶ୍ୱାସନିରୋଧ—ବ. (୬ତତ୍) ଶ୍ୱାସରୋଧ ଦେଖ ।

ଶ୍ୱାସପ୍ରଶ୍ୱାସ—ବ ନିଶ୍ୱାସ ଓ ପ୍ରଶ୍ୱାସ ।

ଶ୍ୱାସପ୍ରଶ୍ୱାସଧାରଣ—କ୍ଳୀ. ବ.ପ୍ରାଣାୟାମ ।

ଶ୍ୱାସରୁଦ୍ଧ—ପୁଂ. ବଂ. (ବ.ବ୍ରୀ) ଯାହାର ନିଶ୍ୱାସ ବନ୍ଦ ହୋଇଅଛି ।

ଶ୍ୱାସରୋଗ—ବ.ଘନଘନ ନିଶ୍ୱାସଛାଡ଼ିବା ରୂପ ରୋଗ, ଧଇଁରୋଗ ।

ଶ୍ୱାସରୋଧ—ବ. (୬ତତ୍) ନିଶ୍ୱାସ ଅଟକି-ଯିବା ରୋଗ, ଦମ୍ ଅଟକିଯିବା ।

ଶ୍ୱାସବର୍ଦ୍ଧକ—ବିଂ. ନିଶ୍ୱାସ ପ୍ରଶ୍ୱାସର ବୃଦ୍ଧି କାରକ ।

ଶ୍ୱାସବାୟୁ—ବ. ପ୍ରାଣବାୟୁ ।

ଶ୍ୱାସହୀନ-ବିଂ.(୩ତତ୍)ନିଶ୍ୱାସପ୍ରଶ୍ୱାସଶୂନ୍ୟ

ଶ୍ୱାସହେତୁ—ବ. (୬ତତ୍) ନିଦ୍ରା ।

ଶ୍ୱାସାର—ପୁଂ.ବ.(ଶ୍ୱାସ+ଅର)ପୁଷ୍କର-ମୂଳ, ଏକପ୍ରକାର ଔଷଧି ମୂଳ; (ବିଂ) ଶ୍ୱାସଘ୍ନ ଦେଖ ।

ଶ୍ୱାସୀ—ପୁଂ.ବ. (ଶ୍ୱସ+ଶୀର୍+ଇନ୍) ପବନ, ବାୟୁ, (ପୁଂ.ବଂ) ଶ୍ୱାସଯୁକ୍ତ, ଶ୍ୱାସରୋଗୀ, (ସ୍ତ୍ରୀ) ଶ୍ୱାସିନୀ ।

ଶ୍ୱିତ୍ର—କ୍ଳୀ.ବ. (ଶ୍ୱିତ୍+ଣ.ର) ଧବଳ-ରୋଗ, ଶ୍ୱେତକୁଷ୍ଠ, ଛଉ ।

ଶ୍ୱିତ୍ରକ—ପୁଂ. ବଂ. ଧବଳରୋଗଯୁକ୍ତ, ଛଉଆ ।

ଶ୍ୱିତ୍ରଘ୍ନୀ—ସ୍ତ୍ରୀ.ବ. (ଶ୍ୱିତ୍ର+ହନ୍+ଅ +ଈ) ଶୀତପର୍ଣ୍ଣୀ, ଦନ୍ତୁଆଡଲତା ।

ଶ୍ୱିତ୍ରାର—ବ. ଏକପ୍ରକାର ବାକୁଚି ।

ଶ୍ୱିତ୍ରୀ—ପୁଂ.ବଂ. (ଶ୍ୱିତ୍ର+ଇନ୍ ଶ୍ୱିତ୍ର ରୋଗଗ୍ରସ୍ତ (ବ୍ୟକ୍ତି),(ସ୍ତ୍ରୀ) ଶ୍ୱିତ୍ରିଣୀ ।

ଶ୍ୱେତ—ବ. (ଶ୍ୱିତ୍+ଭା.ଅ) ରୌପ୍ୟ, ଶୁକ୍ଲବର୍ଣ୍ଣ, ଶ୍ୱେତଦ୍ୱୀପ,ମିଶ୍ରି,କପର୍ଦ୍ଦକ, ଶୁକ୍ରଗ୍ରହ, ଶଙ୍ଖ, ଶିବଙ୍କ ଅବତାର-ବିଶେଷ, ଧଳାମେଘ, ନାଗବିଶେଷ

ସ୍ଫଟିକ, କର୍ପୂର, ଧବଳଗିରି, ବିଦର୍ଭର ଜନୈକ ରାଜା, ଶ୍ୱେତବର୍ଣ୍ଣ ବସ୍ତୁ,(ବି°) ଶୁକ୍ଳ, ଧଳା, (ସ୍ତ୍ରୀ) ଶ୍ୱେତା ।
ଶ୍ୱେତଅପରାଜିତା—ସ୍ତ୍ରୀ.ବି. ଶ୍ୱେତାପରାଜିତା ଦେଖ ।
ଶ୍ୱେତକ—ବି. ( ଶ୍ୱେତ+କ ) ରୁପା, କଉଡ଼ି, ଉତ୍ତମ କାଂସ୍ୟ, ଭଲ ପିତ୍ତଳ
ଶ୍ୱେତକଣ୍ଟାରୀ—ସ୍ତ୍ରୀ.ବି. ଶୁକ୍ଳକଣ୍ଟାରିବୃକ୍ଷ, ଶ୍ୱେତଗୁଞ୍ଜା ।
ଶ୍ୱେତକଣ୍ଟକ—ବି. ଶ୍ୱେତଲଜ୍ଜାକୁଳିତା ।
ଶ୍ୱେତକଣ୍ଟକାରିକା—ବି. ଶୁଭ୍ରପୁଷ୍ପ କଣ୍ଟକାରି, ଯେଉଁ କଣ୍ଟକାରିର ଫୁଲ ଧଳା ଅଟେ ।
ଶ୍ୱେତକଦମ୍ବ—ବି. ଯେଉଁ କଦମ୍ବଗଛର ଫୁଲ ଧଳା ।
ଶ୍ୱେତକନ୍ଦା—ସ୍ତ୍ରୀ.ବି. ଶୁକ୍ଳ ଅତିବିଷା ।
ଶ୍ୱେତକପୋତ—ବି. ଦର୍ବୀକର ସର୍ପବିଶେଷ ।
ଶ୍ୱେତକମଳ—ବି. ( ଶ୍ୱେତ+କମଳ ) ଧଳାପଦ୍ମ ।
ଶ୍ୱେତକରବୀର—ବି. ଧଳାକନିଅର ।
ଶ୍ୱେତକାକ—ପୁଂ.ବି. ଧଳାକୁଆ ।
ଶ୍ୱେତକାଞ୍ଚନ—ପୁଂ.ବି. ଧଳା କାଞ୍ଚନଫୁଲର ଗଛ ।
ଶ୍ୱେତକାଣ୍ଡା—ସ୍ତ୍ରୀ.ବି. ଶ୍ୱେତଦୂର୍ବା ।
ଶ୍ୱେତକାମ୍ବୋଜୀ—ସ୍ତ୍ରୀ.ବି. ଧଳାକାଇଞ୍ଚ ।
ଶ୍ୱେତକି—ପୁଂ.ବି. ଜନୈକ ପୌରାଣିକ ରାଜା ।
ଶ୍ୱେତକୁଞ୍ଜର—ପୁଂ.ବି. ଐରାବତହସ୍ତୀ, ଶ୍ୱେତହସ୍ତୀ ।
ଶ୍ୱେତକୁମାରୀ—ସ୍ତ୍ରୀ.ବି. ଲତାବିଶେଷ ।
ଶ୍ୱେତକୁମୁଦ—ବି. ଧଳାକଇଁ ।
ଶ୍ୱେତକୁମ୍ଭିକା—ସ୍ତ୍ରୀ.ବି. ଶୁକ୍ଳପାଟଳବୃକ୍ଷ ।
ଶ୍ୱେତକୁରୁଣ୍ଟକ— ବି. ଧଳାଫୁଲଯୁକ୍ତ ଦାସକେରେଣ୍ଡାଗୁଳ୍ମ । [ ତୃଣ ।
ଶ୍ୱେତକୁଶ—ପୁଂ.ବି.ପାଣ୍ଡୁରବର୍ଣ୍ଣ କୁଶ-
ଶ୍ୱେତକୁଷ୍ଠ—ବି. ଧବଳକୁଷ୍ଠ ରୋଗ, ଶ୍ୱିତ୍ର । [ ମିଶା ।
ଶ୍ୱେତକୃଷ୍ଣ—ବି°.(ଦ୍ୱନ୍ଦ୍ୱ)ଧଳା ଓ କଳା-
ଶ୍ୱେତକୃଷ୍ଣାଭ—ବି°. (ବ.ବ୍ରୀ) ସାଦା ଓ କଳାରଙ୍ଗ ର ଆଭାଯୁକ୍ତ ।
ଶ୍ୱେତକୁସୁମା—ସ୍ତ୍ରୀ.ବି. ଧଳାବେଗୁନିଆ, ଶ୍ୱେତନିର୍ଗୁଣ୍ଡୀ ।
ଶ୍ୱେତକେତୁ—ପୁଂ.ବି.ଉଦ୍ଦାଳକ ଋଷିଙ୍କ ପୁତ୍ର ଋଷିବିଶେଷ,ବୌଦ୍ଧ ମତାବଲମ୍ବୀ ବ୍ୟକ୍ତି, କେତୁଗ୍ରହବିଶେଷ,ବୁଦ୍ଧ,ଶ୍ୱେତବର୍ଣ୍ଣ ପତାକା ।
ଶ୍ୱେତକେଶ—ପୁଂ.ବି. (କ.ଧା) ନାଲି ସଜନାଗଛ,ଧଳାରଙ୍ଗର ବାଳ,ପାଚିଲାବାଳ, (ବି°—ବ.ବ୍ରୀ) ଯାହାର ବାଳ ଧଳା, (ସ୍ତ୍ରୀ) ଶ୍ୱେତକେଶା ।
ଶ୍ୱେତକୋଲ—ପୁଂ. ବି. ଶଫରମତ୍ସ୍ୟ, କେବଣ୍ଡି ମାଛ ।
ଶ୍ୱେତଖଦିର—ବି. ପାକଡ଼ାଖଇର ।
ଶ୍ୱେତଗଙ୍ଗା—ସ୍ତ୍ରୀ ବି.ତୀର୍ଥବିଶେଷ, ପୁରୁଷୋତ୍ତମର ତୀର୍ଥ ପୁଷ୍କରଣୀବିଶେଷ ।
ଶ୍ୱେତଗଜ—ପୁଂ.ବି. ଇନ୍ଦ୍ରହସ୍ତୀ, ଐରାବତ, ଶ୍ୱେତହସ୍ତୀ ।
ଶ୍ୱେତଗରୁତ୍—ପୁଂ.ବି.ଧଳାହଂସ, ରାଜହଂସ,(ବି°—ବ.ବ୍ରୀ) ଶ୍ୱେତପକ୍ଷବିଶିଷ୍ଟ
ଶ୍ୱେତଗବ—ବି. ଶ୍ୱେତୈରଣ୍ଡ ଦେଖ ।
ଶ୍ୱେତଗିରି—ପୁଂ. ବି. ଶ୍ୱେତପର୍ବତ, ଧବଳଗିରି ।
ଶ୍ୱେତଗୁଞ୍ଜା—ବି.ଧଳାରଙ୍ଗର କାଇଁଚ ।
ଶ୍ୱେତଗୋକର୍ଣ୍ଣୀ—ସ୍ତ୍ରୀ.ବି. ଲତାଭେଦ ।
ଶ୍ୱେତଗୋଧୂମ—ବି. ଏକପ୍ରକାର ଘାସ ।
ଶ୍ୱେତଘଣ୍ଟା—ସ୍ତ୍ରୀ.ବି. ନାଗଦନ୍ତୀ,ହାତୀଶୁଣ୍ଢୀଗୁଳ୍ମ ।
ଶ୍ୱେତଘଣ୍ଟୀ—ସ୍ତ୍ରୀ.ବି.ଶ୍ୱେତଘଣ୍ଟା ଦେଖ
ଶ୍ୱେତଘୋଷକ(ଘୋଷା)—ବି° ମହାକୋଷାତକୀ, ତରଡ଼ା, ଜହ୍ନିଜାତୀୟ ବନ୍ୟଲତାଫଳବିଶେଷ ।
ଶ୍ୱେତଚନ୍ଦନ—ବି. ବାସିଚନ୍ଦନ, ଶୁକ୍ଳଚନ୍ଦନ । [ ଚମ୍ପକବୃକ୍ଷ ।
ଶ୍ୱେତଚମ୍ପକ—ବି. ଶ୍ୱେତପୁଷ୍ପବିଶିଷ୍ଟ
ଶ୍ୱେତଚିଲ୍ଲିକା—ସ୍ତ୍ରୀ. ବି. ଶ୍ୱେତଚିଲ୍ଲୀ ଦେଖ, ଶ୍ୱେତଶିଂଶପା ।
ଶ୍ୱେତଚିଲ୍ଲୀ—ବି. ଭାଗୀରଥି ଯାରଙ୍କୁ
ଦେଶରେ ଜନ୍ମିବା ଧଳା ବଥୂଆଶାଗବିଶେଷ ।
ଶ୍ୱେତଛଦ—କ୍ଳୀ.ବି. ଶୁଭ୍ରବର୍ଣ୍ଣ ଛଦ ।
ଶ୍ୱେତଚ୍ଛଦ—ବି. ( ବ.ବ୍ରୀ ) ରାଜହଂସ, ଶ୍ୱେତବର୍ବର ଦେଖ,(ପୁଂ.ବି°-ବ.ବ୍ରୀ) ଧଳା ପକ୍ଷବିଶିଷ୍ଟ, ଧଳାପତ୍ରବିଶିଷ୍ଟ, ଧଳା ବଲ୍କଲବିଶିଷ୍ଟ,(ସ୍ତ୍ରୀ) ଶ୍ୱେତଚ୍ଛଦା ।
ଶ୍ୱେତଜୀରଣ-ବି.ସାଦାଜିର,ଧଳାଜିରା ।
ଶ୍ୱେତଜଲଜ—କ୍ଳୀ. ବି.କଇଁଫୁଲ,କୁମୁଦ
ଶ୍ୱେତଜବା—ବି. ଶ୍ୱେତମନ୍ଦାର ଦେଖ ।
ଶ୍ୱେତଜୀରକ—ବି.ସାଦାଜୀର, ଧଳାଜିରା ।
ଶ୍ୱେତଝିଣ୍ଟୀ—ବି. [ଧଳାବର୍ଣ୍ଣ ଫୁଲଯୁକ୍ତ ଦାସକେରେଣ୍ଡା ଗୁଳ୍ମ ।
ଶ୍ୱେତଟଙ୍କଣକ—କ୍ଳୀ. ବି. ସାଦାସୁହାଗା, ଧଳାବର୍ଣ୍ଣ ଟାଙ୍କଣା ।
ଶ୍ୱେତତଣ୍ଡୁଲ—ବି.ଆତପତଣ୍ଡୁଲ,ଅରୁଆଚାଉଳ ।
ଶ୍ୱେତତଣ୍ଡୁଲମଣ୍ଡ—ବି.ଅରୁଆଚାଉଳର ମଣ୍ଡ
ଶ୍ୱେତତାମ୍ବୂଳ—ବି. ଛଞ୍ଚପାନ ।
ଶ୍ୱେତତୁଳସୀ—ସ୍ତ୍ରୀ.ବି.ଶୁଭ୍ରପତ୍ର ତୁଳସୀବୃକ୍ଷ, ଧଳା ତୁଳସୀ ।
ଶ୍ୱେତତ୍ରିବୃତ୍—ସ୍ତ୍ରୀ. ବି. ସାଦା ତିହୁଡ଼ି, ତିହୁଡ଼ିର ପ୍ରକାରଭେଦ । [ ଦନ୍ତୀ ।
ଶ୍ୱେତଦନ୍ତା—ସ୍ତ୍ରୀ.ବି.ଶ୍ୱେତଦୂର୍ବା,ନାଗ-
ଶ୍ୱେତଦୂର୍ବା—ସ୍ତ୍ରୀ. ବି. ଧଳା ଦୂବ ।
ଶ୍ୱେତଦ୍ୟୁତି—ପୁଂ. ବି. ଚନ୍ଦ୍ର ।
ଶ୍ୱେତଦ୍ରୁମ—ପୁଂ. ବି. ବରୁଣଗଛ ।
ଶ୍ୱେତଦ୍ୱିପ—ପୁଂ. ବି. ଇନ୍ଦ୍ରହସ୍ତୀ, ଐରାବତ, ଶୁକ୍ଳବର୍ଣ୍ଣ ହସ୍ତୀ ।
ଶ୍ୱେତଦ୍ୱୀପ—ପୁଂ.ବି. ଚନ୍ଦ୍ରଦ୍ୱୀପ, ବୈକୁଣ୍ଠାଖ୍ୟ, ବିଷ୍ଣୁଙ୍କର ଧାମ, ଇଂଲଣ୍ଡର ଅନ୍ୟ ନାମ ।
ଶ୍ୱେତଧାତୁ—ପୁଂ.ବି.ଖଡ଼ିକା, ଫୁଲଖଡ଼ି, ଶୁକ୍ଳବର୍ଣ୍ଣ ଧାତୁଦ୍ରବ୍ୟ ।
ଶ୍ୱେତଧାନ୍ୟ—ବି. ଶୁକ୍ଳଧାନ୍ୟ, ଯେଉଁ ଧାନର ବର୍ଣ୍ଣ ଧଳା ।
ଶ୍ୱେତଧାମା—ପୁଂ. ବି. (ବ.ବ୍ରୀ) ଚନ୍ଦ୍ର, କର୍ପୂର, (ତତ୍ପୁ) ସମୁଦ୍ର ଫେନ ।
ଶ୍ୱେତଧୂନକ—କ୍ଳୀ. ବି. ଧଳା ଝୁଣା ।

ଶ୍ୱେତନାଡ଼ୀ—ସ୍ତ୍ରୀ.ବ. ଫୁଲଝଡ଼, ଶ୍ୱେତ ଅପରାଜିତା ।
ଶ୍ୱେତନାମା—ପୁଂ.ବ.ଶ୍ୱେତବର୍ଣ୍ଣ ଅପରାଜିତା ପୁଷ୍ପ ।
ଶ୍ୱେତନିଷ୍ପାବା—ସ୍ତ୍ରୀ. ବ. ଶ୍ୱେତବର୍ଣ୍ଣର ଶିମ୍ବବିଶେଷ ।
ଶ୍ୱେତନୀଳ—ବିଂ. (ଦ୍ୱନ୍ଦ୍ୱ) ଶୁକ୍ଳ ଓ ନୀଳବର୍ଣ୍ଣ ମିଶ୍ରିତ, (ବି) ଧଳା ଓ ନୀଳମିଶ୍ରିତ ବର୍ଣ୍ଣ, ମେଘ ।
ଶ୍ୱେତପକ୍ଷ—ପୁଂ.ବ. (ବ.ବ୍ରୀ)ହଂସ,(ବିଂ) ଶ୍ୱେତପକ୍ଷବିଶିଷ୍ଟ ।
ଶ୍ୱେତପତ୍ର—ପୁଂ. ବ. (ବ.ବ୍ରୀ) ହଂସ, ରାଜହଂସ,ଶ୍ୱେତକମଳ,ଶ୍ୱେତତୁଳସୀ, (କ.ଧା) ଧଳାପତ୍ର, ଧଳାପକ୍ଷ, ( ବିଂ ) ଶ୍ୱେତପତ୍ରଯୁକ୍ତ, ଶ୍ୱେତ ପକ୍ଷବିଶିଷ୍ଟ ।
ଶ୍ୱେତପତ୍ରରଥ—ପୁଂ.ବ. (ବ.ବ୍ରୀ) ବ୍ରହ୍ମା, (କ.ଧା) ହଂସଯୁକ୍ତବିମାନ ।
ଶ୍ୱେତପତ୍ରବାହନ—ପୁଂ. ବ. ( ବ.ବ୍ରୀ ) ବ୍ରହ୍ମା, ହଂସବାହନ ।
ଶ୍ୱେତପତ୍ରା—ବି. ଶ୍ୱେତଶିଂଶପା ।
ଶ୍ୱେତପଦ୍ମ—କ୍ଳୀ. ବ. ଧଳା ପଦ୍ମଫୁଲ ।
ଶ୍ୱେତପଦ୍ମାସନା—ସ୍ତ୍ରୀ. ବ. ( ବ.ବ୍ରୀ ) ସରସ୍ୱତୀ, ଲକ୍ଷ୍ମୀ । [ ବିଶେଷ ।
ଶ୍ୱେତପର୍ଣ୍ଣ—ପୁଂ.ବ.ଶ୍ୱେତଅର୍କକ,ପର୍ବତ-
ଶ୍ୱେତପର୍ଣ୍ଣୀ-ସ୍ତ୍ରୀ.ବ.ବାଣପର୍ଣ୍ଣୀ,ବୋଦଝୋଞ୍ଜି
ଶ୍ୱେତପର୍ଣ୍ଣାସ—ପୁଂ. ବ. ଶ୍ୱେତତୁଳସୀ ।
ଶ୍ୱେତପର୍ବତ—ପୁଂ. ବ. ପର୍ବତଭେଦ, ଧବଳଗିରି । [ ଗଣଭେଦ ।
ଶ୍ୱେତପାଦ—ପୁଂ. ବ. ଶିବଅନୁଚର-
ଶ୍ୱେତପାରାବତ—ପୁଂ.ବ. ଶୁକ୍ଳ ପକ୍ଷବିଶିଷ୍ଟ ପାରାପକ୍ଷୀ । [ ପଥର ।
ଶ୍ୱେତପାଷାଣ—ପୁଂ. ବ. ସ୍ଫଟିକ, ଧଳା
ଶ୍ୱେତପିଙ୍ଗ(ଳ)—ବି. ସିଂହ, ଶୁକ୍ଳ ଓ ପିଙ୍ଗଳବର୍ଣ୍ଣ, ପାଣ୍ଡୁରଙ୍ଗ, (ବିଂ) ନୀଳ ଓ ଶୁକ୍ଳ ମିଶ୍ରିତ ।
ଶ୍ୱେତପିଙ୍ଗଳକ—ପୁଂ.ବ. (ଶ୍ୱେତପିଙ୍ଗଳ + କ) ସିଂହ ।
ଶ୍ୱେତପିଣ୍ଡାଳୁ—ବି. ଯେଉଁ ଖମ୍ବଆଳୁର ଭିତର ଧଳା ।
ଶ୍ୱେତପିଣ୍ଡୀତକ—ପୁଂ. ବ. ଶ୍ୱେତପୁଷ୍ପ ମଦନବୃକ୍ଷ, ଶ୍ୱେତପିଣ୍ଡାଳୁ ଦେଖ ।
ଶ୍ୱେତପୁନର୍ନବା—ସ୍ତ୍ରୀ.ବ. ଶୁଭ୍ରମୂଳ,ପୁନର୍ନବା, ଶ୍ୱେତପୁରୁଣୀ ।
ଶ୍ୱେତପୁଷ୍ପ—ବି.(କ.ଧା)ଧଳାଫୁଲ,(ବ.ବ୍ରୀ) ଧଳାବେଗୁନିଆ, ଶ୍ୱେତକରବୀର,ଧଳା ଅରଖଗଛ, ଶ୍ୱେତ କୁରୁଣ୍ଟକ,ସେବତୀ, ବରୁଣବୃକ୍ଷ,(ବିଂ-ବ.ବ୍ରୀ)ଶୁକ୍ଳପୁଷ୍ପବିଶିଷ୍ଟ, (ସ୍ତ୍ରୀ) ଶ୍ୱେତପୁଷ୍ପା ।
ଶ୍ୱେତପୁଷ୍ପକ—ବି.ଶ୍ୱେତକରବୀର,କାଶତୃଣ, (ବିଂ) ଶ୍ୱେତପୁଷ୍ପଯୁକ୍ତ ।
ଶ୍ୱେତପୁଷ୍ପା—ବି. ଧଳାତରଡ଼ା, ମହାକାଳ (ଲତା ଓ ଫଳ), ନାଗଦନ୍ତୀ, ଶ୍ୱେତନିର୍ଗୁଣ୍ଡୀ, ଶ୍ୱେତ ଅପରାଜିତା ।
ଶ୍ୱେତପୁଷ୍ପିକା—ସ୍ତ୍ରୀ.ବ. ପୁତ୍ରଦାତ୍ରୀ ଲତା, ମହାଶଣପୁଷ୍ପିକା,ଶ୍ୱେତ ହରଡ଼ ।
ଶ୍ୱେତପୂରିକା—ସ୍ତ୍ରୀ.ବ.ଖାଦ୍ୟଦ୍ରବ୍ୟଭେଦ, ଲୁଚି, ପୁରି ।
ଶ୍ୱେତପ୍ରସୂନକ—ପୁଂ.ବ. ଶାକବୃକ୍ଷ,ଶାଗୁଆନ ଗଛ, (ବିଂ) ଶୁକ୍ଳବର୍ଣ୍ଣ ପୁଷ୍ପଯୁକ୍ତ ।
ଶ୍ୱେତପ୍ରଦର-ବି.ଝିଙ୍କଟ ସ୍ତ୍ରୀରୋଗବିଶେଷ ।
ଶ୍ୱେତପ୍ରସ୍ତର—ବି. ଧଳାପଥର ।
ଶ୍ୱେତଫଳା—ସ୍ତ୍ରୀ. ବ. ଧଳା ବାଇଗଣ ।
ଶ୍ୱେତଭଣ୍ଟିକା—ସ୍ତ୍ରୀ.ବ. ଧଳା ବାଇଗଣ ।
ଶ୍ୱେତଭଣ୍ଡା—ସ୍ତ୍ରୀ. ବ. ଧଳା ଅପରାଜିତା (ଫୁଲ ଓ ଲତା) ।
ଶ୍ୱେତଭାନୁ—ବି. (ବ.ବ୍ରୀ) ଚନ୍ଦ୍ର ।
ଶ୍ୱେତଭୃଙ୍ଗରାଜ—ପୁଂ. ବ. କେଶଦୁଦୁରା, ଶ୍ୱେତପୁଷ୍ପଯୁକ୍ତ ଭୃଙ୍ଗରାଜଗୁଳ୍ମ ।
ଶ୍ୱେତମଣ୍ଡଳ—ପୁଂ. ବ. ଚକ୍ଷୁର ଅଭ୍ୟନ୍ତରସ୍ଥ ଶୁକ୍ଳଭାଗ,ମଣ୍ଡଳ ସର୍ପବିଶେଷ ।
ଶ୍ୱେତମନ୍ଦାର—ପୁଂ. ବ. ଶ୍ୱେତାର୍କବୃକ୍ଷ, ଧଳାଫୁଲଯୁକ୍ତ ମନ୍ଦାରଗଛ ।
ଶ୍ୱେତମରିଚ—କ୍ଳୀ. ବ. ସଜନାମଞ୍ଜି, ଶ୍ୱେତଶିଗ୍ରୁ । [ ପଥର ।
ଶ୍ୱେତମର୍ମର—ଗ୍ରା. ବ. ଧଳା ମାରବଲ
ଶ୍ୱେତମହୋଷ୍ଟିକା—ସ୍ତ୍ରୀ.ବ.ଶ୍ୱେତବୃହତୀ ।
ଶ୍ୱେତମାଣ୍ଡବ୍ୟ—ପୁଂ. ବ. ଋଷିଭେଦ ।
ଶ୍ୱେତମାଧବ-କ୍ଳୀ. ବ.ତୀର୍ଥଭେଦ,(ପୁଂ.ବ) ବିଷ୍ଣୁ ମୂର୍ତ୍ତିବିଶେଷ ।
ଶ୍ୱେତମାଳ—ପୁଂ.ବ.(ବ.ବ୍ରୀ) ମେଘ,ଧୂମ ।
ଶ୍ୱେତମୂଳ(ଳା)—ବି. (ବ.ବ୍ରୀ) ଶ୍ୱେତପୁନର୍ନବା, ଧଳାପୁରୁଣୀ ।
ଶ୍ୱେତମୃଗ—ପୁଂ.ବ.ଭୂଣସ୍ଥ ମୃଗବିଶେଷ ।
ଶ୍ୱେତମୋଦ—ପୁଂ.ବ.ପୀଡ଼ାକାରକ ଗ୍ରହବିଶେଷ ।
ଶ୍ୱେତରକ୍ତ—ପୁଂ. ବ. ପାଟଳବର୍ଣ୍ଣ,(ବିଂ) ପାଟଳବର୍ଣ୍ଣବିଶିଷ୍ଟ,ଗୋଲାପୀ,ଫିକାନାଲି
ଶ୍ୱେତରଞ୍ଜନ—କ୍ଳୀ. ବ. ସୀସକ, ସୀସା ।
ଶ୍ୱେତରତ୍ନ—କ୍ଳୀ. ବ. ସ୍ଫଟିକ ।
ଶ୍ୱେତରଥ—ପୁଂ. ବ. (ବ.ବ୍ରୀ)ଶୁକ୍ରଗ୍ରହ, (କ.ଧା) ଶୁକ୍ଳବର୍ଣ୍ଣର ରଥ ।
ଶ୍ୱେତରଶ୍ମି—ପୁଂ.ବ. ଚନ୍ଦ୍ର,ଶ୍ୱେତଶରୀର ବିଶିଷ୍ଟ ରୂପଧାରୀ ଗନ୍ଧର୍ବବିଶେଷ ।
ଶ୍ୱେତରସ—କ୍ଳୀ. ବ. ଲହୁଣୀ,ନବନୀତ ।
ଶ୍ୱେତରାଜିକା-ସ୍ତ୍ରୀ.ବ.ଧଳା ରାଇସୋରିଷ ।
ଶ୍ୱେତରାବକ—ପୁଂ. ବ. ନିର୍ଗୁଣ୍ଡୀବୃକ୍ଷ ।
ଶ୍ୱେତରୂପ୍ୟ—କ୍ଳୀ. ବ. ଦସ୍ତାମିଶ୍ରିତ ଶୁକ୍ଳ ଧାତୁବିଶେଷ ।
ଶ୍ୱେତରୋଚିଃ—ପୁଂ. ବ. (ବ.ବ୍ରୀ) ଚନ୍ଦ୍ର ।
ଶ୍ୱେତରୋଧ୍ର—ପୁଂ. ବ. ଶୁକ୍ଳଲୋଧ୍ର ।
ଶ୍ୱେତରୋହିତ—ପୁଂ.ବ.ଶୁକ୍ଳପୁଷ୍ପ ରୋହିତକ ବୃକ୍ଷ, କୂଟଶାଲ୍ମଳୀ ।
ଶ୍ୱେତଲୋଧ୍ର—ପୁଂ. ବ. ଧଳା ଲୋଧଗଛ ।
ଶ୍ୱେତଲୋହିତ—ପୁଂ.ବ.ଶିବଙ୍କ ଅବତାର ଭେଦ ।
ଶ୍ୱେତବଲ୍କ—ସ୍ତ୍ରୀ. ବ. ଶୁକ୍ଳବଚ, ପାରସ୍ୟ ଦେଶଜାତ ବୃକ୍ଷର ଚେର ।
ଶ୍ୱେତବତ୍ସା—ବିଂ.(ବ.ବ୍ରୀ) ଶ୍ୱେତବର୍ଣ୍ଣ ବତ୍ସବିଶିଷ୍ଟା (ଗାଭୀ) । [ ଦେଖ ।
ଶ୍ୱେତବନବନ୍ଧା—ଗ୍ରା. ବ. ଶ୍ୱେତବୁହ୍ମା
ଶ୍ୱେତବରାହ—ବି. ଧଳାବରାହ, ସୃଷ୍ଟିର କଳ୍ପମାନଙ୍କ ମଧ୍ୟରୁ ଏକ କଳ୍ପର ନାମ, ବିଷ୍ଣୁଙ୍କର ରୂପବିଶେଷ, ତୀର୍ଥବିଶେଷ ।
ଶ୍ୱେତବର୍ଣ୍ଣକ—କ୍ଳୀ.ବ.ଶ୍ୱେତରକ୍ତଚନ୍ଦନ ।
ଶ୍ୱେତବର୍ଣ୍ଣା—ସ୍ତ୍ରୀ.ବ. ଧଳାବର୍ଣ୍ଣର କଉଡ଼ି, ଶ୍ୱେତପୁଷ୍ପପାଟଳ ।
ଶ୍ୱେତବଙ୍କରକ—କ୍ଳୀ. ବ. ବଙ୍କରଚନ୍ଦନ,

ସୁରଭିଚନ୍ଦନ, ବାସିଚନ୍ଦନ ।
ଶ୍ୱେତବଙ୍ଗରଙ୍କା—ସ୍ତ୍ରୀ. ବ. ଧଳାତୁଳସୀ ।
ଶ୍ୱେତବଲ୍କଲ—ପୁଂ.ବ. ଯଜ୍ଞଡୁମ୍ବୁର ଗଛ ।
ଶ୍ୱେତବଲ୍ଲୀ—ସ୍ତ୍ରୀ. ବ. ଶୁକ୍ଳ ବାସ୍ତୁକଶାଗ, ଧଳାରଙ୍ଗର ବଥୁଆ ଶାଗ ।
ଶ୍ୱେତବସ୍ତ୍ର—ବି. ( କ.ଧା ) ଧଳାଲୁଗା, (ପୁଂ.ବିଂ-ବ.ବ୍ରୀ) ଶ୍ୱେତବସ୍ତ୍ରୀ ଦେଖ, (ସ୍ତ୍ରୀ) ଶ୍ୱେତବସ୍ତ୍ରା ।
ଶ୍ୱେତବସ୍ତ୍ରୀ—ପୁଂ. ବିଂ. (ଶ୍ୱେତବସ୍ତ୍ର+ଇନ୍) ଯେ ଧଳାଲୁଗା ପିନ୍ଧିଥାଏ, (ସ୍ତ୍ରୀ) ଶ୍ୱେତବସ୍ତ୍ରିଣୀ ।
ଶ୍ୱେତବାଜୀ—ପୁଂ.ବ.(ଶ୍ୱେତ+ବାଜିନ୍) ଧଳାଘୋଡ଼ା, (ବ.ବ୍ରୀ) ଚନ୍ଦ୍ର, ଅର୍ଜୁନ ।
ଶ୍ୱେତବାରାହକଳ୍ପ—ବ. ବ୍ରହ୍ମାଙ୍କ ସୃଷ୍ଟିର ଆଦ୍ୟଯୁଗର ପ୍ରଥମ କଳ୍ପ ।
ଶ୍ୱେତବାରାହକଳ୍ପାବ୍ଦ-ବ. ଶ୍ୱେତବାରାହ କଳ୍ପର ଗଣନାରେ ବର୍ଷର ପରିମାଣ ।
ଶ୍ୱେତବାର୍ତ୍ତାକୀ—ସ୍ତ୍ରୀ.ବ.ଧଳାବାଇଗଣ ।
ଶ୍ୱେତବାର୍ତ୍ତାକୀ(କୁ)—ବ. ଧଳାବାଇଗଣ
ଶ୍ୱେତବାସାଃ—ପୁଂ. ବ. (ବ.ବ୍ରୀ)ଶୁକ୍ଳ-ସ୍ତ୍ରଧାରୀ ସନ୍ନ୍ୟାସୀ, (ପୁଂ.ବିଂ-ବ.ବ୍ରୀ) ଯେ ଧଳାଲୁଗା ପିନ୍ଧିଅଛି, ଶୁକ୍ଳବସନଧାରୀ ।
ଶ୍ୱେତବାହ—ପୁଂ. ବ. ( ଶ୍ୱେତ+ବହ +ଅ)ବ.ବ୍ରୀ; ଇନ୍ଦ୍ର, ଚନ୍ଦ୍ର, ଅର୍ଜୁନ, ମକର, ମଗର ।
ଶ୍ୱେତବାହନ—ପୁଂ.ବ.ଶ୍ୱେତବାହଦେଖ
ଶ୍ୱେତବାହୀ—ପୁଂ. ବ. (ଶ୍ୱେତ+ବାହ +ଇନ୍) ଶ୍ୱେତବାହ ଦେଖ ।
ଶ୍ୱେତବଟକତା—ସ୍ତ୍ରୀ. ବ. କଫ ଆଧିକ୍ୟ ହେତୁରୁ ଶୁକ୍ଳପୁରୀଷତା ।
ଶ୍ୱେତବୀଜ—ପୁଂ. ବ. ଶ୍ୱେତକୋଳଥ ।
ଶ୍ୱେତବୁହ୍ନା—ସ୍ତ୍ରୀ. ବ. ବନତକ୍ରା, ଔଷଧି ଗୁଳ୍ମବିଶେଷ । [ ବୃକ୍ଷ ।
ଶ୍ୱେତବୃନ୍ତ—ପୁଂ. ବ.ବରୁଣଗଛ,ଶୁକ୍ଳବର୍ଣ୍ଣ
ଶ୍ୱେତବୃନ୍ତାକ—ପୁଂ.ବ. ଧଳାବାଇଗଣ ।
ଶ୍ୱେତବୃହତୀ—ସ୍ତ୍ରୀ. ବ. ଧଳାପୁଷ୍ପବିଶିଷ୍ଟ ଲଟା, ବେଏଁକୋଳି, ଶୁକ୍ଳବର୍ଣ୍ଣ ବାଇ-ଗଣ ।
ଶ୍ୱେତଶରପୁଙ୍ଖ(ଙ୍ଖା)—ବ. ଶ୍ୱେତପୁଷ୍ପଯୁକ୍ତ ଶରପୁଙ୍ଖ ଗୁଳ୍ମ ।
ଶ୍ୱେତଶାରିବା-ସ୍ତ୍ରୀ.ବ.ଶ୍ୱେତ ଅନନ୍ତମୂଳ ।
ଶ୍ୱେତଶାଲ—ଗ୍ରା.ବ.ସାଧାରଣରର ଶାଲଗଛ
ଶ୍ୱେତଶାଲ୍ମଳି—ପୁଂ.ବ.ଏକପ୍ରକାର ଧଳା ଫୁଲବିଶିଷ୍ଟ ଶିମିଳିଗଛ ।
ଶ୍ୱେତଶିଂଶପା—ସ୍ତ୍ରୀ. ବ. ଶ୍ୱେତପତ୍ର ଶିଂଶପାବୃକ୍ଷ ବା ଶିଶୁଗଛ । [ (ଗଛ) ।
ଶ୍ୱେତଶିଗ୍ରୁ—ପୁଂ.ବ. ସାଧାରଣ ସଜନା
ଶ୍ୱେତଶିଳା—ସ୍ତ୍ରୀ.ବ.ଶ୍ୱେତବର୍ଣ୍ଣ ପାଷାଣ ଭେଦ,ଶ୍ୱେତପ୍ରସ୍ତର, ହେମସାଗର ଗୁଳ୍ମ
ଶ୍ୱେତଶୃଙ୍ଗ—ପୁଂ. ବ. (ବ.ବ୍ରୀ) ଯବ, (ବିଂ) ଶୁକ୍ଳବର୍ଣ୍ଣ ଶୃଙ୍ଗଯୁକ୍ତ ।
ଶ୍ୱେତଶୂକ—ପୁଂ. ବ. (ବ.ବ୍ରୀ)ଯବ ।
ଶ୍ୱେତଶୂରଣ—ପୁଂ. ବ. ବନ ଓଲୁଅ ।
ଶ୍ୱେତଶୈଳ—ପୁଂ. ବ. ପର୍ବତଭେଦ, ଧବଳଗିରି ।
ଶ୍ୱେତଶୈଳମୟ—ବିଂ.ଶୁକ୍ଳବର୍ଣ୍ଣ ମର୍ମର ପ୍ରସ୍ତର ଦ୍ୱାରା ଆଚ୍ଛାଦିତ ।
ଶ୍ୱେତଶ୍ରେଷ୍ଠ—ପୁଂ. ବ. ଚନ୍ଦନବୃକ୍ଷ ।
ଶ୍ୱେତସର୍ପ—ପୁଂ. ବ. ବରୁଣବୃକ୍ଷ, ଶୁକ୍ଳ-ଅହି, ଧଳା ସାପ ।
ଶ୍ୱେତସର୍ଷପ—ପୁଂ. ବ. ଗୁରୁସୋରିଷ ।
ଶ୍ୱେତସାର—ପୁଂ. ବ. (ବ.ବ୍ରୀ)ଖଇର-ଗଛ, ସଜୀବ ଉଦ୍ଭିଦ ଶସ୍ୟାଦିର ଅନ୍ତ-ର୍ନିହିତ ଧଳା ସାରାଂଶବିଶେଷ ।
ଶ୍ୱେତସିଂହୀ—ସ୍ତ୍ରୀ.ବ ଶ୍ୱେତବୃହତୀ,ଧଳା-ବାଇଗଣ ।
ଶ୍ୱେତସୁରସା—ସ୍ତ୍ରୀ.ବ.ଶୁକ୍ଳଶେଫାଳିକା, ଙ୍ଗଶିଉଳି, ଶ୍ୱେତ ନିର୍ଗୁଣ୍ଡୀ, ସାଧା ତୁଳସୀଗଛ ।
ଶ୍ୱେତଯୁରା—ସ୍ତ୍ରୀ. ବ. ମଦ୍ୟଭେଦ ।
ଶ୍ୱେତସ୍ପନ୍ଦା—ସ୍ତ୍ରୀ.ବ.ଶ୍ୱେତ ଅପରାଜିତା ।
ଶ୍ୱେତହୟ—ବ.(କ.ଧା) ଧଳା ଘୋଡ଼ା, ଇନ୍ଦ୍ରାଶ୍ୱ, ଉଚ୍ଚୈଃଶ୍ରବା, ଅର୍ଜୁନବୃକ୍ଷ, (ବ ବ୍ରୀ) ଅର୍ଜୁନ ।
ଶ୍ୱେତହସ୍ତୀ—ପୁଂ.ବ.ଶ୍ୱେତକୁଞ୍ଜର ଦେଖ
ଶ୍ୱେତା—ସ୍ତ୍ରୀ.ବିଂ.(ଶ୍ୱେତ+ଆ)ଶ୍ୱେତର ସ୍ତ୍ରୀଲିଙ୍ଗ, (ବ) ଶ୍ୱେତକଣ୍ଟକାରୀ, ଫିଟି-କିରି, ଅଡୁଷୀ, ଶ୍ୱେତ ଅପରାଜିତା, ଧଳା ବାଇଗଣ, ଶ୍ୱେତଦୂର୍ବା, ବଂଶ-ରୋଚନା, ପାଷାଣଭେଦୀ, ରୁକ୍ମିଣୀ-ହାତପୋଡ଼ା ଗୁଳ୍ମ, କଉଡ଼ି, ଗମ୍ଭାରି-ଗଛ, ମାଙ୍କଡ଼ସା, ଧଳାକାଇଁଚ ।
ଶ୍ୱେତାକନ୍ଦ-ବ.ଧଳା ଅରଖଫୁଲର ଗଛ ।
ଶ୍ୱେତାଙ୍ଗ—ପୁଂ. ବିଂ. (ବ.ବ୍ରୀ) ଶୁକ୍ଳ-ଶରୀରବିଶିଷ୍ଟ, (ସ୍ତ୍ରୀ) ଶ୍ୱେତାଙ୍ଗୀ (ବିଂ କ.ଧା) ଶୁକ୍ଳଶରୀର; (ବ.ବ୍ରୀ) ଶୁକ୍ଳ-ଶରୀରବିଶିଷ୍ଟ ବ୍ୟକ୍ତି, ଶ୍ୱେତଦ୍ୱୀପବାସୀ ସାହେବ ।
ଶ୍ୱେତାଣ୍ଡେୟ—ପୁଂ. ବ. ଋଷିବିଶେଷ ।
ଶ୍ୱେତାଦ୍ରି—ପୁଂ. ବ. ଶ୍ୱେତ ପର୍ବତ, କୈଳାସ ପର୍ବତ ।
ଶ୍ୱେତାନୁଲେପନ—ପୁଂ. ବିଂ. ଶ୍ୱେତ ଅନୁଲେପନବିଶିଷ୍ଟ, ଚନ୍ଦନାଦି ଚର୍ଚ୍ଚିତ, (ପୁଂ.ବ) ବଳରାମ ।
ଶ୍ୱେତାପାମାର୍ଗ—ବ.ଧଳା ଅପାମାର୍ଗ ଗୁଳ୍ମ
ଶ୍ୱେତାଭ—ବିଂ. (ବ.ବ୍ରୀ) ଶ୍ୱେତବର୍ଣ୍ଣ-ବିଶିଷ୍ଟ,ଈଷତ୍ ଶ୍ୱେତ,(ସ୍ତ୍ରୀ)ଶ୍ୱେତାଭା ।
ଶ୍ୱେତାଭଦ୍ରା—ସ୍ତ୍ରୀ.ବ.ଧଳା ଅପରାଜିତା ।
ଶ୍ୱେତାଭ୍ର—କ୍ଳୀ. ବ. ଶ୍ୱେତବର୍ଣ୍ଣ ଅଭ୍ର, ଧଳା ମେଘ ।
ଶ୍ୱେତାମ୍ବର—ବ. (କ.ଧା) ଧଳା ଲୁଗା, ଶ୍ୱେତ ବସ୍ତ୍ର ପରିଧାନକାରୀ ସନ୍ନ୍ୟାସୀ, ଶିବ, (ବିଂ)ଶ୍ୱେତବସ୍ତ୍ର ପରିଧାୟୀ,(ସ୍ତ୍ରୀ) ଶ୍ୱେତାମ୍ବରା ।
ଶ୍ୱେତାମ୍ବରୀ—ପୁଂ. ବ. (ଶ୍ୱେତାମ୍ବର+ଇନ୍) ଜୈନସମ୍ପ୍ରଦାୟବିଶେଷ ।
ଶ୍ୱେତାମ୍ଳି—ବ. ମହାରାଷ୍ଟ୍ର ଦେଶରେ ପାଟେଲୀ ଓ କର୍ଣ୍ଣାଟରେ ବିଲସ୍ପୁହୁଲି ନାମରେ ପରିଚିତ ବୃକ୍ଷବିଶେଷ ।
ଶ୍ୱେତାର୍କ—ପୁଂ. ବ. ଶୁକ୍ଳ ଅର୍କବୃକ୍ଷ ।
ଶ୍ୱେତାର୍ଚ୍ଚିଃ—ପୁଂ. ବ. ଚନ୍ଦ୍ର ।
ଶ୍ୱେତାଳୁ—ବ. ଭିତର ଧଳା ମୋଟ ଦେଶୀ ଆଳୁ ।
ଶ୍ୱେତାହ୍ୱା—ସ୍ତ୍ରୀ.ବ.ଶ୍ୱେତପାଟଳୀ,ଶୁକ୍ଳ-ପୁଷ୍ପବିଶିଷ୍ଟ ପାଟଳୀଗଛ ।
ଶ୍ୱେତେକ୍ଷୁ—ପୁଂ.ବ.ଧଳାଆଖୁ, କନ୍ତାରି-ଆଖ, ଖାଡ଼ିଆଖୁ ।

ଶ୍ୱେତୈରଣ୍ଡ—ପୁଂ. ବ. ଶୁକ୍ଳ ଏରଣ୍ଡ ବୃକ୍ଷ, ଧଳାଗବ ।

ଶ୍ୱେତୋଦର—ପୁଂ.ବ(ବ.ବ୍ରୀ)କୁବେର, ସର୍ପବିଶେଷ, (କ.ଧା) ଶ୍ୱେତବର୍ଣ୍ଣ ପେଟ ।

ଶ୍ୱେତୋତ୍ପଳ—ବ. (ଶ୍ୱେତ+ଉତ୍ପଳ) ଧଳାକଇଁ, ଶ୍ୱେତପଦ୍ମ ।

ଶ୍ୱେତୌହ୍ୱା—ସ୍ତ୍ରୀ. ବ. ( ଶ୍ୱେତବାହ+ଈ) ଇନ୍ଦ୍ରାଣୀ, ଶଚୀ ।

ଶ୍ୱୈନ୍ଦ—କ୍ଲୀ. ବ. ଶ୍ୱିନ୍ଦରୋଗ ।

ଶ୍ୱୈତ୍ଛେନ୍ଦିକ—ବିଂ.ଶ୍ୱେତଛନ୍ଦସମ୍ବନ୍ଧୀୟ

ଶ୍ୱୈତ୍ୟ—କ୍ଲୀ. ବ. (ଶ୍ୱେତ+ଷ୍ୟ) ଶୁଭ୍ରତା, ଶୁକ୍ଳତା, ନିର୍ମଳତା, ଧବଳିମା

ଶ୍ୱୈନ୍ଦ୍ୟ—କ୍ଲୀ.ବ.ଶିନ୍ଦରୋଗତା, ଛଉ ।

ଶ୍ୱୋଭବ—ପୁଂ. ବ. ଆଗାମୀ କାଲର କର୍ତ୍ତବ୍ୟ ବିଷୟେ ଯତ୍ନଶୀଳତା ।

ଶ୍ୱୋଭବୀ—ପୁଂ. ବିଂ. ଆଗାମୀ କାଲି ଦିନର କର୍ତ୍ତବ୍ୟ ଅନୁଷ୍ଠାନକାରୀ ।

ଶ୍ୱୋଭୂତ—ଅ. ଆଗାମୀ କାଲି ଯାହା ଘଟିବ ।

ଶ୍ୱୋବସୀୟସ—ବିଂ. ( ଶ୍ୱଃ+ବସୁ+ଇୟସ୍+ଅ) ଭବିଶ୍ରେୟସଯୁକ୍ତ, ଆଗାମୀ କାଲି ଘଟିବା ଶୁଭଯୁକ୍ତ (ଘଟଣା), (ବ) ଆଗାମୀ କାଲି ଘଟିବା ମଙ୍ଗଳ, ଭବିଷ୍ୟନ୍ତ ଶୁଭ ।

ଶ୍ୱୋବସ୍ୟସ୍—ବ. ବ୍ରହ୍ମନ୍, ବ୍ରହ୍ମ ।

# ଷ

ଷ—ଏକତ୍ରିଂଶ ବ୍ୟଞ୍ଜନବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ମୂର୍ଦ୍ଧା ବା ମସ୍ତକ,(ବିଂ-ସୋ+କ.ଅ) ଗଣେଶ, (ଭ୍.ଅ)ନାଶ, ଧ୍ୱଂସ, କ୍ଷତ, ଶେଷ, ଅବଶେଷ, (ଅଧି. ଅ) ନିଦ୍ରା, ମୋକ୍ଷ, ପ୍ରାକ୍ତନ ସଂସ୍କାର, ଜ୍ଞାନଲୋପ,ସ୍ୱର୍ଗ, କେଶ,ଅଙ୍କୁର,ଧୈର୍ଯ୍ୟ ଶିକ୍ଷକ, ମାନବ, ଶିରଃ, ଗର୍ଭମୋଚନ, ଚୁଚୁକ, (ବିଂ) ଶ୍ରେଷ୍ଠ, ବିଜ୍ଞ, ଜ୍ଞାନୀ, ସୁନ୍ଦର, ପଣ୍ଡିତ, ଶୋଭନ ।

ଷଟ୍(ଷ)—ବ ଓ ବିଂ. ( ଷୋ+କ.କ୍ଵିପ୍) ଛଅ ।

ଷଟ୍କ—ବିଂ.(ଷଟ୍+କ) ଛଅଟି, ଛଅଗୁଣିଆ, ଛଅପରସ୍ତିଆ, (ବ)ଛଅସଂଖ୍ୟା, ଛଅବସ୍ତୁର ସମାହାର ।

ଷଟ୍କଟୁ—କ୍ଳୀ.ବ. ଶୁଣ୍ଠି,ପିପ୍ପଳୀ, ମରିଚ, ଚଇକାଠ, ଚିତାମୂଳ ଓ ପିପ୍ପଳୀମୂଳ ।

ଷଟ୍କର୍ଣ୍ଣ—ବ. ଛଅଟି କାନ, ଷଡ୍‌କାନ, (ବିଂ-ବ.ବ୍ରୀ ) ଯେଉଁ ବିଷୟ ବକ୍ତା ବା ଶ୍ରୋତା ଛଡ଼ା ଅନ୍ୟ ତୃତୀୟ ବ୍ୟକ୍ତିଙ୍କ କର୍ଣ୍ଣଗୋଚର ହୋଇଅଛି ।

ଷଟ୍କର୍ଣ୍ଣଭେଦ—ବ.କୌଣସି ଗୁପ୍ତ ବିଷୟର ଶ୍ରୋତା ଓ ବକ୍ତାଙ୍କ ଛଡ଼ା ଅନ୍ୟ ତୃତୀୟ ବ୍ୟକ୍ତିଙ୍କ କର୍ଣ୍ଣଗୋଚରେ ହେବା ଅବସ୍ଥା ।

ଷଟ୍କର୍ମ—ବ. ବ୍ରାହ୍ମଣଙ୍କ କର୍ତ୍ତବ୍ୟ ଛଅଗୋଟି କର୍ମ, (ଯଜନ, ଯାଜନ, ଅଧ୍ୟୟନ, ଅଧ୍ୟାପନ, ଦାନ ଓ ପ୍ରତିଗ୍ରହ ) ତନ୍ତ୍ରୋକ୍ତ ଶାନ୍ତି, ବଶୀକରଣ, ସ୍ତମ୍ଭନ, ବିଦ୍ୱେଷଣ, ଉଚ୍ଚାଟନ, ମାରଣ ଏହି ଷଡ଼ବିଧ କର୍ମ, ଅନନ୍ୟୋପାୟ,ବ୍ରାହ୍ମଣ ଜୀବିକା ନିର୍ବାହାର୍ଥ ଯେଉଁ ଛଅଗୋଟି କର୍ମ କରିବେ ବୋଲି ଶାସ୍ତ୍ରନିର୍ଦ୍ଦିଷ୍ଟ ଅଛି. (ଯଥା-ଉଞ୍ଛ, ପ୍ରତିଗ୍ରହ, ଭିକ୍ଷା,ବାଣିଜ୍ୟ, ପଶୁପାଳନ ଓ କୃଷି)ଯୋଗସାଧନୋକ୍ତ ଛଅଗୋଟି କର୍ମ, (ଯଥା-ଧୌତି,ବସ୍ତି, ନେତି, ନୌଳିକୀ,ତ୍ରାଟକ,କପାଳ,ଭାତି

ଷଟ୍କର୍ମନିରତ—ପୁଂ.ବିଂ.(୭ତତ୍)ବ୍ରାହ୍ମଣ କର୍ତ୍ତବ୍ୟ ଛଅଟି କର୍ମରେ ରତ(ବ୍ରାହ୍ମଣ)

ଷଟ୍କର୍ମୀ—ପୁଂ.ବିଂ. (ବ.ବ୍ରୀ) ଷଟ୍କର୍ମରତ (ବ୍ରାହ୍ମଣ), ଷଟ୍କର୍ମପାରଗ ।

ଷଟ୍କୁଟା—ସ୍ତ୍ରୀ.ବ. ଭୈରବୀବିଶେଷ ।

ଷଟ୍କୃତ୍ୱସ୍—ଅବ୍ୟ. ଛଅଥର ।

ଷଟ୍କୋଣ—କ୍ଲୀ.ବ.ଜାତକର ଲଗ୍ନସ୍ଥାନଠାରୁ ଷଷ୍ଠ ଗୃହ,ବଜ୍ର, ହୀରା, ତନ୍ତ୍ରୋକ୍ତ ଯନ୍ତ୍ରଭେଦ, ଗଣେଶ, ଛଅକୋଣବିଶିଷ୍ଟ କ୍ଷେତ୍ର, (ବିଂ.ବ.ବ୍ରୀ) ଛଅଟି କୋଣବିଶିଷ୍ଟ, ଷଡ଼ସ୍ର ।

ଷଟ୍କୋଣୀ—ବିଂ. (ଷଟ୍କୋଣ+ଇନ୍) ଛଅଟି କୋଣଯୁକ୍ତ (କ୍ଷେତ୍ର) ।

ଷଟ୍ଚକ୍ର—ବ. ଶରୀର ମଧ୍ୟସ୍ଥ ପଦ୍ମାକାର ଛଅଟି କଳ୍ପିତ ଚକ୍ର ।

ଷଟ୍ଚତ୍ୱାରିଂଶ—ବିଂ. ଯେ ୪୬ ସଂଖ୍ୟା ପୂରଣ କରେ, ୪୬ସଂଖ୍ୟାର ପୂରକ ।

ଷଟ୍ଚତ୍ୱାରିଂଶକ—ବିଂ. ୪୬ସଂଖ୍ୟାଦ୍ୱାରା ପୂରିତ ।

ଷଟ୍ଚତ୍ୱାରିଂଶତ୍—ବ.(କ.ଧା)୪୬ସଂଖ୍ୟା, (ବିଂ) ୪୬ସଂଖ୍ୟକ । [ ପୂରକ ।

ଷଟ୍ଚତ୍ୱାରିଂଶତ୍ତମ—ବିଂ. ୪୬ସଂଖ୍ୟାର

ଷଟ୍ଚରଣ—ପୁଂ.ବ.(ବ.ବ୍ରୀ)ଗୁଅରପୋକ, ଝିଣ୍ଟିକା, ଭ୍ରମର, ଉକୁଣି, ଛଅଗୋଟି ଗୋଡ଼, (ପୁଂ.ବିଂ) ଷଟ୍ପାଦବିଶିଷ୍ଟ ।

ଷଟ୍ତ୍ରିଂଶ—ବିଂ. ୩୬ସଂଖ୍ୟାର ପୂରକ ।

ଷଟ୍ତ୍ରିଂଶତ୍—ବ. (କ.ଧା) ୩୬ସଂଖ୍ୟା, (ବିଂ) ୩୬ସଂଖ୍ୟକ ।

ଷଟ୍ତ୍ରିଂଶତ୍ତମ—ବିଂ. ୩୬ସଂଖ୍ୟାର ପୂରକ, ୩୬ ସଂଖ୍ୟା ସ୍ଥାନୀୟ ।

ଷଟ୍ପଞ୍ଚାଶତ୍—ବ. (କ.ଧା)୫୬ସଂଖ୍ୟା ।

ଷଟ୍ପଞ୍ଚାଶତ୍ତମ—ବିଂ.୫୬ସଂଖ୍ୟାର ପୂରକ

ଷଟ୍ପଦ—ବିଂ. (ବ.ବ୍ରୀ) ଯାହାର ଛଅଟି ପାଦ ଅଛି, ଷଟ୍ଚରଣବିଶିଷ୍ଟ, (ପୁଂ.ବ) ଭ୍ରମର, ଉକୁଣୀ, ଗୁଅରପୋକ ।

ଷଟ୍ପଦଜ୍ୟା—ସ୍ତ୍ରୀ. ବ. (ବ.ବ୍ରୀ)କାମଧନୁ

ଷଟ୍ପଦଘାତୀ—ପୁଂ. ବ. ସ୍ୱର୍ଣ୍ଣଚମ୍ପକ ।

ଷଟ୍ପଦଦଳ—ପୁଂ. ବ. ସୁରପୁନ୍ନାଗ, ନାଗକେଶର ।

ଷଟ୍ପଦପ୍ରିୟ—ପୁଂ. ବ. (୬ତତ୍) ନାଗକେଶର, ସୁରପୁନ୍ନାଗ ।

ଷଟ୍ପଦପ୍ରିୟା—ସ୍ତ୍ରୀ. ବ. ବନମଲ୍ଲି ।

ଷଟ୍ପଦୀ—ସ୍ତ୍ରୀ. ବ.(ଷଟ୍ପଦ୍+ଈ)ବରୁଣ ଗଛ, ଉକୁଣି, ଝିଣ୍ଟିକା, ମଲ୍ଲିଫୁଲ ।

ଷଟ୍ପଦାତିଥି—ପୁଂ. ବ. (ବ.ବ୍ରୀ) ଆମ୍ବଗଛ, ସ୍ୱର୍ଣ୍ଣଚମ୍ପା ବୃକ୍ଷ ।

ଷଟ୍ପଦାଧାର—ପୁଂ. ବ. କଦମ୍ବଗଛ ।

ଷଟ୍ପଦାନନ୍ଦବର୍ଦ୍ଧନ—ପୁଂ.ବ. (ବ.ବ୍ରୀ) ଦେବବଙ୍କୁରକ, ଅଶୋକଗଛ ।

ଷଟ୍ପଦାନନ୍ଦା—ସ୍ତ୍ରୀ. ବ.(ବ.ବ୍ରୀ)ମଲ୍ଲିକା ।

ଶ୍ୱେତୈରଣ୍ଡ—ପୁଂ. ବ. ଶୁକ୍ଳ ଏରଣ୍ଡ ବୃକ୍ଷ, ଧଳାଗବ ।

ଶ୍ୱେତୋଦର—ପୁଂ.ବ(ବ.ବ୍ରୀ)କୁବେର, ସର୍ପବିଶେଷ, (କ.ଧା) ଶ୍ୱେତବର୍ଣ୍ଣ ପେଟ ।

ଶ୍ୱେତୋତ୍ପଳ—ବ. (ଶ୍ୱେତ+ଉତ୍ପଳ) ଧଳାକଇଁ, ଶ୍ୱେତପଦ୍ମ ।

ଶ୍ୱେତୌହୀ—ସ୍ତ୍ରୀ. ବ. ( ଶ୍ୱେତବାହ+ ଈ) ଇନ୍ଦ୍ରାଣୀ, ଶଚୀ ।

ଶ୍ୱେତ୍ର—କ୍ଳୀ. ବ. ଶ୍ୱିତ୍ରରୋଗ ।

ଶ୍ୱୈତଛତ୍ରିକ—ବିଂ.ଶ୍ୱେତଛତ୍ରସମ୍ବନ୍ଧୀୟ

ଶ୍ୱୈତ୍ୟ—କ୍ଳୀ. ବ. (ଶ୍ୱେତ+ଷ୍ୟ) ଶୁଭ୍ରତା, ଶୁକ୍ଳତା, ନିର୍ମଳତା, ଧବଳିମା

ଶ୍ୱୈତ୍ର୍ୟ—କ୍ଳୀ.ବ.ଶ୍ୱିତ୍ରରୋଗତା, ଛଉ ।

ଶ୍ୱୋଭବ—ପୁଂ. ବ. ଆଗାମୀ କାଲିର କର୍ତ୍ତବ୍ୟ ବିଷୟରେ ଯତ୍ନଶୀଳତା ।

ଶ୍ୱୋଭାଗୀ—ପୁଂ. ବିଂ. ଆଗାମୀ କାଲି ଦିନର କର୍ତ୍ତବ୍ୟ ଅନୁଷ୍ଠାନକାରୀ ।

ଶ୍ୱୋଭୂତ—ଅ. ଆଗାମୀ କାଲି ଯାହା ଘଟିବ ।

ଶ୍ୱୋବସୀୟସ—ବିଂ. ( ଶ୍ୱଃ+ବସୁ+ ଇୟସ୍+ଅ) ଭବିଶୁଭଯୁକ୍ତ, ଆଗାମୀ କାଲି ଘଟିବା ଶୁଭଯୁକ୍ତ (ଘଟଣା), (ବି) ଆଗାମୀ କାଲି ଘଟିବା ମଙ୍ଗଳ, ଭବିଷ୍ୟତ୍ ଶୁଭ ।

ଶ୍ୱୋବସ୍ୟସ୍—ବି. ବ୍ରହ୍ମନ୍, ବ୍ରହ୍ମ ।

# ଷ

ଷ—ଏକତ୍ରିଂଶ ବ୍ୟଞ୍ଜନବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ମୂର୍ଦ୍ଧା ବା ମସ୍ତକ,(ବି-ସୋ+କ.ଅ) ଗଣେଶ, (ଭା.ଅ)ନାଶ, ଧ୍ୱଂସ, କ୍ଷତ, ଶେଷ, ଅବଶେଷ, (ଅଧି. ଅ) ନିଦ୍ରା, ମୋକ୍ଷ, ପ୍ରାକ୍ତନ ସଂସ୍କାର, ଜ୍ଞାନଲୋପ,ସ୍ୱର୍ଗ, କେଶ,ଅଙ୍କୁର,ଧୈର୍ଯ୍ୟ ଶିକ୍ଷକ, ମାନବ, ଶିରଃ, ଗର୍ଭମୋଚନ, ଚୁଚୁକ, (ବିଂ) ଶ୍ରେଷ୍ଠ, ବିଜ୍ଞ, ଜ୍ଞାନୀ, ସୁନ୍ଦର, ପଣ୍ଡିତ, ଶୋଭନ ।

ଷଟ୍(ଷ୍)—ବି ଓ ବିଂ. ( ସୋ+କ.କ୍ୱିପ୍ ) ଛଅ ।

ଷଟ୍‌କ—ବିଂ.(ଷଟ୍+କ) ଛଅଟି, ଛଅ-ଗୁଣିଆ, ଛଅପରସ୍ତିଆ, (ବି)ଛଅସଂଖ୍ୟା, ଛଅବସ୍ତୁର ସମାହାର ।

ଷଟ୍‌କଟୁ—କ୍ଳୀ.ବି. ଶୁଣ୍ଠି,ପିପ୍ପଳୀ, ମରିଚ, ଚଇକାଠ, ଚିତାମୂଳ ଓ ପିପ୍ପଳୀମୂଳ ।

ଷଟ୍‌କର୍ଣ୍ଣ—ବି. ଛଅଟି କାନ, ଷଟ୍ କାନ, (ବିଂ-ବ.ବ୍ରୀ ) ଯେଉଁ ବିଷୟ ବକ୍ତା ବା ଶ୍ରୋତା ଛଡ଼ା ଅନ୍ୟ ତୃତୀୟ ବ୍ୟକ୍ତିଙ୍କ କର୍ଣ୍ଣଗୋଚର ହୋଇଅଛି ।

ଷଟ୍‌କର୍ଣ୍ଣଭେଦ—ବି.କୌଣସି ଗୁପ୍ତ ବିଷୟର ଶ୍ରୋତା ଓ ବକ୍ତାଙ୍କ ଛଡ଼ା ଅନ୍ୟ ତୃତୀୟ ବ୍ୟକ୍ତିଙ୍କ କର୍ଣ୍ଣଗୋଚର ହେବା ଅବସ୍ଥା ।

ଷଟ୍‌କର୍ମ—ବି. ବ୍ରାହ୍ମଣଙ୍କ କର୍ତ୍ତବ୍ୟ ଛଅ-ଗୋଟି କର୍ମ, (ଯଜନ, ଯାଜନ, ଅଧ୍ୟୟନ, ଅଧ୍ୟାପନ, ଦାନ ଓ ପ୍ରତିଗ୍ରହ ) ତନ୍ତ୍ରୋକ୍ତ ଶାନ୍ତି, ବଶୀକରଣ, ସ୍ତମ୍ଭନ, ବିଦ୍ୱେଷଣ, ଉଚ୍ଚାଟନ, ମାରଣ ଏହି ଷଡ଼ବିଧ କର୍ମ, ଅନନ୍ୟୋପାୟ,ବ୍ରାହ୍ମଣ ଜୀବିକା ନିର୍ବାହାର୍ଥ ଯେଉଁ ଛଅଗୋଟି କର୍ମ କରିବେ ବୋଲି ଶାସ୍ତ୍ରନିର୍ଦ୍ଦିଷ୍ଟ ଅଛି. (ଯଥା-ଉଞ୍ଛ, ପ୍ରତିଗ୍ରହ, ଭିକ୍ଷା,ବାଣିଜ୍ୟ, ପଶୁପାଳନ ଓ କୃଷି)ଯୋଗସାଧନୋକ୍ତ ଛଅଗୋଟି କର୍ମ, (ଯଥା-ଧୌତି,ବସ୍ତି, ନେତି, ନୌଳିକୀ,ତ୍ରାଟକ,କପାଳ,ଭାତି

ଷଟ୍‌କର୍ମନିରତ—ପୁଂ.ବିଂ.(୭ତତ୍)ବ୍ରାହ୍ମଣ କର୍ତ୍ତବ୍ୟ ଛଅଟି କର୍ମରେ ରତ(ବ୍ରାହ୍ମଣ)

ଷଟ୍‌କର୍ମା—ପୁଂ.ବିଂ. (ବ.ବ୍ରୀ) ଷଟ୍‌କର୍ମ-ରତ (ବ୍ରାହ୍ମଣ), ଷଟ୍‌କର୍ମପାରଗ ।

ଷଟ୍‌କୁଟା—ସ୍ତ୍ରୀ.ବି. ଭୈରବୀବିଶେଷ ।

ଷଟ୍‌କୃତ୍ୱସ୍—ଅବ୍ୟ. ଛଅଥର ।

ଷଟ୍‌କୋଣ—କ୍ଳୀ.ବି.ଜାତକର ଲଗ୍ନସ୍ଥାନ-ଠାରୁ ଷଷ୍ଠ ଗୃହ,ବଜ୍ର, ହୀରା, ତନ୍ତ୍ରୋକ୍ତ ଯନ୍ତ୍ରଭେଦ, ଗଣେଶ, ଛଅକୋଣବିଶିଷ୍ଟ କ୍ଷେତ୍ର, (ବିଂ.ବ.ବ୍ରୀ) ଛଅଟି କୋଣ-ବିଶିଷ୍ଟ, ଷଡ଼ସ୍ର ।

ଷଟ୍‌କୋଣୀ—ବିଂ. (ଷଟ୍‌କୋଣ+ଇନ୍) ଛଅଟି କୋଣଯୁକ୍ତ (କ୍ଷେତ୍ର) ।

ଷଟ୍‌ଚକ୍ର —ବି. ଶରୀର ମଧ୍ୟସ୍ଥ ପଦ୍ମାକାର ଛଅଟି କଳ୍ପିତ ଚକ୍ର ।

ଷଟ୍‌ଚତ୍ୱାରିଂଶ—ବିଂ. ଯେ ୪୬ ସଂଖ୍ୟା ପୂରଣ କରେ, ୪୬ସଂଖ୍ୟାର ପୂରକ ।

ଷଟ୍‌ଚତ୍ୱାରିଂଶକ—ବିଂ. ୪୬ସଂଖ୍ୟାଦ୍ୱାରା ପୂରିତ ।

ଷଟ୍‌ଚତ୍ୱାରିଂଶତ୍—ବି.(କ.ଧା)୪୬ସଂଖ୍ୟା, (ବିଂ) ୪୬ସଂଖ୍ୟକ । [ ପୂରକ ।

ଷଟ୍‌ଚତ୍ୱାରିଂଶତ୍ତମ—ବିଂ. ୪୬ସଂଖ୍ୟାର

ଷଟ୍‌ଚରଣ—ପୁଂ.ବି.(ବ.ବ୍ରୀ)ଗୁଅରପୋକ, ଝିଣ୍ଟିକା, ଭ୍ରମର, ଉକୁଣି, ଛଅଗୋଟି ଗୋଡ଼, (ପୁଂ.ବିଂ) ଷଟ୍‌ପାଦବିଶିଷ୍ଟ ।

ଷଟ୍‌ତ୍ରିଂଶ—ବିଂ. ୩୬ସଂଖ୍ୟାର ପୂରକ ।

ଷଟ୍‌ତ୍ରିଂଶତ୍—ବି. (କ.ଧା) ୩୬ସଂଖ୍ୟା, (ବିଂ) ୩୬ସଂଖ୍ୟକ ।

ଷଟ୍‌ତ୍ରିଂଶତ୍ତମ—ବିଂ. ୩୬ସଂଖ୍ୟାର ପୂରକ, ୩୬ ସଂଖ୍ୟା ସ୍ଥାନୀୟ ।

ଷଟ୍‌ପଞ୍ଚାଶତ୍—ବି. (କ.ଧା)୫୬ସଂଖ୍ୟା ।

ଷଟ୍‌ପଞ୍ଚାଶତ୍ତମ—ବିଂ.୫୬ସଂଖ୍ୟାର ପୂରକ

ଷଟ୍‌ପଦ—ବିଂ. (ବ.ବ୍ରୀ) ଯାହାର ଛଅଟି ପାଦ ଅଛି, ଷଟ୍‌ଚରଣବିଶିଷ୍ଟ, (ପୁଂ.ବି) ଭ୍ରମର, ଉକୁଣୀ, ଗୁଅରପୋକ ।

ଷଟ୍‌ପଦଜ୍ୟା—ସ୍ତ୍ରୀ. ବି. (ବ.ବ୍ରୀ)କାମଧନୁ

ଷଟ୍‌ପଦଘାତ—ପୁଂ. ବି. ସ୍ୱର୍ଣ୍ଣଚମ୍ପକ ।

ଷଟ୍‌ପଦଦଳ—ପୁଂ. ବି. ସୁରପୁନ୍ନାଗ, ନାଗକେଶର ।

ଷଟ୍‌ପଦପ୍ରିୟ—ପୁଂ. ବି. (୬ତତ୍) ନାଗ-କେଶର, ସୁରପୁନ୍ନାଗ ।

ଷଟ୍‌ପଦପ୍ରିୟା—ସ୍ତ୍ରୀ. ବି. ବନମଲ୍ଲି ।

ଷଟ୍‌ପଦା—ସ୍ତ୍ରୀ. ବି.(ଷଟ୍‌ପଦ୍+ଆ)ଦବୁର ଗଛ, ଉକୁଣି, ଝିଣ୍ଟିକା, ମଲ୍ଲିଫୁଲ ।

ଷଟ୍‌ପଦାତିଥି—ପୁଂ. ବି. (ବ.ବ୍ରୀ) ଆମ୍ବ-ଗଛ, ସ୍ୱର୍ଣ୍ଣଚମ୍ପା ବୃକ୍ଷ ।

ଷଟ୍‌ପଦାଧାର—ପୁଂ. ବି. କଦମ୍ବଗଛ ।

ଷଟ୍‌ପଦାନନ୍ଦବର୍ଦ୍ଧନ—ପୁଂ.ବି. (ବ.ବ୍ରୀ) ଦେବବଙ୍କୁରକ, ଅଶୋକଗଛ ।

ଷଟ୍‌ପଦାନନ୍ଦା—ସ୍ତ୍ରୀ. ବି.(ବ.ବ୍ରୀ)ମଲ୍ଲିକା ।

ଷଟ୍‌ପଦାଭିଧର୍ମ—ବ. ବୌଦ୍ଧମାନଙ୍କର ଖଣ୍ଡିଏ ଧର୍ମଶାସ୍ତ୍ର ।
ଷଟ୍‌ପଦାଳୟ—ପୁଂ.ବ.ସୁରପୁନ୍ନାଗବୃକ୍ଷ ।
ଷଟ୍‌ପଦାଳୀ— ସ୍ତ୍ରୀ. ବ. ମକ୍ଷିକାଶ୍ରେଣୀ, ଭ୍ରମରଶ୍ରେଣୀ ।
ଷଟ୍‌ପଦିକା(ପଦୀ)—ସ୍ତ୍ରୀ. ବ. (ଷଟ୍‌ପଦ+ଈ) ମାଈଭ୍ରମର, ଉକୁଣୀ, ଝିଣ୍ଟିକା, ଛଅ ଚରଣବିଶିଷ୍ଟ ଶ୍ଳୋକ,ଛଅପୋଇ ।
ଷଟ୍‌ପଦେଷ୍ଟ—ବ. କଦମ୍ବ ।
ଷଟ୍‌ପଳକ—ବଂ. ଛଅପଳ ପରିମିତ,ଛଅ ପଳବିଶିଷ୍ଟ । [ (ଘ) ।
ଷଟ୍‌ପାଦ—ବ. ଝିଣ୍ଟିକା, (ସ୍ତ୍ରୀ) ଷଟ୍‌ପାଦା
ଷଟ୍‌ପ୍ରଜ୍ଞ(ପ୍ରାଜ୍ଞ)—ପୁଂ.ବ.(ଷଟ୍+ପ୍ରଜ୍ଞା) ବ.ବ୍ରୀ);ଚତୁରପୁରୁଷାର୍ଥ (ଧର୍ମ,ଅର୍ଥ,କାମ, ମୋକ୍ଷ) ଓ ଲୋକତତ୍ତ୍ୱ ବା ଲୋକାର ଓ ତତ୍ତ୍ୱଜ୍ଞାନ ଏହି ଛଅବିଷୟରେ ଅଭିଜ୍ଞ ବ୍ୟକ୍ତି, ବୌଦ୍ଧ ଜାରପୁରୁଷ, ଲମ୍ପଟ, କାମୁକବ୍ୟକ୍ତି ।
ଷଟ୍‌ଲବଣ—କ୍ଲୀ. ବ. କାଚ, ସୌନ୍ଧବ, ସାମୁଦ୍ର, ବିଟ୍ ଓ ସୌବର୍ଚ୍ଚଳ ଓ ମୁଲ୍ଲବଣ
ଷଟ୍‌ଲୌହସମ୍ଭବ—କ୍ଲୀ. ବ. ଶିଳାଜତୁ ।
ଷଟ୍‌ଶାସ୍ତ୍ରୀ—ପୁଂ. ବଂ. (ଷଟ୍‌ଶାସ୍ତ୍ର+ଇନ୍) ଛଅଦର୍ଶନ ବା ଶାସ୍ତ୍ରରେ ଅଭିଜ୍ଞ ।
ଷଟ୍‌ଷଷ୍ଠ—ବଂ. ୬୬ସଂଖ୍ୟାର ପୂରକ ।
ଷଟ୍‌ଷଷ୍ଟି—ବ ଓ ବଂ.(କ.ଧା)୬୬ସଂଖ୍ୟା, ୬୬ସଂଖ୍ୟକ ।
ଷଟ୍‌ଷଷ୍ଟିତମ—ବ. ୬୬ସଂଖ୍ୟାର ପୂରକ
ଷଟ୍‌ସପ୍ତ—ବଂ.୭୬ସଂଖ୍ୟାର ପୂରକ,ଛଅଠ ସାତଗୁଣ ଅର୍ଥାତ୍ ୪୨ସଂଖ୍ୟକ ।
ଷଟ୍‌ସପ୍ତତ-ବଂ.୭୬ସଂଖ୍ୟକ, ୭୬ସଂଖ୍ୟାର ପୂରକ । [ ୭୬ସଂଖ୍ୟକ ।
ଷଟ୍‌ସପ୍ତତି—ବ ଓ ବଂ.(କ.ଧା)୭୬ସଂଖ୍ୟା.
ଷଟ୍‌ସପ୍ତତିତମ—ବଂ.୭୬ସଂଖ୍ୟାର ପୂରକ
ଷଟ୍‌ସହସ୍ର—ବଂ.ଛଅହଜାର ସଂଖ୍ୟା ଦ୍ୱାରା ପୂରିତ ।
ଷଟ୍‌ସହସ୍ରଶତ—ବ ଓ ବଂ. ଛଅଲକ୍ଷ ।
ଷଟ୍—ଗ୍ରା. ବ. ଛଅ ।
ଷଟ୍‌ଦଶ—ଗ୍ରା. ବ. ଷୋହଳସଂଖ୍ୟା,୧୬ ।
ଷଟ୍‌ବଂଶ—ଗ୍ରା. ବ. ଛବିଶ ।
ଷଟ୍‌ଶକ୍ତି—ଗ୍ରା. ବ. ବୈଷ୍ଣବ ସାହିତ୍ୟରେ ଶ୍ରୀକୃଷ୍ଣଙ୍କର ତଥା ରାଧିକାଙ୍କ ଶକ୍ତି ରୂପଧାରିଣୀ ଛଅଟି ଦେବୀ ।
ଷଠା—ଗ୍ରା. ବ. ଷାଠିଏ, ୬୦ସଂଖ୍ୟା
ଷଠାଶହେ—ଗ୍ରା. ବ ଓ ବଂ. ୧୬୦ ।
ଷଠୀ—ଗ୍ରା.ବ.ଶିଶୁର ଜନ୍ମହେବାର ଷଷ୍ଠଦିନରେ କର୍ତ୍ତବ୍ୟ ଉତ୍ସବାଦି ଓ ଷଷ୍ଠୀଦେବୀଙ୍କ ପୂଜା ।
ଷଠୀଓଷା—ଗ୍ରା. ବ. ଭାଦ୍ର ଶୁକ୍ଳ ଷଷ୍ଠୀତିଥିରେ ହେଉଥିବା ଷଷ୍ଠୀଦେବୀଙ୍କ ପୂଜା
ଷଠୀଘର—ଗ୍ରା. ବ. ଶିଶୁର ଜନ୍ମର ଷଷ୍ଠଦିନ ଅନୁଷ୍ଠିତ ଉତ୍ସବ ।
ଷଠୀଦଉଛେଇ—ଗ୍ରା. ବ. ଷଷ୍ଠୀଦେବୀ ।
ଷଡ୍‌ଋତୁ—ବ.(ଷଟ୍+ଋତୁ)ବର୍ଷର ଛଅଟି ଋତୁ ।
ଷଡ୍‌ଗବ—ବ.(ଷଟ୍+ଗୋ)ଛଅଟି ଗୋରୁ (ବଂ-ବ.ବ୍ରୀ) ଛଅଟି ଗୋରୁ ଦ୍ୱାରା ଆକୃଷ୍ଟ (ଶକଟାଦି), ଛଅଟିବଳଦ ଦ୍ୱାରା କୃଷ୍ଟ (ଭୂମି) ।
ଷଡ୍‌ଗୟା—ବ. ( ଷଟ୍+ଗୟା ) ଗୟା ତୀର୍ଥରେ ଥିବା ଛଅଗୋଟି ଦର୍ଶନ ଓ ଦୈବୀକର୍ମ କରିବା ଯୋଗ୍ୟ ପ୍ରଧାନତୀର୍ଥ
ଷଡ୍‌ଗୁଣ—ବଂ. (ଷଟ୍+ଗୁଣ) ଛଅଥର, ଛଅଗୁଣିଆ, ଛଅସଂଖ୍ୟାରେ ଗୁଣିତ, (ବ) ଛଅଦ୍ୱାରା ଗୁଣିଲେ ଯେତେହେବ ତେତେ, ରାଜାମାନଙ୍କର ଛଅଗୁଣ, (ଯଥା:—ସନ୍ଧିବିଗ୍ରହ, ଯାନ, ଆସନ, ଦ୍ୱୈଧଭାବ ଓ ଆଶ୍ରୟ),ମନୁଷ୍ୟର ଛଅଟି ବିଶିଷ୍ଟ ଗୁଣ (ଯଥା—ଐଶ୍ୱର୍ଯ୍ୟ, ଜ୍ଞାନ, ଯଶଃ, ଶ୍ରୀ, ବୈରାଗ୍ୟ ଓ ଧର୍ମ) ।
ଷଡ୍‌ଗ୍ରନ୍ଥା—ବ. ଶ୍ୱେତବଚ, ବଚ, ଷଟୀ, ପାଳୁଅ, ଏକପ୍ରକାର ଗନ୍ଧଶୁଣ୍ଠି, ମହାକରଞ୍ଜ, ଗିଲ ବା ବଣପୋଲ ।
ଷଡ୍‌ଗ୍ରନ୍ଥି—ବ. ପିପ୍ପଳୀମୂଳ ।
ଷଟ୍‌ଗ୍ରନ୍ଥିକା—ବ. ଷଟୀ, ପାଳୁଅ ।
ଷଡ୍‌ଗ୍ରନ୍ଥୀ—ବ. ବଚ୍ଚ, ବଚ ।
ଷଡ୍‌ଗ୍ରହ—ବ. ଛଅଟି ଗ୍ରହ ।
ଷଡ୍‌ଗ୍ରହକୂଟ—ବ. ଛଅଟିଗ୍ରହଙ୍କର ଏକ ରାଶିରେ ସ୍ଥିତି ।
ଷଡ୍(ଜ)ଜ—ବ. (ଷଟ୍+ଜନ୍+କ.ଅ) ମୟୂରର କଣ୍ଠଧ୍ୱନି, କେକାରବ, ଘ୍ରାଣ ଆଦିରୁ ଉଦ୍ଭୂତ ଅନ୍ୟସ୍ୱର,ସଙ୍ଗୀତ ମୂଳ ସ୍ୱର, ଯାହାର ସଙ୍କେତ 'ସା', ଏହା ମୟୂର କଣ୍ଠନିଃସୃତ ସ୍ୱରତୁଲ୍ୟ ।
ଷଡ୍‌ଜୟନ୍ତୀ—ବ. ବର୍ଷମଧ୍ୟରେ ନିର୍ଦ୍ଦିଷ୍ଟ ଛଅଟି ଉପବାସ ବ୍ରତ,(ଯଥା--ଶିବରାତ୍ରି-ଜନ୍ମାଷ୍ଟମୀ, ବାମନଜନ୍ମ, ନୃସିଂହଜନ୍ମ, ରାମନବମୀ ଓ ଦୁର୍ଗାଷ୍ଟମୀ ବା ମହାଷ୍ଟମୀ ।
ଷଡ୍‌ଦର୍ଶନ—ବ. ହିନ୍ଦୁମାନଙ୍କର ଛଅସଂଖ୍ୟକ ଦର୍ଶନଶାସ୍ତ୍ର, (ଯଥା—ପୂର୍ବମୀମାଂସା,ଉତ୍ତରମୀମାଂସା ବା ବେଦାନ୍ତ, ନ୍ୟାୟ ବା ତର୍କଶାସ୍ତ୍ର, ସାଂଖ୍ୟ,ପାତଞ୍ଜଳ ବା ଯୋଗ, ବୈଶେଷିକ ।
ଶଡ୍‌ଦର୍ଶୀ—ପୁଂ. ବଂ. ଷଟ୍‌ଦର୍ଶୀ ଦେଖ ।
ଷଡ୍‌ଦନ—ବ. ଛଅଦନ ।
ଷଡ୍‌ଦୁର୍ଗ—ବ. ନୃଦୁର୍ଗ, ବନଦୁର୍ଗ, ଗିରିଦୁର୍ଗ, ମନ୍ୱଦୁର୍ଗ, ଧନ୍ୱଦୁର୍ଗ, ମୃଦ୍ଦୁର୍ଗ ଏହି ଛଅପ୍ରକାର ଦୁର୍ଗ ।
ଷଡ୍ଧା—ବ. (ଷଟ୍+ଧା) ଛଅପ୍ରକାର, (ବଂ) ଛଅପ୍ରକାରର, (କି.ବଂ) ଛଅପ୍ରକାରେ, ଛଅଭାଗରେ ।
ଷଡ୍‌ବକ୍ତ୍ର--ବ.(କ.ଧା)ଛଅଟି ମୁହଁ,(ବ.ବ୍ରୀ) ଷଡ଼ାନନ, କାର୍ତ୍ତିକେୟ, (ପୁଂ.ବଂ) ଛଅଟି ମୁଖଯୁକ୍ତ ।
ଷଡ୍‌ବର୍ଗ—ବ. (ଷଟ୍+ବର୍ଗ) ଷଡ଼ରିପୁ ଦେଖ, ଧର୍ମ, ଅର୍ଥ, କାମ, ମୋକ୍ଷ, ଲୋକାଚାର ଓ ତତ୍ତ୍ୱଜ୍ଞାନ ରୂପ ମନୁଷ୍ୟର ଛଅଟି ଉଦ୍ଦେଶ୍ୟ, ( ଜ୍ୟୋତିଷୋକ୍ତ ) ରାଶିର ଛଅପ୍ରକାର ଭାଗ,(ଯଥା—କ୍ଷେତ୍ର, ହୋରା, ଦ୍ରେକ୍କାଣ,ନବାଂଶ,ଦ୍ୱାଦଶାଂଶ ଓ ତ୍ରିଂଶାଂଶ ।
ଷଡ୍‌ବାହୁ—ବ. ( କ.ଧା ) ଛଅଟି ହାତ, (କ୍ଷେତ୍ରର) ଛଅଟି ପାର୍ଶ୍ୱସ୍ଥ ସୀମାରେଖା, (ବ.ବ୍ରୀ) ଛଅଟି ବାହୁବେଷ୍ଟିତ କ୍ଷେତ୍ର, (ବଂ-ବ.ବ୍ରୀ) ଛଅବାହୁବିଶିଷ୍ଟ, (ସ୍ଥା.ବ) ଶ୍ରୀଚୈତନ୍ୟ ଦେବ ।
ଷଡ୍‌ବଂଶ—ବଂ. ଛବିଶସଂଖ୍ୟାର ପୂରକ, ଷଡ୍‌ବଂଶତକ, ଷଡ୍‌ବଂଶତିତମ ।

ଷଡ଼୍‌ବିଂଶତି—ବି ଓ ବିଂ. ଛବିଶ ।
ଷଡ଼୍‌ବିଧ-ବିଂ.(ଷଡ଼୍‌+ବିଧା),ବି.ଗ୍ରା;ଛଅପ୍ରକାରର ।
ଷଡ଼୍‌ବିନ୍ଦୁ—ବି.ଛଅଟି ବିନ୍ଦୁ,ଛଅ ଟୋପା, ବିଷ୍ଣୁ, କୀଟବିଶେଷ ।
ଷଡ଼୍‌ବିନ୍ଦୁତୈଳ—ବି. ଆୟୁର୍ବେଦୋକ୍ତ ଶିରରୋଗର ହିତକର ତୈଳବିଶେଷ
ଷଡ଼୍‌ଭାଗ—ବି. (ଷଟ୍‌+ଭାଗ) ଛଅଭାଗ, ଛଅଭାଗର ଏକଭାଗ ।
ଷଡ଼୍‌ଭୁଜ—ବି ଓ ବିଂ. ଷଡ଼୍‌ବାହୁ ଦେଖ, ଜ୍ୱରର କଳ୍ପିତ ମୂର୍ତ୍ତି ।
ଷଡ଼୍‌ଭୁଜା—ସ୍ତ୍ରୀ. ବିଂ. ଷଡ଼୍‌ଭୁଜର ସ୍ତ୍ରୀଲିଙ୍ଗ, (ବିଂ) ଚଣ୍ଡିକାଦେବୀ ।
ଷଡ଼୍‌ଯନ୍ତ୍ର—ବି. ଚକ୍ରାନ୍ତ ।
ଷଡ଼୍‌ରସ—ବି. ଜିହ୍ୱାଦ୍ୱାରା ଆସ୍ୱାଦନୀୟ ଛଅଟିରସ, (ଯଥା—ଲବଣ,ଅମ୍ଳ,ମଧୁର, କଟୁ, କଷାୟ, ତିକ୍ତ, (ବିଂ) ଷଡ଼ରସଯୁକ୍ତ (ଖାଦ୍ୟ) ।
ଷଡ଼୍‌ରିପୁ—ବି. (ଷଟ୍‌+ରିପୁ) ମନୁଷ୍ୟର କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ ଏହି ଛଅଟି ଶତ୍ରୁ ।
ଷଡ଼୍‌ଗ୍ରନ୍ଥି—ବି.(ଷଷ୍‌+ଗ୍ରନ୍ଥି)ଛଅଟି ଗ୍ରନ୍ଥି, ଛଅ ଦବାଗ୍ରନ୍ଥି ।
ଷଡ଼୍‌ରେଖା—ବି.ଛଅ ରେଖାର ସମବାୟ, (ବି.ଗ୍ରା) ତରଭୁଜ ଫଳ ଓ ଲତା ।
ଷଡ଼୍‌ଲବଣ—ବି.ସୈନ୍ଧବ,ସାମୁଦ୍ର, ବିଟ, ସୌବର୍ଚ୍ଚଳ, ମୃତ, କାଚ ଏହି ଛଅ ।
ଷଡ଼୍‌ଲୋହ—ବି.ଛଅଟି ଧାତୁ ।
ଷଡ଼—ଗ୍ରା.ବିଂ.ଷଟ୍, ଛଅସଂଖ୍ୟକ, ଛଅପ୍ରକାରର ।
ଷଡ଼ଅକ୍ଷର—ଗ୍ରା.ବି. (ବୈଷ୍ଣବଙ୍କ ବ୍ୟବହୃତ) ହରେ ରାମ କୃଷ୍ଣ ।
ଷଡ଼ଂଶ—ପୁଂ.ବି. ( ଷଟ୍ + ଅଂଶ )ଛଅଭାଗରୁ ଏକଭାଗ, ଷଟ୍‌ଅଂଶ ।
ଷଡ଼କର୍ଣ୍ଣ—ଗ୍ରା. ବି.ଓ ବିଂ. ଷଟ୍‌କର୍ଣ୍ଣ ଦେଖ ।
ଷଡ଼କାନମନ୍ତ୍ରଭେଦ-ଗ୍ରା.(ପ୍ରବଚନ) ଦୁଇଜଣରେ ଘଟିଥିବା କୌଣସି ଗୁପ୍ତ ବିଷୟ ତୃତୀୟ ବ୍ୟକ୍ତି ଜାଣିଲେ ତାହା ଆଉ ଗୁପ୍ତ ହୋଇ ରହେନାହିଁ ।
ଷଡ଼କ୍ଷର—ବିଂ. (ଷଟ୍‌+ଅକ୍ଷର) ଛଅଟି ଅକ୍ଷରଯୁକ୍ତ, (ସ୍ତ୍ରୀ) ଷଡକ୍ଷରୀ, (ବି)ଛଅଟି ଅକ୍ଷର ।
ଷଡ଼କ୍ଷରମନ୍ତ୍ର—ବି. ଛଅଟି ଅକ୍ଷରବିଶିଷ୍ଟ ମନ୍ତ୍ର, ବିଷ୍ଣୁଙ୍କର ହରେ ରାମ କୃଷ୍ଣ, ଶିବଙ୍କର=ଓଁ ନମଃଶିବାୟ, ଗଣେଶଙ୍କର=ନମୋଃ ଗଣେଶାୟ,ରାମଙ୍କର=ରାଂ ରାମାୟ ନମଃ ।
ଷଡ଼କ୍ଷୀଣ—ବି.(ଷଟ୍ + ଅକ୍ଷି+ଅ+ଇନ) ମତ୍ସ୍ୟ, ମାଛ ।
ଷଡ଼ଙ୍ଗ—ବି. ଶରୀରର ଛଅଟି ଅଙ୍ଗ, (ଯଥା-ହସ୍ତଦ୍ୱୟ, ପଦଦ୍ୱୟ, ମସ୍ତକ ଓ କଟି) ବେଦର ଛଅଟି ଅଙ୍ଗ ବା ଛଅଟି ଶାସ୍ତ୍ର, (ଯଥା-ଶିକ୍ଷା ବା ଶବ୍ଦାର୍ଥ ବିଦ୍ୟା, କଳ୍ପ ବା କର୍ମକାଣ୍ଡ,ବ୍ୟାକରଣ,ନିରୁକ୍ତି, ଛନ୍ଦଃ, ଜ୍ୟୋତିଷ) ଗବ୍ୟ ବା ଗୋରୁଠାରୁ ପ୍ରାପ୍ତ ଛଅପ୍ରକାର ପବିତ୍ର ବସ୍ତୁ, (ଯଥା-ଗୋମୂତ୍ର, ଗୋମୟ, କ୍ଷୀର, ଦଧି ଘୃତ, ଗୋରୋଚନା), ଦେବପୂଜାରେ ଅଙ୍ଗନ୍ୟାସାଦି କରାଯିବା ହୃଦୟାଦି ଛଅଟି ଅବୟବ (ଯଥା-ହୃଦୟ, ଶିରଃ, ଶିଖା, କବଚ, ନେତ୍ରତ୍ରୟ,କରତଳ ଓ କରପୃଷ୍ଠ)ରାଜ୍ୟାଙ୍ଗ ଛଅଟି(ଯଥା-ମୌଳ. ଭୃତ୍ୟ,ସୁହୃତ୍, ଶ୍ରେଣୀ, ଦ୍ୱିଷତ୍,ଆଟବିକ ବା ଅରଣ୍ୟବାସୀ ସେନା,) ଛଅପ୍ରକାର ଯୋଗାଙ୍ଗ,(ଯଥା- ପ୍ରତ୍ୟାହାର, ଧ୍ୟାନ, ପ୍ରାଣାୟାମ,ଧାରଣା,ତର୍କ,ସମାଧି) ଆଦ୍ୟ ଶ୍ରାଦ୍ଧକାଳରେ ପ୍ରେତ ଉଦ୍ଦେଶ୍ୟରେ ଦିଆଯିବା ଛଅଟି ବସ୍ତୁ, (ଯଥା-ଆସନ, ଛତ୍ର, ଉପାନହ, ଶଯ୍ୟା, ଅନ୍ନ ଓ ଜଳ) ଗୋକ୍ଷୁର, ଗୋଖୁରା (ବି.ଗ୍ରା) ବେଦ, (ବିଂ) ଛଅଟି ଅଙ୍ଗବିଶିଷ୍ଟ ।
ଷଡ଼ଙ୍ଗକ—କ୍ଲୀ.ବି.(ଷଡ଼ଙ୍ଗ+କ)ଛଅଟି ଅଙ୍ଗବିଶିଷ୍ଟ ଦେହ, ଚନ୍ଦ୍ରର ଛଅଗୋଟି ସୌନ୍ଦର୍ଯ୍ୟଦାୟକ ଅଂଶ ।
ଷଡ଼ଙ୍ଗଜିତ୍—ପୁଂ.ବି. (ଷଡ଼ଙ୍ଗ+ଜି+କ୍ୱିପ୍) ବିଷ୍ଣୁ, (ପୁଂ.ବିଂ) ଷଡ଼ଙ୍ଗଜେତା
ଷଡ଼ଙ୍ଗନ୍ୟାସ-ବି. ଦେବପୂଜାରେ ମନ୍ତ୍ରୋଚ୍ଚାରଣପୂର୍ବକ ଛଅଗୋଟି ଅଙ୍ଗକୁ କରାଯିବା ନ୍ୟାସ ବା ଅଙ୍ଗୁଳି ସ୍ପର୍ଶନ ।
ଷଡ଼ଙ୍ଗୀ—ପୁଂ.ବିଂ. ( ଷଡ଼ଙ୍ଗ + ଇନ୍ ) ଷଡ଼ଙ୍ଗଯୁକ୍ତ, ଷଡ଼ଙ୍ଗ ବଳବିଶିଷ୍ଟ, (ସ୍ତ୍ରୀ) ଷଡ଼ଙ୍ଗିନୀ, (ବି) ବେଦର ଷଡ଼ଙ୍ଗାଧ୍ୟାୟୀ ବ୍ରାହ୍ମଣ,(ଗ୍ରା.ବି)ବ୍ରାହ୍ମଣଙ୍କ ବଂଶୋପାଧିବିଶେଷ ।
ଷଡ଼ଙ୍ଗୁଳ(ଳି),ବି. ( ଷଟ୍ + ଅଙ୍ଗୁଳ )ଛଅଆଙ୍ଗୁଳ ପରିମାଣ,ଛଅ ଆଙ୍ଗୁଠିଆ ବ୍ୟକ୍ତି, (ବିଂ) ଛଅଆଙ୍ଗୁଳ ପରିମିତ ।
ଷଡ଼ଙ୍ଘ୍ରି—ପୁଂ.ବି.(ଷଟ୍ + ଅଙ୍ଘ୍ରି)ଭ୍ରମର, ମହୁମାଛି, ମାଛି ।
ଷଡ଼ଦଶ—ଗ୍ରା.ବି ଓ ବିଂ.ଷୋଳ,ଷୋଡ଼ଶ
ଷଡ଼ଦର୍ଶୀ—ଗ୍ରା.ବିଂ. ଦର୍ଶନଶାସ୍ତ୍ରଜ୍ଞ ।
ଷଡ଼ଧିକ—ବିଂ.(ବି.ଗ୍ରା)ଯେଉଁ ସଂଖ୍ୟାରେ ଛଅସଂଖ୍ୟା ଅଧିକ ଯୋଗ ହୋଇଅଛି ।
ଷଡ଼ରତ୍ନି—ବିଂ.(ଷଟ୍+ଅରତ୍ନି)ଛଅହାତ ପରିମିତ ।
ଷଡ଼ଭିଜ୍ଞ—ପୁଂ.ବି.ବୁଦ୍ଧଦେବ,(ପୁଂ.ବିଂ-ଚତ୍ତ୍ୱ) ଛଅଟି ବିଦ୍ୟାରେ ପାରଗ (ବ୍ୟକ୍ତି) ।
ଷଡରସ—ଗ୍ରା.ବି. ଷଡ଼୍‌ରସ ଦେଖ, ଛଅପ୍ରକାର ରସ, ରସିକତା ।
ଷଡ଼ରସବ୍ୟଞ୍ଜନ—ଗ୍ରା.ବି. ସବୁ ପ୍ରକାରର ସ୍ୱାଦଯୁକ୍ତ ତିଅଣ ।
ଷଡ଼ରସଭୋଜନ—ଗ୍ରା.ବି.ଲବଣାଦି ଛଅ ରସଯୁକ୍ତ ଖାଦ୍ୟ ଖାଇବା ।
ଷଡ଼ରସରେ ମନୁଷ୍ୟ-ଗ୍ରା.ବି.ରସିକ ବ୍ୟକ୍ତି ।
ଷଡ଼ରି—ବି. (ଷଟ୍+ଅରି) କାମକ୍ରୋଧାଦି ଷଟ୍‌ରିପୁ ।
ଷଡ଼ବିକାର—ଗ୍ରା.ବି. ଜନ୍ମ,ସ୍ଥିତି, ବୃଦ୍ଧି, ପରିଣାମ, କ୍ଷୟ ଓ ବିନାଶ ଏହି ରୂପ ପ୍ରାଣୀର ଛଅଟି ପରିବର୍ତ୍ତନ ବା ଅବସ୍ଥା ।
ଷଡ଼ଶୀତି—ବି ଓ ବିଂ. ଛୟାଅଶି, ୮୬, (ବି) ରବିସଂକ୍ରମଣବିଶେଷ,(ଯଥା-ମିଥୁନ, କନ୍ୟା,ଧନୁ, ମୀନ ଏହି ସଂକ୍ରାନ୍ତିମାନ ।
ଷଡ଼ଶୀତିଚକ୍ର—ବି. ମିଥୁନ, କନ୍ୟା,ମୀନ ଓ ଧନୁ ରାଶିସ୍ଥ ରବିଙ୍କର ଶୁଭାଶୁଭ ଜ୍ଞାନାର୍ଥ ନକ୍ଷତ୍ରାଙ୍କିତ ନରାକାର ଚକ୍ର

ବା ସନ୍ତାନ୍ତପୁରୁଷ ।
ଷଡ଼ଶୀତିତମ--ବି°.୮୬ସଂଖ୍ୟାର ପୂରକ ।
ଷଡ଼ଶୀତିସଂକ୍ରମଣ—ବି. ଷଡ଼ଶୀତି ଦେଖ
ଷଡ଼ଶ୍ୱ—ବି°. (ବ.ବ୍ରୀ) ଯହିଁରେ ଛଅଟି ଘୋଡ଼ା ଲଗିଥାଆନ୍ତି, (ବି) ଛଅଘୋଡ଼ା ଲଗିଥିବା ଗାଡ଼ି ।
ଷଡ଼ଷ୍ଟକ—କ୍ଲୀ.ବି. ଯୋଗବିଶେଷ, ବର ଓ କନ୍ୟାର ଜନ୍ମ ରାଶିଠାରୁ ପରସ୍ପର ଷଷ୍ଠ ଓ ଅଷ୍ଟମ ରାଶିସମ୍ବନ୍ଧ ।
ଷଡ଼ସ୍ର—ବି°. ଷଟ୍‌କୋଣବିଶିଷ୍ଟ ।
ଷଡ଼ହ—ପୁଂ.ବି. ଛଅଦିନ ।
ଷଡ଼ାମ୍ବା—ବି. ଅଗ୍ନି ।
ଷଡ଼ାନନ—ପୁଂ.ବି. (ଷଟ୍+ଆନନ) ବ.ବ୍ରୀ; କାର୍ତ୍ତିକେୟ ।
ଷଡ଼ାମ୍ନାୟ—ପୁଂ.ବି.( ଷଟ୍+ଆମ୍ନାୟ ), ଶିବଙ୍କର ମୁଖନିର୍ଗତ ଛଅପ୍ରକାର ତନ୍ତ୍ର ଶାସ୍ତ୍ର, (ଯଥା-ପୂର୍ବାମ୍ନାୟ, ଦକ୍ଷିଣାମ୍ନାୟ ପଶ୍ଚିମାମ୍ନାୟ, ଉତ୍ତରାମ୍ନାୟ, ଊର୍ଦ୍ଧ୍ୱାମ୍ନାୟ ଓ ଅଧୋଆମ୍ନାୟ ।
ଷଡ଼ାୟତନ—କ୍ଲୀ.ବି.ଚକ୍ଷୁ,କର୍ଣ୍ଣ,ନାସିକା, ଜିହ୍ୱା,ତ୍ୱକ୍ ଓ ମନ ।
ଷଡ଼ାବଳୀ-ସ୍ତ୍ରୀ.ବି.ଛଅଟି ବସ୍ତୁର ଶ୍ରେଣୀ ।
ଷଡ଼ାସ୍ୟ—ପୁଂ.ବି.(ବ.ବ୍ରୀ) କାର୍ତ୍ତିକେୟ ।
ଷଡ଼ାସ୍ୟଜନକାହୃତ—ବି. (ଷଡ଼ାସ୍ୟ+ଜନକ+ଅହୃତ)କାମଦେବ ।
ଷଡ଼ିଙ୍ଗି—ଗ୍ରା.ବି. ଶାଳଗଛର ଫଳ ।
ଷଡ଼ୁପାୟ—ବି.(ଷଟ୍+ଉପାୟ—ତନ୍ତ୍ର) ସ୍ତମ୍ଭନ, ମୋହନ, ବଶୀକରଣ, ଉଚ୍ଚାଟନ, ଆକର୍ଷଣ ଓ କ୍ଷୋଭନରୂପକ ଛଅଟି ତାନ୍ତ୍ରିକ ଉପାୟ ।
ଷଡ଼ୂର୍ମି-ସ୍ତ୍ରୀ.ବି.(ଷଟ୍+ଊର୍ମି)ଛଅଟି ତରଙ୍ଗ, ଷଡ଼୍‌ରିପୁ ଦେଖ ।
ଷଡ଼୍‌ଷଣ—କ୍ଲୀ.ବି. ଏକତ୍ର ମିଶ୍ରିତ ଛଅଟି କଟୁଦ୍ରବ୍ୟ; (ପିପ୍ପଳୀ, ପିପ୍ପଳୀମୂଳ, ଗୁଇଁ କାଠ, ଶୁଣ୍ଠି, ଚିତାମୂଳ ଓ ମରିଚ ମିଶ୍ରିତ ଔଷଧ ।
ଷଡ଼ୈଶ୍ୱର୍ଯ୍ୟ—ବି. (ଷଟ୍+ଐଶ୍ୱର୍ଯ୍ୟ)ଛଅପ୍ରକାର ସମ୍ପଦ ବା ପ୍ରଭୁତ୍ୱ, ସର୍ବବିଧ ସମ୍ପଦ ବା ରାଜଭୋଗ ।

ଷଣ୍ଡ—ପୁଂ. ବି. (ଷଣ୍+କ.ଡ଼) ବୃଷଭ, ଷଣ୍ଢ, ନପୁଂସକ ବ୍ୟକ୍ତିସମୂହ, ପଦ୍ମ ବା କୁମୁଦସମୂହ, ଶଙ୍ଖ,ବୃକ୍ଷ, ଯୋନିରୋଗ ବିଶେଷ, ଶୁକ୍ରାଚାର୍ଯ୍ୟଙ୍କ ପୁତ୍ର,ଛାଗଲାଦି ପଶୁଙ୍କ ଦଳ ।
ଷଣ୍ଡକ—ବି. (ଷଣ୍ଡ+ସ୍ୱାର୍ଥେ.କ) ଷଣ୍ଡ ଦେଖ ।
ଷଣ୍ଡତିଲ—ବି. ଯେଉଁ ତିଳରୁ ତେଲ ବାହାରେ ନାହିଁ, ( ଗ୍ରା.ବି-ଲ.ଅର୍ଥ ) ନପୁଂସକ ।
ଷଣ୍ଡା(ଣ୍ଢା)—ଗ୍ରା. ବି. ଶଣ୍ଡା ଦେଖ, ଷଣ୍ଡାସୁର, ଷଣ୍ଡାମାର୍କା ଦେଖ ।
ଷଣ୍ଡାମାର୍କ—ବି. ଷଣ୍ଡ ଓ ଅମର୍କ ନାମକ ଶୁକ୍ରଙ୍କର ପୁତ୍ରଦ୍ୱୟ ।
ଷଣ୍ଡା(ଣ୍ଢା)ମାର୍କା—ଗ୍ରା. ବି. ବଳବାନ୍ ଓ ପୃଥୁଳ ବ୍ୟକ୍ତି, ମଲ୍ଲ, (ଗ୍ରା.ବି°) ପୃଥୁଳ ଓ ବଳୁଆ ।
ଷଣ୍ଡାଲୀ—ସ୍ତ୍ରୀ.ବି.ଘୃତ ତୈଳାଦିର ପରିମାଣବିଶେଷ, ସାରସୀ, କାମୁକା ସ୍ତ୍ରୀ, ସରସୀ, ସରୋବର ।
ଷଣ୍ଢ—ପୁଂ.ବି.(ଷଣ୍+କ.ଢ)ନପୁଂସକ, କ୍ଳୀବ, ସ୍ୱାଧୀନ, ବୃଷ, (ଲ.ଅର୍ଥ) ଷଣ୍ଢପଣ ଯେ ପରିଶ୍ରମ ନ କରି ଘରଆଡ଼େ ବୁଲିକରି ଖାଏ, ବନ୍ଧୁନାରୀଙ୍କ ମଧ୍ୟରେ ଏକମାତ୍ର ନାୟକ ରୂପେ ବିରାଜିତ ପୁରୁଷ,ବାତୋପତାପିତ ଯୋନିରେ ଉତ୍ପନ୍ନ ନରଦ୍ୱେଷିଣୀ ସ୍ତନରହିତା ସ୍ତ୍ରୀ, (ଗ୍ରା.ବି) ବୀର, ଓଡ଼ିଶାର କୁଳୀନଙ୍କ ବଂଶର ଉପାଧି, (ଗ୍ରା.ବି°) ଶ୍ରେଷ୍ଠ ।
ଷଣ୍ଢିଆ-ଗ୍ରା.ବି°.ନପୁଂସକ,ଷଣ୍ଢସମ୍ବନ୍ଧୀୟ ।
ଷଣ୍ଢିତା—ବି. ଯୋନିରୋଗବିଶେଷ ।
ଷଣ୍ଣବତ—ବି°. ( ଷଟ୍+ନବତି+ଅ ) ଯେ ୯୬ ସଂଖ୍ୟା ପୂରଣ କରେ, ୯୬ ସଂଖ୍ୟାର ପୂରକ ।
ଷଣ୍ଣବତି—ବି. ( ଷଟ୍+ନବତି ) ଛଅ ଅଧିକ ନବେ ସଂଖ୍ୟା, ୯୬ ସଂଖ୍ୟା ।
ଷଣ୍ଣାଡ଼ୀଚକ୍ର—ସ୍ତ୍ରୀ. ବି. ମନୁଷ୍ୟମାନଙ୍କର ଜନ୍ମାଦି ଛଅଟି ନକ୍ଷତ୍ର ଘଟିତ ଚକ୍ରବିଶେଷ, ଜନ୍ମ, କର୍ମ, ସାଙ୍ଘାତିକ,ସମୁଦାୟ,ବିନାଶ ଓ ମାନସ ଏହି ଛଅ ନାଡ଼ୀ

ଷଣ୍ମନୁ—ପୁଂ. ବି. (ଷଟ୍+ମନୁ) ସୃଷ୍ଟି-ଆଦିରୁ ଏକାଦିକ୍ରମେ ରାଜତ୍ୱ କରୁଥିବା ଛ ଜଣ ମନୁ । [ ବିଶିଷ୍ଟ ।
ଷଣ୍ମାତ୍ର—ବି°. (ଷଟ୍+ମାତ୍ରା) ଛଅମାତ୍ରା
ଷଣ୍ମାସ—କ୍ଲୀ.ବି. (ଷଟ୍+ମାସ)ଛଅମାସ ।
ଷଣ୍ମାସିକ—ବି. (ଷଣ୍ମାସ+ଇକ) ଛଅମାସରେ ଯାହା ଘଟେ ।
ଷଣ୍ମାସ୍ୟ—ବି°. ( ଷଣ୍ମାସ+ଯ ) ଯାହା ଛଅ ମାସରେ ସାଧ୍ୟ ।
ଷଣ୍ମୁଖ—ପୁଂ. ବି. (ବ.ବ୍ରୀ)କାର୍ତ୍ତିକେୟ, (କ୍ଲୀ.ବି-କ.ଧା) ଛଅଟି ମୁଖ (ପୁଂ.ବି°-ବ.ବ୍ରୀ) ଛଅମୁଖ ବିଶିଷ୍ଟ ।
ଷଣ୍ମୁଖା—ସ୍ତ୍ରୀ. ବି. (ବ.ବ୍ରୀ) ଷଡ଼ଭୁଜା, ଖରଭୁଜ ।
ଷତ୍ୱ—କ୍ଲୀ. ବି. ( ଷ+ତ୍ୱ ) ମୂର୍ଦ୍ଧନ୍ୟ ଷ କାରର ଭାବ,ସ ସ୍ଥାନରେ 'ଷ'ହେବା ।
ଷତ୍ୱବିଧାନ(ବିଧି)-ଦନ୍ତ୍ୟସ ସ୍ଥାନେ ମୂର୍ଦ୍ଧନ୍ୟ ଷ ହେବାର ବ୍ୟାକରଣୋକ୍ତ ବିଧି ।
ଷର୍ଷପୀ-ସ୍ତ୍ରୀ.ବି. ଖଞ୍ଜନାକୃତି ପକ୍ଷିବିଶେଷ ।
ଷଷ୍—ବି° ଓ ବି. ଷଟ୍ ଦେଖ ।
ଷଷ୍ଟ—ତ୍ରି. ବି°. ଷଷ୍ଟିସଂଖ୍ୟା ସମ୍ବନ୍ଧୀୟ, (ବି) ଷଷ୍ଟିସଂଖ୍ୟା ।
ଷଷ୍ଟି—ସ୍ତ୍ରୀ. ବି. ( ଷଷ୍+ଦଶନ୍+ତି ) ଷାଠିଏସଂଖ୍ୟା,(ବି°) ଷାଠିଏସଂଖ୍ୟକ ।
ଷଷ୍ଟିକ—ପୁଂ. ବି. ୬୦ ଦିନରେ ପାଚିବା ଧାନ, ଷାଠିଆ ଧାନ,(ବି°) ୬୦ସଂଖ୍ୟା ଦ୍ୱାରା କ୍ରୀତ, ୬୦ ସଂଖ୍ୟକ ।
ଷଷ୍ଟିକଧାନ୍ୟ—ବି.ଶାରଦ ଧାନ୍ୟବିଶେଷ, ଷାଠିଆ ଧାନ୍ୟ ।
ଷଷ୍ଟିକା—ସ୍ତ୍ରୀ. ବି. (ଷଷ୍ଟିକ+ଆ) ଷଷ୍ଠୀ ଦେଖ, ଷଷ୍ଟିକ ଧାନ୍ୟ ମଧ୍ୟରୁ ଧାନ୍ୟବିଶେଷ । [ ଲର ଭାବ ।
ଷଷ୍ଟିକାନ୍ନ—କ୍ଲୀ. ବି. ଷଷ୍ଟିକ ଧାନ ଗୁଣ୍ଡ-
ଷଷ୍ଟିକ୍ୟା-ସ୍ତ୍ରୀ.ବି. ଷଷ୍ଟିକଧାନ୍ୟ,ଷାଠିଆଧାନ ।
ଷଷ୍ଟିକ୍ୟ—ବି°. (ଷଷ୍ଟିକ+ଯ) ଷଷ୍ଟିକ ଧାନ୍ୟର ଉପଯୁକ୍ତ (କ୍ଷେତ୍ର), ଷାଠିଆ ଧାନର (ଜମି) ।
ଷଷ୍ଟିଜ—ପୁଂ.ବି. (ଷଷ୍ଟି+ଜନ୍+କ.ଅ)

ଷଷ୍ଟିକ ଧାନ୍ୟ ।
ଷଷ୍ଟିତନ୍ତ୍ର—କ୍ଲୀ. ବ. ସାଂଖ୍ୟଶାସ୍ତ୍ର ।
ଷଷ୍ଟିତମ—ବି°.(ଷଷ୍ଟି + ତମ)୬୦ସଂଖ୍ୟାର ପୂରକ ।
ଷଷ୍ଟିଧା—ଅ.(ଷଷ୍ଟି + ଧା)ଷାଠିଏପ୍ରକାର, ଷାଠିଏ ରକମର ।
ଷଷ୍ଟିମତ୍ତ—ପୁଂ. ବ. ହସ୍ତୀ, ହାତୀ ।
ଷଷ୍ଟିଲତା—ସ୍ତ୍ରୀ. ବ. ଭ୍ରମରମାରୀ ।
ଷଷ୍ଟିବର୍ଷୀ—ପୁଂ. ବି°. ( ଷଷ୍ଟି ବର୍ଷ + ଇନ୍ ) ୬୦ବର୍ଷ ବୟସ୍କ, (ସ୍ତ୍ରୀ) ଷଷ୍ଟି-ବର୍ଷିଣୀ ।
ଷଷ୍ଟି ବାସରକ—ପୁଂ.ବ. ଷଷ୍ଟିକଧାନ୍ୟ ।
ଷଷ୍ଟିବିଦ୍ୟା-ସ୍ତ୍ରୀ.ବ.ସାଂଖ୍ୟବିଦ୍ୟା,ସାଂଖ୍ୟ-ଦର୍ଶନ ।
ଷଷ୍ଟି ଶାଳ—ପୁଂ. ବ. ଷଷ୍ଟିକ ଧାନ୍ୟ ।
ଷଷ୍ଟି ସମ୍ବତ୍ସର—ପୁଂ. ବ. ପ୍ରଭବ ଆଦି ଷାଠିଏସଂଖ୍ୟକ ବର୍ଷ ।
ଷଷ୍ଟି ସହସ୍ର—ବ. ଓ ବି°.୬୦୦୦୦ସଂଖ୍ୟା ବା ସଂଖ୍ୟକ ।
ଷଷ୍ଟିହାୟନ—ପୁଂ.ବ. ହସ୍ତୀ,ଗଜ,ଧାନ୍ୟ-ବିଶେଷ, ଷାଠିଏ ସଂଖ୍ୟକ ବର୍ଷ,(ପୁଂ. ବି°) ୬୦ବର୍ଷ ବୟସ୍କ, ( ସ୍ତ୍ରୀ ) ଷଷ୍ଟି-ହାୟନା ।
ଷଷ୍ଟ୍ୟବ୍ଦ—କ୍ଲୀ.ବ. ପ୍ରଭବଆଦି ୬୦ବର୍ଷ ।
ଷଷ୍ଠ—ବି°. (ଷଷ୍ + ଥ) ଛଅ ସଂଖ୍ୟାର ପୂରକ, ଛଅସଂଖ୍ୟକ, (ସ୍ତ୍ରୀ) ଷଷ୍ଠୀ ।
ଷଷ୍ଠମ—ବି°. ଛଅସଂଖ୍ୟାର ପୂରକ ।
ଷଷ୍ଠକାଳ—ପୁଂ. ବ. ଛଅପୂରକ କାଳ ।
ଷଷ୍ଠାଂଶ—ପୁଂ. ବ. ଛଅଭାଗ ।
ଷଷ୍ଠାନ୍ନକାଳ(କ)—ପୁଂ. ବ. ଦୁଇଦିନ ଅନାହାର ରହି ତୃତୀୟଦିନ ସାୟଂ-କାଳେ ଥରେ କରିବା ଭୋଜନ ।
ଷଷ୍ଠାନ୍ନକାଳିକ—ପୁଂ.ବି°.ଦୁଇଦିନ ଅନା-ହାର ରହି ତୃତୀୟ ଦିନରେ ସାୟଂ-କାଳରେ ଯେ ଥରେ ଭୋଜନ କରେ ।
ଷଷ୍ଠାନ୍ନକାଳକ—ପୁଂ. ବି°. ଯେଉଁ ବ୍ୟକ୍ତି ଦୁଇ ବା ତିନଦିନ ପରେ ଥରେ ଖାଏ ।
ଷଷ୍ଠଷ୍ଟମ—ବି°.ଛଅସ୍ଥାନୀୟ ଓ ଆଠସ୍ଥାନୀୟ ।
ଷଷ୍ଟିମତ୍ତ—ବ(ଷଷ୍ଟିନ୍ + ମତ୍ତ)ହସ୍ତୀ,ହାତୀ ।
ଷଷ୍ଟିହାୟନ—ବ(ଷଷ୍ଟିନ୍ + ହାୟନ)ହାତୀ, ଏକପ୍ରକାର ଧାନ, ଛଅବର୍ଷ ।
ଷଷ୍ଠୀ—ସ୍ତ୍ରୀ. ବ.(ଷଷ୍ଠ + ଈ) କାତ୍ୟାୟନୀ, ଦୁର୍ଗା, ସମ୍ବନ୍ଧପଦଯୁକ୍ତ ବିଭକ୍ତି, ତିଥି-ବିଶେଷ, ଷୋଡ଼ଶ ମାତୃକାର ଅନ୍ତର୍ଗତ ମାତୃକାବିଶେଷ, ଷଷ୍ଠୀଦେବୀ ।
ଷଷ୍ଠୀଜାୟ—ପୁଂ. ବି°. (ଷଷ୍ଠୀ + ଜାୟା) ବ.ବ୍ରୀ; ଯାହାର ଛଅଜଣ ସ୍ତ୍ରୀ ଅଛି ।
ଷଷ୍ଠୀତତ୍ପୁରୁଷ—ବ. ଯେଉଁ ସମାସରେ ପୂର୍ବପଦ ଷଷ୍ଠୀ ବିଭକ୍ତିବିଶିଷ୍ଟ ଥାଇ ଉତ୍ତର ପଦ ସଙ୍ଗେ ଯୁକ୍ତ ହୋଇଥାଏ ।
ଷଷ୍ଠୀଦେବୀ—ସ୍ତ୍ରୀ. ବ. ଷୋଡ଼ଶ ମାତୃକା ଅନ୍ତର୍ଗତ ମାତୃକାବିଶେଷ ।
ଷଷ୍ଠୀପ୍ରିୟ—ପୁଂ.ବ.(୬ତତ୍ପୁ)କାର୍ତ୍ତିକେୟ ।
ଷଷ୍ଠୀବିଭକ୍ତି—ବ.ସମ୍ବନ୍ଧପଦଯୁକ୍ତ ବିଭକ୍ତି ।
ଷାଠି—ଗ୍ରା.ବ.ଷାଠିଏ, ୬୦ସଂଖ୍ୟା, (ବି°) ୬୦ ସଂଖ୍ୟକ ।
ଷାଠିଆ—ଗ୍ରା. ବି°. ୬୦ସଂଖ୍ୟାସମ୍ବନ୍ଧୀୟ, (ଗ୍ରା.ବ)ଷାଠିଏଦିନରେ ପାଚିବା ଧାନ, ମରହଟ୍ଟୀ ବଂଶୋପାଧିବିଶେଷ ।
ଷାଠିଏ—ଗ୍ରା.ବ.ବି°.ଷଷ୍ଟି, ଛଅ ଗୁଣିତ ଦଶ, ଷାଠିଏ ମାତ୍ର ବସ୍ତୁ ।
ଷାଠିକ—ଗ୍ରା.ବ.ବି°. ଷାଠିଏ ମାତ୍ର ।
ଷାଡ଼ବ—ପୁଂ. ବ. (ଷଟ୍ + ଅବ) ଗାନ, ଗୀତ, ରସ,ସ୍ୱାଦ,ରାଗର ଜାତିବିଶେଷ, ମଧୁର ଅମ୍ଳାଦି ଛଅ ରସଯୁକ୍ତ ଖାଦ୍ୟ-ଦ୍ରବ୍ୟବିଶେଷ ।
ଷାଡ଼ବିକ—ପୁଂ. ବ. ମିଷ୍ଟାନ୍ନ ବିକେତା ।
ଷାଡ୍ ଗୁଣ୍ୟ—କ୍ଲୀ. ବ. (ଷଡ୍ଗୁଣ + ଯ) ରାଜ୍ୟ ରକ୍ଷା ନିମନ୍ତେ ରାଜାମାନଙ୍କ ଦ୍ୱାରା ଅବଲମ୍ବିତ ଷଡ଼ବିଧ ଉପାୟ, ଷଡ୍ଗୁଣ ଦେଖ ।
ଷାଣ୍ଡ—ପ୍ରା. (ବସ୍ତ୍ର)ବ. ଷଣ୍ଢ ।
ଷାଣ୍ମାତୁର—ପୁଂ. ବ. (ଷଟ୍ + ମାତୃ + ଅ) କାର୍ତ୍ତିକେୟ, ଷଡ଼ାନନ ।
ଷାଣ୍ମାସିକ—ବି°. (ଷଣ୍ମାସ + ଇକ) ଯାହା ଛଅ ମାସରେ ଥରେ ଘଟେ, ଛଅ-ମାସସମ୍ବନ୍ଧୀୟ, ଛଅମାସ ଅନ୍ତରରେ କର୍ତ୍ତବ୍ୟ (ଶ୍ରାଦ୍ଧାଦି), ପ୍ରତି ଛଅମାସରେ ଥରେ ପ୍ରକାଶିତ । [ ଦେଖ ।
ଷାଣ୍ମାସ୍ୟ—ବି°. (ଷଣ୍ମାସ + ଯ) ଷଣ୍ମାସ୍ୟ
ଷାବ୍ଦଶବ୍ଦିକ—ବି°. (ଷଡ୍ଶବ୍ଦ + ଇକ)ସଂ-ବ୍ୟାକରଣର ଷଡ୍ବିଧାନ ଓ ଶବ୍ଦବିଧାନ ପ୍ରତିପାଦକ ବ୍ୟାକରଣ ଶାସ୍ତ୍ର ।
ଷିଠାମ—ଯା.ବ. ଷ୍ଟାମ୍ପ ଦେଖ ।
ଷିଡ୍ଗ—ପୁଂ.ବି°. (ଷିଟ୍ + ମି.ଗ)କାମୁକ, ଲମ୍ପଟ, ରସିକ,(ବ) ଜାରପୁରୁଷ,ଉପ-ପତି, ନାଗର, ଲମ୍ପଟ ବ୍ୟକ୍ତି, ରସିକ ବ୍ୟକ୍ତି ।
ଷିଦଣୀ—ଗ୍ରା.ବ.କାଚବାଡ଼,କାଚର କାନ୍ଥ ।
ଷୂ—ପୁଂ. ବ. ଗର୍ଭବିମୋଚନ ।
ଷୂ—ସ୍ତ୍ରୀ. ବ. ଗର୍ଭବିମୋଚନ ।
ଷେଣ୍—ଗ୍ରା. ବ. ବୃଷ, ଦଳର ପ୍ରଧାନ ବ୍ୟକ୍ତି ।
ଷୋଅ(ହ)ଳ-ଗ୍ରା.ବ.ବି°. ଷୋଳ ଦେଖ ।
ଷୋଡ଼ନ୍—ପୁଂ. ବ. (ଷଷ୍ + ଦନ୍ତ)ଛଅଟି ଦନ୍ତବିଶିଷ୍ଟ ଷଣ୍ଢ, ଯେଉଁ ବଳଦ ବା ବୃଷ ଛଅଟା ଦାନ୍ତଛି ।
ଷୋଡ଼ଶ—ବ. ( ଷଟ୍ + ଦଶନ୍ )କ.ଧା; ଷୋଳ, ୧୬ସଂଖ୍ୟା, ଷୋହଳ ଭାଗର ୧ଭାଗ, ଷୋଡ଼ଶକ ଶ୍ରାଦ୍ଧର ଷୋହଳଟି ବିଶେଷ ଉପକରଣ, (ବି°) ଷୋହଳ ସଂଖ୍ୟକ, (ଷୋଡ଼ଶନ୍ + ଅ)୧୬ସଂଖ୍ୟାର ପୂରକ, (ସ୍ତ୍ରୀ)ଷୋଡ଼ଶୀ ।
ଷୋଡ଼ଶକ -ବ.(ଷୋଡ଼ଶନ୍ + କ)ଷୋଳ-ସଂଖ୍ୟା, ମୃତାହ ଶ୍ରାଦ୍ଧରେ ପ୍ରେତ ଉଦ୍ଦେଶ୍ୟରେ ଦେୟ ଷୋହଳଟି ବସ୍ତୁ ।
ଷୋଡ଼ଶକଳ—ପୁଂ.ବି°.(ବ.ବ୍ରୀ)ଯାହାର ଷୋହଳ କଳା ବା ଅଂଶ ଅଛି ।
ଷୋଡ଼ଶକଳା—ସ୍ତ୍ରୀ. ବ. ଚନ୍ଦ୍ରମଣ୍ଡଳର ଷୋହଳଟି ଭାଗ ମଧ୍ୟରୁ ପ୍ରତ୍ୟେକ ଭାଗ ।
ଷୋଡ଼ଶଦଳ—ବି. ଷୋହଳଟି ପାଖୁଡ଼ା, (ବି°) ଷୋହଳ ପାଖୁଡ଼ାଯୁକ୍ତ ।
ଷୋଡ଼ଶଦଳପଦ୍ମ-ବ.ଷୋଡ଼ଶାର ଦେଖ ।
ଷୋଡ଼ଶଦାନ—କ୍ଲୀ.ବ.ଷୋଡ଼ଶକ ଦେଖ, ତୁଳା ପୁରୁଷାଦି ବହୁ ପୁଣ୍ୟପ୍ରଦ ଷୋହଳ ପ୍ରକାର ମହାଦାନ ।
ଷୋଡ଼ଶଧା—ଅ.(ଷୋଡ଼ଶ + ଧା) ଷୋଳ-

ପ୍ରକାର, ଷୋଳ ରକମ ।
ଷୋଡ଼ଶପିଣ୍ଡ—ପୁଂ. ବି. ପିତୃପକ୍ଷ ଅମାବାସ୍ୟା(ମହାଳୟା)ରେ ଓ ତୀର୍ଥସ୍ଥାନରେ କରାଯିବା ଶ୍ରାଦ୍ଧ ଉପଲକ୍ଷ୍ୟେ ଓ ପାର୍ବଣ ଶ୍ରାଦ୍ଧାନ୍ତେ ପ୍ରଦତ୍ତ ୧୯ ଗୋଟି ପିଣ୍ଡ ।
ଷୋଡ଼ଶଭୁଜ—ପୁଂ. ବିଂ. ଷୋଡ଼ଶ ହସ୍ତବିଶିଷ୍ଟ,ଯାହାର ଷୋହଳଟି ହାତ ଅଛି
ଷୋଡ଼ଶଭୁଜା—ସ୍ତ୍ରୀ. ବି. ଷୋହଳ ହସ୍ତଯୁକ୍ତା ଦୁର୍ଗା ।
ଷୋଡ଼ଶମ୍—ବିଂ. ଯେ ଷୋହଳ ସଂଖ୍ୟା ପୂରଣ କରେ,ଷୋହଳ ସଂଖ୍ୟାର ପୂରକ
ଷୋଡ଼ଶମାତୃକା—ସ୍ତ୍ରୀ.ବି.ଗୌରୀ ପ୍ରଭୃତି ମଙ୍ଗଳ କର୍ମରେ ପୂଜିତା ଷୋହଳଟି ଦେବୀ ।
ଷୋଡ଼ଶବୟସୀ—ଗ୍ରା. ସ୍ତ୍ରୀ. ବିଂ. ଯେଉଁ ବାଳିକାର ବୟସ ଷୋହଳ ବର୍ଷ ।
ଷୋଡ଼ଶବିଧ—ବି. ଷୋଳପ୍ରକାର, (ବିଂ) ଷୋଳ ପ୍ରକାରର, (ସ୍ତ୍ରୀ)ଷୋଡ଼ଶବିଧା ।
ଷୋଡ଼ଶବ୍ଦା—ଗ୍ରା.ସ୍ତ୍ରୀ. ବିଂ. ଯେଉଁ ସ୍ତ୍ରୀର ବୟସ ଷୋହଳ ବର୍ଷ ।
ଷୋଡ଼ଶସହସ୍ର—କ୍ଲୀ. ବି.ଷୋଳହଜାର ।
ଷୋଡ଼ଶାଂଶ—ପୁଂ. ବି. ଷୋଳଭାଗ, ଷୋଳ ଭାଗରୁ ଏକ ଭାଗ ।
ଷୋଡ଼ଶାଂଶୁ—ପୁଂ.ବି.(ବି.ଗ୍ରା)ଶୁକ୍ରଗ୍ରହ, (ବିଂ) ଷୋଡ଼ଶ କିରଣଯୁକ୍ତ ।
ଷୋଡ଼ଶାଙ୍ଗ—କ୍ଲୀ.ବି (ବି.ଗ୍ରା)ଷୋହଳଟି ସୁଗନ୍ଧ ଦ୍ରବ୍ୟ ମିଶ୍ରିତ ଧୂପ ।
ଷୋଡ଼ଶାଙ୍ଘ୍ରି—ପୁଂ.ବି. (ବି.ଗ୍ରା) କର୍କଟ, କଙ୍କଡ଼ା,(ବିଂ) ଷୋହଳଟି ପଦବିଶିଷ୍ଟ ।
ଷୋଡ଼ଶାତ୍ମକ—ପୁଂ.ବି. ଷୋଡ଼ଶ ଗୁଣର ଚେତନାକାରୀ ।
ଷୋଡ଼ଶାତ୍ମା—ପୁଂ. ବି. ଷୋଡ଼ଶ କଳା ଅର୍ଥାତ୍ ପଞ୍ଚଭୂତ ଓ ଏକାଦଶ ଇନ୍ଦ୍ରିୟର ପ୍ରଧାନ ।
ଷୋଡ଼ଶାର—କ୍ଲୀ.ବି. ଷୋଡ଼ଶଦଳ ପଦ୍ମ, ତନ୍ତ୍ରୋକ୍ତ ଷଟ୍‌ଚକ୍ର ମଧ୍ୟସ୍ଥ ପଦ୍ମ, ଜଳାଶୟ ପ୍ରତିଷ୍ଠା ଉପଲକ୍ଷ୍ୟେ ଓ ବେଦୀ ଉପରେ ଅଙ୍କିତ ଷୋଡ଼ଶ ପାଖୁଡ଼ିଆ ପଦ୍ମର ଚକ୍ରବିଶେଷ, ଷୋଡ଼ଶ ଅଙ୍କଯୁକ୍ତ ସଂସାରଚକ୍ର, (ବିଂ-ବି.ଗ୍ରା)ଷୋଳ କୋଣବିଶିଷ୍ଟ କ୍ଷେତ୍ର, ଷୋଳ ପାଖୁଡ଼ିଆ ପଦ୍ମ,(ଷୋଡ଼ଶ+ଅର)ଷୋଳଟି ଅରବିଶିଷ୍ଟ ଚକ ।
ଷୋଡ଼ଶାର୍ଚ୍ଚିଃ—ବିଂ. ( ବି.ଗ୍ରା ) ଷୋଡ଼ଶ ଶିଖାଯୁକ୍ତ, (ପୁଂ.ବି) ଶୁକ୍ରଗ୍ରହ ।
ଷୋଡ଼ଶାବର୍ତ୍ତ—ବିଂ. (ବି.ଗ୍ରା) ଷୋଡ଼ଶ ଆବର୍ତ୍ତନ ଯୁକ୍ତ, (ପୁଂ.ବି) ଶଙ୍ଖ ।
ଷୋଡ଼ଶାବ୍ଦ—ବି.୧୬ ବରଷ, ୧୬ବର୍ଷର ପୂରକ ବର୍ଷ,(ପୁଂ.ବିଂ-ବି.ଗ୍ରା) ୧୬ବର୍ଷ ବୟସ୍କ, (ସ୍ତ୍ରୀ) ଷୋଡ଼ଶାବ୍ଦା ।
ଷୋଡ଼ଶିକ—ବିଂ. ଷୋଡ଼ଶଯୁକ୍ତ ।
ଷୋଡ଼ଶିକା—ସ୍ତ୍ରୀ. ବି. (ଷୋଡ଼ଶ+ଇକ +ଆ)ଏକପଳପରିମାଣ, ଆଠତୋଳା, ଦୁଇତୋଳା ପରିମାଣ ।
ଷୋଡ଼ଶୀ—ବି. (ଷୋଡ଼ଶ+ଇନ୍)ଯଜ୍ଞପାତ୍ରବିଶେଷ, ସସୋମକପାତ୍ର,(ସ୍ତ୍ରୀ.ବି-ଷୋଡ଼ଶ+ଈ)ଦଶମହାବିଦ୍ୟା ମଧ୍ୟରୁ ଏକତମା ଦେବୀବିଶେଷ,ଗୟାର ପ୍ରେତଶିଳାରେ ଦିଆଯିବା ପିଣ୍ଡବିଶେଷ,(ଗ୍ରା. ବି.ସ୍ତ୍ରୀ) ଷୋଡ଼ଶବର୍ଷୀୟା ସ୍ତ୍ରୀ ।
ଷୋଡ଼ଶୋପଚାର—ପୁଂ. ବି. (କ.ଧା) ଦେବ ଦେବୀପୂଜାର ଉପଲକ୍ଷ୍ୟେ ବ୍ୟବହୃତ ଷୋଳ ପ୍ରକାର ଉପକରଣ ।
ଷୋଢ଼ା—ଅ. (ଷଷ୍+ଧା)ଛଅପ୍ରକାରେ, ଷଡ଼୍‌ବିଧ, ଛଅ ଥର ।
ଷୋଢ଼ାନ୍ୟାସ—ବି. (ତନ୍ତ୍ର) ଦେବତାଙ୍କୁ ପୂଜାକରିବା ସମୟରେ ତନ୍ତ୍ରବିଧି ଦ୍ୱାରା ପୂଜକର ଶରୀରରେ ମନ୍ତ୍ରନ୍ୟାସ ।
ଷୋଢ଼ାସିଦ୍ଧ—ପୁଂ. ବିଂ. ଯେ ଷୋଢ଼ାନ୍ୟାସ ସାଧନରେ ସିଦ୍ଧିଲାଭ କରିଅଛନ୍ତି ।
ଷୋଦନ—ପୁଂ. ବି. ଯେଉଁ ବାଛୁଡ଼ି ଛଅଟି ଦାନ୍ତଅଛି, ଷୋଡ଼ନ୍ ।
ଷୋଳ--ଗ୍ରା.ବି. ଓ ବିଂ, ଷୋଡ଼ଶ ଦେଖ ।
ଷୋଳଅଣା—ଗ୍ରା. ବି. ୬୪ପଇସା, ଏକଟଙ୍କାର ଅଣାର ସମଷ୍ଟି,କୌଣସି ବିଷୟ ବା ପଦାର୍ଥର ପୂର୍ଣ୍ଣଅବସ୍ଥା, (ଗ୍ରା.ବିଂ) ସମ୍ପୂର୍ଣ୍ଣ ।
ଷୋଳକଳା—ଗ୍ରା. ବି. ଷୋଡ଼ଶକଳା ଦେଖ, (ଲ.ଅର୍ଥ) କୌଣସି ବିଷୟର ସମ୍ପୂର୍ଣ୍ଣ ଅବସ୍ଥା ।
ଷୋଳଖଣ୍ଡିଆ-ପ୍ରା. (ଜୟପୁର)ବି.ଗଉଡ଼ଙ୍କ ଶ୍ରେଣୀବିଶେଷ ।
ଷୋଳଗୁଣ—ଗ୍ରା. ବି.ଷୋଳଥର,ଷୋଳଦ୍ୱାରା ଗୁଣିତ ହେଲେ ଘଟିବା ପରିମାଣ, (ଗ୍ରା.ବିଂ) ଷୋଳଦ୍ୱାରା ଗୁଣିତ ।
ଷୋଳଡମ୍ବରୁ—ଗ୍ରା.ବି.ମେରୁଦଣ୍ଡ ମଧ୍ୟରେ ସୁଷୁମ୍ନା ନାଡ଼ୀରେ ଥିବା ଷୋହଳଟି ଗଣ୍ଠି ।
ଷୋଳପଣ—ଗ୍ରା. ବି. ଏକକାହାଣ ବା ୩୨୦ଗଣ୍ଡା ବା ୧୨୮୦ କଡ଼ା କଉଡ଼ି, ବିଷୟ ବା ବସ୍ତୁର ପୂର୍ଣ୍ଣତା,(ବିଂ)ସମ୍ପୂର୍ଣ୍ଣ (ପଦାର୍ଥ), ଗୋଟାକଯାକ, ପୂର୍ଣ୍ଣାଙ୍ଗ ।
ଷୋଳପଣି—ଗ୍ରା. ବି. ବର୍ଷକ ମଧ୍ୟରେ ରଜାଙ୍କୁ ଦେୟ ରାଜସ୍ୱର ସମ୍ପୂର୍ଣ୍ଣ ପରିମାଣ
ଷୋଳପଣିଆ—ଗ୍ରା. ବିଂ. ଷୋଳପଣ ସମ୍ବନ୍ଧୀୟ, (ଗ୍ରା.ବି) କୌଣସି ବିଷୟାଦିର ପୂର୍ଣ୍ଣ ଅଧିକାରପ୍ରାପ୍ତ ବ୍ୟକ୍ତି ।
ଷୋଳପାଲି(ପୂଜା)—ଗ୍ରା.ବି.ମନୋବାଞ୍ଛା ସିଦ୍ଧ୍ୟର୍ଥ ସତ୍ୟନାରାୟଣଙ୍କର କରାଯିବା ଷୋହଳଟି ପାଲି ବା ପୂଜା ।
ଷୋଳବରଷିଆ—ଗ୍ରା.ପୁଂ. ବିଂ. ଷୋଡ଼ଶବର୍ଷୀୟ, ପୂର୍ଣ୍ଣଯୁବା,(ସ୍ତ୍ରୀ)ଷୋଳବରଷୀ ।
ଷୋହଳ—ଗ୍ରା. ବି ଓ ବିଂ. ଷୋଡ଼ଶ ।
ଷ୍କୁଲ—ଯା. ବି. ବିଦ୍ୟାଳୟ ।
ଷ୍ଟାମ୍ପ୍—ଯା. ବି.ଗଭର୍ଣ୍ଣମେଣ୍ଟଙ୍କ ମୋହରମରା କାଗଜ, ଯହିଁରେ ଦଲିଲ ଆଦି ଲେଖାଯାଏ, ଡାକଟିକଟ, ଅକ୍ଷରାଦି ଖୋଦିତ ମୋହର । [ ଷ୍ଟିଭି ।
ଷ୍ଟେଟ୍—ଯା. ବି. ରାଜ୍ୟ, ଜମିଦାରୀ,ଭୂସଷ୍ଟ୍ରୁମ୍—ପୁଂ. ବି. ଚନ୍ଦ୍ର, ଗ୍ରନ୍ଥି ।
ଷ୍ଠୀ(ଷ୍ଠେ)ବନ—ବି.(ଷ୍ଠୀବ୍+ଭା.ଅନ)ଛେପ ପକାଇବା, (ମି.ଅନ) ଛେପ, ଖଙ୍କାର ।
ଷ୍ଠୀବୀ—ପୁଂ. ବିଂ. ( ଷ୍ଠୀବ+କ.ଇନ୍ ) ନିଷ୍ଠୀବନଯୁକ୍ତ, ଯେ ଛେପ ପକାଏ ।
ଷ୍ଠ୍ୟୂତ—ବିଂ. (ଷ୍ଠୀବ୍+ମି.ତ) ଉଦ୍ଗୀର୍ଣ୍ଣ, ଯାହା ବାନ୍ତି କରାଯାଇଅଛି,ଛେପ ରୂପେ କଢ଼ାଯାଇଥିବା, ନିରସ୍ତ ।

# ସ

ସ—ବର୍ଣ୍ଣମାଳାର ଦ୍ୱାତ୍ରିଂଶ ବ୍ୟଞ୍ଜନବର୍ଣ୍ଣ, ଉଚ୍ଚାରଣ ସ୍ଥାନ ଦନ୍ତ ।

ସ—ବି. (ସୋ+କ.ଅ) ଶିବ, ବିଷ୍ଣୁ, ଚନ୍ଦ୍ର, ବାୟୁ, ଜୀବାତ୍ମା , ଜ୍ଞାନ, ଚନ୍ଦ୍ରା, ଦୀପ୍ତି, ସର୍ପ, ଭୃଗୁ, ପର୍ବତାଦିର ଢାଲୁ-ପ୍ରଦେଶ, ପର୍ବତୋପରିସ୍ଥ ଉଚ୍ଚ ସମତଳ ପ୍ରଦେଶ, ଭୃଗୁମୁନି,ଶୃଙ୍ଗାଗ୍ରୀର୍ଯ୍ୟ,ପ୍ରଶସ୍ତ-ମାର୍ଗ, ପକ୍ଷୀ ।

ସଅଁ—ଗ୍ରା.ବି. (ବୈଦ୍ୟକ) ଏକପ୍ରକାର ଆରଣ୍ୟ ଗୁଳ୍ମ ।

ସଅଁକରିବା—ପ୍ରା.(କେନ୍ଦ୍ରାପଡ଼ା)କ୍ରି.ସମାନ କରିବା, ଚିକ୍କଣ କରିବା ।

ସଅଁତିରିଶ(ଶି)—ଗ୍ରା.ବି ଓ ବିଂ. (ସଂ-ସପ୍ତତ୍ରିଂଶତ୍) ସଇଁତ୍ରିଶ ଦେଖ ।

ସଅଁବାର—ଗ୍ରା.ବି. ( ସଂ-ସୋମବାର ) ସୋମବାର,ଶିବଙ୍କ ଉଦ୍ଦେଶ୍ୟରେ ଅନୁ-ଷ୍ଠିତ ସୋମବାର ଉପବାସ ।

ସଅଁବାରଆ(ୟା)—ଗ୍ରା.ବିଂ.ସୋମବାର-ସମ୍ବନ୍ଧୀୟ, ସୋମବାରରେ ଘଟିବା ।

ସଅଁରଜ—ଗ୍ରା.ବି.(ସଂ-ସୋମରାଜୀ)ସୋମ-ରାଜୀ ଦେଖ ।

ସଅଁସଅଁ—ଗ୍ରା. ଅବ୍ୟ. (ଧ୍ୱନ୍ୟନୁକରଣ) ସଁସଁ ଦେଖ ।

ସଅକବଅକ—ଯା.ବି. କାଇଲ, ଦୋଷ, ତ୍ରୁଟି, ଭୁଲ୍, ଭ୍ରମ । [ ଦେଖ ।

ସଅ(ହ)ଣିକ—ଗ୍ରା.ବି. ଓ ବିଂ. ସହଣି

ସଅପ—ଗ୍ରା.ବି. ସପ ଦେଖ । [ ଦେଖ ।

ସଅ(ହ)ରଜ—(ସଂ-ସୋମରାଜୀ)ସୋମରାଜୀ

ସଅଳ—ଗ୍ରା.କ୍ରି. ବିଂ. ସହଳ, ଜଲଦି, ଶୀଘ୍ର, ଚଞ୍ଚଳ, ସତ୍ୱର, ପ୍ରତ୍ୟୁଷରେ ।

ସଅଳଆ—ଗ୍ରା.ବିଂ. ସାଧାରଣ ସମୟର ଅପେକ୍ଷାକୃତ ପୂର୍ବେ ଘଟିବା ।

ସଅଳେ—ଗ୍ରା.ଅବ୍ୟ. ଶୀଘ୍ର ।

ସଇ(ଈ)—ଗ୍ରା.ସ୍ତ୍ରୀ.ବି. ( ସଂ-ସଖୀ ) ସଖୀ ଦେଖ, (ଯା.ଅବ୍ୟ) ସନ୍ଧ୍ୟ ଦେଖ ।

ସଇଁ—ଗ୍ରା.ଅବ୍ୟ.(ଧ୍ୱନ୍ୟନୁକରଣ)କାୟିକ ପରିଶ୍ରମଜନିତ ଘନନିଶ୍ୱାସ,ସଇଁସଇଁ

ସଇକତ—ଗ୍ରା.ବି.(ପଦ୍ୟ)ସୈକତ ଦେଖ

ସଇଗା—ପ୍ରା.( ଗଡ଼ଜାତ ) ଏକପ୍ରକାର ବନ୍ୟ ଆଳୁ ।

ସଇତମ୍ବା(ମା)—ପ୍ରା.(ସିଂହଭୂମ)ବି. ପିଦୁଡ଼ି

ସଇତାନ—ଯା.ବି. ଖ୍ରୀଷ୍ଟାନ୍, ୟିହୁଦୀ ଓ ମୁସଲମାନଙ୍କ ଧର୍ମଶାସ୍ତ୍ର ବର୍ଣ୍ଣିତ ଈଶ୍ୱର-ଦ୍ରୋହୀ ସ୍ୱର୍ଗଦୂତ, ଭୂତ, ମୃତବ୍ୟକ୍ତିର ପ୍ରେତ, ପଠାଣଭୂତ, (ଲ.ଅର୍ଥ) କ୍ରୂର, ପାପୀ ଓ ଦୁରାଚାର ବ୍ୟକ୍ତି ।

ସଇତାନି—ଯା.ବି. ଖଳତା, ଦୁଷ୍ଟାମୀ, (ବିଂ) ସଇତାନସମ୍ବନ୍ଧୀୟ, ଆସୁରିକ, ଖଳ, ଦୁଷ୍ଟତାଯୁକ୍ତ, ମନ୍ଦ ।

ସଇତାନିଆ—ଗ୍ରା. ବିଂ. ସଇତାନପରି ଖଳ (ବ୍ୟକ୍ତି), ଅସୁବିଧାଜନକ ( କାର୍ଯ୍ୟ), ଅତି ମନ୍ଦ । [ ୩୭ ।

ସଇଁତିରିଶ(ଶି)—ଗ୍ରା.ବି ଓ ବିଂ. ସପ୍ତତ୍ରିଂଶ,

ସଇନ(ନ୍)—ଗ୍ରା.ବି. ସେନା, ଫଉଜ, ବନ୍ଧୁକ୍ଲୋକ ।

ସଇନ୍ଦୁ—ଗ୍ରା. (ପ୍ରାଚୀନ) ବିଂ. ସଙ୍ଗମର ଅବ୍ୟବହିତ ପରେ ଭୂମିଷ୍ଠ (ସନ୍ତାନ) ।

ସଇନ୍ଧ୍ରୀ(ନ୍ତ୍ରୀ)—ଗ୍ରା.(ପଦ୍ୟ)ସ୍ତ୍ରୀ.ବି. ଅନ୍ତଃ-ପୁରସ୍ଥା ରାଣୀ ପ୍ରଭୃତିଙ୍କର ସେବା-କାରିଣୀ ଭୃତ୍ୟା ।

ସଇମୋହର(ର)—ଯା. ବି. ଭାରପ୍ରାପ୍ତ କର୍ମଚାରୀଙ୍କ ସ୍ୱାକ୍ଷର ଓ ଅଫିସ ମୋହର ମରାଯାଇଥିବା ସରକାରୀ କାଗଜପତ୍ରର ଅବିକଳ ନକଲ ।

ସଇରତ୍—ଯା.ବି. ଜମିଦାରୀର ଅନ୍ତର୍ଗତ ଭୂମିର ସ୍ଥାୟୀ ରାଜସ୍ୱ ଛଡ଼ା ମଛଦିଆ ବନକର ଫଳକର ଆଦି ଅସ୍ଥାୟୀ ଖଜଣା, ଅତିରିକ୍ତ କର ।

ସଇଲ୍—ଗ୍ରା.କ୍ରି.ସହିବା କ୍ରିୟାର ବର୍ତ୍ତମାନ ସାମୀପ୍ୟ ଭୂତକାଳର ତୃତୀୟପୁରୁଷ ଏକବଚନ (ସେ) ସହିଲର ଅନ୍ୟରୂପ, ସହିବା କ୍ରିୟାର ବର୍ତ୍ତମାନ ସାମୀପ୍ୟ ଭୂତକାଳ ତୃତୀୟପୁରୁଷ ଏକବଚନ ସହିଲର ଅନ୍ୟରୂପ ।

ସଇ(ହି)ସମ୍ଭାଳି—ଗ୍ରା.କ୍ରି.ବିଂ.ସାବଧାନ-ହୋଇ,ଆଗପଛ ବିଚାରକରି,ଅପେକ୍ଷା-ପୂର୍ବକ ।

ସଇସ—ଯା. ବି. ଅଶ୍ୱପାଳକ, ଘୋଡ଼ାର ଖବର ବୁଝିବା ଚାକର ।

ସଇସି—ଯା.ବି. ସଇସର କାମ,(ଯା.ବିଂ) ସଇସିଆ ଦେଖ ।

ସଇସିଆ—ଗ୍ରା.ବିଂ. ସଇସର ଯୋଗ୍ୟ, ସଇସସମ୍ବନ୍ଧୀୟ । [ ଦେଖ ।

ସଈସଙ୍ଗାତ—ଗ୍ରା. ପୁଂ. ବି. ସହିସଙ୍ଗାତ

ସଉ(ଓ)ଆ—ଗ୍ରା.ବି. କୌଣସି ରାଶି ଓ ତହିଁସଙ୍ଗେ ତହିଁରୁ ¼,ବିଂ.¼ ପରିମିତ ।

ସଉ(ଓ)ଆର—ଯା. ବି. (ସଂ-ଅଶ୍ୱକାର) ଯେ ଯାନାଦିରେ ଚଢ଼େ, ଆରୋହୀ ।

ସଉକ୍(ଖ,କ,ଖି)-ଗ୍ରା.ବିଂ.(ସଂ-ସୌଖୀନ) ଯେ କୌଣସି ବିଶେଷବସ୍ତୁ ବା ପୋଷାକ ପ୍ରତି ସର୍ବଦା ବିଶେଷ ଆଗ୍ରହାନ୍ୱିତ, ବିଳାସପୂର୍ଣ୍ଣ, ବିଳାସପ୍ରିୟ,ରସଜ୍ଞ,ରସିକ, ସୁଖେଚ୍ଛୁ,(ଗ୍ରା.ବି-ସଂ-ସୌଖ୍ୟ)କୌଣସି ବିଶେଷ ବସ୍ତୁ ପ୍ରତି ଆଗ୍ରହ ବା ଆଦର, ମଉଜ ବା ଅଯ୍ୟସ୍,ସୁଖଭୋଗ, ବିଳାସ, ବିଳାସୀ ବ୍ୟକ୍ତି ।

ସଉକି(ଖି)ନ୍(ନ)—ଯା. ବିଂ. କୌଣସି ବିଷୟପ୍ରତି ଅଭିଳାଷୀ,ରସିକତାବିଶିଷ୍ଟ, ବିଳାସୀ, (ବି) ରସିକ ବ୍ୟକ୍ତି, ସଉକ୍ ଦେଖ ।

ସଉକି(କ୍ଲି)ନଆଁ—ଗ୍ରା. ବିଂ.ସଉକ୍ ଦେଖ

ସଉଖ୍ୟ—ଗ୍ରା.ବି. (ସଂ-ସୌଖ୍ୟ) ସୌଖ୍ୟ ଦେଖ ।

ସଉତୁଣିଆଁ—ଗ୍ରା.ବିଂ. ସପତ୍ନୀସମ୍ବନ୍ଧୀୟ, ସପତ୍ନୀର ଉଦରଜାତ (ସନ୍ତାନ) ।

ସଉତୁଣିଆଁଘର—ଗ୍ରା.ବି. ଯେଉଁ ପରି-ବାରରେ କର୍ତ୍ତାଙ୍କର ଏକାଧିକ ପତ୍ନୀ-ଥାନ୍ତି ।

ସଉତୁଣିଆଁପୁଅ—ଗ୍ରା. ପୁଂ. ବି. ସପତ୍ନୀ ପୁତ୍ର, ସାବତପୁଅ ।

ସଉତୁଣୀ—ଗ୍ରା. ସ୍ତ୍ରୀ. ବି. (ସଂ-ସପତ୍ନୀ) ସମାନପତିକା ସ୍ତ୍ରୀ ।

ସଉଦା—ଯା. ବି. କିଣାବିକା ବେପାର, କାରବାର, ପଣ୍ୟଦ୍ରବ୍ୟର କ୍ରୟବିକ୍ରୟ, (ଲ.ଅର୍ଥ)ସଂସାରର କାର୍ଯ୍ୟ,ପଣ୍ୟଦ୍ରବ୍ୟ, ଦୋକାନୀ ବା ବେପାରୀଠାରୁ କିଣାଯିବା ପଣ୍ୟ ଦ୍ରବ୍ୟ, ପଣ୍ୟଦ୍ରବ୍ୟର କ୍ରୟ,ପଣ୍ୟ ଦ୍ରବ୍ୟର କ୍ରୟ ବିକ୍ରୟର ଚୁକ୍ତି ।

ସଉଦାଗର-ଯା.ବି.ବଡ଼ବଣିକ,ବେପାରୀ ।

ସଉଦାଗରି-ଯା.ବି.ବଣିଗ୍‌ବୃତ୍ତି,ବାଣିଜ୍ୟ, ବ୍ୟବସାୟ,କାରବାର, (ବିଂ) ସଉଦାଗର ସମ୍ବନ୍ଧୀୟ, ବାଣିଜ୍ୟ ସମ୍ବନ୍ଧୀୟ ।

ସଉଦାଗରିଆ—ଯା. ବିଂ. ସଉଦାଗର ସମ୍ବନ୍ଧୀୟ ।

ସଉଦାପଟିବା—ଗ୍ରା.ବି.କ୍ରେତା ଓ ବିକ୍ରେତାଙ୍କ ମଧ୍ୟରେ କୌଣସି ପଣ୍ୟଦ୍ରବ୍ୟର ଭାଉ ଛିଣ୍ଡିବା ।

ସଉଦାପତର(ପତ୍ର,ପାତ୍ର)-ଗ୍ରା.ବି.ଦୋକାନରୁ କିଣାଯିବା ନାନାପ୍ରକାରର ପଣ୍ୟଦ୍ରବ୍ୟ, ପଣ୍ୟଦ୍ରବ୍ୟସମୂହ, ନାନାପ୍ରକାର ପଣ୍ୟଦ୍ରବ୍ୟର କ୍ରୟ । [ ଦେଖ ।

ସଉଧ—ଗ୍ରା. ବି.(ପଦ୍ୟ,ସଂ-ସୌଧ)ସୌଧ

ସଉନ୍ଦର୍ଯ୍ୟ--ଗ୍ରା.ବି.(ପଦ୍ୟ,ସଂ-ସୌନ୍ଦର୍ଯ୍ୟ) ସୁନ୍ଦରତା, ଶୋଭା ।

ସଉପ—ଗ୍ରା. ବି. ସପ ଦେଖ ।

ସଉପଚଟେଇ—ଗ୍ରା. ବି. ସଅମସିଣା ।

ସଉବଲ—ଗ୍ରା.ବି. (ପଦ୍ୟ,ସଂ-ସୌବଲ) ସୌବଲ ଦେଖ ।

ସଉଭାଗୀ—ଗ୍ରା. ବିଂ.ସ୍ତ୍ରୀ.(ସଂ-ସୌଭାଗ୍ୟବତୀ) ସୌଭାଗ୍ୟବତୀ, ପତିଙ୍କ ସ୍ନେହପ୍ରାପ୍ତା ।

ସଉଭାଗ୍ୟ—ଗ୍ରା.ବି.(ପଦ୍ୟ,ସଂ-ସୌଭାଗ୍ୟ) ସୌଭାଗ୍ୟ ଦେଖ ।

ସଉରଭ—ଗ୍ରା. ବି.(ପଦ୍ୟ-ସଂ-ସୌରଭ) ସୌରଭ ଦେଖ ।

ସଉରି—ଗ୍ରା.ବି.(ସଂ-ସୌରି)ତୀର୍ଥବିଶେଷ. (ପଦ୍ୟ) ଶନିଗ୍ରହ ।

ସଏନ୍‌ବାର—ଗ୍ରା. (ପାଟଣା,ବି)ଶନିବାର ।

ସଏର୍—ଯା. ବି. ସଇରତ୍ ଦେଖ ।

ସଏରତା—ଯା. ବି. ଗୁଆକାତି ।

ସଓୟାର—ଯା. ବି. ଅଶ୍ୱାରୋହୀ, ରାଜାମାନଙ୍କର ବହିର୍ଭ୍ରମଣ ।

ସଓୟାରି—ଯା. ବି. ଯାନବିଶେଷ,ପାଲିଙ୍କି ପ୍ରଭୃତି, ସବାରି, ବାଦ୍ୟଯନ୍ତ୍ରବିଶେଷ ।

ସଓୟାଲ—ଯା. ବି. ପ୍ରଶ୍ନ,ଜେରା,ଜିଜ୍ଞାସା, ଅନୁରୋଧ, ପୂର୍ବପକ୍ଷ ।

ସଂ—ଗ୍ରା. ବି.(ସାଙ୍କେତିକ)ସଂସ୍କୃତ,ସଂଜ୍ଞା, ବିଶେଷ୍ୟପଦ,ସବ୍‌ଡିଭିଜନ୍,(ଅ)ଶୋଭନାର୍ଥ, ସମାର୍ଥ, ସଙ୍ଗତାର୍ଥ, ପ୍ରକୃଷ୍ଟାର୍ଥ, ପ୍ରକର୍ଷ, ଶ୍ଳେଷ, ନୈରନ୍ତର୍ଯ୍ୟ, ଔଚିତ୍ୟ ଅର୍ଥ ବିଜ୍ଞାପକ ଉପସର୍ଗବିଶେଷ ।

ସଂକଟ+ବିଂ.(ସମ୍+କଟ+କ.ଅ) ନିବିଡ଼ ଜନତାଯୁକ୍ତ, ଅଭେଦ୍ୟ, ଅନୁତ୍ତୀର୍ଯ୍ୟ, ଅନତିକ୍ରମ୍ୟ, ଅପ୍ରଶସ୍ତ, ସଂକୀର୍ଣ୍ଣ, ସରୁ, କଷ୍ଟମୟ, ବିପତ୍ତିଜନକ ।

ସଂକଟ—ବି. ବିପଦ, ଆପଦ, ଆସନ୍ନ ବିପଦ, ଭିଡ଼, ଜନତା, ଦୁଃଖ, କ୍ଲେଶ, ବିଷମ ଅବସ୍ଥା, ଅଖାଡ଼ୁଆ, ଅସଜ,(ଗ୍ରା.ବି) ଗିରିସଂକଟ, (ବିଂ—ସମ୍+କଟ+କ.ଅ) ନିବିଡ଼ ଜନତାଯୁକ୍ତ, ଅଭେଦ୍ୟ, ଅନୁତ୍ତୀର୍ଯ୍ୟ, ସଂକୀର୍ଣ୍ଣ, କଷ୍ଟମୟ, ବିପତ୍ତିଜନକ, (ସ୍ତ୍ରୀ) ସଂକଟା ।

ସଂକଟକାଳ—ବି. ( କ.ଧା ) ବିପତ୍କାଳ, ଅଖାଡ଼ୁଆ ବେଳ ।

ସଂକଟତାରଣ—ବି. (୬ତତ୍) ବିପଦରୁ ଉଦ୍ଧାର କରିବା, (ପୁଂ.ବିଂ) ସଂକଟରୁ ଉଦ୍ଧାରକର୍ତ୍ତା,(ସ୍ତ୍ରୀ) ସଂକଟତାରିଣୀ ।

ସଂକଟପୂର୍ଣ୍ଣ—ବିଂ. (୩ତତ୍)ବିପତ୍ତିପୂର୍ଣ୍ଣ ।

ସଂକଟସଂକୁଳ—ବିଂ. (୩ତତ୍) ଯେଉଁ ସ୍ଥାନରେ ବା ଅବସ୍ଥାରେ ମନୁଷ୍ୟକୁ ବା ପ୍ରାଣୀକୁ ଚାରିଆଡ଼େ ବିପଦ ଘେରିଥାଏ ।

ସଂକଟସ୍ଥଳ—ବି. (କ.ଧା) ବିପଦାକୀର୍ଣ୍ଣ ସ୍ଥାନ, ବିପତ୍ତିପୂର୍ଣ୍ଣ ବିଷୟ, (ଭୂଗୋଳ ପରିଭାଷା) ଯୋଜକ, ଭୂକନ୍ଦର ।

ସଂକଟା—ସ୍ତ୍ରୀ.ବି.(ସଂକଟ+ଆ) ଦେବୀବିଶେଷ,ସଂକଟାଇ ଠାକୁରାଣୀ,ଦୁର୍ଗାଙ୍କ ଗ୍ରାମପୂଜିତା ମୂର୍ତ୍ତିବିଶେଷ, ଅଷ୍ଟ ଯୋଗିନୀଙ୍କ ମଧ୍ୟରୁ ଏକତମା, କାଶୀରେ ପ୍ରତିଷ୍ଠିତା ଓ ପୂଜିତା ଦେବୀପ୍ରତିମା ।

ସଂକଟାକୀର୍ଣ୍ଣ—ବିଂ. (୩ତତ୍)ସଂକଟାପନ୍ନ ଦେଖ ।

ସଂକଟାକ୍ଷ—ବି. (ସମ୍+କଟାକ୍ଷ) ଧବ-କଟାକ୍ଷ, ଅର୍ଜୁନ ବୃକ୍ଷ, ( ବିଂ ) କଟାକ୍ଷ ସହିତ, କଟାକ୍ଷଯୁକ୍ତ (ଦୃଷ୍ଟି) ।

ସଂକଟାପନ୍ନ—ବିଂ.(୩ତତ୍)ବିପତ୍ସଂକୁଳ (ଅବସ୍ଥା ବା ସ୍ଥାନ), ବିପନ୍ନ ।

ସଂକଥନ—ବି. (ସମ୍+କଥ୍+ଭା.ଅନ) କଥୋପକଥନ, ବାକ୍ୟାଳାପ ।

ସଂକର—ବି.(ସମ୍+କୃ+ଭା.ଅ)ଏକାଧିକ ବସ୍ତୁର ମିଶ୍ରଣ, ବିରୁଦ୍ଧ ପଦାର୍ଥମାନଙ୍କର ମିଶ୍ରଣ, ବର୍ଣ୍ଣସଙ୍କର ଜାତି ବା ବ୍ୟକ୍ତି, ( ସମ୍+କୃ+ମଂ.ଅ ) ଆବର୍ଜନା, ସମ୍ମାର୍ଜନୀକ୍ଷିପ୍ତ ଧୂଳ୍ୟାଦି, ସାଙ୍କୁଚମାଛ, ଅର୍ଥାଲଙ୍କାରବିଶେଷ ।

ସଂକରା—ଗ୍ରା. ବି. ଏକପ୍ରକାର ବଣୁଆ କଦଳୀ, (ଗାଳି) ବର୍ଣ୍ଣସଙ୍କର ।

ସଂକରାନୁଭୂତ-ବି.କାବ୍ୟାଲଙ୍କାରବିଶେଷ

ସଂକରାନ୍ତି—ଗ୍ରା. ବି. (ପଦ୍ୟ) ସଂକ୍ରାନ୍ତି ଦେଖ ।

ସଂକରୀ—ସ୍ତ୍ରୀ. ବି. (ସଂକର+ଈ)ନବଦୂଷିତା କନ୍ୟା, ଯେଉଁ କନ୍ୟା ଅଳ୍ପଦିନହେଲା ଭ୍ରଷ୍ଟା ହୋଇଅଛି ।

ସଂକରୀକରଣ—(ସଂକର+ଚ୍ୱି+କୃ+ଭା.ଅନ) ନାନାବିଧ ପାପାନ୍ତର୍ଗତ ପାପବିଶେଷ, ଗ୍ରାମ୍ୟ ଓ ଆରଣ୍ୟ ପଶୁମାନଙ୍କର ବଧ,ବହୁପଦାର୍ଥର ଏକତ୍ର ମିଶ୍ରଣ, ଦୁଇ ବିଭିନ୍ନ ଜାତୀୟ ପଶୁ ବା ବୃକ୍ଷାଦିକୁ ଯୋଡ଼ିକରି ଦୁଇଜାତିର ଗୁଣବିଶିଷ୍ଟ ଜୀବ ବା ବୃକ୍ଷାଦି ଉତ୍ପାଦନ କରାଇବା କ୍ରିୟା, ଜାତି ଭ୍ରଂଶକରଣ ।

ସଂକର୍ଷ—ପୁଂ. ବି. (ସଂ+କୃଷ୍+ଅ) ସମ୍ୟକ୍ କର୍ଷଣ, ଆକର୍ଷଣ ।

ସଂକର୍ଷଣ—ବି. (ସମ୍+କୃଷ୍+ଭା.ଅନ) ସମ୍ପୂର୍ଣ୍ଣରୂପେ କର୍ଷଣ,ଆକର୍ଷଣ,(ମଂ.ଅନ) କୃଷିକର୍ମ, (କ.ଅନ) ବଳରାମ, ଶିବ, ବିଷ୍ଣୁଙ୍କର କଳାବିଶେଷ ।

ସଂକଳ--ବି.(ସମ୍+କଳ+ଅ)ସଂକଳନ, ଯୋଗ, ଏକତ୍ରୀକରଣ, ସଞ୍ଚୟ,ମିଳନ, ଅଙ୍କ ମିଶାଣ, ଠିକ୍ ।

ସଂକଳନ(ନା)—ବି. ( ସମ୍+କଳ+ ଅନ+ଆ) ସଂକଳ ଦେଖ ।

ସଂକଳପ—ଗ୍ରା. ବି. (ପଦ୍ୟ) ସଂକଳ୍ପ

ସଂକଳୟିତା—ବି. ଓ ବିଂ. ପୁଂ.(ସମ୍+ କଳ+କ.ତ୍ର) ସଂକଳନକାରୀ,ସଂଗ୍ରହ-କର୍ତ୍ତା, (ସ୍ତ୍ରୀ) ସଂକଳୟିତ୍ରୀ ।

ସଂକଳିତ—ବିଂ. (ସମ୍+କଳ+ମିଂ.ତ) ସଂଗୃହୀତ, ଏକତ୍ର ଯୋଗ କରାଯାଇ-ଥିବା ରାଶିମାନ ।

ସଂକଳ୍ପ—ବି.(ସମ୍+କ୍ଳୃପ୍+ଭା.ଅ)ବାଞ୍ଛା, ମନୋରଥ, ମନୋବାଞ୍ଛା, ଇଚ୍ଛା,ଅଭି-ପ୍ରାୟ, ମନରେ କରାଯାଇଥିବା ପ୍ରତିଜ୍ଞା, ଧର୍ମ କର୍ମ ଓ ବ୍ରତାଦି କରିବା ପୂର୍ବରୁ ମନରେ ଯେଉଁ ଫଳ ବାଞ୍ଛା କରାଯାଏ. ବ୍ରତ ଓ ପୂଜାଦି କରିବା କର୍ତ୍ତା ସଂକ-ଳ୍ପିତ ଉଦ୍ଦେଶ୍ୟସଂବଳିତ ଯେଉଁ ମନ୍ତ୍ରାଦି ବା ବଚନ ଉଚ୍ଚାରଣ କରନ୍ତି । [ ଦେଖ ।

ସଂକଳ୍ପକ—ବିଂ. ସଂକଳ୍ପବିଶିଷ୍ଟ ।

ସଂକଳ୍ପଜ—ବିଂ. (ସଂକଳ୍ପ+ଜନ୍+ କ.ଅ)ଇଚ୍ଛାରୁ ଉତ୍ପନ୍ନ,ପ୍ରଥମେ ସଂକଳ୍ପ ଉଚ୍ଚାରଣ କରି କରାହିବା କାର୍ଯ୍ୟ ।

ସଂକଳ୍ପଜନ୍ମା—ବି. (ବ.ବ୍ରୀ) ମନସିଜ, କନ୍ଦର୍ପ, କାମ ।

ସଂକଳ୍ପନ—କ୍ଲୀ. ବି. (ସଂକଳ୍ପ+ଅନ) ସଂକଳ୍ପ, ଅଭିଳାଷ, ଇଚ୍ଛା ।

ସଂକଳ୍ପନା—ସ୍ତ୍ରୀ.ବି. (ସଂକଳ୍ପନ+ଆ) ଇଚ୍ଛା, ଅଭିଳାଷ ।

ସଂକଳ୍ପନାମୟ—ବିଂ.ସଂକଳ୍ପନାସ୍ୱରୂପ, (ସ୍ତ୍ରୀ) ସଂକଳ୍ପନାମୟୀ, ଅଣିମାଦି ସିଦ୍ଧି ।

ସଂକଳ୍ପନୀୟ—ବିଂ. (ସଂକଳ୍ପ+ଅନୀୟ) ସଂକଳ୍ପାର୍ହ, ସଂକଳ୍ପଯୋଗ୍ୟ ।

ସଂକଳ୍ପବଚନ(ବାକ୍ୟ)—ବି. ଧର୍ମକାର୍ଯ୍ୟ ଉଦ୍ଦେଶ୍ୟରେ ବୋଲାହିବା ମାନସିକ ଅଭିଳାଷ ସୂଚକ ସଂସ୍କୃତ ବାକ୍ୟ ।

ସଂକଳ୍ପବିକଳ୍ପ-ବି.ଅଭିଳାଷ ଓ ସନ୍ଦେହ

ସଂକଳ୍ପଭବ—ପୁଂ ବି. କାମଦେବ,(ବିଂ) ଅଭିଳାଷ ସମ୍ଭୂତମାତ୍ର । [ ମଦନ ।

ସଂକଳ୍ପଯୋନି—ବି.(ବ.ବ୍ରୀ)କାମଦେବ

ସଂକଳ୍ପରମଣୀ--ବି.(କ.ଧା) ମନୋରଥ ନାୟିକା, ମାନସ ନାୟିକା ।

ସଂକଳ୍ପବାନ୍—ପୁଂ. ବିଂ. (ସଂକଳ୍ପ+ ବତ୍) ସଂକଳ୍ପବିଶିଷ୍ଟ ।

ସଂକଳ୍ପସିଦ୍ଧ—ବିଂ.(୩ତତ୍)ଯାହା ମାନ-ସିକ ଅଭିଳାଷ ଦ୍ୱାରା ନିର୍ମିତ ହୋଇ-ଅଛି, ଯେ ମାନସିକ ବଳଦ୍ୱାରା ଅତି-ମାନୁଷ ଶକ୍ତି ଲାଭକରିଅଛନ୍ତି, ( ସ୍ତ୍ରୀ ) ସଂକଳ୍ପସିଦ୍ଧା ।

ସଂକଳ୍ପସିଦ୍ଧି—ବି. (୬ତତ୍) ମନୋରଥ ସିଦ୍ଧି, ଅଭିଳାଷର ପୂରଣ ।

ସଂକଳ୍ପିତ—ବିଂ.(ସମ୍+କ୍ଳୃପ୍+ମିଂ ତ) ଅଭିଳଷିତ, ବାଞ୍ଛିତ, କର୍ତ୍ତବ୍ୟ ରୂପେ ସ୍ଥିରୀକୃତ, ଯାହା ( ବ୍ରତାଦି ) ସଂକଳ୍ପ ବାକ୍ୟଦ୍ୱାରା ଆରବ୍ଧ ହୋଇଅଛି, ଚିନ୍ତିତ, ଖ୍ୟାତ ।

ସଂକଳ୍ପିତବ୍ୟ--ବିଂ. (ସଂକଳ୍ପ+ତବ୍ୟ) ସଂକଳ୍ପଯୋଗ୍ୟ, ସଂକଳ୍ପର ଉପଯୁକ୍ତ ।

ସଂକଳ୍ପିତାର୍ଥ—ବି. (କ.ଧା) ସଂକଳ୍ପିତ ଉଦ୍ଦେଶ୍ୟ, ଅଭିଳଷିତ ବିଷୟ ।

ସଂକସୁକ—ବିଂ.(ସମ୍+କସ୍+କ.ଉକ) ଅସ୍ଥିର, ଚଞ୍ଚଳ, ସଂକୀର୍ଣ୍ଣ, ଅପବାଦ-କାରକ,ଦୁର୍ବଳ, ଦୁର୍ଜନ,ଖଳ,ଅବିଚାର୍ଯ୍ୟ, (ସ୍ତ୍ରୀ) ସଂକସୁକା ।

ସଂକାର— ବି. ( ସମ୍+କୃ+ମିଂ.ଅ ) ସମ୍ମାର୍ଜନୀକ୍ଷିପ୍ତ ଧୂଳି ଆଦି,ଅଗ୍ନିର ଚଡ଼ଚଡ଼ ଶବ୍ଦ ।

ସଂକାରୀ—ସ୍ତ୍ରୀ.ବି.(ସଂକାର+ଈ)ସଂକରୀ, ନବଦୂଷିତା କନ୍ୟା ।

ସଂକାଳନ—କ୍ଲୀ.ବି. ସକଂଳନ ଶବ୍ଦାର୍ଥ ।

ସଂକାଶ— ବିଂ. (ସମ୍+କାଶ୍+କ.ଅ) ତୁଲ୍ୟ, ସଦୃଶ, ସମାନବର୍ଣ୍ଣ ବା କାନ୍ତି-ବିଶିଷ୍ଟ, ସମୀପବର୍ତ୍ତୀ, ନିକଟବର୍ତ୍ତୀ,(ସ୍ତ୍ରୀ) ସଂକାଶା ।

ସଂକିଳ—ବି. ( ସମ୍+କିଳ+କ.ଅ ) ଦହନୋଲ୍କା, ଅଗ୍ନି ପିଣ୍ଡ,ମସାଲ,ଜ୍ୱଳନ୍ତ ଅଗ୍ନି ।

ସଂକୀର୍ଣ୍ଣ-ବିଂ.(ସମ୍+କୃ+ମିଂ.ତ) ଅପ୍ରସର, ଅପ୍ରଶସ୍ତ, କ୍ଷୁଦ୍ର,ସୀମାବଦ୍ଧ,ସରୁ,ଶ୍ରେଷ୍ଠ, ସଙ୍କୁଚିତ, ଉଦାରତାହୀନ, ଅନୁଦାର, ନିବିଡ଼, ଘନ, ଜନତାଯୁକ୍ତ, ସମାକୀର୍ଣ୍ଣ, ପରିବ୍ୟାପ୍ତ, ବିକ୍ଷିପ୍ତ, ନାନାବସ୍ତୁମିଳିତ, ଅପବିତ୍ର, ନାନାଜାତିର ମିଶ୍ରଣରେ ଜାତ,ପରସ୍ପର ବିଜାତୀୟ ( ବହୁବସ୍ତୁ ), ସଂକଟମୟ, (ବି) ବର୍ଣ୍ଣସଙ୍କରଜାତି, (ସଂଗୀତ) ମିଶ୍ରରାଗ, ସଂକଟ, (ସ୍ତ୍ରୀ) ସଂକୀର୍ଣ୍ଣା ।

ସଂକୀର୍ଣ୍ଣକଣ୍ଠ—ବି.(କ.ଧା)ସଙ୍କୁଚିତ କଣ୍ଠ, (ପୁଂ.ବିଂ-ବବ୍ରୀ) ସଙ୍କୁଚିତ କଣ୍ଠବିଶିଷ୍ଟ, (ସ୍ତ୍ରୀ) ସଂକୀର୍ଣ୍ଣକଣ୍ଠା ।

ସଂକୀର୍ଣ୍ଣଗ୍ରୀବ—ପୁଂ. ବିଂ.(ବ.ବ୍ରୀ)ଯାହାର ବେକ ସରୁ, ସରୁବେକା,(ସ୍ତ୍ରୀ) ଗ୍ରୀବା ।

ସଂକୀର୍ଣ୍ଣଗ୍ରୀବା—ବି. (କ.ଧା) ସରୁବେକ ।

ସଂକୀର୍ଣ୍ଣଚିତ୍ତ—ବି. (କ.ଧା) ନୀଚହୃଦୟ, ନୀଚମନ, (ବିଂ) ସଂକୀର୍ଣ୍ଣମନାଃ ଦେଖ ।

ସଂକୀର୍ଣ୍ଣଚେତାଃ—ପୁଂ. ଓ ସ୍ତ୍ରୀ.ବିଂ(ବ.ବ୍ରୀ) ସଂକୀର୍ଣ୍ଣମନାଃ ଦେଖ । [ ଜାତି ।

ସଂକୀର୍ଣ୍ଣଜାତି—ବି. (କ.ଧା) ବର୍ଣ୍ଣସଙ୍କର

ସଂକୀର୍ଣ୍ଣତା(ତ୍ୱ)—ବି. ( ସଂକୀର୍ଣ୍ଣ+ତା ) ଅପ୍ରସରତା, ( ମନର ) ଅନୁଦାରତା, ସାଂକର୍ଯ୍ୟ, ଭିଡ଼, ଜନତା ।

ସଂକୀର୍ଣ୍ଣଦେହ—ବି. (କ.ଧା) ସଂକୁଚିତ ଶରୀର, କ୍ଷୁଦ୍ର ଦେହ, (ପୁଂ.ବିଂ-ବ.ବ୍ରୀ) କ୍ଷୁଦ୍ର ଦେହବିଶିଷ୍ଟ,ସଂକୁଚିତକାୟ,(ସ୍ତ୍ରୀ) ସଂକୀର୍ଣ୍ଣଦେହା ।

ସଂକୀର୍ଣ୍ଣନୀତି—ବି.(କ.ଧା)ଅନୁଦାର ନୀତି, ଅପ୍ରଶସ୍ତ ନିୟମ, ଯେଉଁ ନୀତି ଅଳ୍ପ ଲୋକଙ୍କ ମଧ୍ୟରେ ଆବଦ୍ଧ; ସାର୍ବଜନୀନ ନୁହେ ।

ସଂକୀର୍ଣ୍ଣପଥ—ବି. (କ.ଧା) ସରୁ ବାଟ ।

ସଂକୀର୍ଣ୍ଣମତ—ବି.(କ.ଧା)ଅନୁଦାର ମତ ।

ସଂକୀର୍ଣ୍ଣମନ— ବି.(କ.ଧା)ଅନୁଦାର ମନ ।

ସଂକୀର୍ଣ୍ଣମନାଃ—ପୁଂ. ସ୍ତ୍ରୀ. ବିଂ. (ବ.ବ୍ରୀ) ନୀଚମନାଃ, ଅନୁଦାରମନାଃ, ସ୍ୱାର୍ଥପର ।

ସଂକୀର୍ଣ୍ଣମୁଖ—ବି. ( କ.ଧା ) ସରୁ ମୁହଁ, ସଂକୁଚିତ ମୁହଁ,(ବିଂ-ବ.ବ୍ରୀ) ସରୁମୁହାଁ,

ଅପ୍ରଶସ୍ତ ଦ୍ୱାରବିଶିଷ୍ଟ, (ସ୍ତ୍ରୀ) ମୁଖା ।

ସଂକୀର୍ଣ୍ଣଯୋନି—ବି. (କ.ଧା) ନୀଚଜାତି, (ବିଂ-ବ.ବ୍ରୀ) ନୀଚଜାତ, ନୀଚଜାତୀୟ ।

ସଂକୀର୍ଣ୍ଣହୃଦୟ—ବି.ବିଂ. (କ.ଧା-ବ.ବ୍ରୀ) ସଂକୀର୍ଣ୍ଣଚିତ୍ତ ଦେଖ, (ସ୍ତ୍ରୀ) ହୃଦୟା ।

ସଂକୀର୍ଣ୍ଣାତ୍ମା—ବି.ବିଂ(କ.ଧା-ବ.ବ୍ରୀ)ସଂକୀର୍ଣ୍ଣଚିତ୍ତ ଦେଖ ।

ସଂକୀର୍ଣ୍ଣାୟତନ—ବି.(କ.ଧା) କ୍ଷୁଦ୍ର ସ୍ଥାନ, (ବିଂ-ବ.ବ୍ରୀ) ଅପ୍ରଶସ୍ତ ଆକାରବିଶିଷ୍ଟ, ସଂକୁଚିତ, ଅପ୍ରଶସ୍ତ ।

ସଂକୀର୍ଣ୍ଣାବସ୍ଥ—ବିଂ. (ବ.ବ୍ରୀ) ସଂକୁଚିତ ଅବସ୍ଥାଯୁକ୍ତ, ହୀନଦଶାପ୍ରାପ୍ତ, ହୀନାବସ୍ଥାଯୁକ୍ତ ।

ସଂକୀର୍ଣ୍ଣାବସ୍ଥା—ବି. (କ.ଧା) ସଂକୁଚିତ ଅବସ୍ଥା, ଅପଶସର ଅବସ୍ଥା ।

ସଂକୀର୍ଣ୍ଣାୟମାନ-ବିଂ.କ୍ରମଶ ସଂକୀର୍ଣ୍ଣ ହେଉଥିବା, (ସ୍ତ୍ରୀ) ମାନା ।

ସଂକୀର୍ଣ୍ଣୀକରଣ—ବି.ସଂକରୀକରଣ,ଗ୍ରାମ୍ୟ ଓ ଆରଣ୍ୟ ପଶୁ ବଧଜନିତ ପାପ,ପ୍ରସାରିତ ବସ୍ତ୍ରର ଆକୁଞ୍ଚନ ।

ସଂକୀର୍ତ୍ତନ(ନା)—ବି (ସମ୍+କୃତ୍+ଭା. ଅନ+ଆ) ଦେବତାଦିଙ୍କ ନାମୋଚ୍ଚାରଣପୂର୍ବକ ସ୍ତୁତିଗାନ, ସମ୍ୟକ୍ ପ୍ରକାରରେ ଦେବତାଦିଙ୍କ ନାମ ଉଚ୍ଚାରଣପୂର୍ବକ ଗାନ, ଗୁଣାଦି କଥନ, ବର୍ଣ୍ଣନ, ଉଚ୍ଚାରଣ, ( ଗ୍ରା. ବି ) ରାଧାକୃଷ୍ଣ ଓ ଶ୍ରୀ ଚୈତନ୍ୟଙ୍କ ସମ୍ବନ୍ଧୀୟ ଖୋଲ କରତାଳ ଓ ନୃତ୍ୟାଦି ସହିତ ଗୀତଗାନ ।

ସଂକୀର୍ତ୍ତନମଣ୍ଡଳ(ଳି)—ଗ୍ରା.ବି. ସଂକୀର୍ତ୍ତନକାରୀ ଦଳ ।

ସଂକୀର୍ତ୍ତନିଆ—ଗ୍ରା. ବି. ସଂକୀର୍ତ୍ତନକାରୀ ଦଳର ବ୍ୟକ୍ତି ।

ସଂକୀର୍ତ୍ତିତ—ବିଂ. (ସମ୍+କୃତ+ର୍ମ.ତ) ସମ୍ୟକ୍ ବା ଉଚ୍ଚ ସ୍ୱରରେ ଉଚ୍ଚାରିତ, ସଂସ୍ତୁତ,ପ୍ରଶଂସିତ,ବର୍ଣ୍ଣିତ,(ସ୍ତ୍ରୀ)କୀର୍ତ୍ତିତା ।

ସଂକୀଲ—ପୁଂ. ବି. ଋଷିବିଶେଷ ।

ସଂକୁଚନ—କ୍ଲୀ. ବି. ସମ୍ୟକ୍ ଆକୁଞ୍ଚନ, (ପୁଂ.ବି) ବାଳଗ୍ରହବିଶେଷ ।

ସଂକୁଚିତ—ବିଂ. (ସମ୍+କୁଚ୍+ର୍ମ.ତ) ସଂକୀର୍ଣ୍ଣ, ମୁଦ୍ରିତ, ନିମୀଳିତ, ଗୁଡ଼ିଆ ହୋଇଥିବା, ଅପ୍ରସାରିତ, କୁଣ୍ଠିତ, ସଂକୋଚପ୍ରାପ୍ତ, ସଂକ୍ଷିପ୍ତ, କୁଞ୍ଚିକୁଞ୍ଚି ହୋଇଥିବା, (ସ୍ତ୍ରୀ) ସଂକୁଚିତା ।

ସଂକୁଚିବା—ଗ୍ରା.କ୍ରି. ସଂକୁଚିତ ହେବା, ଲଜ୍ଜାରେ ଜଡ଼ ହେବା ।

ସଂକୁଟନ—କ୍ଲୀ. ବି. (ସମ୍+କୁଟ୍+ଭା. ଅନ) ମୃତ୍ୟୁ ।

ସଂକୁଳ—ବିଂ. ( ସମ୍+କୁଳ+ର୍ମ.ଅ ) ବ୍ୟାପ୍ତ, ସମାକୀର୍ଣ୍ଣ,ପୂର୍ଣ୍ଣ, ବହୁଳ, ଯୁକ୍ତ, ଏକତ୍ର ବିଦ୍ୟମାନ, ମିଶ୍ରିତ,ଗୋଳମାଳପୂର୍ଣ୍ଣ, ସଂକୀର୍ଣ୍ଣ, ବହୁଲୋକ ସମାକୀର୍ଣ୍ଣ, (ବି) ଦ୍ୱନ୍ଦ୍ୱଯୁଦ୍ଧ, ଜନତା, ପରସ୍ପରର ବିରୁଦ୍ଧ ବାକ୍ୟାଳାପ, କଳି,ଗୋଳମାଳ, ଭିଡ଼, (ସ୍ତ୍ରୀ) ସଂକୁଳା ।

ସଂକୁଳନ—ବି. ସଙ୍କୁଳନ ଦେଖ ।

ସଂକୁଳଯୁଦ୍ଧ—ବି. ଗୋଳମାଳିଆ ବା ଅନିୟମିତ ଯୁଦ୍ଧ ।

ସଂକୁଳିତ—ବିଂ.(ସମ୍+କୁଳ୍+ର୍ମ.ତ) ଏକତ୍ରୀଭୂତ,ସଂଗୃହୀତ,ସଂକୀର୍ଣ୍ଣ,ବ୍ୟାପ୍ତ

ସଂକୁସୁମିତ—ବିଂ. ସମ୍ୟକ୍ ପ୍ରସ୍ଫୁଟିତ, ବିକଶିତ ।

ସଂକୃତ—ବିଂ.ସମ୍ୟକ୍‌ରୂପେ ବା ଯଥାଶକ୍ତି ନିଷ୍ପନ୍ନ ।

ସଂକୃପ୍ତି—ସ୍ତ୍ରୀ. ବି. ଇଚ୍ଛା, ବାସନା ।

ସଂକେତ—ବି. (ସମ୍+କିତ୍+ଭା.ଅ) ସଂକ୍ଷେପରେ ଅଭିପ୍ରାୟ ପ୍ରକାଶ କରିବାର ଚେଷ୍ଟା, ଇସାରା,ଇଙ୍ଗିତ,ନେତ୍ର, ବକ୍ତ୍ର ହସ୍ତାଦି ଦ୍ୱାରା ମନୋଭାବବ୍ୟଞ୍ଜକ ଚେଷ୍ଟାବିଶେଷ, (ଣ.ଅ) କୌଣସି ବସ୍ତୁ ବା ବିଷୟଜ୍ଞାପକ ଚିହ୍ନ, ଶବ୍ଦର ଅର୍ଥବୋଧକ ଶକ୍ତି,ଠାର; (ଅଧି.ଅ) ନାୟକ ବା ନାୟିକାଙ୍କର ନିର୍ଦ୍ଦିଷ୍ଟ ମିଳନ ସ୍ଥାନ, ବୋଧ, ସନ୍ଧାନ, ଅନୁମାନ, ସୂତ୍ର, ବ୍ୟାକରଣାଦିର ସୂତ୍ର,ଗୁପ୍ତସ୍ଥାନ,ନିୟମ, ଚୁକ୍ତି,ଶୈଳୀ, ସମୟ, ଆକାର ।

ସଂକେତକ—ବି. ( ସଂକେତ+କ ) ସଂକେତ ଦେଖ ।

ସଂକେତକାରୀ—ପୁଂ. ବିଂ. ଯେ ଇସାରା କରେ, (ସ୍ତ୍ରୀ) ସଂକେତକାରିଣୀ ।

ସଂକେତଦେବା—ଗ୍ରା. କ୍ରି. ପ୍ରେରକଙ୍କୁ ଚିହ୍ନିବାର କୌଣସି ଚିହ୍ନ ଦୂତଦ୍ୱାରା ଅନ୍ୟବ୍ୟକ୍ତିଙ୍କ ନିକଟକୁ ପଠାଇବା, ନାୟକନାୟିକାଙ୍କ ସଙ୍କେତ ସ୍ଥଳ ନିରୂପଣ କରିବା ।

ସଂକେତଜ୍ଞ—ପୁଂ. ବିଂ. ଯେ ସଂକେତ ବା ଠାର ଜାଣେ, (ସ୍ତ୍ରୀ) ସଂକେତଜ୍ଞା ।

ସଂକେତଜ୍ଞାପକ—ବିଂ.(ସଂକେତ+ଜ୍ଞାପି +କ.ଅକ)ସାଙ୍କେତିକ,(ସ୍ତ୍ରୀ)ସଂକେତଜ୍ଞାପିକା । [ ସୂଚକ ଧ୍ୱନି ।

ସଂକେତଧ୍ୱନି—ବି. (କ.ଧା) ସଂକେତ-

ସଂକେତନିକେତନ—କ୍ଲୀ.ବି. ସଂକେତସ୍ଥାନ, ପ୍ରିୟସଙ୍ଗମାର୍ଥ ନିର୍ଦ୍ଦିଷ୍ଟ ଗୃହ ।

ସଂକେତଭୂମି—ସ୍ତ୍ରୀ. ବି. ସଂକେତସ୍ଥାନ, ପ୍ରିୟସଙ୍ଗମାର୍ଥ ନିର୍ଦ୍ଦିଷ୍ଟ ସ୍ଥାନ ।

ସଂକେତରୁଦ୍ଧପ୍ରଦେଶ—ପୁଂ.ବି.ବୌଦ୍ଧମାନଙ୍କର ସମାଧିବିଶେଷ ।

ସଂକେତବାକ୍ୟ—ବି.(କ.ଧା)ଠାରକଥା, ସାଙ୍କେତିକ ବାକ୍ୟ ।

ସଂକେତସ୍ତବ-ପୁଂ.ବି.ଶାକ୍ତସମ୍ପ୍ରଦାୟୋକ୍ତ ସ୍ତୁତିବିଶେଷ ।

ସଂକେତସ୍ଥଳ(ସ୍ଥାନ)—ବି.ଯେଉଁ ସ୍ଥାନରେ ଦୁଇ ବା ତତୋଧିକ ବ୍ୟକ୍ତି ଗୁପ୍ତଭାବରେ ମିଳିତ ହେବାପାଇଁ ପୂର୍ବରୁ ସ୍ଥିର କରାଯାଇ ଥାଏ ।

ସଂକେତାଗ୍ନି—ବି. (କ.ଧା) କୌଣସି ସ୍ଥଳର ବା ବିଷୟର ଅସ୍ତିତ୍ୱସୂଚନା କରିବା ପାଇଁ ପ୍ରଜ୍ୱାଳିତ ଅଗ୍ନି ।

ସଂକେତାଲୋକ—ବି. (କ.ଧା)ସଂକେତଜ୍ଞାପକ ଆଲୋକ ।

ସଂକେତିତ—ବିଂ. (ସଂକେତ+ଇତ) କୃତସଂକେତ, ସଂକେତ ଦ୍ୱାରା ପ୍ରକାଶିତ, ଅଭିଧା ଶକ୍ତିଦ୍ୱାରା ବୋଧିତ ।

ସଂକୋଚ—ବି. (ସମ୍+କୁଚ୍+ଭା.ଅ) ବିସ୍ତୃତ ପଦାର୍ଥର କ୍ଷୀଣୀଭାବ ବା ବସ୍ତୁର ଅଳ୍ପଭାବ,ସଂକ୍ଷେପ, କୁଣ୍ଠା, ଜଡ଼ୀଭାବ, ଲଜ୍ଜାଶୀଳତା, ଲଜ୍ଜା, ବହୁ ବାକ୍ୟଯୁକ୍ତ ପଦକୁ ଅଳ୍ପ ପଦରେ ପ୍ରକାଶ କରିବା,

ଅପ୍ରସ୍ଫୁଟନ, ମୁଦ୍ରଣ, ବନ୍ଧନ; କୁଙ୍କୁମ, ଜାଫ୍ରାନ; ମତ୍ସ୍ୟବିଶେଷ, ଶାଙ୍କୁଚମାଛ, ଔଷଧ; ସାମାନ୍ୟ ବିଷୟରୁ ବିଶେଷକରିବା; (ଗ୍ରାଂବିଂ)ସଂକୁଚିତ, ମୁଦ୍ରିତ ।

ସଂକୋଚକ—ପୁଂ.ବିଂ. (ସମ୍+କୁଚ୍+କ.ଅକ) ଯାହା ସଂକୁଚିତ କରାଏ, ସଂକୋଚନକାରୀ, (ସ୍ତ୍ରୀ)ସଂକୋଚିକା ।

ସଂକୋଚତ୍ୱକ୍—ଶରୀରର ଯେଉଁ ଅଂଶର ଚର୍ମ ମୁଦ୍‌ହୋଇଯାଏ, କୁଞ୍ଚିତଚର୍ମ ।

ସଂକୋଚନ—ବି.(ସମ୍+କୁଚ୍+ଭା.ଅନ) ସଂକୋଚକରଣ, ମୁଦ୍ରଣ,ଚପି ଛୋଟ କରିବା ।

ସଂକୋଚନୀ—ସ୍ତ୍ରୀ ବି. (ସଂକୋଚନ+ଈ) ଲଜ୍ଜାଳୁଲତା ।

ସଂକୋଚନୀୟ—ବିଂ. (ସମ୍+କୁଚ୍+ମୀ.ଅନୀୟ) ସଂକୋଚ୍ୟ ଦେଖ ।

ସଂକୋଚପତ୍ରକ—ବି.ବୃକ୍ଷର ଜ୍ୱରବିଶେଷ

ସଂକୋଚପିଶୁନ—ବି. କୁଙ୍କୁମ,ଜାଫ୍ରାନ ।

ସଂକୋଚପ୍ରାପ୍ତ—ବିଂ.(୬ତତ୍ପୁ)ଲଜ୍ଜାପ୍ରାପ୍ତ, ଲଜ୍ଜିତ, ଜଡ଼ତ୍ୱବାପନ୍ନ ।

ସଂକୋଚିତ—ବିଂ. ସଂକୋଚଯୁକ୍ତ,ଅବକଳିତ, ବ୍ରୀଡ଼ାବନତ ।

ସଂକୋଚୀ—ପୁଂ. ବିଂ. (ସଂକୋଚ+ଇନ୍) ସଂକୋଚଯୁକ୍ତ, ସଂକୁଚିତ, ଜଡ଼ୀଭୂତ, କୁଣ୍ଠିତ, ଲଜକୁଳା, (ସ୍ତ୍ରୀ) ସଂକୋଚିନୀ ।

ସଂକୋଚ୍ୟ—ବିଂ. (ସମ୍+କୁଚ୍+ମୀ.ଯ) ସଂକୋଚନ କରିବାର ଯୋଗ୍ୟ, ସଂକୋଚିତ ହେବାର ଯୋଗ୍ୟ,ଯାହାକୁ ଚପିକରି ଛୋଟ କରାଯାଇପାରେ,(ସ୍ତ୍ରୀ) ସଂକୋଚ୍ୟା ।

ସଂକୋଚ୍ୟତା—ବି.ଜଡ଼ପଦାର୍ଥର ଗୁଣବିଶେଷ,ଯେଉଁ ଗୁଣ ଥିବାରୁ କେତେକ ଜଡ଼ପଦାର୍ଥକୁ ଚପିଦେଲେ ତାହା ଛୋଟ ହୋଇଯାଏ ।

ସଂକ୍ରନ୍ଦ—ପୁଂ.ବି. କ୍ରନ୍ଦନ, ରୋଦନ, ଶୋକପ୍ରକାଶ, ଯୁଦ୍ଧାର୍ଥ ଆସ୍ଫାଳନ ।

ସଂକ୍ରନ୍ଦନ—ବି.(ସମ୍+କ୍ରନ୍ଦନ)ଅତ୍ୟନ୍ତ କ୍ରନ୍ଦନ, ଅତି ରୋଦନ, (ସମ୍+କ୍ରନ୍ଦ+କ.ଅନ) ଦେବରାଜ, ଇନ୍ଦ୍ର, (ବିଂ) ଶତ୍ରୁରୋଦକ ।

ସଂକ୍ରମ—ବି. (ସମ୍+କ୍ରମ୍+ଭା.ଅ) ସଂଗ୍ରହ, ଗମନ, ପର୍ଯ୍ୟଟନ, ଗତି, ଏକସ୍ଥାନରୁ ସ୍ଥାନାନ୍ତରକୁ ଗମନ,ଗ୍ରହମାନଙ୍କର ଏକରାଶିରୁ ଅନ୍ୟ ରାଶିକୁ ଗତି,ରବିସଂକ୍ରମଣ ସଂକ୍ରାନ୍ତି,ସୂର୍ଯ୍ୟଙ୍କର ରାଶ୍ୟନ୍ତର ପ୍ରବେଶ, ପ୍ରତିହତି ଗତି, ବାଧାପ୍ରାପ୍ତ ଗତି,ଅତିକ୍ରମ, ପାରହେବା, ଉପରଦେଇ ଯିବା, ସମସାମୟିକତା, ପ୍ରାପ୍ତି, ( ରୋଗର ) ଏକ ବ୍ୟକ୍ତିଠାରୁ ଅନ୍ୟ ବ୍ୟକ୍ତିକୁ ଆକ୍ରମଣ କରିବା,କାର୍ଯ୍ୟସାଧନର ଉପାୟ, ପ୍ରତିବିମ୍ବନ, (ଣ.ଅ) ଦୁର୍ଗସଂଚର,ପ୍ରବେଶ କରିବାର ପୋଲ, ସଙ୍କ, ସେତୁ, ପୋଲ,ସୋପାନ ।

ସଂକ୍ରମଣ—ବି. (ସମ୍+କ୍ରମ୍+ଭା.ଅନ) ସଂକ୍ରମ ଦେଖ ।

ସଂକ୍ରମସ୍ୱର—ବି. ଏକି ସମୟରେ ପୃଥ୍ବୀଭାବରେ ଉଭୟନାକପୁଡ଼ାରେ ବହୁଥିବା ଚନ୍ଦ୍ରସ୍ୱର ଓ ସୂର୍ଯ୍ୟସ୍ୱର ।

ସଂକ୍ରମିତ—ବିଂ. (ସମ୍+ଣିଚ୍+କ୍ରମ୍+ମୀ.ତ) ପ୍ରବେଶିତ, ଭର୍ତ୍ତିକରାଯାଇଥିବା, ନିବେଶିତ, ସ୍ଥାନାନ୍ତର ଗମିତ, ସ୍ଥାନାନ୍ତରିତ, ପ୍ରତିବିମ୍ବିତ, ସ୍ଥାପିତ,ସଞ୍ଚାରିତ ।

ସଂକ୍ରମିବା—ଗ୍ରା.କ୍ରି.(ପଦ୍ୟ) ବ୍ୟାପ୍ତହେବା, ବ୍ୟାପିବା ।

ସଂକ୍ରାଇବା—ଗ୍ରା. (ସମ୍ଭ.କ୍ରି) ସଂକୁଚିତ କରିବା, ଜାକିବା ।

ସଂକ୍ରାନ୍ତ—ବିଂ. (ସମ୍+କ୍ରମ୍+କ.ତ) ସଂବନ୍ଧୀୟ, ସଂପର୍କୀୟ, ସଂକ୍ରାନ୍ତଯୁକ୍ତ (ମାସ) ପ୍ରାପ୍ତ, (ଦ୍ୱନ୍ଦ୍ୱୁତ) କ୍ରମାଗତ (ଧନାଦି) କୌଣସି ବ୍ୟକ୍ତି ଜରିଆରେ ପ୍ରାପ୍ତ ହୋଇଥିବା, ପ୍ରତିବିମ୍ବିତ, ଗତ, ଯୁକ୍ତ, ପ୍ରବିଷ୍ଟ, ସଞ୍ଚାରିତ, ଘଟିତ, (ସ୍ତ୍ରୀ) ସଂକ୍ରାନ୍ତା ।

ସଂକ୍ରାନ୍ତି—ବି. ( ସମ୍+କ୍ରମ୍+ଭା.ତି ) ସଂକ୍ରମଣ, ସୂର୍ଯ୍ୟଙ୍କର ଏକରାଶିରୁ ଅନ୍ୟ ରାଶିକୁ ଗମନ, ରବିସଂକ୍ରମଣ, ବିସ୍ତାର, ବ୍ୟାପ୍ତି, କାଳର ସୂକ୍ଷ୍ମ ଅଂଶବିଶେଷ, ଯେଉଁ ସମୟରେ ସୂର୍ଯ୍ୟ ଏକରାଶିରୁ ଅନ୍ୟ ରାଶିକୁ ଗତି କରନ୍ତି, ପ୍ରତିବିମ୍ବନ, ଅବସ୍ଥାନ୍ତର ପ୍ରାପ୍ତି, ପ୍ରତିକରଣ, ବାହାନା, ରବିସଂକ୍ରମଣ ଦିବସ ।

ସଂକ୍ରାନ୍ତିଚକ୍ର—ବି. (ଫଳିତ ଜ୍ୟୋତିଷ) ପ୍ରତ୍ୟେକ ମନୁଷ୍ୟର ଶୁଭାଶୁଭ ଜ୍ଞାପକ ନକ୍ଷତ୍ରାଙ୍କିତ ନରାକାର ଚକ୍ର ।

ସଂକ୍ରାନ୍ତିଚାଳନ—ବି.ମନୁଷ୍ୟର ଜାତକର ଗ୍ରହ ଓ ନକ୍ଷତ୍ରାନୁସାରେ ସୂର୍ଯ୍ୟଙ୍କର ଶୁଭ ବା ଅଶୁଭଜନକ ସଂକ୍ରମଣ ।

ସଂକ୍ରାମ—ବି. ( ସମ୍+କ୍ରମ୍+ଭା.ଅ ) ସଂକ୍ରମ ଦେଖ ।

ସଂକ୍ରାମକ—ବିଂ. ( ସମ୍+କ୍ରମ୍+କ.ଅକ) ବ୍ୟାପକ, ସଂଗ୍ରହକ, ଗତିଶୀଳ, ଏକସ୍ଥାନରେ ପ୍ରବେଶକାରକ, ଛିଆଁ (ରୋଗ), (ସ୍ତ୍ରୀ) ସଂକ୍ରାମିକା ।

ସଂକ୍ରାମକତା(ତ୍ୱ)—ବି.ରୋଗର ସଂକ୍ରାମକ ଗୁଣ, ଯେଉଁ ଗୁଣଦ୍ୱାରା ରୋଗ ଏକ ବ୍ୟକ୍ତିଠାରୁ ବ୍ୟକ୍ତ୍ୟନ୍ତରକୁ ଡିଏଁ ।

ସଂକ୍ରାମକରୋଗ—ବି. ଛିଆଁରୋଗ,ଯେଉଁ ରୋଗ ରୋଗୀର ସଂସର୍ଗଦ୍ୱାରା ବ୍ୟକ୍ତ୍ୟନ୍ତରକୁ ସଂକ୍ରମଣକରେ ।

ସଂକ୍ରାମିତ-ବିଂ.(ସମ୍+କ୍ରମ୍ ଣିଚ୍+ମୀ.ତ) ସଂକ୍ରମିତ ଦେଖ, ( ସ୍ତ୍ରୀ ) ସଂକ୍ରାମିତା ।

ସଂକ୍ରାମିତା—ବି. (ସଂକ୍ରାମିନ୍+ତା) ସଂକ୍ରାମକତା ଦେଖ ।

ସଂକ୍ରାମୀ—ବିଂ. (ସଂକ୍ରମ+ଇନ୍)ସଂକ୍ରାମକ, ଯେ ସକଳ ରୋଗ ସଂକ୍ରମଣ କରେ ।

ସଂକ୍ରୀଡ଼—ପୁଂ. ବି. ( ସମ୍+କ୍ରୀଡ଼୍+ଅ) ସମ୍ୟକ୍‌କ୍ରୀଡ଼ା, ପରିହାସ ।

ସଂକ୍ରୀଡ଼ନ—କ୍ଲୀ.ବି.କ୍ରୀଡ଼ା,ଲୀଳା, ଖେଳ

ସଂକ୍ରୋଶ—ପୁଂ.ବି.ଉଚ୍ଚ ଶବ୍ଦ,ଆକ୍ରୋଶ, ଇହକାଳରେ ଓ ପରକାଳରେ ଦୁଃଖ ।

ସଂକ୍ଳେଦ—ବି. (ସମ୍+କ୍ଳିଦ୍+ଭା.ଅ) ଆର୍ଦ୍ରତା ।

ସଂକ୍ଳେଶ—ବି. ସମ୍ୟକ୍ କଷ୍ଟ ବା ଦୁଃଖ ।

ସଂକ୍ଷୟ—ବି.(ସମ୍+କ୍ଷି+ଭା.ଅ)ବିନାଶ,

ଧ୍ୱଂସ, ପ୍ରଳୟ ।

ସଂକ୍ଷର—ବି. ସଙ୍ଗମ,ନଦ୍ୟାଦିର ସମ୍ମିଳନ ସ୍ଥାନ, ସାମଭେଦ ।

ସଂକ୍ଷିପ୍ତ—ବିଂ.(ସମ୍+କ୍ଷିପ୍+ମି.ତ)ଇତସ୍ତତଃ ବିକ୍ଷିପ୍ତ, ନିକ୍ଷିପ୍ତ, ସଂକୁଚିତ, ଅଳ୍ପୀକୃତ,ସଂଚିତ,ସଂକଳିତ,ଏକତ୍ରୀକୃତ, ପରିତ୍ୟକ୍ତ, ଗୃହୀତ, ଅଟକ କରାଯାଇଥିବା, ବାଧାପ୍ରାପ୍ତ, (ସ୍ତ୍ରୀ)ସଂକ୍ଷିପ୍ତା ।

ସଂକ୍ଷିପ୍ତକ—ବି. ସାଂକ୍ଷିପ୍ତ ।

ସଂକ୍ଷିପ୍ତତ୍ୱ—ବି.ସଂକ୍ଷିପ୍ତର ଭାବ ବା ଧର୍ମ ।

ସଂକ୍ଷିପ୍ତସାର—ବିଂ. (ବ.ବ୍ରୀ) ଯାହାର ସାରାଂଶ ସଂକ୍ଷିପ୍ତ କରାଯାଇଅଛି, (ସ୍ତ୍ରୀ) ସଂକ୍ଷିପ୍ତସାରା,(ବି) କ୍ରମଦୀଶ୍ୱରଙ୍କ ସଂକଳିତ ସଂସ୍କୃତ ବ୍ୟାକରଣ ଗ୍ରନ୍ଥବିଶେଷ ।

ସଂକ୍ଷିପ୍ତା—ସ୍ତ୍ରୀ. ବି. ଜ୍ୟୋତିଷ ମତରେ ବୁଧଗ୍ରହର ଗତିବିଶେଷ ।

ସଂକ୍ଷିପ୍ତାତିସଂକ୍ଷିପ୍ତ—ବିଂ.(ସଂକ୍ଷିପ୍ତାତି+ସଂକ୍ଷିପ୍ତ) ଅତି ସଂକ୍ଷିପ୍ତ ।

ସଂକ୍ଷିପ୍ତି—ସ୍ତ୍ରୀ.ବି.ନାଟକବର୍ଣ୍ଣିତ ଆରଭଟୀବିଶେଷ ।

ସଂକ୍ଷିପ୍ତିକା—ସ୍ତ୍ରୀ. ବି. ସଂକ୍ଷିପ୍ତି ।

ସଂକ୍ଷୀୟମାଣ—ବିଂ(ସମ୍+କ୍ଷି+ମି.ଆନ) କ୍ଷୟପ୍ରାପ୍ୟମାଣ, ଯାହା କ୍ଷୟ ପାଉଅଛି, (ସ୍ତ୍ରୀ) ସଂକ୍ଷୀୟମାଣା ।

ସଂକ୍ଷୁବ୍ଧ—ବିଂ. (ସମ୍+କ୍ଷୁଭ୍+କ.ତ) ବିଚାଳିତ, ବିଲୋଡ଼ିତ, ଆକୁଳ, (ସ୍ତ୍ରୀ) ସଂକ୍ଷୁବ୍ଧା ।

ସଂକ୍ଷେପ—ବି. (ସମ୍+କ୍ଷିପ୍+ଭା.ଅ) ସଂକୋଚ, ଅଳ୍ପୀକରଣ, ସଂକ୍ଷିପ୍ତବର୍ଣ୍ଣନ, ଚୁମ୍ବକ ।

ସଂକ୍ଷେପକ—ବିଂ(ସମ୍+କ୍ଷିପ୍+କ.ଅକ) ସଂକୋଚକ, (ସ୍ତ୍ରୀ) ସଂକ୍ଷେପିକା, (ବି) ଯେ କୌଣସି ବିଷୟକୁ ସଂକ୍ଷିପ୍ତ କରେ ।

ସଂକ୍ଷେପଣ—ବି.(ସମ୍+କ୍ଷିପ୍+ଭା.ଅନ) ସଂକ୍ଷିପ୍ତକରଣ, ଚୁମ୍ବକକରିବା ।

ସଂକ୍ଷେପତଃ—କ୍ରି.ବିଂ(ସଂକ୍ଷେପ+ତସ୍) ସଂକ୍ଷିପ୍ତ ଭାବରେ ।

ସଂକ୍ଷେପ୍ତା—ପୁଂ. ବିଂ. (ସଂକ୍ଷିପ୍+ତୃ) ସଂକ୍ଷେପକାରୀ, ସଂକ୍ଷେପକ ।

ସଂକ୍ଷେପିବା—ଗ୍ରା. (ପଦ୍ୟ)କ୍ରି. ସଂକ୍ଷିପ୍ତ କରିବା ।

ସଂକ୍ଷୋଭ—ବି. (ସମ୍+କ୍ଷୁଭ୍+ଭା.ଅ) ଶୃଙ୍ଖଳା, ଅସ୍ଥିରତା, ମନଶ୍ଚାଞ୍ଚଲ୍ୟ, ଧର୍ଷଣ, ମନସ୍ତାପ, ଅତିକ୍ଷୋଭ, ଗର୍ବ, ଭୟ, ଚକିତତା ।

ସଂକ୍ଷୋଭଣ-କ୍ଲୀ.ବି.ସଞ୍ଚାଳନ,ଆଲୋଡ଼ନ ।

ସଂକ୍ଷୋଭୀ—ପୁଂ.ବିଂ. ସଂକ୍ଷୋଭକାରୀ ।

ସଂଖ୍ୟ—ବି(ସମ୍+ଖ୍ୟା+ଅଧି.ଅ) ଯୁଦ୍ଧ. ସଂଗ୍ରାମ, (ବିଂ) ସଂଖ୍ୟେୟ ।

ସଂଖ୍ୟକ—ବିଂ. ସଂଖ୍ୟାଯୁକ୍ତ, ଗଣିତ, ଗଣାଯାଇଥିବା, ଗଣନୀୟ ।

ସଂଖ୍ୟତା—ବି. (ସଂଖ୍ୟ+ତା)ସଂଖ୍ୟତ୍ୱ, ସଂଖ୍ୟେୟତା ।

ସଂଖ୍ୟା—ବି. (ସମ୍+ଖ୍ୟା+ଭା.ଅ+ଆ) ସୁମାରି, ଗଣନା, ଗଣତି, ବିଚାର, (ଗଣିତ) ରାଶି, ଅଙ୍କ, ଗଣନା ଦ୍ୱାରା ଜଣାଯିବା ରାଶି ବା ପରିମାଣ,କୌଣସି ବିଷୟର ତଦନ୍ତ ।

ସଂଖ୍ୟାକ—ବିଂ.ସଂଖ୍ୟାଯୁକ୍ତ,ସଂଖ୍ୟାବିଶିଷ୍ଟ

ସଂଖ୍ୟାଙ୍କବିନ୍ଦୁ—ବି.ସଂଖ୍ୟାର ଅଙ୍କଜ୍ଞାପକ ବିନ୍ଦୁ, ଶୂନ୍ୟସଂଖ୍ୟା ।

ସଂଖ୍ୟାତ—ବିଂ. (ସମ୍+ଖ୍ୟା+ମି.ତ) କୃତସଂଖ୍ୟ,ଗଣିତ,ବିଚାରିତ,ବିଖ୍ୟାତ, ପ୍ରସିଦ୍ଧ, (ସ୍ତ୍ରୀ) ସଂଖ୍ୟାତା ।

ସଂଖ୍ୟାତା—ପୁଂ. ବିଂ. (ସଂଖ୍ୟା+ତୃ) ସଂଖ୍ୟାକାରକ, ଗଣକ, ସଂଖ୍ୟାକାରୀ, ସଂଖ୍ୟାପ୍ରବର୍ତ୍ତକ ।

ସଂଖ୍ୟାତିଗ—ବିଂ. (ସଂଖ୍ୟା+ଅତି+ଗମ୍+ଅ) ସଂଖ୍ୟାତିକ୍ରମକାରୀ ।

ସଂଖ୍ୟାନ—ବି. (ସମ୍+ଖ୍ୟା+ଭା.ଅନ) ଗଣନା, ଗଣତି କରିବା,ସଂଖ୍ୟା,ଧ୍ୟାନ, ପ୍ରକାଶ ।

ସଂଖ୍ୟାନାମ—ବି. ବାକ୍ୟଦ୍ୱାରା ସଂଖ୍ୟା- [ଲକ୍ଷଣ ।

ସଂଖ୍ୟାପଦ—ବି. ବାକ୍ୟଯୁକ୍ତ ସଂଖ୍ୟା ।

ସଂଖ୍ୟାପନ(ନା)—କ୍ଲୀ. ବି. (ସମ୍+ଶିର୍+ଖ୍ୟା+ଭା.ଅନ+ଆ)ସଂଖ୍ୟାନିର୍ଦ୍ଧାରଣ, ନିର୍ଦ୍ଧାରଣ, ସ୍ଥିରୀକରଣ ।

ସଂଖ୍ୟାବାନ୍—ପୁଂ. ବି. (ସଂଖ୍ୟା+ବତ୍) ପଣ୍ଡିତ, ପ୍ରାଜ୍ଞବ୍ୟକ୍ତି, (ପୁଂ.ବିଂ) ପ୍ରାଜ୍ଞ, ବିଦ୍ୱାନ୍, (ସ୍ତ୍ରୀ) ସଂଖ୍ୟାବତୀ ।

ସଂଖ୍ୟାବିଦ୍—ପୁଂ. ବି. (ସଂଖ୍ୟା+ବିଦ୍+କ.କ୍ୱିପ୍) ଅଙ୍କବିଦ୍ୟାରେ ପାରଙ୍ଗମ ବ୍ୟକ୍ତି, ପଣ୍ଡିତ ।

ସଂଖ୍ୟାବିଦ୍ୟା(ବିଜ୍ଞାନ,ଶାସ୍ତ୍ର)—ବି. ଅଙ୍କଶାସ୍ତ୍ର, ଗଣିତଶାସ୍ତ୍ର ।

ସଂଖ୍ୟାବିଧାନ—କ୍ଲୀ.ବି.ସଂଖ୍ୟାର ବିଧାନ, ଗଣନାର ନିୟମ ।

ସଂଖ୍ୟାବୃଦ୍ଧିକର—ବିଂ.ସଂଖ୍ୟାର ପୁନରାବୃତ୍ତିଜ୍ଞାପକ, ବହୁସଂଖ୍ୟକ ।

ସଂଖ୍ୟାବେତ୍ତା—ପୁଂ. ବିଂ. (ସଂଖ୍ୟା+ବିଦ୍+କ.ତୃ)ସଂଖ୍ୟାବାନ୍ ଦେଖ,(ସ୍ତ୍ରୀ) ସଂଖ୍ୟାବେତ୍ତ୍ରୀ ।

ସଂଖ୍ୟାମଙ୍ଗଳଗ୍ରନ୍ଥି—ପୁଂ.ବି. ସୌଭାଗ୍ୟବୃଦ୍ଧି କାମନାରେ ସଂଖ୍ୟାନୁରୂପ ଗ୍ରନ୍ଥିବନ୍ଧନ କ୍ରିୟାବିଶେଷ ।

ସଂଖ୍ୟାଯୋଗ—ପୁଂ.ବି. ଗ୍ରହସମାବେଶ ।

ସଂଖ୍ୟାଲଘିଷ୍ଠସମ୍ପ୍ରଦାୟ—ବି. ଦେଶରେ ଯେଉଁ ସାମ୍ପ୍ରଦାୟିକ ସଂଖ୍ୟା ଅନ୍ୟ ସମ୍ପ୍ରଦାୟମାନଙ୍କ ସଂଖ୍ୟା ଅପେକ୍ଷା କମ ।

ସଂଖ୍ୟାଲିପି—ସ୍ତ୍ରୀ.ବି.ଲିପିଭେଦ,ସଂଖ୍ୟାବିଷୟକ ଲିପି ।

ସଂଖ୍ୟାଶବ୍ଦ—ବି.ସଂଖ୍ୟାବାଚକ ବାକ୍ୟ ।

ସଂଖ୍ୟାଶଃ—ଅ. ସଂଖ୍ୟାକ୍ରମେ ।

ସଂଖ୍ୟେୟ—ବିଂ. (ସମ୍+ଖ୍ୟା+ମି.ଯ) ଗଣନୀୟ, ଗଣ୍ୟ, ସଂଖ୍ୟାଯୋଗ୍ୟ,(ସ୍ତ୍ରୀ) ସଂଖ୍ୟେୟା ।

ସଂଗ—ବି. ସଙ୍ଗ ଦେଖ ।

ସଂଗଠନ—ବି. ସମ୍ୟକ୍ ରୂପରେ ଗଠନ, ବିଶେଷରୂପେ ସଂସ୍ଥାପନ ବା ସଂଯୋଗସାଧନ ।

ସଂଗଣିକା—ବି. (ସମ୍+ଗଣ+ଣ.ଇକ+ଆ)ଅନୁପମ କଥୋପକଥନ,ସମାଜ, ଜଗତ୍ର ।

ସଂଗତ—ବିଂ. (ସମ୍+ଗମ୍+କ.ତ) ଉପଯୁକ୍ତ, ସମୁଚିତ, ଉଚିତ, ଯଥେଷ୍ଟ, ଯୌକ୍ତିକ, ସମ୍ମିଳିତ, ମିଳିତ,ସଂଯୁକ୍ତ, ସଂବଦ୍ଧ, ସାକ୍ଷାତ୍କୃତ,ସଂଚିତ,ଏକତ୍ରୀ-

କୃତ, ହୃଷ୍ଟ, ( ବି-ଗ୍ର.ତ ) ମିତ୍ରତା, ସୌହାର୍ଦ୍ଦ, ମିଳନ, ସଂଯୋଗ, ସହଚରତ୍ୱ, ( ଜ୍ୟୋତିଷ ) ଗ୍ରହମାନଙ୍କର ସମସୂତ୍ରରେ ଅବସ୍ଥାନ, (ଗ୍ରା.ବି) ଶିଖମାନଙ୍କର ଧର୍ମଚର୍ଚ୍ଚାର୍ଥ ବୈଠକ ବା ବନ୍ଧୁସମ୍ମେଳନ ।

**ସଂଗତଲ**—ବି. ବୌଦ୍ଧମଠ ଭେଦ ।

**ସଂଗତାର୍ଥ**—ବିଂ. ଯୁକ୍ତାର୍ଥ, ସୁସଙ୍ଗତ ବାକ୍ୟଯୁକ୍ତ ।

**ସଂଗତି**—ବି. ( ସମ୍+ଗମ୍+ଭା.ତି ) ମିଳନ, ମିଶ୍ରଣ, ସହବାସ, ସାହଚର୍ଯ୍ୟ, ସଂଗମ, ସଂଯୋଗ, ରତି, ଯୋଗ୍ୟତା, କ୍ଷମତା, ସଂଚୟ, ଜ୍ଞାନ,ବୋଧ,ବୈଷୟିକ ସ୍ୱାଚ୍ଛନ୍ଦ୍ୟ,ସଂସ୍ଥାନ,ଉପଯୋଗିତା, ଯୋଗାଡ଼,ସଂବନ୍ଧ, ପୂର୍ବାପର ସଂବନ୍ଧ, ଔଚିତ୍ୟ, ସାମଞ୍ଜସ୍ୟ, ଅବସର ।

**ସଂଗତି**—ସୁଯୋଗ, (ନ୍ୟାୟଶାସ୍ତ୍ର) ଅନନ୍ତର ବକ୍ତବ୍ୟତ୍ୱ, କଥାର ପ୍ରସଙ୍ଗ ।

**ସଂଗତିପନ୍ନ**—ପୁଂ.ବିଂ. (ଷତତ୍ପୁ) ସାଂସାରିକ ସ୍ୱଚ୍ଛନ୍ଦ ଅବସ୍ଥାଯୁକ୍ତ, ଧନୀ, (ସ୍ତ୍ରୀ) ସଙ୍ଗତିପନ୍ନା ।

**ସଂଗତିବିହୀନ**—ପୁଂ.ବିଂ. (ଷତତ୍ପୁ)ଧନହୀନ, ସମ୍ବଳହୀନ, (ସ୍ତ୍ରୀ) ବିହୀନା ।

**ସଂଗତିସମ୍ପନ୍ନ**-ବିଂ(ଷତତ୍ପୁ)ସଂଗତିଶାଳୀ ।

**ସଂଗତିସାଧକ**—ବିଂ. (୬ତତ୍ପୁ) ସଂସ୍ଥାନକାରକ, ମିଳନ ସମ୍ପାଦକ,(ସ୍ତ୍ରୀ)ସାଧିକା

**ସଂଗଥ**—ବିଂ. ସଙ୍ଗତ ଶବ୍ଦାର୍ଥ, ଏକତ୍ର ସମ୍ମିଳିତ ।

**ସଂଗଥ**—ପୁଂ. ବି. ସଙ୍ଗମନ, ସଂଗ୍ରାମ ।

**ସଂଗଦୋଷ**—ପୁଂ.ବି. (କ.ଧା) ସଂସର୍ଗ ଦୋଷ, ସହବାସ ହେତୁ ଅନିଷ୍ଟ ।

**ସଂଗବ**—ବି. ସଙ୍ଗବ ଦେଖ ।

**ସଂଗବାନ୍**—ପୁଂ.ବିଂ(ସଙ୍ଗ+ବତ୍) ସଙ୍ଗବିଶିଷ୍ଟ, ସଙ୍ଗଯୁକ୍ତ, ସଙ୍ଗୀ ।

**ସଂଗବିନୀ**—ସ୍ତ୍ରୀ. ବି. ଦୋହନ ଭୂମିକୁ ଆସିଥିବା ଗାଈ ।

**ସଂଗମ**—ବି. ସଙ୍ଗମ ଦେଖ ।

**ସଂଗମକ**—ବିଂ. ପଥଜ୍ଞାପକ ।

**ସଂଗମନ**—ବି. ଗନ୍ତବ୍ୟ ସ୍ଥାନ, ସମ୍ୟକ୍ ପ୍ରକାରରେ ଗମନ, ସଙ୍ଗମ, ମେଳନ ।

**ସଂଗମନୀୟ**—ବିଂ. ସଙ୍ଗମନଯୋଗ୍ୟ, ସମ୍ମିଳନ ଯୋଗ୍ୟ ।

**ସଂଗମସ୍ଥ**—ବିଂ. ସଙ୍ଗବିଶିଷ୍ଟ, ଐକାନ୍ତିକ ଆକାଂକ୍ଷାଯୁକ୍ତ ।

**ସଂଗମୀ**—ପୁଂ. ବିଂ. ସଙ୍ଗମଶୀଳ ।

**ସଂଗମେଶ୍ୱର**—ପୁଂ.ବି. ବିଶ୍ୱନାଥ, ଶିବଙ୍କର ନାମାନ୍ତର, ଶୈବ ତୀର୍ଥବିଶେଷ ।

**ସଂଗର**—ବି. ସଙ୍ଗର ଦେଖ ।

**ସଂଗରଣ**—କ୍ଲୀ. ବି. ଅନୁଧାବନ, ଉପଲବ୍ଧିକରଣ ।

**ସଂଗଲ**—ପଞ୍ଜାବର ଝଙ୍ଗଜିଲାସ୍ଥ ଗୋଟିଏ ପ୍ରାଚୀନ ସହରର ଧ୍ୱଂସାବଶେଷ, ଇତିହାସ ବିଖ୍ୟାତ ସ୍ଥାନ ।

**ସଂଗାତ**—ଗ୍ରା. ବି. ସଙ୍ଗାତ ଦେଖ ।

**ସଂଗାଦ**--ପୁଂ.ବି.ବାକ୍ୟାଳାପ,କଥାବାର୍ତ୍ତା ।

**ସଂଗାୟନ**—କ୍ଲୀ. ବି.ପରିଚିତ ଗାୟକ ।

**ସଂଗିକ**—ପୁଂ.ବି. କାଶ୍ମୀର ରାଜପ୍ରତିହାର ବିଶେଷ ।

**ସଂଗିନୀ**—ସ୍ତ୍ରୀ. ବି. ସଙ୍ଗିନୀ ଦେଖ ।

**ସଂଗିବିରହିତ**—ବିଂ (ଷତତ୍ପୁ)ସଙ୍ଗିଶୂନ୍ୟ; ସହଚରବିହୀନ, ଏକାକୀ ।

**ସଂଗିରମାଣ**—ପୁଂ.ବିଂ.ସଙ୍ଗିରମାଣ ଦେଖ

**ସଂଗୀ**—ପୁଂ. ବି. ସଙ୍ଗୀ ଦେଖ ।

**ସଂଗୀତ**—ବିଂ. (ସମ୍+ଗୈ+ମି.ତ) ନୃତ୍ୟବାଦ୍ୟ ସହକାରେ ଗୀତ,ସମ୍ୟକ୍ ପ୍ରକାରେ ଗୀତ, (ବି-ଭା.ତ)ବହୁ ମିଳିତ ଗାନ, ତୌର୍ଯ୍ୟତ୍ରିକ, ପ୍ରେକ୍ଷଣାର୍ଥ ନୃତ୍ୟ ଗୀତ ଓ ବାଦ୍ୟ, ତାଳ, ଲୟ, ରୂପାଦି ସମନ୍ୱିତ ସରସ ହୃଦୟଗ୍ରାହୀ ରଚନା, (ଗ୍ରା.ବି) ଗୀତଆଦି ରସଯୁକ୍ତ ଓ ରାଧାକୃଷ୍ଣ ଲୀଳା ବା ନାୟକ ନାୟିକା ବିଷୟକ ଗୀତ ।

**ସଂଗୀତକରିବା**—ଗ୍ରା.କ୍ରି.ନୃତ୍ୟବାଦ୍ୟାଦି ସହ ସଙ୍ଗୀତ ବୋଲିବା, ସଙ୍ଗୀତ ରଚନା କରିବା ।

**ସଂଗୀତକଗୃହ**—କ୍ଲୀ. ବି. ସଙ୍ଗୀତଶାଳା, ଯେଉଁ ଗୃହରେ ସଙ୍ଗୀତାନୁଷ୍ଠାନ ହୁଏ ।

**ସଂଗୀତକଳା(ବିଦ୍ୟା)**—ସ୍ତ୍ରୀ. ବି. ସଂଗୀତ ଗାନରୂପବିଶିଷ୍ଟ ବିଦ୍ୟା,ସଂଗୀତ ଶାସ୍ତ୍ର ।

**ସଂଗୀତଗୁରୁ**--ବି.ସଂଗୀତବିଦ୍ୟାର ଶିକ୍ଷକ, ସଙ୍ଗୀତାଗ୍ରଣୀ ।

**ସଂଗୀତଜ୍ଞ**—ପୁଂ.ବିଂ. ( ସଙ୍ଗୀତ+ଜ୍ଞା+କ.ଅ)ସଙ୍ଗୀତବେତ୍ତା,ସଙ୍ଗୀତ ବିଷୟରେ ଅଭିଜ୍ଞ । [ ଦେଖ ।

**ସଂଗୀତତରଙ୍ଗ**—ବି. ସଙ୍ଗୀତଲହରୀ

**ସଂଗୀତତାନ**—ବି. (୬ତତ୍ପୁ) ସଙ୍ଗୀତ ପ୍ରବାହ ଦେଖ ।

**ସଂଗୀତତାଳ**—ବି. (୬ତତ୍ପୁ)ସଙ୍ଗୀତରେ କାଳ ବା ସମୟ ଜ୍ଞାପକ ସ୍ୱର ।

**ସଂଗୀତଦର୍ପଣ**—ବି. ମୋଗଲ ସମ୍ରାଟ୍ ଜାହାଙ୍ଗୀରଙ୍କ ରାଜତ୍ୱ କାଳରେ ଓଝାଁ ଦାମୋଦର ମିଶ୍ରଙ୍କ ଦ୍ୱାରା ରଚିତ ସଙ୍ଗୀତ ବିଷୟକ ସଂସ୍କୃତ ଗ୍ରନ୍ଥବିଶେଷ ।

**ସଂଗୀତଦାମୋଦର**—ବି. ହିନ୍ଦୁ ସଙ୍ଗୀତ ବିଷୟକ ଶୁଭଙ୍କରଙ୍କ ପ୍ରଣୀତ ଗ୍ରନ୍ଥ ।

**ସଂଗୀତଧ୍ୱନି**—ବି. (୬ତତ୍ପୁ) ସଙ୍ଗୀତର ଶବ୍ଦ ।

**ସଂଗୀତନର୍ତ୍ତୟ**— ବି. ନାରଦାଗସ୍ତ୍ୟଣ ବିରଚିତ ହିନ୍ଦୁ ସଙ୍ଗୀତ ଗ୍ରନ୍ଥବିଶେଷ ।

**ସଂଗୀତପ୍ରବାହ**—ବି. (୬ତତ୍ପୁ)ସଂଗୀତର ସ୍ରୋତ, ଅବିରତ ବୋଲାଯିବା ସଂଗୀତ

**ସଂଗୀତପ୍ରିୟ**—ପୁଂ.ବିଂ(ବ.ବ୍ରୀ)ସଂଗୀତାନୁରାଗୀ, (ସ୍ତ୍ରୀ) ସଂଗୀତପ୍ରିୟା ।

**ସଂଗୀତବିଦ୍**—ପୁଂ. ବିଂ. ( ସଂଗୀତ+ବିଦ୍+କ.କ୍ୱିପ୍) ସଂଗୀତଜ୍ଞ ।

**ସଂଗୀତବିଦ୍ୟା**—ବି. ସଙ୍ଗୀତ ବିଷୟକ ଅଭିଜ୍ଞତା ବା କଳା ।

**ସଂଗୀତବିଦ୍ୟାଳୟ**—ବି(୬ତତ୍ପୁ)ସଙ୍ଗୀତ ଶିକ୍ଷାର ପାଠଶାଳା, ମିଉଜିକ୍ ସ୍କୁଲ୍ ।

**ସଂଗୀତବିଶାରଦ**—ପୁଂ. ବିଂ. (୬ତତ୍ପୁ) ସଂଗୀତ ବିଦ୍ୟାରେ ପାରଙ୍ଗମ ।

**ସଂଗୀତବେଶ୍ମ**—ବି. (୬ତତ୍ପୁ) ସଂଗୀତଗୃହ, ସଙ୍ଗୀତଶାଳା ।

**ସଂଗୀତରଚକ**(ସ୍ତ୍ରିତା)—ପୁଂ. ବି. ବିଂ. ଯେ ସଙ୍ଗୀତ ରଚନା କରେ, ସଂଗୀତର କବି । [ ଯୋଡ଼ିବା ।

**ସଂଗୀତରଚନ(ନା)**--ବି.(୬ତତ୍ପୁ)ସଙ୍ଗୀତ

ସଂଗୀତରତ୍ନାକର— ବି. ଶାର୍ଙ୍ଗଦେବଙ୍କ ବିରଚିତ ହିନ୍ଦୁ ସଙ୍ଗୀତ ଗ୍ରନ୍ଥବିଶେଷ ।
ସଂଗୀତରତ୍ନାବଳୀ—ବି. ହରିଭଟ୍ଟ ବିରଚିତ ହିନ୍ଦୁସଙ୍ଗୀତ ଗ୍ରନ୍ଥବିଶେଷ ।
ସଂଗୀତରାଗ—ବି. (୬ତତ୍) ସଙ୍ଗୀତର ରାଗ ଓ ରାଗିଣୀ ।
ସଂଗୀତରାଗମାଳିକା—ବି.ହରିଭଟ୍ଟ ବିରଚିତ ହିନ୍ଦୁ ସଙ୍ଗୀତବିଷୟକ ଗ୍ରନ୍ଥବିଶେଷ ।
ସଂଗୀତଲହରୀ(ତରଙ୍ଗ)—ବି. (୬ତତ୍) ସଙ୍ଗୀତର ପ୍ରବାହ, ଲହରୀପରି ଉପର୍ଯ୍ୟୁପରି ଧାରାବାହିକରୂପେ ଉଠୁଥିବା ସଂଗୀତର ଉଚ୍ଛ୍ୱାସ ।
ସଂଗୀତଶାସ୍ତ୍ର—ବି. ସଙ୍ଗୀତବିଷୟକ ଗ୍ରନ୍ଥ, ଯେଉଁ ଶାସ୍ତ୍ରରେ ଗାନ, ବାଦ୍ୟ ଓ ନୃତ୍ୟର ପ୍ରକରଣମାନ ସମ୍ୟକ୍‌ରୂପେ ଆଲୋଚିତ ହୋଇଥାଏ,ନୃତ୍ୟଗୀତିବାଦ୍ୟ ଶାସ୍ତ୍ର ।
ସଂଗୀତସାର—ବି. ହରିଭଟ୍ଟ ବିରଚିତ ହିନ୍ଦୁସଙ୍ଗୀତ ବିଷୟକ ଗ୍ରନ୍ଥବିଶେଷ ।
ସଂଗୀତସାଗର—ବି. (ରୂପକ; ସାଗର ସଙ୍ଗେ ତୁଳନୀୟ ଅପରିମେୟ ସଙ୍ଗୀତ, (ଗ୍ରା.ବି) ସ୍ୱର୍ଗୀୟ ଦାମୋଦର ପଟ୍ଟନାୟକଙ୍କ ସଂକଳିତ ୬ଖଣ୍ଡ ଓଡ଼ିଆ ପ୍ରାଚୀନ ସଂଗୀତସଂଗ୍ରହ ପୁସ୍ତକ ।
ସଂଗୀତାଚାର୍ଯ୍ୟ—ବି. (୬ତତ୍) ସଙ୍ଗୀତ ଶିକ୍ଷକ ।
ସଂଗୀତାନୁରାଗ—ବି. (୭ତତ୍) ସଂଗୀତ ବିଷୟରେ ଶ୍ରଦ୍ଧା ।
ସଂଗୀତାନୁରାଗୀ-ପୁଂ.ବିଂ. (୭ତତ୍)ସଙ୍ଗୀତ ଶାସ୍ତ୍ର ବା ସଙ୍ଗୀତ ବିଦ୍ୟା ପ୍ରତି ଶ୍ରଦ୍ଧାଯୁକ୍ତ, (ସ୍ତ୍ରୀ) ସଙ୍ଗୀତାନୁରାଗିଣୀ ।
ସଂଗୀତ— ବି. ( ସମ୍+ଗୈ+କ୍ତ ) ସଂଗୀତ ଦେଖ, ଆଳାପ, କଥୋପକଥନ, ତନ୍ତ୍ରର ଶାଖାବିଶେଷ ।
ସଂଗୀତପ୍ରାସାଦ—ବି. ସଙ୍ଗୀତଶାଳା ।
ସଂଗୀର୍ଣ୍ଣ—ବିଂ. ( ସମ୍+ଗୃ+କ୍ତ ) ପ୍ରତିଜ୍ଞାତ, ଅଙ୍ଗୀକୃତ, ପ୍ରତିଶ୍ରୁତ ।
ସଂଗୁଣ—ବିଂ, ସମ୍ୟକ୍ ଗୁଣନ ।
ସଂଗୁପ୍ତ—ବିଂ. ( ସମ୍+ଗୁପ୍+କ୍ତ ) ଲୁକ୍କାୟିତ, ସୁରକ୍ଷିତ, (ପୁଂ.ବିଂ) ବୁଦ୍ଧବିଶେଷ, ସଙ୍ଗୋପନାଶ୍ରୟ ।
ସଂଗୁପ୍ତି—ବି. ( ସମ୍+ଗୁପ୍+କ୍ତି ) ସଂଗୋପନ ଦେଖ, ଲୁଚିବା ଅବସ୍ଥା ।
ସଂଗୂଢ଼—ବିଂ. (ସମ୍+ଗୁହ୍+କ୍ତ) ସଂଗୁପ୍ତ ଦେଖ,ଉତ୍ତମରୂପେ ଆଚ୍ଛାଦିତ. ସଂବୃତ, ରାଶୀକୃତ, ସଂକଳିତ ।
ସଂଗୃହୀତ—ବିଂ. (ସମ୍+ଗୃହୀତ)ଆହୃତ. ଏକତ୍ରୀକୃତ, ସଂକଳିତ ।
ସଂଗୃହୀତି—ସ୍ତ୍ରୀ.ବି. ଧାରଣକାରୀ ।
ସଂଗୃହୀତା—ପୁଂ.ବିଂ. ସଂଗ୍ରହକାରକ ।
ସଂଗୋପକ—ପୁଂ. ବିଂ. (ସମ୍+ଗୁପ୍+କ.ଅକ) ସଂଗୋପନକାରୀ, ରକ୍ଷାକାରୀ, (ସ୍ତ୍ରୀ) ସଂଗୋପିକା ।
ସଂଗୋପନ—ବି. ( ସମ୍+ଗୋପନ ) ସମ୍ୟକ୍‌ରୂପେ ଲୁଚାଇବା,ସମ୍ୟକ୍‌ରକ୍ଷଣ, ଅପ୍ରକାଶ ।
ସଂଗୋପନୀୟ—ବିଂ. (ସମ୍+ଗୁପ୍+ଅନୀୟ) ସଂଗୋପନଯୋଗ୍ୟ, ସମ୍ପୂର୍ଣ୍ଣ ରୂପରେ ଗୋପନର ଉପଯୁକ୍ତ ।
ସଂଗ୍ରନ୍ଥନ—ବି. ( ସମ୍+ଗ୍ରନ୍ଥ+ଅନ ) ସମ୍ୟକ୍‌ରୂପେ ଗ୍ରନ୍ଥନ ।
ସଂଗ୍ରସନ—କ୍ଳୀ.ବି. ଅତିରିକ୍ତ ଭୋଜନ, ସମ୍ୟକ୍‌ରୂପେ ଗ୍ରାସ ।
ସଂଗ୍ରହ—ବି. ( ସମ୍+ଗ୍ରହ୍+ଘ.ଅ ) ବିକ୍ଷିପ୍ତ ଦ୍ରବ୍ୟମାନଙ୍କର ଏକତ୍ରୀକରଣ, ଗୋଟାଇବା, ଆହରଣ, ସଂକଳନ. ତୋଳିବା, ଚୟନ, ସଂକ୍ଷେପ, ସଞ୍ଚୟ, ସମୁଚ୍ଚୟ, ରାଶୀକରଣ, ଟଙ୍କାକରିବା, ରକ୍ଷିତା,ମହୋଦ୍ୟମ,ଆଲିଙ୍ଗନ,ମୁଷ୍ଟିବନ୍ଧ, ନାନା ଗ୍ରନ୍ଥରୁ ବିଷୟମାନ ଉଦ୍ଧାରକରି ଏକ ଗ୍ରନ୍ଥରେ ସନ୍ନିବେଶିତ କରିବା, (ଅଧି.ଅନ) ବ୍ୟାକରଣ ଗ୍ରନ୍ଥବିଶେଷ, ଗ୍ରହଣ ।
ସଂଗ୍ରହକାର(ରୀ)—ପୁଂ.ବିଂ. (ସଂଗ୍ରହ+କୃ+କ.ଇନ୍) ଯେ ଗୋଟାଏ ବା ଏକତ୍ର କରେ,(ସ୍ତ୍ରୀ)ସଂଗ୍ରହକାରିଣୀ ।
ସଂଗ୍ରହଗ୍ରହଣୀ—ସ୍ତ୍ରୀ.ବି. ଗ୍ରହଣୀ ରୋଗବିଶେଷ, ସଞ୍ଚିତଗ୍ରହଣୀ ।
ସଂଗ୍ରହଗ୍ରନ୍ଥ—ବି. (କ.ଧା) ଯେଉଁ ପୁସ୍ତକରେ ନାନାସ୍ଥାନରୁ ସଂଗୃହୀତ ବିଷୟମାନ ଥାଏ ।
ସଂଗ୍ରହଣ—ବି. (ସମ୍+ଗ୍ରହ୍+ଭ.ଅନ) ସଂଗ୍ରହ ଦେଖ,ସଂଗ୍ରହ କରିବା କାର୍ଯ୍ୟ ।
ସଂଗ୍ରହଣୀ-ବି. (ସମ୍+ଗ୍ରହ୍+ଣ.ଅନ+ଈ) ଗ୍ରହଣୀରୋଗ, ଉଦ୍ୟଙ୍କର ବା ବହୁକାଳ ସ୍ଥାୟୀ ଉଦରାମୟ, ଅତିସାର, ସଂଗ୍ରହ ଦେଖ ।
ସଂଗ୍ରହବାନ୍—ପୁଂ. ବିଂ. ସଂଗ୍ରହଶୀଳ, ସଂଗ୍ରହଯୁକ୍ତ । [ ସଂକ୍ଷିପ୍ତ ବିବନ୍ଧ ।
ସଂଗ୍ରହସୂତ୍ର—କ୍ଳୀ.ବି. ସୂତ୍ରଗ୍ରନ୍ଥ ସମୂହର
ସଂଗ୍ରହାଧ୍ୟାୟ—ବି. ଗ୍ରନ୍ଥର କେଉଁ କେଉଁ ଅଧ୍ୟାୟରେ କି କି ବିଷୟ ଓ କେତେ ଶ୍ଳୋକ ଅଛି; ଗ୍ରନ୍ଥମୂଳରେ ଯେଉଁ ଅଧ୍ୟାୟରେ ଏହା ଏକତ୍ର ସୂଚିତ ହୋଇଥାଏ ।
ସଂଗ୍ରହିବା—ଗ୍ରା.କ୍ରି,(ପଦ୍ୟ)ସଂଗ୍ରହକରିବା
ସଂଗ୍ରହୀ—ପୁଂ. ବିଂ, ( ସଂଗ୍ରହ+ଇନ୍ ) ସଂଗ୍ରହକାରକ, ଯେ ସଂଗ୍ରହ କରେ ।
ସଂଗ୍ରହୀତା—ପୁଂ.ବିଂ.(ସମ୍+ଗ୍ରହ୍+କ.ତୃ) ସଂଗ୍ରହକାରକ, (ସ୍ତ୍ରୀ)ସଂଗ୍ରହୀତ୍ରୀ ।
ସଂଗ୍ରାମ—ବି. ( ସମ୍+ଗ୍ରାମ+ଘ.ଅ ) ସଙ୍ଗର, ଯୁଦ୍ଧ, ଆହବ ।
ସଂଗ୍ରାମକ୍ଷେତ୍ର—ବି. (୬ତତ୍)ଯୁଦ୍ଧକ୍ଷେତ୍ର ।
ସଂଗ୍ରାମଜିତ୍—ପୁଂ.ବିଂ. (ସଂଗ୍ରାମ+ଜି+କ୍ୱିପ୍) ଯୁଦ୍ଧଜେତା, ସଂଗ୍ରାମବିଜୟୀ ।
ସଂଗ୍ରାମତୂର୍ଯ୍ୟ—କ୍ଳୀ. ବି. ଯୁଦ୍ଧତୂର୍ଯ୍ୟ ।
ସଂଗ୍ରାମପଟହ—ବି,ରଣବାଦ୍ୟ,ବଡ଼କାଡ଼ା
ସଂଗ୍ରାମପ୍ରିୟ—ପୁଂ. ବିଂ, ( ବ.ବ୍ରୀ ) ଯୁଦ୍ଧପ୍ରିୟ, (ସ୍ତ୍ରୀ) ସଂଗ୍ରାମପ୍ରିୟା ।
ସଂଗ୍ରାମସିଂହ—ଗ୍ରା.ବି,ଚିତୋରର ଜଣେ ମହାରାଣା ।
ସଂଗ୍ରାମାଶିଷ୍—ସ୍ତ୍ରୀ. ବି. ମୂର୍ତ୍ତିମତୀ ବିଜୟ ବାକ୍ୟ, ସଂଗ୍ରାମେ ବିଜୟ ଲାଭାର୍ଥକ ସ୍ତୁତି । [ (ବି) ସଂଗ୍ରାମ ।
ସଂଗ୍ରାମ୍ୟ—ବିଂ. ସଂଗ୍ରାମର ବିଷୟୀଭୂତ,
ସଂଗ୍ରାହ—ବି.(ସମ୍+ଗ୍ରହ୍+ଘ.ଅ) ସଂଗ୍ରହ ଦେଖ, (ଶ.ଅ) ଅସ୍ତ୍ରାଦିର ମୁଠା, ମୁଷ୍ଟି

ଫଳକର ମୁଷ୍ଟି, ଢାଲର ମୁଠା, ମୁଷ୍ଟି ଦ୍ୱାରା ବନ୍ଧନ, ମୁଷ୍ଟି ।

ସଂଗ୍ରାହକ—ପୁଂ.ବିଂ (ସମ୍+ଗ୍ରହ୍+କ.ଅକ) ସଂଗ୍ରହକାରୀ, ସଂଗ୍ରହୀତା, (ସ୍ତ୍ରୀ) ସଂଗ୍ରାହିକା ।

ସଂଗ୍ରାହୀ—ପୁଂ, ବିଂ. (ସମ୍+ଗ୍ରହ୍+କ.ଇନ୍) ସଂଗ୍ରାହକ ଦେଖ, (ସ୍ତ୍ରୀ) ସଂଗ୍ରାହିଣୀ, (ବି) କୂଟଜ ବା ପିତାକୋରୁଆ ଗଛ ।

ସଂଗ୍ରାହ୍ୟ—ବିଂ, (ସମ୍+ଗ୍ରହ୍+ଯ) ସଂଗ୍ରାହଣୀୟ, ସଂଗ୍ରହର ଉପଯୁକ୍ତ ।

ସଂଘ—ବି. (ସମ୍+ହନ୍+ର୍ମି.ଅ) ସମୂହ, ଗଣ, ଗଦା, ସମିତି, ସଭା, ସମାଜ, ଜନତା, ଗହଳି, ସ୍ୱଜାତୀୟ ଓ ବିଜାତୀୟ ବହୁ ମନୁଷ୍ୟ ବା ଜୀବମାନଙ୍କର ମିଳିତଗଣ, ଭିକ୍ଷୁ ଓ ଭିକ୍ଷୁଣୀମାନଙ୍କ ସମାଜ, ପଲ, ଦଳ, ବୌଦ୍ଧ ସମ୍ପ୍ରଦାୟ-ବ୍ୟୂହ, ବୌଦ୍ଧ ଧର୍ମର ତିନିଟି ମଧ୍ୟରୁ ଏକତମ, (ଅନ୍ୟ ଦୁଇଟି ଧର୍ମ ଓ ବୁଦ୍ଧ)

ସଂଘକ—ବି.(ସଂଘ+କ) ସଂଘ ଦେଖ ।

ସଂଘଗୁହ୍ୟ—ପୁଂ.ବି.ବୌଦ୍ଧ ଯତିବିଶେଷ

ସଂଘଚାରୀ—ପୁଂ. ବି. (ସଂଘ+ଚର୍+କ,ଇନ୍) ଯେ ଦଳବଦ୍ଧ ହୋଇ ବିଚରଣ କରନ୍ତି, (ସ୍ତ୍ରୀ) ସଂଘଚାରିଣୀ, (ବି) ମତ୍ସ୍ୟ ।

ସଂଘଜୀବୀ—ପୁଂ. ବି. (ସଂଘ+ଜୀବନ୍) ମୂଲିଆ, ଗ୍ରାମ୍ୟ, କୁଲି, ବୋହିଆ ।

ସଂଘଟ୍ଟ—ବି(ସମ୍+ଘଟ୍ଟ୍+ଭା.ଅ)ମେଳନ, ନିୟୋଜନ, ମିଶ୍ରଣ, ଗଠନ, ଘଟନା, ଘଟିବା, ବିବରଣ, ବୃତ୍ତାନ୍ତ, (ବିଂ) ଯଥେଷ୍ଟ, ପର୍ଯ୍ୟାପ୍ତ, (ଗ୍ରା.ବି) ଓଡ଼ିଆମାନଙ୍କର ବିବାହାଦିରେ ଚାଉଳ ଡାଲି, ପରିବା ଆଦି ମିଶି ତିଆରି ପ୍ରସ୍ତୁତ ହୋଇଥିବା ଘାଣ୍ଟିଆ ଖାଦ୍ୟବିଶେଷ ।

ସଂଘଟ୍ଟନ—କ୍ଲୀ. ବି. (ସଂଘଟ୍ଟ+ଅନ) ପରସ୍ପର ମିଳନ, ସଂଘଟ୍ଟ ଦେଖ ।

ସଂଘଟ୍ଟନା—ସ୍ତ୍ରୀ.ବି (ସଂଘଟ୍ଟ୍+ଆ) ସଂଘଟ୍ଟ ଦେଖ ।

ସଂଘଟ୍ଟ—ବି. ( ସମ୍+ଘଟ୍ଟ+ଭା.ଅ ) ସଂଘର୍ଷ, ପରସ୍ପର ଘର୍ଷଣ, ଘୋଟିବା, ମର୍ଦ୍ଦନ, ପରସ୍ପର ଆଘାତ ଲାଗିବା, ବାଦବିବାଦ, ମିଳନ, ନିୟୋଜନ, ଆଲିଙ୍ଗନ, ନିକଟ ସଂପର୍କ, ଗୁଳନ, ମାଲମାନଙ୍କର କୁସ୍ତିକାଳୀନ ପଞ୍ଝା ପକାପକି ବା ବାହା ଭିଡ଼ାଭିଡ଼ି, ହାବୁଡ଼ାହାବୁଡ଼ି, ଭେଟାଭେଟି ।

ସଂଘଟ୍ଟଚକ୍ର—ବି.ଫଳିତ ଜ୍ୟୋତିଷୋକ୍ତ ଯୁଦ୍ଧ ବିଷୟାର୍ଥ ନକ୍ଷତ୍ରାଙ୍କିତ ଚକ୍ରବିଶେଷ

ସଂଘଟ୍ଟନ—କ୍ଲୀ, ବି. ( ସଂଘଟ୍ଟ+ଅନ ) ମେଳନ, ଗଠନ, ଘଟନା, ସଂଘଟ୍ଟ ।

ସଂଘଟ୍ଟନା—ସ୍ତ୍ରୀ, ବି. (ସଂଘଟ୍ଟନ+ଆ) ସଂଘଟ୍ଟ ଦେଖ । [ ବଲ୍ଲୀ ।

ସଂଘଟ୍ଟା—ସ୍ତ୍ରୀ. ବି. (ସଂଘଟ୍ଟ+ଆ) ଲତା,

ସଂଘଟ୍ଟିତ—ବିଂ. (ସମ୍+ଘଟ୍ଟ+ର୍ମି.ତ) ସଂଯୋଜିତ, ନିର୍ମିତ, ଘଟିଥିବା, ଗଠିତ, ଗୁଳିତ, ଘର୍ଷିତ ।

ସଂଘଟ୍ଟୀ—ପୁଂ. ବି. ସହଚର, ( ବିଂ ) ସଂଘଟ୍ଟକାରକ ।

ସଂଘତଲ—ବି, (ବ.ବ୍ରୀ) ଯୁକ୍ତ କରତଳଦ୍ୱୟ, ଅଞ୍ଜଳି, ଅଞ୍ଜଳିବନ୍ଧନ, (ପୁଂ.ବିଂ) କୃତାଞ୍ଜଳି, ଅଞ୍ଜଳି କରିଥିବା (ବ୍ୟକ୍ତି), (ସ୍ତ୍ରୀ) ସଂଘତଳା ।

ସଂଘତଥ—ବିଂ. ବହୁ ସଂଖ୍ୟାବିଶିଷ୍ଟ ।

ସଂଘନ—ବିଂ. (ସମ୍+ଘନ) ଦୁର୍ଭେଦ୍ୟ ।

ସଂଘପତି—ପୁଂ.ବି. ଦଳପତି ।

ସଂଘପୁଷ୍ପୀ—ସ୍ତ୍ରୀ. ବି. ଧାତକୀ ।

ସଂଘଭଦ୍ର—ବି. ବୌଦ୍ଧଯତିବିଶେଷ ।

ସଂଘମଣ୍ଡଳ—ବି. ଦଳସମୂହ । [ ନାମ ।

ସଂଘମିତ୍ରା—ଗ୍ରା.ବି. ଅଶୋକଙ୍କ କନ୍ୟାର

ସଂଘରକ୍ଷିତ-ପୁଂ.ବି.ବୌଦ୍ଧ ଯତିବିଶେଷ ।

ସଂଘର୍ଷ—ବି. ( ସମ୍+ଘୃଷ୍+ଭା.ଅ ) ପରସ୍ପର ପରସ୍ପରକୁ ଯୁଦ୍ଧାର୍ଥ ସ୍ପର୍ଦ୍ଧା ସହିତ ଆହ୍ୱାନ, ବାଜିରଖିବା, ପରସ୍ପର ଘର୍ଷଣ, ମର୍ଦ୍ଦନ, ଘୋଟିବା, ଧୀରେ ଧୀରେ ଗମନ, ଧୀରେ ଧୀରେ ବହିବା (ପାଣି, ପବନ), ଓଲଗା ବାହିବା, ପ୍ରତିଦ୍ୱନ୍ଦ୍ୱିତା, ଈର୍ଷା, ଯୁଦ୍ଧ, ଦ୍ୱନ୍ଦ୍ୱ ।

ସଂଘର୍ଷଣ—ବି. (ସମ୍+ଘୃଷ୍+ଭା.ଅନ) ସଂଘର୍ଷ ଦେଖ, ଆତ୍ମପ୍ରାଧାନ୍ୟ ସୂଚକ ଅହଂକାର ବାକ୍ୟ ।

ସଂଘର୍ଷୀ—ପୁଂ, ବିଂ. (ସଂ-ଘୃଷ୍+ଇନ୍) ସଂଘର୍ଷକାରକ, ପରସ୍ପର ସ୍ପର୍ଦ୍ଧାକାରୀ, ଘର୍ଷଣକାରୀ ।

ସଂଘବର୍ଦ୍ଧନ—ବି.ବୌଦ୍ଧାଚାର୍ଯ୍ୟବିଶେଷ ।

ସଂଘଶଃ—କ୍ରି.ବିଂ. (ସଂଘ+ଶସ୍) ଦଳେ ଦଳେ, ବହୁଶଃ, ଏକତ୍ର ।

ସଂଘସ—ବି. ( ସମ୍+ଘସ୍+ଭା.ଅ ) ଭୋଜନ, (ର୍ମି.ଅ) ଭୋଜ୍ୟ ଦ୍ରବ୍ୟ ।

ସଂଘାଟ—ପୁଂ. ବି. (ସଂଘ+ଅଟ+ଅ) ଅନେକଙ୍କ ସହିତ ଗମନକାରୀ, ଯେ ଦଳବାନ୍ଧି ବିଚରଣ କରେ ।

ସଂଘାଟିକା—ବି.(ସମ୍+ଘଟ+କ.ଅକ+ଆ) ଯୋଡ଼ା, ଯୁଗ୍ମ, ଘ୍ରାଣ, ଦୂତୀ, କୁଟ୍ଟିଣୀ, ଜଳକଣ୍ଟକ, ସିଂଘଡ଼ା ।

ସଂଘାଟୀ—ସ୍ତ୍ରୀ, ବି. ବୌଦ୍ଧଯତିମାନଙ୍କର ପରିଧେୟ ବାସବିଶେଷ ।

ସଂଘାଣକ—ପୁଂ.ବି. ସଂଘାଣକ, ଶ୍ଳେଷ୍ମା ।

ସଂଘାତ—ବି. ( ସମ୍+ହନ୍+ଭା.ଅ ) ଆଘାତ, ହତ୍ୟା, ବଧ, ନିବିଡ଼ତା, ଘନତ୍ୱ, ସମୂହ, ଦଳ, ନିବିଡ଼ସଂଯୋଗ, ଜମାଟ ବାନ୍ଧିବା, ପରସ୍ପର ସଙ୍ଗେ ମିଳନ, ସମ୍ମିଳନ, (କ.ଅ) କଫ, (ଣ.ଅ) ନରକବିଶେଷ, ନାଟକାଭିନୟରେ ଗତିବିଶେଷ ବା ଏକପ୍ରକାର ଗୁଳି, (ଗ୍ରା.ବିଂ) ମୃତ ।

ସଂଘାତକ—ପୁଂ.ବିଂ. ସଂଘାତକାରୀ ।

ସଂଘାତକଠିନ—ବିଂ. ନିବିଡ଼ ସଂଯୋଗ ଯୋଗୁଁ ଘନ ।

ସଂଘାତପତ୍ରିକା—ବି. ଶତପୁଷ୍ପା, ଶଉପ ।

ସଂଘାତବଳ—ଗ୍ରା.ବି. ଏକ ବସ୍ତୁ ପ୍ରତି ଭିନ୍ନ ଭିନ୍ନ ଦିଗରୁ ଦୁଇ ବା ତତୋଽଧିକ ବଳ ପ୍ରୟୋଗ କରାଗଲେ ସେହି ଉଭୟ ବଳର ଫଳସ୍ୱରୂପ ଉତ୍ପନ୍ନ ନୂତନ ବଳ ।

ସଂଘାତବଳପ୍ରବୃତ୍ତ-ପୁଂ.ବି. ଆଧିଭୌତିକ ଓ ଆଗନ୍ତୁକ ରୋଗବିଶେଷ ।

ସଂଘାତବାନ୍—ପୁଂ. ବିଂ. (ସଂଘାତ+ବତ୍) ସଂଘାତବିଶିଷ୍ଟ, ଦଳଯୁକ୍ତ, ସଂଘାତଯୁକ୍ତ ।

ସଂଘାତଶୂଳବାନ୍—ବିଂ. ସଂଘାତଶୂଳ-

କାମକ ରୋଗର ଯନ୍ତ୍ରଣା ସଦୃଶ ।
ସଂଘାଖ—ଗ୍ରା.ବି. ଘାତକ ।
ସଂଘାତ୍ୟ—ବି. ସଂଘାତକ, ସଂହାର୍ଯ୍ୟ ।
ସଂଘାଧିପ—ପୁଂ.ବି. ସଂଘପତି, ସଭାପତି, ଦଳପତି ।
ସଂଘାନନ୍ଦ—ପୁଂ. ବି. ବୌଦ୍ଧମାନଙ୍କର ସପ୍ତଦଶ ଆଗ୍ରର୍ଯ୍ୟବିଶେଷ ।
ସଂଘାରାମ-ବି.(୬ତତ୍ତ୍)ବୌଦ୍ଧ ସନ୍ନ୍ୟାସୀମାନଙ୍କର ମଠ, ବିହାର ।
ସଂଘାରିବା—ଗ୍ରାଁ.କ୍ରି. (ପଦ୍ୟ)ସଂହାରିବା ।
ସଂଘାବିଶେଷ—ପୁଂ.ବି.ବୌଦ୍ଧ ମତରେ ପାପବିଶେଷ ।
ସଂଘୁଷିତ—ବିଂ. (ସମ୍+ଘୁଷ୍+ମି.ତ) ସମ୍ୟକ୍‌ରୂପେ ପ୍ରଗୃହୀତ ବା ଉଦ୍‌ଘୋଷିତ. ଶବ୍ଦିତ, (କ-ଭା.ତ) ଶବ୍ଦ, ଘୋଷଣା ।
ସଂଘୁଷ୍ଟ—ବିଂ. ( ସମ୍+ଘୁଷ୍+ମି.ତ ) ସଂଘୁଷିତ ଦେଖ ।
ସଂଘୋଷ—ପୁଂ.ବି. (ସମ୍+ଘୁଷ୍+ଅ) ଘୋଷ, ଶବ୍ଦ । [ କାଷ ।
ସଂଘୋଷୀ-ପୁଂ.ବିଂ. ଢେକାଷ,ଘୋଷଣା-
ସଂଘୃଷ୍ଟ—ବିଂ. ( ସମ୍+ଘୃଷ୍+ମି.ତ ) ଉତ୍ତମରୂପେ ମର୍ଦ୍ଦିତ, ଚିକ୍କଣହୋଇ ବଟାଯାଇଥିବା ।
ସଂଚ—ବି. ସଞ୍ଚ ଦେଖ ।
ସଂଚତ୍ତ୍—ବିଂ. ସଞ୍ଚତ୍ର ଦେଖ ।
ସଂଚୟ—ବି. ସଞ୍ଚୟ ଦେଖ ।
ସଂଚୟନ—ବି. ସଞ୍ଚୟନ ଦେଖ ।
ସଂଚୟନାୟ—ବିଂ.ସଞ୍ଚୟନାୟ ଦେଖ ।
ସଂଚୟୀ—ପୁଂ.ବିଂ. ସଞ୍ଚୟୀ ଦେଖ ।
ସଂଚର—ବି. ସଞ୍ଚର ଦେଖ ।
ସଂଚରିତ—ବିଂ. ସଞ୍ଚରିତ ଦେଖ ।
ସଂଚରିଷ୍ଣୁ—ବିଂ. ସଞ୍ଚରିଷ୍ଣୁ ଦେଖ ।
ସଂଚଳନ—ବି. ସଞ୍ଚଳନ ଦେଖ ।
ସଂଚ୍ଛ—ବି ଓ ବିଂ. ସଞ୍ଚା ଦେଖ ।
ସଂଚ୍ଛନ—ବି. ସଞ୍ଚାନ ଦେଖ ।
ସଂଚ୍ଛାଯ୍ୟ—ବି. ସଞ୍ଚାଯ୍ୟ ଦେଖ ।
ସଂଚ୍ଛର୍—ବି. ସଞ୍ଚାର ଦେଖ ।
ସଂଚ୍ଛାରକ—ପୁଂ.ବିଂ. ସଞ୍ଚାରକ ଦେଖ ।
ସଂଚ୍ଛରଣ—ବି. ସଞ୍ଚାରଣ ଦେଖ ।

ସଂଚ୍ଛରିକା—ବି. ସଞ୍ଚାରିକା ଦେଖ ।
ସଂଚ୍ଛରିଣୀ—ବି ଓ ବିଂ. ସଞ୍ଚାରିଣୀ ଦେଖ ।
ସଂଚ୍ଛରିତ—ବିଂ. ସଞ୍ଚାରିତ ଦେଖ ।
ସଂଚ୍ଛସ୍ଥ—ବି ଓ ବିଂ. ସଞ୍ଚାସ୍ଥ ଦେଖ ।
ସଂଚ୍ଛର୍ଯ୍ୟ—ବିଂ. ସଞ୍ଚାର୍ଯ୍ୟ ଦେଖ ।
ସଂଚ୍ଛଳନ—ବି. ସଞ୍ଚାଳନ ଦେଖ ।
ସଂଚ୍ଛଳୀ-ପୁଂ.ବି ଓ ବିଂ.ସଞ୍ଚାଳୀ ଦେଖ ।
ସଂଚିତ—ବିଂ. ସଞ୍ଚିତ ଦେଖ ।
ସଂଚିନ୍ତା—ବି. ସଞ୍ଚିନ୍ତା ଦେଖ ।
ସଂଚିନ୍ତିତ—ବିଂ. ସଞ୍ଚିନ୍ତିତ ଦେଖ ।
ସଂଚୂର୍ଣ୍ଣନ—ବି. ସଞ୍ଚୂର୍ଣ୍ଣନ ଦେଖ ।
ସଂଚେତବ୍ୟ—ବିଂ. ସଞ୍ଚେତବ୍ୟ ଦେଖ ।
ସଂଜ—ବି. ସଞ୍ଜ ଦେଖ ।
ସଂଜନ—ବି. ସଞ୍ଜନ ଦେଖ ।
ସଂଜବନ—ବି. ସଞ୍ଜବନ ଦେଖ ।
ସଂଜୟ—ବି. ସଞ୍ଜୟ ଦେଖ ।
ସଂଜା—ବି. ସଞ୍ଜା ଦେଖ ।
ସଂଜାତ—ବିଂ. ସଞ୍ଜାତ ଦେଖ ।
ସଂଜିହୀର୍ଷା—ବି. ସଞ୍ଜିହୀର୍ଷା ଦେଖ ।
ସଂଜିହୀର୍ଷୁ—ବିଂ. ସଞ୍ଜିହୀର୍ଷୁ ଦେଖ ।
ସଂଜୀବନ—ବି. ସଞ୍ଜୀବନ ଦେଖ ।
ସଂଜ୍ଞ—ପୁଂ. ବିଂ. ସଂଜ୍ଞାଯୁକ୍ତ, ଉପାଧିଯୁକ୍ତ,ଗୁଳିଲାବେଳେ ଯାହାର ଦୁଇଆଣ୍ଠୁ ପରସ୍ପର ସଙ୍ଗେ ବାଜେ,ଅମୁକନାମରେ ନାମିତ, ଯେ ସକଳ ବିଷୟ ଜାଣେ, (ବି) ପୀତକାଷ୍ଠ, (ସ୍ତ୍ରୀ) ସଂଜ୍ଞା ।
ସଂଜ୍ଞପନ—ବି. (ସମ୍+ଜ୍ଞପି+ଭା.ଅନ) ମାରଣ, ବଧ, ଜ୍ଞାପନ,ମୁଷ୍ଟ୍ୟାଦି ଦ୍ୱାରା ଯଜ୍ଞପଶୁ ମାରଣ ଘାତ ।
ସଂଜ୍ଞପ୍ତି—ସ୍ତ୍ରୀ. ବି. (ସମ୍+ଜ୍ଞପି+ତି) ମାରଣ, ଜ୍ଞାପନ ।
ସଂଜ୍ଞା—ସ୍ତ୍ରୀ. ବି. (ସମ୍+ଜ୍ଞା+ଣ.ଅ+ଆ) ଅଭିଧା, ଆଖ୍ୟା, ନାମ, (ବସ୍ତୁର ବା ପ୍ରାଣୀର) ବିଶିଷ୍ଟତାବୋଧକ ଶବ୍ଦ, ଉପାଧି, ଜ୍ଞାନ, ଚେତନା, ଚୈତନ୍ୟ, ବୁଦ୍ଧି, ସଂକେତ, ହସ୍ତାଦି ଦ୍ୱାରା ଅର୍ଥସୂଚନା, (ବ୍ୟାକରଣ) ବିଶେଷ୍ୟ ପଦ, ବିଶିଷ୍ଟ ଅର୍ଥବୋଧକ ବିଶେଷ୍ୟ ବା ନାମ, ବ୍ୟକ୍ତି ବା ସ୍ଥାନବିଶେଷର ନାମ,ପ୍ରତ୍ୟୟର ବ୍ୟାକରଣଗତ ନାମ,ବେଦମାତା ଗାୟତ୍ରୀଦେବୀ,ଗାୟତ୍ରୀମନ୍ତ୍ର,ସୂର୍ଯ୍ୟପତ୍ନୀ, (ଗ୍ରା.ବି) ବଂଶୋପାଧି, ବିଜ୍ଞାନ, ଜ୍ୟୋତିଷ, ତନ୍ତ୍ରାଦିରେ ବ୍ୟବହୃତ ଶବ୍ଦମାନଙ୍କର ସ୍ୱରୂପ ବର୍ଣ୍ଣନା ।
ସଂଜ୍ଞାନ—ବି. ( ସମ୍+ଜ୍ଞା+ଭା.ଅନ ) ଜ୍ଞାନ, ଚେତନା, ସଂକେତ ।
ସଂଜ୍ଞାପନ—ବି. (ସମ୍+ଜ୍ଞପି+ଭା.ଅନ) ବିଜ୍ଞାପନ, ଜଣାଇବା ।
ସଂଜ୍ଞାବିଘାତୀ—ବିଂ. (ସଂଜ୍ଞା+ବି+ହନ୍+କ.ଇନ୍) ଯାହା ଚୈତନ୍ୟ ଲୋପ କରେ, (ସ୍ତ୍ରୀ) ସଂଜ୍ଞାବିଘାତିନୀ ।
ସଂଜ୍ଞାବିପର୍ଯ୍ୟୟ—ବି. (୬ତତ୍ତ୍)ଚେତନାର ନାଶ ।
ସଂଜ୍ଞାଲବ୍ଧ—ପୁଂ.ବିଂ. ଲବ୍ଧସଂଜ୍ଞ,ଲବ୍ଧଚେତନ, (ସ୍ତ୍ରୀ) ସଂଜ୍ଞାଲବ୍ଧା ।
ସଂଜ୍ଞାଲାଭ—ବି.(୬ତତ୍ତ୍) ଚେତନାଲାଭ ।
ସଂଜ୍ଞାଲୋପ—ବି. (୬ତତ୍ତ୍) ବେହୋସ ହେବା ଅବସ୍ଥା ।
ସଂଜ୍ଞାଶୂନ୍ୟ-ପୁଂ.ବିଂ. (୩ତତ୍ତ୍)ଅଚେତନ ।
ସଂଜ୍ଞାସୁତ—ବି.(୬ତତ୍ତ୍) ଯମ,ବୈବସ୍ୱତମନୁ, ଅଶ୍ୱିନୀକୁମାର ଦ୍ୱୟ, ଶନିଗ୍ରହ ।
ସଂଜ୍ଞାସୁତା—ବି. ଯମୁନା (ନଦୀ) ।
ସଂଜ୍ଞିତ—ପୁଂ. ବିଂ. ( ସଂଜ୍ଞା+ଇତ ) ସଂଜ୍ଞାରେ ବା ନାମରେ ଅଭିହିତ,(ସ୍ତ୍ରୀ) ସଂଜ୍ଞିତା ।
ସଂଜ୍ଞୁ—ବିଂ. ( ବ.ବ୍ରୀ ) ସଂହତଜାନୁ, ମିଳିତଜାନୁ, ଯାହାର ଜାନୁଦ୍ୱୟ ପରସ୍ପର ମିଳିତ ।
ସଂଜ୍ୱର—ବି. ସଞ୍ଜ୍ୱର ଦେଖ ।
ସଂଡ଼—ବି. ସଣ୍ଡ ଦେଖ ।
ସଂଡିଶ—ବି. ସଣ୍ଡିଶ ଦେଖ ।
ସଂଡ଼ୀନ—ବି.ବିଂ. ସଣ୍ଡୀନ ଦେଖ ।
ସଂତ—ବି. ସନ୍ତ ଦେଖ ।
ସଂତତ—ବିଂ.ଓ କ୍ରି.ବିଂ. ସନ୍ତତ ଦେଖ ।
ସଂତତି—ବି. ସନ୍ତତି ଦେଖ ।
ସଂତପ୍ତ—ପୁଂ. ବିଂ. ସନ୍ତପ୍ତ ଦେଖ ।
ସଂତମସ—ବି. ସନ୍ତମସ ଦେଖ ।
ସଂତରଣ—ବି. ସନ୍ତରଣ ଦେଖ ।

ସଂତର୍ପଣ—ବ. ସନ୍ତର୍ପଣ ଦେଖ ।
ସଂତାନ—ବ. ସନ୍ତାନ ଦେଖ ।
ସଂତାନକ—ବ. ସନ୍ତାନକ ଦେଖ ।
ସଂତାନକା—ବ. ସନ୍ତାନକା ଦେଖ ।
ସଂତାନତ—ପୁଂ.ବଂ.ସନ୍ତାନତ ଦେଖ ।
ସଂତାପ—ବ. ସନ୍ତାପ ଦେଖ ।
ସଂତାପନ—ବ. ସନ୍ତାପନ ଦେଖ ।
ସଂତାପନୀୟ—ବଂ. ସନ୍ତାପନୀୟ ଦେଖ ।
ସଂତାପିତ—ବଂ. ସନ୍ତାପିତ ଦେଖ ।
ସଂତାପୀ—ବଂ. ସନ୍ତାପୀ ଦେଖ ।
ସଂତି—ବ. ସନ୍ତି ଦେଖ ।
ସଂତୁଷ୍ଟ—ପୁଂ. ବଂ. ସନ୍ତୁଷ୍ଟ ଦେଖ ।
ସଂତୁଷ୍ଟି—ବ. ସନ୍ତୁଷ୍ଟି ଦେଖ ।
ସଂତୋଳନ—ବ. ସନ୍ତୋଳନ ଦେଖ ।
ସଂତୋଷ—ବ. ସନ୍ତୋଷ ଦେଖ ।
ସଂତୋଷଣୀୟ-ବଂ.ସନ୍ତୋଷଣୀୟ ଦେଖ
ସଂତୋଷୀ—ପୁଂ.ବଂ.ସନ୍ତୋଷୀ ଦେଖ ।
ସଂତ୍ରସ୍ତ—ପୁଂ. ବଂ. ସନ୍ତ୍ରସ୍ତ ଦେଖ ।
ସଂତ୍ରାସ—ବ. ସନ୍ତ୍ରାସ ଦେଖ ।
ସଂତ୍ରାସିତ—ପୁଂ.ବଂ. ସନ୍ତ୍ରାସିତ ଦେଖ ।
ସଂଦଂଶ—ବ. ସନ୍ଦଂଶ ଦେଖ ।
ସଂଦର୍ଭ—ବ. ସନ୍ଦର୍ଭ ଦେଖ ।
ସଂଦର୍ଶନ—ବ. ସନ୍ଦର୍ଶନ ଦେଖ ।
ସଂଦଷ୍ଟ—ବଂ. ସନ୍ଦଷ୍ଟ ଦେଖ ।
ସଂଦାନ—ବ. ସନ୍ଦାନ ଦେଖ ।
ସଂଦାନିତ—ବଂ. ସନ୍ଦାନିତ ଦେଖ ।
ସଂଦାନିନୀ—ବ. ସନ୍ଦାନିନୀ ଦେଖ ।
ସଂଦାବ—ବ. ସନ୍ଦାବ ଦେଖ ।
ସଂଦିଗ୍ଧ—ବ. ସନ୍ଦିଗ୍ଧ ଦେଖ ।
ସଂଦିଗ୍ଧତା—ବ. ସନ୍ଦିଗ୍ଧତା ଦେଖ ।
ସଂଦିତ—ବଂ. ସନ୍ଦିତ ଦେଖ ।
ସଂଦିଷ୍ଟ—ପୁଂ. ବଂ. ସନ୍ଦିଷ୍ଟ ଦେଖ ।
ସଂଦିହାନ—ପୁଂ.ବଂ.ସନ୍ଦିହାନ ଦେଖ ।
ସଂଦୀ—ସ୍ତ୍ରୀ. ବ. ସନ୍ଦୀ ଦେଖ ।
ସଂଦୀପ୍ୟ—ବ. ସନ୍ଦୀପ୍ୟ ଦେଖ ।
ସଂଦୃବ୍ଧ—ବଂ. ସନ୍ଦୃବ୍ଧ ଦେଖ ।
ସଂଦେଶ—ବ. ସନ୍ଦେଶ ଦେଖ ।
ସଂଦେହ—ବ. ସନ୍ଦେହ ଦେଖ ।
ସଂଦେଶ୍ୟ—ବ. ବଂ. ସନ୍ଦେଶ୍ୟ ଦେଖ ।

ସଂଦୋହ—ବ. ସନ୍ଦୋହ ଦେଖ ।
ସଂଦ୍ରାବ—ବ. ସନ୍ଦ୍ରାବ ଦେଖ ।
ସଂଧା—ବ. ସନ୍ଧା ଦେଖ ।
ସଂଧାତବ୍ୟ—ବଂ. ସନ୍ଧାତବ୍ୟ ଦେଖ ।
ସଂଧାନ—ବ. ସନ୍ଧାନ ଦେଖ ।
ସଂଧାନକା—ବ. ସନ୍ଧାନକା ଦେଖ ।
ସଂଧାନିତ—ବଂ. ସନ୍ଧାନିତ ଦେଖ ।
ସଂଧାମୀ—ପୁଂ. ବଂ. ସନ୍ଧାମୀ ଦେଖ ।
ସଂଧି—ବ. ସନ୍ଧି ଦେଖ ।
ସଂଧିକା—ବ. ସନ୍ଧିକା ଦେଖ ।
ସଂଧିକ—ବ. ସନ୍ଧିକ ଦେଖ ।
ସଂଧିଜ—ବଂ. ସନ୍ଧିଜ ଦେଖ ।
ସଂଧିଷ୍ଠା—ବ. ସନ୍ଧିଷ୍ଠା ଦେଖ ।
ସଂଧିସ୍ତୁ—ବଂ. ସନ୍ଧିସ୍ତୁ ଦେଖ ।
ସଂଧିତ—ବଂ. ସଂଧିତ ଦେଖ ।
ସଂଧିନୀ—ସ୍ତ୍ରୀ. ବ. ସନ୍ଧିନୀ ଦେଖ ।
ସଂଧିଲା—ବ. ସନ୍ଧିଲା ଦେଖ ।
ସଂଧୁକ୍ଷଣ—ବ. ସନ୍ଧୁକ୍ଷଣ ଦେଖ ।
ସଂଧୁକ୍ଷିତ—ବଂ. ସନ୍ଧୁକ୍ଷିତ ଦେଖ ।
ସଂଧେୟ—ବଂ. ସନ୍ଧେୟ ଦେଖ ।
ସଂଧ୍ୟା—ବ. ସନ୍ଧ୍ୟା ଦେଖ ।
ସଂନତ—ବଂ. ସନ୍ନତ ଦେଖ ।
ସଂନଦ୍ଧ—ବ. ସନ୍ନଦ୍ଧ ଦେଖ ।
ସଂନଦ୍ଧ—ପୁଂ. ବଂ. ସନ୍ନଦ୍ଧ ଦେଖ ।
ସଂନମନ—ବ. ସନ୍ନମନ ଦେଖ ।
ସଂନୟ—ବ. ସନ୍ନୟ ଦେଖ ।
ସଂନହନ—ବ. ସନ୍ନହନ ଦେଖ ।
ସଂନାହ—ବ. ସନ୍ନାହ ଦେଖ ।
ସଂନାହ୍ୟ—ବ ଓ ବଂ. ସନ୍ନାହ୍ୟ ଦେଖ ।
ସଂନିକଟ—ବଂ. ସନ୍ନିକଟ ଦେଖ ।
ସଂନିକର୍ଷ—ବ. ସନ୍ନିକର୍ଷ ଦେଖ ।
ସଂନିକର୍ଷଣ—ବ. ସନ୍ନିକର୍ଷଣ ଦେଖ ।
ସଂନିକୃଷ୍ଟ—ବଂ. ସନ୍ନିକୃଷ୍ଟ ଦେଖ ।
ସଂନିଧ—ବ. ସନ୍ନିଧ ଦେଖ ।
ସଂନିଧାନ—ବ. ସନ୍ନିଧାନ ଦେଖ ।
ସଂନିଧାମୀ—ପୁଂ. ବଂ. ସାମାଜିକ ।
ସଂନିଧାପନ(ନା)—ବ.ସନ୍ନିଧାପନ ଦେଖ
ସଂନିଧାପନୀମୁଦ୍ରା—ବ. ସନ୍ନିଧାପନୀମୁଦ୍ରା ଦେଖ ।

ସଂନିଧି—ବ. ସନ୍ନିଧି ଦେଖ ।
ସଂନିପତନ—ବ. ସନ୍ନିପତନ ଦେଖ ।
ସଂନିପତିତ—ବଂ. ସନ୍ନିପତିତ ଦେଖ ।
ସଂନିପାତ—ବ. ସନ୍ନିପାତ ଦେଖ ।
ସଂନିପାତନ—ବ. ସନ୍ନିପାତନ ଦେଖ ।
ସଂନିବଦ୍ଧ—ବଂ. ସନ୍ନିବଦ୍ଧ ଦେଖ ।
ସଂନିବନ୍ଧନ—ବ. ସନ୍ନିବନ୍ଧନ ଦେଖ ।
ସଂନିବିଷ୍ଟ—ବଂ. ସନ୍ନିବିଷ୍ଟ ଦେଖ ।
ସଂନିବୃତ୍ତ—ବଂ. ସନ୍ନିବୃତ୍ତ ଦେଖ ।
ସଂନିବୃତ୍ତି—ବ. ସନ୍ନିବୃତ୍ତି ଦେଖ ।
ସଂନିବେଶ—ବ. ସନ୍ନିବେଶ ଦେଖ ।
ସଂନିଭ—ବଂ. ସନ୍ନିଭ ଦେଖ ।
ସଂନିହିତ—ବଂ. ସନ୍ନିହିତ ଦେଖ ।
ସଂନ୍ୟସ୍ତ—ବଂ. ସନ୍ନ୍ୟସ୍ତ ଦେଖ ।
ସଂନ୍ୟାସ—ବ. ସନ୍ନ୍ୟାସ ଦେଖ ।
ସଂନ୍ୟାସନ—ବ. ସନ୍ନ୍ୟାସନ ଦେଖ ।
ସଂନ୍ୟାସିନୀ—ସ୍ତ୍ରୀ.ବ ଓ ବଂ. ସନ୍ନ୍ୟାସିନୀ ଦେଖ ।
ସଂନ୍ୟାସୀ—ପୁଂ.ବ.ଓ ବଂ.ସନ୍ନ୍ୟାସୀ ଦେଖ
ସଂପତ୍ତି—ବ. ସମ୍ପତ୍ତି ଦେଖ ।
ସଂପଦ୍—ବ. ସମ୍ପଦ ଦେଖ ।
ସଂପନ୍ନ—ବଂ. ସମ୍ପନ୍ନ ଦେଖ ।
ସଂପରାୟ—ବ. ସମ୍ପରାୟ ଦେଖ ।
ସଂପରାୟିକ—ବ. ସମ୍ପରାୟିକ ଦେଖ ।
ସଂପରିଗ୍ରହ—ବ. ସମ୍ପରିଗ୍ରହ ଦେଖ ।
ସଂପର୍କ—ବ. ସମ୍ପର୍କ ଦେଖ ।
ସଂପର୍କୀ—ପୁଂ. ବଂ. ସମ୍ପର୍କୀଦେଖ ।
ସଂପର୍କୀୟ—ପୁଂ.ବଂ. ସମ୍ପର୍କୀୟ ଦେଖ ।
ସଂପା—ବ. ସମ୍ପା ଦେଖ ।
ସଂପାକ—ପୁଂ.ବଂ. ସମ୍ପାକ ଦେଖ ।
ସଂପାଟ—ବ. ସମ୍ପାଟ ଦେଖ ।
ସଂପାତ—ବ.ସମ୍ପାତ ଦେଖ ।
ସଂପାଠ—ବ. ସମ୍ପାଠ ଦେଖ ।
ସଂପାଠକ—ବ. ସମ୍ପାଠକ ଦେଖ ।
ସଂପାଦକ-ପୁଂ.ବ ଓ ବଂ.ସମ୍ପାଦକ ଦେଖ
ସଂପାଦକତା—ବ. ସମ୍ପାଦକତା ଦେଖ
ସଂପାଦକୀୟ—ବଂ. ସମ୍ପାଦକୀୟ ଦେଖ ।
ସଂପାଦନ—ବ. ସମ୍ପାଦନ ଦେଖ ।
ସଂପାଦନୀୟ—ବଂ. ସମ୍ପାଦନୀୟ ଦେଖ

ସଂପାଦୟିତା—ପୁଂ.ବିଂ.ସମ୍ପାଦୟିତା ଦେଖ
ସଂପାଦିତ—ବିଂ. ସମ୍ପାଦିତ ଦେଖ।
ସଂପାଦ୍ୟ—ବି ଓ ବିଂ. ସମ୍ପାଦ୍ୟ।
ସଂପୀଡ଼—ବି. ସମ୍ପୀଡ଼ ଦେଖ।
ସଂପୀଡ଼ନୀୟ—ବିଂ. ସମ୍ପୀଡ଼ନୀୟ ଦେଖ।
ସଂପୀଡ଼ିତ—ବିଂ. ସମ୍ପୀଡ଼ିତ ଦେଖ।
ସଂପୀଡ଼୍ୟମାନ—ବିଂ.ସମ୍ପୀଡ଼୍ୟମାନ ଦେଖ
ସଂପୀତ—ବି. ସମ୍ପୀତ ଦେଖ।
ସଂପୁଟ—ବି ଓ ବିଂ. ସମ୍ପୁଟ ଦେଖ।
ସଂପୁଟକ—ବି. ସମ୍ପୁଟକ ଦେଖ।
ସଂପୁଟିତ—ବିଂ. ସମ୍ପୁଟିତ ଦେଖ।
ସଂପୂର୍ଣ୍ଣ—ବିଂ. ସମ୍ପୂର୍ଣ୍ଣ ଦେଖ।
ସଂପୂର୍ଣ୍ଣତୟା-କ୍ରି.ବିଂ.ସମ୍ପୂର୍ଣ୍ଣତୟା ଦେଖ
ସଂପୂର୍ଣ୍ଣତର(ମ)-ବିଂ.ସମ୍ପୂର୍ଣ୍ଣତର(ମ)ଦେଖ
ସଂପୂର୍ଣ୍ଣତା(ତ୍ୱ)—ବି. ସମ୍ପୂର୍ଣ୍ଣତା ଦେଖ।
ସଂପୂର୍ଣ୍ଣା—ବି ଓ ବିଂ. ସମ୍ପୂର୍ଣ୍ଣା ଦେଖ।
ସଂପୃକ୍ତ—ବିଂ. ସମ୍ପୃକ୍ତ ଦେଖ।
ସଂପୋଷ୍ୟ—ବିଂ. ସମ୍ପୋଷ୍ୟ ଦେଖ।
ସଂପ୍ରତି—ଅବ୍ୟ. ସମ୍ପ୍ରତି ଦେଖ।
ସଂପ୍ରତିପତ୍ତି—ବି. ସମ୍ପ୍ରତିପତ୍ତି ଦେଖ।
ସଂପ୍ରତିବୋଧ—ବି. ସମ୍ପ୍ରତିବୋଧ ଦେଖ।
ସଂପ୍ରତିବୋଧକ—ପୁଂ. ବି ଓ ବିଂ. ସମ୍ପ୍ରତିବୋଧକ ଦେଖ।
ସଂପ୍ରଜାତ—ବିଂ. ସମ୍ପ୍ରଜାତ ଦେଖ।
ସଂପ୍ରଜ୍ଞାତ—ବି. ସମ୍ପ୍ରଜ୍ଞାତ ଦେଖ।
ସଂପ୍ରଦାତା—ପୁଂ.ବି ଓ ବିଂ. ସମ୍ପ୍ରଦାତା ଦେଖ।
ସଂପ୍ରଦାନ—ବି. ସମ୍ପ୍ରଦାନ ଦେଖ।
ସଂପ୍ରଦାନୀୟ—ବିଂ. ସମ୍ପ୍ରଦାନୀୟ ଦେଖ।
ସଂପ୍ରଦାୟ—ବି. ସମ୍ପ୍ରଦାୟ ଦେଖ।
ସଂପ୍ରଧାରଣ(ଣା)—ବି.ସମ୍ପ୍ରଧାରଣ ଦେଖ।
ସଂପ୍ରପଦ—ବି. ସମ୍ପ୍ରପଦ ଦେଖ।
ସଂପ୍ରଯୁକ୍ତ—ବିଂ. ସମ୍ପ୍ରଯୁକ୍ତ ଦେଖ।
ସଂପ୍ରୟୋଗ—ପୁଂ. ବି. ସମ୍ପ୍ରୟୋଗ ଦେଖ
ସଂପ୍ରୟୋଗୀ—ପୁଂ.ବିଂ.ସମ୍ପ୍ରୟୋଗୀ ଦେଖ
ସଂପ୍ରୟୋଜକ—ପୁଂ. ବିଂ. ସମ୍ପ୍ରୟୋଜକ ଦେଖ। [ ଦେଖ।
ସଂପ୍ରୟୋଜନ(ନା)—ବି. ସମ୍ପ୍ରୟୋଜନ
ସଂପ୍ରସାଦ—ବି. ସମ୍ପ୍ରସାଦ ଦେଖ।
ସଂପ୍ରସାରଣ—ବି. ସମ୍ପ୍ରସାରଣ ଦେଖ।
ସଂପ୍ରସ୍ଥିତ—ବିଂ. ସମ୍ପ୍ରସ୍ଥିତ ଦେଖ।
ସଂପ୍ରହାର—ବି. ସମ୍ପ୍ରହାର ଦେଖ।
ସଂପ୍ରାପ୍ତ—ବିଂ. ସମ୍ପ୍ରାପ୍ତ ଦେଖ।
ସଂପ୍ରୀତ—ବିଂ. ସମ୍ପ୍ରୀତ ଦେଖ।
ସଂପ୍ରେଷ—ବି. ସମ୍ପ୍ରେଷ ଦେଖ।
ସଂପ୍ଳବ—ବି. ସମ୍ପ୍ଳବ ଦେଖ।
ସଂଫାଲ—ବି. ସମ୍ଫାଲ ଦେଖ।
ସଂଫୁଲ୍ଲ—ବିଂ. ସମ୍ଫୁଲ୍ଲ ଦେଖ।
ସଂବ—ବି. ସମ୍ବ ଦେଖ।
ସଂବତ୍—ବି. ସମ୍ବତ୍ ଦେଖ।
ସମ୍ବତ୍‌ସମ—ଅ. ସମ୍ବତ୍ସର ପର୍ଯ୍ୟନ୍ତ।
ସଂବତ୍ସର—ବି. ସମ୍ବତ୍ସର ଦେଖ।
ସଂବତ୍ସରକରି—ପୁଂ. ବି. ଶିବ।
ସଂବତ୍ସରତମ—ବିଂ. ସମ୍ବତ୍ସରର ପୂରକ, ଯେ ସମ୍ବତ୍ସରର ପୂରଣ କରେ।
ସଂବତ୍ସରଦୀପକୃତ—ବି. ଦୀପଦାନ ରୂପ ଉତ୍ସବବିଶେଷ। [ ବିଶେଷ।
ସଂବତ୍ସରପ୍ରବର୍ହ—ବି. ଗବାମୟନ ଯାଗ-
ସଂବତ୍ସରପ୍ରବଲ୍ହ—ବି. କୃତ୍ୟବିଶେଷ।
ସଂବତ୍ସରଭ୍ରମୀ—ବିଂ. ବର୍ଷ ଭ୍ରମଣକାରୀ (ସୂର୍ଯ୍ୟ)। [ କାରୀ।
ସଂବତ୍ସରଭୃତ୍—ବିଂ. ସମ୍ବତ୍ସର ପାଳନ-
ସଂବତ୍ସରମୟ—ବିଂ. ସମ୍ବତ୍ସରଯୁକ୍ତ।
ସଂବତ୍ସରରୟ—ବିଂ ଏକବର୍ଷବ୍ୟାପୀ ଯାହା ହୁଏ।
ସଂବତ୍ସରସତ—ବି. ସୋମଯଜ୍ଞ।
ସଂବତ୍ସରସଦ୍—ବିଂ. ସମ୍ବତ୍ସର ବାସକାରୀ
ସଂବତ୍ସରସମ୍ମିତ—ବିଂ.ସମ୍ବତ୍ସର ପରମିତ
ସଂବତ୍ସରସହସ୍ର—କ୍ଲୀ.ବି. ବର୍ଷସହସ୍ର।
ସଂବତ୍ସରାବର—ବି. ନ୍ୟୂନକଳ୍ପ ଏକ ବତ୍ସର।
ସଂବତ୍ସରିକ—ବିଂ. ସମ୍ବତ୍ସରସମ୍ବନ୍ଧୀୟ, ସାମ୍ବତ୍ସରିକ।
ସଂବତ୍ସରୀଣ—ବିଂ.ସମ୍ବତ୍ସରବ୍ୟାପୀ ଉତ୍ପନ୍ନ
ସଂବତ୍ସରୀୟ—ବିଂ. ସମ୍ବତ୍ସରେତ୍ପନ୍ନ।
ସଂବତ୍ସରୋପାସିତ—ବିଂ. ସମ୍ବତ୍ସରଭୃତ୍ ମନ୍ତ୍ରୋକ୍ଷଧଦ୍ୱାରା ବର୍ଣ୍ଣକରଣ।
ସଂବଦନ—ବି. ସମ୍ବଦନ ଦେଖ।
ସଂବଦନା—ସ୍ତ୍ରୀ.ବି. ସମ୍ବଦନ ବଶୀକରଣ,
ସଂବଦିତବ୍ୟ—ବିଂ. ସଂବଦନର ଉପଯୁକ୍ତ, ସମ୍ୟକ୍‌ପ୍ରକାରରେ କଥିତବ୍ୟ।
ସଂବନ୍ଧ—ବିଂ. ସମ୍ବନ୍ଧ ଦେଖ।
ସଂବନନ—ବି. ସମ୍ବନନ ଦେଖ।
ସଂବନ୍ଦନ—କ୍ଲୀ. ବି. ସମ୍ୟକ ପ୍ରକାରରେ ବନ୍ଦନ।
ସଂବନ୍ଧ—ବି. ସମ୍ବନ୍ଧ ଦେଖ।
ସଂବନ୍ଧନୀ—ସ୍ତ୍ରୀ.ବି.ବିଂ.ସମ୍ବନ୍ଧନୀ ଦେଖ।
ସଂବନ୍ଧୀ—ପୁଂ. ବି. ବିଂ. ସମ୍ବନ୍ଧୀ ଦେଖ।
ସଂବନ୍ଧୀୟ—ବିଂ. ସମ୍ବନ୍ଧୀୟ ଦେଖ।
ସଂବର—ବି. ସମ୍ବର ଦେଖ।
ସଂବରଣ—ବି. ସମ୍ବରଣ ଦେଖ।
ସଂବରଣୀୟ—ବିଂ. ସମ୍ବରଣ କରିବାର ଉପଯୁକ୍ତ, ନିବାରଣର ଯୋଗ୍ୟ,ସଙ୍ଗୋପନୀୟ।
ସଂବରିତ—ବିଂ. ସମ୍ବରିତ ଦେଖ।
ସଂବର୍ଗ—ବି. ସମ୍ବର୍ଗ ଦେଖ।
ସଂବର୍ଗ—ବି. ସମବିଶେଷ, ସମୂହ,(ବିଂ) ଏକତ୍ରଭୂତ।
ସଂବର୍ଗଜିତ୍—ପୁଂ.ବି.ଲୌମକାୟନ ଗୋତ୍ର ସମ୍ଭୂତ ବୈଦିକ ଆଚାର୍ଯ୍ୟବିଶେଷ।
ସଂବର୍ଗ—ଅ. ସମ୍ୟକ୍‌ପ୍ରକାରେ ବର୍ଜନକାରୀ। [ ଯୁକ୍ତ।
ସଂବର୍ଗ୍ୟ—ବିଂ. ବର୍ଗଦ୍ୱାରା ଗୁଣନର ଉପ-
ସଂବର୍ଜ୍ଜନ—କ୍ଲୀ. ବି. ସଂଗ୍ରହଣ, ସଂଗ୍ରହ।
ସଂବର୍ଣ୍ଣନ—ବି. ବ୍ୟାଖ୍ୟାକରଣ।
ସଂବର୍ତ୍ତ—ବି. ସମ୍ବର୍ତ୍ତ ଦେଖ।
ସଂବର୍ତ୍ତକ—ବି. ସମ୍ବର୍ତ୍ତକ ଦେଖ।
ସଂବର୍ତ୍ତିକା—ବି. ସମ୍ବର୍ତ୍ତିକା ଦେଖ।
ସଂବର୍ତ୍ତନ—ବି. ମନ୍ତ୍ରଶକ୍ତିସମ୍ପନ୍ନ ଯୁଦ୍ଧାସ୍ତ୍ରବିଶେଷ।
ସଂବର୍ତ୍ତି—ଅ.ସମ୍ୟକ ପ୍ରକାରେ ଆବର୍ତ୍ତନ
ସଂବର୍ତ୍ତିମରୁତୀୟ—ବିଂ. ସମ୍ବର୍ତ୍ତି ଓ ମରୁତ ସମ୍ବନ୍ଧୀୟ।
ସଂବର୍ତ୍ତି—ବି. ସମ୍ବର୍ତ୍ତି ଦେଖ।
ସଂବର୍ତ୍ତିକା—ସ୍ତ୍ରୀ. ବି. ପଦ୍ମକେଶର ସମୀପସ୍ଥ ଦଳ, ପଦ୍ମାଦିର କର୍ଣ୍ଣିକାକାର ନୂତନପତ୍ର, ପଦ୍ମାଦି,ଦୀପାଦିର ଦଶା, ବର୍ତ୍ତି।

ସଂବର୍ଦ୍ଧକ—ପୁଂ.ବିଂ. ସମ୍ବର୍ଦ୍ଧ ଦେଖ ।
ସଂବର୍ଦ୍ଧନ(ନା)—ବି. ସମ୍ବର୍ଦ୍ଧନ ଦେଖ ।
ସଂବର୍ଦ୍ଧନୀୟ—ବିଂ. ସମ୍ୟକ୍‌ପ୍ରକାରେ ବୃଦ୍ଧି-କରିବାର ଉପଯୁକ୍ତ, ପ୍ରତିପାଳନୀୟ, ପରିରକ୍ଷଣୀୟ ।
ସଂବର୍ଦ୍ଧିତ—ବିଂ. ସମ୍ବର୍ଦ୍ଧିତ ଦେଖ ।
ସଂବର୍ମିତ—ବିଂ. ସମ୍ବର୍ମିତ ଦେଖ ।
ସଂବର୍ଷଣ—କ୍ଲୀ. ବି. ବୃଥାଭିମାନ, ମିଥ୍ୟା-ଭିମାନ ।
ସଂବଲ—ବି. ସମ୍ବଲ ଦେଖ ।
ସଂବଳନ—ବି. ସମ୍ମିଳନ, ସମ୍ୟକ୍‌ଗଠନ ।
ସଂବଳିତ—ବିଂ. ସମ୍ବଳିତ ଦେଖ ।
ସଂବସଥ—ବି. ସମ୍ବସଥ ଦେଖ ।
ସଂବସନ—ବିଂ.ବାସକରିବାର ଉପଯୁକ୍ତ, ଯେଉଁଠାରେ ବାସକରାଯାଇପାରେ ।
ସଂବସୁ—ବିଂ.ସମ୍ୟକ୍‌ପ୍ରକାରେ ବାସକାରୀ ।
ସଂବହ—ବି. ସମ୍ବହ ଦେଖ ।
ସଂବହନ—ବି. ( ସମ୍+ବହ୍+ଅନ ) ସଞ୍ଚାଳନ, ସମ୍ୟକ୍‌ପ୍ରକାରେ ବହନ ।
ସଂବହିକା—ବି. ସମ୍ବହିକା ଦେଖ ।
ସଂବହିତା—ବିଂ. (ସମ୍+ବହ୍+ତୃ ) ସଂବାହକ, ସଂବାହନକାରୀ ।
ସଂବାକୃତ—ବିଂ ଓ ବି.ସମ୍ବାକୃତଦେଖ ।
ସଂବାଟିକା—ସ୍ତ୍ରୀ.ବି.ଶୃଙ୍ଗାଟକ,ଚତୁଷ୍ପଥ ।
ସଂବାଦ—ବି.ସମ୍ବାଦ ଦେଖ ।[ ଦାତା ।
ସଂବାଦକ—ବି. ମିଳନ, ସଂଘ, ସମ୍ବାଦ-
ସଂବାଦନ—ବି. ସମ୍ମିଳନ
ସଂବାଦୀ—ପୁଂ. ବିଂ. ସମ୍ବାଦୀ ଦେଖ ।
ସଂବାଧ—ବି. ସମ୍ବାଧ ଦେଖ ।
ସଂବାଧନ—ବି. ସମ୍ବାଧନ ଦେଖ ।
ସଂବାର—ବି. ବାକ୍ୟରୋଧକରଣ,ବାକ୍-ସଂଯମ, ନିବାରଣ ।
ସଂବାରକ—ପୁଂ. ବିଂ. ନିବାରଣକାରୀ, କ୍ଷାନ୍ତକାରୀ ।
ସଂବାରୟିଷ୍ଣୁ—ବିଂ. ସଂବାରଣଶୀଳ,ଯେ ସମ୍ବାରିତ ହୋଇଥାଏ ।
ସଂବାର୍ଯ୍ୟ—ବିଂ. ସଂବାରଣୀୟ, ଯାହାକୁ ନିବାରଣ କରାଯାଏ ।
ସଂବାସ—ବି. ସମ୍ବାସ ଦେଖ ।
ସଂବାସୀ—ପୁଂ.ବିଂ. ବାସଧାରୀ,ବିସ୍ତ୍ରଯୁକ୍ତ, ଏକ ଗ୍ରାମରେ ବାସକାରୀ ।
ସଂବାସ୍ୟ-ବିଂ.ଛେଦନ କରିବାର ଯୋଗ୍ୟ ।
ସଂବାହ—ବି. ସମ୍ବାହ ଦେଖ ।
ସଂବାହକ—ପୁଂ. ବିଂ ଓ ବି. ସମ୍ବାହକ ଦେଖ ।
ସଂବାହନ—ବି. ସମ୍ବାହନ ଦେଖ ।
ସଂବାହିକା—ସ୍ତ୍ରୀ. ବି. ପିପିଲିକାବିଶେଷ ।
ସଂବାହିତ—ବିଂ. ସମ୍ବାହିତ ଦେଖ ।
ସଂବାହିତବ୍ୟ—ବିଂ. ସଂବାହନ କରିବା ଯୋଗ୍ୟ, ଯାହାକୁ ସଂବାହନ କରିବାକୁ ହେବ ।
ସଂବାହୀ—ପୁଂ. ବିଂ. ସଂବାହନଶୀଳ, ସଂବାହନଯୁକ୍ତ ।
ସଂବାହ୍ୟ—ବିଂ. ( ସମ୍+ବହ୍+ଯ ) ସଂବାହିତ, ସମ୍ୟକ୍ ପ୍ରକାରରେ ବହନ କରିବାର ଯୋଗ୍ୟ ।
ସଂବିଗ୍ନ—ବିଂ. ସମ୍ବିଗ୍ନ ଦେଖ ।
ସଂବିଚେତବ୍ୟ—ବିଂ.(ସମ୍+ବି+ଚି+ତବ୍ୟ) ସମ୍ୟକ୍ ରୂପେ ପୃଥକ୍‌କରଣ ଯୋଗ୍ୟ ।
ସଂବିଜ୍ଞାତ—ବିଂ. ସମ୍ୟକ୍‌ପ୍ରକାରେ ଜ୍ଞାତ ।
ସଂବିଜ୍ଞାନ—ବି. (ସମ୍+ବି+ଜ୍ଞା+ଅନ) ସମ୍ୟକ୍ ଜ୍ଞାନ ।
ସଂବିତ୍—ବି. ସମ୍ବିତ୍ ଦେଖ ।
ସଂବିତକାଫଳ-ବି.ସେବଫଳ,ସେଉଫଳ ।
ସଂବିତ୍ତି—ବି. ସମ୍ବିତ୍ତି ଦେଖ ।
ସଂବିଦ୍‌ବ୍ୟତିକ୍ରମ—ବି. ସମ୍ବିଦ୍‌ବ୍ୟତିକ୍ରମ ଦେଖ ।
ସଂବିଦା—ବି. ସମ୍ବିଦା ଦେଖ ।
ସଂବିଦିତ—ବିଂ. ସମ୍ବିଦିତ ଦେଖ ।
ସଂବିଧ୍—ସ୍ତ୍ରୀ.ବି.ସଂବିଧା,ସେବାର ସାମଗ୍ରୀ, ଉପକରଣ ଦ୍ରବ୍ୟ ।
ସଂବିଧା—ବି. ସମ୍ବିଧା ଦେଖ ।
ସଂବିଧାତା—ପୁଂ. ବିଂ. (ସମ୍+ବି+ଧା+ତୃ) ସଂବିଧାନକାରୀ ।
ସଂବିଧାତବ୍ୟ—ବିଂ. ସଂବିଧାନ ଯୋଗ୍ୟ ।
ସଂବିଧାନ—କ୍ଲୀ. ବି. (ସମ୍+ବି+ଧା+ଅନ) ସଂବିଧା ଦେଖ ।
ସଂବିଧାନକ—କ୍ଲୀ.ବି.ଅଲୌକିକ ଘଟନା, ଯାହା ସାଧାରଣରେ ଘଟେ ନାହିଁ ।
ସଂବିଧାନବାନ୍—ପୁଂ.ବିଂ.ସଂବିଧାନଯୁକ୍ତ, ଉପକରଣବିଶିଷ୍ଟ ।
ସଂବିଧି—ବି. ସଂବିଧା ଦେଖ ।
ସଂବିଧେୟ—ବିଂ. ସଂବିଧାତବ୍ୟ, ସଂବି-ଧାନର ଯୋଗ୍ୟ ।
ସଂବିନ୍ମୟ—ବିଂ. ଚିନ୍ମୟ, ଜ୍ଞାନମୟ ।
ସଂବିଭକ୍ତ—ବିଂ. ସମ୍ବିଭକ୍ତ ଦେଖ ।
ସଂବିଭକ୍ତା—ପୁଂ. ବିଂ. ବିଭାଗକର୍ତ୍ତା, ଯେ ବିଶେଷରୂପେ ଭାଗ କରେ ।
ସଂବିଭଜନୀୟ—ବିଂ. ସମ୍ୟକ୍ ପ୍ରକାରେ ବିଭକ୍ତବ୍ୟ, ଯାହା ଯଥାମତ ବିଭାଗକରା-ଯିବା ଉଚିତ ।
ସଂବିଭଜ୍ୟ—ବିଂ. ସଂବିଭଜନୀୟ ଦେଖ ।
ସଂବିଭାଗ—ବି. ସମ୍ୟକ୍‌ପ୍ରକାରେ ଭାଗ, ଅଂଶର ସ୍ଥିର ।
ସଂବିଭାଗିତା—ସ୍ତ୍ରୀ. ବି. ସଂବିଭାଗକାରିତା, ସଂବିଭାଗକାରୀର ଭାବ ।
ସଂବିଭାଗୀ—ପୁଂ. ବିଂ. ପ୍ରବିଭାଗକାରୀ,ଯେ ସମ୍ୟକ୍‌ପ୍ରକାରେ ଭାଗ କରେ ।
ସଂବିଭାଜ୍ୟ—ବିଂ. ସମ୍ୟକ୍‌ପ୍ରକାରେ ଭାଗ-କରିବାର ଯୋଗ୍ୟ ।
ସଂବିଭାବ୍ୟ—ବିଂ. ସଂଚିନ୍ତ୍ୟ, ସମ୍ୟକ୍‌ଭାବ-ନାର ପାତ୍ର ।
ସଂବିମର୍ଦ୍ଦ—ପୁଂ. ବି. ସମ୍ୟକ୍‌ପ୍ରକାରେ ବିମର୍ଦ୍ଦନ ।
ସଂବିବର୍ଦ୍ଧୟିଷୁ—ବିଂ. ସମ୍ୟକ୍‌ପ୍ରକାରେ ବର୍ଦ୍ଧନ କରିବାକୁ ଇଚ୍ଛୁକ ।
ସଂବିବାଦୀ—ପୁଂ. ବିଂ. (ସମ୍+ବି+ବଦ୍+ଇନ୍) ସମ୍ୟକ୍‌ବିବାଦଯୁକ୍ତ, ପରସ୍ପର ଭିନ୍ନମତବିଶିଷ୍ଟ ।
ସଂବିଷା—ସ୍ତ୍ରୀ. ବି. ଅତିବିଷା, ଅତୁଟୀ ।
ସଂବିଷ୍ଟ—ବିଂ. ସମ୍ବିଷ୍ଟ ଦେଖ ।
ସଂବିହାର—ବି. ସମ୍ୟକ୍‌ପ୍ରକାରେ ବିହାର ।
ସଂବୀକ୍ଷଣ—ବି. ସମ୍ବୀକ୍ଷଣ ଦେଖ ।
ସଂବୀତ—ବିଂ. ସମ୍ବୀତ ଦେଖ ।
ସଂବୃଦ୍ଧ—ବିଂ. ସମ୍ବୃଦ୍ଧ ଦେଖ ।
ସଂବୃଦ୍ଧି—ବି. ସମ୍ବୃଦ୍ଧି ଦେଖ ।

ସଂବୁବୂର୍ଷୁ—ବିଂ. ( ସମ୍+ବୃ+ସନ୍+
ଉ) ସମ୍ବରଣ କରିବାକୁ ଇଚ୍ଛୁକ ।
ସଂବୃକ୍ତଧୃଷ୍ଣୁ—ବିଂ. ଧର୍ଷଣଶୀଳ ଅର୍ଥାତ୍
ଅଖ୍ୟାତମାନଙ୍କର ଛିନ୍ନବିଚ୍ଛିନ୍ନକାରୀ ।
ସଂବୃଜ୍—ବିଂ. ସ୍ୱୀକର୍ତ୍ତା,ସ୍ୱୀକାରକାରୀ ।
ସଂବୃତ୍—ବିଂ. ଆଚ୍ଛାଦିତ ।
ସଂବୃତ—ବିଂ. ସମ୍ବୃତ ଦେଖ ।
ସଂବୃତକୋଷ୍ଠ—ବିଂ. ବଦ୍ଧକୋଷ୍ଠ ।
ସଂବୃତମନ୍ତ୍ର—ବିଂ.ଗୁପ୍ତମନ୍ତ୍ର. ଗୁପ୍ତରହସ୍ୟ ।
ସଂବୃତି—ବି. ସମ୍ବୃତି ଦେଖ ।
ସଂବୃତ୍ତ—ବିଂ. ସମ୍ବୃତ୍ତ ଦେଖ ।
ସଂବୃତ୍ତି—ବି. ସମ୍ବୃତ୍ତି ଦେଖ ।
ସଂବୃଦ୍ଧି—ବି. ସମ୍ୟକ୍ ପ୍ରକାରେ ବୃଦ୍ଧି ।
ସଂବେଗ—ବି. ସମ୍ବେଗ ଦେଖ ।
ସଂବେଜନ—ବି. (ସମ୍+ବିଜ୍+ଅନ)
ସମ୍ୟକ୍ କମ୍ପନ ।
ସଂବେଦ—ବି. ସମ୍ବେଦ ଦେଖ ।
ସଂବେଦନ(ନା)—ବି.ସମ୍ବେଦନ ଦେଖ ।
ସଂବେଦ୍ୟ—ବିଂ. ସମ୍ବେଦ୍ୟ ଦେଖ ।
ସଂବେଦ୍ୟତା(ତ୍ୱ)—ଜ୍ଞେୟତ୍ୱ, ଜାଣିବାର
ଉପଯୁକ୍ତତା ।
ସଂବେଶ—ବି. ସମ୍ବେଶ ଦେଖ ।
ସଂବେଶକ—ବିଂ, ଶୟନାଦି କାରକ ।
ସଂବେଶନ—ବି. ସମ୍ବେଶନ ଦେଖ ।
ସଂବେଶନୀୟ—ବିଂ.ଯାହାର ସଂବେଶନେ
ପ୍ରୟୋଜନ ଥାଏ ବା ଅଛି ।
ସଂବେଶପତି—ପୁଂ. ବି. ସୁରତପତି ।
ସଂବେଶୀ—ପୁଂ. ବିଂ. ସଂବେଶବିଶିଷ୍ଟ ।
ସଂବେଶ୍ୟ—ବିଂ.ଉପଭୋଗକରଣ, ପ୍ରାପ୍ତ-
ହେବା, ଅଧିକାରୀହେବା ।
ସଂବେଷ୍ଟ—ବିଂ.ସମ୍ୟକ୍ପ୍ରକାରେ ବେଷ୍ଟିତ,
ବେଷ୍ଟନ,ବସ୍ତ୍ରାଚ୍ଛାଦିତ, ପରିଧୃତବସନ ।
ସଂବେଷ୍ଟନ—କ୍ଲୀ. ବି. ସମ୍ୟକ୍ ପ୍ରକାରେ
ବେଷ୍ଟନ, ଘେରାଇବା, ଘୋଡ଼ାଇବା ।
ସଂବୋଢ଼ା—ପୁଂ.ବିଂ.(ସମ୍+ବହ୍+ତୃ)
ସମ୍ୟକ୍ ପ୍ରକାରେ ବହନକର୍ତ୍ତା ।
ସଂବୋଧ—ବି. ସମ୍ବୋଧ ଦେଖ ।
ସଂବୋଧନ—ବି. ସମ୍ବୋଧନ ଦେଖ ।
ସଂବ୍ୟବସାୟ—ବିଂ. ମୀମାଂସନୀୟ, ପର-
ସ୍ପରର ପାର୍ଥକ୍ୟ ନିର୍ଦ୍ଦେଶପର ।
ସଂବ୍ୟବହରଣ—ବି. ସମ୍ୟକ୍ ପ୍ରକାରେ
ବ୍ୟବହାର ।
ସଂବ୍ୟବହାର—ବି. ସଂବ୍ୟବହରଣ ।
ସଂବ୍ୟବହାରବାନ୍—ବିଂ.ବ୍ୟବହାରବିଶିଷ୍ଟ
ସଂବ୍ୟବହାର୍ଯ୍ୟ—ବିଂ. ସମ୍ୟକ୍ ପ୍ରକାରେ
ବ୍ୟବହାରର ଯୋଗ୍ୟ ।
ସଂବ୍ୟାଥ—ବି. ବିଭିନ୍ନ ସ୍ଥାନରୁ ସମାଗତ
ଲୋକସଂଘ ବା ସମୂହ ।
ସଂବ୍ୟାଧ—ବି. ଯୁଦ୍ଧ ।
ସଂବ୍ୟାନ—ବି. ସମ୍ବ୍ୟାନ ଦେଖ ।
ସଂବ୍ୟାୟୂ--ବି.ଆଚ୍ଛାଦନବସ୍ତ୍ର,ପଶମୀବସ୍ତ୍ର ।
ସଂବ୍ୟୂଢ଼—ବିଂ.ଘୃଷ୍ଟ, ଘର୍ଷଣଯୁକ୍ତ,ଏକତ୍ର
ମିଶ୍ରିତ ।
ସଂବ୍ୟୂହ—ପୁଂ.ବି. ସଂବିଭାଗ, ପ୍ରବିଭାଗ,
ଏକତ୍ରକରଣ, ମିଶ୍ରଣ ।
ସଂବ୍ୟୂହନ—କ୍ଲୀ. ବି. ଏକତ୍ରୀକରଣ,
ଘୃଷ୍ଟକରଣ, ସଂବିଭାଗ ।
ସଂବ୍ୟୂହମ—ପୁଂ.ବି.ମୃଦୁବୀର୍ଯ୍ୟ ପକ୍ୱ କ୍ଷାର-
ବିଶେଷ ।
ସଂବ୍ରାତ—ପୁଂ.ବିଂ,ପ୍ରଚୁର, ବହୁସଂଖ୍ୟକ
ସଂକ୍ଲୃପ୍ତ—ପୁଂ. ବି, ସମ୍ୟକ୍ ପ୍ରକାରେ
ନମସ୍କାର ।
ସଂଭବ—ବି. ସମ୍ଭବ ଦେଖ ।
ସଂଭବତଃ—ଅ. ସମ୍ଭବତଃ ଦେଖ ।
ସଂଭବ୍ୟ—ବିଂ, ସମ୍ଭବ୍ୟ ଦେଖ ।
ସଂଭଲ—ବି. ସମ୍ଭଲ ଦେଖ ।
ସଂଭଲୀ—ସ୍ତ୍ରୀ, ବି. ସମ୍ଭଲୀ ଦେଖ ।
ସଂଭାବନ—ବି, ସମ୍ଭାବନ ଦେଖ ।
ସଂଭାବନା—ବି, ସମ୍ଭାବନା ଦେଖ ।
ସଂଭାବନୀୟ—ବିଂ. ସମ୍ଭାବନୀୟ ଦେଖ ।
ସଂଭାବିତ—ବିଂ, ସମ୍ଭାବିତ ଦେଖ ।
ସଂଭାବ୍ୟ—ବିଂ. ସମ୍ଭାବ୍ୟ ଦେଖ ।
ସଂଭାର—ବି. ସମ୍ଭାର ଦେଖ ।
ସଂଭାଷ(ଷା)—ବି. ସମ୍ଭାଷ ଦେଖ ।
ସଂଭାଷଣ(ଣା)—ବି. ସମ୍ଭାଷଣ ଦେଖ ।
ସଂଭାଷୀ—ପୁଂ. ବିଂ. ସମ୍ଭାଷୀ ଦେଖ ।
ସଂଭିନ୍ନ—ବିଂ. ସମ୍ଭିନ୍ନ ଦେଖ ।
ସଂଭିନ୍ନପ୍ରଳାପ—ବି. ବାଜେ କଥା ।
ସଂଭୁ—ବିଂ. ସମ୍ଭୁ ଦେଖ ।
ସଂଭୁକ୍ତ—ବିଂ. ସମ୍ଭୁକ୍ତ ଦେଖ ।
ସଂଭୂତ—ବିଂ. ସମ୍ଭୂତ ଦେଖ ।
ସଂଭୂତି—ବି. ସମ୍ଭୂତି ଦେଖ ।
ସଂଭୂୟ—ଅ. ସମ୍ଭୂୟ ଦେଖ ।
ସଂଭୂୟକାରୀ-ପୁଂ.ବିଂ. ସମ୍ଭୂୟକାରୀ ଦେଖ
ସଂଭୂୟସଂଧାନ-ବିଂ.ସମ୍ଭୂୟସନ୍ଧାନଦେଖ ।
ସଂଭୂୟସମୁତ୍ଥାନ—ବି. ସମ୍ଭୂୟସମୁତ୍ଥାନ
ଦେଖ ।
ସଂଭୃତ—ବିଂ. ସମ୍ଭୃତ ଦେଖ ।
ସଂଭୃତି—ବି. ସମ୍ଭୃତି ଦେଖ ।
ସଂଭେଦ—ବି. ସମ୍ଭେଦ ଦେଖ ।
ସଂଭୋଗ—ବି. ସମ୍ଭୋଗ ଦେଖ ।
ସଂଭୋଗୀ—ପୁଂ.ବିଂ. ସମ୍ଭୋଗୀ ଦେଖ ।
ସଂଭ୍ରମ—ବି. ସମ୍ଭ୍ରମ ଦେଖ ।
ସଂଭ୍ରାନ୍ତ—ବିଂ. ସମ୍ଭ୍ରାନ୍ତ ଦେଖ ।
ସଂମତ—ବିଂ. ସମ୍ମତ ଦେଖ ।
ସଂମତି—ବି. ସମ୍ମତି ଦେଖ ।
ସଂମଦ—ବି. ସମ୍ମଦ ଦେଖ ।
ସଂମର୍ଦ୍ଦ(ର୍ଦ୍ଦ)—ବି. ସମ୍ମର୍ଦ୍ଦ ଦେଖ ।
ସଂମାନ—ବି. ସମ୍ମାନ ଦେଖ ।
ସଂମାନନ(ନା)—ବି. ସମ୍ମାନନ ଦେଖ ।
ସଂମାନନୀୟ—ବିଂ. ସମ୍ମାନନୀୟ ଦେଖ ।
ସଂମାର୍ଜ(ର୍ଜ୍ଜ)କ—ବିଂ. ସମ୍ମାର୍ଜକ ଦେଖ ।
ସଂମାର୍ଜନୀ—ବି. ସମ୍ମାର୍ଜନୀ ଦେଖ ।
ସଂମିଳିତ—ବିଂ. ସମ୍ମିଳିତ ଦେଖ ।
ସଂମିଶ୍ର—ବିଂ. ସମ୍ମିଶ୍ର ଦେଖ ।
ସଂମିଶ୍ରଣ—ବି. ସମ୍ମିଶ୍ରଣ ଦେଖ ।
ସଂମୁଖ—ବି. ସମ୍ମୁଖ ଦେଖ ।
ସଂମୁଖୀନ—ବିଂ. ସମ୍ମୁଖୀନ ଦେଖ ।
ସଂମୁଗ୍ଧ—ବିଂ. ସମ୍ମୁଗ୍ଧ ଦେଖ ।
ସଂମୂଢ଼—ବିଂ. ସମ୍ମୂଢ଼ ଦେଖ ।
ସଂମୂର୍ଚ୍ଛନ(ନା)—ବି.ସମ୍ମୂର୍ଚ୍ଛନଦେଖ,(ବିଂ)
ସଂମୂର୍ଚ୍ଛିତ
ସଂମୃଷ୍ଟ—ବିଂ. ସମ୍ମୃଷ୍ଟ ଦେଖ ।
ସଂମୋଦ—ବି. ସମ୍ମୋଦ ଦେଖ ।
ସଂମୋହ—ବି. ସମ୍ମୋହ ଦେଖ ।
ସଂମୋହନ—ବି. ସମ୍ମୋହନ ଦେଖ ।
ସଂଯ—ବି. (ସମ୍=ଏକତ୍ରେ + ଯମ୍=

ନିବୃତ୍ତି କରିବା + କ.ଅ) ପ୍ରାଣୀର ଦେହ ମଧ୍ୟରେ ଥିବା ଯଥାସ୍ଥାନାବସ୍ଥିତ ସମୁଦାୟ ଅସ୍ଥିକଙ୍କାଳ ।

ସଂଯତ୍—ବି. (ସମ୍+ଯମ୍+ଅଧି.କ୍ୱିପ୍) ସଂଗ୍ରାମ, ଯୁଦ୍ଧ, ସଂଶୟ ।

ସଂଯତ୍—ଗ୍ରା. ବି. ଧୀରସ୍ଥିର ଭାବରେ ଦୁଇହାତକୁ ଲମ୍ବାଇ ଠିଆହୁଅ, (ରାଧାଶ୍ୟାମଙ୍କ ପ୍ରବର୍ତ୍ତିତ ଡ୍ରିଲ ସମ୍ବନ୍ଧୀୟ ଆଦେଶ ବଚନ) ।

ସଂଯତ—ବିଂ. ( ସମ୍+ଯମ୍+ମିଁ.ତ ) ବଦ୍ଧ, ନିୟମିତ, ସଂଯମବିଶିଷ୍ଟ, ପରିମିତ, ଶାନ୍ତ, ନିବୃତ୍ତ, ଉଦ୍ୟତ, ଜିତେନ୍ଦ୍ରିୟ, ବଶୀଭୂତ, ଅବରୁଦ୍ଧ, ( ସ୍ତ୍ରୀ ) ସଂଯତା, (ପୁଂ.ବି) ଶିବ, କୃତସଂଯମ ସନ୍ନ୍ୟାସୀ ।

ସଂଯତଚିତ୍ତ—ବିଂ. (ବ.ବ୍ରୀ) ସଂଯତାତ୍ମା, ସ୍ଥିରମନାଃ, ଯେ ଆପଣାର ମନକୁ ବଶୀଭୂତ କରିଅଛି, (ବି—କ.ଧା) ନିୟମିତ ଚିତ୍ତ, ସ୍ଥିର ମନ ।

ସଂଯତାଚାର—ପୁଂ. ବି.(କ.ଧା) ନିୟମିତ ଆଚରଣ, ସଂଯତଯୁକ୍ତ ଅନୁଷ୍ଠାନ, (ବିଂ-ବ.ବ୍ରୀ) ନିୟମିତାଚାରୀ, ଶୁଦ୍ଧାଚାରୀ ।

ସଂଯତଚେତାଃ-ପୁଂ.ବିଂ-.ସଂଯତମାନସ, ଯେ ମନକୁ ସଂଯତ କରିଅଛି ।

ସଂଯତପ୍ରାଣ—ପୁଂ. ବିଂ.ଇନ୍ଦ୍ରିୟନିରୋଧସମର୍ଥ, ଯେ ପ୍ରାଣାୟାମ ଦ୍ୱାରା ଶ୍ୱାସବାୟୁକୁ ନିରୋଧ କରିବାରେ ଅଭ୍ୟସ୍ତ ହୋଇଥାଏ ।

ସଂଯତବାନ୍—ପୁଂ. ବିଂ. କାମକ୍ରୋଧାଦି ରିପୁଦମନଶୀଳ ।

ସଂଯତବସ୍ତ୍ର—ବିଂ. ଯାହାର ବସ୍ତ୍ର ଯଥାଯଥ ଭାବେ ବିନ୍ୟସ୍ତ ହୋଇଥାଏ ।

ସଂଯତବାକ୍—ପୁଂ.ବିଂ.(ବ.ବ୍ରୀ) ବାକ୍ୟାଳାପନିରସ୍ତ, ଅଳ୍ପଭାଷୀ ।

ସଂଯତାକ୍ଷ—ବିଂ. ନିମିଳିତନେତ୍ର ।

ସଂଯତାଞ୍ଜଳି—ବିଂ. ବଦ୍ଧାଞ୍ଜଳି ।

ସଂଯତାତ୍ମା—ପୁଂ ଓ ସ୍ତ୍ରୀ. (ବ.ବ୍ରୀ) ଯେ ନିଜର ଚିତ୍ତବୃତ୍ତିର ଦମନରେ ସମର୍ଥ, ସଂଯତଚିତ୍ତ ଦେଖ ।

ସଂଯତାହାର—ପୁଂ.ବିଂ. ପରିମିତାହାରୀ, (ସ୍ତ୍ରୀ) ସଂଯତାହାରା ।

ସଂଯତୀ—ପୁଂ. ବିଂ. ( ସଂଯତ+ଇନ୍ ) ସଂଯମଶୀଳ, (ସ୍ତ୍ରୀ) ସଂଯତିନୀ ।

ସଂଯତେନ୍ଦ୍ରିୟ—ପୁଂ. ବିଂ. (ବ.ବ୍ରୀ) ଯେ ଇନ୍ଦ୍ରିୟମାନଙ୍କୁ ବଶୀଭୂତ କରିଅଛି, (ସ୍ତ୍ରୀ) ସଂଯତେନ୍ଦ୍ରିୟା । [ ସତର୍କ ।

ସଂଯତ୍ତ—ପୁଂ. ବିଂ. ପ୍ରସ୍ତୁତ, ଅନୁରକ୍ତ,

ସଂଯଦ୍ବର—ପୁଂ.ବିଂ. ଯେ ବାକ୍ୟ ସଂଯମ କରିଥାଏ, (ବି) ଜନ୍ତୁସମୂହ ।

ସଂଯଦ୍ବର—ପୁଂ. ବି. (ସଂଯତ୍+ବର) ରାଜା, ନୃପ ।

ସଂଯଦ୍ବାମ—ପୁଂ. ବିଂ. ଅବଚ୍ଛିନ୍ନ ପ୍ରେମ ବା ଆକାଙ୍କ୍ଷାଯୁକ୍ତ ।

ସଂଯନ୍ତା—ପୁଂ. ବିଂ. (ସମ୍+ଯମ୍+କ.ତୃ) ସଂଯମକାରୀ, ନିୟନ୍ତା, ପରିଚାଳକ, (ସ୍ତ୍ରୀ) ସଂଯନ୍ତ୍ରୀ ।

ସଂଯନ୍ତବ୍ୟ—ବିଂ. ସଂଯମନ ଯୋଗ୍ୟ ।

ସଂଯନ୍ତ୍ରିତ—ବିଂ. ବଦ୍ଧ, ରୁଦ୍ଧ ।

ସଂଯପନ—ବି. ଜଳ ବା ପିଷ୍ଟମାନଙ୍କର ମିଶ୍ରୀକରଣ ।

ସଂଯମ—ବି. (ସମ୍+ଯମ୍+ଅ) ବ୍ରତାଦିର ଅଙ୍ଗ, ଇନ୍ଦ୍ରିୟନିଗ୍ରହ, ବନ୍ଧନ, ସଙ୍କୋଚ, ନିୟମ, ସମାଧି, ଧ୍ୟାନ, ଚତୁଃଶାଳ ଗୃହ, ବ୍ରତାଦିର ପୂର୍ବଦିନ ହବିଷ୍ୟ ଭୋଜନ, ଏକବାର, ଯୋଗ, ଯମଦେବ, (ଗ୍ରା.ବି) ଗାଢ଼ ଆଲିଙ୍ଗନ ।

ସଂଯମକ—ପୁଂ.ବିଂ. (ସମ୍+ଯମ୍+ଅକ) ନିୟନ୍ତା ।

ସଂଯମନ—କ୍ଲୀ.ବି. (ସମ୍+ଯମ୍+ଅନ) ସଂଯମ ଦେଖ, ଶାସନ. ଦମନ ।

ସଂଯମନୀ—ବି. (ସମ୍+ଯମ୍+ଅଧି.ଅନ+ଈ) ଯମପୁରୀ, (ପୁଂ.ବି--ଯମ୍+ଇନ୍) ରାଜା, ଶାସନକର୍ତ୍ତା ।

ସଂଯମିତ—ବିଂ.(ସମ୍+ଯମ୍+ତ) ଦମିତ, ବଦ୍ଧ, ରୁଦ୍ଧ, ନିୟମିତ, ଜାତସଂଯମ ।

ସଂଯମିବା—ଗ୍ରା.କ୍ରି. ସଂଯତକରିବା ।

ସଂଯମୀ—ପୁଂ. ବିଂ. (ସମ୍+ଯମ୍+ଇନ୍) ଇନ୍ଦ୍ରିୟ ସଂଯମଯୁକ୍ତ, ଯୋଗରତ, ସମାଧିରତ, (ବି) ଯୋଗୀ, ମୁନି, ଜିତେନ୍ଦ୍ରିୟ ବ୍ୟକ୍ତି, (ସ୍ତ୍ରୀ) ସଂଯମିନୀ ।

ସଂଯାତ୍ରା—ବି. (ସମ୍+ଯା+ଭା.ତ୍ର+ଆ) ଜଳଯାତ୍ରା, ଏକତ୍ର ଗମନ, ଅନେକ ଲୋକ ମିଳି ଏକସଙ୍ଗେ ଯିବା, ଦ୍ୱୀପାନ୍ତର ଗମନ, ସମ୍ମିଳନ ।

ସଂଯାତ୍ରିକ—ବିଂ.(ସମ୍+ଯା+ତ୍ର+ଇକ) ଏକସଙ୍ଗେ ଯିବା ଯାତ୍ରିଗଣ, (ସ୍ତ୍ରୀ) ତ୍ରିକା ।

ସଂଯାନ—ବି. ( ସମ୍+ଯା+ଭା.ଅନ ) ସଂଯାତ୍ରା ଦେଖ, (କ.ଅନ) ସୂଚୀ, ଗ୍ରନ୍ଥ, (ମିଁ.ଅ) ସମ୍ମିଳନ, ଶବାନୁଗମନ ।

ସଂଯାପ—ଗ୍ରା.ବି. ଧଡ଼ି ।

ସଂଯାବ—ବି. (ସମ୍+ଯୁ+ମିଁ.ଅ) ଘୃତକ୍ଷୀରାଦିପକ୍ୱ ଗୋଧୂମ ଚୂର୍ଣ୍ଣ, ପିଠାବିଶେଷ, ପୁରକାକରା, ନାନମାନ ।

ସଂଯାମ—ବି. ( ସମ୍+ଯମ୍+ଭା.ଅ ) ସଂଯମ ଦେଖ ।

ସଂଯୁକ୍—ପୁଂ.ବିଂ. (ସମ୍+ଯୁଜ୍+କ.କ୍ୱିପ୍) ଗୁଣବାନ୍, ଗୁଣାଢ୍ୟ, ମିତ୍ରବତ୍ସଳ, ସଂଯୁକ୍ତ, (ବି) ଜାମାତା ।

ସଂଯୁକ୍ତ—ବିଂ. (ସମ୍+ଯୁଜ୍+ମିଁ.ତ) ସଂଯୋଗବିଶିଷ୍ଟ, ସମ୍ମିଳିତ, ସଂଲଗ୍ନ, ଏକତ୍ରିତ, ସମ୍ବନ୍ଧ, ମିଶ୍ରିତ, ଏକୀଭୂତ, (ସ୍ତ୍ରୀ) ସଂଯୁକ୍ତା ।

ସଂଯୁକ୍ତକ—ବିଂ. ଯାହା ଆସି ମିଳିତ ହୁଏ ।

ସଂଯୁକ୍ତା—ସ୍ତ୍ରୀ.ବିଂ.(ସଂଯୁକ୍ତ+ଆ) ମିଳିତା, ସଂଯୁକ୍ତର ସ୍ତ୍ରୀଲିଙ୍ଗ, (ବି) ଜୟଚନ୍ଦ୍ରଙ୍କ କନ୍ୟା ଓ ପୃଥ୍ୱୀରାଜଙ୍କ ମହିଷୀ ।

ସଂଯୁଗ—ବି. (ସମ୍+ଯୁଜ୍+ଅଧି.ଅ) ଯୁଦ୍ଧ, (ଭା.ଅ) ସଂଯୋଗ, ଯୋଗାଡ଼ଯନ୍ତ୍ର ।

ସଂଯୁଗଗୋଷ୍ପଦ—ବି. ସାମାନ୍ୟ ବିଷୟ ନେଇ ବାଦବିବାଦ ।

ସଂଯୁତ—ବିଂ. (ସମ୍+ଯୁଜ୍+ମିଁ.ତ) ସଂଯୁକ୍ତ ଦେଖ, (ସ୍ତ୍ରୀ) ସଂଯୁତା ।

ସଂଯୁତି—ବି. ଶବ୍ଦ ସମାବେଶ ।

ସଂଯୁଯୁତ୍ସୁ—ପୁଂ.ବିଂ. (ସମ୍+ଯୁ+ସନ୍+ଉ) ସମ୍ୟକ୍‌ପ୍ରକାରେ ମିଶାଇବାକୁ ଇଚ୍ଛୁକ, ଯେ ଉତ୍ତମରୂପେ ମିଶାଇବାକୁ ଇଚ୍ଛା କରିଥାଏ ।

ସଂଯୋଗ—ବି. ( ସମ୍‌+ ଯୁଜ୍‌ + ଭା.ଅ ) ସମ୍ମେଳନ, ମିଳନ, ଏକତ୍ରହେବା, (ନ୍ୟାୟଦର୍ଶନ)ଦୂରସ୍ଥ ବା ଅପ୍ରାପ୍ତ ବସ୍ତୁଦ୍ୱୟର ପରସ୍ପର ଯୋଗ, ସଂଘଟନ, ମିଶ୍ରଣ, (ଗଣିତ) ମିଶାଣ, ସଂପର୍କ, ସଙ୍ଗମ, ଅଳଙ୍କାର ବା ଆଭରଣାଦିର ଏକ ସାର,(ବ୍ୟାକରଣ)ସ୍ୱରବର୍ଣ୍ଣ ସଙ୍ଗେ ମିଳି ଉଚ୍ଚାରିତ ବ୍ୟଞ୍ଜନ ବର୍ଣ୍ଣ, ଶିବ, (ଗ୍ରା.ବି)ସୁଯୋଗ, ଦୈବଯୋଗ,ବିଧାନ, ଘଟନ, (ବିଂ) ସଂଯୁକ୍ତ ।

ସଂଯୋଗକାରକ—ବିଂ. ( ସଂଯୋଗ+ କୃ+ କ.ଅକ) ଯାହା ଦୁଇ ବସ୍ତୁକୁ ବା ଦୁଇ ବ୍ୟକ୍ତିଙ୍କୁ ମିଳିତ କରାଏ, (ସ୍ତ୍ରୀ) ସଂଯୋଗକାରିକା ।

ସଂଯୋଗପୃଥକ୍ତ୍ୱ—ବି. ନ୍ୟାୟବିଶେଷ ।

ସଂଯୋଗବିଯୋଗ—ବି. ମିଳନ ଓ ବିଚ୍ଛେଦ, (ଗଣିତ) ରାଶିମାନଙ୍କ ମିଶାଣ ଓ ଫେଡ଼ାଣ, (ବିଜ୍ଞାନ) ଦୁଇଟି ବସ୍ତୁର ମିଶ୍ରଣ ଓ ପୃଥକ୍‌କରଣ ।

ସଂଯୋଗବିରୁଦ୍ଧ—ବିଂ.(ବୈଦ୍ୟକ)ଯେଉଁ ଖାଦ୍ୟଦ୍ରବ୍ୟାଦି ପରସ୍ପର ସହିତ ସଂଯୁକ୍ତ ବା ମିଳିତ ବା ରକ୍ଷିତ ହେଲେ ବ୍ୟବହାରକାରୀର ରୋଗ ଘଟାଏ କିମ୍ବା ବିଷପରି ଫଳ ଜାତ କରେ ।

ସଂଯୋଗସାଧକ--ପୁଂ.ବିଂ.ଯେ ସଂଯୋଗ ବା ମିଳନ ଘଟାଏ, (ସ୍ତ୍ରୀ) ସାଧିକା ।

ସଂଯୋଗସାଧନ—ବି. (ତନ୍ତ୍ର) ଦୁଇ ପୃଥକ୍ ବସ୍ତୁକୁ ବା ବ୍ୟକ୍ତିଙ୍କୁ ପରସ୍ପର ସହିତ ମିଳାଇବା କାର୍ଯ୍ୟ ।

ସଂଯୋଗାତ୍ମକ—ପୁଂ.ବିଂ(ବି.ଶା)ସଂଯୋଗ ବା ମିଳନହିଁ ଯହିଁର ପ୍ରତିପାଦ୍ୟ ବିଷୟ, (ସ୍ତ୍ରୀ) ସଂଯୋଗାତ୍ମିକା ।

ସଂଯୋଗାନ୍ତ—ପୁଂ. ବିଂ. (ବି.ଶା)ଯେଉଁ ନାଟକର ବା ଉପନ୍ୟାସାଦିର ଶେଷରେ ଗ୍ରନ୍ଥୋକ୍ତ ବ୍ୟକ୍ତିମାନଙ୍କର ବା ନାୟକ ନାୟିକାଙ୍କର ମିଳନ ହୁଏ,(ସ୍ତ୍ରୀ)ଗାନ୍ତା ।

ସଂଯୋଗାନ୍ତନାଟକ—ବି. ଯେଉଁ ନାଟକର ଶେଷରେ ନାଟକୀୟ ବ୍ୟକ୍ତିଗଣଙ୍କର ମିଳନ ଘଟେ ।

ସଂଯୋଗିତ—ବିଂ. (ସଂଯୋଗ + ଇତ) ଜାତସଂଯୋଗ, ଯାହା ସଂଯୋଗ କରାହୋଇଥାଏ ।

ସଂଯୋଗିବା—ଗ୍ରା. କ୍ରି. (ପଦ୍ୟ) ସଂଯୁକ୍ତ କରିବା, ଲଗାଇବା, ବ୍ୟବସ୍ଥା କରିବା ।

ସଂଯୋଗୀ—ପୁଂ.ବିଂ.(ସଂଯୋଗ+ଇନ୍) ସଂଯୋଗକାରକ, ସଂଯୋଗବିଶିଷ୍ଟ, ସଂଯୋଜିତ, (ସ୍ତ୍ରୀ) ସଂଯୋଗିନୀ, (ବି) ବୈଷ୍ଣବ ସମ୍ପ୍ରଦାୟଭେଦ ।

ସଂଯୋଗେ—ଗ୍ରା. କ୍ରି. ବିଂ. ଯୋଗେ, ଯୋଗୁଁ, କାରଣରୁ ।

ସଂଯୋଜକ—ପୁଂ.ବିଂ. (ସମ୍+ ଯୁଜ୍+ ଣିଚ୍ + କ.ଅକ)ସଂଯୋଗକାରକ, ଯେ ମିଳନ ଘଟାଏ, (ସ୍ତ୍ରୀ) ସଂଯୋଜିକା ।

ସଂଯୋଜନ—ବି. (ସମ୍+ଯୁଜ୍+ଭା.ଅନ) ସଂଯୋଗକରଣ, ଏକତ୍ରୀକରଣ,ମିଶ୍ରଣ, ମୈଥୁନ, ସହବାସ କରାଇବା, ଯୋଚ ଖୁଆଇବା, ଯୋଚିବା କର୍ମ ।

ସଂଯୋଜନା—ବି. (ସଂଯୋଜନ+ଆ) ସଂଯୋଜନ ଦେଖ, ଆୟୋଜନ ।

ସଂଯୋଜିତ-ବିଂ.(ସମ୍+ଯୁଜ୍+ଣିଚ୍+ମି.ତ)ସଂମେଳିତ, ମିଶ୍ରୀକୃତ ଏକ ପଦାର୍ଥରୁ ବିୟୋଗ କରାଯାଇ ଅନ୍ୟ ପଦାର୍ଥରେ ଯୋଗ କରାଯାଇଥିବା, ସନ୍ଧି ବା ସ୍ୱାର୍ଥ ଏକତ୍ରୀକୃତ, ଯୋଚ୍ଚ ଯାଇଥିବା, ଯୋଗା ଯାଇଥିବା,(ସ୍ତ୍ରୀ)ସଂଯୋଜିତା ।

ସଂଯୋଜ୍ୟ—ବିଂ.ସଂଯୋଗର ଉପଯୁକ୍ତ, ଯାହା ସଂଯୋଗ କରାଯାଇପାରେ ।

ସଂଯୋଦ୍ଧା—ବି. ସମାନବୀର, ଯେ ପ୍ରତିପକ୍ଷତା ସ୍ୱୀକାର କରି ଯୁଦ୍ଧ କରିବାକୁ ସମର୍ଥ ।

ସଂଯୋଦ୍ଧବ୍ୟ—ବିଂ. ପ୍ରତିଦ୍ୱନ୍ଦ୍ୱିତାପୂର୍ବକ ଯୁଦ୍ଧ କରିବାର ଉପଯୁକ୍ତ ।

ସଂଯୋଧକଣ୍ଟକ—ବି. ଯକ୍ଷବିଶେଷ ।

ସଂରକ୍ତ—ବିଂ. ( ସମ୍+ ରଞ୍ଜ୍ + ମି.ତ ) ରଙ୍ଗା ଯାଇଥିବା, ଗାଢ଼ରକ୍ତ, ରାଗୋଦ୍ରେକିତ, ଅତନୁବିଦ୍ଧ, କ୍ରୋଧରେ ଜଳୁଥିବା, ମୋହିତ, (କ.ତ) ସୁନ୍ଦର, ମନୋହର ।

ସଂରକ୍ଷ—ବି.(ସମ୍+ରକ୍ଷ୍+ଭା.ଅ)ରକ୍ଷାକରିବା, ତତ୍ତ୍ୱାବଧାରଣ, ଯତ୍ନପୂର୍ବକ ସମ୍ଭାଳିବା, ପୂର୍ବ ରୀତିମାନ ଅକ୍ଷୁଣ୍ଣ ରଖିବା, ପରିଚାଳନ, ରଖିବାର ଭାରଗ୍ରହଣ ।

ସଂରକ୍ଷକ—ପୁଂ.ବି.ବିଂ.(ସମ୍+ରକ୍ଷ୍+କ.ଅକ)ଯେ ରକ୍ଷା କରେ,(ସ୍ତ୍ରୀ)ରକ୍ଷିକା ।

ସଂରକ୍ଷଣ—ବି. (ସମ୍+ରକ୍ଷ୍+ଭା.ଅନ) ସଂରକ୍ଷ ଦେଖ ।

ସଂରକ୍ଷଣନୀତି—ବି. ପ୍ରାଚୀନ ରାଜନୀତିକ ଓ ସାମାଜିକ ପ୍ରଥାମାନ ଲୁପ୍ତ ନ କରି ତାହା ବଜାୟ ରଖିବାର ପଦ୍ଧତି,ଯେଉଁ ନୀତି ସାହାଯ୍ୟରେ ବାଣିଜ୍ୟାଦି ଦ୍ୱାରା ଦେଶର ସ୍ୱାର୍ଥରକ୍ଷା କରାଯାଏ ।

ସଂରକ୍ଷଣନୀତିକ—ବିଂ. ଯେଉଁମାନେ ସଂରକ୍ଷଣ ନୀତିର ପକ୍ଷପାତୀ ।

ସଂରକ୍ଷଣୀୟ—ବିଂ. (ସମ୍ + ରକ୍ଷ୍+ମି. ଅନୀୟ) ସମ୍ୟକ୍ ପ୍ରକାରେ ରକ୍ଷା କରିବାର ଯୋଗ୍ୟ, ଯାହାକୁ ରକ୍ଷା କରିବା ଏକାନ୍ତ କର୍ତ୍ତବ୍ୟ, ତତ୍ତ୍ୱାବଧାନର ଉପଯୁକ୍ତ ।

ସଂରକ୍ଷା—ସ୍ତ୍ରୀ. ବି. ( ସମ୍ +ରକ୍ଷ୍+ ଆ ) ସମ୍ୟକ୍ ରକ୍ଷା, କୌଣସି ଉଦ୍ଦେଶ୍ୟରେ ରକ୍ଷଣ ।

ସଂରକ୍ଷିତ—ବିଂ. (ସମ୍ + ରକ୍ଷ୍+ମି.ତ) ଯାହାକୁ ସମ୍ୟକ୍ ପ୍ରକାରେ ରକ୍ଷା କରାହୋଇଥାଏ, ପରିତ୍ରାତ, ପ୍ରତିପାଳିତ ।

ସଂରକ୍ଷୀ—ପୁଂ.ବିଂ. ସଂରକ୍ଷଣକାରୀ, ଯେ ସମ୍ୟକ୍, ପ୍ରକାରେ ରକ୍ଷା କରେ ।

ସଂରକ୍ଷ୍ୟ—ବିଂ. ସଂରକ୍ଷଣୀୟ ।

ସଂରଞ୍ଜନୀୟ—ବିଂ. ସମ୍ୟକ୍ ପ୍ରକାରେ ତୁଷ୍ଟି ସାଧନର ଯୋଗ୍ୟ ।

ସଂରବ୍ଧ—ବିଂ. (ସମ୍+ରନ୍ଭ୍+କ୍ତ) କ୍ରୁଦ୍ଧ, ରାଗାନ୍ୱିତ, ବିଶେଷ ଶବ୍ଦବିଶିଷ୍ଟ, ବ୍ୟାକୁଳ, (ମି.ତ) ଉତ୍ସାହିତ, ବର୍ଦ୍ଧିତ, ବୃଦ୍ଧିପ୍ରାପିତ, ଫୁଲିଯାଇଥିବା, ଉତ୍ତେଜିତ, ପରସ୍ପର ସଂଯୁକ୍ତ,(ସ୍ତ୍ରୀ)ସଂରବ୍ଧା ।

ସଂରମ୍ଭ—ବି. (ସମ୍+ରନ୍ଭ୍+ଭା.ଅ) କ୍ରୋଧ, ରାଗ, ଆକ୍ରୋଶ, ପ୍ରାକ୍ତିକରି

କାନ୍ଧବା, ବାହୁନା, ଗର୍ବ, ଅହଙ୍କାର, ମନର ଆବେଗ, ବିଷୟାନ୍ତରରେ ସ୍ଥାୟୀ ଉଦ୍ବେଗ, ସଂଭ୍ରମ, ବେଗ,ଯୁଦ୍ଧ-ବିଶେଷ,ଘଟନାଦି ଉପଲକ୍ଷରେ ହେବା ମେଲା, ଗୋଳମାଳ, ଆଟୋପ, ଆଡ଼ମ୍ବର, ଦଙ୍ଗାହେଙ୍ଗାମା, ଲାଳସା, ଉଦ୍ବେଗ, ମନର ବ୍ୟାକୁଳତା ବା ଅସ୍ଥିରତା,ଉତ୍ତାପ ସହ ଫୁଲ,ଉତ୍ସାହ,ଆସ୍ତୃତ, ବିସ୍ତୃତ ।

**ସଂରମ୍ଭଣ**—ବି. ( ସମ୍ + ରମ୍ଭ + ଅନ ) ସଂରମ୍ଭ, (ବିଂ) ସଂରମ୍ଭକାରକ ।

**ସଂରମ୍ଭୀ**—ପୁଂ. ବିଂ. (ସଂରମ୍ଭ+ଇନ୍) ଅତକ୍ରୁଦ୍ଧ, ବେଗବାନ୍, ଗୋଳମାଳିଆ, ବ୍ୟାକୁଳ, ଗର୍ବୀ, (ସ୍ତ୍ରୀ) ସଂରମ୍ଭିଣୀ ।

**ସଂରାଗ**—ବି. ଅନୁରକ୍ତି, ଅତ୍ୟାସକ୍ତି ।

**ସଂରାଜିତା**—ପୁଂ. ବିଂ. (ସମ୍+ରାଜ୍+ତୃ) ସମ୍ୟକ୍ପ୍ରକାରେ ଦୀପ୍ତିମାନ୍ ।

**ସଂରାଦ୍ଧି**—ସ୍ତ୍ରୀ. ବି.(ସମ୍ + ରାଧ୍+ତି)ସଂରାଧନ, ସମ୍ୟକ୍ ପ୍ରକାରେ ସିଦ୍ଧିକରଣ ।

**ସଂରାଧନ(ନା)**—ବି. ( ସମ୍+ରାଧ୍+ଭା. ଅନ+ଆ) ଆରାଧାନା, ସେବା, ଆରାଧନାଦି ଦ୍ୱାରା ସନ୍ତୋଷ ବିଧାନ, ସମାଧାନ, ଗଭୀର ଧ୍ୟାନ ।

**ସଂରାଧି**—ସ୍ତ୍ରୀ. ବି. ସମ୍ପୂର୍ଣ୍ଣ ରୂପେ କାର୍ଯ୍ୟ ସୁସିଦ୍ଧ କରିବା ।

**ସଂରାଧିତ**—ବିଂ.ଆରାଧିତ,ସେବିତ,ଅର୍ଚ୍ଚିତ

**ସଂରାଧ୍ୟ**—ବିଂ. ଯଥାମତ ଆରାଧନାର ଯୋଗ୍ୟ, ସମ୍ୟକ୍ ପ୍ରକାରେ ଆରାଧନାର ଯୋଗ୍ୟ ।

**ସଂରାବ**—ବି.(ସମ୍+ ରୁ + ଭା.ଅ)ଆରାବ, କୋଳାହଳ, ଗୋଳମାଳ,ଘୋ ଘା, ନାଦ ।

**ସଂରାବୀ**—ପୁଂ. ବିଂ. ( ସମ୍+ରୁ+କ. ଇନ୍) ଶବ୍ଦବିଶିଷ୍ଟ, ଶବ୍ଦକାରକ,ଗୋଳମାଳକାରୀ, (ସ୍ତ୍ରୀ) ସଂରାବିଣୀ ।

**ସଂରହାଣ**—ପୁଂ. ବିଂ. (ସମ୍+ଲହ୍+କ.ଆନ) ସ୍ନେହରେ ଲୁଟୁଥିବା, (ସ୍ତ୍ରୀ) ସଂରହାଣା ।

**ସଂରୁଗ୍ଣ**—ବିଂ.(ସମ୍ + ରୁଜ୍+ମି.ତ)ଚୂର୍ଣ୍ଣିତ, ବିଚୂର୍ଣ୍ଣିତ,ଖଣ୍ଡବିଖଣ୍ଡିତ,ସମ୍ୟକ୍ପୀଡ଼ିତ ।

**ସଂରୁଜନ**—ବି. ରୁକ୍, ପୀଡ଼ା ।

**ସଂରୁଦ୍ଧ**—ବିଂ. ( ସମ୍+ରୁଧ୍+ମି.ତ ) ବଦ୍ଧ, ଅବରୁଦ୍ଧ, ନିରୁଦ୍ଧ, କାରାରୁଦ୍ଧ, ବାଧାପ୍ରାପ୍ତ, ପରିପୂରିତ, ଆଚ୍ଛାଦିତ, ଆବୃତ, ସ୍ଥଗିତ, ନିଷିଦ୍ଧ ।

**ସଂରୁଧ୍**—ବି.(ସମ୍+ ରୁଧ୍ + କ୍ୱିପ୍) ସମ୍ୟକ୍ ରୋଧକାରୀ ।

**ସଂରୂଢ଼**—ପୁଂ.ବିଂ. (ସମ୍ + ରୁହ୍ + କ. ତ) ଆରୂଢ଼, ଅଙ୍କୁରିତ, ଜାତ, ପ୍ରବୃଦ୍ଧ, ପୂରିଯାଇଥିବା (ବ୍ରଣାଦି),ଏକାନ୍ତ ବର୍ଦ୍ଧିତ, ଦୃଢ଼ ରୂପେ ସଂଲଗ୍ନ ବା ଚେରେଇଥିବା, ସାହସୀ, ଆସ୍ଥାବିଶିଷ୍ଟ, (ସ୍ତ୍ରୀ) ସଂରୂଢ଼ା ।

**ସଂରେଦନ**--ବି.ସମ୍ୟକ୍ପ୍ରକାରେ କ୍ରନ୍ଦନ ।

**ସଂରୋଧ**—ବି. ( ସମ୍ +ରୁଧ୍+ଭା.ଅ ) ରୋଧନ,ନିରୋଧ, ପ୍ରତିବନ୍ଧ,ପ୍ରତିରୋଧ, ଅଟକ, ନିବାରଣ, ବନ୍ଧନ, ଶତ୍ରୁଦ୍ୱାରା ନଗରାଦି ବେଷ୍ଟନ,କାରାରୋଧ,ନିକ୍ଷେପ, (ଣ.ଅ) ବେଢ଼, ବନ୍ଧନସାଧନ, ସ୍ଥଗିତକରଣ ।

**ସଂରୋଧକ**—ପୁଂ. ବିଂ.(ସମ୍ + ରୁଧ୍+ କ.ଅକ) ସଂରୋଧକାରୀ, (ସ୍ତ୍ରୀ) ସଂରୋଧିକା ।

**ସଂରୋଧନ**—ବି.(ସମ୍ +ରୁଧ୍+ଭା.ଅନ) ଅଟକାଇବା, ସଂରୁଦ୍ଧ କରିବା ।

**ସଂରୋଧ୍ୟ**—ବିଂ. ଅବରୋଧର ଯୋଗ୍ୟ, ଯାହାକୁ ଅବରୋଧ କରିଯାଇପାରେ ।

**ସଂରୋପଣ**—ବି.ସମ୍ୟକ୍ ପ୍ରକାରେ ରୋପଣ କରିବା, କ୍ଷତାଦିର ଶୁଷ୍କତାପ୍ରାପ୍ତି,କ୍ଷତନିବୃତ୍ତି ।

**ସଂରୋହ**—ବି. (ସମ୍ +ରୁହ୍ + କ.ଅ) ଅଙ୍କୁର, ଗଜା, (ଭା.ଅ) ଜନ୍ମ, ଉତ୍ପତ୍ତି ।

**ସଂରୋହଣ**—ବି. ସଂରୋପଣ, ବ୍ରଣାଦିର ଶୁଷ୍କୀକରଣ ।

**ସଂରୋହୀ**—ବିଂ. ଉତ୍ପନ୍ନ, ଜାତ ।

**ସଂଲକ୍ଷଣ**—ବି.(ସମ୍ +ଲକ୍ଷ୍+ଭା.ଅନ) ବିଶେଷ ଭାବରେ ଚିହ୍ନିତକରଣ ।

**ସଂଲକ୍ଷ୍ୟ**--ବିଂ.ସନ୍ଦର୍ଶନୀୟ,ସମ୍ୟକ୍ପ୍ରକାରେ ଦର୍ଶନର ଯୋଗ୍ୟ ।

**ସଂଲଗ୍ନ**—ବିଂ.( ସମ୍ +ଲଗ୍ +କ.ତ ) ସଂଯୁକ୍ତ,ନିକଟରେ ଅବସ୍ଥିତ,ଏକୀଭୂତ, ମିଳିତ,ଏକାଠି ଲାଗି ଯାଇଥିବା,ପରସ୍ପର ଆଘାତ ପ୍ରତିଘାତ କରୁଥିବା, ମାଡ଼ମରାମରି ହେଉଥିବା, (ସ୍ତ୍ରୀ) ସଂଲଗ୍ନା ।

**ସଂଲଗ୍ନିକ**—ଗ୍ରା. ବିଂ. ବନ୍ଧୁତା ଦ୍ୱାରା ସମ୍ବନ୍ଧଯୁକ୍ତ(ବ୍ୟକ୍ତି), ସଗୋତ୍ର ।

**ସଂଲପନ**—କ୍ଲୀ.ବି. ସଂଲାପ, ପ୍ରଲାପ ।

**ସଂଲୟ**—ବି. (ସମ୍ +ଲୀ+ ଭା.ଅ)ନିଦ୍ରା, ବିଲୟ, ବିନାଶ, ପ୍ରଳୟ ।

**ସଂଲୟନ**—ବି. (ସମ୍ + ଲୀ + ଭା.ଅନ) ସଂଲୟ ଦେଖ ।

**ସଂଲାପ**—ବି. ( ସମ୍ +ଲପ୍ + ଭା.ଅ ) ଅନ୍ୟୋନ୍ୟ ଭାଷଣ, ପରସ୍ପର ପ୍ରୀତି ସହିତ କଥାବାର୍ତ୍ତା,ନିର୍ଜନରେ ଆଳାପ, ଉକ୍ତିପ୍ରତ୍ୟୁକ୍ତି ।

**ସଂଲାପକ**—ପୁଂ.ବିଂ. ପ୍ରଳାପକାରୀ ।

**ସଂଲିପ୍ତ**—ବିଂ. ଯୁକ୍ତ, ମିଳିତ ।

**ସଂଲିପ୍ସୁ**—ପୁଂ. ବିଂ. ସମ୍ୟକ୍ପ୍ରକାରେ ଲାଭ କରିବାକୁ ଇଚ୍ଛୁକ ।

**ସଂଲୀନ**—ବିଂ. ( ସମ୍ +ଲୀ+କ.ତ ) ସଂଯୋଜିତ, ଲାଗିଯାଇଥିବା ଲୁକ୍କାୟିତ, ସଂକୁଚିତ, ଭୂମିରେ ଲେପଟିଯିବା ।

**ସଂଲୋକୀ**—ବିଂ. ସନ୍ଦର୍ଶକ, ସମ୍ୟକ୍ ପ୍ରକାରେ ଦର୍ଶନକାରୀ ।

**ସଂଲୋଡ଼ନ**—ବିଂ. (ସମ୍ +ଲୋଡ଼୍+ ଅନ) ଘଣ୍ଟାଚକଟା, ଗୋଳାଇବା ।

**ସଂଶକଲା**—ସ୍ତ୍ରୀ.ବି. ଜୀବହତ୍ୟା,ପଶୁବଧ ।

**ସଂଶପ୍ତକ**—ପୁଂ.ବି. (ସମ୍ +ଶପ୍+କ) ଯେଉଁ ଯୋଦ୍ଧା ଯୁଦ୍ଧ ଭୂମିରୁ ପଳାଇବ ନାହିଁ ବୋଲି ଶପଥ କରିଥାଏ, ନାରାୟଣୀ ସେନାବିଶେଷ, ବଡ଼ ବଡ଼ ପ୍ରଧାନ ଯୋଦ୍ଧା, ଯୁଦ୍ଧରୁ ଅନିବର୍ତ୍ତୀ ସୈନ୍ୟ, ସହଯୋଦ୍ଧା, ଅନ୍ୟକୁ ହତ୍ୟା କରିବାପାଇଁ ଶପଥ କରିଥିବା ଷଡ଼ଯନ୍ତ୍ରକାରୀ ବ୍ୟକ୍ତି ।

**ସଂଶବ୍ଦ**—ବି. ପ୍ରତିବାଦ, ଉଲ୍ଲେଖ ।

**ସଂଶବ୍ଦନ**—ବି. (ସମ୍ + ଶବ୍ଦ + ଭା.ଅନ) ପ୍ରଶଂସା କରିବା, ଶବ୍ଦ ଉତ୍ପାଦନ, ବଡ଼ ପାଟି କରି ଡାକିବା, ଉଲ୍ଲେଖକରଣ ।

ସଂଶବ୍ୟ—ବିଂ. ସମ୍ୟକ୍ ଉଲ୍ଲେଖଣୀୟ, ସ୍ତୁତିବାଦଯୁକ୍ତ ।
ସଂଶମ—ବି. ଚିତ୍ତଶାନ୍ତି, ପ୍ରବୃତ୍ତି ନିରୋଧ
ସଂଶମନ—ବି. ( ସମ୍+ଶମ୍+ଅନ ) ଆକାଶ ଗୁଣଭୂଯିଷ୍ଠ ଦ୍ରବ୍ୟ,ପଞ୍ଚ କର୍ମ-ଦ୍ୱାରା ଦୁଷ୍ଟ ଦୋଷ ନିର୍ହରଣ ଏବଂ ଅଦୁଷ୍ଟ ଦୋଷର ଅନୁଦ୍‌ଗୀରଣପୂର୍ବକ ଶାନ୍ତିକରଣ ।
ସଂଶମନୀୟ—ବିଂ.ସଂଶମନର ଯୋଗ୍ୟ ।
ସଂଶୟ—ବି. ( ସମ୍ + ଶୀ + ଭା.ଅ ) ସନ୍ଦେହ, ସନ୍ଦେହାତ୍ମକ ଜ୍ଞାନ, ଦ୍ୱୈଧୀ-ଭାବ, ଆଶଙ୍କା, ବିପଦ, ସମ୍ଭବତା, (ନ୍ୟାୟଦର୍ଶନ) ଏକ ଧର୍ମିକ ବିରୁଦ୍ଧ-ଭାବାଭାବ ପ୍ରକାରକ ଜ୍ଞାନ ।
ସଂଶୟଗ୍ରସ୍ତ—ପୁଂ. ବିଂ. (୩ତତ୍)ସଂଶ-ୟାକୁଳ, (ସ୍ତ୍ରୀ) ସଂଶୟଗ୍ରସ୍ତା ।
ସଂଶୟଚ୍ଛେଦ—ବି. ସନ୍ଦେହ ନାଶ, ସଂଶୟ ଦୂରୀକରଣ ।
ସଂଶୟଚ୍ଛେତ୍ତା—ପୁଂ. ବିଂ. (ସଂଶୟ+ଛିଦ୍+କ.ତୃ)ସନ୍ଦେହ ନାଶକାରୀ, (ସ୍ତ୍ରୀ) ସଂଶୟଚ୍ଛେତ୍ରୀ ।
ସଂଶୟଜନକ—ବିଂ. (ସଂଶୟ+ଜନ+କ.ଅକ) ସନ୍ଦେହ ଉତ୍ପାଦକ ।
ସଂଶୟଜନିତ—ବିଂ. ସନ୍ଦେହରୁ ଉତ୍ପନ୍ନ ।
ସଂଶୟଜ୍ଞାନ—ବି. ସନ୍ଦେହ ବୋଧ, ଦୁଇ ବସ୍ତୁ ମଧ୍ୟରୁ କୌଣସି ଗୋଟିଏ ହେବା ରୂପ ସନ୍ଦେହ ।
ସଂଶୟଦୋଳା—ବି.ସଂଶୟରୂପ ଦୋଳା
ସଂଶୟମୂଳକ—ବିଂ.(ବ.ବ୍ରୀ) ସନ୍ଦେହା-ତ୍ମକ । [ ହେତୁ ।
ସଂଶୟଚ୍ଛେଦହେତୁ—ବି. ସଂଶୟଚ୍ଛେଦନ
ସଂଶୟସମ—ବି. ମିଥ୍ୟାତର୍କ, ଭିତ୍ତିହୀନ ତର୍କ । [ ରୂପ ସମୁଦ୍ର ।
ସଂଶୟସାଗର—ବି. (ରୂପକ) ସଂଶୟ-
ସଂଶୟସ୍ଥ—ପୁଂ. ବିଂ. (ସଂଶୟ+ସ୍ଥା+କ.ଅ) ସନ୍ଦେହଯୁକ୍ତ,ସଂଶୟାପନ୍ନ,(ସ୍ତ୍ରୀ) ସଂଶୟସ୍ଥା ।
ସଂଶୟାକୁଳ—ପୁଂ. ବିଂ. (୩ତତ୍)ସନ୍ଦି-ଗ୍ଧ,ଯାହା ସନ୍ଦେହ ଦ୍ୱାରା ଆଲୋଡ଼ିତ, (ସ୍ତ୍ରୀ) ସଂଶୟାକୁଳା ।
ସଂଶୟାତ୍ମକ—ବିଂ.ସନ୍ଦେହଜନକ,ଯଦ୍ଦ୍ୱାରା ସନ୍ଦେହ ଜନ୍ମିପାରେ ।
ସଂଶୟାତ୍ମା—ପୁଂ. ଓ ସ୍ତ୍ରୀ. ବିଂ (ବ.ବ୍ରୀ) ସନ୍ଦିହାନ, ( ବି ) ସନ୍ଦେହପୂର୍ଣ୍ଣ ଆତ୍ମା, ସନ୍ଦେହଯୁକ୍ତ ମନ ।
ସଂଶୟାନ—ପୁଂ. ବିଂ. (ସମ୍+ଶୀ+କ.ଆନ) ସଂଶୟାଳୁ ଦେଖ ।
ସଂଶୟାନ୍ୱିତ—ପୁଂ. ବିଂ. ( ୩ତତ୍ ) ସଂଶୟଯୁକ୍ତ, ସନ୍ଦେହପୂର୍ଣ୍ଣ, କର୍ତ୍ତବ୍ୟ-ବିମୂଢ଼, (ସ୍ତ୍ରୀ) ସଂଶୟାନ୍ୱିତା ।
ସଂଶୟୋପନ୍ନମାନସ—ପୁଂ. ବିଂ.ସନ୍ଦେହ-ଯୁକ୍ତ, ସଂଶୟାନ୍ୱିତଚିତ୍ତ, ସାଂଶୟିକ ।
ସଂଶୟାଳୁ—ପୁଂ ଓ ସ୍ତ୍ରୀ.ବିଂ. (ସମ୍+ଶୀ+କ.ଆଳୁ) ସନ୍ଦେହଚିତ୍ତ, ସନ୍ଦେହୀ ।
ସଂଶୟିତ—ବିଂ. ( ସମ୍+ଶୀ+କ.ତ ) ସନ୍ଦେହାନ୍ୱିତ, ଅନିଶ୍ଚିତ, ବିପଦ୍‌ଗ୍ରସ୍ତ, (ନିଂ.ତ) ଯେଉଁ ବିଷୟରେ ସନ୍ଦେହ କରାଯାଉଅଛି, (ସ୍ତ୍ରୀ) ସଂଶୟିତା ।
ସଂଶୟିତା—ପୁଂ.ବିଂ. (ସମ୍+ଶୀ+କ.ତୃ) ସନ୍ଦିହାନ, (ସ୍ତ୍ରୀ) ସଂଶୟିତ୍ରୀ ।
ସଂଶୟୋପମା—ସ୍ତ୍ରୀ. ବି. ଅଳଙ୍କାର-ବିଶେଷ, ସଂଶୟୋପମାଳଙ୍କାର ।
ସଂଶୟୋପେତ—ପୁଂ. ବିଂ. ( ବ.ବ୍ରୀ ) ସଂଶୟାପନ୍ନ, (ସ୍ତ୍ରୀ) ସଂଶୟୋପେତା ।
ସଂଶର—ବି. (ସମ୍+ଶୃ+ଅ) ଏକତ୍ର, ଭଙ୍ଗ, ଏକତ୍ର ପୃଥକ୍‌କରଣ ।
ସଂଶରଣ—ବି. ( ସମ୍+ଶୃ+ଭା.ଅନ ) ଯୁଦ୍ଧୋପକ୍ରମ, ଯୁଦ୍ଧାରମ୍ଭ, ସଂରକ୍ଷଣ ।
ସଂଶାନ୍ତି—ବି.ସମ୍ୟକ୍‌ପ୍ରକାରେ ନିବୃତ୍ତି ।
ସଂଶାସନ—ବି. ସମ୍ୟକ୍‌ଶାସନ, ଆଦେଶ-ପତ୍ର,ନିରୂପିତ କର୍ମପାଳନର ଆଦେଶ ।
ସଂଶିତ—ପୁଂ.ବିଂ. ( ସମ୍+ଶୋ+ନିଂ.ତ) ନିର୍ଣ୍ଣୀତ, ନିର୍ଦ୍ଧାରିତ, ସ୍ଥିରୀକୃତ, ନିରୂ-ପିତ, ସୂଚିତ, ସମ୍ପୂର୍ଣ୍ଣ,ନିର୍ବାହିତ;ସମ୍ପା-ଦିତ, ତୀକ୍ଷ୍ଣୀକୃତ, ନିଷ୍ଠାବାନ୍, ସମାପ୍ତ, ତୀକ୍ଷ୍ଣ, (ସ୍ତ୍ରୀ) ସଂଶିତା ।
ସଂଶିତବ୍ରତ—ପୁଂ. ବିଂ. (ବ.ବ୍ରୀ) ବ୍ରତ-ନିଷ୍ଠ,ଯଥା ନିୟମରେ ବ୍ରତ ଅନୁଷ୍ଠାନ-କାରୀ,ଯେ ବ୍ରତପାଳନ କରି ସାରିଅଛି, (ସ୍ତ୍ରୀ) ସଂଶିତବ୍ରତା ।
ସଂଶିତାତ୍ମା—ପୁଂ. ବିଂ. (ବ.ବ୍ରୀ) ଯାହାଙ୍କ ମନ ଉତ୍ତମରୂପେ ସଂଯତ ଓ ପରିଶୁଦ୍ଧ ହୋଇଅଛି । [ କରଣ ।
ସଂଶିତି—ସ୍ତ୍ରୀ. ବି. ସମ୍ୟକ୍‌ପ୍ରକାରେ ତୀକ୍ଷ୍ଣୀ-
ସଂଶିରୀଷୁ—ପୁଂ. ବିଂ. (ସମ୍+ଶୃ+ସ+ଉ) ସଂଶରଣ କରିବାର ଇଚ୍ଛୁକ ।
ସଂଶିଶାନ—ବିଂ. ଉତ୍ତମ ତୀକ୍ଷ୍ଣୀକରଣ ବା ଉପଯୁକ୍ତ ଭାବରେ ଧାରଦେବା ।
ସଂଶିଶ୍ୱ—ବିଂ. ଏକ ଶିଶୁକ, (ସ୍ତ୍ରୀ) ସଂଶି-ଶ୍ୱୀ,ବଢ଼ପସୂଷ୍ଟା,ଯାହାର ଦୁଗ୍ଧ ନିୟତ-ବର୍ଦ୍ଧିତ ।
ସଂଶିଶ୍ରୀଷୁ—ବିଂ. (ସମ୍+ଶ୍ରି+ସନ୍+ଉ) ଆଶ୍ରୟ କରିବା ନିମିତ୍ତ ଇଚ୍ଛୁକ ।
ସଂଶିସ୍—ସ୍ତ୍ରୀ. ବି. (ସଂ+ଶାସ୍+କ୍ୱିପ୍) ଆଦେଶ ।
ସଂଶୀତ—ବିଂ. ଅତ୍ୟନ୍ତ ଶୈତ୍ୟଯୁକ୍ତ ।
ସଂଶୀତି—ବି.(ସମ୍+ଶୀ+ଭା.ତି) ସଂଶୟ, ସନ୍ଦେହ ।
ସଂଶୀଳନ—ବି. ଅଭ୍ୟାସ, ପୁନଃ ପୁନଃ ଆଲୋଚନା ।
ସଂଶୁଦ୍ଧ—ପୁଂ.ବିଂ. (ସମ୍+ଶୁଧ୍+ନିଂ.ତ) ସମ୍ପୂର୍ଣ୍ଣରୂପେ ପବିତ୍ରୀକୃତ,ପରିଶୋଧିତ, ସମ୍ମାର୍ଜିତ,ପ୍ରାୟଶ୍ଚିତ୍ତାଦି ଦ୍ୱାରା ଅପଗତ-ପାପ, ଅପରାଧ ବା ଅଭିଯୋଗରୁ ମୁକ୍ତ, ଦାୟିତ୍ୱ ବା ଋଣରୁ ନିଷ୍କୃତିପ୍ରାପ୍ତ, ସମ୍ପୂର୍ଣ୍ଣ-ରୂପେ ପରିଷ୍କୃତ, (ସ୍ତ୍ରୀ) ସଂଶୁଦ୍ଧା ।
ସଂଶୁଦ୍ଧି—ବି. ( ସମ୍+ଶୁଦ୍ଧି ) ମାର୍ଜନ, ସମ୍ୟକ୍‌ଶୋଧନ, ସମ୍ୟକ୍‌ଶୁଦ୍ଧି, ସ୍ନାନାଦି ଦ୍ୱାରା ଦେହ ମାର୍ଜନ,ସଂଶୋଧନ,ଋଣ-ପରିଶୋଧ, ଅପରାଧରୁ ବା ଅଭିଯୋଗରୁ ମୁକ୍ତିଲାଭ ।
ସଂଶୁଷ୍କ—ବିଂ.ଆତପାଦି ଦ୍ୱାରା ସଂଶୋ-ଧିତ (ବସ୍ତୁ), ନୀରସ, ସ୍ନିଗ୍ଧତାଶୂନ୍ୟ ।
ସଂଶୋଧକ—ପୁଂ.ବିଂ. (ସମ୍+ଶୁଧ୍+କ.ଅକ)ପରିଷ୍କାରକ,ସଂଶୋଧନକାରୀ, ସଂସ୍କାରକ, ବିଶୋଧକ, (ସ୍ତ୍ରୀ) ସଂଶୋ-ଧିକା ।

ସଂଶୋଧନ—ବି. (ସମ୍+ଶୁଧ୍+ଭା.ଅନ) ପରିଷ୍କରଣ,ପରିମାର୍ଜନ, ଭ୍ରମାଦି ଶୋଧନ, ଭ୍ରାନ୍ତି ଦୂରୀକରଣ, ଶୁଦ୍ଧିକରଣ, ବିଶୋଧନ,ଦେହସ୍ଥ ବାତାଦି ଦୋଷ ପ୍ରଶମନ ଦ୍ରବ୍ୟ ।

ସଂଶୋଧିତ—ବିଂ. ( ସମ୍+ଶୁଧ୍+ତ ) ପରିଶୋଧିତ,ଶୁଦ୍ଧୀକୃତ(ବସ୍ତ୍ର),ପରିଷ୍କୃତ, ମାର୍ଜିତ ।

ସଂଶୋଷ—ବି. ଶୋଷଣ, ଶୁଷ୍କତା ।

ସଂଶୋଷଣ—ବି. ସମ୍ୟକ୍‌ପ୍ରକାରେ ଶୁଷ୍କ ହେବା ।

ସଂଶ୍ବତ—ବି. ଇନ୍ଦ୍ରଜାଲ, ମାୟା, ଐନ୍ଦ୍ରଜାଲିକ, ଜାଦୁକର, ଛଳ ।

ସଂଶ୍ୟାନ—ବିଂ. (ସମ୍+ଶ୍ୟୈ+କ.ତ) ସଙ୍କୁଚିତ, ଘନୀଭୂତ, ଗୁଡ଼ିଆ ହୋଇଥିବା, ମୁଦିହୋଇଯାଇଥିବା ।

ସଂଶ୍ରଦ୍ଧ—ଗ୍ରା.ବି. ଅତ୍ୟନ୍ତସ୍ନେହ,ଆଦର ।

ସଂଶ୍ରୟ—ବି. (ସମ୍+ଶ୍ରି+ର୍ମ.ଅ) ଅବଲମ୍ବନ, ଆଶ୍ରୟସ୍ଥଳ, କାରଣ, ବାସସ୍ଥାନ, ଗୃହ, (ଭା.ଅ) ପ୍ରାପ୍ତି, ବ୍ୟାପ୍ତି, ରକ୍ଷା, ଆଶ୍ରୟ,(ରାଜନୀତି) ରାଜ୍ୟରକ୍ଷାର୍ଥ ରାଜାଙ୍କର ପାଳନୀୟ ୬ଟି ଗୁଣରୁ ଏକ, ଅନ୍ୟ ରାଜାଙ୍କ ସଙ୍ଗେ ସମ୍ପର୍କସ୍ଥାପନ, (ବିଂ) ସଂଶ୍ରିତ, ଆଶ୍ରିତ । [ଆଶ୍ରୟ ।

ସଂଶ୍ରୟଣ—ବି.(ସମ୍+ଶ୍ରି+ଅନ)ସଂଶ୍ରୟ

ସଂଶ୍ରୟଣୀୟ-ବିଂ. (ସମ୍+ଶ୍ରି+ଅନୀୟ) ସଂଶ୍ରୟଯୋଗ୍ୟ, ଆଶ୍ରୟାର୍ହ, ଆଶ୍ରୟର ଉପଯୁକ୍ତ ।

ସଂଶ୍ରୟିତବ୍ୟ—ବିଂ. (ସମ୍+ଶ୍ରି+ତବ୍ୟ) ସଂଶ୍ରୟର ଉପଯୁକ୍ତ, ଆଶ୍ରୟାର୍ହ ।

ସଂଶ୍ରୟୀ—ବିଂ.(ସମ୍+ଶ୍ରି+ଇନ୍)ସଂଶ୍ରୟଯୁକ୍ତ, ଆଶ୍ରୟବିଶିଷ୍ଟ ।

ସଂଶ୍ରବ—ବି.(ସମ୍+ଶ୍ରୁ+ଭା.ଅ)ସମ୍ପର୍କ, ସମ୍ବନ୍ଧ, ପ୍ରତିଜ୍ଞା, ଅଙ୍ଗୀକାର, ସଙ୍ଗମ, ମିଳନ, ମନୋଯୋଗ ପୂର୍ବକ ଶ୍ରବଣ ।

ସଂଶ୍ରବଣ—ବି. ( ସମ୍+ଶ୍ରୁ+ଅନ--ଣ. ଅନ) କାନ, (ଭା.ଅନ) ଶୁଣିବା ।

ସଂଶ୍ରାବ—ବି. (ସମ୍+ଶ୍ରୁ+ଅ)ସିଞ୍ଚନ, ଛିଞ୍ଚିବା, ସଂଶ୍ରବ ଦେଖ ।

ସଂଶ୍ରାବୟିତା—ପୁଂ. ବିଂ. (ସମ୍+ଶ୍ରୁ+ଣିଚ୍+ତୃ) ସମ୍ୟକ୍‌ରୂପେ ଶ୍ରବଣକାରକ, ଧେଣ୍ଡୁରବାଦକ ।

ସଂଶ୍ରାବ୍ୟ—ବିଂ. ସଂଶ୍ରାବଯୋଗ୍ୟ ।

ସଂଶ୍ରିତ—ବିଂ. ( ସମ୍+ଶ୍ରି+କ.ତ ) ଆଶ୍ରିତ, ଶରଣାପନ୍ନ,ସଂଯୁକ୍ତ, ଆଶ୍ରୟପ୍ରାପ୍ତ, (ସ୍ତ୍ରୀ) ସଂଶ୍ରିତା,(ବି)ଆଶ୍ରିତବ୍ୟକ୍ତି, ଅନୁଚର ।

ସଂଶ୍ରିତବ୍ୟ—ବିଂ. ଆଶ୍ରୟାର୍ହ ।

ସଂଶ୍ରୁତ—ବିଂ. (ସମ୍+ଶ୍ରୁ+ର୍ମ.ତ)ପ୍ରତିଶ୍ରୁତ, ପ୍ରତିଜ୍ଞାତ, ଉତ୍ତମରୂପେ ଶ୍ରୁତ ।

ସଂଶ୍ରୁତ୍ୟ--ବି. ବିଶ୍ୱାମିତ୍ରଙ୍କର ପୁତ୍ରବିଶେଷ

ସଂଶ୍ରେଷିଣ—ପୁଂ. ବି. ଇନ୍ଦ୍ର ।

ସଂଶ୍ଲିଷ୍ଟ—ବିଂ. ( ସମ୍+ଶ୍ଲିଷ୍+ର୍ମ.ତ ) ଆଲିଙ୍ଗିତ,ମିଳିତ,ସଂପୃକ୍ତ,ସଂପର୍କଯୁକ୍ତ, ନିକଟବର୍ତ୍ତୀ, ସନ୍ନିହିତ, ଯୁକ୍ତ,ସଂବଦ୍ଧ ।

ସଂଶ୍ଲେଷ—ବି. ( ସମ୍+ଶ୍ଲିଷ୍+ଭା.ଅ ) ଆଲିଙ୍ଗନ, ମିଳନ,ସଂପର୍କ, ଲାଗିଯିବା, ଗାଢ଼ସଂଯୋଗ ।

ସଂଶ୍ଲେଷଣ—ବି.(ସମ୍+ଶ୍ଲିଷ୍+ଭା.ଅନ) ସଂଶ୍ଲେଷ ଦେଖ,(ଣ.ଅନ) ବାନ୍ଧୁଣି ।

ସଂଶ୍ଲେଷୀ—ପୁଂ. ବିଂ. (ସମ୍+ଶ୍ଲିଷ୍+ଇନ୍) ସଂଶ୍ଲେଷବିଶିଷ୍ଟ, ଆଲିଙ୍ଗନଯୁକ୍ତ ।

ସଂସକ୍ତ—ବିଂ. (ସମ୍+ସଞ୍ଜ୍+କ.ତ) ସଂଲଗ୍ନ,ସନ୍ନିକଟବର୍ତ୍ତୀ,ସଂସୃଷ୍ଟ,ସଂପୃକ୍ତ, ଆସକ୍ତ, ସମନ୍ୱିତ ବିସ୍ତୃତ,ଗୋଳେଇହୋଇ ମିଶିଯାଇଥିବା, ବିଶିଷ୍ଟ, ଯୁକ୍ତ, ନିରୁଦ୍ଧ, ଅମୁକ କାର୍ଯ୍ୟପାଇଁ କୃତସଂକଳ୍ପ, ବଦ୍ଧ ।

ସଂସକ୍ତି—ବି. (ସମ୍+ସଞ୍ଜ୍+ଭା.ତି) ନିକଟବର୍ତ୍ତିତା, ଦୃଢ଼ମିଳନ, (ବିଜ୍ଞାନ) ପଦାର୍ଥର ଗୁଣବିଶେଷ,ଯେଉଁ ଗୁଣଦ୍ୱାରା ପଦାର୍ଥ ମଧ୍ୟସ୍ଥ ପରସ୍ପର ନିକଟବର୍ତ୍ତୀ ପରମାଣୁଗୁଡ଼ିକ ପରସ୍ପର ସହିତ ମିଳିତ ହୁଏ, ଲାଗିଯିବା ଅବସ୍ଥା, ସହବାସ, ଘନିଷ୍ଠତା, ଏକତ୍ର ବନ୍ଧନ, କୌଣସି ବିଷୟପ୍ରତି ଲିପ୍ତ ହେବା ଅବସ୍ଥା,ଏକାନ୍ତ ଆସକ୍ତି ।

ସଂସକ୍ତିପ୍ରବଣ—ବିଂ. (୭ତତ୍) ସଂସକ୍ତିଶୀଳ, ସଂଯୋଗଶୀଳ, (ସ୍ତ୍ରୀ) ପ୍ରବଣା ।

ସଂସକ୍ତିଶୀଳ—ବିଂ. (ବ.ବ୍ରୀ)ସଂସକ୍ତିପ୍ରବଣ, ସଂଯୋଗ ପ୍ରକୃତିବିଶିଷ୍ଟ, (ସ୍ତ୍ରୀ)ଶୀଳା ।

ସଂସଙ୍ଗ—ବି. (ସଂ+ସଞ୍ଜ+ଅ)ସମ୍ୟକ୍ ମିଳନ, ଏକତ୍ର ଗ୍ରନ୍ଥନ ।

ସଂସଙ୍ଗୀ—ପୁଂ.ବିଂ.(ସଂ+ସଞ୍ଜ+ଇନ୍) ମିଳନକାରୀ, ସଙ୍ଗକାରୀ ।

ସଂସଦ୍—ବି. ( ସମ୍+ସଦ୍+ଅଧି.କ୍ୱିପ୍) ସଭା,ସମାଜ,ଧର୍ମାଧିକରଣ,ବିଚାରାଳୟ ।

ସଂସର୍ମକ—ବିଂ.ସମାନ ଗମନ ।

ସଂସରଣ—ବି. ( ସମ୍+ସୃ+ଭା.ଅନ ) ବିନା ବାଧାରେ ସେନାଙ୍କର ଗମନ ବା ଯାତ୍ରା, ଗମନ, ସଂସାର, ସାଂସାରିକ ବିଷୟ, ସଙ୍କଟ, ( ଅଧି.ଅନ ) ପ୍ରଧାନ ପଥ, ବଡ଼ରାସ୍ତା ,ରାଜଦାଣ୍ଡ,ସଂସାରରେ ଜନ୍ମ ଓ ପୁନର୍ଜନ୍ମ, ଯୁଦ୍ଧର ଆରମ୍ଭ, ନଗରର ଫାଟକ ନିକଟରେ ଥିବା ପଥିକଙ୍କର ବିଶ୍ରାମସ୍ଥାନ ।

ସଂସଗ୍ର—ପ୍ରା. (ଯାଜପୁର)ବିଂ. ସବଦା ସାଁ ସାଁ ହେଉଥିବା ବଳଦ ।

ସଂସର୍ଗ—ବି. ( ସମ୍+ସୃଜ୍+ଭା.ଅ ) ସଂପର୍କ, ସଂବନ୍ଧ, ଏକତ୍ର ଅବସ୍ଥାନ, ମୈଥୁନ, ସହବାସ, ସଙ୍ଗ, ମିଳନ, ସାହଚର୍ଯ୍ୟ, ନୈକଟ୍ୟ, ସ୍ପର୍ଶ ।

ସଂସର୍ଗଜ—ବିଂ. (ସଂସର୍ଗ+ଜନ୍+କ. ଅ) ସଂସର୍ଗରୁ ଜାତ,(ସ୍ତ୍ରୀ) ସଂସର୍ଗଜା ।

ସଂସର୍ଗଜାଦୋଷଗୁଣାଭବନ୍ତି—(ପ୍ରବଚନ) ମନୁଷ୍ୟର ଦୋଷ ବା ଗୁଣ ସଂସର୍ଗରୁ ଘଟେ ।

ସଂସର୍ଗଦୋଷ—ବି. (୬ତତ୍)ଦୋଷଯୁକ୍ତ ସଂସର୍ଗ, ମନ୍ଦ ସଂସର୍ଗ, ସଂସର୍ଗର ଦୋଷ, (କ.ଧା)ସଂସର୍ଗଜନିତ ଦୋଷ ।

ସଂସର୍ଗଲିପ୍ସା—ବି. ( ୬ତତ୍ ) ସହବାସ ପାଇଁ ଇଚ୍ଛା ।

ସଂସର୍ଗିତ୍ୱ—ବି. ସଂସର୍ଗକାରୀର ଭାବ ବା ଧର୍ମ, ସଂସର୍ଗ, ସହବାସ ।

ସଂସର୍ଗବାନ୍—ପୁଂ.ବିଂ. (ସଂସର୍ଗ+ବତ୍) ସଂସର୍ଗଯୁକ୍ତ, ସଂସର୍ଗକାରୀ, ସଂସର୍ଗବିଶିଷ୍ଟ ।

ସଂସର୍ଗବିଦ୍ୟା—ସ୍ତ୍ରୀ ବି. ଶୋଭାଯାତ୍ରାରେ ସୁଶୃଙ୍ଖଳିତ ଶ୍ରେଣୀବଦ୍ଧ ଭାବରେ ଗମନର ବିଦ୍ୟା ଅଥବା ସେନାମାନଙ୍କର ଶ୍ରେଣୀବଦ୍ଧ ଭାବରେ ଗମନାଗମନ ଯାହା ଦ୍ୱାରା ଶିକ୍ଷା ହୁଏ ।

ସଂସର୍ଗାଭାବ—ବି. (୬ତତ୍) ସମ୍ପର୍କର ଅଭାବ, (ନ୍ୟାୟଦର୍ଶନ) ତ୍ରିବିଧ ଅଭାବ (ଯଥା--ପ୍ରାଗଭାବ, ପ୍ରଧ୍ୱଂସାଭାବ, ଓ ଅତ୍ୟନ୍ତାଭାବ) ।

ସଂସର୍ଗିତା—ସ୍ତ୍ରୀ.ବି. ସଂସର୍ଗୀର ଭାବ ବା ଧର୍ମ, ସଂସର୍ଗ ।

ସଂସର୍ଗୀ—ପୁଂ.ବିଂ. ( ସଂସର୍ଗ+ଇନ୍ ) ସମ୍ବନ୍ଧୀ, ଚିରବାସକାରୀ, ସଂଯୁକ୍ତ, (ଅମୁକର) ସଙ୍ଗେ ସଂସର୍ଗକାରୀ,(ପୁଂ. ବି) ସଙ୍ଗୀ, ସହଚର, ସହଯୋଗୀ, ସହକର୍ମୀ, (ସ୍ତ୍ରୀ) ସଂସର୍ଗିଣୀ ।

ସଂସର୍ଜନ—ବି. (ସମ୍+ସୃଜ୍+ଭା.ଅନ) ଏକତ୍ର ମିଶାଇବା, ତ୍ୟାଗକରଣ,ଉତ୍ସର୍ଗକରଣ ।

ସଂସର୍ପ—ବି.(ସମ୍+ସୃପ୍+ଭା.ଅ)ସମ୍ୟକ୍ ପ୍ରକାରେ ଗମନ,ସର୍ପବତ୍ ଗତି,ବିସ୍ତାର, ଧୀରଗମନ, (ଅଧି.ଅ) କ୍ଷୟ ମାସବିଶିଷ୍ଟ ବର୍ଷର ମଳମାସ ।

ସଂସର୍ପଣ—ବି. (ସମ୍+ସୃପ୍+ଭା.ଅନ) ଗୁରୁଣ୍ଡି ଗୁରୁଣ୍ଡି ଯିବା, ଅପ୍ରତ୍ୟାଶିତ ଆକ୍ରମଣ ।

ସଂସର୍ପୀ—ପୁଂ. ବିଂ. (ସମ୍+ସୃପ୍+କ. ଇନ୍) ଗୁରୁଣ୍ଡି କରି ଯାଉଥିବା, ଧୀର ଗତି କରୁଥିବା, ବକ୍ରଗତି କରୁଥିବା, (ସ୍ତ୍ରୀ) ସଂସର୍ପିଣୀ ।

ସଂସବ—ବି. ସୋମ ଯଜ୍ଞ କାଳରେ ହୋତାମାନଙ୍କର ବିପର୍ଯ୍ୟୟାତ୍ମକ କର୍ମ ।

ସଂସାଦ୍—ବି. (ସମ୍+ସଦ୍+ଅଧି.କ୍ୱିପ୍) ସଂସଦ୍ ଦେଖ ।

ସଂସାଦନ—ବି. ଏକତ୍ର ସମାଗମ ।

ସଂସାଧକ--ପୁଂ.ବିଂ.ନିର୍ବାହକାରୀ,ମଙ୍ଗଳ ସାଧନଶୀଳ ।

ସଂସାଧନ—ବି (ସମ୍+ସାଧ୍+ଭା.ଅନ) ସମାପନ, ନିଷ୍ପାଦନ, ପ୍ରାପ୍ତି, ବ୍ୟବସ୍ଥା, ବଧ, ମାରଣ, ନିର୍ବାପନ ।

ସଂସାଧ୍ୟ—ବିଂ. ସଂସାଧନଯୋଗ୍ୟ ।

ସଂସାର—ବି. ( ସମ୍+ସୃ+ଅଧି.ଅ ) ଜଗତ୍, ପୃଥିବୀ, ମାୟାପୂରିତ ଜଗତ୍, ମାୟାବନ୍ଧନ, ମାୟାଜନ୍ୟ ବ୍ୟସନ, ସାଂସାରିକ ବିଷୟ, ସ୍ତ୍ରୀ ପୁତ୍ର କନ୍ୟା ସମ୍ବଳିତ ପରିବାର, ଗାର୍ହସ୍ଥ୍ୟ, ଘରକରଣା,ଜନସମାଜ, ଐହିକ ବ୍ୟାପାର, ପୁନର୍ଜନ୍ମ, ବାରମ୍ବାର ମୃତ୍ୟୁ ପରେ ଜନ୍ମାନ୍ତର, (ଗ୍ରା.ସ୍ତ୍ରୀ.ବି) ଭାର୍ଯ୍ୟା ।

ସଂସାରକରିବା—ଗ୍ରା. କ୍ରି. ସ୍ତ୍ରୀ ପୁତ୍ରାଦିଙ୍କ ସହିତ ଘରକରଣା କରିବା, ଜନସମାଜରେ ଚଳିବା, ବିବାହକରିବା ।

ସଂସାରକାନନ—ବି. (ରୂପକ) ଅରଣ୍ୟ ପରି ଅଗମ୍ୟ ଓ ଆପତ୍ତିସଙ୍କୁଳ ସଂସାର ।

ସଂସାରକାମନା(ବାସନା)—ବି. (୬ତତ୍) ପାର୍ଥିବ ଭୋଗ ବାସନା,ବିଷୟବାସନା ।

ସଂସାରକାମୀ—ପୁଂ. ବିଂ. ସାଂସାରିକ ଭୋଗ ବାସନା ପାଇଁ ଲାଳାୟିତ, (ସ୍ତ୍ରୀ) ସଂସାରକାମିନୀ ।

ସଂସାରକାରା—ବି. (ରୂପକ)ଜେଲଖାନା ସଙ୍ଗେ ତୁଳିତ ସଂସାର । [ କୂପ ।

ସଂସାରକୂପ—ବି. (ରୂପକ) ସଂସାରରୂପ

ସଂସାରଗମନ—ବି.(୨ତତ୍)ମୃତ୍ୟୁ ପରେ ପୁନର୍ଜନ୍ମ, ଜନ୍ମାନ୍ତର ପରିଗ୍ରହ ।

ସଂସାରଗୁରୁ—ବି. (୬ତତ୍)ପରମେଶ୍ୱର, କାମଦେବ, କନ୍ଦର୍ପ, ଜଗତ୍ଗୁରୁ,ସମଗ୍ର ଜଗତର ପୂଜ୍ୟ ବ୍ୟକ୍ତି ।

ସଂସାରଚକ୍ର—ବି. (ରୂପକ) ସଂସାରରୂପ ଚକ୍ର, ଚକ୍ରବତ୍ ଘୂର୍ଣ୍ଣନଶୀଳ ଜଗତ୍, ବାରମ୍ବାର ଜନ୍ମ ଓ ମରଣ ।

ସଂସାରଜ୍ଞ—ପୁଂ. ବିଂ. (ସଂସାର+ଜ୍ଞା+କ.ଅ) ସଂସାର ବିଷୟରେ ଅଭିଜ୍ଞ, ସଂସାରର ଢଙ୍ଗଢାଙ୍ଗ ଯେ ଜାଣିକରି ଚଳେ, (ସ୍ତ୍ରୀ) ସଂସାରଜ୍ଞା ।

ସଂସାରଜ୍ଞାନ—ବି. (୬ତତ୍ ବା ୭ତତ୍) ସଂସାର ସମ୍ବନ୍ଧରେ ଜ୍ଞାନ ବା ଅଭିଜ୍ଞତା

ସଂସାରତରଙ୍ଗ—ବି.(ରୂପକ) ଚଞ୍ଚଳତା ଅର୍ଥାତ୍ ଅସ୍ଥିରତା ଯୋଗୁଁ ତରଙ୍ଗ ସଙ୍ଗେ ତୁଳନା କରାଯାଉଥିବା ସଂସାର ।

ସଂସାରତାଡ଼ନା—ବି. (ରୂପକ) ସଂସାରୀ ଲୋକ ଦ୍ୱାରା ଅନୁଭୂତ କଷ୍ଟ ।

ସଂସାରତାଡ଼ିତ—ବିଂ(୩ତତ୍)ସଂସାରରୁ ଦୂରୀଭୂତ, ପାର୍ଥିବ ପ୍ରତିକୂଳ ଘଟନା ଦ୍ୱାରା ନିପୀଡ଼ିତ ।

ସଂସାରତୃଷ୍ଣା—ବି. ସାଂସାରିକ ଭୋଗବିଳାସ ପାଇଁ ଅତ୍ୟଧିକ ବାସନା ।

ସଂସାରତ୍ୟାଗ—ବି. (୬ତତ୍) ପରିଜନବର୍ଗର ତ୍ୟାଗ,ମାୟାବନ୍ଧନଚ୍ଛେଦନ ।

ସଂସାରତ୍ୟାଗୀ—ପୁଂ. ବିଂ. (ସଂସାର+ତ୍ୟଜ୍+କ.ଇନ୍)ପରିଜନବର୍ଗର ସଙ୍ଗତ୍ୟାଗକାରୀ, ମାୟାବନ୍ଧନ ଚ୍ଛେଦନକାରୀ, ସନ୍ନ୍ୟାସୀ, (ସ୍ତ୍ରୀ) ତ୍ୟାଗିନୀ ।

ସଂସାରଧର୍ମ—ବି. (୬ତତ୍)ଗାର୍ହସ୍ଥ୍ୟ ଧର୍ମ, ଗୃହୀର ଅନୁଷ୍ଠେୟ କାର୍ଯ୍ୟ ।

ସଂସାରଧାରା—ସ୍ତ୍ରୀ. ବି. ଯୁକ୍ତପ୍ରଦେଶର ଡେରାଡୁନ ଜିଲାନ୍ତର୍ଗତ ଗୋଟିଏ ପାର୍ବତ୍ୟ ଜଳଧାରା ।

ସଂସାରପଥ(ମାର୍ଗ)-ବି.(କ.ଧା)ମାତୃଯୋନି, (ରୂପକ)ସଂସାରଯାତ୍ରା ପଥ ବା ମାର୍ଗ ସଙ୍ଗେ ତୁଳିତ ସଂସାର ବା ଇହଜଗତ୍, ଇହଜଗତର ଘଟନାଚକ୍ର, (୬ତତ୍) ସଂସାରଯାତ୍ରା ନିର୍ବାହର ଉପାୟ ।

ସଂସାରପ୍ରାନ୍ତର—ବି. (ରୂପକ) ବିସ୍ତୀର୍ଣ୍ଣ ପଡ଼ିଆ ସଙ୍ଗେ ତୁଳିତ ସଂସାର ।

ସଂସାରବନ୍ଧନ—ବି. ( ୬ତତ୍ ) ମାୟାବନ୍ଧନ, ସଂସାରର ଆକର୍ଷଣ ।

ସଂସାରବାସ—ବି. ସଂସାରରେ ଜନ୍ମଗ୍ରହଣ କରି ବଞ୍ଚିବା,ପରିବାର ଓ ବିଷୟସମ୍ପତ୍ତିଆଦି ନେଇ ଘରକରଣା କରିବା ।

ସଂସାରବାନ୍—ପୁଂ.ବିଂ. ସଂସାରୀ,ସଂସାରବିଶିଷ୍ଟ ।

ସଂସାରବିତୃଷ୍ଣା—ବି. (୭ତତ୍) ସାଂସାରିକ ବିଷୟ ପ୍ରତି ବୈରାଗ୍ୟ, ସଂସାରର ଭୋଗବିଳାସ ବା ମାୟାମମତା ପ୍ରତି ଔଦାସୀନ୍ୟ ।

ସଂସାରମଣ୍ଡଳ—ବି.ଭୂମଣ୍ଡଳ,ଜଗନ୍ମଣ୍ଡଳ ।

ସଂସାରମରୁ—ବି. (ରୂପକ)ଦିଗନ୍ତବିସ୍ତୃତ

ବିପତ୍ତିସଙ୍କୁଳ ବିଶାଳ ମରୁଭୂମି ସହିତ ତୁଳନୀୟ ସଂସାର ।

ସଂସାରମୋକ୍ଷ(ଣ)—ବି. (୫ତତ୍) ସଂସାରରୁ ମୁକ୍ତି, ପୁନର୍ଜନ୍ମରୁ ମୁକ୍ତି, (ବିଂ) ସଂସାରବାରକ, ଯାହାଙ୍କର କୃପାରୁ ଭବବନ୍ଧନ ମୋଚନ ହୁଏ ।

ସଂସାରଯାତ୍ରା—ବି. (ରୂପକ) ଯାତ୍ରା ବା ଭ୍ରମଣ ସଙ୍ଗେ ତୁଳନୀୟ ସଂସାର, (୬ତତ୍) ଜୀବନଯାତ୍ରା ।

ସଂସାରଲୀଳା—ବି.(ରୂପକ)ଖେଳ ସଙ୍ଗେ ତୁଳନୀୟ ସଂସାର, (୬ତତ୍) ଜୀବଲୀଳା, ସଂସାରରେ ଜାତହୋଇ ଜନ୍ମଠାରୁ ମରଣ ପର୍ଯ୍ୟନ୍ତ ମନୁଷ୍ୟର କରିବା କାର୍ଯ୍ୟ ଓ ଅନୁଭବମାନ,ସଂସାରୀଲୋକର ଖେଳ କୌତୁକ ଓ ଭୋଗବିଳାସ, ଜୀବନଯାତ୍ରା, ଜୀବନଧାରଣ, ବଞ୍ଚିବା ।

ସଂସାରସମୁଦ୍ର(ସାଗର)—ବି. (ରୂପକ) ସମୁଦ୍ରପରି ବିସ୍ତୀର୍ଣ୍ଣ ଅକୂଳ ଗମ୍ଭୀର ଓ ତରଙ୍ଗାକୁଳ ସଂସାର ।

ସଂସାରସାରଥି—ପୁଂ. ବି. ଜନ୍ମରୁ ମୁକ୍ତକାରୀ ସଂସାରରୂପ ତରଣୀର କର୍ଣ୍ଣଧାର ବା ରଥର ଚାଳକ,ସଂସାରର ନାୟକ, ଶିବ ।

ସଂସାରସୁଖ—ବି. (୬ତତ୍) ସଂସାରର ସୁଖ,ବିଷୟ ଭୋଗହେତୁ ତୃପ୍ତି,ସାଂସାରିକ ଶାନ୍ତି ।

ସଂସାରସେବା—ବି. (୬ତତ୍) ଜଗତର ଜୀବମାନଙ୍କ ଉପକାର ।

ସଂସାରସ୍ରୋତଃ—ବି. (ରୂପକ) ସ୍ରୋତ ସଙ୍ଗେ ତୁଳନୀୟ ସଂସାର, ଜଗତର ଉତ୍ପତ୍ତି ଓ ବିନାଶରୂପ ସ୍ରୋତ ।

ସଂସାରହାଟ—ଗ୍ରା.ବି. ହାଟରୂପେ କଳ୍ପିତ ସଂସାର ।

ସଂସାରହେତୁ—ବି. ମାୟା, ସଂସାରରେ ଜନ୍ମଗ୍ରହଣର କାରଣ ବା ଅବିଦ୍ୟା ।

ସଂସାରାନୁରକ୍ତ—ପୁଂ. ବିଂ. (୭ତତ୍) ସଂସାରାସକ୍ତ ଦେଖ ।

ସଂସାରାନୁରକ୍ତି—ବି. (୭ତତ୍) ସଂସାରାସକ୍ତି ଦେଖ ।

ସଂସାରାବର୍ତ୍ତ—ବି.ଜଳାବର୍ତ୍ତପରି ସଂସାର ଚକ୍ରରେ ଜୀବ ପୁନଃ ପୁନଃ ଭ୍ରମଣକରେ ଏଣୁ ସଂସାର ଆବର୍ତ୍ତ ରୂପେ ଉକ୍ତ ହୋଇଥାଏ ।

ସଂସାରାରଣ୍ୟ—ବି. (କ.ଧା) ସଂସାରକାନନ ଦେଖ ।

ସଂସାରାଶ୍ରମ—ବି. (ରୂପକ) ସାଂସାରିକ ଅବସ୍ଥିତି, ଗୃହୀର ଅବସ୍ଥା, ଗୃହସ୍ଥାଶ୍ରମ ।

ସଂସାରାସକ୍ତ—ପୁଂ. ବିଂ. (୭ତତ୍)ସଂସାରରେ ଅନୁରକ୍ତ,ସାଂସାରିକ ବିଷୟରେ ଅଭିନିବିଷ୍ଟ, ପାର୍ଥିବ, ବିଷୟାନୁରାଗୀ, (ସ୍ତ୍ରୀ) ସଂସାରାସକ୍ତା ।

ସଂସାରାସକ୍ତି—ବି. (୭ତତ୍) ସଂସାରରେ ଏକାନ୍ତ ଅନୁରାଗ, ବିଷୟଭୋଗରେ ଏକାନ୍ତ ଅଭିନିବେଶ ।

ସଂସାରି—ଗ୍ରା.ବିଂ.(ସଂ-ସଂସାରୀ)ସାଂସାରିକ, (ଗ୍ରା.ବି) ସଂସାରୀ ଦେଖ ।

ସଂସାରିକ(କା)—ଗ୍ରା. ବିଂ. ସାଂସାରିକ ଦେଖ, (ଗ୍ରା.ବି.) ଗୃହସ୍ଥ ବ୍ୟକ୍ତି ।

ସଂସାରିତ୍ୱ—କ୍ଳୀ.ବି. ସଂସାର, ଶରୀରତ୍ୱ, ସଂସାରୀର ଭାବ ବା ଧର୍ମ ।

ସଂସାରୀ—ପୁଂ.ବି. ( ସଂସାର + ଇନ୍ ) ବିଷୟୀ ଲୋକ,ଗୃହସ୍ଥ ବ୍ୟକ୍ତି,ସଂସାରାସକ୍ତ ବ୍ୟକ୍ତି, ପ୍ରାଣୀ, ବିବେଚନାବିଶିଷ୍ଟ ଜୀବ, ଜୀବାତ୍ମା, (ପୁଂ.ବିଂ) ସଂସାରରେ ବାସକରୁଥିବା,ସଂସାରାସକ୍ତ, ଜଗତସ୍ଥ. ସଂସାରସମ୍ବନ୍ଧୀୟ,ସାଂସାରିକ, (ସ୍ତ୍ରୀ)ରିଣୀ

ସଂସାରୀପାନୁ—ପ୍ରା.(ଗଞ୍ଜାମ)ବି.ଇନ୍‌କମ୍ ଟିକସ, ଆୟ ଉପରେ ସରକାର ନେଉଥିବା ଟିକସ ।

ସଂସିକ୍ତ—ବିଂ. ( ସମ୍+ସିଚ୍+ର୍ମ.କ୍ତ ) ସମ୍ପୂର୍ଣ୍ଣରୂପେ ଆର୍ଦ୍ର, ଓଦା ସରସର, ସିକ୍ତ, ଯହିଁରେ ପାଣି ଛିଞ୍ଚାଯାଇଥାଏ ବା ମଡ଼ାଯାଇଥାଏ, (ସ୍ତ୍ରୀ)ସଂସିକ୍ତା ।

ସଂସିଦ୍ଧ—ବିଂ. ( ସମ୍+ସିଧ୍+କ.କ୍ତ ) ସମ୍ପୂର୍ଣ୍ଣରୂପେ ସିଦ୍ଧ, ସୁସମ୍ପନ୍ନ, ସୁସମାହିତ, ସମ୍ପୂର୍ଣ୍ଣରୂପେ ସିଦ୍ଧିପ୍ରାପ୍ତ,ସ୍ୱଭାବସିଦ୍ଧ, (ସ୍ତ୍ରୀ) ସଂସିଦ୍ଧା, (ବି) ସିଦ୍ଧିପ୍ରାପ୍ତ ବ୍ୟକ୍ତି ।

ସଂସିଦ୍ଧି—ସ୍ତ୍ରୀ.ବି. (ସମ୍ + ସିଧ୍ + ଭା.କ୍ତି) ସ୍ୱଭାବ, ପ୍ରକୃତି,ସ୍ୱାଭାବିକ ବା ପ୍ରାକୃତିକ ଅବସ୍ଥା, ସମାପ୍ତି, ସିଦ୍ଧି,ନିଷ୍ପତ୍ତି,ମତ୍ତା ସ୍ତ୍ରୀ, ମୋକ୍ଷ, ପରମୁକ୍ତି, ଫଳ ।

ସଂସୀ—ରାଜପୁତାନା ଓ ଉତ୍ତର ପଶ୍ଚିମ ପ୍ରଦେଶର ଗାଙ୍ଗେୟ ଅନ୍ତର୍ବେଦୀବାସୀ ନିମ୍ନ ଶ୍ରେଣୀର ଜାତିବିଶେଷ ।

ସଂସୁତସୋମ—ବି. ସଂସବ ।

ସଂସୂଚକ—ବିଂ.ସୂଚନାକାରୀ, ନିର୍ଦ୍ଦେଶକ

ସଂସୂଚନ—ବି. ସରଳ ଭାବରେ ବର୍ଣ୍ଣାଇବା, ପ୍ରମାଣକରଣ, କଥନ,ଜ୍ଞାପନ ।

ସଂସୂଚିତ—ବିଂ. ଅଭିହିତ, ନିର୍ଦ୍ଦେଶିତ, ଜ୍ଞାପିତ ।

ସଂସୂଚ୍ୟ—ବିଂ. ସୂଚନାଯୋଗ୍ୟ ।

ସଂସୃଦ—ବି. ପର୍ଣ୍ଣାଦର ମୁଖସ୍ଥିତ ତାଳୁଭାଗ ।

ସଂସୃକ୍—ସ୍ତ୍ରୀ.ବି. ମିଶ୍ରଣ, ସଂସର୍ଗ ।

ସଂସୃତି—ସ୍ତ୍ରୀ. ବି. (ସମ୍+ସୃ+ତି--ଅଧି. ତି) ସଂସାର, (ଭା.ତି)ପ୍ରବାହ,ସ୍ରୋତଃ, ସହଗମନ, ସତୀଙ୍କର ସ୍ୱାମୀଙ୍କ ସଙ୍ଗେ ମରଣ । [ ସମୂହ ।

ସଂସୃପ୍—ସ୍ତ୍ରୀ. ବି. ଦେବସଂଘ, ଦେବ-

ସଂସୃପାହବିଃ—ବି. ସଂସୃପା ଦେବବୃନ୍ଦଙ୍କର ପ୍ରୀତ୍ୟର୍ଥେ ପ୍ରଦତ୍ତ ହବି ।

ସଂସୃପେଷ୍ଟି—ବି. ଦଶପେୟ ଜାଗରେ ଅଗ୍ନ୍ୟାଦ ଦେବଗଣ ଉଦ୍ଦେଶକ ଉତ୍ସର୍ଗୀତ ଯଜ୍ଞ କ୍ରିୟା ।

ସଂସୃଷ୍ଟ—ବିଂ. ( ସମ୍+ସୃଜ୍+କ.କ୍ତ ) ସଂଯୁକ୍ତ,ସଂସର୍ଗବିଶିଷ୍ଟ, ମିଳିତ, ମିଶ୍ରିତ, କୃତସହବାସ, ରମିତ, କୃତସଂସର୍ଗ, (ସ୍ତ୍ରୀ) ସଂସୃଷ୍ଟା, (ବି-ଭା.କ୍ତ) ସମ୍ବନ୍ଧ ।

ସଂସୃଷ୍ଟଜିତ୍—ବିଂ. (ସଂସୃଷ୍ଟ+ଜି+କ୍ୱିପ୍) ସମ୍ମିଳିତ ବ୍ୟକ୍ତିମାନଙ୍କ ଜୟକାରୀ ।

ସଂସୃଷ୍ଟତ୍ୱ—କ୍ଳୀ.ବି. ସଂସୃଷ୍ଟର ଭାବ ବା ଧର୍ମ ।

ସଂସୃଷ୍ଟି—ବି. ( ସମ୍+ସୃଜ୍+ଭା.କ୍ତି ) ସହବାସ, ସାହଚର୍ଯ୍ୟ, ମିଳନ,ସଂସ୍ରବ, ଏକତ୍ର ମିଶ୍ରଣ, ଏକାନ୍ନ ବାସ, କାବ୍ୟାଳଙ୍କାରବିଶେଷ,କାବ୍ୟର ସ୍ଥାନ ବିଶେ-

ଷରେ ବା ଅଂଶବିଶେଷରେ ଏକାଧିକ ଅଲଙ୍କାରର ଏକତ୍ର ସମାବେଶ ।

ସଂସୃଷ୍ଟୀ—ପୁଂ.ବିଂ. ( ସଂସୃଷ୍ଟ+ଇନ୍ ) ଏକତ୍ର ସହବାସକାରୀ, ଏକାନ୍ନବର୍ତ୍ତୀ, ବିଭାଗାନନ୍ତର ପୁନର୍ମିଳିତ,(ସ୍ତ୍ରୀ)ସୃଷ୍ଟିନୀ ।

ସଂସେକ—ପୁଂ.ବି. (ସମ୍+ସିଚ୍+ଭା. ଅ) ପାଣି ସିଞ୍ଚିବା, ପାଣି ମଡ଼ାଇବା ।

ସଂସେବନ—ବି. (ସଂ+ସେବ୍+ଅନ) ଉତ୍ତମରୂପେ ସେବନ, ସମ୍ୟକ୍ରୂପେ ସେବନ ।

ସଂସେବା—ସ୍ତ୍ରୀ. ବି. (ସଂ+ସେବ+ଅ +ଆ) ସମ୍ୟକ୍ ସେବା ।

ସଂସେବିତା—ପୁଂ. ବିଂ. (ସମ୍+ସେବ୍ +ତୃ) ସମ୍ୟକ୍ରୂପେ ସେବାକାରକ ।

ସଂସେବୀ—ପୁଂ. ବିଂ. (ସମ୍+ସେବ୍+ ଇନ୍) ସଂସେବିତା, ସମ୍ୟକ୍ପ୍ରକାରେ ସେବାକାରକ।

ସଂସେବ୍ୟ—ବିଂ. (ସମ୍+ସେବ୍+ଯ) ସମ୍ୟକ୍ ସେବାଯୋଗ୍ୟ,ସେବାର ଉପଯୁକ୍ତ ।

ସଂସ୍କନ୍ଦ—ପୁଂ. ବି. ବାଳଗ୍ରହବିଶେଷ ।

ସଂସ୍କରଣ—ବି. ( ସମ୍+କୃ+ଭା.ଅନ ) ସଂସ୍କାର, ସଂସ୍କାରକ୍ରିୟା,ପବିତ୍ରୀକରଣ, ଜୀର୍ଣ୍ଣଦ୍ରବ୍ୟର ମରାମତି, (ଗ୍ରା. ବି) ଛାପା ପୁସ୍ତକର ପ୍ରକାଶ, କୌଣସି ପୁସ୍ତକର ମୁଦ୍ରଣର ଥର ।

ସଂସ୍କର୍ତ୍ତା—ପୁଂ.ବିଂ, (ସମ୍+କୃ+କ.ତୃ) ସଂସ୍କାରକାରୀ, ପବିତ୍ରକାରୀ, ପାଚକ, ଜୀର୍ଣ୍ଣକର,(ସ୍ତ୍ରୀ)ସଂସ୍କର୍ତ୍ତ୍ରୀ,(ପୁଂ.ବି)ସଂସ୍କାରକାରୀ ବ୍ୟକ୍ତି, ପବିତ୍ର କରିବା ବ୍ୟକ୍ତି, ପାଚକ,ପୂଜାହାରୀ,ଯେ ମରାମତି କରେ ।

ସଂସ୍କାର—ବି.(ସମ୍+କୃ+ଭା.ଅ)ନିର୍ମଳୀକରଣ, ପରିଷ୍କରଣ, ମରାମତି, ଜୀର୍ଣ୍ଣୋଦ୍ଧାର, ପ୍ରସ୍ତୁତୀକରଣ, ଶୁଦ୍ଧି, ଶୋଧନ, ଶୁଦ୍ଧିକ୍ରିୟା, ମାର୍ଜନ, ଅଲଂକରଣ, ଭ୍ରମ ସଂଶୋଧନ, ବ୍ୟାକରଣଗତ ଶୁଦ୍ଧତା, ରନ୍ଧନ, ସିଦ୍ଧକରିବା, ଶିଖାଇବା, ଶାସ୍ତ୍ରାଭ୍ୟାସଜନ୍ୟବ୍ୟୁତ୍ପତ୍ତି, ଶିକ୍ଷା, ବ୍ୟାକରଣ ଶାସ୍ତ୍ରରେ ବ୍ୟୁତ୍ପତ୍ତି, ବେଗ, ଦ୍ରବ୍ୟର ସ୍ଥିତିସ୍ଥାପକତା, ଧାରଣା, ସିଦ୍ଧାନ୍ତ, ବଦ୍ଧମୂଳ ବିଶ୍ୱାସ, ପୂର୍ବଜନ୍ମ ସମ୍ବନ୍ଧୀୟ ଜ୍ଞାନ, ପୂର୍ବଜନ୍ମର ବାସନା ଜନିତ କର୍ମ· ଜନ୍ମାନ୍ତରୀଣ ଜ୍ଞାନ, (ଦର୍ଶନଶାସ୍ତ୍ର) ସ୍ମୃତି ହେତୁକ ମନୋବୃତ୍ତି, ଗୁଣବିଶେଷ, (ବୈଜ୍ଞାନିକପରିଭାଷା)ପ୍ରାଣୀର ସହଜ ପ୍ରବୃତ୍ତି, ସ୍ୱାଭାବିକ ଜ୍ଞାନ, ସହଜ ବାସନା,ମନ୍ତ୍ରପାଠ ଦ୍ୱାରା ଦ୍ରବ୍ୟାଦି ଶୋଧନ, ପ୍ରୋକ୍ଷଣ, ଦ୍ୱିଜାତିମାନଙ୍କର ଦେହଶୁଦ୍ଧି ବିଧାୟକ ଦଶବିଧ କର୍ମ, ଦଶକର୍ମ, ଦ୍ୱିଜାତିଙ୍କର ଜାତ କର୍ମାଦି ଦଶବିଧ ଅନୁଷ୍ଠାନ, ସତ୍କ୍ରିୟା, ମୃତ ବ୍ୟକ୍ତିର ଶବଦାହ ଓ ମରଣାଶୌଚ ସଂପୃକ୍ତ ଶୁଦ୍ଧିକ୍ରିୟା, (ଗ୍ରା ବି)ଶବଦାହ କ୍ରିୟା,ସଂସ୍କୃତଭାଷା, (ଗ୍ରା.ବିଂ) ପବିତ୍ର, ଶୁଦ୍ଧ ।

ସଂସ୍କାରକ—ପୁଂ. ବି. ବିଂ. (ସମ୍+କୃ+ କ.ଅକ) ଯେ ସଂସ୍କାର କରେ, ପାଚକ ଯେ ମରାମତି କରେ, ଯେ ପରିଷ୍କାର କରେ, ଯେ ଶୋଧନ କରେ, (ସ୍ତ୍ରୀ) ସଂସ୍କାରିକା ।

ସଂସ୍କାରଜ—ବିଂ. ( ସଂସ୍କାର+ଜନ୍+ କ.ଅ)ସଂସ୍କାର ଦ୍ୱାରା ଘଟିତ ବା ଉତ୍ପନ୍ନ

ସଂସ୍କାରଜନକ-ବିଂ.ସଂସ୍କାରର ଉତ୍ପାଦକ, ଶୁଦ୍ଧିଜନକ ।

ସଂସ୍କାରନାମା—ବି. ନାମକର୍ମ ।

ସଂସ୍କାରପୂତ—ପୁଂ. ବିଂ. (୩ତତ୍)ସଂସ୍କାର ଦ୍ୱାରା ପବିତ୍ରୀକୃତ, (ସ୍ତ୍ରୀ) ସଂସ୍କାରପୂତା ।

ସଂସ୍କାରମୟ--ବିଂ.ସଂସ୍କାରବିଶିଷ୍ଟ,ସଂସ୍କୃତ

ସଂସ୍କାରବର୍ଜିତ(ରହିତ)--ପୁଂ.ବିଂ.(୩ତତ୍) ଦଶସଂସ୍କାର ହୀନ, ଉପନୟନାଦି ସଂସ୍କାର ବିହୀନ, (ସ୍ତ୍ରୀ)ସଂସ୍କାରବର୍ଜିତା ।

ସଂସ୍କାରବାନ୍—ପୁଂ. ବିଂ. ( ସଂସ୍କାର+ ବତ୍) ସଂସ୍କାରଯୁକ୍ତ, ସଂସ୍କାରବିଶିଷ୍ଟ ।

ସଂସ୍କାରବିହୀନ—ପୁଂ.ବିଂ.(୩ତତ୍)ବ୍ରାତ୍ୟ, ଯେଉଁ ଦ୍ୱିଜାତି ଦ୍ୱିଜାତିବିହିତ ସଂସ୍କାରକୁ ବର୍ଜନ କରିଥିବା ହେତୁରୁ ପତିତ ହୋଇଥାଏ, (ସ୍ତ୍ରୀ) ସଂସ୍କାରବିହୀନା ।

ସଂସ୍କାର୍ଯ୍ୟ—ବିଂ. (ସମ୍+କୃ+ଯ)ସଂସ୍କାରାର୍ହ, ସଂସ୍କାରର ଉପଯୁକ୍ତ, ଭୂଷଣାର୍ହ, ଅଲଂକରଣର ଉପଯୁକ୍ତ ।

ସଂସ୍କୃତ—ବିଂ. (ସମ୍+କୃ+ର୍ମ.ତ)ପରିଶୋଧିତ, ଶୁଦ୍ଧ, ସମ୍ପାଦିତ, ନିଷ୍ପନ୍ନ, ପବିତ୍ରୀକୃତ,ସଜ୍ଜିତ, ଭୂଷିତ,ପରିଷ୍କୃତ, ମାର୍ଜିତ, ସିଦ୍ଧ, ପକ୍ୱ, ମନ୍ତ୍ରପୂତ, ଦୋଷ ବା ଭ୍ରାନ୍ତି ଶୂନ୍ୟ କରାଯାଇଥିବା, ସାଧୁ, ବ୍ୟାକରଣସିଦ୍ଧ ( ଶବ୍ଦ ), ବିଶୁଦ୍ଧଭାବେ ପ୍ରସ୍ତୁତ, ରନ୍ଧାଯାଇଥିବା, ଶ୍ରେଷ୍ଠ, ଶାସ୍ତ୍ରବିହିତ ସଂସ୍କାରମାନ କରାଯାଇଥିବା (ଦ୍ୱିଜାତି),ବିବାହିତ, କୃତ୍ରିମ, ନିର୍ମଳୀକୃତ, (ବି)ଦେବଭାଷା,ଭାରତର ପ୍ରାଚୀନ ଆର୍ଯ୍ୟଭାଷା, ବ୍ୟାକରଣ ନିୟମାନୁସାରେ ରଚିତ ଶବ୍ଦ,ବିଜ୍ଞ ବ୍ୟକ୍ତି,ପଣ୍ଡିତ,ବୈଦିକ ନୈବେଦ୍ୟ, ଶାସ୍ତ୍ରବିହିତ ବିଧି ।

ସଂସ୍କୃତଭାଷା—ସ୍ତ୍ରୀ. ବି. ଦେବଭାଷା,ଭାରତୀୟ ଆର୍ଯ୍ୟମାନଙ୍କ ବ୍ୟବହୃତ ବିଶୁଦ୍ଧ ଭାଷା ।

ସଂସ୍କୃତି—ବି.(ସମ୍+କୃ+ଭା:ତି)ସଭ୍ୟତା, ଶିକ୍ଷା, ଭଦ୍ରତା ଓ ସାମାଜିକତାଦିରେ ଧାରାବାହିକ ଅନୁଧ୍ୟାନ ଅନୁଶୀଳନ ଓ ଅନୁଗମନ ।

ସଂସ୍କୃତ୍ରିମ—ବିଂ.(ସମ୍ +କୃତ୍ରିମ)ସଂସ୍କୃତ, ସଂସ୍କାର ଦ୍ୱାରା ନିର୍ବୃତ୍ତ ।

ସଂସ୍କ୍ରିୟା—ବି.(ସମ୍ +କ୍ରିୟା) ସଂସ୍କାର ଦେବା, ଶବଦାହକ୍ରିୟା ।

ସଂସ୍ତବ(ନ)—ବି. (ସମ୍+ସ୍ତବ) ସମ୍ୟକ୍ ପ୍ରଶଂସା, ସ୍ତୁତି, ଖୋସାମତ, ପରିଚୟ, ଆଳାପ. ପରସ୍ପରଙ୍କ ମନର ମେଳ ।

ସଂସ୍ତବାନ—ବି. (ସମ୍+ସ୍ତୁ+କ.ଆନ) ବାଗ୍ମୀ, ସଦ୍ବକ୍ତା, ଉଦ୍ଗାତା, ବେଦମନ୍ତ୍ର ଗାୟକ ପୁରୋହିତ,(ଭା.ଅନ)ହର୍ଷ,(ପୁଂ. ବିଂ) ବାଗ୍ମୀ,ଯଥାର୍ଥରୂପେ ପ୍ରଶଂସାକାରୀ, (ସ୍ତ୍ରୀ) ସଂସ୍ତବାନା ।

ସଂସ୍ତମ୍ଭ(ନ)—ବି.(ସମ୍+ସ୍ତନ୍ଭ୍+ଭା.ଅ) ପ୍ରତିବନ୍ଧ,ଦୃଢ଼ୀକରଣ,ନିବାରଣ,ଦମନ, ସ୍ଥଗିତ କରିବା,ଜଡ଼ଭାବ,ଅନୁମୋଦନ, (ଣ.ଅ) ଠେକ, ଯଦ୍ଦ୍ୱାରା କୌଣସି ବସ୍ତୁକୁ ଟେକି ଧରାଯାଏ,(ବିଂ)ସଂସ୍ତବ୍ଧ ।

ସଂସ୍ତମ୍ଭମାସ୍ୟ—ବିଂ. (ସଂସ୍ତମ୍ଭ+ଅମାସ୍ୟ)

ସଂସ୍ତମ୍ଭନାର୍ହ, ନିବାରଣଯୋଗ୍ୟ ।
ସଂସ୍ତମ୍ଭୟିତା—ପୁଂ. ବିଂ. (ସଂ+ସ୍ତମ୍ଭ+ଣିଚ୍+ତୃ) ନିବାରକ ।
ସଂସ୍ତର(ଣ)—ବି. ( ସମ୍+ସ୍ତୃ+ମଁ.ଅ ) ଶଯ୍ୟା,ଆସ୍ତରଣ,(ଅଧି.ଅ)ହୋମ,ଯଜ୍ଞ ।
ସଂସ୍ଥା--ଗ୍ରା.ବି.(ସଂ-ସଂସ୍ଥା)ସଚଳ ଅବସ୍ଥା· ଧନ, ବିଷୟସମ୍ପତ୍ତି, ଭୂସମ୍ପତ୍ତି, ଜମି, କୋଟି,ବ୍ରାହ୍ମଣାଦି ଜାତିର ଭେଦବିଶେଷ
ସଂସ୍ତାବ—ବି. (ସଂ + ସ୍ତୁ+ଅଧି.ଅ) ଯଜ୍ଞ ବେଦିରେ ସ୍ତବ ଗାନକାରୀ ବ୍ରାହ୍ମଣମାନଙ୍କର ବସିବା ସ୍ଥାନ, (ଭା.ଅ) ପରିଚୟ, ସ୍ତୁତି, ସଂକୀର୍ତ୍ତନ ।
ସଂସ୍ତାର—ବି.(ସମ୍+ସ୍ତୃ+ଭା.ଅ)ବିସ୍ତୃ-ଇବା, ବିସ୍ତାର, ଶଯ୍ୟା, ଆସ୍ତରଣ ।
ସଂସ୍ତିର—ବି. (ସଂ+ସ୍ତୃ+ଅ)ଆଚ୍ଛନ୍ନ ।
ସଂସ୍ତୁତ—ବିଂ. (ସମ୍+ସ୍ତୁ+ମଁ.ଅ)ସ୍ତୁତି-ପ୍ରାପ୍ତ,ଯାହାକୁ ବିଶେଷ ରୂପେ ସ୍ତୁତି କରାଯାଏ, ପ୍ରଶଂସିତ, ପୂଜିତ, ସୁପରିଚିତ, ଯାହାକୁ ପ୍ରାର୍ଥନା କରାଯାଏ,ଏକଜାତି ପ୍ରଶଂସିତ, ପରସ୍ପର ସହିତ ମେଳ ଥିବା, ଅଭିପ୍ରେତ, ଉଦ୍ଦିଷ୍ଟ ।
ସଂସ୍ତ୍ୟାୟ—ବି. (ସମ୍+ସ୍ତ୍ୟୈ+ଭା.ଅ) ସଂସ୍ଥାନ, ନିବିଡ଼ ସନ୍ନିବେଶ, ସଂଘାତ, ସମୂହ, ବିସ୍ତାର, ଗୃହ,ପରିଚୟ,ଆଳାପ, ଗଦା, ସ୍ତୂପ, ନୈକଟ୍ୟ ।
ସଂସ୍ଥ—ପୁଂ. ବିଂ. ( ସମ୍+ସ୍ଥା+କ.ଅ ) ଅବସ୍ଥିତ, ସମାପ୍ତ, ମୃତ, ସଦୃଶ, (ସ୍ତ୍ରୀ) ସଂସ୍ଥା, (ବି) ଚର, ସ୍ୱରାଜ୍ୟବାସୀ ।
ସଂସ୍ଥା—ସ୍ତ୍ରୀ. ବିଂ. ସଂସ୍ଥର ସ୍ତ୍ରୀଲିଙ୍ଗ, (ବି-ସମ୍+ସ୍ଥା+ଭା.ଅ+ଆ)ନ୍ୟାୟପଥରେ ଅବସ୍ଥାନ, ମର୍ଯ୍ୟାଦା, ସଞ୍ଚରଣ, ସ୍ଥିତି, ଅବସ୍ଥାନ,ସାଦୃଶ୍ୟ,ଧ୍ୱଂସ,ମୃତ୍ୟୁ, ବ୍ୟବସ୍ଥା, ସମାପ୍ତି, ଶେଷ, ସଭା, ସମାଜ, ରୀତି, ବ୍ୟବସ୍ଥା ପ୍ରଚଳିତ ରୀତି ସମ୍ବନ୍ଧରେ ପ୍ରକାଶିତ ମତ, ଜୀବନକାଳ,ବ୍ୟକ୍ତି,ଯଜ୍ଞ-ବିଶେଷ,ପ୍ରଳୟ,ପ୍ରକାଶ, ମୂର୍ତ୍ତି,ଆକାର, ଆକାଙ୍କ୍ଷା,ପ୍ରଣିଧି,ଚର,ପୁରାଣର ଗୋ୧୦ଟି ଲକ୍ଷଣ ମଧ୍ୟରୁ ଏକତମ, ସ୍ଥାପିତ ବିଦ୍ୟାଳୟାଦି, (ଗ୍ରା.ବି) ଧନସମ୍ପତ୍ତି, ସଚଳ-ଅବସ୍ଥା, ବ୍ରାହ୍ମଣାଦିର ଭେଦ, ଜମି, କୋଟି ।
ସଂସ୍ଥାନ—ବି. ( ସମ୍+ସ୍ଥା+ଭା.ଅନ ) ସଂନିବେଶ,ନୈକଟ୍ୟ,ଚତୁଷ୍ପଥ,ଅବୟବ ସନ୍ନିବେଶ, ଆକୃତି, ମୃତ୍ୟୁ, ବିନାଶ, ଚିହ୍ନ, ନିର୍ମାଣ, ସମ୍ୟକ୍ ଅବସ୍ଥିତି, ବିନ୍ୟାସ, ବ୍ୟବସ୍ଥା, ଜୀବିକା ନିର୍ବାହର ଉପାୟ, ଧନାଦି ସଞ୍ଚୟ, ସମୂହ, ଗଦା, ପରିମାଣ, ଗୃହ ।
ସଂସ୍ଥାପକ—ବି. ବିଂ. (ସମ୍+ସ୍ଥାପି+କ. ଅକ)ଯେ ସଂସ୍ଥାପନ କରେ,ପ୍ରତିଷ୍ଠାତା, (ସ୍ତ୍ରୀ) ସଂସ୍ଥାପିକା ।
ସଂସ୍ଥାପନ(ନା)—ବି. ( ସଂ+ସ୍ଥାପି+ଭା. ଅନ-ସ୍ତ୍ରୀ.ଆ)ସ୍ଥିରୀକରଣ,ପ୍ରତିଷ୍ଠାକରିବା, ଦୃଢ଼ ଭିତ୍ତି ଉପରେ ସ୍ଥାପନ ।
ସଂସ୍ଥାପୟିତା—ପୁଂ. ବିଂ. (ସମ୍ + ସ୍ଥାପି +କ.ତୃ) ସଂସ୍ଥାପନକର୍ତ୍ତା, ସ୍ଥାପକ, ପ୍ରତିଷ୍ଠାତା, (ସ୍ତ୍ରୀ) ସଂସ୍ଥାପୟିତ୍ରୀ ।
ସଂସ୍ଥାପିତ—ବିଂ.(ସମ୍+ସ୍ଥାପି+ମଁ.ତ) ପ୍ରତିଷ୍ଠିତ, ସ୍ଥାୟୀ ରୂପେ ଆରବ୍ଧ, ସ୍ଥିରୀକୃତ ।
ସଂସ୍ଥାପ୍ୟ—ବିଂ(ସଂ+ସ୍ଥାପି+ଯ)ସଂସ୍ଥାପନୀୟ, ସଂସ୍ଥାପନାର୍ହ ।
ସଂସ୍ଥାସ୍ନୁଚରିଷ୍ଣୁ—ପୁଂ. ବିଂ. ସ୍ଥିତିଯୁକ୍ତ ଓ ଚଳନଶୀଳ ।
ସଂସ୍ଥିତ—ବିଂ. ( ସମ୍+ସ୍ଥା+କ.ତ ) ସମ୍ୟକ୍ ସ୍ଥିତ, ମୃତ, ସମାପ୍ତ,ସଂନିବିଷ୍ଟ ।
ସଂସ୍ଥିତି—ବି. (ସମ୍+ସ୍ଥିତି) ସଂସ୍ଥାନ ଦେଖ ।
ସଂସ୍ପର୍ଦ୍ଧା—ସ୍ତ୍ରୀ.ବି. ସମ୍ୟକ୍ ସ୍ପର୍ଦ୍ଧା, ସମ୍ୟକ୍ ରୂପେ ପରସ୍ପରକୁ ପରାଭବ କରିବାର ଇଚ୍ଛା ।
ସଂସ୍ପର୍ଦ୍ଧି—ପୁଂ.ବିଂ.ସଂସ୍ପର୍ଦ୍ଧାବିଶିଷ୍ଟ, ପରସ୍ପରକୁ ପରାଭବ କରିବାରେ ଅଭିଳାଷୀ ।
ସଂସ୍ପର୍ଶ—ବି.(ସମ୍+ସ୍ପୃଶ୍+ଭା.ଅ)ସମ୍ୟକ୍ ସ୍ପର୍ଶ, ମିଳନ, ବସ୍ତୁର ତ୍ୱକ୍ ଇନ୍ଦ୍ରିୟ-ଗ୍ରାହ୍ୟ ଗୁଣ ।
ସଂସ୍ପର୍ଶନ—ବି. ( ସମ୍ +ସ୍ପୃଶ୍+ଅନ ) ସଂସ୍ପର୍ଶ, ସମ୍ୟକ୍ ସ୍ପର୍ଶ ।
ସଂସ୍ପର୍ଶା—ବି. ଜନୀ ନାମକ ଗନ୍ଧଦ୍ରବ୍ୟ ।
ସଂସ୍ପର୍ଶୀ—ପୁଂ.ବିଂ(ସମ୍+ସ୍ପୃଶ୍+ଇନ୍) ଯେ ସ୍ପର୍ଶ କରେ, (ସ୍ତ୍ରୀ) ସଂସ୍ପର୍ଶିନୀ ।
ସଂସ୍ପୃକ୍—ବିଂ. (ସଂସ୍ପର୍ଶ+କ୍ୱିପ୍)ସଂସ୍ପର୍ଶୀ, ସଂସ୍ପର୍ଶକାରକ ।
ସଂସ୍ପୃଷ୍ଟ—ବିଂ. ( ସମ୍+ସ୍ପୃଶ୍+ମଁ.ତ ) ସଂଯୁକ୍ତ, ଦୃଢ଼ ରୂପରେ ଛୁଆଁ ହୋଇ-ଥିବା ।
ସଂସ୍ଫାଲ—ବି. ( ସମ୍+ସ୍ଫଲ୍+କ.ଅ ) ମେଣ୍ଢା, ମେଷ ।
ସଂସ୍ଫୁଟ—ବିଂ. ( ସମ୍+ସ୍ଫୁଟ ) ସମ୍ୟକ୍ ବିକଶିତ, ପ୍ରସ୍ଫୁଟିତ (ପୁଷ୍ପ) ।
ସଂସ୍ଫେଟ—ପୁଂ. ବି.(ସଂସ୍ଫିଟ+ଅଧି-ଅ) ସଂଗ୍ରାମ, ଯୁଦ୍ଧ ।
ସଂସ୍ଫୋଟ--ବି (ସମ୍+ସ୍ଫୁଟ୍+ଭା.ଅ)ଯୁଦ୍ଧ, ସଂଗ୍ରାମ ।
ସଂସ୍ୱେଦଜ—ବି. ଭୂଇଁଛତୁ, ଶିଲୀନ୍ଧ୍ର ।
ସଂସ୍ମରଣ—ବି.ସମ୍ୟକ୍ ସ୍ମରଣ, ପୂର୍ବଜନ୍ମ ସଂସ୍କାରଜ ଜ୍ଞାନ ।
ସଂସ୍ମରଣୀୟ—ବିଂ. ( ସମ୍+ସ୍ମୃ+ମଁ. ଅନୀୟ) ସଂସ୍ମରଣର ଯୋଗ୍ୟ ।
ସଂସ୍ମାରକ—ପୁଂ.ବିଂ.(ସମ୍+ସ୍ମୃ+ଣିଚ୍ ଅକ) ଯେ ସ୍ମରଣ କରାଏ ।
ସଂସ୍ମାରଣ—ବି. (ସମ୍+ସ୍ମୃ+ଣିଚ୍+ଅନ)ସମ୍ୟକ୍ସ୍ମାରଣ, ସ୍ମରଣକରାଇବା ।
ସଂସ୍ମୃତି—ବି. (ସମ୍+ସ୍ମୃ+ତି)ସଂସ୍ମରଣ, ସମ୍ୟକ୍ ସ୍ମରଣ ।
ସଂସ୍ୟନ୍ଦୀ-ପୁଂ.ବିଂ.(ସମ୍+ସ୍ୟନ୍ଦ୍+ଇନ୍) ସମ୍ୟକ୍ ଗମନଶୀଳ ।
ସଂସ୍ର(ସ୍ରା)ବ—ବି. (ସମ୍+ସ୍ରୁ+ଭା.ଅ) ସମ୍ବନ୍ଧ, ସମ୍ପର୍କ, ମିଳନ, ଗତି, କ୍ଷରଣ, ଯଜ୍ଞରେ ପ୍ରଦତ୍ତ ହବିଃ ।
ସଂସ୍ରବଭାଗ—ବିଂ.ଯଜ୍ଞରେ ଯେଉଁ ସବୁ ହବିଃ ପ୍ରଦତ୍ତ ହୋଇଅଛି ।
ସଂସ୍ରବରହିତ—ବିଂ. (୩ତତ୍ପୁ) ସମ୍ବନ୍ଧ-ହୀନ, ନିଃସମ୍ପର୍କ ।
ସଂସ୍ରଷ୍ଟା—ପୁଂ.ବିଂ. ସମ୍ମିଳନକାରୀ, କର୍ମ୍ମ-ନିଷ୍ପାଦନକର୍ତ୍ତା ।
ସଂସ୍ୱେଦ—ବି(ସମ୍+ସ୍ୱିଦ୍+ଅ)ସମ୍ୟକ୍

ସ୍ୱେଦ, ଘର୍ମ, ଅତିଶୟ ଝାଳ ।
ସଂସ୍ୱେଦଯୁ—ବିଂ. ଘର୍ମଶୀଳ, ଯାହାର ଅତିଶୟ ଘର୍ମ(ଝାଳ)ହୁଏ ।
ସଂହତ—ସ୍ତ୍ରୀ.ବିଂ. (ସମ୍ + ହନ୍ + କ୍ୱିପ୍) ପୁଞ୍ଜୀଭୂତ ।
ସଂହତ—ବିଂ. (ସମ୍ + ହନ୍ + ର୍ମ.ତ) ଦୃଢ଼, ଲଗ୍ନ, ମିଳିତ, ନିବିଡ଼ ରୂପେ ସଂଯୁକ୍ତ, ଏକତ୍ର, ଘନୀଭୂତ, ସଞ୍ଚିତ, ଆହତ, ଆଘାତପ୍ରାପ୍ତ, ସମ୍ୟକ୍ ହତ ।
ସଂହତଗ୍ରନ୍ଥିକା—ସ୍ତ୍ରୀ.ବି. (ସଂହତ+ଗ୍ରନ୍ଥି +କ+ଆ) ଶତପୁଷ୍ପା, ଶଲ୍ଫ ।
ସଂହତଜାନୁ—ପୁଂ.ବିଂ. (ବ.ବ୍ରୀ)ଯେଉଁ ବ୍ୟକ୍ତିର ଆଣ୍ଠୁ ଦୁଇଟି ଚାଲିଲାବେଳେ ଲାଗେ, ସଂଜ୍ଞୁ ।
ସଂହତତଳ—ବି. (କ.ଧା) ମିଳିତ କରତଳ ଦ୍ୱୟ, (ପୁଂ.ବିଂ) ଦୁଇ କରତଳକୁ ଯୋଡ଼ିଥିବା (ବ୍ୟକ୍ତି) ।
ସଂହତପୁଚ୍ଛ—ବିଂ. ସଂଯୁକ୍ତ ପୁଚ୍ଛବିଶିଷ୍ଟ ।
ସଂହତଭ୍ରୂ—ପୁଂ. ବିଂ ଓ ସ୍ତ୍ରୀ. (ବ.ବ୍ରୀ) ଯେଉଁ ବ୍ୟକ୍ତି ଭ୍ରୂଯୁଗଳକୁ ସଙ୍କୁଚିତ ବା ସନ୍ନିହିତ କରିଅଛି ।
ସଂହତସ୍ତନା—ସ୍ତ୍ରୀ. ବିଂ. (ବ.ବ୍ରୀ) ଯେଉଁ ସ୍ତ୍ରୀର ସ୍ତନଦ୍ୱୟ ଖୁବ୍ ସନ୍ନିହିତ ।
ସଂହତାଙ୍ଗ—ବିଂ. ମିଳିତ ଅଙ୍ଗଯୁକ୍ତ, ସଂହତାଙ୍ଗବିଶିଷ୍ଟ ।
ସଂହତାପନ—ବି. ନାଗବିଶେଷ ।
ସଂହତି—ବି.(ସମ୍ + ହନ୍ + ଭା.ତି)ସଂଘ, ସମୂହ,ସଂଘାତ,ଗଦା,ନିବିଡ଼,ସଂଯୋଗ, ସମ୍ମିଳନ, ସମ୍ୟକ୍ ବଧ, ବହୁବସ୍ତୁର ଏକତ୍ରୀଭାବ, (ବିଜ୍ଞାନ) ଜଡ଼ ବସ୍ତୁର ଗୁଣବିଶେଷ, ଯଦ୍ଦ୍ୱାରା ପଦାର୍ଥର ପରମାଣୁଗୁଡ଼ିକ ଘନଭାବରେ ପରସ୍ପର ସହିତ ମିଳିତ ହୋଇ ରହେ,ମିଳନ,ଦୃଢ଼ତା, ଘନୀଭୂତ ସ୍ଥିତି, ମେଳ, (ଣ.ତି) ବଳ, (ଅଧି.ତି) ଦେହ ।
ସଂହତ୍ୟକାରୀ—ପୁଂ. ବିଂ. ଏକତ୍ରକାରୀ, ମିଳିତ କର୍ମକାରୀ ।
ସଂହନନ—ବି. (ସମ୍ + ହନ୍ + ଭା.ଅନ) ସମ୍ୟକ୍ ଆଘାତ, (ଅଧି.ଅନ) ଶରୀର, ଦେହ, ସମୂହ,ସଂଘାତ,ବଧ,(ଣ.ଅନ) ବଳ, (ବିଂ) କଠିନ ।
ସଂହନନାଙ୍ଗ—ବିଂ.କଠିନାବୟବ,କଠିନ ଅବୟବବିଶିଷ୍ଟ ।
ସଂହନୁ—ବିଂ. ସଂହତ ହନୁଯୁକ୍ତ ।
ସଂହନ୍ତା—ପୁଂ. ବିଂ. (ସମ୍ + ହନ୍ + ତୃ) ସଂହାରକର୍ତ୍ତା, ଯେ ସଂହାର କରେ ।
ସଂହର—ପୁଂ. ବି. ଅସୁରବିଶେଷ, ପବମାନ, ଅଗ୍ନି ।
ସଂହରଣ—ବି. (ସମ୍ + ହୃ + ଭା.ଅନ) ସଂହାର କରିବା,ବିନାଶ,ସଂଗ୍ରହକରିବା, ଗଦା କରିବା,ସଂକ୍ଷେପ,ଏକତ୍ରକରିବା, ସଙ୍କୋଚ, ପ୍ରତ୍ୟାକର୍ଷଣ, ସଞ୍ଚୟ ।
ସଂହରିବା—ଗ୍ରା. କ୍ରି. (ପଦ୍ୟ-ସଂ-ସଂହାରଣ) ସଂହାରିବା ଦେଖ, ବଧ କରିବା, ତ୍ୟାଗ କରିବା, ଦମନ କରିବା, ସମ୍ଭାଳିବା, ରଖିବା,ରୁନ୍ଧିବା,ନିରୋଧକରିବା, ସଂଯତ କରିବା, ବଶୀଭୂତ କରିବା, ବଦଳାଇବା ।
ସଂହର୍ତ୍ତବ୍ୟ—ବିଂ. (ସମ୍ + ହୃ + ତବ୍ୟ) ସଂହାରଯୋଗ୍ୟ, ବିନାଶଯୋଗ୍ୟ ।
ସଂହର୍ତ୍ତା—ପୁଂ. ବିଂ. (ସମ୍ + ହୃ + କ.ତୃ) ସଂହାରକାରୀ, ବଧକାରୀ, ରୋଧକାରୀ, ଦମନକାରୀ, (ସ୍ତ୍ରୀ) ସଂହର୍ତ୍ତ୍ରୀ ।
ସଂହର୍ଷ—ବି. (ସମ୍ + ହୃଷ୍ + ଭା.ଅ) ଆମୋଦପ୍ରମୋଦ, ଅନ୍ୟ ଶୁଭଦ୍ୱେଷ, ପରଶ୍ରୀକାତରତା,ପରସ୍ପର ସ୍ପର୍ଦ୍ଧା,ଘର୍ଷଣ, ରୋମାଞ୍ଚ, ଲୋମହର୍ଷ, (କ.ଅ) ବାୟୁ ।
ସଂହର୍ଷଣ—ବି. (ସମ୍ + ହୃଷ୍ + ଅନ) ସଂହର୍ଷ ଦେଖ ।
ସଂହର୍ଷୀ—ପୁଂ.ବିଂ. (ସମ୍ + ହୃଷ୍ + ଇନ୍) ସଂହର୍ଷକାରକ ।
ସଂହବନ—ବି.(ସମ୍ + ହୁ + ଅନ)ସମ୍ୟକ୍ ପ୍ରକାରେ ଆହୁତି ।
ସଂହାତ—ବି. ସଂଘାତ,ସଂକ୍ଷେପ,ନରକଭେଦ, ଶିବାନୁଚର ଗଣଭେଦ ।
ସଂହାତ୍ୟ—ବି. ଅଦୃଷ୍ଟର ପର୍ଯ୍ୟାୟିକ ବୈପରୀତ୍ୟ, ସଂଘାତ୍ୟ ।
ସଂହାର—ବି. (ସମ୍ + ହୃ + ଭା.ଅ)ଧ୍ୱଂସ, ବିନାଶ,ସୃଷ୍ଟିର ପ୍ରଳୟ,ସଂକ୍ଷେପ,ଆହରଣ, ସଂଗ୍ରହ, ସଂକଳନ, ସଂକୋଚ, ପ୍ରତ୍ୟାକର୍ଷଣ,ସଂଯମନ, ଦମନ, ବଶୀକରଣ, ବଧ, ଦୁଇବସ୍ତୁକୁ ଯୋଡ଼ିବା, (କ.ଅ) ଅଷ୍ଟସଂଖ୍ୟକ ଭୈରବବିଶେଷ, (ଅଧି.ଅ) ନରକବିଶେଷ, ପୂଜାକାଳୀନ ମୁଦ୍ରାବିଶେଷ, ସଂହାରମୁଦ୍ରା ଦେଖ, (ଗ୍ରା.ବିଂ) ବିନଷ୍ଟ ।
ସଂହାରକ—ପୁଂ. ବିଂ. (ସମ୍ + ହୃ + କ. ଅକ) ଧ୍ୱଂସକାରକ, ଯେ ସଂକୋଚନ କରେ, ବଧକାରୀ, (ସ୍ତ୍ରୀ) ସଂହାରିକା
ସଂହାରକାର୍ଯ୍ୟ—ବି. ଧ୍ୱଂସକ୍ରିୟା, ଦମନ ବା ନିରୋଧନ ।
ସଂହାରକାଳ—ବି. ସର୍ବନାଶର ସମୟ, ପ୍ରଳୟକାଳ, ଦେଶରେ ମହାବିପଦର ଉପସ୍ଥିତି ।
ସଂହାରଣୀ—ଗ୍ରା. ସ୍ତ୍ରୀ. ବିଂ. (ସଂ-ସଂହାରିଣୀ) ସଂହାରକାରିଣୀ ।
ସଂହାରବୁଦ୍ଧିମାନ୍—ପୁଂ.ବିଂ (ସଂହାରବୁଦ୍ଧି + ମତ୍) ସଂହାର ବୁଦ୍ଧିବିଶିଷ୍ଟ, ସଂହାର ବୁଦ୍ଧିଯୁକ୍ତ ।
ସଂହାରଭୈରବ—ପୁଂ. ବି. ଭୈରବବିଶେଷ ।
ସଂହାରମୁଦ୍ରା—ବି. ପୂଜା ସମୟରେ ଦେବତାଙ୍କ ସମ୍ମୁଖରେ ପ୍ରଦର୍ଶିତ କରମୁଦ୍ରାବିଶେଷ ।
ସଂହାରମୂର୍ତ୍ତି(ରୂପ)—ବି.ଶିବଙ୍କର ମୂର୍ତ୍ତିବିଶେଷ, ଯେଉଁ ମୂର୍ତ୍ତି ଧାରଣ କରି ମହାଦେବ ସୃଷ୍ଟିକୁ ସଂହାର କରନ୍ତି, (ଲ.ଅର୍ଥ) ଭୟଙ୍କର ରୂପ ।
ସଂହାରିବା—ଗ୍ରା.କ୍ରି(ସଂ-ସଂହାର)ସଂହାର କରିବା, ବଧକରିବା, (ସଂ-ସଂହରଣ) ତ୍ୟାଗକରିବା, କ୍ରୋଧଆଦିକୁ ଦମନ କରିବା, (ଦୃଷ୍ଟି) ଫେରାଇବା ।
ସଂହାରୀ—ପୁଂ.ବିଂ. (ସମ୍ + ହୃ + ଇନ୍) ସଂହାରକାରକ, ବିନାଶକାରୀ, ପ୍ରଳୟକାରୀ, (ସ୍ତ୍ରୀ) ସଂହାରିଣୀ, (ପୁଂ. ବି) ଭୈରବବିଶେଷ ।
ସଂହାର୍ଯ୍ୟ—ବିଂ.(ସମ୍ + ହୃ + ଯ)ସଂହାର

ଯୋଗ୍ୟ, ସଂହାରଣୀୟ, ସଂହାରର ଉପଯୁକ୍ତ ।
ସଂହିତ—ପୁଂ.ବିଂ. (ସମ୍+ଧା+ର୍ମ.ତ) ମିଳିତ, ଏକତ୍ରୀଭୂତ, ରାଶୀକୃତ, ସଂଗୃହୀତ, (ସ୍ତ୍ରୀ) ସଂହିତା, (ବି.-ଗଣିତ+, ଯୋଗଚିହ୍ନ) ।
ସଂହିତପୁଷ୍ପିକା—ବି. (ବି.ଗ୍ରା) ମିଶ୍ରେୟା, ପାନମହୁରି,(ସ୍ତ୍ରୀ,ବିଂ) ଯହିଁର ଫୁଲମାନ ପେନ୍ଥା ପେନ୍ଥା ହୋଇଥାଏ, (ପୁଂ) ସଂହିତପୁଷ୍ପିକ ।
ସଂହିତା—ବି. (ସମ୍+ଧା+ର୍ମ.ତ+ଆ) ନାନା ସ୍ଥଳରୁ ସଂଗୃହୀତ ବା ସଂକଳିତ ଗ୍ରନ୍ଥ, ମନ୍ୱାଦି ସ୍ମୃତି, ସ୍ମୃତିଶାସ୍ତ୍ର,ବେଦର ଶାଖାବିଶେଷ, ବୈଦିକ କର୍ମକାଣ୍ଡ ।
ସଂହିତାନ୍ତ—ବିଂ. ସଂହିତାର ଶେଷ, ଶେଷଯୁକ୍ତ ।
ସଂହିତୀଭାବ—ବି.ଅମିଳିତ ବସ୍ତୁମାନଙ୍କର ମିଳନ, ଏକତ୍ରୀଭାବ ।
ସଂହିତୋରୁ—ବିଂ.ସଂଯୁକ୍ତ ଊରୁବିଶିଷ୍ଟ ।
ସଂହୂତି—ବି. ( ସମ୍+ହ୍ୱେ+ଭା.ତି ) ହୁଲ୍ଲାରି, ବହୁ ଲୋକଙ୍କର ସମ୍ମିଳିତ ସମକାଳୀନ ଆହ୍ୱାନ, ହୋ ।
ସଂହୃତ—ବିଂ.(ସମ୍+ହୃ+ର୍ମ.ତ)କୃତସଂହାର, ବିନାଶିତ,ଆହୃତ,ସଙ୍କଳିତ, ସଂଗୃହୀତ, ସଂଚିତ,ଅବରୁଦ୍ଧ,ପ୍ରତ୍ୟାକୃଷ୍ଟ, ସଂକୁଚିତ, ସଂକ୍ଷିପ୍ତ, ଦମିତ, ସଂଯତ ।
ସଂହୃତି—ବି(ସମ୍+ହୃ+ଭା.ତି)ସଂହାର, ସଂକୋଚ, ସଂଗ୍ରହ, ଆକ୍ରମଣ ।
ସଂହୃତିମାନ୍—ପୁଂ.ବିଂ. (ସଂହୃତି+ମତ୍) ସଂହାରବିଶିଷ୍ଟ, ବିନାଶଯୁକ୍ତ, (ସ୍ତ୍ରୀ) ସଂହୃତିମତୀ ।
ସଂହୃଷ୍ଟ—ବିଂ. ( ସମ୍+ହୃଷ୍+କ.ତ ) ଆହ୍ଲାଦିତ, ସମ୍ୟକ୍ ହୃଷ୍ଟ, ଉଦ୍ଧତ ।
ସଂହ୍ରାଦ—ବି. (ସମ୍+ହ୍ରାଦ୍+ଭା.ଅ) ଗୋଳମାଳ, ଶବ୍ଦ, ଧ୍ୱନି ।
ସଂହ୍ରାଦନ—ବି.(ସଂହ୍ରାଦ+ଅନ)ଶବ୍ଦ, (ବିଂ) ସଂହ୍ରାଦକାରକ, ଶବ୍ଦକାରକ ।
ସଂହ୍ରାଦି—ପୁଂ, ବି. ରାକ୍ଷସବିଶେଷ ।
ସଂହ୍ରାଦୀ—ପୁଂ. ବିଂ. (ସମ୍+ହ୍ରାଦ୍+ଇନ୍)ଶବ୍ଦକାରକ, ହ୍ରାଦଯୁକ୍ତ,ଦୋୟମାନ, (ସ୍ତ୍ରୀ) ସଂହ୍ରାଦିନୀ, (ବି) ରାକ୍ଷସବିଶେଷ ।
ସଂହ୍ରାଦୀୟ—ବିଂ. ସଂହ୍ରାଦସମ୍ବନ୍ଧୀୟ ।
ସଂହ୍ରିୟମାଣ—ବିଂ.(ସମ୍+ହୃ+ଆନ) ଅପହୃତ, ବିନଷ୍ଟ ।
ସଂହ୍ରୀଣ—ବିଂ. ( ସମ୍+ହ୍ରୀ+କ.ତ ) ଲଜ୍ଜାଶୀଳ, ଲଜ୍ଜିତ, (ସ୍ତ୍ରୀ)ସଂହ୍ରୀଣା ।
ସଂହ୍ଲାଦ—ବି. (ସମ୍+ହ୍ଲାଦ୍+ଭା.ଅ) ଆହ୍ଲାଦ, ଆନନ୍ଦ, ସନ୍ତୋଷ ।
ସଂହ୍ଲାଦୀ—ପୁଂ.ବିଂ(ସମ୍+ହ୍ଲାଦ+ଇନ୍) ଆନନ୍ଦିତ, ଆହ୍ଲାଦଯୁକ୍ତ । [ ତିକ ।
ସଃ—ଗ୍ରା.ବି.ସବ୍‌ଭିଡ଼ିଜନ ଶବ୍ଦର ସାଙ୍କେ-
ସଃରେଃ—ଗ୍ରା.ବି.ସବ୍‌ରେଜିଷ୍ଟ୍ରାର ଶବ୍ଦର ସାଙ୍କେତିକ ।
ସଁ—ଗ୍ରା. ଅ.(ଧ୍ୱନ୍ୟନୁକରଣ)କଠିନ ପରିଶ୍ରମ ଜନିତ ଘନ ଘନ ବା ଖରନିଶ୍ୱାସ ନେବାର ଓ ଛାଡ଼ିବାର ଶବ୍ଦ,ଧଁ ସଁ,ଶରଢ ବା ଶ୍ୱାସ ଯୋଗୁଁ ନାକବାଟେ ଶୁଣାଯିବା ଶବ୍ଦ, କନ୍ଦନ ଯୁକ୍ତ ଦୀର୍ଘନିଶ୍ୱାସର ଶବ୍ଦ ।
ସଁଇଁ ସଁଇଁ—ଗ୍ରା. ଅ. (ଧ୍ୱନ୍ୟର୍ଥକ) ସଁଇଁ ସଁଇଁ ଦେଖ ।
ସଁଘା—ପ୍ରା.(ସିଂହଭୂମି) ବି.ଶୂଦ୍ରାଣୀ ବିଧବାର ବିବାହ, ଦୁତିଅ, (ଗ୍ରା.ବି) ସଙ୍ଘା ଦେଖ ।
ସଁପା—ଗ୍ରା. ବି. ସମ୍ପା ଦେଖ ।
ସଁପିବା—ଗ୍ରା. କ୍ରି. ସମ୍ପିବା ଦେଖ ।
ସଁବାର—ଗ୍ରା. ବି. ସୋମବାର ।
ସଁବାରିଆ—ଗ୍ରା.ବିଂ.ସୋମବାର ସମ୍ବନ୍ଧୀୟ ।
ସକ୍(ଖ)—ଯା.ବି.ମନୋଦୁଃଖ, ସନ୍ଦେହ, ସଉକ,ଆଗ୍ରହ,ପସନ୍ଦ,ଖ୍ୟାତି,ବାବୁଗିରି ।
ସକ୍‌ବକ୍—ଗ୍ରା.ବି. କାଇଲ ମାଲୁଲ, ଭ୍ରମ ଓ ଦୋଷ, ଅଭାବ ଅସୁବିଧା ।
ସକ୍‌ବା—ପ୍ରା, (ଲରିଆ,କ୍ରି) ପାରିବା, (କୌଣସି କାର୍ଯ୍ୟ କରିବାକୁ ) ସମର୍ଥ ହେବା, ସକିବା ।
ସକ୍‌ସକ୍—ଗ୍ରା.ବି.ସକାଇ କାନ୍ଦିବା,ଭୂମିର ଆର୍ଦ୍ରତା, (ଗ୍ରା.ବିଂ) ସକାଇକାନ୍ଦୁଥିବା, (ଘ-ସିକ୍ତ) ଆର୍ଦ୍ର, ଆଗ୍ରହାନ୍ୱିତ, ଲାଳାୟିତ, ହାଇଁପାଇଁ ।
ସକ୍‌ସକା—ଗ୍ରା. ପୁଂ. ବିଂ. ଯେ ସକାଇ କରି କାନ୍ଦିବାରେ ଅଭ୍ୟସ୍ତ ।
ସକ୍‌ସକିଆ—ଗ୍ରା. ବିଂ. (ଘ-ସିକ୍ତ) ସନ୍ତସନ୍ତିଆ, ଓଦା, ସକ୍‌ସକା ।
ସକ—ଯା. ବି. ସକ୍ ଦେଖ ।
ସକଙ୍କଟ—ପୁଂ. ବିଂ. ଆଲିଙ୍ଗନ ଦ୍ୱାରା ଅବରୁଦ୍ଧ, ଆଲିଙ୍ଗିତ
ସକଞ୍ଚୁକ—ବିଂ.କଞ୍ଚୁକ ସହିତ ବର୍ତ୍ତମାନ ।
ସକଟ—ବିଂ. (ସ+କଟ) ଅଧମ, ମନ୍ଦ, ହୀନ(ବ୍ୟକ୍ତି) ବି.ଶାଖୋଟବୃକ୍ଷ,ଶାହାଡ଼ା ଗଛ ।
ସକଟାକ୍ଷ—ବିଂ.କଟାକ୍ଷର ସହିତବର୍ତ୍ତମାନ
ସକଟାନ୍ନ—ବି. (ସକଟ+ଅନ୍ନ) ଅଶୁଦ୍ଧ ଅନ୍ନ ।
ସକଣ୍ଟକ—ବିଂ.(ବି.ଗ୍ରା)କଣ୍ଟାଳିଆ,କଣ୍ଟକଯୁକ୍ତ, (ଲ.ଅର୍ଥ)ବାଧାଯୁକ୍ତ,ଶତ୍ରୁବେଷ୍ଟିତ, (ବି) ଶୈବାଳ, ଶିଉଳି, ପୂତିକରଞ୍ଜ, ଦଶପୋଲ,କରମର୍ଦ୍ଦକ,କରଣ୍ଡାକୋଳି ।
ସକର୍ଣ୍ଣକ—ବି.କର୍ଣ୍ଣପାଳିଗତ ରୋମ,କାନ ଉପର ଲୋମ ।
ସକ(ଖ)ତ—ଯା.ବିଂ. ଓ କ୍ରି.ବିଂ.ଅତ୍ୟନ୍ତ, ଶକତ, ଶକ୍ତ ।
ସକମଳ—ବିଂ.ପଦ୍ମର ସହିତ ବର୍ତ୍ତମାନ ।
ସକର୍ମ—ବିଂ. କର୍ମଯୁକ୍ତ, କର୍ମର ସହିତ ବର୍ତ୍ତମାନ ।
ସକର—ପୁଂ. ବିଂ. (ବି.ଗ୍ରା) ହସ୍ତଯୁକ୍ତ, ରାଜସ୍ୱଯୁକ୍ତ, ଶୁଣ୍ଢଯୁକ୍ତ, କିରଣବିଶିଷ୍ଟ, (ସ୍ତ୍ରୀ)ସକରା ।
ସକରକନ୍ଦ—ଗ୍ରା. ବି. ଆଳୁଜାତୀୟ ଏକପ୍ରକାର ମୂଳ ।
ସକରୁଣ—ପୁଂ. ବିଂ. (ବି.ଗ୍ରା) କରୁଣାଯୁକ୍ତ, କରୁଣାଶୀଳ, ଦୟାଳୁ,କାରୁଣ୍ୟପୂର୍ଣ୍ଣ, (ସ୍ତ୍ରୀ) ସକରୁଣା ।
ସକରୁଣସ୍ୱର—ବି. କାରୁଣ୍ୟ ବ୍ୟଞ୍ଜକ ସ୍ୱର, ଯେଉଁ ସ୍ୱରକୁ ଶୁଣିବା ବ୍ୟକ୍ତିଙ୍କ ମନରେ କରୁଣା ଜନ୍ମେ ।
ସକର୍ଣ୍ଣ—ପୁଂ. ବିଂ. (ବି.ଗ୍ରା) ଶ୍ରବଣଶୀଳ,

ଶ୍ରୁତିତତ୍ପର, କର୍ଣ୍ଣଯୁକ୍ତ, (ସ୍ତ୍ରୀ) ସକର୍ଣ୍ଣା ।

ସକର୍ଣ୍ଣିକ—ପୁଂ. ବି. ଋଷିବିଶେଷ, (ବିଂ) କର୍ଣ୍ଣ ସହିତ ବର୍ତ୍ତମାନ ।

ସକର୍ତ୍ତୃକ—ବିଂ. ଯାହାର କର୍ତ୍ତା ଅଛି, ଯାହାର କର୍ତ୍ତା ଥାଏ ।

ସକର୍ମକ—ପୁଂ.ବିଂ. (ବି.ବ୍ରୀ) କର୍ମ ସମନ୍ୱିତ, · କର୍ମଯୁକ୍ତ, କାର୍ଯ୍ୟବିଶିଷ୍ଟ, (ବ୍ୟାକରଣ)ଯେଉଁ କ୍ରିୟାର କର୍ମ ଥାଏ, (ସ୍ତ୍ରୀ) ସକର୍ମିକା, (ବି)ସକର୍ମକ ଧାତୁ ।

ସକର୍ମକକ୍ରିୟା—ବି. (ବ୍ୟାକରଣ) ଯେଉଁ କ୍ରିୟା କୌଣସି କର୍ମକୁ ଅନ୍ୱିତ କରେ ।

ସକଳ—ପୁଂ.ବିଂ. (ବି.ବ୍ରୀ) ସବୁ, ସମସ୍ତ, ନିଖିଳ, ସମଗ୍ର, ସମୁଦାୟ, ସମ୍ପୂର୍ଣ୍ଣ, ସୂକ୍ଷ୍ମ କାରୁକାର୍ଯ୍ୟବିଶିଷ୍ଟ, ସୂକ୍ଷ୍ମଶିଳ୍ପଯୁକ୍ତ, କଳାସହିତ, (ସ୍ତ୍ରୀ) ସକଳା ।

ସକଳକଳ—ବିଂ. ଷୋଡ଼ଶ କଳାବିଶିଷ୍ଟ, ସମଗ୍ର କଳାରେ ପୂର୍ଣ୍ଣ ।

ସକଳଙ୍କ—ବିଂ. (ବି.ବ୍ରୀ) କଳଙ୍କଯୁକ୍ତ, ଦାଗଥିବା, କଳଙ୍କିତ,(ସ୍ତ୍ରୀ)ସକଳଙ୍କା ।

ସକଳଜନନୀ—ସ୍ତ୍ରୀ.ବି. ପ୍ରକୃତି, ସକଳ ଭୁବନ ପ୍ରସବକର୍ତ୍ତ୍ରୀ । [ ଭୁଟ ।

ସକଳପ୍ରିୟ—ବି. (ଭିତତ୍ତ୍ୱ)ଚଣା, ଚଣକ,

ସକଳଭୁବନମୟ—ବିଂ. ତ୍ରିଭୁବନମୟ, ସକଳ ଭୁବନସ୍ୱରୂପ ।

ସକଳଯଜ୍ଞମୟ--ବିଂ. ସକଳ ଯଜ୍ଞସ୍ୱରୂପ ।

ସକଳବର୍ଣ୍ଣ—ବି. ସମସ୍ତବର୍ଣ୍ଣ, ବ୍ରାହ୍ମଣାଦି ବର୍ଣ୍ଣ ଚତୁଷ୍ଟୟ ।

ସକଳସିଦ୍ଧି—ସ୍ତ୍ରୀ.ବି. ସମଗ୍ର ସିଦ୍ଧି, (ବିଂ) ଅଣିମାଦି ଅଷ୍ଟ ସିଦ୍ଧିଯୁକ୍ତ,ସକଳ ସିଦ୍ଧିବିଶିଷ୍ଟ,(ବି) ବିଷ୍ଣୁ । [ ବିଶେଷ ।

ସକଳସିଦ୍ଧିଦାଭୈରବୀ—ସ୍ତ୍ରୀ.ବି.ଭୈରବୀ-

ସକଳାଧାର—ପୁଂ. ବି. ଶିବ, ସମସ୍ତଙ୍କର ଆଧାର । [ ମାନ ।

ସକଳିକ—ବିଂ. କଳିକାର ସହିତ ବର୍ତ୍ତି-

ସକଳୀବିଧା—ସ୍ତ୍ରୀ.ବି. ସମସ୍ତ ପ୍ରକାର ।

ସକଳେ-ଗ୍ରା.ସର୍ବ. ସମସ୍ତେ, ସମସ୍ତ ବ୍ୟକ୍ତି

ସକଳେନ୍ଦୁ—ପୁଂ. ବି. ଅଖଣ୍ଡମଣ୍ଡଳ ପୂର୍ଣ୍ଣଚନ୍ଦ୍ର ।

ସକଳେଶ୍ୱର--ପୁଂ.ବି.ସମସ୍ତଙ୍କର ଈଶ୍ୱର, ପ୍ରଭୁ, ବିଷ୍ଣୁ ।

ସକଲ୍ପନ-ଗ୍ରା.ବିଂ.(ନ୍ୟାୟଦର୍ଶନ) କଳ୍ପିତ

ସକଲ୍ୟାଣ—ପୁଂ.ବିଂ.(ବି.ବ୍ରୀ)କଲ୍ୟାଣଯୁକ୍ତ, (ସ୍ତ୍ରୀ) ସକଲ୍ୟାଣା ।

ସକ(ଖ)ସ୍—ଯା.ବି. ଶକ୍ତିଶାଳୀ ବ୍ୟକ୍ତି, ବଳୁଆ ବ୍ୟକ୍ତି, ଧୈର୍ଯ୍ୟଶୀଳ ବ୍ୟକ୍ତି, ଧୈର୍ଯ୍ୟ, ଶାରୀରିକ ବଳ କ୍ଷମତା ।

ସକା—ଗ୍ରା.ବି.ସକାଇ କାନ୍ଦିବା,(ଗ୍ରା.ପୁଂ. ବିଂ) ସକାଇ କାନ୍ଦୁଥିବା, (ସ୍ତ୍ରୀ)ସକାଈ ।

ସକାଇବା—ଗ୍ରା.କ୍ରି. ନାକରେ କାନ୍ଦିବା ।

ସକାକୋଲ—ବି. ନରକବିଶେଷ ।

ସକାଣ—ଗ୍ରା. ବି. ସକାକାନ୍ଦଣା, ସକାଇ କାନ୍ଦିବା ।

ସକାମ—ପୁଂ.ବିଂ.(ବି.ବ୍ରୀ) କାମନାଯୁକ୍ତ, ବାସନାଯୁକ୍ତ, ସାଭିଳାଷ, ଯାହା ଫଳ କାମନାପୂର୍ବକ କରାଯାଏ,କାମୀ,ସନ୍ତୁଷ୍ଟ, ସୁଖୀ, (ସ୍ତ୍ରୀ) ସକାମା ।

ସକାମକର୍ମ—ବି. (କ.ଧା) ଯେଉଁ କର୍ମ-କୌଣସି ବିଶେଷ ଫଳ ଲାଭ କରିବା ଉଦ୍ଦେଶ୍ୟରେ କରାଯାଏ ।

ସକାମଧର୍ମ—ବି. (କ.ଧା) ଯେଉଁ ଧର୍ମ ସାଧନରେ ସାଧକର ଫଳ ଲାଭର ଆଶା ଥାଏ ।

ସକାର—ବି.ସ' ଶବ୍ଦ, ସ'ଅକ୍ଷର, ସ'ବର୍ଣ୍ଣ

ସକାରଣ—ବିଂ. ହେତୁଯୁକ୍ତ, ସହେତୁକ, କାରଣ ସହିତ ବିଦ୍ୟମାନ ।

ସକାରାଦି(ଦ୍ୟ)—ବିଂ. (ବି.ବ୍ରୀ) ଯେଉଁ ଶବ୍ଦର ଆଦ୍ୟରେ 'ସ' ଅକ୍ଷର ଥାଏ ।

ସକାରାନ୍ତ—ବିଂ. (ବି.ବ୍ରୀ)ଯେଉଁ ଶବ୍ଦର ଶେଷରେ 'ସ' ଅକ୍ଷର ଥାଏ ।

ସକାଲ୍—ପ୍ରା.(ସମ୍ବ)ବି. ସକାଳ ଦେଖ ।

ସକାଳ—ବିଂ.(ବି.ବ୍ରୀ)ସମୟୋପଯୋଗୀ (କ୍ରି.ବିଂ) ଉପଯୁକ୍ତ ସମୟରେ, ପ୍ରତ୍ୟୂଷରେ, ଶୀଘ୍ର, (ଗ୍ରା.ବି) ପ୍ରାତଃକାଳ, ପୂର୍ବାହ୍ନ, (ଗ୍ରା.ବିଂ) ପୂର୍ବାହ୍ନରେ କୃତ ବା ଅନୁଷ୍ଠିତ ।

ସକାଳଓଳି—ଗ୍ରା. ବି. ସକାଳ ବେଳା ଦେଖ ।

ସକାଳଖିଆ—ଗ୍ରା.ବି.ପ୍ରାତର୍ଭୋଜନ,(ବିଂ) ପ୍ରାତର୍ଭୋଜୀ, ଯେଉଁ ଲୋକର ସକାଳେ ଖାଇବା ଅଭ୍ୟାସ ।

ସକାଳଗାଧୁଆ—ଗ୍ରା. ବି. ପ୍ରାତଃସ୍ନାନ, (ଗ୍ରା.ବିଂ)ପ୍ରାତଃସ୍ନାୟୀ,ସକାଳେ ଗାଧୋଉଥିବା (ବ୍ୟକ୍ତି) । [ ଭାତ ଭୋଜନ ।

ସକାଳପଖାଳ--ଗ୍ରା.ବି.ପ୍ରତ୍ୟୂଷରେ ପଖାଳ

ସକାଳପବନ—ଗ୍ରା. ବି. ପ୍ରାତଃକାଳୀନ ବାୟୁ, ପ୍ରତ୍ୟୂଷରେ ସଞ୍ଚାରିତ ମୃଦୁଶୀତଳ ବାୟୁ ।

ସକାଳପାଇ(ହି)ବା—ଗ୍ରା.ବି. ପ୍ରାତଃକାଳ ହେବା, ରାତି ପାହିବା ।

ସକାଳବେଳ(ଳା)—ଗ୍ରା. ବି. ପୂର୍ବାହ୍ନ ।

ସକାଳ(ଳେ)ସକାଳ(ଳେ)—ଗ୍ରା. ଅବ୍ୟ. ଅତି ପ୍ରତ୍ୟୂଷରେ, ଅତିଶୀଘ୍ର ।

ସକାଳୁ(ଳୁଁ)—ଗ୍ରା. ଅ. ପ୍ରାତଃକାଳରୁ, ପ୍ରାତଃକାଳରେ ।

ସକାଳୁଆ—ଗ୍ରା.ବି.ପ୍ରାତଃକାଳ,(ଗ୍ରା.ବିଂ) ପ୍ରାତଃକାଳୀନ, ପୂର୍ବାହ୍ନକାଳୀନ ।

ସକାଳୀ—ସ୍ତ୍ରୀ.ବି. ସମୁଦ୍ରତୀରବର୍ତ୍ତୀ ସ୍ଥାନବିଶେଷ ।

ସକାଶ—ବି. (ସ+କାଶ୍+ଅ)ସାମୀପ୍ୟ, ନିକଟବର୍ତ୍ତିତା,(ବିଂ)କାଶଯୁକ୍ତ,(ଅମୁକ) ପର ଦେଖାଯାଉଥିବା, ଦୃଶ୍ୟ, ନିକଟ, ଉପସ୍ଥାପିତ,ବର୍ତ୍ତମାନ, (ଅବ୍ୟ)ନିକଟକୁ, ନିକଟରୁ, ନିମିତ୍ତ, ପାଇଁ ।

ସକାଶାତ୍—ଅ. ( ଅମୁକର ) ନିକଟରୁ, (ଗ୍ରା.ଅ) ସକାଶୁ ଦେଖ ।

ସକାଶୁ(ଶେ)—ଗ୍ରା. ଅ. (ବିଭକ୍ତି ସୂଚକ) ଯୋଗୁଁ, ହେତୁ, କାରଣରୁ, ଯୋଗେ, ପାଇଁ, ନିମିତ୍ତ,ନିମନ୍ତେ, ଉଦ୍ଦେଶ୍ୟରେ, ଅଭିପ୍ରାୟରେ, ନିକଟରୁ ।

ସକାଶେ--ଗ୍ରା.ଅବ୍ୟ. (ସଂ-ସକାଶ)ସକାଶୁ ଦେଖ, ନିକଟରେ,ପାଖରେ,ପାର୍ଶ୍ୱରେ ।

ସକି—ଯା. ବିଂ. ସଉକି ଦେଖ, ରସିକପ୍ରକୃତିକ,ଅଭିମାନିଆ,ସନ୍ଧିହାନ ପ୍ରକୃତିବିଶିଷ୍ଟ ।

ସକୁକ୍ଷି—ପୁଂ ଓ ସ୍ତ୍ରୀ. ବିଂ. (ବି.ବ୍ରୀ) ଏକ ମାତାଙ୍କ ଗର୍ଭରୁ ଉତ୍ପନ୍ନ (ଭାଇ ବା ଭଉଣୀ) ।

ସକୁତୂହଳ—ପୁଂ. ବିଂ. କୌତୁକଯୁକ୍ତ, କୁତୂହଳ ସହିତ ବର୍ତ୍ତମାନ ।
ସକୁରୁଣ୍ଡ—ବି. ବନ୍ୟବୃକ୍ଷବିଶେଷ, ସାକୁରୁଣ୍ଡ ବୃକ୍ଷ।
ସକୁଳ—ବି.(ସକ୍+କ.ଉଳ)ଶକୁଳମତ୍ସ୍ୟ, ଶେଉଳମାଛ,ଏକବଂଶରେ ଜାତ ବ୍ୟକ୍ତି, (ପୁଂ.ବିଂ-ବ.ବ୍ରୀ)ଏକପରିବାରର ବ୍ୟକ୍ତି, ସକୁଳପ୍ରସୂତ, ପରିବାର ବିଶିଷ୍ଟ, ପରିବାର ସହିତ, (ସ୍ତ୍ରୀ) ସକୁଳା ।
ସକୁଳଜ—ବିଂ.ସଗୋତ୍ରଜ,ସମାନ କୁଳଜାତ ।   [ କଟୁକ୍କୀ ।
ସକୁଳାଦନୀ—ସ୍ତ୍ରୀ. ବି. ମହାରାଷ୍ଟ୍ରୀ ଲତା,
ସକୁଳାର୍ଭକ—ବି. (୬ତତ୍) ଗଡ଼ିଶାମାଛ, ସାନ ଶେଉଳ, ଶେଉଳକଡ଼ା ।
ସକୁଳୀ—ବି.ମତ୍ସ୍ୟବିଶେଷ,ଶେଉଳମାଛ।
ସକୁଳ୍ୟ—ପୁଂ. ବିଂ. ( ବ.ବ୍ରୀ ) ସଗୋତ୍ର ବ୍ୟକ୍ତି,ଏକବଂଶୀୟ ବ୍ୟକ୍ତି,ଆପଣାବଂଶର ସପିଣ୍ଡମାନଙ୍କର ଊର୍ଦ୍ଧ୍ୱତନ ତିନପୁରୁଷ ଓ ନିମ୍ନତନ ତିନପୁରୁଷର ବ୍ୟକ୍ତିଗଣ, ଆପଣାର ଉପରର ୭ପୁରୁଷର ଊର୍ଦ୍ଧ୍ୱତନ ୩ ପୁରୁଷର ଓ ନିମ୍ନର ୭ପୁରୁଷର ନିମ୍ନତନ ୩ପୁରୁଷର ବ୍ୟକ୍ତି, ବଂଶର ଦୂରବର୍ତ୍ତୀ ପୂର୍ବପୁରୁଷ ଓ ବଂଶଧରଗଣ ।
ସକୂତ-ପୁଂ.ବିଂ.ଅଭିଳାଷୀ, ପ୍ରାପ୍ତକାମୀ, ପ୍ରେମାକାଂକ୍ଷୀ, ଆକାଂକ୍ଷାଯୁକ୍ତ ।
ସକୃତ୍—ଅ. (ଏକ+ବାରାର୍ଥେ,ସ)ଏକବାର, ଥରେମାତ୍ର, ସର୍ବଦା, ସହିତ, ଏକଦା, ପୂର୍ବେ କୌଣସି କାଳରେ, ତତ୍କ୍ଷଣାତ୍, (ବି) ବିଷ୍ଠା ।
ସକୃତ୍—ବି. ଶୂଦ୍ର ଶାସନ ।
ସକୃତ୍ଗର୍ଭ—ସ୍ତ୍ରୀ. ବି. (ବ.ବ୍ରୀ) ଖଚର, ଅଶ୍ୱତର,ଯେଉଁ ସ୍ତ୍ରୀ ଥରେ ମାତ୍ର ଗର୍ଭିଣୀ ହୋଇଅଛି, (ସ୍ତ୍ରୀ.ବିଂ)ଥରେ ମାତ୍ର ଗର୍ଭଧାରଣ କାରଣୀ (ସ୍ତ୍ରୀ) ।
ସକୃତ୍ପ୍ରଜ—ପୁଂ.ବିଂ(ବ.ବ୍ରୀ)ଯେ ଥରେ ମାତ୍ର ପ୍ରସବ କରେ, ଜାତୈକପତ୍ୟ, (ସ୍ତ୍ରୀ) ସକୃତ୍ପ୍ରଜା, (ବି) କାକ, କୁଆ, ବାୟସ ।
ସକୃତ୍ପ୍ରଜା—ସ୍ତ୍ରୀ. ବି. (ବ.ବ୍ରୀ) ଯେଉଁ ସ୍ତ୍ରୀ ଥରେ ମାତ୍ର ସନ୍ତାନ ଜନ୍ମ କରିଅଛି, ଏକଚଆଣୀ ସ୍ତ୍ରୀ ।
ସକୃତ୍ପ୍ରସୂତା—ସ୍ତ୍ରୀ.ବିଂ(ସକୃତ୍+ପ୍ରସୂତା) ଯେଉଁ ସ୍ତ୍ରୀ କେବଳ ଗୋଟିଏ ସନ୍ତାନ ପ୍ରସବ କରେ, କାକବନ୍ଧ୍ୟା, (ସ୍ତ୍ରୀ. ବି) କାକବନ୍ଧ୍ୟା ସ୍ତ୍ରୀ, ଯେଉଁ ଗାଈ ଥରେ ମାତ୍ର ପ୍ରସବ କରିଅଛି ।
ସକୃତ୍ଫଳା—ସ୍ତ୍ରୀ. ବି. (ବ.ବ୍ରୀ)କଦଳୀ, ଧାନ, ଯବ, ଗହମ ।
ସକୃତ୍ଫଳ—ବିଂ. (ବ.ବ୍ରୀ) ଯାହାର ଏକବାର ମାତ୍ର ଫଳ ହୋଇଅଛି ।
ସକୃଦ୍ଦୁଃଖକର—ପୁଂ.ବିଂ. ଯେ ବା ଯାହା ଥରେ ମାତ୍ର ଦୁଃଖ ଦିଏ, (ସ୍ତ୍ରୀ)କରୀ ।
ସକୃଦ୍ବୀର—ବି. ସଗରକ, ବନ୍ୟ ବୃକ୍ଷବିଶେଷ ।
ସକୃଦ୍ବୀରା—ସ୍ତ୍ରୀ. ବି. ଏକଘାର, ବନ୍ଧ୍ୟା କର୍କୋଟକୀ, ଅଷାଢ଼ୁଆ (ଗୁଳ୍ମ) ।
ସକୃପଣ—ପୁଂ. ବିଂ. ଦୁଃଖି, ଦୁଃଖଗ୍ରସ୍ତ, (ସ୍ତ୍ରୀ) ସକୃପଣା ।
ସକେତ—ବିଂ. ସମାନ ପ୍ରଜ୍ଞାବିଶିଷ୍ଟ ।
ସକେଶ—ପୁଂ.ବିଂ. (ବ.ବ୍ରୀ) କେଶମୟ, କେଶମିଶ୍ରିତ ।
ସକୈତବ—ପୁଂ. ବିଂ. (ବ.ବ୍ରୀ)କପଟୀ, ଛଳନାମୟ, (ସ୍ତ୍ରୀ) ସକୈତବା ।
ସକୋପ—ପୁଂ. ବିଂ. (ବ.ବ୍ରୀ)ରାଗାନ୍ୱିତ, କ୍ରୁଦ୍ଧ ।
ସକ୍ରୋଧା—ଗ୍ରା.ବିଂ. ରାଗାନ୍ୱିତ, କ୍ରୁଦ୍ଧ ।
ସକୋଶ—ବିଂ. ଅଭିଧାନଯୁକ୍ତ, କୋଷବିଶିଷ୍ଟ ।
ସକୌତୁକ—ବିଂ.କୌତୁକଯୁକ୍ତ,କୌତୁହଳାନ୍ୱିତ ।
ସକ୍କା—ଯା.ବି. ଭିସ୍ତି, ଚର୍ମ ନିର୍ମିତ ଜଳର ଥଳିରେ ପାଣି ବୋହିବା ବ୍ୟକ୍ତି ।
ସକ୍ତ—ପୁଂ.ବିଂ. (ସନ୍ଜ୍+କ.ତ)ଅର୍ପିତ; ନିର୍ଦ୍ଦିଷ୍ଟ, ଆସକ୍ତ, ମନୋଯୋଗୀ,ସଲଗ୍ନ, (ସ୍ତ୍ରୀ) ସକ୍ତା ।
ସକ୍ତମୂତ୍ର—ବିଂ. (ବ.ବ୍ରୀ) ଯାହାର ଅଳ୍ପ ଅଳ୍ପ ମୂତ୍ରପାତ ହୁଏ ।
ସକ୍ତି—ବି. ( ସନ୍ଜ୍+ଭା.ତି ) ଆସକ୍ତି, ସଂଯୋଗ, ଅଭିନିବେଶ, ସଙ୍ଗ ।
ସକ୍ତିମାନ୍—ବିଂ. (ସକ୍ତି + ମତ୍) ଆସକ୍ତିବିଶିଷ୍ଟ, ସଙ୍ଗଯୁକ୍ତ ।
ସକ୍ତୁ—ବି.(ସଚ୍+ମି.ତୁ)ଶକ୍ତୁ , ଛତୁଆ, ତନ୍ନାମକ ବିଷ ।
ସକ୍ତୁକ—ବି. (ସକ୍ତୁ+କ) ସକ୍ତୁ, ବିଷ ବୃକ୍ଷବିଶେଷ ।
ସକ୍ତୁକାର—ପୁଂ.ବିଂ.ସକ୍ତୁ ପ୍ରସ୍ତୁତକାରୀ।
ସକ୍ତୁଘଟାଖ୍ୟାୟିକା—ସ୍ତ୍ରୀ. ବି. ଶକ୍ତୁ ଓ ପାତ୍ରସମ୍ବନ୍ଧୀୟ ବିବରଣବିଶିଷ୍ଟ ।
ସକ୍ତୁପ୍ରସ୍ଥୀୟ—ବିଂ.ଶକ୍ତୁର ବାଣିଜ୍ୟସମ୍ବନ୍ଧୀୟ ।
ସକ୍ତୁଫଳ(ଳା)—ସ୍ତ୍ରୀ. ବି. ଶମୀବୃକ୍ଷ ।
ସକ୍ତୁଫଳୀ—ସ୍ତ୍ରୀ. ବି. ଶମୀବୃକ୍ଷ ।
ସକ୍ତୁଳ—ବିଂ. ସକ୍ତୁଯୁକ୍ତ, ସକ୍ତୁବିଶିଷ୍ଟ ।
ସକ୍ତୁଣୀ—ବିଂ. ସକ୍ତୁ ଦ୍ୱାରା ମିଶ୍ରୀକୃତ, ଛତୁଆ ଦ୍ୱାରା ମିଶ୍ରିତ ।
ସକ୍ଥି—ବି. (ସନ୍ଜ୍+ଥି) ଊରୁ, ଊରୁସନ୍ଧି, ଜଙ୍ଘ, ଶକଟର ଅଙ୍ଗବିଶେଷ ॥
ସକ୍ରତୁ—ବିଂ.ସମାନ କର୍ମବିଶିଷ୍ଟ, ସମାନ ପ୍ରଜ୍ଞାଯୁକ୍ତ, ଇନ୍ଦ୍ରର ସହିତ ।
ସକ୍ରିୟ—ବିଂ. କ୍ରିୟାଯୁକ୍ତ, କ୍ରିୟାବିଶିଷ୍ଟ ।
ସକ୍ରୁଧ୍—ବିଂ. ଉତ୍ତରୋତ୍ତର କ୍ରୋଧଶୀଳ, କ୍ରୋଧପରାୟଣ ।
ସକ୍ରୋଧ—ପୁଂ. ବିଂ. ସକୋପ, କ୍ରୁଦ୍ଧ, କ୍ରୋଧବିଶିଷ୍ଟ ।
ସକ୍ଷ—ବିଂ. ଅତିକ୍ରମଣୀୟ, ପରାଭୂତ ।
ସକ୍ଷଣ—ବିଂ. ପରାଭୂତ, ଲବ୍ଧାବସର ।
ସକ୍ଷଣୀ—ବିଂ. ସଚଳୟୁ, ସେବ୍ୟ ।
ସକ୍ଷମ—ବିଂ. ( ବ.ବ୍ରୀ ) କ୍ଷମତାବିଶିଷ୍ଟ, କ୍ଷମତାଯୁକ୍ତ କ୍ଷମାଗୁଣବିଶିଷ୍ଟ, ସଦୟ, (ସ୍ତ୍ରୀ) ସକ୍ଷମା,(ସ୍ତ୍ରୀ.ବିଂ)ପାରଗ, ସମର୍ଥ ।
ସକ୍ଷମତା—ସ୍ତ୍ରୀ.ବି.ପାରଗତା, ସାମର୍ଥ୍ୟ ।
ସକ୍ଷମା—ସ୍ତ୍ରୀ. ବିଂ. (ପ୍ରାଚୀନ ପଦ୍ୟ) କ୍ଷମା ପ୍ରଦାନରେ ସମର୍ଥ ।
ସକ୍ଷାର—ବିଂ. କ୍ଷାରଯୁକ୍ତ,ଲବଣବିଶିଷ୍ଟ ।
ସକ୍ଷୀର—ବିଂ. କ୍ଷୀରଯୁକ୍ତ, କ୍ଷୀର ସହିତ ବର୍ତ୍ତମାନ ।
ସକ୍ଷୋଭେ—କ୍ରି. ବିଂ. (ବ.ବ୍ରୀ),କ୍ଷୋଭର

ସହିତ, ମନସ୍ତାପର ସହିତ ।
ସଖ୍—ଧା. ବ. ସକ୍ ଦେଖ ।
ସଖ—ପୁଂ. ବ. ବିଂ. (ଅନ୍ୟ ଶବ୍ଦସଙ୍ଗେ 'ସଖା' ଶବ୍ଦ ସମାସରେ ଯୁକ୍ତ ହେଲେ 'ସଖ'ହୁଏ--ଯଥା-ଇନ୍ଦ୍ରସଖ, ବାୟୁସଖ) ସଖା, ବନ୍ଧୁ ।
ସଖା—ପୁଂ. ବ. (ସହ + ଖ୍ୟା + ମି.ଇ) ବନ୍ଧୁ, ମିତ୍ର, ସୁହୃତ୍, ପ୍ରଣୟାସ୍ପଦ, ସହଚର, ସମପ୍ରାଣ, ସହାୟ, (ସ୍ତ୍ରୀ) ସଖୀ ।
ସଖାସୋଦର—ଗ୍ରା. ବ. ବନ୍ଧୁ, କୁଟୁମ୍ବ ।
ସଖି—ପୁଂ. ବ. (ସ + ଖ୍ୟା + ମି.ଇ'ସଖା' ଦେଖ,(ସ୍ତ୍ରୀ.ବ-ସଖୀ ଶବ୍ଦର ସ୍ତ୍ରୀ ସମ୍ବୋଧନ) ସଖୀ ପ୍ରତି ସମ୍ବୋଧନ, (ଗ୍ରା.ବ-ଫ-ସଖୀ) କୁଣ୍ଢେଇ, ପୁତ୍ତଳିକା, ସଖୀ ବା ପିଉଲା ପରି ସୁନ୍ଦର ବାଳକା,(ପ୍ରା. ଯାଜପୁର,ବ) ବନ୍ଧୁ, ସାଙ୍ଗ, ସୁଖ ।
ସଖିଜନ—ବ. ବନ୍ଧୁବ୍ୟକ୍ତି, ମିତ୍ରବ୍ୟକ୍ତି ।
ସଖିତା(ତ୍ୱ)—ବ.(ସଖି + ଭା.ତା,ତ୍ୱ)ମିତ୍ରତା ସୌହାର୍ଦ୍ଦ୍ୟ, ସଖ୍ୟ, ସାଦୃଶ୍ୟ ।
ସଖିପୂର୍ବ—ବ. ବନ୍ଧୁତ୍ୱ ।
ସଖିଳ—ବିଂ. ପରିଶିଷ୍ଟବିଶିଷ୍ଟ ।
ସଖିବାନ୍—ପୁଂ. ବିଂ. ( ସଖି + ବତ୍ ) ସହାୟବିଶିଷ୍ଟ, ବନ୍ଧୁଯୁକ୍ତ, ସହଚରଯୁକ୍ତ
ସଖୀ—ସ୍ତ୍ରୀ.ବ. ( ସଖି + ଈ ) ବୟସ୍ୟା, ସ୍ତ୍ରୀଲୋକର ସ୍ତ୍ରୀସହଚରୀ ।
ସଖୀନାଟ—ଗ୍ରା. ବ. ସ୍ତ୍ରୀବେଶରେ ସଜ୍ଜିତ ନାଟୁଆପିଲାଙ୍କ ନାଟ ।
ସଖୀପିଲା—ଗ୍ରା. ବ. ରାମଲୀଳାଆଦିରେ ଯେଉଁ ବାଳକ ସଖୀ ବା ସ୍ତ୍ରୀବେଶରେ ନାଚେ ।
ସଖୀଭାବ—ଗ୍ରା. ବ.ବୟସ୍ୟାଭାବ,ଶ୍ରୀକୃଷ୍ଣଙ୍କ ପ୍ରତି ବୟସ୍ୟା ବା ସହଚରୀର ଭାବ ।
ସଖେ—ପୁଂ.(ସଖି ଶବ୍ଦର ପୁଲିଙ୍ଗସମ୍ବୋଧନ)ହେ ସଖେ,ହେ ମିତ୍ର,(ସ୍ତ୍ରୀ)ସଖୀ ।
ସଖେଦ—ପୁଂ.ବିଂ. (ବ.ବ୍ରୀ) ଖେଦଯୁକ୍ତ, ଦୁଃଖସହିତ ବର୍ତ୍ତମାନ,ଖେଦର ସହିତ ବର୍ତ୍ତମାନ ।
ସଖ୍ୟ—ବ. ( ସଖି + ଭା.ଯ ) ମୈତ୍ରୀ, ସୌହାର୍ଦ୍ଦ, ଘନିଷ୍ଠତା, ସଙ୍ଗତା, ସମପ୍ରାଣତା ।
ସଖ୍ୟଭାବ—ବ. ବନ୍ଧୁଗତ ଅନୁରାଗ ।
ସଖ୍ୟସ୍ଥାପନ—ବ. (ଷତତ୍) ବନ୍ଧୁତ୍ୱସ୍ଥାପନ, ମିତ୍ରତା କରିବା ।
ସଗଣ—ବିଂ. (ବ.ବ୍ରୀ) ସାନୁଚର,ସଦଳ, ଆପଣା ଦଳୀୟ ବା ଜାତୀୟ ବ୍ୟକ୍ତିମାନଙ୍କ ବା ବ୍ୟକ୍ତିମାନଙ୍କ ସହିତ,ଆପଣାଜାତୀୟ, ଏକଜାତୀୟ,(ବ) ଯେଉଁ ଛନ୍ଦୋଗଣ ଦିର୍ଘ ଛନ୍ଦରେ ବ୍ୟବହୃତ ହୋଇଥାଏ, (ଗ୍ରା. କ୍ରି. ବିଂ) ସଦଳବଳ ହୋଇ ।
ସଗଦ୍ଗଦ—ବିଂ. ଗଦ୍ଗଦ ବାକ୍ୟବିଶିଷ୍ଟ, ଗଦ୍‌ଗଦ ବାକ୍ୟଯୁକ୍ତ ।
ସଗନ୍ଧ—ବିଂ. (ବ.ବ୍ରୀ) ଗନ୍ଧଯୁକ୍ତ, ସୁବାସିତ, ଗର୍ବଯୁକ୍ତ, ଏକବଂଶଜାତ,(ଗ୍ରା.ବ) ଜ୍ଞାତି, କୁଟୁମ୍ବ ।
ସଗନ୍ଧୀ—ବିଂ. ଗନ୍ଧଯୁକ୍ତ, ଗନ୍ଧବିଶିଷ୍ଟ ।
ସଗର—ବିଂ. (ବ.ବ୍ରୀ-ସ + ଗର=ବିଷଯୁକ୍ତ,ବିଷାକ୍ତ, (ପୁଂ.ବ-ସ + ଗର)ବିଷ, ବିଷ ସହିତ ମାତୃଗର୍ଭରୁ ଜନ୍ମିଥିବାରୁ) ସୂର୍ଯ୍ୟବଂଶୀୟ ନରପତିବିଶେଷ, ଅର୍ହତ୍‌ଭେଦ ।
ସଗର୍ବ—ପୁଂ.ବିଂ.(ବ.ବ୍ରୀ)ଗର୍ବିତ(ବ୍ୟକ୍ତି), ଗର୍ବପୂର୍ଣ୍ଣ(ବାକ୍ୟ ବା ବ୍ୟବହାର), (ସ୍ତ୍ରୀ) ସଗର୍ବା ।
ସଗର୍ବ(ର୍ବେ)—ଗ୍ରା. କ୍ରି. ବିଂ. ଗର୍ବସହକାରେ, ଗର୍ବିତ ଭାବରେ ।
ସଗର୍ଭ—ପୁଂ.ବିଂ. (ବ.ବ୍ରୀ) ଅଭ୍ୟନ୍ତରସ୍ଥ ସୂକ୍ଷ୍ମପତ୍ରାଦି ଯୁକ୍ତ(କୁଶ ଦୂର୍ବାଦି), ଗର୍ଭଯୁକ୍ତ, ଉଦରଯୁକ୍ତ, (ସ୍ତ୍ରୀ) ସଗର୍ଭା,(ପୁଂ.-ବ-ବ.ବ୍ରୀ) ଭାଇ, ସହୋଦର ।
ସଗର୍ଭା—ସ୍ତ୍ରୀ.ବିଂ.(ସଗର୍ଭ + ଆ)ଗର୍ଭବତୀ, (ସ୍ତ୍ରୀ.ବ) ସହୋଦରା, ଏକ ମାତାଙ୍କ ଗର୍ଭଜାତ କନ୍ୟା ।
ସଗର୍ଭ୍ୟ—ପୁଂ. ବ. ଓ ବିଂ. (ସଗର୍ଭ + ଯ) ସଗର୍ଭ ଦେଖ, (ସ୍ତ୍ରୀ) ସଗର୍ଭ୍ୟା ।
ସଗର୍ଭ୍ୟା—ସ୍ତ୍ରୀ.ବ. ଓ ବିଂ. (ସଗର୍ଭ + ଯ + ଆ) ସଗର୍ଭା ଦେଖ ।
ସଗା—ଗ୍ରା. ବିଂ. ( ଫ-ସଗାବ ) ଯେଉଁ କୋଢ଼ର ବା କାଙ୍କର ମୂଳର କଣା ଏପରି ହୋଇ ଥାଏ ଯେ ତହିଁରେ ପୂରାଯିବା ବେଣ୍ଟଟି କୋଢ଼ର ମୁହଁପାଖକୁ ଲାଗିଯାଏ ।
ସଗୁ—ବିଂ. ଗାଈର ବୃଷ ସଙ୍ଗମ ।
ସଗୁଣ—ବିଂ. (ବ.ବ୍ରୀ) ଗୁଣଯୁକ୍ତ, ଉତ୍ତମ ଗୁଣଯୁକ୍ତ, ସତ୍ତ୍ୱ ରଜଃ ଓ ତମଃ ଆଦି ଗୁଣବିଶିଷ୍ଟ, ସାଂସାରିକ,ଗୁଣ ବା ଦଉଡ଼ି ଲାଗିଥିବା (ଧନୁ), ଯେଉଁ ଧନୁରେ ଗୁଣ ଚଢ଼ିଥାଏ,ସାକାର.ଶରୀରୀ,(ସ୍ତ୍ରୀ)ସଗୁଣା— ପ୍ରକୃତି, ଗୁଣବିଶିଷ୍ଟ ।
ସଗୁଣବତୀ—ସ୍ତ୍ରୀ.ସଗୁଣବିଶିଷ୍ଟା,ଗୁଣବତୀ ।
ସଗୁଣା—ବ. ଭକ୍ତିବିଶେଷ ।
ସଗୁଣୀ—ପୁଂ. ବିଂ. ( ସଗୁଣ + ଇନ୍ ) ଗୁଣଯୁକ୍ତ, ସଗୁଣବିଶିଷ୍ଟ ।
ସଗୁଣୋପାସନା—ବ. (କ.ଧା) ଈଶ୍ୱରଙ୍କୁ ସଗୁଣ ବା ଶରୀରୀ କଳ୍ପନାରେ ଆରାଧନା, ସାକାର ଉପାସନା । [ଯୁକ୍ତ ।
ସଗୃହ—ବିଂ. ଗୃହଯୁକ୍ତ,ସପତ୍ନୀକ, ପତ୍ନୀ-
ସଗୋତ୍ର-ପୁଂ.ବିଂ. (ବ.ବ୍ରୀ) ଏକଗୋତ୍ରରୁ ଜାତ, ଏକବଂଶୀୟ, (ସ୍ତ୍ରୀ) ସଗୋତ୍ରା, (ବ) କୁଳ, ବଂଶ, ଜ୍ଞାତି, କୁଟୁମ୍ବ ।
ସଗୋତ୍ରବିବାହ—ବ. ସଗୋତ୍ର ବ୍ୟକ୍ତିଙ୍କୁ ବିବାହ କରିବା ।
ସଗୋତ୍ରସପିଣ୍ଡ—ବ. ( ସ୍ମୃତି ) ଯେଉଁ ସଗୋତ୍ରମାନଙ୍କ ସଙ୍ଗେ କୌଣସି ବ୍ୟକ୍ତିର ପିଣ୍ଡଦାନ ଦ୍ୱାରା ସମ୍ବନ୍ଧ ଅଛି ।
ସଗୋତ୍ରା—ସ୍ତ୍ରୀ. ବ. ଓ ବିଂ. (ସଗୋତ୍ର + ଆ) ସଗୋତ୍ରର ସ୍ତ୍ରୀଲିଙ୍ଗ ।
ସଗୋତ୍ରୀ—ଗ୍ରା.ବ. ଓ ବିଂ.(ଫ-ସଗୋତ୍ର) ସଗୋତ୍ର ଦେଖ ।
ସଗୋଷ୍ଠୀ-ବିଂ.ଗୋଷ୍ଠୀର ସହିତ ବର୍ତ୍ତମାନ ।
ସଗୌରବ— ବିଂ. ଗୌରବବିଶିଷ୍ଟ, ଗୁରୁତାଯୁକ୍ତ ।
ସଗ୍ଧି—ବ. (ସ + ଜଗ୍ଧି + ଭା.ତି)ସହଭୋଜନ, ଏକତ୍ର ଭୋଜନ ।
ସଘନ—ବିଂ. (ବ.ବ୍ରୀ)ନିବିଡ଼ଶୀଳ,ମେଘର ସହିତ ବର୍ତ୍ତମାନ, ମେଘଯୁକ୍ତ, ମେଘାବୃତ, ନିବିଡ଼, (ଗ୍ରା.ବିଂ)ଘନଘନ,ଅଜସ୍ର, ନିରନ୍ତର ।

ସଘନେ—କ୍ରି.ବିଂ.ଘନଘନ,ପୁନଃପୁନଃ, ନିରନ୍ତର, ଅବିଶ୍ରାନ୍ତ, ଝଡ଼ନାଦରେ ।
ସଘୃଣ—ପୁଂ. ବିଂ. (ବି.ଗ୍ରା) ଘୃଣାଯୁକ୍ତ, ଘୃଣାବିଶିଷ୍ଟ ।
ସଙ୍କଟ--ବିଂ.(ସମ୍+କଟ୍+କ.ଅ)ଆପଦ-ଜନକ,ସଙ୍କୀର୍ଣ୍ଣ,ଅଳ୍ପ ପ୍ରସ୍ଥ,ଜନତାଯୁକ୍ତ, ନିବିଡ଼,ସରୁ, ଅପାର, ଭିଡ଼, ଅଭେଦ୍ୟ, (ସ୍ତ୍ରୀ) ସଙ୍କଟା,(ବି) ଦୁଃଖ,ବିପଦ,କ୍ଳେଶ, ଜନତା, ସମର୍ଦ୍ଦ ।
ସଙ୍କଟଚତୁର୍ଥୀ—ସ୍ତ୍ରୀ. ବି. ବ୍ରତବିଶେଷ, ଶ୍ରାବଣ କୃଷ୍ଣ ଚତୁର୍ଥୀ ।
ସଙ୍କଟା—ସ୍ତ୍ରୀ.ବି. ସଂକଟା ଦେଖ ।
ସଙ୍କଟାକ୍ଷ—ବି. ସଂକଟାକ୍ଷ ଦେଖ ।
ସଙ୍କଟିକ—ବିଂ. ସଂକଟସମ୍ବନ୍ଧୀୟ ।
ସଙ୍କଟୀ--ବିଂ.ସଂକଟବିଶିଷ୍ଟ,ସଂକଟଯୁକ୍ତ ।
ସଙ୍କଥନ—ବି. ସଂକଥନ ଦେଖ ।
ସଙ୍କଥା—ସ୍ତ୍ରୀ. ବି. (ସମ୍+କଥ୍+ଭା.ଅ+ଆ) ପରସ୍ପର ଆଳାପ,ସମ୍ୟକ୍ କଥନ, ସଂଲାପ ।
ସଙ୍କର—ବି. ସଂକର ଦେଖ ।
ସଙ୍କରକ--ବିଂ.ମିଶ୍ରଣଶୀଳ,ମିଶ୍ରଣବିଶିଷ୍ଟ ।
ସଙ୍କରକୃତ୍ୱା—ବି. ସଙ୍କରୀକରଣ ।
ସଙ୍କରତା—ବି. ସାଙ୍କର୍ଯ୍ୟ, ସଂକରର ଭାବ ବା ଧର୍ମ ।
ସଙ୍କରି—ଗ୍ରା.ବି. ସଂକରି ଦେଖ ।
ସଙ୍କରିନୁଭୂତ--ବି.ସଂକରିନୁଭୂତ ଦେଖ ।
ସଙ୍କରିନ୍ତ-ଗ୍ରା.ବି.(ପଦ୍ୟ)ସଂକରିନ୍ତ ଦେଖ ।
ସଙ୍କରିଶ୍ୱ—ପୁଂ.ବି. ଖଇର ।
ସଙ୍କରିତ—ବିଂ. ମିଶ୍ରିତ, ସାଙ୍କର୍ଯ୍ୟଯୁକ୍ତ ।
ସଙ୍କରୀ—ସ୍ତ୍ରୀ.ବି. ସଂକରୀ ଦେଖ ।
ସଙ୍କରୀକରଣ--ବି. ସଂକରୀକରଣ ଦେଖ ।
ସଙ୍କର୍ଷଣ—ବି. ସଂକର୍ଷଣ ଦେଖ ।
ସଙ୍କର୍ଷୀ—ବିଂ. ସମ୍ୟକ୍‌ରୂପେ ଆକର୍ଷଣ-କାରୀ ।
ସଙ୍କଳ—ବି. ସଂକଳ ଦେଖ ।
ସଙ୍କଳନ(ନା)—ବି. ସଂକଳ ଦେଖ ।
ସଙ୍କଳୟିତା—ବିଂ.ସଂକଳୟିତା ଦେଖ ।
ସଙ୍କଳିତ—ବିଂ. ସଂକଳିତ ଦେଖ ।
ସଙ୍କଳ୍ପ—ବି. ସଂକଳ୍ପ ଦେଖ ।
ସଙ୍କଳ୍ପିତ—ବିଂ. ସଂକଳ୍ପବିଶିଷ୍ଟ ।
ସଙ୍କଳ୍ପିତ—ବିଂ. ସଂକଳ୍ପିତ ଦେଖ ।
ସଙ୍କସୁକ—ବିଂ. ସଂକସୁକ ଦେଖ ।
ସଙ୍କାର—ବି. ସଂକାର ଦେଖ ।
ସଙ୍କାଶୀ—ସ୍ତ୍ରୀ.ବି. ସଂକାଶୀ ଦେଖ ।
ସଙ୍କାଶ—ବିଂ. ସଂକାଶ ଦେଖ ।
ସଙ୍କିଳ—ବି. ସଂକିଳ ଦେଖ ।
ସଙ୍କୀର୍ଣ୍ଣ—ବିଂ. ସଂକୀର୍ଣ୍ଣ ଦେଖ ।
ସଙ୍କୀର୍ତ୍ତନ(ନା)-ବି.ସଂକୀର୍ତ୍ତନ(ନା)ଦେଖ ।
ସଙ୍କୀର୍ତ୍ତିତ—ବିଂ. ସଂକୀର୍ତ୍ତିତ ଦେଖ ।
ସଙ୍କୁଚିତ—ବିଂ. ସଂକୁଚିତ ଦେଖ ।
ସଙ୍କୁଟନ—ବି. ସଂକୁଟନ ଦେଖ ।
ସଙ୍କୁଳ—ବିଂ. ସଂକୁଳ ଦେଖ ।
ସଙ୍କୁଳନ—ବି. (ସମ୍+କୁଲ୍+ଭା.ଅନ) ଏକତ୍ରୀକରଣ,ସଂଗ୍ରହକରିବା,ଯୋଗାଡ଼ କରିବା ।
ସଙ୍କୁଲାନ—ଗ୍ରା. ବି. ପର୍ଯ୍ୟାପ୍ତି, (ବିଂ) ପର୍ଯ୍ୟାପ୍ତ, ଯଥେଷ୍ଟ ।
ସଙ୍କୁଳିତ—ବିଂ. ସଂକୁଳିତ ଦେଖ ।
ସଙ୍କେତ—ବି. ସଂକେତ ଦେଖ ।
ସଙ୍କୋଚ—ବି. ସଂକୋଚ ଦେଖ ।
ସଙ୍କୋଚନ—ବି. ସଂକୋଚନ ଦେଖ ।
ସଙ୍କୋଚନୀ—ବି. ସଂକୋଚନୀ ଦେଖ ।
ସଙ୍କୋଚନୀୟ-ବିଂ.ସଂକୋଚନୀୟ ଦେଖ ।
ସଙ୍କୋଚୀ—ବିଂ. ସଂକୋଚୀ ଦେଖ ।
ସଙ୍କୋଚ୍ୟ—ବିଂ. ସଂକୋଚ୍ୟ ଦେଖ ।
ସଙ୍କ୍ରନ୍ଦନ—ବି. ସଂକ୍ରନ୍ଦନ ଦେଖ ।
ସଙ୍କ୍ରମ—ବି. ସଂକ୍ରମ ଦେଖ ।
ସଙ୍କ୍ରମିତ—ବିଂ. ସଂକ୍ରମିତ ଦେଖ ।
ସଙ୍କ୍ରାନ୍ତ—ବିଂ. ସଂକ୍ରାନ୍ତ ଦେଖ ।
ସଙ୍କ୍ରାନ୍ତି—ବି. ସଂକ୍ରାନ୍ତି ଦେଖ ।
ସଙ୍କ୍ରାମ—ବି. ସଂକ୍ରାମ ଦେଖ ।
ସଙ୍କ୍ରାମକ—ବି. ସଂକ୍ରାମକ ଦେଖ ।
ସଙ୍କ୍ରାମଣ—ବି. ସଂକ୍ରାମଣ ଦେଖ ।
ସଙ୍କ୍ରାମିତ—ବିଂ. ସଂକ୍ରାମିତ ଦେଖ ।
ସଙ୍କ୍ଲେଦ—ବି. ସଂକ୍ଲେଦ ଦେଖ ।
ସଙ୍କ୍ଷୟ—ବି. ସଂକ୍ଷୟ ଦେଖ ।
ସଙ୍କ୍ଷିପ୍ତ—ବିଂ. ସଂକ୍ଷିପ୍ତ ଦେଖ ।
ସଙ୍କ୍ଷୀୟମାଣ—ବିଂ.ସଂକ୍ଷୀୟମାଣ ଦେଖ ।
ସଙ୍କ୍ଷୁବ୍ଧ—ବିଂ. ସଂକ୍ଷୁବ୍ଧ ଦେଖ ।
ସଙ୍କ୍ଷେପ—ବି. ସଂକ୍ଷେପ ଦେଖ ।
ସଙ୍କ୍ଷେପକ—ବିଂ. ସଂକ୍ଷେପକ ଦେଖ ।
ସଙ୍କ୍ଷେପଣ—ବି. ସଂକ୍ଷେପଣ ଦେଖ ।
ସଙ୍କ୍ଷୋଭ—ବି. ସଂକ୍ଷୋଭ ଦେଖ ।
ସଙ୍ଖ—ଗ୍ରା. ବି. ( ସଂ-ସଂକ୍ରମ ) ପୋଲ, ସେତୁ ।
ସଙ୍ଖଡ଼ା—ପ୍ରା. (ବସ୍ତର) ବି. ଭୁକ୍ତାବଶିଷ୍ଟ ଦ୍ରବ୍ୟ, ସଙ୍ଖୁଡ଼ି, (ବିଂ) ସଙ୍ଖୁଡ଼ି ଖାଦ୍ୟ, ଉଚ୍ଛିଷ୍ଟ ଖାଦ୍ୟ ।
ସଙ୍ଖଲନା—ଗ୍ରା.ବି.ସଙ୍ଖୋଲା, କୁଶଳପ୍ରଶ୍ନ
ସଙ୍ଖା—ଗ୍ରା. ବି. ଶଙ୍ଖା, କାଚ, ଚୂଡ଼ୀ ।
ସଙ୍ଖାମୁଠା—ପ୍ରା.(ଚିଲିକାଅଞ୍ଚଳ)ବି.ଚିଲି-କାରେ ମିଳିବା ଏକପ୍ରକାର ଚିଙ୍ଗୁଡ଼ି ।
ସଙ୍ଖାଳ(ଳୀ)—ଗ୍ରା. ବି. ଧନରତ୍ନ, ଧନ-ରତ୍ନପରି ପ୍ରିୟ ବସ୍ତୁ, ଧନରତ୍ନ ପରି ମନୁଷ୍ୟର ପ୍ରିୟତମ ବ୍ୟକ୍ତି,ଜୀବନସର୍ବସ୍ୱ, ପାଣ୍ଠି, ସଞ୍ଚିତଧନ, ମୂଳପାଣ୍ଠି, ଏକ-ମାତ୍ର ଭରସାର ସ୍ଥାନ ।
ସଙ୍ଖୁଆ—ଗ୍ରା. ବି. ନଦୀ ବା ପୋଖରୀ-ଆଦିରୁ ପାଣି ବୋହିଯିବା ପାଇଁ ନିର୍ମିତ ପୋଲ, କ୍ଷୁଦ୍ର ସେତୁ ।
ସଙ୍ଖୁଡ଼ି—ଗ୍ରା. ବି. (ସଂ-ସଙ୍କର) ଜଳପକ୍ୱ ଖାଦ୍ୟ, (ଭାତ, ଡ଼ାଲି, ତିଅଣ ପ୍ରଭୃତି), ଉଚ୍ଛିଷ୍ଟଖାଦ୍ୟ,(ବିଂ) ରନ୍ଧା ହୋଇଥିବା (ଅନ୍ନ ବ୍ୟଞ୍ଜନାଦି),ସଙ୍ଖୁଡ଼ି ରଖାଯାଇ-ଥିବା (ବାସନ) ।
ସଙ୍ଖୁଡ଼ିପ୍ରସାଦ(ଭୋଗ)—ଗ୍ରା.ବି. ଅଭଡ଼ା ବା ଅନ୍ନ ତିଅଣ ପ୍ରସାଦ, ଦେବତାଙ୍କୁ ନୈବେଦ୍ୟ ଅନ୍ନ ବ୍ୟଞ୍ଜନାଦି ।
ସଙ୍ଖୁଲା—ଗ୍ରା. ବି. କୁଶଳପ୍ରଶ୍ନ, ସ୍ୱାଗତ ସମ୍ଭାଷଣ ।
ସଙ୍ଖୁଳିବା—ଗ୍ରା. କ୍ରି. ସ୍ୱାଗତ ବା କୁଶଳ ପ୍ରଶ୍ନ କରିବା, ଆଶ୍ୱାସନା କରିବା ।
ସଙ୍ଖୋଳିବା—ଗ୍ରା.କ୍ରି. ଆପଦ ସମୟରେ ବନ୍ଧୁ ନିକଟକୁ ଯାଇ ସାନ୍ତ୍ୱନା ଦେବା ।
ସଙ୍ଖ୍ୟ—ବି.(ସମ୍+ଖ୍ୟା+ଅଧି.ଅ)ଯୁଦ୍ଧ, (ବିଂ) ସଂଖ୍ୟେୟ ।
ସଙ୍ଖ୍ୟକ-ବିଂ.ସଂଖ୍ୟାଯୁକ୍ତ ସଂଖ୍ୟାବିଶିଷ୍ଟ ।

ସଙ୍ଖ୍ୟା—ବି. ସଂଖ୍ୟା ଦେଖ ।

ସଙ୍ଖ୍ୟାତ—ବିଂ. ସଂଖ୍ୟାତ ଦେଖ ।

ସଙ୍ଖ୍ୟାନ— ବି. ସଂଖ୍ୟାନ ଦେଖ ।

ସଙ୍ଖ୍ୟାପନ—ବି. ସଂଖ୍ୟାପନ ଦେଖ ।

ସଙ୍ଖ୍ୟେୟ—ବିଂ. ସଂଖ୍ୟେୟ ଦେଖ ।

ସଙ୍ଗ୍‌ତ—ପ୍ରା.(ସମ୍ଭ)ବି.ସାଥି, ସାହଚର୍ଯ୍ୟ ।

ସଙ୍ଗ—ବି. ( ସନ୍‌ଜ୍+ଭା.ଅ ) ସଂସ୍ରବ, ସଂସର୍ଗ, ସହବାସ, ମିଳନ, ସଂଯୋଗ, ଆସକ୍ତି,ଅନୁରାଗ,ବିଷୟାନୁରାଗ, ସମ୍ପର୍କ. ସଂବନ୍ଧ, ସାହଚର୍ଯ୍ୟ,ସହଯୋଗ,ସଙ୍ଗମ. ମୈଥୁନ, ଦୁଇ ନଦୀ କିମ୍ବା ନଦୀ ଓ ସମୁଦ୍ରର ମିଳନ ସ୍ଥାନ,ମିତ୍ରତା,ବନ୍ଧୁତା, (ଗ୍ରା.ବି. ସଂ-ସଙ୍ଗୀ) ସାଙ୍ଗ, ସହଚର, ସାହଚର୍ଯ୍ୟ ।

ସଙ୍ଗଚ୍ୟୁତ—ବିଂ. ( ୫ତତ୍ ) ସଙ୍ଗଭ୍ରଷ୍ଟ. ସଂସର୍ଗ ବିଚ୍ୟୁତ, ସଙ୍ଗୀଠାରୁ ଦୂରଗତ

ସଙ୍ଗ(ଙ୍ଘ)ଡ଼—ଗ୍ରା. ବିଂ. (ସଂ·ସଂଘଟିତ) ଭିନ୍ନ ଭିନ୍ନ ପରିବା ସୁସିଦ୍ଧ ହୋଇ ଏକତ୍ର ମିଶିଯାଇଥିବା (ବ୍ୟଞ୍ଜନ), (ସଂ-ସଂଯତ)ସୁନ୍ଦର, ସୁବିଧାଜନକ,ଠିକଣା, ସୁବିନ୍ୟସ୍ତ, ସଂଯତ ।

ସଙ୍ଗଣନା—ବି. ସମ୍ୟକ୍ ଗଣନା ।

ସଙ୍ଗଣିକା—ବି. ସଂଗଣିକା ଦେଖ ।

ସଙ୍ଗତ—ବି. ବିଂ. ସଂଗତ ଦେଖ ।

ସଙ୍ଗଠ—ବି. ସଂଗଠ ଦେଖ ।

ସଙ୍ଗତେ—ଗ୍ରା. (ପଦ୍ୟ)କ୍ରି, ବିଂ. ସଙ୍ଗେ ଦେଖ ।

ସଙ୍ଗଦୋଷ—ବି. ମନ୍ଦ ବ୍ୟକ୍ତି ସଙ୍ଗେ ସଂସର୍ଗ, ସଂସର୍ଗଦୋଷ, ଅସତ୍‌ସଙ୍ଗ, ଅସତ୍‌ସଙ୍ଗଜନିତ ମନ୍ଦଫଳ, ସଂସ୍ପର୍ଶ-ଦୋଷ,ସାଂସାରିକ ଆସକ୍ତିଜନିତ ଦୋଷ

ସଙ୍ଗବ—ବି. (ସମ୍+ଗୌ+ଅ)ପ୍ରାତଃ-କାଳୀନ ପ୍ରଥମ ତିନି ମୁହୂର୍ତ୍ତ ।

ସଙ୍ଗବାନ୍—ପୁଂ.ବିଂ(ସଙ୍ଗ + ବତ୍)ସଙ୍ଗ-ବିଶିଷ୍ଟ, ସଙ୍ଗଯୁକ୍ତ, ସଙ୍ଗୀ ।

ସଙ୍ଗବିନୀ—ସ୍ତ୍ରୀ. ବି. ଦୋହନ ଭୂମିକୁ ଆସିଥିବା ଗାଈ ।

ସଙ୍ଗଭଙ୍ଗ—ବି. ସଙ୍ଗୀ ବା ସଙ୍ଗିନୀର ବିଚ୍ଛେଦ, ମିଳନର ଭଙ୍ଗ ।

ସଙ୍ଗମ—ବି. ( ସମ୍+ଗମ୍+ଭା.ଅ ) ନଦ୍ୟାଦିର ମିଳନସ୍ଥଳ,ରତି, ମୈଥୁନ, ସାହଚର୍ଯ୍ୟ, ସ୍ତ୍ରୀ ପୁରୁଷଙ୍କର ମିଥୁନୀଭାବ, ସମ୍ଭୋଗ ।

ସଙ୍ଗମଋତୁ—ବି. ଯେଉଁ ଋତୁରେ ଜୀବ-ମାନେ ମୈଥୁନ କରନ୍ତି ।

ସଙ୍ଗମକ—ବିଂ. ପଥଜ୍ଞାପକ ।

ସଙ୍ଗମକାରୀ—ପୁଂ. ବିଂ. ଯେ ମୈଥୁନ କରେ, ମୈଥୁନକାରୀ, (ସ୍ତ୍ରୀ)କାରିଣୀ ।

ସଙ୍ଗମକାଳ—ବି. ମୈଥୁନର ସମୟ ।

ସଙ୍ଗମନ—ବି. ଗନ୍ତବ୍ୟସ୍ଥାନ, ସମ୍ୟକ୍ ପ୍ରକାରେ ଗମନ, ସଙ୍ଗମ, ମେଳନ ।

ସଙ୍ଗମନୀୟ—ବିଂ.ସଙ୍ଗମନଯୋଗ୍ୟ,ସମ୍ମି-ଳନଯୋଗ୍ୟ ।

ସଙ୍ଗମୟ—ବିଂ. ସଙ୍ଗବିଶିଷ୍ଟ, ଐକାନ୍ତିକ ଆକାଙ୍‌କ୍ଷାଯୁକ୍ତ ।

ସଙ୍ଗମରହିତ—ବିଂ. (୩ତତ୍)ସଙ୍ଗରହିତ ଦେଖ, ମୈଥୁନହୀନ । [ କାମନା ।

ସଙ୍ଗମଲିପ୍ସା—ବି. ( ୬ତତ୍ ) ସହବାସ-

ସଙ୍ଗମୀ—ପୁଂ.ବିଂ. ସଙ୍ଗମଶୀଳ ।

ସଙ୍ଗମେଳ—ଗ୍ରା.ବି.ବହୁ ବ୍ୟକ୍ତିଙ୍କର ସଙ୍ଗ ବା ମେଳ ।

ସଙ୍ଗର—ବି. (ସମ୍+ ଗୃ+ଅଧି.ଅ)ଯୁଦ୍ଧ, ଆବାସ, ବିପଦ, ସଂପଦ, ( ମି.ଅ ) ଅଙ୍ଗୀକାର, ପ୍ରତିଜ୍ଞା, ଜ୍ଞାନ, ବିଷ,ନିୟ-ବିନିୟ ନିର୍ଦ୍ଧାରଣ, ପ୍ରଶ୍ନ ନିୟମ,(ଭା.ଅ) କର୍ମକରଣ, ଯୁଦ୍ଧ କରିବା, ଶମୀବୃକ୍ଷ, ଶମୀବୃକ୍ଷର ଫଳ,(ଗ୍ରା.କ୍ରି.ବିଂ)ସଙ୍ଗରେ

ସଙ୍ଗରଣ—ବି. ଅନୁଧାବନ, ଉପଲବ୍ଧି-କରଣ ।

ସଙ୍ଗରହିତ—ପୁଂ.ବିଂ. (୩ତତ୍) ସାଂସା-ରିକ ସଂପର୍କଶୂନ୍ୟ, ଏକାକୀ, ଆସକ୍ତି-ରହିତ ।

ସଙ୍ଗରେ—ଗ୍ରା.କ୍ରି.ବିଂ. ସଙ୍ଗେ ଦେଖ ।

ସଙ୍ଗସାଥି—ଗ୍ରା.ବି. ସଙ୍ଗୀ ଓ ସହଚର ।

ସଙ୍ଗା(ଙ୍ଘା)—ଗ୍ରା. ବି. ଗୃହ ତଳେ ଓ କାନ୍ଥ ଉପରେ ବାଉଁଶ ପକାଇ ଦ୍ରବ୍ୟାଦି ରଖିବା ନିମନ୍ତେ କରାଯିବା ଭାଡ଼ି, ସଙ୍ଗିବା, ପଶୁମାନଙ୍କର ମୈଥୁନ, (ପ୍ରା. ସିଂହଭୂମ.ବି)ଘରର ଉପର.ଶୂଦ୍ର-ମାନଙ୍କ ଦ୍ୱିତୀୟ ବିବାହ ପ୍ରଥା,(ଗ୍ରା.ବିଂ) ଶକଟ ବହନକାରୀ,ଯେଉଁ ପଶୁ ମୈଥୁନ କରିଅଛି, କୃତସଙ୍ଗମ ।

ସଙ୍ଗାଇଦେବା—ପ୍ରା. ( ପାଟଣା ) କ୍ରି. ଥୋଇଦେବା ।

ସଙ୍ଗାଇବା—ପ୍ରା.(ପାଟଣା)କ୍ରି.ରଖିବା ।

ସଙ୍ଗାଇବା— ଗ୍ରା.କ୍ରି.ସଙ୍ଘାଇବା ଦେଖ ।

ସଙ୍ଗାତ—ଗ୍ରା.ପୁଂ ଓ ସ୍ତ୍ରୀ. ବି. ପରସ୍ପରର ସଙ୍ଗେ ଘନିଷ୍ଠ ବନ୍ଧୁତାଦ୍ୱାରା ଧର୍ମତଃ ଆବଦ୍ଧ ବ୍ୟକ୍ତି, ଘନିଷ୍ଠ ବନ୍ଧୁ, ମିତ୍ର, ସୁହୃଦ୍, କୌଣସି ପୁରୁଷର ଆପଣା ଶାଳୀକି ସମ୍ବୋଧନ କଲାବେଳେ ବ୍ୟବହୃତ ଡାକ, (ସ୍ତ୍ରୀ)ସଙ୍ଗାତୁଣୀ ।

ସଙ୍ଗାତବସିବା—ଗ୍ରା.କ୍ରି. ( ଦୁଇଜଣ ) ପରସ୍ପର ମଧ୍ୟରେ ମହାପ୍ରସାଦ ଦିଆଦେଇ ହୋଇ(ସଙ୍ଗାତ)ମିତ୍ରତାସ୍ଥାପନ କରିବା

ସଙ୍ଗାତମଇତ୍ର—ଗ୍ରା.ବି.ମହାପ୍ରସାଦବନ୍ଧୁତା

ସଙ୍ଗାତୁଣୀ—ଗ୍ରା.ସ୍ତ୍ରୀ. ବି. ସଙ୍ଗାତଙ୍କ ସ୍ତ୍ରୀ, ପ୍ରେୟସୀ ।

ସଙ୍ଗାଦ—ବି.ବାକ୍ୟାଳାପ, କଥାବାର୍ତ୍ତା ।

ସଙ୍ଗାୟନ—ବି. ପରିଚିତ ଗାୟକ ।

ସଙ୍ଗିତ—ଗ୍ରା. ପୁଂ. ବି. (ସଂ-ସଙ୍ଗ) ସହ-ଯୋଗୀ,ଏକସଙ୍ଗରେ ବିଚରଣକାରୀ,(ସ୍ତ୍ରୀ) ସଙ୍ଗିତା ।

ସଙ୍ଗିନ୍(ନ)—ଯା.ବି. ବନ୍ଧୁକର ଅଗରେ ନଳିର ପାର୍ଶ୍ୱରେ ଗୁଞ୍ଜା ହୋଇଥିବା ମୁନିଆଁ ବର୍ଚ୍ଛାପରି ଅସ୍ତ୍ର (ଏଥିରେ ଭୁସା-ଯାଏ),ବନ୍ଧୁକ ସଂଲଗ୍ନ ଛୋରା,(ଯା.ବିଂ) ଗୁରୁତର, ଖୁବ୍‌ଭାରୀ, ଅତି କଠୋର, କଷ୍ଟସାଧ୍ୟ, ଦାୟିତ୍ୱପୂର୍ଣ୍ଣ, ଅସାଧାରଣ, ମୋଟା ଓ ମଜଭୁତ୍, ସୁଦୃଢ଼ ।

ସଙ୍ଗିନୀ—ସ୍ତ୍ରୀ. ବି. (ସଙ୍ଗିନ୍+ଈ)ସଙ୍ଗୀର ସ୍ତ୍ରୀଲିଙ୍ଗ, ବୟସ୍ୟା, ସଜନୀ ।

ସଙ୍ଗିବା—ଗ୍ରା.କ୍ରି. (ସଂ-ସଙ୍ଗ)ବୃଷ ଗାଈକୁ ମୈଥୁନ କରିବା ।

ସଙ୍ଗିବିହୀନ—ବିଂ.(୩ତତ୍)ସଙ୍ଗୀଶୂନ୍ୟ, ସହଚରବିହୀନ, ଏକାକୀ । [ ଉଦର ।

ସଙ୍ଗିର୍—ସ୍ତ୍ରୀ. ବି. ସମ୍ୟକ୍ ଧାରଣାଭୂତ

ସଙ୍ଗିର—ବିଂ.ସମ୍ୟକ୍ ଗଳାଧଃକରଣଶୀଳ ।
ସଙ୍ଗିରମାଣ—ପୁଂ. ବିଂ. (ସମ୍+ଗୃ+କ.ଆନ)ପ୍ରତିଜ୍ଞାକାରୀ,(ସ୍ତ୍ରୀ)ସଙ୍ଗିରମାଣା ।
ସଙ୍ଗୀ—ପୁଂ.ବି. (ସଙ୍ଗ+ଇନ୍)ସହଚର, ବୟସ୍ୟ,ସଙ୍ଗାତ,କର୍ମସଙ୍ଗୀ,ପଢ଼ାସଙ୍ଗୀ, ଶିକ୍ଷାସହଚର, କ୍ରୀଡ଼ାସହଚର, (ବିଂ) ସମଭିବ୍ୟାହାରୀ, ସଙ୍ଗବିଶିଷ୍ଟ, ଆସକ୍ତ, କୌଣସି ବସ୍ତୁରେ ସଂସକ୍ତ,(ସ୍ତ୍ରୀ)ସଙ୍ଗିନୀ ।
ସଙ୍ଗୀତ—ବି ଓ ବିଂ. ସଂଗୀତ ଦେଖ ।
ସଙ୍ଗୀତ—ବି. ସଂଗୀତ ଦେଖ ।
ସଙ୍ଗୀର୍ଣ୍ଣ—ବିଂ. ସଂଗୀର୍ଣ୍ଣ ଦେଖ ।
ସଙ୍ଗୁପ୍ତ—ବିଂ. ସଂଗୁପ୍ତ ଦେଖ ।
ସଙ୍ଗୁପ୍ତି—ବି. ସଂଗୁପ୍ତି ଦେଖ ।
ସଙ୍ଗୂଢ଼—ବିଂ. ସଂଗୂଢ଼ ଦେଖ ।
ସଙ୍ଗୃହୀତ—ବିଂ. ସଂଗୃହୀତ ଦେଖ ।
ସଙ୍ଗେ—ଗ୍ରା. କ୍ରି. ବିଂ. (ସଂ-ସଙ୍ଗ) ସହ, ସହିତ, ସଙ୍ଗରେ, ମିଳିତହୋଇ,ମିଶ୍ରିତ ହୋଇ, ସମଭିବ୍ୟାହାରରେ ।
ସଙ୍ଗେଇଦେବା—ପ୍ରା. (ସମ୍ବଲ) କ୍ରି. କୌଣସି ପଦାର୍ଥକୁ ଯତ୍ନରେ ରଖିବା, ସାଇତିବା ।
ସଙ୍ଗେଣ—ଗ୍ରା. କ୍ରି.ବିଂ. ସଙ୍ଗେ ଦେଖ ।
ସଙ୍ଗେସଙ୍ଗେ—ଗ୍ରା.ଅବ୍ୟ.ସାଙ୍ଗେସାଙ୍ଗେ ଦେଖ ।
ସଙ୍ଗୋପକ—ପୁଂ.ବିଂ.ସଂଗୋପକ ଦେଖ
ସଙ୍ଗୋପନ—ବି. ସଂଗୋପନ ଦେଖ ।
ସଙ୍ଗ୍ରହ—ବି. ସଂଗ୍ରହ ଦେଖ ।
ସଙ୍ଗ୍ରହଣ—ବି. ସଂଗ୍ରହଣ ଦେଖ ।
ସଙ୍ଗ୍ରହଣୀ—ବି. ସଂଗ୍ରହଣୀ ଦେଖ ।
ସଙ୍ଗ୍ରହୀତା—ପୁଂ.ବିଂ. ସଂଗ୍ରହୀତା ଦେଖ ।
ସଙ୍ଗ୍ରାମ—ବି. ସଂଗ୍ରାମ ଦେଖ ।
ସଙ୍ଗ୍ରାହ—ବି. ସଂଗ୍ରାହ ଦେଖ ।
ସଙ୍ଗ୍ରାହକ—ପୁଂ.ବିଂ. ସଂଗ୍ରାହକ ଦେଖ ।
ସଙ୍ଗ୍ରାହୀ—ପୁଂ.ବିଂ. ସଂଗ୍ରାହୀ ଦେଖ ।
ସଙ୍ଘ—ବି. ସଂଘ ଦେଖ ।
ସଙ୍ଘଟ୍ଟ—ବି. ସଂଘଟ୍ଟ ଦେଖ ।
ସଙ୍ଘଟ୍ଟା—ବି. ସଂଘଟ୍ଟା ଦେଖ ।
ସଙ୍ଘଟ୍ଟିକା—ବି. ସଂଘଟ୍ଟିକା ଦେଖ ।
ସଙ୍ଘଟ୍ଟିତ—ବିଂ. ସଂଘଟ୍ଟିତ ଦେଖ ।
ସଙ୍ଘଠ—ବି. ସଂଘଠ ଦେଖ ।
ସଙ୍ଘନ—ବି. ସଂଘନ ଦେଖ ।
ସଙ୍ଘର୍ଷ—ବି. ସଂଘର୍ଷ ଦେଖ ।
ସଙ୍ଘସ—ବି. ସଂଘସ ଦେଖ ।
ସଙ୍ଘା—ଗ୍ରା.ବି.ଗୃହଘରର ଗୃହର ତଳେ ଓ ପରସ୍ପର ବିପରୀତ କାଠମାନଙ୍କ ଉପରେ ଗୁଡ଼ାଏ ବାଉଁଶକୁ ଲଗାଲଗି କରି ଆଡ଼ବାଗରେ ପକାଇ ତିଆରି କରାଯିବା ଖଣ୍ଡ, (ସଂ-ସଙ୍ଗମ) ସନ୍ଧି ନା, ଗାଈ ସହିତ ବୃଷର ସଙ୍ଗମ, (ଗ୍ରା.ବିଂ. ସ୍ତ୍ରୀ,ସଂ-ସଙ୍ଗମ) ବୃଷ ସହିତ ସହବାସ କରିଥିବା (ଗାଈ),(ପ୍ରା.ସମ୍ବ) କାଠକୁରି (ସିଂହଭୂମ) ସଙ୍ଘା, (ସମ୍ବଲ) ଜିନିଷ ରଖିବାପାଇଁ କାଠରେ ମରାଯାଇଥିବା ପଟା ।
ସଙ୍ଘା(ଘେ)ଇବା—ଗ୍ରା.କ୍ରି.ସନ୍ଧିବା କ୍ରିୟାର ଣିଜନ୍ତରୂପ,ଗାଈକୁ ବୃଷ ସଙ୍ଗେ ସଙ୍ଗମ କରାଇବା, ସଂଯୋଜିତ କରାଇବା,ମିଳାଇବା ।
ସଙ୍ଘାଡ଼ି—ଗ୍ରା.ବି.(ସଂ-ସଙ୍ଘଟ୍ଟିକା) ସଙ୍କୋଚିତ ତିଆରି କରିବାପାଇଁ ସୂତା କଟା ହୋଇ ମୋଡ଼ା ହୋଇଥିବା ପଇତା ସୂତାର ଦୁଇପଟ ବା ଦୁଇଟି ମୋଡ଼ା, (ସଂ-ସଂଘଟ୍ଟ)ଏକାଥରକେ ଚଡ଼ାଗ୍ନିରେ ମୁହାଁଯିବା କାଷ୍ଠଖଣ୍ଡମାନ, ମାଛମଞ୍ଜିର ଦୁଇଟି ନୋଳା ।
ସଙ୍ଘାଡ଼ିବା—ଗ୍ରା. କ୍ରି. (ସଂ-ସଙ୍ଘଟ୍ଟ) ବହୁ ପଦାର୍ଥକୁ ବା ବହୁଉପାଦାନକୁ ଏକତ୍ର ମିଶ୍ରିତ କରିବା,ଛାଣକୁ ଘୋରିବା ବା ଘାଣ୍ଟିବା, ଗାଈକୁ ସୁଧାରିବା ।
ସଙ୍ଘାତ—ବି. ସଙ୍ଘାତ ଦେଖ ।
ସଙ୍ଘୁଷିତ—ବିଂ. ସଙ୍ଘୁଷିତ ଦେଖ ।
ସଙ୍ଘୁଷ୍ଟ—ବିଂ.ସଂଘୁଷ୍ଟ ଦେଖ ।
ସଙ୍ଘୃଷ୍ଟ—ବିଂ. ସଂଘୃଷ୍ଟ ଦେଖ ।
ସଚକିତ—ବିଂ.(ସ+ଚକିତ,ବ.ବ୍ରୀ)ତ୍ରସ୍ତ ଆଶ୍ଚର୍ଯ୍ୟାନ୍ୱିତ,ସାବଧାନ,ଜାଗ୍ରତ,ଭୀରୁ ।
ସଚକିତନୟନ—ପୁଂ.ବିଂ.(ବ.ବ୍ରୀ)ସଭୟ ଦୃଷ୍ଟି,ଯାହାର ନୟନ ଭୟଯୁକ୍ତହୋଇଥାଏ, (ସ୍ତ୍ରୀ) ସଚକିତନୟନା ।
ସଚଞ୍ଚଳ—ବିଂ.(ବ.ବ୍ରୀ)ବାୟୁଯୁକ୍ତ,ପବନଯୁକ୍ତ, (ଗ୍ରା.ବିଂ) ଚଞ୍ଚଳ ।
ସଚନ୍ଦ—ବିଂ. ଚନ୍ଦସହିତ, ଚନ୍ଦସହିତ ବର୍ତ୍ତିମାନ ।
ସଚକ୍ରୀ—ପୁଂ. ବିଂ. ରଥଚାଳକ ।
ସଚକ୍ଷୁଃ—ପୁଂ. ବିଂ. ଚକ୍ଷୁଷ୍ମାନ୍ ।
ସଚଥ—ପୁଂ. ବି. ସଚନ, ଯାଗାସହାୟ୍ୟକରଣ ।
ସଚଥ୍ୟ—ବି. ସବ, ସକଳ ।
ସଚନ—ବି. ସେବନ ।
ସଚନ୍ଦନ—ବିଂ.(ବ.ବ୍ରୀ)ଚନ୍ଦନାକ୍ତ,ଚନ୍ଦନମିଶ୍ରିତ ।
ସଚରାଚର—ବିଂ. (ବ.ବ୍ରୀ) ସ୍ଥାବରସ୍ଥାବର ସହିତ ବର୍ତ୍ତିମାନ, ସ୍ଥାବର ଓ ଜଙ୍ଗମ ଯୁକ୍ତ(ପୃଥିବୀ),(ସ୍ତ୍ରୀ) ସଚରାଚରା,(ଗ୍ରା.ବିଂ) ସମସ୍ତ,ସମଗ୍ର,ଜଗତରେ ସର୍ବତ୍ର ଦେଖାଯିବା, (ସ୍ତ୍ରୀ.ବି) ବିଶ୍ୱସୃଷ୍ଟି ବ୍ରହ୍ମାଣ୍ଡ, ସୃଷ୍ଟ ସମସ୍ତ ପଦାର୍ଥ, (ଗ୍ରା.କ୍ରି.ବିଂ)ସାଧାରଣତଃ,ଏହି ପୃଥିବୀରେ,ଏହି ସୃଷ୍ଟିରେ ।
ସଚଳ—ବିଂ. ( ସହ+ଚଳ ) ବ.ବ୍ରୀ; ଚଳନଶୀଳ,ଗତିଶକ୍ତିଯୁକ୍ତ,ଅସ୍ଥିର,ଚଞ୍ଚଳ, (ଗ୍ରା.ବିଂ) ସଙ୍ଗତିସମ୍ପନ୍ନ (ଅବସ୍ଥା) ।
ସଚଳଜାତି—ଗ୍ରା. ବି. ପାଣିଛୁଆଁ ଜାତି, ଉଚ୍ଚ ଜାତି ।
ସଚଳଲବଣ—ଗ୍ରା. ବି. (ସଂ-ସୌବର୍ଚ୍ଚଳ ଲବଣ) ପଞ୍ଚଲବଣ ମଧ୍ୟରୁ ଏକତମ ।
ସଚା—ସ୍ତ୍ରୀ. ବି. ସଖା, ମିତ୍ର, ( ଗ୍ରା.ବିଂ ) ଠିକ୍, ଯଥାର୍ଥ, ଅକୃତ୍ରିମ, ଖାଣ୍ଟି, (ଗ୍ରା. ବି ଓ ବିଂ) ସଚ୍ଚା ଦେଖ ।
ସଚାଭୂ-ବିଂ.ଆମ୍ଭମାନଙ୍କ ସହିତ ଅବସ୍ଥିତ ।
ସଚି(ଚୀ)—ସ୍ତ୍ରୀ. ବି. ( ସଚ୍+ଇ,ଈ ) ଶଚୀ, ଇନ୍ଦ୍ରାଣୀ ।
ସଚିତ୍—ବିଂ. ଜ୍ଞାନଯୁକ୍ତ,ଚୈତନ୍ୟଯୁକ୍ତ ।
ସଚିତ୍କ—ବିଂ. ଚୈତନ୍ୟାଧିଷ୍ଠିତ ।
ସଚିତ୍ତ— ପୁଂ. ବିଂ. ଏକଚିତ୍ତବିଶିଷ୍ଟ, ଏକମନା
ସଚିହ୍ନ—ବିଂ. ( ବ.ବ୍ରୀ ) ଚିହ୍ନସହ ଯୁକ୍ତ, ପ୍ରତିକୃତିସମନ୍ୱିତ, (ସ୍ତ୍ରୀ) ସଚିହ୍ନା ।
ସଚନ୍ଦ୍ର—ପୁଂ. ବିଂ. (ବ.ବ୍ରୀ) ଚନ୍ଦ୍ରଯୁକ୍ତ,

ଭାବିତ, ଭାବନାଯୁକ୍ତ ।
ସଚକ୍ରିତ—ଗ୍ରା. ବି°. ସଚକ୍ର ଦେଖ ।
ସଚକ୍ଷୁକ—ବି°.(ବ.ବ୍ରୀ) କ୍ଳାନ୍ତଚକ୍ଷୁବିଶିଷ୍ଟ, ଚଲାଆଖିଆ, (ବି) କ୍ଳାନ୍ତଚକ୍ଷୁ ।
ସଚିବ—ପୁଂ. ବ. (ସଚ୍‌+ଇବ) ମନ୍ତ୍ରୀ, ଅମାତ୍ୟ, ସହାୟ, ପରାମର୍ଶୀ, ସଙ୍ଗୀ, ସାହାଯ୍ୟକାରୀ ବ୍ୟକ୍ତି,କୃଷ୍ଣଧୂସ୍ତୁର,କଳାଦୁଦୁରା ।
ସଚିବାମୟ—ବ. ବିସର୍ପରୋଗ ।
ସଚୀ—ସ୍ତ୍ରୀ.ବ. ଇନ୍ଦ୍ରାଣୀ, ଦେବରାଜପତ୍ନୀ, (ଗ୍ରା.ବ)ଶ୍ରୀ ଚୈତନ୍ୟଦେବଙ୍କର ମାତା ।
ସଚୀନନ୍ଦନ—ପୁଂ.ବ. ଜୟନ୍ତ,ଇନ୍ଦ୍ରସୁତ, ଶ୍ରୀ ଚୈତନ୍ୟଦେବ ।
ସଚେତ୍—ଗ୍ରା. ବି°. ଅନିଦ୍ରିତ, ଜାଗ୍ରତ୍, ଚେଇଁଥିବା,ଚେତାଳ,ହୁସିଆର,ସଜ୍ଞାନ, ପୁନଃଚେତନାପ୍ରାପ୍ତ ।
ସଚେତନ—ପୁଂ.ବି°. (ସହ+ଚେତନା) ଚେତନାଯୁକ୍ତ, ଚେତନାବିଶିଷ୍ଟ, ସଜ୍ଞାନ. ସଜୀବ, ଜୀବନ୍ତ, ହୁସିଆର, ସତର୍କ ।
ସଚେଲ—ପୁଂ. ବି°. ( ସହ+ଚେଲ ) ବ.ବ୍ରୀ; ପରିହିତବସ୍ତ୍ର, ସବସ୍ତ୍ର ।
ସଚେଲସ୍ନାନ—ବ. ସବସ୍ତ୍ରସ୍ନାନ, ଲୁଗା ପିନ୍ଧିଥାଇ ଗାଧୋଇବା ।
ସଚେଷ୍ଟ—ପୁଂ. ବି°. ( ସହ+ଚେଷ୍ଟା ) ବ.ବ୍ରୀ; ଚେଷ୍ଟାଯୁକ୍ତ, ଉଦ୍ୟୋଗୀ, (ବି) ଆମ୍ବ ।
ସଚ୍ଚୋଟ୍(ଟ)—ଗ୍ରା. ପୁଂ. ଓ ସ୍ତ୍ରୀ. ବି°. (ସଂ-ସତ୍) ସାଧୁ, ସତ୍, ପ୍ରଭୁଭକ୍ତ, (ସଂ-ସତ୍ୟ) ସତ୍ୟବାଦୀ, (ସ୍ତ୍ରୀ) ସତୀ, ( ବି ) ସଚ୍ଚାପଣ ।
ସଚ୍ଚୋଟ୍‌ପଣ—ଗ୍ରା. ବ. ସତ୍ୟବାଦିତା, ସାଧୁତା, (ଅନ୍ୟରୂପ) ସଚ୍ଚୋଟ୍‌ପଣିଆଁ ।
ସଚ୍ଚା—ଗ୍ରା. ପୁଂ. ବି°. ସଚ୍ଚୋଟ୍ ଦେଖ, ଅସଲ, ଖାଣ୍ଟି, ପ୍ରକୃତ, (ବି)ସଚ୍ଚାପଣ ।
ସଚ୍ଚରିତ—କ୍ଲୀ. ବ.ସଚ୍ଚରିତ୍ର,ସଦାଚରଣ, (ବି°) ଉତ୍ତମ ଚରିତ୍ରବିଶିଷ୍ଟ ।
ସଚ୍ଚରିତ୍ର—ବି°. (ବ.ବ୍ରୀ) ସୁଶୀଳ, ସତ୍‌ସ୍ୱଭାବ, ସଦାଚାରପରାୟଣ ।
ସଚ୍ଚର୍ଯ୍ୟା—ସ୍ତ୍ରୀ.ବ. ଉତ୍ତମ ଆଚରଣ,ସାଧୁଆଚରଣ ।
ସଚ୍ଚାର—ପୁଂ. ବି°. ଧର୍ମଉପଶରକ୍ଷକ ।
ସଚ୍ଚାରା—ସ୍ତ୍ରୀ. ବ. (ସତ୍+ଚର୍+ଆ) ହଳଦୀ, ହରିଦ୍ରା ।
ସଚ୍ଚିତ୍—କ୍ଲୀ. ବ. ନିତ୍ୟଜ୍ଞାନସ୍ୱରୂପ ବ୍ରହ୍ମ, ପରଂବ୍ରହ୍ମ ।
ସଚ୍ଚିଦଂଶ—ପୁଂ. ବ. ବୁଦ୍ଧି, ଜ୍ଞାନ ।
ସଚ୍ଚିଦାନନ୍ଦ—ପୁଂ. ବ. (ସତ୍+ଚିତ୍+ ଆନନ୍ଦ) ନିତ୍ୟଜ୍ଞାନ ସୁଖସ୍ୱରୂପ, ବ୍ରହ୍ମ, ପରମେଶ୍ୱର ।
ସଚ୍ଚିଦାନନ୍ଦତ୍ରିଭୁବନଦେବ—ଗ୍ରା. ବ. ବାମଣ୍ଡାରାଜ୍ୟର ସ୍ୱନାମଧନ୍ୟ ସ୍ୱର୍ଗୀୟ ରାଜା । [ଭାବନା ।
ସଚ୍ଚିନ୍ତା—ସ୍ତ୍ରୀ. ବ. ସାଧୁଚିନ୍ତା,ସଦ୍‌ବିଷୟ
ସଚ୍ଚିନ୍ମୟ—ପୁଂ. ବି°. (ସଚ୍ଚିତ୍+ମୟ) ସତ୍ ଓ ଚୈତନ୍ୟ ସ୍ୱରୂପ ।
ସଚ୍ଚୀ—ଗ୍ରା. ସ୍ତ୍ରୀ. ବି°. (ସଂ-ସତୀ) ସାଧ୍ୱୀ, ସତୀ,ସତ୍ୟବାଦୀନୀ,(ଗ୍ରା.ବ) ସଚ୍ଚୋଟ୍‌ପଣ ।
ସଚ୍ଛ—ଗ୍ରା. ବି°. ସ୍ୱଚ୍ଛ, କଳୁଷ ବା ଅସନ୍ତୋଷରହିତ, (ବି) ମନର ସ୍ୱଚ୍ଛତା ।
ସଚ୍ଛଳ—ଗ୍ରା. ବି°. ସଙ୍ଗତସମ୍ପନ୍ନ, ଧନୀ, ବ୍ୟୟୀ, ଦାନଶୀଳ, ଦାତା ।
ସଚ୍ଛାତ୍ର—ବ.ଭକ୍ତିଯୁକ୍ତ ଆଜ୍ଞାବହ କର୍ତ୍ତବ୍ୟପରାୟଣ ଓ ସଦାଚରଣ ଶିଷ୍ୟ ।
ସଚ୍ଛିଦ୍ର—ବି°. ଛିଦ୍ରଯୁକ୍ତ, ରନ୍ଧ୍ରବିଶିଷ୍ଟ, ଫୋଡ଼ ଥିବା ।
ସଚ୍ଛୂଦ୍ର—ବ. (ସତ୍+ଶୂଦ୍ର)ନବଶାକ ।
ସଜ—ଗ୍ରା. ବି°. (ସଂ-ସଦ୍ୟ) ନୂଆ, ଯାହା ବାସି ନୁହେ, ସଜ୍ଜିତ, ଭୂଷିତ, ସୁସାଧ୍ୟ, ଏକାଦିନକରେ ଧୋବ କରାଯାଇଥିବା (ଲୁଗା),(ବି)ଶିଳ୍ପିଯନ୍ତ୍ର,କାରିଗରର ଯନ୍ତ୍ରଚୟ, ବ୍ୟବସାୟୀର ସାଧନ, ପସରା, ଉପକରଣ, ପୁସ୍ତକାଦିର ଏକ ସାର, ସୁବିଧା, ସୁଯୋଗ, ଦାଢ଼ ଅଶ୍ୱସଜ୍ଜା, ଅଳଙ୍କାରସମୂହ, ବେଶ, କଷିତାଳ ମଧ୍ୟରେ ଥିବା କୋମଳ ପଦାର୍ଥ, କଷିତାଳ, ସହଜ ବିଷୟ, ଅବସ୍ଥା ।
ସଜଅସଜ—ଗ୍ରା.ବ. ସୁବିଧା ଓ ଅସୁବିଧା, ସୁଯୋଗ ଓ ଦୁର୍ଯୋଗ, ଖଞ୍ଜ ଓ ଅଖଞ୍ଜ, (ବି°) ସୁବିଧାଜନକ ଓ ଅସୁବିଧାଜନକ, ସହଜ ଓ କଷ୍ଟ ।
ସଜଉଠା(ଠେ)ଇବା—ଗ୍ରା. କ୍ରି. ଦଶହରା ଦିନ ସୁନାରବଣିଆଁ ଓ ଭଣ୍ଡାରି ଆଦିମାନେ ପୂଜାକରିବା ପାଇଁ ବସାଇଥିବା ତାଙ୍କର ଯନ୍ତ୍ରାଦିକୁ ପୂଜା ପୀଠରୁ ଉଠାଇବା ।
ସଜଉଣ୍ଡିବା-ଗ୍ରା.କ୍ରି.ଖଞ୍ଜ ଉଣ୍ଡିବା,କୌଣସି କାର୍ଯ୍ୟ କରିବାପାଇଁ ଉପଯୁକ୍ତ ସୁଯୋଗ ଖୋଜିବା ।
ସଜକରିବା—ଗ୍ରା. କ୍ରି. ସଜ୍ଜିତ କରିବା, ଅଳଂକାରାଦି ଦ୍ୱାରା ବେଶ କରିବା ।
ସଜକ୍ରିୟା—ଗ୍ରା.ବ. (ସଦ୍ୟଃକ୍ରିୟାଶଦେଇ) ମୃତଦିନଠାରୁ ଦଶଦିନ ପର୍ଯ୍ୟନ୍ତ ପ୍ରତିଦିନ କରାଯିବା ପ୍ରେତ କର୍ମ ।
ସଜଗଜ—ଗ୍ରା. ବ ଓ ବି°. ସୁସଜ୍ଜିତ, ସାଜସଜ୍ଜା, କାର୍ଯ୍ୟସାଧନ ଯନ୍ତ୍ରାଦି, (ପ୍ରା. ଯାଜ) ରଜର ପୂର୍ବଦିନ ।
ସଜଗୋବର—ଗ୍ରା.ବ(ସଂ-ସଦ୍ୟଗୋମୟ) ସଦ୍ୟୋଜାତ ଗୋମୟ ।
ସଜଡ଼ା—ଗ୍ରା. ବ. (ସଂ-ସଜ୍ଜା) ସଜାଡ଼ିବା କ୍ରିୟା, ସଜ୍ଜିତକରିବା, ମରାମତକରିବା, (ବି°) ମରାମତ ହୋଇଥିବା, ସୁସଜ୍ଜିତ, ନିର୍ଦ୍ଦୋଷୀକୃତ ।
ସଜଡ଼ା(ଡେ)ଇବା—ଗ୍ରା.କ୍ରି.ସଜାଡ଼ିବାର ଣିଜନ୍ତ ରୂପ, ଅନ୍ୟ ଦ୍ୱାରା ମରାମତ କରାଇବା ।
ସଜଡ଼ାସଜଡ଼ି—ଗ୍ରା. ବ. ମରାମତ, ସଜ୍ଜିତ କରିବା କର୍ମ ।
ସଜଡ଼ାହେବା—ଗ୍ରା.କ୍ରି, ମରାମତହେବା, ସଜ୍ଜିତହେବା ।
ସଜତୋଡ଼ାଣି—ଗ୍ରା. ବ. (ସଂ-ସଦ୍ୟଃ+ ତୋୟାନ୍ନ) ସଜ ପଖାଳର ତୋରାଣି ।
ସଜନ—ବି°. ଜନଯୁକ୍ତ, ଲୋକବିଶିଷ୍ଟ, ଲୋକସମନ୍ୱିତ ।
ସଜନପଦ—ବି°. ଜନପଦର ସହିତ ବର୍ତ୍ତମାନ, ଦେଶଯୁକ୍ତ ।
ସଜନା—ଗ୍ରା. ବ. କେନାଗଛ ।
ସଜନତ—ଗ୍ରା. ବି°. ସଜାତ ।

ସଜନ୍ମା—ଗ୍ରା.ସ୍ତ୍ରୀ. ବି. ବୟସ୍ୟା, ସହଚରୀ, ସଖୀ, ମିତ୍ରସ୍ଥାନୀୟା (ସ୍ତ୍ରୀ), ପ୍ରଣୟିନୀ, ପ୍ରେମିକା, ସ୍ତ୍ରୀ, ଭାର୍ଯ୍ୟା, ନାରୀ ।

ସଜନୀୟ—ବିଂ.ଲୋକପ୍ରସିଦ୍ଧ, ଶସ୍ୟମାନ ।

ସଜନୁ--ବିଂ.ସରଳ ଭାବରେ ଦଣ୍ଡାୟମାନ

ସଜନ୍ୟ—ବିଂ.ସମ୍ପର୍କଯୁକ୍ତ, ଆତ୍ମସଂଶ୍ଳିଷ୍ଟ, ସଜନୀୟ ।

ସଜପଖାଳ—ଗ୍ରା. ବି. ରନ୍ଧାଯାଇଥିବା ଭାତରେ ସାଙ୍ଗେ ସାଙ୍ଗେ ପାଣି ମିଶାଯାଇଥିବା ପଖାଳ ।

ସଜପଡିବା—ଗ୍ରା.ବି.ସୁବିଧାହେବା, ଖଞ୍ଜିପଡିବା, ସୁଯୋଗ ଘଟିବା ।

ସଜବସା(ସେ)ଇବା—ଗ୍ରା. କ୍ରି. ଦଶହରା ଦୋଳପୂର୍ଣ୍ଣିମାଆଦି ପର୍ବରେ ଜନନନର ଜୀବିକାସାଧନ ଦ୍ରବ୍ୟ ଓ ଯନ୍ତ୍ରାଦିର ପୂଜା

ସଜବସିବା—ଗ୍ରା. ବି. ଶିଳ୍ପୀଆଦିଙ୍କ ଯନ୍ତ୍ର ଓ ଉପକରଣାଦି ଯଥୋପଯୁକ୍ତ ଉତ୍ସବ ଉପଲକ୍ଷରେ ପୀଠ ଉପରେ ପୂଜାର୍ଥ ସ୍ଥାପିତ ହେବା ।

ସଜବାଜ—ଗ୍ରା. ବିଂ. କୌଣସି କାର୍ଯ୍ୟ ପାଇଁ ବେଶ ହୋଇ ପ୍ରସ୍ତୁତ ହୋଇଥିବା, ସୁସଜ୍ଜିତ, ଅଲଂକାରାଦି ଦ୍ୱାରା ସୁସଜ୍ଜିତ, (ଗ୍ରା.ବି) ସାଜସଜ୍ଜା, କାର୍ଯ୍ୟ ସାଧନ ଯନ୍ତ୍ରାଦି, ଅଲଙ୍କାର ଦ୍ୱାରା ସଜ୍ଜା, (ପ୍ରା.ଯାଜପୁର.ବି) ରଜର ପୂର୍ବଦିନ ।

ସଜମଡ଼ା—ଗ୍ରା. ବି. ସଦ୍ୟୋମୃତ ଜୀବର ଶବ ।

ସଜମାଉଁସ—ଗ୍ରା.ବି. ସଦ୍ୟୋମୃତ ଜୀବର ମାଂସ (ଯାହା ସଡ଼ି ଯାଇ ନଥାଏ) ।

ସଜମାଉଁସରେ ଅଂଶେଇପକା(କେ)ଇବା--(ନ୍ୟାୟ). ଗ୍ରା.କ୍ରି. (ଲ.ଅର୍ଥ) ନିର୍ଦ୍ଦୋଷ ବା ନିଷ୍କଳଙ୍କ ବ୍ୟକ୍ତିଠାରେ କଳଙ୍କାରୋପ କରିବା ।

ସଜମ୍ବାଳ—ବିଂ. (ସ+ଜମ୍ବାଳ) ବ.ବ୍ରୀ; ପଙ୍କିଳ ।

ସଜରସ—ଗ୍ରା. ବି. (ସଂ-ସର୍ଜରସ)ଝୁଣା ।

ସଜଳ—ପୁଂ. ବିଂ. (ସ+ଜଳ) ବ.ବ୍ରୀ; ଜଳଯୁକ୍ତ, ଜଳପୂର୍ଣ୍ଣ, ଆର୍ଦ୍ର,(ସ୍ତ୍ରୀ)ସଜଳା

ସଜଳନୟନ—ବି. (କ.ଧା) ଲୋତକାର୍ଦ୍ର ନେତ୍ର, ଲୋତକପୂର୍ଣ୍ଣ ଚକ୍ଷୁଃ, (ପୁଂ.ବିଂ. ବ.ବ୍ରୀ) ଅଶ୍ରୁପୂର୍ଣ୍ଣ ନେତ୍ରଯୁକ୍ତ (ବ୍ୟକ୍ତି), (ସ୍ତ୍ରୀ) ସଜଳନୟନା ।

ସଜଳନୟନେ—କ୍ରି.ବିଂ.(ବ.ବ୍ରୀ)ସାଶ୍ରୁନେତ୍ରେ, ଲୋତକପୂର୍ଣ୍ଣ ଚକ୍ଷୁରେ ।

ସଜଳସ—ଗ୍ରା. ବି. (ସଂ-ସର୍ଜରସ)ଝୁଣା ।

ସଜଳସ୍ଥଳ-ବିଂ. (ସ+ଜଳସ୍ଥଳ)ବ.ବ୍ରୀ; ଜଳଭାଗ ଓ ସ୍ଥଳଭାଗ ସମନ୍ୱିତ(ପୃଥିବୀ)

ସଜସାଜ—ଗ୍ରା.ବି.(ସଂ-ସଜ୍ଜା)ସାଜସଜ୍ଜା ।

ସଜହୁ(ହେ)ବା—ଗ୍ରା. କ୍ରି. (ସଂ-ସଜ୍ଜିତ) ସଜ୍ଜିତହେବା, କୌଣସି କାର୍ଯ୍ୟ କରିବାକୁ ପ୍ରସ୍ତୁତ ହେବା, ବେଶଭୂଷାଦି ଦ୍ୱାରା ଅଲଂକୃତ ହେବା, ସୁବିଧାଜନକ ହେବା ।

ସଜା—ଗ୍ରା. ବି. (ସଂ-ସଜ୍ଜା)ସଜ୍ଜିତକରଣ, (ଯା.ବି) କଇଦ, ଦଣ୍ଡ, ଶାସ୍ତି,(ଗ୍ରା.ବିଂ) ସଜ୍ଜିତ, ମିଥ୍ୟା ପ୍ରମାଣ ଦ୍ୱାରା ରଚିତ (ମକଦ୍ଦମା), (ପ୍ରା.ବାଲେ.ବି) ବସାଦହି କରିବା ନିମନ୍ତେ ଆଉଟା ଦୁଧରେ ମିଶାଇ ଦଆଯିବା ମହି ।

ସଜା(ଜେ)ଇବା—ଗ୍ରା.କ୍ରି.ସଜ୍ଜିତକରିବା, ସୁସଜ୍ଜିତକରିବା, ଅନ୍ୟ ବ୍ୟକ୍ତିକୁ ବେଶ କରିବା ।

ସଜାଗ—ବିଂ.ଈଷତ୍ ନିଦ୍ରାଯୁକ୍ତ, ଜାଗ୍ରତ, ଅନିଦ୍ରିତ, ସତର୍କ ।

ସଜାଗର-ବିଂ.ଜାଗରଣ ସହିତ ବର୍ତ୍ତମାନ

ସଜାଡ଼—ଗ୍ରା.ବିଂ. (ସଂ-ସଜ୍ଜିତ) ସୁସଜ୍ଜିତ, ସୁବିଧାଜନକ, ଜୀର୍ଣ୍ଣସଂସ୍କୃତ, ପୂର୍ବାବସ୍ଥାପ୍ରାପ୍ତ, (ଗ୍ରା. ବି-ସଂ-ସଜ୍ଜା) ସଜ୍ଜିତ ଅବସ୍ଥା, ଜୀର୍ଣ୍ଣ ସଂସ୍କୃତଅବସ୍ଥା,ଆରୋଗ୍ୟ, ଡ଼ାଲି, ସଞ୍ଚା, ଯଥାଯୋଗ୍ୟ ସଜ୍ଜା,ଯତ୍ନ, ପରିଷ୍କୃତ ଓ ପରିଚ୍ଛନ୍ନ ଅବସ୍ଥା, ଉପଯୁକ୍ତ ବା ସୁବିଧାଯୁକ୍ତ ଅବସ୍ଥା ।

ସଜାଡ଼ିଆ—ଗ୍ରା.ବିଂ.(ସଂ-ସଜ୍ଜିତ)ସୁସଜ୍ଜିତ, ଜୀର୍ଣ୍ଣ ସଂସ୍କୃତ, ଆରୋଗ୍ୟପ୍ରାପ୍ତ, ସୁବିଧାଜନକ, ଯେ ସଜାଡ଼େ ।

ସଜାଡ଼ିବା—ଗ୍ରା. କ୍ରି. ( ସଂ-ସସଜ୍ଧାତୁ ) ସଜ୍ଜିତକରିବା, ସୁସଜ୍ଜିତକରିବା,ନିର୍ମାଣ କରିବା,ସର୍ଜନାକରିବା, ମରାମତକରିବା, ସୁବନ୍ଦୋବସ୍ତ କରିବା,ଯତ୍ନପୂର୍ବକ କୌଣସି କାର୍ଯ୍ୟ କରିବା ।

ସଜାତ—ବିଂ. ସମାନଜନ୍ମା, ଜ୍ଞାତିଭାଇ ବାନ୍ଧବ ।

ସଜାତି—ବିଂ. (ସ+ଜାତି)ସମଶ୍ରେଣୀୟ, ସମାନ ଜାତିବିଶିଷ୍ଟ, (ବି.କ.ଧା) ସମାନ ଶ୍ରେଣୀ,ଏକଜାତି,ଏକଜାତୀୟ ସ୍ତ୍ରୀପୁରୁଷଙ୍କ ସନ୍ତାନ ।

ସଜାତୀୟ-ବିଂ(ସ+ଜାତୀୟ)ଏକଜାତୀୟ, ସମାନ ଜାତୀୟ, ସବର୍ଣ୍ଣ, ଏକବିଧ,ଏକ ଧର୍ମାକ୍ରାନ୍ତ,ସଦୃଶ, ତୁଲ୍ୟ,(ସ୍ତ୍ରୀ)ଜାତୀୟା ।

ସଜାୟ—ବିଂ. ଜାୟା ସହିତ ବର୍ତ୍ତମାନ, ସସ୍ତ୍ରୀକ ।

ସଜାର—ପ୍ରା. (ସିଂହ) ବି. ସାଜଦାର, ଭାଗୁଆଳୀ ।

ସଜାରୁ—ଗ୍ରା.ବି. (ସଂ-ଶଲ୍ଲକୀ)ଝିଙ୍କ ।

ସଜାହୁକୁମ—ଗ୍ରା. ବି. ଦଣ୍ଡାଜ୍ଞା, ଜେଲ୍ ଯିବାର ହୁକୁମ ।

ସଜିଆ—ଗ୍ରା.ବିଂ(ସଂ-ସଜ୍ଜା)ସୁବିଧାଜନକ, ସହଜ ।

ସଜିଲ୍(ଲ,ଲ)—ଗ୍ରା. ବିଂ. (ସଂ-ସଜ୍ଜିତ) ସୁସଜ୍ଜିତ, ପ୍ରସ୍ତୁତ, ଉଦ୍ୟତ, ଆୟୋଜିତ, ସୁବିଧାଜନକ, ସଂଗୃହୀତ, ସୁଯୋଗଯୁକ୍ତ, (ଗ୍ରା.ବି) ସୁବିଧା, ସଜ, ସୁଯୋଗ, ସୁସଜ୍ଜିତ ଅବସ୍ଥା,ବନ୍ଦୋବସ୍ତ, ଯୋଗାଡ଼, ଉପକରଣର ସଂଗ୍ରହ ।

ସଜିଲ୍ହେବା--ଗ୍ରା.କ୍ରି.(ଧନଆଦି)ଆୟୋଜିତହେବା, ବନ୍ଦୋବସ୍ତ ହେବା, କୌଣସି କାର୍ଯ୍ୟ କରିବାକୁ ପ୍ରସ୍ତୁତ ହେବା, ସୁବିଧାଜନକ ହେବା ।

ସଜିଲ୍ସାଜିଲ୍—ଗ୍ରା. ବି. ବନ୍ଦୋବସ୍ତ, ଯୋଗାଡ଼ ।

ସଜୀବ—ବିଂ.(ସ+ଜୀବ)ବ.ବ୍ରୀ; ଜୀବନ୍ତ, ସଚେତନ, (ଲ.ଅର୍ଥ)ତାଜା,ସତେଜ ।

ସଜୀବତା(ତ୍ୱ)--ବି.ସଚେତନତ୍ୱ, ତେଜସ୍ୱୀ ଭାବ, ତେଜଃ ।

ସଜୁଆଣୀକଦଳୀ—ଗ୍ରା.ବି.ଯେଉଁ କଦଳୀ ଅତି କଷି ନୁହେଁ କିମ୍ବା ଅତି ପାଚିଲା ନୁହେ ।

ସଜୂଃ—ଅ. (ସହ + ଜୁଷ୍ + କ୍ୱିପ୍) ସହ, ସହିତ ।

ସଜୁଷ୍—ବି°. (ସ+ଜୁଷ୍+କ୍ୱିପ୍)ପ୍ରୀତି-ଯୁକ୍ତ, ସେବାକାରୀ, (ବି) ତାପସ ।

ସଜୂ(ଜ୍ୱ)ସ୍—ଅ. (ସହ+ଜୁଷ୍+କ.କ୍ୱିପ୍) ସହ, ସହିତ ।

ସଜେ—ଗ୍ରା. ବି. ବି°. ଏକସାର ମାନ ।

ସଜେଇବା—ଗ୍ରା. ବି.ସଜାଇବା ଦେଖ ।

ସଜୋର—ଗ୍ରା. ବି°. ବଳୁଆ, ( ଗ୍ରା.କ୍ରି. ବି°) ବଳପୂର୍ବକ, ଜୋରକରି ।

ସଜୋଷ—ବି°. ସମାନ ପ୍ରୀତିଯୁକ୍ତ ।

ସଜୋଷଣ—ବି. ପରସ୍ପର ଅଭ୍ୟସ୍ତ ପ୍ରୀତି ବା ଆନନ୍ଦାଳାପ ।

ସଜ୍ଜ—ବି°. ( ସସଜ୍ + କ.ଅ ) ସଜ୍ଜିତ, ଭୂଷିତ, ପ୍ରସ୍ତୁତ, ଉଦ୍ୟତ, ସନ୍ନଦ୍ଧ,ସାଞ୍ଜୁ ପିନ୍ଧିଥିବା, ପ୍ରାଚୀରାଦି ଦ୍ୱାରା ସୁରକ୍ଷିତ, ସମ୍ଭୂତ, ନିଭୃତ, (ସ୍ତ୍ରୀ) ସଜ୍ଜା

ସଜ୍ଜକ—ବି°. (ସଜ୍ଜ+କ) ସଜ୍ଜ ଦେଖ ।

ସଜ୍ଜନମ—ବି°. (ସଜ୍ଜ+ନମ) ପ୍ରସ୍ତୁତ, ସଜ୍ଜିତ ।

ସଜ୍ଜନ—ବି°. (କ.ଧା,ସତ୍ + ଜନ)ସନ୍ଥ, ସାଧୁ, ସୁଜନ, ସଚ୍ଚରିତ୍ର, ସୁଜାତ, ସତ୍-କୁଳୋଦ୍ଭବ, (ବି) ସାଧୁବ୍ୟକ୍ତି, ସଚ୍ଚରିତ୍ର ବ୍ୟକ୍ତି,(ସସ୍ଜ୍+ଭା.ଅନ)ସଜ୍ଜନାଦେଖ

ସଜ୍ଜନା—ବି. (ସସ୍ଜ୍+ଭା.ଅନ+ଆ) ସଜ୍ଜନ, ସଜ୍ଜୀକରଣ, ସାଜସଜ୍ଜା, ରକ୍ଷୀ ସୈନ୍ୟଙ୍କ ଅବସ୍ଥିତ ସ୍ଥାନ,ଚୌକି,ଥାନା, ଘାଟ,ବିପଦସଙ୍କୁଳ ସ୍ଥାନମାନଙ୍କରେ ପ୍ରହରୀ ବିନ୍ୟାସ, ବନ୍ଦର, ଯୁଦ୍ଧପାଇଁ ସୈନ୍ୟ ସ୍ଥାପନ,ସଜ,ବେଶ,ପୋଷାକ, ଘରର ଅସବାବ ପତ୍ର, ଅଳଂକରଣ, ଆୟୋଜନ,ବନ୍ଦୋବସ୍ତ, ବେଶକରିବା, ଘୋଡ଼ାକୁ ସଜାଇବା,ହାତୀକୁ ସଜାଇବା

ସଜ୍ଜନତ—ବି°. ( ସତ୍ + ଜନ + ମି.ତ ) ଉତ୍ତମରୂପେ ପ୍ରସୂତ,ସାଧୁତାଜନିତ ।

ସଜ୍ଜା—ବି. (ସସ୍ଜ୍ + ଭା.ଅ + ଆ)ସାଜ, ବେଶଭୂଷା, ପୋଷାକ, ସନ୍ନାହ,ସାଞ୍ଜୁ, ଆୟୋଜନ, ସଜ୍ଜୀକୃତ ଅବସ୍ଥା ।

ସଜ୍ଜାଗୃହ—ବି. ବେଶଗୃହ, ସଜ୍ଜାହୋଇ-ଥିବା ଘର ।

ସଜ୍ଜିତ—ପୁଂ. ବି°. (ସଜ୍ଜା+ଇତ) ସଜ୍ଜୀ-କୃତ, ଭୂଷିତ, ବେଶପରିହିତ, ବର୍ମିତ, ସନ୍ନଦ୍ଧ,ଆୟୋଜିତ,ଉଦ୍ୟତ,ଉଦ୍ୟୁକ୍ତ, (ସ୍ତ୍ରୀ) ସଜ୍ଜିତା ।

ସଜ୍ଜୀକୃତ—ପୁଂ.ବି°. (ସଜ୍ଜା+ଚ୍ୱି + କୃତ ଯେ ପ୍ରଥମେ ଅସଜ୍ଜିତ ଥାଇ ପରେ ସଜ୍ଜିତ ହୁଏ, (ସ୍ତ୍ରୀ) ସଜ୍ଜୀକୃତା ।

ସଜ୍ଜୀଭୂତ—ବି°. ( ସଜ୍ଜା + ଚ୍ୱି +ଭୂତ ) ପୂର୍ବେ ସଜ୍ଜିତ ନଥାଇ ବର୍ତ୍ତମାନ ନିଜେ ଯେ ସଜ୍ଜିତ ହୋଇଥାଏ ।

ସଜ୍ଜୁଷ୍ଟ—ବି°. ଉତ୍ତମ ବିଧାଯୁକ୍ତ, ସୁଖ-ଦାୟକ ।

ସଜ୍ୱର—ପୁଂ. ବି°. (ସ+ଜ୍ୱର,ବ.ବ୍ରୀ) ଜ୍ୱରଯୁକ୍ତ, (ସ୍ତ୍ରୀ) ସଜ୍ୱରା ।

ସଜ୍ୟ—ବି°.(ସ + ଜ୍ୟା,ବ.ବ୍ରୀ)ଆରୋପିତ ମୌର୍ବୀକ, ଜ୍ୟାଯୁକ୍ତ, (ସ୍ତ୍ରୀ) ସଜ୍ୟା ।

ସଜ୍ୟୋତିଃ—ବି°.ସମାନ ଜ୍ୟୋତିଃ,ତୁଲ୍ୟ ଜ୍ୟୋତିବିଶିଷ୍ଟ ।

ସଞ୍ଜା—ଗ୍ରା. ବି. (ସଂ-ସ୍ୱାମୀ)ସାଇଁ,ସ୍ୱାମୀ, ପ୍ରଭୁ ।

ସଞ୍ଚ—ବି. (ସମ୍ + ଚ + ଅଧି.ଅ) ପୋଥି ବା ପୁସ୍ତକ ଲେଖିବାପାଇଁ ପ୍ରସ୍ତୁତ ପତ୍ର-ଚୟ,ପୋଥିର ଗ୍ରନ୍ଥ, (ଗ୍ରା.ବି,ସଂ-ସନ୍ଧି) ଦାଗ, ସଞ୍ଚା, ଚିହ୍ନ, ଗ୍ରନ୍ଥି, ଗଣ୍ଠି, (ସଂ-ସଜ୍ଜା) ଶୋଭା, ସୌନ୍ଦର୍ଯ୍ୟ, ସୁଢ଼ଳତା, (ଗ୍ରା.ବି°) ସୁନ୍ଦର, ସୁଢ଼ଳ, ସୁଠାମ ।

ସଞ୍ଚକ—ବି. ଛାପାଙ୍କିତ ମୁଦ୍ରାବିଶେଷ ।

ସଞ୍ଚଘଞ୍ଚ—ଗ୍ରା. ବି°. ସାନ୍ଦ୍ରଭାବରେ ପୃଥୁଳ ସୁନ୍ଦର ଓ ଘନ ।

ସଞ୍ଚତ୍—ବି°. ( ସମ୍+ଚ+କ.ଅତ୍ ) ପ୍ରତାରକ, ବଞ୍ଚକ, ଠକ, (ସ୍ତ୍ରୀ) ସଞ୍ଚତୀ ।

ସଞ୍ଚନ—ଗ୍ରା. ବି. (ସଂ-ସଞ୍ଚୟନ) ସଞ୍ଚୟ ଦେଖ ।

ସଞ୍ଚପ—ଗ୍ରା. ବି. (ସଂ-ସଂକ୍ଷେପ)ସଂକ୍ଷେପ ଦେଖ, (ଗ୍ରା.ବି°) ସଂକ୍ଷିପ୍ତ ଦେଖ ।

ସଞ୍ଚପିବା—ଗ୍ରା.କ୍ରି.(ସଂ-ସଂକ୍ଷେପ) ସଂକ୍ଷେପ କରିବା, (ସଂ-ସଞ୍ଚୟ) ସଞ୍ଚୟକରିବା, ସଂଗ୍ରହକରିବା, ଗଦାକରିବା ।

ସଞ୍ଚୟ—ବି. (ସମ୍+ଚି+ଭା.ଅ)ସମୂହ, ସଂଗ୍ରହ, ସଗୃହୀତ ବସ୍ତୁଚୟର ରାଶୀ-କରଣ, ରାଶି, ଗଦା, ରାଶୀକୃତ ଧନ, ଜମା, ପାଣ୍ଠି ।

ସଞ୍ଚୟକାରୀ—ପୁଂ. ବି°.(ସଞ୍ଚୟ+କୃ+କ.ଇନ୍) ଯେ ଜମା କରେ,(ସ୍ତ୍ରୀ)ସଞ୍ଚୟ-କାରିଣୀ ।

ସଞ୍ଚୟଗୃହ—ବି. (୬ତତ୍) ସଞ୍ଚୟ ବସ୍ତୁ ରଖିବା ଘର, ଭଣ୍ଡାର ।

ସଞ୍ଚୟନ—ବି. (ସମ୍+ଚି+ଭା.ଅନ ) ସଂଗ୍ରହ କରିବା, ରାଶୀକରଣ ।

ସଞ୍ଚୟନିରତ—ପୁଂ. ବି°. (୭ତତ୍) ଯେ ସର୍ବଦା ସଞ୍ଚୟ କରିବାରେ ଲାଗିଥାଏ, (ସ୍ତ୍ରୀ) ସଞ୍ଚୟନିରତା ।

ସଞ୍ଚୟନୀୟ—ବି°. (ସମ୍+ଚି+ଅନୀୟ) ସଂଗ୍ରାହ୍ୟ, ସଂଗ୍ରହୀତବ୍ୟ ।

ସଞ୍ଚୟବାନ୍—ପୁଂ. ବି°. (ସଞ୍ଚୟ+ବତ୍) ସଞ୍ଚୟବିଶିଷ୍ଟ, ସଞ୍ଚୟୀ,ଯେ ସଞ୍ଚୟକରେ ।

ସଞ୍ଚୟଶୀଳ—ପୁଂ. ବି°. (ବ.ବ୍ରୀ)ସଞ୍ଚୟୀ, ଯେ ସର୍ବଦା ସଞ୍ଚୟ କରେ,(ସ୍ତ୍ରୀ)ସଞ୍ଚୟ-ଶୀଳା ।

ସଞ୍ଚୟାକାଙ୍କ୍ଷା—ବି. (୬ ବା ୭ତତ୍)ସଞ୍ଚୟ କରିବାର ଇଚ୍ଛା ।

ସଞ୍ଚୟାଗାର—ବି.(୬ତତ୍)ଭଣ୍ଡାରଘର, ଗୋଦାମଘର ।

ସଞ୍ଚୟାର୍ଥୀ—ପୁଂ. ବି°. (ସଞ୍ଚୟ+ଅର୍ଥ+କ.ଇନ୍)ସଞ୍ଚୟ କରିବାପାଇଁ ଅଭିଳାଷୀ, (ସ୍ତ୍ରୀ) ସଞ୍ଚୟାର୍ଥିନୀ ।

ସଞ୍ଚୟିକ—ପୁଂ. ବି°. ସଞ୍ଚୟକାରୀ ।

ସଞ୍ଚୟିତ୍ୱ—ବି. ସଞ୍ଚୟ, ସଂଗ୍ରହ,ସଞ୍ଚୟୀର ଭାବ ବା ଧର୍ମ ।

ସଞ୍ଚୟୀ—ପୁଂ. ବି°. ( ସମ୍+ଚି+କ.ଇନ୍) ଯେ ସଞ୍ଚୟ କରେ,(ସ୍ତ୍ରୀ)ସଞ୍ଚୟିନୀ ।

ସଞ୍ଚର—ପୁଂ. ବି. (ସମ୍+ଚର୍+ଭା.ଅ) ଚଳନ, ଗମନ, ଏକସ୍ଥାନରୁ ଅନ୍ୟ-ସ୍ଥାନକୁ ଗମନ, ସ୍ପନ୍ଦନ, କମ୍ପନ, (+ଣ.ଅ) ଶଙ୍କ, ସେତୁ, ପୋଲ,ଅମ୍ବୁ-ପଥ, (+ଅଧି.ଅ)ପଥ, ଶରୀର,ଦେହ ।

ସଞ୍ଚରଣ—ବି. ( ସମ୍+ଚର୍+ଅନ )

ଗମନ, ଚଳନ, କମ୍ପନ, ପ୍ରସ୍ଥାନ ।

ସଞ୍ଚର(ରେ)ଇବା—ଗ୍ରା. କ୍ରି. ସଞ୍ଚରିବା କ୍ରିୟାର ଣିଜନ୍ତ ରୂପ, ଚାଳିତ କରିବା ।

ସଞ୍ଚରିତ—ବିଂ. (ସମ୍+ଚର୍+କ.ତ) ପ୍ରସ୍ଥିତ, ପ୍ରଚଳିତ, ଗତ ।

ସଞ୍ଚରିବା—ଗ୍ରା. କ୍ରି. ଗତିକରିବା, ବିଚରଣ କରିବା, ଭ୍ରମଣ କରିବା, (ପ୍ରେମ) ଝାଙ୍କୁଣିବା, (ଦେହରେ) ସଞ୍ଚାରିତ ହେବା, ଜାତ ହେବା, ଆବିର୍ଭୂତ ହେବା ।

ସଞ୍ଚରିଷ୍ଣୁ—ବିଂ. (ସମ୍+ଚର୍+କ.ଇଷ୍ଣୁ) ସଞ୍ଚରଣଶୀଳ, ଗତିଶୀଳ, ଭ୍ରମଣକାରୀ ।

ସଞ୍ଚରେଣ୍ୟ—ବିଂ. ଚତୁର୍ଦ୍ଦିଗରେ ସଞ୍ଚରଣକାରୀ ।

ସଞ୍ଚଳ—ବି. ସୌବର୍ଚ୍ଚଳ ଲବଣ, ସଚଳ [ ଲବଣ ।

ସଞ୍ଚଳନ—ବି. (ସମ୍+ଚଲ୍+ଭା.ଅନ) କମ୍ପନ, ଦୋଳନ, ପ୍ରଚଳନ, ଗତିକରିବା

ସଞ୍ଚଳନାଡ଼ୀ—ସ୍ତ୍ରୀ. ବି. ଧମନୀ ।

ସଞ୍ଚା—ଗ୍ରା. ବି. ଚିହ୍ନ, ଦାଗ, ଶୋଭା, ସୌନ୍ଦର୍ଯ୍ୟ, ରକ୍ତାଦିର ବିନ୍ଦୁ ବା ଦାଗ, ଛାଞ୍ଚ, ସାମଗ୍ରୀ, ଉପକରଣ, ଆଗନ୍ତୁକ, ଅତିଥି ଓ ବିଶିଷ୍ଟ ବ୍ୟକ୍ତିମାନଙ୍କୁ ଖାଦ୍ୟ ପଦାର୍ଥ ଦିଆଯିବା ଚାଉଳ, ଡାଲି ପରିବ ଆଦି ସାମଗ୍ରୀ, ସିଧା, ଖାଦ୍ୟ ସମ୍ଭାର, ସଂଗ୍ରହ, ସମଷ୍ଟି, ଏକତ୍ରୀକରଣ, ଗଦା, ବନ୍ଧେବସ୍ତ, ବ୍ୟବସ୍ଥାନ, ଛଞ୍ଚା, ଓଳିଆ ବାନ୍ଧିବା ଦଉଡ଼ି, (ଗ୍ରା.ବିଂ) ଦୃଢ଼, କଠିନ, ସଞ୍ଚୟଶୀଳ, କୃପଣ, (ବି) ସଞ୍ଚ ଦେଖ ।

ସଞ୍ଚାଣ—ଗ୍ରା. ବି. (ସଂ-ସଞ୍ଚୟନ) ସଞ୍ଚୟ କରିବା କର୍ମ, (ସଂ-ସଞ୍ଚାନ) ଶ୍ୟେନପକ୍ଷୀ, ଛଞ୍ଚାଣ ।

ସଞ୍ଚାଣି—ଗ୍ରା. ବି. (ସଂ-ସଞ୍ଚୟନ) ସଞ୍ଚୟ ଦେଖ, (ଗ୍ରା.ବିଂ) ସଞ୍ଚିତ, ନିର୍ଦ୍ଧାରିତ, ବ୍ୟବସ୍ଥିତ ।

ସଞ୍ଚାନ—ବି. ( ସମ୍+ଚି+କ.ଆନ ) ଶ୍ୟେନପକ୍ଷୀ, ଛଞ୍ଚାଣ ।

ସଞ୍ଚାଯ୍ୟ—ବି. (ସମ୍+ଚି+ର୍ମି.ଘ) ଯଜ୍ଞବିଶେଷ, କ୍ରତୁ ।

ସଞ୍ଚାର—ବି. (ସମ୍+ଚର୍+ଭା.ଅ) ଗମନ, ଗତି, ସଂକ୍ରମଣ, ଗ୍ରହମାନଙ୍କର ରାଶ୍ୟନ୍ତରକୁ ଚଳନ, ବୃଦ୍ଧି, ବିସ୍ତାର, କଷ୍ଟଗତି, କଷ୍ଟ, ଦୁଃଖ, ବିପଦ, ପଥପ୍ରଦର୍ଶନ, ଉତ୍ତେଜନ, ଚାଳନ, ଚଳାଇବା କର୍ମ, ସଂକ୍ରାମକ ରୋଗାକ୍ରାନ୍ତ ରୋଗୀର ଦେହରୁ ଦେହାନ୍ତରକୁ ରୋଗର ଆକ୍ରମଣ, (ଣ.ଅ) ସର୍ପମଣି, ସଞ୍ଚର, ପୋଲ, ଶଙ୍କ, (ଅପ୍ର.ଅ) ପଥ, (ଗ୍ରା.ବି) ଗ୍ଲାଉଣି, ପଦାର୍ଥ ଉପରେ ମଡ଼ାଯିବା ପୁଟ, ବାଦ୍ୟର ଆଦ୍ୟ ତାନ, ଆକୃତି, ଆଧାନ, ଦେଶ ।

ସଞ୍ଚାରକ—ପୁଂ. ବି. (ସମ୍+ଚାରି+କ.ଅକ) ବିସ୍ତାରକ, ସଂକ୍ରାମକ, ଚାଳକ, ପଥପ୍ରଦର୍ଶକ, (ସ୍ତ୍ରୀ) ସଞ୍ଚାରିକା ।

ସଞ୍ଚାରଜୀବୀ—ପୁଂ. ବିଂ. (ସଞ୍ଚାର+ଜୀବ୍+କ.ଇନ୍) ଶରଣାପନ୍ନ, ଦୁର୍ଦ୍ଦଶାଗ୍ରସ୍ତ, (ସ୍ତ୍ରୀ) ସଞ୍ଚାରଜୀବନୀ ।

ସଞ୍ଚାରଣ—ବି. (ସମ୍+ଚର୍+ଭା.ଅନ) ସଞ୍ଚାରକ୍ରିୟା, ସଞ୍ଚାର ଦେଖ ।

ସଞ୍ଚାରଣୀୟ—ବିଂ. (ସଞ୍ଚର୍+ଣିଚ୍+ଅନୀୟ) ସଞ୍ଚାରଣ ଯୋଗ୍ୟ, ସଞ୍ଚାରଣାର୍ହ ।

ସଞ୍ଚାରଫଳ—ବି. (ଫଳିତ ଜ୍ୟୋତିଷ) ଗ୍ରହମାନଙ୍କର ସଞ୍ଚାରଜନିତ ଶୁଭାଶୁଭ ଫଳ ।

ସଞ୍ଚାରିକା—ସ୍ତ୍ରୀ. ବି. (ସମ୍+ଚର୍+କ.ଅକ+ଆ) ଯୁଗ୍ମ, ଯୋଡ଼ା, ଦୂତୀ, ଘ୍ରାଣ, ବାୟୁ ।

ସଞ୍ଚାରିଣୀ—ବି. ହଂସପଦୀ ନାମକ ଅପୁଷ୍ପକ ଗୁଳ୍ମ, ରକ୍ତଲଜ୍ଜାଳୁକା, (ବିଂ) ଗତିଶୀଳା, ଗମନକାରିଣୀ, ସଂକ୍ରମଣଶୀଳା ।

ସଞ୍ଚାରିତ—ପୁଂ. ବିଂ. (ସମ୍+ଚାରି+ର୍ମି.ତ) ଇତସ୍ତତଃ ଚାଳିତ, ବିକମ୍ପିତ, ଦୋଳାୟିତ, (ସ୍ତ୍ରୀ) ସଞ୍ଚାରିତା ।

ସଞ୍ଚାରିବା—ଗ୍ରା. କ୍ରି. (ସଂ-ସଞ୍ଚାର) ସଞ୍ଚାରିତ କରିବା, ବିସ୍ତାର କରିବା ।

ସଞ୍ଚାରିଭାବ—ବି. ( କ.ଧା ) ସଞ୍ଚାରୀଭାବ ଦେଖ ।

ସଞ୍ଚାରୀ—ପୁଂ. ବିଂ. (ସମ୍+ଚର୍+କ.ଇନ୍) ସଞ୍ଚରଣଶୀଳ, ଗତିଶୀଳ, ଅସ୍ଥାୟୀ, ପରିବର୍ତ୍ତନଶୀଳ, ବିସ୍ତାରଶୀଳ, ଆଗନ୍ତୁକ, (ସ୍ତ୍ରୀ) ସଞ୍ଚାରିଣୀ, (ବି) ସଞ୍ଚାରୀଭାବ ଦେଖ, ବାୟୁ, ଧୂପ, (ସଙ୍ଗୀତ) ଗୀତ ବା ରାଗଆଳାପର ଚାରିପାଦ ମଧ୍ୟରୁ ତୃତୀୟ ପାଦ, (ଗ୍ରା. ସ୍ତ୍ରୀ. ବି) ଦୂତୀ, (ପୁଂ ବିଂ) ସଞ୍ଚାରଣକାରୀ ।

ସଞ୍ଚାରୀଭାବ—ବି. କାବ୍ୟାଦି ବର୍ଣ୍ଣିତ ରସମାନଙ୍କର ନିର୍ବେଦ ଆବେଗ ଆଦି ଅସ୍ଥାୟୀ ବ୍ୟଭିଚାରୀ ଭାବ ।

ସଞ୍ଚାର୍ଯ୍ୟ—ବିଂ. (ସମ୍+ଚର୍+ର୍ମି.ଯ) ସଂକ୍ରମଣୀୟ, ପ୍ରେରଣଶୀଳ ।

ସଞ୍ଚାଳକ—ବିଂ. ପରିଚାଳକ, ସଞ୍ଚାରକ, ପରିଶୁଦ୍ଧ ।

ସଞ୍ଚାଳନ—ବି. (ସମ୍+ଚାଳି+ଭା.ଅନ) ସଂକ୍ରମଣ, ଚାଳନ, ଇତସ୍ତତଃ ଚାଳନ, କମ୍ପନ ।

ସଞ୍ଚାଳିତ—ବିଂ. (ସମ୍+ଚାଳି+ର୍ମି.ତ) ଇତସ୍ତତଃ ଚାଳିତ, ସଂକ୍ରମିତ, (ସ୍ତ୍ରୀ) ସଞ୍ଚାଳିତା ।

ସଞ୍ଚାଲୀ—ବି. (ସମ୍+ଚଲ୍+କ.ଅ+ଈ) ଗୁଞ୍ଜା, କାଇଞ୍ଚ ।

ସଞ୍ଚିଆ—ଗ୍ରା. ପୁଂ. ବିଂ. ( ସଂ-ସଞ୍ଚୟୀ ) ସଞ୍ଚୟଶୀଳ, କୃପଣ ।

ସଞ୍ଚିକା(ଚୀ)ର୍ଷୁ—ବିଂ. (ସମ୍+ଚୀ+ସନ୍+କ.ଉ) ସଞ୍ଚୟ କରିବାକୁ ଇଚ୍ଛୁକ ।

ସଞ୍ଚିକ୍ଷିପ୍ସୁ—ବିଂ. (ସମ୍+କ୍ଷିପ୍+ସନ୍+କ.ଉ) ସଂକ୍ଷେପ କରିବାକୁ ଅଭିଳାଷୀ ।

ସଞ୍ଚିତ୍—ପ୍ରା(ସମ୍ଭ)ବି.ଶୁନଃଚିତ୍, ମାଙ୍କଡ଼ଚିତ ।

ସଞ୍ଚିତ—ବିଂ. (ସମ୍+ଚି+ର୍ମି.ତ) ସଂଗୃହୀତ, ରାଶୀକୃତ, ଏକତ୍ରୀକୃତ, ବର୍ଦ୍ଧୀଭୂତ, ସମ୍ଭୂତ, (ଗ୍ରା.ବିଂ) ଅବସ୍ଥାପିତ, ପାଳିତ, ସୃଷ୍ଟ ।

ସଞ୍ଚିତଧନ—ବି.(କ.ଧା) ଜମା କରାଯାଇଥିବା ଧନ, (ପୁଂ.ବିଂ.-ବ.ବ୍ରୀ) ଯେଉଁ ବ୍ୟକ୍ତି ଧନ ସଞ୍ଚୟ କରିଅଛି, (ସ୍ତ୍ରୀ) ଧନା ।

ସଞ୍ଚିତାର୍ଥ—ପୁଂ.ବି.(କ.ଧା) ସଂଗୃହୀତ ଧନ, ରାଶୀକୃତ ବିତ୍ତ, ଜମାଥିବା ଟଙ୍କା କଉଡ଼ି ।

ସଞ୍ଚିତି—ବି. (ସମ୍+ଚି+ଭା.ତି) ସ୍ତରେ ସ୍ତରେ ସଜାଇବା, ଗ୍ରନ୍ଥନ, ଗୁନ୍ଥା ।

ସଞ୍ଚଦା—ସ୍ତ୍ରୀ. ବ. ମୂଷିକପର୍ଣ୍ଣୀ ନାମକ ଶାକବିଶେଷ, ମୂଷାକାନ୍ନି ଲତା ।

ସଞ୍ଚନ୍ଦ୍ରିତ—ବିଂ. (ସମ୍+ଚନ୍ଦ୍ର+କ.ତ) ସମ୍ୟକ୍ ଚନ୍ଦ୍ରଯୁକ୍ତ, (ସ୍ତ୍ରୀ) ସଞ୍ଚନ୍ଦ୍ରିତା, (+ମି.ତ) ସମ୍ୟକ୍‌ଚନ୍ଦ୍ରିତ ।

ସଞ୍ଚନ୍ଦ୍ୟ—ବିଂ. ( ସମ୍+ଚନ୍ଦ୍ର+ମି.ଯ) ସମ୍ୟକ୍ ରୂପେ ଚନ୍ଦ୍ରମୀୟ ।

ସଞ୍ଚିବା—ଗ୍ରା. କ୍ରି. ସଞ୍ଚୟକରିବା, ରକ୍ଷାକରିବା, ସମ୍ପାଦିବା,ପାଳିବା,ପୋଷିବା; ନିର୍ମାଣକରିବା, ସୃଷ୍ଟି କରିବା, ପୂର୍ବରୁ ନିର୍ଦ୍ଧାରଣକରିବା, ସ୍ମରଣରେ ରଖିବା ।

ସଞ୍ଚିଲ—ଗ୍ରା.ବିଂ.(ସଂ-ସଞ୍ଚିତ)ସଞ୍ଚିତ, ସୃଷ୍ଟ,

ସଞ୍ଚୀୟମାନ—ବିଂ.(ସମ୍+ଚି+ମି.ଆନ) ଯାହା ସଞ୍ଚିତ ହୋଇଅଛି ଏରୂପ, ଆହ୍ରିୟମାଣ ।

ସଞ୍ଚୂର୍ଣ୍ଣନ—ବ. (ସମ୍+ଚୂର୍ଣ୍ଣ+ଭା.ଅନ) ଉତ୍ତମ ରୂପେ ଚୂରିବା,ବାଟିବା,ମଳିବା, (ବିଂ) ସଞ୍ଚୂର୍ଣ୍ଣିତ ।

ସଞ୍ଚୃତ—ସ୍ତ୍ରୀ. ବ. ସମ୍ବନ୍ଧ ।

ସଞ୍ଚେତବ୍ୟ—ବିଂ (ସମ୍+ଚି+ମି.ତବ୍ୟ) ସଞ୍ଚୟ କରିବାର ଯୋଗ୍ୟ, ସଞ୍ଚିତ ହେବା ଯୋଗ୍ୟ ।

ସଞ୍ଚେୟ—ବିଂ(ସମ୍+ଚି+ଯ) ସଞ୍ଚୟନୀୟ, ସଞ୍ଚୟାର୍ହ, ସଂଗ୍ରାହ୍ୟ ।

ସଞ୍ଚୋଦକ—ବ (ସମ୍+ଚୋଦ୍+ଅକ) ଦେବପୁତ୍ରବିଶେଷ,(ବିଂ)ପ୍ରେରଣକାରୀ ।

ସଞ୍ଚୋଦନ—ବ. ( ସମ୍+ଚୋଦ୍+ଭା. ଅନ)ପ୍ରେରଣ ।

ସଞ୍ଚୋଦୟିତବ୍ୟ—ବିଂ.(ସମ୍+ଚୋଦ୍+ଣିଚ୍+ତବ୍ୟ) ପ୍ରେରୟିତବ୍ୟ, ସଞ୍ଚୋଦନଯୋଗ୍ୟ ।

ସଞ୍ଚୋର--ବ.ରାଜପୁତାନାବାସୀ ଶ୍ରୀମାଳୀ ବ୍ରାହ୍ମଣମାନଙ୍କର ଗୋଟିଏ ଶାଖା ।

ସଞ୍ଛର୍ଦ୍ଦନ—ବ. ବମନ, ଛର୍ଦ୍ଦିତ୍ୟାଗ, ଫୁତ୍କାର ।

ସଞ୍ଛେତ୍ତା—ବିଂ. ( ସମ୍+ଛିଦ୍+କ.ତୃ) ଛେଦକାରକ, ନିବାରକ ।

ସଞ୍ଛେତ୍ତବ୍ୟ—ବ. ( ସମ୍+ଛିଦ୍+ତବ୍ୟ) ସଞ୍ଛେଦାର୍ହ, ନିବାରଣର ଉପଯୁକ୍ତ ।

ସଞ୍ଜ(ଞ୍ଜ)—ବ. (ସମ୍+ଜନ୍+ଣ.ଅ) ବ୍ରହ୍ମା, ଶିବ, (ଗ୍ରା.ବ-ସଂ-ସନ୍ଧ୍ୟା)ସାୟଂକାଳ, ସନ୍ଧ୍ୟାରେ ଦେବତାଙ୍କ ଉଦ୍ଦେଶ୍ୟରେ ବସାଯିବା ବତି, (ବିଂ) ସନ୍ଧ୍ୟାକାଳୀନ ।

ସଞ୍ଜଦ୍ୱୀପ—ଗ୍ରା.ବ.(ସଂ-ସନ୍ଧ୍ୟାଦୀପ)ସନ୍ଧ୍ୟାଦୀପ ଦେଖ ।

ସଞ୍ଜଧୂପ—ଗ୍ରା. ବ. ସନ୍ଧ୍ୟାପରେ ଦେବତାଙ୍କ ନିକଟରେ ଅର୍ପିତ ଭୋଗ ଓ ପୂଜା ଏବଂ ଧୂପ ଇତ୍ୟାଦି ।

ସଞ୍ଜନ—ବ. ( ସଞ୍ଜ+ଭା.ଅନ ) ବନ୍ଧନ, ସଂଘଟ୍ଟନ ।

ସଞ୍ଜନନା—ସ୍ତ୍ରୀ. ବ. (ସମ୍+ଜନ୍+ଭା. ଅନ+ଆ) ଉତ୍ପାଦନ, ଜନନଶକ୍ତି ।

ସଞ୍ଜନନୀ—ସ୍ତ୍ରୀ.ବ.ଯୁଣାର ସଦୃଶ ବନ୍ଧାସ୍ତବିଶେଷ ।

ସଞ୍ଜବତି—ଗ୍ରା. ବ. ସନ୍ଧ୍ୟାବତି ଦେଖ ।

ସଞ୍ଜୟ—ବ.(ସମ୍+ଜି+କ.ଅ)କୌରବ ନରପତି ଧୃତରାଷ୍ଟ୍ରଙ୍କ ମନ୍ତ୍ରୀ ।

ସଞ୍ଜୟନ୍ତ—ବିଂ. ପ୍ରାପ୍ତ, ଅଧିକୃତ, (ସ୍ତ୍ରୀ) ସଞ୍ଜୟନ୍ତୀ, ନଗରୀବିଶେଷ ।

ସଞ୍ଜଳ୍ପ—ପୁଂ.ବ.ଜଳ୍ପନା, କଥାବାର୍ତ୍ତା ।

ସଞ୍ଜବନ—ବ. (ସମ୍+ଜୂ+ଅଧି.ଅନ) ଚତୁଃଶାଳ, ପରସ୍ପରାଭିମୁଖୀ ଗୃହଚତୁଷ୍ଟୟ ।

ସଞ୍ଜବ(ମ)ନୀପୁର(ରୀ)—ଗ୍ରା.ବ.(ସଂ-ସଞ୍ଜୀବନୀ) ଯମପୁରୀ ।

ସଞ୍ଜବସା(ସେ)ଇବା—ଗ୍ରା. କ୍ରି. ସଞ୍ଜଦେବା, ସନ୍ଧ୍ୟାବତୀକୁ ଜାଳି ଦେବମୂର୍ତ୍ତିଙ୍କ ସମ୍ମୁଖରେ ତୁଳସୀ ମୂଳେ ବା ଦାଣ୍ଡ ଦୁଆରରେ ରଖିବା ।

ସଞ୍ଜବେଳ—ଗ୍ରା.ବ. ବେଳବୁଡ଼, ସନ୍ଧ୍ୟାବେଳ ।

ସଞ୍ଜଲଗିବା—ଗ୍ରା. ବ. ସନ୍ଧ୍ୟା ବୁଡ଼ିବା ପରେ ଦୀପ ଜାଳିବା (ବେଳ) ।

ସଞ୍ଜସକାଳ—ଗ୍ରା.ବ.ସନ୍ଧ୍ୟା ଓ ପ୍ରାତଃକାଳ

ସଞ୍ଜସକାଳେ—ଗ୍ରା. କ୍ରି. ବିଂ. ପ୍ରତିଦିନ ସକାଳେ ଓ ସନ୍ଧ୍ୟାବେଳେ ।

ସଞ୍ଜା—ବ. (ସଞ୍ଜ+କ.ଅ+ଆ) ଛାଗୀ, ମାଈ ଛେଳି, (ଗ୍ରା.ବ) ଜମିର ନଗଦ ଖଜଣା ପରିବର୍ତ୍ତରେ ରୂଷୀର ଜମିଦାରକୁ ଶସ୍ୟର ନିର୍ଦ୍ଧାରିତ ପରିମାଣ ଦେବାପାଇଁ ଜମିଦାର ସଙ୍ଗେ ପୂର୍ବରୁ କରାଯିବା ଚୁକ୍ତି, ସଞ୍ଜା ପ୍ରଥା ଦ୍ୱାରା ନିର୍ଦ୍ଧାରିତ ଶସ୍ୟାଂଶ ରୂପ କର ।

ସଞ୍ଜାଈ—ଗ୍ରା. ସ୍ତ୍ରୀ. ବ. (ସଂ-ସନ୍ଧ୍ୟାଦେବୀ) ଦେବତା ରୂପେ କଳ୍ପିତା ସନ୍ଧ୍ୟା ।

ସଞ୍ଜାକବୁଲପତ୍ର—ଗ୍ରା.ବ.ସଞ୍ଜା ଜମିପାଇଁ ଜମିଦାରଙ୍କୁ ପ୍ରଜା ଲେଖିଦେବା ଚୁକ୍ତିପତ୍ର ।

ସଞ୍ଜାଖଜଣା—ଗ୍ରା. ବ. ଜମିରେ ଫସଲ ଉତ୍ପାଦନ କରି ରଇତ ଜମିଦାରଙ୍କୁ ନଗଦ ଖଜଣା ନ ଦେଇ ଜମିଦାରଙ୍କ ସହିତ ପୂର୍ବ ନିର୍ଦ୍ଧାରିତ ସର୍ତ୍ତ ଅନୁଯାୟୀ ଫସଲର ଯେଉଁ ଅଂଶ ତାଙ୍କୁ ଦିଅନ୍ତି ।

ସଞ୍ଜାଜମି—ଗ୍ରା.ବ. ପ୍ରଜା ଯେଉଁ ରୟତି ଜମିପାଇଁ ଜମିଦାରଙ୍କୁ ନଗଦ ଖଜଣା ପରିବର୍ତ୍ତରେ ସଞ୍ଜା ଦିଅନ୍ତି ।

ସଞ୍ଜାତ—ପୁଂ. ବିଂ. (ସମ୍+ଜନ୍+କ. ତ) ଜାତ, ଉତ୍ପନ୍ନ, ପ୍ରାପ୍ତ,(ସ୍ତ୍ରୀ)ସଞ୍ଜାତା ।

ସଞ୍ଜାତି—ଗ୍ରା. ବିଂ. (ସଂ-ସ୍ୱଜାତୀୟ)ନିଜ ଜାତୀୟ ଓ ସମଜାତୀୟ(ବ୍ୟକ୍ତି) ।

ସଞ୍ଜାପ(ବ)—ଯା.ବ.କୁରୁତା, ରେଜେଇ-ଆଦିର ଧଡ଼ିରେ ସିଲାଇ କରାଯିବା କନାର ସରୁ ବଟ ବା ଧଡ଼ି, ପୋଷାକ ଭିତର ଅସ୍ତ ।

ସଞ୍ଜିଆ—ଗ୍ରା.ବ.(ସଂ-ସନ୍ଧ୍ୟା)ସଞ୍ଜ,ସନ୍ଧ୍ୟା, ସଞ୍ଜବତି, ସନ୍ଧ୍ୟାଦୀପ ।

ସଞ୍ଜିଘୃକ୍ଷୁ—ବିଂ. (ସମ୍+ଗ୍ରହ୍+ସନ୍+ଉ) ଗ୍ରହଣ କରିବାକୁ ଇଚ୍ଛୁକ, (ବ) ସଞ୍ଜିଘୃକ୍ଷା ।

ସଞ୍ଜିଜୀବୟିଷୁ—ବିଂ. ( ସମ୍+ଜୀବ୍+ଣିଚ୍+ସନ୍+ଉ)ସଞ୍ଜୀବିତ କରିବାକୁ ଇଚ୍ଛୁକ ।

ସଞ୍ଜିଜୀବିଷୁ—ବିଂ(ସମ୍+ଜୀବ୍+ସନ୍+ଉ) ଜୀବନାଭିଲାଷୀ । [ କେତା ।

ସଞ୍ଜିତ୍ର—ବିଂ. (ସମ୍+ଜି+କ୍ୱିପ୍)ସମ୍ୟକ୍-

ସଞ୍ଜିତ—ସ୍ତ୍ରୀ. ବ. ପ୍ରାପ୍ତି, ଲବ୍ଧବିଜୟ, ଯୁଦ୍ଧରେ ଜୟପ୍ରାପ୍ତି ।
ସଞ୍ଜିମାନ୍—ପୁଂ. ବିଂ. ଜୟବାନ୍, ଜୟୀ, (ସ୍ତ୍ରୀ) ସଞ୍ଜିମତୀ ।
ସଞ୍ଜିହାର୍ଷା—ବ(ସମ୍+ହୃ+ଷ୍ଣ.ଅ+ଆ) ସଂହାର କରିବାର ଇଚ୍ଛା ।
ସଞ୍ଜିହାର୍ଷୁ—ପୁଂ.ବିଂ. (ସମ୍+ହୃ+ସନ୍ ଉ) ସଂହାରାଭିଲାଷୀ, ସଂହାର କରିବାକୁ ଇଚ୍ଛୁକ ।
ସଞ୍ଜୀବ—ବିଂ. ( ସମ୍+ଜୀବ୍+କ.ଅ ) ପୁନର୍ଜୀବନଦାନକାରୀ, (ବି-ଭା.ଅ)ପୁନର୍ଜୀବନ ଦାନ, (ବୌଦ୍ଧମତେ) ନରକବିଶେଷ ।
ସଞ୍ଜୀବକ—ପୁଂ. ବିଂ. (ସମ୍+ଜୀବ୍.ଣିଚ୍ +କ.ଅକ) ଜୀବନଦାନକାରୀ, ଯେ ମୃତବ୍ୟକ୍ତିକୁ ବଞ୍ଚାଇ ପାରେ, ( ସ୍ତ୍ରୀ ) ସଞ୍ଜୀବିକା, (ପୁଂ.ବି) ବୃଷଭେଦ ।
ସଞ୍ଜୀବନ—ବି.(ସମ୍+ଜୀବ୍.ଣିଚ୍+ଭା. ଅନ) ଜୀବିତ କରାଇବା, ଜୀବଦାନ କରିବା, ସମ୍ୟକ୍‌ପ୍ରକାରେ ପ୍ରାଣଧାରଣ, ନରକବିଶେଷ, (ବିଂ-କ.ଅନ) ଯାହା ଜୀଆଁଏ ବା ଜୀବିତ କରାଏ,ଜୀବିତକାରୀ, (ସ୍ତ୍ରୀ) ସଞ୍ଜୀବନୀ ।
ସଞ୍ଜୀବନୀ—ସ୍ତ୍ରୀ. ବ.(ସଞ୍ଜୀବନ+ଈ)ମୃତବ୍ୟକ୍ତିକୁ ଜୀଆଁଇବାର ଔଷଧ, ସଞ୍ଜୀବନୀ ବିଦ୍ୟା, ( ସ୍ତ୍ରୀ.ବିଂ ) ପ୍ରାଣଦାୟିନୀ, ଜୀବିତକାରିଣୀ ।
ସଞ୍ଜୀବନୀପୁର(ସା)-ବି.ସମ୍ବଲପୁର,ସମ୍ବପୁର ।
ସଞ୍ଜୀବନୀସୁଧା—ବି.(କ.ଧା)ମଲାମନୁଷ୍ୟକୁ ଜୀଆଁଇଦେବା ଅମୃତ ।
ସଞ୍ଜୀବୟିଷୁ—ବିଂ. (ସମ୍+ଜୀବ୍+ଣିଚ୍ +ସନ୍.ଉ) ଅନ୍ୟକୁ ଜୀଆଁଇବାକୁ ଇଚ୍ଛୁକ ।
ସଞ୍ଜୀବିଷୁ—ପୁଂ. ବିଂ. (ସମ୍+ଜୀବ୍+ସନ୍+ଉ) ନିଜେ ଜୀଇଁବାକୁ ଇଚ୍ଛୁକ, (ବି) ସଞ୍ଜୀବିଷା ।
ସଞ୍ଜୁଆ—ଗ୍ରା. ବିଂ. (ସଂ-ସାନ୍ଧ୍ୟ) ସନ୍ଧ୍ୟାକାଳ ସମ୍ବନ୍ଧୀୟ, ସନ୍ଧ୍ୟାକାଳୀନ ।
ସଞ୍ଜୁଗ(ଟ୍,ତ୍)—ଗ୍ରା.ବି. (ସଂ-ସଂଯୋଗ) ଆୟୋଜନ, ବ୍ୟବସ୍ଥା, ଉପକରଣାଦି ପ୍ରସ୍ତୁତ ରଖିବା, (ଗ୍ରା.ବିଂ) ଆୟୋଜିତ, ଉପକରଣାଦି ପ୍ରସ୍ତୁତଥିବା ।
ସଞ୍ଜ୍ୱର—ବି. (ସମ୍+ଜ୍ୱର) ସନ୍ତାପ, ବିଶେଷ ଜ୍ୱର ।
ସଞ୍ଜ୍ୱରବାନ୍—ପୁଂ. ବିଂ. (ସମ୍+ଜ୍ୱର+ବତ୍) ସମ୍ୟକ୍ ଜ୍ୱରବିଶିଷ୍ଟ ।
ସଞ୍ଜ୍ୱରୀ—ପୁଂ. ବିଂ. (ସମ୍+ଜ୍ୱର+ଇନ୍) ସମ୍ୟକ୍ ଜ୍ୱରବିଶିଷ୍ଟ, (ସ୍ତ୍ରୀ) ସଞ୍ଜ୍ୱରିଣୀ ।
ସଜ୍ଞାନ-ବିଂ.(ବ ବ୍ରୀ)ଜ୍ଞାନଯୁକ୍ତ,ସଚେତନ ।
ସଜ୍ଞାନେ—କ୍ରି.ବିଂ. (ବ.ବ୍ରୀ) ଜ୍ଞାନପୂର୍ବକ, ଜାଣିଶୁଣି ।
ସଟ୍—ଗ୍ରା. ଅ. ତ୍ୱରାସୂଚକ, ଶୀଘ୍ର ।
ସଟ୍‌କଲ୍—ପ୍ରା. (ସମ୍ବ) କ୍ରି. ବିଂ. ଶୀଘ୍ର ।
ସଟ୍‌କା—ଗ୍ରା. ବ. ଗୁଡ଼ାଖୁ ଖାଇବାର ଅଲବଲା, ଲମ୍ବାନଳ ।
ସଟ୍‌କ(ନା)ର—ଗ୍ରା.ଅବ୍ୟ.ହଠାତ୍,ଚଞ୍ଚଳ. ହଠାତ୍ ପ୍ରବେଶ କରିବା ପ୍ରକାରେ, ଶୀଘ୍ର ପଳାଇବା ପ୍ରକାରେ,ଚଟ୍‌କିନା ।
ସଟ(ଟା)--ବି.(ସଟ୍+କ.ଅ+ଆ)ସିଂହର ବେକ ଉପରର କେଶର, ଋଷିମାନଙ୍କ ଜଟା, ବରଗଛର ଓହଳ,ଜଟା,ଶିଖା, ପର୍ବତଶୃଙ୍ଗ, ଚୁଟି ।
ସଟରା—ଗ୍ରା.ବି. ପୁଷର ସାଇ ଯାତରେ ଏରା ପକ୍ଷୀର ପକ୍ଷ ଓ ମାଳ ପିନ୍ଧି ନାଗାଙ୍କ ସଙ୍ଗେ ବାହାରିବା ସନ୍ନ୍ୟାସୀମାନଙ୍କ ସହଚର ନାନକପନ୍ଥୀ ବେଶଧାରୀ ବ୍ୟକ୍ତି ।
ସଟାଙ୍ଗ—ପୁଂ.ବି. (ବ.ବ୍ରୀ)ସିଂହ,କେଶରୀ
ସଟାଙ୍ଗ (ଙ୍ଗ) କିନା (ର) —ଗ୍ରା.କ୍ରି.ବିଂ. (ଧ୍ୱନ୍ୟନୁକରଣ) ହଠାତ୍, ସିଧାହୋଇ, ଲମ୍ବଭାବରେ ।
ସଟାବଟା—ଗ୍ରା. ବିଂ. ଅସୁନ୍ଦର ଭାବରେ ବା ଯେନତେନ ପ୍ରକାରେ କରାଯାଇଥିବା(କର୍ମ),(ଗ୍ରା.ବି)ଭଣ୍ଡାଭଣ୍ଡି,କୌଶଳପୂର୍ଣ୍ଣ ମୀମାଂସା,ସାମାନ୍ୟ,ସ୍ତୋକବାକ୍ୟ ।
ସଟାମ—ପ୍ରା.(ଲରିଆ)ବି. ପୁଆରୀ ଗାଡ଼ି ।
ସଟାଲ—ପୁଂ.ବିଂ.(ସଟା+ଲ)ଜଟାଯୁକ୍ତ, (ପୁଂ.ବି) କେଶରୀ, ସିଂହ ।
ସଟି(ଟୀ)—ବି. ଶଟୀ ଦେଖ ।
ସଟିକା—ବି. ଗନ୍ଧପତ୍ରା, ଶଟୀ ।
ସଟୀକ—ବିଂ.(ବ.ବ୍ରୀ)ଟୀକାଯୁକ୍ତ,ମନ୍ତବ୍ୟଯୁକ୍ତ, ସତ୍ୟ, ଯଥାର୍ଥ ।
ସଟେନ୍—ପ୍ରା.(ଲରିଆ)ବି. ଖଉଁଖାଉଁ କାଟିବା ।
ସଟକ—ବି. (ସଟ+ମି.ଟକ) ପ୍ରାକୃତ ଭାଷା ରଚିତ ନାଟକବିଶେଷ ।
ସଠା—ଗ୍ରା.ବି.ଆଗରୁଗ୍ରା ସଉଦା କରିବା ରୂପ ଜୁଆଖେଳ ।
ସଟ୍ଟା—ବି. ପକ୍ଷିବିଶେଷ, ବାଦ୍ୟ ।
ସଠ—ଗ୍ରା.ବି ଓ ବିଂ. ଶଠ ।
ସଠା—ଗ୍ରା.ବି. ଶଠା ।
ସଠ(ଠେ)ଇବା—ଗ୍ରା.କ୍ରି. ଭଣ୍ଡାଇବା ।
ସଠାସଠି—ଗ୍ରା.ବି. ଭଣ୍ଡାଭଣ୍ଡି,ଭଣ୍ଡାଇବା କର୍ମ ।
ସଠିକ—ଗ୍ରା.ବିଂ.ସୁନିଶ୍ଚିତ,ଠିକ୍,ଅଭ୍ରାନ୍ତ ।
ସଠିକଖବର(ସମ୍ବାଦ)—ଗ୍ରା. ବ. ସତ୍ୟମୂଳକ ସମ୍ବାଦ, ସବିଶେଷ ବୃତ୍ତାନ୍ତ ।
ସଠୀ—ବି. ଶଠୀ ।
ସଡ଼୍‌କିନା(ନେ)-ଗ୍ରା.ଅବ୍ୟ. ସଟ୍‌କିନା ଦେଖ
ସଡ଼୍‌କିପଲମ ପ୍ରା.(ଯାଜପୁର)ବି. ଚକୁଳିପିଠା ଓ ରୁଟିଆଦି କରିବାପାଇଁ ମାଟିର ଚଟକା ତେଲେଣି ।
ସଡ଼—ଗ୍ରା. ବିଂ. ଘୃତ ତୈଳାଦିଦ୍ୱାରା ପରିପକ୍ୱ, ବର୍ଦ୍ଧିଷ୍ଣୁ, ନିୟମ ଜଣାଥିବା ।
ସଡ଼କ—ଗ୍ରା.ବି.ରାଜଦାଣ୍ଡ, ରାସ୍ତା, ପଥ ।
ସଡ଼କଦାଣ୍ଡ(ଣ୍ଡି)—ଗ୍ରା. ବି. (ଏକାର୍ଥକ ସହଚର) ଲମ୍ବା ସଡ଼କ, ରାଜଦାଣ୍ଡ ।
ସଡ଼କା—ଗ୍ରା.ବି ଓ ବିଂ. ଶଡ଼କା ।
ସଡ଼ପ—ଗ୍ରା.ବି. (ସଂ-ସଟକା)ସଡ଼କ,ସାଗୁ ବା ଗୁଆଗଛକାତୀୟ ଏକପ୍ରକାର ଗଛ ।
ସଡ଼ସଡ଼—ଗ୍ରା. ଅବ୍ୟ. (ଧ୍ୱନ୍ୟନୁକରଣ) ପାଣିଆ ଖାଦ୍ୟକୁ କିମ୍ବା ଜଳମିଶ୍ରିତ ଖାଦ୍ୟକୁ ହାପୁର ଖାଇବାର ଶବ୍ଦ,ବ୍ରଣ ହେବା ସ୍ଥାନରେ (ଦେହ ଫାଟିପଡ଼ିବା ପରି) ବେଦନାର ଅନୁଭୂତ, ସରସର୍, ପୂର୍ବେ ଅନୁଭବ ବା ଉପଭୋଗ କର-

ଥିବା ସୁଖପ୍ରଦ ବସ୍ତୁକୁ ଦେଖିଲେ ପୁଣି ତାହା ଭୋଗ କରିବାର ଲାଳସା ବା ମନର ଚଳ, ନଳଆଦି ମଧ୍ୟରେ ନାଳୁଆ ବା ହୁଗୁଳା ଜିନିଷ ହୁଗୁଳା ହୋଇ ଯିବାଆସିବା କରିବାର ଅବସ୍ଥା ।

ସଡ଼ସଡ଼ହେବା—ଗ୍ରା. କ୍ରି. ( ଘାଆ ବା ବଥ)ଅତିଶୟ କଥାଇବା ଦ୍ୱାରା ବେଦନା ଦେବା ।

ସଡ଼ସଡ଼—ଗ୍ରା. ବି° ଜଳଯୁକ୍ତ, ହୁଗୁଳା, ନାଳୁଆ, ନରମ, ନୀରସ, ଶୁଷ୍କ,କର୍ଦ୍ଦମମୟ ।

ସଡ଼ା—ଗ୍ରା. ଶଡ଼ା, ବାସୀ, ପର୍ଯ୍ୟୁଷିତ, ଜଘନ୍ୟ, ନଷ୍ଟ, ପଚ୍ଚ ।

ସଡ଼ାଇବା—ଗ୍ରା.କ୍ରି. ଶଡ଼ାଇବା ଦେଖ ।

ସଡ଼(ଡ଼ି)ଙ୍ଗ(ଙ୍ଗି)—ଗ୍ରା.ବି.ଶେଡ଼ିଙ୍ଗ ଦେଖ ।

ସଡ଼(ଡ଼ି)ବା—ଗ୍ରା. କ୍ରି. ପଚିବା, ଶଡ଼ିବା ଦେଖ, (ଲ.ଅର୍ଥ) ନିଜର ପୁରୁଷାର୍ଥକୁ କାମରେ ନ ଲଗାଇ ଆଳସ୍ୟରେ ବା ଜନାନ୍ତରାଳରେ ରହି ଜୀବନକୁ ବୃଥା ନଷ୍ଟ କରିବା ।

ସଡୁ(ଢୁ)—ଗ୍ରା.ବି. (ଫ-ସବୋଢ଼ା)ପୁରୁଷ ପକ୍ଷରେ)ନିଜ ସ୍ତ୍ରୀଙ୍କ ଭଉଣୀଙ୍କ ସ୍ୱାମୀ ।

ସଣ—ବି. ଶଣ ଦେଖ ।

ସଣଭଣ,ସଣସଣ—ଗ୍ରା. ଅ. ସାଲୁସାଲୁ, ଚଣଭଣ, ଖାଦ୍ୟାଦିକୁ ମାଛି ଗୁଡ଼ାଏ ବା କୀଟମାନେ ବେଢ଼ିବା ଅବସ୍ଥା, ଘାଆରେ କୃମି ବେଢ଼ିବା ଅବସ୍ଥା, ମୁଣ୍ଡରେ ଉକୁଣି ସାଲୁସାଲୁ ହେବା ଅବସ୍ଥା, ପଚ୍ଚ ଜିନିଷ ଓ ମଇଳାଆଦି ପୂର୍ଣ୍ଣ ହେବା ଯୋଗୁଁ କୌଣସି ପଦାର୍ଥ ବା ସ୍ଥାନ ଗନ୍ଧାଇବା ଅବସ୍ଥା ।

ସଣରସଣର—ପ୍ରା. (ଗଡ଼ଜାତ) ବି°. ସାଲୁସାଲୁ ଦେଖ ।

ସଣସୂତ—ବି. ଶଣସୂତ ଦେଖ ।

ସଣ୍ଢା—ଗ୍ରା. ବି. ସାଣ୍ଢିବା କର୍ମ, ସାଣ୍ଢିବା ଦେଖ,(ଗ୍ରା,ବି°) ଫେଣ୍ଟା ହୋଇଥିବା ।

ସଣ୍ଠ—ପ୍ରା. (ଆଠମଲ୍ଲିକ)ବି°. କୃପଣ ।

ସଣ୍ଠଣ(ଣା)—ଗ୍ରା.ବି.(ସଂ-ସଂସ୍ଥାନ) ଉତ୍ତମ ଚାଲିଚଳଣ, ମର୍ଯ୍ୟାଦା, ସୁସଜ୍ଜିତ ଅବସ୍ଥା, ସୁବ୍ୟବସ୍ଥିତ ଅବସ୍ଥା, ପରିପାଟୀ, କାରୁକାର୍ଯ୍ୟ, କଳାବିଦ୍ୟା ସାଧନଜନିତ କର୍ମ, (ଗ୍ରା.ବି°)ସୁବ୍ୟବସ୍ଥିତ,ସୁନ୍ଦର,ମର୍ଯ୍ୟାଦାଯୁକ୍ତ, ଯେଉଁ ବ୍ୟକ୍ତି ପରିପାଟୀ ରୂପେ ବେଶଆଦି ପିନ୍ଧେ ବା ବସେ ।

ସଣ୍ଡ—ବି. (ସନ୍ + କ.ଡ଼)ଷଣ୍ଢ, ବୃଷ ।

ସଣ୍ଡାସି—ଯା.ବି.ପକ୍ଷୀ ଏକମହଲ ପାଇଖାନା ।

ସଣ୍ଡିଶ—ବି. ସନ୍ଦଂଶ, ସଣ୍ଢ଼ାସି ।

ସଣ୍ଡୀନ—ବି(ସମ୍ + ଡ଼ୀ + ଭା.ତ) ପକ୍ଷୀମାନଙ୍କର ଉଡ଼ିବାର ପ୍ରକାରବିଶେଷ, ପକ୍ଷୀମାନଙ୍କର ଉଡ଼ିକରି ବୃକ୍ଷାଦିରେ ପତନ, ପୁ. ବି°. ଶୂନ୍ୟରୁ ବୃକ୍ଷାଦିରେ ବସିବା ଉଦ୍ଦେଶ୍ୟରେ ଉଡ଼ୁଥିବା(ପକ୍ଷୀ) ।

ସଣ୍ଢ଼ାସି—ଗ୍ରା.ବି. (ଫ-ସନ୍ଦଂଶ)ଲୁହାର ଏକପ୍ରକାର ଚମୁଟା ।

ସଣ୍ଢ଼ାସ—ପ୍ରା.(ଉଃବାଲେ)ଗ୍ରାମଘରରେ ବାଆସିବା ବଡ଼ା ବାଡ଼ର କାମୁଡ଼ା ।

ସଣ୍ଢିଆ—ଗ୍ରା.ବି.(ସଂ-ସନ୍ଧିକୀଳକ)ଶଗଡ଼ ଚକର ପଟିରେ ଥିବା ପୁଟି ଖଣ୍ଡମାନଙ୍କୁ ପରସ୍ପର ସହିତ ଯୋଡ଼ ଯୋଡ଼ି ଦୃଢ଼ ଭାବରେ ସଂଲଗ୍ନ କରାଇବାର ଘର ବା ମଧ୍ୟର ଭିତରେ ଦିଆଯିବା କାଠର ଖିଲ ।

ସତ୍—ବି°.(ଅସ୍ + କ.ଅତ୍) ବିଦ୍ୟମାନ, ବର୍ତ୍ତମାନ,ସତ୍ୟ, ପ୍ରକୃତ, ସାଧୁ,ଉତ୍ତମ, ଉତ୍କୃଷ୍ଟ, ପ୍ରଶସ୍ତ, ଧୀର, ସୁନ୍ଦର, ଚିରସ୍ଥାୟୀ, ମାନନୀୟ, ପୂଜ୍ୟ,ଜ୍ଞାନୀ,ବିଦ୍ୱାନ୍, (ସ୍ତ୍ରୀ) ସତୀ, (ବି) ଅସ୍ତିତ୍ୱମାତ୍ର, ବ୍ରହ୍ମ ।

ସତ୍‌କଥକ—ପୁ°.ବି°. (କ.ଧା)ସଦ୍‌ବକ୍ତା, (ବି) ଯେ ଭଲ ବକ୍ତୃତା କରିପାରନ୍ତି ।

ସତ୍‌କଥା—ବି(କ.ଧା)ଭଲକଥା, ଧର୍ମଚର୍ଚ୍ଚା

ସତ୍‌କଦମ୍ବ—ବି.କେଳିକଦମ୍ବ,କୁରୁମଗଛ

ସତ୍‌କବି—ବି.(କ.ଧା)ଶ୍ରେଷ୍ଠ ବା ଉତ୍ତମ କବି ।

ସତ୍‌କର୍ତ୍ତବ୍ୟ—ବି°.(ସତ୍ + କୃ + ମି.ଯ) ସତ୍‌କୃତ ହେବାର ଯୋଗ୍ୟ, (ସ୍ତ୍ରୀ) ସତ୍‌କର୍ତ୍ତବ୍ୟା ।

ସତ୍‌କର୍ତ୍ତା—ପୁ°. ବି°. ସତ୍‌କର୍ମକାରୀ,ସତ୍‌କାରକାରୀ, (ସ୍ତ୍ରୀ) ସତ୍‌କର୍ତ୍ତ୍ରୀ, (ପୁ°. ବି) ବିଷ୍ଣୁ ।

ସତ୍‌କର୍ମ—ବି. ବେଦବିହିତ କର୍ମ, ସାଧୁକାର୍ଯ୍ୟ, ପୁଣ୍ୟଜନକ କାର୍ଯ୍ୟ,ଧର୍ମକାର୍ଯ୍ୟ, ପରୋପକାର ।

ସତ୍‌କାବ୍ୟ—ବି. (କ.ଧା) ଯେଉଁ କାବ୍ୟ ଅଦୋଷ ଗୁଣବିଶିଷ୍ଟ ଅଳଙ୍କାର ଦ୍ୱାରା ଅଳଂକୃତ ଓ ରସଯୁକ୍ତ ।

ସତ୍‌କାଞ୍ଚନାର—ବି. ରକ୍ତକାଞ୍ଚନ ଗଛ ।

ସତ୍‌କାଣ୍ଡ—ବି.ଚିଲପକ୍ଷୀ,ଶ୍ୟେନ, ଛଞ୍ଚାଣ

ସତ୍‌କାର—ବି. ( ସତ୍ + କୃ + ଭା.ଅ ) ସମାଦର, ପରିଚର୍ଯ୍ୟା,ପୁରସ୍କାର,ପୂଜା, ଶବ ଦାହାଦି କର୍ମ, ମଙ୍ଗଳ, ସେବା ।

ସତ୍‌କାରଣ—ବି. (କ.ଧା) ବିଦ୍ୟମାନ କାରଣ, (ବି°-ବ.ବ୍ରୀ) ଯାହାର କାରଣ ବିଦ୍ୟମାନ ।

ସତ୍‌କାର୍ଯ୍ୟ—ବି.(କ.ଧା)ସତ୍‌କର୍ମ ଦେଖ, ( ପୁ°.ବି°-ସତ୍ + କୃ + ମି.ଯ) ସତ୍‌କର୍ତ୍ତବ୍ୟ ଦେଖ, (ସ୍ତ୍ରୀ) ସତ୍‌କାର୍ଯ୍ୟା ।

ସତ୍‌କାର୍ଯ୍ୟବାଦ—ବି. ସାଂଖ୍ୟଦର୍ଶନ ମତରେ ଏ ଜଗତ୍ ସତ୍‌କାରଣ ବା ସତ୍ ପଦାର୍ଥରୁ ଉତ୍ପନ୍ନ ହୋଇଅଛି ଏବଂଭୂତ ମତବାଦ ।

ସତ୍‌କୀର୍ତ୍ତି—ସ୍ତ୍ରୀ. ବି. ଉତ୍ତମ କୀର୍ତ୍ତି, ସାଧୁକୀର୍ତ୍ତି, (ବି°) ସାଧୁକୀର୍ତ୍ତିବିଶିଷ୍ଟ, ସତ୍‌କାର୍ଯ୍ୟକାରୀ ।

ସତ୍‌କୁଳ—ବି.(କ.ଧା)ସଦ୍‌ବଂଶ,ଉଚ୍ଚବଂଶ ।

ସତ୍‌କୁଳଜ—ପୁ°. ବି°. ସଦ୍‌ବଂଶଜାତ ।

ସତ୍‌କୁଳୀ—ବି. ଉତ୍କଳବାସୀ ଏକପ୍ରକାର ଗୃହସ୍ଥ ବୈଷ୍ଣବ ସମ୍ପ୍ରଦାୟ ।

ସତ୍‌କୁଳୀନ—ବି°. ( ସତ୍‌କୁଳ + ଈନ ) ସତ୍‌କୁଳୋଦ୍ଭବ, ଉତ୍ତମବଂଶୀୟ ।

ସତ୍‌କୁଳୋଦ୍ଭବ—ବି°.ସଦ୍‌ବଂଶୀୟ, ଭଦ୍ରସନ୍ତାନ, ସଦ୍‌ବଂଶଜାତ ।

ସତ୍‌କୃତ—ବି°. (ସତ୍ + କୃତ୍ + ମି.ତ) ସମ୍ମାନିତ, ସମାଦୃତ,ପୁରସ୍କୃତ,ପୂଜିତ, (ସ୍ତ୍ରୀ) ସତ୍‌କୃତା, (ବି) ବିଷ୍ଣୁ ।

ସତ୍‌କୃତି—ସ୍ତ୍ରୀ. ବି. (ସତ୍ + କୃ + ଭା.ତି) ସତ୍‌କାର ଦେଖ ।

ସତ୍କ୍ରିୟ—ପୁଂ.ବିଂ. (ବ.ବ୍ରୀ) ସତ୍କର୍ମକାରୀ, ଧାର୍ମିକ, (ସ୍ତ୍ରୀ) ସତ୍କ୍ରିୟା ।

ସତ୍କ୍ରିୟା—ବି.(କ.ଧା) ସତ୍କର୍ମ ଦେଖ, ସତ୍କାର ଦେଖ ।

ସତ୍କ୍ଷେତ୍ର—ବି. ଉତ୍ତମ କ୍ଷେତ୍ର ।

ସତ୍ଚାକର—ଗ୍ରା.ବି. ବିଶ୍ୱାସୀ ଭୃତ୍ୟ, ଯେଉଁ ଚାକର ସ୍ୱାମୀଙ୍କ ଧନାଦି ଚୋରି କରେନାହିଁ ।

ସତ୍ପତ୍ର—ବି. ପଦ୍ମର ନବଦଳ ।

ସତ୍ପଥ—ବି.ସୁପଥ, ଉତ୍ତମ ମାର୍ଗ,ସଦାଚରଣ ।

ସତ୍ପଥୀ—ଗ୍ରା. ବି. ବ୍ରାହ୍ମଣମାନଙ୍କର ବଂଶୋପାଧିବିଶେଷ ।

ସତ୍ପରାମର୍ଶ—ବି. (କ.ଧା) ଉତ୍ତମ ବା ମଙ୍ଗଳମୟ ବା ସମୟୋପଯୋଗୀ ପରାମର୍ଶ ।

ସତ୍ପଶୁ—ବି. ଯଜ୍ଞୀୟପଶୁ, ଯଜ୍ଞବଳି, ସୁନ୍ଦର ପଶୁ ।

ସତ୍ପାତ୍ର—ବି.(କ.ଧା) ଦାନଗ୍ରହଣ କରିବାର ଉପଯୁକ୍ତ ବ୍ୟକ୍ତି,(କନ୍ୟାକୁ)ବିବାହ କରିବାର ଉପଯୁକ୍ତ ବ୍ୟକ୍ତି, ଶୁଦ୍ଧପାତ୍ର, ସଚ୍ଛିଷ୍ୟ ।

ସତ୍ପିତା—ବି.(କ.ଧା) ପୁତ୍ରପ୍ରତି ଦୟାଳୁ ଓ ଉତ୍ତମ ବ୍ୟବହାରକାରୀ ପିତା ।

ସତ୍ପୁତ୍ର—ବି.(କ.ଧା)ସୁପୁତ୍ର,(ସ୍ତ୍ରୀ)ପୁତ୍ରୀ ।

ସତ୍ପୁରୁଷ—ବି.ଭଦ୍ରଲୋକ, ସାଧୁ,ଉତ୍ତମ ପୁରୁଷ, ପୂଜ୍ୟମାନ ପୁରୁଷ ।

ସତ୍ପ୍ରତିଗ୍ରହ—ବି.(କ.ଧା) ସାଧୁଜନଦତ୍ତ ଦ୍ରବ୍ୟର ଗ୍ରହଣ ।

ସତ୍ପ୍ରତିଜ୍ଞା—ବି. (କ.ଧା) ସତ୍କାର୍ଯ୍ୟ କରିବା ପାଇଁ ସଂକଳ୍ପ ।

ସତ୍ପ୍ରତିପକ୍ଷ—ବି. (କ.ଧା) ତୁଲ୍ୟ ପ୍ରତିଯୋଗୀ,(ନ୍ୟାୟଶାସ୍ତ୍ର)ସାଧ୍ୟାଭାବ ବ୍ୟାପ୍ୟାବତ୍ପକ୍ଷ, ପ୍ରକୃତ ବା ଯୁକ୍ତିଯୁକ୍ତ କାରଣ ଉପରେ ସ୍ଥାପିତ ଅନୁମାନ ।

ସତ୍ପ୍ରତିପକ୍ଷିତ—ବିଂ.ସତ୍ ପ୍ରତିପକ୍ଷ ଦ୍ୱାରା ନିଷ୍ପନ୍ନ ।

ସତ୍ପ୍ରତିପକ୍ଷୀ—ବିଂ. ସତ୍ପ୍ରତିପକ୍ଷବିଶିଷ୍ଟ ।

ସତ୍ପ୍ରସଙ୍ଗ—ବି.(କ.ଧା) ଉତ୍ତମ ବା ଧର୍ମବିଷୟକ କଥାବାର୍ତ୍ତା ।

ସତ୍ଫଳ—ବି. (ସତ୍ + ଫଳ) କ.ଧା; ସୁଫଳ, (ବ.ବ୍ରୀ) ଡାଳିମ୍ବବୃକ୍ଷ ।

ସତ୍ବ୍ୟକ୍ତି—ଗ୍ରା. ବି. ସଚ୍ଚରିତ୍ର ବ୍ୟକ୍ତି, ସାଧୁ ବ୍ୟକ୍ତି,ଯେ ଉତ୍କୋଚଆଦି ନିଏନାହିଁ

ସତ୍ଭଲ—ବି. ଡାଳିମ୍ବଗଛ ।

ସତ୍ସଂକଳ୍ପ— ବି. ସତ୍ପ୍ରତିଜ୍ଞା ।

ସତ୍ସଂସର୍ଗ-ବି.ସାଧୁ ବ୍ୟକ୍ତିଙ୍କ ସହବାସ ।

ସତ୍ସଙ୍ଗ—ବି. ସାଧୁସଙ୍ଗ, ସଜ୍ଜନ ସହବାସ, ଅନେକ ଲୋକ ମିଳିତ ହୋଇ ପାରମାର୍ଥିକ ବିଷୟ ଚର୍ଚ୍ଚା କରିବା,(ଗ୍ରା. ବି) ଅଣାକାର ଓ ଅଚଳାଆଦି ବିଷୟରେ ପାଞ୍ଚଜଣ ବସି ଚର୍ଚ୍ଚା କରିବାର ସଭା ।

ସତ୍ସଙ୍ଗୀ—ପୁଂ.ବିଂ. ଯେଉଁ ବ୍ୟକ୍ତି ସତ୍ସଙ୍ଗ କରେ, ସଚ୍ଚରିତ୍ର ସହଚର ।

ସତ୍ସାର—ବିଂ.(ବ.ବ୍ରୀ)ଉତ୍ତମ ସାରଯୁକ୍ତ, (ବି) ବୃକ୍ଷବିଶେଷ, ଚିତାପାରୁ, କବି, ଚିତ୍ରକର ।

ସତ୍ସାହସ—ଗ୍ରା.ବି.(କ.ଧା) ସତ୍କାର୍ଯ୍ୟ କରିବା ବିଷୟରେ ନିର୍ଭୀକତା, ସତ୍ୟ କହିବା ବିଷୟରେ ନିର୍ଭୀକତା ।

ସତ୍ସେବା—ବି. (୬ତତ୍) ସାଧୁଜନ ପ୍ରଭୃତିଙ୍କ ସେବା ।

ସତ—ଗ୍ରା. ବି. (ସଂ-ସତ୍ୟ)ସତ୍ୟ, ଶପଥ, ପ୍ରତିଜ୍ଞା, ସତ୍ୟକଥା, ବିଶ୍ୱାସ, ଆସ୍ଥା, ସତ୍ୟଯୁଗ, ସତ୍ତ୍ୱଗୁଣ, (ବିଂ)ସତ୍,ସାଧୁ, ସତ୍ୟବାଦୀ, ପ୍ରକୃତ, ପ୍ରତିଜ୍ଞାପାଳକ, ବିଶ୍ୱାସୀ, (ଗ୍ରା.ଅ) ସିନା, (ନିଶ୍ଚୟାର୍ଥକ) ନିଶ୍ଚେ ।

ସତଉପୁଜିବା—ଗ୍ରା.ବି.ପୃଥିବୀରେ ସତ୍ୟଯୁଗ ଆବିର୍ଭୂତ ହେବା ।

ସତକଥା—ଗ୍ରା. ବି. ସତ୍ୟବାକ୍ୟ, ପ୍ରକୃତ ଘଟଣା, ପ୍ରକୃତ ବିଷୟ ।

ସତକରିବା—ଗ୍ରା.କ୍ରି.କୌଣସି ବାକ୍ୟରେ ବା କଥାରେ ବିଶ୍ୱାସ କିମ୍ବା ଆସ୍ଥା ସ୍ଥାପନକରିବା, ସତମଣିବା, ସତ୍ୟକରିବା, ଧର୍ମତଃ ପ୍ରତିଜ୍ଞାକରିବା ।

ସତକହିଲ—ଗ୍ରା (ବାକ୍ୟ)କୌଣସି ବ୍ୟକ୍ତି ଛିଙ୍କିଲାବେଳେ ନିକଟସ୍ଥ ବ୍ୟକ୍ତିଙ୍କର ଉଚ୍ଚାରିତ ପଦ, ସତ୍ୟଂଜୀବ ।

ସତକା(କୁ)ସତ—ଗ୍ରା.କ୍ରି.ବିଂ ପ୍ରକୃତରେ, ବାସ୍ତବରେ ।

ସତଚୂଳିଶ—ଗ୍ରା.ବି.ବିଂ. (ସଂ-ସପ୍ତଚତ୍ୱାରିଂଶତ୍) ଚାଳିଶରୁ ଅଧିକା ସାତ, ୪୭ ।

ସତତ—ବି.(ସମ୍ + ତନ + ତ) ନିରନ୍ତର କ୍ରିୟା,(ବିଂ)ତଦ୍ୱିଶିଷ୍ଟ,ନିରନ୍ତର କ୍ରିୟାଯୁକ୍ତ, ଅନବରତ, (କ୍ରି.ବିଂ) ସର୍ବଦା, ନିରନ୍ତର ।

ସତତଗ—ବି.(ସତତ + ଗମ୍ + ଅ)ବାୟୁ, ପବନ, (ବିଂ) ସର୍ବଦା ଗତିବିଶିଷ୍ଟ ।

ସତତଗତି—ବି. ବାୟୁ, ସଦାଗତି ।

ସତତଜ୍ୱର—ବି. ବିଷମ ଜ୍ୱରବିଶେଷ ।

ସତତା—ବି. ଭଦ୍ରତା, ସଦ୍ଭାବ, ସତ୍ୟର ଆଚରଣ, ସାଧୁର ସ୍ୱଭାବ ।

ସତତି—ବିଂ. ସଦାଗତିବିଶିଷ୍ଟ, ଯାହାର ଗତି ରୁଦ୍ଧ ବା ଭଙ୍ଗ ନୁହେଁ ।

ସତତ୍ତ୍ୱ—ବି.(ସ + ତତ୍ତ୍ୱ)ପ୍ରକୃତି, ସ୍ୱଭାବ ।

ସତନ୍ତର—ଗ୍ରା.(ଲରିଆ)ବିଂ. ସ୍ୱତନ୍ତ୍ର ।

ସତନାମି—ଗ୍ରା.ବି.ଛତିଶଗଡ଼ର ଚମାର୍ଜାତୀୟ ଲୋକଙ୍କ କଥିତ ଛତିଶଗଡ଼ୀ ବା ଲରିଆ ଭାଷାର ରୂପାନ୍ତର ।

ସତନୁ—ବିଂ. ଦେହବିଶିଷ୍ଟ ।

ସତନ୍ତ୍ର—ବିଂ.ତନ୍ତ୍ରଯୁକ୍ତ, ସ୍ୱର ସମ୍ମିଳିତ ।

(ମୋର)ସତବଳା(ଲେ)ଇବା—ଗ୍ରା. ବି. କୌଣସି ବିଷୟର ସତ୍ୟତା ଉପରେ ବିଶ୍ୱାସସ୍ଥାପନ,(କୌଣସି ବ୍ୟକ୍ତିଠାରେ) ଆସ୍ଥା ସ୍ଥାପିତ ହେବା, କୌଣସି କାର୍ଯ୍ୟ କରିବାକୁ ସାହସ ହେବା, ମନ ହେବା, ଇଚ୍ଛା ଜାତହେବା ।

ସତମଣିବା—ଗ୍ରା: କ୍ରି. ସତ୍ୟ ବୋଲି ବିଶ୍ୱାସ କରିବା ।

ସତମସ—ଗ୍ରା.ବିଂ. ଅନ୍ଧକାରଯୁକ୍ତ, ରାହୁଗ୍ରହଯୁକ୍ତ ।

ସତମିଛ—ଗ୍ରା.ବିଂ.ସତ୍ୟ ଓ ମିଥ୍ୟା,ପ୍ରକୃତ ଓ ଅପ୍ରକୃତ, (ବି) ସତକଥା ଓ ମିଛକଥା,ପ୍ରକୃତ ବିଷୟ ଓ ଅପ୍ରକୃତ ବିଷୟ

ସତମିଛଲଗା(ଗେ)ଇକହିବା—ଗ୍ରା. କ୍ରି.

ଚୁଗୁଲି କରିବା, କୌଣସି ବ୍ୟକ୍ତି ନାମରେ କେତେକ ସତ୍ୟ ଓ କେତେକ ମିଥ୍ୟା କଥା ମିଶାଇ ଅନ୍ୟ ଆଗେ କହିବା ।

ସତର—ଗ୍ରା.ବି ଓ ବିଂ. ( ସଂ-ସପ୍ତଦଶ ) ଦଶରୁ ଅଧିକ ସାତସଂଖ୍ୟା, ୧୭, (ବିଂ) ବହୁ ସଂଖ୍ୟକ ।

ସତରଉତ୍ତରଶହେ—ଗ୍ରା. ବି. ଏକଶତ ସତର, ୧୧୭ ।

ସତରିକ—ଗ୍ରା.ବିଂ. (ସଂ-ସତର୍କ) ସତର୍କ ଦେଖ, (ଗ୍ରା.ବି—ସଂ-ସପ୍ତଦଶ) ସତର ଘର ପଣକଆର ୧୦ ଖଣ୍ଡା ।

ସତରକଥାରେସଣ୍ଢଭୁଲେ-ଗ୍ରା.(ପ୍ରବଚନ) ସ୍ୱାମୀଙ୍କ ପ୍ରତି ଭକ୍ତିମତୀ ସ୍ତ୍ରୀଲୋକ ଅନ୍ୟ ମୁଖରୁ ସ୍ୱାମୀଙ୍କ ସମ୍ବନ୍ଧରେ(ସତର) ନାନା ଦୁର୍ନାମ ଶୁଣିଲେ ଉକ୍ତ ସ୍ତ୍ରୀର ମନ ମଧ୍ୟ ଭୁଲିଯାଏ ବା ସ୍ୱାମୀଙ୍କ ପ୍ରତି ବିମୁଖ ହୁଏ ସ୍ୱାମୀଙ୍କ ପ୍ରତି ଏକାନ୍ତ ଅନୁରକ୍ତା ସ୍ତ୍ରୀକୁ ସତର (ଅର୍ଥାତ୍ ନାନା ପ୍ରକାରେ ବା ବହୁବାର ) ପ୍ରଲୋଭନଯୁକ୍ତ କଥା କହିଲେ ସେ ମଧ୍ୟ ସତୀତ୍ୱରୁ ବିଚଳିତା ହୁଏ ।

ସତରଙ୍ଗ(ଞ୍ଜି)—ଯା.ବି. ଚଉରଙ୍ଗ ପାଳି-ପରି ଘର ଘର ହୋଇ ବୁଣାହୋଇ-ଥିବା ମୋଟା ସୂତାର ବିଛଣା, ଦରି, (ଗ୍ରା. ବି—ସଂ-ଚତୁରଙ୍ଗ ) ଚତୁରଙ୍ଗ ବା ନ୍ୟାୟବଳ ଖେଳ ।

ସତରଞ୍ଜିଗୁଡ଼ି—ପ୍ରା.(ବାଲେଶ୍ୱର)ବି.ନାନା ରଙ୍ଗର ଅନେକ ଖଣ୍ଡ କାଗଜ ଯୋଡ଼ି ଯେଉଁ ଗୁଡ଼ି ତିଆର ହୋଇଥାଏ ।

ସତରଞ୍ଜି—ଗ୍ରା.ବି. ସୂତାନିର୍ମିତ ବିଛଣା ଆସନବିଶେଷ ।

ସତରପନ୍ଦର—ଗ୍ରା. ବିଂ. ବହୁସଂଖ୍ୟକ, ଅନିର୍ଦ୍ଦିଷ୍ଟ ସଂଖ୍ୟକ, ଅନିଶ୍ଚିତ, ହରି-ବରଣିଆଁ, (ବି) ଅନିଶ୍ଚିତତା, ଅନିର୍ଦ୍ଦେଶ, ସନ୍ଦେହ, ହରିବରଣ ।

ସତରଫଳା—ଗ୍ରା.ବିଂ.ଓଡ଼ିଆରେ ଯେଉଁ ବ୍ୟଞ୍ଜନବର୍ଣ୍ଣମାନଙ୍କର "ଫଳକ ବା 'ଫଳା'ମାନ ଅନ୍ୟ ବ୍ୟଞ୍ଜନବର୍ଣ୍ଣ ସଙ୍ଗେ ମିଶି ଯୁକ୍ତାକ୍ଷର ହୁଏ ସେହି ଫଳକ ଚିହ୍ନିତ ଅକ୍ଷରମାନ ।

ସତରେ—ଗ୍ରା.କ୍ରି.ବିଂ.ପ୍ରକୃତରେ, ବିଶ୍ୱାସ-ପୂର୍ବକ ।

ସତର୍କ—ପୁଂ.ବିଂ. (ବି.ସ୍ତ୍ରୀ) ବିବେଚକ, ତର୍କକାରୀ, ସାବଧାନ, ଯତ୍ନଶୀଳ. ମନୋଯୋଗଶୀଳ,. ଯେ ଆଗପଛ ତର୍କଣା କରି କାମ କରେ, (ସ୍ତ୍ରୀ)ସତର୍କା

ସତର୍କତା—ବି.(ସତର୍କ+ଭା.ତା) ସାବ-ଧାନତା, ହୁସିଆର ।

ସତର୍କତାବଲମ୍ବନ—ବି. (୬ତତ୍) ସତ-ର୍କତାର ଆଶ୍ରୟ ନେବା ।

ସତର୍କହେବା—ଗ୍ରା.କ୍ରି.ସାବଧାନ ହେବା

ସତଳ-ଗ୍ରା.ବିଂ.(ସଂ-ସମତଳ) ସମତଳ, ଚଉରସ, (ବିଂ)ତଳର ସହିତ ବର୍ତ୍ତମାନ

ସତଷଠୀ—ଗ୍ରା. ବି ଓ ବିଂ. (ସଂ-ସପ୍ତ-ଷଷ୍ଟୀ) ଷାଠିଏରୁ ଅଧିକ ସାତ, ୬୭ ।

ସତସଠିଆ—ଗ୍ରା.ବି. ଟିଙ୍ଗିପିଟି ।

ସତସା—ବି. ଏକପ୍ରକାର ନାଗବଲ୍ଲୀ ବା ପାନ ।

ସତସ୍ତୁରି—ଗ୍ରା.ବି ଓ ବିଂ. (ସଂ-ସପ୍ତ-ସପ୍ତତି)ସାତ ଅଧିକ ସତୁରି, ୭୭ ।

ସତହି(ହେ)ବା—ଗ୍ରା. କ୍ରି. କୌଣସି ବ୍ୟକ୍ତିର ବର୍ଣ୍ଣିତ ବିଷୟ ବା ବାକ୍ୟ କାର୍ଯ୍ୟତଃ ସତ୍ୟ ବୋଲି ଦେଖାଯିବା, ( କହିବା କଥା ) ସତରେ ସତରେ ଘଟିବା ।

ସତା—ଗ୍ରା.ବି. ସତ୍ତା ଦେଖ, (ସଂ-ସତ୍ତ୍ୱ) ସାର, ବଳ, ପରାକ୍ରମ, ସାମର୍ଥ୍ୟ, ସତ୍ତ୍ୱ ।

ସତାଅଶି—ଗ୍ରା. ବି ଓ ବିଂ. (ସଂ-ସପ୍ତା-ଶୀତି) ସାତ ଅଧିକ ଅଶି, ୮୭ ।

ସତା(ତେ)ଇଶ(ଶି)—ଗ୍ରା. ବି ଓ ବିଂ. (ସଂ-ସପ୍ତବିଂଶ) ସପ୍ତବିଂଶତି, ସାତ ଅଧିକ କୋଡ଼ିଏ ।

ସତାଇଶ(ଶି)ନକ୍ଷତ୍ର—ଗ୍ରା.ବି. ଜ୍ୟୋତିଷ ଶାସ୍ତ୍ରୋକ୍ତ ସପ୍ତବିଂଶ ନକ୍ଷତ୍ର ।

ସତାଇଶ(ଶି)ପୁରୁଷ—ଗ୍ରା.ବି. କୌଣସି ବ୍ୟକ୍ତିର ଉର୍ଦ୍ଧ୍ୱତନ ଓ ଅଧସ୍ତନ ବହୁ-ପୁରୁଷ ।

ସତାଇଶ(ଶି)ଯୋଗ—ଗ୍ରା.ବି. ଜ୍ୟୋତି-ଷୋକ୍ତ ସପ୍ତବିଂଶ ଶୁଭାଶୁଭ ଯୋଗମାନ ।

ସତାଇଶ(ଶି)ହଜାରି—ଗ୍ରା.ବିଂ.ଅତି ଧନୀ (ବ୍ୟକ୍ତି), (ବି) ପୁରୀ ରାଜାଙ୍କ ମାଡ଼ଳାପଞ୍ଜି-ଦାରରେ ଥିବା ଜଗନ୍ନାଥ ମହାପ୍ରଭୁଙ୍କ ସେବାପାଇଁ ଲେଖାଥିବା ପୁରୀ ଜିଲ୍ଲାରେ ଅବସ୍ଥିତ ଜମିଦାରୀ ।

ସତାଁ—ଗ୍ରା. କ୍ରି. ବିଂ. ସପ୍ତଗୁଣିତ ବା ସାତଦ୍ୱାରା ଗୁଣିତ ହେଲେ ।

ସତାନ—ଗ୍ରା.ବି ଓ ବିଂ.ସନ୍ତାବନ, ୫୭ ।

ସତାନନ୍ଦ—ବି. ଗୌତମ ମୁନିଙ୍କ ପୁତ୍ର, ଓ ଜନକ ରାଜାଙ୍କ ପୁରୋହିତ ।

ସତାନ(ଲ)ବେ—ଗ୍ରା. ବି ଓ ବିଂ. (ସଂ-ସପ୍ତନବତି) ସାତ ଅଧିକ ନବେ, ୯୭ ।

ସତାନପତାନ—ଗ୍ରା.ବି, ସତାଇଶପୁରୁଷ ଦେଖ ।

ସତାବନ—ଗ୍ରା. ବି ଓ ବିଂ. ସପ୍ତପଞ୍ଚାଶତ୍, ସାତ ଅଧିକ ପଗୃଶ, ୫୭ ।

ସତାର୍—ଯା. ବି. ଅପେକ୍ଷା କରିବା, କାଳ ବିଳମ୍ବ ।

ସତାର୍‌କରିବା—ଗ୍ରା. କ୍ରି. କେତେକ ସମୟପାଇଁ ଅପେକ୍ଷା କରିବା, କୌଣସି କାର୍ଯ୍ୟରେ ବିଳମ୍ବ ସହ୍ୟ କରିବା, ସମୟ ଦେବା, ମହଲତ୍ ଦେବା ।

ସତାର୍‌ମଦାର୍—ଯା.ବି. ସହି ସମ୍ଭାଳିବା, କାଳବିଳମ୍ବ ।

ସତାର—ବିଂ. (ବି.ସ୍ତ୍ରୀ—ସ+ତାରା ) ତାରା ସହିତ ବିଦ୍ୟମାନ ବା ଯୁକ୍ତ, (ସ+ତାର) ସତନ୍ତ୍ର ।

ସତାରିବା—ଗ୍ରା. କ୍ରି. ସବୁର କରିବା, କାଳବିଳମ୍ବ ସହିବା, ଅପେକ୍ଷା କରିବା ।

ସତାସମ—ଗ୍ରା.ବି. ସତ୍ତ୍ୱ ।

ସତି-ବି.(ସନ୍+ଭା.ତି)ଦାନ,(ଷୋ+ଭା.ତି) ଅବସାନ, ବିନାଶ ।

ସତିଆ—ଗ୍ରା.ପୁଂ.ବିଂ. ( ସଂ-ସତ୍ୟବାଦୀ ) ସତ୍ୟବାଦୀ, (ସ୍ତ୍ରୀ) ସତେଇ ।

ସତିଆପୁରୁଷ—ଗ୍ରା.ବି.ସତ୍ୟବାଦୀ(ବ୍ୟକ୍ତି), (ବ୍ୟଙ୍ଗ୍ୟ) ମିଥ୍ୟାବାଦୀ ବ୍ୟକ୍ତି, କପଟାଚାରୀ ବ୍ୟକ୍ତି ।

ସତିତସ୍ତ—ଗ୍ରା.ବି. ସତୀତତ୍ତ୍ୱ, ସତୀତ୍ୱ ।

ସତିମିର—ବି°.ତିମିର ସହିତ ବର୍ତ୍ତମାନ, ଅନ୍ଧକାରଯୁକ୍ତ ।

ସତିଲ—ବି°. ତିଲସହିତ, ତିଲଯୁକ୍ତ ।

ସତୀ—ସ୍ତ୍ରୀ.ବି°. ( ଅସ୍+କ.ଅତ୍+ଈ ) ବିଦ୍ୟମାନା. ସତ୍‌ସ୍ୱଭାବା, ଉତ୍ତମା,ପତି-ବ୍ରତା, ସାଧ୍ୱୀ, ପତିବ୍ରତା, (ବି-ଷୋ+କ.ଅତ୍+ଈ) ସ୍ୱାମୀ ସଙ୍ଗରେ ସହ-ମୃତା ସ୍ତ୍ରୀ,ସାଧ୍ୱୀ ସ୍ତ୍ରୀ,ପତିଗତପ୍ରାଣା ସ୍ତ୍ରୀ, ପତିବ୍ରତା ସ୍ତ୍ରୀ,ଦାନ,ଅବସାନ,ସୌରାଷ୍ଟ୍ର-ମୃତ୍ତିକା. ଚତୁରକ୍ଷର ସଂସ୍କୃତ ଛନ୍ଦୋ-ବିଶେଷ, ସାବିତ୍ରୀ (ସତ୍ୟବାନଙ୍କ ସ୍ତ୍ରୀ), ପାର୍ବତୀ (ମହାଦେବଙ୍କ ପତ୍ନୀ) ।

ସତୀକ—ବି. ଜଳ ।

ସତୀଚଉରା—ଗ୍ରା. ବି. ସହମୃତା ସ୍ତ୍ରୀଙ୍କ ସମାଧି ମନ୍ଦିର,ସତୀଙ୍କ ଚିତାଭସ୍ମଉପରେ ନିର୍ମିତ ଚଉରା, କଟକ ସହରର ପଶ୍ଚିମପ୍ରାନ୍ତସ୍ଥ କାଠଯୋଡ଼ି ନଦୀକୂଳର ଶ୍ମଶାନର ନାମ ।

ସତୀତା(ତ୍ୱ)—ବି. (ସତୀ+ଭା.ତା) ସତୀ-ସ୍ତ୍ରୀଙ୍କ ଧର୍ମ, ପାତିବ୍ରତ୍ୟ, ପରପୁରୁଷ ସଂସର୍ଗହୀନତା । [ ରୂପ ଧର୍ମ ।

ସତୀତ୍ୱଧର୍ମ—ବି, (କ.ଧା)ପତିପରାୟଣତା·

ସତୀତ୍ୱନାଶ(ଭଙ୍ଗ)--ବି.ସ୍ତ୍ରୀର ସତୀତ୍ୱ ନଷ୍ଟ କରିବା, ପରପୁରୁଷ ଦ୍ୱାରା ସତୀ ସ୍ତ୍ରୀର ରମଣ ।

ସତୀତ୍ୱରକ୍ଷା(ପାଳନ)---ବି. ପାତିବ୍ରତ୍ୟ ଧର୍ମ ପାଳନ, ସତୀ ସ୍ତ୍ରୀର ସତୀତ୍ୱ ନାଶ କରିବା ବ୍ୟକ୍ତିର ଆକ୍ରମଣରୁ ରକ୍ଷା, ସତୀକୁ ରକ୍ଷା କରିବା ।

ସତୀତ୍ୱଧାରି—ପୁଂ. ବି ବା ବି°. ପାତି-ବ୍ରତ୍ୟର ଆଧାର, ଅତିଶୟ ପତିବ୍ରତା ।

ସତୀଦାହ—ବି.ମୃତ ସ୍ୱାମୀଙ୍କ ଶବ ସଙ୍ଗେ ଚିତାଗ୍ନିରେ ସତୀର ଜୀବନୋତ୍ସର୍ଗ,ସହ-ମରଣ, ଅନୁମରଣ ।

ସତୀଧର୍ମ—ବି. ସତୀତ୍ୱ ଦେଖ ।

ସତୀଧର୍ଷଣ—ବି. (୬ତତ୍) ସତୀର ସତୀତ୍ୱ ନଷ୍ଟ କରିବା ।

ସତୀନ—ବି. କଳସ, ମଟର, (ସତୀ+ନୀ+ଅ) ସତୀଲ ଦେଖ ।

ସତୀନକ—ବି. ସତୀଲକ ।

ସତୀନକଙ୍କତ—ବି°. ଉଦକଗୃହ ଅଳଙ୍କ-କ୍ଷ ବିଶିଷ୍ଟ ।

ସତୀନାଗରା—ଗ୍ରା. ବି. ପୂର୍ବେ ସହମୃତା ବା ଅନୁମୃତା ହେବାକୁ ଶ୍ମଶାନକୁ ଯାତ୍ରା କରୁଥିବା ସତୀ ସ୍ତ୍ରୀଙ୍କ ଯାତ୍ରା ସମୟରେ ବଜା ଯାଉଥିବା ନାଗରା,କିନ୍ତୁ ବର୍ତ୍ତମାନ ସ୍ୱାମୀ ବଞ୍ଚିଥାଉ ଥାଉଁ ମୃତା ସ୍ତ୍ରୀଙ୍କ ଶବ ଦାହାର୍ଥ ଶ୍ମଶାନକୁ ନିଆଯିବାବେଳେ ଶବଯାତ୍ରା ସଙ୍ଗେ ବାଜିବା ବାଦ୍ୟ ।

ସତୀନାଥ—ବି.(୬ତତ୍)ମହାଦେବ,ଶିବ ।

ସତୀପଣ—ଗ୍ରା. ବି. ସତୀତ୍ୱ, ସତୀତ୍ୱର ବଡ଼ାଇ ।

ସତୀପୀଠ—ବି. ବିରଜାକ୍ଷେତ୍ର,ଯାଜପୁରର ଏକନାମ,ଯେଉଁ ଯେଉଁ ସ୍ଥାନରେ ସତୀଙ୍କ ଶବର ଅଂଶମାନ ପଡ଼ିଥିଲା ।

ସତୀଯିବା—ଗ୍ରା. କ୍ରି. (ବର୍ତ୍ତମାନ ଏ ପ୍ରଥା ରହିତ) ସ୍ୱାମୀଙ୍କ ସହମୃତା ହେବା ।

ସତୀର୍ଥ(ର୍ଥ୍ୟ)—ବି.(ସ+ତୀର୍ଥ) ସମକାଳରେ ଏକ ଗୁରୁଙ୍କ ନିକଟରେ ଅଧ୍ୟୟନ କରୁ-ଥିବା ଶିଷ୍ୟ ।

ସତୀଲ(କ)—ବି. ( ସତୀ+ଲା+କ.ଅ ) ବଂଶ, କୁଳ, (ସ+ତିଲ) ମାଷ, ବରା, ମଟର, କଳସ ।

ସତୀଲା-ବି.ତହୁଡ଼ି ମଞ୍ଜି,ଖେସାରି,ଚଣା ।

ସତୀଲକ୍ଷ୍ମୀ—ଗ୍ରା.ବି.ସ୍ତ୍ରୀ. ଲକ୍ଷ୍ମୀଙ୍କ ପରି ସତୀ ଓ ଗୁଣବତୀ ସଧବା ସ୍ତ୍ରୀ ।

ସତୀବ୍ରତା—ସ୍ତ୍ରୀ.ବି. ସତୀବ୍ରତାବଲମ୍ବିନୀସ୍ତ୍ରୀ ସ୍ତ୍ରୀ,ବାସବଦତ୍ତା ବର୍ଣ୍ଣିତ ନାୟିକାବିଶେଷ

ସତୀଶ—ବି.(୬ତତ୍) ମହାଦେବ, ଶିବ ।

ସତୀସରଃ--ବି.ସତୀନାମରେ ଉତ୍ସର୍ଗୀକୃତ କାଶ୍ମୀରସ୍ଥ ପୁଣ୍ୟତୋୟା ହ୍ରଦବିଶେଷ ।

ସତୀସାଧବୀ—ଗ୍ରା. ସ୍ତ୍ରୀ. ବି. ସତୀ ସ୍ତ୍ରୀ ।

ସତୀସାବିତ୍ରୀ—ଗ୍ରା.ବି.ସାବିତ୍ରୀଙ୍କ ପରି ସତୀ

ସତୁଆ—ଗ୍ରା. ପୁଂ. ବି°. ସତ୍ୟବାଦୀ ।

ସତୁରି—ଗ୍ରା. ବି. ଓ ବି°. ସପ୍ତତି, ୬୦ ସଂଖ୍ୟାରୁ ଅଧିକ ୧୦, ୭୦ ।

ସତୁଲ—ପ୍ରା. (ସିଂହଭୂମି) ବି. (କଟକ ଅଞ୍ଚଳରେ ଅତୁଲ) ହସ୍ତଭୂଷଣ, ଖଡ଼ୁ, ଦାନ୍ତଥିବା ହାତଖଡ଼ୁ ।

ସତୁଷ—ବି°. (ବ.ବ୍ରୀ) ତୁଷ ଯୁକ୍ତ(ଶସ୍ୟ)

ସତୂଳ—ବି, ଗୁଳଛ ବା ପୁଚ୍ଛଯୁକ୍ତ ।

ସତୃଣ—ବି.ତୃଣର ସହିତ ବର୍ତ୍ତମାନ,ତୃଣ-ବିଶିଷ୍ଟ, ତୃଣଯୁକ୍ତ ।

ସତୃଟ୍—ପୁଂ. ବି°. (ସ+ତୃଷ)ତୃଷ୍ଣାଯୁକ୍ତ, ତୃଷିତ, ତର୍ଷିତ, (ସ୍ତ୍ରୀ) ସତୃଷା ।

ସତୃଷ୍ଣ—ବି°.(ସ+ତୃଷ୍ଣା,ବ.ବ୍ରୀ)ତୃଷାଯୁକ୍ତ, ପିପାସୁ,ସସ୍ପୃହ,ସାଗ୍ରହ,ଅତ୍ୟନ୍ତ ଆଗ୍ରହ-ଯୁକ୍ତ(ଦୃଷ୍ଟି),ତେଜସ୍ୱୀ,ବଳବାନ୍,(ସ୍ତ୍ରୀ) ସତୃଷ୍ଣା ।

ସତୃଷ୍ଣଦୃଷ୍ଟି—ବି. (କ.ଧା) ସାଗ୍ରହନୟନ, ଲାଲସାଯୁକ୍ତଦୃଷ୍ଟି,(ବି°-ବ.ବ୍ରୀ) ସାଗ୍ରହ-ଦୃଷ୍ଟି ଯୁକ୍ତ ।

ସତେ—ଗ୍ରା. ଅ. ସତରେ, ସତ୍ୟରେ, ପ୍ରକୃତରେ,(କାମନା ଓ ପ୍ରଶ୍ନାର୍ଥକ)ପ୍ରକୃ-ତରେ ବା ଫଳତଃ ଏହାକି ଘଟିବ, (ପ୍ରଶ୍ନାର୍ଥକ)ଏହାକି ସତ୍ୟ? ଭଲ?ଫଳତଃ

ସତେଇହେବା—ଗ୍ରା. କ୍ରି.ଭଲେଇହେବା, ଆପଣାର ସାଧୁତା ଦେଖାଇ ହେବା ବା କହିହେବା ।

ସତେଜ—ଗ୍ରା. ବି°. ପ୍ରଖର, ତେଜସ୍ୱୀ, ବୀର୍ଯ୍ୟଶୀଳ, ବଳବାନ୍,ସଜୀବ,ହୃଷ୍ଟପୁଷ୍ଟ, ମନୋହର । [ ଦେଖ ।

ସତେଜାଃ—ବି°.(ସହ+ତେଜସ୍)ସତେଜ

ସତେର—ବି. ତୁଷ ।

ସତୋକ—ବି° .ପୁତ୍ର ପୌତ୍ରାଦି ଅପତ୍ୟ ସହିତ ।

ସତୋବୃହତ୍—ବି°. ସମଗ୍ରାର୍ଦ୍ଧ,ସମେତ ।

ସତୋବୃହତୀ—ସ୍ତ୍ରୀ. ବି. ତ୍ରିପଦାଛନ୍ଦୋ-ବିଶେଷ ।

ସତୋବୀର—ପୁଂ. ବି°. ପ୍ରାପ୍ତବୀର୍ଯ୍ୟ ।

ସତ୍ତ—ଗ୍ରା. ବି ଓ ବି°. (ସଂ-ସତ୍ୟ)ସତ୍ୟ ଦେଖ, (ବି°-ସଂ-ସତ୍)ସତ୍ ଦେଖ ।

ସତ୍ତମ—ବି°.(ସତ୍+ତମ) ଅତି ଉତ୍ତମ, ସର୍ବୋତ୍ତମ, ଉତ୍କୃଷ୍ଟ, ପୂଜ୍ୟତମ, (ସ୍ତ୍ରୀ) ସତ୍ତମା ।

ସତ୍ତର୍କ—ବି. ସାଧୁମାନଙ୍କର ତର୍କ, ସାଧୁ-ତର୍କ, ଉତ୍ତମତର୍କ ।

ସତ୍ତା—ସ୍ତ୍ରୀ. ବ. (ସତ୍ + ଭା.ତା) ବିଦ୍ୟମାନତା, ସ୍ଥିତି,ଉତ୍ପତ୍ତି,ସାଧୁତା,ଉତ୍କର୍ଷ, ଭଦ୍ରତା, ଉତ୍କୃଷ୍ଟତା ଜାତିବିଶେଷ, ଦ୍ରବ୍ୟ, ଗୁଣ ଓ କର୍ମନିଷ୍ଠ ଜାତି,(ଗ୍ରା.ବି) ପତା, ଚିହ୍ନ, (ବିଂ) ନିକ୍ଷେପ,ଉପବିଷ୍ଟ ।

ସତ୍ତାବାନ୍—ପୁଂ.ବିଂ. ସତ୍ତାଯୁକ୍ତ,ସତ୍ତାବିଶିଷ୍ଟ

ସତ୍ତି—ସ୍ତ୍ରୀ. ବି. ପ୍ରବେଶ ।

ସତ୍ତ୍ୱ—ବି. (ସତ୍ + ଭା.ତ୍ୱ)ବିଦ୍ୟମାନତା, ସ୍ଥିତି, ଚେତନ ପଦାର୍ଥ, ଜୀବ, ପ୍ରାଣୀ, ଜନ୍ତୁ, ସତ୍ତ୍ୱଗୁଣ, ଦ୍ରବ୍ୟ, ପଦାର୍ଥ,ମନଃ, ଅନ୍ତଃକରଣ, ଶକ୍ତି, ସ୍ୱଭାବ, ପ୍ରକୃତି, ବ୍ୟବସାୟ, ବ୍ୟବହାର, ଅବସ୍ଥା, ବଳ, ଶକ୍ତି,କ୍ଷମତା,ସ୍ୱାଭାବିକ ଅବସ୍ଥା,ପରାକ୍ରମ, ଧୈର୍ଯ୍ୟ, ତେଜ,ଉତ୍ସାହ, ଧନ, ଜୀବନ, ପ୍ରାଣ,ଜୀବନଧାରଣ,ଜୀବନକାଳ,ଆୟୁଃ, ଚୈତନ୍ୟ,ଆତ୍ମା,ସାହସ,ନିର୍ଯ୍ୟାସ, ରସ, ସାର, ମନୋଗତଭାବ, କୁବେର, ପିଶାଚାଦି, ବୁଦ୍ଧି, ନିଃଶ୍ୱାସ, ପ୍ରଶ୍ୱାସ, ସତ୍ତାଜାତି,(ଗ୍ରା.ବି-ସଂ-ସ୍ୱତ୍ୱ)ସମ୍ପତ୍ତିରେ ସ୍ୱାମୀର ଅଧିକାର, ସ୍ୱାମିତ୍ୱ, ସ୍ୱତ୍ୱ ।

ସତ୍ତ୍ୱକର୍ତ୍ତା—ପୁଂ. ବି. ପ୍ରଜାପତି ।

ସତ୍ତ୍ୱଗୁଣ—ବି. ସୃଷ୍ଟିର ବା ପ୍ରକୃତିର ୩ଟି ଗୁଣ ମଧ୍ୟରୁ ପ୍ରଧାନ ବା ଉତ୍ତମ ବା ଶ୍ରେଷ୍ଠ ଗୁଣ ।

ସତ୍ତ୍ୱତା—ବି. (ସତ୍ତ୍ୱ + ତା) ସତ୍ତ୍ୱଗୁଣର କାର୍ଯ୍ୟ, ସତ୍ତ୍ୱର ଭାବ ବା ଧର୍ମ ।

ସତ୍ତ୍ୱଧାମ—ବି. ସତ୍ତ୍ୱପ୍ରକାଶ, ବିଷ୍ଣୁ ।

ସତ୍ତ୍ୱପତି—ବି.ଜୀବଜଗତର ପତି,ଭଗବାନ

ସତ୍ତ୍ୱପ୍ରକାଶ—ବି.ସତ୍ତ୍ୱଗୁଣର ପ୍ରକାଶ,ବିଷ୍ଣୁ

ସତ୍ତ୍ୱମୟ—ବିଂ. (ସତ୍ତ୍ୱ+ମୟ)ସତ୍ତ୍ୱସ୍ୱରୂପ

ସତ୍ତ୍ୱମୂର୍ତ୍ତି—ବି. ବିଷ୍ଣୁ, ସତ୍ତ୍ୱ କେବଳ ଯାହାର ମୂର୍ତ୍ତି ହୋଇଅଛି ।

ସତ୍ତ୍ୱଲକ୍ଷଣା—ସ୍ତ୍ରୀ.ବିଂ.ଗୁର୍ବିଣୀ,ଗର୍ଭବତୀ ।

ସତ୍ତ୍ୱବାନ୍—ପୁଂ.ବିଂ.(ସତ୍ତ୍ୱ+ବତ୍)ସତ୍ତ୍ୱଗୁଣବିଶିଷ୍ଟ, ସ୍ଥାୟୀ, ସ୍ୱାଭାବିକ,ଧାର୍ମିକ, ନିଷ୍ପାପ ।

ସତ୍ତ୍ୱବତୀ—ସ୍ତ୍ରୀ. ବି. (ସତ୍ତ୍ୱ + ବତ୍ + ଈ) ତନ୍ତ୍ରବର୍ଣ୍ଣିତ ଦେବୀବିଶେଷ,ଗର୍ଭବତୀ ସ୍ତ୍ରୀ ।

ସତ୍ତ୍ୱଶାଳୀ—ପୁଂ. ବିଂ. (ସତ୍ତ୍ୱ + ଶାଳ + ଇନ୍) ସତ୍ତ୍ୱବିଶିଷ୍ଟ, ସତ୍ତ୍ୱଗୁଣଯୁକ୍ତ ।

ସତ୍ତ୍ୱସର୍ଗ—ବି. ସତ୍ତ୍ୱଗୁଣ ଦ୍ୱାରା ସୃଷ୍ଟ ।

ସତ୍ତ୍ୱସ୍ଥ—ବିଂ. (ସତ୍ତ୍ୱ + ସ୍ଥା + କ.ଅ)ସତ୍ତ୍ୱଗୁଣ ପ୍ରଧାନ (ବ୍ୟକ୍ତି), (ସ୍ତ୍ରୀ) ସତ୍ତ୍ୱସ୍ଥା ।

ସତ୍ତ୍ୱସ୍ଥାନ—ବି. ସତ୍ତ୍ୱର ଆଧାର ।

ସତ୍ତ୍ୱହର—ବିଂ. ସତ୍ତ୍ୱନାଶକ, ସତ୍ତ୍ୱଗୁଣ ନାଶକ ।

ସତ୍ତ୍ୱାତ୍ମା—ପୁଂ. ବିଂ. ସତ୍ତ୍ୱସ୍ୱରୂପ, ( ବି ) ସତ୍ତ୍ୱମୂର୍ତ୍ତି, ବିଷ୍ଣୁ ।

ସତ୍ତ୍ୱେ—ଗ୍ରା. ଅବ୍ୟ. (ସଂ-ସତ୍ ଶବ୍ଦର ୭ମୀ ବିଭକ୍ତି ସତି) ଥାଇମଧ୍ୟ,ଅବସ୍ଥିତ ଥିଲେ ମଧ୍ୟ, ହେଲେ ମଧ୍ୟ, (ବି) ହେଲେହେଁ, (ଅମୁକର) ବିଦ୍ୟମାନତା ଥାଇସୁଦ୍ଧା ।

ସତ୍ର(ସ)—ବି. (ସଦ୍+ଅଧି.ସ) ଯଜ୍ଞ, ସତତ ଅନ୍ନପାନାଦି ଦାନ, ସଦାବ୍ରତ, ଛଏବରତ୍, ବନ, ଅରଣ୍ୟ, ଗୃହ, ଧନ, ଆଚ୍ଛାଦନ, କୌତୁକ,ଛଳ,ସରୋବର, ବିଷ୍ଣୁଙ୍କର ଏକ ନାମ, ଯେଉଁଠାରେ ଅନ୍ନପାନାଦି ଲୋକଙ୍କୁ ବିତରଣ କରାଯାଉଥାଏ । [ ସତ୍ରଶାଳା ।

ସତ୍ରଗୃହ—ବି. ଯାଗଶାଳ, ଯଜ୍ଞଗୃହ,

ସତ୍ରଯାଗ—ବି. ଯଜ୍ଞ, ସତ୍ର ।

ସତ୍ରବସତି—ବି. ସତ୍ର ।

ସତ୍ରଶାଳା—ବି.ଅନ୍ନାଦି ଦାନଗୃହ,ଯଜ୍ଞଶାଳା, ପ୍ରତିଶ୍ରୟ ।

ସତ୍ରସଦ୍-ବିଂ.ଜୀବିତ ଦାତା,ଜୀବନଦାତା ।

ସତ୍ରସଦ୍ମ—ବି. ସତ୍ରଶାଳା ।

ସତ୍ରା—ଅବ୍ୟ. ସହାର୍ଥ, ସହିତ, ସମଭିବ୍ୟାହାରରେ ।

ସତ୍ରାଜିତ୍—ବି. (ସତ୍ର + ଆ+ଜି+କ. କ୍ୱିପ୍) ଶ୍ରୀକୃଷ୍ଣଙ୍କର ଶ୍ୱଶୁର, ସତ୍ୟଭାମାଙ୍କ ପିତା ।

ସତ୍ରାନ୍ନ—ବି. (ସତ୍ର + ଅନ୍ନ) ସତ୍ରରେ ପ୍ରଦତ୍ତ ଅନ୍ନ,ଅନ୍ନଛତ୍ରରେ କ୍ଷୁଧିତ ବ୍ୟକ୍ତିମାନଙ୍କୁ ଦିଆଯିବା ପକ୍ୱାନ୍ନ ।

ସତ୍ରାନ୍ନଭୋଜୀ—ପୁଂ. ବି ଓ ବିଂ. ଛତରଖିଆ,ଯେଉଁବ୍ୟକ୍ତି ଅନ୍ନଛତ୍ରରେ ଖଇରାତ୍ ଦିଆଯିବା ଅନ୍ନ ଖାଏ ।

ସତ୍ରି—ବି.(ସଦ୍+କ.ତ୍ରି )ମେଘ,ମେଣ୍ଢା, ହସ୍ତୀ, (ବିଂ) ଜୟଶୀଳ, ଜୟକାଂକ୍ଷୀ ।

ସତ୍ରିଜାତକ—ବି. ଏକପ୍ରକାର ମାଂସର ବ୍ୟଞ୍ଜନ ।

ସତ୍ରୀ—ପୁଂ. ବିଂ. (ସତ୍ର + ଇନ୍ ଯାଗଶୀଳ, (ବି) ସଦାଗୃହୀ ଗୃହସ୍ଥ, ଦୂତ ।

ସତ୍ରୀଭୂତ—ବିଂ. ଭୂତଗଣର ରକ୍ଷକ ।

ସତ୍ରୋତ୍ଥାନ—ବି.ସତ୍ର ରୁ ଉତ୍ଥାନ,ଯଜ୍ଞରୁ ଉଠିବା । [ ଣୀୟ ।

ସତ୍ର୍ୟ—ବିଂ. ସତ୍ରସମ୍ବନ୍ଧୀୟ, ଯଜ୍ଞସମ୍ବ-

ସତ୍ୱ—ବି. (ସତ୍+ଭା.ତ୍ୱ) ସତ୍ତ୍ୱ ଦେଖ, (ଗ୍ରା.ବି) ବସ୍ତୁରେ ବା ସମ୍ପତ୍ତିରେ ସ୍ୱାମିତ୍ୱ, ଅଧିକାର ।

ସତ୍ୱଉଚ୍ଛେଦ—ଗ୍ରା. ବି. ସ୍ୱତ୍ୱର ଲୋପ ।

ସତ୍ୱଉଦ୍ଭବ—ଗ୍ରା.ବି.ଖରିଦ ବା ବହୁକାଳ ଦଖଲ ବା ଉତ୍ତରାଧିକାରିତ୍ୱ ବା ଦାନ ଗ୍ରହଣ କରିଥିବା ବ୍ୟକ୍ତିର ଉକ୍ତ ସମ୍ପତ୍ତିରେ ସ୍ୱତ୍ୱର ଉତ୍ପତ୍ତି ।

ସତ୍ୱଦଖଲ—ଗ୍ରା. ବି. କୌଣସି ବ୍ୟକ୍ତିର ସ୍ୱତ୍ୱ ଓ ଉକ୍ତ ସମ୍ପତ୍ତିର ଭୋଗ ।

ସତ୍ୱଦାବୀ—ଗ୍ରା. ବି. ସମ୍ପତ୍ତିରେ ସ୍ୱାମିତ୍ୱ ବା ଅଧିକାର ପାଇବା ପାଇଁ ଦାବି ।

ସତ୍ୱବାନ୍—ବିଂ. ସତ୍ତ୍ୱବାନ୍ ଦେଖ,(ଗ୍ରା. ବିଂ) ଯାହାର ସମ୍ପତ୍ତିରେ ସ୍ୱାମିତ୍ୱ ଥାଏ, ହକ୍‌ଦାର୍ ।

ସତ୍ୱବୁଡ଼ା(ଡ଼େ)ଇବା—ଗ୍ରା. କ୍ରି. ଅନ୍ୟବ୍ୟକ୍ତିର ସ୍ୱତ୍ୱକୁ ବା ସ୍ୱାମିତ୍ୱକୁ ଜବରଦସ୍ତି ଅଧିକାର ଦ୍ୱାରା ଲୋପ କରିବା ।

ସତ୍ୱର—କ୍ରି. ବିଂ. (ବ.ବ୍ରୀ) ଅବିଳମ୍ବେ, ଶୀଘ୍ର, (ବିଂ) ଶୀଘ୍ର, ତ୍ୱରିତ,ଅବିଳମ୍ବ ।

ସତ୍ୱରଗତି—ବି. (କ.ଧା) ଶୀଘ୍ରଗମନ, (ବିଂ-ବ.ବ୍ରୀ) ତ୍ୱରିତ ଗତିବିଶିଷ୍ଟ ।

ସତ୍ୱରତା(ତ୍ୱ)—ବି. ( ସତ୍ୱର+ଭା.ତା ) ଶୀଘ୍ରତା ।

ସତ୍ୱଲୋପ—ଗ୍ରା. ବି. ସତ୍ୱଉଦ୍ଭବ ଦେଖ, ସମ୍ପତ୍ତିରେ ଜନ୍ମିଥିବା ସବୁପ୍ରକାରର ସତ୍ୱ

ସତ୍ୱସାବ୍ୟସ୍ତ-ଗ୍ରା.ବି. ସମ୍ପତ୍ତିରେ କୌଣସି ବ୍ୟକ୍ତିର ସ୍ୱତ୍ୱ ଥିବା ସମ୍ବନ୍ଧେ ଅଦାଲତଙ୍କ ଦ୍ୱାରା ବିଚାର ପୂର୍ବକ ନିର୍ଦ୍ଧାରଣ ।

ସତ୍ୱାସତ୍ୱ—ଗ୍ରା.ବି. ସ୍ୱତ୍ୱସମ୍ବନ୍ଧୀୟ ବିଷୟ,

ବାଦୀ ଓ ପ୍ରତିବାଦୀ ଦୁଇଜଣଙ୍କ ମଧ୍ୟରୁ କାହାର ଦାବୀକୃତ ସତ୍ୱ ଅଛି ଓ କାହାର ନାହିଁ ଏହି ବିଷୟ ।
**ସତ୍ୟ**—ବିଂ.(ସତ୍ + ଯ) ପ୍ରକୃତ, ଯଥାର୍ଥ, ଯାହା ଭ୍ରମାତ୍ମକ ନୁହେଁ, ଠିକ୍, ଯାହା ମିଥ୍ୟା ନୁହେଁ, ନିତ୍ୟ, ଅବିନାଶୀ, ନିଃସନ୍ଦେହ, ନିଶ୍ଚିତ, (ବି) ନିତ୍ୟତା, ଅବିନଶ୍ୱରତା, ଯାଥାର୍ଥ୍ୟ, ଯଥାର୍ଥ କଥନ, ଅମିଥ୍ୟା, ପ୍ରକୃତ ଘଟଣାର ବର୍ଣ୍ଣନା, ପବିତ୍ରତା, ପୁଣ୍ୟ, ଯଥାର୍ଥ ଜ୍ଞାନ, ବିଜ୍ଞାନ, ସିଦ୍ଧାନ୍ତ, ବୈଜ୍ଞାନିକ ବା ପ୍ରାକୃତିକ ଅପରିବର୍ତ୍ତନୀୟ ନିୟମ, ଧର୍ମତଃ ପ୍ରତିଜ୍ଞା, ଶପଥ, ସତ୍ୟଯୁଗ, ସୃଷ୍ଟିର ୪ ଯୁଗ ମଧ୍ୟରୁ ପ୍ରଥମ ଯୁଗ, (ଏହାର ପରିମାଣ ୧୭୨୮୦୦୦ ବର୍ଷ) ବ୍ରହ୍ମଲୋକ, ବିଷ୍ଣୁ, ଶ୍ରୀରାମଚନ୍ଦ୍ର, ଅଶ୍ୱତ୍ଥ ବୃକ୍ଷ, ନାନ୍ଦୀମୁଖ ଶ୍ରାଦ୍ଧରେ ଅର୍ଚ୍ଚିତ ଦେବତା, (ଗ୍ରା.ବି) ତଥ୍ୟ, ବିଜ୍ଞାନ ବା ଦର୍ଶନାଦି ଶାସ୍ତ୍ରମତେ ଅପରିବର୍ତ୍ତନୀୟ ବିଷୟ, ସ୍ୱତଃସିଦ୍ଧ, ସ୍ୱୀକାର୍ଯ୍ୟ ।
**ସତ୍ୟଆମ୍ବ(ମ୍ବା)**—ଗ୍ରା. ବି. (ସଂ-ସତ୍ୟ ଓ ଆମ୍ର) ନାଗେଶ୍ୱରାଦି ବର୍ଗର ସୁଠାମ-ଶ୍ୟାମଳ ତରୁବିଶେଷ ।
**ସତ୍ୟଂ**—ଅ. (ସତ୍ + ଯମ୍) ପ୍ରଶ୍ନ, ସ୍ୱୀକାର ।
**ସତ୍ୟଂକାର**—ବି. ସତ୍ୟଙ୍କାର ଦେଖ ।
**ସତ୍ୟକ**—ବି. ସତ୍ୟଙ୍କାର ଦେଖ ।
**ସତ୍ୟକଥନ**—ବି.(୬ତତ୍) ସତ କହିବା ।
**ସତ୍ୟକଥା**—ଗ୍ରା. ବି. ଅମିଥ୍ୟା, ପ୍ରକୃତ ଘଟଣାର ବିବୃତି ।
**ସତ୍ୟକରଣ**—ବି. ସତ୍ୟଙ୍କାର ଦେଖ, କୌଣସି କାର୍ଯ୍ୟ କରିବା ପାଇଁ ପ୍ରତିଜ୍ଞା କରିବା, ଶପଥ, ଧର୍ମତଃ ପ୍ରତିଜ୍ଞା ।
**ସତ୍ୟକାର**—ବି. ସତ୍ୟଙ୍କାର ଦେଖ ।
**ସତ୍ୟକିଙ୍କର**—ବି ଓ ବିଂ.(୬ତତ୍) ସତ୍ୟର ଦାସ, ସତ୍ୟବ୍ରତପରାୟଣ ।
**ସତ୍ୟକୀର୍ତ୍ତି**—ବିଂ. ଧର୍ମକାର୍ଯ୍ୟଶାଳୀ ।
**ସତ୍ୟକୁ ଆସିବା**—ଗ୍ରା. କ୍ରି. ସତ୍ୟରୂପେ ଘଟିବା ।
**ସତ୍ୟକୃତ୍**—ବିଂ. (ସତ୍ୟ + କୃ + କ୍ୱିପ୍) ସତ୍ୟକାରକ, ଯେ ସତ୍ୟ କରେ ।
**ସତ୍ୟଗିର୍**—ବିଂ. ସତ୍ୟବାକ୍, ସତ୍ୟବାକ୍ୟଯୁକ୍ତ, ସତ୍ୟବାଦୀ ।
**ସତ୍ୟଘ୍ନ**—ବିଂ. ( ସତ୍ୟ + ହନ୍ + ଅ ) ସତ୍ୟନାଶକ, ଯେ ସତ୍ୟକରି ତାହା ପ୍ରତିପାଳନ କରେ ନାହିଁ ।
**ସତ୍ୟଙ୍କାର**—ବି. (ସତ୍ୟଂ + କୃ + ଘ.ଅ) କୌଣସି ଦ୍ରବ୍ୟ କ୍ରୟ କରିବା ପାଇଁ ଅଙ୍ଗୀକାର, ଚକ୍ତିକୃତ କାର୍ଯ୍ୟର ଅବଶ୍ୟକ୍ରିୟା ସାଧନ ନିମିତ୍ତ ପରହସ୍ତରେ ଦୀୟମାନ ବସ୍ତୁ ବା ବ୍ୟକ୍ତି ।
**ସତ୍ୟଙ୍କାରକୃତ**—କୌଣସି ଦ୍ରବ୍ୟ କିଣିବା ନିମନ୍ତେ କଥା ସ୍ଥିରହେବା ପରେ ବିକ୍ରେତାକୁ ଆଗତୁରା ଦିଆଯିବା ଧନ, ବଇନା ।
**ସତ୍ୟଜଳ୍ପନ**—ବି.(୬ତତ୍) ସତ୍ୟକଥନ, ସତ୍ୟକହିବା ।
**ସତ୍ୟଜିତ୍**—ବିଂ.ସତ୍ୟବାନ୍, (ବି) ସୁନୀତିର ପୁତ୍ର, କୃଷ୍ଣଙ୍କର ପୁତ୍ରବିଶେଷ, ଦାନବବିଶେଷ ।
**ସତ୍ୟଜ୍ଞ**—ବିଂ. (ସତ୍ୟ + ଜ୍ଞା + ଅ) ସତ୍ୟପ୍ରତିଜ୍ଞ, ଯେ ସତ୍ୟକୁ ଜାଣେ ।
**ସତ୍ୟଜ୍ୟୋତିଃ**—ବିଂ. ଅତ୍ୟୁଜ୍ଜ୍ୱଳ ଦିବ୍ୟଜ୍ୟୋତି ବିଶିଷ୍ଟ ।
**ସତ୍ୟତପାଃ**—ବି. (ସତ୍ୟ + ତପସ୍) ମୁନିବିଶେଷ(ଏ ମୁନି ପ୍ରଥମେ ବ୍ୟାଧଥିଲେ, ପରେ ତପସ୍ୟା କରି ଦୁର୍ବାସା ମୁନିଙ୍କ ବରରେ ସର୍ବଶାସ୍ତ୍ରରେ ପାରଦର୍ଶୀ ହୋଇଥିଲେ) ।
**ସତ୍ୟତଃ**—ଅ.ସତ୍ୟ ବିଷୟରେ, ସତ୍ୟରୁ ।
**ସତ୍ୟତା**—ବି. (ସତ୍ୟ + ତା) ଯଥାର୍ଥତା, ନିଶ୍ଚୟ, ନିର୍ଣ୍ଣୟ, ସତ୍ୟ ।
**ସତ୍ୟଦର୍ଶୀ**—ବିଂ.ତତ୍ତ୍ୱଦର୍ଶୀ, (ବି) ବୌଦ୍ଧଯତିବିଶେଷ ।
**ସତ୍ୟଦୃକ୍**—ବିଂ. (ସତ୍ୟ + ଦୃଶ୍ + କ୍ୱିପ୍) ସତ୍ୟଦର୍ଶୀ, ତତ୍ତ୍ୱଦର୍ଶୀ ।
**ସତ୍ୟଦେବ**—ବି.ସତ୍ୟନାରାୟଣ ଦେଖ ।
**ସତ୍ୟଧନ**—ବିଂ. ଧାର୍ମିକ, ସତ୍ୟବାଦୀ ।
**ସତ୍ୟଧର୍ମ**—ବି. (ରୂପକ) ପ୍ରତିଜ୍ଞାପାଳନରୂପ ଧର୍ମ, ସତ୍ୟବ୍ରତ । [ ତପୂର ।
**ସତ୍ୟଧର୍ମପରାୟଣ**—ବିଂ.ସତ୍ୟବ୍ରତ ପାଳନ
**ସତ୍ୟଧୃତ**—ବି. ମୁନିବିଶେଷ, (ବିଂ) ସତ୍ୟଶୀଳ, ସତ୍ୟଭାବ ।
**ସତ୍ୟନାମ**—ବି. ଧର୍ମଅଭିଧା ।
**ସତ୍ୟନାମତା**—ବି. ସତ୍ୟ ଧର୍ମଭାବ ।
**ସତ୍ୟନାମା**—ବି. ବ୍ରାହ୍ମୀଶାକ, ଆଦିତ୍ୟଭକ୍ତା ।
**ସତ୍ୟନାରାୟଣ**—ବି.ବିଷ୍ଣୁ ବା ନାରାୟଣ ।
**ସତ୍ୟନାରାୟଣକଥା**—ବି. ସ୍କନ୍ଦ ପୁରାଣ ରେବା ଖଣ୍ଡର ୪ଟି ଅଧ୍ୟାୟରେ ବର୍ଣ୍ଣିତ 'ସତ୍ୟନାରାୟଣ' ବ୍ରତ ଓ ପୂଜା ଏବଂ ଉକ୍ତ ବ୍ରତାଚାରୀ ବ୍ୟକ୍ତିଙ୍କ ବିବରଣୀ ବା ଗଳ୍ପ ।
**ସତ୍ୟନାରାୟଣପାଲା**—ଗ୍ରା.ବି. (ସଂ-ସତ୍ୟନାରାୟଣ ଓ ପାଳ) ସତ୍ୟନାରାୟଣଙ୍କ ମାହାତ୍ମ୍ୟ ବର୍ଣ୍ଣନା ପୂର୍ବକ ୧୭ ଗୋଟି ପାଲା ବା ଗଳ୍ପକୁ ଗୀତଦ୍ୱାରା ବର୍ଣ୍ଣନ ।
**ସତ୍ୟନାରାୟଣପୂଜା**—ଗ୍ରା. ବି. ସ୍କନ୍ଦପୁରାଣାନ୍ତର୍ଗତ ରେବା ଖଣ୍ଡର ୪ର୍ଥ ଅଧ୍ୟାୟରେ ବର୍ଣ୍ଣିତ ସତ୍ୟନାରାୟଣ ବା ବିଷ୍ଣୁଙ୍କର ପୂଜା ।
**ସତ୍ୟନାରାୟଣବ୍ରତ**—ମନୋବାଞ୍ଛା ସିଦ୍ଧି ହେବାପାଇଁ ଅନୁଷ୍ଠିତ ସତ୍ୟନାରାୟଣଙ୍କ ପୂଜା କିମ୍ବା ବାଞ୍ଛାସିଦ୍ଧି ହେଲେ ସତ୍ୟନାରାୟଣ ପୂଜା କରିବା ପାଇଁ ମନୁଷ୍ୟ ଯେଉଁ ସଂକଳ୍ପ (ମାନସିକ) କରିଥାଏ, ବାଞ୍ଛା ସିଦ୍ଧି ଉତ୍ତାରେ ଉକ୍ତ ପୂଜାକରିବା ଓ ବନ୍ଧୁକୁଟୁମ୍ବ ସହିତ ସତ୍ୟନାରାୟଣଙ୍କ କଥା ଶୁଣିବା ଓ ପ୍ରସାଦ ସେବନରୂପ ବ୍ରତ ।
**ସତ୍ୟନିଷ୍ଠ**—ପୁଂ.ବିଂ. (ବ.ବ୍ରୀ) ସତ୍ୟବାଦୀ, ଯେ ସର୍ବଦା ସତ୍ୟ କହିବାକୁ ଦୃଢ଼ବ୍ରତ କରିଥାଏ, ସତ୍ୟ ବା ପ୍ରତିଜ୍ଞା ପାଳନ କରିବାକୁ ଦୃଢ଼ବ୍ରତ, ସତ୍ୟାନୁରାଗୀ, (ସ୍ତ୍ରୀ) ସତ୍ୟନିଷ୍ଠା ।
**ସତ୍ୟନିଷ୍ଠା**—ବି. (୭ତତ୍) ସତ୍ୟରେ ବା ସତ୍ୟ ବିଷୟରେ ନିଷ୍ଠା, (ସ୍ତ୍ରୀ.ବିଂ-ବ.ବ୍ରୀ) ସତ୍ୟାନୁରାଗିଣୀ, ସତ୍ୟବାଦିନୀ ।
**ସତ୍ୟନେତ୍ର**—ପୁଂ. ବି. ଋଷିବିଶେଷ ।
**ସତ୍ୟପରାକ୍ରମ**—ବିଂ. ସତ୍ୟଶୀଳ, ସତ୍ୟ-

ବିକ୍ରମ ।

ସତ୍ୟପରାୟଣ—ପୁଂ.ବିଂ. (ବ.ବ୍ରୀ)ସତ୍ୟନିଷ୍ଠ ଦେଖ, (ସ୍ତ୍ରୀ) ସତ୍ୟପରାୟଣା ।

ସତ୍ୟପାଠ—ଗ୍ରା. ବି. ମକଦ୍ଦମାରେ ପକ୍ଷମାନେ(ଅର୍ଥାତ୍ ବାଦୀ ତାହାର ଅରଜିର ଶେଷରେ ପ୍ରତିବାଦୀ ତାହାର ଜବାବର ଶେଷରେ ଓ ଦରଖାସ୍ତକାରୀ ଦରଖାସ୍ତର ଶେଷରେ) କଚେରିରେ ଦାଖଲ କରିବା ଅଜିର ଆଦ୍ୟର ପ୍ରାନ୍ତରେ ଲେଖିବା ଧର୍ମତଃ ଶପଥ ବାକ୍ୟ, ସତ୍ୟପାଠ ।

ସତ୍ୟପାଳନ—ବି.(୬ତତ୍)ପ୍ରତିଜ୍ଞାପାଳନ ସତ୍ୟରକ୍ଷା ।

ସତ୍ୟପାଳିବା—ଗ୍ରା.କ୍ରି. ସତ୍ୟ ବା ଧର୍ମତଃ କରାଯାଇଥିବା ଅଙ୍ଗୀକାରକୁ କାର୍ଯ୍ୟରେ ପରିଣତ କରିବା ।

ସତ୍ୟପୀର-ଗ୍ରା.ବି.ସତ୍ୟନାରାୟଣ ଦେଖ ।

ସତ୍ୟପୁର—ବି. ସତ୍ୟଲୋକ ଦେଖ ।

ସତ୍ୟପୁଷ୍ଟି—ବି. ସତ୍ୟାନୁରାଗୀ, ସତ୍ୟପଥେ ପରିବୃଦ୍ଧି ।

ସତ୍ୟପ୍ରତିଜ୍ଞ—ପୁଂ. ବିଂ. (ବ.ବ୍ରୀ) ଯେ ପ୍ରତିଜ୍ଞାପାଳନ ବିଷୟରେ ଅଟଳ,ଦୃଢ଼ପ୍ରତିଜ୍ଞ. (ସ୍ତ୍ରୀ) ସତ୍ୟପ୍ରତିଜ୍ଞା ।

ସତ୍ୟପ୍ରତିଜ୍ଞା—ସ୍ତ୍ରୀ. ବିଂ. ସତ୍ୟପ୍ରତିଜ୍ଞର ସ୍ତ୍ରୀଲିଙ୍ଗ, (ଗ୍ରା.ବି) ଶପଥ,ହଲପ, ସୁକୁତିପତ୍ର ଲିଖିତ ଦଲିଲରେ ଲେଖିଥିବା ବିଷୟ ସତ୍ୟଥିବା ବିଷୟରେ ଲେଖକର ଶପଥ, ସତ୍ୟପାଠ ଦେଖ ।

ସତ୍ୟପ୍ରସବ—ପୁଂ. ବିଂ. ସତ୍ୟାନୁଜ୍ଞ ।

ସତ୍ୟପ୍ରାଣ—ପୁଂ.ବିଂ.(ବ.ବ୍ରୀ) ସତ୍ୟୈକନିଷ୍ଠ, ଯେ ସତ୍ୟ କହିବା ଓ ସତ୍ୟ ପାଳନ କରିବା ପାଇଁ ଜୀବନକୁ ଉତ୍ସର୍ଗ କରି ଅଛନ୍ତି, (ସ୍ତ୍ରୀ) ସତ୍ୟପ୍ରାଣା ।

ସତ୍ୟପ୍ରାଶୂ—ପୁଂ. ବିଂ. ସତ୍ୟପରାକ୍ରମ ।

ସତ୍ୟପ୍ରିୟ—ପୁଂ. ବିଂ. (ବ.ବ୍ରୀ) ସତ୍ୟବାଦୀ,ସତ୍ୟାନୁରାଗୀ, (ସ୍ତ୍ରୀ) ସତ୍ୟପ୍ରିୟା ।

ସତ୍ୟଫଳ—ବି. ଶ୍ରୀଫଳ, ବିଲ୍ୱବୃକ୍ଷ ।

ସତ୍ୟବକ୍ତା—ପୁଂ.ବିଂ. ସତ୍ୟବାଦୀ, (ସ୍ତ୍ରୀ) ସତ୍ୟବକ୍ତ୍ରୀ ।

ସତ୍ୟବଚନ—ବି. (କ.ଧା) ସତ୍ୟକଥା, (ପୁଂ.ବିଂ) ସତ୍ୟବାଦୀ

ସତ୍ୟବତ୍—ପୁଂ ଓ ସ୍ତ୍ରୀ. ବିଂ. (ବ.ବ୍ରୀ) ସତ୍ୟବାଦୀ, (ବି) ଋଷି, ମୁନି, ସତ୍ୟବଚନ ।

ସତ୍ୟବତୀ—ସ୍ତ୍ରୀ. ବିଂ. (ସତ୍ୟବତ୍ + ଈ) ସତ୍ୟବାଦିନୀ, (ସ୍ତ୍ରୀ.ବି) ବ୍ୟାସ ଜନନୀ, ଶାନ୍ତନୁଙ୍କର ଦ୍ୱିତୀୟା ପତ୍ନୀ, ନାରଦ ମୁନିଙ୍କ ପତ୍ନୀ,ବିଶ୍ୱାମିତ୍ରଙ୍କ ଭଉଣୀ ଋଚିକ ଋଷିଙ୍କ ପତ୍ନୀ ଓ ଶୁନଃଶେଫ ଋଷିଙ୍କ ମାତା ।

ସତ୍ୟବତୀସୁତ—ପୁଂ. ବି. ( ୬ତତ୍ ) ବ୍ୟାସଦେବ, ଜମଦଗ୍ନି ।

ସତ୍ୟବଦନ—ବିଂ. ସତ୍ୟବାଦୀ ।

ସତ୍ୟବଦ୍ୟ—ବିଂ.(ସତ୍ୟ+ବଦ୍+କ୍ୟପ୍) ଯଥାର୍ଥବାଦୀ, ପ୍ରକୃତଭାଷୀ ।

ସତ୍ୟବନ୍ତ—ଗ୍ରା. ବିଂ. ସତ୍ୟବାଦୀ, ଯେ ସତ୍ୟ ପାଳନ କରେ, (ପୁଂ.ବି) ସତ୍ୟବାନ୍, ସାବିତ୍ରୀଙ୍କ ସ୍ୱାମୀ ।

ସତ୍ୟବର୍ତ୍ମ—ବି. ସତ୍ୟପଥ, ସତ୍ୟମାର୍ଗ ।

ସତ୍ୟବାକ୍—ପୁଂ.ବିଂ.(ବ.ବ୍ରୀ)ସତ୍ୟବାଦୀ, (ସ୍ତ୍ରୀ) ସତ୍ୟବାଚୀ, ( ବି ) ମୁନି, ଋଷି, ବାୟସ, କାକ, (କ୍ଲୀ.ବି କ.ଧା) ସତ୍ୟବଚନ ।

ସତ୍ୟବାକ୍ୟ—ବି. ସତ୍ୟବଚନ, (ପୁଂ.ବିଂ ବ.ବ୍ରୀ)ସତ୍ୟବାଦୀ,ସତ୍ୟବାକ୍ୟବିଶିଷ୍ଟ ।

ସତ୍ୟବାଚକ—ପୁଂ. ବିଂ. (ସତ୍ୟ + ବଚ୍ + ଅକ) ସତ୍ୟବାଦୀ ।

ସତ୍ୟବାଦ—ବି. ସତ୍ୟ ବିଷୟକ ବାଦ, ସତ୍ୟବାକ୍ୟ ।

ସତ୍ୟବାଦିତା—ସ୍ତ୍ରୀ.ବି. ସତ୍ୟବାଦୀର ଭାବ ବା ଧର୍ମ, ସତ୍ୟବଚନ ।

ସତ୍ୟବାଦୀ—ବିଂ. (ସତ୍ୟ + ବଦ୍+କ. ଇନ୍) ସତ୍ୟଭାଷୀ, ଯେ ସତ୍ୟ କହେ, (ସ୍ତ୍ରୀ)ସତ୍ୟବାଦିନୀ,(ବି)ମୁନି,ଋଷି,ବାୟସ, କାକ, (ଗ୍ରା.ବି) ପୁରୀଜିଲା ଅନ୍ତର୍ଗତ ସାକ୍ଷୀଗୋପାଳଙ୍କ ପ୍ରତିମାର ସୁପ୍ରସିଦ୍ଧ ଗ୍ରାମ ।

ସତ୍ୟବାଦୀଗୋପୀନାଥ—ଗ୍ରା. ବି. ସତ୍ୟବାଦୀରେ ବିରାଜିତ 'ସାକ୍ଷୀ ଗୋପାଳ' ନାମକ ଶ୍ରୀକୃଷ୍ଣଙ୍କ ବିଗ୍ରହ ।

ସତ୍ୟବାନ୍—ପୁଂ. ବିଂ. (ସତ୍ୟ+ବତ୍) ସତ୍ୟପରାୟଣ, ସତ୍ୟବାଦୀ, ସତ୍ୟବ୍ରତ, ସତ୍ୟଯୁକ୍ତ, ସତ୍ୟ ଉପରେ ପ୍ରତିଷ୍ଠିତ, (ସ୍ତ୍ରୀ) ସତ୍ୟବତୀ,(ବି) ସାବିତ୍ରୀଙ୍କ ସ୍ୱାମୀ, ମୁନିବିଶେଷ ।

ସତ୍ୟବାହ—ପୁଂ.ବି.ଭରଦ୍ୱାଜ ଗୋତ୍ରୀୟ ଋଷିବିଶେଷ ।

ସତ୍ୟବାହନ—ବିଂ. ସତ୍ୟଶୀଳ, ଯାହା ସତ୍ୟ ଆନୟନ କରେ । [ ବାଘା ]

ସତ୍ୟବିକ୍ରମ—ବିଂ.ସତ୍ୟପରାକ୍ରମ, ସତ୍ୟ-

ସତ୍ୟବୃତ୍ତ—ପୁଂ.ବିଂ.(ବ.ବ୍ରୀ)ସତ୍ୟବାଦୀ, ଯଥାର୍ଥବକ୍ତା, (କ୍ଲୀ.ବି) ସଚ୍ଚରିତ ।

ସତ୍ୟବୃତ୍ତି—ବି. ସତ୍ୟ କଥନର ଭାବ, ସଚ୍ଚରିତତା ।

ସତ୍ୟବ୍ରତ—ପୁଂ.ବିଂ.(ବ.ବ୍ରୀ) ସତ୍ୟନିଷ୍ଠ ଦେଖ, (ସ୍ତ୍ରୀ)ସତ୍ୟବ୍ରତା, (ବି) ଭୀଷ୍ମଙ୍କର ନାମାନ୍ତର, ମହାଦେବ, ସୂର୍ଯ୍ୟବଂଶୀୟ ଜଣେ ରାଜା, ସତ୍ୟରୂପକ ବ୍ରତ ।

ସତ୍ୟଭଙ୍ଗ—ବି.(୬ତତ୍) ପ୍ରତିଜ୍ଞା ଭଙ୍ଗ, ଅଙ୍ଗୀକାର ଅନୁସାରେ କାର୍ଯ୍ୟ ନ କରିବା ।

ସତ୍ୟଭାମା—ସ୍ତ୍ରୀ.ବି. (ସତ୍ୟ+ଭାମ୍+ଆ) ସତ୍ରାଜିତ୍ ରାଜାଙ୍କର କନ୍ୟା, ଶ୍ରୀକୃଷ୍ଣଙ୍କର ୮ଜଣ ମହିଷୀଙ୍କ ମଧ୍ୟରୁ ଏକତମା ।

ସତ୍ୟଭାରତ—ବି. (ବ.ବ୍ରୀ) ମହାଭାରତ ପ୍ରଣେତା ବେଦବ୍ୟାସ ।

ସତ୍ୟଭାଷଣ—ବି. (୬ତତ୍) ସତକହିବା, ସତ୍ୟକଥନ ।

ସତ୍ୟଭାଷୀ—ପୁଂ. ବିଂ. (ସତ୍ୟ+ଭାଷ୍+କ.ଇନ୍) ସତ୍ୟବାଦୀ, ଯେ ସତକଥା କହେ, (ସ୍ତ୍ରୀ) ସତ୍ୟଭାଷିଣୀ ।

ସତ୍ୟଭ୍ରଷ୍ଟ—ପୁଂ.ବିଂ.(୫ତତ୍)ଯେ ସତ୍ୟ ଲଙ୍ଘନ କରିଅଛି, (ସ୍ତ୍ରୀ) ସତ୍ୟଭ୍ରଷ୍ଟା ।

ସତ୍ୟମ୍—ଅ.(ସତ୍+ଯମ୍)ସ୍ୱୀକାରାର୍ଥ ହଁ, ପ୍ରତିଜ୍ଞାସୂଚକ ହଁ, ପ୍ରଶ୍ନାର୍ଥ ସତେ, ଏହାକି ସତ୍ୟ, (ବି) ସତ୍ୟଲୋକ ଦେଖ ।

ସତ୍ୟମନ୍ତା—ପୁଂ.ବିଂ.ସତ୍ୟଜ୍ଞାନୀ, ଯଥାର୍ଥଦର୍ଶୀ ।

ସତ୍ୟମୟ—ବିଂ.ସତ୍ୟସ୍ୱରୂପ,ସତ୍ୟପ୍ରଧାନ

ସତ୍ୟମାନ—ବି. ସତ୍ୟଭୂତ ପ୍ରମାଣ, ସତ୍ୟ ସ୍ୱରୂପ ଯେ ପ୍ରମାଣ ।

ସତ୍ୟମୂଳକ—ବି°(ବ.ବ୍ରୀ)ସତ୍ୟ ଉପରେ ପ୍ରତିଷ୍ଠିତ ।

ସତ୍ୟମେଧାଃ—ପୁଂ. ବି. ବିଷ୍ଣୁ ।

ସତ୍ୟମୃତ—ବି. ପ୍ଲକ୍ଷଦ୍ୱୀପସ୍ଥ ମହାନଦୀବିଶେଷ ।

ସତ୍ୟଯୁଗ—ବି.(କ.ଧା)କୃତଯୁଗ, ସୃଷ୍ଟିର ୪ଟି ଯୁଗ ମଧ୍ୟରୁ ପ୍ରଥମ ଯୁଗ ।

ସତ୍ୟଯୁଗାଦ୍ୟା—ସ୍ତ୍ରୀ.ବି.ସତ୍ୟଯୁଗାରମ୍ଭକ ତିଥି, ଅକ୍ଷୟତୃତୀୟା ।

ସତ୍ୟଯୋନି—ବି. ସତ୍ୟନିବାସ ।

ସତ୍ୟଯୌବନ—ବିଦ୍ୟାଧର, ଦେବଯୋନିବିଶେଷ, (ସ୍ତ୍ରୀ)ସତ୍ୟଯୌବନା ।

ସତ୍ୟରତ—ବି°. ସତ୍ୟାନୁରକ୍ତ, (ବି) ସତ୍ୟବ୍ରତ ରାଜପୁତ୍ର ।

ସତ୍ୟରଥ—ବି. ମୈଥିଳ ରାଜବିଶେଷ, ସୋମରଥଙ୍କ ପୁତ୍ର ।

ସତ୍ୟର ଦାସ—ଗ୍ରା. ବି.ବି°. ଯେ ସତ୍ୟପାଇଁ ସର୍ବସ୍ୱ ତ୍ୟାଗ କରିପାରେ,ସତ୍ୟନିଷ୍ଠ (ବ୍ୟକ୍ତି), ସତ୍ୟପ୍ରତିଜ୍ଞ ।

ସତ୍ୟରାଜା—ପୁଂ.ବି°.ଯାହାର ପ୍ରଭୁ ଅବିନାଶୀ, ଅବିନାଶୀ ରାଜା ।

ସତ୍ୟରାଧଃ—ପୁଂ.ବି° ସତ୍ୟଧନ,ଯାହାର ସତ୍ୟ ଏକମାତ୍ର ଧନ ।

ସତ୍ୟରୂପ—ପୁଂ. ବି. ସତ୍ୟସ୍ୱରୂପ ବିଷ୍ଣୁ ।

ସତ୍ୟଲଙ୍ଘନ—ବି. (୬ତତ୍)ସତ୍ୟଭଙ୍ଗ ।

ସତ୍ୟଲଙ୍ଘିବା—ଗ୍ରା.କ୍ରି.ସତ୍ୟଭଙ୍ଗକରିବା, ପ୍ରତିଜ୍ଞା ପାଳନ ନ କରିବା ।

ସତ୍ୟଲୋକ—ବି. (କ.ଧା) ସପ୍ତ ଲୋକାନ୍ତର୍ଗତ ଉଚ୍ଚତମ ଲୋକ, ବ୍ରହ୍ମଲୋକ ।

ସତ୍ୟଲୌକିକ—ବି.ବୈଦିକ ଓ ଲୌକିକ କୃତ୍ୟ ।

ସତ୍ୟଶପଥ—ପୁଂ. ବି°. ସତ୍ୟପ୍ରତିଜ୍ଞ ।

ସତ୍ୟଶୀଳ—ପୁଂ.ବି°.(ବ.ବ୍ରୀ)ସତ୍ୟସ୍ୱଭାବ

ସତ୍ୟଶୀଳୀ—ପୁଂ. ବି°. ସତ୍ୟଶୀଳଯୁକ୍ତ, ସତ୍ୟସ୍ୱଭାବ ।

ସତ୍ୟଶ୍ରବାଃ-ପୁଂ.ବି°.ସତ୍ୟବିଷୟ ଶ୍ରବଣକାରୀ, (ବି)ଋଷିବିଶେଷ, ମାର୍କଣ୍ଡେୟଙ୍କ ପୁତ୍ର, ବୀତହବ୍ୟଙ୍କ ପୁତ୍ର ।

ସତ୍ୟଶ୍ରୁତ—ବି°. ସତ୍ୟ ଦ୍ୱାରା ପ୍ରସିଦ୍ଧ ।

ସତ୍ୟସଂହିତ—ପୁଂ. ବି°. ସତ୍ୟପ୍ରତିଜ୍ଞ, ସତ୍ୟସନ୍ଧ । [ ପ୍ରତିଜ୍ଞ ।

ସତ୍ୟସଂକଳ୍ପ—ପୁଂ.ବି.ସତ୍ୟସନ୍ଧ, ସତ୍ୟ-

ସତ୍ୟସଙ୍କାଶ—ପୁଂ. ବି°. ସତ୍ୟସନ୍ନିଭ, ଯଥାର୍ଥର ତୁଲ୍ୟ ।

ସତ୍ୟସଙ୍ଗର—ପୁଂ. ବି°. ( ସତ୍ୟ+ସମ୍ ଗୃ+କ.ଅ) ସତ୍ୟପ୍ରତିଜ୍ଞ, ଅନ୍ୟାୟରହିତ, (ପୁଂ.ବି) କୁବେର ।

ସତ୍ୟସନ୍ଧା—ସ୍ତ୍ରୀ.ବି.ପାଣ୍ଡବମହିଷୀ,ଦ୍ରୌପଦୀ

ସତ୍ୟସତୀ—ସ୍ତ୍ରୀ.ବି. ସତ୍ୟଶୀଳା ରମଣୀ ।

ସତ୍ୟସତ୍ୟସତ୍ୟ—ଗ୍ରା. ଅ. କୌଣସି ପ୍ରତିଜ୍ଞାକୁ ପାଳନ କରିବାପାଇଁ ଧର୍ମତଃ ପ୍ରତିଜ୍ଞାପୂର୍ବକ 'ସତ୍ୟ' ଶବ୍ଦର ୩ଥର ଉଚ୍ଚାରଣ ।

ସତ୍ୟସନ୍ଧ—ପୁଂ. ବି°. (ବ.ବ୍ରୀ) ସତ୍ୟପ୍ରତିଜ୍ଞ, ସଫଳପ୍ରତିଜ୍ଞ,(ସ୍ତ୍ରୀ)ସତ୍ୟସନ୍ଧା, (ପୁଂ.ବି)ଭରତ,ରାମଚନ୍ଦ୍ର,ଜନମେଜୟ, ସ୍କନ୍ଦାନୁଚରବିଶେଷ,ବିଷ୍ଣୁ, ଧୃତରାଷ୍ଟ୍ରଙ୍କ ପୁତ୍ର ।

ସତ୍ୟସନ୍ଧା—ସ୍ତ୍ରୀ. ବି. ଦ୍ରୌପଦୀ, କୃଷ୍ଣା ।

ସତ୍ୟସାର—ପୁଂ. ବି°. (ବ.ବ୍ରୀ) ସତ୍ୟବାଦୀ, ଯାହାର ସତ୍ୟ ଏକମାତ୍ର ସାର ।

ସତ୍ୟସେନ—ପୁଂ.ବି.ଧର୍ମଙ୍କଠାରୁ ସୁନୃତା ଗର୍ଭଜାତ ମନୁପୁତ୍ରବିଶେଷ, ଭାରତ ବର୍ଣ୍ଣିତ ଯୋଦ୍ଧାବିଶେଷ ।

ସତ୍ୟସ୍ଥ—ବି°. (ସତ୍ୟ+ସ୍ଥା+ଅ)ସତ୍ୟେ ଅବସ୍ଥିତ, ସତ୍ୟାବଲମ୍ବୀ, ଯେ ସର୍ବଦା ସତ୍ୟରେ ଥାଏ ।

ସତ୍ୟା—ସ୍ତ୍ରୀ.ବି.(ସତ୍ୟ+ଅ+ଆ)ସୀତା, ବ୍ୟାସମାତା, ସତ୍ୟବତୀ, କୃଷ୍ଣପତ୍ନୀ, ସତ୍ୟଭାମା, ଦୁର୍ଗା, ଶଂଯୁପତ୍ନୀ ।

ସତ୍ୟାକୃତ—ବି. (ସତ୍ୟ+ଆ+କୃ+ଭା. ତ) ସତ୍ୟଙ୍କାର ଦେଖ ।

ସତ୍ୟାଗ୍ନି—ପୁଂ. ବି. ଅଗସ୍ତ୍ୟ ମୁନି ।

ସତ୍ୟାଗ୍ରହ—ବି.ସତ୍ୟ ପ୍ରତି ଆଗ୍ରହ,ସତ୍ୟନିଷ୍ଠା, ସତ୍ୟାନୁରାଗ, କୌଣସି ସଦୁଦ୍ଦେଶ୍ୟରେ ପ୍ରତିଜ୍ଞା କରି ତାହାର ସିଦ୍ଧି ପର୍ଯ୍ୟନ୍ତ ଅଟଳ ରହିବା,(ଗ୍ରା.ବି)ହିଂସାଶୂନ୍ୟ ଓ ଶାନ୍ତ ହୋଇ ମିଥ୍ୟା ସଙ୍ଗେ ଯୁଦ୍ଧ କରିବା ରୀତି, ମହାତ୍ମା ଗାନ୍ଧିଙ୍କ କର୍ମନୀତି ।

ସତ୍ୟାଗ୍ରହୀ-ଗ୍ରା.ବି°.ଯେଉଁମାନେ ମହାତ୍ମା ଗାନ୍ଧିଙ୍କ ପ୍ରବର୍ତ୍ତିତ ସତ୍ୟାଗ୍ରହ ବ୍ରତ ଅବଲମ୍ବନ କରିଅଛନ୍ତି ।

ସତ୍ୟାଗ୍ରହୀସେନା—ଗ୍ରା.ବି.ମହାତ୍ମା ଗାନ୍ଧିଙ୍କ ଦ୍ୱାରା ଗଠିତ ରାଜନୈତିକ ଦଳ ।

ସତ୍ୟାଙ୍ଗ—ବି. ଜମ୍ବୁଦ୍ୱୀପବାସୀ ଶୂଦ୍ରଜାତିବିଶେଷ ।

ସତ୍ୟାଚରଣ—ବି. (୬ତତ୍)ସତକହିବା, ସତ୍ୟବାଦିତା, ସତ୍ୟପାଳନ ।

ସତ୍ୟାତ୍ମକ—ବି°. (ବ.ବ୍ରୀ)ସତ୍ୟସ୍ୱରୂପ ।

ସତ୍ୟାତ୍ମଜ—ପୁଂ.ବି.ସତ୍ୟଭାମାଙ୍କ ପୁତ୍ର ।

ସତ୍ୟାତ୍ମା—ପୁଂ.ବି°.ସତ୍ୟସ୍ୱରୂପ,ସତ୍ୟମୟ

ସତ୍ୟାନାଶ—ଗ୍ରା.ବି. (ସ-ସତ୍ୟ ଓ ନାଶ) ସର୍ବନାଶ, ସତ୍ୟଭଙ୍ଗ ।

ସତ୍ୟାନାଶିଆ—ଗ୍ରା. ବି°. ଯେ ସର୍ବନାଶ ଘଟାଏ, ନାଶକାରୀ, ସତ୍ୟଭଙ୍ଗକାରୀ ।

ସତ୍ୟାନୁରାଗ—ବି. (୬ତତ୍) ସତ୍ୟନିଷ୍ଠା, ସତ୍ୟପ୍ରିୟତା, ସତ୍ୟରେ ଆସକ୍ତି ।

ସତ୍ୟାନୁରାଗୀ—ପୁଂ.ବି° (୬ତତ୍)ସତ୍ୟନିଷ୍ଠ, ସତ୍ୟପ୍ରିୟ, (ସ୍ତ୍ରୀ) ରାଗିଣୀ ।

ସତ୍ୟାନୁସନ୍ଧାନ—ବି(୬ତତ୍)ସତ କଥାକୁ ବା ପ୍ରକୃତ ତଥ୍ୟକୁ ଖୋଜିବା ।

ସତ୍ୟାନୁସନ୍ଧିତ୍ସା—ବି. (ସତ୍ୟ+ଅନୁସନ୍ଧିତ୍ସା) ସତ୍ୟ ବା ତଥ୍ୟ ଅନୁସନ୍ଧାନ କରିବାପାଇଁ ଇଚ୍ଛା ।

ସତ୍ୟାନୃତ—ବି°.ସତ୍ୟ ଓ ମିଥ୍ୟା, ସତ୍ୟ ଓ ମିଥ୍ୟା ମିଶ୍ରିତ, (ବି) ସତ ଓ ମିଛକଥା, (ବ.ବ୍ରୀ) ସତ୍ୟ ଓ ଅନୃତ ଅଛି ଯହିଁରେ, ବାଣିଜ୍ୟ, ବ୍ୟବସାୟ ।

ସତ୍ୟାପନ(ନା)—ବି. (ସତ୍ୟାପ+ଅନ +ଆ)ସତ୍ୟଙ୍କାର ଦେଖ ।

ସତ୍ୟାୟୁ—ପୁଂ.ବି.ପୁରୂରବାଙ୍କ ଉର୍ବଶୀଗର୍ଭଜାତ ପୁତ୍ରବିଶେଷ ।

ସତ୍ୟାର୍ଥପ୍ରକାଶ—ଗ୍ରା.ବି. ସ୍ୱର୍ଗୀୟ ସ୍ୱାମୀ ଦୟାନନ୍ଦଙ୍କ ପ୍ରଣୀତ ସୁନାମଖ୍ୟାତ ଗ୍ରନ୍ଥ

ସତ୍ୟାଶ୍ରୟ—ପୁଂ. ବି. ଚାଲୁକ୍ୟବଂଶୀୟ ଖ୍ୟାତନାମା ନୃପତି ।

ସତ୍ୟାଶ୍ରିତ—ବିଂ. ( ସତ୍ୟ + ଆଶ୍ରିତ ) ସତ୍ୟ ଯାହାକୁ ଆଶ୍ରୟ କରିଅଛି, ସତ୍ୟ ମୂଳକ ।

ସତ୍ୟାସତ୍ୟ—ବି. ( ସତ୍ୟ ଓ ଅସତ୍ୟ ) ସତ୍ୟ ଓ ମିଥ୍ୟା, କୌଣସି ବିଷୟ ସତ୍ୟ ଅଟେ କି ନାଁ ଏହି ବିଷୟ ।

ସତ୍ୟେତର—ବିଂ. ମିଥ୍ୟା. ସତ୍ୟରୁ ଭିନ୍ନ ।

ସତ୍ୟୋକ୍ତି—ସ୍ତ୍ରୀ.ବି. ସତ୍ୟକଥନ ।

ସତ୍ୟୋତ୍ତର—ବିଂ. ସତ୍ୟଭୂୟିଷ୍ଠ ।

ସତ୍ୟୋଦ୍ୟ—ପୁଂ.ବିଂ. (ସତ୍ୟ + ବଦ୍ + କ.ଯ) ସତ୍ୟବାଦୀ, (ସ୍ତ୍ରୀ) ସତ୍ୟୋଦ୍ୟା ।

ସତ୍ୟୋପଯାଚନ—କ୍ଲୀ.ବି. ସତ୍ୟଭିକ୍ଷା ।

ସତ୍ର—ବି. ସତ୍ର ଦେଖ ।

ସତ୍ରସମାପତି—ଗ୍ରା. ବି. ହନୁମାନଙ୍କର ତୀର୍ଥବିଶେଷ ।

ସତ୍ରା—ଅବ୍ୟ. ସହିତ, ସଙ୍ଗେ ସମଭିବ୍ୟାହାରରେ ।

ସତ୍ରାଜ୍—ପୁଂ.ବି. ପୂର୍ଣ୍ଣ ଜୟ ।

ସତ୍ରାଜିତ୍—ବି. ସତ୍ରାଜିତ୍ ଦେଖ ।

ସତ୍ରାନ୍ନ—ବି. ସତ୍ରାନ୍ନ ଦେଖ ।

ସତ୍ରାସ—ବିଂ. ତ୍ରସ୍ତ, ତ୍ରାସବିଶିଷ୍ଟ, ତ୍ରାସଯୁକ୍ତ ।

ସତ୍ରାସାହ—ପୁଂ.ବିଂ. ଯୁଗପଦ୍ ଦଶଦ୍ରୁନାଶକ, ଏକକାଳୀନ ଦଶଦ୍ରୁ ନାଶକ ।

ସତ୍ରିଜାତକ—ବି.(ସ + ତ୍ରିଜାତକ) ମାଂସତରକାରୀବିଶେଷ ।

ସତ୍ରୀ—ବି ଓ ବିଂ. ସତ୍ରୀ ଦେଖ ।

ସଥୁତ୍କାର—ବିଂ. ଅମ୍ବୁକୃତ, ଥୁତ୍କାର ସହିତ ବର୍ତ୍ତମାନ ।

ସଦ—ବି. (ସଦ୍ + ଭା.ଅ) ଲାଭ, (ମଁ.ଅ) କ୍ଷେତଫଳ ।

ସଦଂଶ—ବିଂ. (ବ.ବ୍ରୀ) ଦନ୍ତଯୁକ୍ତ, (ବି) ସଣ୍ଡୁଆସି, (କ.ଧା) ଉତ୍ତମ ଭାଗ ।

ସଦଂଶକ—ବିଂ. ( ସ + ଦଂଶ + କ ) ଦନ୍ତଯୁକ୍ତ, (ବି) କଙ୍କଡ଼ା, ସଣ୍ଡୁଆସି ।

ସଦଂଶବଦନ—ବି.( ବ.ବ୍ରୀ ) କଙ୍କପକ୍ଷୀ, କୁଡିଆ କାଙ୍କ ।

ସଦଃ—ବି. ସ୍ତ୍ରୀ ଓ କ୍ଲୀ. ( ସଦ୍ + ଅଧି. ଅସ୍ ) ସମିତି, ସଭା, ପରିଷଦ୍ ।

ସଦକ୍ଷ—ବି. ଜ୍ଞାନଯୁକ୍ତ, ଦକ୍ଷତାବିଶିଷ୍ଟ ।

ସଦକ୍ଷିଣ—ବିଂ. ଦକ୍ଷିଣାଯୁକ୍ତ, ଦକ୍ଷିଣାବିଶିଷ୍ଟ ।

ସଦଞ୍ଜନ—ବି. ଅଞ୍ଜନବିଶେଷ, କୁସୁମାଞ୍ଜନ

ସଦଣ୍ଡ—ବିଂ. ଦଣ୍ଡଯୁକ୍ତ, ଦଣ୍ଡ ସହିତରେ ଥିବା ।

ସଦନ—ବି. (ସଦ୍ + ଅଧି.ଅନ) ଘର, ବାସସ୍ଥାନ, (କ.ଅନ) ଜଳ, (ଭା.ଅନ) ମନୋଦୁଃଖ. ବିଷାଦ, (ମଁ.ଅନ) ଜଳକଣ୍ଟ ।

ସଦନାସ୍ଥ—ବିଂ. ଯଜ୍ଞଗୃହରେ ବସିବାକାଙ୍କ୍ଷୀ ।

ସଦନୁଷ୍ଠାନ—ବି. (କ.ଧା) ସତ୍‌କାର୍ଯ୍ୟ, ଲୋକ ହିତକର କାର୍ଯ୍ୟ, ପରୋପକାର, ଧର୍ମ କାର୍ଯ୍ୟ ।

ସଦନ୍ତ—ବିଂ. ଦନ୍ତଯୁକ୍ତ, ଦନ୍ତସହିତ ବର୍ତ୍ତମାନ ।

ସଦନ୍ଧ—ବିଂ. ସର୍ବଦା ଶୃଙ୍ଖଳିତ ।

ସଦପଦେଶ—ବି.ମନ୍ଦ ବିଷୟରେ ଶିକ୍ଷାଦାନ ।

ସଦଭିପ୍ରାୟ—ବି. ଉତ୍ତମ ମାନସ, ଉତ୍ତମ ତାତ୍ପର୍ଯ୍ୟ, ଉତ୍କୃଷ୍ଟ ମତ ।

ସଦମ—ବିଂ. ଦମଯୁକ୍ତ ।

ସଦମ୍ଭ—ପୁଂ.ବିଂ. ଦମ୍ଭଯୁକ୍ତ, ଦମ୍ଭବିଶିଷ୍ଟ. ଅହଂକାରୀ ।

ସଦୟ—ପୁଂ.ବିଂ. (ବ.ବ୍ରୀ) ଦୟାମୟ, ଦୟାଳୁ, ପର ଦୁଃଖରେ କାତର, (ସ୍ତ୍ରୀ) ସଦୟା, (ବି) (ସତ୍ + ଅୟ) ଶୁଭବନ୍ଧ ବିଧି । [ ଶୀଳତା ।

ସଦୟତା—ବି.(ସଦୟ + ଭା.ତା) ଦୟା-

ସଦୟପ୍ରକୃତି—ବି. ( କ.ଧା ) ଦୟାଳୁ ସ୍ୱଭାବ,( ପୁଂ.ବିଂ ) ବ.ବ୍ରୀ; ଦୟାଳୁସ୍ୱଭାବବିଶିଷ୍ଟ (ବ୍ୟକ୍ତି) ।

ସଦୟପ୍ରକୃତିକ—ପୁଂ.ବିଂ. (କ.ଧା) ଦୟାଳୁ ସ୍ୱଭାବବିଶିଷ୍ଟ (ବ୍ୟକ୍ତି), (ସ୍ତ୍ରୀ) ସଦୟପ୍ରକୃତିକା ।

ସଦୟହୃଦୟ—ବି. (କ.ଧା) ଦୟାମୟ ଚିତ୍ତ, (ପୁଂ.ବିଂ) ବ.ବ୍ରୀ; ଯାହାର ହୃଦୟ ଦୟା ପୂର୍ଣ୍ଣ ଅଟେ, (ସ୍ତ୍ରୀ) ସଦୟହୃଦୟା ।

ସଦୟେ—ଗ୍ରା.ବିଂ. (ପଦ୍ୟ) ସଦୟ ଦେଖ, (ବି) ଦୟା ।

ସଦର—ଯା. ବିଂ. ପ୍ରଧାନ, ବହିଃସ୍ଥ. ପ୍ରକାଶ୍ୟ, ବ୍ୟକ୍ତ, ଯାହା ଗୁପ୍ତ ନୁହେଁ, ରାଜ୍ୟଶାସନ ସମ୍ପର୍କରେ କେନ୍ଦ୍ରସ୍ଥାନୀୟ ରାଜଧାନୀସମ୍ବନ୍ଧୀୟ, ଶାସନକେନ୍ଦ୍ରିକ, ରାଜଧାନୀରେ ଅବସ୍ଥିତ, (ବି) ପ୍ରଧାନ କର୍ମସ୍ଥାନ, ବହିଃପ୍ରକୋଷ୍ଠ, ସମ୍ମୁଖ ଭାଗ, ରାଜଧାନୀ, ସହର, ଜିଲ୍ଲାର ବିଭାଗର ରାଜକାର୍ଯ୍ୟ ପରିଚାଳନାର କେନ୍ଦ୍ରସ୍ଥାନ, (ସଂ-ବିଂ) ବ.ବ୍ରୀ; (ସ + ଦର) ଭୟଯୁକ୍ତ ।

ସଦରଅନ୍ଦର—ଯା.ବି. ବାହାରପାଖ ଓ ଭିତରପାଖ ।

ସଦରଆଲା(ଲ୍ଲା)—ଯା.ବି. ଜିଲ୍ଲାର ସଦରରେ ବା କେନ୍ଦ୍ରରେ ନିଯୁକ୍ତ ଦେବାନୀ ବିଚାରର ସର୍ବୋଚ୍ଚ ହାକିମ ।

ସଦରଇଲାକା-ଯା.ବି.ଜିଲ୍ଲାର ରାଜଧାନୀର ନିକଟବର୍ତ୍ତୀ ଅଞ୍ଚଳ ।

ସଦରଜମା—ଯା.ବି. ଜମିଦାର ଗଭର୍ଣ୍ଣମେଣ୍ଟଙ୍କୁ ଯାହା ରାଜସ୍ୱ ଦିଅନ୍ତି ।

ସଦରଥାନା—ଗ୍ରା.ବି. ଜିଲ୍ଲାର ରାଜଧାନୀର ବା ସଦରର ସଂଲଗ୍ନ ଅଞ୍ଚଳର ଶାନ୍ତିରକ୍ଷା ଆଦି ପାଇଁ ନିଯୁକ୍ତ ପୋଲିସ କର୍ମଚାରୀମାନଙ୍କ କାର୍ଯ୍ୟାଳୟ ।

ସଦରଦର(ରୋ)ଜା—ଯା. ବି. ଘରର ଦାଣ୍ଡପାଖ ଦୁଆର ।

ସଦରଦେବାନୀ—ଯା. ବି. ପ୍ରଧାନ ସ୍ୱତ୍ତ୍ୱନିର୍ବାଚକ ବିଚାରାଳୟ ।

ସଦର ଦେବାନୀ ଅଦାଲତ୍—ଇଂରେଜ କୋମ୍ପାନୀ ଅମଳର ପ୍ରଥମ ପ୍ରତିଷ୍ଠିତ ବିଚାରାଳୟ ।

ସଦରପୀଠିକା—ଗ୍ରା.ବି ତାଳପତ୍ର ପାଞ୍ଜିବିଡ଼ାର ସମ୍ମୁଖୀନ ବା ଉପରର ପତ୍ର ।

ସଦରଫି(ଫେ)ରସ୍ତ—ଯା. ବି. ଖାତାର ଆଦ୍ୟରେ ଥିବା ସୂଚୀପତ୍ର ।

ସଦରମଫସଲ—ଯା. ବି. ଜିଲ୍ଲାର ରାଜଧାନୀ ଓ ମଫସଲ, ସହର ଓ ଦେଶ, ଲୁଗା ଓ ପୋଷାକଆଦିର ବାହାର ପାଖ

ଓ ଭିତର ପାଖ ।

ସଦରସବ୍‌ଡିଭିଜନ୍‌—ଯା. ବି. ଜିଲାର ରାଜଧାନୀ ଯେଉଁ ସବ୍‌ଡିଭିଜନର ଅନ୍ତର୍ଗତ ।

ସଦରସିରସ୍ତା-ଯା.ବି.ଜମିଦାରଙ୍କ ସଦର କଚେରୀର କାର୍ଯ୍ୟାଳୟ ବା କାଗଜପତ୍ର

ସଦରୀ—ଗ୍ରା.ବି°. ସଦରରେ ବାସ କରୁଥିବା (ବ୍ୟକ୍ତି), ସଭ୍ୟ, ଶିଷ୍ଟ, ସଦରସମ୍ବନ୍ଧୀୟ ।

ସଦରକୋରୁଆ—ଗ୍ରା. ବି. ମଧ୍ୟପ୍ରଦେଶର ସାମ୍ବପୁରର କୋରୁଆ ଜାତିର କଥିତ ଛତିଶଗଡ଼ି ଓ ଲରିଆ ଭାଷାର ରୂପାନ୍ତର ।

ସଦର୍ଜନ—ବି. (ସତ୍‌+ଅର୍ଜନ) କ.ଧା; ସଦୁପାୟ ଦ୍ୱାରା ଧନାର୍ଜନ ।

ସଦର୍ଜିତ—ବି° (ସତ୍‌+ଅର୍ଜିତ)ସଦୁପାୟ ଦ୍ୱାର ଅର୍ଜିତ ।

ସଦର୍ଥ—ବି. ସାଧୁଅର୍ଥ, ସୁସଙ୍ଗତ ଅର୍ଥ, (ବି°) ସଙ୍ଗତ ଅର୍ଥବିଶିଷ୍ଟ ।

ସଦର୍ପ—ବି°. (ସ+ଦର୍ପ)ବ.ବ୍ରୀ; ଅହଙ୍କାରଯୁକ୍ତ, ଗର୍ବୀ, ଦୃପ୍ତ,(ସ୍ତ୍ରୀ)ସଦର୍ପା ।

ସଦର୍ପେ—କ୍ରି. ବି°. (ବ.ବ୍ରୀ) ଦର୍ପ ସହକାରେ, ଗର୍ବର ସହିତ ।

ସଦଳ—ବି°(ବ.ବ୍ରୀ)ପତ୍ରଯୁକ୍ତ, ପାଖୁଡ଼ାଯୁକ୍ତ, ଆପଣାର ଗୋଷ୍ଠୀସହିତ ।

ସଦଳବଳ—ବି°. (ସ+ଦଳବଳ)ଆପଣାର ଦଳବଳ ସହିତ ।

ସଦଳସ—ଗ୍ରା. ବି. (ସ-ସର୍କରସ)ଝୁଣା ।

ସଦଶ—ବି°. ଦଶବିଶିଷ୍ଟ ।

ସଦଶନ—ବି°.ଦଶନର ସହିତ ବର୍ତ୍ତମାନ. ଦନ୍ତଯୁକ୍ତ ।

ସଦଶିଷ୍ୟ—ଗ୍ରା ବି(ପ୍ରାଚୀନପଦ୍ୟ)ସୁଶିଷ୍ୟ

ସଦଶ୍ୱ—ପୁଂ.ବି. ସମର ରଜାଙ୍କର ପୁତ୍ର, ଉତ୍କୃଷ୍ଟ ଅଶ୍ୱ ଯୋଜିତ ରଥ, ବିଦ୍ୟମାନାଶ୍ୱ ।

ସଦଶ୍ୱୋର୍ମି—ପୁଂ. ବି. ରାଜାବିଶେଷ ।

ସଦସତ୍ତ୍ୱ—ବି. ସତ ଓ ଅସତର ଧର୍ମ, ପ୍ରଧାନ ଗୁଣ ଭାବ ।

ସଦସତ୍‌—ବି°. (ସତ୍‌+ଅସତ୍‌) ସତ୍‌ ଓ ଅସତ୍‌, ଭଲ ଓ ମନ୍ଦ, (ବେଦାନ୍ତ ସ୍ଥୂଳ ଓ ସୂକ୍ଷ୍ମ (ବସ୍ତୁ) ।

ସଦସତ୍ପତି—ପୁଂ.ବି.ସତ୍‌ ଅସତ୍‌ କାର୍ଯ୍ୟର ପତି,ସତ୍‌ ଓ ଅସତ୍‌ କାର୍ଯ୍ୟର ନାୟକ ।

ସଦସଦ୍‌ଫଳ—ବି.ସତ୍‌ ଓ ଅସତ୍‌ ଫଳ, ଭଲ ଓ ମନ୍ଦ ଫଳ ।

ସଦସଦ୍‌ବିଚାର—ବି.ଉତ୍ତମ ଓ ମନ୍ଦ ବିଷୟର ବିଚାର, କିଏ ଉତ୍ତମ କିଏ ମନ୍ଦ ଏଥିର ବିଚାର ।

ସଦସଦ୍‌ବିବେକ—ବି(ସଦସତ୍‌+ବିବେକ) ସଦସତ୍‌ ଜ୍ଞାନ, କିଏ ଭଲ କିଏ ମନ୍ଦ ଏ ସମ୍ବନ୍ଧେ ଜ୍ଞାନ ।

ସଦସଦ୍‌ବିବେଚନା—ବି.ସଦସତ୍‌ ବିବେକ, ଉତ୍ତମ ଓ ମନ୍ଦ ମଧ୍ୟରେ ପ୍ରଭେଦ ସମ୍ବନ୍ଧେ ବିଚାର ବା ସିଦ୍ଧାନ୍ତ ।

ସଦସ୍‌—ବି. ସଦଃ ଦେଖ, ସଭା ।

ସଦସଦାତ୍ମକ—ବି°.ସତ୍‌ ଓ ଅସତ୍‌ ସ୍ୱରୂପ, ଜଗତ କାରଣ ଅବ୍ୟକ୍ତ, ଏ ହେତୁ ଶାସ୍ତ୍ରରେ ଏହା ସଦସଦାତ୍ମକ ରୂପରେ ଅଭିହିତ ହୋଇଅଛି ।

ସଦସଦ୍ଭାବ—ବି. ସତ୍‌ ଓ ଅସତ୍‌ର ଭାବ, ସତ୍‌ ଓ ଅସତ୍‌ର ବିଦ୍ୟମାନତା ।

ସଦସଦ୍ରୂପ—ବି°. ସତ୍‌ ଓ ଅସତ୍‌ ରୂପବିଶିଷ୍ଟ, ସତ୍‌ ଓ ଅସଦ୍ରୂପଯୁକ୍ତ ।

ସଦସନ୍ମୟ—ବି°. (ସଦସତ୍‌+ମୟ)ସତ୍‌ ଓ ଅସତ୍‌ ସ୍ୱରୂପ ।

ସଦସସ୍ପତି—ବି. ଏତତ୍‌ ସଂଜ୍ଞକ ଦେବମୟ ଆଶୀର୍ବାଦ, ସଭାପତି ।

ସଦସ୍ୟ—ବି°. (ସଦସ୍‌+ସମ୍ବନ୍ଧାର୍ଥେ.ଯ) ସଭାସମ୍ବନ୍ଧୀୟ, ସାମାଜିକ, ବିଧିଦର୍ଶୀ. ସଭ୍ୟ, ଯଜ୍ଞାଦି କର୍ମରେ ନିଯୁକ୍ତ କର୍ମକାରକମାନଙ୍କର ଭ୍ରମସଂଶୋଧନକାରୀ, (ପୁଂ.ବି-ସଦସ୍‌+ସାଧୁ ଅର୍ଥରେ ଯ ସଭାସଦ୍‌, ସଭାର ସଭ୍ୟ, ଯଜ୍ଞାଦି ସ୍ଥଳରେ ବିଧିଦର୍ଶୀ ବ୍ୟକ୍ତି, (ସ୍ତ୍ରୀ) ସଦସ୍ୟା, (ଗ୍ରା. ବି)ବ୍ରାହ୍ମଣମାନଙ୍କ ବଂଶୋପାଧିବିଶେଷ ।

ସଦା—ଅ.(ସର୍ବ+କାଳାର୍ଥେ,ଦା)ସର୍ବଦା, ସବୁବେଳେ, ଅବିଶ୍ରାନ୍ତ ରୂପେ, ଚିରକାଳ ସକାଶେ,(ପ୍ରା.ଲରିଆ.ବି°)ସାଦା ।

ସଦାକାନ୍ତା—ସ୍ତ୍ରୀ. ବି. ନଦୀବିଶେଷ ।

ସଦାକାର—ପୁଂ. ବି°. ଆକାରବିଶିଷ୍ଟ ।

ସଦାକାଳ—ଗ୍ରା.ବି.ସବୁସମୟ,ଚିରକାଳ, (ଗ୍ରା. କ୍ରି. ବି°) ନିୟତ, ସର୍ବଦା, ଚିରକାଳ ପାଇଁ ।

ସଦାକାଳବହ—ବି° (ସଦାକାଳ+ବହ୍‌+ଅ) ସକଳ ସମୟ ଯାହା ବାହିତ ହୁଏ, (ସ୍ତ୍ରୀ) ସଦାକାଳବହା=ନଦୀ ।

ସଦାଗତ—ବି°. ( ସଦା+ଗତ ) ବ.ବ୍ରୀ; ସର୍ବଦା ଗତିଶୀଳ, (ବି) ବାୟୁ. ପବନ, ସୂର୍ଯ୍ୟ, ଆତ୍ମା, (ଅବ୍ୟୟୀଭାବ) ମୁକ୍ତି, ମୋକ୍ଷ, ପରମେଶ୍ୱର, (ଗ୍ରା.ବି)ଅବିଶ୍ରାନ୍ତ ଗମନ, (ବି°) ମୁକ୍ତି ବହନକାରୀ ।

ସଦାଗମ—ବି. ସତ୍‌ର ଆଗମ ।

ସଦାଗର—ଯା.ବି.ବଣିକ୍‌, ସଉଦାଗର ।

ସଦାଗରି—ଯା.ବି.ସଉଦାଗରି, ବାଣିଜ୍ୟ, ବେପାର, (ବି°) ବାଣିଜ୍ୟସମ୍ବନ୍ଧୀୟ ।

ସଦାଚରଣ—ବି. (କ.ଧା) ସାଧୁ ବ୍ୟବହାର, ଉତ୍ତମ ଚାଲିଚଳନ, ଶାନ୍ତ ଓ ଶିଷ୍ଟ ବ୍ୟବହାର ।

ସଦାଚରଣଜାମିନ୍‌—ଗ୍ରା.ବି.ଭବିଷ୍ୟତରେ କାହା ପ୍ରତି ଅତ୍ୟାଚାର ନ କରି ଶାନ୍ତ ଓ ଶିଷ୍ଟ ଭାବରେ ଚଳିବା ପାଇଁ ଦୁଷ୍ଟ ଓ ଅପରାଧୀ ବ୍ୟକ୍ତିଠାରୁ ମାଜିଷ୍ଟ୍ରେଟ ଯେଉଁ ଜାମିନ୍‌ ଗ୍ରହଣ କରନ୍ତି ।

ସଦାଚାର—ବି. (ସତ୍‌+ଆଚାର) କ.ଧା; ସାଧୁ ବ୍ୟବହାର, ଶାସ୍ତ୍ରବିହିତ ବିଧି ବା ରୀତି, ଶାସ୍ତ୍ରବିହିତ ଆଚାର, ଧର୍ମାନୁମୋଦିତ ଆଚରଣ, (ବି°-ବ.ବ୍ରୀ)ସଦାଚରଣଶୀଳ, ସଦାଚାରୀ, ସାଧୁ ଆଚରଣବିଶିଷ୍ଟ, ସଚ୍ଚରିତ୍ର, (ସ୍ତ୍ରୀ)ସଦାଚାରା ।

ସଦାଚାରନିରତ—ପୁଂ.ବି°. (୭ତତ୍‌)ଯେ ସର୍ବଦା ସଦାଚାରରେ ରତ ହୋଇଥାଏ ।

ସଦାଚାରନିଷ୍ଠା—ବି. (୭ତତ୍‌)ସଦାଚାର ପ୍ରତି ଅତ୍ୟାସକ୍ତି ।

ସଦାଚାରବାନ୍‌—ପୁଂ.ବି°. (ସଦାଚାର+ବତ୍‌) ସଦାଚାରୀ ଦେଖ ।

ସଦାଚାରବିଗର୍ହିତ—ବି°. (୩ତତ୍‌)ସଦାଚାରର ପ୍ରତିକୂଳ (କାର୍ଯ୍ୟ) ।

ସଦାଚାରବିହିତ—ବିଂ.(୩ତତ୍)ସଦାଚାରର ଅନୁସାରେ କୃତ ।

ସଦାଚାରବିହୀନ—ପୁଂ.ବିଂ. (୩ତତ୍)ଯେ ସଦାଚାର ପାଳନ କରେ ନାହିଁ ।

ସଦାଚାରଭ୍ରଷ୍ଟ—ବିଂ (୫ତତ୍)ସଦାଚାରରୁ ସ୍ଖଳିତ, ଯେଉଁ ବ୍ୟକ୍ତି ସଦାଚରଣ ତ୍ୟାଗ କରିଅଛି ।

ସଦାଚାରୀ—ପୁଂ.ବିଂ. (ସଦାଚାର+ଇନ୍) ଯେ ସଦାଚାର ବା ସାଧୁ ଆଚରଣ କରେ. (ସ୍ତ୍ରୀ) ସଦାଚାରିଣୀ ।

ସଦାଜୟ—ଗ୍ରା.ବି.ପ୍ରାଚୀନ ଓଡ଼ିଆ କବିବିଶେଷ ।

ସଦାତନ—ପୁଂ.ବିଂ(ସଦା+ତନ)ଚିରସ୍ଥାୟୀ, ନିତ୍ୟ, ସନାତନ, ଅବିଶ୍ରାନ୍ତ, (ସ୍ତ୍ରୀ) ସଦାତନୀ, (ବି)ବିଷ୍ଣୁ ।

ସଦାତୋୟା—ସ୍ତ୍ରୀ.ବି.(ସଦାତୋୟ+ଆ) ଏଲାପର୍ଣ୍ଣୀ, କରତୋୟା ନଦୀ ।

ସଦାତ୍ମା—ପୁଂ.ବିଂ(ବ.ବ୍ରୀ)ସାଧୁ,ସଦନ୍ତଃକରଣ, ଧାର୍ମିକ ।

ସଦାଦାନ—ବି.(ବ.ବ୍ରୀ)ମତ୍ତହସ୍ତୀ, ଐରାବତ ହସ୍ତୀ,ଗଣେଶ, ସଦାବ୍ରତ,ଖଇରାତ୍

ସଦାଦିନ(ନେ)—ଗ୍ରା.କ୍ରି.ବିଂ ସବୁଦିନେ, ସବୁ ସମୟରେ । [ ସହିତ ।

ସଦାନ—ବିଂ. ଦାନର ସହିତ, ମଙ୍ଗଳର

ସଦାନନ୍ଦ—ପୁଂ. ବିଂ. (ବ.ବ୍ରୀ) ନିତ୍ୟହର୍ଷଯୁକ୍ତ, (ସ୍ତ୍ରୀ) ସଦାନନ୍ଦା, (ପୁଂ.ବି) ଶିବ, ବିଷ୍ଣୁ, ବ୍ରହ୍ମ, ପରମାତ୍ମା ।

ସଦାନନ୍ଦସଉଦାଗର—ଗ୍ରା.ବି. ସତ୍ୟପୀର ପାଲାରେ ବର୍ଣ୍ଣିତ ସଉଦାଗରର ବା ବଣିକ୍ ପୁତ୍ରର ନାମ ।

ସଦାନନ୍ଦହୃଦୟ--ପୁଂ.ବିଂ(ବ.ବ୍ରୀ)ସର୍ବଦା ଆନନ୍ଦମୟ, ସବୁବେଳେ ପ୍ରଫୁଲ୍ଲଚିତ୍ତ ।

ସଦାନର୍ତ୍ତି—ବି. (ସଦା+ନର୍ତ୍ତି) ଖଞ୍ଜନ ପକ୍ଷୀ, କଜଳପାତି ଚଢ଼େଇ, (ପୁଂ.ବିଂ) ସର୍ବଦା ନୃତ୍ୟକାରୀ, (ସ୍ତ୍ରୀ)ସଦାନର୍ତ୍ତୀ ।

ସଦାନୀରମଧ୍ୟା—ସ୍ତ୍ରୀ.ବି. ନଦୀବିଶେଷ ।

ସଦାନୀରବହା—ସ୍ତ୍ରୀ.ବି.କରତୋୟା ନଦୀ

ସଦାନୀରା—ସ୍ତ୍ରୀ. ବି.(ବ.ବ୍ରୀ)କରତୋୟା ନଦୀ ।

ସଦାନୁଗତ—ପୁଂ. ବିଂ. ସର୍ବଦା ଆଶ୍ରିତ (ବ୍ୟକ୍ତି), (ସ୍ତ୍ରୀ) ସଦାନୁଗତା ।

ସଦାପର୍ଣ୍ଣ—ବିଂ. ସର୍ବଦା ପତ୍ରଯୁକ୍ତ ।

ସଦାପୁଷ୍ପ—ବି.(ବ.ବ୍ରୀ)ନାରିକେଳ ବୃକ୍ଷ, ନଡ଼ିଆଗଛ, ଧଳା ଅର୍କଗଛ, କୁନ୍ଦବୃକ୍ଷ, କାର୍ପାସବୃକ୍ଷ, ଆକନ୍ଦବୃକ୍ଷ,(ବିଂ)ସର୍ବଦା ପୁଷ୍ପଯୁକ୍ତ (ବୃକ୍ଷଲତାଦି), ସବୁ ଋତୁରେ ଯହିଁରେ ଫୁଲ ଫୁଟେ, (ସ୍ତ୍ରୀ)ସଦାପୁଷ୍ପା ।

ସଦାପୁଷ୍ପୀ—ବି.ରକ୍ତାର୍କ ବୃକ୍ଷ,ନାଲି ଅରଖଗଛ ।

ସଦାପ୍ରମୁଦିତ—ବି. ସିଦ୍ଧିବିଶେଷ, (ସ୍ତ୍ରୀ) ସଦାପ୍ରମୁଦିତା, ସତ୍ ପ୍ରମୁଦିତା ସିଦ୍ଧି ।

ସଦାପ୍ରସୂନ—ବିଂ. (ବ.ବ୍ରୀ)ସର୍ବଦା ପୁଷ୍ପଯୁକ୍ତ (ବୃକ୍ଷ), (ସ୍ତ୍ରୀ) ସଦାପ୍ରସୂନା, (ବି) ରୋହିତକ ବୃକ୍ଷ, ସୁଆମଗଛ, ଅର୍କଗଛ, କୁନ୍ଦଗୁଳ୍ମ ।

ସଦାଫଳ—ପୁଂ.ବିଂ.ବବ୍ରୀ;ସବୁ ଋତୁରେ ଫଳ ଧରିବା ବୃକ୍ଷ, (ବି) ନାରିକେଳ, ନଡ଼ିଆ, ଉଡୁମ୍ବର, ବିଲ୍ୱ, ବେଲ ।

ସଦାଫଳା—ବି. କ୍ଷିପଣ୍ଡପୁଷ୍ପ, ଏକପ୍ରକାର ବାଇଗଣ, ନାଇକିର ବାଇଗଣ,ବୃହତୀ, ଭେଜିବାଇଗଣ ।

ସଦାଭଦ୍ରା—ସ୍ତ୍ରୀ. ବି. ଗମ୍ଭାରିଗଛ ।

ସଦାଭବ—ବିଂ. ଚିରନ୍ତନ, ଆବହମାନ ବିଦ୍ୟମାନ ।

ସଦାମଣ୍ଡଳପତ୍ରକ—ପୁଂ.ବି.ଶ୍ୱେତ ପୁନର୍ନବା, ସାଦାପୁରୁଣୀ ।

ସଦାମାଂସୀ-ସ୍ତ୍ରୀ.ବି.ମାଂସ ରୋହିଣୀବିଶେଷ

ସଦାଯୋଗୀ—ପୁଂ. ବି. (ସଦା+ଯୋଗ+ଇନ୍) ବିଷ୍ଣୁ, ନାରାୟଣ ।

ସଦାର—ପୁଂ. ବିଂ. (ବ.ବ୍ରୀ) ସପତ୍ନିକ, ଯାହାର ସ୍ତ୍ରୀ ଜୀବିତ ଅଛି ।

ସଦାର୍ଜବ—ବିଂ. ନିରନ୍ତର ସରଳଚିତ୍ତ, ସତ୍ପ୍ରକୃତିକ ।

ସଦାଳାପ—ବି.(କ.ଧା) ଭଦ୍ର କଥାବାର୍ତ୍ତା, ସାଧୁ କଥୋପକଥନ ।

ସଦାଳାପୀ—ପୁଂ.ବିଂ.(ସଦାଳାପ+ଇନ୍) ସାଧୁ ଆଳାପକାରୀ, ମିଷ୍ଟାଳାପୀ, (ସ୍ତ୍ରୀ) ସଦାଳାପିନୀ ।

ସଦାବର୍ତ୍ତି-ଗ୍ରା.ବିଂ. (ସଂ-ସଦାବ୍ରତ) ସର୍ବଦା ଦାନ, ଖଇରାତ୍ ।

ସଦାବ(ବେ)ହାର—ଗ୍ରା. ବି. (ଏକାସବୁ ଋତୁରେ ଫୁଟେ) ଆଇଁସିକାତ ଫୁଲ ଓ ଗୁଳ୍ମ ।

ସଦାବେଳ—ଗ୍ରା. ବି. ସବୁକାଳ ।

ସଦାବେଳେ—ଗ୍ରା.କ୍ରି.ବିଂ. ସର୍ବଦା,ସବୁସମୟରେ ।

ସଦାବ୍ରତ—ବି. ଅନ୍ନସତ୍ର, ଖଇରାତ୍, ସଦା ଦାନ ।

ସଦାଶଙ୍କିତ—ପୁଂ.ବିଂ. ସତତଶଙ୍କାଯୁକ୍ତ, (ସ୍ତ୍ରୀ) ସଦାଶଙ୍କିତା ।

ସଦାଶୟ—ପୁଂ. ବିଂ. ( ସତ୍ + ଆଶୟ ) ବ.ବ୍ରୀ; ମହାଶୟ, ସହୃଦୟ, ଉନ୍ନତଚେତାଃ, (ସ୍ତ୍ରୀ) ସଦାଶୟା ।

ସଦାଶୟତା—ସ୍ତ୍ରୀ. ବି. (ସଦାଶୟ + ଭା. ତା) ସହୃଦୟତା, ମହାନୁଭବତା ।

ସଦାଶିବ—ପୁଂ.ବି. (ସଦା + ଶିବ) ମହାଦେବ, (ବିଂ) ସର୍ବଦା ମଙ୍ଗଳଯୁକ୍ତ ।

ସଦାଶିବବିଦ୍ୟାଭୂଷଣ—ଗ୍ରା.ପୁଂ.ବି.(ନାମ) ଗଞ୍ଜାମ ବ୍ରହ୍ମପୁରବାସୀ ସ୍ୱର୍ଗୀୟ ଉତ୍କଳୀୟ ବ୍ରାହ୍ମଣ ପଣ୍ଡିତ ।

ସଦାଶିବମିଶ୍ରକାବ୍ୟକଣ୍ଠମହାମହୋପାଧ୍ୟାୟ—ଗ୍ରା. (ନାମ) ଓଡ଼ିଶାର ସଂସ୍କାରକାମୀ ଜନୈକ ପ୍ରସିଦ୍ଧ ବ୍ରାହ୍ମଣ ପଣ୍ଡିତ ।

ସଦାଶ୍ରିତ—ପୁଂ. ବିଂ. (ସତ୍ + ଆଶ୍ରିତ) ଯେ ସାଧୁବ୍ୟକ୍ତିଙ୍କ ଆଶ୍ରୟରେ ଅଛି, (ସଦା + ଆଶ୍ରିତ)ସର୍ବଦା ଆଶ୍ରୟାଧୀନ, (ସ୍ତ୍ରୀ) ସଦାଶ୍ରିତା ।

ସଦାସର୍ବଦା—ଗ୍ରା. କ୍ରି.ବିଂ. ସଦା,ସର୍ବଦା, ସବୁବେଳେ, ନିରନ୍ତର ।

ସଦିଚ୍ଛା—ବି. (କ.ଧା) ସାଧୁଇଚ୍ଛା, ସାଧୁସଙ୍କଳ୍ପ ।

ସଦୀଶ୍ୱର—ପୁଂ. ବି. ସଦାଗତି, ବାୟୁ ।

ସଦୁଃଖ—ପୁଂ. ବିଂ. ଦୁଃଖଯୁକ୍ତ, ଦୁଃଖୀ ।

ସଦୁକ୍ତି—ବି.(କ.ଧା) ସାଧୂକ୍ତି,ମହାପୁରୁଷମାନଙ୍କ ବଚନ ।

ସଦୁତ୍ତର—କ୍ଲୀ.ବି,(କ.ଧା) ଉତ୍ତମଉତ୍ତର, ଉପଯୁକ୍ତ ଉତ୍ତର ।

ସଦ୍ବୁଦ୍ଦେଶ୍ୟ—କ୍ଲୀ. ବି. ( କ.ଧା ) ମହତ୍ ଅଭିପ୍ରାୟ,ସାଧୁସଙ୍କଳ୍ପ, ସାଧୁଉଦ୍ଦେଶ୍ୟ ।
ସଦୁପଦେଶ—ବି. (କ.ଧା) ଉତ୍ତମ ଉପଦେଶ, ମଙ୍ଗଳକର ପରାମର୍ଶ ।
ସଦୁପଦେଶଗର୍ଭ—ବିଂ.(ବ.ବ୍ରୀ) ସଦୁପଦେଶ ପୂର୍ଣ୍ଣ (ବାକ୍ୟ) ।
ସଦୁପାୟ—ବି. ( କ.ଧା ) ସତ୍ଉପାୟ, ଉତ୍ତମ ଉପାୟ, ଉପଯୁକ୍ତ ଉପାୟ ।
ସଦୂର୍ବ—ବିଂ. ( ସହ+ଦୂର୍ବା ) ବ.ବ୍ରୀ; ଦୂର୍ବାଘାସଯୁକ୍ତ ।
ସଦୃକ୍—ପୁଂ.ବିଂ. (ସ+ଦୃଶ୍+ର୍ମ.କ୍ୱିପ୍) ସଦୃଶ, ତୁଲ୍ୟ, ଅନୁରୂପ, ଉପଯୁକ୍ତ, ଯୋଗ୍ୟ, (ସ୍ତ୍ରୀ) ସଦୃଶୀ ।
ସଦୃକ୍ଷ—ପୁଂ.ବିଂ. (ସ+ଦୃଶ୍+ର୍ମ.ସକ୍) ସମାନ, ତୁଲ୍ୟ, (ସ୍ତ୍ରୀ) ସଦୃକ୍ଷା(କ୍ଷୀ) ।
ସଦୃଗ୍ବୋଧ—ବି. ବସ୍ତୁର ଅନୁରୂପ ଜ୍ଞାନ ।
ସଦୃଶ—ପୁଂ. ବିଂ. (ସ+ଦୃଶ୍+ର୍ମ.ଅ) ସମାନ, ତୁଲ୍ୟ,ଉପଯୁକ୍ତ, ଯୋଗ୍ୟ, (ସ୍ତ୍ରୀ) ସଦୃଶୀ, (ଗ୍ରା.ଅ) ପରି ।
ସଦୃଶଚିକିତ୍ସା—ବି. ସଦୃଶ ବ୍ୟବସ୍ଥା ।
ସଦୃଶତ୍ୱ—ବି.ସମାନତ୍ୱ,ତୁଲ୍ୟତ୍ୱ,ସଦୃଶର ଭାବ ବା ଧର୍ମ ।
ସଦୃଶବୃତ୍ତି—ବିଂ. ସମାନ କାର୍ଯ୍ୟବିଶିଷ୍ଟ, ଯେଉଁମାନଙ୍କର ଜୀବନୋପାୟ ଅଭିନ୍ନ ।
ସଦୃଶବ୍ୟବସ୍ଥା—ଗ୍ରା. ବି. ହୋମିଓପାଥି ଚିକିତ୍ସା ।
ସଦୃଶସ୍ପନ୍ଦନ—ବି. ନିଷ୍ପନ୍ଦ ।
ସଦୃଶି—ଗ୍ରା. ଅବ୍ୟ. (ପ୍ରାଚୀନ ପଦ୍ୟ) ପରି, ସଦୃଶ ।
ସଦୃଷ୍ଟାନ୍ତବାଦୀ—ପୁଂ. ବିଂ. ଉପଯୁକ୍ତ ଦୃଷ୍ଟାନ୍ତ ଦର୍ଶାଇବାକୁ କ୍ଷମ, ( ପୁଂ.ବି ) ଯେଉଁ ବ୍ୟକ୍ତି କଥାବାର୍ତ୍ତାରେ ଉପଯୁକ୍ତ ଦୃଷ୍ଟାନ୍ତ ବ୍ୟବହାର କରନ୍ତି ।
ସଦେବ—ବିଂ.ଦେବତାଯୁକ୍ତ,ଦେବତାଙ୍କ ସହିତ ବର୍ତ୍ତମାନ ।
ସଦେବକ—ବିଂ.(ସଦେବ+କ)ଦେବତା ସହିତ ବର୍ତ୍ତମାନ ।
ସଦେଶ—ବିଂ. (ବ.ବ୍ରୀ) ଏକଦେଶସ୍ଥ, ସମାନଦେଶୀୟ,(ସ=ସହିତ+ଦେଶ) ସମୀପସ୍ଥ, ନିକଟବର୍ତ୍ତୀ ।
ସଦେଶଜ—ବିଂ.(ସଦେଶ+ଜନ୍+କ. ଅ) ଏକଦେଶଜାତ ।
ସଦୈକରସ—ବିଂ. ସର୍ବଦା ଏକରସବିଶିଷ୍ଟ, (ବି) ବ୍ରହ୍ମ ।
ସଦୋଗୃହ—ବି. ସଭାଗୃହ, ମନ୍ତ୍ରଣାଗାର ।
ସଦୋଦ୍ୟମ-ବିଂ.(ବ.ବ୍ରୀ)ସର୍ବଦା ଉଦ୍ୟମବିଶିଷ୍ଟ, (ବି) ସଦାଉଦ୍ୟମ ।
ସଦୋଷ—ବିଂ.ଦୋଷଯୁକ୍ତ,ଦୋଷବିଶିଷ୍ଟ ।
ସଦ୍ଗତି—ବି.(ସତ୍ + ଗତି) କ.ଧା;ଉତ୍ତମ ଗତି, ମନ୍ଦ ଅବସ୍ଥାରୁ ଉତ୍ତମ ଅବସ୍ଥା ପ୍ରାପ୍ତି, ଉତ୍ତମ ଅବସ୍ଥା ଲାଭ, ସଦ୍‌ବ୍ୟବହାର, ସୁଖମୟ ପରିଣାମ, ମୁକ୍ତି,ମୋକ୍ଷ, ନିର୍ବାଣ, ସଚ୍ଚରିତ୍ର ।
ସଦ୍‌ଗନ୍ଧ—ବି.(କ.ଧା)ଉତ୍ତମ ବା ମନୋମୋହକର ଗନ୍ଧ, ସୁଗନ୍ଧ ।
ସଦ୍‌ଗୁଣ—ବି.(କ.ଧା-ସତ୍+ଗୁଣ)ସୁଗୁଣ ଉତ୍ତମ ଗୁଣ, (ପୁଂ.ବିଂ-ବ.ବ୍ରୀ) ଉତ୍ତମ ଗୁଣବିଶିଷ୍ଟ ।
ସଦ୍‌ଗୁରୁ—ବି. (କ.ଧା-ସତ୍+ଗୁରୁ)ଉପଯୁକ୍ତ ବା ଯୋଗ୍ୟ ବା ଜ୍ଞାନୀ ଗୁରୁ ।
ସଦ୍‌ଗୁରୁବୋଧଗମ୍ୟ-ବିଂ. (କ.ଧା-ସତ୍+ଗୁରୁ+ବୋଧଗମ୍ୟ) ଯେଉଁ ବିଷୟ ସଦ୍‌ଗୁରୁଙ୍କ ସାହାଯ୍ୟରେ ବୁଝିବାକୁ ଶିଷ୍ୟ କ୍ଷମ ହୁଏ ।
ସଦ୍‌ଗୃହ—ବି. କ.ଧା; (ସତ୍+ଗୃହ ) ଉତ୍ତମ ଘର ।
ସଦ୍‌ଗୋପ—ଗ୍ରା. ବି. ଧଳଭୂମିର ଓଡ଼ିଆ ଗୋପ ବା ଗଉଡ଼ମାନଙ୍କ ଜାତିର ଶାଖାବିଶେଷ,ବଙ୍ଗଦେଶର ଶୂଦ୍ର ବା ବୈଶ୍ୟ ଜାତିବିଶେଷ ।
ସଦ୍‌ଗ୍ରହ—ପୁଂ. ବି. ଶୁଭଗ୍ରହ, ବୃହସ୍ପତି ଓ ଶୁକ୍ରଗ୍ରହ ।
ସଦ୍‌ଗ୍ରାମ—ବି.କ.ଧା;(ସତ୍+ଗ୍ରାମ) ସଦ୍‌ବ୍ୟକ୍ତି ବା ଉଚ୍ଚଜାତୀୟ ବ୍ୟକ୍ତି ବା ଭଦ୍ରବ୍ୟକ୍ତିମାନଙ୍କ ଅଧ୍ୟୁଷିତ ଗ୍ରାମ ।
ସଦ୍‌ଘନ—ବି. ଚିଦ୍‌ଘନ, ଆନନ୍ଦଘନ, ସଚ୍ଚିଦାନନ୍ଦ ବ୍ରହ୍ମ ।
ସଦ୍‌ବଂଶ—ବି. (କ.ଧା) ଉତ୍ତମ ବା ଉଚ୍ଚକୁଳ, ସତ୍କୁଳ ।
ସଦ୍‌ବକ୍ତା—ପୁଂ.ବିଂ. ଉତ୍ତମବକ୍ତା,ବାଗ୍ମୀ ।
ସଦ୍‌ବକ୍ତୃତା—ସ୍ତ୍ରୀ.ବି. ଉତ୍ତମବକ୍ତୃତା, ସତ୍ତ ବକ୍ତୃତା ।
ସଦ୍‌ବନ୍ଧୁ—ବି. (କ.ଧା-ସତ୍+ବନ୍ଧୁ)ସନ୍ମିତ୍ର, ଉତ୍ତମବନ୍ଧୁ,ଉପକାରୀ ବା ପ୍ରକୃତ ବନ୍ଧୁ ।
ସଦ୍‌ବସଥ—ବି.(ସତ୍+ବସ୍+ଅଧି.ଅଥ) ଉତ୍ତମ ବସତିସ୍ଥାନ, ଗ୍ରାମ ।
ସଦ୍‌ବିଗ୍ରହ—ବି. (କ.ଧା-ସତ୍+ବିଗ୍ରହ) ସୁବିଗ୍ରହ, ନ୍ୟାୟ୍ୟବିଗ୍ରହ, ନ୍ୟାୟସଙ୍ଗତ ତର୍କ ।
ସଦ୍‌ବିଗ୍ରହକ—ବିଂ. କ.ଧା; ସୁବିଗ୍ରହକ, ନ୍ୟାୟବିଗ୍ରହକାରୀ ।
ସଦ୍‌ବିଦ୍ୟା—ବି. (କ.ଧା) ଉତ୍ତମ ବିଦ୍ୟା, ଯେଉଁବିଦ୍ୟା ବା ବିଜ୍ଞାନ ଦ୍ୱାରା ଜଗତର ଉପକାର ହୁଏ, ପରମାର୍ଥବିଦ୍ୟା, ବ୍ରହ୍ମବିଦ୍ୟା ।
ସଦ୍‌ବିବେକ—ବି. ଉତ୍ତମବିବେକ, ସଦ୍‌ବିବେଚନ ଦେଖ ।
ସଦ୍‌ବିବେଚନ(ନା)—ବି. ସୁବିବେଚନା, ଉତ୍ତମ ବିବେଚନା, ଭଲ ମନ୍ଦ ବାଛିବା ବିଷୟରେ ନିପୁଣତା ।
ସଦ୍‌ବୁଦ୍ଧି—ସ୍ତ୍ରୀ.ବି. ଉତ୍ତମବୁଦ୍ଧି, ସାଧୁବୁଦ୍ଧି, (ବିଂ) ଉତ୍ତମ ବୁଦ୍ଧି ବିଶିଷ୍ଟ ।
ସଦ୍‌ବୃତ୍ତ—ବି. କ.ଧା;(ସତ୍+ବୃତ୍ତ ) ସଦ୍‌ବ୍ୟବହାର,ସଚ୍ଚରିତ୍ର, (ବିଂ-ବ.ବ୍ରୀ) ସଚ୍ଚରିତ୍ର ବିଶିଷ୍ଟ, ସମ୍ପୂର୍ଣ୍ଣରୂପେ ଗୋଲ, ସୁଗୋଲ, (ସ୍ତ୍ରୀ) ସଦ୍‌ବୃତ୍ତା ।
ସଦ୍‌ବୃତ୍ତି—ବି. କ.ଧା;(ସତ୍+ବୃତ୍ତି ) ସଦ୍‌ବ୍ୟବହାର, ଉତ୍ତମ ଜୀବିକା, ସଦ୍‌ବ୍ୟାଖ୍ୟାନ ଗ୍ରନ୍ଥବିଶେଷ,ଉତ୍ତମ ଚରିତ,ଉତ୍ତମ ଲୋକମାନଙ୍କ ସମ୍ବନ୍ଧେ ବିବରଣ ।
ସଦ୍‌ବୃତ୍ତିଭାକ୍—ପୁଂ. ବିଂ. (ସଦ୍‌ବୃତ୍ତି+ଭଜ୍+କ.କ୍ୱିପ୍) ସଦ୍‌ବୃତ୍ତି ବିଶିଷ୍ଟ,ଉତ୍ତମ ଜୀବିକା ଅବଲମ୍ବନକାରୀ ।
ସଦ୍‌ବ୍ୟବହାର—ବି. ( କ.ଧା ) ସମୁଚିତ ବ୍ୟବହାର, ଉତ୍ତମ ବ୍ୟବହାର, ଉତ୍ତମ ଆଚରଣ, ପ୍ରଶଂସ୍ୟ କାରବାର ବା ଜୀବିକା ।

ସଦ୍‌ବ୍ୟସ୍ତ—ବି. କ.ଧା; (ସତ୍+ବ୍ୟସ୍ତ) ସତ୍‌କାର୍ଯ୍ୟରେ ବ୍ୟସ୍ତ, ଧର୍ମକାର୍ଯ୍ୟରେ ଖର୍ଚ୍ଚ ।

ସଦ୍‌ବ୍ୟୟୀ—ପୁଂ. ବିଂ. (ସଦ୍ବ୍ୟୟ+ଇନ୍) ସାଧୁସମ୍ମତ ବ୍ୟୟଶୀଳ, ସତ୍କାର୍ଯ୍ୟରେ ବ୍ୟୟକାରୀ, (ସ୍ତ୍ରୀ) ସଦ୍ବ୍ୟୟିନୀ ।

ସଦ୍ବ୍ୟାଖ୍ୟାନ—ବି.ଉତ୍ତମରୂପେ ବ୍ୟାଖ୍ୟାକରଣ,ସଚ୍ଚରିତ୍ର ବ୍ୟକ୍ତିମାନଙ୍କ ବିବରଣ ।

ସଦ୍ଭାଗ୍ୟ—କ୍ଲୀ.ବି. ସୁଭାଗ୍ୟ, ଉତ୍ତମଭାଗ୍ୟ, ଶୁଭାଦୃଷ୍ଟ ।

ସଦ୍ଭାବ—ବି.(କ.ଧା;ସତ୍+ଭାବ)ପ୍ରଣୟ, ବନ୍ଧୁତା,ଘନିଷ୍ଠତା,ଭଲମିଶାମିଶ,ସାଧୁତା, ଶିଷ୍ଟତା, ଭଦ୍ରତା, ସତ୍ତା, ସ୍ଥିତି,ସଦ୍‌ବୃତ୍ତ ଦେଖ, ସଦ୍‌ବୃତ୍ତି ଦେଖ ।

ସଦ୍ଭୂତ—ବିଂ. (ସତ୍+ଭୂତ) ସତ୍ୟ, ଯଥାର୍ଥ ।

ସଦ୍ଭୃତ୍ୟ-ପୁଂ.ବିଂ.ସାଧୁଭୃତ୍ୟ,ଉତ୍ତମଭୃତ୍ୟ ।

ସଦ୍ଧନ—ବି. (ସତ୍+ଧନ) ସଦୁପାୟରେ ଅର୍ଜିତ ଧନ ।

ସଦ୍ଧର୍ମ—ବି. କ.ଧା;(ସତ୍+ଧର୍ମ) ଶ୍ରେଷ୍ଠଧର୍ମ, ଉତ୍ତମ କର୍ମାନୁଷ୍ଠାନ,ବୌଦ୍ଧଧର୍ମ ।

ସଦ୍ଧର୍ମଚାରୀ-ପୁଂ. ବିଂ. (ସଦ୍ଧର୍ମ+ଚର୍+ଇନ୍) ଯେ ଉତ୍ତମ ଧର୍ମାଚରଣ କରେ ।

ସଦ୍ଧର୍ମବିଶାରଦ—ପୁଂ.ବିଂ.(କ.ଧା,୭ତତ୍) ବୌଦ୍ଧଧର୍ମରେ ପାରଦର୍ଶୀ, (ସ୍ତ୍ରୀ) ବିଶାରଦା ।

ସଦ୍ଧେତୁ—ବି.(ସତ୍+ହେତୁ)ନ୍ୟାୟଶାସ୍ତ୍ର, ହେତ୍ୱାଭାସ ଦୋଷରହିତ ପ୍ରତିଜ୍ଞା,ସାଧୁହେତୁ ।

ସଦ୍ଵୀପ—ପୁଂ. ବିଂ. (ସ+ଦ୍ୱୀପ) ଦ୍ୱୀପ ସମନ୍ୱିତ, (ସ୍ତ୍ରୀ) ସଦ୍ୱୀପା ।

ସଦ୍ମ—କ୍ଲୀ.ବି. (ସଦ୍+ଅଧି.ମନ୍) ନିକେତନ,ଗୃହ,ବାସଗୃହ,ଭଦ୍ରାସନ,ପୈତୃକ ବାସଗୃହ, (କ.ମନ୍) ଜଳ, ସଂଗ୍ରାମ ।

ସଦ୍ୟ—ଗ୍ରା.ବିଂ.(ସଂ-ସଦ୍ୟଃ)ସଜ,ତଟକା, (ଗ୍ରା.ଅ) ସଦ୍ୟଃ ଦେଖ, ତତକ୍ଷଣାତ୍, ଅଳ୍ପକ୍ଷଣପୂର୍ବେ, ନୂତନହୋଇ ।

ସଦ୍ୟଉଦ୍ଧୃତ—ବିଂ. (ସଦ୍ୟଃ+ଉଦ୍ଧୃତ) ସଦ୍ୟସମୁଦ୍ଧୃତ ଦେଖ ।

ସଦ୍ୟଃ—ଅ. (ସ+ଦ୍ୟସ୍) ସପଦି, ତତ୍‌କ୍ଷଣେ, ସେହିକ୍ଷଣି, ତତ୍କାଳେ, ସେହିମୁହୂର୍ତ୍ତରେ, ବର୍ତ୍ତମାନ ସମୟରେ, ଉପସ୍ଥିତ ଅବସରରେ ।

ସଦ୍ୟଃକୃତ—ବିଂ. କିଛିକ୍ଷଣ ପୂର୍ବେ କରାଯାଇଥିବା, ତତ୍‌କ୍ଷଣ କୃତ,(ବି)ଆଖ୍ୟା, ସଂଜ୍ଞା, ନାମ ।

ସଦ୍ୟଃକ୍ରିୟ--ପୁଂ.ବିଂ.(ବ.ବ୍ରୀ) ଯେ ତତ୍‌କ୍ଷଣାତ୍ କାର୍ଯ୍ୟ କରେ,(ସ୍ତ୍ରୀ)ସଦ୍ୟଃକ୍ରିୟା

ସଦ୍ୟଃକ୍ରିୟା—ବି. ମୃତ ବ୍ୟକ୍ତିର ମରିବା ଦିନଠାରୁ ଆରମ୍ଭ କରି କରସିବା ଅନ୍ତ୍ୟେଷ୍ଟିକ୍ରିୟା, ସଜକ୍ରିୟା ।

ସଦ୍ୟଃକ୍ରୀ—ବିଂ. ଯାହା ସଦ୍ୟ ନିଷ୍ପନ୍ନ ହୁଏ, (ବି) ଏକାହସାଧ୍ୟ ସୋମଯାଗ, ଦୀକ୍ଷା, ଉପସଦ ପ୍ରଭୃତି ।

ସଦ୍ୟଃକ୍ଷତ—ବିଂ. ଯାହା ତତ୍‌କ୍ଷଣାତ୍ କ୍ଷତ ହୋଇଅଛି ।

ସଦ୍ୟଃପକ୍ୱ—ବିଂ.କିଛିକ୍ଷଣ ପୂର୍ବେ ପାଚିଥିବା,କିଛିକ୍ଷଣ ପୂର୍ବେ ପାକ କରାଯାଇଥିବା ।

ସଦ୍ୟଃପର୍ଯ୍ୟୁଷିତ—ବିଂ. ତତ୍‌କ୍ଷଣାତ୍ ଯାହା ପର୍ଯ୍ୟୁଷିତ ହୋଇଥାଏ ।

ସଦ୍ୟଃପାକ—ବିଂ. ତତ୍‌କ୍ଷଣାତ୍ ପାକ କରାହୋଇଥିବା ।

ସଦ୍ୟଃପାତୀ—ବିଂ. (ସଦ୍ୟଃ+ପତ୍+ଇନ୍) ପତନୋନ୍ମୁଖ, ସଦ୍ୟଃ ପତନଶୀଳ ।

ସଦ୍ୟପ୍ରକ୍ଷାଳକ—ବିଂ. ତତ୍‌କ୍ଷଣାତ୍ ପ୍ରକ୍ଷାଳନକାରୀ ।

ସଦ୍ୟଃପ୍ରସୂତ—ପୁଂ.ବିଂ. ଅତି ଅଳ୍ପକାଳ ହେଲା ଜାତ(ସନ୍ତାନ),(ସ୍ତ୍ରୀ)ସଦ୍ୟପ୍ରସୂତା

ସଦ୍ୟଃପ୍ରସୂତା—ସ୍ତ୍ରୀ. ବିଂ. ନବ ପ୍ରସବିନୀ, ତଦିନେ ଜାତାପତ୍ୟା, ତତ୍‌କ୍ଷଣାତ୍ ପ୍ରସୂତା ।

ସଦ୍ୟଃପ୍ରସୂତି—ସ୍ତ୍ରୀ.ବି ଓ ବିଂ. ଯେଉଁ ସ୍ତ୍ରୀ ବର୍ତ୍ତମାନ ଅର୍ଥାତ୍ କ୍ଷଣମାତ୍ର ପୂର୍ବେ ପ୍ରସବ କରିଅଛି ।

ସଦ୍ୟଃପ୍ରାଣକର—ବିଂ. ତତ୍‌କ୍ଷଣାତ୍ ଅର୍ଥାତ୍ ସେବନମାତ୍ରେ ବଳକାରକ, (ସ୍ତ୍ରୀ)ସଦ୍ୟଃପ୍ରାଣକରୀ ।

ସଦ୍ୟଃପ୍ରାଣହର—ପୁଂ.ବିଂ. ତତ୍‌କ୍ଷଣାତ୍ ପ୍ରାଣନାଶକ, ସେବନମାତ୍ରେ ବଳ ଓ ଆୟୁଃ କ୍ଷୟକର ।

ସଦ୍ୟଃପ୍ରୀଣନ—ବି. ଆହ୍ଲାଦ, ଭୋଜନ ।

ସଦ୍ୟଃଫଳ—ବିଂ.ତତ୍‌କ୍ଷଣାତ୍ ଫଳଯୁକ୍ତ, ଯାହାର ଫଳ ସଦ୍ୟ ସଦ୍ୟ ହୁଏ ।

ସଦ୍ୟଃଶୁଦ୍ଧି—ବି. ସଦ୍ୟଶୌଚ ଦେଖ ।

ସଦ୍ୟଶୋଥ—ବି. (ସଦ୍ୟଃ+ଶୋଥସ୍) କପିକଚ୍ଛୁ, ବାଇଡଙ୍କ ।

ସଦ୍ୟଃଶୌଚ—ବି. ତତ୍‌କ୍ଷଣାତ୍ ଶୁଦ୍ଧି, ଅଶୁଦ୍ଧ ହେବାର ପରକ୍ଷଣରେ ଶୁଦ୍ଧ ହେବା, (ବିଂ) ଯାହାର ଶୁଦ୍ଧି ଲାଭ କରିବାପାଇଁ ବିଳମ୍ବ ଘଟେ ନାହିଁ,ଯେ ଅଶୁଚ ହେବାମାତ୍ରକେ ଶୁଦ୍ଧିଲାଭ କରେ ।

ସଦ୍ୟଃସମୁଦ୍ଧୃତ—ବିଂ. ଯାହା ଅଳ୍ପକ୍ଷଣ ହେଲା ଉଦ୍ଧୃତ ହୋଇଅଛି । [ଲହୁଣୀ ।

ସଦ୍ୟଃସମୁଦ୍ଧୃତନବନୀତ—ବି. ତଟକା

ସଦ୍ୟଃସ୍କ—ବିଂ. ( ସଦ୍ୟଃ+କୈ+ଅ ) ଅଭିନବ, ନୂତନ, (ସ୍ତ୍ରୀ) ସଦ୍ୟଃସ୍କା ।

ସଦ୍ୟଃସ୍ମାର—ବିଂ. ସଦ୍ୟୋଜାତ ।

ସଦ୍ୟଃସ୍ଥାଳ—ବି.ତତ୍‌କ୍ଷଣାତ୍.ସେହିକ୍ଷଣି. ସେହିସମୟ ।

ସଦ୍ୟଃସ୍ତ୍ୱ—ବି. ( ସଦ୍ୟଃ+ତ୍ୱ ) ସଦ୍ୟଃସ୍କାଳତ୍ୱ, ତତ୍‌କ୍ଷଣାତ୍ କୃତ କର୍ମ ।

ସଦ୍ୟଃସ୍ନାତ—ପୁଂ.ବିଂ.ତତ୍‌କ୍ଷଣାତ୍ ସ୍ନାନ କରିଥିବା (ବ୍ୟକ୍ତି), (ସ୍ତ୍ରୀ ସଦ୍ୟଃସ୍ନାତା ।

ସଦ୍ୟଃସ୍ନାନ—ବି. ତତ୍‌କ୍ଷଣାତ୍ ସ୍ନାନ ।

ସଦ୍ୟଃସ୍ନାୟୀ—ପୁଂ.ବିଂ. ଯେ ସଦ୍ୟଃସ୍ନାନ କରିଅଛନ୍ତି, (ସ୍ତ୍ରୀ) ସଦ୍ୟଃସ୍ନାୟିନୀ ।

ସଦ୍ୟଃସ୍ନେହନ—ବି. ନିତ୍ୟ ତୈଳସିକ୍ତକରଣ, ତୈଳଦ୍ୱାରା ଆର୍ଦ୍ରକରଣ ।

ସଦ୍ୟକ୍ରିୟା—ଗ୍ରା.ବି.ସଦ୍ୟଃକ୍ରିୟା ଦେଖ ।

ସଦ୍ୟକ୍ରିୟାକରିବା(ଧରିବା)-ଗ୍ରା. କ୍ରି.ମୃତ ବ୍ୟକ୍ତିଙ୍କ ମରିବା ଦିବସଠାରୁ ଆରମ୍ଭ କରି ଦ୍ୱାଦଶାହ ଶେଷସୁଦ୍ଧା ଅନ୍ତ୍ୟେଷ୍ଟି କ୍ରିୟା ସମାପନ କରିବା ।

ସଦ୍ୟପାତ(ତ୍ତ)--ଗ୍ରା. ବିଂ. ତତ୍‌କ୍ଷଣାତ୍ ପଡ଼ିଥିବା ।

ସଦ୍ୟମୁକ୍ତି—ଗ୍ରା. ବ. ( ସଂ-ସଦ୍ୟୋମୁକ୍ତି ) ସଙ୍ଗେ ସଙ୍ଗେ ମୁକ୍ତି ।
ସଦ୍ୟଶୌଚ—ଗ୍ରା.ବ.(ସଂ-ସଦ୍ୟଃଶୌଚ) ସଦ୍ୟଃ ଶୌଚ ଦେଖ ।
ସଦ୍ୟୁକ୍ତି--ସ୍ତ୍ରୀ.ବ. ଉତ୍ତମ ଯୁକ୍ତି,ସାଧୁ ମନ୍ତ୍ରଣା
ସଦ୍ୟୋଜାତ, ସଦ୍ୟୋଜ—ପୁଂ. ବିଂ. (ସଦ୍ୟଃ+ଜ ତ)ବର୍ତ୍ତମାନ ଜନ୍ମ ହୋଇ ଥିବା, ନବୋତ୍ପନ୍ନ, (ସ୍ତ୍ରୀ)ସଦ୍ୟୋଜାତା, (ବ) କଅଁଳାବାଛୁରୀ,ତର୍ଣ୍ଣକ,ଶିବଙ୍କର ମୂର୍ତ୍ତିବିଶେଷ ।
ସଦ୍ୟୋଜାତପାଦ—ପୁଂ. ବ. ଶିବ, ମହାଦେବ ।
ସଦ୍ୟୋତ୍କ--ବିଂ.ସଦ୍ୟଃ ଉତ୍ତେଜନଶୀଳ ।
ସଦ୍ୟୋଦୁଗ୍ଧ—ବ.(ସଦ୍ୟଃ+ଦୁଗ୍ଧ)ଟଟକା ଦୁଧ ।
ସଦ୍ୟୋଭବ—ବିଂ. ତତ୍କ୍ଷଣାତ୍ ଉତ୍ପତ୍ତି-ବିଶିଷ୍ଟ, ତତ୍କ୍ଷଣାତ୍ ଜାତ ।
ସଦ୍ୟୋଭବ—ବ. ( ସଦ୍ୟଃ+ଭବ ) ସଦ୍ୟୋଜାତ ବତ୍ସ, କଅଁଳାବାଛୁରୀ ।
ସଦ୍ୟୋଽଭିବର୍ଷ—ବ. ସଦ୍ୟୋବୃଷ୍ଟି ।
ସଦ୍ୟୋମଣ୍ଡଲପତ୍ରକ—ବ. ଶ୍ୱେତ ପୁନର୍ନବା, ଶ୍ୱେତ ପୁରୁଣୀ ।
ସଦ୍ୟୋମନ୍ୟୁ—ବ. ( ସଦ୍ୟଃ+ମନ୍ୟୁ ) ସାଙ୍ଗେ ସାଙ୍ଗେ ଜାତହେବା କ୍ରୋଧ, (ବିଂ) ଯାହା ହଠାତ୍ କ୍ରୋଧ ଜାତ କରାଏ ।
ସଦ୍ୟୋମରଣ—ବ. (ସଦ୍ୟଃ+ମରଣ) ତତ୍କ୍ଷଣ ପୂର୍ବେ ଘଟିଥିବା ମୃତ୍ୟୁ, ଅପଘାତ ମୃତ୍ୟୁ ।
ସଦ୍ୟୋମାଂସ—ବ. ( ସଦ୍ୟଃ+ମାଂସ ) ଅପର୍ଯ୍ୟୁଷିତ ମାଂସ, ସଜ ମାଉଁସ, ଟଟକା ମାଂସ ।
ସଦ୍ୟୋମୃତ—ବିଂ. ତତ୍କ୍ଷଣାତ୍ ମୃତ, ଯେ ଅଳ୍ପକ୍ଷଣହେଲା ମରିଅଛି.(ସ୍ତ୍ରୀ)ମୃତା
ସଦ୍ୟୋବର୍ଷ—ବ. ତତ୍କ୍ଷଣାତ୍ ବର୍ଷଣ ।
ସଦ୍ୟୋବଚ୍ୟୁତ—ବିଂ.ତତ୍କ୍ଷଣାତ୍ ପତିତ
ସଦ୍ୟୋବୃଷ୍ଟି—ବ. ( ସଦ୍ୟଃ+ବୃଷ୍ଟି ) ଟଟକା ଅସାର, ତତ୍କ୍ଷଣାତ୍ ବର୍ଷା ।
ସଦ୍ୟୋବ୍ରଣ—ବ. ନୂଆ ଘାଆ ।
ସଦ୍ୟୋହତ—ପୁଂ.ବିଂ. (ସଦ୍ୟ+ହତ) ଯେ ଅଳ୍ପକ୍ଷଣ ହେଲା ହତ ହୋଇଅଛି, (ସ୍ତ୍ରୀ) ସଦ୍ୟୋହତା, (ବ) ଅଳ୍ପକ୍ଷଣ ହେଲା ହତ ହୋଇଥିବା ଜୀବ ।
ସଦ୍ରତ୍ନ—ବ. ଉତ୍ତମ ରତ୍ନ, ସତ୍‌ରତ୍ନ ।
ସଦ୍ରୁ—ବିଂ. (ସଦ୍+କ.ରୁ) ଗମନଶୀଳ, ଗତିବିଶିଷ୍ଟ, ଅବସନ୍ନ, ଅବସ୍ଥିତ ।
ସଦ୍ରୂପ—ବ. ( କ.ଧା; ସତ୍+ରୂପ ) ସୁନ୍ଦର ରୂପ ।
ସଧ—ଗ୍ରା.ବ.(ସଂ-ଶ୍ରଦ୍ଧା) ଆକାଙ୍କ୍ଷା,ଇଚ୍ଛା, ଲାଳସା, ଆଗ୍ରହ, କାର୍ଯ୍ୟ ସାଧନାର୍ଥ ଉପାୟ,ସୁଆଦ,ଗର୍ଭିଣୀମାନଙ୍କ ଦୋହଦ ବାସନା, ମାୟା, ମମତା, ଗର୍ଭିଣୀର ଗର୍ଭାବସ୍ଥା ଯୋଗୁଁ ଅଭିଲଷିତ ଖାଦ୍ୟ ।
ସଧନ—ପୁଂ.ବିଂ. ( ସ+ଧନ ) ବ.ବ୍ରୀ; ଧନଶାଳୀ, ଧନବାନ୍, (ସ୍ତ୍ରୀ) ସଧନା ।
ସଧବା—ସ୍ତ୍ରୀ.ବିଂ.(ସ+ଧବ+ଆ)ବ.ବ୍ରୀ; ଅହ୍ୟ, ସଭର୍ତ୍ତୃକା, ପତିବତ୍ନୀ, ଯାହାର ସ୍ୱାମୀ ଜୀବନ୍ତ, (ବିପ.) ବିଧବା ।
ସଧର୍ମ—ବ. (କ.ଧା) ତୁଲ୍ୟଧର୍ମ, ଏକଧର୍ମ, ସମାନଗୁଣ. (ବିଂ)ବ.ବ୍ରୀ; ସଧର୍ମା,ଏକ ଧର୍ମାବଲମ୍ବୀ, ସଦ୍ଗୁଣ, (ସ୍ତ୍ରୀ) ସଧର୍ମା ।
ସଧର୍ମଗୃହିଣୀ-ସ୍ତ୍ରୀ,ବ. (ଯେ ପତିଙ୍କ ସଙ୍ଗେ ଧର୍ମଆଚରଣକରନ୍ତି)ସହଧର୍ମିଣୀ,ଧର୍ମପତ୍ନୀ
ସଧର୍ମ(ର୍ମି)ଣୀ—ସ୍ତ୍ରୀ.ବିଂ.(ସଧର୍ମିନ୍+ଈ) ଏକଧର୍ମାକ୍ରାନ୍ତା,ସଧର୍ମୀରସ୍ତ୍ରୀଲିଙ୍ଗ,(ସ୍ତ୍ରୀ. ବ) ଧର୍ମପତ୍ନୀ, ଭାର୍ଯ୍ୟା ।
ସଧର୍ମତ୍ୱ—କ୍ଳୀ. ବ. ତୁଲ୍ୟଧର୍ମତ୍ୱ ।
ସଧର୍ମା—ପୁଂ.ବିଂ.(ବ.ବ୍ରୀ)ଏକଧର୍ମାକ୍ରାନ୍ତ, ଏକଧର୍ମାବଲମ୍ବୀ, ଏକ ସ୍ୱାଭାବିକ ଗୁଣ-ଯୁକ୍ତ, ଏକରୂପ, ସଦ୍ଗୁଣ, ତୁଲ୍ୟ ।
ସଧର୍ମାଗୃହିଣୀ—ସ୍ତ୍ରୀ. ବ. ପତ୍ନୀ, ଭାର୍ଯ୍ୟା ।
ସଧର୍ମୀ(ର୍ମୀ)—ପୁଂ.ବିଂ. (ସଧର୍ମ+ଇନ୍) ସମାନ ଧର୍ମଯୁକ୍ତ, ଏକଧର୍ମାକ୍ରାନ୍ତ, ଏକ-ରୂପ, ସଦ୍ଗୁଣ, ତୁଲ୍ୟ, (ସ୍ତ୍ରୀ) ସଧର୍ମିଣୀ ।
ସଧଲିଆ—ପ୍ରା.(ଲଉଆ)ବିଂ.(ସଂ-ଶ୍ରଦ୍ଧାଳୁ) ଇଚ୍ଛୁକ ।
ସଧା—ଗ୍ରା. ବ. (ସଂ-ସାଧ୍‌ଧାତୁ) ସାଧନ ଦେଖ, ବହୁଲୋକଙ୍କଠାରୁ ଧନଆଦିର ସଂଗ୍ରହ ସମସ୍ୟାସାଧନ ।
ସଧା(ଧେ)ଇବା—ଗ୍ରା. କ୍ରି. ସାଧିତ କରା-ଇବା, ସାଧିତ କ୍ରିୟାର ଣିଜନ୍ତରୂପ ।
ସଧି—ବ.(ସ+ଧା+କ.ଇ)ଅଗ୍ନି ,କୁଆଁ ।
ସଧିଃ—ବ. (ସହ+କ.ଇସ୍) ଷଣ୍ଢ, ବୃଷ, ବଳୀବର୍ଦ୍ଦ ।
ସଧୀର—ଗ୍ରା.ବିଂ. (ସଂ-ସଧୈର୍ଯ୍ୟ)ଧୈର୍ଯ୍ୟ-ଶୀଳ ।
ସଧୀରେ—ଗ୍ରା. କ୍ରି. ବିଂ. (ପଦ୍ୟ) ଧୈର୍ଯ୍ୟ ସହକାରେ, ଆସ୍ତେ ଆସ୍ତେ, ଧୀରେ ଧୀରେ । [ ଶ୍ରଦ୍ଧାରେ ।
ସଧେ—ଗ୍ରା.କ୍ରି, ବିଂ. (ପଦ୍ୟ)ଶ୍ରଦ୍ଧାଭରେ,
ସଧୈର୍ଯ୍ୟ(ର୍ଯ୍ୟ)—ଗ୍ରା. କ୍ରି. ବିଂ. (ସଂ-ସଧୈର୍ଯ୍ୟ) ଧୀରତା ସହକାରେ,ଧୈର୍ଯ୍ୟ ସହକାରେ ।
ସଧ୍ୟମ—ଗ୍ରା. (ଲଉଆ) ବିଂ. ସତ୍ୟବାନ୍ ।
ସଧ୍ରୀଚୀ—ସ୍ତ୍ରୀ. ବ. ( ସଧ୍ର୍ୟଚ୍+ସ୍ତ୍ରୀ.ଈ ) ସହଚରୀ, ସଙ୍ଗିନୀ, ସଖୀ, ପତ୍ନୀ ।
ସଧ୍ରୀଙ୍—ପୁଂ.ବ. (ସ+ଅନ୍ଚ୍+କୃ.କ୍ୱିପ୍) ସହଚର,ସଙ୍ଗୀ,ସହାୟ,ସାହାଯ୍ୟକାରୀ, (ସ୍ତ୍ରୀ) ସଧ୍ରୀଚୀ ।
ସନ୍—ଗ୍ରା. ଅ. (ଧ୍ୱନ୍ୟନୁକରଣ) ପବନ ଜୋରରେ ବୋହିବାର ଶବ୍ଦ, ବାୟୁ ସଞ୍ଚାଳନ ଶବ୍ଦ, ଶରର ବା ତୀରର ମୁହୁର୍ମୁହୁଃ ମରାଯିବାର ଶବ୍ଦ,ଦ୍ରୁତଗମନ ଜନିତ ଶବ୍ଦ, (ପ୍ରା. ଲଉଆ. ବ) ସ୍ୱର୍ଣ୍ଣ, ସୁନା, (ପ୍ରା. ସମ୍ବଲ) ସନ ।
ସନ୍—(ସଂ. ପ୍ରତ୍ୟୟ) ଇଚ୍ଛାର୍ଥେ ଧାତୁର ପରେ ଲଗିବା ପ୍ରତ୍ୟୟ ।
ସନ—ବ.(ସନ୍+ଣ.ଅ)ହସ୍ତିକର୍ଣ୍ଣାସ୍ଫାଳନ, ହାତୀର କାନ ହଲାଇବା, ଘଣ୍ଟାପାଟଳୀ ବୃକ୍ଷ, ସନତ୍କୁମାର, ସନକ, ସନନ୍ଦ, ସନାତନ, ଦାନ, (ବିଂ) ଅଖଣ୍ଡିତ, (ଗ୍ରା. ବ-ପଦ୍ୟ) ସ୍ୱନ, ଶବ୍ଦ, (ଯା.ବ) ସାଲ, ବର୍ଷ, ଅବ୍ଦ, ମୁଦ୍ରାଉପରେ ଛପାଥିବା ବର୍ଷର ସଂଖ୍ୟା ।
ସନଆଖର(ଶ)—ଯା. ବ. ବର୍ଷର ଶେଷ ।
ସନକ—ବ. (ସନ୍+କ.ଅକ) ଜନୈକ ମୁନି, ବ୍ରହ୍ମାଙ୍କର ୭ଟି ମାନସ ପୁତ୍ରମଧ୍ୟରୁ ଏକତମ, ବୈଶ୍ୱଦେବ ଓ ଶ୍ରାଦ୍ଧରେ

ଯେଉଁ 'ସପ୍ତଦଶବ୍ୟ' ମନୁଷ୍ୟଙ୍କୁ ତର୍ପଣ କରଯାଏ ସେମାନଙ୍କ ମଧ୍ୟରୁ ଏକତମ, ବିଷ୍ଣୁ, ପାର୍ଷଦବିଶେଷ, ବୃନ୍ଦାପୁରର ଅନୁଚରବିଶେଷ।
ସନକ୍ଷତ୍ର—ଗ୍ରା. ବି. (ଫ-ସ୍ୱନକ୍ଷତ୍ର) ମନୁଷ୍ୟର ଜନ୍ମଦିବସର ନକ୍ଷତ୍ର ଯେଉଁଦିନରେ ପଡ଼େ।
ସନଙ୍ଗୁ—ବି. ପରିଷ୍କୃତ ଚର୍ମ।
ସନଜ—ବିଂ. କଢ୍ୟଜାତ।
ସନତ୍—ବି. (ସନ୍+କ.ଅତ୍) ବ୍ରହ୍ମା, (ଅ) ସଦା, ସର୍ବଦା।
ସନତ୍କୁମାର—ବି. ( ସନତ୍+କୁମାର ) ଋଷିବିଶେଷ, ବ୍ରହ୍ମାଙ୍କର ମାନସ ପୁତ୍ରବିଶେଷ, ଧର୍ମଙ୍କ ଔରସରେ ଅହିଂସା ଗର୍ଭଜାତ ପୁତ୍ରବିଶେଷ, ଜୈନ ମତରେ ଦ୍ୱାଦଶ ସାର୍ବଭୌମମାନଙ୍କ ମଧ୍ୟରୁ ଏକତମ।
ସନତ୍କୁମାରଜ—ପୁଂ.ବି.ଜୈନମାନଙ୍କର ଦେବଗଣବିଶେଷ।
ସନତ୍କୁମାରୀୟ—ବିଂ. ସନତ୍କୁମାର ପ୍ରୋକ୍ତ (ଶାସ୍ତ୍ରାଦି)।
ସନତ୍ନ—ବିଂ. ସନାତନ।
ସନତ୍ସୁଜାତ—ପୁଂ. ବି. ବ୍ରହ୍ମାଙ୍କର ପୁତ୍ର, ଋଷିବିଶେଷ।
ସନଦ—ବିଂ. ଦାନସହିତ, (ସ୍ତ୍ରୀ) ସନଦା, (ଗ୍ରା.ବି) ସନନ୍ଦ ନାମକ ଋଷି।
ସନଦ୍ରୟି—ବିଂ. ଦୀୟମାନ ଧନ।
ସନଦ୍ୱାଜ—ବିଂ. ଦୀୟମାନାନ୍ନ।
ସନନ୍ଦ—ବିଂ. (ସ+ନନ୍ଦ) ଆନନ୍ଦଯୁକ୍ତ, ନନ୍ଦସହିତ, (ସ୍ତ୍ରୀ) ସନନ୍ଦା, (ବି) ବ୍ରହ୍ମାଙ୍କର ମାନସ ପୁତ୍ରବିଶେଷ,ଋଷିବିଶେଷ, (ଯା.ବି) କୌଣସି ବ୍ୟକ୍ତିଙ୍କୁ ଭୂମି,ବୃତ୍ତି, ପଦ ବା ଉପାଧିଆଦି ଦିଆଗଲେ ତାହାର ନିଦର୍ଶନ ସ୍ୱରୂପ ତାଙ୍କୁ ରାଜାଙ୍କ ଠାରୁ ମିଳିବା ପଟ୍ଟାଆଦି, ରାଜାଦେଶ ପତ୍ର, ରାଜାଙ୍କର ସ୍ୱାକ୍ଷର ଓ ମୋହରଯୁକ୍ତ ଆଦେଶପତ୍ର, ଅନୁଶାସନ।
ସନନ୍ଦକ—ବି. ବ୍ରହ୍ମାଙ୍କର ମାନସ ପୁତ୍ରବିଶେଷ।
ସନନ୍ଦନ—ବି. (ସ+ନନ୍ଦନ=ଆନନ୍ଦ) ବ୍ରହ୍ମାଙ୍କର ଏକତମ ମାନସପୁତ୍ର,ସନନ୍ଦଙ୍କର ନାମାନ୍ତର, (ବିଂ) ଆନନ୍ଦକାରୀ, ନନ୍ଦନର ସହିତ ବର୍ତ୍ତମାନ।
ସନ୍ପଟ୍—ଗ୍ରା. (ପାଟଣା) ବି. ଛଣପଟ।
ସନପର୍ଣ୍ଣୀ—ସ୍ତ୍ରୀ. ବି. ଅସନପର୍ଣ୍ଣୀ।
ସନବରସନ—ଯା. କ୍ରି. ବିଂ. ପ୍ରତିବର୍ଷ, ଫି ସନ।
ସନମତ—ଗ୍ରା. ବିଂ. (ଫ-ସମ୍ମତ) ସମ୍ମତ ଦେଖ।
ସନମନ୍ଧ—ଗ୍ରା. ବି. ( ଫ-ସମ୍ବନ୍ଧ ) ସମ୍ବନ୍ଧ ଦେଖ, କରଣ ସମାଜରେ ମହାପ୍ରସାଦ ନିବନ୍ଧ ପରେ କନ୍ୟାଘରୁ ବରଘରକୁ ସିଉଳାର ବେଶ୍ଭର ପଠାଯିବା ପରେ ବରଘରୁ କନ୍ୟାଘରକୁ କନ୍ୟାର ବ୍ୟବହାର୍ଯ୍ୟ ପାଟଶାଢ଼ୀ,ଅଳଙ୍କାର ଓ ବାସନ ଆଦି ଯାହା ବେଶ୍ଭର ପଠାଯାଏ।
ସନମାନ—ଗ୍ରା.ବି. (ଫ-ସମ୍ମାନ) ସମ୍ମାନ।
ସନମୁଖ—ଗ୍ରା. ବି. ସମ୍ମୁଖ ଦେଖ।
ସନମୁଣ୍ଡ – ଗ୍ରା.ବି. ସନର ଆଖର,ବର୍ଷର ଶେଷଭାଗ।
ସନମୁଣ୍ଡେ—ଗ୍ରା.କ୍ରି. ବିଂ.ବର୍ଷଶେଷରେ।
ସନମୂଳ—ଗ୍ରା. ବି. ବର୍ଷର ଆରମ୍ଭ।
ସନମୂଳେ--ଗ୍ରା.କ୍ରି.ବିଂ.ବର୍ଷର ଆଦ୍ୟରେ।
ସନୟ—ବିଂ. ନୀତିସହିତ ବର୍ତ୍ତମାନ, ନୀତିଯୁକ୍ତ, (ବି) ସନାତନ, ପୁରାଣ।
ସନଲ—ଗ୍ରା.ବି. (ବଣିଆ ବେ)ପଠାଣଙ୍କ ବିଭାଘରେ ବର ତରଫରୁ କନ୍ୟାକୁ ଦିଆଯିବା ଏକପ୍ରକାର ସୁନାକଣ୍ଠି।
ସନଶ୍ରୁତ—ବିଂ.ସନାତନରୂପେ ପ୍ରସିଦ୍ଧ।
ସନସନ—ଗ୍ରା. ଅ. (ଧ୍ୱନ୍ୟନୁକରଣ)ଅସ୍ତ୍ରଗୁଳନର ଝନତ୍କାର ଶବ୍ଦ, ଝଣଝଣ, ପବନଆଦି ବହିବାର ଶବ୍ଦ,ସାଇଁ ସାଇଁ
ସନସୂତ୍ର—ବି. (ଭଡତ୍) ଦୁଇଟି ଖିଅଶଣ ସୂତ୍ରଦ୍ୱାରା ଗଠିତ ପଇତା, ଶଣସୂତ୍ର।
ସନହାଲ୍—ଯା.ବି. ଚଳିତସନ,ଏହିବର୍ଷ, (ଗ୍ରା.ବିଂ) ଚଳିତ ସନ ସମ୍ବନ୍ଧୀୟ।
ସନା—ଅ. ନିତ୍ୟ, ସର୍ବଦା, ସବୁକାଳେ, ଚିରକାଳ, ସୃଷ୍ଟିର ଆଦ୍ୟରୁ, (ପ୍ରାଦେ. ପାଟଣା) କନ୍ଧାନ ଅଞ୍ଚଳର ପ୍ରଚଳିତ ଭାଷା, (ବି) ସୁନା।
ସନାଏତ୍—ପ୍ରା. (ସମ୍ବଲ) ବି. ଆପତ୍ତି।
ସନାକୁରୁ—ଗ୍ରା.ବି. କାଠବେଣ୍ଟରେ ବଙ୍କା ଲୁହାର ଆଙ୍କୁଶି ଲଗିଥିବା ଅଙ୍କାଶଙ୍କ ଯନ୍ତ୍ର।
ସନାକ୍ତ—ଯା. ବି. ଅଭିଜ୍ଞାନ, ଚହ୍ନିବା, ଚିହ୍ନୋଟ। [ ବଶିଷ୍ଟ।
ସନାଜୁ—ବିଂ.ଦୀର୍ଘକାଳ ଧର ବିପ୍ରୟୋଗ-
ସନାଜୁର୍—ବିଂ. ସଦାଜୀର୍ଣ୍ଣ।
ସନାଟମାରିବା-ପ୍ରା. ( ବାଲେଶ୍ୱର ) କ୍ରି. ସନାଟିଆସିବା ଦେଖ।
ସନାଟିଆସିବା--ପ୍ରା. (ବାଲେଶ୍ୱର)କ୍ରି.ଅତି କ୍ଷିପ୍ର ଗତିରେ ଧାଇଁ ଆସିବା, ଖୁବ୍ ଜୋରରେ ଗତି କରିବା।
ସନାତ୍—ଅ. ନିତ୍ୟ, ସନାତନ, ଚିରନ୍ତନ, (ବି) ବିଷ୍ଣୁ।
ସନାତନ—ବିଂ.(ସନା+ଭବାର୍ଥେ ତନ) ସଦାତନ,ନିତ୍ୟ, ଚିରସ୍ଥାୟୀ, ପୁନଃପୁନଃ, ସୃଷ୍ଟିର ଆଦ୍ୟରୁ ଚଳି ଆସୁଥିବା, (ସ୍ତ୍ରୀ) ସନାତନୀ,(ବି) ବିଷ୍ଣୁ, ଶିବ,ବ୍ରହ୍ମା, ପିତୃମାନଙ୍କର ଅତିଥି, ବୈଷ୍ଣବରାଜ, ବ୍ରହ୍ମାଙ୍କର ମାନସ ପୁତ୍ରବିଶେଷ, ଜନଲୋକବାସୀ ଦିବ୍ୟ ମନୁଷ୍ୟ।
ସନାତନଗୋସ୍ୱାମୀ—ଗ୍ରା.ବି.ଶ୍ରୀଚୈତନ୍ୟଦେବଙ୍କ ସମସାମୟିକ ସାଧୁଶୀଳବୈଷ୍ଣବ ଭକ୍ତ।
ସନାତନତମ-ବି.ବିଷ୍ଣୁଙ୍କର ନାମବିଶେଷ, (ବିଂ-ସନାତନ+ତମ) ପ୍ରାଚୀନତମ।
ସନାତନଧର୍ମ—ବି.ପ୍ରାଚୀନ ଆର୍ଯ୍ୟମାନଙ୍କ ଅମଳରୁ ଚଳି ଆସୁଥିବା ହିନ୍ଦୁଧର୍ମ, ଚିରସ୍ଥାୟୀ ଧର୍ମ।
ସନାତନଧର୍ମସଭା—ବି.କାଶୀ ନଗରୀରେ ପ୍ରତିଷ୍ଠିତ ପୁରାତନ ହିନ୍ଦୁ ମହାସଭା।
ସନାତନୀ—ସ୍ତ୍ରୀ.ବି.ଦୁର୍ଗା,ଲକ୍ଷ୍ମୀ,ସରସ୍ୱତୀ।
ସନାଥ—ବିଂ.(ବି.ଗ୍ରୀ) ଯାହାର ନାଥ ବା ପ୍ରଭୁ ବା ସ୍ୱାମୀ ଅଛନ୍ତି, ସହିତ, ଯୁକ୍ତ, (ସ୍ତ୍ରୀ) ସନାଥା।
ସନାଥତା—ବି.ସନାଥର ଭାବ ବା ଧର୍ମ, ସନାଥତ୍ୱ।

ସନାଥା—ସ୍ତ୍ରୀ.ବିଂ. (ସ + ନାଥ + ସ୍ତ୍ରୀ.ଆ) ବି.ଗ୍ରା; ସଧବା, ସଭର୍ତ୍ତୃକା ।

ସନାଭ—ପୁଂ. ବି. ସନାଭି, ସୋଦର, ସହୋଦର ।

ସନାଲ୍ପ—ସ୍ତ୍ରୀ. ବି. ଶ୍ୱେତପାଟଳୀ ବୃକ୍ଷ ।

ସନାଭି—ପୁଂ. ବି. ସପ୍ତ ପୁରୁଷାନ୍ତର୍ଗତ, ସପିଣ୍ଡ, ଜ୍ଞାତି, ସପିଣ୍ଡ ଦେଖ, (ବିଂ) ସ୍ନେହଯୁକ୍ତ, ସଦ୍ଗୁଣ ।

ସନାଭ୍ୟ—ବି. ଜ୍ଞାତି, ସପିଣ୍ଡ ।

ସନାମ—ବିଂ. ସମାନ ନାମଯୁକ୍ତ, ତୁଲ୍ୟ ନାମବିଶିଷ୍ଟ,(ବି)ସମାନସଂଜ୍ଞା,ଏକନାମ ।

ସନାମକ—ବିଂ. (ସ+ନାମ+କ) ସମାନ ନାମଯୁକ୍ତ,(ବି)ଶୋଭାଞ୍ଜନ ବୃକ୍ଷ,ସଜନା-ଗଛ ।

ସନାମନା—ଗ୍ରା. ବି. (ସଂ-ସମ୍ମାନ)ସମ୍ମାନ, ମର୍ଯ୍ୟାଦା, (ଗ୍ରା.ବିଂ) ସମ୍ମାନିତ ।

ସନାମା—ବିଂ. ସମାନ ନାମଯୁକ୍ତ ।

ସନାରମ୍ଭ—ଗ୍ରା. ବି. ବର୍ଷର ଆରମ୍ଭ ।

ସନାସି—ପ୍ରା. (ଲରିଆ)ବି. ଚମୁଟା ।

ସନି—ବି. (ସନ୍+ଭା.ଇ) ପୂଜା, ଦାନ, ପ୍ରାର୍ଥନା, ଅନ୍ୱେଷଣା, ପୂଜ୍ୟ ବ୍ୟକ୍ତିଙ୍କର ସନ୍ତୋଷପୂର୍ବକ କୌଣସି କର୍ମରେ ନିୟୋଜନ, ଦିକ୍, ଦିଗ, ପ୍ରଦେଶ, ଅଞ୍ଚଳ, ଆଦେଶ ।

ସନିକାମ—ବିଂ. ଦାନାର୍ଥ ଇଚ୍ଛୁକ ।

ସନିତ—ବିଂ. (ସନ୍+ମିଂ.ତ) ପ୍ରତିପନ୍ନ, ସୁଖ୍ୟାତିଯୁକ୍ତ, ଯଶସ୍ୱୀ, (ସ୍ତ୍ରୀ)ସନିତା ।

ସନିଧ(ଧି)—ଗ୍ରା.ବି. (ସଂ-ସନ୍ନିଧି) ନିକଟ, ସମୀପ ।

ସନିଧା(ଧା)ନ—ଗ୍ରା.ବି. ( ସଂ-ସନ୍ନିଧାନ ) ସନ୍ନିଧାନ, ନିକଟ । [ ନିକଟକୁ ।

ସନିଧେ(ଧେ)—ଗ୍ରା.ଅ (ସଂ-ସନ୍ନିଧି)ଠାକୁ.

ସନିପାତ—ଗ୍ରା.ବି(ସଂ-ସନ୍ନିପାତ)ଜ୍ୱରାଦିର ତ୍ରିଦୋଷଜ ବିକାର । [ ନିନ୍ଦିତ ।

ସନିନ୍ଦ—ବିଂ. ନିନ୍ଦାବିଶିଷ୍ଟ, ନିନ୍ଦାଯୁକ୍ତ,

ସନିମେଷ—ବିଂ. ନିମେଷବିଶିଷ୍ଟ, ନିମେ-ଷର ସହ ବର୍ତ୍ତମାନ ।

ସନିୟମ—ବିଂ.ନିୟମଯୁକ୍ତ,ନିୟମବିଶିଷ୍ଟ ।

ସନିର୍ବନ୍ଧ—ବିଂ. (ବି.ଗ୍ରା) ଖୁବ୍ ଜିଗର ସହିତ କରାଯିବା (ଅନୁରୋଧ),ନିର୍ବନ୍ଧ-ଯୁକ୍ତ, ଆଗ୍ରହାତିଶୟ୍ୟବିଶିଷ୍ଟ । [ ଯୁକ୍ତ ।

ସନିର୍ବେଦ-ବିଂ.ନିର୍ବେଦବିଶିଷ୍ଟ.ବୈରାଗ୍ୟ-

ସନିଷ୍ଠ—ବିଂ.ଶ୍ରେଷ୍ଠ ଧନବାନ୍,ନିଷ୍ଠାବାନ୍, ନିଷ୍ଠାଯୁକ୍ତ ।

ସନିଷ୍ଠିବ—ବି.(ବି.ଗ୍ରା) ଅସ୍ପୃଷ୍ଟୋଚ୍ଚାରିତ, ନିଷ୍ଠୀ-ବନଯୁକ୍ତ ବାକ୍ୟ ।

ସନିଷ୍ଠେବ—ବି. (ସ+ନିଷ୍ଠେବ) ବି.ଗ୍ରା, ଅସ୍ପୃଷ୍ଟୋଚ୍ଚାରିତ. ନିଷ୍ଠୀବନଯୁକ୍ତ ବାକ୍ୟ,ବାରି-ବିନ୍ଦୁପୂର୍ଣ୍ଣ ମୁଖ ।

ସନିଷ୍ୟନ୍ଦ—ବିଂ.ପ୍ରବାହଶୀଳ.ଗତିବିଶିଷ୍ଟ ।

ସନୀ—ବି. ( ସନ୍+ଣ.ଈ ) ହସ୍ତିକର୍ଣ୍ଣା-ସ୍ଫାଳନ, ସନି ଦେଖ ।

ସନୀଡ଼—ବିଂ. (ସ + ନୀଡ଼)ନ.ଗ୍ରା; ନୀଡ଼-ଯୁକ୍ତ, ନିକଟବର୍ତ୍ତୀ, ସମୀପସ୍ଥ, ତୁଲ୍ୟ. ସମାନ, (ସ୍ତ୍ରୀ) ସନୀଡ଼ା ।

ସନୀପ—ବି. ଦେଶବିଶେଷ ଓ ତଦ୍ଦେଶ-ବାସୀ (ମହାଭାରତ ଭୀଷ୍ମପର୍ବ) ।

ସନେ—ଗ୍ରା. ଅ. (ସଂ-ସନାଥ) ସଙ୍ଗ, ସମଭିବ୍ୟାହାରରେ ।

ସନେଇ—ଗ୍ରା.ବି. କଟକଜିଲ୍ଲାର ବାଙ୍କିର ସୁବିଦିତ ସ୍ୱର୍ଣ୍ଣଗର୍ଭ ଗ୍ରାମ ।

ସନେଟ୍—ଯା.ବି. ଚତୁର୍ଦ୍ଦଶ ଅକ୍ଷରବିଶିଷ୍ଟ ଚତୁର୍ଦ୍ଦଶ ପଦ ବା ପଂକ୍ତିଯୁକ୍ତ କବିତା ।

ସନେମି—ବିଂ.ନେମିବିଶିଷ୍ଟ, (ଅବ୍ୟ)କ୍ଷିପ୍ର, ପୁରାଣ ।

ସନୋଜା—ବିଂ. ଚିରସ୍ଥାୟୀ ।

ସନ୍ତ—ପୁଂ.ବି.ସଂହତତଳ, ଯୁକ୍ତତଳ, ଦୁଇ କରତଳ ଯୋଡ଼ା ହୋଇଥିବା ଅବସ୍ଥା, (ଗ୍ରା. ବି) ସନ୍ଥ, ଅଭ୍ୟାସ ବା ଆବୃତ୍ତି କରିବା ପାଇଁ ଗୁରୁଙ୍କଠାରୁ ଶିଷ୍ୟର ନେବା ନୂଆ ପାଠ, ସାଧୁ ବ୍ୟକ୍ତି. ସଚ୍ଚ-ରିତ୍ର ବ୍ୟକ୍ତି,ଧାର୍ମିକ ଓ ପୁଣ୍ୟଶୀଳ ବ୍ୟକ୍ତି, ସାଧାରଣ ସାଧୁ, ବାବାଜୀ ।

ସନ୍ତକ—ଗ୍ରା.ବି.ନିଦର୍ଶନ ଦ୍ରବ୍ୟ, ସୂଚକ-ଚିହ୍ନ, ଅଭିଜ୍ଞାନ, ଯାହା ଦ୍ୱାରା କୌଣସି ବସ୍ତୁର ବା ବ୍ୟକ୍ତିର ବିଶିଷ୍ଟତା ସମ୍ବନ୍ଧେ ଜ୍ଞାନ ଜନ୍ମେ, ସ୍ମାରକ ବସ୍ତୁ, ଅକ୍ଷର ଲେଖି ଜାଣି ନ ଥିବା ବା ସ୍ୱାକ୍ଷର କରି ଜାଣି ନ ଥିବା ବ୍ୟକ୍ତିଙ୍କର କୌଣସି ଦଲିଲ ସମ୍ପାଦନ କରିବାର ନିଦର୍ଶନ ସ୍ୱରୂପ ଉକ୍ତ ଦଲିଲରେ ଦଲିଲ ସମ୍ପା-ଦନକାରୀଙ୍କ ଦ୍ୱାରା ଅଙ୍କିତ ଚିହ୍ନ, ଜାତି ବା ବ୍ୟକ୍ତିବିଶେଷର ବିଶେଷତ୍ୱ ଜ୍ଞାପକ ଚିହ୍ନ, ଦସ୍ତଖତ, ସହି, ସ୍ୱାକ୍ଷର,ସନ୍ତାନ, ପଂକ୍ତି. ଶ୍ରେଣୀ ।

ସନ୍ତକକରିବା—ଗ୍ରା. କ୍ରି. ଦଲିଲରେ ନିଜର ନାମ ଦସ୍ତଖତ କରିବା, ସ୍ୱାକ୍ଷର କରିବା, ସନ୍ତକ କାଟିବା ଦେଖ ।

ସନ୍ତକକାଟିବା—ଗ୍ରା. କ୍ରି. ( ନିଜର ନାମ ଲେଖି ଜାଣି ନ ଥିବା ବ୍ୟକ୍ତି) କୌଣସି ଦଲିଲରେ ଆପଣାର'ସନ୍ତକ'କୁ ଅଙ୍କିତ କରିବା ।

ସନ୍ତକ୍ଷଣ—ବି. କ୍ଷତିକରଣ, ଛିନ୍ନକରଣ, ହାନିକରିବା, ବାଧାଦେବା ।

ସନ୍ତଖରଚ—ପ୍ରା. (ଗଞ୍ଜାମ) ବି. (ଗଞ୍ଜାମୀ ଓଡ଼ିଆ ମହାଜନମାନଙ୍କ ବ୍ୟବହୃତ ) ମହାଜନଙ୍କର ଘର ଖରଚ ଓ ବ୍ୟକ୍ତି-ଗତ ଖରଚ ।

ସନ୍ତତ—ବିଂ. ( ସମ୍+ତନ୍+କ.ତ ) ବିସ୍ତୃତ, ପରିବ୍ୟାପ୍ତ, ସତତ, ନିତ୍ୟ, ନିରନ୍ତର, ଅବିରତ, ବହୁଳ, ଅନାଦି, ଅନନ୍ତ, (କ୍ରି.ବିଂ) ସର୍ବଦା, ଅବିରତ, ଅବିଶ୍ରାନ୍ତ ରୂପେ, ଚିରନ୍ତନ ରୂପେ,(ବି) କ୍ରିୟାବିଶେଷ ।

ସନ୍ତତଜ୍ୱର—ବି. ସତତଜ୍ୱର, ଏକପ୍ରକାର ଭୟଙ୍କର ଜ୍ୱର, ବିଷମଜ୍ୱରବିଶେଷ ।

ସନ୍ତତାଭ୍ୟାସ—ପୁଂ.ବି. ନିରନ୍ତରାଭ୍ୟାସ, ସର୍ବଦା ଅଭ୍ୟାସ, ସ୍ୱାଧ୍ୟାୟ ।

ସନ୍ତତି—ବି. ( ସମ୍+ତନ୍+ଣ.ତି ) ଅପତ୍ୟ. ସନ୍ତାନ, ପୁତ୍ରକନ୍ୟା, (ଭା.ତି) ବ୍ୟାପ୍ତି, ( କ.ତି ) ଭାବୀ ବଂଶ, ଗୋତ୍ର, ପଙ୍କ୍ତି, ଶ୍ରେଣୀ, ପାରମ୍ପର୍ଯ୍ୟ, ଧାରା, ଦକ୍ଷକନ୍ୟା ଓ କ୍ରତୁର ପତ୍ନୀ,(ଗ୍ରା.ସ୍ତ୍ରୀ.ବି) କନ୍ୟା, ଝିଅ ।

ସନ୍ତତିମାନ୍—ପୁଂ. ବିଂ. (ସନ୍ତତି + ମତୁ) ସନ୍ତତିବିଶିଷ୍ଟ । [ ବେଳେ ।

ସନ୍ତତେ—ଗ୍ରା. କ୍ରି. ବିଂ. ସର୍ବଦା; ସବୁ-

ସନ୍ତନୁ—ପୁଂ. ବି. ରାଧାଙ୍କର ଅନୁଚର ଜଣେ ଗୋପାଳକ ।

ସନ୍ତପତ(ନ୍ତ)—ଗ୍ରା. ବି. (ସଂ-ସନ୍ତାପ) ସନ୍ତାପ, କ୍ଳେଶ, ଦୁଃଖ, ପରଦ୍ୱାରା ଉତ୍ପୀଡ଼ନ ।

ସନ୍ତପନ—ବି.(ସମ୍+ତପ୍+ଅନ) ସମ୍ୟକ୍ ରୂପେ ତପନ ।

ସନ୍ତପ୍ତ—ପୁଂ.ବିଂ.(ସମ୍+ତପ୍+କ.ତ) ସନ୍ତାପଯୁକ୍ତ, ଦୁଃଖିତ, କ୍ଲିଷ୍ଟ, ତାପିତ. ଉତ୍ତପ୍ତ, ଦଗ୍ଧ, ପରିଶ୍ରାନ୍ତ, ପଥଶ୍ରମରେ କ୍ଳାନ୍ତ, ଜ୍ୱରାକ୍ରାନ୍ତ, ଜ୍ୱଳନ୍ତ, ଅଗ୍ନିଦ୍ୱାରା ବିଶୁଦ୍ଧ, (ସ୍ତ୍ରୀ) ସନ୍ତପ୍ତା ।

ସନ୍ତମକ—ବି. ଶ୍ୱାସରୋଗବିଶେଷ ।

ସନ୍ତମସ୍—ବି. ବିଶ୍ୱକ୍ତମଃ, ଗାଢ଼ ଅନ୍ଧକାର, ମୋହ, ମହାମୋହ ।

ସନ୍ତମହନ୍ତ—ଗ୍ରା. ବି.ବୈରାଗୀ ଓ ମହନ୍ତ, ବାବାଜୀ ବୈଷ୍ଣବ, ସାଧୁସନ୍ଥ ।

ସନ୍ତରଣ—ବି. ( ସମ୍+ତୃ+ଭା.ଅନ ) ପାରଗମନ, ଜଳୋପରି ହସ୍ତ ପାଦାଦି ସଞ୍ଚାଳନ ପୂର୍ବକ ଭାସି ବୁଲିବା, ପହଁରିବା, (ବିଂ) ତାରକ, ନାଶକ ।

ସନ୍ତରଣକାରୀ—ପୁଂ.ବିଂ. ଯେ ପହଁରେ. (ସ୍ତ୍ରୀ) ସନ୍ତରଣକାରିଣୀ ।

ସନ୍ତରଣକୁଶଳ—ପୁଂ. ବିଂ. ( ୭ତତ୍ ) ସନ୍ତରଣ ବିଷୟରେ ଦକ୍ଷ, ପହଁରିବା ବିଷୟରେ ପଟୁ ।

ସନ୍ତରଣକୌଶଳ—ବି.(୭ତତ୍)ପହଁରିବାର କଉଶଳ ।

ସନ୍ତରଣପଟୁ—ବିଂ. ପହଁରିବାରେ ନିପୁଣ

ସନ୍ତରପନ୍ତର—ଗ୍ରା.ବିଂ. ସନ୍ତପନ୍ତ ଦେଖ

ସନ୍ତରା—ଗ୍ରା.ବି. (ସଂ-ସମ୍ଭର)ଏକପ୍ରକାର ମାଂସଳତୃଣ,(ସଂ-ଛଦ)ଏକଜାତୀୟ ତୃଣ, (ଗ୍ରା.ପୁଂ.ବିଂ.-ସଂ-ସିକ୍ତ)ସନ୍ତସନ୍ତଆ,ଓଦା (ଭୂମି), ଅପରିଷ୍କୃତ, (ପ୍ରା.ଗଡ଼ଜାତ) ଏକପ୍ରକାର କମଳାଲେମ୍ବୁ ।

ସନ୍ତରାବଣ—ଗ୍ରା.ବି.ଅନେକ ସନ୍ତରା ଗଛ ଜନ୍ମିଥିବା ଜଳାଭୂମି,ଅପରିଷ୍କୃତ ସ୍ଥାନ ।

ସନ୍ତରାମହିଣା—ଗ୍ରା. ବି. ପରୁଡ଼ମହିଣା, ସନ୍ତରା ଦ୍ୱାରା ବୁଣାହୋଇଥିବା ହେଁସ ।

ସନ୍ତରିକ—ବି. ଯେଉଁ ଜୀବମାନେ ପହଁରି ପାରନ୍ତି ।

ସନ୍ତରିବା—ଗ୍ରା. କ୍ରି. (ପଦ୍ୟ) ସନ୍ତରଣ କରିବା, ପହଁରିବା ।

ସନ୍ତରୁଦ୍—ପୁଂ.ବିଂ.ଉପଦ୍ରବର ନିବାରକ ।

ସନ୍ତର୍ଜନ—ବି. ଭୟଦେଖାଇବା,ତାଡ଼ନ, ସ୍କନ୍ଦାନୁଚରବିଶେଷ । [ ବିଶେଷ ।

ସନ୍ତର୍ଦ୍ଦନ—ବି. ରାଜାଧୃଷ୍ଟକେତୁଙ୍କ ପୁତ୍ର-

ସନ୍ତର୍ପକ—ପୁଂ. ବିଂ. (ସମ୍+ତୃପ୍+ଅକ)ସନ୍ତର୍ପକାରକ, ତୃପ୍ତିକାରିକ ।

ସନ୍ତର୍ପଣ—ବି. (ସମ୍+ତୃପ୍+ଣିଚ୍+ଭା. ଅନ) ତୃପ୍ତକରିବା,ତୃପ୍ତିଦାନ,(କ.ଅନ) ଦ୍ରାକ୍ଷାଦିଯୁକ୍ତ ତୃପ୍ତିଜନକ ମିଷ୍ଟାନ୍ନବିଶେଷ, ତୃପ୍ତି, ( ବିଂ—କ.ଅନ ) ତୃପ୍ତିଜନକ, ପ୍ରୀତିଜନକ, ଆନନ୍ଦଜନକ, ( ଗ୍ରା.ବି-ଲ.ଅର୍ଥ) ସାବଧାନତା ଅବଲମ୍ବନ, ସତର୍କତା ଅବଲମ୍ବନ,ଯତ୍ନ,(ପ୍ରା-ଗଞ୍ଜାମ-ବିଂ) ସାବଧାନ, ଜାଗ୍ରତ ।

ସନ୍ତର୍ପଣୀୟ—ବିଂ. (ସମ୍+ତୃପ୍+ଣିଚ୍ ଅନୀୟ) ସନ୍ତର୍ପଣ ଯୋଗ୍ୟ, ସନ୍ତର୍ପଣର ଉପଯୁକ୍ତ ।

ସନ୍ତର୍ପଣେ—କ୍ରି. ବିଂ. ସତର୍କ ଭାବରେ, ସାବଧାନରେ, ସତର୍କତାର ସହିତ ।

ସନ୍ତର୍ପ୍ୟ—ବିଂ.(ସମ୍+ତୃପ୍+ଯ)ସନ୍ତର୍ପଣାର୍ହ ।

ସନ୍ତସନ୍ତଆ—ଗ୍ରା. ବିଂ. (ସଂ-ସିକ୍ତ) ଆର୍ଦ୍ର, ଓଦା, ଜଳସିକ୍ତ । [ (ଗ୍ରା.ବି) ସନ୍ତା ।

ସନ୍ତା—ଗ୍ରା. ବିଂ. (ସଂ-ସିକ୍ତ)ଜଳାର୍ଦ୍ର,ଓଦା.

ସନ୍ତା(ନ୍ତେ)ଇବା—ଗ୍ରା. କ୍ରି. (ସଂ-ସିକ୍ତ), (ଭୂମି) ଜଳାର୍ଦ୍ରହେବା,( ସଂ-ସନ୍ତପନ ) କ୍ଳେଶଦେବା ।

ସନ୍ତାଡ଼୍ୟ—ବିଂ.(ସମ୍+ତଡ଼୍+ଯ)ସନ୍ତାଡ଼ନୀୟ, ସମ୍ୟକ୍ରୂପେ ତାଡ଼ନର ଯୋଗ୍ୟ

ସନ୍ତାନ—ବି. ( ସମ୍+ତନ୍+ଣ,ଅ ) ସନ୍ତତି ଦେଖ, ବଂଶଧର,(ଭା.ଅ)ବିସ୍ତାର, ( ମିଂ. ଅ ) ପ୍ରବନ୍ଧ, ମୂଷଳଧାର ବର୍ଷାର ସୋପାମାନ,(ଭା.ଅ)ଅବିଚ୍ଛେଦ,ପ୍ରବାହ, ( କ.ଅ ) ଦେବତରୁବିଶେଷ, ଅସ୍ତ୍ରବିଶେଷ ।

ସନ୍ତାନକ—ବି. (ସନ୍ତାନ+କ)କଳ୍ପବୃକ୍ଷ, ଦେବ ତରୁବିଶେଷ, ସନ୍ତାନ ଦେଖ, (ବିଂ) ବିସ୍ତୃତ, ବ୍ୟାପନଶୀଳ, (ସ୍ତ୍ରୀ) ସନ୍ତାନିକା ।

ସନ୍ତାନକମୟ—ବିଂ. ଦେବତରୁବିଶିଷ୍ଟ, ପୁଷ୍ପାଦିଯୁକ୍ତ ।

ସନ୍ତାନକାମନା—ବି. (୪ତତ୍) ଅପତ୍ୟ ଲାଭ କରିବାର ଇଚ୍ଛା ।

ସନ୍ତାନକାମୀ—ପୁଂ. ବିଂ. ସନ୍ତାନ ଲାଭ କରିବା ପାଇଁ ଯେ ଇଚ୍ଛା କରେ, (ସ୍ତ୍ରୀ) ସନ୍ତାନକାମିନୀ ।

ସନ୍ତାନଗଣପତି—ବି. ଗଣପତିବିଶେଷ ।

ସନ୍ତାନଗୋପାଳମନ୍ତ୍ର—ବି. ସନ୍ତାନ ଲାଭ କାମନାରେ ଜପ କରାଯିବା ମନ୍ତ୍ରବିଶେଷ ।

ସନ୍ତାନଚର୍ଯ୍ୟା—ବି. ( ୬ତତ୍ ) ସନ୍ତାନ ପାଳନ ଦେଖ ।

ସନ୍ତାନଜନକ—ପୁଂ. ବିଂ. (ସନ୍ତାନ+ଜନ+କ.ଅକ) ସନ୍ତାନୋତ୍ପାଦକ ଦେଖ, (ସ୍ତ୍ରୀ) ସନ୍ତାନଜନିକା, (ପୁଂ. ବି) ସନ୍ତାନର ପିତା ।

ସନ୍ତାନପରମ୍ପରା—ବି.(୬ତତ୍)ସନ୍ତାନାଦି କ୍ରମ, ସନ୍ତାନଙ୍କ ସନ୍ତାନ, ତାଙ୍କର ସନ୍ତାନ ଏହିପରି ପର୍ଯ୍ୟାୟ ।

ସନ୍ତାନପାଦପ—ବି. ଦେବତରୁବିଶେଷ ।

ସନ୍ତାନପାଳନ—ବି. (୬ତତ୍) ଅପତ୍ୟାଦିଙ୍କ ଲାଳନପାଳନ ।

ସନ୍ତାନପ୍ରସବ—ବି. ( ୬ତତ୍ ) ଅପତ୍ୟ ଜନ୍ମ କରିବା ।

ସନ୍ତାନବାତ୍ସଲ୍ୟ—ବି. (୬ତତ୍) ଅପତ୍ୟ ସ୍ନେହ, ପୁତ୍ର କନ୍ୟାଙ୍କୁ ସ୍ନେହ କରିବା ।

ସନ୍ତାନବାନ୍—ପୁଂ.ବିଂ.(ସନ୍ତାନ+ବତ୍) ଯାହାର ଅପତ୍ୟ ଥାଏ,(ସ୍ତ୍ରୀ)ସନ୍ତାନବତୀ

ସନ୍ତାନସନ୍ତତି—ବି. (ବ.ସ୍ତ୍ରୀ)ପୁତ୍ରକନ୍ୟାଗଣ,ଅପତ୍ୟମାନେ,ସନ୍ତାନ ପରମ୍ପରା ।

ସନ୍ତାନହୀନ—ପୁଂ.ବିଂ.(୩ତତ୍)ଯାହାର ଅପତ୍ୟ ନାହିଁ,ଅପତ୍ୟରହିତ,(ସ୍ତ୍ରୀ)ହୀନା

ସନ୍ତାନିକ—ବିଂ.(ସନ୍ତାନ+ଇକ)ସନ୍ତାନବିଶିଷ୍ଟ ।

ସନ୍ତାନିକା—ବି. ( ସନ୍ତାନ+କ+ସ୍ତ୍ରୀ,

ଆ) ଦୁଧର ସର, ଛୁରୀର ଧାର, ଫେନ, ଲୂତାତନ୍ତୁ, ମାଙ୍କଡ଼ସା ଜାଲ, (ସ୍ତ୍ରୀ.ବଂ) ବସ୍ତୁଉତ୍କାରଣୀ ।

ସନ୍ତାନିତ—ବଂ. (ସନ୍ତାନ+ଇତ) ବିସ୍ତାରିତ କରାଯାଇଥିବା ।

ସନ୍ତାନପନ୍ତାନ—ଗ୍ରା. ବ. ସନ୍ତାନସନ୍ତତି ଦେଖ ।

ସନ୍ତାନୀ—ବଂ. ପାରମ୍ପର୍ଯ୍ୟ ।

ସନ୍ତାନୋଚିତ—ବଂ. (୬ତତ୍) ପୁତ୍ର କନ୍ୟାର ଉପଯୁକ୍ତ ।

ସନ୍ତାନୋତ୍ପାଦକ—ପୁଂ.ବଂ. (୬ତତ୍) ଯାହା ସନ୍ତାନ ଜନ୍ମାଏ, (ସ୍ତ୍ରୀ) ଉତ୍ପାଦିକା

ସନ୍ତାନୋତ୍ପାଦକଶକ୍ତି—ବ. ପୁରୁଷ ଓ ସ୍ତ୍ରୀଙ୍କର ସନ୍ତାନ ଜନ୍ମାଇବା କ୍ଷମତା ।

ସନ୍ତାନୋତ୍ପାଦୀ—ପୁଂ. ବଂ. (ସନ୍ତାନ+ଉତ୍+ପଦ୍+କ.ଇନ୍) ଯେ ସନ୍ତାନ ଜନ୍ମ କରେ, ସନ୍ତାନ ଜନନକାରୀ, (ସ୍ତ୍ରୀ) ସନ୍ତାନୋତ୍ପାଦିନୀ ।

ସନ୍ତାପ—ବ. (ସମ୍+ତପ୍+ଭା.ଅ) ଉତ୍ତାପ, ଜ୍ୱରଜନିତ ଶରୀରର ତାପ, ମନୋଦୁଃଖ, ମନସ୍ତାପ, ପରିତାପ, ଅନ୍ତର୍ଦାହ, ପଶ୍ଚାତ୍ତାପ, ଦେହସ୍ଥ ରସ୍ତୁ, ଜନ୍ତୁ, (ଗ୍ରା.ବ—ଲ.ଅର୍ଥ) କ୍ରନ୍ଦନ ଓ ଦୁଃଖପୂର୍ଣ୍ଣ ବାକ୍ୟଦ୍ୱାରା ମନର ବେଦନା ପ୍ରକାଶ ।   [ ଦୁଃଖଜନକ ।

ସନ୍ତାପକର—ବଂ.(ସନ୍ତାପ+କୃ+କ.ଅ)

ସନ୍ତାପକ—ବଂ. (ସମ୍+ତପ୍+ଣିଚ୍+ଅକ) ସମ୍ୟକ୍ ତାପକାରକ ।

ସନ୍ତାପକ୍ଲିଷ୍ଟ—ପୁଂ.ବଂ.(୩ତତ୍)ମର୍ମପୀଡ଼ା ଯୋଗୁଁ କାତର, (ସ୍ତ୍ରୀ) ସନ୍ତାପକ୍ଲିଷ୍ଟା ।

ସନ୍ତାପନ—ବ. (ସମ୍+ତପ୍+ଣିଚ୍+ଅନ) ସନ୍ତାପଦାନ, କ୍ଲେଶଦେବା, ବସ୍ତୁକୁ ଉତ୍ତାପ ଦେବା, କାମଦେବଙ୍କର ପଞ୍ଚଶର ମଧ୍ୟରୁ ଏକତମ, (ପୁଂ.ବଂ) ସନ୍ତାପଜନକ, ଦୁଃଖଜନକ, ଯାହା ଉତ୍ତପ୍ତ କରେ, (ସ୍ତ୍ରୀ) ସନ୍ତାପନୀ ।

ସନ୍ତାପନାଶ—ବ.(୬ତତ୍) ଦୁଃଖର ଲୋପ, ଦୁଃଖର ଦୂରୀଭବ ।

ସନ୍ତାପନୀୟ—ପୁଂ. ବଂ. (ସମ୍+ତପ୍+ଣିଚ୍+ମୀ.ଅନୀୟ) ଯାହା ସନ୍ତାପିତ ହେବାର ଯୋଗ୍ୟ, (ସ୍ତ୍ରୀ) ସନ୍ତାପନୀୟା ।

ସନ୍ତାପବାନ୍—ପୁଂ. ବଂ.(ସନ୍ତାପ+ବତ୍) ସନ୍ତାପବିଶିଷ୍ଟ, ତାପଯୁକ୍ତ ।

ସନ୍ତାପାଗ୍ନି—ବ.(ରୂପକ) ଅଗ୍ନି ପରି ଦାହକ ମନସ୍ତାପ ।

ସନ୍ତାପିତ—ବଂ.(ସନ୍ତାପ+ଇତ) ଦୁଃଖିତ, ସନ୍ତାପଯୁକ୍ତ, ତାପଯୁକ୍ତ, ଅନ୍ୟଦ୍ୱାରା ଉତ୍ତପ୍ତିତ, ଉତ୍ତେଜିତ, ଦଗ୍ଧ, ଅଧ୍ୱାଦି ଗମନ ଦ୍ୱାରା ଶ୍ରାନ୍ତ, (ସ୍ତ୍ରୀ) ସନ୍ତାପିତା ।

ସନ୍ତାପିତା—ପୁଂ. ବଂ. (ସମ୍+ତପ୍+ଣିଚ୍+ତୃ) ସନ୍ତାପକାରକ, ଦୁଃଖ କାରକ

ସନ୍ତାପିହେବା—ଗ୍ରା. କ୍ରି. ମନୋଦୁଃଖ ପ୍ରକାଶ କରିବା, ଅନୁତାପ କରିବା ।

ସନ୍ତାପୀ—ପୁଂ. ବଂ. (ସନ୍ତାପ+ଇନ୍) ସନ୍ତାପଯୁକ୍ତ, (ସମ୍+ତପ୍+ଣିଚ୍+କ.ଇନ୍ ଯେ ଅନ୍ୟକୁ ସନ୍ତାପିତ କରେ, (ସ୍ତ୍ରୀ) ସନ୍ତାପିନୀ ।

ସନ୍ତାପୀୟ—ବଂ. ତାପଦାନର ଉପଯୁକ୍ତ, ସନ୍ତାପାର୍ହ ।

ସନ୍ତାପ୍ୟ—ବଂ. (ସମ୍+ତପ୍+ଣିଚ୍+ଯ) ସନ୍ତାପାର୍ହ, ସନ୍ତାପରେ ଉପଯୁକ୍ତ ।

ସନ୍ତାର—ବ. (ସମ୍+ତୃ+ଭା.ଅ) ସନ୍ତରଣ, (ସମ୍+ତୃ+ଣିଚ୍+ଭା.ଅ) ନଦୀ ଆଦିକୁ ପାର କରାଇବା ।

ସନ୍ତାରକ—ପୁଂ.ବଂ.(ସମ୍+ତୃ+ଅକ) ସନ୍ତାରକାରୀ ।

ସନ୍ତାର୍ଯ୍ୟ—ବଂ.(ସମ୍+ତୃ+ଯ) ସନ୍ତରଣଶୀଳ, ସନ୍ତରଣାର୍ହ ।

ସନ୍ତି—ବ.(ସନ୍+ଭା.ତି) ଦାନ, ବିତରଣ, ଅବସାନ, ଶେଷ ।

ସନ୍ତିଆ—ଗ୍ରା.ବଂ. (ଫ-ଦ୍ୱିକ୍ତି) ସନ୍ତସନ୍ତିଆ, ଓଦା, (ଫ-ସନ୍ତ=ଅବସାନ) ଅପରିଷ୍କୃତ ଶରୀରଯୁକ୍ତ, ରୋଗ ଯୋଗୁଁ ଶୀର୍ଣ୍ଣକାୟ, ଦୁର୍ବଳ ଓ ଅକର୍ମଣ୍ୟ, (ଗ୍ରା.ବ) ଦୁର୍ବଳ ଓ ଅକ୍ଷମ ବ୍ୟକ୍ତି ।

ସନ୍ତୁଳା—ଗ୍ରା.ବ.(ଫ-ସନ୍ତୋଳନ) ସାମାନ୍ୟ ମାତ୍ର ତୈଳ ଦ୍ୱାରା ଅଳ୍ପ ଭଜିତ କରାଯାଇ ଅଳ୍ପ ଜଳଦ୍ୱାରା ସିଦ୍ଧ ନିର୍ଜଳ ବ୍ୟଞ୍ଜନ, (ଲ.ଅର୍ଥ) ଦହିଗଞ୍ଜି ହେବା, ବ୍ୟତିବ୍ୟସ୍ତ ହେବା, (ଗ୍ରା.ବଂ) ଅଳ୍ପ ତୈଳ ଦ୍ୱାରା ଭଜିତ ଓ ପରେ ସାମାନ୍ୟ ଜଳ ଦ୍ୱାରା ସିଦ୍ଧ ଓ ନୀରସୀକୃତ ।

ସନ୍ତୁଳା(ଳେ)ଇବା—ଗ୍ରା. କ୍ରି. ସନ୍ତୁଳିବା କ୍ରିୟାର ଣିଜନ୍ତ ରୂପ ।

ସନ୍ତୁଳିବା—ଗ୍ରା. କ୍ରି. (ଫ-ସନ୍ତୋଳନ) କଟାପରିବା ବା ମାଛପ୍ରଭୃତିକୁ ସାମାନ୍ୟ ଘିଅରେ ବା ତେଲରେ ଭଜାବାପରେ କିଞ୍ଚିତ୍ ଜଳମିଶାଇ କିମ୍ବା ଉକ୍ତ ଦ୍ରବ୍ୟରୁ ବାହାରିବା ଜଳ ଛଡ଼ା ତହିଁରେ ଅନ୍ୟ ଜଳ ଯୋଗ ନକରି ତାହାକୁ ନିର୍ଜଳ କରି ସିଦ୍ଧ କରି ତରକାରୀ ପ୍ରସ୍ତୁତକରିବା, (ଲ.ଅର୍ଥ) କୌଣସି ବ୍ୟକ୍ତିକୁ ଅତ୍ୟନ୍ତ କଷ୍ଟଦେବା, (ପ୍ରା. ଫ ହିନ୍ଦୁମି--କ୍ରି.) ବଘାରିବା ।

ସନ୍ତୁଳିହେବା—ଗ୍ରା.କ୍ରି.(ଲ.ଅର୍ଥ) ଦୁଃଖରେ କ୍ଲିଷ୍ଟହେବା, ଅତିଶୟ ଗ୍ରୀଷ୍ମହେତୁ ବ୍ୟଥିତ ହେବା ।

ସନ୍ତୁଷ୍ଟ—ପୁଂ. ବଂ. (ସମ୍+ତୁଷ୍+କ.ତ) ସନ୍ତୋଷଯୁକ୍ତ, ତୃପ୍ତ, ପ୍ରସନ୍ନ, ଆହ୍ଲାଦିତ, (ସ୍ତ୍ରୀ) ସନ୍ତୁଷ୍ଟା ।

ସନ୍ତୁଷ୍ଟକରିବା—ଗ୍ରା.କ୍ରି.କୌଣସି ବ୍ୟକ୍ତିକୁ ତୃପ୍ତ କରାଇବା ।

ସନ୍ତୁଷ୍ଟଚିତ୍ତ—ପୁଂ.ବଂ.(ବ.ବ୍ରୀ) ତୃପ୍ତମନାଃ, ଯାହାର ମନ ତୃପ୍ତ ହୋଇଅଛି, (ସ୍ତ୍ରୀ) ସନ୍ତୁଷ୍ଟଚିତ୍ତା,(ବି-କ.ଧା)ହୃଷ୍ଟମନ ।

ସନ୍ତୁଷ୍ଟଚେତାଃ—ପୁଂ.ବଂ. ଓ ସ୍ତ୍ରୀ.(ବ.ବ୍ରୀ) ପ୍ରସନ୍ନମନାଃ, ହୃଷ୍ଟଚିତ୍ତ ।

ସନ୍ତୁଷ୍ଟମନାଃ—ପୁଂ.ବଂ ଓ ସ୍ତ୍ରୀ. (ବ.ବ୍ରୀ) ସନ୍ତୁଷ୍ଟଚେତାଃ ।

ସନ୍ତୁଷିତ—ପୁଂ.ବ.ଦେବପୁତ୍ରବିଶେଷ ।

ସନ୍ତୁଷ୍ଟି—ବ. (ସମ୍+ତୁଷ୍ଟି) ସମ୍ପୂର୍ଣ୍ଣ ପରିତୃପ୍ତି, ମନବୋଧ, ଆହ୍ଲାଦ ।

ସନ୍ତୁଷ୍ଟିକର—ପୁଂ.ବଂ. (ସନ୍ତୁଷ୍ଟି+କୃ+କ.ଅ) ଯାହା ମନୁଷ୍ୟଙ୍କୁ ସନ୍ତୁଷ୍ଟ କରାଏ, (ସ୍ତ୍ରୀ) ସନ୍ତୁଷ୍ଟିକରୀ ।

ସନ୍ତୃପ୍ତି—ସ୍ତ୍ରୀ.ବ. (ସମ୍+ତୃପ୍+ତି) ସମ୍ୟକ୍ ତୃପ୍ତି, ସନ୍ତୋଷ ।

ସନ୍ତେଜନ—ବି. ତୀକ୍ଷ୍ଣୀକରଣ, ଦାଢ଼ୁଆ କରିବା, ଶାଣ ଦେବା ।

ସନ୍ତୋଳନ—ବି. (ସମ୍+ତୁଲ୍+ଭା.ଅନ) ସନ୍ତୁଳିବା କ୍ରିୟା, ( ଗ୍ରା.ବି-ସନ୍ତୋଳା,) (ଗ୍ରା.କ୍ରି) ସନ୍ତୋଳିବା ।

ସନ୍ତୋଷ—ପୁଂ.ବି. (ସମ୍+ତୁଷ୍+ଭା.ଅ) ପରିତୋଷ, ତୃପ୍ତି, ଅହ୍ଲାଦ, ଆନନ୍ଦ, ସନ୍ତୁଷ୍ଟି, ଧୃତି, ସ୍ୱାସ୍ଥ୍ୟ, ପାତଞ୍ଜଳମତେ ଯୋଗାଙ୍ଗବିଶେଷ, (ଗ୍ରା.ବିଂ)ସନ୍ତୁଷ୍ଟ ।

ସନ୍ତୋଷକ—ବିଂ. (ସମ୍+ତୁଷ୍+ଅକ) ଆନନ୍ଦଦାୟକ,ତୁଷ୍ଟିକର, ହର୍ଷଜନକ

ସନ୍ତୋଷକର—ବିଂ (ସନ୍ତୋଷ+କୃ+କ.ଅ)ତୃପ୍ତିକର,ଯାହା ଆନନ୍ଦ ଜନ୍ମାଏ, (ସ୍ତ୍ରୀ) ସନ୍ତୋଷକରୀ ।

ସନ୍ତୋଷଜନକ—ବିଂ.(ତତ୍ପୁ)ତୃପ୍ତିକର ଆହ୍ଲାଦଜନକ,(ସ୍ତ୍ରୀ)ସନ୍ତୋଷଜନିକା ।

ସନ୍ତୋଷଣ—ବି. (ସମ୍+ତୁଷ୍+ଅନ) ସନ୍ତୋଷ, ସନ୍ତୁଷ୍ଟି ।

ସନ୍ତୋଷଣୀୟ—ବିଂ. (ସମ୍+ତୁଷ୍+ଣିଚ୍ +ମିଂ.ଅନୀୟ) ଯାହାଙ୍କୁ ସନ୍ତୁଷ୍ଟ କରାଇବା ଉଚିତ, ଯାହାଙ୍କୁ ସନ୍ତୁଷ୍ଟ କରାଯାଇପାରେ ।

ସନ୍ତୋଷବର୍ଦ୍ଧନ—ବି. (ସନ୍ତୋଷ+ବୃଧ୍ +ଭା.ଅନ) ତୃପ୍ତି ବଢ଼ାଇବା,ସନ୍ତୋଷକୁ କ୍ରମଶଃ ଅଧିକତର କରାଇବା, (ବିଂ-କ.ଅନ) ଯେ ସନ୍ତୋଷ ବର୍ଦ୍ଧନ କରାଏ ।

ସନ୍ତୋଷବାନ୍—ପୁଂ.ବିଂ. (ସନ୍ତୋଷ+ବତ୍)ସନ୍ତୋଷଯୁକ୍ତ,ସନ୍ତୁଷ୍ଟ,ଅହ୍ଲାଦିତ ।

ସନ୍ତୋଷବୃଦ୍ଧି—ବି. (ତତ୍ପୁ) କ୍ରମଶଃ ତୃପ୍ତି ବଢ଼ିବା ।

ସନ୍ତୋଷହେବା— ଗ୍ରା. କ୍ରି. ପରିତୃପ୍ତ ହେବା, ସନ୍ତୁଷ୍ଟ ହେବା ।

ସନ୍ତୋଷିବା—ଗ୍ରା. କ୍ରି. (ପଦ୍ୟ) ସନ୍ତୁଷ୍ଟ କରାଇବା ।

ସନ୍ତୋଷୀ—ପୁଂ.ବିଂ. (ସମ୍+ତୁଷ୍+ଣିଚ୍ +କ.ଇନ୍) ଆହ୍ଲାଦକର, (ସନ୍ତୋଷ +ଇନ୍ ) ସନ୍ତୁଷ୍ଟ, ସନ୍ତୁଷ୍ଟପ୍ରକୃତିକ, ହର୍ଷାନ୍ୱିତ, (ସ୍ତ୍ରୀ) ସନ୍ତୋଷିଣୀ ।

ସନ୍ତୋଷ୍ଟବ୍ୟ—ବିଂ. ସନ୍ତୁଷ୍ଟିର ଯୋଗ୍ୟ ।

ସନ୍ତୋଷ୍ୟ—ବିଂ. ( ସମ୍+ତୁଷ୍+ଯ ) ସନ୍ତୋଷାର୍ହ, ସନ୍ତୋଷର ଉପଯୁକ୍ତ, ସନ୍ତୋଷଣୀୟ ।

ସନ୍ତ୍ୟାଗ—ବି. ( ସମ୍+ତ୍ୟଜ୍+ଅ ) ସମ୍ୟକ୍‌ରୂପେ ତ୍ୟାଗ, ଏକବାରେ ପରିତ୍ୟାଗ ।

ସନ୍ତ୍ୟାଗୀ—ପୁଂ.ବିଂ. (ସମ୍+ତ୍ୟଜ୍+ଇନ୍) ସମ୍ୟକ୍‌ରୂପେ ତ୍ୟାଗକାରୀ ।

ସନ୍ତ୍ୟାଜ୍ୟ—ବିଂ. ( ସମ୍+ତ୍ୟଜ୍+ଯ ) ତ୍ୟାଗଯୋଗ୍ୟ,ସମ୍ୟକ୍‌ପ୍ରକାରେ ତ୍ୟାଗାର୍ହ

ସନ୍ତ୍ରସ୍ତ—ପୁଂ.ବିଂ. (ସମ୍+ତ୍ରସ୍+କ.ତ) ଅତ୍ୟନ୍ତ ଭୀତ,ଭୀତଚକିତ, (ସ୍ତ୍ରୀ)ସନ୍ତ୍ରସ୍ତା

ସନ୍ତ୍ରାଣ—ବି. (ସମ୍+ତ୍ରୈ+ଅନ)ସମ୍ୟକ୍ ରୂପେ ତ୍ରାଣ,ସମ୍ୟକ୍‌ପ୍ରକାରେ ରକ୍ଷଣ ।

ସନ୍ତ୍ରାସ—ବି. ( ସମ୍+ତ୍ରସ୍+ଭା.ଅ ) ଅତ୍ୟନ୍ତ ଭୀତି, ଶଙ୍କା ।

ସନ୍ତ୍ରାସନ—ବି. (ସମ୍+ତ୍ରସ୍+ଣିଚ୍+ଅନ) ସମ୍ୟକ୍ ତ୍ରାସ ।

ସନ୍ତ୍ରାସିତ—ବିଂ. (ସମ୍+ତ୍ରସ୍+ଣିଚ୍+ମିଂ.ତ) ଅନ୍ୟଦ୍ୱାରା ଭୀତିପ୍ରାପ୍ତ,ଅତିଭୀତ, (ସ୍ତ୍ରୀ) ସନ୍ତ୍ରାସିତା ।

ସନ୍ତ୍ରୀ—ଯା.ଭୂ. ପହରାବାଲା ସିପାହି ।

ସନ୍ଥ—ଗ୍ରା.ପୁଂ.ବି. ସତ୍‌ପୁରୁଷ, ସଚ୍ଚରିତ୍ର ବ୍ୟକ୍ତି,ସାଧୁ ବ୍ୟକ୍ତି, ଧାର୍ମିକ ବ୍ୟକ୍ତି.ମହାପୁରୁଷ, ବାବାଜୀ, ଆବୃତ୍ତି କରିବାପାଇଁ ଗୁରୁଙ୍କଠାରୁ ଗ୍ରନ୍ଥର ଗ୍ରହଣ କରିବା ନୂତନ ପାଠ, (ଗ୍ରା.ବିଂ) ସାଧୁଶୀଳ, ସତ୍‌ଶୀଳ । [ ସାଧୁ ବ୍ୟକ୍ତି ।

ସନ୍ଥଜନ—ଗ୍ରା. ବି. ( ସଂ-ସତ୍‌ଜନ )

ସନ୍ଥଦେବା—ଗ୍ରା. କ୍ରି. ଗ୍ରନ୍ଥକୁ ଅଭ୍ୟାସ କରିବା ପାଇଁ (ଗୁରୁ) ନୂତନ ପାଠ ନ୍ୟସ୍ତ କରିବା ।

ସନ୍ଥପଣ—ଗ୍ରା. ବି. ସାଧୁତା, ଆଚରଣର ଧୀରତା, ଭଦ୍ରତା, ଭଦ୍ର ବ୍ୟବହାର ।

ସନ୍ଥମହନ୍ତ—ଗ୍ରା. ବି. ସାଧାରଣ ବୈରାଗୀ ଓ ମଠାଧିକାରୀ ବୈରାଗୀମାନେ ।

ସନ୍ଥା—ଗ୍ରା. ବି. ଘାଆର ବା ପାଣିଥିବା ବଥର ମୁହଁ ଯେପରି ବୁଜିହୋଇ ନ ଯିବ ଓ ତହିଁ ମଧ୍ୟରୁ ମୁହଁବାଟେ ପୂଯ ଓ ପାଣିଆଦି ବାହାରିଯିବ, ଏଥିପାଇଁ ତା ମୁହଁରେ ଦିଆଯିବା କାଠି ବା ସଳିତା

ସନ୍ଦଂଶ—ବି. (ସମ୍+ଦନ୍ଶ୍+କ.ଅ) ସଣ୍ଡୁଆଶି, ଗୁଆକାତି, ଚିମୁଟା ।

ସନ୍ଦଂଶକ—ବି. (ସନ୍ଦଂଶ+କ) ସନ୍ଦଂଶ ଦେଖ ।

ସନ୍ଦଂଶପ୍ରାପିତନ୍ୟାୟ-ବି. (ନ୍ୟାୟ) ସଣ୍ଡୁଆଶିର ଦୁଇବାହୁ ଦ୍ୱାରା ଧୃତବସ୍ତୁକୁ ଚିପିବାପରି ଦୁଇଆଡ଼ୁ ଉତ୍ତମରୂପେ ବା ଦୃଢ଼ଭାବରେ ଧରାହେବା ବସ୍ତୁ ବା ଦୁଇଦିଗରୁ ଆକ୍ରାନ୍ତ ହୋଇଥିବା ବ୍ୟକ୍ତି ପକ୍ଷରେ ଏହି ନ୍ୟାୟ ପ୍ରଯୁକ୍ତ ହୁଏ ।

ସନ୍ଦଂଶଯାତନା—ବି. (ବ.ବ୍ରୀ)ହିନ୍ଦୁମାନଙ୍କର ନରକବିଶେଷ ।

ସନ୍ଦଂଶିକା—ସ୍ତ୍ରୀ. ବି. (ସମ୍+ଦଂଶ୍+ଅକ+ଆ) ଲୌହଯନ୍ତ୍ରବିଶେଷ,ସଣ୍ଡୁଆଶି, ଚିମୁଟା ।

ସନ୍ଦଂଶିତ—ବିଂ. ( ସମ୍+ଦଂଶ୍+ତ ) ସମ୍ୟକ୍‌ରୂପେ ଦଂଶିତ ।

ସନ୍ଦଂଶୀ—ସ୍ତ୍ରୀ.ବି. (ସନ୍ଦଂଶ+ଈ) ସନ୍ଦଂଶ ଦେଖ ।

ସନ୍ଦରସ—ଗ୍ରା. ବି. (ସଂ-ସର୍ଜ୍ଜରସ) ବୃକ୍ଷବିଶେଷର ରସ ନିର୍ଯ୍ୟାସ, ଏକପ୍ରକାର ଶାଳଗଛରୁ ବାହାରିବା ଝୁଣା,ଧଳା ଝୁଣା ।

ସନ୍ଦର୍ପ—ପୁଂ. ବି. ( ସମ୍+ଦୃପ୍+ଅ ) ସମ୍ୟକ୍ ଦର୍ପ, ଅତିଶୟ ଦର୍ପ ।

ସନ୍ଦର୍ଭ—ବି. (ସମ୍+ଦୃଭ୍+ଭା.ଅ)ରଚନା, ପ୍ରବନ୍ଧ,ପରସ୍ପରର ସହିତ ସମ୍ୟକ୍‌ରୂପେ ସମ୍ବନ୍ଧ ରଚନା,ସଂଗ୍ରହ, ସମ୍ବନ୍ଧ, ଗ୍ରନ୍ଥନ, (ମିଂ.ଅ) କୌଣସି ବିଷୟ ସମ୍ବନ୍ଧରେ ଗ୍ରନ୍ଥପୁସ୍ତକ, ବିସ୍ତାର, ରହସ୍ୟ,ଗୂଢ଼ାର୍ଥ ।

ସନ୍ଦର୍ଶ—ବି. (ସମ୍+ଦୃଶ୍+ଅ)ସନ୍ଦର୍ଶନ ଦେଖ ।

ସନ୍ଦର୍ଶନ—ବି. (ସମ୍+ଦୃଶ୍+ଭା.ଅନ) ସମ୍ୟକ୍‌ଦର୍ଶନ, ଅବଲୋକନ, ନିରୀକ୍ଷଣ, ପରୀକ୍ଷା, ଦେଖିବା,ଜ୍ଞାନ, ମୂର୍ତ୍ତି,ଆକୃତି, ଚେହେରା ।

ସନ୍ଦର୍ଶନପଥ—ବି. ଅବଲୋକନର ପଥ ।

ସନ୍ଦର୍ଶୟିତା—ପୁଂ. ବିଂ. (ସମ୍+ଦୃଶ୍+ଣିଚ୍+ତୃ)ସମ୍ୟକ୍‌ରୂପେ ଦର୍ଶନକାରକ, ଯେ ଭଲଭାବରେ ଦେଖାଏ ।
ସନ୍ଦଷ୍ଟ—ବିଂ. ( ସମ୍+ଦନ୍‌ଶ୍+ର୍ମି.କ୍ତ ) ଗୁରୁତର ଭାବରେ କାମୁଡ଼ା ହୋଇଥିବା, ସଂଶ୍ଳିଷ୍ଟ, ଦୃଢ଼ରୂପେ ଲଗ୍ନ, ସଲଗ୍ନ ।
ସନ୍ଦଷ୍ଟୋଷ୍ଠପୁଟ—ପୁଂ. ବିଂ. ( ନ.ବ୍ରୀ ) ଅତି କ୍ରୁଦ୍ଧହୋଇ ଯେ ରାଗରେ ନିଜର ଓଠକୁ ଖୁବ୍ ଜୋରରେ କାମୁଡ଼ି ଧରିଅଛି, (ସ୍ତ୍ରୀ) ସନ୍ଦଷ୍ଟୋଷ୍ଠପୁଟା ।
ସନ୍ଦାଡ଼—ପ୍ରା. (ବାଲେଶ୍ୱର) ବି. କାଠର ମୋଟ ଠେଙ୍ଗା ।
ସନ୍ଦାନ— ବି. (ସମ୍+ଦୋ + ଭା.ଅନ) ସମ୍ୟକ୍‌ଚ୍ଛେଦନ, ବନ୍ଧନ, ( ର୍ମି.ଅନ ) ଶୃଙ୍ଖଳ, ରଜ୍ଜୁ, ବନ୍ଧନସାଧନ ବସ୍ତୁ, (ସମ୍+ଦାନ=ଗଜଗଣ୍ଡବାରି)ହସ୍ତୀର କପୋଳର ଊର୍ଦ୍ଧ୍ୱଦେଶ ଓ କାନୁଦ୍ୱୟର ଅଧୋଭାଗ, ଯେଉଁସ୍ଥାନରୁ ମଦଜଳ କ୍ଷରିତ ହୁଏ । [ ଖଇର ।
ସନ୍ଦାନକା—ସ୍ତ୍ରୀ. ବି. କଣ୍ଟାଖଦିର,ପାକଡ଼ା
ସନ୍ଦାନିତ—ବିଂ. (ସନ୍ଦାନ+ଇତ) ଶୃଙ୍ଖଳିତ, ବଦ୍ଧ, ରୁଦ୍ଧ, ନିଗଡ଼ିତ ।
ସନ୍ଦାନିନୀ—ସ୍ତ୍ରୀ. ବି. (ସନ୍ଦାନ+ଇନ୍+ଈ) ଗୋଶାଳା, ଗୁହାଳଘର ।
ସନ୍ଦାବ—ବି. ( ସମ୍+ଦ୍ରୁ+ଭା ଅ ) ପଳାୟନ, ହଟିଯିବା ।
ସନ୍ଦାହ—ବି. (ସମ୍+ଦହ୍+ଅ) ତାଳୁ ଓଷ୍ଠର ପ୍ରଦାହ ।
ସନ୍ଦିଗ୍ଧ—ପୁଂ.ବିଂ.(ସମ୍+ଦିହ୍+କ.କ୍ତ) ସନ୍ଦେହାନ, ସଂଶୟଯୁକ୍ତ ।
ସନ୍ଦିଗ୍ଧଚିତ୍ତ—ବି. (କ.ଧା) ସଂଶୟଯୁକ୍ତ ମନ, (ସ୍ତ୍ରୀ) ସନ୍ଦିଗ୍ଧଚିତ୍ତା, (ପୁଂ.ବିଂ—ବ.ବ୍ରୀ) ସନ୍ଦିଗ୍ଧଚେତାଃ ଦେଖ ।
ସନ୍ଦିଗ୍ଧଚେତାଃ—ପୁଂ ଓ ସ୍ତ୍ରୀ.ବିଂ.(ବ.ବ୍ରୀ) ଯାହାର ମନ ସଂଶୟଯୁକ୍ତ ଅଟେ,ଯାହାର ମନରେ ସନ୍ଦେହ ଯାତ ହୋଇଅଛି ।
ସନ୍ଦିଗ୍ଧତା(ତ୍ୱ)—ବି. (ସନ୍ଦିଗ୍ଧ+ଭା.ତା) ସନ୍ଦେହଯୁକ୍ତତା,ସନ୍ଦେହାନତା,ଅଳଙ୍କାର ଶାସ୍ତ୍ରରେ କାବ୍ୟଦୋଷବିଶେଷ, ଯେଉଁ ପ୍ରୟୋଗ ଦ୍ୱାରା ଅର୍ଥର ଅବଗତିରେ ସନ୍ଦେହ ଜାତହେବା ଦୋଷ ।
ସନ୍ଦିଗ୍ଧମତି—ବିଂ. ( ବ.ବ୍ରୀ ) ସନ୍ଦେହ ବିଷୟୀଭୂତ ବୁଦ୍ଧିଯୁକ୍ତ, ଯେଉଁବ୍ୟକ୍ତି ସର୍ବଦା ସନ୍ଦିଗ୍ଧ ।
ସନ୍ଦିଗ୍ଧମନାଃ—ପୁଂ. ବିଂ ଓ ସ୍ତ୍ରୀ. (ବ.ବ୍ରୀ) ସନ୍ଦିଗ୍ଧଚେତାଃ ଦେଖ ।
ସନ୍ଦିଗ୍ଧାର୍ଥ—ବିଂ. ସନ୍ଦିଗ୍ଧାର୍ଥ ବିଶିଷ୍ଟ,(ବି) ସନ୍ଦେହ ବିଷୟୀଭୂତାର୍ଥ, ଯେଉଁଅର୍ଥରେ ସନ୍ଦେହ ଥାଏ ।
ସନ୍ଦିତ—ବିଂ. ( ସମ୍+ଦୋ+ର୍ମି.କ୍ତ ) ସନ୍ଦାନିତ ଦେଖ ।
ସନ୍ଦିଦୃକ୍ଷୁ—ପୁଂ. ବିଂ. ସନ୍ଦର୍ଶନ କରିବାକୁ ଇଚ୍ଛୁକ, ଦେଖିବାକୁ ଅଭିଳାଷୀ ।
ସନ୍ଦିଧକ୍ଷୁ—ପୁଂ.ବିଂ. ସମ୍ୟକ୍‌ରୂପେ ଦଗ୍ଧ କରିବାକୁ ଇଚ୍ଛୁକ ।
ସନ୍ଦିଶା—ଗ୍ରା.ବି. (ସଂ-ସନ୍ଦେଶ)ଅଭିଳାଷ, ମନୋରଥ, ବାଞ୍ଛା ।
ସନ୍ଦିଷ୍ଟ—ପୁଂ. ବିଂ. (ସମ୍+ଦିଶ୍+ର୍ମି.କ୍ତ) ଆଦିଷ୍ଟ, ଆଦେଶପ୍ରାପ୍ତ,ଅଙ୍ଗୀକୃତ,କଥିତ, (ବି-ଭା.କ୍ତ) ଆଦେଶ, ବାର୍ତ୍ତା, ସମ୍ବାଦ, (ସ୍ତ୍ରୀ) ସନ୍ଦିଷ୍ଟା ।
ସନ୍ଦିଷ୍ଟାର୍ଥ—ପୁଂ.ବିଂ. (ନ.ବ୍ରୀ)ବାର୍ତ୍ତାବହ, ଦୂତ, (ସ୍ତ୍ରୀ) ସନ୍ଦିଷ୍ଟାର୍ଥା ।
ସନ୍ଦିହାନ- ପୁଂ.ବିଂ. (ସମ୍+ଦିହ୍+କ.ଆନ) ସନ୍ଦେହାନ୍ୱିତ, ସଂଶୟଯୁକ୍ତ, ଯାହାର ମନରେ ସନ୍ଦେହ ଜାତ ହୋଇଅଛି, ସଂଶୟୀ, (ସ୍ତ୍ରୀ) ସନ୍ଦିହାନା ।
ସନ୍ଦୀ—ସ୍ତ୍ରୀ. ବି. (ସମ୍+ଦୋ+ର୍ମି.ଅ+ଈ) ଶଯ୍ୟା, ଖଟ, ଚଉକି,ଗ୍ରେଟଖଟ ।
ସନ୍ଦୀନ—ବିଂ. ଦୀନ, ଦୁଃଖୀ, ଦରିଦ୍ର ।
ସନ୍ଦୀପକ—ବିଂ. (ସମ୍+ଦୀପ୍+ଅକ) ସମ୍ୟକ୍‌ରୂପେ ଉଦ୍ଦୀପନ,ସମ୍ୟକ୍‌ପ୍ରକାରେ ଉତ୍ତେଜକ ।
ସନ୍ଦୀପନ—କ୍ଲୀ. ବି. (ସମ୍+ଦୀପ୍+ଭା. ଅନ) ପ୍ରୋତ୍ସାହିତକରଣ, ପ୍ରଜ୍ୱଳନ, ସମ୍ୟକ୍‌ପ୍ରକାରେ ଉତ୍ତେଜନ, (ପୁଂ.ବି) ମୁନିବିଶେଷ, (ବିଂ) ସନ୍ଦୀପନକାରୀ ।
ସନ୍ଦୀପନବାନ୍—ପୁଂ.ବିଂ.(ସନ୍ଦୀପନ+ବତୁ) ସନ୍ଦୀପନବିଶିଷ୍ଟ, ଉତ୍ତେଜନବିଶିଷ୍ଟ ।
ସନ୍ଦୀପ୍ତ—ବିଂ. (ସମ୍+ଦୀପ୍+ର୍ମି.କ୍ତ) ଉତ୍ତେଜିତ, ପ୍ରଜ୍ୱଳିତ, ପ୍ରୋତ୍ସାହିତ ।
ସନ୍ଦୀପ୍ୟ—ବି. ମୟୂରଶିଖା ବୃକ୍ଷ, ମୟୂରଚୂଳିଆଗଛ, (ବିଂ) ସନ୍ଦୀପନ ଯୋଗ୍ୟ, ସନ୍ଦୀପନୀୟ ।
ସନ୍ଦୁହ୍ୟ—ବିଂ. (ସମ୍+ଦୁହ୍+ଯ) ସନ୍ଦୋହ୍ୟ, ସମ୍ୟକ୍ ଦୋହନୀୟ ।
ସନ୍ଦୂଷଣ—ବି.(ସମ୍+ଦୁଷ୍+ଅନ)ସମ୍ୟକ୍‌ରୂପେ ଦୂଷଣ, (ବିଂ) ସମ୍ୟକ୍‌ରୂପେ ଦୂଷଣକାରକ । [ ରଚିତ ।
ସନ୍ଦୃବ୍ଧ—ବି.(ସମ୍+ଦୃନ୍‌ଭ୍+ର୍ମି.କ୍ତ)ଗ୍ରଥିତ,
ସନ୍ଦୃଶ୍ୟ—ବିଂ. (ସମ୍+ଦୃଶ୍+ଯ)ସନ୍ଦର୍ଶନ ଯୋଗ୍ୟ, ଦେଖିବାର ଉପଯୁକ୍ତ ।
ସନ୍ଦୃଷ୍ଟି—ବି. (ସମ୍+ଦୃଶ୍+ତି) ସମ୍ୟକ୍ ଦୃଷ୍ଟି, ସମ୍ୟକ୍ ଦର୍ଶନ ।
ସନ୍ଦେ—ପ୍ରା.(ବାଲେ)ବି. ସନ୍ଦେହ ।
ସନ୍ଦେଘ—ବି(ସମ୍+ଦିହ୍+ଅ) ସନ୍ଦେହ (ବୈଦିକ) ।
ସନ୍ଦେଶ—ବି. ( ସମ୍+ଦିଶ୍+ର୍ମି.ଅ ) ସମ୍ବାଦ, ବାର୍ତ୍ତା, ଖବର, ଅନ୍ୟର ନିକଟକୁ ପ୍ରେରିତ ସମ୍ବାଦ,ଆଜ୍ଞା, ଆଦେଶ, ସମାଚାର,(ଗ୍ରା.ବି)ଗୁଡ଼ରେ ବା ଚିନିରେ ପାଗ କରାଯାଇଥିବା ନଡ଼ିଆ କୋରାରେ ବା ଛେନାରେ ପ୍ରସ୍ତୁତ ମିଷ୍ଟାନ୍ନବିଶେଷ, ନିର୍ଜଳ ଦୁଧ ଛେନା ସଙ୍ଗେ ଚିନି ମିଶାଯାଇ କଟେଇରେ ସନ୍ତୁଳା ହୋଇ ପ୍ରସ୍ତୁତ କରାଯିବା ମିଷ୍ଟାନ୍ନବିଶେଷ, (ଗ୍ରା. ପଦ୍ୟ.ବି) ସନ୍ଦେହ ।
ସନ୍ଦେଶକ—ବି. (ସନ୍ଦେଶ+କ)ସନ୍ଦେଶ ବାକ୍ୟ, ସମ୍ବାଦ ।
ସନ୍ଦେଶପଦ—ବି. ଶବ୍ଦ ବା ସ୍ୱର ଲକ୍ଷଣ, ଯେଉଁ ପଦର ଶବ୍ଦ ଦ୍ୱାରା ପ୍ରକୃତ ସନ୍ଦେଶ ସୁଗମ ହୁଏ ।
ସନ୍ଦେଶବହ—ପୁଂ.ବି.(ସନ୍ଦେଶ+ବହ୍+କ.ଅ) ବାର୍ତ୍ତାବହ, ଦୂତ, ହରକରା ।
ସନ୍ଦେଶବାକ୍—ସ୍ତ୍ରୀ. ବି. ସନ୍ଦେଶ ରୂପ ବାକ୍ୟ, ସମ୍ବାଦ, ବାର୍ତ୍ତା, ବାଚିକ,ସମାଚାର ।

ସନ୍ଦେଶହର—ପୁଂ. ବ.(ସନ୍ଦେଶ+ହୃ+ଅ) ଦୂତ, ବାର୍ତ୍ତାବହ, ବାର୍ତ୍ତାହର ।

ସନ୍ଦେଶହାର–ପୁଂ.ବ.ବାର୍ତ୍ତାହର, ଦୂତ ।

ସନ୍ଦେଶହାରକ—ପୁଂ. ବ. (ସନ୍ଦେଶ+ହୃ+ଅକ) ଦୂତ, ବାର୍ତ୍ତାବହ, ଚର ।

ସନ୍ଦେଶହାରୀ-ପୁଂ.ବ. ଦୂତ, ଯେ ସନ୍ଦେଶ ନେଇଯାଏ ।

ସନ୍ଦେଶାର୍ଥ—ପୁଂ. ବ. ସମ୍ବାଦ ନିମିତ୍ତ, ବାର୍ତ୍ତା ସକାଶେ ।

ସନ୍ଦେଶୋକ୍ତି—ସ୍ତ୍ରୀ. ବ. ସନ୍ଦେଶ କଥନ, ସମ୍ବାଦକଥନ ।

ସନ୍ଦେଷ୍ଟବ୍ୟ—ବିଂ. ଅନୁସନ୍ଧେୟ ।

ସନ୍ଦେହ—ବ. ( ସମ୍+ଦହ୍+ଭା.ଅ ) ସଂଶୟ, ଦ୍ୱୈଧଭାବ, ଅର୍ଥାଲଙ୍କାରବିଶେଷ, ଏକ ଧର୍ମିକ ବିରୁଦ୍ଧ ଭାବାଭାବ ପ୍ରକାରକ ଜ୍ଞାନ ।

ସନ୍ଦେହକରିବା—ଗ୍ରା.କ୍ରି. କୌଣସି ବିଷୟରେ ମନରେ ଦ୍ୱିଧାଭାବ ପୋଷଣ କରିବା ।

ସନ୍ଦେହକଳ୍ପ—ବିଂ.ସନ୍ଦିଗ୍ଧ, ସଂଶୟସ୍ଥଳ ।

ସନ୍ଦେହଜନକ—ବିଂ. (୬ତତ୍ପୁ) ସଂଶୟଜନକ, ସଂଶୟକର, ଯାହା ମନୁଷ୍ୟ ମନରେ ସନ୍ଦେହ ଜାତ କରାଏ ।

ସନ୍ଦେହତ୍ୱ—ବ. (ସନ୍ଦେହ+ତ୍ୱ) ସନ୍ଦେହର ଭାବ, ସନ୍ଦେହର ଧର୍ମ ।

ସନ୍ଦେହଦୋଳା—ବ. (ରୂପକ) ଦୋଳା ସଙ୍ଗେ ଉପମିତ ସନ୍ଦେହ ।

ସନ୍ଦେହଭଞ୍ଜନ—ବ. ( ୬ତତ୍ପୁ ) ମନରୁ ସଂଶୟର ଦୂରୀକରଣ ।

ସନ୍ଦେହସଂକୁଳ—ବିଂ.(୩ତତ୍ପୁ) ସନ୍ଦେହପୂର୍ଣ୍ଣ, ସନ୍ଦେହଜନକ ।

ସନ୍ଦେହାକୁଳ—ବିଂ. (୩ତତ୍ପୁ) ସଂଶୟ ଦ୍ୱାରା ପୀଡ଼ିତ,ସଂଦେହଗ୍ରସ୍ତ ।

ସନ୍ଦେହୀ—ପୁଂ.ବିଂ. (ସମ୍+ଦହ୍+କ. ଇନ୍) ସଂଶୟକାରୀ, (ଗ୍ରା.ବିଂ) ଯାହା ଦ୍ୱାରା କୌଣସି ବିଷୟରେ ମନରେ ସନ୍ଦେହ ଜାତ ହୁଏ ।

ସନ୍ଦୋଳ—ବ. ସୁନ୍ଦର ଦୋଳା, କର୍ଣ୍ଣାଲଙ୍କାରବିଶେଷ,ଏକପ୍ରକାର କାନଫୁଲ ।

ସନ୍ଦୋହ—ବ. (ସମ୍+ଦୁହ୍+ଭା.ଅ) ସମ୍ୟକ୍ ଦୋହନ,ଉତ୍ତମ ରୂପେ ଦୁହିଁବା, (ମିଁ.ଅ) ଯାହା ସମ୍ୟକ୍ ଦୋହନ କରାହୋଇଅଛି, ଦୁଗ୍ଧ, ସମୂହ,ଗଣ, ରାଶି ।

ସନ୍ଦୋହନ—ବ.ସମ୍ୟକ୍ ପ୍ରକାରେ ଦୁଗ୍ଧାଦିର ରସ ନିଃସୃତ କରିଦେବା ।

ସନ୍ଦୋହ୍ୟ—ବିଂ. ( ସମ୍+ଦୁହ୍+ଯ ) ସନ୍ଦୋହନୀୟ, ସମ୍ୟକ୍ ରୂପେ ଦୋହନ ଯୋଗ୍ୟ, ଦୋହନର ଉପଯୁକ୍ତ ।

ସନ୍ଦ୍ରଷ୍ଟବ୍ୟ—ବିଂ. (ସମ୍+ଦୃଶ୍+ତବ୍ୟ) ସମ୍ୟକ୍ ଦ୍ରଷ୍ଟବ୍ୟ,ସମ୍ୟକ୍ ରୂପେ ଦର୍ଶନଯୋଗ୍ୟ ।

ସନ୍ଦ୍ରଷ୍ଟା—ପୁଂ. ବିଂ. (ସମ୍+ଦୃଶ୍+ତୃ) ସମ୍ୟକ୍ ଦ୍ରଷ୍ଟା, ସମ୍ୟକ୍ ଦର୍ଶନକାରୀ ।

ସନ୍ଦ୍ରାବ—ବ(ସମ୍+ଦ୍ରୁ+ଭା.ଅ)ବେଗରେ ଗମନ, ପଳାୟନ ।

ସନ୍ଧ—ପ୍ରା. (କାଉଆ)ବ. ସୁଗନ୍ଧବିଶେଷ ।

ସନ୍ଧା—ବ(ସମ୍+ଧା+ଭା.ଅ+ଆ)ଅନୁସନ୍ଧାନ, ପ୍ରତିଜ୍ଞା, ସ୍ଥିତି, ସନ୍ଧି, ଯୋଡ଼, ମିଳନ, ସନ୍ଧ୍ୟା, (ଗ୍ରା. ବ) ସାନ୍ଧିବା, ଘାଣ୍ଟିବା, ସନ୍ଧଫାଙ୍କ ।

ସନ୍ଧାଇବା—ଗ୍ରା. କ୍ରି. ସାନ୍ଧିବା କ୍ରିୟାର ଣିଜନ୍ତରୂପ,ଅନ୍ୟ ବ୍ୟକ୍ତି ଦ୍ୱାରା ସନ୍ଧିବା କ୍ରିୟା କରାଇବା, ସାରୁର ବନ୍ଧନରୁ ଗଜା ବାହାରିବା ପାଇଁ ତାକୁ ଗୋଟିଏ ଗାତରେ ଏକାଠେଇଁ ପୋତିଦେବା ।

ସନ୍ଧାଧୀଆ—ପ୍ରା.(ଯାଜପୁର)ବ. ପାଣିରେ ବହୁତ ସମୟ ବୁଡ଼ି ରହିବାରୁ ଅଙ୍ଗୁଳି ସନ୍ଧିରେ ହେବା ଘାଆ ।

ସନ୍ଧାତବ୍ୟ—ବିଂ(ସମ୍+ଧା+ମିଁ.ତବ୍ୟ) ଯାହା ସହିତ ସନ୍ଧି କରିଯିବା ଉଚିତ, ସନ୍ଧାନଯୋଗ୍ୟ ।

ସନ୍ଧାତା—ପୁଂ. ବ. ଶିବ, ବିଷ୍ଣୁ ।

ସନ୍ଧାନ—ବ. ( ସମ୍+ଧା+ଭା.ଅନ ) ଖୋଜିବା, ଅନ୍ୱେଷଣ, ତଲାସ, ମିଶ୍ରଣ, ସଘଟ୍ଟନ,ମିଳନ,ସଂଯୋଜନ,ଯୋଜନା ସ୍ଥିତି, ସନ୍ଧି, ଦୁଇ ବସ୍ତୁର ଯୋଗସ୍ଥାନ, ପାଳନ, ବାଣ ଯୋଜନା, ଧନୁରେ ଶର ଯୋଖିବା, ବନ୍ଧନ, ଅଭିଷବ, ମଦ୍ୟ ପ୍ରସ୍ତୁତ କରିବା ପାଇଁ ଆବଶ୍ୟକ ଦ୍ରବ୍ୟ ବା ଉପାଦାନାଦିର ଯୋଗ, ମଦ୍ୟ, ମଦ, କାଞ୍ଜି, ରାଜସଜ୍ଜା, ଘଣ୍ଟା, ମଦ୍ୟ ସନ୍ଧୀକରଣ, ଉପାୟ, କର୍ମକୌଶଳ, ଲକ୍ଷ୍ୟ, ସ୍ୱାଦୁ ବସ୍ତୁ, (ବିଂ) ଧାରକ, (ଗ୍ରା.ବ) ହଜିଥିବା ବା ଚୋରି ଯାଇଥିବା ଦ୍ରବ୍ୟ କିମ୍ବା ଅପରାଧ ସମ୍ବନ୍ଧରେ ତଥ୍ୟ ବା ସଂବାଦ, ସୂଚକ, ପରିବାରର ଗୁପ୍ତକଥା, ଗୃହଛିଦ୍ର, (ଗ୍ରା. ବିଂ) ସଂଲଗ୍ନ, ସଂଯୋଜିତ ।

ସନ୍ଧାନକ—ବ.ସଂଲଗ୍ନକରଣ, ଯୋଜନ, ସନ୍ଧାନ ଦେଖ ।

ସନ୍ଧାନକରଣୀ—ବ.ମହୌଷଧିବିଶେଷ ।

ସନ୍ଧାନକରିବା—ଗ୍ରା. କ୍ରି. ଖୋଜିବା, ତଲାସକରିବା ।

ସନ୍ଧାନକାରୀ—ପୁଂ.ବିଂ. ସନ୍ଧାନକାରକ, ଯେ ସନ୍ଧାନ କରେ, (ସ୍ତ୍ରୀ)କାରିଣୀ ।

ସନ୍ଧାନଦେବା—ଗ୍ରା.କ୍ରି. କୌଣସି ବିଷୟର ତଥ୍ୟ ଅନ୍ୟ ବ୍ୟକ୍ତିଙ୍କୁ ଜଣାଇବା ।

ସନ୍ଧାନନେବା—ଗ୍ରା.କ୍ରି.କୌଣସି ବିଷୟ ସମ୍ବନ୍ଧରେ ଜ୍ଞାତବ୍ୟ ସମ୍ବାଦ ବା ତଥ୍ୟ ଖୋଜିବା, ଅନୁସନ୍ଧାନରେ ରହିବା ।

ସନ୍ଧାନପାଇବା—ଗ୍ରା.କ୍ରି.ସୁରାକ୍ପାଇବା, କୌଣସି ବିଷୟର ତଥ୍ୟ ବା ସମ୍ବାଦ ଅବଗତ ହେବା ।

ସନ୍ଧାନବର୍ଗ—ବ. ବୈଦ୍ୟ ଶାସ୍ତ୍ରୋକ୍ତ ନାନାପ୍ରକାର ମଦିରା (ଯଥା—ମଦ୍ୟ, ଗୌଡ଼ୀ, ମାଧ୍ୱୀ, ପୈଷ୍ଟୀ, କାଦମ୍ବରୀ, ମାଧୂକୀ, ମୈରେୟୀ, ମାର୍ଦ୍ୱୀକ, ସୁରା, ସୀଧୁ) ।

ସନ୍ଧାନମିଳିବା—ଗ୍ରା.କ୍ରି. ଖୋଜା ଯାଉଥିବା କୌଣସି ବିଷୟର ତଥ୍ୟ ଜଣା ପଡ଼ିବା ।

ସନ୍ଧାନସୂତ୍ର—ବ. (୬ତତ୍ପୁ) ଅନ୍ୱେଷଣର ଉପାୟ ।

ସନ୍ଧାନାର୍ଥ—ବିଂ. (ବ.ବ୍ରୀ) ଅନ୍ୱେଷଣର ନିମିତ୍ତ, (ସ୍ତ୍ରୀ) ସନ୍ଧାନାର୍ଥା ।

ସନ୍ଧାନିକା—ବ. ( ସନ୍ଧାନ+କ+ଆ ) ବିବିଧ ଫଳରୁ ପ୍ରସ୍ତୁତ ଆସବ ।

ସନ୍ଧାନିତ—ବିଂ. ( ସନ୍ଧାନ+ଇତ ) ସଂଘଟିତ, ସମ୍ମିଳିତ, ଯାହାର ସନ୍ଧାନ ମିଳିଅଛି, ସଂଯୋଜିତ ।

ସନ୍ଧାନିନୀ—ସ୍ତ୍ରୀ.ବି. ଗୋଗୃହ, ଗୁହାଳ ।

ସନ୍ଧାନୀ—ପୁଂ.ବିଂ.(ସନ୍ଧାନ+ଇନ୍)ଅନୁସନ୍ଧାନକାରୀ, ଲକ୍ଷ୍ୟକାରୀ,ଚେଷ୍ଟାନ୍ୱିତ, (ସ୍ତ୍ରୀ) ସନ୍ଧାନନୀ, (ବି) (ସମ୍+ଧା+ଭା.ଅନ+ଈ) ସନ୍ଧାନ ଦେଖ ।

ସନ୍ଧାନୀୟ—ବିଂ. (ସମ୍+ଧା+ଅନୀୟ) ସନ୍ଧାନଯୋଗ୍ୟ, ସନ୍ଧାନର ଉପଯୁକ୍ତ ।

ସନ୍ଧାନୀୟବର୍ଗ—ବି. ବୈଦ୍ୟୋକ୍ତ ଭଗ୍ନସଂଯୋଜନ କଷାୟ ଦ୍ରବ୍ୟଗଣ ।

ସନ୍ଧାରଣ—ବିଂ. ( ସମ୍+ଧୃ+ଅନ ) ସମ୍ୟକ୍‌ରୂପେ ଧାରଣ ।

ସନ୍ଧାର୍ଯ୍ୟ—ବିଂ. (ସମ୍+ଧୃ+ଯ) ସନ୍ଧାରଣଯୋଗ୍ୟ, ସମ୍ୟକ୍‌ରୂପେ ଧାରଣର ଉପଯୁକ୍ତ ।

ସନ୍ଧି—ବି.(ସମ୍+ଧା+ଭା.ଇ)ସଂଯୋଗ, ମିଳନ, ମୈତ୍ରୀକରଣ, ( ବ୍ୟାକରଣ ) ସନ୍ନିକଟସ୍ଥ ଦୁଇଟି ବର୍ଣ୍ଣର ସଂଯୋଗଜାତ ବିକାର, ବର୍ଣ୍ଣଦ୍ୱୟର ସଂଯୋଗଜାତ ରୂପାନ୍ତର,ସନ୍ଧାନ, ତତ୍ତ୍ୱ,ତଥ୍ୟ, (ମି.ଇ) ଦୁଇ ବସ୍ତୁ ମଧ୍ୟରେ ବ୍ୟବଧାନ, ଫାଙ୍କ, ଗୁପ୍ତକଥା, ରହସ୍ୟ, ରୋଗର ଅତି ବିଷମ ଅବସ୍ଥା,(ଅଧି.ଇ) ମିଳନସ୍ଥାନ, ଯୋଡ଼, ଗଣ୍ଠି, ( ଣ.ଇ ) ଯୁଦ୍ଧ ପରେ ବିଜିଗୀଷୁ ଓ ଅରିଙ୍କ ମଧ୍ୟରେ ବ୍ୟବସ୍ଥାପୂର୍ବକ ଐକ୍ୟ ସ୍ଥାପନ, ସିନ୍ଧିଗାତ, ସୁରଙ୍ଗ, ସୁଡ଼ଙ୍ଗ,ଗାତ,ଖୋଳ, ଝରକା ଗାତ, ଦ୍ୱାର, ବିଶ୍ରାମ, ସନ୍ଧିପୂଜା, ସାଧନକାର୍ଯ୍ୟ, ସାଧନାର୍ଥ ପ୍ରଯୋଜ୍ୟ ଉପାୟ,(କ.ଇ) ଏକ ଯୁଗର ଅବସାନ ଓ ଅନ୍ୟ ଯୁଗର ଆରମ୍ଭ ସ୍ଥଳ, ଦୁଇ ଯୁଗର ପରସ୍ପର ମିଳନକାଳ, ଦେହଗ୍ରନ୍ଥି, ଅସ୍ଥି ବା ଶିରାଦ୍ୱୟର ମିଳନସ୍ଥଳ, ଗଣ୍ଠି, ନାଟକାଂଶବିଶେଷ, ନାଟକର ଦୁଇଟି ଅଙ୍କ ବା ଗର୍ଭାଙ୍କ(ଦୃଶ୍ୟ)ମଧ୍ୟର ବ୍ୟବଧାନ, ଭଗ , ଯୋନିଦ୍ୱାର,(ଗ୍ରା.ବି) (ସଂ-ସନ୍ଧିକ) ସନ୍ନିପାତବିଶେଷ, ଜ୍ୱର-ଆଦରେ ବାତ ପିତ୍ତ ଓ କଫର ପ୍ରକୋପ ଜନିତ ଅବସ୍ଥା, (ପଦ୍ୟ) ଛନ୍ଦ, କପଟ, ଅତି ସଂକୀର୍ଣ୍ଣ ଗଳି, କଥାର ଗୁପ୍ତ ମର୍ମ ବା ରହସ୍ୟ, କଥା କହିବାର ଭଙ୍ଗି ବା କୌଶଳ ।

ସନ୍ଧିଆ--ଗ୍ରା.ବି.(ସଂ-ସନ୍ଧ୍ୟା)ସନ୍ଧ୍ୟା ଦେଖ. (ସଂ-ସନ୍ଧି) ସନ୍ଧି ଦେଖ, ଶଗଡ଼ ଚକର ପରିଧିର ୬ଖଣ୍ଡି ଅଂଶର ଯୋଡ଼ଜାଗା, (ଗ୍ରା.ବିଂ) ସନ୍ଧିବିଶିଷ୍ଟ ।

ସନ୍ଧିଆପ(ପୋ)ଚରି—ଗ୍ରା. ବି. ଶଗଡ଼ ଚକର ପରିଧିରେ ଥିବା ଭିନ୍ନ ଭିନ୍ନ ବୃତ୍ତ ଖଣ୍ଡମାନଙ୍କୁ ମଜଭୁତ କରିବାପାଇଁ ବ୍ୟବହୃତ ଖିଲ ଓ ଖୋଲ ।

ସନ୍ଧିଆପ(ପୋ)ଚରିମାରିବା—ଗ୍ରା. କ୍ରି. (ଲ.ଅର୍ଥ) କୌଣସି କାର୍ଯ୍ୟକୁ ଖୁବ୍ ମଜଭୁତ କରି କରିବା, ଶଗଡ଼ ଚକର ପରିଧିକୁ ମଜଭୁତକରିବାପାଇଁ ତହିଁରେ ଖିଲପ୍ରଭୃତି ମାରିବା ।

ସନ୍ଧିକ—ବି.(ସନ୍ଧି+କ)ବୈଦ୍ୟଶାସ୍ତ୍ରୋକ୍ତ ତ୍ରୟୋଦଶ ସନ୍ନିପାତ ମଧ୍ୟରୁ ଏକତମ ।

ସନ୍ଧିକଥା---ଗ୍ରା.ବି. ବିଷମ ସମସ୍ୟା,ଗୁପ୍ତକଥା, ରହସ୍ୟ, ଅଖଣ୍ଡିଆ ଅବସ୍ଥା ।

ସନ୍ଧିକର—ପୁଂ.ବିଂ. (ସନ୍ଧି+କୃ+କ.ଅ) ଯେଉଁ ବ୍ୟକ୍ତି ଦୁଇ ବିପକ୍ଷ ପକ୍ଷଙ୍କୁ ସନ୍ଧିଦ୍ୱାରା ମିଳିତ କରାଏ, (ସ୍ତ୍ରୀ)ସନ୍ଧିକରୀ

ସନ୍ଧିକା—ବି. (ସନ୍ଧି+କ+ଆ) ମଦ୍ୟସନ୍ଧାନ, ମଦର ଉପାଦାନ ଗୁଡ଼ିକୁ ବିଧିପୂର୍ବକ ସଢ଼ାଇବା ।

ସନ୍ଧିକାଳ—ଗ୍ରା.ବି.ପୂର୍ଣ୍ଣିମା ଓ ପ୍ରତିପଦର ମଧ୍ୟବର୍ତ୍ତୀ ଗ୍ରହଣକାଳ ।

ସନ୍ଧିକୁସୁମା—ସ୍ତ୍ରୀ.ବି. ତ୍ରିସନ୍ଧି, ପୁଷ୍ପବୃକ୍ଷ ।

ସନ୍ଧିକ୍ଷଣ—ବି. ( ୬ତତ୍ ) ସନ୍ଧିସମୟ, ଦୁଇଟି କାଳର ବା ଦୁଇଟି ବିଷୟର ମିଳନକାଳ, ଆଶ୍ୱିନ ଓ ଚୈତ୍ର ଶୁକ୍ଳାଷ୍ଟମୀ ଓ ଶୁକ୍ଳ ନବମୀର ଯଥାକ୍ରମେ ଅନ୍ତିମ ଓ ପ୍ରଥମ ଦଣ୍ଡ (ଯହିଁରେ ସନ୍ଧି ପୂଜା ହୁଏ) ।

ସନ୍ଧିଗ—ପୁଂ.ବି. ସନ୍ଧିକନାମକ ସନ୍ନିପାତ ଜ୍ୱର ।

ସନ୍ଧିଗୁପ୍ତ—ବି.ଗୁପ୍ତସ୍ଥାନ, ବିପକ୍ଷ ସୈନ୍ୟ ଅପେକ୍ଷାରେ ଯେଉଁ ସ୍ଥାନରେ ବା ଘାଟିରେ ସୈନ୍ୟ ଲୁଚି ରହନ୍ତି ।

ସନ୍ଧିଗୁଳ୍ମ—ବି. ବନ୍ୟଗୁଳ୍ମବିଶେଷ ।

ସନ୍ଧିଚୌର—ବି.(କ.ଧା) ଯେଉଁ ଚୋର ଘରେ ସିନ୍ଧିଗାତ ଖୋଳି ଚୋରି କରେ ।

ସନ୍ଧିଚୌର୍ଯ୍ୟ—ବି. (୩ତତ୍) ସିନ୍ଧିଗାତ ଖୋଳି ଘରେ ପଶି ଯେଉଁ ଚୋରି କରାଯାଏ ।

ସନ୍ଧିଚ୍ୟୁତ—ବିଂ. (୫ତତ୍) ମିଳନାଭାବ, ଗ୍ରନ୍ଥିଭଙ୍ଗ, ସଂଯୋଗଭ୍ରଷ୍ଟ ।

ସନ୍ଧିଚ୍ୟୁତି—ବି. (୫ତତ୍) ହାଡ଼ ଗଣ୍ଠିରୁ ହାଡ଼ ଖସିଯିବା ।

ସନ୍ଧିଚ୍ଛେଦ—ବି.(୬ତତ୍) ସନ୍ଧିର ଛେଦ, ସନ୍ଧିଭଙ୍ଗ, ସନ୍ଧିର ନିୟମଭଙ୍ଗ ।

ସନ୍ଧିଚ୍ଛେଦକ—ବିଂ. ସନ୍ଧିର ଚ୍ଛେଦକାରୀ, ଯେ ସନ୍ଧିର ନିୟମଭଙ୍ଗ କରେ ।

ସନ୍ଧିଜ—ବି. ( ସନ୍ଧି+ଜନ୍+କ.ଅ ) ବକଯନ୍ତ୍ର ଦ୍ୱାରା ଚୂଆଁ ହୋଇ ପ୍ରସ୍ତୁତ ହେବା ମଦ୍ୟ,ସୁରା,(ବିଂ) ସନ୍ଧିସମୁତ୍ପନ୍ନ, ସନ୍ଧିଜାତମାତ୍ର ।

ସନ୍ଧିଜୀବକ—ପୁଂ. ବିଂ. (ସନ୍ଧି+ଜୀବ୍+କ.ଅକ) ଯେଉଁ ବ୍ୟକ୍ତି ଶଠତା ଦ୍ୱାରା ଜୀବିକା ନିର୍ବାହ କରେ, ସନ୍ଧିଚୌର୍ଯ୍ୟ କରି ଯେ ଜୀବିକା ନିର୍ବାହ କରେ,(ସ୍ତ୍ରୀ) ସନ୍ଧିଜୀବିକା, (ବି) ସନ୍ଧିଚୌର,କୁଟୁଣୀ, ଭଡ଼ୁଆ ।

ସନ୍ଧିଜୀବିକ—ବି. ଓ ପୁଂ, ବିଂ. (କ.ଧା) ସନ୍ଧିଜୀବକ ଦେଖ, (ସ୍ତ୍ରୀ)ସନ୍ଧିଜୀବିକା ।

ସନ୍ଧିତ୍ସୁ—ବିଂ. (ସମ୍+ଧା+ସନ୍+କ.ଉ) ସନ୍ଧାନ କରିବାକୁ ଇଚ୍ଛୁକ ।

ସନ୍ଧିତ—ବିଂ.(ସମ୍+ଧା+ଇତ)ମିଳିତ, (ବ୍ୟାକରଣ)ସନ୍ଧିଯୁକ୍ତ,ବଦ୍ଧ,ପୁନର୍ମିଳିତ, ସନ୍ଧି ଦ୍ୱାରା ଆବଦ୍ଧ ।

ସନ୍ଧିତସ୍କର—ବି.ସନ୍ଧିଚୋର, ଯେଉଁମାନେ ସିନ୍ଧିକରି ଚୋରି କରନ୍ତି ।

ସନ୍ଧିନୀ—ସ୍ତ୍ରୀ. ବି. (ସନ୍ଧା+ଇନ୍+ଈ) ବୃଷ ଦ୍ୱାରା ଆକ୍ରାନ୍ତ ଋତୁମତୀ ଗାଈ, ଯେଉଁ ଗାଈ ବିଏଯାଇଅଛି, ନଷ୍ଟ ଦତ-

ମୈଥୁନା ଋତୁମତୀ ଗାଈ, ଅକାଳରେ ଦୁଗ୍ଧଦାୟିନୀ ଗାଈ,ସେହି ଉଦ୍ଦୀପନାର ବିକାରବିଶେଷ ।

ସନ୍ଧିପତ୍ର—ବି. (କ.ଧା) ଯେଉଁ ପତ୍ରରେ ବା ଲେଖାରେ ସନ୍ଧିକାରୀ ଉଭୟ ପକ୍ଷ ସ୍ୱାକ୍ଷର କରନ୍ତି ।

ସନ୍ଧିପୂଜା—ବି. (କ.ଧା) ଆଶ୍ୱିନ ଓ ଚୈତ୍ର ଶୁକ୍ଳାଷ୍ଟମୀ ଓ ନବମୀ ତିଥି ଦ୍ୱୟର ସନ୍ଧି-କ୍ଷଣରେ ଅନୁଷ୍ଠିତ ଦୁର୍ଗାପୂଜା,ମହାଷ୍ଟମୀର ଶେଷଦଣ୍ଡ ଓ ମହାନବମୀର ଆଦ୍ୟ ଦଣ୍ଡର ମଧ୍ୟ କାଳୀନ ଦୁର୍ଗାପୂଜା ।

ସନ୍ଧିବଦ୍ଧ—ବିଂ. (୩ତତ୍) ସନ୍ଧି ସୂତ୍ରରେ ଆବଦ୍ଧ, ପରସ୍ପର ମଧ୍ୟରେ ସନ୍ଧିବନ୍ଧନ ଦ୍ୱାରା ମିଳିତ ।

ସନ୍ଧିବନ୍ଧ—ବି. ଭୂମିଚମ୍ପକ, ଭୂଇଁଚମ୍ପା, ସନ୍ଧିବନ୍ଧନ ଦେଖ ।

ସନ୍ଧିବନ୍ଧନ—ବି.(୩ତତ୍)ସନ୍ଧିଦ୍ୱାରା ପର-ସ୍ପର ସହିତ ମିଳନ, (ବ.ଗ୍ରା) ଶିରା ।

ସନ୍ଧିବା—ଗ୍ରା. କ୍ରି. (ସଂ-ସନ୍ଧାନ)ସନ୍ଧାନ କରିବା, ଖୋଜିବା, ତଲାସିବା, ଶକ୍ତି-ରୂପକ ଅସ୍ତ୍ରର ସନ୍ଧାନ କରିବା, ଶର ସନ୍ଧାନ କରିବା, ଫିଙ୍ଗିବା ପାଇଁ ଶରକୁ ଧନୁରେ ଯୋଚିବା, ସନ୍ଧାଇବା ଦେଖ, ଯୋଜନା କରିବା, ପ୍ରୟୋଗ କରିବା, ଯୋଡ଼ିବା ।

ସନ୍ଧିବାତ—ବି.(କ.ଧା)ଗଣ୍ଠିବାତ,ଦେହର ଗଣ୍ଠିରେ ଜନ୍ମିବା ବାତରୋଗ ।

ସନ୍ଧିବିଗ୍ରହ—ବି. (ଦ୍ୱନ୍ଦ୍ୱ) ସନ୍ଧି ଓ ଯୁଦ୍ଧ ।

ସନ୍ଧିବିଗ୍ରହକ—ବି. ( ସନ୍ଧିବିଗ୍ରହ+କ ) ସାନ୍ଧିବିଗ୍ରହିକ, ରାଜ୍ୟର ସନ୍ଧି ଓ ଯୁଦ୍ଧ ସମ୍ବନ୍ଧେ ଯେଉଁ ସଚିବ ପରାମର୍ଶ ଦିଅନ୍ତି

ସନ୍ଧିବିଗ୍ରହକାୟସ୍ଥ—ପୁଂ. ବି.ସନ୍ଧିବିଗ୍ରହକ

ସନ୍ଧିବିଚ୍ଛେଦ—ବି. ସନ୍ଧିଭଙ୍ଗ ଦେଖ, (ବ୍ୟାକରଣ) ସନ୍ଧିଦ୍ୱାରା ନିଷ୍ପନ୍ନ ପଦର ଭିନ୍ନ ଭିନ୍ନ ଅଂଶକୁ ପୃଥକ୍ କରିବା ।

ସନ୍ଧିବିବନ୍ଧ—ଗ୍ରା.ବି.ବଡ଼ ଓ ଗ୍ରୋଟ ସମସ୍ତ ସନ୍ଧି, ବାହାରର ଓ ଭିତରର ସମସ୍ତ ସ୍ଥାନ, ସାନବଡ଼ ସବୁ ଫାଙ୍କ ।

ସନ୍ଧିବେଳା—ବି. ଦିନ ଓ ରାତିର ମିଳନ କାଳ, ସନ୍ଧ୍ୟା,ତିଥି ଦ୍ୱୟର ମିଳନକାଳ. ଆଶ୍ୱିନ ଓ ଚୈତ୍ରଶୁକ୍ଳାଷ୍ଟମୀ ଓ ଶୁକ୍ଳ-ନବମୀର ଯଥାକ୍ରମେ ଅନ୍ତିମ ଓ ପ୍ରଥମ ଦଣ୍ଡ ।

ସନ୍ଧିଭଙ୍ଗ—ବି. ( ୬ତତ୍ ) ଦୁଇପକ୍ଷଙ୍କ ମଧ୍ୟରେ କରାଯାଇଥିବା ସନ୍ଧିର ଲଙ୍ଘନ, ସନ୍ଧିଚ୍ୟୁତି, ଦେହର ଗଣ୍ଠି ଖସିଯିବା ।

ସନ୍ଧିଭେଦୀ—ପୁଂ. ବି. ତସ୍କରବିଶେଷ, ସିନ୍ଧୁଆଚୋର ।

ସନ୍ଧିମାନ୍—ପୁଂ. ବିଂ. (ସନ୍ଧି + ମତ୍)ସନ୍ଧି-ବିଶିଷ୍ଟ, ସନ୍ଧିଯୁକ୍ତ ।

ସନ୍ଧିରନ୍ଧ୍ରକା—ବି. (ସନ୍ଧି+ରନ୍ଧ୍ର +କୈ ଭା.ଅ+ଆ) ସୁରୁଙ୍ଗା, ସୁଡ଼ଙ୍ଗ, ସିନ୍ଧି ।

ସନ୍ଧିରାଗ—ବି. (ବ.ବ୍ରୀ) ସିନ୍ଦୂର ।

ସନ୍ଧିଲା—ବି. (ସନ୍ଧି+ଲା+କ.ଅ+ଆ) ସୁଡ଼ଙ୍ଗ, ସିନ୍ଧିଗାତ, ନଦୀ, (ଅପ୍ର.ଅ) ମଦିରା ।

ସନ୍ଧିସରତ୍—ଗ୍ରା.ବି.ସନ୍ଧିର ନିୟମମାନ ।

ସନ୍ଧିସ୍ଥଳ—ବି. ଗଣ୍ଠିଜାଗା, ଯୋଡ଼ମୁହଁ, ବିଷମ ଅବସ୍ଥା,ଦୁଇକାଳର ମିଳନକାଳ ।

ସନ୍ଧିହାରକ—ବି.(ସନ୍ଧି+ହୃ+ଅକ)ସନ୍ଧିଆ-ଚୋର,ସନ୍ଧିଚୋର ।

ସନ୍ଧୁକ୍ଷଣ—ବି. (ସମ୍+ଧୁକ୍ଷ୍+ଭା.ଅନ) ଅଗ୍ନି ପ୍ରଜ୍ୱାଳନ, ନିଆଁକୁ ଜଳାଇବା, ନିଆଁକୁ ତେଜିବା, ଉଦ୍ଦୀପନ, ଅଗ୍ନି ଉତ୍ତେଜନ ।

ସନ୍ଧୁକ୍ଷିତ—ବିଂ. (ସମ୍+ଧୁକ୍ଷ୍+ମାଁ.ତ) ପ୍ରଜ୍ୱାଳିତ,ତେଜାଯାଇଥିବା,ଉତ୍ତେଜିତ

ସନ୍ଧେୟ—ବିଂ. ( ସମ୍+ଧା+ମାଁ.ଯ ) ସନ୍ଧି କରିବାର ଯୋଗ୍ୟ, ଯାହା ଅନୁ-ସନ୍ଧାନ କରିବାର ଯୋଗ୍ୟ,ଲକ୍ଷ କରି-ବାର ଉପଯୁକ୍ତ, ମିଳନାର୍ହ ।

ସନ୍ଧ୍ୟ—ବିଂ. ସନ୍ଧିଭବ, ସନ୍ଧିସମ୍ବନ୍ଧୀୟ ।

ସନ୍ଧ୍ୟକ୍ଷର—ବି. ସନ୍ଧିଗତ ଅକ୍ଷର, ସ୍ୱର-ବର୍ଣ୍ଣ ବା ଯୁକ୍ତ ବ୍ୟଞ୍ଜନ ବର୍ଣ୍ଣ, ଏ, ଐ, ଓ, ଔ ।

ସନ୍ଧ୍ୟର୍କ୍ଷ—ବି. (ସନ୍ଧି+ଋକ୍ଷ--ଜ୍ୟୋତିଷ) ଯେଉଁ ନକ୍ଷତ୍ରରେ ଦୁଇଟି ରାଶିର ସନ୍ଧି ହୁଏ, କୃତ୍ତିକାନକ୍ଷତ୍ର ।

ସନ୍ଧ୍ୟବେଳା—ବି. ଊଷା ଓ ସନ୍ଧ୍ୟାକାଳ ।

ସନ୍ଧ୍ୟା—ବି. ( ସନ୍ଧି+ଯ+ଆ, ଅଥବା ସମ୍+ଧ୍ୟୈ+ଅପ୍ର.ଅ+ଆ,ଯେଉଁ ସମ-ୟରେ ଦେବାରାଧନା କରାଯାଏ କିମ୍ବା ସମ୍+ଧା+କ.ଯ+ଆ,ଯାହା ମଙ୍ଗ-ଳକୁ ଧାରଣ କରେ) ଦିବା ଓ ରାତ୍ରିର ସନ୍ଧିକାଳ,ଦିନ ଓ ରାତ୍ରିର ମିଳନ ସମୟ, ପ୍ରାତଃ ସନ୍ଧ୍ୟା ଓ ସାୟଂ ସନ୍ଧ୍ୟାସମୟରେ କର୍ତ୍ତବ୍ୟ ଉପାସନାଦି, ସନ୍ଧ୍ୟାହ୍ନିକ, ସନ୍ଧ୍ୟାବନ୍ଦନା, ପ୍ରାତଃସନ୍ଧ୍ୟା ମଧ୍ୟାହ୍ନ ସନ୍ଧ୍ୟା ଓ ସାୟଂ ସନ୍ଧ୍ୟାକାଳରେ ଉପାସ୍ୟ ଦେବତା,ତ୍ରିସନ୍ଧ୍ୟାରେ ଉପାସ୍ୟ ଦେବ-ତାଙ୍କ ଉଦ୍ଦେଶ୍ୟରେ ଜପାଯିବା ମନ୍ତ୍ର, ଯୁଗସନ୍ଧି, ଦୁଇ ଯୁଗର ମିଳନ କାଳ, ସନ୍ଧ୍ୟାଂଶ, କାଳ, କାଳଦେବତାଙ୍କର ତିନି ସ୍ତ୍ରୀ ମଧ୍ୟରୁ ଏକତମା, ଉପାସନା, ଧ୍ୟାନ, ପ୍ରତିଜ୍ଞା, ସୀମା, ନଦୀବିଶେଷ, ସନ୍ଧ୍ୟାଚଳରୁ ନିର୍ଗତା ନଦୀ,ବୃକ୍ଷବିଶେଷ, ପ୍ରତିଷ୍ଠା,ଚିନ୍ତା,ସଂଯୋଗ,ସନ୍ଧାନ ଦେଖ,(ଲ. ଅର୍ଥ)ଜୀବନର ଅବସାନକାଳ, ମୃତ୍ୟୁର ପୂର୍ବକାଳ,(ଗ୍ରା.ବି) ସନ୍ଧ୍ୟାଦୀପ ଦେଖ, ସାୟଂକାଳ, ଦିବାବସାନ, (ପ୍ରା.ଉତ୍ତର ବାଲେଶ୍ୱର) ବିକାଳ, ଜଳଖିଆ ।

ସନ୍ଧ୍ୟାଆର(ଳ)ତି—ଗ୍ରା. ବି. (ସଂ-ସନ୍ଧ୍ୟା +ଆରାତ୍ରିକ) ସାୟଂକାଳରେ ଦେବ-ତାଙ୍କ ନିକଟରେ ପ୍ରଜ୍ୱାଳିତ ବତୀ ଦ୍ୱାରା ନୀରାଜନା ।

ସନ୍ଧ୍ୟାଂଶ—ବି. ଯୁଗସନ୍ଧି, ଦୁଇଯୁଗର ମଧ୍ୟବର୍ତ୍ତୀ କାଳ, ଯୁଗର ଶେଷକାଳ, ପ୍ରତ୍ୟେକ ଯୁଗର ପ୍ରଥମ ଓ ଶେଷାଂଶ

ସନ୍ଧ୍ୟାକରିବା—ଗ୍ରା. କ୍ରି. ତ୍ରିସନ୍ଧ୍ୟାରେ ଅନୁଷ୍ଠେୟ ଉପାସନା କରିବା, ସନ୍ଧ୍ୟା ବୁଡ଼ାଇବା କୌଣସି କାର୍ଯ୍ୟକୁ ସନ୍ଧ୍ୟା ପର୍ଯ୍ୟନ୍ତ ବିଳମ୍ବ କରିବା ।

ସନ୍ଧ୍ୟାକାଳ—ବି.ସାୟଂକାଳ,ଦିବାବସାନ, ସନ୍ଧ୍ୟାହ୍ନିକ କରିବାର ସମୟ, ତ୍ରିସନ୍ଧ୍ୟା ।

ସନ୍ଧ୍ୟାକାଳୀନ—ବିଂ.(ସନ୍ଧ୍ୟାକାଳ+ଈନ) ସନ୍ଧ୍ୟାକାଳରେ ଘଟିବା ।

ସନ୍ଧ୍ୟାକୃତ୍ୟ—ବି. ସନ୍ଧ୍ୟାହ୍ନିକ ଦେଖ ।

ସନ୍ଧ୍ୟାଗମ—ବି. (୬ତତ୍ପୁ) ସନ୍ଧ୍ୟାର ପୂର୍ବବର୍ତ୍ତୀକାଳ,ସୂର୍ଯ୍ୟାସ୍ତର ପୂର୍ବବର୍ତ୍ତୀ ସମୟ।

ସନ୍ଧ୍ୟାଗାୟତ୍ରୀ—ବି.ତ୍ରିସନ୍ଧ୍ୟାରେ ଉପାସ୍ୟ ଦେବତାତ୍ରୟ (ଗାୟତ୍ରୀ, ସାବିତ୍ରୀ, ସରସ୍ୱତୀ)।

ସନ୍ଧ୍ୟାଚଳ—ବି. ପୁରାଣୋକ୍ତ ପର୍ବତବିଶେଷ।

ସନ୍ଧ୍ୟାଦର୍ଶନ- ଗ୍ରା.ବି.ଆଷାଢ଼ ଶୁକ୍ଳନବମୀ ଦିନ ସନ୍ଧ୍ୟାବେଳେ ଗୁଣ୍ଡିଚାଘରେ ଜଗନ୍ନାଥ ମହାପ୍ରଭୁଙ୍କ ଦର୍ଶନ।

ସନ୍ଧ୍ୟାଦୀପ—ବି.(କ.ଧା) ସଞ୍ଜଦୀପ,ସାୟଂକାଳରେ ଗୃହରେ ବା ଦେବମନ୍ଦିରରେ ପ୍ରଜ୍ୱାଳିତ ପ୍ରଦୀପ।

ସନ୍ଧ୍ୟାଦେବା—ଗ୍ରା. କ୍ରି. ସନ୍ଧ୍ୟାବେଳେ ଘରେ ବା ଦେବମନ୍ଦିରରେ ବା ତୁଳସୀଚଉରା ମୂଳେ ଆଲୋକ ଜାଳିବା।

ସନ୍ଧ୍ୟାଧୂପ—ଗ୍ରା. ବି. ସଞ୍ଜଧୂପ ଦେଖ।

ସନ୍ଧ୍ୟାନାଟୀ—ପୁଂ. ବି.(ସନ୍ଧ୍ୟା+ନଟ୍+କ.ଇନ୍) ଶିବ, ମହାଦେବ।

ସନ୍ଧ୍ୟାପହର—ଗ୍ରା.ବି.ସାୟଂକାଳର ପରବର୍ତ୍ତୀ ପ୍ରହର, ରାତ୍ରିର ପ୍ରଥମ ପ୍ରହର।

ସନ୍ଧ୍ୟାପୁଷ୍ପୀ—ବି. (ସନ୍ଧ୍ୟା+ପୁଷ୍ପ+ଈ) ଜାଈ, ଜାଇଫୁଲ।

ସନ୍ଧ୍ୟାବର୍ତ୍ତି(ବଳିତା)—ଗ୍ରା. ବି. ସନ୍ଧ୍ୟାବେଳେ ଗୃହରେ ବା ଦେବମନ୍ଦିରରେ ଜଳାଯିବା ବର୍ତ୍ତିକା।

ସନ୍ଧ୍ୟାବନ୍ଦନ(ନା)—ବି. ତ୍ରିସନ୍ଧ୍ୟାରେ ଅନୁଷ୍ଠେୟ ଉପାସନାଦି।

ସନ୍ଧ୍ୟାବଳ-ବି.(ବ.ବ୍ରୀ)ରାକ୍ଷସ, ନିଶାଚର।

ସନ୍ଧ୍ୟାବଳି—ବି.ଶିବାଳୟସ୍ଥ ପାଷାଣ ମୃତ୍ତ କାଷ୍ଠାଦି ନିର୍ମିତ ବୃଷ ପ୍ରତିମା।

ସନ୍ଧ୍ୟାବନ୍ଦ୍ୟା—ସ୍ତ୍ରୀ. ବି. ବରଦାଦେବୀ।

ସନ୍ଧ୍ୟାବେଳ—ଗ୍ରା.ବି.ସନ୍ଧ୍ୟାସମୟ,ସୂର୍ଯ୍ୟାସ୍ତର ପରବର୍ତ୍ତୀ କାଳ।

ସନ୍ଧ୍ୟାଭ୍ର—ବି.(ବ.ବ୍ରୀ)ସୁବର୍ଣ୍ଣ ଗୈରିକ, (୬ତତ୍ପୁ) ସନ୍ଧ୍ୟାକାଳୀନ ମେଘ।

ସନ୍ଧ୍ୟାଭ୍ରମ—ବି. ମେଘ ଘୋଡ଼ାଇବା ଯୋଗୁଁ ସନ୍ଧ୍ୟା ନହେଉଣୁ ସନ୍ଧ୍ୟା ହେଲା ବୋଲି ମନରେ ଜନ୍ମିବା ଭ୍ରମ।

ସନ୍ଧ୍ୟାମଣି—ଗ୍ରା.ବି.କୃଷ୍ଣକେଳିଫୁଲ, ରକ୍ତବର୍ଣ୍ଣ ପୁଷ୍ପବିଶେଷ, ରଙ୍ଗଣୀଫୁଲ।

ସନ୍ଧ୍ୟାମୁଖ—ବି.(୬ତତ୍ପୁ) ସନ୍ଧ୍ୟାର ଆରମ୍ଭ ବେଳା।

ସନ୍ଧ୍ୟାର(ରା)ତ୍ରିକ—ବି. (କ.ଧା)ସନ୍ଧ୍ୟାକାଳୀନ ଆଳତି, ଦେବମନ୍ଦିରରେ ପ୍ରାତଃ ସନ୍ଧ୍ୟା ଓ ସାୟଂ ସନ୍ଧ୍ୟାରେ କରାଯିବା ଆରତ୍ରିକ।

ସନ୍ଧ୍ୟାରାଗ—ବି.(ବ.ବ୍ରୀ)ସିନ୍ଦୂର,ସକାଳେ ପୂର୍ବାକାଶରେ ସୂର୍ଯ୍ୟୋଦୟ ପୂର୍ବରୁ ଓ ସନ୍ଧ୍ୟାବେଳେ ପଶ୍ଚିମାକାଶରେ ସୂର୍ଯ୍ୟାସ୍ତ ପରେ ଦେଖାଯିବା ଅରୁଣିମା।

ସନ୍ଧ୍ୟାରାମ—ବି. (ବ.ବ୍ରୀ)ପ୍ରଜାପତି,ବ୍ରହ୍ମା।

ସନ୍ଧ୍ୟାଶଙ୍ଖଧ୍ୱନି—ବି. ସନ୍ଧ୍ୟାକାଳୀନ ଶଙ୍ଖ ଶବ୍ଦ।

ସନ୍ଧ୍ୟାହ୍ନିକ—ବି.(ସନ୍ଧ୍ୟା+ଆହ୍ନିକ)ସନ୍ଧ୍ୟାବନ୍ଦନା, ତ୍ରିସନ୍ଧ୍ୟାରେ ଅନୁଷ୍ଠେୟ ଉପାସନାଦି।

ସନ୍ନ—ପୁଂ. ବିଂ. (ସଦ୍+କ.ତ) କ୍ଷୀଣ, ମ୍ଳାନ, ରହିତ, ଅବସନ୍ନ, ଗତ, ନଷ୍ଟ, ଜଡ଼ ଓ ସ୍ଥାବର ଭଗ୍ନୋତ୍ସାହ, (ସ୍ତ୍ରୀ) ସନ୍ନା, (ବି) ପିୟାଳବୃକ୍ଷ।

ସନ୍ନକ—ପୁଂ. ବିଂ. (ସନ୍ନ+କ) ଖର୍ବ, (ସ୍ତ୍ରୀ)ସନ୍ନିକା।

ସନ୍ନକଦ୍ରୁ—ପୁଂ. ବି. ପିୟାଳ ବୃକ୍ଷ।

ସନ୍ନତ—ବିଂ.(ସମ୍+ନମ୍+କ.ତ)ପ୍ରଣତ, ଶବ୍ଦିତ, ଧ୍ୱନିତ, ବଳିତ।

ସନ୍ନତି—ବି.(ସମ୍+ନମ୍+ଭା.ତି)ଅବନତି, ପ୍ରଣତି, ପ୍ରଣାମ, ନମ୍ରତା, ନମ୍ରଭାବ, ବିନୟ, ଧ୍ୱନି, ହୋମବିଶେଷ।

ସନ୍ନତିମାନ୍—ପୁଂ. ବିଂ. (ସନ୍ନତି+ମତ୍) ସନ୍ନତିବିଶିଷ୍ଟ, (ପୁଂ.ବି)ସୁମତିର ପୁତ୍ର।

ସନ୍ନତେୟୁ—ପୁଂ. ବି. ରୌଦ୍ରାଶ୍ୱର ପୁତ୍ରବିଶେଷ।

ସନ୍ନଦ୍ଧ—ବିଂ. (ସମ୍+ନହ୍+ର୍ମ.ତ) ସନ୍ନାହବିଶିଷ୍ଟ, ବର୍ମିତ, ସାଞ୍ଜୁପିନ୍ଧିଥିବା, କବଚବଦ୍ଧ, କୃତସନ୍ନାହ, ସାଜସଜ୍ଜା ପରିହିତ, ଶସ୍ତ୍ରସଜ୍ଜିତ, ପୋଷାକ ପିନ୍ଧିଥିବା, ବ୍ୟୂହିତ, ବ୍ୟୂହ ବିନ୍ୟାସଯୁକ୍ତ, ବ୍ୟୂଢ଼, ଶ୍ରେଣୀବଦ୍ଧ, ବଦ୍ଧ, ସମ୍ବଦ୍ଧ, ଉତ୍ପନ୍ନ, ଆତତାୟୀ ବଧାର୍ଥ ଉଦ୍ୟତ, ଯାହାର ବାହୁରେ କବଚ ବା ଡେଉଁରିଆ ବନ୍ଧାହୋଇଅଛି, ମନ୍ତ୍ରାଦି ସଂଯୁକ୍ତ, ମନ୍ତ୍ରାଦି ରକ୍ଷିତ,ଅଭିମନ୍ତ୍ରିତ,(ସ୍ତ୍ରୀ)ସନ୍ନଦ୍ଧା।

ସନ୍ନଦ୍ଧବ୍ୟ—ବିଂ.(ସମ୍+ନହ୍+ତବ୍ୟ) ସନ୍ନାହ ଯୋଗ୍ୟ, ସନ୍ନାହ୍ୟ।

ସନ୍ନଭାବ—ବି. ଅବସନ୍ନତା, ଭୀରୁତା।

ସନ୍ନମନ—ବି. (ସମ୍+ନମ୍+ଭା.ଅନ) ତଳକୁ ନୁଆଁଇବା, (ବିଂ) ସନ୍ନମିତ।

ସନ୍ନୟ—ବି. (ସମ୍+ନୀ+ର୍ମ.ଅ) ସମୂହ, ପଶ୍ଚାଦ୍‌ଭାଗସ୍ଥ ସୈନ୍ୟ।

ସନ୍ନହନ-ବି.(ସମ୍+ନହ୍+ଭା.ଅନ)ବର୍ମପରିଧାନ, ଦେହରେ ଅସ୍ତ୍ର ବାନ୍ଧିବା, ଅସ୍ତ୍ରବନ୍ଧନ, ରଣସଜ୍ଜା, ଉଦ୍‌ଯୋଗ।

ସନ୍ନା—ସ୍ତ୍ରୀ.ବିଂ. (ସନ୍ନ+ଆ) ଅବସାଦଗ୍ରସ୍ତା, କ୍ଷୀଣା, ମ୍ଳାନା। [ ଶବ୍ଦ।]

ସନ୍ନାଦ—ବି. (ସମ୍+ନଦ+ଅ) ଘୋଷଣ

ସନ୍ନାଦନ—ବିଂ.ସନ୍ନାଦକାରୀ, ଶବ୍ଦକାରୀ, (ବି) ସମ୍ୟକ୍ ନାଦ, ସମ୍ୟକ୍ ଶବ୍ଦ।

ସନ୍ନାମ—ବି.(ସମ୍+ନମ୍+ଭା.ଅ)ନମ୍ରତା, (ସତ୍+ନାମ) ଉତ୍ତମ ନାମ।

ସନ୍ନାମା—ବିଂ. (ସତ୍+ନାମନ୍) ବ.ବ୍ରୀ; ଉତ୍ତମ ନାମଯୁକ୍ତ।

ସନ୍ନାହ—ବି.(ସମ୍+ନହ୍+ଣ ବା ର୍ମ.ଅ) କବଚ, ସାଞ୍ଜୁ, ବର୍ମ, ପୋଷାକ, ସାଜସଜ୍ଜା, (ଭା.ଅ) ଉଦ୍ୟୋଗ।

ସନ୍ନାହ୍ୟ—ବିଂ. (ସନ୍ନାହ+ଯ) ସନ୍ନଦ୍ଧ ହେବାର ଯୋଗ୍ୟ, ବର୍ମିତ, (ବି)ଯୁଦ୍ଧଯୋଗ୍ୟ ହସ୍ତୀ।

ସନ୍ନିକଟ—ବିଂ. ଅତିନିକଟ, ଲଗାଲଗି, ଆସନ୍ନ।

ସନ୍ନିକର୍ଷ—ବି. (ସମ୍+ନି+କୃଷ୍+ଭା.ଅ)ସାନ୍ନିଧ୍ୟ, ନୈକଟ୍ୟ,(କ.ଅ) ଇନ୍ଦ୍ରିୟ ଗୋଚର ବିଷୟ, ବିଷୟେନ୍ଦ୍ରିୟ ସମ୍ବନ୍ଧ, (ନ୍ୟାୟ)ସାମାନ୍ୟ ଲକ୍ଷଣା, ଜ୍ଞାନଲକ୍ଷଣା, ଯୋଗଜ—ଏହି ତ୍ରିବିଧ ଅଲୌକିକ ପ୍ରତ୍ୟକ୍ଷ ସାଧନ ଉପାୟ।

ସନ୍ନିକର୍ଷଣ—ବି. (ସମ୍+ନି+କୃଷ୍+

ଭା.ଅନ) ସନ୍ନିଧାନ, ସମ୍ବନ୍ଧ, ସନ୍ନିଧି ।

ସନ୍ନିକାଶ—ବି. ଜ୍ୟୋତିର୍ଦ୍ଧାନ, ସମ୍ୟକ୍ ବିକାଶ ।

ସନ୍ନିକୃଷ୍ଟ—ବିଂ. (ସମ୍+ନି+କୃଷ୍+ ର୍ମ.କ୍ତ) ସନ୍ନିହିତ, ଅତି ନିକଟବର୍ତ୍ତୀ, ସମୀପସ୍ଥ ।

ସନ୍ନିଗ୍ରହ—ବି(ସମ୍+ନିଗ୍ରହ)ଗୁରୁ ଦଣ୍ଡ-ଦାନ, ସଜାଦେବା ।

ସନ୍ନିଚୟ—ବି. (ସମ୍+ନି+ଚି+ଅ) ସମ୍ୟକ୍ ରୂପେ ସଞ୍ଚୟ ।

ସନ୍ନିଦାଘ—ବି. ନିଦାଘ ।

ସନ୍ନିଧ—ବି. (ସମ୍+ନି+ଧା+ଭା.ଅ) ସନ୍ନିଧାନ ଦେଖ, (ବିଂ) ସମୀପସ୍ଥ, ନିକଟବର୍ତ୍ତୀ ।

ସନ୍ନିଧାତା—ପୁଂ. ବି.ବିଂ. (ସମ୍+ନି+ ଧା+କ.ତୃ) କର୍ତ୍ତା, (ସ୍ତ୍ରୀ) ଧାତ୍ରୀ ।

ସନ୍ନିଧାନ—ବି. (ସମ୍+ନି+ଧା+ଭା. ଅନ) ସାମୀପ୍ୟ, ନୈକଟ୍ୟ, ଆବିର୍ଭାବ, ସ୍ଥିତି, ସମାଗମ, (ଅଧି.ଅନ) ଇନ୍ଦ୍ରିୟ-ଗୋଚର ବିଷୟ, (ର୍ମ.ଅନ) ଆଶ୍ରୟ, (ତନ୍ତ୍ର) ସାଧୁମାନଙ୍କର ସ୍ଥାନ, (କ.ଧା) ଉତ୍ତମ ନିଧି ।

ସନ୍ନିଧାପନ—ବି. (ସମ୍+ନି+ଧା.ଣିଚ୍ +ଭା.ଅନ) ସଂସ୍ଥାପନ, ରଖିବା, ନିକ-ଟରେ ରଖିବା ।

ସନ୍ନିଧାପନୀ—ବି. (ସମ୍+ନି+ଧା.ଣିଚ୍ +ଣ.ଅନ+ଈ)ମୁଦ୍ରାବିଶେଷ, ଅଙ୍ଗୁଷ୍ଠ (ବୁଢ଼ା ଅଙ୍ଗୁଳି)ଉଚ୍ଚ କରି ମୁଷ୍ଟିବଦ୍ଧ ହସ୍ତ ଦ୍ୱୟର ସଂଯୋଗ ।

ସନ୍ନିଧି—ବି. (ସମ୍+ନି+ଧା+ଭା.ଇ) ସାମୀପ୍ୟ, ସନ୍ନିଧାନ, ( କ.ଧା; ସତ୍+ ନିଧି) ଉତ୍ତମନିଧି, ସମ୍ପଦ, ଅବସ୍ଥାନ, ଇନ୍ଦ୍ରିୟଗ୍ରାହ୍ୟ ବିଷୟ ।

ସନ୍ନିନ(ନା)ଦ—ବି. ( ସମ୍+ନିନଦ. ନିନାଦ) ଘୋରରବ, ଉଚ୍ଚସ୍ୱର ।

ସନ୍ନିପତନ—ବି. ( ସମ୍+ନିପତନ ) ସନ୍ନିପାତ ଦେଖ ।

ସନ୍ନିପତିତ—ବିଂ. ( ସମ୍+ନିପତିତ ) ସମ୍ୟକ୍ ରୂପେ ନିପତିତ, ଉପସ୍ଥିତ, ଆଗତ, ସମ୍ମିଳିତ, ମିଶ୍ରିତ, ଅବତୀର୍ଣ୍ଣ, ମୃତ, ଏକୀକୃତ ।

ସନ୍ନିପାତ—ବି. (ସମ୍+ନି+ପତ୍+ଭା. ଅ) ସମ୍ୟକ୍ ରୂପେ ପତନ, ବିନାଶ, ଅବତରଣ, ଉପସ୍ଥିତି, ସମୂହ, ସମୂହର ମିଳନ, (ଅଧି.ଅ) ଯୁଦ୍ଧ, ସଂଗ୍ରାମ, ସନ୍ଧି, ବାତ ପିତ୍ତ କଫର ପ୍ରକୋପଜନିତ ତ୍ରିଦୋଷଜ ବିକାର, ଜ୍ୱର ରୋଗର ମାରତ୍ମକ ଅବସ୍ଥା, ବାତ ପିତ୍ତ କଫ ଏ ତ୍ରିଦୋଷର ମିଳନ ।

ସନ୍ନିପାତନ—ବି. ସନ୍ନିପାତ ଦେଖ ।

ସନ୍ନିପାତନାଡ଼ୀ—ସ୍ତ୍ରୀ.ବି. ରୋଗବିଶେଷ, ଦନ୍ତ ମୂଳଗତ ରୋଗ ।

ସନ୍ନିପାତନୁତ୍—ବି. (ସନ୍ନିପାତ+ନୁଦ୍ +କ୍ୱିପ୍) ନେପାଳ ନିମ୍ବ ।

ସନ୍ନିପାତମୃତ୍ୟୁ—ଗ୍ରା.ବି. ବାତ ପିତ୍ତ କଫ ତ୍ରିଦୋଷରେ ଆକ୍ରାନ୍ତ ରୋଗୀ ।

ସନ୍ନିପାତୀ—ପୁଂ.ବିଂ.(ସନ୍ନିପାତ+ଇନ୍) ସନ୍ନିପାତ ରୋଗଗ୍ରସ୍ତ, (ସ୍ତ୍ରୀ)ପାତିନୀ ।

ସନ୍ନିପାତ୍ୟ—ବିଂ.(ସମ୍+ନି+ପତ୍+ଘ ସନ୍ନିପାତ ଯୋଗ୍ୟ, ନିପାତନାର୍ହ ।

ସନ୍ନିବଦ୍ଧ—ବିଂ. ( ସମ୍+ନି+ବନ୍ଧ୍+ ର୍ମ.କ୍ତ) ଦୃଢ଼ ଭାବରେ ବଦ୍ଧ, ସମ୍ୟକ୍ ବନ୍ଧନଯୁକ୍ତ, ଗ୍ରଥିତ, ଘନ ଭାବରେ ଶ୍ରେଣୀବଦ୍ଧ, ରଚିତ ।

ସନ୍ନିବନ୍ଧ—ବି. (ସମ୍+ନି+ବନ୍ଧ୍+ଭା. ଅ) ସନ୍ନିବେଶ, ଦୃଢ଼ବନ୍ଧନ, ଗୁନ୍ଥା, ପ୍ରବନ୍ଧ ରଚନା ।

ସନ୍ନିବନ୍ଧନ—ବି. (ସମ୍+ନି+ବନ୍ଧ୍+ ଭା.ଅନ)ସଂକଳନ, ଗ୍ରଥନ, ଦୃଢ଼ବନ୍ଧନ, ରଚନା, ଶୃଙ୍ଖଳା, ବିନ୍ୟାସ, ସୁଶୃଙ୍ଖଳ ବିନ୍ୟାସ, (ବିଂ.ବ.ବ୍ରୀ) ଉତ୍ତମ ଭାଷ୍ୟ-ଗ୍ରନ୍ଥଯୁକ୍ତ, ଉତ୍ତମ ପ୍ରୀତିଦାନଯୁକ୍ତ ।

ସନ୍ନିବପନ—ବି.(ସମ୍+ନିବପନ)ଉତ୍ତମ ରୂପେ ବୁଣିବା ।

ସନ୍ନିବାୟ—ବି.ସମୁଦାୟ,ସମଷ୍ଟି,ସମୂହ ।

ସନ୍ନିବର୍ତ୍ତନ—ବି. ପ୍ରତ୍ୟାବର୍ତ୍ତନ, ସମ୍ୟକ୍ ରୂପେ ଫେରିବା ।

ସନ୍ନିବାରଣ-ବି.ସମ୍ୟକ୍ ରୂପେ ନିବାରଣ

ସନ୍ନିବାର୍ଯ୍ୟ—ବିଂ. ସନ୍ନିବାରଣ ଯୋଗ୍ୟ, ସମ୍ୟକ୍ ରୂପେ ନିବାରଣ କରିବାର ଉପଯୁକ୍ତ ।

ସନ୍ନିବାସ—ବି.(ସମ୍+ନି+ବସ୍+ଅ) ସମ୍ୟକ୍ ନିବାସ, ବସ୍ତି ।

ସନ୍ନିବିଷ୍ଟ—ବିଂ.(ସମ୍+ନି+ବିଶ୍+କ. କ୍ତ) ଉପବିଷ୍ଟ, ଗୃହୀତାସନ, ସମ୍ମୁଖରେ ଉପସ୍ଥିତ, ନିକଟସ୍ଥ, ସମୀପ, ସଂଲଗ୍ନ, ମନୋଯୋଗୀ ।

ସନ୍ନିବୃତ୍ତ—ବିଂ. (ସମ୍+ନି+ବୃତ୍+ କ.କ୍ତ) ବିରତ, ନିବୃତ୍ତ, ଅପଗତ, ପ୍ରତ୍ୟାଗତ ।

ସନ୍ନିବୃତ୍ତି—ବି. (ସମ୍+ନି+ବୃତ୍+ଭା. କ୍ତି) ବିରତି, ନିବୃତ୍ତି, ଅପଗମ,ପ୍ରତ୍ୟା-ଗମନ ।

ସନ୍ନିବେଶ—ବି. (ସମ୍+ନି+ବିଶ୍+ ଅଧି.ଅ) ଆଶ୍ରମ, ସ୍ଥାନ, ନୈକଟ୍ୟ, ନଗରାଦିର ବହିଃସ୍ଥ ବିହାର ସ୍ଥାନ,ନଗ-ରର ବହିଃସ୍ଥ ପ୍ରଦେଶ, (ଭା.ଅ) ସମଷ୍ଟି, ସ୍ଥିତି, ବିନ୍ୟାସ,ସଂଗ୍ରହ,ସ୍ଥାପନ,ସଂଯୋଗ, ମିଳନ, ରଚନ, ବସାଇବା, (ସମ୍+ ନି+ବିଶ୍+ଣିଚ୍+ଭା.ଅ) ଭିତରକୁ ପ୍ରବେଶ କରାଇବା ।

ସନ୍ନିବେଶନ—ବି. (ସମ୍+ନି+ବିଶ୍+ ଅନ) ସନ୍ନିବେଶ ଦେଖ ।

ସନ୍ନିବେଶୀ—ବିଂ. (ସମ୍+ନି+ବିଶ୍+ ଇନ୍) ସନ୍ନିବେଶଯୁକ୍ତ ।

ସନ୍ନିବେଶ୍ୟ—ବିଂ. ସନ୍ନିବେଶ ଯୋଗ୍ୟ, ସନ୍ନିବେଶର ଉପଯୁକ୍ତ ।

ସନ୍ନିବୋଦ୍ଧବ୍ୟ—ବିଂ. (ସମ୍+ନି+ବୁଧ୍ +ତବ୍ୟ) ସନ୍ନିବୋଧଯୁକ୍ତ, ସନ୍ନି-ବୋଧାର୍ହ ।

ସନ୍ନିଭ—ବିଂ.(ସମ୍+ନି+ଭା+କ.ଅ) ତୁଲ୍ୟ, ସଦୃଶ ।

ସନ୍ନିମିତ୍ତ—ବି.ସାଧୁନିମିତ୍ତ,ଉତ୍ତମନିମିତ୍ତ, ସାଧପ୍ରୟୋଜନ ।

ସନ୍ନିୟନ୍ତା—ପୁଂ. ବିଂ. (ସମ୍+ନି+ ଯମ୍+ତୃ) ସମ୍ୟକ୍ ନିୟନ୍ତା, ସମ୍ୟକ୍-ରୂପେ ନିୟମକାରୀ ।

ସନ୍ନିୟମ—ବି. (ସମ୍+ନି+ୟମ୍+ଅ) ସମ୍ୟକ୍‌ରୂପେ ନିୟମ।

ସନ୍ନିଯୋଗ—ବି. (ସମ୍+ନି+ଯୁଜ୍+ଅ) ସମ୍ୟକ୍‌ରୂପେ ନିୟୋଗ।

ସନ୍ନିରୁଦ୍ଧ—ବିଂ. (ସମ୍+ନି+ରୁଧ୍+ମିଁ.ତ) ଉତ୍ତମରୂପେ ନିରୁଦ୍ଧ, ବଦ୍ଧ, କୃତାବରୋଧ।

ସନ୍ନିରୁଦ୍ଧଗୁଦ—ବି. (ବ.ବ୍ରୀ) ଦାରୁଣ କୋଷ୍ଠକାଠିନ୍ୟ ରୋଗବିଶେଷ।

ସନ୍ନିରୋଧ—ବି.(ସମ୍+ନି+ରୁଧ୍+ଅ) ସମ୍ୟକ୍‌ରୂପେ ନିରୋଧ।

ସନ୍ନିରୋଧବ୍ୟ—ବିଂ. (ସମ୍+ନି+ରୁଧ୍+ତବ୍ୟ)ସମ୍ୟକ୍‌ରୂପେ ନିରୋଧଯୋଗ୍ୟ, ନିରୋଧର ଉପଯୁକ୍ତ।

ସନ୍ନିଶ୍ଚିତ—ବି. ସମ୍ୟକ୍‌ରୂପେ ନିଶ୍ଚିତ।

ସନ୍ନିଷେବ୍ୟ—ବିଂ. (ସମ୍+ନି+ସେବ୍+ଯ) ସମ୍ୟକ୍ ପ୍ରକାରେ ସେବାର ଯୋଗ୍ୟ।

ସନ୍ନିସର୍ଗ—ବି. ସମ୍ୟକ୍ ନିସର୍ଗ।

ସନ୍ନିହତି—ସ୍ତ୍ରୀ. ବି. ସନ୍ନିଧି।

ସନ୍ନିହିତ—ବିଂ. (ସମ୍+ନି+ଧା+ମିଁ.ତ) ସନ୍ନିବେଶିତ, ସଂସ୍ଥାପିତ, ସମୀପସ୍ଥ, ନିକଟବର୍ତ୍ତୀ, ଦୃଢ଼ରୂପେ ସ୍ଥାପିତ, (ବି-ଭା.ତ) ସନ୍ନିଧାନ, ଅଗ୍ନିବିଶେଷ।

ସନ୍ନିହିତପ୍ରାୟ—ବିଂ. କ୍ଷଣିକ, ସ୍ୱଳ୍ପକ୍ଷଣସ୍ଥାୟୀ।

ସନ୍ନୃତ୍ୟ—ବି. ସମ୍ୟକ୍‌ରୂପେ ନୃତ୍ୟ।

ସନ୍ନେୟ—ବିଂ.ସମ୍ୟକ୍ ନୟନଯୋଗ୍ୟ।

ସନ୍ନୋଦୟିତବ୍ୟ—ବିଂ. ସମ୍ୟକ୍‌ପ୍ରକାରେ ଉଦୟର ଯୋଗ୍ୟ।

ସନ୍ନ୍ୟସନ—ବି. (ସମ୍+ନି+ଅସ୍+ଅନ) ତ୍ୟାଗ, ସମର୍ପଣ।

ସନ୍ନ୍ୟସ୍ତ—ବିଂ. (ସମ୍+ନି+ଅସ୍+ମିଁ.ତ) ଗଚ୍ଛିତ, ସଂରକ୍ଷିତ, ସମର୍ପିତ, ନିକ୍ଷିପ୍ତ, ତ୍ୟକ୍ତ, (ସ୍ତ୍ରୀ) ସନ୍ନ୍ୟସ୍ତା।

ସନ୍ନ୍ୟାସ—ବି. (ସମ୍+ନି+ଅସ୍+ଭା.ଅ) ସଂସାରବାସନା ତ୍ୟାଗ, ଭିକ୍ଷୁଧର୍ମ, ନିଷ୍କାମକର୍ମ, କାମ୍ୟକର୍ମ ପରିତ୍ୟାଗ, ହିନ୍ଦୁଙ୍କର ଚତୁର୍ଥ ଆଶ୍ରମ, ନିକ୍ଷେପ, ସମର୍ପଣ, ଗଚ୍ଛିତ ରଖିବା, (ମିଁ.ଅ) ଗଚ୍ଛିତ ଧନ, ଦେହତ୍ୟାଗ, ହଠାତ୍ ମୃତ୍ୟୁ. ସନ୍ନ୍ୟାସ ରୋଗ ଦେଖ, ତ୍ୟାଗ, ଜଟାମାଂସୀ, ଶିବ।

ସନ୍ନ୍ୟାସଗ୍ରହଣ—ବି. (୬ତତ୍) ଗୃହସ୍ଥଧର୍ମ ପରିତ୍ୟାଗ ପୂର୍ବକ ସନ୍ନ୍ୟାସବ୍ରତ ଅବଲମ୍ବନ।

ସନ୍ନ୍ୟାସଧର୍ମ—ସଂସାର ବାସନା ପରିତ୍ୟାଗ ପୂର୍ବକ ଯୋଗସାଧନାରୂପ ଧର୍ମ।

ସନ୍ନ୍ୟାସବାନ୍—ପୁଂ. ବିଂ. (ସନ୍ନ୍ୟାସ+ବତ୍) ସନ୍ନ୍ୟାସୀ, ସନ୍ନ୍ୟାସବିଶିଷ୍ଟ, ସନ୍ନ୍ୟାସ ରୋଗୀ।

ସନ୍ନ୍ୟାସନ—ବି. (ସମ୍+ନି+ଅସ୍+ଭା. ଅନ)ସଂସାର ତ୍ୟାଗକରିବା,ଅନ୍ୟବ୍ୟକ୍ତି ନିକଟରେ ଧନାଦି ଗଚ୍ଛିତ ରଖିବା, ନିକ୍ଷେପ କରିବା, ତ୍ୟଜନ।

ସନ୍ନ୍ୟାସରୋଗ—ବି. ମାରାତ୍ମକ ମୂର୍ଚ୍ଛାରୋଗ ବିଶେଷ।

ସନ୍ନ୍ୟାସାଶ୍ରମ—ବି.(ରୂପକ)ହିନ୍ଦୁର ଚତୁର୍ଥ ଆଶ୍ରମ, ଭିକ୍ଷୁଧର୍ମ।

ସନ୍ନ୍ୟାସିନୀ—ସ୍ତ୍ରୀ. ବିଂ. (ସନ୍ନ୍ୟାସ+ଇନ୍+ଈ)ସନ୍ନ୍ୟାସଧର୍ମଗ୍ରହଣକାରିଣୀ,ସଂସାରବିରାଗିଣୀ, (ବି) ସନ୍ନ୍ୟାସାବଲମ୍ବିନୀ ନାରୀ, ସଂସାରତ୍ୟାଗିନୀ ନାରୀ।

ସନ୍ନ୍ୟାସୀ—ପୁଂ. ବିଂ. (ସମ୍+ନି+ଅସ୍+କ.ଇନ୍) ସଂସାର ବିରାଗୀ,ସଂସାରବିରକ୍ତ, (ସ୍ତ୍ରୀ) ସନ୍ନ୍ୟାସିନୀ,(ବି)ସଂସାରବିରାଗୀ ବ୍ୟକ୍ତି, ଯେ ସଂସାର ଆଶ୍ରମ ଓ ବାନପ୍ରସ୍ଥ ଆଶ୍ରମ ତ୍ୟାଗକରି ଭିକ୍ଷୁହୋଇ ଥାଆନ୍ତି. ଭିକ୍ଷୁ, ଯୋଗୀ, ବୌଦ୍ଧଭିକ୍ଷୁ, ବାରାଣସୀ ଜିଲ୍ଲାବାସୀ ଏକଜାତୀୟ ଗୃହସ୍ଥ

ସନ୍ମଙ୍ଗଳ—ବିଂ. ସାଧୁ ଓ ମଙ୍ଗଳଜନକ।

ସନ୍ମଣି—ବି. ସଦ୍‌ରତ୍ନ, ଉତ୍ତମ ମଣି।

ସନ୍ମତ—ଗ୍ରା. ବି. (ସଂ-ସମ୍ମତ) ସମ୍ମତ, ସ୍ୱୀକାର, ରାଜି, ଅଙ୍ଗୀକାର।

ସନ୍ମତି—ବି. (କ.ଧା) ଉତ୍ତମ ବୁଦ୍ଧି, (ଗ୍ରା. ବିଂ ଓ ବି) ସମ୍ମତ ଦେଖ।

ସନ୍ମତେ—ଗ୍ରା. କ୍ରି. ବିଂ. ସମ୍ମତକ୍ରମେ।

ସନ୍ମନ୍ତ୍ର—ବି. ସାଧୁମନ୍ତ୍ର, ଉତ୍ତମ ମନ୍ତ୍ର।

ସନ୍ମାନ—ଗ୍ରା. ବି. (ସଂ-ସମ୍ମାନ) ସମ୍ମାନ ଦେଖ, (ବି-୬ତତ୍) ସଦ୍‌ବ୍ୟକ୍ତିଙ୍କ ପ୍ରଦର୍ଶିତ ମର୍ଯ୍ୟାଦା, (୭ତତ୍) ସଦ୍‌ବ୍ୟକ୍ତିଙ୍କୁ ପ୍ରଦର୍ଶିତ ସମ୍ମାନ।

ସନ୍ମାର୍ଗ—ବି. (ସତ୍+ମାର୍ଗ-କ.ଧା; ଲ.ଅର୍ଥ)ସତ୍‌ପନ୍ଥା,ସଦାଚାର.ସଦୁପାୟ, ସାଧୁମାନଙ୍କର ଅନୁସୃତ ପନ୍ଥା।

ସନ୍ମାର୍ଗୀ—ପୁଂ. ବିଂ. (ସନ୍ମାର୍ଗ+ଇନ୍) ସତ୍‌ପଥାବଲମ୍ବୀ, ଧର୍ମପଥରେ ବିଚରଣକାରୀ, ସାଧୁଶୀଳ।

ସନ୍ମିତ୍ର—ବି. (କ.ଧା)ଉତ୍ତମ ବନ୍ଧୁ,ପ୍ରକୃତ ଉପକାରୀ ବନ୍ଧୁ।

ସନ୍ମିଳନ—ଗ୍ରା.ବି. ସମ୍ମିଳନ ଦେଖ,(ବି. ୬ତତ୍) ସାଧୁମାନଙ୍କ ମିଳନ।

ସନ୍ମୁଖ—ଗ୍ରା. ବି.( ସଂ—ସମ୍ମୁଖ ) ସମ୍ମୁଖ ଦେଖ, (ଗ୍ରା.ବିଂ)ସାମନାରେ ଥିବା।

ସନ୍ମୁନି—ପୁଂ.ବି. ଉତ୍ତମ ମୁନି,ଦୈବଜ୍ଞ।

ସନ୍ମୌଳିକ—ପୁଂ. ବି. ଉତ୍ତମ ମୌଳିକ, କାୟସ୍ଥ ସମାଜରେ କୁଳୀନଭିନ୍ନ ଦତ୍ତ, ଦାସ, ସେନ, କର, ପାଳିତ ପ୍ରଭୃତି ୮ ଘରକୁ ସନ୍ମୌଳିକ କହନ୍ତି।

ସପ୍(ପ)—ଯା. ବି. ଶପ।

ସପ୍(ପ)ଟାଇଧରିବା—ଗ୍ରା. କ୍ରି. ଜାବୁଡ଼ି କରି ଧରିବା।

ସପ୍(ପ)ଟା(ଟେ)ଇବା—ଗ୍ରା.କ୍ରି.(ସଂ-ସର୍ପ) କୌଣସି ପଦାର୍ଥକୁ ଅନ୍ୟ ପଦାର୍ଥ ସଙ୍ଗେ ସଂଶ୍ଳେଷିତ କରିବା, ଜଡ଼ାଇବା,ଜଡ଼ିତ କରାଇବା,ଜାବୁଡ଼ିକରି ଧରିବା,ଗୁଡ଼େଇ ହେବା।

ସପ୍(ପ)ଟାସପ୍(ପ)ଟିକରିବା—ପ୍ରା.(ଯାଜ) କ୍ରି. ଆକୁଳବ୍ୟାକୁଳ କରିବା, ବହଳବହଳ କରିବା, ପଟାପଟିକରି ପ୍ରବର୍ତ୍ତିଇବା।

ସପ୍(ପ)ଟିବା—ଗ୍ରା, କ୍ରି. କୌଣସି ବସ୍ତୁର ଦେହରେ ଲାଗିକରି ଜଡ଼ିଯିବା, ସଂକୁଚିତ ହେବା,(ଶିକାର କରିବାକୁ ଯିବାବେଳେ ଶିକାରୀ ପଶୁ)ଲେପ୍‌ଟାଇପଡ଼ିବା

ସପକ୍ଷ—ବିଂ. ( ସ+ପକ୍ଷ,ବ.ବ୍ରୀ ) ଏକ ପକ୍ଷାବଲମ୍ବୀ, ସାହାଯ୍ୟକାରୀ, ଅନୁକୂଳ,

ତୁଲ୍ୟ, ପକ୍ଷ ବା ଡ଼େଣାଯୁକ୍ତ, (ସ୍ତ୍ରୀ) ସପକ୍ଷା ।

ସପକ୍ଷକ—ବିଂ. ସପକ୍ଷ ଦେଖ ।

ସପକ୍ଷତା(ତ୍ୱ)—ବି. ( ସପକ୍ଷ + ଭା.ତା ) ସହାୟତା, ସାହାଯ୍ୟ, ଏକପକ୍ଷାବଲମ୍ବନ, ପକ୍ଷ ବା ଡ଼େଣାଯୁକ୍ତ ଅବସ୍ଥା, ଅନୁଗ୍ରହ, ଅନୁକୂଳ୍ୟ ।

ସଫ—ଗ୍ରା.ବିଂ. ପାଠୁଆ, ବିଦ୍ୱାନ୍ ।

ସପତ—ଗ୍ରା. ବି ଓ ବିଂ. (ପଦ୍ୟ) ସପ୍ତ, ସାତ ।

ସପତଣୀ—ଗ୍ରା.ସ୍ତ୍ରୀ.ବି. (ପଦ୍ୟ) ସପତ୍ନୀ, ସଉତୁଣୀ ।

ସପତଫେଣା—ଗ୍ରା.ବି. ସପ୍ତଫେଣୀଗଛ, (ଗ୍ରା.ବିଂ)ସପ୍ତଫେଣୀ, ସପ୍ତ ଫେଣାଯୁକ୍ତ (ସର୍ପ) ।

ସପତମ—ଗ୍ରା.ବିଂ. (ପଦ୍ୟ)ସପ୍ତମ ଦେଖ ।

ସପତମଶୀତଲ—ଗ୍ରା.ବି.ମୃତାହର ସପ୍ତମ ଦିନ ଭାଇକୁଟୁମ୍ବଆଦିଙ୍କୁ ଦିଆଯିବା ଜଳ-ଖିଆ ଭୋଜନ ।

ସପତମୀ—ଗ୍ରା.ବିଂ. ସପ୍ତମୀ ଦେଖ ।

ସପତସ୍ୱରୀ—ଗ୍ରା.ବି.ସପ୍ତ ସ୍ୱରଯୁକ୍ତ ବାଜା, (ଗ୍ରା.ବିଂ) ସପ୍ତସ୍ୱରୀ, ସପ୍ତ ସ୍ୱରଯୁକ୍ତ (ବାଦ୍ୟ) ।

ସପତା—ଗ୍ରା.ବି. ( ସଂ-ସପ୍ତାହ ) ସପ୍ତା [ ଦେଖ ।

ସପତ୍ର—ବିଂ.(ବ.ଗ୍ରୀ)ପତ୍ରଯୁକ୍ତ,ପକ୍ଷଯୁକ୍ତ, (ବି) ଶର, ବାଣ । [ ଦେଖ ।

ସପତ୍ରକ—ବି. ଓ ବିଂ.(ସପତ୍ର+କ)ସପତ୍ର

ସପତ୍ର(ତ୍ରା)କୃତ—ବିଂ. (ସ+ପତ୍ର+କୃ+ର୍ମି.ତ) ବାଣବିଦ୍ଧ, ଶରବିଦ୍ଧ(ମୃଗାଦି) ଅତିଶୟ ଉତ୍ପୀଡ଼ିତ ।

ସପତ୍ରାକରଣ—ବି. (ସ+ପତ୍ର+କୃ+ଭା.ଅନ) ବାଣ ବା ଶରଦ୍ୱାରା ବେଧନ, ଅତିଶୟ ପୀଡ଼ନ, ଉତ୍ପୀଡ଼ନ ।

ସପତ୍ରାକୃତି—ସ୍ତ୍ରୀ ବି. (ସପତ୍ର+କୃ+ତି) ଅତ୍ୟନ୍ତ ପୀଡ଼ନ, କଷ୍ଟପ୍ରାପ୍ତି ।

ସପତ୍ନ—ପୁଂ. ବି. (ସପତ୍ନୀ+ଅ, ଅଥବା ସ+ପତ୍ନ+କ.ନ) ଶତ୍ରୁ, ରିପୁ,ବୈରୀ, ବିପକ୍ଷ, (ବିଂ) ଶତ୍ରୁ ଭାବାପନ୍ନ ।

ସପତ୍ନଘ୍ନ—ବି ଓ ବିଂ. ଶତ୍ରୁ କ୍ଷୟକାରୀ ।

ସପତ୍ନଜିତ୍—ପୁଂ.ବିଂ. (ସପତ୍ନ + ଜି + କ୍ୱିପ୍) ଶତ୍ରୁଜେତା, ଶତ୍ରୁ ଜୟକାରୀ ।

ସପତ୍ନତା—ସ୍ତ୍ରୀ.ବି. (ସପତ୍ନ+ତା)ଶତ୍ରୁତା ସପତ୍ନର ଭାବ ବା ଧର୍ମ ।

ସପତ୍ନଦୂଷଣ—ବିଂ. ଶତ୍ରୁଦୂଷଣ ।

ସପତ୍ନହା—ପୁଂ.ବିଂ. (ସପତ୍ନ+ହନ୍+କ୍ୱିପ୍) ଶତ୍ରୁନାଶକ, ରିପୁହନ୍ତା ।

ସପତ୍ନାରି—ପୁଂ.ବି.(ସପତ୍ନ + ଅରି)ଏକ-ପ୍ରକାର ବାଉଁଶ, କଣ୍ଟାବାଉଁଶ ।

ସପତ୍ନୀ—ସ୍ତ୍ରୀ.ବି.(ବ.ଗ୍ରୀ ) ସମାନପତିକା ସ୍ତ୍ରୀ, ସଉତୁଣୀ ।

ସପତ୍ନୀକ—ପୁଂ. ବିଂ. ( ସପତ୍ନୀ + କ ) ଯାହାର ଏକାଧିକ ବିବାହିତା ସ୍ତ୍ରୀ ଥାଆନ୍ତି, ( ସ+ପତ୍ନୀ+କ ) ବ.ଗ୍ରୀ; ଯାହାର ସ୍ତ୍ରୀ ବଞ୍ଚିଥାଏ, ସସ୍ତ୍ରୀକ, ସ୍ତ୍ରୀଙ୍କ ସମଭିବ୍ୟାହାରୀ ।

ସପତ୍ନୀତ୍ୱ—ବି. ସପତ୍ନୀର ଭାବ ବା ଧର୍ମ, ସଉତୁଣୀର କାର୍ଯ୍ୟ ।

ସପତ୍ନୀପୁତ୍ର—ପୁଂ. ବି. (୬ତତ୍ପୁ) ସଉ-ତୁଣୀର ପୁଅ, ସାବତପୁଅ ।

ସପତ୍ନୀପୁତ୍ରୀ—ସ୍ତ୍ରୀ. ବି. ସଉତୁଣୀର ଝିଅ, ସାବତଝିଅ ।

ସପତ୍ନୀମାତା—ସ୍ତ୍ରୀ. ବି. ସତ୍ମା,ବିମାତା ।

ସପତ୍ନ୍ୟ—ବିଂ.ସପତ୍ନୀବିଶିଷ୍ଟ,ସପତ୍ନୀଯୁକ୍ତ ।

ସପଦଚକ୍ଷୁଃ—ବିଂ. ଯେଉଁମାନଙ୍କର ଚକ୍ଷୁ ଦୀର୍ଘ ମୂଳୋପରି ସ୍ଥାପିତ, (ବି) ଚିଙ୍ଗୁଡ଼ି ଓ କଙ୍କଡ଼ା ।

ସପଦି—ଅ. (ସ+ପଦ+କ.ଇ) ତତ୍-କ୍ଷଣାତ୍, ସଙ୍ଗେ ସଙ୍ଗେ,ଏକାବେଳକେ ଦ୍ରୁତ, ଶୀଘ୍ର ।

ସପଦ୍ମ—ବିଂ. (ବ.ଗ୍ରୀ) ପଦ୍ମବିଶିଷ୍ଟ ।

ସପନ—ଗ୍ରା. ବି. (ସଂ-ସ୍ୱପ୍ନ) ସ୍ୱପ୍ନ ଦେଖ ।

ସପନକଥା—ଗ୍ରା. ବି. ସ୍ୱପ୍ନରେ ଦେଖା ଯିବା ବିଷୟ, କାଳ୍ପନିକ ବା ଅବାସ୍ତବ ବିଷୟ, ଆଶ୍ଚର୍ଯ୍ୟ ଜନକବିଷୟ, ଯେଉଁ କଥାର ସତ୍ତା ନାହିଁ ।

ସପନା—ଗ୍ରା. ବି. ସପନାଇବା, ସ୍ୱପ୍ନରେ ଦେଖାଦେବା । [ ଦେଖ ।

ସପନା(ନେ)ଇବା—ଗ୍ରା. କ୍ରି. ସ୍ୱପ୍ନାଇବା

ସପନାବତୀ—ଗ୍ରା.ବି. ସ୍ୱପ୍ନସ୍ୱରୂପିଣୀ ଦେବୀ

ସପମସିଣା—ଗ୍ରା. ବି. ଏକପ୍ରକାର ମସୃଣ ତୃଣ ଦ୍ୱାରା ବୁଣାଯାଇଥିବା ମସିଣା ।

ସପର—କ୍ଲୀ.ବି.ସାଧିକ,ପରାର୍ଦ୍ଧରୁ ଅଧିକ ।

ସପରସଲେଇହେବା—ଗ୍ରା. କ୍ରି. ଉପରେ ପଡ଼ି ହିତକଥା କହିବା ।

ସପରିତୋଷ—ବିଂ.(ବ.ଗ୍ରୀ) ପରିତୋଷର ସହିତ ବର୍ତ୍ତିମାନ, ସୋଲ୍ଲାସ ।

ସପରିବାର—ବିଂ.(ବ.ଗ୍ରୀ;ସ+ପରିବାର) ପରିଜନବର୍ଗ ସମନ୍ୱିତ, ସ୍ତ୍ରୀ ପୁତ୍ରାଦି ପରିବାର ସହିତ ବିଦ୍ୟମାନ, ପୋଷ୍ୟ-ବର୍ଗ ସହ, (କ୍ରି.ବିଂ)ଆପଣାର ସ୍ତ୍ରୀ ପୁତ୍ରାଦି ପରିବାର ସହିତ ( କୌଣସି କାର୍ଯ୍ୟ କରିବା) ।

ସପରିବାରେ—କ୍ରି. ବିଂ. (ବ.ଗ୍ରୀ) ପରି-ଜନବର୍ଗ ସମଭିବ୍ୟାହାରରେ, ସ୍ତ୍ରୀ ପୁତ୍ର କନ୍ୟାଦିର ସହିତ ।

ସପରିଷତ୍କ—ବିଂ. ଓ କ୍ରି.ବିଂ.(ସ+ପରି-ଷଦ୍+କ—ବ. ଗ୍ରୀ) ସଦଳ ।

ସପର୍ଯ୍ୟା—ବି.(ସପର + ଭା.ଯ+ଅ+ଆ) ପୂଜା, ସେବା, ଅର୍ଚ୍ଚନା, ଆରାଧନା ।

ସପ(ପା)ସପ୍(ପ)—ଗ୍ରା.ଅ.(ଧ୍ୱନ୍ୟନୁକରଣ) କୋରଡ଼ାମାଡ଼ ଚଞ୍ଚଳ ଚାଲିଯିବାର ଶବ୍ଦ, ଉପର୍ଯ୍ୟୁପରି ଦେହରେ ବେତ୍ରାଘାତର ଶବ୍ଦ, ଝଟ୍‌ପଟ୍, ଉପର୍ଯ୍ୟୁପରି ଓ ଶୀଘ୍ର ଶୀଘ୍ର ।

ସପର୍ବ—ବିଂ. ପର୍ବଯୁକ୍ତ, ମିଳିତ, ଯୁକ୍ତ ।

ସପଲାଶ—ବିଂ. ପତ୍ରଯୁକ୍ତ,ପତ୍ରବିଶିଷ୍ଟ ।

ସପଶୁ—ବିଂ. ପଶୁବିଶିଷ୍ଟ, ପଶୁର ସହିତ ବର୍ତ୍ତିମାନ ।

ସପଶୁକ—ବିଂ. ପଶୁଯୁକ୍ତ, ପଶୁବିଶିଷ୍ଟ ।

ସପା(ଟ)ମ୍—ଗ୍ରା. କ୍ରି. ବିଂ. ହଠାତ୍,ଝଟ୍

ସପାଦ—ବିଂ. (ସ + ପାଦ) ଚରଣଯୁକ୍ତ, ଚତୁର୍ଥଭାଗ ସହିତ, ସଉଆ ।

ସପାଦକ—ବିଂ. ପାଦବିଶିଷ୍ଟ ।

ସପାଦପୀଠ—ବି. (ସ+ପାଦପୀଠ)ପାଦ-ପୀଠଯୁକ୍ତ(ସିଂହାସନ),ପାଦ ବା ଚରଣ-ବିଶିଷ୍ଟ ହୋଇ ।

ସପାଦଶିରଣୀ—ପ୍ରା.(ଯାଜପୁର) ବି. ସନ୍ଧ୍ୟା-ନାରାୟଣ ପୂଜାରେ ଶଏ ପାଚିଲାକଦଳୀ

ସଙ୍ଗେ ଏକସେର ଏକପାଆ ଘିଅ,ଏକସେର ଏକପାଆ ଦୁଧ, ଏକସେର ଏକପାଆ ଗହମଅଟା ମିଶାଇ ତିଆର କରାଯିବା ଭୋଗ ।

ସପାଦୁକ—ପୁଂ.ବିଂ.(ବ.ବ୍ରୀ;ସ+ପାଦୁକା) ଜୋତା ବା କଠାଉ ସହିତ, (ସ୍ତ୍ରୀ) ସପାଦୁକା ।

ସପାଲ—ବିଂ. ପଶୁପାଳର ସହିତ,ଲୋକ ପାଳନକାରୀ(ରାଜା),(ପୁଂ.ବି)ରାଜପୁତ୍ରବିଶେଷ ।

ସପିଣ୍ଡ—ପୁଂ. ବିଂ. ( ବ.ବ୍ରୀ ) ପିଣ୍ଡଦ୍ୱାରା ସମ୍ବନ୍ଧ, (ବି)ସନାଭି, ମନୁଷ୍ୟର ଉପର ୩ପୁରୁଷ (ପିତା, ପିତାମହ ଓ ପ୍ରପିତାମହ, ଏବଂ ଏମାନଙ୍କ ସ୍ତ୍ରୀମାନେ ) ତଳ ୩ପୁରୁଷ (ପୁଅ ନାତି ଓ ଅଣନାତି ଏବଂ ଏମାନଙ୍କ ସ୍ତ୍ରୀମାନେ)ଓ ନିଜେ ଏପରି ୭ପୁରୁଷ ଅନ୍ତର୍ଗତ ଜ୍ଞାତି, ପିଣ୍ଡଦ୍ୱାରା ସମ୍ବନ୍ଧ ଏକବଂଶୀୟ ବ୍ୟକ୍ତିଗଣ ।

ସପିଣ୍ଡତା—ବି. ସାପିଣ୍ଡ୍ୟ, ସପିଣ୍ଡର ଭାବ ବା ଧର୍ମ ।

ସପିଣ୍ଡନ—ବି. ( ସ+ପିଣ୍ଡ + ଭା.ଅନ ) ସପିଣ୍ଡୀକରଣ, ପ୍ରେତତ୍ୱ ମୋଚନାର୍ଥ ପିତାଦିଙ୍କ ପିଣ୍ଡସହି ପିଣ୍ଡମିଶ୍ରଣ ।

ସପିଣ୍ଡା—ସ୍ତ୍ରୀ. ବି ଓ ବିଂ.ସପିଣ୍ଡର ସ୍ତ୍ରୀଲିଙ୍ଗ

ସପିଣ୍ଡୀକରଣ—ବି. (ସପିଣ୍ଡ + ଚ୍ୱି+କୃ +ଭା.ଅନ) ମୃତାହରେ ମୃତ ବ୍ୟକ୍ତିର ପ୍ରେତ ଉଦ୍ଦେଶ୍ୟରେ ପ୍ରଦତ୍ତ ପିଣ୍ଡକୁ ପିତା, ପିତାମହ, ପ୍ରପିତାମହଙ୍କ ପିଣ୍ଡ ସଙ୍ଗେ ମିଶାଇବା ରୂପ କର୍ମ, ପିତୃ ପିଣ୍ଡ ସଙ୍ଗେ ପ୍ରେତ ପିଣ୍ଡର ମିଶ୍ରୀକରଣ, ମୃତ୍ୟୁର ଏକବର୍ଷାନ୍ତେ କର୍ତ୍ତବ୍ୟ ଶ୍ରାଦ୍ଧ ।

ସପିଣ୍ଡୀକୃତ—ପୁଂ.ବିଂ.ଯେଉଁ ମୃତ ବ୍ୟକ୍ତିଙ୍କର ସପିଣ୍ଡୀକରଣ ରୂପ କ୍ରିୟା କରାଯାଇଅଛି, (ସ୍ତ୍ରୀ) ସପିଣ୍ଡୀକୃତା ।

ସପିନା-ଯା.ବି.(ଇଂ-ସପିନା)ବିଚାରାଳୟରେ ହାଜର ହେବାପାଇଁ ପକ୍ଷ ବା ସାକ୍ଷୀଙ୍କ ପ୍ରତି କୋର୍ଟରୁ ବାହାରିବା ସମନ ।

ସପିଦା—ପ୍ରା.(ସମ୍ବ)କ୍ରି. ସମିବା, ଗାଳିଦେବା, ଅଭିଶାପ ଦେବା ।

ସପୀତକ—ବି. (ସ+ପୀତ+କ)ବିବୃଲ ବରୁରଗଛ, ରାଜକୋଷାତକୀ, ଜହ୍ନି ।

ସପୀତି—ବି. ( ସ+ପୀତି ) ଏକାଧିକ ବ୍ୟକ୍ତିଙ୍କର ଏକତ୍ର ପାନକ୍ରିୟା, ସହପାନ, ବନ୍ଧୁ ଓ ଆତ୍ମୀୟଙ୍କ ସଙ୍ଗେ ବସି ଏକତ୍ର ପାନ କରିବା ରୂପ କ୍ରିୟା ।

ସପୀତିକା—ବି. ହସ୍ତିଘୋଷା, ମହା କୋଷାତକୀ, ମଧୁରତରଡ଼ା ।

ସପୁତ୍ର—ପୁଂ.ବିଂ. (ବ.ବ୍ରୀ) ପୁତ୍ର ସହିତ ବିଦ୍ୟମାନ, ପୁତ୍ରବିଶିଷ୍ଟ, ଯାହା ସଙ୍ଗେ ପୁତ୍ର ଥାଏ, (ସ୍ତ୍ରୀ) ସପୁତ୍ରା ।

ସପୁ(ସୁ)ର୍—ପ୍ରା.(ସମ୍ବଲପୁର, ପାଟଣା, ବୌଧ, ବାମଣ୍ଡା) ବିଂ. ସରୁ, କ୍ଷୀଣ, ଅଣଓସାରିଆ, ଅତି କ୍ଷୁଦ୍ର ।

ସପୁରି—ଯା.ବି. ଅମ୍ଳ ମଧୁର ରସଯୁକ୍ତ କଆଁଜାତୀୟ ଗଛର ଫଳବିଶେଷ ।

ସପୁରିମୁ(ମୋ)ରୁବା—ଗ୍ରା. ବି. ସପୁରିର ଚୋପା ଛଡ଼ାଯାଇ ତହିଁର କୋମଳାଂଶକୁ ଚିନି ସହିତ ପାକ କରାଯାଇ ପ୍ରସ୍ତୁତ କରାଯିବା ମିଷ୍ଟାନ୍ନ ।

ସପୁରୁଷ—ବିଂ. ପୁରୁଷବିଶିଷ୍ଟ, ପୁରୁଷ ସହିତ ବର୍ତ୍ତମାନ ।

ସପୁର୍ଣ୍ଣିଆ—ପ୍ରା.(ଗଡ଼ଜାତ)ବି. ଝଙ୍କାଳିଆ ବନ୍ୟଗୁଳ୍ମବିଶେଷ ।

ସପୁଷ୍ପ—ପୁଂ. ବିଂ. ( ବ.ବ୍ରୀ ) ପୁଷ୍ପଯୁକ୍ତ, ପୁଷ୍ପବିଶିଷ୍ଟ, (ସ୍ତ୍ରୀ) ସପୁଷ୍ପା ।

ସପୂର୍ବ—ବିଂ. ସେହିମାନ ପ୍ରଥମ, ସେହି ହୋଇଅଛି ଯାହାର ପ୍ରଥମ ।

ସପେଟା—ଯା.ବି.ବକୁଳାଦି ବର୍ଗର ତରୁବିଶେଷ ଓ ତହିଁର ସୁଖାଦ୍ୟଫଳ ।

ସପ୍ତ—ବି. (ସପ୍+ତି) ସାତସଂଖ୍ୟା, ୭, (ବିଂ) ସପ୍ତମ, ସାତର ପୂରଣ, (ସ୍ତ୍ରୀ) ସପ୍ତୀ ।

ସପ୍ତକ—ବି. (ସପ୍ତନ୍+କ) ସପ୍ତସଂଖ୍ୟା, ସାତଗୋଟି ବସ୍ତୁର ଏକତ୍ର ମିଳନ, ସାତଗୋଟି ସ୍ୱରର ଏକତ୍ର ମିଳନ,(ବିଂ) ସପ୍ତସଂଖ୍ୟକ, ସପ୍ତମ, ସାତର ପୂରଣ, ସପ୍ତସ୍ଥାନୀୟ ।

ସପ୍ତକର୍ଣ୍ଣି—ପୁଂ.ବି. ଋଷିବିଶେଷ ।

ସପ୍ତକାଣ୍ଡ—ବି.ରାମାୟଣ ଗ୍ରନ୍ଥର ୭ଗୋଟି କାଣ୍ଡ ବା ବିଭାଗ ।

ସପ୍ତକୀ—ବି. (ସପ୍ତକ+ଈ, ଯାହାର ସାତଗୋଟି ସରଥାଏ, କିମ୍ବା ସପ୍+କ.ତକ+ଈ) ଯାହା କଟିରେ ଏକତ୍ର ହୁଏ) କାଞ୍ଚୀ, ଅଣ୍ଟାସୂତା, ମେଖଳା, ସାତସରିଆ ଗୋଠ, (ଗ୍ରା.ବି)ବୀଣା ।

ସପ୍ତକୃତ—ପୁଂ. ବି. ବିଶ୍ୱଦେବା ନାମକ ଦେବଗଣବିଶେଷ ।

ସପ୍ତକୃତ୍ୱଂ—ଅ. (ସପ୍ତ+କୃତ୍ୱଂ) ସାତ, ସାତକରି ।

ସପ୍ତଗଙ୍ଗ—ବି. (ସପ୍ତନ୍+ଗଙ୍ଗା) ସାତଗୋଟି ନଦୀର ମିଳନ ସ୍ଥାନ ।

ସପ୍ତଗଣ—ବିଂ.ସପ୍ତ ସଂଖ୍ୟାର ସମଷ୍ଟିଯୁକ୍ତ, ମରୁଦ୍ଗଣ ।

ସପ୍ତଗୁ—ବିଂ. ସାତୋଟି ଗାଈବିଶିଷ୍ଟ, (ପୁଂ.ବି) ଆଙ୍ଗିରସ ଗୋତ୍ରୀୟ ଋଷିବିଶେଷ ।

ସପ୍ତଗୁଣ-ବିଂ.ସପ୍ତଗୁଣବିଶିଷ୍ଟ, ୭ଗୁଣଯୁକ୍ତ

ସପ୍ତଗୃଧ୍ର—ବି. ସପ୍ତସଂଖ୍ୟକ ଗୃଧ୍ର, ଅଥବ ବେଦ ମତେ ସାତଟି ଗୃଧ୍ର ନେଇ ଯେଉଁ ଯାଗ ହୁଏ ।

ସପ୍ତଗୋଦାବର—ବି.ସପ୍ତ ଗୋଦାବରୀର ମିଳନ ।

ସପ୍ତଗ୍ରନ୍ଥିଶୁଣ୍ଡ—ବି. (ଜୀବ ବିଜ୍ଞାନ ପରିଭାଷା) ଯେଉଁ ଜୀବମାନଙ୍କର ଶୁଣ୍ଡଦ୍ୱୟର ଅଗରେ ସାତଟି ଲେଖାଏ ଗ୍ରନ୍ଥିଥାଏ (ଯଥା—ବୃଶ୍ଚିକ) ।

ସପ୍ତଗ୍ରାମ—ଗ୍ରା.ବି. ସାତଗାଁ ନାମକ ବଙ୍ଗ ଦେଶର ପ୍ରାଚୀନ ବିଖ୍ୟାତ ଅଞ୍ଚଳ ଓ ତହିଁର ରାଜଧାନୀ, ସୁରର ସାତଟି ଆଶ୍ରୟ ।

ସପ୍ତଚତ୍ୱାରିଂଶ—ବିଂ. (ସପ୍ତଚତ୍ୱାରିଂଶ+ଅ) ୪୭ସଂଖ୍ୟାର ପୂରକ ।

ସପ୍ତଚତ୍ୱାରିଂଶତ୍—ବି.(କ.ଧା)ସତଚାଳିଶ, ୪୭ସଂଖ୍ୟା,(ବିଂ)ସତଚାଳିଶ ସଂଖ୍ୟକ ।

ସପ୍ତଚତ୍ୱାରିଂଶତ୍ତମ—ବିଂ. ୪୭ ସଂଖ୍ୟାର ପୂରକ, ସପ୍ତଚତ୍ୱାରିଂଶ ।

ସପ୍ତଚରୁ—ବି. ଗ୍ରାମବିଶେଷ (ମହାଭାରତ

ବନପଙ୍କ) ।

ସପ୍ତଚଟକ—ବି, ଅଗ୍ନି । [ ଆନା ।

ସପ୍ତଚ୍ଛଦ—ବି. (ବ.ବ୍ରୀ) ସପ୍ତପର୍ଣ୍ଣୀ, ଛତି-

ସପ୍ତଜନ—ବି. ମୁନିବିଶେଷ, ସାତଜଣ ।

ସପ୍ତଜନ୍ମ—ବି, ସାତଥର ଦେହଧାରଣ କରିବା ।

ସପ୍ତଜିହ୍ୱ(ଜ୍ୱାଳ)—ବି. (ବ.ବ୍ରୀ; ସପ୍ତନ୍+ଜିହ୍ୱା) ଅଗ୍ନି, ନିଆଁ ( ଯଥା:—କାଳୀ, କରାଳୀ, ମନୋଜବା, ସୁଲୋହିତା, ସୁଧୂମ୍ରବର୍ଣ୍ଣା, ଉଗ୍ରା ଓ ପ୍ରଦୀପ୍ତା, ମତାନ୍ତରେ ସପ୍ତଜିହ୍ୱାର ନାମ, ଯଥା—ଆବହ, ପ୍ରବହ, ଉଦ୍‌ବହ, ସଂବହ, ବିବହ, ନିବହ ପରିବହ ଏହି ସାତଗୋଟି ବାୟୁ) ।

ସପ୍ତତନ୍ତୁ—ବି. (ବ.ବ୍ରୀ; ସପ୍ତନ୍+ତନ୍+ଅଧି.ତୁ) ଯଜ୍ଞ, ଯାଗ ।

ସପ୍ତତି—ସ୍ତ୍ରୀ. ବି. (କ.ଧା) ସତୁରିସଂଖ୍ୟା, (ବିଂ) ତତ୍‌ସଂଖ୍ୟକ ।

ସପ୍ତତିତମ—ବିଂ. ସତୁରିସଂଖ୍ୟାର ପୂରକ ।

ସପ୍ତତ୍ରିଂଶ—ବିଂ, ୩୭ ସଂଖ୍ୟାର ପୂରକ, (ସ୍ତ୍ରୀ) ସପ୍ତତ୍ରିଂଶୀ ।

ସପ୍ତତ୍ରିଂଶତ୍—ବି. ୩୦ରୁ ସାତ ଅଧିକ ସଂଖ୍ୟା, (ବିଂ) ୩୭ସଂଖ୍ୟକ ।

ସପ୍ତତ୍ରିଂଶତ—ବି. (ସପ୍ତତ୍ରିଂଶତ୍+ଇ) ୩୭ସଂଖ୍ୟାର ପୂରଣ । [ ପୂରକ ।

ସପ୍ତତ୍ରିଂଶତ୍ତମ—ବିଂ. ୩୭, ଏହି ସଂଖ୍ୟାର

ସପ୍ତଥ—ବି. ସପ୍ତସଂଖ୍ୟାର ପୂରଣ, ସପ୍ତମ ସଂଖ୍ୟା ।

ସପ୍ତଦଶ—ବି. (ସପ୍ତଦଶ+ଅ) ୧୭, ସତର, (ବିଂ) ସତର ସଂଖ୍ୟକ, ସତର ସଂଖ୍ୟାର ପୂରକ ।

ସପ୍ତଦଶକ—ବିଂ. ସପ୍ତଦଶ ଶବ୍ଦାର୍ଥ ।

ସପ୍ତଦଶତା—ସ୍ତ୍ରୀ. ବି. ସପ୍ତଦଶର ଭାବ ବା ଧର୍ମ ।

ସପ୍ତଦଶଧା—ଅ. ସପ୍ତଦଶ ପ୍ରକାର ।

ସପ୍ତଦଶମ—ବିଂ. ସପ୍ତଦଶର ପୂରଣ ।

ସପ୍ତଦଶରାତ୍ର—ବି. ସପ୍ତଦଶଦିନ ବ୍ୟାପୀ ଉତ୍ସବବିଶେଷ । [ ଯୁକ୍ତ ।

ସପ୍ତଦଶୀ—ବିଂ. ସପ୍ତଦଶ ସଂଖ୍ୟା(ସ୍ତୋତ୍ର)

ସପ୍ତଦିନ—ବି. ସପ୍ତସଂଖ୍ୟକ ଦିନ, ୭ଦିନ ।

ସପ୍ତଦିବସ—ବି. ସାତଦିନ ।

ସପ୍ତଦିବ୍ୟମନୁଷ୍ୟ-ବି. ସପ୍ତମନୁଷ୍ୟ ଦେଖ ।

ସପ୍ତଦୀଧିତି—ପୁଂ. ବି. (ବ.ବ୍ରୀ) ଅଗ୍ନି ।

ସପ୍ତଦୀପ—ବି, ସାତଦୀପ, ସାତଗୋଟି ମୁଖଯୁକ୍ତ ପ୍ରଦୀପ ।

ସପ୍ତଦ୍ୱୀପ—ବି. (କ.ଧା) ଜମ୍ବୁ, ପ୍ଲକ୍ଷ, ଶାଲ୍ମଳି, କୁଶ, କ୍ରୌଞ୍ଚ, ଶାକ, ପୁଷ୍କର ଏହି ସାତ ମହାଦ୍ୱୀପ, (ବିଂ.ବ.ବ୍ରୀ) ସପ୍ତଦ୍ୱୀପବିଶିଷ୍ଟ, (ସ୍ତ୍ରୀ) ସପ୍ତଦ୍ୱୀପା ।

ସପ୍ତଦ୍ୱୀପପତି—ପୁଂ. ବି. (ଷତତ୍) ଅଗ୍ନୀଧ୍ର, ମେଧାତିଥି, ବପୁଷ୍ମାନ୍, ଜ୍ୟୋତିଷ୍ମାନ୍, ଦ୍ୟୁତିମାନ୍, ଭବ୍ୟ, ସବନ, ଏହି ସାତ ସପ୍ତଦ୍ୱୀପର ଅଧିପତି, ପୁରାଣୋକ୍ତ ରାଜଗଣ ।

ସପ୍ତଦ୍ୱୀପା—ସ୍ତ୍ରୀ. ବିଂ. (ବ.ବ୍ରୀ) ସପ୍ତଦ୍ୱୀପବିଶିଷ୍ଟ, (ସ୍ତ୍ରୀ, ବି. ବ.ବ୍ରୀ) ପୃଥିବୀ, ଧରଣୀ ।

ସପ୍ତଧା—କ୍ରି. ବିଂ. (ସପ୍ତ + ଧା) ସାତପ୍ରକାରରେ, ସାତଥର, ସାତଭାଗରେ, ସାତ ଅଂଶରେ ।

ସପ୍ତଧାତୁ—ବି. ଶରୀରସ୍ଥ ସପ୍ତସଂଖ୍ୟକ ଧାତୁ ବା ସାର ବା ଉପାଦାନ, ଯଥା- ରସ, ରକ୍ତ, ମାଂସ, ବସା, ମଜ୍ଜା, ଅସ୍ଥି, ଶୁକ୍ର ।

ସପ୍ତଧାର—ବି. ତୀର୍ଥବିଶେଷ ।

ସପ୍ତନଳୀ—ସ୍ତ୍ରୀ. ବି. ସପ୍ତନଳା, ପକ୍ଷୀ ଧରିବାର ଯନ୍ତ୍ରବିଶେଷ ।

ସପ୍ତନବତ—ବିଂ, (ସପ୍ତନବତି + ଅ) ସତାନବେ ସଂଖ୍ୟାର ପୂରଣ ।

ସପ୍ତନବତି—ସ୍ତ୍ରୀ.ବି. ସଂଖ୍ୟାବିଶେଷ, ୯୭ ସଂଖ୍ୟା । [ ୯୭ ।

ସପ୍ତନବତିତମ—ବି. ସପ୍ତନବତି ସଂଖ୍ୟା,

ସପ୍ତନବୟା—ସ୍ତ୍ରୀ. ବିଂ. ଷୋଡ଼ଶବର୍ଷୀୟା, ଷୋଡ଼ଶୀ ।

ସପ୍ତନାଡ଼ିକ—ପୁଂ. ବିଂ. (ସପ୍ତନ୍ + ନାଡ଼ୀ + କ) ସାତଗୋଟି ନାଡ଼ୀଯୁକ୍ତ, (ସ୍ତ୍ରୀ) ସପ୍ତନାଡ଼ିକା, (ଜ୍ୟୋତିଷ) ସପ୍ତନାଡ଼ୀ ଚକ୍ରବିଶିଷ୍ଟ ।

ସପ୍ତନାଡ଼ିକା—ସ୍ତ୍ରୀ. ବି. ଶୃଙ୍ଗାଟକ ।

ସପ୍ତନାଡ଼ୀଚକ୍ର—ବି, ବୃଷ୍ଟି ଜ୍ଞାନାର୍ଥ ଗ୍ରହ ନକ୍ଷତ୍ରାଙ୍କିତ ସପ୍ତନାଡ଼ୀକ ସର୍ପାକୃତି ଚକ୍ରବିଶେଷ ।

ସପ୍ତନାମା—ବି. ଆଦିତ୍ୟଭକ୍ତା, ଅଣ- ସୋରିଷିଆ ଗୁଳ୍ମ, ବନ୍ୟ ଶାକବିଶେଷ, ବାୟୁ ।

ସପ୍ତପଞ୍ଚାଶ—ବିଂ. (ସପ୍ତପଞ୍ଚାଶତ୍+ଅ) ୫୭ ସଂଖ୍ୟାର ପୂରଣ ।

ସପ୍ତପଞ୍ଚାଶତ୍-ବି. ଓ ବିଂ. ପଞ୍ଚାଶ ଅପେକ୍ଷା ଅଧିକ ସାତସଂଖ୍ୟା, ୫୭ ।

ସପ୍ତପତ୍ର—ବି. (ବ.ବ୍ରୀ) ମୁଦ୍ଗର ବୃକ୍ଷ, ମୃଗୁରମଲ୍ଲି ଗୁଳ୍ମ, ସୁଗନ୍ଧରାଜ ଗୁଳ୍ମ, ସପ୍ତଚ୍ଛଦ, ସଚନା ।

ସପ୍ତପଦ—ବି. (ସପ୍ତନ୍+ପଦ) ସାତ- ପାହୁଣ୍ଡ, ସାତଥର ପଦ ବିକ୍ଷେପ, ବିବାହ କାଳରେ ବରଙ୍କୁ ଦେୟ ସାତଗୋଟି ବସ୍ତୁ, ଯେଉଁ ମନ୍ତ୍ରର ଆଗରେ 'ସପ୍ତପଦୀ' ଶବ୍ଦ ଉକ୍ତ ହୋଇଅଛି ।

ସପ୍ତପଦାର୍ଥ—ବି(ଦ୍ୱିଗୁ, ସପ୍ତନ୍+ ପଦାର୍ଥ) (ନ୍ୟାୟ ଓ ବୈଶେଷିକ ଦର୍ଶନ) ଦ୍ରବ୍ୟ, ଗୁଣ, କର୍ମ, ସାମାନ୍ୟ, ବିଶେଷ, ସମ- ବାୟ ଓ ଅଭାବ, ବସ୍ତୁର ଏହି ସାତ ବିଷୟ ।

ସପ୍ତପଦୀ—ସ୍ତ୍ରୀ. ବି. (ସପ୍ତନ୍+ପଦ+ଈ) ସାତପାହୁଣ୍ଡର ମିଳନ, ବିବାହ- କାଳରେ ବରଙ୍କର ଓ କନ୍ୟାଙ୍କର ୭ଥର ଏକ ଏକ ମଣ୍ଡଳରେ ପାଦକ୍ଷେପ କରି- ଯିବାରୂପ କ୍ରିୟା, ବିବାହେ ସ୍ୱନାମଖ୍ୟାତ କର୍ମବିଶେଷ ।

ସପ୍ତପଦୀଗମନ—ବି. ବିବାହ ପରେ ମନ୍ତ୍ରୋ- ଚ୍ଚାରଣ ପୂର୍ବକ ବରଙ୍କର ଓ କନ୍ୟାଙ୍କର ୭ଗୋଟି ମଣ୍ଡଳରେ ପାଦପକାଇ ଯିବା- ରୂପ କର୍ମ ।

ସପ୍ତପରାକ—ବି. ବାହ୍ୟବସ୍ତୁରୁ ପ୍ରବୃତ୍ତିକୁ ନିରୁଦ୍ଧ କରି ରଖିବା, ଏକସପ୍ତାହକାଳ ଉପବାସୀ ରହିବା ।

ସପ୍ତପର୍ଣ୍ଣୀ—ବି. ବୃକ୍ଷବିଶେଷ, ସଚନାଗଛ, ମିଷ୍ଟାନ୍ନବିଶେଷ, ଦ୍ରାକ୍ଷା, ଦାଡ଼ିମ୍ବ, ଖର୍ଜୁର, ଗୁଡ଼, ଘୃତ ଓ ମଧୁଦ୍ୱାରା ମିଶ୍ରିତ ଆମ୍ର ଉପରେ ଖଇଚୂନା ଛିଞ୍ଚା ହୋଇଥିବା ମିଷ୍ଟାନ୍ନ ।

ସପ୍ତପର୍ଣ୍ଣକ—ବି. ସପ୍ତପର୍ଣ୍ଣ ବୃକ୍ଷ, ଛତିନା ଗଛ । [ ଲତା ।

ସପ୍ତପର୍ଣ୍ଣୀ—ବି. ଲଜ୍ଜାଳୁ ଲତା, ଲାଜକୁଳୀ

ସପ୍ତପଲାଶ—ବି. ସପ୍ତପର୍ଣ୍ଣ ବୃକ୍ଷ ।

ସପ୍ତପାତାଳ—ବି. ସପ୍ତସଂଖ୍ୟକ ଅଧୋଭୁବନ, ଯଥା:—ଅତଳ, ବିତଳ, ସୁତଳ, ତଳାତଳ, ମହାତଳ, ସୁତଳ ଓ ଅଗ ।

ସପ୍ତପିତୃକାମାବାସ୍ୟା—ବି. ସାତପୁଷି ଅମାବାସ୍ୟା, ଭାଦ୍ର ଅମାବାସ୍ୟା ।

ସପ୍ତପୁତ୍ର—ବି.(ଦ୍ୱିଗୁ) ସାତଗୋଟି ସନ୍ତାନ, (ପୁଂ.ବିଂ ଓ ବି-ବ.ବ୍ରୀ)ଯାହାର ସାତଟି ପୁଅ ଅଛନ୍ତି, ସପ୍ତଲୋକ ଯାହାଙ୍କ ପୁତ୍ର, (ସ୍ତ୍ରୀ) ସପ୍ତପୁତ୍ରା ।

ସପ୍ତପୁତ୍ରସୂ—ସ୍ତ୍ରୀ. ବି. ଓ ବିଂ (ସପ୍ତପୁତ୍ର + ସୂ+କ କ୍ୱିପ୍) ସୁତବତ୍ସରା, ଯେଉଁ ସ୍ତ୍ରୀ ସାତଗୋଟି ପୁତ୍ର ଜନ୍ମ କରିଥାଆନ୍ତି ।

ସପ୍ତପୁରୁଷ—ବି. ମନୁଷ୍ୟର ଉପରର ଓ ତଳର, କିମ୍ବା ଉପରକୁ, ତଳକୁ ଓ ନିଜକୁ ମିଶାଇ ଗଣାଯିବା ସାତଜଣ ବଂଶଧର ।

ସପ୍ତପ୍ରକୃତି—ବି. (ହିନ୍ଦୁଦର୍ଶନ) ପଞ୍ଚଭୂତ, ମହତ୍ତ୍ୱ ତତ୍ତ୍ୱ ଓ ଅହଂକାର ।

ସପ୍ତଫଣା(ଣୀ)—ଗ୍ରା. ବି. ନାଗଫେଣିଆ ଗଛ ଏକପ୍ରକାର ମନସାଗଛ ।

ସପ୍ତଫଣୀ—ବିଂ. ( ସପ୍ତଫଣା+ଇନ୍ ) ପୁରାଣୋକ୍ତ ସାତଟି ଫଣାଯୁକ୍ତ (ସର୍ପ) ।

ସପ୍ତବାହ୍ୟ—ବି. ବାହ୍ଲିକ ଦେଶାନ୍ତର୍ଗତ ରାଜ୍ୟବିଶେଷ ।

ସପ୍ତବ୍ରାହ୍ମଣ—ବି.(ସମାହାରଦ୍ୱିଗୁ) ଏକସ୍ଥାନରେ ସାତଜଣ ବ୍ରାହ୍ମଣଙ୍କର ସମ୍ମିଳନ, ସପ୍ତର୍ଷି ଦେଖ ।

ସପ୍ତଭଙ୍ଗିନୟ—ବି. ଜୈନମାନଙ୍କର ଚିରଭ୍ୟସ୍ତ ବାଦାନୁବାଦର ଅଙ୍ଗଭଙ୍ଗିବିଶେଷ ।

ସପ୍ତଭଦ୍ର—ବି. (ବ.ବ୍ରୀ; ସପ୍ତ+ଭଦ୍ର= ଶୁଭକର) ଶିରୀଷବୃକ୍ଷ ।

ସପ୍ତଭୁବନ—ବି. (ସମାହାର ଦ୍ୱିଗୁ) ସପ୍ତଲୋକ ଦେଖ ।

ସପ୍ତମ—ବିଂ.(ସପ୍ତନ୍+ମ) ସାତସଂଖ୍ୟାର ପୂରଣ, (ସ୍ତ୍ରୀ) ସପ୍ତମୀ ।

ସପ୍ତମକ—ବିଂ. ( ସପ୍ତମ+କ ) ସପ୍ତମ ଶବ୍ଦାର୍ଥ ।

ସପ୍ତମଗୃହ(ସ୍ଥାନ)—ବି.(ଜ୍ୟୋତିଷ)ଜାତକରେ ଲଗ୍ନଠାରୁ ୭ମ ଗ୍ରହର ଅବସ୍ଥିତ, ୭ମ ସ୍ଥାନ ।

ସପ୍ତମଙ୍ଗଳା—ଗ୍ରା. ବି. ବିବାହର ୭ମ ଦିବସ ଓ ସେଦିନ କର୍ତ୍ତବ୍ୟ ବର କନ୍ୟାଙ୍କ ବନ୍ଦାପନାଦି କର୍ମ ।

ସପ୍ତମନୁଷ୍ୟ—ବି.ମନୁଷ୍ୟମାନଙ୍କର ପୁରାଣୋକ୍ତ ସାତଜଣ ଆଦି ପୁରୁଷ ।

ସପ୍ତମନ୍ତ୍ର(ମରୀଚ)—ବି. (ବ.ବ୍ରୀ)ଅଗ୍ନି ।

ସପ୍ତମାତା—ସ୍ତ୍ରୀ. ବି. ତନ୍ତ୍ରୋକ୍ତ ସାତଟି ମାତୃକା, ଯାହାର ସାତଟି ମାତା, ଗଙ୍ଗାଦି ସାତଟି ନଦୀ ଯାହାର ମାତା ।

ସପ୍ତମାତୃକା—ବି. (ଦ୍ୱିଗୁ) ତାନ୍ତ୍ରିକମାନଙ୍କର ସାତ ଦେବତା, ଯଥା :—ବ୍ରାହ୍ମୀ, ମାହେଶ୍ୱରୀ, କୌମାରୀ, ବୈଷ୍ଣବୀ, ବାରାହୀ, ଇନ୍ଦ୍ରାଣୀ ଓ ଚାମୁଣ୍ଡା ।

ସପ୍ତମାଧିପତି—ବି.(ଜ୍ୟୋତିଷ)ଲଗ୍ନଠାରୁ ୭ମ ଗୃହରେ ଥିବା ଗ୍ରହ ।

ସପ୍ତମାନୁଷ—ପୁଂ. ବି. ଅଗ୍ନି (ବୈଦିକ) ।

ସପ୍ତମାସ୍ୟ —ବିଂ. ସପ୍ତପୁତ୍ର ଦେଖ ।

ସପ୍ତମୀ—ସ୍ତ୍ରୀ. ବିଂ. (ସପ୍ତମ+ଈ) ସପ୍ତମ ଶବ୍ଦର ସ୍ତ୍ରୀଲିଙ୍ଗ, (ବି) ସପ୍ତମର ପୂରଣୀ ତିଥି, ଚନ୍ଦ୍ରଙ୍କର ସପ୍ତମ କଳାର କ୍ରିୟାକାଳ, (ବ୍ୟାକରଣ) ସପ୍ତମୀ ବିଭକ୍ତି, ଅଧିକରଣ କାରକର ବିଭକ୍ତି, ବିଶେଷ୍ୟ ଓ ସର୍ବନାମ ପଦର ବିଭକ୍ତିବିଶେଷ ।

ସପ୍ତମୀଜ—ପୁଂ.ବିଂ. (ସପ୍ତମୀ+ଜନ୍+ କ.ଅ) ଯେ ସପ୍ତମୀ ତିଥିରେ ଜନ୍ମଗ୍ରହଣ କରିଛନ୍ତି, (ସ୍ତ୍ରୀ) ସପ୍ତମୀଜା ।

ସପ୍ତମୀତତ୍ପୁରୁଷ—ବି.ତତ୍ପୁରୁଷ ସମାସବିଶେଷ, ଯେଉଁ ତତ୍ପୁରୁଷ ସମାସରେ ସପ୍ତମୀ ବିଭକ୍ତିର ଚିହ୍ନର ଲୋପହୁଏ ।

ସପ୍ତମୀପୂଜା—ବି.ସପ୍ତମୀ ତିଥିରେ ଅନୁଷ୍ଠିତ ସୂର୍ଯ୍ୟ, ଦୁର୍ଗା, ଶିବ ଓ ବିଷ୍ଣୁ ଆଦି ଦେବତାଙ୍କ ପୂଜା, ଆଶ୍ୱିନ ଶୁକ୍ଳାସପ୍ତମୀ ଦିନ ବିହିତ ନବପତ୍ରିକା ଦୁର୍ଗାପୂଜା, ଚୈତ୍ର ଶୁକ୍ଳାସପ୍ତମୀଦିନ ବିହିତ ବାସନ୍ତୀ ଦୁର୍ଗାପୂଜା ।

ସପ୍ତମୀବିଭକ୍ତି—ବି. (ବ୍ୟାକରଣ) ଅଧିକରଣ କାରକର ଚିହ୍ନ, ଯଥା—ରେ, ପରେ, ମଧ୍ୟରେ, ଅରେ, ଠାରେ, ଆଦି ।

ସପ୍ତରକ୍ତ—ବି. (ଦ୍ୱିଗୁ-ସପ୍ତନ୍+ରକ୍ତ) ଶରୀରର ରକ୍ତବର୍ଣ୍ଣ ବା ରକ୍ତାଭ ସାତଗୋଟି ଅବୟବ, ଯଥା—କରତଳ, ପାଦତଳ, ନେତ୍ରପ୍ରାନ୍ତ, ଜିହ୍ୱା, ତାଳୁ, ଓଷ୍ଠ ଓ ନଖ ।

ସପ୍ତରଶ୍ମି—ବିଂ.ସପ୍ତସଂଖ୍ୟକ ଗାୟତ୍ର୍ୟାଦି ଛନ୍ଦୋଯୁକ୍ତ, ସପ୍ତରଶ୍ମି ବିଶିଷ୍ଟ ।

ସପ୍ତରାତ୍ର—ବି. (ସମାହାର ଦ୍ୱିଗୁ)ସପ୍ତାହ, ଲଗେ ଲଗେ ସାତଦିନ ଓ ସାତରାତ୍ରି ବ୍ୟାପୀ ସମୟ ।

ସପ୍ତରାତ୍ରିକ—ବି. ସପ୍ତରାତ୍ର, ସାତଦିନ ।

ସପ୍ତର୍ଷି—ପୁଂ. ବି. ବ୍ରହ୍ମାଙ୍କର ମାନସପୁତ୍ର ସାତଜଣ ଋଷିଙ୍କ ସମୂହ, ଯଥା—ମରୀଚି, ଅତ୍ରି, ଅଙ୍ଗିରା, ପୁଲସ୍ତ୍ୟ, ପୁଲହ, କ୍ରତୁ ଓ ବଶିଷ୍ଠ, ସପ୍ତର୍ଷିମଣ୍ଡଳ ଦେଖ ।

ସପ୍ତର୍ଷିକ—ପୁଂ. ବି. ସପ୍ତର୍ଷି ଦେଖ ।

ସପ୍ତର୍ଷିଗୃହ—ବି. ମହର୍ଷିମାନଙ୍କର ବିଚରଣ ।

ସପ୍ତର୍ଷିଜ—ପୁଂ. ବି. ବୃହସ୍ପତି ଗ୍ରହ ।

ସପ୍ତର୍ଷିତା—ସ୍ତ୍ରୀ. ସପ୍ତର୍ଷି ନକ୍ଷତ୍ରଯୁକ୍ତା ।

ସପ୍ତର୍ଷିମଣ୍ଡଳ—କ୍ଲୀ. ବି. (ଜ୍ୟୋତିଷ) ସାତଟି ବିଶେଷ ନକ୍ଷତ୍ରର ଚକ୍ର, କଥିତ ଅଛି ଯେ ବଶିଷ୍ଠଆଦି ସପ୍ତଋଷି ଏହି ସାତ ନକ୍ଷତ୍ରରୂପେ ବିରାଜିତ, ଏହାକୁ ସାଧାରଣ ଲୋକେ ସାତଭାଇ ବୋଲିଥାଆନ୍ତି, ଇୟୁରୋପରେ ସପ୍ତର୍ଷିମଣ୍ଡଳ 'ବୃହତ୍ ଭଲ୍ଲୁକ' ନାମେ ଅଭିହିତ ।

ସପ୍ତଲା—ସ୍ତ୍ରୀ. ବି. ( ସପ୍ତନ୍+ଲା+ କ.ଅ+ଆ) ନବମଲ୍ଲିକା, ନିଆଳୀଫୁଲ, ଗୁଞ୍ଜା, କାଇଁଚ, ଚର୍ମକଷା, ଦେଉଳିଆ ସିଝୁ, ମାଂସରୋହିଣୀ ନାମକ ବୃକ୍ଷ ।

ସପ୍ତଲିକା—ସ୍ତ୍ରୀ. ବି. ସପ୍ତଲା ଦେଖ ।

ସପ୍ତଲୋକ—ବି. (ସପ୍ତନ୍+ଲୋକ)ହିନ୍ଦୁପୁରାଣୋକ୍ତ ସାତଗୋଟି ଊର୍ଦ୍ଧ୍ୱଭୁବନ,

ଯଥ :—ଭୂଃ, ଭୁବଃ, ସ୍ୱଃ, ମହଃ,ଜନଃ, ତପଃ,ସତ୍ୟଂ ଏହି ସାତ ଉପରସ୍ଥ ଲୋକ।
ସପ୍ତଚଣ୍ଡା—ସ୍ତ୍ରୀ. ବି. ନଦୀବିଶେଷ ।
ସପ୍ତଧାତୁ—ବି. ବନ୍ଧନଭୂତ ଧାତୁ,ଋଷି।
ସପ୍ତବର୍ଗ—ବି. ସାତଟି ଦଳ ।
ସପ୍ତବାର—ବି. ରବି, ସୋମ, ମଙ୍ଗଳ, ବୁଧ, ବୃହସ୍ପତି(ଗୁରୁ), ଶୁକ୍ର ଓ ଶନି, ଗରୁଡ଼ର ପୁତ୍ରବିଶେଷ ।
ସପ୍ତବିଂଶ—ବିଂ. ସପ୍ତବିଂଶତି ସଂଖ୍ୟାର ପୂରଣ, ୨୭ ସଂଖ୍ୟାର ପୂରଣ ।
ସପ୍ତବିଂଶକ—ବିଂ. ( ସପ୍ତବିଂଶ+କ ) ସପ୍ତବିଂଶ ଶବ୍ଦାର୍ଥ।
ସପ୍ତବିଂଶତି—ବି. ସପ୍ତ ଅଧିକ ବିଂଶତି ସଂଖ୍ୟା, ୨୭ ସଂଖ୍ୟା ।
ସପ୍ତବିଂଶତିକ—ବି. (ସପ୍ତବିଂଶତି+କ) ସପ୍ତବିଂଶତି ଶବ୍ଦାର୍ଥ ।
ସପ୍ତବିଂଶତିତମ—ବିଂ. (ସପ୍ତବିଂଶତି+ତମ) ସପ୍ତବିଂଶତି ସଂଖ୍ୟାର ପୂରଣ ।
ସପ୍ତବିଂଶତିମ—ବିଂ.ସପ୍ତବିଂଶତି ସଂଖ୍ୟାର ପୂରଣ, ୨୭ ସଂଖ୍ୟାର ପୂରଣ ।
ସପ୍ତବିଂଶୀ—ବିଂ. ସପ୍ତବିଂଶତି ସଂଖ୍ୟା ବିଶିଷ୍ଟ ।
ସପ୍ତବିଦାରୁ—ବି. ବୃକ୍ଷବିଶେଷ ।
ସପ୍ତବିଧ-ବିଂ.ସାତପ୍ରକାର,ସାତରକମର ।
ସପ୍ତଶତ—ବିଂ ଓ ବି. (ସପ୍ତନ୍+ଶତ) ସାତଶହ ।
ସପ୍ତଶତିକା—ସ୍ତ୍ରୀ. ବିଂ. (ସପ୍ତଶତ+କ+ଆ) ସପ୍ତଶତ ଶ୍ଳୋକବିଶିଷ୍ଟ, (ବି)ସାତଶହ ଶ୍ଳୋକଯୁକ୍ତ ଗ୍ରନ୍ଥ, ମାର୍କଣ୍ଡେୟପୁରାଣାନ୍ତର୍ଗତ ଦେବୀମାହାତ୍ମ୍ୟ ବା ଚଣ୍ଡୀ ନାମକ ଗ୍ରନ୍ଥ, (ଗ୍ରା.ବି) ପୂର୍ବବଙ୍ଗ ଦେଶରେ ପୂର୍ବେ ବାସକରୁଥିବା ସାତଶହ ବ୍ରାହ୍ମଣ ପରିବାରଙ୍କ ସମବାୟ ।
ସପ୍ତଶତୀ—ବି. ସପ୍ତଶତିକା ଦେଖ ।
ସପ୍ତଶଯ୍ୟା—ଗ୍ରା. ବି. (ସପ୍ତ ସଂଖ୍ୟକ ଶଯ୍ୟା ଯାହାର) ବ.ବ୍ରୀ; ଢେଙ୍କାନାଳ ରାଜ୍ୟସ୍ଥିତ ସାତଗୋଟି ସ୍ତର ବା ଶ୍ରେଣୀବିଶିଷ୍ଟ ପାହାଡ଼ର ନାମ ।
ସପ୍ତଶଲାକ—ବିଂ. (ସପ୍ତନ୍+ଶଲାକା) ବ.ବ୍ରୀ; ସାତଗୋଟି ଶଲାକାଯୁକ୍ତ, (ବି) ସପ୍ତଶଲାକଚକ୍ର ଦେଖ ।
ସପ୍ତଶଲାକଚକ୍ର-ବି.(ସପ୍ତନ୍+ଶଲାକା—ସମାହାର ଦ୍ୱିଗୁ ଓ କ.ଧା ( ଫଳିତ ଜ୍ୟୋତିଷ ମତରେ)ବିବାହର ଶୁଭାଶୁଭ ଦିନ ଜ୍ଞାନାର୍ଥ ଅଙ୍କିତ ତିର୍ଯ୍ୟଗୂର୍ଦ୍ଧ୍ୱ ସପ୍ତରେଖା ବିଶିଷ୍ଟ ଚକ୍ରବିଶେଷ ।
ସପ୍ତଶଲାକବେଧ—ବି.(ଜ୍ୟୋତିଷ) ସପ୍ତଶଲାକ ଚକ୍ରପାତନ ଦ୍ୱାରା ଗଣନା କଲାଗଲେ ବିବାହ ପାଇଁ ସ୍ଥିରୀକୃତ ତିଥିର ନକ୍ଷତ୍ରରେ ଘଟିବା ଅଶୁଭକର ଦୋଷ ।
ସପ୍ତଶିରା—ବି. (ସପ୍ତନ୍+ଶିରା) ବ.ବ୍ରୀ; ନାଗବଲ୍ଲୀ, ପାନଲତା, (ଗ୍ରା.ବି)ସହସ୍ରରାବଣର ଜଣେ ମନ୍ତ୍ରୀ ।
ସପ୍ତଶୀର୍ଷ—ବି. (ବ.ବ୍ରୀ)କୃତ୍ତିକାନକ୍ଷତ୍ର ।
ସପ୍ତଶୀର୍ଷୀ—ବିଂ. ସପ୍ତଶୀର୍ଷ ବିଶିଷ୍ଟ ।
ସପ୍ତଶୂନ୍ୟ—ବି. ଜ୍ୟୋତିଷ ଗଣନାକ୍ରମେ ଗ୍ରହମାନଙ୍କର ଅମଙ୍ଗଳ ସୂଚକ ଅବସ୍ଥାନ ବିଶେଷ ।
ସପ୍ତଷଷ୍ଟ—ବିଂ. (ସପ୍ତଷଷ୍ଟି+ଅ) ସତଷଠିର ପୂରଣ । [ ଅଧିକ ।
ସପ୍ତଷଷ୍ଟି—ବି. ଓ ବିଂ ଷାଠିଏରୁ ସାତ
ସପ୍ତଷଷ୍ଟିତମ—ବିଂ. ସପ୍ତଷଷ୍ଟି ସଂଖ୍ୟାର ପୂରଣ ।
ସପ୍ତସପ୍ତକ—ବି. ଓ ବିଂ(ସପ୍ତଗୁଣିତସପ୍ତ+କ) ଊଣପଚାଶ, ୪୯ ।
ସପ୍ତସପ୍ତତି—ବି ଓ ବିଂ. (ସପ୍ତ ଅଧିକ ସପ୍ତତି)୭୭ ସଂଖ୍ୟା, ସତସ୍ତରି ସଂଖ୍ୟକ ।
ସପ୍ତସପ୍ତତିତମ—ବିଂ. ୭୭ ସ୍ଥାନୀୟ ।
ସପ୍ତସପ୍ତି—ବି. (ସପ୍ତନ୍+ସପ୍ତି) ବ.ବ୍ରୀ; ସପ୍ତାଶ୍ୱ, ସୂର୍ଯ୍ୟ,ଗାୟତ୍ରୀ,ଉଷ୍ଣିକ୍, ଅନୁଷ୍ଟୁପ୍,ବୃହତୀ,ପଂକ୍ତି,ତ୍ରିଷ୍ଟୁପ୍,ଜଗତୀ ଏହି ସାତ ଛନ୍ଦ, ସପ୍ତଅଶ୍ୱ ।
ସପ୍ତସମୁଦ୍ର—ବି. ଲବଣ, ଇକ୍ଷୁ, ସୁରା, ଘୃତ, ଦଧି, ଦୁଗ୍ଧ ଓ ଜଳ ସମୁଦ୍ର ।
ସପ୍ତସାଗର—ବି. ସପ୍ତସମୁଦ୍ର ଦେଖ, ମତ୍ସ୍ୟ ପୁରାଣୋକ୍ତ ମହାଦାନବିଶେଷ, ଶିବଲିଙ୍ଗବିଶେଷ ।
ସପ୍ତସାମ—ବି. (ସପ୍ତନ୍+ସାମନ୍) ରଥନ୍ତର,ବୃହତ୍ ସାମ,ବାମଦେବ୍ୟ,ବୈରୂପ, ପାବମାନ, ବୈରାଜ ଓ ଚାନ୍ଦ୍ରମସ ଏହି ସାତଗୋଟି ସାମ ବା ସାମବେଦୋକ୍ତ ଗୀତିମାନ ମନ୍ତ୍ର ।
ସପ୍ତସିନ୍ଧୁ—ବି. ସପ୍ତସମୁଦ୍ର ଦେଖ ।
ସପ୍ତସୂ—ବିଂ. (ସପ୍ତନ୍+ସୂ+କ.କ୍ୱିପ୍) ସପ୍ତ ପୁତ୍ର ପ୍ରସୂତା ସ୍ତ୍ରୀ, ସାତ ପୁଅର ମା ।
ସପ୍ତସ୍ୱର—ବି. ହିନ୍ଦୁ ସଙ୍ଗୀତ ଶାସ୍ତ୍ରୋକ୍ତ ସାତଗୋଟି ସ୍ୱର,ସା, ରି, ଗା, ମା, ପା, ଧା, ନି, ଷଡ୍ଜାଦି ସାତଗୋଟି ସ୍ୱର,ଷଡ୍ଜ ଋଷଭ, ଗାନ୍ଧାର,ମଧ୍ୟମ,ପଞ୍ଚମ, ଧୈବତ ଓ ନିଷାଦ, ଏହି ସାତଙ୍କୁ ଯଥାକ୍ରମେ ମୟୂର, ବୃଷଭ,ଛାଗ,କ୍ରୌଞ୍ଚ,କୋକିଳ, ଘୋଟକ ଏବଂ ହସ୍ତୀମାନଙ୍କର ସ୍ୱର ବୋଲି ନିଷ୍ପନ୍ନ ଅଛି, ଯଥା:-ସା=ଷଡ୍ଜ ମୟୂର, ଇତ୍ୟାଦି କ୍ରମେ ।
ସପ୍ତସ୍ୱରା—ବି.(ବ.ବ୍ରୀ)ବାଦ୍ୟଯନ୍ତ୍ରବିଶେଷ, ଜଳତରଙ୍ଗ,ଏଥିରେ କାଂସ୍ୟାଦି ନିର୍ମିତ ସାତଟି ଜଳପୂର୍ଣ୍ଣ ପାତ୍ର ସଜ୍ଜିତ କରି ବଜାଇବାକୁ ହୁଏ, (ସ୍ତ୍ରୀ.ବିଂ) ସପ୍ତସ୍ୱରବିଶିଷ୍ଟା ।
ସପ୍ତସ୍ୱର୍ଗ—ଗ୍ରା.ବି. ଭୂ,ଭୁବଃ, ସ୍ୱଃ,ମହଃ, ଜନଃ,ତପଃ ସତ୍ୟଂ,ଏହି ସପ୍ତଲୋକ ।
ସପ୍ତସ୍ୱସା—ବିଂ. ଗାୟତ୍ରୀପ୍ରଭୃତି ସାତଟି ଛନ୍ଦଃ ଯାହାର ସ୍ୱସା (ଭଗିନୀ) ସ୍ୱରୂପ ହୋଇଥାଏ ବା ଗଙ୍ଗାଦି ସାତନଦୀ ଯାହାର ସ୍ୱସା (ଭଗିନୀ) ।
ସପ୍ତସ୍ରୋତଃ—ବି. ତୀର୍ଥବିଶେଷ, ଭାଗବତରେ ଲେଖା ଅଛି ଯେ ଗଙ୍ଗାଦେବୀ ସପ୍ତର୍ଷିମାନଙ୍କର ପ୍ରୀତି ନିମିତ୍ତ ନିଜ ସ୍ରୋତକୁ ସାତ ଭାଗରେ ବିଭକ୍ତ କରିଥିଲେ, ଏଥିପାଇଁ ସେ ତଦବଧି ସପ୍ତସ୍ରୋତା ନାମରେ ଅଭିହିତା ।
ସପ୍ତହା—ବିଂ. (ସପ୍ତହନ୍+କ୍ୱିପ୍) ସପ୍ତସଂଖ୍ୟକ ପୁରର ନାଶକ, ନମୁଚିପ୍ରଭୃତି ସପ୍ତସଂଖ୍ୟକ ଅସୁର ବିନାଶକ ।
ସପ୍ତହୋତା—ପୁଂ.ବିଂ. (ବ.ବ୍ରୀ) ସପ୍ତହୋତାବିଶିଷ୍ଟ (ଅଗ୍ନି),ଯେଉଁ ଅଗ୍ନିରେ ସାତଜଣ ବସି ହୋମ କରନ୍ତି ।

ସପ୍ତା—ଗ୍ରା. ବି. ( ସଂ-ସପ୍ତାହ ) ସପ୍ତାହ, ସପ୍ତାହକାଳ ଅହୋରାତ୍ର ଭାଷା ଭାଗବତ ୧୨ସ୍କନ୍ଧ ଯାକ ଆଦ୍ୟରୁ ଶେଷ ପର୍ଯ୍ୟନ୍ତ ବୋଲାଯିବା ରୂପ ଅନୁଷ୍ଠାନ, (ବିଂ) ସପ୍ତାହ ବ୍ୟାପୀ, ସାତବରଷ ବ୍ୟାପୀ ।

ସପ୍ତାଂଶୁ—ବି. (ସପ୍ତନ୍+ଅଂଶୁ)ବ.ବ୍ରୀ; ଅଗ୍ନି, ସପ୍ତଜିହ୍ୱ, ଶନିଗ୍ରହ, (ବିଂ)କ୍ରୂର ଚକ୍ଷୁବିଶିଷ୍ଟ ।

ସପ୍ତାଂଶୁପୁଙ୍ଗବ—ବି.(ସପ୍ତାଂଶୁ+ପୁଙ୍ଗବ =ଶ୍ରେଷ୍ଠ) ଶନିଗ୍ରହ ।

ସପ୍ତାକ୍ଷର—ବିଂ.ସପ୍ତାକ୍ଷର ମନ୍ତ୍ର,ସାତୋଟି ଅକ୍ଷରବିଶିଷ୍ଟ, ଯେଉଁ ମନ୍ତ୍ରରେ ୭ଟି ଅକ୍ଷର ଥାଏ ।

ସପ୍ତାଗାରଂ-ଅ.ସାତଟିଘର, ସପ୍ତପ୍ରକୋଷ୍ଠ

ସପ୍ତାଙ୍ଗ—ବି. ( ସପ୍ତନ୍+ଅଙ୍ଗ ) ନୀତି-ଶାସ୍ତ୍ରୋକ୍ତ ରାଜ୍ୟର ସାତଗୋଟି ଅଙ୍ଗ, (ଯଥା-ସ୍ୱାମୀ,ଅମାତ୍ୟ, ସୁହୃତ୍, କୋଷ, ରାଷ୍ଟ୍ର, ଦୁର୍ଗ ଓ ବଳ, ମତାନ୍ତରେ ରାଜା, ଅମାତ୍ୟ,ପୁର, ରାଷ୍ଟ୍ର, କୋଷ, ଦଣ୍ଡ ଓ ସୁହୃତ୍, ମତାନ୍ତରରେ ରାଜା, ଅମାତ୍ୟ, ପ୍ରଜା, ଦୁର୍ଗ, କୋଷାଗାର, ଚତୁରଙ୍ଗ ସୈନ୍ୟ, ମିତ୍ର ), ଏକପ୍ରକାର ଯୋଗ-ସାଧନ, (ଜ୍ୟୋତିଷ) କୌଣସି ଦିବସ ସମ୍ବନ୍ଧେ ଜ୍ଞାତବ୍ୟ ଜ୍ୟୋତିଷୋକ୍ତ ସାତ-ଗୋଟି ବିଷୟ, ଯଥା—ତିଥି, ବାର, ନକ୍ଷତ୍ର, ରାଶି, ଯୋଗ, କରଣ ଓ ରବ୍ୟଂଶ, (ବ.ବ୍ରୀ—ସପ୍ତ ଅଙ୍ଗବିଶିଷ୍ଟ) ରାଜ୍ୟ ।

ସପ୍ତାତ୍ମା—ବିଂ. ସପ୍ତ ଆତ୍ମାବିଶିଷ୍ଟ, ସପ୍ତ ପ୍ରକୃତିବାନ୍ ।

ସପ୍ତାଦ୍ରି—ପୁଂ. ବି. ସପ୍ତପର୍ବତ, ମହେନ୍ଦ୍ର ପ୍ରଭୃତି ସାତଟି କୁଳାଚଳ ।

ସପ୍ତାବସା(ସେ)ଇବା—ଗ୍ରା.କ୍ରି. ସଂକଳ୍ପ-ପୂର୍ବକ ଏକ ସପ୍ତାହ କାଳ ଅନବରତ ଭାଗବତ ପାଠରୂପ ଅନୁଷ୍ଠାନର ସୂତ୍ରପାତ କରିବା ।

ସପ୍ତାର୍ଚ୍ଚିଃ—ବି.(ସପ୍ତନ୍+ଅର୍ଚ୍ଚିସ୍) ବ.ବ୍ରୀ; ସପ୍ତଜିହ୍ୱ, ଅଗ୍ନି, ଶନିଗ୍ରହ, ଚିତ୍ରକବୃକ୍ଷ, (ବିଂ) କ୍ରୂର ଚକ୍ଷୁବିଶିଷ୍ଟ ।

ସପ୍ତାର୍ଣ୍ଣବ—ବି. (ସପ୍ତନ୍+ଅର୍ଣ୍ଣବ)ସପ୍ତ-ସମୁଦ୍ର ଦେଖ ।

ସପ୍ତାସ୍ର—ବିଂ. ସପ୍ତକୋଣବିଶିଷ୍ଟ, ସପ୍ତ-କୋଣାକାର ।

ସପ୍ତାଶ୍ୱ—ବି. ( ସପ୍ତନ୍+ଅଶ୍ୱ ) ବ.ବ୍ରୀ, ସୂର୍ଯ୍ୟ,(ଦ୍ୱିଗୁ)ସାତଟା ଘୋଡ଼ା,ଗାୟତ୍ରୀ, ଉଷ୍ଣିକ୍, ଅନୁଷ୍ଟୁପ୍, ବୃହତୀ, ପଂକ୍ତି, ତ୍ରିଷ୍ଟୁପ୍, ଜଗତୀ ଏହି ସାତଟି ବୈଦିକ ଛନ୍ଦ, (ବିଂ-ବ.ବ୍ରୀ)ସାତଟି ଅଶ୍ୱବିଶିଷ୍ଟ ।

ସପ୍ତାଶ୍ୱବାହନ—ପୁଂ.ବି.(ବ.ବ୍ରୀ)ସୂର୍ଯ୍ୟ ।

ସପ୍ତାଷ୍ଟ—ବିଂ. ସପ୍ତ ବା ଅଷ୍ଟ ।

ସପ୍ତାସ୍ୟ—ବିଂ. ସପ୍ତସଂଖ୍ୟକ ଛନ୍ଦୋମୟ ମୁଖବିଶିଷ୍ଟ, ସପ୍ତମୁଖ ବିଶିଷ୍ଟ ।

ସପ୍ତାହ—ବି. (ସପ୍ତନ୍+ଅହନ୍) ସପ୍ତ-ଦିନ ବ୍ୟାପୀ କାଳ, ହପ୍ତା ।

ସପ୍ତି—ବି. (ସପ୍+କ.ତି)ଅଶ୍ୱ,ଘୋଡ଼ା ।

ସପ୍ତିତା—ବି.(ସପ୍ତି+ତା) ବେଗଗାମୀତ୍ୱ ।

ସପ୍ତିବାନ୍—ପୁଂ. ବିଂ. ସର୍ପଣଯୁକ୍ତ, ଶୀଘ୍ର ଗମନସମର୍ଥ ।

ସପ୍ତୀ—ପୁଂ. ବିଂ. ସପ୍ତସଂଖ୍ୟା ବିଶିଷ୍ଟ, ସପ୍ତସଂଖ୍ୟାଯୁକ୍ତ,(ସ୍ତ୍ରୀ)ସପ୍ତିନୀ=ବାଜିନୀ ।

ସପ୍ତୋତ୍ତର—ବିଂ. ( ସପ୍ତନ୍+ଉତ୍ତର ) ବ.ବ୍ରୀ; ସାତଉତ୍ତର, ଯେଉଁ ରାଶିର ଶେଷରେ ୭ ସଂଖ୍ୟା ଅଛି ।

ସପ୍ତୋତ୍ସାଦନ—ବିଂ. ସପ୍ତାଂଶେ ଖଣ୍ଡିତ (ଦେହ) ।

ସପ୍ତ୍ୟ—ବିଂ. ସର୍ପଣୀୟ, ଗମନଯୋଗ୍ୟ ।

ସପ୍ରକାରକ—ବିଂ. (ସ+ପ୍ରକାର+କ). ଭିନ୍ନ ଭିନ୍ନ ପ୍ରକାର ବିଶିଷ୍ଟ ।

ସପ୍ରଜ—ପୁଂ. ବିଂ. (ବ.ବ୍ରୀ-ସ+ପ୍ରଜା) ପ୍ରଜାବିଶିଷ୍ଟ, ସନ୍ତତିବାନ୍ (ସ୍ତ୍ରୀ) ସପ୍ରଜା ।

ସପ୍ରଜାପତିକ—ପୁଂ. ବିଂ. ପ୍ରଜାପତିର ସହିତ ବର୍ତ୍ତମାନ, ପ୍ରଜାପତିଯୁକ୍ତ ।

ସପ୍ରଣୟ—ବିଂ. ପ୍ରଣୟର ସହିତ,ପ୍ରଣୟ-ଯୁକ୍ତ ।

ସପ୍ରତିବନ୍ଧ-ବିଂ.(ସ+ପ୍ରତିବନ୍ଧ)ବାଧାଯୁକ୍ତ ।

ସପ୍ରତିଭ—ବିଂ. (ବ.ବ୍ରୀ) ପ୍ରତିଭାନ୍ୱିତ, ମେଧାବୀ, ଅତିଶୟ ବୁଦ୍ଧିମାନ୍, ସତର୍କ, ଚତୁର, (ସ୍ତ୍ରୀ) ସପ୍ରତିଭା ।

ସପ୍ରଭ—ବିଂ. (ବ.ବ୍ରୀ-ସ+ପ୍ରଭା) ପ୍ରଭା ବା ଦୀପ୍ତିବିଶିଷ୍ଟ, (ସ୍ତ୍ରୀ) ସପ୍ରଭା ।

ସପ୍ରଭତ୍ୱ—ବି. ଦୀପ୍ତି, ଔଜ୍ଜ୍ୱଲ୍ୟ ।

ସପ୍ରଭାବ—ପୁଂ. ବିଂ. (ବ.ବ୍ରୀ) ପ୍ରଭାବ ବା ପରାକ୍ରମବିଶିଷ୍ଟ, (ସ୍ତ୍ରୀ)ସପ୍ରଭାବା ।

ସପ୍ରଭୃତି—ବିଂ. ସମାନ ପ୍ରଭୃତି ।

ସପ୍ରମାଣ—ବିଂ. (ସ+ପ୍ରମାଣ) ପ୍ରମାଣ-ଯୁକ୍ତ, ପ୍ରମାଣିତ, (ବି) ସତ୍ୟତାବଧା-ରଣ, ଅସଂଶୟ । [ ବିଶିଷ୍ଟ ।

ସପ୍ରବାଦ—ବିଂ. ପ୍ରବାଦଯୁକ୍ତ, ପ୍ରବାଦ-

ସପ୍ରସବ—ବିଂ. ପ୍ରସବଯୁକ୍ତ; ପ୍ରସବର ସହିତ ବର୍ତ୍ତମାନ ।

ସପ୍ରାଣ—ପୁଂ. ବିଂ. (ବ.ବ୍ରୀ) ପ୍ରାଣବିଶିଷ୍ଟ, ଜୀବିତ, (ସ୍ତ୍ରୀ) ସପ୍ରାଣା ।

ସପ୍ରାୟ—ବିଂ.ଏକପ୍ରକାର, ଏକଜାତୀୟ ।

ସପ୍ରୁଣିଆ—ପ୍ରା.(ବଣେଇ ଓ ଖୋର୍ଦ୍ଧା)ବି. ଝଙ୍କାଳିଆ ଗୁଳ୍ମବିଶେଷ ।

ସପ୍ରେମା—ବିଂ. ପ୍ରେମ ବା ବନ୍ଧୁତ୍ୱଯୁକ୍ତ ।

ସଫତାଲୁ—ଯା.ବି. ଏକପ୍ରକାର ବିଦେ-ଶୀୟ ଖାଦ୍ୟଫଳ ଓ ବୃକ୍ଷ, ପୀଚ୍‌ଗଛ ଓ କୋଳି ।

ସଫ—ବି. ବିଶିଷ୍ଟ ଗୋଷ୍ଠୀୟ ଆଗୃର୍ଯ୍ୟ-ବିଶେଷ, ଭିନ୍ନଭିନ୍ନ ସାମଭେଦ ।

ସଫର୍—ଯା.ବି.ପର୍ଯ୍ୟଟନ, ଦେଶାନ୍ତରେ ଭ୍ରମଣ, ବିଦେଶବାସ, ଜଳଯାତ୍ରା ।

ସଫର-ବି.(ସ୍ଫୁର+କ.ଅ) ମତ୍ସ୍ୟବିଶେଷ, କେରଣ୍ଡିମାଛ, (ସ୍ତ୍ରୀ) ସଫରୀ ।

ସଫରଦରୀ—ଗ୍ରା. ବି. (ଜାହାଜୀ ଭାଷା) ଜାହାଜର ପଶ୍ଚାଦ୍ ଭାଗରେ ପତାକା ଉଡ଼ିବାର ସ୍ତମ୍ଭ ।

ସଫରଆ(ୟା)—ଗ୍ରା.ବିଂ. ଭ୍ରମଣକାରୀ ।

ସଫରକୁମଡ଼ା—ଯା. ବି. କୁଷ୍ମାଣ୍ଡବିଶେଷ, ଏକପ୍ରକାର କଖାରୁ ।

ସଫରୀ—ସ୍ତ୍ରୀ. ବି. (ସଫର+ଈ) ମତ୍ସ୍ୟ-ବିଶେଷ, କେରଣ୍ଡିମାଛ, (ଯା. ବିଂ) ଭ୍ରମଣକାରୀର ବ୍ୟବହାର୍ଯ୍ୟ ।

ସଫଳ—ବିଂ.(ସ+ଫଳ)ବ.ବ୍ରୀ; ଫଳ-ବାନ୍, ଫଳବିଶିଷ୍ଟ, ଯେଉଁ ଗଛରେ

ଫଳ ଧରୁଥାଏ, ଲାଭଜନକ, ଫଳରେ ବା କାର୍ଯ୍ୟରେ ଘଟିବା, ଯହିଁରେ ଆଶାନୁରୂପ ଫଳ ମିଳେ,(ସ୍ତ୍ରୀ)ସଫଳା ।

**ସଫଳକାମ**—ବି°.(ବ.ବ୍ରୀ)ସିଦ୍ଧ ମନୋରଥ, ଯାହାର ମନୋରଥ ସୁସିଦ୍ଧ ହୋଇଥାଏ ।

**ସଫଳକ୍ଳେଶ(କଷ୍ଟ)**—ବି. (କ.ଧା)ଯେଉଁ କ୍ଳେଶ ପାଇବା ଦ୍ୱାରା ଅଭିପ୍ସିତ ଫଳ ଲାଭ ହୁଏ ।

**ସଫଳତା**—ବି.(ସଫଳ+ଭା.ତା)ସାଫଲ୍ୟ, ସିଦ୍ଧି, କୃତକାର୍ଯ୍ୟତା ।

**ସଫଳପରିଶ୍ରମ**—ବି. (କ.ଧା) ଫଳଯୁକ୍ତ ପରିଶ୍ରମ ।

**ସଫଳପ୍ରଯତ୍ନ**—ବି. (କ.ଧା) ଫଳଯୁକ୍ତ ଉଦ୍ୟମ, (ପୁଂ. ବି°-ବ.ବ୍ରୀ) ଯାହାର ଯତ୍ନ ସଫଳ ହୋଇଅଛି, (ସ୍ତ୍ରୀ)ସଫଳପ୍ରଯତ୍ନା ।

**ସଫଳସ୍ୱପ୍ନ**—ବି. (କ.ଧା) ଯେଉଁ ସ୍ୱପ୍ନଦୃଷ୍ଟ ଘଟନା ସତରେ ଘଟେ ବା ସଫଳ ହୁଏ,( ପୁଂ.ବି°-ବ.ବ୍ରୀ ) ଯାହାର ସ୍ୱପ୍ନଦୃଷ୍ଟ ବିଷୟ ବାସ୍ତବ ଘଟନାରେ ପରିଣତ ହୋଇଛି, (ସ୍ତ୍ରୀ) ସଫଳସ୍ୱପ୍ନା ।

**ସଫଳୀକୃତ**—ବି°. (ସଫଳ+ଚ୍ୱି+କୃ+ର୍ମ.ତ) ପୂର୍ବେ ଯାହା ସଫଳ ନଥିଲା ବର୍ତ୍ତମାନ ସଫଳ କରାହୋଇଅଛି ।

**ସଫା**—ଯା.ବି°. ସୁସ୍ପଷ୍ଟ, ସରଳ.ନିଷ୍କପଟ, ପ୍ରକାଶ୍ୟ, ନିର୍ଦ୍ଦୋଷ, ଯହିଁରେ ଦାଗ ନାହିଁ, (ଯା.ବି) ସୁନ୍ଦର, ନିର୍ମଳ,ପୃଷ୍ଠା, ଜମିଜମାର ସମଷ୍ଟି ପୃଷ୍ଠା, (କ୍ରି. ବି°) ସୁସ୍ପଷ୍ଟ ରୂପେ, ପ୍ରକାଶ୍ୟ ରୂପେ ।

**ସଫାଇ**—ଯା.ବି°.ପରିଷ୍କୃତ, ସୁସ୍ପଷ୍ଟୀକୃତ, (ବି) ପରିଷ୍କୃତକରଣ, ଅଭିଯୁକ୍ତ ବ୍ୟକ୍ତି ଆପଣାକୁ ନିର୍ଦ୍ଦୋଷ ବୋଲି ଅଦାଲତଙ୍କ ନିକଟରେ ପ୍ରମାଣ ଦର୍ଶାଇବା କର୍ମ, ନିର୍ଦ୍ଦୋଷତା, ସଚ୍ଚାପଣ, ବିଶ୍ୱାସିତା, ସରଳତା, ନିଷ୍କପଟତା ।

**ସଫାଇସାକ୍ଷୀ**—ଗ୍ରା.ବି.ଅଭିଯୁକ୍ତ ବ୍ୟକ୍ତିର ସ୍ୱୀୟ ନିର୍ଦ୍ଦୋଷତା ପ୍ରମାଣାର୍ଥ ଅଦାଲତରେ ଉପସ୍ଥାପିତ ସାକ୍ଷୀ ।

**ସଫାଇସାହେବ**—ଗ୍ରା.(ସ୍ଥାନୀ)ବି, ମ୍ୟୁନିସି-ପାଲିଟିର ମେଥରମାନଙ୍କ ସଫା ରହିବାକୁ ନାହିଁ ଏ ବିଷୟ ପରିଦର୍ଶନ କରିବା ପାଇଁ ସହରରେ ମ୍ୟୁନିସିପାଲିଟି ଦ୍ୱାରା ନିଯୁକ୍ତ ପ୍ରଧାନ କର୍ମଚାରୀ ।

**ସଫାକଥା**—ଗ୍ରା. ବି. ସୁସ୍ପଷ୍ଟକଥା, ସରଳ ବା ନିଷ୍କପଟ କଥା ।

**ସଫାକରିବା**—ଗ୍ରା.କ୍ରି. କୌଣସି ସ୍ଥାନକୁ ପରିଷ୍କୃତ କରିବା, ନିର୍ମଳ ବା ମଳ-ଶୂନ୍ୟ କରିବା ।

**ସଫାଝାଡ଼ା**—ଗ୍ରା. ବି. କୋଷ୍ଠଶୁଦ୍ଧି ।

**ସଫାପାଣି**—ଗ୍ରା. ବି. ନିର୍ମଳ ଜଳ, ସ୍ୱଚ୍ଛ-ଜଳ ।

**ସଫାଲୁଗା**—ଗ୍ରା.ବି. ପରିଷ୍କୃତ ବସ୍ତ୍ର, ମଳ ବା ଚିହ୍ନହୀନ ଲୁଗା ।

**ସଫାସଫା**—ଗ୍ରା. କ୍ରି. ବି°, ସୁସ୍ପଷ୍ଟ ରୂପେ, ନିଷ୍କପଟ ଭାବରେ ।

**ସଫାସାବି(ବୁ)ତ**—ଯା.ବି. ସୁସ୍ପଷ୍ଟ ପ୍ରମାଣ, ନିଃସନ୍ଦେହ ପ୍ରମାଣ,(ବି°) ସୁସ୍ପଷ୍ଟ ରୂପେ ପ୍ରମାଣିତ ।

**ସଫାସୁର(ତୁ)ତ**—ଯା. ବି° ସୁପରିଷ୍କୃତ, ସୁନିର୍ମଳ, ପରିଷ୍କୃତ ଓ ପରିଚ୍ଛନ୍ନ ।

**ସଫି**—ବି.ଏକପ୍ରକାର ବନ୍ୟ ବୃକ୍ଷ (ବଙ୍ଗ ଦେଶର ଉତ୍ତର ପୂର୍ବ ପ୍ରାନ୍ତରେ ଜନ୍ମେ)

**ସଫୁର୍**—ଫା. (ସମ୍ବ)ବି°. ସବୁ ।

**ସଫେଇ**—ଯା.ବି. ସଫାଇ ଦେଖ, (ପ୍ରା. ବଳଙ୍ଗିର ପାଟଣା)ବି°.ସଫା,ପରିଷ୍କୃତ ।

**ସଫେଦ୍(ଦ)**—ଯା. ବି°. ଧଳା, ଶୁକ୍ଳ, ଶୁଭ୍ର, ଉଜ୍ଜ୍ୱଳ, (ବି) ଶୁକ୍ଳବର୍ଣ୍ଣ, ଶୁକ୍ଳ-ବର୍ଣ୍ଣ ଚୂନା, ରଙ୍ଗ କରିବା ନିମନ୍ତେ ବ୍ୟବହୃତ ସୀସକରୁ ପ୍ରସ୍ତୁତ ଧଳାଚୂନା ଓ ରଙ୍ଗବିଶେଷ ।

**ସଫେ(ଫୈ)ଦ୍‌କୋ**—ଯା. ବି. ଆଫଗାନ ସ୍ଥାନର ପର୍ବତ ମାଳାବିଶେଷ ।

**ସଫେଦ୍‌ପଇ**—ଯା. ବି. ପୂତିକା ଶାକ-ବିଶେଷ, ପୁଇଶାଗ ।

**ସଫେଦା**—ଯା. ବି°. ଶୁକ୍ଳ, ଧଳା, ଶୁଭ୍ର, ଉଜ୍ଜ୍ୱଳ. (ବି) ରଙ୍ଗ ପାଇଁ ବ୍ୟବହୃତ ଏକପ୍ରକାର ଧଳାରଙ୍ଗ, (ସୀସକରୁ ଉତ୍ପନ୍ନ) ଲକ୍ଷ୍ନୌର ପ୍ରସିଦ୍ଧ ଧଳା ଖରଣ୍ଡ ମୂଳ, ଲକ୍ଷ୍ନୌର ପ୍ରସିଦ୍ଧ ଧଳା ଆମ୍ବ, ରଙ୍ଗରେ ଓ ଔଷଧରେ ବ୍ୟବହୃତ ଦସ୍ତା ଧାତୁର ଭସ୍ମ, ଏକପ୍ରକାର ବିଦେଶାଗତ ସୁସ୍ୱାଦୁ ଫଳ ଓ ତହିଁର ବୃକ୍ଷ, ସପେଟା, ଗୃହର ଚୂନା ।

**ସଫେଦ୍**—ଯା. ବି. ଶୁକ୍ଳୀକରଣ, ଘରର କାନ୍ଥାଦିକୁ ଜଳ ଚୂନାଦିରେ ଧଳା କରିବା ।

**ସଫେନ**—ବି°. (ବ.ବ୍ରୀ) ଫେନଯୁକ୍ତ, ଫେନବିଶିଷ୍ଟ ।

**ସବ୍**—ଯା. ବି°.(ଇଂ ଓ ଲାଟିନ୍—ସବ୍; ଅନ୍ୟ ଶବ୍ଦ ପୂର୍ବେ ବ୍ୟବହୃତ ଇଂରାଜୀ ଉପପଦ; ଏହାର ଅର୍ଥ— ଅଧୀନ, ନିମ୍ନ, (ସର୍ବ.) ସବୁ, ସମସ୍ତ ।

**ସବ୍‌ଜା**—ଯା. ବି°, ସବଜା ଦେଖ ।

**ସବ୍‌ଜାନ୍ତା**—ଯା. ବି. ବି°. (ସ=ସର୍ବଜ୍ଞ) ଯେଉଁ ବ୍ୟକ୍ତି ସର୍ବଜ୍ଞ ବୋଲି ଗର୍ବ କରେ ।

**ସବ୍‌ଜୀ**—ଯା. ବି. ସବଜୀ ଦେଖ ।

**ସବ୍‌ଡିଭିଜନ**—ଯା. ବି. ଜିଲ୍ଲାର ଅଧସ୍ତନ ମହକୁମା, ଡେପୁଟିମାଜିଷ୍ଟ୍ରେଟଙ୍କ ଇଲାକାର ଡିଭିଜନ ଅଧୀନ ଇଲାକା ।

**ସବ୍‌ପ୍ରୋଟେମ୍**—ଯା. ବି. (ଲାଟିନ୍)ସର-କାରୀ ଚାକିରିର ଏକପ୍ରକାର ଅସ୍ଥାୟୀ ବ୍ୟବସ୍ଥା ।

**ସବ୍‌ରତୁ**—ଯା. ବି. ସବୁରତୁ ଦେଖ ।

**ସବ୍‌ରତୁକରିବା**—ଗ୍ରା.କ୍ରି.ଅପେକ୍ଷାକରିବା, ସହ୍ୟକରିବା, ଧୈର୍ଯ୍ୟ ସହକାରେ ରହିବା ।

**ସବ୍‌ରତ**—ଯା.ବି°.ସହନଶୀଳ, ଧୈର୍ଯ୍ୟ-ଶୀଳ, ସୁସ୍ଥିରମନାଃ ।

**ସବ୍‌ଲମ୍ବରଦାର୍**—ପ୍ରା.(ସମ୍ବ)ବି. ମାହାଲର ନିମ୍ନ ସ୍ୱତ୍ୱାଧିକାରୀ ବ୍ୟକ୍ତିମାନଙ୍କ କର୍ମଚାରୀ ପ୍ରତିନିଧି ।

**ସବ୍‌ଲୁ(ଲୋ)ଟ୍**—ଗ୍ରା. ବି°. ଲମ୍ପଟ, ସବୁ-ଖିଆ (ବ୍ୟକ୍ତି) ।

**ସବ୍‌ସିଡ଼ିଆରସନ୍ଧି**—ଗ୍ରା. ବି. ଇଷ୍ଟଇଣ୍ଡିଆ କମ୍ପାନି ଏବଂ ଦେଶୀୟ ରାଜା ପରସ୍ପରକୁ ଯୁଦ୍ଧରେ ଓ ଶତ୍ରୁଠାରୁ ରକ୍ଷାହେ

ସାହାଯ୍ୟ କରିବା ସର୍ତ୍ତରେ ହୋଇଥିବା ସନ୍ଧି ।

ସବ—ବି. (ସୂ+ମି.ଅ) ଅପତ୍ୟ, ସନ୍ତାନ, ସୂର୍ଯ୍ୟ, ପୁଷ୍ପମଧୁ, ଚନ୍ଦ୍ର, ଯଜ୍ଞରେ ପ୍ରସ୍ତୁତ ଆସବ, ଯାଗବଳିଦାନ, ଆହୁତି, (ଭୂ.ଅ) ପ୍ରସବ, ସୁରସନ୍ଧାନ, (କ.ଅ) ଜଳ, ଯଜ୍ଞ, ସୋମରସ ନିଷ୍ପୀଡ଼ନ ଓ ପାନ, (ବିଂ) ଅଙ୍କ ।

ସବଂଶ—ବିଂ. (ବ.ବ୍ରୀ) (ସ+ବଂଶ) ବଂଶସହିତ, ସପରିବାର ।

ସବଂଶେ—କ୍ରି.ବିଂ.(ବ.ବ୍ରୀ) ବଂଶର ସହିତ, କୁଳଜାତ ସକଳ ଲୋକଙ୍କ ସହିତ ।

ସବଚନ—ବିଂ. ସମାନ ବଚନ ।

ସବଜ—ଯା.ବିଂ. ସବୁଜ ଦେଖ ।

ସବଜା—ଯା.ବିଂ. ସବୁଜା ଦେଖ ।

ସବଜି(ଜୀ)—ଯା. ବି. ଉଦ୍ଭିଜ୍ଜ ଦ୍ରବ୍ୟ, ଶାକ, କଞ୍ଚା ଉଦ୍ଭିଦ ବା ତରକାରି ।

ସବଦ—ଗ୍ରା.ବି. (ସଂ-ଶପଥ) ରାଣ ।

ସବସ୍ତ୍ର—ପୁଂ.ବିଂ. (ବ.ବ୍ରୀ) ବସ୍ତ୍ରସହିତ, (ସ୍ତ୍ରୀ) ସବସ୍ତ୍ରା ।

ସବସ୍ତ୍ରାଗାଭୀ—ଗ୍ରା. ବି. ବାଛୁରି ସହିତ ଥିବା ଗାଈ ।

ସବସ୍ତ୍ରାଧେନୁଦାନ—ବି. ମହା ପୁଣ୍ୟକର ଦାନବିଶେଷ, ବ୍ରାହ୍ମଣଙ୍କୁ ବାଛୁରି ସହିତ ଦୁହାଁଳି ଗାଈ ଦାନ କରିବା ।

ସବନ—ବି. (ସୂ+ଭା.ଅନ) ପ୍ରସବ, (ଣ.ଅ) ଯଜ୍ଞସ୍ନାନ, ସ୍ନାନ, ଅଧ୍ୱର, ଯଜ୍ଞ, ସୋମପାନ, ସୋମରସ ସନ୍ଧାନ, ସୋମନିର୍ଦ୍ଦଳନ, ଚନ୍ଦ୍ର, ପୁଷ୍କର ଦ୍ୱୀପର ପୌରାଣିକ ରାଜା, (ଅଧି.ଅ) ଯଜ୍ଞ, ଭୃଗୁଙ୍କର ଏକପୁତ୍ର, ସ୍ୱାୟମ୍ଭୁବ ମନୁଙ୍କର ପୁତ୍ର, ପ୍ରିୟବ୍ରତ ରାଜାଙ୍କର ଏକପୁତ୍ର, ଅଗ୍ନିଙ୍କର ନାମାନ୍ତର, (ବିଂ-ବ.ବ୍ରୀ), ବନବିଶିଷ୍ଟ ।

ସବନକର୍ମ—କ୍ଳୀ.ବି. ଯଜ୍ଞ କର୍ମ ।

ସବନମୁଖ—ବି. ଯଜ୍ଞାରମ୍ଭ ।

ସବନବିଧ—ବି. ଯଜ୍ଞକାର୍ଯ୍ୟ, ଯଜ୍ଞର ବିଷୟୀଭୂତ ।

ସବନଶଃ—ଅବ୍ୟ. ତ୍ରିକାଳଂ, ମନ୍ଦ୍ରମଧ୍ୟମ ଓ ତାର ସ୍ୱରଯୁକ୍ତ (ଗୀତଧ୍ୱନି ।

ସବନିକ—ବିଂ. (ସବନ+ଇକ) ଯଜ୍ଞସମ୍ବନ୍ଧୀୟ ।

ସବନୀୟ—ବିଂ. ସୋମ ଯଜ୍ଞସମ୍ବନ୍ଧୀୟ ।

ସବନୁର—ବି. ବୋମ୍ବାଇ ଧାରୱାଡ଼ ଜିଲାନ୍ତର୍ଗତ ଗୋଟିଏ ସାମନ୍ତ ରାଜ୍ୟ ।

ସବନ୍ଧକପ୍ରୟୋଗ—ବି. କୌଣସି ବସ୍ତୁ ବନ୍ଧକ ରଖି ଋଣ ଦାନ ।

ସବନ୍ଧୁ—ବିଂ. ବନ୍ଧୁର ସହିତ ବର୍ତ୍ତମାନ, ବନ୍ଧୁଯୁକ୍ତ ।

ସବୟାଃ—ବିଂ. (ସ+ବୟସ୍) ସମାନବୟସ୍କ, ସମସାମୟିକ, (ବି) ସହଚର, (ସ୍ତ୍ରୀ) ସହଚରୀ, ବୟସ୍ୟା, ସଖୀ ।

ସବର—ବି.(ସୂ+କ.ଅର) ସଳିଳ ଜଳ, ଶିବ; (ଜାହାଜିଆଭାଷା) ଜାହାଜରେ ବ୍ୟବହୃତ ପାଲବିଶେଷ ।

ସବର୍—ଗ୍ରା.ବିଂ. ଭରଭର, ନଈର ପୂର୍ଣ୍ଣ ବଢ଼ି ହେବା (ଅବସ୍ଥା) ।

ସବର୍ଣ୍ଣ—ବିଂ. (ବ.ବ୍ରୀ) ସମବର୍ଣ୍ଣ ଏକ ରଙ୍ଗବିଶିଷ୍ଟ, ସଦୃଶ, (ବ୍ୟାକରଣ) ଏକ ସ୍ଥାନରୁ ଉଚ୍ଚାରିତ (ବର୍ଣ୍ଣ ବା ଅକ୍ଷରମାନ), (ବି) ସମାନ ଜାତି, ସଦୃଶ ରଙ୍ଗ, ଏକ ସ୍ଥାନରୁ ଉଚ୍ଚାରିତ ବର୍ଣ୍ଣ ।

ସବର୍ଣ୍ଣବିବାହ—ବି. ସମଜାତୀୟ ପୁରୁଷ ଓ ସ୍ତ୍ରୀଙ୍କ ମଧ୍ୟରେ ବିବାହ ।

ସବର୍ଣ୍ଣା—ସ୍ତ୍ରୀ.ବିଂ. (ସବର୍ଣ୍ଣ+ଆ) ବ.ବ୍ରୀ; ସମାନ ଜାତୀୟା, ସଦୃଶୀ ।

ସବର୍ଣ୍ଣା—ସ୍ତ୍ରୀ. ବି. ସୂର୍ଯ୍ୟଙ୍କ ପତ୍ନୀ, ଛାୟାଦେବୀ, ସମାନ ଜାତୀୟା (ସ୍ତ୍ରୀ) ।

ସବର୍ଣ୍ଣୀଭ—ବିଂ. ସବର୍ଣ୍ଣ ।

ସବର୍ଣ୍ଣିକରଣୀ—ଗ୍ରା. ବି. ଅବ୍ୟର୍ଥ ମହୌଷଧବିଶେଷ ।

ସବର୍ଯ୍ୟ—ବିଂ. ଶ୍ରେଷ୍ଠଗୁଣବିଶିଷ୍ଟ, ଶ୍ରେଷ୍ଠ ଧନବିଶିଷ୍ଟ, ବଳିୟାନ୍, (ସ୍ତ୍ରୀ) ସବର୍ଯ୍ୟା ।

ସବଳ—ପୁଂ. ବିଂ. (ବ.ବ୍ରୀ) ବଳବାନ୍, ସାମର୍ଥ୍ୟଯୁକ୍ତ, ସୈନ୍ୟଯୁକ୍ତ, ଦଳବଳ ସହିତ, ବଳପ୍ରୟୋଗଯୁକ୍ତ, (ସ୍ତ୍ରୀ) ସବଳା, (ଗ୍ରା.ବି) ନାନାବିଧ ବର୍ଣ୍ଣବିଶିଷ୍ଟ ।

ସବଳତା—ବି. ବଳବତ୍ତା, ସାମର୍ଥ୍ୟ ।

ସବଳି—ବି. ପ୍ରଦୋଷ, ସନ୍ଧ୍ୟା, ଓପର ଓଳି, (ବିଂ.ବ.ବ୍ରୀ; ସ+ବଳି) ବଳିବିଶିଷ୍ଟ

ସବଳେ—ଗ୍ରା.କ୍ରି.ବିଂ. ବଳପୂର୍ବକ, ଜୋର ସହିତ, ସୈନ୍ୟସଙ୍ଗ ।

ସବସ୍ତ୍ର—ବିଂ. (ସ+ବସ୍ତ୍ର) ବସ୍ତ୍ର ସହିତ, ପରିହିତବସ୍ତ୍ର, (ସ୍ତ୍ରୀ) ସବସ୍ତ୍ରା ।

ସବହ୍ନି—ବି. କ୍ରିତ୍ତା, ତଦ୍ଭିନ୍ନ ।

ସବହୁମାନ—କ୍ରି. ବିଂ. (ସ+ବହୁମାନ) ବହୁମାନ ସହକାରେ, ସମ୍ମାନସହକାରେ

ସବା—ଗ୍ରା. ସର୍ବ; (ସଂ-ସର୍ବ—ଏହା ଅନ୍ୟ ଶବ୍ଦପରେ ଲାଗେ) ସବୁ, (ଯଥା—ସବାଖିଆ, ସବାବାଲ, (ସମସ୍ତଙ୍କ ମଧ୍ୟରେ, ଯଥା—ସବାହାନ, ସବାବଡ଼) ଗ୍ରା.ବିଂ. (ସଂ-ସପାଦ) ସଉଆ ।

ସବାଆଗ—ଗ୍ରା. ବିଂ.(ସଂ-ସର୍ବାଗ୍ର) ସର୍ବାଗ୍ର, ସର୍ବାଗ୍ରେସ୍ଥିତ, (କ୍ରି.ବିଂ) ସମସ୍ତଙ୍କ ଆଗରେ, (ବି) ସର୍ବାଗ୍ରସ୍ଥାନ, ସମସ୍ତଙ୍କ ଆଗ ।

ସବାଇ—ଗ୍ରା. ବି. (ସଂ-ଶତପର୍ବିକା କିମ୍ବା ଶତ ବୀର୍ଯ୍ୟା) ଏକପ୍ରକାର ଘାସ, ପନାସୀଘାସ ।

ସବାକାଳେ—ଗ୍ରା.କ୍ରି.ବିଂ. ସବୁ କାଳପାଇଁ, ସର୍ବଦା ।

ସବାକାନ୍ତ—ଗ୍ରା. ବିଂ. ନିର୍ଦ୍ଦିଷ୍ଟ ସୀମାରେ ଅବସ୍ଥିତ, ସମସ୍ତ ଭୂମି ସହିତ, ଚତୁର୍ଦ୍ଦିଗରେ ନିର୍ଦ୍ଦିଷ୍ଟ ସୀମାବିଶିଷ୍ଟ ।

ସବାଖଇଙ୍ଗା—ଗ୍ରା. ବି. ଚିଲିକାହ୍ରଦରେ ମିଳୁଥିବା ଏକପ୍ରକାର ବଡ଼ମାଛ ।

ସବାଖାଇ—ଗ୍ରା. ସ୍ତ୍ରୀ. ବି. ସବାଖିଆର ସ୍ତ୍ରୀଲିଙ୍ଗ, ସବାଖିଆ କେଳାଜାତୀୟା ସ୍ତ୍ରୀ, (ସ୍ତ୍ରୀମାନଙ୍କୁ ଦିଆଯିବା ଗାଳିବିଶେଷ) ଯେଉଁ ସ୍ତ୍ରୀ ସମସ୍ତ ପଦାର୍ଥଖାଏ, ଅର୍ଥାତ୍ ଅଖାଦ୍ୟ ଖାଏ, ଯେ ନିଷିଦ୍ଧ ଓ ଘୃଣ୍ୟଦ୍ରବ୍ୟ ଖାଏ, ଅମେଧ୍ୟଭୋଜିନୀ ।

ସବାଖିଆ(ଖୁଆ)—ଗ୍ରା. ପୁଂ. ବିଂ. (ସଂ-ସର୍ବଖାଦକ) ଯେ ସବୁ ପଦାର୍ଥ ଖାଏ, ଯାହାର ଖାଇବା ବିଷୟରେ ମେଧ୍ୟାମେଧ୍ୟ ବିଚାର ନଥାଏ, (ବି) କେଳାମାନଙ୍କ ଶ୍ରେଣୀବିଶେଷ ।

ସୁବାଧ—ବି°. (ବ.ବ୍ରୀ) ବାଧାଯୁକ୍ତ,ପୀଡ଼ାଯୁକ୍ତ, ନିଷେଧଯୁକ୍ତ ।

ସବାପଛ—ଗ୍ରା. କ୍ରି. ବି°.ସମସ୍ତଙ୍କପଶ୍ଚାତ୍‌ଭାଗରେ, ସମସ୍ତଙ୍କ ଶେଷରେ, ସମସ୍ତଙ୍କ ପରେ ।

ସବାବଡ଼—ଗ୍ରା. ବି°. ସମସ୍ତଙ୍କଠାରୁ ବଡ଼ ବୃଦ୍ଧତମ,ସମସ୍ତଙ୍କଠାରୁ ଅଧିକ ବୟସ୍କ ।

ସବାବାଲ—ଗ୍ରା. ବି. ମସ୍ତକ ଓ ମୁଖରେ ବଢ଼ିଥିବା ସମଗ୍ର କେଶ ।

ସବା(ଓ୍ୱା)ର୍‌—ଯା.ବି.ଆରୋହୀ,ଅଶ୍ୱାରୋହୀ

ସବାରିଣି—ଗ୍ରା. ବି. ପ୍ରତ୍ୟେକ କ୍ଷେତକୁ ଖଣ୍ଡ ଖଣ୍ଡ କରି ମପିବା ପ୍ରକାର, (ଗ୍ରା. ବି°) କ୍ରମିକ, କତାଓ୍ୱାରି (ମାପ) ।

ସବାରି—ଯା. ବି. (ସଂ-ଶିବିକା) ପାଲିଙ୍କି, ଖଡ଼ଖଡ଼ି, ଘୋଡ଼ା ବା ହାତୀ ଉପରେ ଚଢ଼ିବା, ଘୋଡ଼ା ଓ ଗାଡ଼ିଆଦିରେ ଚଢ଼ିବାର ଅର୍ଥ,(ବି°) ଚଢ଼ିବା ନିମନ୍ତେ ବ୍ୟବହୃତ, ଆରୋହଣ ଯୋଗ୍ୟ ।

ସବାରିଆ—ଗ୍ରା. ବି°. ଯେଉଁ ଘୋଡ଼ା ସବାରି ବା ଚଢ଼ିବାପାଇଁ ବ୍ୟବହୃତ ହୁଏ ।

ସବାର୍ଷି—ପ୍ରା. (ଲରିଆ),ବି°.ଇଜମାଲି ।

ସବା(ଓ୍ୱା)ଲ—ଯା. ବି.ପ୍ରଶ୍ନ,ମକଦ୍ଦମାରେ କୌଣସି ପକ୍ଷ ଅପର ପକ୍ଷକୁ ଲେଖିକରି ପଚାରିବା ପ୍ରଶ୍ନ ।

ସବାସ—ବି°.(ସ+ବାସ;ବ.ବ୍ରୀ)ଗନ୍ଧଯୁକ୍ତ, ଗୃହଯୁକ୍ତ, ଗୃହସ୍ଥ । [ ଦେଖ ।

ସବାସା(ସାଃ)—ବି°. (ସ +ବାସସ୍‌)ସବସ୍ତ୍ର

ସବସାଦ--ବି°.ଲୁଗାପାରିବା, ବସ୍ତ୍ରପରିହିତ

ସବାସାନ-ଗ୍ରା.ବି°.ସମସ୍ତଙ୍କ ମଧ୍ୟରେ ସାନ

ସବାସୀ—ବି°. ଏକବସ୍ତ୍ରଧାରୀ ବା ଏକାନ୍ତ ବାସକାରୀ ।

ସବାହ୍ୟାନ୍ତଃକରଣ—ବି°. (ବ.ବ୍ରୀ) ଦେହ ଓ ଅନ୍ତଃକରଣ ସହିତ ବର୍ତ୍ତମାନ ।

ସବାହ୍ୟାଭ୍ୟନ୍ତର—ବି°. (ବ.ବ୍ରୀ)ବାହାର ଓ ଭିତରର ସହିତ ।

ସବି—ଗ୍ରା. (ସର୍ବ) ସର୍ବେ, ସବୁ ।

ସବିଏ—ଗ୍ରା. (ସର୍ବ) ସମସ୍ତେ, ପ୍ରତ୍ୟେକ ବ୍ୟକ୍ତି ।

ସବିକଳ୍ପ—ବି°. ଦ୍ୱୈଧଜ୍ଞାନଯୁକ୍ତ,ସନ୍ଦିଗ୍ଧ, ଉଭୟ ପ୍ରକାର ମତାନୁଯାୟୀ, ବି. (ବେଦାନ୍ତ) ଜ୍ଞାତା ଓ ଜ୍ଞେୟର ଭେଦଜ୍ଞାନ, (ନ୍ୟାୟଦର୍ଶନ)ବିଶେଷଣ (ଗୁଣ) ଯୁକ୍ତ ବିଶେଷ୍ୟ(ବସ୍ତୁ)ର ଜ୍ଞାନ, (ଯୋଗଶାସ୍ତ୍ର) ସମାଧିବିଶେଷ ।

ସବିକଳ୍ପକ—ବି ଓ ବି°.ସବିକଳ୍ପ ଦେଖ ।

ସବିକାର—ବି°. (ବ.ବ୍ରୀ) ବିକାରଯୁକ୍ତ, ଚିତ୍ତବିକାରବିଶିଷ୍ଟ, (ସ୍ତ୍ରୀ) ସବିକାରୀ ।

ସବିକାଶ(ସ)—ବି°.(ବ.ବ୍ରୀ)ବିକାଶପ୍ରାପ୍ତ, ପ୍ରସାରିତ, ଅସଙ୍କୁଚିତ,ପ୍ରଫୁଲ୍ଲ,ବିକଶିତ ।

ସବିଗ୍ରହ—ବି°.(ବ.ବ୍ରୀ)ମୂର୍ତ୍ତିମାନ୍‌,ଦେହବିଶିଷ୍ଟ, ସଶରୀର, ରୂପବିଶିଷ୍ଟ, ଦେବମୂର୍ତ୍ତିସହ ବିଦ୍ୟମାନ,(ବ୍ୟାକରଣ)ସମାସଯୁକ୍ତ ବା ସମସ୍ତ ପଦ), ଅର୍ଥଦ୍ୟୋତକ, ତାତ୍ପର୍ଯ୍ୟସୂଚକ ।

ସବିଙ୍କ—ଗ୍ରା. (ସର୍ବ) ସମସ୍ତଙ୍କର ।

ସବିଙ୍କି(ଙ୍କୁ)—ଗ୍ରା. (ସର୍ବ) ସମସ୍ତଙ୍କୁ ।

ସବିଚାର—ବି°.ବିଚାରଯୁକ୍ତ,ବିଚାରବିଶିଷ୍ଟ, (ବି) ସମାଧିବିଶେଷ । [ ସହିତ ।

ସବିଜ୍ଞାନ—ବି°. (ସ+ବିଜ୍ଞାନ) ବିଜ୍ଞାନ

ସବିଡ଼ାଲମ୍ଭ—ବି.ପରିହାସ ବା କୌତୁକ, ନଟନଭେଦ ।

ସବିତର୍କ—ବି°.ବିତର୍କଯୁକ୍ତ,ବିତର୍କବିଶିଷ୍ଟ, (ବି) ସମାଧିବିଶେଷ ।

ସବିତା—ପୁଂ.ବି°.(ସୂ+କ.ତୃ)ଜନୟିତା, ସ୍ରଷ୍ଟା, (ସ୍ତ୍ରୀ) ସବିତ୍ରୀ, ( ବି ) ସୂର୍ଯ୍ୟ, ଈଶ୍ୱର, ଅର୍କବୃକ୍ଷ ।

ସବିତାଚଳ—ବି. ମେରୁର ଉତ୍ତରସ୍ଥ ପର୍ବତବିଶେଷ ।

ସବିତୃ—ବି. ଓ ବି° ସବିତା ଦେଖ ।

ସବିତୃତନୟ—ବି. (ଜ୍ୟୋତି) ଶନିଗ୍ରହ ।

ସବିତୃଦୈବତ—ବି.(ବ.ବ୍ରୀ)ହସ୍ତାନକ୍ଷତ୍ର ।

ସବିତୃପ୍ରସୂତ—ବି°.ସୂର୍ଯ୍ୟଙ୍କଠାରୁ ଜାତ ।

ସବିତୃମଣ୍ଡଳ—ବି.(ଜ୍ୟୋତି)ସୂର୍ଯ୍ୟମଣ୍ଡଳ ।

ସବିତୃଲ—ବି°. ସୂର୍ଯ୍ୟସମ୍ବନ୍ଧୀୟ ।

ସବିତୃସୁତ—ବି. (ଜ୍ୟୋତି) ଶନିଗ୍ରହ ।

ସବିଦ—ବି. (ସୂ+ଇଦ) ପ୍ରସବକରଣ ।

ସବିତ୍ରିୟ—ବି°. (ସବିତୃ+ଇୟ) ସୂର୍ଯ୍ୟସମ୍ବନ୍ଧୀୟ ।

ସବିତ୍ରୀ—ସ୍ତ୍ରୀ. ବି°. (ସୂ+ତୃ+ଈ)ଜନୟିତ୍ରୀ, ପ୍ରସୂତି, ଉତ୍ପାଦିକା, (ସ୍ତ୍ରୀ. ବି) ଜନନୀ, ମାତା, ଗାଈ ।

ସବିଦ୍ୟ—ପୁଂ.ବି°. (ସ + ବିଦ୍ୟା)ବ.ବ୍ରୀ; ବିଦ୍ୱାନ୍‌, କୃତବିଦ୍ୟ, (ସ୍ତ୍ରୀ) ସବିଦ୍ୟା ।

ସବିଧ—ବି°. (ବ.ବ୍ରୀ) ସଦୃଶ, ସମୀପ, ନିକଟ, (ସ୍ତ୍ରୀ) ସବିଧା ।

ସବିଧାନ—ବି°. (ବ.ବ୍ରୀ)ବିଧିପୂର୍ବକ ।

ସବିନୟ—ବି°. (ସ+ବିନୟ) ବ.ବ୍ରୀ; ବିନୀତ, ବିନୟଯୁକ୍ତ, (କ୍ରି.ବି°) ବିନୟ ସହକାରେ ।

ସବିନୟନିବେଦନ—ବି. (କ.ଧା)ବିନୟ ସହକାରେ ଅନୁରୋଧ ।

ସବିନୟନିବେଦନମିଦଂ—( ସଂ-ବାକ୍ୟ ) ଚିଠି ଲେଖିବା ଆଦ୍ୟରେ ଶିରୋନାମାରେ ଲେଖାଯିବା ବାକ୍ୟ, ଏଥିର ଅର୍ଥ--ଏହା ମୋର ସବିନୟ ନିବେଦନ ଅଟେ ।

ସବିନୟେ—କ୍ରି.ବି°. (ବ.ବ୍ରୀ) ବିନୟର ସହିତ, ବିନୀତ ଭାବରେ ।

ସବିରାମ—-ବି°. (ସ+ବିରାମ) ବ.ବ୍ରୀ; ବିରାମଯୁକ୍ତ,ବିଚ୍ଛେଦବିଶିଷ୍ଟ ।

ସବିରାମଜ୍ୱର—ବି. ଯେଉଁ ଜ୍ୱର ମଝିରେ ମଝିରେ ଛାଡ଼ିଯାଏ ଓ ପୁଣି ଆକ୍ରମଣ କରେ ।

ସବିଭାସ—ବି. ସୂର୍ଯ୍ୟଙ୍କର ନାମାନ୍ତର ।

ସବିଶେଷ—ବି°.(ସ+ବିଶେଷ)ଅତ୍ୟନ୍ତ, ବିସ୍ତାରିତ, ବିଶେଷ ପ୍ରକାରର,(କ୍ରି.ବି°) ବିଶେଷରୂପେ,ବିସ୍ତାରିତ ବିବରଣସହ ।

ସବିଶେଷକ—ବି°. ( ସବିଶେଷ+କ ) ବିଶେଷ ପଦାର୍ଥ ସହିତ ବର୍ତ୍ତମାନ, ଏକ କ୍ରିୟାରେ ୩ ଶ୍ଳୋକ ଅନ୍ୱିତ ହେଲେ ବିଶେଷକ କହନ୍ତି, ଏହିରୂପ ବିଶେଷକ ଯୁକ୍ତ ।

ସବିଶେଷଣ—ବି°.ବିଶେଷଣଯୁକ୍ତ, ବିଶେଷଣବିଶିଷ୍ଟ ।

ସବିଷାଣ—ବି°. ଶିଙ୍ଗାଳ, ଶୃଙ୍ଗଯୁକ୍ତ ।

ସବିଷାଦ—-ବି°. ଦୁଃଖିତ, ଖେଦିତ,

ବିଷୟଯୁକ୍ତ ।

ସବସ୍ତ(ସ୍ତା)ର—ବିଂ.(ବ.ବ୍ରୀ) ବିସ୍ତାରିତ, ଅସଂକ୍ଷିପ୍ତ, ବାହୁଲ୍ୟଯୁକ୍ତ ।

ସବସ୍ମୃତ—ବିଂ.(ବ.ବ୍ରୀ) ସବସ୍ତର,ବିସ୍ମୃତ ସହିତ, ବିସ୍ତାରିତ ।

ସବିସ୍ମୟ—ପୁଂ. ବିଂ. (ବ.ବ୍ରୀ) ସାଶ୍ଚର୍ଯ୍ୟ, ବିସ୍ମିତ, ବିସ୍ମୟ ସହକାରେ, (ସ୍ତ୍ରୀ,ସବିସ୍ମୟା, (କ୍ରି.ବିଂ) ବିସ୍ମିତ ଭାବରେ ।

ସବହେଁ—ଗ୍ରା. ସର୍ବ. ସଭିଏ, ସମସ୍ତେ ।

ସବୀଜ—ବିଂ. (ସ+ବୀଜ) ବ.ବ୍ରୀ; ବୀଜ ସହିତ ବର୍ତ୍ତମାନ ।

ସବୀର୍ଯ୍ୟ—ବିଂ(ସ+ବୀର୍ଯ୍ୟ)ବ.ବ୍ରୀ; ବୀର୍ଯ୍ୟବିଶିଷ୍ଟ, ତେଜୋଯୁକ୍ତ ।

ସବୁ—ଗ୍ରା. ସର୍ବ. (ଫ-ସର୍ବ)ସର୍ବ, ଅନ୍ୟ ଶବ୍ଦ ପରେ ବହୁ ବଚନାର୍ଥରେ ବ୍ୟବହୃତ ପଦାଂଶ ।

ସବୁକରି—ଗ୍ରା. ଅ. ସର୍ବମୋଟ, ସବୁ ମିଶାଇଲେ ।

ସବୁଙ୍କୁ—ଗ୍ରା. ସର୍ବ. ସମସ୍ତଙ୍କୁ ।

ସବୁଜ(ଜା)—ଯା.ବି.ଶାଗୁଆରଙ୍ଗ,ହରିଦ୍ବର୍ଣ୍ଣ, ଗଛ ପତ୍ରର ବର୍ଣ୍ଣ, (ବିଂ)ଶାଗୁଆ, ହରିତ୍ ।

ସବୁଜାଣ—ଗ୍ରା.ବିଂ (ଫ.ସର୍ବଜ୍ଞ)ସର୍ବଜ୍ଞ ।

ସବୁଜି—ଯା.ବି.ସାଗୁଆବସ୍ତୁ, ବୃକ୍ଷଲତାଦି, ଶାକାଦି ପରିବାପତ୍ର ।

ସବୁଠଉ—ଗ୍ରା. ସର୍ବ. ସବୁଠୁ ଦେଖ ।

ସବୁଠା—ଗ୍ରା. ସର୍ବ. (ଫ-ସର୍ବ ଓ ସ୍ଥାନ) ସବୁ ଜାଗା, ସବୁ ସ୍ଥାନ ।

ସବୁଠାକୁ—ଗ୍ରା. ସର୍ବ. ସବୁ ସ୍ଥାନକୁ ।

ସବୁଠାରୁ—ଗ୍ରା.ସର୍ବ. ସବୁ ସ୍ଥାନରୁ,ସର୍ବାପେକ୍ଷା ।

ସବୁଠାରେ—ଗ୍ରା.ସର୍ବ. ସବୁ ସ୍ଥାନରେ ।

ସବୁଠି—ଗ୍ରା. ସର୍ବ. ସବୁଠାରେ ।

ସବୁଠିକା(ର)—ଗ୍ରା.ସର୍ବ. ସବୁ ସ୍ଥାନର ।

ସବୁଠିକି(କୁ)—ଗ୍ରା.ସର୍ବ. ସବୁ ସ୍ଥାନକୁ ।

ସବୁଠୁଁ(ଠୁ)—ଗ୍ରା. ସର୍ବ. ସବୁଠାରୁ, ସବୁ ସ୍ଥାନରୁ, ସର୍ବାପେକ୍ଷା ।

ସବୁଠେଇ—ଗ୍ରା. ସର୍ବ, ସବୁ ସ୍ଥାନରେ, ସବୁ ଦେଶରେ ।

ସବୁତ୍—ଯା. ବି. ପ୍ରମାଣ, କାରଣ, (ଯା. ବିଂ) ପ୍ରମାଣିତ ।

ସବୁଥି—ଗ୍ରା. ସର୍ବ. ସବୁ ବିଷୟ ।

ସବୁଥିକି(କୁ)—ଗ୍ରା. ସର୍ବ. ସବୁ ସ୍ଥାନକୁ, ସବୁ ବିଷୟ ପ୍ରତି, ସବୁ କାର୍ଯ୍ୟକୁ ।

ସବୁଥିରୁ—ଗ୍ରା.ସର୍ବ.ସବୁ ବିଷୟରୁ, ସବୁ ବସ୍ତୁରୁ, ସବୁ କାର୍ଯ୍ୟରୁ, ସର୍ବାପେକ୍ଷା ।

ସବୁଥିରେ-ଗ୍ରା.ସର୍ବ.ସର୍ବତଃ, ସବୁଠାରେ, ସବୁ ବିଷୟରେ, ସବୁ କଥାରେ ।

ସବୁଦିନ—ଗ୍ରା.ବି. ସବୁବେଳ, ପ୍ରତିଦିନ, (ଗ୍ରା.ଅ) ସବୁଦିନରେ, ସବୁ କାଳରେ, ପ୍ରତିଦିନ ।

ସବୁନ୍ତ—ଗ୍ରା. ସର୍ବ. (ଫ-ସର୍ବ) ସମସ୍ତେ, ସମସ୍ତଙ୍କୁ, ସମସ୍ତଙ୍କର, ସବୁର ।

ସବୁପ୍ରତିକି(କୁ)—ଗ୍ରା.ଅ.ସମସ୍ତଙ୍କ ଅପେକ୍ଷା

ସବୁବେଳ—ଗ୍ରା. ସର୍ବ. ସର୍ବକାଳ ।

ସବୁବେଳେ—ଗ୍ରା. କ୍ରି. ବିଂ. ସର୍ବଦା, ସତତ, ଅଧିକାଂଶ ସମୟରେ ।

ସବୁମତେ—ଗ୍ରା. ଅ. ସବୁପ୍ରକାରେ ।

ସବୁର୍—ଯା.ବି.ଅପେକ୍ଷାକରିବା, ଧୈର୍ଯ୍ୟ, ସହିଷ୍ଣୁତା, (ବିଂ)ଧୈର୍ଯ୍ୟଶୀଳ,(ଅ) ଥୟ ଧର, ବନ୍ଦକର, ବିରତ ହୁଅ ।

ସବୁର୍ ଗଛରେ ମେଉଆ ଫଳେ—ଗ୍ରା. (ଢଗ) ଧୈର୍ଯ୍ୟଶୀଳ ବ୍ୟକ୍ତି ସୁଫଳ ଲାଭ କରେ ।

ସବୁରତ୍—ଯା. ବି. ସବୁର ଦେଖ ।

ସବୁରିତ-ଗ୍ରା.ବିଂ.ଧୈର୍ଯ୍ୟଶୀଳ,ଯେ ସମୟ ଦିଏ,ଯେ ହଠାତ୍ ରାଗି ଯାଏ ନାହିଁ ।

ସବୁର—ଗ୍ରା. ସର୍ବ. ସମସ୍ତଙ୍କର, ସବୁ ବ୍ୟକ୍ତିଙ୍କର ।

ସବୁରିଙ୍କି(ଙ୍କୁ)—ଗ୍ରା. ସର୍ବ. ସମସ୍ତଙ୍କୁ ।

ସବୁଲ—ପ୍ରା. (ଲରିଆ)ସର୍ବ. ସମସ୍ତ ।

ସବୃଦ୍ଧିକ—ବିଂ.(ବ.ବ୍ରୀ) ବୃଦ୍ଧିଯୁକ୍ତ, ସୁଦ ସମେତ ।

ସବୃଷ୍ଟିକ—ବିଂ. (ବ.ବ୍ରୀ) ବୃଷ୍ଟି ସହିତ ।

ସବେ—ଗ୍ରା. ସର୍ବ. ସମସ୍ତେ ।

ସବେଇ—ଗ୍ରା. ବି. ସବାଇ ଦେଖ ।

ସବେକାଦର୍—ଯା.ବି. ମୁସଲମାନୀ ରମଜାନ ମାସର ସପ୍ତବିଂଶ ଦିନ ।

ସବେଗ—ବିଂ (ସ+ବେଗ)ବେଗବାନ୍, (ସ୍ତ୍ରୀ) ସବେଗା ।

ସବେ(ବ)ବରାତ୍—ଯା. ବି. ସୁବେବରାତ୍, ମୁସଲମାନମାନଙ୍କ ପର୍ବବିଶେଷ ।

ସବେଶ(ଷ)—ବିଂ.(ସହ+ବେଶ)ସମୀପସ୍ଥ, ନିକଟବର୍ତ୍ତୀ, ଭୂଷିତ, ବେଶପରିହିତ,(ସ୍ତ୍ରୀ) ସବେଶା ।

ସବୋ—ପ୍ରା. (ପାଟଣା)ସର୍ବ. ସବୁ ।

ସବ୍ବ—ଯା.ବି. ଶାଗ ପ୍ରଭୃତି ପନ୍ନ ପରିବା, ଖାଙ୍ଗ, ସିଦ୍ଧି ।

ସବ୍ବା—ଗ୍ରା. ବିଂ. (ଫ-ସର୍ବ)ସବୁ, ସମସ୍ତଙ୍କ ଅପେକ୍ଷା ।

ସବ୍ୟ—ବିଂ. (ସୂ+ର୍ମ.ଯ) ବାମ, ବାଆଁ, ଦକ୍ଷିଣ, ଡାହାଣ, ପ୍ରତିକୂଳ, ପଶ୍ଚାତ୍, ଦକ୍ଷିଣଦିଗସ୍ଥ, ବାମ ଓ ଦକ୍ଷିଣ ଉଭୟ, ବାଆଁ କାନ୍ଧରେ ପଇତାକୁ ପକାଇ କଟୀର ଡାହାଣ ଦିଗକୁ ଲମ୍ବାଇବା ପ୍ରକାରେ ପଡ଼ିଥିବା (ଯଜ୍ଞୋପବୀତ),ବି. (କ.ଯ) ବିଷ୍ଣୁ, ଯଜ୍ଞୋପବୀତ, ସୂର୍ଯ୍ୟ ବା ଚନ୍ଦ୍ର ଗ୍ରହଣର ୧୦ ପ୍ରକାର ଗ୍ରାସ ମଧ୍ୟରୁ ଏକତମ, ଅଙ୍ଗିରା ଋଷିଙ୍କର ଏକ ପୁତ୍ର ।

ସବ୍ୟକର—ବି. (କ.ଧା) ବାମହାତ, ଉଭୟହସ୍ତ, ଦକ୍ଷିଣହସ୍ତ ।

ସବ୍ୟଗୁଣ—ପୁଂ.ବି.ସବ୍ୟସାଚୀ,ଅର୍ଜ୍ଜୁନ ।

ସବ୍ୟଞ୍ଜନ—ବିଂ. ବ୍ୟଞ୍ଜନବର୍ଣ୍ଣବିଶିଷ୍ଟ ।

ସବ୍ୟତଃ—ଅ. (ସବ୍ୟ+ତସ୍)ସବ୍ୟଭାଗେ, ସବ୍ୟପାର୍ଶ୍ୱେ ।

ସବ୍ୟଭିଗୁର—ବିଂ. ବ୍ୟଭିଗୁରବିଶିଷ୍ଟ, (ବି) ନ୍ୟାୟମତେ ହେତ୍ୱାଭାସବିଶେଷ ।

ସବ୍ୟସାଚୀ—ପୁଂ. ବିଂ. (ସବ୍ୟ+ସଚ୍+କ.ଇନ୍) ବାମହସ୍ତେ ଶରକ୍ଷେପକ, ଉଭୟ ହସ୍ତରେ ଶରକ୍ଷେପଣପଟୁ, (ପୁଂ ବି) ତୃତୀୟ ପାଣ୍ଡବ, ଅର୍ଜ୍ଜୁନ ।

ସବ୍ୟା—ସ୍ତ୍ରୀ. ବି. ଚନ୍ଦ୍ରାବଳୀଙ୍କର ଅନ୍ତରଙ୍ଗ ସଖୀବିଶେଷ ।

ସବ୍ୟାଜ—ବିଂ. (ସ+ବ୍ୟାଜ) ବ.ବ୍ରୀ; ଛଳଯୁକ୍ତ, ସପ୍ରତିବନ୍ଧକ ।

ସବ୍ୟାଧି ବିଂ.(ବ.ବ୍ରୀ)ବ୍ୟାଧିଯୁକ୍ତ,ପୀଡ଼ିତ ।

ସବ୍ୟାନତ--ବିଂ.ବାମେ ନତ,(ଯୁଦ୍ଧକାଳେ ଯୋଦ୍ଧାପୁରୁଷ ତୀର ଧରି ବାମପାଖକୁ ଈଷତ୍ ବଙ୍କ ଥାଏ) ।

ସବ୍ୟାପ୍ରୁଷ୍ଟି—ବି. ମୃଗୟାକାଳରେ ଅଶ୍ୱର .ବାମେ ବକ୍ରଗମନ ।

ସବ୍ୟାଯୁଗ୍ୟ—ବିଂ. ଦକ୍ଷିଣେ ଓ ବାମେ ଅଶ୍ୱଦ୍ୱୟ ଯୁକ୍ତ ।

ସବ୍ୟାବୃତ୍—ପୁଂ.ବିଂ.ଦକ୍ଷିଣେ ଓ ବାମେ ଚଳି ଚଳି ଗମନକାରୀ ।

ସବ୍ୟାବୃତ୍ତ—ବିଂ. ବାମେ ବା ଦକ୍ଷିଣେ ଆବର୍ତ୍ତିତ ।

ସବ୍ୟାଶୂନ୍ୟ—ବିଂ.(ସବ୍ୟ+ଅଶୂନ୍ୟ)ସର୍ବ-ମୁଖପୂର୍ତ୍ତି ।

ସବ୍ୟାହୃତ—ବିଂ. ବ୍ୟାହୃତିଯୁକ୍ତ, ପ୍ରଣବ-ବିଶିଷ୍ଟ, ଓଁକାରଯୁକ୍ତ ।

ସବ୍ୟେତର—ବିଂ. (ଷତତ୍) ଡାହାଣ, ଦକ୍ଷିଣ । [ ଦିଗେ ।

ସବ୍ୟେତରତଃ—ଅ. ଦକ୍ଷିଣଭାଗେ,ଦକ୍ଷିଣ

ସବ୍ୟେଷ୍ଠ(ଷ୍ଠା)—ବି.(ସବ୍ୟେ+ସ୍ଥା+ଅ) ରଥଚାଳକ, ସାରଥି, ରଥର ବାମ-ପାର୍ଶ୍ୱରେ ଉପବିଷ୍ଟ ବୀର ।

ସବ୍ୟୋତ୍ତାନ—ବିଂ. ସବ୍ୟୋନ୍ନତ, ଦକ୍ଷିଣ ବା ବାମପାର୍ଶ୍ୱେ ଲମ୍ବହୋଇ ଶୋଇଥିବା ।

ସବ୍ୟୋନ୍ନତ—ବି. ଯୋଦ୍ଧୃପୁରୁଷର ଦକ୍ଷିଣ ବା ବାମାଙ୍ଗ ଉନ୍ନତକରଣରୂପ ଅଙ୍ଗ-ବିକ୍ଷେପବିଶେଷ ।

ସବ୍ରଣ—ବିଂ. ବ୍ରଣଯୁକ୍ତ, ବ୍ରଣବିଶିଷ୍ଟ ।

ସବ୍ରତ—ବିଂ. ସମାନ କର୍ମ, ତୁଲ୍ୟକର୍ମ-ବିଶିଷ୍ଟ, ବ୍ରତବିଶିଷ୍ଟ, ନିୟମଯୁକ୍ତ ।

ସବ୍ରତୀ—ପୁଂ.ବିଂ.ବ୍ରତୀଯୁକ୍ତ, ସମାନ ବ୍ରତ-ବିଶିଷ୍ଟ ।

ସବ୍ରହ୍ମଚାରୀ—ପୁଂ. ବି. (ସ+ବ୍ରହ୍ମଚାରୀ) ଯେଉଁ ଛାତ୍ରମାନେ ଏକ ଗୁରୁଙ୍କ ନିକ-ଟରେ ବେଦାଧ୍ୟୟନ କରିବା ପାଇଁ ବ୍ରହ୍ମଚର୍ଯ୍ୟ ଅବଲମ୍ବନ କରନ୍ତି,ସତୀର୍ଥ, ସହାଧ୍ୟାୟୀ ।

ସବ୍ରାହ୍ମଣ—ବିଂ. ବ.ବ୍ରୀ (ସ+ବ୍ରାହ୍ମଣ) ବ୍ରାହ୍ମଣବିଶିଷ୍ଟ, ବ୍ରାହ୍ମଣଯୁକ୍ତ ।

ସବ୍ରୀଡ଼—ବିଂ.(ବ.ବ୍ରୀ-ସ+ବ୍ରୀଡ଼ା)ଲଜ୍ଜା-ଯୁକ୍ତ, ସଲଜ୍ଜ, (ସ୍ତ୍ରୀ) ସବ୍ରୀଡ଼ା ।

ସଭକ୍ତି—ବିଂ. ବ.ବ୍ରୀ (ସ+ଭକ୍ତି) ଭକ୍ତି ସହିତ, (କ୍ରି.ବିଂ) ଭକ୍ତିସହକାରେ ।

ସଭକ୍ତିକଂ—ଅ. ଭକ୍ତିର ସହିତ,ଭକ୍ତିଯୁକ୍ତ-ହୋଇ ।

ସଭକ୍ଷ—ବିଂ.ଭକ୍ଷଦ୍ରବ୍ୟବିଶିଷ୍ଟ, ଭକ୍ଷଦ୍ରବ୍ୟ ସହିତ ବର୍ତ୍ତମାନ ।

ସଭଙ୍ଗଶ୍ଳେଷ—ବି. କାବ୍ୟର ଅଳଂକାର ବିଶେଷ, ଶ୍ଳେଷ ।

ସଭୟ—ବିଂ. ବ.ବ୍ରୀ (ସ+ଭୟ) ଭୟ-ବିଶିଷ୍ଟ, ଭୟଯୁକ୍ତ, ଭୀତ, ତ୍ରସ୍ତ ।

ସଭର୍ତ୍ତୃକା—ସ୍ତ୍ରୀ ବିଂ. (ସ+ଭର୍ତ୍ତୃ+କ+ଆ) ସନାଥା, ସଧବା, ଅବିଧବା ।

ସଭଳନ୍ତ—ଗ୍ରା.ବିଂ. (ଫ-ସ୍ଖଳନ୍ତ) ସ୍ଖଳନ୍ତ ।

ସଭବ—ବିଂ. ଶିବଯୁକ୍ତ,ଉତ୍ପତ୍ତିଯୁକ୍ତ,ଉତ୍ପତ୍ତି ବିଶିଷ୍ଟ ।

ସଭସ୍ମ—ବିଂ. ବ.ବ୍ରୀ (ସ+ଭସ୍ମନ୍) ଭସ୍ମ-ବାନ୍, ଭସ୍ମଲିପ୍ତାଙ୍ଗ ।

ସଭା—ସ୍ତ୍ରୀ. ବି. (ସହ୍+ଭା+ଅଧି.କ୍ୱିପ୍ +ଆ)ଯେଉଁଠାରେ ସଭ୍ୟମାନେ ଏକତ୍ର ହୋଇ ଶୋଭା ପାଆନ୍ତି,କୌଣସି ବିଶିଷ୍ଟ ଉଦ୍ଦେଶ୍ୟ ପାଇଁ ଯେଉଁଠାରେ ବହୁ-ଲୋକ ସମବେତ ହୁଅନ୍ତି, ପରିଷଦ୍, ଗୋଷ୍ଠୀ, ସମିତି, ଜନତା, ଗୃହ, ଶାଳା, ମିଳନସ୍ଥଳ, ରାଜସଭା, ରାଜ ଦରବାର, ଦ୍ୟୂତ, ପ୍ରଜାପତିଙ୍କ କନ୍ୟା, ଯେଉଁ ଗୃହରେ ସଭାର ଅଧିବେଶନ ହୁଏ, ଦ୍ୟୂତଗୃହ, ଧର୍ମାଧିକରଣ, ବିଚାରାଳୟ, ରାଜାଙ୍କ ସଙ୍ଗେ ବହୁଲୋକଙ୍କର ସାକ୍ଷାତ୍-କାର, (ଗ୍ରା. ବିଂ ଓ ବିଂ ର ବିଂ, ସ-ସର୍ବ) ସବୁ, ସବା, (ଗ୍ରା.ବି) ସାମାଜିକ ପ୍ରଶ୍ନ ବା ସମସ୍ୟା ମୀମାଂସାର୍ଥ ଆହୂତ ସମ ଜାତୀୟ ବ୍ୟକ୍ତିମାନଙ୍କର ସମାଜ,ଜାତି-ଆଣ ସଭା ।

ସଭାଅନ୍ତେ—ଗ୍ରା.କ୍ରି.ବିଂ. ସବାଶେଷରେ ।

ସଭାଆଗ—ଗ୍ରା. ବି. ସମସ୍ତଙ୍କ ସମ୍ମୁଖସ୍ଥ ସ୍ଥାନ, ସଭା ହେଉଥିବା ସ୍ଥାନର ସମ୍ମୁଖ-ବର୍ତ୍ତୀ ସ୍ଥାନ, ସବୁ ଘଟନାର ଅଗ୍ରବର୍ତ୍ତୀ ସମୟ,ସବୁଘଟନାର ପୂର୍ବବର୍ତ୍ତୀ ସମୟ, (ଗ୍ରା.ବିଂ) ସମସ୍ତଙ୍କ ଅଗ୍ରବର୍ତ୍ତୀ, ଅନ୍ୟ ସମସ୍ତ ଘଟଣାର ପୂର୍ବବର୍ତ୍ତୀ, ସମସ୍ତଙ୍କ ଅଗ୍ରଜ, ସର୍ବପ୍ରଥମ ।

ସଭାକରିବା—ଗ୍ରା. କ୍ରି. କୌଣସି ବିଷୟ ଆଲୋଚନା କରିବାପାଇଁ ସଭ୍ୟମାନଙ୍କୁ ଆହ୍ୱାନ କରି ଉପସ୍ଥିତ ବ୍ୟକ୍ତିମାନଙ୍କ ଦ୍ୱାରା ସଭାର କାର୍ଯ୍ୟ ସମାଧାନ କରା-ଇବା, (ଲ.ଅର୍ଥ) ସମବେତ ହେବା, ଏକତ୍ର ହେବା ।

ସଭାକାର—ବି. ଓ ବିଂ. (ସଭା+କୃ+କ. ଅ)ଯେ ସଭା ଆହ୍ୱାନ କରନ୍ତି ବା ସଭାର କର୍ମ କରନ୍ତି । [ ବିଶେଷ ।

ସଭାକ୍ଷ—ପୁଂ.ବି. ହରିବଂଶ ବର୍ଣ୍ଣିତ ବ୍ୟକ୍ତି-

ସଭାଖାଇ—ଗ୍ରା.ସ୍ତ୍ରୀ.ବି. ସବାଖାଇ ଦେଖ, (ପ୍ରା. ଗଞ୍ଜାମ.ବି) ଗ୍ରାଉଖାଇ ।

ସଭାଖିଆ(ଯ୍ୟା)—ଗ୍ରା.ବି.ସବାଖିଆ ଦେଖ ।

ସଭାଗ—ବିଂ. ବ.ବ୍ରୀ (ସ+ଭାଗ) ଭାଗ-ବିଶିଷ୍ଟ, (ସ୍ତ୍ରୀ) ସଭାଗା, (ପୁଂ.ବି. ଓ ବିଂ) ଯେ ସଭାକୁ ଯାଆନ୍ତି ।

ସଭାଗୃହ-ବି.ଯେଉଁଘରେ ସଭାର ବୈଠକ ହୁଏ, ସଭାସ୍ଥଳ ।

ସଭାଗ୍ୟ—ପୁଂ. ବିଂ. (ବ.ବ୍ରୀ) ଭାଗ୍ୟଯୁକ୍ତ, (ସ୍ତ୍ରୀ) ସଭାଗ୍ୟା ।

ସଭାଘର—ଗ୍ରା. ବି. ସଭାଗୃହ ଦେଖ ।

ସଭାଚର—ପୁଂ.ବି.(ସଭା+ଚର୍+କ.ଅ) ଯେ ସଭାରେ ଉପସ୍ଥିତ ହୁଅନ୍ତି, (ପୁଂ.-ବିଂ) ସଭାରେ ବିଚରଣକାରୀ, (ସ୍ତ୍ରୀ) ସଭାଚରୀ ।

ସଭାଚାର—ବି. (ସଭା+ଆଚାର) ସମା-ଜରେ ଆଚରଣୀୟ ରୀତି, ରାଜସଭାର ଶିଷ୍ଟତାନୁମୋଦିତ ରୀତି. ସଭାସମିତିରେ ଆଚରଣୀୟ ଆଦବକାଇଦା ।

ସଭାଜନ—ବି. (କ.ଧା-ସଭାରେ ଉପସ୍ଥିତ ଜନ) ସଭାରେ ଉପସ୍ଥିତ ବ୍ୟକ୍ତିଗଣ, (ଷତତ୍) ସଭ୍ୟ, ସଭାସଦ୍, (ସଭାଜ୍+ଭା.ଅନ) ପୂଜା, କୁଶଳପ୍ରଶ୍ନ, ସମ୍ଭାଷଣ, ଅଭିନନ୍ଦନ, ସତ୍କାର, ଗମନାଗମନାଦି ସମୟରେ ସୁହୃତ୍‌ମାନଙ୍କ ସଙ୍ଗେ ଆଳି-ଙ୍ଗନ ପୂର୍ବକ କୁଶଳାଦି ପ୍ରଶ୍ନ, ଜିଜ୍ଞାସା,

(ବଂ-ସ+ଭାଜନ) ସପାତ୍ର, ପାତ୍ରଯୁକ୍ତ, (ସଭାଜ+କ.ଆନ) ପ୍ରୀତିଦାୟକ, (ଗ୍ରା. ବି, ବହୁବଚନ, ପୁଂ ଓ ସ୍ତ୍ରୀ) ନାଟ, ଯାତ୍ରା. ତାମସା, ଠିଆପାଲି, ଅଭିନୟ ଆଦି ଦେଖିବାକୁ ସମାଗତ ଦର୍ଶକଗଣ ।

ସଭାଜିତ—ବଂ. (ସଭାଜ+ତ) ପୂଜିତ, ସତ୍କୃତ, ଅଭ୍ୟର୍ଥିତ, ସ୍ୱାଗତ ପ୍ରଶ୍ନାଦି ଜିଜ୍ଞାସିତ ।

ସଭାତଳ--ବି.(୬ତତ୍ପୁ) ସଭାର ଅଧିବେଶନ ହେଉଥିବା ସ୍ଥାନ, ( ଗ୍ରା.ବି ) ସମସ୍ତଙ୍କ ଅପେକ୍ଷା ନିମ୍ନଦେଶ, (ଗ୍ରା.ବଂ)ସମସ୍ତଙ୍କ ଅପେକ୍ଷା ନୀଚ, ସମସ୍ତଙ୍କ ଅପେକ୍ଷା କନିଷ୍ଠ ।

ସଭାଧିବେଶନ—ବି. (୬ତତ୍ପୁ) ସଭାରେ ବୈଠକ, ସଭାରେ ଆଲୋଚିତ ବିଷୟରେ ଆଲୋଚନା ହେବାପାଇଁ ସଭ୍ୟମାନଙ୍କ ସମ୍ମିଳନ ।

ସଭାଧ୍ୟକ୍ଷ—ପୁଂ.ବି, (୬ତତ୍ପୁ) ସଭାପତି ।

ସଭାନର—ପୁଂ, ବି. କିନ୍ନର ପୃଥଭେଦ, ଅନୁର ପୃଥଭେଦ ।

ସଭାନର୍ଭିକରିବା—ଗ୍ରା. କ୍ରି.ସଭାର କାର୍ଯ୍ୟ ସମାଧାନ କରିବା ।

ସଭାନେତା(ନେତୃ)—ବଂ ବା ପୁଂ. ବି. (୬ତତ୍ପୁ) ସଭାର ନାୟକ ବା ଚାଳକ, ସଭାପତି ।

ସଭାନେତୃତ୍ୱ—ବି. (୬ତତ୍ପୁ)ସଭାପତିତ୍ୱ ।

ସଭାନେତ୍ରୀ—ସ୍ତ୍ରୀ. ବି. ବଂ.(୬ତତ୍ପୁ)ସଭାର ନାୟିକା ବା ପରିଚାଳିକା,ସଭାର କର୍ତ୍ତ୍ରୀ ।

ସଭାପଛ—ଗ୍ରା. ବି. ସମସ୍ତଙ୍କ ଅପେକ୍ଷା ପଶ୍ଚାତ୍‌ଭାଗ, ସମସ୍ତଙ୍କ ଅପେକ୍ଷା ପଶ୍ଚାଦ୍‌ବର୍ତ୍ତୀ କାଳ, ସଭା ହେଉଥିବା ସ୍ଥାନର ସର୍ବ ପଶ୍ଚାଦ୍‌ବର୍ତ୍ତୀ ସ୍ଥାନ, ( ଗ୍ରା.ବଂ ) ଅନ୍ୟ ସମସ୍ତଙ୍କ ପଶ୍ଚାଦ୍‌ବର୍ତ୍ତୀ, ଅନ୍ୟ ସମସ୍ତ ଘଟଣାର ପରେ ଘଟିବା, ଅନ୍ୟ ସମସ୍ତ ଘଟଣାର ପୂର୍ବେ ଘଟିଥିବା, ସର୍ବ କନିଷ୍ଠ, ଯେ ଅନ୍ୟ ସମସ୍ତଙ୍କ ପରେ ଆସି ପହଞ୍ଚେ, ସମସ୍ତଙ୍କ ଶେଷରେ ଅବସ୍ଥିତ ।

ସଭାପଣ୍ଡିତ—ବି. ରାଜସଭାର ବା ଅନ୍ୟ ସଭାର ସଭ୍ୟ ପଣ୍ଡିତ ।

ସଭାପତି—ପୁଂ. ସ୍ତ୍ରୀ. ବି. ସଭାର ପ୍ରଧାନ ପରିଚାଳକ ବା ନାୟକ, ସମାଜର ନେତା, ଦ୍ୟୂତଗୃହର ସ୍ୱାମୀ ।

ସଭାପତିତ୍ୱ—ବି. ସଭାରେ ସଭାପତି ରୂପେ କାର୍ଯ୍ୟ କରିବାର ଅବସ୍ଥା, ସଭାପତିଙ୍କ ପଦ ।

ସଭାପରିଷଦ୍—ସ୍ତ୍ରୀ. ବି. ଯେଉଁଠାରେ ବହୁଲୋକ ଏକତ୍ର ହୋଇ କୌଣସି ବିଷୟର ମୀମାଂସା ବା ବିଚାର କରନ୍ତି, ସାହିତ୍ୟାଲୋଚନାର୍ଥ ବା ରାଜକୀୟ ବିଷୟ ମୀମାଂସାର୍ଥ ସଭାର ଅଧିବେଶନ ।

ସଭାପର୍ବ—ବି. (ସଭା+ପର୍ବନ୍)ମହାଭାରତର ଦ୍ୱିତୀୟ ପର୍ବ ବା ଦ୍ୱିତୀୟ ଖଣ୍ଡ ।

ସଭାପାଳ—ବି. ଦ୍ୱାରପାଳ, ଦ୍ୱାରରକ୍ଷକ, ସଭାଗୃହର ରକ୍ଷକ ।

ସଭାପୂଜନ(ପୂଜା)—ବି.ସଭାରେ ଉପସ୍ଥିତ ବ୍ୟକ୍ତିମାନଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ,(ଗ୍ରା. ବି) ମହାରାଷ୍ଟ୍ରଦେଶ ପ୍ରଚଳିତ ବିବାହକାଳୀନ ସାମାଜିକ କ୍ରିୟାବିଶେଷ ।

ସଭାବ—ଗ୍ରା.ବି.(ସଂ-ସ୍ୱଭାବ)ସ୍ୱଭାବ,ପ୍ରକୃତି

ସଭାବଡ଼—ଗ୍ରା. ବଂ. ସମସ୍ତଙ୍କ ଅପେକ୍ଷା ବଡ଼ ।

ସଭାବସା(ବୋ)ଇବା—ଗ୍ରା. କ୍ରି. କୌଣସି ବିଷୟ ଆଲୋଚନା କରାଯିବା ପାଇଁ ସଭା ଆହ୍ୱାନ କରି ସଭାର ଅଧିବେଶନ କରାଇବା, କୌଣସି ବିଶିଷ୍ଟ ଉଦ୍ଦେଶ୍ୟ ସାଧନାର୍ଥ ସମାଜ ପ୍ରତିଷ୍ଠିତ କରିବା ।

ସଭାବସିବା—ଗ୍ରା.ବି.ସଭାର ଅଧିବେଶନ ।

ସଭାବାରଣ—ଗ୍ରା. ବି. କୌଣସି ସଭାରେ ଉପସ୍ଥିତ ହେବା କିମ୍ବା ସଭାରେ ଯୋଗ ଦେବାପାଇଁ କୌଣସି ଅପରାଧୀ ବା ସଭାଦ୍ୱାରା ଦଣ୍ଡିତ ବ୍ୟକ୍ତିକୁ ସଭାପକ୍ଷରୁ କରାଯିବା ନିଷେଧ ।

ସଭାର୍ଯୀ—ପୁଂ. ବି. ଦ୍ୟୂତ ଗୃହରକ୍ଷକ ।

ସଭାଭଙ୍ଗ—ବି. (୬ତତ୍ପୁ) ସଭାର କାର୍ଯ୍ୟ ଶେଷ, ସଭାରୁ ସମସ୍ତଙ୍କର ପ୍ରସ୍ଥାନ ।

ସଭାଭାଗେ—ଗ୍ରା. ବି. ସଭା ସମକ୍ଷରେ ।

ସଭାଭାଙ୍ଗିବା—ଗ୍ରା.କ୍ରି.ସଭାର କାର୍ଯ୍ୟସମାପ୍ତ ପରେ ସଭାକୁ ସ୍ଥଗିତ କରିବା, (ଗ୍ରା.ବି) ସଭାଭଙ୍ଗ ।

ସଭାଭୂଷଣ—ବଂ. (୬ତତ୍ପୁ) ସଭାମଣ୍ଡନ ଦେଖ ।

ସଭାମଉଳିବା—ଗ୍ରା. କ୍ରି. ସଭାର କାର୍ଯ୍ୟ ସମ୍ପାଦନ ହେବା ପରେ ଅଧିବେଶନ ସ୍ଥଗିତ ହେବା ।

ସଭାମଣ୍ଡନ—ପୁଂ.ବଂ. (ସଭାର ମଣ୍ଡନ=ଭୂଷଣ) ସଭାରେ ନିଜର ଉପସ୍ଥିତି ଦ୍ୱାରା ବା ନିଜର ପ୍ରତିଭା ବା କୃତିତ୍ୱ ଦେଖାଇବା ଦ୍ୱାରା ଯେଉଁ ବ୍ୟକ୍ତି ସଭାର ଅଳଂକାର ରୂପେ ସଭାଜନମାନଙ୍କ ଦ୍ୱାରା ବିବେଚିତ ହୁଅନ୍ତି, (ସ୍ତ୍ରୀ) ସଭାମଣ୍ଡନା, ( ବି. ୬ତତ୍ପୁ ) ସଭାଗୃହକୁ ସଜାଇବା; ସଭାସଜ୍ଜା,(ଗ୍ରା.ବି)ପଣ୍ଡିତ,ନର୍ତ୍ତକ,ଗାୟକ ଆଦିଙ୍କୁ ରାଜାମାନଙ୍କ ପ୍ରଦତ୍ତ ଉପାଧି-ବିଶେଷ ।

ସଭାରମ୍ଭ—ବି.(୬ତତ୍ପୁ) ସଭାର ଅଧିବେଶନର ବା କାର୍ଯ୍ୟର ଆରମ୍ଭ ।

ସଭାଶେଷେ—ଗ୍ରା.କ୍ରି.ବଂ. ସର୍ବଶେଷରେ

ସଭାସଦ୍—ବି. (ସଭା+ସଦ୍+କ.କ୍ୱିପ୍) ସଭ୍ୟ, ସଭାସ୍ତାର, ପରିଷଦ୍‌ବଳ, ପରିଷଦ, ବିଜ୍ଞ ।

ସଭାସମିତି—ସ୍ତ୍ରୀ.ବି. ସଭାଆଦି, ଶ୍ରେଷ୍ଠ ଓ ବଡ଼ ସଭାମାନ ।

ସଭାସାନ—ଗ୍ରା.ବଂ.ସମସ୍ତଙ୍କଠାରୁ ଆକାରରେ, ବୟସରେ ବା ପଦବୀଆଦିରେ ଶ୍ରେଷ୍ଠ ।

ସଭାସୀନ-ପୁଂ.ବଂ.(୬ତତ୍ପୁ)ସଭା ସ୍ଥଳରେ ଉପବିଷ୍ଟ, (ସ୍ତ୍ରୀ) ସଭାସୀନା ।

ସଭାସ୍ତାର—ପୁଂ.ବି. (ସଭା+ସ୍ତୃ+କ.ଅ) ସଭ୍ୟ, ସଭାସଦ୍ ।

ସଭାସ୍ଥ—ବଂ. (ସଭା+ସ୍ଥା+ଅ)ସଭାରେ ବର୍ତ୍ତମାନ, ସଭ୍ୟ, ସଭାସ୍ଥିତ ।

ସଭାସ୍ଥଳ(ସ୍ଥାନ)—ବି. (୬ତତ୍ପୁ) ଯେଉଁ ଜାଗାରେ ସଭା ହୁଏ, ସଭାର କ୍ଷେତ୍ର ।

ସଭାସ୍ଥାଣୁ—ବି. ସଭାରେ ସ୍ଥିର, ନିଶ୍ଚଳ ।

ସଭେ(ଯ୍ୟେ)—ଗ୍ରା.ସର୍ବ.(ସଂ-ସର୍ବ)ସମସ୍ତେ

ସଭି(ଭ୍ୟି)କ—ପୁଂ.ବି.(ସଭା+ଇକ)ଦ୍ୟୂତ-ସଭାଧ୍ୟକ୍ଷ, ଜୁଆ ଖେଳର ସଭାପତି,

ଦ୍ୟୂତ କ୍ରୀଡ଼ା ଗୃହର ଅଧ୍ୟକ୍ଷ ।
ସଭଙ୍କ(ର)—ଗ୍ରା.ସର୍ବ. ( ୬ଷ୍ଠୀବିଭକ୍ତି ) ସମସ୍ତଙ୍କର ।
ସଭଙ୍କି(ଙ୍କୁ)—ଗ୍ରା. ସର୍ବ. ( ୨ୟାବିଭକ୍ତି ) ସମସ୍ତଙ୍କୁ, ସମସ୍ତଙ୍କ ଅପେକ୍ଷା ।
ସଭାିକ—ପୁଂ.ବି. (ସଭା + ଇ କ) ସଭିକ ଦେଖ ।
ସଭୁରି—ଗ୍ରା.ସର୍ବ. (ସଂ-ସର୍ବସ୍ୟ,୬ତତ୍ତ୍) ସବୁର, ସମସ୍ତଙ୍କର । [ସଭଏ ।
ସଭେ-ପ୍ରା.(ସମ୍ବ)ସର୍ବ. (ସଂ-ସର୍ବେ)ସମସ୍ତେ
ସଭେୟ—ପୁଂ,ବିଂ.ସଭ୍ୟ, ସଭାରେ ସାଧୁ
ସଭୋଚିତ— ବିଂ ( ୭ତତ୍ତ୍ ) ସଭାର ଉପଯୁକ୍ତ, (ପୁଂ.ବି) ପଣ୍ଡିତ ।
ସଭ୍ୟ—ପୁଂ.ବିଂ. (ସଭା + ଯ)ସାମାଜିକ, ସଭାରେ ଯୋଗ ଦେବା (ବ୍ୟକ୍ତି)ସାଧୁଶୀଳ, ଭବ୍ୟ,ଶିଷ୍ଟ, ଭଦ୍ର,ସୁଜନ,ବିଶ୍ୱସ୍ତ, ସଦ୍‌ବଂଶୀୟ,ସଭାର ବା ସମାଜର ହିତକର, ସଭାସହାନ୍ତ, ସଭାସମ୍ବନ୍ଧୀୟ, ଦ୍ୟୂତକର, ପ୍ରତାରକ,(ବି) ଦ୍ୟୂତକର, ଜୁଆରି,ସଭାର ମେମ୍ବର,ସଭାଜନ,ସଭାସଦ୍, ସଜ୍ଜନ, ଭଦ୍ରଲୋକ, କୁଳୀନ ବ୍ୟକ୍ତି, ଦ୍ୟୂତ ଗୃହାଧ୍ୟକ୍ଷ,ରଜାଙ୍କୁ ବିଗୃହ କର୍ମରେ ସାହାଯ୍ୟପାଇଁ ନିଯୁକ୍ତ ବ୍ୟକ୍ତି, ସଭାର ସହକାରୀ ବ୍ୟକ୍ତି, ଦ୍ୟୂତ ଗୃହାଧ୍ୟକ୍ଷଙ୍କ ଭୃତ୍ୟ,ପଞ୍ଚାଗ୍ନି ମଧ୍ୟରୁ ଏକତମ, (ସ୍ତ୍ରୀ) ସଭ୍ୟା ।
ସଭ୍ୟଜଗତ୍—ବି. (କ.ଧା) ଭଦ୍ରତାଯୁକ୍ତ ସଂସାର, ଶିଷ୍ଟସମାଜ, ଆର୍ଯ୍ୟାବର୍ତ୍ତ ।
ସଭ୍ୟଜନ—ବି. ଭଦ୍ରବ୍ୟକ୍ତି ।
ସଭ୍ୟତା(ତ୍ୱ)—ବି. ( ସଭ୍ୟ + ଭା.ତା ) ସାମାଜିକତା, ଭଦ୍ରତା, ଶିଷ୍ଟାଚାର, ସୌଜନ୍ୟ, ସାମାଜିକ ଉତ୍କର୍ଷ, ମାର୍ଜିତ ରୁଚି ଓ ବ୍ୟବହାର,ସମାଜ ବା ଜୀବନ ଯାତ୍ରାର ଉତ୍କର୍ଷ,ଲୋକସମାଜରେ ମିଳି ମିଶି ଚଳିବା ଭାବ ।
ସଭ୍ୟତାନୁମତ—ବିଂ.(୩ତତ୍ତ୍)ଶିଷ୍ଟାଚାରସଙ୍ଗତ, ସଭ୍ୟ ସମାଜର ବ୍ୟବହାର ଅନୁସାରୀ ।
ସଭ୍ୟତାପ୍ରାପ୍ତ—ପୁଂ.ବିଂ.(୨ତତ୍ତ୍) ସଭ୍ୟ, ଯେ ସଭ୍ୟ ହୋଇଅଛି, (ସ୍ତ୍ରୀ)ସଭ୍ୟତାପ୍ରାପ୍ତା ।
ସଭ୍ୟତାବହିର୍ଭୂତ—ବିଂ. (୫ତତ୍ତ୍)ସଭ୍ୟ ସମାଜର ବ୍ୟବହାରର ବିପରୀତ ।
ସଭ୍ୟନିର୍ବାଚନ—ବି. (୬ତତ୍ତ୍) ସଭାସଦ୍ ମନୋନୟନ, ସଭାର ଉପଯୁକ୍ତ ବ୍ୟକ୍ତି ବାଛିବା ।
ସଭ୍ୟଭବ୍ୟ—ବିଂ. (ଦ୍ୱନ୍ଦ୍ୱ) ଭଦ୍ରତାଯୁକ୍ତ, ଶିଷ୍ଟ ଓ ଶାନ୍ତ, ପରିଷ୍କାର ପରିଚ୍ଛନ୍ନ ।
ସଭ୍ୟସମାଜ—ବି.(୬ତତ୍ତ୍) ସଭ୍ୟ ବ୍ୟକ୍ତିମାନଙ୍କର ସମାଜ, ସଭ୍ୟ ବ୍ୟକ୍ତିସମୂହ ।
ସଭ୍ୟହେବା—ଗ୍ରା. କ୍ରି. ସଭ୍ୟସମାଜର ଆଚାର ବ୍ୟବହାରରେ ଦୀକ୍ଷିତ ହେବା, ଭଦ୍ରତା ଶିକ୍ଷା କରିବା, ସଭ୍ୟତାନୁମତ ବ୍ୟବହାର କରିବା, ସ୍ଥିର ହେବା ।
ସଭ୍ୟେତର—ବିଂ. ସଭ୍ୟରୁ ପୃଥକ୍ ବା ଭିନ୍ନ । [ ଯୁକ୍ତ ।
ସଭ୍ରମ—ବିଂ. (ବ.ବ୍ରୀ,ସ+ଭ୍ରମ) ଭ୍ରମ-
ସଭ୍ରମେ—ଗ୍ରା.କ୍ରି.ବିଂ. ଅତ୍ୟନ୍ତ ଆଦରରେ, କାଉଳାହୋଇ, ବ୍ୟତିବ୍ୟସ୍ତ ହୋଇ ।
ସମ୍-(ସଂ-ଉପସର୍ଗ,ସୋ + କ.ଅମ୍)ଗୋଟିଏ ଉପସର୍ଗ, (ଅ) ସମ୍ୟକ୍,ବିଶେଷ,ସମ୍ପୂର୍ଣ୍ଣରୂପେ, ଏକତ୍ର, ଏକସଙ୍ଗେ,ସମୀପରେ, ଅଭିମୁଖରେ, ସମ୍ମୁଖରେ, ସଂଯୋଗ, ସଂଗତି, ମିଳନ, ପ୍ରକୃଷ୍ଟ, ଅତ୍ୟନ୍ତ, ଉତ୍ତମରୂପେ, ସମାନ,ତୁଲ୍ୟ,ଶୋଭନ, ସୁନ୍ଦର, ସମୃଦ୍ଧ, ଆଶ୍ଳେଷ ।
ସମ୍ଜା—ଗ୍ରା. ବିଂ. ସମଜା ଦେଖ ।
ସମ୍ଦ(ଧି)—ପ୍ରା. (ସମ୍ବଲ)ପୁଂ.ବି.ସମୁଦ, (ସ୍ତ୍ରୀ) ସମ୍(ଦେ)ଧେନ ।
ସମ୍ଧୀନ୍—ପ୍ରା.(ଲରିଆ)ସ୍ତ୍ରୀ.ବି.ସମଧୁଣୀ ।
ସମ୍ନା—ପ୍ରା. (ସମ୍ବଲ) ବି. ଏକପ୍ରକାର ଦୂର୍ବା ବା ଘାସ ।
ସମ୍ସ(ସେ)ରଜଙ୍ଗ୍—ଗ୍ରା. ବି.ନେପାଳର ପ୍ରଧାନ ମନ୍ତ୍ରୀଙ୍କ ଉପାଧି ।
ସମ—ବିଂ. (ସମ୍+କ.ଅ) ତୁଲ୍ୟ,ସଦୃଶ, ସମାନ, ସେହି, ତଦ୍ରୂପ,(ଗଣିତ)ଯୁଗ୍ମ, ଯୋଡ଼(ସଂଖ୍ୟା), ସକଳ,ସମସ୍ତ, ସମଗ୍ର, ଅବନ୍ଧୁର, ସମ୍ପୂର୍ଣ୍ଣ,ସମାନସ୍କନ୍ଧ,ସମତଳ, ସରଳ,ନ୍ୟାୟପର,ଅପକ୍ଷପାତୀ,ପ୍ରତ୍ୟେକ, ମମତାବର୍ଜିତ, ଯଥାଯୋଗ୍ୟ, ସୁବିଧାଜନକ, ବି.(ଗଣିତ)ବର୍ଗମୂଳ ଆନୟନାର୍ଥ ଅଙ୍କଉପରେ ଯେଉଁ ରଜ୍ଜୁରେଖା ଦିଆଯାଏ, କ୍ଷେତ୍ରର ବର୍ଗଫଳ,କାବ୍ୟାଲଂକାରବିଶେଷ, ଅର୍ଥାଲଙ୍କାରବିଶେଷ, ଯୋଗ୍ୟକର୍ମଦ୍ୱାରା ଅନୁରୂପ ବସ୍ତୁଦ୍ୱୟର ଶ୍ଳାଘନୀୟ ମିଳନ, (ସଙ୍ଗୀତ) ତାଳ ଉପରେ ଦିଆଯିବା ବେଶୀ ଜୋର, ତାଳର ପ୍ରଥମ ଉତ୍ପତ୍ତି ସ୍ଥାନ; ଲୟ, (ଜ୍ୟୋତିଷ) ବୃଷ, କର୍କଟ,କନ୍ୟା,ବୃଶ୍ଚି, ମକର ଓ ମୀନରାଶିଙ୍କର ସାଧାରଣ ନାମ,ସମତଳ ପ୍ରଦେଶ,ଅବନ୍ଧୁର ସ୍ଥାନ, (ସ୍ତ୍ରୀ) ସମା. ( କ୍ରି.ବିଂ ) ସମଭିବ୍ୟାହାରରେ, ସଙ୍ଗେ, ସମାନଭାବରେ, ପରି, ସେହିପ୍ରକାରେ, ସମ୍ପୂର୍ଣ୍ଣରୂପେ, ଏକସମୟରେ, (ଗ୍ରା.ବି) ଉପମା ।
ସମଉଦିତ—ଗ୍ରା. ବିଂ. ( ସଂ-ସମୁଦିତ ) ସମୁଦିତ, ପ୍ରକାଶିତ ।
ସମକକ୍ଷ—ପୁଂ.ବିଂ. (ସମ୍+କକ୍ଷ)ବ.ବ୍ରୀ; ତୁଲ୍ୟ, ପ୍ରତିଯୋଗୀ, ତୁଲ୍ୟବଳବିଶିଷ୍ଟ, ସମାନ ଗୌରବ ବା ଅବସ୍ଥାବିଶିଷ୍ଟ, ସମଦଳ ପ୍ରତିଦ୍ୱନ୍ଦ୍ୱୀ ।
ସମକଚ୍ଛ—ଗ୍ରା. ବିଂ. ( ସଂ-ସମକକ୍ଷ ) ସମକକ୍ଷ ଦେଖ ।
ସମକଟିବନ୍ଧ—ଗ୍ରା.ଚ.ସମମଣ୍ଡଳ ଦେଖ ।
ସମକନ୍ୟା—ସ୍ତ୍ରୀ. ବି. ( ସମା+କନ୍ୟା ) ବିବାହପାଇଁ ସମ୍ପୂର୍ଣ୍ଣ ଯୋଗ୍ୟାକୁମାରୀ, ବିବାହୋପଯୁକ୍ତା ବାଳିକା ।
ସମକର୍ଣ୍ଣ—ବି. ଶିବଙ୍କର ନାମାନ୍ତର, ବୁଦ୍ଧଦେବ, ( ଜ୍ୟାମିତି ) ଗୋଟିଏ ଚତୁର୍ଭୁଜର ବିପରୀତ କୋଣଦ୍ୱୟସଂଲଗ୍ନ ରେଖାକୁ ସମକର୍ଣ୍ଣ ରେଖା କହନ୍ତି ।
ସମକର୍ମା—ବିଂ. (ବ.ବ୍ରୀ-ସମ୍+କର୍ମନ୍) ତୁଲ୍ୟକର୍ମଯୁକ୍ତ । [ ସେହିକ୍ଷଣ ।
ସମକାଳ—ବି. ( କ.ଧା ) ଏକ ସମୟ,
ସମକାଳବର୍ତ୍ତୀ—ପୁଂ. ବିଂ. (ସମକାଳ+

ବୃତ୍ତ+କ.ଇନ୍)ସମକାଳକ ଦେଖ,(ସ୍ତ୍ରୀ) ସମକାଳବର୍ତ୍ତିନୀ ।
ସମକାଳକ—ବିଂ. ( ସମକାଳ + ଇକ ) ସମସାମୟିକ, ଯାହା ଏକ ସମୟରେ ଘଟେ ।
ସମକାଳୀନ—ବିଂ. (ସମକାଳ + ଈନ) ସମକାଳୋଦ୍ଭବ, ଏକକାଳୀୟ ।
ସମକାଳୋତ୍ପନ୍ନ—ବିଂ. (୭ତତ୍ପୁ) ଏକ-ସମୟରେ ଜାତ,(ସ୍ତ୍ରୀ)ସମକାଳୋତ୍ପନ୍ନା ।
ସମକୃତ୍ତ—ବି.(ସମ + କୃ + କ୍ୱିପ୍)କଫ ।
ସମକେନ୍ଦ୍ରିକ—ବିଂ. (ସମକେନ୍ଦ୍ର+ଇକ) ପରସ୍ପରକୁ ବେଢ଼ିଥିବା ଯେଉଁ ବୃତ୍ତ-ମାନଙ୍କର କେନ୍ଦ୍ର ଗୋଟିଏ ।
ସମକେନ୍ଦ୍ରିକବୃତ୍ତ—ବି. ( କ.ଧା ) ଏକ କେନ୍ଦ୍ର ବିଶିଷ୍ଟ ଏକାଧିକ ବୃତ୍ତ ।
ସମକୋଣ—ବି. (ଜ୍ୟାମିତି) ସରଳ ରେଖା ଉପରେ ସିଧା ଲମ୍ବଭାବରେ ଅନ୍ୟ ସରଳ ରେଖା ଦଣ୍ଡାୟମାନ ହେଲେ ରେଖାର ଦୁଇପାର୍ଶ୍ୱରେ ଯେଉଁ ଦୁଇକୋଣ ଜାତ ହୁଏ ।
ସମକୋଣିକ—ବିଂ. (ସମକୋଣ+ଇକ) ସମକୋଣ ସମ୍ବନ୍ଧୀୟ,ସମକୋଣୀ,ଯେଉଁ କ୍ଷେତ୍ର (ଚତୁର୍ଭୁଜ,ତ୍ରିଭୁଜ) ରେ ସମ-କୋଣ ଥାଏ।
ସମକୋଣୀ—ବିଂ. (ସମକୋଣ+ଇନ୍) ଯେଉଁ କ୍ଷେତ୍ର (ଯଥା:—ତ୍ରିଭୁଜ, ଚତୁ-ର୍ଭୁଜ ) ର ମଧ୍ୟରେ ଏକ ବା ତତୋ-ଧିକ ସମକୋଣ ଥାଏ ।
ସମକୋଣୀତ୍ରିଭୁଜ—ବି.(ଜ୍ୟାମିତି)ଯେଉଁ ତ୍ରିଭୁଜର ଗୋଟିଏ କୋଣ ସମକୋଣ ଅଟେ ।
ସମକୋଲ—ପୁଂ.ବି. (ବ.ଗ୍ରା)ସର୍ପ,ସାପ ।
ସମକୋଶ—ବି. ଦେଶବିଶେଷ (ଭାରତ ଭୀଷ୍ମପର୍ବ) ।
ସମକୋଷ୍ଠମିତି—ବି.ଭୂମ୍ୟାଦିର ପରମାଣ ନିର୍ଦ୍ଦେଶକ କ୍ରିୟାବିଶେଷ ।
ସମକ୍ର(କ୍ତ)—ବିଂ. (ସମ୍+ଅନ୍‌ଚ୍+କ. ତ) ତୁଲ୍ୟରୂପେ ଅବସ୍ଥାପିତ, ତୁଲ୍ୟ-ରୂପେ ଗମନକାରୀ, ଏକସମୟରେ ଗତିକାରୀ, ଯୋଡ଼ା, ସଙ୍ଗତ ।
ସମକ୍ୱାଥ—ବି. ଅଷ୍ଟମାଂଶ ବିଶିଷ୍ଟ କ୍ୱାଥ, ଅଷ୍ଟମାଂଶ ଜଳ ଅବଶିଷ୍ଟ ଥାଉ ଥାଉ ନିଆଁ ଉପରୁ ଓହ୍ଲାଇବା କ୍ୱାଥ ।
ସମକ୍ରିୟ—ବିଂ. (ବ.ଗ୍ରା-ସମ + କ୍ରିୟା + ଅ) ସମାନ ବା ତୁଲ୍ୟ କ୍ରିୟାବିଶିଷ୍ଟ, (ସ୍ତ୍ରୀ) ସମକ୍ରିୟା ।
ସମକ୍ଷ—ବିଂ. (ସମ+ଅକ୍ଷି+ଅ) ଚକ୍ଷୁର ସମୀପ, ପ୍ରତ୍ୟକ୍ଷ, ଚକ୍ଷୁର୍ଗୋଚର,ସମ୍ମୁଖ, ଅଗ୍ରତଃ, (ଅବ୍ୟ) ଚକ୍ଷୁସମୀପରେ ।
ସମକ୍ଷେ—ଗ୍ରା. କ୍ରି. ବିଂ. ( ସଂ-ସମକ୍ଷଂ ) ସାମନାରେ, ଆପଣା ଆଖି ଆଗରେ ।
ସମଖାତ—କ୍ଲୀ. ବି. କୂପାକାର ଗର୍ତ୍ତ, (ଗଣିତ)ଯେଉଁ ଗର୍ତ୍ତର ପାର୍ଶ୍ୱମାନ ତଳ-ପର୍ଯ୍ୟନ୍ତ ନିରନ୍ତର ସମାନ୍ତରାଳ ।
ସମଗନ୍ଧକ—ବି. ( ସମ + ଗନ୍ଧ + କ ) କୃତ୍ରିମ ଧୂପ ।
ସମଗନ୍ଧିକ—ବି. (ସମ+ଗନ୍ଧ+ଇକ) ଉଶୀର, ବେଣାମୂଳ,(ବିଂ) ତୁଲ୍ୟଗନ୍ଧ-ବିଶିଷ୍ଟ ।
ସମଗରହଦ(ପାଟ)—ଗ୍ରା.ବି.ପୁରୀ ସହରର ନିକଟବର୍ତ୍ତୀ ପାଟ, ସଙ୍ଗମ ପାଟ, ସର-ହ୍ରଦ ।
ସମଗାର—ଗ୍ରା. ବିଂ. ସମାନ, ସଦୃଶ ।
ସମଗୁଣ—ବି.(କ.ଧା)ସମାନ ବା ତୁଲ୍ୟ-ଗୁଣ, (ବିଂ-ବ.ଗ୍ରା) ତୁଲ୍ୟଗୁଣ ବିଶିଷ୍ଟ, (ସ୍ତ୍ରୀ) ସମଗୁଣା ।
ସମଗୁଣଶ୍ରେଢ଼ୀ(ଣୀ)—ବି. ଯେଉଁ ସମସ୍ତ ରାଶିର ପ୍ରତ୍ୟେକ ପରବର୍ତ୍ତୀ ରାଶିସହିତ ସମାନ ଅନୁପାତ ଥାଏ ।
ସମଗ୍ର—ବିଂ. ( ସମ+ଗ୍ରହ୍+କ.ଅ ) ସମସ୍ତ, ସମୁଦାୟ, ସକଳ, ସଂପୂର୍ଣ୍ଣ, ଅଖିଳ, (ସ୍ତ୍ରୀ) ସମଗ୍ରା ।
ସମଗ୍ରଣୀ—ପୁଂ. ବିଂ. (ସମ+ଅଗ୍ର+ଣୀ +କ୍ୱିପ୍) ସମ୍ୟକ୍‌ରୂପେ ଅଗ୍ରଣୀ ।
ସମଗ୍ରଯମକ—ବି. (ଅଳଙ୍କାର) ଯମକ-ବିଶେଷ ।
ସମଙ୍ଗ—ଗ୍ରା.ବି. ସମଗଗ୍ର ଦେଖ,ଔଷଧ-ବିଶେଷ ।
ସମଙ୍ଗା—ବି.(ସମ+ଅନ୍‌ଗ୍+କ.ଅ+ଆ) ମଞ୍ଜିଷ୍ଠା ଲତା, ଲଜ୍ଜାଳୁ ଲତା, ବାଳା, ଏକପ୍ରକାର ସୁଗନ୍ଧ ଘାସ, ସୁଗନ୍ଧ କ୍ଷୁପ-ବିଶେଷ, କୁରୁବେଲ, ବାଳା, ବାଞ୍ଛି-ଅଥଁଳା ।
ସମଙ୍ଗିନୀ-ସ୍ତ୍ରୀ.ବି.ବୋଧିବୃକ୍ଷ ଦେବତାଭେଦ
ସମଙ୍ଗୀ—ବିଂ.ପୂର୍ଣ୍ଣାବୟବ ବିଶିଷ୍ଟ,ପ୍ରୟୋ-ଜନୀୟ ଦ୍ରବ୍ୟାଦି ପୂର୍ଣ୍ଣ (ଶକଟ), (ସ୍ତ୍ରୀ) ସମଙ୍ଗିନୀ ।
ସମଚତୁର—ବିଂ. ସମଚତୁରସ୍ର ବିଶିଷ୍ଟ, ସମଚତୁଷ୍କୋଣ ।
ସମଚତୁରସ୍ର—ବିଂ. (ବ.ଗ୍ରା) ସମଚତୁ-ଷ୍କୋଣ, ସମାନ ଚୌରସ, ( ବି ) ବର୍ଗକ୍ଷେତ୍ର ।
ସମଚତୁର୍ବାହୁ—ବି. ( ବ.ଗ୍ରା ) ଯେଉଁ ଚତୁର୍ଭୁଜର ଚାରିବାହୁଯାକ ସମାନ, (ବିଂ) ଯାହାର ଚାରିବାହୁ ସମାନ ।
ସମଚତୁର୍ଭୁଜ—ବିଂ. ତୁଲ୍ୟଚତୁର୍ଭୁଜ-ବିଶିଷ୍ଟ,ଯାହାର ଚାରିଭୁଜ ସମାନ ।
ସମଚତୁଷ୍କୋଣ—ବି. ଓ ବିଂ ଯେଉଁ ଚତୁର୍ଭୁଜର ୪ଟି ଯାକ କୋଣ ସମ-କୋଣ ।
ସମଚିତ୍ତ—ପୁଂ.ବିଂ. (ବ.ଗ୍ରା) ସବୁପଦା-ର୍ଥରେ ତୁଲ୍ୟଦୃଷ୍ଟି ବିଶିଷ୍ଟ, ସର୍ବତ୍ର ସମ-ଦର୍ଶକ, (ସ୍ତ୍ରୀ) ସମଚିତ୍ତା ।
ସମଜ—ବି.(ସମ୍+ଅଜ୍+କ.ଅ)ପଶୁର ଦଳ, ପଶୁସମୂହ, ମୂର୍ଖଙ୍କ ଦଳ, ବନ, (ଗ୍ରା.ବି) ସମୁଜ, ଉତ୍ତମରୂପେ ବୁଝିବା, ବୋଧ, ବିବେଚନା, ଅର୍ଥବୋଧ,ବୁଦ୍ଧି, ଜ୍ଞାନ ।
ସମଜଦାର୍—ଯା. ବିଂ. ବୁଦ୍ଧିମାନ୍,ବିଜ୍ଞ, ବିବେଚକ, ଯେ ବୁଝିପାରେ ।
ସମଜସ—ଗ୍ରା. ବି. (ସଂ-ସାମଞ୍ଜସ୍ୟ)ସମା-ଧାନ, ସାମଞ୍ଜସ୍ୟ, ବିବାଦଭଞ୍ଜନ,ବୁଝା-ଇବା, (ବିଂ-ସମଞ୍ଜସ)ଯୁକ୍ତିଯୁକ୍ତ,ଉଚିତ ।
ସମ(ମୁ)ଜା—ଗ୍ରା. ବି. ବୁଝିବା, ସମଜିବା, (ବିଂ) ଯେ ବୁଝିପାରେ, ବୁଦ୍ଧିମାନ୍, ବିବେଚକ ।
ସମଜାଇବା—ଗ୍ରା.କ୍ରି.ହୃଦୟଙ୍ଗମ କରା-

ଇବା, ବୁଝାଇବା, ପ୍ରବର୍ତ୍ତାଇବା,ମଙ୍ଗାଇବା ।
**ସମଜାତ**—ବି.(କ.ଧା)ଏକଶ୍ରେଣୀ, (ବିଂ-ବ.ବ୍ରୀ) ସମଜାତୀୟ ।
**ସମଜାତୀୟ**—ବିଂ(ସମଜାତ+ଈୟ)ଏକଜାତୀୟ,ତୁଲ୍ୟ ଜାତବିଶିଷ୍ଟ,(ସ୍ତ୍ରୀ)ଜାତୀୟା ।
**ସମଜାସମଜ**—ଗ୍ରା. ବି. ଉଭମରୂପେ ବୁଝାଇବା, ପରସ୍ପରର ଅର୍ଥ ପରସ୍ପର ବୁଝିବା ।
**ସମଜବା**—ଗ୍ରା. କି. କୌଣସି ବିଷୟର ତଥ୍ୟକୁ ଉତ୍ତମରୂପେ ବୁଝିବା, ହୃଦୟଙ୍ଗମକରିବା,ପରସ୍ପରର ଅର୍ଥ ବୁଝିନେବା
**ସମ(ମୁ)ଜହେବା**—ଗ୍ରା.କି. ବୁଝିହେବା ।
**ସମ(ମା)ଜ୍ଞା**—ବି. (ସମ+ଜ୍ଞା+ଣ.କ୍ୱିପ୍) କୀର୍ତ୍ତି, ଯଶଃ, ସୁଖ୍ୟାତ ।
**ସମଜ୍ୟା**—ବି.(ସମ୍+ଅଜ୍+ଅଧି.ଯ+ଆ) ସମାଜ, ସଭା, (କ.ଯ+ଆ) କୀର୍ତ୍ତି, ଯଶଃ ।
**ସମଞ୍ଜନ**—କ୍ଲୀ. ବି. ବେଶଭୂଷା, (ବିଂ) ତଦ୍ବିଶିଷ୍ଟ ।
**ସମଞ୍ଜନୀୟ**—ବିଂ. ବେଶଭୂଷାଯୁକ୍ତ ।
**ସମଞ୍ଜସ**—ବିଂ. (ସମ୍+ଅଞ୍ଜସ) ବ.ବ୍ରୀ; ସମୀଚୀନ, ଉଚିତ,ଉପଯୁକ୍ତ, ଅଭ୍ୟସ୍ତ, ଅନୁଭବୀ, ସୁପରିଚିତ, ସୁଜନ, ଉତ୍ତମ, ଯଥାର୍ଥ, ସତ୍ୟ, ସମ୍ପୂର୍ଣ୍ଣ ରୂପେ ମିଳିଯାଉଥିବା, ତୁଲ୍ୟ, ସଦୃଶ,(ବି)ଆପୋସିରେ ମିଳାମିଶା, ବିବାଦର ସମାଧାନ, ସ୍ଥିରସିଦ୍ଧାନ୍ତ, ସୁଜନ ବ୍ୟକ୍ତି, ଉତ୍ତମ ବ୍ୟକ୍ତି, ଉପଯୁକ୍ତତା, ଯାଥାର୍ଥ୍ୟ, ସମ୍ପୂର୍ଣ୍ଣ ରୂପେ ମିଳନ, ମୀମାଂସା ।
**ସମଞ୍ଜସୀଭୂତ**—ବିଂ.ମିଳିତ, ଯେ ଯେଉଁ ସ୍ଥାନରେ ବା ଅବସ୍ଥାରେ ଅବସ୍ଥିତ କରୁ; କେହି କାହାର ହାନି ନକରୁ ।
**ସମଣ୍ଡ**—ବି. ଗଣ୍ଡୀର, ସମଣ୍ଡିଳା ଦେଖ ।
**ସମତଟ**—ବି.(ବ.ବ୍ରୀ) ସମୁଦ୍ର ତୀରବର୍ତ୍ତୀ ଦେଶଭାଗ ।
**ସମତଳ**—ବି.(କ.ଧା) ସମାନଭୂମି, ଅବନ୍ଧୁର ଭୂମି, (ବିଂ-ବ.ବ୍ରୀ) ଯାହା ଉଚ ନୀଚ ନୁହେଁ, ଅବନ୍ଧୁର ।
**ସମତା(ତ୍ୱ)**—ସ୍ତ୍ରୀ.ବି. (ସମ୍+ଭା.ତା)ଏକରୂପତା,ଅବନ୍ଧୁରତା, ସାମ୍ୟ,ତୁଲ୍ୟତା ।
**ସମତ**—ଗ୍ରା.ବି.(ଫ-ସମ୍ମତି)ସମ୍ମତି, ରାଜି ।
**ସମତିକ୍ରମ**—ବି. (ସମ+ଅତିକ୍ରମ)ନିୟମ ଲଙ୍ଘନ, ଗ୍ରହଡ଼ିଯିବା । [ ଧିକ ।
**ସମତିରିକ୍ତ**—ବିଂ(ସମ୍+ଅତିରିକ୍ତ)ଅତ୍ୟଧିକ ।
**ସମତୀତ**—ବିଂ. (ସମ୍+ଅତୀତ) ସମ୍ୟକ୍ ରୂପେ ଅତୀତ, ଗତ, ବିଗତ ।
**ସମତୁଲ**—ବିଂ.(ବ.ବ୍ରୀ) ସମାନ ଓଜନବିଶିଷ୍ଟ, ତୁଳନାରେ ସମାନ, ସମକକ୍ଷ, (ସ୍ତ୍ରୀ) ସମତୁଲା ।
**ସମତୁଲ**—ଗ୍ରା.ବିଂ. (ଫ-ସମତୁଲ) ସମତଳ, (ଫ-ସମ ଓ ତୁଲ୍ୟ)ଠିକ୍ ସମାନ, ସରତୁଲ(୨ଟି ପଦାର୍ଥ),ସମାଧା,ଏକତୁଲ
**ସମତୁଲ୍ୟ**—ବିଂ. ସମକକ୍ଷ, ସମାନ ।
**ସମତ୍ଥ**—ଗ୍ରା. ବିଂ. (ଫ-ସମର୍ଥ) ସମର୍ଥ, ଉପଯୁକ୍ତ, ବଳବାନ୍, ମଜଭୂତ, (ସ୍ତ୍ରୀ) ସ୍ୱାମୀ ଗୃହକୁ ଯାଇ ସେଠାରେ ସ୍ୱାମୀଙ୍କ ସଙ୍ଗେ ଘର କରିବା ପାଇଁ ଉପଯୁକ୍ତା (ଯୁବତୀ କନ୍ୟା) ।
**ସମତ୍ରୟ**—ବି. ସମଭାଗଯୁକ୍ତ ହରିତକୀ ଶୁଣ୍ଠି ଓ ଗୁଡ଼ ତ୍ରିକ୍,(ବିଂ)ତିନୋଟି ପଦାର୍ଥର ସମାନ ଭାଗଯୁକ୍ତ ।
**ସମତ୍ରିକୋଣ**—ବି. ସମତ୍ରିଭୁଜ ଦେଖ ।
**ସମତ୍ରିଭୁଜ**—ବି.(କ.ଧା)ସମବାହୁ ତ୍ରିଭୁଜ, ଯେଉଁ ତ୍ରିଭୁଜର ତିନୋଟିଯାକ ବାହୁ ସମାନ ।
**ସମତ୍ସର**—ପୁଂ.ବିଂ.(ସ+ମତ୍ସର)ବ.ବ୍ରୀ; ମତ୍ସରବିଶିଷ୍ଟ, (ସ୍ତ୍ରୀ) ସମତ୍ସରା ।
**ସମଦ**—ପୁଂ.ବିଂ.(ବ.ବ୍ରୀ)ସଗର୍ବ,ମତ୍ତତାବିଶିଷ୍ଟ, କାମମଦବିଶିଷ୍ଟ, ଅତି ଆନନ୍ଦିତ, (ସ୍ତ୍ରୀ) ସମଦା ।
**ସମଦନ**—ବି.ସଂଗ୍ରାମ, ଯୁଦ୍ଧ, (ବିଂ) ମଦନର ସହିତ ବର୍ତ୍ତମାନ ।
**ସମଦେ**—କି. ବିଂ: ଗର୍ବ ସହକାରେ ।
**ସମଦଣ୍ଡ**—ଗ୍ରା. ବି. ସେନା, ସୈନ୍ୟ ।
**ସମଦର୍ଶନ**—ବି.(କ.ଧା)ସବୁ ବିଷୟ ପ୍ରତି ଧୀର ବିଚାରପୂର୍ବକ ଦୃଷ୍ଟି, ଅପକ୍ଷପାତ ଦୃଷ୍ଟି, ତତ୍ତ୍ୱଜ୍ଞାନ, ସବୁ ବିଷୟ ଓ ଭୂତପ୍ରତି ତୁଲ୍ୟ ଦୃଷ୍ଟି,(ପୁଂ.ବିଂ-ବ.ବ୍ରୀ) ସମଦର୍ଶୀ ଦେଖ ।
**ସମଦର୍ଶିତା**—ସ୍ତ୍ରୀ.ବି.(ସମଦର୍ଶିନ୍+ଭା.ତା) ଅପକ୍ଷପାତତା, ବିଚାରଧୀରତା, ତୁଲ୍ୟଦର୍ଶିତା ।
**ସମଦର୍ଶୀ**—ପୁଂ. ବିଂ. (ସମ+ଦୃଶ୍+କ.ଇନ୍) ଅପକ୍ଷପାତୀ, ଭେଦ ଜ୍ଞାନରହିତ, ବିବେକୀ, ଧୀରସ୍ଥିର ବିଚାରଯୁକ୍ତ,ପଣ୍ଡିତ, ଜ୍ଞାନୀ, ଆତ୍ମଜ୍ଞ, ତତ୍ତ୍ୱଜ୍ଞାନୀ, (ସ୍ତ୍ରୀ) ସମଦର୍ଶିନୀ ।
**ସମଦଳକ**-ବି. (ସମ+ଦଳ+କ)ଯେଉଁ ଗେଣ୍ଡା ଶାମୁକାର ଦୁଇଟିଯାକ ପାଖୁଡ଼ା ସମାନ ।
**ସମ(ମୁ)ଦ(ଧି)**—ଗ୍ରା.ପୁଂ. ଶ. (ଫ-ସମ୍ବନ୍ଧ ଓ ସମ୍ବନ୍ଧୀ) ବିବାହ ପରେ ବରଙ୍କ ଓ କନ୍ୟାଙ୍କ ପିତା ।
**ସମଦୁଃଖ**—ବିଂ. (ବ.ବ୍ରୀ) ସମାନ ରୂପେ ଦୁଃଖ ଭୋଗ କରୁଥିବା,ଯାହାର ଅନ୍ୟର ଦୁଃଖରେ ସହାନୁଭୂତି ଥାଏ, (ସ୍ତ୍ରୀ) ସମଦୁଃଖା ।
**ସମଦୁଃଖସୁଖ**—ପୁଂ. ବିଂ. (ବ.ବ୍ରୀ)ଦୁଃଖ ଓ ସୁଖ ଯାହା ଦୃଷ୍ଟିରେ ସମାନ, ଦୁଃଖରେ ଓ ସୁଖରେ ଭାଗଦାର, (ସ୍ତ୍ରୀ) ସମଦୁଃଖସୁଖା ।
**ସମଦୃଶ(ଷ୍ଟି)**—ବିଂ. (ସମ+ଦୃଶ୍+କ. କ୍ୱିପ୍) ବ.ବ୍ରୀ; ସମଦର୍ଶୀ ଦେଖ ।
**ସମଦୃଶ**—ଗ୍ରା. ବିଂ. (ପଦ୍ୟ)ସଦୃଶ ।
**ସମଦ୍ୱାଦଶାସ୍ତ୍ର**—ବି. (ବ.ବ୍ରୀ) ଯେଉଁ ଦ୍ୱାଦଶ ଭୁଜକ୍ଷେତ୍ରର ବାହୁମାନ ସମାନ, ଦ୍ୱାଦଶଟି ସମଭୁଜ ଓ ସମକୋଣବିଶିଷ୍ଟ ଚିତ୍ର ବା କ୍ଷେତ୍ର ।
**ସମଦ୍ୱିଭୁଜ**—ବି.(ବ.ବ୍ରୀ) ଯେଉଁ ଚତୁର୍ଭୁଜର ପରସ୍ପର ବିପରୀତ ବାହୁଦ୍ୱୟ ସମାନ ।
**ସମଧ(ନ୍ଧ)**—ଗ୍ରା.ବି. (ଫ-ସମ୍ବନ୍ଧ)ସମ୍ବନ୍ଧ, ସମ୍ପର୍କ, ବିବାହ ଦ୍ୱାରା ବନ୍ଧୁତା ସମ୍ପର୍କ, (ବିଂ) ସମ୍ବନ୍ଧୀୟ, ସମ୍ପର୍କୀୟ ।
**ସମଧରାତଳ**—ବି. ଯେଉଁ ଧରାତଳର ପୃଷ୍ଠ ସମ୍ପୂର୍ଣ୍ଣରୂପେ ସମତଳ, (ବିଂ)ଏକ

ସମତଳରେ ସ୍ଥିତ ।
ସମଧର୍ମା(ର୍ମୀ)—ବିଂ.ସମାନ ଧର୍ମବିଶିଷ୍ଟ ।
ସମଧାତୁ—ପୁଂ.ବି. ଶରୀରର ସର୍ବଧାତୁର ସାମ୍ୟଭାବ, ସ୍ୱାସ୍ଥ୍ୟାବସ୍ଥା ।
ସମଧିକ—ବିଂ.(ସମ୍+ଅଧିକ)ଅତ୍ୟଧିକ, ଅତିରିକ୍ତ, ପ୍ରଚୁର ।
ସମଧିଗମ—ପୁଂ.ବି. (ସମ୍+ଅଧି+ଗମ୍+ଅ) ସମ୍ୟକ୍ ରୂପେ ଅଧିଗମ, ପ୍ରାପ୍ତି ।
ସମଧୁର—ବିଂ. ମଧୁର ସହିତ ବର୍ତ୍ତମାନ, ମଧୁରବିଶିଷ୍ଟ ।
ସମଧୃତ—ବିଂ. ଏକଧରଣ, ତୁଲ୍ୟରୂପ, ଏକବିଧ, ଅଭିନ୍ନ ।
ସମଧ୍ୱ—ପୁଂ. ବିଂ. (ବି.ଗ୍ରା) ସମଯାତ୍ରିକ, ସହଯାତ୍ରୀ, ଏକତ୍ର ଭ୍ରମଣକାରୀ, ଯାତ୍ରାକାଳୀନ ସହଚର, (ସ୍ତ୍ରୀ)ସମଧ୍ୱା ।
ସମନ୍(ନ୍ସ)—ଯା. ବି. ନିର୍ଦ୍ଦିଷ୍ଟ ତାରିଖରେ ଯବାନବନ୍ଦୀ ଦେବାପାଇଁ କିମ୍ବା ଦଲିଲ ଦାଖଲ କରିବା ପାଇଁ ବା ବିଚାରାଳୟରେ ହାଜର ହେବା ପାଇଁ ମୁଦ୍ଦାଲା ବା ଆସାମୀ ବା ସାକ୍ଷୀଙ୍କ ପ୍ରତି ବିଚାରାଳୟର ମୋହର ଓ ଦସ୍ତଖତ ସହିତ ପଠାଯିବା ଆଦେଶପତ୍ର ।
ସମନଖରଚ—ଯା. ବି. ସମନ ଜାରି କରାଇବା ପାଇଁ ସରକାରଙ୍କଠାରେ ପ୍ରାର୍ଥୀର ଉପାଜିତ କରିବା ସବୁପ୍ରକାରର ଖରଚ ।
ସମନ୍‌ଜାରି—ଯା. ବି. ଯେଉଁ ବ୍ୟକ୍ତିକୁ ଦମନ କରାଯାଏ ତାହା ନିକଟରେ ଉକ୍ତ ସମନକୁ ପହଞ୍ଚାଇ ତାକୁ ଜଣାଇବା ।
ସମନ୍‌ମିଆଦ—ଯା.ବି.ତଲବାନ. ମିଆଦ, ତଲବାନା, କୌଣସି ବ୍ୟକ୍ତି ଉପରେ ସମନ ଜାରି କରିବା ପାଇଁ ସରକାରଙ୍କର ଯେଉଁ ଖରଚ ହୁଏ ତହିଁ ପାଇଁ ପ୍ରାର୍ଥୀ ସରକାରଙ୍କ ନିକଟ ଆଗରୁ ନିର୍ଦ୍ଦିଷ୍ଟ ପରିମାଣରେ କୋର୍ଟଫିସ୍ ଦ୍ୱାରା ଯେଉଁ ଖରଚ ଦାଖଲ କରେ ।
ସମନଗା—ସ୍ତ୍ରୀ.ବି. ବିଦ୍ୟୁତ୍, ସୂର୍ଯ୍ୟରଶ୍ମି ।
ସମନନ—କ୍ଲୀ.ବି.ସମଭାବେ ଶ୍ୱାସ ପ୍ରଶ୍ୱାସ ତ୍ୟାଗ ।
ସମନନ୍ତର—ବିଂ. ( ସମ୍+ଅନନ୍ତର ) ଅବ୍ୟବହିତ ପରବର୍ତ୍ତୀ ।
ସମନର—ବି. ସମଶଙ୍କୁ ।
ସମନସ୍କ—ପୁଂ. ବିଂ. ସମାନମନବିଶିଷ୍ଟ, ତୁଲ୍ୟ ମନଯୁକ୍ତ ।
ସମନାଃ—ପୁଂ. ବିଂ. ସମନସ୍କ, ସମାନ ମନୋଯୁକ୍ତ ।
ସମନା—ସ୍ତ୍ରୀ. ସମ୍ୟଗାନୟିତ୍ରୀ, ସମ୍ୟକ୍ ଚେଷ୍ଟୟିତ୍ରୀ, ସମ୍ୟକ୍ ରୂପେ ଚେଷ୍ଟାକାରିଣୀ ।
ସମନାଥ—ଗ୍ରା.ବି.(ସଂ-ସୋମନାଥ) ହାତର ଅଳଙ୍କାରବିଶେଷ ।
ସମନୀକ—କ୍ଲୀ. ବି. ସଂଗ୍ରାମ, ଯୁଦ୍ଧ ।
ସମନୁକୀର୍ତ୍ତନ—ବି. ସମ୍ୟକ୍‌ରୂପେ ଅନୁକୀର୍ତ୍ତନ, ସମ୍ୟକ୍‌ପ୍ରକାରେ କଥନ ।
ସମନୁଗ୍ରାହ୍ୟ—ବିଂ.(ସମ୍+ଅନୁ+ଗ୍ରହ୍+ଯ)ସମ୍ୟକ୍‌ରୂପେ ଅନୁଗ୍ରାହ୍ୟ,ସମ୍ୟକ୍ ପ୍ରକାରେ ଅନୁଗ୍ରହଣୀୟ ।
ସମନୁଜ—ବିଂ.ଅନୁଜ ସହିତ.ଶିଷ୍ୟଯୁକ୍ତ ।
ସମନୁଜ୍ଞା—ବି. (ସମ୍+ଅନୁଜ୍ଞା) ସମ୍ପୂର୍ଣ୍ଣ ଅନୁମତି ।
ସମନୁବନ୍ଧ—ପୁଂ. ବି. ଅନୁବନ୍ଧ,ସମ୍ୟକ୍‌ରୂପେ ଅନୁବନ୍ଧ ।
ସମନୁବର୍ତ୍ତୀ—ପୁଂ. ବିଂ. (ସମ୍+ଅନୁ+ବୃତ୍+କ.ଇନ୍)ସମ୍ୟକ୍‌ରୂପେ ଅନୁବର୍ତ୍ତୀ ସମ୍ୟକ୍‌ରୂପେ ଅନୁଗାମୀ ।
ସମନୁବ୍ରତ—ପୁଂ. ବିଂ. (ସମ୍+ଅନୁ+ବ୍ରତ) ସମ୍ପୂର୍ଣ୍ଣ ରୂପେ ଅନୁଗତ, ଭକ୍ତ, (ସ୍ତ୍ରୀ) ସମନୁବ୍ରତା ।
ସମନୁଷ୍ଠେୟ—ବିଂ.(ସମ୍+ଅନୁ+ସ୍ଥା+ଯ) ସମ୍ୟକ୍‌ପ୍ରକାରେ ଅନୁଷ୍ଠାନର ଯୋଗ୍ୟ, ସମ୍ୟକ୍‌ରୂପେ ଅନୁଷ୍ଠେୟ ।
ସମନ୍ତ—ବି. (ସମ୍+ଅନ୍ତ) ଶେଷଭାଗ, ସୀମା, ସମୁଦାୟ, (ବିଂ) ସମ୍ପୂର୍ଣ୍ଣ, ବିଶ୍ୱଜନୀନ, ସର୍ବ,ସମସ୍ତ, ସକଳ,(କ୍ରି.ବିଂ) ଚତୁର୍ଦ୍ଦିଗରେ, ପୂର୍ଣ୍ଣରୂପେ ।
ସମନ୍ତତଃ—ଅ. କ୍ରି.ବିଂ.(ସମନ୍ତ+ତସ୍) ସମନ୍ତାତ୍, ସବୁଆଡୁ, ସବୁଦିଗରୁ, ଚାରିଆଡ଼େ, ସବୁଆଡ଼େ, ସର୍ବତ୍ର, ସମ୍ପୂର୍ଣ୍ଣରୂପେ ।
ସମନ୍ତଦର୍ଶୀ—ପୁଂ. ବି. ବୁଦ୍ଧ,(ବିଂ)ସକଳଦ୍ରଷ୍ଟା ।
ସମନ୍ତଦୁଗ୍ଧା-ବି.(ବି.ଗ୍ରା)ସ୍ନୁହୀବୃକ୍ଷ, ସିଝୁଗଛ
ସମନ୍ତନେତ୍ର--ପୁଂ.ବି.ବୋଧିସତ୍ତ୍ୱଭେଦ ।
ସମନ୍ତପଞ୍ଚକ—ବି. ବି.ଗ୍ରା; ସମନ୍ତ=ଚାରିଆଡ଼େ+ପଞ୍ଚକ=ପାଞ୍ଚଗୋଟିହ୍ରଦ] ଯାହାର) କୁରୁକ୍ଷେତ୍ର ପ୍ରଦେଶର ନାମ, କୁରୁକ୍ଷେତ୍ରସ୍ଥ ତୀର୍ଥବିଶେଷ ।
ସମନ୍ତପ୍ରଭ—ପୁଂ.ବି.ବୋଧିସତ୍ତ୍ୱଭେଦ ।
ସମନ୍ତପ୍ରଭାସ—ପୁଂ. ବି. ବୁଦ୍ଧ ।
ସମନ୍ତପ୍ରସାଦକ—ପୁଂ.ବି.ବୋଧିସତ୍ତ୍ୱଭେଦ
ସମନ୍ତଭଦ୍ର—ପୁଂ. ବି. (ସମନ୍ତ+ଭଦ୍ର) ବୁଦ୍ଧଦେବଙ୍କର ନାମ ।
ସମନ୍ତଭୁକ୍—ବି. (ସମନ୍ତ+ଭୁଜ୍+କ୍ୱିପ୍) ଅଗ୍ନି, ହୁତାଶନ,(ବିଂ)ସର୍ବଭକ୍ଷ ।
ସମନ୍ତର—ବି.ଦେଶଭେଦ ଓ ତଦ୍ଦେଶବାସୀ ।
ସମନ୍ତରଶ୍ମି—ପୁଂ.ବି. ବୋଧିସତ୍ତ୍ୱଭେଦ ।
ସମନ୍ତବଲୋକିତା—ବି. ବୌଦ୍ଧମତେ ଜଗଭେଦ ।
ସମନ୍ତସୁଲାବଲୋକନ—ବି. ପୁଷ୍ପଭେଦ; ବୌଦ୍ଧମତେ ଖୀରତ୍ଵଜ୍ଞାପକ କୌଣସି ପ୍ରକାର ଶବ୍ଦ ।
ସମନ୍ତସ୍ଥାରଣମୁଖଦର୍ଶନ—ପୁଂ.ବି. ଗରୁଡ଼ରାଜଭେଦ ।
ସମନ୍ତାତ୍—ଅ.କ୍ରି.ବିଂ.ସମନ୍ତତଃ ଦେଖ ।
ସମନ୍ତାଲୋକ—ପୁଂ. ବି. ଧ୍ୟାନର ପ୍ରକାରଭେଦ ।
ସମନ୍ତାବଲୋକିତା -ବି.ବୋଧିସତ୍ତ୍ୱଭେଦ ।
ସମନ୍ତିକ—ଅ. ସୀମା ସମୀପରେ ।
ସମନ୍ତ୍ରକ—ବିଂ. (ବି.ଗ୍ରା) ମନ୍ତ୍ରଯୁକ୍ତ, ମନ୍ତ୍ରପୂତ, ମନ୍ତ୍ରର ସହିତ ବର୍ତ୍ତମାନ ।
ସମନ୍ତ୍ରିକ—ବିଂ.(ସ+ମନ୍ତ୍ରିନ୍+କ)ମନ୍ତ୍ରିଯୁକ୍ତ(ରାଜା) ।
ସମନ୍ତ୍ରୀ—ପୁଂ. ବିଂ. ମନ୍ତ୍ରଯୁକ୍ତ, ମନ୍ତ୍ରବିଶିଷ୍ଟ, ମନ୍ତ୍ରୀର ସହିତ ବର୍ତ୍ତମାନ ।
ସମନ୍ୱୟ—ବି. (ସମ୍+ଅନ୍ୱୟ)ସଂଯୋଗ, ମିଳନ, ସଙ୍ଗତି,ସଙ୍ଗମ,ସମଭିବ୍ୟାହାର, ପ୍ରାପ୍ତିସ୍ଥିତି କରିବା ପରେ ପଣ୍ଡିତବ୍ୟକ୍ତିର

ସମାଜରେ ପୁନର୍ଗ୍ରହଣ, ଅବରୋଧ, ଶାନ୍ତ, ପ୍ରାକୃତିକ କାର୍ଯ୍ୟକାରଣ ସମ୍ବନ୍ଧ, ଧାରାବାହିକତା, କ୍ରମ ।

ସମନ୍ୱିତ—ବିଂ.(ସମ୍+ଅନ୍ୱିତ)ମିଳିତ, ସଂଯୁକ୍ତ, ସମଭିବ୍ୟାହାରଦ୍ୱାରା ଯୁକ୍ତ, ସଙ୍ଗତ ।

ସମନ୍ୟୁ—ବିଂ. (ସ+ମନ୍ୟୁ) ସକୋପ, କୋପଯୁକ୍ତ,ଦୁଃଖିତ, (ବି) ମହାଦେବ ।

ସମନ୍ଧ—ଗ୍ରା.ବି.(ସଂ-ସମ୍ବନ୍ଧ)ସମ୍ବନ୍ଧ ଦେଖ

ସମପଦ— ବି. ( ସମ୍=ସମାନ ହୁଏ ପଦ=ଚରଣ ଯହିଁରେ, ରତିବନ୍ଧ-ବିଶେଷ, ଧନୁର୍ଦ୍ଧାରୀର ପାଦଦ୍ୱୟକୁ ତୁଲ୍ୟ ରୂପ ଧାରଣ ପୂର୍ବକ ଅବସ୍ଥାନବିଶେଷ, ତୁଲ୍ୟପଦ ବା ଅବସ୍ଥିତି ।

ସମପଦସ୍ଥ—ବିଂ. (ସମପଦ+ସ୍ଥା+କ. ଅ) ତୁଲ୍ୟରୂପ ପଦ ବା ପଦବୀଯୁକ୍ତ, ତୁଲ୍ୟ ସମ୍ମାନବିଶିଷ୍ଟ, (ସ୍ତ୍ରୀ) ସମପଦସ୍ଥା ।

ସମପାଦ—ବି. ଧନ୍ୱୀମାନଙ୍କର ଅବସ୍ଥାନ-ବିଶେଷ,ସମପଦ, (ବିଂ) ସମାନ ଚରଣ-ବିଶିଷ୍ଟ,ଯେଉଁ ଛନ୍ଦର ଚାରିପାଦ ସମାନ

ସମପାଦଯମକ—ବି. (ଅଳଙ୍କାର)ଯମକ-ବିଶେଷ (ପଦର ଆଦ୍ୟରେ ଓ ଶେଷରେ ସମାନ ବାକ୍ୟ ବିନ୍ୟାସଥିଲେ ଏ ଯମକ ହୁଏ) । [ ଅନୁଛାବତ ।

ସମପୃଷ୍ଠ—ବିଂ.(ବ.ବ୍ରୀ)ସମତଳ,ଅବନ୍ଧୁର,

ସମପ୍ରାଣ—ପୁଂ. ବିଂ. (ବ.ବ୍ରୀ) ଏକପ୍ରାଣ, ଯାହାଙ୍କର ହୃଦୟ ଏକ,ସହୃଦୟ,(ସ୍ତ୍ରୀ) ସମପ୍ରାଣା, (ବି) ସୁହୃଦ୍, ବନ୍ଧୁ ।

ସମପ୍ରାଧାନ୍ୟସଙ୍କର—ବି.ସମ୍ୟକ୍ ପ୍ରାଧାନ୍ୟ ପ୍ରଦର୍ଶନେ ପାରସ୍ପରିକ କୃତ୍ରିମତା ।

ସମବକାର—ବି. (ସମ୍+ଅବ୍+କୃ+ଅଧି.ଅ) ଯହିଁରେ ବହୁ ଅର୍ଥ ସମବକୀର୍ଣ୍ଣ ହୁଏ, ନାଟକବିଶେଷ ।

ସମବତାର—ବି. (ସମ୍+ଅବ୍+ତୃ+ଣ. ଅ) ସୋପାନ, ସିଢ଼ିର ପାହାଚ, ( ଭା. ଅ) ଅବତରଣ, ଓହ୍ଲାଇବା, (+ମଁ.ଅ) ପାରିହେବା, ଘାଟ, ତୀର୍ଥ ।

ସମବଧାନ—ବି. ( ସମ୍+ଅବଧାନ ) ବିଶେଷ ମନୋଯୋଗ,ନିଷ୍ପତ୍ତି,ମୀମାଂସା ।

ସମବନ—କ୍ଳୀ. ବି. (ସମ୍+ଅବ୍+ଅନ) ସମ୍ୟକ୍‌ରୂପେ ଅବନ, ସମ୍ୟକ୍‌ପ୍ରକାରେ ରକ୍ଷଣ ।

ସମବୟଃସ୍ଥ—ପୁଂ. ବିଂ. (ସମ+ବୟଃ+ସ୍ଥା+କ.ଅ) ସମବୟସୀ, ଏକବୟସୀ, (ସ୍ତ୍ରୀ) ସମବୟଃସ୍ଥା ।

ସମବୟସ—ଗ୍ରା. ବିଂ. ସମବୟଃସ୍ଥ ।

ସମବୟସୀ—ଗ୍ରା.ପୁଂ.ସ୍ତ୍ରୀ.ବିଂ.ସମବୟଃସ୍ଥ ଦେଖ ।

ସମବୟସ୍କ—ବିଂ. (ବ.ବ୍ରୀ) ତୁଲ୍ୟ ବୟସ-ବିଶିଷ୍ଟ, ଏକବୟସୀ, (ସ୍ତ୍ରୀ)ବୟସ୍କା ।

ସମବର୍ଣ୍ଣ—ବିଂ.(ବ.ବ୍ରୀ) ଏକ ବା ସମାନ ବର୍ଣ୍ଣବିଶିଷ୍ଟ, (ସ୍ତ୍ରୀ) ସମବର୍ଣ୍ଣା,(ବି)ସମାନ-ବର୍ଣ୍ଣ ।

ସମବର୍ତ୍ତୀ—ପୁଂ.ବିଂ. (ସମ+ବୃତ୍+କ. ଇନ୍)ତୁଲ୍ୟରୂପେ ସ୍ଥିତ,(ସ୍ତ୍ରୀ)ସମବର୍ତ୍ତିନୀ, (ବି) କୃତାନ୍ତ, ଯମ ।

ସମବଲମ୍ବ—ବିଂ. (ବ.ବ୍ରୀ) ସମାନ ଲମ୍ବ ବିଶିଷ୍ଟ,(ଜ୍ୟାମିତି.ବି)ଯେଉଁ ଚତୁର୍ଭୁଜର ଲମ୍ବ ରେଖା ସମାନ ।

ସମବସରଣ—ବି. (ସମ୍+ଅବ୍+ସୃ+ମଁ.ଅନ) ସଭାଗୃହ, ଧର୍ମମଣ୍ଡପ, ଯେଉଁ ମଣ୍ଡପରେ ଧର୍ମୋପଦେଶ ଦିଆଯାଏ ।

ସମବସର୍ଗ୍ୟ—ବି.ରକ୍ଷ୍ୟ, ଅବନମନ, ପରି-ତ୍ୟାଗ ।

ସମବସୃଜ୍ୟ—ବିଂ. ସମ୍ୟକ୍ ପରିତ୍ୟାଜ୍ୟ ।

ସମବସ୍କନ୍ଦ—ବି. (ସମ୍+ଅବ୍+ସ୍କନ୍ଦ+ଭା.ଅ) ଦୁର୍ଗାଦି ଦ୍ୱାରା ସମ୍ୟକ୍‌ରୂପେ ସୁରକ୍ଷିତକରଣ,(ଣ.ଅ)ଦୁର୍ଗ ପ୍ରାକାର ।

ସମବସ୍ଥା—ବି. (ସମ୍+ଅବସ୍ଥା) ସମାନ ଅବସ୍ଥା, ତୁଲ୍ୟ ଦଶା, ସମତା, ସାମ୍ୟ ।

ସମବସ୍ଥାନ—ବି.(ସମ୍+ଅବସ୍ଥାନ)ସମ୍ୟକ୍ ଅବସ୍ଥାନ, ସମ ଭାବରେ ଅବସ୍ଥାନ ।

ସମବସ୍ଥିତ—ବିଂ. ( ସମ୍+ଅବସ୍ଥିତ ) ସମ୍ୟକ୍‌ରୂପେ ଅବସ୍ଥିତ, ସମ ଭାବରେ ଅବସ୍ଥିତ ।

ସମବସ୍ଥିତି—ବି.(ସମ୍+ଅବସ୍ଥିତି)ସମ-ବସ୍ଥାନ ଦେଖ ।

ସମବସ୍ରବ—ବି. (ସମ୍+ଅବ+ସ୍ରୁ+ଅ) ସମ୍ୟକ୍‌ରୂପେ ଅବସ୍ରବ, କ୍ଷରଣ ।

ସମବହାର—ପୁଂ.ବି. (ସମ୍+ଅବ୍+ହୃ+ଅ) ବିଭକ୍ତ ।

ସମବହାସ୍ୟ—ବିଂ. (ସମ୍+ଅବ୍+ହସ୍+ମଁ.ଯ) ସମ୍ୟକ୍‌ରୂପେ ଉପହାସନୀୟ, (ସ୍ତ୍ରୀ) ସମବହାସ୍ୟା ।

ସମବାୟ—ବି. (ସମ୍+ଅବ୍+ଇ+କ. ଅ) ସମୂହ, (ଭା.ଅ) ସଂଯୋଗ, ମିଳନ, ସମ୍ବନ୍ଧ, ପରସ୍ପର ସମ୍ବନ୍ଧ, (ବୈଶେଷିକ ଦର୍ଶନଶାସ୍ତ୍ର) ନିତ୍ୟ ସଂବନ୍ଧ, ନ୍ୟାୟ ଶାସ୍ତ୍ରାନୁମୋଦିତ ସଂବନ୍ଧ,(ବିଂ)ସମବେତ, ଯୌଥ, ଦଳବଦ୍ଧ ।

ସମବାୟଋଣସମିତି—ବି. (ଆଧୁନିକ ବ୍ୟବହାର) ବହୁ ବ୍ୟକ୍ତିଙ୍କ ସମବେତ ମୂଳଧନ ଦ୍ୱାରା ବ୍ୟକ୍ତିବିଶେଷଙ୍କୁ ପ୍ରୟୋଜନ ବେଳେ ଋଣ ଦେବାପାଇଁ ଗଠିତ ସମିତି, ଯୌଥ ମହାଜନ ସମିତି ।

ସମବାୟତ୍ୱ—କ୍ଳୀ. ବି. ସମବାୟର ଭାବ ବା ଧର୍ମ, ସମବାୟ ସମ୍ବନ୍ଧତ୍ୱ ।

ସମବାୟନ—କ୍ଳୀ.ବି.ପରସ୍ପରରେ ସଂଘାତ ପ୍ରାପ୍ତି ।

ସମବାୟସମିତି—ସ୍ତ୍ରୀ.ବି. ଅନେକ ମିଳିତ ହୋଇ ଏକଯୋଗେ କାର୍ଯ୍ୟ କରିବାର ଓ ପରସ୍ପରକୁ ସାହାଯ୍ୟ କରିବାର ନିମିତ୍ତ ସମ୍ମିଳନୀ ।

ସମବାୟୀ—ବିଂ. ( ସମବାୟ+ଇନ୍ ) (ଦର୍ଶନଶାସ୍ତ୍ର) ସମବାୟ ବା ନିତ୍ୟ ସଂବନ୍ଧଯୁକ୍ତ, ଉପାଦାନୀଭୂତ ।

ସମବାୟୀକାରଣ-ବି.(ଦର୍ଶନଶାସ୍ତ୍ର) ଯେଉଁ କାରଣର କାର୍ଯ୍ୟ ସଙ୍ଗେ ଅବିଚ୍ଛେଦ୍ୟ ବା ନିତ୍ୟ ସଂବନ୍ଧ ଥାଏ ।

ସମବାର—ଗ୍ରା. ବି. ( ସଂ-ସୋମବାର ) ସୋମବାର ।

ସମବାରିଆ—ଗ୍ରା.ପୁଂ.ବିଂ. ସୋମବାରରେ ଜାତ, ସୋମବାର ଦିନ ଘଟିବା, ଯେ ସୋମବାର ବ୍ରତ ପାଳେ,(ସ୍ତ୍ରୀ)ସମବାରୀ ।

ସମବାହୁ—ବିଂ. (ବ.ବ୍ରୀ) ସମାନ ବାହୁଯୁକ୍ତ (କ୍ଷେତ୍ର), ଯେଉଁ କ୍ଷେତ୍ରର ବାହୁମାନ ପରସ୍ପର ପରିମିତ ସମାନ ।

ସମବୃତ୍ତ—ବି°. ସମାନ ଅଥଚ ବୃତ୍ତ, ଗୋଲ, (ବି) ଛନ୍ଦୋଭେଦ ।
ସମବେକ୍ଷଣ—ବି. ( ସମ୍+ଅବେକ୍ଷଣ ) ସମ୍ୟକ୍‌ରୂପେ ଦର୍ଶନ, ପର୍ଯ୍ୟବେକ୍ଷଣ ।
ସମବେତ—ବି°. (ସମ୍+ଅବ+ଇ+କ.ତ) ଏକତ୍ରୀଭୂତ, ପରସ୍ପର ସବଦ୍ଧ, ପରସ୍ପର ସଂଯୁକ୍ତ, ନିତ୍ୟ ସଂବନ୍ଧଦ୍ୱାରା-ଯୁକ୍ତ, ସଞ୍ଚିତ, ଏକ ଶ୍ରେଣୀଭୁକ୍ତ,(ବହୁ-ଲୋକଙ୍କ)ସମ୍ମିଳିତ, ମିଳିତ,(ସ୍ତ୍ରୀ)ବେତା
ସମବେତଚେଷ୍ଟା—ବି. ବହୁଲୋକଙ୍କ ସମ୍ମିଳିତ ଚେଷ୍ଟା ।
ସମବେତବାଣିଜ୍ୟ—ବି. (ଆଧୁନିକ)ବହୁ ଲୋକଙ୍କ ସମବେତ ମୂଳଧନଦ୍ୱାରା ହେବା ବାଣିଜ୍ୟ, ଇଜମାଲି ବେପାର ।
ସମବେଦନା—ବି.(କ.ଧା)ତୁଲ୍ୟ ଯାତନା, ସହାନୁଭୂତି, ଅନ୍ୟର ସୁଖ ଦୁଃଖାଦିରେ ସୁଖଦୁଃଖାନୁଭବ ।
ସମବେଧ—ବି°. ସମାନ ବେଧବିଶିଷ୍ଟ, (ବି) ସମାନ ବେଧ ।
ସମବେଶ(ଷ)—ବି. ସମାନ ବେଶ ବା ସଜ୍ଜା, ଯୁଦ୍ଧ ସଜ୍ଜା, ସେନା ସମାବେଶ ।
ସମବେଶନ-ବି.ବିବାହର ଚତୁର୍ଥ ରାତିରେ ମୈଥୁନାର୍ଥ ବରକନ୍ୟାଙ୍କର ଏକତ୍ର ଶୟନ, ଚତୁର୍ଥିକା ।
ସମଭାଗ—ବି. (କ.ଧା) ସମାନ ଭାଗ, (ବି°. ବ.ବ୍ରୀ) ସମାନ ଭାଗବିଶିଷ୍ଟ ।
ସମଭାବ—ବି. (୬ତତ୍) ( ସମ+ଭାବ ) ସମତା,ସାଦୃଶ୍ୟ,ଏକରୂପତା,ତୁଲ୍ୟତା ।
ସମଭିଧା—ବି. (ସମ୍+ଅଭିଧା)ସମନାମ, ଅଭିଧା ।
ସମଭିଭାଷଣ—କ୍ଲୀ. ବି. (ସମ୍+ଅଭି+ଭାଷ+ଅନ) ସମ୍ୟକ୍‌ରୂପେ ଅଭିଭାଷଣ
ସମଭିବ୍ୟାହାର—ବି. (ସମ୍+ଅଭି+ବି+ଆ+ହୃ+ଭା.ଅ)ସାହଚର୍ଯ୍ୟ,ସଙ୍ଗ, ଏକତ୍ରାବସ୍ଥିତି,ଏକତ୍ର ସଂଯୋଗ,ଏକତ୍ର ଗମନ, ଏକସଙ୍ଗେ ଉଚ୍ଚାରଣ ।
ସମଭିବ୍ୟାହାରରେ—କ୍ରି.ବି°. ଏକସଙ୍ଗେ, ସାଙ୍ଗହୋଇ ।
ସମଭିବ୍ୟାହାରୀ—ପୁଂ.ବି°. (ସମ୍+ଅଭି+ବି+ଆ+ହୃ+ଇନ୍ ) ସଙ୍ଗୀ, ଏକତ୍ର ଗମନକାରୀ, ସହଗାମୀ ।
ସମଭିବ୍ୟାହୃତ—ବି°. (ସମ୍+ଅଭି+ବି+ଆ+ହୃ+ମି.ତ)ଏକତ୍ରୀଭୂତ, ଏକ ସଙ୍ଗେ ଗୃହୀତ, ସହୋଚ୍ଚାରିତ, ଯୁକ୍ତ ।
ସମଭିହାର—ବି. (ସମ୍+ଅଭି+ହୃ+ଅ)ପୌନଃପୁଣ୍ୟ, ବାରମ୍ବାର,ଆତିଶଯ୍ୟ
ସମଭୂମି—ବି. (କ.ଧା) ସମତଳ ସ୍ଥାନ, ମନ୍ଦିର ଅଟ୍ଟାଳିକାଦି ଭାଙ୍ଗି ତହିଁର ତଳ ଭୂମିକୁ ସମତଳକରଣ ।
ସମଭ୍ୟର୍ଥୟିତା—ପୁଂ.ବି° (ସମ୍+ଅଭି+ଅର୍ଥ+ଣିଚ୍+ତୃ ) ସମ୍ୟକ୍ ରୂପେ ଅଭ୍ୟର୍ଥନକାରୀ ।
ସମଭ୍ୟାସ—ବି.ସମ୍ୟକ୍ ରୂପେ ଅଭ୍ୟାସ ।
ସମଭ୍ୟୁଦ୍ଧରଣ-ବି.ସମ୍ୟକ୍ ରୂପେ ଉଦ୍ଧାର ।
ସମଭ୍ୟୁପଗମନ—ବି. ସମ୍ୟକ୍ ଅଭ୍ୟୁପ-ଗମନ,ବୋଧ ସହକାରେ ଅନୁମୋଦନ
ସମଭ୍ୟୁପେୟ—ବି. ସମଭ୍ୟୁପଗମନ ।
ସମମ୍—ଅ.(ସମ୍+କ.ଅମ୍)ସହ, ସହିତ, ଏକଦା, ଏକକାଳରେ,ଏକ ସମୟରେ, ଯୁଗପତ୍ ।
ସମମଣ୍ଡଳ—ବି.ଭୂମଣ୍ଡଳର ଯେଉଁ ଅଂଶ ଶୀତମଣ୍ଡଳ ଓ ଗ୍ରୀଷ୍ମମଣ୍ଡଳଦ୍ୱୟର ମଧ୍ୟବର୍ତ୍ତୀ ।
ସମମତି—ବି°. ସମବୁଦ୍ଧି ବିଶିଷ୍ଟ ।
ସମମୟ—ବି°. ସମାନ ଭାବବିଶିଷ୍ଟ ।
ସମମାତ୍ର—ବି°. ସମାନ ମାତ୍ରାବିଶିଷ୍ଟ ।
ସମୟ—ବି. (ସମ୍+ଇ+କ.ଅ, କିମ୍ବା ସମ୍+ଯା+ଣ.ଅ) କାଳ, ଋତୁ, ପରି-ମିତ କାଳ, ସୀମା, ଉପଯୁକ୍ତ ବେଳା, ନିର୍ଦ୍ଦିଷ୍ଟକାଳ, ଅବକାଶ, ସୁଯୋଗ, ନିୟମ, ସତ୍ୟ, ପ୍ରତିଜ୍ଞା, ଶପଥ, ସିଦ୍ଧାନ୍ତ, ଅନ୍ତିମକାଳ, ନିର୍ଦ୍ଦେଶ, ସଂକେତ, ଚୁକ୍ତି, ଆଦେଶ, ଆଜ୍ଞା, ଆଗ୍ରହ, ବ୍ୟବହାର, ମୀମାଂସା, କର୍ତ୍ତବ୍ୟ ନିର୍ବାହ, ପ୍ରଚାର, ଘୋଷଣା, ଦୁଃଖାବସାନ, ଉପଦେଶ, ଧର୍ମ, ନ୍ୟାୟ, ସମ୍ପଦ, ବାକ୍ୟ, ବକ୍ତୃତା, (ପୁଂ.ବି°-ବ.ବ୍ରୀ)ସୌଭାଗ୍ୟଶାଳୀ, (ସ୍ତ୍ରୀ) ସମୟା, (ଗ୍ରା.ବି) ମୃତ୍ୟୁ, କାଳର ସୀମା, ମହଲତ, କୌଣସି ବ୍ୟକ୍ତିର ଉନ୍ନତିର ବା ଅଧିକାରର ବା ରାଜତ୍ୱର କାଳ ।
ସମୟଅସମୟ—ଗ୍ରା. ବି. କାଳାକାଳ, ସୁସମୟ ଓ ଦୁଃସମୟ, ସବୁବେଳ ।
ସମୟକରିବା—ଗ୍ରା.କ୍ରି. କୌଣସି କାର୍ଯ୍ୟ କରିବାପାଇଁ ସମୟର ବ୍ୟବସ୍ଥା କରିବା, ମିଆଦ ସ୍ଥିର କରିବା, ଚୁକ୍ତିକରିବା ।
ସମୟକାର—ବି. (ସମୟ+କୃ+କ.ଅ) ପରିଭାଷ୍ୟ, ସଂକେତ ।
ସମୟକ୍ରମେ—ଅ. ଉପଯୁକ୍ତ ସମୟରେ ।
ସମୟକ୍ରିୟା—ବି. ସମୟ କରିବା ।
ସମୟଘଟିବା—ଗ୍ରା. ବି. ସମୟ ମିଳିବା ଦେଖ । [ ଜାଣେ ।
ସମୟଜ୍ଞ—ପୁଂ.ବି.ବିଷ୍ଣୁ, (ବି°)ଯେ ସମୟ
ସମୟଦେବା—ଗ୍ରା.କ୍ରି. ମହଲତଦେବା, ସମୟ ନିର୍ଦ୍ଦେଶ କରିବା ।
ସମୟଧର୍ମ—ବି. ସମୟକ୍ରିୟା ।
ସମୟନଥିବା—ଗ୍ରା.ବି.ଅବସରର ଅଭାବ, ସୁବିଧାର ଅଭାବ ।
ସମୟନିରୂପଣ—ବି. ନିର୍ଦ୍ଦିଷ୍ଟ ସମୟର ସ୍ଥିରୀକରଣ ।
ସମୟପାଇବା—ଗ୍ରା.କ୍ରି.ମହଲତପାଇବା, ଅବସର ପ୍ରାପ୍ତ ହେବା,ଫୁରୁସତ୍‌ପାଇବା
ସମୟବିଦ୍ୟା—ସ୍ତ୍ରୀ.ବି.ସମୟ ଧର୍ମ,ଯୋଗ୍ୟ-କାଳ, ଉପଦେଶ, ଶିକ୍ଷା ।
ସମୟବିଭାଗ—ବି. (୬ତତ୍) ଭିନ୍ନ ଭିନ୍ନ କାର୍ଯ୍ୟ ପାଇଁ ଭିନ୍ନ ଭିନ୍ନ ବେଳର ବଣ୍ଟନ, କାଳକୁ ଭିନ୍ନ ଭିନ୍ନ ଅଂଶରେ ବିଭାଗ କରିବା ।
ସମୟମିଳିବା—ଗ୍ରା.ବି. ସୁଯୋଗ ଘଟିବା, ଅବକାଶ ମିଳିବା ।
ସମୟଶିଚର—ଅ. ସୁଯୋଗ କ୍ରମେ ।
ସମୟସେବକ(ସେବୀ)-ପୁଂ.ବି°. (୬ତତ୍) ସମୟର ଉପାସକ, ସମୟର ମୂଲ୍ୟଜ୍ଞ, ସମୟ ର ଗତି ବୁଝି ତଦୁପଯୁକ୍ତ ଭାବରେ କାର୍ଯ୍ୟକାରୀ, (ସ୍ତ୍ରୀ) ସେବିକା ।
ସମୟହେବା—ଗ୍ରା. ବି. ମୃତ୍ୟୁ ଘଟିବା, ସମୟ ମିଳିବା, ଉପଯୁକ୍ତ ସମୟ ଉପସ୍ଥିତ ହେବା ।

ସମକ୍ଷା—ଅ. (ସମ୍+ଈ+କ.ଆ) ସମୀପରେ, ନିକଟରେ, ମଧ୍ୟରେ, (ସ୍ତ୍ରୀ.ବିଂ-ସମୟ+ଆ)ସୌଭାଗ୍ୟଶାଳିନୀ, (ଗ୍ରା.ବି ସଂ-ସମୟ) କାଳ, ମୃତ୍ୟୁ ।

ସମୟାଧ୍ୟୁଷିତ—ବି. ଯେଉଁ ସମୟରେ ସୂର୍ଯ୍ୟ ବା ନକ୍ଷତ୍ର ଦୃଷ୍ଟିଗୋଚର ହୁଏ ନାହିଁ, ସୂର୍ଯ୍ୟ ନକ୍ଷତ୍ରବର୍ଜିତ କାଳ ।

ସମୟାନ୍ତର—ବି.(କ.ଧା;ଅନ୍ୟ+ସମୟ) ଅନ୍ୟ ସମୟ, ଭିନ୍ନକାଳ ।

ସମୟାବିଷିତ—ବିଂ. କାଳବଶେ ନଷ୍ଟ ବା ବିଲୟପ୍ରାପ୍ତ ।

ସମୟାଭାବ—ବି.(୬ତତ୍)କାଳର ଅଭାବ, ବେଳ ନ ଅଣ୍ଟିବା,ଅବସର ନ ମିଳିବା ।

ସମୟାପ୍ରତିଷିତ—ବିଂ.କାଳକ୍ରମେ ବିଧ୍ୱସ୍ତ ।

ସମଯୋଗ୍ୟ—ପୁଂ.ବିଂ. (ସମ+ଯୋଗ୍ୟ) କ.ଧା; ସମକକ୍ଷ,ସମତୁଲ,ସମାନରୂପେ ଯୋଗ୍ୟ, (ସ୍ତ୍ରୀ) ସମଯୋଗ୍ୟା ।

ସମୟୋଚିତ—ବିଂ. କାଳର ଉପଯୁକ୍ତ, ଯେଉଁ କାଳରେ ଯାହା ଉପଯୋଗୀ ।

ସମୟୋପଯୋଗୀ—ପୁଂ. ବିଂ. (୬ତତ୍) ସମୟର ଉପଯୁକ୍ତ,କାଳୋପଯୁକ୍ତ,(ସ୍ତ୍ରୀ) ସମୟୋପଯୋଗିନୀ ।

ସମଯୋଦ୍ଧା—ବି. ( ସମ+ଯୁଧ୍+ତୃ ) ଏକସଙ୍ଗରେ ଏକପକ୍ଷରେ ଯୁଦ୍ଧ କରୁଥିବା ବୀର, ଯୁଦ୍ଧରେ ପ୍ରତିଦ୍ୱନ୍ଦ୍ୱୀ ବୀର ।

ସମରକ(ଖ)ନ୍ଦ—ଯା. ବି. ତୁର୍କିସ୍ଥାନର ଅନ୍ତର୍ଗତ ଓ ଅଧୁନା ରୁଷ୍ ରାଜ୍ୟର ଅଧିକୃତ ଦୁର୍ଗାଧିଷ୍ଠିତ ନଗର ।

ସମର—ବି. ସମ=ସମାନ+ଋ ଧାତୁ= ଗମନ କରିବା+ଅଧି.ଅ) ଯହିଁରେ ଏକାଧିକ ବ୍ୟକ୍ତି ସମାନରୂପେ ଗମନ କରନ୍ତି, କିମ୍ବା (ସ=ସହିତ+ମର= ମରଣଶୀଳ) ମରଣଶୀଳମାନଙ୍କ ସହିତ ବର୍ତ୍ତମାନ, (ବି.ଗ୍ରା) ଯୁଦ୍ଧ,ରଣ,ସଂଗ୍ରାମ, ଲଢ଼େଇ, ଯୁଦ୍ଧଜାହାଜ ।

ସମରକର୍ମ—କ୍ଲୀ.ବି.ଯୁଦ୍ଧକର୍ମ,ଯୁଦ୍ଧକାର୍ଯ୍ୟ

ସମରକୁଶଳ—ପୁଂ.ବିଂ. (୭ତତ୍) ଯୁଦ୍ଧନିପୁଣ, ଯୁଦ୍ଧ ବିଷୟରେ ପଟୁ, (ସ୍ତ୍ରୀ) ସମରକୁଶଳା ।

ସମରକ୍ଷିତ—ସ୍ତ୍ରୀ.ବି.ଯୁଦ୍ଧକ୍ଷେତ୍ର,ଯୁଦ୍ଧସ୍ଥଳ ।

ସମରକ୍ଷେତ୍ର—ବି. (କ.ଧା) ଯୁଦ୍ଧଭୂଇଁ, ଲଢ଼େଇ ଥାନ ।

ସମରଜୟୀ(ଜୟିନ୍)—ପୁଂ. ବିଂ.(୭ତତ୍) ରଣବିଜୟୀ, ଯୁଦ୍ଧଜୟକାରୀ, ( ସ୍ତ୍ରୀ ) ସମରଜୟିନୀ ।

ସମରଜିତ୍—ପୁଂ. ବି. (ସମର+ଜି+କ୍ୱିପ୍) ସମରଜେତା, ଯୁଦ୍ଧଜେତା ।

ସମରଜ୍ଜୁ—ସ୍ତ୍ରୀ. ବି. ବସ୍ତୁଦ୍ୱୟର ବ୍ୟବଧାନେ ସଂନ୍ୟସ୍ତରଜ୍ଜୁ, ବୀଜଗଣିତରେ ଦୂରତ୍ୱ ବା ଗଭୀରତ୍ୱଜ୍ଞାପକ ରେଖା ।

ସମରଣ—କ୍ଲୀ. ବି. ସମ୍ୟକ୍‌ରୂପେ ଯାଗାଦେଶ ଗମନ, (ବିଂ) ମରଣର ସହିତ ବର୍ତ୍ତମାନ ।

ସମରତ—ବି. ରତିବନ୍ଧବିଶେଷ ।

ସମରତୁଙ୍ଗ—ପୁଂ. ବି. ଯୋଦ୍ଧୃଭେଦ ।

ସମରଥ—ପୁଂ. ବି. ମୈଥିଳ ରାଜଭେଦ, କ୍ଷେମାଧିରାଜପୁତ୍ର,( ଗ୍ରା.ବିଂ;ସଂ ସମର୍ଥ ) ସମର୍ଥ ଦେଖ, (ଗ୍ରା. ବି. ସଂ-ସାମର୍ଥ୍ୟ ) ସାମର୍ଥ୍ୟ ଦେଖ ।

ସମରଥା—ଗ୍ରା.ବିଂ.(ସଂ-ସମର୍ଥ) ସାମର୍ଥ୍ୟଯୁକ୍ତ, ସମର୍ଥ, ପରାକ୍ରମଶାଳୀ, (ଗ୍ରା.ବି) ଶୂଦ୍ରମାନଙ୍କର ବଂଶୋପାଧିବିଶେଷ, ଦେବ ସେବକବିଶେଷ, ଭୁବନେଶ୍ୱର ଓ ପୁରୀମନ୍ଦିରରେ ଯେଉଁମାନେ ଠାକୁରଙ୍କ ସେବେଷେଇପାଇଁ ପରିକା କାଟନ୍ତି, ଗୁଡ଼ିଲ ଧୁଅନ୍ତି, ଚୂନା କୁଟନ୍ତି ଓ ବିର ବାଟନ୍ତି ।

ସମରପଣ—ଗ୍ରା. ବି. (ପଦ୍ୟ;ସଂ-ସମର୍ପଣ) ସମର୍ପଣ ଦେଖ ।

ସମରପିବା—ଗ୍ରା. କ୍ରି. ( ସଂ-ସମର୍ପିବା ) ସମର୍ପିବା ଦେଖ । [ ରଣତତ୍ତ୍ୱ ;

ସମରପୋତ—ବି. (କ.ଧା) ଯୁଦ୍ଧଜାହାଜ,

ସମରପ୍ରିୟ—ପୁଂ.ବିଂ. (ବ.ବ୍ରୀ)ଯୁଦ୍ଧପ୍ରିୟ, ଯେ ଯୁଦ୍ଧ କରିବାକୁ ସୁଖପାଏ, ସମରପ୍ରିୟା ।

ସମରବଳ-ବି.ଯୁଦ୍ଧର ବଳ,ରାଜପୁତ୍ରଭେଦ

ସମରବର୍ମ—କ୍ଲୀ.ବି.ସମରୋପଯୁକ୍ତ ବର୍ମ, ଯୁଦ୍ଧ କରିବାର ଉପଯୁକ୍ତ ବର୍ମ ।

ସମରବସୁଧା—ସ୍ତ୍ରୀ.ବି. ଯୁଦ୍ଧକ୍ଷେତ୍ର,ଯୁଦ୍ଧସ୍ଥଳ ।

ସମରବିଜ୍ଞାନ—ବି. (ଆଧୁନିକ ପ୍ରୟୋଗ) ଯୁଦ୍ଧବିଜ୍ଞାନ ।

ସମରବିଦ୍ୟା—ବି. ଯୁଦ୍ଧବିଜ୍ଞାନ, ଯୁଦ୍ଧକୌଶଳ ।

ସମରବୀର—ପୁଂ. ବି. ସମରେ ବୀର, ଯୁଦ୍ଧସ୍ଥଳରେ ବୀର,ଯଶୋଦାଙ୍କ ପିତା ।

ସମରମୁହାଁ—ଗ୍ରା.ବିଂ. ଯୁଦ୍ଧପାଇଁ ସଜ୍ଜିତ, ଯୁଦ୍ଧପାଇଁ ଅଗ୍ରସର ।

ସମରମୂର୍ଦ୍ଧା—ବି. ( ୬ତତ୍ ) ଯୁଦ୍ଧରେ ସମ୍ମୁଖଭାଗ, ଯେଉଁଠାରେ ଯୁଦ୍ଧ ପ୍ରଥମେ ଆରମ୍ଭ ହୁଏ ।

ସମରଶଯ୍ୟା—ବି. (ରୂପକ.କ.ଧା) ଯୁଦ୍ଧସ୍ଥଳରୂପ ଶଯ୍ୟା ( ଅର୍ଥାତ୍ ) ଯେଉଁ ଶଯ୍ୟାରେ ଯୋଦ୍ଧାମାନେ ଶୋଇଲାପରେ ମହାନିଦ୍ରାଭିଭୂତ ହୁଅନ୍ତି ।

ସମରଶାୟିତ--ପୁଂ.ବିଂ.(୩ତତ୍)ଯୁଦ୍ଧରେ ପତିତ,ଯେ ଯୁଦ୍ଧ କରୁ କରୁ ହତହୋଇ ସମରଭୂମିରେ ଚିରନିଦ୍ରା ଭଜେ, (ସ୍ତ୍ରୀ) ସମରଶାୟିତା ।

ସମରଶାୟୀ—ପୁଂ. ବିଂ. (୭ତତ୍)ସମରଶାୟିତ ଦେଖ, (ସ୍ତ୍ରୀ) ସମରଶାୟିନୀ ।

ସମରଶୀଳ—ପୁଂ. ବିଂ. (ବ.ବ୍ରୀ) ରଣକୁଶଳ,ଯୁଦ୍ଧପଟୁ,ଯୁଦ୍ଧରେ ନିଯୁକ୍ତ.(ସ୍ତ୍ରୀ) ସମରଶୀଳ ।

ସମରସଚିବ—ବି. (୬ତତ୍) ଯୁଦ୍ଧମନ୍ତ୍ରୀ, ଯୁଦ୍ଧ ସମ୍ବନ୍ଧରେ ରାଜାଙ୍କୁ ପରାମର୍ଶ ଦେବା ମନ୍ତ୍ରୀ ।

ସମରସଚିବତା—ସ୍ତ୍ରୀ. ବି. (ସମରସଚିବ +ଭା.ତା)ଯୁଦ୍ଧମନ୍ତ୍ରିତ୍ୱ,ଯୁଦ୍ଧମନ୍ତ୍ରୀଙ୍କ ପଦ ।

ସମରସଜ୍ଜା—ବି. ଯୁଦ୍ଧସଜ୍ଜା,ଯୁଦ୍ଧ କରିବା ପାଇଁ ପ୍ରସ୍ତୁତ ହେବ ।

ସମରସିଂହ—ଗ୍ରା.ବି.ମିବାର ବା ଚିତୋରର ଜନୈକ ରଣା,ଗୁଜରାଟର ଜଣେ ବିଖ୍ୟାତ ପ୍ରାଚୀନ ଜ୍ୟୋତିର୍ବିଦ୍ ।

ସମରସ୍ୱାମୀ—ପୁଂ.ବି. କାଶୀସ୍ଥିତ ସମରକ୍ଷେତ୍ରାଧିଷ୍ଠିତ ଦେବମୂର୍ତ୍ତିଭେଦ ।

ସମଗ୍ର—ଯୁକ୍ତପ୍ରଦେଶ ଆଗ୍ରାଜିଲାନ୍ତର୍ଗତ

ବୋଟିଏ ନଗର ।
ସମରାଙ୍ଗଣ(ନ)—ବି. (୬ତତ୍)ଯୁଦ୍ଧସ୍ଥଳ, ରଣକ୍ଷେତ୍ର ।
ସମରାଜ—ଗ୍ରା. ବି. ( ସଂ-ସୋମରାଜୀ ) ସୋମରାଜୀ ଦେଖ ।
ସମରାତିଥି—ପୁଂ.ବି.ସମର ସ୍ଥଳେ ଅତିଥି ସ୍ୱରୂପ,ଯେ ଯୁଦ୍ଧସ୍ଥଳକୁ ଗମନ କରେ ।
ସମରାଶି—ବି. (କ.ଧା-ଗଣିତ) ଯେଉଁ ରାଶିକୁ ଦୁଇସଂଖ୍ୟାରେ ହରଲେ କିଛି ଭାଗଶେଷ ରହେନାହିଁ, ଯୋଡ଼ସଂଖ୍ୟା, ( ଜ୍ୟୋତିଷ ) ମେଷାଦି ଦ୍ୱାଦଶ ରାଶି ମଧ୍ୟରୁ ୨ୟ ୪ର୍ଥ ୬ଷ୍ଠ ୮ମ ୧୦ମ ଓ ୧୨ଶ ରାଶି ।
ସମରୁ—ଗ୍ରା. ବି. ଭାରତପ୍ରସିଦ୍ଧ ଜର୍ମାନୀ ସୈନିକବିଶେଷ ।
ସମରୁବେଗମ-ଗ୍ରା.ବି.ସମରୁଙ୍କ ରକ୍ଷିତା ସ୍ତ୍ରୀ ।
ସମରେଖ—ବିଂ. ସମାନ ରେଖାଯୁକ୍ତ, ସରଳରେଖା ବିଶିଷ୍ଟ ।
ସମରେନ୍ଦ୍ରସିଂହ—ଗ୍ରା. ବି. ମିବାରର ରାଣାପ୍ରତାପସିଂହଙ୍କ କନିଷ୍ଠ ଭ୍ରାତା ।
ସମରୋଚିତ—ବିଂ.(୪ତତ୍) ସମରପାଇଁ ଉପଯୁକ୍ତ ।
ସମରୋତ୍ସବ—ବି. (ରୂପକ) ଉତ୍ସବ ରୂପେ କଳ୍ପିତ ଯୁଦ୍ଧ ।
ସମରୋଦ୍ଦେଶ—ବି. (୬ତତ୍) ରଣକ୍ଷେତ୍ର (ମହାଭାରତ) ।
ସମରୋପାୟ-ବି.(୬ତତ୍) ସମର କୌଶଳ
ସମର୍ଘ—ବି. ସୁଲଭ ମୂଲ୍ୟ, (ବିଂ)ସସ୍ତା ।
ସମର୍ଚ୍ଚନ(ନା)—ବି.(ସମ୍+ଅର୍ଚ୍ଚନ)ସମ୍ୟକ୍ ପୂଜନ ।
ସମର୍ଦ୍ଦିତ—ବିଂ. ( ସମ୍+ଅର୍ଦ୍ଦ+ମି.ତ ) ସମ୍ୟକ୍ ଉତ୍ପୀଡ଼ିତ, ପ୍ରାର୍ଥିତ ।
ସମର୍ତ୍ତି—ସ୍ତ୍ରୀ. ବି.ସମ୍ୟକ୍ ଆର୍ତ୍ତି ବା ଦୁଃଖ ।
ସମର୍ଥ—ପୁଂ. ବିଂ. (ସମ୍+ଅର୍ଥ+କ.ଅ) ଶକ୍ତିବିଶିଷ୍ଟ, ବଳବାନ୍, କ୍ଷମତାପନ୍ନ,କ୍ଷମ ଶକ୍ତ, ପାରଗ, ଯୋଗ୍ୟ, ଉପଯୁକ୍ତ, ଉପକାରୀ, ପ୍ରଶସ୍ତ, ଅଭୀଷ୍ଟ, ଯୁକ୍ତିଯୁକ୍ତ, ସମ୍ବନ୍ଧାର୍ଥ, (ସ୍ତ୍ରୀ) ସମର୍ଥା, (ଗ୍ରା.ବିଂ. ସଂ-ସମର୍ଥ) ବଳଶାଳୀ ଓ ହୃଷ୍ଟପୁଷ୍ଟ, ରଜସ୍ୱଳା ହୋଇଥିବା,(ଗ୍ରା.ବି)ସାମର୍ଥ୍ୟ,ବଳ
ସମର୍ଥକ—ବି. ( ସମ୍+ଅର୍ଥ+କ.ଅକ ) ଚନ୍ଦନକାଷ୍ଠ,(ପୁଂ.ବି.ବିଂ.)ସମର୍ଥନକାରୀ, ଯେ କୌଣସି ପ୍ରସ୍ତାବକୁ ସମର୍ଥନକରେ (ସ୍ତ୍ରୀ) ସମର୍ଥିକା ।
ସମର୍ଥତା(ତ୍ୱ)—ବି. ( ସମର୍ଥ+ଭା.ତା ) ସାମର୍ଥ୍ୟ, ବଳଶାଳିତା, ଯଥେଷ୍ଟତା, ଯୋଗ୍ୟତା ।
ସମର୍ଥନ—ବି. (ସମ୍+ଅର୍ଥ+ଭା.ଅନ) ଯାଚ୍ଞା, ସ୍ଥିରୀକରଣ, ଦୃଢ଼ୀକରଣ, ବିବାଦ ମୀମାଂସା, ବିବାଦ ଭଞ୍ଜନ, ବିବେଚନା, ଅଧ୍ୟବସାୟ, ଉତ୍ସାହ, ସମ୍ଭାବନା, ନିଷେଧ, ମନା, କୌଣସି ପ୍ରସ୍ତାବକୁ ଦୃଢ଼ଭାବରେ ଅନୁମୋଦନ, ମତର ପୋଷକତା କରିବା ।
ସମର୍ଥନକରିବା—ଗ୍ରା.କ୍ରି.କୌଣସି କଥାର ଆନୁକୂଲ୍ୟରେ ମତଦେବା ।
ସମର୍ଥନା—ବି. (ସମ୍+ଅର୍ଥ+ଭା.ଅନ+ଆ) ସମର୍ଥନ ଦେଖ, ଅଶକ୍ୟ ବିଷୟରେ ଅଧ୍ୟବସାୟ ।
ସମର୍ଥନୀୟ—ବିଂ. (ସମ୍+ଅର୍ଥ+ଅନୀୟ) ସମର୍ଥନଯୋଗ୍ୟ, ସମର୍ଥନର ଉପଯୁକ୍ତ ।
ସମର୍ଥିଆ—ଗ୍ରା.ବିଂ. (ସଂ-ସମର୍ଥ) ସମର୍ଥ, ବଳୁଆ ।
ସମର୍ଥିତ—ବିଂ. ( ସମ୍+ଅର୍ଥ+ମି.ତ ) କୃତସମର୍ଥନ, ଯାଚିତ, ସ୍ଥିରୀକୃତ, ଦୃଢ଼ୀକୃତ, ମୀମାଂସିତ, ସୁବିବେଚିତ, ସମ୍ଭାବିତ ।
ସମର୍ଥ୍ୟ—ବିଂ.ସମର୍ଥନୀୟ, ସମର୍ଥନଯୋଗ୍ୟ
ସମର୍ଦ୍ଧକ—ପୁଂ. ବିଂ. (ସମ୍+ଋଧ୍+କ. ଅକ) ବରଦ, ଅଭୀଷ୍ଟପ୍ରଦ, କାମନା ପୂର୍ତ୍ତିକାରୀ, (ସ୍ତ୍ରୀ) ସମର୍ଦ୍ଧିକା ।
ସମର୍ଦ୍ଧୁକ—ପୁଂ.ବିଂ. ସମର୍ଦ୍ଧକ ଦେଖ ।
ସମର୍ପକ—ପୁଂ. ବିଂ. (ସମ+ଅର୍ପ+କ. ଅକ) ସମର୍ପଣକର୍ତ୍ତା ଦେଖ,(ସ୍ତ୍ରୀ)ର୍ପିକା ।
ସମର୍ପଣ—ବି. ( ସମ୍+ଅର୍ପଣ ) ଦାନ, ନୈବେଦ୍ୟାଦି ଦେବତାଙ୍କୁ ଉତ୍ସର୍ଗ କରିବା, ଅନ୍ୟ ବ୍ୟକ୍ତିଠାରେ କୌଣସି ବସ୍ତୁର ଭାର ଦେବା, ସ୍ଥାପନ, ଅନ୍ୟ ବ୍ୟକ୍ତିର ହସ୍ତରେ ଅର୍ପଣ, ସଂପ୍ରଦାନ, ସ୍ୱକୀୟ ସ୍ୱତ୍ୱ ତ୍ୟାଗପୂର୍ବକ ପ୍ରଦାନ, ତନ୍ତ୍ରୋକ୍ତ ପୂଜାର ଶେଷରେ ପୂଜିତ ଦେବତାଙ୍କ ଉଦ୍ଦେଶ୍ୟରେ ଆତ୍ମ ସମର୍ପଣ ।
ସମର୍ପଣକର୍ତ୍ତା—ପୁଂ.ବିଂ. ଯେ କୌଣସି ପଦାର୍ଥକୁ କୌଣସି ବ୍ୟକ୍ତିଙ୍କ ହସ୍ତରେ ଅର୍ପଣ କରେ, (ସ୍ତ୍ରୀ)ସମର୍ପଣକର୍ତ୍ତ୍ରୀ ।
ସମର୍ପଣପତ୍ର—ବି. ଯେଉଁ ଦଲିଲ ଦ୍ୱାରା ଦେବସେବା ଓ କୌଣସି ଦେବୋତ୍ତର ସମ୍ପତ୍ତି କୌଣସି ବ୍ୟକ୍ତି ହାତରେ ସମର୍ପିତ ହୁଏ ।
ସମର୍ପୟିତା—ପୁଂ. ବିଂ. (ସମ୍+ଅର୍ପି+କ.ତୃ) ସମର୍ପଣକର୍ତ୍ତା ଦେଖ ।
ସମର୍ପା—ଗ୍ରା.ବି. ରାକ୍ଷସୀବିଶେଷ,ଅଶୋକ ବନରେ ରାବଣ କର୍ତ୍ତୃକ ନିଯୁକ୍ତା ସୀତାଙ୍କର ପ୍ରଧାନ ରକ୍ଷୟିତ୍ରୀ ସ୍ତ୍ରୀ ।
ସମର୍ପିତ—ବିଂ. (ସମ୍+ଅର୍ପିତ)ସମ୍ୟକ୍ ରୂପେ ନ୍ୟସ୍ତ, ସଂନ୍ୟସ୍ତ, ସ୍ଥାପିତ,ଦତ୍ତ ।
ସମର୍ପିତା—ପୁଂ.ବିଂ. (ସମ୍+ଅର୍ପି+ତୃ) ସମର୍ପଣକାରୀ ।
ସମର୍ପିବା—ଗ୍ରା.କ୍ରି. ସମର୍ପଣ କରିବା, ଭାର ଅର୍ପଣ କରିବା ।
ସମର୍ପ୍ୟ—ବିଂ. (ସମ୍+ଅର୍ପ+ଯ) ସମର୍ପଣଯୋଗ୍ୟ ।
ସମର୍ଯ୍ୟ—ପୁଂ.ବି. ଶତ୍ରୁ ।
ସମର୍ଯ୍ୟକର୍ତ୍ତୃ—ପୁଂ.ବିଂ. ଶତ୍ରୁକତା ।
ସମର୍ଯ୍ୟାଦ—ପୁଂ.ବିଂ. (ବ.ବ୍ରୀ)ସୀମାଯୁକ୍ତ, ମର୍ଯ୍ୟାଦାଯୁକ୍ତ, ନିକଟସ୍ଥ, ସନ୍ନିହିତ, ସଚ୍ଚରିତ୍ର, (ସ୍ତ୍ରୀ) ସମର୍ଯ୍ୟାଦା ।
ସମର୍ହଣ(ଣା)—ବି.(ସମ୍+ଅର୍ହଣ)ସମ୍ୟକ୍ ପୂଜନ ।
ସମଳ—ପୁଂ.ବିଂ. ( ବ.ବ୍ରୀ ) ମଳଯୁକ୍ତ, ମଳୁଆ, ଆବିଳ, ମଳିନ, କର୍ଦ୍ଦମଯୁକ୍ତ, କଳଙ୍କିତ, କଳୁଷିତ,(ସ୍ତ୍ରୀ) ସମଳା,(ବି) ବିଷ୍ଠା ।
ସମଲପୁର—ଗ୍ରା.ବି. ସମ୍ବଲପୁର ଦେଖ ।
ସମଲପୁରୀ—ଗ୍ରା.ବିଂ.ସମ୍ବଲପୁରୀ ଦେଖ ।
ସମଲା—ଗ୍ରା.ବି. ସମ୍ବଳା ଦେଖ ।
ସମଲଇ—ଗ୍ରା. ସ୍ତ୍ରୀ. ବି. ଦେବୀଙ୍କ ନାମ-

ବିଶେଷ,ସମ୍ବଲପୁରର ଅଧିଷ୍ଠାତ୍ରୀ ଦେବୀ।

ସମଲାଇଗଣ୍ଡ—ଗ୍ରା.ବି. ସମ୍ବଲପୁର ନିକଟବର୍ତ୍ତୀ ମହାନଦୀ ଗର୍ଭସ୍ଥ ଗଭୀର ଅଂଶବିଶେଷର ନାମ।

ସମଲୋଷ୍ଟ୍ରାଶ୍ମକାଞ୍ଚନ—ବିଂ. ଯେ ପ୍ରସ୍ତର ଢେଲା ଓ ସ୍ୱର୍ଣ୍ଣକୁ ସମାନ ଭାବରେ ଦେଖେ।

ସମଶଙ୍କୁ—ବି. (ବ.ବ୍ରୀ)ଯେଉଁ ସମୟରେ ସୂର୍ଯ୍ୟ ଠିକ୍ ମସ୍ତକୋର୍ଦ୍ଧ୍ୱ ଦେଶରେ ଅବସ୍ଥାନ କରୁଥାଆନ୍ତି।

ସମଶନ—ବି. (ସମ୍+ଅଶନ)ଅପର୍ଯ୍ୟାପ୍ତ ଭୋଜନ।

ସମଶନୀୟ—ବିଂ. (ସମ୍+ଅଶ୍+ଅନୀୟ) ସମ୍ୟକ୍ ପ୍ରକାରେ ଅଶନଯୋଗ୍ୟ।

ସମଶର୍କରଚୂର୍ଣ୍ଣ—ବି. ଗ୍ରହଣୀ ଓ କାଶାଧିକାରୋକ୍ତ ଚୂର୍ଣ୍ଣୌଷଧ ବିଶେଷ।

ସମଶୀତଳ-ବିଂ.ସାମାନ୍ୟ ରୂପେ ଶୀତଳ, ଯାହା ଅତି ଥଣ୍ଡା ଓ ଅତି ଗରମ ନୁହେ।

ସମଶୀର୍ଷିକା—ସ୍ତ୍ରୀ. ବି. ସମ୍ୟକ୍ ଅବସ୍ଥାନ, ଶୀର୍ଷର ସମରେଖାରେ ଅବସ୍ଥିତି।

ସମଶୋଧନ—ବି. (ବୀଜଗଣିତ) ସମୀକରଣର ଉଭୟ ପାଖରୁ ସମସଂଖ୍ୟା ବିଯୋଗ କରିବା ରୂପ କ୍ରିୟାବିଶେଷ।

ସମଶ୍ନୁବ—ବି.ପ୍ରାପଣ, ଉପନୀତ ହେବା।

ସମଶ୍ନୁବାନ୍—ପୁଂ. ବିଂ. (ସମ୍+ଅଶ୍+କ.ଅନ) ବ୍ୟାପନଶୀଳ, ବ୍ୟାପ୍ତିବିଶିଷ୍ଟ, (ସ୍ତ୍ରୀ) ସମଶ୍ନୁବାନା।

ସମଶ୍ରେଣି(ଣୀ)—ବି (କ.ଧା)ଏକଶ୍ରେଣୀ, ତୁଲ୍ୟ ଶ୍ରେଣୀ।

ସମଶ୍ରେଣି(ଣୀ)ଭୁକ୍ତ—ବିଂ. ଏକଶ୍ରେଣୀର ଅନ୍ତର୍ଗତ, ଏକ ଦଳର ଅନ୍ତର୍ଗତ।

ସମଷ୍ଟି—ବି.(ସମ୍+ଅଶ୍+ଭା.ତି)ସମ୍ୟକ୍ ବ୍ୟାପ୍ତି,ଚାରିଆଡ଼େ ବ୍ୟାପିଯିବା,ସାକଲ୍ୟ, ସାମଗ୍ର୍ୟ,ସମସ୍ତତା,ପୁଞ୍ଜୀଭୂତ ସମସ୍ତବସ୍ତୁ, (ଦର୍ଶନ) ସମସ୍ତ ବସ୍ତୁର ଏକତ୍ରାବସ୍ଥିତି, (ଗଣିତ)ଏକାଧିକ ସଂଖ୍ୟାର ଯୋଗଫଳ, ମୋଟ।

ସମଷ୍ଟି(ଷ୍ଠୀ)ଷ୍ଟି(ଷ୍ଠୀ)ଲ(ଲା)—ବି. (ସମ୍+ସ୍ଥା+କ.ଇଲ+ଆ) ଏକପ୍ରକାର କ୍ଷୁପ, ଯାହା ଜଳାଭୂମିରେ ଜନ୍ମେ,କଉକଉଆ. ଗଣ୍ଡଦୂର୍ବା, ଗଣ୍ଠି ଘାସ, ଏକପ୍ରକାର କାକୁଡ଼ି, କଣ୍ଟୁଶୂରଣ, ବାଘରାଓଁଲିଆ।

ସମଷ୍ଟୀଭୂତ—ବିଂ. (ସମଷ୍ଟି+ଚ୍ୱି+ଭୂ+ତ) ସମଗ୍ରୀଭୂତ, ଯାହା ପୂର୍ବରେ ସମଷ୍ଟି ନଥିଲା ବର୍ତ୍ତମାନ ସମଷ୍ଟି ହୋଇଅଛି।

ସମସଂଖ୍ୟକ—ବିଂ. ବ.ବ୍ରୀ;( ସମ+ସଂଖ୍ୟା+କ) ସମାନ ସଂଖ୍ୟାବିଶିଷ୍ଟ, ସମରାଶିବିଶିଷ୍ଟ।

ସମସଂଖ୍ୟା—ବି. ସମାନସଂଖ୍ୟା, ସମରାଶି।

ସମସଂଖ୍ୟାତ—ବିଂ. (ସମ୍+ସଂଖ୍ୟା+ତ) ସମାନ ସଂଖ୍ୟାବିଶିଷ୍ଟ।

ସମସଂସ୍ଥାନ—ବି.ଉଭୟ ଦିଗରେ ସମାନ ଅବସ୍ଥାନ,ଉଭୟ ଦିଗର ଭାରର ସମତାକରଣ।

ସମସଂସ୍ଥିତ—ବିଂ. ( ସମ୍+ସଂସ୍ଥା+ତ ) ଉଭୟ ଦିଗରେ ସମରୂପେ ସଂସ୍ଥିତ, ସମାନରୂପେ ସଂସ୍ଥାନଯୁକ୍ତ।

ସମସନ—ବି. (ସମ୍+ଅସ୍+ଭା.ଅନ) ସଂକ୍ଷେପ କରଣ, (ବ୍ୟାକରଣ) ଏକାଧିକ ଶବ୍ଦର ସମାସ, ସମାସକରଣ।

ସମସମକାଳ—ଅ.ସେହି ସେହି କାଳରେ, ତତ୍‌ସମୟରେ।

ସମସର—ବି. ଗଞ୍ଜପା ସାରରେ ଦିଆଯିବା ଏକପ୍ରକାର ରଙ୍ଗ, ( ଗେରୁମାଟିରେ କଇଥ ଅଠାମିଶାଇ ଏହି ରଙ୍ଗ ତିଆରି କରାଯାଏ)। [ ସମାନ।

ସମସରଲ—ବିଂ.ଅବକ୍ର, ସିଧା, ଆଦ୍ୟନ୍ତ

ସମସରି—ଗ୍ରା. ବିଂ.ଠିକ୍ ସମାନ,ସାଦୃଶ୍ୟ, ତୁଲ୍ୟ, (ଗ୍ରା.ଅ) ସହିତ।

ସମସାପର୍ବତ—ପଶ୍ଚିମଘାଟ ପର୍ବତମାଳାର ଗୋଟିଏ ଗିରିଶୃଙ୍ଗ।

ସମସାମୟିକ—ବିଂ.(ସମ+ସାମୟିକ)ସମକାଳୀନ, ଏକକାଳରେ ଘଟିବା।

ସମସୁଖଦୁଃଖ—ପୁଂ. ବିଂ. (ବ.ବ୍ରୀ) ସମବେଦନା ଅନୁଭବୀ, ଯାହାର ସୁଖ ଓ ଦୁଃଖରେ ସମାନ ମନୋଭାବ,(ସ୍ତ୍ରୀ)ଦୁଃଖା (ବି.କ.ଧା)ସୁଖଦୁଃଖାଦିର ସମାନୁଭୂତି।

ସମସୁପ୍ତି—ବି. (ସମ+ସୁପ୍ତି)ମହାପ୍ରଳୟ, କଳ୍ପାନ୍ତ, ତୁଲ୍ୟଶୟନ।

ସମସୂତ୍ର—ବିଂ. ସମାନ ସୂତ୍ରରେ ବା ରେଖାରେ ଯାହା ଥାଏ।

ସମସୂତ୍ରଗ—ବିଂ. (ସମସୂତ୍ର+ଗମ୍+ଅ) ସମାନଗାମୀ।

ସମସୂତ୍ରପାତ—ବି. ସରଳ ସୂତ୍ରବିନ୍ୟାସ, ସମାନ ସୂତା ଧରିବା।

ସମସେର୍—ପ୍ରା.(ଗଡ଼ଜାତ)କ୍ଷତ୍ରିୟ ବୀରମାନଙ୍କୁ ଦିଆଯିବା ଉପାଧି।

ସମସେରଜଙ୍ଗ—ଯା. ନେପାଳର ମନ୍ତ୍ରୀ ଓ ସେନାପତିଙ୍କ ଉପାଧି।

ସମସୌରଭ—ବି. ସମାନ ସୌରଭ, ତୁଲ୍ୟ ଗନ୍ଧ, (ବିଂ) ତୁଲ୍ୟଗନ୍ଧବିଶିଷ୍ଟ।

ସମସ୍କନ୍ଧ—ପୁଂ.ବିଂ. (ବ.ବ୍ରୀ) ସମାନସ୍କନ୍ଧ ଦେଖ, (ସ୍ତ୍ରୀ) ସମସ୍କନ୍ଧା।

ସମସ୍ତ—ବିଂ (ସମ୍+ଅସ୍+ମିଂ.ତ)ସବୁ, ସମୁଦାୟ, ସମଗ୍ର, ଏକତ୍ରୀକୃତ, ସମ୍ମିତ, ସମଷ୍ଟୀକୃତ, ସଂକ୍ଷିପ୍ତ, ସଂଯୁକ୍ତ,(ବ୍ୟାକରଣ)କୃତସମାସ, ସମାସ ଦ୍ୱାରା ନିଷ୍ପନ୍ନ (ପଦ), (ସ୍ତ୍ରୀ) ସମସ୍ତା,(ଗ୍ରା.ବି)ସମୁଦାୟ ପଦାର୍ଥ, ସବୁବ୍ୟକ୍ତି, (ଗ୍ରା.ସର୍ବ) ସବୁ।

ସମସ୍ତଦୁଗ୍ଧା—ବି. ସିହୁଁ, ପତର ସିହୁଁ, ସେହୁଣ୍ଡ।

ସମସ୍ତା(ସ୍ଥା)ନ—ପ୍ରା.(ଗଞ୍ଜାମ ଓ ବିଶାଖପଟଣା) ଜମିଦାରୀ, ଦକ୍ଷିଣ ଓଡ଼ିଶାର ରଜା ବା ଜମିଦାରଙ୍କ ରାଜଧାନୀ।

ସମସ୍ତ(ସ୍ତି)ଙ୍କି(ଙ୍କୁ)—ଗ୍ରା. ସର୍ବ. ସକଳ ବ୍ୟକ୍ତିଙ୍କୁ, ସମସ୍ତଙ୍କୁ।

ସମସ୍ତେ—ଗ୍ରା.ସର୍ବ. ସର୍ବେ. ସବୁବ୍ୟକ୍ତି।

ସମସ୍ଥ—ବିଂ. (ସମ+ସ୍ଥା+କ.ଅ) ସମଭାବରେ ସ୍ଥିତ,ସଦୃଶ,ତୁଲ୍ୟ,(ସ୍ତ୍ରୀ)ସମସ୍ଥା।

ସମସ୍ଥଳୀ—ବି.ଗଙ୍ଗା ଯମୁନାର ମଧ୍ୟବର୍ତ୍ତୀ ସମତଳ ପ୍ରଦେଶ, ଅନ୍ତର୍ବେଦୀ,ଦୋଆବ୍

ସମସ୍ଥାନ—ପ୍ରା. (ଗଞ୍ଜାମ) ଶିରୋଦେଶ, ମୁଣ୍ଡ, ଅଗ୍ରଭାଗ,ଦକ୍ଷିଣ ଓଡ଼ିଶାର ରାଜଧାନୀ, ସଦର, ଜମିଦାରୀ, ରାଜ୍ୟ।

ସମସ୍ୱାମିକ—ବିଂ. (ବ.ବ୍ରୀ) ଏକ ସ୍ୱାମିକ, ଯାହାଙ୍କର ସ୍ୱାମୀ ଏକ।

ସମସ୍ୱାମିତ୍ୱ—ବି. ତୁଲ୍ୟସ୍ୱତ୍ୱ, ସମାନ ଅଧିକାର ।

ସମସ୍ୟମାନ—ବିଂ. ( ସମ୍+ଅସ୍+ମି. ଆନ) ଯେଉଁ ପଦମାନଙ୍କର ସମାସ କରାଯାଇଅଛି ।

ସମସ୍ୟା—ବି. ( ସମ୍+ଅସ୍+ଣ.ଯ+ଆ) ଶ୍ଳୋକର ପାଦ ପୂରଣାର୍ଥ ପ୍ରଶ୍ନ, ଜଟିଳ ବିଷୟ, କଠିନ ପ୍ରଶ୍ନ, କୂଟପ୍ରଶ୍ନ, ଛନ୍ଦାଗଣ୍ଡ, ନାଆଁ ଯଥା ପଦ୍ଧତି, ପୂର୍ଣାର୍ଥ ପ୍ରହେଳିକା, ତୃଗ, (ଭ୍ରମ+ଆ) ଘଟାଇବା, ଯୋଡିବା, ମିଶ୍ରଣ, (ଗ୍ରା.ବି) ଉତ୍ତର, କିଂକର୍ତ୍ତବ୍ୟବିମୂଢ଼ ଭାବ ବା ଅବସ୍ଥା ।

ସମସ୍ୟାପୂରଣ—ବି. (୬ତତ୍ପୁ)ପ୍ରଶ୍ନ କରାଯାଇଥିବା ଶ୍ଳୋକାଂଶର ଅପର ପାଦପୂରଣ,ଜଟିଳ ବା କୂଟ ପ୍ରଶ୍ନର ଉତ୍ତର ।

ସମସ୍ୟାର୍ଥା—ସ୍ତ୍ରୀ. ବି. ସମସ୍ୟା ।

ସମହ୍ୟା—ବି. ( ସମ୍+ଅହ୍ୱ+କ.ଯ+ଆ) ଖ୍ୟାତି, ଯଶଃ, କୀର୍ତ୍ତି ।

ସମା—ସ୍ତ୍ରୀ. ବିଂ. ( ସମ+ଆ ) ତୁଲ୍ୟା. ସଦୃଶୀ, ବି. (ସମ୍+କ.ଅ+ଆ)ସମ୍ବତ୍ସର,ବର୍ଷ, (ଗ୍ରା.ବି) ଢ଼ିଙ୍କି ପାହାରରେ ଯେଉଁ ଲୁହାବଳୟ ଲାଗେ ।

ସମାଂଶ—ବି. (କ.ଧା) ତୁଲ୍ୟ ଅଂଶ, ( ବିଂ ) ତୁଲ୍ୟ ଅଂଶବିଶିଷ୍ଟ, ସମାନ ଭାଗଯୁକ୍ତ ।

ସମାଂଶଭାଗୀ—ବିଂ.ତୁଲ୍ୟଭୋଗାଧିକାରୀ ।

ସମାଂଶହାରୀ—ପୁଂ. ବିଂ. (ସମାଂଶ+ହୃ+କ.ଇନ୍)ସମାନ ଅଂଶର ବା ଭାଗର ଗ୍ରହଣକାରୀ,ସମଭାଗାର୍ହ, (ସ୍ତ୍ରୀ) ସମାଂଶହାରିଣୀ । [ କାରିଣୀ ।

ସମାଂଶହାରିଣୀ—ସ୍ତ୍ରୀ.ବିଂ.ତୁଲ୍ୟ ଭୋଗାଧି-

ସମାଂଶିକ—ପୁଂ. ବିଂ. (ସମ୍+ଅଂଶ୍+ଇକ) ତୁଲ୍ୟାଂଶଗ୍ରାହୀ,ସମାନଭାଗୀ,(ସ୍ତ୍ରୀ) ସମାଂଶିକା ।

ସମାଂଶୀ—ପୁଂ. ବିଂ. ତୁଲ୍ୟଭାଗବିଶିଷ୍ଟ, ସମାନ ଭାଗଯୁକ୍ତ ।

ସମାଂସ—ବିଂ. (ସ+ମାଂସ) ମାଂସଯୁକ୍ତ, ମାଂସଳ ।

ସମାଂସକରଣ—କ୍ଳୀ. ବି. ମାଂସ ସହିତ ବଳି ନୈବେଦ୍ୟ ।

ସମାଂସମୀନ—ପୁଂ.ବିଂ. (ସ+ମାଂସ+ମୀନ) ମାଂସ ଓ ମତ୍ସ୍ୟଯୁକ୍ତ (ଭୋଜନ ବା ଖାଦ୍ୟ), (ସ୍ତ୍ରୀ) ସମାଂସମୀନା ।

ସମାଂସମୀନା-ସ୍ତ୍ରୀ.ବି.(ସମାଂ+ସ+ଈନ୍+ଆ)ପ୍ରତିବର୍ଷ ପ୍ରସବକାରୀ ଗାଈ,ବର୍ଷବିୟାଣୀ ଗାଈ, (ସ୍ତ୍ରୀ.ବିଂ) ମତ୍ସ୍ୟମାଂସଯୁକ୍ତା ।

ସମାକର—ବିଂ. ସମାନ ଆକାରବିଶିଷ୍ଟ ।

ସମାକର୍ଷଣ—ବି.(ସମ୍+ଆକର୍ଷଣ)ସମ୍ୟକ୍ ଆକର୍ଷଣ ।

ସମାକର୍ଷିତ—ପୁଂ. ବିଂ. (ସମ୍+ଆ+କୃଷ୍+ଣିଚ୍+ମି.ତ) ସମ୍ୟକ୍‌ରୂପେ ଆକର୍ଷିତ, (ସ୍ତ୍ରୀ) ସମାକର୍ଷିତା ।

ସମାକର୍ଷୀ—ପୁଂ.ବିଂ. (ସମ୍+ଆ+କୃଷ୍+କ.ଇନ୍)ବିଶେଷଭାବରେ ଆକର୍ଷଣକାରୀ, (ସ୍ତ୍ରୀ) ସମାକର୍ଷିଣୀ. (ବି) ବହୁଦୂର ବ୍ୟାପୀ ଗନ୍ଧ, ତୃଷ୍ଣାଜନକ ଗନ୍ଧବିଶିଷ୍ଟ ଭକ୍ଷ୍ୟଦ୍ରବ୍ୟ ।

ସମାକାର—ବି.(କ.ଧା) ସମାନ ଆକାର, (ବିଂ-ବ.ବ୍ରୀ) ତୁଲ୍ୟ ଆକାରବିଶିଷ୍ଟ, (ସ୍ତ୍ରୀ) ସମାକାରା ।

ସମାକୀର୍ଣ୍ଣ—ବିଂ.(ସମ୍+ଆ+କୃ+ମି.ତ) ବ୍ୟାପ୍ତ, ସଙ୍କୁଳ, ସମାଚ୍ଛନ୍ନ ।

ସମାକୁଳ—ପୁଂ. ବିଂ. (ସମ୍+ଆକୁଳ) କାତର, ବ୍ୟାକୁଳ, ଅଧୀର, ଅସ୍ଥିର, ସନ୍ଦିଗ୍ଧ, ସଶଙ୍କିତ, ହତବୁଦ୍ଧି,ବ୍ୟାପ୍ତ. ପରିପୂର୍ଣ୍ଣ, ସଙ୍କୁଳ, (ସ୍ତ୍ରୀ) ସମାକୁଳା ।

ସମାକୃଷ୍ଟ—ପୁଂ. ବିଂ. (ସମ୍+ଆକୃଷ୍ଟ) ସମ୍ୟକ୍ ଆକୃଷ୍ଟ, (ସ୍ତ୍ରୀ) ସମାକୃଷ୍ଟା ।

ସମାକ୍ରନ୍ଦନ—ବି.(ସମ୍+ଆ+କ୍ରନ୍ଦ୍+ଅନ) ସମ୍ୟକ୍‌ପ୍ରକାରେ ଆକ୍ରମଣ ।

ସମାକ୍ରାନ୍ତ—ପୁଂ. ବିଂ. (ସମ୍+ଆକ୍ରାନ୍ତ) ଗୃହୀତ, ଆକ୍ରାନ୍ତ, ବିଶେଷଭାବରେ ଆକ୍ରାନ୍ତ, ଗୃହୀତ, ପରିବ୍ୟାପ୍ତ, ବିସ୍ତୃତ, ଚତୁର୍ଦ୍ଦିଗରେ ନିର୍ଦ୍ଦିଷ୍ଟ ସୀମାବିଶିଷ୍ଟ,ସୀମାବିଶିଷ୍ଟ । [ ବିଶିଷ୍ଟ ।

ସମାକ୍ଷର—ବିଂ. (ବ.ବ୍ରୀ) ସମାନ ଅକ୍ଷର

ସମାକ୍ଷରବିକର—ପୁଂ.ବି.ଧ୍ୟାନର ପ୍ରକାର ଭେଦ ।

ସମାକ୍ଷେପ—ପୁଂ. ବି. (ସମ୍+ଆ+କ୍ଷିପ୍+ଅ) ସମ୍ୟକ୍‌ରୂପେ ଆକ୍ଷେପ,ସମ୍ୟକ୍‌ପ୍ରକାରେ କ୍ଷେପଣ ।

ସମାଖ୍ୟା—ବି. (ସମ୍+ଆ+ଖ୍ୟା+ଣ. ଅ+ଆ)କୀର୍ତ୍ତି, ଯଶଃ,ବିଶେଷ, ଆଖ୍ୟା, ନାମ, ଉପାଧି ।

ସମାଖ୍ୟାତ—ପୁଂ.ବିଂ. (ସମ୍+ଆଖ୍ୟାତ) ବିଖ୍ୟାତ, ବିଶେଷ ନାମଯୁକ୍ତ, ( ସ୍ତ୍ରୀ ) ସମାଖ୍ୟାତା ।

ସମାଖ୍ୟାନ-ବି.ସମ୍ୟକ୍‌ପ୍ରକାରେ ଆଖ୍ୟାନ, ସମ୍ୟକ୍‌ପ୍ରକାରେ କଥନ, ସମଆଖ୍ୟାନ, ତୁଲ୍ୟଆଖ୍ୟାନ ।

ସମାଗତ—ପୁଂ. ବିଂ. (ସମ୍+ଆଗତ) ଉପସ୍ଥିତ,ଏକତ୍ରମିଳିତ,ଆଗତ,ସାକ୍ଷାତ୍କାର କରିଥିବା, (ସ୍ତ୍ରୀ) ସମାଗତା ।

ସମାଗତ(ମ)—ବି. (ସମ୍+ଆ+ଗମ୍+ତି)ଉପସ୍ଥିତ,ସମ୍ମିଳନ,ଆଗମନ,ସଙ୍ଗମ, ଗମନାଗମନ, ଗତାୟାତ, ସଂସାର, ସଂପ୍ରାପ୍ତି ।

ସମାଗମନ—କ୍ଳୀ. ବି. (ସମ୍+ଆ+ଗମ୍+ଅନ) ସମାଗମ, ସମ୍ୟକ୍‌ରୂପେ ଆଗମନ ।

ସମାଘାତ—ବି.(ସମ୍+ଆଘାତ)ଗୁରୁତର ଆଘାତ, ସଂଗ୍ରାମ, ଯୁଦ୍ଧ, ହତ୍ୟା, ବଧ ।

ସମାଙ୍ଘ୍ରିକ—ବିଂ. ସମାନ ଚରଣବିଶିଷ୍ଟ, ତୁଲ୍ୟ ଚରଣଯୁକ୍ତ ।

ସମାଚୟନ—ବି. (ସମ୍+ଆ+ଚୟନ) ଏକତ୍ର ସ୍ଥାପନ ।

ସମାଚରଣ—ବି. ( ସମ୍+ଆଚରଣ ) ସଦାଚାର, ଉତ୍ତମ ଆଚରଣ ।

ସମାଚରଣୀୟ—ବିଂ. (ସମ୍+ଆ+ଚର୍+ଅନୀୟ) ସମ୍ୟକ୍‌ରୂପେ ଆଚରଣୀୟ ।

ସମାଚରିତ—ବିଂ. ( ସମ୍+ଆଚରିତ ) ସମ୍ୟକ୍ ଆଚରିତ,(ବି)ସମାଚାର ଦେଖ ।

ସମାଚାର—ବି. (ସମ୍+ଆଚାର) ଖବର, ସମ୍ବାଦ, ସଦାଚାର, ଉତ୍ତମ ଆଚରଣ, ଶିଷ୍ଟାଚାର ।

ସମାଚ୍ଛନ୍ନ—ପୁଂ. ବିଂ. ( ସମ୍+ଆଚ୍ଛନ୍ନ ) ସମ୍ପୂର୍ଣ୍ଣରୂପେ ଆବୃତ, ଅଭିଭୂତ, ଲୁକ୍କାୟିତ,

ସ୍ଥିତ, ଗୃହଦ୍ୱାରରେ ବେଢ଼ା ହୋଇଥିବା, (ସ୍ତ୍ରୀ) ସମାଚ୍ଛନ୍ନା ।

ସମାଚ୍ଛାଦନ—ବି. ( ସମ୍+ଆଚ୍ଛାଦନ ) କୌଣସି ବ୍ୟକ୍ତିକୁ ସମ୍ପୂର୍ଣ୍ଣରୂପେ ଘୋଡ଼ାଇ ପକାଇଥିବା ଆବରଣ, ଘଟାଟୋପ, ସମ୍ପୂର୍ଣ୍ଣରୂପେ ଆବରଣ କରିବା ।

ସମାଜ—ବି. ( ସମ୍+ଅଜ୍+ଅଧି,ଅ ) ସଭା, ଗଣ, ସମୂହ, ଦଳ, ସଂଘ, ସଂପ୍ରଦାୟ, ବିଶେଷ କାର୍ଯ୍ୟ ବା ଉଦ୍ଦେଶ୍ୟ ସାଧନାର୍ଥ ଗଠିତ ଦଳ, ବୈଷ୍ଣବବିଶେଷଙ୍କ ସମାଧି ସ୍ଥାନ, ଏକଧର୍ମ ଓ ଏକଆଚାର-ସଂପନ୍ନ ଲୋକସମଷ୍ଟି, ଜାତିଆଣସଭା, ମେଳା, ସାମାଜିକ ଉତ୍ସବ, ପଶୁମାନଙ୍କ ଛଡ଼ା ଅନ୍ୟ ପ୍ରାଣୀମାନଙ୍କ ଦଳ, (କ.ଅ) ହସ୍ତୀ, ପରସ୍ପର ନିର୍ଭରଶୀଳ ମାନବ ସମୂହ, (ଭ୍ର.ଅ) ଏକତ୍ରଗମନ, (ଗ୍ରା.ବି) ୬ ସ୍ୱର୍ଗତ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସଙ୍କ ପ୍ରତିଷ୍ଠିତ ବର୍ତ୍ତମାନ କଟକରେ ପଣ୍ଡିତ ଶ୍ରୀ ଲିଙ୍ଗରାଜ ମିଶ୍ର ଏମ୍.ଏଙ୍କ ଦ୍ୱାରା ସମ୍ପାଦିତ ଓ ଶ୍ରୀ ରାଧାନାଥ ରଥଙ୍କ ଦ୍ୱାରା ପରିଚାଳିତ ସତ୍ୟବାଦୀ ପ୍ରେସରୁ ପ୍ରକାଶିତ ସାପ୍ତାହିକ ଓ ଦୈନିକ ସମ୍ବାଦ ପତ୍ର ।

ସମାଜଗତ—ବିଂ. (୨ତତ୍ପୁ) ସମାଜ ସମ୍ବନ୍ଧୀୟ, ସମାଜବଦ୍ଧ, ସାମାଜିକ ।

ସମାଜଗୃହ—ବି. ବ୍ରାହ୍ମସମାଜ ଆଦିର ଭଜନାଳୟ, ସଭାଗୃହ ।

ସମାଜଚ୍ୟୁତ—ପୁଂ.ବିଂ.(୫ତତ୍ପୁ) କୌଣସି ସମାଜରୁ ବହିଷ୍କୃତ ।

ସମାଜତତ୍ତ୍ୱ—ବି. ସାମାଜିକ ବୃତ୍ତାନ୍ତ ।

ସମାଜନାୟକ—ପୁଂ. ବି. (୬ତତ୍ପୁ)ସମାଜର ନେତା ବା ଅଗ୍ରଣୀ ବ୍ୟକ୍ତି ।

ସମାଜନୀତି—ବି. (୬ତତ୍ପୁ) ସାମ୍ପ୍ରଦାୟିକ ନିୟମ, ସମ୍ପ୍ରଦାୟର ବିଧି ।

ସମାଜପତି—ପୁଂ. ବି, (୬ତତ୍ପୁ)ସମାଜର ଅଧ୍ୟକ୍ଷ, ସମ୍ପ୍ରଦାୟର ନେତା ।

ସମାଜପତିତ—ବିଂ.(୫ତତ୍ପୁ)ସମାଜଚ୍ୟୁତ, ଏକଘରିଆ ।

ସମାଜବନ୍ଧ—ପୁଂ. ବିଂ.(୩ତତ୍ପୁ)ଦଳବଦ୍ଧ, ସମାଜବନ୍ଧା ।

ସମାଜବହିର୍ଭୂତ—ବିଂ. (୫ତତ୍ପୁ)ସମାଜଚ୍ୟୁତ, ( ୬ତତ୍ପୁ ) ସାମାଜିକ ନିୟମର ବିପରୀତ ବା ପ୍ରତିକୂଳ । [ ଦେଖ ।

ସମାଜବିଧାନ—ବି.(୬ତତ୍ପୁ) ସମାଜଶାସନ

ସମାଜବିରୁଦ୍ଧ—ବିଂ, (୬ତତ୍ପୁ) ସମାଜର ପ୍ରତିକୂଳ, ସାମାଜିକ ରୀତିର ବିପରୀତ ।

ସମାଜବିରୋଧୀ—ପୁଂ.ବିଂ.(ଉପପଦତତ୍ପୁ) ସମାଜର ନିୟମ ବିରୋଧରେ କାର୍ଯ୍ୟକାରୀ ।

ସମାଜଭୁକ୍ତ—ବିଂ. ( ୭ତତ୍ପୁ ) ସମାଜର ଅନ୍ତର୍ଗତ ।

ସମାଜଭୂଷଣ—ବି.(୬ତତ୍ପୁ)ନିଜର ଗୁଣାଦି ଦ୍ୱାରା ସମାଜର ଭୂଷଣ ବା ଅଳଙ୍କାର ସ୍ୱରୂପ (ବ୍ୟକ୍ତି) ।

ସମାଜରହିତ-ବିଂ.(୩ତତ୍ପୁ) ସମାଜଶୂନ୍ୟ, ସମ୍ପ୍ରଦାୟବିହୀନ, ସାକଲ୍ୟବର୍ଜିତ, ସମାଜଚ୍ୟୁତ ।

ସମାଜଶକ୍ତି-ବି.(୬ତତ୍ପୁ)ସମାଜର କ୍ଷମତା, ସମ୍ପ୍ରଦାୟର ସାମର୍ଥ୍ୟ ।

ସମାଜଶାସନ—ବି. (୬ତତ୍ପୁ) ସମାଜବିଧି ସାମାଜିକ ନିୟମ, ସାମାଜିକ ଶାସ୍ତ୍ର ।

ସମାଜସଂସ୍କାର—ବି. (୬ତତ୍ପୁ) ସମାଜର ଶୋଧନ, ସମାଜର କୁନିୟମ ନିବାରଣ ପୂର୍ବକ ସୁନିୟମର ପ୍ରବର୍ତ୍ତନ ।

ସମାଜସଂସ୍କାର—ବିଂ. (୬ତତ୍ପୁ) ସମାଜର ଦୋଷ ସଂଶୋଧନକାରୀ, ସମାଜର ମନ୍ଦନିୟମ ନିବାରଣ ପୂର୍ବକ ସୁନିୟମର ପ୍ରବର୍ତ୍ତକ ।

ସମାଜସଂସ୍କାରୀ-ପୁଂ.ବିଂ.ସାମାଜିକ ସଂସ୍କାର ବା ପରିବର୍ତ୍ତନରେ ସହାୟ ବା ଚାଳକ (ବ୍ୟକ୍ତି), ଯେ ସମାଜ ହିତକର କୌଣସି ସୁପ୍ରଥାକୁ ପ୍ରଶ୍ରୟ ଦିଅନ୍ତି ।

ସମାଜହିତ—ବି. (୬ତତ୍ପୁ) ସମାଜର ଉପକାର ।

ସମାଜହିତକର-ପୁଂ.ବିଂ.(ଉପପଦତତ୍ପୁ) ସମାଜର ଉପକାରୀ (ପ୍ରଥା ବା କାର୍ଯ୍ୟ)

ସମାଜହିତୈଷଣା—ବି.(୬ତତ୍ପୁ)ସମାଜର ମଙ୍ଗଳ କାମନା ।

ସମାଜହିତୈଷୀ—ପୁଂ.ବିଂ(ଉପପଦତତ୍ପୁ) ସମାଜର ମଙ୍ଗଳକାମୀ (ବ୍ୟକ୍ତି), (ସ୍ତ୍ରୀ) ସମାଜହିତୈଷିଣୀ ।

ସମାଜୀ—ଗ୍ରା.ବିଂ. (ସଂ-ସାମାଜିକ) ସାମାଜିକ, କୌଣସି ସମାଜର ଅଧୀନ ।

ସମାଜ୍ଞା—ବି. (ସମ୍+ଆ+ଜ୍ଞା+ର୍ମି.ଅ+ଆ) କୀର୍ତ୍ତି, ଯଶଃ । [ ଭେଦ ।

ସମାଞ୍ଜନ—କ୍ଲୀ.ବି. ମିଶ୍ରିତ ଅଞ୍ଜନ ଔଷଧ

ସମାତୃ(ତା)—ସ୍ତ୍ରୀ, ବିଂ. ମାତୃସମା, ମାତୃସ୍ଥାନୀୟା, (ସ୍ତ୍ରୀ.ବି) ବିମାତା ।

ସମାତୃକ—ପୁଂ.ବିଂ.(ବି.ବ୍ରୀ)ମାତୃବିଶିଷ୍ଟ, ମାତାଙ୍କ ସମଭିବ୍ୟାହାରୀ, (ସ୍ତ୍ରୀ)ମାତୃକା ।

ସମାତ୍ମକ—ବିଂ. (ବି.ବ୍ରୀ) ତୁଲ୍ୟ ସ୍ୱଭାବବିଶିଷ୍ଟ, (ସ୍ତ୍ରୀ) ସମାତ୍ମିକା ।

ସମାତ୍ମା—ପୁଂ,ବିଂ.ତୁଲ୍ୟସ୍ୱଭାବ, ଯାହାର ଚିତ୍ତବୃତ୍ତି ପରସ୍ପର ସମାନ ।

ସମାଦର—ବି. (ସମ୍+ଆଦର) ସମ୍ମାନ, ବିଶେଷ ଆଦର, ସମ୍ବର୍ଦ୍ଧନା ।

ସମାଦରଣୀୟ—ବିଂ. (ସମ୍+ଆ+ଦୃ+ଅନୀୟ) ସମ୍ମାନାର୍ହ, ସମ୍ୟକ୍ ପ୍ରକାରେ ଆଦରର ଉପଯୁକ୍ତ ।

ସମାଦାନ—ସ୍ତ୍ରୀ. ବି, ( ସମ୍+ଆଦାନ ) ସମ୍ୟକ୍ ଗ୍ରହଣ, ଉପଯୁକ୍ତ ଦାନଗ୍ରହଣ, ସୌଗତାନ୍ତ୍ରିକ, ବୌଦ୍ଧମାନଙ୍କ ନିତ୍ୟକର୍ମ ।

ସମାଦାର—ଗ୍ରା.ବି. ବଙ୍ଗଦେଶୀୟ ପାରିବାରିକ ଉପାଧିବିଶେଷ ।

ସମାଦିବା—ଗ୍ରା. କ୍ରି. ଆଶ୍ୱାସନା କରିବା ।

ସମାଦୃତ—ପୁଂ. ବିଂ. (ସମ୍+ଆଦୃତ) ସମ୍ମାନିତ, ଅତିଆଦୃତ, ସମ୍ବର୍ଦ୍ଧିତ ।

ସମାଦେୟ—ବିଂ. ପ୍ରାପ୍ତ, ଅଭ୍ୟର୍ଥନାର ଉପଯୁକ୍ତ ।

ସମାଦେଶ—ବି.(ସମ୍+ଆଦେଶ)ସମ୍ୟକ୍ ଆଦେଶ, ଆଜ୍ଞା ।

ସମାଦେଶନ—ବି.(ସମ୍+ଆ+ଦିଶ୍+ଅନ) ସମ୍ୟକ୍ ଆଦେଶ, ଆଜ୍ଞା ।

ସମାଧା—ବି. (ସମ୍+ଆ+ଧା+ଭା.ଅ+ଆ) ସିଦ୍ଧାନ୍ତ, ମୀମାଂସା, ନିଷ୍ପତ୍ତି, ବିରୋଧଭଞ୍ଜନ, ବିବାଦ ନିଷ୍ପତ୍ତି, ନିୟମ, ତପସ୍ୟା,

ଜୀବର ଇଚ୍ଛାପ୍ରଣୋଦିତ ଧର୍ମାନୁଷ୍ଠାନ, ସମାଧି. ଯୋଗ ସାଧନ, ବ୍ରହ୍ମରେ ମନକୁ ସ୍ଥିର କରି ରଖିବା,ଅନୁସନ୍ଧାନ, ସମର୍ଥନ, ଚିତ୍ତର ଏକାଗ୍ରତା, ଧ୍ୟାନ, ପ୍ରତିକାର,କାର୍ଯ୍ୟର ସମାପନ,ନାଟକର ଅଙ୍ଗବିଶେଷ ।

ସମାଧାନ—ବି. (ସମ୍ + ଆ + ଧା + ଭା. ଅନ) ସମାଧା ଦେଖ, ପ୍ରଶ୍ନର ଉତ୍ତର-ଦାନ, ସମସ୍ୟାପୂରଣ, (ଗ୍ରା.ବି)ଦୁଇ-ଜଣଙ୍କ ବିବାଦ ମୀମାଂସାପୂର୍ବକ ମିଳନ ।

ସମାଧାନୀ—ଗ୍ରା. ପୁଂ. ସ୍ତ୍ରୀ. ବିଂ. ଯେଉଁ ବ୍ୟକ୍ତି ଅନ୍ୟ ବ୍ୟକ୍ତିଙ୍କର ବିବାଦ ମୀମାଂସା କରିଦିଅନ୍ତି, ଶାନ୍ତିପକ୍ଷୀୟ ।

ସମାଧାନୀୟ—ବିଂ. (ସମ୍+ଆ+ଧା+ ଅନୀୟ) ସମାଧାନର ଯୋଗ୍ୟ ।

ସମାଧି—ବି. ( ସମ୍ + ଆ + ଧା + ଅଧି. ଇ) ସମାଧା ଦେଖ, ସମାଧାନ ଦେଖ, ପରମାତ୍ମାଙ୍କ ସହିତ ଜୀବାତ୍ମାର ଏକୀଭାବ, ପ୍ରତିଜ୍ଞା, ସମର୍ଥନ, ଯୁକ୍ତି, ପ୍ରତିଶୋଧ, ସଞ୍ଚୟ, ଅସାଧ୍ୟ ବିଷୟରେ ଅଧ୍ୟବସାୟ, ମୌନଭାବ, ବାକ୍‌ସଂଯମ, କାବ୍ୟର ଗୁଣବିଶେଷ, ଯେଉଁଠାରେ ଦୁଇଟି ଘଟନା ଦୈବ କ୍ରମେ ଏକ ସମୟରେ ଘଟେ, ଏବଂ ଏକ କ୍ରିୟା ସହିତ ଦୁଇ କର୍ତ୍ତାର ଅନ୍ୱୟ ହୋଇ ଦୁଇଟି ଘଟନା ପ୍ରକାଶିତ ହୁଏ, ଅର୍ଥାଲଂକାରବିଶେଷ, ଭବିଷ୍ୟତ୍ ଯୁଗର ଜୈନ ମୁନିବିଶେଷ, ଅଙ୍ଗୀକାର, ଧ୍ୟାନ, ଆକ୍ଷେପ, ନିଦ୍ରା, ଏକାଗ୍ରତା, ମାର୍କଣ୍ଡେୟ ପୁରାଣାନ୍ତର୍ଗତ ଦେବୀ ମାହାତ୍ମ୍ୟରେ ବର୍ଣ୍ଣିତ ବୈଶ୍ୟ, ଜଳାଭାବ ହେବା ଯୋଗେ ଶସ୍ୟ ସଞ୍ଚୟ କରି ରଖିବା, ଆଶ୍ରିତ ରକ୍ଷଣ-ଚେଷ୍ଟା, (ଗ୍ରା.ବି) ପ୍ରାଣବାୟୁ ଆଉ ଆଉ ହିନ୍ଦୁ ସାଧୁ ସନ୍ନ୍ୟାସୀମାନେ ଭୂଗର୍ଭରେ ଆପଣା ପାଇଁ ଯେଉଁ ଶେଷ ବିଶ୍ରାମା-ଗାରର ଆୟୋଜନ କରନ୍ତି, ଏବଂ ଯେଉଁଠାରେ ସେମାନଙ୍କ ମୃତ୍ୟୁ ପରେ ଦେହର ଅସ୍ଥି ବା ଚିତାଭସ୍ମ ରକ୍ଷିତ ହୋଇ ପୂଜା ପାଏ, ଯୋଗଆସନ, କବର,ଶବ ପୋତିବା, ଶବର ଚିତା-ଭସ୍ମ ପୋତାଯିବା ସ୍ଥାନ ।

ସମାଧିକ୍ଷେତ୍ର—ବି. ( ୬ତତ୍ପୁ ) ଯେଉଁ ସ୍ଥାନରେ ଶବମାନଙ୍କୁ କବର ଦିଆଯାଏ

ସମାଧିଗର୍ଭ—ବି. ବୋଧିସତ୍ତ୍ୱ ଭେଦ ।

ସମାଧିଗୃହ—ବି. ସମାଧି ମନ୍ଦିର ଦେଖ ।

ସମାଧିତ—ବିଂ. ବନ୍ଧୁତ୍ୱ, ସମ୍ବନ୍ଧଯୁକ୍ତ, ସମାଧିଯୁକ୍ତ ।

ସମାଧିତ୍ସୁ—ବିଂ. ( ସମ୍+ଆ+ଧା+ ସନ୍-ଉ)ସମାଧାନ କରିବାପାଇଁ ଇଚ୍ଛୁକ ।

ସମାଧିପାଇବା—ଗ୍ରା. କ୍ରି. ମୃତ୍ୟୁପରେ ପୋତାଯିବା ।

ସମାଧିପ୍ରସ୍ତର(ଶିଳା)—ବି. (୬ତତ୍ପୁ)କବ-ରର ଉପରେ ସ୍ଥାପିତ ପଥର ।

ସମାଧିବିଘ୍ନ—ବି. (କ.ଧା)ଧ୍ୟାନ ବିଷୟରେ ବାଧା,ଯୋଗୀଙ୍କର 'ନିର୍ବିକଳ୍ପସମାଧି' ଅବସ୍ଥା ଲାଭ ହେବା ବିଷୟରେ ଉପ-ସ୍ଥିତ ବିଘ୍ନମାନ ।

ସମାଧିବିଧି—ବି. ଯୋଗଶାସ୍ତ୍ରୋକ୍ତ ସମାଧି ଲାଭ କରିବାପାଇଁ ଶାସ୍ତ୍ରରେ ଉପଦିଷ୍ଟ ବିଧାନ ବା ନିୟମମାନ ।

ସମାଧିଭଙ୍ଗ—ବି. (୬ତତ୍ପୁ) ଧ୍ୟାନଭଙ୍ଗ, ଧ୍ୟାନ ଭାଙ୍ଗିଯିବା ।

ସମାଧିମଗ୍ନ—ବିଂ. (୭ତତ୍ପୁ) ଧ୍ୟାନମଗ୍ନ, (ସ୍ତ୍ରୀ) ସମାଧିମଗ୍ନା ।

ସମାଧିମଠ—ଗ୍ରା.ବି. ପୁରୀର ମଠବିଶେଷ

ସମାଧିମନ୍ଦିର—ଗ୍ରା.ବି. ସମାଧି ଉପରେ ନିର୍ମିତ ଗୃହ ବା ଦେଉଳ,ମୃତବ୍ୟକ୍ତିର ଚିତାଭସ୍ମକୁ ପୋତି ତହିଁ ଉପରେ ନିର୍ମିତ କରିବା ମନ୍ଦିର ।

ସମାଧିମତିକା-ବି.ମାଳବିକାଗ୍ନି ମିତ୍ର ବର୍ଣ୍ଣିତ ପୁରସ୍ତ୍ରୀଭେଦ, ଏକାଗ୍ରମନା, ଏକାନ୍ତ ମନୋଯୋଗୀ ।

ସମାଧିମାନ୍—ପୁଂ.ବିଂ. (ସମାଧି + ମତ୍) ସମାଧିବିଶିଷ୍ଟ,ସମାଧିଯୁକ୍ତ,ମନୋଯୋଗୀ

ସମାଧିସମାନତା—ସ୍ତ୍ରୀ.ବି. ବୌଦ୍ଧ ମତେ ଧ୍ୟାନର ପ୍ରକାରଭେଦ ।

ସମାଧିସ୍ତମ୍ଭ—ବି. ସମାଧି ଉପରେ ନିର୍ମିତ ସ୍ତମ୍ଭ,ଭୂଗର୍ଭ ନିହିତ ଶବୋପରି ରଚିତ ସ୍ତମ୍ଭ ।

ସମାଧିସ୍ଥ—ପୁଂ.ବିଂ. (ସମାଧି+ସ୍ଥା+କ. ଅ) ଧ୍ୟାନନିମଗ୍ନ, ସମାଧିମଧ୍ୟସ୍ଥ, ପର-ମାତ୍ମାଙ୍କ ଧ୍ୟାନରେ ପୂର୍ଣ୍ଣରୂପେ ମଗ୍ନ, (ସ୍ତ୍ରୀ) ସମାଧିସ୍ଥା ।

ସମାଧିସ୍ଥଳ—ବି. (୬ତତ୍ପୁ) ସମାଧିସ୍ଥାନ, ସମାଧିକ୍ଷେତ୍ର, ଶବନିଧାନ ସ୍ଥାନ,ବ୍ରାହ୍ମ-ଜଗତର ପବିତ୍ର ସ୍ଥାନଭେଦ ।

ସମାଧିହାଣ୍ଡି-ଗ୍ରା.ବି. ପୁରୀରେ ଅନ୍ନ ମହା-ପ୍ରସାଦ ରଖାଯିବାର ଏକପ୍ରକାର ହାଣ୍ଡି ।

ସମାଧେୟ—ବିଂ. (ସମ୍ +ଆ + ଧା + ମି.ଯ) ସମାଧାନର ଉପଯୁକ୍ତ ।

ସମାଧ୍ମା(ଧ୍ମା)ତ—ବିଂ. (ସମ୍ + ଆଧ୍ମାତ) ସମ୍ୟକ୍ ବର୍ଦ୍ଧିତ,ଉତ୍ସାହିତ,ସମୁଦ୍ଦୀପିତ, ଗର୍ବିତ, ସମାନ ରୂପେ ଶବ୍ଦିତ ।

ସମାଧ୍ୟାୟୀ—ପୁଂ.ବିଂ. (ସମ୍ +ଅଧ୍ୟାୟୀ) ସହପାଠୀ, ତୁଲ୍ୟ ଅଧ୍ୟୟନକାରୀ,(ସ୍ତ୍ରୀ) ସମାଧ୍ୟାୟିନୀ । [ ଦେଖ ।

ସମାନ୍—ଗ୍ରା.ବିଂ. ( ଫ-ସମାନ ) ସମାନ

ସମାନ—ବିଂ. (ସମ୍ + ଆ + ମା + କ.ଅ) ସମ, ସଦୃଶ, ତୁଲ୍ୟ, ସମତଳ,ଅଭିନ୍ନ, ଏକରୂପ, ତୁଲ୍ୟ ପରିମାଣ ବା ଆକାର ବା ଗୁଣବିଶିଷ୍ଟ, ସରବ, (ସ୍ତ୍ରୀ) ସମାନା, (ବି—ସମ୍ + ଅନ+ଭା.ଅ) ପ୍ରାଣବାୟୁ ବିଶେଷ,ଶରୀର ମଧ୍ୟସ୍ଥ ପଞ୍ଚବାୟୁ ମଧ୍ୟରୁ ନାଭିଦେଶରେ ଅବସ୍ଥିତ ବାୟୁ, (ବ୍ୟାକରଣ) ଏକ ସ୍ଥାନରୁ ଉଚ୍ଚାରିତ ବର୍ଣ୍ଣ ।

ସମାନକରଣ—ବି. ବକ୍ର ବସ୍ତୁକୁ ସଳଖ କରିବା, ଏକଜାତୀୟ ଦୁଇଟି ବସ୍ତୁକୁ ସମାନ ଆକାରକୁ ଆଣିବା,ଶିଥିଳ ଶିଶ୍ନର ସଂଯମନ, ନିରଣ ।

ସମାନକର୍ତ୍ତୃକ—ବିଂ. ସମାନ କର୍ତ୍ତାଯୁକ୍ତ, ତୁଲ୍ୟ କର୍ତ୍ତାବିଶିଷ୍ଟ, ଏକକର୍ତ୍ତୃକ ।

ସମାନକର୍ମା—ବିଂ. (ବ.ବ୍ରୀ) (ସମାନ + କର୍ମନ୍) ସମ ବ୍ୟବସାୟୀ,ସମାନ କର୍ମ-କାରୀ, (ବି) ସମାନ କାର୍ଯ୍ୟ, ତୁଲ୍ୟ କାର୍ଯ୍ୟ ।

ସମାନକାରଣ—ବିଂ.(ବ.ବ୍ରୀ)ତୁଲ୍ୟକାରଣ-ବିଶିଷ୍ଟ, (ବି) ସମାନ କାରଣ, ତୁଲ୍ୟ ହେତୁ ।

**ସମାନକାଳ**—ବିଂ. ସମାନକାଳବିଶିଷ୍ଟ, ତୁଲ୍ୟ ସମୟଯୁକ୍ତ, (ବି) ତୁଲ୍ୟ କାଳ, ସାମାନ ସମୟ ।

**ସମାନକାଳିକ(ଳୀନ)**—ବିଂ. (ସମାନକାଳ+ଇକ)ସମକାଳୀନ,ଏକକାଳରେ ଜାତ ବା ଉତ୍ପନ୍ନ, ସମସାମୟିକ, ଏକ ସମୟରେ ଘଟିବା ।

**ସମାନଗତି**—ବିଂ. ତୁଲ୍ୟ ଗତିବିଶିଷ୍ଟ, ସମାନ ଗତିଯୁକ୍ତ, (ବି) ସମାନ ଗତି, ତୁଲ୍ୟ ଗମନ ।

**ସମାନଗୁଣ**—ବିଂ. ସମାନ ଗୁଣବିଶିଷ୍ଟ, ତୁଲ୍ୟ ଗୁଣଯୁକ୍ତ, (ବି) ସମାନ ଗୁଣ ।

**ସମାନଗୋତ୍ର**—ବିଂ. ଏକ ଗୋତ୍ର,ତୁଲ୍ୟ ଗୋତ୍ର, ସଗୋତ୍ର ।

**ସମାନଗ୍ରାମ**—ବି. ଏକଗ୍ରାମ ।

**ସମାନଗ୍ରାମୀୟ**—ବିଂ.ସମାନଗ୍ରାମେ ଭବ ।

**ସମାନଜନ**—ବି. ତୁଲ୍ୟ ଜନ, ସମାନ ଲୋକ ।

**ସମାନଜନ୍ମା**—ବିଂ.ବ.ବ୍ରୀ;+ସମାନ+ଜନ୍ମନ୍ ) ତୁଲ୍ୟବୟସ୍କ ।

**ସମାନଜନୀୟ**—ବିଂ.ସମାନ ଜନସମ୍ବନ୍ଧୀୟ

**ସମାନଜାତି**—ବିଂ.ତୁଲ୍ୟଜାତି,ଏକଜାତି. ସମାନବର୍ଣ୍ଣ ।

**ସମାନଜାତୀୟ**—ପୁଂ. ବିଂ. (ସମାନ+ଜାତି+ଈୟ)ତୁଲ୍ୟଜାତୀୟ,ଏକଜାତୀୟ, ସଜାତୀୟ, (ସ୍ତ୍ରୀ) ସମାନଜାତୀୟା ।

**ସମାନତନ୍ତ୍ର**—ବିଂ. (ବ,ବ୍ରୀ) ଏକବ୍ୟବସାୟୀ, ଏକରୂପ ପ୍ରକୃତିବିଶିଷ୍ଟ, ଏକଶାଖାଧ୍ୟୟନ ପୂର୍ବକ ଏକରୂପ ଯାଗଯଜ୍ଞ କରତ, ସ୍ୱତନ୍ତ୍ର, (ସ୍ତ୍ରୀ) ସମାନତନ୍ତ୍ରା ।

**ସମାନତଃ**—ଅ.(ସମାନ+ତସ୍) ସମାନରୂପେ, ସମାନଭାବେ, ତୁଲ୍ୟରୂପେ ।

**ସମାନତା(ତ୍ୱ)**—ବି. ( ସମାନ+ଭା.ତା ) ସମତା, ତୁଲ୍ୟତ୍ୱ ।

**ସମାନତ୍ର**—ଅ. ଏକସ୍ଥାନସ୍ଥାୟୀ ।

**ସମାନଧର୍ମୀ**—ପୁଂ. ଓ ସ୍ତ୍ରୀ. ବିଂ (ବ,ବ୍ରୀ) ତୁଲ୍ୟଧର୍ମୀ, ଏକଧର୍ମବିଶିଷ୍ଟ, ଏକଧର୍ମାବଲମ୍ବୀ, ସଧର୍ମୀ ।

**ସମାନନ**—ପୁଂ. ବିଂ. (ସମ+ଆନନ) ବ.ବ୍ରୀ; ତୁଲ୍ୟଆନନ ବା ମୁଖବିଶିଷ୍ଟ, (ସ୍ତ୍ରୀ) ସମାନନା ।

**ସମାନନାମା**—ବିଂ. (ବ.ବ୍ରୀ; ସମାନ+ନାମନ୍) ସନାମା, ସମାନ ନାମବିଶିଷ୍ଟ ଏକନାମବିଶିଷ୍ଟ ।

**ସମାନପ୍ରଭୃତି**-ବିଂ. ସପ୍ରଭୃତି,ଏକସକଳ ।

**ସମାନବଚନ**—ବିଂ. ସବଚନ, ସମାନ ବାକ୍ୟବିଶିଷ୍ଟ ।

**ସମାନବୟଃ**—ବିଂ. (ବ.ବ୍ରୀ; ସମାନ+ବୟସ୍) ଏକବୟସ୍କ, ତୁଲ୍ୟବୟସ୍କ ।

**ସମାନବର୍ଚ୍ଚାଃ**—ପୁଂ.ବିଂ. ତୁଲ୍ୟଦୀପ୍ତିଯୁକ୍ତ, ତୁଲ୍ୟଦୀପ୍ତିଶାଳୀ ।

**ସମାନବର୍ଣ୍ଣ**—ବି.(ବ୍ୟାକରଣ) ଏକସ୍ଥାନରୁ ଉଚ୍ଚାରିତ ବର୍ଣ୍ଣ, ସମୋଚ୍ଚାରିତ ବର୍ଣ୍ଣ, (ବିଂ) ତୁଲ୍ୟବର୍ଣ୍ଣ ବିଶିଷ୍ଟ, ତୁଲ୍ୟଜାତିବିଶିଷ୍ଟ, (ସ୍ତ୍ରୀ) ସମାନବର୍ଣ୍ଣା ।

**ସମାନବଳ**—ବି. (କ.ଧା) ତୁଲ୍ୟବଳ. (ବିଜ୍ଞାନ) କୌଣସି ପଦାର୍ଥ ପ୍ରତି ବିପରୀତ ଦିଗରୁ ପ୍ରଯୁକ୍ତ ତୁଲ୍ୟବଳ, (ପୁଂ. ବିଂ-ବ.ବ୍ରୀ) ତୁଲ୍ୟବଳବିଶିଷ୍ଟ ।

**ସମାନବାନ୍ଧୁ**—ପୁଂ. ବିଂ. (ବ.ବ୍ରୀ) ସମବାନ୍ଧୁ ଦେଖ ।

**ସମାନବ୍ରହ୍ମଚାରୀ**—ପୁଂ. ବିଂ, ଏକରୂପ ବ୍ରହ୍ମଚର୍ଯ୍ୟ ଆଚରଣକାରୀ, ଏକ ବ୍ରତଚାରୀ, (ସ୍ତ୍ରୀ) ସମାନ ବ୍ରହ୍ମଚାରିଣୀ, (ପୁଂ.ବି) ସତୀର୍ଥ ।

**ସମାନଭୂତି**—ବି. ସାର୍ଷ୍ଟି ମୁକ୍ତି (ଅର୍ଥାତ୍ ମୃତ୍ୟୁପରେ ବିଷ୍ଣୁଙ୍କ ସମାନ ଐଶ୍ୱର୍ଯ୍ୟରେ ବୈକୁଣ୍ଠରେ ଅବସ୍ଥାନ)ସମାନ ଐଶ୍ୱର୍ଯ୍ୟ ।

**ସମାନମୂର୍ଦ୍ଧା**—ପୁଂ. ବିଂ, ସମାନ ମୂର୍ଦ୍ଧାଯୁକ୍ତ, ସମାନ ମୂର୍ଦ୍ଧାବିଶିଷ୍ଟ ।

**ସମାନୟନ**—ବି. ( ସମ୍+ଆନୟନ ) ସମ୍ୟକ୍ ଆନୟନ, ମିଳନ, ସଙ୍ଗତ, ଆଣିବା ।

**ସମାନଯୋନି**—ବିଂ. ତୁଲ୍ୟଯୋନି, ଏକପ୍ରକାର କାରଣଜାତ ।

**ସମାନରୂପ**—ବିଂ. ତୁଲ୍ୟରୂପଯୁକ୍ତ, ଏକପ୍ରକାର ରୂପବିଶିଷ୍ଟ, ତୁଲ୍ୟରୂପ ।

**ସମାନଲୋକ**—ବିଂ, ତୁଲ୍ୟଲୋକ, ଏକଶ୍ଲୋକ ।

**ସମାନଶବ୍ଦ**—ପୁଂ.ବିଂ. ତୁଲ୍ୟଶବ୍ଦ,ସମାନ ଶବ୍ଦବିଶିଷ୍ଟ, ତୁଲ୍ୟଶବ୍ଦଯୁକ୍ତ ।

**ସମାନଶଯ୍ୟ**—ପୁଂ. ବିଂ. (ବ.ବ୍ରୀ;ସମାନ+ଶଯ୍ୟା) ଏକଶଯ୍ୟାରେ ଶୟନକାରୀ, (ସ୍ତ୍ରୀ) ସମାନଶଯ୍ୟା ।

**ସମାନଶାଖା**—ବିଂ.ଯେ ଏକଶାଖା ଅଧ୍ୟୟନ କରେ, ସମଶାଖାଭୁକ୍ତ ।

**ସମାନଶୀଳ**—ପୁଂ. ବିଂ. (ବ.ବ୍ରୀ) ତୁଲ୍ୟ ଆଚରଣ ବିଶିଷ୍ଟ, ତୁଲ୍ୟ ସ୍ୱଭାବବିଶିଷ୍ଟ, (ସ୍ତ୍ରୀ) ସମାନଶୀଳା ।

**ସମାନସଂଖ୍ୟ**—ପୁଂ. ବିଂ. (ସମାନ+ସଂଖ୍ୟା+ଅ) ତୁଲ୍ୟ ସଂଖ୍ୟକ, (ସ୍ତ୍ରୀ) ସମାନସଂଖ୍ୟା ।

**ସମାନସୁଖଦୁଃଖ**—ପୁଂ. ବିଂ. (ବ.ବ୍ରୀ) ଯାହାର ଦୃଷ୍ଟିରେ ସୁଖ ଓ ଦୁଃଖ ସମାନ, (ସ୍ତ୍ରୀ) ସମାନ ସୁଖଦୁଃଖା ।

**ସମାନସ୍କନ୍ଧ**—ପୁଂ.ବିଂ. (ବ.ବ୍ରୀ)ସମସ୍କନ୍ଧ, ଯେଉଁ ବ୍ୟକ୍ତିର ସ୍କନ୍ଧର ଉଚ୍ଚତା ଅନ୍ୟ ବ୍ୟକ୍ତିର ସ୍କନ୍ଧର ଉଚ୍ଚତା ସଙ୍ଗେ ସମାନ, (ଲ.ଅର୍ଥ) ଏକ ଅବସ୍ଥିତିଯୁକ୍ତ,ସମପଦସ୍ଥ, ଧନ ବିଦ୍ୟା ବୟସ ଆଦିରେ ପରସ୍ପର ସଙ୍ଗେ ସମାନ, (ସ୍ତ୍ରୀ) ସମାନସ୍କନ୍ଧା ।

**ସମାନସ୍ଥାନ**—ବି. ପରସ୍ପରର ଅବସ୍ଥାନାର୍ଥ ଏକରୂପ ସ୍ଥାନ,ସମସ୍ଥାନ,ଯେଉଁସ୍ଥାନରେ ଦ୍ରବ୍ୟ ଓ ବୃଦ୍ଧି ସମାନ ।

**ସମାନା**—ସ୍ତ୍ରୀ. ବିଂ. (ସମାନ+ଆ)ସମାନର ସ୍ତ୍ରୀଲିଙ୍ଗ ।

**ସମାନାକ୍ଷର**—ବି. ସ୍ୱରବର୍ଣ୍ଣ, ଯେ ସନ୍ଧ୍ୟକ୍ଷର ବା ଯୁକ୍ତାକ୍ଷର ନୁହେ ।

**ସମାନାଧିକରଣ**—ବି. (ସମାନ+ଅଧିକରଣ)ଯେଉଁ ସାଧାରଣ ଗୁଣ ଥିବାରୁ ପଦାର୍ଥଗଣଙ୍କୁ ଏକଜାତୀୟ ବୋଲାଯାଏ ।

**ସମାନାଧିକାର**—ବି.(କ.ଧା) ତୁଲ୍ୟ ଅଧିକାର ବା ସ୍ୱତ୍ୱ, (ପୁଂ.ବିଂ) ସମାନ ଅଧିକାରବିଶିଷ୍ଟ, (ସ୍ତ୍ରୀ) ସମାନାଧିକାରା ।

**ସମାନାର୍ଥ**—ବି. (କ.ଧା) ତୁଲ୍ୟ ଅର୍ଥ, ଏକ ଅର୍ଥ, (ବିଂ.ବ.ବ୍ରୀ) ଏକ ଅର୍ଥବିଶିଷ୍ଟ, (ପୁଂ) ସମପ୍ରୟୋଜନ ବା ଉଦ୍ଦେଶ୍ୟ ବିଶିଷ୍ଟ, (ସ୍ତ୍ରୀ) ସମାନାର୍ଥା ।

ସମାନୀକରଣ—ବି.ଅସମାନ ବସ୍ତୁକୁ ସମାନ କରିବା ।

ସମାନୀତ—ବିଂ. (ସମ୍+ଆନୀତ)ସମ୍ୟକ୍ ଆନୀତ.ମିଳିତ,ସଙ୍ଗତ,(ସ୍ତ୍ରୀ)ସମାନୀତା ।

ସମାନୁପାତ—ବି. ( ଗଣିତ ) ଏକାଧିକ ଅନୁପାତର ସମାନତ୍ୱ ସମ୍ବନ୍ଧ, ଦୁଇ ବା ବହୁଅନୁପାତର ସମାନତ୍ୱ ସମ୍ବନ୍ଧ ।

ସମାନେ—ବି. ସମାନପଦାର୍ଥରେ, ତୁଲ୍ୟ ବ୍ୟକ୍ତି ବା ବସ୍ତୁରେ, ( କ୍ରି.ବିଂ.ବ.ସ୍ତ୍ରୀ ) ମାନର ସହିତ, ମାନରକ୍ଷି, (ଗ୍ରା.ଅ)ପଣ. ସଦ୍ଗୁଣ, ଭଲଆ ।

ସମାନୋଦକ—ବି. ( ବ.ସ୍ତ୍ରୀ;ସମାନ+ଉଦକ)ଚତୁର୍ଦ୍ଦଶ ପୁରୁଷ ପର୍ଯ୍ୟନ୍ତ ତର୍ପଣୀୟ ଜ୍ଞାତି, ଏକୋଦକ ।

ସମାନୋଦର୍ଯ୍ୟ—ପୁଂ. ବି. (ବ.ସ୍ତ୍ରୀ;ସମାନ+ଉଦର+ଯ)ଏକମାତାଙ୍କ ସନ୍ତାନ, ସହୋଦର, (ସ୍ତ୍ରୀ) ସମାନୋଦର୍ଯ୍ୟା ।

ସମାନୋଦର୍ଯ୍ୟା—ସ୍ତ୍ରୀ. ବି. ସହୋଦରା ।

ସମାନୋପମା-ବି. ଉପମାଲଙ୍କାର ଭେଦ ।

ସମାନ୍ତକ—ପୁଂ. ବି. କାମଦେବ ।

ସମାନ୍ତର—ବିଂ. (ବ.ସ୍ତ୍ରୀ;ସମ+ଅନ୍ତର) ସର୍ବତ୍ର ସମଦୂରବର୍ତ୍ତୀ, ପରସ୍ପର ସମାନ ବା ଏକରୂପ ।

ସମାନ୍ତରକ୍ଷେତ୍ର—ବି. (ଜ୍ୟାମିତି) ଯେଉଁ କ୍ଷେତ୍ରର ବିପରୀତ ବାହୁମାନ ସମାନ୍ତର

ସମାନ୍ତରବୃତ୍ତ—ବି. (ଜ୍ୟାମିତି) ଯେଉଁ ବୃତ୍ତମାନଙ୍କର ପରିଧି ପରସ୍ପରଠାରୁ ସମଦୂରବର୍ତ୍ତୀ, ଏକକେନ୍ଦ୍ରିକ ।

ସମାନ୍ତରରେଖା—ବି.ଯେଉଁ ରେଖାମାନ ସର୍ବତ୍ର ପରସ୍ପରଠାରୁ ସମଦୂରବର୍ତ୍ତୀ ହୋଇଥାଆନ୍ତି ।

ସମାନ୍ତରଶ୍ରେଢ଼ୀ(ଶ୍ରେଣୀ)—ବି. (ଗଣିତ) ପରବର୍ତ୍ତୀ ରାଶି ଅପେକ୍ଷା ସମପରିମାଣରେ ଗୁରୁତର ବା ଲଘୁତର ରାଶିସମୂହ ।

ସମାନ୍ତରସରଳରେଖା—ବି. (ଜ୍ୟାମିତି) ଯେଉଁ ସରଳରେଖା ପରସ୍ପର ସମାନ୍ତର

ସମାନ୍ତରାଳ—ବିଂ. (ବ.ସ୍ତ୍ରୀ;ସମ+ଅନ୍ତରାଳ) ସମାନ୍ତର ଦେଖ ।

ସମାନ୍ତରିକ—ଯେଉଁ ଚତୁର୍ଭୁଜ କ୍ଷେତ୍ରର ଦୁଇ ଦୁଇଟି ଭୁଜ ପରସ୍ପର ସମାନ୍ତର ।

ସମାନ୍ତରିକକ୍ଷେତ୍ର—ବି(ସମାନ୍ତର+ଇକ) ସମାନ୍ତର କ୍ଷେତ୍ର. ସମାନ୍ତର ଚତୁର୍ଭୁଜ, ଯେଉଁ ଚତୁର୍ଭୁଜର ସମ୍ମୁଖବର୍ତ୍ତୀ ଦୁଇ ଦୁଇଟି ବାହୁ ପରସ୍ପର ସମାନ୍ତର ।

ସମାପ୍(ଧାତୁ)— (ସଂ. ସମ୍ଉପସର୍ଗ+ଆପ୍ଧାତୁ)ଶେଷକରିବା,ସମ୍ପୂର୍ଣ୍ଣକରିବା, ଶେଷହେବା ।

ସମାପ—ବି. (ସମ୍+ଆପ୍+ଅ) ବ.ସ୍ତ୍ରୀ; ଦେବଯଜନ ସ୍ଥାନ, ଯଜ୍ଞ ।

ସମାପକ—ବିଂ. (ସମ୍+ଣିଚ୍+ଆପ୍+କ.ଅକ)ସମାପନକାରୀ, ଯେ କୌଣସି କାର୍ଯ୍ୟର ସମାପ୍ତି କରେ,(ସ୍ତ୍ରୀ)ସମାପିକା ।

ସମାପତ—ଗ୍ରା.ବିଂ. (ପଦ୍ୟ—ସଂ-ସମାପ୍ତ) ସମାପ୍ତ ଦେଖ । [ଦେଖ ।

ସମାପତ—ଗ୍ରା. ବି. (ସଂ-ସମାପ୍ତି) ସମାପ୍ତି

ସମାପତ୍ତି—ବି. ( ସମ୍+ଆପତ୍ତି ) ସମକାଳରେ ଉପସ୍ଥିତ, ପରସ୍ପରର ଆପତ୍ତି, ଯଦୃଚ୍ଛାସଙ୍ଗତ, ମିଳନ ।

ସମାପନ—ବି. ( ସମ୍+ଣିଚ୍+ଆପ୍+ଭା.ଅନ ) ସମାଧାନ, ଶେଷକରଣ, ସମାପ୍ତି, ଉଦ୍ଯାପନ, ବଧ, ଲାଭ ।

ସମାପନୀୟ—ବିଂ. ( ସମ୍+ଆପ୍+ଣିଚ୍ ଅନୀୟ) ସମାପ୍ୟ ଦେଖ ।

ସମାପୟିତବ୍ୟ—ବିଂ. ( ସମ୍+ଆପ୍+ଣିଚ୍+ତବ୍ୟ ) ସମାପନ କରିବାର ଯୋଗ୍ୟ ।

ସମାପନ୍ନ—ବିଂ (ସମ୍+ଆ+ପଦ୍+ର୍ମ.ତ) ଲବ୍ଧ. ପ୍ରାପ୍ତ,( କ.ତ ) ବିପନ୍ନ, ବିପଦ୍ଗ୍ରସ୍ତ, କଷ୍ଟାର୍ଦ୍ଦିତ, ସମ୍ପନ୍ନ, ହତ,ସମାପ୍ତ, କ୍ଲିଷ୍ଟ, ସାଧିତ, (ସ୍ତ୍ରୀ) ସମାପନ୍ନା ।

ସମାପାଦ୍ୟ—ବି.ସମାପତ୍ତି,ସନ୍ନିକଟ,ସଙ୍ଗତ

ସମାପି—(ଧାତୁ) (ସଂ.ସମ୍+ଆପ୍ଧାତୁ-ଣିଚ୍) ଅନ୍ୟ ଦ୍ୱାରା ସମାପ୍ତ କରାଇବା ।

ସମାପିକା—ସ୍ତ୍ରୀ. ବିଂ. ( ସମାପକ+ଆ ) ସମାପକର ସ୍ତ୍ରୀଲିଙ୍ଗ, ( ବ୍ୟାକରଣ ) ଯାହାର ପ୍ରୟୋଗ ଦ୍ୱାରା ବାକ୍ୟ ସମାପ୍ତି ହୁଏ (କ୍ରିୟା) ।

ସମାପିକାକ୍ରିୟା—ବି(ବ୍ୟାକରଣ)ଯେଉଁ କ୍ରିୟା ଦ୍ୱାରା କଥିତ ବାକ୍ୟର ସମାପ୍ତି ହୁଏ ।

ସମାପିତ—ବିଂ.(ସମ୍+ଆପ୍, +ଣିଚ୍+ର୍ମ.ତ) କଷ୍ଟାର୍ଦ୍ଦିତ, ସମାପ୍ତ, ମାରିତ ।

ସମାପିତବ୍ୟ—ବିଂ.( ସମ୍+ଆପ୍+ଣିଚ୍+ତବ୍ୟ) ସମାପ୍ତ ହେବାର ଯୋଗ୍ୟ ।

ସମାପିପୟିଷୁ—ବିଂ. (ସମ୍+ଆପ୍+ଣିଚ୍+ସନ୍+କ.ଉ) ସମାପନ କରିବାକୁ ଇଚ୍ଛୁକ ।

ସମାପୀ—ପୁଂ. ବିଂ. (ସମ୍+ଆପ୍+କ. ଇନ୍) ସମାପନକାରୀ, (ସ୍ତ୍ରୀ) ସମାପିନୀ ।

ସମାପ୍ତ—ବିଂ. ( ସମ୍+ଆପ୍+ର୍ମ.ତ ) ଶେଷ କରାଯାଇଥିବା, ଯାହା ଶେଷ ହୋଇଅଛି,ସପ୍ରାପ୍ତ,ସମ୍ପୂର୍ଣ୍ଣ,ସମାହିତ ।

ସମାପ୍ତପୁନରାତ୍ତତା—ବି. କାବ୍ୟୋକ୍ତ ଦୋଷବିଶେଷ,ରଚନାର ଦୋଷବିଶେଷ, ଯେଉଁ ସ୍ଥଳରେ ବାକ୍ୟକୁ ସମାପ୍ତ କରି-ସାରି ପୁଣି ସେହି ବାକ୍ୟର ସୂତ୍ରକୁ ଗ୍ରହଣ କରାଯାଏ ।

ସମାପ୍ତାର୍ଥ୍ୟା—ବି. (ସମାପ୍ତ+ଅର୍ଥ+ଯ+ଆ) ସମସ୍ୟା ଦେଖ ।

ସମାପ୍ତାଳ—ପୁଂ.ବି. (ସମାପ୍ତ+ଅଲ+କ.ଅ) ପତି, ସ୍ୱାମୀ ।

ସମାପ୍ତି—ବି.(ସମ୍+ଆପ୍+ଭା.ତି)ଶେଷ, ଅବସାନ, ପ୍ରାପ୍ତି, ସମର୍ଥନ, କାର୍ଯ୍ୟ-ସମାଧା, ଉଦ୍ଯାପନ, ବିରୋଧ ଭଞ୍ଜନ ।

ସମାପ୍ତିକ—ବି. (ସମାପ୍ତି+କ ) ଅଧୀତ-ବେଦଶାଖା, ଯେ ବେଦପାଠ ସମାପ୍ତ କରିଅଛନ୍ତି ।

ସମାପ୍ତ୍ୟର୍ଥା—ସ୍ତ୍ରୀ. ବି. ସମସ୍ୟା ଶ୍ଳୋକର ପାଦ ପୂରଣାର୍ଥ ପ୍ରଶ୍ନ ।

ସମାପ୍ୟ—ବିଂ. ( ସମ୍+ଆପ୍+ର୍ମ.ଯ ) ସମାପନୀୟ, ସମାପ୍ତ ହେବାର ଯୋଗ୍ୟ ।

ସମାପ୍ରିୟ—ପୁଂ.ବିଂ. (ସମ୍+ଆ+ପ୍ରିୟ) ଅତ୍ୟନ୍ତ ପ୍ରିୟ, (ସ୍ତ୍ରୀ)ସମାପ୍ରିୟା ।

ସମାପ୍ଲବ(ପ୍ଲାବ)—ବିଂ. (ସମ୍+ଆ+ପ୍ଲୁ+ଭା.ଅ) ସ୍ନାନ, ଅବଗାହନ, ଉତ୍ତମରୂପେ ଗାଧୁଆ ।

ସମାବର୍ଜନ—କ୍ଲୀ.ବି. (ସମ୍+ଆ+ବର୍ଜ୍

+ ଅନ) ସମ୍ୟକ୍‌ରୂପେ ଆବର୍ଜନ ।
ସମାବର୍ଜିତ—ବି. (ସମ୍+ଆ+ବୃଜ୍+ ମି.ତ) ବର୍ଜୀକୃତ, ନମିତ, ଯାହାକୁ ନୁଆଁ ହୋଇଅଛି ।
ସମାବର୍ତ୍ତ(ନ)—ବି. (ସମ୍+ଆବର୍ତ୍ତନ) ପ୍ରତ୍ୟାଗମନ, ବେଦାଧ୍ୟୟନାନନ୍ତର ଗାର୍ହସ୍ଥ୍ୟାଧିକାର,ପ୍ରଯୋଜକ କର୍ମ,ଦ୍ୱିଜ ଯୁବକର ଗୁରୁଗୃହରେ ପ୍ରଥମାଶ୍ରମ ସମାପନାନନ୍ତର ଦ୍ୱିତୀୟାଶ୍ରମରେ ପ୍ରବୃତ୍ତି. ବାଲ୍ୟକାଳରେ ଯଜ୍ଞୋପବୀତ ଗ୍ରହଣ କରି ବ୍ରହ୍ମଚାରୀରୂପେ ଗୁରୁଗୃହରେ ବେଦଶିକ୍ଷା ଶେଷ କରି ବିବାହ ହେବା ପୂର୍ବରୁ ଗୁରୁଙ୍କ ଆଦେଶ କ୍ରମେ ଦ୍ୱିଜାତି ଯୁବକର ନିଜ ଗୃହକୁ ଫେରିବା ରୂପ କର୍ମ ।
ସମାବର୍ତ୍ତନୀୟ—ବି.(ସମ୍+ଆ+ବୃତ୍+ ଅନୀୟ) ସମାବର୍ତ୍ତନାର୍ହ, ସମାବର୍ତ୍ତନର ଯୋଗ୍ୟ ।
ସମାବର୍ତ୍ତିତ—ପୁଂ. ବି. (ସମ୍+ଆ+ ବୃତ୍+ମି.ତ) ପ୍ରତ୍ୟାବର୍ତ୍ତିତ, ଯାହାଙ୍କୁ ଫେରାଇ ଅଣାଯାଇଅଛି ।
ସମାବାୟ—ବି. ସମୂହ, ସମବାୟ, ସମାହାର ।
ସମାବାସ—ବି. ସମ୍ୟକ୍‌ରୂପେ ଅଧିବାସ ।
ସମାବଦ୍ଧ—ବି. (ସମ୍+ଆ+ବଧ୍+ ମି.ତ) ସଂଘଟିତ, ସଂଯୋଜିତ ।
ସମାବିଷ୍ଟ—ବି.(ସମ୍+ଆବିଷ୍ଟ)କାର୍ଯ୍ୟରେ ନିବିଷ୍ଟ, କୌଣସି କାର୍ଯ୍ୟରେ ନିଯୁକ୍ତ, ଏକାଗ୍ରଚିତ୍ତ,ଏକତ୍ର ଅବସ୍ଥିତ, ଆକ୍ରାନ୍ତ, (ସ୍ତ୍ରୀ) ସମାବିଷ୍ଟା ।
ସମାବୃତ—ବି. (ସମ୍+ଆବୃତ) ଘେରି-ଆଡ଼େ ଆବୃତ, ଚତୁର୍ଦ୍ଦିଗରେ ବେଷ୍ଟିତ, ଲୁକ୍କାୟିତ, ସଂଯୋଜିତ ।
ସମାବୃତ୍ତ—ବି. (ସମ୍+ଆ+ବୃତ୍+ କ.ତ) ପ୍ରତ୍ୟାବୃତ୍ତ, ଗୁରୁଗୃହରେ ବେଦପାଠ ଶେଷ କରି ଗୃହସ୍ଥାଶ୍ରମ ଆରମ୍ଭ କରିବାପାଇଁ ଗୃହକୁ ପ୍ରତ୍ୟାବୃତ୍ତ, ଲବ୍ଧାନୁଜ୍ଞ,ଯେଉଁ ଦ୍ୱିଜ ଯୁବକ ବ୍ରହ୍ମଚର୍ଯ୍ୟାଶ୍ରମ ପରେ ଗୁରୁଙ୍କ ଆଦେଶପାଇ ଗୃହସ୍ଥାଶ୍ରମରେ ପ୍ରବେଶ କରିବାପାଇଁ ଗୃହକୁ ଫେରି ଆସିଅଛନ୍ତି ।
ସମାବୃତ୍ତକ—ବି. ( ସମାବୃତ୍ତ+କ ) ସମାବୃତ୍ତ ଦେଖ ।
ସମାବୃତ୍ତି—ସ୍ତ୍ରୀ.ବି. (ସମ୍+ଆ+ବୃତ୍ +ତି) ସମାବର୍ତ୍ତନ ଦେଖ ।
ସମାବେଶ—ବି. (ସମ୍+ଆ+ବିଶ୍+ ଭା.ଅ) ପ୍ରବେଶ, ସଂସ୍ଥିତି,ମନୋଯୋଗ, ଏକତ୍ରାବସ୍ଥିତି ।
ସମାବେଶନ—ବି. (ସମ୍+ଆ+ବିଶ୍+ ଣିଚ୍+ଭା.ଅନ) ପ୍ରବେଶ କରାଇବା, ଏକତ୍ର ସ୍ଥାପନ ।
ସମାବେଶିତ—ବି. ( ସମ୍+ଆ+ବିଶ୍ ଣିଚ୍+ମି.ତ) ପ୍ରବେଶିତ, ସମାବେଶ-ପ୍ରାପ୍ତ,ଏକତ୍ର ରଖାଯାଇଥିବା,ସଂସ୍ଥାପିତ, ଅଭିନିବେଶିତ, ଯାହାର ମନୋଯୋଗ ଅନ୍ୟଦ୍ୱାରା ଆକର୍ଷିତ ହୋଇଅଛି ।
ସମାଭାଷଣ—କ୍ଲୀ. ବି. (ସମ୍+ଆ+ଭାଷ୍ + ଅନ) ସମ୍ୟକ୍‌ରୂପେ ଆଭାଷଣ ।
ସମାମ୍—ପୁଂ.ବି. ଦୈର୍ଘ୍ୟ ।
ସମାମ୍ନାନ—କ୍ଲୀ.ବି. ବୃତ୍ତି, ଅର୍ଥଦାନ ।
ସମାମ୍ନାତ—ବି. (ସମ୍+ଆମ୍ନାତ)ସମାଧ୍ମାତ, ସମୋଚ୍ଚାରିତ, ଏକସଙ୍ଗେ ପଠିତ ।
ସମାମ୍ନାୟ—ବି(ସମ୍+ଆ+ମ୍ନା+ଭା.ଅ) ଏକତ୍ର ପଠନ, ଏକତ୍ର ଉଚ୍ଚାରଣ, ପାଠକ୍ରମ, ପରମ୍ପରତା, (ମି.ଅ) ଶାସ୍ତ୍ର, ସଂଖ୍ୟା, ସମଷ୍ଟି ।
ସମାମ୍ନାୟମୟ—ବି.ଶାସ୍ତ୍ରମୟ, ଶାସ୍ତ୍ରସ୍ୱରୂପ
ସମାମ୍ନାୟିକ—ବି. (ସମାମ୍ନାୟ+ଇକ) ଶାସ୍ତ୍ରସମ୍ବନ୍ଧୀୟ, ଶାସ୍ତ୍ରରେ ପଠିତ ।
ସମାମ୍ୟ—ବି. ଦୈର୍ଘ୍ୟଯୁକ୍ତ ।
ସମାୟ—ପୁଂ. ବି. ଉପସ୍ଥିତି, ଆଗମନ, ସାକ୍ଷାର୍ଥେ ଗମନ ।
ସମାୟାତ—ପୁଂ. ବି. (ସମ୍+ଆୟାତ) ସମାଗତ, ଉପସ୍ଥିତ, ଏକତ୍ର ଆଗତ, (ସ୍ତ୍ରୀ) ସମାୟାତା ।
ସମାଯୁକ୍ତ—ବି. ( ସମ୍+ଆ+ଯୁଜ୍+ ମି.ତ) ଏକତ୍ରଯୁକ୍ତ, ସଂଯୁକ୍ତ ।
ସମାଯୋଗ—ବି. (ସମ୍+ଆ+ଯୁଜ୍+ ଭା.ଅ) ସମୂହ,ସମଷ୍ଟି, ଦଳ,ଉଦ୍ଦେଶ୍ୟ, କାରଣ, ଉଦ୍ଭବ, ସ୍ଥାନ, ସଂଯୋଗ, ସମବାୟ,ପ୍ରଯୋଜନ,(ମି.ଅ)ପରିଚ୍ଛଦ ।
ସମାର—ଗ୍ରା.ବି. (ସଂ-ସମ୍ଭାର)ଦେଉଳର ବେଢ଼ା ମଧ୍ୟରେ ଥିବା ଯେଉଁ କୋଠ-ରିରେ ଭୋଗ ପାଇଁ ଚୂନାକୁଟା,ବେଶର ବଟା, ପରିବା କଟାହୁଏ ।
ସମାରଭ୍ୟ—ବି. (ସମ୍+ଆ+ରଭ୍+ ଯ) ସମାରମ୍ଭର ଯୋଗ୍ୟ, ଆରମ୍ଭ କରି-ବାର ଉପଯୁକ୍ତ ।
ସମାରମ୍ଭ—ବି.(ସମ୍+ଆରମ୍ଭ)କୌଣସି ଅନୁଷ୍ଠାନର ବା କର୍ମର ଆରମ୍ଭ,ଆରବ୍ଧ କର୍ମ, ସମାରୋହ, ଆଡ଼ମ୍ବର ।
ସମାରମ୍ଭଣ—ବି. (ସମ୍+ଆ+ରମ୍ଭ୍ ଭା.ଅନ)ଆଲିଙ୍ଗନ, ଗ୍ରହଣ, ସମାଲମ୍ଭନ ଦେଖ ।
ସମାରମ୍ଭୀ—ପୁଂ. ବି. ଆରମ୍ଭଶୀଳ ।
ସମାରାଧନ—ବି (ସମ୍+ଆରାଧନ)ସମ୍ୟକ୍ ଆରାଧନ, ପୂଜନ,ସେବା,ପରିଚର୍ଯ୍ୟା ।
ସମାରାଧନତତ୍ପର—ପୁଂ. ବି. (ବି.ଗ୍ରା) ପୂଜା କରିବା ନିମନ୍ତେ ପ୍ରସ୍ତୁତ, (ସ୍ତ୍ରୀ) ସମାରାଧନତତ୍ପରା ।
ସମାରାଧିତ—ପୁଂ.ବି. (ସମ୍+ଆରାଧିତ) ସମ୍ୟକ୍ ପୂଜିତ,ସଂସେବିତ,(ସ୍ତ୍ରୀ) ରାଧିତା ।
ସମାରୁରୁକ୍ଷୁ—ବି.(ସମ୍+ଆ+ରୁହ୍+ ସନ୍+କ.ଉ) ସମାରୋହଣ କରିବାକୁ ଇଚ୍ଛୁକ ।
ସମାରୂଢ଼—ବି. ( ସମ୍+ଆରୂଢ଼ ) ସମାରୋହଯୁକ୍ତ, ଆଡ଼ମ୍ବରଯୁକ୍ତ, ଅଧ୍ୟୁ-ଷିତ, ଆରୂଢ଼, ଉପରେ ଚଢ଼ିଥିବା, (ସ୍ତ୍ରୀ) ସମାରୂଢ଼ା ।
ସମାରୋପ—ବି.(ସମ୍+ଆରୋପ)ସମ୍ୟକ୍ ରୋପଣ, ସବିଶେଷ ଆରୋପ ।
ସମାରୋପଣ—ବି. ସମ୍ୟକ୍ ଆରୋପଣ, ଆରୋପ ।
ସମାରୋହ—ବି. (ସମ୍+ଆରୋହ)ଅଧ୍ୟୁ-ଷିତ, ଆରୋହଣ, ଆଡ଼ମ୍ବର, ସମ୍ପତ୍ତି ।
ସମାରୋହଣ—ବି. ସମାରୋହ ଦେଖ ।

ସମାର୍ଜନ(ନା)—ଗ୍ରା. ବି. (ସଂ-ସମାଧାନ) ସମାଧାନ, ଆଶ୍ୱାସନା, ସମ୍ମାର୍ଜନ ।

ସମାର୍ଜିବା—ଗ୍ରା. କ୍ରି. (ପଦ୍ୟ)ଧୋଇବା ।

ସମାର୍ଥ—ବି. (କ.ଧା) ସମାନ ଅର୍ଥ, ଏକ ପ୍ରୟୋଜନ, ଏକ ଉଦ୍ଦେଶ୍ୟ, (ବିଂ-ବ.ବ୍ରୀ) ଏକାର୍ଥବିଶିଷ୍ଟ, ସମାର୍ଥକ ଦେଖ, (ସ୍ତ୍ରୀ) ସମର୍ଥା ।

ସମାର୍ଥକ—ବିଂ. ( ସମ୍+ଅର୍ଥ+କ ) ତୁଲ୍ୟାର୍ଥକ, ଏକାର୍ଥକ, ସମପ୍ରୟୋଜନ-ବିଶିଷ୍ଟ ।

ସମାର୍ଥୀ—ପୁଂ. ବିଂ. (ସମ୍+ଅର୍ଥ+କ. ଇନ୍) ଏକ ପ୍ରୟୋଜନ ବା ଉଦ୍ଦେଶ୍ୟ-ବିଶିଷ୍ଟ, ଶାନ୍ତି ପାଇଁ ଇଚ୍ଛୁକ, ମନର ସମତାସାଧନପ୍ରୟାସୀ, (ସ୍ତ୍ରୀ)ସମାର୍ଥିନୀ ।

ସମାର୍ବୁଦ—ବି. ଅର୍ବୁଦ ସଂଖ୍ୟା ତୁଲ୍ୟ, ତତ୍ପୂରଣ ।

ସମାର୍ଷ—ବିଂ. ସମ୍ୟକ୍ ରୂପେ ଋଷିଠାରୁ ଆଗତ ।

ସମାଲ୍—ଗ୍ରା, ଅ. ହୁସିଆର୍, ସାବଧାନ ହୁଅ, (ଆସନ୍ନ ବିପଦକୁ) ସମ୍ଭାଳିବାକୁ ବା ସହିବାକୁ ପ୍ରସ୍ତୁତ ହୁଅ ।

ସମାଲ—ଗ୍ରା.ବି.ସମ୍ଭାଳ, ଧୈର୍ଯ୍ୟଧାରଣ, ସହିଯିବା, ସହନଶୀଳତା, ଅପେକ୍ଷା-କରିବା,(ଗ୍ରା.ବିଂ)ଧୈର୍ଯ୍ୟଶୀଳ,ଅପେକ୍ଷା-କାରୀ, ସହନଶୀଳ,(ସଂ-ପୁଂ.ବିଂ-ବ,ବ୍ରୀ) ମାଳାବିଶିଷ୍ଟ ।

ସମାଲକ୍ଷ୍ୟ—ବିଂ. ( ସମ୍ +ଆ+ଲକ୍ଷ୍+ ର୍ମ.ଯ) ଦର୍ଶନଯୋଗ୍ୟ, ବିଶେଷ ରୂପେ ଚିହ୍ନିତ ରଖାଯିବାର ଯୋଗ୍ୟ, ଅଭି-ନିବେଶ ସହକାରେ ଦର୍ଶନଯୋଗ୍ୟ, ପ୍ରଣିଧାନଯୋଗ୍ୟ, (ସ୍ତ୍ରୀ) ସମାଲକ୍ଷ୍ୟା ।

ସମାଲଗା—ଗ୍ରା. କ୍ରିଂ. ଯନ୍ତ୍ରରେ ସମା ବା ମୁଦଆ ଲାଗିଥାଏ ।

ସମାଲବ୍ଧ—ବିଂ. (ସମ୍+ଆ+ଲଭ୍+ ର୍ମ.ତ) ରଞ୍ଜିତ, ଚର୍ଚ୍ଚିତ, ରଙ୍ଗ କରା-ଯାଇଥିବା, ଲେପିତ, ଆଲେପିତ, ମେଳିତ, ହତ ।

ସମାଲଭନ—ବି.(ସମ୍+ଆ+ଲଭ୍+ ଭ୍ବା.ଅନ)ସମାଲମ୍ଭନ,ଆଲେପନ,ହନନ, ବଧ ।

ସମାଲମ୍ବ—ବି.(ସମ୍+ଆ+ଲମ୍ବ+ଭା. ଅ)ରଜ୍ଜୁ ଓ ମାଳାଦି ଲମ୍ବାଇବା,ସମ୍ୟକ୍ ଆଶ୍ରୟ, ଭୂସ୍ତୃଣ, ସୁଗନ୍ଧ ତୃଣବିଶେଷ ।

ସମାଲମ୍ବୀ—ପୁଂ. ବି. ଭୂସ୍ତୃଣ, ସୁଗନ୍ଧ ତୃଣବିଶେଷ ।

ସମାଲମ୍ଭ—ବି.(ସମ୍+ଆ+ଲଭ୍+ଭା.ଅ) କୁଙ୍କୁମାଦି ବିଲେପନ, ମାରଣ, ହନନ, ବଧ ।

ସମାଲମ୍ଭନ—ବି. (ସମ୍+ଆ+ଲଭ୍+ ଭା.ଅନ) ରଞ୍ଜନ, ରଙ୍ଗାଇବା, ବିଲେ-ପନ, ବୋଳିବା, ମାରଣ, ହନନ,ବଧ, ଦେହରେ ଚନ୍ଦନାଦି ବୋଳିବା ।

ସମାଲମ୍ଭୀ—ପୁଂ. ବି.(ସମ୍+ଆ+ଲମ୍ଭ୍ +କ.ଇନ୍) ବିଲେପନକାରୀ, ମାରଣ-କାରୀ, ହତ୍ୟାକାରୀ, (ସ୍ତ୍ରୀ)ସମାଲମ୍ଭିନୀ ।

ସମାଲାପ—ପୁଂ. ବି. ( ସମ୍+ଆଲାପ ) ସମ୍ୟକ୍ ଆଲାପ ।

ସମାଳଆ—ଗ୍ରା. ବି. ସମାଳୁଆ ଦେଖ, ଧୈର୍ଯ୍ୟଶୀଳ,ସହନଶୀଳ,ଅପେକ୍ଷାକାରୀ ।

ସମାଲିଙ୍ଗନ—ବି. ( ସମ୍+ଆଲିଙ୍ଗନ ) ସମ୍ୟକ୍ ଆଲିଙ୍ଗନ ।

ସମାଳୀ—ସ୍ତ୍ରୀ· ବି. (ବ.ବ୍ରୀ; ସ+ମାଳ+ ଈ) କୁସୁମକାର, ଫୁଲର ତୋଡ଼ା ।

ସମାଲୋକ—ବି. (ସମ୍+ଆ+ଲୋକ୍ +ଭା.ଅ) ସମ୍ୟକ୍‌ରୂପେ ଦର୍ଶନ, ଉତ୍ତମ-ରୂପେ ଦେଖିବା ।

ସମାଲୋକନ—କ୍ଲୀ. ବି. (ସମ୍+ଆ+ ଲୋକ୍+ଅନ) ସମ୍ୟକ୍‌ରୂପେ ଆଲୋ-କନ, ଦର୍ଶନ ।

ସମାଲୋକୀ—ପୁଂ. ବିଂ. (ସମ୍+ଆ+ ଲୋକ୍+ଇନ୍) ସମାଲୋକନକାରୀ, ଦ୍ରଷ୍ଟା, ଦର୍ଶନକାରୀ ।

ସମାଲୋକ୍ୟ—ବିଂ.(ସମ୍+ଆ+ଲୋକ୍ +ଯ)ସମାଲୋକନାର୍ହ,ଦର୍ଶନଯୋଗ୍ୟ ।

ସମାଲୋଚ—ବି. (ସମ୍+ଆ+ଲୋଚ୍+ ଅ) ସମ୍ୟକ୍‌ପ୍ରକାରେ ଆଲୋଚନ,ସମା-ଲୋଚନା ।

ସମାଲୋଚକ—ପୁଂ. ବି. ଓ ବିଂ (ସମ୍+ ଆ+ଲୋଚ୍+କ.ଅକ) ସମାଲୋଚୀ ଦେଖ, (ସ୍ତ୍ରୀ) ସମାଲୋଚକା ।

ସମାଲୋଚନ(ନା)—ବି.(ସମ୍+ଆଲୋ-ଚନ) କୌଣସି ବସ୍ତୁର,ବ୍ୟକ୍ତିର,ବିଷ-ୟର ବା ରଚନାର ଦୋଷଗୁଣାଦିର ସମ୍ୟକ୍ ଆଲୋଚନା ।

ସମାଲୋଚନୀୟ—ବିଂ. (ସମ୍+ଆଲୋ-ଚନୀୟ) ଆଲୋଚିତ ହେବାଯୋଗ୍ୟ ।

ସମାଲୋଚିତ—ବିଂ. କୃତସମାଲୋଚନ, ଯାହାର ଦୋଷ ଗୁଣର ବିଚାର କରା-ହୋଇଅଛି ।

ସମାଲୋଚୀ—ପୁଂ. ବିଂ ଓ ବି. (ସମ୍+ ଆ+ଲୋଚ୍+କ.ଇନ୍)ସମାଲୋଚନ-କାରୀ, (ସ୍ତ୍ରୀ) ସମାଲୋଚିନୀ ।

ସମାଲୋଚ୍ୟ—ବିଂ. (ସମ୍+ଆ+ଲୋଚ୍ +ର୍ମ.ଯ) ସମାଲୋଚନାର ଯୋଗ୍ୟ, ଯାହାର ଦୋଷ ଗୁଣର ବିଚାରକରିବା ଉଚିତ ବା କରାଯିବା ଉଚିତ ।

ସମାଶ—ବି.(ସମ୍+ଅଶ୍+ଭା.ଅ)ସମ୍ୟକ୍ ଭକ୍ଷଣ, ସମ୍ୟକ୍ ଉପଭୋଗ ।

ସମାଶଙ୍କିତ—ପୁଂ.ବିଂ. (ସମ୍+ଆଶଙ୍କିତ) ଅତ୍ୟନ୍ତ ଭୀତ, ଅତ୍ୟନ୍ତ ସନ୍ଦିଗ୍ଧ ।

ସମାଶ୍ରୟ—ବି. (ସମ୍+ଆଶ୍ରୟ) ସମ୍ୟକ୍ ଆଶ୍ରୟ, ଅବଲମ୍ବନ, ସହାୟ, ରକ୍ଷା, ସମ୍ୟକ୍ ଆଧାର ।

ସମାଶ୍ରୟଣୀୟ—ବିଂ. (ସମ୍+ଆ+ଶ୍ରି +ଅନୀୟ) ସମ୍ୟକ୍‌ରୂପେ ଆଶ୍ରୟଣୀୟ, ସମ୍ୟକ୍‌ରୂପେ ଆଶ୍ରୟର ଯୋଗ୍ୟ ।

ସମାଶ୍ରୟୀ—ପୁଂ. ବିଂ. (ସମ୍+ଆ+ଶ୍ରି +ଇନ୍) ସମାଶ୍ରୟଯୁକ୍ତ, ସମ୍ୟକ୍‌ରୂପେ ଆଶ୍ରିତ ।

ସମାଶ୍ରିତ—ବିଂ.(ସମ୍+ଆ+ଶ୍ରି+ର୍ମ.ତ) ସମ୍ୟକ୍‌ପ୍ରକାରେ ଆଶ୍ରିତ, ଅବଲମ୍ବିତ, ରକ୍ଷିତ ।

ସମାଶ୍ଲେଷ—ବି. (ସମ୍+ଆଶ୍ଲେଷ) ଦୃଢ଼ ଆଲିଙ୍ଗନ, (ବିଂ) ସମାଶ୍ଲେଷିତ ।

ସମାଶ୍ଲେଷଣ—ବି. (ସମ୍+ଆ+ଶ୍ଲିଷ୍ + ଅନ) ସମାଶ୍ଲେଷ, ଆଲିଙ୍ଗନ ।

ସମାଶ୍ୱାସ—ପୁଂ. ବି. (ସମ୍+ଆ+ଶ୍ୱସ୍

+ଅ) ସମ୍ୟକ୍‌ପ୍ରକାରେ ଆଶ୍ୱାସ. ଆଶ୍ୱାସଦାତା ।

ସମାଶ୍ୱାସନ—ବିଂ.ସମ୍ୟକ୍ ଆଶ୍ୱାସଶୀଳ ।

ସମାଶ୍ୱାସ୍ୟ—ବିଂ.ସମ୍ୟକ୍ ଆଶ୍ୱାସଯୋଗ୍ୟ

ସମାଷ—ବିଂ. (ବି.ଗ୍ରା) ଗ୍ରାମ୍ୟମିଶ୍ରିତ ।

ସମାସ—ବି. ( ସମ୍ + ଅସ୍ + ଭା.ଅ ) ସଂକ୍ଷେପ, ସଂଗ୍ରହ, ସମାହାର, ମିଳନ, ସମର୍ଥନ, ( ସ + ମାସ ) ସମ୍ବତ୍ସର, (ବ୍ୟାକରଣ) ଦୁଇ ବା ତତୋଧିକ ପଦମଧ୍ୟସ୍ଥ ବିଭକ୍ତିର ଲୋପକରି ସେମାନଙ୍କୁ ଏକପଦ କରଣ, ଅନେକପଦର ଏକପଦ କରଣ, ସମାସ ଛଅ ପ୍ରକାର, ଯଥା—ଦ୍ୱନ୍ଦ୍ୱ, ବହୁବ୍ରୀହି, କର୍ମଧାରୟ, ତତ୍ପୁରୁଷ, ଦ୍ୱିଗୁ, ଅବ୍ୟୟୀଭାବ ।

ସମାସକରିବା—ଗ୍ରା. କ୍ରି. ଭିନ୍ନ ଭିନ୍ନ ପଦକୁ ଏକତ୍ର କରି ସମସ୍ତପଦରେ ପରିଣତ କରିବା ।

ସମାସକ୍ତ—ବିଂ. (ସମ୍ + ଆସକ୍ତ)ଅତ୍ୟାସକ୍ତ, ସଂଲଗ୍ନ, ଯୁକ୍ତ, ଲବ୍ଧ, ଅଭିନିବିଷ୍ଟ, ବଶୀକୃତ, ରଶୀକୃତ,(ସ୍ତ୍ରୀ)ସମାସକ୍ତା ।

ସମାସକ୍ତି—ବି. (ସମ୍ + ଆସକ୍ତି)ସମାସଙ୍ଗ ଦେଖ ।

ସମାସଙ୍ଗ—ବି. (ସମ୍ + ଆସଙ୍ଗ)ଅତ୍ୟାସକ୍ତି, ଅଭିନିବେଶ, ସଂଯୋଗ ।

ସମାସଞ୍ଜନ—ବି. ( ସମ୍ + ଆ + ସଞ୍ଜ୍ + ଅନ)ସମାସଙ୍ଗ ଦେଖ ।

ସମାସତ୍ତି—ସ୍ତ୍ରୀ.ବି. (ସମ୍ + ଆ + ସଦ୍ + ଭା.ତି) ସନ୍ନିକର୍ଷ, ନିକଟ ।

ସମାସନ—ବି. (କ.ଧା) ସମାନ ଆସନ, ଏକଆସନ, (ପୁଂ ବିଂ.ବି.ଗ୍ରା) ସମାନ ଆସନବିଶିଷ୍ଟ, ଏକ ଆସନରେ ଆସୀନ, (ସ୍ତ୍ରୀ) ସମାସନା ।

ସମାସନ୍ନ—ବିଂ. (ସମ୍ + ଆସନ୍ନ)ସନ୍ନିହିତ, ଅତି ନିକଟବର୍ତ୍ତୀ, ପ୍ରାପ୍ତ ।

ସମାସପୁର-ପ୍ରାଚୀନ ଭୋଜରାଜ୍ୟର ଅନ୍ତର୍ଗତ ଗୋଟିଏ ନଗର ।

ସମାସବାନ୍—ବିଂ. ସମାସବିଶିଷ୍ଟ, ସମାସଯୁକ୍ତ, ସଂକ୍ଷିପ୍ତ, (ବି) ଗୁନ୍ଦ୍ର ବୃକ୍ଷ ।

ସମାସବିଗ୍ରହ—ବି. (୬ତତ୍ପୁ)ସମସ୍ତପଦକୁ ଭଙ୍ଗି ତହିଁର ସମସ୍ୟମାନ ପଦମାନଙ୍କର ପୃଥକ୍‌କରଣ ।

ସମାସଭାବନା—ବି. (ବୀଜଗଣିତ)ବିଭିନ୍ନ ଗୁଣ ଫଳର ଯୋଗଫଳର ନିର୍ଦ୍ଧାରଣ, ଦୁଇଟି କ୍ଷୁଦ୍ରାଂଶର ସମଷ୍ଟି ।

ସମାସାଦିତ—ବିଂ. (ସମ୍ + ଆ + ସଦ୍ + ଣିଚ୍ + ର୍ମ.ତ) ପ୍ରାପିତ, ସଂପ୍ରାପ୍ତ, ଲବ୍ଧ, ସମାଗତ, ଅଦ୍ଭୁତ, ଆକ୍ରାନ୍ତ, ପହଞ୍ଚା ଯାଇଥିବା,ଉଦ୍ଧୃତ, (ସ୍ତ୍ରୀ) ସମାସାଦିତା ।

ସମାସାଦ୍ୟ—ବିଂ. (ସମ୍ + ଆ + ସଦ୍ + ର୍ମ.ଯ)ପ୍ରାପ୍ୟ, ଲଭ୍ୟ, ଉଦ୍ଧୃତ ହେବାର ଯୋଗ୍ୟ, ସମାଗତ ହେବା ଯୋଗ୍ୟ ।

ସମାସାନ୍ତ—ବି. (ବ୍ୟାକରଣ)ସମାସହେବା ପରେ ଦିଆଯିବା ପ୍ରତ୍ୟୟବିଶେଷ ।

ସମାସାର୍ଥ—ବି. (୬ତତ୍ପୁ) ସମାସର ଅର୍ଥ, ସଂକ୍ଷିପ୍ତାର୍ଥ, (ବି.ଗ୍ରା) ସମସ୍ୟା ।

ସମାସାର୍ଥା—ସ୍ତ୍ରୀ. ବି. ସମସ୍ୟା, ଶ୍ଳୋକର ଏକ ଦୁଇ ବା ତିନିପାଦ ଦ୍ୱାରା ପୂରଣ ।

ସମାସାର୍ଦ୍ଧ—ବିଂ. (ବି.ଗ୍ରା) ମାସାର୍ଦ୍ଧ ବା ପକ୍ଷବ୍ୟାପୀ ।

ସମାସୀନ—ପୁଂ. ବିଂ. ( ସମ୍ + ଆସୀନ) ବସିଥିବା, କୃତୋପବେଶନ, ଉପବିଷ୍ଟ, ( ସ୍ତ୍ରୀ) ସମାସୀନା ।

ସମାସୃଷ୍ଟ—ବିଂ. ତ୍ୟକ୍ତ, ସମୁଜ୍ଝିତ ।

ସମାସେଚନ—କ୍ଲୀ. ବି. ସମ୍ୟକ୍‌ରୂପେ ଅଭିଷେକ ।

ସମାସୋକ୍ତ—ବିଂ. (୩ତତ୍ପୁ) ସଂକ୍ଷେପରେ ଉକ୍ତ ।

ସମାସୋକ୍ତି—ବି. (୬ତତ୍ପୁ) ଅର୍ଥାଲଙ୍କାରବିଶେଷ, ସମାନ କାର୍ଯ୍ୟ, ସମାନ ଲିଙ୍ଗ ଓ ସମାନ ବିଶେଷଣ ଦ୍ୱାରା ଯେଉଁ ସ୍ଥଳରେ ପ୍ରକୃତ ବିଷୟରେ ଅନ୍ୟର ବ୍ୟବହାର ଆରୋପ ହୁଏ ।

ସମାହତ—ବିଂ.(ସମ୍ + ଆହତ)ସମ୍ୟକ୍‌ରୂପେ ଆହତ, ତାଡ଼ିତ ।

ସମାହାର—ବିଂ.ସମ୍ୟକ୍‌ରୂପେ ଆହରଣଶୀଳ ।

ସମାହରଣ-ବି.(ସମ୍ + ଆହରଣ)ଏକତ୍ରୀକରଣ, ସଂଗ୍ରହ, ସଞ୍ଚୟ, ସଂକ୍ଷିପ୍ତ କରିବା ।

ସମାହର୍ତ୍ତା—ପୁଂ.ବିଂ. (ସମ୍ + ଆ + ହୃ + ତୃ) ସମାହରଣକାରୀ, ମିଳନକାରୀ, ସଂକ୍ଷେପକାରୀ, (ସ୍ତ୍ରୀ) ସମାହର୍ତ୍ତ୍ରୀ ।

ସମାହାର—ପୁଂ.ବି. (ସମ୍ + ଆ + ହୃ + ଭା.ଅ) ସଂଗ୍ରହ, ବହୁ ବସ୍ତୁର ଏକତ୍ରୀକରଣ, ଆହରଣ, ସଂକ୍ଷେପ, ମେଳନ, ସମଷ୍ଟି,ସମୂହ, ପୁଞ୍ଜ, ଦ୍ୱନ୍ଦ୍ୱ ଓ ଦ୍ୱିଗୁ ସମାସବିଶେଷ ।

ସମାହାରଦ୍ୱନ୍ଦ୍ୱ—ବି. (ବ୍ୟାକରଣ) ଦ୍ୱନ୍ଦ୍ୱ ସମାସବିଶେଷ, ଯେଉଁ ସମାସରେ ସମସ୍ୟମାନ ପଦଦ୍ୱାରା ଲକ୍ଷିତ ବସ୍ତୁମାନଙ୍କର ସମାହାର ବା ସମଷ୍ଟି ସୂଚିତ ହୁଏ ।

ସମାହାରଦ୍ୱିଗୁ—ବି.(ବ୍ୟାକରଣ)ସମାସବିଶେଷ,ଯେଉଁ ସମାସରେ ସଂଖ୍ୟାଯୁକ୍ତ ବସ୍ତୁମାନଙ୍କ ସମଷ୍ଟି ବୁଝାଯାଏ ।

ସମାହାର୍ଯ୍ୟ—ବିଂ. (ସମ୍ + ଆ + ହୃ + ଯ) ସମାହାରଯୋଗ୍ୟ, ମିଳନାର୍ହ, ସଂକ୍ଷେପଯୋଗ୍ୟ ।

ସମାହିତ—ବିଂ. (ସମ୍ + ଆ + ଧା + ର୍ମ. ତ) ସମାଧିନିଷ୍ଠ,ଧ୍ୟାନମଗ୍ନ, ଏକାଗ୍ରଚିତ୍ତ, ଶାନ୍ତଚିତ୍ତ, ଅଭ୍ରାନ୍ତଚିତ୍ତ, ଦୃଢ଼, ନିଷ୍ପନ୍ନ, ମୀମାଂସିତ, ସ୍ଥାପିତ, ସଂଗୃହୀତ, ସମ୍ମତ, ଅଙ୍ଗୀକୃତ, ଦତ୍ତ, ବିଶୋଧିତ, ଭୂଗର୍ଭରେ ନିହିତ,(ଶବଦେହ)ପୋତାଯାଇଥିବା, ଶୁଚି, ନିର୍ବିବାଦୀକୃତ,ପ୍ରତିଜ୍ଞାତ ।

ସମାହୂତ—ବିଂ.(ସମ୍ + ଆହୂତ)ସମ୍ୟକ୍‌ରୂପେ ଆହୂତ, ନିମନ୍ତ୍ରିତ ।

ସମାହୃତ—ବିଂ. (ସମ୍ + ଆ + ହୃ + ର୍ମ.ତ ) ସଂଗୃହୀତ, ସଞ୍ଚିତ, ସଙ୍କଳିତ, ଏକତ୍ରୀକୃତ,ସଂକ୍ଷିପ୍ତ, ଆକୃଷ୍ଟ, ଆୟୋଜିତ, ଅନୀତ, ପ୍ରାପ୍ତ ।

ସମାହୃତି—ବି. (ସମ୍ + ଆ + ହୃ + ଭା. ତି) ସମାହାର,ସଂଗ୍ରହ,ସଞ୍ଚୟ,ସଂକ୍ଷେପ, ଆୟୋଜନ, ଏକ ବା ଅନେକ କର୍ତ୍ତୃକ ଏକାଭିପ୍ରାୟ ବାକ୍ୟମାନଙ୍କ ଏକୀକରଣ ।

ସମାହ୍ୱ—ପୁଂ.ବିଂ. (ସମ୍ + ଆହ୍ୱା + ଅ) ସମନାମ ବିଶିଷ୍ଟ, (ସ୍ତ୍ରୀ) ସମାହ୍ୱା ।

ସମାହ୍ୱୟ—ବି. (ସମ୍ + ଆ + ହ୍ୱେ +

ଣ.ଅ) ଯୁଦ୍ଧକୁ ଆହ୍ୱାନ, ( ଅପ୍ର.ଅ ) ପ୍ରାଣିଦ୍ୟୂତ, ବାଜିରଖି ପଶୁପକ୍ଷ୍ୟାଦି ଦ୍ୱାରା ଯୁଦ୍ଧ କରାଇବା, ଯୁଦ୍ଧ, (ଣ.ଅ) ନାମ, ଆଖ୍ୟା, ଦ୍ୟୂତ ।

ସମାହ୍ୱା—ସ୍ତ୍ରୀ. ବିଂ. ସମାହ୍ୱର ସ୍ତ୍ରୀଲିଙ୍ଗ, (ବି) ଗୋଜିହ୍ୱାଶାକ, କୋବି ।

ସମାହ୍ୱାତା—ପୁଂ. ବିଂ. (ସମ୍ + ଆ + ହ୍ୱେ + କ.ତୃ) ଯୁଦ୍ଧକୁ ଆହ୍ୱାନକାରୀ, ଦ୍ୟୂତକୁ ଆହ୍ୱାନକାରୀ,(ସ୍ତ୍ରୀ)ସମାହ୍ୱାତ୍ରୀ ।

ସମାହ୍ୱାନ—ବି. (ସମ୍ + ଆହ୍ୱାନ)ଯୁଦ୍ଧକୁ ଆହ୍ୱାନ, ନିମନ୍ତ୍ରଣ, ସମ୍ମେଳନୀ, ଦ୍ୟୂତ-କ୍ରୀଡ଼ାକୁ ଆହ୍ୱାନ ।

ସମିଆନା—ଯା. ବି. ଚନ୍ଦ୍ରାତପ,ଚାନ୍ଦୁଆ ।

ସମିକ—ବି. (ସମ୍ + ଇକ) ବେଧନାସ୍ତ୍ର-ବିଶେଷ, ବନସିକଣ୍ଠା, ଶେଲ, ବର୍ଚ୍ଛା ।

ସମିତ୍—ବି. ( ସମ୍ + ଇ + ମିଂ.କ୍ୱିପ୍ ) ଯୁଦ୍ଧ, ସମର ।

ସମିତ୍(ଦ୍)—ବି. (ସମ୍ + ଇନ୍ଧ୍ + ଣ. କ୍ୱିପ୍) ଇନ୍ଧନ, ହୋମାଗ୍ନି ପ୍ରଜ୍ୱାଳନାର୍ଥ କାଷ୍ଠ, ଜାଳ, ହୋମସମିଧ, ଜାଳେଣି କାଠ ।

ସମିତ୍କର—ପୁଂ.ବିଂ. (ବ.ବ୍ରୀ)ହାତରେ ସମିଧ ଧରିଥିବା । [ ଚଢ଼ା ।

ସମିତ୍କଲାପ—ବି.(ଷତତ୍)ଯଜ୍ଞ ସମିଧର

ସମିତ୍କାଷ୍ଠ—ବି. ( କ.ଧା ) ଯଜ୍ଞାଗ୍ନି ସନ୍ଦୀପନାର୍ଥ ବ୍ୟବହୃତ କାଷ୍ଠ ।

ସମିତ୍କୁଶ—ବି. (ଦ୍ୱନ୍ଦ୍ୱ) ଯଜ୍ଞାର୍ଥ ସମିଧ ଓ କୁଶ ।

ସମିତ୍ପାଣି—ପୁଂ. ବିଂ. (ବ.ବ୍ରୀ) ସମି-ଦ୍ଧସ୍ତ, ଯାହାର ହସ୍ତରେ ସମିଧ ଥାଏ ।

ସମିତ—ବି. (ପାରିଭାଷିକ ଶବ୍ଦ) ଦୁଇ-ବସ୍ତୁର ସମତା ବା ତୁଲ୍ୟତାଜ୍ଞାପକ ଚିହ୍ନ,=ଏହିପରି ସମାନ ଚିହ୍ନ, (ବିଂ-ସମ୍ + ଇ + କ.ତ)ଏକତ୍ରୀଭୂତ,(ମିଂ.ତ) ସମ୍ୟକ୍‌ପ୍ରାପ୍ତ, (ସ୍ତ୍ରୀ) ସମିତା, (ଗ୍ରା.ବିଂ) ସମାନ ।

ସମିତା—ସ୍ତ୍ରୀ. ବି.(ସମ୍ + ଇ + କ.ତ + ଆ)ଗୋଧୂମଚୂର୍ଣ୍ଣ, ମଇଦା ବା ଅଟା ।

ସମିତି—ବି. (ସମ୍ + ଇ + ମିଂ ବା ଅପ୍ର. ତି) ସଭା, କମିଟି,ଯୁଦ୍ଧ, (ଭା.ତି)ସଙ୍ଗ, ସାମ୍ୟ, ସନ୍ନିପାତ ।

ସମିତିକଜାତି—ଯା.ବି.ପଶ୍ଚିମ ଆସିଆରେ ପ୍ରାଚୀନ କାଳରେ ବାସକରୁଥିବା ଜାତି-ବିଶେଷ ।

ସମିତିଙ୍ଗମ—ପୁଂ. ବିଂ. (ସମିତିଂ + ଗମ୍ + କ.ଅ) ସଭାସମିତିକୁ ଗମନକାରୀ ।

ସମିତିଞ୍ଜୟ—ପୁଂ. ବିଂ. (ସମିତିଂ + ଜି + କ.ଅ) ଯୁଦ୍ଧରେ ଜୟୀ, (ବି) ଯମ, ବିଷ୍ଣୁ, ଭାରତବର୍ଣ୍ଣିତ ଯୋଦ୍ଧୃବିଶେଷ ।

ସମିଥ—ବି. (ସମ୍ + ଇ + କ.ଥ)ଅଗ୍ନି, (ମିଂ.ଥ) ଯୁଦ୍ଧ, (ଣ.ଥ)ଆହୁତି,(ପୁଂ.ବିଂ) ଆହ୍ୱାତ, ଅଗ୍ନିରେ ଆହୁତି ଦିଆଯାଇ-ଥିବା ।

ସମିଥୁନ—ବିଂ. ମିଥୁନଯୁକ୍ତ, ମିଥୁନର ସହିତ ବର୍ତ୍ତମାନ ।

ସମିଦ୍—ବି. ସମିଧ୍ ଦେଖ ।

ସମିଦ୍ଧ—ବିଂ. ( ସମ୍ + ଇନ୍ଧ୍ + କ.ତ ) ପ୍ରଦୀପ୍ତ, ପ୍ରଜ୍ୱଳିତ, ଉତ୍ତେଜିତ ।

ସମିନ୍ଧନ—ବି. (ସମ୍ + ଇନ୍ଧ + ଣ.ଅନ) ଅଗ୍ନି ପ୍ରଜ୍ୱାଳନାର୍ଥ କାଷ୍ଠାଦି, ଜାଳ, (ଭା.ଅନ) ଉଦ୍ଦୀପନ ।

ସମିଦ୍ଧବାନ୍—ପୁଂ.ବିଂ. (ସମିଦ୍ଧ + ବତ୍) ସମିଦ୍ଧବିଶିଷ୍ଟ, ସମିଦ୍ଧ ।

ସମିଦ୍ଧାଗ୍ନି—ପୁଂ.ବିଂ.ପ୍ରଦୀପ୍ତ ଅଗ୍ନିବିଶିଷ୍ଟ ।

ସମିଦ୍ଧାର—ପୁଂ. ବିଂ. ( ସମିତ୍ + ହୃ + କ.ଅ) ସମିଧ ଆହରଣକାରୀ, ସମିଧ ସଂଗ୍ରହକାରୀ ।

ସମିଦ୍ବର—ବି. (ସମିଦ୍ + ବର)ପଳାଶ ।

ସମିଦ୍ଭାର—ବି. (ଷତତ୍)ସମିଧର ଭାର ।

ସମିଧ୍—ବି. ( ସମ୍ + ଇନ୍ଧ + ଣ.କ୍ୱିପ୍ ) ଇନ୍ଧନ, ଜାଳ, ଜାଳେଣି କାଠ, ଅଗ୍ନି ସନ୍ଦୀପନାର୍ଥ ବ୍ୟବହୃତ ତୃଣ କାଷ୍ଠାଦି, ହୋମକାଷ୍ଠ, ହୋମ ସମିଧ ।

ସମିଧ—ବି.(ସମ୍ + ଇନ୍ଧ + କ.ଅ)ଅଗ୍ନି, (ଗ୍ରା.ବି) ସମିଧ୍ ଦେଖ ।

ସମିନ୍ଧ—ପୁଂ.ବି.(ସମ୍ + ଇନ୍ଧ + ଅ)ଅଗ୍ନି ।

ସମିନ୍ଧନ—ବି. (ସମ୍ + ଇନ୍ଧ୍ + ଣ.ଅନ) ଯଜ୍ଞକାଷ୍ଠ,ସମିତ୍, (ଭା.ଅନ) ଉଦ୍ଦୀପନ, ଉତ୍ତେଜିତକରଣ ।

ସମିବା—ପ୍ରା.(ସମ୍)କ୍ରି. ପଶିବା, ପ୍ରବେଶ କରିବା । [ ପବନ ।

ସମିର—ବି. (ସମ୍ + ଇ + କ.ର)ବାୟୁ;

ସମିଶ୍ର—ବି. ଏକତ୍ର ମିଳିତ ହୋଇ ଅବସ୍ଥାନ ।

ସମିଷ୍ଟି—ସ୍ତ୍ରୀ. ବି. ଯଜ୍ଞ ସମ୍ପାଦନ ।

ସମୀକ—ବି. ( ସମ୍ + କ.ଈକ ) ଯୁଦ୍ଧ, ସମର ।

ସମୀକରଣ-ବି.(ସମ୍ + (ଚ୍ୱି)ଈ + କରଣ) ସଦୃଶୀକରଣ, ଅସମ ପଦାର୍ଥମାନଙ୍କୁ ସମାନ କରିବା, (ବୀଜଗଣିତ) ଅଜ୍ଞାତ ସଂଖ୍ୟା ନିର୍ଣ୍ଣୟ କରିବାର ଗାଣିତିକ ପ୍ରକ୍ରିୟାବିଶେଷ, କୌଣସି ନିର୍ଦ୍ଦିଷ୍ଟ ରାଶିକୁ ଗ୍ରହଣ କରି ତଦ୍ବଳରେ କୌଣସି ଅନିର୍ଦ୍ଦିଷ୍ଟ ରାଶିର ପରିମାଣ ନିର୍ଣ୍ଣୟକରଣ, ( ଗଣିତ ) ଏକାଧିକ ଭଗ୍ନାଂଶମାନଙ୍କୁ ସମାନ ହରବିଶିଷ୍ଟ ଭଗ୍ନାଂଶରେ ପରିଣତ କରିବା ।

ସମୀକାର—ବି. (ସମ୍ + କୃ + ଚ୍ୱି + ଅ) ସମୀକରଣ ଦେଖ ।

ସମୀକୃତ—ବିଂ(ସମ୍ + (ଚ୍ୱି)ଈ + କୃତ) ସମାନୀକୃତ, ଏକୀକୃତ, ସମୀକରଣ ରୂପେ ଗଠିତ ।

ସମୀକୃତି—ସ୍ତ୍ରୀ. ବି. ସମାନକରଣ ।

ସମୀକ୍ରିୟା—ସ୍ତ୍ରୀ.ବି. ସମୀକରଣ ଦେଖ ।

ସମୀକ୍ଷ—ବି. ( ସମ୍ + ଈକ୍ଷ୍ + ଣ.ଅ ) ସାଂଖ୍ୟଦର୍ଶନ,(ଭା.ଅ) ସମ୍ୟକ୍ ବିଚାର, ସମ୍ୟକ୍ ଦର୍ଶନ, ଯତ୍ନ,ଅନ୍ୱେଷଣ,ଆଲୋ-ଚନା, ବିବେଚନା, ସମ୍ୟକ୍ ଜ୍ଞାନ ।

ସମୀକ୍ଷକ—ପୁଂ. ବି. (ସମ୍ + ଈକ୍ଷ୍ + କ. ଅକ) (ହିସାବ ପତ୍ରଆଦିର)ପରିଦର୍ଶକ, ପର୍ଯ୍ୟବେକ୍ଷକ,(ପୁଂ.ବିଂ)ସମ୍ୟକ୍ ଦର୍ଶନ-କାରୀ, (ସ୍ତ୍ରୀ) ସମୀକ୍ଷିକା ।

ସମୀକ୍ଷଣ—ବି. (ସମ୍ + ଈକ୍ଷଣ) ସମ୍ୟକ୍ ଦର୍ଶନ,ପ୍ରେକ୍ଷଣ, ପର୍ଯ୍ୟବେକ୍ଷଣ,ଆଲୋ-ଚନା, ଅନ୍ୱେଷଣ, ସାଂଖ୍ୟଦର୍ଶନ, ଯତ୍ନ, (ବିଂ) ପ୍ରକାଶକ ।

ସମୀକ୍ଷା—ବି.(ସମ୍ + ଈକ୍ଷ + ଭା.ଅ + ଆ)

ସମ୍ୟକ୍ ଦର୍ଶନ, ପର୍ଯ୍ୟବେକ୍ଷଣ, ଯଥାର୍ଥ ବୁଦ୍ଧି, ପ୍ରକୃତ, (ଜୈମିନୀଙ୍କ) ମୀମାଂସା ଶାସ୍ତ୍ର, (ବେଦାନ୍ତ ଦର୍ଶନ) ଚତୁର୍ବିଂଶତ ତତ୍ତ୍ୱ, ଆଲୋଚନା, ଅନୁସନ୍ଧାନ, ଅନ୍ୱେଷଣ ।

ସମୀକ୍ଷିତ—ବିଂ. (ସମ୍ + ଈକ୍ଷ୍ + ର୍ମି.ତ) ସମ୍ୟକ୍ ଦୃଷ୍ଟ, ପର୍ଯ୍ୟବେକ୍ଷିତ, ଅନ୍ୱେଷିତ, ଆଲୋଚିତ, ଉତ୍ତମ ରୂପେ ପରୀକ୍ଷିତ (ହିସାବ) ।

ସମୀକ୍ଷିତବ୍ୟ—ବିଂ(ସମ୍ + ଈକ୍ଷ୍ + ତବ୍ୟ) ସମୀକ୍ଷଣର ଉପଯୁକ୍ତ, ସମ୍ୟକ୍ ପ୍ରକାରେ ଦର୍ଶନଯୋଗ୍ୟ ।

ସମୀକ୍ଷୀକରଣ—ବି. ବିବାହ ପରେ ବର ଓ କନ୍ୟାଙ୍କର ପରସ୍ପର ମୁଖାବଲୋକନ ପୂର୍ବକ ବୈଦିକ ମନ୍ତ୍ରୋଚ୍ଚାରଣ ରୂପ କର୍ମ

ସମୀକ୍ଷ୍ୟ—ବି. ( ସମ୍ + ଈକ୍ଷ୍ + ର୍ମି.ଯ ) ସମୀକ୍ଷା ଦେଖ, (ବିଂ) ସମୀକ୍ଷଣ ଯୋଗ୍ୟ (ସଂ-ଅସମାପିକା କ୍ରିୟା ) ପୂର୍ବାପର ବିବେଚନା କରି ।

ସମୀକ୍ଷ୍ୟକାରିତା—ବି. (ସମୀକ୍ଷ + କୃ + କ.ଇନ୍ + ଭା.ତା) ପୂର୍ବାପର ବିବେଚନା ପୂର୍ବକ କାର୍ଯ୍ୟକାରିତା, ପରିଣାମଦର୍ଶିତା ।

ସମୀକ୍ଷ୍ୟକାରୀ—ପୁଂ. ବିଂ. (ସମୀକ୍ଷ୍ୟ + କୃ + କ.ଇନ୍)ବିବେଚନା ପୂର୍ବକ କାର୍ଯ୍ୟକାରୀ, ପରିଣାମଦର୍ଶୀ, (ସ୍ତ୍ରୀ) ସମୀକ୍ଷ୍ୟକାରିଣୀ ।

ସମୀକ୍ଷ୍ୟବାଦୀ—ପୁଂ. ବିଂ.(ସମୀକ୍ଷ୍ୟ + ବଦ୍ + କ.ଇନ୍ ) ଯେ ଉତ୍ତମ ରୂପେ ବିବେଚନା ପୂର୍ବକ କଥା କହେ, (ସ୍ତ୍ରୀ) ସମୀକ୍ଷ୍ୟବାଦିନୀ ।

ସମୀର—ବି. (ସମ୍ + ଈ + ଅଧି.ବା ର୍ମି. ର) ସମୁଦ୍ର ।

ସମୀରକ—ବି. (ସମ୍ + ଈ + ଅଧି.ରକ) ମୈଥୁନ, ସ୍ତ୍ରୀ ସଂସର୍ଗ ।

ସମୀଚୀ—ସ୍ତ୍ରୀ. ବି.(ସମ୍ + ଈ + କ.ଅ + ଈ) ମୃଗୀ, ( ଭା.ଅ + ଈ ) ବନ୍ଦନା, ପୂଜା, ସ୍ତୁତି ।

ସମୀଚୀନ—ବିଂ. (ସମ୍ୟଚ୍ + ଈନ୍ ବା ସମ୍ + ଅଞ୍ଚ + କ.ଈନ) ଯଥାର୍ଥ, ସତ୍ୟ, ସଙ୍ଗତ, ଉପଯୁକ୍ତ, ଯଥାଯୋଗ୍ୟ, ଯୁକ୍ତିଯୁକ୍ତ, ଉତ୍ତମ ।

ସମୀଚୀନତା—ବି. ( ସମୀଚୀନ + ତା ) ସମୀଚୀନତ୍ୱ, ଉତ୍ତମତା, ଉତ୍କୃଷ୍ଟତା ।

ସମୀଦ—ବି.(ସମିତା ଶବ୍ଦର ବିକଳ୍ପରୂପ) ସମିତା, ଗୋଧୂମଚୂର୍ଣ୍ଣ, ମଇଦା ।

ସମୀନ—ବିଂ. ( ସମା + ଈନ ) ବତ୍ସର-ସମ୍ବନ୍ଧୀୟ, ବାତ୍ସରିକ, ( ସ + ମୀନ ) ମତ୍ସ୍ୟସହିତ, ମତ୍ସ୍ୟବିଶିଷ୍ଟ, (ସ୍ତ୍ରୀ)ସମୀନା

ସମୀନିକା—ସ୍ତ୍ରୀ. ବି.( ସମା + ଈନ + କ + ଆ)ସମାଂସମୀନା, ପ୍ରତିବର୍ଷ ପ୍ରସୂତା ଗୌ, ବର୍ଷବିୟାଣୀ ଗାଈ ।

ସମୀପ—ବିଂ.(ସମ୍ + ଅପ + ଅ)ସନ୍ନିହିତ. ନିକଟବର୍ତ୍ତୀ, ଅନ୍ତିକ ।

ସମୀପକାଳ—ବି.ନିକଟ ସମୟ, ସମୀପଦେଶ ।

ସମୀପଗ—ପୁଂ. ବିଂ. ( ସମୀପ + ଗମ୍ + କ.ଅ) ନିକଟକୁ ଗମନକାରୀ,(ସ୍ତ୍ରୀ)ସମୀପଗା ।

ସମୀପଗମନ—ବି. ( ସମୀପ + ଗମ୍ + ଅନ) ନିକଟ ଗମନ ।

ସମୀପଜ—ବିଂ. (ସମୀପ + ଜନ୍ + ଅ) ସମୀପଜାତ. ନିକଟଜାତ ।

ସମୀପତା(ତ୍ୱ)—ବି. ( ସମୀପ + ଭା.ତା ) ସାମୀପ୍ୟ, ନୈକଟ୍ୟ ।

ସମୀପତଃ—ଅ.(ସମୀପ + ତସ୍)ନିକଟରୁ, ପାଖରୁ ।

ସମୀପନୟନ—ବି. (ସମୀପ + ନୀ + ଅନ) ନିକଟକୁ ଆନୟନ, ନିକଟକୁ ଆଣିବା ।

ସମୀପବର୍ତ୍ତୀ—ବିଂ. ( ସମୀପ + ବୃତ୍ + କ.ଇନ୍) ନିକଟବର୍ତ୍ତୀ, ନିକଟସ୍ଥ, (ସ୍ତ୍ରୀ) ସମୀପବର୍ତ୍ତିନୀ ।

ସମୀପରେ—ଗ୍ରା. ଅ.ନିକଟରେ, ପାଖରେ

ସମୀପସ୍ଥ—ବିଂ. (ସମୀପ + ସ୍ଥା + କ.ଅ) ନିକଟସ୍ଥ, ସମୀପରେ ଅବସ୍ଥିତ, (ସ୍ତ୍ରୀ) ସମୀପସ୍ଥା ।

ସମୀୟ—ବିଂ. (ସମ + ଈୟ) ସମସମ୍ବନ୍ଧୀ, ତୁଲ୍ୟ କାରଣକ ।

ସମୀର—ବି. (ସମ୍ + ଈର୍ + କ.ଅ)ବାୟୁ, ସମୀବୃକ୍ଷ ।

ସମୀରଣ—ବି. (ସମ୍ + ଈର୍ + କ.ଅନ) ବାୟୁ, ପବନ, ମରୁବକ, ମରୁଆଗୁଳ୍ମ, ପଥିକ,(ଭା.ଅନ)ପ୍ରେରଣ,(ବିଂ)ପ୍ରେରକ ।

ସମୀରିତ—ବିଂ. (ସମ୍ + ଈର୍ + ର୍ମି.ତ) ଉଚ୍ଚାରିତ, ସମ୍ୟକ୍ରୂପେ ପ୍ରେରିତ,(ବି. + ଭା.ତ) ପ୍ରେରଣ ।

ସମୀହନ—ବି. ( ସମ୍ + ଈହ୍ + ଭା.ଅନ) ସମ୍ୟକ୍ପ୍ରକାରେ ଚେଷ୍ଟା,(କ.ଅନ)ବିଷ୍ଣୁ

ସମୀହା—ବି. (ସମ୍ + ଈହ୍ + ଭା.ଅ + ଆ) ଇଚ୍ଛା, ସମ୍ୟକ୍ ଚେଷ୍ଟା, ଉଦ୍ୟମ, ସନ୍ଧାନ ।

ସମୀହିତ—ବିଂ. (ସମ୍ + ଈହ୍ + ର୍ମି.ତ ) ଚେଷ୍ଟିତ, ଉଦ୍ୟୁକ୍ତ, ଅଭୀଷ୍ଟ, ବାଞ୍ଛିତ, (ବି, ଭା.ତ) ସମ୍ୟକ୍ଚେଷ୍ଟା, ଇଚ୍ଛା ।

ସମୁକ୍ଷଣ—ବି. ସମ୍ୟକ୍ପ୍ରକାରେ ସିଞ୍ଚନ, ସମ୍ମୁକ୍ଷଣ ।

ସମୁଖ—ପୁଂ. ବିଂ. (ବ.ବ୍ରୀ.ସ + ମୁଖ ) ମୁଖବିଶିଷ୍ଟ, ବାବଦୂକ, ଗପଡ଼ି, (ସ୍ତ୍ରୀ) ସମୁଖା,(ଗ୍ରା.ବି)ବାଗ୍ମୀ,ସମ୍ମୁଖ,ପ୍ରସନ୍ନତା

ସମୁଖରେ—ଗ୍ରା. କ୍ରି. ବିଂ. ସାମନାରେ ।

ସମୁଖାସମୁଖି—ଗ୍ରା.ବିଂ ଓ କ୍ରି.ବିଂ.ସାମନାସାମନି, ପରସ୍ପରର ସମ୍ମୁଖବର୍ତ୍ତୀ ।

ସମୁଚିତ—ବିଂ.(ସମ୍ + ଉଚିତ)ଉପଯୁକ୍ତ, ଯୋଗ୍ୟ, ସମଞ୍ଜସ ।

ସମୁଚିତଦଣ୍ଡ—ବି.(କ.ଧା) ଦୋଷର ବା ଅପରାଧର ଉପଯୁକ୍ତ ଦଣ୍ଡ ।

ସମୁଚ୍ଚ—ବି. (ସମ୍ + ଉଚ୍ଚ) ଅତ୍ୟୁଚ୍ଚ ।

ସମୁଚ୍ଚ(ଚ୍ଚା)ୟ—ବି. (ସମ୍ + ଉତ୍ + ଚି + ଭା.ଅ) ସମାହାର, ସମୂହ, ସଂଗ୍ରହ, ଗଣନା, ଇତ୍ୟାଦି, ରାଶି, (ବ୍ୟାକରଣ) ବହୁ ପଦାର୍ଥର ଏକ କ୍ରିୟାରେ ଅନ୍ୱୟ, ଅର୍ଥାଲଙ୍କାରବିଶେଷ ।

ସମୁଚ୍ଚର—ବି. (ସମ୍ + ଉତ୍ + ଚର୍ + ଭା.ଅ) ସମ୍ୟକ୍ ଉଚ୍ଚାରଣ, ଊର୍ଦ୍ଧ୍ୱକୁ ଉଠିବା, ଉତ୍ପତନ, ପରିତ୍ୟାଗ,(ବିଂ) (କ.ଅ) ସଞ୍ଚରଣଶୀଳ, ବିଚରଣଶୀଳ ।

ସମୁଚ୍ଚରନ୍ତୁ—ବି. (ସମ୍ + ଉତ୍ + ଚର୍

+କ.ଅନ୍ତ) ଉଚ୍ଚାରକ, ଉତ୍ପନ୍ନଶୀଳ, (ସ୍ତ୍ରୀ) ସମୁଚ୍ଚରନ୍ତୀ ।

**ସମୁଚ୍ଚାର**—ବି. ଓ ବିଂ. (ସମ୍+ଉତ୍+ଚର୍+ଘ.ଅ) ସମୁଚ୍ଚର ଦେଖ ।

**ସମୁଚ୍ଚାରଣ**—କ୍ଲୀ. ବି. ସମ୍ୟକ୍‌ରୂପେ ଉଚ୍ଚାରଣ ।

**ସମୁଚ୍ଚିତ**—ବିଂ. (ସମ୍+ଉତ୍+ଚି+ମଁ.ତ) ସଂଗୃହୀତ, ସ୍ତୂପୀକୃତ, ଏକତ୍ର ମିଳିତ ।

**ସମୁଚ୍ଛଳନ**—ବି. (ସମ୍+ଉତ୍+ଶଳ+ଘ.ଅନ) ଗୁରୁଆଡ଼େ ଖେଳେଇ ହୋଇଯିବା, ପରିବ୍ୟାପ୍ତି ।

**ସମୁଚ୍ଛଳିତ**—ବିଂ. (ସମ୍+ଉତ୍+ଶଲ୍+କ.ତ)ପରିବ୍ୟାପ୍ତ ସମନ୍ତାତ୍ ବିସ୍ତୀର୍ଣ୍ଣ, ପ୍ଳାବିତ, ହିତୁଳ ପଡ଼ିବା ।

**ସମୁଚ୍ଛିତି**—ସ୍ତ୍ରୀ.ବି. ଧ୍ୱଂସ, ବିନାଶ ।

**ସମୁଚ୍ଛେଦ**—ବି.(ସମ୍+ଉଚ୍ଛେଦ)ବିନାଶ, ଧ୍ୱଂସ, ଉନ୍ମୂଳନ, ସମୂଳ ବିନାଶ ।

**ସମୁଚ୍ଛେଦନ**—ବି. (ସମୁଚ୍ଛେଦ+ଅନ) ସମୁଚ୍ଛେଦ ଦେଖ ।

**ସମୁଚ୍ଛ୍ୱସିତ**—ବିଂ. (ସମ୍+ଉତ୍+ଶ୍ୱସ୍+କ.ତ)ଊର୍ଦ୍ଧ୍ୱ ଶ୍ୱାସଯୁକ୍ତ,ଉଚ୍ଛ୍ୱାସଯୁକ୍ତ, ଦୀନଚକ୍ଷୁଜୀବିତ, ବିଶେଷ ରୂପେ ଫୁଲିଥିବା, ସ୍ଫୀତ ।

**ସମୁଚ୍ଛ୍ୱାସ**—ବି. (ସମ୍+ଉତ୍+ଶ୍ୱସ୍+ଘ.ଅ) ଊର୍ଦ୍ଧ୍ୱ ଶ୍ୱାସ, ପ୍ରବଳ ନିଶ୍ୱାସ, ସ୍ଫୀତି, ବିଶେଷ ଫୁଲ, ନିଶ୍ୱାସପ୍ରଶ୍ୱାସ, ସ୍ଫୂର୍ତ୍ତି, ସ୍ଫୁରଣ ।

**ସମୁଚ୍ଛ୍ରି(ଚ୍ଛ୍ରା)ୟ**—ବି. (ସମ୍+ଉତ୍+ଶ୍ରି+ଘ.ଅ) ଅତ୍ୟୁନ୍ନତ, ଉଚ୍ଚତା, ଅତି ଉଚ୍ଚ ହୋଇ ଫୁଲିବା, ସ୍ଫୀତ, ବୃଦ୍ଧି, କଳହ, ବିରୋଧ ।

**ସମୁଚ୍ଛ୍ରିତ**—ବିଂ. (ସମ୍+ଉତ୍+ଶ୍ରି+କ.ତ) ବର୍ଦ୍ଧିତ, ଅତ୍ୟୁନ୍ନତ, ଫୁଲିଯାଇଥିବା ।

**ସମୁଚ୍ଛ୍ରିତି**—ବି. (ସମ୍+ଉତ୍+ଶ୍ରି+ଘ.ତି) ସମୁଚ୍ଛ୍ରାୟ, ବିରୋଧ, ଉଚ୍ଚତା, ଅତ୍ୟୁନ୍ନତ, ବୃଦ୍ଧି ।

**ସମୁଜ୍ଜିହୀର୍ଷୁ**—ବିଂ. ( ସମ୍+ଉତ୍+ହୃ+ସନ୍+ଉ) ସମ୍ୟକ୍ ରୂପେ ଉଦ୍ଧାର କରିବାକୁ ଇଚ୍ଛୁକ ।

**ସମୁଜ୍ଝିତ**—ବିଂ. (ସମ୍+ଉଜ୍‌ଝିତ)ପରିତ୍ୟକ୍ତ, ପରିବର୍ଜିତ ।

**ସମୁଜ୍ଜ୍ୱଳ**—ବିଂ. (ସମ୍+ଉଜ୍ଜ୍ୱଳ) ଅତି ଉଜ୍ଜ୍ୱଳ, (ସ୍ତ୍ରୀ) ସମୁଜ୍ଜ୍ୱଳା ।

**ସମୁଡ୍ଡୀନ**—ବିଂ. (ସମ୍+ଉତ୍+ଡୀ+କ.ତ)ଯେ ଉଡ଼ିକରି ଊର୍ଦ୍ଧ୍ୱକୁ ଉଠିଅଛି, ଊର୍ଦ୍ଧ୍ୱାକାଶକୁ ଉଡ଼ିଥିବା ।

**ସମୁତ୍କ**—ପୁଂ.ବିଂ (ସମ୍+ଉତ୍କ) ସମ୍ୟକ୍ ଅଭିଳାଷୀ, (ସ୍ତ୍ରୀ) ସମୁତ୍କା ।

**ସମୁତ୍କଟ**—ବିଂ.ସମ୍ୟକ୍ ପ୍ରକାରେ ଉତ୍କଟ ।

**ସମୁତ୍କଣ୍ଠ**—ପୁଂ. ବିଂ. (ସମ୍+ଉତ୍କଣ୍ଠ) ବିଶେଷ ଭାବରେ ଉତ୍କଣ୍ଠିତ ବା ବ୍ୟଗ୍ର, ବ୍ୟସ୍ତ ।

**ସମୁତ୍କର୍ଷ**—ବିଂ. ( ସମ୍+ଉତ୍+କୃଷ୍+ଅ) ସମ୍ୟକ୍ ଉତ୍କର୍ଷ ।

**ସମୁତ୍କୀର୍ଣ୍ଣ**—ବିଂ (ସମ୍+ଉତ୍କୀର୍ଣ୍ଣ ) ବିଦ୍ଧ, ବିଦୀର୍ଣ୍ଣ, ଭଗ୍ନ, ଖୋଦିତ, ବିକୀର୍ଣ୍ଣ, ବିକ୍ଷିପ୍ତ (ସ୍ତ୍ରୀ) ସମୁତ୍କୀର୍ଣ୍ଣା ।

**ସମୁତ୍କ୍ରମ**—ବି (ସମ୍+ଉତ୍କ୍ରମ ) ଊର୍ଦ୍ଧ୍ୱ ଗମନ, ଉପରକୁ ଉଠିବା, ଊର୍ଦ୍ଧ୍ୱକୁ ଡେଇଁବା ।

**ସମୁତ୍କ୍ରାନ୍ତ**—ବିଂ. ( ସମ୍+ଉତ୍କ୍ରାନ୍ତ ) ଉଚ୍ଚକୁ ଚଢ଼ କରିଥିବା, ପାଣି ଯାହା ଉପରକୁ ଡେଇଁ ଯାଇଅଛି ।

**ସମୁତ୍କ୍ରୋଶ**—ବି.(ସମ୍+ଉତ୍+କ୍ରୁଶ୍+ଘ.ଅ) ଉଚ୍ଚଶବ୍ଦ, ଚର୍ଜନ, ଚିତ୍କାର, (କ.ଅ) କୁରରପକ୍ଷୀ, ଉତ୍କ୍ରୋଶ ପକ୍ଷୀ ।

**ସମୁତ୍କ୍ଷେପ**—ବି. ସମ୍ୟକ୍‌ରୂପେ ଉଠାଇ ଫିଙ୍ଗିବା, ଫୋପାଡ଼ିବା ।

**ସମୁତ୍କ୍ଷେପଣ**—ବି. ସମୁତ୍କ୍ଷେପ ।

**ସମୁତ୍ତର**—ବି. ସମ୍ୟକ୍ ଉତ୍ତର ।

**ସମୁତ୍ତାର**—ବି.(ସମ୍+ଉତ୍+ତୃ+ଅ) ସମ୍ୟକ୍ ପାର, ସମ୍ୟକ୍‌ରୂପେ ଉତ୍ତରଣ ।

**ସମୁତ୍ଥ**—ବିଂ.(ସମ୍+ଉତ୍+ସ୍ଥା+କ.ଅ) ଉଦ୍ଭୂତ, ଉତ୍ପନ୍ନ, ଉତ୍ଥିତ, ଉଦିତ ।

**ସମୁତ୍ଥାନ**—ବି. ( ସମ୍+ଉତ୍ଥାନ ) ଉଦୟ, ଊର୍ଦ୍ଧ୍ୱଗମନ, ଉପରକୁ ଉଠିବା, ବୃଦ୍ଧି, ଉତ୍ତୋଳନ, ଆରମ୍ଭ, ଠିଆହେବା, ବିଛଣାରୁ ଉଠିବା, ବ୍ୟାଧିନିର୍ଣ୍ଣୟ, ରୋଗମୁକ୍ତି, ବିଶେଷଉଦ୍ଯୋଗ, ବିଦ୍ରୋହାଚରଣ ପୂର୍ବକ ଉତ୍ଥାନ, ଉନ୍ନତି ।

**ସମୁତ୍ଥାପ୍ୟ**—ବିଂ. (ସମ୍+ଉତ୍+ସ୍ଥା.ଣିଚ୍+ଯ) ସମୁତ୍ଥାପନର ଯୋଗ୍ୟ, ସମୁତ୍ଥାନ କରାଇବାର ଉପଯୁକ୍ତ ।

**ସମୁତ୍ଥିତ**—ବିଂ. ( ସମ୍+ଉତ୍ଥିତ ) ସମୁତ୍ଥ ଦେଖ ।

**ସମୁତ୍ଥେୟ**—ବିଂ. (ସମ୍+ଉତ୍+ସ୍ଥା+ଯ)ସମୁତ୍ଥାନର ଉପଯୁକ୍ତ, ସମୁତ୍ଥାନାର୍ହ ।

**ସମୁତ୍ପତନ**—ବି.(ସମ୍+ଉତ୍ପତନ) ଉତ୍ପତନ, ଉପରକୁ ଉଡ଼ିଯିବା ।

**ସମୁତ୍ପତ୍ତି**—ବି. (ସମ୍+ଉତ୍ପତ୍ତି)ସମୁତ୍ଥାନ ଦେଖ, ଉଦ୍ଭବ, ଉତ୍ପତ୍ତି, ଜନ୍ମ, ଉପସ୍ଥିତ ।

**ସମୁତ୍ପନ୍ନ**—ବିଂ. (ସମ୍+ଉତ୍+ପଦ୍+କ.ତ) ସମୁଦ୍ଭୂତ, ସମ୍ୟକ୍ ଉତ୍ପନ୍ନ, ଜାତ, ଉଦ୍‌ଗତ, ଘଟିତ, ପ୍ରବୃତ୍ତ ।

**ସମୁତ୍ପାଟ**—ବି.(ସମ୍+ଉତ୍ପାଟ)ସମୂଳ ଉତ୍ପାଟନ, ଉନ୍ମୂଳନ ।

**ସମୁତ୍ପାଟନ**—ବି.(ସମ୍+ଉତ୍+ପାଟି+ଅନ) ସମ୍ୟକ୍ ଉତ୍ପାଟନ, ଉନ୍ମୂଳନ, ଉତ୍ପାଟିତକରଣ ।

**ସମୁତ୍ପାଟିତ**—ବିଂ. (ସମ୍+ଉତ୍+ପାଟି+ତ) ଉନ୍ମୂଳିତ, ସମୂଳେ ବିନାଶିତ ।

**ସମୁତ୍ପାତ**—ବି. ( ସମ୍+ଉତ୍ପାତ ) ଅତ୍ୟନ୍ତ ଉପଦ୍ରବ ।

**ସମୁତ୍ପାଦ**—ବି. ସମ୍ୟକ୍ ଉତ୍ପତ୍ତି ।

**ସମୁତ୍ପାଦନ**—ବି. (ସମ୍+ଉତ୍ପାଦନ) ଜନ୍ମାଇବା, ଉତ୍ପତ୍ତି ।

**ସମୁତ୍ପିଞ୍ଜ**—ପୁଂ. ବିଂ. (ସମ୍+ଉତ୍+ପିଜ୍+ମଁ.ଅ) ଅତ୍ୟନ୍ତ ଆକୁଳ, ଅତିଶୟ କାତର, (ସ୍ତ୍ରୀ) ସମୁତ୍ପିଞ୍ଜା, (ବି) ଛିନ୍ନ ଭିନ୍ନ ବ୍ୟାକୁଳ ସୈନ୍ୟ ।

**ସମୁତ୍ପୀଡ଼ନ**—ବି. (ସମ୍+ଉତ୍ପୀଡ଼ନ) ସମ୍ୟକ୍ ଅତ୍ୟାଚାର ।

ସମୁତ୍ଫାଳ—ବି. (ସମ୍+ଉତ୍ଫାଳ) ତରଙ୍ଗାୟିତ ଗମନ, ଅଶ୍ୱର ଆସ୍ଫାଳନ ସହ ଗମନ, ଦେହକୁ ଦୋହଲାଇକରି ଗତି ।

ସମୁତ୍ଫୁଲ୍ଲ—ପୁଂ. ବିଂ. ଅତିଶୟ ପ୍ରଫୁଲ୍ଲ, ସମ୍ୟକ୍ ବିକଶିତ, (ସ୍ତ୍ରୀ) ସମୁତ୍ଫୁଲ୍ଲା ।

ସମୁତ୍ସର୍ଗ—ବି. ( ସମ୍ + ଉତ୍ + ସୃଜ୍+ ଅ) ଉତ୍ସର୍ଗ, ତ୍ୟାଗ ।

ସମୁତ୍ସନ୍ନ—ବିଂ. (ସମ୍+ଉତ୍ସନ୍ନ) ବିନାଶିତ, ନିର୍ମୂଳୀକୃତ ।

ସମୁତ୍ସବ—ବି. (ସମ୍+ଉତ୍+ସୁ+ଅ) ସମ୍ୟକ୍ ଉତ୍ସବ, ଅତିଶୟ ଉତ୍ସବ ।

ସମୁତ୍ସାଦିତ— ବିଂ. ( ସମ୍+ଉତ୍+ ସାଦି-ତ)ଉନ୍ମୂଳିତ, ବିନାଶିତ,ନିର୍ମୂଳୀକୃତ । [ ଉତ୍ସାହ ।

ସମୁତ୍ସାହ—ବି (ସମ୍+ଉତ୍ସାହ) ଅତ୍ୟନ୍ତ

ସମୁତ୍ସାହତା—ସ୍ତ୍ରୀ. ବି. ( ସମୁତ୍ସାହ+ ତା) ସମୁତ୍ସାହତ୍ୱ, ସମୁତ୍ସାହର ଭାବ ବା ଧର୍ମ ।

ସମୁତ୍ସୁକ—ପୁଂ.ବିଂ. (ସମ୍+ଉତ୍ସୁକ) ବିଶେଷ ବ୍ୟଗ୍ର ବା ଉତ୍କଣ୍ଠିତ, (ସ୍ତ୍ରୀ) ସମୁତ୍ସୁକା ।

ସମୁତ୍ସୃଷ୍ଟ—ବିଂ. ( ସମ୍+ଉତ୍ସୃଷ୍ଟ ) ପରିତ୍ୟକ୍ତ, ତ୍ୟକ୍ତ ।

ସମୁତ୍ସେଧ—ବି. (ସମ୍+ଉତ୍+ସିଧ୍ +ଅ) ଉଚ୍ଚତା,ଉଚ୍ଛ୍ରାୟ ।

ସମୁଦକ୍ତ—ବିଂ. ( ସମ୍+ଉତ୍+ଅନଚ୍ ମିଂ.ତ) ଉଦ୍ଧୃତ, ଉତ୍ତୋଳିତ ।

ସମୁଦନ୍ତ—ବିଂ. ସୀମାନ୍ତ ଉଚ୍ଚତାବିଶିଷ୍ଟ, ସମ୍ୟକ୍ ଉଦନ୍ତ ।

ସମୁଦୟ—ବି. (ସମ୍+ଉଦୟ) ସମୂହ, ସମଗ୍ର,ସକଳ, ଯୁଦ୍ଧ, ସମୁଦ୍ଗମ, ଦିବସ, ଅଭ୍ୟୁଦୟ,ଉନ୍ନତି,ସମୁତ୍ଥାନ(ଜ୍ୟୋତିଷ) ଷନ୍ନାଡ଼ୀ ଚକ୍ରାନ୍ତର୍ଗତ ୪ର୍ଥ ନାଡ଼ୀ,ଲଗ୍ନ

ସମୁଦାଗମ—ବି(ସମ୍+ଉତ୍+ଆଗମ) ସମ୍ୟକ୍ ଜ୍ଞାନ, ପୂର୍ଣ୍ଣଚେତନା ।

ସମୁଦାଚାର--ବି(ସମ୍+ଉତ୍+ଆଚାର) ଆଶୟ, ଅଭିପ୍ରାୟ, ଅଭିଳାଷ, ସମ୍ୟକ୍ ଆଚାର, ଶିଷ୍ଟାଚାର, ନମସ୍କାର, ଅଭିବାଦନ ।

ସମୁଦାନୟ—ପୁଂ. ବି. ସମିତି,ଶେଷକରି ଆଣିବା, ସମ୍ପାଦନ ।

ସମୁଦାୟ--ବି.(ସମ୍+ଉତ୍+ଇ+ଘ.ଅ) ସମୂହ, ଉତ୍ଥାନ, ଉଦୟ, (ମିଂ.ଅ)ଯୁଦ୍ଧ, (କ.ଅ) ପୃଷ୍ଠସ୍ଥାୟୀ ବଳ, ସମୁଚ୍ଚୟ, ସକଳ, ସମସ୍ତ, (ଗ୍ରା.ବିଂ) ସମସ୍ତ,ସବୁ, ସମ୍ପୂର୍ଣ୍ଣ ।

ସମୁଦାହାର—ବି.(ସମ୍+ଉତ୍+ଆ+ ହୃ+ଘ.ଅ)କଥୋପକଥନ,ବାକ୍ୟାଳାପ

ସମୁଦି(ଧି)—ଗ୍ରା. ପୁଂ. ବି. (ସଂ-ସମ୍ବନ୍ଧୀ) ଆପଣାର ପୁଅର ବା ଝିଅର ଶ୍ୱଶୁର ।

ସମୁଦିତ—ବିଂ. (ସମ୍+ଉଦିତ)ଉତ୍ଥିତ, ସମ୍ୟକ୍ ଉଦିତ ବା ଉତ୍ଥିତ, ସମୁତ୍ପନ୍ନ, ସମୁଦ୍ଭୂତ, ଉନ୍ନତ, ସମ୍ୟକ୍‌ରୂପେ କଥିତ, ଉଚ୍ଚୈଃସ୍ୱରରେ କଥିତ ।

ସମୁଦୀରଣ—ବି. ( ସମ୍+ଉଦୀରଣ ) ଉଚ୍ଚାରଣ, ସମ୍ୟକ୍ କଥନ ।

ସମୁଦୀରିତ—ବିଂ. (ସମ୍+ଉତ୍+ଈର୍ +ମିଂ.ତ) ସମ୍ୟକ୍ କଥିତ, ଉଚ୍ଚାରିତ, (ବି.ଭା.ତ)ଉଦୀରଣ, ଉଚ୍ଚାରଣ ।

ସମୁଦୀର୍ଣ୍ଣ—ବି. ସମ୍ୟକ୍ ଉଦୀର୍ଣ୍ଣ, ସମ୍ୟକ୍ କଥନ ।

ସମୁଦୁଣୀ-ଗ୍ରା.ସ୍ତ୍ରୀ. ବି. ଆପଣାର ପୁତ୍ରର ବା କନ୍ୟାର ଶାଶୁ ।

ସମୁଦ୍ଗ—ବି.(ସମ୍+ଉତ୍+ଗମ୍+କ.ଅ) ସମ୍ପୁଟକ, ଫରୁଆ, ପେଡ଼ା,ପତ୍ରରଦନା, ଠୋଙ୍ଗା, ଯେଉଁ ପାତ୍ରର ଉପରଫାଳ ବା ଡାଲା ଖୋଲା ଯାଇପାରେ, (ବିଂ) ମୁଦ୍ଗବିଶିଷ୍ଟ ।

ସମୁଦ୍ଗକ—ବି. ସମ୍ପୁଟକ,ଫରୁଆ,ଛନ୍ଦୋବିଶେଷ ।

ସମୁଦ୍ଗତ—ବିଂ.(ସମ୍+ଉଦ୍ଗତ) ସମୁତ୍ଥିତ ଦେଖା, ସମୁଦିତ, ଉତ୍ପନ୍ନ ।

ସମୁଦ୍ଗମ—ବି. (ସମ୍+ଉଦ୍ଗମ ) ଉତ୍ଥାନ, ଉଦୟ, ଉତ୍ପତ୍ତି ।

ସମୁଦ୍ଗାର—ବି.(ସମ୍+ଉଦ୍‌ଗାର)ଅତ୍ୟନ୍ତ ବମନ ।

ସମୁଦ୍ଗୀତ—ବିଂ. (ସମ୍+ଉତ୍+ଗୀତ) ଉଚ୍ଚୈଃସ୍ୱରରେ ଗୀତ ।

ସମୁଦ୍ଗୀରଣ—ବି. ( ସମ୍+ଉଦ୍‌ଗୀରଣ ) ଉଦ୍‌ବମନ,ଉତ୍ତୋଳନ,ଉଚ୍ଚାରଣ,କଥନ

ସମୁଦ୍ଗୀର୍ଣ୍ଣ—ବିଂ.(ସମ୍+ଉଦ୍+ଗୃ+ମିଂ. ତ)ବମିତ,ଉତ୍ତୋଳିତ,କଥିତ, ଉଚ୍ଚାରିତ

ସମୁଦ୍ଘାତି—ପୁଂ. ବିଂ. ସମ୍ୟକ୍ ଉଦ୍‌ଘାତଯୁକ୍ତ ।

ସମୁଦ୍ଘର୍ଷ—କ୍ଳୀ. ବି. ପରସ୍ପର ବିବାଦ, ଆପଣା ଆପଣା ମଧ୍ୟରେ ବିବାଦ ।

ସମୁଦ୍ଦିଧୀର୍ଷୁ—ପୁଂ. ବିଂ. (ସମ୍+ଉତ୍+ ଧୃ+ସନ୍+ଉ) ସମ୍ୟକ୍ ରୂପେ ଉଦ୍ଧାର କରିବାକୁ ଇଚ୍ଛୁକ ।

ସମୁଦ୍ଦିଷ୍ଟ—ବିଂ. (ସମ୍+ଉଦ୍ଦିଷ୍ଟ) ସମ୍ୟକ୍ ଉଦ୍ଦିଷ୍ଟ, କୃତୋଦ୍ଦେଶ, ଅନ୍ୱେଷିତ ।

ସମୁଦ୍ଦେଶ—ବି. (ସମ୍+ଉତ୍+ଦିଶ୍+ ଅ) ସମ୍ୟକ୍ ଉଦ୍ଦେଶ, ଅନୁସନ୍ଧାନ ।

ସମୁଦ୍ଧତ—ବିଂ. (ସମ୍+ଉତ୍+ହନ୍+ କ.ତ) ଅଶିଷ୍ଟ, ଅବିନୀତ, ଗର୍ବିତ,ଉତ୍କ୍ଷିପ୍ତ, ସମୁଦ୍‌ଗୀର୍ଣ୍ଣ ।

ସମୁଦ୍ଧରଣ—ବି.(ସମ୍+ଉଦ୍ଧରଣ)ଓପାଡ଼ିବା, ଉନ୍ମୂଳନ, ଉତ୍ତୋଳନ, ଉନ୍ମୋଚନ, ମୋଚନ, ଉଦ୍ଧାରକରିବା,ବମନ, ବାନ୍ତାନ୍ନ, ଯେଉଁ ଅନ୍ନ ବମନ ହୋଇଥାଏ ।

ସମୁଦ୍ଧର୍ତ୍ତା—ପୁଂ.ବିଂ. (ସମ୍+ଉତ୍+ଧୃ କ.ତୃ)ଉଦ୍ଧାରକର୍ତ୍ତା, ଉନ୍ମୂଳନକର୍ତ୍ତା, ଋଣ ପରିଶୋଧକର୍ତ୍ତା,(ସ୍ତ୍ରୀ)ସମୁଦ୍ଧର୍ତ୍ତ୍ରୀ ।

ସମୁଦ୍ଧର୍ଷ—ବି. ସମ୍ୟକ୍ ଧର୍ଷଣ ।

ସମୁଦ୍ଧସ୍ତ—ବି. ( ସମ୍+ଉତ୍+ହସ୍ତ ) ହାତ ଦ୍ୱାରା ପୋଛି ପକାଇବା ।

ସମୁଦ୍ଧାର—ବି. (ସମ୍+ଉଦ୍ଧାର) ମୁକ୍ତି, ପରିତ୍ରାଣ, ମୋଚନ,ଉନ୍ମୂଳନ,ଉତ୍ତୋଳନ ।

ସମୁଦ୍ଧୃତ—ବିଂ.( ସମ୍+ଉଦ୍ଧୃତ)ଉତ୍ତୋଳିତ, ମୋଚିତ,କୃତୋଦ୍ଧାର, ଉଦ୍ଗୀର୍ଣ୍ଣ, ବାନ୍ତ, ବମିତ, ଉନ୍ମୂଳିତ, ଅସଦ୍‌ବ୍ୟବହାରପ୍ରାପ୍ତ, ଅଂଶୀକୃତ, ଗୃହୀତ, ଅଧିକୃତ, ଉତ୍ଥାପିତ, ଅପନୀତ, ପୃଥକ୍ ରକ୍ଷିତ ।

ସମୁଦ୍ବହ— ବିଂ. (ସମ୍ + ଉତ୍ + ବହ୍ + କ.ଅ) ଉଦ୍ବହନକର୍ତ୍ତା, ଉତ୍ତୋଳକ, ବହନକାରୀ, ଶ୍ରେଷ୍ଠ ।

ସମୁଦ୍ବାହ—ବି. ସମ୍ୟକ୍ ପ୍ରକାରେ ବହନ, ବିବାହ । [ ଉଦ୍ବେଗ ।

ସମୁଦ୍ବେଗ—ବି(ସମ୍+ଉଦ୍ବେଗ)ସମ୍ୟକ୍

ସମୁଦ୍ବୋଧ—ବି. (ସମ୍+ଉତ୍+ବୁଧ୍+ଅ) ଉଦ୍ବୋଧ, ଜ୍ଞାନ ।

ସମୁଦ୍ଭବ—ବି. (ସମ୍+ଉଦ୍ଭବ) ଉତ୍ପତ୍ତି, ଜନ୍ମ,ହୋମାଗ୍ନି ର ନାମଭେଦ,କାରଣ, (ବିଂ) ଉଦ୍ଭୂତ, ଉତ୍ପନ୍ନ, ଜାତ, (ସ୍ତ୍ରୀ) ସମୁଦ୍ଭବା ।

ସମୁଦ୍ଭାସିତ—ବିଂ. ( ସମ୍+ଉଦ୍ଭାସିତ ) ପ୍ରଦୀପ୍ତ, ଉଜ୍ଜ୍ୱଳୀକୃତ, ଶୋଭିତ ।

ସମୁଦ୍ଭୂତ—ବିଂ (ସମ୍+ଉଦ୍ଭୂତ)ଜାତ, ଉତ୍ପନ୍ନ, ଉତ୍ଥିତ ।

ସମୁଦ୍ଭୂତି—ବି.(ସମ୍+ଉତ୍+ଭୂ+ତି) ସମୁଦ୍ଭବ, ଉଦ୍ଭବ, ଉତ୍ପତ୍ତି ।

ସମୁଦ୍ଭେଦ—ବି. ଉଦ୍ଭେଦନ, ବିକାଶ, ସମ୍ୟକ୍ ଉତ୍ପତ୍ତି, ପ୍ରସ୍ରବଣ, ଜଳୋଦର ଉଦ୍ଗମନ ।

ସମୁଦ୍ୟତ—ପୁଂ. ବିଂ. (ସମ୍+ଉଦ୍ୟତ) ଉଦ୍ୟତ, ଉଦ୍ୟୁକ୍ତ, ପ୍ରସ୍ତୁତ ।

ସମୁଦ୍ୟମ—ବି. (ସମ୍ + ଉଦ୍ୟମ) ସମ୍ୟକ୍ ଉଦ୍ୟମ, ବିଶେଷ ଚେଷ୍ଟା, ଆରମ୍ଭ ।

ସମୁଦ୍ୟମୀ—ପୁଂ.ବିଂ(ସମୁଦ୍ୟମ + ଇନ୍) ଉଦ୍ୟମଯୁକ୍ତ, ଚେଷ୍ଟାଯୁକ୍ତ, ଆରମ୍ଭକାରୀ

ସମୁଦ୍ୟୋଗ—ବି. (ସମ୍ + ଉଦ୍ + ଯୁଜ୍ + ଅ) ସମ୍ୟକ୍ ଉଦ୍ଯୋଗ ।

ସମୁଦ୍ର— ବି. ( ସମ୍=ସମ୍ୟକ୍+ ଉନ୍ଦ୍ଧାତୁ=କ୍ଲିନ୍ନ ହେବା+ଅପା.ର; ଚନ୍ଦ୍ରୋଦୟ ଦ୍ୱାରା ଯହିଁରୁ ଜଳସମୂହ କ୍ଲିନ୍ନ ହୁଏ; କିମ୍ବା ସ=ସହିତ+ମୁଦ୍ରା =ମର୍ଯ୍ୟାଦା, ସୀମା, ଯାହା ମର୍ଯ୍ୟାଦା ବା ସୀମାଯୁକ୍ତ ହୋଇ ଅବସ୍ଥିତ; କିମ୍ବା ସ=ସହିତ+ମୁଦ୍ରା=ମଣି ରତ୍ନାଦି, ଅର୍ଥାତ୍ ଯାହା ରତ୍ନାକର ଅଟେ; କିମ୍ବା ସମ୍=ସମ୍ୟକ୍+ଉଦ୍ରେକ—ନିପାତନ-ସିଦ୍ଧ; ଏଥିରେ ଜଳର ସମୁଦ୍ରେକ ବା ବାହୁଲ୍ୟ ହୁଏ; କିମ୍ବା ସମ୍=ସମ୍ୟକ୍+ ଉଦ୍ଗତ+ର=ଅଗ୍ନି ଯହିଁରୁ)ସାଗର, ପୃଥିବୀକୁ ବେଷ୍ଟନ କରିଥିବା ଜଳରାଶି, (ଲ.ଅର୍ଥ) ସମୁଦ୍ର ପରି ବିଶାଳକାୟ ଓ ଅସୀମ ଗଭୀର ବସ୍ତୁ,ସାମୁଦ୍ରିକ ଗ୍ରନ୍ଥ-କାର ମୁନିବିଶେଷ, ଏକକଡ଼ା କଉଡ଼ିର ସାତ ଭାଗରୁ ଭାଗେ, ଚାରିସଂଖ୍ୟା, ପ୍ରାଚୀନ ଜାତିବିଶେଷ, ଶିବ, (ବିଂ. ବ.ବ୍ରୀ; ସ+ମୁଦ୍ରା+ଅ) ମୁଦ୍ରାଯୁକ୍ତ, ମୁଦ୍ରିତ, ଗୁପ୍ତ, (ସ୍ତ୍ରୀ) ସମୁଦ୍ରା ।

ସମୁଦ୍ରକୁ ପାଣି ଚଳୁକରିବା—ଗ୍ରା. କ୍ରି. (ନ୍ୟାୟ) ଅଗସ୍ତ୍ୟ ଋଷି ମହା ପ୍ରତାପୀ ଥିବାରୁ ତପଃ ପ୍ରଭାବରୁ ସମୁଦ୍ରର ସମସ୍ତ ଜଳକୁ ଆପଣା ଗଣ୍ଡୂଷ ମଧ୍ୟରେ ରଖି ପିଇଥିଲେ) ଅସମ୍ଭବ କାର୍ଯ୍ୟ କରିବାକୁ ସାହସ କରିବା ବ୍ୟକ୍ତି ପ୍ରତି ଏ ଢଗ ପ୍ରୟୋଗ କରାଯାଏ ।

ସମୁଦ୍ରକଫ—ବି(୬ତତ୍)ସମୁଦ୍ର ଫେନ, ସମୁଦ୍ରର ଫେଣା, କସ୍ତୁରି ।

ସମୁଦ୍ରକଲ୍ଲୋଳ(ଗର୍ଜନ)—ବି. (୬ତତ୍) ସମୁଦ୍ରର ଲହରୀମାନଙ୍କର ପରସ୍ପର ସହିତ ଓ କୂଳ ସହିତ ଆଘାତ ପ୍ରତିଘାତଜନିତ ଉଚ୍ଚଶବ୍ଦ ।

ସମୁଦ୍ରକାଞ୍ଚୀ—ବି. (ବ,ବ୍ରୀ) ପୃଥିବୀ ।

ସମୁଦ୍ରକାନ୍ତା—ବି.(୬ତତ୍)ନଦୀ, ସମୁଦ୍ରରେ ପଡ଼ୁଥିବା ନଦୀ, ପୃକ୍କା, ପିଡ଼ଙ୍ଗ ଶାଗ ।

ସମୁଦ୍ରକୁ ଶଙ୍ଖେପାଣି—ଗ୍ରା. ପ୍ରବଚନ, (ନ୍ୟାୟ) ବହୁ ଲୋକଙ୍କୁ ଅତି ସାମାନ୍ୟ ବସ୍ତୁ ବା ଖାଦ୍ୟଦେବା, କିମ୍ବା ମହା-ଅଭାବ ସ୍ଥଳରେ ସାମାନ୍ୟ ବସ୍ତୁ ଦେବା ନ୍ୟାୟ ।

ସମୁଦ୍ରକୁ ଡେଇଁବା—ଗ୍ରା. କ୍ରି. ସମୁଦ୍ର ଜଳକୁ ଲମ୍ଫଦେବା, (ଲ.ଅର୍ଥ) ସଙ୍କଟ ବା ବିପଦ ମଧ୍ୟରେ ଆତ୍ମସମର୍ପଣକରିବା, ଇଚ୍ଛା ପୂର୍ବକ ବିପଦକୁ ବରଣକରିବା ।

ସମୁଦ୍ରକୂଳ—ବି. (୬ତତ୍) ସମୁଦ୍ରତଟ ଦେଖ ।

ସମୁଦ୍ରଗ—ପୁଂ.ବି.ବୋଇତୁଆଳ,ନାବିକ, ପୋତବଣିକ୍, (ବିଂ) ସମୁଦ୍ରଗାମୀ ଦେଖ, (ସ୍ତ୍ରୀ) ସମୁଦ୍ରଗା ।

ସମୁଦ୍ରଗର୍ଭ—ବି. ( ୬ତତ୍ ) ସମୁଦ୍ରର ଅଭ୍ୟନ୍ତର,ସମୁଦ୍ରର ଯେଉଁ ଅଂଶରେ ଜଳ ଥାଏ, ଯୁଆରର ଉଚ୍ଚତମ ସୀମା-ମଧ୍ୟସ୍ଥ ସମୁଦ୍ର ।

ସମୁଦ୍ରଗା—ସ୍ତ୍ରୀ.ବି. ( ସମୁଦ୍ରଗ+ଆ ) ନଦୀ, (ସ୍ତ୍ରୀ.ବିଂ) ସାଗରଗାମିନୀ ।

ସମୁଦ୍ରଗାମୀ—ପୁଂ.ବିଂ. (ସମୁଦ୍ର+ଗମ୍ +ଇନ୍) ଯାହା (ଯେଉଁ ନଦୀଆଦି) ସମୁଦ୍ର ଆଡ଼କୁ ଯାଇଅଛି.ଯାହା ସମୁଦ୍ରରେ ଗମନାଗମନ କରେ, ଯେଉଁ ବ୍ୟକ୍ତି ସମୁଦ୍ର ପଥରେ ଗମନାଗମନ କରେ, ସମୁଦ୍ରସ୍ଥିତ, (ସ୍ତ୍ରୀ)ଗାମିନୀ ।

ସମୁଦ୍ରଗୁପ୍ତ—ଗ୍ରା. ବି. ୪ର୍ଥ ଶତାବ୍ଦୀର ଆର୍ଯ୍ୟାବର୍ତ୍ତସ୍ଥ ମଗଧ ରାଜ୍ୟର ଜନୈକ ନରପତି ।

ସମୁଦ୍ରଗୃହ—ବି. (ରୂପକ-କ.ଧା)ବରୁଣାଳୟ, ଜଳଯନ୍ତ୍ର ଗୃହ ।

ସମୁଦ୍ରଚୁଳୁକ—ପୁଂ.ବି. (ବ.ବ୍ରୀ)ଅଗସ୍ତ୍ୟ ମୁନି ।

ସମୁଦ୍ରଚୌର୍ଯ୍ୟ—ବି. ବମ୍ବେଟିଆ ଗିରି, ସମୁଦ୍ରଗାମୀ ଜାହାଜରୁ ଧନାଦି ଲୁଣ୍ଠନ କରିବା ବୃତ୍ତି ।

ସମୁଦ୍ରଜ—ବିଂ. (ସମୁଦ୍ର+ଜନ୍+କ.ଅ) ସମୁଦ୍ରଜାତ, ସମୁଦ୍ରରୁ ଉତ୍ପନ୍ନ, ସାମୁଦ୍ରିକ, (ସ୍ତ୍ରୀ) ସମୁଦ୍ରଜା, (ବି) ସମୁଦ୍ର ଲବଣ, ପଙ୍ଖାଲୁଣ, ପ୍ରବାଳ ମୁକ୍ତାଦି ରତ୍ନ ।

ସମୁଦ୍ରଜନ୍ତୁ—ବି.ସମୁଦ୍ରଜୀବ ଦେଖ ।

ସମୁଦ୍ରଜା—ସ୍ତ୍ରୀ. ବିଂ. (ସମୁଦ୍ର+ଜନ୍ +କ.ଅ+ଆ) ସମୁଦ୍ରଜର ସ୍ତ୍ରୀଲିଙ୍ଗ, (ସ୍ତ୍ରୀ.ବି) ଲକ୍ଷ୍ମୀ । [ ଉତ୍ପନ୍ନ ।

ସମୁଦ୍ରଜାତ—ବିଂ. (୫ତତ୍) ସମୁଦ୍ରରୁ

ସମୁଦ୍ରଜୀବ—ବି. (୬ତତ୍) ସମୁଦ୍ରରେ ବାସ କରୁଥିବା ଜନ୍ତୁ,ସାମୁଦ୍ରିକ ଜୀବ ।

ସମୁଦ୍ରଢେଉ—ଗ୍ରା. ବି. ସମୁଦ୍ରରେ ଉଠିବା ଢେଉ ବା ତରଙ୍ଗ,ସମୁଦ୍ର-ଲହରୀ ।

ସମୁଦ୍ରତଟ,(ତୀର, ବେଳା, କୁକ୍ଷି)—ବି. (୬ତତ୍) ସମୁଦ୍ରର କୂଳବର୍ତ୍ତୀ ଦେଶ, ଉପକୂଳ ।

ସମୁଦ୍ରତନୟା— ସ୍ତ୍ରୀ. ବି. (୬ତତ୍) କ୍ଷୀରସିନ୍ଧୁ ତନୟା, ଲକ୍ଷ୍ମୀ ।

ସମୁଦ୍ରତଳ—ବି. (୬ତତ୍) ସମୁଦ୍ରର ନିମ୍ନବର୍ତ୍ତୀ ଭୂମି ।

ସମୁଦ୍ରତୀରସ୍ଥ—ବିଂ. ସମୁଦ୍ର ତୀରବାସୀ

ସମୁଦ୍ରଦୟିତା (ପତ୍ନୀ,ଯୋଷିତ୍)—ସ୍ତ୍ରୀ.ବି. (୬ତତ୍) ନଦୀ ।

ସମୁଦ୍ରନବନୀତ—ବି. (୬ତତ୍) ଅମୃତ, ଚନ୍ଦ୍ର ।

ସମୁଦ୍ରନେମୀ—ବି. (ବ.ବ୍ରୀ) ପୃଥିବୀ ।

ସମୁଦ୍ରପର୍ଯ୍ୟନ୍ତ—ବିଂ. ସାଗରବଧି, ସାଗର ପର୍ଯ୍ୟନ୍ତ ।

ସମୁଦ୍ରପନ୍ଥା—ବି. (ସମୁଦ୍ର+ପନ୍ଥା) ସମୁଦ୍ର କୂଳ ।

ସମୁଦ୍ରପୋକି—ଗ୍ରା. ବି. ଏକପ୍ରକାର ଡାଙ୍ଗପର ଝିଣ୍ଟିକା ।

ସମୁଦ୍ରଫଳ—ବି. ଅବ୍ଧି ଫଳ, ବୃକ୍ଷବିଶେଷ, କପିତ୍ଥଫଳ, କଇଥ ।

ସମୁଦ୍ରଫେନ—ବି. (୬ତତ୍) ସମୁଦ୍ରର ଢେଉମାନଙ୍କ ଆଘାତ ପ୍ରତଘାତରେ ଉତ୍ଥିତ ଫେଣ, ସମୁଦ୍ରସ୍ଥ ମୃଦୁକାୟ ବର୍ଗର ପ୍ରାଣୀ ବିଶେଷର କଙ୍କାଳ ।

ସମୁଦ୍ରବକ୍ଷଃ—ବି. (୬ତତ୍) ସମୁଦ୍ରର ଉପରିଭାଗ ।

ସମୁଦ୍ରବଚନ--ବି.ସମୁଦ୍ରବଚନ ଦେଖ

ସମୁଦ୍ରବଳୟ—ବି. (ରୂପକ) ମନୁଷ୍ୟର ହାତକୁ ବଳୟ ବେଢ଼ିଥିବା ପରି ପୃଥିବୀକୁ ବେଢ଼ିଥିବା ସମୁଦ୍ର, (ବିଂ) ବ.ବ୍ରୀ; ଚତୁର୍ଦ୍ଦିଗରେ ସମୁଦ୍ର ଦ୍ୱାରା ବେଷ୍ଟିତ, (ସ୍ତ୍ରୀ)ସମୁଦ୍ରବଳୟା ।

ସମୁଦ୍ରବସନା—ସ୍ତ୍ରୀ.ବି. ପୃଥିବୀ ।

ସମୁଦ୍ରବହ୍ନି—ବି. ସମୁଦ୍ରାଗ୍ନି, ବଡ଼ବାନଳ ।

ସମୁଦ୍ରବାସୀ—ପୁଂ. ବିଂ. (ସମୁଦ୍ର+ବସ୍+କ.ଇନ୍) ସମୁଦ୍ର ତୀରରେ ବାସକରୁଥିବା (ବ୍ୟକ୍ତି), ସମୁଦ୍ରରେ ବାସକାରୀ (ଜୀବ) ।

ସମୁଦ୍ରବେଳା—ବି.(୬ତତ୍)ସମୁଦ୍ରତୀର ।

ସମୁଦ୍ରମତ୍ସ୍ୟ—ବି. ସାମୁଦ୍ରିକ ମାଛ, ଲୁଣିମାଛ ।

ସମୁଦ୍ରମଥ(ନ୍ଥ)ନ—ବି. (୬ତତ୍) ହିନ୍ଦୁ ପୁରାଣରେ ବର୍ଣ୍ଣିତ ଦେବତା ଓ ଅସୁରମାନଙ୍କ ଦ୍ୱାରା ସମୁଦ୍ରର ଆଲୋଡ଼ନ ।

ସମୁଦ୍ରମଣ୍ଡୂକୀ—ସ୍ତ୍ରୀ. ବି. ଜଳଶୁକ୍ତି ।

ସମୁଦ୍ରମାଳୀ—ବିଂ.(ସମୁଦ୍ର+ମାଳା+ଇନ୍) ସମୁଦ୍ରଦ୍ୱାରା ବେଷ୍ଟିତ, (ସ୍ତ୍ରୀ) ସମୁଦ୍ରମାଳିନୀ, (ବି) ପୃଥିବୀ ।

ସମୁଦ୍ରମେଖଳ—ବିଂ. (ବ.ବ୍ରୀ; ସମୁଦ୍ର+ମେଖଳା+ଅ) ସମୁଦ୍ର ଦ୍ୱାରା ବେଷ୍ଟିତ, (ସ୍ତ୍ରୀ) ସମୁଦ୍ରମେଖଳା ।

ସମୁଦ୍ରମେଖଳା—ବି. (ବ.ବ୍ରୀ) ପୃଥିବୀ. (ରୂପକ.କ.ଧା) ମନୁଷ୍ୟର କଟିଦେଶକୁ ମେଖଳା ବେଢ଼ିଥିବା ପରି ପୃଥିବୀକୁ ବେଢ଼ିଥିବା ସମୁଦ୍ର, (ସ୍ତ୍ରୀ.ବିଂ-ବ.ବ୍ରୀ) ସାଗରବେଷ୍ଟିତା ।

ସମୁଦ୍ରଯାତ୍ରା—ବି. (୬ତତ୍)ଦେଶାନ୍ତରକୁ ଯିବାପାଇଁ ସମୁଦ୍ର ଭ୍ରମଣ ।

ସମୁଦ୍ରଯାନ—ବି. (ମଧ୍ୟ-କ.ଧା·୬ତତ୍) ଅର୍ଣ୍ଣବପୋତ, ଜାହାଜ, ବୋଇତ, (୬ତତ୍) ସମୁଦ୍ରଯାତ୍ରା ।

ସମୁଦ୍ରଯାୟୀ—ବିଂ. ସମୁଦ୍ରଗାମୀ ।

ସମୁଦ୍ରରସଣା—ସ୍ତ୍ରୀ. ବି. ପୃଥିବୀ ।

ସମୁଦ୍ରରସନା—ସ୍ତ୍ରୀ. ବି. ପୃଥିବୀ ।

ସମୁଦ୍ରଲବଣ—ବି. ସମୁଦ୍ରର ଜଳରୁ ଜାତ ଲବଣ, କରକଚ ଲୁଣ, ସୈନ୍ଧବ ଲବଣ ।

ସମୁଦ୍ରଲହରୀ—ବି. (୬ତତ୍) ସମୁଦ୍ରର ଉତ୍ତାଳ ତରଙ୍ଗ, ସମୁଦ୍ରପାଣିର ପରସ୍ପର ଆଘାତରୁ ଜାତ ବଡ଼ ବଡ଼ ଢେଉ

ସମୁଦ୍ରଶୂର—ପୁଂ. ବି. ବଣିକ୍‌ଭେଦ ।

ସମୁଦ୍ରଶୋଷ—ବି. ବୃକ୍ଷବିଶେଷ ।

ସମୁଦ୍ରସାର—ବି. ଶୁକ୍ତି, ମୁକ୍ତା ।

ସମୁଦ୍ରସୁଭଗା—ସ୍ତ୍ରୀ. ବି. ଗଙ୍ଗାନଦୀ ।

ସମୁଦ୍ରସ୍ଥଳୀ—ସ୍ତ୍ରୀ. ବି. ସମୁଦ୍ରତୀରସ୍ଥ ତୀର୍ଥକ୍ଷେତ୍ର ଭେଦ ।

ସମୁଦ୍ରସ୍ନାନ—ବି.(୬ତତ୍)ସମୁଦ୍ର ଜଳରେ ଗାଧୋଇବା ।

ସମୁଦ୍ରା—ବି. ଆମୃଥଦା, ଆମୃକଷିଆ ଗଛ, ଶମୀଗଛ ।

ସମୁଦ୍ରାନ୍ତ—ବି. (୬ତତ୍) ସମୁଦ୍ରକୂଳ, ଜାଇଫଳ, (ବିଂ-ବ.ବ୍ରୀ) ସମୁଦ୍ରଦ୍ୱାରା ସୀମାବଶିଷ୍ଟ ।

ସମୁଦ୍ରାନ୍ତା—ବି. ପିଡ଼ଙ୍ଗ ଶାଗ, ପୃକ୍କା, କାର୍ପାସୀ, କପାଗଛ, ଦୁରାଲଭା,ପୃଥିବୀ ।

ସମୁଦ୍ରାମ୍ବରା—ସ୍ତ୍ରୀ.ବି. (ବ.ବ୍ରୀ) ପୃଥିବୀ ।

ସମୁଦ୍ରାୟଣ—ବିଂ.ସମୁଦ୍ରେ ଗମନକାରୀ, (ସ୍ତ୍ରୀ.ବି) ନଦୀ ।

ସମୁଦ୍ରାରୁ—ବି. (ସମୁଦ୍ର + ଆ + ଋ + କ.ଉ) କୁମ୍ଭୀର, ତିମିଙ୍ଗିଳ ମତ୍ସ୍ୟ, ସେତୁବନ୍ଧ ।

ସମୁଦ୍ରାର୍ଥ—ବିଂ.ସମୁଦ୍ର ଯାହାର ଏକମାତ୍ର ଗନ୍ତବ୍ୟ ।

ସମୁଦ୍ରାର୍ଥା—ସ୍ତ୍ରୀ. ବି. ନଦୀ ।

ସମୁଦ୍ରାବରଣ— ବିଂ. ସାଗରେଣାଚ୍ଛାଦିତ, (ବି) ପୃଥିବୀ ।

ସମୁଦ୍ରି(ଦ୍ରୀ)ୟ—ବିଂ. (ସମୁଦ୍ର + ଇୟ) ସାମୁଦ୍ରିକ,ସମୁଦ୍ର ସମ୍ବନ୍ଧୀୟ.ସମୁଦ୍ରଜାତ ।

ସମୁଦ୍ରେକ—ପୁଂ. ବି. (ସମ୍+ଉତ୍+ରିଚ୍+ଅ) ସମ୍ୟକ୍‌ପ୍ରକାରେ ଉଦ୍ରେକ ।

ସମୁଦ୍ରେଷ୍ଠ—ବିଂ. (ସମୁଦ୍ର + ସ୍ଥା + ଅ) ସମୁଦ୍ରସ୍ଥ, ସମୁଦ୍ରେ ସ୍ଥିତ ।

ସମୁଦ୍ରୋନ୍ମାଦନ—ପୁଂ. ବି. ସ୍କନ୍ଦାନୁଚର ଭେଦ ।

ସମୁନ୍ଦନ—ବି. (ସମ୍ + ଉନ୍ଦ୍ + ଭା.ଅନ) ଓଦାକରିବା, ଆର୍ଦ୍ରତା ।

ସମୁନ୍ଧୀ—ଗ୍ରା. ପୁଂ. ବି. (ସଂ-ସମ୍ବନ୍ଧୀ) ଆପଣାର ପୁଅର ବା ଝିଅର ଶ୍ୱଶୁର, (ସ୍ତ୍ରୀ) ସମୁନ୍ଧୁଣୀ ।

ସମୁନ୍ନ—ବିଂ. (ସମ୍+ଉନ୍ଦ୍+କ.ତ) ଆର୍ଦ୍ର, ଓଦା ।

ସମୁନ୍ନତ—ବିଂ. (ସମ୍+ଉନ୍ନତ)ଅତ୍ୟନ୍ତ ଉଚ୍ଚ, ଉଚ୍ଚପଦସ୍ଥ, ମହତ୍,ଉନ୍ନତପ୍ରାପ୍ତ, ସମୃଦ୍ଧ, ଉପରକୁ ଟେକାଯାଇଥିବା,

ଉତ୍ତୋଳିତ, ଗର୍ବିତ,ନ୍ୟାୟପ୍ରିୟ,ପଦାକୁ ବାହାରଥିବା, (ବ) ପ୍ରସୂତିଭେଦ ।

ସମୁନ୍ନତି—ସ୍ତ୍ରୀ.ବ. (ସମ୍ + ଉତ୍ + ନମ୍ + ତି) ବିଶେଷ ଉନ୍ନତି, ସମୃଦ୍ଧି, ଉଚ୍ଚ ଅବସ୍ଥାପ୍ରାପ୍ତି, ଉଚ୍ଚତା,ଉତ୍ତୋଳନ, ଉଚ୍ଚ ଅବସ୍ଥା, ସମ୍ମାନ, ମର୍ଯ୍ୟାଦା,ବୃଦ୍ଧି,ଗର୍ବ, ସଫଳତା, ମହତ୍ତ୍ୱ ।

ସମୁନ୍ନଦ—ପୁଂ. ବ. ରାକ୍ଷସବିଶେଷ ।

ସମୁନ୍ନଦ୍ଧ—ବିଂ. (ସମ୍ + ଉତ୍ + ନହ୍ + କ୍ତ)ଗର୍ବିତ,ପଣ୍ଡିତଂମନ୍ୟ,ପ୍ରଧାନ, ଶ୍ରେଷ୍ଠ, ଉଦ୍ଧତ,ବଦ୍ଧ,ସମୁନ୍ନତ,ସମୁଚ୍ଚ, ସ୍ଫୀତ, ପୂର୍ଣ୍ଣ, ଉତ୍ପନ୍ନ, ଅଧ୍ୟକ୍ଷ ।

ସମୁନ୍ନମନ—କ୍ଳୀ.ବ. ଊର୍ଦ୍ଧ୍ୱେ ଉତ୍ତୋଳନ ବା ଆକୁଞ୍ଚନ ।

ସମୁନ୍ନୟ—ବ. (ସମ୍ + ଉତ୍+ନୀ + ଅ) ସମୁନ୍ନୟନ ଦେଖ ।

ସମୁନ୍ନୟନ—ବ. ( ସମ୍ + ଉନ୍ନୟନ ) କୌଣସି ବସ୍ତୁକୁ ଉଚ୍ଚ କରାଇବା, ଉତ୍ତୋଳନ, ଉଦ୍ଭାବନ, ଉତ୍କ୍ଷେପଣ, ଉପରକୁ ଟେକାଉଠିବା, ପ୍ରାପ୍ତି, ଘଟନା, ଲାଭ, ପ୍ରବୃତ୍ତି ।

ସମୁନ୍ନସ—ବିଂ. ଉନ୍ନସ, ଊର୍ଦ୍ଧ୍ୱନାସିକା-ବିଶିଷ୍ଟ ।

ସମୁନ୍ନାଦ—ପୁଂ.ବ,ଅନୁକ୍ରମିକ ଚିତ୍କାର, ସମୂହ ଶବ୍ଦ ।

ସମୁନ୍ନାହ—ବ.(ସମ୍ + ଉତ୍ + ନହ୍ + ଅ) ଉଚ୍ଛ୍ରାୟ, ଉଚ୍ଚତା ।

ସମୁନ୍ନେୟ—ବିଂ. ଅଭିବ୍ୟକ୍ତି ଯୋଗ୍ୟ, ଯାହା ସମ୍ୟକ୍ ଆଯୁକ୍ତିରେ ଆନୟନ କରାଯାଏ ।

ସମୁନ୍ମୁଖ—ବିଂ. ଉନ୍ମୁଖ ।

ସମୁନ୍ମିଶ୍ର—ବିଂ. ଉନ୍ମିଶ୍ର, ମିଶ୍ର ।

ସମୁନ୍ମୂଳନ—ବ. (ସମ୍ + ଉନ୍ମୂଳନ) ଉପାଡ଼ିଦେବା, ନିର୍ମୂଳୀକରଣ, (ବିଂ) ସମୁନ୍ମୂଳିତ ।

ସମୁପକ୍ରମ—ବ. (ସମ୍ + ଉପ + କ୍ରମ୍ + ଅ) ସମ୍ୟକ୍ ଉପକ୍ରମ, ଆରମ୍ଭ ।

ସମୁପଗନ୍ତବ୍ୟ—ବିଂ. ଗମନ କର୍ତ୍ତବ୍ୟ ।

ସମୁପଗମ—ବ.(ସମ୍ + ଉପଗମ)ନିକଟକୁ ଆସିବା,ନିକଟାଗମନ,ସଂଶ୍ରବ,ମେଳନ ।

ସମୁପଚର—ବ. (ସମ୍ + ଉପ + ଚର + ଅ) ସମ୍ୟକ୍ ଉପଚାର, ପୂଜା ।

ସମୁପଚିତ—ବିଂ. (ସମ୍ + ଉପ + ଚି + ର୍ମ.ତ) ସମ୍ୟକ୍ ବୃଦ୍ଧିପ୍ରାପ୍ତ,ବହୁଳୀକୃତ, ସଂହୃତ, ରାଶୀକୃତ ।

ସମୁପଚ୍ଛାଦ—ବ. (ସମ୍ + ଉପ + ଛଦ୍ + ଅ) ସମ୍ୟକ୍ ଆଚ୍ଛାଦନ ।

ସମୁପଜୋଷମ୍—ଅ. (ସମ୍ + ଉପ + ଜୁଷ୍ + ଭା.ଅମ୍) ଇଚ୍ଛାର ସମ୍ପୂର୍ଣ୍ଣ ଅନୁକୂଳରେ, ସୁଖରେ, ଆନନ୍ଦରେ ।

ସମୁପଧାନ—ବ.(ସମ୍ + ଉପ + ଧା + ଭା.ଅନ) ସମୁତ୍ପାଦନ, ସ୍ଥାପନ, ରକ୍ଷା କରିବା ।

ସମୁପଭୋଗ—ବ.(ସମ୍ + ଉପ + ଭୁଜ୍ + ଅ) ସମ୍ୟକ୍ ଉପଭୋଗ ।

ସମୁପବେଶ—ବ. ( ସମ୍ + ଉପ + ବିଶ୍ + ଭା.ଅ)ଉପବେଶନ,ଅଭ୍ୟର୍ଥନା, ଏକତ୍ର ବସିବା ।

ସମୁପଯୁକ୍ତ—ବିଂ.(ସମ୍ + ଉପଯୁକ୍ତ)ସମ୍ୟକ୍ ଉପଯୁକ୍ତ ।

ସମୁପସ୍ତମ୍ଭ—ବ. ସଂକ୍ଷେପକରଣ ।

ସମୁପସ୍ଥା—ସ୍ତ୍ରୀ. ବ. (ସମ୍ + ଉପ + ସ୍ଥା + ଅ) ନୈକଟ୍ୟ, ସାମୀପ୍ୟ, ଘଟନା ।

ସମୁପସ୍ଥିତ—ବିଂ. ( ସମ୍ + ଉପସ୍ଥିତ ) ଉପସ୍ଥିତ,ପହଞ୍ଚିଥିବା, ସମୁପେତ, ଘଟିଥିବା, ନିକଟସ୍ଥ ।

ସମୁପହ୍ୱର—ପୁଂ. ବ. ହୋମାଦି ଦ୍ୱାରା ଦେବତାଦିଙ୍କୁ ଆମନ୍ତ୍ରଣ ।

ସମୁପହ୍ୱର—ପୁଂ. ବ. ଗୁପ୍ତସ୍ଥାନ,ଲୁଚିରହିବାର ସ୍ଥାନ ।

ସମୁପାର୍ଜନ—ବ.(ସମ୍ + ଉପାର୍ଜନ)ଏକତ୍ର ଅର୍ଜନ, ଏକ ସମୟରେ ଅର୍ଜନ ।

ସମୁପାନୟନ—ବ.(ସମ୍ + ଉପ + ଆ + ନୀ + ଅନ)ସମ୍ୟକ୍‌ରୂପେ ଉପାନୟନ ।

ସମୁପାଲମ୍ଭ—ବ. (ସମ୍ + ଉପ + ଆ + ଲମ୍ଭ୍ + ଅ)ସମ୍ୟକ୍ ଉପାଲମ୍ଭ,ତିରସ୍କାର, ସରୋଷବାକ୍ୟ ।

ସମୁପେକ୍ଷକ—ବିଂ.ସମୁପେକ୍ଷାକାରୀ, ଯେ ଉପେକ୍ଷା କରେ ।

ସମୁପେତ—ବିଂ(ସମ୍ + ଉପେତ)ସମାଗତ,ଏକତ୍ର ଉପସ୍ଥିତ,ଉପସ୍ଥିତ,(ଦ୍ୱାରା) ଅଧ୍ୟୁଷିତ, ଯୁକ୍ତ, ବିଶିଷ୍ଟ ।

ସମୁପେୟିବାନ୍—ପୁଂ. ବିଂ. (ସମ୍ + ଉପ + ଇ + କ.ବସ୍) ଗମନକର୍ତ୍ତା, ଗମନବିଶିଷ୍ଟ, ଉପସ୍ଥିତ, ପ୍ରାପ୍ତ, (ସ୍ତ୍ରୀ) ସମୁପେୟୁଷୀ ।

ସମୁପେପ୍ସୁ—ବିଂ.(ସମ୍ + ଉପ + ଆପ୍ + ସନ୍ + ଉ) ସମ୍ୟକ୍ ପ୍ରକାରରେ ପାଇବାକୁ ବା ଲାଭ କରିବାକୁ ଇଚ୍ଛୁକ ।

ସମୁପୋଢ଼—ବିଂ.( ସମ୍ + ଉପ + ବହ୍ + ର୍ମ.ତ) ଦମିତ, ସଂଘାତ, ସମୁତ୍ପନ୍ନ, ସମାସନ୍ନ, ସମୁଦିତ, ଉପରକୁ ଉଠିଥିବା, ସଂଗତ, ବୃଦ୍ଧିପ୍ରାପ୍ତ, ବର୍ଦ୍ଧିତ, ଆରବ୍ଧ, ନିକଟକୁ ଆନୀତ ।

ସମୁର୍ବର—ବିଂ (ସମ୍ + ଉର୍ବର)ଅତ୍ୟନ୍ତ ଉର୍ବର ।

ସମୁଲ୍ଲସନ୍—ପୁଂ. ବିଂ. (ସମ୍ + ଉତ୍ + ଲସ୍ + ଅତ୍) କ୍ରୀଡ଼ାଶୀଳ, ଉଲ୍ଲାସଯୁକ୍ତ, ଦୀପ୍ତିମାନ୍. (ସ୍ତ୍ରୀ) ସମୁଲ୍ଲସନ୍ତୀ ।

ସମୁଲ୍ଲ(ଲ୍ଲା)ସିତ—ବିଂ. ( ସଂ + ଉଲ୍ଲସିତ) ଅତ୍ୟନ୍ତ ଆନନ୍ଦିତ, ସମୁତ୍ଫୁଲ୍ଲ, ଶୋଭିତ,କ୍ରୀଡ଼ାଶୀଳ, ଅତି ଉଜ୍ଜ୍ୱଳ ।

ସମୁଲ୍ଲାସ—ବ. (ସମ୍ + ଉତ୍ + ଲସ୍ + ଅ) ସମ୍ୟକ୍ ଉଲ୍ଲାସ, ହର୍ଷ,ଆନନ୍ଦ ।

ସମୁଲ୍ଲାସିବା—ଗ୍ରା.କ୍ରି. (ପଦ୍ୟ) ଉଲ୍ଲାସିତ କରିବା, ଆନନ୍ଦିତ କରାଇବା ।

ସମୁଲ୍ଲାସୀ—ପୁଂ.ବିଂ. (ସମୁଲ୍ଲାସ + ଇନ୍) ହର୍ଷବିଶିଷ୍ଟ, ଆନନ୍ଦଯୁକ୍ତ ।

ସମୁଲ୍ଲେଖ—ବ.(ସମ୍ + ଉଲ୍ଲେଖ)ସମ୍ୟକ୍ ଉଲ୍ଲେଖ, ଖନନ, ଖୋଦନ,ରାମ୍ପୁଡ଼ିବା, ଗୁଞ୍ଚିବା, କଥନ, ପଦାଘାତଦ୍ୱାରା ଭୂମି ଖନନ, କୁନ୍ଦନ ।

ସମୁଲ୍ଲେଖନ—ବ. (ସମ୍ + ଉତ୍ + ଲିଖ୍ + ଭା.ଅନ) ସମୁଲ୍ଲେଖ ଦେଖ, (ବିଂ) ସମୁଲ୍ଲିଖିତ । [ ଦେହ ।

ସମୁଲ୍ବଣ—ବିଂ. ସମ୍ୟକ୍ ଉଲ୍ବଣ, ପୁଷ୍ଟ-

ସମୁଷ୍ଟ—ବିଂ. ସମ୍ୟକ୍ ଉଷ୍ଟ, ଦୀପ୍ତିଶୀଳ ।

ସମୂହ୍ୟପୃଷ୍ଠ—ବି. ଅଗ୍ନି ।

ସମୂଢ଼—ବିଂ. ( ସମ୍ + ବହ୍ + ମିଂ.ତ ) ଉଢ଼, ବିବାହିତ, ଧୃତ, ରାଶୀକୃତ, ଶୋଧିତ, କୁଞ୍ଚୀକୃତ, ସଦ୍ୟୋଜାତ, ପରିଷ୍କୃତ,ଦମିତ,ଅନୁପଦ୍ରୁତ,ସଙ୍ଗତ, ଏକତ୍ରୀକୃତ, ସଂଗୃହୀତ, ଗୃହଆଚ୍ଛେ ଆଚ୍ଛନ୍ନ, ବାହିତ, ନୀୟମାନ, ମୂର୍ଖ ସହିତ ବର୍ତ୍ତମାନ ।

ସମୂର(ରୁ)—ବି. (ସମ୍ + ଉରୁ; ବି.ଗ୍ରା) ଏକପ୍ରକାର ମୃଗ, ଯାହାର ଚର୍ମରେ ବ୍ରହ୍ମଚାରୀର ଆସନ ହୋଇପାରେ ।

ସମୂଳ—ବିଂ. (ସ + ମୂଳ) ମୂଳ ସହିତ, କାରଣ ସହିତ, ସହେତୁକ, ସତ୍ୟ, ଯଥାର୍ଥ, (ସ୍ତ୍ରୀ) ସମୂଳା,(ଗ୍ରା.ବିଂ)ନିଶ୍ଚିତ, ସ୍ଥିର ।

ସମୂଳକ— ବିଂ. (ସମୂଳ + କ) ସମୂଳ ଦେଖ, (ସ୍ତ୍ରୀ) ସମୂଳକା ।

ସମୂଳଘାତ—ବି. ମୂଳ ଉଚ୍ଛେଦ କରି ସଂହାରକରଣ ।

ସମୂଳେ—ଗ୍ରା.କ୍ରି. ବିଂ. ( ସଂ-ସମୂଳଂ ) ମୂଳ ବା ଚେର ସହିତ,ସମ୍ପୂର୍ଣ୍ଣରୂପେ, ଆଦ୍ୟକୁ ମିଶାଇ,ଆଦ୍ୟରୁ ଆରମ୍ଭ କରି, ମୂଳପୋଛ କରି ।

ସମୂଳେନିର୍ମୂଳ—ଗ୍ରା.ବି. ମୂଳୋଚ୍ଛେଦ, ବିନାଶ, କୁଳଲୋପ ।

ସମୂହ—ବି. ( ସମ୍ + ବହ୍ + କ.ଅ ) ସମୁଦାୟ, ସମସ୍ତ,ରାଶି, ନିବହ, ଗଣ, ସମାହାର; ଦଳ, (ସମ୍ + ଉହ୍ + ଭା. ଅ) ସମ୍ୟକ୍ ତର୍କ, ଅତ୍ୟନ୍ତ ସନ୍ଦେହ, (ଗ୍ରା.ବିଂ) ସମୁଦାୟ, ବହୁ, ଅନେକ, ଏକୋଠିଆ ବହୁ,- ବିସ୍ତର, ଅତ୍ୟନ୍ତ, ଅତ୍ୟଧିକ, (ଗ୍ରା.ବି) ଗ୍ରାମର ବା ସମାଜର ସମ୍ମିଳିତ ବ୍ୟକ୍ତିଗଣ ବା ସଙ୍ଘ ।

ସମୂହକ—ବି. ( ସମୂହ + କ ) ସମୂହ ଦେଖ ।

ସମୂହକ୍ଷତ—ବି. ଅତ୍ୟନ୍ତ କ୍ଷତ, ସବୁ ଦିଗରେ କ୍ଷତ,ଯେଉଁ କ୍ଷତ ସମସ୍ତ ସମାଜର ଅଟେ ।

ସମୂହନ—ବି. (ସମ୍ + ବହ୍ + ଭା.ଅନ) ଏକତ୍ରୀକରଣ, ସଂଗ୍ରହ, ସମୂହ ତର୍କ ।

ସମୂହନୀ—ବି. (ସମୂହ + ନୀ + କ.ଅ + ଈ) ସମ୍ମାର୍ଜ୍ଜନୀ, ଝାଡ଼ୁ, ଝୁଣ୍ଟୁଣୀ ।

ସମୂହାବଲମ୍ବନଜ୍ଞାନ—ବି. (ଦର୍ଶନଶାସ୍ତ୍ର) ବହୁତା ବା ସମାହାର ସମ୍ବନ୍ଧୀୟ ଜ୍ଞାନ ।

ସମୂହ୍ୟ—ବି. ( ସମ୍ + ବହ୍ + କ.ଯ ) ଯଜ୍ଞୀୟ ଅଗ୍ନି ବିଶେଷ,ଯଜ୍ଞାଗ୍ନିର ସଂସ୍କାର ବିଶେଷ, (ବିଂ-ସମ୍ + ଉହ୍ + ମିଂ.ଯ) ତର୍କଣୀୟ ।

ସମୃତ—ବିଂ. (ସମ୍ + ଋ + ତ)ସମ୍ପ୍ରାପ୍ତ ।

ସମୃତି—ସ୍ତ୍ରୀ. ବି.(ସମ୍ + ଋ + ତି)ସମ୍ପ୍ରାପ୍ତି ।

ସମୃଦ୍ଧ—ବିଂ. ( ସମ୍ + ଋଧ୍ + କ.ତ ) ସମ୍ୟକ୍ ବୃଦ୍ଧି ପ୍ରାପ୍ତ, ସମୁନ୍ନତ, ବିଭବଶାଳୀ, ଧନପୂର୍ଣ୍ଣ, ସମୃଦ୍ଧିଯୁକ୍ତ, ଐଶ୍ୱର୍ଯ୍ୟଶାଳୀ, କଲ୍ୟାଣଯୁକ୍ତ, (ମିଂ.ତ) ଉତ୍ପନ୍ନ, ଜାତ,ସୁଖୀ, ଭାଗ୍ୟବାନ୍,ଫଳପୂର୍ଣ୍ଣ,ପୂର୍ଣ୍ଣ. ବିପୁଳ,ପ୍ରଚୁର, (ପୁଂ.ବି) ନାଗବିଶେଷ ।

ସମୃଦ୍ଧି—ବି.(ସମ୍ + ଋଧ୍ + ଭା.ତି) ସମ୍ୟକ୍ ବୃଦ୍ଧି, ସମୁନ୍ନତି, ଉନ୍ନତି,ସମ୍ପତ୍ତି,ବିଭବ କଲ୍ୟାଣ, ଶ୍ରେୟଃ, ମଙ୍ଗଳ,ସୁଖ,ଐଶ୍ୱର୍ଯ୍ୟ, ଉତ୍ପତ୍ତି, ପ୍ରାଚୁର୍ଯ୍ୟ, କ୍ଷମତା, ପ୍ରଭୁତ୍ୱ ।

ସମୃଦ୍ଧିମତ୍ତା—ସ୍ତ୍ରୀ. ବି. ସମ୍ପତ୍ତିଶାଳିତା ।

ସମୃଦ୍ଧିମାନ୍—ପୁଂ. ବିଂ. ସମୃଦ୍ଧିବିଶିଷ୍ଟ. ଐଶ୍ୱର୍ଯ୍ୟାନ୍ୱିତ,ଉନ୍ନତଶାଳୀ,ଧନଶାଳୀ, (ସ୍ତ୍ରୀ) ସମୃଦ୍ଧିମତୀ ।

ସମୃଦ୍ଧିଶାଳୀ—ପୁଂ. ବିଂ. (ସମୃଦ୍ଧି + ଶାଳିନ୍)ସମୃଦ୍ଧିମାନ୍ ଦେଖ,(ସ୍ତ୍ରୀ)ସମୃଦ୍ଧିଶାଳିନୀ ।

ସମୃଦ୍ଧିସମ୍ପନ୍ନ—ପୁଂ.ବିଂ.(୩ତତ୍ପୁ)ସମୃଦ୍ଧିମାନ୍ ଦେଖ, (ସ୍ତ୍ରୀ) ସମୃଦ୍ଧିସମ୍ପନ୍ନା ।

ସମେ—ଗ୍ରା. କ୍ରି. ବିଂ. ପଦ୍ୟ.(ସଂ-ସମମ୍) ସମାନ ସଂଖ୍ୟାବିଶିଷ୍ଟ ଦଳରେ, ସମାନ ରୂପରେ ।

ସମେତ--ବିଂ.(ସମ୍ + ଆ + ଇ + କ.ତ) ସହିତ,ସହିତଯୁକ୍ତ,ସଙ୍ଗେଯୁକ୍ତ,ସଙ୍ଗତ. ସଂଯୁକ୍ତ, ପ୍ରାପ୍ତ, ଉପସ୍ଥିତ, ସମୁପସ୍ଥିତ, ଏକତ୍ର ମିଳିତ,ନିକଟକୁ ଆଗତ,ହାବୁଡ଼ ଯାଇଥିବା, ଏକମତ,ସ୍ୱୀକୃତ;(ଅମୁକକୁ) ମିଶାଇ, (ସ୍ତ୍ରୀ) ସମେତା, (ବି) ସମେତ ନାମକ ପର୍ବତ ।

ସମେତେ—ଗ୍ରା. ଅ. ସହିତ ।

ସମେତେଣି—ଗ୍ରା. ଅ. (ପଦ୍ୟ) ସହିତ ।

ସମେଧ—ବିଂ. ଯଜ୍ଞଯୋଗ୍ୟ ଦ୍ରବ୍ୟସଂଯୁକ୍ତ, (ପୁଂ.ବି) ମେରୁ ଅନ୍ତର୍ଗତ ପର୍ବତ ଭେଦ ।

ସମେଧନ—କ୍ଲୀ.ବି.(ସମ୍ + ଏଧ + ଅନ) ସମ୍ୟକ୍ ବର୍ଦ୍ଧନ, ଅତିଶୟ ବର୍ଦ୍ଧନ ।

ସମେଧିତ--ବିଂ. ( ସମ୍ + ଇନ୍ଧ + ଣିଚ୍ + ମିଂ.ତ) ପ୍ରଜ୍ୱଳିତ, ସମ୍ବର୍ଦ୍ଧିତ, ଉନ୍ନତ, ଉନ୍ନମିତ, ସବଳ, ବଳବାନ୍, ସଂଯୁକ୍ତ ।

ସମେଳେ—ଗ୍ରା.କ୍ରି. ବିଂ. (ସଂ-ସମ୍ମିଳିତ) ସମ୍ମିଳିତ ହୋଇ, ସମଭିବ୍ୟାହାରରେ ।

ସମୋଦକ—ବି. (ସମ୍ + ଉଦକ)କ.ଧା; ସମପରିମିତ ଜଳ, (ବି.ଗ୍ରା) ସମପରିମିତ ଜଳଯୁକ୍ତ ଦଧି,ଯେଉଁ ଘୋଳରେ ଅଧେ ଦହି ଅଧେ ପାଣିଥାଏ, ମଥିତାର୍ଦ୍ଧମ୍ବୁ ଦଧି ।

ସମୋପକାରକ-ବିଂ.ତୁଲ୍ୟୋପକାରକର୍ତ୍ତା ।

ସମୋପମା —ବି. ଉପମାଲଙ୍କାରବିଶେଷ ।

ସମ୍ପାତ—ପୁଂ.ବି. (ସମ୍ + ପତ୍ + ଅ)ପତନ, ଅବତରଣ, (ସ୍ତ୍ରୀ) ସମ୍ପା, (ଗ୍ରା.ବି)ଗାଳିବିଶେଷ ।

ସମ୍ପକ୍ୱ—ବିଂ. (ସମ୍ + ପକ୍ୱ)ଉତ୍ତମ ରୂପେ ପାଚିଥିବା, ଉତ୍ତମ ରୂପେ ପାକ କରାଯାଇଥିବା ।

ସମ୍ପତ୍ତିପ୍ରଦ—ପୁଂ. ବିଂ. (ସମ୍ପଦ୍ + ପ୍ର + ଦା + କ.ଅ) ଯେ ସମ୍ପତ୍ତି ଦିଅନ୍ତି, (ସ୍ତ୍ରୀ) ସମ୍ପତ୍ତିପ୍ରଦା ।

ସମ୍ପତ୍ତିପ୍ରଦାଭୈରବୀ—ସ୍ତ୍ରୀ. ବି. ସମ୍ପତ୍ତିପ୍ରଦାର୍ଥୀ ତନ୍ତ୍ରସାପେକ୍ଷ ଭୈରବୀବିଶେଷ

ସମ୍ପତ୍ତିଶାଳୀ—ପୁଂ.ବିଂ(ସମ୍ପଦ୍ + ଶାଳିନ୍) ସମ୍ପତ୍ତିଶାଳୀ ଦେଖ, (ସ୍ତ୍ରୀ) ଶାଳିନୀ ।

ସମ୍ପତ୍ତି—ବି. (ସମ୍ + ପଦ୍ + ମିଂ.ତି)ଧନ, ଜାଏଦାଦ, ଐଶ୍ୱର୍ଯ୍ୟ, ବିଭବ,ଧନବୃଦ୍ଧି, ଶୋଭା,ଗୁଣୋତ୍କର୍ଷ, ଗୌରବ, ବିଭୂତି, ସୁଖ, ସୌଭାଗ୍ୟ, ସାଫଲ୍ୟ, ଉପଯୁକ୍ତ ଅବସ୍ଥା, ପ୍ରାଚୁର୍ଯ୍ୟ, ପୂର୍ଣ୍ଣତା, ଲକ୍ଷ୍ମୀ ।

ସମ୍ପତ୍ତିକ—ପୁଂ. ବିଂ. ( ସମ୍ପତ୍ତି + କ )

ସମ୍ପତ୍ତିଶାଳୀ, (ସ୍ତ୍ରୀ) ସମ୍ପତ୍ତିକା ।

ସମ୍ପତ୍ତିକ୍ଷୟ—ବି. (୬ତତ୍ପୁ)ଧନର ନାଶ, ବିପତ୍ତି ।

ସମ୍ପତ୍ତିବେଳ(ଳା)—ଗ୍ରା. ବି. ଐଶ୍ୱର୍ଯ୍ୟର ସମୟ, ଯେଉଁ ସମୟରେ ଐଶ୍ୱର୍ଯ୍ୟ ବୃଦ୍ଧି ହେଉଥାଏ ।

ସମ୍ପତ୍ତିଶାସ୍ତ୍ର—ବି. ଧନବିଜ୍ଞାନ ।

ସମ୍ପତ୍ତିସ୍ଥାନ—ପୁଂ.ବିଂ (୩ତତ୍ପୁ)ଧନସ୍ଥାନ, ଗରବ, (ସ୍ତ୍ରୀ) ସମ୍ପତ୍ତିସ୍ଥାନା ।

ସମ୍ପଦ୍—ବି. ( ସମ୍ + ପଦ୍+ ମି.କ୍ୱିପ୍ ) ସମ୍ପତ୍ତି ଦେଖ, ଅଳଙ୍କରଣ, ମୁକ୍ତାର ହାର, ଯଥୋଚିତ ପ୍ରଣାଳୀ ।

ସମ୍ପଦ୍‌ବର—ପୁଂ. ବି. (ସମ୍ପଦ୍+ ବର) ରାଜା, ଭୂପତି ।

ସମ୍ପଦ୍‌ବିନିମୟ—ବି. (୬ତତ୍ପୁ) ପରସ୍ପର ମଧ୍ୟରେ ସମ୍ପତ୍ତିର ଆଦାନ ପ୍ରଦାନ ।

ସମ୍ପଦ୍‌ବିପଦ୍—ବି. (ଦ୍ୱନ୍ଦ୍ୱ) ସମ୍ପତ୍ତି ଓ ବିପତ୍ତିର ସମାହାର ।

ସମ୍ପଦ—ବି. (ବି.ସଂ; ସମ୍ + ପଦ) ଯୁକ୍ତ ପଦରେ ଠିଆହେବା,(ଗ୍ରା.ବି) ସମ୍ପତ୍ତି ।

ସମ୍ପଦ୍‌ଲକ୍ଷଣ—ବି. (୬ତତ୍ପୁ) ଐଶ୍ୱର୍ଯ୍ୟର ଚିହ୍ନ ।

ସମ୍ପନ୍ନ—ପୁଂ.ବିଂ. (ସମ୍ + ପଦ୍ + କ୍ତ.ତ) ଐଶ୍ୱର୍ଯ୍ୟଯୁକ୍ତ.ସମ୍ପତ୍ତିଶାଳୀ,ଧନୀ,(ମି.ତ.) ସମ୍ପାଦିତ, ନିଷ୍ପନ୍ନ, ସମାହୃତ, ସମ୍ପୂର୍ଣ୍ଣ, ସଙ୍ଗରେ ଯୁକ୍ତ, ସୌଭାଗ୍ୟବାନ୍,ସୁଖୀ, ସମ୍ପୂର୍ଣ୍ଣରୂପେ ବଢ଼ିଥିବା, ପୋଖତ, ପାକଲ, (ଅମୁକ) ବିଶିଷ୍ଟ,ଯୁକ୍ତ,ପ୍ରକୃତ, ଠିକ୍, (ସ୍ତ୍ରୀ) ସମ୍ପନ୍ନା ।

ସମ୍ପନ୍ନକ୍ରମ—ବି. ବୌଦ୍ଧସମାଧି ଭେଦ ।

ସମ୍ପନ୍ନତା—ସ୍ତ୍ରୀ.ବି.(ସମ୍ପନ୍ନ+ତା)ସମ୍ପତ୍ତି, ଐଶ୍ୱର୍ଯ୍ୟ, ସମ୍ପୂର୍ଣ୍ଣତା ।

ସମ୍ପର—ବି. ପରବର୍ତ୍ତୀକାଳ ।

ସମ୍ପରାୟ—ବି,(ସମ୍+ପରା+ଇ+ଅଧି. ଅ) ଯୁଦ୍ଧ, ଉତ୍ତରକାଳ, ଭବିଷ୍ୟତ୍, ଆପୃତ, ଆପଦ, (କ.ଅ) ସନ୍ତାନ ।

ସମ୍ପରାୟ(ୟି)କ—ବି. ( ସମ୍ପରାୟ+କ ) ସମ୍ପରାୟ ଦେଖ ।

ସମ୍ପରିଗ୍ରହ—ବି. (ସମ୍+ପରିଗ୍ରହ)ଗ୍ରହଣ, ସ୍ୱୀକାର, ବିବାହ ।

ସମ୍ପରିପାଳନ—ବି.(ସମ୍+ ପରି + ପାଳ + ଅନ) ସମ୍ୟକ୍‌ରୂପେ ପରିପାଳନ ।

ସମ୍ପରିପ୍ରେପ୍ସୁ—ପୁଂ. ବିଂ. ପରିଦର୍ଶନ କରିବାକୁ ଇଚ୍ଛୁକ ।

ସମ୍ପରିମାର୍ଗଣ-ବି.ଅନ୍ୱେଷଣକରି ବୁଲିବା ।

ସମ୍ପରିଶୋଷଣ—ବି. ସମ୍ୟକ୍ ଶୋଷଣ, କ୍ଷୟ ବା ଲୋପ ।

ସମ୍ପରୀୟ—ବିଂ. ସମ୍ପର ସମ୍ବନ୍ଧୀୟ ।

ସମ୍ପର୍କ—ବି.(ସମ୍+ପୃଚ୍+ଭା.ଅ)ସମ୍ବନ୍ଧ, ସମ୍ଭବ,ସଂସର୍ଗ.ସଂଯୋଗ,ମିଳନ,ବିବାହ ବା ରକ୍ତାଦିଜନିତ ବନ୍ଧୁ, ସ୍ତ୍ରୀସଂସର୍ଗ, ମୈଥୁନ, ସ୍ପର୍ଶ, ( ଗ୍ରା.ବି ) ବନ୍ଧୁତାର ଦୂରସମ୍ପର୍କ ।

ସମ୍ପର୍କବର୍ଜିତ—ବିଂ(୩ତତ୍ପୁ)ସମ୍ବନ୍ଧଶୂନ୍ୟ

ସମ୍ପର୍କିତ—ବିଂ.(ସମ୍ପର୍କ+ଇତ) ସମ୍ପର୍କ-ଯୁକ୍ତ, ସମ୍ବନ୍ଧବିଶିଷ୍ଟ ।

ସମ୍ପର୍କୀ—ପୁଂ.ବିଂ.(ସମ୍ପର୍କ+ଇନ୍)ସମ୍ବନ୍ଧ-ଯୁକ୍ତ. ସମ୍ବନ୍ଧୀ, (ସ୍ତ୍ରୀ) ସମ୍ପର୍କିଣୀ ।

ସମ୍ପର୍କୀୟ—ପୁଂ. ବିଂ. (ସମ୍ପର୍କ+ଈୟ) ସମ୍ବନ୍ଧୀୟ,ସଂକ୍ରାନ୍ତ,ବନ୍ଧୁତା ଦ୍ୱାରା ଆବଦ୍ଧ, ରକ୍ତସମ୍ପର୍କଯୁକ୍ତ ବା ବିବାହ ସମ୍ପର୍କଯୁକ୍ତ (ସ୍ତ୍ରୀ) ସମ୍ପର୍କୀୟା ।

ସମ୍ପର୍ଯ୍ୟାସନ—କ୍ଲୀ.ବି.ସମ୍ୟକ୍ ପରିବର୍ତ୍ତନ

ସମ୍ପବନ—କ୍ଲୀ. ବି. ପବିତ୍ରକରଣ ।

ସମ୍ପା—ବି. (ସମ୍ + ପଦ୍+କ.ଅ + ଆ ) କ୍ଷଣପ୍ରଭା, ବିଦ୍ୟୁତ୍, ବିଜୁଳି, ( ଗ୍ରା.ବି ) (ସଂ-ସମ୍ପାତ) ଗାଳିଦେବା, ଅଭିଶାପ-ଦେବା ।

ସମ୍ପା(ମ୍ପେ)ଇବା--ଗ୍ରା.କ୍ରି.ସମ୍ପିବା କ୍ରିୟାର ପ୍ରଯୋଜକ ରୂପ, ଅନ୍ୟଦ୍ୱାରା ଗାଳି ଦିଆଇବା ।

ସମ୍ପାକ—ପୁଂ.ବିଂ.(ସମ୍+ପଚ୍+କ.ଅ) ଲମ୍ପଟ,ଧୃଷ୍ଟ, ଦୁଷ୍ଟ, ଅବିନୀତ, ତାର୍କିକ, ଅଳସ, ଚତୁର, କାମୁକ, କ୍ଷୁଦ୍ର, (ଗ୍ରା.ବି) ଆରଗ୍ୱଧ, ସୁନାରିଗଛ, ଉତ୍ତମରୂପେ ପକ୍ୱ ହେବା ଅବସ୍ଥା ।

ସମ୍ପାକଟା—ଗ୍ରା. ବି. ଅଭିଶାପ ଦିଆ ଓ ଗାଳିଦିଆ ।

ସମ୍ପାଗୌର—ପୁଂ. ବିଂ. ଉଜ୍ଜ୍ୱଳ ଗୌର-ବର୍ଣ୍ଣବିଶିଷ୍ଟ, (ସ୍ତ୍ରୀ) ସମ୍ପାଗୌରୀ ।

ସମ୍ପାଚନ—କ୍ଲୀ. ବି. ସମ୍ୟକ୍ ପକ୍ୱ ।

ସମ୍ପାଟ—ବି.(ସମ୍+ପଟ୍+କ.ଅ)ତର୍କୁ, ତାକୁଡ଼ି, (ଭା.ଅ) ପରସ୍ପରକୁ କାଟିବା ।

ସମ୍ପାଠ୍ୟ—ବିଂ.(ସମ୍ + ପଠ୍+ଯ)ସମ୍ୟକ୍‌ରୂପେ ପାଠନର ଉପଯୁକ୍ତ, ପଢ଼ାଇବାର ଉପଯୁକ୍ତ ।

ସମ୍ପାତ—ବି.(ସମ୍ + ପତ୍ + ଭା.ଅ)ପତନ, ସମ୍ମୁଖ, ଅଭିଶାପ, ଉତ୍ପ୍ଳବନ, ଗମନ, ପ୍ରବେଶ, ପକ୍ଷୀମାନଙ୍କର ଗତିବିଶେଷ, ଚଢ଼େଇମାନଙ୍କର ଉପରୁ ତଳକୁ ଖସି-ପଡ଼ିବାର ଗତି, (ଗ୍ରା.ବି) ଜଳଧାର ।

ସାମ୍ପାତନତ୍—ବିଂ.ପ୍ରସ୍ତୁତ, ସମ୍ୟକ୍ ନିଷ୍ପନ୍ନ କରି ଆଣିବା ।

ସମ୍ପାତବଚନ—ବି. ଅଭିଶାପ ବାକ୍ୟ ।

ସମ୍ପାତି—ଗ୍ରା. ବି. ଅରୁଣପୁତ୍ର, ଜଟାୟୁର ବଡ଼ଭାଇ ।

ସମ୍ପାତିକ--ପୁଂ.ବି. (ସମ୍ପାତି+କ)ଗରୁଡ଼ର ଜ୍ୟେଷ୍ଠ ଭ୍ରାତା ।

ସମ୍ପାତୀ-ପୁଂ.ବିଂ.(ସମ୍+ ପତ୍ + କ.ଇନ୍) ସମ୍ୟକ୍ ପତନଶୀଳ, (ସ୍ତ୍ରୀ)ସମ୍ପାତିନୀ ।

ସମ୍ପାଦ—ବି.(ସମ୍+ପଦ୍+ଭା.ଅ) ସମ୍ୟକ୍ ନିଷ୍ପାଦନ, ଅର୍ଜନ, (ଗ୍ରା.ବି-ସଂ-ସମ୍ବାଦ) ପୁରାଣ ବର୍ଣ୍ଣିତ ବିଷୟ ବା ଘଟଣା, ସମ୍ବାଦ, ଖବର, ପୁରାଣରେ ବର୍ଣ୍ଣିତ ଦୁଇଜଣଙ୍କର କଥୋପକଥନ, କରଣ, ସଂଘର୍ଷ, ସମ୍ପାଦନ, ଉଆଣ, (ଗ୍ରା. ବିଂ) ସମ୍ପୂର୍ଣ୍ଣ ।

ସମ୍ପାଦକ—ପୁଂ.ବିଂ (ସମ୍+ ପଦ୍+ ଣିଚ୍ କ.ଅକ) ସମ୍ପାଦନକାରୀ, କାର୍ଯ୍ୟ ନିର୍ବାହକ,(ସ୍ତ୍ରୀ)ସମ୍ପାଦିକା,(ପୁଂ.ବି)ସଭାର କାର୍ଯ୍ୟ ସମ୍ପାଦନକର୍ତ୍ତା, ଯେଉଁ ବ୍ୟକ୍ତି ସମ୍ବାଦପତ୍ରର ବା ସାମୟିକ ପତ୍ରିକାର ପ୍ରବନ୍ଧାଦି ସଂଗ୍ରହ ପୂର୍ବକ ପ୍ରକାଶିତ କରନ୍ତି, ପତ୍ରିକାର ସଂକଳୟିତା ବା ପରିଚାଳକ, କୌଣସି ଅନୁଷ୍ଠାନର କାର୍ଯ୍ୟ ପରିଚାଳନାଧ୍ୟକ୍ଷ ।

ସମ୍ପାଦକତା(ତ୍ୱ)—ବି. (ସମ୍ପାଦକ+ଭା.

ତା) ସମ୍ପାଦକଙ୍କ କର୍ମ, ସମ୍ପାଦନ ।

ସମ୍ପାଦକୀୟ—ବିଂ. (ସମ୍ପାଦକ + ଈୟ) ସମ୍ପାଦକସମ୍ବନ୍ଧୀୟ ବା ସମ୍ପାଦକକର୍ତ୍ତୃକ ଲିଖିତ ।

ସମ୍ପାଦନ—ବି. (ସମ୍ + ଣିଚ୍ + ପଦ୍ + ଭା.ଅନ)ସମାଧାନ,ସମାପନ, ନିଷ୍ପାଦନ, ଗ୍ରନ୍ଥାଦିର ସଂକଳନ ଓ ସଂସ୍କରଣ. ଉପାର୍ଜନ ।

ସମ୍ପାଦନକରିବା—କ୍ରି. କ୍ରି. ସମ୍ପାଦକ ରୂପେ ସମ୍ବାଦପତ୍ରାଦି ଚଳାଇବା, ସମାଧାକରିବା, ସମ୍ପାଦିବା ।

ସମ୍ପାଦନୀୟ—ବିଂ. ( ସମ୍ + ପାଦ + ର୍ମ. ଅନୀୟ) ସମ୍ପାଦିତ ହେବାର ଯୋଗ୍ୟ ।

ସମ୍ପାଦୟିତା—ପୁଂ. ବିଂ (ସମ୍ + ପାଦ + କ.ତୃ) ସମ୍ପାଦନକାରୀ, (ସ୍ତ୍ରୀ) ୟିତ୍ରୀ ।

ସମ୍ପାଦିତ—ବିଂ (ସମ୍ + ପାଦ + ର୍ମ.ତ) କୃତସମ୍ପାଦନ, ସମାପିତ, ନିର୍ବାହିତ. ନିଷ୍ପାଦିତ ।

ସମ୍ପାଦିବା—ଗ୍ରା. କ୍ରି. ସମାଧାନକରିବା, ସାଇତିବା, ଯତ୍ନ ପୂର୍ବକ ରକ୍ଷାକରିବା, ସଂଗ୍ରହକରିବା, ମନରେ ସ୍ଥାନଦେବା, ଚିନ୍ତାକରିବା,କାମନାକରିବା,ମନାସିବା, ଘଟାଇବା,ଫଳରେ ଘଟାଇବା,ଖୋଜିବା, ଲୋଡ଼ିବା, ( ଅର୍ଥଆଦିକୁ ) ବୁଝାଇବା, ବିଧାନକରିବା, ସ୍ତ୍ରୀର ଗର୍ଭରେ ଜନ୍ମାଇବା, (କୌଣସି କର୍ମ)କରିବା,ସଞ୍ଚିବା, ଜାତକରିବା ।

ସମ୍ପାଦୀ—ପୁଂ. ବିଂ. ସମ୍ପାଦନକାରୀ, ଶୋଭାବିଶିଷ୍ଟ, ଶୋଭାସମ୍ପନ୍ନ ।

ସମ୍ପାଦ୍ୟ—ବିଂ. (ସମ୍ + ପାଦ + ର୍ମ.ଯ) ସମ୍ପାଦନୀୟ,ନିଷ୍ପାଦ୍ୟ, ସାଧ୍ୟ, କରଣୀୟ, (ବି. ଜ୍ୟାମିତି ) କୌଣସି ସତ୍ୟର ସମ୍ପାଦନ ବା ପ୍ରତିଷ୍ଠା ପାଇଁ କରାଯିବା ଜ୍ୟାମିତିକ ପ୍ରତିଜ୍ଞା ବା ସମସ୍ୟା ।

ସମ୍ପିଣ୍ଡିତ—ବିଂ.ସମ୍ୟକ୍ ପିଣ୍ଡୀକୃତ,ଏକତ୍ର ମିଳିତ, ଯୁକ୍ତ ।

ସମ୍ପିଦେବା—ଗ୍ରା. କ୍ରି. ସମର୍ପଣକରିବା. ଅନ୍ୟର ହସ୍ତକୁ ବଢ଼ାଇ ଦେବା,ଗାଳି ଦେବା ।

ସମ୍ପିଧାନ—ବି. ( ସମ୍ + ଅପି + ଧା + ଅନ) ସମ୍ୟକ୍ ବିଧାନ, ଆଚ୍ଛାଦନ ।

ସମ୍ପିବା—ଗ୍ରା. କ୍ରି. ଅଭିସମ୍ପାତକରିବା, ଗାଳିଦେବା, କୁଶାଳ ହେବା, ଉତ୍ସର୍ଗ କରିବା ।

ସମ୍ପୀଡ଼—ବି. ( ସମ୍ + ପୀଡ଼୍ + ଭା.ଅ ) ସମ୍ପୀଡ଼ନ ଦେଖ ।

ସମ୍ପୀଡ଼ନ—ବି(ସମ୍ + ପୀଡ଼ + ଭା.ଅନ) ଚପିବା କର୍ମ, ନିଷ୍ପୀଡ଼ନ, ଚପୁଡ଼ିବା କର୍ମ, ଉତ୍ପୀଡ଼ନ, ପୀଡ଼ାଦାନ, ଅତ୍ୟାଚାର, ପ୍ରେରଣ, ଗୁପିବା, ଘଣ୍ଟାଘଣ୍ଟି, ଦଣ୍ଡଦେବା ।

ସମ୍ପୀଡ଼ନୀୟ—ବିଂ. (ସମ୍ + ପୀଡ଼୍ + ର୍ମ. ଅନୀୟ) ସମ୍ପୀଡ଼ିତ ହେବାର ଯୋଗ୍ୟ, ଉତ୍ପୀଡ଼ିତ ହେବାର ଯୋଗ୍ୟ, ଦଣ୍ଡନୀୟ

ସମ୍ପୀଡ଼ା—ବି.(ସମ୍ + ପୀଡ଼ା)ଉତ୍ପୀଡ଼ନ ।

ସମ୍ପୀଡ଼ିତ—ବିଂ.(ସମ୍ + ପୀଡ଼୍ + ର୍ମ.ତ) ଉତ୍ପୀଡ଼ିତ,ନିର୍ପୀଡ଼ିତ.ଚପୁଡ଼ା ହୋଇଥିବା. ଚପା ହୋଇଥିବା (ସ୍ତ୍ରୀ)ସମ୍ପୀଡ଼ିତା ।

ସମ୍ପୀଡ଼୍ୟମାନ—ପୁଂ. ବିଂ. (ସମ୍ + ପୀଡ଼୍ + ର୍ମ.ଆନ) ଯାହା ଚପା ହାଉଥାଏ, ଯାହାକୁ ଉତ୍ପୀଡ଼ିତ କରାଯାଉଥାଏ, (ସ୍ତ୍ରୀ) ସମ୍ପୀଡ଼୍ୟମାନା ।

ସମ୍ପୀତି—ବି. (ସମ୍ + ପା + ଭା.ତି)ବନ୍ଧୁଲୋକଙ୍କର ଏକତ୍ର ପାନ ।

ସମ୍ପୁଟ—ବି. ( ସମ୍ + ପୁଟ୍ + ଅଧି.ଅ ) ପେଡ଼ା, କାଠପେଡ଼ି, ଦୁଇଫାଳଯୁକ୍ତ, ପେଟରା, ଫରୁଆ, କରଟ, ରତିବନ୍ଧବିଶେଷ, କୁରୁବକ, ଦାସକେରେଣ୍ଟାଗୁଳ୍ମ, ଗାଡ଼, ଖୋଲ, ଚକ୍ରଟିଣ୍ଟି, ବିଂ. (କ.ଅ) ମିଳିତ, ଯୁକ୍ତ, ଏକତ୍ରୀଭୂତ ଦୁଇ ପଦାର୍ଥର ମଧ୍ୟବର୍ତ୍ତୀ, କୌଣସି ମନ୍ତ୍ରକୁ ପ୍ରତ୍ୟେକ ଶ୍ଳୋକର ପୂର୍ବରେ ଓ ପରେ ଉଚ୍ଚାରଣ ପୂର୍ବକ ବୋଲିଯିବା ।

ସମ୍ପୁଟକ-ବି.(ସମ୍ପୁଟ + କ)ସମ୍ପୁଟ ଦେଖ

ସମ୍ପୁଟକର—ପୁଂ.ବିଂ.(ବ.ବ୍ରୀ) କୃତାଞ୍ଜଳି

ସମ୍ପୁଟିତ—ବିଂ. (ସମ୍ + ପୁଟ୍ + ର୍ମ.ତ ) ପରସ୍ପର ସଙ୍ଗେ ପେଡ଼ା ପରି ଯୋଡ଼ା ହୋଇଥିବା,ଉପରେ ଓ ତଳେ ଘୋଡ଼ଣୀ ଥିବା ।

ସମ୍ପୁଷ୍ଟି—ସ୍ତ୍ରୀ. ବି. (ସମ୍ + ପୁଷ୍ + ତି) ସମ୍ୟକ୍ ପୁଷ୍ଟି, ପୋଷଣ ।

ସମ୍ପୂଜନ—ବି. (ସମ୍ + ପୂଜ୍ + ଭା.ଅନ) ସମ୍ୟକ୍ ପୂଜା ।

ସମ୍ପୂଜା—ସ୍ତ୍ରୀ. ବି. (ସମ୍ + ପୂଜ୍ + ଅ + ଆ) ସମ୍ୟକ୍ ପୂଜା ।

ସମ୍ପୂଜିତ—ବିଂ. ( ସମ୍ + ପୂଜ୍ + ତ ) ବିଶେଷ ରୂପେ ପୂଜିତ, ଅତି ସମ୍ମାନିତ, (ପୁଂ.ବି) ବୃଦ୍ଧ ।

ସମ୍ପୂଜ୍ୟ—ବିଂ.(ସମ୍ + ପୂଜ୍ + ଯ)ସମ୍ୟକ୍ ପୂଜନୀୟ, ସମ୍ମାନାର୍ହ ।

ସମ୍ପୂର୍ଣ୍ଣ—ବିଂ.(ସମ୍ + ପୃ + ର୍ମ.ତ)ପରିପୂର୍ଣ୍ଣ, ସମାପ୍ତ, ଉଦ୍‌ଯାପିତ, ସମଗ୍ର, ବି. (ସଙ୍ଗୀତ) ସପ୍ତସ୍ୱରବିଶିଷ୍ଟ ରାଗ, ଶୂନ୍ୟ, (ଗ୍ରା. କ୍ରି, ବିଂ ଓ ବିଂ, ର ବିଂ.)ସମ୍ପୂର୍ଣ୍ଣ ରୂପେ ।

ସମ୍ପୂର୍ଣ୍ଣକାଳୀନ—ବିଂ.ସମ୍ପୂର୍ଣ୍ଣ କାଳଭବ ।

ସମ୍ପୂର୍ଣ୍ଣତର—ବିଂ.(ସମ୍ପୂର୍ଣ୍ଣ + ତର)ସମ୍ୟକ୍ ପରିପୂର୍ଣ୍ଣ ।

ସମ୍ପୂର୍ଣ୍ଣତା(ତ୍ୱ)—ବି. ( ସମ୍ପୂର୍ଣ୍ଣ + ଭା.ତା ) ପରିପୂର୍ଣ୍ଣତା, ସମଗ୍ରତା, ସମାପ୍ତି ।

ସମ୍ପୂର୍ଣ୍ଣମୂର୍ଚ୍ଛା—ବି. ପୂର୍ଣ୍ଣ ଅଜ୍ଞାନ ଅବସ୍ଥା, ମୂର୍ଚ୍ଛା ।

ସମ୍ପୂର୍ଣ୍ଣରୂପେ—ଗ୍ରା.କ୍ରି.ବିଂ.ପୂର୍ଣ୍ଣଭାବରେ, ସମଗ୍ର ରୂପରେ ।

ସମ୍ପୂର୍ଣ୍ଣା—ସ୍ତ୍ରୀ. ବି. ସୂର୍ଯ୍ୟୋଦୟର ଦୁଇ ମୁହୂର୍ତ୍ତ ପୂର୍ବରୁ ଆରବ୍ଧ ହୋଇଥିବା, ଏକାଦଶୀ ।

ସମ୍ପୂର୍ତ୍ତି—ବି.(ସମ୍ + ପୂର୍ତ୍ତି)ସମ୍ୟକ୍‌ପୂର୍ତ୍ତି, ସମ୍ୟକ୍ ପୂରଣ ।

ସମ୍ପୃକ୍ତ—ବିଂ. ( ସମ୍ + ପୃଚ୍ + ର୍ମ.ତ ) ସମ୍ବଦ୍ଧ, ସଂସୃଷ୍ଟ,ସଂଶ୍ଳିଷ୍ଟ,ଏକତ୍ର ମିଶ୍ରିତ, ମିଳିତ, ସଂଯୁକ୍ତ,ଗ୍ରଥିତ,ଜଡ଼ିତ,ସଂଲଗ୍ନ, ଖଚିତ, ସ୍ପର୍ଶକରିଥିବା ।

ସମ୍ପୃଣ—ବିଂ.(ସମ୍ + ପୃ + ର୍ମ.ତ)ପୂର୍ଣ୍ଣତାପ୍ରାପ୍ତ, ପୂର୍ଣ୍ଣ କରାଯାଇଥିବା ।

ସମ୍ପୈଇଦେବା—ପ୍ରା. (ଯାଜପୁର) କ୍ରି. ସମର୍ପଣ କରିବା ।

ସମ୍ପୈଇବା—ଗ୍ରା.କ୍ରି.ଅନ୍ୟଦ୍ୱାରା ସମ୍ପିବା

ହିଂସା କରାଇବା ।

ସମ୍ପେଷ—ବି. ( ସମ୍ + ପିଷ୍ + ଭା.ଅ ) ସମ୍ୟକ୍ ପେଷଣ, (ମି.ଅ ) ଉତ୍ତମରୂପେ ଚୂର୍ଣ୍ଣ ହୋଇଥିବା ଗୁଣ୍ଡ ।

ସମ୍ପେଷଣ—ବି. ( ସମ୍ + ପିଷ୍ + ଅନ ) ସମ୍ପେଷ ଦେଖ, (ବି°)ସମ୍ପେଷିତ ।

ସମ୍ପୋଡ଼—ଗ୍ରା. ବି. ଲୀଳା, କୌତୁକ, ଆଲିଙ୍ଗନ ।

ସମ୍ପୋଡ଼େ—ଗ୍ରା.କ୍ରି.ବି°.ଅବଲୀଳାକ୍ରମେ, ସହଜରେ ।

ସମ୍ପୋଷ୍ୟ—ବି°. (ସମ୍ + ପୋଷ୍ୟ)ଅଭାବ ପୂରଣ ଯୋଗ୍ୟ, ଜୀବନ ଯାହା ନିର୍ବାହ ପାଇଁ ଯଥେଷ୍ଟ,ଯଥେଷ୍ଟ,ପୋଷଣହେବାର ଯୋଗ୍ୟ, (ବି) ସମ୍ପୋଷଣ ।

ସମ୍ପ୍ରକାଶକ—ପୁଂ.ବି°.(ସମ୍ + ପ୍ର + କାଶି + ଅକ) ସମ୍ୟକ୍‌ରୂପେ ପ୍ରକାଶକାରୀ ।

ସମ୍ପ୍ରକାଶନ—ବି. ସମ୍ + ପ୍ର + କାଶି + ଅନ)ସମ୍ୟକ୍ ପ୍ରକାଶ,ସମ୍ୟକ୍ ବିକାଶ ।

ସମ୍ପ୍ରକାଶ୍ୟ—ବି°.(ସମ୍ପ୍ରକାଶ୍+ଯ)ସମ୍ୟକ୍ ପ୍ରକାଶର ଯୋଗ୍ୟ, ସମ୍ୟକ୍ ପ୍ରକାଶର ଉପଯୁକ୍ତ ।

ସମ୍ପ୍ରକ୍ଷାଳ—ବି.(ସମ୍ + ପ୍ର+କ୍ଷାଳ+ଅ) ସମ୍ୟକ୍ ପ୍ରକ୍ଷାଳନ ।

ସମ୍ପ୍ରକ୍ଷାଳନ—ବି.(ସମ୍ + ପ୍ରକ୍ଷାଳନ) ସମ୍ପୂର୍ଣ୍ଣ ସ୍ନାନ, ଗାଧୋଇବା,ପ୍ଲାବନ,(ବି°)ସମ୍ପ୍ରକ୍ଷାଳିତ ।

ସମ୍ପ୍ରଣାଦ—ପୁଂ. ବି. (ସମ୍ + ପ୍ର + ନଦ + ଅ)ଅତିଶୟ ନାଦ,ଅତିଶୟ ଶବ୍ଦ ।

ସମ୍ପ୍ରଣେତା—ପୁଂ. ବି°. (ସମ୍ + ପ୍ର + ନୀ + କ.ତୃ) ଶାସକ, ବିଚାରପତି,(ସ୍ତ୍ରୀ) ସମ୍ପ୍ରଣେତ୍ରୀ ।

ସମ୍ପ୍ରତର୍ଦ୍ଦନ—ବି. (ସମ୍ + ପ୍ର + ତର୍ଦ୍ଦ + କ.ଅନ) ବିଷ୍ଣୁ ।

ସମ୍ପ୍ରତାପନ—ବି. ( ସମ୍ + ପ୍ରତାପନ ) ତତାଇବା ପୋଡ଼ିବା,ଉତ୍ପୀଡ଼ନ,ନରକଭେଦ, (ବି°) ସମ୍ପ୍ରତାପିତ ।

ସମ୍ପ୍ରତି—ଅ. (ସମ୍ + ପ୍ରତି) ଇଦାନୀଂ, ଅଧୁନା, ବର୍ତ୍ତମାନ, ଏହିକ୍ଷଣି, ଏହି ମୁହୂର୍ତ୍ତରେ, କିୟତ୍‌କାଳ ପୂର୍ବରୁ, (ବି) ଅଗତ କଲ୍ପୀୟ ଉପସର୍ପିଣୀ ଶାଖାର ଚତୁର୍ବିଂଶ ଅର୍ହତ୍, ଅଶୋକଙ୍କ ଜଣେ ପୌତ୍ର, କୁଣାଳଙ୍କର ଜଣେ ପୁତ୍ର ।

ସମ୍ପ୍ରତିପତ୍ତି—ବି.(ସମ୍ + ପ୍ରତିପତ୍ତି) ସମ୍ୟକ୍ ଜ୍ଞାନ, ଏକତ୍ର,ଅଭିଯୁକ୍ତ ବ୍ୟକ୍ତିର ଅପରାଧ ସ୍ୱୀକାର, ପ୍ରତିବାଦୀର ଏକତ୍ରସ୍ଥ ଜବାବ,ସ୍ୱୀକାର,ଯୁକ୍ତି,ସାହଚର୍ଯ୍ୟ,ଉପସ୍ଥିତି, ଆକ୍ରମଣ, ସମ୍ପାଦନ, ଘଟନା, ଆପୋଷ । [ ବଣିଷ୍ଟ ।

ସମ୍ପ୍ରତିପତ୍ତିମାନ୍—ପୁଂ. ବି°. ସମ୍ପ୍ରତିପତ୍ତି-

ସମ୍ପ୍ରତିପାଦନ—ବି. (ସମ୍ + ପ୍ରତିପାଦନ) ସମ୍ୟକ୍‌ରୂପେ ପ୍ରତିପାଦନ, ଅନ୍ୟକୁ କୌଣସି ବସ୍ତୁର ପ୍ରଦାନ, ଦାନ, ସମର୍ପଣ, (ବି°) ସମ୍ପ୍ରତିପାଦିତ ।

ସମ୍ପ୍ରତିପୂଜା—ସ୍ତ୍ରୀ. ବି. ସମ୍ୟକ୍ ପୂଜା, ସମ୍ମାନ ଦାନ ।

ସମ୍ପ୍ରତିରୋଧକ—ବି°.(ସମ୍ + ପ୍ରତିରୋଧକ) ଯାହା ସମ୍ୟକ୍ ବାଧା ଦିଏ,ଯାହା ଆବଦ୍ଧ କରେ, (ବି) ପ୍ରତିବନ୍ଧକ, ବିଘ୍ନ, ସମ୍ୟକ୍‌ରୂପେ ବାଧା, କାରାବନ୍ଧନ ।

ସମ୍ପ୍ରତିବଦ୍—ପୁଂ.ବି°.ବର୍ତ୍ତମାନ ବିଷୟାଭିଜ୍ଞ ।

ସମ୍ପ୍ରତିଷ୍ଠା—ବି. (ସମ୍ + ପ୍ରତିଷ୍ଠା) ସ୍ଥିତି, ଅବସ୍ଥିତି, ସମ୍ୟକ୍ ପ୍ରତିଷ୍ଠା, ( ବି° ) ସମ୍ପ୍ରତିଷ୍ଠିତ ।

ସମ୍ପ୍ରତିସଞ୍ଚର—ବି.(ସମ୍ + ପ୍ରତି + ସଞ୍ଚର) ପ୍ରଳୟବିଶେଷ,ବ୍ରାହ୍ମପ୍ରଳୟ ।

ସମ୍ପ୍ରତୀକ୍ଷା—ବି.(ସମ୍ + ପ୍ରତୀକ୍ଷା)ସମ୍ୟକ୍‌ରୂପେ ବା ଧୈର୍ଯ୍ୟସହକାରେ ପ୍ରତୀକ୍ଷା, ଆଶା ।

ସମ୍ପ୍ରତୀକ୍ଷ୍ୟ—ବି°. (ସମ୍ + ପ୍ରତି + ଇକ୍ଷ୍ + ଯ) ସମ୍ୟକ୍‌ରୂପେ ପ୍ରତୀକ୍ଷଣୀୟ, ପ୍ରତୀକ୍ଷାର୍ହ ।

ସମ୍ପ୍ରତୀତ—ବି°. ସମ୍ୟକ୍‌ରୂପେ ପ୍ରତୀତ, ଯାହା ହୃଦୟଙ୍ଗମ ହୋଇଥାଏ,କୌଣସି ବିଷୟରେ ନିଃସନ୍ଦେହୀକୃତ,ପ୍ରମାଣିତ, ସ୍ୱୀକୃତ,ପ୍ରସିଦ୍ଧ,ସମ୍ପୂର୍ଣ୍ଣରୂପେ ସ୍ୱୀକୃତ ।

ସମ୍ପ୍ରତୀତି—ବି. (ସମ୍ + ପ୍ରତୀତି) ସମ୍ୟକ୍ ଜ୍ଞାନ, ପ୍ରତ୍ୟୟସିଦ୍ଧ ଜ୍ଞାନ, ପୂର୍ଣ୍ଣବିଶ୍ୱାସ, ପ୍ରସିଦ୍ଧି, ଖ୍ୟାତି । [ ରଥ୍ୟା ।

ସମ୍ପ୍ରତୋଲୀ—ସ୍ତ୍ରୀ.ବି. ପ୍ରତୋଲୀ, ରାସ୍ତା,

ସମ୍ପ୍ରତ୍ୟୟ—ପୁଂ. ବି. (ସମ୍ + ପ୍ରତି + ଇ + ଅ) ସମ୍ୟକ୍ ପ୍ରତ୍ୟୟ,ଜ୍ଞାନ, ବୋଧ, ଅବଗମ ।

ସମ୍ପ୍ରଦା—ଗ୍ରା. ବି. ( ସଂ-ସମ୍ପ୍ରଦାୟ ) ବୈଷ୍ଣବ ବା ବୈରାଗୀମାନଙ୍କର ବିଭିନ୍ନ ଦଳ, ଆଖଡ଼ା, ଖୋଳ କରତାଳସହ ନାମସଂକୀର୍ତ୍ତନ କରିବା ଦଳ, ନାମସଂକୀର୍ତ୍ତନ ।

ସମ୍ପ୍ରଦାତା—ପୁଂ.ବି°. (ସମ୍ + ପ୍ର + ଦା + କ.ତୃ) ସମ୍ପ୍ରଦାନକର୍ତ୍ତା,(ସ୍ତ୍ରୀ)ସମ୍ପ୍ରଦାତ୍ରୀ, (ବି) ଦାତା,ଦାନକାରୀ ବ୍ୟକ୍ତି ।

ସମ୍ପ୍ରଦାନ—ବି.(ସମ୍ + ପ୍ରଦାନ)ସମ୍ପୂର୍ଣ୍ଣରୂପେ ଦାନ, ସମର୍ପଣ, ସ୍ୱ ସ୍ୱତ୍ୱ ଧ୍ୱଂସ ପୂର୍ବକ ପର ସ୍ୱତ୍ୱର ଉଦ୍ଭବ ହେବାପାଇଁ ଦାନ, ବରକୁ କନ୍ୟାଦାନରୂପ କର୍ମ, (ବ୍ୟାକରଣ) ୪ର୍ଥୀ ବିଭକ୍ତିର କାରକ, ଯେଉଁ ବ୍ୟକ୍ତିକୁ ଦାନ କରାଯାଏ--ତତ୍ସମ୍ବନ୍ଧୀୟ କାରକ,ପ୍ରକୃଷ୍ଟଦାନ,ଦାନୀୟ ବ୍ୟକ୍ତି, ଯାହାଙ୍କୁ କୌଣସି ବସ୍ତୁ ଦାନ କରାଯାଏ ।

ସମ୍ପ୍ରଦାନୀୟ—ବି°.(ସମ୍ + ପ୍ର + ଦା + ମି.ଅନୀୟ) ଯେଉଁ ପଦାର୍ଥ ସମ୍ପ୍ରଦାନ କରାଯିବାର ଯୋଗ୍ୟ ବା ସମ୍ପ୍ରଦାନ କରାଯିବାପାଇଁ ଅଭିପ୍ରେତ,ସମ୍ପ୍ରଦାନର ଯୋଗ୍ୟ,(ସମ୍ପ୍ରଦାନ + ଅନୀୟ)ଯେଉଁ ବ୍ୟକ୍ତିକୁ କୌଣସି ବସ୍ତୁ ଦାନ କରିବା ପାଇଁ ସଂକଳ୍ପ କରାଯାଇଥାଏ, ( ବି ) ଦାନ ।

ସମ୍ପ୍ରଦାୟ—ବି.(ସମ୍ + ପ୍ର + ଦା + ମି.ଅ) ଗୁରୁ ପରମ୍ପରାଗତ ଉପଦେଷ୍ଟା, ଗୁରୁ ପରମ୍ପରାକ୍ରମେ ପ୍ରଚଳିତ ଧର୍ମମତବାଦ, ସମାଜ,ଦଳ,ଗୋଷ୍ଠୀ, ସଦାଚାର,ରୀତି, ଏକଜାତି ବା ସମାଜ ବା ଧର୍ମାବଲମ୍ବୀଙ୍କ ମଧ୍ୟରୁ ବିଶିଷ୍ଟ ମତାବଲମ୍ବୀ ବା ସ୍ୱତନ୍ତ୍ର ଦେବପୂଜକ ଦଳ ବା ଶାଖା, (ଗ୍ରା.ବି) ସମ୍ପ୍ରଦାୟ ଦେଖ, (ବି°)ସମ୍ପ୍ରଦାୟିକ ।

ସମ୍ପ୍ରଦାୟଭୁକ୍ତ—ପୁଂ. ବି°. (୭ତତ୍ପୁ)ଏକ

ସମ୍ପ୍ରଦାୟର ଅନ୍ତର୍ଗତ ।
ସମ୍ପ୍ରଦାୟୀ—ପୁଂ. ବିଂ. (ସମ୍ପ୍ରଦାୟ + ଇନ୍) ସମ୍ପ୍ରଦାୟବିଶିଷ୍ଟ, ସଭ୍ୟ, ସାମାଜିକ, ସମାଜସ୍ଥ ।
ସମ୍ପ୍ରଧାରଣ(ଣା)—ବି.(ସମ୍+ପ୍ର+ଣିଚ୍ ଧୃ+ଭା.ଅନ+ଆ) ଯୁକ୍ତାଯୁକ୍ତ ବିବେଚନା, ଉଚିତାନୁଚିତ ନିଶ୍ଚୟ,କର୍ତ୍ତବ୍ୟାବଧାରଣ,କର୍ତ୍ତବ୍ୟ ନିର୍ଣ୍ଣୟ,ଅବଧାରଣ, ନିର୍ଣ୍ଣୟ ।
ସମ୍ପ୍ରଧାର୍ଯ୍ୟ—ବିଂ. ସମ୍ପ୍ରଧାରଣ ଯୋଗ୍ୟ ।
ସମ୍ପ୍ରପଦ—ବି. (ସମ୍+ପ୍ର+ପଦ୍+ଭା. ଅ) ଭ୍ରମଣ, ପର୍ଯ୍ୟଟନ ।
ସମ୍ପ୍ରପନ୍ନ—ବିଂ. (ସମ୍+ପ୍ରପନ୍ନ) ଠାରେ ଉପସ୍ଥିତ, ବିଶିଷ୍ଟ, ପ୍ରବିଷ୍ଟ ।
ସମ୍ପ୍ରପୁଷ୍ପିତ—ବିଂ. ପ୍ରଚୁରପୁଷ୍ପଯୁକ୍ତ,ସମ୍ୟକ୍ ପ୍ରସ୍ଫୁଟିତ, ପୁଷ୍ପବିଶିଷ୍ଟ । [ କଥାବାର୍ତ୍ତା ।
ସମ୍ପ୍ରବଦନ—ବି. ( ସମ୍ + ପ୍ରବଦନ )
ସମ୍ପ୍ରବର୍ତ୍ତକ—ବିଂ. (ସମ୍+ପ୍ର+ବର୍ତ୍ତି+ ଅକ) ସମ୍ୟକ୍ ପ୍ରବର୍ତ୍ତନକାରୀ, ପ୍ରଚଳନକାରୀ ।
ସମ୍ପ୍ରବର୍ତ୍ତନ—ବି. ( ସମ୍ + ପ୍ରବର୍ତ୍ତନ ) କାର୍ଯ୍ୟାରମ୍ଭ, କାର୍ଯ୍ୟରେ ହସ୍ତକ୍ଷେପଣ, (ବିଂ) ସମ୍ପ୍ରବର୍ତ୍ତିତ ।
ସମ୍ପ୍ରବାହ—ବି. ( ସମ୍ + ପ୍ର + ବହ୍ + ଅ) ପ୍ରବାହ, ଧାର ।
ସମ୍ପ୍ରବୃତ୍ତି—ସ୍ତ୍ରୀ. ବି. ସମ୍ୟକ୍ ଆସକ୍ତି,ଅନୁଗମନେଚ୍ଛା, ବିକାଶ, ଆବିର୍ଭାବ,ଉପସ୍ଥିତି, ସଂଘଟନ ।
ସମ୍ପ୍ରବୃଦ୍ଧି—ସ୍ତ୍ରୀ.ବି.ସମ୍ୟକ୍ ପ୍ରବୃଦ୍ଧି ,ଅତିଶୟ ବୃଦ୍ଧି । [ ବର୍ଷା ।
ସମ୍ପ୍ରବୃଷ୍ଟ(ଷ୍ଟି)—ବି.(ସମ୍+ପ୍ରବୃଷ୍ଟ)ସମ୍ପୂର୍ଣ୍ଣ
ସମ୍ପ୍ରବେଶ—ବି. (ସମ୍ +ପ୍ରବେଶ) ପୂର୍ଣ୍ଣ ରୂପେ ପ୍ରବେଶ, ଭିତରକୁ ପ୍ରବେଶ, (ବିଂ) ସମ୍ପ୍ରବିଷ୍ଟ, ସମ୍ପ୍ରବେଶିତ ।
ସମ୍ପ୍ରଭବ—ବିଂ. (ସମ୍ +ପ୍ର+ଭୂ+ଅ) ସମ୍ୟକ୍ ଉତ୍ପତ୍ତିବିଶିଷ୍ଟ ।
ସମ୍ପ୍ରଭିନ୍ନ—ବିଂ. (ସମ୍ +ପ୍ରଭିନ୍ନ) ଚିରିଯାଇ ମେଲା କରିଯାଇଥିବା,ମତ୍ତ(ହସ୍ତୀ-ଆଦି) ।
ସମ୍ପ୍ରମର୍ଦ୍ଦନ—ପୁଂ. ବି. ବିଷ୍ଣୁ ।
ସମ୍ପ୍ରମାଦ—ବି. (ସମ୍ + ପ୍ରମାଦ)ମୋହ, ଭ୍ରାନ୍ତି, (ବିଂ) ସମ୍ପ୍ରମତ୍ତ ।
ସମ୍ପ୍ରମୁକ୍ତି—ସ୍ତ୍ରୀ. ବି. (ସମ୍ + ପ୍ର + ମୁଚ୍+ ତି) ସମ୍ୟକ୍ ମୁକ୍ତି, ମୋଚନ ।
ସମ୍ପ୍ରମେହ-ପୁଂ.ବି.ପ୍ରମେହ ରୋଗ,ପ୍ରମେହ
ସମ୍ପ୍ରମୋଦ—ବି. ( ସମ୍ +ପ୍ରମୋଦ ) ଅତ୍ୟନ୍ତ ଆନନ୍ଦ.(ବିଂ)ସମ୍ପ୍ରମୋଦିତ ।
ସମ୍ପ୍ରମୋଷ-ବି.(ସମ୍ +ପ୍ରମୋଷ)ଚୌର୍ଯ୍ୟ, ବିନାଶ, କ୍ଷତି, କାଢ଼ି ନେବା ।
ସମ୍ପ୍ରମୋହ—ବି. ସମ୍ୟକ୍ ମୋହ,ମାନସିକ ବିକୃତି ।
ସମ୍ପ୍ରୟାଣ—ବି (ସମ୍ + ପ୍ର + ଯା + ଅନ) ସମ୍ୟକ୍ ପ୍ରୟାଣ, ସମ୍ୟକ୍ ଗମନ,ସ୍ୱର୍ଗାରୋହଣ, ମହାପ୍ରସ୍ଥାନ ।
ସମ୍ପ୍ରୟାସ—ବି. (ସମ୍ +ପ୍ର+ଯସ୍+ ଅ) ସମ୍ୟକ୍ ପ୍ରୟାସ, ଅତିଶୟ ଯତ୍ନ ।
ସମ୍ପ୍ରଯୁକ୍ତ—ବିଂ. (ସମ୍ + ପ୍ର+ଯୁଜ୍+ର୍ମ. ତ)ଏକତ୍ର ଯୋଗ ଦେଇଥିବା, ଲାଭ ଉଦ୍ଦେଶ୍ୟରେ ବିନିଯୋଜିତ (ଧନ),ପରସ୍ପର କୃତସଙ୍ଗମ, କୃତସଂକଳ୍ପ, ଆସକ୍ତ ।
ସମ୍ପ୍ରଯୋକ୍ତବ୍ୟ—ବିଂ.(ସମ୍ +ପ୍ର+ଯୁଜ୍ +ତବ୍ୟ)ସମ୍ୟକ୍ ପ୍ରକାରେ ପ୍ରୟୋଗର ଯୋଗ୍ୟ ।
ସମ୍ପ୍ରଯୋ(ୟୋ)ଗ—ବି. ( ସମ୍ + ପ୍ର+ ଯୁଜ୍+ ଭା.ଅ) ବିନିଯୋଗ, ପ୍ରୟୋଗ, ଧନପ୍ରୟୋଗ, ଲାଭ ପାଇଁ ବା ସୁଧ ପାଇଁ ଟଙ୍କା ଖଟାଇବା, ମାରଣ,ବଶୀକରଣ, ଉଚାଟନଆଦି ତାନ୍ତ୍ରିକକ୍ରିୟା, ଇନ୍ଦ୍ରଜାଲ, କୁହୁକ,ସାପେକ୍ଷତା,ସମ୍ବନ୍ଧ, ସଂଯୋଗ, ଯୌନସଙ୍ଗମ, ରମଣ, ଲମ୍ପଟ୍ୟ, ମିଳନ, ଧାର, ତାନ୍ତ୍ରିକ ଅଭିଚାରର ପ୍ରୟୋଗ, ଦୁଇ ପଦାର୍ଥକୁ ଯୋଡିବାପଦାର୍ଥ ବା ମୁଣ୍ଡିଆ, (ବିଂ) ଅର୍ଥିତ; ପ୍ରାର୍ଥିତ ।
ସମ୍ପ୍ରଯୋଗୀ—ପୁଂ. ବିଂ. (ସମ୍+ ପ୍ର+ ଯୁଜ୍+କ.ଇନ୍) ସମ୍ପ୍ରୟୋଗକାରୀ,ଐନ୍ଦ୍ରଜାଲିକ, ତାନ୍ତ୍ରିକ ଅଭିଚାର ପ୍ରୟୋଗକାରୀ, କାମୁକ, ଲମ୍ପଟ, (ସ୍ତ୍ରୀ) ସମ୍ପ୍ରଯୋଗିନୀ, (ବି) ଧନ ଖଟାଇବା ବ୍ୟକ୍ତି, ଐନ୍ଦ୍ରଜାଲିକ, ଲମ୍ପଟ ବ୍ୟକ୍ତି, ଅନୈସର୍ଗିକ ଉପାୟରେ ଇନ୍ଦ୍ରିୟ ଚରିତାର୍ଥକାରୀ ବ୍ୟକ୍ତି ।
ସମ୍ପ୍ରଯୋ(ୟୋ)ଜକ—ପୁଂ.ବିଂ. (ସମ୍+ ପ୍ର + ଣିଚ୍+ ଯୁଜ୍+ କ.ଅକ) କାମୁକ, ଲମ୍ପଟ,ସମ୍ପ୍ରଯୋଗ ଘଟାଇବା (ବ୍ୟକ୍ତି), (ସ୍ତ୍ରୀ) ସମ୍ପ୍ରଯୋଜିକା, ( ବି ) ଦଲାଲ, ଯେଉଁବ୍ୟକ୍ତି ସ୍ତ୍ରୀଙ୍କୁ ଓ ପୁରୁଷଙ୍କୁ ସଙ୍ଗମାର୍ଥ ମିଳିତ କରାଏ, ସଂଯୋଗକାରୀ ବ୍ୟକ୍ତି ।
ସମ୍ପ୍ରଯୋ(ୟୋ)ଜନ—ବି.(ସମ୍+ପ୍ର+ ଣିଚ୍+ଯୁଜ୍+ଭା.ଅନ) ଅନ୍ୟଦ୍ୱାରା ସମ୍ପ୍ରଯୋଗ ଘଟାଇବା, (ବିଂ) ସମ୍ପ୍ରଯୋଜିତ ।
ସମ୍ପ୍ରଯୋଜ୍ୟ—ବିଂ. (ସମ୍+ପ୍ର+ଯୁଜ୍ + ଯ) ସମ୍ୟକ୍ରୂପେ ପ୍ରୟୋଗର ଯୋଗ୍ୟ, ପ୍ରୟୋଗାର୍ହ ।
ସମ୍ପ୍ରଲାପ—ବି. (ସମ୍+ପ୍ର+ଲପ୍+ଅ) ସମ୍ୟକ୍ ପ୍ରଲାପ, ଅତିଶୟ ପ୍ରଲାପ ।
ସମ୍ପ୍ରଶ୍ନ—ବି. ସମ୍ୟକ୍ ପ୍ରଶ୍ନ ।
ସମ୍ପ୍ରଶ୍ରୟ—ବି. ପ୍ରଶ୍ରୟ, ବିନୟ,ନମ୍ରତା ।
ସମ୍ପ୍ରଷ୍ଟବ୍ୟ—ବିଂ. (ସମ୍+ପ୍ରଚ୍ଛ୍ +ତବ୍ୟ) ସମ୍ୟକ୍ରୂପେ ଜିଜ୍ଞାସାର ଯୋଗ୍ୟ ।
ସମ୍ପ୍ରସର୍ପଣ—ବି. ସମ୍ୟକ୍ ପ୍ରସର୍ପଣ, ଅଭିମୁଖେ ବା ସମ୍ମୁଖେ ଗମନ ।
ସମ୍ପ୍ରସାଦ-ବି. (ସମ୍+ ପ୍ର+ ସଦ୍+ ଭା.ଅ) ପ୍ରସନ୍ନତା,ବିଶ୍ୱାସ,ସୁଷୁପ୍ତି, ଗଭୀର ନିଦ୍ରା, ଯୋଗଶାସ୍ତ୍ରୋକ୍ତ ଚିତ୍ତର ନିର୍ମଳତା ସମ୍ପାଦକ ଯତ୍ନବିଶେଷ,(ବିଂ)ସମ୍ପ୍ରସନ୍ନ ।
ସମ୍ପ୍ରସାଧ—ବିଂ. ପ୍ରସାଧନାର୍ହ,(ବି) ସୁଶୃଙ୍ଖଳା, ସୁବ୍ୟବସ୍ଥା ସ୍ଥାପନ ।
ସମ୍ପ୍ରସାରଣ—ବି. ( ସମ୍+ପ୍ରସାରଣ ) ବିସ୍ତାରଣ, ବିସ୍ତାର, (ବ୍ୟାକରଣ) ଇ, ଉ, ଋ, ଌ ସ୍ଥାନରେ ଯଥାକ୍ରମେ ଯ, ୱ,ର,ଲ ଆଗମ ହେବା ସ୍ଥିତି, ସଂପୂର୍ଣ୍ଣରୂପେ ମେଲାଇ ଦେବା, (ବିଂ) ସମ୍ପ୍ରସାରିତ ।
ସମ୍ପ୍ରସୂତ—ସ୍ତ୍ରୀ.ପ୍ରସବକାରିଣୀ, ଯେଉଁ ସ୍ତ୍ରୀ ତିନ ବା ତତୋଽଧିକ ସନ୍ତାନ ପ୍ରସବ କରିଥାଏ ।

ସମ୍ପ୍ରସ୍ଥାନ—ବି. (ସମ୍+ପ୍ର+ସ୍ଥା+ଅନ) ଯାତ୍ରାକରଣ ।

ସମ୍ପ୍ରସ୍ଥିତ—ବିଂ. (ସମ୍+ପ୍ରସ୍ଥିତ) ପ୍ରସ୍ଥାନୋଦ୍ୟତ,ଗତ,ଯେ ଯାଇଅଛି,ଚଳିତ, (ବିଂ) ସମ୍ପ୍ରସ୍ଥିତ ।

ସମ୍ପ୍ରହର୍ଷ—ବି. (ସମ୍+ପ୍ର+ହୃଷ୍+ଅ) ସମ୍ୟକ୍ ହର୍ଷ, ଆନନ୍ଦ, ଆହ୍ଲାଦ ।

ସମ୍ପ୍ରହର୍ଷୀ—ବିଂ. (ସମ୍+ପ୍ର+ହୃଷ୍+ଇନ୍) ହର୍ଷବିଶିଷ୍ଟ,ଆନନ୍ଦଯୁକ୍ତ,ଆହ୍ଲାଦବିଶିଷ୍ଟ ।

ସମ୍ପ୍ରହାର—ପୁଂ. ବି. (ସମ୍+ପ୍ରହାର) ସମ୍ୟକ୍ ପ୍ରହାର,ବିଶେଷ ପ୍ରହାର,ହନନ, ମାରଣ, ଗମନ, ଯୁଦ୍ଧ, ମାଡ ମରାମରି, ପିଟାପିଟି, (ବିଂ) ସମ୍ପ୍ରହୃତ ।

ସମ୍ପ୍ରହାରୀ—ପୁଂ. ବି. (ସମ୍+ପ୍ର+ହୃ+ଇ) ପଥିକ ସଂହତ ।

ସମ୍ପ୍ରହାରୀ—ପୁଂ. ବିଂ. ଯୁଦ୍ଧକାରୀ, ଅସ୍ତ୍ରପ୍ରହାରକାରୀ ।

ସମ୍ପ୍ରହାସ—ବି.(ସମ୍+ପ୍ରହାସ)ଉପହାସ, ବିଦ୍ରୂପ ।

ସମ୍ପ୍ରାପ୍ତ—ବିଂ. (ସମ୍+ପ୍ରାପ୍ତ) ସମ୍ୟକ୍ ଲବ୍ଧ, ସମାଗତ, ଉପସ୍ଥିତ, ଫଳିତ, ଘଟିତ, ପ୍ରବୃତ୍ତ, କଥିତ, (ବି)ସମ୍ପ୍ରାପ୍ତି ।

ସମ୍ପ୍ରାପ୍ତବ୍ୟ—ବିଂ.(ସମ୍+ପ୍ର+ଆପ୍+ତବ୍ୟ)ପାଇବାର ଯୋଗ୍ୟ,ସମ୍ୟକ୍‌ରୂପେ ଲାଭର ଉପଯୁକ୍ତ ।

ସମ୍ପ୍ରାପ୍ତି—ସ୍ତ୍ରୀ. ବି. (ସମ୍+ପ୍ର+ଆପ୍+ଭା.ତି) ସମ୍ୟକ୍ ପ୍ରାପଣ, ସମ୍ୟକ୍ ପ୍ରାପ୍ତି, ସମାଗତ, ଉପସ୍ଥିତି, ଲାଭ, ରୂପବିଶିଷ୍ଟ ହୋଇ ରୋଗର ଉତ୍ପତ୍ତି ।

ସମ୍ପ୍ରାର୍ଥନା—ସ୍ତ୍ରୀ.ବି.ସମ୍ୟକ୍‌ରୂପେ ପ୍ରାର୍ଥନା, ଯାଚ୍ଞା ।

ସମ୍ପ୍ରାର୍ଥ୍ୟ—ବିଂ.(ସମ୍+ପ୍ର+ଅର୍ଥ+ଯ) ସମ୍ୟକ୍‌ରୂପେ ପ୍ରାର୍ଥନୀୟ ।

ସମ୍ପ୍ରିୟ—ବିଂ. ସମ୍ୟକ୍‌ପ୍ରିୟ, ଅତି ପ୍ରିୟ ।

ସମ୍ପ୍ରୀଣନ—କ୍ଲୀ. ବି. (ସମ୍+ପ୍ରୀ+ଅନ) ସମ୍ୟକ୍ ପ୍ରୀଣନ, ପ୍ରୀତି, ପ୍ରଣୟ ।

ସମ୍ପ୍ରୀତ—ବିଂ. (ସମ୍+ପ୍ରୀତ) ସନ୍ତୁଷ୍ଟ, ଅତି ହୃଷ୍ଟ, ଅତ୍ୟନ୍ତ ପ୍ରୀତିଯୁକ୍ତ,ପରସ୍ପର ପ୍ରତି ପ୍ରୀତ ।

ସମ୍ପ୍ରୀତି—ସ୍ତ୍ରୀ. ବି. (ସମ୍+ପ୍ରୀ+ଭା.ତି) ସମ୍ୟକ୍ ପ୍ରଣୟ, ସନ୍ତୋଷ,ହର୍ଷ,ସ୍ନେହ, ଆନନ୍ଦ ।

ସମ୍ପ୍ରୀତିମାନ୍—ପୁଂ. ବିଂ. (ସମ୍+ପ୍ରୀତି+ମତ୍) ସମ୍ପ୍ରୀତିବିଶିଷ୍ଟ, ପ୍ରଣୟଯୁକ୍ତ ।

ସମ୍ପ୍ରେକ୍ଷକ—ପୁଂ.ବିଂ.(ସମ୍+ପ୍ର+ଈକ୍ଷ୍+ଅକ) ସମ୍ୟକ୍‌ରୂପେ ଦର୍ଶନକାରୀ, ସମ୍ୟକ୍‌ଦ୍ରଷ୍ଟା ।

ସମ୍ପ୍ରେକ୍ଷଣ—ବି. (ସମ୍+ପ୍ରେକ୍ଷଣ) ସମ୍ୟକ୍ ଦର୍ଶନ, ଭୂୟୋଦର୍ଶନ, ଅନୁସନ୍ଧାନ, (ବିଂ) ସମ୍ପ୍ରେକ୍ଷିକ ।

ସମ୍ପ୍ରେପ୍ସୁ—ପୁଂ.ବିଂ. (ସମ୍+ପ୍ର+ଆପ୍+ସନ୍.ଉ) ସମ୍ୟକ୍‌ରୂପେ ପାଇବାକୁ ଅଭିଳାଷୀ, ସମ୍ୟକ୍ ଲାଭ କରିବାକୁ ଇଚ୍ଛୁକ ।

ସମ୍ପ୍ରେରଣ—ବି. (ସମ୍+ପ୍ର+ଈର୍+ଅନ) ସମ୍ୟକ୍ ପ୍ରେରଣ ।

ସମ୍ପ୍ରେଷ—ବି. (ସମ୍+ପ୍ର+ଇଷ୍+ଭା.ଅ)ନିୟୋଗ, ବଧ,ପ୍ରେରଣ,ସମ୍ବାଦପ୍ରେରଣ ।

ସମ୍ପ୍ରେଷଣ—ବି. (ସମ୍+ପ୍ର+ଇଷ୍+ଅନ) ସମ୍ୟକ୍‌ରୂପେ ପ୍ରେଷଣ,ପ୍ରେରଣ ।

ସମ୍ପ୍ରେଷ—ପୁଂ. ବିଂ. (ସମ୍+ପ୍ର+ଇଷ୍+ଅ) ଆଜ୍ଞାକର୍ତ୍ତା,ନେତା,ପ୍ରେରଣକର୍ତ୍ତା, ପ୍ରେରକ ।

ସମ୍ପ୍ରୋକ୍ଷଣ—ବି(ସମ୍+ପ୍ରୋକ୍ଷଣ)ସମ୍ୟକ୍ ଜଳସେଚନ, ବଳିଦାନପୂର୍ବରୁ ପଶୁ ବଧ ସ୍ଥାନରେ ପଶୁ ଉପରେ ମନ୍ତ୍ରପାଠ ପୂର୍ବକ ଜଳସେଚନ,(ବିଂ)ସମ୍ପ୍ରୋକ୍ଷିତ ।

ସମ୍ପ୍ରୋଷିତ—ବିଂ. (ସମ୍+ପ୍ର+ଇଷ୍+ତ) ପଦଚ୍ୟୁତ, ପ୍ରେରିତ ।

ସମ୍ପ୍ଲବ—ବି(ସମ୍+ପ୍ଲୁ+ଭା.ଅ)ସମ୍ୟକ୍ ପ୍ଲାବନ, ବନ୍ୟା, ଜଳର ଅତିଶୟ ବୃଦ୍ଧି, ପ୍ରଳୟକାଳୀନ ବନ୍ୟା,ଶୃଙ୍ଖଳା,ସଂକ୍ଷୋଭ, ଇତସ୍ତତଃ ପତନ, ଘୋରଆଡ଼େ ବର୍ଷଣ, ବିନାଶ, (ବିଂ) ସମ୍ପ୍ଲୁତ, ସମ୍ପ୍ଲାବିତ ।

ସମ୍ଫାଳ—ବି(ସମ୍+ଫଲ୍+କ.ଅ)ମେଘ, ମେଷ ।

ସମ୍ଫୁଲ୍ଲ—ବିଂ(ସମ୍+ଫୁଲ୍ଲ+କ.ତ)ପ୍ରଫୁଲ୍ଲ, ପ୍ରସ୍ଫୁଟିତ, ବିକଶିତ, (ସ୍ତ୍ରୀ)ସମ୍ଫୁଲ୍ଲା ।

ସମ୍ଫେଟ—ବି.(ନାଟ୍ୟୋକ୍ତିରେ)ଆସ୍ଫାଳନ, ରୋଷପୂର୍ବକ କଥନ, ଦୁଇଜଣ କ୍ରୁଦ୍ଧ ବ୍ୟକ୍ତିଙ୍କର ଭେଟାଭେଟି ।

ସମ୍ବ—ବି. (ସମ୍ବ+ଭା.ଅ) ଦୁଇଥର ଚଷିବା, ଦୁଇଓଡ଼ ଚାଷ, ପ୍ରତି ଲୋମାକର୍ଷଣ,ବିପରୀତ ଦିଗରୁ ଚଷିବା,ଜମିକୁ ଦ୍ୱିତୀୟଥର ଚଷିବା, (କ.ଅ)ଜଳ ।

ସମ୍ବତ୍—ବି. (ସମ୍+ବଦ୍+ମି.କ୍ୱିପ୍) ସମ୍ବତ୍ସର, ବର୍ଷ, ରାଜା ବିକ୍ରମାଦିତ୍ୟଙ୍କ ପ୍ରବର୍ତ୍ତିତ ଅବ୍ଦ ।

ସମ୍ବତ୍ସର—ବି. (ସମ୍+ବତ୍ସର) ପୂର୍ଣ୍ଣ ଏକବର୍ଷ, ବାରମାସ ।

ସମ୍ବଦନ—ବି. (ସମ୍+ବଦ୍+ଭା.ଅନ) କଥନ, ଉଚ୍ଚାରଣ, (ମି.ଅନ) ସମ୍ବାଦ, ସଦୃଶୀକରଣ ।

ସମ୍ବଦ୍ଧ—ବିଂ. (ସମ୍+ବନ୍ଧ୍+ମି.ତ) ସମ୍ବନ୍ଧଯୁକ୍ତ, ଦୃଢ଼ବଦ୍ଧ, ପରସ୍ପର ସହିତ ବନ୍ଧା ହୋଇଥିବା, ସଂଯୁକ୍ତ, ସମ୍ମିଳିତ, ନିରୁଦ୍ଧ, (ଦ୍ୱାରାଦି) ବିଶିଷ୍ଟ, (ବ୍ୟାକରଣ) ଅର୍ଥ ବା ରଚନା ସମ୍ବନ୍ଧବିଶିଷ୍ଟ ।

ସମ୍ବନନ—ବି. (ସମ୍+ବନ୍+ଭା.ଅନ) ଆଲୋଚନା, ବଶୀକରଣ, ମନ୍ତ୍ରୌଷଧି ଦ୍ୱାରା ମୁଗ୍ଧକରିବା ।

ସମ୍ବନ୍ଧ—ବି(ସମ୍+ବନ୍ଧ+ଭା.ଅ)ସମ୍ପର୍କ, ସଂସର୍ଗ, ଏକ ପଦାର୍ଥ ସଙ୍ଗେ ଅନ୍ୟ ପଦାର୍ଥର ସଂଯୋଗ,ମିଳନ, ସଂଘଟନ, ସମୀଚୀନତା, ଯୋଗ୍ୟତା, (ଣ+ଅ) ଆତ୍ମୀୟତା, ବନ୍ଧୁତା, ମିତ୍ରତା, ସଖ୍ୟ, କୁଟୁମ୍ବିତା,କାର୍ଯ୍ୟ କାରଣତା ବା ଜନ୍ୟଜନକତା ଭାବ, (ବ୍ୟାକରଣ) ଷଷ୍ଠୀବିଭକ୍ତିଯୁକ୍ତକାରକ, ବିବାହ ଦ୍ୱାରା ସ୍ଥାପିତ ବନ୍ଧୁତ୍ୱ, ସମୃଦ୍ଧି, ବନ୍ଧୁ, କୁଟୁମ୍ବ, ସଗୋତ୍ର, ସୌଭାଗ୍ୟ, (ବିଂ) ମିଳିତ, ଶକ୍ତ, ହିତ, ଉପଯୁକ୍ତ, ସମର୍ଥ ।

ସମ୍ବନ୍ଧକ—ବି. ସମ୍ବନ୍ଧ ଦେଖ ।

ସମ୍ବନ୍ଧନ—ବି(ସମ୍+ବନ୍ଧ୍+ଅନ)ସମ୍ୟକ୍ ବନ୍ଧନ ।

ସମ୍ବନ୍ଧୟିତା—ପୁଂ. ବିଂ. ସମ୍ବନ୍ଧକାରକ ।

ସମ୍ବନ୍ଧରେ-ଗ୍ରା.ଅ.ସମ୍ପର୍କରେ,ବିଷୟରେ ।

ସମ୍ବନ୍ଧସୂଚକ—ବିଂ. (୬ତତ୍) ସମ୍ପର୍କ ବ୍ୟଞ୍ଜକ, ସଂସର୍ଗ ଜ୍ଞାପକ, (ସ୍ତ୍ରୀ) ସମ୍ବନ୍ଧ-ସୂଚିକା ।

ସମ୍ବନ୍ଧିନୀ—ବି.ସ୍ନେହ ଉଦ୍ଦୀପନାର ବିକାର ବିଶେଷ, (ସ୍ତ୍ରୀ.ବିଂ) ସମ୍ବନ୍ଧୀର ସ୍ତ୍ରୀଲିଙ୍ଗ ।

ସମ୍ବନ୍ଧୀ—ପୁଂ. ବିଂ. (ସମ୍ବନ୍ଧ+କ.ଇନ୍) ସମ୍ବନ୍ଧବିଶିଷ୍ଟ, ମିଳିତ, ସମ୍ପର୍କଯୁକ୍ତ, ସଦ୍‌ଗୁଣବିଶିଷ୍ଟ, ଉପଯୁକ୍ତ, ସମର୍ଥ,ସମ୍ବନ୍ଧୀୟ, ବହୁଗୁଣବିଶିଷ୍ଟ, ବିଦ୍ୱାନ୍, (ସ୍ତ୍ରୀ) ସମ୍ବନ୍ଧିନୀ, (ପୁଂ.ବି) କୁଟୁମ୍ବ, ବିବାହ ବନ୍ଧନ ଦ୍ୱାରା ସମ୍ପୃକ୍ତ ବ୍ୟକ୍ତି, ମିତ୍ର, (ଗ୍ରା.ବି) ଆପଣା ପୁଅ ବା କନ୍ୟାର ଶ୍ୱଶୁର, (ସ୍ତ୍ରୀ) ସମ୍ବନ୍ଧୁଣୀ ।

ସମ୍ବନ୍ଧୀୟ—ବିଂ(ସଂବନ୍ଧ+ଈୟ)ସମ୍ବନ୍ଧ-ଯୁକ୍ତ, ସମ୍ପର୍କୀୟ ।

ସମ୍ବନ୍ଧୁ—ବିଂ. ଶୋଭନ ବନ୍ଧୁ, ସ୍ୱାଭାବିକ ବନ୍ଧୁ, ନିଜର ବନ୍ଧୁ, (ବି) ଜ୍ଞାତି ।

ସମ୍ବର—ବି. (ସମ୍+ବୃ+କ.ଅ) ଜଳ, ପର୍ବତ, ପର୍ବତବିଶେଷର ନାମ,ସେତୁ, ବୌଦ୍ଧ ବ୍ରତବିଶେଷ, (ଭା.ଅ) ସଂଯମ, ଇନ୍ଦ୍ରିୟଦମନ, ସମ୍ବରଣ, ଦମନ, ମତ୍ସ୍ୟ-ବିଶେଷ,ପଞ୍ଜାବର ଲବଣ ହ୍ରଦବିଶେଷ, ଦୈତ୍ୟବିଶେଷ, ହରିଣବିଶେଷ ।

ସମ୍ବରଣ—ବି. (ସମ୍+ବୃ+ଭା.ଅନ) ଆବରଣ, ଲୁଗ୍ରଇବା, ଗୋପନ,ଦମନ, ସମ୍ଭାଳିବା,ସଂଯମନ, ବରଣ, ବରମାଳା ଦାନ, ଇନ୍ଦ୍ରିୟସଂଯମ, ଚନ୍ଦ୍ରବଂଶୀୟ ଜନୈକ ରାଜା ।

ସମ୍ବରଦଶମୀ—ଗ୍ରା. ବି. (ସଂ-ଶାମ୍ବଦଶମୀ) ପୌଷ ଶୁକ୍ଳ ଦଶମୀରେ ଅନୁଷ୍ଠିତ ହିନ୍ଦୁ-ମାନଙ୍କ ବ୍ରତବିଶେଷ ।

ସମ୍ବରମତ୍ସ୍ୟ—ବି. ବୃହତ୍କାୟ ସାମୁଦ୍ରିକ ମତ୍ସ୍ୟବିଶେଷ, ଶିଶୁମାର ।

ସମ୍ବରରିପୁ-ବି.(୬ତତ୍)ମଦନ,କାମଦେବ ।

ସମ୍ବରୋଦ୍ଭବ—ବି. ରାଜପୁତାନାନ୍ତର୍ଗତ ଲବଣାକ୍ତ ହ୍ରଦବିଶେଷ ।

ସମ୍ବରାରି—ବି.(୬ତତ୍)ମଦନ,କାମଦେବ

ସମ୍ବରିତ—ବିଂ(ସମ୍+ଣିଚ୍+ବୃ+ମ୍ପି.ତ)ଆବୃତ, ଗୋପିତ,ଦମିତ,ବରିତ ।

ସମ୍ବରିବା—ଗ୍ରା. କ୍ରି. (ପଦ୍ୟ) ଲୁଗ୍ରଇବା, ଗୋପନକରିବା ।

ସମ୍ବରୀ—ବି.(ସମ୍ବ+କ.ର+ଈ)ବୃଦ୍ଧଦନ୍ତୀ ନାମକ ଔଷଧ ଦ୍ରବ୍ୟ, ଶତାବରୀ, ମୂଷିକପର୍ଣ୍ଣୀ. ଆଲକୁଶୀ ।

ସମ୍ବର୍ତ୍ତ-ବି.(ସମ୍+ବୃତ୍+ଭା.ଅ)କଳ୍ପାନ୍ତ, ମହାପ୍ରଳୟ,(କୌଣସି)ଆଡ଼କୁ ବୁଲିବା, (କ.ଅ) ବହୁ ଜଳବର୍ଷୀ ମେଘବିଶେଷ, ସାତ ମେଘରୁ ଏକତମ, ପ୍ରଳୟକାଳୀନ ସପ୍ତ ମେଘରୁ ଏକତମ, ମୁନିବିଶେଷ, କର୍ଷକ ଫଳବୃକ୍ଷ, ମେଘ, ବର୍ଷ, (ଅଧି.ଅ) ସମୂହ ।

ସମ୍ବର୍ତ୍ତକ—ବି.(ସମ୍+ଣିଚ୍+ବୃତ୍+ଣ.ଅକ) ବଳଦେବଙ୍କ ଲଙ୍ଗଳ, (କ.ଅକ) ବଳଦେବ, ବଡ଼ବାନଳ,ମେଘବିଶେଷ, କଳ୍ପାନ୍ତକାଳୀନ ଅଗ୍ନି ।

ସମ୍ବର୍ତ୍ତକୀ—ପୁଂ.ବି (ସମ୍ବର୍ତ୍ତକ+କ.ଇନ୍) ସମ୍ବର୍ତ୍ତକ ନାମକ ଲଙ୍ଗଳଧାରୀ ବଳଦେବ

ସମ୍ବର୍ତ୍ତି—ବି(ସମ୍+ଣିଚ୍+ବୃତ୍+କ.ଇ) ପଦ୍ମର କେଶର ସମୀପସ୍ଥ ଦଳ, ପଦ୍ମା-ଦିର ନବପତ୍ର, ବର୍ତ୍ତୀ, ଦୀପାବଳୀର ବର୍ତ୍ତିକା, ସମ୍ବର୍ତ୍ତିକା ।

ସମ୍ବର୍ଦ୍ଧକ—ପୁଂ.ବିଂ. (ସମ୍+ବୃଧ୍+କ.ଅକ) ସମ୍ୟକ୍ ବୃଦ୍ଧିକାରକ, ସମ୍ବର୍ଦ୍ଧନା-କାରକ, ସମ୍ମାନକାରକ, ଅଭ୍ୟର୍ଥନା-କାରୀ ।

ସମ୍ବର୍ଦ୍ଧନ(ନା)—ବି.( ସମ୍+ବୃଧ୍+ଣିଚ୍+ଭା.ଅନ+ଆ)ସମ୍ୟକ୍ ବୃଦ୍ଧି କରାଇବା, ବଢ଼ାଇବା, ସମ୍ମାନନ, ଅଭ୍ୟର୍ଥନା, ( ସମ୍+ବୃଧ୍+ଭା.ଅନ+ଆ) ସମ୍ୟକ୍ ବୃଦ୍ଧି, (କ.ଅନ)ସମୃଦ୍ଧି, ସମ୍ପତ୍ତି, (ପୁଂ.ବିଂ-କ.ଅନ) ସମ୍ବର୍ଦ୍ଧକ ଦେଖ ।

ସମ୍ବର୍ଦ୍ଧିତ—ବିଂ. (ସମ୍+ବୃଧ୍+ଣିଚ୍+ମ୍ପି.ତ)ସମ୍ୟକ୍ ବୃଦ୍ଧି ପ୍ରାପିତ, ସମ୍ମାନିତ, ଅଭ୍ୟର୍ଥିତ ।

ସମ୍ବର୍ଦ୍ଧିତବେଗ—ବି.(କ.ଧା) ବୃଦ୍ଧିପ୍ରାପିତ ବେଗ, ( ପୁଂ.ବିଂ-ବ.ବ୍ରୀ ) ଯାହାର ବେଗ ଅତିଶୟ ବଢ଼ାଯାଇଅଛି, (ସ୍ତ୍ରୀ) ସମ୍ବର୍ଦ୍ଧିତବେଗା ।

ସମ୍ବର୍ମିତ—ବିଂ. (ସମ୍+ବର୍ମିତ)ବର୍ମା-ଚ୍ଛାଦିତ, ସମଗ୍ର ଦେହରେ ସାଞ୍ଜୁ ପିନ୍ଧି-ଥିବା ।

ସମ୍ବଳ—ବି. (ସମ୍+ଣ.ଅଲ) ପାଥେୟ, ବାଟଖରଚ, ବାଟରେ ଚଳିବା ପାଇଁ ଖାଦ୍ୟସାମଗ୍ରୀ,ଜୀବିକା,ଜୀବନଧାରଣୋ-ପାୟ, ପାଣ୍ଠି, ବ୍ୟବସାୟାଦିର ମୂଳଧନ, ଧନ, ପୁଞ୍ଜି, (କ.ଅ) ଜଳ ।

ସମ୍ବଲପୁର—ଗ୍ରା. ବି. ଉତ୍କଳର ପଶ୍ଚିମ-ପ୍ରାନ୍ତସ୍ଥ ଜିଲ୍ଲାର ଓ ନଗରର ନାମ ।

ସମ୍ବଲପୁରି(ଆ)—ଗ୍ରା. ବିଂ. ସମ୍ବଲପୁର ସମ୍ବନ୍ଧୀୟ, ସମ୍ବଲପୁର ଅଞ୍ଚଳରେ ଜାତ ବା ପ୍ରସ୍ତୁତ, (ପୁଂ. ବି ଓ ବିଂ) ସମ୍ବଲ-ପୁରର ଅଧିବାସୀ, ସମ୍ବଲପୁରବାସୀ ।

ସମ୍ବଲପୁରିଆଣୀ—ଗ୍ରା. ବିଂ. ସମ୍ବଲପୁରି ବା ସମ୍ବଲପୁରିଆର ସ୍ତ୍ରୀଲିଙ୍ଗ, (ଗ୍ରା.ବି) ସମ୍ବଲପୁର ଅଧିବାସିନୀ ସ୍ତ୍ରୀ ।

ସମ୍ବଲପୁରିଆପୋକ—ପ୍ରା. (ସିଂହଭୂମ)ବି. ଅସରପା (ପୋକ) ।

ସମ୍ବଲପୁରୀଭାଷା—ଗ୍ରା.ବି.ସମ୍ବଲପୁରରେ ପ୍ରଚଳିତ ଓଡ଼ିଆ ଭାଷା ।

ସମ୍ବଲକ୍ଷାର—କ୍ଳୀ. ବି. ମନଃଶୀଳା ।

ସମ୍ବଲସ୍ଥାନ—ବିଂ. (୩ତତ୍) ନିଃସମ୍ବଳ, ସଂସ୍ଥାନସ୍ଥାନ, ଧନସ୍ଥାନ ।

ସମ୍ବଲା(ଲ୍ଲା)—ପ୍ରା. ( ସମ୍ବଲପୁର ) ବି. ସମ୍ବାଲୁଆ ।

ସମ୍ବଲା(ଲେ)ଇ—ଗ୍ରା. ବି. ସମ୍ବଲପୁରର ଅଧିଷ୍ଠାତ୍ରୀ ଦେବୀ ।

ସମ୍ବଳିତ—ବିଂ. (ସମ୍+ବଲ+ମ୍ପି.ତ) ମିଳିତ,ବଳପ୍ରାପିତ,ସଂଯୋଜିତ,ସହିତ, ବେଷ୍ଟିତ, ଚୂର୍ଣ୍ଣିତ, ସାଙ୍ଗ ଥିବା, ଯୁକ୍ତ-ହୋଇଥିବା, (ଅମୁକର) ଅନ୍ତର୍ଭୁକ୍ତ ।

ସମ୍ବସଥ—ବି. (ସମ୍+ବସ୍+ଅଧି.ଅଥ) ବସତି, ଗ୍ରାମ, ପଲ୍ଲୀ ।

ସମ୍ବହ—ବି. ( ସମ୍+ବହ୍+ଭା.ଅ ) ସମ୍ୟକ୍ ବହନ, (କ.ଅ) ବାୟୁବିଶେଷ, ମେଘବାହୀ ୭ଗୋଟି ବାୟୁରୁ ଏକତମ ।

ସମ୍ବାହିକା—ବି. ( ସମ୍ବାହ୍ + କ + ଆ ) ଶୃଙ୍ଗାଟକ, ଶିଙ୍ଗଡ଼ା ।

ସମ୍ବାହୁଲ—ବିଂ.ବି.ସମ୍ୟକ୍ ବହୁଲ,ବାହୁଲ, ପ୍ରଚୁର ।

ସମ୍ବାକୃତ-ବିଂ.ଦ୍ୱିତୀୟବାର କର୍ଷିତ(ଭୂମି), (ବି)ଦୁଇଓଡ଼ ଚଷ ହୋଇଥିବା ଜମି ।

ସମ୍ବାଦ—ବି. ( ସମ୍ + ବଦ୍ + ର୍ମି ଅ ) ଖବର, ବାର୍ତ୍ତା,ସମାଚାର.ଲୋକମୁଖରେ ପ୍ରଚାରିତ ସମାଚାର, ବୃତ୍ତାନ୍ତ, ସାଦୃଶ୍ୟ. ସମ୍ଭାଷଣ,କଥୋପକଥନ,ପୂର୍ବଣବର୍ଣ୍ଣିତ ଘଟନା ବା ବିଷୟ ।

ସମ୍ବାଦଦାତା—ପୁଂ. ବିଂ. (ସମ୍ବାଦ+ଦା +କ.ତୃ) ଯେ ଅନ୍ୟବ୍ୟକ୍ତିକୁ କୌଣସି ସମ୍ବାଦ ଦିଏ, (ସ୍ତ୍ରୀ) ସମ୍ବାଦଦାତ୍ରୀ,(ବି) ସମ୍ବାଦପତ୍ରରେ ପ୍ରକାଶିତ ହେବାପାଇଁ ସ୍ଥାନାନ୍ତରରୁ ସମ୍ବାଦପ୍ରେରକ ବ୍ୟକ୍ତି ।

ସମ୍ବାଦପତ୍ର(ପତ୍ରିକା)—ବି. ଯେଉଁ ପତ୍ରି-କାରେ ଦେଶର ନାନାବିଧ ସମ୍ବାଦ ପ୍ରଚାରିତ ହୁଏ ।

ସମ୍ବାଦପ୍ରାପ୍ତି—ବି. କୌଣସି ବିଷୟର ସମ୍ବାଦ ପାଇବା ।

ସମ୍ବାଦବହ—ପୁଂ. ବି ଓ ବିଂ. (ସମ୍ବାଦ + ବହ୍ + କ.ଅ) ଯେଉଁବ୍ୟକ୍ତି ଖବର ନିଆ ଅଣା କରେ, (ସ୍ତ୍ରୀ) ସମ୍ବାଦବହା ।

ସମ୍ବାଦବାହିକାନାଡ଼ୀ—ସ୍ତ୍ରୀ. ବି. ଶରୀରର ଯେଉଁ ନାଡ଼ୀମାନ ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁ-ମାନଙ୍କ ସମ୍ବନ୍ଧୀୟ ଜ୍ଞାନକୁ ମସ୍ତିଷ୍କରେ ପହଞ୍ଚାନ୍ତି ।

ସମ୍ବାଦୀ—ପୁଂ. ବିଂ. (ସମ୍ + ବଦ୍+ କ. ଇନ୍)ଗାନକାରୀ,ଉଚ୍ଚାରଣକାରୀ,କଥନ କାରୀ, ଏକରୂପ ସମ୍ଭାଷଣକାରୀ, ତୁଲ୍ୟ, ଏକରୂପ, (ସ୍ତ୍ରୀ)ସମ୍ବାଦିନୀ,(ବି-ସଙ୍ଗୀତ) ବାଦ୍ୟସ୍ୱରର ସହଗାମୀ ସ୍ୱର ।

ସମ୍ବାଧ—ବି. ( ସମ୍ + ବାଧ୍ + ଘ.ଅ ) ସମ୍ୟକ୍ ବାଧା, ବିଶେଷ ବିଘ୍ନ, ଭିଡ଼, ଜନତା, ଭଗ, ଯୋନିମାର୍ଗ, ସଙ୍କଟ, ଭୟ, ମହାବିପଦ, ସଂଘର୍ଷ, ନରକର ଦ୍ୱାର, ଉପରକୁ ମାଡ଼ିଆସିବା, ଆଘାତ କରିବା, (ବିଂ-ବି.ସ୍ତ୍ରୀ; ସମ୍ + ବାଧା + ଅ) ସଙ୍କୀର୍ଣ୍ଣ,ଅପ୍ରଶସ୍ତ. ଜନତାପୂର୍ଣ୍ଣ, ନିରୁଦ୍ଧ, ଉପରକୁ ମାଡ଼ିଆସୁଥିବା, (ସ୍ତ୍ରୀ. ବିଂ) ପୂର୍ଣ୍ଣ. ବହୁଳ, ସରୁ ।

ସମ୍ବାଧନ—ବି.(ସମ୍ + ବାଧ୍ + ଭା.ଅନ) ବାଧାଦେବା, ବାଟଆଦି ବନ୍ଦ କରିବା, (କ.ଅ)ଯୋନିଦ୍ୱାର,ଦ୍ୱାରପାଳ,ଶୂଳାଗ୍ର. ଚିପିବା, (ଣ.ଅନ)ଫାଟକ ବାଡ଼,ଅଟ-କାଇବା ପାଇଁ ଦିଆଯିବା ବାଡ଼ ।

ସମ୍ବାସ—ବି. (ସମ୍ + ବସ୍ + ଅଧି.ଅ) ବାସସ୍ଥାନ, ଅନାବୃତ ବିହାର ସ୍ଥାନ, ସଭା, ସମାଜ, (ଭା.ଅ) ଅବସ୍ଥିତି ।

ସମ୍ବାହ—ବି. (ସମ୍ + ବହ୍ + ଣିଚ୍ + ଭା.ଅ) ଅଙ୍ଗମର୍ଦ୍ଦନ, ହାତଗୋଡ଼ଆଦିକୁ ଚିପିବା ବା ଦଳିବା, ଭାରାଦି ବହନ ।

ସମ୍ବାହକ—ପୁଂ. ବିଂ. (ସମ୍ + ବହ୍ + ଣିଚ୍ + କ.ଅକ) ବାହକ, ବହନକାରୀ. ଅଙ୍ଗମର୍ଦ୍ଦନକାରୀ, ଯାହା ଏକ ପଦାର୍ଥର ଉତ୍ତାପ ବା ବିଦ୍ୟୁତକୁ ଅନ୍ୟ ପଦାର୍ଥକୁ ବହିନିଏ, (ସ୍ତ୍ରୀ) ସମ୍ବାହିକା, (ପୁଂ.ବି) ଗୋଡ଼ଘଷା ଭୃତ୍ୟ,ପଦାର୍ଥରୁ ପଦାର୍ଥା-ନ୍ତରକୁ ଉତ୍ତାପଆଦି ବହନକାରୀ ବସ୍ତୁ ।

ସମ୍ବାହନ—ବି. (ସମ୍ + ବହ୍ + ଣିଚ୍ + ଭା.ଅନ) ସମ୍ବାହ ଦେଖ, ଜଳ ବା ବାୟୁଦ୍ୱାରା କୌଣସି ପଦାର୍ଥର ତାପ ଅନ୍ୟ ପଦାର୍ଥକୁ ବାହିତ ହେବା ।

ସମ୍ବାହିତ—ବିଂ.(ସମ୍ + ବାହିତ)ମର୍ଦ୍ଦିତ, ବାହିତ ।

ସମ୍ବିଗ୍ନ(ଗ୍ନ)—ବି. (ସମ୍ + ବିଜ୍ + କ.ତ) ଭୀତ, ତ୍ରସ୍ତ, ଉଦ୍‌ବିଗ୍ନ ।

ସମ୍ବିତ୍(ଦ୍)—ବି.(ସମ୍ + ବିଦ୍ + ଭା.କ୍ୱିପ୍) ଜ୍ଞାନ ବୁଦ୍ଧି, ପରିଚୟ, ପ୍ରତିଜ୍ଞା,ଚୁକ୍ତିର ସର୍ତ୍ତ, ନିୟମ, ବିଧି, ପ୍ରାକୃତିକ ବିଧି. ଧର୍ମବିଧି, ଆଚାର,ଯୁଦ୍ଧସ୍ଥଳରେ ଚିତ୍କାର ଧ୍ୱନି, ସଙ୍କେତ,ସାଙ୍କେତିକ ପଦ,ଠାର, ସମାଧି, ସମ୍ଭାଷଣ, ସନ୍ତୋଷ,(ର୍ମି.କ୍ୱିପ୍) ଗଣଗୁଲ୍ମ, ଯୁଦ୍ଧ,ନାମ,ଚକ୍ଷୁଆଇଗଛ,ଭାଙ୍ଗ ।

ସମ୍ବିତ୍ତି—ବି. ( ସମ୍ + ବିଦ୍ + ଭା.ତି ) ଅନୁଭବ, ଅନୁଭୂତି, ଚେତନା, ବୁଦ୍ଧି, ପୂର୍ବସ୍ମୃତି, ଇନ୍ଦ୍ରିୟଲବ୍ଧଜ୍ଞାନର ପ୍ରଥମ ସ୍ତର ।

ସମ୍ବିଦା—ବି.(ସମ୍ + ବିଦ୍ + ଭା.ଅ + ଆ) ସମ୍ବିତ୍ ଦେଖ ।

ସମ୍ବିଦାମଞ୍ଜରୀ—ବି. (ସମ୍ବିଦା + ମଞ୍ଜରୀ) ଗଞ୍ଜେଇ, ଗଞ୍ଜାଗଛର କଳି ।

ସମ୍ବିଦିତ—ବିଂ. (ସମ୍ + ବିଦିତ) ପ୍ରତି-ଜ୍ଞାତ, ପରିଜ୍ଞାତ, ପରିଚିତ ।

ସମ୍ବିଦ୍ୟତିକ୍ରମ—ବି.(୬ତତ୍) ପ୍ରତିଜ୍ଞାଲଙ୍ଘନ

ସମ୍ବିଧା—ବି. ( ସମ୍ + ବି + ଧା + ଣ.ଅ + ଆ) ଅଲଂକାର, ସାଜସଜ୍ଜା,ରଚନା, ସଜ୍ଜା, ସଂଘଟନ, ଘଟଣା, ଆୟୋଜନ, ବୈଚିତ୍ର୍ୟ, ସେବାସାମଗ୍ରୀ, ଭେଟି ।

ସମ୍ବିଧାନ—ବି. ସଂବିଧାନ ଦେଖ ।

ସମ୍ବିଭକ୍ତ-ବିଂ.(ସମ୍ + ବିଭକ୍ତ)ପୃଥକ୍‌କୃତ

ସମ୍ବିଷ୍ଟ—ବିଂ. ( ସମ୍ + ବିଶ୍ + କ.ତ ) ନିଦ୍ରିତ, ସୁପ୍ତ, ନିବିଷ୍ଟ, (ବି) ସମ୍ବେଶ ।

ସମ୍ବୀକ୍ଷଣ—ବି. (ସମ୍ + ବୀକ୍ଷଣ) ପର୍ଯ୍ୟ-ବେକ୍ଷଣ, ଅନ୍ୱେଷଣ, ଦର୍ଶନ, ଭେଟ ।

ସମ୍ବୀତ—ବିଂ. (ସମ୍ + ବ୍ୟେ + ର୍ମି.ତ ) ଆବୃତ, ଆଚ୍ଛାଦିତ, ଗୋପିତ, ରୁଦ୍ଧ, ( ସମ୍ + ବି + ଇ + କ.ତ ) ସମ୍ମିଳିତ, ଏକତ୍ରୀଭୂତ ।

ସମ୍ବୁଦ୍ଧ—ବିଂ. ( ସମ୍ + ବୁଧ୍ + କ.ତ ) ଉଦ୍‌ବୁଦ୍ଧ, ଜାଗରିତ, ଚେତନାଯୁକ୍ତ, ସମ୍ୟକ୍ ଜ୍ଞାନୀ, (ବି) ବୁଦ୍ଧଅବତାର ।

ସମ୍ବୁଦ୍ଧି—ବି. (ସମ୍ + ବୁଧ୍ + ଭା.ତି)ଆହ୍ୱାନ, ସମ୍ବୋଧନ, ଜାଗରଣ,ଆମନ୍ତ୍ରଣ,ଦର୍ଶନ, (ବ୍ୟାକରଣ) ସମ୍ବୋଧନ, ସମ୍ବୋଧନର ଏକ ବଚନ, ସମ୍ପୂର୍ଣ୍ଣ ଜ୍ଞାନ ।

ସମ୍ବୁବୋଧୟିଷୁ—ପୁଂ.ବିଂ.ସମ୍ୟକ୍ ବୋଧ ଲାଭ କରିବାକୁ ଇଚ୍ଛୁକ ।

ସମ୍ବୃତ—ବିଂ. (ସମ୍ + ବୃ + ର୍ମି.ତ)ଗୁପ୍ତ

ସମ୍ବୃତି—ବି. ( ସମ୍ + ବୃ + ଭା.ତି ) ଗୋପନ,ଆଚ୍ଛାଦନ,(ଣ.ତି)ଘୋଡ଼ଣୀ ।

ସମ୍ବୃତ—ବିଂ. ( ସମ୍ + ବୃତ୍ + କ. ବା ଣ.ତ)କଣ୍ଟକିତ,ସମ୍ପାଦିତ,ଜାତ,ଗୋପିତ, (ବି) ବରୁଣଦେବ ।

ସମ୍ବୃତି—ବି. ( ସମ୍ + ବୃତ୍ତି ) ଗୋପନ,

ନିଷ୍ପତ୍ତି, ସିଦ୍ଧି ।
ସମ୍ବୃଂହଣ—ବି. ବଳସମ୍ବିଧାନ ।
ସମ୍ବେଗ—ବି.(ସମ୍+ବିଜ୍+ଭା.ଅ)ଭୟ. ଭୟଜନିତ ତ୍ୱରା, ଅତିବେଗ, ଆବେଗ, ଉଦ୍‌ବେଗ ।
ସମ୍ବେଜନ—ବି. ଅତ୍ୟନ୍ତ କମ୍ପନ ।
ସମ୍ବେଦ—ବି. (ସମ୍+ବିଦ୍+ଭା.ଅ) ଅନୁଭବ, ଜ୍ଞାନବୋଧ ।
ସମ୍ବେଦନ(ନା)—ବି. (ସମ୍+ବିଦ୍+ଭା.ଅନ.ଆ) ଅନୁଭବଜନିତ ଜ୍ଞାନ, ଅନୁମାନ (ଣି.ଅନ) ଜ୍ଞାପନ ।
ସମ୍ବେଦ୍ୟ—ବିଂ. (ସମ୍+ବିଦ୍+ର୍ମ.ଯ) ଜ୍ଞେୟ, ଅନୁଭବ ଯୋଗ୍ୟ ।
ସମ୍ବେଶ—ବି.(ସମ୍+ବିଶ୍+ଭା.ଅ)ନିଦ୍ରା, ବିଶ୍ରାମ, ଉପବେଶନ, ରତି, ଶୟନ, (ଅଧି.ଅ) ପୀଠ, ଆସନ, ଶଯ୍ୟା, ସ୍ୱପ୍ନ, ରତିବନ୍ଧବିଶେଷ, ଉପଭୋଗ ସ୍ଥାନ ।
ସମ୍ବେଷ୍ଟ—ବିଂ. (ସମ୍+ବେଷ୍ଟ୍+ଣିଚ୍+ର୍ମ.ତ) ସମ୍ୟକ୍ ବେଷ୍ଟିତ, ବସ୍ତ୍ରାଚ୍ଛାଦିତ, (ବି. ଭା.ଅ) ବେଷ୍ଟନ, ଘେରିବା ।
ସମ୍ବୋଧ—ବି.(ସମ୍+ବୁଧ୍+ଭା.ଅ)ନାଶ କ୍ଷେପ,ନ୍ୟାସ, ବୋଧନ,ବ୍ୟାଖ୍ୟାକରଣ, ଜ୍ଞାପନ, ଉପଦେଶ କରଣ, ନିକ୍ଷେପ, ପ୍ରେରଣ, ଧ୍ୱଂସ ।
ସମ୍ବୋଧନ—ବି. (ସମ୍+ବୁଧ୍+ଭା.ଅନ) ଆହ୍ୱାନ,ଡାକ,ଆମନ୍ତ୍ରଣ,କାରକବିଶେଷ, ଅଭିମୁଖୀକରଣ ।
ସମ୍ବୋଧନଚିହ୍ନ—ବି.ସମ୍ବୋଧନ ସ୍ଥଳରେ ପୁସ୍ତକାଦିରେ ବ୍ୟବହୃତ ସଙ୍କେତ, '!' ।
ସମ୍ବୋଧୟିତା—ପୁଂ.ବିଂ.ସମ୍ବୋଧନକାରୀ, ଜ୍ଞାନଦାତା ।
ସମ୍ବୋଧି—ବି. (ସମ୍+ବୁଧ୍+ଭା.ଇ) ପରମଜ୍ଞାନ, ପ୍ରଜ୍ଞା ।
ସମ୍ବୋଧିତ—ବିଂ. (ସମ୍+ବୁଧ୍+ଣିଚ୍+ତ) ଆହୂତ, କୃତସମ୍ବୋଧନ ।
ସମ୍ବୋଧ୍ୟ—ବିଂ.(ସମ୍+ବୁଧ୍+ଯ)ସମ୍ବୋଧନର ଯୋଗ୍ୟ,ସମ୍ୟକ୍ ଜ୍ଞାନର ଉପଯୁକ୍ତ
ସମ୍ବ୍ୟାନ—ବି. (ସମ୍+ବ୍ୟେ+ଣ.ଅନ) ବସ୍ତ୍ର, ଉତ୍ତରୀୟ ବସ୍ତ୍ର ।
ସମ୍ବ୍ୟୂଢ଼—ବିଂ.(ସମ୍+ବ୍ୟୂଢ଼)ପୃଷ୍ଟ,ଏକତ୍ର ମିଶ୍ରିତ ।
ସମ୍ବ୍ରାତ—ବିଂ. ପ୍ରଚୁର, ବହୁସଂଖ୍ୟକ ।
ସମ୍ଭକ୍ତା—ପୁଂ. ବିଂ. (ସମ୍+ଭଜ୍+ତୃ) ସମ୍ୟକ୍ ବିଭାଗକାରୀ, ପରସ୍ପର ବିଜ୍ଞାପନଶୀଳ । [ ଭକ୍ତି ।
ସମ୍ଭକ୍ତି—ସ୍ତ୍ରୀ.ବି.ସମ୍ୟକ୍ ବିଭଜନ, ସମ୍ୟକ୍
ସମ୍ଭକ୍ଷ-ବି.(ସମ୍+ଭକ୍ଷ୍+ଅ)ସମ୍ୟକ୍ ଭକ୍ଷଣ
ସମ୍ଭବ—ବି. (ସମ୍+ଭୂ+ଭା.ଅ) ଉତ୍ପତ୍ତି. ଜନ୍ମ, କ୍ଷତି,ଧ୍ୱଂସ,(ର୍ମ.ତ)ହେତୁ,କାରଣ, ଅନୁମାନ, ସମ୍ଭାବନା, ସମୀଚୀନତା, ଯୁକ୍ତି, ଯୋଗ୍ୟତା, ସଙ୍କେତ, କ୍ଷମତା, ଶକ୍ତି, ପରିଚୟ, ସଖ୍ୟ,(କ.ଅ) ବର୍ତ୍ତମାନ କଳ୍ପର ତୃତୀୟ ଜୈନାବତାର,(ବିଂ) ଉତ୍ପନ୍ନ, ମେଳକ, (ଗ୍ରା.ବିଂ) ସମ୍ଭବ୍ୟ, ସମ୍ଭବପର,ଯାହା ଘଟିପାରେ,(ଗ୍ରା.କ୍ରି.ବିଂ) ସମ୍ଭବତଃ ।
ସମ୍ଭବକରିବା--ଗ୍ରା.କ୍ରି.ଅନୁମାନ କରିବା ।
ସମ୍ଭବତଃ—ଅ. (ସମ୍ଭବ+ତସ୍)ବୋଧହୁଏ, ଅନୁମିତ ହୁଏ ଯେ ।
ସମ୍ଭବନ—ବି. (ସମ୍+ଭୂ+ଭା.ଅନ) ଉଦ୍ଭାବନ, ଉତ୍ପାଦନ, ମିଳନ, (ବିଂ) ଉତ୍ପନ୍ନ ହେବାର ଯୋଗ୍ୟ ।
ସମ୍ଭବପର—ବିଂ.(୨ତତ୍) ସମ୍ଭାବନାଯୁକ୍ତ, ଯୋଗ୍ୟତାବିଶିଷ୍ଟ, ଯୁକ୍ତିପ୍ରଧାନ ।
ସମ୍ଭବାତୀତ--ବିଂ.ଅସମ୍ଭବ୍ୟ,କାରଣଶୂନ୍ୟ, ଯୋଗ୍ୟତାରହିତ ।
ସମ୍ଭବିବା—ଗ୍ରା. କ୍ରି. (ସଂ-ସମ୍ଭବ)ଜାତହେବା, ଘଟିବା, ସମ୍ଭବପର ହେବା ।
ସମ୍ଭବିଷ୍ଣୁ—ବିଂ. (ସମ୍+ଭୂ+କ.ଇଷ୍ଣୁ) ଉତ୍ପାଦନଶୀଳ । [ ଜାତ ।
ସମ୍ଭବୀ—ଗ୍ରା. ବିଂ. (ଅମୁକ କୁଳରୁ ପ୍ରସୂତ,
ସମ୍ଭବ୍ୟ-ବିଂ.(ସମ୍+ଭୂ+ର୍ମ.ଯ)ସମ୍ଭାବନୀୟ, ଯାହା ଘଟିପାରେ ବୋଲି ଅନୁମାନ କରାଯାଏ,ବିଶ୍ୱାସ ଯୋଗ୍ୟ, ଉପପତ୍ତି ଯୋଗ୍ୟ, (ବି) କପିତ୍ଥ ।
ସମ୍ଭୟ—ପୁଂ.ବି.(ସମ୍+ଭୀ+ଅ)ସମ୍ୟକ୍ ଭୟ, ଅତିଶୟ ଭୟ ।
ସମ୍ଭର—ବି. (ସମ୍+ଭୃ+ଭା.ଅ)ଆହରଣ, ସଂଗ୍ରହ, ସମ୍ୟକ୍‌ଭର ।
ସମ୍ଭର(ଂ)—ଗ୍ରା. ବି. (ସଂ-ସମାରୋହ) ଆଡ଼ମ୍ବର,ଜାକଜମକ,ଉତ୍ସବ,ଚାକଚକ୍ୟ
ସମ୍ଭରଣ—ବି. (ସମ୍+ଭୃ+ଭା.ଅନ) ପୂର୍ଣ୍ଣତାପ୍ରାପଣ, ସମ୍ୟକ୍ ପୂର୍ଣ୍ଣକରଣ, (ବିଂ) ସମ୍ଭୃତ ।
ସମ୍ଭରରେ—ଗ୍ରା.କ୍ରି.ବିଂ.ସମାରୋହରେ, ଆଡ଼ମ୍ବର ସହକାରେ ।
ସମ୍ଭରିବା—ଗ୍ରା. କ୍ରି. (ପଦ୍ୟ) ସମ୍ଭରଣ, ସମ୍ଭାଳିବା ଦେଖ ।
ସମ୍ଭଲ—ବି. (ସମ୍+ଭଲ୍+ର୍ମ.ଅ) ପ୍ରାଚୀନ ଗ୍ରୀକ୍‌ମାନଙ୍କର ସ୍ୱର୍ଗ ପ୍ରାନ୍ତସ୍ଥ ସାମ୍ରାଜ୍ୟର ନାମ, କନ୍ୟାର୍ଥୀ ପୁରୁଷ ।
ସମ୍ଭଳା—ଗ୍ରା. ବି. (ସଂ-ସମ୍ଭରଣ) ସମ୍ଭାଳିବା ଦେଖ. ଧୈର୍ଯ୍ୟ,ସହିବା, (ଗ୍ରା.ବିଂ) ସମ୍ଭାଳ ଦେଖ । [ ଦେଖ ।
ସମ୍ଭଳାପଡ଼ିବା—ଗ୍ରା. କ୍ରି.ସମ୍ଭାଳି ହେବା
ସମ୍ଭଳାଯି(ହେ)ବା-ଗ୍ରା.କ୍ରି.ସହ୍ୟ ହେବା ।
ସମ୍ଭଳୀ—ସ୍ତ୍ରୀ. ବି. (ସମ୍+ଭଲ୍+କ.ଅ+ଈ) କୁଟ୍ଟିନୀ, ଦୂତୀ ।
ସମ୍ଭାଇବା—ଗ୍ରା. କ୍ରି. (ସଂ-ସମ୍ଭବ)ସମ୍ଭବ ଜଣା ହେବା, ପ୍ରବେଶ କରିବା,ପଶିବା, ଭର୍ତ୍ତିହୋଇଯିବା, ଯଥେଷ୍ଟ ହେବା, କୌଣସି ପାତ୍ରର ଆକାରକୁ ଗ୍ରହିଁ ଯଥେଷ୍ଟ ହେବା ।
ସମ୍ଭାବ—ବି. (ସମ୍+ଭାବ)ଅବସ୍ଥା,ଦଶା ।
ସମ୍ଭାବନ(ନା)—ବି. (ସମ୍+ଭୂ+ଣିଚ୍ ଭା.ଅନ.ଆ) ଚିନ୍ତା, ଧ୍ୟାନ, ପୂଜା, ସତ୍କାର, ଗୌରବ, ଯୋଗ୍ୟତା, ଘଟିବାର ଆଶା, ନିଶ୍ଚୟାତ୍ମକ ସନ୍ଦେହ,ସମ୍ପାଦନ, ଅନୁଗ୍ରହ, ସୁଖ୍ୟାତି, (ବ୍ୟାକରଣ) କ୍ରିୟାରେ ଯୋଗ୍ୟତା ବା ଅଧ୍ୟବସାୟ, କାବ୍ୟାଲଙ୍କାରବିଶେଷ, ସ୍ୱୀକାର,ତର୍କ, ଅଭିସନ୍ଧି, (ବିଂ) ସମ୍ଭାବକ ।
ସମ୍ଭାବନା-ଗ୍ରା.ବି.(ସଂ-ସମ୍ମାନନା)ସମ୍ମାନନ
ସମ୍ଭାବନୀୟ—ବିଂ. (ସମ୍+ଭୂ+ଣିଚ୍+ର୍ମ.ଅନୀୟ) ଚିନ୍ତନୀୟ, କଳ୍ପନୀୟ,ପୂଜନୀୟ, ସମ୍ମାନନୀୟ, ପ୍ରଶଂସନୀୟ, ସମ୍ଭାବନାର ଉପଯୁକ୍ତ ।

ସମ୍ଭାବୟିତବ୍ୟ—ବି॰. ( ସମ୍+ଭୂ+ଣିଚ୍+ତବ୍ୟ) ସମ୍ଭାବନୀୟ ଦେଖ ।

ସମ୍ଭାବିତ—ବି॰. (ସମ୍ +ଭାବି.+ମି.ତ) କୀର୍ତ୍ତିଯୁକ୍ତ,ବିଖ୍ୟାତ, ପ୍ରସିଦ୍ଧ, ପ୍ରଶଂସିତ, ପୂଜିତ, ସତ୍କୃତ, ସମ୍ମାନିତ, ବହୁମତ. ଚିନ୍ତିତ, ଯାହା ଘଟିବ ବୋଲି ସମ୍ଭବ କରଯାଏ, ତର୍କିତ, (ଗ୍ରା.ବି॰) ଜାତ ।

ସମ୍ଭାବିତବ୍ୟ—ବି॰. ସମ୍ଭାବନୀୟ ।

ସମ୍ଭାବୀ—ପୁ॰. ବି॰. ସମ୍ଭାବନା ଯୋଗ୍ୟ, ସେହିପରି ହେବାର ଉପଯୁକ୍ତ ।

ସମ୍ଭାବ୍ୟ—ବି॰. (ସମ୍+ଭାବି+ମି.ଯ) ସମ୍ଭାବ୍ୟ,ପ୍ରତର୍କ୍ୟ, ପ୍ରଶଂସନୀୟ,ପୂଜ୍ୟ ।

ସମ୍ଭାର—ବି.(ସମ୍ +ଭୃ+ଭା.ଅ)ସାମଗ୍ରୀ, ଉପକରଣ, ସଂଗ୍ରହ, ସଂଗୃହୀତ ପଦାର୍ଥ ସମୂହ, ରାଶି, ଗଦା, ସମୂହ, ସମ୍ପୂର୍ଣ୍ଣତା. ପୋଷଣ, ପୁଷ୍ଟିସାଧନ, ( ଗ୍ରା.ବି. ସଂ-ସମାରୋହ) ସମାରୋହ, (ସଂ-ସମ୍ଭାର) ବନ୍ଧୁଘରକୁ ଏକାଥ ପ୍ରେରିତ ଅନେକ ଖାଇବା ଜିନିଷ ।

ସମ୍ଭାରେ—ଗ୍ରା. କ୍ରି. ବି॰.ସମାରୋହରେ, ଆଡମ୍ବରରେ । [ ଶୀଘ୍ର ।

ସମ୍ଭାର୍ଯ୍ୟ--ବି॰.ଭରଣର ଉପଯୁକ୍ତ ସମ୍ଭୃତ-

ସମ୍ଭାଳ—ଗ୍ରା. ବି॰. (ସଂ-ସମ୍ବରଣ)ସଂବୃତ, ଆବୃତ,ଯାହା ସହାଯାଏ, ନିରୁଦ୍ଧ,ସହିବା ଗୁଣଯୁକ୍ତ, ଧୈର୍ଯ୍ୟଶୀଳ,(ଗ୍ରା.ବି)ଧୈର୍ଯ୍ୟ-ଶୀଳତା, ସହିଷ୍ଣୁତା,ସତର୍କହୁଅ (ତୁମ୍ଭେ) ସମ୍ବରଣ କର ।

ସମ୍ଭାଳନ୍ତା—ଗ୍ରା. ବି॰. ରକ୍ଷାକାରୀ ।

ସମ୍ଭାଳନେବା-ଗ୍ରା.କ୍ରି. ସମ୍ଭାଳିବା ଦେଖ ।

ସମ୍ଭାଳିବା—ଗ୍ରା. କ୍ରି. ( ସଂ ସମ୍ବରଣ ) ଆବରଣ କରିବା, ନିବାରଣ କରିବା, (କ୍ରୋଧାଦି) ସମ୍ବରଣ କରିବା,ଧୈର୍ଯ୍ୟ ସହିତ ସହ୍ୟ କରିବା, (ବାକ୍ୟାଦିକୁ) ସଂଯତ କରିବା, ସହିବା, ରକ୍ଷାକରିବା, କିଛିକାଳ ଅପେକ୍ଷା କରିବା, ଧାରଣ କରିବା, (କଇଁସ୍ରୋତ) ନିଜର ମଧ୍ୟରେ ଧାରଣ କରିବା, ସମ୍ଭାଇବା, ସ୍ଥିର ଓ ଅଟଳ ରଖିବା, ଧୈର୍ଯ୍ୟଚ୍ୟୁତ ନ ହେବା ପାଇଁ ତତ୍ପର ହେବା ।

ସମ୍ଭାଳିସି(ହୋ)ବା—ଗ୍ରା. କ୍ରି. ଧୈର୍ଯ୍ୟ-ଧାରଣ ପୂର୍ବକ ଅପେକ୍ଷା କରିବା,ଆତ୍ମ ନିରୋଧ କରିବା ।

ସମ୍ଭାଷ(ଷା)—ବି. (ସମ୍+ଭାଷ୍+ଭା ଅ +ଆ) ଆଳାପ, ପରସ୍ପର କଥୋପ-କଥନ,ଅଭ୍ୟର୍ଥନା,(ଗ୍ରା.ବି; ସଂ-ସମ୍ବାଦ) ଖବର, ପତ୍ରାଦି ।

ସମ୍ଭାଷଣ—ବି. ( ସମ୍+ଭାଷ୍+ଅନ ) ସମ୍ଭାଷ ଦେଖ ।

ସମ୍ଭାଷଣାଦେବା —ଗ୍ରା. କ୍ରି. ଆନନ୍ଦରେ କଥା କହିବା ।

ସମ୍ଭାଷଣୀୟ—ବି॰.(ସମ୍ +ଭାଷ୍+ଅନୀୟ) ସମ୍ଭାଷଣ ଯୋଗ୍ୟ,କଥନର ଉପଯୁକ୍ତ ।

ସମ୍ଭାଷିବା—ଗ୍ରା. କ୍ରି. (ପଦ୍ୟ) ସମ୍ଭାଷଣ କରିବା, କଥୋପକଥନ କରିବା ।

ସମ୍ଭାଷୀ—ପୁ॰.ବି॰. (ସମ୍+ଭାଷ୍+କ. ଇନ୍) ଆଳାପକାରୀ, (ସ୍ତ୍ରୀ) ସମ୍ଭାଷିଣୀ ।

ସମ୍ଭାଷ୍ୟ—ବି॰. ( ସମ୍ +ଭାଷ୍+ଯ ) ସମ୍ଭାଷଣୀୟ ।

ସମ୍ଭିନ୍ନ—ବି॰. ( ସମ୍ +ଭିଦ୍+ମି.ତ ) ସଂକ୍ଷୋଭିତ,ଆଲୋଡ଼ିତ,ଗ୍ଳାଳିତ,ମିଳିତ, ମର୍ଦ୍ଦିତ, ମିଶ୍ରିତ, ପ୍ରସ୍ଫୁଟିତ, ଭଗ୍ନ ।

ସମ୍ଭୁ—ବି॰. (ସମ୍+ଭୂ+କ.ଉ) ଯାହା ଜାତ ହୁଏ, (ପୁ॰.ବି)ବ୍ରହ୍ମା,ଶିବ,ବିଷ୍ଣୁ ।

ସମ୍ଭୁକ୍ତ—ବି॰. ( ସମ୍+ଭୁଜ୍+ମି.ତ ) ଉପଭୁକ୍ତ, ସଙ୍ଗମିତ, ରମିତ, ( ବି ) ସମ୍ଭୋଗ ।

ସମ୍ଭୂତ—ବି॰.(ସମ୍ +ଭୂ+କ.ତ)ଜାତ, ଉତ୍ପନ୍ନ, (ଗ୍ରା.ବି; ସଂ-ସମ୍ଭୂତି) ଜନ୍ମ ।

ସମ୍ଭୂତବିଜୟ—ବି. ଶ୍ରୁତକେବଳି ସଂଜ୍ଞକ ଜୈନବିଶେଷ ।

ସମ୍ଭୂତି—ବି. (ସମ୍+ଭୂ+ଭା.ତି)ଉତ୍ପତ୍ତି. ଜନ୍ମ, ଉଦ୍ଭବ, ବିଭୂତି,ଐଶ୍ୱର୍ଯ୍ୟ,କ୍ଷମତା. ଶକ୍ତି ।

ସମ୍ଭୂୟକାରୀ—ପୁ॰. ବି. ବି॰. (ସମ୍+ଭୂ +କ.ୟ+ଇନ୍) ଏକସଙ୍ଗେ କାର୍ଯ୍ୟ-କାରୀ, ସହକର୍ମୀ, ଅଂଶୀଦାର ।

ସମ୍ଭୂୟସନ୍ଧାନ—ବି. (ସମ୍ଭୂୟ+ସନ୍ଧାନ) ମିଳିତ ସନ୍ଧିକରଣ ।

ସମ୍ଭୂୟସମୁତ୍ଥାନ--ବି. (ସମ୍ଭୂୟ+ସମୁତ୍ଥାନ) ସମ୍ମିଳିତ ଉତ୍ଥାନ,ଯୌଥ କାରବାର,ବହୁ ଅଂଶୀଦାରଙ୍କ ସମ୍ମିଳିତ ମୂଳଧନରେ ହେବା କାରବାର, ବହୁଲୋକଙ୍କର ଏକତ୍ର ମିଳିତ ହୋଇ ବାଣିଜ୍ୟକରଣ, ଅଂଶିଦାରୀ,ଯୌଥ କାରବାରରେ ଅଂଶୀ-ଦାରମାନଙ୍କ ମଧ୍ୟରେ ଉପସ୍ଥିତ ବିବାଦ ।

ସମ୍ଭୃତ—ବି॰.(ସମ୍+ଭୃ+କ.ତ)ସମ୍ୟକ ପୁଷ୍ଟ, ଯତ୍ନସିଦ୍ଧ. ଦତ୍ତ, ଲବ୍ଧ, ସଂଚିତ, ବର୍ଦ୍ଧିତ,ଜନିତ,ପୂର୍ଣ୍ଣ,ସଙ୍କଳିତ,ସଂଗୃହୀତ, ପ୍ରସ୍ତୁତ ।

ସମ୍ଭୃତଶ୍ରୀ—ବି. ଜଳଦ, ମେଘ ।

ସମ୍ଭୃତସମ୍ଭାର—ବି.ସମ୍ପାଦିତ ସଞ୍ଚୟ-କରଣ ।

ସମ୍ଭୃତାଙ୍ଗ—ପୁ॰.ବି॰.(ବ.ବ୍ରୀ)ପୁଷ୍ଟାଙ୍ଗ, ପୁଷ୍ଟ ଅବୟବବିଶିଷ୍ଟ,(ସ୍ତ୍ରୀ)ସମ୍ଭୃତାଙ୍ଗୀ ।

ସମ୍ଭୃତି—ବି. (ସମ୍ +ଭୃ+ଭା.ତି)ସମ୍ୟକ୍ ପୋଷଣ, ବର୍ଦ୍ଧନ, ପ୍ରସ୍ତୁତକରଣ,ସଞ୍ଚୟ, ପରିପୂର୍ଣ୍ଣତା, ସମ୍ଭାର ।

ସମ୍ଭୃତ୍ୟ—ବି॰. ସମ୍ଭାର୍ଯ୍ୟ ।

ସମ୍ଭେଦ—ବି. ( ସମ୍+ଭିଦ୍+ଭା.ଅ ) ମିଳନ,ନଦୀଦ୍ୱୟର ସଙ୍ଗମ ସ୍ଥଳ,ସ୍ଫୁଟନ, ଭେଦନ, ନଦୀର ଓ ସାଗରର ସଙ୍ଗମ, ବିଧାନ, ଘଟନା,ବିଡ଼ମ୍ବନା,ଆସାମାନ୍ତ-ର୍ଗତ ତୀର୍ଥବିଶେଷ ।

ସମ୍ଭେଦନ—ବି. (ସମ୍+ଭିଦ୍+ଅନ) ସମ୍ୟକ୍ ଭେଦନ, ସମ୍ଭେଦ ଦେଖ ।

ସମ୍ଭେଦ୍ୟ—ବି॰. ( ସମ୍+ଭିଦ୍+ଯ ) ସମ୍ଭେଦଯୋଗ୍ୟ,ସମ୍ଭେଦର ଉପଯୁକ୍ତ ।

ସମ୍ଭୋକ୍ତା—ପୁ॰. ବି. ବି॰. (ସମ୍+ଭୁଜ୍ +କ.ତୃ)ସମ୍ଭୋଗକାରୀ,(ସ୍ତ୍ରୀ)ସମ୍ଭୋକ୍ତ୍ରୀ

ସମ୍ଭୋଗ—ବି.(ସମ୍+ଭୁଜ୍+ଭା.ଅ)ଉପ-ଭୋଗ,ହର୍ଷ,ରତିକ୍ରୀଡ଼ା,ସଙ୍ଗମ,ରମଣ, ଶୃଙ୍ଗାରଭେଦ, (କ.ଅ) କେଳିନଗର ।

ସମ୍ଭୋଗକାର—ପୁ॰. ବି. ବୁଦ୍ଧଭେଦ ।

ସମ୍ଭୋଗଯକ୍ଷିଣୀ—ସ୍ତ୍ରୀ.ବି.ଯୋଗିନୀଭେଦ ।

ସମ୍ଭୋଗବାନ୍—ପୁ॰. ବି॰. ଭୋଗବିଶିଷ୍ଟ, ଭୋଗଯୁକ୍ତ ।

ସମ୍ଭୋଗବେଶ୍ମ—ବି. ସମ୍ଭୋଗଗୃହ,ରତି-

ଗୃହ, କେଳିଗୃହ ।
ସମ୍ଭୋଗୀ—ପୁଂ. ବିଂ. (ସମ୍+ଭୁଜ୍+କ.ଇନ୍)ଉପଭୋଗକାରୀ, ସମ୍ଭୋଗକାରୀ, ସଙ୍ଗମକାରୀ, (ସ୍ତ୍ରୀ) ସମ୍ଭୋଗିନୀ,(ପୁଂ.ବି) କେଳିନାଗର, ଲମ୍ପଟ ।
ସମ୍ଭୋଗ୍ୟ—ବିଂ. ( ସମ୍+ଭୁଜ୍+ଯ ) ଭୋଗ୍ୟ, ସମ୍ଭୋଗ ଯୋଗ୍ୟ ।
ସମ୍ଭୋଜ—ବି. ଭୋଜନ, ଭକ୍ଷଣ, ସମ୍ୟକ୍ ଭକ୍ଷଣ ।
ସମ୍ଭୋଜକ—ପୁଂ. ବିଂ. ରନ୍ଧନ ପୂର୍ବକ ଭୋଜନକାରୀ ।
ସମ୍ଭୋଜନ-ବି.(ସମ୍+ଭୋଜନ)ମିଳିତ-ସାଦନ, ଗୋଷ୍ଠୀଭୋଜନ, ଜାତିଆଣ ଭୋଜି ।
ସମ୍ଭୋଜନୀୟ-ବିଂ.(ସମ୍+ଭୁଜ୍+ଅନୀୟ) ଭୋଜନାର୍ହ, ଭୋଜନର ଯୋଗ୍ୟ ।
ସମ୍ଭୋଜ୍ୟ—ବିଂ. ( ସମ୍+ଭୁଜ୍+ଯ ) ଭୋଜନ ଯୋଗ୍ୟ, ଭୋଜନାର୍ହ ।
ସମ୍ଭ୍ରମ—ବି.(ସମ୍+ଭ୍ରମ୍+ଭା.ଅ)ଭ୍ରମଣ, ଘୂର୍ଣ୍ଣନ, ଭ୍ରାନ୍ତି, ମହାଭ୍ରମ,ଭୟ,ଉଦ୍ବେଗ, ମର୍ଯ୍ୟାଦା, ସମାଦର,ଆଦର,ଗୌରବ, ଭଦ୍ରତା, ଭୟମିଶ୍ରିତ ଭକ୍ତି,ଆସ୍ଥା,ବିଶ୍ୱାସ
ସମ୍ଭ୍ରାନ୍ତ—ବିଂ. ( ସମ୍+ଭ୍ରମ୍+କ.ତ ) ସମ୍ଭ୍ରମଯୁକ୍ତ, ମାନନୀୟ, ଆଦରଣୀୟ, ଭଦ୍ର, ଉଦ୍‌ବିଗ୍ନ, (ସ୍ତ୍ରୀ) ସମ୍ଭ୍ରାନ୍ତା ।
ସମ୍ଭ୍ରାନ୍ତତନ୍ତ୍ର—ବି. ଭଦ୍ର ବା ଉଚ୍ଚବଂଶୀୟ ବ୍ୟକ୍ତିମାନଙ୍କ ଦ୍ୱାରା ରାଜ୍ୟଶାସନ ।
ସମ୍ଭ୍ରାନ୍ତବଂଶୀୟ--ବିଂ.ଭଦ୍ର କୁଳରେ ଜାତ, କୁଳୀନ ।
ସମ୍ଭ୍ରାନ୍ତସଭା—ବି. ବିଲାତ ପାର୍ଲିମେଣ୍ଟର ସମ୍ଭ୍ରାନ୍ତ ବଂଶୀୟ ବ୍ୟକ୍ତିମାନଙ୍କ ଦ୍ୱାରା ଗଠିତ ଶାଖା ।
ସମ୍ଭ୍ରାନ୍ତସମାଜ—ବି.ଭଦ୍ରବଂଶୀୟ ବ୍ୟକ୍ତିଗଣ
ସମ୍ଭ୍ରାନ୍ତି—ସ୍ତ୍ରୀ. ବି.(ସମ୍+ଭ୍ରମ୍+କ୍ତି)ସମ୍ଭ୍ରମ
ସମ୍ମତ—ବିଂ. ( ସମ୍+ମନ୍+ମି.ତ ) ଅନୁମତ, ସ୍ୱୀକୃତ, ଅଭିପ୍ରେତ, ପ୍ରିୟ, (ଗ୍ରା.)ସମ୍ମତ, ସ୍ୱୀକୃତ ।
ସମ୍ମତି—ସ୍ତ୍ରୀ. ବି. (ସମ୍+ମନ୍+ଭା.ତି) ସ୍ୱୀକାର, ଅନୁଜ୍ଞା,ଅନୁମତି,ମଞ୍ଜୁରି, ମତ, ଆଦେଶ, ଇଚ୍ଛା, ବାସନା, ସମ୍ମାନ, ଅଭିପ୍ରାୟ, ଐକମତ୍ୟ, ଆତ୍ମବୋଧ, ଆତ୍ମଜ୍ଞାନ, ସନ୍ଧାନ, ପ୍ରଣୟ, ( ଗ୍ରା.ବି- କରଣ ସମାଜ) ସନମତ, ବର କର୍ତ୍ତା ଓ କନ୍ୟାକର୍ତ୍ତାଙ୍କ ମଧ୍ୟରେ ବିବାହ ସମ୍ବନ୍ଧରେ ଚୁକ୍ତି ବା ମହାପ୍ରସାଦବନ୍ଧ, (ଗ୍ରା.ଅ. ସଂ-ସମ୍ମିତ) ତୁଲ୍ୟ ।
ସମ୍ମତିଗ୍ରହଣ—ବି. (୬ତତ୍) ଅନ୍ୟବ୍ୟକ୍ତି-ଠାରୁ ମଞ୍ଜୁରି ନେବା ।
ସମ୍ମତିଗ୍ରହୀତା—ପୁଂ. ବି. ବିଂ. ଅନ୍ୟଠାରୁ ମଞ୍ଜୁରି ନେବା ବ୍ୟକ୍ତି,(ସ୍ତ୍ରୀ)ସମ୍ମତିଗ୍ରହୀତ୍ରୀ
ସମ୍ମତିଦାତା—ପୁଂ.ବି. ବିଂ. ଯେ ମଞ୍ଜୁରି ଦିଏ, (ସ୍ତ୍ରୀ) ସମ୍ମତିଦାତ୍ରୀ ।
ସମ୍ମତିଦାନ—ବି. ମଞ୍ଜୁରି ଦେବା ।
ସମ୍ମଦ—ବି.(ସମ୍+ମଦ୍+ଭା.ଅ)ଆହ୍ଲାଦ, ଆନନ୍ଦ, ହର୍ଷ, ଆମୋଦ, ମତ୍ସ୍ୟବିଶେଷ (ବିଂ) ସୁଖୀ, ଆନନ୍ଦିତ, (ଗ୍ରା.ବି) ଗର୍ବ
ସମ୍ମଦମୟ—ବିଂ.ସମ୍ୟକ୍ ହର୍ଷ ବା ଆନନ୍ଦ-ବିଶିଷ୍ଟ ।
ସମ୍ମନ୍ତବ୍ୟ—ବିଂ. (ସମ୍+ମନ୍+ତବ୍ୟ) ସମ୍ୟକ୍ ମନନ ଯୋଗ୍ୟ, ସମ୍ୟକ୍ ମନନର ଉପଯୁକ୍ତ ।
ସମ୍ମନ୍ତ୍ରଣୀୟ—ବିଂ.(ସମ୍+ମନ୍ତ୍ର+ଅନୀୟ) ସମ୍ୟକ୍‌ରୂପେ ମନ୍ତ୍ରଣୀୟ, ସମ୍ୟକ୍ ମନ୍ତ୍ର-ଣାର ଯୋଗ୍ୟ ।
ସମ୍ମୟନ—ବି. ଯୂପ ପ୍ରୋଥନ ବା ଯୂପର ଗୃହଧାରେ ଖାତଖନନ ।
ସମ୍ମର୍ଦ(ର୍ଦ୍ଦ)—ବି. ( ସମ୍+ମୃଦ୍+ଅ ) ସଂଘର୍ଷ, ଭିଡ଼, ଜନତା, ପେଷଣ,ଯୁଦ୍ଧ. ସଂଗ୍ରାମ, (ବିଂ) ସମ୍ମର୍ଦ୍ଦିତ ।
ସମ୍ମର୍ଦ୍ଦନ—ବି.।ବାସୁଦେବର ପୁତ୍ରଭେଦ, ବିଦ୍ୟାଧରବିଶେଷ, (ବିଂ)ସମ୍ମର୍ଦ୍ଦକାରୀ ।
ସମ୍ମର୍ଦ୍ଦୀ—ପୁଂ. ବିଂ. ସମ୍ମର୍ଦ୍ଦକାରୀ ।
ସମ୍ମର୍ଶନ—ବି. ସମ୍ୟକ୍ ବ୍ୟାପନ ।
ସମ୍ମର୍ଶୀ—ବିଂ. ବିଚାରକାରୀ ।
ସମ୍ମର୍ଷ—ପୁଂ.ବି.ସମ୍ୟକ୍ ମର୍ଷ,ସହନ ।
ସମ୍ମା—ସ୍ତ୍ରୀ. ବି. ତୁଲ୍ୟ ।
ସମ୍ମାତା—ପୁଂ. ବି. ସତୀ ପୁତ୍ର,ପତିବ୍ରତା ସ୍ତ୍ରୀଙ୍କ ପୁତ୍ର, (ସ୍ତ୍ରୀ) ସମ୍ମାତ୍ରୀ ।
ସମ୍ମାତୁର—ପୁଂ. ବି. (ସତ୍+ମାତୃ+ଅ) ଭଦ୍ରମାତୁର, ପତିବ୍ରତା ସ୍ତ୍ରୀଙ୍କ ପୁତ୍ର,(ସ୍ତ୍ରୀ) ସମ୍ମାତୁରୀ ।
ସମ୍ମାଦ—ବି.(ସମ୍+ମଦ୍+ଭା.ଅ)ମତ୍ତତା, ଉନ୍ମାଦ, ଅତିବେଗ, ବିଷ୍ଣୁପୁରାଣୋକ୍ତ ମତ୍ସ୍ୟାଧିପତି ।
ସମ୍ମାନ—ବି. ( ସମ୍+ମନ୍+ଭା.ଅ ) ମର୍ଯ୍ୟାଦା, ଗୌରବ, ସମାଦର, ପୂଜା, (ସମ୍+ମା+ଭା.ଅନ) ସମ୍ୟକ୍‌ପରିମାଣ
ସମ୍ମାନନ(ନା)—ବି. (ସମ୍+ମନ୍+ଣି. ଅନ+ଅ,ଆ) ମର୍ଯ୍ୟାଦା ଦେଖାଇବା, ସମ୍ମାନ କରିବା, ପରିମାଣ କରିବା ।
ସମ୍ମାନନୀୟ—ପୁଂ. ବିଂ. (ସମ୍+ମନ୍+ଣି.ଅନୀୟ)ସମ୍ମାନିତ ହେବାର ଯୋଗ୍ୟ, (ସ୍ତ୍ରୀ) ସମ୍ମାନନୀୟା ।
ସମ୍ମାନପାତ୍ର—ବି. (୬ତତ୍) ସମ୍ମାନାସ୍ପଦ ।
ସମ୍ମାନପ୍ରାପ୍ତ-ବିଂ.(୨ତତ୍) ସମ୍ମାନିତ ଦେଖ
ସମ୍ମାନପ୍ରାପ୍ତି—ବି. (୬ତତ୍)ସମ୍ମାନଲାଭ ।
ସମ୍ମାନରକ୍ଷା—ସ୍ତ୍ରୀ. ବି. (୬ତତ୍)ମର୍ଯ୍ୟାଦା-ରକ୍ଷା, ମାନରକ୍ଷା ।
ସମ୍ମାନଲାଭ—ବି.(୬ତତ୍)ନୂତନ ମର୍ଯ୍ୟାଦା ପ୍ରାପ୍ତି ।
ସମ୍ମାନହାନି—ବି. (୬ତତ୍) ସମ୍ମାନନାଶ ।
ସମ୍ମାନାନନ୍ତର—ଗ୍ରା.କ୍ରି. ବିଂ. ସମ୍ମାନ ବା ମର୍ଯ୍ୟାଦା କରିବା ପରେ ( ନିବେଦନ କରିବା) ।
ସମ୍ମାନାର୍ହ-ପୁଂ.ବିଂ.(ଉପପଦତତ୍) ସମ୍ମାନ-ନୀୟ, ସମ୍ମାନ ପାଇବାର ଯୋଗ୍ୟ, (ସ୍ତ୍ରୀ) ସମ୍ମାନାର୍ହା ।
ସମ୍ମାନାସ୍ପଦ—ବି. (୬ତତ୍) ସମ୍ମାନ ପାଇ-ବାର ଉପଯୁକ୍ତ ବ୍ୟକ୍ତି, ସମ୍ମାନନୀୟ ବ୍ୟକ୍ତି
ସମ୍ମାନିତ—ବିଂ. (ସମ୍+ମାନ୍+ମି.ତ) ସମାଦୃତ, ସତ୍‌କୃତ, ପୂଜିତ ।
ସମ୍ମାନୀ—ପୁଂ. ବିଂ. ସମ୍ମାନବିଶିଷ୍ଟ, ସମ୍ମାନ-ଯୁକ୍ତ ।
ସମ୍ମାନୀୟ—ବିଂ. (ସମ୍+ମନ୍+ଣିଚ୍+ଅନୀୟ)ପୂଜନୀୟ,ମାନ୍ୟ,ସମ୍ମାନର ଯୋଗ୍ୟ
ସମ୍ମାନ୍ୟ—ବିଂ. (ସମ୍+ମାନ୍+ଯ) ସମ୍ମା-ନାର୍ହ, ସମ୍ମାନର ଯୋଗ୍ୟ ।

ସମ୍ମାର୍ଗ—ବ. ସତ୍ମାର୍ଗ, ଉତ୍କୃଷ୍ଟ ପନ୍ଥା ।
ସମ୍ମାର୍ଜ(ର୍ଜ୍ଜ)କ—ପୁଂ. ବି°. (ସମ୍ + ମୃଜ୍ କ.ଅକ) ପରିଷ୍କାରକ,ଶୋଧକ, ଯାହା ସଫାକରେ,(ସ୍ତ୍ରୀ)ସମ୍ମାର୍ଜିକା,(ବି-ଣ.ଅନ) ସମ୍ମାର୍ଜ୍ଜନୀ, ଝାଡ଼ୁ, ଯେଉଁ ବ୍ୟକ୍ତି ସଫା କରେ ।
ସମ୍ମାର୍ଜ୍ଜନ(ନା)—ବ.(ସମ୍ + ମୃଜ୍ + ଭା. ଅନ, ଆ) ସଂଶୋଧନ, ବିଶୋଧନ,ପରିଷ୍କୃତି କରଣ,ଓଳାଇବା,ପହଁରିବା, ଶୁଦ୍ଧ କରିବା, କୌଣସି ଲିଖିତ ପୁସ୍ତକ ବା ପାଣ୍ଡୁଲିପିକୁ ଯତ୍ନପୂର୍ବକ ପରୀକ୍ଷା କରିବା ପରେ ଆବଶ୍ୟକ ସ୍ଥଳରେ ତହିଁର ସଂଶୋଧନ, ସଂଯୋଜନ, ପରିବର୍ତ୍ତନ ଆଦି ପ୍ରକ୍ରିୟା ।
ସମ୍ମାର୍ଜ୍ଜନୀ—ବ. (ସମ୍ + ମାର୍ଜ + ଣ.ଅନ + ଈ) ଝାଡ଼ୁ, ଗୁଞ୍ଜୁଣୀ, ବର୍ଦ୍ଧନୀ ।
ସମ୍ମାର୍ଜ୍ଜମାନ—ବି°. ସମ୍ମାର୍ଜ୍ଜିତ ଦେଖ ।
ସମ୍ମାର୍ଜ୍ଜିତ-ବି°.ଶୋଧିତ,ପରିଚ୍ଛନ୍ନ,ପରିଷ୍କୃତ
ସମ୍ମିତ—ବି°.(ସମ୍ + ମା + ମି.ତ)ସଦୃଶ, ତୁଲ୍ୟ,ପରିମାଣବିଶିଷ୍ଟ,ଅନୁମତ,ଅନୁଯାୟୀ
ସମ୍ମିତତ୍ୱ—କ୍ଲୀ. ବ. ( ସମ୍ମିତ + ତ୍ୱ ) ସଦୃଶତ୍ୱ, ତୁଲ୍ୟତ୍ୱ ।
ସମ୍ମିତି-ସ୍ତ୍ରୀ.ବ.ଇଚ୍ଛାକାଙ୍କ୍ଷା, ସଦୃଶାଭିଳାଷ
ସମ୍ମିମର୍ଦ୍ଦିଷୁ—ବି°. (ସମ୍ + ମୃଦ୍ + ସନ୍ + ଉ) ସମ୍ମର୍ଦ୍ଦନ କରିବାକୁ ଅଭିଳାଷୀ ।
ସମ୍ମିଳନ(ନୀ)—ବ. (ସମ୍ + ମିଳନ)ବହୁ ବସ୍ତୁର ଏକତ୍ର ମିଶ୍ରଣ, ସଂଯୋଗ,ବିବାଦ କରିଥିବା ବ୍ୟକ୍ତିଙ୍କର ମିଳନ, ଏକତ୍ର ହେବା, (ଗ୍ରା.ବ,ସଂ ସମ୍ମେଳନ,ନୀ) ବହୁ ବ୍ୟକ୍ତିଙ୍କର ସମ୍ମିଳିତ ସଭା ।
ସମ୍ମିଳିତ—ବି°. (ସମ୍ + ମିଳିତ)ଏକତ୍ରୀ-ଭୂତ,ସଂଯୋଜିତ,ଏକସ୍ଥାନରେ ଉପସ୍ଥିତ
ସମ୍ମିଳିତଚେଷ୍ଟା—ବ. ବହୁ ଲୋକଙ୍କର ଏକତ୍ରୀଭୂତ ଉଦ୍ୟମ ।
ସମ୍ମିଳିତହେବା—ଗ୍ରା.କ୍ରି. ଏକତ୍ରହେବା, ଏକଯୋଟ ହେବା ।
ସମ୍ମିଶ୍ର—ବି°. ( ସମ୍ + ମିଶ୍ର + କ.ଅ ) ଏକତ୍ରମିଶ୍ରିତ, ଏକତ୍ରମିଳିତ, ସଂଯୁକ୍ତ, (ସ୍ତ୍ରୀ.)ସମ୍ମିଳିତା ।
ସମ୍ମିଶ୍ରଣ—ବ. (ସମ୍ + ମିଶ୍ରଣ) ଏକତ୍ର-ମିଳନ, ବହୁପଦାର୍ଥର ମିଶ୍ରଣ, ଏକତ୍ର ମିଶାଇବା, ବି°.-ସମ୍ମିଶ୍ରିତ ।
ସମ୍ମୀଳନ—ବ.(ସମ୍ + ମୀଲ୍ + ଭା.ଅନ) ମୁଦ୍ରିତ ହୋଇଯିବା, ବୁଜି ହୋଇଯିବା, ଘୋଡ଼ାଇପକାଇବା ।
ସମ୍ମୀଲ୍ୟ—ବି°. ( ସମ୍ + ମୀଲ୍ + ଯ ) ସମ୍ମୀଳନଯୋଗ୍ୟ ।
ସମ୍ମୁଖ—ବି°.(ଅବ୍ୟୟ ସମାସ) ସାମନା-ସାମନି, ଅଭିମୁଖ, ସମକ୍ଷ, ଆଗ, କୌଣସିଆଡ଼କୁ ମୁହଁ କରିବା, ମୁହାଁ-ମୁହିଁ, ସମର୍ଥ, ଏକଆଡ଼କୁ ମୁହଁ କରି ବିପରୀତ ଢଙ୍ଗରେ ଅବସ୍ଥିତ, ଅମୁକ-ଆଡ଼କୁ ସିଧାକରି ରହିଥିବା,(ଅମୁକକୁ) ଭେଟିଥିବା,ଅନୁକୂଳ,(ସ୍ତ୍ରୀ.)ସମ୍ମୁଖା, ଖୀ ବ. ( ସର୍ବ + ମୁଖ ) ସମସ୍ତମୁଖ, ଗ୍ରା. କ୍ରି. ବି°. (ସଂ. ସମ୍ମୁଖଂ) ସାମ-ନାରେ, ସାମନାସାମନି, (ଅମୁକଙ୍କ) ଉପସ୍ଥିତିରେ ।
ସମ୍ମୁଖଦନ୍ତ—ବ. ପାଟିର ସାମନାରେ ଥିବା ଦାନ୍ତ, ଗ୍ରୁମୁଦାନ୍ତ ।
ସମ୍ମୁଖବର୍ତ୍ତୀ—ପୁଂ.ବି°. (ସମ୍ମୁଖ + ବୃତ୍ + କ.ଇନ୍) ସାମନାରେ ଥିବା, ସାମନା ପାଖର,(ସ୍ତ୍ରୀ.)ସମ୍ମୁଖବର୍ତ୍ତିନୀ ।
ସମ୍ମୁଖଯୁଦ୍ଧ—ବ.ସମ୍ମୁଖସ୍ଥ ଦୁଇ ଯୋଦ୍ଧା ବା ଦୁଇ ଯୋଦ୍ଧୃଦଳ ମଧ୍ୟରେ ହେବା ଯୁଦ୍ଧ, ମୁହାଁମୁହିଁ ଯୁଦ୍ଧ ।
ସମ୍ମୁଖରେ—ଗ୍ରା.କ୍ରି.ବି°.ସାମନା ସାମନି, ସାମନାରେ, ଉପସ୍ଥିତିରେ ।
ସମ୍ମୁଖସମର—ବ. ସାମନା ସାମନି ଲଢ଼େଇ ।
ସମ୍ମୁଖସ୍ଥ—ବି°. ସାମନାରେ ଥିବା ।
ସମ୍ମୁଖାସମ୍ମୁଖୀ-ଗ୍ରା.ବି°. ପରସ୍ପର ସମ୍ମୁଖ-ବର୍ତ୍ତୀ, ସାମନା ସାମନି ।
ସମ୍ମୁଖୀ—ବ.(ସମ୍ମୁଖ + ଇନ୍)ଦର୍ପଣ ।
ସମ୍ମୁଖୀନ—ପୁଂ. ବି°. (ସମ୍ମୁଖ + ଈନ) ସମ୍ମୁଖବର୍ତ୍ତୀ,(ସ୍ତ୍ରୀ.)ସମ୍ମୁଖୀନା ।
ସମ୍ମୁଖୀନହେବା—ଗ୍ରା. କ୍ରି. ସାମନାକୁ ଆସିବା, ଭେଟିବା ।
ସମ୍ମୁଗ୍ଧ—ବ.( ସମ୍ + ମୁଗ୍ଧ ) ଅତ୍ୟନ୍ତ ମୋହିତ, ବିମୋହିତ, ଜଡ଼ୀଭୂତ ।
ସମ୍ମୂଢ଼—ବି°.( ସମ୍ + ମୂଢ଼ ) ଅଜ୍ଞାନ, ରାଗାଦି ଦ୍ୱାରା ଅନ୍ଧୀଭୂତ, ସମ୍ୟକ୍ ମୋହଯୁକ୍ତ, ମୂର୍ଚ୍ଛାଯୁକ୍ତ, ନିର୍ବୋଧ, ରାଶୀକୃତ, ଭଗ୍ନ, ଶୀଘ୍ରଜାତ ।
ସମ୍ମୂଢ଼ପିଡ଼କା-ସ୍ତ୍ରୀ.ବ.ଶୂକ ରୋଗଭେଦ ।
ସମ୍ମୂର୍ଚ୍ଛନ—ବ.ସମ୍ୟକ୍ ମୂର୍ଚ୍ଛନ, ସମ୍ୟକ୍ ମୂର୍ଚ୍ଛାତ୍ୟାଗ ।
ସମ୍ମୂର୍ଚ୍ଛ—ପୁ. ବ. ( ସମ୍ + ମୂର୍ଚ୍ଛ + ଅ ) ସମ୍ୟକ୍ ମୋହ, ବ୍ୟାପ୍ତି ।
ସମ୍ମୂର୍ଚ୍ଛିତ—ବ.(ବୈଦ୍ୟକ) ତୃଷ୍ଣାଦି ।
ସମ୍ମୂର୍ଚ୍ଛନ(ନା)—ବ.(ସମ୍ + ମୂର୍ଚ୍ଛ ଅ.) ଅଚୈତନ୍ୟ, ମୂର୍ଚ୍ଛା, ବୃଦ୍ଧି, ସର୍ବତଃ ବ୍ୟାପ୍ତି, ବ୍ୟାପ୍ତି, ବିସ୍ତାର, ପ୍ରସାର, ଉଚ୍ଚତା, ଉଚ୍ଛ୍ରାୟ ।
ସମ୍ମୂର୍ଚ୍ଛନୋଦ୍ଭବ—ବ. ମତ୍ସ୍ୟାଦି ବା ଅନ୍ୟାନ୍ୟ ଜଳଚର ପ୍ରାଣୀ ।
ସମ୍ମୃଷ୍ଟ—ବି°.(ସମ୍ + ମୃଷ୍ଟ)ସଂଶୋଧିତ, ପରିଷ୍କୃତ, ନିର୍ମଳୀକୃତ, ବଘରା ହୋଇ-ଥିବା (ବ୍ୟଞ୍ଜନାଦି), ସମ୍ମାର୍ଜ୍ଜିତ ।
ସମ୍ମେଘ—ବ.ସମ୍ୟକ୍ ମେଘ, ମେଘଯୁକ୍ତ ଆକାଶ ।
ସମ୍ମେଳନ(ନୀ)—ବ.(ସମ୍ + ମିଲ୍ + ଣିଚ୍ + ଭା. ଅନ, ଈ ) ଏକତ୍ରକରାଇବା, ମିଳିତକରାଇବା ( ଅଧି, ଅନ, ଈ ) ମେଳା, ସଭା, ସମିତି ।
ସମ୍ମୋଦ—ବି. (ସମ୍ + ମୋଦ)ଆମୋଦ, ପ୍ରୀତି, ପ୍ରମୋଦ ।
ସମ୍ମୋଦନ—ବ. ( ସମ୍ + ମୁଦ୍ + ଅନ ) ସମ୍ମୋଦ, ହର୍ଷ, ଆନନ୍ଦ ।
ସମ୍ମୋହ—ବ.(ସମ୍ + ମୋହ) ଅଜ୍ଞତା, ଅତ୍ୟନ୍ତମୋହ, ବିମୁଗ୍ଧ କରିବା, ରାଗାଦିଜନିତ ଅନ୍ଧତା, ମୂର୍ଚ୍ଛା ।
ସମ୍ମୋହକ—ବି°. ( ସମ୍ମୋହ + ଅକ ) ମୋହକାରକ, ମୋହଜନକ, (ସ୍ତ୍ରୀ.) ସମ୍ମୋହିକା,ବ. ସନ୍ନିପାତଜ୍ୱର ।
ସମ୍ମୋହନ-ବ.(ସମ୍ + ମୁହ + ଣିଚ୍ + ଭା. ଅନ) ବିମୁଗ୍ଧକରଣ, (କ.ଅନ)

କନ୍ଦର୍ପର ବାଣବିଶେଷ, ବିଂ.ମୋହ-ଜନକ, (ସ୍ତ୍ରୀ) ସମ୍ମୋହିନୀ ।

ସମ୍ମୋହିତ—ବିଂ. ସମ୍ୟକ୍ ମୋହପ୍ରାପ୍ତ, ସାତିଶୟ ବିମୋହିତ ।

ସମ୍ୟକ୍—ଅ ଓ କ୍ରି.ବିଂ.(ସମ୍+ଅଞ୍ଚ୍+କ. କ୍ୱିପ୍) ଉତ୍ତମରୂପେ, ଘନିଷ୍ଠରୂପେ, ପ୍ରକୃତରୂପେ, ସମ୍ପୂର୍ଣ୍ଣରୂପେ, ବିଶିଷ୍ଟ-ରୂପେ, ସର୍ବପ୍ରକାରେ,(ବିଂ) (ସମ୍+ଅଞ୍ଚ୍+କ୍ୱିପ୍) ମନୋଜ୍ଞ, ଯୋଗ୍ୟ, ଉପଯୁକ୍ତ,ଶୁଦ୍ଧ,ସମୁଦାୟ,ସତ୍ୟ,ସଙ୍ଗତ, (ବି) ସତ୍ୟବଚନ, ବିଂ ର ବିଂ. ଅତ୍ୟନ୍ତ, ସର୍ବତୋଭାବରେ ।

ସମ୍ୟକ୍‌କର୍ମାନ୍ତ—ବି. ସମ୍ୟକ୍‌ରୂପେ କର୍ମର ସର୍ବଶେଷ, କଷ୍ଟାବଦାନାବସ୍ଥା ।

ସମ୍ୟକ୍‌ଶ୍ଚରିତ—ବି. ଜୈନମତରେ ବସ୍ତୁର ତତ୍ତ୍ୱ ଅବଗତ ହୋଇ ତଦନୁସାରେ ଚଳିବା; ଏହା ଧର୍ମଶାସ୍ତ୍ରର ଅନ୍ତର୍ଗତ ।

ସମ୍ୟକ୍‌ଦୃଷ୍ଟି—ବି.ଉତ୍ତମରୂପେ ଦେଖିବା. ପର୍ଯ୍ୟବେକ୍ଷଣ ।

ସମ୍ୟକ୍‌ପ୍ରବୃତ୍ତି—ସ୍ତ୍ରୀ.ବି. ସମ୍ୟକ୍ ଇଚ୍ଛା ।

ସମ୍ୟକ୍‌ଯୋଗ—ବି.ସମାଧି ଦେଖ ।

ସମ୍ୟକ୍‌ବୋଧ—ବି.ସମ୍ୟକ୍ ଜ୍ଞାନ ।

ସମ୍ରାଜ୍(ଟ୍)—ପୁଂ.ବି.(ସମ୍+ରାଜ୍+କ. କ୍ୱିପ୍) ମଣ୍ଡଳେଶ୍ୱର, ରାଜଚକ୍ରବର୍ତ୍ତୀ, ରାଜାଧିରାଜ, (ସ୍ତ୍ରୀ) ସମ୍ରାଜ୍ଞୀ ।

ସମ୍ରାଜ୍ଞା—ସ୍ତ୍ରୀ.ବି.(ସମ୍ରାଜ+ଈ) ସମ୍ରାଟ ପଦରେ ଅଧିଷ୍ଠିତା ସ୍ତ୍ରୀ,ସମ୍ରାଟଙ୍କ ପତ୍ନୀ ।

ସମ୍ରାଜ୍ଞୀ—ସ୍ତ୍ରୀ. ବି. ସମ୍ରାଜ୍ଞା, ସମ୍ରାଟର ଅଧୀଶ୍ୱରୀ ।

ସମ୍ରାଟ—ଗ୍ରା.ପୁଂ. ବି.ସମ୍ରାଟ୍ ଦେଖ ।

ସମ୍ଳିଷ୍ଟ—ବିଂ. (ସମ୍+ମ୍ଳେଚ୍ଛ+କ.ତ) ସମ୍ମିଳିତ ଦେଖ ।

ସଯତ୍ନ—ବିଂ.(ବ.ବ୍ରୀ) ଯତ୍ନଯୁକ୍ତ, ଯତ୍ନ-ବିଶିଷ୍ଟ, ସଚେଷ୍ଟ,ଉଦ୍ୟୁକ୍ତ, ଯତ୍ନସହିତ, (ସ୍ତ୍ରୀ.)ସଯତ୍ନା ।

ସଯତ୍ନେ—ବିଂ.(ବ.ବ୍ରୀ) ଯତ୍ନସହକାରେ, ଯତ୍ନପୂର୍ବକ ।

ସଯନ୍ତ୍ର—କ୍ଳୀ.ବି,ଯନ୍ତ୍ରଣା,ସଦ୍ଧବାସ,ମିଳନ ।

ସଯନ—କ୍ଳୀ.ବି.ବନ୍ଧନ, ପୁଂ.ବିଶ୍ୱାମିତ୍ର-ଙ୍କର ପୁତ୍ରବିଶେଷ ।

ସଯବ—ବିଂ.ଯବଯୁକ୍ତ,ଯବବିଶିଷ୍ଟ ।

ସଯାବକ—ବିଂ. ଯାବକଯୁକ୍ତ, ସମାନ ଗତିବିଶିଷ୍ଟ ।

ସୟାଁ—ଗ୍ରା.ବିଂ.ଧାଇଁ ବେଗୀ,ଶ୍ୱାସବେଗୀ ।

ସୟା—ଗ୍ରା.ପୁଂ.ବି. ସଖା, ସଖୀର ସ୍ୱାମୀ, (ସ୍ତ୍ରୀ) ସଈ ।

ସଯୂଥ୍ୟ—ବିଂ (ସ+ଯୂଥ+ଯ)କୌଣସି ଦଳର ବା ଗୋଷ୍ଠୀର ଜଣେ, (ସ୍ତ୍ରୀ) ସଯୂଥ୍ୟା ।

ସଯୋନି—ବି. (ସ+ଯୋନି) ବ.ବ୍ରୀ; ଇନ୍ଦ୍ର, ଏକ ମାତାଙ୍କ ଗର୍ଭଜାତ ଭାଇ, ଦୁଇଟି ବାହୁବିଶିଷ୍ଟ ଗୁଆକାତି, (ବିଂ-ବ.ବ୍ରୀ) ଯେଉଁମାନଙ୍କର ଉତ୍ପତ୍ତି ସ୍ଥାନ ଏକ, ଏକ ମାତାଙ୍କ ଗର୍ଭଜାତ, ଘନିଷ୍ଠ ସମ୍ପର୍କରେ ସମ୍ପୃକ୍ତ ।

ସର୍—ଗ୍ରା.ଅ.(ଧ୍ୱନ୍ୟନୁକରଣ)ଅନବରତ ସୂକ୍ଷ୍ମ ଧାରରେ ତଳକୁ ପଡ଼ିବା ଜଳ ବା ଦୁଗ୍ଧାଦିଜନିତ ଶବ୍ଦ, (ସର୍‌ର,ଅନ୍ୟ-ରୂପ) ।

ସରଉ(ଓ)ତା—ପ୍ରା. (ସମ୍ବ)ବି.ଗୁଆକାତି

ସରଜନ୍ମହିବାକ୍—ଯା.ବି.ଉତ୍କଳ ପ୍ରଦେ-ଶର ପ୍ରଥମ ଗଭର୍ଣ୍ଣର ।

ସରଜନିଆ—ପ୍ରା. (ଲିରଥା) ବି. ଉଚ୍ଚ ବର୍ଣ୍ଣୀୟ ବ୍ୟକ୍ତି ।

ସର୍‌ତାଲ୍—ଯା. ବି. ପରତାଲ କରିବ ପରେ ଜମିର ତୃଣ୍ଣୀୟ ଜରିବ ।

ସରପାଁସ—ପ୍ରା. (ଖଡ଼ିଆଲ)ବିଂ. ମିଥ୍ୟା-ବାଦୀ, (ବି)ମିଥ୍ୟା, ମିଥ୍ୟାବାଦୀ ବ୍ୟକ୍ତି ।

ସରପ୍ରତାପଚନ୍ଦ୍ରଭଞ୍ଜଦେବ(ଓ)—ଗ୍ରା. ବି. ମୟୂରଭଞ୍ଜର ମହାରାଜା ।

ସରବାସୁଦେବ ସୁଢ଼ଳଦେବ—ଗ୍ରା. ବି. ବାମଣ୍ଡାର ସ୍ୱର୍ଗତ ଖ୍ୟାତ ପ୍ରସିଦ୍ଧ ରାଜା ।

ସରବୀରମିତ୍ରୋଦୟସିଂହଦେବ—ଗ୍ରା.ବି. ସୋନପୁରର ସ୍ୱର୍ଗତ ମହାରାଜା ।

ସରବ୍ରଜେନ୍ଦ୍ରନାରାୟଣ ଭଞ୍ଜଦେବ—ଗ୍ରା. ବି. କନିକାର ରାଜାବାହାଦୁର ।

ସରରସାଇ—ଗ୍ରା. ଅ. (ଧ୍ୱନ୍ୟନୁକରଣ) ତରଳ ପଦାର୍ଥର ଅବିରତ ସରୁ ଧାର ପତନର ଶବ୍ଦ, ଟିଣର ସାଇଁଶଗଡ଼ ନାମକ ଖେଳନାର ଘୂର୍ଣ୍ଣନ ଶବ୍ଦ ।

ସରସର—ଗ୍ରା. ଅ. ସରସର ଦେଖ ।

ସର୍‌ସିଆ—ପ୍ରା.(ଖଡ଼ିଆଲ)ବିଂ.(ସ-ସଦୃଶ) ସମାନ, ସଦୃଶ, (ବି) ସୋଡ଼ଷିଆ ।

ସର—ବି. ( ସୃ+କ.ଅ ) ସରୋବର, ପୋଖରୀ, ଭୂଷଣବିଶେଷ, ମଧୁ, ମାଳା, ହାରର ଯୋଗ, ଲବଣ, ଝରଣା,ଜଳ, ଶର, ବାଣ, ମହାପିଣ୍ଡୀତରୁ, (ଭା.ଅ) ଗତି, (ବିଂ-ସୃ+କ.ଅ) ଗମନକାରୀ, ଗତି କରୁଥିବା, (ଏ ଅର୍ଥରେ 'ସର' ଶବ୍ଦ ପରେ ପ୍ରାୟ ଯୁକ୍ତ ହୁଏ, ଯଥା—ଅଗ୍ରସର, ଅବସର ଇତ୍ୟାଦି) ସାରକ, ଭେଦକ, (ଗ୍ରା.ବି-ସ-ସରଃ) ଜଳୀୟ ପଦାର୍ଥ ଉପରେ ପଡ଼ିବା ଘନ ସ୍ତର, ସର, ଘର, ଲିଙ୍ଗ, (ବିଶେଷତଃ) ଛେଳି, ଘୋଡ଼ା, ଷଣ୍ଢ ଆଦି ପଶୁଙ୍କର ଉଦ୍‌ବୃତ୍ତ ଲିଙ୍ଗର ଅଗ୍ରଭାଗ, ନୌକାରେ ବ୍ୟବହୃତ ଆହୁଲାର ଦଣ୍ଡ ଅଂଶ,ପୁଷ୍ପ-ନଳର ପୁଷ୍ପ ସହିତ ନିକଟବର୍ତ୍ତୀ ନୁଡ଼ି-ବିଶେଷ ।

ସରଃ—ବି. (ସୃ+ଅଧି.ଅସ୍) ପୁଷ୍କରିଣୀ, ପୋଖରୀ, ସରୋବର, (କ.ଟ) ଜଳ, ଦଧିଗ୍ର, ଦୁଗ୍ଧର ସାର ଭାଗ, ବାଣ, ତୀର, ବାଣ ତୃଣ, ଶରତୃଣ, ଲବଣ, ନିର୍ଝର, ମହାପିଣ୍ଡୀ ତରୁ,(ଭା.ଅ) ଗତି, (ବିଂ) ଗମନକର୍ତ୍ତା, ଗତି କରୁଥିବା ।

ସରଃକାକ—ପୁଂ. ବି. (ସଃପଃଙ୍ଗ୍ରୈକ.ଧା) ହଂସ, (ସ୍ତ୍ରୀ) ସରଃକାକୀ=ହଂସୀ ।

ସରକ—ପୁଂ.ବିଂ, (ସୃ+କ,ଅକ)ଗମନ-ଶୀଳ, ଗତିବିଶିଷ୍ଟ, (ସ୍ତ୍ରୀ) ସରକା, (ବି) ସରୋବର, ଆକାଶ, ମଦ୍ୟପାତ୍ର,ମଦ୍ୟ-ପାନ, ଆଖୁରସରୁ ପ୍ରସ୍ତୁତ ମଦ, ଅଖଣ୍ଡିତ ବହୁପଥ, ସଡ଼କ, ମଦ୍ୟ ପରିବେଷଣ, ସୁରା, ମଦ୍ୟ, (ଭା.ଅକ) ଗତି, ଗମନ, (ମି.ଅକ) ସ୍ୱର୍ଗ,(ଗ୍ରା.ବି)ପଣ୍ୟ ବସ୍ତୁତସ୍ତ୍ର, ସ୍ଥାନାନ୍ତରକୁ ପଣ୍ୟ ବସ୍ତୁତସ୍ତ୍ର ବହନ କରିବାର ଅର୍ଥ, କ୍ଷେପ ।

ସରକଟ-ଗ୍ରା.ବିଂ.ଖୁବ୍ ବର୍ଷାଯୁକ୍ତ (ସମୟ)

ସରକଢ଼ା—ଗ୍ରା.ବି. ଗୁଣିବିଦ୍ୟା ବା ମନ୍ତ୍ରଯନ୍ତ୍ର ପ୍ରୟୋଗ ଦ୍ୱାରା କୌଣସି ଗାଈର ଦୁଗ୍ଧକୁ ସଙ୍କୋଚନ କରିବାର ପ୍ରକ୍ରିୟା ।

ସରକଣ୍—ଯା. ବିଂ. ଅବାଧ୍ୟ, ଅଗ୍ରାହ୍ୟ ।

ସରକା—ଯା. ବି. ସମ୍ବନ୍ଧ, ସମ୍ପର୍କ,ଅଂଶ, ହିଂସା,(ଗ୍ରା. ପାଟଣା)କୁଟାଆଦିର ଲୁଣ୍ଡା

ସରକା(କେ)ଇବା—ଗ୍ରା.କ୍ରି. ଏକପାଖକୁ ଘୁଞ୍ଚାଇବା, ସ୍ଥାନାନ୍ତରିତ କରିବା ।

ସରକାଢ଼ିବା—ଗ୍ରା. କ୍ରି. ଆଉଟା ଦୁଧ ଉପରେ ପଡ଼ିଥିବା ସରକୁ ଉଠାଇନେବା,ମନ୍ତ୍ରଯନ୍ତ୍ର ପ୍ରୟୋଗ ଦ୍ୱାରା ଗାଈର ଦୁଧକୁ ସଙ୍କୋଚନ କରିବା, (ଲ.ଅର୍ଥ) କୌଣସି ପଦାର୍ଥର ସାର ଅଂଶକୁ ବାହାର କରିନେଇ ଅକାମିକା ଅଂଶକୁ ଛାଡ଼ିଦେବା ।

ସରକାର୍—ଯା. ବି.ପ୍ରଭୁ, ସ୍ୱାମୀ, ମାଲିକ, ଦେଶର ରାଜା, ଦେଶୀୟ ରାଜାମାନଙ୍କ ପ୍ରତି ସମ୍ମାନସୂଚକ ବଚନ, ଦେଶର ଗଭର୍ଣ୍ଣମେଣ୍ଟ, ଦେଶର ଶାସନକର୍ତ୍ତା, ମୁସଲମାନ ରାଜତ୍ୱରେ ଦେଶର ରାଜସ୍ୱ ଆଦାୟର ସୁବିଧା ନିମନ୍ତେ ଗଠିତ ବିଭାଗ, ସୁବା, ଦେଣଦାରଙ୍କଠାରୁ ପାଉଣା ଟଙ୍କା ଆଦାୟକାରୀ, ଗୃହର ତତ୍ତ୍ୱାବଧାରକ, ବଙ୍ଗଦେଶର ବଂଶୋପାଧିବିଶେଷ,ମୋଗଲ ରାଜତ୍ୱ କାଳରେ ଦକ୍ଷିଣାତ୍ୟର ପୂର୍ବ ଉପକୂଳବର୍ତ୍ତୀ କେତେକ ଅଞ୍ଚଳର ନାମ, (ଯା.ଅବ୍ୟ) ରାଜା ଓ ହାକିମମାନଙ୍କ ଅନୁଗତ ବ୍ୟକ୍ତିମାନଙ୍କର ସଂବୋଧନ, ହେ ମହାଶୟ, ହେ ପ୍ରଭୋ ।

ସରକାରଉମେଶଚନ୍ଦ୍ର—ଗ୍ରା.ବି.ଓଡ଼ିଶାର ସର୍ବପ୍ରଥମ ସ୍ୱର୍ଚିତ ଉପନ୍ୟାସ ଲେଖକ ।

ସରକାରୀ—ଯା. ବିଂ. ସରକାର ବା ଗଭର୍ଣ୍ଣମେଣ୍ଟ ସମ୍ବନ୍ଧୀୟ, ରାଜକୀୟ, ଯହିଁର ମାଲିକ ରାଜା ବା ଗଭର୍ଣ୍ଣମେଣ୍ଟ ସ୍ୱୟଂ ଅଟନ୍ତି, ସର୍ବସାଧାରଣଙ୍କ ବ୍ୟବହାର ଯୋଗ୍ୟ ବା ଯହିଁରେ ସର୍ବସାଧାରଣଙ୍କ ଅଧିକାର ଅଛି, ଯେଉଁ ସମ୍ପତ୍ତି ବ୍ୟକ୍ତିବିଶେଷଙ୍କର ନୁହେଁ ।

ସରକାରୀକାଗଜ—ଯା.ବି. ରାଜକୀୟ ନଥି ଆଦି, ରାଜକୀୟ କାର୍ଯ୍ୟରେ ବ୍ୟବହୃତ କାଗଜ ।

ସରକାରୀକାମ(ର୍ଯ୍ୟ)—ଗ୍ରା. ବି. ରାଜକୀୟ କର୍ମ, ଗଭର୍ଣ୍ଣମେଣ୍ଟଙ୍କ ଅଧୀନ ଚାକିରି ।

ସରକାରୀଚିଠି—ଗ୍ରା. ବି. ରାଜକୀୟ ପତ୍ର, ରାଜକୀୟ କର୍ମ ସମ୍ବନ୍ଧୀୟ ପତ୍ର ।

ସରକାରୀସିରସ୍ତା-ଯା.ବି.ରାଜକୀୟ ଅଫିସ ।

ସର(ରି)ଦାର୍—ଯା. ବି. ଅଂଶୀଦାର୍, କୌଣସି ସମ୍ପତ୍ତିର ଅଂଶର ମାଲିକ ।

ସରକିବା—ଗ୍ରା. କ୍ରି. ଘୁଞ୍ଚିବା ।

ସରକ୍ତ—ବିଂ. ରକ୍ତର ସହିତ ବର୍ତ୍ତମାନ, ରକ୍ତଯୁକ୍ତ, ରକ୍ତବିଶିଷ୍ଟ ।

ସରକ୍ତଗୌର—ବିଂ. ରକ୍ତିମାର ଗୌରବର୍ଣ୍ଣଯୁକ୍ତ ।

ସରଖତ୍—ଯା.ବି. ଘରଭଡ଼ା ଦିଆଯିବାର ସର୍ତ୍ତମାନ ଲେଖାଥିବା ଦସ୍ତାବିଜ ।

ସରଗ—ଗ୍ରା.ବି.(ସଂ-ସ୍ୱର୍ଗ) ସ୍ୱର୍ଗ,ଆକାଶ ।

ସରଗଚନ୍ଦ—ଗ୍ରା. ବି. ସ୍ୱର୍ଗର ଚନ୍ଦ୍ରମା, (ଲ.ଅର୍ଥ) ଚନ୍ଦ୍ରମାତୁଲ୍ୟ ସୁନ୍ଦର ବସ୍ତୁ ବା ବ୍ୟକ୍ତି, ଚନ୍ଦ୍ରମାତୁଲ୍ୟ ମନୁଷ୍ୟର ଅପ୍ରାପ୍ୟ ବସ୍ତୁ ।

ସରଗତରା—ଗ୍ରା. ବି. ସ୍ୱର୍ଗର ତାରା, (ଲ.ଅର୍ଥ) ତାରାପରି ଉଜ୍ଜ୍ୱଳ ପଦାର୍ଥ, ତାରକାପରି ଅପ୍ରାପ୍ୟ ବସ୍ତୁ ।

ସରଗପଥର—ଗ୍ରା. ବି. କୁଆପଥର ।

ସରଗଫଳ—ଗ୍ରା ବି. କୁଆପଥର, (ଗ୍ରା. ଗଡ଼ଜାତ. ବି) ମାଇପଙ୍କର ପରସ୍ପର ମଧ୍ୟରେ ସ୍ଥାପନ କରିବା ବନ୍ଧୁତା ।

ସରଗମ୍—ଗ୍ରା. ବି. (ସଂ--ସା,ରେ,ଗା,ମା, କମ୍ବା ସ୍ୱରଗ୍ରାମ) ସ୍ୱରଗ୍ରାମ, ସପ୍ତସ୍ୱରର କ୍ରମଗଠ,ସଙ୍ଗୀତର ମୌଳିକ ସ୍ୱରମାନ.

ସରଗରମ୍—ଯା. ବିଂ. ଅତ୍ୟନ୍ତ ଗରମ ବା ଉଷ୍ଣ, ଉତ୍ତେଜିତ, ଆଗ୍ରହାନ୍ୱିତ, ଅଧ୍ୟବ୍ୟସ୍ତ, ବେଗାନ୍ୱିତ, ତେଜସ୍କର, ଆଡମ୍ବରମୟ, କୋଳାହଳପୂର୍ଣ୍ଣ,ଲୋକପୂର୍ଣ୍ଣ, ପ୍ରେମବହ୍ୱଳ, ଉତ୍ସାହୀ, ଉତ୍ସାହାନ୍ୱିତ,କୌଣସି ଜିନିସର ବେଶି ଦରକାର ହେବାରୁ ତହିଁର ମୂଲ୍ୟ ବା ଦାଉ ବଢ଼ିଯାଇଥିବା (ଅବସ୍ଥା), (ଯା.ବି) ଘୋଷଣା, ଜଣାଇବା ।

ସରଗରୁତୋଳିବା—ଗ୍ରା. କ୍ରି. (ଲ.ଅର୍ଥ) ନ ଥିବା ବସ୍ତୁକୁ ବା ଅସମ୍ଭବ ବସ୍ତୁକୁ କଳ୍ପନା ପ୍ରୟାସଦ୍ୱାରା ଆଣିବା ।

ସରଗରୁପଡ଼ିବା—ଗ୍ରା. ବିଂ. ଯାହା ଆଶା କରାଯାଇ ନ ଥାଏ,ଆଚମ୍ବିତ,(ଗ୍ରା.କ୍ରି) ଉପରୁ ଖସି ପଡ଼ିବା, (ଲ.ଅର୍ଥ) ଅପ୍ରତ୍ୟାଶିତ ଭାବରେ ଉପସ୍ଥିତ ହେବା ବା ଘଟିବା ।

ସରଗୀ—ପ୍ରା. (ସିଂହଭୂମ)ବି.ଶାଳୁଆକାଠ, (କଳାହାଣ୍ଡି) ଶାଳୁଆ ଗଛ ।

ସରଗୁଣା—ଗ୍ରା.ବି.ସାରଗୁଣା, ଏକପ୍ରକାର ବୀଣା, ବାଦ୍ୟଯନ୍ତ୍ରବିଶେଷ ।

ସରଗୁଜା—ଗ୍ରା. ବି. ଗ୍ରେଟନାଗପୁର ବିଭାଗର ନିକଟବର୍ତ୍ତୀ ଦେଶୀୟ ରାଜ୍ୟବିଶେଷ,ରାମତଲା,ସୋମରାଜ୍ୟାଦି ବର୍ଗର କୃଷିଜାତ ବର୍ଷାୟୁ ଶାକବିଶେଷର ତୈଳବୀଜ ।

ସରଗୁଣ୍ଡା—ପ୍ରା. (ସିଂହଭୂମ) ବି. ଲମ୍ବାକୃତବିଶିଷ୍ଟ ରାଶି ।

ସରଘର—ଗ୍ରା. ବି. (ସଂ-ସାର+ଗୃହ) ଭଣ୍ଡାରଘର, ଆହାର୍ଯ୍ୟସାମଗ୍ରୀ ସଞ୍ଚିତ ହେବାର ଗୃହ ।

ସରଘର(ରୁ)ଆ—ସରଘରର ଭାରପ୍ରାପ୍ତ ଭୃତ୍ୟ, ଭଣ୍ଡାରର ରକ୍ଷକ, (ଲ.ଅର୍ଥ) କୌଣସି ଇଲାକାର ମାଲିକ ।

ସରଘା—ବି.(ସୃ+ଅ+ହନ୍+କ.ଆ) ମଧୁମକ୍ଷିକା, ମହୁମାଛି । [ ଦଳ ।

ସରଘାପଟଳ—ବି. (୬ତତ୍) ମହୁମାଛିଙ୍କ

ସରଙ୍ଗ—ବି. (ସୃ+କ.ଅଙ୍ଗ) ଚତୁଷ୍ପଦ ଜନ୍ତୁ, ପକ୍ଷୀ ।

ସରଜ୍-ଯା.ବି. ଏକପ୍ରକାର ପଶମୀ ଲୁଗା ।

ସରଜ—ବି. (ସର+ଜନ୍+କ.ଅ) ହୈୟଙ୍ଗବୀନ, କାଲିର ଦୁଧରୁ ପ୍ରସ୍ତୁତ ଘିଅ, ନବନୀତ,ଲହୁଣୀ, (ବିଂ)ମଳିନ ।

ସରଜଃ—ସ୍ତ୍ରୀ. ବି. ବିଂ. (ସ+ରଜସ୍) ବ.ବ୍ରୀ; ସରଜସ୍କା ଦେଖ, (ବି) ପଙ୍କଜ, ପଦ୍ମ ।

ସରଜତ—ବିଂ. (ସ+ରଜତ) ବ.ବ୍ରୀ; ରଜତବିଶିଷ୍ଟ, ରୌପ୍ୟଯୁକ୍ତ ।

ସରଜନ(ନା)--ଗ୍ରା.ବି.(ପଦ୍ୟ (ସଂ-ସର୍ଜନ) ସର୍ଜନ ଦେଖ ।

ସରଜମିନ୍(ନ)—ଯା. ବି. ଭୂପୃଷ୍ଠ, ସ୍ଥାନ, କୌଣସି ବ୍ୟାପାର ବା ଘଟଣାସମ୍ବନ୍ଧୀୟ ସ୍ଥାନ, ମକଦ୍ଦମା ସମ୍ବନ୍ଧୀୟ ସ୍ଥାନ, ସୀମାନା, ବରାବର, ଉକୁଷ୍ଥଳ ।

ସରଜମିନ୍ତଦନ୍ତ(ତଦାରଖ)—ଯା. ବି. ମକଦ୍ଦମା ସମ୍ବନ୍ଧୀୟ ସ୍ଥାନରେ ଉପସ୍ଥିତ ହୋଇ ସେଠାରେ କରିବା ଅନୁସନ୍ଧାନ ।

ସରଜସା—ସ୍ତ୍ରୀ.ବି.ବିଂ. (ସ+ରଜସ୍+ଆ) ସରଜସ୍କା ଦେଖ ।

ସରଜସ୍କ—ପୁଂ.ବିଂ. (ସ+ରଜସ୍+କ) ବ.ବ୍ରୀ; ରଜୋବିଶିଷ୍ଟ, ଧୂଳିଯୁକ୍ତ,(ସ୍ତ୍ରୀ) ସରଜସ୍କା ।

ସରଜସ୍କା—ସ୍ତ୍ରୀ. ବିଂ. ( ସରଜସ୍କ+ଆ ) ରଜସ୍ୱଳା, ରଜୋବିଶିଷ୍ଟା, ଋତୁମତୀ, (ସ୍ତ୍ରୀ.ବି) ଋତୁମତୀ ସ୍ତ୍ରୀ,ପ୍ରାପ୍ତରଜସ୍କା ସ୍ତ୍ରୀ ।

ସରଜାଃ—ସ୍ତ୍ରୀ.ବି (ସ+ରଜସ୍)ଋତୁମତୀ ସ୍ତ୍ରୀ, ପଙ୍କଜ, (ବିଂ) ରଜୋବିଶିଷ୍ଟ, ଧୂଳିଯୁକ୍ତ ।

ସରଜୋନ୍ଧ—ବିଂ.ରଜୋଯୁକ୍ତ, ଧୂଳିବିଶିଷ୍ଟ, (ସ୍ତ୍ରୀ)ସରଜୋନ୍ଧା=ଋତୁମତୀ ସ୍ତ୍ରୀ ।

ସରଜା(ଞ୍ଜା,ଦା)ମ—ଯା. ବି. ଆବଶ୍ୟକ ଉପକରଣ, ସାମଗ୍ରୀ, ଅସବାବ, ଗୃହର ଉପକରଣ, ସାଜସଜ୍ଜା, ବସ୍ତୁଚୟ ।

ସରଜିବା—ଗ୍ରା.କ୍ରି.(ପଦ୍ୟ)ସର୍ଜନକରିବା, ଜାତକରିବା, ନିକ୍ଷେପକରିବା ।

ସରଜୋର୍--ଯା.ବିଂ.ଜବରଦସ୍ତ, ଉଦ୍ଧତ, ଦୁର୍ଦ୍ଦମ, ଅତି ଦୁଷ୍ଟ ।

ସରଟ୍—ବି(ସୃ+କ.ଅଟ୍ ) ବାୟୁ,ମେଘଖଣ୍ଡ, ଝିଟିପିଟି, ମହୁମାଛି, ଏଣ୍ଡୁଅ ।

ସରଟ(ଟୁ)—ବି. (ସୃ+କ.ଅଟ୍)କୃକଲାସ, ଏଣ୍ଡୁଅ, ଝିଟିପିଟି, ବାୟୁ ।

ସରଟକ—ବି. କୃକଲାସ ।

ସରଟି—ବି. (ସୃ+କ.ଅଟି)ବାୟୁ,ମେଘ ।

ସରଡ଼ିଆ—ପ୍ରା. (ବଲାଙ୍ଗୀରପାଟଣା) ବିଂ. ପିଚ୍ଛିଳ, ଖସଡ଼ା ।

ସରଡ଼ିଯିବା—ପ୍ରା. (ବଲାଙ୍ଗୀରପାଟଣା) କ୍ରି. ଖସିଯିବା ।

ସରଣ—-ବି. (ସୃ+ଭା.ଅନ) ଘୁଞ୍ଚିବା, ଗମନ, ଗତି, ଧୀରଗତି, ଲୌହମଳ, ମାଧବୀ ଲତା, (ବିଂ--କ.ଅ)ଗମନଶୀଳ, ଗତିଶୀଳ, (ଗ୍ରା.ବି) ଉତ୍କଳୀ ବ୍ରାହ୍ମଣମାନଙ୍କର ବଂଶୋପାଧିବିଶେଷ ।

ସରଣା—-ବି. (ସରଣ+ଆ) ପ୍ରସାରଣୀ ଲତା, ତ୍ରିବୃତ୍, ଡମ୍ବୁରୁ, (ବିଂ) ଗମନକର୍ତ୍ତ୍ରୀ ।

ସରଣି(ଣୀ)—ବି (ସୃ+ଅଧି.ଅନ, ଇ) ପଥ, ବାଟ, ମାର୍ଗ, ସଡ଼କ, ଶ୍ରେଣୀ, ପଙ୍କ୍ତି,ଖତ,(କ.ଅ)ଗଳରୋଗବିଶେଷ, ପ୍ରସାରଣୀ ଲତା, ସିଧା ବା ଅଖଣ୍ଡିତ ରେଖା, ବ୍ୟବସ୍ଥା, ବନ୍ଦୋବସ୍ତ, ଡଗର, ବାଟ ।

ସରଣିକଲ୍ପ—ବି. (ଦୃଷ୍ଟାନ୍ତ) କୌଣସି ବ୍ୟକ୍ତିର ଯିବାର ବା ଆସିବାର ବାଟର ଦଗ ।

ସରଣୀବରଣୀ—ଗ୍ରା. ବି. (ସଂ-ସରଣୀ+ବରଣ)ବାଟବରଣ, ପାଛୋଟିଆଣିବା ।

ସରଣ୍ଡ—ବି (ସୃ+କ.ଅଣ୍ଡ)ପକ୍ଷୀ,କାମୁକବ୍ୟକ୍ତି, ସରଟ, ଏଣ୍ଡୁଅ, ଝିଟିପିଟି, ଶଠ ବ୍ୟକ୍ତି, ଏକପ୍ରକାର ଅଳଙ୍କାର ।

ସରଣ୍ଡା—ଗ୍ରା. ବି. କଟକ ଜିଲାର ବାଙ୍କୀ ଗଡ଼ଜାତାନ୍ତର୍ଗତ ଓ ମହାନଦୀର ଉତ୍ତର ତୀରବର୍ତ୍ତୀ କ୍ଷୁଦ୍ର ପର୍ବତବିଶେଷ ।

ସରଣ୍ୟ—ବିଂ(ସରଣ+ଯ)ଗମ୍ୟ,ଗନ୍ତବ୍ୟ

ସରଣ୍ୟୁ—ବି. (ସୃ+କ.ଅନ୍ୟୁ) ବାୟୁ, ଅଗ୍ନି, ମେଘ ଜଳ,ବସନ୍ତ,ଯମଦେବ ।

ସର(ରେ)ତ୍ନ—ବିଂ.(ସୃ+କ.ଅତ୍ନ)ଗମନ କରୁଥିବା, (ବି) ସୂଚି, ସୂତା, (ଯା. ବି) ନିର୍ଦ୍ଦିଷ୍ଟ ଚୁକ୍ତି, ନିୟମ ।

ସରତା—ସ୍ତ୍ରୀ.ବି.ଯନ୍ତିକା, ଗୁବାକ ଛେଦନାସ୍ତ୍ର, ଗୁଆକାତି ।

ସରତ୍ନ—ବିଂ. (ସ+ରତ୍ନ) ରତ୍ନ ସହିତ ବର୍ତ୍ତମାନ ।

ସରତ୍ନି—ବି. (ସୃ+ଣ.ଅତ୍ନି) ମୁଷ୍ଟିବଦ୍ଧ କର,ମୁଠା କରାଯାଇଥିବା ହାତ,ମୁଠିଏ ପରିମାଣ, କହୁଣୀଠାରୁ ହାତ ମୁଠାର ଅଗ ପର୍ଯ୍ୟନ୍ତ ମାପ, ରତ୍ନି ।

ସରଥ—-ପୁଂ. ବିଂ. (ସ+ରଥ) ବ.ବ୍ରୀ; ରଥାରୋହୀ, ରଥବିଶିଷ୍ଟ, (ପୁଂ.ବି)ରଥାରୋହୀ ଯୋଦ୍ଧା ।

ସରଥୀ—-ପୁଂ. ବିଂ. ସମାନ ରଥଯୁକ୍ତ, ଏକ ରଥାରୂଢ଼,ରଥୀ ସହିତ ବର୍ତ୍ତମାନ ।

ସରଦ—ବିଂ. (ସହ+ରଦ)ଦନ୍ତବିଶିଷ୍ଟ, (ଯା. ବି) କଫ, ଅଣ୍ଡା, ଶୀତଜନିତ ରୋଗ । [ ମେଳା ।

ସରଦଙ୍ଗା—ପ୍ରା. (ବଲାଙ୍ଗୀରପାଟଣା) ବି. ସରଦଲ(ଲ)—-ଗ୍ରା. ବି. (ସଂ-ଶାର୍ଦ୍ଦୂଳ) କବାଟର ଚଉକାଠ ଉପରେ ଦିଆଯିବା କାଠର ଚଉଡ଼ା ପଟା ।

ସରଦା—ଯା. ବି. କାବୁଲରୁ ଆସୁଥିବା ଏକପ୍ରକାର ଉତ୍କୃଷ୍ଟ ତରଭୁଜ ।

ସରଦାର୍(ର)—ଯା.ପୁଂ.ବି.ସର୍ଦ୍ଦାର ଦେଖ

ସରଦାରୀ—ଯା. ବି. ସର୍ଦ୍ଦାରୀ ଦେଖ ।

ସରଦି—ଯା. ବି. ସର୍ଦ୍ଦି ଦେଖ ।

ସରଦିଆ—ଗ୍ରା.ବିଂ.ସର୍ଦ୍ଦିଆ ଦେଖ ।

ସରଦିଗରମି—ଗ୍ରା.ବିଂ.ସର୍ଦ୍ଦିଗରମୀ ଦେଖ

ସରଦ୍ୱାନ୍—-ପୁଂ. ବି. ଗୌତମ ମୁନି, ଗୌତମମୁନିଙ୍କ ପୁତ୍ର ।

ସରଧି—ବି (ସର+ଧା+କ.ଇ)ସମୁଦ୍ର

ସରନାମ୍(ମି)—ଯା. ବିଂ. ପ୍ରସିଦ୍ଧ ।

ସରନାମା—ଯା.ବିଂ.ପତ୍ର ବା ପ୍ରବନ୍ଧାଦିର ଶିରୋନାମା,ଯେଉଁଠାରେ ଅଭିପ୍ରେତ ବିଷୟ ଲେଖାଯିବା ପୂର୍ବରୁ ପତ୍ରଗ୍ରାହୀଙ୍କ ନାମ ଓ ବିଶେଷଣାଦିଯୁକ୍ତ ଅବତାରଣା, ପତ୍ରାଦିର ଉପରେ ଲେଖାଯିବା ପତ୍ରଗ୍ରାହକଙ୍କ ନାମ ଓ ବାସସ୍ଥାନଆଦି ।

ସରନ୍ଜା(ନ୍ତ)—ଗ୍ରା.ବିଂ. ଯାହା ସମ୍ପାଦିତ, ଶେଷ, ସବିଶେଷ, ସଭ୍ୟପତ୍ର ।

ସରନ୍ଧ୍ର--ବିଂ(ସ+ରନ୍ଧ୍ର)ବ.ବ୍ରୀ;ଛିଦ୍ରବିଶିଷ୍ଟ ।

ସରପ—ଗ୍ରା. ବି. ପଦ୍ୟ. (ସଂ-ସର୍ପ) ସର୍ପ ଦେଖ ।

ସରପଞ୍ଚ—ଯା.ବି. ପଞ୍ଚାଏତର ସଭାପତି, ହେଡ଼୍ ପଞ୍ଚାଏତ୍ ।

ସରପଟ୍—ଗ୍ରା.ବିଂ. ଜରଜର, ସରସର,

(ଗ୍ରା.କ୍ରି.ବଂ) ସମ୍ପୂର୍ଣ୍ଣରୂପେ,ପୂର୍ଣ୍ଣରୂପେ, ଆର୍ଦ୍ର ହେବାପ୍ରକାରେ,(ଗ୍ରା.ବ.ସଂ-ସର୍ପଣ) ଘୋଡ଼ା ପୁଚ୍ଛି ଉଠାଇ ଦଉଡ଼ିବା, ଥର-ଥରକେ ଦୁଇ ଆଗ ଗୋଡ଼କୁ ଓ ପୁଣି ଦୁଇ ପଛ ଗୋଡ଼କୁ ଉଠାଇ ଦଉଡ଼ିବା।

ସରପଠା—ଗ୍ରା. ବ. ସରତୃଣ ଜନ୍ମିଥିବା ନଦୀଗର୍ଭସ୍ଥ କୁଦ।

ସରପଣା—ଗ୍ରା.ବ. ଦୁଧସରମିଶ୍ରିତ ମିଷ୍ଟ ପ୍ରପାନକ।

ସରପତ୍ରିକା—ବ.(ସର+ପତ୍ର+କ+ଆ) ବ.ଗ୍ରୀ; ପଦ୍ମ, ପଦ୍ମପତ୍ର।

ସରପର୍ଣ୍ଣୀ—ବ. ଶରଭଙ୍ଗା ଦେଖ।

ସରପା—ପ୍ରା. (ଗଡ଼ଜାତ)ବଂ. ଶଯ୍ୟା।

ସରପାଟ(ହ୍ରଦ)—ଗ୍ରା.ବ.ପୁଷ୍କର ନିକଟ-ବର୍ତ୍ତୀ ଅଗସ୍ତ୍ୟର ହ୍ରଦ।

ସରପାମ(ପୁ)ଡ଼ି—ଗ୍ରା.ବ.ପିଷ୍ଟକବିଶେଷ।

ସରପୁଳ—ଗ୍ରା. ବ. ପିଷ୍ଟକବିଶେଷ।

ସରପେଚ(ଷ୍ଟ)—ଯା.ବ. ପଗଡ଼ି ଉପରେ ଲଗାଯିବା ରତ୍ନଖଚିତ ସ୍ୱର୍ଣ୍ଣାଲଂକାର-ବିଶେଷ।

ସରପୋଶ୍—ଯା.ବ.ଗ୍ଲାସଆଦିର ଉପରସ୍ଥ ଢାଙ୍କୁଣୀ, ଆଚ୍ଛାଦନ ଦ୍ରବ୍ୟବିଶେଷ।

ସରଫ୍—ଯା. ବ. ଟଙ୍କାଆଦି ଭଙ୍ଗାଇବା ବ୍ୟବସାୟରେ ନିଯୁକ୍ତ ବ୍ୟକ୍ତି,ପୋଦାର, ଟଙ୍କାଆଦି ମୁଦ୍ରାକୁ ପରୀକ୍ଷା କରିବା ପାଇଁ ନିଯୁକ୍ତ କର୍ମଚାରୀ।

ସରଫ୍‌ବେଶି—ଯା.(ପ୍ରା.ଗଞ୍ଜାମ) ବ.ମହାଜନକୁ ଲୁଣ ମାପି କରି ଦିଆଯିବା ବେଳେ ମାପିବା ପରେ ବଳ ପଡ଼ିବା ଲୁଣ।

ସରଫ୍‌ରାଜ(ଜ)—ଯା.ବଂ.ଗର୍ବିତ, ଗର୍ବୀ, ଆସ୍ଫାଳନକାରୀ, ଖୁସି,ଆନନ୍ଦିତ, ଧନ୍ୟ, କୃତାର୍ଥ, ଉଚ୍ଚପଦସ୍ଥ, (ଯା.ବ) ଗର୍ବ, ଦାମ୍ଭିକତା, ସ୍ପର୍ଦ୍ଧା, ଆସ୍ଫାଳନ, ମୁସଲମାନମାନଙ୍କୁ ଦିଆଯିବା ନାମବିଶେଷ।

ସରଫ୍(ଫ)ବାଜ—ଯା. ବ. ଆସ୍ପର୍ଦ୍ଧା, ବୃଥା ଆସ୍ଫାଳନ, ଗର୍ବିତା, ଆନନ୍ଦ।

ସରଫା—ଗ୍ରା.ବଂ.ଶଯ୍ୟା,(ଯା.ବ) ସରଫର କର୍ମ, ଯେଉଁ ସ୍ଥାନରେ ବା ବଜାରରେ ଟଙ୍କା ଓ ନୋଟ ଆଦି ଭଙ୍ଗାଯାଏ।

ସରଫୀ—ଯା.ବ. ସରଫର କର୍ମ ବା ବୃତ୍ତି।

ସରବ୍‌କାନ୍—ପ୍ରା.(ବଲାଙ୍ଗିର ପାଟଣା)ବ. ସର୍ବାଙ୍ଗ।

ସରବ—ସର୍ବ. ଗ୍ରା. (ପଦ୍ୟ) ସର୍ବ ଦେଖ।

ସରବତ୍ର—ଯା. ବି. ସର୍ବତ୍ର ଦେଖ।

ସରବଦ୍ଧ—ଯା. ବଂ. ସର୍ବଦ୍ଧ ଦେଖ।

ସରବଥା—ଗ୍ରା. ଅ.(ପଦ୍ୟ)ସର୍ବଥା ଦେଖ

ସରବଦା-ଗ୍ରା. ଅ. ( ପଦ୍ୟ,ସଂ-ସର୍ବଦା ) ସର୍ବଦା ଦେଖ। [ପୁତ୍ର।

ସରବନ-ଗ୍ରା.ବ.(ସଂ-ଶ୍ରମଣ) ଅନ୍ଧକ ମୁନିଙ୍କ

ସରବନ୍ଦ(ନ୍ଦି)—ଗ୍ରା. ବ. (ସଂ-ଶିରୋବନ୍ଧନ) ପଗଡ଼ି,(ଯା.ବ ଓ ବଂ)ସରବନ୍ଦୀ ଦେଖ।

ସରବନ୍ଦୀ(ନ୍ଦି)—ଯା.ବ.ଧନୁର୍ଦ୍ଧର ଯୋଦ୍ଧା, ତୀରନ୍ଦାଜ, (ବଂ) ଧନୁର୍ଦ୍ଧର।

ସରବର—ପ୍ରା. (ବଲାଙ୍ଗିରପାଟଣା) ଅ. ସରସର।

ସରବସ୍ୱ—ଗ୍ରା. ବ. ଚକ୍ରାକାରରେ ମିଳୁଥିବା ଏକପ୍ରକାର ମାଛ,(ଯା.ବ) ସର୍ବସ୍ୱ ଦେଖ

ସରବସ୍ତକାର୍—ଯା. ବ. ଯେ ଖଜଣା ଅସୁଲ କରେ, ମକଦ୍ଦମ।

ସରବ୍ୟ—କ୍ଲୀ. ବ. ଶରବ୍ୟ ଦେଖ।

ସରଭ—ପୁଂ. ବ. ଶରଭ ଦେଖ।

ସରଭସ—ବଂ. ବେଗଯୁକ୍ତ,ବେଗବିଶିଷ୍ଟ।

ସରମ୍(ମ)—ଯା. ବ. ଲଜ୍ଜା, ମାନ,ସମ୍ଭ୍ରମ, ଅପମାନ, ସଙ୍କୋଚ।

ସରମା—ସ୍ତ୍ରୀ. ବ. (ସ+ରମ୍+କ.ଅ+ଆ)କୁକ୍କୁରୀ, କୁଖୀ,କଶ୍ୟପପତ୍ନୀବିଶେଷ, (ସର+ମା) ଗନ୍ଧର୍ବରାଜ ଶୈଳୂଷଙ୍କ କନ୍ୟା ଓ ବିଭୀଷଣଙ୍କ ପତ୍ନୀ।

ସରମାତ୍ମଜ—ପୁଂ. ବ. (୬ତତ୍) ସରମାଙ୍କ ପୁତ୍ର, ତରଣୀସେନ,ଅଣ୍ଡିରା କୁକ୍କୁରଛୁଆ

ସରମିଯିବା—ଗ୍ରା. କ୍ରି.ଫଳୁଚରୁ ହୋଇଯିବା,(ପ୍ରା.ବଲାଙ୍ଗିରପାଟଣା)କ୍ରି. ଅଚେତ ହେବା।

ସରୟୁ—ବ. (ସୃ+କ.ଯୁ)ବାୟୁ।

ସରୟୁ(ଯୂ)—ସ୍ତ୍ରୀ. ବ. (ସର+ଯା+କ. ଉ,ଊ)ଅଯୋଧ୍ୟା ପ୍ରଦେଶସ୍ଥ ନଦୀବିଶେଷ

ସରଳ—ବ. (ସୃ+କ.ଅଳ) ଶାଳଗଛ, ଏକପ୍ରକାର ଦେବଦାରୁଗଛ, ବୃକ୍ଷ, ଅଗ୍ନି, (ବଂ) ଋଜୁ,ଅବକ୍ର, ସିଧା,ସହଜ-ସାଧ୍ୟ, ଉଦାର, ମସୃଣ, ନିଷ୍କପଟ, ସାଧୁ, ସ୍ୱଚ୍ଛ, ନ୍ୟାଯ୍ୟପର,(ସ୍ତ୍ରୀ) ସରଳା।

ସରଳଲଗା—ପ୍ରା. (ବସ୍ତର) ବଂ.ଅକ୍ଲାନ୍ତ

ସରଳଚିତ୍ତ--ବ. (କ.ଧା)ନିଷ୍କପଟ ହୃଦୟ, (ପୁଂ.ବଂ-ବ.ଗ୍ରୀ) ସରଳଚେତାଃ ଦେଖ, (ସ୍ତ୍ରୀ) ସରଳଚିତ୍ତା।

ସରଳଚେତାଃ—ପୁଂ.ସ୍ତ୍ରୀ. ଓ ବଂ.(ବ.ଗ୍ରୀ; ସରଳ+ଚେତସ୍) ନିଷ୍କପଟହୃଦୟ (ବ୍ୟକ୍ତି)।

ସରଳତା(ତ୍ୱ)—ବ. (ସରଳ+ଭା.ତା) ଋଜୁତା, ନିଷ୍କପଟତା, ନ୍ୟାଯ୍ୟପରତା, ଉଦାରତା।

ସରଳତୃଣ—ବ. ସୁଗନ୍ଧତୃଣ,ଭୂସ୍ତୃଣ।

ସରଳଦ୍ରବ(ନିର୍ଯ୍ୟାସ)--ବ.(୬ତତ୍) ସରଳ ବୃକ୍ଷର ରସ,ଟାର୍ପିନ୍, ଗନ୍ଧବିରଜା,ଝୁଣା, ଶ୍ରୀପିଷ୍ଟ।

ସରଳଦ୍ରୁ—ବ. ସରଳଗଛ, ଏକପ୍ରକାର ଦେବଦାରୁ ଗଛ।

ସରଳପ୍ରକୃତି—ବ.(କ.ଧା)ଉଦାର ପ୍ରକୃତି, କପଟତାହୀନ ସ୍ୱଭାବ, (ପୁଂ.ବଂ-ବ.ଗ୍ରୀ) ସରଳପ୍ରକୃତିକ ଦେଖ।

ସରଳପ୍ରକୃତିକ—ପୁଂ. ବଂ. ( ବ.ଗ୍ରୀ ) ନିଷ୍କପଟ ପ୍ରକୃତିବିଶିଷ୍ଟ, (ସ୍ତ୍ରୀ) ସରଳ-ପ୍ରକୃତିକା।

ସରଳପ୍ରଶ୍ନ—ବ. (କ.ଧା) କପଟତାଶୂନ୍ୟ ଅଭିସନ୍ଧିରହିତ ପ୍ରଶ୍ନ, ସହଜସାଧ୍ୟ ପ୍ରଶ୍ନ।

ସରଳପ୍ରାଣ—ବ. (କ.ଧା) କପଟତାହୀନ ହୃଦୟ, (ପୁଂ.ବଂ-ବ.ଗ୍ରୀ)ସରଳଚେତାଃ ଦେଖ, (ସ୍ତ୍ରୀ) ସରଳପ୍ରାଣା।

ସରଳବିଶ୍ୱାସ—ବ. ( କ.ଧା ) ନିଷ୍କପଟ ବିଶ୍ୱାସ,(ପୁଂ.ବଂ-ବ.ଗ୍ରୀ)ସରଳବିଶ୍ୱାସୀ ଦେଖ।

ସରଳବିଶ୍ୱାସୀ—ବଂ. ( ବ.ଗ୍ରୀ ) ଯେଉଁ ଲୋକ ମନରେ କୌଣସି କପଟ ବା ସନ୍ଦେହ ନ ରଖି ଅନ୍ୟଠାରେ ବା ଅନ୍ୟର କଥାରେ ବିଶ୍ୱାସ ସ୍ଥାପନ କରେ।

ସରଳବୁଦ୍ଧି—ବ. (କ.ଧା) କପଟତାଶୂନ୍ୟ

ବୁଦ୍ଧି ବା ମନ, (ପୁଂ.ଓ ସ୍ତ୍ରୀ-ବିଂ ବ.ବ୍ରୀ) ନିଷ୍କପଟ, ସରଳହୃଦୟ ।

ସରଳରେଖା—ବି. ଋଜୁରେଖା, ସିଧା ରେଖା ।

ସରଳସ୍ରାବ(ସ୍ୟନ୍ଦ)—ବି.(କ.ଧା)ଶ୍ରୀପିଷ୍ଟ ।

ସରଳହୃଦୟ—ବି. (କ.ଧା) ସରଳଚିତ୍ତ ଦେଖ,(ପୁଂ.ବିଂ-ବ.ବ୍ରୀ)ସରଳଚେତାଃ ଦେଖ, (ସ୍ତ୍ରୀ) ସରଳହୃଦୟା ।

ସରଳା—ସ୍ତ୍ରୀ.ବି. (ସରଳ+ଆ)ସରଳର ସ୍ତ୍ରୀଲିଙ୍ଗ, (ବି) ନିସୁଣୀ, ଚିହ୍ନତ୍ତ, ନଦୀବିଶେଷ, କପିଳଦ୍ରାକ୍ଷା, କୃଷ୍ଣତୁଳସୀ, ମଲ୍ଲିକା, ସରଳ ପ୍ରକୃତିବିଶିଷ୍ଟା ସ୍ତ୍ରୀ ।

ସରଲ୍ଲ—ପ୍ରା. (ବଲାଙ୍ଗୀରପାଟଣା) କ୍ରି. ଟସଗଲା ।

ସରଳାଙ୍ଗ—ବି. ଶ୍ରୀବେଷ୍ଟ, ତାର୍ପିନ୍, ସରଳ ଅଠା ।

ସରଳାଦେବୀ—ଗ୍ରା.ବି. ଉତ୍କଳର ବିଦୁଷୀ ନାରୀ କର୍ମିଣୀ ଶ୍ରୀମତୀ ସରଳା ଦେବୀ ଏମ୍. ଏଲ୍. ଏ. ।

ସରଳି—ଗ୍ରା. ବି. ପଲମଠାରୁ କ୍ଷୁଦ୍ରତର ଓ ଟେଢାତର ଶ୍ରେଷ୍ଠ ପଲମ ।

ସରଲିଆ—ପ୍ରା.(କଳାହାଣ୍ଡି) ବି. ଟେମ୍ପୁଲିଆ ବସ୍ତ୍ର ।

ସରଳିବା—ଗ୍ରା.କ୍ରି.ଖଣ୍ଡାକୁ ଖାପରୁ କାଢ଼ି ହାତରେ ଖଣ୍ଡାର ପଥକୁ ସଳଖିବା ।

ସରଳୋନ୍ନତ—ବି. (କ.ଧା)ସିଧାଭାବରେ ଉଚ୍ଚ, ଡେଙ୍ଗା ।

ସରଶ୍ମି—ବିଂ. ସମାନଦୀପ୍ତି, ତୁଲ୍ୟ ଦୀପ୍ତିବିଶିଷ୍ଟ, ରଶ୍ମିଯୁକ୍ତ ।

ସରସ୍—ବି. ସରଃ ଦେଖ, ( ଗ୍ରା.ବିଂ ) ସରସ ଦେଖ ।

ସରସ—ବି. (ସୃ+ଅଧି.ଅସ୍ କିମ୍ବା ସ+ରସ୍) ସରୋବର, କାଷ୍ଠାଗୁରୁ, (ବିଂ-ବ ବ୍ରୀ) ରସଯୁକ୍ତ, ରସୁଆଳ, ସୁସ୍ୱାଦୁ, ମଧୁର, ନୂତନ, ତାଜା, ଟଟକା,ରସିକତାପୂର୍ଣ୍ଣ, ପ୍ରଫୁଲ୍ଲ, ହାସ୍ୟଯୁକ୍ତ, ଆର୍ଦ୍ର, ସୁନ୍ଦର, ପ୍ରେମମୟ,କବିତାମୟ,(ଗ୍ରା.ବିଂ) ଉତ୍କୃଷ୍ଟ, ଉତ୍କୃଷ୍ଟତର, ରସିକ, ରସଜ୍ଞ, ନାଗରତାପୂର୍ଣ୍ଣ, ସୁଗୁଣଗ୍ରାହକ ।

ସରସତା(ତ୍ୱ)—ବି. ( ସରସ୍+ଭା.ତା ) ସରସହେବାର ଭାବ ।

ସରସମ୍ପ୍ରତ—ବି. ନିକଣ୍ଟବୃକ୍ଷ ।

ସରସବଦନ—ବି. (କ.ଧା) ପ୍ରଫୁଲ୍ଲମୁଖ, ହର୍ଷଯୁକ୍ତ ମୁଖ,(ପୁଂ.ବିଂ-ବ.ବ୍ରୀ)ହାସ୍ୟମୁଖ, ସହର୍ଷବଦନ,(ସ୍ତ୍ରୀ)ସରସବଦନା ।

ସରସବାଣୀ—ସ୍ତ୍ରୀ.ବି. ସୁମିଷ୍ଟବାକ୍ୟ,ମଧୁର ବାକ୍ୟ ।

ସରସର—ଗ୍ରା. ବିଂ. ଜରଜର, ବିଶେଷଭାବରେ ତୈଳାଦିଦ୍ୱାରା ଜର୍ଜରିତ ବା ଲେପିତ, ଅତି ଆର୍ଦ୍ର, ଯାହା ଦେହରୁ କୌଣସି ଜଳୀୟବସ୍ତୁ ବୋହିପଡୁଥାଏ, ଅମ୍ବୁକରେ ପୂର୍ଣ୍ଣ (ଯଥା—ପାଣି ସରସର), (ଗ୍ରା.ଅ; ସଂ-ସୀତ୍କାର) କ୍ଷତର ବା ବ୍ରଣର ବ୍ୟଥା ଜଣିବା ଅବସ୍ଥା, ଝିରଝିର୍, ସଲ୍‌ସଲ୍, ଗଲଗଲ ହେବା ଅବସ୍ଥା, ଦେହ ରୋଗାକ୍ରାନ୍ତ ବୋଧହେବା ଅବସ୍ଥା, ଖଟା ଖାଇବା ଯୋଗୁ ଦାନ୍ତ ସଢ଼ ପଡ଼ିବା, (ଗ୍ରା. ବିଂ ର ବିଂ) ଅତ୍ୟନ୍ତ, (କ୍ରି.ବିଂ) ବାରମ୍ବାର ।

ସରସରିଆ—ଗ୍ରା. ବିଂ. ସରସର ଦେଖ ।

ସରସା—ବିଂ. ( ସରସ+ଆ ) ଶ୍ୱେତନିବୃନ୍ତ, ଧଳାନିହୁଣ୍ଡି, (ଗ୍ରା.ବିଂ) ସରସ ଦେଖ, (ଗ୍ରା.ବି) ଦନ୍ତରୋଗବିଶେଷ ।

ସରସାଦାନ୍ତ—ଗ୍ରା.ବି. ସରସା ରୋଗଯୁକ୍ତ ଦାନ୍ତ ।

ସରସାଦାନ୍ତିଆ—ଗ୍ରା. ପୁଂ. ବିଂ. ଯାହାର ଦନ୍ତରୋଗ ଅଛି ।

ସରସି—ପ୍ରା. (ଖଡ଼ିଆଳ) ବି. ବଡ଼ାଇ. ବାହାଦୁରୀ, ଆତ୍ମପ୍ରଶଂସା ।

ସରସି(ସୀ)କ—ପୁଂ.ବି. (ସରସ୍ + ଇକ) ସାରସପକ୍ଷୀ ।

ସରସିଜ—ବି. (ସରସି + ଜନ୍ + କ.ଅ) କମଳ, ପଦ୍ମ, (ବିଂ) ସରୋବରଜାତ ।

ସରସିତ—ଗ୍ରା. ବିଂ. (ପଦ୍ୟ) ରସଯୁକ୍ତ ।

ସରସୀ—ବି. ( ସୃ + ଅଧି.ଅସ୍ + ଈ ) ସରୋବର, ପୁଷ୍କରିଣୀ, ଛନ୍ଦୋଭେଦ ।

ସରସୀକ—ବି.(ସରସୀ + କ)ସାରସପକ୍ଷୀ ।

ସରସୀରୁହ—ବି.(ସରସୀ+ରୁହ୍+କ.ଅ ସ୍ତ୍ରୀ.ଇଜ. ପଦ୍ମ, ସାରସପକ୍ଷୀ ।

ସରସୀରୁହେକ୍ଷଣ—ପୁଂ. ବିଂ. (ବ.ବ୍ରୀ) ପଦ୍ମପରି ସୁନ୍ଦର ନେତ୍ରବିଶିଷ୍ଟ, ( ସ୍ତ୍ରୀ ) ସରସୀରୁହେକ୍ଷଣା ।

ସରସୋ—ପ୍ରା. (ବସ୍ତର) ବି. ସୌରଭ ।

ସରସ୍ତ—ଗ୍ରା.ବିଂ. ପଦ୍ୟ;(ସଂ-ସ୍ରସ୍ତ)ଶିଥିଳ ।

ସରସ୍ୟ—ବିଂ.ସରୋବରଭବ,ସରୋବରଜାତ ।

ସରସ୍ୱତୀ—ସ୍ତ୍ରୀ.ବି. (ସରସ୍ + ବତ୍ + ଈ) ବାଗ୍‌ଦେବୀ,ବିଦ୍ୟାର ଅଧିଷ୍ଠାତ୍ରୀ ଦେବୀ, ବାଣୀ, ବାକ୍ୟ, ସ୍ତ୍ରୀରତ୍ନ, ଉତ୍ତମା ସ୍ତ୍ରୀ, ସୋମଲତା, ମନୁପତ୍ନୀବିଶେଷ, ଗୋ, ଗାଈ, ଜ୍ୟୋତିଷ୍ମତୀ, ବ୍ରାହ୍ମୀ, ମଣ୍ଡୂକପର୍ଣ୍ଣୀ,ଦୁର୍ଗା, ଆର୍ଯ୍ୟାବର୍ତ୍ତର ନଦୀବିଶେଷ, ସାୟଂସନ୍ଧ୍ୟାରେ ଗାୟତ୍ରୀ ଜପକାଳରେ ବ୍ରାହ୍ମଣଙ୍କର ଧ୍ୟେୟା ଦେବୀ, ରୁଦ୍ରାଣୀ, ବ୍ରହ୍ମାଣୀ, କାକ, (ଗ୍ରା. ସ୍ତ୍ରୀ. ବି) ଜୈନଦେବୀବିଶେଷ, (ପୁଂ) ପଣ୍ଡିତମାନଙ୍କୁ ଦିଆଯିବା ଉପାଧିବିଶେଷ ।

ସରସ୍ୱତୀକଣ୍ଠାଭରଣ—ବି. ( ୬ତତ୍ପୁ; ସରସ୍ୱତୀ+କଣ୍ଠ+ଆଭରଣ ) ସରସ୍ୱତୀ ମୂର୍ତ୍ତିଙ୍କ କଣ୍ଠ ହାର,ଷାଠିଏ ତାଳ ମଧ୍ୟରୁ ଗୋଟିଏ, ଭୋଜରାଜ କୃତ ଅଳଙ୍କାର ଗ୍ରନ୍ଥବିଶେଷ, ପ୍ରମାରବଂଶୀୟ ରାଜା ଭୋଜଙ୍କ ଦ୍ୱାରା ପ୍ରତିଷ୍ଠିତ ଧାରାନଗରସ୍ଥ ବିଦ୍ୟାଳୟର ନାମ ।

ସରସ୍ୱତୀଙ୍କ ବରପୁତ୍ର—ଗ୍ରା.ବି.ମହାପଣ୍ଡିତ ବା ମହାକବି ।

ସରସ୍ୱତୀପୁତ୍ର(କୁଟୁମ୍ବ)—ବି. ପଣ୍ଡିତ ବା ବିଦ୍ୱାନ୍ ବ୍ୟକ୍ତି, କବି ।

ସରସ୍ୱତୀପୂଜା—ବି. ମାଘ ଶୁକ୍ଳପଞ୍ଚମୀ ବା ଶ୍ରୀପଞ୍ଚମୀଦିନ ବିଦ୍ୟାଧିଷ୍ଠାତ୍ରୀ ସରସ୍ୱତୀ ଦେବୀଙ୍କ ପୂଜା ।

ସରସ୍ୱତୀବାଳବାଣୀ-ବି.ବାଳକଥିତ ଭାଷା ।

ସରସ୍ୱତୀବିଳାସ—ବି. ଉତ୍କଳର ରାଜା ପ୍ରତାପରୁଦ୍ରଦେବଙ୍କ ସଙ୍କଳିତ ସଂସ୍କୃତ ସ୍ମୃତିଗ୍ରନ୍ଥ ।

ସରସ୍ୱାନ୍—ବି. (ସରସ୍ + ବତ୍) ସରୋବର, ନଦ, ସମୁଦ୍ର, ମହିଷ, ( ବିଂ ) ରସଯୁକ୍ତ ।

ସିର(ଶ)ହଦ୍(ଦ)—ଯା.ବି.ସୀମା,କୌଣସି ସ୍ଥାନର ଚତୁଃସୀମା ।

ସିରହସ୍ୟ—ବିଂ. ବ.ବ୍ରୀ; (ସ+ରହସ୍ୟ) ସିମନ୍ତକ, ମନ୍ତ୍ରସହିତ, ସୋପନିଷତ୍ ରହସ୍ୟଯୁକ୍ତ ।

ସରା—ବି. ( ସୃ+ଅ+ଆ ) ଝରଣା, ପସାରୁଣୀ ଲତା, ଗନ୍ଧଭଦ୍ରା,(ଗ୍ରା.ବି-ସଂ-ସର) ସିର, ଏକାଧିକ ଖିଅଯୁକ୍ତ ମାଳା-ଆଦିର ଖିଅ, ସୋରା, ( ସଂ-ସରାବ ) ମୃତ୍ତିକାନିର୍ମିତ କ୍ଷୁଦ୍ର ପାତ୍ରବିଶେଷ,(ଯା. ବି) ମୁସଲମାନ୍‌ମାନଙ୍କର ଦାୟାଧିକାର ଧର୍ମଶାସ୍ତ୍ର, ପାନ୍ଥନିବାସ, ଚଟିଘର,(ଗ୍ରା. ପୁଂ. ବିଂ; ଅନ୍ୟ ଶବ୍ଦସଙ୍ଗେ ବ୍ୟବହୃତ, ଯଥା—ଢନସରା, ମହତସରା) ଯାହା ଦ୍ୱାରା ସରିଯାଏ ।

ସରା(ରେ)ଇ—ଯା.ବି. ପାନ୍ଥଶାଳା,ଯାତ୍ରି-ମାନଙ୍କ ବିଶ୍ରାମ ସ୍ଥାନ, (ପ୍ରା.ପାଟଣା.ବି) ଆଟିକା ।

ସରାଇକଲା—ସିଂହଭୂମ ଜିଲାନ୍ତର୍ଗତ ଗୋଟିଏ ରାଜ୍ୟ ।

ସରା(ରେ)ଇବା-ଗ୍ରା.କ୍ରି.ସାରିବା,ହରାଇବା ।

ସରାଏ—ଗ୍ରା. ବିଂ ଓ ବି. (ହାରଆଦିର) ଏକସରି ମାତ୍ର, ଏକସରାବ ପରିମିତ ।

ସରାକ—ଗ୍ରା. ବି. (ସଂ-ଶ୍ରାବକ) ସିଂହଭୂମି ଓ ଉତ୍ତରଗଡ଼ଜାତ ବାସୀ ଓଡ଼ିଆଭାଷୀ ତନ୍ତ୍ରୀଜାତିବିଶେଷ, (ଗ୍ରା. ବି ଓ ବିଂ) ସରାଏ ଦେଖ ।

ସରାକତ୍(ତ)—ଯା. ବି. ଅଂଶୀଦାରୀ, ସରିକ୍‌ଦାରୀ, ବହୁଲୋକଙ୍କର ଏକତ୍ର ବ୍ୟବସାୟ, ସମ୍ପର୍କ,ହିଂସାଦାର୍, ହିଂସା, ଅଂଶ, (ଯା.ବିଂ) ସରାକତ ସମ୍ବନ୍ଧୀୟ ।

ସରାକତ୍(ତ)ନାମା—ଯା. ବି. ଯେଉଁ ଦସ୍ତାବିଜଦ୍ୱାରା ଏକାଧିକ ବ୍ୟକ୍ତି ଏକତ୍ର ବ୍ୟବସାୟ ଆରମ୍ଭ କରନ୍ତି ।

ସରାଗ—ବିଂ. ( ସ+ରାଗ; ବ.ବ୍ରୀ ) ଅନୁରକ୍ତ,ଶ୍ରଦ୍ଧା ଓ ସ୍ନେହଯୁକ୍ତ,ଲାଳାୟିତ, ଅଭିଳାଷୀ, ରଞ୍ଜିତ, ରକ୍ତବର୍ଣ୍ଣବିଶିଷ୍ଟ, (ଗ୍ରା.ବିଂ)କ୍ରୋଧଯୁକ୍ତ,କ୍ରୁଦ୍ଧ,ଉତ୍କଣ୍ଠାଯୁକ୍ତ, ଆଗ୍ରହାନ୍ୱିତ, ସ୍ଫୂର୍ତ୍ତିଯୁକ୍ତ, ହର୍ଷଯୁକ୍ତ, ସରସ, ହାସ୍ୟଯୁକ୍ତ, ଉଜ୍ଜ୍ୱଳ, (ଗ୍ରା.ବି) ସ୍ନେହ, ସ୍ଫୂର୍ତ୍ତି, ସୁଖ, ଆଗ୍ରହ, ଇଚ୍ଛା, ମମତା, ସଉକ, ପ୍ରିୟତା, ଲାଳସା ।

ସରାଗୀ—ଗ୍ରା.ପୁଂ.ବିଂ.(ସଂ-ସରାଗ)ପ୍ରଫୁଲ୍ଲ, ହର୍ଷଯୁକ୍ତ, ସ୍ଫୂର୍ତ୍ତିଯୁକ୍ତ, ବ୍ୟଗ୍ର ।

ସରାଜକ—ବିଂ. ରାଜଯୁକ୍ତ, ରାଜବିଶିଷ୍ଟ ।

ସରାଣୀ—ଗ୍ରା. ସ୍ତ୍ରୀ. ବି. ରାଜାନ୍ତଃପୁରରେ ସିରଘରର ଭାରପ୍ରାପ୍ତା ରକ୍ଷକାରାଣୀ ।

ସରାପ(ବ୍)—ଯା. ବି. ମଦ, ଭାଟି ଦ୍ୱାରା ପ୍ରସ୍ତୁତ ମଦ ।

ସରାବ—ବି.(ସର୍+ଅବ୍+କ.ଅ)ଶରାବ, ମୃଣ୍ମୟ ପାତ୍ରବିଶେଷ, ସରା ।

ସରାବସଂପୁଟ—ବି. ଅଗ୍ନି ଉତ୍ତାପରେ ରସୌଷଧ ପ୍ରସ୍ତୁତ କରିବା ପାଇଁ ପର-ସ୍ପରର ମୁହଁ ଯୋଡ଼ାହୋଇ ବନ୍ଦକରା-ଯାଇଥିବା ପାତ୍ର ।

ସରାବିକା—ବି. ( ସରାବ୍+କ+ଆ ) ଶ୍ରେଷ୍ଠ ସରା ।

ସରାସର୍—ଯା.ଅ. ସମ୍ପୂର୍ଣ୍ଣରୂପେ,ସ୍ଥୂଳତଃ ।

ସରାସରି—ଯା. ବିଂ. ସମାନ୍ତରାଳ, ଏକ ମୁଣ୍ଡରୁ ଅନ୍ୟ ମୁଣ୍ଡ ପର୍ଯ୍ୟନ୍ତ ବିସ୍ତୃତ, ସଂକ୍ଷିପ୍ତ, ମୋଟାମୋଟି, (ଯା.ବି) ସ୍ଥୂଳ-ବିଚାର, ଅନୁମାନ, ଅନ୍ଦାଜ୍, ଅଟକଳ ।

ସରି(ରୀ)—ବି.(ସୃ+କ.ଇ.ଈ) ଝରଣା, ନିର୍ଝର, ଗ୍ରା. ବି. (ସଂ-ସର) ହାର ବା ମାଳ ବା ସୂତା ଆଦିର ସୋରା,(ସଂ-ସର=ବାଣ) ସରଘରା, ଲିଙ୍ଗ, (ବିଶେ-ଷତଃ ପଶୁଆଦିଙ୍କ ଲିଙ୍ଗ) ଧାଡ଼ି,ଶ୍ରେଣୀ, ଉପମା ତୁଳନା, ଶଗଡ଼ଚକ ଦ୍ୱାରା ଭୂମିରେ ଅଙ୍କିତ ଚିହ୍ନ, ଗ୍ରା.ବିଂ.ସଦୃଶ, ସମାନ, ତୁଲ୍ୟ, ଯୋଗ୍ୟ, ଉଚିତ, (ଏତେ ସେତେ କେତେ ଓ ଯେତେ ପରେ ବ୍ୟବହୃତ) ଅବସ୍ଥାପ୍ରାପ୍ତ, ଅବସ୍ଥାପନ୍ନ, ଗ୍ରା.ଅ.ଭଳି ପରି,ପର୍ଯ୍ୟନ୍ତ, ସରିକି, ପ୍ରା. ଗଞ୍ଜାମ. ଅ. ପର୍ଯ୍ୟାପ୍ତ-ବୋଧକ ) ଏତିକିରେ ଯଥେଷ୍ଟହେବ, ଏହା ଆନନ୍ଦର ବିଷୟ ହେବ ।

ସରିଅ(ୟୋ)ତ୍—ଯା. ବି. ସନ୍ଧି, ଚୁକ୍ତିର ଭିନ୍ନ ଭିନ୍ନ ଅଂଶ, ଯା.ବିଂ ମୁସଲମାନ-ମାନଙ୍କ ସରା ବା ଦାୟାଧିକାର ଶାସ୍ତ୍ର-ସମ୍ବନ୍ଧୀୟ ।

ସରିଆ—ଗ୍ରା.ବିଂ. ସୋରା ବା ମାଳଯୁକ୍ତ ।

ସରିଆସିବା—ଗ୍ରା.କ୍ରି. (କୌଣସି କାର୍ଯ୍ୟ ବା ସମୟ) ଶେଷ ହୋଇ ଆସିବା, ଶେଷ ହେବାର ପୂର୍ବ ଅବସ୍ଥାରେ ପହଞ୍ଚିବା ।

ସରିକ୍(କି)—ଯା.ବି.ଅଂଶ, ଭାଗ, ହିଂସା, ଅଂଶୀଦାର ।

ସରିକ—ପୁଂ. ବିଂ. ( ସୃ+କ.ଇକ ) ଗମନକାରୀ, ଗନ୍ତା,(ସ୍ତ୍ରୀ)ସରିକା ।

ସରିକା—ସ୍ତ୍ରୀ. ବିଂ. (ସୃ+କ.ଅକ+ଆ) ଗତିକାରିଣୀ, ଗମନକାରିଣୀ, (ବିଂ) ହିଙ୍ଗୁପତ୍ରୀ, ମୋତିର ସରା ବା ଏକ-ମାଳ, ମୁକ୍ତା, ଶ୍ରେଷ୍ଠପୋଖରୀ, ରତ୍ନ, ଯା.ବି. ହିଂସା, ଅଂଶ, ଭାଗ, ସମ୍ପର୍କ, ସମ୍ବନ୍ଧ, ଗ୍ରା.ବିଂ-ସମାନ, ସଦୃଶ ।

ସରିକି—ଗ୍ରା. ଅ. ( ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ ଯଥା—ଏସରିକି, କେଉଁ ସରିକି),(ଅମୁକ ସୀମା)ପର୍ଯ୍ୟନ୍ତ,ଯାକେ, (ଅମୁକସ୍ଥାନ) ପର୍ଯ୍ୟନ୍ତ, (ଅମୁକ ସମୟ) ପର୍ଯ୍ୟନ୍ତ, (ଅମୁକଅବସ୍ଥା)ପର୍ଯ୍ୟନ୍ତ, (ବି) ମଧ, ସୁଦ୍ଧା, ଠାରେ, ପ୍ରତି ।

ସରିଗମ-ଗ୍ରା.ବି. ସା ରି ଗା ମା ପା ଧା ନି, ସଙ୍ଗୀତର ସପ୍ତସ୍ୱର, ସ୍ୱରଗ୍ରାମ ।

ସରିଘର(ରା)—ଗ୍ରା.ବି. (ସଂ-ଶର)ଲିଙ୍ଗ, ପଶୁ ଆଦିଙ୍କର ଉଦ୍ରିକ୍ତ ଲିଙ୍ଗ ।

ସରିତ୍—ବି.(ସୃ+କ.ଇତ୍) ନଦୀ,ସୂତ୍ର, ସୂତା, ଦୁର୍ଗା ।

ସରିତ୍‌କଫ—ବି.(୬ତତ୍)ନଦୀର ଫେଣ ।

ସରିତ୍‌ପତି—ବି.(୬ତତ୍) ସମୁଦ୍ର ।

ସରିତ୍‌ପ୍ରବାହ—ବି. ନଦୀର ସ୍ରୋତ ।

ସରିତ୍‌ସୁତ-ବି.(୬ତତ୍)ଗଙ୍ଗାପୁତ୍ର ଭୀଷ୍ମ ।

ସରିତ—ଗ୍ରା.ବି. ( ସଂ-ସରିତ୍ ) ସରିତ୍, ନଦୀ ।

ସରିତାଂନାଥ—ବି.(୬ତତ୍)ସମୁଦ୍ର,ଜଳଧି

ସରିତାମ୍ପତି—ବି. (୬ତତ୍) ଜଳଧି, ସମୁଦ୍ର ।

ସରିତାମ୍ବରା-ବି.(ସରିତାଂ+ବରା)ଗଙ୍ଗା ।

ସରିଡୁଲ୍—ଗ୍ରା.ବି° ପରସ୍ପର ସଙ୍ଗେ ସମାନ, ସମତଳ,ସମାନ ତଳବିଶିଷ୍ଟ ।
ସରିତ୍ତଟ—ବି. (ଷତତ୍) ନଦୀର କୂଳ ।
ସରିତ୍ପତି—ବି.(ସରିତ୍+ପତି)ସମୁଦ୍ର ।
ସରିଦ୍ବରା—ବି. (ଷତତ୍) ଗଙ୍ଗା ।
ସରିଦେବା—ଗ୍ରା. କ୍ରି ଉପମାଦେବା, ତୁଳନାକରିବା ।
ସରିନ୍ନାଥ—ବି. (ଷତତ୍) ସରିତ୍ପତି. ସାଗର ।
ସରିନ୍ମୁଖ—ବି.ନଦୀର ମୁଖ,ନଦୀର ମୁହାଣ
ସରିପଟ—ଗ୍ରା.ବି°.ସରିଡୁଲ୍, ସମାନସ୍କନ୍ଧ, ପ୍ରତିଦ୍ୱନ୍ଦ୍ୱୀ ।
ସରିଫ—ଯା.ବି. ସହରର ପ୍ରଧାନ ମଣ୍ଡଳ ବା ନେତା,(ଯା.ବି°)ମାନମାନ୍ୟ,ପୂଜ୍ୟ ।
ସରିବର—ଗ୍ରା. ବି. କୌଣସି ବିବାଦର ସମାଧାନ, ସମତା, (ଗ୍ରା.ବି°)ସମାହିତ. ସଦୃଶ ।
ସରିବା—ଗ୍ରା. କ୍ରି. ନିଃଶେଷିତ ହେବା, କ୍ଷୟିତହେବା, ଶେଷହେବା, ସମାପ୍ତ-ହେବା, ପୂରିବା, ସଂପୂର୍ଣ୍ଣ ହେବା, ବ୍ୟୟିତହେବା, ଅଣ ବାହାର ହେବା, ଆଉ ଲୋଡ଼ା ନ ହେବା, ଟପିଯିବା ବା ଗତହେବା, ବିଦ୍ୟମାନ ନଥିବା,ସମାହିତ ହେବା, ନଷ୍ଟହେବା, ସର୍ବନାଶ ଘଟିବା, ଅବସ୍ଥା ସାଙ୍ଘାତିକ ହେବା, ହାନିହେବା, ହ୍ରାସହେବା, ଲୋପ-ପାଇବା, ଲୁପ୍ତହେବା, ଅନ୍ତିମ ସୀମାର ନିକଟବର୍ତ୍ତୀହେବା, ସରିଯିବା, (ପ୍ରା. ବାଲେ. କ୍ରି.) ଘୁଞ୍ଚିବା, ଘୁଞ୍ଚିଯିବା ।
ସରିବାଏଦ୍—ପ୍ରା. ( ଖଣ୍ଡଆଲ ) ବି°. ବାଦ ବିବାଦରେ ପରସ୍ପର ସମାନ ।
ସରିମା—ବି.( ସୃ+ଔ.ଇମନ୍ ) ଗମନ, ଗତି । [ ବିଶେଷ ।
ସରିମାନ—ଗ୍ରା.ବି. ସଙ୍ଗୀତର ତାଳ
ସରିଯାଏ(କେ)-ଗ୍ରା.ଅ.ସତେକି, ପର୍ଯ୍ୟନ୍ତ ।
ସରିର୍—କ୍ଲୀ.ବି.ସରିତ୍, ସଲିଳ, (ବି°) ବକ୍ର ।
ସରିଳ—ବି.(ସୃ+କ.ଇଲ) ଜଳ,ପାଣି ।
ସରିଶା—ଗ୍ରା.ବି°.(ସଂ—ସଦୃଶ) ସଦୃଶ, ସମାନ, ତୁଲ୍ୟ, ସମାବସ୍ଥାପନ୍ନ ।
ସରିଷପ—ବି. ସର୍ଷପ, ସୋରିଷ ।
ସରିଷ—ପ୍ରା.(ଲଇଆ—ବି ଓ ବି°)ଶେଷ
ସରିସମ(ସମାନ)—ଗ୍ରା. ବି°. ପରସ୍ପରର ସଙ୍ଗେ ସମ୍ପୂର୍ଣ୍ଣରୂପେ ସମାନ,ସମତଳ, ଅବନ୍ଧୁର ।
ସରିସରି—ଗ୍ରା. ଅ.ଧାଡ଼ି ଧାଡ଼ି ହୋଇ, ହାତ ହାତ ହୋଇ,ପସ୍ତ ପସ୍ତ ହୋଇ ।
ସରୀ—ସ୍ତ୍ରୀ. ବି. ନର୍ଝର, ଝରଣା ।
ସରୀମା—ପୁଂ.ବି. ବାୟୁ, ଗମନ ।
ସରୀସୃପ—ବି.(ସୃପ୍+କ.ଅ) ଯେ ପୁନଃ ପୁନଃ ବା ଲମ୍ଫଦେଇ ବା କୁଟିଳ ଗତିରେ ଗମନ କରେ, ସର୍ପ, ବୃଶ୍ଚିକ, ଭେକାଦି. (ଜ୍ୟୋତିଷ) ମୀନ, ବୃଶ୍ଚିକ ଓ କର୍କଟ ରାଶିର ନାମ,(ବି°)ଜଙ୍ଗମ ।
ସରୁ—ବି. (ସୃ+କ.ଉ) ଶକ୍ତ ଆଦର ମୂର୍ତ୍ତି, ଗ୍ରା.ବି°. ପତଳା, କ୍ଷୀଣ, କୃଶ, ଶୀର୍ଣ୍ଣ, ସୂକ୍ଷ୍ମ, କୋମଳ ।
ସରୁଅନ୍ନ—ଗ୍ରା ବି.ସରୁଭାତ ଦେଖ ।
ସରୁଆ—ଗ୍ରା.ବି°.ପୁଂ.(ସଂ—ଶୀର୍ଣ୍ଣ) ସରୁ ଦେଖ ।
ସରୁଆମଳ—ଗ୍ରା. ବି°. ପୁଂ.କୃଶଦେହ-ବିଶିଷ୍ଟ (ଟଙ୍କି) ।
ସରୁକଙ୍କାଳୀ—ଗ୍ରା. ସ୍ତ୍ରୀ. ଯେଉଁ ସ୍ତ୍ରୀର କଙ୍କାଳ ବା ଶରୀରର ପାର୍ଶ୍ୱଦ୍ୱୟ କ୍ଷୀଣ
ସରୁକଟୀ—ଗ୍ରା.ବି. କୃଶଅଣ୍ଟା, ଗ୍ରା. ବି°. କୃଶକଟୀବିଶିଷ୍ଟା (ସ୍ତ୍ରୀ) ।
ସରୁକନା—ଗ୍ରା. ବି. ପତଳା କନା ।
ସରୁ(ବୋ)କା—ଯା.ବି. ସମ୍ପର୍କ, ସମ୍ବନ୍ଧ ।
ସରୁଗୋଡ଼ୀ—ଗ୍ରା.ବି.ସ୍ତ୍ରୀ. ଯେଉଁ ସ୍ତ୍ରୀର ଗୋଡ଼ ସରୁ, ଯା.ବି. କ୍ଷୁଦ୍ର କ୍ଷୁଦ୍ର କଙ୍କର । [ ଯୁକ୍ତ ।
ସରୁଡ଼୍—ବି° (ବ.ଗ୍ରା;ସ+ରୁର୍)ଶୋଭା-
ସରୁତକୁଲ—ଗ୍ରା.ବି. ବର,ଗୁଣ୍ଡଲ, ବଟା ଦ୍ୱାରା ପ୍ରସ୍ତୁତ ପତଳା ପିଷ୍ଟକବିଶେଷ ।
ସରୁଗୁଣ୍ଡଲ—ଗ୍ରା.ବି. ସୂକ୍ଷ୍ମ ଗୁଣ୍ଡଲ ।
ସରୁଚିଙ୍ଗୁଡ଼ି—ଗ୍ରା.ବି. ଛୋଟ୍ ଛୋଟ ଛୋଟ ଚିଙ୍ଗୁଡ଼ି ମାଛ ।
ସରୁଜ—ପୁଂ.ବି°.(ବ.ଗ୍ରା) ରୁଗ୍ଣ, ରୋଗ-ବିଶିଷ୍ଟ, (ସ୍ତ୍ରୀ)ସରୁଜା । [ ପୀଡ଼ା ।
ସରୁଜନ୍ମ—ବି. ସରୁଜର ଭାବ ବା ଧର୍ମ,
ସରୁତା—ପ୍ରା.(ସମ୍ବ.) ବି. ଗୁଆକାଠ ।
ସରୁଦଉଡ଼ି—ଗ୍ରା.ବି. କ୍ଷୀଣ ରଜ୍ଜୁ ।
ସରୁଧଡ଼ି—ଗ୍ରା.ବି. ସୂକ୍ଷ୍ମ ଧଡ଼ି ।
ସରୁଧଡ଼ିଆ—ଗ୍ରା.ବି°. ସୂକ୍ଷ୍ମ ଧଡ଼ିବିଶିଷ୍ଟ (ଲୁଗା) ।
ସରୁଧାନ—ଗ୍ରା.ବି. ସୂକ୍ଷ୍ମ ଧାନ୍ୟ ।
ସରୁବାଲି—ଗ୍ରା.ବି.ସୂକ୍ଷ୍ମ ବାଲୁକା ।
ସରୁଭାତ—ଗ୍ରା.ବି.ସରୁଗୁଣ୍ଡଲର ଅନ୍ନ ।
ସରୁମଧ୍ୟା—ଗ୍ରା. ସ୍ତ୍ରୀ ବି°. ସରୁକଟୀଯୁକ୍ତା (ସ୍ତ୍ରୀ) । [ ବସ୍ତ୍ର ।
ସରୁଲୁଗା—ଗ୍ରା. ବି. ପତଳାଲୁଗା. ସୂକ୍ଷ୍ମ
ସରୁସୂତା—ଗ୍ରା.ବି. ସୂକ୍ଷ୍ମ ସୂତା ।
ସରୂପ—ପୁଂ.ବି°.(ସ+ରୂପ,ବ.ଗ୍ରା)ଏକ-ରୂପବିଶିଷ୍ଟ, ରୂପବିଶିଷ୍ଟ, (ସ୍ତ୍ରୀ) ସରୂପା, (ଗ୍ରା.ବି°) ସ୍ୱରୂପ, ତୁଲ୍ୟ, ସଦୃଶ ।
ସରୂପକ—ବି°. ( ବ.ଗ୍ରା-ସ+ରୂପକ ) ରୂପକାଳଂକାର ସହିତ ।
ସରୂପକୃତ୍—ବି°. (ସରୂପ+କୃ+କ୍ୱିପ୍) ସଦୃଶକାରୀ, ସରୂପକାରୀ ।
ସରୂପକରଣ—ବି°. ସରୂପକୃତ୍ ।
ସରୂପତା—ବି. (ସରୂପ+ତା) ସରୂପତ୍ୱ, ତୁଲ୍ୟତା, ସାଦୃଶ୍ୟ ।
ସରୂପବତ୍ସା—ସ୍ତ୍ରୀ. ବି. ସବତ୍ସା ଗୋ ।
ସରୂପୋପମା—ସ୍ତ୍ରୀ. ବି. ଉପମାଲଙ୍କାର ଭେଦ, ସମାନୋପମା ।
ସରେ—ଗ୍ରା. ଅ. ଶେଷ ପର୍ଯ୍ୟନ୍ତ,(ଗ୍ରା.କ୍ରି-ସରିବା କ୍ରିୟାର ନିତ୍ୟ ପ୍ରବୃତ୍ତ ବର୍ତ୍ତମାନ ଅନ୍ୟ ପୁରୁଷ ଏକ ବଚନର ରୂପ, 'ସରଇ' ଶବ୍ଦର ଅନ୍ୟରୂପ ।
ସରେଇ—ଗ୍ରା. ବି. ବି°. ସରାଇ ଦେଖ, (ପ୍ରା.ସମ୍ବ-ବି) ମଝିଭଲିଆ ଆଟିକା, ସୋରେଇ ।
ସରେତ୍—ଯା. ବି. ସର୍ତ୍ତ ।
ସରେଜ(ଜୋ,ଜୌ)—ଯା.ବି°.ମୌଳିକ, ଆଦ୍ୟ, ପ୍ରାଥମିକ ।
ସରେଫ—ବି°. ରେଫଯୁକ୍ତ ।
ସରେହାଲ୍—ଯା. ବି. କୌଣସି ବିଷୟ

ସମ୍ବନ୍ଧୀୟ ସମସ୍ତ ବିବରଣ ।
ସରୋକା(କ୍କା)—ଯା.ବି. ସମ୍ପର୍କ, ସମ୍ବନ୍ଧ, ହିଂସା, ଅଂଶ ।
ସରୋଗ—ବିଂ. ବେଗ ସହିତ ବର୍ତ୍ତମାନ, ବେଗଯୁକ୍ତ, ବେଗବିଶିଷ୍ଟ ।
ସରୋଜ—ବି. ( ସରଃ + ଜନ୍ + କ.ଅ ) ପଦ୍ମ,(ବିଂ)ସରୋବର ଜାତ,(ସ୍ତ୍ରୀ)ସରୋଜା
ସରୋଜନୟନ-ପୁଂ.ବିଂ.(ଉପମିତ-ବ.ବ୍ରୀ) ପଦ୍ମପରି ସୁନ୍ଦର ନେତ୍ରବିଶିଷ୍ଟ,(ବି-କ.ଧା) ପଦ୍ମପରି ସୁନ୍ଦର ନେତ୍ର ।
ସରୋଜନୟନୀ-ଗ୍ରା.ସ୍ତ୍ରୀ.ବିଂ.(ସଂ-ସରୋଜନୟନା)ପଦ୍ମପରି ସୁନ୍ଦର ନେତ୍ରବିଶିଷ୍ଟା(ସ୍ତ୍ରୀ)
ସରୋଜନ୍ମା—ବି.(ସରଃ+ଜନ୍ମନ୍)ପଦ୍ମ ।
ସରୋଜବଦନ—ବି. (କ.ଧା) ପଦ୍ମମୁଖ, (ପୁଂ.ବିଂ-ବ.ବ୍ରୀ)ପଦ୍ମପରି ସୁନ୍ଦର ମୁଖ ବିଶିଷ୍ଟ (ସ୍ତ୍ରୀ) ସରୋଜବଦନା ।
ସରୋଜବଦନୀ—ଗ୍ରା. ସ୍ତ୍ରୀ. ବିଂ. ( ସଂ-ସରୋଜବଦନା )ପଦ୍ମପରି ସୁନ୍ଦର ମୁଖ-ବିଶିଷ୍ଟା (ସ୍ତ୍ରୀ) ।
ସରୋଜିନୀ—ସ୍ତ୍ରୀ. ବି. ( ସରୋଜ + ଇନ୍ + ଈ) ପଦ୍ମଗଛ, ପଦ୍ମଲତା, ପଦ୍ମସମୂହ, ପଦ୍ମବହୁଳ ପୁଷ୍କରିଣୀ ।
ସରୋଜିନୀନାଇଡୁ—ଗ୍ରା. ବି. ଭାରତର ପ୍ରସିଦ୍ଧା ନାରୀ ନେତ୍ରୀ ।
ସରୋଜୀ—ବି. (ସରୋଜ+ଇନ୍ )ବ୍ରହ୍ମା, (ପୁଂ.ବିଂ) ପଦ୍ମବିଶିଷ୍ଟ (ସ୍ତ୍ରୀ) ସରୋଜିନୀ ।
ସରୋ(ରୌ)ଡା--ପ୍ରା.(ସମ୍ବ)ବି.ଖିଲଡାଢ, ଗୁଆଡାଢ ।
ସରୋତ୍ସବ—ବି. (ବ.ବ୍ରୀ) ସାରସପକ୍ଷୀ ।
ସରୋଧ—ବିଂ. (ସ + ରୋଧ) କ୍ରୁଦ୍ଧ ।
ସରୋବର —ବି.(ସରଃ + ବର)ପୁଷ୍କରିଣୀ, ପୋଖରୀ, ପଦ୍ମାଦି ପୂର୍ଣ୍ଣ ଜଳାଶୟ ।
ସରୋରୁହ(ହ୍)—ବି. (ସରଃ + ରୁହ୍ + କ. ଅ, କ.କ୍ୱିପ୍) ସରୋଜ, ପଦ୍ମ ।
ସରୋରୁହାସନ-ବି.(ବ.ବ୍ରୀ)ପଦ୍ମାସନ,ବ୍ରହ୍ମା
ସରୋରୁହିଣୀ—ସ୍ତ୍ରୀ. ବି. ସରୋଜିନୀ,ପଦ୍ମିନୀ
ସରୋଷ—ପୁଂ. ବିଂ. (ବ.ବ୍ରୀ) ସକ୍ରୋଧ, କ୍ରୁଦ୍ଧ, (ସ୍ତ୍ରୀ) ସରୋଷା ।
ସରୌଷ୍ଠକ—ଗ୍ରା. ବି. (ସଂ-ସହ + ଓଷ୍ଠ୍ୟ) କାବ୍ୟର ଛନ୍ଦ ଯୋଜନାବିଶେଷ ।
ସର୍କ—ବି. (ସୃ + କ.କ)ବାୟୁ, ମନ, ଚନ୍ଦ୍ର ପ୍ରଜାପତି ।
ସର୍କଟା(ଟେ)ଇବା—ପ୍ରା. (ସମ୍ବ.) କ୍ରି.ଶକ୍ତ କରି ବାନ୍ଧିବା ।
ସର୍କ(କ୍ୟୁ)ଲ୍—ଯା.ବି.ଶାସନ ସୌକର୍ଯ୍ୟାର୍ଥ ଗଠିତ ନିର୍ଦ୍ଦିଷ୍ଟ ସୀମାବିଶିଷ୍ଟ ଅଞ୍ଚଳ ।
ସର୍କସ—ଯା.ବି.(ଇଂ-ସର୍କସ୍) ଲୋକମାନଙ୍କ ମନରଞ୍ଜନାର୍ଥ ଆଶ୍ଚର୍ଯ୍ୟ ଜନକ ବ୍ୟାୟାମ ଓ ଶିକ୍ଷିତ ପଶୁମାନଙ୍କ କ୍ରୀଡ଼ା ଦେଖାଇବାପାଇଁ ଗଠିତ ଦଳ,ଲୋକମାନଙ୍କୁ ଦେଖାଇବାପାଇଁ ଆଚରିତ କଷ୍ଟସାଧ୍ୟ ବ୍ୟାୟାମ,କସରତ ।
ସର୍କା—ଯା.ବି. ସରୋକା ଦେଖ, ସରବା ଦେଖ. (ପ୍ରା. ସମ୍ବଲ. ବି) ଘର ଲିପିବା ପାଇଁ ବ୍ୟବହୃତ ମାଟିଗୋବରର ଲୁଣ୍ଡା
ସର୍କା(କେ)ଇବା—ପ୍ରା.(ବାଲେଶ୍ୱର) କ୍ରି. ଘୁଞ୍ଚାଇବା, କୌଣସି ବସ୍ତୁକୁ ସ୍ଥାନାନ୍ତରକୁ ଘୁଞ୍ଚାଇବା ।
ସର୍କାଫାନ୍—ପ୍ରା. (ସମ୍ବଲ) ବି. ବାଘୁଆ ଫାଶ,ଜଙ୍ଗଲରେ ପକାଯିବା ଏକପ୍ରକାର ଗଣ୍ଠି, ଯାହାକୁ ଟାଣିଦେବାମାତ୍ରେ ସେ ଗଣ୍ଠି ଝୁଲନ୍ତାରୂପେ ଭିଡ଼ିହୋଇଯାଏ ।
ସର୍କାର—ଯା. ବି. ସରକାର ଦେଖ ।
ସର୍କାରୀ—ଗ୍ରା. ବିଂ. ସରକାରୀ ଦେଖ ।
ସର୍କିବା—ଗ୍ରା. କ୍ରି. ସରକିବା ଦେଖ ।
ସର୍ଗ—ବି. (ସୃଜ୍ + ଭା.ଅ) ସୃଷ୍ଟି, ଜନ୍ମ, ପ୍ରବୃତ୍ତି,ମୋହ,ପ୍ରଯତ୍ନ, ଚେଷ୍ଟା,ଉତ୍ସାହ, ଅନୁମତି, ଚୁକ୍ତି, ମତ, ମଳତ୍ୟାଗ, ପୁରାଣର ଦଶ ଲକ୍ଷଣ ମଧ୍ୟରୁ ଏକତମ, (ମି.ଅ) ବର୍ଣ୍ଣ, ବ୍ରହ୍ମାଣ୍ଡ,(କ.ଅ) ସ୍ୱଭାବ, ପ୍ରକୃତି, ଶିବଙ୍କର ଏକ ନାମ, (ଣ.ଅ) ନିୟମ, ତ୍ୟାଗ, ନିଶ୍ଚୟ, ମୋକ୍ଷ, ମହାକାବ୍ୟର ଅଧ୍ୟାୟ, ଗ୍ରନ୍ଥର ପରିଚ୍ଛେଦ, (ଗ୍ରା.ବି-ସଂ-ସ୍ୱର୍ଗ) ସ୍ୱର୍ଗ, ଆକାଶ, (ପ୍ରା. ସମ୍ବ.ବି) ଗଜା ଶାଳଗଛ ।
ସର୍ଗକର୍ତ୍ତା—ପୁଂ. ବି. ସୃଷ୍ଟିକର୍ତ୍ତା, ବ୍ରହ୍ମା, (ବିଂ) ସୃଷ୍ଟି କାରୀମାତ୍ର ।
ସର୍ଗକୃତ୍—ପୁଂ.ବି. (ସର୍ଗ + କୃ + କ୍ୱିପ୍) ସୃଷ୍ଟିକର୍ତ୍ତା, ବ୍ରହ୍ମା ।
ସର୍ଗବନ୍ଧ—ବିଂ. (ବ.ବ୍ରୀ) ଭିନ୍ନ ଭିନ୍ନ ସର୍ଗ ବା ଅଧ୍ୟାୟରେ ବିଭକ୍ତ (ଗ୍ରନ୍ଥ) ।
ସର୍ଗବନ୍ଧ—ବି. ( ବ.ବ୍ରୀ ) ଅଧ୍ୟାୟବିଶିଷ୍ଟ ଗ୍ରନ୍ଥ, ମହାକାବ୍ୟ ।
ସର୍ଗୀ—ପ୍ରା.(ସିଂହଭୂମି,ସମ୍ବଲ.ଗଡ଼ଜାତ) ଶାଳଗଛ ।
ସର୍ଜ(ର୍ଜ୍ଜ)—ବି.( ସୃଜ୍ + କ.ଅ )ଅଜକର୍ଣ୍ଣ ବା ଶାଳଗଛ, ଶାଳରସ, ଝୁଣା,ବଣିକ୍, ଅସନବୃକ୍ଷ, ଶଲ୍ଲକୀବୃକ୍ଷ ।
ସର୍ଜ(ର୍ଜ୍ଜ)କ—ବି. (ସର୍ଜ+କ) ପୀତଶାଳ, ପିଆଶାଳ,ଶାଳଗଛ,ଝୁଣା,ଅସନଗଛ ।
ସର୍ଜଗନ୍ଧା—ବି. ରାସ୍ନା । [ଅସନଗଛ ।
ସର୍ଜତରୁ—ବି. ପିଆଶାଳ, ଶାଳଗଛ,
ସର୍ଜନ୍—ଯା. ବି. ଅସ୍ତ୍ରଚିକିତ୍ସକ ।
ସର୍ଜ(ର୍ଜ୍ଜ)ନ-ବି.(ସୃଜ୍ + ଭା.ଅନ)ସୃଷ୍ଟିକର୍ମ, ତ୍ୟାଗ, ବିସର୍ଜନ, ଫିଙ୍ଗିବା, (ମି.ଅନ) ସୈନ୍ୟର ପଶ୍ଚାଦ୍‌ଭାଗ, ସୃଷ୍ଟବସ୍ତୁଚୟ, ଶାଳନିର୍ଯ୍ୟାସ ।
ସର୍ଜ(ର୍ଜ୍ଜ)ନା—ବି. (ସର୍ଜନ୍ + ଆ) ସୃଷ୍ଟି ।
ସର୍ଜନାମା—ପୁଂ. ବି. ସର୍ଜତରୁ ।
ସର୍ଜନିର୍ଯ୍ୟାସ(କ)—ବି. ସର୍ଜରସ ଦେଖ ।
ସର୍ଜନୀ—ବି.(ସୃଜ୍ + ଣ.ଅନ + ଈ)ଗୁହ୍ୟଦ୍ୱାରର ବଳିମାନଙ୍କ ମଧ୍ୟସ୍ଥ ବଳି (ଯେଉଁବାଟେ ମଳ ଓ ଅପାନବାୟୁ ଆଦି ବହିର୍ଗତ ହୁଏ ।
ସର୍ଜନୀୟ-ବିଂ.( ସୃଜ୍+ମି.ଅନୀୟ ) ଯାହା ସୃଷ୍ଟି କରାଯାଇପାରେ ।
ସର୍ଜମଣି—ବି. ସର୍ଜରସ, ଝୁଣା, ମୋଚରସ, ଶିମିଳିଗଛର ଅଠା ।
ସର୍ଜମିନ୍(ନ)—ଯା.ବି.ସରଜମିନ୍ ଦେଖ ।
ସର୍ଜରସ—ବି. ଶାଳଗଛର ରସ, ଝୁଣା ।
ସର୍ଜ(ର୍ଜୀ,ର୍ଜ୍ଜି,ର୍ଜ୍ଜୀ)—ବି.(ସୃଜ୍ + ମି.ଇ, ଈ) ସର୍ଜିକ ଦେଖ ।
ସର୍ଜିକ(କା)—ବି. ( ସୃଜ୍ + ଅକ + ଆ ) ସର୍ଜିକାକ୍ଷାର, ସାଜିମାଟି, ନଗାବିଶେଷ ।
ସର୍ଜିକାକ୍ଷାର—ବି. ସାଚିଆର, ସାଜିମାଟି, ସୋରା ।
ସର୍ଜିବା—ଗ୍ରା. କ୍ରି. (ପଦ୍ୟ) ସର୍ଜନକରିବା

ସୃଷ୍ଟିକରିବା, ଘଟାଇବା ।

ସର୍ଜିଲ୍—ଗ୍ରା. ବିଂ. ସୃଷ୍ଟ ।

ସର୍ଜୁ—ବି(ସର୍ଜ+କ.ଉ)ବଣିକ୍, ବଦ୍ଧ୍ୟୁତ୍, (ମି.ଉ) ହାର, ଅଭସାର ।

ସର୍ଜ୍ୟ—ବିଂ. ( ସୃଜ୍+ମି.ଯ ) ସର୍ଜନୀୟ, (ବି) ସର୍ଜରସ, ଝୁଣା ।

ସର୍ଡ଼ିପଡ଼ିବା—ପ୍ରା. (ସମ୍ବଲ) କ୍ରି. ଭୂମିରେ ପାଦ ଖସିବାରୁ ପଡ଼ିଯିବା ।

ସର୍ତ(ତ୍ତି)—ଯା. ବି. ସମ୍ବିଦା,ଦଲିଲର ବା ଚୁକ୍ତିର ଭିନ୍ନ ଭିନ୍ନ ଅଙ୍ଗ ବା ନିୟମ, (ପ୍ରା.ବାଲେ; ସମୁଦ୍ର ଉପକୂଳ ଅଞ୍ଚଳ-- ବି.) ସମୁଦ୍ର ଉପକୂଳସ୍ଥ ଝର, ଯହିଁରୁ ମଇଁଷିମାନଙ୍କ ପିଇବା ପାଣି ନିଆଯାଏ ।

ସର୍ଦ୍ଦ(ର୍ଦ୍ଦି)—ଯା. ବି. କଫ, ଥଣ୍ଡା, ଶୀତ-ଜନିତ ରୋଗ,(ଯା.ବିଂ) ଥଣ୍ଡା,ଶୀତଳ, ଲେସମା, ମାନ୍ଦା ।

ସର୍ଦ୍ଦିକରିବା(ଧରିବା)—ଗ୍ରା.ବି. ଶୀତଜନିତ ରୋଗ ଧରିବା ।

ସର୍ଦ୍ଦିଗରମ—ଯା. ବିଂ. ଥଣ୍ଡା ଓ ଗରମ, (ଗ୍ରା.ବି) ଥଣ୍ଡାଜନିତ ରୋଗ ଓ ଗରମ-ଜନିତ ରୋଗ,ଦେହରେ ଅତ୍ୟନ୍ତ ଥଣ୍ଡା ଲଗିଲା ପରେ ହଠାତ୍ ଗରମ ଲଗିଲେ କିମ୍ବା ଗରମ ଲଗିବା ପରେ ହଠାତ୍ ଥଣ୍ଡା ଲଗିଲେ ଯେଉଁ ରୋଗ ଜନ୍ମେ ।

ସର୍ଦ୍ଦା—ଯା. ବି. କାବୁଲରେ ମିଳୁଥିବା ଏକପ୍ରକାର ଲମ୍ବା ତରଭୁଜ ।

ସର୍ଦ୍ଦାମ୍—ଯା. ବି. ସରଜାମ ଦେଖ ।

ସର୍ଦ୍ଦାର—ଯା. ପୁଂ. ବି. ବହୁବ୍ୟକ୍ତି ବା ଦଳମଧ୍ୟରେ ପ୍ରଧାନ ବ୍ୟକ୍ତି, ଅଧିପତି ବା ମୁଖ୍ୟବ୍ୟକ୍ତି,ଦଳପତି,ଜାତିର ମୁଖ୍ୟ ବ୍ୟକ୍ତି, ଗ୍ରାମର ମଣ୍ଡଳ, କୁଲିମାନଙ୍କର ନାୟକ,ଭାରତର ଉତ୍ତର ପଶ୍ଚିମ ସୀମା-ନ୍ତସ୍ଥ ଭିନ୍ନ ଭିନ୍ନ ଜାତୀୟ ମୁସଲମାନ ଅଧିବାସୀମାନଙ୍କର ସାମନ୍ତ ରାଜା, ଜମାଦାର, ଚୌକିଦାରଙ୍କ ମଧ୍ୟରେ ପ୍ରଧାନ ଚୌକିଦାର, ମିଶରଦେଶରେ ପଲଟଣମାନଙ୍କ ସେନାପତିଙ୍କ ଉପାଧି-ବିଶେଷ, ଦେଶାନ୍ତରକୁ କୁଲି ସଂଗ୍ରହ-କାରୀ, (ବି) ରାଜାଙ୍କ ଅଧୀନ ଜମିଦାରଙ୍କ ଉପାଧିବିଶେଷ, (ସ୍ତ୍ରୀ) ସର୍ଦ୍ଦାରଆଣୀ ।

ସର୍ଦ୍ଦାରି—ଯା. ବି. ସର୍ଦ୍ଦାରର ପଦବୀ ବା କର୍ମ, ସର୍ଦ୍ଦାରର ପ୍ରାପ୍ୟ ବେତନ, (ଯା. ବିଂ) ସର୍ଦ୍ଦାର ସମ୍ବନ୍ଧୀୟ ।

ସର୍ଦ୍ଦାରଆଣୀ—ଗ୍ରା.ସ୍ତ୍ରୀ.ବି. ନେତ୍ରୀ,ଦଳର ମୁଖ୍ୟସ୍ଥାନ ଅଧିକାରିଣୀ ସ୍ତ୍ରୀ,ସରଦାରଙ୍କ ସ୍ତ୍ରୀ ।

ସର୍ଦ୍ଦି—ଯା. ବି. ସର୍ଦ୍ଦ ଦେଖ ।

ସର୍ପ—ବି. (ସୃପ୍+କ.ଅ) ସାପ, ଭୁଜଙ୍ଗ, (ଭା.ଅ) ଗମନ, ଗତି କରିବା, ନାଗ-କେଶର,ପ୍ରାଚୀନ ଭାରତର ଶ୍ମଶ୍ରୁଧାରୀ ମ୍ଳେଚ୍ଛଜାତିବିଶେଷ,ଏଗାର ରୁଦ୍ରମାନଙ୍କ ମଧ୍ୟରୁ ଏକ, (ଜ୍ୟୋତିଷ) ଏକପ୍ରକାର ମନ୍ଦ ଯୋଗ, (ଲ.ଅର୍ଥ) କାଳସର୍ପପରି କ୍ରୁର ଓ ଅନିଷ୍ଟକାରୀ ବ୍ୟକ୍ତି ।

ସର୍ପକଙ୍କାଳିକା—ବି. ଏକପ୍ରକାର ଗୁଳ୍ମ, ଗନ୍ଧଗୁଳ୍ମ, ସର୍ପକଙ୍କାଳୀ ।

ସର୍ପଗତି—ବି. (୬ତତ୍ତ୍ୱ) ସର୍ପର ଗତି ବା ଚଳନ, କୁଟିଳଗତି, ( ବିଂ ) ସର୍ପପରି ଗତିବିଶିଷ୍ଟ ।

ସର୍ପଗନ୍ଧା—ବି. ବୃକ୍ଷବିଶେଷ, ଗୁଳ୍ମ,ଗନ୍ଧ-ଗୁଳ୍ମ, ନାଗଦମନୀ ଗୁଳ୍ମ ।

ସର୍ପଗନ୍ଧିକା—ସ୍ତ୍ରୀ. ବି. ସର୍ପଗନ୍ଧା ଦେଖ ।

ସର୍ପଘଟ—ବି.ସର୍ପମାଣ୍ଡୁ, ପ୍ରାଚୀନକାଳରେ ପ୍ରଚଳିତ ଶପଥବିଶେଷ ।

ସର୍ପଘାତ—ବି. ( ୬ତତ୍ତ୍ୱ ) ସର୍ପଦଂଶନ, ସାପକାମୁଡ଼ା ।

ସର୍ପଘାତିନୀ—ବି.ସର୍ପକଙ୍କାଳିକାବିଶେଷ ।

ସର୍ପଘାତୀ—ପୁଂ. ବିଂ. ସର୍ପହନ୍ତା, ସର୍ପ ହନନକାରୀ ।

ସର୍ପଛତ୍ର(କ)—ବି. ଏକପ୍ରକାର ଛତୁ, [ ଭୂଇଁଛତୁ ।

ସର୍ପଟ୍—ଗ୍ରା. ବି. ଜୋରରେ ଦଉଡ଼, ଘୋଡ଼ାର ଦଉଡ଼ ।

ସର୍ପଣ—ବି.(ସୃପ୍+ଭା.ଅନ)ଗତି, ଗମନ, ମରାଯାଉଥିବା ବାଣ (କାଣ୍ଡ ବା ଶର)ର ଭୂମିଉପରେ ଗମନ ।

ସର୍ପତୃଣ—ବି. (ବି.ଗ୍ରା)ନକୁଳ,ନେଉଳ, ନକୁଳକନ୍ଦ ।

ସର୍ପଦଂଷ୍ଟ୍ର—ବି.ଦନ୍ତୀବୃକ୍ଷ,ସାପର ଦାନ୍ତ ।

ସର୍ପଦଂଷ୍ଟ୍ରା—ବି. ବୃଶ୍ଚିକାଳି, ବିଛୁଆତି, ସିଂହପିପ୍ପଳୀ, ସର୍ପର ଦାନ୍ତ ।

ସର୍ପଦଂଷ୍ଟ୍ରିକା-ବି. କକଡ଼ାଶୃଙ୍ଗୀ,ଅଜଶୃଙ୍ଗୀ ।

ସର୍ପଦଂଷ୍ଟ୍ରୀ—ବି. ବୃଶ୍ଚିକାଳି, ବିଛୁଆତି, ଦନ୍ତୀ, ବସ୍ଥ ।

ସର୍ପଦଂଶନ—ବି. ସାପକାମୁଡ଼ିବା ।

ସର୍ପଦଣ୍ଡା(ଣ୍ଡୀ)—ବି. (ସର୍ପ+ଦଣ୍ଡ୍+ଅ+ଆ) ସୈଂହଳୀ, ସିଂହପିପ୍ପଳୀ ।

ସର୍ପଦଣ୍ଡୀ—ବି. ନାଗବଲା, ଗୋରକ୍ଷୀ ।

ସର୍ପଦନ୍ତୀ(ପୁଷ୍ପୀ)—ବି. ନାଗଦନ୍ତୀ ।

ସର୍ପଦମନୀ-ବି.ବନ୍ଧ୍ୟାକର୍କୋଟକୀ,ହାତିଆ-କାଙ୍କଡ଼ ।

ସର୍ପଦଷ୍ଟ—ବି. ସର୍ପଦଂଶନ,(ବିଂ-୩ତତ୍ତ୍ୱ) ଯାହାକୁ ସାପ କାମୁଡ଼ିଥାଏ ।

ସର୍ପଦେଶ୍ୟ-ବି.ହିନ୍ଦୁମାନଙ୍କର ତୀର୍ଥବିଶେଷ ।

ସର୍ପଦ୍ୱିଟ୍(ଷ୍)—ବି. (ସର୍ପ+ଦ୍ୱିଷ୍+କ. କ୍ୱିପ୍.ଅ) ମୟୂର ।

ସର୍ପନାମା—ବି. ସର୍ପକଙ୍କାଳିକା ଭେଦ ।

ସର୍ପନେତ୍ରା—ବି. ସର୍ପାକ୍ଷୀ ଦେଖ ।

ସର୍ପପତି—ବି. ( ୬ତତ୍ତ୍ୱ ) ଶେଷନାଗ, ବାସୁକି ।

ସର୍ପପୁଷ୍ପା—ବି. ନାଗଦନ୍ତୀ ।

ସର୍ପପ୍ରିୟ—ବି. (୬ତତ୍ତ୍ୱ) ଚନ୍ଦନ ବୃକ୍ଷ ।

ସର୍ପଫଣ—ବି. (୬ତତ୍ତ୍ୱ)ସାପର ଫେଣା ।

ସର୍ପଫଣଜ—ବି.(ସର୍ପ+ଫଣ୍+ଜନ୍+ଅ) ସାପଫେଣାରେ ଥିବା ମଣି ।

ସର୍ପଫେଣ(ନ)—ବି. ଅହିଫେନ, ଅଫିମ, ଆପୁ ।

ସର୍ପଭୟ—ବି. ସାପକାମୁଡ଼ିବାର ଭୟ ।

ସର୍ପଭୁକ୍(ଜ୍)—ବିଂ. (ସର୍ପ+ଭୁଜ୍+କ. କ୍ୱିପ୍) ଯେ ସାପ ଖାଏ, ସର୍ପଖାଦକ, (ବି) ଗରୁଡ଼, ମୟୂର, ରାଜସର୍ପ,ଗୋଧି, ଗୃଧ୍ର, ହାଡ଼ଗିଲା ଚଢ଼େଇ, ନେଉଳ, ସାରସପକ୍ଷୀ ।

ସର୍ପଭ୍ରମ—ବି. ରଜ୍ଜୁରେ (ଦଉଡ଼ିରେ) ମିଥ୍ୟାସର୍ପର ଆରୋପ ବା ବୋଧ ।

ସର୍ପମାଣ୍ଡୁ—ବି. ( ପ୍ରାଚୀନ ପ୍ରଚଳିତ ) ମାଟିଆରେ ସାପ ପୂରାଇ ତହିଁରେ ହାତ ପୂରାଇବା ପରେ ସାପ ନ

କାମୁଡ଼ିଲେ ନିର୍ଦ୍ଦୋଷତା ପ୍ରମାଣହେବା ରୂପ ପରୀକ୍ଷା, ସର୍ପମାଣ୍ଡୁ ଦ୍ୱାରା ଶପଥ ବା ହଲପ ।
ସର୍ପମାଳା—ସ୍ତ୍ରୀ.ବି. ସର୍ପକଙ୍କାଳୀ ଭେଦ ।
ସର୍ପମାଳୀ—ପୁଂ. ବି. (ସର୍ପ+ମାଳ୍+ଇନ୍) ସର୍ପମାଳାକାରୀ ଶିବ ।
ସର୍ପଯଜ୍ଞ—ବି. ପରୀକ୍ଷିତରାଜାଙ୍କ ପୁତ୍ର ଜନମେଜୟଙ୍କ ଅନୁଷ୍ଠିତ ସର୍ପବଂଶକ୍ଷୟକର ଯାଗବିଶେଷ ।
ସର୍ପଯାଗ—ବି. ସର୍ପଯଜ୍ଞ ଦେଖ ।
ସର୍ପରାଜ—ପୁଂ.ବି.ବାସୁକି,ଅନନ୍ତଦେବ, (ବିଂ) ସର୍ବଶ୍ରେଷ୍ଠ ।
ସର୍ପଲତା—ବି. ନାଗବଲ୍ଲୀ, ପାନ ।
ସର୍ପବନ୍ଧ—ବି. ଚତୁରତାପୂର୍ଣ୍ଣ କୁଚକ୍ର, କୁଟିଳଯୁକ୍ତି,ଚିତ୍ରରଚନାବିଶେଷ,କୁଣ୍ଡଳାକାର ସର୍ପର ଆକାର ଅନୁସାରେ ଅକ୍ଷର ସନ୍ନିବେଶିତ ହୋଇଥିବା ରଚନାବିଶେଷ ।
ସର୍ପବଳ—ବି.ସର୍ପର ଶକ୍ତି ବା ସାମର୍ଥ୍ୟ,ବିଷ ।
ସର୍ପବଳି-ବି.ସର୍ପଯଜ୍ଞ,ଦାନକ୍ରିୟାବିଶେଷ ।
ସର୍ପବଲ୍ଲୀ—ବି. ନାଗବଲ୍ଲୀ, ପାନ ।
ସର୍ପବତ୍-ବିଂ, ସର୍ପଜ୍ଞାନବିଶିଷ୍ଟ,ସର୍ପ ତତ୍ତ୍ୱଜ୍ଞ
ସର୍ପବିଦ୍ୟା—ବି. (କ.ଧା)ବିଷଧର ସର୍ପଙ୍କୁ ଧରିବା ଓ ବଶକରିବା ବିଦ୍ୟା ।
ସର୍ପବେଦ—ବି. ସର୍ପବିଦ୍ୟା ।
ସର୍ପବ୍ୟୂହ—ବି. (କ.ଧା) ସର୍ପଆକାରରେ ରଚିତ ସେନାବ୍ୟୂହ ।
ସର୍ପଶିରଃ – ବି. ହସ୍ତବିନ୍ୟାସ ଭେଦ, ହସ୍ତ ସର୍ପଫଣାକାରେ ରଖିବା ।
ସର୍ପଶୀର୍ଷ—ବି. ସାପର ମୁଣ୍ଡ, ଇଷ୍ଟକାଭେଦ ।
ସର୍ପସତ୍ର—ବି. (କ.ଧା) ସର୍ପକୁଳ ଧ୍ୱଂସ ନିମିତ୍ତ ଯଜ୍ଞ,ସର୍ପନାଶକ ଯଜ୍ଞବିଶେଷ ।
ସର୍ପସତ୍ରୀ—ବି. ( ସର୍ପସତ୍ର+କ.ଇନ୍ ) ସର୍ପଯଜ୍ଞର ଅନୁଷ୍ଠାତା, ପରୀକ୍ଷିତପୁତ୍ର ଜନମେଜୟ ରାଜା ।
ସର୍ପସହା—ସ୍ତ୍ରୀ.ବି. (ସର୍ପ+ସହ୍+ଅ ଆ) ସର୍ପକଙ୍କାଳୀ ଭେଦ,ସର୍ପଘାତିନୀ ।
ସର୍ପହା—ବି. ( ସର୍ପ+ହନ୍+କ.କ୍ୱିପ୍ ) ସର୍ପାକ୍ଷୀ ଦେଖ, ନକୁଳ,ନେଉଳ,(ବିଂ) ସର୍ପଘାତକ ।
ସର୍ପହୃଦୟଚନ୍ଦନ—ବି. ଚନ୍ଦନକାଷ୍ଠ ।
ସର୍ପା—ସ୍ତ୍ରୀ. ବି. (ସର୍ପ+ଆ) ସର୍ପିଣୀ ।
ସର୍ପାକ୍ଷ—କ୍ଲୀ. ବି. (ବ.ବ୍ରୀ) ରୁଦ୍ରାକ୍ଷ ।
ସର୍ପାକ୍ଷୀ-ବି.କ୍ଷୁଦ୍ର ଗୁଳ୍ମବିଶେଷ,ଗନ୍ଧନାକୁଲୀ, ଗନ୍ଧରାସ୍ନା,ଶ୍ୱେତାପରାଜିତା, ରକ୍ତଶଙ୍ଖିନୀ· ରକ୍ତପୁଷ୍ପଯୁକ୍ତ ବନବନା ।
ସର୍ପାଖ୍ୟ—ବି. ବ.ବ୍ରୀ; (ସର୍ପ+ଆଖ୍ୟା+ଅ) ମହୁଷକନ୍ଦଭେଦ, ନାଗକେଶର, (ବିଂ) ସର୍ପନାମକ, ସର୍ପନାମଧାରୀ ।
ସର୍ପାଘାତ—ବି. (୬ତତ୍ପୁ) ସର୍ପଦଂଶନ, ସାପକାମୁଡ଼ା । [ ସୈଂହଳୀ ।
ସର୍ପାଙ୍ଗୀ—ବି. ସର୍ପକଙ୍କାଳୀ ଭେଦ,
ସର୍ପାଦନୀ—ବି. ନାକୁଳୀ ।
ସର୍ପାନ୍ତ—ବି. (ସର୍ପ+ଅନ୍ତ+ଅ) ଗରୁଡ଼ ।
ସର୍ପାରାତି—ବି. (୬ତତ୍ପୁ) ଗରୁଡ଼,ନକୁଳ, ମୟୂର, ସାପର ଶତ୍ରୁ ।
ସର୍ପାବାସ—ବି.(୬ତତ୍ପୁ)ସର୍ପର ବାସସ୍ଥାନ, (ବ.ବ୍ରୀ) ଚନ୍ଦନବୃକ୍ଷ, ସାପଗାତ ।
ସର୍ପାଶନ—ବି ଓ ବିଂ. (ବ.ବ୍ରୀ)ସର୍ପଭୁକ୍ ଦେଖ ।
ସର୍ପାସ୍ୟ—ପୁଂ. ବି. ରାକ୍ଷସ । [ ଉଦକ ।
ସର୍ପିଃ—ବି.(ସୃପ୍+କ.ଇସ୍) ଘୃତ,ଆଜ୍ୟ,
ସର୍ପିକା—ବି. (ସର୍ପ+କ+ଆ) କ୍ଷୁଦ୍ର ସାପ, ଗୋକର୍ଣ୍ଣୀ ଲତା ।
ସର୍ପିକା-ଗୋଟିଏ ପ୍ରାଚୀନ ନଦୀ,ବର୍ତ୍ତମାନ ଗୋମତୀ ନଦୀର ଶାଖାରୂପେ ପ୍ରବାହିତ ।
ସର୍ପିଣୀ—ସ୍ତ୍ରୀ. ବି. ( ସୃପ୍+ଇନ୍+ଈ ) ସର୍ପଭାର୍ଯ୍ୟା, ସ୍ତ୍ରୀଜାତୀୟ ସର୍ପ,ଗନ୍ଧରାସ୍ନା, (ସ୍ତ୍ରୀ.ବିଂ. ସର୍ପିନ୍+ଈ) ବିସର୍ପଣଶୀଳା, ଗାମିନୀ, (ଗ୍ରା.ସ୍ତ୍ରୀ.ବି-ଲ.ଅର୍ଥ) ଅତି କ୍ରୂର ନାରୀ । [ କ୍ଷତ ।
ସର୍ପିତ—ବି.(ସର୍ପ+ଇତ)ସର୍ପାଘାତଜନିତ
ସର୍ପିରନ୍ନ—ବି. ଘୃତୌଦନ, ଘୃତମିଶ୍ରିତ ଓଦନ ।
ସର୍ପିରବ୍ଧି—ବି. ଘୃତସମୁଦ୍ର ।
ସର୍ପିଶଳା—ସ୍ତ୍ରୀ. ବି. ରୁଦ୍ରାଣୀବିଶେଷ ।
ସର୍ପିର୍ମଣ୍ଡ—ପୁଂ. ବି. ନବନୀତଖଣ୍ଡ ।
ସର୍ପିଷ୍କୁଣ୍ଡିକା—ସ୍ତ୍ରୀ. ବି. ସର୍ପିପାତ୍ର, ଘୃତକୁମ୍ଭ ବା କୁଣ୍ଡ ।
ସର୍ପୀ—ପୁଂ. ବିଂ. ( ସୃପ୍+କ.ଇନ୍ ) ବିସର୍ପଣଶୀଳ,ଗମନକର୍ତ୍ତା,ଜଙ୍ଗମ,(ସ୍ତ୍ରୀ) ସର୍ପିଣୀ, ( ସ୍ତ୍ରୀ,ବି-ସର୍ପ+ଈ ) ସର୍ପିଣୀ, ମାଈ ସାପ ।
ସର୍ପୀ(ର୍ପେ)ଷ୍ଟ-ବି(୬ତତ୍ପୁ)ଶ୍ରୀଖଣ୍ଡଚନ୍ଦନ ।
ସର୍ପେଶ୍ୱର—ବି. (୬ତତ୍ପୁ) ସର୍ପାଧିପତି, ବାସୁକି, ନାଗରାଜ,ତୀର୍ଥବିଶେଷ,ସର୍ପେଶ୍ୱର ତୀର୍ଥ, (ଗ୍ରା.ବି) ପ୍ରତିଷ୍ଠିତ ମହାଦେବଙ୍କ ନାମ, ଆଠଗଡ଼ ଅନ୍ତର୍ଗତ କ୍ଷୁଦ୍ର ପର୍ବତର ନାମ, ଏହି ପାହାଡ଼ ନିକଟରେ ଥିବା ଶିବଲିଙ୍ଗ ।
ସର୍ପେଶ୍ୱରୀ—ଗ୍ରା. ବି. ଆଠଗଡ଼ର ପ୍ରଧାନ ନଦୀ, ସାପୁଆ ନଈ ।
ସର୍ପୋନ୍ମାଦ—ବି. ଏକପ୍ରକାର ଉନ୍ମାଦ ରୋଗ ।
ସର୍ଫ—ଯା. ବିଂ. ବ୍ୟୟିତ ।
ସର୍ବ(ର୍ବ)—ବିଂ. (ସର୍ବ+କ.ଅ) ସବୁ, ସମସ୍ତ, ସକଳ,ପ୍ରତ୍ୟେକ, ସମଗ୍ର, ସମୁଦାୟ, ସମ୍ପୂର୍ଣ୍ଣ,ସର୍ବ,ସମସ୍ତେ,ପ୍ରତ୍ୟେକେ, (ବି-ସୃ+ଣ.ବନ୍) ଶିବ, ମହାଦେବ, ବିଷ୍ଣୁ ।
ସର୍ବଂ(ର୍ବଂ)ସହ—ପୁଂ.ବିଂ(ସର୍ବଂ+ସହ୍+କ.ଅ) ସହଣିକ, ଯେ ସବୁ ବିଷୟ ସହ୍ୟକରେ, (ସ୍ତ୍ରୀ) ସର୍ବଂସହା, (ବି) ରାଜା, ଭୂପତି ।
ସର୍ବଂ(ର୍ବଂ)ସହା—ସ୍ତ୍ରୀ. ବି. (ସର୍ବଂସହ+ଆ) ବସୁନ୍ଧରା, ପୃଥିବୀ, (ସ୍ତ୍ରୀ.ବିଂ)ସକଳ ସହ୍ୟକାରିଣୀ ।
ସର୍ବକ—ବିଂ, (ସର୍ବ+କ)ସକଳ, ସମୁଦାୟ, ସମ୍ପୂର୍ଣ୍ଣ ।
ସର୍ବକଭାର୍ଯ୍ୟ—ପୁଂ. ବିଂ. ସର୍ବର ସ୍ୱାମୀ ।
ସର୍ବକର୍ତ୍ତା--ପୁଂ.ବି.(ଉପପଦ ତତ୍ପୁରୁଷ) ସବୁ ବସ୍ତୁର ସ୍ରଷ୍ଟା, ସମସ୍ତଙ୍କର ପ୍ରଭୁ, ଈଶ୍ୱର, ବ୍ରହ୍ମା ।
ସର୍ବକର୍ମ(ର୍ମ୍ମ)—ବି. ସମସ୍ତ କାର୍ଯ୍ୟ ।
ସର୍ବକର୍ମକ୍ଷମ—ପୁଂ.ବିଂ. ସର୍ବକର୍ମୀ ଦେଖ, (ସ୍ତ୍ରୀ) ସର୍ବକର୍ମକ୍ଷମା ।

ସର୍ବକର୍ମଫଳତ୍ୟାଗୀ—ପୁଂ. ବିଂ. ଯେ ନିଜ କୃତ ସମସ୍ତ କର୍ମର ଫଳ ପାଇଁ ଆଶା ନ ରଖି କର୍ମର ଫଳକୁ ଈଶ୍ୱରଙ୍କଠାରେ ଅର୍ପଣ କରେ ।

ସର୍ବକର୍ମୀ—ପୁଂ.ବିଂ. (ସର୍ବକର୍ମ + ଇନ୍) ସବୁ କାର୍ଯ୍ୟ କରିବାକୁ କ୍ଷମ, (ସ୍ତ୍ରୀ)ସର୍ବକର୍ମିଣୀ ।

ସର୍ବକର୍ମୀଣ—ବିଂ.(ସର୍ବକର୍ମ + ଈନ)ସକଳ କର୍ମ କ୍ଷମ, (ସ୍ତ୍ରୀ) ସର୍ବକର୍ମୀଣା ।

ସର୍ବକାମ—ବି. (କ.ଧା) ସମସ୍ତ କାମନା, (ବି.ଗ୍ରା) ମହାଦେବ, ଏକ ଅର୍ହତଙ୍କ ନାମ, (ପୁଂ.ବିଂ-ବ.ଗ୍ରା)ସମସ୍ତ କାମନାକାରୀ, ସବୁ ଇଚ୍ଛା ପୂରଣକାରୀ ।

ସର୍ବକାମଦ—ପୁଂ.ବିଂ. (ସର୍ବକାମ + ଦା କ.ଅ) ସର୍ବ କାମନା ପୂରଣକାରୀ, (ସ୍ତ୍ରୀ) ସର୍ବକାମଦା ।

ସର୍ବକାମଦୁଘ—ବିଂ. ( ସର୍ବ + କାମ + ଦୁହ୍ + ଅ) ସକଳ କାମନା ଦୋହନକାରୀ, (ସ୍ତ୍ରୀ) ସର୍ବକାମଦୁଘା = ପୃଥିବୀ ।

ସର୍ବକାମଦୁହ—ବିଂ. ( ସର୍ବ + କାମ + ଦୁହ୍ + କ୍ୱିପ୍)ସକଳ କାମନା ଦୋହନକାରୀ ।

ସର୍ବକାମମୟ—ବିଂ.ସକଳ କାମନାସ୍ୱରୂପ ।

ସର୍ବକାମିକ—ବିଂ. ସର୍ବ କାମନା ପୂର୍ତ୍ତିକାରୀ, ସକଳ ବିଷୟରେ ବାସନା ପୂର୍ତ୍ତିକାରୀ ।

ସର୍ବକାମୀ—ପୁଂ.ବିଂ. (ସର୍ବକାମ + ଇନ୍) ସକଳପ୍ରକାର କାମନାଯୁକ୍ତ ।

ସର୍ବକାମ୍ୟ—ବିଂ. ସକଳ କାମନାର ବିଷୟୀଭୂତ ।

ସର୍ବକାରକ—ବିଂ. ସକଳର କାରକ, (ପୁଂ)ବ୍ୟାକରଣୋକ୍ତ କର୍ତ୍ତା କର୍ମ ପ୍ରଭୃତି ସକଳ ପ୍ରକାର କାରକ ।

ସର୍ବକାରଣ—ବି. ସକଳର କାରଣ, ସକଳର ହେତୁ ।

ସର୍ବକାରୀ—ପୁଂ.ବିଂ.(ସର୍ବ + କୃ + ଇନ୍) ଯେ ସକଳ କରନ୍ତି, (ପୁଂ.-ବି) ସର୍ବ ଜଗତ୍ର ସ୍ରଷ୍ଟା,ବ୍ରହ୍ମା ।

ସର୍ବକାଳ—ବି.ସକଳ ସମୟ,ଚିରକାଳ ।

ସର୍ବକାଳୀନ—ବିଂ. (ସର୍ବକାଳ + ଈନ) ସବୁ କାଳରେ ଘଟିବା ।

ସର୍ବକୃଚ୍ଛ୍ର—ବିଂ.ସକଳ ପ୍ରକାର କଷ୍ଟ ବା ଦୁଃଖବିଶିଷ୍ଟ ।

ସର୍ବକୃତ୍—ପୁଂ.ବିଂ. (ସର୍ବ + କୃ + କ୍ୱିପ୍) ସକଳକାରୀ, ସର୍ବସ୍ରଷ୍ଟା ।

ସର୍ବକୃଷ୍ଣ—ବିଂ. ସକଳ କୃଷ୍ଣବର୍ଣ୍ଣବିଶିଷ୍ଟ ।

ସର୍ବକେଶ—ପୁଂ. ବି. ସକଳ କେଶ ।

ସର୍ବକେଶକ—ବିଂ.ସର୍ବ ଗାତ୍ରରେ ଉତ୍ପନ୍ନ କେଶଯୁକ୍ତ ।

ସର୍ବକେଶର—ବି. ବକୁଳ ବୃକ୍ଷ ଓ ପୁଷ୍ପ ।

ସର୍ବକେଶୀ—ପୁଂ.ବି.ନଟ,ନୃତ୍ୟକାରକ ।

ସର୍ବକ୍ଷୟ—ବି. ସର୍ବନାଶ ।

ସର୍ବକ୍ଷାର—ବି.ସାବୁନ୍, ତିନି ଗୁରପ୍ରକାର କ୍ଷାରର ମିଶ୍ରଣରେ ପ୍ରସ୍ତୁତ ମଳ ପରିଷ୍କାରକ ପଦାର୍ଥ, ମୁଷ୍କକବୃକ୍ଷ, ପାଟଳିଗଛ ।

ସର୍ବକ୍ଷିତ୍—ବିଂ. ସର୍ବବ୍ୟାପୀ, ଯେ ସର୍ବଭୂତରେ ବିଦ୍ୟମାନ ଅଛନ୍ତି, (ପୁଂ.ବି) ବ୍ରହ୍ମା ।

ସର୍ବଗ—ପୁଂ. ବିଂ.(ସର୍ବ + ଗମ୍ + କ.ଅ) ସର୍ବଗାମୀ, ଯେ ସବୁ ସ୍ଥାନକୁ ଯାଏ, ସର୍ବବ୍ୟାପୀ, (ସ୍ତ୍ରୀ) ସର୍ବଗା, (ବି) ଶିବ, ବାୟୁ, ଜଳ, ଆତ୍ମା, ବ୍ରହ୍ମ ।

ସର୍ବଗତ—ବିଂ. (ସର୍ବ + ଗତ) ସର୍ବତ୍ର ସ୍ଥିତ, ସର୍ବଗ, ସର୍ବବ୍ୟାପୀ, ( ସ୍ତ୍ରୀ ) ସର୍ବଗତା ।

ସର୍ବଗନ୍ଧ—ବି. ଚତୁର୍ଜାତକ, କକ୍କୋଳ, ଲବଙ୍ଗ, କର୍ପୂର, ଅଗୁରୁ ଓ ଶିହ୍ଲକ, (ବିଂ) ସର୍ବଗନ୍ଧବିଶିଷ୍ଟ ।

ସର୍ବଗନ୍ଧମୟ—ବିଂ.ସର୍ବଗନ୍ଧସ୍ୱରୂପ,ସକଳପ୍ରକାର ଗନ୍ଧସ୍ୱରୂପ ।

ସର୍ବଗନ୍ଧକ—ବିଂ. ସକଳପ୍ରକାର ଗନ୍ଧ- [ ବିଶିଷ୍ଟ ।

ସର୍ବଗା—ସ୍ତ୍ରୀ.ବିଂ.(ସର୍ବଗ + ଆ)ସର୍ବଗର ସ୍ତ୍ରୀଲିଙ୍ଗ, (ବି)ଶ୍ୟାମାଲତା,କଙ୍ଗୁଧାନ୍ୟ, ପ୍ରିୟଙ୍ଗୁବୃକ୍ଷ ।

ସର୍ବଗାମୀ—ପୁଂ. ବିଂ. (ସର୍ବ + ଗମ୍ + ଇନ୍) ସର୍ବଗ ଦେଖ, (ସ୍ତ୍ରୀ)ସର୍ବଗାମିନୀ ।

ସର୍ବଗୁ—ବିଂ. ଗବାଦି ପଶୁସମଷ୍ଟିବିଶିଷ୍ଟ ।

ସର୍ବଗୁଣ—ବିଂ.ସକଳ ଗୁଣବିଶିଷ୍ଟ.ସକଳପ୍ରକାର ଗୁଣଯୁକ୍ତ, (ବି) ସକଳପ୍ରକାର ଗୁଣ ।

ସର୍ବଗୁଣାକ(ଧା)ର—ପୁଂ. ଓ ସ୍ତ୍ରୀ. ବିଂ (ଷତତ୍) ସବୁଗୁଣର ଆଶ୍ରୟ,ସବୁଗୁଣଯୁକ୍ତ ।

ସର୍ବଗୁଣାନ୍ୱିତ—ପୁଂ. ବିଂ. ( ୩ତତ୍ ) ଯାହାଠାରେ ସବୁଗୁଣ ଥାଏ, ( ସ୍ତ୍ରୀ ) ସର୍ବଗୁଣାନ୍ୱିତା ।

ସର୍ବଗୁଣୀ—ପୁଂ.ବିଂ. (ସର୍ବଗୁଣ୍ + ଇନ୍) ସର୍ବଗୁଣାନ୍ୱିତ,ସକଳପ୍ରକାର ଗୁଣବିଶିଷ୍ଟ

ସର୍ବଗୁରୁ—ପୁଂ. ବି. ସମସ୍ତଙ୍କର ଗୁରୁ ।

ସର୍ବଗୁହ୍ୟମୟ—ବିଂ. ଯାହା ସର୍ବତୋଭାବରେ ଗୋପନୀୟ ଭାବାପନ୍ନ, ଯେଉଁ ବ୍ୟାପାରର ଆଭ୍ୟନ୍ତରିକ ରହସ୍ୟ ଉଦ୍ଘାଟିତ ହୁଏ ନାହିଁ ।

ସର୍ବଗୃହ୍ୟ—ବିଂ.ସମସ୍ତ ଗୃହସ୍ଥ ଭୃତ୍ୟାଦିଯୁକ୍ତ ପରିବାର ।

ସର୍ବଗ୍ରନ୍ଥି(କ)—ବି. ପିପ୍ପଳୀମୂଳ ।

ସର୍ବଗ୍ରନ୍ଥ—ବି. ଆଦିତ୍ୟାଦି ସମସ୍ତ ଗ୍ରହ ।

ସର୍ବଗ୍ରହଣ—ବି. ସବୁପଦାର୍ଥକୁ ନେବା, ଚନ୍ଦ୍ରଗ୍ରହଣ ବା ସୂର୍ଯ୍ୟପରାଗ ସମୟରେ ଚନ୍ଦ୍ରର ବା ସୂର୍ଯ୍ୟର ସମୁଦାୟ ଅଂଶ ଅଦୃଶ୍ୟ ହେବା ଅବସ୍ଥା ।

ସର୍ବଗ୍ରହରୂପୀ-ପୁଂ.ବି. ସମସ୍ତ ଗ୍ରହସ୍ୱରୂପ, ବିଷ୍ଣୁ, କୃଷ୍ଣ, ଜନାର୍ଦ୍ଦନ ।

ସର୍ବଗ୍ରନ୍ଥାପନ୍ଥା—ବି. ନାଗଦମନୀ ।

ସର୍ବଗ୍ରାସ-ବି. ସମୁଦାୟ ପଦାର୍ଥକୁ ଖାଇବା, ଚନ୍ଦ୍ରଗ୍ରହଣ ବା ସୂର୍ଯ୍ୟପରାଗ ସମୟରେ ଚନ୍ଦ୍ରର ବା ସୂର୍ଯ୍ୟର ସମୁଦାୟ ଅଂଶ ଅଦୃଶ୍ୟ ହେବା ଅବସ୍ଥା ।

ସର୍ବଗ୍ରାସୀ—ପୁଂ. ବିଂ. ଯେ ସମସ୍ତ ବସ୍ତୁକୁ ଗ୍ରାସକରେ, ଯେ ସବୁ ପଦାର୍ଥକୁ ଆତ୍ମସାତ୍ କରେ, (ସ୍ତ୍ରୀ) ସର୍ବଗ୍ରାସିନୀ ।

ସର୍ବଙ୍କଷ—ବିଂ. (ସର୍ବଂ + କଷ୍ + କ.ଅ) ସର୍ବାତଙ୍କାମକ, ସର୍ବଶ୍ରେଷ୍ଠ, ପାପୀ,(ବି) ପାପ ।

ସର୍ବଚର୍ମୀଣ—ବିଂ.(ସର୍ବ + ଚର୍ମ + ଈନ) ସକଳଚର୍ମନିର୍ମିତ, ଯେଉଁ ବସ୍ତୁର ସମ୍ପୂ-

ଦାୟ ଅଂଶ ଚର୍ମନିର୍ମିତ ।

ସର୍ବଚ୍ଛନ୍ଦକ—ବିଂ. ସର୍ବବାଞ୍ଛାପୂର୍ଣ୍ଣକାରୀ ।

ସର୍ବଜ—ବିଂ. (ସର୍ବ+ଜନ୍+ଅ) ସମସ୍ତ କାରଣରୁ ଜାତ,ସକଳ ଦୋଷରୁ ଜାତ

ସର୍ବଜନ-ବି.(କ.ଧା)ସମସ୍ତ ବ୍ୟକ୍ତିମାନେ ।

ସର୍ବଜନତା—ସ୍ତ୍ରୀ. ବି. (ସର୍ବଜନ+ତା) ସର୍ବଜନ ।

ସର୍ବଜନନୀ—ସ୍ତ୍ରୀ. ବି. ସମସ୍ତଙ୍କର ଉତ୍ପାଦିକା, (ବିଂ) ସର୍ବଜନ ସମ୍ବନ୍ଧୀୟ ।

ସର୍ବଜନପ୍ରିୟ-ପୁଂ.ବିଂ. (କ.ଧା ଓ ୬ତତ୍) ସବୁଲୋକଙ୍କର ପ୍ରିୟ,(ସ୍ତ୍ରୀ)ସର୍ବଜନପ୍ରିୟା

ସର୍ବଜନପ୍ରିୟା—ସ୍ତ୍ରୀ. ବି. ଋଦ୍ଧି, ବୃଦ୍ଧି ।

ସର୍ବଜନବୋଧ—ବିଂ.(କ.ଧା ଓ ୩ତତ୍) ଯାହା ସମସ୍ତେ ବୁଝିପାରନ୍ତି ।

ସର୍ବଜନସ୍ୱୀକୃତ--ବିଂ. (କ.ଧା ଓ ୩ତତ୍) ସମସ୍ତଙ୍କ ଦ୍ୱାରା ସ୍ୱୀକୃତ ।

ସର୍ବଜନାନୁମତ—ବିଂ.(କ.ଧା ଓ ୩ତତ୍) ସମସ୍ତଙ୍କ ଦ୍ୱାରା ଅନୁମୋଦିତ ।

ସର୍ବଜନୀନ—ବିଂ. ( ସର୍ବଜନ+ଈନ ) ସର୍ବଜନ ସମ୍ବନ୍ଧୀୟ, ସର୍ବଲୋକ ହିତକର, ସର୍ବତ୍ର ପ୍ରସିଦ୍ଧ ।

ସର୍ବଜନୀୟ-ବିଂ.ସକଳଲୋକର ହିତକର ।

ସର୍ବଜୟ—ବି. ସକଳ ବିଷୟରେ ଜୟ, ସକଳ କାର୍ଯ୍ୟରେ ଜୟ ।

ସର୍ବଜୟା-ବି. ସ୍କନ୍ଦପୁରାଣୋକ୍ତ ସ୍ତ୍ରୀକର୍ତ୍ତବ୍ୟ ଦ୍ୱାଦଶମାସ କର୍ତ୍ତବ୍ୟ ବ୍ରତବିଶେଷ, ହରିଦ୍ରାଦି ବର୍ଗର ପୁଷ୍ପକ୍ଷୁପବିଶେଷ,ରକ୍ତଫୁଲର ଗଛ । [ଦେଖ ।

ସର୍ବଜାଣ—ଗ୍ରା. ବିଂ. (ସଂ-ସର୍ବଜ୍ଞ) ସର୍ବଜ୍ଞ

ସର୍ବଜିତ୍—ବିଂ. (ସର୍ବ+ଜି+କ.କ୍ୱିପ୍) ଯେ ସମସ୍ତଙ୍କୁ ଜୟ କରେ, ବିଶ୍ୱଜୟୀ, (ବି)କାଳଚକ୍ରର ଏକବିଂଶ ବର୍ଷ,ମୃତ୍ୟୁ, କାଳ, ଯଜ୍ଞବିଶେଷ ।

ସର୍ବଜୀବ—ବି. ସମସ୍ତ ଜୀବ ।

ସର୍ବଜୀବମୟ—ବିଂ. ( ସର୍ବଜୀବ+ମୟ ) ସକଳ ଜୀବ ସ୍ୱରୂପ ।

ସର୍ବଜୀବୀ—ପୁଂ.ବିଂ. ସର୍ବଜୀବଯୁକ୍ତ,ସର୍ବଜୀବବିଶିଷ୍ଟ ।

ସର୍ବଜ୍ଞ—ପୁଂ.ବିଂ. (ସର୍ବ+ଜ୍ଞା+କ.ଅ) ସକଳ ଜ୍ଞାତା, ଯେ ସମସ୍ତ ବିଷୟ ଜାଣେ, (ସ୍ତ୍ରୀ) ସର୍ବଜ୍ଞା, (ବି) ଶିବ,ବୁଦ୍ଧ, ବ୍ରହ୍ମା, ପରମେଶ୍ୱର ।

ସର୍ବଜ୍ଞତା(ତ୍ୱ)—ବି. ( ସର୍ବଜ୍ଞ+ଭା.ତା ) ସର୍ବଜ୍ଞର ଭାବ ବା ଧର୍ମ, ଅତୀତ ଅନାଗତ ଜ୍ଞାନେ କ୍ଷମତା ।

ସର୍ବଜ୍ଞମ୍ମନ୍ୟ—ବିଂ. ସର୍ବଜ୍ଞମାନୀ, ଯେ ଆପଣାକୁ ସର୍ବଜ୍ଞ ବୋଲି ବିବେଚନା କରେ ।

ସର୍ବଜ୍ଞା—ସ୍ତ୍ରୀ. ବି. (ସର୍ବଜ୍ଞ+ଆ) ଦୁର୍ଗା, (ସ୍ତ୍ରୀ. ବିଂ) ସର୍ବଜ୍ଞର ସ୍ତ୍ରୀଲିଙ୍ଗ ।

ସର୍ବଜ୍ଞାତା(ତୃ)—ପୁଂ. ବିଂ. (ସର୍ବ+ଜ୍ଞା+କ.ତୃ)ସକଳ ଜ୍ଞାତା, ଯେ ସମସ୍ତ ବିଷୟ ଜାଣେ, (ସ୍ତ୍ରୀ) ସର୍ବଜ୍ଞାତ୍ରୀ ।

ସର୍ବଜ୍ୟା(ଜ୍ୟା)ନ—ବି. ସର୍ବନାଶ, ସବୁ ବସ୍ତୁର ନାଶ । [ ଗ୍ରାମ୍ୟ ।

ସର୍ବଢ଼—ଗ୍ରା. ବି. ପଣା, ମିଠା ମିଶ୍ରିତ

ସର୍ବତଃ—ଅ.(ସର୍ବ+ତସ୍) ଚାରିଆଡ଼େ, ସବୁଆଡ଼େ, ସବୁଆଡ଼ୁ, ସବୁପ୍ରକାରେ, ସବୁବିଷୟରେ, ସମ୍ପୂର୍ଣ୍ଣରୂପେ ।

ସର୍ବତଃପାଣିପାଦ—ବି. ସର୍ବ ସ୍ଥଳରେ ଯାହାର ହସ୍ତ ଓ ପଦ, ବିଷ୍ଣୁ ।

ସର୍ବତଃଶୁଭା—ସ୍ତ୍ରୀ.ବି. ପ୍ରିୟଙ୍ଗୁ ବୃକ୍ଷ, (ବିଂ) ଚତୁର୍ଦ୍ଦିଗରେ ଶୁଭବିଶିଷ୍ଟ ।

ସର୍ବତନ୍ତ୍ର—ପୁଂ. ବିଂ. (ବ.ବ୍ରୀ) ସକଳ ତନ୍ତ୍ରାଧେତା, ଯେଉଁ ବିଷୟ ସ୍ୱୟଂ ପ୍ରସିଦ୍ଧ, ଅର୍ଥାତ୍ ଯାହାପାଇଁ ଅନ୍ୟ ପ୍ରମାଣ ଆବଶ୍ୟକ ହୁଏନାହିଁ, ସର୍ବଶାସ୍ତ୍ର ସମ୍ମତ, ( ଷ-୬ତତ୍ ) ସାଧାରଣତନ୍ତ୍ର ଶାସନ,(କ.ଧା) ସବୁପ୍ରକାର ତନ୍ତ୍ରଶାସ୍ତ୍ର ।

ସର୍ବତାପକ(ନ)—ବିଂ. (ସର୍ବ+ତପ୍+କ.ଅକ) ଯେ ସମସ୍ତଙ୍କୁ ତାପିତ କରେ, ଯେ ସମସ୍ତଙ୍କୁ ଦୁଃଖ ଦିଏ, (ବି) କାମଦେବ, ସୂର୍ଯ୍ୟ ।

ସର୍ବତି—ଗ୍ରା. ବିଂ. ପଣାପରି ମିଠା ।

ସର୍ବତିକ୍ତା—ବି. କାକମାଚୀ, ନୁଣନୁଣିଆ ଶାକଗୁଳ୍ମ, ଭଣ୍ଟାକୀ, ବାଇଗଣ ।

ସର୍ବତୀର୍ଥ—ବି. ସକଳ ତୀର୍ଥ, ସମୁଦାୟ ତୀର୍ଥ ।

ସର୍ବତୀର୍ଥମୟ—ବିଂ.ସମୁଦାୟ ତୀର୍ଥସ୍ୱରୂପ, (ସ୍ତ୍ରୀ) ସର୍ବତୀର୍ଥମୟୀ—ଗଙ୍ଗା ।

ସର୍ବତୀର୍ଥାତ୍ମକ—ବିଂ. ସର୍ବତୀର୍ଥ ସ୍ୱରୂପ ।

ସର୍ବତେ—ଗ୍ରା. ଅ. (ସଂ-ସର୍ବତଃ) ସବୁପ୍ରକାରେ, ସବୁଠାରେ, ସମସ୍ତଙ୍କ ବିଷୟରେ ।

ସର୍ବତୋଗାମୀ—ପୁଂ.ବିଂ. ସକଳ ସ୍ଥାନେ ଗମନଶୀଳ, ଯେ ସମସ୍ତ ସ୍ଥାନକୁ ଗମନ କରିପାରେ ।

ସର୍ବତୋବୃତ୍ତ—ବିଂ. (ସର୍ବତଃ+ବୃତ୍ତ) ସର୍ବତଃ ବ୍ୟାପକ, ଚକ୍ରାକାର ।

ସର୍ବତୋଭଦ୍ର—ବିଂ. ( ସର୍ବତଃ+ଭଦ୍ର) ସର୍ବତଃ ମଙ୍ଗଳଦାୟକ, (ପୁଂ) ଯାହାର ମୁଣ୍ଡ ମୁଛ ଦାଢ଼ି ସବୁ କେଶ ମୁଣ୍ଡିତ ହୋଇଅଛି, (ବି) ଦେବାଳୟବିଶେଷ, ରାଜାଙ୍କ ବ୍ୟବହାରାର୍ଥ ନିର୍ମିତ ଗୃହବିଶେଷ, ବିଷ୍ଣୁରଥ, ବ୍ୟୂହବିଶେଷ, ଉତ୍ସର୍ଗ ବା ପ୍ରତିଷ୍ଠାଦି କର୍ମରେ ପୂଜାଧାର ଚତୁଷ୍କୋଣ ମଣ୍ଡଳବିଶେଷ,ନିମ୍ବଗଛ, ବାଉଁଶ,ଯାତ୍ରା, ଦାନ, ବିବାହାଦି ସମ୍ବନ୍ଧରେ ଶୁଭାଶୁଭ ଜ୍ଞାପକ ଜ୍ୟୋତିଷୋକ୍ତ ଗ୍ରହଚକ୍ରବିଶେଷ, ବିଚିତ୍ରଅକ୍ଷର ବିନ୍ୟାସଯୁକ୍ତ ଚିତ୍ରକାବ୍ୟବିଶେଷ, ଏକପ୍ରକାର ପ୍ରହେଳିକା, ଗନ୍ଧଦ୍ରବ୍ୟବିଶେଷ, ଯେଉଁ ଗୃହର ଚାରିପାଖେ ପରିକ୍ରମା କରିବାକୁ ସ୍ଥାନ ଥାଏ, ହଠ ଯୋଗରେ ଆସନ ଓ ମୁଦ୍ରାବିଶେଷ ।

ସର୍ବତୋଭଦ୍ରକଚ୍ଛେଦ—ବି. ଭଗନ୍ଦର ରୋଗର ଚିକିତ୍ସା ପାଇଁ କରାଯିବା ଚତୁଷ୍କୋଣ ଅସ୍ତ୍ରକ୍ଷତ ।

ସର୍ବତୋଭଦ୍ରଚକ୍ର—ବି. ମନୁଷ୍ୟମାନଙ୍କର ଶୁଭାଶୁଭ ଜ୍ଞାନାର୍ଥ ଚକ୍ରବିଶେଷ ।

ସର୍ବତୋଭଦ୍ରମଣ୍ଡଳ—ବି.ଶାରଦୀୟ ଦୁର୍ଗା ପୂଜା, ବ୍ରତ, ବୃଷୋତ୍ସର୍ଗ ଓ ଗୃହ, ମନ୍ଦିର, ଜଳାଶୟାଦି ପ୍ରତିଷ୍ଠା ଉପଲକ୍ଷରେ ପଞ୍ଚ ବର୍ଣ୍ଣୀ ଚୂର୍ଣ୍ଣ ଦ୍ୱାରା ଭୂପୃଷ୍ଠରେ ଅଙ୍କିତ କିମ୍ବା ବସ୍ତ୍ରରେ ରଞ୍ଜିତ ପଦ୍ମଯୁକ୍ତ ଚତୁଷ୍କୋଣ ମଣ୍ଡଳବିଶେଷ ।

ସର୍ବତୋଭଦ୍ରା—ବି. ଗମ୍ଭାରଗଛ, ନଟ-ଯୋଷିତ୍, ନର୍ତ୍ତୀ ।

ସର୍ବତୋଭାବରେ—କ୍ରି. ବି. ବି°. ସବୁ-ପ୍ରକାରେ,ସମ୍ପୂର୍ଣ୍ଣ ରୂପେ,ସର୍ବତୋଭାବେ ।

ସର୍ବତୋମୁଖ—ପୁଂ. ବି°. (ସର୍ବତଃ+ମୁଖ) ବ.ବ୍ରୀ; ସର୍ବଦିଗଭିମୁଖୀ, ସବୁ-ଆଡ଼କୁ ମୁହଁକରିଥିବା, ସର୍ବଦିଗବର୍ତ୍ତୀ, ସର୍ବତ୍ରସ୍ଥିତ, ସର୍ବତ୍ର ବ୍ୟାପକ, (ସ୍ତ୍ରୀ) ସର୍ବତୋମୁଖୀ, (ବି) ଆକାଶ,ସ୍ୱର୍ଗ,ଜଳ, ଶିବ, ବ୍ରହ୍ମା, ଆତ୍ମା, ଅଗ୍ନି, ବ୍ରାହ୍ମଣ, ବ୍ୟୂହରଚନାବିଶେଷ ।

ସର୍ବତୋମୁଖୀପ୍ରତିଭା—ବି. ଯେଉଁ ପ୍ରତିଭା ସବୁଦିଗରେ କାର୍ଯ୍ୟ କରେ ।

ସର୍ବତ୍ୟାଗ—ବି. (୬ତତ୍) ସବୁବିଷୟର ବର୍ଜନ ।

ସର୍ବତ୍ୟାଗୀ—ପୁଂ. ବି°. (ସର୍ବ+ତ୍ୟଜ୍+କ.ଇନ୍) ଯେଉଁବ୍ୟକ୍ତି ଯାବତୀୟ ବିଷୟଭୋଗ ବର୍ଜନ କରିଥାଏ, (ସ୍ତ୍ରୀ) ସର୍ବତ୍ୟାଗିନୀ ।

ସର୍ବତ୍ର—ଅ. (ସର୍ବ+ତ୍ର) ସବୁଠାରେ, ସବୁଦେଶରେ, ସବୁକାଳରେ, ସବୁ-ଆଡ଼େ, ସକଳ ବିଷୟରେ ।

ସର୍ବତ୍ରଗ—ପୁଂ. ବି°. (ସର୍ବତ୍ର+ଗମ୍+କ.ଅ) ସର୍ବତ୍ରଗାମୀ, (ସ୍ତ୍ରୀ) ସର୍ବତ୍ରଗା, (ପୁଂ.ବି) ବାୟୁ, ମନୁଙ୍କର ଏକ ପୁତ୍ର, ଭୀମସେନଙ୍କର ଏକପୁତ୍ର ।

ସର୍ବତ୍ରଗତ—ବି°.ସର୍ବତ୍ର ବ୍ୟାପ୍ତ,ସମ୍ପୂର୍ଣ୍ଣ ।

ସର୍ବତ୍ରଗାମୀ—ପୁଂ.ବି°. (ସର୍ବତ୍ର+ଗମ୍+କ.ଇନ୍) ସର୍ବତ୍ରଗ ଦେଖ,(ସ୍ତ୍ରୀ)ସର୍ବତ୍ର-ଗାମିନୀ, (ବି) ବାୟୁ, ପରମାତ୍ମା ।

ସର୍ବତ୍ରସତ୍ତ୍ୱ—ବି°. ସକଳସ୍ଥଳରେ ସତ୍ତ୍ୱ-ବିଶିଷ୍ଟ, ଯେ ସବୁସ୍ଥାନରେ ବିଦ୍ୟମାନ ଥାଆନ୍ତି ।

ସର୍ବତ୍ରୈବ—ଅବ୍ୟ. (ସର୍ବତ୍ର+ଏବ) ସବୁଠାରେହିଁ ।

ସର୍ବଥା—ଅବ୍ୟ.(ସର୍ବ+ଥା)ସବୁପ୍ରକାରେ, ଅତିଶୟ, ଅତ୍ୟନ୍ତ,ହଁ, ନିଶ୍ଚେ,ଅବଶ୍ୟ ।

ସର୍ବଦ—ବି°.(ସର୍ବ+ଦା+କ.ଅ)ସର୍ବ-ଦାନକାରୀ, (ସ୍ତ୍ରୀ) ସର୍ବଦା ।

ସର୍ବଦଣ୍ଡଧର—ପୁଂ. ବି. ଶିବ ।

ସର୍ବଦମନ—ବି°.(ସର୍ବ+ଦମି+କ.ଅନ) ସକଳ ଦମନକର୍ତ୍ତା,ସକଳଙ୍କର ଶାସକ, (ସ୍ତ୍ରୀ)ସର୍ବଦମନା,(ପୁଂ.ବି)ରାଜା ଦୁଷ୍ମନ୍ତଙ୍କ ଔରସରେ ଶକୁନ୍ତଳାଙ୍କ ଗର୍ଭଜାତ ପୁତ୍ର ରାଜା ଭରତଙ୍କ ଶିଶୁକାଳୀନ ନାମ ।

ସର୍ବଦରାଜ—ପୁଂ. ବି. ଶାକ୍ୟମୁନି ।

ସର୍ବଦର୍ଶନ—ବି.ସକଳ ବିଷୟରେ ଦୃଷ୍ଟି, ଦର୍ଶନ,(ବି°) ଯାହାର ସକଳବିଷୟରେ ଦୃଷ୍ଟି ଅଛି ।

ସର୍ବଦର୍ଶନସଂଗ୍ରହ—ବି. ମାଧବାଚାର୍ଯ୍ୟଙ୍କ କୃତ ସଂସ୍କୃତ ଗ୍ରନ୍ଥବିଶେଷ ।

ସର୍ବଦର୍ଶୀ—ପୁଂ. ବି°. (ସର୍ବ+ଦୃଶ୍+କ. ଇନ୍) ଯେ ସବୁ ବିଷୟ ଦେଖିପାରେ, ସର୍ବଦ୍ରଷ୍ଟା, ସର୍ବଜ୍ଞ, (ସ୍ତ୍ରୀ) ସର୍ବଦର୍ଶିନୀ, (ପୁଂ.ବି) ବୁଦ୍ଧ, ପରମେଶ୍ୱର ।

ସର୍ବଦା—ଅବ୍ୟ. (ସର୍ବ+ଦା) ସବୁ-ବେଳେ, ସବୁକାଳରେ ।

ସର୍ବଦୁଃଖ—କ୍ଲୀ.ବି. ସକଳପ୍ରକାର ଦୁଃଖ, ଆଧ୍ୟାତ୍ମିକ, ଆଧିଦୈବିକ ଓ ଆଧି-ଭୌତିକ ଏହି ତ୍ରିବିଧ ଦୁଃଖ ।

ସର୍ବଦୁଃଖକର-ବି°. ସର୍ବଦୁଃଖପ୍ରଦ ଦେଖ ।

ସର୍ବଦୁଃଖକ୍ଷୟ—ବି.(୬ତତ୍)ସମସ୍ତ ଦୁଃଖର ନାଶ, ମୋକ୍ଷ ।

ସର୍ବଦୁଃଖପ୍ରଦ—ପୁଂ.ବି°. ଯେ ସବୁ ଦୁଃଖ ଦିଏ, (ସ୍ତ୍ରୀ) ସର୍ବଦୁଃଖପ୍ରଦା ।

ସର୍ବଦୁଷ୍ଟାନ୍ତକୃତ--ପୁଂ.ବି°. ସକଳପ୍ରକାର ଦୁଷ୍ଟର ଦମନ ବା ନାଶକାରୀ ।

ସର୍ବଦୃକ୍—ପୁଂ.ବି°.(ସର୍ବ+ଦୃଶ୍+କ୍ୱିପ୍) ସର୍ବଦ୍ରଷ୍ଟା, ସର୍ବଦର୍ଶୀ ।

ସର୍ବଦେବ—ବି. ସବୁ ଦେବତାମାନେ ।

ସର୍ବଦେବତାମୟ--ପୁଂ.ବି°. ସର୍ବଦେବତା ସ୍ୱରୂପ ।

ସର୍ବଦେବତ୍ୟ—ବି°.ସର୍ବଦେବତା ସମ୍ବ-ନ୍ଧୀୟ, ସର୍ବଦେବତାଙ୍କର ନିବାସଭୂତ

ସର୍ବଦେବନମସ୍କାର—ବି. ସବୁ ଦେବ-ତାଙ୍କୁ ପ୍ରଣାମ ।

ସର୍ବଦେବମୁଖ—ବି. (୬ତତ୍) ଅଗ୍ନି ।

ସର୍ବଦେବାତ୍ମକ—ବି°.ସର୍ବଦେବ ସ୍ୱରୂପ ।

ସର୍ବଦେଶମୟ—ବି°. ସକଳ ଦେଶସମ୍ବ-ନ୍ଧୀୟ, ସକଳ ଦେଶୀୟ ।

ସର୍ବଦେଶୀୟ—ବି°. (ସର୍ବଦେଶ+ଈୟ) ସର୍ବଦେଶସମ୍ବନ୍ଧୀୟ ।

ସର୍ବଦେଶ୍ୟ-ବି°.ସର୍ବଦେଶଭବ, ପ୍ରତ୍ୟେକ ଦେଶରେ ଯାହା ଅଛି ।

ସର୍ବଦୈବସତ୍ତ୍ୱ—କ୍ଲୀ.ବି.ସର୍ବତ୍ର ସତ୍ତ୍ୱ, ଯେ ସର୍ବତ୍ର ବ୍ୟାପ୍ତ, ଯାହାର ସତ୍ତ୍ୱ ସକଳ ସ୍ଥାନରେ ବିଦ୍ୟମାନ ଅଛି ।

ସର୍ବଦ୍ରଷ୍ଟା—ପୁଂ.ବି.ବି°. (ସର୍ବ+ଦୃଶ୍+କ.ତୃ)ସର୍ବଦର୍ଶୀ ଦେଖ, (ସ୍ତ୍ରୀ)ସର୍ବଦ୍ରଷ୍ଟ୍ରୀ

ସର୍ବଧନୀ—ପୁଂ.ବି°. ସକଳପ୍ରକାର ଧନ-ଯୁକ୍ତ, ସକଳପ୍ରକାର ଧନବିଶିଷ୍ଟ ।

ସର୍ବଧନ୍ୱା—ପୁଂ. ବି. କାମଦେବ ।

ସର୍ବଧର—ପୁଂ. ବି. (ସର୍ବ+ଧୃ+ଅ) ସକଳର ଧାରକ ।

ସର୍ବଧର୍ମ—ବି. ସବୁ ପ୍ରକାରର ଧର୍ମ ।

ସର୍ବଧର୍ମମୟ—ବି°(ସର୍ବଧର୍ମ+ମୟ)ସର୍ବ-ଧର୍ମ ସ୍ୱରୂପ ।

ସର୍ବଧର୍ମମୁଦ୍ରା—ବି.ବୌଦ୍ଧ ସମାଧିଭେଦ

ସର୍ବଧର୍ମସମତା—ସ୍ତ୍ରୀ. ବି. ସକଳ ଧର୍ମର ସମତା, ସକଳ ଧର୍ମର ତୁଲ୍ୟତ୍ୱ,ବୌଦ୍ଧ ସମାଧିଭେଦ ।

ସର୍ବଧର୍ମସମନ୍ୱୟ—ବି. (୬ତତ୍) ବିଭିନ୍ନ ଧର୍ମମତମାନ ଆଲୋଚନା କରି ତହିଁରେ ଲକ୍ଷିତ ମତଭେଦମାନ ଖଣ୍ଡନ ପୂର୍ବକ ସବୁ ଧର୍ମର ଏକ ମତତ୍ୱର ପ୍ରତିପାଦନ ।

ସର୍ବଧାତୁକ—ବି.(ସର୍ବଧାତୁ+କ)ତମ୍ବା ।

ସର୍ବଧାମ—ବି. ବାସଗୃହ, ଜନ୍ମଭୂମି, ସ୍ୱଦେଶ ।

ସର୍ବଧାରୀ(ରି)—ବି. କାଳଚକ୍ରର ଦ୍ୱାବିଂଶ ବର୍ଷ, (ବି°) ସର୍ବଧାରକ, ଯେ ସକଳ ଧାରଣ କରେ ।

ସର୍ବଧୁରାବହ—ବି°. (ସର୍ବ+ଧୁରା+ବହ୍+କ.ଅ)ଯେ ସବୁ ପ୍ରକାରର ଭାରବହେ, (ବି)ଯେଉଁ ପଶୁ (ଘୋଡ଼ା, ବଳଦଆଦି) ଗାଡ଼ି, ରଥ, ଲଙ୍ଗଳ ପ୍ରଭୃତି ଟାଣେ ଏବଂ ଯେ ମନୁଷ୍ୟ ଓ ବୋଝଆଦି ବହେ

ସର୍ବଧୁକ୍ଷଣ—ପୁଂ.ବି.ସକଳ ଭାର ବାହକ,

ରଥ ଲଙ୍ଗଳାଦିର ଭାରବାହକ ଗବାକ୍ଷ ।

ସର୍ବନି(ନା)—ଗ୍ରା.(ସମ୍ଭବ)ବି. (ସଂ-ଶ୍ରାବଣୀ) ବର୍ଷା ଋତୁରେ ଧାନ କ୍ଷେତ୍ରରେ ମଞ୍ଜିକୁ ଜନ୍ମିବା ଅନାବନା ବା ବାଉଁଶିଆ ତୃଣ ।

ସର୍ବନାଭ—ବି(ସର୍ବ+ନାଭି+ଅ)ବ.ଗ୍ରୀ; ଏକପ୍ରକାର ଅସ୍ତ୍ର ।

ସର୍ବନାମ—ବି. (ସର୍ବ+ନାମନ୍) ୬ତତ୍, ସମସ୍ତଙ୍କର ନାମ, (ବ.ଗ୍ରୀ-ବ୍ୟାକରଣ) ଯେଉଁ ସବୁ ଶବ୍ଦ (ଆମ୍ଭେ, ମୁଁ, ତୁମ୍ଭେ, ତୁ, ଏ, ସେ, ତାହା, ଯେ, ସର୍ବ, ସବୁ, ଇତ୍ୟାଦି) ବିଶେଷ୍ୟ ପଦ ପରିବର୍ତ୍ତରେ ବ୍ୟବହୃତ ହୁଏ, ବ୍ରହ୍ମା, (ବିଂ) ସକଳ ନାମବିଶିଷ୍ଟ ।

ସର୍ବନାଶ—ବି. (୬ତତ୍) ସବୁ ପଦାର୍ଥର ବା ବସ୍ତୁର ବା ବିଷୟର ଧ୍ୱଂସ, ସମୂଳ ବିନାଶ, ପ୍ରଳୟ ।

ସର୍ବନାଶିନୀ—ସ୍ତ୍ରୀ. ବିଂ.(ସର୍ବନାଶିନ୍+ଈ) ସର୍ବନାଶୀର ସ୍ତ୍ରୀଲିଙ୍ଗ,(ସ୍ତ୍ରୀ.ବି)ମହାକାଳୀ

ସର୍ବନାଶୀ—ପୁଂ. ବିଂ. (ସର୍ବନାଶ+ଇନ୍) ସର୍ବ ଧ୍ୱଂସକାରୀ,ଯେ ସର୍ବନାଶ ଘଟାଏ, ସର୍ବନାଶକାରୀ, ପ୍ରଳୟଙ୍କର, (ସ୍ତ୍ରୀ)ସର୍ବନାଶିନୀ ।

ସର୍ବନାଶେ ସମୁତ୍ପନ୍ନେଅର୍ଦ୍ଧଂତ୍ୟଜତି ପଣ୍ଡିତଃ-(ପ୍ରବଚନ), ପଣ୍ଡିତ ବା ଜ୍ଞାନୀ ବ୍ୟକ୍ତି ଯେଉଁଠାରେ କୌଣସି ବସ୍ତୁର ସର୍ବନାଶ ଘଟିବା ଅବଶ୍ୟମ୍ଭାବୀ ବୋଲି ଦେଖନ୍ତି ସେଠାରେ ଉକ୍ତ ବସ୍ତୁର ଅଧେ ବା ଅଂଶେ ତ୍ୟାଗ କରି ଅନ୍ୟ ଅଂଶକୁ ରକ୍ଷା କରନ୍ତି ।

ସର୍ବନିୟନ୍ତା—ବିଂ.(ସର୍ବ+ନି+ଯମ୍+କ.ତୃ) ସକଳ ବିଷୟର ପରିଚାଳକ, (ସ୍ତ୍ରୀ) ସର୍ବନିୟନ୍ତ୍ରୀ ।

ସର୍ବନିଯୋଜକ—ବିଂ. ସକଳର ନିଯୋଜନକାରୀ, ଯେ ସମସ୍ତଙ୍କୁ ନିଯୋଗ କରନ୍ତି, (ପୁଂ.ବି) ବିଷ୍ଣୁ ।

ସର୍ବନିଳୟ—ବିଂ. ସର୍ବାଧାର ସମ୍ପନ୍ନ, ବାସଗୃହଯୁକ୍ତ ।

ସର୍ବନ୍ଦମ—ପୁଂ.ବି.ବିଂ. (ସର୍ବ+ଦମ୍+କ.ଅ) ସର୍ବଦମନ ଦେଖ ।

ସର୍ବନ୍ଦମନ—ପୁଂ.ବି.ସର୍ବଦମନ,ଭରତ ।

ସର୍ବପତି—ପୁଂ.ବି.ସମସ୍ତଙ୍କର ପତି,ବିଷ୍ଣୁ ।

ସର୍ବପର୍ଣୀଣ—ପୁଂ. ବି. ସାରଥି ।

ସର୍ବପଥଜ୍ଞ—ପୁଂ.ବିଂ. (ସର୍ବପଥ+ଜ୍ଞା+କ.ଅ) ଯେ ସବୁ ବାଟ ଜାଣେ, (ସ୍ତ୍ରୀ) ସର୍ବପଥଜ୍ଞା ।

ସର୍ବପଥୀନ—ପୁଂ.ବିଂ(ସର୍ବ+ପଥ+ଈନ) ସର୍ବପଥଗାମୀ, ସର୍ବପଥଜ୍ଞ, ସର୍ବପଥବ୍ୟାପୀ, (ସ୍ତ୍ରୀ) ସର୍ବପଥୀନା, (ବି) ରଥ, ଯେଉଁ ରଥ ସବୁପ୍ରକାର ପଥରେ ଯାଇପାରେ, ଯେଉଁ ରଥ ରାସ୍ତାର ସବୁ ଅଂଶକୁ ଅଧିକାର କରେ ।

ସର୍ବପଶୁ—ବି. ମୃଗବଳି, ସକଳପ୍ରକାର ପଶୁ ।

ସର୍ବପା—ସ୍ତ୍ରୀ.ବି. ବଳିରାଜ ପତ୍ନୀ, (ସ୍ତ୍ରୀ.ବି. ସର୍ବ+ପା+କ.ଅ+ଆ)ସମସ୍ତ ପଦାର୍ଥ ପାନକର୍ତ୍ତ୍ରୀ, ସମସ୍ତଙ୍କ ପାଳନକର୍ତ୍ତ୍ରୀ, (ପୁଂ.ବିଂ) ସର୍ବପ ।

ସର୍ବପାଚକ—ବି. (ସର୍ବ+ପଚ୍+ଣିଚ୍+କ.ଅକ) ସୁହାଗା, ଟଙ୍କଣକ୍ଷାର ।

ସର୍ବପାଳ—ପୁଂ.ବିଂ. (ସର୍ବ+ପାଲ୍+ଅ) ସମସ୍ତଙ୍କର ପାଳକ,ଯେ ସମସ୍ତଙ୍କୁ ପାଳନ କରନ୍ତି ।

ସର୍ବପାଳକ—ପୁଂ. ବିଂ. ସମସ୍ତଙ୍କର ପାଳନକାରୀ ।

ସର୍ବପୁରୁଷ—ବିଂ. ସକଳ ପୁରୁଷଯୁକ୍ତ, (ପୁଂ.ବି) ସକଳ ପୁରୁଷ ।

ସର୍ବପୂତ—ବିଂ.ସକଳ ବିଷୟରେ ପବିତ୍ର ।

ସର୍ବପୂରକ—ବିଂ. (ସର୍ବ+ପୂର୍+ଅକ) ସକଳ ପୂରଣକାରୀ ।

ସର୍ବପୂର୍ଣ୍ଣିହ—କ୍ଳୀ.ବି. ସମ୍ଭାର । [ପ୍ରଥମ ।

ସର୍ବପୂର୍ବ—ବିଂ. ସକଳର ପୂର୍ବ,ସମସ୍ତଙ୍କର

ସର୍ବପୃଷ୍ଠ—ପୁଂ. ବି. ଯାଗଭେଦ, (ବିଂ) ସମସ୍ତର ପଶ୍ଚାତ୍ ।

ସର୍ବପ୍ରକାର—ବି. (କ.ଧା) ସବୁରକମ, (ବିଂ-ବ.ଗ୍ରୀ) ସବୁରକମର ।

ସର୍ବପ୍ରଦ—ପୁଂ. ବିଂ. (ସର୍ବ+ପ୍ର+ଦା+ଅ) ସର୍ବଦ, ସମସ୍ତ ପ୍ରଦାନକାରୀ, (ସ୍ତ୍ରୀ) ସର୍ବପ୍ରଦା ।

ସର୍ବପ୍ରଧାନ—ବିଂ. (୭ତତ୍) ସବାଉପରି, ସର୍ବଶ୍ରେଷ୍ଠ, ସର୍ବୋତ୍କୃଷ୍ଟ, ( ସ୍ତ୍ରୀ ) ସର୍ବପ୍ରଧାନା ।

ସର୍ବପ୍ରଭୁ—ପୁଂ. ବି. (୬ତତ୍) ସମସ୍ତଙ୍କର ପ୍ରଭୁ, ସକଳର ନିଗ୍ରହାନୁଗ୍ରହସମର୍ଥ ।

ସର୍ବପ୍ରାୟଶ୍ଚିତ୍ତ—ପୁଂ. ବିଂ. ସକଳପ୍ରକାର ପ୍ରାୟଶ୍ଚିତ୍ତଯୁକ୍ତ, ଯେ ସକଳ ପ୍ରକାର ପ୍ରାୟଶ୍ଚିତ୍ତ କରିଥାଏ, (କ୍ଳୀ.ବି) ଆହବନୀୟ, ଅଗ୍ନିରେ ତ୍ୟାଗ ।

ସର୍ବପ୍ରିୟ—ପୁଂ. ବିଂ. (୬ତତ୍)ସମସ୍ତଙ୍କର ବଲ୍ଲଭ,ସମସ୍ତେ ଯାହାକୁ ସ୍ନେହ କରନ୍ତି, (ବ.ଗ୍ରୀ) ସମସ୍ତେ ଯାହାର ପ୍ରିୟ,ସମସ୍ତଙ୍କର ରୁଚିକର (କର୍ମ), (ସ୍ତ୍ରୀ)ସର୍ବପ୍ରିୟା; (ପୁଂ.ବି) ଶିବଭକ୍ତ ।

ସର୍ବପ୍ରିୟା—ସ୍ତ୍ରୀ. ବି. ଅସତୀ ନାରୀ,କୁଳଟା ସ୍ତ୍ରୀ, (ସ୍ତ୍ରୀ.ବିଂ) ସର୍ବପ୍ରିୟର ସ୍ତ୍ରୀଲିଙ୍ଗ ।

ସର୍ବବନ୍ଦନୀୟ—ପୁଂ. ବିଂ. (୬ତତ୍) ସମସ୍ତଙ୍କ ପୂଜନୀୟ, (ସ୍ତ୍ରୀ) ସର୍ବବନ୍ଦନୀୟା ।

ସର୍ବବର୍ତ୍ତିକା—ବି. ଗମ୍ଭାରି ଗଛ ।

ସର୍ବବଲ୍ଲଭ—ପୁଂ. ବିଂ. (୬ତତ୍)ସର୍ବପ୍ରିୟ ଦେଖ, (ସ୍ତ୍ରୀ) ସର୍ବବଲ୍ଲଭା ।

ସର୍ବବଲ୍ଲଭା—ସ୍ତ୍ରୀ.ବି.ଅସତୀ ନାରୀ,କୁଳଟା ସ୍ତ୍ରୀ, (ସ୍ତ୍ରୀ.ବିଂ) ସର୍ବବଲ୍ଲଭର ସ୍ତ୍ରୀଲିଙ୍ଗ ।

ସର୍ବବଳ—କ୍ଳୀ. ବି. ସଂଖ୍ୟାବିଶେଷ ।

ସର୍ବବାଦିସମ୍ମତ—ବିଂ. (ସର୍ବବାଦିନ୍+ସମ୍ମତ) ୩ତତ୍; ସକଳ ମତବାଦୀଙ୍କ ଦ୍ୱାରା ଅନୁମୋଦିତ, ସବୁ ସମ୍ପ୍ରଦାୟଙ୍କ ଦ୍ୱାରା ସ୍ୱୀକୃତ, ସମସ୍ତଙ୍କଦ୍ୱାରା ସ୍ୱୀକୃତ ।

ସର୍ବବାଦୀ—ପୁଂ.ବିଂ. (ସର୍ବ+ବଦ୍+କ.ଇନ୍) ସବୁପ୍ରକାରର ମତ ଅବଲମ୍ବନକାରୀ, ବିଭିନ୍ନମତାବଲମ୍ବୀ, ସବୁ ସମ୍ପ୍ରଦାୟର, (ବି) ଶିବଙ୍କର ଏକନାମ,(ସ୍ତ୍ରୀ) ସର୍ବବାଦିନୀ ।

ସର୍ବବାଧାପ୍ରଶମନ—ବି. (୬ତତ୍) ସବୁବାଧାର ନିବାରଣ ।

ସର୍ବବାହ୍ୟ—ବିଂ. ସକଳ ଲୋକମାନଙ୍କ ଦ୍ୱାରା ପରିତ୍ୟକ୍ତ ।

ସର୍ବବିଜୟୀ—ପୁଂ. ବିଂ. (ସର୍ବବିଜୟ+ଇନ୍) ସକଳ ବସ୍ତୁ ବିଜୟକାରୀ, ନିଖିଳ

ବସ୍ତୁ ବିଜୟକାରୀ ।
ସର୍ବବିଜ୍ଞାନୀ—ପୁଂ. ବିଂ. ସକଳ ବିଜ୍ଞାନ-ବିଶିଷ୍ଟ, ଯେ ସକଳ ବିଜ୍ଞାନ ଅବଗତ ହୋଇଥାଏ ।
ସର୍ବବିଦ୍—ବିଂ. (ସର୍ବ+ବିଦ୍+କ.କ୍ୱିପ୍) ସର୍ବଜ୍ଞ ଦେଖ, (ବି)ପରମେଶ୍ୱର,ଓଁକାର
ସର୍ବବିତ୍ତ୍ୱ—କ୍ଳୀ. ବି. ସର୍ବବିଦ୍‌ର ଭାବ ବା ଧର୍ମ, ସର୍ବଜ୍ଞତ୍ୱ ।
ସର୍ବବିଦ୍ୟ—ବିଂ.ସକଳବିଷୟରେ ବିଦ୍ୱାନ୍, ସକଳ ବିଦ୍ୟାବିଶିଷ୍ଟ ।
ସର୍ବବିଦ୍ୟା—ସ୍ତ୍ରୀ.ବି. (କ.ଧା)ସବୁପ୍ରକାରର ବିଦ୍ୟା ।
ସର୍ବବିଦ୍ୟାବିଶାରଦ—ପୁଂ. ବିଂ. (କ.ଧା ଓ ୭ତତ୍) ସବୁବିଦ୍ୟାରେ ପାରଦର୍ଶୀ, (ସ୍ତ୍ରୀ) ସର୍ବବିଦ୍ୟାବିଶାରଦା ।
ସର୍ବବିଦ୍ୟାମୟ—ବିଂ. (ସର୍ବବିଦ୍ୟା+ମୟ) ସକଳ ବିଦ୍ୟାସ୍ୱରୂପ ।
ସର୍ବବିଧ—ବିଂ. ସକଳପ୍ରକାର ।
ସର୍ବବିଶ୍ୱ-ବି.ସକଳ ବିଶ୍ୱ, ସମୁଦାୟ ଜଗତ୍ ।
ସର୍ବବୀଜ—ବି. (୬ତତ୍) ସମସ୍ତଙ୍କର କାରଣ, ସକଳର ବୀଜ ।
ସର୍ବବୀର—ପୁଂ. ବିଂ. (ବ.ବ୍ରୀ) ବହୁପୁତ୍ର-ଯୁକ୍ତ, (ସ୍ତ୍ରୀ) ସର୍ବବୀରା ।
ସର୍ବବୀରଜିତ୍—ପୁଂ. ବିଂ. ସକଳ ବୀର-ପୁରୁଷ ଜୟକାରୀ ।
ସର୍ବବେତ୍ତା—ପୁଂ. ( ସର୍ବ+ବିଦ୍+ତୃ ) ସର୍ବଜ୍ଞ, ସର୍ବବିତ୍ ।
ସର୍ବବେଦ—ପୁଂ.ବିଂ. (ସର୍ବ+ବିଦ୍+କ.ଅ) ସର୍ବଜ୍ଞ ଦେଖ, ସବୁ ବେଦମାନ, (ସ୍ତ୍ରୀ) ସର୍ବବେଦା. (ପୁଂ.ବି)ସର୍ବବେଦା-ଧ୍ୟେତା ବ୍ରାହ୍ମଣ ।
ସର୍ବବେଦସ—ବି. ସକଳ ସମ୍ପତ୍ତି ।
ସର୍ବବେଦା(ଦାଃ)—ପୁଂ.ବି (ସର୍ବ+ବିଦ୍ କ.ଅସ୍) ଯେଉଁ ବ୍ୟକ୍ତି ସର୍ବସ୍ୱଦକ୍ଷିଣ ଯାଗ ସମ୍ପାଦନ କରିଅଛନ୍ତି ।
ସର୍ବବେଦସୀ—ପୁଂ.ବିଂ. ସର୍ବସ୍ୱ ଦକ୍ଷିଣା-ଦାନରୂପ ଯଜ୍ଞକାରୀ ।
ସର୍ବବେଦାତ୍ମା—ପୁଂ. ବିଂ. ସର୍ବବେଦ ସ୍ୱରୂପ, ପ୍ରଣବ ।

ସର୍ବବେଦୀ—ପୁଂ.ବିଂ.(ସର୍ବବେଦ+ଇନ୍) ସର୍ବଜ୍ଞ, ସର୍ବବେଦବିଶିଷ୍ଟ.(ପୁଂ.ବି)ଶିବ ।
ସର୍ବବେଶୀ—ପୁଂ. ବିଂ(ସର୍ବବେଶ+ଇନ) ସବୁପ୍ରକାରର ବେଶଧାରୀ,(ସ୍ତ୍ରୀ)ବେଶିନୀ, (ବି) ନଟ, ବହୁରୂପ ବ୍ୟକ୍ତି ।
ସର୍ବବୈନାଶିକ—ବି. ଆତ୍ମାଆଦି ସମସ୍ତ ବିନାଶଶୀଳ ବୋଲି ଯେ କହେ,ବୌଦ୍ଧ
ସର୍ବବ୍ୟାପକ—ବିଂ. (୬ତତ୍) ସକଳ ସ୍ଥାନରେ ବିସ୍ତୀର୍ଣ୍ଣ, ସର୍ବତ୍ର ବ୍ୟାପ୍ତିଶୀଳ, ଯାହା ସକଳ ବ୍ୟାପିଅଛି,(ସ୍ତ୍ରୀ)ବ୍ୟାପିକା, (ବି) ଈଶ୍ୱର, ଶିବ, ବ୍ରହ୍ମା ।
ସର୍ବବ୍ୟାପିତ୍ୱ—ବି. ( ସର୍ବବ୍ୟାପିନ୍+ଭା. ତ୍ୱ) ସର୍ବତ୍ର ବ୍ୟାପ୍ତିଶୀଳତା, ସକଳ ସ୍ଥାନରେ ବା ସକଳ ବସ୍ତୁରେ ବ୍ୟାପି ରହିଥିବା ବା ଥିବାର ଶକ୍ତି ।
ସର୍ବବ୍ୟାପୀ—ପୁଂ. ବିଂ. ( ସର୍ବ+ବି+ଆପ୍+କ.ଇନ) ସର୍ବତ୍ର ବ୍ୟାପ୍ତିଶୀଳ, ସର୍ବତ୍ର ସ୍ଥିତ, ସର୍ବଗତ, (ସ୍ତ୍ରୀ) ବ୍ୟାପିନୀ, (ବି) ଈଶ୍ୱର, ବାୟୁ ।
ସର୍ବବ୍ରତ—ବି. ସକଳବ୍ରତ, ଯେଉଁ ବ୍ରତ ଅନୁଷ୍ଠାନ କଲେ ସକଳ ବ୍ରତର ଫଳ ହୁଏ ।
ସର୍ବଭକ୍ଷ—ପୁଂ. ବିଂ.(ସର୍ବ+ଭକ୍ଷ୍+ଅ) ସର୍ବଭକ୍ଷଣକର୍ତ୍ତା, (ସ୍ତ୍ରୀ) ଭକ୍ଷା, (ପୁଂ.ବି) ହୁତାଶନ, ଅଗ୍ନି ।
ସର୍ବଭକ୍ଷା—ସ୍ତ୍ରୀ. ବି. ଛାଗୀ. ମାଈଛେଳି ।
ସର୍ବଭକ୍ଷୀ—ପୁଂ.ବିଂ. (ସର୍ବଭକ୍ଷ+ଇନ୍) ସର୍ବଭକ୍ଷ ଦେଖ ।
ସର୍ବଭକ୍ଷ୍ୟ—ପୁଂ.ବିଂ. (ବ.ବ୍ରୀ) ସର୍ବଗ୍ରାସୀ ଦେଖ, (ସ୍ତ୍ରୀ) ସର୍ବଭକ୍ଷ୍ୟା ।
ସର୍ବଭବାରଣୀ—ସ୍ତ୍ରୀ.ବି. ସକଳ ଲୋକର ଜନନୀ, (ମାଃ ପୁରାଣ) ।
ସର୍ବଭବୋଦ୍ଭବ—ପୁଂ. ବି. ସୂର୍ଯ୍ୟ ।
ସର୍ବଭାବନ—ପୁଂ. ବି. ଶିବ, (ବିଂ)ସକଳ ପ୍ରକାର ଭାବନାଯୁକ୍ତ ।
ସର୍ବଭାକ୍—ପୁଂ.ବିଂ(ସର୍ବ+ଭଜ୍+କ୍ୱିପ୍) ସମସ୍ତପ୍ରକାର ଭଜନକାରୀ ।
ସର୍ବଭାବ—ପୁଂ. ବି. ସମସ୍ତ ପ୍ରକାର ଭାବ, ସର୍ବାନ୍ତଃକରଣ,ସମ୍ପୂର୍ଣ୍ଣରୂପ,(ଜ୍ୟୋତିଷ)

ଲଗ୍ନାଦି ଦ୍ୱାଦଶ ଭାବ ।
ସର୍ବଭୁକ୍—ପୁଂ. ବିଂ. (ସର୍ବ+ଭୁଜ୍+କ. କ୍ୱିପ୍) ସର୍ବଗ୍ରାସୀ ଦେଖ, (ବି) ଅଗ୍ନି ।
ସର୍ବଭୂତ—ବି. (କ.ଧା) ସମସ୍ତ ପ୍ରାଣୀ, ଜଗତ୍ ଜୀବଗଣ, କ୍ଷିତ୍ୟାଦି ପଞ୍ଚମହା-ଭୂତ ।
ସର୍ବଭୂତମୟ—ବିଂ. ( ସର୍ବଭୂତ + ମୟ ) ସର୍ବଜୀବ ସ୍ୱରୂପ ।
ସର୍ବଭୂତହିତ—ବି(୬ତତ୍)ସମସ୍ତପ୍ରାଣୀଙ୍କ ମଙ୍ଗଳ ।
ସର୍ବଭୂତାତ୍ମକ—ବିଂ. (ବ.ବ୍ରୀ) ସର୍ବଭୂତ ସ୍ୱରୂପ, ଏହି ଜଗତ୍ ସର୍ବଭୂତାତ୍ମକ ।
ସର୍ବଭୂତାତ୍ମା—ପୁଂ. ବି. ସକଳ ପ୍ରାଣୀର ଆତ୍ମା ।
ସର୍ବଭୂତାତ୍ମାଭୂତ—ବିଂ. ସକଳ ଭୂତର ଆତ୍ମଭୂତ,ସମସ୍ତ ପ୍ରାଣୀଙ୍କର ଆତ୍ମାସ୍ୱରୂପ ।
ସର୍ବଭୂତାଧିପତି—ପୁଂ.ବି. (୬ତତ୍)ସମସ୍ତ ପ୍ରାଣୀର ଅଧିପତି, ବିଷ୍ଣୁ ।
ସର୍ବଭୂତାଧିବାସ—ପୁଂ. ବି. ସର୍ବଭୂତର ନିବାସଭୂମି ବିଷ୍ଣୁ, ଶ୍ରୀକୃଷ୍ଣ ।
ସର୍ବଭୂତାନ୍ତକ—ପୁଂ. ବି. ସକଳ ଭୂତର ଅନ୍ତକାରୀ, ଯମ ।
ସର୍ବଭୂତାନ୍ତରାତ୍ମା—ପୁଂ. ବିଂ. ସର୍ବଜୀବର ଆତ୍ମାସ୍ୱରୂପ ।
ସର୍ବଭୂମି—ସ୍ତ୍ରୀ.ବି. ସମସ୍ତଭୂମି,ସକଳଭୂମି ।
ସର୍ବଭୂମିକ—ବି.(ସର୍ବଭୂମି+କ)ଦାରୁଚିନି ।
ସର୍ବଭୋଗୀ—ପୁଂ. ବିଂ. (ସର୍ବ+ଭୋଗିନ୍) ସର୍ବଭକ୍ଷ, ସମସ୍ତ ଭୋଗକାରୀ,(ସ୍ତ୍ରୀ)ସର୍ବ-ଭୋଗିନୀ ।
ସର୍ବଭୋଗ୍ୟ—ବିଂ. (୬ତତ୍) ସମସ୍ତଙ୍କର ଭୋଗ୍ୟ, ସକଳର ଭୋଗର ଉପଯୁକ୍ତ ।
ସର୍ବମଖ(ଖା)ସା—ପ୍ରା. (ଜୟପୁର)ଚିରସ୍ଥାୟୀ ଜାଗିର ।
ସର୍ବମଙ୍ଗଳ—ବି.ସର୍ବଶୁଭ,ସବୁବିଷୟରେ ମଙ୍ଗଳ, (ପୁଂ.ବିଂ) ମୋକ୍ଷଦାତା, ସବୁ-ପ୍ରକାରର ମଙ୍ଗଳବିଧାତା, (ସ୍ତ୍ରୀ) ସର୍ବ-ମଙ୍ଗଳା ।
ସର୍ବମଙ୍ଗଳକର—ପୁଂ.ବିଂ. ସବୁପ୍ରକାରର ମଙ୍ଗଳବିଧାୟକ,(ସ୍ତ୍ରୀ)ସର୍ବମଙ୍ଗଳକାରୀ ।

**ସର୍ବମଙ୍ଗଳମୟ**—ବିଂ. (କ.ଧା) ସକଳ-ମଙ୍ଗଳର ଆଧାର,(ସ୍ତ୍ରୀ)ସର୍ବମଙ୍ଗଳମୟୀ, (ପୁଂ.ବି) ଈଶ୍ୱର ।

**ସର୍ବମଙ୍ଗଳା**—ସ୍ତ୍ରୀ.ବି. ( ସର୍ବ+ମଙ୍ଗଳ+ଆ) ବ.ଗ୍ରା; ଦୁର୍ଗା, ଲକ୍ଷ୍ମୀ, ସୁନାମଖ୍ୟାତ ଦେବୀବିଶେଷ ।

**ସର୍ବମଢର**—ଗ୍ରା.ବି. ଏକଜାତୀୟ ପ୍ରାଚୀନ ଅର୍ଣ୍ଣବପୋତ ।

**ସର୍ବମୟ**—ପୁଂ. ବିଂ. (ସର୍ବ+ମୟ)ସର୍ବା-ତ୍ମକ, ସର୍ବବ୍ୟାପକ,ସର୍ବତ୍ର ପରାକ୍ରମଶାଳୀ, (ସ୍ତ୍ରୀ) ସର୍ବମୟୀ ।

**ସର୍ବମୟକର୍ତ୍ତା**—ପୁଂ. ବି. ଯେଉଁ ବ୍ୟକ୍ତିର କ୍ଷମତା ବା ଅଧିକାର ସର୍ବବ୍ୟାପୀ, (ସ୍ତ୍ରୀ) ସର୍ବମୟକର୍ତ୍ତ୍ରୀ ।

**ସର୍ବମଳାପଗତ**—ପୁଂ. ବି. ସମାଧିଭେଦ, ଏହି ସମାଧି ହେଲେ ସକଳ ଚିତ୍ତମଳ ଦୂରୀଭୂତ ହୁଏ ।

**ସର୍ବମହତ୍**—ବିଂ.ଅତି ବୃହତ୍, ସର୍ବୋଚ୍ଚ. ସର୍ବଶ୍ରେଷ୍ଠ ।

**ସର୍ବମାଗଧକ**—ଯେ ସମସ୍ତ ମଗଧଦେଶ ଅବଲମ୍ବନ କରିଥାଏ ।

**ସର୍ବମାତା**—ସ୍ତ୍ରୀ. ବି, (୬ତତ୍)ସମସ୍ତଙ୍କର ମାତା ।

**ସର୍ବମାତ୍ରା**—ସ୍ତ୍ରୀ. ବି. ବୈଦିକ ଛନ୍ଦୋଭେଦ

**ସର୍ବମାରମଣ୍ଡଳବିଧ୍ୱଂସନକାରୀ**-ପୁଂ.ବି.ରଶ୍ମି

**ସର୍ବମିତ୍ର**—ବି.(୬ତତ୍) ସମସ୍ତଙ୍କର ମିତ୍ର, ସମସ୍ତଙ୍କର ବନ୍ଧୁ ।

**ସର୍ବମୂଲ୍ୟ**—ବି. (ବ.ଗ୍ରା) କପର୍ଦ୍ଦକ,କଉଡ଼ି, କୌଣସି କ୍ଷୁଦ୍ର ମୁଦ୍ରା ।

**ସର୍ବମୂଷକ**—ପୁଂ.ବି.(ସର୍ବ+ମୂଷ+ଅକ) କାଳ, ସର୍ବନାଶକ ସମୟ ।

**ସର୍ବମୃତ୍ୟୁ**—ପୁଂ.ବି. ସକଳ ପ୍ରକାର ମରଣ ।

**ସର୍ବମେଧ**—ବିଂ. (ସର୍ବ+ମେଧ୍+କ.ଅ) ସର୍ବସଂହାରକ, ସର୍ବନାଶୀ, ସର୍ବସଙ୍ଗୀ, (ବି-କ.ଧା) ସର୍ବପ୍ରକାରର ଯଜ୍ଞ, ସାର୍ବ-ଜନିକ ଯଜ୍ଞ, ଦଶଦିନ କୃତ୍ୟ ସୋମ-ଯାଗବିଶେଷ ।

**ସର୍ବମେଧ୍ୟତ୍ୱ**—କ୍ଳୀ. ବି. ସମ୍ପୂର୍ଣ୍ଣ ପୂତତ୍ୱ, ପୂର୍ଣ୍ଣପବିତ୍ରତା ।

**ସର୍ବମ୍ଭର**—ପୁଂ. ବି.ପ୍ରାଣ, ପ୍ରାଣ ସମସ୍ତଙ୍କୁ ପୋଷଣ କରେ ।

**ସର୍ବଯୁ**—ଗ୍ରା. ଅ. ସବୁଠାରେ ।

**ସର୍ବଯଜ୍ଞ**—ପୁଂ.ବି. ସକଳ ପ୍ରକାର ଯଜ୍ଞ ।

**ସର୍ବଯତ୍ନବାନ୍**—ପୁ . ବିଂ. ( ସର୍ବଯତ୍ନ+ବତ୍) ସକଳପ୍ରକାର ଯତ୍ନବିଶିଷ୍ଟ,ସମସ୍ତ-ପ୍ରକାର ଯତ୍ନଯୁକ୍ତ ।

**ସର୍ବଯଜ୍ୱୀ**—ପୁଂ. ବିଂ. ସର୍ବଯଜ୍ଞ କୁଶଳୀ ।

**ସର୍ବଯମକ**—ଗ୍ରା.ବି.କାବ୍ୟାଳଙ୍କାରବିଶେଷ

**ସର୍ବଯୋଗୀ**—ପୁଂ. ବି. (୭ତତ୍) ଶିବ ।

**ସର୍ବଯୋନି**—ସ୍ତ୍ରୀ. ବି. (୬ତତ୍)ସମସ୍ତଙ୍କର କାରଣ, ସକଳ ପ୍ରକାର ଯୋନି ।

**ସର୍ବରକ୍ଷକ**—ବିଂ. (ସର୍ବ+ରକ୍ଷ୍+କ.ଅକ) ଯେ ସମସ୍ତଙ୍କୁ ରକ୍ଷାକରେ ।

**ସର୍ବରକ୍ଷଣ**—ବି.(୬ତତ୍)ସକଳର ରକ୍ଷଣ ସମସ୍ତଙ୍କର ରକ୍ଷାକରଣ, (ବି)ସର୍ବ ରକ୍ଷା କର, ସମସ୍ତଙ୍କର ରକ୍ଷକ ।

**ସର୍ବରକ୍ଷଣକବଚ**— ବି. ବ୍ରହ୍ମବୈବର୍ତ୍ତ ପୁରାଣୋକ୍ତ ବିଷ୍ଣୁ ସ୍ତବବିଶେଷ ।

**ସର୍ବରତ୍ନ**—କ୍ଳୀ. ବି. ସକଳପ୍ରକାର ରତ୍ନ ।

**ସର୍ବରତ୍ନକ**—ବି.ଜୈନମାନଙ୍କର ରତ୍ନାଧୀ-ଶ୍ୱର ଦେବତା ଭେଦ ।

**ସର୍ବରତ୍ନମୟ**—ବିଂ. ସର୍ବ ରତ୍ନ ସ୍ୱରୂପ, ସମସ୍ତପ୍ରକାର ରତ୍ନଦ୍ୱାରା ନିର୍ମିତ ।

**ସର୍ବରସ**—ବି. ଧୂନକ, ଝୁଣା, ବାଦ୍ୟଯନ୍ତ୍ର, ବୀଣାଭେଦ, ଘୃତ, ପଣ୍ଡିତ, ଲବଣରସ, ଲବଣ,(ପୁଂ.ବିଂ)ସର୍ବ ବିଦ୍ୟାରେ ନିପୁଣ (ବ୍ୟକ୍ତି), ସର୍ବ ରସବିଶିଷ୍ଟ,(ସ୍ତ୍ରୀ)ସର୍ବରସା

**ସର୍ବରସା**—ସ୍ତ୍ରୀ. ବିଂ.(ସର୍ବରସ+ଆ)ସର୍ବ ରସର ସ୍ତ୍ରୀଲିଙ୍ଗ, (ବି) ଖଇମଣ୍ଡ ।

**ସର୍ବରସୋତ୍ତମ**—ବି.ଲବଣରସ, ଲବଣ ।

**ସର୍ବରା**—ଯା. ବି. ରାଜସ୍ୱ, ଜମିର ଖଜଣା ପେଶ୍‌କସ ।

**ସର୍ବରାକାର**—ଯା. ବି. ଯେଉଁ କର୍ମଚାରୀ ପ୍ରଜାଙ୍କ ଠାରୁ ଖଜଣା ଅସୁଲ କରି ଜମିଦାର ବା ଗଭର୍ଣ୍ଣମେଣ୍ଟଙ୍କ ନିକଟରେ ଦାଖଲ କରନ୍ତି, ଯେ ଖଜଣା ଅସୁଲ କରେ ।

**ସର୍ବରାକାରୀ**—ଯା.ବିଂ. ସର୍ବରାକାର ସମ୍ବ-ନ୍ଧୀୟ, ( ଗ୍ରା.ବି ) ସର୍ବରାକାରର ପଦ ।

**ସର୍ବରାଜ୍**—ପୁଂ. ବି. (ସର୍ବ+ରଜ୍+କ୍ୱିପ୍) ଯେ ସକଳ ବିଷୟରେ ଶୋଭାପାଏ ।

**ସର୍ବରାଜେନ୍ଦ୍ର**—ପୁଂ.ବି.ସକଳ ରାଜଶ୍ରେଷ୍ଠ, ପ୍ରଧାନ ନରପତି ।

**ସର୍ବରାତ୍ର**—ବି.ରଜନୀର ସମସ୍ତ ଅଂଶ,ସକଳ ରାତ୍ରି ।

**ସର୍ବରାହ**—ଯା. ବି. ଫରମାସୀ ଜିନିଷ ଯୋଗାଇବା କର୍ମ, ପଣ୍ୟଦ୍ରବ୍ୟର ଆମ-ଦାନି ।

**ସର୍ବରି**—ଯା. ବିଂ. (ଇଂ-ସର୍ଭେ)ସରକାରୀ ସର୍ଭେ ସମ୍ବନ୍ଧୀୟ,(ଯା.ବି)ସର୍ଭେଅର୍ ବା ମାପିବା କର୍ମଚାରୀଙ୍କ କର୍ମ ।

**ସର୍ବରିମାଣ**—ଗ୍ରା.ବି. ୨୪ହସ୍ତି ପଦକାରେ ମାଣ, ଆଧୁନିକ ସର୍ଭେ ଦ୍ୱାରା ମାପ ହୋଇଥିବା ଏକର ।

**ସର୍ବରୀ**—ବି.(ସୃ+କ.ବରି)ରଜନୀ, ରାତ୍ରି ।

**ସର୍ବରୀକର**—ପୁଂ.ବି. (ବ.ଗ୍ରା)ନିଶାକର, ଚନ୍ଦ୍ର ।

**ସର୍ବରୂପ**—ବି. ସକଳପ୍ରକାର ରୂପ,(ବିଂ) ସକଳ ରୂପବିଶିଷ୍ଟ,(ପୁଂ.ବି.) ବ୍ରହ୍ମା ।

**ସର୍ବରୂପୀ**—ବିଂ. ସକଳ ରୂପବିଶିଷ୍ଟ ।

**ସର୍ବରୋଗ**-ବି.ସକଳପ୍ରକାର ରୋଗ,ସକଳ ପ୍ରକାର ପୀଡ଼ା ।

**ସର୍ବରୋହିତ**-ବିଂ. ସମ୍ପୂର୍ଣ୍ଣରୂପେ ରକ୍ତବର୍ଣ୍ଣ- [ ମଣ୍ଡିତ ।

**ସର୍ବର୍ତ୍ତୁ**—ବି.(ସର୍ବ+ଋତୁ,କ ଧା)ସବୁଋତୁ

**ସର୍ବର୍ତ୍ତୁକ**—ବିଂ. ସମସ୍ତ ଋତୁରେ ଉତ୍ପନ୍ନ ପୁଷ୍ପ ମାଲ୍ୟ ଫଳାଦି ଦ୍ୱାରା ଶୋଭିତ ।

**ସର୍ବର୍ତ୍ତୁପରିବର୍ତ୍ତ**—ବି. ବତ୍ସର, ବର୍ଷ ।

**ସର୍ବର୍ତ୍ତୁଫଳ**—ବି. ୭ତତ୍)ସର୍ବ ଋତୁରେ ଜାତ ଫଳମାନ, (ବ.ଗ୍ରା) ନଡ଼ିଆଗଛ, (ବିଂ)ଯେଉଁ ବୃକ୍ଷ ସବୁ ଋତୁରେ ଫଳ-ଦିଏ, (ସ୍ତ୍ରୀ) ସର୍ବର୍ତ୍ତୁଫଳା ।

**ସର୍ବଲ(ଳା,ଳୀ)**—ବି.(ସର୍ବ+ଲ+କ.ଅ; +ଆ, ଈ) ତୋମରାସ୍ତ୍ର, ସାବଳ, ଲୌହର ମୋଟ ଓ ଲମ୍ବ ଦଣ୍ଡ ।

**ସର୍ବଲକ୍ଷଣ**—ବି. ସକଳପ୍ରକାର ଲକ୍ଷଣ, ସମସ୍ତପ୍ରକାର ଚିହ୍ନ ।

**ସର୍ବଲବଣ**—ବି. ଔଷର ଲବଣ ।

ସର୍ବଲିଙ୍ଗୀ—ପୁଂ. ବିଂ. ( ସର୍ବ+ଲିଙ୍ଗ+ଇନ୍)ସକଳ ଚିହ୍ନଧାରୀ,(ସ୍ତ୍ରୀ)ସର୍ବଲିଙ୍ଗିନୀ, (ବି) ପାଷଣ୍ଡ, ନାସ୍ତିକ,ଦେବ ବିରୋଧାଚାରୀ ଓ ସର୍ବ ବର୍ଣ୍ଣର ଚିହ୍ନଧାରୀ, ଧର୍ମ ବିଶ୍ୱାସରହିତ ବ୍ୟକ୍ତି, ଦେବ ବିରୋଧୀ ବୌଦ୍ଧ କ୍ଷପଣକ, ଧୂର୍ତ୍ତ ବ୍ୟକ୍ତି, ପାମର ବ୍ୟକ୍ତି ।

ସର୍ବଲୋକ—ବି.ଅଖିଳ,ବ୍ରହ୍ମାଣ୍ଡ,ସମୁଦାୟ ସୃଷ୍ଟି, ସୃଷ୍ଟ ସକଳ ପ୍ରାଣୀ ।

ସର୍ବଲୋକଧାତୁପଦ୍ରବୋଦ୍ବେଗପ୍ରଶମନଭୀଷ୍ଟ—ପୁଂ. ବି. ବୁଦ୍ଧ ।

ସର୍ବଲୋକପିତାମହ-ପୁଂ.ବି.(୬ତତ୍)ବ୍ରହ୍ମା

ସର୍ବଲୋକପ୍ରସିଦ୍ଧ—ବିଂ. (୭ତତ୍) ବିଶ୍ୱବିଖ୍ୟାତ, ଯାହାକୁ ବିଶ୍ୱବାସୀ ଜାଣନ୍ତି ।

ସର୍ବଲୋକଭୟାପ୍ରମିତତ୍ରିବିଧ୍ୱଂସନକର—ପୁଂ.ବି. ବୁଦ୍ଧଦେବ ।

ସର୍ବଲୋକମୟ—ବିଂ.ସକଳ ଲୋକ ସ୍ୱରୂପ

ସର୍ବଲୋକାନ୍ତରାତ୍ମା—ପୁଂ. ବି. ବିଷ୍ଣୁ ।

ସର୍ବଲୋକୀ—ବିଂ. ସର୍ବଲୋକବିଶିଷ୍ଟ, ସର୍ବଲୋକଯୁକ୍ତ । [ ଶ୍ରୀକୃଷ୍ଣ ।

ସର୍ବଲୋକେଶ—ପୁଂ.ବି.ଶିବ,ବ୍ରହ୍ମା,ବିଷ୍ଣୁ,

ସର୍ବଲୋକେଶ୍ୱର--ପୁଂ.ବି.ଶିବ,ବ୍ରହ୍ମା,ବିଷ୍ଣୁ, ଶ୍ରୀକୃଷ୍ଣ ।

ସର୍ବଲୋହ-ବି. (ବି.ଗ୍ରା) ଲୌହମୟ ବାଣ (କ.ଧା) ସବୁ ଧାତୁ ।

ସର୍ବଲୋହିତ—ବିଂ. ସର୍ବରୋହିତ ।

ସର୍ବଲୌହ—ବି. ତମ୍ବା, ବାଣ, ଖାର ।

ସର୍ବବର୍ଣ୍ଣ—ବି.ସକଳପ୍ରକାର ବର୍ଣ୍ଣ,ବ୍ରାହ୍ମଣାଦି ବର୍ଣ୍ଣ ସକଳ ।

ସର୍ବଶଃ-କ୍ରି.ବିଂ.(ସର୍ବ+ଶସ୍)ସବୁପ୍ରକାରେ, ସାଧାରଣ ରୂପେ ।

ସର୍ବଶକ୍ତି—ସ୍ତ୍ରୀ.ବି.(କ.ଧା)ସକଳବିଷୟରେ ସାମର୍ଥ୍ୟ, ସକଳପ୍ରକାର କ୍ଷମତା ।

ସର୍ବଶକ୍ତିମତ୍ତ୍ୱ(ତ୍ୱ)—ବି. (ସର୍ବଶକ୍ତିମତ୍+ତା) ସମସ୍ତ ଶକ୍ତିଯୁକ୍ତ ଅବସ୍ଥା ।

ସର୍ବଶକ୍ତିମୟ—ପୁଂ.ବିଂ.(ସର୍ବଶକ୍ତି+ମୟ) ସର୍ବଶକ୍ତିମାନ୍ ଦେଖ, (ସ୍ତ୍ରୀ) ସର୍ବଶକ୍ତିମୟୀ ।

ସର୍ବଶକ୍ତିମାନ୍—ପୁଂ.ବିଂ.(ସର୍ବଶକ୍ତି+ମତ୍) ସକଳ ଶକ୍ତିର ଅଧିକାରୀ, ସବୁପ୍ରକାରେ ବଳଶାଳୀ, (ସ୍ତ୍ରୀ) ସର୍ବଶକ୍ତିମତୀ, (ବି) ପରମେଶ୍ୱର ।

ସର୍ବଶସ୍ୟ—ବିଂ.ସକଳ ପ୍ରକାର ଶସ୍ୟଯୁକ୍ତ, (ସ୍ତ୍ରୀ) ସର୍ବଶସ୍ୟା ।

ସର୍ବଶସ୍ୟା—ସ୍ତ୍ରୀ. ବିଂ. ଧାନ୍ୟାଦି ଶସ୍ୟବିଶିଷ୍ଟ, (ସ୍ତ୍ରୀ) ବସୁନ୍ଧରା । [ ଶାସ୍ତ୍ର ।

ସର୍ବଶାକୁନ--କ୍ଲୀ.ବି.ସକଳପ୍ରକାର ଶାକୁନ

ସର୍ବଶାନ୍ତି—ସ୍ତ୍ରୀ.ବି.ସକଳ ପ୍ରକାର ଶାନ୍ତି ।

ସର୍ବଶାନ୍ତିକୃତ୍—ପୁଂ.ସ୍ତ୍ରୀ. ବିଂ. (ସର୍ବଶାନ୍ତି+କୃ+କ.କ୍ୱିପ୍) ସକଳ ବିଷୟରେ ସମକାରକ,(ବି)ଶକୁନ୍ତଳା ପୁତ୍ର ଭରତରାଜ ।

ସର୍ବଶାସ୍ତ୍ର—କ୍ଲୀ. ବି. ସକଳପ୍ରକାର ଶାସ୍ତ୍ର ।

ସର୍ବଶାସ୍ତ୍ରଜ୍ଞ—ପୁଂ,ବିଂ.(ସର୍ବଶାସ୍ତ୍ର+ଜ୍ଞା+କ.ଅ) ସର୍ବଶାସ୍ତ୍ରଦର୍ଶୀ ଦେଖ,(ସ୍ତ୍ରୀ)ସର୍ବଶାସ୍ତ୍ରଜ୍ଞା ।

ସର୍ବଶାସ୍ତ୍ରଦର୍ଶୀ—ପୁଂ.ବିଂ.(ସର୍ବଶାସ୍ତ୍ର+ଦୃଶ୍+କ.ଇନ୍) ଯେ ସବୁ ଶାସ୍ତ୍ର ଜାଣେ, (ସ୍ତ୍ରୀ) ସର୍ବଶାସ୍ତ୍ରଦର୍ଶିନୀ ।

ସର୍ବଶାସ୍ତ୍ରବିଦ୍—ପୁଂ.ବିଂ.(ସର୍ବଶାସ୍ତ୍ର+ବିଦ୍ କ.କ୍ୱିପ୍) ସର୍ବଶାସ୍ତ୍ରଦର୍ଶୀ ଦେଖ, (ସ୍ତ୍ରୀ) ସର୍ବଶାସ୍ତ୍ରବେତ୍ତ୍ରୀ ।

ସର୍ବଶାସ୍ତ୍ରମୟ—ବିଂ. ସକଳ ଶାସ୍ତ୍ରସ୍ୱରୂପ ।

ସର୍ବଶୁଚି—ବି(ସର୍ବ+ଶୁଚି)ବି.ଗ୍ରା, ସୂର୍ଯ୍ୟ, ଅଗ୍ନି ।

ସର୍ବଶୁଭ—ବିଂ. (୭ତତ୍) ସକଳ ବିଷୟରେ ମଙ୍ଗଳସୂଚକ, (ବି) ସକଳ ବିଷୟରେ ମଙ୍ଗଳ ।

ସର୍ବଶୂନ୍ୟ—ବିଂ. ଯାହାର ସକଳଶୂନ୍ୟ, ସକଳଶୂନ୍ୟ, (ବି) ଆକାଶ ।

ସର୍ବଶୂନ୍ୟତା—ସ୍ତ୍ରୀ. ବି. (ସର୍ବଶୂନ୍ୟ+ତା) ସକଳ ଶୂନ୍ୟର ଭାବ ନା ଧର୍ମ, କିଛି ନଥିବା ଅବସ୍ଥା ।

ସର୍ବଶୂନ୍ୟବାଦୀ—ବି, ବୌଦ୍ଧ ।

ସର୍ବଶ୍ରେଷ୍ଠ—ପୁଂ. ବିଂ, (୭ତତ୍) ସର୍ବପ୍ରଧାନ, ସର୍ବୋତ୍ତମ,(ସ୍ତ୍ରୀ) ସର୍ବଶ୍ରେଷ୍ଠା ।

ସର୍ବଶ୍ୱେତ—ବିଂ.ସକଳ ଶ୍ୱେତବର୍ଣ୍ଣବିଶିଷ୍ଟ

ସର୍ବଶ୍ୱେତା—ସ୍ତ୍ରୀ. ବି. ସର୍ପପିକା ନାମକ ପ୍ରାଣହର କୀଟବିଶେଷ ।

ସର୍ବସଂଗତ—ବି. ଷଷ୍ଟିକ ଧାନ୍ୟ, (ବିଂ) ସର୍ବସଙ୍ଗତ ଦେଖ ।

ସର୍ବସଂସର୍ଗଲବଣ—ବି. ଊଷରକ, ଊଷର ଲବଣ ବା ଦ୍ରୋଣୀ ଲବଣ, ସୋରା, ଖାରଲୁଣ ।

ସର୍ବସଂସ୍ଥ--ବିଂ.ସକଳ ବିଷୟରେ ସ୍ଥିତିଯୁକ୍ତ

ସର୍ବସଂହାର—ବି. (୬ତତ୍) ସମସ୍ତଙ୍କର ବିନାଶ,(ବି.ଗ୍ରା)କାଳ, ମୃତ୍ୟୁ ଦେବତା ।

ସର୍ବସଙ୍ଗତ—ବିଂ. ସର୍ବପ୍ରକାରେ ଉଚିତ, ସର୍ବଥା ଉଚିତ, (ବି) ଷଷ୍ଟିକଧାନ୍ୟ ।

ସର୍ବସତ୍ତ୍ୱପାପକହନ—ପୁଂ. ବି. ସମାଧିଭେଦ ।

ସର୍ବସତ୍ତ୍ୱପ୍ରିୟଦର୍ଶନ—ପୁଂ.ବି.ବୁଦ୍ଧ,ବୋଧିସତ୍ତ୍ୱଭେଦ ।

ସର୍ବସତ୍ତ୍ୱୌଜୋହାରୀ—ସ୍ତ୍ରୀ.ବି. ରାକ୍ଷସୀ ।

ସର୍ବସତ୍ୟ—ବିଂ, ଯଥାର୍ଥ, ପ୍ରକୃତ ।

ସର୍ବସନ୍ନହନ—କ୍ଲୀ.ବି. ସମୁଦାୟ ସୈନ୍ୟ, ସମବେତ ଓ ସଜ୍ଜିତକରଣ ।

ସର୍ବସନ୍ନହନାର୍ଥକ—ପୁଂ. ବି. ଚତୁରଙ୍ଗ ସୈନ୍ୟ ସନ୍ନାହ,ସର୍ବାଭିସାର,ସର୍ବୌଘ ।

ସର୍ବସନ୍ନାହ—ବି. ସର୍ବାତ୍ମା,ସର୍ବସନ୍ନହନ ।

ସର୍ବସମକ୍ଷ—ବି. ( ୬ତତ୍ ) ସମସ୍ତଙ୍କର ସମ୍ମୁଖ ।

ସର୍ବସମତା—ସ୍ତ୍ରୀ.ବି.ସମସ୍ତଙ୍କ ପ୍ରତି ସମାନ ଜ୍ଞାନ ବା ବ୍ୟବହାର, ସମୁଦାୟର ଐକମତ୍ୟ ।

ସର୍ବସମୃଦ୍ଧ—ବିଂ. ସକଳ ବିଷୟରେ ସମୃଦ୍ଧ, ସମସ୍ତ ବିଷୟରେ ସମ୍ପନ୍ନ ।

ସର୍ବସମେତ—ଗ୍ରା. କ୍ରି. ବିଂ. ସବୁସୁଦ୍ଧା, ସମସ୍ତଙ୍କୁ ମିଶାଇଲେ ।

ସର୍ବସମ୍ମତ—ବିଂ.(୩ତତ୍) ସମସ୍ତଙ୍କଦ୍ୱାରା ସ୍ୱୀକୃତ ।

ସର୍ବସମ୍ମତି—ବି. ସମସ୍ତଙ୍କର ଅଙ୍ଗୀକାର ।

ସର୍ବସମ୍ପନ୍ନ—ବିଂ. ସର୍ବସମୃଦ୍ଧ, ସକଳ ବିଷୟରେ ସମ୍ପନ୍ନ ।

ସର୍ବସମ୍ପନ୍ନଶସ୍ୟା-ସ୍ତ୍ରୀ.ବି. ବସୁମତୀ,ପୃଥିବୀ ।

ସର୍ବସମ୍ଭବ—ବିଂ. ସର୍ବବିଷୟର ପ୍ରସ୍ରବଣ ସ୍ୱରୂପ,ଯାହାଠାରୁ ସମସ୍ତ ବିଷୟ ଉତ୍ପନ୍ନ ।

ସର୍ବସର—ପୁଂ. ବି. ମୁଖରୋଗବିଶେଷ ।
ସର୍ବସହ—ପୁଂ. ବିଂ. ସର୍ବଂସହ ଦେଖ, (ସ୍ତ୍ରୀ) ସର୍ବସହା, (ବି) ଗୁଗ୍ଗୁଳ ।
ସର୍ବସହିଷ୍ଣୁ—ଗ୍ରା. ପୁଂ. ବିଂ. ଯେ ସବୁ-ବିଷୟ ସହ୍ୟକରେ ।
ସର୍ବସହା—ସ୍ତ୍ରୀ.ବି.ପୁରାଣବର୍ଣ୍ଣିତ ଇପ୍ସିତ-ପ୍ରଦା ଗାଭୀଭେଦ, ଧରଣୀ, ପୃଥିବୀ ।
ସର୍ବସାକ୍ଷୀ—ପୁଂ. ବି. ୬ତତ୍ପୁ; (ସର୍ବ+ସାକ୍ଷିନ୍) ଈଶ୍ୱର, ଅଗ୍ନି ,ବାୟୁ, ସୂର୍ଯ୍ୟ ।
ସର୍ବସାଦ—ବିଂ. ( ସର୍ବ+ସଦ୍+ଅ ) ଯହିଁରେ ସମସ୍ତ ଲୀନ ହୁଏ ।
ସର୍ବସାଧନ—ବି. (ବ.ଗ୍ରା) ସ୍ୱର୍ଣ୍ଣ, ଶିବ, ଯାହାଦ୍ୱାରା ସକଳ କାର୍ଯ୍ୟ ସାଧନ ହୁଏ ।
ସର୍ବସାଧାରଣ(ସାମାନ୍ୟ)-ବି.ସବୁଶ୍ରେଣୀର ଲୋକମାନେ, ଇତର ଓ ଭଦ୍ର ସବୁ-ଶ୍ରେଣୀର ଲୋକେ,(ବିଂ) ଜନସାଧାରଣ ସମ୍ବନ୍ଧୀୟ, ମାମୁଲ ।
ସର୍ବସାର—ବି. (୬ତତ୍ପୁ) ସବୁ ପଦାର୍ଥର ସାର, ସବୁ ପଦାର୍ଥର ସାରାଂଶ, (ବିଂ. ୬ତତ୍ପୁ) ସବୁବସ୍ତୁ ମଧ୍ୟରେ ସାର ବା ପ୍ରଧାନ ।
ସର୍ବସାରଙ୍ଗ—ବି. ନାଗଭେଦ ।
ସର୍ବସାହ—ବିଂ. ( ସର୍ବ+ସହ୍ +ଅ ) ସକଳ ସହନକାରୀ, ଯେ ସକଳ ସହ୍ୟ କରିପାରେ ।
ସର୍ବସିଦ୍ଧ—ବିଂ. (୬ତତ୍ପୁ)ଯେ ସବୁବିଷୟ ସାଧନକ୍ଷମ, ସକଳ ଲୋକଙ୍କର ସମୀ-ପରେ ପ୍ରସିଦ୍ଧ, (ବି) ଭୈରବବିଶେଷ, ଶ୍ରୀଫଳ ।
ସର୍ବସିଦ୍ଧା—ସ୍ତ୍ରୀ. ବି. ଶୁକ୍ଳପକ୍ଷର ଚତୁର୍ଥୀ, ନବମୀ ଓ ଚତୁର୍ଦ୍ଦଶୀ ତିଥିତ୍ରୟ ।
ସର୍ବସିଦ୍ଧାର୍ଥ—ବିଂ.ସର୍ବସିଦ୍ଧ କାମ୍ୟଫଳ, ଯାହାର ସକଳ ପ୍ରୟୋଜନ ସିଦ୍ଧ ହୋଇଥାଏ ।
ସର୍ବସିଦ୍ଧି—ବି. (୭ତତ୍ପୁ) ସବୁ ବିଷୟରେ ସିଦ୍ଧି, ଶ୍ରୀଫଳ, ବେଲ, ପୂର୍ଣ୍ଣତର୍କ ।
ସର୍ବସୁଦ୍ଧା—ଗ୍ରା. କ୍ରି. ବିଂ. ମୋଟରେ, ସର୍ବସମେତ ।
ସର୍ବସୂକ୍ଷ୍ମ—ପୁଂ, ବି. ଶ୍ରୀକୃଷ୍ଣ ।
ସର୍ବସୌବର୍ଣ୍ଣ—ବିଂ. ସୁବର୍ଣ୍ଣମୟ ।
ସର୍ବସ୍ୱ—ବି. (ସର୍ବ+ସ୍ୱ) ସମୁଦାୟ ଧନ, ସବୁସମ୍ପତ୍ତି ।
ସର୍ବସ୍ୱତ୍ୱ—ବି. ସବୁପ୍ରକାରର ସ୍ୱତ୍ୱ ବା ଅଧିକାର ।
ସର୍ବସ୍ୱତ୍ୱରକ୍ଷିତ—ବିଂ. ଯେଉଁ ପ୍ରକାଶିତ ପୁସ୍ତକ ଆଇନ୍‌ଅନୁସାରେ ସରକାରଙ୍କ ନିକଟରେ ରେଜିଷ୍ଟ୍ରି କରାଯାଇଥାଏ ଓ ଯହିଁରୁ ଗ୍ରନ୍ଥକାରଙ୍କ ବିନା ଅନୁମତିରେ ଅନ୍ୟ କେହି ବ୍ୟକ୍ତି କୌଣସି ଅଂଶ ଉଦ୍ଧାର ବା ବ୍ୟବହାର ପୂର୍ବକ ଅନ୍ୟ-ଗ୍ରନ୍ଥ ପ୍ରକାଶ କରିପାରିବେ ନାହିଁ ।
ସର୍ବସ୍ୱଦକ୍ଷିଣ—ବିଂ. ( ସର୍ବସ୍ୱ + ଦକ୍ଷିଣା ) ବ.ଗ୍ରା;ଯହିଁରେ ଯଜ୍ଞକର୍ତ୍ତା ନିଜର ସର୍ବସ୍ୱ ଦକ୍ଷିଣାରୂପେ ଦାନ କରନ୍ତି,(ବି)ବିଶ୍ୱଜିତ୍ ନାମକ ଯଜ୍ଞ ।
ସର୍ବସ୍ୱନାଶ—(୬ତତ୍ପୁ) ସମସ୍ତ ସମ୍ପତ୍ତିର ବିନାଶ ।
ସର୍ବସ୍ୱର୍ଣ୍ଣମୟ-ବିଂ.ସମ୍ପୂର୍ଣ୍ଣରୂପେ ସ୍ୱର୍ଣ୍ଣମଣ୍ଡିତ ।
ସର୍ବସ୍ୱାନ୍ତ—କ୍ଲୀ.ବି. (୬ତତ୍ପୁ) ସର୍ବସ୍ୱକ୍ଷୟ, ସମସ୍ତ ସମ୍ପତ୍ତି ନାଶ, ( ବିଂ-ବ.ଗ୍ରା ) ଯାହାର ସମସ୍ତ ଧନ କ୍ଷୟପ୍ରାପ୍ତ ହୋଇ-ଅଛି, ଦରିଦ୍ର ଦଶାରେ ଉପନୀତ, (ସ୍ତ୍ରୀ) ସର୍ବସ୍ୱାନ୍ତା ।
ସର୍ବସ୍ୱୀ—ବି. ( ସର୍ବସ୍ୱ+କ.ଇନ୍ ) ବର୍ଣ୍ଣ-ସଙ୍କର ଜାତିବିଶେଷ, (ନାପିତ ଔର-ସରେ ଗୋପ କନ୍ୟାଗର୍ଭଜାତ ସନ୍ତାନ) (ବିଂ) ସକଳ ଧନବିଶିଷ୍ଟ, ସମସ୍ତ ଧନଯୁକ୍ତ ।
ସର୍ବସ୍ୟ—ଗ୍ରା. ସର୍ବ. ସମସ୍ତଙ୍କର ।
ସର୍ବସ୍ରଷ୍ଟା—ପୁଂ.ବିଂ.(୬ତତ୍ପୁ) ସକଳଙ୍କର ସୃଷ୍ଟିକର୍ତ୍ତା,ବିଶ୍ୱନିର୍ମାତା,(ସ୍ତ୍ରୀ)ସର୍ବସ୍ରଷ୍ଟ୍ରୀ
ସର୍ବହତ୍ୟା—ସ୍ତ୍ରୀ. ବି. ସକଳର ନାଶ ।
ସର୍ବହର—ପୁଂ.ବିଂ.(ସର୍ବ+ହୃ+କ.ଅ) ଯେ ସବୁ ହରଣ କରେ,(ସ୍ତ୍ରୀ)ସର୍ବହରା, (ବି) ମୃତ୍ୟୁ, କାଳ, ଶିବ, ଯମ ।
ସର୍ବହରଣ—ବି. ( ସର୍ବ+ହୃ+ଅନ ) ସକଳ ହରଣ, ସକଳ ନାଶ ।
ସର୍ବହାର—ବି. ସକଳହର ।
ସର୍ବହାରୀ—ପୁଂ.ବିଂ. (ସର୍ବ+ହୃ+ଇନ୍) ସକଳ ହରଣକାରୀ, (ସ୍ତ୍ରୀ)ସର୍ବହାରିଣୀ ।
ସର୍ବହିତ—ବି(୬ତତ୍ପୁ)ସମସ୍ତଙ୍କର ମଙ୍ଗଳ, ମରିଚ, (ବିଂ) ସକଳ ହିତକାରକ ।
ସର୍ବହୁତ—ବି. ଯଜ୍ଞ, ଯହିଁରେ ନାନା ଦ୍ରବ୍ୟ ଆହୁତି ଦିଆଯାଏ ।
ସର୍ବହୋମ—ବି. ଯଜ୍ଞରେ ସକଳ ଦ୍ରବ୍ୟର ହୋମ ।
ସର୍ବାଂଶ—ବି. ସମୁଦାୟ ଅଂଶ ।
ସର୍ବାକ୍ଷ—ବି. (ବ.ଗ୍ରା) ରୁଦ୍ରାକ୍ଷ ।
ସର୍ବାକ୍ଷିରୋଗ—ପୁଂ, ବି. ସର୍ବ ନେତ୍ରଗତ ରୋଗ ।
ସର୍ବାଖ୍ୟ—ବି(ସର୍ବ+ଆଖ୍ୟା+ଅ)ବ.ଗ୍ରା; ପାରଦ, ପାରା ।
ସର୍ବାଗ୍ନେୟ—ବିଂ. ସକଳ ଅଗ୍ନି ସମ୍ବନ୍ଧୀୟ
ସର୍ବାଘୋଟ—ଗ୍ରା.ବିଂ.ସର୍ବତ୍ର ଘୋଟିଥିବା ।
ସର୍ବାଙ୍ଗ—ବି.(କ.ଧା) ସମସ୍ତ ଅଙ୍ଗ, ସମୁ-ଦାୟ ଦେହ, ସମସ୍ତ ଅଂଶ, ସମସ୍ତ ବେଦାଙ୍ଗ, (ପୁଂ:ବି) ମହାଦେବ ।
ସର୍ବାଙ୍ଗସମ୍ପନ୍ନ—ବିଂ. (୩ତତ୍ପୁ) ସକଳ ଅବୟବବିଶିଷ୍ଟ, ତ୍ରୁଟିହୀନ,(ସ୍ତ୍ରୀ)ସର୍ବାଙ୍ଗ-ସମ୍ପନ୍ନା ।
ସର୍ବାଙ୍ଗସୁନ୍ଦର—ବିଂ. (୭ତତ୍ପୁ) ସକଳ ବିଷୟରେ ସୁନ୍ଦର ବା ପରିପାଟୀ, ମନୋରମ, (ସ୍ତ୍ରୀ)ସର୍ବାଙ୍ଗସୁନ୍ଦରୀ ।
ସର୍ବାଙ୍ଗସୁନ୍ଦରରସ—ବି. ସ୍ୱର୍ଣ୍ଣାଦି ଧାତୁ ଘଟିତ ଆୟୁର୍ବେଦୋକ୍ତ ଔଷଧବିଶେଷ
ସର୍ବାଙ୍ଗନାବଦ୍ୟ—ବିଂ.(ବ.ଗ୍ରା) ସର୍ବାଙ୍ଗ ସୁନ୍ଦର, (ସ୍ତ୍ରୀ) ସର୍ବାଙ୍ଗନାବଦ୍ୟା ।
ସର୍ବାଙ୍ଗୀ—ବିଂ.ସର୍ବାବୟବ ସମ୍ବନ୍ଧଯୁକ୍ତ, ସର୍ବାବୟବବ୍ୟାପ୍ତ ।
ସର୍ବାଙ୍ଗୀଣ(ନ)—ବିଂ.(ସର୍ବାଙ୍ଗ+ଈନ) ସର୍ବାଙ୍ଗସମ୍ବନ୍ଧୀୟ,ସର୍ବାଙ୍ଗର ହିତକର, ସର୍ବାଙ୍ଗ ବ୍ୟାପକ, ନିଖୁଣ, ସମସ୍ତ ଅବୟବଯୁକ୍ତ ।
ସର୍ବାଜୀବ—ବିଂ. ସମସ୍ତ ଉପଜୀବିକାବିଶିଷ୍ଟ
ସର୍ବାଣୀ—ସ୍ତ୍ରୀ. ବି. (ସର୍ବ+ଈ) ଭବାନୀ, ଦୁର୍ଗା ।
ସର୍ବାଢ୍ୟ—ବିଂ, (ବ.ଗ୍ରା) ଯେଉଁ ବ୍ୟକ୍ତି

ସବୁ ଅନ୍ତଃସ୍ଥଙ୍କ ସଂହାର କରେ ।
ସର୍ବାତ୍ମା—ବି. (ସର୍ବ+ଆତ୍ମନ୍) ୬ତତ୍; ପରଂବ୍ରହ୍ମ, ଶିବ, ଜିନ, ଅର୍ହତ ।
ସର୍ବାଦୃତ—ପୁଂ. ବିଂ. (୩ତତ୍) ସମସ୍ତଙ୍କ ଦ୍ୱାରା ଆଦୃତ, (ସ୍ତ୍ରୀ) ସର୍ବାଦୃତା ।
ସର୍ବାଧାର—ବି. ସକଳର ଆଧାର ।
ସର୍ବାଧିକାର—ବି. (୬ତତ୍) ପୂର୍ଣ୍ଣପ୍ରଭୁତ୍ୱ, (କ.ଧା) ଅମସ୍ତ ଅଧିକାର ।
ସର୍ବାଧିକାରୀ—ପୁଂ.ବିଂ. (ସର୍ବାଧିକାର+ଇନ୍) ସବୁ ଅଧିକାର ସମ୍ପନ୍ନ, ଯାହାର ସକଳ ବିଷୟରେ ଅଧିକାର ଥାଏ,(ସ୍ତ୍ରୀ) ସର୍ବାଧିକାରିଣୀ, (ବି) ବଙ୍ଗଦେଶୀୟ କାୟସ୍ଥଙ୍କର ବଂଶୋପାଧିବିଶେଷ ।
ସର୍ବାଧିପତ୍ୟ--ବି.ସମସ୍ତଙ୍କ ଉପରେ ପ୍ରଭୁତ୍ୱ
ସର୍ବାଧ୍ୟକ୍ଷ—ବି. ସମସ୍ତଙ୍କର ଅଧ୍ୟକ୍ଷ ।
ସର୍ବାନନ୍ଦ—ପୁଂ. ବିଂ. (ବ.ବ୍ରୀ) ଯାହାର ସବୁ ବିଷୟରେ ଆନନ୍ଦ,(ସ୍ତ୍ରୀ)ସର୍ବାନନ୍ଦା, ବି. ସକଳପ୍ରକାର ଆନନ୍ଦ , ଭୈରବ ବିଶେଷ ।
ସର୍ବାନବଦ୍ୟାଙ୍ଗ— ପୁଂ. ବିଂ. ସମସ୍ତ ଅନନ୍ଦିତ ଅଙ୍ଗ ସମ୍ପନ୍ନ, ସକଳ ସୁନ୍ଦର ଅଙ୍ଗଯୁକ୍ତ ।
ସର୍ବାନୁକାରିଣୀ—ସ୍ତ୍ରୀ.ବିଂ.ସର୍ବାନୁକାରୀର ସ୍ତ୍ରୀଲିଙ୍ଗ, (ବି) ଶାଳପର୍ଣ୍ଣୀ ।
ସର୍ବାନୁକାରୀ—ପୁଂ. ବିଂ. (ସର୍ବ+ଅନୁ+କୃ+କ.ଇନ୍) ଯେ ସମସ୍ତଙ୍କୁ ଅନୁକରଣ କରେ, (ସ୍ତ୍ରୀ) ସର୍ବାନୁକାରିଣୀ ।
ସର୍ବାନୁକୂଳ—ବିଂ.ସମସ୍ତଙ୍କର ଅନୁକୂଳ, (ଗ୍ରା.ବି) ସବୁ କାର୍ଯ୍ୟାରମ୍ଭ ।
ସର୍ବାନୁକ୍ରମ—ବି.ବେଦର ଅନୁକ୍ରମଣିକା ।
ସର୍ବାନୁଦାତ୍ତ—ବିଂ. ସକଳ ଅନୁଦାତ୍ତ ସ୍ୱରବିଶିଷ୍ଟ ।
ସର୍ବାନୁଭୂ—ପୁଂ. ବିଂ. (ସର୍ବ+ଅନୁ+ଭୂ+କ୍ୱିପ୍) ସକଳ ବିଷୟ ଅନୁଭବକାରୀ ।
ସର୍ବାନୁଭୂତ—ବି. ( ୬ତତ୍ ) ସକଳ ବିଷୟରେ ଅନୁଭୂତି ବା ବୋଧ,ଶ୍ୱେତନିବୃତା, ଧଳାତିହୁଡି, ଜୈନସନ୍ନ୍ୟାସୀବିଶେଷ, (ପୁଂ.ବିଂ-ବ.ବ୍ରୀ)ତତ୍ତ୍ୱଜ୍ଞାତା ।
ସର୍ବାନ୍ତକ—ପୁଂ.ବିଂ. ସକଳ ଅନ୍ତକାରୀ, ଯେ ସମସ୍ତଙ୍କୁ ନାଶକରେ,(ପୁଂ.ବି)ଯମ ।
ସର୍ବାନ୍ତକୃତ୍—ପୁଂ. ବିଂ. (ସର୍ବ+ଅନ୍ତ+କୃ+କ୍ୱିପ୍) ସମସ୍ତଙ୍କର ଅନ୍ତକାରୀ, (ପୁଂ.ବି) ଯମ ।
ସର୍ବାନ୍ତର—ବିଂ. ସକଳ ଅନ୍ତରଯୁକ୍ତ ।
ସର୍ବାନ୍ତରସ୍ଥ—ବିଂ. ସକଳ ଅନ୍ତରସ୍ଥିତ ।
ସର୍ବାନ୍ତରାତ୍ମା-ପୁଂ.ବି. ସମସ୍ତଙ୍କ ଅନ୍ତରାତ୍ମା ।
ସର୍ବାନ୍ତର୍ଯ୍ୟାମୀ—ପୁଂ. ବିଂ. ( ୬ତତ୍ ) ସମସ୍ତଙ୍କର ଅନ୍ତରରେ ଗମନକାରୀ.ଯେ ସମସ୍ତଙ୍କର ଅନ୍ତର ବିଷୟ ଜାଣେ, (ପୁଂ.ବି) ଈଶ୍ୱର ।
ସର୍ବାନ୍ନ—କ୍ଲୀ.ବି. ସକଳପ୍ରକାର ଖାଦ୍ୟଦ୍ରବ୍ୟ, ସମସ୍ତଙ୍କର ଅନ୍ନ ।
ସର୍ବାନ୍ନଭକ୍ଷକ—ପୁଂ. ବିଂ. (ସର୍ବାନ୍ନ+ଭକ୍ଷ୍+ଅକ) ସର୍ବାନ୍ନଭୋଜୀ,ସମସ୍ତଙ୍କର ଅନ୍ନଭୋକ୍ତା ।
ସର୍ବାନ୍ନଭୋଜୀ—ପୁଂ. ବିଂ. ( ସର୍ବାନ୍ନ+ଭୁଜ୍+ଇନ୍) ସମସ୍ତଙ୍କର ଅନ୍ନଭକ୍ଷକ, ଚତୁର୍ବର୍ଣ୍ଣର ଅନ୍ନଭୋକ୍ତା ।
ସର୍ବାନ୍ନୀନ—ପୁଂ.ବିଂ. (୬ତତ୍)ସର୍ବାନ୍ନଭୋଜୀ, ସମସ୍ତଙ୍କର ଅନ୍ନଭକ୍ଷକ ।
ସର୍ବାପରତ୍ୱ—ବି.ସର୍ବ ଓ ଅପରର ଭାବ ଓ ଧର୍ମ ।
ସର୍ବାପେକ୍ଷା—ଅ. ସମସ୍ତଙ୍କ ଅପେକ୍ଷା ।
ସର୍ବାପ୍ତି-ସ୍ତ୍ରୀ.ବି. ସକଳ ବିଷୟର ପ୍ରାପ୍ତି ।
ସର୍ବାଭାବ--ପୁଂ.ବି.ସକଳପ୍ରକାର ଅଭାବ ।
ସର୍ବାଭିଭୂ—ପୁଂ.ବି.ବୁଦ୍ଧ,(ବିଂ)ସକଳର ଅଭିଭବକାରୀ ।
ସର୍ବାଭିସନ୍ଧକ-ପୁଂ.ବିଂ.ସମସ୍ତ ବିଷୟରେ ଅଭିସନ୍ଧାନକାରୀ ।
ସର୍ବାଭିସନ୍ଧୀ—ପୁଂ. ବିଂ. ( ସର୍ବ+ଅଭି+ସମ୍+ଧା+କ.ଇନ୍) ସକଳାଭିସନ୍ଧାନବିଶିଷ୍ଟ, ସବୁପ୍ରକାର ବଞ୍ଚନାଯୁକ୍ତ, ଯେ ସମସ୍ତଙ୍କ ଉପହାସ କରେ, ( ପୁଂ.ବି ) ବୈଡ଼ାଲବ୍ରତିକ, ଛଦ୍ମତାପସ, ( ସ୍ତ୍ରୀ ) ସର୍ବାଭିସନ୍ଧିନୀ ।
ସର୍ବାଭିସାର—ବି. ଚତୁରଙ୍ଗ ସୈନ୍ୟ ସନ୍ନାହ, ଚତୁରଙ୍ଗ ସେନାସନ୍ନିବେଶ ।
ସର୍ବାମାତ୍ୟ—ବି. ପରିବାରର ବା ଗୃହର ସବୁ ବ୍ୟକ୍ତି (ଭୃତ୍ୟ ପରିଜନାଦି) ।
ସର୍ବାୟସ—ବିଂ. ସକଳ ଲୌହମୟ ।
ସର୍ବାର୍ଥ—ବି. (କ.ଧା)ସମସ୍ତ ପ୍ରୟୋଜନ, ସମସ୍ତ ବ୍ୟବହାର, ସବୁ ଉଦ୍ଦେଶ୍ୟ,(ପୁଂ. ବିଂ-ବ.ବ୍ରୀ) ଚରିତାର୍ଥ, (ସ୍ତ୍ରୀ)ସର୍ବାର୍ଥା ।
ସର୍ବାର୍ଥସାଧକ—ପୁଂ. ବିଂ. (ସର୍ବାର୍ଥ+ସାଧ୍+ଅକ) ଯେ ସମସ୍ତ ଇଷ୍ଟ ସିଦ୍ଧି କରାଏ, ସମସ୍ତ ପ୍ରୟୋଜନର ସାଧକ, ସିଦ୍ଧିଦାୟକ, (ସ୍ତ୍ରୀ) ସର୍ବାର୍ଥସାଧିକା ।
ସର୍ବାର୍ଥସାଧନ—ବି- ( ୬ତତ୍ ) ସବୁ ପ୍ରୟୋଜନ ବା ଉଦ୍ଦେଶ୍ୟର ସିଦ୍ଧି ।
ସର୍ବାର୍ଥସାଧିକା--ସ୍ତ୍ରୀ.ବି. (ସର୍ବାର୍ଥସାଧକ+ଆ)ଦୁର୍ଗା,(ସ୍ତ୍ରୀ.ବିଂ-୬ତତ୍)ସକଳ ପ୍ରୟୋଜନ ସିଦ୍ଧିକାରିଣୀ ।
ସର୍ବାର୍ଥସିଦ୍ଧ—ପୁଂ. ବିଂ. (ବ.ବ୍ରୀ) ପୂର୍ଣ୍ଣମନସ୍କାମ, ସିଦ୍ଧାର୍ଥ, (ସ୍ତ୍ରୀ) ସର୍ବାର୍ଥସିଦ୍ଧା, (ବି) ବୁଦ୍ଧଦେବ, ରାମଚନ୍ଦ୍ରଙ୍କର ରାଜତ୍ୱ ସମୟର ଜଣେ ଭିକ୍ଷୁକ ବ୍ରାହ୍ମଣ ।
ସର୍ବାର୍ଥସିଦ୍ଧି—ବି. (୬ତତ୍)ସବୁ ପ୍ରୟୋଜନ ବା ଉଦ୍ଦେଶ୍ୟର ସଫଳତା ।
ସର୍ବାର୍ଥାନୁସାଧନୀ—ସ୍ତ୍ରୀ. ବି. ଦୁର୍ଗା ।
ସର୍ବାବସର—ବି. (ବ.ବ୍ରୀ) ଅର୍ଦ୍ଧରାତ୍ର ।
ସର୍ବାବସୁ—ପୁଂ.ବି.ସୂର୍ଯ୍ୟ ରଶ୍ମି ଭେଦ ।
ସର୍ବାବାସ—ପୁଂ. ବି. ଶିବ ।
ସର୍ବାଶୀ—ପୁଂ. ବି. ଓ ବିଂ. (ସର୍ବ+ଅଶ୍+କ.ଇନ୍) ସର୍ବଭକ୍ଷ ଭୋଜୀ, ( ସ୍ତ୍ରୀ ) ସର୍ବାଶିନୀ ।
ସର୍ବାଶ୍ରମୀ—ପୁଂ.ବିଂ.ସକଳ ଆଶ୍ରମବିଶିଷ୍ଟ ।
ସର୍ବାସ୍ତ୍ର—ପୁଂ.ବିଂ. (ବ.ବ୍ରୀ) ସକଳ ଅସ୍ତ୍ରଯୁକ୍ତ, (ସ୍ତ୍ରୀ) ସର୍ବାସ୍ତ୍ରା ।
ସର୍ବାସ୍ତ୍ରମହାଜ୍ୱାଳା—ସ୍ତ୍ରୀ. ବି. ଜୈନମାନଙ୍କର ଷୋଡ଼ଶବିଦ୍ୟାଦେବୀ ଅନ୍ତର୍ଗତ ଦେବୀବିଶେଷ ।
ସର୍ବାସ୍ତ୍ରା—ସ୍ତ୍ରୀ.ବି.ଜୈନମତରେ ଷୋଡ଼ଶ ବିଦ୍ୟାଦେବୀଙ୍କ ଅନ୍ତର୍ଗତା ଦେବୀବିଶେଷ ।
ସର୍ବାସ୍ୟ—କ୍ଲୀ. ବି. ସକଳମୁଖ ।
ସର୍ବାହ୍ନ—ବି. (ସର୍ବ+ଅହନ୍) ସମସ୍ତଦିନ, ଦିନତମାମ୍ ।

ସାକ୍ଷୀଗୋପାଳ—ଗ୍ରା. ବି. ବେଙ୍ଗଲ ନାଗପୁର ରେଲୱେର ପୁରୀଶାଖା ନିକଟସ୍ଥ ସାକ୍ଷୀଗୋପାଳ ମନ୍ଦିରର ନିକଟବର୍ତ୍ତୀ ରେଲ୍‌ଷ୍ଟେସନ, ସତ୍ୟବାଦୀରେ ବିରାଜିତ ଗୋପାଳଜୀ ନାମକ ଶ୍ରୀକୃଷ୍ଣଙ୍କ ବିଗ୍ରହ, (ଲ.ଅର୍ଥ) ନିଷ୍କ୍ରିୟ ବା ନିଶ୍ଚେଷ୍ଟ ସାକ୍ଷୀ, ମୂକସାକ୍ଷୀ, ନିମିତ୍ତମାତ୍ର ବ୍ୟକ୍ତି, ନାମତଃ ସାକ୍ଷୀ, ( ଗ୍ରା.ବିଂ ) କେବଳ ସାକ୍ଷିସ୍ୱରୂପେ ଉପସ୍ଥିତ, ନିଶ୍ଚେଷ୍ଟଭାବେ ଅବସ୍ଥିତ ।

ସାକ୍ଷୀଗୋପୀନାଥ—ଗ୍ରା.ବି.ସତ୍ୟବାଦୀରେ ବିରାଜିତ ସାକ୍ଷୀଗୋପାଳ ବା ଗୋପାଳଜୀ ନାମକ ଶ୍ରୀକୃଷ୍ଣଙ୍କ ବିଗ୍ରହ ।

ସାକ୍ଷେପ—ବିଂ. ଆକ୍ଷେପଯୁକ୍ତ,ଆକ୍ଷେପବିଶିଷ୍ଟ ।

ସାକ୍ଷ୍ୟ—ବି. (ସାକ୍ଷିନ୍+ଭା.ଯ) ସାକ୍ଷୀର କର୍ମ, ଧର୍ମାଧିକରଣରେ ସାକ୍ଷୀଙ୍କ ଦ୍ୱାରା ପ୍ରଦତ୍ତ ପ୍ରମାଣ, ସାକ୍ଷୀଠାରୁ ପ୍ରମାଣଗ୍ରହଣ, (ଗ୍ରା.ବି) ସାକ୍ଷୀ, (ବିଂ) ଦ୍ରଷ୍ଟବ୍ୟ ।

ସାକ୍ଷ୍ୟଗ୍ରହଣ—ବି. (୬ତତ୍) ସାକ୍ଷିନେବା, କୌଣସି ସାକ୍ଷୀର କଥିତ ବିଷୟକୁ ଶୁଣିବା ଓ ଲେଖିବା ।

ସାକ୍ଷ୍ୟମଞ୍ଚ—ବି. (୬ତତ୍)ସାକ୍ଷ୍ୟଦେବାର ସ୍ଥାନ ।

ସାକ୍ଷ୍ୟଲକ୍ଷ୍ୟ—ଗ୍ରା. ବିଂ. ଯେଉଁ ବିଷୟ କୌଣସି ବ୍ୟକ୍ତି ନିଜେ ସ୍ୱଚକ୍ଷୁରେ ଦେଖି ଲକ୍ଷ୍ୟ କରିଥାଏ,ପ୍ରତ୍ୟକ୍ଷୀକୃତ(ବିଷୟ) ।

ସାକ୍ଷ୍ୟଲକ୍ଷ୍ୟପ୍ରତ୍ୟକ୍ଷପ୍ରମାଣ—ଗ୍ରା.ବି.ନିଜେ ଦେଖିଥିବା ସାକ୍ଷ୍ୟର ପ୍ରମାଣ ।

ସାଖି—ଗ୍ରା. ବି. (ସଂ-ସାକ୍ଷୀ)ସାକ୍ଷି ଦେଖ ।

ସାଖିଶବଦ—ଗ୍ରା. ବି. ମନଗଢ଼ା କଥା ।

ସାଖେୟ—ବିଂ. ସଖିସମ୍ବନ୍ଧୀ ।

ସାଖ୍ୟ—ବି. (ସଖି+ଯ) ସଖ୍ୟ, ମିତ୍ରତା, (ଗ୍ରା.ବି) ସାକ୍ଷ୍ୟ ଦେଖ ।

ସାଗ—ପ୍ରା. (ଲରିଆ)ବି. ପରିବା,(ଗ୍ରା.ବି) ଶାଗ ।

ସାଗର—ବି. (ସଗର+ଅ)ସିନ୍ଧୁ, ସମୁଦ୍ର, ବଡ଼ପ୍ରାକୃତିକ ହ୍ରଦ, (ଲ.ଅର୍ଥ) ବହୁସଂଖ୍ୟକ ବ୍ୟକ୍ତି ବା ବହୁପରିମିତ ବସ୍ତୁ, ସାଗରପରି ବହୁପରିମିତ ବସ୍ତୁର ଆଧାର, ଭଣ୍ଡାର, ଲୋକସାଧାରଣ, ଜନସାଧାରଣ, ସଂଖ୍ୟାବିଶେଷ,ଦଶପଦ୍ମ ସଂଖ୍ୟା, ୧୪ଶୂନ୍ୟଯୁକ୍ତ ସଂଖ୍ୟା, ମୃଗବିଶେଷ, ଚାରି ବା ସାତ ସଂଖ୍ୟା, (ବିଂ) ସାଗର ସମ୍ବନ୍ଧୀ, (ଗ୍ରା.ବି) ମଧ୍ୟପ୍ରଦେଶର ନଗର ବିଶେଷ, ବଡ଼ କୃତ୍ରିମ ଜଳାଶୟ ।

ସାଗରକ—ବି. ଜନପଦବିଶେଷ, (ସ୍ତ୍ରୀ) ସାଗରିକା, ରତ୍ନାବଳୀର ସଖୀ ।

ସାଗରକେଶରୀ—ଗ୍ରା. ବି. (ତୁଲ୍ୟାର୍ଥ; ବି.ସ୍ତ୍ରୀ); ସାଗରରେ କେଶରୀ ସ୍ୱରୂପ, (ଲ.ଅର୍ଥ); ଜାହାଜ ।

ସାଗରଗ—ପୁଂ.ବିଂ.(ସାଗର + ଗମ୍+ଅ) ସାଗରଗାମୀ, ସାଗର ପର୍ଯ୍ୟନ୍ତ ଗମନକାରୀ, (ସ୍ତ୍ରୀ) ସାଗରଗା=ଗଙ୍ଗା ନଦୀ ।

ସାଗରଗମ—ବିଂ. ସାଗରପର୍ଯ୍ୟନ୍ତଗାମୀ ।

ସାଗରଗର୍ଭ—ବି. ( ୬ତତ୍ ) ସମୁଦ୍ରର ଅଭ୍ୟନ୍ତର, ସମୁଦ୍ରଗର୍ଭ ।

ସାଗରଗାମିନୀ—ସ୍ତ୍ରୀ. ବି. (ସାଗରଗାମିନ୍ +ଈ) ସ୍ରୋତସ୍ୱତୀ, ନଦୀ, (ଯାହା ସମୁଦ୍ରରେ ପଡ଼ିଅଛି),ସ୍ତ୍ରୀ.ବିଂ; ସମୁଦ୍ରକୁ ଗମନକାରିଣୀ ।

ସାଗରଗାମୀ—ପୁଂ. ବିଂ. (ସାଗର+ଗମ୍ +ଇନ୍) ସାଗରପର୍ଯ୍ୟନ୍ତ ଗମନକାରୀ, (ସ୍ତ୍ରୀ) ସାଗରଗାମିନୀ ।

ସାଗରଜ—ବିଂ.(ସାଗର + ଜନ୍+ କ.ଅ) ସମୁଦ୍ରରୁ ଜାତ, (ବି) ସାମୁଦ୍ର ଲବଣ ।

ସାଗରନେମି—ସ୍ତ୍ରୀ. ବିଂ. (ବି.ସ୍ତ୍ରୀ) ଚାରିପାଖରେ ସମୁଦ୍ର ଦ୍ୱାରା ପରିବେଷ୍ଟିତ, (ସ୍ତ୍ରୀ.ବି) ପୃଥିବୀ ।

ସାଗରପର୍ଯ୍ୟନ୍ତ—ବିଂ. ସମୁଦ୍ର ପର୍ଯ୍ୟନ୍ତ, ସମୁଦ୍ର ଅବଧି ।

ସାଗରପାଳ—ପୁଂ. ବି. ନାଗରାଜା ।

ସାଗରପେଶା—ଯା.ବି.ବର୍ଣ୍ଣସଙ୍କରଜାତିବିଶେଷ, ଗୋଲ୍ଲମଜାତି, କରଣଙ୍କର ଓ ଉତ୍କଳର ଉପନିବେଶୀ ବଙ୍ଗୀୟ କାୟସ୍ଥଙ୍କର ରକ୍ଷିତା ସ୍ତ୍ରୀ ଗର୍ଭଜାତ ସନ୍ତାନଙ୍କ ଜାତି ।

ସାଗରବକ୍ଷଃ—ବି. (୬ତତ୍) ସମୁଦ୍ରର ଉପରିଭାଗ ।

ସାଗରମୁଦ୍ରା—ସ୍ତ୍ରୀ.ବି. ଧ୍ୟାନ ମୁଦ୍ରାବିଶେଷ

ସାଗରମେଖଳା—ସ୍ତ୍ରୀ.ବି.(ବି.ସ୍ତ୍ରୀ)ପୃଥିବୀ .

ସାଗରବାସୀ—ପୁଂ. ବିଂ. (ସାଗର+ବସ୍ ଇନ୍ ) ସାଗରତୀରରେ ବାସକାରୀ, ସାଗର ମଧ୍ୟରେ ବାସକାରୀ, (ସ୍ତ୍ରୀ) ସାଗରବାସିନୀ ।

ସାଗରଶାଖା—ବି. ( ୬ତତ୍ ) ଯେଉଁ ସଙ୍କୀର୍ଣ୍ଣ ସାଗରାଂଶ ସ୍ଥଳ ମଧ୍ୟକୁ ପଶି ଯାଇଥାଏ ।

ସାଗରସଙ୍ଗମ—ବି(୬ତତ୍)ଯେଉଁଠାରେ ନଦୀ ସମୁଦ୍ରରେ ପଡ଼ିଥାଏ, ନଦୀର ଓ ସମୁଦ୍ରର ସଙ୍ଗମ ସ୍ଥାନ ।

ସାଗରସିନ୍ଧୁସଙ୍ଗମ—ବି. ତୀର୍ଥବିଶେଷ, ସିନ୍ଧୁ ନଦୀର ଆରବ ସାଗରରେ ପଡ଼ିଥିବା ସ୍ଥାନ ।

ସାଗରସ୍ନାନ—ବି. (୭ତତ୍) ସମୁଦ୍ରରେ ଗାଧୁଆ, ଶୁଭଯୋଗବିଶେଷ, ଯେଉଁ ଯୋଗରେ ସମୁଦ୍ରରେ ସ୍ନାନ କଲେ ମହା ପୁଣ୍ୟହୁଏ, (ଗ୍ରା.ବି) ଜ୍ୟେଷ୍ଠ ଶୁକ୍ଳ ଦଶମୀ, ଦଶହରା ।

ସାଗରା—ଗ୍ରା. ବି. (ସଂ-ସାଗର) ସମୁଦ୍ର ।

ସାଗରାନୂପକ—ପୁଂ.ବିଂ (ସାଗର+ଅନୂପ +କ)ବି.ସ୍ତ୍ରୀ; ସାଗର ତୀରବାସୀ ।

ସାଗରାନ୍ତ—ବିଂ.(ବି.ସ୍ତ୍ରୀ)ସାଗର ଯାହାର ସୀମା, (କ୍ରି.ବିଂ) ସମୁଦ୍ର ପର୍ଯ୍ୟନ୍ତ ।

ସାଗରାମ୍ବରା—ସ୍ତ୍ରୀ. ବି. ପୃଥିବୀ, (ସ୍ତ୍ରୀ.ବିଂ-ବି.ସ୍ତ୍ରୀ)ସମୁଦ୍ରରୂପ ବସ୍ତ୍ରରେ ଆଚ୍ଛାଦିତା

ସାଗରାଳୟ—ବି. (ବି.ସ୍ତ୍ରୀ) ବରୁଣଦେବ

ସାଗରାବର୍ତ୍ତ—ପୁଂ. ବି. ସାଗର ଦ୍ୱୀପ ।

ସାଗରୋତ୍ଥ—ବିଂ. (୫ତତ୍) ସମୁଦ୍ରରୁ ଜାତ, (ବି) ସାମୁଦ୍ର ଲବଣ ।

ସାଗରୋଦକ—ବି.(୬ତତ୍) ସମୁଦ୍ର ଜଳ

ସାଗରୋପମ—ବିଂ. (ସାଗର+ଉପମା+ ଅ) ବହୁ.ସ୍ତ୍ରୀ; ସମୁଦ୍ର ସଦୃଶ, ସାଗରତୁଲ୍ୟ, (ସ୍ତ୍ରୀ) ସାଗରୋପମା । [ ବିଶିଷ୍ଟ ।

ସାଗସ୍—ବିଂ (ସ + ଅଗସ୍)ବି.ସ୍ତ୍ରୀ;ପାପ-

ସାଗିବା—ଗ୍ରା. କ୍ରି. ସଙ୍କୁଚିତକରିବା ଓ

ହେବା, ପ୍ରସାରିତହେବା ।

ସାଗିରଥ୍(ଥି)—ଯା. ବି. ଗୁରୁଙ୍କ ଶିଷ୍ୟ, ଯେ ଓସ୍ତାଦଙ୍କଠାରୁ ମଲ୍ଲବିଦ୍ୟା ବା ସଙ୍ଗୀତବିଦ୍ୟା ଶିଖିଥାଏ ।

ସାଗିହେବା—ଗ୍ରା. କ୍ରି. (ବାଙ୍କ ଲମ୍ବବସ୍ତୁ) ଫଳଖିହେବା,ଲୁଚାହେବା,ନଇଁଯିବା ।

ସାଗୁ—ଯା. ବି. ତାଳ ବା ଗୁବାକାଦି ବର୍ଗର ଭାରତୀୟ ଦ୍ୱୀପପୁଞ୍ଜର ବୃକ୍ଷବିଶେଷ, ସାଗୁଦାନା ଦେଖ, ସାଗୁଦାନା ଦ୍ୱାରା ପ୍ରସ୍ତୁତ (ଦୁଗ୍ଧ ବା ଜଳମିଶ୍ରିତ) ଲଘୁପାକ ତରଳ ଖାଦ୍ୟ ।

ସା: ଗୁ:—ଗ୍ରା. ବି. (ଗଣିତ) ସାଧାରଣ ଗୁଣନୀୟକର ସାଙ୍କେତିକ ।

ସାଗୁଆ—ଗ୍ରା.ବିଂ.(ସଂ-ଶାକବର୍ଣ୍ଣ)ସବୁଜବର୍ଣ୍ଣ, ସାବୁଜା ।

ସାଗୁଆନ୍—ଗ୍ରା. ବି. ଶାକତରୁ ଦେଖ ।

ସାଗୁଣା—ଗ୍ରା. ବି. ଗୃଧ୍ରପକ୍ଷୀ ।

ସାଗୁଦାନା—ଗ୍ରା.ବି. ସାଗୁ ଗଛର ଶସରୁ ତିଆରି କ୍ଷୁଦ୍ର ଖଜାକୃତି ବର୍ତ୍ତୁଳାକାର ବସ୍ତୁବିଶେଷ ।

ସାଗୁନ୍—ପ୍ରା.(ପାଟଣା)ବି. ସାବୁନ୍, (ପ୍ରା. ଖଡ଼ିଆଲ) ଶାଗୁଆନ ।

ସାଗୁବାଡ଼ି—ପ୍ରା.(ଗଞ୍ଜାମ)ବି.ଢ଼ିଠିଆ ଜମି ।

ସାଗ୍ନି—ବିଂ. (ସ+ଅଗ୍ନି) ବି. ସ୍ତ୍ରୀ; ଅଗ୍ନିବିଶିଷ୍ଟ ।

ସାଗ୍ନିକ—ପୁଂ. ବିଂ. (ସ+ଅଗ୍ନି+କ) ନିରନ୍ତର ଯଜ୍ଞାଗ୍ନିର ରକ୍ଷାକାରୀ, ଅଗ୍ନିହୋତ୍ରୀ (ବ୍ରାହ୍ମଣ) ।

ସାଗ୍ର—ବିଂ. (ସ+ଅଗ୍ର) ବି. ସ୍ତ୍ରୀ; ଅଗ୍ରବିଶିଷ୍ଟ, ସମଗ୍ର ।

ସାଗ୍ରହ—ବିଂ.(ସ+ଆଗ୍ରହ)ବି.ସ୍ତ୍ରୀ,ଆଗ୍ରହାନ୍ୱିତ, ଆଗ୍ରହବିଶିଷ୍ଟ, (ସ୍ତ୍ରୀ)ସାଗ୍ରହା ।

ସାଙ୍କ୍ଲିବା—ପ୍ରା. (ସମ୍ବଲ)କ୍ରି. ଚିହ୍ନିବା ।

ସାଙ୍କଚ—ଗ୍ରା.ବି.ଜଳଚର ଜୀବବିଶେଷ ।

ସାଙ୍କଥିକ—ପୁଂ. ବିଂ. (ସଙ୍କଥା+ଇକ) ସଙ୍କଥା ବା କଥୋପକଥନ ବିଷୟରେ ପଟୁ ।

ସାଙ୍କରିକ—ପୁଂ. ବିଂ. (ସଙ୍କର+ଇକ) ସଙ୍କର ବା ମିଶ୍ରବର୍ଣ୍ଣ ସମ୍ବନ୍ଧୀୟ, (ସ୍ତ୍ରୀ) ସାଙ୍କରିକା ।

ସାଙ୍କର୍ଯ୍ୟ—ବି. (ସଙ୍କର+ଭା.ଯ) ସଙ୍କରର ଭାବ, ମିଶ୍ରଣ ।

ସାଙ୍କଲ—ବିଂ.(ସଙ୍କଲ+ଅ)ସଙ୍କଲ ଦ୍ୱାରା ନିର୍ବୃତ୍ତ, ସଙ୍କଳନରୁ ଜାତ ।

ସାଙ୍କଳ୍ପିକ—ବିଂ.(ସଙ୍କଳ୍ପ+ଇକ)ସଙ୍କଳ୍ପ ସମ୍ବନ୍ଧୀୟ ।

ସାଙ୍କୁଚୀ—ସ୍ତ୍ରୀ. ବି. ଶାଙ୍କୁଚମାଛ ।

ସାଙ୍କୁଡ଼(ଡ଼ୁ)ପାଙ୍କୁଡ଼(ଡ଼ୁ)—ଗ୍ରା. ବିଂ. (ସଂ-ସଙ୍କୁଚିତ) ଶୀତ ବା ଭୟ ଯୋଗୁଁ ଯେ ଅଙ୍ଗ ପ୍ରତ୍ୟଙ୍ଗକୁ ସଂକୁଚିତ କରିଥାଏ, ସଙ୍କୁଚିତ,(ବି.ଶୀତାର୍ତ୍ତ ବା ଭୟତ୍ରସ୍ତ) ଅଙ୍ଗପ୍ରତ୍ୟଙ୍ଗକୁ ଯାକିଯୁକି ବସିଥିବା ବ୍ୟକ୍ତି ।

ସାଙ୍କୁଡ଼ା—ଗ୍ରା.ବି. (ସଂ-ସଙ୍କୋଚନ)ଅଙ୍ଗାଦିର ସଙ୍କୋଚନ, (ଗ୍ରା.ବିଂ) ସଙ୍କୁଚିତ ।

ସାଙ୍କୁଡ଼ିବା—ଗ୍ରା. କ୍ରି. (ସଂ-ସଙ୍କୁଚିତ) (ସକର୍ମକ--ଅଙ୍ଗପ୍ରତ୍ୟଙ୍ଗାଦିକୁ) ସଙ୍କୁଚିତ କରିବା, (ଅକର୍ମକ) ସଙ୍କୁଚିତହେବା, (ଲ.ଅର୍ଥ) ଭୟତ୍ରସ୍ତହେବା ।

ସାଙ୍କୃତ—ବିଂ. ସଙ୍କୃତପ୍ରବର ସମ୍ବନ୍ଧୀୟ ।

ସାଙ୍କୃତ—ପୁଂ. ବି. ବୈୟାଘ୍ରପାଦ୍ୟ ଗୋତ୍ରଜ ପ୍ରବର ପ୍ରବର୍ତ୍ତକ ମୁନିବିଶେଷ ।

ସାଙ୍କୃତ୍ୟ—ପୁଂ.ବି.(ସାଙ୍କୃତ+ଯ)ସାଙ୍କୃତ ମୁନିଙ୍କ ଗୋତ୍ରାପତ୍ୟ, ସାଙ୍କୃତ୍ୟାୟନ ।

ସାଙ୍କେତିକ—ବିଂ: (ସଙ୍କେତ+ଇକ) ସଙ୍କେତ ସମ୍ବନ୍ଧୀୟ, ସଙ୍କେତସୂଚକ, ସଙ୍କେତକାରକ,ସଙ୍କେତଦ୍ୱାରା ସୂଚିତ, ସଂକ୍ଷିପ୍ତ ଉପାୟରେ ସମାହୃତ, ସଂକ୍ଷିପ୍ତ ଉପାୟରେ ଅଙ୍କସମସ୍ୟା ସାଧନକାରୀ (ବିଧି ବା ପ୍ରଣାଳୀ), ବିଜ୍ଞାନଆଦିରେ ସଂକ୍ଷିପ୍ତରୂପେ ଭାବ ବା ଅର୍ଥ ବା ଶବ୍ଦ ପ୍ରକାଶ କରିବା ପାଇଁ ବ୍ୟବହୃତ ଚିହ୍ନ, (ସ୍ତ୍ରୀ) ସାଙ୍କେତିକୀ ।

ସାଙ୍କେତିକଧାରା—ଗ୍ରା. ବି. ହିସାବ କରିବାର ଇତର ଜନବୋଧ ସରଳପ୍ରଣାଳୀ ।

ସାଙ୍କେତ୍ୟ—ବି. (ସଙ୍କେତ+ଯ) ମୂଳପ୍ରମାଣଶୂନ୍ୟ ପାଷଣ୍ଡାଗମ,ପାଷଣ୍ଡମାନଙ୍କ ଶାସ୍ତ୍ର ।

ସାଙ୍କ୍ରମିକ—ବିଂ.(ସଙ୍କ୍ରମ+ଇକ)ସଙ୍କ୍ରମଶୀଳ, (ବି) ଯେଉଁ ରୋଗ ରୋଗୀର ଦେହରୁ ଅନ୍ୟ ଦେହକୁ ସଂକ୍ରମଣ କରେ ।

ସାଂକ୍ଷେପିକ—ବିଂ. (ସଂକ୍ଷେପ+ଇକ) ସଂକ୍ଷିପ୍ତ, ସଂକ୍ଷେପକାରକ ।

ସାଙ୍ଖ୍ୟ—ବିଂ. (ସଂଖ୍ୟା+ଅ) ଜ୍ଞାନୀ,ଜ୍ଞାନ ସମ୍ବନ୍ଧୀୟ, (ବି) କପିଳମୁନିଙ୍କ ପ୍ରଣୀତ ହିନ୍ଦୁଦର୍ଶନଶାସ୍ତ୍ର ।

ସାଙ୍ଖ୍ୟଦର୍ଶନ—ବି.କପିଳଦର୍ଶନ, କପିଳମୁନିଙ୍କ ପ୍ରବର୍ତ୍ତିତ ଦର୍ଶନଶାସ୍ତ୍ର ।

ସାଙ୍ଖ୍ୟଯୋଗ—ବି.ସାଙ୍ଖ୍ୟଦର୍ଶନ ପ୍ରଦର୍ଶିତ ଜ୍ଞାନଯୋଗ, ବ୍ରହ୍ମବିଦ୍ୟା, ଯହିଁରେ ଅଜ୍ଞାନର ନିବୃତ୍ତି ହୋଇ ସାଙ୍ଖ୍ୟ ବା ବେଦଜ୍ଞାନଦ୍ୱାରା ଜୀବର ମୁକ୍ତିଲାଭ ହୁଏ, ଭଗବଦ୍‌ଗୀତାର ତୃତୀୟ ଅଧ୍ୟାୟରେ ବର୍ଣ୍ଣିତ ସାଙ୍ଖ୍ୟ ବା ଜ୍ଞାନଯୋଗ ଓ ଯୋଗ ବା କର୍ମଯୋଗ ।

ସାଙ୍ଖ୍ୟାୟନ—ପୁଂ.ବି. ସୂତ୍ରକାର ଭେଦ ।

ସାଙ୍ଗ—ବିଂ. ଦ.ସ୍ତ୍ରୀ; (ସ+ଅଙ୍ଗ) ଅଙ୍ଗବିଶିଷ୍ଟ ଅବୟବଯୁକ୍ତ,ସର୍ବାବୟବବିଶିଷ୍ଟ, ପୂର୍ଣ୍ଣାଙ୍ଗ, ସମ୍ପୂର୍ଣ୍ଣ, ଅବିକଳାଙ୍ଗ, (ସ୍ତ୍ରୀ) ସାଙ୍ଗା, (ଗ୍ରା.ବି) ସହଚରୀ, ସହଚର, ଭେଣୋଇ,(ଗ୍ରା.ବିଂ) ସମାପ୍ତ, ସଙ୍ଗରେ ଥିବା, (ପ୍ରା. ସମ୍ବଲ,ଆଠମଲ୍ଲିକ,ବୌଦ୍ଧ —ବି) ଭାଇଙ୍କ ଶାଳକ ।

ସାଙ୍ଗକରିବା—ଗ୍ରା. କ୍ରି. ସଙ୍ଗୀସ୍ୱରୂପ ଗ୍ରହଣ କରିବା, କୌଣସି କାର୍ଯ୍ୟକୁ ସମ୍ପୂର୍ଣ୍ଣ କରିବା ।

ସାଙ୍ଗକୁ—ଗ୍ରା. ଅ. ସାଙ୍ଗେ ଦେଖ, ନିକଟକୁ, ପାଖକୁ ।

ସାଙ୍ଗତିକ—ପୁଂ. ବି. ସଙ୍ଗତ,ସମ୍ମିଳନ, ସହାଧ୍ୟାୟୀ, ବିଚିତ୍ର ପରିହାସାଦି କଥାକାରୀ ।

ସାଙ୍ଗତ୍ୟ—ବି. ସାଙ୍ଗତିକ ।

ସାଙ୍ଗପାଙ୍ଗ-ଗ୍ରା.ବିଂ,ସାଙ୍ଗୋପାଙ୍ଗ ଦେଖ ।

ସାଙ୍ଗବାଲୁ—ଗ୍ରା. ବି. ଏକଦଳଭୁକ୍ତ ସଙ୍ଗୀମାନେ, (ସ୍ତ୍ରୀ) ସାଙ୍ଗବାଲୀ ।

ସାଙ୍ଗଭଇ – ଗ୍ରା. ପୁଂ. ବି. ଏକଦଳଭୁକ୍ତ

ବା ଶ୍ରେଣୀଭୁକ୍ତ ବ୍ୟକ୍ତି, ଭ୍ରାତୃସ୍ଥାନୀୟ ବ୍ୟକ୍ତି, ସହକର୍ମୀ ବ୍ୟକ୍ତି ।
ସାଙ୍ଗମ—ବି. (ସଙ୍ଗମ+ଅ) ସଙ୍ଗମ ।
ସାଙ୍ଗମନ—ବି. ସଙ୍ଗମ ।
ସାଙ୍ଗମେଳ(ଳ)—ବି. (ସଂ-ସଙ୍ଗୀ ଓ ମିଳନ) ସଙ୍ଗୀମାନଙ୍କ ସାହଚର୍ଯ୍ୟ,ବନ୍ଧୁ-ସଙ୍ଗୀଙ୍କ ସମାଗମ ।
ସାଙ୍ଗରୂପକ—ବି. ଏକପ୍ରକାର ରୂପକ ।
ସାଙ୍ଗରେ—ଗ୍ରା. ଅ. ସଙ୍ଗେ ଦେଖ ।
ସାଙ୍ଗଲକ୍ଷଣ—କ୍ଲୀ. ବି. ଅଙ୍ଗଲକ୍ଷଣଯୁକ୍ତ, ଅଙ୍ଗଲକ୍ଷଣ ସହିତ ବର୍ତ୍ତମାନ ।
ସାଙ୍ଗସର(ସା)—ଗ୍ରା. ବି. (ସଂ-ସଙ୍ଗ ଓ ସଦୃଶ) ସଙ୍ଗୀ ବା ସମକକ୍ଷ ବ୍ୟକ୍ତି ।
ସାଙ୍ଗସାଥି(ସୁଖ)—ଗ୍ରା. ବି. (ସଂ-ସଙ୍ଗ ଓ ସଖା) ସଙ୍ଗାତ ଓ ସହଚର, ସହଚର-ମାନଙ୍କସହିତ ଏକତ୍ର ଆମୋଦପ୍ରମୋଦ
ସାଙ୍ଗସୁଙ୍ଗା—ଗ୍ରା.ବି.ଏକ ସଙ୍ଗ ଓ ସହ-ବାସରେ ଥିବା ବ୍ୟକ୍ତିଗଣ, ସଙ୍ଗମେଳ, ସହଚରତ୍ୱ, ସାଙ୍ଗମାନଙ୍କ ମୋହବନ୍ତ, ସଙ୍ଗୀମାନଙ୍କ ଅନୁରୋଧ ଉପରୋଧ ।
ସାଙ୍ଗହେବା—ଗ୍ରା. କ୍ରି. କୌଣସି ବ୍ୟକ୍ତି ସହିତ ସହଚରତ୍ୱ ସ୍ଥାପନ କରିବା, କୌଣସି ବ୍ୟକ୍ତିଙ୍କ ସମଭିବ୍ୟାହାରୀ ହେବା, (କୌଣସି କାର୍ଯ୍ୟ) ସମ୍ପୂର୍ଣ୍ଣ-ହେବା ।
ସାଙ୍ଗା—ସ୍ତ୍ରୀ. ବିଂ. (ବି.ଣ) ଅଙ୍ଗଯୁକ୍ତା, (ପ୍ରା. ବଲଙ୍ଗିର ପାଟଣା. ବି) ଗୃହ-ଘରର ଭର୍ତ୍ତା,(ଉତ୍ତର ପଶ୍ଚିମ ଗଡ଼ଜାତ. ବି) ନୀଚ ଶ୍ରେଣୀଙ୍କ ମଧ୍ୟରେ ଦ୍ୱିତୀୟ ବିବାହ ।
ସାଙ୍ଗି—ଗ୍ରା.ବି. (ସଂ-ସଙ୍ଗୀ) ସଙ୍ଗୀ, ଏକ ସଙ୍ଗେ ବ୍ୟବସାୟ କରିବା ବ୍ୟକ୍ତି, ଅଂଶିଦାର, କୌଣସି ଗୁରୁ ପଦାର୍ଥ ଉଠାଇବା ନିମିତ୍ତ ଯେଉଁ ବାଉଁଶ ବା କାଷ୍ଠଖଣ୍ଡ ବ୍ୟବହାର କରାଯାଏ ଓ ଉଠାଇବା ପ୍ରକ୍ରିୟା ।
ସାଙ୍ଗିଆ—ଗ୍ରା.ବିଂ.(ସଂ-ସଙ୍ଗୀ)ସଙ୍ଗୀସମ୍ବ-ନ୍ଧୀୟ, (ଗ୍ରା.ବି) ସଙ୍ଗୀ, ଯେଉଁମାନେ ସାଙ୍ଗୀ ଦ୍ୱାରା ଭାର ବସ୍ତୁ ବହନ କରନ୍ତି, (ସଂ-ସଂଜ୍ଞା) ସଂଜ୍ଞା, କୌଣସି ବ୍ୟକ୍ତିର ବଂଶଗତ ଉପାଧି ।
ସାଙ୍ଗିବା—ଗ୍ରା. (ବସ୍ତ୍ର)କ୍ରି. କହିବା ।
ସାଙ୍ଗୁଆ-ଗ୍ରା.ପୁଂ.ବିଂ. ଯେଉଁ ବ୍ୟକ୍ତି ସଙ୍ଗୀ-ମାନଙ୍କ ସମାଜରେ ଚଳିବାକୁ ସୁଖ-ପାଏ, ସାମାଜିକ,(ବି)ସଙ୍ଗୀ, ସହଚର, ସାଥୁଆ, ଯେଉଁ ଯାତ୍ରୀ ଗୁମାସ୍ତା ଅନ୍ୟ ପଣ୍ଡାଙ୍କ ଯାତ୍ରୀମାନଙ୍କ ସଙ୍ଗଧରି ବହୁ ଦୂରରୁ ତୀର୍ଥକୁ ଆସିଥାଆନ୍ତି, ଯେଉଁ ଲୋକମାନେ ସାଙ୍ଗୀ ବାଉଁଶ ଦ୍ୱାରା ଭାର କାନ୍ଧେଇ କରି ବୁହନ୍ତି ।
ସାଙ୍ଗେ—ଗ୍ରା.କ୍ରି. ବିଂ ସାଥିରେ, ସଙ୍ଗେ, ସଙ୍ଗରେ, ସମଭିବ୍ୟାହାରରେ, ଏକ-ସଙ୍ଗେ, ସହିତ, ଏକତ୍ର ।
ସାଙ୍ଗେଇବା—ଗ୍ରା.କ୍ରି.କୌଣସି ବ୍ୟକ୍ତିକୁ ଆପଣାର ସହଚରରୂପେ ଗ୍ରହଣକରିବା
ସାଙ୍ଗେନ୍—ପ୍ରା. (ବଲଙ୍ଗିର ପାଟଣା) ବି. ସାଙ୍ଗ ।
ସାଙ୍ଗେସାଙ୍ଗେ—ଗ୍ରା. କ୍ରି. ବିଂ. ସହିତ, ସମଭିବ୍ୟାହାରରେ, ଏକତ୍ର, ଏକ-ସମୟରେ, ଯୁଗପତ୍, ତତ୍‌କ୍ଷଣାତ୍, ସେହିକ୍ଷଣି ।
ସାଙ୍ଗୋପାଙ୍ଗ—ବିଂ(ସ+ଅଙ୍ଗ+ଉପାଙ୍ଗ) ଅଙ୍ଗ ଉପାଙ୍ଗଯୁକ୍ତ, ପୂର୍ଣ୍ଣାଙ୍ଗ, ଯାହାର କୌଣସି ଅଂଶ ଖଣ୍ଡିଆ ବା ଅସମ୍ପୂର୍ଣ୍ଣ ରହିନାହିଁ, ଶାସ୍ତ୍ର ବା ବିଧି ନିର୍ଦ୍ଦିଷ୍ଟ ସମସ୍ତ ଅଙ୍ଗମାନ ଅନୁଷ୍ଠିତ ହୋଇଥିବା(କର୍ମ)
ସାଙ୍ଗୋପାଙ୍ଗବେଦ—ବି. (ଅଙ୍ଗ ଓ ଉପାଙ୍ଗ ସହିତ ବେଦ) ଋକ୍ ଯଜୁଃ ସାମରୂପ ଛଅ ଅଙ୍ଗ ଓ ଶିକ୍ଷା କଳ୍ପ, ବ୍ୟାକରଣ, ନିରୁକ୍ତ, ଛନ୍ଦଃ, ଜ୍ୟୋତିଷ ରୂପ ଛଅ ଉପାଙ୍ଗଯୁକ୍ତ ସମଗ୍ର ବେଦ ।
ସାଙ୍ଗ୍ରହଣ—କ୍ଲୀ. ବି. ସଂଗ୍ରହ ।
ସାଙ୍ଗ୍ରହସୂତ୍ରିକ— ପୁଂ. ବିଂ. ଯେ ସଂଗ୍ରହସୂତ୍ର ଅଧ୍ୟୟନ କରିଥାଏ ।
ସାଙ୍ଗ୍ରହିକ—ପୁଂ. ବିଂ. (ସମ୍+ଗ୍ରହ୍+ଇକ)ସଂଗ୍ରହକାରୀ, ସଂଗ୍ରହ ଗ୍ରନ୍ଥ ଅଧ୍ୟୟନକାରୀ ।
ସାଙ୍ଗ୍ରାମ—ପୁଂ.ବିଂ.(ସଂଗ୍ରାମ+ଅ)ସଂଗ୍ରାମ କାର୍ଯ୍ୟକାରୀ, (ବି) ଯୁଦ୍ଧ ।
ସାଙ୍ଗ୍ରାମିକ—ବିଂ(ସଙ୍ଗ୍ରାମ+ଇକ)ସଙ୍ଗ୍ରାମ-ସମ୍ବନ୍ଧୀୟ,ଯୁଦ୍ଧୋପଯୋଗୀ,ରଣକୁଶଳ, (ବି) ସେନାପତି ।
ସାଙ୍ଘାଟିକା—ସ୍ତ୍ରୀ.ବି.ଯୁଗଳ, ସ୍ତ୍ରୀ ମିଥୁନ, କୁଟ୍ଟନୀ, ବୃକ୍ଷଭେଦ ।
ସଂଘାତ—ବି. ସଂଘାତ, ସମୂହ, ଦଳ ।
ସାଙ୍ଘାତିକ—ବିଂ. (ସଂଘାତ+ଇକ) ମାରାତ୍ମକ,ପ୍ରାଣନାଶକ, ବିନାଶଜନକ, (ସ୍ତ୍ରୀ)ସାଙ୍ଘାତିକୀ,(ବି) ଜନ୍ମ ନକ୍ଷତ୍ରଠାରୁ ଷୋଡ଼ଶ ନକ୍ଷତ୍ର, ନାଡ଼ୀଭେଦ, (ଗ୍ରା. ବି) ସମଷ୍ଟିବଦ୍ଧ ଏକଜାତୀୟ କ୍ଷୁଦ୍ର ଶାମୁକା ।
ସାଙ୍ଘାତ୍ୟ—କ୍ଲୀ. ବି. ସଂହାତ୍ୟ ।
ସାଙ୍କୁଳୀ—ସ୍ତ୍ରୀ.ବି. (ସଙ୍କୁଳ+ଅ+ଈ) ସାମ୍ରାଜ୍ୟ ବ୍ୟାପିନୀ ତଥ୍ୟ ।
ସାଗ୍ରହ—ବିଂ. (ସ+ଆଗ୍ରହ) ବି.ଖ୍ରୀ; ଆଗ୍ରହବାନ୍, ସଦାଗ୍ରହସମ୍ପନ୍ନ, (ସ୍ତ୍ରୀ) ସାଗ୍ରହା ।
ସାଚ—ଅ.(ସତ୍+ସଂ.ଇ)ବିତ୍ର, ତର୍ଯ୍ୟକ୍, ତେରଛା,(ଗ୍ରା.ବି-ସଂ-ଶ୍ୱେତ ବା ସତ୍ୟ) ପରିଷ୍କୃତ ଗୁଡ଼, କନ୍ଦ, ମିଷ୍ଟାନ୍ନ, ଖଣ୍ଡ ନବାତ,(ଗ୍ରା.ବିଂ)ଧଳା, ଶ୍ୱେତ,ଉତ୍କୃଷ୍ଟ, ଅସଲ, ଅବିମିଶ୍ର ।
ସାଚକ୍ଷା(ଖା)ର—ଗ୍ରା.ବି.(ସଂ-ସର୍ଜିକ୍ଷାର) ଖାରମାଟି, ସୋଡ଼ା, ସୋଡ଼ିଅମ୍ ବା ପୋଟାସିୟମ ଓ ଅଙ୍ଗାର ଘଟିତ କ୍ଷାର-ବିଶେଷ ।
ସାଚଧଡ଼ି—ଗ୍ରା.ବି. ଲୁଗାରେ ଦିଆଯାଇ-ଥିବା ରେସମର ଧଳା ଜରୀର ।
ସାଚପାନ—ଗ୍ରା.ବି.ପାଚକଣ ଧଳା ପଡ଼ି-ଯାଇଥିବା ପାନ, ଏକ ପ୍ରକାର ସୁଗନ୍ଧ-ଯୁକ୍ତ ପାନ ।
ସାଚବାଟିକା—ବି (ସାଚ + ବଟ + ଇକ + ଆ)ଶ୍ୱେତ ପୁନର୍ନବା,ଧଳାପୁରୁଣୀ ।
ସାଚବ୍ୟ—ବି.(ସଚିବ+ଷ୍ୟ) ମନ୍ତ୍ରିତ୍ୱ, ରାଜ୍ୟଶାସନ, (ଗ୍ରା.ବି) ସାହାଯ୍ୟ, ପରା-ମର୍ଶ, ମୂଳ୍ୟ ସୁଲଭତା ।
ସାଚବ୍ୟାକ୍ଷେପ—ବି. ଅଳଙ୍କାର ଭେଦ

ସାଚୀକରଣ—ବି. (ସାଚ+ଚ୍ୱି+କରଣ) ସିଧା ଜନସକୁ ବଶକରିବା,ବଶୀକରଣ, ନୁଆଁଇବା ।

ସାଚୀକୃତ—ବିଂ. (ସାଚ+ଚ୍ୱି+କୃ+ର୍ମ.ତ) ବଶୀକୃତ, ତର୍ଯ୍ୟକ୍‌କୃତ ।

ସାଚୀଗୁଣ—ପୁଂ.ବି.ଦେଶଭେଦ, ପ୍ରକୃଷ୍ଟ ଗୁଣବାନ୍ ଦେଶ ।

ସାଚେତ୍ୟ—ବିଂ. ପୂରକ ।

ସାଚ୍ୟ—ବିଂ. ସମବେତବ୍ୟ ।

ସାଜ—ବିଂ. ଅଜର ସମ୍ବନ୍ଧୀୟ ବର୍ତ୍ତମାନ, (ବି) ପୂର୍ବ ଭାଦ୍ରପଦ ନକ୍ଷତ୍ର, (ଗ୍ରା.ବି.ସଂ-ସଜ୍ଜା) ସଜ୍ଜା, ପୋଷାକ, ବେଶ, ସଜ୍ଜିତ ହେବା ସରଞ୍ଜାମ, ଅଲଙ୍କାରର ଉପକରଣଚୟ, ଅଲଙ୍କାର, ଘରର ଆସବାବ, ଗୃହ ସଜ୍ଜାର ଉପକରଣ,ସନ୍ନାହ, ବର୍ମ, ଅସ୍ତ୍ର ଶସ୍ତ୍ରାଦ, ଅଲଙ୍କାରର ଏକସେଟ୍ ବା ଏକସାର,ସୌନ୍ଦର୍ଯ୍ୟ,ଶୋଭା ।

ସାଜଗୋଜ—ଗ୍ରା. ବି. ସାଜସଜ୍ଜା ଦେଖ, (ବିଂ) ସଜବାଜ, ସୁସଜ୍ଜିତ,ସମ୍ପୂର୍ଣ୍ଣରୂପେ ସଜ୍ଜିତ ।

ସାଜଣା(ଣି)—ଗ୍ରା. ବି. ସାଜଣି ଦେଖ ।

ସାଜ(ଜି)ସ୍—ଯା. ବି. (ମନ୍ଦାର୍ଥ) ମେଳ, କୁମନ୍ତ୍ରଣା,ଷଡ଼ଯନ୍ତ୍ର, (ଯା.ବିଂ)ଷଡ଼ଯନ୍ତ୍ରଜନିତ ।

ସାଜସଜ୍ଜା—ଗ୍ରା. ବି. ବେଶର ଉପକରଣ ସମୂହ, ଆସବାବ, ଗୃହସଜ୍ଜା ।

ସାଜାତ୍ୟ—ବି. (ସଜାତି+ଭା.ଯ)ସଜାତିସ୍ୱତା, ଏକଜାତିସ୍ୱତା, ଏକବିଧତା ।

ସାଜି—ଗ୍ରା.ବି ଓ ଯା. ବି. ମେଳ, ବ୍ୟବସାୟରେ ଏକାଧିକ ଲୋକଙ୍କର ଯୋଗ, କୃଷିରେ ଭାଗଦାରୀ, ( ସଂ-ସାହାଯ୍ୟ ) ସାହାଯ୍ୟ, ସମ୍ମତି, (ବିଂ) ଇଜମାଇଲ, ଭାଗ ହୋଇନଥିବା (ସମ୍ପତ୍ତି) ।

ସାଜ(ଜେ)ଣି—ଗ୍ରା.ବି.ସାଜସଜ୍ଜା,ସଜ୍ଜିତକରଣ,ଅଲଙ୍କରଣ,ଅଲଙ୍କାର,ପୋଷାକ, ସଜ୍ଜା ।

ସାଜିଦାର୍—ଯା.ବି.ଯୌଥ ବ୍ୟବସାୟରେ ଅଂଶୀଦାର, ଭାଗଦାର୍ । [ ଭାଙ୍ଗିବା ।

ସାଜିନଖେଳିବା—ପ୍ରା.(ଯାଜପୁର,କ୍ରି)ବନ୍ଧ

ସାଜିବା—ଗ୍ରା.କ୍ରି.ନିଜେ ସଜ୍ଜିତହେବା, ସଜହେବା, ସୁସଜ୍ଜିତ କରିବା, ଅଲଙ୍କୃତ କରିବା, କୌଣସି କାର୍ଯ୍ୟପାଇଁ ନିଜେ ପ୍ରସ୍ତୁତ ହେବା, ସଜାଇବା, ସାଇତିବା, ଉପଯୋଗୀ ହେବା, ଶୋଭାପାଇବା, ସୁନ୍ଦର ଦେଖାଯିବା,ଦୀପ୍ତିପାଇବା ।

ସାଜିମାଟି—ଗ୍ରା. ବି. କ୍ଷାରଯୁକ୍ତ ମୃତ୍ତିକା, ସର୍ଜିକାକ୍ଷାର ।

ସାଜିରେ ଚଷିବା—ଗ୍ରା.କ୍ରି. ( ଏକାଧିକ କୃଷକ)ଭୂମିକୁ ଭାଗଦାର ହୋଇ କୃଷି କରିବା ।

ସାଜୁ—ଗ୍ରା. ବି.ସାଞ୍ଜୁ ଦେଖ (ପ୍ରା.ଲରିଆ) ବି. ସଜ୍ଜା, ଆଭରଣ, ଅଲଙ୍କାର ।

ସାଜେ—ଗ୍ରା.ବି. ବିଂ.ଏକସେଟ୍,ଏକସାଜ

ସାଜୋ—ପ୍ରା.(ପାଟଣା;ବି)ବେଶ,ଭୂଷଣ

ସାଞ୍ଚ—ଗ୍ରା. ବି. ଗ୍ରନ୍ଥ ।

ସାଞ୍ଚାରିକ—ବିଂ.(ସଞ୍ଚାର+ଇକ) ସଞ୍ଚାର ସମ୍ବନ୍ଧୀୟ,ସଞ୍ଚରଣଶୀଳ,ସଞ୍ଚାରଯୋଗ୍ୟ, (ସ୍ତ୍ରୀ) ସଞ୍ଚାରିକା । [ ଖେଳ ।

ସାଞ୍ଚି—ଗ୍ରା. ବି.ଗ୍ରନ୍ଥ, ଅଲେଖା ତାଳପତ୍ର

ସାଞ୍ଜନ—ବି. ( ସ+ଅଞ୍ଜନ ) କୃକଳାସ, ଏଣ୍ଡୁଅ, (ବିଂ) ଅଞ୍ଜନବିଶିଷ୍ଟ, ଶରୀରେନ୍ଦ୍ରିୟ ସମ୍ବନ୍ଧୀୟ ।

ସାଞ୍ଜୁ—ଗ୍ରା. ବି. (ସଂ-ସଜ୍ଜା) ଯୋଦ୍ଧାର ଦେହରକ୍ଷକ ପୋଷାକ, କବଚ, ବର୍ମ, ପକ୍ଷ, ଡେଣା ।

ସାଞ୍ଜୁଆ—ଗ୍ରା.ବି.ସାଞ୍ଜୁ ଦେଖ,(ପୁଂ.ବିଂ) ସାଞ୍ଜୁଆଳ ଦେଖ ।

ସାଞ୍ଜୁଆଳ—ଗ୍ରା. ବିଂ. ବର୍ମାବୃତ ।

ସାଞ୍ଜୁଳାଗି(ହେ)ବା—ଗ୍ରା. କ୍ରି. ଏକତ୍ର ଛନ୍ଦାହେବା ।

ସାଞ୍ଜୁଳିବା—ଗ୍ରା. କ୍ରି. (ସଂ-ସଂଯୋଜନ) ଦୁଇ ବା ତତୋଧିକ ବସ୍ତୁକୁ ବା ଜୀବଙ୍କୁ ଦଉଡ଼ି ଦ୍ୱାରା ପରସ୍ପର ସଙ୍ଗେ ଛନ୍ଦିଦେବା,ଦୁଇ ବା ତତୋଧିକ ଜୀବଙ୍କୁ ବା ବ୍ୟକ୍ତିଙ୍କୁ ଏକ ସ୍ଥାନରେ ରଖିବା ।

ସାଟ୍—ଗ୍ରା.ବି.ଗନ୍ଧା, କୁମନ୍ତ୍ରଣା, ଇଙ୍ଗିତ, ସଙ୍କେତ, ଗୋଡ଼ ଦଣ୍ଡା ଦ୍ରବ୍ୟକୁ ଆକର୍ଷି ଧରିବା ପାଇଁ ପଛ ପାଖର ଫଳିର ମୁଣ୍ଡରେ ଦିଆଯାଇଥିବା କାଠର ଖିଲ ।

ସାଟୋପ—ବିଂ. (ସ+ଆଟୋପ)ବି.ସ୍ତ୍ରୀ; ସାଡ଼ମ୍ବର, ଅହଙ୍କୃତ, ସଗର୍ବ,ବିକଟାଳ, (ଗ୍ରା.ବି) ଗର୍ବ, ଆଡ଼ମ୍ବର ।

ସାଟୋପେ—ଗ୍ରା. କ୍ରି. ବିଂ. ଆଡ଼ମ୍ବର ସହକାରେ, ଗର୍ବସହକାରେ ।

ସାଠ—ଗ୍ରା.ବି.ଶାଣ୍ଠ, (ପାଠ ଶବ୍ଦର ଅର୍ଥହୀନ ସହଚର)ଯେଉଁ ବୁଦ୍ଧି ବା ବିଚକ୍ଷଣତା ପୁସ୍ତକରୁ ବା ପାଠରୁ ମିଳ ନଥାଏ, ସାଂସାରିକ ଅଭିଜ୍ଞତା, ସାଂସାରିକ ବିଷୟବୁଦ୍ଧି, ବୁଦ୍ଧିର ବିଚକ୍ଷଣତା ।

ସାଠୁଆ—ଗ୍ରା.ପୁଂ.ବିଂ.ବୁଦ୍ଧିମାନ୍, ସାଂସାରିକ ବିଷୟବୁଦ୍ଧିସମ୍ପନ୍ନ ।

ସାଡ଼ଗାଡ଼—ପ୍ରା. (ସମ୍ବଲ) ବି. ପିଲା ଓ ସ୍ତ୍ରୀମାନଙ୍କର ଏକପ୍ରକାର ଖେଳ ।

ସାଡ଼ ସାତ—ଗ୍ରା. ବି. (ସଂ-ସାର୍ଦ୍ଧ ସପ୍ତ) ସାର୍ଦ୍ଧ ସପ୍ତ, ସାର୍ଦ୍ଧ ସପ୍ତବର୍ଷ ।

ସା(ସ୍ୟା)ଡ଼-ଗ୍ରା. ବି. ସେଆଡ଼, ସେଦିଗ, ସିଆଡ଼, ସେହିସ୍ଥାନ ।

ସା(ସ୍ୟା)ଡ଼ଜା—ଗ୍ରା. ବିଂ. ସେହିଆଡ଼ର, ସେହି ସ୍ଥାନର ।

ସା(ସ୍ୟା)ଡ଼କୁ—ଗ୍ରା. ଅ. ସେହିଆଡ଼କୁ, ସିଆଡ଼କୁ, ସେହିସ୍ଥାନକୁ ।

ସାଡ଼ମ୍ବର—ପୁଂ. ବିଂ.( ସ+ଆଡ଼ମ୍ବର) ବି.ସ୍ତ୍ରୀ; ଆଡ଼ମ୍ବରଯୁକ୍ତ,(ସ୍ତ୍ରୀ)ସାଡ଼ମ୍ବରା ।

ସାଡ଼ା—ଗ୍ରା. ବି. (ସଂ-ସ୍ୱର ବା ସଂଜ୍ଞା) ସ୍ୱର, ଶବ୍ଦ, ଧ୍ୱନି, ଚୈତନ୍ୟ, ସ୍ପନ୍ଦନ, ଡାକର ଜବାବ,ଉଚ୍ଚୈଃସ୍ୱରରେ ଉତ୍ତର, ଆହ୍ୱାନ, ଡାକହାକ ।

ସାଡ଼ା(ଡ଼ି)ଶବ୍ଦ—ଗ୍ରା. ବି. କୌଣସି ପ୍ରକାରର ଶବ୍ଦ ବା ଧ୍ୱନି, ସ୍ପର୍ଶବୋଧ, ଚୈତନ୍ୟ,ଜୀବର ଅତି କ୍ଷୀଣ ପ୍ରାଣ ଥିବାର ପ୍ରମାଣ ।

ସା(ସ୍ୟା)ଡ଼ୁ—ଗ୍ରା.ଅ.ସେହିଦିଗରୁ, ସେହି ସ୍ଥାନରୁ, (ପ୍ରା. ପାଟଣା କନ୍ଧମାଳ ଅଞ୍ଚଳ) ବିଂ. ସାରୁ ।

ସା(ସ୍ୟା)ଡ଼େ—ଗ୍ରା. ଅବ୍ୟ. ସେ ଦିଗରେ, ସେଠଣେ, ସେ ସ୍ଥାନରେ, ସେଠାରେ ।

ସାଢ଼ୀ—ପ୍ରା. (ଲରିଆ) ବି. ଦୁର୍ଘାଦର

ସର, ( ଗ୍ରା.ବ,ସଂ-ଶାଟିକା ) ସଧବା ସ୍ତ୍ରୀମାନଙ୍କ ପରିଧେୟ ଧଡ଼ିଦାର୍ ଲୁଗା, ଶାଢ଼ୀ ।

ସାଢ଼ୁ—ପ୍ରା. (ଦସ୍ତର)ପୁଂ. ବ.ସଢୁଭେଶ ।

ସାଢ଼େ—ଗ୍ରା. ବିଂ. (ସଂ-ସାର୍ଦ୍ଧ) ସାର୍ଦ୍ଧ, ଅର୍ଦ୍ଧସହିତ ।

ସାଣ—ଗ୍ରା. ବ. (ସଂ-ଶାଣ) ଶାଣଦେବା, ମନ୍ଦହୋଇଥିବା ଅସ୍ତ୍ରାଦିର ଧାରକୁ ତୀକ୍ଷ୍ଣ କରିବା ।

ସାଣ୍ଢଣା—ଗ୍ରା. ବ. କୌଶଳ, ମହତ୍ତ୍ୱ, କଳାବିଦ୍ୟା ।

ସାଣ୍ଟି(ଣ୍ଠି)ବା—ଗ୍ରା. କ୍ରି. ଧାନ୍ୟାଦି କ୍ଷୁଦ୍ର ବସ୍ତୁକୁ ଏକତ୍ର ମିଶାଇବା, ଫେଣ୍ଟିବା, ଧାନଆଦିକୁ କାଣ୍ଡିବା, ଆଘାତ କରିବା, ବଳପୂର୍ବକ ଠେଲିବା, ବଳପୂର୍ବକ ଉପର୍ଯ୍ୟୁପରି ଘଷିବା, ମକଚିବା,ଅଣ୍ଟିବା, ସଂଲଗ୍ନ କରିବା, ଅତ୍ୟାଗ୍ରହ କରିବା, ବିପଦରେ ପକାଇବା, ସିଧା କରିବା, (ବ୍ୟଙ୍ଗ୍ୟ) ବହୁତଗୁଡ଼ାଏ ଖାଇବା ।

ସାଣ୍ଟେଇବା—ଗ୍ରା. କ୍ରି. ସାଣ୍ଟି ବାକ୍ରିୟାର ଣିଜନ୍ତରୂପ, ହୃଡ଼ବଡ଼େଇବା, ପରାସ୍ତ ହେବା ।

ସାଣ୍ଡ—ବିଂ, ଅଣ୍ଡଯୁକ୍ତ, ଅଣ୍ଡବିଶିଷ୍ଟ, (ପ୍ରା. ବସ୍ତର. ବ) ଷଣ୍ଢ ।

ସାତ୍—କ୍ଲୀ. ବ. (ସାତ୍+କ୍ୱିପ୍) ବ୍ରହ୍ମ, (ଅ-ପ୍ରତ୍ୟୟ,ଅନ୍ୟ ବିଶେଷ୍ୟ ଶବ୍ଦପରେ ଯୁକ୍ତ ହୁଏ), ଅମୁକବସ୍ତୁ(ମଧ୍ୟକୁ)ଗୃହୀତ, ଅନ୍ତର୍ଭୁକ୍ତ, (ଗ୍ରା.ଅ. ସଂ-ସ୍ୟାତ୍)ଯଦି-ସ୍ୟାତ୍, ଯଦ୍ୟପି,ପଶ୍ଚାନ୍ତରରେ,ଅଥବା, ସହିତ, (ବିଂ) ସାତ୍, ୭ ।

ସାତ—ବ. (ସାତ୍+ଘ.ଅ)ସୁଖ,ମଙ୍ଗଳ, ହର୍ଷ, ସିଂହଳୁପୀ ଗନ୍ଧର୍ବବିଶେଷ,(ବିଂ-ସନ୍+ମି.ତ) ଦତ୍ତ, (ସୋ+କ.ତ) କଷ୍ଟ,(ଗ୍ରା.ବ. ସଂ-ସପ୍ତନ୍)ସପ୍ତସଂଖ୍ୟା, ଛତା, ସାତଟିପଯୁକ୍ତ ଗଞ୍ଜପାସାର, (ବିଂ ସପ୍ତସଂଖ୍ୟକ, (ଗ୍ରା.ଅ) ସଙ୍ଗେ ।

ସାତଅଲଗା—ଗ୍ରା. ବିଂ. ପରସ୍ପର ଠାରୁ ପୃଥକ୍ ହୋଇ ଭିନ୍ନ ଭିନ୍ନ ସ୍ଥାନରେ ଅବସ୍ଥିତ(ବ୍ୟକ୍ତି ବା ବସ୍ତୁ),ସମ୍ପୂର୍ଣ୍ଣରୂପେ ପରସ୍ପର ସମ୍ପର୍କରହିତ ।

ସାତଅହ୍ୟଅ—ଗ୍ରା. ସ୍ତ୍ରୀ. ବ. ସାତଜଣ ସଧବା ସ୍ତ୍ରୀଲୋକ ।

ସାତକଥା—ଗ୍ରା. ବ. ନାନାକଥା,ନାନା-ପ୍ରକାରର ଗପସପ, ବହୁକଥନ୍ତି ।

ସାତକପର୍ଣ୍ଣିକଆ—ଗ୍ରା.ବ.ସାତସଂଖ୍ୟାରେ ୧୦ ରୁ ୧୨ ପର୍ଯ୍ୟନ୍ତ ଗୁଣାଯାଇ ଲେଖା-ଯିବା ପଣକିଆର ଖଣ୍ଡମାନ ।

ସାତକାଣ୍ଡ—ଗ୍ରା.ବ.ରାମାୟଣର ସପ୍ତକାଣ୍ଡ ବା ବୃତ୍ତାନ୍ତ ।

ସାତକାଣ୍ଡରାମାୟଣ—ଗ୍ରା. ବ. ରାମାୟଣ-ପରି ବୃହତ୍ ଗ୍ରନ୍ଥ,ଅତି ବୃହତ୍ ବ୍ୟାପାର ।

ସାତକାମୁଡ଼ା—ଗ୍ରା.ବ. ଏକପ୍ରକାର କଳା ଷଟ୍‌ପଦୀ ପକ୍ଷବିହୀନ ପୋକ, ଏକପ୍ରକାର ପୋକ ।

ସାତକୁ ସତର କରିବା-ଗ୍ରା. କ୍ରି. କୌଣସି ବିଷୟକୁ ଅତିରଞ୍ଜିତ କରି ବର୍ଣ୍ଣନା କରିବା, ଅର୍ଥାତ୍ ମିଛକଥା ଯୋଡ଼ିକରି କହିବା । [ ୭×୧ ।

ସାତକେ—ଗ୍ରା. ବ. ୭ ରେ ୧ ଗୁଣିଲେ

ସାତକୋଣିଆଗଣ୍ଡ—ଗ୍ରା.ବ. ପ୍ରାୟ ସାତ-କୋଶ ଦୀର୍ଘ ମହାନଦୀର ଗଭୀରଅଂଶର ନାମ ।

ସାତଖୁଣିମାଫ୍—ଗ୍ରା. ବ. ରାଜାନୁଗ୍ରହରୁ ବ୍ୟକ୍ତିବିଶେଷଙ୍କ ସାତଗୋଟି ନରହତ୍ୟା ଅପରାଧର ଦଣ୍ଡରୁ ଅବ୍ୟାହତି ଦିଆଯିବା ରୂପ ପ୍ରାଚୀନ ପ୍ରଥା ।

ସାତଖୁଆ—ଗ୍ରା. ବ. ପ୍ରଥମେ ରଜସ୍ୱଳା ବାଳିକାର ପ୍ରଥମ ରଜୋଦର୍ଶନର ସପ୍ତମଦିନ ସାତଜଣ ଅହ୍ୟ ମାଇପଙ୍କ ଦ୍ୱାରା ଦୂବ, ବରକୋଳି ପତ୍ର ଓ ହଳଦିଆ ଗୃହରେ ବନ୍ଦାପନା ।

ସାତଗାଡ଼ଖେଳ—ପ୍ରା. ( ସମ୍ବ ) ବ. କାଣ୍ଡିଗାଡ଼ ଖେଳ ।

ସାତଗୁଣା—ଗ୍ରା.ବ. (ସଂ-ସପ୍ତ+ଗୁଣିତ) ସାତଗୁଣ, (ବିଂ.ସଂ-ସପ୍ତଗୁଣିତ) ସପ୍ତ-ତନ୍ତ୍ରୀଯୁକ୍ତ, ସାତଗୁଣ ବେଶି ।

ସାତପଡ଼ୁ—ପ୍ରା.(ବାଲେ)ବ. ପୌଷମାସ ଶୁକ୍ଳ ଦଶମୀ ତିଥିରେ ହେବା ଉପବାସ ଓ ପର୍ବ, ଶମ୍ବରଦଶମୀ ।

ସାତଘଡ଼ିଆ—ଗ୍ରା.ବ. ବନ୍ଧୂକପୁଷ୍ପ,ବନ୍ଧୁଲି ଫୁଲ, ଦୁପହରିଆ ଫୁଲ ।

ସାତଘରବୁଢ଼ା(ଭଙ୍ଗା)—ଗ୍ରା. ପୁଂ. ବ. ଯେଉଁ ବ୍ୟକ୍ତି ଅନେକ ପରିବାରରେ ଅଶାନ୍ତି ବା କଳହ ବା ବିନାଶ ଘଟାଏ, (ସ୍ତ୍ରୀ)ସାତଘର ବୁଡ଼େଇ (ଭଙ୍ଗେଇ) ।

ସାତଘରବୁଡ଼ା(ଡ଼ୋ)ଇବା—ଗ୍ରା. କ୍ରି.ବହୁ ପରିବାରରେ କଳହ ଓ ଅନିଷ୍ଟଆଦି ଲାଗିବାର କାରଣ ହେବା ।

ସାତଘାଟରେ ପାଣି ପିଆଇବା—ଗ୍ରା. କ୍ରି. କୌଣସି ବ୍ୟକ୍ତିକୁ ନାନାସ୍ଥାନକୁ ଯିବାକୁ ବାଧ୍ୟ କରି ହଇରାଣ କରିବା ।

ସାତଘେରା—ଗ୍ରା.ବ.ସାତଥର ପ୍ରଦକ୍ଷିଣ ।

ସାତଜନମ(ଜନ୍ମ)—ଗ୍ରା. ବ. (ସଂ-ସପ୍ତ-ଜନ୍ମ)ସଂସାରରେ ବହୁ ଜନ୍ମ ଜନ୍ମାନ୍ତର ।

ସାତଡ଼ଙ୍କିଆ—ପ୍ରା. (ବାଙ୍କି ଓ ଡମପଡ଼ା) ବ. କାଠଚମ୍ପାଫୁଲ ଓ ଗଛ ।

ସାତତାଳପାଣି—ଗ୍ରା. ବ. (ସାତଗୋଟି ତାଳଗଛ ବୁଡ଼ିଯିବା ଭଳି)ଅତି ଗଭୀର ଜଳ ।

ସାତତ୍ୟ—ବ. (ସତତ+ଘ.ଯ) ଅବି-ଚ୍ଛେଦ, ଅବିଚ୍ଛିନ୍ନତା, ସତତ ଘଟିବା ଅବସ୍ଥା ।

ସାତଦ୍ୱୀପ—ଗ୍ରା. ବ. (ସଂ-ସପ୍ତ ଓ ଦ୍ୱୀପ) ବନ୍ଦାଇବା ପାଇଁ ବ୍ୟବହୃତ ସପ୍ତବର୍ତ୍ତି ଓ ସପ୍ତ ମୁଖଯୁକ୍ତ ପ୍ରଦୀପ ।

ସାତପଛ—ଗ୍ରା.ଅ. (ସଂ-ସପ୍ତ+ପଶ୍ଚାତ୍) ସମସ୍ତଙ୍କ ପଛ,ସମସ୍ତଙ୍କ ପରେ ଆଗତ, ସମସ୍ତଙ୍କ ପରେ ଜାତ ।

ସାତପଭୁରିଆ—ଗ୍ରା.ବ (ସଂ-ସପ୍ତପଦ୍ଧିକା) ସାତଟି ପତ୍ର ହେଲେ ଯେଉଁ ଗଛ ଫଳେ ( ଅର୍ଥାତ୍ କଞ୍ଚି ବା ଭେଣ୍ଡି ), ଯେଉଁ କଞ୍ଚି, ଯେଉଁ କଞ୍ଚି ଏକାକି ସାତଟି ଫଳ ଧରେ ।

ସାତପର—ଗ୍ରା.ବ. ସମ୍ପୂର୍ଣ୍ଣ ରୂପେ ଅସମ୍ପର୍କୀୟ ବ୍ୟକ୍ତି, ସମ୍ପୂର୍ଣ୍ଣ ରୂପେ ଅଜ୍ଞାତ ବ୍ୟକ୍ତି । [ ଖେଳ ।

ସାତପହଣ୍ଡି—ଗ୍ରା. ବ. ଏକପ୍ରକାର ଶିଶୁ

ସାତପାଞ୍ଚ—ଗ୍ରା.ବି. ବହୁଲୋକ ମୀମାଂସାର ଅସ୍ଥିରତା, ଦ୍ୱୈଧଭାବ, ସନ୍ଦେହ, ଅନେକ ବିଷୟ ।

ସାତପାତାଳ—ଗ୍ରା. ବି. ସପ୍ତପାତାଳ ।

ସାତପୁଅ—ଗ୍ରା.ବି.ଗଳ୍ପ ଓ କାହାଣୀରେ ବର୍ଣ୍ଣିତ ଏକ ପରିବାରେ ଥିବା ସାତଗୋଟି ପୁଅ ।

ସାତପୁଅମା—ଗ୍ରା. ବି. ଗ୍ରାମ ଦେବତାବିଶେଷ, ସପ୍ତପୁତ୍ରଙ୍କ ଜନନୀ,(ଗ୍ରା.ବିଂ) ସପ୍ତପୁତ୍ରଙ୍କ ଜନନୀପରି ଗର୍ବୀ ଓ ଆସ୍ଫାଳନମୟ, ଆଡ଼ମ୍ବରମୟ ।

ସାତପୁଡ଼ା(ଢ଼)—ଗ୍ରା. ବି. ଶିଶୁମାନଙ୍କ କ୍ରୀଡ଼ାବିଶେଷ ।

ସାତପୁରି—ଗ୍ରା. ବି. ( ସଂ-ସପ୍ତପୂରିକା ) ସାତପ୍ରକାରର ପୂର ଦିଆଯାଇଥିବା ପିଠା, ଯାହା ସାତପୂର ଅମାବାସ୍ୟା ଦିନ ଦେବତାଙ୍କୁ ଭୋଗ ଲଗାଯାଏ ।

ସାତପୁରିଅମାବାସ୍ୟା—ଗ୍ରା.ବି.(ସଂ-ସପ୍ତପୂରିକା ବା ସପ୍ତପିତୃକା ଅମାବାସ୍ୟା) ଭାଦ୍ରବ ମାସର ଅମାବାସ୍ୟା ।

ସାତପୁରୁଷ—ଗ୍ରା. ବି. (ସଂ-ସପ୍ତପୁରୁଷ) ମନୁଷ୍ୟ ନିଜକୁ ମିଶାଇ ଉପରର ତିନି ଓ ତଳର ତିନି ପୁରୁଷ, ସାତ ମନୁଷ୍ୟର ଉଚ୍ଚତା ବା ଗଭୀରତା ।

ସାତପୁରୁଷ—ଗ୍ରା. ବିଂ. ସାତ ପୁରୁଷସମ୍ବନ୍ଧୀୟ,ଚିରସ୍ଥାୟୀ,ବହୁ ପୁରୁଷାଗତ ।

ସାତଫେଣିଆ—ଗ୍ରା.ବି.ଏକପ୍ରକାର ମନ୍ଥୁମାଛ, ସପ୍ତଫଣା, (ଗ୍ରା.ବିଂ) ସପ୍ତଫଣୀ ।

ସାତବାର—ଗ୍ରା.ବି.(ସଂ-ସପ୍ତ + ବାସର) ସପ୍ତାହର ସାତଦିନ, ସାତଥର ।

ସାତବାହାନ—ବି.(ସାତ=ସିଂହରୂପୀ ଗନ୍ଧର୍ବ + ବାହନ ଯାହାର—ବ.ବ୍ରୀ;) ଶାଳିବାହନ ରଜା ।

ସାତବେଣ୍ଟି— ଗ୍ରା. ବି. ପୂର୍ବକାଳର ରାଜଦଣ୍ଡବିଶେଷ ।

ସାତଭାଇଆ—ଗ୍ରା.ବି(ସଂ-ଛନ୍ଦ)ଶାଖାଚର ଚଟକାଦି ବର୍ଗର ଚଞ୍ଚଳ ପକ୍ଷିବିଶେଷ, (ସଂ-ସପ୍ତ ଓ ଭ୍ରାତୃ) ସପ୍ତ ତାରକାଯୁକ୍ତ କୃତ୍ତିକା ନକ୍ଷତ୍ର, ବାଲମୁକୁଳିଆ ପରି ଏକପ୍ରକାର ବ୍ରଣ, ଅଙ୍ଗିରା ମାର୍କଣ୍ଡଙ୍କ ଦଳ, (ଗ୍ରା.ବିଂ) ବହୁସ୍ୱାମିକ (ସମ୍ପତ୍ତି, କର୍ମ), ଇଜମାଲି ।

ସାତଭାଇଆଆଖଡ଼ା—ଗ୍ରା. ବି. ବହୁସ୍ୱାମିକ ଅନୁଷ୍ଠାନ, ଯେଉଁଠାରେ ବହୁ ଲୋକଙ୍କର ଟଭୁଳ ଥିବାରୁ କାହାଆଦେଶ କେହି ମାନେ ନାହିଁ ।

ସାତମଙ୍ଗଳା—ଗ୍ରା.ବି. (ସଂ-ସପ୍ତମଙ୍ଗଳ) ବିବାହର ସପ୍ତମ ଦିବସ ଓ ସେ ଦିନ କର୍ତ୍ତବ୍ୟ ବରକନ୍ୟାଙ୍କ ବନ୍ଦାପନାଦି କର୍ମ ।

ସାତମସିଆ—ଗ୍ରା.ବିଂ. ସପ୍ତମାସ ବୟସ୍କ (ଶିଶୁ), ଗର୍ଭ ଧାରଣର ସପ୍ତମ ମାସରେ ଜାତ (ଶିଶୁ),(ଗ୍ରା.ବି)ଚଉରଖିଆ, ଗର୍ଭ ଧାରଣର ସପ୍ତମ ମାସପରେ ଗର୍ଭିଣୀ ପାଇଁ ପ୍ରେରିତ ପିଷ୍ଟକାଦିର ସମଗ୍ରୀ ଓ ତତ୍ସମ୍ପର୍କୀୟ ବିଧାନମାନ ।

ସାତସୁ—ବିଂ. (ସାତ+ସ କିମ୍ବା ସାତ+ଆ) ସୁଖକର, ସୁଖଜନକ ।

ସାତଲା—ବି. ଚର୍ମକଷା, ସେହୁଣ୍ଡଭେଦ, ଏକପ୍ରକାର ସିଝୁ, ଦେଉଳିଆ ସିଝୁ, ନବମାଳିକା, ନିଆଳି, (ଗ୍ରା.ବି) ମୁଗୁରାମଲ୍ଲୀ, ବହୁଦଳ ମଲ୍ଲୀ ।

ସାତଲାଘୋଟ—ପ୍ରା. (ଗଞ୍ଜାମ) ବି. ବାଟି ବା କଉଡ଼ିଖେଳରେ ବାଟିକୁ ମାରିବାର ସପ୍ତମ ଆଘାତ ।

ସାତଶାସନ—ଗ୍ରା.ବି.ପୁରୀଜିଲ୍ଲାର ଉତ୍ତୁନା ବିରପଦା ନିକଟସ୍ଥ ସାତଗୋଟି ବ୍ରାହ୍ମଣ ଶାସନ,ସାଳପୁର ସହରର ସାତଗୋଟି କୁଳୀନ ବ୍ରାହ୍ମଣଶାସନ ।

ସାତସଉତୁଣିଆ—ଗ୍ରା.ବି ଶାଖାଚର କ୍ଷୁଦ୍ର ପକ୍ଷିବିଶେଷ ।

ସାତସତର—ଗ୍ରା. ବି. ସାତପାଞ୍ଚ ଦେଖ, (ବିଂ) ବହୁ, ଅନେକ ।

ସାତସନ୍ଧ—ଗ୍ରା. ବି. ଅଗମ୍ୟ ବା ଗୁପ୍ତ ସ୍ଥାନମାନ ।

ସାତସମୁଦ୍ର—ଗ୍ରା.ବି.ସପ୍ତସମୁଦ୍ର ଦେଖ ।

ସାତସମୁଦ୍ରଲଙ୍କାପାରି—ଗ୍ରା.ବି.ସମୁଦ୍ରର ଅନ୍ୟପାଖରେ ବହୁଦୂରରେ ଥିବା ଦେଶ ।

ସାତସାଇ(ହି)—ଗ୍ରା. ବି. ପୁରୀସହରର ଆଦିମ ସାତଗୋଟି ବସ୍ତି ।

ସାତ—ବି. ( ସୋ+କ୍ତ ) ବିନାଶ, ଅବସାନ ଶେଷ, ପୀଡ଼ା,ତୀବ୍ରବେଦନା, (ସମ୍+କ୍ତ) ଦାନ, (ଗ୍ରା.ବି) ଅଭାବ ।

ସାତିରେକ—ବିଂ. ଅତିରିକ୍ତ,ଅତିରେକବିଶିଷ୍ଟ ।

ସାତିଶୟ-ବିଂ.(ସ+ଅତିଶୟ)ଅତ୍ୟଧିକ ।

ସାତିସାର—ପୁଂ. ବିଂ. (ସ + ଅତିସାର) ଅତିସାର ରୋଗଯୁକ୍ତ, ଅତିସାରଗ୍ରସ୍ତ, (ସ୍ତ୍ରୀ) ସାତିସାରୀ ।

ସାତ୍ତ୍ୱିକ—ବି. ( ସତ୍ତ୍ୱ+ଅ ) ବଂଶ, ସନ୍ତାନକ, ଜଳ । [ ଦେଖ ।

ସାତ୍ତ୍ୱିକ—ବି.(ସତ୍ତ୍ୱ + ଅ+କ)ସନ୍ତାନ

ସାତୁଆ—ଗ୍ରା. ପୁଂ. ବି. ସହଚର,ସଙ୍ଗୀ, ଭାଗିଦାର, ସହସାନ୍ତ୍ରୀ ।

ସାତୁଆଳ—ଗ୍ରା. ବିଂ. ସପ୍ତମ ।

ସାତୁକୀ—ଗ୍ରା.ବିଂ. ସାତ୍ତ୍ୱିକଲକ୍ଷଣଯୁକ୍ତ ।

ସାତୁକ୍ୟ—ଗ୍ରା. ବିଂ. ସାତ୍ତ୍ୱିକ ଦେଖ ।

ସାତୁ(ତୋ)ଟା—ଗ୍ରା. ବି ଓ ବିଂ. ସାତଗୋଟା,ଘଣ୍ଟାରେ ସାତ ବାଜିବା ବେଳ ।

ସାତେ—ଗ୍ରା. ଅ. (ସଂ-ସହିତ) ସାଥେ, ସଙ୍ଗେ ।

ସାତେସାତ—ଗ୍ରା.ଅ.(ସଂ-ସହିତ)ସାଥେସାଥ, ସଙ୍ଗେ ସଙ୍ଗେ, ତତ୍କ୍ଷଣାତ୍, ଅତିଶୀଘ୍ର ।

ସାତୋଡ଼ା—ଗ୍ରା. ବି. କେତେକ ପ୍ରାଚୀନ ଗଡ଼ଜାତର ରାଜବଂଶର ବଂଶୋପାଧିବିଶେଷ, କେତେକ ପ୍ରାଚୀନ ରାଜକର୍ମଚାରୀଙ୍କ ଉପାଧି ।

ସାତୋଡ଼ାବେହେରାମହାପାତ୍ର—ଗ୍ରା. ବି. ପ୍ରାଚୀନ ଉତ୍କଳର ରଜାଙ୍କ ଅଧୀନ ମଫସଲର ରାଜକର୍ମଚାରୀବିଶେଷ ।

ସାତ୍ତ୍ୱିକ—ବିଂ. ସାତ୍ତ୍ୱିକ ଦେଖ ।

ସାତ୍ତ୍ୱିକଅଭିନୟ—ବି. ସ୍ତମ୍ଭସ୍ୱେଦାଦି ସାତ୍ତ୍ୱିକବିକାରଯୁକ୍ତ ହୋଇ ପାତ୍ରମାନେ ରଙ୍ଗମଞ୍ଚରେ ଯେଉଁ ଅଭିନୟ ଦେଖାନ୍ତି ।

ସାତ୍ତ୍ୱିକାନୁଭବ—ବି.(ସାତ୍ତ୍ୱିକ+ଅନୁଭବ) ବ.ସ୍ଥା; ସତ୍ତ୍ୱଗୁଣରୁ ଯାହାର ଉତ୍ପତ୍ତି,

(କ.ଧା)ଭକ୍ତିର ବା ପ୍ରେମର ଆତିଶଯ୍ୟର ଫଳରେ ଶରୀରରେ ଜାତ କେତେକ ପରିବର୍ତ୍ତନ ।
ସାତ୍ୱ—ବିଂ. ( ସତ୍ତ୍ୱ+ଅ ) ସତ୍ତ୍ୱଗୁଣ ସମ୍ବନ୍ଧୀୟ, ସାତ୍ତ୍ୱିକ ।
ସାତ୍ୱତ୍—ବି. (ସାତ୍ୱ+ଅତ୍+କ.କ୍ୱିପ୍) ଯଦୁବଂଶୀୟମାନଙ୍କ ଶାସିତ ପ୍ରାଚୀନ ରାଜ୍ୟବିଶେଷ, ଯଦୁବଂଶୀୟ ଲୋକ, (ସାତ+କ.ବନ୍ତ) ଉପାସକ, ପୂଜକ ।
ସାତ୍ୱତ—ବି. ( ସାତ୍ୱତ୍+ଅ ) ସାତ୍ୱତ୍-ଦେଶୀୟ ଲୋକମାନେ, ବଳରାମ, ଶ୍ରୀକୃଷ୍ଣ, ଯଦୁବଂଶୀୟ ବ୍ୟକ୍ତି, ଯାଦବ, ବିଷ୍ଣୁ, (ସାତ୍ୱତୀ+ଅ) ଶିଶୁପାଳ, ବିଷ୍ଣୁ-ଭକ୍ତବିଶେଷ,ଯଦୁବଂଶୀୟ ଅଂଶୁରାଜାଙ୍କ ପୁତ୍ର ଜଣେ ରାଜା,ମନୁସଂହିତାର ଭକ୍ତ ବ୍ରାତ୍ୟବୈଶ୍ୟଙ୍କ ଠାରୁ ଉତ୍ପନ୍ନ ଜାତି-ବିଶେଷ ।
ସାତ୍ୱତୀ—ସ୍ତ୍ରୀ. ବି. (ସାତ୍ୱତ୍+ଈ)ନାଟକ ବୃତ୍ତିବିଶେଷ, ନାଟକୀୟ ଭାଷାବିଶେଷ, ଶିଶୁପାଳଙ୍କ ମାତା, ସୁଭଦ୍ରାଙ୍କର ଏକ ନାମ,(ସ୍ତ୍ରୀ.ବିଂ)ସାତ୍ୱତଦେଶୀୟା,ଭକ୍ତା ।
ସାତ୍ୱତୀୟ—ବିଂ.ସାତ୍ୱତ ସମ୍ବନ୍ଧୀୟ,ଯାଦବ ସମ୍ବନ୍ଧୀୟ ।
ସାତ୍ୱତୀବୃତ୍ତି—ବି. ନାଟକବୃତ୍ତିବିଶେଷ, ନାଟକୀୟ ଭାଷାବିଶେଷ ।
ସାତ୍ତ୍ୱିକ—ବିଂ.(ସତ୍ତ୍ୱ+ଇକ)ସତ୍ତ୍ୱଗୁଣ ସମ୍ବନ୍ଧୀୟ,ସତ୍ତ୍ୱଗୁଣ ପ୍ରଣୋଦିତ,ସତ୍ତ୍ୱଗୁଣଜାତ, ସତ୍ତ୍ୱଗୁଣ ପ୍ରଧାନ, ସତ୍, ସାଧୁ, ସତ୍ୟ, ଫଳାକାଙ୍କ୍ଷା ବିରହିତ, ନିଃସ୍ୱାର୍ଥ, (ସ୍ତ୍ରୀ) ସାତ୍ତ୍ୱିକୀ, (ବି) ମନରେ ଭକ୍ତି ବା ପ୍ରେମ ଯୋଗୁଁ ସତ୍ତ୍ୱଗୁଣର ଉଦ୍ରେକ ହେଲେ ଯେଉଁ ଯେଉଁ ଶାରୀରିକ ବିକାରଅବସ୍ଥା ଘଟେ (ଏହା ଅଷ୍ଟବିଧ, ଯଥା:—ସ୍ତମ୍ଭ, ସ୍ୱେଦ, ରୋମାଞ୍ଚ, ସ୍ୱରଭଙ୍ଗ, କମ୍ପ, ବୈବର୍ଣ୍ଣ୍ୟ, ଅଶ୍ରୁ ,ପ୍ରଳୟ ବା ମୂର୍ଚ୍ଛା ବା ପ୍ରଳାପ), ବ୍ରହ୍ମା, ବିଷ୍ଣୁ, ନାଟକବୃତ୍ତି-ବିଶେଷ ।
ସାତ୍ତ୍ୱିକକର୍ତ୍ତା—ବି.ଯେଉଁବ୍ୟକ୍ତି ଫଳକାମନା ତ୍ୟାଗକରି କାମ କ୍ରୋଧାଦି ବର୍ଜିତ ଓ ସଙ୍ଗରହିତ ହୋଇ କର୍ମକରେ ।
ସାତ୍ତ୍ୱିକକର୍ମ—ବି. ସଙ୍ଗରହିତ, କାମନା-ରହିତ ଓ ରାଗଦ୍ୱେଷରହିତ ହୋଇ କରାଯିବା କର୍ମ ।
ସାତ୍ତ୍ୱିକଜ୍ଞାନ— ବି. ସର୍ବଭୂତଠାରେ ଏକରୂପ ଜ୍ଞାନ ଓ ବିଭକ୍ତ ବସ୍ତୁରେ ଅବିଭକ୍ତ ଜ୍ଞାନ ।
ସାତ୍ତ୍ୱିକତପଃ—ବି. ଅଫଳାକାଙ୍କ୍ଷୀ ଯୋଗୀ ବ୍ୟକ୍ତିଙ୍କ ତପସ୍ୟା ।
ସାତ୍ତ୍ୱିକଦାନ—ବି. (କ.ଧା) ସତ୍ତ୍ୱଗୁଣଯୁକ୍ତ ଦାନ, କର୍ତ୍ତବ୍ୟ ବୋଧରେ ଉପକାର ପ୍ରତ୍ୟାଶୀ ନହୋଇ ଦେଶ, କାଳ ଓ ଉପଯୁକ୍ତ ପାତ୍ର ବିବେଚନା କରି ପ୍ରଦତ୍ତ ଦାନ ।
ସାତ୍ତ୍ୱିକଧୃତି—ବି.(କ.ଧା)ମନଃପ୍ରାଣେନ୍ଦ୍ରିୟ କ୍ରିୟାକୁ ଅବ୍ୟଭିଚାରୀ ଯୋଗଦ୍ୱାରା ଯେଉଁ ଧୃତି ଧାରଣ କରେ ।
ସାତ୍ତ୍ୱିକପୁରାଣ—ବି.ବିଷ୍ଣୁପୁରାଣ,ନାରଦୀୟ ପୁରାଣ, ଭାଗବତ, ଗରୁଡ଼, ପଦ୍ମ ଓ ବରାହପୁରାଣ, ଏହିଛଅଗୋଟି ପୁରାଣ ।
ସାତ୍ତ୍ୱିକପୂଜା—ବି. (କ.ଧା) ଫଳାକାଙ୍କ୍ଷା-ଶୂନ୍ୟ ହୋଇ ଈଶ୍ୱର ପ୍ରୀତ୍ୟର୍ଥ ଯଥାବିଧି ଦେବାରାଧନା ।
ସାତ୍ତ୍ୱିକପ୍ରିୟ—ବିଂ. ସାତ୍ତ୍ୱିକ ବ୍ୟକ୍ତିର ପ୍ରିୟ (ଯଥା—ଖାଦ୍ୟ) ।
ସାତ୍ତ୍ୱିକପ୍ରିୟଖାଦ୍ୟ—ବି. ଯେଉଁ ଆହାର ଦ୍ୱାରା ଆୟୁ, ବଳ—ତଥା ସାତ୍ତ୍ୱିକଗୁଣ ବୃଦ୍ଧି ହୁଏ ।
ସାତ୍ତ୍ୱିକବନ୍ତ—ଗ୍ରା. ବିଂ. ସତ୍ତ୍ୱଗୁଣଯୁକ୍ତ ।
ସାତ୍ତ୍ୱିକବିକାର—ବି. ମନରେ ଭକ୍ତି ବା ପ୍ରେମ ଯୋଗୁଁ ସତ୍ତ୍ୱଗୁଣର ଉଦ୍ରେକ ହେଲେ ଯେଉଁ ଯେଉଁ ଶାରୀରିକବିକାର ଅବସ୍ଥା ଘଟେ, ପ୍ରେମିକ ପ୍ରେମିକାଙ୍କ ଅଙ୍ଗାଦିରେ ଲକ୍ଷିତ ପ୍ରେମ ବା କାମ ସକ୍ତି ଓ ଭକ୍ତି ଜନିତ ଅଷ୍ଟବିଧ ବିକାର ।
ସାତ୍ତ୍ୱିକବୁଦ୍ଧି—ବି. (କ.ଧା) ଯେଉଁ ବୁଦ୍ଧି ଦ୍ୱାରା ପ୍ରବୃତ୍ତି, ନିବୃତ୍ତି, କାର୍ଯ୍ୟାକାର୍ଯ୍ୟ, ଭୟାଭୟ, ବନ୍ଧମୋକ୍ଷ ଜଣାଯାଏ ।
ସାତ୍ତ୍ୱିକଯଜ୍ଞ-ବି.(କ.ଧା)ଫଳର ଆକାଙ୍କ୍ଷା ନକରି ଈଶ୍ୱରଙ୍କଠାରେ ଚିତ୍ତସମର୍ପଣ ପୂର୍ବକ ଯଥାବିଧି ଯଜ୍ଞାନୁଷ୍ଠାନ ।
ସାତ୍ତ୍ୱିକସ୍ମୃତି—ବି. ବଶିଷ୍ଠ, ହାରୀତ,ବ୍ୟାସ, ପରାଶର,ଭରଦ୍ୱାଜ,କାଶ୍ୟପମୁନିମାନଙ୍କ କୃତ ସ୍ମୃତିଶାସ୍ତ୍ର ।
ସାତ୍ତ୍ୱିକା—ସ୍ତ୍ରୀ. ବି.(ସାତ୍ତ୍ୱିକ+ଆ)ଦୁର୍ଗା ।
ସାତ୍ତ୍ୱିକାହାର—ବି. ( କ.ଧା ) ଆୟୁଃ, ପ୍ରାଣବଳ,ସ୍ୱାସ୍ଥ୍ୟ,ସୁଖ ଓ ପ୍ରୀତିବର୍ଦ୍ଧକ; ସରସ ସ୍ନେହଯୁକ୍ତ; ସ୍ଥାୟିସାରବିଶିଷ୍ଟ; ଚିତ୍ତତୃପ୍ତିକର ଭକ୍ଷ୍ୟ ଭୋଜନ ।
ସାତ୍ତ୍ୱିକୀ—ବିଂ. (ସାତ୍ତ୍ୱିକ+ଈ) ସାତ୍ତ୍ୱିକ ଶବ୍ଦର ସ୍ତ୍ରୀଲିଙ୍ଗ, (ବି) ଦୁର୍ଗା ।
ସାତ୍ତ୍ୱିକୀପୂଜା—ବି. ଜପଯଜ୍ଞ ଓ ନିରାମିଷ ନୈବେଦ୍ୟ ଓ ସ୍ତବପାଠ ଦ୍ୱାରା କରାଯିବା ପୂଜା, ଫଳକାମନା ବିରହିତ ଦେବାରାଧନା ।
ସାତ୍ମ—ବିଂ. ଆତ୍ମା ସହିତ ବର୍ତ୍ତମାନ, ଆତ୍ମାଯୁକ୍ତ, ଆତ୍ମାବିଶିଷ୍ଟ ।
ସାତ୍ମକ—ବିଂ. (ସ+ଆତ୍ମନ୍+କ)ଆତ୍ମଃ ବିଶିଷ୍ଟ,ଆତ୍ମାଦ୍ୱାରା ଯୁକ୍ତ, (ସ୍ତ୍ରୀ)ସାତ୍ମିକା ।
ସାତ୍ମା—ବିଂ. ଆତ୍ମାର ସହିତ ବର୍ତ୍ତମାନ ।
ସାତ୍ମ୍ୟ—ବିଂ. (ଆତ୍ମନ୍+ହିତାର୍ଥେ ଯ= ଆତ୍ମ୍ୟ,ସ=ସହିତ ବର୍ତ୍ତମାନ+ଆତ୍ମ୍ୟ) ସୁଖଜନକ, ସୁଖକର, ମଙ୍ଗଳକର,(ବି) ସାରୂପ୍ୟ, ସରୂପତା, ଦେବତ୍ୱ, ଯେଉଁ ରସ ସେବନଦ୍ୱାରା ଶରୀରର ଉପକାର ହୁଏ ଓ ଯହିଁର ଫଳରେ ପ୍ରକୃତିବିରୁଦ୍ଧ କୌଣସି କର୍ମ କଲେ ଶରୀରର ଅନିଷ୍ଟ ହୁଏନାହିଁ, ଋତୁ, କାଳ, ଦେଶଆଦିର ଅନୁକୂଳ ଆହାର ବିହାରାଦି ।
ସାତ୍ୟର୍କି—ପୁଂ. ବି. ସାତ୍ୟକି ।
ସାତ୍ୟକି—ପୁଂ.ବି. (ସତ୍ୟକ+ଇ)କୃଷ୍ଣଙ୍କ ସାରଥି, ଯଦୁବଂଶୀୟ ବୀରବିଶେଷ ।
ସାତ୍ୟଦୂତ—ବି. ସତ୍ୟସ୍ୱରୂପାଦି ଦେବତାଙ୍କ ଉଦ୍ଦେଶ୍ୟରେ ଅନୁଷ୍ଠିତ ହୋମ ।
ସାତ୍ୟବତ—ପୁଂ. ବି. (ସତ୍ୟବତୀ+ଅ) ବ୍ୟାସଦେବ, ସାତ୍ୟବତେୟ ।
ସାତ୍ୟବତେୟ—ପୁଂ. ବି. ବ୍ୟାସଦେବ ।
ସାତ୍ରାଜିତ—ପୁଂ. ବି. (ସତ୍ରାଜିତ+ଅ)

ଷିକାଶତାନକ ।

ସାତ୍ରାଜିତୀ—ସ୍ତ୍ରୀ.ବି.(ସତ୍ରାଜିତ+ଅ+ଈ) ଶ୍ରୀକୃଷ୍ଣଙ୍କର ଏକତମା ମହିଷୀ,ସତ୍ୟଭାମା ।

ସାଥ—ଗ୍ରା.ଅ. (ସଂ-ସାର୍ଦ୍ଧଂ,ସହ,ସହିତ) ସହିତ, ସଙ୍ଗେ, (ବି) ସଙ୍ଗ ।

ସାଥରେ—ଗ୍ରା. ଅ. ସଙ୍ଗରେ, ସଙ୍ଗେ, ସହିତେ ।

ସାଥି—ଗ୍ରା.ବି. ସଙ୍ଗ, ସଙ୍ଗୀ, ସହଯାତ୍ରୀ, ଭାଗିଦାର, ସହକର୍ମୀ, (ଅ) ସଙ୍ଗେ, (ବିଂ) କୌଣସି ବ୍ୟକ୍ତି ସଙ୍ଗେ ଭଲ ମନ୍ଦରେ ସମାନ ଭାବରେ ଦାୟୀ ।

ସାଥିକରିବା—ଗ୍ରା.କ୍ରି.କୌଣସି ବ୍ୟକ୍ତିକୁ ଆପଣାର ସହଚରରୂପେ ଗ୍ରହଣକରିବା

ସାଥିଦାର—ଗ୍ରା. ବିଂ. ଭାଗିଦାର, ଭାଗୁଆଳୀ, ସହଚର ।

ସାଥିଦାର—ଗ୍ରା. ବି. ଭାଗିଦାର ।

ସାଥିଧରିବା—ଗ୍ରା.କ୍ରି. କୌଣସି ବ୍ୟକ୍ତିର ସହଚର ରୂପେ ତାକୁ ଅନୁସରଣ କରିବା ।

ସାଥୁଆ—ଗ୍ରା.ପୁଂ. ବି. ସଙ୍ଗୀ, ସହଚର, ଯେଉଁ ଯାତ୍ରୀ ଗୁମାସ୍ତା ଅନ୍ୟ ପଣ୍ଡାର ଯାତ୍ରୀଙ୍କ ସଙ୍ଗେ ଦୂର ଦେଶକୁ ତୀର୍ଥକୁ ଆସିଥାଏ,(ପ୍ରା.ସିଂହଭୂମି.ବି)ସ୍ୱର୍ଣ୍ଣକାର, ବଣିଆ ।

ସାଦ—ବି. (ସଦ୍+ଭା.ଅ)ବିଷାଦ,ଗତି, ଶରଣ, ଆଳସ୍ୟ, କ୍ଷୀଣତା, କୃଶତା, ବିନାଶ,ହିଂସା,ବିଦ୍ଧି,ଇଚ୍ଛା, ଗର୍ଭିଣୀର ଭକ୍ଷଣେଚ୍ଛା, ଦୋହଦ ।

ସାଦତ—ଯା.ବି.ଅଭ୍ୟାସ, (ପୁଂ)ମୁସଲ-ମାନୀ ନାମ ।

ସାଦତଅଲ୍ଲୀ—ଗ୍ରା.ବି.ଅଯୋଧ୍ୟାର ନବାବ ବଂଶର ପ୍ରତିଷ୍ଠାତା,ଅଯୋଧ୍ୟାର ଜନୈକ ନବାବ ।

ସାଦନ—ବି. ( ସଦ୍+ଣିଚ୍+ଭା.ଅନ ) ବିନାଶନ, ଅବସାଦ,ବିଷାଦ ଜନ୍ମାଇବା, ଦୂରୀକରଣ, (ଅଧି.ଅନ)ସଦନ,ଗୃହ ।

ସାଦନୀ—ବି. (ସଦ୍+ଣିଚ୍+କ.ଅନ+ଈ) କଟୁକୀ, ପ୍ରିୟଙ୍ଗୁ ।

ସାଦନୀୟ—ବିଂ. ଗୃହକର୍ମକୁଶଳ ।

ସାଦମୟ—ବିଂ. ଅବସନ୍ନ,ଅବସାଦବିଶିଷ୍ଟ

ସାଦୟିତବ୍ୟ—ବିଂ. ନାଶର ଉପଯୁକ୍ତ, ନାଶାର୍ହ ।

ସାଦର—ବିଂ. ( ସ+ଆଦର,ବ.ବ୍ରୀ ) ଆଦରଯୁକ୍ତ, ପ୍ରୀତିବିଶିଷ୍ଟ,(ପ୍ରା.ଗଞ୍ଜାମ) ବି. ଲାଞ୍ଚ ବା ବକ୍‌ସିସ୍‌ । [ ବାକ୍ୟ ।

ସାଦରବଚନ—ବି. (କ.ଧା)ଆଦରଯୁକ୍ତ

ସାଦରସମ୍ଭାଷଣ—ବି.(କ.ଧା) ଆଦରଯୁକ୍ତ କଥୋପକଥନ, ଆଦରଯୁକ୍ତ ସ୍ୱାଗତ ସମ୍ଭାଷଣ ।

ସାଦରାଲିଙ୍ଗନ—ବି. (କ.ଧା) ପ୍ରୀତିଯୁକ୍ତ ଆଲିଙ୍ଗନ ।

ସାଦରକୋଲ— ପ୍ରା, ( ଗଡ଼ଜାତ,ବି ) କେଉଁଝରର ବାମଣ୍ଡା ଆଦି ଗଡ଼ଜାତରେ ଅନାର୍ଯ୍ୟମାନଙ୍କ କଥିତ ବିହାରୀ ଭାଷା ।

ସାଦରେ—ଗ୍ରା. କ୍ରି. ବିଂ (ସଂ-ସାଦରଂ) ଆଦର ସହକାରେ ।

ସାଦା—ଯା.ବିଂ.ଶୁଭ୍ର, ଶ୍ୱେତବର୍ଣ୍ଣ,ଅଲିଖିତ (କାଗଜ),ସହଜ,ସୋଜା,ସରଳ, ସାଧାରଣ, ଅନଳଙ୍କୃତ ।

ସାଦାପଥର—ଗ୍ରା.ବି. ଧଳାପଥର, ମର୍ମର ପଥର ।

ସାଦାସିଧା—ଗ୍ରା.ବିଂ.ସରଳମତି,ସୋଜା-ସୁଜା, ମୋଟାମୋଟି, ଜଟିଳତାଶୂନ୍ୟ, ଆଡ଼ମ୍ବରରହିତ, ଅଧିକ ମସଲାବିହୀନ, ଅନଳଙ୍କୃତ ।

ସାଦି—ବିଂ, ( ସଦ୍+କ.ଇ ) ଅବସନ୍ନ, ଆଦିଯୁକ୍ତ, ( ବି ) ସାରଥି, ଯୋଦ୍ଧା, ବାୟୁ, (ଯା.ବି) ବିବାହ ।

ସାଦିତ—ବିଂ. ( ସଦ୍+ଣିଚ୍+ର୍ମ.ତ ) ବିଷାଦିତ,ଶରଣପ୍ରାପିତ,ଗମିତ,ଦୁର୍ବଳୀ-କୃତ, ଭଗ୍ନ, ଛିନ୍ନ, (ସ୍ତ୍ରୀ) ସାଦିତା ।

ସାଦୀ—ବି. (ସଦ୍+ଇନ୍)ଘୋଡ଼ାସବାର ଅଶ୍ୱାରୋହୀ, ଗଜାରୋହୀ, ରଥାରୋହୀ, ଅଶ୍ୱାରୋହୀ ସେନା ।

ସାଦୃଶ—ବିଂ.(ସଦୃଶ+ଅ)ସଦୃଶ ।

ସାଦୃଶ(ଶେ)—ଗ୍ରା. ଅବ୍ୟ. ସଦୃଶ ।

ସାଦୃଶ୍ୟ—ବି. (ସଦୃଶ+ଭା.ଯ)ସଦୃଶତା, ତୁଲ୍ୟତା, ସମାନତା,ଆଲେଖ୍ୟ,ଛବି, ଚର୍ମ ବା ଫଟୋ, କୁରଙ୍ଗ, ମୃଗ ।

ସାଦ୍ୟ—ବିଂ.ଆରୋହଣର ଉପଯୁକ୍ତ,(ପୁଂ) ଅଶ୍ୱାରୋହୀ ।

ସାଧ—ଗ୍ରା. ବି. ( ସଂ-ସାଦ-କାମ୍ୟ-ସ୍ୱାଦ ବା ଶ୍ରଦ୍ଧା)ଗର୍ଭିଣୀର ଦୋହଦ,ଗର୍ଭିଣୀର ବାଞ୍ଛିତ ଖାଦ୍ୟଦ୍ରବ୍ୟ, ମନସଧ,ଅଭିଳାଷ, ସଉକ ।

ସାଧକ—ବିଂ. (ସାଧ୍+ଣିଚ୍+କ.ଅକ) ସାଧନକାରକ,ନିପୁଣ,ପୂଜକ,ସହାୟକ, ପୂର୍ଣ୍ଣକାରକ, (ସ୍ତ୍ରୀ-ସାଧିକା;ବି) ପୂଜକ ବ୍ୟକ୍ତି,ସହାୟକ ବ୍ୟକ୍ତି,ଯୋଗୀ,ତପସ୍ୱୀ, ମନ୍ତ୍ରାଦି ସାଧନରେ ନିଯୁକ୍ତ ବ୍ୟକ୍ତି, ଗୁଣିଆଁ, ପିତ୍ତ,ପୁତ୍ରଞ୍ଜୀବବୃକ୍ଷ,ଦଅଣା ।

ସାଧକା—ସ୍ତ୍ରୀ.ବି, (ସାଧକ+ଆ) ଦୁର୍ଗା ।

ସାଧନ—ବି. (ସାଧ୍+ଣ.ଅନ) କରଣ-କାରକ, ତୃତୀୟାବିଭକ୍ତି,ଯାହାଦ୍ୱାରା କ୍ରିୟା ସାଧିତ ହୁଏ, (ନ୍ୟାୟଶାସ୍ତ୍ର) ହେତୁ, (ଭା.ଅନ) ସମ୍ପାଦନ, ନିଷ୍ପାଦନ, ଉଦ୍ଦେଶ୍ୟଲାଭ, ଧାତୁଆଦିର ଶୋଧନ କର୍ମ, ସିଦ୍ଧିଲାଭ, ଉପାୟ, କାରଣ, ହେତୁ, ସମସ୍ୟା ସମାଧାନ,ଗଣିତାଦିର ପ୍ରଶ୍ନସମାଧାନ, ଉପକରଣ, ସାମଗ୍ରୀ, ମାରଣ, ଅନ୍ତ୍ୟେଷ୍ଟିକ୍ରିୟା, ଶବସଂସ୍କାର, ଅଗ୍ନିଦାନ, ଶବଦାହକ୍ରିୟା, ଗମନ, ଦ୍ରବ୍ୟ, ଧନ, ଅର୍ଥଦାପନ, ବିନାଶନ, ଯୁଦ୍ଧୋପକରଣ, ସୈନ୍ୟ,ବାହନ,ଶିଶ୍ନ, ମେଢ୍ର, ପଶୁମାନଙ୍କର ସ୍ତନ ବା ପହ୍ଲା, ମୈତ୍ରୀ,ସିଦ୍ଧୌଷଧି,ଅନୁଗମନ,ତପସ୍ୟା, ଜପାଦିଦ୍ୱାରା ମନ୍ତ୍ରସିଦ୍ଧକରଣ,ଉପାସନା, ଆରାଧନା, କାରଗରର ହତିଆରଆଦି, ଦଣ୍ଡଦେବା, ପ୍ରମାଣ, ଋଣଆଦି ପରି-ଶୋଧ କରିବା, (ଗ୍ରା.ବି)କୁସ୍ତି,ବ୍ୟାୟାମ, ପଡ଼ିଆ ବା ଜଙ୍ଗଲ ଜମିକୁ ଆବାଦ-କରିବା, ସନ୍ତୋଷବିଧାନ କର୍ମ, ପଶୁ-ଆଦିଙ୍କୁ ମଣ କରିବା ।

ସାଧନକରିବା—ଗ୍ରା. କ୍ରି. ନିଷ୍ପନ୍ନ କରିବା, ଫଳସିଦ୍ଧି ଘଟାଇବା, ମନ୍ତ୍ରସିଦ୍ଧି ପାଇଁ ଆରାଧନାଦିକରିବା,(ସମସ୍ୟା)ସମାଧାନ କରିବା,କୁସ୍ତି ବା କସରତ୍‌ଆଦି କରିବା,

ତାନ୍ତ୍ରିକ ସିଦ୍ଧି ଲାଭ କରିବା, ଦଣ୍ଡ ଦେବା, ଯତ୍ନ କରିବା, (ପତିତ ଜମିକୁ) ଆବାଦ କରିବା, ଦୁଷ୍ଟ ଜୀବକୁ ବା ପଶୁଆଦିଙ୍କୁ ଦଣ୍ଡାଦି ଦ୍ୱାରା ଆୟତ୍ତ କରିବା, ମଣ କରିବା ।

ସାଧନକ୍ଷମ—ବିଂ. ( ୭ତତ୍ ) ସାଧନ କରିବାରେ ସମର୍ଥ, (ସ୍ତ୍ରୀ) ସାଧନକ୍ଷମା ।

ସାଧନନିଷ୍ଠ—ପୁଂ. ବିଂ. (ବ.ବ୍ରୀ) ସାଧନ କରିବାରେ ଏକାଗ୍ରଚିତ୍ତ, (ସ୍ତ୍ରୀ) ନିଷ୍ଠା ।

ସାଧନନିଷ୍ଠା—ବି. (୭ତତ୍) ସାଧିବାରେ ତତ୍ପରତା ।

ସାଧନଭଜନ—ଗ୍ରା. ବି. ଜପତପ, ପୂଜା ଆରାଧନା ।

ସାଧନା—ବି. ( ସାଧନ+ଆ ) ସାଧନ ଦେଖ, ସିଦ୍ଧି ଲାଭ ପାଇଁ କରାଯିବା ଚେଷ୍ଟା, ସିଦ୍ଧି, (ଗ୍ରା.ବି) ତାଲିମ୍ ।

ସାଧନାର୍ହ—ବିଂ. ସାଧନ ଯୋଗ୍ୟ, ସାଧନୀୟ ।

ସାଧନୀ—ବି. ସମାଧାନକାରୀ(ପୁସ୍ତକାଦି) ।

ସାଧନୀୟ—ବିଂ. ( ସାଧ୍+ମି.ଅନୀୟ ) ନିଷ୍ପାଦ୍ୟ, ସାଧନଯୋଗ୍ୟ, ଯାହା ସମ୍ପାଦନ କରାଯାଇପାରେ, ଆରାଧନୀୟ, ସାଧିତହେବାର ଯୋଗ୍ୟ ।

ସାଧନ୍ତ—ପୁଂ. ବିଂ. ଭିକ୍ଷୁକ ।

ସାଧବ—ଗ୍ରା.ବି. ସାଧୁବ୍ୟକ୍ତି, ପଣ୍ଡିତବ୍ୟକ୍ତି. ମହାଜନ, ବଣିକ୍, ମୂଳଧନାଢ୍ୟ, ସାହୁକାର, ଲକ୍ଷପତି, ନୌବଣିକ୍, ବୋଇତଆଳ, (ଗ୍ରା.ବିଂ) ସାଧୁ, ସଜ୍ଜନ, (ସ୍ତ୍ରୀ) ସାଧବାଣୀ ।

ସାଧବଘରବୋହୂ—ଗ୍ରା.ବି. ଇନ୍ଦ୍ରଗୋପ, ପାଟପୋକ, ସାଧବାଣୀ ପୋକ ।

ସାଧବାଣୀ—ଗ୍ରା. ସ୍ତ୍ରୀ.ବି. ସାଧବର ସ୍ତ୍ରୀ, ସାଧବଘରବୋହୂ ଦେଖ ।

ସାଧବୀ—ଗ୍ରା.ସ୍ତ୍ରୀ. ବି.(ସଂ-ସାଧ୍ୱୀ)ସାଧ୍ୱୀ ସ୍ତ୍ରୀ, ସତୀ ସ୍ତ୍ରୀ, ଅହ୍ୟ ସ୍ତ୍ରୀ, ସଧବା ସ୍ତ୍ରୀ ।

ସାଧଭକ୍ଷଣ—ବି. ଗର୍ଭିଣୀର ଦୋହଦ, ଅଭିଳଷିତ ଭୋଜ୍ୟଗ୍ରହଣ ।

ସାଧୟିତବ୍ୟ—ବିଂ. (ସାଧ୍+ମି.ତବ୍ୟ) ସାଧନୀୟ ଦେଖ ।

ସାଧୟିତା—ପୁଂ. ବିଂ. (ସାଧ୍+କ.ତୃ) ସାଧକ, ସାଧନକାରୀ, (ସ୍ତ୍ରୀ)ସାଧୟିତ୍ରୀ ।

ସାଧର୍ମ୍ୟ—ବି.(ସଧର୍ମ+ଭା.ଯ) ସାଦୃଶ୍ୟ, ଏକଧର୍ମିତା, ସଧର୍ମିତା

ସାଧା—ଯା. ବିଂ. ସାଦା ଦେଖ ।

ସାଧାର—ବିଂ.ଆଧାରଯୁକ୍ତ,ଆଧାରବିଶିଷ୍ଟ ।

ସାଧାରଣ—ବିଂ. (ସ+ଆଧାରଣ କମ୍ବା ସ+ଧାରଣା+ଅ ) ସମସ୍ତଙ୍କଠାରେ ବିଦ୍ୟମାନ, ସାମାନ୍ୟ, ଯାହା ସର୍ବତ୍ର ବା ସଚରାଚର ଦେଖାଯାଏ, ଇଜମାଲି, ଯହିଁରେ ସମସ୍ତଙ୍କର ଅଧିକାର ଥାଏ. ବହୁଭୋଗ୍ୟ, ସଦୃଶ, ତୁଲ୍ୟ, ଏକବିଧ, ଅନେକସମ୍ବନ୍ଧୀୟ, ପ୍ରକାଶ୍ୟ, ସାର୍ବଜନିକ. ସରଳ, ସହଜ, (ସ୍ତ୍ରୀ) ସାଧାରଣୀ, (ବି. ନ୍ୟାୟଦର୍ଶନ) ହେତ୍ୱାଭାସବିଶେଷ, ଭାବପ୍ରକାଶ ଅନୁସାରେ ଯେଉଁ ପ୍ରଦେଶରେ ବା ଅଞ୍ଚଳରେ ଜଙ୍ଗଲ. ଜଳ, ରୋଗ, ଶୀତ ଓ ଗ୍ରୀଷ୍ମର ଆଧିକ୍ୟ ହୋଇଥାଏ, ଉପର୍ଯ୍ୟୁକ୍ତ ଦେଶର ଜଳ, (ଗ୍ରା.ବି) ଜନସାଧାରଣ, (ବିଂ) ସାଧା, ନିଷ୍କପଟ, ଗର୍ବଶୂନ୍ୟ ।

ସାଧାରଣଗତି—ସ୍ତ୍ରୀ. ବି. ସାମାନ୍ୟ ଗତି. ବିଜ୍ଞାନମତେ ସଚଳ ଦ୍ରବ୍ୟର ଉପରିସ୍ଥିତ ଦ୍ରବ୍ୟର ଗତି ।

ସାଧାରଣଗୁଣ—ବି. ଯେଉଁ ଗୁଣ ସବୁଠାରେ ଦେଖାଯାଏ ।

ସାଧାରଣତଃ—ଗ୍ରା.ଅ. (ସଂ-ସାଧାରଣ୍ୟ+ତସ୍) ସଚରାଚରତଃ, ମୋଟାମୋଟି. ସ୍ଥୂଳତଃ, ସର୍ବତ୍ର, ସାମାନ୍ୟ ଭାବରେ, ବହୁ ସ୍ଥାନରେ ବା ଘଟଣାରେ ।

ସାଧାରଣତନ୍ତ୍ର—ବି. ପ୍ରଜାମାନଙ୍କ ନିର୍ବାଚିତ ପ୍ରତିନିଧିଙ୍କ ଦ୍ୱାରା ପରିଚାଳିତ ଶାସନତନ୍ତ୍ର ।

ସାଧାରଣତା—ସ୍ତ୍ରୀ.ବି. (ସାଧାରଣ+ତା) ସାଧାରଣତ୍ୱ, ସାଧାରଣ୍ୟ, ସାଧାରଣର ଧର୍ମ ।

ସାଧାରଣଦେଶ—ବି. ଜାଙ୍ଗଲାନୂପଲକ୍ଷଣ ସମ୍ପନ୍ନ ସ୍ଥାନ, ଯେଉଁ ପ୍ରଦେଶରେ ବା ଅଞ୍ଚଳରେ ଜଙ୍ଗଲ, ଜଳ, ରୋଗ, ଶୀତ ଓ ଗ୍ରୀଷ୍ମର ଆଧିକ୍ୟ ହୋଇଥାଏ ।

ସାଧାରଣଧର୍ମ—ବି. ସାଧାରଣ ଗୁଣ, ଚତୁର୍ବର୍ଣ୍ଣୀୟର ପ୍ରତିପାଲ୍ୟ ଧର୍ମ, ସର୍ବଜନୀନ ଧର୍ମ ।

ସାଧାରଣପର୍ଷାଏତ୍—ଗ୍ରା.ବି ଚଉକିଦାରୀ ଇଉନିଅନର ପ୍ରେସିଡ଼େଣ୍ଟଙ୍କ ଛଡ଼ା ଅନ୍ୟ ମେମ୍ବରଗଣ ।

ସାଧାରଣପଥ(ମାର୍ଗ)—ବି. ସାଧାରଣଙ୍କ ବ୍ୟବହୃତ ରାସ୍ତା ।

ସାଧାରଣପୁସ୍ତକାଳୟ—ବି. ଯେଉଁ ପୁସ୍ତକାଳୟରେ ସର୍ବସାଧାରଣ ପୁସ୍ତକପାଠ କରିବା ପାଇଁ ଅଧିକାରୀ ଅଟନ୍ତି ।

ସାଧାରଣପ୍ରଚଳିତ—ବିଂ. (୭ତତ୍)ସାଧାରଣଙ୍କ ମଧ୍ୟରେ ଚଳିତ, ଇତର ଭଦ୍ର ନିର୍ବିଶେଷରେ ବ୍ୟବହୃତ ।

ସାଧାରଣସଭା—ଗ୍ରା. ବି. ଯେଉଁ ସଭାରେ ଜନସାଧାରଣ ଯୋଗ ଦେଇ ପାରନ୍ତି ।

ସାଧାରଣସମ୍ପତ୍ତି—ଗ୍ରା. ବି. ଯେଉଁ ସମ୍ପତ୍ତିରେ ସର୍ବସାଧାରଣଙ୍କର ଅଧିକାର ଅଛି ।

ସାଧାରଣସ୍ତ୍ରୀ—ବି(କ.ଧା)ଗଣିକା, ବେଶ୍ୟା

ସାଧାରଣହିତ—ବି. ସର୍ବସାଧାରଣଙ୍କର ମଙ୍ଗଳ ।

ସାଧାରଣହିତକର—ଗ୍ରା.ବିଂ. ସର୍ବସାଧାରଣଙ୍କ ମଙ୍ଗଳକର ।

ସାଧାରଣୀ—ସ୍ତ୍ରୀ. ବିଂ. (ସାଧାରଣ+ଈ) ଏକବିଧା, ସାମାନ୍ୟା, (ବି) କୁଞ୍ଚିକା, ଗୁବ, କାଇଞ୍ଚ, ଗୁଞ୍ଜାଫଳ, ଅପ୍‌ସରାବିଶେଷ ।

ସାଧାରଣେତର—ବିଂ. (୫ତତ୍) ଅସାଧାରଣ, ଅନନ୍ୟସାଧାରଣ ।

ସାଧାରଣ୍ୟ—ବି. (ସାଧାରଣ+ଭା.ଯ) ସାଧାରଣ ହେବାର ଭାବ, ସାଧାରଣତା, ସାମ୍ୟ, କୁଞ୍ଚିକା, ଗୁବ, ଏକ ଦେଶୀୟ ଜନସାଧାରଣ ବା ଜାତି, ଜନସମୂହ, ଯେଉଁ ଦୋଷ ବା ଗୁଣ ସମସ୍ତଙ୍କଠାରେ ଅଛି ।

ସାଧାସିଧା—ଗ୍ରା.ବିଂ.ସରଳ ଓ ନିଷ୍କପଟ, ସରଳମତି, ଅନଳଙ୍କୃତ । [ କର ।

ସାଧି—ଗ୍ରା.କ୍ରି ବିଂ.ସାଧନକରି, ଆଦାୟ-

ସାଧିକ—ବିଂ.ଅଧିକଯୁକ୍ତ, ଅଧିକ ସହିତ ବର୍ତ୍ତମାନ ।

ସାଧିକା—ସ୍ତ୍ରୀ. ବିଂ. (ସାଧକ+ଆ) ସାଧକର ସ୍ତ୍ରୀଲିଙ୍ଗ, (ବି)ସୁଷୁପ୍ତି, ଗାଢ଼ନିଦ୍ରା, ଶାସନକର୍ତ୍ତ୍ରୀ ।

ସାଧିକାର—ବିଂ. (ସ + ଅଧିକାର) ଅଧିକାରଯୁକ୍ତ ।

ସାଧିତ—ବିଂ. ( ସାଧ୍+ଣିଚ୍+ମି.ତ ) ନିଷ୍ପାଦିତ, ସମ୍ପାଦିତ, ସମାହିତ,ବିନାଶିତ, ଦଣ୍ଡିତ,ପ୍ରମାଣାଦି ଦ୍ୱାରା ନିଶ୍ଚିତ, ଶୋଧିତ, ଦାପିତ, ପରିଶୋଧିତ, (ସ୍ତ୍ରୀ) ସାଧିତା ।

ସାଧିତାର୍ଥ—ପୁଂ. ବିଂ, (ବ.ବ୍ରୀ) ଯାହାର ଅଭିପ୍ରେତ ବିଷୟ ସିଦ୍ଧ ହୋଇଅଛି, (ସ୍ତ୍ରୀ)ସାଧିତାର୍ଥା ।

ସାଧିଦୈବତ—ବିଂ. ଅଧିଷ୍ଠାତ୍ରୀ ଦେବତା ସହିତ,ଅଧିଦେବତାର ସହିତ ବର୍ତ୍ତମାନ

ସାଧିବା—ଗ୍ରା. କ୍ରି.ସାଧନକରିବା,ଲୋକଙ୍କ ଠାରୁ ଚାନ୍ଦା ଭେଦାଆଦି ଆଦାୟକରିବା, ପୂର୍ବର ବୈରଶୋଧନ କରିବା, ଅନୁନୟ ବିନୟ କରିବା,ମନ୍ତ୍ର ଓ ଉପାସନା ଦ୍ୱାରା ଦେବଦେବୀ ଆଦିଙ୍କୁ ବରପ୍ରଦ କରାଇବା, ବଶୀଭୂତ କରିବା, ସାଧ କରିବା, ଶାସନ କରିବା, ଅତ୍ୟାଚାର କରିବା, ଗଣିତର ସମସ୍ୟାର ସମାଧାନ କରିବା, ମଣାକରିବା, ସିଦ୍ଧି ଲାଭକରିବା, ଜାଣିବା, ଫଳାଫଳ ବାହାର କରିବା ।

ସାଧିମା—ବି. (ସାଧୁ+ଭା.ଇମନ୍)ସାଧୁତା

ସାଧିଷ୍ଠ—ବିଂ. ( ସାଧୁ+ଇଷ୍ଠ ) ଅତ୍ୟନ୍ତ ସାଧୁ, ଅତିନ୍ୟାଯ୍ୟ, ଯୋଗ୍ୟ, ଉପଯୁକ୍ତ, କଠିନ, ( ବାଢ଼+ଇଷ୍ଠ ) ଅତିଦୃଢ଼, ଅତ୍ୟନ୍ତ ।

ସାଧିଷ୍ଠାନ—ବି.( ସ + ଅଧିଷ୍ଠାନ; ତନ୍ତ୍ର ) ଦେହ ମଧ୍ୟସ୍ଥ କଳ୍ପିତ ୬ଗୋଟି ଚକ୍ର ମଧ୍ୟରୁ ଦ୍ୱିତୀୟ ଚକ୍ର, ଲିଙ୍ଗଚକ୍ର ।

ସାଧୀ—ଗ୍ରା. (ଛତିଶଗଡ଼)ବି. ବିବାହ ।

ସାଧୀୟାନ୍—ପୁଂ.ବିଂ. (ସାଧୁ+ ଈୟସ୍) ସାଧିଷ୍ଠ ଦେଖ, (ସ୍ତ୍ରୀ) ସାଧୀୟସୀ ।

ସାଧୁ—ବିଂ.(ସାଧ୍+କ.ଉ) ସୁଶୀଳ,ସତ୍ସ୍ୱଭାବ, ସଦାଶୟ, ଧର୍ମଭୀରୁ, ଧର୍ମିକ, ନିର୍ଲୋଭ, ମହତ୍, ମହାଶୟ, ସୁନ୍ଦର, କୁଳୀନ, ସମର୍ଥ, ନିପୁଣ, ହିତକର, ଉଚିତ, ଉତ୍ତମ, ପ୍ରଶଂସନୀୟ, ଉପଯୁକ୍ତ, ଯୋଗ୍ୟ, (ସ୍ତ୍ରୀ) ସାଧ୍ୱୀ, (ବି) ମୁନି,ମହାପୁରୁଷ, ବାର୍ଦ୍ଧୁଷିକ, ମହାଜନ, ବଣିକ, ଦେବଭକ୍ତ,ଶାକ୍ୟମୁନି,ବୁଦ୍ଧ,ଜୈନଯତି ସଦାଚାରୀ ଓ ସଦ୍‌ବ୍ୟକ୍ତି, ଯେଉଁବ୍ୟକ୍ତି ମନ୍ତ୍ର ତନ୍ତ୍ରାଦି ସାଧନରେ ସିଦ୍ଧ ହୋଇଅଛନ୍ତି, ଦମନକ, ଦଅଣାଗୁଳ୍ମ, ବରୁଣ ବୃକ୍ଷ, (ଗ୍ରା.ବି) ବାବାଜୀ, ବୈଷ୍ଣବ ।

ସାଧୁକ—ବି. କଦମ୍ବଗଛ, ବରୁଣଗଛ ।

ସାଧୁକାରୀ—ପୁଂ.ବିଂ.ଉତ୍ତମ କାର୍ଯ୍ୟକାରୀ, (ସ୍ତ୍ରୀ) ସାଧୁକାରିଣୀ ।

ସାଧୁକୃତ୍—ବିଂ.(ସାଧୁ+କୃ+କ୍ୱିପ୍) ବିଶୁଦ୍ଧ କର୍ମକାରୀ ।

ସାଧୁକୃତ୍ୟ—ବି. ସାଧୁମାନଙ୍କର କୃତ୍ୟ, ସତ୍‌କାର୍ଯ୍ୟ, ବିଶୁଦ୍ଧ କର୍ମ । [ ସ୍ଥାନ ।

ସାଧୁଚରଣ—ବି. ନ୍ୟାଯ୍ୟ ବିଷୟର ଅନୁ-

ସାଧୁଜ—ପୁଂ. ବିଂ. (ସାଧୁ + ଜନ୍ + କ. ଅ)ଭଦ୍ରବଂଶୋଦ୍ଭବ,କୁଳୀନ,(ସ୍ତ୍ରୀ)ସାଧୁଜା

ସାଧୁଜନ—ପୁଂ. ବି. ଉତ୍ତମବ୍ୟକ୍ତି, ଋଷିପ୍ରତିମ ବ୍ୟକ୍ତି ।

ସାଧୁଜାତ—ବିଂ. ସୁନ୍ଦର,ଉଜ୍ଜ୍ୱଳ,ଶ୍ରୀସମ୍ପନ୍ନ

ସାଧୁତ—ଗ୍ରା,ବି. (ସଂ-ସାଧୁ)ସାଧବ,ମହାଜନ, ବଣିକ ।

ସାଧୁତା(ତ୍ୱ)—ବି. (ସାଧୁ+ଭା.ତା)ଧାର୍ମିକତା, ଭଦ୍ରତା, ସୌଜନ୍ୟ, ଶିଷ୍ଟାଚାର, ନ୍ୟାୟପରାୟଣତା,ସଦାଚରଣ,ଉତ୍ତମତା

ସାଧୁଦର୍ଶୀ—ପୁଂ. ବିଂ. ( ସାଧୁ + ଦୃଶ୍+ ଇନ୍)ସାଧୁଦ୍ରଷ୍ଟା,ଯେ ଉତ୍ତମରୂପେ ଦର୍ଶନ କରେ ।

ସାଧୁଦାୟୀ—ପୁଂ. ବିଂ. ( ସାଧୁ + ଦା + ଇନ୍) ଉତ୍ତମ ବସ୍ତୁ ଦାନକାରୀ ।

ସାଧୁଦେବୀ—ପୁଂ. ବିଂ. (ସାଧୁ+ଦିବ୍+ ଇନ୍) ଉତ୍ତମରୂପେ କ୍ରୀଡ଼ାକାରକ, ଯେ ଉତ୍ତମରୂପେ ଦ୍ୟୁତକ୍ରୀଡ଼ାକରିପାରେ ।

ସାଧୁଧର୍ମ—ବି. ଜୈନମାନଙ୍କ ମତରେ ସାଧୁମାନଙ୍କ ଆଚରଣ,(ଏହା ଦଶପ୍ରକାର ଯଥାଃ—କ୍ଷାନ୍ତି, ମାର୍ଦ୍ଦବ, ଆର୍ଜବ, ଭକ୍ତି, ତପ, ସଂଯମ, ସତ୍ୟ, ଶୌଚ,ଅକିଞ୍ଚନ ଓ ବ୍ରହ୍ମ) ।

ସାଧୁଧୀ(ବୁଦ୍ଧି)—ପୁଂ. ବିଂ. ସ୍ତ୍ରୀ. ସୁବୁଦ୍ଧିବିଶିଷ୍ଟ (ବ୍ୟକ୍ତି), (ସ୍ତ୍ରୀ.ବି) ଶ୍ୱଶ୍ରୂ, ଶାଶୁ, ଉତ୍ତମବୁଦ୍ଧି ।

ସାଧୁପୁତ୍ର—ପୁଂ.ବିଂ.ଉତ୍ତମପୁତ୍ର,ସତ୍‌ପୁତ୍ର, ବୌଦ୍ଧଯତିଭେଦ ।

ସାଧୁପୁଷ୍ପ—କ୍ଲୀ, ବି. ସ୍ଥଳପଦ୍ମ, ଉତ୍ତମପୁଷ୍ପ

ସାଧୁପ୍ରକୃତି—ପୁଂ.ବିଂ.(ବ.ବ୍ରୀ)ସତ୍‌ସ୍ୱଭାବବିଶିଷ୍ଟ, (ବି-କ.ଧା) ସୁସ୍ୱଭାବ ।

ସାଧୁପ୍ରୟୋଗ—ବି. (କ.ଧା)ଶିଷ୍ଟପ୍ରୟୋଗ, ଶିଷ୍ଟସମାଜାନୁଗତ ଭାଷାର ପ୍ରୟୋଗ ।

ସାଧୁବାଦ—ବି. ( ସାଧୁ + ବଦ୍+ଭା.ଅ ) ସାଧୁ! ସାଧୁ! ଏହିପରି ବାକ୍ୟ, ପ୍ରଶଂସା, ଧନ୍ୟ ଧନ୍ୟ ପଦ, ଧନ୍ୟବାଦ ।

ସାଧୁବାନ୍—ପୁଂ. ବିଂ. ( ସାଧୁ+ବତ୍ ) ସାଧୁଗୁଣବିଶିଷ୍ଟ, ଉତ୍ତମ ଗୁଣଯୁକ୍ତ ।

ସାଧୁବାହ—ପୁଂ.ବି.(ସାଧୁ+ବହ୍+କ.ଅ) ବିନୀତାଶ୍ୱ,ସୁଶିକ୍ଷିତ ଓ ଶାନ୍ତ ଅଶ୍ୱ,ଉତ୍ତମ ବାହନ ।

ସାଧୁବାହୀ—ବି.(ସାଧୁ+ବହ୍+କ.ଇନ୍) ସୁଶିକ୍ଷିତ ଓ ବିନୀତ ଅଶ୍ୱ, ଯେଉଁ ପଶୁ ଉତ୍ତମରୂପେ ବହନକରେ,(ସାଧୁବାହ+ ଇନ୍) ସୁନ୍ଦର ଘୋଟକବିଶିଷ୍ଟ ।

ସାଧୁବୃକ୍ଷ—ବି.ସୁନ୍ଦର ବୃକ୍ଷ, କଦମ୍ବତରୁ, ବରୁଣବୃକ୍ଷ ।

ସାଧୁବୃତ୍ତ—ପୁଂ.ବିଂ.(ସାଧୁ+ବୃତ୍ତ,ବ.ବ୍ରୀ) ସଚ୍ଚରିତ୍ର, ସତ୍‌ସ୍ୱଭାବ, (ସ୍ତ୍ରୀ)ସାଧୁବୃତ୍ତା ।

ସାଧୁବୃତ୍ତି—ବି. (କ.ଧା) ଉତ୍ତମ ଜୀବିକା, ଉତ୍ତମ ଆଚରଣ ।

ସାଧୁଭାଷା—ସ୍ତ୍ରୀ.ବି. (କ.ଧା)ସଂସ୍କୃତଭାଷା, ବିଶୁଦ୍ଧଭାଷା, ମାର୍ଜିତ ବା ସାହିତ୍ୟର ଉପଯୁକ୍ତ ଭାଷା, କଥ୍ୟ ବା ଚଳିତ ଭାଷାରୁ ସ୍ୱତନ୍ତ୍ରଲେଖ୍ୟ ଭାଷା ।

ସାଧୁଲକ୍ଷଣ—ବି. (୬ତତ୍) ଯେଉଁ ଚିହ୍ନ ବା ଲକ୍ଷଣମାନଙ୍କଦ୍ୱାରା ସାଧୁଜନ ଚିହ୍ନା ଯାଆନ୍ତି ।

ସାଧୁଶୀଳ—ବିଂ. (ବ.ବ୍ରୀ)ସଚ୍ଚରିତ୍ର,ସତ୍ସ୍ୱ-

ସ୍ୱଭାବବିଶିଷ୍ଟ, (ସ୍ତ୍ରୀ) ସାଧୁଶୀଳା ।

ସାଧୁସଙ୍ଗ(ସହବାସ)—ବି. ( ତତ୍ପୁ ) ସାଧୁବ୍ୟକ୍ତିଙ୍କ ସହିତ ବସଉଠ କରିବା ।

ସାଧୁସନ୍ଥ—ଗ୍ରା.ବି.ସାଧୁ ବୈଷ୍ଣବ,ବାବାଜୀ-ବୈଷ୍ଣବ ।

ସାଧୁସମ୍ମତ—ବିଂ. (ତତ୍ପୁ) ସଜ୍ଜନାନୁମୋଦିତ, ଧାର୍ମିକ ବ୍ୟକ୍ତିଗଣ କର୍ତ୍ତୃକ ସ୍ୱୀକୃତ ।

ସାଧୁସାଧୁ—ଅ. ଧନ୍ୟ ଧନ୍ୟ ! ବାଃ ବାଃ ।

ସାଧୁସେବା-ବି.ସାଧୁବ୍ୟକ୍ତିଙ୍କ ପରିଚର୍ଯ୍ୟା ।

ସାଧୂତ—ବି. (ସ+ଆଧୂତ)ମୟୂରସମୂହ, ପଣ୍ୟଗାଥୀ, ହାଟ, ଆଡିପଣି, ଛତା ।

ସାଧ୍ୱର—ବିଂ.(ସ+ଅଧ୍ୱର)ଯଜ୍ଞସହିତ ।

ସାଧ୍ୱସ—ବି(ସାଧୁ+ଅସ୍+ର୍ମ.ଅ) ଭୟ, ତ୍ରାସ, ଶଙ୍କା, ସମ୍ଭ୍ରମ, ମନର ଆବେଗ, ବ୍ୟାକୁଳତା, କିଂ କର୍ତ୍ତବ୍ୟ ବିମୂଢ଼ତା, ପ୍ରତିମା ।

ସାଧ୍ୱାଚାର—ବି. ସାଧୁମାନଙ୍କ ଆଚରଣ, ଶିଷ୍ଟାଚାର ।

ସାଧ୍ୱୀ—ସ୍ତ୍ରୀ. ବିଂ. (ସାଧୁ+ଈ)ସାଧୁଶୀଳା (ସ୍ତ୍ରୀ), ପତିବ୍ରତା, ସତୀ, ସଚ୍ଚରିତ୍ରା,(ସ୍ତ୍ରୀ. ବି) ପତିବ୍ରତା ସ୍ତ୍ରୀ,ମେଦା,କୃଷ୍ଣ ପାଷାଣ ।

ସାଧ୍ୟ—ବିଂ. ( ସାଧ୍+ଣିଚ୍+ର୍ମ.ଯ ) ନିଷ୍ପାଦ୍ୟ, ମନୁଷ୍ୟ ଯାହା ସମ୍ପାଦନ କରିପାରେ, ସାଧନାର୍ହ, (ନ୍ୟାୟଶାସ୍ତ୍ର) ଯେଉଁ ପ୍ରତିଜ୍ଞା ସାଧନ ବା ପ୍ରମାଣ କରିବାକୁ ହେବ, ପ୍ରତିପାଦ୍ୟ,ସମାଧାନ ଯୋଗ୍ୟ, ଯେଉଁ ରୋଗ ଔଷଧ ବା ଚିକିତ୍ସାଦ୍ୱାରା ଉପଶାନ୍ତ କରାଯାଇପାରେ, ପ୍ରତିକରଣୀୟ, ସହଜ, ସରଳ,ଜ୍ଞେୟ, (ସ୍ତ୍ରୀ) ସାଧ୍ୟା, (ବି) ଦ୍ୱାଦଶପ୍ରକାର ଗଣଦେବତା, (ଯଥାଃ—ମନଃ,ମନ୍ତା,ପ୍ରାଣ, ନର, ଅପାନ, ବୀର୍ଯ୍ୟବାନ୍, ବିନିର୍ଭୟ, ନୟ,ଦଂଶ,ନାରାୟଣ,ବୃଷ ଓ ପ୍ରଭୁଞ୍ଚ), (ନ୍ୟାୟଶାସ୍ତ୍ର) ଅନୁମିତ ବିଷୟ,ଯୋଗବିଶେଷ, ଦେବତା,(ଫଳିତ ଜ୍ୟୋତିଷ) ବିଷ୍କୁମ୍ଭଆଦି ୨୭ଯୋଗ ମଧ୍ୟରୁ ଏକବିଂଶ ଯୋଗ, ତନ୍ତ୍ରମତରେ ଗୁରୁଙ୍କଠାରୁ ଗ୍ରହଣୀୟ ୪ପ୍ରକାର ମନ୍ତ୍ରମଧ୍ୟରେ ଏକ, (ଗ୍ରା.ବିଂ) ଯେଉଁ ଜମି ଆବାଦ କରାଯାଇପାରେ, ଦଣ୍ଡାଦି ଦ୍ୱାରା କରାୟତ୍ତ, ଶାସିତ, ତାଲିମ ବା ମଣକରାଯାଇଥିବା (ପଶୁଆଦି), (ବି)ଶକ୍ତି,କ୍ଷମତା,ସାମର୍ଥ୍ୟ, ସାଧନ ।

ସାଧ୍ୟକରିବା—ଗ୍ରା. କ୍ରି. ଦଣ୍ଡାଦିଦ୍ୱାରା ଦୁଷ୍ଟ ବ୍ୟକ୍ତିକୁ ଜବତ କରିବା, ଶାସନ ଦ୍ୱାରା ବଶରେ ଆଣିବା, ପତିତଜମିକୁ କୃଷିଆଦିଦ୍ୱାରା ଆବାଦ କରିବା, ବ୍ୟାୟାମଆଦିରେ ସିଦ୍ଧି ଲାଭ କରିବା, ଘୋଡ଼ାଆଦି ପଶୁଙ୍କୁ ମଣ କରିବା ।

ସାଧ୍ୟକ୍ରମେ-ଗ୍ରା. କ୍ରି. ବିଂ. ସାଧ୍ୟମତ ଦେଖ ।

ସାଧ୍ୟତା(ତ୍ୱ)—ବି.(ସାଧ୍ୟ+ଭା.ତା)ସାଧନୀୟ ହେବାର ଅବସ୍ଥା, ସାଧନସ୍ଥ ଧର୍ମ ।

ସାଧ୍ୟତାବଚ୍ଛେଦ—ବି. ( ନ୍ୟାୟଶାସ୍ତ୍ର ) ସାଧ୍ୟତାର ସ୍ଥିରୀକରଣ ।

ସାଧ୍ୟତାବଚ୍ଛେଦକ—ବିଂ. (ସାଧ୍ୟତା+ଅବଚ୍ଛେଦକ—ନ୍ୟାୟଶାସ୍ତ୍ର) ସାଧ୍ୟତାର ଅବଚ୍ଛେଦକ, ଅନୁମିତ ବିଧେୟତାବଚ୍ଛେଦକ, (ସ୍ତ୍ରୀ) ସାଧ୍ୟତାବଚ୍ଛେଦକା ।

ସାଧ୍ୟପକ୍ଷ—ବି. (ନ୍ୟାୟଶାସ୍ତ୍ର)ଯେଉଁବିଷୟ ମୀମାଂସା ବା ସାଧନ ହେବାପାଇଁ ଉପସ୍ଥାପିତ ହୋଇଥାଏ, ସାଧିତହେବା ଯୋଗ୍ୟ ଅବସ୍ଥା ।

ସାଧ୍ୟବସାନା—ବି. ଲକ୍ଷଣାଶକ୍ତି ଭେଦ ।

ସାଧ୍ୟବସାନିକା—ବି. ସାହିତ୍ୟଦର୍ପଣ ଅନୁସାରେ ଏକପ୍ରକାର ଲକ୍ଷଣା ।

ସାଧ୍ୟମତ(ତେ)—ଗ୍ରା. କ୍ରି. ବିଂ.ଯଥାସାଧ୍ୟ, କ୍ଷମତାନୁଯାୟୀ ।

ସାଧ୍ୟସମ—ପୁଂ. ବି. ହେତ୍ୱାଭାସବିଶେଷ ।

ସାଧ୍ୟସାଧନ—ବି. (ନ୍ୟାୟଶାସ୍ତ୍ର) ସାଧ୍ୟ ଓ ସାଧନ, ସାଧ୍ୟ ବିଷୟର ସମାଧାନ,ଯାହା ସାଧନହେବାର ସମ୍ଭବ ତହିଁର ସାଧନ ।

ସାଧ୍ୟସାଧନା—ଗ୍ରା. ବି. (ଉଦ୍ଦେଶ୍ୟସିଦ୍ଧି-ପାଇଁ) ଉପାସନା, ଆରାଧନା, ନାନାପ୍ରକାର ଅନୁନୟ ବିନୟ ।

ସାଧ୍ୟସିଦ୍ଧିପାଦ—ବି. (ଧର୍ମଶାସ୍ତ୍ର, ହିନ୍ଦୁ ଆଇନ୍) ବ୍ୟବହାରର ୪ର୍ଥ ପାଦ, ଧର୍ମାଧିକରଣ ବା ଅଦାଲତରେ ପକ୍ଷମାନଙ୍କ ଦ୍ୱାରା ଘଟିତ ହେବା ୪ର୍ଥ କ୍ରମ ।

ସାଧ୍ୟହେବା—ଗ୍ରା.କ୍ରି. ଅଧୀନ ବା ଆୟତ୍ତ ହେବା,ଦଣ୍ଡାଦି ଦ୍ୱାରା ବଶୀଭୂତହେବା, ତାଲିମ୍‌ହେବା, ମଣହେବା ।

ସାଧ୍ୟାତିରିକ୍ତ--ଗ୍ରା.ବିଂ.କ୍ଷମତାରୁ ଅତିରିକ୍ତ, ସାଧ୍ୟାତୀତ ।

ସାଧ୍ୟାନୁଯାୟୀ—ଗ୍ରା.କ୍ରି. ବିଂ. ଯଥାସାଧ୍ୟ, ସାଧ୍ୟମତେ ।

ସାଧ୍ୟାନୁସାରେ—ଗ୍ରା. କ୍ରି. ବିଂ. କ୍ଷମତାନୁଯାୟୀ, ଶକ୍ତିଅନୁସାରେ, ଯଥାସାଧ୍ୟ ।

ସାଧ୍ୟାୟତ୍ତ—ଗ୍ରା. ବିଂ. (ଫ-ସାଧନାୟତ୍ତ) ଆୟତ୍ତାଧୀନ, କ୍ଷମତାର ଅଧୀନ, ନିଜର କ୍ଷମତା ମଧ୍ୟକୁ ଆଗତ ।

ସାଧ୍ୟାସାଧ୍ୟ—ବିଂ. ସାଧ୍ୟ ଓ ଅସାଧ୍ୟ, ଶକ୍ୟ ଓ ଅଶକ୍ୟ ।

ସାନ୍ଲୀ—ପ୍ରା. (କଳାହାଣ୍ଡି) ବି. ଦ୍ୱିତୀୟ ବିବାହିତା ବା କନିଷ୍ଠ ପତ୍ନୀ ।

ସାନ—ଗ୍ରା.ବିଂ(ଫ-ସନ=କ୍ଷୀଣ,ସାମାନ୍ୟ =ଅଳ୍ପ) ଛୋଟ, କ୍ଷୁଦ୍ର, ଶିଶୁ, ଅଳ୍ପବୟସ୍କ, ବୟସରେ କନିଷ୍ଠ, କ୍ଷୁଦ୍ରତର, ନୀଚ, ନୀଚତର, ନିକୃଷ୍ଟ ।

ସାନଆଠ—ଗ୍ରା. ବି. ଟେମା ଖେଳ, ୮ଗୋଟି କଉଡ଼ିରେ ଖେଳାଯିବା ଏକପ୍ରକାର ଖେଳ ।

ସାନକ୍ଷୀରକୋଳି—ଗ୍ରା.ବି. ଔଷଧ ଗୁଳ୍ମ- [ ବିଶେଷ ।

ସାନଖସୁ—ପ୍ରା. (ବସ୍ତର)ବି. କୁଣ୍ଡିଆ ।

ସାନଛତା—ଗ୍ରା.ବି ପୁରୀରେ ଜଗନ୍ନାଥଙ୍କ ସିଂହଦ୍ୱାର ନିକଟରେ ଅବସ୍ଥାନ କରୁଥିବା ଏକଦଳ ବାବାଜୀଙ୍କ ଆଖଡ଼ା ।

ସାନଜା(ଯା)ଆ—ଗ୍ରା.ସ୍ତ୍ରୀ.ବି.(ସ୍ତ୍ରୀପକ୍ଷରେ) ଦେବରଙ୍କ ସ୍ତ୍ରୀ ।

ସାନତାଠି—ପ୍ରା (ବସ୍ତର)ବି.ଶ୍ରେଷ୍ଠ ଆଙ୍କ ବା ଆଙ୍କିଆ ।

ସାନନ୍ଦ—ପୁଂ.ବିଂ. (ସ + ଆନନ୍ଦ)ବି.ସ୍ତ୍ରୀ; ସହର୍ଷ, ଆହ୍ଲାଦିତ, (ସ୍ତ୍ରୀ) ସାନନ୍ଦା,(ବି) ଷୋଡ଼ଶ ଧ୍ରୁବକାନ୍ତର୍ଗତ ଧ୍ରୁବକବିଶେଷ ଗୁଚ୍ଛକରଞ୍ଜ ।

ସାନନ୍ଦରେ—ଗ୍ରା.କ୍ରି.ବିଂ. (ଫ-ସାନନ୍ଦଂ) ଆନନ୍ଦ ସହକାରେ ।

**ସାନନ୍ଦର**—ବି.ବରାହ ପୁରାଣୋକ୍ତ ସମୁଦ୍ରର ଉତ୍ତର ଓ ମଳୟଗିରିର ଦକ୍ଷିଣସ୍ଥ ତୀର୍ଥବିଶେଷ ।

**ସାନପିଲା**—ଗ୍ରା. ପୁଂ. ସ୍ତ୍ରୀ.ବି.ଶିଶୁ ବାଳକ ବାଳିକା, (ପୁଂ) ସାନପୁଅ ।

**ସାନପୁଅ**—ଗ୍ରା.ପୁଂ.ବି. କନିଷ୍ଠ ପୁତ୍ର ।

**ସାନବାବୁ**—ଗ୍ରା.ବି. ଗୃହର କନିଷ୍ଠ ବାବୁ, ଅଫିସର ବଡ଼ ବାବୁଙ୍କ ଅଧସ୍ତନ ବାବୁ ।

**ସାନବୁଆ**—ପ୍ରା. (ବଲାଙ୍ଗିରପାଟଣା) ବି. କାକା, କକେଇ, (ସ୍ତ୍ରୀ) ସାନମା ।

**ସାନମଝିଆ**—ଗ୍ରା.ବିଂ. ଗୃହଜଣଙ୍କ ମଧ୍ୟରୁ କନିଷ୍ଠର ଉପର(ଭାଇ ଇତ୍ୟାଦି), (ସ୍ତ୍ରୀ) ସାନମଝିଆଣୀ ।

**ସାନଲା**—ପ୍ରା. (ପାଟଣା) ସ୍ତ୍ରୀ. ବି. ଦ୍ୱିତୀୟ ବିବାହିତା ପତ୍ନୀ, କନିଷ୍ଠା ପତ୍ନୀ ।

**ସାନସାନ**—ଗ୍ରା.ବି. ବିଂ. (ବହୁବଚନ) । ଶ୍ରେଷ୍ଠ ଶ୍ରେଷ୍ଠ ବହୁ (ଲୋକ ବା ବସ୍ତୁ) ।

**ସାନସି**—ବି. ସୁବର୍ଣ୍ଣ ।

**ସାନହାଣ୍ଡି**—ପ୍ରା(ଗଡ଼ଜାତ)ବି.ବନ୍ୟବୃକ୍ଷବିଶେଷ ।

**ସାନାଥ୍ୟ**—ବି. (ସନାଥ+ଯ) ସନାଥର ଭାବ, ନାଥଯୁକ୍ତତା ।

**ସାନି**—ଯା.କ୍ରି. ବିଂ. ପୁନର୍ବାର, ଆଉଥରେ, ଦ୍ୱିତୀୟଥର, (ବିଂ) ପୁନର୍ବାର ଅନୁଷ୍ଠିତ, ଦ୍ୱିତୀୟବାର କୃତ,ଦୋହରା, ଦ୍ୱିତୀୟ, ଅନ୍ୟ, ସମାନ,(ବି. କଚେରୀଆ) ଫଇସଲ ହୋଇଥିବା ମକଦ୍ଦମାର ପୁନର୍ବିଚାର,(ଗ୍ରା.ବି)ଗୋରୁଙ୍କୁ ଖୁଆଇବ ପାଇଁ ପିଡ଼ିଆ ଗୁଣ୍ଡା ଗୋଳିଆ ହୋଇଥିବା କଟା ନଡ଼ା ।

**ସାନିକା**—ବି. (ସନ+ଇକ+ଆ)ବଂଶୀ ।

**ସାନିଘାଟି**—ପ୍ରା. ( ବଲାଙ୍ଗିର ପାଟଣା ) ବିବାଦ ପରେ ମିଳାମିଶା ।

**ସାନିବା**—ପ୍ରା.(ସମ୍ବ)କ୍ରି. ବହୁ ପଦାର୍ଥକୁ ଏକତ୍ର ମିଶାଇ ଗୋଳାଇବା, ସାନ୍ଧିବା ।

**ସାନିବିଚାର**—ଗ୍ରା.ବି.ନିଷ୍ପତ୍ତି ହୋଇଥିବା ମକଦ୍ଦମାର ଦ୍ୱିତୀୟବାର ବିଚାର ।

**ସାନିମକଦ୍ଦମା**—ଗ୍ରା.ବି. ଫଇସଲ ପରେ ପୁଣି ବିଚାର ହେବା ମକଦ୍ଦମା ।

**ସାନୁ**—ବି. ( ସନ୍+କ.ଉ ) ଗିରିତଟ, ପର୍ବତର ଉପରିସ୍ଥ ସମତଳ ଭୂମି, ଅଧିତ୍ୟକା,ବନ, ପ୍ରବଳପବନ,ବାତ୍ୟା, ପଥ, ମାର୍ଗ, ଅଗ୍ର, ପଣ୍ଡିତ, କୋବିଦ, ସୂର୍ଯ୍ୟ, କଣଳସ୍ତ, ପଲ୍ଲବ, ପର୍ବତର ଶିଖର, ସମତଳ ଭୂମି, ପାହାଡ଼ିଆ ଜଙ୍ଗଲ, ଅନ୍ତ, ଲମ୍ବ ବସ୍ତ୍ରର ମୁଣ୍ଡ ।

**ସାନୁଜ**—ବିଂ. ସମୁନ୍ନତ, ଅତ୍ୟୁନ୍ନତ,(ବି) ସାନୁ ଦେଖ ।

**ସାନୁକମ୍ପ**—ପୁଂ.ବିଂ. (ସ+ଅନୁକମ୍ପା+ଅ)ବ.ବ୍ରୀ; ସଦୟ ।

**ସାନୁକୂଲ**—ବିଂ.(ସ+ଆନୁକୂଲ୍ୟ)ସଦୟ, ଅନୁକୂଳ ।

**ସାନୁଗ**—ପୁଂ. ବିଂ. ଅନୁପଯୁକ୍ତ, ସାନୁଦେଶେ ଗମନକାରୀ ।

**ସାନୁଚର**—ପୁଂ. ବିଂ. ଅନୁଚରବିଶିଷ୍ଟ, ସାନୁଦେଶେ ବିଚରଣକାରୀ ।

**ସାନୁଜ**—ବିଂ. ବ.ବ୍ରୀ; ( ସ + ଅନୁଜ ) କନିଷ୍ଠ ସହିତ ବର୍ତ୍ତିମାନ, (ସାନୁ+ଜନ+କ.ଅ) ପର୍ବତର ସାନୁଦେଶରୁ ଜାତ, (ସ୍ତ୍ରୀ)ସାନୁଜା,(ବି)ପ୍ରପୌଣ୍ଡରୀକ, ଏକପ୍ରକାର ପାର୍ବତ୍ୟବୃକ୍ଷର ମୂଳ,ତୁମ୍ବୁରୁ ବୃକ୍ଷ,ନେପାଳ ଧନିଆଁ,(ଗ୍ରା.ବି)ଅନୁଜ ।

**ସାନୁତାପ**-ବିଂ. ଅନୁତାପଯୁକ୍ତ,ଅନୁତାପବିଶିଷ୍ଟ, ଅନୁତପ୍ତ ।

**ସାନୁଦେଶ**—ବି. ପର୍ବତର ସାନୁ ବା ଉପରିସ୍ଥ ସମତଳ ଦେଶ ।

**ସାନୁନୟ**—ବିଂ. ବ.ବ୍ରୀ;(ସ+ଅନୁନୟ) ସବିନୟ ।

**ସାନୁନୟେ**—କ୍ରି.ବିଂ.(ବ.ବ୍ରୀ)ଅନୁନୟର ସହିତ, ସବିନୟରେ, ବିମୀତଭାବରେ ।

**ସାନୁନାସିକ**—ବିଂ. (ସ+ଅନୁନାସିକ) ଅନୁନାସିକ ବର୍ଣ୍ଣବିଶିଷ୍ଟ, ନାସିକାଦ୍ୱାରା ଉଚ୍ଚାରିତ ହୁଏ ଏପରି ବର୍ଣ୍ଣଯୁକ୍ତ ।

**ସାନୁନାସିକ୍ୟ**—ବିଂ. ସାନୁନାସିକ ବର୍ଣ୍ଣବିଶିଷ୍ଟ ।

**ସାନୁପ୍ରସ୍ଥ**—ପୁଂ. ବି. ବାନର ଭେଦ ।

**ସାନୁପ୍ରାସ**-ବିଂ. ଅନୁପ୍ରାସ ଅଳଙ୍କାରଯୁକ୍ତ ।

**ସାନୁବନ୍ଧ**—ବିଂ. (ବ.ବ୍ରୀ) ଅନୁବନ୍ଧଯୁକ୍ତ, ସନିର୍ବନ୍ଧ, ନିରନ୍ତର, ଆରମ୍ଭଯୁକ୍ତ ।

**ସାନୁମାନ୍**—ପୁଂ.ବି.(ସାନୁ+ମତ୍)ପର୍ବତ ।

**ସାନୁମାନ**-ବିଂ.ଅନୁମାନ ସହିତ ବର୍ତ୍ତିମାନ, ଅନୁମାନ ପ୍ରମାଣବିଶିଷ୍ଟ ।

**ସାନୁମାନକ**—ବି. ପ୍ରପୌଣ୍ଡରୀକ, ଏକପ୍ରକାର ପାର୍ବତ୍ୟ ବୃକ୍ଷର ମୂଳ ।

**ସାନୁରାଗ**-ବିଂ.ଅନୁରାଗ ସହିତ ବର୍ତ୍ତିମାନ, ଅନୁରାଗଯୁକ୍ତ, ଅନୁରାଗବିଶିଷ୍ଟ ।

**ସାନୁରୂଢ଼**—ବିଂ. ସାନୁଦେଶସ୍ଥିତ ।

**ସାନୁବନ୍ଧଗ**—ବିଂ.ଅନୁବନ୍ଧ ଗନ୍ଧବିଶିଷ୍ଟ ।

**ସାନୁଶୟ**-ବିଂ. ଅନୁଶୟଯୁକ୍ତ, ଅନୁତାପବିଶିଷ୍ଟ ।

**ସାନୁସ୍ୱାର**—ବିଂ.ଅନୁସ୍ୱାରଯୁକ୍ତ,ଅନୁସ୍ୱାର ସହିତ ବର୍ତ୍ତିମାନ ।

**ସାନୂପ**—ବିଂ.ଅନୂପ ସଜଳ ଦେଶ,ଅନୂପ ସହିତ ବର୍ତ୍ତିମାନ ।

**ସାନେୟିକା**—ବି. ବଂଶୀ, ମହୁରୀ ।

**ସାନେୟୀ**—ସ୍ତ୍ରୀ. ବି. ବଂଶୀ, ମହୁରୀ ।

**ସାନ୍ତ**—ବିଂ. (ବ.ବ୍ରୀ; (ସ+ଅନ୍ତ) ଅନ୍ତ ବା ସୀମାବିଶିଷ୍ଟ, ସସୀମ,ଯେଉଁ ଶବ୍ଦର ଅନ୍ତରେ 'ସ' ଥାଏ, (ସ୍ତ୍ରୀ) ସାନ୍ତା,(ଗ୍ରା.ବି)ନିର୍ଦ୍ଦିଷ୍ଟ ସୀମା ବା ଦୈର୍ଘ୍ୟ ବା ଆକାର ବିଶିଷ୍ଟ ଭୂଭାଗ, ନିର୍ଦ୍ଦିଷ୍ଟସୀମା,(ଫ-ସମାନ୍ତର) ସମାନ୍ତରାଳ, (ଗ୍ରା.ଅ) ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ।

**ସାନ୍ତକ**—ବିଂ. ଅନ୍ତକଯୁକ୍ତ,ଅନ୍ତକବିଶିଷ୍ଟ ।

**ସାନ୍ତତିକ**—ବିଂ. ସନ୍ତତି ସମ୍ବନ୍ଧୀୟ ।

**ସାନ୍ତପନ**—ବି. (ସମ୍+ତପ୍+ଣିଚ୍+ଭା.ଅନ) ବ୍ରତବିଶେଷ,କୃଚ୍ଛ୍ରସାଧ୍ୟ ବ୍ରତ, ଗୋମୟ, ଗୋମୂତ୍ର, ଦୁଗ୍ଧ,ଦଧି,ଘୃତ, କୁଶୋଦକ ଏହି ଛଅଦ୍ରବ୍ୟ କ୍ରମଶଃ ଛଅଦିନ ଭକ୍ଷଣ ଓ ଏକରାତ୍ରି ଉପବାସ ରୂପ ବ୍ରତ, ଋଷିବିଶେଷ ।

**ସାନ୍ତପନୀୟ**—ବିଂ. ମନୁକ୍ତ ସାନ୍ତପନ ସମ୍ବନ୍ଧୀୟ ।

**ସାନ୍ତର**—ବିଂ.(ସ+ଅନ୍ତର)ବ୍ୟବଧାନବିଶିଷ୍ଟ, ବ୍ୟବହିତ, ସଚ୍ଛିଦ୍ର, ବିରଳ, ଜାଲୁଜାଲୁଆ, ସାବକାଶ,(ସ୍ତ୍ରୀ)ସାନ୍ତରା ।

**ସାନ୍ତରତା(ତ୍ୱ)**—ବି. (ସାନ୍ତର+ଭା.ତା)

ଯେଉଁ ଗୁଣଥିବାରୁ ଜଡବସ୍ତୁମାନଙ୍କ ଅନ୍ତର୍ଦ୍ଦେଶରେ ଟିକିଏ ଟିକିଏ ବ୍ୟବଧାନ ବା ଅନ୍ତର ଥାଏ ।

ସାନ୍ତରପ୍ଳୁତ—ବି. ପ୍ଳୁତ ଗତିବିଶେଷ ।

ସାନ୍ତରା—ଗ୍ରା.ବି.ସୁରଙ୍ଗୀ, ମିଠା କମଳା, ସାଆନ୍ତରା (ପ୍ରା.ସମ୍ବ.ବି) ମିଠା ଲେମ୍ବୁ ।

ସାନ୍ତରାୟ—ବିଂ.ଅନ୍ତରାୟଯୁକ୍ତ,ଅନ୍ତରାୟ-ବିଶିଷ୍ଟ ।

ସାନ୍ତର୍ଦ୍ଦେଶ—ବିଂ. ଅନ୍ତର୍ଦ୍ଦେଶ ସହିତ ବର୍ତ୍ତମାନ, ମଧ୍ୟଦେଶବିଶିଷ୍ଟ ।

ସାନ୍ତଃସ୍ଥ—ବିଂ. ଅନ୍ତଃସ୍ଥ. ସ୍ୱରବର୍ଣ୍ଣଯୁକ୍ତ ।

ସାନ୍ତାନ—ବିଂ. (ସନ୍ତାନ+ଅ) ସନ୍ତାନ ସମ୍ବନ୍ଧୀୟ,ପାରିଜାତ ମାଲ୍ୟ ସମ୍ବନ୍ଧୀୟ ।

ସାନ୍ତାନିକ—ବିଂ.(ସନ୍ତାନ+ଇକ)ସନ୍ତାନ ସମ୍ବନ୍ଧୀୟ, ପ୍ରସରଣଶୀଳ, (ସ୍ତ୍ରୀ) ସାନ୍ତାନିକୀ, (ପୁଂ.ବି)ସନ୍ତାନୋତ୍ପାଦନ ନିମିତ୍ତ ପତ୍ନୀକାମୀ ବ୍ରାହ୍ମଣ ।

ସାନ୍ତାପିକ—ବିଂ.(ସନ୍ତାପ+ଇକ)ସନ୍ତାପ-ଦାୟକ, ପୀଡ଼ାଦାୟକ ।

ସାନ୍ତାଲ—ଗ୍ରା. ବି. (ସଂ-ସମତଲ) ଛୋଟ-ନାଗପୁର ଅଞ୍ଚଳବାସୀ ଜଙ୍ଗଲୀ ଅନାର୍ଯ୍ୟ ଜାତିବିଶେଷ ।

ସାନ୍ତାଲପରଗଣା(ନା)—ଗ୍ରା. ବି. ବିହାର-ପ୍ରଦେଶର ଭାଗଲପୁର ବିଭାଗର ଜିଲ୍ଲା-ବିଶେଷ ।

ସାନ୍ତାଳି—ଗ୍ରା. ବିଂ. ସାନ୍ତାଲ ସମ୍ବନ୍ଧୀୟ, ବଙ୍ଗଳା, ବିହାର ଓ ଓଡ଼ିଶାପ୍ରଦେଶ-ମାନଙ୍କ ଅଧିବାସୀ ସାନ୍ତାଲମାନଙ୍କ କଥିତ ଖେରଓ୍ୱାରି ଭାଷାର ରୂପାନ୍ତର ।

ସାନ୍ତୁ—ପ୍ରା. (ଗଡଜାତ,ବି-ରଜାଙ୍କୁ ଶାନ୍ତ କରିବାକୁ ଦିଆଯିବାରୁ) ବାଣୁଆ ଶିକା-ରରେ ମାରିଥିବା ମୃତଆଦି ପଶୁର ପଛ-ଆଡର ଗୋଟିଏ ଫଡ଼ିଆ,ଯାହା ଶିକାରି ଭେଟି ସ୍ୱରୂପ ରଜାଙ୍କୁ ଦେବାକୁ ବାଧ

ସାନ୍ତୁଆ—ପ୍ରା. (ଗଞ୍ଜାମ,ବି) ଗଞ୍ଜାମଜିଲ୍ଲାର ପାଇକଜାତିବିଶେଷ ।

ସାନ୍ତ୍ୱ—ବି.(ସାନ୍ତ୍ୱ+ଭା.ଅ)ସାମ,ପ୍ରବୋଧ ବାକ୍ୟ,କର୍ଣ୍ଣପ୍ରୀତିଜନକ ବାକ୍ୟ,ଦାକ୍ଷିଣ୍ୟ ସନ୍ଧି, ମେଳନ, (କ୍ରିଂ) ପ୍ରିୟ, ଅତିମନ୍ଦ ।

ସାନ୍ତ୍ୱନ(ନା)—ବି. ( ସାନ୍ତ୍ୱ + ଭା.ଅନ, ଆ) ସମାଶ୍ୱାସନ, ପ୍ରିୟବଚନ ଦ୍ୱାରା ପ୍ରବୋଧ ଦାନ, ପ୍ରିୟକର.ସାମୋପାୟ, ବିପନ୍ନ ବା ଶୋକଗ୍ରସ୍ତ ବ୍ୟକ୍ତିଙ୍କୁ ଆଶ୍ୱା-ସନା ଦେବା, ପ୍ରଣୟ, ପ୍ରେମ, ସସ୍ନେହ ସାଦର ସମ୍ଭାଷଣ ଓ କୁଶଳ ପ୍ରଶ୍ନ, ସନ୍ଧି, ମିଳନ ।

ସାନ୍ତ୍ୱନାଦାନ—ବି.(ଷତତ୍) ଆଶ୍ୱାସ—ପ୍ରଦାନ, ପ୍ରବୋଧ ଦେବା ।

ସାନ୍ତ୍ୱନାଦାୟକ—ପୁଂ. ବିଂ.(ସାନ୍ତ୍ୱନା + ଦା + କ.ଅକ)ଯେ ବା ଯାହା ସାନ୍ତ୍ୱନା ଦିଏ, (ସ୍ତ୍ରୀ) ସାନ୍ତ୍ୱନାଦାୟିକା ।

ସାନ୍ତ୍ୱନିତ—ବିଂ. ( ସାନ୍ତ୍ୱନ+ଇତ ) ସାନ୍ତ୍ୱନାପ୍ରାପ୍ତ ।

ସାନ୍ତ୍ୱବାଦ—ବି, ସାନ୍ତ୍ୱନାମୟ ବାକ୍ୟ ।

ସାନ୍ତ୍ୱୟିତା—ପୁଂ. ବିଂ. (ସାନ୍ତ୍ୱ+କ.ତୃ) ଯେ ବା ଯାହା ସାନ୍ତ୍ୱନା ଦିଏ, (ସ୍ତ୍ରୀ) ସାନ୍ତ୍ୱୟିତ୍ରୀ ।

ସାନ୍ଦୀପନି—ପୁଂ. ବି. (ସନ୍ଦୀପନ+ଇ) ମୁନିବିଶେଷ, କୃଷ୍ଣ ଓ ବଳରାମଙ୍କର ଧନୁର୍ବିଦ୍ୟାଶିକ୍ଷକ ।

ସାନ୍ଦୃଷ୍ଟିକ—କ୍ଲୀ. ବି. ସନ୍ଦୃଷ୍ଟି, ସଦ୍ୟଫଳ, ତାତ୍କାଳିକ ଫଳ, ଦୃଷ୍ଟ ପର କଳ୍ପନା ନ୍ୟାୟ, (ତ୍ରି. ବିଂ-ସମ୍+ଦୃଷ୍ଟ + ଇକ) ତାତ୍କାଳିକ (ଫଳ), ପୂର୍ବ ଦୃଷ୍ଟାନୁସାରୀ (ନ୍ୟାୟବିଶେଷ),(ସ୍ତ୍ରୀ) ସାନ୍ଦୃଷ୍ଟିକୀ ।

ସାନ୍ଦୃଷ୍ଟିକନ୍ୟାୟ—ବି.ସଦ୍ୟଃଫଳ,ତାତ୍-କାଳିକଫଳ.ଦୃଷ୍ଟପରକଳ୍ପନା(ନ୍ୟାୟ)।

ସାନ୍ଦ୍ର—ବିଂ. (ସ+ଅନ୍ଦ୍+କ.ର) ଘନ, ନିବିଡ଼, ଅଭେଦ୍ୟ, ସ୍ନିଗ୍ଧ, ଚିକ୍କଣ, ମନୋଜ୍ଞ, ସୁନ୍ଦର, ମୃଦୁ, (ସ୍ତ୍ରୀ) ସାନ୍ଦ୍ରା, (ବି) ବନ, ଅରଣ୍ୟ, ତକ୍ର, ଘୋଳ ।

ସାନ୍ଦ୍ରତା(ତ୍ୱ)—ବି(ସାନ୍ଦ୍ର+ଭା.ତା) ଘନତା, ନିବିଡ଼ତା ।

ସାନ୍ଦ୍ରପଦ—ବି. ଛନ୍ଦୋବିଶେଷ, ଏଥିର ପ୍ରତ୍ୟେକ ଚରଣରେ ୧୧ଟି ଲେଖାଏ ଅକ୍ଷରଥାଏ ।

ସାନ୍ଦ୍ରପୁଷ୍ପ—ବି. (ବ.ବ୍ରୀ) ବିଭୀତକ ବୃକ୍ଷ ଓ ପୁଷ୍ପ ।

ସାନ୍ଦ୍ରପ୍ରସାଦମେହ—ବି. ଚରକର ନିଦାନ ସ୍ଥାନରେ ଲିଖିତ ମେହ ରୋଗବିଶେଷ ।

ସାନ୍ଦ୍ରମେହ—ବି. ଶ୍ଳେଷ୍ମଜ ମେହରୋଗ-ବିଶେଷ ।

ସାନ୍ଦ୍ରସ୍ନିଗ୍ଧ—ବିଂ.ଘନ ଓ ଚିକ୍କଣ,ମେଦୁର

ସାନ୍ଦ୍ରାବିଣ—ବି. ସମ୍ୟକ୍ ଦ୍ରବ ।

ସାନ୍ଧ—ବିଂ. (ସନ୍ଧ+ଅ) ସନ୍ଧିସମ୍ବନ୍ଧୀୟ ।

ସାନ୍ଧକାର—ବିଂ. ଅନ୍ଧକାରଯୁକ୍ତ ।

ସାନ୍ଧି(ଢ଼ି)—ଗ୍ରା. ବି. (ସଂ-ସଗ୍ଧି) ସହ-ଭୋଜନ, ବନ୍ଧୁଲୋକଙ୍କର ଏକତ୍ର ଭୋଜନ, ପଙ୍କ୍ତି ।

ସାନ୍ଧିକ—ବି. (ସନ୍ଧା+ଇକ) ଶୌଣ୍ଡିକ, ଶୁଣ୍ଡି, ପୁଂ. ବିଂ; ( ସନ୍ଧି+ଇକ ) ସନ୍ଧିକର୍ତ୍ତା ।

ସାନ୍ଧିବା—ଗ୍ରା. କ୍ରି. ( ସମ୍+ଧା ଧାତୁ ) ଏକାଧିକ ବସ୍ତୁକୁ ଏକତ୍ର ମିଶ୍ରିତ କରିବା ପାଇଁ ଜଳଦ୍ୱାରା ଚକଟିବା, ଦଳିବା, ( ସଂ-ସାନ୍ଦ୍ର ) ଘନୀଭବରେ ପଦାର୍ଥରୁ ଜଳଦ୍ୱାରା ମିଳାଇବା.ଛିଦ୍ରରେ କୌଣସି ବସ୍ତୁକୁ ପୂରାଇ ଖୋଦିବା,ପ୍ରହାରକରିବା, ମାଡ ଦେବା ।

ସାନ୍ଧିବିଗ୍ରହିକ—ପୁଂ. ବିଂ. (ସନ୍ଧିବିଗ୍ରହ+ଇକ) ସନ୍ଧି ଓ ବିଗ୍ରହସାଧନ ବିଷୟରେ ନିପୁଣ, (ସ୍ତ୍ରୀ) ସାନ୍ଧିବିଗ୍ରହିକା, (ବି) ସନ୍ଧି ଓ ବିଗ୍ରହ କାର୍ଯ୍ୟରେ ରଜାଙ୍କୁ ପରାମର୍ଶ ଦେବା କର୍ମଚାରୀ ।

ସାନ୍ଧିବେଲ—ବିଂ. ( ସନ୍ଧିବେଲା+ଅ ) ସନ୍ଧ୍ୟାସମ୍ବନ୍ଧୀୟ ।

ସାନ୍ଧ୍ୟ—ବିଂ. (ସନ୍ଧ୍ୟା+ଅ) ସନ୍ଧ୍ୟା ସମ୍ବ-ନ୍ଧୀୟ, ସନ୍ଧ୍ୟାକାଳୀନ, ସନ୍ଧ୍ୟାକାଳରେ ଅନୁଷ୍ଠେୟ, (ସ୍ତ୍ରୀ) ସାନ୍ଧ୍ୟୀ ।

ସାନ୍ଧ୍ୟକୁସୁମ—ବି. (କ.ଧା) ତ୍ରିସନ୍ଧିପୁଷ୍ପ, ସନ୍ଧ୍ୟାବିକାଶୀ ଫୁଲ, (ବିଂ-ବ.ବ୍ରୀ)ଯେଉଁ ଗଛମାନଙ୍କର ଫୁଲ ସନ୍ଧ୍ୟାବେଳେ ଓ ଭୋରୁ ଫୁଟେ, (ସ୍ତ୍ରୀ) ସାନ୍ଧ୍ୟକୁସୁମା ।

ସାନ୍ଧ୍ୟଗଗନ—ବି.(କ.ଧା)ସନ୍ଧ୍ୟାକାଳରେ ବିଚିତ୍ର ବର୍ଣ୍ଣରଞ୍ଜିତ ଆକାଶ ।

ସାନ୍ଧ୍ୟତାରା(ନକ୍ଷତ୍ର)—ବି. ( କ.ଧା ) ସନ୍ଧ୍ୟାକାଳରେ ଦେଖାଯିବା ନକ୍ଷତ୍ର,

ସନ୍ଧ୍ୟାକାଳୀନ ଶୁକ୍ରତାରା ।
ସାନ୍ଧ୍ୟଦୀପ(ପ୍ରଦୀପ)—ବି.(କ.ଧା)ସନ୍ଧ୍ୟାବତୀ, ସନ୍ଧ୍ୟାବେଳେ ଜଳାଯିବା ଦୀପ ।
ସାନ୍ଧ୍ୟବାତ(ବାୟୁ)—ବି. (କ.ଧା)ସାନ୍ଧ୍ୟ-ସମୀର । [ ସ୍ତୁତି ।
ସାନ୍ଧ୍ୟଭଜନ—ବି. ସନ୍ଧ୍ୟାକାଳୀନ ଈଶ୍ୱର
ସାନ୍ଧ୍ୟଭୋଜନ—ବି.(କ.ଧା)ସନ୍ଧ୍ୟାବେଳେ ଖିଆଯିବା ଖାଦ୍ୟ ।
ସାନ୍ଧ୍ୟାକାଶ—ବି. (କ.ଧା)ସାନ୍ଧ୍ୟଗଗନ ।
ସାନ୍ଧ୍ୟାଲୋକ—ବି.(କ.ଧା)ସନ୍ଧ୍ୟାକାଳୀନ ଆଲୋକ ।
ସାନ୍ଧ୍ୟାହ୍ନିକ—ବି.(କ.ଧା) ସନ୍ଧ୍ୟାକାଳରେ ଅନୁଷ୍ଠେୟ ଉପାସନାଦି ।
ସାନ୍ତର୍ଯ୍ୟ—ବିଂ. ଅବକାଶର ସହିତ ।
ସାନ୍ନହନିକ—ପୁଂ.ବିଂ. (ସନ୍ନହନ+ଇକ) କବଚଧର, ସନ୍ନାହବିଶିଷ୍ଟ, ଯେ ଯୋଦ୍ଧା ଅସନ୍ନ ଦେଖି ସୈନ୍ୟମାନଙ୍କୁ ବର୍ମିତ ହେବାପାଇଁ ଆଦେଶ ଦିଅନ୍ତି, ବର୍ମ-ବନ୍ଧନକାରୀ(ବ୍ୟକ୍ତି) ।
ସାନ୍ନାଯ୍ୟ—ବି.(ସମ୍+ନି+ନୀ+ଯ)ହବିଃ, ହବନୀୟ ଘୃତ, ମନ୍ତ୍ରପୂତ ଘୃତ ।
ସାନ୍ନାହ(ହି)କ—ବିଂ. କବଚ ପରିହିତ, କବଚବନ୍ଧକାରୀ ।
ସାନ୍ନିଧ—ବି. (ସନ୍ନିଧି+ଯ) ସାମୀପ୍ୟ, ନୈକଟ୍ୟ, ସନ୍ନିଧି ।
ସାନ୍ନିଧତା—ବି. ( ସାନ୍ନିଧ+ତା ) ସମୀପତା, ସାମୀପ୍ୟ ।
ସାନ୍ନିପାତିକ—ବିଂ.(ସନ୍ନିପାତ+ଇକ) ସନ୍ନିପାତ ରୋଗଜନିତ ବା ବାତପିତ୍ତ କଫଜ, ତ୍ରିଦୋଷ କୋପଜନିତ, (ବି) ସନ୍ନିପାତ ଜ୍ୱର ।
ସାନ୍ନିପାତିକୀ—ସ୍ତ୍ରୀ. ବି. ତ୍ରିଦୋଷଜନ୍ୟ ଯୋନିରୋଗ, ସନ୍ନିପାତଜନ୍ୟ ଯୋନି-ରୋଗ ।
ସାନ୍ନିପାତୀ—ପୁଂ.ବିଂ.ସମ୍ୟକ୍ ନିପାତନଶୀଳ
ସାନ୍ନିପାତ୍ୟ—ବିଂ.ସନ୍ନିପାତ୍ୟ,ସନ୍ନିପାତନ-ଯୋଗ୍ୟ । [ ସନ୍ନିବେଶ ପ୍ରାପ୍ତ ।
ସାନ୍ନିବେଶିକ—ବିଂ.(ସନ୍ନିବେଶ+ଇକ)
ସାନ୍ନ୍ୟାସିକ—ପୁଂ.ବିଂ. (ସନ୍ନ୍ୟାସ+ଇକ) ସନ୍ନ୍ୟାସୀ, (ସ୍ତ୍ରୀ) ସାନ୍ନ୍ୟାସିକୀ ।
ସାନ୍ୱୟ—ବିଂ. ବ.ବ୍ରୀ; ( ସ+ଅନ୍ୱୟ ) ଅନ୍ୱୟଯୁକ୍ତ, ଅନ୍ୱୟବିଶିଷ୍ଟ, ବଂଶବିଶିଷ୍ଟ, କାରଣବିଶିଷ୍ଟ ।
ସା(ସାଁ)ପ୍—ଗ୍ରା. (ସମ୍ବଲ)ବି.ସର୍ପ,ସାପ ।
ସା(ସାଁ)ପ୍‌କଟି—ଗ୍ରା.(ସମ୍ବଲ)ବି.ନେଉଳ ।
ସା(ସାଁ)ପ୍‌ଖୋଳ୍—ଗ୍ରା.(ସମ୍ବ)ବି.ସାପକାତି ।
ସାପ—ଗ୍ରା. ବି. (ସଂ-ସର୍ପ) ସର୍ପ, ଭୁଜଙ୍ଗ, (ଲ.ଅର୍ଥ) ପରର ଅନିଷ୍ଟକାରୀ ବ୍ୟକ୍ତି. କ୍ରୂର ଓ ଖଳବ୍ୟକ୍ତି, (ସ୍ତ୍ରୀ) ସାପୁଣୀ ।
ସାପକଙ୍କାଳ—ଗ୍ରା.ବି. (ସଂ-ସର୍ପକଙ୍କାଳିକା) ବୃନ୍ଦାବନୀୟ ଔଷଧି ବୃକ୍ଷବିଶେଷ ।
ସାପକଣ୍ଟା—ଗ୍ରା. ବି. ମୃତସର୍ପର ଅସ୍ଥି-କଙ୍କାଳ ।
ସାପକାତି—ଗ୍ରା.ବି.ସାପ ଦେହର ଖୋଳ ବା ଆବରଣ ।
ସାପକ୍ଷ—ଗ୍ରା. ବି. (ସଂ-ସପକ୍ଷ) ଅନୁକୂଳ, ସ୍ୱପକ୍ଷୀୟ, (ବି) ସହାୟ ।
ସାପଗରଳ—ଗ୍ରା. ବି. ( ସଂ-ସର୍ପଗରଳ ) ସାପର ବିଷ ।
ସାପଗାତ—ଗ୍ରା. ବି. ସର୍ପମାନେ ଯେଉଁ ଗର୍ତ୍ତରେ ରହନ୍ତି ।
ସାପଛତୁ—ଗ୍ରା.(ଜୟପୁର)ବି. (ସଂ-ସର୍ପ-ଛତ୍ର) ଏକପ୍ରକାର ଛତୁ ।
ସାପଟା(ଟେ)ଇବା—ଗ୍ରା. କ୍ରି. ସାପପରି ଗୁଡ଼ାଇ ହୋଇ ଦୃଢ଼ ଭାବରେ ଧରିବା, କଡ଼ାଇ ଧରିବା, କାବୁଡ଼ିକରି ଧରିବା ।
ସାପତନ—ଗ୍ରା.ବିଂ.(ସଂ-ସାପତ୍ନ୍ୟ) ସାବତ ।
ସାପତ୍ନ—ବି. (ସପତ୍ନ+ଅ, କମ୍ବା ସପତ୍ନୀ +ଅ) ଶତ୍ରୁ, ଶତ୍ରୁତା, ବହୁପତ୍ନୀକତା, (ବିଂ) ସପତ୍ନୀଜାତ ।
ସାପତ୍ନେୟ—ବି.(ସପତ୍ନୀ+ଏୟ) ସପତ୍ନୀ-ପୁତ୍ର, (ସ୍ତ୍ରୀ) ସାପତ୍ନେୟୀ ।
ସାପତ୍ନ୍ୟ—ପୁଂ.ବି. (ସପତ୍ନୀ+ଯ)ସପତ୍ନୀ-ପୁତ୍ର,(ଭା.ଯ) ସପତ୍ନୀଭାବ, (ସମାନାର୍ଥେ ଯ) ଶତ୍ରୁ , ପ୍ରତିଦ୍ୱନ୍ଦ୍ୱୀ, ଶତ୍ରୁତା ।
ସାପତ୍ୟ—ପୁଂ.ବିଂ.(ସ+ଅପତ୍ୟ)ବ.ବ୍ରୀ; ସନ୍ତାନବିଶିଷ୍ଟ, (ସ୍ତ୍ରୀ) ସାପତ୍ୟା ।
ସାପଦ୍—ବିଂ(ସ+ଆପଦ୍)ବ.ବ୍ରୀ;ଆପଦ୍-ବିଶିଷ୍ଟ, ଆପଦ୍‌ଯୁକ୍ତ ।
ସାପଦେଣି—ପୁଂ.ବିଂ.ଅପମାନଯୁକ୍ତ,ଅପ-ମାନବିଶିଷ୍ଟ, ସାପମାନ ।
ସାପପେଡ଼ା—ଗ୍ରା.ବି.କେଳାମାନେ ଯେଉଁ ପେଡ଼ାରେ ସାପକୁ ରଖନ୍ତି, କରଣ୍ଡି ।
ସାପଫେଣ(ଣା)—ଗ୍ରା. ବି. (ସଂ-ସର୍ପ ଓ ଫଣା) ସର୍ପର ଫଣା ।
ସାପବଣ—ଗ୍ରା. ବି. ସର୍ପମୟ ସ୍ଥାନ ।
ସାପବିଷ—ଗ୍ରା. ବି. ସର୍ପର ଗରଳ ।
ସାପମଣି—ଗ୍ରା. ବି. (ସଂ-ସର୍ପମଣି)ନାଗ-ଆଦି ସାପଙ୍କ ମୁଣ୍ଡରେ ଥିବା ଏକପ୍ରକାର ମଣି ।
ସାପମନ୍ତ୍ର—ଗ୍ରା. ବି. (ସଂ-ସର୍ପମନ୍ତ୍ର)ସାପକୁ ବଶ କରିବା ପାଇଁ କିମ୍ବା ସାପ ବିଷ ଝଡ଼ାଇବା ପାଇଁ ବ୍ୟବହୃତ ମନ୍ତ୍ର ।
ସାପମାର—ଗ୍ରା. ବି. (ସଂ-ସର୍ପ+ମାରକ) ତ୍ରିସନ୍ଧବର୍ଗର ଦିବାଚର ଟେଉଁସି ରଙ୍ଗର ପକ୍ଷିବିଶେଷ ।
ସାପଯୋଗ—ଗ୍ରା. (ପାଟଣା)ବି.ସାପକାତି
ସାପରାଧ—ପୁଂ. ବିଂ. (ସ+ଅପରାଧ) ବ.ବ୍ରୀ; ଅପରାଧଯୁକ୍ତ, (ସ୍ତ୍ରୀ) ସାପରାଧା ।
ସାପହ୍ନବ—ବିଂ.ଅପହ୍ନବଯୁକ୍ତ, ଅପହ୍ନବ-ବିଶିଷ୍ଟ, ଅଳଙ୍କାରବିଶିଷ୍ଟ ।
ସାପାୟ—ବିଂ.ଅପାୟଯୁକ୍ତ, ନାଶବିଶିଷ୍ଟ ।
ସାପାଶ୍ରୟ—ବି. ଗୃହାନ୍ତଃପୁରସ୍ଥ ଉନ୍ମୁକ୍ତ ସ୍ଥାନର ବୀଥିକା ।
ସାପିଣ୍ଡ(ଣ୍ଡ୍ୟ)—ବି. ( ସପିଣ୍ଡ+ଭା.ଅ.ଯ ) ଜ୍ଞାତିତ୍ୱ, ସପିଣ୍ଡତା ।
ସାପୁଆ—ଗ୍ରା. ବିଂ. ସାପପରି ସିଝୁ, ସର୍ପମୟ,ସର୍ପ ଦମନ କରିବାରେ ଦକ୍ଷ, ସାପ ଧରିବା ଓ ଖେଳାଇବା ଯାହାର ଜୀବିକା,(ଗ୍ରା.ବି) ଏକପ୍ରକାର ସରୁ ଡଙ୍ଗା, ଆଠଗଡ଼ରେ ପ୍ରବାହିତ ସର୍ପେଶ୍ୱରୀ ନଦୀ, (ପ୍ରା. ବାଲେ. ବି) ମତ୍ସ୍ୟବିଶେଷ, (ପ୍ରା. ଗଡ଼ଜାତ. ବି)ଛଚରା, (ପ୍ରା.ଗଞ୍ଜାମ.ବି) ଘରର ଭୂଇଁ ଉପରେ ବସିଥିବା ଗୁଜକୁ ଯେଉଁ ସରୁଆ କାଠଖଣ୍ଡିମାନ ଛିଡ଼ା ଦିଆ ହୋଇପର ରହିଥାଏ ।
ସାପୁଆକେଳା—ଗ୍ରା. ବି. ଏକଜାତୀୟ

କେଲା, ଯେଉଁମାନେ ସାପଧର ଓ ସାପଖେଳାଇ ଜୀବିକା ନିର୍ବାହ କରନ୍ତି ।
ସାପୁଆଡଙ୍ଗା—ଗ୍ରା.ବି. ଗୋଟିଏ ଲମ୍ବ ଓ ମୋଟ କାଠଗଡ ଖୋଲା ହୋଇ ଢଆର ହୋଇଥିବା (ସାପପର) ସରୁ ସରୁ ଓ ଲମ୍ବ ଡଙ୍ଗା ।
ସାପୁଆନଇ—ଗ୍ରା. ବି. (ସାପପର)ସରୁଆ ନଦୀ. ଅଠଗଡ଼ର କ୍ଷୁଦ୍ର ନଦୀ ।
ସାପୁଆପଥର—ଗ୍ରା. ବି. ନୂଆଗଡ଼ର ନାଗଝର ନଦୀକୂଳରେ ଥିବା ଗୋଟିଏ ୬୦ ହାତ ଲମ୍ବ ପଥର ।
ସାପୁଆବରୁଡ଼—ଗ୍ରା.ବି. ଏକଜାତୀୟ ବରୁଡ଼ ।
ସାପୁଆମହୁଫେଣା—ଗ୍ରା. ବି. ଏକପ୍ରକାର ମହୁମାଛିଙ୍କ ଦ୍ୱାରା ନିର୍ମିତ ସରୁଆ ମହୁ-ଫେଣା । [ ବିଶେଷ ।
ସାପୁଆମୁଣ୍ଡି—ଗ୍ରା.ବି.ଏଣ୍ଡ୍ରେପଡ଼ାର ପର୍ବତ
ସାପୁଟା(ଟେ)ଇବା—ଗ୍ରା. କ୍ରି. ସାପପରି ଗୁଡ଼େଇ ହୋଇ ଧରିବା ।
ସାପୁଣୀ—ଗ୍ରା.ସ୍ତ୍ରୀ.ବି.(ସଂ-ସର୍ପିଣୀ)ସ୍ତ୍ରୀ ସର୍ପ. (ଲ.ଅର୍ଥ)କ୍ରୂର ଓ ଖଳପ୍ରକୃତି ବିଶିଷ୍ଟା ସ୍ତ୍ରୀ
ସାପେକ୍ଷ—ବିଂ.(ସ+ଅପେକ୍ଷା)ଅପେକ୍ଷା-ଯୁକ୍ତ, ପରସ୍ପରାପେକ୍ଷୀ, ପରସ୍ପର ପ୍ରତି ଆକାଙ୍କ୍ଷାବିଶିଷ୍ଟ, ଯେ ଅନ୍ୟର ଅପେକ୍ଷା ରଖେ, (ବି) ସାପେକ୍ଷତା ।
ସାପ୍ତପଦୀନ—ବିଂ. ( ସପ୍ତପଦ+ଈନ ) ସାତପଦ କଥାଦ୍ୱାରା ଜାତ (ବନ୍ଧୁତା), ସାତଥର ପଦ ନିକ୍ଷେପ ଦ୍ୱାରା ନିର୍ବୃତ୍ତ ବା ନିଷ୍ପନ୍ନ,(ବି)ସଖ୍ୟ,ବନ୍ଧୁତା, ସାତପଦ କଥାରେ ଉତ୍ପନ୍ନ ବନ୍ଧୁତା, ଏକସଙ୍ଗରେ ସାତପାହୁଣ୍ଡ ଯିବା ଦ୍ୱାରା ଜାତ ବନ୍ଧୁତା
ସାପ୍ତପୁରୁଷ—ବିଂ.ସପ୍ତପୁରୁଷ ସମ୍ବନ୍ଧୀୟ, ସପିଣ୍ଡ ।
ସାପ୍ତପୌରୁଷ—ବିଂ. (ସପ୍ତପୁରୁଷ+ଅ) ସାତପୁରୁଷବ୍ୟାପୀ ।
ସାପ୍ତମିକ—ବିଂ. (ସପ୍ତମୀ+ଇକ)ସପ୍ତମୀ ସମ୍ବନ୍ଧୀୟ, ସପ୍ତମଦିବସ ବ୍ୟାପୀ ।
ସାପ୍ତରାତ୍ରିକ—ବିଂ. ସପ୍ତରାତ୍ରିଭବ, ଯାହା ସାତରାତିରେ ହୁଏ ।
ସାପ୍ତାହିକ—ବିଂ.(ସପ୍ତାହ+ଇକ)ସପ୍ତାହ ସମ୍ବନ୍ଧୀୟ ।
ସାପ୍ତି—ପ୍ରା.(ଗଞ୍ଜାମ ବି.)ଶିଶୁମାନଙ୍କ ଜାଭ ପାକ୍ଷି ଓ ଓଠପ୍ରଭୃତିରେ ହେବା ଶ୍ୱେତ ଶ୍ୱେତ ଘାଆ ।
ସାଫ୍—ଯା. ବିଂ. ସଫା,ନିର୍ମଳ,ସ୍ପଷ୍ଟ,ପରି-ଷ୍କୃତ, ନିର୍ଦ୍ଦିଷ୍ଟଭାବରେ ବୋଲଯିବା (କଥା), ଖାଲି, ସ୍ୱଚ୍ଛ, ଅବିମିଶ୍ରିତ,ଉଜ୍ଜ୍ୱଳ, ଯହିଁରେ ଗୋଳମାଳ ନ ଥାଏ, ବିଘ୍ନ-ହୀନ, ସାଦା, ନିଷ୍ପତ୍ତି କରାଯାଇଥିବା (ହିସାବ), ସନ୍ଦେହ ନ ଥିବା, (କ୍ରି.ବିଂ) ସ୍ପଷ୍ଟରୂପେ, ସମ୍ପୂର୍ଣ୍ଣରୂପେ, ନିଃସନ୍ଦେହ ଭାବରେ ।
ସାଫ୍‌କଥା—ଗ୍ରା.ବି.ସ୍ପଷ୍ଟକଥା, ସ୍ପଷ୍ଟବାକ୍ୟ, ସାରକଥା, ନିଷ୍କପଟ କଥା ।
ସାଫ୍‌କରିବା—ଗ୍ରା. କ୍ରି. ସଫାକରିବା, ପରିଷ୍କୃତକରିବା, ( ହିସାବ ) ନିକାଶ କରିବା ।
ସାଫ୍‌ସାବତୁ—ଯା.ବିଂ.ସ୍ପଷ୍ଟରୂପେ ପ୍ରମାଣିତ
ସାଫ୍‌ସାବତା—ଯା.ବି.ସ୍ପଷ୍ଟପ୍ରମାଣ,ଅକାଟ୍ୟ ପ୍ରମାଣ ।
ସାଫ୍‌ସୁତର—ଯା.ବିଂ.ପରିଷ୍କାର ପରିଚ୍ଛନ୍ନ, ପରିଷ୍କୃତ ଓ ସୁନ୍ଦର ।
ସାଫଲ୍ୟ—ବି.(ସଫଳ+ଭା.ଯ) ସଫଳତା, ସିଦ୍ଧି, କୃତକାର୍ଯ୍ୟତା, ଫଳୋତ୍ପତ୍ତି, ଲାଭଜନକତା ।
ସାଫା—ଯା. ବିଂ.ସାଫ୍ ଦେଖ,(ବି)ପଗଡ଼ି, ଶିକାରୀକୁକୁରକୁ ଶିକାର କରିବା ପୂର୍ବରୁ ବା ପାରାକୁ ଉଡ଼ାଇବା ପୂର୍ବରୁ ଉପ-ବାସୀରଖିବା ।
ସାଫି—ଯା. ବି. ପରିଷ୍କୃତ ଅବସ୍ଥା,ପାଣ୍ଡୁ-ଲିପିରୁ ପରିଷ୍କୃତ ଭାବରେ ଲେଖନ ଓ ଲେଖ, ମାର୍ଜନୀ, ଗାମୁଛା, ଭାଙ୍ଗଛଣା କନା, ମାଠ ରନ୍ଧା, ଯେଉଁ ରନ୍ଧାରେ କାଠକୁ ପାଲିସ କରାଯାଏ,ଚଞ୍ଚାଇଧୂଆଁ ପିଇଲାବେଳେ ଚିଲମର ତଳପାଖେ ଧରାଯାଇଥିବା କନା, (ପ୍ରା.ଛତ୍ରଗଡ଼) ରୁମାଲ୍, (ବିଂ) ସାଫ୍ ଦେଖ, ଚିଠାରୁ ପରିଷ୍କୃତ ହୋଇ ନକଲ କରାଯାଇଥିବା
ସାଫିଆନା—ଯା. ବି, ପରିଷ୍କୃତ ଅବସ୍ଥା, ନିର୍ଦ୍ଦୋଷତ୍ୱ, ହାତସଫାଇ, ନିପୁଣତା ।
ସାଫିନାମା—ଯା.ବି. ମୁକ୍ତିପତ୍ର,ଶୁଦ୍ଧିପତ୍ର ।
ସାଫୁଲ୍—ପ୍ରା.(ସମ୍ବ) ବିଂ.ସଫଳ,ସାର୍ଥକ ।
ସାଫେଇ—ଯା. ବି. ସୁନ୍ନୀସମ୍ପ୍ରଦାୟଭୁକ୍ତ ମୁସଲମାନମାନଙ୍କର ଚାରିଶାଖା ମଧ୍ୟରୁ ଏକତମ ।
ସାଭାପତ—ବି.(ସଭାପତି+ଅ)ସଭାପତିଙ୍କ ପୁତ୍ର, (ବିଂ) ସଭାପତି ସମ୍ବନ୍ଧୀୟ ।
ସାଭିପ୍ରାୟ—ବିଂ. ଅଭିପ୍ରାୟ ସହିତ,ଅଭି-ପ୍ରାୟବିଶିଷ୍ଟ, (ସ୍ତ୍ରୀ) ସାଭିପ୍ରାୟା ।
ସାଭିଳାଷ—ପୁଂ.ବିଂ. ଅଭିଳାଷଯୁକ୍ତ,(ସ୍ତ୍ରୀ) ସାଭିଳାଷା ।
ସାଭ୍ୟସୂୟ—ପୁଂ. ବିଂ. ଅସୂୟାପରତନ୍ତ୍ର, ଯେ କୌଣସି ଲୋକର ଗୁଣରେ-ଦୋଷାରୋପ କରେ, (ସ୍ତ୍ରୀ)ସାଭ୍ୟସୂୟା ।
ସାମ—ବି. (ସୋ+କ.ମନ୍) ସାମବେଦ, ବେଦମନ୍ତ୍ର ଗାନ, ବିଶେଷ ସାଧନ, ସାନ୍ତ୍ୱନା, ପ୍ରିୟବଚନ, ସନ୍ଧି, ପାପ-ବିଶେଷ, ପ୍ରିୟକରଣ,ସାମବେଦଗାନ ।
ସାମକ—ବି. (ସମ୍+ଅ+କ)ମୂଳଋଣ, ଅସଲଟଙ୍କା ।
ସାମକ—ବି. (ସମ୍+ଅକ) ତର୍କୁଶାଣ, ତାକୁଡ଼ର ପିଣ୍ଡ, ଶାଣପଥର, ( ବିଂ ) ସାମବେଦାଭିଜ୍ଞ, ସାମବେଦାଧ୍ୟୟନ-କାରୀ ।
ସାମକାରୀ—ପୁଂ.ବିଂ.(ସାମ+କୃ+ଇନ୍) ସାନ୍ତ୍ୱନାକାରୀ ।
ସାମକେଲ୍—ପ୍ରା. (ସମ୍ବଲ) ବି. ରେଣ୍ଡୀ, ଶାମୁକା ।
ସାମଗ—ପୁଂ.ବିଂ. (ସାମନ୍+ଗୈ+କ, ଅ) ସାମବେଦୀ ବ୍ରାହ୍ମଣ, ସାମବେଦ ଗାୟନକାରୀ ବ୍ରାହ୍ମଣ, ବିଷ୍ଣୁ, ( ବିଂ ) ସାମବେଦଜ୍ଞ, ସାମବେଦଗାୟନକାରୀ ।
ସାମଗର୍ଭ—ବି. (ବ.ବ୍ରୀ) ବିଷ୍ଣୁ ।
ସାମଗାନ(ୟ)—ବି. (ସାମ+ଗୈ+ଭା. ଅନ, ଅ) ଛନ୍ଦ ଦ୍ୱାରା ସାମବେଦର ମନ୍ତ୍ରଗାନକରିବା, ସାମବେଦୀ ବ୍ରାହ୍ମଣ ।
ସାମଗିର—ବି. ( କ.ଧା ) ମିଷ୍ଟବାକ୍ୟ, (ବ.ବ୍ରୀ-ବିଂ) ମିଷ୍ଟବାକ୍ୟଯୁକ୍ତ ।

ସାମଗିର—ଗ୍ରା. ବ. ସାମଗ୍ରୀ ଦେଖ ।
ସାମଗୀ—ସ୍ତ୍ରୀ. ବ. ସାମବେଦୀ ବ୍ରାହ୍ମଣର ସ୍ତ୍ରୀ, ସାମଗାନକାରିଣୀ ସ୍ତ୍ରୀ ।
ସାମଗ୍ରୀ—ବ. ( ସମଗ୍ର+ଷ୍ଣ.ଅ+ଈ ) କାରଣସମୂହ, ଦ୍ରବ୍ୟ, ବସ୍ତୁ, ସରଞ୍ଜାମ, ଉପକରଣ, ଉପାଦାନସମୂହ, ପାକାର୍ଥ ବସ୍ତୁଚୟ, ଦଳବଳ, ସମୂହ, ଅସ୍ତ୍ରଶସ୍ତ୍ର, ଭଣ୍ଡାର, କାଠଗରର ସଜ୍ଜାଦ,ସାଧନ ।
ସାମଗ୍ର୍ୟ—ବ, (ସମଗ୍ର + ଯ) ସମଗ୍ରତା, ସାମଗ୍ରୀ ଦେଖ ।
ସାମଜ—ବି°. ( ସାମ+ଜନ୍+କ.ଅ ) ସାମରୁ ଜାତ, (ପୁଂ.ବ) ହସ୍ତୀ ।
ସାମଞ୍ଜସ୍ୟ—ବ. (ସମଞ୍ଜସ୍+ଷ୍ଣ.ଯ)ସମଞ୍ଜସତା,ସମୀଚୀନତା,ଔଚିତ୍ୟ,ସଙ୍ଗତ ମେଳ, ସଦ୍ଭାବ, ଐକମତ୍ୟ, ସମତା, ଉତ୍କର୍ଷ ।
ସାମଞ୍ଜସ୍ୟ(ସାଧନ)ବିଧାନ—ବ. (ଗଣିତ) ମେଳକରାଇବା, ଏକରୂପତାକରଣ ।
ସାମଧେନୀ—ସ୍ତ୍ରୀ. ବ. ( ସମିଧ୍+ଆ + ଧା +ଣ.ଅନ + ଈ) ହୋମାଗ୍ନି ସନ୍ଦୀପନ ମନ୍ତ୍ର, ନିଆଁ ଜଳାଇବାର ମନ୍ତ୍ର, ଇନ୍ଧନ ।
ସାମନା—ଗ୍ରା. ବ. ସମ୍ମୁଖଭାଗ,ଆଗ୍ରମୁଁ ,(ବି°) ସମ୍ମୁଖୀନ ।
ସାମନାଗୁଲ୍—ଗ୍ରା. ବ. ଅଗ୍ରସର ଝୁଅ ।
ସାମନାଦାନ୍ତ—ଗ୍ରା. ବ. ଆଗୁଦାନ୍ତ ।
ସାମନାରେ—ଗ୍ରା. କ୍ରି. ବି°. ସମ୍ମୁଖରେ ।
ସାମନାସାମନି—ଗ୍ରା.ଅବ୍ୟ.ସମ୍ମୁଖାସମ୍ମୁଖୀ. ମୁହାଁମୁହିଁ, ସମ୍ମୁଖରେ, (ବି°) ପରସ୍ପର ସମ୍ମୁଖୀନ ।
ସାମନି—ବ.(ଷୋ+ମନ୍+ଈ) ପଶୁବନ୍ଧନ ରଜ୍ଜୁ, ପଘା ।
ସାମନେ—ଗ୍ରା.ଅ.ସମ୍ମୁଖରେ,ସମକ୍ଷରେ ।
ସାମନ୍ତ— ବି°. ( ସମନ୍ତାତ୍ + ସ୍ୱାର୍ଥେ ଅ) ରାଜ୍ୟର ସମୀପବର୍ତ୍ତୀ, ନିକଟବର୍ତ୍ତୀ, (ବ) ରାଜାଙ୍କ ଅଧୀନ ଶ୍ରେଷ୍ଠ ରାଜା, ସମୀପବର୍ତ୍ତୀ ଦେଶର ରାଜା,ଅଧିନାୟକ, ସାମୀପ୍ୟ, ଶ୍ରେଷ୍ଠ ପ୍ରଜାମଣ୍ଡଳ,ପ୍ରତିବେଶୀ, (ଗ୍ରା.ବ) ସାଆନ୍ତ ଦେଖ, ମଣ୍ଡଳେଶ୍ୱର, ଜମିଦାର,ଗ୍ରାମର ମଣ୍ଡଳ,ରାଜବଂଶଧର, କ୍ଷତ୍ରିୟଙ୍କର ଉପାଧି, ଭଦ୍ରପ୍ରଜା, ଉଚ୍ଚବର୍ଣ୍ଣୀୟ ବ୍ୟକ୍ତି, କରଣମାନଙ୍କର ସାଧାରଣ ଉପାଧି, ସାଆନ୍ତବ୍ରାହ୍ମଣ, କୁଳୀନ ବ୍ରାହ୍ମଣ, ସ୍ୱାମୀ, ପ୍ରଭୁ,ଖାମିନ୍ଦ,ଗୁରୁଜନମାନଙ୍କ ପ୍ରତି ସମ୍ମାନାର୍ଥ ସମ୍ବୋଧନ, ଆଗ୍ରୀ (ଉଚ୍ଚକ୍ଷତ୍ରିୟ)ମାନଙ୍କ ବଂଶୋପାଧି, ସେନାପତି, ଯେଉଁ ଗୃହସ୍ଥଙ୍କୁ ଧୋବା ଭଣ୍ଡାରୀମାନେ ସେବା କରନ୍ତି ସେହି ଗୃହସ୍ଥ ।
ସାମନ୍ତକ—ବ. ପରିଧି, ବ୍ୟାପ୍ତି, କ୍ଷେତ୍ର ।
ସାମନ୍ତରାଜା—ଗ୍ରା. ବ. ରାଜାଙ୍କ ଅଧୀନ ରାଜା ।
ସାମନ୍ତେଶ୍ୱର—ବ. (ସାମନ୍ତ + ଈଶ୍ୱର) ଚକ୍ରବର୍ତ୍ତୀ,ସମ୍ରାଟ୍,ରାଜାଧିରାଜ, ସାମନ୍ତରାଜାମାନଙ୍କର ଅଧିନାୟକ ।
ସାମନ୍ୟ—ପୁଂ.ବ. (ସାମନ୍+ଯ) ସାମବେଦଜ୍ଞ ବ୍ରାହ୍ମଣ ।
ସାମୟିକ—ବି°.(ସମୟ+ଇକ)ସମୟୋଚିତ, କାଳୋପଯୋଗୀ, କାଳୀନ,ସମୟ ବିଶେଷରେ ଯାହା ଘଟେ, ଅଳ୍ପକାଳସ୍ଥାୟୀ, ନିୟମାନୁଯାୟୀ ।
ସାମଯୋନି—ବ. (ବ.ବ୍ରୀ) ବ୍ରହ୍ମା, ହସ୍ତୀ, (ବି°) ସାମବେଦୋତ୍ପନ୍ନ ।
ସାମର—ପ୍ରା. (ଛତିଶଗଡ଼)ଶମ୍ବର ମୃଗ ।
ସାମର—ବ. (ସମର+ଅ) ସମର, ଯୁଦ୍ଧ, (ବି°)ଯୁଦ୍ଧଭବ,(ପ୍ରା.ଛତିଶଗଡ଼)ସାମାନ୍ୟ ଗୋଷ୍ଠ ।
ସାମରଥ୍—ପ୍ରା. (ସମ୍ବ)ବି°. (ସଂ-ସମର୍ଥ) ପ୍ରାପ୍ତରଜସ୍କା, ରଜସ୍ୱଳା, ଗୃହଯୋଗ୍ୟା ବାଳିକା ।
ସାମରଥା(ଥୀ)—ଗ୍ରା. ପୁଂ. ବି°. ସାମର୍ଥ୍ୟବିଶିଷ୍ଟ, ବଳିଷ୍ଠ, ଯୋଗ୍ୟ,କ୍ଷମତାଶାଳୀ, ଭାରକ୍ଷମ, (ବ) ବୀର,ସମର୍ଥ ବ୍ୟକ୍ତି, ଯୋଗ୍ୟ ବ୍ୟକ୍ତି ।
ସାମରାଧିପ—ପୁଂ. ବ. (ସମର+ଅଧିପ) ସେନାପତି ।
ସାମରିକ—ବି°. ( ସମର+ଇକ ) ଯୁଦ୍ଧସମ୍ବନ୍ଧୀୟ, ସମରପ୍ରିୟ,ସମରୋପଯୋଗୀ
ସାମରିକଆଇନ୍—ଗ୍ରା. ବ.ଯୁଦ୍ଧସମୟରେ ପ୍ରଚଳିତ କଠୋର ଆଇନ୍ ।
ସାମରିକପୋତ—ବ. ରଣପୋତ, ଯୁଦ୍ଧଜାହାଜ ।
ସାମରିକବିଚାର—ବ. ଯୁଦ୍ଧସମ୍ବନ୍ଧୀୟ ଅପରାଧର ବିଚାର ।
ସାମରିକବିଚାରାଳୟ—ବ. (କ.ଧା.) ଯୁଦ୍ଧ ସମ୍ବନ୍ଧୀୟ ଅପରାଧର ବିଚାର କରାଯିବା ଅଦାଲତ ।
ସାମରିକବିଦ୍ୟାଳୟ— ବ. ଯେଉଁ ବିଦ୍ୟାଳୟରେ ଯୁଦ୍ଧବିଦ୍ୟା ଶିଖାଯାଏ ।
ସାମରିକବିଭାଗ—ବ. ରାଜ୍ୟଶାସନାଧୀନ ଯୁଦ୍ଧସମ୍ବନ୍ଧୀୟ ବିଭାଗ ।
ସାମରିକମନ୍ତ୍ରୀ(ସଚିବ)—ବ. ଯେଉଁ ମନ୍ତ୍ରୀ ଯୁଦ୍ଧ ସମ୍ବନ୍ଧୀୟ ବିଷୟ ପରିଚାଳନ ଓ ପରାମର୍ଶ କରନ୍ତି ।
[ଶିକ ଦେଖ ।
ସାମରେୟ—ବି°. (ସମର + ଏୟ)ସାମସାମର୍ଥ—ଗ୍ରା. ବି°. ସମର୍ଥ ଦେଖ, (ବ) ସାମର୍ଥ୍ୟ ଦେଖ ।
ସାମର୍ଥପଣ—ଗ୍ରା. ବ. ସାମର୍ଥ୍ୟ ଦେଖ ।
ସାମର୍ଥ୍ୟ—ବ. ( ସମର୍ଥ + ଷ୍ଣ.ଯ ) ଶକ୍ତି, କ୍ଷମତା, ବଳ, ଯୋଗ୍ୟତା,(ବି°)ଶବ୍ଦର ପ୍ରତିପାଦ୍ୟ, (ବିଷୟ)ଶ୍ଲାଘ୍ୟ ।
ସାମର୍ଥ୍ୟପାଇବା—ଗ୍ରା.କ୍ରି.ସାମର୍ଥ୍ୟ ସଂଅଷ୍ଟ ହେବା ।
ସାମର୍ଥ୍ୟବାନ୍-ପୁଂ.ବି°.ସମର୍ଥ,ଯୋଗ୍ୟତାବିଶିଷ୍ଟ, ଶକ୍ତିଯୁକ୍ତ ।
ସାମର୍ଷ—ବି°.(ବ.ବ୍ରୀ)ଅମର୍ଷଯୁକ୍ତ,କ୍ରୋଧବିଶିଷ୍ଟ, ରୁଷ୍ଟ, କ୍ରୁଦ୍ଧ ।
ସାମଲ--ଗ୍ରା.ବ.(ସଂ-ସାହସ+ମଲ୍ଲ)ପାଇକମାନଙ୍କ ବଂଶୋପାଧିବିଶେଷ, କେତେକ ଶୂଦ୍ର, ଚଷା, ଖଣ୍ଡାଏତ, ପାଣ ଓ ବାଉରୀମାନଙ୍କ ବଂଶୋପାଧିବିଶେଷ ।
ସାମଲା—ଗ୍ରା. ବି°. ସାଉଁଲା ଦେଖ ।
ସାମଲା—ଯା. ବ. ମୁକ୍ତାର ଓ ଓକିଲମାନେ ମୁଣ୍ଡରେ ଯେଉଁ ପୁରୁଣାକାଳିଆ ପାଗ ପିନ୍ଧନ୍ତି, ପୂର୍ବକାଳର ରାଜକର୍ମଚାରୀଙ୍କ ପଗଡ଼ି ।
[ଦେଖ ।
ସାମଲାଇବା—ଗ୍ରା. କ୍ରି. ସାଉଁଲାଇବା
ସାମଲାସ୍ୟନ—ପୁଂ.ବି°.(ସମଲ+ଅସ୍ୟନ)

ସମଲ ସ୍ଥାନ ପ୍ରତ୍ୟାବୃତ୍ତ, ସମଲ ସ୍ଥାନବାସୀ,(ଖ)ସମଲ ସ୍ଥାନର ଅଦୂରବର୍ତ୍ତୀ ସ୍ଥାନ ।

ସାମଲବା—ଗ୍ରା.କ୍ରି. ସାଉଁଳିବା ଦେଖ ।

ସାମଲେୟ—ବ.ବି°. ( ସମଲ + ଏୟ ) ସାମଲାୟନ ଦେଖ ।

ସାମଲ୍ୟ—ବ.ବି°.(ସମଲ + ଯ) ସାମଲାୟନ, ଦେଖ, (ବ) ସମଲତା ।

ସାମବାଦ—ବି°. (୬ତତ୍) ପ୍ରିୟବାକ୍ୟ କଥନ, ପ୍ରିୟବାକ୍ୟ, ସାମପ୍ରୟୋଗ ।

ସାମବାୟିକ—ବି°. (ସମବାୟ+ଇକ) ସମବାୟସମ୍ବନ୍ଧୀୟ, (ସ୍ତ୍ରୀ) ସାମବାୟିକୀ, (ବ) ନାୟକ, ଦଳପତି, ମନ୍ତ୍ରୀ ।

ସାମବିଦ୍—ପୁଂ. ବି°. ( ସାମ + ବିଦ୍ + କ୍ୱିପ୍) ସାମବେଦଜ୍ଞ, ସାମଜ୍ଞ ।

ସାମବିଧାନ—ବ.ସାମବେଦୋକ୍ତ ବିଧାନ

ସାମବିପ୍ର—ବ. ସାମବେଦୀୟ ବ୍ରାହ୍ମଣ ।

ସାମବେଦ--ବ.ଚତୁର୍ବେଦ ମଧ୍ୟରୁ ତୃତୀୟ ବେଦ, ସାମବେଦ ।

ସାମବେଦିଆ—ଗ୍ରା.ବି°.ସାମବେଦାଧ୍ୟାୟୀ (ବ୍ରାହ୍ମଣ) ।

ସାମବେଦିକ--ପୁଂ. ବି°. (ସାମବେଦ+ +ଇକ ) ସାମବେଦୀୟ ( ବ୍ରାହ୍ମଣ ), ସାମବେଦସମ୍ବନ୍ଧୀୟ ।

ସାମବେଦୀ—ପୁଂ.ବ.(ସାମବେଦ+ଇନ୍) ସାମବେଦାଧ୍ୟାୟୀ ବ୍ରାହ୍ମଣ ।

ସାମବେଦୀୟ —ବି°.ସାମବେଦସମ୍ବନ୍ଧୀୟ, ସାମବେଦାଧ୍ୟାୟୀ ।

ସାମ(ମୁ)ସେଇ—ଗ୍ରା. ବ. ଅବଶୁଦ୍ଧ, ଅତି ଶ୍ରେଷ୍ଠ ଢାଲ ।

ସାମସେରଜଙ୍ଗ--ଗ୍ରା.ବ.ନେପାଳ ଶାସନକର୍ତ୍ତା ଓ ପ୍ରଧାନ ରାଜମନ୍ତ୍ରୀଙ୍କ ଉପାଧି ।

ସାମସ୍ତ—ବି°.(ସମସ୍ତ+ଅ)ସମଗ୍ର,ସକଳ ।

ସାମାଙ୍ଗ—ବ. ସାମବେଦର ଅଙ୍ଗ, ସାମବେଦର ଶାଖା ।

ସାମାଗରିକ—ବି°. ( ସମାଗର+ଇକ) ସମାଗରସମ୍ବନ୍ଧୀୟ ।

ସାମାଜିକ—ବି°.(ସମାଜ+ଇକ)ସମାଜସମ୍ବନ୍ଧୀୟ, ସହୃଦୟ, ଯେଉଁ ବ୍ୟକ୍ତି ସମାଜରେ ମିଶେ, ଭଦ୍ର, ଶିଷ୍ଟ, (ବ) ସଭାସଦ୍,ସଭ୍ୟ, ଲୌକିକତା,ସମାଜର ପ୍ରଥାଗତ ମର୍ଯ୍ୟାଦା, କ୍ରିୟାକର୍ମରେ ପ୍ରଦତ୍ତ ଅର୍ଥ ଓ ବସ୍ତ୍ରାଦି ।

ସାମାଜିକତନ୍ତ୍ର—ବ. ସମାଜରେ ଚଳୁଥିବା ବିଧି, ସାମାଜିକ ନିୟମ, ସାମାଜିକ ବିଧାନ ।

ସାମାଜିକତା—ବ. ଲୌକିକତା, ବନ୍ଧୁବେଭାର, ସହୃଦୟତା,ଭଦ୍ରତା,ଶିଷ୍ଟତା, ସମାଜାନୁମତ ମର୍ଯ୍ୟାଦା,ସାମାଜିକ ରୀତି

ସାମାଜିକପଦ୍ଧତି(ରୀତି)—ବ. ସମାଜରେ ଚଳୁଥିବା ବ୍ୟବହାର ।

ସାମାଜିକମୃତ୍ୟୁ—ବ(ଆଧୁନିକ ବ୍ୟବହାର) ରାଜଦ୍ରୋହାଦି ଅପରାଧ ବା ଦେବାଳିଆ ହେବା ଯୋଗୁଁ ଯେଉଁ ବ୍ୟକ୍ତି ସମାଜରୁ ବିତାଡ଼ିତ ହୁଏ ବା ଆଇନ ଦୃଷ୍ଟିରେ ମୃତ ବୋଲି ବିବେଚିତ ହୁଏ ।

ସାମାତ୍ରସାମ୍ୟ—ବ. ପର୍ଯ୍ୟାୟକ୍ରମେ ଗ୍ରହମାନଙ୍କର ବିଷୁବରେଖାରେ ପ୍ରବେଶ ଓ ତହିଁରୁ ନିର୍ଗମ,ପର୍ଯ୍ୟାୟକ୍ରମେ ଆଗମନ ଓ ନିର୍ଗମନ ।

ସାମାତ୍ୟ—ପୁଂ.ବି°. (ବି.ସ୍ତ୍ରୀ) ଅମାତ୍ୟବିଶିଷ୍ଟ, ମନ୍ତ୍ରୀସହିତ ।

ସାମାନ୍—ଯା. ବ. ସାମଗ୍ରୀ, ଉପକରଣ, ଜିନିଷପତ୍ର,କାରିଗରର ଯନ୍ତ୍ରାଦି,କୌଣସି କାର୍ଯ୍ୟର ସାଧନସ୍ୱରୂପ ବସ୍ତୁ ।

ସାମାନ୍‌ପତ୍ର—ଗ୍ରା. ବ. ନିତ୍ୟବ୍ୟବହାର୍ଯ୍ୟ ଦ୍ରବ୍ୟସମୂହ, ଆବଶ୍ୟକ ଦ୍ରବ୍ୟସମୂହ ।

ସାମାନଗ୍ରାମିକ—ବି°. (ସମାନ + ଗ୍ରାମ + ଇକ) ଏକଗ୍ରାମଜାତ, ଏକଗ୍ରାମବାସୀ ।

ସାମାନାଧିକରଣ୍ୟ-ବ.(ସମାନାଧିକରଣ+ ଯ)ଏକସ୍ଥାନାବସ୍ଥିତ ଅବସ୍ଥା.ଏକସ୍ଥାନରେ ସ୍ଥିତି. ଏକାଶ୍ରୟବୃତ୍ତି,ସାଧାରଣ ଗୁଣର ବା ଧର୍ମର ଅବସ୍ଥିତ ସ୍ଥାନ ।

ସାମାନ୍ୟ—ବି°. (ସମାନ+ଯ) ଯାହା ସର୍ବତ୍ର ବା ସବୁବସ୍ତୁରେ ମିଳେ,ସଚରାଚର, ସାଧାରଣ, ଅତି ଅଳ୍ପ, ତୁଚ୍ଛ, ନଗଣ୍ୟ, ସର୍ବବିଷୟକ, ଯାହା ସମସ୍ତଙ୍କର ଅଛି, (ସ୍ତ୍ରୀ) ସାମାନ୍ୟା,(ବ)ଲୋକ୍ର ମନୁଷ୍ୟଙ୍କ ଆଦି ଜାତିସାଧର୍ମ୍ୟ, ଏକଜାତି, ଯୌଗିକ ସିଦ୍ଧିବିଶେଷ,ପ୍ରକାର,ରକମ, ସାଦୃଶ୍ୟ, ସମାନତା, ସାଧାରଣ ଗୁଣ, ସାଧାରଣ କାର୍ଯ୍ୟ, କାବ୍ୟାଲଙ୍କାରବିଶେଷ, ସାମଗ୍ର୍ୟ, ବ୍ୟାପକ ବୃହତ୍ତର ସାଧାରଣ ଲକ୍ଷଣଗତ ସଂଜ୍ଞା ।

ସାମାନ୍ୟକଥା—ଗ୍ରା. ବ. ତୁଚ୍ଛବିଷୟ ।

ସାମାନ୍ୟଗୁଣ—ବ. ଏକଜାତୀୟ ପ୍ରାଣୀ ବା ବସ୍ତୁମଧ୍ୟରେ ଥିବା ସାଧାରଣ ଗୁଣ ।

ସାମାନ୍ୟତଃ—କ୍ରି. ବି°. ସାଧାରଣତଃ, ସାମାନ୍ୟରୂପେ, ସାଧାରଣ ପ୍ରକାରରେ ।

ସାମାନ୍ୟନାୟିକା(ବନିତା)—ବ. (କ.ଧା) କାବ୍ୟାଦିରେ ବର୍ଣ୍ଣିତା ବେଶ୍ୟାରୂପିଣୀ ନାୟିକା ।

ସାମାନ୍ୟପୂଜାବିଧି(ପଦ୍ଧତି)—ବ. ଯେଉଁ ପୂଜାବିଧିଦ୍ୱାରା ଯେ କୌଣସି ଦେବତାଙ୍କର ଅର୍ଚ୍ଚନା କରାଯାଏ ।

ସାମାନ୍ୟବିଧି—(କ.ଧା)ସାଧାରଣ ନିୟମ ।

ସାମାନ୍ୟଲକ୍ଷଣ—ବ.ଯେଉଁ ଏକଜାତୀୟ ଲକ୍ଷଣ ସମସ୍ତଙ୍କଠାରେ ଥାଏ, ସାଧାରଣ ସଂଜ୍ଞା ।

ସାମାନ୍ୟଲକ୍ଷଣା—ବ.(ବି.ସ୍ତ୍ରୀ)ଅଲୌକିକ ସନ୍ନିକର୍ଷବିଶେଷ.ଆଶ୍ରୟଜ୍ଞାପକ ସାମାନ୍ୟ ଜ୍ଞାନ, ଏକଜାତୀୟ ଗୋଟିଏ ବସ୍ତୁକୁ ବା ପ୍ରାଣୀକୁ ଦେଖିଲେ ସେହିଜାତୀର ସମୁଦାୟ ବସ୍ତୁଙ୍କ ବା ପ୍ରାଣୀଙ୍କ ସମ୍ବନ୍ଧେ ଯେଉଁ ସାଧାରଣ ଧାରଣା ବା ଜ୍ଞାନ ଜନ୍ମେ ।

ସାମାନ୍ୟବଚନ—ବ. ସାଧାରଣ ବାକ୍ୟ, ସମସ୍ତଙ୍କ ପକ୍ଷରେ ସାମାନବାକ୍ୟ ।

ସାମାନ୍ୟଶାସନ—ବ. ସାମାନ୍ୟାଧିକାର ।

ସାମାନ୍ୟା—ସ୍ତ୍ରୀ.ବ.(ସାମାନ୍ୟ+ଆ)ସାଧାରଣୀ ନାୟିକା, ବେଶ୍ୟା, (ବି°) ସାମାନ୍ୟର ସ୍ତ୍ରୀଲିଙ୍ଗ,ସାଧାରଣୀ,ସର୍ବବିଷୟିଣୀ

ସାମାନ୍ୟାଧିକାର—ବ. ଏକବସ୍ତୁରେ ବହୁ ବ୍ୟକ୍ତିଙ୍କର ପ୍ରବର୍ତ୍ତିବା ଅଧିକାର ।

ସାମାୟିକ—ପୁଂ. ବି°. ମାୟାବିଶିଷ୍ଟ, ମାୟାଯୁକ୍ତ, (ସ୍ତ୍ରୀ) ସାମାୟିକା ।

ସାମାସିକ—ବି°. ( ସମାସ+ଇକ )

ସାଂକ୍ଷେପିକ, ସଂକ୍ଷେପ ସମ୍ବନ୍ଧୀୟ, (ବ. ସମାସ+ସ୍ୱାର୍ଥେ ଇକ)ସମାସ ଦେଖ ।
ସାମି—ଅବ୍ୟ. ( ସାମ୍ +ଇ ) ନିନ୍ଦନୀୟ, ଅର୍ଦ୍ଧଭାଗ, କିୟଦଂଶ ।
ସାମିଆନା—ଯା. ବି. ଚାନ୍ଦୁଆ,ଚନ୍ଦ୍ରାତପ ।
ସାମିକୃତ—ବି. (ସାମି+କୃତ)ଅର୍ଦ୍ଧୀକୃତ. ଯାହା ଅର୍ଦ୍ଧେକ କରାଯାଇଅଛି, ନିନ୍ଦ୍ୟ, ଯାହାକୁ ନିନ୍ଦା କରାଯାଇଅଛି ।
ସାମିତ—ବିଂ. ( ସମିତା+ଅ ) ସମିତା କି ମଇଦା ସମ୍ବନ୍ଧୀୟ ।
ସାମିତ୍ୟ—ବିଂ. ( ସମିତି+ଯ ) ସମିତି ସମ୍ବନ୍ଧୀୟ ।
ସାମିଧେନୀ(ନ୍ୟ)—ବି. ( ସମିଧ୍+ଆ+ ଧା+ଣ.ଅନ,ଈ) ସାମଧେନୀ ଦେଖ ।
ସାମିନା—ପ୍ରା. (ଉତ୍ତରବାଲେଶ୍ୱର,ବି.) ସାମିଆନା ଦେଖ ।
ସାମିପୀତ—ବିଂ. (ସାମି+ପା+ର୍ମ.ତ) ଅର୍ଦ୍ଧପାନକୃତ, ଦରପିଆ ।
ସାମିଭୁକ୍ତ—ବିଂ.ଅର୍ଦ୍ଧେକ ଭୁକ୍ତ,ଦରଖିଆ. ଅଂଶତଃ ଭୁକ୍ତ ।
ସାମିଷ—ବିଂ.(ସ+ଆମିଷ)ଆମିଷବିଶିଷ୍ଟ, (ବିପ—ନିରାମିଷ) ।
ସାମିଷଶ୍ରାଦ୍ଧ—ବି. ମତ୍ସ୍ୟ ମାଂସାଦି ଦ୍ୱାରା ପିତୃଙ୍କର ଉଦ୍ଦେଶ୍ୟରେ କରାଯିବାଶ୍ରାଦ୍ଧ ।
ସାମୀଚୀ—ବି. ବନ୍ଦନା, ପୂଜା ।
ସାମୀପ୍ୟ—ବି. (ସମୀପ+ଯ) ନୈକଟ୍ୟ, ସାନ୍ନିଧ୍ୟ, (ବ୍ୟାକରଣ)ଅଧିକରଣବିଶେଷ, ଆଧାରଭେଦ ।
ସାମୀପ୍ୟାଧିକରଣ-ବି.ଅଧିକରଣବିଶେଷ, ଯେଉଁ ଅଧିକରଣ ଦ୍ୱାରା ନିକଟବର୍ତ୍ତିତା ବୁଝାଯାଏ ।
ସାମୀର୍ଯ୍ୟ—ବିଂ. (ସମୀର+ଯ) ସମୀର ବା ବାୟୁ ସମ୍ବନ୍ଧୀୟ ।
ସାମିଲ୍(ଲ)—ଯା. ବିଂ. ଅନ୍ତର୍ଗତ, ଅନ୍ତର୍ଭୁକ୍ତ, ସୀମାଭୁକ୍ତ, ଅଙ୍ଗୀଭୂତ ।
ସାମିଲାତ୍—ଯା.ବିଂ.ଅନ୍ତର୍ଭୁକ୍ତ,ଅବିଭକ୍ତ. (ବି)ଅନ୍ତର୍ଭୁକ୍ତ ପଦାର୍ଥ,ଅବିଭକ୍ତ ସମ୍ପତ୍ତି
ସାମୁଏଲ୍—ଯା. ବି. (ହେବ୍ରୁଭାଷା)ବାଇବେଲ୍ ଲିଖିତ ଏଲ୍କାନାଙ୍କ ଔରସରେ ତାଙ୍କ ପ୍ରଥମା ସ୍ତ୍ରୀ ହାନାଙ୍କ ଗର୍ଭଜାତ ସନ୍ତାନ ।
ସାମୁଦାୟିକ—ବିଂ. (ସମୁଦାୟ+ଇକ) ସମୁଦାୟ ସମ୍ବନ୍ଧୀୟ,(ଜ୍ୟୋତିଷ)ଜନ୍ମ-ନକ୍ଷତ୍ରଠାରୁ ଅଷ୍ଟାଦଶ ନକ୍ଷତ୍ର ।
ସାମୁଦ୍ର—ବି.(ସମୁଦ୍ର+ଅ)ସମୁଦ୍ରଫେନ, ସମୁଦ୍ରଜଳଜାତ ଲବଣ,ସମୁଦ୍ରଯାତ୍ରୀ, ଦେହସ୍ଥଚିହ୍ନ, ସାମୁଦ୍ରିକ,ଶରୀରରଚିହ୍ନ (ହସ୍ତଆଦିର ରେଖା) ମାନଙ୍କୁ ଦେଖି ମନୁଷ୍ୟର ଶୁଭାଶୁଭ ନିର୍ଣ୍ଣାୟକ ଶାସ୍ତ୍ର, ସାମୁଦ୍ରିକ ଶାସ୍ତ୍ରବେତ୍ତା, ସମୁଦ୍ରଯାତ୍ରୀ ବଣିକ୍, ସୁଶ୍ରୁତୋକ୍ତ ବିଷଶ୍ରାବୀ ମଶକ-ବିଶେଷ, ମାର୍କଣ୍ଡେୟ ପୁରାଣ ଲିଖିତ ଦେଶବିଶେଷ,ନାରିକେଳ,ତୋପଚିନି, (ବିଂ) ସମୁଦ୍ର ସମ୍ବନ୍ଧୀୟ, ସମୁଦ୍ରଜାତ ମାତ୍ର ।
ସାମୁଦ୍ରକ—ବି. (ସାମୁଦ୍ର+କ) ସାମୁଦ୍ର ଲବଣ, କରକଚ, ସାମୁଦ୍ରିକ ଗ୍ରନ୍ଥ, ସମୁଦ୍ରଗାମୀ ବଣିକ୍, ( ବିଂ ) ସମୁଦ୍ର ସମ୍ବନ୍ଧୀୟ ।
ସାମୁଦ୍ରବଚନ—ବି. ସ୍ତ୍ରୀ ପୁରୁଷମାନଙ୍କ ଦେହରେ ଥିବା ଚିହ୍ନରୁ ଗୁଣପ୍ରକୃତି ଓ ଭବିଷ୍ୟତ୍ ବର୍ଣ୍ଣନାତ୍ମକ ବଚନ ।
ସାମୁଦ୍ରମତ୍ସ୍ୟ—ବି. ଲୁଣୀମାଛ, ସମୁଦ୍ର-ଜାତ ମତ୍ସ୍ୟ ।
ସାମୁଦ୍ରଲବଣ—ବି. ସମୁଦ୍ରଜାତ ଲବଣ, କରକଚ ଓ ପଙ୍କାଲୁଣ ।
ସାମୁଦ୍ରସ୍ଥଳକ—ବି. ସମୁଦ୍ରସ୍ଥଳୀ ଦେଶ ।
ସାମୁଦ୍ରିକ—ବିଂ. ( ସମୁଦ୍ର+ଇକ ) ସମୁଦ୍ର ସମ୍ବନ୍ଧୀୟ, ( ବି ) ଦେହର ଚିହ୍ନାଦିଲକ୍ଷଣ ଅନୁସାରେ ଶୁଭାଶୁଭ ବିଷୟ ନିର୍ଣ୍ଣାୟକ ଶାସ୍ତ୍ର, ସାମୁଦ୍ରିକ ଶାସ୍ତ୍ରବେତ୍ତା ।
ସାମ୍ନୀ—ବି. ( ସାମନ୍+ଈ ) ବୈଦିକ ଛନ୍ଦୋବିଶେଷ ।
ସାମୋଦ—ପୁଂ. ବିଂ. (ସ+ଆମୋଦ) ବି.ସ୍ତ୍ରୀ; ଆମୋଦବିଶିଷ୍ଟ ।
ସାମୋଦ୍ଭବ—ବିଂ. ( ବି.ସ୍ତ୍ରୀ ) ସାମଜ, ସାମବେଦଜାତ, (ବି) ହସ୍ତୀ ।
ସାମ୍ପଦ—ବିଂ. ( ସମ୍ପଦ୍+ଅ ) ସମ୍ପଦ ସମ୍ବନ୍ଧୀୟ ।
ସାମ୍ପରାୟ—ବି. (ସମ୍ପରାୟ+ଅ) ଯୁଦ୍ଧ, ସମ୍ପରାୟ ଶବ୍ଦାର୍ଥ ।
ସାମ୍ପରାୟିକ—ବିଂ. (ସମ୍ପରାୟ+ଇକ) ପାରଲୌକିକ, ଯୁଦ୍ଧ ସମ୍ବନ୍ଧୀୟ ।
ସାମ୍ପୁଟି(ଡ଼ି)ବା—ଗ୍ରା. କ୍ରି. ଗୁରାଆଡ଼େ ଘେରିକରି ଧରିବା ।
ସାମ୍ପ୍ରତ—ବିଂ. ( ସମ୍ପ୍ରତି+ଅ ) ଯୁକ୍ତ, ଇଦାନୀନ୍ତନ, ଉଚିତ ।
ସାମ୍ପ୍ରତମ୍—କ୍ରି. ବିଂ. ସମ୍ପ୍ରତି, ଆଧୁନା, (ବିଂ) ଯୁକ୍ତ, ଉଚିତ ।
ସାମ୍ପ୍ରତିକ—ବିଂ. (ସମ୍ପ୍ରତି+ଇକ)ସମ୍ପ୍ରତି-ଭବ, (ବି) ସମ୍ପ୍ରତି ଦେଖ ।
ସାମ୍ପ୍ରଦାୟିକ—ବିଂ. (ସମ୍ପ୍ରଦାୟ+ଇକ) ସମ୍ପ୍ରଦାୟ ସମ୍ବନ୍ଧୀୟ ।
ସାମ୍ପ୍ରଦାୟିକନିର୍ବାଚନ—ବି. (ଆଧୁନିକ ବ୍ୟବହାର) କୌଣସି ଭିନ୍ନ ଭିନ୍ନ ସମ୍ପ୍ର-ଦାୟ ବା ଗୋଷ୍ଠୀ ମଧ୍ୟରୁ ବାଛି ସେହି ସେହି ଜାତି ଗୋଷ୍ଠୀଦ୍ୱାରା ପ୍ରତିନିଧି ।
ସାମ୍ପ୍ରଯୋ(ୟୋ)ଗିକ—ବିଂ. (ସମ୍ପ୍ରଯୋଗ +ଇକ) ନିତ୍ୟସମ୍ପ୍ରଯୋଗାର୍ହ ।
ସାମ୍ବ—ପୁଂ. ବି. ଶ୍ରୀକୃଷ୍ଣଙ୍କ ଔରସରେ ଜାମ୍ବବତୀଙ୍କ ଗର୍ଭଜାତ ପୁତ୍ର, ଶାମ୍ବ ।
ସାମ୍ବତ୍ସରିକ—ବିଂ. ( ସମ୍ବତ୍ସର+ଇକ ) ବାର୍ଷିକ, ଯାହା ବର୍ଷକେ ଥରେ ଘଟେ ।
ସାମ୍ବନ୍ଧିକ—ବି. (ସମ୍ବନ୍ଧ+ଇକ)ସମ୍ବନ୍ଧି, ଶ୍ୟାଳକ, ଶଳା,(ବିଂ)ସମ୍ବନ୍ଧ ବିଷୟକ, ବିବାହ ବିଷୟକ ।
ସାମ୍ବପୁର(ରୀ)—ବି.ସାମ୍ବ ପ୍ରତିଷ୍ଠିତ ନଗର, ଆଧୁନିକ ମୂଲତାନ ।
ସାମ୍ବପୁରାଣ—ବି. ଉପପୁରାଣବିଶେଷ ।
ସାମ୍ବର—ବିଂ. (ସମ୍ବର+ଷ୍ଣ.ଅ) ରାଜ-ପୁତାନାର ଶମ୍ବର ହ୍ରଦଜାତ, (ବି) ଶମ୍ବର ହ୍ରଦଜାତ ଲବଣ,ଗଡ଼ଲବଣ ।
ସାମ୍ବରି—ଗ୍ରା.ବିଂ. ସମ୍ବର ମୃଗସମ୍ବନ୍ଧୀୟ, (ବି) ସାମ୍ବରଚମ ।
ସାମ୍ବରୀ—ସ୍ତ୍ରୀ. ବି. (ସମ୍ବର+ଅ+ଈ) ମାୟା, ଶାମ୍ବରୀ ଦେଖ, ସମ୍ବର ହ୍ରଦ-

ଜାତ ଲବଣ । [ ଲବଣ ।

ସାମ୍ଭରଲବଣ—ବି. ସମ୍ଭର ହ୍ରଦଜାତ

ସାମ୍ବାଦିକ—ବି.(ସମ୍ବାଦ+ଇକ)ନୈୟ୍ୟାୟିକ, ସମ୍ବାଦଦାତା ।

ସାମୃଗା—ବି.(ସାମ୍ଭବ+ଈ)ରକ୍ତଲୋଧ୍ର ।

ସାମ୍ଭସ୍—ବି..(ସ+ଅମ୍ଭସ୍)ସଜଳ ।

ସାମ୍ମତ୍ୟ—ବି. (ସମ୍ମତ+ଷ୍ୟଞ) ସମ୍ମତର ଭାବ । [ (ଅର୍ଥବ) ।

ସାମ୍ମନସ୍ୟ—ବି. ସମାନ ଚିତ୍ତବୃତ୍ତିଯୁକ୍ତ

ସାମ୍ମାତୁର—ପୁଂ.ବି(ସମ୍ମାତୃ+ଅ)ସତ୍ମାପୁତ୍ର

ସାମ୍ମୁଖୀ—ସ୍ତ୍ରୀ.ବି.ସାୟାହ୍ନ ବ୍ୟାପିନୀ ତିଥି, ଯେଉଁ ତିଥି ସନ୍ଧ୍ୟା ପର୍ଯ୍ୟନ୍ତ ରହେ ।

ସାମ୍ମୁଖ୍ୟ—ବି.(ସମ୍ମୁଖ+ଷ୍ୟଞ)ସମ୍ମୁଖର ଭାବ, ସାମନା ।

ସାମ୍ମୋଦନିକ—ବି.(ସମ୍ମୋଦନ+ଇକ) ସମ୍ମୋଦଦାୟକ, ଆନନ୍ଦଦାୟକ ।

ସାମ୍ୟ—ବି. (ସମ୍+ଷ୍ୟଞ) ସମାନତା, ସମତା, ତୁଲ୍ୟତ୍ୱ, ସାଦୃଶ୍ୟ, ସାମଞ୍ଜସ୍ୟ, ଏକତା, ସାନ୍ତ୍ୱନା, ଏକସ୍ଥାନତ୍ୱ, (ବି) ସମତାପନ୍ନ ।

ସାମ୍ୟବାଦ—ବି. (ତନ୍ତ୍ର) ମତବିଶେଷ, (ଏହି ମତରେ ସମସ୍ତ ଲୋକ ସମାନ, ପୃଥିବୀରେ ଯେ ସମସ୍ତ ଧନରତ୍ନ ଅଛି ସେଥିରେ ସମସ୍ତଙ୍କର ସମାନ ଅଧିକାର, କି ରାଜା କି ପ୍ରଜା କି ଧନୀ କି ଭିକ୍ଷୁକ କି କୁଳୀନ ଇତ୍ୟାଦି ଏ ସମସ୍ତ ସମାନ ଏଥିରେ ପ୍ରଭେଦ ନାହିଁ) ।

ସାମ୍ୟବାଦୀ—ପୁଂ ବି. ସାମ୍ୟବାଦ ମତାବଲମ୍ବୀ,ସମସ୍ତେ ସମାନ ଏହି ମତବାଦୀ, (ସ୍ତ୍ରୀ) ସାମ୍ୟବାଦିନୀ ।

ସାମ୍ୟଭାବ—ବି ପଦାର୍ଥର ସମଭାବରେ ଅବସ୍ଥିତ ଓ ସ୍ଥିରହୋଇ ରହିବା,ସର୍ବତ୍ର ସମଦର୍ଶିତା ।

ସାମ୍ୟସଂସ୍ଥାପକ—ବି. (ତନ୍ତ୍ର) ସାମ୍ୟର ପ୍ରତିଷ୍ଠାତା,ଉଚ୍ଚନୀଚ ଭେଦଜ୍ଞାନ ଦୂରୀକରଣରୂପ ପ୍ରବର୍ତ୍ତକ, (ସ୍ତ୍ରୀ) ସଂସ୍ଥାପିକା ।

ସାମ୍ୟସଂସ୍ଥାପନ—ବି. ସାମଞ୍ଜସ୍ୟ ସ୍ଥାପନ, ସାମ୍ୟବାଦର ପ୍ରତିଷ୍ଠା ।

ସାମ୍ୟାବସ୍ଥା—ବି.ତୁଲ୍ୟାବସ୍ଥା, ସତ୍ତ୍ୱ ରଜଃ ଓ ତମଃ ଗୁଣତ୍ରୟର ସମାନ ଅବସ୍ଥା ।

ସାମ୍ୟୁତ୍ଥାନ—ବି. ଯଜ୍ଞସମାପନର ବିଘ୍ନ ବା ଅସୁବିଧା ।

ସାମ୍ରାଜ୍ୟ—ବି. ( ସମ୍ରାଜ୍+ଷ୍ୟଞ ) ସର୍ବପ୍ରଧାନ ରାଜ୍ୟ, ସାର୍ବଭୌମତ୍ୱ, ଏକଚ୍ଛତ୍ରାଧିପତ୍ୟ, ସମ୍ରାଟଙ୍କ ଶାସନାଧୀନ ରାଜ୍ୟ,ପୂର୍ଣ୍ଣ ଅଧିକାର ।

ସାମ୍ରାଜ୍ୟପ୍ରତିଷ୍ଠା—ବି. (ତନ୍ତ୍ର) ଏକଚ୍ଛତ୍ର ରାଜ୍ୟସ୍ଥାପନ ।

ସାମ୍ରାଜ୍ୟବାଦ—ଗ୍ରା.ବି.(ଆଧୁନିକ)ବିଶାଳ ସାମ୍ରାଜ୍ୟର ଅଙ୍ଗ ହେଲେ ଦେଶର ବୈଷୟିକ ଓ ରାଜନୀତିକ ଉନ୍ନତି ଅପେକ୍ଷାକୃତ ସୁକର ହୁଏ, ଏହିମତବାଦ

ସାମ୍ରାଣିକର୍ଦ୍ଦମ—ବି. ଜବାଦନାମକ ଗନ୍ଧଦ୍ରବ୍ୟ, ଶାଳଆପତନିକୋଷ ( ଏହା ଗନ୍ଧମାର୍ଜ୍ଜାର ବା ଶାଳଆପତନୀର କୋଷ ବା ବୀର୍ଯ୍ୟ; ଏହା ସୁଗନ୍ଧ ଓ ଏକପ୍ରକାର କସ୍ତୁରୀ ରୂପେ ପରିଗଣିତ) ।

ସାମ୍ରାଣିଜ—ବି. ମହାପାରେବତ ଫଳ ।

ସାମ୍ରାଣୀ—ଗ୍ରା.ବି.ଏକପ୍ରକାର ଔଷଧଗଛ, ସାତଲା ଦେଖ ।

ସାୟ—ବି. (ସୋ+କ.ଅ)ସନ୍ଧ୍ୟା,ସାୟଂକାଳ, ବାଣ, ଶର, (ଭା.ଅ)ନାଶ, ଅବସାନ, ଶେଷ, ଉତ୍ସବ, ( ଗ୍ରା.ବି ) ସାହାଯ୍ୟ ।

ସାୟଂ—ଅବ୍ୟ. (ସୋ+କ.ଅମ୍)ସନ୍ଧ୍ୟା, ସାୟଂକାଳ,ଦିନାନ୍ତ,ବାଣ,ତୀର,ସାୟଂକାଳୀନ ।

ସାୟଂକାଳ—ବି. ସନ୍ଧ୍ୟା,ଦିନାନ୍ତ,ସାୟଂସନ୍ଧ୍ୟାକାଳ, (ବି) ସାୟଂକାଳୀନ ।

ସାୟଂକୃତ୍ୟ—ବି. ସାୟଂସନ୍ଧ୍ୟା ।

ସାୟଂକାଳୀନ—ବି.ସନ୍ଧ୍ୟାକାଳସମ୍ବନ୍ଧୀୟ

ସାୟଂଗୃହ--ପୁଂ.ବି.ଯେଉଁବ୍ୟକ୍ତି ସନ୍ଧ୍ୟାବେଳେ ଯେଉଁଠାରେ ପହୁଞ୍ଚେ; ସେଠାରେହିଁ ବାସକରେ ।

ସାୟଂଗୋଷ୍ଠ—ବି. ସାୟଂକାଳରେ ଗୋଚାରଣ ସ୍ଥାନରେ ଅବସ୍ଥାନକାରୀ ଗୋ ।

ସାୟଂପ୍ରାତଃ—ଅବ୍ୟ. ସନ୍ଧ୍ୟାବେଳେ ଓ ସକାଳେ, ସନ୍ଧ୍ୟା ଓ ସକାଳ ।

ସାୟଂପ୍ରାତିର୍ଭୋଜୀ—ପୁଂ. ବି. ( ସାୟଂ, ପ୍ରାତଃ+ଅଶ୍+କି.ଇନ୍) ସନ୍ଧ୍ୟାବେଳେ ଓ ସକାଳେ ଭୋଜନକାରୀ.(ସ୍ତ୍ରୀ)ଭୋଜିନୀ

ସାୟଂପ୍ରାତିକ—ବି. ସନ୍ଧ୍ୟାବେଳେ ଓ ସକାଳେ ଘଟିବା ।

ସାୟଂଭବ—ପୁଂ. ବି. (ସାୟଂ+ଭୂ+କ.ଅ) ସନ୍ଧ୍ୟାବେଳେ ଜାତ, ସନ୍ଧ୍ୟାକାଳୀନ, (ସ୍ତ୍ରୀ) ସାୟଂ ଭବା ।

ସାୟଂଭୋଜନ-ବି.ସନ୍ଧ୍ୟାକାଳୀନ ଭୋଜନ

ସାୟଂଭୋଜୀ—ପୁଂ.ବି.ସନ୍ଧ୍ୟା ସମୟରେ ଭୋଜନକାରୀ, (ସ୍ତ୍ରୀ) ଭୋଜିନୀ ।

ସାୟଂସନ୍ଧ୍ୟା—ବି. ବେଳବୁଡ଼ି, ସନ୍ଧ୍ୟାବେଳ, ସନ୍ଧ୍ୟାକାଳରେ କର୍ତ୍ତବ୍ୟ ଉପାସନା, ସାୟଂକାଳୋପାସ୍ୟ ଦେବତା, ସରସ୍ୱତୀ ।

ସାୟଂସନ୍ଧ୍ୟାଦେବତା—ବି. ସରସ୍ୱତୀ, ସାୟଂ ସନ୍ଧ୍ୟାରେ ଗାୟତ୍ରୀ ଜପକାଳରେ ବ୍ରାହ୍ମଣଙ୍କର ଧ୍ୟେୟା ଦେବୀ ।

ସାୟଂସୂର୍ଯ୍ୟ—ବି. ସନ୍ଧ୍ୟାକାଳୀନ ସୂର୍ଯ୍ୟ ।

ସାୟକ—ବି. ( ସୋ+କ.ଅକ ) ବାଣ, ଶର, ଖଡ୍ଗ, ବଜ୍ର, ଅସ୍ତ୍ରଶସ୍ତ୍ର, ଭଦ୍ରମୁଞ୍ଜ, ପାଞ୍ଚସଂଖ୍ୟା, ବର୍ଣ୍ଣବୃତ୍ତବିଶେଷ ।

ସାୟକପୁଙ୍ଖ(ଙ୍ଖା)—ବି. (ତନ୍ତ୍ର) ଶରର ପୁଚ୍ଛ ।

ସାୟକପ୍ରଣୁତ୍ତ—ବି.ପ୍ରହରଣାର୍ଥ ଉତ୍କ୍ଷିପ୍ତ ଖଡ୍ଗ (ଅଥର୍ବ) । [ ବିଶେଷ ।

ସାୟନ୍ତମୟ—ବି.ଅସ୍ତ୍ରଯୁକ୍ତ, (ବି) ବାଣ-

ସାୟଣ—ବି. (ନାମ), ସାୟନ ଦେଖ ।

ସାୟଣାଚାର୍ଯ୍ୟ--ବି. ଋକ୍‌ବେଦ ଭାଷ୍ୟକାର ଜଣେ ପ୍ରସିଦ୍ଧ ସର୍ବଶାସ୍ତ୍ରବେତ୍ତା ପଣ୍ଡିତ ।

ସାୟଣୀ(ନୀ)ୟ—ବି. (ସାୟଣ+ଈୟ) ସାୟନାଚାର୍ଯ୍ୟସମ୍ବନ୍ଧୀୟ,ସାୟନାଚାର୍ଯ୍ୟକୃତ (ଗ୍ରନ୍ଥ) ।

ସାୟତନ—ବି. (ସ+ଆୟତନ) ଆୟତନବିଶିଷ୍ଟ ।

ସାୟନ—ବି.ସାୟଣାଚାର୍ଯ୍ୟ ଦେଖ, (ବି. ସ+ଅୟନ) ଅୟନବିଶିଷ୍ଟ (ଗ୍ରହ) ।

ସାୟନ୍ତନ—ବି.(ସାୟଂ+ତନ)ସାୟଂ-

କାଳସମ୍ବନ୍ଧୀୟ, ସାୟଂକାଳୀନ ।

ସାୟନ୍ତା—ଗ୍ରା. ସ୍ତ୍ରୀ. ବି. (ନାମ) ଶାନ୍ତା, ଋଷ୍ୟଶୃଙ୍ଗ ମୁନିଙ୍କ ପତ୍ନୀ ।

ସାୟନ୍ଦୁଗ୍—ବି.ସନ୍ଧ୍ୟା ସମୟରେ ଦୁହାଁ-ଯିବା ଦୁଗ୍ଧ ।

ସାୟନ୍ଦୋହ(ନ)—ବି. ସନ୍ଧ୍ୟାକାଳୀନ ଗୋଦୋହନ ।

ସାୟମ୍—ଅ.(ସୋ+ଅମ୍)ସାୟଂ ଦେଖ ।

ସାୟମାଶ—ବି. ସାୟଂଭୋଜନ,(ସାୟା-ଶନ-ଅନ୍ୟରୂପ) ।

ସାୟମାହୃତ—ବି. ( ସାୟଂ+ଆହୃତ ) ସନ୍ଧ୍ୟାବେଳେ ଦିଆଯିବା ଆହୃତ ।

ସାୟ(ଏ,ୟେ)ଲ୍—ଯା. ବି. (କଚେରିଆ) ଦରଖାସ୍ତକାରୀ ।

ସାୟମ୍ମୋଷ—ବି.ସାୟଂକାଳେ ଭୋଜନ ବା ଖାଦ୍ୟଦାନ ।

ସାୟା—ଯା. ବି. ସ୍ତ୍ରୀମାନଙ୍କର କଟିଠାରୁ ତଳକୁ ପିନ୍ଧାଯିବା ଢିଲା ଘାଗରା ।

ସାୟାଁ—ଗ୍ରା. ବି. ସଂଜ୍ଞା ଦେଖ ।

ସାୟାବନ୍ଦୀ—ଯା.ବି. ମୁସଲମାନମାନଙ୍କର ବିବାହ ପାଇଁ ମଣ୍ଡପ ନିର୍ମାଣ କର୍ମ ।

ସାୟାରମ୍ଭ—ବି. (ଷତତ୍) ସାୟଂକାଳର ଆରମ୍ଭ ।

ସାୟାଶନ—ବି. (ମଧ୍ୟ-କ.ଧା) ଦିନାନ୍ତେ ଭୋଜନ, ସନ୍ଧ୍ୟାଭୋଜନ ।

ସାୟାସ—ବିଂ. (ସ+ଆୟାସ) ବ.ବ୍ରୀ; ଆୟାସଯୁକ୍ତ ।

ସାୟାହ୍ନ—ବି.(ସାୟ + ଅହନ୍)ଦିନାନ୍ତ, ଦିବସର ଶେଷଦଣ୍ଡ ଦ୍ୱୟ,ଦିନର ଶେଷ ଦଣ୍ଡ ଓ ରାତ୍ରିର ପ୍ରଥମ ଦଣ୍ଡ,ସାୟଂକାଳ ।

ସାୟାହ୍ନକୃତ୍ୟ—ବି.(ଷତତ୍)ସନ୍ଧ୍ୟାକୃତ୍ୟ. ସନ୍ଧ୍ୟାକାଳୀନ କରଣୀୟ କାର୍ଯ୍ୟ,ସାୟଂ-କାଳୀନ ସନ୍ଧ୍ୟାବନ୍ଦନାଦି ।

ସାୟିକା—ବି. ( ସୋ+ଅକ+ଆ ) କ୍ରମସ୍ଥିତି ।

ସାୟୀ—ପୁଂ. ବିଂ. ( ସୋ+କ.ଇନ୍ ) ଅଶ୍ୱାରୋହୀ, (ସ୍ତ୍ରୀ) ସାୟିନୀ ।

ସାଯୁଜ୍ୟ—ବି. ( ସହ+ଯୁଜ୍+କ.କ୍ୱିପ୍ +ଷ୍ଣ.ଯ) ସହଯୋଗ,ଏକତ୍ୱ, ଏକତା, ଅଭେଦ, ସାଦୃଶ୍ୟ, ପଞ୍ଚଧା ମୁକ୍ତିର ଅନ୍ତର୍ଗତ ମୁକ୍ତିବିଶେଷ,ବିଷ୍ଣୁଙ୍କଦେହରେ ଭକ୍ତର ଲୀନହେବା ଅବସ୍ଥା ।

ସାୟେ—ଅ. ଦିନାନ୍ତେ, ସନ୍ଧ୍ୟାବେଳେ ।

ସାୟେସ୍ତାଖାଁ—ଯା.ବି. ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀର ବଙ୍ଗର ଜଣେ ମୋଗଲ ଶାସନକର୍ତ୍ତା ।

ସାର୍ଯ୍ୟ—ଗ୍ରା. ବି, ସାହାଯ୍ୟ ଦେଖ ।

ସାର୍‌ବା-ପ୍ରା.(ଭିତରିଖଣ୍ଡା). କ୍ରି.ସାରିବା ।

ସାର୍‌ଲିନ୍—ପ୍ରା. (ପାଟଣା) କ୍ରି. ( ମୁଁ ) ସାରିଲିଣି, ଶେଷକଲିଣି ।

ସାର—ବି. (ସୃ + କ ବା ଣ.ଅ)ପଦାର୍ଥର ଶ୍ରେଷ୍ଠାଂଶ, ସାରାଂଶ, ସ୍ଥିରାଂଶ, ଫଳ, ତେଜଃ, ଦେହର ମଜ୍ଜା, ବୃକ୍ଷର ମଜ୍ଜା. ମଞ୍ଜି, ବଜ୍ରକ୍ଷାର,ସ୍ଥୈର୍ଯ୍ୟ,ସାରତ୍ୱ,ଦୃଢ଼ତା, ଉତ୍କର୍ଷ, କାଠିନ୍ୟ, ତତ୍ତ୍ୱାର୍ଥ, ଅତିଶୟ, ବାୟୁ, ରୋଗ, ପଶାଖେଳର ଗୋଟି, ନବନୀତ, ଲହୁଣୀ,ଦୁଧର ସର, ଜଳ, ଧନ, ଲୌହ, ବନ,ବୃକ୍ଷବଲ୍କଳ ରସ, ବୃକ୍ଷାଦିର ଉତ୍ତେଜକ ବା ମୃତ୍ତିକାର ଉର୍ବରତାସାଧକ ବସ୍ତୁ, ଅର୍ଥାଲଂକାର ବିଶେଷ, ଅଙ୍କ, ନିର୍ଯ୍ୟାସ, ସଂକ୍ଷେପ, କଥାର ମର୍ମ,ରହସ୍ୟ,ଅତିସାର,ନାନା-ବର୍ଣ୍ଣ, ଗୋମୟ, ଅମୃତ, ଦାଡ଼ିମ୍ବବୃକ୍ଷ, ପିୟାଲବୃକ୍ଷ, ମୁଦ୍ଗ, କ୍ୱାଥ, ନୀଳୀବୃକ୍ଷ, କର୍ପୂର,ଗଛର ଅଠା,ସାଲବୃକ୍ଷର ସାର. ପାନକ, ପଣା, ଦେହାନ୍ତର୍ଗତ ସ୍ଥିର ପଦାର୍ଥ, ଦୋଫସଲୀ ଜମି,ଗୋଶାଳା, ଦୁହାଁହେବାର ପରକ୍ଷଣରେ ଆଉଟା-ହୋଇଥିବା ଦୁଗ୍ଧ, ପରିମାଣ, (ବିଂ) ଶ୍ରେଷ୍ଠ, ଅତି ଦୃଢ଼, ନାନାବର୍ଣ୍ଣବିଶିଷ୍ଟ, ବଳବାନ୍, ସ୍ଥାୟୀ, ସାରଭୂତ, ଅସଲ, ସଂକ୍ଷିପ୍ତ, ନ୍ୟାଯ୍ୟ, ସର୍ବୋତ୍ତମ, (ଗ୍ରା.ବି) ପ୍ରାଣ, ସାରୀ ପକ୍ଷୀ, ଅଳଂକାରଆଦିର ଏକସେଟ୍, ଗଦା ଚୂନାଧାନ ଉପରେ ଦିଆଯିବା ପାଉଁଶ ଚିହ୍ନ, ଅସମବାହୁକ କ୍ଷେତ୍ରର ମାପରେ ହାରାହାରି ପରିମାଣ ।

ସାରକ—ବିଂ. ( ସୃ+ଣିଚ୍+କ.ଅକ ) ବିରେଚକ, ଭେଦଜନକ, (ବି)ବିରେ-ଚକ ଔଷଧ, ଜୟପାଳ, କନକା, ପୀତମୁଦ୍ଗ, (ସ୍ତ୍ରୀ) ସାରିକା ।

ସାରକଥା—ଗ୍ରା. ବି. ସାରମର୍ମ, ଶ୍ରେଷ୍ଠ ବିଷୟ, କଥାର ଉଦ୍ଦେଶ୍ୟ, ସାରଗର୍ଭ କଥା ।

ସାରକମା—ଗ୍ରା. ବି. ଦେଶୀବିଶେଷ, (ପୀତାମ୍ବର ନୃସଂହପୁରାଣ) ।

ସାରକରିବା—ଗ୍ରା. କ୍ରି. ଅସମବାହୁ କ୍ଷେତ୍ରର ଏକାଧିକ ସ୍ଥାନ ମାପି ତହିଁର ହାରାହାରି ନେବା,ସାରିକରିବା ଦେଖ ।

ସାରକୁଡ଼ି—ଗ୍ରା. ବି. ଖତଗଦା ।

ସାରଖଦିର—ବି. ଦୁଷ୍ଟଦିର, ଦୁର୍ଗନ୍ଧ ଖଇର,ବିଟଖଦିର,ଗନ୍ଧ ଗୋହିରୀଗଛ ।

ସାରଗନ୍ଧ(ନ୍ଧି)—ବି. (ବ.ବ୍ରୀ) ଚନ୍ଦନ, ଶ୍ରୀଖଣ୍ଡ ।

ସାରଗର୍ଭ—ବିଂ. (ବ.ବ୍ରୀ) ସାରଯୁକ୍ତ, ଯାହାର ଅଭ୍ୟନ୍ତରରେ ଶ୍ରେଷ୍ଠାଂଶ ବା ଉତ୍କର୍ଷ ଅଛି,(ସାରଗର୍ଭକ, ସାରଗର୍ଭିତ-ଅନ୍ୟରୂପ) ।

ସାରଗାର—ଗ୍ରା.ବିଂ. ଉତ୍କୃଷ୍ଟ,ସାରଯୁକ୍ତ, ମୀମାଂସିତ, (ବି) ଶେଷମୀମାଂସା ।

ସାରଗୁଡ଼—ଗ୍ରା. ବି. ମତ୍ସ୍ୟଣ୍ଡୀ, ଈଷତ୍ ଦ୍ରବଭାବାପନ୍ନ ଗାଢ଼ତର ଇକ୍ଷୁରସ, ଲେଡ଼ାଗୁଡ଼ ।

ସାରଗୁଣା—ଗ୍ରା.ବି (ସଂ-ସାରଙ୍ଗ)ବାଦ୍ୟ ଯନ୍ତ୍ରବିଶେଷ, ସାରଙ୍ଗି ବାଜା, ଉତ୍କୃଷ୍ଟ ତାରମାନ, ଉତ୍କୃଷ୍ଟ ଗୁଣ, ଶାଗୁଣା, ଗୃଧ୍ର, (ସ୍ତ୍ରୀ) ସାରଗୁଣୀ ।

ସାରଗୋ—ଗ୍ରା. ବି. ଓଡ଼ିଶା ଉପକୂଳର ପ୍ରାଚୀନ ବନ୍ଦରବିଶେଷ ।

ସାରଗ୍ରାହିତା—ବି(ସାରଗ୍ରାହିନ୍+ଭା.ତା) ସାରଭାଗ ଗ୍ରହଣ କରିବା, ମର୍ମ ଗ୍ରହଣ କରିବାର ଶକ୍ତି ।

ସାରଗ୍ରାହୀ—ପୁଂ. ବିଂ. (ସାର+ଗ୍ରହ୍+କ.ଇନ୍) ସାରଭାଗ ବା ଶ୍ରେଷ୍ଠାଂଶ ଗ୍ରହଣକାରୀ, ଯେ ସାର ଗ୍ରହଣ କରେ, (ସ୍ତ୍ରୀ) ସାରଗ୍ରାହିଣୀ ।

ସାରଘ(ଘ୍ୟ)—ବି. (ସରଘା+ଅ+ଯ) ମଧୁ, ମହୁ ।

ସାରଘାଟି—ଗ୍ରା. ବି. ପାରହେବା ପାଇଁ ବିଷମ ସ୍ଥାନ, ସଙ୍କଟ, ବିଷମ ବା ଜଟିଳ ସମସ୍ୟା ।

ସାରଙ୍ଗ୍—ଯା.ବି.ନାବିକମାନଙ୍କ ଅଧ୍ୟକ୍ଷ, ନୌକା ବା ବୋଟର ଚାଳକ ।

ସାରଙ୍ଗ—(ସୃ + କ.ଅଙ୍ଗ) ଚାତକ ପକ୍ଷୀ, ହରିଣ,ମୃଗ, ହସ୍ତୀ, ଭ୍ରମର,ଛତ୍ର,ଛତା. ରାଜହଂସ, ଚିତ୍ରମୃଗ, ବାଦ୍ୟଯନ୍ତ୍ରବିଶେଷ, ଅଂଶୁକ, ନାନାବର୍ଣ୍ଣ, ମୟୂର, କାମଦେବ, ଧନୁ, କେଶ, ସ୍ୱର୍ଗ, ଆଭରଣ, ଅଳଙ୍କାର, ପଦ୍ମ, ଶଙ୍ଖ, ଚନ୍ଦନ, କର୍ପୂର, ପୁଷ୍ପ, କୋକିଳ,ମେଘ,ପୃଥିବୀ, ଭୂମି, ରାତ୍ରି, ଦୀପ୍ତି, ମଣି, ସିଂହ, ଚନ୍ଦ୍ର, ସ୍ୱର୍ଣ୍ଣ, ପରିଚ୍ଛଦ,ଖଞ୍ଜନପକ୍ଷୀ, ଚକ୍ରକଳି, ବାଜପକ୍ଷୀ, ସୂର୍ଯ୍ୟ, ଜଳାଶୟ, ଏକପ୍ରକାର ମହୁମାଛି, ବିଷ୍ଣୁଙ୍କ ଧନୁ, ଶ୍ରୀକୃଷ୍ଣଙ୍କ ଏକନାମ,ଲାବପକ୍ଷୀ, ସମୁଦ୍ର, ବାଣ, ଶର, ଦୀପକ, ଶିବ, ସୁଗନ୍ଧିତ ଦ୍ରବ୍ୟ, ସର୍ପ, ସ୍ତ୍ରୀ, ନାରୀ, ଦିନ, ଖଡ୍ଗ, କପୋତ, ଛନ୍ଦୋବିଶେଷ, ସ୍ତନ, ହାତ, ବାୟସ, କୁଆ, ହଳ, ଗ୍ରହ, ନକ୍ଷତ୍ର, ବେଙ୍ଗ, ଗଗନ, ଆକାଶ, ବସ୍ତ୍ର, ପକ୍ଷୀ, ଈଶ୍ୱର, କଜ୍ଜଳ, ବିଦ୍ୟୁତ୍, ଏକ ରାଗ; (ବିଂ)ନାନାବର୍ଣ୍ଣବିଶିଷ୍ଟ, ଶବଳ, ରଞ୍ଜିତ, ସୁନ୍ଦର, (ଗ୍ରା.ବି) ରତିକ୍ରୀଡ଼ା, ଶାରଙ୍ଗ୍ ଦେଖ ।

ସାରଙ୍ଗକେଶରୀ—ଗ୍ରା.ବି. ସାରଙ୍ଗଗଡ଼ର ନିର୍ମାତା ଉତ୍କଳର ଜଣେ ରାଜା ।

ସାରଙ୍ଗଗଡ଼—ଗ୍ରା.ବି. ଓଡ଼ିଶାର ପ୍ରାଚୀନ ଦୁର୍ଗବିଶେଷ ।

ସାରଙ୍ଗଧର—ପୁଂ. ବି. ଧନୁର୍ଦ୍ଧର,ବିଷ୍ଣୁ ।

ସାରଙ୍ଗନାଥ--ବି(ନାମ)ସାରନାଥ ଦେଖ

ସାରଙ୍ଗପାଣି—ବି. ବିଷ୍ଣୁ ।

ସାରଙ୍ଗମୁଖୀ—ସ୍ତ୍ରୀ.ବିଂ.ପଦ୍ମମୁଖୀ, ସୁନ୍ଦର ମୁଖବିଶିଷ୍ଟା (ସ୍ତ୍ରୀ) ।

ସାରଙ୍ଗଲୋଚନା—ସ୍ତ୍ରୀ.ବିଂ. ଏଣୀନୟନା (ସ୍ତ୍ରୀ),ସାରଙ୍ଗନୟନା,(ନେତ୍ରା,ନେତ୍ରୀ--ଅନ୍ୟରୂପ) ।

ସାରଙ୍ଗରଦ—ବି. ହସ୍ତିଦନ୍ତ ।

ସାରଙ୍ଗିଆ—ଗ୍ରା. ପୁଂ. ବି. ସାରଙ୍ଗଯନ୍ତ୍ର ବାଦନକାରୀ ବ୍ୟକ୍ତି ।

ସାରଙ୍ଗିକ—ବି.(ସାରଙ୍ଗ+ଇକ)ବ୍ୟାଧ

ସାରଙ୍ଗୀ—ସ୍ତ୍ରୀ.ବି.(ସାରଙ୍ଗ + ଈ)ବାଦ୍ୟଯନ୍ତ୍ରବିଶେଷ, (ସ୍ତ୍ରୀ.ବିଂ)ଶବଳା,(ଗ୍ରା.ବି) ଏକପ୍ରକାର ସରୁ ସଳଖ ବାଉଁଶ ।

ସାରଚଳାଇବା—ଗ୍ରା. କ୍ରି. ପଶାଖେଳରେ ଦାନପଡ଼ିବା ଅନୁସାରେ ଗୋଟୀକୁ ଇତସ୍ତତଃ ଚାଳିତ କରିବା ।

ସାରଜ—ବି. ( ସାର+ଜନ୍+ଅ ) ନବନୀତ, ଲହୁଣୀ; (ବିଂ) ସାରଜାତ, (ସ୍ତ୍ରୀ) ସାରଜା ।

ସାରଜାସବ—ବି.ଶାଳଚନ୍ଦନାଦି ସାରୋତ୍ପନ୍ନ ବିଂଶତି ପ୍ରକାରର ଆସବ ।

ସାରଟ—ବି. (ସାର+ସ୍ୱାର୍ଥେ.ଅ) ବହୁରୂପା ଏଣୁଅ, ଗୋଧି ।

ସାରଣ--ବି.(ସୃ+ଣିଚ୍+ଭା.ଅନ) ଚାଳନ ଅପସାରଣ, ଦୋଷଶୁଦ୍ଧି, ସୁଧାରିବା, ଅତିସାରରୋଗ, ଗନ୍ଧଭେଦ,ଭଦ୍ରବଳା, ଆମ୍ରାତକ, ଆମ୍ବଡ଼ା, ରାବଣର ମନ୍ତ୍ରୀବିଶେଷ,ପ୍ରସାରଣୀଲତା,(ଗ୍ରା.ବି)ବିହାର ପ୍ରଦେଶର ଗୋଟିଏ ଜିଲ୍ଲା ।

ସାରଣଗଡ଼—ଗ୍ରା. ବି. ପୂର୍ବେ ସମ୍ବଲପୁର ରାଜାଙ୍କ ଅଧୀନ ଗୋଟିଏ ଗଡ଼ଜାତ ରାଜ୍ୟ, ଏହିରାଜ୍ୟାଧିପତିମାନେ ଗଣ୍ଡଜାତୀୟ ।

ସାରଣା—ସ୍ତ୍ରୀ. ବି. ରସର ସଂସ୍କାରବିଶେଷ (ଗ୍ରା.ବି)ଧନବ୍ୟୟ, ବନ୍ଦୋବସ୍ତ,କଠିଣ ସଂସ୍ଥାନ ।

ସାରଣି—ସ୍ତ୍ରୀ. ବି. (ସୃ+ଣିଚ୍+କ.ଅନି) କ୍ଷୁଦ୍ର ନଦୀ, ପ୍ରସାରଣୀଲତା, ପୁନର୍ନବା, ପୁରୁଣୀ,(ଗ୍ରା.ବି)ଏକପ୍ରକାର ଖେଳନା ।

ସାରଣିକ—ପୁଂ. ବି. ( ସରଣି + ଇକ ) ପଥିକ, (ସ୍ତ୍ରୀ) ସାରଣିକା ।

ସାରଣିକଘ୍ନ—ବି. ( ସାରଣିକ+ହନ୍+କ.ଅ)ବାଟମାରଣା,ଦସ୍ୟୁ,ଯେ ବାଟରେ ପଥିକମାନଙ୍କର ସର୍ବସ୍ୱ ଲୁଟିକରେ ।

ସାରଣୀ—ସ୍ତ୍ରୀ. ବି. (ସୃ+କ.ଅନ+ଈ) କ୍ଷୁଦ୍ର ନଦୀ, ପ୍ରସାରଣୀଲତା,(ଗ୍ରା.ବି) ଏକପ୍ରକାର ଖେଳନା ।

ସାରଣୀଗ୍ରନ୍ଥ—ବି. ( ନାମ ) ଏକପ୍ରକାର ହିନ୍ଦୁ ଜ୍ୟୋତିଷ ଗ୍ରନ୍ଥ ।

ସାରଣ୍ଡ—ବି.(ସୃ+ଣିଚ୍+ମି.ଅଣ୍ଡ)ସର୍ପାଣ୍ଡ, ସାପଡିମ୍ବ ।

ସାରଣ୍ଡା—ଗ୍ରା. ବି. ସୁନ୍ଦରପୁର ନିକଟସ୍ଥ ପାହାଡ଼ବିଶେଷ ।

ସାରତଣ୍ଡୁଳ—ବି. ତଣ୍ଡୁଳସାର, ଚାଉଳ ।

ସାରତରୁ—ବି. କଦଳୀଗଛ, ଖଦିର ।

ସାରଥା—ଗ୍ରା. ବି. ବାଲେଶ୍ୱରଜିଲ୍ଲାରେ ବାଲେଶ୍ୱରର ଉତ୍ତରରେ ପ୍ରବାହିତ ନଦୀ ଓ ତହିଁ ଉପକୂଳସ୍ଥ ବନ୍ଦର ।

ସାରଥି—ବି. ( ସୃ+ଣିଚ୍+କ.ଅଥି ବା ସ+ରଥ+ଇ) ରଥଚାଳକ,କଚୁଆନ, ସହାୟକ, ସମୁଦ୍ର ।

ସାରଥ୍ୟ—ବି.(ସାରଥି+ଭା.ଯ) ସାରଥିର କର୍ମ, ସହାୟ, ସାହାଯ୍ୟ ।

ସାରଥ୍ୟନୈପୁଣ୍ୟ—ବି.(୬ତତ୍)ସାରଥିର କାର୍ଯ୍ୟରେ ପଟୁତା ।

ସାରଦ—ବିଂ.(ସାର+ଦା + କ.ଅ)ଯାହା ବଳଦିଏ, ସାରଦାତ୍ରୀ, (ସ୍ତ୍ରୀ) ସାରଦା ।

ସାରଦା—ସ୍ତ୍ରୀ. ବି. ସରସ୍ୱତୀ,ଦୁର୍ଗା,(ଗ୍ରା.ବି) ଲିପିବିଶେଷ, (ଯା.ବି) ବେହେଲା ପରି ବାଦ୍ୟଯନ୍ତ୍ରବିଶେଷ, (ବିଂ) ସାରଦାତ୍ରୀ, ସାରଦର ସ୍ତ୍ରୀଲିଙ୍ଗ ।

ସାରଦାଆଇନ୍—ଗ୍ରା.ବି. ୧୯୨୯ସାଲରେ ବଡ଼ଲାଟଙ୍କ ବ୍ୟବସ୍ଥାପକ ସଭାରେ ପାଶ୍ ହୋଇଥିବା ବାଲ୍ୟବିବାହ ନିରୋଧକ ଆଇନ୍ ।

ସାରଦାତିଳକ—ବି. ବ୍ରହ୍ମତତ୍ତ୍ୱ ବିଷୟକ ସଂସ୍କୃତ ଗ୍ରନ୍ଥବିଶେଷ ।

ସାରଦାପୀଠ(ତୀର୍ଥ)—ଗ୍ରା. ବି. କାଶ୍ମୀରର ତୀର୍ଥବିଶେଷ ।

ସାରଦାବଙ୍ଗାଲ—ପ୍ରା. (ପାଟଣା)ବି.ଲତାଫଳବିଶେଷ (ଏହା ଫୁଟିପରି ଗୋଲ) ।

ସାରଦାଭୁବନ—ଗ୍ରା. ବି. କଟକଜିଲ୍ଲାର ଝଙ୍କଡ଼ଗ୍ରାମ ।

ସାରଦାମଣ୍ଡଳ—ଗ୍ରା.ବି.ସାରଦାଦେବୀଙ୍କ ଅଧିଷ୍ଠିତ ସ୍ଥାନ, ଝଙ୍କଡ଼ଗ୍ରାମ ।

ସାରଦାରୁ—ବି. ସାରମୟ ଦାରୁ, ସାରମୟ କାଷ୍ଠ ।

ସାରଦାସୁନ୍ଦରୀ—ସ୍ତ୍ରୀ. ବି. ଦୁର୍ଗା ।

ସାରଦେବା—ଗ୍ରା. କ୍ରି. କ୍ଷେତକୁ ଉର୍ବର କରିବାପାଇଁ ସାର ବା ଖତ ଦେବା, ଚୂନାଧାନ କେନ୍ଦୁ ଗ୍ରେଣ୍ଟକର ନେଲେ ଧରିପଡ଼ିବା କାରଣ ତହିଁଉପରେ ପାଉଁଶ ଗୁଣ୍ଡା ଦ୍ୱାରା ବା କୁଲ ଦ୍ୱାରା ରେଖା ଟାଣିବା ।

ସାରଦ୍ରୁମ—ବି. ଖଦିରଦ୍ରୁମ,ଖଇରଗଛ, ସାରପ୍ରଧାନ ବୃକ୍ଷ ।

ସାରଧାତା—ପୁଂ. ବିଂ. ବୋଧଜନୟିତା, ଯେ ବୋଧ ଜନ୍ମାଏ ।

ସାରଧାନ୍ୟ-ବି.ଶ୍ରେଷ୍ଠଧାନ୍ୟ,ଉତ୍ତମଧାନ ।

ସାରନାଥ—ଗ୍ରା.ବି.(ନାମ)କାଶୀନିକଟବର୍ତ୍ତୀ ପ୍ରସିଦ୍ଧ ବୌଦ୍ଧପୀଠ ଓ ପଲ୍ଲୀ ।

ସାରନ୍ଦା(ଣ୍ଡା)—ଗ୍ରା. ବି. ସିଂହଭୂମଜିଲ୍ଲାର ଅନ୍ତର୍ଗତ ହୋମାନଙ୍କ ଅଧ୍ୟୁଷିତ ଗୋଟିଏ ପୀଢ଼ ।

ସାରପଦ-ବି.ବିଷ୍କିରଜାତୀୟ ପକ୍ଷିବିଶେଷ ।

ସାରପାଦପ—ବି. ଧାମନ ବୃକ୍ଷ, ଢ଼ାମଣା ଗଛ (ଏହାର ମଞ୍ଜ ଅତ୍ୟନ୍ତ ଶକ୍ତ) ।

ସାରଭାଙ୍ଗ—ଗ୍ରା. ବି. କୌଣସି ବିଷୟର ବା ଗରବ ବନ୍ଦିର ଶେଷ ମୀମାଂସା ।

ସାରଭାଣ୍ଡ—ବି. ଅକୃତ୍ରିମ ବାଣିଜ୍ୟଦ୍ରବ୍ୟ, ଅକୃତ୍ରିମ ପାତ୍ର, (ମୃଗନାଭ୍ୟାଦି) ।

ସାରଭୂତ—ବିଂ.( ସାର+ଭୂ+କ୍ତ ) ସର୍ବଶ୍ରେଷ୍ଠ, କୌଣସି ପଦାର୍ଥର ସାରସ୍ୱରୂପ ।

ସାରଭୃତ୍—ବିଂ.(ସାର+ଭୃ+କ୍ୱିପ୍) ସାରଗ୍ରାହୀ ।

ସାରମଣ୍ଡୂକ-ବି.ମଣ୍ଡୂକଜାତୀୟ କୀଟ ଭେଦ

ସାରମୟ – ବିଂ. ସାରସ୍ୱରୂପ,ସାର୍ଯ୍ୟାଧିକ ।

ସାରମର୍ମ—ବି.ଅସଲ ମର୍ମ,ସଂକ୍ଷିପ୍ତ ମର୍ମ ।

ସାରମହତ୍—ବିଂ. ସାର ଅଥଚ ମହତ୍, ଅତଏବ ମୂଲ୍ୟବାନ୍ ।

ସାରମିତ—ବି. (ସାର+ମା+କ୍ତ) ବେଦ, ଶ୍ରୁତି ।

ସାରମୂଷିକା—ବି. ଦେବଦାଲୀ, ଏକପ୍ରକାର ଜହ୍ନୀ, ତରଡ଼ା, ଢୁଡ଼ୁକା ।

ସାରମେୟ—ବି.(ସରମା+ଏୟ)କୁକୁର. (ସ୍ତ୍ରୀ) ସାରମେୟୀ ।

ସାରମେୟମଣ୍ଡଳ—ବି. କାଳକାଞ୍ଜମଣ୍ଡଳ ନାମକ ନକ୍ଷତ୍ର ଦ୍ୱୟ ।

ସାରମେୟୌଦନ—ବି.କୁକୁର ଭୋଜନ. ନରକବିଶେଷ ।

ସାରଯମକ-ବି.(ଅଳଙ୍କାର)ଯମକବିଶେଷ ।

ସାରଯୁ—ବିଂ. (ସରଯୁ+ଅ) ସରଯୂନଦୀ ସମ୍ଭୂତ ।

ସାରରୂପ—ବିଂ. (ବି.ଗ୍ରା) ଉତ୍ତମରୂପବିଶିଷ୍ଟ, (ବି) ଶ୍ରେଷ୍ଠରୂପ, ଉତ୍ତମରୂପ ।

ସାରଳା—ଗ୍ରା. ସ୍ତ୍ରୀ. ବି. (ସଂ-ସାରଦା= ସରସ୍ୱତୀ,ଦୁର୍ଗା) କଟକଜିଲ୍ଲାର ଝଙ୍କଡ଼ ପ୍ରଗନ୍ନା ଅନ୍ତର୍ଗତ କନକପୁରରେ ବିରାଜିତା ଦୁର୍ଗାଙ୍କ ପ୍ରତିମା, ସରସ୍ୱତୀ ।

ସାରଳାଘଟ(ଣ୍ଟ)—ଗ୍ରା. ବି. ସାରଳାଠାକୁରାଣୀଙ୍କ ନିକଟରେ ପଣାସଂକ୍ରାନ୍ତିଦିନ ପୂଜାପାଇଥିବା ଘଟ ବା ମାଠିଆ ।

ସାରଳାଦାସ—ଗ୍ରା. ବି. (ନାମ). ଓଡ଼ିଆ ପଦ୍ୟ ମହାଭାରତ ରଚୟିତା, (କଟକଜିଲ୍ଲା ଝଙ୍କଡ଼ ପ୍ରଗନ୍ନାର ତେନ୍ତୁଳିଆଂପଦା ନାମକ ଗ୍ରାମରେ ଏହାଙ୍କର ଜନ୍ମ, ଏହାଙ୍କର ପ୍ରଥମ ନାମ ସିଦ୍ଧେଶ୍ୱର ଥିଲା, ଏ ପ୍ରଥମେ ମୂର୍ଖ ଥିଲେ,ପରେ ସାରଳା ଠାକୁରାଣୀଙ୍କ ଠାରେ ଅଧାପଡ଼ି ବରପାଇ ମହାଭାରତଆଦି ଲେଖିଥିଲେ, ଏହାଙ୍କର ଆଖ୍ୟା ଶେଷରେ ଶୂଦ୍ରମୁନି ବୋଲି ହୋଇଥିଲା, ତତ୍କାଳୀନ ଓଡ଼ିଶାର ରାଜା କପିଳେନ୍ଦ୍ର ଦେବ ଏହାଙ୍କର କବିତାରେ ସନ୍ତୁଷ୍ଟ ହୋଇ ଏହାଙ୍କୁ ପରିଡ଼ା ଉପାଧି ଦେଇଥିଲେ, ତାଙ୍କ ବଂଶଧରମାନେ ସେହି 'ପରିଡ଼ା' ଉପାଧିକୁ ' ପରିଜା ' ବୋଲି ଏବେ ଲେଖୁଅଛନ୍ତି) ।

ସାରଲୋ(ଲୌ)ହ—ବି. ଲୌହସାର, ଇସ୍ପାତ୍, ଖାଣ୍ଟିଲୁହା ।

ସାରଲ୍ୟ—ବି. (ସରଳ+ଯ) ସରଳତା, ନିଷ୍କପଟତା ।

ସାରବତ୍ତ୍ୱ—ବି.(ସାରବତ୍+ଭା.ଯ)ସାରବାନ୍ ହେବା ଅବସ୍ଥା ।

ସାରବନ୍ଦୀ—ଗ୍ରା. ବିଂ. ଶ୍ରେଣୀବଦ୍ଧ, ବି. ଶ୍ରେଣୀବଦ୍ଧକରଣ ।

ସାରବର୍ଜିତ-ବିଂ. ନିଃସଂଶରହିତ,ଯାହାର କାଷ୍ଠମାତ୍ର ସାର ନାହିଁ ।

ସାରବସ୍ତୁ—ବି. ଶ୍ରେଷ୍ଠପଦାର୍ଥ, ବ୍ରହ୍ମ ।

ସାରବାନ୍—ପୁଂ. ବିଂ. (ସାର+ବତ୍) ଶ୍ରେଷ୍ଠାଂଶଯୁକ୍ତ, ସସାର,(ସ୍ତ୍ରୀ)ସାରବତୀ ।

ସାରବାହିବା—ଗ୍ରା. କ୍ରି. ସାରଚଳାଇବା ଦେଖ । [ ଖଇର ।

ସାରଶଲ୍ୟ—ବି. ଶ୍ୱେତଖଦିର, ପାକଡ଼ା

ସାରଶୂନ୍ୟ—ବିଂ.(୩ତତ୍)ଅସାର,ନିକୃଷ୍ଟ, ସାରବର୍ଜିତ ଦେଖ ।

ସାରସ—ବି. (ସରସ+ଅ) ଜଳଚର ପକ୍ଷିବିଶେଷ, ବଡ଼ିଆକାଙ୍କ, ହଂସ,ପଦ୍ମ, ଚନ୍ଦ୍ର, ସ୍ତ୍ରୀକଟ୍ୟାଭରଣ, (ଗୋଠ,ଚନ୍ଦ୍ରହାର), ପକ୍ଷୀ,ପଦ୍ମବନ,ସରୋବରଜଳ, (ବିଂ)ସରୋବର ସମ୍ବନ୍ଧୀୟ,ସରୋବରଜାତ (ଜଳାଦି) ।

ସାରସକ—ବି. ( ସାରସ+ସ୍ୱାର୍ଥେ.କ ) ସାରସ ଦେଖ ।

ସାରସଜଳ—ବି. ସରୋବର ଜଳ ।

ସାରସନ(ନା)—ବି. (ସାର+ସନ୍+କ. ଅ.ଆ) ପୁରୁଷର କଟିବନ୍ଧନ, କମରବନ୍ଧ,କାଞ୍ଚି, ସ୍ତ୍ରୀମାନଙ୍କର କଟ୍ୟାଭରଣ, (ଗୋଠ, ଚନ୍ଦ୍ରହାର, ଅଣ୍ଟାସୂତାଆଦି), ମେଖଳା, କମରପେଟି ।

ସାରସଂଗ୍ରହ—ବି. (୬ତତ୍) ଶ୍ରେଷ୍ଠାଂଶସଙ୍କଳନ, ପ୍ରଧାନ ପ୍ରଧାନ ଭାଗର ଆହରଣ ।

ସାରସଂକଳନ—ବି.(୬ତତ୍)ସାରସଂଗ୍ରହ, ଶ୍ରେଷ୍ଠାଂଶର ସଂଗ୍ରହ, ପ୍ରଧାନ ପ୍ରଧାନ ବିଷୟର ଆହରଣ, ଚୁମ୍ବକକରଣ ।

ସାରସ୍ୱତ—ବିଂ.(ସରସ୍ୱତୀ+ଅ)ସରସ୍ୱତୀ ସମ୍ବନ୍ଧୀୟ, ସାରସ୍ୱତଦେଶୀୟ,ବିଦ୍ୱାନ୍, ପଣ୍ଡିତ, (ସରସ୍ୱତ୍+ଅ) ସମୁଦ୍ର ସମ୍ବନ୍ଧୀୟ,(ବି)ବିଲ୍ୱଦଣ୍ଡ,ଦେଶବିଶେଷ,ଘୃତବିଶେଷ,ସାରସ୍ୱତଦେଶୋଦ୍ଭବ ବ୍ରାହ୍ମଣ,

ଗୌଡ଼ୀୟ ବ୍ରାହ୍ମଣମାନଙ୍କର ୫ଗୋଟି ଶାଖା ମଧ୍ୟରୁ ଏକତମ, କଳ୍ପବିଶେଷ, ସାରସ୍ୱତକଳ୍ପ,ସରସ୍ୱତୀନଦୀ ପୂର୍ବ ଦେଶ-ବିଶେଷ, ପ୍ରସିଦ୍ଧ ସଂସ୍କୃତ ବ୍ୟାକରଣ-ବିଶେଷ, (ଗ୍ରା.ବିଂ) ଶ୍ରେଷ୍ଠ, ଯୋଗ୍ୟ, ସାରଯୁକ୍ତ, ପ୍ରସିଦ୍ଧ, ( ଗ୍ରା.ବି ) ଉତ୍କୃଷ୍ଟ ବସ୍ତୁ, ଶ୍ରେଷ୍ଠଭାବ ।

ସାରସ୍ୱତକଳ୍ପ-ବି. ବ୍ରହ୍ମାଙ୍କ ଉତ୍ସବବିଶେଷ, ସରସ୍ୱତୀଙ୍କର ଉପାସନା ପ୍ରକରଣ ।

ସାରସ୍ୱତକ୍ଷେତ୍ର—ବି. ପ୍ରଭାସର ଅନ୍ତର୍ଗତ ଗୋଟିଏ ତୀର୍ଥକ୍ଷେତ୍ର ।

ସାରସ୍ୱତତୀର୍ଥ—ବି. ସରସ୍ୱତୀନଦୀ ସମ୍ବ-ନ୍ଧୀୟ ତୀର୍ଥ ।

ସାରସ୍ୱତବ୍ରତ—ବି. ମତ୍ସ୍ୟପୁରାଣ ବର୍ଣ୍ଣିତ ସରସ୍ୱତୀଙ୍କ ଉପାସନାମୂଳକ ବ୍ରତବିଶେଷ ।

ସାରସ୍ୱତବ୍ରାହ୍ମଣ—ବି.ଗୌଡ଼ୀୟ ବ୍ରାହ୍ମଣ-ମାନଙ୍କର ୫ଗୋଟି ଶାଖା ମଧ୍ୟରୁ ଏକ ।

ସାରସ୍ୱତୀୟ—ବିଂ. (ସରସ୍ୱତୀ+ଈୟ) ସରସ୍ୱତୀ ସମ୍ବନ୍ଧୀୟ ।

ସାରସ୍ୱତୋତ୍ସବ—ବି. ଶ୍ରୀପଞ୍ଚମୀ, ମାଘ ଶୁକ୍ଳପଞ୍ଚମୀ, ସରସ୍ୱତୀ ପୂଜା ।

ସାରସ୍ୱତ୍ୟ—ବିଂ. ସାରସ୍ୱତ, ସରସ୍ୱତୀ ସମ୍ବନ୍ଧୀୟ । [ ଶୂନ୍ୟ ।

ସାରହୀନ—ବିଂ.(୬ତତ୍)ଅସାର, ସାର-

ସାରା—ବି. ( ସାର+ଆ ) କୃଷ୍ଣତ୍ରିବୃତା, କଳାତିହୁଡ଼ି, ଦୂବ, ଦୁବ, ଶାତଳା, ଦେହକଅସିଂହ,କଦଳୀ,ତାଳଶପତ୍ର, (ବିଂ) ନ୍ୟାଯ୍ୟ, (ଗ୍ରା.ବିଂ, ସଂ ସମଗ୍ର) ସମୁଦାୟ, ସମଗ୍ର, ସମ୍ପୂର୍ଣ୍ଣ, (ସଂ-ସାର) ସାରାଂଶ, ସାରଯୁକ୍ତ,ସାରଗର୍ଭ,ସାର-ବାନ୍, ମୀମାଂସିତ, ପ୍ରହାରାଦି ଦ୍ୱାରା ଶାସିତ, ସମ୍ପନ୍ନ, ନଷ୍ଟାଦୃତ, (କ୍ରି.ବିଂ) ଯାକ,ତମାମ, (ଗ୍ରା.ବି) ଠିକ୍,ସାରାଂଶ ମାପ, ସମାପ୍ତକରଣ, ମରାମତିକରିବା ।

ସାରାଂଶ—ବି(କ.ଧା)ପଦାର୍ଥର ଶ୍ରେଷ୍ଠାଂଶ ଅରକ, ମର୍ମ, କଥାର ମର୍ମ, ଚୁମ୍ବକମର୍ମ

ସାରାକ—ଗ୍ରା.ବି. ପଶ୍ଚିମ ବଙ୍ଗବାସୀ ଜନ୍ମ ଶ୍ରେଣୀୟ ଜାତିବିଶେଷ ।

ସାରାକଥା—ଗ୍ରା.ବି.ଶେଷ ସିଦ୍ଧାନ୍ତ ରୂପେ ମୀମାଂସିତ କଥା, ସାରଯୁକ୍ତ ବିଷୟ ।

ସାରାକରିଦେବା—ଗ୍ରା. କ୍ରି. ଭୂଇଁତଳକୁ ସମାନକରିବା, ପରିଷ୍କାରକରିବା, ସମତୁଲ-କରିବା, ଶାନ୍ତିଦେବା, ମୀମାଂସାକରିବା. ବିବାଦ ବା ମତଭେଦକୁ ମଧ୍ୟସ୍ଥତା ଦ୍ୱାରା ମୀମାଂସାକରିବା, କାର୍ଯ୍ୟସମ୍ପନ୍ନ କରିବା ।

ସାରାକରିବା—ଗ୍ରା. କ୍ରି. ଶେଷ ମୀମାଂସା କରିବା, ପ୍ରହାରାଦି ଦ୍ୱାରା ଆୟତ୍ତକରିବା

ସାରାଛୁଡ଼ିବା—ଗ୍ରା.କ୍ରି. ଠିକ୍ ଭାବରେ ବା ନିଶ୍ଚିତ ରୂପେ ମୀମାଂସିତ ହେବା ।

ସାରାଜୀବନ—ଗ୍ରା.ଅବ୍ୟ. ଜୀବନ ତମାମ୍, ଯେତେଦିନ ଯାଏ ବଞ୍ଚିଥିବ,ଆଜୀବନ ।

ସାରାଦର(ଦାମ୍,ଭାଉ,ମୂଲ)—ଗ୍ରା.ବି.ସର୍-ଦର, ଶେଷ ସିଦ୍ଧାନ୍ତ ରୂପେ ମୀମାଂସା କରାଯିବା ଦର ।

ସାରାଦିନ—ଗ୍ରା. ବି. ଅ. ସମଗ୍ର ଦିବସ, ଦିନତମାମ୍, ଦିନଯାକ ।

ସାରାଦୁନିଆ—ଗ୍ରା.ଗ୍ରା.ବି.ଅ.ସଂସାରଯାକ, ସର୍ବତ୍ର, ସମଗ୍ର ଜଗତ ।

ସାରାବତା(ତୋ)ଇବା(କହିବା)—ଗ୍ରା.କ୍ରି. କୌଣସି ବ୍ୟକ୍ତିକୁ କଥକର ମନର କଥା ବା ଅଭିପ୍ରାୟ କହିଦେବା ।

ସାରାବନା(ନୋ)ଇବା—ଗ୍ରା. କ୍ରି. ଦଣ୍ଡ-ଦ୍ୱାରା ପରାସ୍ତ ବା ସତର୍କ ବା ଅସ-ହାୟ କରିବା ।

ସାରାମ୍ଳ—ବି.ସାର+ଅମ୍ଳ ଜମ୍ବୀର ଲେମ୍ବୁ

ସାରାର୍ଥ—ବି. (କ.ଧା) ମୁଖ୍ୟଅର୍ଥ, ନିଷ୍କର୍ଷ ଅର୍ଥ, ପ୍ରଧାନ ତାତ୍ପର୍ଯ୍ୟ ।

ସାରାଳ—ବି. ତିଳ, ରାଶି ।

ସାରାସାର—ବିଂ. ସାର ଓ ଅସାର, (ବି) ସାରାଂଶ ଓ ଅସାରାଂଶ,ସାର ଓ ଅସାର-ବସ୍ତୁ ।

ସାରାସାରକରିବା—ଗ୍ରା. କ୍ରି. କୌଣସି ବିଷୟର ଭଲ ମନ୍ଦ ବାଛିବା ।

ସାରି(ରୀ)—ବି.(ସାର+ଇ.ଈ) ପାଶକ, ପଶାର ଗୋଟି, ପଶାଖେଳାଳି, ସାରୀ-ଚଢ଼େଇ, ମାଇନା.(ଗ୍ରା.ବି-ସଂ-ଶ୍ରେଣୀ) ଧାଡ଼ି, ଶ୍ରେଣୀ, ପଂକ୍ତି, (ସ୍ତ୍ରୀ) ସାରୀଭଳି ପ୍ରିୟା ସ୍ତ୍ରୀଲୋକ ।

ସାରିଆ—ଗ୍ରା.ବି. ସାରିନାମ୍ନୀ ସ୍ତ୍ରୀର ଡାକ-ନାମ, (ବିଂ) ଗେହ୍ଲା, ଅତି ସ୍ନେହରେ ଲାଳିତ ପାଳିତ, ଉତ୍କୃଷ୍ଟ ।

ସାରିକ(କା)—ବି (ସୃ+ଣିଚ୍+କ.ଅକ. ଆ)ପକ୍ଷିବିଶେଷ, ସାରି ଚଢ଼େଇ, ବଣି-ଚଢ଼େଇ, ପଶାଖେଳର ଗୋଟି, ବେହେଲାର ଧନୁ, (ବିଂ) ରେଚକ, ଭେଦଜନକ, ସାରକର ସ୍ତ୍ରୀଲିଙ୍ଗ ।

ସାରିକାବଣ(ନ)— ବି. ସାରିକାବହୁଳ ବନ ।

ସାରିକ୍ଷୁ—ଗ୍ରା. ବିଂ. ଅବ୍ୟର୍ଥ, ଅମୋଘ ।

ସାରି(ରେ)ଗ(ଗା)ମ(ମା)—ଗ୍ରା. ବି. ହିନ୍ଦୁ ସଙ୍ଗୀତର ସ୍ୱରଗ୍ରାମ ସପ୍ତକ, ସଙ୍ଗୀତର ପ୍ରାଥମିକ ସାତଗୋଟି ସ୍ୱର ।

ସାରିଛ(ଯ)—ଗ୍ରା.ବିଂ.ଅ. ସଦୃଶ, (କ୍ରି) (ତୁମ୍ଭେ) କାର୍ଯ୍ୟବିଶେଷ କରିଅଛ ?

ସାରିଣୀ—ସ୍ତ୍ରୀ. ବି. (ସୃ+କ.ଇନ୍+ଈ) ମହାଦେବୀ, ମହାବଳା, ବଜ୍ରମୂଳୀ, କାର୍ପାସୀ, କପାଗଛ, କପାସିଆଗଛ, ଦୂରାଲଭା, କପିଳ ଶିଂଶପା,ଏକପ୍ରକାର ଶିଶୁଗଛ, ପସରଣୀ, ରକ୍ତ ପୁନର୍ନବା, ନାଳପୂର୍ଣ୍ଣୀ. ( ସାରିନ୍+ସ୍ତ୍ରୀ.ଈ ) ସାରିର ସ୍ତ୍ରୀଲିଙ୍ଗ, (ଗ୍ରା.ବି) ପଶାକାଠି ।

ସାରିଦେବା—ଗ୍ରା. କ୍ରି. ସାରିବା ଦେଖ ।

ସାରିନ୍ଦା—ଗ୍ରା.ବି.ସାରଙ୍ଗୀ ନାମକ ବାଦ୍ୟ ଯନ୍ତ୍ର. ଘୋଡ଼ା ବାଳରେ ତିଆରି ଧନୁ ଦ୍ୱାରା ବାଦିତ ୩ଗୋଟି ତାର ଦ୍ୱାରା ବନ୍ଧା ୩ଟି ତାରବିଶିଷ୍ଟ ଯନ୍ତ୍ରବିଶେଷ ।

ସାରିପକା(କେ)ଇବା—ଗ୍ରା.କ୍ରି. ସାରିବା, ନାଶକରିବା ।

ସାରିଫଲ(ଫଲକ)ବି. ପଶାର ଗୋଟି ।

ସାରିବ—ବି. ଶାଳିଧାନ୍ୟ,ଷଷ୍ଟିକଧାନ୍ୟ, ଷାଠିଏଧାନ ।

ସାରିବା—ବି. (ସୃ+ଣିଚ୍=ସାର+କ. ବ+ଆ)ଶାରିବା ଦେଖ,(ଗ୍ରା.କ୍ରି)ସମାପ୍ତ କରିବା, ଶେଷକରିବା, ସମ୍ପୂର୍ଣ୍ଣକରିବା, ସମ୍ପନ୍ନ କରିବା, ନଷ୍ଟକରିବା, ବିନାଶ କରିବା, ସର୍ବନାଶ ଘଟାଇବା,ଅପବ୍ୟୟ

କରିବା, ଗୃହୋପକରଣାଦି ବ୍ୟବହାର କରିବା, ପାନକରିବା, ଭୋଜନକରିବା, ଅପସାରିତକରିବା, ଘୁଞ୍ଚାଇବା, ଗୃହୀତ କରିବା, ଅପମାନିତ ଓ ଲଜ୍ଜିତ କରାଇବା, ସମସ୍ତ କଷ୍ଟାଇବାକୁ ଅନ୍ୟକୁ କ୍ଷମ-କରିବା, କାଳକାଟିବା, ଶୌଚକ୍ରିୟାରେ ଜଳଆଦି ବ୍ୟବହାର କରିବା, (ପ୍ରା-ପାଟଣା,କନ୍ଧାନଭାଷା)କ୍ରି.ଘଷିବା,ଆଉଁଚିବା ।

ସାରଲୋଣୁଆ—ପ୍ରା, (ଯାଜପୁର,ବି)ଗ୍ରାମ୍ୟ ଖେଳବିଶେଷ ।

ସାରିଷ୍ଠ—ବିଂ.(ସାର+ଇଷ୍ଠ)ସର୍ବସୁନ୍ଦର

ସାରସାର—ଗ୍ରା. ବିଂ. ଶ୍ରେଣୀଶ୍ରେଣୀ,ଧାଡ଼ିଧାଡ଼ି, ଶ୍ରେଣୀବଦ୍ଧ ।

ସାରି—ବି. (ସାର + ଇ) ସାରିକା ଚଢ଼େଇ, ଦେଉଳଆସିଟ୍,ପାଶକ,ପଶା,(ପୁଂ.ବିଂ. ସୃ+କ.ଇନ୍) ଅନୁସରଣକାରୀ,ପଶ୍ଚାଦ୍‌ଗମନକାରୀ ।

ସାରୁ—ଗ୍ରା.ବି.କୃଷିଜାତ ଓ ଅରଣ୍ୟଜାତ ମୂଳ,(କନ୍ଦ) ଶାକବିଶେଷ, କଚୁ,(କୃଷିସ୍ଥାନ ଓ ଋତୁଭେଦରେ ସାରୁର ନାନା-ପ୍ରକାର ନାମ ଅଛି, ଯଥା—ବଡ଼ସାରୁ, ପାଣିସାରୁ,କୁକୁସାରୁ,ମାଣସାରୁ,ବାରହା-ଲେଣ୍ଡିସାରୁ, ଶଙ୍ଖସାରୁ, ବଆଳିଆ-ସାରୁ, ମାଙ୍କଡ଼ଗାଣ୍ଡିଆସାରୁ,ମୁଣ୍ଡା.ନାଡ଼-ସାରୁ, ଛେଳେଙ୍ଗିସାରୁ, ଝଙ୍କଡ଼ସାରୁ, ମୁକୁତାକେଶ, ପେଣ୍ଡିସାରୁ, ଗୁଆଟିଆ ବା ମାଣିକ୍‌ଗୁଡ଼ ସାରୁ ଇତ୍ୟାଦି) ।

ସାରୁଆ—ଗ୍ରା. ବିଂ. ସାରୁକୃଷି ଦ୍ୱାରା ଜୀବିକା ନିର୍ବାହକାରୀ, (ବି) ପଣ୍ଡାଅର ବ୍ରାହ୍ମଣ, ସାରୁକୃଷିକାରୀ ନିକୃଷ୍ଟଶ୍ରେଣୀର ବ୍ରାହ୍ମଣ ।

ସାରୁଆପଣ୍ଡା—ଗ୍ରା. ବି. ସାରୁକୃଷକାରୀ ନିକୃଷ୍ଟ ଶ୍ରେଣୀର ବ୍ରାହ୍ମଣବିଶେଷ ।

ସାରୁଡ଼ାଙ୍କ(ନଡ଼ା)—ଗ୍ରା. ବି. ସାରୁଗଛ ପତ୍ରର ଡେମ୍ଫ ।

ସାରୁପତ୍ରିଆ—ଗ୍ରା.ବି. ସାରୁପତ୍ରପରି ପତ୍ର-ବିଶିଷ୍ଟ ଏକପ୍ରକାର ବନ୍ୟଗୁଳ୍ମ ।

ସାରୁପୋଡ଼ା—ଗ୍ରା. ବି. ଅଗ୍ନିରେ ଦଗ୍ଧ (ସିଦ୍ଧ) ହୋଇଥିବା ସାରୁ, (ଲ.ଅର୍ଥ) ମୂଲ୍ୟହୀନ ଓ ଅସାର ବସ୍ତୁ,ଅତି ସାମାନ୍ୟ ବସ୍ତୁ ।

ସାରୁବାଇଗଣଆଳୁପରିବା—ଗ୍ରା. ବି. ନାନାପ୍ରକାର ମିଶ୍ରିତ ପରିବା ।

ସାରୁମୁଣ୍ଡା—ଗ୍ରା. ବି. ସାରୁମୂଳର ବଡ଼ ବଡ଼ କନ୍ଦ (ମୂଳ) ।

ସାରୁସାରୁ—ଗ୍ରା.ଅବ୍ୟ.ଗାରୁଗାରୁ, ବିରକ୍ତି ଭାବ ପ୍ରକାଶ ସୂଚକ ମୁଖବିକୃତ କରିବା ଓ ଗାଉଁ ଗାଉଁ ହେବା ।

ସାରୁପବସ୍ତ୍ର— ବି. ସ୍ୱରୂପବସ୍ତ୍ରା ଗାଈର ଦୁଗ୍ଧ ।

ସାରୂପ୍ୟ—ବି. (ସରୂପ+ଭା.ଯ)ସରୂପତା, ସମାନରୂପତା, ମୁକ୍ତିବିଶେଷ, ଯେଉଁ ମୁକ୍ତି ଦ୍ୱାରା ଭକ୍ତ ଭଗବାନଙ୍କ ରୂପପରି ସମାନ ରୂପ ପ୍ରାପ୍ତ ହୁଏ ।

ସାରେ—ଗ୍ରା. ବି ଓ ବିଂ. ଏକସାର,ଏକ-ସେଟ୍, (କ୍ରି) ମୁଁ ଶେଷକରେ ।

ସାରେଙ୍ଗ(ଙ୍ଗ୍)—ଯା.ବି.ସାରଙ୍ଗ,ବୋଟ୍‌ର ବା ଜାହାଜର ନାବିକମାନଙ୍କ ସର୍ଦ୍ଦାର. ନାବିକ, ନୌକାର ମଙ୍ଗଧରା ବ୍ୟକ୍ତି ।

ସାରେଣୀ—ଗ୍ରା. ବି. ଫମ୍ପାକଇଥରେ ବା ବେଳରେ ଉଆର ଖେଳନା, ସାରଣୀ

ସାରେଣୀସ୍ରୋତ—ଗ୍ରା.ବି.ଜୁଆର ଆସିବା ବେଳେ ନଦୀମୁହାଣ ନିକଟରେ ସମୁଦ୍ରର ଯେଉଁ ସ୍ରୋତ ନଦୀର ତଳେ ଠେଲି ଭିତରକୁ ପଶିଆସେ ।

ସାରେନ୍ଦ୍ରକ—ବି. ଅନନ୍ତମୂଳର ରସ ।

ସାରୋଦ୍ଧାର—ବି.(୬ତତ୍)ସାରର ଗ୍ରହଣ, ସାରସଂଗ୍ରହ, ବୈଦ୍ୟକ ଗ୍ରନ୍ଥବିଶେଷ ।

ସାରୋପ—ବିଂ. (ସ + ଆରୋପ) ବ.ବ୍ରୀ, ଆରୋପଯୁକ୍ତ, (ସ୍ତ୍ରୀ) ସାରୋପା ।

ସାରୋପା—ସ୍ତ୍ରୀ.ବିଂ. ସାରୋପର ସ୍ତ୍ରୀଲିଙ୍ଗ, (ବି) ଶବ୍ଦର ଲକ୍ଷଣାଶକ୍ତିବିଶେଷ ।

ସାରୋଷ୍ଟ୍ର—ବି. ସୁରାଷ୍ଟ୍ର,ଗୁଜରାଟ,ଦେଶ-ବିଶେଷ ।

ସାରୋଷ୍ଟ୍ରିକ—ବି. ( ସାରୋଷ୍ଟ୍ର+ଇକ ) ସୌରାଷ୍ଟ୍ରିକ, ଏକପ୍ରକାର ବିଷ ।

ସାର୍ଗଲ—ବିଂ. ( ସ+ଅର୍ଗଲ ) ବ.ବ୍ରୀ; ଅର୍ଗଲବିଶିଷ୍ଟ ।

ସାର୍ଗିକ—ବିଂ. (ସର୍ଗ+ଇକ) ସୃଷ୍ଟିକରି-ବାକୁ ସମର୍ଥ ।

ସାର୍ଙ୍ଗୀ—ବି. ସାରଙ୍ଗୀ, ବାଦ୍ୟବିଶେଷ ।

ସାର୍ଚ୍ଚିଃ—ବିଂ. ଅର୍ଚ୍ଚିସଦ୍ଭୂତ ବର୍ତ୍ତିମାନ, ସତେଜସ୍କ, ତେଜୋଯୁକ୍ତ ।

ସାର୍ଜ—ବି. (ସର୍ଜ+ସ୍ୱାର୍ଥେ.ଅ) ସର୍ଜରସ, ଝୁଣା, ସାଲଝୁଣା ।

ସାର୍ଟିଫିକେଟ୍—ଯା. ବି. ପ୍ରଶଂସାପତ୍ର, ନିଦର୍ଶନପତ୍ର ।

ସାର୍ଥ—ବିଂ. (ସ+ଅର୍ଥ)ବ.ବ୍ରୀ;ଧନବାନ୍, ଅର୍ଥଯୁକ୍ତ, ସଫଳ, (ବି) ବଣିକ୍,ବଣିକ୍ସମୂହ, ଜନ୍ତୁସଂଘ, ଜୀବସମୂହ, ସମୂହ, ସାଙ୍ଗୀ, ସାଥୀ, ସହଯାତ୍ରୀ, ( ଗ୍ରା,ବିଂ ) ଶ୍ରେଷ୍ଠ ।

ସାର୍ଥକ—ବିଂ. (ସାର୍ଥ + କ) ଅର୍ଥଯୁକ୍ତ, ସଫଳ, ଅର୍ଥାନୁଯାୟୀ, ଶବ୍ଦାନ୍ତରକୁ ଅପେକ୍ଷା ନ କରି ଅର୍ଥବୋଧକାରକ (ଶବ୍ଦ),କୃତାର୍ଥ,ଯାହାର ଉଦ୍ଦେଶ୍ୟ ସିଦ୍ଧ ହୋଇଅଛି, ପ୍ରୟୋଜନୀୟ, ଦରକାରୀ, ଫଳଯୁକ୍ତ, (ବି) ବଣିକ୍‌ମାନଙ୍କର ଅଧି-ନାୟକ, (ଗ୍ରା.ବିଂ) ପ୍ରଶଂସାର୍ହ,ପରୋପ-କାରୀ, ମୂଲ୍ୟବାନ୍ ।

ସାର୍ଥକକରିବା—ଗ୍ରା, କ୍ରି. କୃତାର୍ଥକରିବା, ଉଦ୍ଦେଶ୍ୟ ସିଦ୍ଧ କରିବା ।

ସାର୍ଥକଜୀବନ—ବି(କ.ଧା)ଯେଉଁ ଜୀବନର ଶେଷ ଉଦ୍ଦେଶ୍ୟ ସିଦ୍ଧ ହୋଇଅଛି,(ବିଂ) ଯେଉଁ ବ୍ୟକ୍ତି ଜୀବନରେ ଉଦ୍ଦେଶ୍ୟ ସାଧ-ନରେ ସାର୍ଥ ହୋଇଅଛି,(ଗ୍ରା,ବି)ଯେଉଁ ଜୀବନ ପରର ଉପକାର ବା ପ୍ରୟୋ-ଜନରେ ଲାଗେ ।

ସାର୍ଥକତା(ତ୍ୱ)—ବି. ସଫଳତା, ଅର୍ଥାନୁ-ଯାୟିତା, ଆବଶ୍ୟକତା, ଅନ୍ୱର୍ଥତା ।

ସାର୍ଥକତାସମ୍ପାଦନ-ବି.(୬ତତ୍)ଅନ୍ୱର୍ଥତା-ସାଧନ, ସାଫଲ୍ୟସାଧନ, ସଫଳତା-କରଣ ।

ସାର୍ଥକନାମା—ପୁଂ.ବିଂ. (ବ.ବ୍ରୀ) ନାମର ଉପଯୁକ୍ତ କାର୍ଯ୍ୟକାରୀ, ସତ୍‌କାର୍ଯ୍ୟଦ୍ୱାରା ଖ୍ୟାତନାମା ।

ସାର୍ଥଧର—ପୁଂ.ବି.ବଣିକ୍‌ଦଳର ନେତା-ବିଶେଷ ।
ସାର୍ଥପତି—ବି. ସାର୍ଥବାହ, ବଣିକ୍ ।
ସାର୍ଥପାଳ—ବି. ( ସାର୍ଥ+ପାଳି+ଅ ) ବଣିକ୍‌ଦଳର ନେତା ।
ସାର୍ଥବତ୍—ବିଂ. (ସାର୍ଥ+ବତ୍) ଯଥାର୍ଥ, ଅର୍ଥଯୁକ୍ତ ।
ସାର୍ଥବାନ୍—ପୁଂ.ବିଂ. ସାର୍ଥବତ୍ ଦେଖ ।
ସାର୍ଥବାହ—ବି. (ସାର୍ଥ+ବହ୍+କ.ଅ) ଦଳବଦ୍ଧହୋଇ ବାଣିଜ୍ୟ କରିବା ବଣିକ୍‌ଦଳ, ପଥପ୍ରଦର୍ଶକ, ବଣିକ୍ ।
ସାର୍ଥବାହନ—ବି. ସାର୍ଥବାହ ଦେଖ ।
ସାର୍ଥଭୃତ୍—ବି. ( ସାର୍ଥ+ଭୃ+କ୍ୱିପ୍ ) ସାର୍ଥବାହ ଦେଖ ।
ସାର୍ଥସଂଚୟ—ବିଂ. ଅର୍ଥସଞ୍ଚୟଯୁକ୍ତ,ଅର୍ଥ-ସଞ୍ଚୟବିଶିଷ୍ଟ ।
ସାର୍ଥୁକ—ଗ୍ରା. ବିଂ. (ସଂ-ସାର୍ଥକ)ସାର୍ଥକ ଦେଖ । [ ଦେଖ ।
ସାର୍ଥକି—ଗ୍ରା.ବି.(ସଂ-ସାର୍ଥକ୍ୟ)ସାର୍ଥକତା
ସାର୍ଦ୍ର—ବିଂ. ଆର୍ଦ୍ରତାଯୁକ୍ତ, ଓଦା ।
ସାର୍ଦ୍ଧ--ବିଂ.(ସ+ଅର୍ଦ୍ଧ)ଅର୍ଦ୍ଧଯୁକ୍ତ,ସାଢ଼େ, ଅର୍ଦ୍ଧେସହିତ, ସହିତ, ସହାର୍ଥ ।
ସାର୍ଦ୍ଧଂ—(ସଂ-ଅବ୍ୟ)ସହିତ ।
ସାର୍ଦ୍ଧବର୍ଷ(ସମ୍ବତ୍ସର)—ବି. ଦେଢ଼ବର୍ଷ ।
ସାର୍ଦ୍ଧବାର୍ଷିକ—ବିଂ.(ସାର୍ଦ୍ଧବର୍ଷ+ଇକ) ଦେଢ଼ବର୍ଷବ୍ୟାପୀ, ଅର୍ଦ୍ଧବର୍ଷବ୍ୟାପୀ ।
ସାର୍ଦ୍ଧଶତ—ବି. ବିଂ. ଦେଢ଼ଶହ ।
ସାର୍ପ—ବି (ସର୍ପ+ସ୍ୱାର୍ଥେ-ଅ)ସର୍ପ,ସାପ, ଅଶ୍ଳେଷା ନକ୍ଷତ୍ର, (ବିଂ)ସର୍ପସମ୍ବନ୍ଧୀୟ ।
ସାର୍ପବିଦ୍ୟକ—ପୁଂ. ବିଂ. (ସର୍ପବିଦ୍ୟା+ଇକ)ସର୍ପସମ୍ବନ୍ଧୀୟ ବିଦ୍ୟା ବା ତନ୍ତ୍ରରେ ପାରଙ୍ଗମ ।
ସାର୍ପିଷ— ବିଂ.(ସର୍ପିସ୍+ଅ)ସର୍ପିଃସମ୍ବନ୍ଧୀ, ଘୃତ ସମ୍ବନ୍ଧୀୟ, (ବି)ଘୃତଦ୍ୱାରା ସଂସ୍କୃତ ବସ୍ତୁ ।
ସାର୍ପିଷ୍କ--ବିଂ.(ସର୍ପଃ+କ)ଘୃତଦ୍ୱାରାସଂସ୍କୃତ
ସାର୍ପ୍ୟ—ବିଂ. (ସର୍ପ+ଯ) ସର୍ପସମ୍ବନ୍ଧୀୟ, (ବି) ଅଶ୍ଳେଷାନକ୍ଷତ୍ର ।
ସାର୍ବ(ର୍ବ)—ବିଂ.(ସର୍ବ+ଅ)ସର୍ବସମ୍ବନ୍ଧୀୟ, ସର୍ବହିତକର,(ବି)ବୁଦ୍ଧ,ଜିନ,ବୌଦ୍ଧଯତି
ସାର୍ବ(ର୍ବ)କାଳୀକ—ବିଂ. ( ସର୍ବକାଳ+ଇକ) ସର୍ବକାଳସମ୍ବନ୍ଧୀୟ, ସର୍ବଦା ମିଳିବା (ବସ୍ତୁ), ଯାହା ସବୁ ଋତୁରେ ମିଳେ, ସର୍ବକାଳୋତ୍ପନ୍ନ, ସର୍ବକାଳରେ କର୍ତ୍ତବ୍ୟ ।
ସାର୍ବକାମସମୃଦ୍ଧ-ବି.କର୍ମମାସର ଷଷ୍ଠଦିନ ।
ସାର୍ବକାମିକ—ବିଂ. ସକଳ କାମନାଭବ, ଯାହା ସବୁପ୍ରକାର କାମନା କରି କରାଯାଏ ।
ସାର୍ବଗତିକ—ବିଂ.ସବୁପ୍ରକାର ଯଜ୍ଞକାରୀ
ସାର୍ବଗୁଣିକ—ବିଂ. ସର୍ବଗୁଣଭବ, ସବୁ-ଗୁଣସମ୍ବନ୍ଧୀୟ ।
ସାର୍ବଚର୍ମୀଣ—ବିଂ. ସକଳ ଚର୍ମନିର୍ମିତ ।
ସାର୍ବଜନିକ—ବିଂ. ( ସର୍ବଜନ+ଇକ ) ସର୍ବଜନସମ୍ବନ୍ଧୀୟ, ସମସ୍ତଙ୍କର ପ୍ରୟୋଜନୀୟ ବା ଉପଯୁକ୍ତ,ସର୍ବଲୋକବିଦିତ, ସକଳ ଲୋକର ଇଷ୍ଟସାଧକ ।
ସାର୍ବଜନୀନ—ବିଂ. ( ସର୍ବଜନ+ଈନ ) ସମସ୍ତଙ୍କ ପ୍ରତି ପ୍ରଯୁଜ୍ୟ, ସାର୍ବଜନିକ ଦେଖ ।
ସାର୍ବଜନ୍ୟ—ବିଂ. ସାର୍ବଜନୀନ ଦେଖ ।
ସାର୍ବଜ୍ଞ(ଜ୍ଞ୍ୟ)—ବି. (ସର୍ବଜ୍ଞ+ଷ୍ଣ.ଅ.ଯ) ସର୍ବଜ୍ଞତା, ସର୍ବଜ୍ଞର ଭାବ ବା ଅବସ୍ଥା ।
ସାର୍ବତ୍ରିକ—ବିଂ. (ସର୍ବତ୍ର+ଇକ)ସର୍ବତ୍ର ବ୍ୟାପୀ, ସର୍ବତ୍ରପ୍ରାପ୍ୟ, ସର୍ବସ୍ଥାନ ଉପଯୁକ୍ତ ।
ସାର୍ବଦେଶିକ—ବିଂ. ସର୍ବଦେଶସମ୍ବନ୍ଧୀୟ, ସାର୍ବତ୍ରିକ ଦେଖ ।
ସାର୍ବଧାତୁକ—ବିଂ. ସମସ୍ତ ଧାତୁସମ୍ବନ୍ଧୀୟ
ସାର୍ବନାମ୍ନ୍ୟ—ବି. ବହୁସଂଖ୍ୟକ ନାମ ।
ସାର୍ବବିଭକ୍ତିକ—ବିଂ.ସର୍ବବିଭକ୍ତିସମ୍ବନ୍ଧୀୟ
ସାର୍ବବେଦ୍ୟ--ବି.ସର୍ବବେଦବିତ୍ ବ୍ରାହ୍ମଣ ।
ସାର୍ବଭୌତିକ—ବିଂ. (ସର୍ବଭୂତ+ଇକ) ସର୍ବଭୂତସମ୍ବନ୍ଧୀୟ, ସର୍ବଭୂତ ନିମିତ୍ତ ।
ସାର୍ବଭୌମ—ବିଂ. (ସର୍ବଭୂମି+ଅ)ସର୍ବଭୂମିସମ୍ବନ୍ଧୀୟ, ଜଗଦ୍‌ବିଖ୍ୟାତ, ସର୍ବତ୍ର ବିଦିତ, ବିଶ୍ୱବ୍ୟାପୀ, (ବି) ସମ୍ରାଟ୍, ଚକ୍ରବର୍ତ୍ତୀ, ନୃପାଗ୍ରଣୀ, ଉତ୍ତରଦିଗ୍ ଗଜ, ପଣ୍ଡିତମାନଙ୍କର ଉପାଧିବିଶେଷ ।
ସାର୍ବଯଜ୍ଞିକ—ବିଂ. ସର୍ବଯଜ୍ଞସମ୍ବନ୍ଧୀୟ ।
ସାର୍ବରୋଗିକ—ବିଂ. ସର୍ବପ୍ରକାର ରୋଗ-ସମ୍ବନ୍ଧୀୟ ।
ସାର୍ବଲୌକିକ—ବିଂ.(ସର୍ବଲୋକ+ଇକ) ସର୍ବଲୋକସମ୍ବନ୍ଧୀୟ,ସର୍ବଲୋକବିଖ୍ୟାତ, ସର୍ବଶ୍ରେଷ୍ଠ, ପୃଥିବୀର ସର୍ବତ୍ର ପରିଚିତ, (ସ୍ତ୍ରୀ) ଲୌକିକୀ ।
ସାର୍ବବର୍ଣ୍ଣିକ—ବିଂ.ସକଳ ବର୍ଣ୍ଣସମ୍ବନ୍ଧୀୟ, ବ୍ରାହ୍ମଣାଦି ଚତୁର୍ବର୍ଣ୍ଣସମ୍ବନ୍ଧୀୟ ।
ସାର୍ବବିଦ୍ୟ—ବିଂ. ସର୍ବବିଦ୍ୟାଯୁକ୍ତ ।
ସାର୍ବବେଦ—ପୁଂ. ବିଂ. କୃତସର୍ବସ୍ୱ-ଦକ୍ଷିଣ ବିଶ୍ୱଜିତ୍ ଯାଗ, ଯେ ସର୍ବସ୍ୱ ଦକ୍ଷିଣା ଦେଇ ବିଶ୍ୱଜିତ୍ ଯାଗ କରିଅଛି
ସାର୍ବବେଦ୍ୟ—ବି. ସର୍ବବେଦଜ୍ଞ ବ୍ରାହ୍ମଣ, (ବିଂ) ସର୍ବବେଦବିତ୍ ।
ସାର୍ବବୈଦିକ--ବିଂ. ସର୍ବବେଦସମ୍ବନ୍ଧୀୟ, ସର୍ବବେଦଜ୍ଞ ।
ସାର୍ବି(ର୍ବେ)-ଯା.ବି.(ପ୍ରା.ଗଞ୍ଜାମ)ବି.ସର୍ଭେ ।
ସାର୍ଷପ—ବିଂ. (ସର୍ଷପ+ଅ) ସର୍ଷପସମ୍ବନ୍ଧୀୟ, ସର୍ଷପଜାତ,(ବି) ସର୍ଷପ ତୈଳ, ସୋରିଷତେଲ ।
ସାର୍ଷପତୈଳ—ବି. ସୋରିଷ ତେଲ ।
ସାର୍ଷ୍ଟି—ବି. (ସ+ଋଷ୍ଟି) ମୁକ୍ତିବିଶେଷ, ଯେଉଁ ମୁକ୍ତିଲାଭ କଲେ ଭକ୍ତ ଈଶ୍ୱରଙ୍କ ପରି ଐଶ୍ୱର୍ଯ୍ୟଶାଳୀ ହୁଏ ।
ସାର୍ଷ୍ୟ—ଗ୍ରା. ବି. ଋଷି ।
ସାଲ୍(ଲ)—ଯା. ବି. ସନ, ଅବ୍ଦ, ବର୍ଷ, ଘୋଡ଼େଇ ହେବାରେ ବ୍ୟବହୃତ ଉତ୍କୃଷ୍ଟ ପଶମୀ ବସ୍ତ୍ର, ଦୁଇ କାଠକୁ ଯୋଡ଼ିବା ପାଇଁ କାଠରେ ଖୋଳାଯିବା ଘାଇ ବା କଣା ।
ସାଲ୍‌ଟା—ଗ୍ରା. ବି. ଜାଲ ବୁଣିବା ପାଇଁ ଏକାଧିକ ଖିଅରେ ଭଙ୍ଗା ବା ବଳାଯାଇଥିବା ସୂତା ।
ସାଲ୍‌ସେଟ୍—ଗ୍ରା. ବି. (ନାମ) ବୋମ୍ବାଇ ବିଭାଗର ଠାନାଜିଲାର ଗୋଟିଏ ଉପବିଭାଗ ଓ ବୋମ୍ବାଇ ସହରର ଉତ୍ତର ଦିଗରେ ଥିବା ଗୋଟିଏ ଦ୍ୱୀପ ।

ସାଲ୍—ଯା.ବି.ଶାଲ୍‌ଦେଖ, ଶାଲଦେଖ ।

ସାଲ—ବି. (ସଲ୍+କ.ଅ) ଶାଲମତ୍ସ୍ୟ, ସାହାଳମାଛ, କାନ୍ଥ, ପ୍ରାଚୀର, ବୃକ୍ଷ, ରାଳ, ଝୁଣା,ସ୍ୱନାମଖ୍ୟାତ ବୃକ୍ଷବିଶେଷ, ସାଲଗଛ ।

ସାଲଆଖର—ଯା. ବି. ବର୍ଷର ଶେଷ ।

ସାଲକ—ପୁଂ. ବିଂ. (ସ+ଅଲକ)ଅଲକ ଦ୍ୱାରା ଅଳଂକୃତ, (ସ୍ତ୍ରୀ) ସାଲକା ।

ସାଲକ୍ତକ—ବିଂ. ଅଲକ୍ତକଯୁକ୍ତ, ଅଳତା ଲଗାଇଥିବା ।

ସାଲକ୍ଷଣ୍ୟ—ବି.ସଲକ୍ଷଣତା, ସଲକ୍ଷଣର ଭାବ ବା ଧର୍ମ ।

ସାଲଂକାର—ବିଂ. (ବି.ଗ୍ରା) ଅଲଂକୃତ, (ସ୍ତ୍ରୀ) ସାଲଂକାରା ।

ସାଲଗମ--ଗ୍ରା.ବି.ଏକପ୍ରକାର ଗୋଲମୂଳା ।

ସାଲଙ୍ଗ(ଗ)—ବି. (ସଲ୍+ଅଙ୍ଗ,ଅଗ) ରାଗର ପ୍ରକାରବିଶେଷ ।

ସାଲତମାମି—ଯା. ବି. କୌଣସି ସନର ବା ବର୍ଷର ଶେଷ ହିସାବ ବା ବିବରଣ

ସାଲତ—ବି.(ସାଲ+ତ)ଶାଲତ ଦେଖ ।

ସାଲଦୋସାଲ୍-ଯା.ବି.ସାଲ୍ ଓ ଦୋସାଲ୍, ବହୁମୂଲ୍ୟ ଶୀତବସ୍ତ୍ର ।

ସାଲନ୍—ଯା. ବି. ଖାଦ୍ୟାର୍ଥ ବ୍ୟବହୃତ ଜୀବମାଂସ, କୋଷ୍ଠ ଓଳେ ଧଆସିବା ଏକପ୍ରକାର ପତଳା ପଣମୀ କଳା,ଅସ୍ତ୍ର ।

ସାଲନ—ବି.(ସାଲ+ନ)ସର୍ଜରସ,ଝୁଣା

ସାଲନିର୍ଯ୍ୟାସ—ବି. ସାଲଗଛର ରସ ବା ଅଠା, ଝୁଣା ।

ସାଲନ୍ଦୀ—ଗ୍ରା. ବି. ବାଲେଶ୍ୱର ଜିଲ୍ଲାର ଭଦ୍ରଖର ନିକଟବାହିନୀ କ୍ଷୁଦ୍ର ନଦୀ ।

ସାଲପଣୀ(ର୍ଣୀ)—ଗ୍ରା. ବି. (ସଂ-ଶାଲପର୍ଣ୍ଣୀ) ଶାଲପର୍ଣ୍ଣୀ ଦେଖ ।

ସାଲପର୍ଣ୍ଣୀ—ବି. ଶାଲପର୍ଣ୍ଣୀ ଦେଖ ।

ସାଲପା—ଗ୍ରା. ବି. ସଡ଼ପ ଦେଖ ।

ସାଲପୁଷ୍ପ—ବି. ସ୍ଥଳପଦ୍ମ ।

ସାଲବାହନ—ବି. ଶାଳିବାହନ ରାଜା ।

ସାଲବନ-ବି.ସାଲବୃକ୍ଷର ବନ,ବୃନ୍ଦାବନସ୍ଥ ଏକବନଭେଦ ।

ସାଲବନ୍ଧ—ଗ୍ରା. ବି. ପରସ୍ପର ସନ୍ନିହିତ ଯୋଡ଼ାଯିବା କାଠଦ୍ୱୟ ମଧ୍ୟରୁ ଗୋଟିଏ କାଠର ବୁରୁଧୁ ଉପରେ କଟାହେବା କଣା (ବନ୍ଧ) ଓ ଅନ୍ୟକାଠ ଅଗରେ ତଣ୍ଡାହେବା ସରୁ ଅଂଶ ।

ସାଲବେଗ—ଗ୍ରା.ବି. ସପ୍ତଦଶ ଶତାବ୍ଦୀର ଓଡ଼ିଆ କବିବିଶେଷ(ଏ ପ୍ରଥମେ ମୁସଲ-ମାନ୍ ଥିଲେ ପରେ ବୈଷ୍ଣବଧର୍ମରେ ଦୀକ୍ଷିତ ହୋଇ ରାଧାକୃଷ୍ଣ ପ୍ରେମଗର୍ଭିକ ସଙ୍ଗୀତ ଓ ଭଜନଆଦି ରଚନା କରି-ଥିଲେ) ।

ସାଲବେଷ୍ଟ—ବି. ଧୂନକ, ଝୁଣା ।

ସାଲଭଞ୍ଜିକା—(ସାଲ+ଭଞ୍ଜ୍+ଇକ+ ପୁତ୍ତଳିକା ।

ସାଲଭଞ୍ଜି(ଞ୍ଜୀ)—ବି. ଶାଲଭଞ୍ଜି ଦେଖ ।

ସାଲମିଛ(ଶି)ର—ଯା. ବି. ସାଲମକନ୍ଦ, ଈଷତ୍ ମିଷ୍ଟରସ ଶାକକନ୍ଦବିଶେଷ, ଶାକରକନ୍ଦ ।

ସାଲମା—-ଗ୍ରା. ବି. ବରକୋଳି ପରି ଏକପ୍ରକାର ଫଳ ।

ସାଲରଜଙ୍ଗ—ଗ୍ରା. ବି. ନେପାଳ ପ୍ରସିଦ୍ଧ ସ୍ୱର୍ଗୀୟ ପ୍ରଧାନ ମନ୍ତ୍ରୀଙ୍କ ନାମ ।

ସାଲରସ—ବି. ଧୂନା, ଝୁଣା ।

ସାଲଶୃଙ୍ଗ—ବି. ପ୍ରାଚୀରାଗ୍ର, ପାଚେରୀର ଅଗ୍ରଭାଗ ।

ସାଲସ—ବିଂ. (ସ+ଅଲସ) ଆଲସ୍ୟ-ବିଶିଷ୍ଟ, ଅଲସୁଆ ।

ସାଲସା—ଯା. ବି. ରକ୍ତଶୋଧକ ବୃକ୍ଷ୍ୟ ଔଷଧବିଶେଷ ।

ସାଲା—ବି. (ସାଲ+ଅ+ଆ)ଶାଲା,ଗୃହ ।

ସାଲା—ବି. ଗୃହ, (ପ୍ରା.ଗଞ୍ଜାମ.ବି)ସାହାଲା ଦେଖ ।

ସାଲାକଟା-ସ୍ତ୍ରୀ.ବି.ଯୁଦ୍ଧରେ ପରାଜିତା ନାରୀ

ସାଲାବୁଖସ୍ତ—ବି. ପାଣିମା ମୂଳ ।

ସାଲାନା—ଯା.ବିଂ. ବାର୍ଷିକ,(ବି) ବାର୍ଷିକ-ଦେୟ ଧନ ।

ସାଲା(ଲ)ବୃକ—ବି. କୁକୁର, ମେଣ୍ଢା, କୋକିଶିଆଳି, ଶୃଗାଳ ।

ସାଲାର—ବି. (ସାଲ୍+ର+ଅଧି.ଅ) ଦ୍ରବ୍ୟରକ୍ଷଣାର୍ଥ ଭିତ୍ତିସ୍ଥ କୀଳକ,କାନ୍ଥରେ ମରାଯାଇଥିବା କାଠି, ନାଗଦନ୍ତକ ।

ସାଲି—ଗ୍ରା. ବି. (ବଣିଆ ଶବ୍ଦ) ଗୋଟିଏ ମୁଣ୍ଡ ମୁନିଆ ଓ ଅନ୍ୟମୁଣ୍ଡ ନିଷ୍ପରୁଣୀପରି ଚେପ୍ଟାଧାର ହୋଇଥିବା ଲୁହାତାରର ହତିଆର ବିଶେଷ ।

ସାଲିଆ—ଗ୍ରା. ବିଂ.ବର୍ଷୀୟ,ସାଲବାସନ-ସମ୍ବନ୍ଧୀୟ,(ଏତେ)ବର୍ଷ ବୟସ୍କ,(ଏତେ) ବର୍ଷସକାଶେ କରାଯାଇଥିବା,ଧଣ୍ଡଦାର ।

ସାଲିଆନା—ଯା. ବିଂ. ବାର୍ଷିକ, ବାର୍ଷିକ ନିର୍ଦ୍ଦିଷ୍ଟ ଦେୟ ବା ପ୍ରାପ୍ୟ,ବାର୍ଷିକ ବୃତ୍ତି ।

ସାଲିଉଟ୍—ଯା. ବି. ଅଧସ୍ତନ ବ୍ୟକ୍ତିଙ୍କର ଉପରସ୍ଥ ବ୍ୟକ୍ତିଙ୍କୁ ସମ୍ମାନ ଦେଖାଇବା ଲାଗି କରିବା ସଲାମ ।

ସାଲିବାହନ—ବି. ଶାଳିବାହନ ଦେଖ ।

ସାଲିମକନ୍ଦ—ବି.ସାଲମ୍ ମିଛିରି ଦେଖ ।

ସାଲିସ୍—ଯା. ବି. ବିବାଦରେ ମଧ୍ୟସ୍ଥ, ଯେ ଆପୋସିରେ ବିବାଦ ମୀମାଂସା କରିବା ପାଇଁ ଉଭୟ ପକ୍ଷଙ୍କ ଦ୍ୱାରା ଭଲଲୋକ ରୂପେ ନିଯୁକ୍ତ ହୋଇଥାଏ, ଉଭୟ ପକ୍ଷର ସ୍ୱୀକାର କ୍ରମେ ବିବାଦ ମୀମାଂସା ।

ସାଲିସ୍‌ନାମା—-ଯା. ବି. ଅପୋସିରେ ମଧ୍ୟସ୍ଥଙ୍କ ଦ୍ୱାରା ମୀମାଂସା ହେବା ବିବା-ଦର ଉଭୟପକ୍ଷଙ୍କ ସ୍ୱୀକୃତ ସର୍ତ୍ତିମାନ ଯେଉଁ ଦଲିଲରେ ଲେଖାଥାଏ,ସାଲିସ୍, ଫଇସଲା ।

ସାଲିସ୍‌ଫଏସଲା—ଯା.ବି.ମଧ୍ୟସ୍ଥମାନଙ୍କର ବିବାଦ ନିଷ୍ପତ୍ତି ବିଷୟକ ରାଏ ।

ସାଲିସାନ୍—ଯା. ବି. ମଧ୍ୟସ୍ଥମାନେ ।

ସାଲିସି—ଯା.ବିଂ.ମଧ୍ୟସ୍ଥଙ୍କ ଦ୍ୱାରା ବିବାଦ ମୀମାଂସାସମ୍ବନ୍ଧୀୟ, (ବି) ମଧ୍ୟସ୍ଥତା, ମଧ୍ୟସ୍ଥଙ୍କ ଦ୍ୱାରା ବିବାଦ ମୀମାଂସା, ସାଲିସ୍, ମାଧ୍ୟସ୍ଥ୍ୟ ।

ସାଲୁ—-ଗ୍ରା. ବି. ଏକବର୍ଣ୍ଣରେ ରଞ୍ଜିତ ପତଳା ସୂତାର କନା,ପତଳା ରଙ୍ଗିନ୍ ସୂତାର କନା ।

ସାଲୁକ—ପ୍ରା.(ବାଲେ)ବି. (ସଂ-ଶାଲୁକ) କଇଁଗଛର ମୂଳରେ ଥିବା ପିଣ୍ଡ, କୁମୁଦକନ୍ଦ ।

ସାଲୁକୁଡ଼ାପୋକ—ପ୍ରା (ବାଲେଶ୍ୱର)ବି. ଲଙ୍ଗୁଡ଼ା ପୋକ ।

ସାଲୁନ୍—ଯା.ବି. ରେଳରେ ବା ଜାହାଜରେ ବିଶିଷ୍ଟ ଆରାମ ଯାତ୍ରୀମାନଙ୍କ ପାଇଁ ସଜ୍ଜିତ ଶ୍ରେଷ୍ଠ କୋଠରି ।

ସାଲୁପ୍—ଯା.ବି. ଶ୍ରେଷ୍ଠ ଜାହାଜ,ଧୂଲୁପ୍, ଡଙ୍ଗା, ନୌକା, ନାହା ।

ସାଲୁବାଲୁ—ଗ୍ରା. ଅ. ସାଲୁସାଲୁ ଦେଖ, ଦ୍ରବ୍ୟମାନ ଇତସ୍ତତଃ ଓ କଦର୍ଯ୍ୟ ହୋଇ ରଖାଯିବା ପ୍ରକାର, ଅପରିଷ୍କୃତ ଓ ଅପରିଚ୍ଛନ୍ନ, ଆବର୍ଜନାଯୁକ୍ତ, ଗୋଳମାଳିଆ, ଅଡୁଆ, (ପ୍ରା.ପୁରୀ.ବି)ସଲବଲ ଦେଖ ।

ସାଲୁର—ଗ୍ରା.ବି.( ନାମ ) ବିଶାଖାପାଟଣା ଜିଲାର ଗୋଟିଏ ଓଡ଼ିଆ ରାଜ୍ୟ ।

ସାଲୁର୍(ରୁ)ବାଲୁର୍(ରୁ)—ଗ୍ରା.କ୍ରି.(ଅବ୍ୟ) ସାଲୁସାଲୁ ଦେଖ, ସାଲୁବାଲୁ ଦେଖ ।

ସାଲୁସାଲୁ—ଗ୍ରା.ଅବ୍ୟ. ବହୁ କ୍ଷୁଦ୍ର ଜୀବ (ଯଥା-ପୋକ)ଅଳ୍ପ ସ୍ଥାନରେ ଉପର୍ଯ୍ୟୁପରି ଇତସ୍ତତଃ ହେବା, ଅତ୍ୟଧିକ ସଂଖ୍ୟାରେ ପରିବ୍ୟାପ୍ତ ।

ସାଲୁସାଲୁହେବା—ଗ୍ରା. କ୍ରି. ଅତ୍ୟଧିକ ସଂଖ୍ୟାରେ ପରିବ୍ୟାପ୍ତ ହେବା ।

ସାଲୂର—ବି. ଭେକ, ମଣ୍ଡୂକ, ବେଙ୍ଗ ।

ସାଲେ—ପ୍ରା. (ଖଡ଼ିଆଳ)ବି. ଅସନଗଛ, (ପ୍ରା.ବଲାଙ୍ଗିର) ବନ୍ୟ କୋମଳ କାଷ୍ଠବିଶେଷ ।

ସାଲେୟ(ଯ୍ୟ)—ବି. ମଧୁରିକା, ମହୁରୀ, ପାତମହୁରୀ ।

ସାଲୋକ୍ୟ—ବି. (ସ+ଲୋକ+ଯ)ମୁକ୍ତିବିଶେଷ, ତୁଲ୍ୟଲୋକ,ଯେଉଁ ମୁକ୍ତିରେ ଭକ୍ତ ପ୍ରଭୁଙ୍କ ସହିତ ଏକଲୋକରେ ବାସ କରେ ।

ସାଲୋହିତ—ବିଂ. ଆତ୍ମୀୟ ।

ସାଲ୍ୱ—ବି. ନାମ, (ସାଲ+ବ)ମହାଭାରତର କର୍ଣ୍ଣପର୍ବରେ ବର୍ଣ୍ଣିତ ଦେଶବିଶେଷ, କୃଷ୍ଣଙ୍କ ଦ୍ୱାରା ହତ ଜଣେ ରାଜା, (ବିଂ) ସାଲ୍ୱଦେଶସମ୍ବନ୍ଧୀୟ ।

ସାଲ୍ୱନସୂଦନ—ବି. (ସାଲ୍ୱ ନୃପତିର ହନ୍ତା) କୃଷ୍ଣ ।

ସାଲ୍ୱିକ—ବି(ସଲ୍ୱ=ଦେଶ+ଇକ)ପକ୍ଷିବିଶେଷ, ବଣିଚଢ଼େଇ, ଶାରୀ ।

ସାଲ୍ୱେୟ—ବିଂ. ( ସାଲ୍ୱ+ଏୟ ) ସାଲ୍ୱଦେଶସମ୍ବନ୍ଧୀୟ, ସାଲ୍ୱଦେଶବାସୀ ।

ସାବ(ବ)ରି—ପ୍ରା.(ଗଞ୍ଜାମ)ବି. (ଇଂ-ସଭରେନ) ସ୍ୱର୍ଣ୍ଣମୁଦ୍ରା ।

ସାବରସୁନା—ପ୍ରା. (ଗଞ୍ଜାମ) ବି. ଇଂଲଣ୍ଡ ପ୍ରଚଳିତ ସ୍ୱର୍ଣ୍ଣ ମୁଦ୍ରାର ଉପାଦାନ ସ୍ୱର୍ଣ୍ଣ ।

ସାବକ୍—ଯା. ବିଂ. ପୁରାତନ, ବିଗତ, ପୂର୍ବକାଳୀନ, ପୂର୍ବବର୍ଷର, ପୂର୍ବେ ହୋଇଥିବା, ବାକି ।

ସାବକ୍ଦସ୍ତୁର—ଯା.ବି.ପ୍ରାଚୀନ ରୀତି ।

ସାବକ୍ବାକି—ଯା. ବିଂ. ପୂର୍ବବର୍ଷମାନଙ୍କ ପାଇଁ ବାକି, ପୂର୍ବବର୍ଷରୁ ବାକିଥିବା, (ବି) ଚଳିତ ସନର ପୂର୍ବବର୍ତ୍ତୀ ସନମାନଙ୍କର ବାକି ଖଜଣା ।

ସାବକ୍ସନ—ଯା. ବି. ଗତବର୍ଷ ।

ସାବକ୍ହାଲ—ଯା. ବିଂ. ଗତ ଓ ବର୍ତ୍ତମାନ, ପୂର୍ବବର୍ଷର ଓ ଚଳିତ ବର୍ଷର ।

ସାବକ—ବି. ଶିଶୁ, ଶାବକ ।

ସାବକାର—ପ୍ରା. (ବସ୍ତର) ବି. ଅରଣୀ ବ୍ୟକ୍ତି, ଧନୀବ୍ୟକ୍ତି, ସାହୁକାର ।

ସାବକାଶ—ବିଂ.(ସ+ଅବକାଶ)ବି.ଗ୍ରା, ଅବସରଯୁକ୍ତ, ଅବସରପ୍ରାପ୍ତ, ସୁଯୋଗବିଶିଷ୍ଟ,(ଗ୍ରା.ବି.ସଂ-ସୁଅବକାଶ)ସୁଯୋଗ, ଉତ୍ତମ ଅବସର, ଫୁରସତ ।

ସାବଗୁଣ୍ଠନ—ପୁଂ.ବିଂ. (ସ + ଅବଗୁଣ୍ଠନ) ଅବଗୁଣ୍ଠିତ, ଓଢ଼ଣା ପକାଇଥିବା ।

ସାବତ୍—ଯା. ବିଂ. ସାବୁତ୍ ଦେଖ ।

ସାବତ—ଗ୍ରା. ବିଂ. (ସଂ-ସାପତ୍ନ) ବୈମାତୃକ, (ବି) ବଳଭଦ୍ରଗୋତ୍ରୀ ବ୍ରାହ୍ମଣ ଓ ଶୂଦ୍ରମାନଙ୍କ ବଂଶୋପାଧିବିଶେଷ ।

ସାବତନ—ଗ୍ରା. ବିଂ. ସାବତ ଦେଖ ।

ସାବତନକଣ୍ଠା—ଗ୍ରା. ବି. ମୃତ ସପତ୍ନୀ (ସଉତୁଣୀ)ଗର୍ଭଜାତ ଜୀବିତ ସନ୍ତାନ ।

ସାବତପୁଅ—ଗ୍ରା. ବି. ସପତ୍ନୀପୁତ୍ର, ସଉତୁଣୀର ପୁଅ, (ସ୍ତ୍ରୀ) ସାବତଝିଅ ।

ସାବତଭଇ—ଗ୍ରା. ବି. ମାତାଙ୍କ ସପତ୍ନୀ (ସଉତୁଣୀ)ର ପୁତ୍ର ।

ସାବତମା(ମାଆ)—ଗ୍ରା. ସ୍ତ୍ରୀ. ବି. ମାତାଙ୍କ ସପତ୍ନୀ (ସଉତୁଣୀ) ।

ସାବତା—ଯା. ବି. ସାବୁତା, ପ୍ରମାଣ ।

ସାବଥ—ଗ୍ରା. ବି. (କଟକିଆ) ପ୍ରମାଣ ।

ସାବଦ୍ୟ—ବିଂ. (ସ+ଅବଦ୍ୟ)ନିନ୍ଦନୀୟ, ଆପତ୍ତିଜନକ, (ବି) ଯୋଗୀମାନଙ୍କର ଲଭ୍ୟ ତିନି ଯୋଗଶକ୍ତିମଧ୍ୟରୁ ଏକ ।

ସାବଧାନ୍—ଗ୍ରା. ଅବ୍ୟ. ମହାଶୟ ! ହେ ଅବଧାନ ! ହୁସିଆର ।

ସାବଧାନ—ବିଂ. ( ସ + ଅବଧାନ ) ସଚେତନ, ହୁସିଆର, ସତର୍କ, ମନୋଯୋଗୀ, (ସ୍ତ୍ରୀ) ସାବଧାନା ।

ସାବଧାନତା—ସ୍ତ୍ରୀ.ବି. ( ସାବଧାନ+ଭା.ତା)ଅପ୍ରମତ୍ତତା,ଅବଧାନ,ସତର୍କତା ।

ସାବଧାନହେବା—ଗ୍ରା. କ୍ରି. କୌଣସି କାର୍ଯ୍ୟରେ ସତର୍କତା ଅବଲମ୍ବନ କରିବା ।

ସାବଧାନୀ—ପୁଂ.ବିଂ. ଦତ୍ତାବଧାନ,କୃତସଂକଳ୍ପ, (ଗ୍ରା. ସ୍ତ୍ରୀ. ବିଂ) ସାବଧାନର ସ୍ତ୍ରୀଲିଙ୍ଗ ।

ସାବଧାରଣ—ବିଂ. ନିଶ୍ଚୟଯୁକ୍ତ, ଅବଧାରଣ ଅର୍ଥନିର୍ଣ୍ଣୟ ।

ସାବଧି—ବିଂ. ଅବଧିଯୁକ୍ତ,ଅବଧିବିଶିଷ୍ଟ ।

ସାବନ୍—ପ୍ରା. (ମେଦିନୀ) ବି. ସାବୁନ୍ ।

ସାବନ—ବି. (ସାବନ୍+ଅ) ସବନ ବା ଯଜ୍ଞସମ୍ବନ୍ଧୀ ଦିନ,ଯଜ୍ଞକର୍ମାନ୍ତ,ଯଜମାନ, ବରୁଣ, ଯଜ୍ଞବିଶେଷ,ଅହୋରାତ୍ର,ଏକ-ସୂର୍ଯ୍ୟୋଦୟରୁ ଅନ୍ୟ ସୂର୍ଯ୍ୟୋଦୟବ୍ୟାପୀ କାଳ, ୬୦ ଦଣ୍ଡ ବ୍ୟାପୀ କାଳ, (ବିଂ)ସବନ ସମ୍ବନ୍ଧୀୟ,ସୂର୍ଯ୍ୟସମ୍ବନ୍ଧୀୟ, (ସ୍ତ୍ରୀ) ସାବନୀ, (ଗ୍ରା.ବିଂ)ସାବନା ଦେଖ ।

ସାବନଦିନ(ଦିବସ)—ବି. ଏକ ସୂର୍ଯ୍ୟୋଦୟରୁ ଅନ୍ୟ ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ କାଳ, ସୌରଦିବସ, ଅହୋରାତ୍ର ।

ସାବନବର୍ଣ୍ଣ—ଗ୍ରା. ବି. (ସଂ-ଶ୍ୟାମ)ଶ୍ୟାମବର୍ଣ୍ଣ, ଯାହା କଳା ନୁହେଁ କି ଗୋରା ନୁହେଁ ।

ସାବନବର୍ଷ(ବତ୍ସର)—ବି.୩୬୦ଟିସୂର୍ଯ୍ୟୋଦୟଯୁକ୍ତ ବର୍ଷ ।

ସାବନମାନ—ବି. ସୂର୍ଯ୍ୟୋଦୟ ଦ୍ୱାରା ପରିମିତ ଗଣନା ।

ସାବନମାସ—ବି. ତିରିଶି ଅହୋରାତ୍ର-ବିଶିଷ୍ଟ ମାସ ।

ସାବନା—ଗ୍ରା.ପୁଂ.ବିଂ(ସଂ-ଶ୍ୟାବ=କୃଷ୍ଣ-ପୀତ)ଶ୍ୟାମବର୍ଣ୍ଣ ଶରୀରବିଶିଷ୍ଟ,ଯାହାର ଦେହ ଅତି ଗୋରା ବା ଅତି କଳା ନୁହେଁ, (ସ୍ତ୍ରୀ) ସାବନୀ ।

ସାବୟବ—ବିଂ.(ବାଗ୍ମୀ) ଅବୟବଯୁକ୍ତ, (ବି) ସାଙ୍ଗରୂପକ ଅଲଙ୍କାର ।

ସାବୟସ୍—ପୁଂ.ବି. ସବୟସର ଅପତ୍ୟ, ଅଷାଢ଼ି ।

ସାବର—ବି. ଲୋଧ୍ର, ଲୋଧ, ଅପରାଧ, ପାପ, ମୃଗବିଶେଷର ମାଂସ ।

ସାବରକ—ବି. ଶ୍ୱେତଲୋଧ୍ର ।

ସାବିରଲୋଧ୍ର-ବି. ଲୋଧ୍ରବିଶେଷ, ଶ୍ୱେତ-ଲୋଧ୍ର ।

ସାବରି—ପ୍ରା. (ଗଞ୍ଜାମ ଓ ଖୋରଧା)ବି. (ଇଂ-ସଭରେନ୍) ଇଂଲଣ୍ଡ ପ୍ରଚଳିତ ସ୍ୱର୍ଣ୍ଣମୁଦ୍ରା, ଗିନି ।

ସାବରିକା—ବି. ନିର୍ବିଷ ଜୋକ ।

ସାବରୋହ—ବିଂ. ଅବରୋହ ସହିତ ବର୍ତ୍ତମାନ, ଅବରୋହବିଶିଷ୍ଟ ।

ସାବର୍ଣ୍ଣ—ପୁଂ. ବି. (ସବର୍ଣ୍ଣ+ଅ) ଦ୍ୱିତୀୟ ମନୁ ସୂର୍ଯ୍ୟଙ୍କ ପୁତ୍ର, ସାବର୍ଣ୍ଣିମନୁ. (ବିଂ) ସବର୍ଣ୍ଣସମ୍ବନ୍ଧୀୟ ।

ସାବର୍ଣ୍ଣକ—ପୁଂ. ବି. ସାବର୍ଣ୍ଣ ମନୁ ।

ସାବର୍ଣ୍ଣଲକ୍ଷ୍ୟ—ବି. ଚର୍ମ ।

ସାବର୍ଣ୍ଣି—ବି. (ସବର୍ଣ୍ଣା+ଇ)ଅଷ୍ଟମ ମନୁ, ସୂର୍ଯ୍ୟପତ୍ନୀ ସଞ୍ଜ୍ଞାଙ୍କ ସବର୍ଣ୍ଣରୂପାଙ୍କ ଗର୍ଭଜାତ ମନୁ, ଗୋତ୍ରବିଶେଷ, ଏକ ମନ୍ୱନ୍ତରର କାଳ,ସାବର୍ଣ୍ଣିମନୁଙ୍କ ଭୋଗ କାଳ ।

ସାବର୍ଣ୍ଣିକ—ବିଂ. ସାବର୍ଣ୍ଣିମନୁସମ୍ବନ୍ଧୀୟ, (ବି)ସାବର୍ଣ୍ଣିମନୁଙ୍କ ଭୋଗକାଳ, ସାବର୍ଣ୍ଣି ମନୁ ।

ସାବର୍ଣ୍ଣ୍ୟ—ବି.(ସବର୍ଣ୍ଣ+ଯ)ସାବର୍ଣ୍ଣ ମନୁ, ସାବର୍ଣ୍ଣ ମନ୍ୱନ୍ତର ।

ସାବଲ—ଗ୍ରା. ବି. ଶବଲ ଦେଖ, ମାଟି-ଆଦି ଖୋଳିବାରେ ବ୍ୟବହୃତ ଲୁହାର ମୋଟା ଛଡ଼, (ବଣିଆ ଶବ୍ଦ) ସୁନା ଓ ରୂପାର ତାଳଆଦି ତିଆରି କରିବାରେ ବ୍ୟବହୃତ ଲୁହାର ଏକପ୍ରକାର ଦଣ୍ଡଆଟ ।

ସାବଲଇଷ୍ଟିଲପରି—ଗ୍ରା. ବିଂ. ହୃଷ୍ଟପୁଷ୍ଟ. ସବଳ ।

ସାବଲଭଙ୍ଗା-ଗ୍ରା.ବି.ଏକପ୍ରକାର ଆରଣ୍ୟ ଗୁଳ୍ମ । [ ସହିତ ।

ସାବଲମ୍ବନ—ବିଂ. (ନ.ଗ୍ରା) ଅବଲମ୍ବନ

ସାବଶେଷ—ବିଂ. (ସ+ଅବଶେଷ)ଅନ-ଶିଷ୍ଟ, ଅସମ୍ପୂର୍ଣ୍ଣ, ଅବଶେଷ ସହିତ ବିଦ୍ୟମାନ ।

ସାବଷ୍ଟମ୍ଭ—ବି. (ସ+ଅବଷ୍ଟମ୍ଭ) ଦୃଢ଼, ମଜବୁତ, ଆତ୍ମନିର୍ଭର, ସ୍ୱାବଲମ୍ବୀ, (ବି) ବାସ୍ତୁବିଶେଷ, ଯେଉଁ ବାସ୍ତୁରେ ବା ଘର ଡାହାଣରେ ନିର୍ମିତ ଘରର ଉତ୍ତର ବା ଦକ୍ଷିଣ ପାଖରେ ରହିଥାଏ ।

ସାବହିତ—ବିଂ.ମନୋଯୋଗୀ,ସାବଧାନ, (କ୍ରି.ବିଂ) ମନୋଯୋଗ ସହକାରେ ।

ସାବାଡ଼—ଯା.ବିଂ(ସଂ-ସର୍ବାନ୍ତ)ନଷ୍ଟହତ. ସମ୍ପୂର୍ଣ୍ଣ, ନିଃଶେଷିତ, ବିନାଶପ୍ରାପ୍ତ. ସର୍ବସ୍ୱାନ୍ତ ।

ସାବାଧ—ବିଂ. ପୀଡ଼ିତ, ଅସୁସ୍ଥ ।

ସାବାଲ(ଲ)କ୍(ଗ୍)—ଯା. ବିଂ. ଆଇନ ଅନୁସାରେ ଯାହାର ବିଷୟ କର୍ମ ବୁଝିବାର ଉପଯୋଗୀ ବୟସ ହୋଇଅଛି. ବୟଃପ୍ରାପ୍ତ. ପ୍ରାପ୍ତ ବ୍ୟବହାର, ପ୍ରାପ୍ତ-ବୟସ୍କ, (ସ୍ତ୍ରୀ) ସାବାଲକା(ଗା), (ଗ୍ରା.ବି) ବୟଃପ୍ରାପ୍ତ ବ୍ୟକ୍ତି । [ ଅବସ୍ଥା ।

ସାବାଲ(ଲ)କି(ଗି)—ଯା.ବି. ପ୍ରାପ୍ତବୟସ୍କ

ସାବାସ୍—ଯା. ଅବ୍ୟ. ଧନ୍ୟଧନ୍ୟ, ବାଃ, ପ୍ରଶଂସାସୂଚକ ଶବ୍ଦ, ସାଧୁବାଦ, (ବି) ଧନ୍ୟବାଦ, ପ୍ରଶଂସାବାଦ, (ବିଂ)ଧନ୍ୟ, ପ୍ରଶଂସାର୍ହ, ପ୍ରଶଂସାସୂଚକ ।

ସାବାସକରିବା—ଗ୍ରା.କ୍ରି.ପ୍ରଶଂସା କରିବା, ଧନ୍ୟ ଧନ୍ୟ କହିବା ।

ସାବାସି—ଯା. ବି. ଧନ୍ୟବାଦ, ପ୍ରଶଂସା-ବାଦ, ବାହାଦୁର,(ବିଂ)ପ୍ରଶଂସାସୂଚକ, ପ୍ରଶଂସାଭାଜନ ।

ସାବି—ଗ୍ରା.ବି. ସାବିଗୁଡ଼ଲ,ସାଗୁଦାନା ।

ସାବିକ୍—ଯା. ବି ଓ ବିଂ.ସାବକ୍ ଦେଖ ।

ସାବିଗୁଡ଼ଲ-ପ୍ରା.(ଗଞ୍ଜାମ)ବି. ସାଗୁଦାନା ।

ସାବିତ୍ର(ତ)—ଯା. ବିଂ. ସୁନ୍ଦର, ସୁବିଧା-ଜନକ, ଯାବୃତ୍ତ ।

ସାବିତ୍ର—ବିଂ. (ସବିତୃ+ଅ) ସୂର୍ଯ୍ୟସମ୍ବନ୍ଧୀୟ, ସୂର୍ଯ୍ୟବଂଶୀୟ, (ବି) ସନ୍ତାନ, ସୂର୍ଯ୍ୟ, ଶିବ,ଅଷ୍ଟମବସୁ,ଅଷ୍ଟାବସୁମଧ୍ୟରୁ ଏକତମ, ବ୍ରାହ୍ମଣ, ଯଜ୍ଞୋପବୀତ, ଗର୍ଭ, କର୍ଣ୍ଣ ।

ସାବିତ୍ରବାନ୍—ପୁଂ.ବିଂ. (ସାବିତ୍ର+ବତ୍) ସାବିତ୍ରବିଶିଷ୍ଟ, ଯଜ୍ଞୋପବୀତବିଶିଷ୍ଟ ।

ସାବିତ୍ରୀ—ବିଂ. ( ସବିତୃ+ଅ+ସ୍ତ୍ରୀ.ଈ ) ସାବିତ୍ରର ସ୍ତ୍ରୀଲିଙ୍ଗ, (ବି) ସୂର୍ଯ୍ୟମଣ୍ଡଳର ଅଧିଷ୍ଠାତ୍ରୀ ଦେବତା, ବେଦମାତା, ଗାୟତ୍ରୀ, ବ୍ରହ୍ମାଙ୍କ ପତ୍ନୀ, ଦୁର୍ଗା, ଦ୍ୱିଜ-ବାଳକର ଉପନୟନ, ମଦ୍ରଦେଶର ରାଜା ଅଶ୍ୱପତିଙ୍କ କନ୍ୟା, ଧର୍ମଙ୍କ ପତ୍ନୀ ଓ ଦକ୍ଷଙ୍କ କନ୍ୟା, କଶ୍ୟପଙ୍କ ସ୍ତ୍ରୀ, ଅଷ୍ଟାବକ୍ରଙ୍କ କନ୍ୟା, ଯମୁନା ନଦୀ, ସରସ୍ୱତୀ ନଦୀ. ପ୍ଲକ୍ଷଦ୍ୱୀପର ଏକ ନଦୀ, ଧାରାନଗରୀର ରାଜା ଭୋଜଙ୍କ ସ୍ତ୍ରୀ,ସଧବା ସ୍ତ୍ରୀ, ଅଅଁଳା, ତୀର୍ଥବିଶେଷ, ( ଗ୍ରା.ବି ) ଶାଉପକାଣ୍ଡିଆ ଏକପ୍ରକାର ଗୁଳ୍ମ,ସାବିତ୍ରୀ ଅମାବାସ୍ୟା ।

ସାବିତ୍ରୀଅମାବାସ୍ୟା—ଗ୍ରା. ବି. ଜ୍ୟେଷ୍ଠ କୃଷ୍ଣଚତୁର୍ଦ୍ଦଶୀ ଓ ଏଦିନ କର୍ତ୍ତବ୍ୟ ସଧବା ସ୍ତ୍ରୀମାନଙ୍କର ବ୍ରତବିଶେଷ (ଏ ବ୍ରତ ଜ୍ୟେଷ୍ଠଚତୁର୍ଦ୍ଦଶୀଯୁକ୍ତ ଅମାବାସ୍ୟାରେ ମଧ୍ୟ କରାଯାଏ, 'ସାବିତ୍ରୀ'ଙ୍କ ପରି ଆଜୀବନ ସଧବା ହେବାପାଇଁ ଏ ବ୍ରତ ସ୍ତ୍ରୀମାନେ କରନ୍ତି, ଏ ଦିନ ସାବିତ୍ରୀ ଓ ସତ୍ୟବାନଙ୍କୁ ପୂଜା କରାଯାଏ,ଆମ-ଦେଶର ସ୍ତ୍ରୀମାନେ ଏଦିନ ଉପବାସ କରନ୍ତି,ଅନ୍ନଗ୍ରହଣ କରନ୍ତି ନାହିଁ;ଅପ-ରାହ୍ଣରେ ପୂଜାଶେଷରେ ପାଚିଲା ଆମ୍ବ, ପଣସ, ସପୁରୀ, କଦଳୀ, ଗଜାମୁଗ, ତାଳସଜଆଦି ଫଳାହାର କରନ୍ତି,ଏହି-ବ୍ରତ ଚତୁର୍ଦ୍ଦଶ ବର୍ଷ ସାଧ, ଏହିବ୍ରତ

ଚଉଦବର୍ଷ କଲପର ଉଦ୍‌ଯାପନ କରାଯାଏ, ଏବ୍ରତ ରାତ୍ରିରେ କର୍ତ୍ତବ୍ୟ,ଦିନଯାକ ଉପବାସ ରହି ରାତ୍ରିରେ ପୂଜାକରି ସାବିତ୍ରୀ ଉପାଖ୍ୟାନ ଶୁଣି ତତ୍ପରେ ନୈବେଦ୍ୟ ଭୋଜନ କରିବ 'ଶ୍ରୀଁ ହ୍ରୀଁ କ୍ଲୀଁ ସାବିତ୍ର୍ୟୈ ସ୍ୱାହା' ଏହା ସାବିତ୍ରୀ ପୂଜାର ମନ୍ତ୍ର-ବିଶ୍ୱକୋଷ) ।

ସାବିତ୍ରୀଉପାଖ୍ୟାନ—ଗ୍ରା.ବି.ସତ୍ୟବାନଙ୍କ ପତ୍ନୀ ସାବିତ୍ରୀଙ୍କ ଚରିତ ।

ସାବିତ୍ରୀପତନ—ବି.(୬ତତ୍) ଉପନୟନ ବା ଯଜ୍ଞୋପବୀତ ଗ୍ରହଣ କରିବାର ଉପଯୁକ୍ତ କାଳ ଅତୀତ ହେଲେ ଦ୍ୱିଜବାଳକ ଯେଉଁ ଅପବାଦର ଭାଗୀ ହୁଏ ।

ସାବିତ୍ରୀପତିତ—ପୁଂ. ବିଂ. (୫ତତ୍)ଉପନୟନ ଯୋଗ୍ୟ କାଳ ଅତୀତ ହେବାପରେ ମଧ୍ୟ ବ୍ରତ ହୋଇ ନ ଥିବା(ଦ୍ୱିଜକୁମାର) ।

ସାବିତ୍ରୀପ୍ରଦାନ—ବି. ବ୍ରତବେଦୀରେ ଗୁରୁଙ୍କଦ୍ୱାରା ଦ୍ୱିଜକୁମାର କର୍ଣ୍ଣରେ ଗାୟତ୍ରୀ ମନ୍ତ୍ରଦାନ ।

ସାବିତ୍ରୀବ୍ରତ—ବି.ଜ୍ୟେଷ୍ଠ ଅମାବାସ୍ୟାରେ ସ୍ତ୍ରୀମାନଙ୍କର କର୍ତ୍ତବ୍ୟ ବ୍ରତ, ସାବିତ୍ରୀ ଅମାବାସ୍ୟା ଦେଖ ।

ସାବିତ୍ରୀସୂତ୍ର—ବି. ଯଜ୍ଞୋପବୀତ ।

ସାବନ୍(ନ)—ଗ୍ରା.ବି ଓ ଯା.ବି.କ୍ଷାରତୈଳ ସଂଯୋଗରେ ନିର୍ମିତ ମଳ ପରିଷ୍କାରକ ବସ୍ତୁ ।

ସାବରୀ—ସ୍ତ୍ରୀ.ବି.( ସୃ+ଇନ୍+ସ୍ତ୍ରୀ.ଈ ) ସରିତ୍, ନଦୀ, (ଗ୍ରା.ବିଂ) ସାବନାର ସ୍ତ୍ରୀଲିଙ୍ଗ, କୃଷ୍ଣପୀତ ମିଶ୍ରିତ ବର୍ଣ୍ଣବିଶିଷ୍ଟା (ସ୍ତ୍ରୀ), (ଯା.ବି) ସାବନ୍(ନ) ଦେଖ ।

ସାବୁ—ଯା.ବି. (ମାଳୟଭାଷା)ସାଗୁଦାନା

ସାବୁତ(ତା,ଦ୍,ଦା)—ଯା.ବିଂ.ପ୍ରମାଣିତ, ସାବ୍ୟସ୍ତ, ନିର୍ଦ୍ଧାରିତ, ନିଶ୍ଚିତ, ସମ୍ପୂର୍ଣ୍ଣ ସାଙ୍ଗ, (ଯା.ବି)ପ୍ରମାଣ,(ଗ୍ରା.ବିଂ)ସୁନ୍ଦର, ଉତ୍ତମ ।

ସାବୁତ୍‌କରିବା—ଗ୍ରା.କ୍ରି ପ୍ରମାଣିତ କରିବା

ସାବୁତ୍‌ଦେବା—ଗ୍ରା. କ୍ରି. ପ୍ରମାଣ ଆଗତ କରିବା ।

ସାବୁଦାନା—ଗ୍ରା.ବି. ସାଗୁଦାନା ।

ସାବୁନ୍—ଯା. ବି. କ୍ଷାର ଓ ତୈଳମିଶ୍ରିତ ମଳ ପରିଷ୍କାରକ ଫେନୋତ୍ପାଦକ ବସ୍ତୁ

ସାବେକ—ଯା.ବିଂ. ସାବକ୍ ଦେଖ ।

ସାବେବରାତ୍-ଯା.ବି. ମୁସଲମାନ ସାବନ୍ ମାସର ଚତୁର୍ଦ୍ଦଶ ଦିନ । [ ସାବିଲ ।

ସାବେଲ—ଗ୍ରା. ବି. ଅସ୍ତ୍ରବିଶେଷ, ଗ୍ରେଟ

ସାବୀ—ବି. (ସ+ଅବ+ଇ) ବୃକ୍ଷବିଶେଷ (ଏହା ବର୍ଷକେ ଥରେ ଫଳ ଧରେ) ।

ସାବ୍ଧି—ବିଂ. (ସ+ଅବ୍ଧି) ସମୁଦ୍ର ସହିତ, ସସମୁଦ୍ର ।

ସାବ୍ଧିଦ୍ୱୀପ—ବିଂ.ସମୁଦ୍ର ଓ ଦ୍ୱୀପସହିତ ।

ସାବ୍ଧିଦ୍ୱୀପାବସୁନ୍ଧରା—ବି.ସସାଗରାଧରା ।

ସାବ୍ୟସ୍ତ-ଗ୍ରା.ବିଂ.ଉତ୍ତମରୂପେ ପ୍ରମାଣିତ । ସୁନିଶ୍ଚିତ, ମୀମାଂସିତ, ସୁବ୍ୟବସ୍ଥା ।

ସାବ୍ୟସ୍ତକରିବା-ଗ୍ରା.କ୍ରି.ନିରୂପଣକରିବା । ପ୍ରମାଣଦ୍ୱାରା ସ୍ଥିରକରିବା ।

ସାଶ(ଶି)—ଯା.ବି. କବାଟର ବା ଝରକାର କାଚର ଫଳକ, କାଚଫଳକ ଲଗା କବାଟ ବା ଝରକା ।

ସାଶ୍‌ମଲ୍—ଗ୍ରା.ବି.(ସଂ-ସାହସମଲ୍ଲ)ଶୂଦ୍ରମାନଙ୍କ ବଂଶୋପାଧିବିଶେଷ, ସାହସୀ ପାଇକମାନଙ୍କୁ ରାଜାଙ୍କଦ୍ୱାରା ପ୍ରଦତ୍ତ ଉପାଧିବିଶେଷ, ସାମଲ ।

ସାଶଂସ—ବିଂ.ଆଶଂସ ର ସହିତ ବର୍ତ୍ତମାନ, ଆଶଂସାଯୁକ୍ତ ।

ସାଶଙ୍କ—ବିଂ. ଆଶଙ୍କାଯୁକ୍ତ, ଭୀତ ।

ସାଶୂଳ—ବି. କମ୍ବଳ ।

ସାଶ୍ଚର୍ଯ୍ୟ—ବିଂ. ଆଶ୍ଚର୍ଯ୍ୟର ସହିତ ବର୍ତ୍ତମାନ, ଆଶ୍ଚର୍ଯ୍ୟାନ୍ୱିତ ।

ସାଶ୍ରୟ—ବିଂ.(ସ+ଆଶ୍ରୟ)ଆଶ୍ରୟଯୁକ୍ତ, ଆଧାରସମନ୍ୱିତ, (ସ୍ତ୍ରୀ)ସାଶ୍ରୟା ।

ସାଶ୍ରୟନ୍ଦକ - ବି. ଜ୍ୟେଷ୍ଠୀ, ଝିଟିପିଟି ।

ସାଶ୍ରୁ—ବିଂ. (ସ+ଅଶ୍ରୁ)ବ.ବ୍ରୀ; ଅଶ୍ରୁଯୁକ୍ତ, ଲୋତକବିଶିଷ୍ଟ, ବାଷ୍ପବାରିବିଶିଷ୍ଟ

ସାଶ୍ରୁଧୀ—ସ୍ତ୍ରୀ. ବି. (ସ+ଅଶ୍ରୁ+ଧା+କ.ଈ) ଶ୍ୱଶ୍ରୂ, ଶାଶୁ ।

ସାଶ୍ରୁନୟନ—ବି. (କ.ଧା) ଅଶ୍ରୁପୂର୍ଣ୍ଣ ନେତ୍ର, ସାଶ୍ରୁନେତ୍ର, (ସାଶ୍ରୁଲୋଚନ-ଅନ୍ୟରୂପ), (ବିଂ-ବ.ବ୍ରୀ) ଯାହାର ଚକ୍ଷୁ ଲୋତକପୂର୍ଣ୍ଣ ହୋଇଥାଏ,(ସ୍ତ୍ରୀ)ସାଶ୍ରୁନୟନା

ସାଶ୍ରୁନୟନେ—କ୍ରି.ବିଂ. (ବ.ବ୍ରୀ) ଅଶ୍ରୁପୂର୍ଣ୍ଣ ନେତ୍ରରେ, ସଜଳ ଚକ୍ଷୁରେ ।

ସାଶ୍ୱ—ବିଂ. (ସ+ଅଶ୍ୱ) ଅଶ୍ୱଯୁକ୍ତ ।

ସାଷ୍ଟ—ବିଂ. (ସ+ଅଷ୍ଟ) ଅଷ୍ଟର ସହିତ ବର୍ତ୍ତମାନ ।

ସାଷ୍ଟମ—ଗ୍ରା.ବି.ବିଂ. ସାଷ୍ଟାମ ଦେଖ ।

ସାଷ୍ଟାଙ୍ଗ—ବିଂ(ସ + ଅଷ୍ଟାଙ୍ଗ) ଅଷ୍ଟାଙ୍ଗଯୁକ୍ତ (ପ୍ରଣାମ),(ମୁଣ୍ଡ, ହାତ, ଗୋଡ଼, ହୃଦୟ, ଆଖି, କଣ୍ଠ, ବଚନ ଓ ମନ ଯୁକ୍ତରେ ଭୂମିରେ ଲୋଟି (ମତାନ୍ତରେ) ମୁଣ୍ଡ, ଗୁଣ୍ଠ, ଦୁଇହାତ, ଦୁଇଆଣ୍ଠୁ ଓ ଦୁଇ ପାଦାଗ୍ରକୁ ଭୂମିରେ ଲଗାଇ ଯେଉଁ ପ୍ରଣାମ କରାଯାଏ), ଯହିଁରେ ଦେହର ଅଷ୍ଟାଙ୍ଗ ଭୂମିରେ ଲାଗେ, (କ୍ରି.ବିଂ) ଅଷ୍ଟାଙ୍ଗକୁ ଭୂମିରେ ଲଗାଇ ।

ସାଷ୍ଟାଙ୍ଗଦଣ୍ଡବତ—ଗ୍ରା. ବି. ସାଷ୍ଟାଙ୍ଗ ପ୍ରଣାମ ଦେଖ ।

ସାଷ୍ଟାଙ୍ଗପ୍ରଣାମ—ବି.ଭୂମିରେ ମୁଣ୍ଡ,ଗୁଣ୍ଠ, ଦୁଇହାତ, ଦୁଇଆଣ୍ଠୁ ଓ ଦୁଇପାଦକୁ ଲଗାଇ ଦଣ୍ଡପରି ଲମ୍ବ ହୋଇ ଗୋଡ଼ ତଳେ ପଡ଼ିବା ।

ସାଷ୍ଟାଙ୍ଗବେଦନା—ବି. (କ.ଧା)ଦେହର ସବୁ ଅଂଶରେ ବା ସ୍ଥାନରେ ଅନୁଭୂତ ବେଦନା ।

ସାଷ୍ଟାଙ୍ଗଯୋଗ—ବି.ଯମ,ନିୟମ,ଆସନ, ପ୍ରାଣାୟାମ, ପ୍ରତ୍ୟାହାର,ଧ୍ୟାନ,ଧାରଣା, ସମାଧି ଏହି ଆଠଗୋଟି ଅଙ୍ଗବିଶିଷ୍ଟ ଯୋଗ ।

ସାଷ୍ଟାଙ୍କେ—ଗ୍ରା.କ୍ରି. ବିଂ. ସାଷ୍ଟାଙ୍ଗ ବିଧି ଅନୁସାରେ ଦେହର ଆଠଅଙ୍ଗକୁ ଭୂମିରେ ଲଗାଇ (ପ୍ରଣାମକରିବା) ।

ସାଷ୍ଟାମ—ଗ୍ରା. ବିଂ. (ସଂ-ସାଷ୍ଟାଙ୍ଗ ) ଯାହା ଯୋଗୁଁ ଅଷ୍ଟାଙ୍ଗ (ଯଥା-ହସ୍ତପଦାଦି ମନ ଏବଂ ବାକ୍)ପ୍ରକୃତିସ୍ଥ ହୁଏ, ପୁନଃଚେତନାପ୍ରାପ୍ତ,ସଚେତ,ସଧୈର୍ଯ୍ୟ, ଯାହାର କ୍ଳାନ୍ତି ଓ ଅବସାଦାଦି ଦୂର-

ଭୂତ ହୋଇଅଛୁ, (ବ) ଚେତନା, ଚୈତନ୍ୟୋଦୟ ।

ସାଷ୍ଟାମକରବା—ଗ୍ରା. କି. ଶୁଶ୍ରୂଷା ଦ୍ୱାରା ଚେତନା ଆଣିବା ବା ବା କ୍ଳାନ୍ତି ଦୂର କରବା । [ ବିଶେଷ ।

ସାଷ୍ଟାମଖାଇ—ପ୍ରା. (ବାଲେ) ବି. ମତ୍ସ୍ୟ-

ସାହନ୍ତ—ବଂ(ସହ+ପୁନଃପୁନଃ ଅର୍ଥରେ ଯଙ୍‌ଲୁଙ୍‌ନ୍ତ=ସାହନ୍ତ+କ.ଇ) ସତତ ସହନକ୍ଷମ, ଅତ୍ୟନ୍ତ ସହିଷ୍ଣୁ, ଶତ୍ରୁମାନଙ୍କୁ ଅଭିଭବକାରୀ ।

ସାସାନଟାଙ୍ଗର—ପ୍ରା. (କୋହ୍ଲ)ବି.ଶବଦାହ ପରେ ମୃତ ବ୍ୟକ୍ତିର ଅସ୍ଥି ଅଣାଯାଇ ଗ୍ରାମପ୍ରାନ୍ତରେ ଭୂଗର୍ଭରେ ପୋତାଯାଇ ତହିଁ ଉପରେ ସ୍ଥାପିତ ହେବା ପଥର ।

ସାସୁ—ବଂ. (ସ+ଅସୁ) ବ.ବ୍ରୀ; ପ୍ରାଣବିଶିଷ୍ଟ, ଜୀବନ୍ତ ।

ସାସୂୟ—ପୁଂ. ବଂ. (ସ+ଅସୂୟା+ଅ) ଅସୂୟାବିଶିଷ୍ଟ, (ସ୍ତ୍ରୀ) ସ ସୂୟା ।

ସାସ୍ଥି—ବଂ. (ସ+ଅସ୍ଥି) ବ.ବ୍ରୀ; ଅସ୍ଥିବିଶିଷ୍ଟ, ଅସ୍ଥିଯୁକ୍ତ ।

ସାସ୍ଥି ତାଧାର୍ଦ୍ଦ—ବି. କାଂସ୍ୟ, କଂସା ।

ସାସ୍ନା—ବି. (ଷସ୍+କ,ଆ) ଗୋରୁର ଗଳକମ୍ବଳ ।

ସାସ୍ପିଣ୍ଡଇନାମ—ପ୍ରା. (ଗଞ୍ଜାମ) ବି. (ଇଂ-ସସ୍‌ପେଣ୍ଡେଡ୍+ଫା.ଇନାମ୍)ଲାଖରାଜ ବାଜ୍ୟାପ୍ତି ।

ସାସ୍ର—ବଂ.(ସ+ଅସ୍ର) ସାଶ୍ରୁ, ଶୈରୁଦ୍ୟମାନ, ସକଳକୋଣବିଶିଷ୍ଟ, ସରକ୍ତ, କୋଣଯୁକ୍ତ । [ ଦେଖ ।

ସାସ୍ରନୟନ—ପୁଂ.ବ ଓ ବଂ.ସାଶ୍ରୁନୟନ

ସାସ୍ୱାଦନ—ବଂ. ଆସ୍ୱାଦବିଶିଷ୍ଟ ।

ସାହ୍—ଯା. ବି. ରଜା ।

ସାହ୍‌ଜାଦା—ଯା. ପୁଂ. ବି. ସାହାଜାଦା ଦେଖ, (ସ୍ତ୍ରୀ) ସାହ୍‌ଜାଦୀ ।

ସାହ୍‌ଜାହାନ୍—ଯା. ବି. ସାହାଜାହାନ୍ ଦେଖ ।

ସାହ—ଗ୍ରା. ବି. ଶୁଣ୍ଡି ଓ ତେଲଆଦି ବ୍ୟବସାୟୀଙ୍କର ବଂଶୋପାଧି,ବିହାରର ବୈଶ୍ୟ ଓ କାୟସ୍ଥମାନଙ୍କ ବଂଶୋପାଧିବିଶେଷ ।

ସାହଙ୍କାର—ପୁଂ. ବଂ. (ସ+ଅହଙ୍କାର) ଅହଂକାରଯୁକ୍ତ, (ସ୍ତ୍ରୀ) ସାହଙ୍କାରା ।

ସାହଚର୍ଯ୍ୟ—ବି. (ସହଚର+ଷ୍ଣ.ଯ) ସଙ୍ଗ, ସଂସ୍ରବ, ସହଚରର ଭାବ, ସହଗମନ,ସମାନାଧିକରଣ୍ୟ,ଏକାଧିକରଣ ବୃତ୍ତି,ଏକାଧାରରେ ରହିବା ।

ସାହଜିକ—ବଂ. (ସହଜ+ଇକ)ପ୍ରକୃତିଜାତ, ସ୍ୱାଭାବିକ,ଜନ୍ମଗତ,ସହଜାତ ।

ସାହୟିତୃ—ବଂ. ସହନକାରୟିତା, ଯେ ସହନ କରାଏ ।

ସାହସ—ବି. (ସହସ୍=ବଳ+ଅ)ଅପରାଧର ଦଣ୍ଡ, ଅର୍ଥଦଣ୍ଡ.ବଳାତ୍କାରକୃତ କାର୍ଯ୍ୟ, ଦୁଷ୍କୃତକର୍ମ, ଦୁଷ୍କର୍ମ, ଅପରାଧ, ପାପ, ଅବମୃଷ୍ୟକୃତ କାର୍ଯ୍ୟ, ଦ୍ୱେଷ, ନରହତ୍ୟା, ଉଦ୍‌କାୟୁତ ଓ ପରଦାରଗମନାଦି ବଳପ୍ରୟୋଗଯୁକ୍ତ ଅପରାଧ, ନରହତ୍ୟା, ଅତ୍ୟାଚାର, ଦମ୍ଭ, ବଳାତ୍କାରରେ ପରସ୍ତ୍ରୀ ରମଣ, ବଳପୂର୍ବକ ପରଦ୍ରବ୍ୟ ଅପହରଣ, ଦସ୍ୟୁତା, ଭୟରହିତ୍ୟ, ନିର୍ଭୀକତା, ଅନୌଚିତ୍ୟ, ଧୃଷ୍ଟତା, ଅଗ୍ନିବିଶେଷ, ଯେଉଁ ଅଗ୍ନିଦ୍ୱାରା ଯଜ୍ଞରେ ଚରୁପାକ ହୁଏ, ଅସତ୍ୟତା, ଉତ୍ସାହ । [ ସହିତ ।

ସାହସକର—ଗ୍ରା. କି. ବଂ. ନିର୍ଭୀକତା-

ସାହସକରେଇ—ଗ୍ରା.କି.ବଳାତ୍କାର କରିବା, ଦୁଃସାହସିକ କାର୍ଯ୍ୟ କରିବା ।

ସାହସଟିଙ୍କା—ଗ୍ରା. ବି. ଯଥେଷ୍ଟ ସାହସ ମନରେ ଜାତହେବା ।

ସାହସବାନ୍ଧିବା—ଗ୍ରା. କି. ଦମ୍ଭ ଧରିବା, ଚିତ୍ତକୁ ଦୃଢ଼କରିବା,ସାହସ ଅବଲମ୍ବନ କରିବା ।

ସାହସା—ଗ୍ରା.ବି. ଦମ୍ଭ, (ପୁଂ.ବଂ) ଅସୀମ ସାହସିକ ।

ସାହସାଙ୍କ—ପୁଂ. ବି. ବିକ୍ରମାଦିତ୍ୟରାଜା ।

ସାହସିକ—ପୁଂ. ବଂ. ନିର୍ଭୀକ, ଶୌର୍ଯ୍ୟଶୀଳ, ବଳାତ୍କାର ଅପରାଧକାରୀ,ଉତ୍ସାହଯୁକ୍ତ, ଯେ ଦସ୍ୟୁତା, ପରଦାର,ନରହତ୍ୟା, ଅସତ୍ୟତା, ପାରୁଷ୍ୟ ପ୍ରଭୃତି ଅପରାଧ କରେ,(ସ୍ତ୍ରୀ) ସାହସିକା ।

ସାହସିକତା—ବି. (ସାହସିକ+ଭା.ତା) ସାହସିକର ଭାବ ବା କାର୍ଯ୍ୟ,ନିର୍ଭୀକତା

ସାହସିକ୍ୟ—ବି. ସାହସିକତା ଦେଖ ।

ସାହସିବା—ଗ୍ରା. କି. ସାହସକରିବା ।

ସାହସୀ—ପୁଂ. ବଂ. ( ସାହସ+ଇନ୍ ) ସାହସିକ, ନିର୍ଭୀକ,ଶୌର୍ଯ୍ୟଶାଳୀ,(ସ୍ତ୍ରୀ) ସିନୀ,(ଗ୍ରା) ସାହସିଆ ।

ସାହସ୍ର—ବି. (ସହସ୍ର+ଅ) ବହୁସହସ୍ର, ସହସ୍ରମାତ୍ର, ସହସ୍ର ସେନାର ଅଧିନାୟକ,(ବଂ) ସହସ୍ର ସମ୍ବନ୍ଧୀୟ, ସହସ୍ର ସଂଖ୍ୟକ,ସହସ୍ର ଧନମୂଲ୍ୟର(ବସ୍ତୁ),ସହସ୍ର ସଂଖ୍ୟା ମୂଲରେ କ୍ରୀତ, ସହସ୍ରଲୋକଙ୍କ ସହାୟ୍ୟପ୍ରାପ୍ତ ।

ସାହସ୍ରକ—ବଂ. ( ସାହସ୍ର+କ )ସହସ୍ର ସଂଖ୍ୟାବିଶିଷ୍ଟ ।

ସାହସ୍ରିକ—ବଂ. (ସହସ୍ର+ଇକ)ସହସ୍ର ସମ୍ବନ୍ଧୀୟ, (ବି) ସହସ୍ର ଭାଗର ଏକଭାଗ ।

ସାହସ୍ରବେଧୀ—ପୁଂ.ବି. ଅମ୍ଳବେତସ, କସ୍ତୁରୀ, (ବଂ) ସହସ୍ର ବେଧକର୍ତ୍ତା ।

ସାହା—ଯା.ବି. ରଜା, ପାରସ୍ୟ ରଜାଙ୍କ ଉପାଧି,ମୁସଲମାନମାନଙ୍କ ବଂଶୋପାଧି, ପ୍ରାଚୀନ ଭାରତର କେତେକ ମୁସଲ୍‌ମାନ ରଜାଙ୍କ ବଂଶୋପାଧି, ବଡ଼ାଲୋକ, (ଗ୍ରା.ବି—ସଂ-ସାଧୁ) ଶୁଣ୍ଡି ତେଲଆଦି ବ୍ୟବସାୟୀଙ୍କର ବଂଶୋପାଧି, ବିହାରର ବୈଶ୍ୟ ଓ କାୟସ୍ଥମାନଙ୍କ ବଂଶୋପାଧିବିଶେଷ,ପୂର୍ବ ବଙ୍ଗରେ ବଣିକ୍ ଜାତିର ବଂଶୋପାଧିବିଶେଷ,(ସଂ ସହାୟ)ଆଶ୍ରୟଦାତା,ସହାୟ,ସାହାଯ୍ୟକାରୀ,ପ୍ରାଣବାୟୁ, ଜୀବନୀ ଶକ୍ତି, ପ୍ରାଣ, ଆତ୍ମା, (ସଂ-ଶାଖା) ଶାଖା, (ସଂ-ସଖା) ବନ୍ଧୁ, ଅବଲମ୍ବନ ।

ସାହାଆଲମ୍—ଯା. ବି. (ନାମ) ଦିଲ୍ଲୀର ଶେଷ ନାମମାତ୍ର ମୋଗଲସମ୍ରାଟ୍ ।

ସାହାଉଡ଼ିବା—ଗ୍ରା. ବି. ପ୍ରାଣ ଗୁଡ଼ିଯିବା, ପ୍ରାଣାନ୍ତକ କଷ୍ଟ ବା ପ୍ରାଣ ସଙ୍କଟ ଉପସ୍ଥିତ ହେବା, ହଂସା ଉଡ଼ିଯିବା,ଦେହାନ୍ତ

ତ୍ୟାଗ, ମୃତ୍ୟୁ ଘଟିବା, ସାହସ ।
ସାହ୍ନୀ—ପ୍ରା.(ଖଡ଼ିଆଳ)ବି. ସାହସ ।
ସାହାଁସେ—ପ୍ରା.(କ୍ଳରିଆ)କ୍ରି.ବିଂ. ଏକାଥରକେ ।
ସାହାକାର—ପ୍ରା.(ସମ୍ବ) ବି. ସାହୁକାର, ଉତ୍ତମର୍ଣ୍ଣ, ମହାଜନ, କୁସୀଦଜୀବୀ ।
ସାହାଖର୍ଚ୍ଚୀ—ଗ୍ରା.ବିଂ. ଅପବ୍ୟୟୀ, ଆୟ ଅପେକ୍ଷା ଯେ ବେଶି ବ୍ୟୟ କରେ ।
ସାହାଜ—ଗ୍ରା.ବି.(ସଂ-ସର୍ଜ୍ଜକ) ଏକପ୍ରକାର ଅରଣ୍ୟ ତରୁ, ଶାଳକାଠ ।
ସାହାଜାଦା—ଯା. ପୁଂ. ବି. ରାଜପୁତ୍ର, (ସ୍ତ୍ରୀ) ସାହାଜାଦୀ ।
ସାହାଜାହା(ନ)—ଗ୍ରା.ବି. ଦିଲ୍ଲୀର ପଞ୍ଚମ ମୋଗଲ ସମ୍ରାଟ୍ ।
ସାହାଜୀ—ଗ୍ରା.ବି. ଶିବାଜୀଙ୍କ ପିତା ।
ସାହାଡ଼ା—ଗ୍ରା.ବି.(ସଂ-ଶାଖୋଟ)ଶାହାଡ଼ା ଦେଖ । [ ବିଶେଷ ।
ସାହାଡ଼ାପତର—ପ୍ରା.(ବାଲେ)ବି. ମତ୍ସ୍ୟ-
ସାହାଡ଼ା(ଡ଼େ)ଇ—ଗ୍ରା. ସ୍ତ୍ରୀ.ବି. ଶାହାଡ଼ା ଗଛମୂଳେ ପୂଜା ପାଉଥିବା ଗ୍ରାମଦେବତା-ବିଶେଷ ।
ସାହାଣ—ଗ୍ରା.ବି.(ସଂ-ଶାଣ)ଶାଣ ଦେଖ, (ସଂ-ସାଧାରଣ)ବହୁସଂଖ୍ୟକ ଜୀବଜନ୍ତୁଙ୍କ ଦଳ, ପଲ, ସମୂହ, ଗୋରୁଙ୍କୁ ଧରୁଥିବା ଶରଦ ରୋଗବିଶେଷ, ( ପ୍ରା.ପୁରୀ.ବି ) ବ୍ୟାୟାମକାରୀ ମଲ୍ଲ ଲୁହାଗଦା ବୁଲାଇବା ଅଭ୍ୟାସ କଲାବେଳେ ଏକ ହାତରେ ଗଦା ଓ ଅନ୍ୟ ହାତରେ ଯେଉଁ ଲୁହାର ଲମ୍ବା ପଟା ଯନ୍ତ୍ର ଧରି ବୁଲାଏ, (ବିଂ) ସର୍ବସାଧାରଣଙ୍କର ପ୍ରବେଶାଧିକାରଯୁକ୍ତ ।
ସାହାଣଦେବା(ଧରିବା)—ଗ୍ରା.କ୍ରି. ହତିଆରଆଦିକୁ ଶାଣ ଦେବା ବା ଧାର କରିବା ।
ସାହାଣଭଣ୍ଡାର—ଗ୍ରା. ବି. ରାଜାଙ୍କର କୋଷାଗାର ବା ଭଣ୍ଡାରଘର ।
ସାହାଣପଥର—ଗ୍ରା. ବି. ଶାଣପଥର ଦେଖ ।
ସାହାଣମେଲ୍ଲା—ଗ୍ରା.ବି. ପୁରୀ ଜଗନ୍ନାଥଙ୍କ ଦେଉଳରେ ଯେଉଁ ସମୟରେ ସର୍ବସାଧାରଣ ଯାତ୍ରୀମାନେ ଜଗନ୍ନାଥଙ୍କ ସନ୍ନିଧିକୁ ଯାଇ ଦର୍ଶନ କରିପାରନ୍ତି ।
ସାହାଣି—ଗ୍ରା. ବି. ଗୋରୁଙ୍କ ବେକର ଓ ମୁହଁର ଫୁଲାରୋଗ ।
ସାହାଣି—ଯା. ବି. ଖଣ୍ଡାଏତ ଓ ଶୂଦ୍ର-ମାନଙ୍କ ବଂଶୋପାଧିବିଶେଷ,ଅଶ୍ୱରକ୍ଷକ. ସହିସ, ରାଉତ ।
ସାହାନ୍‌ସାହା—ଯା.ବି.ରାଜାଧିରାଜ,ସମ୍ରାଟ୍
ସାହାନା—ଯା. ବି. ରାତ୍ରି ଦ୍ୱିତୀୟ ପ୍ରହରରେ ଗୀତହେବା ରାଗବିଶେଷ, (ପ୍ରା. ଲରିଆ.ବି) ସଣ୍ଢ ଆସି ।
ସାହାପଏଖ—ପ୍ରା. (ଲରିଆ)ବିଂ. ସାହାପକ୍ଷ ଦେଖ ।
ସାହାପକ୍ଷ—ଗ୍ରା.ବି.ସହାୟ,(ବିଂ)ଅନୁକୂଳ, ସାହାଯ୍ୟକାରୀ ।
ସାହାପଢ—ଗ୍ରା. ବି. ସାହାପକ୍ଷ ଦେଖ ।
ସାହାପୁରୀ—ଗ୍ରା. ବି. ଏକପ୍ରକାର ଗୁଆ ।
ସାହାପୁରୁଷ—ଯା.ବି.ଜୀବାତ୍ମା,ପ୍ରାଣବାୟୁ, ପ୍ରେତାତ୍ମା ।
ସାହାବ—ଗ୍ରା. ବି. ସାହେବ ଦେଖ ।
ସାହାବନ୍ତ—ଗ୍ରା. ବିଂ. ସାହାଯ୍ୟକାରୀ ।
ସାହାବଳ—ଗ୍ରା. ବି. ସହାୟ ଓ ବଳ ।
ସାହାଭରସା—ଗ୍ରା.ବି.ସହାୟ ଓ ଆଶା ।
ସାହାଭୂତ-ଗ୍ରା.ବିଂ.ସଜୀବ ରୂପେ ଉପଗତ
ସାହାୟ—ଗ୍ରା. ବି. ସହାୟ ଦେଖ ।
ସାହାୟକ—ବି.(ସହାୟ + କ)ସହାୟତା. ଆନୁକୂଲ୍ୟ, ସାହାଯ୍ୟ ।
ସାହାଯ୍ୟ—ବି. (ସହାୟ + ଯ)ସହାୟତା, ଆନୁକୂଲ୍ୟ, (ଗ୍ରା.ବି) କୌଣସିକାର୍ଯ୍ୟ ବା ସ୍କୁଲଆଦି ଚଳାଇବା ପାଇଁ ସରକାରରୁ ବା ଲୋକଙ୍କଠାରୁ ମିଳିବା ଅର୍ଥ
ସାହାଯ୍ୟକାରୀ—ପୁଂ.ବିଂ.(ସାହାଯ୍ୟ+କୃ କ ଇନ୍) ସହାୟତାକାରୀ, ଆନୁକୂଲ୍ୟ-କାରୀ, ପୃଷ୍ଠପୋଷକ, ଅନୁକୂଳ, (ସ୍ତ୍ରୀ) ସାହାଯ୍ୟ କାରିଣୀ ।
ସାହାଯ୍ୟକୃତ—ଗ୍ରା. ବିଂ. ସାହାଯ୍ୟପ୍ରାପ୍ତ, ଅର୍ଥସାହାଯ୍ୟ ପାଉଥିବା (ସ୍କୁଲଆଦି) ।
ସାହାଯ୍ୟଦାନ—ବି. ସାହାଯ୍ୟକରଣ ।
ସାହାଯ୍ୟଦାତା—ପୁଂ.ବିଂ. ଯେ ସାହାଯ୍ୟ କରେ, (ସ୍ତ୍ରୀ) ସାହାଯ୍ୟଦାତ୍ରୀ ।
ସାହାଯ୍ୟପ୍ରାପ୍ତ—ଗ୍ରା. ବିଂ. ସାହାଯ୍ୟକୃତ ଦେଖ ।
ସାହାଯ୍ୟପ୍ରାର୍ଥନା(ଭିକ୍ଷା)—ବି.ଅନ୍ୟଠାରୁ ସାହାଯ୍ୟ ଲୋଡ଼ିବା ।
ସାହାଯ୍ୟପ୍ରାର୍ଥୀ—ପୁଂ.ବିଂ.ସାହାଯ୍ୟ ଲୋଡ଼ୁଥିବା (ବ୍ୟକ୍ତି),(ସ୍ତ୍ରୀ) ସାହାଯ୍ୟପ୍ରାର୍ଥିନୀ ।
ସାହାଯ୍ୟଲାଭ—ବି. ସହାୟତାର ପ୍ରାପ୍ତି ।
ସାହାର—ଗ୍ରା. ବି.(ସଂ-ସହକାର)ଉତ୍କୃଷ୍ଟ ଓ ସୁବାସିତ ଆମ୍ବ ।
ସାହାରଣ(ନ)ପୁର-ଗ୍ରା.ବି.ଯୁକ୍ତପ୍ରଦେଶର ଗୋଟିଏ ନଗର ଓ ଜିଲ୍ଲା ।
ସାହାରା—ଗ୍ରା. ବି. ଆଫ୍ରିକାର ମଧ୍ୟବର୍ତ୍ତୀ ମରୁଭୂମି ।
ସାହାଳ-ଗ୍ରା.ବି.ଚିଲିକାର ଏକପ୍ରକାର ମାଛ
ସାହାଳି—ଗ୍ରା. ବି. ( ସଂ-ଶାଳି ) ଗୃହର ଶ୍ରେଣୀ, ଧାଡ଼ି, (ବିଂ)ଶ୍ରେଣୀବଦ୍ଧ(ବାସଗୃହ) ।
ସାହାଳିସାହାଳିହୋଇବସିବା-ପ୍ରା(ପାଟଣା) ବି. ଧାଡ଼ି ଧାଡ଼ି ହୋଇ ବସିବା ।
ସାହାଳିଆ— ଗ୍ରା.ବିଂ. ସାହାଳି ବା ଶ୍ରେଣୀ-ବିଶିଷ୍ଟ, ଶ୍ରେଣୀବଦ୍ଧ ।
ସାହାସ-ଗ୍ରା.ବି.(ସଂ-ସାହସ)ସାହସ ଦେଖ, ପୀଡ଼ା, (ସଂ-ଶ୍ୱାସ) ଶ୍ୱାସ ଦେଖ, (ପ୍ରା. ଗଞ୍ଜାମ) ତାସ ବା ଜୁଆଖେଳବିଶେଷ ।
ସାହାସଉଡ଼ିବା—ଗ୍ରା. ବି. ଊର୍ଦ୍ଧ୍ୱଶ୍ୱାସ ହେବା, ବେଦମ୍ ହେବା,ଧୈର୍ଯ୍ୟଚ୍ୟୁତ ହେବା, ଅଧୀର ହେବା, ଜରୁଷାହ ହେବା, କିଂକର୍ତ୍ତବ୍ୟବିମୂଢ଼ ହେବା, ପ୍ରାଣାନ୍ତକ ଅବସ୍ଥାରେ ପଡ଼ିବା ।
ସାହାସମୁଣ୍ଡି—ଗ୍ରା. ବି. ଶଗଡ଼ର ଝୁଙ୍ଗ ବା ଜୁଆଳିର ମଝିରେ ଦଉଡ଼ିରେ ବନ୍ଧା ହୋଇଥିବା ଦୁଇଦଣ୍ଡାର ଅଗ୍ର, ଝୁଙ୍ଗଚୂଡ଼ ।
ସାହାସା—ଗ୍ରା. ପୁଂ. ବିଂ. ସାହସିକ, ଅବସ୍ଥାର କର୍ମଗୁରୀ, ଦୁଃସାହସିକ, ମିଥ୍ୟାବାଦୀ,ଶ୍ୱାସରୋଗୀ,(ସ୍ତ୍ରୀ)ସାହାସୀ ।
ସାହାସିବା—ଗ୍ରା. କ୍ରି. ପରିଶ୍ରମ ଯୋଗୁଁ

ଊର୍ଦ୍ଧ୍ୱଶ୍ୱାସ ହେବା, ଘରଶ୍ୱାସଯୁକ୍ତହେବା, (ଜମିଆଦି) ଶୁଷ୍କଜଳ ହେବା, (କାଠ-ଆଦି) କୋଠରେ ଅକର୍ମଣ୍ୟ ହେବା ।
ସାହାସୀ—ଗ୍ରା.ପୁଂ ଓ ସ୍ତ୍ରୀ. ବିଂ,ସାହସିକ ଦେଖ ।
ସାହାସ୍ତର—ପ୍ରା,(ସମ୍ବଲ'ବ.ଶାସ୍ତ ଦେଖ ।
ସାହାସ୍ତ—ଗ୍ରା. ବ. ଶାସ୍ତ ଦେଖ ।
ସାହି—ଗ୍ରା. ବ. ସାଇ ଦେଖ. ( ପ୍ରା. ଖଡ଼. ବ) ସ୍ୟାହି, କାଳି, ଝିଙ୍କ ।
ସାହିଅ—ଗ୍ରା. ବ. ସାହାଯ୍ୟ, ସହାୟ, (ବିଂ) ସହାୟକ ।
ସାହିତ୍ୟ—ବ. (ସହିତ+ଷ୍ଣ.ଯ) ସଙ୍ଗ, ସସର୍ଗ, ସାହାଯ୍ୟ, ଏକତ୍ର ମିଳନ, ପରସ୍ପରର ସାପେକ୍ଷ ବହୁ ପଦର ଏକକ୍ରିୟାନ୍ୱୟିତ୍ୱ, (ସମ୍+ହିତ+ଯ)ଶବ୍ଦଶାସ୍ତ୍ର, କାବ୍ୟ, ନାଟକ, ଅଳଂକାର ପ୍ରଭୃତି, ଅନ୍ୟଲୋକ ବୁଝିପାରିବାଭଳି ଲିଖିତଭାଷାରେ ବ୍ୟକ୍ତ କରାଯିବା ମାନବର ବ୍ୟକ୍ତିଗତ ବା ଜାତୀୟ ଚିନ୍ତା, ଗଦ୍ୟ ପଦ୍ୟମୟ ରଚନା ।
ସାହିତ୍ୟଚର୍ଚ୍ଚା—ବ. ସାହିତ୍ୟ ସମ୍ବନ୍ଧେ ଆଲୋଚନା, କାବ୍ୟ ଶାସ୍ତ୍ରର ଆଲୋଚନା ।
ସାହିତ୍ୟଚର୍ଚ୍ଚୀ—ପୁଂ. ବିଂ. ( ୬ତତ୍ପୁ ) ସାହିତ୍ୟସେବୀ, କାବ୍ୟଶାସ୍ତ୍ରର ଆଲୋଚନାକାରୀ, (ସ୍ତ୍ରୀ) ସାହିତ୍ୟଚର୍ଚ୍ଚିନୀ ।
ସାହିତ୍ୟଜଗତ୍—ବ.(୬ତତ୍) ସାହିତ୍ୟସମ୍ବନ୍ଧୀୟ ସଂସାର, କାବ୍ୟଶାସ୍ତ୍ର ରୂପ ବିଶ୍ୱ ।
ସାହିତ୍ୟଦର୍ପଣ—ବ. ପ୍ରାଚୀନ ଉତ୍କଳର ରାଜା ପୁରୁଷୋତ୍ତମଦେବଙ୍କ ରାଜସଭାର ଉତ୍କଳୀୟ ପଣ୍ଡିତ ବିଶ୍ୱନାଥ ମହାପାତ୍ରଙ୍କ କୃତ ସମଗ୍ର ଭାରତପ୍ରସିଦ୍ଧ ସଂସ୍କୃତ ଅଳଙ୍କାର ଗ୍ରନ୍ଥବିଶେଷ ।
ସାହିତ୍ୟଦର୍ପଣକାର—ଗ୍ରା. ବ. ସାହିତ୍ୟଦର୍ପଣ ନାମକ ଅଳଙ୍କାର ଗ୍ରନ୍ଥର ପ୍ରଣେତା କବିରାଜ ବିଶ୍ୱନାଥ ମହାପାତ୍ର ।
ସାହିତ୍ୟପରିଷତ୍—ବ. ଯେଉଁ ସଭାରେ ସାହିତ୍ୟ ବିଷୟ ଚର୍ଚ୍ଚାହୁଏ ।
ସାହିତ୍ୟବିଶାରଦ—ପୁଂ. ବ. ଓ ବିଂ. ପଣ୍ଡିତଙ୍କୁ ପ୍ରଦତ୍ତ ଉପାଧିବିଶେଷ, ସାହିତ୍ୟରେ ଧୁରନ୍ଧର (ବ୍ୟକ୍ତି), (ସ୍ତ୍ରୀ) ସାହିତ୍ୟବିଶାରଦା ।
ସାହିତ୍ୟବ୍ୟବସାୟୀ—ପୁଂ. ବିଂ.(୬ତତ୍) କାବ୍ୟଶାସ୍ତ୍ର ଲେଖକ, ସାହିତ୍ୟଶାସ୍ତ୍ର ପ୍ରତ୍ୟୟନ ଓ ପ୍ରଚାର ଦ୍ୱାରା ଜୀବିକାନିର୍ବାହକାରୀ, (ସ୍ତ୍ରୀ) ବ୍ୟବସାୟିନୀ ।
ସାହିତ୍ୟଭକ୍ତ—ବିଂ.ଯେଉଁ ବ୍ୟକ୍ତି ସାହିତ୍ୟ ପ୍ରତି ଆକୃଷ୍ଟ ।
ସାହିତ୍ୟଭଣ୍ଡାର—ବ. ଭଣ୍ଡାର ସଙ୍ଗେ ତୁଳନୀୟ ସାହିତ୍ୟ ।
ସାହିତ୍ୟରଥୀ—ବିଂ.ସାହିତ୍ୟ ଓ ରଚନା-ଆଦିରେ ଧୁରନ୍ଧର (ବ୍ୟକ୍ତି),ସାହିତ୍ୟସେବୀମାନଙ୍କ ମଧ୍ୟରେ ପ୍ରଧାନ(ବ୍ୟକ୍ତି) ।
ସାହିତ୍ୟଶାସ୍ତ୍ର—ବ. (୬ତତ୍)କାବ୍ୟଶାସ୍ତ୍ର ।
ସାହିତ୍ୟସମାଜ—ବ. ଯେଉଁ ସଭାରେ ସାହିତ୍ୟ ଚର୍ଚ୍ଚା ନିମିତ୍ତ ନିୟମିତ ଅଧିବେଶନମାନ ହୁଏ ।
ସାହିତ୍ୟସେବକ—ପୁଂ.ବ.ବିଂ. (୬ତତ୍) କାବ୍ୟଶାସ୍ତ୍ରର ଉପାସକ, ସାହିତ୍ୟ ଚର୍ଚ୍ଚାରେ ସର୍ବଦା ଅନୁରକ୍ତ, କାବ୍ୟଶାସ୍ତ୍ରାଦିର ପ୍ରଣେତା ।
ସାହିତ୍ୟସେବା—ବ. (୬ତତ୍) ନିଷ୍ଠାସହକାରେ ସାହିତ୍ୟ ଚର୍ଚ୍ଚା, କାବ୍ୟଶାସ୍ତ୍ରର ପ୍ରଣୟନ ।
ସାହିତ୍ୟସେବୀ—ପୁଂ. ବ.ବିଂ. ସାହିତ୍ୟସେବକ ଦେଖ,(ସ୍ତ୍ରୀ)ସାହିତ୍ୟସେବିନୀ ।
ସାହିତ୍ୟାକାଶ—ବ.ଆକାଶ ସଙ୍ଗେ ତୁଳନୀୟ ସାହିତ୍ୟ,କାବ୍ୟଜଗତର ଆକାଶ ।
ସାହିତ୍ୟାଗ୍ରଣୀ—ପୁଂ. ବ. ବିଂ. (୬ତତ୍) ସାହିତ୍ୟଗୁରୁ,କାବ୍ୟଶାସ୍ତ୍ରର ଉପାଧ୍ୟାୟ ।
ସାହିତ୍ୟାଧ୍ୟାପକ—ବ.ସାହିତ୍ୟ ବା କାବ୍ୟ ଶାସ୍ତ୍ରର ଶିକ୍ଷାଦାତା ।
ସାହିତ୍ୟାନୁରକ୍ତ—ପୁଂ. ବିଂ. (୭ମୀ ବା ୪ର୍ଥୀତତ୍)ସାହିତ୍ୟ ଚର୍ଚ୍ଚାରେ ଅନୁରକ୍ତ, (ସ୍ତ୍ରୀ) ସାହିତ୍ୟାନୁରକ୍ତା ।
ସାହିତ୍ୟାନୁରାଗ-ବ.(୪ର୍ଥୀ ବା ୭ମୀତତ୍) ସାହିତ୍ୟ ଚର୍ଚ୍ଚା ପ୍ରତି ପ୍ରଗାଢ଼ ସ୍ନେହ ।
ସାହିତ୍ୟାନୁରାଗୀ—ପୁଂ.ବିଂ. ସାହିତ୍ୟାନୁରକ୍ତ ଦେଖ, (ସ୍ତ୍ରୀ) ରାଗିଣୀ ।
ସାହିତ୍ୟାମୋଦ—ବ. ( ମଧ୍ୟ.କ.ଧା ) ସାହିତ୍ୟ ଚର୍ଚ୍ଚାରୁ ଜାତ ଆନନ୍ଦ ।
ସାହିତ୍ୟାମୋଦୀ—ପୁଂ. ବିଂ. (୬ତତ୍) ସାହିତ୍ୟାନୁରାଗୀ, କାବ୍ୟଶାସ୍ତ୍ରପ୍ରିୟ,(ସ୍ତ୍ରୀ) ସାହିତ୍ୟାମୋଦିନୀ ।
ସାହିତ୍ୟାଲୋଚନା--ବ(୬ତତ୍)ସାହିତ୍ୟଚର୍ଚ୍ଚା ଦେଖ ।
ସାହିତ୍ୟିକ—ପୁଂ.ବିଂ. (ସାହିତ୍ୟ+ଇକ) ସାହିତ୍ୟସମ୍ବନ୍ଧୀୟ, ସାହିତ୍ୟସେବକ ଦେଖ, (ସ୍ତ୍ରୀ) ସାହିତ୍ୟିକା ।
ସାହିପଡ଼ିଶା(ଶି)—ଗ୍ରା. ବ. ସାଇପଡ଼ିଶା ଦେଖ ।
ସାହିଭାଇ—ଗ୍ରା. ବ. ସାଇଭାଇ ଦେଖ ।
ସାହିମେଲା—ଗ୍ରା. ବ. ସାଇବାଲାମାନଙ୍କ ବଇଠକ, ସାଇବାଲାମାନଙ୍କ ମଉଛା ।
ସାହିମେଳ—ଗ୍ରା.ବ. ସାଇବାଲାମାନଙ୍କର ଏକତ୍ର ସମ୍ମିଳିତ ଷଡ଼ଯନ୍ତ୍ର, (ବିଂ) ସାହିମେଳିଆ ।
ସାହୁ—ଗ୍ରା. ବ. ସାଇ, ପକ୍ଷୀ ।
ସାହୁ—ଗ୍ରା.ପୁଂ.ବ. (ସ-ସାଧୁ)ମହାଜନ, ବଣିକ, ଉତ୍ତମର୍ଣ୍ଣ, ଋଣଦାତା, ଚଷା, ବଣିଆଁ, ପାଟରା, ତେଲି, ଗୁଡ଼ିଆ, ଶୁଦ୍ର,ଥୋଡିଆ,ଶୁଣ୍ଡି,ମାସ୍ତାନ ବ୍ରାହ୍ମଣ-ଆଦିଙ୍କର ବଂଶୋପାଧିବିଶେଷ, ମୂଲିଆ ବା ହଳିଆଙ୍କର ଖାମିନ୍ଦ ବା ସ୍ୱାମୀ, (ନାମ) ଶମ୍ଭୁଜୀଙ୍କ ପୁତ୍ର, ଶିବାଜୀଙ୍କ ମୃତ୍ୟୁ ପରେ ମରହଟ୍ଟାମାନଙ୍କର ଦ୍ୱିତୀୟ ରାଜା
ସାହୁକରବା—ଗ୍ରା.କ୍ରି.ମହାଜନଠାରୁ ଧନ କରଜ କରିବା ।
ସାହୁକାର—ଗ୍ରା.ପୁଂ.ବ. ମହାଜନ,ଋଣଦାତା, ବାଣିଜ୍ୟାଦିର ମୂଳଧନାଧ୍ୟକ୍ଷ, ଶେଠ, ମୂଲିଆ ହଳିଆ ଗୃହକରଆଦିଙ୍କ ସ୍ୱାମୀ ।
ସାହୁକାରି—ଗ୍ରା. ବ. ସାହୁକାରପଣ, ମହାଜନି ।
ସାହୁକାରଆ—ଗ୍ରା. ବିଂ. ସାହୁକାରସମ୍ବନ୍ଧୀୟ, (ବ) ସାହୁକାରପଣିଆ ।

ସାହୁଖାତକ—ଗ୍ରା.ବି.ଋଣଦାତା ଓ ଋଣଗ୍ରହୀତା ।

ସାହୁଖାତକି-ଗ୍ରା.ବି. ସାହୁପଣ ଓ ଖାତକପଣ, ସାହୁ ଓ ଖାତକ ମଧ୍ୟରେ ଥିବା ସମ୍ବନ୍ଧ ।

ସାହୁଖାତକିଆ—ଗ୍ରା.ବିଂ.ସାହୁ ଓ ଖାତକ ସମ୍ବନ୍ଧୀୟ ।

ସାହୁଘରକରିବା—ଗ୍ରା.କ୍ରି. ସାହୁକରିବା, ଦେଖ, ମୂଲିଆ ବା ହଳିଆ ଚାକର ବର୍ଷକ ପାଇଁ ଚାକରରୂପେ କାମ କରିବା ପାଇଁ ଖାମିନ୍ଦ ବା ସ୍ୱାମୀଠାରୁ କିଛି ଅର୍ଥ ଆଗତୁରା ନେଇ ସ୍ୱାମୀ ପାଖରେ ଚାକର ଭାବରେ ନିଯୁକ୍ତ କରିବା

ସାହୁପତିଆରା-ଗ୍ରା.ବି. ଖାତକର ଧାରଥିବା ଟଙ୍କା ସୁଝିବାକୁ କ୍ଷମତା ଥିବା ବିଷୟରେ ସାହୁର ମନରେ ଥିବା ନିଶ୍ଚିନ୍ତତା ।

ସାହୁବାହ୍ମଣ—ପ୍ରା. (ଗଞ୍ଜାମ) ବି. ଏକ ପ୍ରକାର ମାସ୍ତାନ ବ୍ରାହ୍ମଣ ।

ସାହୁମ(ମା)ହାଜନ—ଗ୍ରା, ବି, (ଏକାର୍ଥ ସହଚର) ଋଣଦାତା, ବଣିକ୍ ।

ସାହେନ୍—ପା. (ଲରିଆ) ସାହୁକାରର ସ୍ତ୍ରୀ, ସୁଆଣୀ ।

ସାହେବ—ପା. ପୁଂ. ବି. ସମ୍ମାନନୀୟ ବ୍ୟକ୍ତି, ସମ୍ମାନସୂଚକ ଉପାଧି ବା ସମ୍ବୋଧନ, ଇଉରୋପୀୟ ଓ ଇଉରେସୀୟମାନଙ୍କର ସାଧାରଣ ଉପାଧି, ଉଚ୍ଚ ରାଜ କର୍ମଚାରୀ ବା ଶାସନକର୍ତ୍ତାଙ୍କ ପ୍ରତି ସମ୍ବୋଧନ, ମୁସଲମାନୀ କାଇଦା ବା ଶିଷ୍ଟାଚାର ଅନୁସାରେ ଭଦ୍ର ବ୍ୟକ୍ତି ବା ବନ୍ଧୁଙ୍କୁ ସ୍ନେହ ବା ସମ୍ମାନସୂଚକ ସମ୍ବୋଧନ, ସମ୍ଭ୍ରାନ୍ତ ବ୍ୟକ୍ତି, ମହାଶୟ, ପ୍ରଭୁ, ପ୍ରତିପାଳକ ।

ସାହେବଜାଦା—ପା. ବି. ମୁସଲମାନ୍ ଭଦ୍ର ସନ୍ତାନ, (ସ୍ତ୍ରୀ)ସାହେବଜାଦୀ ।

ସାହେବମେମ୍—ପା.ବି. ପୁରୁଷ ଓ ସ୍ତ୍ରୀ ସାହେବ, ସାହେବ ସାହେବାଣୀ ।

ସାହେବସୁବା—ପା. ବି. ଧନବାନ୍ ଓ ପଦସ୍ଥ ଇଉରୋପୀୟ, ହାକମହୁକୁମା ।

ସାହେବା—ପା.ସ୍ତ୍ରୀ.ବି. ସାହେବ ଶବ୍ଦର ସ୍ତ୍ରୀଲିଙ୍ଗ, ଭଦ୍ର ମହିଳା ଓ ରାଣୀଆଦିଙ୍କ ନାମ ପରେ ବ୍ୟବହୃତ ସମ୍ମାନାର୍ଥକ ଶବ୍ଦ ।

ସାହେବାଣୀ—ଗ୍ରା.ସ୍ତ୍ରୀ.ବି. ଇଉରୋପୀୟା ସ୍ତ୍ରୀ, ବିବି, ମେମ୍ ।

ସାହେବାନ୍—ପା. ବି, ସାହେବ ଶବ୍ଦର ବହୁବଚନ ।

ସାହେବାନା(ନି)—ଗ୍ରା,ବି. ସାହେବ ବା ଇଉରୋପୀୟମାନଙ୍କର ଭାବ, ଆଚରଣ ବା ପଦ୍ଧତି,(ବିଂ)ସାହେବଙ୍କର ଉପଯୁକ୍ତ

ସାହେବାନିଆ—ଗ୍ରା. ବିଂ. ସାହେବ ବା ଇଉରୋପୀୟଙ୍କ ଯୋଗ୍ୟ ବା ଉପଯୁକ୍ତ

ସାହେବାନିକାଏ(କ)ଦା—ଗ୍ରା.ବି. ଇଉରୋପୀୟମାନଙ୍କ ଶିଷ୍ଟାଚାର ।

ସାହେବି—ଗ୍ରା.ବିଂ. ସାହେବଙ୍କ ପରି, ସାହେବ ସମ୍ବନ୍ଧୀୟ, (ବି) ସାହେବାନି ଦେଖ । [ ବାନ୍ଦୀ ।

ସାହେବେନ୍—ପ୍ରା.(ସମ୍ବ)ସ୍ତ୍ରୀ.ବି. ସାହେ-

ସାହେସ—ପ୍ରା.(ଲରିଆ)ବି, ସାହାଯ୍ୟ ।

ସାହ୍ନ—ବିଂ, (ସ+ଅହନ୍)ବି.ଗ୍ରୀଷ୍ମଦିବସବିଶିଷ୍ଟ, ଦିନଯୁକ୍ତ । [ ଯୁକ୍ତ ।

ସାହ୍ନିକ—ପୁଂ.ବିଂ. କୃତାହ୍ନିକ, ଆହ୍ନିକ-

ସାହ୍ୟ-ବି.(ସହ+ଯ)ସାହାଯ୍ୟ,ସହାୟତା. ମେଳନ, ସଙ୍ଗତିହ.(ଗ୍ରା.ବିଂ) ସାହାଯ୍ୟ କାରୀ, (ବି) ସହାୟ ।

ସାହ୍ୟକୃତ୍—ବିଂ. ( ସାହ୍ୟ+କୃ+କ. କ୍ୱିପ୍) ସଙ୍ଗୀ, ସମଭିବ୍ୟାହାରୀ, ସାହାଯ୍ୟକାରୀ ।

ସାହ୍ଲା—ଗ୍ରା ( ପ୍ରା.ଲରିଆ,ବି ) ସହ୍ଲା ଦେଖ, ବନ୍ଧୁ ବ୍ୟକ୍ତିଙ୍କ ମେଳ, (ବିଂ) ମେଳବାନ୍ଧିଥିବା (ବ୍ୟକ୍ତିଗଣ),ପରାମର୍ଶ ସଂଭୂତ (କର୍ମ) ।

ସାହ୍ଲାଦ—ପୁଂ. ବିଂ. ( ସ+ଆହ୍ଲାଦ ), ଆହ୍ଲାଦବିଶିଷ୍ଟ (ବିଷୟ), ଆନନ୍ଦିତ, (ସ୍ତ୍ରୀ)ସାହ୍ଲାଦା,ଗ୍ରା. କ୍ରି. ବିଂ.ଆହ୍ଲାଦସହକାରେ ।

ସାହ୍ୱ—ବିଂ. ସଂଜ୍ଞାବିଶିଷ୍ଟ, ନାମଯୁକ୍ତ ।

ସାହ୍ୱୟ—ବି. (ସ+ଆହ୍ୱୟ) ସମାହ୍ୱୟ. ମେଷାଦି ପ୍ରାଣିଦ୍ୟୂତ, ପଣଯୁକ୍ତ, (ବିଂ) ନାମଯୁକ୍ତ, ନାମବିଶିଷ୍ଟ ।

ସି—ଗ୍ରା. ଅବ୍ୟ. (ଧ୍ୱନ୍ୟନୁକରଣ),ଲଙ୍କାମରିଚ ବା ରାଗ ଖାଇଲେ ପାଟିରୁ ବାହାରିବା ଶବ୍ଦ, ସିଟିମାରିବାର ଶବ୍ଦ, ପ୍ରାଚୀନ ଓଡ଼ିଆରେ ଅନୁଜ୍ଞା ୨ୟପୁରୁଷ ଏକବଚନରେ କ୍ରିୟାରୂପରେ ଯୋଗକରାଯିବା ଅକ୍ଷର,(ଯଥା—ଦେହଲାଆସି, ନୁହସି ଇତ୍ୟାଦି) ଶୀତାର୍ତ୍ତ ବ୍ୟକ୍ତିର ସିତ୍କାର ଶବ୍ଦ,'ସି'ଅକ୍ଷର,(ପ୍ରା.ସମ୍ବ) କ୍ରିୟାର ପ୍ରତ୍ୟୟବିଶେଷ,(ଯଥା--କରସି, ଲାଗସି, (ଦାଶୁ) ଥାଇସି, କହସି ଇତ୍ୟାଦି) ।

ସିଅ—ଗ୍ରା.ବି.ଶିଅଇତ୍ୟାଦି ଦେଖ,ଗଛର ଚେର; ଶାଖାଚେର ।

ସିଅଁ—ଗ୍ରା. କ୍ରି. (ଭୁମ୍ପେ) ସିଲାଇକର ।

ସିଅକ୍ଷର—ଗ୍ରା.ବି. ବିଦ୍ୟାରମ୍ଭରେ ଶିଶୁର ବୋଲିବା ଓ ଲେଖିବା ପ୍ରଥମ ଅକ୍ଷର ।

ସିଅକ୍ଷରବିବର୍ଜିତ—ଗ୍ରା. ବିଂ. ଗଣ୍ଡମୂର୍ଖ, ଅତିମୂର୍ଖ,ନିରକ୍ଷର,ଯେ ଆଦୌ ବିଦ୍ୟାରମ୍ଭ କରିନାହିଁ ବା ବର୍ଣ୍ଣପରିଚୟ କରିନାହିଁ । [ ଥଣ୍ଡା ।

ସିଅଳ୍—ପା. (ବଲାଙ୍ଗିରପାଟଣା) ଶୀତଳ,

ସିଅଳ—ଗ୍ରା. ବି. ଖଜୁରି ଓ ତାଳଗଛରୁ ରସ (ତାଡ଼ି) ବାହାର କରିବା ହରିଜନ ଜାତି ।

ସିଆ—ପା. ବି. ସିହା ଦେଖ, (ଗ୍ରା.ବି— ବଣିଆଶବ୍ଦ) ସୁନା ।

ସିଆଇ(ହି)—ପା. ବି. ମସୀ, କାଳୀ ।

ସି.ଆଇ,ଇ-ପା.ବି.ଇଂରେଜସରକାରଙ୍କ ପ୍ରଦତ୍ତ ଉଚ୍ଚ ସମ୍ମାନସୂଚକ ଉପାଧିବିଶେଷ, ( ଏହା କମ୍ପାନିଅନ୍ ଅଫ୍ ଇଣ୍ଡିଆନ୍ ଏମ୍ପିର୍-ଏହାର ଅର୍ଥ ଭାରତସାମ୍ରାଜ୍ୟର ସଙ୍ଗୀ ବା ବନ୍ଧୁ) ।

ସି,ଆଇ,ଡି,—ପା. ବି. ଗୋଇନ୍ଦାପୁଲିସ୍, ଗୁଇନ୍ଦାପୁଲିସ ବିଭାଗ ।

ସିଆଁ—ଗ୍ରା.ବି.ସିଲେଇକର୍ମ, (ବିଂ) ସିଲାଇ କରାଯାଇଥିବା ।

ସିଆଁଇବା—ଗ୍ରା. କ୍ରି. (ସିଇଁବା କ୍ରିୟାର ଣିଜନ୍ତ ରୂପ) ଅନ୍ୟ ଦ୍ୱାରା ସିଲାଇ କରାଇବା ।

ସିଆଁସେଇଁ—ଗ୍ରା. ବି. ନାନାବସ୍ତୁ ସିଲାଇ କରିବା କର୍ମ ।

ସିଆକାଟୁ—ପ୍ରା.(ଚଣ୍ଡା,ବା)ସ୍ତ୍ରୀଲୋକମାନଙ୍କ ମଣିବନ୍ଧରେ ପିନ୍ଧିବା ବଳୟବିଶେଷ ।

ସିଆଡ଼—ଗ୍ରା. ବି. ସେହିଆଡ଼, ସେ ଦିଗ, ବିପରୀତ ଦିଗ,ସେ ଦେଶ ବା ଅଞ୍ଚଳ ।

ସିଆଡ଼କା(ର)—ଗ୍ରା.ବିଂ. ସେହି ଅଞ୍ଚଳର ବା ଦେଶର, ସେହିଦିଗର, ବିପରୀତ ଦିଗର ।

ସିଆଡ଼(ଡ଼)କୁ—ଗ୍ରା.ଅବ୍ୟ. ସେହିଆଡ଼କୁ ବା ଦିଗକୁ, ତେଣିକି, ତାପରେ, ବିପରୀତ ଦିଗକୁ ।

ସିଆଡ଼—ଗ୍ରା. (ବଣିଆଣଙ୍କ)ବି. ସୁନା ବା ରୁପାର ତାର ଟାଣିବାର ସଣ୍ଡୁଆସି, ବନ୍ୟଲତାବିଶେଷ ।

ସିଆଡ଼(ଡ଼)ଗଣ୍ଠିଫେରାଇବା ବା ବୁଲାଇବା —ଗ୍ରା.କ୍ରି.(କନ୍ଧୁଆ କନ୍ଧ,କୋହ୍ଲ,ଭୂୟାଁ ଆଦି ଅନାର୍ଯ୍ୟମାନେ) ସିଆଡ଼ ଲଇରେ ଗଣ୍ଠି ପକାଇ ରାଜ୍ୟତମାମ ବିଦ୍ରୋହ ବା ମେଳର ଉତ୍ତେଜନାସୂଚକ ଚିହ୍ନ ଗ୍ରାମରୁ ଗ୍ରାମାନ୍ତରକୁ ପଠାଇବା ।

ସିଆଡ଼(ଡ଼)ଲଇ—ଗ୍ରା. ବି. ବନ୍ୟଲତା-ବିଶେଷ ।

ସିଆଡ଼ୁ—ଗ୍ରା. ଅବ୍ୟ. ତେଣୁ, ସେହିଆଡ଼ୁ, ସେଦିଗରୁ, ବିପରୀତ ଦିଗରୁ, ସେ ଅଞ୍ଚଳରୁ ବା ଦେଶରୁ (ବିପ-ଇଆଡ଼ୁ)।

ସିଆଡ଼େ—ଗ୍ରା. ଅବ୍ୟ. ସେଦିଗରେ, ତେଣେ,ସେଠାରେ, ବିପରୀତଦିଗରେ, ପକ୍ଷାନ୍ତରରେ ।

ସିଆ(ହା)ଣ—ଗ୍ରା.ପୁଂ. ବିଂ. (ସଂ-ସଜ୍ଞାନ) ଚତୁର, ଚାଲାଖ, ବୁଦ୍ଧିମାନ୍,ଶଠ,ଧୂର୍ତ୍ତ ।

ସିଆ(ହା)ଣୀ—ଗ୍ରା.ସ୍ତ୍ରୀ.ବିଂ. ରଜୋବତୀ, ରଜସ୍ୱଳା ହୋଇଥିବା (ବାଳିକା) ।

ସିଆଣପଣିଆଁ—ଗ୍ରା. ବି. ଚତୁରତା, ଧୂର୍ତ୍ତତା, ବୁଦ୍ଧିମତ୍ତା ।

ସିଆଣାପାଗଳ—ଗ୍ରା.ବିଂ. ଯେଉଁ ଚତୁର ବ୍ୟକ୍ତି ବାତୁଳତାର ଛଳ କରେ, ବାହାରେ ଲୋକଙ୍କୁ ଦେଖାଇବା ପାଇଁ ବାତୁଳ ବା ସରଳ କିନ୍ତୁ ପ୍ରକୃତରେ ଧୂର୍ତ୍ତ ବା କୂଟବୁଦ୍ଧି ବ୍ୟକ୍ତି, ଯେ ନିଜ ଦୋଷ ଜାଣିପାରି ବାତୁଳତାର ବାହାନା କରେ ।

ସିଆଣାହେବା—ଗ୍ରା.କ୍ରି. (ବାଳକା) ଘର ଯୋଗ୍ୟା ହେବା, ଜ୍ଞାନପାଇବା ।

ସିଆଣିଆ—ଗ୍ରା.ବିଂ.ସିଆ(ହା)ଣ ଦେଖ ।

ସିଆନ୍—ପ୍ରା. (ସମ୍ବ) ବି. ଅଧିନାୟକ, ଦଳପତି, (ବିଂ) ବୁଦ୍ଧିଆର୍, ଚତୁର ।

ସିଆନଙ୍ଗା—ଗ୍ରା. ବି. ବଉଦ ରାଜ୍ୟର ଗୋଟିଏ ପର୍ବତ ।

ସିଆନା—ପ୍ରା(ଲରିଆ)ବିଂ.ସିଆଣା,ଚତୁର

ସିଆର—ଘା.ବି.ଯୌଥ ବା କାରବାରରେ ଅଂଶ ବା ହିସ୍ସା ।

ସି.ଆର୍.ଦାସ—ବଙ୍ଗର ପ୍ରସିଦ୍ଧ ରାଜନୀତିକ ନେତା ସ୍ୱର୍ଗୀୟ ଦେଶବନ୍ଧୁ ଚିତ୍ତରଞ୍ଜନ ଦାସ ।

ସିଆର—ଗ୍ରା.ବି.ଲଙ୍ଗଳଗାର,ପହଣି ।

ସିଆଳ—ଗ୍ରା. ବି. ଶିଆଳ,ସିଆଡ଼ ଦେଖ ।

ସିଆଳିଲତା—ଗ୍ରା. ବି. ଔଷଧିଲତା ବିଶେଷ, ସିଆଡ଼ ଦେଖ ।

ସିଇଠି—ଗ୍ରା. ସର୍ବ. ସେହିଠାରେ,ସେହି-ସ୍ଥାନରେ ।

ସିଇଁବା—ଗ୍ରା. କ୍ରି. ସିଲେଇ କରିବା, ଖଲିଆଦି କରିବାକୁ ପତ୍ରମାନଙ୍କୁ ଏକତ୍ର କରି ବା ଖଡ଼ିକାଦ୍ୱାରା ସିଇଁ ଯୋଡ଼ିବା ।

ସିଇରି—ପ୍ରା. (ଯାଜ) ବି. ମାଟିଗୋବର ଲେସା ହୋଇ ନ ଥିବା ଟୋକେଇ ।

ସିଉକା(କି)—ଗ୍ରା. ବି. ଷୋଳଅଣା ମୂଲ୍ୟର ମୁଦ୍ରା, ଚାରିଅଣା,ଟଙ୍କାର ଚତୁର୍ଥାଂଶ ।

ସିଉକା(କି)କର—ଗ୍ରା. ବିଂ. ଏକସିଉକା ମୂଲ୍ୟର ।

ସିଉକାର—ଗ୍ରା. ବି. (ସଂ-ସ୍ୱୀକାର)ସୀଉ-କାର ଦେଖ ।

ସିଉନା—ପ୍ରା.(ବସ୍ତର)ବି.ଗମ୍ଭାରି(ଗଛ)।

ସିଉନ୍ତା—ଗ୍ରା. ବି. (ସଂ-ସୀମନ୍ତ) ସୁନ୍ଥା, କେଶବିନ୍ୟାସବିଶେଷ ।

ସିଉନ୍ତ(ନ୍ତି)—ଗ୍ରା. ବି. ସନ୍ଥି, ସୀମନ୍ତର ଅଳଙ୍କାରବିଶେଷ । [ ସୁନ୍ଥା ।

ସିଉନ୍ତିଆ—ପ୍ରା. (ସମ୍ବଲ) ବି. ସ୍ତ୍ରୀମାନଙ୍କ

ସିଉରି-ପ୍ରା.(କେନ୍ଦ୍ରାପଡ଼ା)ବି.ଟୋକେଇ ।

ସିଏ—ଗ୍ରା. (ସର୍ବ) ପୁଂ. ଓ ସ୍ତ୍ରୀ. ସେ, ସେହିଲୋକ ।

ସିଓ—ଗ୍ରା. ବି. ସିବଣିକା ଫଳ ।

ସିଂକ—ପ୍ରା. (ଲରିଆ) ବି.ଖଡ଼ିକା,କମି ।

ସିଂକିବା—ପ୍ରା. (ଲରିଆ) ବି. ସିଂଘଣି ପୋଛିବା ।

ସିଂଖିପତା—ପ୍ରା. (ଲରିଆ) ବି. ଖଡ଼ିକା ଦ୍ୱାରା ସିଆଁ ହୋଇଥିବା ପତ୍ରମାନ,ଖଲି ।

ସିଂଖାଣ—ବି. (ସିନସ୍+ଆଣ)ସିଂହାଣ ଦେଖ । [ ଦେଖ ।

ସିଂର୍(ଢ଼୍)ରି—ପ୍ରା. (ସମ୍ବଲ) ବି. ଶିଂର୍ରି

ସିଂଗ(ଘ)—ଗ୍ରା. ବି. (ସଂ-ସିଂହ) ସିଂହ ଦେଖ, (ସଂ-ଶୃଙ୍ଗ) ଶିଂଘ ଦେଖ ।

ସିଂଗା(ଘା)ଣି—ଗ୍ରା.ବି. ଶିଂଗାଣି ଦେଖ ।

ସିଂଗା(ଘା)ଣିଆ—ଗ୍ରା. ବିଂ. ଶିଂଗାଣିଆ ଦେଖ ।

ସିଂଘଡ଼ା—ଗ୍ରା. ବି. ଶିଂଘଡ଼ା ଦେଖ ।

ସିଂଘଣ—ବି.(ସିନ୍ଘ୍+ମି.ଅନ)ନାସିକା-ମଳ, ଲୋହମଳ ।

ସିଂଘାଣ—ବି.(ଶିଂଘ+ମି.ଆନ)ନାସିକା-ମଳ, କଫ, ଶ୍ଳେଷ୍ମା ।

ସିଂଘାଣକ—ବି.(ସିଂଘାଣ+କ)ନାସିକା-ମଳ, କାଚପାତ୍ର, ନାସିକା ରୋଗ-ବିଶେଷ,ଅଶ୍ୱରୋଗବିଶେଷ,ଲୋହକାଇ, ଲୁହାମଳ, ମଣ୍ଡୁର ।

ସିଂଘାନ—ବି. କୋଷବୃଦ୍ଧି, କୁରୁଣ୍ଡ ।

ସିଂଘାଲି—ପ୍ରା. (ଖଡ଼ିଆଳ) ବି. ବାଳିଆ-ମାଛପରି ବଡ଼ ଅନ୍ଧାରିଆ ଓ ଦେକ-ପାଖରେ ୨ଟା କଣ୍ଟାଥିବା ବଡ଼ମାଛି, ଆଡ଼(ଳି)ମାଛ ।

ସିଂଘାର—ଗ୍ରା.ବି. ଶିଂଘାର ଦେଖ ।

ସିଂଘାରିବା—ଗ୍ରା. କ୍ରି. ମନ୍ତ୍ରମୁଗ୍ଧ ଜନ୍ତୁ (ଯଥା:-ସାପ)କୁ ମନ୍ତ୍ରମୋହରୁ ମୁକ୍ତ କରି ନିଜର କରାମତି ଦେଖାଇବା ପାଇଁ ଉତ୍ତେଜିତ କରିବା, ଗୁଣିଆ କୌଣସି ଲୋକର ଘାଆକୁ ମନ୍ତ୍ର ପ୍ରୟୋଗଦ୍ୱାରା ଘାଆ ନ ଶୁଖି ବଢ଼ିବା ପାଇଁ ବଞ୍ଚିବା ପର୍ଯ୍ୟନ୍ତ କଷ୍ଟ ଦେବା ।

ସିଂଘାରହେବା—ଗ୍ରା. କ୍ରି. ବିବାଦ ବା ଗୋଳମାଳ କରିବାକୁ ରାଗରେ ରହିଥିଲେ ଖଟେଇ ହେବା, ରାଗାନ୍ଧ ହୋଇ ଅସତ୍ କାର୍ଯ୍ୟ କରିବାକୁ ବାଟ ଖୋଜିବା ।

ସିଂଘିଣୀ—ବି. ନାସିକା ।

ସିଂଘେନ୍—ପ୍ରା.( ବଲାଙ୍ଗିରପାଟଣା ) ବି. ଶିଂଗାଣି ଦେଖ ।

ସିଂବଙ୍ଗା—ପ୍ରା.(କୋହ୍ଲ)ବି. ସୂର୍ଯ୍ୟ ।

ସିଂସା—ଗ୍ରା.ବି.(ସଂ-ସୀସକ)ସୀସା(ଧାତୁ). (ପ୍ରା.ବଉଦ) ସୀସା ପେନ୍ସିଲ୍ ।

ସିଂହ—ପୁଂ.ବି. (ହିନ୍ସ୍ + କ.ଅ) ସ୍ୱନାମ ପ୍ରସିଦ୍ଧ ବନ୍ୟ ପଶୁ,ପଶୁରାଜ, ମୃଗେନ୍ଦ୍ର, (ଅନ୍ୟ ଜାତିବାଚକ ଶବ୍ଦ ସଙ୍ଗେ ଯୁକ୍ତ ହେଲେ) ଶ୍ରେଷ୍ଠ, (ଯଥା:-ପୁରୁଷସିଂହ, ନରସିଂହ ଇତ୍ୟାଦି) ମେଷାଦି ଦ୍ୱାଦଶ ରାଶିର ଅନ୍ତର୍ଗତ ପଞ୍ଚମ ରାଶି, ସୌର ଭାଦ୍ରମାସ, ରକ୍ତସିଗ୍ରୁ, ନାଲି ସଜନା, ବୌଦ୍ଧ ଯତିମାନଙ୍କର ଧ୍ୱଜ, ରାମାୟଣ ବର୍ଣ୍ଣିତ ଚନ୍ଦ୍ରଗିରି ପର୍ବତବାସୀ ବିଶାଳ ପକ୍ଷିବିଶେଷ, ( ଗ୍ରା.ବି ) କ୍ଷତ୍ରିୟମାନଙ୍କ ବଂଶୋପାଧିବିଶେଷ, କାୟସ୍ଥ, ସାଗର ପେଶା,ଶୂଦ୍ର ରାଜପୁତଆଦିଙ୍କ ବଂଶୋପାଧିବିଶେଷ, ରାଜପ୍ରଦତ୍ତ ଉପାଧିବିଶେଷ ।

ସିଂହକେଶର—ବି. ( ୬ତତ୍ ) ସଟା, ସିଂହର ବେକରେ ଥିବା ଲମ୍ବ କେଶର ବା ବାଳ, ବକୁଳଗଛ ।

ସିଂହଗ୍ରୀବ—ପୁଂ. ବିଂ. ( ବ.ବ୍ରୀ ) ସିଂହ ପରି ଉନ୍ନତ ଗ୍ରୀବାବିଶିଷ୍ଟ ।

ସିଂହଚଞ୍ଚା—ବି. ମାଷପର୍ଣ୍ଣୀ ।

ସିଂହ(ହୁ)ଟାଳି—ଗ୍ରା. ବି. ଏକପ୍ରକାର କାତିଆଳ ମାଛ, ସିଂଘୀମାଛ ।

ସିଂହଡା—ଗ୍ରା.ବି.(ସଂ-ଶୃଙ୍ଗାଟକ)ଶିଂଘଡ଼ା ଦେଖ ।

ସିଂହତଳ—ବି. କରଦ୍ୱୟର ଯୋଜନା, କୃତାଞ୍ଜଳି ।

ସିଂହତୁଣ୍ଡ—ବି. ସେହୁଣ୍ଡବୃକ୍ଷ,ସିଝୁଗଛ, ଏକପ୍ରକାର ମାଛ ।

ସିଂହଦରଜା-ଗ୍ରା.ବି.ସିଂହଦ୍ୱାର ଦେଖ ।

ସିଂହଦ୍ୱାର—ବି. (ମଧ୍ୟ—କ.ଧା) ରାଜପ୍ରାସାଦ ଓ ଦେବାଳୟର ସିଂହ ମୂର୍ତ୍ତି ଚିହ୍ନିତ ପ୍ରବେଶ ଦ୍ୱାର, ପ୍ରଧାନ ବା ସଦର ଦୁଆର,ଫାଟକ ।

ସିଂହଧ୍ୱନି—ବି. (୬ତତ୍) ସିଂହର ଶବ୍ଦ ବା ଗର୍ଜନ, ସିଂହନାଦ ସଦୃଶ ଉଚ୍ଚଶବ୍ଦ ।

ସିଂହନାଥ-ଗ୍ରା.ବି.ବାଙ୍କୀ ବୈଦ୍ୟେଶ୍ୱରର ସମ୍ମୁଖରେ ମହାନଦୀ ଗର୍ଭରେ ବଡ଼ମ୍ବା ରାଜ୍ୟଭୁକ୍ତ ଏକ ପାହାଡ଼ ଓ ଦ୍ୱୀପ ଓ ତହିଁରେ ପ୍ରସିଦ୍ଧ ଶିବବିଗ୍ରହ ।

ସିଂହନାଦ—ବି. (୬ତତ୍) ସିଂହର ଧ୍ୱନି, ଯୋଦ୍ଧାମାନଙ୍କର ରଣୋତ୍ସାହଜ ଶବ୍ଦ, ମହାଦେବ, ସଂସ୍କୃତ ଛନ୍ଦୋବିଶେଷ ।

ସିଂହନାଦକ—ବି. (ସିଂହ+ନଦ୍+ଣ. ଅକ) ଶିଙ୍ଗା, ରଣଶିଙ୍ଗା,ବୁକ୍କାର,(ପୁଂ. ବିଂ-କ.ଅକ ) ସିଂହପରି ନାଦକାରୀ, (ସ୍ତ୍ରୀ) ସିଂହନାଦିକା ।

ସିଂହନାଦଗୁଗ୍ଗୁଲୁ—ବି.ଆମବାତ ରୋଗାଧିକାରୋକ୍ତ ଔଷଧବିଶେଷ ।

ସିଂହନାଦିକା—ବି. (ସିଂହନାଦକ+ସ୍ତ୍ରୀ. ଆ) ଦୁରାଲଭା ।

ସିଂହନାଦୀ—ପୁଂ. ବି. କନ୍ଦର୍ପଙ୍କର ପୁତ୍ର ଭେଦ, (ବିଂ) ସିଂହପରି ନାଦକାରୀ, (ସ୍ତ୍ରୀ) ସିଂହନାଦିନୀ ।

ସିଂହପଟ୍ଟୀ—ବି. ଧର୍ମସମ୍ପ୍ରଦାୟବିଶେଷ ।

ସିଂହପତ୍ରୀ—ବି. ମାଷପର୍ଣ୍ଣୀ ।

ସିଂହପରାକ୍ରମ--ବିଂ. ସିଂହପରି ପରାକ୍ରମଶାଳୀ (ବ୍ୟକ୍ତି),(ବି)ସିଂହର ପରାକ୍ରମ ।

ସିଂହପର୍ଣ୍ଣୀ—ବି. ବାସକ, ବାସଙ୍ଗଗଛ ।

ସିଂହପୁଚ୍ଛିକା--ବି.କ୍ଷୁଦ୍ରପର୍ଣ୍ଣିକା,କ୍ଷୁଦ୍ରଚକ୍ରପର୍ଣ୍ଣୀ, ଗ୍ରେଟଗୁଳୁଣ୍ଡା, ପୃଶ୍ନିପର୍ଣ୍ଣୀଲତା, ମାଷପର୍ଣ୍ଣୀ ।

ସିଂହପୁଚ୍ଛୀ—ସ୍ତ୍ରୀ. ବି. ଚକ୍ରପର୍ଣ୍ଣିକା; ପୃଶ୍ନିପର୍ଣ୍ଣୀ, ମାଷପର୍ଣ୍ଣୀ ।

ସିଂହପୁର—ଗ୍ରା. ବି. ( ନାମ ) ପ୍ରାଚୀନ କଳିଙ୍ଗର ଏକରାଜଧାନୀ ।

ସିଂହପୁଷ୍ପା—ବି. ପୃଶ୍ନିପର୍ଣ୍ଣୀ ଦେଖ ।

ସିଂହପୁଷ୍ପୀ--ବି.ପୃଶ୍ନିପର୍ଣ୍ଣୀ,ବାସକ, ବାସଙ୍ଗ

ସିଂହଭୂମ୍(ମି)—ଗ୍ରା. ବି. (ନାମ)ଆଧୁନିକ ବିହାରପ୍ରଦେଶର ଅନ୍ତର୍ଗତ ଓଡ଼ିଆଜିଲ୍ଲା ବିଶେଷ ।

ସିଂହମାଳିକା—ଗ୍ରା. ବି. ଷଢ଼େଇକଳା ରାଜାଙ୍କ ଗୃହରେ ରକ୍ଷିତ ସିଂହଭୂମିର ତଥା ସିଂହରାଜବଂଶର ଇତିହାସ ।

ସିଂହମୁଖ—ବି. (୬ତତ୍) ସିଂହର ମୁଖ, ହସ୍ତୀର ଭୂଷଣବିଶେଷ, (ବିଂ-ବ.ବ୍ରୀ) ସିଂହପରି ମୁଖବିଶିଷ୍ଟ ।

ସିଂହମୁଖୀ—ସ୍ତ୍ରୀ.ବି.ବାସକ,ବାସଙ୍ଗ ଦେଖ

ସିଂହଯାନା--ସ୍ତ୍ରୀ.ବି.(ସିଂହ+ଯାନ+ଆ) ବ.ବ୍ରୀ;ଦୁର୍ଗା,(ସିଂହରଥା--ଅନ୍ୟରୂପ)

ସିଂହରଥା—ସ୍ତ୍ରୀ. ବି. (ବ.ବ୍ରୀ) ଦୁର୍ଗା ।

ସିଂହରଜା—ଗ୍ରା.ବି. ସିଂହଭୂମିର ରାଜା, ସିଂହଭୂମ୍ ଦେଖ, ପଶୁରାଜ, ସିଂହ ।

ସିଂହରବ--ବି. (୬ତତ୍)ସିଂହର ଗର୍ଜନ, (ବିଂ-ବ.ବ୍ରୀ) ସିଂହପରି ଧ୍ୱନିବିଶିଷ୍ଟ ।

ସିଂହର୍ଷଭ—ବି. ସିଂହଶ୍ରେଷ୍ଠ, ଶୂରଶ୍ରେଷ୍ଠ

ସିଂହରାଠୋର--ପ୍ରା.(ସିଂହଭୂମ୍,ବି) କ୍ଷତ୍ରିୟ ଜାତିବିଶେଷ ।

ସିଂହଳ—ବି. (ନାମ)ଲଙ୍କାଦ୍ୱୀପ,ପିତ୍ତଳ, ଟିଣଧାତୁ, ଦାରୁଚିନି ।

ସିଂହଳକ—ବି.ଉତ୍ତମପିତ୍ତଳ,ବଙ୍ଗ,ରଙ୍ଗଧାତୁ, ଗୁଡ଼ତ୍ୱକ୍ ।

ସିଂହଳଦ୍ୱୀପ—ବି. ଲଙ୍କାଦ୍ୱୀପ ।

ସିଂହଳସ୍ଥା--ବି.ସୈଂହଳୀ, ପିପ୍ପଳୀବିଶେଷ

ସିଂହଳାସ୍ଥାନ—ବି. ତାଳବୃକ୍ଷ ସଦୃଶ ବୃକ୍ଷ ବିଶେଷ ।

ସିଂହଳୀ—ଗ୍ରା. ବିଂ. ସିଂହଳସମ୍ବନ୍ଧୀୟ, ସିଂହଳଦେଶୀୟ, ସିଂହଳଦେଶବାସୀ, ସିଂହଳଦେଶ ପ୍ରଚଳିତ ଭାଷା ।

ସିଂହଳୀୟ—ବିଂ. ( ସିଂହଳ+ଈୟ ) ସିଂହଳଦେଶ ସମ୍ବନ୍ଧୀୟ ।

ସିଂହଲୀଳ—ବିଂ.(ସିଂହ+ଲୀଳା-ବ.ବ୍ରୀ) ସିଂହପରି ଲୀଳାଯୁକ୍ତ, (ବି) ରତିବନ୍ଧବିଶେଷ ।

ସିଂହବଂଶ—ବି. ଉତ୍ତର ପଶ୍ଚିମଭାରତର ଗୋଟିଏ ପ୍ରାଚୀନ ପ୍ରସିଦ୍ଧ ରାଜବଂଶ ।

ସିଂହବକ୍ତ୍ର—ବି. (୬ତତ୍ର) ସିଂହର ମୁଖ (ବିଂ-ବ.ବ୍ରୀ)ସିଂହମୁଖ ପରି ମୁଖବିଶିଷ୍ଟ, (ବି) ରାକ୍ଷସଭେଦ ।
ସିଂହବାହିନୀ—ସ୍ତ୍ରୀ. ବି. ଦୁର୍ଗା ।
ସିଂହବାହିନୀ—ସ୍ତ୍ରୀ.ବି(ସିଂହ+ବହ୍+ଇନ୍+ଈ) ଦୁର୍ଗା ।
ସିଂହବିକ୍ରମ—ବି. (୬ତତ୍ର)ସିଂହର ପରାକ୍ରମ, ( ପୁଂ.ବିଂ.ବ.ବ୍ରୀ ) ସିଂହପରି ପରାକ୍ରମଶାଳୀ, (ସ୍ତ୍ରୀ) ବିକ୍ରମା ।
ସିଂହବିକ୍ରାନ୍ତ—ବି.ଅଶ୍ୱ, ଘୋଟକ,(ପୁଂ. ବିଂ) ସିଂହପରି ପରାକ୍ରମଶାଳୀ ।
ସିଂହବିକ୍ରୀଡ଼ିତ-ବି.ସଂସ୍କୃତ ଛନ୍ଦୋଭେଦ, (ବି) ସିଂହର କ୍ରୀଡ଼ା ।
ସିଂହବିନ୍ନା—ବି. ମାଷପର୍ଣ୍ଣୀ ଦେଖ ।
ସିଂହବିଷ୍ଟର—ବି. ସିଂହାସନ ।
ସିଂହଶାବକ(ଶିଶୁ)—ବି.(୬ତତ୍ର)ସିଂହର ଛୁଆ, ସିଂହଛୁଆ ।
ସିଂହସଂହନନ—ପୁଂ.ବିଂ (ବ.ବ୍ରୀ)ସିଂହ ତୁଲ୍ୟ ସର୍ବାଙ୍ଗସୁନ୍ଦର, ସିଂହସଦୃଶ ଦୃଢ଼ ବପୁଃ (ଶରୀର), ସୁଶ୍ରୀ, ସୁଗଠନ, (ବି) ସିଂହ ଶିକାର, ସିଂହନାଶ ।
ସିଂହସାରଳା—ଗ୍ରା. ବି. କଟକ ଜିଲ୍ଲାର ଝଙ୍କଡ଼ରେ ପ୍ରତିଷ୍ଠିତା ସିଂହବାହିନୀ ସାରଳାଦେବୀ ।
ସିଂହସ୍କନ୍ଧ—ପୁଂ.ବିଂ. (ବ.ବ୍ରୀ)ସିଂହସ୍କନ୍ଧ ପରି ବିଶାଳ ସ୍କନ୍ଧବିଶିଷ୍ଟ,(ବି)ସିଂହସ୍କନ୍ଧ, ବିଶାଳସ୍କନ୍ଧ ।
ସିଂହା—ବି.(ସିଂହ+ଆ)ନାଡ଼ି, (ଗ୍ରା.ବି) ଶିଂଘା, ରଣଶିଂଘା ।
ସିଂହାଚଳ—ବି.ହିନ୍ଦୁ ପୁରାଣୋକ୍ତ ପ୍ରସିଦ୍ଧ ତୀର୍ଥ ଓ ପର୍ବତ, ହିମାଚଳ ।
ସିଂହାଣ(ନ)—ବି. ( ସିଂହ+ମଁ.ଅନ ) ଲୌହମଳ,ଲୁହାମଳ, ମଣ୍ଡୁର,ନାସିକା ମଳ, ସିଙ୍ଘାଣି, (ଗ୍ରା.ବିଂ)ଚତୁର,ସିଂହାଣିଆ, (ଗ୍ରା.ବି ବୀର,ପୁରୁଷସିଂହ.ଧାନ ।
ସିଂହାଣ(ନ)କ—ବି.ନାସିକାମଳ,ସିଙ୍ଘାଣି
ସିଂହାବଲୋକନ—ବି. ସିଂହର ଗୃହାଣି (ଠିଆ ହୋଇ ପଛକୁ ଗୃହିଁବା ପୁଣି ଗୃଲିବା),ନ୍ୟାୟବିଶେଷ(ସିଂହ ଯେପରି ଯାଉଥିବାବେଳେ ମଝିରେ ମଝିରେ ଠିଆ ହୋଇ ପଛଆଡ଼କୁ ଦୂରସ୍ଥ ବସ୍ତୁକୁ ଗୃହେଁ ଓ ପୁଣି ଗୃଲେ, ସେପରି ସ୍ଥଳରେ ଏ ନ୍ୟାୟ ଦିଆଯାଏ), ପଦ୍ୟ ରଚନାରେ ଗୃତୁରୀବିଶେଷ, ଶୃଙ୍ଖଳା ବା ଅନୁପ୍ରାସଯୁକ୍ତ ରଚନାବିଶେଷ । [ ଦେଖ ।
ସିଂହାର—ଗ୍ରା.ବି.(ସଂ-ଶଙ୍ଗାର) ଶିଂଘାର
ସିଂହାରଦ୍ୱାର—ଗ୍ରା.ବି.(ସଂ-ଶୃଙ୍ଗାରଦ୍ୱାର) ଶିଂଘଡ଼ାଦ୍ୱାର ଦେଖ, ଜଗନ୍ନାଥ ମହାପ୍ରଭୁଙ୍କର ଖିରି ପିଠାଆଦିର ଏକପ୍ରକାର ଭୋଗ ।
ସିଂହାରୀ—ସ୍ତ୍ରୀ. ବେଶକାରିଣୀ ସ୍ତ୍ରୀ ।
ସିଂହାସନ—ବି. (କ.ଧା) ସିଂହମୂର୍ତ୍ତି ଚିହ୍ନିତ ଆସନ, ରାଜାସନ, ରାଜଗାଦି, ଯାହା ଉପରେ ବସି ରାଜା ଅଭିଷିକ୍ତ ହୁଅନ୍ତି, ଦେବତାଙ୍କର ବିଜେ କରିବା ଆସନ, ସ୍ୱର୍ଣ୍ଣମୟ ରାଜାସନ, ଯୋଗାସନବିଶେଷ, ଷୋଡ଼ଶ ରତି ବନ୍ଧାନ୍ତର୍ଗତ ରତିବନ୍ଧବିଶେଷ ।
ସିଂହାସନଚକ୍ର—ବି. (ଜ୍ୟୋତିଷ) ସପ୍ତବିଂଶତି ନକ୍ଷତ୍ରାଙ୍କିତ ନରାକାର ଚକ୍ରବିଶେଷ
ସିଂହାସନଚ୍ୟୁତ—ବିଂ. (୫ତତ୍ର) ରାଜାସନରୁ ତାଡ଼ିତ.ରାଜ୍ୟଅଧିକାରରୁ ବଞ୍ଚିତ ।
ସିଂହାସନାଧିରୂଢ଼—ପୁଂ. ବିଂ. (୭ତତ୍ର) ସିଂହାସନରେ ଉପବିଷ୍ଟ.ରାଜ୍ୟାଧିକାର ପ୍ରାପ୍ତ ।
ସିଂହାସ୍ୟ—ବି.(ସିଂହ+ଆସ୍ୟ)୬ତତ୍ର; ସିଂହର ମୁଖ, ବାସଙ୍ଗ ଗଛ, ବାସକ, (ବିଂ-ବ.ବ୍ରୀ) ସିଂହମୁଖ ପରି ମୁଖବିଶିଷ୍ଟ ବା କରାଳ ମୁଖଯୁକ୍ତ, ( ସ୍ତ୍ରୀ ) ସିଂହାସ୍ୟା ।
ସିଂହିକା—ସ୍ତ୍ରୀ. ବି. (ସିଂହୀ=ରାହୁର ମାତା+ସ୍ୱାର୍ଥେ.କ+ଆ) ଦକ୍ଷପ୍ରଜାପତିଙ୍କର ଏକତମା କନ୍ୟା, କାଶ୍ୟପ ଋଷିଙ୍କର ପତ୍ନୀ,ରାହୁର ମାତା,ରାମାୟଣ ବର୍ଣ୍ଣିତ ଏକ ରାକ୍ଷସୀ ।
ସିଂହିକାସୁତ(ସୂନୁ)—ପୁଂ. ବି. (୬ତତ୍ର) ରାହୁ,ଯାଗରେ ଆହୂତ ବାସ୍ତୁପୁରୁଷ ।
ସିଂହିକେୟ—ପୁଂ. ବି. ରାହୁ,ସିଂହିକାର ପୁତ୍ର ।
ସିଂହିର—ପ୍ରା. (ବଲାଙ୍ଗିରପାଟଣା) ବିଂ ଭିତରର ବାଟନିର୍ମିତ ଶିକା ।
ସିଂହୀୟ(ଲ)—ବି. ସିଂହଶାବ,ସିଂହ ।
ସିଂହୀ—ସ୍ତ୍ରୀ. ବିଂ. (ସିଂହ+ଈ) ମାଈସିଂହ,ସିଂହ ସ୍ତ୍ରୀ,ସିଂହିକା,ରାହୁମାତା, ବାର୍ତ୍ତାକୀ,ବାଇଗଣ,କଣ୍ଟକାରୀ,ଅଙ୍କରାନ୍ତି, ବୃହତୀ, ବହ୍ନାଙ୍କୁଡ଼ି, ଲଟାବେଙ୍ଗକୋଳି, ବାସକ, ବାସଙ୍ଗଗଛ, ମୁଦ୍ଗପର୍ଣ୍ଣୀ, ଶିରା, ନାଡ଼ୀ । [ ବେଙ୍ଗକୋଳି ।
ସିଂହୀଲତା—ସ୍ତ୍ରୀ. ବି. ବୃହତୀ, ଲଟା-
ସିଂହୁଣୀ—ଗ୍ରା.ସ୍ତ୍ରୀ. ବି. ମାଈସିଂହ ।
ସିଂହେନ୍ଦ୍ର—ପୁଂ. ବି. ସିଂହଶ୍ରେଷ୍ଠ, ସିଂହରାଜ ।
ସିଁ—ଗ୍ରା. ଅ. (ଧ୍ୱନ୍ୟର୍ଥକ) ଅନୁନାସିକ ସେଁ ସେଁ ଶବ୍ଦ, ସିଁ ଇଁ ସିଁ ।
ସିକ୍—ବିଂ. (ସିଚ୍+କ.କ୍ୱିପ୍) ସେଚନକାରୀ, (ଯା) ଲୁହାର ଛଡ଼,ସରୁନଳୀଆ ବନ୍ଧୁକ ।
ସିକ୍ମୀ—ଯା. ବି. ଅଧୀନ ପ୍ରଜାର ଅଧିକାର,(ବିଂ)ଜମିଦାର ବା ସ୍ୱତ୍ୱାଧିକାରୀର ଅଧୀନ ।
ସିକ୍ମୀଗଉନ୍ତିଆ—ପ୍ରା.(ସମ୍ବ)ବି.ଗଉନ୍ତିଆ ଥିବା ଗ୍ରାମର ନମ୍ବରର ସ୍ୱତ୍ୱାଧିକାରୀ ବ୍ୟକ୍ତି
ସିକ୍ମୀପଟା(ଟ୍ଟା)—ଗ୍ରା. ବି. ସିକ୍ମୀରଇତକୁ ଦିଆଯିବା ପଟ୍ଟା ।
ସିକ୍ମୀପ୍ରଜା—ଗ୍ରା. ବି. ଅନ୍ୟର ଅଧୀନ ରଇତ ।
ସିକ୍ମୀଦାର୍—ଯା. ବି. ସ୍ୱତ୍ୱାଧିକାର ବା ରଇତର ଅଧୀନ ସ୍ୱତ୍ୱାଧିକାରୀ ।
ସିକ୍ଲି(ଲି)—ପ୍ରା.(ଖଡ଼ିଆଳ)ବି.ଶିକୁଳି ।
ସିକଞ୍ଜା—ଯା. ବି. ବନ୍ଧା ବହି ଉପରେ ଗୃପଦେବାର ଯନ୍ତ୍ରବିଶେଷ ।
ସିକଡ଼—ଗ୍ରା. ବି. ଗଛର ଚେର ।
ସିକତା—ବି. (ସିକ୍+ମଁ.ଅତ୍+ଆ) ବାଲି,ବାଲିଆ ଭୂଇଁ,ଶର୍କରା,ଚିନି,କନ୍ଦ ।
ସିକତାବର୍ତ୍ମ—ବି. ବାଲୁକାମୟ ପଥ ।
ସିକତାବାନ୍—ବିଂ. ( ସିକତା+ବତୁ )

ସିକଢଳ,ବାଲୁକାମୟ,(ସ୍ତ୍ରୀ)ସିକତାବତୀ ।

ସିକତାମୟ—ବି°.ବାଲୁକାମୟ,ବାଲିଆ, (ବି) ବାଲୁକାମୟ ତଟ, ଦ୍ୱୀପବିଶେଷ, ଯେଉଁ ଦ୍ୱୀପର ଉପକୂଳ କେବଳ ବାଲୁକାପୂର୍ଣ୍ଣ ।

ସିକତିଲ—ବି.(ସିକତା+ଇଲ)ସିକତାମୟ, ବାଲୁକାମୟ ।

ସିକନ୍ଦର—ଯା, ବି. ମହାତ୍ମା ଆଲେକ୍‌ଜାଣ୍ଡରଙ୍କର ପାରସିକ ନାମ ।

ସିକଲ୍—ଯା. ବି. ମୁହଁର ଚେହେରା, ମୁହଁର ପାଣି ।

ସିକ(କା,ଖ)ସ୍ତ—ଯା. ବି. କ୍ଷତ, ବିନାଶ, ଭଙ୍ଗ, କ୍ଲାନ୍ତ, (ବି°) କ୍ଷତଗ୍ରସ୍ତ, ବିନଷ୍ଟ, ଧ୍ୱସ୍ତ, କ୍ଲାନ୍ତ, ବିମର୍ଷ, ଜୀର୍ଣ୍ଣଶୀର୍ଣ୍ଣ, ଦୁରବସ୍ଥାପ୍ରାପ୍ତ ।

ସିକ(କା)ସ୍ତପଇଡ଼ଃ(ଆ)ସ୍ତ—ଯା, ବି°. ଯେଉଁ ଭୂମି ନଦୀ ବଢ଼ିରେ ଧୋଇ ହୋଇଯାଏ ବା ନଦୀ ଖାଇ ଯିବାରୁ ନଷ୍ଟ ହୋଇଥାଏ ।

ସିକ(କା)ସ୍ତି—ଯା. ବି, କ୍ଷତଗ୍ରସ୍ତ ଅବସ୍ଥା, (ବି°) କ୍ଷତଗ୍ରସ୍ତ, ବିନଷ୍ଟ, କ୍ଲାନ୍ତ,ବିମର୍ଷ, ଦୁରବସ୍ଥାପ୍ରାପ୍ତ ।

ସିକା—ଗ୍ରା.ବି.(ସିକ୍ୟ) ଦଉଡ଼ିରେ ତିଆରି ବସ୍ତୁ ଧାରକବିଶେଷ, ଶିକା ଦେଖ ।

ସିକାଏତ—ଯା.ବି.ଅଭିଯୋଗ, ଦୋଷାରୋପ, ନିନ୍ଦା, ଚୁଗୁଲି ।

ସିକାଏତି—ଗ୍ରା.ବି°.ସିକାଏତସମ୍ବନ୍ଧୀୟ ।

ସିକାସ୍ଥା—ଗ୍ରା. ବି.(ଫ-ଅଭିଷ୍ଟକ) କାବୁଲ କାନ୍ଧାର ଏକ ଜଙ୍ଗଲଗଛ ।

ସିକି—ଗ୍ରା. ଅବ୍ୟ. (ନଷ୍ଟତ୍ୱାର୍ଥକ) ସିନା, ନିଶ୍ଚେ, ଟି, ହିଁ ।

ସିକମ୍(ମି)—ଯା.ବି.ବି°.ସିକ୍‌ମୀ ଦେଖ ।

ସିକି(କ୍କି)ମ୍—ଗ୍ରା. ବି. (ନାମ) ନେପାଳ ଭୁଟାନ ମଧ୍ୟବର୍ତ୍ତୀ ସ୍ୱାଧୀନ ରାଜ୍ୟବିଶେଷ

ସିକୁନ୍—ପ୍ରା. (ଝେଙ୍କୁଆଳ) ବି. ବାଉଁଶ ହେଣ୍ଡିକା, ବାଉଁଶର ସରୁକାଠି ।

ସିକେ(ଖେ)ନ୍—ପ୍ରା(ଝେଙ୍କୁଆଳ)ବି°.ମଣ୍ଡହୋଇଥିବା (ପଶୁ). ଅନ୍ୟଠାରୁ ଶିକ୍ଷା ଦ୍ୱାରା ପ୍ରାପ୍ତ ବୁଦ୍ଧି ।

ସିକେନ୍‌ବୁଇଦ୍(ବୁଧି)-ପ୍ରା.(ଝେଙ୍କୁଆଳ) ବି. ଶିଖେଇ ଦେଲା ବୁଦ୍ଧି ।

ସିକେନ୍‌ବୁଧିଆ—ପ୍ରା. (ଝେଙ୍କୁଆଳ)ବି°.ଯେ ଅନ୍ୟର କଥାରେ ଚାଲେ ।

ସିକ୍କା—ଯା. ବି. ସିକ୍ ଦେଖ ।

ସିକ୍କା—ଯା, ବି. ମୋଗଲ ବାଦସାହଙ୍କ ଅମଳରେ ଭାରତରେ ଚଳୁଥିବା ରୌପ୍ୟ ମୁଦ୍ରା, ଗୋଲ ଟଙ୍କା ।

ସିକ୍ତ—ବି°. ( ସିଚ୍+ର୍ମ.ତ ) ପାଣିଛିଞ୍ଚା ଯାଇଥିବା,ଆର୍ଦ୍ରୀକୃତ,ଓଦାକରା ଯାଇଥିବା, (ସ୍ତ୍ରୀ) ସିକ୍ତା ।

ସିକ୍ତା—ସ୍ତ୍ରୀ. ବି. ବାଲୁକା ।

ସିକ୍ତି—ବି. (ସିଚ୍+ତି)ସେକ, ସିଞ୍ଚନ ।

ସିକ୍ଥ—ବି. (ସିଚ୍+କ.ଥ) ଅନ୍ନର ଏକ ଗ୍ରାସ ବା ଗୁଣ୍ଡା,ଭକ୍ତପୁଲାକ, ମଧୁଚ୍ଛିଷ୍ଟ, ମହଣ, ମହୁସିଠା, ନୀଳ । [ ମହଣ ।

ସିକ୍ଥକ—ବି.(ସିକ୍ଥ+ସ୍ୱାର୍ଥେ.କ)ମଧୁଚ୍ଛିଷ୍ଟ,

ସିକ୍ୟ(କ୍ୟା)—ବି. (ସିକ୍+କ.ଯ+ଆ) ଶିକା ଦେଖ ।

ସିକ୍ୟତ—ବି°. (ସିକ୍ୟ+ଇତ)ଶିକାରେ ରଖାଯାଇଥିବା ବସ୍ତୁ ।

ସିକ୍ଷ୍ୟ—ବି. ସ୍ଫଟିକ ।

ସିଖା—ଗ୍ରା.ବି.ଶିକ୍ଷା, ଶିଖାଇବା, ଉତ୍ତେଜିତ କରିବା. ଅଧ୍ୟାପନା. (ଗ୍ରା.ବି°) ଶିକ୍ଷାପ୍ରାପ୍ତ,ଉତ୍ତେଜିତ, ଯେ ଅନ୍ୟଠାରୁ ଶିକ୍ଷା କରେ ।

ସିଖ୍ରି—ପ୍ରା.(ଲରିଆ)ବି ଓ ବି°. ଅଗଣ୍ଡା ।

ସିଗ୍—ପ୍ରା.(ଲରିଆ)ବି. କୌଣସି ପଦାର୍ଥର ଅଗ୍ରଭାଗ ।

ସିଗଲ୍—ଯା.ବି.ସମୁଦ୍ର ଉପରେ ଭାସିବା ଓ ଉଡ଼ିବା ଏକରକମ ଶ୍ୱେତ ଚଢ଼େଇ ।

ସିଗା—ପ୍ରା.(ବଲଙ୍ଗିରପାଟଣା)ବି°.ବଡ଼ ।

ସିଗାର୍—ଯା.ବି, ପିକା । [ ଦେଖ ।

ସିଗିର୍‌ବିଗିର୍—ପ୍ରା.(ସମ୍ବ)ବି°. ସାଲୁସାଲୁ

ସିଗ୍ନାଲ—ଯା.ବି.ଷ୍ଟେସନକୁ ରେଲଗାଡ଼ି ଆସି ପହଁଚିବା ପୂର୍ବରୁ ଉକ୍ତ ଗାଡ଼ିର ଆଗମନସୂଚକ ପୂର୍ବ ସଙ୍କେତ ।

ସିଗ୍ରି—ପ୍ରା.(ଲରିଆ)ବି. ପିଷ୍ଟକବିଶେଷ, ଏକପ୍ରକାର ପିଠା ।

ସିଙ୍ଗ୍‌ରା—ପ୍ରା.(ବସ୍ତର)ବି. ଶିକୁଳି ।

ସିଙ୍କୋଲି—ଗ୍ରା.ବି. ଶିକୁଳାଘାସ ।

ସିଙ୍ଗ୍‌ରା—ପ୍ରା.(ସମ୍ବ)ବି. ଶିଂଗ୍‌ରା ଦେଖ ।

ସିଙ୍ଗ୍‌ସିଙ୍ଗିଆ—ପ୍ରା.(ଯାଜପୁର୍)ବି°. ଟିଙ୍ଗିଟିଙ୍ଗିଳା, ତମତମ ।

ସିଙ୍ଗ(ଙ୍ଘ)—ଗ୍ରା.ବି.ସିଂହଇତ୍ୟାଦି ଦେଖ, ସିଗ ଦେଖ ।

ସିଙ୍ଗ(ଙ୍ଘ)ଡ଼ା—ଗ୍ରା.ବି. ପାଣିଫଳ,ମିଷ୍ଟାନ୍ନବିଶେଷ, ତାଳଚେରର କ୍ଷୁଦ୍ର ନଦୀ (ଜୋର)ବିଶେଷ । [ ଶ୍ଳେଷ୍ମା ।

ସିଙ୍ଗା(ଙ୍ଘା)ଣି—ଗ୍ରା.ବି. ନାସିକା ମଳ,

ସିଙ୍ଗା(ଙ୍ଘା)ପୁର—ଗ୍ରା.ବି. ମାଳୟ ଉପଦ୍ୱୀପର ଦକ୍ଷିଣ ପ୍ରାନ୍ତରେ ଥିବା ବନ୍ଦର ।

ସିଙ୍ଗାର୍‌ବାଡ଼ି—ପ୍ରା.(ବାଲେ)ବି.ବରଗା ।

ସିଙ୍ଗାର-ଗ୍ରା,ବି. ଶିଂଗାର ଦେଖ,ଭୂଷଣ ।

ସିଙ୍ଗୁଲି—ଗ୍ରା,ବି. ଶାଗୁଆନ ଦେଖ ।

ସିଙ୍ଘଣ—ବି. (ସିନ୍‌ଘ୍+କ.ଅନ)ସିଙ୍ଘାଣ ଦେଖ ।

ସିଙ୍ଘଣାକ—ବି. ( ସିଙ୍ଘଣ+ଆକ ) ସିଙ୍ଘାଣ ଦେଖ ।

ସିଙ୍ଘଳୀ—ଗ୍ରା. ବି. ସିଂହଳୀ ଦେଖ ।

ସିଙ୍ଘା—ଗ୍ରା.ବି.ଶିଂଗା ଦେଖ,ଚଳକାରେ ଚଳୁଥିବା ଡଙ୍ଗାର ପାଲକୁ ବା ତଲେଇକୁ ଆକାଶଙ୍କରେ ଖଟାଇବା ପାଇଁ ବ୍ୟବହୃତ ଦଉଡ଼ି ।

ସିଙ୍ଘାଣ—ବି. ( ସିନ୍‌ଘ୍+କ.ଆନ ) ସିଂହାଣ ଦେଖ ।

ସିଂଙ୍ଘାଣକ—ବି.(ସିଙ୍ଘାଣ+କ)ନାସିକାମଳ, କାଚପାତ୍ର,ଲୌହକିଟ୍ଟ.ଲୁହାମଳ, ମଣ୍ଡୁର, ନାସିକାରୋଗବିଶେଷ ।

ସିଙ୍ଘାନ—ବି. କୁରୁଣ୍ଡବୃକ୍ଷ ।

ସିଙ୍ଘାସି—ଗ୍ରା.ବି. ରଜା ବା ଦେବତାଙ୍କ ବେଶକାରୀ ।

ସିଙ୍ଘିନୀ—ବି, ନାସିକା ।

ସିଙ୍ଘୁଣୀ-ଗ୍ରା.ସ୍ତ୍ରୀ.ବି. ସିଂହୀ,ମାଈ ସିଂହ ।

ସିଚ୍ୟ—ବି. (ସିଚ୍+ର୍ମ.ଯ) ବସ୍ତ୍ର, ଜୀର୍ଣ୍ଣବସ୍ତ୍ର ।

ସିଜର୍—ଗ୍ରା. ବି. (ଇଂ-ସିଜାର୍)ପ୍ରାଚୀନ ରୋମ ସାମ୍ରାଜ୍ୟର ଜନୈକ ରଜା ।

ସିଙ୍ଗା—ଗ୍ରା. ବ ଓ ବିଂ. ସିଙ୍ଘା ଦେଖ ।
ସିଙ୍ଗା(ଙ୍ଗେ)ଇବା—ଗ୍ରା. କ୍ରି. ସିଙ୍ଘାଇବା ଦେଖ ।
ସିଙ୍ଘା—ଗ୍ରା.ବ.(ସିଦ୍ଧଶବ୍ଦଜ) ସିଦ୍ଧକରିବା, (ବିଂ) ସିଦ୍ଧ, ପକ୍ୱ ।
ସିଙ୍ଘା(ଙ୍ଘେ)ଇବା—ଗ୍ରା.କ୍ରି. ଅଗ୍ନିଉତ୍ତାପରେ ସିଦ୍ଧକରିବା । [ ମଣ୍ଡାପିଠା ।
ସିଙ୍ଘାମଣ୍ଡା—ଗ୍ରା. ବି. ଅଆରରେ ସିଦ୍ଧ
ସିଝିବା—ଗ୍ରା. କ୍ରି. ଅଗ୍ନି ବା ଖରାରେ ସିଦ୍ଧହେବା ।
ସିଝୁ—ଗ୍ରା.ବ. (ସଂ-ସୀହୁଣ୍ଡ,ସ୍ନୁହୀ)ପତ୍ରରି-ସିଝୁ, ମନସାସିଝୁ, କଣ୍ଟାସିଝୁ ।
ସିଞ୍ଚଡ଼ା—ଗ୍ରା.ବ ଓ ବିଂ. ସେଚନ,ପବନ-ଚାଳିତ ଜଳଧାର, ଛିଞ୍ଚଡ଼ା ଦେଖ ।
ସିଞ୍ଚଣା—ଗ୍ରା. ବ. ସିଞ୍ଚନ ଦେଖ ।
ସିଞ୍ଚକ୍—ପୁଂ. ବିଂ. (ସିଚ୍+କ.ଣକ୍=ଅକ) ସେଚନକାରୀ, (ସ୍ତ୍ରୀ) ସିଞ୍ଚକ୍ରୀ ।
ସିଞ୍ଚନ—ବ. (ସିଚ୍+ଭା.ଅନ)ସେଚନ ।
ସିଞ୍ଚା—ଗ୍ରା. ବ. ଛିଞ୍ଚା, ସିଞ୍ଚିବାକ୍ରିୟା, (ବିଂ) ସିକ୍ତ, ଛିଞ୍ଚାହୋଇଥିବା ।
ସିଞ୍ଚା(ଞ୍ଚେ)ଇବା—ଗ୍ରା. କ୍ରି. ଅନ୍ୟଦ୍ୱାରା ସେଚନକ୍ରିୟା କରାଇବା ।
ସିଞ୍ଚିଡ଼ିବା—ଗ୍ରା. କ୍ରି. (ସଂ-ସଞ୍ଚାଳନ) ଛିଞ୍ଚାଡ଼ିବା,ଇତସ୍ତତଃ ସଞ୍ଚାଳିତକରିବା, ଇତସ୍ତତଃ ଛିଞ୍ଚିବା ବା ବୁଣିବା, ଫିଙ୍ଗି-ହେବା । [ କର୍ମ ।
ସିଞ୍ଚାବଞ୍ଚା—ଗ୍ରା.ବ.ସିଞ୍ଚିବାକର୍ମ ଓ ବଞ୍ଚିବା
ସିଞ୍ଚିତ-ବିଂ.(ସଂ-ସିକ୍ତ)ସିଞ୍ଚାଯାଇଥିବା ।
ସିଞ୍ଚିତା—ସ୍ତ୍ରୀ. ବ. ପିପ୍ପଳୀ ।
ସିଞ୍ଚିବା—ଗ୍ରା. କ୍ରି.ସେଚନକରିବା,ଛିଞ୍ଚିବା, ଜଳଦ୍ୱାରା ଆର୍ଦ୍ରକରିବା ।
ସିଞ୍ଜା—ବ. ଶିଞ୍ଜା,ଅଳଙ୍କାରଧ୍ୱନି,(ଗ୍ରା.ବ) ଶିଞ୍ଜିନୀ, ଧନୁର ଗୁଣ । [ ଫଳ ।
ସିଞ୍ଜିତକା—ବ.ସେଓଫଳ , ବରକୋଳି
ସିଟ୍—ଯା. ବ. (ଇଂ-ଶୀଟ୍) ନକ୍ସାର ବା କାଗଜର ଫର୍ଦ, ସ୍ଥାନ, ଆସନ ।
ସିଟ୍‌କିନୀ—ପ୍ରା. (ବସ୍ତର-ବ)ବେଣ୍ଡ ଦେଖ
ସିଟ(ଟା,ଠା)—ଗ୍ରା. ବ. ଶିଟ ଦେଖ ।
ସିଟି—ଗ୍ରା. ବ. ମୁହଁ ଦ୍ୱାରା ଦୀର୍ଘ'ଶୀ'ଧ୍ୱନି, ମୁହଁଦ୍ୱାରା ଫୁଙ୍କି ଦୀର୍ଘ,'ଶୀ'ଧ୍ୱନିକରିବାର ଯନ୍ତ୍ର, (ଯା) ନଗର, ସହର ।
ସିଠ—ଗ୍ରା. ବ. (ଶ୍ରେଷ୍ଠକରଣ)ରଜାଙ୍କର ହିସାବ ପତ୍ର ବୁଝିବା କର୍ମଚାରୀ ଓ ସେହି କର୍ମଚାରୀମାନଙ୍କର ( କାର୍ଯ୍ୟରୁ ) ବଂଶଗତ ଓ ଉପାଧିବିଶେଷ ।
ସିଠା—ଗ୍ରା. ବ. ଶିଠା ଦେଖ,ମହୁଶିଠା, ମହଣ, ଅଳ୍ପ ଶୁଖିଥିବା ଗଛର ଅଠା, ଦ୍ରବ୍ୟର ଅସାର ଅଂଶ, ରକ୍ତହୀନତା, (ଗ୍ରା.ବିଂ) ସିଠାପରି ବିବର୍ଣ୍ଣ,ସିଠାଳିଆ, ସେଥୁଆ, (ପ୍ରା.ପୁରୀ.ବ)ସେଠା,ସେସ୍ଥାନ
ସିଠାକା—ପ୍ରା.(ପୁରୀ.ବିଂ)ସେଠାକା ଦେଖ
ସିଠାକୁ—ପ୍ରା. (ପୁରୀ.ବ) ସେଠାକୁ ଦେଖ
ସିଠାମ—ଯା. ବଃ ଷ୍ଟାମ୍ପ, ଦଲିଲ ଆଦି ଲେଖାଯିବାପାଇଁ ସରକାରଙ୍କ ଛାପା-ମାରା କାଗଜ, ଡାକଟିକଟ ।
ସିଠାଳ(ଳିଆ)—ଗ୍ରା. ବିଂ. ଅଠାଳିଆ, ମହଣ ସିଠାପରି, ସିଠାପରି ବିବର୍ଣ୍ଣ ।
ସିଠି(ଠିଁ)—ପ୍ରା. (ପୁରୀ)ବ. ସେଠାରେ ।
ସିଠୁଆ—ଗ୍ରା. ବିଂ. ସିଠାଳ, ସିଠାପରି ଅଳାମିକା, ବିବର୍ଣ୍ଣ ।
ସିଠେଇଁ—ପ୍ରା.(ପୁରୀ,ବ)ସେଠେଇଁ ଦେଖ
ସିଡ଼(ଢ଼)—ଗ୍ରା. ବ. ସେଡ଼ ଦେଖ,ସୂତା କାଟିବା ପାଇଁ ଭଣାଗୁଳାରେ ତିଆରି କରାଯାଇଥିବା ବଳଣା, ତାହାକର ପାଲି, ଜହ୍ନାକର ପାଲଟଣା ଦଉଡ଼ି ।
ସିଢ଼ି(ଡ଼ି)—ଗ୍ରା.ବ.(ସଂ-ଶ୍ରେଣୀ,ନିଃଶ୍ରେଣୀ, ଶ୍ରିଷ୍ଟି) ନିଶୁଣୀ, ପାବଚ୍ଛଚସ୍ପ, ପାଉଛ ।
ସିଢ଼ୁଆ—ଗ୍ରା. ବିଂ. ନିଶୁଣୀପରି ସରୁ,(ବ) କଟକର ପୂର୍ବପ୍ରାନ୍ତରେ ଏକମାଇଲ-ଠାରୁ ବାହାରିଥିବା କାଠଯୋଡ଼ିନଦୀର ଗୋଟିଏ ଶାଖା ।
ସିଣିସିଣିଆ—ପ୍ରା. (କଟକ)ବିଂ.ଫେଣେ-ଫେଣିଆ, ଜରଢ଼ ଯୋଗୁଁ ସାମାନ୍ୟ ଫୁଲଣିଆ ଦିଶୁଥିବା, (ପ୍ରା. ବାଣପୁର) ସଣସଣା, ଅଜଳିଆ ।
ସିଣିସିଣେଇହୋଇ ଉଠିବା (ବାହାରିବା) —ଗ୍ରା.ବ. କୌଣସି କାମ ପ୍ରତି ଉତ୍ସାହ ସହିତ ବାହାରିବା, କଳି ମାଡ଼ିଆଦି କରିବାକୁ କ୍ରୋଧାନ୍ୱିତ ହୋଇ ଆଗ ବାହାରି ପଡ଼ିବା ।
ସିତ୍ତଲ—ପ୍ରା.(ସମ୍ବ)ବ.ଜଳାଭୂମି,କୋଲ୍ଡ଼ି ।
ସିତ—ବ. ( ସୋ. ବା ସି + କ.ତ ) ଶୁକ୍ଳବର୍ଣ୍ଣ, ରୌପ୍ୟ, ମୂଳକ, ମୂଳା, ଶ୍ୱେତଚନ୍ଦନ, ଦୈତ୍ୟଗୁରୁ ଶୁକ୍ରାଚାର୍ଯ୍ୟ, ଶର, ବାଣ, ଶ୍ୱେତ, ଛଇଡ଼ୋଗ, ଶୁଦ୍ଧ-ଗନ୍ଧ,ଚନ୍ଦ, ଧଳା କାଞ୍ଚନଗଛ, ଭୂଜପତ୍ର, ଧବବୃକ୍ଷ, ଧଳାଡିଳ, ସ୍କନ୍ଦଙ୍କ ଅନୁଚର-ବିଶେଷ, ଚନ୍ଦନ, (ପୁଂ. ବିଂ) ଶୁକ୍ଳ, ଧଳା, ( ସି+ମି.ତ ) ସମାପ୍ତ, ଜ୍ଞାତ, ନିବଦ୍ଧ, ଉଜ୍ଜ୍ୱଳ, ନଷ୍ଟ, ଚକଚକିଆ ।
ଶିତକଙ୍ଗୁ—ବ. ସର୍ଜନିର୍ଯ୍ୟାସ, ଶାଳରସ, ଝୁଣା ।
ଶିତକଣ୍ଟା—ବ. ଶ୍ୱେତ କଣ୍ଟକାରୀ ।
ଶିତକଣ୍ଠ—ପୁଂ.ବ.(ବ.ଗ୍ରୀ) ଦାତ୍ୟୂହ ବା ଡାହୁକପକ୍ଷୀ, (ବିଂ) ଶ୍ୱେତବର୍ଣ୍ଣ କଣ୍ଠ-ବିଶିଷ୍ଟ ।
ସିତକର—ବ.(ବ.ଗ୍ରୀ) ଚନ୍ଦ୍ର, କର୍ପୂର ।
ସିତକରା—ସ୍ତ୍ରୀ. ବ. ଧଳଦୂବ ।
ସିତକର୍ଣ୍ଣୀ—ବ. ବାସକ, ବାସଙ୍ଗ ।
ସିତକାଂଶୁ—ବ. ସିତାଂଶୁ ଦେଖ ।
ସିତକାରିକା—ବ.ହ୍ରସ୍ୱ ଦାଟ୍ୟାଳକ,କ୍ଷୁଦ୍ର ବାଡ଼ଅଁଳା ।
ସିତକୁଞ୍ଜର—ବ. (କ.ଧା) ଶ୍ୱେତହସ୍ତୀ, ଇନ୍ଦ୍ରଙ୍କ ହସ୍ତୀ,ଐରାବତ,(ବ.ଗ୍ରୀ) ଇନ୍ଦ୍ର ।
ସିତକୁମ୍ଭୀ—ବ. ସିତପାଟଳା ଦେଖ ।
ସିତକ୍ଷାର—ବ. ସୁହାଗା, ଟାଙ୍କଣା ।
ସିତକ୍ଷୁଦ୍ରା—ବ. ଶ୍ୱେତ କଣ୍ଟକାରୀ ।
ସିତଗୁଞ୍ଜା-ବ.ଶ୍ୱେତକାଇଞ୍ଚ,ଧଳାକାଇଞ୍ଚ ।
ସିତଚନ୍ଦନ—ବ. ଧଳାଚନ୍ଦନ, ଶ୍ରୀଖଣ୍ଡ-ଚନ୍ଦନ ।
ସିତଚିଲ୍ଲୀ—ବ. ଶ୍ୱେତବାସ୍ତୁକ, ଧାଡ଼ା-ବଥୁଆ ।
ସିତଚମ୍ପା—ବ. (ବ.ଗ୍ରୀ) ବାଲୁକାଗଞ୍ଜ, ବାଲିଗରଡ଼ା ମାଛ ।
ସିତଚ୍ଛଦ—ବ. ଶ୍ୱେତଚ୍ଛଦ, ରାଜହଂସ ।
ସିତଚ୍ଛଦା(ଦୀ)—ବ. ଶତପୁଷ୍ପା,ଶାଢ଼ପ ।
ସିତଚ୍ଛଦିତ—ପୁଂ. ବିଂ. (ସିତଚ୍ଛଦ+

ଇତ୍ର) ଶ୍ୱେତଚ୍ଛଦଯୁକ୍ତ (ରଜା) ।
ସିତଚ୍ଛଦ—ବି. (ସିତ+ଚ୍ଛଦ) ବ.ବ୍ରୀ; ରାଜହଂସ, ହଂସ, ରକ୍ତଶୋଭାଞ୍ଜନ ।
ସିତଚ୍ଛଦା—ସ୍ତ୍ରୀ.ବି.(ବ.ବ୍ରୀ)ଶ୍ୱେତଦୂର୍ବା ।
ସିତଜ-ବି.ମଧୁଶର୍କରା,ମହୁରୁ ଜାତ ଚିନି ।
ସିତକଫଳ—ବି. ମଧୁନାରକେଳ ।
ସିତଜଳଜ—ବି. ଶ୍ୱେତପଦ୍ମ ।
ସିତଜ୍ଜା—ବି, ସିତାଖ୍ୟା,ସିତଜଦେଖ ।
ସିତଜାମ୍ବକ—ବି.ବହୁରସାଳ,ଆମ୍ବୃକ୍ଷ ।
ସିତଜୀରକ—ବି.ଶୁକ୍ଳଜୀରକ,ସାଦାଜୀରା ।
ସିତତା(ତ୍ୱ)—ବି. ଶୁକ୍ଳତା ।
ସିତଦର୍ଭ—ବି. (କ.ଧା) ଶ୍ୱେତକୁଶ ।
ସିତଦୀଧିତି—ବି.(ସିତ+ଦୀଧିତି)ବ.ବ୍ରୀ; ଚନ୍ଦ୍ର ।
ସିତଦୀପ୍ୟ—ବି.ଶ୍ୱେତଜୀରକ,ସାଦା ଜୀରା ।
ସିତଦୂର୍ବା—ବି. ଶ୍ୱେତଦୂର୍ବା ।
ସିତଦ୍ୱିଜ—ବି. (କ.ଧା) ରାଜହଂସ ।
ସିତଦ୍ରୁ(ମ)—ବି. (କ.ଧା) ଶୁକ୍ଳବର୍ଣ୍ଣବିଶିଷ୍ଟ ବୃକ୍ଷ, ଅର୍ଜୁନ ଗଛ, ମୋରଟବିଶେଷ, ମୁରୁଗା ଘାସ ।
ସିତଧାତୁ—ବି. ଶୁକ୍ଳଧାତୁ,କଠିନୀ,ଖଡ଼ି ।
ସିତପକ୍ଷ—ବି.(କ.ଧା)ଶୁକ୍ଳପକ୍ଷ,(ବ.ବ୍ରୀ) ରାଜହଂସ ।
ସିତପଦ୍ମ—ବି. ଶ୍ୱେତପଦ୍ମ ।
ସିତପଞ୍ଚଦଶୀ—ବି. ପୂର୍ଣ୍ଣିମା ।
ସିତପର୍ଣ୍ଣୀ(ର୍ଣ୍ଣା)—ବି. ଅର୍କପୁଷ୍ପିକା ବୃକ୍ଷ ।
ସିତପାଟଳା—ବି. ଶ୍ୱେତପାଟଳି ଗଛ, ଶୁକ୍ଳପୁଷ୍ପଯୁକ୍ତ ପାଟଳି ଗଛ ।
ସିତପୀତ—ବି. ଧଳା ଓ ହଳଦିଆବର୍ଣ୍ଣ, (ବିଂ) ଶ୍ୱେତ ଓ ପୀତବର୍ଣ୍ଣବିଶିଷ୍ଟ ।
ସିତପୁଙ୍ଖା—ବି. ସିତଶାପୁଙ୍କା ଦେଖ ।
ସିତପୁଷ୍ପ—ବି.କୈବର୍ତ୍ତିମୁସ୍ତକ, କେଉଟିଆ ମୁଥା,ତଗର ବୃକ୍ଷ,ଶ୍ୱେତରୋହିତ,ଶ୍ୱେତ ସୁଆମ ଗଛ,କାଶ,କାଉଁଶି,ଏକପ୍ରକାର ଅଖୁ, ଫୁଲଆଖୁ, ଶିରିଷ ଗଛ, ପିଣ୍ଡଖର୍ଜୁର, ନାଗଦନ୍ତୀ, ମଲ୍ଲିକା ।
ସିତପୁଷ୍ପୀ—ବି.ମଲ୍ଲିକା,ବଳା,ବାଡ଼ିଅଁଳା, ବନ୍ଧ୍ୟାକର୍କୋଟୀ ।
ସିତପୁଷ୍ପୀ—ବି, ଶ୍ୱେତାପରାଜିତା, କାଶ-ତୃଣ, ନାଗବଲ୍ଲୀ, ପାନ,କୈବର୍ତ୍ତିମୁସ୍ତକ
ସିତପ୍ରଭ(ରବ)—ବି. (ବ.ବ୍ରୀ) ରୌପ୍ୟ, (ବିଂ) ଶ୍ୱେତବର୍ଣ୍ଣଯୁକ୍ତ ।
ସିତମଣି—ବି. ଚନ୍ଦ୍ରକାନ୍ତ ମଣି, ସିତୋପଳ. ସ୍ଫଟିକମଣି ।
ସିତମାଷ—ବି. ରାଜମାଷ, ଏକପ୍ରକାର ଧଳା ବିରି । [ ମରିଚ ।
ସିତମରିଚ—ବି. ଶ୍ୱେତମରିଚ, ସାଦା-
ସିତମୋଘା—ବି. ଶ୍ୱେତପାଟଳବୃକ୍ଷ ।
ସିତମ୍ବର—ଗ୍ରା, ବି. (ଇଂ-ସେପ୍ଟେମ୍ବର) ସେପ୍ଟେମ୍ବରମାସ ।
ସିତରଶ୍ମି—ବି. (ବ.ବ୍ରୀ) କର୍ପୂର ।
ସିତରଞ୍ଜନ—ବି. ପୀତବର୍ଣ୍ଣ, ହଳଦିଆ ବର୍ଣ୍ଣ ।
ସିତରଶ୍ମି—ବି.(ବ.ବ୍ରୀ) କର୍ପୂର, ଚନ୍ଦ୍ର ।
ସିତରୁଚି—ବି, (ବ.ବ୍ରୀ) ଚନ୍ଦ୍ର ।
ସିତଲତା—ବି. ଚନ୍ଦ୍ରକୂଟରେ ଖ୍ୟାତ ଅମୃତସ୍ରବା ଲତା, ଚକ୍ରରୁଦନ୍ତୀ ।
ସିତବରାହ—ବି. ଶ୍ୱେତବରାହ ଦେଖ ।
ସିତବର୍ଣ୍ଣା—ବି, କ୍ଷୀରଣୀବୃକ୍ଷ ।
ସିତବର୍ଷାଭୂ—ବି. ଶ୍ୱେତପୁରୁଣୀ ।
ସିତବଲ୍ଲରୀ—ବି, ବଣଜାମୁ, ଗିଳଣିଜାମୁ
ସିତବଲ୍ଲୀକ—ବି. ଶ୍ୱେତମରିଚ ।
ସିତବାହ୍ମ—ବି. (ବ.ବ୍ରୀ)ଅର୍ଜୁନ ।
ସିତବାର(ବାରକ)—ବି. ଶାକଞ୍ଚଶାକ, ମଧୁରଙ୍ଗାଶାଗ ।
ସିତବାରଣ—ବି. ଶ୍ୱେତହସ୍ତୀ ।
ସିତବାରକ—ବି. ସିଂହଳୀ, ପିପ୍ପଳୀ ।
ସିତଶର୍କରା—ବି. ଚିନି । [ ବନମାଳ ।
ସିତଶାପୁଙ୍କା—ବି. ଶ୍ୱେତ ଶରପୁଙ୍ଖା,
ସିତଶିଂଶପା—ବି. ଶ୍ୱେତ ଶିଂଶପାବୃକ୍ଷ, ସିମୁଳୀଗଛ । [ ବୃକ୍ଷ ।
ସିତଶି(ସି)ବ—ବି, ସୈନ୍ଧବଲବଣ, ଶମୀ-
ସିତଶିମ୍ବିକ—ବି. ଗୋଧୂମ, ଗହମ ।
ସିତଶୂକ—ବି. (ବ.ବ୍ରୀ) ଯବ ।
ସିତଶୂରଣ—ବି. ବନ୍ୟ ଶୂରଣ. ବଣ ଓଲୁଅ
ସିତଶୃଙ୍ଗୀ—ବି. (ଶ୍ୱେତ + ଶୃଙ୍ଗ + ଇନ୍) ଅତିବିଷା ।
ସିତସପ୍ତି—ବି. (ବ.ବ୍ରୀ) ମଧ୍ୟମ ପାଣ୍ଡବ, ଅର୍ଜୁନ, (କ.ଧା) ଶ୍ୱେତଅଶ୍ୱ ।
ସିତସର୍ଷପ—ବି. ଧଳା ସୋରିଷ, ରାଇ- ସୋରିଷ । [ ଗଙ୍ଗା ।
ସିତସାଗର(ସିନ୍ଧୁ)—ବି. କ୍ଷୀରସମୁଦ୍ର,
ସିତସାପୁଙ୍କା—ବି.ଶ୍ୱେତପୁଷ୍ପ ଶରପୁଙ୍ଖା ।
ସିତସାର(ସାରକ)—ବି. ଶାକଞ୍ଚଶାକ, ମଧୁରଙ୍ଗାଶାଗ ।
ସିତସିଂହୀ—ବି. ଶ୍ୱେତ. କଣ୍ଟକାରି ।
ସିତା—ବି. (ସିତ + ଆ) ଶ୍ୱେତ ଶର୍କରା, ଖଣ୍ଡ, ଚିନି, କନ୍ଦ, ମଲ୍ଲିକା, ଶ୍ୱେତ-କଣ୍ଟକାରି, ସୋମରାଜୀ, ବାକୁଚୀ,ଭୁଇଁ-କଖାରୁ. ଶ୍ୱେତଦୂର୍ବା, ଚନ୍ଦ୍ରିକା, କୁଟୁମ୍ବିନୀ ଗୁଳୁ, ମଦ୍ୟ, ପିଙ୍ଗା, ପିଉଳି; ବାୟୁମାଣା,ଭଦ୍ରଭଦଳିଆ ଗୁଳୁ,ତେଜସ୍ୱୀ, ମୁରୁଗାଘାସ, ପର୍ବତଜାତ ଅପରାଜିତା; ଶୁକ୍ଳପକ୍ଷ, ଅର୍କପୁଷ୍ପୀ, କର୍ରୁ, ସିଂହଳୀ, ପିପ୍ପଳୀ, ଆମ୍ରାତକ, ଆମ୍ବଡ଼ା, ରଜତ, ରୁପା, ଶ୍ୱେତପୁରୁଣୀ, ଶ୍ୱେତପାଟଳୀ ବୃକ୍ଷ, ଧଳାଶିମ୍ବ, ନିହଣ୍ଡ ପୁଷ୍ପବୃକ୍ଷ, ହାଦରମାଳୀ,ଆମଳକୀ, ଗୋରୋଚନା, ଧଳାତନ୍ତୁଳ, (ବିଂ) ସିତର ସ୍ତ୍ରୀଲିଙ୍ଗ, ବଦ୍ଧା, ଶୁକ୍ଳବର୍ଣ୍ଣବିଶିଷ୍ଟା, ଶୁଭ୍ରା,ଦର୍ମନ୍ଦା, ନଷ୍ଟା. କ୍ଷୀଣା, (ପ୍ରା. ବଙ୍ଗଳିର. ବ) ପଞ୍ଜାଳଗ୍ରାଟ ।
ସିତାଂଶୁ—ବି. (ସିତ + ଅଂଶୁ) ବ.ବ୍ରୀ; ଚନ୍ଦ୍ର, କର୍ପୂର ।
ସିତାଂଶୁତୈଳ—ବି. କର୍ପୂର ତୈଳ ।
ସିତାଖଣ୍ଡ—ବି. ମଧୁଜାତ ଶର୍କରା, ମିଶ୍ରି ।
ସିତାଖ୍ୟ—ବି. ଶ୍ୱେତମରିଚ ।
ସିତାଖ୍ୟା—ବି. ଶ୍ୱେତଦୂର୍ବା ।
ସିତାଗ୍ର-ବି.(ସିତ+ଅଗ୍ର)ବ.ବ୍ରୀ,କଣ୍ଟକ ।
ସିତାଙ୍କ—ବି.ବାଲିଗରଡ଼ାମାଛ,ବାଲୁକା-ଗର୍ଭ ମତ୍ସ୍ୟ ।
ସିତାଙ୍ଗ—ବି. ଶ୍ୱେତରୋହିତ, ଧଳା-ସୁଆମକାଠ ।
ସିତାଜାଜୀ—ବି.ଶ୍ୱେତଜୀରକ,ସାଦାଜୀରା ।
ସିତାଦ୍ରବ୍ୟ—ବି. ଗୁଡ଼ୋତ୍ପନ୍ନ ହୁମୋତ୍ପନ୍ନ ଓ ମଧୁମିଶ୍ରି ଏ ତିନପ୍ରକାର ଶର୍କରା ।
ସିତାବ—ବି. ଗୁଡ଼, ଖଣ୍ଡ, କନ୍ଦ ।

ସିତାନନ—ପୁଂ. ବି. (ସିତ+ଆନନ ବ.ବ୍ରୀ; ଗରୁଡ଼, ବେଲଗଛ, (ବିଂ) ଶୁକ୍ଳବର୍ଣ୍ଣ ମୁଖବିଶିଷ୍ଟ ।

ସିତାପାକ—ବି. ମସ୍ରଣୀ, ମିଶ୍ରୀ ।

ସିତାପାଙ୍ଗ—ବି. (ସିତ+ଅପାଙ୍ଗ)ବ.ବ୍ରୀ; ମୟୂର ।

ସିତାଫଳ—ଗ୍ରା. (ଗଞ୍ଜାମ)ଆତ ।

ସିତାଭୀବର—ବି. ସୂକ୍ଷ୍ମଷଣ୍ଡକ, ସୁନୁସୁନିଆଶାଗ ।

ସିତାବର୍ଣ୍ଣ—ବି. ସୋମରାଜୀ, ବାକୁଚୀ ।

ସିତାବ୍ଜ—ବି. ଶ୍ୱେତପଦ୍ମ ।

ସିତାଭ—ପୁଂ,ବିଂ. (ସିତ+ଆଭା)ବ.ବ୍ରୀ; ଶୁକ୍ଳକାନ୍ତିବିଶିଷ୍ଟ, (ବି) କର୍ପୂର, ଚନ୍ଦ୍ର ।

ସିତାଭ୍ର—ବି. ଚନ୍ଦ୍ରାହ୍ୱାକ୍ଷୁପ ।

ସିତାଭୋଗ—ଗ୍ରା. ବି. ଗୁଡ଼ଲଅଟା, ମଇଦା, କ୍ଷୀର ଓ ଛେନାଦ୍ୱାରା ପ୍ରସ୍ତୁତ ଘୃତପକ୍ୱ ମିଷ୍ଟାନ୍ନବିଶେଷ, ଏକପ୍ରକାର ସରୁଧାନ ।

ସିତାଭ୍ର—ବି. କର୍ପୂର ।

ସିତାଭ୍ରକ—ବି. କର୍ପୂର ।

ସିତାମ୍ବର—ପୁଂ. ବିଂ. (ସିତ+ଅମ୍ବର) ବ.ବ୍ରୀ, ଶୁକ୍ଳବସ୍ତ୍ର ପରିଧାନକାରୀ, (ସ୍ତ୍ରୀ) ସିତାମ୍ବରା,(ବିଂ.କ.ଧା) ଶୁକ୍ଳବସ୍ତ୍ର,(ବ.ବ୍ରୀ) ଜୈନମାନଙ୍କର ଶ୍ୱେତାମ୍ବର ସମ୍ପ୍ରଦାୟବିଶେଷ ।

ସିତାମ୍ଭୋଜ—ବି. (କ.ଧା) ଶ୍ୱେତପଦ୍ମ ।

ସିତାର(ରା)—ଯା.ବି.ବାଦ୍ୟଯନ୍ତ୍ରବିଶେଷ ।

ସିତାର୍ଜ୍ଜକ—ବି.ଶ୍ୱେତତୁଳସୀ । [ ରକ ।

ସିତାଳକ—ବି.ଶ୍ୱେତଅର୍କ, ଶ୍ୱେତମନ୍ଦା-

ସିତାଳତା—ବି. ଶ୍ୱେତଦୂବ ।

ସିତାଳର୍କ—ବି. ଶ୍ୱେତ ଓ ରକ୍ତ ଅର୍କ ।

ସିତାଳିକା—ବି. ଶୁକ୍ତି, ସିପ, ଶାମୁକା ।

ସିତାଶ୍ମା—ବି. (ସିତ+ଅଶ୍ମନ୍) ଚନ୍ଦ୍ରକାନ୍ତମଣି, ସଙ୍ଗମରମର ପଥର ।

ସିତାଶ୍ୱ—ବି. (କ.ଧା) ଧଳାଘୋଡ଼ା, (ବ.ବ୍ରୀ) ଅର୍ଜ୍ଜୁନ, ଚନ୍ଦ୍ର ।

ସିତାସିତ—ବିଂ. ( ସିତ+ଅସିତ ) ଶୁକ୍ଳ ଓ କୃଷ୍ଣ, (ବି) ବଳରାମ, ଶୁକ୍ରଗ୍ରହ ଯୁକ୍ତ ଶନିଗ୍ରହ, ଗଙ୍ଗା ଓ ଯମୁନା ।

ସିତାହ୍ୱୟ—ବି. ସଜନା,ଧଳା ସୁଅଁମଗଛ, ଧଳାସଜନା, ଧଳାତୁଳସୀ ।

ସିତାହ୍ୱା—ବି. ଶୁକ୍ଳ ପାଟଳୀ ବୃକ୍ଷ ।

ସିତି—ବିଂ. (ସି+କ୍ତି) ଶୁକ୍ଳ, କୃଷ୍ଣ, ନୀଳ, (ବି) ଶୁକ୍ଳବର୍ଣ୍ଣ, ଧଳାରଙ୍ଗ, କୃଷ୍ଣବର୍ଣ୍ଣ, କଳାରଙ୍ଗ, ସୁନୁସୁନିଆଶାଗ, ବନ୍ଧନ ।

ସିତିକଣ୍ଠ—ପୁଂ. ବି. (ବ.ବ୍ରୀ) ନୀଳକଣ୍ଠ, ମହାଦେବ, ଶିବ, ମୟୂର, ଡାହୁକପକ୍ଷୀ ।

ସିତିବାର—ବି. ସିତାବର ଦେଖ ।

ସିତିବାସ—ପୁଂ,ବି.(ବ.ବ୍ରୀ)ବଳଦେବ ।

ସିତିମା—ବି.(ସିତି+ଭା.ଇମନ୍)ଶୁକ୍ଳତା, କୃଷ୍ଣତା । [ ତୃଣ୍ଣଘାଆ ।

ସିତିଳିଆ—ଗ୍ରା. (ବଲାଙ୍ଗିରପାଟଣା) ବି.

ସିତିଳପଶିବା—ଗ୍ରା, (ବଲାଙ୍ଗିରପାଟଣା) କ୍ରି. ସନ୍ତେଇବା, ଆର୍ଦ୍ର ହେବା ।

ସିତିକ୍ଷୁ-ବି. (ସିତ+ଇକ୍ଷୁ) ଶ୍ୱେତ ଇକ୍ଷୁ, ଧଳାଆଖୁ, କନ୍ତାରଆଖୁ ।

ସିତିସାରକ—ବି. ଶାଳିଞ୍ଚଶାକ, ମଦାଟଙ୍କା ଶାଗ ।

ସିତେତର-ବି. (ସିତ+ଇତର) ୬ତତ୍; କୁଳତ୍ଥ, ଶ୍ୟାମଶାଳି, ଶୁକ୍ଳେତରବର୍ଣ୍ଣ (ବିଂ) ଶୁକ୍ଳେତରବର୍ଣ୍ଣ, ନୀଳ,କୃଷ୍ଣବର୍ଣ୍ଣଯୁକ୍ତ ।

ସିତେତରଗତି—ପୁଂ.ବି.(ବ.ବ୍ରୀ)ଅଗ୍ନି, କୃଷ୍ଣବର୍ତ୍ମା । [ ନୀଳକଇଁ ।

ସିତେତରସରୋଜ—ବି. ନୀଳପଦ୍ମ,

ସିତୋଚ୍ଚଟା—ବି. ଶ୍ୱେତଗୁଞ୍ଜା, ଧଳା କାଇଁଚ ।

ସିତୋତ୍ପଳ—ବି.ଶ୍ୱେତପଦ୍ମ,ଧଳାକଇଁ ।

ସିତୋଦର—ପୁଂ.ବି. (ସିତ+ଉଦର) ବ.ବ୍ରୀ; କୁବେର ।

ସିତୋଦରା—ସ୍ତ୍ରୀ.ବି.ବରଟିକା, କଉଡ଼ି ।

ସିତୋଦ୍ଭବ—ବି. ଶ୍ୱେତଚନ୍ଦନ ।

ସିତୋପଲ—ବି.(ସିତ+ଉପଲ)କଠିନୀ, ଖଡ଼ି, ସ୍ଫଟିକ ।

ସିତୋପଲା—ବି. ଶର୍କରା, ମିଶ୍ରି ।

ସିଦୋ—ଗ୍ରା, ( ବଲାଙ୍ଗିର ) ସୁଯୋଗ, ସୁବିଧା ।

ସିଦ୍ଧ—ବିଂ. (ସିଧ୍+ମି.କ୍ତ) ପକ୍ୱ,ସିଝାଯାଇଥିବା, ରନ୍ଧାଯାଇଥିବା, ପ୍ରସିଦ୍ଧ, ନିଷ୍ପନ୍ନ,ମୋଣୀକୃତ,ଫଳିତ,ପ୍ରତିପାଦିତ, ପାରଦର୍ଶୀ ନିପୁଣ, ନିତ୍ୟ,ମୁକ୍ତ, ବିଗୁରତ, ସିଦ୍ଧିବିଶିଷ୍ଟ, ମନ୍ତ୍ର ସିଦ୍ଧିବିଶିଷ୍ଟ, ପରିଶୋଧିତ, ଲକ୍ଷ୍ୟରେ ଉପସ୍ଥିତ, ମୋକ୍ଷର ଅଧିକାରୀ, ପ୍ରସ୍ତୁତ, ଦୀପ୍ତିଶୀଳ, ସାଧନାରେ ଉତ୍ତୀର୍ଣ୍ଣ, ଫଳରେ ଘଟିଥିବା, ନିର୍ଣ୍ଣୀତ,ଶୋଧିତ(ଋଣ),ସୁଲଭ, (ସ୍ତ୍ରୀ)ସିଦ୍ଧା, (ବି) ସୈନ୍ଧବ ଲବଣ, କୃଷ୍ଣଧୁସ୍ତୁର, ଗୁଡ଼, ବ୍ୟବହାର, ମକଦ୍ଦମା, ଦେବଯୋନିବିଶେଷ, ଯୋଗସିଦ୍ଧ ବା ତପଃ ସିଦ୍ଧିପ୍ରାପ୍ତ ମୁନି, ବିଷ୍କୁମ୍ଭାଦି ସପ୍ତବିଂଶତି ଯୋଗାନ୍ତର୍ଗତ ଏକବିଂଶତି ଯୋଗ, କୃଷ୍ଣସିନ୍ଧୁବାର, ଧଳାସୋରିଷ, ଅର୍ହତ, ଜିନ, ଐନ୍ଦ୍ରଜାଲିକ ।

ସିଦ୍ଧକ—ବି. (ସିଦ୍ଧ+କ) ସିନ୍ଧୁବାର, ବେଗୁନିଆ, ଶାଳ ।

ସିଦ୍ଧକାମ—ପୁଂ,ବିଂ. (ବ.ବ୍ରୀ) ସିଦ୍ଧାର୍ଥ, ଯାହାର ମନୋରଥ ସଫଳ ହୋଇଅଛି, (ସ୍ତ୍ରୀ) ସିଦ୍ଧକାମା ।

ସିଦ୍ଧକାମେଶ୍ୱରୀ—ବି.କାମାଖ୍ୟା ଦେବୀଙ୍କ ପଞ୍ଚମୂର୍ତ୍ତି ଅନ୍ତର୍ଗତ ପ୍ରଥମ ମୂର୍ତ୍ତି ।

ସିଦ୍ଧକ୍ଷେତ୍ର—ବି. ଦଣ୍ଡକ ବନର ଅଂଶବିଶେଷ, ଯେଉଁ ସ୍ଥାନରେ ଯୋଗୀ ବା ତାନ୍ତ୍ରିକ ଶୀଘ୍ର ସିଦ୍ଧିଲାଭ କରନ୍ତି ।

ସିଦ୍ଧଗଙ୍ଗା—ବି. (୬ତତ୍) ମନ୍ଦାକିନୀ, ସ୍ୱର୍ଗଗଙ୍ଗା ।

ସିଦ୍ଧଗଣ—ବି. ସିଦ୍ଧମାନଙ୍କର ସମୂହ ।

ସିଦ୍ଧଗୁଟିକା—ବି.ଯେଉଁ ମନ୍ତ୍ରସିଦ୍ଧ ବଟିକାକୁ ପାଟିରେ ପୂରାଇବା ବ୍ୟକ୍ତି ଅଦ୍ଭୁତ ଶକ୍ତି ଲାଭ କରେ ।

ସିଦ୍ଧଦେବ—ବି. ମହାଦେବ, ଶିବ ।

ସିଦ୍ଧଧାତୁ—ବି. ପାରଦ, ପାରା ।

ସିଦ୍ଧଧାମ—ବି. ସିଦ୍ଧସ୍ଥାନ,ପବିତ୍ରକ୍ଷେତ୍ର ।

ସିଦ୍ଧନାଥ—ବି. ମହାଦେବ ।

ସିଦ୍ଧପକ୍ଷ—ବି. (ନ୍ୟାୟଶାସ୍ତ୍ର) ମୀମାଂସା କରାଯାଇଥିବା ବିଷୟ,ପ୍ରମାଣିତ ବିଷୟ

ସିଦ୍ଧପଥ—ବି. (ଜ୍ୟୋତିଷ)ଆକାଶ, ଅନ୍ତରୀକ୍ଷ

ସିଦ୍ଧପୀଠ—ବି. ଯେଉଁ ସ୍ଥାନରେ ଏକଲକ୍ଷ ବଳିଦାନ, କୋଟିସଂଖ୍ୟକ ହୋମ ଓ କୋଟି ସଂଖ୍ୟକ ମହାବିଦ୍ୟାଜପ ହୋଇ- ଅଛି, ସିଦ୍ଧକ୍ଷେତ୍ର ଦେଖ ।

ସିଦ୍ଧପୁର-ବି.ହିନ୍ଦୁଜ୍ୟୋତିଷୋକ୍ତ ଭୂଗୋ- ଳର ଅଧୋଦେଶବିଶେଷ ।

ସିଦ୍ଧପୁରୁଷ—ବି. (କ.ଧା) ସିଦ୍ଧିପ୍ରାପ୍ତ ବ୍ୟକ୍ତି, ମୁକ୍ତମାନବ, ଯୋଗୀ, ଯେଉଁ- ବ୍ୟକ୍ତି ଇପ୍ସିତ ଲାଭ କରିପାରନ୍ତି ।

ସିଦ୍ଧପୁଷ୍ପ—ବି. କରବୀର ବୃକ୍ଷ ।

ସିଦ୍ଧପ୍ରୟୋଜନ—ବି. ଗୌରସର୍ଷପ, (ପୁଂ.ବିଂ) ସିଦ୍ଧକାମ ଦେଖ ।

ସିଦ୍ଧଭୂମି—ବି. ସିଦ୍ଧକ୍ଷେତ୍ର ଦେଖ ।

ସିଦ୍ଧମଠ—ବି. ସିଦ୍ଧପୁରୁଷଙ୍କ ଆଶ୍ରମ ।

ସିଦ୍ଧମନୋରଥ—ପୁଂ.ବି.(ବ.ବ୍ରୀ)ସଫଳ କାମ, ସିଦ୍ଧକାମ ଦେଖ,(ବି)କର୍ମମାସର ଦ୍ୱିତୀୟ ଦିନ ।

ସିଦ୍ଧମାନସ—ପୁଂ. ବିଂ. (ବ.ବ୍ରୀ) ସିଦ୍ଧ- ମନୋରଥ ଦେଖ ।

ସିଦ୍ଧମୋଦକ—ବି.ତବରାଜ ଖଣ୍ଡ,ତବରାଜ- ଜୋଭବ ଖଣ୍ଡ ।

ସିଦ୍ଧଯୋଗ—ବି. ସୁଯୋଗ୍ୟ ମିଳନ ।

ସିଦ୍ଧଯୋଗିନୀ—ସ୍ତ୍ରୀ. ବି. ମନସାଦେବୀ, ଯୋଗିନୀବିଶେଷ ।

ସିଦ୍ଧଯୋଗୀ—ପୁଂ.ବି. ସିଦ୍ଧିଲାଭ କରି- ଥିବା ଯୋଗୀ, ମହାଦେବ ।

ସିଦ୍ଧରସ—ବି. ପାରଦ ।

ସିଦ୍ଧରସାୟନ—ବି.ଦୀର୍ଘଜୀବନ ଓ ପ୍ରଭୂତ ଶକ୍ତିଦ ରସୌଷଧବିଶେଷ ।

ସିଦ୍ଧଲକ୍ଷ୍ୟ—ପୁଂ.ବିଂ.(ବ.ବ୍ରୀ)ଯେ ଲକ୍ଷ୍ୟ- ଭେଦରେ ଅବ୍ୟର୍ଥ, ସିଦ୍ଧସଂକଳ୍ପ,(ବି) ଅବ୍ୟର୍ଥଲକ୍ଷ ।

ସିଦ୍ଧବଟ— ବି. ପୁଣ୍ୟସ୍ଥାନବିଶେଷ, ଶ୍ରୀଶୈଳର ଦକ୍ଷିଣପାଦସ୍ଥ ପୁଣ୍ୟସ୍ଥାନ ।

ସିଦ୍ଧବର୍ତ୍ତି—ବି.(ଆୟୁର୍ବେଦ) ତୈଳଆଦିର ପିଚକାରୀ । [ ପକ୍ୱଦ୍ରବ୍ୟ ।

ସିଦ୍ଧବସ୍ତୁ—ବି. ସିଦ୍ଧ ହୋଇଥିବା ବସ୍ତୁ,

ସିଦ୍ଧବିଦ୍ୟା—ବି. ଦଶ ମହାବିଦ୍ୟା ମଧ୍ୟରୁ ଏକ ।

ସିଦ୍ଧବିନାୟକ-ବି.ଗଣେଶମୂର୍ତ୍ତିବିଶେଷ ।

ସିଦ୍ଧସଂକଳ୍ପ—ପୁଂ. ବିଂ. ଯେଉଁବ୍ୟକ୍ତିର ସଂକଳ୍ପ ସିଦ୍ଧ ହୋଇଅଛି ।

ସିଦ୍ଧସଲିଲ—ବି. କାଞ୍ଜିକା, ସିଝାପାଣି ।

ସିଦ୍ଧସାଧକ—ବି. ( କ.ଧା ) ସିଦ୍ଧିପ୍ରାପ୍ତ ସାଧକ ବ୍ୟକ୍ତି,(ଜ୍ୟୋତିଷ)କଳ୍ପବୃକ୍ଷ, (ବିଂ) ମନୋରଥ ପୂରଣକାରୀ,(ସ୍ତ୍ରୀ) ସାଧିକା ।

ସିଦ୍ଧସାଧନ—ବି. (ଜ୍ୟୋତିଷ) ସିଦ୍ଧ ବସ୍ତୁର ସାଧନ, ପ୍ରମାଣିତ ବିଷୟର ପୁନଃ ପ୍ରମାଣ, ଶ୍ୱେତସର୍ଷପ ।

ସିଦ୍ଧସାଧିତ—ପୁଂ.ବିଂ. ଯେଉଁ ଚିକିତ୍ସକ ବ୍ୟବହାର ଦ୍ୱାରା ଚିକିତ୍ସା ବିଦ୍ୟାରେ ଦକ୍ଷତା ଲାଭ କରିଅଛନ୍ତି ।

ସିଦ୍ଧସିନ୍ଧୁ(ସରିତ୍)—ବି. ସ୍ୱର୍ଗଗଙ୍ଗା ।

ସିଦ୍ଧସେନ—ବି. କାର୍ତ୍ତିକେୟ, ଦେବ- ସେନାପତି ।

ସିଦ୍ଧସ୍ଥାଳୀ—ବି.ସିଦ୍ଧଯୋଗୀମାନଙ୍କ ଭାଣ୍ଡ, ଯହିଁରୁ ଆବଶ୍ୟକତା ଅନୁରୂପ ଭୋଜନ ସାମଗ୍ରୀ ବାହାରେ ।

ସିଦ୍ଧହସ୍ତ—ପୁଂ. ବିଂ. (ବ.ବ୍ରୀ) କୌଣସି କର୍ମରେ ଅତି ପଟୁ, (ସ୍ତ୍ରୀ) ସିଦ୍ଧହସ୍ତା ।

ସିଦ୍ଧହେମ—ବି.ବିଶୁଦ୍ଧ ସ୍ୱର୍ଣ୍ଣ,ସଇସୁନା ।

ସିଦ୍ଧା—ସ୍ତ୍ରୀ.ବିଂ. (ସିଦ୍ଧ+ଆ) ସିଦ୍ଧର ସ୍ତ୍ରୀଲିଙ୍ଗ, (ସ୍ତ୍ରୀ.ବି)ଅଷ୍ଟ ଯୋଗିନୀ ମଧ୍ୟରୁ ଏକ ଯୋଗିନୀ, ଋଦ୍ଧିନାମକ ଔଷଧି, ସିଦ୍ଧାଙ୍ଗନା, ଆର୍ଯ୍ୟାଛନ୍ଦର ଏକଭେଦ ।

ସିଦ୍ଧାଙ୍ଗନା—ସ୍ତ୍ରୀ.ବି.ସିଦ୍ଧନାମକ ଦେବ- ଯୋନି ଜାତୀୟା ସ୍ତ୍ରୀ । [ (ବ୍ୟକ୍ତି) ।

ସିଦ୍ଧାଙ୍ଗୀ—ତ୍ରି. ବିଂ. ସିଦ୍ଧ ଅଙ୍ଗବିଶିଷ୍ଟ

ସିଦ୍ଧାଞ୍ଜନ—ବି. (ଜ୍ୟୋତିଷ) ଯେଉଁ ଅଞ୍ଜନ ଆଖିରେ ଲଗାଇଲେ ଅଦୃଶ୍ୟ ବସ୍ତୁମାନ ଦେଖାଯାଏ ।

ସିଦ୍ଧାଦେବୀ—ବି. ସିଦ୍ଧେଶ୍ୱରୀ ଦେଖ ।

ସିଦ୍ଧାନ୍ତ—ବି. ( ସିଦ୍ଧ+ଅନ୍ତ ) ବ.ବ୍ରୀ; ମୀମାଂସା, ବିଚାରର ଶେଷଫଳ,(ନ୍ୟାୟ- ଶାସ୍ତ୍ର) ପୂର୍ବ ପକ୍ଷ ମୀମାଂସାପୂର୍ବକ ସିଦ୍ଧ ପକ୍ଷ ସ୍ଥାପନ ନବବିଧ ପ୍ରାଚୀନ ଜ୍ୟୋତି- ର୍ଗ୍ରନ୍ଥବିଶେଷ, ( ନ୍ୟାୟ-ଗୌତମସୂତ୍ର ) ତନ୍ତ୍ରାଧିକରଣାଭ୍ୟୁପଗମ ସଂସ୍ଥିତି,ସମ୍ମତ, ନିର୍ଣ୍ଣୀତ ଅର୍ଥ, ମୁଖ୍ୟଉଦ୍ଦେଶ୍ୟ, ଶାସ୍ତ୍ର ବା ବିଜ୍ଞାନର ଶାଖା,(ତ୍ରି.ବିଂ)ମୀମାଂସିତ, ଜ୍ଞାନପ୍ରାପ୍ତ ।

ସିଦ୍ଧାନ୍ତକୌମୁଦୀ—ବି. ପ୍ରସିଦ୍ଧ ସଂସ୍କୃତ ବ୍ୟାକରଣ ଗ୍ରନ୍ଥ ।

ସିଦ୍ଧାନ୍ତଦର୍ପଣ—ବି. ଓଡ଼ିଶା ଖଣ୍ଡପଡ଼ା ରାଜ୍ୟର ସ୍ୱର୍ଗୀୟ ମହାମହୋପାଧ୍ୟାୟ ଚନ୍ଦ୍ରଶେଖର ସାମନ୍ତ(ପଠାଣିସାମନ୍ତ)ଙ୍କ କୃତ ସଂସ୍କୃତ ଜ୍ୟୋତିଷ ଗ୍ରନ୍ଥ ।

ସିଦ୍ଧାନ୍ତପଞ୍ଚାନନ(ବାଗୀଶ--ଭୂଷଣ, ରତ୍ନ, ସାଗର)—ତ୍ରି. ବି. ଶାସ୍ତ୍ରଜ୍ଞ ମୀମାଂସକ ପଣ୍ଡିତମାନଙ୍କ ଉପାଧିବିଶେଷ ।

ସିଦ୍ଧାନ୍ତମୁକ୍ତାବଳୀ— ବି. ନ୍ୟାୟଦର୍ଶନ ଗ୍ରନ୍ଥବିଶେଷ ।

ସିଦ୍ଧାନ୍ତରହସ୍ୟ—ବି. ତାନ୍ତ୍ରିକ ଆଗମ- ବିଶେଷ ।

ସିଦ୍ଧାନ୍ତ—ତ୍ରି.ବି. ସୈଦ୍ଧାନ୍ତ ଦେଖ, (ବିଂ) ଆସ୍ତିକବାଦୀ, ନୈଷ୍ଠିକ ।

ସିଦ୍ଧାନ୍ତିତ-ବିଂ.(ସିଦ୍ଧାନ୍ତ+ଇତ)ନିର୍ଣ୍ଣୀତ, ମୀମାଂସିତ ।

ସିଦ୍ଧାନ୍ତୀ—ପୁଂ. ବିଂ. (ସିଦ୍ଧାନ୍ତ+ଇନ୍) ମୀମାଂସକ, ସିଦ୍ଧାନ୍ତକାରୀ, ମୀମାଂସା- ଦର୍ଶନ ମତାବଲମ୍ବୀ, (ସ୍ତ୍ରୀ) ସିଦ୍ଧାନ୍ତିନୀ । ବି. ତାର୍କିକ, ନୈୟାୟିକ ।

ସିଦ୍ଧାନ୍ତୀୟ—ବିଂ. ( ସିଦ୍ଧାନ୍ତ+ଈୟ ) ସିଦ୍ଧାନ୍ତସମ୍ବନ୍ଧୀୟ । [ ଭାତ ।

ସିଦ୍ଧାନ୍ନ—ବି.(ସିଦ୍ଧ+ଅନ୍ନ)ପକ୍ୱାନ୍ନ,ରନ୍ଧା-

ସିଦ୍ଧାପଗା—ସ୍ତ୍ରୀ. ବି. (ସିଦ୍ଧ+ଆପଗା) ସୁରନଦୀ, ସ୍ୱର୍ଗଗଙ୍ଗା, ଗଙ୍ଗାନଦୀ ।

ସିଦ୍ଧାମ୍ବା—ସ୍ତ୍ରୀ. ବି. ଦୁର୍ଗା ।

ସିଦ୍ଧାୟିକା-ବି.ବୌଦ୍ଧଗଣ ପୂଜିତା ଦେବୀ- ବିଶେଷ ।

ସିଦ୍ଧାରି—ବି. (ସିଦ୍ଧ+ଅରି) ମନ୍ତ୍ରବିଶେଷ

ସିଦ୍ଧାର୍ଥ—ପୁଂ.ବିଂ.(ସିଦ୍ଧ+ଅର୍ଥ)ବ.ବ୍ରୀ; ସିଦ୍ଧକାମ ଦେଖ, (ବି). ବୁଦ୍ଧଦେବ, ଗୌତମ, ଶାକ୍ୟସିଂହ, ମହାବୀର ଜୈନଙ୍କର ପିତା, ଚତୁର୍ବିଂଶଅର୍ହତ୍‌ଙ୍କ ପିତା, ଶ୍ୱେତସର୍ଷପ,ଘଇସୋରିଷ,ଏକ- ଜାତୀୟ ବଟବୃକ୍ଷ,ପ୍ରସିଦ୍ଧ ଅର୍ଥ,ଦଶରଥ-

ରଜାଙ୍କର ଏକମନ୍ତ୍ରୀ, ସ୍କନ୍ଦାନୁଚର-ବିଶେଷ, ଯେଉଁ ଗୃହର ଦକ୍ଷିଣ ଓ ପଶ୍ଚିମାଂଶରେ ବଡ଼ଶାଳ ଥାଏ (ସ୍ତ୍ରୀ) ସିଦ୍ଧାର୍ଥା ।

ସିଦ୍ଧାର୍ଥକ—ବ.ଶ୍ୱେତସର୍ଷପ,ରାଜଘୋଷକ, ସିଦ୍ଧାର୍ଥ ଦେଖ ।

ସିଦ୍ଧାର୍ଥା—ବ. ଚତୁର୍ଥଅର୍ହତ୍‌ଙ୍କ ମାତା, ଶ୍ୱେତସର୍ଷପ ।

ସିଦ୍ଧାଶ୍ରମ—ବ. ବିଶ୍ୱାମିତ୍ରଙ୍କ ତପୋବନ, ସିଦ୍ଧମାନଙ୍କର ଆଶ୍ରମ ।

ସିଦ୍ଧାସନ—ବ. (ତନ୍ତ୍ର) ହଠଯୋଗ ସାଧକମାନଙ୍କର ଆସନବିଶେଷ ।

ସିଦ୍ଧି—ବ. (ସିଧ୍+ଭା.ତି) ସମ୍ପାଦନ, ସଫଳତା, କୃତକାର୍ଯ୍ୟତା, ନିଷ୍ପତ୍ତି, ଫଳୋତ୍ପତ୍ତି,ମୁକ୍ତି,ମନୋବାଞ୍ଛାର ସଫଳତା, ବୃଦ୍ଧି, ତପଃସାଧନ ଦ୍ୱାରା ପ୍ରାପ୍ତ ଅମାନୁଷିକ ଗୁଣ,ଐଶ୍ୱର୍ଯ୍ୟ,ଶୁଭ,ମଙ୍ଗଳ, ଜୟଲାଭ, ଋଦ୍ଧିନାମକ ଔଷଧି, ସମ୍ପତ୍ତି, ଜ୍ୟୋତିଷୋକ୍ତ ଯୋଗବିଶେଷ, ଦୁର୍ଗା, (ଣ,ତ) କାଷ୍ଠପାଦୁକା, କଠଉ, ଭାଙ୍ଗ, ବିଲାସ,ଆଡ଼ମ୍ବର,ଆଡ଼ମ୍ବରଯୁକ୍ତ କାର୍ଯ୍ୟ, ଆଡ଼ମ୍ବରମୟ କର୍ମପଦ୍ଧତି, ଅଷ୍ଟୈଶ୍ୱର୍ଯ୍ୟ ଦେଖ, ଅଷ୍ଟାଦଶସିଦ୍ଧି ଦେଖ, ଲକ୍ଷ୍ୟଭେଦ, ପରିଶୋଧ, ପ୍ରମାଣିତହେବା, ପରିପକ୍ୱତା, ନିପୁଣତା, ଦକ୍ଷତା, ବୁଦ୍ଧି, ଦକ୍ଷପ୍ରଜାପତିଙ୍କର ଏକକନ୍ୟା ଓ ଧର୍ମଙ୍କ ପତ୍ନୀ, ଗଣେଶଙ୍କ ଦୁଇ ସ୍ତ୍ରୀ ମଧ୍ୟରୁ ଏକ, ମେଣ୍ଢିଙ୍ଗା ମନ୍ତ୍ରର, ଅନ୍ତର୍ଦ୍ଧାନ, ପ୍ରଣମକୋପାୟ, 'ପ୍ରଭାବସିଦ୍ଧି, ମନ୍ତ୍ରସିଦ୍ଧି ଓ ଉତ୍ସାହସିଦ୍ଧି ରାଜାମାନଙ୍କର ଏହି ତ୍ରିବିଧସିଦ୍ଧି, (ଗ୍ରା.ବି)ବାହାଦୁରୀ, ପରମ୍ପରା କ୍ରମାଗତ କାର୍ଯ୍ୟ,(ବିଂ)ନିଷ୍ପିତ

ସିଦ୍ଧିଜ—ବିଂ. (ସିଦ୍ଧି+ଜନ୍+କ.ଅ) ସିଦ୍ଧିରୁ ଜାତ ।

ସିଦ୍ଧିଦ—ବ. ( ସିଦ୍ଧି+ଦା+କ.ଅ ) ବଟୁକଭୈରବ, ପୁତ୍ରଞ୍ଜୀବବୃକ୍ଷ, ବଡ଼ ଶାଳଗଛ, ପୁଂ. ବିଂ.ସିଦ୍ଧିଦାତା, (ସ୍ତ୍ରୀ) ସିଦ୍ଧିଦା ।

ସିଦ୍ଧିଦାତା—ପୁଂ. ବିଂ. ସିଦ୍ଧିଦ, ଯେ ସିଦ୍ଧି ବା ସଫଳତା ଦିଏ, ( ସ୍ତ୍ରୀ ) ସିଦ୍ଧିଦାତ୍ରୀ ।

ସିଦ୍ଧିଦାତ୍ରୀ—ସ୍ତ୍ରୀ. ବ. ଦୁର୍ଗା ।

ସିଦ୍ଧିମନ୍ତ—ଗ୍ରା. ବିଂ. ଯେ ସିଦ୍ଧିଲାଭ କରିଅଛି ।

ସିଦ୍ଧିମାନ୍—ପୁଂ. ବିଂ. ( ସିଦ୍ଧି+ମତ୍ ) ସିଦ୍ଧିମନ୍ତ ଦେଖ, (ସ୍ତ୍ରୀ) ସିଦ୍ଧିମତୀ ।

ସିଦ୍ଧିମାର୍ଗ—ବ. ମୋକ୍ଷପଥ,ମୁକ୍ତିମାର୍ଗ ।

ସିଦ୍ଧିଯୋଗ—ବ. ଜ୍ୟୋତିଷୋକ୍ତ ତିଥିବାର ଘଟିତ ଶୁଭଯୋଗବିଶେଷ, (ଶୁକ୍ରବାରରେ ନନ୍ଦାତିଥି,ବୁଧବାରରେ ଭଦ୍ରା, ଶନିବାରରେ ରିକ୍ତା, ମଙ୍ଗଳବାରରେ ଜୟା ଓ ଗୁରୁବାରରେ ପୂର୍ଣ୍ଣା ତିଥିମାନ ଯୋଗହେଲେ ସିଦ୍ଧିଯୋଗ ବୋଲାଯାଏ) ।

ସିଦ୍ଧିଯୋଗିନୀ—ସ୍ତ୍ରୀ.ବ. ଯୋଗିନୀଭେଦ, ଦକ୍ଷପ୍ରଜାପତିଙ୍କର ୫୦ ଜଣ କନ୍ୟା, (ଯଥା:—ସତୀ, ଜ୍ୟୋତି, ସ୍ମୃତି,ସ୍ୱାହା ଆଦି) ।

ସିଦ୍ଧିରସ୍ତୁ—ବ. ( ବାକ୍ୟ ) ସିଦ୍ଧିଲାଭ ହେଉ, ବିଦ୍ୟାରମ୍ଭ ସମୟରେ ପିଲାଙ୍କୁ ଯାହା ପ୍ରଥମେ ଲେଖି ଦିଆଯାଏ,ଶିଶୁର ବିଦ୍ୟାରମ୍ଭ କାର୍ଯ୍ୟର ପ୍ରଥମ ଆରମ୍ଭ ।

ସିଦ୍ଧିଲାଭ—ବ.(ତନ୍ତ୍ର)ସଫଳତାପ୍ରାପ୍ତି ।

ସିଦ୍ଧିଲା—ବ(ସିଦ୍ଧି+ଲା+କ,ଅ+ଈ) କ୍ଷୁଦ୍ର ପିପୀଲିକା, ଗୋଟ ପିମ୍ପୁଡ଼ି ।

ସିଦ୍ଧିସାଧକ—ବ. ଶ୍ୱେତସର୍ଷପ, ରାଜଘୋଷକ, ଦମନ ବୃକ୍ଷ, ଦଅଁଣା ଗଛ ।

ସିଦ୍ଧେଶ୍ୱର—ପୁଂ. ବ. ସିଦ୍ଧିଦାତା ପରମେଶ୍ୱର, ଶିବମୂର୍ତ୍ତିଙ୍କର ନାମବିଶେଷ, ମହାଯୋଗୀ, ସିଦ୍ଧମାନଙ୍କର ଅଧିପତି ।

ସିଦ୍ଧେଶ୍ୱରୀ—ସ୍ତ୍ରୀ. ବ. ମହାବିଦ୍ୟା ବା ଦୁର୍ଗାଙ୍କର ମୂର୍ତ୍ତିବିଶେଷ ।

ସିଦ୍ଧୌଘ—ବ. (ସିଦ୍ଧ+ଓଘ)ତନ୍ତ୍ରୋକ୍ତ ଗୁରୁକ୍ରମବିଶେଷ, (ଯଥା:—ନାରଦ, କାଶ୍ୟପ, ଶମ୍ଭୁ, ଭାର୍ଗବ, କୁଳକୌଶିକ, ଏହି ପାଞ୍ଚଜଣ )।

ସିଧା—ଗ୍ରା. ବିଂ. ସରଳ,ସହଜ,ଋଜୁ, ଶାସିତ, ( ବ ) ଅପକ୍ୱ ଖାଦ୍ୟଦ୍ରବ୍ୟ, ଅରନ୍ଧିତ ଚାଉଳ, ଡାଲି ପ୍ରଭୃତି,ଏକପ୍ରକାର ବନ୍ୟ ବୃକ୍ଷ ।

ସିଧାକଥା—ଗ୍ରା.ବ. ସରଳକଥା,ନିଷ୍କପଟ ବାକ୍ୟ, ଋଜୁକଥା ।

ସିଧାକରିବା—ଗ୍ରା. କ୍ରି.ସଳଖିବା;ପ୍ରହାର ବା ଶାସନଦ୍ୱାରା ବାଟକୁ ଆଣିବା ।

ସିଧାବାଟ—ଗ୍ରା. ବ. ସଳଖ ରାସ୍ତା ।

ସିଧାସଜ୍ଞା—ଗ୍ରା. ବ. ଅମାନ୍ନ, ଅସିଦ୍ଧ ଖାଦ୍ୟ, କୌଣସି ଆଟଳୁକ ବ୍ୟକ୍ତିଙ୍କ ଭୋଜନ ନିମିତ୍ତ ତାଙ୍କ ନିକଟକୁ ପଠାଯିବା ଚାଉଳ ଡାଲି ଆଦି ରନ୍ଧାସାମଗ୍ରୀ ।

ସିଧାସିଧା—ଗ୍ରା. କ୍ରି. ବିଂ. ସଳଖେ ସଳଖେ ।

ସିଧ୍ମ—ଗ୍ରା. ବ. ସିଦ୍ଧି ଦେଖ ।

ସିଧ୍ମନିଧି—ଗ୍ରା. ବ. ସିଦ୍ଧି, ଆଡ଼ମ୍ବର, ଘନଘଟା ।

ସିଧିରସ୍ତୁ—ଗ୍ରା. ବ. ସିଦ୍ଧିରସ୍ତୁ ଦେଖ ।

ସିଧ୍ମ—ବ. (ସିଧ୍+ମନ୍) କିଲାସରୋଗ, ଶ୍ୱିତ୍ର, ଛଉରୋଗ, (ବିଂ) ଶ୍ୱେତଚିହ୍ନବିଶିଷ୍ଟ । [ କୁଷ୍ଠ ।

ସିଧ୍ମପୁଷ୍ପିକା—ବ.ଧଳାଛଉ, ଶ୍ୱିତ୍ର,ଶ୍ୱେତ-

ସିଧ୍ମଳ—ପୁଂ. ବିଂ. (ସିଧ୍ମ+ଲା+କ.ଅ) କିଲାସୀ,ଶ୍ୱିତ୍ରରୋଗଯୁକ୍ତ,(ସ୍ତ୍ରୀ) ସିଧ୍ମଳା ।

ସିଧ୍ମଳା—ବ. ମତ୍ସ୍ୟବିକୃତି, ଶୁଖୁଆ, (ସ୍ତ୍ରୀ, ବିଂ) କୁଷ୍ଠରୋଗିଣୀ ସ୍ତ୍ରୀ ।

ସିଧ୍ୟ—ବିଂ.(ସିଧ୍+କ.ଯ)କାର୍ଯ୍ୟସାଧକ, (ବ) ପୁଷ୍ୟାନକ୍ଷତ୍ର ।

ସିଧ୍ର—ପୁଂ. ବିଂ. (ସିଧ୍+କ.ର) ସାଧୁ, ଧର୍ମପରାୟଣ, ଧାର୍ମିକ, (ବ) ବୃକ୍ଷ ।

ସିଧ୍ରକା—ବ.(ସିଧ୍+ରକ୍+ଆ) ବୃକ୍ଷବିଶେଷ ।

ସିଧ୍ରକାବଣ—ବ. ଦେବୋଦ୍ୟାନ ।

ସିନ୍—ଯା.ବ. ନାଟକର ଦୃଶ୍ୟ, ରଙ୍ଗାଳୟର ଦୃଶ୍ୟପଟ ।

ସିନ—ପୁଂ. ବିଂ. (ସି+ମ.ତ) ଶୁକ୍ଳ, ସାଦା, ଧଳା, କାଣ, କଣା, ଗ୍ରାସ, ଦେହ ।

ସିନା—ଗ୍ରା. ଅବ୍ୟ. (ସଂ-ନନୁ) ମାତ୍ର,

କେବଳ, ଅବଧାରଣ ବା ନିଶ୍ଚୟାତ୍ମକ ଓ ସମ୍ଭାବନା ବୋଧକ ଅବ୍ୟୟ, ସମ୍ଭବତଃ, ମାତ୍ରକ, ସାଧାରଣତଃ,(ଯା.ବ) ଘୋଡ଼ାର ଗ୍ରୀବ ।

ସିନାକୋର୍—ଯା.ବ. ମୁହଁଆଣ୍ଟ, ଢାମ୍ଭିକତା, ସାହସ, ମୁହଁକୋର୍ ।

ସିନାବନ୍ଦ—ଯା.ବ.ଜେରବନ୍ଦ, ଘୋଡ଼ାର ବେକର ଗ୍ରୀବପାଖେ ଘେରି ଯାଇଥିବା ଚମଡ଼ାର ପଟି ।

ସିନୀ—ସ୍ତ୍ରୀ. ବଂ.(ସିନ + ଈ)ଶୁକ୍ଳବର୍ଣ୍ଣା ।

ସିନୀବାଲୀ—ବି. ( ସିନୀ+ବଲ୍+କ.ଅ +ଈ ) ଦୃଷ୍ଟେନ୍ଦୁକଳା ଅମାବାସ୍ୟା, ପ୍ରତିପଦ୍ ବା ଚତୁର୍ଦ୍ଦଶୀଯୁକ୍ତା ଅମାବାସ୍ୟା, ଯେଉଁ ଅମାବାସ୍ୟାରେ ଚନ୍ଦ୍ର ସାମାନ୍ୟ ମାତ୍ର ଦେଖାଯାଏ, ବୈଦିକ ଦେବୀବିଶେଷ, ଶୁକ୍ଳପକ୍ଷ ପ୍ରତିପଦା, ଅଙ୍ଗିରା ଋଷିଙ୍କର ଏକପତ୍ନୀ, ନଦୀବିଶେଷ, (ମା. ପୁ) ।

ସିନେ—ପ୍ରା(ବୌଦ୍ଧ)ଅବ୍ୟ. ସେଠାରେ, (ବଲାଙ୍ଗିରପାଟଣା)ସିନା ।

ସିନେମା—ଯା. ବି. ବାୟସ୍କୋପ ଦେଖ ।

ସିନ୍ତା—ଟ୍ରା. (ସମ୍ବ)ଅବ୍ୟ. ସେପରି ।

ସିନ୍ଦୁଲା—ଗ୍ରା. ବି. ଦନ୍ଦୁଲା ଦେଖ ।

ସିନ୍ଧାଣ(ଣି)—ଗ୍ରା. ବି. ମୃତ୍ତିକାରେ ଦିଆଯିବା ଚକିଆ ।

ସି(ହ୍ଲ)ନ୍ଦ କନ୍ଦା—ପ୍ରା.(ଢେଙ୍କାନାଳ)ବି. ବଣ ଖଜୁରିଗଛର କନ୍ଦା ।

ସିନ୍ଦ(ନ୍ଧ)—ଗ୍ରା. ବି. ସିନ୍ଧ ଦେଖ ।

ସିନ୍ଧ(ନ୍ଧ)—ଗ୍ରା. ବି.ଚୋର କଟିବା ପାଇଁ ଚୋର ପଦାରୁ ଘର ଭିତରକୁ କାନ୍ଥ କାଟି ଯେଉଁ ଗାତ ଖୋଲେ,ସିନ୍ଧିଗାତ ।

ସିନ୍ଧ(ନ୍ଧ)ଅ—ଗ୍ରା. ବି. ସିନ୍ଧିଆର ଦେଖ. ସିନ୍ଧିକରିବା ବାଲା, (ନାମ) ଭାରତର ମହାରାଷ୍ଟ୍ର ରାଜ୍ୟବିଶେଷ ଓ ତହିଁରେ ରାଜାଙ୍କ ଉପାଧି ।

ସିନ୍ଧ(ନ୍ଧି)ଆର(ଳ)—ଗ୍ରା. ବି. ସିନ୍ଧିକରି ଚୋରିକରିବା ଚୋର, (ବଂ)ଯେ ସିନ୍ଧି କରି ଚୋରିକରେ ।

ସିନ୍ଧକାଠି—ଗ୍ରା. ବି. ଯେଉଁ ଲୁହାଭଅଁର ବା ଖଣ୍ଡ ଦ୍ୱାରା ସିନ୍ଧିଗାତ ଖୋଳନ୍ତି

ସିନ୍ଧଗାଡ଼(ଢ଼)—ଗ୍ରା. ବି. ସିନ୍ଧି, ଘରର କାନ୍ଥରେ ଚୋର ଯେଉଁ ଗାତଖୋଳି ଚୋରିକରେ ।

ସିନ୍ଧୁ(ନ୍ଧୁ)—ଗ୍ରା.ବି.ସିନ୍ଧୁଦେଶ,ସିନ୍ଧୁନଦ, ସିନ୍ଧିଗାତ ।

ସିନ୍ଦୁକ—ବି. (ସ୍ୟନ୍ଦ୍+କ.ଉକ)ସିନ୍ଦୁବାର ଦେଖ, (ଯା.ବ) ବାକ୍ସବାକ୍ସ ।

ସିନ୍ଦୁବାର—ବି. ( ସିନ୍ଦୁ+ବାର+କ.ଅ ) ନିର୍ଗୁଣ୍ଡୀ ଦେଖ, ସିନ୍ଦୁବାରକ ।

ସିନ୍ଦୁସହା—ବି.କୃଷ୍ଣନିର୍ଗୁଣ୍ଡୀ,କଳାବେଗୁନିଆଁ ।

ସିନ୍ଦୂର—ବି. (ସ୍ୟନ୍ଦ୍+କ.ଊର)ରକ୍ତବର୍ଣ୍ଣ ଚୂର୍ଣ୍ଣବିଶେଷ, ସିନ୍ଦୂରବର୍ଣ୍ଣ, ନିର୍ଗୁଣ୍ଡୀ, ପାରଦ ଗନ୍ଧକଘଟିତ ରକ୍ତବର୍ଣ୍ଣ ଚୂର୍ଣ୍ଣବିଶେଷ ।

ସିନ୍ଦୂରକଜ୍ଜଳ—ଗ୍ରା. ବି. ସ୍ତ୍ରୀଲୋକମାନଙ୍କ ପ୍ରସାଧନର ଦୁଇଟି ସାମଗ୍ରୀ ।

ସିନ୍ଦୂରକଳି(ଳି)-ଗ୍ରା.ବି.କପାଳରେ ଚର୍ଚ୍ଚିତ କଳିକାକାର ସିନ୍ଦୂରର ରେଖା ।

ସିନ୍ଦୂରକାରଣ—ବି. ସୀସକ,ସୀସାଧାତୁ ।

ସିନ୍ଦୂରଟୋପା—ଗ୍ରା.ବି.କପାଳରେ ଚର୍ଚ୍ଚିତ ସିନ୍ଦୂରର ଗୋଲାକାର ଚିହ୍ନ ।

ସିନ୍ଦୂରତିଳକ—ପୁଂ. ବି. (ବ,ଗ୍ରା) ହସ୍ତୀ, ସିନ୍ଦୂର ଦ୍ୱାରା କପାଳରେ ଅଙ୍କିତ ତିଳକ

ସିନ୍ଦୂରତିଳକା—ସ୍ତ୍ରୀ. ବି. (ବ.ଗ୍ରା) ସଧବା ନାରୀ, ହସ୍ତିନୀ ।

ସିନ୍ଦୂରଦାନ—ବି. ସିନ୍ଦୂରବନ୍ଦନ ଦେଖ ।

ସିନ୍ଦୂରପୁଷ୍ପୀ—ବି. ପୁଷ୍ପବୃକ୍ଷବିଶେଷ ।

ସିନ୍ଦୂରଫରୁଆ—ଗ୍ରା.ବି. ସିନ୍ଦୂର ଯେଉଁ ଫୁରୁଟ କାଠଡ଼ବାରେ ରହେ ।

ସିନ୍ଦୂରବନ୍ଦନ—ବି. ବିବାହ ସମୟରେ କନ୍ୟାର କପାଳରେ ବରର ସିନ୍ଦୂର ଲଗାଇବା ପ୍ରଥା ।

ସିନ୍ଦୂରବିନ୍ଦୁ—ବି.ଲଲାଟରେ ଚର୍ଚ୍ଚିତ ସିନ୍ଦୂରର କ୍ଷୁଦ୍ର ବିନ୍ଦୁ ।

ସିନ୍ଦୂରମୁଣ୍ଡି—ଗ୍ରା. ବି. ଏକପ୍ରକାର ନାଲିମୁଣ୍ଡିଆ ଚଢ଼େଇ ।

ସିନ୍ଦୂରରସ—ବି. ରସସିନ୍ଦୂର ।

ସିନ୍ଦୂରା—ଗ୍ରା. ବଂ. ସିନ୍ଦୂରବର୍ଣ୍ଣବିଶିଷ୍ଟ, (ଗ୍ରା.ବ) ସୂର୍ଯ୍ୟୋଦୟର ପୂର୍ବରୁ ପୂର୍ବଦିଗରେ ଦେଖାଯିବା ରକ୍ତିମା,ଅରୁଣିମା, ସିନ୍ଦୂରବର୍ଣ୍ଣ ।

ସିନ୍ଦୂରା(ମେଘ,ଉଇଁବା)ଫାଟିବା—ଗ୍ରା.ବି. ଅରୁଣୋଦୟ ।

ସିନ୍ଦୂରି—ଗ୍ରା. ବଂ.ସିନ୍ଦୂରବର୍ଣ୍ଣବିଶିଷ୍ଟ,(ଗ୍ରା. ବି) ସିନ୍ଦୂରା ଦେଖ ।

ସିନ୍ଦୂରିଆ—ଗ୍ରା. ବଂ. ସିନ୍ଦୂରବର୍ଣ୍ଣବିଶିଷ୍ଟ, ନାଲିଆ ।

ସିନ୍ଦୂରିଆମ୍ବ -ଗ୍ରା.ବି.ଯେଉଁ ଆମ୍ବର ଚୋପା ସିନ୍ଦୂର ବର୍ଣ୍ଣ ପରି ନାଲିଆ ।

ସିନ୍ଦୂରିତ—ବଂ.(ସିନ୍ଦୂର+ଇତ)ସିନ୍ଦୂର ପରି ରକ୍ତ ବର୍ଣ୍ଣରେ ରଞ୍ଜିତ, ସିନ୍ଦୂର ଦ୍ୱାରା ରଞ୍ଜିତ ।

ସିନ୍ଦୂରୀ—ବି. ସିନ୍ଦୂରପୁଷ୍ପୀ, ବୈଚମା, ସେଚମା, ପୋଦନାସାଗ,ରକ୍ତଚେଲକା, ଧାତକୀ, (ଗ୍ରା.ବଂ) ଲାଲ ।

ସିନ୍ଦୋଟ୍—ପ୍ରା.(ପୁରୀ) ସ୍ତ୍ରୀମାନଙ୍କ ସିବାଆସିବା ପାଇଁ ବ୍ୟବହୃତ ଶାସନ ଗ୍ରାମର ପଛପଟେ ଥିବା ପଥ ।

ସିନ୍ଦୋଳିବା—ଗ୍ରା.କ୍ରି. ଚୋପାଲଗା ଥିବା ଦୁଇଟା ନଡ଼ିଆର କଡାରୁ ଚୋବ ଜଭ ପରି ଅଂଶଦ୍ୱୟକୁ ଏକାଠି ଗଣ୍ଠି ପକାଇ ଛନ୍ଦିବା ।

ସିନ୍ଧାଳ—ଗ୍ରା.ବି ଓ ବଂ.ସିନ୍ଧିଆର ଦେଖ

ସିନ୍ଧି—ଗ୍ରା.ବି. ସିନ୍ଧ ଦେଖ ।

ସିନ୍ଧିଆ—ଗ୍ରା.ବି. ସିନ୍ଧଆ ଦେଖ ।

ସିନ୍ଧିକାଠି—ଗ୍ରା.ବି. ସିନ୍ଧକାଠି ଦେଖ ।

ସିନ୍ଧିଗାତ—ଗ୍ରା.ବି. ସିନ୍ଧଗାତ ଦେଖ ।

ସିନ୍ଧୀ—ଗ୍ରା ବି. ସିନ୍ଧୁ ପ୍ରଦେଶର କଥିତ ଭାଷା, ସିନ୍ଧୁ ପ୍ରଦେଶବାସୀ ବ୍ୟକ୍ତି, ସିନ୍ଧୁ ଅଞ୍ଚଳର ଉତ୍କୃଷ୍ଟ ଘୋଡ଼ା,(ବଂ) ସିନ୍ଧୁଦେଶୀୟ ।

ସିନ୍ଧୁ—ବି. ( ସ୍ୟନ୍ଦ୍+କ.ଉ ) ସମୁଦ୍ର, ବମନ, ଦେଶବିଶେଷ, ନଦବିଶେଷ, ଗଜମଦ,ବେଗୁନିଆଗଛ,ଶ୍ୱେତଟଙ୍କଣ, ଟାଙ୍ଗଣା, ରାଗବିଶେଷ, ନଦୀ, ହସ୍ତୀ, ଦଶରଥଙ୍କ ବାଣରେ ନିହତ ଅନ୍ଧମୁନିଙ୍କ

ପୁଷ, (ଲ.ଅର୍ଥ) କୌଣସି ଗୁଣର ବା ପଦାର୍ଥର ଆଧାର (ବ୍ୟକ୍ତି) (ଯଥା:—କରୁଣାସିନ୍ଧୁଇତ୍ୟାଦି), ଚୂର୍ଣସଂଖ୍ୟା, ସାତସଂଖ୍ୟା, ବରୁଣଦେବତା, ସିନ୍ଧୁପ୍ରଦେଶବାସୀ ବ୍ୟକ୍ତି, ଓଷ୍ଠର ଆର୍ଦ୍ରତା, ହାତୀର ଶୁଣ୍ଡରୁ ବୋହି ନା ପାଣି (ଜଳ), ଗନ୍ଧର୍ବମାନଙ୍କ ରାଜବିଶେଷ ।

ସିନ୍ଧୁଆ—ଗ୍ରା.ବି. ଏକପ୍ରକାର ପାଟଲୁଗା, ପକ୍କା ରଙ୍ଗର ।

ସିନ୍ଧୁଆବାଘ—ପ୍ରା.(ଗଞ୍ଜାମ)ବି.ଜଲଗ୍ରାପଟ୍ଟିଥିଆ ବାଘ ।

ସିନ୍ଧୁକ—ଗ୍ରା.ବି. ସିନ୍ଦୁକ ଦେଖ ।

ସିନ୍ଧୁକନ୍ୟା(ପୁତ୍ରୀ)—ବି. (ଷଷ୍ଠୀତତ୍ପୁ) ଲକ୍ଷ୍ମୀ

ସିନ୍ଧୁକଫ—ବି. (ଷଷ୍ଠୀତତ୍ପୁ)ସମୁଦ୍ରଫେନ ।

ସିନ୍ଧୁକର—ବି. ଶ୍ୱେତଟଙ୍କଣ ।

ସିନ୍ଧୁଖେଳ—ବି. (ସିନ୍ଧୁ+ଖିଲ୍+ଅଧିଅ) ସିନ୍ଧୁଦେଶ ।

ସିନ୍ଧୁଗଜ—ବି. ଏକପ୍ରକାର ସାମୁଦ୍ରିକ ଜୀବ, ଜଳହସ୍ତୀ ।

ସିନ୍ଧୁଘୋଟକ—ବି. ସୀଲ୍‌ଜାତୀୟ ଏକପ୍ରକାର ଜଳଚର ଜୀବ, ଜଳଘୋଟକ, ଘଣ୍ଟାପରି ମୁଖବିଶିଷ୍ଟ ସାମୁଦ୍ରିକ ଜୀବବିଶେଷ, ସିନ୍ଧୁଦେଶୀୟ ଉତ୍କୃଷ୍ଟ ଅଶ୍ୱ ।

ସିନ୍ଧୁଜ—ପୁଂ.ବିଂ.(ସିନ୍ଧୁ+ଜନ୍+କ.ଅ) ସମୁଦ୍ରଜାତ, ସିନ୍ଧୁଦେଶଜାତ, (ସ୍ତ୍ରୀ) ସିନ୍ଧୁଜା, (ବି) ସୈନ୍ଧବଲବଣ, ସିନ୍ଧୁଦେଶଜାତ ଲବଣ, ଚନ୍ଦ୍ର, ଉଚ୍ଚୈଃଶ୍ରବା ଅଶ୍ୱ, କର୍ପୂର, ଶଙ୍ଖ, ସୋହାଗା, ମୋତି ।

ସିନ୍ଧୁଜନ୍ମା—ବି. (ସିନ୍ଧୁ+ଜନ୍ମନ୍) ସୈନ୍ଧବଲବଣ, ଚନ୍ଦ୍ର, ବିଂ. ସମୁଦ୍ରଜାତ ।

ସିନ୍ଧୁଜା—ସ୍ତ୍ରୀ.ବି. ଲକ୍ଷ୍ମୀ, ମୁକ୍ତାଉତ୍ପାଦନକାରୀ ଶୁକ୍ତି, (ବିଂ)ସିନ୍ଧୁଜର ସ୍ତ୍ରୀଲିଙ୍ଗ ।

ସିନ୍ଧୁଜାତ—ପୁଂ. ବିଂ.ସମୁଦ୍ରଜାତ, ସିନ୍ଧୁଦେଶଜାତ, (ବି)ସିନ୍ଧୁଦେଶୀୟ ଘୋଡ଼ା, ମୋତି ।

ସିନ୍ଧୁଡ଼ା—ସ୍ତ୍ରୀ.ବି.ମାଳବରାଗର ଗୋଟିଏ ଭାର୍ଯ୍ୟା, ରାଗିଣୀବିଶେଷ ।

ସିନ୍ଧୁତନୟା—ସ୍ତ୍ରୀ.ବି. ସିନ୍ଧୁଜା ଦେଖ ।

ସିନ୍ଧୁତୀରସମ୍ଭବ—ବି. ଟାଙ୍କଣା ।

ସିନ୍ଧୁଦେଶ—ବି. ଦେଶବିଶେଷ ।

ସିନ୍ଧୁଦ୍ୱୀପ—ବି. ଭରତବଂଶୀୟ ଆଜମିର ନାମକ ରାଜାଙ୍କ ପୁତ୍ର, ଜହ୍ନୁମୁନିଙ୍କ ପୁତ୍ର, ମୁନିବିଶେଷ ।

ସିନ୍ଧୁନଦ—ବି.ଭାରତର ପଶ୍ଚିମପ୍ରାନ୍ତବର୍ତ୍ତୀ ପ୍ରସିଦ୍ଧ ନଦ ।

ସିନ୍ଧୁନନ୍ଦନ—ବି.(ଷଷ୍ଠୀତତ୍ପୁ)ଚନ୍ଦ୍ର, କର୍ପୂର ।

ସିନ୍ଧୁନନ୍ଦନା—ସ୍ତ୍ରୀ. ବି. (ଷଷ୍ଠୀତତ୍ପୁ) ଲକ୍ଷ୍ମୀ ।

ସିନ୍ଧୁନାଥ—ବି. (ଷଷ୍ଠୀତତ୍ପୁ) ସରିତ୍‌ପତି, ସାଗର ।

ସିନ୍ଧୁପତି—ବି.ନଦୀମାନଙ୍କର ପାଳୟିତା, ସମୁଦ୍ର ।

ସିନ୍ଧୁପତ୍ନୀ—ସ୍ତ୍ରୀ. ବି. ନଦୀ ।

ସିନ୍ଧୁପର୍ଣ୍ଣୀ—ବି. ଗମ୍ଭାରୀ (ବୃକ୍ଷ) ।

ସିନ୍ଧୁପିବ—ପୁଂ. ବି. (ସିନ୍ଧୁ+ପା+କ.ଅ) ଅଗସ୍ତ୍ୟଋଷି ।

ସିନ୍ଧୁପୁତ୍ର—ପୁଂ. ବି. (ଷଷ୍ଠୀତତ୍ପୁ) ଚନ୍ଦ୍ର, ମର୍କଟେନ୍ଦୁ, କାକତିନ୍ଦୁକ, ଏକପ୍ରକାର କେନ୍ଦୁଗଛ, ସିନ୍ଧୁରାଜପୁତ୍ର, ସିନ୍ଧୁମୁକ୍ତପୁତ୍ର । [ ଦେଖ ।

ସିନ୍ଧୁପୁତ୍ରୀ—ସ୍ତ୍ରୀ. ବି. (ଷଷ୍ଠୀତତ୍ପୁ) ସିନ୍ଧୁଜା

ସିନ୍ଧୁପୁଷ୍ପ—ବି. ଶଙ୍ଖ, କଦମ୍ବ, ବକୁଳ ।

ସିନ୍ଧୁପ୍ରଦେଶ—ବି.ସିନ୍ଧୁଦେଶ, ଭାରତର ପଶ୍ଚିମସୀମାନ୍ତସ୍ଥିତ ଗୋଟିଏ ପ୍ରଦେଶ ।

ସିନ୍ଧୁପ୍ରସୂତ-ବି.ସିନ୍ଧୁଜ, ସୈନ୍ଧବଲବଣ ।

ସିନ୍ଧୁଫଳ—ଗ୍ରା. ବି. ମୁକ୍ତା ।

ସିନ୍ଧୁବାର—ବି. ନିର୍ଗୁଣ୍ଡୀ ଦେଖ, ସିନ୍ଧୁଦେଶୀୟ ଉତ୍କୃଷ୍ଟ ଅଶ୍ୱ, ପାରସ୍ୟଦେଶୀୟ ଉତ୍କୃଷ୍ଟ ଘୋଡ଼ା ।

ସିନ୍ଧୁବଳ—ବିଂ. (ବ.ବ୍ରୀ) ସମୁଦ୍ରତୁଲ୍ୟ ବଳବାନ୍ ବା ପ୍ରବଳ ।

ସିନ୍ଧୁବାରକ(ବାରିତ)—ବି. ସିନ୍ଧୁବାର ଦେଖ ।

ସିନ୍ଧୁବାସିନୀ—ସ୍ତ୍ରୀ. ବି. ଲକ୍ଷ୍ମୀ ।

ସିନ୍ଧୁବିଡ଼ାଳ—ବି. ଏକପ୍ରକାର କ୍ଷୁଦ୍ର ସିଲ୍‌ମାଛ ।

ସିନ୍ଧୁବୃଷ—ପୁଂ. ବି. ବିଷ୍ଣୁ ।

ସିନ୍ଧୁବେଲା—ବି. (ଷଷ୍ଠୀତତ୍ପୁ)ସମୁଦ୍ରକୂଳ ।

ସିନ୍ଧୁବେଷଣ—ବି. ଗମ୍ଭାରବୃକ୍ଷ ।

ସିନ୍ଧୁବ୍ୟାଘ୍ର—ବି. ଏକପ୍ରକାର ସିଲ୍‌ମାଛ (ଏମାନେ ଦକ୍ଷିଣ ଓ ଉତ୍ତର ମହାସାଗରରେ ଥାଆନ୍ତି, ଏମାନଙ୍କ ଦେହରେ ବାଘପରି ଟୋପା ଟୋପା କଳା ଦାଗ ଥାଏ) ।

ସିନ୍ଧୁଭଲ୍ଲୁକ—ବି.ଏକପ୍ରକାର ସିଲ୍‌ମାଛ ।

ସିନ୍ଧୁମଥ୍ୟ—ବି. ସିନ୍ଧୁମନ୍ଥନଜାତ ଅମୃତ ।

ସିନ୍ଧୁମନ୍ଥଜ—ବି.ସୈନ୍ଧବଲବଣ, ଅମୃତ, (ବିଂ) ସିନ୍ଧୁମନ୍ଥନରୁ ଜାତମାତ୍ର ।

ସିନ୍ଧୁମନ୍ଥନ—ବି. (ଷଷ୍ଠୀତତ୍ପୁ)ସମୁଦ୍ର ମନ୍ଥନ ଦେଖ ।

ସିନ୍ଧୁମାତା—ସ୍ତ୍ରୀ. ବି. ସରସ୍ୱତୀ ।

ସିନ୍ଧୁର—ପୁଂ. ବି. (ସିନ୍ଧୁ+ର) ହସ୍ତୀ, ଆଠସଂଖ୍ୟା, (ସ୍ତ୍ରୀ) ସିନ୍ଧୁରା ।

ସିନ୍ଧୁରଦ୍ୱେଷୀ—ବି. ସିଂହ ।

ସିନ୍ଧୁରବଦନ—ପୁଂ.ବି. (ବ.ବ୍ରୀ)ଗଜାନନ, ଗଣେଶ ।

ସିନ୍ଧୁରା(ସ୍ତ୍ରୀ)—ବି. ରାଗିଣୀବିଶେଷ ।

ସିନ୍ଧୁରାଗ—ବି.ସଙ୍ଗୀତର ରାଗବିଶେଷ ।

ସିନ୍ଧୁରାଜ—ପୁଂ. ବି. ସମୁଦ୍ର, ଜୟଦ୍ରଥ ରାଜା, ମୁନିଭେଦ ।

ସିନ୍ଧୁରବ—ବି.ନିର୍ଗୁଣ୍ଡୀ ଦେଖ, (ଷଷ୍ଠୀତତ୍ପୁ) ସମୁଦ୍ର ଗର୍ଜନ ।

ସିନ୍ଧୁଲତାଗ୍ର—ବି. ପ୍ରବାଳ, ପୋହଳା ।

ସିନ୍ଧୁଲବଣ—ବି. ସୈନ୍ଧବ ଲବଣ ।

ସିନ୍ଧୁଶୟନ—ପୁଂ.ବି. (ବ.ବ୍ରୀ)କ୍ଷୀରସାଗରଶାୟୀ ବିଷ୍ଣୁ, (ସିନ୍ଧୁଶାୟୀ =ଅନ୍ୟରୂପ) ।

ସିନ୍ଧୁସଙ୍ଗମ—ବି. ନଦୀ ବା ନଦ ଓ ସମୁଦ୍ରର ମିଳନ ସ୍ଥାନ, ଦୁଇ ନଦ ବା ନଦୀର ସଙ୍ଗମ ସ୍ଥାନ ।

ସିନ୍ଧୁସମ୍ଭବ—ପୁଂ.ବିଂ. ସିନ୍ଧୁଜ ଦେଖ ।

ସିନ୍ଧୁସମ୍ଭବା—ସ୍ତ୍ରୀ. ବିଂ. ସିନ୍ଧୁସମ୍ଭବର ସ୍ତ୍ରୀଲିଙ୍ଗ, (ବି)ଲକ୍ଷ୍ମୀ, ଫିଟକିରି ।

ସିନ୍ଧୁସାଗର—ବି. ସିନ୍ଧୁ ଓ ସାଗରର ସଙ୍ଗମସ୍ଥାନ ।

ସିନ୍ଧୁସିଂହ—ବି. ଏକପ୍ରକାର ସିଲ୍‌ମାଛ ।

ସିନ୍ଧୁସୁତ—ପୁଂ. ବି. ଜଳନ୍ଧର ଅସୁର ।

ସିନ୍ଧୁସୁତା—ସ୍ତ୍ରୀ. ବି. ଲକ୍ଷ୍ମୀ, ଶାମୁକା ।

ସିନ୍ଧୁସୂନୁ—ପୁଂ. ବି. ସିନ୍ଧୁପୁତ୍ର ଦେଖ ।

ସିନ୍ଧୁହସ୍ତୀ—ବି. ସିନ୍ଧୁଗଜ ଦେଖ ।
ସିନ୍ଧୂତ୍ଥ—ବି ଓ ବିଂ. ସିନ୍ଧୁଜ ଦେଖ ।
ସିନ୍ଧୂଦ୍ଭବ—ବି ଓ ବିଂ. ସିନ୍ଧୁଜ ଦେଖ ।
ସିନ୍ଧୁପଲ—ବି. ସୈନ୍ଧବଲବଣ ।
ସିନ୍ନି—ଯା. ବି. ସତ୍ୟପୀର ବା ସତ୍ୟନାରାୟଣଙ୍କୁ ଦିଆଯିବା ନୈବେଦ୍ୟ ମିଷ୍ଟାନ୍ନ (ଏହା ଦୁଇପ୍ରକାର ଯଥା—କଞ୍ଚାସିନ୍ନି,—ଚାଉଳକଦଳୀ,ଅଟା,ଚିନି, ଗୁଡ,ଦୁଧ ଚକଟା ଓ ପକ୍କାସିନ୍ନି-ଗୁଡ଼ର କୋରା କିମ୍ବା ବୁନ୍ଦିଆ ମିଠାଇ) ।
ସିପ—ଗ୍ରା. ବି. (ସଂ-ଶୁକ୍ତି) ଶିପ ଦେଖ, ଶାମୁକା,ଯାହାକୁ ପୋଡ଼ିଲେ ଚୂନ ହୁଏ
ସିପଟି—ପ୍ରା.(ଗଞ୍ଜାମ—ବି)ଗଞ୍ଜାମର ତାରାତାରଣୀଙ୍କ ମାଳୀ ଜାତୀୟ ଶୂଦ୍ର ସେବକ
ସିପାହି—ଯା. ବି. ସୈନିକ, ପଦାତିକ, ନିମ୍ନଶ୍ରେଣୀୟ କନଷ୍ଟେବଲ, ଚପରାଶି,ପିଅନ, ଅସ୍ତ୍ରଶସ୍ତ୍ରଧାରୀ ପ୍ରହରୀ,ଶାନ୍ତିରକ୍ଷକ,ପାଇକ
ସିପାହିବିଦ୍ରୋହ-ଗ୍ରା:ବି.୧୮୫୭ଖ୍ରୀଷ୍ଟାବ୍ଦରେ ଭାରତର ଅଧିକାରୀ ଇଂରେଜଙ୍କ ବିରୁଦ୍ଧରେ କେତେକ ଭାରତୀୟ ସେନାଙ୍କର ଅସ୍ତ୍ରଧାରଣ ।
ସିପାଲ—ଗ୍ରା. ବି. ଚିଲିକାକୂଳରେ ଜନ୍ମୁଥିବା ଘରଛପରରେ ବ୍ୟବହୃତ ଘାସ ।
ସିପୁଟି—ଗ୍ରା.ପୁଂ.ବି. ବସ୍ତ୍ରସିଇଁବା ଜାତି, ଦରଜି, ଗଞ୍ଜାମର ତାରାତାରିଣୀଙ୍କ ସେବକ ।
ସିପୁଲ୍‌ବଇଠା—ପ୍ରା. (ଯାଜ)ବି. ପୂର୍ବେ ଗୁଡଶାଳୀରେ ଗ୍ରାହମାନଙ୍କୁ ଦିଆଯିବା ଦଣ୍ଡବିଶେଷ, କାଠଚଉକି ।
ସିପ୍ର—ବି. (ସିପ୍+କ.ର) ଚନ୍ଦ୍ର, ସ୍ୱେଦ, ଝାଳ, କାଳିକାପୁରାଣୋକ୍ତ ଦେବସରୋବରବିଶେଷ ।
ସିପ୍ରା—ବି. (ସିପ୍ର+ଆ) ଉଜ୍ଜୟିନୀ ସମୀପସ୍ଥ ନଦୀବିଶେଷ,ସ୍ତ୍ରୀମାନଙ୍କ କଟିବନ୍ଧ ।
ସିଫାଇ—ପ୍ରା.(ଲରିଆ)ବି.ସିପାହି ଦେଖ
ସିବନ୍ଦୀ—ପ୍ରା. (ଜୟପୁର)ବି. ସିପାହୀ ।
ସିବର—ବି. (ସି+ବର)ହସ୍ତୀ ।
ସିବସ—ବି.(ସିବ୍+କ.ଅସ୍)ବସ୍ତ୍ର,ପଦ୍ୟ, ଶ୍ଳୋକ ।
ସିବାୟ—ଯା. ଅବ୍ୟ. ଛଡ଼ା, ବ୍ୟତୀତ ।
ସିବନ୍ଧିକାଫଳ—ବି. କାବୁଲ୍‌ଦେଶୀୟ ଖାଦ୍ୟଫଳବିଶେଷ, ସେଓଫଳ ।
ସିଭିଲ୍—ଯା. ବି. ଦେୱାନି, ଭଦ୍ର ।
ସିଭିଲ୍‌ସର୍ଜନ—ଯା.ବି.ଡାକ୍ତରସାହେବ. ଜିଲ୍ଲାର ସର୍ବୋଚ୍ଚ ଡାକ୍ତର ।
ସିଭିଲ୍‌ସର୍ଭିସ୍—ଯା. ବି. ରାଜ୍ୟଶାସନ ସମ୍ବନ୍ଧୀୟ ଉଚ୍ଚସରକାରୀ ଚାକିରି ।
ସିଭିଲ୍‌ୟାନ୍—ଯା.ବି.ରାଜଶାସନ ସମ୍ବନ୍ଧୀୟ ଉଚ୍ଚ କର୍ମଚାରୀ ।
ସିମ—ବିଂ. (ସି+ଗ୍ର.ମନ୍)ସମସ୍ତ,ସକଳ. ଶ୍ରେଷ୍ଠ, (ଗ୍ରା.ବି) ଶିମ୍ବ ଦେଖ ।
ସିମଲା—ଗ୍ରା. ବି. ପଞ୍ଜାବପ୍ରଦେଶର ଉତ୍ତରାଂଶ ହିମାଳୟର ସାନୁଦେଶରେ ଅବସ୍ଥିତ ଭାରତ ଗଭର୍ଣ୍ଣମେଣ୍ଟଙ୍କର ଓ ଭାଇସ୍‌ରାୟଙ୍କ ଗ୍ରୀଷ୍ମନିବାସ,କଲିକତାର ଗୋଟିଏ ଅଂଶ । [ ଦେଖ ।
ସିମସ୍ଥାନ—ପ୍ରା. (ଗଞ୍ଜାମ.ବି) ଶିମସ୍ଥାନ
ସିମାକଜୋଡ଼—ପ୍ରା. ( ଗଞ୍ଜା ) ବାଟି ବା କଉଡ଼ି ଖେଳରେ ବାଟିରେ ବାଟିକି ମାରିବା ଷଷ୍ଠ ଆଘାତ ।
ସିମାଦ୍ରି—ପ୍ରା.(ଗଞ୍ଜା)ବି.ସିଂହାଚଳ ନାଥଙ୍କ ନାମାନୁସାରେ ଦିଆଯାଇଥିବା ନାମ ।
ସିମାଦ୍ରିଆପୁଡ଼୍—ପ୍ରା.(ଗଞ୍ଜା)ବି.ବାସୁଆ-ବଳଦ ଦେଖ ।
ସିମାପାଇକେରା—ପ୍ରା.( ବାଣପୁର ) ବି. ଏକପ୍ରକାର ଅତି ବଡ଼ ବନ୍ୟଗଛ ।
ସିମାନ୍ତ—ଯା.ବିଂ.(ଫା-ସେମାନ୍ତ)ସୀମାନ୍ତିକ ।
ସିମିତ—ଗ୍ରା.ଅବ୍ୟ. ସେମିତ ଦେଖ ।
ସିମିତିକା—ଗ୍ରା.ବିଂ.ସେମିତିକା ଦେଖ ।
ସିମିଳି—ଗ୍ରା.ବି. ( ସଂ-ଶାଲ୍ମଳୀ ) ଶିମିଳି ଦେଖ, (ପ୍ରା. ବାଲେ) ଶିଉଳି ।
ସିମି(ସିମେଇ)— ଗ୍ରା.ବି. (ସଂ-ସେବିକା) ଘିଅରେ ଭୁଜା ହୋଇଥିବା ଶିମ୍ବ ଆକାରର ଲମ୍ବଲମ୍ବ ପତଳା ଗଜା ।
ସିମୁଣା—ପ୍ରା.(ଆଳି)ବି.ସାନ ହଣ୍ଡୁଆସି ।
ସିମେଣ୍ଟ—ଯା. ବି. ଘରଆଦିର ପଲସ୍ତରା କରିବାରେ ବ୍ୟବହୃତ ଏକପ୍ରକାର ମାଟି
ସିମ୍ପାଞ୍ଜି—ଗ୍ରା.ବି. ଆଫ୍ରିକାର ଜଙ୍ଗଲ ମଧ୍ୟରେ ବାସ କରୁଥିବା ପୁଚ୍ଛହୀନ ଓ କେତେକାଂଶରେ ମନୁଷ୍ୟର ଆକୃତିବିଶିଷ୍ଟ ମର୍କଟ ବା ବନମଣିଷ ।
ସିମ୍ବ—ଗ୍ରା.ବି.(ସଂ-ଶିମ୍ବୀ) ଶିମ୍ବ ଦେଖ ।
ସିମ୍ବଖାଇ—ପ୍ରା.(ବୌଦସମ୍ବଲପୁର) ବି. ନବାନ୍ନ ଉତ୍ସବ, ନୂଆଖିଆ ।
ସିମ୍ବା—ବି. ଶମୀଧାନ୍ୟ, ଶିମ୍ବ ।
ସିମ୍ବି—ବି.ଶିମ୍ବ,ନଖୀନାମକ ଗନ୍ଧଦ୍ରବ୍ୟ ।
ସିମ୍ବିକା—ବି. ଶମୀଧାନ୍ୟ, ଶିମ୍ବକ ।
ସିମ୍ବିତିକା—ବି. ଶମୀଧାନ୍ୟ ।
ସିମ୍ବୀ—ବି. ଶିମ୍ବ, ନଖୀଶାଗ, ବରଗୁଣ୍ଡି ।
ସିୟ୍(ଯେ)ବାର୍—ଗ୍ରା.ବି. ଗଡ଼୍‌ୱାଲ ପଣ୍ଡାମାନଙ୍କର ବଂଶୋପାଧିବିଶେଷ ।
ସିୟୁଣି—ପ୍ରା.(ଗଞ୍ଜା)ବି. ଝୋକେଇ ।
ସିର୍—ପ୍ରା. (ସମ୍ବ) ବି. ମାଫିଦାର ବା ଲାଖରାଜଦାରଙ୍କ ନିଜର ଚାଷଜମି ।
ସିରକା—ଯା.ବି. ସିର୍କା, ଗୁଡ ଓ ଅନ୍ୟ ମିଷ୍ଟ ରସ ସଢ଼ାଇଲେ ଯେଉଁ ଅମ୍ଳ ଉତ୍ପନ୍ନ ହୁଏ, ମଦର କାଞ୍ଜି ।
ସିର୍‌ଖିସ୍ତ—ଯା.ବି. ଯବାସଶର୍କରା ।
ସିର୍‌ଫାସି—ପ୍ରା. (ଝଡ଼) ବି. ଦଉଡ଼ିର ଏକପ୍ରକାର ଫାଶି ବା ଫାସ ।
ସିର୍‌ସିର୍—ଗ୍ରା.ଅବ୍ୟ. ସଲସଲ, ଦେହ ଉପରେ ହାଲୁକା ସୂତା ବା ପରଆଦି ଚଳାଇଲେ ଓ ପୋକଆଦି ଗଲେ ଯେଉଁପରି ଅନୁଭୂତ ହୁଏ,ଜ୍ୱରାଦି ରୋଗ ଆକ୍ରମଣ ପୂର୍ବରୁ ଦେହର ଅସୁସ୍ଥତା ବୋଧ ଅବସ୍ଥା, ଜ୍ୱରାଦି ପୂର୍ବରୁ ଦେହ ଛେଚକୁଟି ହେବା ଅବସ୍ଥା,ରୋମାଞ୍ଚ,ଦେହ ଶୀତେଇବା ଓ ତଜ୍ଜନିତ କମ୍ପିବା ଅବସ୍ଥା
ସିର୍‌ସିର୍‌କରିବା(ହେବା)—ଗ୍ରା. କ୍ରି. (ଦେହ) ରୋଗାକ୍ରମଣ ପୂର୍ବରୁ ଅସୁସ୍ଥ ବୋଧହେବା,ଛେଚକୁଟି ହେବା,ଦେହ ଉପରେ ପିମ୍ପୁଡ଼ି ଚଳିଲାପରି ବୋଧହେବା, ଶୀତେଇବା, ରୋମଟାଙ୍କୁରିବା, (ଲ.ଅର୍ଥ) କୌଣସି ଲୋକ ଉପରେ ବିରକ୍ତିଜନକ ମୁଖଭଙ୍ଗୀ କରିବା ବା ଚିଢ଼ିବା,ଅନ୍ୟର ଗୁଣାଘାଆଆଦି ଦେଖି

ଆପେ ଅବଶ ହେବା ।
ସିର—ବି.(ସି + କ.ର) ପିମ୍ପଲୀ, (ଗ୍ରା.ବି) ଶିର, ନାଡ଼ୀ ।
ସିରଜୁ—ପ୍ରା. (ଛତିଶଗଡ଼) ବି. ସତ୍ୟ ।
ସିରତାଜ—ଯା. ବି. ମୁକୁଟ, ଶିରୋମଣି, (ଲ.ଅର୍ଥ) ଶ୍ରେଷ୍ଠ ବ୍ୟକ୍ତି ।
ସିରନା—ପ୍ରା.(ବସ୍ତର) ବି.ନମ୍ବାରଗଛ ।
ସିରସ୍ତା—ଯା. ବି. ସରକାରୀ କାଗଜ, କଚେରି, ଲେଖାପଢ଼ା ହେବା କାର୍ଯ୍ୟାଳୟ, (ଗ୍ରା.ବି) ହାତୀକୁ ମଣ କରିବା ।
ସିରସ୍ତାଦାର—ଯା. ବି. ଅଫିସର ପ୍ରଧାନ କର୍ମଚାରୀ । [ କାର୍ଯ୍ୟ ।
ସିରସ୍ତାଦାରୀ—ଯା. ବି. ସିରସ୍ତାଦାରଙ୍କ
ସିରା—ବି. (ସି + କ.ର + ଆ) ନାଡ଼ି, ରକ୍ତବାହୀ ନାଡ଼ି, ପାଣିନେବାର ଚମମୁଣା, ଚିନିପ୍ରଭୃତିର ତରଳ ସାର, ଶିରା ଦେଖ, (ପ୍ରା. ଗଞ୍ଜାମ. ବି) ମସି, କାଳି, (ପ୍ରା. ସମ୍ବଲ) ଗିରିଆଦିର ଶୃଙ୍ଗ, କୂଟ. (ଯାଜ) ଟୋକେଇ, ବୋହୂ ।
ସିରାଜ୍—ଯା. ବି. ଏକପ୍ରକାର ମିଷ୍ଟ ଓ ମୃଦୁ ମଦ୍ୟ, ପ୍ରାଣୀୟ ।
ସିରାଜଉଦ୍ଦୌଲା—ଗ୍ରା. ବି. ବଙ୍ଗଳାର ଶେଷ ସ୍ୱାଧୀନ ନବାବ ।
ସିରାଜି—ଯା. ବି. ପାରସ୍ୟଦେଶୀୟ ଏକପ୍ରକାର ସୁମିଷ୍ଟ ଓ ମୃଦୁ ମଦ୍ୟ ।
ସିରନା—ଗ୍ରା.ବି. ପଲଙ୍କର ମୁଣ୍ଡପାଖର ବାଡ଼ ।
ସିର(ର)ପ୍—ଯା.ବି.ବୈଜ୍ଞାନିକ ପ୍ରଣାଳୀରେ କଦଳୀ ଆମ୍ବ ଓ କମଳାପ୍ରଭୃତି ଫଳରୁ ବାହାରିବା ସାରାଂଶ ସହିତ ମିଶ୍ରିତ ପ୍ରପାନକ ।
ସିରାପଥ—ବି.ହୃନ୍ନାଳ । [ ବିଶେଷ ।
ସିରାପ୍ରହର୍ଷ—ବି. ସିରାହର୍ଷ, ନେତ୍ରରୋଗ
ସିରାମଇ—ଗ୍ରା. ବି. ଶିରାମଇ ଦେଖ ।
ସିରାମୂଳ—ବି. ନାଭିମୂଳ, ଯେଉଁସ୍ଥାନରୁ ସିରା ଉଦ୍ଭୂତ ହୋଇଅଛି ।
ସିରାଳ—ବିଂ. ଶିରାଯୁକ୍ତ, ସିରାବିଶିଷ୍ଟ, (ବି) କର୍ମରଙ୍ଗ, କରମଙ୍ଗା ।
ସିରାଳକ—ବି. ଅସ୍ଥିଚର୍ମ ବୃଦ୍ଧ, ହାଡ଼-କଙ୍କାଳ. ପଚଅଇରି ।
ସିରାବୃତ୍ତ—ବି. ସୀସକ, ସୀସା ।
ସିରି—ପା. (ସମ୍ବ) ବି. ସୂତାକାଟିବାରେ ବ୍ୟବହୃତ ଗୁଳାର ବଳଣା. (ଗ୍ରା.ବି) ରମାନୁଜସମ୍ପ୍ରଦାୟର ବୈଷ୍ଣବମାନେ କପାଳରେ ତିଳକ ଦେବାର ନାଲି ଚୂର୍ଣ୍ଣ ।
ସିରସ—ଯା. ବି. ଗୋମେଷାଦିଙ୍କ ଚର୍ମ, ଖୁରା, ଶିଙ୍ଗଆଦି ଆଉଟା ହୋଇ ତିଆରି କରାଯିବା ଏକପ୍ରକାର ଅଠା, ଗୁନ୍ଦଅଠା, ଶିରିଷଗଛର ରସ ।
ସିରସକାଗଜ—ଗ୍ରା. ବି. କାଚକୁ ବାଲିପରି ଚୂର୍ କରି ତାକୁ ସିରସଅଠା ସଙ୍ଗେ ମିଶାଇ କାଗଜ ଉପରେ ବସାଇ ଶୁଖାଇ ତିଆରି କରାଯିବା କାଗଜ, ଯାହାଦ୍ୱାରା କାଠ ପାଲିସ ହୁଏ ।
ସିରସିର—ଗ୍ରା.ଅବ୍ୟ.ସିର୍‌ସିର୍ ଦେଖ ।
ସିରସିରହେବା—ଗ୍ରା.କ୍ରି.ସିଲସିଲ୍‌ହେବା ଦେଖ ।
ସିରା—ବି. ତନ୍ତ୍ର, ଲଙ୍ଗଳୀ, ଲଙ୍ଗଳୀଙ୍କ ଗଛ ଗୁଳ୍ମ ।
ସିର୍କା—ଯା. ବି. ସିରକା ଦେଖ ।
ସିଲ୍—ଯା. ବି. ନାମାଙ୍କିତ ମୋହର, ନାମାଙ୍କିତ ମୋହର୍ ଦ୍ୱାରା ଚିଠି ଉପରେ ବସାଯିବା ମୁଦ, ଦସ୍ତା, ଏକପ୍ରକାର ସାମୁଦ୍ରିକ ଜଳଜନ୍ତୁ, (ଗ୍ରା.ବି) ବଙ୍ଗୀୟ ବଂଶୋପାଧିବିଶେଷ, (ପ୍ରା. ସମ୍ବ) ଶିଳ ।
ସିଲ(ଲି)ପଟ୍(ର୍) —ଯା. ବି. ରେଲ ଲାଇନରେ ଆଡ଼ବାଗରେ ପକାଯିବା କାଠର କଣ୍ଡ ।
ସିଲ୍‌ପା—ପ୍ରା.(ସମ୍ବ)ବି. ଶିଳପୁଆ ।
ସିଲ୍‌ଭର—ଯା. ବି. ରୌପ୍ୟ, ରୁପା, ରାସାୟନିକ ପ୍ରକ୍ରିୟାରେ ନିର୍ମିତ ରୁପାପରି ଦେଖାଯିବା ଧାତୁବିଶେଷ ।
ସିଲ୍‌ଭରଜୁବି(ବ୍ଲି)—ଯା. ବି. ରାଜାଙ୍କର ବ ୨୫ ବର୍ଷ ରାଜତ୍ୱ ପୂରିବା ଉପଲକ୍ଷ୍ୟ ଅନୁଷ୍ଠିତ ଆନନ୍ଦୋତ୍ସବ ।
ସିଲ୍‌ମୁଦ—ଗ୍ରା. ବି. ଚିଠିଆଦି ଉପରେ ଜଉ ବନ୍ଦ ହେବାପରେ ତା ଉପରେ ସିଲ୍ ମରାଯିବା ।
ସିଲ୍‌ମୁଦ୍ର—ଗ୍ରା. ବି. ନାମାଙ୍କିତ ମୁଦ୍ରାଙ୍କ
ସିଲ୍‌ମୋହର—ଯା. ବି. ନାମାଙ୍କିତ ମୁଦ୍ରା ବା ମୋହର ।
ସିଲ୍‌ଲୋଢ଼ା—ପ୍ରା.(ବସ୍ତର) ବି. ଶିଳପୁଆ ।
ସିଲ୍‌ସିଲା—ଯା.ବି.ବ୍ୟବସ୍ଥା, ବନ୍ଦୋବସ୍ତ, (ପ୍ରା. ଛତିଶଗଡ଼) ବି. ପ୍ରବାଦ ।
ସିଲି—ପ୍ରା.(ଗଞ୍ଜାମ)ଗ୍ରା.ବି. ଶିଲ ଦେଖ, (ସମ୍ବ) ଶିଳ, (ଗ୍ରା) ସୁବିଧା, ଶସ୍ତାଗଣ୍ଡା, (ବିଂ) ଶସ୍ତା, ସୁବିଧାଜନକ ।
ସିଲଖ(ଖି)ଲ—ପ୍ରା(ବୌଦ୍ଧ)ବି.ଶୃଙ୍ଖଳା ।
ସିଲଙ୍ଗ୍—ଗ୍ରା. ବି. ଆସାମ ପ୍ରଦେଶର ଲାଟସାହେବଙ୍କ ଗ୍ରୀଷ୍ମକାଳୀନ ରାଜଧାନୀ ।
ସିଲଟ୍—ଯା. ବି. ସ୍ଲେଟପଟା, ପେନସିଲରେ ଲେଖିବା ପାଇଁ ଶିଶୁମାନଙ୍କ ବ୍ୟବହୃତ କୃଷ୍ଣବର୍ଣ୍ଣ ପ୍ରସ୍ତରର ବା ମାଟିର ଫଳକ, (ଗ୍ରା.ବି) ଆସାମ ପ୍ରଦେଶର ଅନ୍ତର୍ବର୍ତ୍ତୀ ଗୋଟିଏ ଜିଲା ଓ ତାହାର ରାଜଧାନୀ ।
ସିଲଟ୍‌ପେନ୍‌ସିଲ—ଗ୍ରା. ବି. ସ୍ଲେଟ ଉପରେ ଲେଖିବା ପାଇଁ ବ୍ୟବହୃତ ମାଟିର ଲେଖନୀ ।
ସିଲା—ଉଞ୍ଛ, କଣିକାଦିର ଗ୍ରହଣ ।
ସିଲନ୍ଧ(ନ୍ଧ୍ର)—ବି. ଶିଲନ୍ଧ ଦେଖ ।
ସିଲା—ଯା.ବି.ଜମିର କଡା, ନିର୍ଦ୍ଦିଷ୍ଟ କମ୍ ଚଉଡ଼ାବିଶିଷ୍ଟ ଲମ୍ବାକ୍ଷେତ୍ର, ପଟି, (ପ୍ରା. ବାଲେ) ଏକପ୍ରକାର ଲୁଣିମାଛ, (ଗ୍ରା. ବି) କୋଣ ।
ସିଲାଇ—ଗ୍ରା. ବି. ସୀବନ, ସିଆଁ ।
ସିଲାଇକରିବା—ଗ୍ରା. କ୍ରି. ସିଇଁବା ।
ସିଲାଇକଲ—ଗ୍ରା. ବି. ସିଇଁବା ପାଇଁ ବ୍ୟବହୃତ ଯନ୍ତ୍ର ।
ସିଲାଓଆରି—ଯା. ବିଂ. ସିଲାସମ୍ବନ୍ଧୀୟ, (ଗ୍ରା.କ୍ରି.ବିଂ) ସିଲାସିଲା କରି ।
ସିଲାଓଆରିକରିବ—ଯା. ବି. କିଆରିଆରି ମାପ ।
ସିଲାବସ୍—ଯା. ବି. ପାଠ୍ୟ ନିର୍ଘଣ୍ଟ ।
ସିଲି—ପ୍ରା. (ସମ୍ବ)ବି. ଶଗଡ଼ଚକ, (ଗ୍ରା. ବି) ଗୋଷ୍ଠିଆପଇ ।
ସିଲଙ୍ଗ୍—ଯା. ବି. ବଳିଭ ପ୍ରଚଳିତ

ରୌପ୍ୟମୁଦ୍ରା ।
ସିଲ୍‌ସିଲ୍—ଗ୍ରା. ବିଂ.କ୍ରି. ବିଂ. ସୁଲୁସୁଲୁ ପବନ । [ ହୋଇଥିବା ।
ସିଲେକ୍ଟ—ଯା. ବିଂ. ନିର୍ବାଚିତ, ବଗ୍ଛ
ସିଲୋନ—ଯା.ବି. ଲଙ୍କା,ସିଂହଳଦ୍ୱୀପ ।
ସିଲ୍ଲି—ପ୍ରା. (ଗଞ୍ଜାମ)ବି. ବିଦାୟ,ଅନୁମତି,
ସିଲ୍ଲି ହବା--ପ୍ରା.(ଗଞ୍ଜାମ.କ୍ରି)ବିଦାୟ ଗ୍ରହଣ କରିବା ।
ସିଲ୍ଲିଙ୍ଗ ଦେବା—ପ୍ରା. (ଜୟପୁର) କ୍ରି. ସାଙ୍ଗିବା ଦେଖ ।
ସିଲ୍ଲିକ—ବି. ଶିଳାରସ ।
ସିଷାଧୟିଷା—ବି. (ସାଧ୍+ସନ୍+ଭା.ଅ +ଆ) ସାଧନକରିବାର ଇଚ୍ଛା ।
ସିଷାଧୟିଷୁ—ପୁଂ. ବିଂ. (ସାଧ୍+ସନ୍+ କ.ଉ) ସାଧନେଚ୍ଛୁ ।
ସିଷାସତୁ—ପୁଂ. ବିଂ. ବିଭାଗ କରିବାକୁ ଇଚ୍ଛୁକ ।
ସିଷାସନ୍—ପୁଂ.ବିଂ. ସମ୍ୟକ୍‌ଭଜନଶୀଳ
ସିଷାସୁ—ପୁଂ. ବିଂ. ଧନଲାଭ କରିବାକୁ ଅଭିଳାଷୀ ।
ସିଷୁମ୍ନା(ମ୍ଣା)—ଗ୍ରା.ବି. ସୁଷୁମ୍ନା ଦେଖ
ସିସେବିଷୁ—ପୁଂ. ବିଂ. ସେବାକରିବାକୁ ଇଚ୍ଛୁକ ।
ସିସ୍ନାସୁ—ପୁଂ.ବିଂ. (ସ୍ନା+ସନ୍+ଉ) ସ୍ନାନେଚ୍ଛୁ, ସ୍ନାନ କରିବାକୁ ଇଚ୍ଛୁକ ।
ସିସଲୁ—ଯା. ବି. ବ୍ୟବସ୍ଥା, ନିଷ୍ପତ୍ତି, ମୀମାଂସା, (ବିଂ)ମୀମାଂସିତ ।
ସିସା—ଗ୍ରା.ବି. ଶିଶା ଦେଖ,(ପ୍ରା.ବୌଦ୍ଧ) ଉଡ୍‌ନ୍‌ପେନ୍ସିଲ୍ ।
ସିସି—ଗ୍ରା.ବି. ଶିଶି ଦେଖ ।
ସିସୃକ୍ଷା—ବି. (ସୃଜ୍+ସନ୍+ଭା.ଅ+ ଆ)ସର୍ଜନ ବା ନିର୍ମାଣ କରିବାର ଇଚ୍ଛା
ସିସୃକ୍ଷୁ—ପୁଂ.ବିଂ. (ସୃଜ୍+ସନ୍+କ. ଉ)ସୃଷ୍ଟି ବା ନିର୍ମାଣ କରିବାକୁ ଇଚ୍ଛୁକ
ସିସ୍ନାସୁ—ପୁଂ.ବି. (ସ୍ନା+ସନ୍+କ.ଉ) ସ୍ନାନାଦି କାର୍ଯ୍ୟ ।
ସିସୋଦୀୟ--ଗ୍ରା.ବିଂ.ସୀସୋଦୀୟା କୁଳର
ସିସୋଦୀୟା—ଗ୍ରା.ବି. ରାଜପୁତମାନଙ୍କର ଏକ ପ୍ରସିଦ୍ଧ ଶାଖା ।
ସିସ୍ତ—ଯା.ବି. ସମ୍ବାଦ, ଶସ୍ତ, ଉପାୟ ।
ସିସ୍ତି—ଯା. ବି. ମାପିବା ଚେନ୍ ସଙ୍ଗେ ଭୂମିରେ ପୋତିବାପାଇଁ ବ୍ୟବହୃତ ଲୁହାର ପିନ୍ (ଗ୍ରା.ବି) ଲକ୍ଷ୍ୟଭେଦ ।
ସିସ୍ତୁ—ପ୍ରା.(ଗଞ୍ଜାମ)ବି.ଭୂମିକର,ଖଜଣା ।
ସିହ୍ନିବା—ପ୍ରା.(ସମ୍ବ) କ୍ରି. ଖୁନ୍ଦି ଖୁନ୍ଦି ଭର୍ତ୍ତି କରିବା ।
ସିହ୍ୱା—ଯା.ବି.ଜମାଖରଚ ବହି.ସିରସ୍ତ, ମୁସଲ୍‌ମାନମାନଙ୍କର ସମ୍ପ୍ରଦାୟ-ବିଶେଷ, (ଗ୍ରା) ଶିଖା ।
ସିହ୍ୱାଡ଼ଆଣ୍ଡା—ଯା.ବି.ଯେଉଁ ସିହ୍ୱାରେ ଭିନ୍ନ ଭିନ୍ନ ଶ୍ରେଣୀର ଜମା ଓ ଖରଚ-ମାନ ପୃଥକ୍ ପୃଥକ୍ ଭାବେ ହେଡ଼ଙ୍ଗ୍ ତଳେ ଲେଖାଯାଏ ।
ସିହ୍ୱାକରିବା—ଗ୍ରା.କ୍ରି. ହିସାବ ବହିରେ ଜମା ଖରଚ ଲେଖିବା, ଜମା ଧନକୁ ହିସାବରେ ଲେଖିବା ।
ସିହ୍ୱାଣ(ଣା)—ଗ୍ରା.ପୁଂ. ଓ ସ୍ତ୍ରୀ.ବିଂ.ସିଆଣ (ଣା) ଦେଖ, ଶ୍ରେଷ୍ଠ ।
ସିହ୍ୱାଣିଆ—ଗ୍ରା. ବିଂ. ସିଆଣ ଦେଖ, ଚତୁର, (ସ୍ତ୍ରୀ) ସିହ୍ୱାଣୀ ।
ସିହୁଣ୍ଡ—ବି. ସ୍ନୁହୀବୃକ୍ଷ. ସିଜୁ ଦେଖ ।
ସିହ୍ନା—ଗ୍ରା.ଅବ୍ୟ. ସିନା ଦେଖ ।
ସିହ୍ଲକ—ବି. (ସ୍ନିହ୍+କ.ଲ) ଧୂପରେ ବ୍ୟବହୃତ ଗନ୍ଧଦ୍ରବ୍ୟବିଶେଷ,ଲୋବାନ୍. ଟିହ୍ଲକ ।
ସିହ୍ଲକୀ—ବି. ଶଲ୍ଲକୀ ଦେଖ ।
ସିହ୍ଲା—ଯା.ବି. ସିଲ୍ଲ ଦେଖ ।
ସୀଉକାର—ଗ୍ରା. ବି. (ସଂ-ସ୍ୱୀକାର) ସ୍ୱୀକାର, ସମ୍ମତି, କରଣ ସମାଜରେ ବିବାହ ପୂର୍ବରୁ ବରକନ୍ୟାଙ୍କ ସମ୍ବନ୍ଧରେ ଉଭୟ ପକ୍ଷଙ୍କର ସମ୍ମତିସୂଚକ ନିର୍ବନ୍ଧ ଓ ଉତ୍ସବ,କରଣ ସମାଜରେ 'ସ୍ୱୀକାର' ଉତ୍ସବରେ କନ୍ୟା ଘରୁ ବର ଘରକୁ ପଠାଯିବା ଭେଟିର ।
ସୀଉକାରିଆ—ଗ୍ରା. ବି. କରଣକୁଳରେ ବିବାହ ବିଷୟରେ ମଧ୍ୟସ୍ଥ ହେବା ବ୍ୟକ୍ତି ।
ସୀକର—ବି. (ସୀକ+ମି.ଅର) ସୂକ୍ଷ୍ମ-ଜଳବିନ୍ଦୁ,ବାୟୁପ୍ରେରିତ ସୂକ୍ଷ୍ମଜଳକଣା, (କ.ଅର) ଝୁଣ୍ଟାଝିଡ଼ା ବୃଷ୍ଟି, ବାୟୁ ।
ସୀକରଶୀତ—ବିଂ. (ମତନ୍ତ୍ର) ଜଳକଣା ଦ୍ୱାରା ଶୀତଳ,ଜଳକଣାପରି ଶୀତଳ ।
ସୀକାର—ପ୍ରା. (ଖଡ଼ିଆଳ) ବି. ସ୍ୱୀକାର, ମାଂସ, ପାରିଧି ।
ସୀ(ତ୍)ତ—ବି. ଜିହ୍ୱା, ଓ ଦନ୍ତଦ୍ୱାରା ଉଚ୍ଚାରିତ ସୀତ୍ ଧ୍ୱନି ।
ସୀତ୍କାର—ବି. (ସୀତ୍+କୃ+ଭା.ଅ) ଅବ୍ୟକ୍ତ ମୁଖଶବ୍ଦବିଶେଷ 'ସୀତ୍' ରୂପ ଅବ୍ୟକ୍ତ ଶବ୍ଦ ।
ସୀତ୍କୃତ—ବିଂ. କୃତସୀତ୍କାର, (ବି) ସୀତ୍କାର ଦେଖ, ( ସୀତ୍କୃତ— ଅନ୍ୟରୂପ ) । [ ରାମପତ୍ନୀ ।
ସୀତସ୍ମା—ଗ୍ରା. ସ୍ତ୍ରୀ. ବି. ସୀତାଦେବୀ,
ସୀତା—ବି. (ସି+ମି.ତ+ଆ)ଲଙ୍ଗଳ-ପଦ୍ଧତି, ଲଙ୍ଗଳଗାର, ( କ.ତ+ଆ ) ସ୍ୱର୍ଗଙ୍ଗା, ଗଙ୍ଗାସ୍ରୋତ,ଲକ୍ଷ୍ମୀ, ପାର୍ବତୀ, ଶସ୍ୟାଧିଦେବତା,ମଦିରା ଜନକନନ୍ଦିନୀ, ରାମପତ୍ନୀ. ଦୁର୍ଗା, (ଗ୍ରା.ବି) ସୀତାଭୋଗ ଦେଖ, ଶାକର,ସ୍ତ୍ରୀଙ୍କୁ ଡାକିବା ନାମ ।
ସୀତାକାନ୍ତ(ନାଥ)—ପୁଂ. ବି. (୬ତତ୍) ରାମଚନ୍ଦ୍ର ।
ସୀତାକୁଣ୍ଡ—ବି. ବିହାରରେ ମୁଙ୍ଗେର୍-ଜିଲ୍ଲାନ୍ତର୍ଗତ ଉଷ୍ଣପ୍ରସ୍ରବଣବିଶେଷ ।
ସୀତାଜନ୍ମବ୍ରତ—ବି.ବୈଶାଖ ଶୁକ୍ଳନବମୀ ଦିନ ସୀତାଙ୍କର ପୂଜା ଓ ବ୍ରତ, ଏଦିନ ସୀତାଙ୍କୁ ରାଜା ଜନକ ଲଙ୍ଗଳପଦ୍ଧତିରୁ ପାଇଥିବାରୁ ।
ସୀତାଦେବୀ—ସ୍ତ୍ରୀ.ବି. ରାମଚନ୍ଦ୍ରଙ୍କ ପତ୍ନୀ ।
ସୀତାଧ୍ୟକ୍ଷ—ପୁଂ. ବି. କ୍ଷମାଶ୍ରୀ ।
ସୀତାନବମୀ—ବି.ସୀତା ଜନ୍ମବ୍ରତ ଦେଖ ।
ସୀତାପତି—ବି. (୬ତତ୍) ରାମଚନ୍ଦ୍ର ।
ସୀତାପୁର—ଗ୍ରା.ବି. ଯୁକ୍ତପ୍ରଦେଶାନ୍ତର୍ଗତ ଲକ୍ଷ୍ନୌର ଉତ୍ତରସ୍ଥ ଗୋଟିଏ ଜିଲ୍ଲା ଓ ସହର ।
ସୀତାବଲ୍ଲଭ—ପୁଂ.ବି. (୬ତତ୍)ରାମଚନ୍ଦ୍ର ।
ସୀତାବକ—ବି. ସନ୍ଦାଳକ, ମାଷ, ବର ।
ସୀତାକେଞ୍ଚ—ଗ୍ରା. ବି. କେନ୍ଦୁଝର ରାଜ୍ୟର ପାହାଡ଼ବିଶେଷ ।

ସୀତାବ୍ରତ—ବି. ସୀତାଜନ୍ମବ୍ରତ ଦେଖ ।
ସୀତାଭୋଗ—ଗ୍ରା.ବି.ସିତାଭୋଗ ଦେଖ
ସୀତାମୃଖ—ବି.ଲାଙ୍ଗଳପଦ୍ଧତିର ମଧ୍ୟଭାଗ
ସୀତ୍କାର—ବି. ସୀତ୍କାର ଦେଖ ।
ସୀତ୍କୃତ—ବି°. ସୀତ୍କୃତ ଦେଖ ।
ସୀତ୍ୟ—ବି(ସୀତା+ଯ)ଧାନ୍ୟ,କୃଷ୍ଟକ୍ଷେତ୍ର, କୃଷହୋଇଥିବା ଜମି ।
ସୀଦତି—କ୍ରି. ବି°.(ସୀଦ୍ଧାତୁ+ଲଟ୍.ତି ପୀଡ଼ା ଭୋଗକରୁଅଛି ।
ସୀଦ୍ୟ—ବି. (ସି+ଣ,ଦ୍ୟ) ଆଲସ୍ୟ ।
ସୀଧୁ—ବି. (ସୀଧ୍+ମି.ଉ) ପକ୍ୱ ଇକ୍ଷୁରସ ଜାତ ମଦ୍ୟ, ଗୁଡ଼ଜାତ ମଦ୍ୟ,ମଦିରା ।
ସୀଧୁଗନ୍ଧ—ବି. ( ୬ତତ୍ପୁ ) ମଦ୍ୟଗନ୍ଧ. (ବି.ଗ୍ରା) ବକୁଳଫୁଲ, ବକୁଳ ଗଛ ।
ସୀଧୁପୁଷ୍ପ—ବି. (ବି.ଗ୍ରା) କଦମ୍ବ, ବକୁଳ, ବଉଳ ।
ସୀଧୁପୁଷ୍ପୀ—ବି. ଧାତକୀ ।
ସୀଧୁରସ—ବି. (ବି.ଗ୍ରା) ଆମ୍ରବୃକ୍ଷ ।
ସୀଧୁବୃକ୍ଷ—ବି. ମାତୁଳୁଙ୍ଗ ବୃକ୍ଷ ।
ସୀଧୁରକ୍ଷିକ—ବି. କାଶୀଷ, ହୀରାକସ ।
ସୀଧୁବୃକ୍ଷ—ବି. ସ୍ନୁହୀବୃକ୍ଷ, ସିଙ୍ଗୁ ଗଛ ।
ସୀଧୁସଞ୍ଜ୍ଞ—ବି. (ସୀଧୁ+ସଞ୍ଜ୍ଞା) ବି.ଗ୍ରା ; ବକୁଳବୃକ୍ଷ ।
ସୀଧ୍ର—ବି. ଅପାନ, ପ୍ରାଣବାୟୁବିଶେଷ, ଅଧୋବାୟୁ, ମଳଦ୍ୱାର ।
ସୀପ—ବି. ପାତ୍ରୀ, ତର୍ପଣାର୍ଥ ପାଇଁ ବ୍ୟବହୃତ ଜଳପାତ୍ରବିଶେଷ ।
ସୀବନ—ବି.(ସୀବ୍+ଭା.ଅନ) ସିଲାଇ, ସୂଚୀକର୍ମ, ତନ୍ତୁସନ୍ତାନ, ବୁଣିବା ।
ସୀବନୀ—ବି(ସୀବ୍+ଅନ+ଈ)ଲିଙ୍ଗାଗ୍ର-ଠାରୁ ଲିଙ୍ଗମୂଳ ଓ କୋଷର ମଧ୍ୟସ୍ଥଳ ଦେଇ ଗୁହ୍ୟଦ୍ୱାର ପର୍ଯ୍ୟନ୍ତ ସିଲାଇ, ଲିଙ୍ଗମଣ୍ୟଧଃ ସୂତ୍ର ।
ସୀମକ—ବି. ସୀମା, ଅବଧି ।
ସୀମନ୍ତ—ବି. ( ସୀମନ୍+ଅନ୍ତ ) କେଶ-ଶ୍ରେଣୀ, ସୁନ୍ଥା, କେଶ ମଧ୍ୟସ୍ଥ ରେଖା ବା ଭଗର, ମାଙ୍ଗ,ସୀମନ୍ତୋନ୍ନୟନ ଦେଖ, ମସ୍ତକ ।
ସୀମନ୍ତକ—ବି. (ସୀମନ୍ତ+କ) ସିନ୍ଦୂର, ନରକବାସ, ସୀମନ୍ତ ଦେଖ, ଅସ୍ଥି-ମାନଙ୍କ ମିଳନ ସ୍ଥାନ ।
ସୀମନ୍ତମଣି—ବି. ସ୍ତ୍ରୀଲୋକମାନେ ସୀମ-ନ୍ତରେ ପିନ୍ଧିବା ଅଳଙ୍କାର, ମଥାମଣି ।
ସୀମନ୍ତରେଖା—ସ୍ତ୍ରୀ.ବି.ସୁନ୍ଥାଗାର,ମୁଣ୍ଡର କେଶ ମଧ୍ୟସ୍ଥ ରେଖା, (ଲ.ଅର୍ଥ, ବି°) ଶ୍ରେଷ୍ଠ ।
ସୀମନ୍ତିତ—ବି°.(ସୀମନ୍ତ+ଇତ)ସୀମନ୍ତ-ବିଶିଷ୍ଟ (କେଶ), ମାଙ୍ଗଭଙ୍ଗା (କେଶ), ଦୁଇ ଭାଗରେ ବିଭକ୍ତ ।
ସୀମନ୍ତିନୀ—ସ୍ତ୍ରୀ.ବି. (ସୀମନ୍ତ+ଇନ୍+ଈ) ସ୍ତ୍ରୀ, ନାରୀ, ସଧବା ସ୍ତ୍ରୀ, (ବି°) ସୀମନ୍ତ-ଧାରିଣୀ ।
ସୀମନ୍ତୀ—ପୁଂ. ବି°. (ସୀମନ୍ତ+ଇନ୍) ସୀମନ୍ତଧାରୀ,କେଶ କାଟିଥିବା (ବ୍ୟକ୍ତି), (ଗ୍ରା.ବି) କେଶ,ସୁନ୍ଥା, (ସ୍ତ୍ରୀ)ସୀମନ୍ତିନୀ ।
ସୀମନ୍ତୋନ୍ନୟନ--ବି.(ସୀମନ୍ତ+ଉନ୍ନୟନ) ଗର୍ଭିଣୀର ଗର୍ଭଧାରଣର ୪ର୍ଥ ୬ଷ୍ଠ ବା ୮ମ ମାସରେ କର୍ତ୍ତବ୍ୟ ସଂସ୍କାରବିଶେଷ, କେଶକୁ ସୁନ୍ଥା ନ କାଟି ଏକତ୍ର ଗୁନ୍ଥା କରି ବାନ୍ଧିବା ।
ସୀମଲିଙ୍ଗ—ବି. ସୀମାଲିଙ୍ଗ ଦେଖ ।
ସୀମସ୍ଥାନ—ଗ୍ରା.ବି. ମୁଣ୍ଡତଳେ ଦିଆଯିବା ତକିଆ, ମାଣ୍ଡି, ମସ୍ତକ ।
ସୀମା—ବି. (ସି+ମନ୍) ପ୍ରାନ୍ତ, ଅବଧି, ଗ୍ରାମାଦିର ଅବଧାରିତ ଅନ୍ତଭାଗ, ସର-ହଦ୍, ଶେଷ, ସମାପ୍ତି, ତୀର, ବେଳା, ସମୁଦ୍ରତୀର, କ୍ଷେତ୍ର, ମର୍ଯ୍ୟାଦା, ସ୍ଥିତି, ପ୍ରଥା, ମୁଷ୍କ, ଅଣ୍ଡକୋଷ, ନିକଟବର୍ତ୍ତୀ ପ୍ରଦେଶ ।
ସୀମାଅଙ୍ଗାର—ପ୍ରା.(ଗଞ୍ଜାମ)ବି.କୋଇଲା ।
ସୀମାକୃଷାଣ—ବି.(୬ତତ୍ପୁ) ସୀମାସନ୍ନିହିତ କ୍ଷେତ୍ରକର୍ଷକ, ପଡ଼ୋଶୀ ଚାଷୀ ।
ସୀମାତିକ୍ରମଣ—ବି.(୬ତତ୍ପୁ) ସୀମାତିକ୍ର-ମଣ, ଅନ୍ୟର ସୀମାଲଙ୍ଘନ ।
ସୀମାଚ(ଞ୍ଚ)ଳ—ବି. ଦାକ୍ଷିଣାତ୍ୟର ତୀର୍ଥ-ବିଶେଷ ଓ ପର୍ବତବିଶେଷ ।
ସୀମାଚିହ୍ନ—ବି. ସୀମାଲିଙ୍ଗ ଦେଖ ।
ସୀମାଚିହ୍ନିତ—ବି°. (୩ତତ୍ପୁ) ଯହିଁରେ ସୀମାରେଖା ଅଙ୍କିତ ହୋଇଅଛି ।
ସୀମାଜ୍ଞାପକ—ବି°.ଯାହା ଦ୍ୱାରା କୌଣସି ସ୍ଥାନର ସୀମା ଜଣାପଡ଼େ ।
ସୀମାତିକ୍ରମ—ବି.ସୀମାଲଙ୍ଘନ,ନିର୍ଦ୍ଧାରିତ ସୀମାକୁ ଡେଇଁ ଯିବା, ସୀମାଉଲଙ୍ଘନ ।
ସୀମାତୀତ—ବି, ଯାହା ସୀମାରୁ ବାହା-ର ପଡ଼ିଅଛି, ଅସୀମ ।
ସୀମାନା—ଗ୍ରା.ବି.ସୀମା ଦେଖ,ସରହଦ୍, ଚୌହଦୀ ।
ସୀମାନିରୂପଣ—ବି. (୬ତତ୍ପୁ) କୌଣସି ସ୍ଥାନର ସୀମାର ସ୍ଥିରୀକରଣ ।
ସୀମାନ୍ତ—ବି. (୬ତତ୍ପୁ) ସୀମା, ସୀମାର ବହିର୍ଭୂତ ନିକଟବର୍ତ୍ତୀ ଦେଶ, (ବି°) ସୀମାର ଅନ୍ତର୍ଗତ ଶେଷଭାଗ, ସୀମାର ବହିର୍ଭୂତ ନିକଟବର୍ତ୍ତୀ ।
ସୀମାନ୍ତର୍ଗତ—ବି°. (୭ତତ୍ପୁ) ସୀମା ମଧ୍ୟରେ ଅବସ୍ଥିତ ।
ସୀମାନ୍ତଦେଶ—ବି. କୌଣସି ଦେଶର ସୀମାକୁ ଲାଗିଥିବା ଦେଶ, ଦୁଇଦେଶ ମଧ୍ୟସ୍ଥ ବିବାଦୀୟ ଭୂମି ।
ସୀମାନ୍ତପ୍ରଦେଶ—ବି.(୬ତତ୍ପୁ) ଅଧିକୃତ ଦେଶର ଶେଷ ସୀମାରେ ଅବସ୍ଥିତ ସ୍ଥାନ ।
ସୀମାନ୍ତବାଣିଜ୍ୟ—ବି. (୭ତତ୍ପୁ)ସୀମାନ୍ତ ପ୍ରଦେଶରେ ବ୍ୟବସାୟ ।
ସୀମାନ୍ତର—ବି. (କ.ଧା)ଅନ୍ୟସୀମା ।
ସୀମାପହାରୀ—ପୁଂ. ବି°. ଯେ ସୀମା ଅପ-ହରଣ କରେ, (ସ୍ତ୍ରୀ) ସୀମାପହାରିଣୀ ।
ସୀମାବଚ୍ଛିନ୍ନ—ବି.(୩ତତ୍ପୁ)ସସୀମ, ନିର୍ଦ୍ଦିଷ୍ଟ ସୀମା ଦ୍ୱାରା ଆବଦ୍ଧ ।
ସୀମାବଦ୍ଧ—ବି°. (୩ତତ୍ପୁ) ସୀମାବିଶିଷ୍ଟ, ସମୀପ, ପ୍ରାନ୍ତ ।
ସୀମାବଦ୍ଧକରଣ—ବି. ଅଧିକୃତ ସ୍ଥାନର ସୀମା ଚିହ୍ନିତ କରିନେବା ।
ସୀମାବାଇଗଣ—ଗ୍ରା.ବି.(ବୈଦ୍ୟକ)ଏକ-ପ୍ରକାର ଗଛ ଓ ତାହାର ଫଳ ।
ସୀମାବାଦ(ବିବାଦ)-ବି.ଏକାଧିକ ବ୍ୟକ୍ତିଙ୍କ ମଧ୍ୟରେ ଘଟିବା ସୀମାସମ୍ବନ୍ଧୀୟ କଳହ ।
ସୀମବଲନ୍ତ—ପ୍ରା. (ଗଞ୍ଜାମ)ବି. ଇଂଲଣ୍ଡ ।

ସୀମାବୃକ୍ଷ—ବି. ସୀମା ନିର୍ଣ୍ଣାୟକ ବୃକ୍ଷ, ସୀମାନାଗଛ ।
ସୀମାମଞ୍ଜୁଆଡି—ଗ୍ରା.ବି.ଏକପ୍ରକାର ଗଛ ।
ସୀମାରେଖା—ବି. ସୀମାଜ୍ଞାପକ ରେଖା ବା ଚିହ୍ନ ।
ସୀମାଲଙ୍ଘନ—ବି. ସୀମାକୁ ଡେଇଁଯିବା, (ଲ.ଅ) ମର୍ଯ୍ୟାଦାର ଅତିକ୍ରମଣ ।
ସୀମାଲିଙ୍ଗ—ବି. ଦୁଇ କ୍ଷେତର ବା ଗ୍ରାମାଦିର ନିର୍ଦ୍ଦିଷ୍ଟ ସୀମା ରେଖାକୁ ଚିହ୍ନାଇବା ପାଇଁ ସେହି ରେଖା ଉପରେ ଦିଆଯିବା ଚିହ୍ନ, ଯେଉଁ ବୃକ୍ଷାଦି ଦ୍ୱାରା କୌଣସି ସ୍ଥାନର ସୀମା ସ୍ଥିର କରାଯାଇଥାଏ, ବନ୍ଧ୍ୟା ।
ସୀମାଶୂନ୍ୟ—ବିଂ. (ବ.ବ୍ରୀ) ସୀମାହୀନ, ଅସୀମ, ଅନନ୍ତ ।
ସୀମାସନ୍ଧି—ବି. (୬ତତ୍) ସୀମାରେଖା, ସୀମାର ମିଳନ ସ୍ଥାନ ।
ସୀମାସନ୍ନିହିତ—ବିଂ. (୭ତତ୍) ସୀମାର ନିକଟବର୍ତ୍ତୀ ।
ସୀମାସେତୁ—ବି. ସୀମାସ୍ଥିତ ହୁଡ଼ା,ପିଲଘାହୁଁ(ଆ) ।
ସୀମାସ୍ଥାନ—ଗ୍ରା. ବି. ମସ୍ତକ ।
ସୀମି(ମୀ)କ—ବି.(ସ୍ୟମ୍+ଇ.ଈକ)ବୃକ୍ଷଭେଦ, ବଲ୍ମୀକ, ଗୁଳପରର ଓଲି, ସୂକ୍ଷ୍ମ କୃମିକୀଟ ।
ସୀର—ବି. (ସି+କ.ର) ସୂର୍ଯ୍ୟ,ଅର୍କବୃକ୍ଷ; ହଳ, ଲଙ୍ଗଳ ।
ସୀରକ—ବି. ସୀର ଦେଖ, ଶିଶୁମାର ।
ସୀରଧ୍ୱଜ—ପୁଂ.ବି.(ବ.ବ୍ରୀ)ଜନକରାଜା ।
ସୀରପତି—ବି. ହଳାଧିଷ୍ଠାତା ବା ସ୍ୱାମୀ କୃଷକ । [ ବଳଦେବ ।
ସୀରପାଣି—ବି. (ସୀର+ପାଣି) ବ.ବ୍ରୀ;
ସୀରଭୃତ୍—ପୁଂ. ବି. (ସୀର+ଭୃ+କ୍ୱିପ୍) ବଳଦେବ ।
ସୀରବାହ(ବାହକ)—ବି ଓ ବିଂ. ହଳବାହନକାରୀ, ଯେ ହଳ ବହନ କରେ, ହଳବାହକ, କୃଷକ ।
ସୀରାଳ—ବି. (୬ତତ୍) ଲଙ୍ଗଳପଦ୍ଧତି, ଲଙ୍ଗଳଗାର ।

ସୀରୀ—ପୁଂ.ବି.(ସୀର+ଇନ୍)ବଳଦେବ. ଲାଙ୍ଗଳୀ, ଲଙ୍ଗଳଙ୍ଗଳିଆ ।
ସୀଲନ୍ଧ—ବି.ଶିଲନ୍ଧ ଦେଖ,ମତ୍ସ୍ୟବିଶେଷ ।
ସୀବକ—ବି. ସୀବନକାରୀ, ସିଲାଇକର୍ମକାରୀ, ଦରଜି । ( ସୀସକ ।
ସୀସ—ବି. ସୀସା ନାମକ ଧାତୁବିଶେଷ,
ସୀସକ—ବି. ସୀସ ଦେଖ ।
ସୀସା—ଗ୍ରା.ବି.ସୀସ ଦେଖ, ଶିଶାଦେଖ ।
ସୀସର—ବି. କୁକ୍କୁରରୂପ ବାଳଗ୍ରହବିଶେଷ ।
ସୀସୋପଧାତୁ—ବି. ସିନ୍ଦୂର ।
ସୀହୁଣ୍ଡ—ବି. ସେହୁଣ୍ଡ ଦେଖ ।
ସୁ—ଅବ୍ୟ. (ସୁ+କ୍ୱି ଉ) ଉତ୍ତମ,ସୁନ୍ଦର. ସାଢଣସ୍ୟ, ଅତ୍ୟନ୍ତ, ସହଜ, ଅନାୟାସରେ, ଶୁଭଙ୍କର,ଉତ୍କଟ,ମନୋରମ, ପୁଣ୍ୟ, ନିର୍ଭର, ଅନୁମତ,ସମୃଦ୍ଧି,କଷ୍ଟ, ହର୍ଷ, ପୂଜା, ଉତ୍କର୍ଷ, (ବି) ପ୍ରସବ,ଶୁଭ, (ଗ୍ରା.ଅ) ପବନ ଶବ୍ଦ, ସାପ ଗର୍ଜିବାର ଶବ୍ଦ, (ବିଂ) ଉତ୍ତମ, ସନ୍ତ, ସାଧୁ ।
ସୁଅ—ଗ୍ରା. ବି. (ସଂ-ସ୍ରୋତସ୍)ନଦ୍ୟାଦିର ସ୍ରୋତ ।
ସୁଅମୁହଁ—ଗ୍ରା.ବି. ସ୍ରୋତର ମୁଖ,ଯେଉଁଠାରେ ସ୍ରୋତର ବେଗଅତି ଅଧିକ, (ଲ.ଅର୍ଥ) ବିପଦଜନକ ସ୍ଥାନ ।
ସୁଅମୁହଁକୁଠେ(ପେ)ଲିଦେବା—ଗ୍ରା. କ୍ରି. ବିପଦକୁ ଠେଲିଦେବା ।
ସୁଅର୍—ଗ୍ରା. ବି. ଶୁଅର୍ ଦେଖ ।
ସୁଆ—ଗ୍ରା.ବି. ଶୁଆ ଦେଖ,ସୋମଲତା ଦେଖ ।
ସୁଆଁଗୁଡ଼ଲ—ଗ୍ରା.ବି. ଦାନାବିଶିଷ୍ଟ ଧଳା ଶସ୍ୟ, ଶୁଆଁଗୁଡ଼ଲ ଦେଖ ।
ସୁଆଁଲଇ—ଗ୍ରା. ବି. ଶ୍ୟାମାଲତା ଦେଖ, ବୃହତ୍ ଟଙ୍କାଳିଆ ଅରଣ୍ୟଲତାବିଶେଷ
ସୁଆଁର(ରେ)ବା—ଗ୍ରା. କ୍ରି. ଆଉଁସିବା, ସଉଁଳିବା, ମୁଣ୍ଡର କେଶକୁ ଆଙ୍ଗୁଠିଦ୍ୱାରା ଚିର କେଶ କେଶ କରିବା ।
ସୁଆଁଳି—ଗ୍ରା. ବି. ପୁରପିଠା, କାକରା, (ପ୍ରା. ଛତିଶଗଡ଼) ସରପୁଲି ।
ସୁଆଁସ—ଗ୍ରା. ବି. (ସଂ-ସଂବେଶ) ଭୂମିକୁ

ସମତଳ କରିବା କାର୍ଯ୍ୟ,ରାଜମିସ୍ତ୍ରୀକାମ, ଘର କୋଠାଆଦି ତୋଳିବା କର୍ମ,(ବିଂ) ସମତଳ କରାଯାଇଥିବା (ଜମି) ।
ସୁଆଁଶିଆ—ଗ୍ରା. ପୁଂ. ବି. ମୂଲିଆ ।
ସୁଆଗ—ଗ୍ରା. ବି. (ସଂ-ସୌଭାଗ୍ୟ)ସୁହାଗ ଦେଖ ।
ସୁଆଗବୃତ—ଗ୍ରା. ବି. ବାଳିକାମାନଙ୍କର ଓଷା ଓ ପୂଜାବିଶେଷ, (କନ୍ୟାମାନେ ଶାଶୁଘରକୁ ଯିବାପର୍ଯ୍ୟନ୍ତ ଆଶ୍ୱିନ ଦ୍ୱିତୀୟାଓଷା ଠାରୁ ମହାଷ୍ଟମୀ ପର୍ଯ୍ୟନ୍ତ ପାହାନ୍ତା ସ୍ନାନକରି ସ୍ନାନ ଘାଟରେ ବାଲିରେ ବାଲୁକାମୂର୍ତ୍ତିକରି ଗୌରୀଙ୍କୁ ପୂଜା କରନ୍ତି,ସେମାନେ ସୌଭାଗ୍ୟବତୀ ଓ ସ୍ୱାମୀପ୍ରିୟା ହେବାପାଇଁ ଏହି ବ୍ରତ ପାଳନ କରନ୍ତି) ।
ସୁଆଗସ୍ନାନ—ଗ୍ରା.ବି. ସୁଆଗବୃତ ଦେଖ ।
ସୁଆଗିଆ—ଗ୍ରା. ପୁଂ.ବିଂ.ସୁହାଗିଆଦେଖ ।
ସୁଆଗିନୀ—ଗ୍ରା.ସ୍ତ୍ରୀ. ବିଂ.ସୁହାଗିନୀ ଦେଖ ।
ସୁଆଗୀ—ଗ୍ରା.ସ୍ତ୍ରୀ ଓ ପୁଂ.ସୁହାଗୀ ଦେଖ ।
ସୁଆଙ୍ଗ—ଗ୍ରା.ବି.(ସଂ-ଶୋଭାଙ୍ଗ ବା ସଙ୍ଘ ସଙ୍ଗ, ସ୍ୱାଙ୍ଗ ) ବିକୃତ ବେଶରଚନା, ଗ୍ରାମ୍ୟ ଯାତ୍ରା,ଦୃଶ୍ୟ କାବ୍ୟାଦିର ଇତର ଜନପ୍ରିୟ ଅଭିନୟ, ନାଟକୀୟ ବ୍ୟକ୍ତିଙ୍କ ରୂପ ଧାରଣ କରି ବେଶଆଦି ପିନ୍ଧି ନୃତ୍ୟାଦି କରିବା ଅଭିନେତା,ପ୍ରହସନ, ବିଭିନ୍ନ ବେଶଧାରୀ ଅଭିନେତାଙ୍କ ଯାତ୍ରା, ଥଟ୍ଟା, ତାମସା, ରଙ୍ଗରହସ୍ୟ, ଛଳ, (ଲ.ଅର୍ଥ) ଆଡ଼ମ୍ବରଯୁକ୍ତ କାର୍ଯ୍ୟ, ଘନଘଟା, ଆରମ୍ଭ ।
ସୁଆଙ୍ଗକରିବା(କାଢ଼ିବା)—ଗ୍ରା. କ୍ରି. କୌଣସି ବ୍ୟକ୍ତିର ଚରିତ ଅଭିନୟ କରିବାପାଇଁ ସେହି ବ୍ୟକ୍ତିର ବେଶ ଧାରଣ କରିବା,ସୁଆଙ୍ଗ ସମ୍ବଳିତ ଯାତ୍ରା କରିବା, (ଲ.ଅର୍ଥ)ବହ୍ୱାରମ୍ଭ ବା ଆଡ଼ମ୍ବର କରିବା, ନୂଆ କନ୍ୟା ଲୋକାକର୍ଷକ କର୍ମ କରିବା ।
ସୁଆଙ୍ଗିଆ—ଗ୍ରା.ପୁଂ. ବିଂ. ସୁଆଙ୍ଗପ୍ରିୟ, ବିକୃତ ବେଶରଚନାକାରୀ, ରହସ୍ୟପ୍ରିୟ, ବହ୍ୱାରମ୍ଭପ୍ରିୟ ।

ସୁଆଙ୍ଗୀ—ଗ୍ରା.ପୁଂ. ଓ ସ୍ତ୍ରୀ,ବିଂ. ସୁଆଙ୍ଗିଆ ଦେଖ ।

ସୁଆଦ—ଗ୍ରା.ବି. (ସଂ-ସ୍ୱାଦ) ରୁଚି, ସ୍ୱାଦ, ସୁସ୍ୱାଦୁ, ମଧୁର ସ୍ୱାଦ, ( ଲ.ଅର୍ଥ ) ମନୋରମତା, (ବିଂ)ସୁସ୍ୱାଦୁ, (ଲ.ଅର୍ଥ) ମନୋରମ ।

ସୁଆଦପାଇବା—ଗ୍ରା.କ୍ରି. କୌଣସି ବସ୍ତୁର ସ୍ୱାଦ ଅନୁଭବ କରିବା ।

ସୁଆଦବାରିବା—ଗ୍ରା. କ୍ରି. ସୁସ୍ୱାଦୁ କି ଅସ୍ୱାଦୁ ଏହା ଜିଭଦ୍ୱାରା ପରୀକ୍ଷା କରିବା

ସୁଆଦଲାଗିବା—ଗ୍ରା. କ୍ରି. ସୁସ୍ୱାଦୁ ବୋଧ ହେବା । [ ମଧୁର ।

ସୁଆଦଆ—ଗ୍ରା.ବିଂ. ସ୍ୱାଦବିଶିଷ୍ଟ,ସୁସ୍ୱାଦୁ,

ସୁଆଦୁ-ଗ୍ରା.ବି.ସ୍ୱାଦ,ବିଂ,ସୁଆଦଆ ଦେଖ

ସୁଆଧୀନ—ପ୍ରା.(ଲରିଆ)ବିଂ. ସ୍ୱାଧୀନ ।

ସୁଆନନା—ଗ୍ରା.ସ୍ତ୍ରୀ.ବିଂ.ସୁବଦନା,ସୁମୁଖୀ ।

ସୁଆ(ଆଁ)ବାଳ—ଗ୍ରା.ବି, (ସଂ-ଶୂକବାଳ) ସୁଆଁବାଳ ଦେଖ ।

ସୁଆମ—ଗ୍ରା.ବି. (ସଂ-ଶାଲ୍ମଳକ) ମଧ୍ୟ ଓ ପଶ୍ଚିମ ଭାରତରେ ଜନ୍ମୁଥିବା ନିମ୍ବାଦି-ବୃକ୍ଷର ଏକପ୍ରକାର କାଠଗଛ ।

ସୁଆର(ର)—ଗ୍ରା.ବି. ସବର ଦେଖ, ଶବର ଦେଖ ।

ସୁଆର—ଗ୍ରା.ପୁଂ. ବି. ( ସଂ-ସୂପକାର ) ଏକଜାତୀୟ ଅବ୍ରାହ୍ମଣ ପାଚକ ବ୍ରାହ୍ମଣ, ସୂପକାର, ରନ୍ଧୁଣିଆଁ, ପାଚକ,ରାଜାଙ୍କ ଖାଦ୍ୟ ଓ ଦେବତାଙ୍କ ଭୋଗ ପାକ-କାରୀ ସେବକ, ଅଶ୍ୱାରୋହୀ, ସବାର ।

ସୁଆରପିଠା—ଗ୍ରା.ବି, ପୁରୀ ବଡ଼ଦେଉ-ଳରେ ପ୍ରତଦିନ ସନ୍ଧ୍ୟାଧୂପରେ ଭୋଗ ହେବା ନାନାପ୍ରକାର ପିଠା ମଧ୍ୟରେ ବଡ଼ ପିଠା ।

ସୁଆରି—ଗ୍ରା.ବି. ସବାରି ଦେଖ ।

ସୁଆରୁଣୀ—ଗ୍ରା.ସ୍ତ୍ରୀ.ବି. ସୁଆରର ସ୍ତ୍ରୀ, ରନ୍ଧୁଣୀ ।

ସୁଅଲ—ଗ୍ରା.ବି. ସବଲ ଦେଖ ।

ସୁଆ(ଆଁ)ଳ—ଗ୍ରା. ବି. କାକରା, ପୁର-କାକରା ପିଠା ।

ସୁଆଳଲତା—ଗ୍ରା.ବି.(ସଂ-ସୁବହ୍ନା)ଔଷଧ-ଧରେ ବ୍ୟବହୃତ ଲତାବିଶେଷ, ଗୋଧାପଦୀ ।

ସୁଆଁସୀ—ପ୍ରା.(ଲରିଆ)ବି. ଅଦ୍ୟ ସ୍ତ୍ରୀ ।

ସୁଇ—ପ୍ରା.(ବାଲେ)ବି. ଛୁଞ୍ଚି, କୁମ୍ଭାର. (ବାମଣ୍ଡା) ପକ୍ଷିବିଶେଷ, (ବଲାଙ୍ଗିର-ପାଟଣା) ସୁଇକି ।

ସୁଇଚ(ଜ)—ଗ୍ରା.ବି. (ଇଂ-ସ୍ୱିଚ)କୌଣସି ବୈଦ୍ୟୁତିକ କଳଆଦିକୁ ଚଳାଇବା ବା ବନ୍ଦ କରିବାକୁ ତାହା ସଙ୍ଗେ ଲାଗିଥିବା ଚାବି ।

ସୁଇଜରଲଣ୍ଡ—ଗ୍ରା. ବି. ୟୁରୋପର ପାର୍ବତ୍ୟ ରାଜ୍ୟବିଶେଷ ।

ସୁଇଝିବା—ପ୍ରା.(ଲରିଆ)କ୍ରି. ସୁଝିବା ।

ସୁଇଲ—ପ୍ରା.(ବଲାଙ୍ଗିର)ବି.ଧାନ ବୁହାଇ ନେବାର ଆଧାର, କାଉଁରିଆ ।

ସୁଉ—ଗ୍ରା.ଅବ୍ୟ. ସୁ ସୁ ଦେଖ ।

ସୁଉଁ—ଗ୍ରା.ବିଂ. ସୁଁ ସୁଁ ଦେଖ ।

ସୁଉସିବା—ଗ୍ରା. କ୍ରି. କୌଣସି ବ୍ୟକ୍ତିକୁ ମାରିବାକୁ ଜୋରରେ ଘାତମାତ କରି ଦଉଡ଼ିବା ।

ସୁଏଜ—ଗ୍ରା. ବି. (ନାମ) ଇଉରୋପ ଓ ଆସିଆର ମଧ୍ୟବର୍ତ୍ତୀ ଯୋଜକ କେନାଲ, ନଗର ଓ ପ୍ରଣାଳୀ ।

ସୁଏଜକେନାଲ—ଗ୍ରା. ବି. ଭୂମଧ୍ୟସାଗର ଓ ଲୋହିତ ସାଗରକୁ ଯୋଗ କରିଥିବା ନାଳ ।

ସୁଏଜବନ୍ଦର(ନଗର)—ଗ୍ରା. ବି. ସୁଏଜ-କେନାଲର ଦକ୍ଷିଣ ପ୍ରାନ୍ତରେ ସୁଏଜ ପ୍ରଣାଳୀରେ ଅବସ୍ଥିତ ବନ୍ଦର ।

ସୁଁ—ଗ୍ରା,ଅବ୍ୟ.(୫ମୀ ବିଭକ୍ତିର ଚିହ୍ନ)ରୁ, ଠାରୁ,(ଯଥା—ବେଲସୁଁ) ।

ସୁଁକାର—ପ୍ରା. (ଲରିଆ)ବି. ସୂତା ।

ସୁଁ ସୁଁ—ଗ୍ରା. ଅବ୍ୟ. ଶ୍ଲେଷ୍ମାଯୁକ୍ତ ନାକରୁ ବାହାରିବା ଅନୁନାସିକ ଶବ୍ଦ, ଶକେଇ କାନ୍ଦିବାର ଶବ୍ଦ ।

ସୁଁ ସୁଁହେବା—ଗ୍ରା. କ୍ରି. ଥର୍ଦ୍ଧିଯୋଗୁଁ ଅନୁନାସିକ ନିଶ୍ୱାସ ଶବ୍ଦ କରିବା, ଶକେଇ କାନ୍ଦିବା ।

ସୁକ୍ତଲା—ଗ୍ରା. ବି. ଶୁକ୍ତଲା ଦେଖ ।

ସୁକ୍ପାଲି—ପ୍ରା. (ବସ୍ତର)ବି. ପାଲିଙ୍କି ।

ସୁକଟ—ଗ୍ରା. ବି. ସୁକ୍ରୁଟ ଦେଖ ।

ସୁକନ୍ଦୁ—ବି.ଶିମ୍ବଷବୃକ୍ଷ,(ବିଂ)ଅତ୍ୟନ୍ତକଡ଼ା

ସୁକଟାକ୍ଷା—ବିଂ. ( ସୁ + କଟାକ୍ଷ + ଆ ) ସୁଦୃଶା, ସୁନୟନା ।

ସୁକଠିନ—ବିଂ.ଅତି କଠିନ, ଅତି ଦୃଢ଼, ଦୁଷ୍କର ।

ସୁକଣ୍ଟକା—ବି, ଘୃତକୁମାରୀ,ଘିଅକୁଆଁରୀ

ସୁକଣ୍ଠ—ବି. ମଧୁର କଣ୍ଠସ୍ୱର, (ପୁଂ.ବିଂ-କ.ଗ୍ରା)ମଧୁର କଣ୍ଠ ସ୍ୱରବିଶିଷ୍ଟ,ସୁଗାୟକ, (ସ୍ତ୍ରୀ) ସୁକଣ୍ଠୀ ।

ସୁକଣ୍ଠୀ-ସ୍ତ୍ରୀ.ବିଂ.ମଧୁର ସ୍ୱରବିଶିଷ୍ଟା (ସ୍ତ୍ରୀ) ମନୋହର କଣ୍ଠଯୁକ୍ତା ।

ସୁକଣ୍ଡୂ—ବି. କଣ୍ଡୁରୋଗ, କାଛୁ ।

ସୁକନ୍ଦ—ବି. କଶେରୁ ମୁଥା ।

ସୁକନ୍ଦକ—ବି. ପଲାଣ୍ଡୁ, ପିଆଜ,ବାରାହୀ-କନ୍ଦ, ଧରଣୀକନ୍ଦ ।

ସୁକନ୍ଦଙ୍କରଣ—ବି. ଶ୍ୱେତ ପଲାଣ୍ଡୁ, ଉଲି

ସୁକନ୍ଦନ—ବି. ବୈଜୟନ୍ତୀ ତୁଳସୀ, ବବରକ, ଲଣ୍ଡାବାଗୁଲି ।

ସୁକନ୍ଦା—ବି.ଲକ୍ଷଣାକନ୍ଦ,ବନ୍ଧ୍ୟାକର୍କୋଟକୀ, ଅଷାଢ଼ୁଆ ।

ସୁକନ୍ଦୀ--ବି. ଶୂରଣ, ଓଲୁଅ ।

ସୁକନ୍ୟକ—ପୁଂ.ବିଂ. (ବ.ଗ୍ରା) ଯାହାର କନ୍ୟା ସୁନ୍ଦରୀ ।

ସୁକନ୍ୟା—ବି. (କ.ଧା) ସୁନ୍ଦରୀ କନ୍ୟା, ଶର୍ଯ୍ୟାତି ରାଜାଙ୍କ କନ୍ୟା । [ ଦେଖ ।

ସୁକନ୍ୟାକ—ପୁଂ.ବିଂ. ବ.ଗ୍ରା; ସୁକନ୍ୟକ

ସୁକର—ପୁଂ.ବିଂ. ( ସୁ + କୃ + ମି.ଅ ) ସୁସାଧ୍ୟ, ଅନାୟାସସାଧ୍ୟ; ସୁଖକର, (ଗ୍ରା.ବିଂ) ସୁନ୍ଦର ।

ସୁକରଜା—ସ୍ତ୍ରୀ.ବିଂ. (ସୁ + କରଜ + ଆ) ସୁନଖୀ, ସୁନ୍ଦର ନଖବିଶିଷ୍ଟା (ସ୍ତ୍ରୀ) ।

ସୁକରା—ସ୍ତ୍ରୀ.ବି. (ସୁକର + ଆ) ସୁଶୀଳା ଗାଈ, ଶାନ୍ତ ଗାଈ ।

ସୁକର୍ଣ୍ଣ(କ)—ପୁଂ. ବିଂ. (ବ.ଗ୍ରା) ସୁନ୍ଦର କର୍ଣ୍ଣବିଶିଷ୍ଟ,ବି.ହସ୍ତୀକନ୍ଦ,(ସ୍ତ୍ରୀ)କର୍ଣ୍ଣିକା ।

ସୁକର୍ଣ୍ଣିକା—ବି. ମୂଷିକକର୍ଣ୍ଣୀ, ମୂଷାକାନ, ବନ୍ୟଶାକବିଶେଷ, ମହାବଳା ।

ସୁକର୍ଣ୍ଣୀ—ବି. ଇନ୍ଦ୍ରବାରୁଣୀ, ମହାକାଳ ।

ସୁକର୍ମ(ର୍ମ୍ମ)-ବ.ଉତ୍ତମକାର୍ଯ୍ୟ, ସତ୍‌କାର୍ଯ୍ୟ, (ବି°) ସତ୍‌କ୍ରିୟ ବ୍ୟକ୍ତି ।

ସୁକର୍ମ୍ମା—ପୁଂ.ବି°.(ସୁ + କର୍ମନ୍)ବ.ବ୍ରୀ; ସତ୍‌କ୍ରିୟା କାର୍ଯ୍ୟକୁଶଳ,(ବ)ବିଷ୍କୁମ୍ଭାଦି ସପ୍ତବିଂଶତି ଯୋଗାନ୍ତର୍ଗତ ସପ୍ତମ-ଯୋଗ, ବିଶ୍ୱକର୍ମା ।

ସୁକଲ—ପୁଂ. ବି°. (ସୁ+କଲ୍+କ.ଅ) ଦାତା ଓ ଭୋକ୍ତା,(ବ.ବ୍ରୀ) ମଧୁରସ୍ପଷ୍ଟ ଧ୍ୱନିକାରୀ, ଅବିକଳ, ଦାନଶୀଳ ।

ସୁକଲ୍ୟ—ଗ୍ରା. ବି°. (ସଂ-ସୁକଲ) ସୁକଲ ଦେଖ ।

ସୁକଲ୍ପ—ବି°. ଅତି ନିପୁଣ ।

ସୁକଳ୍ପିତ—ବି°. ଉତ୍ତମରୂପେ କଳ୍ପିତ, ଉତ୍ତମରୂପେ କଳ୍ପନା କରାହୋଇଥିବା ।

ସୁକବି—ପୁଂ.ବ. ଉତ୍ତମ କବି,ଯେ ଉତ୍ତମ କବିତା ଲେଖିପାରେ,କାଳିଦାସପ୍ରଭୃତି ।

ସୁକାଣ୍ଡ—ବ.( କ.ଧା ) ସୁନ୍ଦର କାଣ୍ଡ, ( ଭ.ବ୍ରୀ ). କାରବେଲ୍ଲି, କଳରାଗଛ, (ବି°-ବ.ବ୍ରୀ)ସୁନ୍ଦରକାଣ୍ଡଯୁକ୍ତ(ବୃକ୍ଷାଦି) ।

ସୁକାଣ୍ଡିକା—ବ. କାଣ୍ଡୀର ଲତା, କଳରା ଲତା ।

ସୁକାଣ୍ଡୀ—ବି°.(ସୁକାଣ୍ଡ + ଇନ୍)ସୁନ୍ଦର-କାଣ୍ଡଯୁକ୍ତ, (ବ) ଭ୍ରମର ।

ସୁକାନ୍(ନ)—ଯା. ବ. ନୌକାର ପଚ୍ଛ-ମଙ୍ଗରେ ଥିବା ନିୟାମକ ଦଣ୍ଡ,ମଙ୍ଗଧରା ଦଣ୍ଡ ।

ସୁକାନ—ଗ୍ରା. ବ. ଚିଲିକାରେ ଯେଉଁ ଭଙ୍ଗାରେ ଲୋକମାନେ ଯାଆସ କରନ୍ତି ।

ସୁକାନି—ଯା. ବ. ନୌକାର କର୍ଣ୍ଣଧାର, ମଙ୍ଗଧରା, (ପ୍ରା. ଉତ୍ତର ବାଲେଶ୍ୱର) ସୁନୁସୁନିଆ ।

ସୁକାନ୍ତ—ପୁଂ. ବ. ସ୍ନେହଶୀଳସ୍ୱାମୀ ।

ସୁକାନ୍ତ—ବ.ସୁନ୍ଦର କାନ୍ତି.ମୁନିବିଶେଷ, ବିଦ୍ୟୁଜ୍ଜିହ୍ୱରାକ୍ଷସର ଭଉଣୀ,(ପୁଂ ଓ ସ୍ତ୍ରୀ. ବି°-ବ.ବ୍ରୀ) ସୁଶ୍ରୀକ, ସୁନ୍ଦର, ସୁନ୍ଦରୀ

ସୁକାମା—ସ୍ତ୍ରୀ. ବି°. ଶୋଭନ କାମଯୁକ୍ତା, (ବ) ତ୍ରାୟମାଣା, ହିମାଳୟଦେଶୀୟ ଭଦଭଦାଳିଆ ଗୁଳ୍ମ ।

ସୁକାର—ଯା. ବ. ସୁସୁ ଶବ୍ଦ,ସ୍ୱୀକାର ।

ସୁକାଳ—ବ. (କ.ଧା) ସୁସମୟ, ଶୁଭ ସମୟ, ରାଜ୍ୟରେ ସୁଭିକ୍ଷ ଅବସ୍ଥା ।

ସୁକାଷ୍ଠକ—ବ. ଉତ୍କୃଷ୍ଟ ବା ସୁନ୍ଦର କାଷ୍ଠ, ଦେବଦାରୁ ।

ସୁକାଷ୍ଠା—ବ.କଣ୍ଟୁକୀ.କାଷ୍ଠ କଦଳୀ ।

ସୁକିନ୍ଦା—ଗ୍ରା. ବ. କଟକଜିଲ୍ଲାର ଯାଜ-ପୁର ସବ୍‌ଡିଭିଜନ୍ ଅନ୍ତର୍ଗତ ଗୋଟିଏ କିଲ୍ଲାଜାତ ଜମିଦାରୀ ।

ସୁକୁଟ—ଗ୍ରା. ବ. ନିର୍ଯ୍ୟାତନା, ତାଣ୍ଡବ, ଯନ୍ତ୍ରଣା,କଳିକଜିଆ, ନାଟ, ହଟହଟା । ସୁକୁଟଦେଖିବା—ଗ୍ରା.କ୍ରି.ପରର ଦୁଃଖ ବା ଲାଞ୍ଛନା ଭୋଗକୁ ଆନନ୍ଦ ସହିତ ଦେଖିବା ।

ସୁକୁନ୍ତଳ—ବ. ଧୃତରାଷ୍ଟ୍ରଙ୍କର ଏକପୁତ୍ର । (ବି°) ଉତ୍ତମ କୁନ୍ତଳବିଶିଷ୍ଟ ।

ସୁକୁନ୍ଦ—ବ. ସଲ୍ଲକୀନିର୍ଯ୍ୟାସ,ସରଳଅଠା ।

ସୁକୁନ୍ଦକ—ବ. ପଲାଣ୍ଡୁ, ପିଆଜ ।

ସୁକୁନ୍ଦନ—ବ. ବର୍ବରଚନ୍ଦନ ।

ସୁକୁମାର—ପୁଂ.ବ.(କ.ଧା)ଉତ୍ତମବାଳକ, ଅତିଶିଶୁ, ପୁଣ୍ଡ୍ରେକ୍ଷୁ, ବନଚମ୍ପକ, ସତ୍‌ପୁତ୍ର କ୍ଷବ, ତୁଙ୍ଗ, ଶ୍ୟାମାକ,ସୁଆଁଧାନ, ରାଜମାଷ.କାଙ୍ଗୁଧାନ୍ୟ,ଅପାମାର୍ଗ,ତମାଖୁ ପତ୍ର,ବେଙ୍ଗିପିତ୍ତଳ, ଅଳଙ୍କାରଶାସ୍ତ୍ରୋକ୍ତ ଗୁଣଭେଦ,(ବି°)ଅତିକୋମଳ,କୋମଳ ଶରୀରବିଶିଷ୍ଟ, ଯେ ଆଦୌ କଷ୍ଟ ସହି ନପାରେ, ସୂକ୍ଷ୍ମ, ସରୁ, ପତଳା ।

ସୁକୁମାରକ—ବ. (ସୁକୁମାର+ସ୍ୱାର୍ଥେ କ) ସୁକୁମାର ଦେଖ ।

ସୁକୁମାରକଳା—ବ.ସୂକ୍ଷ୍ମକଳା ଦେଖ ।

ସୁକୁମାରବିଦ୍ୟା—ବ.କଳାବିଦ୍ୟା, ସାହିତ୍ୟ ପ୍ରଭୃତି ମନୋରଞ୍ଜନ ଶାସ୍ତ୍ର ।

ସୁକୁମାରବୃତ୍ତି—ବ. (କ.ଧା) କୋମଳ ସ୍ୱଭାବ, ଚିତ୍ରଣ କାର୍ଯ୍ୟ ।

ସୁକୁମାରମତି—ବ.(କ.ଧା)ଅତି କୋମଳ ଚିତ୍ତ,(ବି°.ବ.ବ୍ରୀ)ଅତି କୋମଳଚେତାଃ, ଅତି ସରସ ହୃଦୟବିଶିଷ୍ଟ

ସୁକୁମାରଶିଳ୍ପ—ବ. ସୂକ୍ଷ୍ମକଳାବିଦ୍ୟା,ସାହି-ତ୍ୟାଦି ଶାସ୍ତ୍ର ।

ସୁକୁମାରୀ—ବ. ଜାଈ, ଜାଇଫୁଲ,ନିଆଳୀ ଫୁଲ, କଦଳୀ, ପିଢ଼ଙ୍ଗଶାଗ, ମାଳତୀ ।

ସୁକୁମାରିଆ—ଗ୍ରା. ପୁଂ. ବି°. ସୁକୁମାର, କୋମଳଅଙ୍ଗବିଶିଷ୍ଟ, ଯେ କଷ୍ଟ ସହି ନପାରେ ।

ସୁକୁମାରିକା—ବ. କଦଳୀଗଛ ।

ସୁକୁମାରୀ—ସ୍ତ୍ରୀ. ବ.(ସୁକୁମାର+ଈ)ନବ-ମାଳିକା, ନିଆଳୀ, ବନମଲ୍ଲିକା, ବଡ଼ କଳରା,କଦଳୀଗଛ, ପୃକ୍କା,ପିଢ଼ଙ୍ଗଶାଗ, କନ୍ୟା, ବାଳିକା, ଝିଅ, ତ୍ରିସନ୍ଧିପୁଷ୍ପ ବୃକ୍ଷ, (ବି°)ଅତିକୋମଳାଙ୍ଗୀ (ସ୍ତ୍ରୀ),ସୁକୁମାରର ସ୍ତ୍ରୀଲିଙ୍ଗ, (ଗ୍ରା.ବ) କୋମଳାଙ୍ଗୀ ସ୍ତ୍ରୀ, ଯେଉଁ ସ୍ତ୍ରୀ ଶାରୀରିକ କଷ୍ଟ ସହି ନପାରେ, ସ୍ତ୍ରୀଙ୍କୁ ଡାକିବା ନାମ ।

ସୁକୁର୍କୁର—ବ. ବାଳରୋଗବିଶେଷ ।

ସୁକୁଳ—ବ. ଉତ୍ତମକୁଳ ବା ବଂଶ, (ବି°. ବ.ବ୍ରୀ) ଉଚ୍ଚବଂଶୋଦ୍ଭବ, କୁଳୀନ ।

ସୁକୃତ୍—ବି°. (ସୁ+କୃ + କ.କ୍ୱିପ୍)ଧାର୍ମିକ, ପୁଣ୍ୟବାନ୍, ସତ୍‌କାର୍ଯ୍ୟକାରୀ,ସୌଭାଗ୍ୟ-ବାନ୍ ।

ସୁକୃତ—ବ. (ସୁ+କୃତ) ପୁଣ୍ୟ, ସତ୍-କର୍ମ, ଧର୍ମ, ଦୟା, ପୁରସ୍କାର, ମଙ୍ଗଳ, ଶୁଭ, ଦାନ, ଭାଗ୍ୟ, (ବି°)ସୁନ୍ଦରରୂପେ ନିର୍ମିତ, ସୁବିହିତ, ସୌଭାଗ୍ୟଶାଳୀ, ପୁଣ୍ୟବାନ୍. ଧାର୍ମିକ, ସୁସମ୍ପନ୍ନ, (ଗ୍ରା.ବ) ନିୟମ, ହାଲପ, ପୂର୍ବଜନ୍ମାର୍ଜିତ ପୁଣ୍ୟ ।

ସୁକୃତପରିଣାମ(ଫଳ)—ବ. ( ଷତତ୍ ) ପୁଣ୍ୟର ଫଳ, ବାଞ୍ଛିତ ସମ୍ପତ୍ତି ।

ସୁକୃତବନ୍ତ—ଗ୍ରା.ପୁଂ.ବି°.ସୁକୃତୀ ଦେଖ

ସୁକୃତବାନ୍—ପୁଂ. ବି°. (ସୁକୃତ +ବତ୍) ସୁକୃତୀ ଦେଖ, (ସ୍ତ୍ରୀ) ସୁକୃତବତୀ ।

ସୁକୃତି—ବ. (ସୁ+କୃ+ଭା.ତି)ପୁଣ୍ୟ, ସତ୍‌କର୍ମ, ମଙ୍ଗଳ, ସୌଭାଗ୍ୟ, ଅଦୃଷ୍ଟ, ଭାଗ୍ୟ, ଧର୍ମ ।

ସୁକୃତୀ—ପୁଂ.ବି°. (ସୁକୃତ+ଇନ୍)ସତ୍-କର୍ମକାରୀ, ଧାର୍ମିକ, ଭାଗ୍ୟବାନ୍, ବୁଦ୍ଧି-ମାନ୍, ଶୁଭଯୁକ୍ତ, ପୁଣ୍ୟବାନ୍, (ସ୍ତ୍ରୀ) ସୁକୃତିନୀ ।

ସୁକୃତ୍ୟ—ବ.(ସୁକୃତ+ଯ)ପୁଣ୍ୟ,ସୁକୃତ

ସୁକୃଷ୍ଟ—ବି°. ଉତ୍ତମ ରୂପେ କର୍ଷିତ ।

ସୁକୃଷ୍ଣ—ବି°. ଅତିଶୟ କୃଷ୍ଣବର୍ଣ୍ଣବିଶିଷ୍ଟ, ଗାଢ଼ କଳାରଙ୍ଗର ।

ସୁକେତ—ବି. ସୂର୍ଯ୍ୟ ।

ସୁକେତୁ—ପୁ°. ବି. (ନାମ) ତାଡ଼କା ରାକ୍ଷସୀର ପିତା, ଚନ୍ଦ୍ରକେତୁ ରାଜାଙ୍କ ନାମ, ସାଗରଙ୍କ ପୁତ୍ର, ନନ୍ଦିବର୍ଦ୍ଧନଙ୍କ ପୁତ୍ର, (ବ.ଗ୍ରା) ଯେ ମନୁଷ୍ୟ ଓ ପଶୁମାନଙ୍କର ଶବ୍ଦ ବା ଭାଷା ଜାଣିପାରେ ।

ସୁକେଶ—ପୁ°. ବି°. (ବ.ଗ୍ରା) ସୁନ୍ଦରକେଶବିଶିଷ୍ଟ, (ସ୍ତ୍ରୀ) ସୁକେଶୀ,ଜଣେକ ଧର୍ମଶୀଳ ରାକ୍ଷସ ।

ସୁକେଶର—ବି.(ବ.ଗ୍ରା)ଜାଜପୁର, ଟେଷ ।

ସୁକେଶା(ଶୀ)— ସ୍ତ୍ରୀ. ବି°. ସୁନ୍ଦର କେଶବିଶିଷ୍ଟା (ସ୍ତ୍ରୀ) ।

ସୁକେଶି-ବି.ସ୍ୱନାମପ୍ରସିଦ୍ଧ ରାକ୍ଷସବିଶେଷ, ସୁକେଶ ରାକ୍ଷସ ।

ସୁକେଶୀ—ପୁ°. ବି°. (ସୁକେଶ + ଇନ୍) ସୁନ୍ଦର କେଶବିଶିଷ୍ଟ, (ସ୍ତ୍ରୀ) ସୁନ୍ଦର କେଶଯୁକ୍ତା,(ସ୍ତ୍ରୀ.ବି) ଅପ୍ସରାବିଶେଷ, ଜଣେ ସ୍ୱର୍ଗ ବେଶ୍ୟା, (ସ୍ତ୍ରୀ)ସୁକେଶିନୀ ।

ସୁକେସର—ବି. (ବ.ଗ୍ରା) ସିଂହ, (ବି°) ସୁନ୍ଦର କେସରବିଶିଷ୍ଟ ।

ସୁକୋମଳ—ବି°. ଅତି କୋମଳ, (ସ୍ତ୍ରୀ) ସୁକୋମଳା । [କାକୋଲୀ ।

ସୁକୋଲୀ—ବି. ଶୋଭନବଦରୀ, କ୍ଷୀର-

ସୁକୋଶକ—ବି. କୋଶାମ୍ର, ଲକ୍ଷାବୃକ୍ଷ, କୁସୁମଗଛ ।

ସୁକୋଶା—ବି. କୋଷାତକୀ ।

ସୁକୌଶଳ—ବି. ଅତିଶୟ ନୈପୁଣ୍ୟ, କୌଶଳପୂର୍ଣ୍ଣ ଉପାୟ ।

ସୁକ୍କଡ଼ଚନ୍ଦନ—ଯେଉଁ ଶ୍ରୀଖଣ୍ଡ ଚନ୍ଦନର ଡାଳ ବା ଗଛ ସ୍ୱୟଂ ଶୁଷ୍କ ହେବା ପରେ ସଂଗୃହୀତ ହୁଏ ।

ସୁକ୍ତ—ବି. ଏକପ୍ରକାର କାଞ୍ଜି ।

ସୁକ୍ତା—ବି. ତନ୍ତୁଳୀ ।

ସୁକ୍ରତୁ—ବି°. ଉତ୍ତମ କର୍ମକର୍ତ୍ତା ।

ସୁକ୍ରତୁସ୍ପୃହା—ପୁ°. ବି. ଶୁଭକର୍ମ କରିବାର ଇଚ୍ଛା ।

ସୁକ୍ଷଣ—ବି, ସୁଶବ୍ଦ, ଉତ୍ତମ ଧନ ।

ସୁକ୍ଷମ—ପୁ°. ବି°. ଅତ୍ୟନ୍ତ ପାରଙ୍ଗମ, (ଗ୍ରା.ବି°) ସୂକ୍ଷ୍ମ ।

ସୁକ୍ଷିତ—ପୁ°.ବି°. ଉତ୍ତମ ନିବାସବିଶିଷ୍ଟ. ଉତ୍ତମ ପୁତ୍ରପୌତ୍ରାଦିବିଶିଷ୍ଟ ।

ସୁକ୍ଷେମ—ବି. ସୁମଙ୍ଗଳ ।

ସୁଖଦୁଖ୍—ଗ୍ରା.(ଦ୍ୱନ୍ଦ୍ୱ)ବି. ସୁଖଦୁଃଖ ଦେଖ

ସୁଖ—ବି. (ସୁଖ+ଭା.ଅ ବା ସୁ+ଖନ୍ +ଭା.ଅ) ଆତ୍ମ ବା ମନୋବୃତ୍ତି ଗୁଣବିଶେଷ, ପ୍ରୀତି, ହର୍ଷ, ଆନନ୍ଦ, ତୃପ୍ତି, ସ୍ୱାଚ୍ଛନ୍ଦ୍ୟ, ଜଳ, ସ୍ୱର୍ଗ, ବୃଦ୍ଧି ନାମକ ଔଷଧ, (ବି°-କ.ଅ)ସୁଖଜନକ, ପ୍ରୀତିକର, ପ୍ରିୟ, ମନୋହର, କଷ୍ଟବିହୀନ, ସୁଖୀ, ମଧୁର, ସୁସ୍ଥ, (ସ୍ତ୍ରୀ) ସୁଖା, (ଗ୍ରା. ବି) ଶୁଖ ଦେଖ, ସୁସ୍ଥତା, ଆରୋଗ୍ୟ, ସ୍ୱାସ୍ଥ୍ୟ,(ବି°)ସୁସ୍ଥତାଯୁକ୍ତ, ଶୁଖ ଦେଖ ।

ସୁଖକର—ପୁ°. ବି°. (ସୁଖ+କୃ.କ.ଅ) ସୁଖଜନକ, ପ୍ରିୟ, (ମି.ଅ) ସୁସାଧ୍ୟ, ଯେଉଁ କର୍ମ ସୁଖରେ କରାଯାଏ,ସୁକର (ସ୍ତ୍ରୀ) ସୁଖକରୀ ।

ସୁଖକୃତ୍—ବି°.ସୁକର, ଯାହା ସୁଖରେ, କରାଯାଏ ।

ସୁଖକ୍ରିୟା—ବି. ସୁଖଜନକ କ୍ରିୟା, ଯାହା କଲେ ସୁଖହୁଏ ବା ଲାଗେ ।

ସୁଖଗ—ପୁ°. ବି°.(ସୁଖ+ଗମ୍+କ.ଅ) ସୁଖରେ ଗମନକର୍ତ୍ତା, (ସ୍ତ୍ରୀ) ସୁଖଗା ।

ସୁଖଗମ(ମ୍ୟ)—ବି°. (ସୁଖ+ଗମ୍+ମି. ଅ.ଯ) ସୁଗମ ଦେଖ ।

ସୁଖଗ୍ରାହ୍ୟ—ବି°. ଯାହା ସୁଖରେ ଗ୍ରହଣ କରାଯାଏ ।

ସୁଖଙ୍କର—ପୁ°.ବି°. (ସୁଖ°+କୃ+କ. ଅ) ସୁଖକର, ଆନନ୍ଦଜନକ, ପ୍ରୀତିଜନକ, (ସ୍ତ୍ରୀ) ସୁଖଙ୍କରୀ ।

ସୁଖଙ୍କରୀ—ସ୍ତ୍ରୀ.ବି°. ସୁଖଙ୍କରର ସ୍ତ୍ରୀଲିଙ୍ଗ (ବି)ଜୀବନ୍ତୀବୃକ୍ଷ ।

ସୁଖଚଞ୍ଚୁ—ବି. ଶିବ ଖଟ୍ବାଙ୍ଗ ।

ସୁଖଚର—ପୁ°. ବି°. (ସୁଖ+ଚର୍+ କ.ଅ)ସୁଖରେ ବିଚରଣକାରୀ,(ଲ.ଅର୍ଥ) ସୁଖୀ, ଆନନ୍ଦ ଭୋଗକାରୀ ।

ସୁଖଚ୍ଚର—ବି. (ସୁଖ+ଚର୍+କ.ଅ)

ଉତ୍କୃଷ୍ଟ ଅଶ୍ୱ, ସୁଶିକ୍ଷିତ ଅଶ୍ୱ ।

ସୁଖଚୁଷୀ—ଗ୍ରା.ପୁ°.ବି°. ସୁଖୀ ।

ସୁଖଚ୍ଛେଦ୍ୟ—ବି°. ଯାହା ସୁଖରେ ଛେଦନ କରାଯାଇପାରେ.(ସ୍ତ୍ରୀ)ଚ୍ଛେଦ୍ୟା ।

ସୁଖଜନକ—ବି°. (ସୁଖ+ଜନ୍+କ. ଅକ) ଯାହା ସୁଖ ଦିଏ,(ସ୍ତ୍ରୀ)ସୁଖଜନକା

ସୁଖଜାତ—ବି. ( ୬ତତ୍ର ) ସୁଖସମୂହ, (ବି°—୫ତତ୍ର) ସୁଖରୁ ଜାତ, ବ.ଗ୍ରା) ସୁଖୀ, ଜାତସୁଖ ।

ସୁଖଣ୍ଡଣୀ—ଗ୍ରା.ବି.ଉତ୍ତମ ଭାବରେ ଖଟିତ ବା ଖଣ୍ଡା ହୋଇଥିବା ।

ସୁଖଦ—ପୁ°.ବି°. (ସୁଖ+ଦା+କ.ଅ) ଯେ ଅନ୍ୟକୁ ସୁଖ ଦିଏ, ( ବି ) ବିଷ୍ଣୁ, ବିଷ୍ଣୁଙ୍କ ଆସ୍ଥାନ,ଶୃଙ୍ଗାର ବା ହାସରସପ୍ରଧାନ ବଂଶତ୍ୟକ୍ଷର ସଂଯୁକ୍ତ ତାଳବିଶେଷ ।

ସୁଖଦା—ସ୍ତ୍ରୀ.ବି°. ସୁଖଦର ସ୍ତ୍ରୀଲିଙ୍ଗ,(ବି) ସ୍ୱର୍ଗ ବେଶ୍ୟା, ଶମୀବୃକ୍ଷ, ଗଙ୍ଗାନଦୀ, ଛନ୍ଦୋବିଶେଷ,(ଗ୍ରା.ବି)ଜ୍ୱରଘ୍ନ ଔଷଧବିଶେଷ ।

ସୁଖଦାତା—ପୁ°. ବି°. ସୁଖଦ ଦେଖ, (ସ୍ତ୍ରୀ) ସୁଖଦାତ୍ରୀ ।

ସୁଖଦାୟକ(ଦାୟୀ)—ପୁ°.ବି°. ସୁଖଦ, ଆନନ୍ଦଜନକ, (ସ୍ତ୍ରୀ)ଦାୟିକା,ଦାୟିନୀ ।

ସୁଖଦାୟିନୀ—ସ୍ତ୍ରୀ.ବି. ମାଂସରୋହିଣୀ ।

ସୁଖଦାନୀ—ଗ୍ରା.ବି°. ସୁଖଦାତା ।

ସୁଖଦୁଃଖ—ବି. ସୁଖଦୁଖ ଦେଖ ।

ସୁଖଦୁଖ—ଗ୍ରା.ବି. ଆନନ୍ଦ ଓ ନିରାନନ୍ଦ, ସୁଖର ଓ ଦୁଃଖର ଅନୁଭୂତି, ପରସ୍ପର ମଧ୍ୟରେ ନିଜ ନିଜର ସଂସାରିକ ଭଲ ମନ୍ଦ ବିଷୟରେ କଥାଭାଷା ।

ସୁଖଦୁଃଖହେବା—ଗ୍ରା. କ୍ରି. ପରସ୍ପର ମଧ୍ୟରେ ନିଜର ସୁଖମୟ ଓ ଦୁଃଖମୟ ସଂସାରିକ ଅନୁଭବ ବିଷୟରେ କଥାଭାଷା ହେବା ।

ସୁଖଦୁ(ଦୋ)ହ୍ୟା—ସ୍ତ୍ରୀ. ବି°. (ସୁଖ+ ଦୁହ୍+ମି.ଯ+ଆ) ଯାହାକୁ (ଯେଉଁ ଗାଈକୁ) ସୁଖରେ ଦୁହିଁ ହୁଏପାରେ, (ବି)ସହଜରେ ଦୁହାଁ ହେଉଥିବା ଗାଈ ।

ସୁଖଦୃଶ୍ୟ—ବିଂ. ଦର୍ଶନଯୋଗ୍ୟ ।
ସୁଖଦେବା—ଗ୍ରା.କ୍ରି. ଅନ୍ୟର ପ୍ରୀତିକର କାର୍ଯ୍ୟ କରିବାଦ୍ୱାରା ସୁଖୀ କରିବା ।
ସୁଖଧାମ—ବି. ଯେଉଁଠାରେ ସର୍ବଦା ସୁଖ ଥାଏ,ବୈକୁଣ୍ଠ.(ବିଂ)ସୁଖଦାୟକ ।
ସୁଖନାଶ—ବି. (ଷତତ୍ପୁ) ସୁଖର ବିନାଶ ବା ଲୋପ ।
ସୁଖନିଦ୍ରା—ବି. ସୁନିଦ୍ରା, ନିଶ୍ଚିନ୍ତରେ ହେବା ନିଦ୍ରା ।
ସୁଖନିବିଷ୍ଟ—ବିଂ. ସୁଖରେ ନିବିଷ୍ଟ, ସୁଖଯୁକ୍ତ, ସୁଖୀ ।
ସୁଖପାଇବା—ଗ୍ରା. କ୍ରି. ସୁଖ ଭୋଗ କରିବା, ସ୍ନେହ ବା ଆଦର ଚକ୍ଷୁରେ (କାହାକୁ) ଦେଖିବା ।
ସୁଖପେୟ—ବିଂ.ସୁପେୟ,ଯାହା ପିଇଲେ ସୁଖବୋଧ ହୁଏ ।
ସୁଖପ୍ରଦ—ପୁଂ. ବିଂ. (ସୁଖ+ପ୍ର+ଦା +କ.ଅ) ଯେ ସୁଖଦାନ କରେ,(ସ୍ତ୍ରୀ) ସୁଖପ୍ରଦା ।
ସୁଖପ୍ରସବ—ବି.ସୁପ୍ରସବ,ବିନାକ୍ଲେଶରେ ସନ୍ତାନ ପ୍ରସବ ।
ସୁଖପ୍ରସବା—ସ୍ତ୍ରୀ. ବିଂ. ବିନା କଷ୍ଟରେ ପ୍ରସବ କରିଥିବା (ସ୍ତ୍ରୀ) ।
ସୁଖବନ୍ଧ—ବିଂ. ଆନନ୍ଦଦାୟକ ।
ସୁଖବର—ବି. ଶୁଭସମ୍ବାଦ ।
ସୁଖବର୍ଚ୍ଚକ(ବର୍ଚ୍ଚସ୍)—ବି. ସର୍ଜିକାକ୍ଷାର, ସାଜିମାଟି ।
ସୁଖବାସ—ବି. (ବ.ବ୍ରୀ) ତରଭୁଜ, ଶୀର୍ଣ୍ଣବୃନ୍ତ, (ବିଂ)ସୁଖମୟ(ବାସସ୍ଥାନ) ।
ସୁଖବାସନ—ବି.ସୁବାସନ ଗନ୍ଧଦ୍ରବ୍ୟ ।
ସୁଖବାସର—ବି.ଆନନ୍ଦଦାୟକ ଦିବସ ।
ସୁଖବେଳ—ଗ୍ରା.ବି. ସୁଖଭୋଗର ସମୟ ।
ସୁଖବୋଧ—ବି. (ଷତତ୍ପୁ)ସୁଖାନୁଭବ ।
ସୁଖବୋଧ୍ୟ—ବିଂ. ଯାହା ସୁଖରେ ବୁଝି-ହୁଏ, ସୁବୋଧ୍ୟ ।
ସୁଖଭକ୍ଷ—ବି. ଶ୍ୱେତଶିଗ୍ରୁ,ଧଳାସଜନା, (ବିଂ) ବିନା କ୍ଲେଶରେ ଭୋଜନକାରୀ ।
ସୁଖଭକ୍ଷ୍ୟ—ବିଂ. ସୁଭକ୍ଷ୍ୟ,ଯାହା ଖାଇ-ବାକୁ ସୁଖକର ହୁଏ ।

ସୁଖଭଞ୍ଜ—ବି. ଶ୍ୱେତମରିଚ ।
ସୁଖଭଦ୍ରା—ବି. ଭଦ୍ରମୁସ୍ତା, ଭଦ୍ରମୁଥା ।
ସୁଖଭାକ୍—ପୁଂ. ବିଂ. (ସୁଖ+ଭଜ୍+ କ.କ୍ୱିପ୍)ସୁଖଭାଗୀ,ସୁଖଭୋଗୀ,ସୁଖୀ ।
ସୁଖଭାନୁ—ବି. (ରୂ-କ.ଧା) ସୁଖସୂର୍ଯ୍ୟ ଦେଖ ।
ସୁଖଭୁକ୍—ବିଂ. (ସୁଖ+ଭୁଜ୍+କ୍ୱିପ୍) ସୁଖଭୋଗକାରୀ, ସୁଖୀ ।
ସୁଖଭେଦ୍ୟ—ବିଂ.ଯାହା ସୁଖରେ ଭାଙ୍ଗି-ଯାଏ, ସୁଖରେ ଭେଦଯୋଗ୍ୟ ।
ସୁଖଭୋଗ—ବି. (ଷତତ୍ପୁ) ସୁଖ ବା ଆନନ୍ଦକୁ ଅନୁଭବ କରିବା ।
ସୁଖଭୋଗୀ—ପୁଂ.ବିଂ.ସୁଖଭାକ୍ ଦେଖ ।
ସୁଖଭୋଜନ—ବି. ସୁଖକର ପଦାର୍ଥ ଭୋଜନ, ସନ୍ତୋଷଜନକ ଭୋଜନ ।
ସୁଖମୟ—ବି. (ସୁଖ+ମୟ) ସୁଖପୂର୍ଣ୍ଣ, ଆନନ୍ଦପୂର୍ଣ୍ଣ, ପ୍ରିୟ, (ସ୍ତ୍ରୀ) ସୁଖମୟୀ ।
ସୁଖମୋଦ—ବି. ଶୋଭାଞ୍ଜନ ବୃକ୍ଷ,ନାଲି-ସଜନା ।
ସୁଖମୋଦା—ବି. ଶଲ୍ଲକୀ ବୃକ୍ଷ ।
ସୁଖଯାମିନୀ(ରଜନୀ)—ବି. ସୁଖମୟୀ ରାତ୍ରି, ଦୀପାନ୍ୱିତା ଅମାବାସ୍ୟାର ରାତ୍ରି, କାର୍ତ୍ତିକ ଅମାବାସ୍ୟାରେ ପୂଜ୍ୟା ଲକ୍ଷ୍ମୀ ।
ସୁଖରବି—ବି. ସୁଖରୂପ ସୂର୍ଯ୍ୟ ।
ସୁଖରାତ୍ରି—ବି. ସୁଖଯାମିନୀ ଦେଖ ।
ସୁଖରେ—ଗ୍ରା. କ୍ରି. ବିଂ. ସ୍ୱଇଚ୍ଛାରେ, ସୁଖସହକାରେ, ସହଜରେ ।
ସୁଖଲାଗିବା—ଗ୍ରା.କ୍ରି. ସୁଖକର ବୋଧ ହେବା, ଆବୃତ ହେବା ।
ସୁଖଲାଭ—ବି. (ଷତତ୍ପୁ) ସୁଖପ୍ରାପ୍ତି, ସୁଖଭୋଗ ।
ସୁଖଲେଶ—ବି.(ଷତତ୍ପୁ) ଅଳ୍ପମାତ୍ରସୁଖ, ସାମାନ୍ୟ ସୁଖ ।
ସୁଖଶୟନ—ବି. ସୁଖନିଦ୍ରା ଦେଖ, ସୁଖଜନକ ଶଯ୍ୟା ।
ସୁଖଶଯ୍ୟା—ବି. ଦୁଖଜନକ ବିଛଣା ।
ସୁଖଶାନ୍ତି—ବି. (ଦ୍ୱନ୍ଦ୍ୱ) ସୁଖ ଓ ଶାନ୍ତି, ଆନନ୍ଦ ଓ ବିଶ୍ରାମ,ସୁଖ ଓ ସ୍ୱୈରୈଶ୍ୱର୍ଯ୍ୟ ।
ସୁଖଶାୟୀ—ପୁଂ. ବିଂ. ସୁଖରେ ଶୟନ-କାରୀ, (ସ୍ତ୍ରୀ) ସୁଖଶାୟିନୀ ।
ସୁଖଶ୍ରବ—ବିଂ. ଶ୍ରୁତିସୁଖକର ।
ସୁଖଶ୍ରାବ୍ୟ—ବିଂ. (ଉତତ୍ପୁ) ସୁଶ୍ରାବ୍ୟ, ଶ୍ରୁତିସୁଖକର, ଶୁଣିବାକୁ ମିଷ୍ଟ, (ସ୍ତ୍ରୀ) ସୁଖଶ୍ରାବ୍ୟା ।
ସୁଖସଂବାଦ—ବି.(କ.ଧା) ଶୁଭସମାଚାର, ସୁଖଜନକ ବାର୍ତ୍ତା ।
ସୁଖସଂବେଶ—ବିଂ. ଶ୍ରୁତିସୁଖକର ।
ସୁଖସଂଭୋଗ—ବି.(ଷତତ୍ପୁ) ସୁଖଭୋଗ ।
ସୁଖସଂସ୍ଥ—ବିଂ. ସୁଖରେ ଅବସ୍ଥାନକାରୀ, (ସ୍ତ୍ରୀ) ସୁଖସଂସ୍ଥା ।
ସୁଖସଞ୍ଚାର—ବି. ସୁଖରେ ବିଚରଣ, (ବିଂ) ସୁଖରେ ସଞ୍ଚରଣଶୀଳ ।
ସୁଖସଞ୍ଚାରୀ—ପୁଂ. ବିଂ. ଯେ ସୁଖରେ ସଂଚରଣ କରେ, (ସ୍ତ୍ରୀ)ସୁଖସଞ୍ଚାରିଣୀ ।
ସୁଖସନ୍ଦୋହ୍ୟା—ସ୍ତ୍ରୀ. ବି. ଓ ବିଂ. ସୁଖଦୁହ୍ୟା ଦେଖ ।
ସୁଖସମ୍ବୋଧ୍ୟ—ବିଂ. ଯାହା ସହଜରେ ବୋଧହୁଏ, ସୁଖବୋଧ୍ୟ ।
ସୁଖସମୃଦ୍ଧି(ସମ୍ପତ୍ତି)-ବି. ସୁଖ ଓ ବିଭବ ।
ସୁଖସଲିଳ—ବି. ଉଷ୍ଣୋଦକ,ଉଷ୍ଣଜଳ ।
ସୁଖସାଗର—ବି. (ରୂ-କ.ଧା) ଅତ୍ୟନ୍ତ ସୁଖ, ସୁଖସିନ୍ଧୁ ।
ସୁଖସାଧ—ବି. (ଷତତ୍ପୁ) ସୁଖକର ଅଭିଳାଷ, ସୁଖର ବାସନା ।
ସୁଖସାଧ୍ୟ—ବିଂ. ଅନାୟାସ ସାଧ୍ୟ, ଯାହା ଅକ୍ଳେଶରେ ସାଧନ କରାଯାଏ ।
ସୁଖସୁପ୍ତ—ବିଂ. (ଓତତ୍ପୁ) ସ୍ୱଚ୍ଛନ୍ଦଭାବରେ ନିଦ୍ରିତ ।
ସୁଖସୁପ୍ତି—ବି. (ମ. ପ. ଲୋ; କ.ଧା) ସୁଖନିଦ୍ରା, ସୁନିଦ୍ରା ।
ସୁଖସୂର୍ଯ୍ୟ—ବି. ସୁଖରବି ଦେଖ ।
ସୁଖସେବା—ବି. (ଷତତ୍ପୁ) ସୁଖଭୋଗ, ସୁଖର ଉପାସନା ।
ସୁଖସେବ୍ୟ—ବିଂ.ସୁସେବ୍ୟ,ଅନାୟାସରେ ଯାହା ସେବନ କରାଯାଇପାରେ ।
ସୁଖସ୍ଥ—ପୁଂ. ବିଂ. ସୁଖରେ ଅବସ୍ଥାନ-କାରୀ, ସୁଖୀ ।
ସୁଖସ୍ପର୍ଶ—ବି. (କ.ଧା) ଆନନ୍ଦଜନକ

ସ୍ପର୍ଶ,ପ୍ରୀତିପୂର୍ଣ୍ଣ ସ୍ପର୍ଶ,(ବିଂ-ବ.ବ୍ରୀ)ଯାହାକୁ ସ୍ପର୍ଶକଲେ ସୁଖବୋଧ ହୁଏ, ଅତି କୋମଳ ।

ସୁଖସ୍ମୃତି—ବି. (ଷତତ୍) ପୂର୍ବାନୁଭୂତ ସୁଖର ସ୍ମରଣ ।

ସୁଖସ୍ୱଚ୍ଛନ୍ଦତା—ବି. (ଦ୍ୱନ୍ଦ୍ୱ) ଆନନ୍ଦ ଓ ସ୍ୱଚ୍ଛତା ।

ସୁଖସ୍ୱପ୍ନ—ବି. ସୁଖଜନକ ସ୍ୱପ୍ନ, ସୁଖଲାଭର ସ୍ୱପ୍ନ ।

ସୁଖା—ବି. ( ସୁଖ+ଆ ) ବରୁଣପୁରୀ, (ସ୍ତ୍ରୀ.ବିଂ) ପ୍ରୀତିକରୀ, ପ୍ରିୟା, ଆନନ୍ଦଜନିକା ।

ସୁଖାଗମ—ବି. (ଷତତ୍) ସୁଖଭୋଗର ସମୟ ଆସିବା ।

ସୁଖାଗାର—ବି. ( ସୁଖ+ଆଗାର ) ସୁଖଜନକ ଗୃହ,ସୁଖପ୍ରଦ ବିଷୟ ।

ସୁଖାଜାତ—ବି. ଶିବ ।

ସୁଖାଦ୍ୟ—ବି. ସୁଭୋଜ୍ୟ, ହିତକର ଓ ତୃପ୍ତିକର ଭୋଜ୍ୟ ବସ୍ତୁ ।

ସୁଖାଧାର—ବି. (ଷତତ୍)ସୁଖମୟ ସ୍ଥାନ, ସ୍ୱର୍ଗ, (ବିଂ) ଯେଉଁଠାରେ ସବୁ ସୁଖ ମିଳେ ।

ସୁଖାନୁଭବ—ବି. (ଷତତ୍)ସୁଖବୋଧ ।

ସୁଖାନ୍ତ—ବି. (ଷତତ୍) ସୁଖର ଅବସାନ, ( ବ.ବ୍ରୀ ) ଯେଉଁ ନାଟକର ଶେଷରେ ସୁଖଦାୟକ ଘଟନା ଥାଏ ।

ସୁଖାନ୍ୱେଷଣ—ବି. ( ଷତତ୍ ) ସୁଖ-ଖୋଜିବା ।

ସୁଖାନ୍ୱେଷୀ—ପୁଂ. ବିଂ. (ସୁଖ+ଅନୁ +ଇଷ୍+କ.ଇନ୍)ସୁଖର ଅନୁସନ୍ଧାନକାରୀ, ଯେ ସୁଖ ଖୋଜେ, ( ସ୍ତ୍ରୀ ) ସୁଖାନ୍ୱେଷିଣୀ ।

ସୁଖାପ—ବିଂ. (ସୁଖ+ଆପ୍+ଅ)ସୁଖ ଦ୍ୱାରା ପ୍ରାପଣୀୟ, ଯାହା ସୁଖରେ ଲଭ କରାଯାଏ ।

ସୁଖାପ୍ଲବ—ବିଂ. ସୁଖେ ଭାସମାନ ।

ସୁଖାଭ୍ୟୁଦୟିକ—ବିଂ. ସୁଖ ଓ ଅଭ୍ୟୁଦୟଯୁକ୍ତ ।

ସୁଖାମ୍ବୁ—କ୍ଲୀ. ବି. ଉଷ୍ଣଜଳ ।

ସୁଖାସ୍ୱୃତ(ନ)—ବି. ସୁଶିକ୍ଷିତ ଅଶ୍ୱ ।

ସୁଖାୟତନ—ବି(ଷତତ୍)ସୁଖାଧାର ଦେଖ

ସୁଖାରାଧ—ବିଂ.ସୁଖେ ଆରାଧନୀୟ,ଯାହାକୁ ଆରାଧନା କରାଯାଏ ।

ସୁଖାରୋହଣ—ବି.ସୋପାନ, ସହଜରେ ଯଦ୍ୱାରା ଉଠିବାକୁ ହୁଏ ।

ସୁଖାର୍ଜିତ—ବିଂ. (୩ତତ୍) ସହଜରେ ଉପାର୍ଜିତ ।

ସୁଖାର୍ଥ—ବିଂ. ସୁଖନିମିତ୍ତ, ସୁଖଲାଗି ।

ସୁଖାର୍ଥୀ—ପୁଂ.ବିଂ(ସୁଖ+ଅର୍ଥ+ଇନ୍) ସୁଖକାମୀ, ଯେ ସୁଖ ପ୍ରାର୍ଥନା କରେ, (ସ୍ତ୍ରୀ) ସୁଖାର୍ଥିନୀ ।

ସୁଖାଳୁକା—ବି. ଜୀବନ୍ତୀଭେଦ ।

ସୁଖାବଗମ—ବି. ସୁଖପ୍ରାପ୍ତି, ସୁଖଲାଭ ।

ସୁଖାବତୀ—ସ୍ତ୍ରୀ. ବି. ବୌଦ୍ଧମତେ ସ୍ୱର୍ଗବିଶେଷ ।

ସୁଖାବତୀଦେବ—ପୁଂ. ବି. ବୁଦ୍ଧ ।

ସୁଖାବତୀଶ୍ୱର—ବି.ବୁଦ୍ଧଭେଦ, ବୌଦ୍ଧମତେ ଦେବଭେଦ ।

ସୁଖାବବୋଧ—ବି. ସୁଖର ଅବବୋଧ, ସୁଖଜ୍ଞାନ ।

ସୁଖାବଲ—ପୁଂ.ବି. ରାଜଭେଦ,ନୃଚକ୍ଷୁର ପୁତ୍ର ।

ସୁଖାବହ—ବିଂ. (ସୁଖ+ଆବହ) ସୁଖଦାତା, ସୁଖପ୍ରଦାନକାରୀ, (ସ୍ତ୍ରୀ)ବହା ।

ସୁଖାବୃତ—ବିଂ.ସୁଖ ଦ୍ୱାରା ଆବୃତ,ଯେ ସକଳ ସୁଖରେ ବ୍ୟାପ୍ତ ।

ସୁଖାଶ-ପୁଂ.ବିଂ(ସୁଖ+ଆଶା+ଅ)ବ.ବ୍ରୀ; ଶୋଭନ ଆଶାଯୁକ୍ତ,(ସ୍ତ୍ରୀ) ସୁଖାଶା,(ବି-ସୁଖ+ଆଶ=ଭୋଜନ)ସୁଖଭୋଜନ, ରାଜତନକବୃକ୍ଷ, ଏକପ୍ରକାର ବନ୍ଧନ କାଠର ଗଛ,ବରୁଣଭେଦ,ତରଭୁଜ ।

ସୁଖାଶକ—ପୁଂ.ବି.(ସୁଖାଶ+କ)ରାଜତନକ ବୃକ୍ଷ ।

ସୁଖାଶା—ବି.(ଷତତ୍) ସୁଖ ପାଇବାର ଆଶା,(ସ୍ତ୍ରୀ.ବିଂ-ବ.ବ୍ରୀ)ଉତ୍ତମ ଆଶାଯୁକ୍ତା ।

ସୁଖାଶ୍ରୟ—ବି. ସୁଖାଧାର ।

ସୁଖାସନ—ବି. (କ.ଧା) ସୁଖଜନକ ଆସନ, ମୃତ ବ୍ୟକ୍ତିଙ୍କ ଉଦ୍ଦେଶ୍ୟରେ ଶ୍ରାଦ୍ଧ କାଳରେ ଶଯ୍ୟା ଓ ଖଟଆଦିର ଦାନ,ପାଲିଙ୍କି,(ଗ୍ରା.ବି) ବିଷ୍ଣୁଙ୍କ ଅନନ୍ତଶୟନ, ବରୁଣଦେବ, ସମୁଦ୍ର,ସାଗର ।

ସୁଖାସିକା—ସ୍ତ୍ରୀ. ବି. ସ୍ୱାସ୍ଥ୍ୟ ।

ସୁଖାସୀନ—ପୁଂ.ବିଂ.ସୁଖରେ ଉପବିଷ୍ଟ, (ସ୍ତ୍ରୀ) ସୁଖାସୀନା ।

ସୁଖାସୁଖ—କ୍ଲୀ. ବି. ସୁଖ ଓ ଅସୁଖ, ସୁଖଦୁଃଖ ।

ସୁଖିତ—ବିଂ. (ସୁଖ+ଇତ)ଆନନ୍ଦିତ, ଉତ୍ଫୁଲ୍ଲ, (ସ୍ତ୍ରୀ)ସୁଖିତା, (ବି)ସୁଖ ।

ସୁଖିତା(ତ୍ୱ)—ବି. ( ସୁଖିନ୍+ଭା.ତା ) ସୁଖୀ ହେବାର ଭାବ ବା ଅବସ୍ଥା ।

ସୁଖିନୀ—ସ୍ତ୍ରୀ.ବିଂ (ସୁଖିନ୍+ଈ)ସୁଖୀର ସ୍ତ୍ରୀଲିଙ୍ଗ ।

ସୁଖୀ—ପୁଂ. ବିଂ. (ସୁଖ+ଇନ୍) ସୁଖବିଶିଷ୍ଟ, ଯେ ସୁଖ ଭୋଗକରେ, (ସ୍ତ୍ରୀ) ସୁଖିନୀ, (ପୁଂ.ବି) ଯତି ।

ସୁଖୀନଳ—ପୁଂ.ବି.ରାଜଭେଦ,ନୃଚକ୍ଷୁର ପୁତ୍ର ।

ସୁଖୁମ—ଗ୍ରା.ବିଂ.(ଫ-ସୂକ୍ଷ୍ମ) ସୂକ୍ଷ୍ମ ଦେଖ ।

ସୁଖେ—ଗ୍ରା. କ୍ରି.ବିଂ. ସୁଖହକାରରେ, ସହଜରେ, ଅନାୟାସରେ,ସ୍ୱଇଚ୍ଛାରେ, ଖୁସିଏଁ, ସ୍ୱେଚ୍ଛାକ୍ରମେ, ସ୍ୱାଚ୍ଛନ୍ଦ୍ୟରେ ।

ସୁଖେତର—ବି. ସୁଖରୁ ଭିନ୍ନ, ଦୁଃଖ ।

ସୁଖୈଶ୍ୱର୍ଯ୍ୟ—ବି. (ଦ୍ୱନ୍ଦ୍ୱ) ସୁଖ ସମୃଦ୍ଧି ।

ସୁଖେଷ୍ଠ—ପୁଂ. ବି. (ସୁଖେ+ସ୍ଥା+ଅ) ଶିବ, ମହାଦେବ ।

ସୁଖୋଚ୍ଛେଦ୍ୟ—ବିଂ.ସୁଖ ଦ୍ୱାରା ଉଚ୍ଛେଦ ଯୋଗ୍ୟ,ଯାହାକୁ ଅନାୟାସରେ ଉଚ୍ଛେଦ କରାଯାଏ ।

ସୁଖୋତ୍ପାଦକ—ପୁଂ. ବିଂ. ଯେଉଁ ବ୍ୟକ୍ତି ବସ୍ତୁ ବା ଭାବନା ସୁଖ ଜନ୍ମାଏ, (ସ୍ତ୍ରୀ) ସୁଖୋତ୍ପାଦିକା ।

ସୁଖୋତ୍ସବ—ବି. ( ଷତତ୍ ବା କ.ଧା ) ଆନନ୍ଦୋତ୍ସବ,(ବିଂ-ବ.ବ୍ରୀ)ପତି,ସ୍ୱାମୀ ।

ସୁଖୋଦକ—ବି. ସୁଖଜନକ ତପ୍ତଜଳ, ଈଷଦୁଷ୍ଣ ଜଳ ।

ସୁଖୋଦୟ—ବି. ସୁଖର ଉଦୟ, ସୁଖର ଆଗମ, (ବିଂ) ସ ଖମୟ, ଯେଉଁ ସମ-

ସୁଖରେ ସୁଖହୁଏ ।
ସୁଖୋଦର୍କ—ବିଂ. ଉତ୍ତରକାଳ ଯାହାର ସୁଖକର ହୁଏ,ଯାହାର ଭବିଷ୍ୟକାଳ ଶୁଭ
ସୁଖୋଦ୍ୟ—ବିଂ. (ସୁଖ+ବଦ୍+ର୍ମ.ଯ ସହଜରେ ଉଚ୍ଚାରଣୀୟ ।
ସୁଖୋପଗମ୍ୟ—ବିଂ. ସୁଖରେ ଉପଗମନୀୟ, ସୁଖେ ଉପଗମନ ଯୋଗ୍ୟ ।
ସୁଖୋପବିଷ୍ଟ—ବିଂ. ସୁଖରେ ଉପବିଷ୍ଟ, ଯେ ସୁଖରେ ଉପବେଶନ କରିଥାଏ ।
ସୁଖୋପାୟ—ବି. ସୁଖର ଉପାୟ,ଯେଉଁ ଉପାୟ ଅବଲମ୍ବନ କଲେ ସୁଖହୁଏ, (ବିଂ) ସୁଖକର ଉପାୟବିଶିଷ୍ଟ ।
ସୁଖୋର୍ଜିକ—ବି. ସଜିକାକ୍ଷାର,ସାଜିମାଟି
ସୁଖୋଷିତ—ବିଂ. (ସୁଖ+ବସ୍+ତ) ଯେ ସୁଖରେ ବାସ କରୁଥାଏ, ଯେ ସୁଖରେ କାଳଯାପନ କରୁଥାଏ ।
ସୁଖୋଷ୍ଣ—ବିଂ. ସୁଖ ଓ ଉଷ୍ଣ, ସୁଖଜନକ ଅଥଚ ଉଷ୍ଣ ।
ସୁଖ୍ୟାତି—ସ୍ତ୍ରୀ.ବି.(କ୍ରୃ.ଧା)ପ୍ରଶଂସା,ଯଶଃ, ପ୍ରସିଦ୍ଧି ।
ସୁଗ—ପୁଂ. ବିଂ. (ସୁ+ଗମ୍+କ.ଅ) ସୁବୋଧ, ସୁଗମ, ସୁନ୍ଦରଗାମୀ,ସୁଗାମୁକ, (ସ୍ତ୍ରୀ) ସୁଗା, (କ୍ଳୀ) ବିଷ୍ଠା,ସୁଖଗନ୍ତବ୍ୟ ଦେଶାଦି, ପଥ, ସ୍ୱାମୀ ।
ସୁଗଠ(ଢ଼)ଣ(ନ)—ଗ୍ରା.ବି. (ସଂସୁଘଟନ) ସୁନ୍ଦର ଗଢ଼ଣ, (ଗ୍ରା.ବିଂ) ସୁନ୍ଦରରୂପେ ଗଢ଼ା ।
ସୁଗଠିତ—ବିଂ.(ସୁ+ଗଠ୍+ର୍ମ.ତ)ସୁନ୍ଦର ଭାବରେ ନିର୍ମିତ, ସୁଗଠନ ସମ୍ପନ୍ନ ।
ସୁଗଣ୍—ବି.(ସୁ+ଗଣ୍+କ୍ୱିପ୍) ସୁନ୍ଦର ଗଣକ ।
ସୁଗଣକ—ପୁଂ. ବି. ଉତ୍ତମ ଗଣକ, ଯେ ଉତ୍ତମରୂପେ ଗଣନା କରିପାରେ ।
ସୁଗଣ୍ଡିଆ—ଗ୍ରା.ବି. ଏକପ୍ରକାର ଭୂଇଁରେ ମାଡ଼ି ବଢ଼ିବା ଲତାବିଶେଷ ।
ସୁଗତ—ବିଂ.(ସୁ+ଗମ୍+କ.ତ)ସୁନ୍ଦର ଗମନବିଶିଷ୍ଟ,(ପୁଂ.ବି)ବୌଦ୍ଧ,ବୁଦ୍ଧଦେବ
ସୁଗତାବଦାନ—ବି.ବୌଦ୍ଧମାନଙ୍କ ସୂତ୍ର ଗ୍ରନ୍ଥବିଶେଷ ।

ସୁଗତ—ବି.(ନାମ)ଅଜ୍ଞାତ କାଳର ବୌଦ୍ଧ ମଠବିଶେଷ, ଗ୍ରନ୍ଥକାରବିଶେଷ. ମୋକ୍ଷଗତ, ମୁକ୍ତି ।
ସୁଗନ୍ଧ—ବିଂ. (ବ.ବ୍ରୀ) ଗନ୍ଧବହ, ସଦ୍‌ଗନ୍ଧ ମିଶ୍ରିତ, ସୁଗନ୍ଧିତ, (ନ୍ୟାୟ)ଗନ୍ଧ, ସମବାୟୀତଣ୍ଡ ସମ୍ବନ୍ଧ ଦ୍ୱାରା ସମ୍ବନ୍ଧବିଶିଷ୍ଟ, (ବି-କ.ଧା) ସୁବାସ,ମନୋହର ଗନ୍ଧ, ସୌରଭ, (ବ.ବ୍ରୀ) ଚନ୍ଦନ. ନୀଳୋତ୍ପଳ, ଗ୍ରନ୍ଥିପର୍ଣ୍ଣ, ଗଣ୍ଠିଅଳା,ଗନ୍ଧତୃଣ, ଧନନ୍ଦୀ, କ୍ଷୁଦ୍ର ଜୀରକ, ରକ୍ତଶିଗ୍ରୁ, କାଳିସଜନା, ଗନ୍ଧକ, ଚଣକ, ଚଣା, ଭୂତୃଣ.ଶ୍ରୀଖଣ୍ଡ ଚନ୍ଦନ,ଶବର ଚନ୍ଦନ, ଗନ୍ଧରାଜଫୁଲ, ଧୂନା, ଶାଳିଧାନ୍ୟ,ବାସବତୀଧାନ, ମରୁବକ, ମାଧବୀଲତା. କସେରୁ, ସଫେଦ, ଜୁଆରି, କିଆ,(ସ୍ତ୍ରୀ) ସୁଗନ୍ଧା ।
ସୁଗନ୍ଧକ—ବି. ରକ୍ତତୁଳସୀ, ଗନ୍ଧକ, ନାଗରଙ୍ଗକ, ନାରଙ୍ଗ, କର୍କୋଟକ, କାଙ୍କଡ଼, ଦ୍ରୋଣପୁଷ୍ପୀ.ଚମ୍ପକ,ରକ୍ତଶାଳି ଧାନ୍ୟ ।
ସୁଗନ୍ଧକେଶର—ପୁଂ.ବି.ରକ୍ତଶିଗ୍ରୁ, ଲାଲ ସଜନା ।
ସୁଗନ୍ଧଗନ୍ଧକ—ପୁଂ.ବି. ଗନ୍ଧକ ।
ସୁଗନ୍ଧଗନ୍ଧା—ସ୍ତ୍ରୀ.ବି. ଦାରୁହରିଦ୍ରା ।
ସୁଗନ୍ଧଗଣ—ବି. (ବୈଦ୍ୟଶାସ୍ତ୍ର) କର୍ପୂର, କସ୍ତୁରୀ, ଲତା କସ୍ତୁରୀ, ଗନ୍ଧ ମାର୍ଜାର ବୀର୍ଯ୍ୟ, ଶୈରକ, ଶ୍ରୀଖଣ୍ଡ ଚନ୍ଦନ. ପୀତଚନ୍ଦନ, ଶୀଳାଜତୁ, ରକ୍ତଚନ୍ଦନ, ଅଗୁରୁଚନ୍ଦନ, କୃଷ୍ଣାଗୁରୁ, ଦେବଦାରୁ, ପତଙ୍ଗ, ସରଳ, ତଗର, ପଦ୍ମାକ, ଗୁଗ୍ଗୁଳ, ସରଳ ନିର୍ଯ୍ୟାସ, ଝୁଣା, କୁନ୍ଦୁରୁ, ଶିଲାରସ,ଲୋବାନ୍. ଲବଙ୍ଗ, ଜାଇଫୀ, ଜାଇଫଳ, ଅଳାଇଚ,ଗୁଜୁରାଟ. ଡାଲଚିନି, ତେଜପତ୍ର, ନାଗକେଶର, କୁଙ୍କୁମ, ବେଣାଚେର, ଗୋରୋଚନା, ନଖୀ, କେସର,ଜଟାମାଂସୀ, ନାଗର ମୁଥା, ଆମ୍ବ ଅଦା ଆଦି ସୁଗନ୍ଧ ଦ୍ରବ୍ୟ ।
ସୁଗନ୍ଧଚନ୍ଦ୍ରା—ସ୍ତ୍ରୀ. ବି. ସୁଗନ୍ଧଶୁଣ୍ଠୀ ।

ସୁଗନ୍ଧତୃଣ—ବି. ତୃଣଭେଦ, ପୂଦୁନା ଗନ୍ଧତୃଣ । [ ତେଲ ।
ସୁଗନ୍ଧତୈଳ-ବି.ସୁବାସିତତୈଳ, ବାସନା
ସୁଗନ୍ଧତୈଳନିର୍ଯ୍ୟାସ—ବି. ଜବାଦ୍ନାମକ ଗନ୍ଧଦ୍ରବ୍ୟ ।
ସୁଗନ୍ଧତ୍ରୟ—ବି. ଚନ୍ଦନ, ବାଳକ ଓ ନାଗକେଶର ।
ସୁଗନ୍ଧିତ୍ରିଫଳା—ବି.ଜାଇଫଳ, ଲବଙ୍ଗ ଓ ଏଳାଇଚ ।
ସୁଗନ୍ଧନ—ବି. ଜୀରକ, ଜୀରା ।
ସୁଗନ୍ଧପତ୍ରା—ବି. ଶତାବରୀ, କ୍ଷୁଦ୍ର ଜାମୁ, ବୃହତୀ,ଅପରାଜିତା,ଜୀରା,ବାଡ଼ିଅଅଁଳା, ବୃଦ୍ଧଦାରକ, ରୁଦ୍ରଜଟା ।
ସୁଗନ୍ଧପତ୍ରୀ—ବି. ଜାତୀପତ୍ରୀ, ଜାଇଫୀ ।
ସୁଗନ୍ଧଫଳ—ବି. କଙ୍କୋଳ,କାଙ୍କୋଲ ।
ସୁଗନ୍ଧଭୂତୃଣ—ବି. ଗନ୍ଧତୃଣ, ପୂଦୁନା ।
ସୁଗନ୍ଧମୟ—ବିଂ.(ସୁଗନ୍ଧ+ମୟ)ସଦ୍‌ଗନ୍ଧପୂର୍ଣ୍ଣ, ସୁବାସବିଶିଷ୍ଟ, (ସ୍ତ୍ରୀ) ସୁଗନ୍ଧମୟୀ ।
ସୁଗନ୍ଧମୁଖ୍ୟା—ବି. କସ୍ତୁରିକା,ମୃଗନାଭି ।
ସୁଗନ୍ଧମୂତ୍ରପତନ—ବି. ସୁଗନ୍ଧମାର୍ଜାର ।
ସୁଗନ୍ଧମୂଳା—ବି. ସ୍ଥଳପଦ୍ମିନୀ, ରାସ୍ନା, ଅଅଁଳା, ଗନ୍ଧପଲାଶୀ, ଲବଲୀ, ନଅରଙ୍ଗ କୋଳି ।
ସୁଗନ୍ଧମୂଳୀ—ବି. ସୁଗନ୍ଧଶୁଣ୍ଠୀ ।
ସୁଗନ୍ଧମୂଷିକ—ବି. ଚୁଚୁନ୍ଦୁରା ।
ସୁଗନ୍ଧରାଜ—ଗ୍ରା. ବି. ସୁଗନ୍ଧ ପୁଷ୍ପ ବିଶେଷ
ସୁଗନ୍ଧବଲ୍କଲ—ବି. ତ୍ୱକ୍, ଗୁଡ଼ତ୍ୱକ୍ ।
ସୁଗନ୍ଧବୈରକାଢ୍ୟ—ବି. ରୋହିଷତୃଣ, ସୁଗନ୍ଧତୃଣ ।
ସୁଗନ୍ଧଶାଳ—ବି. ଶାଳିଧାନ୍ୟବିଶେଷ ।
ସୁଗନ୍ଧଶାଳୀ-ପୁଂ.ବିଂ.(ସୁଗନ୍ଧ+ଶାଳିନ୍) ସୁଗନ୍ଧବିଶିଷ୍ଟ, ଉତ୍ତମବାସଯୁକ୍ତ,ସୁବାସିତ, (ସ୍ତ୍ରୀ) ସୁଗନ୍ଧଶାଳିନୀ ।
ସୁଗନ୍ଧଷଟ୍କ—ବି. ଛଅଗୋଟି ସୁଗନ୍ଧ ଦ୍ରବ୍ୟ (ଯଥା-ଜାଇଫଳ, କଙ୍କୋଲ, ଲବଙ୍ଗ,ଅଳେଇଚ କର୍ପୂର ଓ ଗୁଆ) ।
ସୁଗନ୍ଧସାର—ବି.ଶାଳବୃକ୍ଷ. ସାଗୁଆନଗଛ
ସୁଗନ୍ଧସ୍ଥଳ—ଗ୍ରା.ବି.ସୁଗନ୍ଧବସ୍ତୁ, ସୁବାସିତ ପଦାର୍ଥ ।

ସୁଗନ୍ଧା—ବି.(ସୁଗନ୍ଧ+ଆ)ରାସ୍ନା, ଶଟୀ, ଗନ୍ଧଶୁଣ୍ଠି,ପୃକ୍କା, ନାଗପର୍ଣ୍ଣୀ,ଶଲ୍ଲକୀବୃକ୍ଷ, ମାଧବୀ,ଅଷ୍ଟାଚୁଆ, ରୁଦ୍ରଜଟା,ଶତପୁଷ୍ପା, ନାକୁଲୀ,ନଆଲୀ, ସ୍ୱର୍ଣ୍ଣଯୂଥିକା,ଅନନ୍ତା, ଚେମିଡ଼ିଲଇ, ମାତୁଲଙ୍ଗ, ତୁଳସୀ, ହରିଦ୍ରା, ଏଳବାଳୁକ, ସୋମରାଜି,(ପ୍ରା. ସାକପୁର,ବି) ତୁଳସୀ ।

ସୁଗନ୍ଧାଢ୍ୟା—ବିଂ. ସୁଗନ୍ଧବିଶିଷ୍ଟ (ଦ୍ରବ୍ୟ)

ସୁଗନ୍ଧାଢ୍ୟା—ସ୍ତ୍ରୀ, ବି. ବୃତ୍ତମଲ୍ଲିକା, ବଟପତ୍ରମଲ୍ଲିକା, ସୁଗନ୍ଧ ଧାନଧାନ୍ୟବିଶେଷ

ସୁଗନ୍ଧାମାଳକ—ବି, ସୁଗନ୍ଧ ଆମଳକ, ମିଳିତ ଔଷଧବିଶେଷ ।

ସୁଗନ୍ଧାର—ବି. ଗାନ୍ଧାର ଦେଶ ।

ସୁଗନ୍ଧି—ବିଂ.(ସୁଗନ୍ଧ+ଇ) ସୁଗନ୍ଧଯୁକ୍ତ, ସୁରଭିତ, ଧାର୍ମିକ,(ବି) ସୌରଭ,ସଦ୍-ଗନ୍ଧ, ସହକାର, ଆମ୍ବ, ପରମାତ୍ମା, ଏଳବାଳୁକ,ମୁଥା, କସେରୁ, ଗନ୍ଧତୃଣ, ଧନ୍ୟାକ, ଧନିଆ, ପିପ୍ପଳିମୂଳ, ବନ-ତୁଳସୀ, ଅନନ୍ତମୂଳ, ବବରିକା, ଚର୍ଭଟିକା ।

ସୁଗନ୍ଧିକ—ବି ସୁ+ଗନ୍ଧ+ଇକ)କହ୍ଲାର, କର୍ଣ୍ଣ, ପୁଷ୍କରମୂଳ,ସୁରପାନ୍ନୀ, ଉଶୀର, ବେଣାଚେର, ମହାଶାଳି, ତୁରୁଷ୍କ, ଲୋବାନ୍, ଗନ୍ଧକ,କଲାଇଗିର,ଶିଳାରସ, ବାସବନ୍ତି ଗୁଗୁଳ, କଇଥ, ପୁନ୍ନାଗ, ନାଗକେଶର ।

ସୁଗନ୍ଧିକା—ବି, ( ସୁଗନ୍ଧିକ+ଆ ) କୃଷ୍ଣ-ହରିଦ୍ରା, କସ୍ତୁରୀ, ଶ୍ୱେତଶାରିବା, ସ୍ୱର୍ଣ୍ଣକେତକୀ ।

ସୁଗନ୍ଧିକୁସୁମ—ବି. ସଦ୍‌ଗନ୍ଧଯୁକ୍ତ ପୁଷ୍ପ, ପୀତକରବୀର, ସ୍ପୃକ୍କା ।

ସୁଗନ୍ଧିକୁସୁମା—ବି.ସ୍ପୃକ୍କା, ପିଡ଼ଙ୍ଗଶାଗ ।

ସୁଗନ୍ଧିତ—ବିଂ.(ସୁଗନ୍ଧ+ଇତ)ସୁଗନ୍ଧ-ଯୁକ୍ତ, ସୁଗନ୍ଧିକୃତ, ସୁବାସିତ ।

ସୁଗନ୍ଧିତା—ବି. ସୌଗନ୍ଧ, ସୌରଭ ।

ସୁଗନ୍ଧିତେଜନ—ବି. ବେଢ଼ଷତୃଣ ।

ସୁଗନ୍ଧିଫଳା—ବି. ଜାଇଫଳ,ପୂଗଫଳ ଓ ଲବଙ୍ଗକଳିକା ଫଳ ।

ସୁଗନ୍ଧିମା—ବି. (ସୁଗନ୍ଧିନ୍+ଈ)ଆରାମ-ଶୀତଳା, ସ୍ୱର୍ଣ୍ଣକେତକୀ ।

ସୁଗନ୍ଧିଫଳ—ବି. ଶୀତଳଚନ୍ଦ୍ର,କବାବଚିନି

ସୁଗନ୍ଧିବର୍ଗ—ବି. ସୁଗନ୍ଧିଗଣ ଦେଖ ।

ସୁଗନ୍ଧିମୂଳ—ବି. ଉଶୀର, ବେଣାମୂଳ ।

ସୁଗନ୍ଧିମୂଷିକା—ବି. ଚୁଚୁନ୍ଦୁରୀ ମୂଷା ।

ସୁଗନ୍ଧୀ—ପୁଂ. କ୍ଳୀ, ବିଂ. ( ସୁଗନ୍ଧ+କ. ଇନ୍) ସୁଗନ୍ଧଯୁକ୍ତ, ସୁବାସବିଶିଷ୍ଟ ।

ସୁଗନ୍ଧୀକୃତ—ବିଂ. (ସୁଗନ୍ଧ+ଚ୍ୱି+କୃ +ତ)ଗନ୍ଧଯୁକ୍ତ କରାଯାଇଥିବା (ଗନ୍ଧ-ସ୍ନାନ ବସ୍ତ୍ର) ।

ସୁଗଭସ୍ତି—ବିଂ. (ବି.ଗ୍ରା) ଦୀପ୍ତିମାନ୍ ।

ସୁଗମ୍ଭୀର—ପୁଂ.ବିଂ, (ସୁ+ଗମ୍ଭୀର)ଅତି-ଗମ୍ଭୀର, ଅତଳସ୍ପର୍ଶ, (ସ୍ତ୍ରୀ) ସୁଗମ୍ଭୀରା ।

ସୁଗମ—ପୁଂ. ବିଂ. (ସୁ+ଗମ୍+ମି.ଅ ସୁକର, ଅନାୟାସରେ କରଣୀୟ, ଯେଉଁଠାକୁ ମନୁଷ୍ୟ ସହଜରେ ଯାଇ-ପାରେ; ସୁଗମ୍ୟ, ସହଜରେ ଲଭ୍ୟ, ଅନାୟାସବୋଧ,ସୁଜ୍ଞେୟ,(ସ୍ତ୍ରୀ)ସୁଗମା ।

ସୁଗମନ—ବିଂ. ଶୋଭନ ଗମନଯୁକ୍ତ, (ବି) ସୁନ୍ଦର ଗମନ ।

ସୁଗମ୍ଭୀର—ପୁଂ.ବିଂ(ସୁ+ଗମ୍ଭୀର)ଅତ୍ୟନ୍ତ ଗାମ୍ଭୀର୍ଯ୍ୟଯୁକ୍ତ, (ସ୍ତ୍ରୀ) ସୁଗମ୍ଭୀରା ।

ସୁଗମ୍ୟ—ପୁଂ. ବିଂ. (ସୁ+ଗମ୍ୟ)ସୁଗମ ଦେଖ, (ସ୍ତ୍ରୀ) ସୁଗମ୍ୟା ।

ସୁଗର—ବି. ହିଙ୍ଗୁଳ ।

ସୁଗର୍ଭକ—ବି. ଦ୍ୱିପୁଷ୍ପ ।

ସୁଗହନ—ବିଂ. (ସୁ+ଗହନ) ନିରବ-କାଶ, ଅତି ନିବିଡ଼, (ବି) ଉତ୍ତମ ବା ସୁନ୍ଦର ବନ ।

ସୁଗହନା—ବି. କୁମ୍ଭା, ଯଜ୍ଞ ସ୍ଥାନରେ ଅସ୍ପୃଶ୍ୟାଦି ବ୍ୟକ୍ତିମାନଙ୍କ ଦର୍ଶନ କର-ଣାର୍ଥ ଯେଉଁ ନିରବକାଶ ବେଷ୍ଟନ ବା ବାଡ଼ ଦିଆଯାଏ ।

ସୁଗାଇବା—ପ୍ରା. (ଲଣ୍ଡିଆ) କ୍ରି. ସ୍ନେହ-କରିବା ।

ସୁଗାନ୍ଧ—ବିଂ. ସୁନ୍ଦର ଗାନଯୁକ୍ତ ।

ସୁଗାଧ—ବିଂ. ଯେଉଁ ନଦୀରେ ସୁଖରେ ସ୍ନାନ କରାଯାଏ,ଯେଉଁ ନଦୀକୁ ଲୋକେ ସହଜରେ ପାରିହୋଇ ପାରନ୍ତି,ସୁତାର୍ଯ୍ୟା ।

ସୁଗାଲ—ବି. ବେଦସ୍ତା ଓ ସୁରେସପୀୟ କପର୍ଦ୍ଦୀରମତ ଏକ ଭ୍ରମଣଶୀଳ ଜାତି ।

ସୁଗୀତ—ବି. ସୁନ୍ଦର ଗାନ,ଉତ୍ତମରୂପେ ଗୀତ ।

ସୁଗୀତି—ବି. ଅତି ମନୋରମ ଗୀତ, ସୁନ୍ଦର ଗାନ ।

ସୁଗୁଣୀ—ପୁଂ. ବିଂ. ( ସୁଗୁଣ+ଇନ୍ ) ଉତ୍ତମ ଗୁଣବିଶିଷ୍ଟ, ଯାହାର ସୁଗୁଣ ସକଳ ଅଛି ।

ସୁଗୁନ୍ଦ୍ରା—ସ୍ତ୍ରୀ. ବି. ଗୁନ୍ଦ୍ରସିମି ବୃକ୍ଷ ।

ସୁଗୁପ୍ତ—ବି. (ସୁ+ଗୁପ୍ତ) ଅତି ଗୁପ୍ତ, ଉତ୍ତମରୂପେ ରକ୍ଷିତ ।

ସୁଗୁପ୍ତା—ବି, କପିକଚ୍ଛୁ, ବାଇଡ଼ଙ୍କ ।

ସୁଗୁରୁ—ବିଂ.ଅତିଶୟ ଗୁରୁ,ଉତ୍ତମ ଗୁରୁ-ଯୁକ୍ତ, (ପୁଂ.ବି) ଉତ୍ତମ ଗୁରୁ, ଉତ୍ତମ ଶିକ୍ଷକ ।

ସୁଗୂଢ଼—ବିଂ.(ସୁ+ଗୂଢ଼)ଅତିଶୟ ଗୁପ୍ତ ।

ସୁଗୃହ—ବି. ସୁନ୍ଦର ଘର, ( ବି.ଗ୍ରା ) ଚଞ୍ଚୁସୂଚକ ପକ୍ଷୀ, ବାୟାଚଢ଼େଇ,ଏକ-ପ୍ରକାର ହଂସ ।

ସୁଗୃହିଣୀ—ସ୍ତ୍ରୀ. ବି. ନାନାସୁଗୁଣବିଶିଷ୍ଟା ଗୃହିଣୀ ।

ସୁଗୃହୀ—ପୁଂ. ବି. ( ସୁଗୃହ+ଇନ୍ ) ସୁନ୍ଦରଗୃହର ସ୍ୱାମୀ,ସୁନ୍ଦରୀସ୍ତ୍ରୀଙ୍କ ସ୍ୱାମୀ, ସୁଗୃହ ଦେଖ ।

ସୁଗୃହୀତ—ବିଂ.(ସୁ+ଗୃହୀତ) ସୁନ୍ଦର-ରୂପେ ଗୃହୀତ ।

ସୁଗୃହୀତନାମା—ବିଂ,(ସୁଗୃହୀତ+ନାମନ୍) ପୁଣ୍ୟଶ୍ଲୋକ, ପ୍ରାତଃସ୍ମରଣୀୟ(ବ୍ୟକ୍ତି) ।

ସୁଗୋ—ସ୍ତ୍ରୀ. ବି. ପୂଜନୀୟା ଗାଭୀ ।

ସୁଗୋଚର—ବିଂ. ( ସୁ+ଗୋଚର ) ଉତ୍ତମରୂପେ ଗୋଚର,(ଗ୍ରା.ବିଂ)ସୁସ୍ପଷ୍ଟ ।

ସୁଗୋପ୍ୟ—ବିଂ.ଅତିଶୟ ଗୋପ୍ୟ,ଅତ୍ୟନ୍ତ ଗୋପନ ଯୋଗ୍ୟ ।

ସୁଗୋଲ(ଳ)-ବି.(ସୁ+ଗୋଲ) ସମ୍ୟକ୍-ରୂପେ ଗୋଲାକାର, ସମ୍ପୂର୍ଣ୍ଣ ଗୋଲ ।

ସୁଗୌତମ—ପୁଂ. ବି. ଗୌତମ, ଶାକ୍ୟମୁନି ।

ସୁଗ୍ରନ୍ଥ—ବି. ଉତ୍ତମ ପୁସ୍ତକ ।

ସୁଗ୍ରନ୍ଥି—ବିଂ. (ବ.ବ୍ରୀ) ସୁନ୍ଦର ଗ୍ରନ୍ଥିଯୁକ୍ତ, (ବି) ଚୋରକ ନାମକ ଗନ୍ଧଦ୍ରବ୍ୟ, ପିପ୍ପଳୀ ମୂଳ ।

ସୁଗ୍ରହ—ବି.ଫଳିତଜ୍ୟୋତିଷ ଅନୁସାରେ ଶୁଭଫଳଦ ଗ୍ରହ (ଯଥା—ବୃହସ୍ପତି, ଶୁକ୍ର) ।

ସୁଗ୍ରହଣ—ବି. ଉତ୍ତମରୂପେ ଗ୍ରହଣ ।

ସୁଗ୍ରୀବ—ପୁଂ. ବିଂ. (ସୁ=ସୁନ୍ଦରଅଟେ ଗ୍ରୀବା ଯାହାର) ବ.ବ୍ରୀ; ସୁନ୍ଦରଗ୍ରୀବା ବିଶିଷ୍ଟ, (ସ୍ତ୍ରୀ) ସୁଗ୍ରୀବା, (ବି) ବିଷ୍ଣୁଙ୍କ ୪ଅଶ୍ୱ ମଧ୍ୟରୁ ଏକଅଶ୍ୱର ନାମ,ରାମାୟଣ ବର୍ଣ୍ଣିତ ଶ୍ରୀରାମ ମିତ୍ର କପୀଶ୍ୱର, ଚଣ୍ଡୀ ବା ଦେବୀ ମାହାତ୍ମ୍ୟରେ ବର୍ଣ୍ଣିତ ଅସୁର ବିଶେଷ,ବର୍ତ୍ତମାନ ଆବସର୍ପିଣୀର(ଯୁଗ) ନବମଜିନ ପିତା, ଅର୍ହନ୍ତ ପିତା, ଶିବ, ଇନ୍ଦ୍ର, ରାଜହଂସ, ପର୍ବତବିଶେଷ,ଅସ୍ତ୍ରବିଶେଷ, ନାଗଭେଦ, ଶଙ୍ଖ, ଘୀର, ଜଳାଶୟ ।

ସୁଗ୍ରୀବା—ବି. (କ.ଧା) ସୁନ୍ଦର ଗ୍ରୀବା, ସ୍ତ୍ରୀ.ବିଂ; ( ସୁଗ୍ରୀବ+ଆ ) ସୁଗ୍ରୀବର ସ୍ତ୍ରୀଲିଙ୍ଗ ।

ସୁଗ୍ରୀବୀ—ବି.(ସୁଗ୍ରୀବ + ଈ) ତାମ୍ର ଗର୍ଭଜାତା କଶ୍ୟପ ଦୁହିତା (ସୁଗ୍ରୀବୀଠାରୁ ପକ୍ଷୀମାନେ ଜନ୍ମ ଲଭିଥିଲେ) ।

ସୁଗ୍ରୀବେଶ—ବି. (୬ତତ୍) (ସୁଗ୍ରୀବ+ଈଶ) ରାମଚନ୍ଦ୍ର ।

ସୁଗ୍ଲ—ବିଂ. (ସୁ+ଗ୍ଲୈ+କ.ଅ)ଅତ୍ୟନ୍ତ ଗ୍ଲାନିବିଶିଷ୍ଟ ।

ସୁଘଟ—ବିଂ. ଯାହା ସୁଖରେ ହୁଏ, ଯାହା ଅନାୟାସରେ ଘଟିଥାଏ ।

ସୁଘଟଣ—ଗ୍ରା.ବି ଓ ବିଂ.ସୁଗଠନ ଦେଖ

ସୁଘଟନ—ବି.ଶୁଭଯୁକ୍ତ ଘଟନା,ସୌଭାଗ୍ୟ. (ଗ୍ରା.ବିଂ) ସୁନ୍ଦର ।

ସୁଘଟିତ—ବିଂ. ( ସୁ+ଘଟ୍+ର୍ମ.ତ ) ସୁନ୍ଦର ରୂପରେ ସଜ୍ଜିତ,ଉତ୍ତମରୂପେ କଳିତ ।

ସୁଘଡ଼ି—ଗ୍ରା. ବି. ସୁସମୟ, ଶୁଭ ସମୟ

ସୁଘୋର—ବିଂ. ଅତିଶୟ ଘୋର, ଅତି ଗାଢ଼ ।

ସୁଘୋଷ—ବିଂ. (ବ.ବ୍ରୀ) ସୁନ୍ଦର ସ୍ୱରବିଶିଷ୍ଟ, (ବି) ନକୁଳଙ୍କ ଶଙ୍ଖର ନାମ, ବାଦ୍ୟଯନ୍ତ୍ରବିଶେଷ ।

ସୁଙ୍କେଇବା—ପ୍ରା.(କଟକ)କ୍ରି. ସଙ୍କେଇବା

ସୁଙ୍ଗା(ଘା)—ଗ୍ରା.ବି ଓ ବିଂ. ଶୁଙ୍ଗା ।

ସୁଙ୍ଘା(ଙ୍ଘେ)ଇବା—ଗ୍ରା.କ୍ରି. ଶୁଙ୍ଘାଇବା ।

ସୁଙ୍ଘାସୁଙ୍ଘି—ଗ୍ରା.ବି. ବିଶେଷ ଭାବରେ ଶୁଙ୍ଘିବା ।

ସୁଙ୍ଘିବା—ଗ୍ରା.କ୍ରି. ଆଘ୍ରାଣ କରିବା ।

ସୁଚକ୍ଷୁ—ବିଂ. ସୁନ୍ଦର ଚକ୍ଷୁଯୁକ୍ତ, (ବି) ଉଡ଼ୁମ୍ବର ଶିବ, ଉତ୍ତମ ଲୋଚନ ।

ସୁଚଞ୍ଚୁକା—ବି. ମହାଚଞ୍ଚୁ ଶାକ ।

ସୁଚନ୍ଦନ—ବି.ପତ୍ରାଙ୍ଗଚନ୍ଦନ,ବକମକାଠ

ସୁଚତୁର—ବିଂ. ଅତିଶୟ ଚତୁର, ଅତି ବୁଦ୍ଧିମାନ୍ ।

ସୁଚନ୍ଦ୍ର—ବି.ସମାଧିଭେଦ, ଦେବଗନ୍ଧର୍ବଭେଦ, ସିଂହିକାର ପୁତ୍ର, ହେମଚନ୍ଦ୍ରଙ୍କର ପୁତ୍ର, ଧୂମାଶ୍ୱର ପିତା ।

ସୁଚରିତ—ବି.ସଦାଚାର,ସଦ୍‌ବ୍ୟବହାର, (ପୁଂ.ବିଂ)ବ.ବ୍ରୀ;ସଚ୍ଚରିତ୍ର, ସତ୍ସ୍ୱଭାବବିଶିଷ୍ଟ, (ସ୍ତ୍ରୀ) ସୁଚରିତା ।

ସୁଚରିତ୍ର—ପୁଂ.ବିଂ. (ବ.ବ୍ରୀ) ସଚ୍ଚରିତ୍ର, (ସ୍ତ୍ରୀ) ସୁଚରିତ୍ରା, ( ବି-କ.ଧା ) ଉତ୍ତମ ଚରିତ୍ର ।

ସୁଚରିତ୍ରା—ସ୍ତ୍ରୀ.ବି.ସାଧ୍ୱୀ ସ୍ତ୍ରୀ,ଉତ୍ତମଚରିତ୍ରା ସ୍ତ୍ରୀ, (ସ୍ତ୍ରୀ.ବିଂ) ସୁଚରିତ୍ରର ସ୍ତ୍ରୀଲିଙ୍ଗ ।

ସୁଚର୍ମା—ପୁଂ.ବିଂ.(ବ.ବ୍ରୀ—ସୁ+ଚର୍ମନ୍) ଶୋଭନ ଚର୍ମବିଶିଷ୍ଟ, (ବି) ଭୂର୍ଜବୃକ୍ଷ ।

ସୁଚୁ(ଚେ)ଇବା—ଗ୍ରା.କ୍ରି. (ସଂ-ସୂଚନା) ସୂଚନା କରିବା, ଚେତାଇବା ।

ସୁଚୁରୀ—ବି. ଅକ୍ରୂରର ଶ୍ୱସା ।

ସୁଚୁରୁ—ବିଂ. (ସୁ+ଚୁରୁ)ସୁମନୋହର. ଅତି ସୁନ୍ଦର, (ପୁଂ.ବିଂ)ରୁକ୍ମିଣୀ ଗର୍ଭଜାତ ଶ୍ରୀକୃଷ୍ଣଙ୍କ ଏକ ପୁତ୍ର, ବିଶ୍ୱକ୍ସେନଙ୍କ ପୁତ୍ର ।

ସୁଚୁରୁରୁପେ—ଗ୍ରା.କ୍ରି. ବିଂ. ( ବ.ବ୍ରୀ ) ସୁନ୍ଦରରୂପେ,ଅତିଶୟ ମନୋଜ୍ଞ ଭାବେ

ସୁଚୁଲ୍(ଲି)—ଗ୍ରା.ବି. ଉତ୍ତମ ଆଚରଣ, ସଦାଚାର, ଉତ୍ତମ ସ୍ୱଭାବ ।

ସୁଚ—ଗ୍ରା.ବି. (ସଂ-ସୁଚ=ମୈଥୁନବନ୍ଧବିଶେଷ) ଶୃଙ୍ଗାର ରସ ।

ସୁଚିକ୍କଣ—ବିଂ. ଅତି ଚିକ୍କଣ ବା ମସୃଣ, ଖୁବ୍ ସ୍ନିଗ୍ଧ ।

ସୁଚିତ୍ତ—ବି. ଉଦାରଚିତ୍ତ, ପ୍ରସନ୍ନ ମନ, (ପୁଂ.ବିଂ)ବ.ବ୍ରୀ; ସ୍ଥିରଚେତାଃ,ଜିତେନ୍ଦ୍ରିୟ, (ସ୍ତ୍ରୀ) ସୁଚିତ୍ତା ।

ସୁଚିତ୍ର—ବି. ସୁନ୍ଦର ଚିତ୍ର, (ବିଂ)ସୁନ୍ଦର ରୂପେ ଚିତ୍ରିତ, ବିଚିତ୍ର ।

ସୁଚିତ୍ରକ—ବିଂ. ସୁଚିତ୍ର ଦେଖ, (ବି) ମତ୍ସ୍ୟରଙ୍କ,ମାଛରଙ୍କା ଚଢ଼େଇ,ଚିତ୍ରସର୍ପ, ଚିତ୍ତସାପ ।

ସୁଚିତ୍ରବୀଜା—ସ୍ତ୍ରୀ. ବି. ବିଡଙ୍ଗ ।

ସୁଚିତ୍ରା—ବି. ସୁଚିତ୍ରର ସ୍ତ୍ରୀଲିଙ୍ଗ, (ବି) ରାଧାଙ୍କ ସଖୀବିଶେଷ, ଚିର୍ଭଟା, ଫୁଟିକାକୁଡ଼ି ।

ସୁଚିତ୍ରିତ—ବିଂ. ସୁଚିତ୍ର ଦେଖ; (ସ୍ତ୍ରୀ) ସୁଚିତ୍ରିତା ।

ସୁଚିନ୍ତା—ବି. (କ.ଧା) ଉତ୍ତମ ଚିନ୍ତା ।

ସୁଚିନ୍ତିତ—ବିଂ.ସମ୍ୟକ୍ ରୂପେ ଚିନ୍ତିତ ।

ସୁଚିନ୍ତିତାର୍ଥ—ପୁଂ. ବି. ମାରପୁତ୍ରଭେଦ, (ବିଂ) ଯେ ଅର୍ଥକୁ ଉତ୍ତମ ରୂପେ ଚିନ୍ତା କରିଅଛି ।

ସୁଚିବା—ଗ୍ରା. କ୍ରି. ବିଗୁରିକରିବା ।

ସୁଚିର—ବି.ଅତି ଦୀର୍ଘକାଳ, (ବିଂ) ଅତି ଦୀର୍ଘକାଳ ସ୍ଥାୟୀ, ଚିରସ୍ଥାୟୀ, ପ୍ରାଚୀନ ।

ସୁଚିରକେତୁ—ବି. ରେସମୀ ପତାକା ।

ସୁଚିରାୟୁଃ—ବି. ( ସୁଚିର+ଆୟୁସ୍ ) ଦେବତା,(ବିଂ)ଯେ ଦୀର୍ଘକାଳ ବଞ୍ଚେ, ଅତି ଦୀର୍ଘାୟୁ । [ କନ୍ୟା ।

ସୁଚୀରା—ସ୍ତ୍ରୀ.ବି. ଯାଦବବଂଶୀୟ, ଶ୍ୱଫଲ୍କ

ସୁଚୁକ୍ରିକା—ବି. ତନ୍ତୁଳ, କଇଆ ।

ସୁଚୁଟୀ—ବି. (ସୁ+ଚୁଟ୍+ଣ.ଅ+ଈ) ପଦାର୍ଥକୁ ଅଗ୍ନିରୁ ଉଠାଇବା ପାଇଁ ବ୍ୟବହୃତ ଲୌହର ଦ୍ୱିବାହୁକ ଯନ୍ତ୍ର, ଚିମୁଟା, ସଣ୍ଡୁଆସି ।

ସୁଚେତନ—ବିଂ.ସୁପ୍ରସିଦ୍ଧ,ଉତ୍ତମ ଜ୍ଞାନଯୁକ୍ତ

ସୁଚେତା—ଗ୍ରା. ବିଂ ସୁଚେତାଃ ଦେଖ

ସୁଚେତାଃ—ପୁଂ.ସ୍ତ୍ରୀ.ବିଂ. (ସୁ+ଚେତସ୍)

ବି.ଗ୍ରା; ସୁହୃଦୟ, ସାଧୁ-ହୃଦୟବିଶିଷ୍ଟ, ସୁଚତୁ, ସତର୍କ ।

ସୁଚେଲ(କ)—ବି.(କ.ଧା) ସୁନ୍ଦର ବସ୍ତ୍ର, ସରୁଲୁଗା, (ବିଂ) ଉତ୍ତମ ବସ୍ତ୍ରଯୁକ୍ତ ।

ସୁଚେଷ୍ଟରୂପ—ପୁଂ. ବି. ବୁଦ୍ଧଦେବ ।

ସୁଛନ୍ଦ—ବି. ସୁଗଠଣ, (ବିଂ) ସୁନ୍ଦର ଗଠଣଯୁକ୍ତ ।

ସୁଛନ୍ଦୀ—ସ୍ତ୍ରୀ. ବି. ସିନ୍ଧୁନଦୀର ପୂର୍ବତମ ଶାଖା, ଶତଦ୍ରୁ ନଦୀ ।

ସୁଛଦ—ବିଂ. ସୁନ୍ଦର ଆଚ୍ଛାଦନବିଶିଷ୍ଟ, ସୁନ୍ଦର ପ୍ରଲେପଯୁକ୍ତ ।

ସୁଜନ—ବି. ସଜ୍ଜନ, ସାଧୁ, ଭଦ୍ରବ୍ୟକ୍ତି, (ଗ୍ରା; ଯାଜପୁର.ବି) ସଜନା (ଗଛ) ।

ସୁଜନତା-ବି(ସୁଜନ+ଭା.ତା) ସଜ୍ଜନତା, ସୌଜନ୍ୟ, ସାଧୁତା ।

ସୁଜନମ୍ମନ୍ୟ—ପୁଂ. ବି. ସୁଜନମାନ୍ତୀ,ଯେ ନିଜକୁ ସଜ୍ଜନ ବୋଲି ମନେ କରେ ।

ସୁଜନା—ଗ୍ରା. ( ଯାଜପୁର ) ବି. ସଜନା (ଗଛ) ।

ସୁଜନ୍ମା—ବିଂ. ( ସୁ + ଜନ୍ମନ୍ ) ବି.ଗ୍ରା; ବିବାହିତ ପତିଙ୍କ ଔରସଜାତ(ସନ୍ତାନ), ସଦ୍‌ବଂଶଜାତ.ଶ୍ରେଣଜନ୍ମା. ଅତିସାଧୁ ।

ସୁଜସ୍ୟ—ବିଂ.(ସୁ + ଜି + ମି.ଅ)ସୁଜେୟ ଦେଖ ।

ସୁଜଳ—ବି. ସୁନ୍ଦରଜଳ, ପବିତ୍ରଜଳ, କମଳ, ପଦ୍ମ, (ପୁଂ.ବିଂ-ବି.ଗ୍ରା) ସୁନ୍ଦର ଜଳଯୁକ୍ତ, ଯଥେଷ୍ଟ ଜଳଯୁକ୍ତ, ସୁଜଳବାନ୍, (ସ୍ତ୍ରୀ) ସୁଜଳା ।

ସୁଜଳବତୀ—ସ୍ତ୍ରୀ. ବିଂ. (ସୁଜଳ + ବତ୍ + ଈ)କ.ଧା; ଶୋଭନ ଜଳବିଶିଷ୍ଟା, ପ୍ରଚୁର ଜଳଶାଳିନୀ ।

ସୁଜଳବାନ୍—ପୁଂ,ବିଂ(ସୁଜଳ+ବତ୍) ପବିତ୍ର ଜଳଯୁକ୍ତ, ବିଶୁଦ୍ଧ ଜଳଯୁକ୍ତ, ସୁସ୍ୱାଦୁ ଜଳଯୁକ୍ତ, ଯଥେଷ୍ଟ ଜଳଯୁକ୍ତ ।

ସୁଜଳ୍ପ—ବି. (ବି.ଗ୍ରା) ବାକ୍ୟବିଶେଷ, ସରଳତା, ସତ୍ୟ, ଗାମ୍ଭୀର୍ଯ୍ୟ ଓ ସହୃଦୟତାପୂର୍ଣ୍ଣ ଓ ଶିଷ୍ଟତାଯୁକ୍ତ ବାକ୍ୟ ।

ସୁଜାଉଦ୍ଦୌଲ୍ଲା—ଅଯୋଧ୍ୟାର ଜନୈକ ନବାବ ।

ସୁଜାକ୍—ଯା. ବି. ଔପସର୍ଗିକ ମେହ ।

ସୁଜାଣ—ଗ୍ରା.ପୁଂ. ସ୍ତ୍ରୀ. ବିଂ (ସଂ-ସୁଜ୍ଞ) ସୁଜ୍ଞ ଦେଖ, ଚତୁର ।

ସୁଜାଣମଣି—ଗ୍ରା. ସ୍ତ୍ରୀ. ବି. ସୁଜ୍ଞା ସ୍ତ୍ରୀ, ପଣ୍ଡିତା ସ୍ତ୍ରୀ, ଚତୁରା ସ୍ତ୍ରୀ ।

ସୁଜାତ—ପୁଂ. ବିଂ. ସୁଜନ୍ମା ଦେଖ ।

ସୁଜାତକା—ବି. କୁଙ୍କୁମଶାଳି, ହୈମନ୍ତିକ ଶାଳିଧାନ୍ୟବିଶେଷ ।

ସୁଜାତା—ବି. ତୁବରୀ,ସୌରାଷ୍ଟ୍ରମୃତ୍ତିକା, ଉଦ୍ଦାଲକ କନ୍ୟା,ବୁଦ୍ଧଦେବଙ୍କ ବୁଦ୍ଧତ୍ୱ-ପ୍ରାପ୍ତି ପରେ ତାଙ୍କୁ ନିଜ ଘରକୁ ଡାକି ଭୋଜନ କରାଇଥିବା ଜଣେ ଗ୍ରାମୀଣ କନ୍ୟା ।

ସୁଜାମି—ବିଂ. ଭଗିନୀ ଭ୍ରାତାଦି ଆତ୍ମୀୟ ସ୍ୱଜନଯୁକ୍ତ ।

ସୁଜି—ଗ୍ରା. ବି. (ସଂ-ସମୀଦ) ଅଟାର ବା ମଇଦାର ଖୁଦ,ଗହମଚୂର୍ଣ୍ଣର ସୂକ୍ଷ୍ମାଂଶ, (ଗ୍ରା. ସମ୍ବ. ବି) ଛୁଞ୍ଚ ।

ସୁଜିନ—ଗ୍ରା.ବି.ଦୁଇ ପ୍ରସ୍ଥ କନା ମଧ୍ୟରେ ଖୁବ୍ ପତଳା ତୂଳା ଦିଆଯାଇ ତା ଉପରେ ସୂଚୀଦ୍ୱାରା ନାନାଚିତ୍ର କରାଯାଇଥିବା ଆସନ ବା ଛୋଟ ଚଦର, ସୂଚୀକର୍ମ ଦ୍ୱାରା ଅଲଙ୍କୃତ କାର୍ପାସବସ୍ତ୍ରର ଶ୍ରେଷ୍ଠ ଆସନ ।

ସୁଜିହ୍ୱ—ପୁଂ. ବିଂ. ବି.ଗ୍ରା; (ସୁ + ଜିହ୍ୱା + ଅ) ସୁନ୍ଦର ଜିହ୍ୱାବିଶିଷ୍ଟ, ମଧୁର-ଭାଷୀ, (ସ୍ତ୍ରୀ) ସୁଜିହ୍ୱା ।

ସୁଜୀବନ୍ତୀ—ସ୍ତ୍ରୀ, ବି. ସ୍ୱର୍ଣ୍ଣଜୀବନ୍ତୀ ।

ସୁଜୀବିତ—ବି. ଉତ୍ତମ ଜୀବନ, ସଫଳ ଜନ୍ମ, (ବିଂ) ଉତ୍ତମରୂପେ ଜୀବିତ ।

ସୁଜୀର୍ଣ୍ଣ—ବିଂ.ଉତ୍ତମରୂପେ ଜୀର୍ଣ୍ଣ,ଅତ୍ୟନ୍ତ ଚିରା, ଖୁବ୍ ସରୁ ।

ସୁଜେୟ—ବିଂ. (ସୁ + ଜେୟ) ଯାହାକୁ ଅତି ସହଜରେ ଜୟ କରାଯାଇପାରେ ।

ସୁଜ୍ଞ—ପୁଂ.ବିଂ.(ସୁ + ଜ୍ଞା+କ.ଅ)ବିଜ୍ଞ, ପଣ୍ଡିତ, ବିଦ୍ୱାନ୍,ଅଭିଜ୍ଞ,ସୁବିବେଚକ, (ସ୍ତ୍ରୀ) ସୁଜ୍ଞା ।

ସୁଜ୍ଞାତ—ବିଂ. (ସୁ + ଜ୍ଞାତ)ଉତ୍ତମରୂପେ ଜ୍ଞାଣା, ସୁପରିଚିତ ।

ସୁଜ୍ଞାନ—ବି. ବ୍ରହ୍ମଜ୍ଞାନ, ଉତ୍ତମ ଜ୍ଞାନ ।

ସୁଜ୍ଞାନୀ—ବିଂ. ବ୍ରହ୍ମଜ୍ଞାନୀ,(ଗ୍ରା.ବିଂ) ଯେଉଁ ବ୍ୟକ୍ତି ଆପଣା ଜ୍ଞାନକୁ ପରର ଉପ-କାରରେ ଲଗାଏ ।

ସୁଜ୍ଞେୟ—ବିଂ. (ସୁ+ଜ୍ଞେୟ) ଯାହା ସହଜରେ ଜଣାଯାଏ ।

ସୁଝ—ଗ୍ରା. ବି ଓ ବିଂ. ଶୁଝ ।

ସୁଝା(ଝେ)ଇବା—ଗ୍ରା. କ୍ରି. ଶୁଝାଇବା, ବୁଝାଇବା, ସମଜାଇବା ।

ସୁଝିବା—ଗ୍ରା. କ୍ରି. ପରିଶୋଧ କରିବା, ବୋହାରେ ଜାତକ ମିଳିବା, ବୁଝିବା ।

ସୁଝୀନ—ଗ୍ରା.ବିଂ, ଅତି ସୂକ୍ଷ୍ମ ।

ସୁଟ୍—ଯା. ବି. ପୋଷାକର ଗୋଟିଏ ସାଜ, ଅଲଙ୍କାରର ଏକସଜ, ଦେବାଣି ମକଦ୍ଦମା, ବନ୍ଧୁକରେ ଫାଏର୍ କରିବା, ( ଗ୍ରା.ଅ-ଧ୍ୱନ୍ୟନୁକରଣ ) ବୋତଲର ଠିପି ବାହାରିଗଲାବାର ଧୀର ଶବ୍ଦ,ଅଫିମର ଗୁଲି ବା ମଦକ ହୁକ୍କା ଟାଣିବାର ଶବ୍ଦ, ଗୁଡ଼୍‌ଗୁଡ଼୍‌ସୁଟ୍, ପରସ୍ପର ଗୋପନରେ କଥାବାର୍ତ୍ତା କରିବାର ଶବ୍ଦ ।

ସୁଟ୍‌କରିବା—ଗ୍ରା. କ୍ରି. ବନ୍ଧୁକ ଫାଏର କରିବା, ଲାଗିବା, ଉପଯୋଗୀ ହେବା ।

ସୁଟ୍‌କେସ—ଯା.ବି.ପୋଷାକ ଓ ଦୈନିକ ବ୍ୟବହାର୍ଯ୍ୟ ଦ୍ରବ୍ୟାଦି ରଖିବାର ବାକ୍ସ ।

ସୁଟ୍‌ସାଟ୍‌କରିବା—ଗ୍ରା. କ୍ରି. କୌଣସି ଗୁପ୍ତ ବିଷୟକୁ ପ୍ରକାଶ କରିବା,ଶୋର୍ କରିବା ।

ସୁଟ୍‌ସାଟ୍ ନକରିବ୍ୟ—ଗ୍ରା.( ବାକ୍ୟ ) ଏ ବିଷୟ ଅନ୍ୟତ୍ର ଅପ୍ରକାଶ୍ୟ, ଏ କଥା ଅନ୍ୟଠାରେ ପ୍ରକାଶ କରିବା ଉଚିତ ନୁହେ ।

ସୁଟୁ(ଧାତୁ)—ତାଚ୍ଛିଲ୍ୟ ବା ଅନାଦର କରିବା ।

ସୁଠାଣି—ଗ୍ରା.ବିଂ. (ସଂ-ସୁଷ୍ଠୁ) ସୁନ୍ଦର ।

ସୁଠାମ—ଗ୍ରା.ବିଂ. ସୁଗଠିତ, ସୁଶ୍ରୀ, ସୁନ୍ଦର ।

ସୁଡ଼୍(ଡ଼ୁ)ସୁଡ଼୍(ଡ଼ୁ)—ଗ୍ରା.ଅବ୍ୟ.(ଧ୍ୱନ୍ୟନୁ-କରଣ) ପାଣିଆ ଦ୍ରବ୍ୟ ହାପୁରିବା ଶବ୍ଦ

ସୁଡ଼ଉଲ—ଗ୍ରା.ପୁଂ, ଓ ସ୍ତ୍ରୀ.ବିଂ,ସୁଗଠନ ।

ସୁଡ଼(ଢ଼)କା—ଗ୍ରା.ପୁଂ. ଓ ବି. ବଂ. ସୋଡ଼କା ଦେଖ ।

ସୁଡ଼(ଢ଼)କିବା—ଗ୍ରା.କ୍ରି.(ଧ୍ୱନ୍ୟନୁକରଣ) ସୋଡ଼କିବା, ସୁଡ଼୍ ସୁଡ଼୍ ଶବ୍ଦ କରି ଜଳୀୟ ବା ଜଳମିଶ୍ରିତ ବସ୍ତୁ ଖାଇବା ।

ସୁଡ଼(ଢ଼)ଙ୍ଗ—ଗ୍ରା. ବି. ( ସଂ-ସୁରଙ୍ଗ । ପାହାଡ଼ ବା ମାଟି ଭିତରେ ଭିତରେ ଦୂରକୁ ଖୋଳାଯାଇଥିବା ଲମ୍ବ ଗଳି ।

ସୁଡ଼ୀ—ଗ୍ରା.ବି. ସର୍ଜିକା କ୍ଷାର ।

ସୁଡ଼ୁଗସ୍ତା—ପ୍ରା. (ସିଂହ) ବି. କେବଳ ମନୁଷ୍ୟ ଚାଲିଲା ଭଳି ରାସ୍ତା ।

ସୁଡ଼ୀନ—ବି,(ସୁ+ଡ଼ୀନ)ପକ୍ଷୀଙ୍କ ଗତି-ବିଶେଷ ।

ସୁଡ଼ୀନକ—ବି. ପକ୍ଷୀମାନଙ୍କର ଗତି-ବିଶେଷ ।

ସୁଢ଼ଙ୍ଗ—ଗ୍ରା.ବି.ଉତ୍ତମ ଘାଟ, (ଗ୍ରା.ବଂ) ସୁନ୍ଦର ।

ସୁଢ଼ଲ(ଳ)—ଗ୍ରା.ବଂ.ସୁନ୍ଦର,ସୁଗଠିତ. (ଗ୍ରା.ବି) ରୂପସୌନ୍ଦର୍ଯ୍ୟ, ସୁଷମା ।

ସୁଢ଼ଳ—ଗ୍ରା.ବି. ଦେବତା, ମହାଦେବ, ଶିବ, (ଗ୍ରା.ବଂ) ସୁଡ଼ୌଲ, ସୌଷ୍ଠବ-ସମ୍ପନ୍ନ ।

ସୁଢ଼ଳଦେବ—ଗ୍ରା.ବି. ଓଡ଼ିଶା ବାମଣ୍ଡା ରାଜ୍ୟର ପୂର୍ବତନ ଅଧୀଶ୍ୱର, ପୂର୍ବତନ ସର୍ ବାସୁଦେବ ସୁଢ଼ଳ ଦେବଙ୍କ ନାତି ରାଜା ଦିବ୍ୟଶଙ୍କର ସୁଢ଼ଳଦେବ, ବାମଣ୍ଡା ରାଜବଂଶରେ ଏକ ପୁରୁଷ ଛଡ଼ା ରାଜାଙ୍କର ଉପାଧି ।

ସୁଣ(ଣୁ)ସୁଣ(ଣୁ)—ଗ୍ରା.ଅବ୍ୟ.(ଧ୍ୱନ୍ୟନୁକରଣ) ଶରଦି ଯୋଗୁଁ ଶିଙ୍ଘାଣିଯୁକ୍ତ ନାକରୁ ବାହାରିବା ଶବ୍ଦ ।

ସୁଣ(ଣ୍ଣ)କା—ଗ୍ରା. ବଂ. ଶରଦି ହେତୁ ଫୁଲୁକା (ମୁହଁ), ଶୋଥଯୁକ୍ତ (ମୁହଁ) ।

ସୁଣ(ଣ୍ଣ)ସୁଣିଆ—ଗ୍ରା. ବଂ. ଶରଦିଆ, ସୁଣ୍ଣକା ଦେଖ, (ଗ୍ରା.ବି)ଔଷଧି ଶାକ-ବିଶେଷ, ସୁନୁସୁନିଆ ଶାଗ ।

ସୁଣ୍ଠା—ଗ୍ରା.ବଂ. ( ସଂ-ସଷ୍ଠାପିତ )ଠୁଣ୍ଠା ଦେଖ, (ଗ୍ରା.ବି) ଶୁଷ୍କଦ୍ରବ୍ୟ ।

ସୁଣ୍ଠି—ଗ୍ରା.ବି. ଠୁଣ୍ଠି ଦେଖ ।

ସୁଣ୍ଡିଆ—ଗ୍ରା.ପୁଂ.ବଂ. ଶୁଣ୍ଡିଆ ଦେଖ ।

ସୁତ୍ର—ପ୍ରା. (ସମ୍ବଲପୁର, ଭୁଲିଆ ବା ତନ୍ତୀଙ୍କ ଭାଷା) ସୂତା, ସୂତ୍ର, (ବଲ-ଙ୍ଗିରପାଟଣା)ବି. କୁଲ୍ଲା ।

ସୁତ୍ରଘାଇ—ପ୍ରା.(ସମ୍ବ)ବି. ବିଲର କଳା-ଧାରରେ ପାଣି ପଶିବାପାଇଁ ଖୋଳା-ଯାଇଥିବା ଛୋଟ ନାଳିଆ ।

ସୁତ୍ରୁଲ—ଗ୍ରା.ବି. ସୁତୁଲି ଦେଖ ।

ସୁତ—ପୁଂ. ବି. ( ସୁ+ମିତ ) ପୁତ୍ର, ତନୟ, ରାଜପୁତ୍ର, (ଜ୍ୟୋତିଷ) ଜନ୍ମ କୁଣ୍ଡଳୀରେ ଲଗ୍ନର ପଞ୍ଚମ ଗୃହ, ଦଶମ ମନୁଙ୍କ ପୁତ୍ର, (ପୁଂ.ବଂ) ଜାତ, ଉତ୍ପନ୍ନ, ସମ୍ଭବ, ନିଷ୍ପୀଡ଼ିତ, ( ପ୍ରା.ବାଲେ.ବି ) ଶୋଥ ରୋଗ ।

ସୁତକ—ପୁଂ. ବି. (ସୁତ+ସ୍ୱାର୍ଥେ.କ) ପୁତ୍ର, (ସ୍ତ୍ରୀ) ସୁତକା, ସୁତିକା ।

ସୁତକ—ବି.(ସୁତ+କ) ଜନନାଶୌଚ ଛୁତକିଆ,ଶିଶୁର ଜନ୍ମାବଧି ଏଗାରଦିନ ପର୍ଯ୍ୟନ୍ତ ଶିଶୁର କୁଟୁମ୍ବମାନଙ୍କୁ ଲାଗିବା ଅଶୌଚ ।

ସୁତକା—ସ୍ତ୍ରୀ.ବି. (ସୁତକ+ଆ) ସୁତ-କର ସ୍ତ୍ରୀଲିଙ୍ଗ, କନ୍ୟା ।

ସୁତଜୀବକ—ବି. ପୁତ୍ରଜୀବକ ବୃକ୍ଷ ।

ସୁତତ୍ୱ—ବି. (ସୁତ+ତ୍ୱ) ସୁତର ଭାବ ବା ଧର୍ମ ।

ସୁତନୟ—ପୁଂ. ବଂ. ସୁପୁତ୍ରଯୁକ୍ତ,(ପୁଂ. ବି) ସୁପୁତ୍ର ।

ସୁତନିର୍ବିଶେଷରେ—ଗ୍ରା. କ୍ରି.ବଂ. ପୁତ୍ର-ପ୍ରତି ଯେଉଁପରି ବ୍ୟବହାର, ପାଳନ, ସ୍ନେହ ବା ଦୃଷ୍ଟି କରାଯାଏ ସେହିପରି ।

ସୁତନୁ—ବି. (କ.ଧା) ସୁନ୍ଦର ଦେହ, କୃଶାଙ୍ଗ, (ସ୍ତ୍ରୀ) ନାରୀ, ବସୁଦେବଙ୍କର ଏକ ଉପପତ୍ନୀ, ଉଗ୍ରସେନଙ୍କର ଏକ କନ୍ୟା, ଅକ୍ରୂରଙ୍କ ପତ୍ନୀ,କୃଶାଙ୍ଗୀ (ସ୍ତ୍ରୀ), (ପୁଂ) ଗନ୍ଧର୍ବବିଶେଷ, ଉଗ୍ରସେନଙ୍କର ଏକ ପୁତ୍ର, ମର୍କଟବିଶେଷ, (ପୁଂ.ବଂ) ବ.ବ୍ରୀ; ସୁନ୍ଦର ଅଙ୍ଗବିଶିଷ୍ଟ, ( ସ୍ତ୍ରୀ ) ସୁନ୍ଦରୀ, ଯେଉଁ ସ୍ତ୍ରୀର ସର୍ବାବୟବ ସୁନ୍ଦର, କୃଶାଙ୍ଗୀ. (ସ୍ତ୍ରୀ) ସୁତନୁ ।

ସୁତନୁତା—ସ୍ତ୍ରୀ. ବି. ( ସୁତନୁ+ତା ) ସୁତନୁର ଭାବ ବା ଧର୍ମ ।

ସୁତନ୍ତୁ—ବି.ଶିବ,ବିଷ୍ଣୁ,ଦାନବବିଶେଷ ।

ସୁତନ୍ତ୍ର—ବି. ସୁନ୍ଦର ତନ୍ତ୍ର, ସୁଶାସନ, ସୁଶୃଙ୍ଖଳା ।

ସୁତନ୍ତ୍ରି—ବି. ବୀଣାଆଦି ଯନ୍ତ୍ରର ଉତ୍କୃଷ୍ଟ ବାଦକ ।

ସୁତନ୍ତ୍ରିତ—ବଂ. (ସୁତନ୍ତ୍ର+ଇତ) ସୁଶୃ-ଙ୍ଖଳାଯୁକ୍ତ, ସୁଶାସିତ ।

ସୁତନ୍ତ୍ରୀ—ବି. ମଧୁର ସ୍ୱରଯୁକ୍ତ ବୀଣା ।

ସୁତପ—ବି. ସୋମପାନକାରୀ ବ୍ୟକ୍ତି ।

ସୁତପଃ—ବି.କ.ଧା; (ସୁ+ତପସ୍)ଉତ୍ତମ ତପସ୍ୟା ।

ସୁତପାଃ—ବି. ( ସୁ+ତପସ୍ ) ବ.ବ୍ରୀ; ମୁନି, ତପସ୍ୱୀ, ଉଗ୍ରତପାମୁନି, (ସୁ+ତପ୍+କ.ଅସ୍) ସୂର୍ଯ୍ୟ,ରୌତ୍ୟମୁନିଙ୍କର ଏକପୁତ୍ର, ବିଷ୍ଣୁ, ( ପୁଂ.ବଂ-ବ.ବ୍ରୀ ) ତପସ୍ୱୀ ।

ସୁତପାଦିକା—ସ୍ତ୍ରୀ. ବି. ଶ୍ରେଷ୍ଠ ହଂସ-ପାଦିକା ଗୁଳ୍ମ ।

ସୁତପେୟ—ବି.ଯଜ୍ଞରେ ସୋମରସ ପାନ ।

ସୁତପ୍ତ—ବଂ. ( ସୁ+ତପ୍ତ ) ଅତ୍ୟନ୍ତ ଗରମ ।

ସୁତବତୀ—ସ୍ତ୍ରୀ. ବଂ. (ସୁତ+ଇନ୍+ଈ) ପୁତ୍ରବତୀ, ଯାହାର ପୁତ୍ର ଅଛି, (ପୁଂ) ସୁତବାନ୍ ।

ସୁତବସ୍କର—ସ୍ତ୍ରୀ.ବଂ. ସପ୍ତପୁତ୍ରପ୍ରସୂ,ସାତଟି ପୁତ୍ର ଜନ୍ମକରିଥିବା (ସ୍ତ୍ରୀ) ।

ସୁତବାନ୍—ପୁଂ. ବଂ. (ସୁତ+ବତ୍) ପୁତ୍ରଯୁକ୍ତ, ଯାହାର ପୁଅ ଅଛି, (ସ୍ତ୍ରୀ) ସୁତବତୀ ।

ସୁତମିସ୍ରା—ବି.(ସୁ+ତମିସ୍ରା) ଗାଢ଼ଅନ୍ଧ-କାର, ଅତି ଘୋର ରଜନୀ ।

ସୁତଯାଗ—ବି. ପୁତ୍ରେଷ୍ଟିଯାଗ ।

ସୁତରା—ପ୍ରା. (ବସ୍ତର) କ୍ରି. ଶୋଇନ୍ତୀ ।

ସୁତର୍—ପ୍ରା. (ପାଟଣା) ବଂ. ସରଳ, (ଗ୍ରା.ବଂ) ଶାନ୍ତ, ବଶୀଭୂତ ।

ସୁତର—ଗ୍ରା. ବି. (ସଂ ସୂତ୍ର) କୌଶଳ, ଉପାୟ, ଛଳ, କନ୍ଦର,କାର୍ଯ୍ୟସାଧନର

ଗୁପ୍ତପ୍ରଣାଳୀ, ସ୍ୱାସ୍ଥ୍ୟ, ସୁଯୋଗ,ସୁବିଧା, ଗୁପ୍ତମନ୍ତ୍ରଣା, ( ବିଂ ) ସୁବିଧାଜନକ, ସୁଯୋଗଯୁକ୍ତ, ସୁସ୍ଥ, ଶାନ୍ତ ।

ସୁତରକରିବା—ଗ୍ରା. କ୍ରି. ସୁତୁରିଇବା, ଗୋପନରେ ପରାମର୍ଶ ଦେବା, ଗୋପନରେ ଉତ୍ତେଜିତ କରିବା,(କ୍ରୁଷ୍ଟ ପଶୁଆଦିଙ୍କୁ) ଆଉଁସାପାଉଁସା କରି ଶାନ୍ତ କରିବା, ମନାଇବା । [ ଦେଖ ।

ସୁତରସାତର—ଗ୍ରା. ବି. ସୁତୁରସାତର

ସୁତରି—ଗ୍ରା.ବିଂ.କୌଶଳପୂର୍ଣ୍ଣ,ସୁଯୋଗପୂର୍ଣ୍ଣ, ସୁବିଧାଜନକ, ସୁପରିଷ୍କୃତ ।

ସୁତରି(ରେ)ଇବା--ଗ୍ରା.କ୍ରି.ସୁତରକରିବା ଦେଖ । [ ଦେଖ ।

ସୁତରିସୁତରି—ଗ୍ରା. ବି. ସୁତୁରିସୁତୁରି

ସୁତରାଂ—ଅ. (ସୁ+ତରାମ୍) ଅତଏବ, ଫଳତଃ, ଅଗତ୍ୟା, ଅବଶ୍ୟ, ଅତ୍ୟନ୍ତ. ଔଚିତ୍ୟ, ଅପିଚ, ଏବଂ ମଧ ।

ସୁତରେସୁତରେ-ଗ୍ରା.କ୍ରି.ବିଂ ଫନ୍ଦିଫାନ୍ଦିରେ, କଳ କୌଶଳରେ;ଗୋପନରେ, (ପ୍ରା. ବଲାଙ୍ଗିରପାଟଣା--କ୍ରି.ବିଂ) ସିଧାସିଧା ।

ସୁତର୍କାଣ୍ଡ—ବି. ଦେବଦାଲିଲତା ।

ସୁତର୍ଦ୍ଦନ—ବି(ସୁ+ତର୍ଦ୍ଦ+ଅନ)କୋକିଳ

ସୁତଳ—ବିଂ.(ସୁ+ତଳ)ବ.ବ୍ରୀ; ସୁନ୍ଦର ତଳବିଶିଷ୍ଟ(ଗୃହାଦି),(ସ୍ତ୍ରୀ) ସୁତଳା,(ବି) ସାତପାତାଳ ମଧ୍ୟରୁ ଏକ ପାତାଳର ନାମ, ଅଟ୍ଟାଳିକାର ସର୍ବନିମ୍ନ ତଳ, ଅଟ୍ଟାଳିକାର ମୂଳ ପତ୍ତନ ।

ସୁତଳ୍ପ—ବି. ଉତ୍ତମଶଯ୍ୟା, (ବିଂ)ଉତ୍ତମ ଶଯ୍ୟାବିଶିଷ୍ଟ ।

ସୁତଶ୍ରେଣୀ—ବି.ମୂଷିକପର୍ଣ୍ଣୀ, ମୂଷାକାନି ।

ସୁତସ୍ଥାନ—ବି. ଜ୍ୟୋତିଷୋକ୍ତ ଲଗ୍ନାବଧି ପଞ୍ଚମସ୍ଥାନ ।

ସୁତହିବୁକଯୋଗ-—ବି. ( ଜ୍ୟୋତିଷ ) ବିବାହସମ୍ବନ୍ଧୀୟ ଶୁଭଯୋଗବିଶେଷ, ବିବାହ କାଳର ଲଗ୍ନ, ଲଗ୍ନର ୪ର୍ଥ ୫ମ ୯ମ ବା ୧୦ମ ସ୍ଥାନରେ ବୃହସ୍ପତି ଅଥବା ଶୁକ୍ର ଥିଲେ ଏହି ଯୋଗ ଘଟେ ।

ସୁତା—ସ୍ତ୍ରୀ.ବି(ସୁତ+ଆ)କନ୍ୟା,ଦୁହିତା, ନୃପକନ୍ୟା, ଶ୍ୱେତଦୂର୍ବା, ଦୁରାଲଭା, (ସ୍ତ୍ରୀ.ବିଂ) ଜାତା, ସମ୍ଭୂତା, (ଗ୍ରା.ବି-ସଂ-ସୂତ୍ର) ସୂତା ଦେଖ ।

ସୁତାତ୍ମଜ—ପୁଂ.ବି.(ଷତତ୍ପୁ)ପୁତ୍ରର ପୁତ୍ର, ନାତି, ପୌତ୍ର, ଦୌହିତ୍ର, (ସ୍ତ୍ରୀ)ସୁତାତ୍ମଜା ।

ସୁତାନ—ବି (ସୁ + ତାନ)ସୁମଧୁର ସ୍ୱର. (ବିଂ) ଉତ୍ତମ ତାନଯୁକ୍ତ ।

ସୁତାପତି—-ପୁଂ. ବି. କନ୍ୟାର ସ୍ୱାମୀ, ଜାମାତା ।

ସୁତାଭାବ—ବି. ପୁତ୍ର କନ୍ୟାର ଅଭାବ ।

ସୁତାର— ବିଂ. ( ସୁ+ତାର ) ଅତ୍ୟନ୍ତ ଉଜ୍ଜ୍ୱଳ, ଅତି ଉଚ୍ଚ, ଯାହାର ଆଖିର ପିତୁଳା ସୁନ୍ଦର, (ପୁଂ.ବି) ସାଙ୍ଖ୍ୟଦର୍ଶନୋକ୍ତ ସିଦ୍ଧିବିଶେଷ, (ପ୍ରା. ମେଦ. ବି) (ସଂ-ସୂତ୍ରକାର)ବଢ଼େଇ, ଶିଳ୍ପକର ।

ସୁତାରକ—ପୁଂ.ବିଂ.ଶୋଭନ ତାରକାଯୁକ୍ତ, (ସ୍ତ୍ରୀ) ସୁତାରକା ।

ସୁତାରକା-•ବି.ଚତୁର୍ବିଂଶତି ବୁଦ୍ଧ ଶାସନାନ୍ତର୍ଗତ ଦେବତାବିଶେଷ,(ବିଂ)ଶୋଭନ ତାରକାବିଶିଷ୍ଟ ।

ସୁତାରି—ବି. (ସାଂଖ୍ୟ) ନଅପ୍ରକାର ତୁଷ୍ଟି ମଧ୍ୟରୁ ଏକ, ଆଠପ୍ରକାର ସିଦ୍ଧିରୁ ଏକ ।

ସୁତାର୍ଥୀ—ପୁଂ.ବିଂ.(ସୁତ+ଅର୍ଥ+ଇନ୍) ପୁତ୍ରାର୍ଥୀ. ପୁତ୍ର କାମନାକାରୀ, (ସ୍ତ୍ରୀ) ସୁତାର୍ଥିନୀ ।

ସୁତାଳ—ବିଂ. ଶୋଭନ ତାଳବିଶିଷ୍ଟ ।

ସୁତାସୁତ—ପୁଂ.ବି. (ଷତତ୍ପୁ) ଦୌହିତ୍ର, (ସ୍ତ୍ରୀ) ସୁତାସୁତା ।

ସୁତି—ପ୍ରା. (ଲରିଆ)ପୁଂ.ବି. ଅଣନାତି, ନାତିର ପୁଅ ।

ସୁତିକା—ସ୍ତ୍ରୀ.ବି.(ସୁତକ+ଆ)କନ୍ୟା ।

ସୁତିକାଣ୍ଡ--ପ୍ରା(ସମ୍ବ) ବି.ଏକପ୍ରକାର ଶର

ସୁତିକ୍ତ—ବି.ପର୍ପଟ, (ବିଂ)ଅତ୍ୟନ୍ତ ପିତା, ଅତିଶୟ କଟୁ, (ସ୍ତ୍ରୀ) ସୁତିକ୍ତା ।

ସୁତିକ୍ତକ—•ବି. ପାରିଭଦ୍ର, ପାଳଧୁଆ, ଭୂନିମ୍ବ, ଖେତପାପଡ଼ା ।

ସୁତିକ୍ତା—ବି.କୋଷାତକୀ, ପିତାତରଡ଼ା, ଶଲ୍ଲକୀ ।

ସୁତିନୀ—ସ୍ତ୍ରୀ. ବିଂ. (ସୁତିନ + ଈ) ସୁତୀ କେର ସ୍ତ୍ରୀଲିଙ୍ଗ, ସୁତବତୀ ।

ସୁତୀ—ବିଂ.(ସୁତ+ଈ)ସୁତେଚ୍ଛୁ , ପୁତ୍ରବତ୍ ଆଚରଣକାରୀ,(ପୁଂ-ସୁତ+ଇନ୍) ସୁତବାନ୍, ପୁତ୍ରବାନ୍, (ସ୍ତ୍ରୀ) ସୁତିନୀ ।

ସୁତୀକ୍ଷ୍ଣ—•ବିଂ. ଅତିଶୟ ତୀକ୍ଷ୍ଣ, ଅତ୍ୟନ୍ତ ଖର, (ସ୍ତ୍ରୀ) ସୁତୀକ୍ଷ୍ଣା, (ବି) ଶୋଭାଞ୍ଜନ, ଶଜନା, ଶ୍ୱେତଶିଗ୍ରୁ, ଶରଭଙ୍ଗ ମୁନିଙ୍କ ଆଶ୍ରମ ନିକଟରେ ଆଶ୍ରମ କରିଥିବା ମୁନିବିଶେଷ ।

ସୁତୀକ୍ଷ୍ଣକ—ବି. (ସୁତୀକ୍ଷ୍ଣ+କ) ସୁତୀକ୍ଷ୍ଣ ଦେଖ,ମୁଷ୍କକବୃକ୍ଷ,(ସ୍ତ୍ରୀ) ସୁତୀକ୍ଷ୍ଣକା— ସର୍ଷପବୃକ୍ଷ ।

ସୁତୀର୍ଥ—ବିଂ. ଶୋଭନ ତୀର୍ଥଯୁକ୍ତ, ଉତ୍ତମ ସୋପାନଯୁକ୍ତ, ଉତ୍ତମତୀର୍ଥ ।

ସୁତୀବ୍ର—ବିଂ. ଅତିଶୟ ତୀବ୍ର, ଅତ୍ୟୁଗ୍ର, ଅତି ତୀକ୍ଷ୍ଣ, (ସ୍ତ୍ରୀ) ସୁତୀବ୍ରା ।

ସୁତୁଙ୍ଗ—ବିଂ. ଅତି ଉଚ୍ଚ,(ବି)ନାରିକେଳ ବୃକ୍ଷ,(ଜ୍ୟୋତିଷ)ଗ୍ରହମାନଙ୍କର ଉଚ୍ଚାଂଶ ବିଶେଷ ।

ସୁତୁରସାତର—ଗ୍ରା.ବି. ଫନ୍ଦିଫାନ୍ଦି,କଳକୌଶଳ, ନାନା ଉପାୟ, ସୁବିଧା, ସୁଯୋଗ ।

ସୁତୁରି—ଗ୍ରା. ବିଂ. ସୁତରି ଦେଖ ।

ସୁତୁରି(ରେ)ଇବା—ଗ୍ରା. କ୍ରି. ସୁତରିଇବା ଦେଖ, (ପ୍ରା.ପାଟଣା.କ୍ରି)ଲକ୍ଷ୍ୟକରିବା ।

ସୁତୁରିସୁତୁରି—ଗ୍ରା. ବି. ନାନା କୌଶଳ ପ୍ରୟୋଗ, ଗୋପନରେ ମନ୍ତ୍ରଣା, ଗୋପନରେ ପରସ୍ପର ସନ୍ଧାନପୂର୍ବକ ମୀମାଂସା, ଫୁସୁଲାଫୁସୁକ, ଭଣ୍ଡିବା ।

ସୁତୁରି—ଗ୍ରା. ବି. ଯେ ଟୀକା ଦିଏ ।

ସୁତୁରୁଣୀ—ଗ୍ରା.ସ୍ତ୍ରୀ.ବି.ସୁତରଣୀ ଦେଖ ।

ସୁତୁରେସୁତୁରେ—ଗ୍ରା. କ୍ରି.ବିଂ. ସୁତେସୁତେ ଦେଖ ।

ସୁତୁର୍ଣ୍ଣୀ—ପ୍ରା. (ଗଞ୍ଜାମ)ସ୍ତ୍ରୀ.ବି. ଧାଈ ।

ସୁତୁଲି—ଗ୍ରା.ବି. (ସଂ-ସୂତ୍ର) ସରୁ ଦଉଡ଼ି, ମୋଟ ସୂତା, କପାସୂତାରେ ବଳାହୋଇଥିବା ସରୁ ଦଉଡ଼ି, (ଗ୍ରା.ବିଂ) ସୂତ୍ରନିର୍ମିତ ।

ସୁତେକର—ବି. ଋତ୍ୱିକ୍ ।

ସୁତେଜନ—ବ. ଧନ୍ୱନବୃକ୍ଷ, ଉତ୍ତମଧାରଗଛ, ସୁତୀକ୍ଷ୍ଣ ଶର, (ବି°) ସୁତୀକ୍ଷ୍ଣ ।
ସୁତେଜାଃ—ବି°.ଶୋଭନ ତେଜୋଯୁକ୍ତ, (ବ) ଅତୀତ କଳ୍ପୀୟ ଅର୍ହତ୍‌ଭେଦ, ଆଦିତ୍ୟଭକ୍ତା, ମଣ୍ଡୂକପର୍ଣ୍ଣୀ ।
ସୁତେଜିତ—ବି°. ସୁତୀକ୍ଷ୍ଣ ।
ସୁତୈଲା—ସ୍ତ୍ରୀ. ବ. ମହାଜ୍ୟୋତିଷ୍ମତୀ, ଲତାଫଟକୀ ।
ସୁତୋୟ—ବି°. ସୁନ୍ଦର ତୋୟବିଶିଷ୍ଟ, ଉତ୍ତମ ଜଳଯୁକ୍ତ, (ବ) ଉତ୍ତମ ଜଳ ।
ସୁତୋଷ--ବ.ସନ୍ତୋଷ,(ପୁଂ.ବି°)ସନ୍ତୁଷ୍ଟ. (ସ୍ତ୍ରୀ) ସୁତୋଷା ।
ସୁତ୍ୟା—ସ୍ତ୍ରୀ. ବ. ସୋମାଭିଷବ କ୍ରିୟା-ସମାପ୍ତି ଦିନ ।
ସୁତ୍ରାତ—ବି°.(ସୁ+ତ୍ରୈ+ତ) ଉତ୍ତମରୂପେ ତ୍ରାତ, ରକ୍ଷିତ ।
ସୁତ୍ରାଣ—ବ.ଶୋଭନ ତ୍ରାଣ,ଉତ୍ତମରକ୍ଷଣ
ସୁତ୍ରାମା—ବ.(ସୁ+ତ୍ରୈ+କ.ମନ୍)ଦେବରାଜ, ଇନ୍ଦ୍ର, (ବି°) ଉତ୍ତମ ରୂପେ ତ୍ରାଣକାରୀ ।
ସୁଦନସୁଦନ—ଗ୍ରା. କ୍ରି. ବି°. ଝଙ୍କରେ ଝଙ୍କରେ,କୌଶଳକ୍ରମେ, ଛଳକୌଶଳ ପ୍ରୟୋଗପୂର୍ବକ, ଗୋପନରେ ।
ସୁତ୍ୱା—ବି°.(ସୁ+କ.ବନ୍(କ୍ୱନପ୍)ଯଜ୍ଞ-ସ୍ନାନାନ୍ତେ ସୋମପାନକାରୀ ।
ସୁତ୍ୟ—ବ. ଯଜ୍ଞାର୍ଥ ସୋମରସ ବାହାର କରିବା ପାଇଁ ନିର୍ଦ୍ଦିଷ୍ଟ ଦିବସ ।
ସୁଆ—ଗ୍ରା.ବ.(ସଂ-ସୀମନ୍ତ)ସୁନ୍ଦର, କଙ୍କତିକା ଦ୍ୱାରା ଦୁଇଫାଳ କରାହୋଇଥିବା କେଶ ବିନ୍ୟାସ ।
ସୁଆରେନ୍—ପ୍ରା.(ସମ୍ବ)ସ୍ତ୍ରୀ.ବ.ଧାଈ,ଧାତ୍ରୀ
ସୁଥିଆର—ପ୍ରା. (ସମ୍ବ)ବ. ଟୀକା ଦେବା ବ୍ୟକ୍ତି ।
ସୁଦ—ଗ୍ରା.ବ. କୁସୀଦ, ବୃଦ୍ଧି, କଳାନ୍ତର, ଧନ ପ୍ରୟୋଗର ଲାଭ ।
ସୁଦକଷା-ବ.ପ୍ରାପ୍ୟସୁଦ ନିର୍ଣ୍ଣୟ କରିବାର ନିୟମ ବା ପ୍ରକ୍ରିୟା ।
ସୁଦଖୋର—ସଂ. ଯେ ଟଙ୍କାର ସୁଧ ଗ୍ରହଣ କରେ ।

ସୁଦଂଷ୍ଟ୍ର—ପୁଂ.ବି°.ଶୋଭନ ଦନ୍ତବିଶିଷ୍ଟ, (ସ୍ତ୍ରୀ) ସୁଦଂଷ୍ଟ୍ରା,(ବ)କୃଷ୍ଣଙ୍କର ଏକପୁତ୍ର, ସମ୍ବରର ଏକପୁତ୍ର ।
ସୁଦକ୍ଷ—ପୁଂ.ବି°. ସୁନିପୁଣ,ଅତିପାରଗ, (ସ୍ତ୍ରୀ) ସୁଦକ୍ଷା ।
ସୁଦକ୍ଷିଣ—ବି°. (ବ.ଗ୍ରୀ)ଉଦାର.ବଦାନ୍ୟ ଉତ୍ତମ ପ୍ରକୃତିବିଶିଷ୍ଟ, ଉତ୍ତମ ଦକ୍ଷିଣା-ଯୁକ୍ତ, (ସ୍ତ୍ରୀ) ସୁଦକ୍ଷିଣା ।
ସୁଦକ୍ଷିଣ—ବ. (ନାମ) ବିଦର୍ଭର ରାଜ-ବିଶେଷ.ଅଗସ୍ତ୍ୟଋଷିଙ୍କ ପୁତ୍ର,ପୌଣ୍ଡ୍ରକ ରାଜାଙ୍କ ପୁତ୍ର ।
ସୁଦକ୍ଷିଣା—ସ୍ତ୍ରୀ. ବି°. (ସୁଦକ୍ଷିଣ+ଆ) ବ.ଗ୍ରୀ; ଉତ୍ତମ ଦକ୍ଷିଣାଯୁକ୍ତା, (ସ୍ତ୍ରୀ.ବ) ଉତ୍ତମ ଦକ୍ଷିଣା,ପର୍ଯ୍ୟାପ୍ତ ଦକ୍ଷିଣା,ଉଦାର ସ୍ୱଭାବା ସ୍ତ୍ରୀ.ସୂର୍ଯ୍ୟବଂଶୀୟ ଦିଲୀପ ରାଜାଙ୍କ ପତ୍ନୀ, ଶ୍ରୀକୃଷ୍ଣଙ୍କର ଜଣେ ପତ୍ନୀ ।
ସୁଦଦ୍ରୁଲା—ବ. ଦଗ୍ଧା ନାମକ ଗୁଳ୍ମ, ଚିତାକୁଟୀ ନାମକ ଗୁଳ୍ମ ।
ସୁଦଣ୍ଡ—ବ. ବେତ୍ର.ବେତ.ଉତ୍ତମ ଯଷ୍ଟି ।
ସୁଦଣ୍ଡିକା—ବ. ଗୋରକ୍ଷୀ ନାମକ ଗୁଳ୍ମ, ନାଗବଳା, ଗରଗଡ଼ ।
ସୁଦତ୍—ପୁଂ. ବି°. (ସୁ+ଦନ୍ତ) ସୁନ୍ଦର ଦନ୍ତବିଶିଷ୍ଟ(ବ୍ୟକ୍ତି), (ସ୍ତ୍ରୀ) ସୁଦତୀ ।
ସୁଦତୀ—ସ୍ତ୍ରୀ. ବି°. (ସୁଦତ୍+ଈ)ସୁଦତ୍ ଶବ୍ଦର ସ୍ତ୍ରୀଲିଙ୍ଗ, (ବ) ସୁନ୍ଦରୀ ସ୍ତ୍ରୀ, ଉତ୍ତମ ବା ସୁନ୍ଦର ଦନ୍ତବିଶିଷ୍ଟା ସ୍ତ୍ରୀ ।
ସୁଦନ୍ତ—ବ.ଶୋଭନ ଦନ୍ତ,ନଟ,ନର୍ତ୍ତକ ।
ସୁଦନ୍ତୀ—ସ୍ତ୍ରୀ. ବ. ହସ୍ତିନୀବିଶେଷ, (ପୁଂ) ଉତ୍ତମ ବା ଶ୍ରେଷ୍ଠ ହସ୍ତୀ, (ସ୍ତ୍ରୀ) ହସ୍ତିନୀ,(ଗ୍ରା.ବି°)ଉତ୍ତମଦନ୍ତବିଶିଷ୍ଟା ସ୍ତ୍ରୀ
ସୁଦମ—ବି°.(ସୁ+ଦମ୍+ମି.ଅ)ଅନାୟାସରେ ଦମନୀୟ ବା ଶାସନୀୟ ।
ସୁଦମନ—ବ. ଆମ୍ର, ଆମ୍ରବୃକ୍ଷ ।
ସୁଦୟେ—ଗ୍ରା. ବି°. ସଦୟ । [ ଗୀନ ।
ସୁଦରିଦ୍ର—ପୁଂ.ବି°. ଅତି ଦରିଦ୍ର, ଅତ-
ସୁଦର୍ଭ—ବି°. (ବ.ଗ୍ରୀ)ସୁନ୍ଦର କୁଶଯୁକ୍ତ, (ସ୍ତ୍ରୀ) ସୁଦର୍ଭା ।
ସୁଦର୍ଭା—ସ୍ତ୍ରୀ. ବ. ଇକ୍ଷୁଦର୍ଭା ତୃଣ, (ବି°) ଉତ୍ତମ କୁଶଯୁକ୍ତା ।

ସୁଦର୍ଶ—ବି°. (ସୁ+ଦୃଶ୍+ମି.ଅ) ପ୍ରିୟଦର୍ଶନ, ସୁଦୃଶ୍ୟ, (ସ୍ତ୍ରୀ) ସୁଦର୍ଶା ।
ସୁଦର୍ଶନ—ବ. ( ସୁ+ଦୃଶ୍+ଅନ ) ବିଷ୍ଣୁଙ୍କ ଚକ୍ରର ନାମ, ଚକ୍ରଚିହ୍ନିତ ଶାଳଗ୍ରାମବିଶେଷ,ହସ୍ତିବିଶେଷ,ସୁମେରୁ, ଜମ୍ବୁବୃକ୍ଷ, ଉତ୍ତମ ଦର୍ଶନ,ଗୁଳ୍ମବିଶେଷ, ବର୍ତ୍ତମାନ ଅବସର୍ପିଣୀର ଅଷ୍ଟାଦଶ ଜୈନ ମୁନିଙ୍କ ପିତା, ବୃଷ୍ଣିହର୍ତ୍ତା ପିତା, ଜନମାନଙ୍କର ଦେବତାବିଶେଷ, ଶିବ, ଅଗ୍ନିଙ୍କର ଏକପୁତ୍ର,ବିଦ୍ୟାଧରବିଶେଷ, ମତ୍ସ୍ୟ,ଦଧୀଚିଙ୍କର ଏକପୁତ୍ର,ଭରତଙ୍କର ଏକପୁତ୍ର, ଗୃଧ୍ର, ଛଅଟି ଗ୍ରନ୍ଥିବିଶିଷ୍ଟ ସନ୍ନ୍ୟାସୀଙ୍କର ଦଣ୍ଡବିଶେଷ, ( ବି° ) ଉତ୍ତମ ଦର୍ଶନବିଶିଷ୍ଟ,ସୁଦୃଶ୍ୟ,ସୁନ୍ଦର ।
ସୁଦର୍ଶନଚକ୍ର—ବ. ବିଷ୍ଣୁଙ୍କ ଚକ୍ର ।
ସୁଦର୍ଶନଚୂର୍ଣ୍ଣ—ବ.ଭାବପ୍ରକାଶୋକ୍ତ ଜ୍ୱର-ରୋଗହର ଚୂର୍ଣ୍ଣବିଶେଷ ।
ସୁଦର୍ଶନଦ୍ୱୀପ—ବ. ଜମ୍ବୁଦ୍ୱୀପ ।
ସୁଦର୍ଶନସରଃ—ବ. ରାମାୟଣ ବର୍ଣ୍ଣିତ ସ୍ୱର୍ଣ୍ଣକେଶର ରଞ୍ଜିତ ରଜତ ପଦ୍ମବିଶିଷ୍ଟ ସରୋବରବିଶେଷ ।
ସୁଦର୍ଶନା—ସ୍ତ୍ରୀ. ବି°. ( ସୁଦର୍ଶନ+ଆ ) ସୁଦର୍ଶନର ସ୍ତ୍ରୀଲିଙ୍ଗ, (ସ୍ତ୍ରୀ.ବ) ସୁନ୍ଦରୀ ସ୍ତ୍ରୀ, ଗୁଳ୍ମବିଶେଷ, ଏକପ୍ରକାର ମଦିରା, ଜଣେ ଗନ୍ଧର୍ବୀ, ପଦ୍ମସରୋବର, ଜମ୍ବୁବୃକ୍ଷ, ଇନ୍ଦ୍ରପୁରୀ, ଅମରାବତୀ, ଶୁକ୍ଳପକ୍ଷ ରାତ୍ରି, ଆଜ୍ଞା, ଆଦେଶ ।
ସୁଦର୍ଶନୀ—ବ. (ସୁଦର୍ଶନ+ଈ) ଅମରାବତୀ, ଇନ୍ଦ୍ରପୁରୀ ।
ସୁଦର୍ଶନୀୟ—ବି°. (ସୁ+ଦୃଶ୍+ଅନୀୟ) ସୁନ୍ଦର ଭାବରେ ଦର୍ଶନଯୋଗ୍ୟ, ଶୋଭନରୂପେ ଦୃଶ୍ୟ ।
ସୁଦଳ—ବ.କ୍ଷୀରମୋରଟ ନାମକ ଲତା, ମୁଚକୁନ୍ଦ, ସେନା,(ବି°) ସୁନ୍ଦର ଦଳ-ବିଶିଷ୍ଟ, (ସ୍ତ୍ରୀ) ସୁଦଳା ।
ସୁଦଳା—ସ୍ତ୍ରୀ. ବ. (ସୁଦଳ+ଆ) ଶାଳ-ପର୍ଣ୍ଣୀ, ତରୁଣୀ,ଶତପତ୍ରୀ,ସେବତୀଫୁଲ ।
ସୁଦଶନ—ପୁଂ.ବି°.ଶୋଭନ ଦନ୍ତବିଶିଷ୍ଟ, ସୁନ୍ଦର ଦନ୍ତଯୁକ୍ତ, (ସ୍ତ୍ରୀ) ସୁଦଶନା ।

ସୁଦଶା—ବି. ଉତ୍ତମ ଦଶା, ସୁଗ୍ରହଜନିତ ଜୀବନର ଉତ୍ତମ ଦଶା, ସୁଦଶାବ୍ରତ ଦେଖ ।

ସୁଦଶାବ୍ରତ—ବି. ପଦ୍ମପୁରାଣୋକ୍ତ ବ୍ରତବିଶେଷ, (ଗ୍ରା.ବି) ସୁଦଶାବ୍ରତ କରିବା ବ୍ୟକ୍ତିଙ୍କ ବାହୁରେ ବନ୍ଧାଯିବା ୧୦ଟି ଗଣ୍ଠିଯୁକ୍ତ ସୂତ୍ର ।

ସୁଦା—ପ୍ରା.(ଆଠମଲ୍ଲିକ)ବି. ଆଠମଲ୍ଲିକର ସୁଦା ଜାତୀୟ ଲୋକଙ୍କ ଭାଷା, ଆଠମଲ୍ଲିକଅଧିବାସୀ ଅନାର୍ଯ୍ୟ ଜାତିବିଶେଷ

ସୁଦତା—ପୁଂ.ବିଂ. ବିଶେଷ ଦାନଶୀଳ, ସତ୍ କାର୍ଯ୍ୟରେ ଦାନଶୀଳ ।

ସୁଦାନ—ବି.ଶୋଭନ ଦାନ,ଉତ୍ତମଦାନ

ସୁଦାନୁ—ବିଂ. ଶୋଭନ ଦାନୋପେତ, ଶୋଭନ ଦାନଯୁକ୍ତ ।

ସୁଦାନ୍ତ—ବି.(ନାମ)ଶାକ୍ୟ ମୁନିଙ୍କ ଶିଷ୍ୟବିଶେଷ, (ପୁଂ.ବିଂ)ଅତି ଶାନ୍ତ (ବ୍ୟକ୍ତି), (ସ୍ତ୍ରୀ) ସୁଦାନ୍ତା ।

ସୁଦାମ—ବି. (ନାମ) ଦ୍ୱାଦଶ ଗୋପାଳ ମଧ୍ୟରୁ ଜଣେ ଗୋପାଳ, ବାରସୁତ ।

ସୁଦାମା-ବିଂ. ( ସୁ+ଦା+କ.ମନ୍ ) ଅତିଶୟ ଦାନଶୀଳ,(ପୁଂବି) ମେଘ,ସମୁଦ୍ର, ଐରାବତ; ( ସୁ ଅଟେ ଦାମନ୍=ମାଳା ଯାହାର)ପର୍ବତ, ଶ୍ରୀକୃଷ୍ଣ ସଖା,ଗୋପବିଶେଷ, ଶ୍ରୀକୃଷ୍ଣଙ୍କ ବାଲ୍ୟ ସହଚର ଜନୈକ ଦରିଦ୍ର ବ୍ରାହ୍ମଣ, (ଲ ଅ) କୁଚେଲ ବ୍ରାହ୍ମଣ, ମଳିନ ବସ୍ତ୍ରଧାରୀ ବ୍ରାହ୍ମଣ,କେକୟ ନଗରରୁ ଅଯୋଧ୍ୟାକୁ ଆସିବା ପଥରେ ଥିବା ପର୍ବତବିଶେଷ, ରାମାୟଣ ଅଯୋଧ୍ୟା କାଣ୍ଡ ବର୍ଣ୍ଣିତ ନଦୀବିଶେଷ,(ନାମ) ଶ୍ରୀକୃଷ୍ଣଙ୍କ ମଥୁରା ଗମନ ସମୟରେ ତାଙ୍କୁ ମଥୁରାରେ ଭେଟିଥିବା କଂସର ମାଳି, ଗନ୍ଧର୍ବବିଶେଷ ।

ସୁଦାମାପୁରୀ—ଗ୍ରା. ବି. ତୀର୍ଥବିଶେଷ ।

ସୁଦାୟ—ବି.(ସୁ+ଦାୟ)କ.ଧା; ଉତ୍ତମ ଦାନ, ଯୌତୁକ, ଉପହାର, ଦେୟ ଯୌତୁକାଦି, ପିତୃମାତୃ ଭର୍ତ୍ତୃ କୁଳରୁ ବିବାହିତା କନ୍ୟାକୁ ଦିଆଯିବା ଧନାଦି ଉପହାର, ବ୍ରତ ବେଦୀରେ ବ୍ରହ୍ମଚାରୀଙ୍କୁ ଦିଆଯିବା ଭିକ୍ଷା, (ବ.ଗ୍ରା) ସୁଦାୟ ଦାନକାରୀ ବ୍ୟକ୍ତି, (କ.ଧା) ଘୋର ବିପଦ,ମହା ସଙ୍କଟ ।

ସୁଦାରୁ—ପୁଂ. ବି. ପାରିପାତ୍ର, ପର୍ବତ. (କ୍ଲୀ) ଶୋଭନଦାରୁ, ଉତ୍ତମ କାଷ୍ଠ, ଦେବଦାରୁ କାଷ୍ଠ,(ବିଂ) ଉତ୍ତମ କାଷ୍ଠଯୁକ୍ତ । [ ଖ୍ରୀଷ୍ଟାବ୍ଦ ।

ସୁଦାରୁଣ—ବିଂ. ଅତି ଭୟାନକ, ଅତି

ସୁଦାସ—ବି.(ନାମ)ଦିବୋଦାସଙ୍କ ପୁତ୍ର, ଋତୁପର୍ଣ୍ଣଙ୍କ ପୁତ୍ର, ଚ୍ୟବନଙ୍କ ପୁତ୍ର, ବୃହଦ୍ରଥଙ୍କ ପୁତ୍ର ।

ସୁଦି—ଗ୍ରା. ବି. କୌଣସି ଚାନ୍ଦ୍ର ମାସର ଶୁକ୍ଳପକ୍ଷ, (ଗ୍ରା.ବିଂ) ଶୁକ୍ଳପକ୍ଷୀୟ ।

ସୁଦିନ-ବି.ଶୁଭଦିନ, ଶୁଭ କାର୍ଯ୍ୟ ନିମନ୍ତେ ପ୍ରଶସ୍ତ ଦିବସ, ସୁସମୟ, (ବିଂ)ପ୍ରଶସ୍ତ ।

ସୁଦିନତା—ବି(ସୁଦିନ+ଭା.ତା)ସୁଦିନତ୍ୱ, ସୁଦିନର ଭାବ ବା ଧର୍ମ, ସୁସମୟର କାର୍ଯ୍ୟ ।

ସୁଦିନାହ—ବି.ପ୍ରଶସ୍ତ ଦିବସ,ପୁଣ୍ୟାହ ।

ସୁଦିବ—ବି. ( ସୁ+ଦିବ୍+କ.ଅ ) ଅତି ଉଜ୍ଜ୍ୱଳ ।

ସୁଦିବସ—ବି. ସୁଦିନ ଦେଖ ।

ସୁଦିହ—ବିଂ. ସୁତୀକ୍ଷ୍ଣ, ଖୁବ୍ ଉଜ୍ଜ୍ୱଳ, ସୁଚିକ୍କଣ ।

ସୁଦୀପ୍ତ—ବିଂ.ଶୋଭନ ଦୀପ୍ତିବିଶିଷ୍ଟ, (ସ୍ତ୍ରୀ. ବି) ଶୋଭନ ଦୀପ୍ତି, ଉଜ୍ଜ୍ୱଳଦୀପ୍ତି, (ପୁଂ. ବି)ଆଙ୍ଗିରସ ଗୋତ୍ରାପତ୍ୟ ମୁନିବିଶେଷ ।

ସୁଦୀଧିତ—ବିଂ. ସୁଦୀପ୍ତ ଦେଖ ।

ସୁଦୀନ—ପୁଂ. ବିଂ. (ସୁ+ଦୀନ) ଅତ୍ୟନ୍ତ ଦରିଦ୍ର, (ସ୍ତ୍ରୀ) ସୁଦୀନା ।

ସୁଦୀର୍ଘ—ବିଂ. ( ସୁ + ଦୀର୍ଘ ) ଅତିଦୀର୍ଘ, (ବି) ଚିଚିଣ୍ଡିକା, ଛଚିନ୍ଦା, (ସ୍ତ୍ରୀ)ସୁଦୀର୍ଘା ।

ସୁଦୀର୍ଘଘର୍ମୀ—ବି.ଅସନପର୍ଣ୍ଣୀ,ଅପରାଜିତା

ସୁଦୀର୍ଘଫଳକା—ବି. ବାଇଗଣବିଶେଷ, ନାଲିକର ବାଇଗଣ ।

ସୁଦୀର୍ଘରାଜୀଫଳା—ବି. କର୍କଟିକାଭେଦ, ଏକପ୍ରକାର କାକୁଡି । [ ରଜନୀ ।

ସୁଦୀର୍ଘା—ସ୍ତ୍ରୀ. ବି. ଚୀନାକର୍କଟୀ, ସୁଦୀର୍ଘା

ସୁଦୁଃଖ—ବିଂ. ଅତିଶୟ ଦୁଃଖଯୁକ୍ତ ।

ସୁଦୁଃଖିତ—ବିଂ.ଅତିଶୟ ବ୍ୟଥିତ,ଅତିଶୟ ଦୁଃଖବିଶିଷ୍ଟ, (ସ୍ତ୍ରୀ)ସୁଦୁଃଖିତା ।

ସୁଦୁରାଧର୍ଷ—ବିଂ. (ସୁ+ଦୁର୍+ଆ+ଧୃଷ୍+ଅ) ଅତି ଦୁର୍ଦ୍ଧର୍ଷ ।

ସୁଦୁରାସଦ—ବିଂ. ଅତିଶୟ ଦୁଷ୍ପ୍ରାପ୍ୟ ।

ସୁଦୁରୁକ୍ତି-ବି.ଅତି ଦୁରୁକ୍ତି,ଅତି ଦୁର୍ବାକ୍ୟ କଥନ ।

ସୁଦୁର୍ଗମ—ବିଂ.(ସୁ + ଦୁର୍+ଗମ୍+ଅ) ଅତି ଦୁର୍ଗମ,ଯେ ସ୍ଥାନକୁ ଅତି କଷ୍ଟରେ ଗମନ କରାଯାଏ ।

ସୁଦୁର୍ଜ୍ଜୟ—ବିଂ. (ସୁ+ଦୁର୍+ଜି+ଅ) ଅତି କଷ୍ଟରେ ଜେୟ, ଯାହା ଅତି କଷ୍ଟରେ ଜୟ କରାଯାଏ ।

ସୁଦୁର୍ଜ୍ଞେୟ—ବିଂ. ଅତି ଦୁର୍ଜ୍ଞେୟ, ଯାହା ଅତି କଷ୍ଟରେ ଜଣାଯାଏ ।

ସୁଦୁର୍ଦ୍ଦର୍ଶ—ବିଂ. (ସୁ+ଦୁର୍+ଦୃଶ୍+ଅ) ଅତି ଦୁର୍ଦ୍ଦର୍ଶ, ଯାହା ଅତି କଷ୍ଟରେ ଦେଖାଯାଏ ।

ସୁଦୁର୍ଦୃଶ—ବିଂ. (ସୁ+ଦୁର୍+ଦୃଶ୍+ଅ) ଅତି ଦୁର୍ଦ୍ଦର୍ଶ ।

ସୁଦୁର୍ବଳ—ବିଂ. ଅତି ଦୁର୍ବଳ, ନିତାନ୍ତ ବଳହୀନ । [ ବୁଦ୍ଧି ।

ସୁଦୁର୍ବୁଦ୍ଧି—ବିଂ. ଅତି ଦୁର୍ବୁଦ୍ଧି, ମନ୍ଦ-

ସୁଦୁର୍ଭଗ—ବିଂ. ଅତି ମନ୍ଦ ଭାଗ୍ୟ, ଅତିଶୟ ହତଭାଗ୍ୟ,(ସ୍ତ୍ରୀ)ସୁଦୁର୍ଭଗା=ନାରୀ ।

ସୁଦୁର୍ଭାଗ୍ୟ—ବି.ଅତିଶୟ ଦୁର୍ଭାଗ୍ୟ,ଦୁରଦୃଷ୍ଟ, (ବିଂ) ଅତି ଦୁର୍ଭାଗ୍ୟଯୁକ୍ତ ।

ସୁଦୁର୍ମତି—ବିଂ. ଅତି ଦୁର୍ବୁଦ୍ଧି, ଅତି ମନ୍ଦବୁଦ୍ଧି ବିଶିଷ୍ଟ, (ସ୍ତ୍ରୀ)ଅତି ଦୁଷ୍ଟାବୁଦ୍ଧି ।

ସୁଦୁର୍ମନା—ପୁଂ. ବିଂ. ଅତି ଦୁର୍ମନା, ଉଦ୍ୱିଗ୍ନଚିତ୍ତ, ଯାହାର ଅତିଶୟ ଦୁର୍ଭାବନା ହୁଏ ।

ସୁଦୁର୍ମୂଲ୍ୟ—ବିଂ.ଅତିଶୟ ଦୁର୍ମୂଲ୍ୟ, ଅତି ମହାର୍ଘ, ଅତି ମହାମୂଲ୍ୟ ।

ସୁଦୁର୍ଲଭ—ପୁଂ.ବିଂ. ( ସୁ+ଦୁର୍ଲଭ ) ଅତି ଦୁଷ୍ପ୍ରାପ୍ୟ, ଯାହା ଅତି କଷ୍ଟରେ ଲାଭ ହୁଏ, (ସ୍ତ୍ରୀ) ସୁଦୁର୍ଲଭା ।

ସୁଦୁର୍ବହ-ବିଂ.(ସୁ+ଦୁର୍+ବହ୍+ଅ) ଅତିଶୟ ଦୁର୍ବହ, ଅତିଶୟ ଭାରି ।

**ସୁଦୁର୍ବିଦ**—ବି°. (ସୁ+ଦୁର୍+ବିଦ୍+ଅ) ଯାହା ଅତି କଷ୍ଟରେ ଜଣାଯାଏ ।

**ସୁଦୁର୍ବିନୀତ**—ବି°. ଅତି ଦୁର୍ବିନୀତ, ଦୁଷ୍ଟ, ଅଶିଷ୍ଟ ।

**ସୁଦୁସ୍ତର**—ବି°.(ସୁ+ଦୁସ୍ତର)ଅତି ଦୁର୍ଗମ, ଅତି ଦୁଃଖରେ ତରଣୀୟ,ସୁଦୁସ୍ତର ।

**ସୁଦୁଷ୍କର**—ବି°. ( ସୁ+ଦୁଷ୍କର ) ଅତି କଷ୍ଟସାଧ୍ୟ, ଅତି କ୍ଳେଶକର ।

**ସୁଦୁଷ୍କୃତ**—ବି. ଅତିଶୟ ଦୁଷ୍କୃତ,ପାପ, (ବି°) ଅତିଶୟ ପାପଯୁକ୍ତ, ଅତିଶୟ ଅନ୍ୟାୟ ରୂପେ ଅନୁଷ୍ଠିତ ।

**ସୁଦୁଷ୍ଟ**—ପୁଂ.ବି°. ଅତିଶୟ ଦୁଷ୍ଟ, ଅତିଶୟ ଦୋଷଯୁକ୍ତ ।

**ସୁଦୁଷ୍ପ୍ରସାଧ୍ୟ**—ବି°. ଯାହା ଅତି କଷ୍ଟରେ ସାଧନ କରାଯାଏ ।

**ସୁଦୁଷ୍ପ୍ରେକ୍ଷ**—ବି°. (ସୁ+ଦୁର୍+ପ୍ର+ଈକ୍ଷ+ଅ) ଅତିଶୟ ଦୁଷ୍ପ୍ରେକ୍ଷ, ଅତି କଷ୍ଟରେ ଦର୍ଶନୀୟ ।

**ସୁଦୁସ୍ତର**—ବି°. (ସୁ+ଦୁର୍+ତୃ+ମି.ଅ) ଅତି ଦୁଃଖରେ ତରଣୀୟ,(ସ୍ତ୍ରୀ) ସୁଦୁସ୍ତରା ।

**ସୁଦୁସ୍ତାର**—ବି°. ଅତି ଦୁସ୍ତର, ଯାହା ଅତି ଦୁଃଖରେ ପାର ହେବାକୁ ହୁଏ ।

**ସୁଦୁସ୍ତ୍ୟଜ**—ବି°. (ସୁ+ଦୁର୍+ତ୍ୟଜ୍+ମି.ଅ) ଅତି ଦୁଃଖରେ ତ୍ୟାଜ୍ୟ ।

**ସୁଦୁଃସହ**-ବି°.(ସୁ+ଦୁର୍+ସହ୍+ଅ) ଅତି ଦୁଃସହ, ଯାହା ଅତି କଷ୍ଟରେ ସହ୍ୟ କରାଯାଏ ।

**ସୁଦୁଃସ୍ପର୍ଶ**—ବି°. (ସୁ+ଦୁର୍+ସ୍ପୃଶ୍+ଅ)ଅତି ଦୁଃସ୍ପର୍ଶ, ଯାହା ସ୍ପର୍ଶ କରିବା ଅତିଶୟ କଠିନ ।

**ସୁଦୂର**—ବି°. ଅତି ଦୂରରେ ଅବସ୍ଥିତ, ଅତି ଦୂରବର୍ତ୍ତୀ ।

**ସୁଦୂରଗାମୀ**—ପୁଂ.ବି°. ବହୁ ଦୂରଗାମୀ, (ସ୍ତ୍ରୀ) ସୁଦୂରଗାମିନୀ ।

**ସୁଦୂରପରାହତ**—ବି°.ଅତି ଦୂରରେ ପରାହତ, ସମ୍ପୂର୍ଣ୍ଣରୂପେ ପରାହତ, ଦୁରଦୃଷ୍ଟ, ସମ୍ପୂର୍ଣ୍ଣରୂପେ ଅସମ୍ଭବ ।

**ସୁଦୃକ୍**—ପୁଂ ଓ ସ୍ତ୍ରୀ.ବି°. (ବି.ସ୍ତ୍ରୀ)ସୁନ୍ଦର ନୟନ, ସୁନ୍ଦର ନୟନଯୁକ୍ତ, (ବି)ସୁନ୍ଦରୀ ସ୍ତ୍ରୀ ।

**ସୁଦୃଢ଼**—ପୁଂ.ବି°. ଅତି ଦୃଢ଼, ଗାଢ଼, (ସ୍ତ୍ରୀ) ସୁଦୃଢ଼ା ।

**ସୁଦୃଢ଼ତ୍ୱକ୍**—ବି. ଗମ୍ଭାରୀବୃକ୍ଷ ।

**ସୁଦୃଶ୍ୟ**—ପୁଂ.ବି°. ବି.ସ୍ତ୍ରୀ; (ସୁ+ଦୃଶ୍ୟ) ସୁନ୍ଦର, ନୟନାଭିରାମ, (ସ୍ତ୍ରୀ)ସୁଦୃଶ୍ୟା ।

**ସୁଦୃଷ୍ଟ**—ବି°.(ସୁ+ଦୃଶ୍+ତ)ଶୋଭନରୂପେ ଦୃଷ୍ଟ, ଯାହା ଭଲ ଭାବରେ ଦେଖାଯାଏ ।

**ସୁଦୃଷ୍ଟି**—ବି. (କ.ଧା) ଉତ୍ତମ ଦୃଷ୍ଟି,ଅନୁଗ୍ରହପୂର୍ଣ୍ଣ ଦୃଷ୍ଟି, (ବି.ସ୍ତ୍ରୀ) ଗୃଧ୍ର, (ବି°-ବି.ସ୍ତ୍ରୀ) ଦୂରଦର୍ଶୀ ।

**ସୁଦେବ**—ବି°. ସୁକ୍ରୀଡ଼, ଉତ୍ତମ କ୍ରୀଡ଼ାବିଶିଷ୍ଟ, (ବି) ରାଜଭେଦ, ବିଷ୍ଣୁ, ଅମ୍ବରୀଷ ।

**ସୁଦେବନ**—ବି. ଉତ୍ତମ କ୍ରୀଡ଼ା ।

**ସୁଦେଶୀ**—ସ୍ତ୍ରୀ. ବି. ଫିଶଳକଣ୍ଟା ଗୁଳ୍ମ ।

**ସୁଦେଶ**—ବି.ଉତ୍ତମ ଦେଶ,ଉତ୍ତମ ସ୍ଥାନ ।

**ସୁଦେଷ୍ଣ**—ପୁଂ. ବି. ରୁକ୍ମିଣୀ ଗର୍ଭଜାତ ଶ୍ରୀକୃଷ୍ଣଙ୍କ ପୁତ୍ର ।

**ସୁଦେଷ୍ଣା**—ସ୍ତ୍ରୀ. ବି. ବିରାଟରାଜାଙ୍କ ସ୍ତ୍ରୀ ଓ କୀଚକର ଭଗିନୀ, ବଳିଙ୍କ ସ୍ତ୍ରୀ ।

**ସୁଦେହ**—ବି. (କ.ଧା) ସୁନ୍ଦର ଶରୀର, (ପୁଂ.ବି°-ବି.ସ୍ତ୍ରୀ)କମନୀୟ ଶରୀରବିଶିଷ୍ଟ, (ସ୍ତ୍ରୀ) ସୁଦେହା ।

**ସୁଦୈବ**-ବି.ସୌଭାଗ୍ୟ,ଉତ୍ତମ ସଂଯୋଗ ।

**ସୁଦୋହ**—ବି°. ସୁଖରେ ଦୋହନଯୋଗ୍ୟ । [ ଯଥା ଗାଈ ।

**ସୁଦୋହନ**—ସ୍ତ୍ରୀ.ବି.ଶୋଭନ ଦୋହନ-

**ସୁଦୋହା(ଘା)**—ସ୍ତ୍ରୀ. ବି°. (ସୁ+ଦୁହ୍+ମି.ଅ+ଆ) ଯେଉଁ ଗାଈକୁ ସହଜରେ ଦୁହାଁଯାଇପାରେ ।

**ସୁଦ୍ୟୁ**—ପୁଂ. ବି. ପୁରୁବଂଶୀୟ ରାଜା ଗୁରୁପଦଙ୍କ ପୁତ୍ର ।

**ସୁଦ୍ୟୁମ୍ନ**—ପୁଂ.ବି. ବୈବସ୍ୱତମନୁଙ୍କ ପୁତ୍ର ଏବଂ ଇଳରାଜ ନାମରେ ଖ୍ୟାତ ।

**ସୁଦ୍ଧା**—ଗ୍ରା. ଅ. (ସଂ-ସାର୍ଦ୍ଧଂ) ପର୍ଯ୍ୟନ୍ତ, ସମେତ, ମଧ୍ୟ ।

**ସୁଧ**—ଗ୍ରା. ବି. ସୁଦ ଦେଖ ।

**ସୁଧନ**—ବି°. ଶୋଭନ ଧନଯୁକ୍ତ, ଉତ୍ତମ ଧନବିଶିଷ୍ଟ, (ବି) ଶୋଭନ ଧନ,ପ୍ରଚୁର ଧନ ।

**ସୁଧନ୍ୱା**—ପୁଂ. ବି. (ସୁ+ଧନୁସ୍)ବି.ସ୍ତ୍ରୀ; ଶ୍ରେଷ୍ଠଧାନୁଷ୍କ, ଉତ୍କୃଷ୍ଟ ଧନୁର୍ଦ୍ଧର,ବିଶ୍ୱକର୍ମା, ଜନୈକ ନୃପ, ଅନନ୍ତଦେବ, ଶେଷଦେବ, ସୂର୍ଯ୍ୟଙ୍କକନ୍ୟା ତପତୀଙ୍କ ଗର୍ଭଜାତ କୁରୁଙ୍କ ସନ୍ତାନ, ବିଷ୍ଣୁ, ବିଦୁର, ଅଙ୍ଗିରସ, ସୁଧନ୍ୱାଚାର୍ଯ୍ୟ ।

**ସୁଧନ୍ୱାଚାର୍ଯ୍ୟ**-ବି. ବ୍ରାତ୍ୟବୈଶ୍ୟଙ୍କ (ଅର୍ଥାତ୍ ଯେଉଁ ବୈଶ୍ୟଙ୍କର ବ୍ରତ ହୋଇ ନ ଥାଏ)ଔରସରେ ସବର୍ଣ୍ଣା ସ୍ତ୍ରୀ ଗର୍ଭଜାତ ଜାତି ।

**ସୁଧର୍ମ**—ବି. (ନାମ)ଜିନଗଣାଧିପବିଶେଷ, କିନ୍ନରରାଜବିଶେଷ, ଉତ୍ତମ ଧର୍ମ,ପୁଣ୍ୟକର୍ତ୍ତବ୍ୟକର୍ମ, (ବି°)ଶୋଭନ ଧର୍ମଯୁକ୍ତ, ଉତ୍ତମ ଧର୍ମବିଶିଷ୍ଟ,(ଗ୍ରା.ବି°-ସଂ-ସୁଧର୍ମା) ଯେ ଦୁଷ୍ଟ ନୁହେ ।

**ସୁଧର୍ମା**—ପୁଂ. ବି°. (ସୁ+ଧର୍ମନ୍) ଅତି ଧାର୍ମିକ, ଧର୍ମପରାୟଣ, ( ବି ) କୁଟୁମ୍ବୀ, କୁଟୁମ୍ବପାଳକ ଗୃହସ୍ଥ,ଦେବସଭା,ଇନ୍ଦ୍ରଙ୍କ ସଭା, ଶେଷଜୈନଙ୍କର ଜନୈକ ଶିଷ୍ୟ, ଜୈନମାନଙ୍କର ଗଣାଧିପବିଶେଷ, କ୍ଷତ୍ରିୟ,ଦଶାର୍ଣ୍ଣର ଜଣେ ରାଜା,(ଗ୍ରା.ବି°) ନମ୍ର, ଶାନ୍ତ, ସୁଶୀଳ ।

**ସୁଧର୍ମାଗାଈ**—ଗ୍ରା. ସ୍ତ୍ରୀ. ବି. ଶାନ୍ତସ୍ୱଭାବଯୁକ୍ତା ଗାଈ ।

**ସୁଧର୍ମାଗାଈରବାଛୁରୀମରେ**-ଗ୍ରା.(ପ୍ରବଚନନ୍ୟାୟ)ସୁଶୀଳା ଗାଈଠାରୁ ଦୁଧ ଦୁହାଁଗଲାବେଳେ ସେ ଦୁଷ୍ଟାମି କରେନାହିଁ, ଏଥିପାଇଁ ଲୋକେ ତାଠାରୁ ଦୁଧନିଃଶେଷ କରି ଦୁହିଁ ନଅନ୍ତି,ଫଳରେ ଦୁଧ ଦୁହାଁ ସରିଲାପରେ ତା ନିଜ ବାଛୁରୀ ପିଇବା ପାଇଁ ଗାଈଠାରେ ଦୁଧ ନ ଥାଏ,ତେଣୁ ଏହି ଗାଈର ବାଛୁରୀ ଦୁଧ ପିଇବାକୁ ନ ପାଇ ମରଯାଏ; ସତ୍ସ୍ୱଭାବ ବ୍ୟକ୍ତିର ସଦ୍ବ୍ୟବହାରର ଲୋକେ ଅପବ୍ୟବହାର କରନ୍ତି ଓ ତାହାଁର ଫଳରେ ସେ

କଷ୍ଟଭୋଗ କରେ-ଏହି ଉକ୍ତରେ ଏହି ପ୍ରବଚନ ବୋଲଯାଏ,ଆଉମଧ ଧର୍ମଶୀଳ ବ୍ୟକ୍ତିର ଅନିଷ୍ଟ ଘଟିଲେ ଲୋକେ ଏ ପ୍ରବଚନ ବ୍ୟବହାର କରନ୍ତି ।

ସୁଧର୍ମୀ—ସ୍ତ୍ରୀ.ବ. (ସୁଧର୍ମ+ଈ) ଦେବସଭା,(ପୁଂ-ସୁଧର୍ମ+ଇନ୍)ଧର୍ମପରାୟଣ

ସୁଧା—ବ. (ସୁ+ଧେ+ମି ଅ+ଆ) ଅମୃତ, ପୀୟୂଷ, ଲେପନ, ଚୂନ, କଳିଚୂନ, ମୂର୍ବିକା, ମୃରୁଗାଗୁଳ୍ମ, ସ୍ନୁହୀ. ସିଝୁଗଛ,ଚଙ୍ଗା,ଇଷ୍ଟକା,ଇଟା,ବିଦ୍ୟୁତ୍, ରସ, ତୋୟ, ଜଳ, ଧାତ୍ରୀ, ଆମଳକ, ଅଁଳା, ହସ୍ତକା, ହରଡ଼ା,ଶାଳପର୍ଣ୍ଣୀ, ପୁଷ୍ପରସ, ମକରନ୍ଦ, ଜ୍ୟୋତ୍ସ୍ନା, ଚନ୍ଦ୍ରିକା, ମଦ୍ୟ, ମଦିରା, ଦୁଗ୍ଧ, ଅରଣ, ପୃଥ୍ୱୀ, ବିଷ, ହଳାହଳ, ଗୁଳୁଚ, ରୁଦ୍ରଙ୍କ ସ୍ତ୍ରୀ, ପୁତ୍ରୀ, ବଧୂ, ଧାମ, ଘର, ମଧୁ ।

ସୁଧାଂଶୁ—ବ. (ବ.ବ୍ରୀ) ହିମାଂଶୁ, ଚନ୍ଦ୍ର, କର୍ପୂର ।

ସୁଧାଂଶୁତୈଳ—ବ. କର୍ପୂର ତୈଳ ।

ସୁଧାଂଶୁରତ୍ନ—ବ. ମୌକ୍ତିକ, ମୁକ୍ତା ।

ସୁଧାଂଶୁଶେଖର—ପୁଂ.ବ. (ବ.ବ୍ରୀ)ଶଶିଶେଖର, ମହାଦେବ ।

ସୁଧାକଣ୍ଠ—ବ. (ବ.ବ୍ରୀ) କୋକିଳ ।

ସୁଧାକର—ବ. (୬ତତ୍) ଚନ୍ଦ୍ର ।

ସୁଧାକରଦ୍ୱିବେଦୀ–ଗ୍ରା.ବ.ସୁବିଖ୍ୟାତ ଗାଣିତିକ ପଣ୍ଡିତ ।

ସୁଧାକାର-ବ.କାନ୍ଥଆଦିକୁ ଚୂନ ସଫେଦ କରିବା ବ୍ୟକ୍ତି, ରାଜମିସ୍ତ୍ରୀ ।

ସୁଧାକୋଷ—ବ. (୬ତତ୍ ବା କ.ଧା) ଅମୃତର ବା ଅମୃତମୟ ଭଣ୍ଡାର ।

ସୁଧାକ୍ଷାଳିତ—ବଂ. (୩ତତ୍) ଚୂନ ଦ୍ୱାରା ଧଉଳା ହୋଇଥିବା ।

ସୁଧାଟେଙ୍ଗ—ଗ୍ରା.(ଟେଙ୍ଗ୍ରାମ)ବ. ବନ୍ୟ ଗୁଳ୍ମବିଶେଷ, ଝଙ୍କସିଝୁ ।

ସୁଧାଘଟ—ବ. ଅମୃତପୂର୍ଣ୍ଣ କଳସ,ଚନ୍ଦ୍ର ।

ସୁଧାଙ୍ଗ—ବ. (ବ.ବ୍ରୀ) ଚନ୍ଦ୍ର ।

ସୁଧାଜୀବୀ—ପୁଂ.ବ.(ସୁଧା+ଜୀବ୍+କ.ଇନ୍) ରାଜମିସ୍ତ୍ରୀ, ସୁଧାଲେପକ ।

ସୁଧାଝର—ଗ୍ରା. ବ. ସୁଧାଧାର, ଅମୃତର ଧାରା, ଅମୃତସ୍ରାବୀ ଝରଣା ।

ସୁଧାଝର—ଗ୍ରା. ବ. ସୁଧାପାନ ଦେଶ ।

ସୁଧାତ—ବଂ. ସୁଧୌତ, ଉତ୍ତମ ରୂପେ ଧୌତ ।

ସୁଧାତୁ—ବ. ସ୍ୱର୍ଣ୍ଣ ।

ସୁଧାତୁଦକ୍ଷିଣ—ବଂ.(ବ.ବ୍ରୀ)ଯେଉଁ ବ୍ୟକ୍ତି ଯଜ୍ଞାଦିରେ ସୁବର୍ଣ୍ଣ ଦକ୍ଷିଣା ଦିଅନ୍ତି ।

ସୁଧାଦୀଧିତ—ବ. (ବ.ବ୍ରୀ) ଚନ୍ଦ୍ର ।

ସୁଧାଧବଳ—ବଂ.ଚୂନ ବା ଚନ୍ଦ୍ର କିରଣପରି ଧଳା, ଚୂନ ବୋଳା ବା ଧଉଳା ହୋଇଥିବା ।

ସୁଧାଧବଳିତ(ଧୌତ)—ବଂ. (୩ତତ୍) ଚୂନ ଲିପା ହେବାରୁ ଧଳା ହୋଇଥିବା

ସୁଧାଧାର—ବ.( ସୁଧା+ଆଧାର ଅଥବା ସୁଧା+ଆ+ଧୃ+କ.ଅ)୬ତତ୍, ଅମୃତ ପାତ୍ର, ଚନ୍ଦ୍ର ।

ସୁଧାଧାରା—ବ.(୬ତତ୍)ଅମୃତର ଧାରା ।

ସୁଧାନିଧି—ବ. (୬ତତ୍) ଚନ୍ଦ୍ର, ସମୁଦ୍ର ।

ସୁଧାନିଧିରସ—ବ.ରକ୍ତପିତ୍ତରୋଗାଧିକାରୋକ୍ତ ଔଷଧବିଶେଷ ।

ସୁଧାପୟଃ—ବ. (୬ତତ୍) ସିନ୍ଧୁକ୍ଷୀର ।

ସୁଧାପାଣି—ବ. (ସୁଧା + ପାଣି) ବ.ବ୍ରୀ; ଧନ୍ୱନ୍ତରି ।

ସୁଧାପାତ୍ର—ବ. (କ.ଧା) ସୁଧାପୂର୍ଣ୍ଣ ପାତ୍ର ।

ସୁଧାପାନ—ବ. (୬ତତ୍)ଅମୃତ ପିଇବା ।

ସୁଧାପାଷାଣ—ବ. (କ.ଧା) ଫୁଲଖଡ଼ି, ଚକ୍ଖଡ଼ି ।

ସୁଧାପୂର୍ଣ୍ଣ—ବଂ.(୩ତତ୍)ଅମୃତ ପରିପୂର୍ଣ୍ଣ, ଅମୃତରେ ଭରିଥିବା ।

ସୁଧାବତ୍—ଅ. ସୁଧାତୁଲ୍ୟ ।

ସୁଧାବର୍ଷୀ—ବଂ. (ସୁଧା+ବୃଷ୍+କ.ଇନ୍) ଯେ ସୁଧା ବର୍ଷଣ କରେ,(ସ୍ତ୍ରୀ) ସୁଧାବର୍ଷିଣୀ, (ବ) ବ୍ରହ୍ମା, ଏକ ବୁଦ୍ଧଙ୍କ ନାମ, ଚନ୍ଦ୍ର ।

ସୁଧାବାସ—ବ. (୬ତତ୍) ଚନ୍ଦ୍ର, ଖପୁରି, କାକୁଡ଼, ଚୂର୍ଣ୍ଣମୟ ଗୃହ ।

ସୁଧାବାସା—ବ. ଖପୁରୀ, କାକୁଡ଼ି ।

ସୁଧାଭାଣ୍ଡ—ବ. (୬ତତ୍) ସୁଧାପାତ୍ର ।

ସୁଧାଭିତ୍ତି—ବ. ( କ.ଧା ) ଚୂନସଫେଦ କରାଯାଇଥିବା କାନ୍ଥ ।

ସୁଧାଭୁକ୍(ଭୋଜୀ)—ବ.(ସୁଧା+ଭୁଜ୍+କ.କ୍ୱିପ୍) ଦେବତା ।

ସୁଧାଭୃତ—ବ. (ସୁଧା + ଭୃ + ଅଧି.ତ) ଚନ୍ଦ୍ର, ଯଜ୍ଞ ।

ସୁଧାମ—ବ. ଉତ୍ତମଧାମ,ଚନ୍ଦ୍ରମା,ପ୍ରାଚୀନ ଋଷିବିଶେଷ ।

ସୁଧାମଧୁର—ବ. ଅମୃତପରି ମିଠା ।

ସୁଧାମୟ—ବଂ. ( ସୁଧା+ମୟ ) ଅତି ମଧୁର, ଅମୃତପୂର୍ଣ୍ଣ, ଚୂର୍ଣ୍ଣମୟ, ( ସ୍ତ୍ରୀ ) ସୁଧାମୟୀ, (ବ) ରାଜଭବନ ।

ସୁଧାମୟୂଖ—ବ.(ବ.ବ୍ରୀ)ସୁଧାକର,ଚନ୍ଦ୍ର ।

ସୁଧାମୁଖ—ବ. (କ.ଧା) ସୁଧାପୂର୍ଣ୍ଣ ମୁଖ, ସୁନ୍ଦର ମୁଖ, (ପୁଂ.ବଂ-ବ.ବ୍ରୀ)ଯାହାର ମୁଖ ଅମୃତପରି ମନୋରମ, ( ସ୍ତ୍ରୀ ) ସୁଧାମୁଖୀ ।

ସୁଧାମୁଖୀ—ସ୍ତ୍ରୀ.ବଂ. ସୁଧାମୁଖର ସ୍ତ୍ରୀଲିଙ୍ଗ (ସ୍ତ୍ରୀ.)ଅପ୍ସରାବିଶେଷ ।

ସୁଧାମୂଳୀ—ବ. ସାଲମମିଶ୍ରି ।

ସୁଧାମୋଦକ—ବ. ଯବାସଶର୍କରା, ଦୁରାଲଭାରୁ ପ୍ରସ୍ତୁତ ଗୁଡ଼ ।

ସୁଧାୟୁ—ବ. ସୁଧା ।

ସୁଧାଯୋନି—ବ. (ବ.ବ୍ରୀ) ଚନ୍ଦ୍ରମା ।

ସୁଧାର-ବଂ. ଶୋଭନ ଧାରାଯୁକ୍ତ,ଶୋଭନ ଧାରାବିଶିଷ୍ଟ,(ଗ୍ରା.ବ)ସଂସ୍କାର,ସଂଶୋଧନ ।

ସୁଧାରଶ୍ମି—ବ. (ବ.ବ୍ରୀ) ଚନ୍ଦ୍ର ।

ସୁଧାରସ—ବ. ସୁଧାରୂପ ରସ, ଯେଉଁ ରସ ସୁଧାପରି ଉପକାରୀ ।

ସୁଧାରସମୟ—ବଂ. ସୁଧାରସ ସ୍ୱରୂପ, ସୁଧାରସାତ୍ମକ ।

ସୁଧାରା—ବ. ଉତ୍ତମ ଧାରା ବା ବ୍ୟବସ୍ଥା, ସୁଶୃଙ୍ଖଳା, (ଗ୍ରା.ବଂ) ଉତ୍ତମ (ବ୍ୟକ୍ତି), ସରଳ (ବ୍ୟକ୍ତି) ।

ସୁଧାଲେପ—ଗ୍ରା. ବ. (ଶିଳ୍ପଶାସ୍ତ୍ର) ଲକ୍ଷ, ଦେବଦାରୁ ଗଛର ନିର୍ଯ୍ୟାସ (ଝୁଣା), ଗୁଗ୍ଗୁଳ,ଗୃହଧୂମ(ଅଳନ୍ଧୂ), କଞ୍ଚା କଇଥ; ବେଲ ଓ କେନ୍ଦୁର ଅଠାମିଶ୍ରିତ ଏକପ୍ରକାର ଲେପ, ମଞ୍ଜିଷ୍ଠାର ଓ ହରଡ଼ାର ସଦ୍ୟ ଅଠାମିଶ୍ରିତ ଲେପ,

ଘରେ ଚୂନ ଲିପିବା, କାନ୍ଥରେ କଲ-
ଚୂନ ଦ୍ୱାରା ସଫେଦ କରିବା ।
ସୁଧାଲୋକ—ବି. (ପ୍ରା.ଲର୍ଆ)ସାଦାସିଧା
ଲୋକ ।
ସୁଧାଶାଳୀ—ଗ୍ରା. ସ୍ତ୍ରୀ. ବି. ଅମୃତମୟୀ ସ୍ତ୍ରୀ,
ଅମୃତଭାଷିଣୀ ସ୍ତ୍ରୀ ।
ସୁଧାସମୁଦ୍ର—ବି. ସୁଧାସିନ୍ଧୁ ଦେଖ ।
ସୁଧାସିକ୍ତ—ବିଂ. ( ୭ତତ୍ ) ଅମୃତରେ
ଅଭିଷିକ୍ତ, ଅମୃତରେ ଭିଜାଥିବା ।
ସୁଧାସିତ—ବିଂ. ଚୂନକାମ କରାହୋଇ-
ଥିବା (ଗୃହ) ।
ସୁଧାସିନ୍ଧୁ—ବି. (କ. ଧା) ଅମୃତସମୁଦ୍ର,
ହିନ୍ଦୁପୁରାଣୋକ୍ତ ସପ୍ତସାଗରରୁ ଅନ୍ୟତମ
ସୁଧାସୂ—ବି. ( ସୁଧା+ସୂ+କ.ଉ )
ଚନ୍ଦ୍ର, ଯଜ୍ଞ ।
ସୁଧାସୂତ—ବି.(ସୁଧା + ସୂ+କ.ତ)ଚନ୍ଦ୍ର,
ପଦ୍ମ, ଯଜ୍ଞ ।
ସୁଧାସ୍ପର୍ଦ୍ଧୀ—ପୁଂ. ବିଂ. (ସୁଧା + ସ୍ପୃଧ୍+
କ.ଇନ୍) ଅମୃତତୁଲ୍ୟ,(ଯଥା—ଭାଷଣ,
ବଚନ) ।
ସୁଧାସ୍ରବା—ବିଂ.ଯହିଁରୁ ସୁଧା ଝରୁଥାଏ,
ସୁଧାବର୍ଷୀ ଦେଖ, (ବି) ପ୍ରତିଜିହ୍ୱା,
ଘଣ୍ଟିକା, ରୁଦନ୍ତୀ ଗୁଳ୍ମ ।
ସୁଧାସ୍ରଗ—ବି. ରୁଦନ୍ତୀ ଗୁଳ୍ମ ।
ସୁଧାହର(ହୃତ୍)—ବି. (ସୁଧା + ହୃ+କ.
ଅ) ପକ୍ଷିରାଜ, ଗରୁଡ଼ ।
ସୁଧି—ପ୍ରା.(ଲର୍ଆ)ବି. ସିଦ୍ଧି ।
ସୁଧିତ—ବିଂ. (ସୁ+ଧା+ତ) ସୁବ୍ୟ-
ବସ୍ଥିତ, ଅମୃତ ସଦୃଶ ।
ସୁଧିତ—ବି. (ସୁ+ଧି+ର୍ମ.ତ)ଅସ୍ତ୍ରବିଶେଷ
କୁଠାର, ସ୍ୱଧିତ ଦେଖ ।
ସୁଧୀ—ବି. ( ସୁ+ଧୀ-ବ.ବ୍ରୀ—ପୁଂ ଓ
ସ୍ତ୍ରୀ) ପଣ୍ଡିତ, (କ.ଧା) ବିଚକ୍ଷଣ ବୁଦ୍ଧି,
(ପୁଂ ଓ ସ୍ତ୍ରୀ.ବିଂ.)ବୁଦ୍ଧିମାନ୍, ବିଚକ୍ଷଣ,
ଚତୁର, ଧାର୍ମିକ ।
ସୁଧୀର—ପୁଂ. ବିଂ. (ସୁ+ଧୀର) ଅତି
ଧୀର, ଅତ୍ୟନ୍ତ ନମ୍ର, ସୁଶୀଳ, ଅତି
ଧୈର୍ଯ୍ୟଶୀଳ, (ସ୍ତ୍ରୀ) ସୁଧୀରା, (ଗ୍ରା.ବି)
ଅତି ଧୀରତା, ସୁଶୀଳତା ।

ସୁଧୁ—ଗ୍ରା.ଅବ୍ୟ. ପୂର୍ଣ୍ଣରୂପେ, କେବଳ,
ଶୁଦ୍ଧ, ଅକାରଣ, ଅନର୍ଥକ ।
ସୁଧୁପକ—ବି. ଶ୍ରୀବେଷ୍ଟ, ସଲ୍ଲକୀ ଅଠା ।
ସୁଧୂମ୍ୟ—ବି. ସ୍ୱାଦୁନାମକ ଗନ୍ଧଦ୍ରବ୍ୟ ।
ସୁଧୂମ୍ରବର୍ଣ୍ଣା—ବି. ଅଗ୍ନିଙ୍କର ସପ୍ତଜିହ୍ୱା
ମଧ୍ୟରୁ ଗୋଟିଏ ଜିହ୍ୱା ।
ସୁଧୃତି—ପୁଂ.ବି.ମିଥିଳାପତି ମହାବୀର୍ଯ୍ୟର
ପୁତ୍ର ।    [ ଧୃତ ।
ସୁଧୃତ—ବିଂ. (ସୁ+ଧୃ+ତ)ଦୃଢ଼ରୂପ
ସୁଧୃଷ୍ଟମ—ବିଂ. ଅତିଶୟ ଧୃଷ୍ଟ, ଧୃଷ୍ଟତମ
ସୁଧୋଭବ—ବି. ( ସୁଧା+ଉଦ୍ଭବ )
ଧନ୍ୱନ୍ତରି ।
ସୁଧୋଭବା—ସ୍ତ୍ରୀ.ବି. ହରୀତକୀ,ହରିଡ଼ା
ସୁଧୌତ—ବିଂ. ଉତ୍ତମରୂପେ ଧୌତ ।
ସୁନ୍ସାନ୍—ଗ୍ରା ବିଂ. (ଫ-ଶୂନ+ସ୍ଥାନ)
ଲୋକଶୂନ୍ୟ (ସ୍ଥାନ),କୋଳାହଳରହିତ,
ମୌନାବଲମ୍ବୀ ।
ସୁନ୍ଦହ୍—ଗ୍ରା.ବି. ହରିବଂଶ ଓ ଭାଗ-
ବତରେ ବର୍ଣ୍ଣିତ ପ୍ରାଚୀନ ଶୋଣିତପୁର
ବା ଶ୍ରୋଣିତପୁର ।
ସୁନ—ଗ୍ରା.ବି. (ଫ-ଶୂନ୍ୟ) ଶୂନ ଦେଖ,
(ଫ-ସୂନୁ) ପୁତ୍ର ।
ସୁନଜର—ଗ୍ରା.ବି. ସୁଦୃଷ୍ଟି, ସାନୁଗ୍ରହ
ଦୃଷ୍ଟି, ଦୟାପୂର୍ଣ୍ଣ ଦୃଷ୍ଟି ।
ସୁନ(ନ୍ନ)ତ—ଗ୍ରା.ବି.ମୁସଲମାନ୍ ବାଳକ-
ମାନଙ୍କର ଲିଙ୍ଗାଗ୍ର ଚର୍ମଚ୍ଛେଦ ରୂପ
ସଂସ୍କାର, ମୁସଲମାନ୍‌ମାନଙ୍କ ଧର୍ମ ପ୍ରବ-
ର୍ତ୍ତକ ଈଶ୍ୱର ପ୍ରେରିତ ହଜରତ୍ ମହ-
ମ୍ମଦଙ୍କ ମୁଖରୁ ଶୁଣିଥିବ କିମ୍ବା ତାଙ୍କୁ
ଦେଖିଥିବା ବ୍ୟକ୍ତିଙ୍କଦ୍ୱାରା ପ୍ରକାଶ କରା-
ଯାଇଥିବା କିମ୍ବଦନ୍ତୀମୂଳକ ଆଚାର ।
ସୁନ(ନ୍ନ)ତ—ବି. (ସୁ + ନତ) ଅତ୍ୟନ୍ତ
ନମ୍ରତା, (ଗ୍ରା.ବିଂ) ସୁନତ୍ ସମ୍ବନ୍ଧୀୟ,
ଯେଉଁ ବ୍ୟକ୍ତିର ସୁନତ୍ ସଂସ୍କାର
ହୋଇଅଛି ।
ସୁନନ୍ଦ—ପୁଂ.ବିଂ. (ସୁ+ନନ୍ଦ୍+ଣିଚ୍
+କ.ଅ) ଆନନ୍ଦଜନକ, ସୁନ୍ଦର ଓ
ଆନନ୍ଦଦାୟକ, (ସ୍ତ୍ରୀ) ସୁନନ୍ଦା, (ବି)
(ନାମ) ବଳଭଦ୍ରଙ୍କ ମୂଷଳ, ଶ୍ରୀକୃଷ୍ଣଙ୍କର

ପାର୍ଶ୍ୱଚର ଗୋପବିଶେଷ, ଦ୍ୱାଦଶ ବର୍ଷ
ରାଜଗୃହ ମଧ୍ୟରୁ ଏକତମ ।
ସୁନନ୍ଦନ—ବି. (କ.ଧା) ସୁପୁତ୍ର ଦେଖ,
ଶ୍ରୀକୃଷ୍ଣଙ୍କ ପୁତ୍ରବିଶେଷ ।
ସୁନନ୍ଦା—ସ୍ତ୍ରୀ.ବିଂ. (ସୁନନ୍ଦ+ଆ)ସୁନ-
ନ୍ଦର ସ୍ତ୍ରୀଲିଙ୍ଗ, (ସ୍ତ୍ରୀ.ବି) ଉମା, ପାର୍ବତୀ,
ଗୋରୋଚନା,ନାରୀ, ଉମାଙ୍କର ଜଣେ
ସଖୀଙ୍କ ନାମ, ଅର୍କପତ୍ରୀ ଗୁଳ୍ମ, କୁଆଁ-
ମଇତା,ଇନ୍ଦୁମତୀଙ୍କ ସ୍ୱୟମ୍ବର କାଳରେ
ତାଙ୍କ ସଙ୍ଗେ ରାଜସଭାକୁ ଯାଇଥିବା
ସଖୀଙ୍କ ନାମ, କୃଷ୍ଣଙ୍କର ଜଣେ ପତ୍ନୀ,
ବାଳଙ୍କ ମାତା, ଚେଦିରାଜ ସବାହୁଙ୍କ
ଭଉଣୀ, ଭରତଙ୍କ ସ୍ତ୍ରୀ, ଧଳାଗାଈ,
(ଗ୍ରା.ବି) କୃଷ୍ଣଙ୍କର ଅଷ୍ଟ ପଟ୍ଟମହିଷୀଙ୍କ
ମଧ୍ୟରୁ ଏକତମା ।
ସୁନନ୍ଦିନୀ—ସ୍ତ୍ରୀ.ବି.ଆରାମଶୀତଳା, ସୁଗନ୍ଧ
ପତ୍ର, ଶାକବିଶେଷ, ଛନ୍ଦୋଭେଦ ।
ସୁନପୁର—ଗ୍ରା.ବି.(ମାଦଳାପାଞ୍ଜି)ସୋନ-
ପୁର ।    [ ବିଶେଷ ।
ସୁନଫା—ବି. ଜ୍ୟୋତିଷୋକ୍ତ ଯୋଗ-
ସୁନୟ—ବି. ସୁନୀତି ଦେଖ ।
ସୁନୟନ—ବି. (କ.ଧା) ସୁନ୍ଦର ଚକ୍ଷୁ,
(ବ.ବ୍ରୀ) ମୃଗ,(ପୁଂ.ବିଂ-ବ.ବ୍ରୀ)ସୁନ୍ଦର
ନୟନବିଶିଷ୍ଟ,ସୁଲୋଚନ,(ସ୍ତ୍ରୀ)ନୟନା ।
ସୁନୟନା—ସ୍ତ୍ରୀ. ବିଂ. (ବ.ବ୍ରୀ) ସୁନ୍ଦର
ନେତ୍ରବିଶିଷ୍ଟା, ସୁଲୋଚନା, (ସ୍ତ୍ରୀ. ବି)
ନାରୀ ।
ସୁନସ—ପୁଂ. ବିଂ. (ସୁ + ନାସା) ବ.ବ୍ରୀ;
ସୁନ୍ଦର ନାସିକାବିଶିଷ୍ଟ, (ସ୍ତ୍ରୀ)ସୁନସା ।
ସୁନା—ଗ୍ରା.ବି.(ଫ-ସ୍ୱର୍ଣ୍ଣ)ପ୍ରସିଦ୍ଧ ହରିଦ୍ରାଭ
ଧାତୁ, ସୁବର୍ଣ୍ଣ,ସୁନାପରି ମୂଲ୍ୟବାନ୍ ବସ୍ତୁ,
ଉତ୍ତମ ବାଳକ ବା ବାଳିକା, ଶିଶୁ ଓ
ପ୍ରଣୟିମାନଙ୍କ ପ୍ରତି ସ୍ନେହ ସମ୍ବୋଧନ,
( ଶିଶୁରଞ୍ଜନଭାଷା ) ପ୍ରିୟତମ ଶିଶୁର
ଲିଙ୍ଗ, ଗ୍ରା.ବିଂ.(ଅନ୍ୟ ଶବ୍ଦ ସଙ୍ଗେଯୁକ୍ତ)
ସ୍ୱର୍ଣ୍ଣନିର୍ମିତ, ସୁନାପରି ବର୍ଣ୍ଣବିଶିଷ୍ଟ,
ଉତ୍ତମ, ସୁଶୀଳ ।
ସୁନାକାକ(କେ)ର(ରି)—ଗ୍ରା.ବି.ସ୍ତ୍ରୀମାନଙ୍କ
ମସ୍ତକରେ କେଶ ଉପରେ ଖଞ୍ଜାଯିବା

କାକବପିଠା ବା ପୂର୍ଣ୍ଣଚନ୍ଦ୍ର ଆକୃତିବିଶିଷ୍ଟ ସ୍ୱର୍ଣ୍ଣ ଅଳଙ୍କାର ।

ସୁନାକୁକୁଡ଼ା ଉଡ଼ା(ଡ଼ୋ)ଇବା—ଗ୍ରା. କ୍ରି. ଲଭବାନ୍ ହେବା, କୌଣସି କାର୍ଯ୍ୟରେ କୃତକାର୍ଯ୍ୟ ହେବା ।

ସୁନାକୂପ—ଗ୍ରା.ବି. ସୁନାର କୂଅ, ପୁରୀର ଜଗନ୍ନାଥ ଦେଉଳର ବେଢ଼ା ଭିତରେ ଶୀତଳାଦେବୀଙ୍କ ଦେଉଳ ଆଗରେ ଥିବା କୂଅ ।

ସୁନାକୃତ—ବି. କର୍ପୂରକ, କଳାହଳଦୀ ।

ସୁନାଖିଲ—ଗ୍ରା.ବି.ଏକପ୍ରକାର ସରୁଧାନ ।

ସୁନାଗର—ପୁଂ.ବି.(ସୁ+ନାଗର)ଉତ୍ତମ ନାଗର, (ସ୍ତ୍ରୀ) ସୁନାଗରୀ ।

ସୁନାଗରା—ଗ୍ରା.ବି. ସ୍ୱର୍ଣ୍ଣ ନିର୍ମିତ ଗରା ବା ଘଟ, ସ୍ୱର୍ଣ୍ଣପୂର୍ଣ୍ଣ ଗରା, ଉତ୍ତମ ନାଗରା ବା ତନ୍ତ୍ରିଷ୍ଟ ବାଦ୍ୟଯନ୍ତ୍ରବିଶେଷ ।

ସୁନାଗୋରୀ—ଗ୍ରା. ସ୍ତ୍ରୀ. ବି. ସୁନାପରି ଗୌର ଅଙ୍ଗବିଶିଷ୍ଟା ରମଣୀ ।

ସୁନାଚଟା—ଗ୍ରା. ବି. କପାଳରେ ଚିତା ଦେବାପରି ଅଠାମାରି ପିନ୍ଧିବା ପାଇଁ ବ୍ୟବହୃତ ସ୍ୱର୍ଣ୍ଣଖଣ୍ଡ ।

ସୁନାଚେନ୍—ଗ୍ରା. ବି. ସୁନାର ଶିକୁଳି ।

ସୁନାଛୁଆଁ(ଉଁ)ଣି—ଗ୍ରା. ବିଂ. ଉପରେ ସୁନାପରି ମଡ଼ାଯାଇଥିବା, (ଗ୍ରା. ବି) ସୁନାଛୁଇଁବା ।

ସୁନାଜଙ୍ଘ(ଘା,ଘି)—ଗ୍ରା.ବି. କୁଳେଚର-ବର୍ଗର ୨ହାତ ଉଚ୍ଚ ପକ୍ଷିବିଶେଷ ।

ସୁନାଝିଅ—ଗ୍ରା.ସ୍ତ୍ରୀ.ବି.(ଶିଶୁରଞ୍ଜନ ପଦ-ବାଳିକାକୁ ସ୍ନେହ ସମ୍ବୋଧନ)ଉତ୍ତମା ବା ସୁଶୀଳା ବାଳିକା । [ ବିଶିଷ୍ଟ ।

ସୁନାଦ—ବି.ଶଙ୍ଖ, (ବିଂ) ସୁନ୍ଦର ନାଦ-

ସୁନାଦି(ଦେ)ହ—ଗ୍ରା. ବି. ସୁନାପରି ହରିଦ୍ରାଭ ଗୌର ଶରୀର, ମୂଲ୍ୟବାନ୍ ଓ ସୁସ୍ଥ ଶରୀର ।

ସୁନାଦେହଚୂନା(ମାଟି)କରିବା—ଗ୍ରା. କ୍ରି. ଶରୀରକୁ ବିନଷ୍ଟ କରିବା, ନିଜର ସ୍ୱାସ୍ଥ୍ୟକୁ ନଷ୍ଟ କରିବା ।

ସୁନାନାକୀ—ଗ୍ରା.ସ୍ତ୍ରୀ.ବିଂ.ଯେଉଁ କନ୍ୟାର ନାକ ସୁନାପରି ସୁନ୍ଦର, ଯେଉଁ ସ୍ତ୍ରୀ ନାକରେ ସୁନାର ଅଳଙ୍କାର ପିନ୍ଧିଥାଏ ।

ସୁନାପଇତା—ଗ୍ରା.ବି. ସୁନାର ତାରରେ ତିଆରି ଯଜ୍ଞୋପବୀତ ଆକାରର ସୂତ୍ର ।

ସୁନାପାଗ—ଗ୍ରା. ବି. ସ୍ୱର୍ଣ୍ଣନିର୍ମିତ ପଗଡ଼ି ।

ସୁନାପାଣି—ଗ୍ରା. ବି. କୌଣସି ପଦାର୍ଥକୁ ଗିଲ୍ଟ କରିବା ପାଇଁ ବା ସୁନେଲି ରଙ୍ଗ ମଡ଼ାଇବା ପାଇଁ ବ୍ୟବହୃତ ସ୍ୱର୍ଣ୍ଣ ବର୍ଣ୍ଣର ଏକପ୍ରକାର ଦ୍ରବ୍ୟ ।

ସୁନାପାତିଆ—ଗ୍ରା. ବି. ସୁନାର ଖୁବ ପତଳା ପତ୍ର, (ପ୍ରା. ବାଲେ.ବି)ସୁନାର ପାତିଆ ଭଳି ଲମ୍ବା ମତ୍ସ୍ୟବିଶେଷ ।

ସୁନାପୁଅ—ଗ୍ରା. ପୁଂ. ବି. (ବାଳକ ପ୍ରତି ସ୍ନେହ ସମ୍ବୋଧନ) ଗେହ୍ଲାପୁଅ,(ଶିଶୁ-ରଞ୍ଜନ ପଦ) ଉତ୍ତମ ସୁଶୀଳ ବାଳକ, (ଲ.ଅର୍ଥ) ସର୍ବତ୍ର ଆଦୃତ ବ୍ୟକ୍ତି, ପ୍ରୀତି ପାତ୍ର ।

(ସେଠାରେ)ସୁନାଫଳିବା—ଗ୍ରା.ବି. ସ୍ୱର୍ଣ୍ଣର ବା ଧନର ଉତ୍ପାଦନ ।

ସୁନାଫୁଟିଅଗାଡ଼ିହେବା(ନ୍ୟାୟ)-ଗ୍ରା.(ପ୍ରବ) ପ୍ରଥମରେ ଭଲଫଳର ଆଶାଥିବାଠାରେ ପରେ ନିଷ୍ଫଳ ହେବା ।

ସୁନାବଲା—ପ୍ରା. (ପାରଳୁଦ) ବି. ଶଗଡ଼ ଚକର ହାଣ୍ଡି ବା ତୁମ୍ବ ଉପରେ ଭିଡ଼ା-ଯିବା ଲୁହାର ପାତିଆ,(ଗ୍ରା.ବି)ସୁନାପୁଅ ଦେଖ,ସୁନାର ତିଆରି ବଲା ବା ଖଡ଼ୁ ।

ସୁନାବେଙ୍ଗ—ଗ୍ରା.ବି.ସୁନାପରି ହଳଦିଆ ଓ ଚିକ୍କଣ ଚର୍ମବିଶିଷ୍ଟ ଏକପ୍ରକାର ବେଙ୍ଗ

ସୁନାବେଶ—ଗ୍ରା. ବି. ଗୁଣ୍ଡିଚା ପରେ ବାହୁଡ଼ାଯାତ୍ରାରେ ଜଗନ୍ନାଥ ବଳଭଦ୍ର-ମୂର୍ତ୍ତିଙ୍କ ରଥମାନ ସିଂହଦ୍ୱାରକୁ ଫେରି ଆସିବାପରେ ଦେବବିଗ୍ରହମାନଙ୍କର ସ୍ୱର୍ଣ୍ଣାଭରଣରେ ଯେଉଁ ବେଶ ହୁଏ ।

ସୁନାଭ—ବି. (ସୁ+ନାଭି) ହିମାଳୟର ପୁତ୍ର, ମୈନାକପର୍ବତ, ସୁଦର୍ଶନଚକ୍ର, ଧୃତରାଷ୍ଟ୍ରଙ୍କର ଏକ ପୁତ୍ର, ବରୁଣଙ୍କର ଏକ ମନ୍ତ୍ରୀ,ଗରୁଡ଼ଙ୍କର ଏକ ପୁତ୍ର, ଅସ୍ତ୍ର-ମାନଙ୍କରେ ପ୍ରୟୋଗ କରାଯିବା ମନ୍ତ୍ର-ବିଶେଷ, (ବିଂ) ସୁନ୍ଦର ନାଭିବିଶିଷ୍ଟ, (ସ୍ତ୍ରୀ) ସୁନାଭା ।

ସୁନାଭସ୍ମ—ଗ୍ରା.ବି.ସ୍ୱର୍ଣ୍ଣଭସ୍ମ,ଜାରିତସ୍ୱର୍ଣ୍ଣର ପାଉଁଶ ।

ସୁନାଭାତ—ଗ୍ରା. ବି. ମୂଲ୍ୟବାନ୍ ଅନ୍ନ ।

ସୁନାଭି—ବିଂ. ସୁନ୍ଦର ନାଭିଯୁକ୍ତ ।

ସୁନାମ—ବି. (ସୁ+ନାମନ୍) ସୁଖ୍ୟାତି, ଯଶଃ, ପ୍ରଶଂସା ।

ସୁନାମକେଇ—ଗ୍ରା. ବି. (ସଂ-ସ୍ୱର୍ଣ୍ଣପତ୍ରିକା) ଭେଦକଦ୍ରବ୍ୟବିଶେଷ, ମଳନିଃସାରକ ଔଷଧି ।

ସୁନାମଣ୍ଡା—ଗ୍ରା. ବି. ( ସଂ-ସ୍ୱର୍ଣ୍ଣମଣ୍ଡିତ ) ସ୍ୱର୍ଣ୍ଣଭୂଷିତ,ସୁନାରେ ଗୁନ୍ଥାଣି ହୋଇ-ଥିବା ।

ସୁନାମଦ୍ୱାଦଶୀ—ବି. ଅଗ୍ନିପୁରାଣୋକ୍ତ ଦ୍ୱାଦଶ ମାସର ଶୁକ୍ଳଦ୍ୱାଦଶୀରେ କର୍ତ୍ତବ୍ୟ ବିଷ୍ଣୁପୂଜାରୂପ ବ୍ରତ ।

ସୁନାମା—ବିଂ. ବି.ସ୍ତ୍ରୀ; (ସୁ+ନାମନ୍) ଯଶସ୍ୱୀ, ( ବି-ନାମ ) କଂସର ୮ଭାଇ ମଧ୍ୟରୁ ଏକ,ସ୍କନ୍ଦାନୁଚରବିଶେଷ,ବୈନ-ତେୟଙ୍କର ଏକ ପୁତ୍ର, ସୁକେତୁଙ୍କର ଏକ ପୁତ୍ର ।

ସୁନାମିକା—ବି. ତ୍ରାୟମାଣା ଲତା ।

ସୁନାମୁଖୀ-ଗ୍ରା.ବି.ସୁନାମକେଇ ଦେଖ ।

ସୁନାମୁଗ—ଗ୍ରା. ବି. ଏକପ୍ରକାର ମୁଗ ।

ସୁନାମୁଦ—ଗ୍ରା. ବି. (ସଂ-ସ୍ୱର୍ଣ୍ଣ+ମୁଦ୍ରିକା) ସ୍ୱର୍ଣ୍ଣନିର୍ମିତ ମୁଦ୍ରିକା ।

ସୁନାମୁଦିଆ—ଗ୍ରା. ବି. (ସଂ-ସ୍ୱର୍ଣ୍ଣମୁଦ୍ରିକା) ଯେଉଁବ୍ୟକ୍ତି ସୁନାମୁଦ ପିନ୍ଧିଥାଏ, (ଲ. ଅର୍ଥ) ବଡ଼ଲୋକ । [ ପତ୍ନୀ ।

ସୁନାମ୍ନୀ—ସ୍ତ୍ରୀ. ବି. ଦେବକୀ, ବସୁଦେବ

ସୁନାୟକ—ପୁଂ. ବି. ନାଟକ ଉପନ୍ୟାସ କାବ୍ୟାଦିର ଉତ୍ତମ ନାୟକ,ସ୍କନ୍ଦାନୁଚର-ବିଶେଷ, (ନାମ) ବୈନତେୟଙ୍କ ପୁତ୍ର-ବିଶେଷ, ଦୈତ୍ୟବିଶେଷ ।

ସୁନାର—ବି. ଶୁନୀସ୍ତନ୍ୟ, କୁକ୍କୁରୀଦୁଗ୍ଧ, ସର୍ପାଣ୍ଡ,କଲବିଙ୍କ,ଘରଚଟିଆ ଚଢ଼େଇ, (ଗ୍ରା.ବି) ସୁନାର ।

ସୁନାର(ରି)ଧାଇ—ପ୍ରା. (ବାଲେଶ୍ୱର) ବି. ହଳଦିଆରଙ୍ଗର ଏକଜାତୀୟ ବାଉଁଶ ।

ସୁନାବଗଡ଼ା—ଗ୍ରା.ବି. ବନ୍ୟବୃକ୍ଷବିଶେଷ ।

ସୁନାର—ଗ୍ରା. ବି. (ସଂ-ସ୍ୱର୍ଣ୍ଣକାର)ବଣିଆ, (ସଂ-ସ୍ୱର୍ଣ୍ଣାଙ୍ଗ)ଆରଗ୍ୱଧ ଗଛ,ସୁନାରି-ଗଛ ।

ସୁନାରବଣିଆ—ଗ୍ରା.ବି. (ସଂ-ସ୍ୱର୍ଣ୍ଣକାର+ବଣିକ୍) ସ୍ୱର୍ଣ୍ଣକାର ବଣିଆ ।

ସୁନାରୀ—ସ୍ତ୍ରୀ. ବି. (ସୁ+ନାରୀ) ଉତ୍ତମା ସ୍ତ୍ରୀ, ରସିକା ସ୍ତ୍ରୀ, (ଗ୍ରା.ବି) ସୁନାରି-ଗଛ, ସୁନାରବଣିଆ ।

ସୁନା(ନେ)ଲି—ଗ୍ରା.ବିଂ.ସ୍ୱର୍ଣ୍ଣବର୍ଣ୍ଣବିଶିଷ୍ଟ, ସ୍ୱର୍ଣ୍ଣରଞ୍ଜିତ,ଗିଲ୍‌ଟିକରା,ସ୍ୱର୍ଣ୍ଣ ସମ୍ବନ୍ଧୀୟ ।

ସୁନାଲ—ବି. ରକ୍ତକମଳ ।

ସୁନାଲକ—ବି. ଅଗସ୍ତ୍ୟ ବୃକ୍ଷ ।

ସୁନା(ନେ)ଲି—ଗ୍ରା.ବିଂ ସୁନାସମ୍ବନ୍ଧୀୟ, ସୁନାପରି ବର୍ଣ୍ଣବିଶିଷ୍ଟ ।

ସୁନା(ନେ)ଲିରଙ୍ଗ—ଗ୍ରା. ବି. ସ୍ୱର୍ଣ୍ଣବର୍ଣ୍ଣ-ବିଶିଷ୍ଟ ରଙ୍ଗ ।

ସୁନାଶୀ(ସୀ)ର—ବି. (ବ.ବ୍ରୀ) ଇନ୍ଦ୍ର, ଦେବତା, (ଗ୍ରା.ବି)ପ୍ରଧାନ ଯୋଦ୍ଧା ।

ସୁନାସ—ଗ୍ରା. ପୁଂ. ବିଂ. (ସଂ-ସୁନାସିକ) ସୁନାସିକ ବା ସୁନ୍ଦର ନାସିକାଯୁକ୍ତ, (ଗ୍ରା.ବି-ସଂ ସୁନାସା)ସୁନ୍ଦର ନାସିକା ।

ସୁନାସା—ସ୍ତ୍ରୀ.ବି.(କ.ଧା)ସୁନ୍ଦରନାସିକା

ସୁନାସିକ—ପୁଂ. ବିଂ.(ବ.ବ୍ରୀ) ସୁନ୍ଦର ନାସିକାଯୁକ୍ତ, (ସ୍ତ୍ରୀ) ସୁନାସିକା ।

ସୁନାସିକା—ବି. (କ.ଧା)ସୁନ୍ଦର ନାକ, କୀକନାସା, (ସ୍ତ୍ରୀ.ବିଂ) ସୁନ୍ଦର ନାସା-ବିଶିଷ୍ଟା ।

ସୁନି—ଯା. ବି. ମୁସଲମାନସମ୍ପ୍ରଦାୟ-ବିଶେଷ ।

ସୁନିଆଁ(ଆ)—ଗ୍ରା.ବି(ସଂ-ସ୍ୱର୍ଣ୍ଣ)ସ୍ୱର୍ଣ୍ଣମୁଦ୍ରା, ମଉଡ଼,ମହୋର,ଭାଦ୍ରମାସ ଶୁକ୍ଳ ଦ୍ୱାଦଶୀ, ଓଡ଼ିଆ ସନର ଓ ପୁରୀ ରାଜାଙ୍କ ଅଙ୍କର ପରିବର୍ତ୍ତନ ଦିବସ ।

ସୁନିକ—ପୁଂ.ବି.ରଘୁଞ୍ଜୟଙ୍କ ମନ୍ତ୍ରୀଭେଦ

ସୁନିକୃଷ୍ଟ—ବିଂ(ସୁ+ନି+କୃଷ୍+ତ) ଅତି ନିକୃଷ୍ଟ, ଅତିଶୟ ନିନ୍ଦିତ ।

ସୁନିଖାତ—ବିଂ.(ସୁ+ନି+ଖନ୍+ତ) ଯାହା ଉତ୍ତମ ରୂପେ ନିଖାତ ହୋଇ-ଅଛି, ଉତ୍କୃଷ୍ଟ ରୂପେ ପ୍ରୋଥିତ ।

ସୁନିତମ୍ବିନୀ—ସ୍ତ୍ରୀ. ବି. ଉତ୍ତମ ନିତମ୍ବ-ବିଶିଷ୍ଟା ନାରୀ ।

ସୁନିଦ୍ର—ପୁଂ. ବିଂ. (ସୁ+ନିଦ୍ରା+ଅ) ବ.ବ୍ରୀ; ଉତ୍ତମ ରୂପେ ଶୋଇଥିବା, ଗାଢ଼ନିଦ୍ରିତ, (ସ୍ତ୍ରୀ) ସୁନିଦ୍ରା ।

ସୁନିଦ୍ରା—ବି. ସ୍ୱପ୍ନ ବା ଜାଗରଣରହିତ ନିଦ୍ରା, ଗାଢ଼ନିଦ୍ରା ।

ସୁନିନଦ—ପୁଂ.ବିଂ.ସୁନ୍ଦର ନାଦକାରୀ, (ସ୍ତ୍ରୀ) ସୁନିନଦା ।

ସୁନିପୁଣ—ପୁଂ.ବିଂ.ସୁଦକ୍ଷ, ଅତି ନିପୁଣ ବା ବିଚକ୍ଷଣ, (ସ୍ତ୍ରୀ) ସୁନିପୁଣା ।

ସୁନିଭୃତ—ଅ. ଅତିଶୟ ନିଭୃତ ।

ସୁନିମୁଗ—ଗ୍ରା. ବି. ଏକପ୍ରକାର ମୁଗ, ଝାଲ୍ଲିମୁଗ ।

ସୁନିୟନ୍ତ୍ରିତ—ବିଂ.ସୁସଂଯତ,ସୁନିୟମରେ ପରିଚାଳିତ ।

ସୁନିୟତ—ବିଂ.(ସୁ+ନି+ଯମ୍+ତ) ଅତିଶୟ ନିୟତ ।

ସୁନିୟମ—ବି.ଉତ୍ତମ ନିୟମ,ସୁଶୃଙ୍ଖଳା

ସୁନିରୂପିତ—ବିଂ.(ସୁ+ନି+ରୂପ+ତ) ଉତ୍ତମ ରୂପେ ନିରୂପିତ ।

ସୁନିର୍ଣ୍ଣୀତ—ବିଂ. ଉତ୍ତମ ରୂପେ ଅବ-ଧାରିତ ବା ସ୍ଥିରୀକୃତ, ସୁନିର୍ଦ୍ଦିଷ୍ଟ ।

ସୁନିର୍ଦ୍ଦିଷ୍ଟ—ବିଂ. ସୁସ୍ଥିର, ଉତ୍ତମ ରୂପେ ନିର୍ଦ୍ଦିଷ୍ଟ ବା ସ୍ଥିରୀକୃତ, ନିତ୍ୟ ।

ସୁନିର୍ଦ୍ଧାରିତ—ବିଂ. ଉତ୍ତମ ରୂପେ ସ୍ଥିରୀ-କୃତ, ସୁନିଶ୍ଚିତ ।

ସୁନିର୍ମଳ—ବିଂ. ଅତିଶୟ ନିର୍ମଳ, ଅତି ସ୍ୱଚ୍ଛ, ଅତି ପବିତ୍ର ।

ସୁନିର୍ମିତ—ବିଂ. ଉତ୍ତମ ରୂପେ ନିର୍ମିତ, ସୁନ୍ଦର ରୂପେ ପ୍ରସ୍ତୁତ ।

ସୁନିର୍ଯା(ର୍ଯ୍ୟା)ସା—ବି.ଜିଙ୍ଗିନୀବୃକ୍ଷ,ଶାଲ୍ମଲୀ ଜାତୀୟ ବୃକ୍ଷବିଶେଷ । [ ଶାଣିତ ।

ସୁନିଶିତ—ବିଂ.ସୁତୀକ୍ଷ୍ଣ, ଉତ୍ତମ ରୂପେ

ସୁନିଶ୍ଚୟ—ପୁଂ.ବି.(ସୁ+ନିର୍+ଚି+ଅ) ଦୃଢ଼ ନିଶ୍ଚୟ, ଠିକ୍ ।

ସୁନିଶ୍ଚଳ—ବିଂ.ଅତି ନିଶ୍ଚଳ, ସ୍ଥିର,ଦୃଢ଼ ।

ସୁନିଶ୍ଚିତ—ବିଂ.ଅତି ନିଶ୍ଚିତ, ସୁନିର୍ଦ୍ଧାରିତ, (ବି) ବୁଦ୍ଧବିଶେଷ ।

ସୁନିଷଣ୍ଣ—ବିଂ. (ସୁ+ନି+ସଦ୍+ତ) ସୁନ୍ଦର ଭାବରେ ଉପବିଷ୍ଟ, (ବି) ସୁନୁ-ସୁନିଆଶାଗ ।

ସୁନିଷଣ୍ଣକ—ବି. (ସୁ+ନି+ସଦ୍+କ. ତ+ସ୍ୱାର୍ଥେ.କ) ଶାକବିଶେଷ, ସୁନୁ-ସୁନିଆଁ ଶାଗ ।

ସୁନିଷୁନିଆଁ—ଗ୍ରା. ବି. (ସଂ-ସୁନିଷଣ୍ଣକ) ଜଳ କର୍ଦ୍ଦମଜ ଅପୁଷ୍ପକ ଶାକବିଶେଷ ।

ସୁନିଷ୍କ—ବିଂ. ଶୋଭନାଲଂକାରଯୁକ୍ତ, ସୁନ୍ଦର ଅଳଙ୍କାରବିଶିଷ୍ଟ ।

ସୁନିଷ୍ଟପ୍ତ—ବିଂ. (ସୁ+ନିର୍+ତପ୍+କ.ତ) ଅତି ଉତ୍ତପ୍ତ, ଅତିଶୟ ଗରମ ।

ସୁନିଷ୍ଠୁର—ବିଂ. ଅତିଶୟ ନିଷ୍ଠୁର, ଅତି ନିର୍ଦ୍ଦୟ ।

ସୁନିସ୍ତ୍ରିଂଶ—ବି. ଦାଢ଼ୁଆ ଖଣ୍ଡା, ସୁତୀକ୍ଷ୍ଣ ତରବାରି ।

ସୁନୀଚ—ବିଂ. ଅତିଶୟ ନୀଚ, (ବି) ଗ୍ରହ ଗଣର ରାଶି ବିଶେଷରେ ଅବସ୍ଥାନ-ବିଶେଷ ।

ସୁନୀତ—ବି. ବୁଦ୍ଧିମତ୍ତା, ନୀତିମତ୍ତା,(ନାମ) ସୁବଳଙ୍କ ପୁତ୍ର ରାଜବିଶେଷ, (ବିଂ) ସୁନୀତି ସହିତ, ସୁନୀତିଯୁକ୍ତ ।

ସୁନୀତି—ବି. (ସୁ+ନୀ+ଭା.ତି) ଉତ୍ତମ ନୀତି, ଉତ୍ତମ ନିୟମ, ନ୍ୟାୟସଙ୍ଗତ ଆଇନ, ଉତ୍କୃଷ୍ଟ ଉଦ୍ଦେଶ୍ୟ, ସାଧୁ ଉଦ୍ଦେଶ୍ୟ, ଉତ୍ତମ ଆଚରଣ, ଉତ୍ତମ ବ୍ୟବହାର,(ବ.ବ୍ରୀ--ନାମ)ଉତ୍ତାନପାଦ ରାଜାଙ୍କର ପ୍ରଥମା ସ୍ତ୍ରୀ, ଧ୍ରୁବଙ୍କ ମାତା, ଶିବ, (ବିଂ--ବ.ବ୍ରୀ)ଉତ୍ତମ ନୀତିବିଶିଷ୍ଟ, ନୀତିମାନ୍ ।

ସୁନୀତିନନ୍ଦନ—ବି. (୬ତତ୍) ଧ୍ରୁବ ।

ସୁନୀଥ—ପୁଂ.ବିଂ. (ସୁ+ନୀ+କ.ଥ) ଧାର୍ମିକ, ସାଧୁ, (ସ୍ତ୍ରୀ) ସୁନୀଥା, (ବି) ବ୍ରାହ୍ମଣ, (ନାମ) କୃଷ୍ଣଙ୍କର ଏକ ପୁତ୍ର, ଶିଶୁପାଳର ଏକ ନାମ ।

ସୁନୀଳ—ବିଂ.ଅତ୍ୟନ୍ତ ନୀଳ,(ସ୍ତ୍ରୀ)ସୁନୀଳା (ବି) ଲାମଜ୍ଜକ, ଗନ୍ଧବେଣା, ଧନଶୀ, ଦାଡ଼ିମ୍ବ । [ ନୀଳା ।

ସୁନୀଳକ—ବି.ନୀଳ ଭୃଙ୍ଗରାଜ, ନୀଳରତ୍ନ,

ସୁମାଳା—ବି. ( ସୁମାଳ + ଆ ) ଅତସୀ, ବିଷ୍ଣୁକ୍ରାନ୍ତା, ଶ୍ୱେତ ଅପରାଜିତା, ଜରଣ୍ଡି ତୃଣ, ଚଣିକା ତୃଣ ।

ସୁନୁ—ବି(ସୁ+ନୋ)ଜଳ,(ପ୍ରା.ବାଲେ.ବି) ମତ୍ସ୍ୟବିଶେଷ ।

ସୁନୁରି—ପ୍ରା. (ଗଡ଼ଜାତ)ବିଂ ସୁନାଲି ।

ସୁନୁରିକନ୍ୟାଣ—ପ୍ରା. (ଗଡ଼ଜାତ) ବି. ହଳଦିଆ କନିଅର (ଗଛ ଓ ଫୁଲ) ।

ସୁନୃତ—ଗ୍ରା. ବିଂ. (ସଂ-ସୂନୃତ) ସତ୍ୟ ଓ ପ୍ରିୟ ।

ସୁନୃପ—ପୁଂ. ବି. ଉତ୍ତମ ରାଜା ।

ସୁନେଇପୁତଲି—ପ୍ରା.(ସମ୍ବ)ବି. ଶାଳିଆ-ପତର ।

ସୁନେତ୍ର—ବି.ସୁନ୍ଦର ନୟନ, (ପୁଂ.ବିଂ-ବି.ବ୍ରୀ) ସୁନ୍ଦର ନୟନବିଶିଷ୍ଟ, (ସ୍ତ୍ରୀ) ସୁନେତ୍ରା, ସୁନେତ୍ରୀ ।

ସୁନେପାଳ—ବି.(ବୈଦ୍ୟକ)ପିଣ୍ଡ ଖର୍ଜୁର ବିଶେଷ, ଛୁଆରା ।

ସୁନେଲି—ଗ୍ରା. ବିଂ. (ସଂ-ସ୍ୱର୍ଣ୍ଣ)ସୁନାପରି ବର୍ଣ୍ଣବିଶିଷ୍ଟ ।

ସୁନୌ—ବିଂ.(ସୁ+ନୌ)ବ.ବ୍ରୀ; ସୁନ୍ଦର ନୌକାବିଶିଷ୍ଟ ।

ସୁନ୍ଥା—ଗ୍ରା.ବି. ସୀମନ୍ତ, କେଶବିନ୍ୟାସ ।

ସୁନ୍ଥାଣ(ଣି)—ଗ୍ରା. ବି. ତକିଆ ।

ସୁନ୍ଥାଣି—ଗ୍ରା. ବି. ଶବ ବାହାର୍ଥ ଜୁଇର ତଳେ ଆଡ଼ବାଗରେ ଦିଆଯିବା କାଠର ଦୁଇଟି ଗଡ଼ ।

ସୁନ୍ଥାଣିକାଠି—ପ୍ରା.(ଗଞ୍ଜାମ ଓ ଘୁମୁସର) ଶଗଡ଼ର ସୁଆଳି ।

ସୁନ୍ଦ—ବି.(ସୁନ୍ଦ୍+କ.ଅ--ନାମ)ରାକ୍ଷସ-ବିଶେଷ, ତାଡ଼କା ରାକ୍ଷସୀର ସ୍ୱାମୀ, ମାରୀଚ ରାକ୍ଷସର ପିତା, ରାମଚନ୍ଦ୍ରଙ୍କ ସଙ୍ଗେ ଲଙ୍କା ଯାଇଥିବା ବାନର ଯୋଦ୍ଧ ବିଶେଷ, ବିଷ୍ଣୁ ।

ସୁନ୍ଦର—ବିଂ.(ସୁନ୍ଦ୍+କ.ଅର କିମ୍ବା ସୁ +ଦୃ+ମଁ.ଅ) ମନୋହର, ରମଣୀୟ, ମନୋରମ, ରୁଚିକର, ମନମୋହକର, ପ୍ରିୟଦର୍ଶନ, ଉତ୍କୃଷ୍ଟ, ପ୍ରୀତି ଉତ୍ପାଦକ, ଉତ୍ତମ, ସୁଶ୍ରୀ, (ସ୍ତ୍ରୀ) ସୁନ୍ଦରୀ, (ପୁଂ.ବି-ସୁ-ନ୍ଦ୍+କ.ଅ)ମଦନ, କାମଦେବ, ବୃକ୍ଷବିଶେଷ, ସୁନ୍ଦରୀ କାଠର ଗଛ. ପାଟଳାଦି ବର୍ଗର ବନ୍ୟ ତରୁ, ରାମାୟଣର ପଞ୍ଚମଖଣ୍ଡ, ସୁନ୍ଦରାକାଣ୍ଡ, ଲଙ୍କାର ପର୍ବତବିଶେଷ, (ଗ୍ରା. ବି ) ଶୋଭା, ସୌନ୍ଦର୍ଯ୍ୟ ।

ସୁନ୍ଦରଗସ୍ୟା—ପ୍ରା.(ପୁରୀ)ବି.ବଡ଼ କଣ୍ଟକ-ହୀନ ବାଉଁଶବିଶେଷ, ସୁନ୍ଦରାଘାଇ ବାଉଁଶ ।

ସୁନ୍ଦରତା(ତ୍ୱ)—ବି. (ସୁନ୍ଦର+ଭା.ତା) ସୌନ୍ଦର୍ଯ୍ୟ ।

ସୁନ୍ଦରପଣ—ଗ୍ରା.ବି. ସୌନ୍ଦର୍ଯ୍ୟ ।

ସୁନ୍ଦରପଦା—ଗ୍ରା. ବି. ଭୁବନେଶ୍ୱର ନିକଟବର୍ତ୍ତୀ ଗ୍ରାମବିଶେଷ ।

ସୁନ୍ଦରବଣ(ନ)—ଗ୍ରା. ବି. ଗଙ୍ଗା ନଦୀର ମୁହାଣରେ ନିମ୍ନ ଭୂମିରେ ଥିବା ବିସ୍ତୃତ ଅରଣ୍ୟ ।

ସୁନ୍ଦରବଦନ—ବି.(କ.ଧା) ସୁନ୍ଦର ମୁଖ, (ପୁଂ.ବିଂ-ବ.ବ୍ରୀ) ସୁନ୍ଦର ମୁଖବିଶିଷ୍ଟ (ସ୍ତ୍ରୀ) ସୁନ୍ଦରବଦନା ।

ସୁନ୍ଦରବର—ବିଂ. ଅତି ସୁନ୍ଦର, (ବି) ସୁନ୍ଦର ଜୋଇଁ ।

ସୁନ୍ଦରମ୍ମନ୍ୟ—ପୁଂ.ବିଂ. (ସୁନ୍ଦରଂ+ମନ୍ +କ.ଅ)ଯେ ଆପଣାକୁ ସୁନ୍ଦର ବୋଲି ମନେ କରେ ।

ସୁନ୍ଦରଶାଳି—ପ୍ରା. (ସିଂହ)ବି.ଏକପ୍ରକାର ସରୁ ଧାନ ।

ସୁନ୍ଦରା(ରେ)—ଗ୍ରା. ବି. ପାଇକ ଓ ଖଣ୍ଡା-ଏତମାନଙ୍କର ବଂଶୋପାଧିବିଶେଷ, ଶୂଦ୍ରଜାତିବିଶେଷ ।

ସୁନ୍ଦରାକାଣ୍ଡ—ଗ୍ରା.ବି. (ସଂ-ସୁନ୍ଦରକାଣ୍ଡ) ରାମାୟଣର ସାତକାଣ୍ଡରୁ ଏକତମ ।

ସୁନ୍ଦରି—ବି.ବୃକ୍ଷବିଶେଷ, ସୁନ୍ଦର କାଠର ଗଛ, ନଦୀମୁହାଣ ପଟୁରେ ଜନ୍ମିବା ଏକପ୍ରକାର ଗଛ,ସଂ—(ସ୍ତ୍ରୀ ସମ୍ବୋଧନ) ସୁନ୍ଦରୀର ସମ୍ବୋଧନ,(ଗ୍ରା.ବିଂ)ସୁନ୍ଦର ।

ସୁନ୍ଦରିଆ—ଗ୍ରା.ବିଂ. ସୁନ୍ଦର, ସୁନ୍ଦର ଓ କ୍ଷୁଦ୍ର ।

ସୁନ୍ଦରିମା—ବି. ( ସୁନ୍ଦର+ଭା.ଇମନ୍ ) ସୁନ୍ଦରତ୍ୱ, ସୌନ୍ଦର୍ଯ୍ୟ ।

ସୁନ୍ଦରୀ—ସ୍ତ୍ରୀ.ବିଂ. ସୁରୂପା, ସୁଦୃଶ୍ୟା,(ବି) ରୂପଲାବଣ୍ୟସମ୍ପନ୍ନା ସ୍ତ୍ରୀ, ସୁରୂପା ସ୍ତ୍ରୀ, ବୃକ୍ଷବିଶେଷ, ହରିଦ୍ରା, ତ୍ରିପୁରସୁନ୍ଦରୀ, ଦଶମହାବିଦ୍ୟା ଅନ୍ତର୍ଗତ ଦେବୀବିଶେଷ, ତନ୍ତ୍ରୋକ୍ତ ଯୋଗିନୀବିଶେଷ,ଅର୍ଦ୍ଧ-ସମ-ବୃତ୍ତବିଶେଷ, (ଗ୍ରା.ବି) ଦୃଢ଼କାଷ୍ଠ ବୃକ୍ଷ-ବିଶେଷ ।

ସୁନ୍ଦରେଶ୍ୱର—ବି. ଶିବମୂର୍ତ୍ତିଭେଦ ।

ସୁନ୍ଦା—ଗ୍ରା.ବି. ମଥାଘଷା, ନାନା ଔଷଧ ଦ୍ରବ୍ୟ ମିଶ୍ରିତ କୁଟା ମସଲ ।

ସୁନ୍ଦୋପସୁନ୍ଦ—ବି. (ଦ୍ୱନ୍ଦ୍ୱ) ମାରୀଚ,ରାକ୍ଷସ-ବିଶେଷ ।

ସୁନ୍ଦାରୀ—ପ୍ରା.(ଲରିଆ)ବ.ସୁନାରବଣିଆଁ ।

ସୁନ୍ନତ—ଯା.ବି.ମୁସଲମାନ ଓ ଇହୁଦୀର ଲିଙ୍ଗ ଚର୍ମଚ୍ଛେଦ ସଂସ୍କାରବିଶେଷ ।

ସୁନ୍ନୀ—ମୁସଲମାନମାନଙ୍କର ସମ୍ପ୍ରଦାୟ-ବିଶେଷ ।

ସୁନ୍ୱନ୍—ପୁଂ. ବିଂ. (ସୁ+କ.ବନ୍)ସଙ୍କ-ଳ୍ପିତା, ସତୀ ।

ସୁପ୍—(ବ୍ୟାକରଣ—୭ମୀ ବିଭକ୍ତି ବହୁ ବଚନର ପ୍ରତ୍ୟୟ ସୁ) ଲିଙ୍ଗୋତ୍ତର ପ୍ରଯୁଜ୍ୟମାନ ପ୍ରତ୍ୟୟବିଶେଷ, ଏକ-ବିଂଶତି ବିଭକ୍ତିର ସଂଜ୍ଞା ।

ସୁପ୍ତିଙନ୍ତ-(ଦ୍ୱନ୍ଦ୍ୱ)ସୁପ୍ପ୍ରତ୍ୟୟ ଓ ତିଙନ୍ତ ପ୍ରତ୍ୟୟ ।

ସୁପକ୍ୱ—ବିଂ. ଉତ୍ତମରୂପେ ପାଚିଥିବା, ଉତ୍ତମରୂପେ ରନ୍ଧା ହୋଇଥିବା,ଉତ୍ତମ-ରୂପେ ସିଝିଥିବା,ଉତ୍ତମରୂପେ ପରିଣତ, (ବି) ସୁଗନ୍ଧ ଆମ୍ବ ।

ସୁପକ୍ଷ—ବିଂ.(ବ.ବ୍ରୀ)ସୁନ୍ଦର ପକ୍ଷବିଶିଷ୍ଟ, (ସ୍ତ୍ରୀ) ସୁପକ୍ଷା ।

ସୁପକ୍ଷିଣ—ଗ୍ରା.ବି.(ସଂ-ସୁ+ପକ୍ଷିନ୍)ଉତ୍ତମ ଶର ।

ସୁପକ୍ଷ୍ମା—ପୁଂ.ସ୍ତ୍ରୀ.ବିଂ(ସୁ+ପକ୍ଷ୍ମନ୍)ବ.ବ୍ରୀ; ସୁନ୍ଦର ପକ୍ଷ୍ମବିଶିଷ୍ଟ ।

ସୁପଚ—ବିଂ.(ସୁ+ପଚ୍+ମଁ.ଅ) ଲଘୁ-ପାକ, (ବି-କ.ଅ) ଉତ୍କୃଷ୍ଟ ପାଚକ ।

ସୁପଟ—ବି. (କ.ଧା) ସୁନ୍ଦର ବସ୍ତ୍ର, (ପୁଂ. ବିଂ-ବ.ବ୍ରୀ) ସୁନ୍ଦର ବସ୍ତ୍ରବିଶିଷ୍ଟ, (ସ୍ତ୍ରୀ)

ସୁପଟା, (ପ୍ରା.ପାଟଣା.ବିଂ) ସୁନ୍ଦର ।

ସୁପଣ(ଲୋ)ଖା—ଗ୍ରା. ବି. (ସଂ-ଶୂର୍ପଣଖା) ସୂର୍ପଣଖା ଦେଖ ।

ସୁପତ୍ର—ବିଂ.(ବ.ବ୍ରୀ) ସୁନ୍ଦର ପତ୍ରଯୁକ୍ତ, ସୁନ୍ଦର ପକ୍ଷଯୁକ୍ତ, ସୁନ୍ଦର ବାହନଯୁକ୍ତ, (ବି) ତେଜପତ୍ର, ଆଦିତ୍ୟପତ୍ର, ପକ୍ଷି ଚାହ ଚିତ୍ର,ଇଙ୍ଗୁଦୀ, ପୌରାଣିକ ପକ୍ଷି-ବିଶେଷ, (ସ୍ତ୍ରୀ) ସୁପତ୍ରୀ ।

ସୁପତ୍ରକ—ବି. ଶିଗ୍ରୁ, ସଜନା ।

ସୁପତ୍ରା—ବି. ( ବୈଦ୍ୟକ ) ରୁଦ୍ରଜଟା, ଶତାବରୀ, ପାଲଙ୍କ୍ୟ, ଶମୀ,ଶାଳପର୍ଣ୍ଣୀ ।

ସୁପତ୍ରିକା—ବି. ଜତୁକା, ପର୍ପଟୀ ।

ସୁପତ୍ରିତ—ବିଂ. (ସୁପତ୍ର+ଇତ) ପକ୍ଷ-ବିଶିଷ୍ଟ, ଶରବିଶିଷ୍ଟ ।

ସୁପତ୍ରୀ—ବି. (ସୁପତ୍ର+ଈ)ଗଙ୍ଗାପତ୍ରୀ. (ବିଂ-ସୁପତ୍ର+ଇନ୍)ସୁପତ୍ରିତ ଦେଖ ।

ସୁପତ୍ନୀ—ପୁଂ. ବିଂ. ଶୋଭନ ପତ୍ନୀଯୁକ୍ତ, ଉତ୍ତମ ପତ୍ନୀବିଶିଷ୍ଟ ।

ସୁପଥ—ବି.(କ.ଧା) ସଦାଚାର, ସନ୍ମାର୍ଗ. ସତ୍‌ପ୍ରଣାଳୀ, ସୁନ୍ଦର ପଥ, ଏକବର୍ଣ୍ଣ ବୃତ୍ତ, (ବିଂ) ଉତ୍ତମ ପଥବିଶିଷ୍ଟ ।

ସୁପଥ୍ୟ—ବିଂ. ଉତ୍କୃଷ୍ଟ ପଥ୍ୟ, ଯାହା ଖାଇଲେ ଦେହ ସୁସ୍ଥ ହୁଏ,(ବି)ରୋଗୀର ହିତକର ଆହାର, ସତ୍‌ଖାଦ୍ୟ, ଲଘୁ ଆହାର, ଆମ୍ବ ।

ସୁପଥ୍ୟା—ବି. ଶ୍ୱେତ ଚିଲ୍ଲୀ, ଧଳା ବଥୂଆ ଶାଗ, ନାଲି ବଥୂଆ ଶାଗ ।

ସୁପନ୍ଥ(ନ୍ଥା)—ଗ୍ରା. ବି. ସୁପଥ ଦେଖ ।

ସୁପଦ୍ମ—ବି. ସୁନ୍ଦର ପଦ୍ମ, ଉତ୍ତମ ପଦ ବିନ୍ୟାସ,ପଦ୍ମନାଭଦତ୍ତକୃତ ବାଳବୋଧ ସଂସ୍କୃତ ବ୍ୟାକରଣର ନାମ, (ବିଂ) ଶୋଭନ ପଦ୍ମଯୁକ୍ତ, ଉତ୍ତମ ପଦ-ବିନ୍ୟାସବିଶିଷ୍ଟ ।

ସୁପଦ୍ମା—ବି. ଔଷଧିବିଶେଷ, ବଚ ।

ସୁପରାକ୍ରମ—ବିଂ.ଅତିଶୟ ପରାକ୍ରମବିଶିଷ୍ଟ

ସୁପରିପୂଜିତ—ବିଂ. (ସୁ+ପରି+ପୂଜ୍ +ତ) ବିଶେଷ ରୂପେ ପୂଜିତ, ଅତି ପୂଜିତ ।

ସୁପରିପୂର୍ଣ୍ଣ—ବିଂ (ସୁ+ପରି+ପୂର+ତ) ଅତିଶୟ ପରିପୂର୍ଣ୍ଣ ।

ସୁପରିଭାଷ—ବିଂ. ଉତ୍ତମ ବାକ୍ୟବିଶିଷ୍ଟ ।

ସୁପରିରକ୍ଷ—ବିଂ. ସର୍ବତୋଭାବରେ ନଷ୍ଟ ।

ସୁପରିଶୁଦ୍ଧ—ବିଂ. (ସୁ+ପରି+ଶୁଧ୍+ତ) ଅତିଶୟ ପରିଶୁଦ୍ଧ, ବିଶେଷ ରୂପେ ଶୁଦ୍ଧ

ସୁପରିଶ୍ରାନ୍ତ—ବିଂ.(ସୁ+ପରି+ଶ୍ରମ୍+ତ) ଅତିଶୟ ଶ୍ରାନ୍ତ, ଅତ୍ୟନ୍ତ ପରିଶ୍ରମ-ବିଶିଷ୍ଟ ।

ସୁପରୀକ୍ଷଣ—କ୍ଲୀ.ବି. (ସୁ+ପରି+ଈକ୍ଷ୍ +ଅନ) ଉତ୍ତମ ରୂପେ ପର୍ଯ୍ୟବେକ୍ଷଣ. ଭଲକରି ଦେଖିବା ।

ସୁପରୀକ୍ଷିତ—ବିଂ (ସୁ+ପରି+ଈକ୍ଷ୍+ତ) ଉତ୍ତମ ରୂପେ ପରୀକ୍ଷିତ, ଯାହା ଭଲ ରୂପେ ପରୀକ୍ଷା କରାହୋଇଅଛି ।

ସୁପରୁଷ—ବିଂ. ଅତିଶୟ ପରୁଷ,ଅତ୍ୟନ୍ତ ନିଷ୍ଠୁର ।

ସୁପର୍ଣ୍ଣ—ବିଂ.(ବ.ବ୍ରୀ)ସୁନ୍ଦର ପତ୍ରବିଶିଷ୍ଟ. ସୁନ୍ଦର ପକ୍ଷବିଶିଷ୍ଟ. (ସ୍ତ୍ରୀ) ସୁପର୍ଣ୍ଣା,(ବି) ପକ୍ଷିରାଜ ଗରୁଡ଼. ସ୍ୱର୍ଣ୍ଣଚୂଡ଼ପକ୍ଷୀ, ଆର-ଗ୍ୱଧ, ସୁନାରିଗଛ, କୁକ୍କୁଟ, ପକ୍ଷୀ. କିରଣ, ବିଷ୍ଣୁ, ଅଶ୍ୱ, ବ୍ୟୂହ ରଚନା-ବିଶେଷ, ନାଗକେଶର, ସୁନ୍ଦର ପତ୍ର, ଅସୁରବିଶେଷ ।

ସୁପର୍ଣ୍ଣକ—ବି.ଆରଗ୍ୱଧ ବା ସୁନାରିଗଛ. ସପ୍ତଚ୍ଛଦ,ଗରୁଡ଼,(ବିଂ)ସୁନ୍ଦର ପତ୍ରବିଶିଷ୍ଟ, ସୁନ୍ଦର ପକ୍ଷବିଶିଷ୍ଟ ।

ସୁପର୍ଣ୍ଣକେତୁ—ପୁଂ.ବି. (ବ.ବ୍ରୀ) ଗରୁଡ଼ ଧ୍ୱଜ, ବିଷ୍ଣୁ, ଶ୍ରୀକୃଷ୍ଣ ।

ସୁପର୍ଣ୍ଣରାଜ—ପୁଂ.ବି. ପକ୍ଷିରାଜ, ଗରୁଡ଼ ।

ସୁପର୍ଣ୍ଣା--ସ୍ତ୍ରୀ.ବି.ସୁପର୍ଣ୍ଣର ସ୍ତ୍ରୀଲିଙ୍ଗ,(ସ୍ତ୍ରୀ.ବି) ପଦ୍ମିନୀ, ପଦ୍ମବୃକ୍ଷ,ଗରୁଡ଼ ଜନନୀ,ବିନତା

ସୁପର୍ଣ୍ଣାଖ୍ୟ—ବି. ନାଗକେଶର ।

ସୁପର୍ଣ୍ଣାଣ୍ଡ—ବି.ଶୂଦ୍ରା ମାତା ଓ ସୂତପିତାଙ୍କ ଠାରୁ ଉତ୍ପନ୍ନ ସନ୍ତାନ ।

ସୁପର୍ଣ୍ଣିକା—ବି. ସ୍ୱର୍ଣ୍ଣଜୀବନ୍ତୀ, ପଳାଶୀ, ଶାଳପର୍ଣ୍ଣୀ, ରେଣୁକା, ବାକୁଚି ।

ସୁପର୍ଣ୍ଣୀ—ସ୍ତ୍ରୀ. ବି. (ସୁପର୍ଣ୍ଣ+ଈ) ପଦ୍ମିନୀ, ବିନତା, ଗରୁଡ଼ମାତା, ମାଇଚଢ଼େଇ, ପଳାଶୀ, ରାତ୍ରି, ରାତ୍ରି, ରେଣୁକା, ଅଗ୍ନି-ଙ୍କର ସପ୍ତଜିହ୍ୱା ମଧ୍ୟରୁ ଏକ, ଗରୁଡ଼, (ସ୍ତ୍ରୀ. ବିଂ) ଉତ୍ତମ ପତ୍ରଯୁକ୍ତା ।

ସୁପର୍ଣ୍ଣୀତନୟ—ପୁଂ. ବି. (ଷତତ୍ପୁ)ଗରୁଡ଼

ସୁପର୍ଣ୍ଣେୟ—ପୁଂ. ବି. (ସୁପର୍ଣ୍ଣୀ+ଏୟ) ଗରୁଡ଼ ।

ସୁପର୍ଦ୍ଦ-ଯା.ବି. କୌଣସି ବିଷୟ ମକଦ୍ଦମା ବା ଆସାମୀକୁ ଅନ୍ୟବ୍ୟକ୍ତିଙ୍କ ନିକଟକୁ ବିଚାର ବା ରକ୍ଷଣ ନିମନ୍ତେ ପ୍ରେରଣ ।

ସୁପର୍ବ(ର୍ବା)—ବି. (ସୁ+ପର୍ବନ୍,କ.ଧା) ସୁନ୍ଦର ପର୍ବ, (ବିଂ)ସୁନ୍ଦର ପର୍ବବିଶିଷ୍ଟ ।

ସୁପର୍ବତ—ବି. ସାଧାରଣ ଭେଦ, ଉତ୍ତମ ପର୍ବତ ।

ସୁପର୍ବା(ର୍ବା)—ବିଂ. ( ବ.ବ୍ରୀ,ସୁ+ପର୍ବନ୍) ସୁନ୍ଦର ପର୍ବଯୁକ୍ତ (ସ୍ତ୍ରୀ)ସୁପର୍ବର ସ୍ତ୍ରୀଲିଙ୍ଗ, (ବି) ଦେବତା, ବାଣ, ବଂଶ, ବାଉଁଶ, ଧୂମ, ଶ୍ୱେତ ଦୂର୍ବା ।

ସୁପଳାୟିତ—ପୁଂ. ବିଂ.ଯେ ସୁପ୍ରଭାବରେ ବା ଶତ୍ରୁର ଅଗୋଚରରେ ପଳାଇଅଛି, (ସ୍ତ୍ରୀ) ସୁପଳାୟିତା ।

ସୁପଲାଶ—ବିଂ. ଉତ୍ତମ ପତ୍ରବିଶିଷ୍ଟ ।

ସୁପବିତ୍ର—ବି. ଅତିଶୟ ପବିତ୍ର, ଛନ୍ଦୋ-ଭେଦ ।

ସୁପା—ପ୍ରା. (ପାଟଣା)ବି.(ସଂ-ସୂର୍ପ) କୁଲା ।

ସୁପାକେ—ଗ୍ରା. କ୍ରି. ବିଂ. ସୌଭାଗ୍ୟରୁ, ସୁଯୋଗରୁ, ଅନୁଗ୍ରହରୁ. ପ୍ରସାଦରୁ ।

ସୁପାକିନୀ—ସ୍ତ୍ରୀ. ବି. ଆମ୍ର ହରିଦ୍ରା ।

ସୁପାକ୍ୟ—ବି.(ସୁ+ପାକ୍+ଯ)ବିଟ୍‌ଲବଣ

ସୁପାତ—ଗ୍ରା. ବି.(ସଂ-ସୁ+ପାତ୍ଧାତୁ= ପକାଇବା) ଶେଯ, ସୁଶଯ୍ୟା, କୋମଳ ଶଯ୍ୟା ।

ସୁପାତ୍ର—ବି.(ସୁ+ପାତ୍ର)ଯୋଗ୍ୟ ବ୍ୟକ୍ତି, ବିଦ୍ୟା ଓ ତପସ୍ୟାଦି ଗୁଣଯୁକ୍ତ ବ୍ୟକ୍ତି, ଉତ୍ତମ ଆଧାର ।

ସୁପାରଗ—ପୁଂ. ବିଂ. ଅତିଶୟ ପାରଗ, (ପୁଂ.ବି) ଶାକ୍ୟମୁନି ।

ସୁପାରଣ—ବିଂ. ସୁପାଠ୍ୟ, (ବି) ଉତ୍ତମ ପାରଣ, ଉତ୍ତମ ଭୋଜନ ।

ସୁପାରି(ରି)ସ୍—ଯା.ବି.କୌଣସି ବ୍ୟକ୍ତିକୁ,

ଅନୁଗ୍ରହ ଦେଖାଇବା ପାଇଁ ଅନ୍ୟ ବ୍ୟକ୍ତିକୁ ଅନୁରୋଧ ।

ସୁପାରି—ଗ୍ରା. ବି. ଲିଙ୍ଗର ଅଗ୍ର, ଚର୍ମବିହୀନ ଓ ଗୁବାକାକୃତି ଲିଙ୍ଗାଗ୍ର ।

ସୁପାରି—ଗ୍ରା. ବି. (ସଂ-ଶପୁର ବା ସୁପୁର) ଗୁବାକ, ଗୁଆ, ଲିଙ୍ଗର ଅଗ୍ର, ଲିଙ୍ଗର ଚର୍ମହୀନ ଅଗ୍ରଭାଗ ।

ସୁପାର୍ଶ୍ୱ—ବି. ସପ୍ତମ ଜୈନମୁନି, ଚତୁର୍ବିଂଶତି ବୃତ୍ତାର୍ହତ ଅନ୍ତର୍ଗତ ଅର୍ହତବିଶେଷ, ପ୍ଲକ୍ଷବୃକ୍ଷ, (ନାମ)ସମ୍ପାତି ପୁତ୍ର ପକ୍ଷିବିଶେଷ, ଗର୍ଦ୍ଧଭାଣ୍ଡ, ଶ୍ରୁତାୟୁଙ୍କ ପୁତ୍ର, ରାବଣର ଜଣେ ସୁଶୀଳ ସଚିବ, (ପୁଂ. ବିଂ.) ସୁନ୍ଦର ପାର୍ଶ୍ୱବିଶିଷ୍ଟ, (ସ୍ତ୍ରୀ) ସୁପାର୍ଶ୍ୱା ।

ସୁପାର୍ଶ୍ୱକ—ବି. ଚତୁର୍ବିଂଶତି ଭାବି ଅର୍ହତ ଅନ୍ତର୍ଗତ ଅର୍ହତବିଶେଷ, ଗର୍ଦ୍ଧଭାଣ୍ଡ ବୃକ୍ଷ ଏକପ୍ରକାର ଅଶ୍ୱତ୍ଥଗଛ, ପଲାଶ ଓ ଶାଲ୍ମଳିଗଛ ।

ସୁପାଳକ-ଗ୍ରା. ବି. ଧାନଆଦି ଫସଲ ନିମନ୍ତେ ଉପଯୁକ୍ତ ସମୟରେ ବର୍ଷାଆଦି ହେବାର ଅବସ୍ଥା ।

ସୁପିଙ୍ଗଳ—ବିଂ. ଅତିଶୟ ପିଙ୍ଗଳବର୍ଣ୍ଣ ।

ସୁପିଙ୍ଗଳା—ବି. ଜୀବନ୍ତୀ, ଜ୍ୟୋତିଷ୍ମତୀ ।

ସୁପିଷ୍ଟ—ବିଂ. ଉତ୍ତମରୂପେ ପିଷ୍ଟ, ଯାହା ଉତ୍ତମରୂପେ ପେଷଣ ହୋଇଥାଏ ।

ସୁପିସ—ବିଂ. ସୁଗନ୍ଧ, ଉତ୍ତମ ପେଷଣଯୁକ୍ତ

ସୁପୀଡନ—ବି. ହସ୍ତଘର୍ଷଣ, ଅଙ୍ଗମର୍ଦ୍ଦନ

ସୁପୀତ—ବି. ଗର୍ଜ୍ଜର, ଗାଜର, ପିତଟିଣ୍ଟୀ, (ବିଂ) ଉତ୍ତମରୂପେ ପାନକରା ହୋଇଥିବା, ଗାଢ଼ ହଳଦିଆ ।

ସୁପୀନ—ବିଂ. (ସୁ+ପୀନ) ଅତିସ୍ଥୂଳ ବା ମୋଟ ।

ସୁପୀବା—ପୁଂ. ବି. (ସୁ+ପା+କ. ବନ୍) ଉତ୍ତମରୂପେ ପାନକାରୀ ବ୍ୟକ୍ତି, ଶୋଭନ ପାନକର୍ତ୍ତା ।

ସୁପୁ—ବିଂ. ଅତିଶୟ ପବିତ୍ରକାରକ ।

ସୁପୁଂସୀ—ସ୍ତ୍ରୀ. ବି. (ସୁ+ପୁମସ୍+ଈ) ଯେଉଁ ସ୍ତ୍ରୀଙ୍କ ପତି ସୁପୁରୁଷ ।

ସୁପୁଟ—ବି. କୋଲକନ୍ଦ, ବିଷ୍ଣୁକନ୍ଦ, (ସ୍ତ୍ରୀ) ସୁପୁଟା ।

ସୁପୁଟା—ବି. ସେବତୀ, ବନମଲ୍ଲିକା ।

ସୁପୁତ୍ର—ପ୍ରା. (ସମ୍ବଲ) ବି. (ସଂ-ସୁପୁତ୍ର) ଯୋଗ୍ୟପୁତ୍ର, କୁଳୋଜ୍ଜ୍ୱଳକାରୀ ପୁତ୍ର ।

ସୁପୁତ୍ର—ପୁଂ. ବି. ଯୋଗ୍ୟପୁତ୍ର, ବିଦ୍ୟାବିନୟାଦିଯୁକ୍ତ ପୁତ୍ର, ପିତାମାତାଙ୍କ ପ୍ରତି ଭକ୍ତିମାନ୍ ପୁତ୍ର, (ବୈଦ୍ୟକ) ତିଳକ ବୃକ୍ଷ, (ବିଂ) ଉତ୍ତମ ପୁତ୍ରବିଶିଷ୍ଟ, ଯୋଗ୍ୟ ପୁତ୍ରବାନ୍ (ବ୍ୟକ୍ତି), (ସ୍ତ୍ରୀ) ସୁପୁତ୍ରା ।

ସୁପୁତ୍ରିକା—ସ୍ତ୍ରୀ. ବି. ଜତୁକା ଲତା, ପର୍ପଟୀ, (ବିଂ) ଯୋଗ୍ୟ ପୁତ୍ରବତୀ, ସୁନ୍ଦରୀ କନ୍ୟାବିଶିଷ୍ଟା ।

ସୁପୁର—ବି. ଗୁବାକ, ଗୁଆ ।

ସୁପୁରୁଷ—ପୁଂ. ବି. (କ. ଧା) ସୁନ୍ଦର ପୁରୁଷ, ସୁଶ୍ରୀ ନର, ରୂପବାନ୍ ମାନବ ।

ସୁପୁଲଭ—ପ୍ରା. (ପୁରୀ, ଗଡ଼ଜାତ) ବି. ମଙ୍ଗଳ, ସୁଖ ।

ସୁପୁଷ୍କର—ବି. ସ୍ଥଳପଦ୍ମ, ସ୍ଥଳକମଳ ।

ସୁପୁଷ୍କଳ—ବିଂ. ପ୍ରଚୁର, ଅତ୍ୟଧିକ, ପ୍ରଭୂତ ।

ସୁପୁଷ୍ଟ—ବିଂ. ଅତିଶୟ ପୁଷ୍ଟ ।

ସୁପୁଷ୍ଟି—ବି. ଅତି ପୁଷ୍ଟି, ଉତ୍ତମରୂପ ପୋଷଣ ।

ସୁପୁଷ୍ପ—ବି. ସୁନ୍ଦର ପୁଷ୍ପ ଲବଙ୍ଗ, ଆକ୍ରନ୍ଦ, ପୌଣ୍ଡ୍ରକ, ଏକପ୍ରକାର କଇଁମୂଳ, ସ୍ତ୍ରୀମାନଙ୍କ ରଜଃ, ତୂଳ, ଶ୍ୱେତକୋଳିଗଛ, ରକ୍ତପୁଷ୍ପକ, ପାଳଧୂଆ ଗଛ, ଶିରୀଷ, ହରିଦ୍ରା, ଦାରୁହଳଦୀ, ରଜତରୁଣୀ, ସ୍ୱର୍ଣ୍ଣଜାତି, ମୁଚକୁନ୍ଦ, ଶ୍ୱେତଆକନ୍ଦ, ପଲାଶାଶ୍ୱତ୍ଥ, ଦେବଦାରୁ, ବଡ଼ସେବତୀ ।

ସୁପୁଷ୍ପକ—ବି. ଶିରୀଷ ବୃକ୍ଷ, ସୁପୁଷ୍ପ ଦେଖ ।

ସୁପୁଷ୍ପା—ସ୍ତ୍ରୀ. ବି. (ସୁପୁଷ୍ପ+ଆ) ଶତପୁଷ୍ପା, ଶଣ୍ଠାବରୀ, ବନସେବତୀ, କୋଷାତକୀ, ଘୋଷା ଲତା, ଦ୍ରୋଣପୁଷ୍ପୀ ।

ସୁପୁଷ୍ପିକା—ବି. ବୃଦ୍ଧଦାରକ ବିଶେଷ, ପାଟଳା ବୃକ୍ଷ, କୃଷ୍ଣମଧୁଷବଲ୍ଲୀ, ବନଶଣ ।

ସୁପୁଷ୍ପୀ—ବି. ଶ୍ୱେତାପରାଜିତା, କଦଳୀ, ଶତପୁଷ୍ପୀ, ଶଙ୍ଖପ, ବୃଦ୍ଧଦାରକ, ଦ୍ରୋଣପୁଷ୍ପୀ, ମିଶ୍ରେୟା ।

ସୁପୁଷ୍ୟ—ପୁଂ. ବି. ବୁଦ୍ଧ ।

ସୁପୂଜିତ—ବିଂ. (ସୁ+ପୂଜ୍+ତ) ଉତ୍ତମରୂପ ପୂଜିତ ।

ସୁପୂତ—ବି. ଅତିଶୟ ପୂତ, ଅତି ପବିତ୍ର ।

ସୁପୂର—ବି. ବୀଜପୂର, ଟାଭା, (ସୁ+ପୂର) ଉତ୍ତମ ପ୍ରବାହ, ଖରସ୍ରୋତ, (ବିଂ) ସହଜରେ ପୂର୍ଣ୍ଣହେବା ଯୋଗ୍ୟ ।

ସୁପୂରକ—ବି. ବକପୁଷ୍ପ, ବୀଜପୂର, ଟାଭା, ଚୂର୍ଣ୍ଣକବିଶେଷ ।

ସୁପେଡାରକଣ୍ଟି—ପ୍ରା. (ସିଂହଭୂମି) ବି. ବେକରେ ଠିକ୍ କଣ୍ଠତଳେ ପିନ୍ଧାଯିବା ସୁନାର ଛେଲ୍‌ କଣ୍ଠି ।

ସୁପେଶ—ବିଂ. ଶୋଭନରୂପ, ସୁନ୍ଦର ।

ସୁପ୍ତ—ପୁଂ. ବିଂ. (ସ୍ୱପ୍+କ. ତ) ନିଦ୍ରିତ, ଶୟିତ, ଇନ୍ଦ୍ରିୟଜ୍ଞାନଶୂନ୍ୟ, ସ୍ୱକାର୍ଯ୍ୟାକ୍ଷମ, (ସ୍ତ୍ରୀ) ସୁପ୍ତା, (ବି—ଭା. ତ) ନିଦ୍ରା, ଶୟନ ।

ସୁପ୍ତଘାତକ—ପୁଂ. ବିଂ. (ସୁପ୍ତ+ଘାତକ) ହିଂସ୍ର, ନିଦ୍ରିତପ୍ରାଣୀର ହତ୍ୟାକାରୀ ।

ସୁପ୍ତଜନ—ବି. (କ. ଧା) ନିଦ୍ରିତ ବ୍ୟକ୍ତି, (ବ. ବ୍ରୀ) ଅର୍ଦ୍ଧରାତ୍ର ।

ସୁପ୍ତଜ୍ଞାନ(ବିଜ୍ଞାନ)—ବି. ସ୍ୱପ୍ନ ।

ସୁପ୍ତପ୍ରବୁଦ୍ଧ—ପୁଂ. ବିଂ. ଯେ ଶୋଇଥିଲା ବର୍ତ୍ତମାନ ନିଦରୁ ଉଠିଅଛି, (ସ୍ତ୍ରୀ) ସୁପ୍ତପ୍ରବୁଦ୍ଧା ।

ସୁପ୍ତପ୍ରଲପିତ—ବି. ବକିବକାଇବା ।

ସୁପ୍ତପ୍ରସୁପ୍ତ—ପୁଂ. ବିଂ. (ପ୍ରଥମେ ସୁପ୍ତ ଓ ପରେ ସୁପ୍ତ) ଯେ ଥରେ ନିଦ୍ରାରୁ ଉଠି ପୁଣି ଶୋଇଛି, (ସ୍ତ୍ରୀ) ସୁପ୍ତପ୍ରସୁପ୍ତା ।

ସୁପ୍ତାଙ୍ଗ—ବି. (କ. ଧା) ନିଶ୍ଚେଷ୍ଟ ଅଙ୍ଗ ।

ସୁପ୍ତି—ବି. (ସ୍ୱପ୍+ଭା. ତି) ନିଦ୍ରା, ଶୟନ, ଶୋଇବା, ବିଶ୍ରାମ, ବିଶ୍ୱାସ, ପ୍ରତ୍ୟୟ, ଅଙ୍ଗର ନିଶ୍ଚେଷ୍ଟତା ।

ସୁପ୍ତୋତ୍ଥିତ—ପୁଂ. ବିଂ. (କ. ଧା) ନିଦ୍ରାରୁ ଉଠିଥିବା, (ସ୍ତ୍ରୀ) ସୁପ୍ତୋତ୍ଥିତା ।

ସୁପ୍ରକେତ—ପୁଂ. ବିଂ. ଜ୍ଞାନବାନ୍, ବୁଦ୍ଧିମାନ୍, (ସ୍ତ୍ରୀ) ସୁପ୍ରକେତା ।

ସୁପ୍ରଚେତା—ବିଂ. ଅତି ବୁଦ୍ଧିମାନ୍ ।

ସୁପ୍ରଜ୍ଞ—ବିଂ. ଅତି ବୁଦ୍ଧିମାନ୍, (ସ୍ତ୍ରୀ) ସୁପ୍ରଜ୍ଞା ।

ସୁପ୍ରଜାତ—ପୁଂ. ବିଂ. ବହୁ ସନ୍ତାନବାନ୍,

(ସ୍ତ୍ରୀ) ସୁକୋଚା ।
ସୁପ୍ରଣାଳୀ—ବି. ସୁନିୟମ ।
ସୁପ୍ରତର—ବି°. ସହଜରେ ତରଣୀୟ, (ସ୍ତ୍ରୀ) ସୁପ୍ରତରା ।
ସୁପ୍ରତର୍କ—ବି. ନ୍ୟାୟଯୁକ୍ତ ବାକ୍ୟ, ଯୁକ୍ତିଯୁକ୍ତ ବାକ୍ୟ ।
ସୁପ୍ରତାର—ବି°. ସହଜରେ ତରଣୀୟ ।
ସୁପ୍ରତିଗୃହୀତ—ବି°. (ସୁ + ପ୍ରତି + ଗ୍ରହ୍ + ତ) ଉତ୍ତମରୂପେ ପ୍ରତିଗୃହୀତ, ଯାହା ଉତ୍ତମରୂପେ ପ୍ରତିଗ୍ରହ କରାହୋଇଅଛି ।
ସୁପ୍ରତିଚ୍ଛିନ୍ନ—ବି°. (ସୁ + ପ୍ରତି + ଛିଦ୍ + ତ) ସୁବିଭକ୍ତ ।
ସୁପ୍ରତିଜ୍ଞ—ପୁଂ.ବି°. (ସୁ + ପ୍ରତିଜ୍ଞା + ଅ—ବ.ବ୍ରୀ) ଦୃଢ଼ପ୍ରତିଜ୍ଞ, (ସ୍ତ୍ରୀ) ସୁପ୍ରତିଜ୍ଞା
ସୁପ୍ରତିଜ୍ଞା—ସ୍ତ୍ରୀ.ବି. ଦୃଢ଼ପ୍ରତିଜ୍ଞା ।
ସୁପ୍ରତିଭ—ବି. ମଦିରା, ମାର୍ଜିତ ବା ଉଜ୍ଜ୍ୱଳ ବୁଦ୍ଧି, (ବି°) ଉତ୍ତମ ପ୍ରତିଭାଯୁକ୍ତ
ସୁପ୍ରତିଶ୍ରୟ—ବି°. ସୁନ୍ଦର ଆଶ୍ରୟବିଶିଷ୍ଟ, ସୁନ୍ଦର ଗୃହଯୁକ୍ତ ।
ସୁପ୍ରତିଷ୍ଠ—ବି°. (ବ.ବ୍ରୀ) ଯଶସ୍ୱୀ, ସୁବିଖ୍ୟାତ, (ସ୍ତ୍ରୀ) ସୁପ୍ରତିଷ୍ଠା, (ବି) ବ୍ୟୂହରଚନାବିଶେଷ ।
ସୁପ୍ରତିଷ୍ଠା—ସ୍ତ୍ରୀ.ବି°. (ବ.ବ୍ରୀ) ଅତ୍ୟନ୍ତ ପ୍ରତିଷ୍ଠାନ୍ୱିତା, (ସ୍ତ୍ରୀ.ବି—କ.ଧା) ସୁଖ୍ୟାତି, ଉତ୍ତମ ପ୍ରତିଷ୍ଠା, ପଞ୍ଚାକ୍ଷର ବୃତ୍ତିବିଶିଷ୍ଟ ବୈଦିକ ଛନ୍ଦୋବିଶେଷ, ଦେବୋଦ୍ଦେଶରେ ମଦିରାଦି ବିଧାନ ।
ସୁପ୍ରତିଷ୍ଠାନ—ବି°. ଉତ୍ତମ ସ୍ଥିତିବିଶିଷ୍ଟ, (କ୍ଳୀ.ବି) ଶୋଭନ, ପ୍ରତିଷ୍ଠାନ, ଉତ୍ତମ ପ୍ରତିଷ୍ଠା ।
ସୁପ୍ରତିଷ୍ଠିତ—ବି°. (ସୁ + ପ୍ରତି + ସ୍ଥା + ତ) ଉତ୍ତମରୂପେ ପ୍ରତିଷ୍ଠିତ, ସୁଖ୍ୟାତିଯୁକ୍ତ, (ସ୍ତ୍ରୀ) ସୁପ୍ରତିଷ୍ଠିତା, (ବି) ଉଡ଼ୁମ୍ବରବୃକ୍ଷ, ଯୋଗର ସମାଧିବିଶେଷ, ଦେବପୁତ୍ରବିଶେଷ ।
ସୁପ୍ରତୀକ—ପୁଂ.ବି°. ଶୋଭନାଙ୍ଗବିଶିଷ୍ଟ, ସୁନ୍ଦର ରୂପରେ ନିର୍ମିତ, (ସ୍ତ୍ରୀ) ସୁପ୍ରତୀକା, (ପୁଂ.ବି—ବ.ବ୍ରୀ—ସୁ+ପ୍ରତୀକ) ଈଶାନ କୋଣର ଦିଗ୍‌ଗଜ, ମହାଦେବ, କାମଦେବ, ଶୋଭନ ଅଙ୍ଗ । [ପତ୍ନୀ ।
ସୁପ୍ରତୀକିନୀ—ସ୍ତ୍ରୀ.ବି. ସୁପ୍ରତୀକ ଦିଗ୍‌ଗଜ-
ସୁପ୍ରତୀତ—ବି°. (ସୁ + ପ୍ରତୀତ) ଉତ୍ତମରୂପେ ଜ୍ଞାତ, ସମ୍ପୂର୍ଣ୍ଣରୂପେ ପ୍ରମାଣିତ ।
ସୁପ୍ରତ୍ୟବସିତ—ବି°. (ସୁ + ପ୍ରତି + ଅବ + ସୋ + ତ) ସୁନ୍ଦରରୂପେ ଭୁକ୍ତ, ଯାହା ଉତ୍ତମରୂପେ ଭୋଜନ କରାଯାଇଅଛି । [ଦାତା ।
ସୁପ୍ରଦ—ବି°. ଉଦାର, ଦାନଶୀଳ,
ସୁପ୍ରଦର୍ଶ—ପୁଂ.ବି°. ପ୍ରିୟଦର୍ଶନ, ଦେଖିବାକୁ ସୁନ୍ଦର, (ସ୍ତ୍ରୀ) ସୁପ୍ରଦର୍ଶା ।
ସୁପ୍ରଦର୍ଶନ—ପୁଂ.ବି°. ପ୍ରିୟଦର୍ଶନ, (ସ୍ତ୍ରୀ) ସୁପ୍ରଦର୍ଶନା ।
ସୁପ୍ରଦୋହା—ସ୍ତ୍ରୀ.ବି°. ଯେଉଁ ଗାଈକୁ ଦୁହିଁବା ସହଜ ।
ସୁପ୍ରଧୃଷ୍ୟ—ବି°. ସୁଖରେ ଅଭିଭବନୀୟ, ଯାହାକୁ ସୁଖରେ ଅଭିଭବ କରାଯାଏ
ସୁପ୍ରପାନ—ବି°. ସୁଖରେ ପାନଯୋଗ୍ୟ
ସୁପ୍ରବୁଦ୍ଧ—ବି°. (ସୁ + ପ୍ର + ବୁଧ୍ + ତ) ଅତିଶୟ ପ୍ରବୁଦ୍ଧ, ଅତିଶୟ ବୋଧଯୁକ୍ତ, (ପୁଂ.ବି) ଶାକ୍ୟବୁଦ୍ଧ ।
ସୁପ୍ରଭ—ପୁଂ.ବି°. (ବ.ବ୍ରୀ) ସୁନ୍ଦର ପ୍ରଭାଯୁକ୍ତ, ଉତ୍ତମ ଦୀପ୍ତିବିଶିଷ୍ଟ, (ସ୍ତ୍ରୀ) ସୁପ୍ରଭା, (ବି) ପଦ୍ମକାଷ୍ଠ, ଶୁକ୍ଳକନ୍ଦ, ଶାଲ୍ମଳୀ ଦ୍ୱୀପର ଅନ୍ତର୍ଗତ ଗୋଟିଏ ବର୍ଷ ।
ସୁପ୍ରଭା—ସ୍ତ୍ରୀ.ବି°. (ବ.ବ୍ରୀ) ସୁନ୍ଦର ପ୍ରଭାଯୁକ୍ତା, (ସ୍ତ୍ରୀ.ବି) ସୋମରାଜୀ, ଅଗ୍ନିଙ୍କର ଏକ ଜିହ୍ୱା, ସ୍କନ୍ଦଙ୍କର ଏକ ମାତୃକା, ସ୍ପଷ୍ଟ ଦୀପ୍ତି, ଅତିଶୟ ଔଜ୍ଜ୍ୱଲ୍ୟ ।
ସୁପ୍ରଭାତ—ବି. (କ.ଧା) ସୁନ୍ଦର ବା ଶୁଭସୂଚକ ପ୍ରାତଃକାଳ, ମେଘାଦି ବର୍ଜିତ ପ୍ରଭାତ, ପ୍ରାତଃକାଳରେ ପାଠ୍ୟ ସ୍ତୋତ୍ର, (ବି°) ଅତିଶୟ ପ୍ରଭାଯୁକ୍ତ, ଶୁଭସୂଚକ ପ୍ରଭାତଯୁକ୍ତ (ଦିବସ), (ସ୍ତ୍ରୀ) ସୁପ୍ରଭାତା ।
ସୁପ୍ରଭାତା—ବି°, ସୁନ୍ଦରପ୍ରଭାତଯୁକ୍ତା (ରାତ୍ରି), (ବି) ଭାଗବତ ୫ମ ସ୍କନ୍ଧ ୨ୟ ଅଧ୍ୟାୟରେ ବର୍ଣ୍ଣିତ ୭ ଗୋଟି ମହାନଦୀ ମଧ୍ୟରୁ ଗୋଟିଏ ।
ସୁପ୍ରଯୁକ୍ତ—ବି°. ଶୋଭନ ପ୍ରୟୋଗବିଶିଷ୍ଟ, ଉତ୍ତମ ପ୍ରୟୋଗଯୁକ୍ତ ।
ସୁପ୍ରଯୁକ୍ତଶର—ପୁଂ.ବି°. (ବ.ବ୍ରୀ) ବାଣରେ ସିଦ୍ଧହସ୍ତ, ଶରବିଦ୍ୟାରେ ନିପୁଣ ବା ବିଚକ୍ଷଣ, (ବି—କ.ଧା) ଉତ୍ତମରୂପେ ପ୍ରୟୋଗ କରାଯାଇଥିବା ବାଣ ।
ସୁପ୍ରୟୋଗ—ବି. ଉତ୍ତମ ପ୍ରୟୋଗ, ଉତ୍ତମ ନିକ୍ଷେପ, (ବି°-ବ.ବ୍ରୀ) ଉତ୍ତମପ୍ରୟୋଗବିଶିଷ୍ଟ, ସୁପ୍ରଯୁକ୍ତ ।
ସୁପ୍ରୟୋଗନିପୁଣ—ପୁଂ. ବି°. (୭ତତ୍ପୁ) ଭଲରୂପେ ପ୍ରୟୋଗ କରିବାରେ ଅଭିଜ୍ଞ, (ସ୍ତ୍ରୀ) ସୁପ୍ରୟୋଗନିପୁଣା ।
ସୁପ୍ରୟୋଗବିଶିଖ—ପୁଂ. ବି°. (ବ.ବ୍ରୀ) ସୁଶିକ୍ଷିତ ବାଣମୋକ୍ଷକ, (ସ୍ତ୍ରୀ) ବିଶିଖା ।
ସୁପ୍ରୟୋଗା—ସ୍ତ୍ରୀ.ବି. ସହ୍ୟପର୍ବତର ପାଦନିଃସୃତ ଦାକ୍ଷିଣାତ୍ୟରେ ପ୍ରବାହିତ ଗୋଟିଏ ନଦୀ ।
ସୁପ୍ରଲମ୍ଭ—ବି°. (ସୁ + ପ୍ର + ଲଭ୍ + ମ୍.ଅ) ସୁଖଲଭ୍ୟ ।
ସୁପ୍ରଲାପ—ବି. (କ.ଧା) ସୁବଚନ ।
ସୁପ୍ରବୃଦ୍ଧ—ବି°. (ସୁ + ପ୍ର + ବୃଧ୍ + ତ) ଅତିଶୟ ବୃଦ୍ଧ ।
ସୁପ୍ରବେଶ—ବି°. ସୁନ୍ଦର ପ୍ରବେଶବିଶିଷ୍ଟ, ଉତ୍ତମରୂପେ ପ୍ରବିଷ୍ଟ, (ବି) ଶୋଭନ-ପ୍ରବେଶ ।
ସୁପ୍ରବ୍ରଜିତ—ବି°. ଯେ ସମ୍ୟକ୍‌ରୂପେ ପ୍ରବ୍ରଜ୍ୟାଶ୍ରମ ଅବଲମ୍ବନ କରିଅଛି ।
ସୁପ୍ରଶସ୍ତ—ବି°. ଅତି ବିସ୍ତୃତ, ସୁବିସ୍ତୃତ ।
ସୁପ୍ରଶ୍ନ—ବି. ସୁଖକର ପ୍ରଶ୍ନ, ସୁନ୍ଦର ପ୍ରଶ୍ନ ।
ସୁପ୍ରସଙ୍ଗ—ବି. ଉତ୍ତମ ବିଷୟର ଚର୍ଚ୍ଚା ।
ସୁପ୍ରସନ୍ନ—ପୁଂ. ବି°. ଅତ୍ୟନ୍ତ ପ୍ରସନ୍ନ, ସୁପ୍ରସାଦଯୁକ୍ତ, (ସ୍ତ୍ରୀ) ସୁପ୍ରସନ୍ନା, (ବି) କୁବେର ।
ସୁପ୍ରସନ୍ନକ—ବି. କୃଷ୍ଣାର୍ଜ୍ଜକ, ଏକପ୍ରକାର କଣତୁଳସୀ । [କରିବା ।
ସୁପ୍ରସବ—ବି. ସୁଖରେ ସନ୍ତାନ ଜନ୍ମ
ସୁପ୍ରସର—ବି. ପ୍ରସାରଣୀ ଲତା ।
ସୁପ୍ରସାଦ—ବି. (କ.ଧା) ଅତିଶୟ ପ୍ରୀତି, ଏକାନ୍ତ ଅନୁକୂଳତା, (ବ.ବ୍ରୀ) ଶିବ, ମହାଦେବ, ବିଷ୍ଣୁ, (ବି°) ପ୍ରସନ୍ନାତ୍ମା-

ଯୁକ୍ତ,(ସ୍ତ୍ରୀ)ସୁପ୍ରସାଦା=ସ୍କନ୍ଦମାତୃ ଭେଦ।
ସୁପ୍ରସାଗ—ସ୍ତ୍ରୀ. ବି. ପ୍ରସାରଣୀ ଲତା।
ସୁପ୍ରସିଦ୍ଧ—ପୁଂ. ବିଂ. ସୁବିଖ୍ୟାତ, ସୁବି-ଦିତ, ସର୍ବତ୍ର ପ୍ରସିଦ୍ଧ, (ସ୍ତ୍ରୀ) ସୁପ୍ରସିଦ୍ଧା।
ସୁପ୍ରସୂ—ବିଂ. ସୁଜାତ, ଶୋଭନଜନ୍ମା, ସଦ୍ବଂଶଜ, ଉତ୍ତମପ୍ରସୂତ।
ସୁପ୍ରାକାର—ବି. ସୁନ୍ଦରପ୍ରାଚୀର।
ସୁପ୍ରାକୃତ—ବି. ଅତି ସାଧାରଣ।
ସୁପ୍ରାତ—ବିଂ. ସୁନ୍ଦର ପ୍ରାତଃକାଲବିଶିଷ୍ଟ, ଶୋଭନ ପ୍ରାତଃକାଲଯୁକ୍ତ।
ସୁପ୍ରାତର—ଅ. ସୁନ୍ଦର ପ୍ରାତଃକାଳ, ଶୋଭନ ପ୍ରାତଃକାଳ। [ ସୁପାପ୍ୟ।
ସୁପ୍ରାପ—ବିଂ. ( ସୁ+ପ୍ର+ଆପ୍+ଅ )
ସୁପ୍ରାପ୍ୟ—ବିଂ. (ସୁ+ପ୍ର+ଆପ୍+ଯ) ଯାହା ଅନାୟାସେ ମିଳେ।
ସୁପ୍ରିୟ—ପୁଂ. ବିଂ. ଅତିପ୍ରିୟ,(ସ୍ତ୍ରୀ)ସୁପ୍ରିୟା= ସୁନ୍ଦରହୃଦ୍ୟା, (ବି) ଅପ୍ସରୋବିଶେଷ।
ସୁପ୍ରୀତ—ବିଂ. ଅତି ସନ୍ତୁଷ୍ଟ, ଅତିଶୟ ପ୍ରୀତ
ସୁପ୍ରୀତିକର—ବିଂ. ଅତିଶୟ ପ୍ରୀତିକାରକ, (ପୁଂ. ବି) କିନ୍ନର ରାଜଭେଦ।
ସୁପ୍ରୌଢ଼-ବିଂ, ଅତିଶୟ ପ୍ରୌଢ଼, ଅତିବୃଦ୍ଧ।
ସୁଫଳ—ବି. (କ.ଧା) ସୁନ୍ଦର ଫଳ, ଆନନ୍ଦ ଜନକ ଶେଷଫଳ, କାର୍ଯ୍ୟସିଦ୍ଧି, ବଦର, ବରକୋଳି, ମୁଦ୍ଗ, ଶ୍ରୀଫଳ, ବେଲ, କପିତ୍ଥ, କଇଥ, ଦାଡ଼ିମ୍ବ, କର୍ଣ୍ଣିକାର, ଟଗର, ଲେମ୍ବୁ, ବାଦାମ, (ବିଂ-ବ.ବ୍ରୀ) ଉତ୍ତମ ଫଳଶାଳୀ, ସୁନ୍ଦର ସୁମିଷ୍ଟ ଫଳୋତ୍ପାଦକ ପ୍ରଚୁର ଫଳବିଶିଷ୍ଟ, କାର୍ଯ୍ୟସିଦ୍ଧିଯୁକ୍ତ, (ସ୍ତ୍ରୀ)ସୁଫଳା।
ସୁଫଳା—ବି. ଇନ୍ଦ୍ରବାରୁଣୀ, ମହାକାଳ, କୁଷ୍ମାଣ୍ଡୀ, କାଶ୍ମରୀ, ଗମ୍ଭାରୀ, କଦଳୀ, କପିଳଦ୍ରାକ୍ଷା। [ ଫଳକ।
ସୁଫାଲ—ବି. ଶୋଭନଫାଲ, ଶୋଭନ
ସୁଫି—ମୁସଲମାନମାନଙ୍କ ଧର୍ମସମ୍ପ୍ରଦାୟ ଏକ ପ୍ରକାର କାପାସ ଓ ରେଶମୀ ବସ୍ତ୍ର।
ସୁଫୁଲ୍ଲ—ବିଂ. (ସୁ+ଫୁଲ+ତ) ସୁନ୍ଦର ରୂପେ ଫୁଲ୍ଲ, ସ୍ପଷ୍ଟରୂପେ ବିକସିତ।
ସୁଫୁଲଚ—ଗ୍ରା. (ଫୁର୍ଗ-ବି ଓ ବିଂ) ଦୁଃଖ, ଦୁର୍ଭାଗ୍ୟ, ମଙ୍ଗଳ, ଶୁଭ।
ସୁଫେନ—ବି. ସମୁଦ୍ର ଫେନ।
ସୁବଂଶ—ବି. ଉତ୍ତମବଂଶ, ଭାଗବତ ଅନୁ-ସାରେ ବସୁଦେବଙ୍କ ଏକପୁତ୍ର।
ସୁବଂଶେକ୍ଷୁ—ବି. ଧଳାଆଖୁ।
ସୁବକ୍ତା—ପୁଂ. ବିଂ. ବାଗ୍ମୀ,(ସ୍ତ୍ରୀ)ସୁବକ୍ତ୍ରୀ।
ସୁବକ୍ତ୍ର—ବି.(କ.ଧା) ସୁନ୍ଦର ମୁଖ, ବନ-ବବରୀ, ଶିବ, ସ୍କନ୍ଦଙ୍କ ଅନୁଚରବିଶେଷ, ଦନ୍ତବକ୍ତ୍ରଙ୍କର ଏକ ପୁତ୍ର(ପୁଂ. ବିଂ-ବ.ବ୍ରୀ) ସୁନ୍ଦର ମୁଖଯୁକ୍ତ, (ସ୍ତ୍ରୀ) ସୁବକ୍ତ୍ରା।
ସୁବକ୍ଷଃ—ବିଂ. ବ.ବ୍ରୀ; (ସୁ+ବକ୍ଷସ୍)ସୁନ୍ଦର ବା ବିଶାଳ ବକ୍ଷୋବିଶିଷ୍ଟ।
ସୁବକ୍ଷା—ବି. ମନ୍ଦ୍ରଦାନବଙ୍କ କନ୍ୟା ଓ ହିରଣ୍ୟାକ୍ଷଙ୍କ ଓ ବିଲ୍ଲକ୍ଷଣଙ୍କ ମାତା।
ସୁବଚନ—ବି. (କ.ଧା) ସୁନ୍ଦର ବଚନ, (ପୁଂ. ବିଂ. ବ.ବ୍ରୀ) ସୁନ୍ଦର ବଚନଯୁକ୍ତ, (ସ୍ତ୍ରୀ) ସୁବଚନା।
ସୁବଚାଃ—ପୁଂ. ଓ ସ୍ତ୍ରୀ. ବି ବ.ବ୍ରୀ; (ସୁ+ବଚସ୍) ବାଗ୍ମୀ।
ସୁବଦନ—ପୁଂ. ବିଂ. (ବ.ବ୍ରୀ)ସୁନ୍ଦରମୁଖ-ବିଶିଷ୍ଟ, (ସ୍ତ୍ରୀ)ସୁବଦନା, (ବି)ବନତୁଳସୀ।
ସୁବଦ୍ଧ—ବିଂ. ଉତ୍ତମରୂପେ ବଦ୍ଧ।
ସୁବନ୍ଅଲ୍ଲା—ଯା.ଅ.ବାଃ ବାଃ, ଧନ୍ୟଧନ୍ୟ।
ସୁବନ୍ତ—ବି. ପଦବିଶେଷ, ବ୍ୟାକରଣର ବିଧି ଅନୁସାରେ ଯେଉଁ ସକଳ ପଦର ଅନ୍ତେ ସୁପ୍ଆଦି ବିଭକ୍ତି ହୁଏ ସେମାନଙ୍କ ସୁବନ୍ତ ପଦ ବୋଲଯାଏ। [ ଚନ୍ଦ୍ର।
ସୁବନ—ବି. (ସୁ+କ.ବନ)ସୂର୍ଯ୍ୟ, ଅଗ୍ନି,
ସୁବନ୍ଧ—ବି. (ବ.ବ୍ରୀ) ତିଳ; ଖସା, ଯନ୍ତ୍ର।
ସୁବନ୍ଧୁ—ପୁଂ. ବି. ଉତ୍ତମବନ୍ଧୁ, (ବିଂ)ଶୋଭନ ବନ୍ଧ୍ୟା ଓ ଯୋନି ସମ୍ବନ୍ଧଯୁକ୍ତ।
ସୁବପୁଃ—ପୁଂ. ସ୍ତ୍ରୀ. ବିଂ. (ସୁ+ବପୁସ୍; ବ.ବ୍ରୀ) ସୁନ୍ଦର ଦେହବିଶିଷ୍ଟ।
ସୁବଭ୍ରୂ—ବିଂ. ସୁଚିକ୍କଣ ଭ୍ରୂଯୁକ୍ତ। [ ସ୍ତ୍ରୀ
ସୁବୟାଃ—ସ୍ତ୍ରୀ. ବି. (ସୁ+ବୟସ୍)ପୌଢ଼ା
ସୁବରନ—ଗ୍ରା. ବି. (ଦେଶ୍ୟ. ସ-ସୁବର୍ଣ୍ଣ) ସୁନା, ସୁନ୍ଦର ଶରୀରବର୍ଣ୍ଣ।
ସୁବର୍ଚ୍ଚକ—ବି. ହାଜିମାଟି।
ସୁବର୍ଚ୍ଚଳ—ବି. କଳାଲବଣ।
ସୁବର୍ଚ୍ଚଳା—ସ୍ତ୍ରୀ. ବି. ( ସୁ+ବର୍ଚ୍ଚ+ ଅଲ+ଆ)ସୂର୍ଯ୍ୟ ପତ୍ନୀ, ଅତସୀ, ସୂର୍ଯ୍ୟ-ମୁଖୀ(ଫୁଲ), ଅଣସୋଷିଆ, ବ୍ରାହ୍ମୀ, ଦେଶବିଶେଷ।
ସୁବର୍ଚ୍ଚାଃ—ପୁଂ. ସ୍ତ୍ରୀ. ବିଂ.(ସୁ+ବର୍ଚ୍ଚସ୍ ବ.ବ୍ରୀ; ଶୋଭନ ତେଜୋବିଶିଷ୍ଟ, ତେଜସ୍ୱୀ, (ପୁଂ.ବି) ଗରୁଡ଼ଙ୍କର ଏକ ପୁତ୍ର, ସ୍କନ୍ଦଙ୍କ ଏକ ପାରିଷଦଙ୍କ ନାମ, ଧୃତରାଷ୍ଟ୍ରଙ୍କ ଏକପୁତ୍ର, ଦଶମ ମନୁଙ୍କ ଏକ ପୁତ୍ର।
ସୁବର୍ଚ୍ଚିକ—ବି. ସ୍ୱର୍ଜିକା କ୍ଷାର, ସାଜିମାଟି।
ସୁବର୍ଚ୍ଚିକା—ବି. ଜଉକା, ସର୍ଜ୍ଜୀ, ସାଜିମାଟି।
ସୁବର୍ଚ୍ଚୀ—ବି. ( ସୁ+ବର୍ଚ୍ଚସ୍+ଇନ୍) ସ୍ୱର୍ଜିକା କ୍ଷାର।
ସୁବର୍ଣ୍ଣ—ବି. (ବ.ବ୍ରୀ) ପ୍ରସିଦ୍ଧ ହରିଦ୍ରା-ବର୍ଣ୍ଣ ବହୁମୂଲ୍ୟ ଧାତୁ, ସୁନା, ସ୍ୱର୍ଣ୍ଣ, ୧୬ ମଶା ବା ଅଶୀତି ରତିକା ପରି-ମିତ ସ୍ୱର୍ଣ୍ଣ, କର୍ଷ ପରିମିତ ସୁବର୍ଣ୍ଣ, କର୍ଷ ପରିମାଣ, ଯଜ୍ଞବିଶେଷ, ଧାତୁରା, କଣଗୁଗ୍ଗୁଳ, ସମ୍ପତ୍ତି, ଧନ, ସ୍ୱର୍ଣ୍ଣ ମୁଦ୍ରା, ମୋହର, ସୁନ୍ଦର ବର୍ଣ୍ଣ, ଦଶ-ମଶା ଓଜନର ପ୍ରାଚୀନ କାଳର ଏକ ସ୍ୱର୍ଣ୍ଣ ମୁଦ୍ରା, ସ୍ୱର୍ଣ୍ଣ ଗୈରିକ, ହରିଚନ୍ଦନ, ନାଗକେଶର, ହଳଦୀ, ହଳଦିଆ ସୋରିଷ, ଦଶରଥଙ୍କର ଏକ ମନ୍ତ୍ରୀ, ମୁନିବିଶେଷ, (ବିଂ)ସୁନ୍ଦର ବର୍ଣ୍ଣବିଶିଷ୍ଟ, ସୁନା ପରି ବର୍ଣ୍ଣବିଶିଷ୍ଟ, ସ୍ୱର୍ଣ୍ଣ ନିର୍ମିତ, (ଗ୍ରା.ବି)ଉତ୍ତମ ଅକ୍ଷର, ଉତ୍ତମ ଜାତି।
ସୁବର୍ଣ୍ଣକ—ବି. (ସୁବର୍ଣ୍ଣ+କ) ସୁନା, ପିତ୍ତଳ, ୧କର୍ଷ, ସୁନାରି ଗଛ, ସ୍ୱର୍ଣ୍ଣକ୍ଷୀରୀ, (ବିଂ) ସୁବର୍ଣ୍ଣ ଦେଖ।
ସୁବର୍ଣ୍ଣକଦଳୀ(ଫଳା)—ବି. କଦଳୀ-ବିଶେଷ, ଚମ୍ପା କଦଳୀ।
ସୁବର୍ଣ୍ଣକମଳ(ପଦ୍ମ)—ବି.ରକ୍ତବର୍ଣ୍ଣ ପଦ୍ମ, ନାଲି କଇଁ।
ସୁବର୍ଣ୍ଣକର୍ଷ—ବି, ୧୬ ମଶା ଓଜନର ପ୍ରାଚୀନ ସ୍ୱର୍ଣ୍ଣମାନ।
ସୁବର୍ଣ୍ଣକାର(କର୍ତ୍ତା,କୃତ୍)—ବି.ସ୍ୱର୍ଣ୍ଣକାର, ସୁନାରି ବଣିଆ।
ସୁବର୍ଣ୍ଣକୁଳୀ—ବି. ମହାଜ୍ୟୋତିଷ୍ମତୀ

ସୁବର୍ଣ୍ଣକେତକୀ--ବି. କେତକୀ ଫୁଲ ଓ ଗଛ ।

ସୁବର୍ଣ୍ଣକେଶରୀ—ଗ୍ରା. ବି. ଓଡ଼ିଶାର କେଶରୀ ବଂଶର ଶେଷ ରାଜା ।

ସୁବର୍ଣ୍ଣଖଚିତ—ବିଂ.(୭ତତ୍ତ୍ୱ)ସ୍ୱର୍ଣ୍ଣଜଡ଼ିତ

ସୁବର୍ଣ୍ଣଗୈରିକ—ବି.ଗୈରିକଭେଦ,ବନମାଟି, ହଳଦିଆ ଗେରୁ ।

ସୁବର୍ଣ୍ଣଗୌର—ବିଂ.ସୁନା ପରି ଗୌରବର୍ଣ୍ଣ ଶରୀରବିଶିଷ୍ଟ,(ସ୍ତ୍ରୀ)ସୁବର୍ଣ୍ଣଗୌରୀ ।

ସୁବର୍ଣ୍ଣଘ୍ନ—ବି. (ସୁବର୍ଣ୍ଣ+ହନ୍+କ. କ୍ୱିପ୍) ରଙ୍ଗା ଧାତୁ ।

ସୁବର୍ଣ୍ଣଚୌର(ସ୍ତେୟୀ)—ବି. ସୁନା ଚୋର, ସୁନା ଚୋରି କରିବା ବ୍ୟକ୍ତି ।

ସୁବର୍ଣ୍ଣଚୌର୍ଯ୍ୟ(ସ୍ତେୟ)—ବି. ସୁନା ଚୋରି କରିବା ।

ସୁବର୍ଣ୍ଣଜାତି—ବି.ହଳଦିଆ ଜାଇଫୁଲ ।

ସୁବର୍ଣ୍ଣଜୀବକ—ବି. (ସୁବର୍ଣ୍ଣ+ଜୀବ୍+କ.ଇନ୍+କ ସୁନାର ବଣିଆ, ସୁବର୍ଣ୍ଣ ବ୍ୟାପାରକାରୀ ପ୍ରାଚୀନ ବର୍ଣ୍ଣସଙ୍କର ଜାତିବିଶେଷ ।

ସୁବର୍ଣ୍ଣତଟିନୀ—ଗ୍ରା.ସ୍ତ୍ରୀ.ବି.ସୁବର୍ଣ୍ଣରେଖା ନଦୀ ।

ସୁବର୍ଣ୍ଣଦୀଧିତ—ବି.(ସୁବର୍ଣ୍ଣ ପରି ଦୀଧିତି କିରଣ ଯାହାର) ଅଗ୍ନିଦେବ ।

ସୁବର୍ଣ୍ଣଦ୍ୱୀପ(ଭୂମି)—ବି.ସୁମାତ୍ରା ଦ୍ୱୀପର ପ୍ରାଚୀନ ନାମ ।

ସୁବର୍ଣ୍ଣଧେନୁ—ବି. ଦାନାର୍ଥ ସ୍ୱର୍ଣ୍ଣନିର୍ମିତ ଗୋମୂର୍ତ୍ତି ।

ସୁବର୍ଣ୍ଣପକ୍ଷ—ବି. ସୁନାର ଡେଣାର ପକ୍ଷ, (ବ.ବ୍ରୀ) ଗରୁଡ଼,(ବିଂ—ବ.ବ୍ରୀ)ସୁନାର ପକ୍ଷବିଶିଷ୍ଟ ।

ସୁବର୍ଣ୍ଣପଦ୍ମା—ବି. (ବ.ବ୍ରୀ) (ସୁବର୍ଣ୍ଣ+ପଦ୍ମ+ଆ) ସ୍ୱର୍ଗଗଙ୍ଗା ।

ସୁବର୍ଣ୍ଣପୁର—ଗ୍ରା. ବି. କଟକ ଜିଲାର ବାଙ୍କି ଅନ୍ତର୍ଗତ ଗୋଟିଏ ବଡ଼ ଗ୍ରାମ, ସୋନପୁର ।

ସୁବର୍ଣ୍ଣପୁଷ୍ପ—ବି. ବଡ଼ ସେବତୀଫୁଲ, ରାଜତରୁଣୀ ।

ସୁବର୍ଣ୍ଣପ୍ରତିମା—ବି. (କ.ଧା) ସ୍ୱର୍ଣ୍ଣନିର୍ମିତ ମୂର୍ତ୍ତି ।

ସୁବର୍ଣ୍ଣପ୍ରସର(ବ)—ବି. ଏଳବାଲୁକ ।

ସୁବର୍ଣ୍ଣପ୍ରସୂ—ବିଂ. (ସୁବର୍ଣ୍ଣ+ପ୍ର+ସୂ+କ.କ୍ୱିପ୍) ଯାହା ସୁନା ଉତ୍ପାଦନ କରେ ।

ସୁବର୍ଣ୍ଣବଣିକ୍—ବି. (ସୁବର୍ଣ୍ଣ+ବଣିକ୍) ସୁନାରବଣିଆ,ହିନ୍ଦୁ ବର୍ଣ୍ଣସଙ୍କର ଜାତିବିଶେଷ ।

ସୁବର୍ଣ୍ଣବର୍ଣ୍ଣ—ବି (କ.ଧା)ସୁନାପରି ବର୍ଣ୍ଣ ବା ରଙ୍ଗ,(ବ.ବ୍ରୀ)ବିଷ୍ଣୁସହସ୍ରନାମୋକ୍ତ ବିଷ୍ଣୁଙ୍କର ଗୋଟିଏ ନାମ, (ପୁଂ.ବିଂ-ବ.ବ୍ରୀ)ସୁନାପରି ବର୍ଣ୍ଣବିଶିଷ୍ଟ, ହେମାଙ୍ଗ. ସୁନେଲି, (ସ୍ତ୍ରୀ) ସୁବର୍ଣ୍ଣବର୍ଣ୍ଣା ।

ସୁବର୍ଣ୍ଣବର୍ଣ୍ଣା--ବିଂ.ସୁବର୍ଣ୍ଣ ବର୍ଣ୍ଣର ସ୍ତ୍ରୀଲିଙ୍ଗ, (ବି,ବ.ବ୍ରୀ) ହରିଦ୍ରା, ହଳଦୀ ।

ସୁବର୍ଣ୍ଣବିନ୍ଦୁ—ପୁଂ. ବି. ବିଷ୍ଣୁ ।

ସୁବର୍ଣ୍ଣଭସ୍ମ—ବି. ସ୍ୱର୍ଣ୍ଣଭସ୍ମ ।

ସୁବର୍ଣ୍ଣମୟ—ବିଂ.(ସୁବର୍ଣ୍ଣ+ମୟ) ସ୍ୱର୍ଣ୍ଣନିର୍ମିତ, ସୁବର୍ଣ୍ଣରେ ପୂର୍ଣ୍ଣ,(ସ୍ତ୍ରୀ) ସୁବର୍ଣ୍ଣମୟୀ ।

ସୁବର୍ଣ୍ଣମାକ୍ଷୀ(ମାକ୍ଷିକ)—ଗ୍ରା.ବି.ସ୍ୱର୍ଣ୍ଣମାକ୍ଷିକ

ସୁବର୍ଣ୍ଣମାସକ--ବି.ପ୍ରାଚୀନକାଳରେ ସୁନା ତଉଲିବାର ଦାରଧାନ ଓଜନର ମାନବିଶେଷ ।

ସୁବର୍ଣ୍ଣମିତ୍ର—ବି. (୬ତତ୍ତ୍ୱ) ସୋହାଗା ।

ସୁବର୍ଣ୍ଣମୁଖୀ—ଗ୍ରା. ବି. ପ୍ରାଚୀନ ଅର୍ଣ୍ଣବପୋତବିଶେଷ ।

ସୁବର୍ଣ୍ଣମୁଣ୍ଡି—ପ୍ରା. (ଖଡ଼ିକାନ୍ଥ,ବି) କଳାରବକାରୀ ପକ୍ଷିବିଶେଷ ।

ସୁବର୍ଣ୍ଣମୋଚା(ରମ୍ଭା)—ବି.ସୁବର୍ଣ୍ଣକଦଳୀ

ସୁବର୍ଣ୍ଣଯୂଥିକା(ଯୂଥୀ)—ପୀତବର୍ଣ୍ଣ ଯୂଇଫୁଲ, ପୀତଯୂଥୀ, ସ୍ୱର୍ଣ୍ଣ ଯୂଇ ।

ସୁବର୍ଣ୍ଣରୂପ୍ୟକ—ବି. ସୁମାତ୍ରା ଦ୍ୱୀପର ପ୍ରାଚୀନ ନାମ ।

ସୁବର୍ଣ୍ଣରେଖା—ଗ୍ରା.ବି. ଓଡ଼ିଶାମଧ୍ୟ ଦେଇ ପ୍ରବାହିତ ହୋଇଥିବା ନଦୀବିଶେଷ, ଓଡ଼ିଶା ଉପକୂଳର ପ୍ରାଚୀନ ବନ୍ଦରବିଶେଷ, ଗଞ୍ଜାମଜିଲାରେ ମିଳୁଥିବା ସିନ୍ଦୁରୀ ଅମ୍ବ ବିଶେଷ,ଉପେନ୍ଦ୍ରଭଞ୍ଜକୃତ କ୍ଷୁଦ୍ର କାବ୍ୟବିଶେଷ ।

ସୁବର୍ଣ୍ଣରେତାଃ-ବି.(ସୁବର୍ଣ୍ଣ+ରେତସ୍) ଶିବ ।

ସୁବର୍ଣ୍ଣରୋମା—ବି. (ବ.ବ୍ରୀ)ମେଣ୍ଢା,(ବିଂ) ପୀତାଭ ଲୋମବିଶିଷ୍ଟ ।

ସୁବର୍ଣ୍ଣଲତା—ବି. ଜ୍ୟୋତିଷ୍ମତୀ ଲତା ।

ସୁବର୍ଣ୍ଣଶ୍ରୀ—ବି.ଆସାମ ପ୍ରଦେଶରେ ବହୁଥିବା ବ୍ରହ୍ମପୁତ୍ରର ମୁଖ୍ୟ ଶାଖାନଦୀ ।

ସୁବର୍ଣ୍ଣସିଦ୍ଧ—ପୁଂ.ବିଂ.(ବ.ବ୍ରୀ)ଯେ ଇନ୍ଦ୍ରଜାଲ ବଳରେ ସୁନା ପ୍ରାପ୍ତ କରିପାରେ, (ସ୍ତ୍ରୀ) ସୁବର୍ଣ୍ଣସିଦ୍ଧା ।

ସୁବର୍ଣ୍ଣସୁଯୋଗ—ଗ୍ରା.ବି.ଉତ୍କୃଷ୍ଟ ସୁବିଧା ।

ସୁବର୍ଣ୍ଣା—ସ୍ତ୍ରୀ. ବିଂ. ସୁବର୍ଣ୍ଣର ସ୍ତ୍ରୀଲିଙ୍ଗ, (ବି) କୃଷ୍ଣାଗୁରୁ, ବାଡିଅଁଳା, ସ୍ୱର୍ଣ୍ଣକ୍ଷୀରୀ,ହରିଦ୍ରା, ଇନ୍ଦ୍ରବାରୁଣୀ, ଅଗ୍ନିଙ୍କର ସାତ ଜିହ୍ୱା ମଧ୍ୟରୁ ଏକ; ଇକ୍ଷ୍ୱାକୁଙ୍କ କନ୍ୟା ଓ ସୁହୋତ୍ରଙ୍କ ସ୍ତ୍ରୀ ।

ସୁବର୍ଣ୍ଣାକର—ବି.(୬ତତ୍ତ୍ୱ)ସୁନାର ଖଣି ।

ସୁବର୍ଣ୍ଣାଖ୍ୟ--ବି. ନାଗକେଶର, ଧୁସ୍ତୁର ଗୁଳ୍ମ ।

ସୁବର୍ଣ୍ଣାଭ—ପୁଂ.ବିଂ. (ସୁବର୍ଣ୍ଣ+ଆଭା+ଆ.ବ.ବ୍ରୀ) ସୁନାପରି ଆଭାବିଶିଷ୍ଟ, (ସ୍ତ୍ରୀ) ସୁବର୍ଣ୍ଣାଭା, (ବି) ରାଜାବର୍ତ୍ତମଣି ।

ସୁବର୍ଣ୍ଣାର—ବି. ରକ୍ତକାଞ୍ଚନ ବୃକ୍ଷ ।

ସୁବର୍ଣ୍ଣାହ୍ୱା—ବି. ସ୍ୱର୍ଣ୍ଣଯୂଥିକା ।

ସୁବର୍ଣ୍ଣୀ—ବି. ଆଖୁକର୍ଣ୍ଣୀ, ମୂଷାକାନୀ ।

ସୁବର୍ତ୍ତୁଳ—ବିଂ.ଅତିଗୋଲ,(ବି)ତରଭୁଜ

ସୁବଳ—ପୁଂ. ବି. ଶ୍ରୀକୃଷ୍ଣଙ୍କର ବାଲ୍ୟସଖା ଗୋପ ବାଳକର ନାମ, ଶକୁନିଙ୍କର ପିତା ।

ସୁବଳୟ—ବି. ସୁନ୍ଦର ବଳୟ ।

ସୁବଳୟ—ଗ୍ରା.ବି. (ଫ-ସୁବେଲ)ସମୁଦ୍ରକୂଳସ୍ଥ ଲଙ୍କାର ଉତ୍ତରଅଂଶର ପାହାଡ଼ ।

ସୁବଳିତ—ଗ୍ରା.ବିଂ. ସୁନ୍ଦର ଓ ବର୍ତ୍ତୁଳାକାର, ସୁନ୍ଦର, (ବିଂ-ସୁ+ବଳ+ଇତ) ବଳବିଶିଷ୍ଟ ।

ସୁବଲ୍ଲି(ଲ୍ଲୀ)—ବି. ସୋମରାଜୀ, ବାକୁଚି, କଟୁକୀ, ପୁତ୍ରଦାତ୍ରୀ ଲତା ।

ସୁବସନ—ବି. ସୁନ୍ଦର ବସ୍ତ୍ର, (ପୁଂ.ବିଂ-କ.ଧା)ସୁନ୍ଦର ବସ୍ତ୍ରଧାରୀ, (ସ୍ତ୍ରୀ)ବସନା ।

ସୁବସନ୍ତ—ବି.ସୁକାଳୀୟ ଅର୍ଥାତ୍ ସାମାନ୍ୟ କଷ୍ଟପ୍ରଦ ବସନ୍ତରୋଗ, ମନୋରମ

ବସନ୍ତକାଳ, ଚୈତ୍ରାବଳୀ, ବାସନ୍ତୀ, ଚୈତ୍ରପୂର୍ଣ୍ଣିମା, ଚୈତ୍ର ପୂର୍ଣ୍ଣିମାରେ ଅନୁଷ୍ଠେୟ ମଦନୋତ୍ସବ ।

ସୁବସନ୍ତକ—ବି.ବାସନ୍ତୀ, ମଦନୋତ୍ସବ, ଚୈତ୍ରାବଳୀ, ନଆଳୀ(ଲତା ଓ ଫୁଲ) ।

ସୁବସନ୍ତା—ବି. ମାଧବୀଲତା, ଜାତିପୁଷ୍ପ, ଜାଇଫୁଲ ।

ସୁବହ—ବିଂ(ସୁ+ବହ୍+ମିଂ.ଅ)ସୁଖବାହ୍ୟ, ଯାହା ଅନାୟାସରେ ବହନ କରାଯାଏ, (କ.ଅ) ଅନାୟାସ କ୍ରମେ ବହନକ୍ଷମ, ଧୈର୍ଯ୍ୟବାନ୍, (ସ୍ତ୍ରୀ)ସୁବହା, (ବି) ଏକପ୍ରକାର ବାୟୁ ।

ସୁବହା—ସ୍ତ୍ରୀ.ବିଂ.(ସୁବହ+ଆ)ସୁବହର ସ୍ତ୍ରୀଲିଙ୍ଗ,(ବି)ଶେଫାଳିକା, ଟଙ୍କଟିଭଳା, ଏଲାପର୍ଣ୍ଣୀ,ରାସ୍ନା,ଶଲ୍ଲକୀ, ଲବାନ୍ ଗଛ, ତ୍ରିବୃତ୍,ତେହୁଡ଼ି,ରୁଦ୍ରଜଟା, ଈଶ୍ୱରଜଟା, ହଂସପଦୀ, ଗୋଧାପଦୀ, ମୂଷଲୀ,ତାଳମୂଳୀ,ନୀଳ ସିନ୍ଧୁବାର, ନୀଳ ବେଗୁନିଆ, କୁଆମଇଚା, ଗନ୍ଧନାକୁଲୀ,ନକୁଲକନ୍ଦ ।

ସୁବହୁ—ବିଂ. ଅନେକ, ପ୍ରଭୂତ ।

ସୁବହୁଶ୍ରୁତ—ପୁଂ.ବିଂ.ସର୍ବଶାସ୍ତ୍ରଜ୍ଞ,ଜ୍ଞାନୀ ।

ସୁବା—ଯା. ବି. ଶାସନ ବିଭାଗ, ରାଜ୍ୟର ପ୍ରଦେଶ,ସାହେବ ଶବ୍ଦ ସହିତ ନିରର୍ଥକ ସହଚର ରୂପେ ବ୍ୟବହୃତ ଶବ୍ଦ ।

ସୁବାକ—ଗ୍ରା. ବି. (ସଂ-ସୁ+ବାକ୍)ଋଷିବିଶେଷ ।

ସୁବାକ୍ୟ—ବି. ଉତ୍ତମ ବାକ୍ୟ, ମଧୁର ବାକ୍ୟ, (ପୁଂ.ବିଂ) ମଧୁରଭାଷୀ, ସୁବାଗ୍ମୀ, (ସ୍ତ୍ରୀ) ସୁବାକ୍ୟା ।

ସୁବାଦାର—ଯା. ବି. ରାଜକୀୟ ବିଭାଗର ଶାସନକର୍ତ୍ତା, ଦେଶୀୟ ପଲଟଣ ବା ପଦାତିମାନଙ୍କ ସରଦାରଙ୍କ ଉପାଧି, ସୈନାଧ୍ୟକ୍ଷବିଶେଷ ।

ସୁବ୍ରାଦାରମା(ମେ)ଜର—ଯା.ବି.ଭାରତୀୟ ଓ ସୈନ୍ୟବିଭାଗର କାପ୍ତାନଙ୍କ ଉପାଧିବିଶେଷ ।

ସୁବାଦାରି—ଯା.ବି. ସୁବାଦାରର କାର୍ଯ୍ୟ ବା ଚାକିରି ।

ସୁବାନ—ଗ୍ରା.ବି. ସ୍ୱାତି ମାହୁନ୍ତଙ୍କ ରାଜଦତ୍ତ ଉପାଧି ।

ସୁବାମତ—ଗ୍ରା. ବିଂ. ସାଧାରଣ ।

ସୁବାଲ—ବିଂ. ନିର୍ବୋଧ ।

ସୁବାସ—ବି. (ସୁ+ବାସ)ସୁନ୍ଦର ବସ୍ତ୍ର, ସୁଗନ୍ଧି, ସୌରଭ, ସୁନ୍ଦର ଗୃହ, ସୁଖରେ ବାସକରିବା, ଶିବଙ୍କର ଏକନାମ, (ବିଂ) ସୁଗନ୍ଧଯୁକ୍ତ ।

ସୁବାସକ—ବି. ତରଭୁଜ ।

ସୁବାସନ—ପୁଂ.ବି.ଦଶମ ମନୁଙ୍କର ଏକପୁତ୍ର, (ଗ୍ରା.ବିଂ) ସୁବାସିତ ।

ସୁବାସନାଶ—ବି. (୬ତତ୍ପୁ) ସୁଗନ୍ଧର ବିନାଶ, ସୁନ୍ଦର ଗୃହର ବିନାଶ,ସୁନ୍ଦର ବସ୍ତ୍ରର ନାଶ

ସୁବାସବାସ—ଗ୍ରା. ବି.ସୁଗନ୍ଧ, ସୁଗନ୍ଧଗ୍ରହଣ, ସୁବାସିତ ବସ୍ତ୍ର ।

ସୁବାସର—ବି. ସୁଦିନ ।

ସୁବାସରା—ବି. ଚନ୍ଦ୍ରଶୂର, ହାଲିମ୍ ।

ସୁବାସାଃ—ପୁଂ.ସ୍ତ୍ରୀ.ବିଂ. (ବ.ବ୍ରୀ) ସୁନ୍ଦର ବସ୍ତ୍ରବିଶିଷ୍ଟ ।

ସୁବାସିତ—ବିଂ.(ସୁବାସ+ଇତ)ସୁବାସଯୁକ୍ତ, ସୌରଭଯୁକ୍ତ, ସୁଗନ୍ଧୀକୃତ, ଯାହାକୁ (ତୈଳାଦି) ବାସଯୁକ୍ତ କରାଯାଇଅଛି ।

ସୁବାସିନୀ—ସ୍ତ୍ରୀ. ବିଂ.(ସୁବାସ+ଇନ୍+ଈ) ସୁବାସୀର ସ୍ତ୍ରୀଲିଙ୍ଗ,(ବି) ସୁବାସଯୁକ୍ତା ରମଣୀ, ଚିରଣ୍ଟୀ, ଚିରକାଳ ପିତ୍ରାଳୟବାସିନୀ ବିବାହିତା କନ୍ୟା, ଦୃଷ୍ଟାୟୁବୟାଃ ବା ପ୍ରୌଢ଼ା ସ୍ତ୍ରୀ,ଚିରକାଳ ପିତ୍ରାଳୟବାସିନୀ ବିବାହିତା ବା ଅବିବାହିତା ସ୍ତ୍ରୀ, ସମ୍ଭ୍ରାନ୍ତବଂଶୀୟ ଅଦ୍ୟ ସ୍ତ୍ରୀଲୋକଙ୍କ ପ୍ରତି ବ୍ୟବହୃତ ସମ୍ଭାଷଣ, ସଧବା ସ୍ତ୍ରୀଲୋକ ।

ସୁବାସୀ—ବିଂ. (ସୁ+ବାସ୍+ଇନ୍) ସୁଖରେ ବାସକରୁଥିବା,ସୌରଭମୟ, ସୁନ୍ଦର ବାସଯୁକ୍ତ, ସୁନ୍ଦର ଗୃହରେ ବାସ କରୁଥିବା ।

ସୁବାହ—ବି. ଉତ୍ତମ ଘୋଡ଼ା, ସ୍କନ୍ଦଙ୍କ ଅନୁଚରବିଶେଷ, (ବିଂ) ସୁନ୍ଦର ଅଶ୍ୱବିଶିଷ୍ଟ,(ସୁ+ବହ୍+ମିଂ.ଅ)ସହଜରେ ବହନଯୋଗ୍ୟ ।

ସୁବାହୁ—ବିଂ. (ବ.ବ୍ରୀ) ସୁନ୍ଦର ବାହୁବିଶିଷ୍ଟ, (ବି) ଉତ୍ତମ ବା ସୁନ୍ଦର ବାହୁ, ସ୍କନ୍ଦଙ୍କର ଜଣେ ପାର୍ଷଦ, ଧୃତରାଷ୍ଟ୍ରଙ୍କ ପୁତ୍ର ଓ ଚେଦିର ରାଜା,ଶ୍ରୀକୃଷ୍ଣଙ୍କ ଏକ ପୁତ୍ର, ବିଶ୍ୱାମିତ୍ରଙ୍କର ତପୋଭଗ୍ନକାରୀ ମାରୀଚର ସହଚର ରାକ୍ଷସ,ଦଶରଥଙ୍କର ସାରଥିର ନାମ, ଶତ୍ରୁଘ୍ନଙ୍କର ଗୋଟିଏ ପୁତ୍ରର ନାମ,ପ୍ରାଚୀନ ଭାରତର ଜନୈକ ରାଜା, କୁବଳୟାଶ୍ୱଙ୍କ ପୁତ୍ର ।

ସୁବିକଟ—ବିଂ. ଅତି ଭୟଙ୍କର ।

ସୁବିକ୍ରମ(ବିକ୍ରାନ୍ତ)—ପୁଂ.ବିଂ. ଅତି ପରାକ୍ରମୀ, (ସ୍ତ୍ରୀ) ସୁବିକ୍ରମା ।

ସୁବିକ୍ଳବ—ବିଂ. ଅତି ବିହ୍ୱଳ ।

ସୁବିଖ୍ୟାତ—ବିଂ. ଅତ୍ୟନ୍ତ ପ୍ରସିଦ୍ଧ ।

ସୁବିଗ୍ରହ—ବି. ସୁନ୍ଦର ଦେହ, (ପୁଂ.ବିଂ) ସୁନ୍ଦର ଶରୀରବିଶିଷ୍ଟ, (ସ୍ତ୍ରୀ) ସୁବିଗ୍ରହା ।

ସୁବିଚାର—ବି. ଉତ୍ତମ ବିଚାର, ନ୍ୟାୟ ବିଚାର, ଶ୍ରୀକୃଷ୍ଣଙ୍କର ଏକପୁତ୍ର ।

ସୁବିଚାରକ—ପୁଂ.ବିଂ. ନ୍ୟାୟବିଚାରକାରୀ (ବ୍ୟକ୍ତି) ।

ସୁବିଚାରିତ—ବିଂ. ଉତ୍ତମରୂପେ ବିଚାର କରଯାଇଥିବା ।

ସୁବିଜ୍ଞ—ପୁଂ. ବିଂ. ଉତ୍ତମରୂପେ ବିଜ୍ଞ, (ସ୍ତ୍ରୀ) ସୁବିଜ୍ଞା ।

ସୁବିଜ୍ଞାନ—ବିଂ. ସହଜରେ ଜ୍ଞେୟ,ଅତିଶୟ ବୁଦ୍ଧିମାନ୍ ।

ସୁବିଜ୍ଞେୟ—ବିଂ. ସହଜରେ ଯାହା ଜଣାଯାଇପାରେ, (ବି) ଶିବ ।

ସୁବିତ—ବିଂ. ଯାହା ସହଜରେ ପହଞ୍ଚାଯାଇପାରେ, ସହଜରେ ପ୍ରାପ୍ୟ ।

ସୁବିତତ—ବିଂ. ସୁବିସ୍ତୃତ ।

ସୁବିତ୍ତ—ପୁଂ. ବିଂ.ଖୁବ୍ ଧନୀ,(ସ୍ତ୍ରୀ)ସୁବିତ୍ତା, (ବି) ଉତ୍ତମ ମାର୍ଗରେ ଅର୍ଜିତ ବା ପ୍ରାପ୍ତ ଧନ ।

ସୁବିଦ୍—ପୁଂ. ଓ ସ୍ତ୍ରୀ. ବି (ସୁ+ବିଦ୍+କ.କ୍ୱିପ୍) ପଣ୍ଡିତ, ଗୁଣଯୁକ୍ତା ନାରୀ ।

ସୁବିଦ—ପୁଂ. ବି. (ସୁ+ବିଦ୍+କ.ଅ) ପଣ୍ଡିତ, କଞ୍ଚୁକୀ, ଅନ୍ତଃପୁରରକ୍ଷକ,

ତିଳକପୁଷ୍ପ ବୃକ୍ଷ, (ସ୍ତ୍ରୀ) ସୁବିଦା।

ସୁବିଦତ୍ର—ବି.(ସୁ+ବିଦ୍+ଅତ୍ର+କ.କ୍ୱିପ୍) ରାଜା।

ସୁବିଦନ—ବି. (ସୁ+ବିଦ୍+କ.ଅନ) କୁଟୁମ୍ବ, (ଭା.ଅନ) ଜ୍ଞାନ, କୃପା, ଦୟା (ର୍ମ.ଅନ) ଧନ, ସମ୍ପତ୍ତି, (ବିଂ)ଅତ୍ୟନ୍ତ ସାବଧାନ, ସହୃଦୟ,ଉଦାର,ଦୟାଳୁ।

ସୁବିଦଲ୍ଲ—ବି. (ସୁ+ବିଦ୍+ଅଲ୍ଲ କିମ୍ବା ସୁବିଦତ୍ର+ଲ+କ.ଅ) ଅନ୍ତଃପୁର, କଞ୍ଚୁକୀ।

ସୁବିଦଲ୍ଲା(ଲା)—ସ୍ତ୍ରୀ.ବି. (ସୁବିଦଲ୍ଲ+ଆ) ଊଢ଼ାନାରୀ, ବିବାହିତା ସ୍ତ୍ରୀ।

ସୁବିଦିତ—ବିଂ. ସୁପରିଜ୍ଞାତ,ଉତ୍ତମରୂପେ ଜ୍ଞାତ।

ସୁବିଦ୍ୟ—ପୁଂ.ବିଂ. (ସୁ+ବିଦ୍ୟା+ଅ) ବ.ବ୍ରୀ; ଖୁବ୍ ପଣ୍ଡିତ।

ସୁବିଦ୍ୟା—ସ୍ତ୍ରୀ. ବି. ଉତ୍ତମ ବିଦ୍ୟା,ହିତକର ବିଦ୍ୟା, (ସ୍ତ୍ରୀ.ବିଂ) ସୁବିଦ୍ୟର ସ୍ତ୍ରୀଲିଙ୍ଗ।

ସୁବିଧ—ପୁଂ. ବିଂ. (ସୁ+ବିଧା+ଅ) ବ.ବ୍ରୀ; ସୁଶୀଳ, (ସ୍ତ୍ରୀ) ସୁବିଧା।

ସୁବିଧା—ବି. (ସୁ+ବିଧା)ଉତ୍ତମପ୍ରକାର, ସଦୁପାୟ, (ଗ୍ରା.ବି) ଝଞ୍ଜ, ସୁଯୋଗ, ସ୍ୱାଚ୍ଛନ୍ଦ୍ୟ, ଉପାୟ।

ସୁବିଧାକରିବା—ଗ୍ରା. କ୍ରି. ସୁଯୋଗ ଘଟାଇବା, ସ୍ୱାଚ୍ଛନ୍ଦ୍ୟ ଘଟାଇବା।

ସୁବିଧାଜନକ—ଗ୍ରା.ବିଂ. ଯାହା ସୁଯୋଗ ଘଟାଏ, ଯଦ୍ଦ୍ୱାରା ସ୍ୱଚ୍ଛନ୍ଦ୍ୟ ଘଟେ।

ସୁବିଧାନ—ବି. (ସୁ+ବିଧାନ) ଉତ୍ତମ ନିୟମ ବା ବ୍ୟବସ୍ଥା।

ସୁବିଧି—ବି. (ସୁ+ବିଧି). ଉତ୍ତମ ବିଧି, ବର୍ତ୍ତିମାନ ଅବସର୍ପିଣୀର ଜୈନ ଅର୍ହତବିଶେଷ।

ସୁବିନୀତ—ପୁଂ.ବିଂ.(ସୁ+ବିନୀତ)ଅତ୍ୟନ୍ତ ବିନୟଯୁକ୍ତ, (ସ୍ତ୍ରୀ) ସୁବିନୀତା।

ସୁବିନୀତା—ସ୍ତ୍ରୀ.ବିଂ.ସୁବିନୀତର ସ୍ତ୍ରୀଲିଙ୍ଗ, (ବି) ସୁକର ଗୌ, ସୁଧାର ଗାଈ।

ସୁବିମଳ—ବିଂ. ଅତି ନିର୍ମଳ।

ସୁବିଶାଳ—ବିଂ. ଅତି ବିଶାଳ।

ସୁବିସ୍ତା—ଗ୍ରା. ବି. (ସଂ-ସୁବିଧା) ସୁବିଧା ଦେଖ।

ସୁବିସ୍ତାରିତ—ବିଂ. ଅତି ବିସ୍ତାରିତ।

ସୁବିସ୍ତୀର୍ଣ୍ଣ—ବିଂ. ଅତି ବିସ୍ତୀର୍ଣ୍ଣ।

ସୁବିସ୍ମୃତ—ବିଂ. ଅତି ବିସ୍ମୃତ।

ସୁବୀଜ—ବି. ସୁନ୍ଦର ବୀଜ,ଫଳୋତ୍ପାଦକ ବୀଜ, ବେଣାଚେର, (ବିଂ) ସୁନ୍ଦର ବୀଜଯୁକ୍ତ, (ସ୍ତ୍ରୀ) ସୁବୀଜା।

ସୁବୀର—ବି. ଦେଶବିଶେଷ, ସିନ୍ଧୁନଦ ସନ୍ନିକଟସ୍ଥ ଦେଶ, ଉତ୍କୃଷ୍ଟ ବୀର ବା ଯୋଦ୍ଧା,ସ୍କନ୍ଦଙ୍କର ଏକ ନାମ, ଶିବଙ୍କର ଏକ ନାମ,ଶିବଙ୍କର ଏକପୁତ୍ର,ଶିବଙ୍କର ଏକପୁତ୍ର, ଏକବୀର ବୃକ୍ଷ।

ସୁବୀରକ—ବି. ସୌବୀରାଞ୍ଜନ, ବଦରୀ, ବରକୋଳି, ଏକବୀର ବୃକ୍ଷ।

ସୁବୀରଜ—ବି. ସୌବୀରାଞ୍ଜନ।

ସୁବୀରାମ୍ଳ-ବି. କାଞ୍ଜିକ,ଯଅର ବା ଗହମର କାଞ୍ଜି।

ସୁବୀର୍ଯ୍ୟ-ବି.ଉତ୍ତମବୀର୍ଯ୍ୟ,ସନ୍ତାନୋତ୍ପାଦନ ସମର୍ଥ ବୀର୍ଯ୍ୟ, ବଦରୀଫଳ, (ପୁଂ.ବିଂ) ମହାଶକ୍ତି ବା ବଳଶାଳୀ,(ସ୍ତ୍ରୀ)ସୁବୀର୍ଯ୍ୟା।

ସୁବୀର୍ଯ୍ୟା—ବି. ବନକାର୍ପାସୀ, ବଣ କପା, କଡ଼ ଶତାବରୀ,ନାଡ଼ିହିଙ୍ଗୁ,ହିଙ୍ଗୁବିଶେଷ

ସୁବୁଦ୍ଧି—ବି. (କ.ଧା) ସଦ୍‌ବୁଦ୍ଧି, ଉତ୍ତମ ବୁଦ୍ଧି,ସୁମତି,ଭଲକାର୍ଯ୍ୟରେ ମତି,(ବିଂ) ଉତ୍ତମ ବୁଦ୍ଧିବିଶିଷ୍ଟ, ବୁଦ୍ଧିମାନ୍, ସତ୍‌ସ୍ୱଭାବ,(ଗ୍ରା.ବି)ଖଣ୍ଡାଏତ ଓ ତେଲିଙ୍କର ବଂଶୋପାଧିବିଶେଷ, ରାଜଦତ୍ତ ଉପାଧିବିଶେଷ।

ସୁବୁଧିଆ—ଗ୍ରା.ପୁଂ. ବିଂ. ସୁବୁଦ୍ଧି ଦେଖ

ସୁବୁଧିକଇଁ—ଗ୍ରା. ବି. ନେଳୀକଇଁ ଫୁଲ, ନୀଳୋତ୍ପଳ।

ସୁବୃତ୍ତ ବିଂ(ସୁ+ବୃତ୍ତ,ବ.ବ୍ରୀ)ସମ୍ପୂର୍ଣ୍ଣରୂପେ ଗୋଲ, ସୁବର୍ତ୍ତୁଳ,ସୁନ୍ଦର ଓ ବର୍ତ୍ତୁଳ, (ପୁଂ)ସଚ୍ଚରିତ୍ର,ସତ୍‌ସ୍ୱଭାବ, ସାଧୁ, (ସ୍ତ୍ରୀ) ସୁବୃତ୍ତା, (ବି) ଶୂରଣ, ଓଲୁଅ।

ସୁବୃତ୍ତା—ବିଂ. ସୁବୃତ୍ତର ସ୍ତ୍ରୀଲିଙ୍ଗ, (ବି) ଶତପତ୍ରୀ, ସେବତୀଫୁଲ, କାକଲୀଦ୍ରାକ୍ଷା, ଅପ୍‌ସରୋବିଶେଷ, ପ୍ରତ୍ୟେକ ଚରଣରେ ୧୯ଅକ୍ଷରବିଶିଷ୍ଟ ବୃତ୍ତବିଶେଷ।

ସୁବୃତ୍ତି—ବି.(କ.ଧା)ସୁନ୍ଦର ବା ଉତ୍ତମ ବା ପବିତ୍ର ଜୀବିକା, ଉତ୍ତମ ବୁଦ୍ଧିବୃତ୍ତି, ସଦାଚାର,ସଚ୍ଚରିତ୍ର, (ବିଂ.ପୁଂ.ସ୍ତ୍ରୀ)ପବିତ୍ର ଜୀବିକାବାନ୍, ସଚ୍ଚରିତ୍ର।

ସୁବୃଦ୍ଧ—ପୁଂ. ବିଂ. ଅତ୍ୟନ୍ତ ବୃଦ୍ଧ, ଅତି ପ୍ରାଚୀନ,(ସ୍ତ୍ରୀ)ସୁବୃଦ୍ଧା, (ବି) ଦକ୍ଷିଣଦିଗ୍‌ଗଜର ନାମ।

ସୁବେ—ଯା. ବି. ସନ୍ଦେହ।

ସୁବେଗା—ବି. ମହାଜ୍ୟୋତିଷ୍ମତୀ ଲତା।

ସୁବେଣୀ—ଗ୍ରା.ସ୍ତ୍ରୀ.ବି.ଉତ୍ତମ କେଶବିଶିଷ୍ଟା ସ୍ତ୍ରୀ, ସ୍ତ୍ରୀ, ନାରୀ।

ସୁବେଦ—ପୁ. ବିଂ. (ସୁ+ବିଦ୍+କ.ଅ) ଅଧ୍ୟାତ୍ମଶାସ୍ତ୍ରରେ ପାରଙ୍ଗମ, ବେଦପାରଗ।

ସୁବେଦୀ—ଗ୍ରା.ପୁଂ.ବିଂ. (ସଂ-ସୁବେଦ) ବେଦପାରଗ (ବ୍ରାହ୍ମଣ)।

ସୁବେଦୀବ୍ରାହ୍ମଣ—ଗ୍ରା. ବି. ବେଦପାରଗ ଆଚାରନିଷ୍ଠ ବ୍ରାହ୍ମଣ।

ସୁବେଧ—ଗ୍ରା. ବିଂ. ଅତି ଗାଢ଼।

ସୁବେଳ—ବି. (ବ.ବ୍ରୀ) ଲଙ୍କାର ନିକଟ ପର୍ବତ, (ବିଂ) ପ୍ରଣତ, ଶାନ୍ତ, ବହୁତ ନଇଁଥିବା, (ଗ୍ରା.ବି) ସୁବେଳା ଦେଖ।

ସୁବେଳା—ବି.(କ.ଧା) ଉପଯୁକ୍ତ ସମୟ, ଉପଯୁକ୍ତ କାଳ,ସୁବିଧାଜନକ ମୁହୂର୍ତ୍ତ।

ସୁବେଶ—ବି. ସୁନ୍ଦର ବେଶ, ସୁନ୍ଦର ପରିଚ୍ଛଦ ଓ ସଜ୍ଜା, ଶ୍ୱେତେକ୍ଷୁ, (ବିଂ-ବ.ବ୍ରୀ) ସୁନ୍ଦର ବେଶଯୁକ୍ତ, ସୁନ୍ଦର, ରୂପବାନ୍, (ସ୍ତ୍ରୀ) ସୁବେଶା।

ସୁବେଶୀ—ପୁଂ. ବିଂ. (ସୁବେଶ+ଇନ୍) ସୁବେଶଧାରୀ, (ସ୍ତ୍ରୀ) ସୁବେଶିନୀ।

ସୁବୋଧ—ବିଂ(ବ.ବ୍ରୀ) ସୁବୁଦ୍ଧି,ସଦ୍‌ବୁଦ୍ଧିବିଶିଷ୍ଟ, ଅତି ବୁଦ୍ଧିମାନ୍, ତୀକ୍ଷ୍ଣ ବୁଦ୍ଧିବିଶିଷ୍ଟ, ଶିଷ୍ଟ, ନମ୍ର, (ସ୍ତ୍ରୀ) ସୁବୋଧା, (ବି) ସୁବୁଦ୍ଧି,ସୁଜ୍ଞାନ,ନିଦ୍ରାରୁ ଜାଗରଣ।

ସୁବୋଧନ—କ୍ଲୀ.ବି.ଉତ୍ତମ ରୂପେ ଜାଗରଣ, ଉତ୍ତମ ରୂପେ ଜ୍ଞାନଜନନ।

ସୁବୋଧୀ—ବିଂ. (ସୁ+ବୁଧ୍+ଇନ୍) ଉତ୍ତମ ବୋଧଯୁକ୍ତ, ଉତ୍ତମ ଜ୍ଞାନବିଶିଷ୍ଟ,

(ସ୍ତ୍ରୀ) ସୁବୋଧିନୀ ।

ସୁବୋଧ—ବି° (ସୁ+ବୁଧ୍+ମ°.ଯ)ଯାହା ସହଜରେ ବୁଝିହୁଏ, ସୁଖବୋଧ, ଯାହାଙ୍କୁ ସହଜରେ ନିଦ୍ରାରୁ ଉଠାଇ ଦିଆଯାଇପାରେ, (ସ୍ତ୍ରୀ)ସୁବୋଧା ।

ସୁବ୍ୟକ୍ତ—ବି°. ସୁପ୍ରକାଶିତ, ପ୍ରକଟିତ, ସୁସ୍ପଷ୍ଟ ।

ସୁବ୍ୟବସ୍ଥ—ବି°. (ସୁ + ବ୍ୟବସ୍ଥା + ଅ) ବି.ଗ୍ରା; ସୁନ୍ଦର ରୂପେ ବ୍ୟବସ୍ଥାଯୁକ୍ତ,(ସ୍ତ୍ରୀ) ସୁବ୍ୟବସ୍ଥା ।

ସୁବ୍ୟବସ୍ଥା—ବି.ଉତ୍ତମ ବ୍ୟବସ୍ଥା,(ସ୍ତ୍ରୀ.ବି°) ସୁବ୍ୟବସ୍ଥର ସ୍ତ୍ରୀଲିଙ୍ଗ ।

ସୁବ୍ୟବସ୍ଥିତ—ବି°, ( ସୁ+ବି+ଅବ+ ସ୍ଥା + ମ°.ତ)ଉତ୍ତମରୂପେ ବ୍ୟବସ୍ଥାଯୁକ୍ତ

ସୁବ୍ରତ—ବି°.(ବି.ଗ୍ରା) ଶୋଭନ ବ୍ରତାନୁଷ୍ଠାତା, ଭୃତିତାନୁସାରେ ବ୍ରତ ପାଳନ କାରୀ, ଧର୍ମପରାୟଣ, ବିନୀତ ବା ନମ୍ର, (ସ୍ତ୍ରୀ) ସୁବ୍ରତା, ଉତ୍ତମବ୍ରତୀ, ବର୍ତ୍ତମାନ ଯୁଗର ବିଂଶଜିନ, ଭବିଷ୍ୟତ୍କାଳର ଏକାଦଶ ଜୈନମୁନି, ସ୍କନ୍ଦଙ୍କର ଏକ ଅନୁଚର, ଏକ ପ୍ରଜାପତିଙ୍କ ନାମ, ରୌଚ୍ୟମନୁଙ୍କର ଏକପୁତ୍ର, ଉଶୀନରଙ୍କ ଏକପୁତ୍ର,ପ୍ରିୟବ୍ରତଙ୍କ ଏକପୁତ୍ର,ବ୍ରହ୍ମଗୃହ

ସୁବ୍ରତା—ସ୍ତ୍ରୀ. ବି°. ସୁବ୍ରତର ସ୍ତ୍ରୀଲିଙ୍ଗ, (ସ୍ତ୍ରୀ.ବି)ଗୁଣବତୀ ଓ ସାଧ୍ୱୀ ସ୍ତ୍ରୀ),ସୁଦୋହ୍ୟ ଗୌ, ଗନ୍ଧପଲାଶୀ, ଗନ୍ଧତୃଣଭେଦ, ଦକ୍ଷଙ୍କର ଏକକନ୍ୟା,ଅପ୍ସରୋବିଶେଷ, ବର୍ତ୍ତମାନ କଳ୍ପର ପଞ୍ଚଦଶ ଅର୍ହତଙ୍କ ମାତା ।

ସୁବ୍ରହ୍ମଣ୍ୟ—ବି. ନିଷ୍ଠାପର ବ୍ରହ୍ମବାଦୀ, କାର୍ତ୍ତିକେୟ, ବିଷ୍ଣୁ, ଶିବ, (ଗ୍ରା.ବି ସୁବ୍ରାହ୍ମଣ) ସୁବ୍ରାହ୍ମଣ ଦେଖ,ଦାକ୍ଷିଣାତ୍ୟରେ ପୁରୁଷଙ୍କ ପ୍ରଦତ୍ତ ନାମ ।

ସୁବ୍ରହ୍ମଣ୍ୟକ୍ଷେତ୍ର—ଗ୍ରା.ବି.ମାନ୍ଦ୍ରାଜ ପ୍ରଦେଶର ଦକ୍ଷିଣକାନଡ଼ାରେ ଥିବା ହିନ୍ଦୁତୀର୍ଥ

ସୁବ୍ରହ୍ମବାସୁଦେବ—ବି.ବ୍ରହ୍ମରୂପ ବସୁଦେବସୁତ, ଶ୍ରୀକୃଷ୍ଣ । [ ବ୍ରାହ୍ମଣ ।

ସୁବ୍ରାହ୍ମଣ—ବି. ଆଗ୍ରହର ବିନୟାଦିଯୁକ୍ତ

ସୁଭକ୍ତି—ବି. ଉତ୍ତମଭକ୍ତି, (ବି°) ଉତ୍ତମ ଭକ୍ତିବିଶିଷ୍ଟ ।

ସୁଭକ୍ଷ(କ୍ଷ୍ୟ)—ବି. ସୁଖଭକ୍ଷ୍ୟ ।

ସୁଭଗ—ବି°.(ବି.ଗ୍ରା; ସୁ+ଭଗ) ଶୋଭନ ଐଶ୍ୱର୍ଯ୍ୟାଦିଯୁକ୍ତ,ସୌଭାଗ୍ୟଯୁକ୍ତ,ଭାଗ୍ୟବାନ୍, ପ୍ରିୟ, ସୁଦର୍ଶନ, ସୁନ୍ଦର,ମନୋହର, ସୁଖଦ, ଆନନ୍ଦଦାୟକ, (ସ୍ତ୍ରୀ) ସୁଭଗା, (ବି) ଟଙ୍କଣ. ଟାଙ୍ଗଣା,ଚମ୍ପକ ଅଶୋକ, ରକ୍ତଝିଣ୍ଟୀ.ର କ୍ତାମ୍ଳାନ,ଅଁକେଇଫୁଲ ଗୁଳ୍ମ,ଶୈଳେୟ,ଶିଳାରସ, ଗନ୍ଧକ, ଶିବ, ସୁବଳଙ୍କର ଏକପୁତ୍ର. ଜୈନମତରେ ଯେଉଁ କାର୍ଯ୍ୟଦ୍ୱାରା ଜୀବ ସୌଭାଗ୍ୟଶାଳୀ ହୁଏ ।

ସୁଭଗଙ୍କରଣ—ବି. ଯାହାଦ୍ୱାରା ସୁଭଗ କରେ ହୁଏ ।

ସୁଭଗତା—ସ୍ତ୍ରୀ. ବି. (ସୁଭଗ + ତ + ଆ) ପ୍ରିୟତ୍ୱ, ସୌନ୍ଦର୍ଯ୍ୟ, ସୁଭଗତ୍ୱ ।

ସୁଭଗମ୍ଭାବୁକ—ପୁଂ. ବି°. (ସୁଭଗ+ଭୂ +କ.ଉକ) ଯେ ବର୍ତ୍ତମାନ ସୁଭଗ ହୋଇଅଛି. (ସ୍ତ୍ରୀ) ସୁଭଗମ୍ଭାବୁକା ।

ସୁଭଗମ୍ମନ୍ୟ—ପୁଂ. ବି°. ( ସୁଭଗଂ+ ମନ୍+କ.ଯ) ଯେ ଆପଣାକୁ ସୁଭଗ (ସୁନ୍ଦର ବା ପ୍ରିୟ)ବୋଲି ମନେକରେ, (ସ୍ତ୍ରୀ) ସୁଭଗମ୍ମନ୍ୟା ।

ସୁଭଗସେନ—ଗ୍ରା. ବି.ଆଲେକ୍‌ଜାଣ୍ଡରଙ୍କ ଭାରତ ଆକ୍ରମଣ ସମୟରେ ପଶ୍ଚିମଭାରତର ଏକ ପ୍ରାନ୍ତର ଶାସକ ।

ସୁଭଗା—ସ୍ତ୍ରୀ.ବି°. (ସୁଭଗ+ଆ)ସୁଭଗର ସ୍ତ୍ରୀଲିଙ୍ଗ,ସୌଭାଗ୍ୟବତୀ,ଅତିପ୍ରିୟା (ଭାର୍ଯ୍ୟା), ସୁନ୍ଦରୀ (ସ୍ତ୍ରୀ), (ବି) କୈବର୍ତ୍ତୀ, କୈବର୍ତ୍ତୀ ମୁସ୍ତକ, ଶାଳପର୍ଣ୍ଣୀ, ହରିଦ୍ରା, ନୀଳଦୂର୍ବା, ତୁଳସୀ. ପ୍ରିୟଙ୍ଗୁ, କସ୍ତୁରୀ, ସୁବର୍ଣ୍ଣକଦଳୀ, ବନମଲ୍ଲୀ, ସୌଭାଗ୍ୟବତୀ ସ୍ତ୍ରୀ ପାଞ୍ଚବର୍ଷ ବୟସ୍କା କୁମାରୀ, ସ୍କନ୍ଦଙ୍କର ଏକମାତୃକା,ରାଗିଣୀବିଶେଷ, ଜାତିପୁଷ୍ପ, ଜାଇଫୁଲ ।

ସୁଭଗାନନ୍ଦନାଥ—ବି. କାଳୀପୂଜା ଉପଲକ୍ଷରେ ତାନ୍ତ୍ରିକମାନଙ୍କ ପୂଜିତ ଭୈରବ ବିଶେଷ ।

ସୁଭଗାସୁତ—ପୁଂ. ବି. ସୌଭାଗିନେୟ, ସୁଭଗାର ପୁତ୍ର ।

ସୁଭଗାହ୍ୱୟା—ସ୍ତ୍ରୀ.ବି.କୈବର୍ତ୍ତିକା ଲତା, ଶାଳପର୍ଣ୍ଣୀ, ହରିଦ୍ରା, ସୁବର୍ଣ୍ଣକଦଳୀ, ତୁଳସୀବୃକ୍ଷ, ନୀଳଦୂର୍ବା ।

ସୁଭିଙ୍ଗ—ବି. ନାରିକେଳ ବୃକ୍ଷ ।

ସୁଭଟ—ପୁଂ. ବି. ଉତ୍ତମଯୋଦ୍ଧା ।

ସୁଭଟ୍ଟ—ପୁଂ. ବି. ମହାପଣ୍ଡିତ ବ୍ୟକ୍ତି ।

ସୁଭଦ୍ର—ପୁଂ.ବି°.(ସୁ+ଭଦ୍ର)ସୁମଙ୍ଗଳଯୁକ୍ତ,ସୌଭାଗ୍ୟଶାଳୀ, ଭାଗ୍ୟବାନ୍,(ସ୍ତ୍ରୀ) ସୁଭଦ୍ରା, (ବି)ବିଷ୍ଣୁ,ରାଜଭେଦ,ଲଙ୍କାର ସମୁଦ୍ର ଉପକୂଳସ୍ଥ ଚତୁର୍ଦ୍ଦିଗରେ ଶତଯୋଜନ ବିସ୍ତୃତ ବହୁ ଶାଖାବିଶିଷ୍ଟ ପୌରାଣିକ ବଟବୃକ୍ଷର ନାମ, ସନତ୍କୁମାରଙ୍କର ଏକ ନାମ, ବସୁଦେବଙ୍କ ଔରସରେ ପୌରବୀ ଗର୍ଭଜାତ ସନ୍ତାନ, ଶ୍ରୀକୃଷ୍ଣଙ୍କର ଏକପୁତ୍ର,ପ୍ଲକ୍ଷଦ୍ୱୀପର ଅନ୍ତର୍ଗତ ଏକବର୍ଷର ନାମ,କଲ୍ୟାଣ,ସୌଭାଗ୍ୟ

ସୁଭଦ୍ରକ—ବି.(ସୁଭଦ୍ର+କ) ଦେବରଥ, ବ୍ୟୋମଯାନ, ବେଲୁନ୍, ବିଲ୍ୱବୃକ୍ଷ ।

ସୁଭଦ୍ରା—ସ୍ତ୍ରୀ. ବି°.(ବି.ଗ୍ରା) ସୌଭାଗ୍ୟଶାଳିନୀ, ଭାଗ୍ୟବତୀ, (ବି) ଅର୍ଜୁନଙ୍କ ଦ୍ୱିତୀୟା ପତ୍ନୀ, ଶ୍ରୀକୃଷ୍ଣଙ୍କ ବୈମାତ୍ରେୟ ଭଗିନୀ, ବସୁଦେବଙ୍କ ଔରସରେ ରୋହିଣୀ ଗର୍ଭଜାତା କନ୍ୟା, ଦୁର୍ଗାଙ୍କର ଏକ ରୂପ, ସଙ୍ଗୀତରେ ଏକ ଶ୍ରୁତିର ନାମ,ଅନିରୁଦ୍ଧଙ୍କ ପତ୍ନୀ,ବଳିଙ୍କ କନ୍ୟା, ଶାରିବା, ଗମ୍ଭାରୀ, ଏକପ୍ରକାର ଘାସ, ଶ୍ୱେତ ମନ୍ଦାରବୃକ୍ଷ, (ଗ୍ରା.ବି) ଜଗନ୍ନାଥ ଓ ବଳଭଦ୍ରଙ୍କ ପ୍ରତିମା ମଧ୍ୟରେ ପ୍ରତିଷ୍ଠିତା ହସ୍ତହୀନା ମୂର୍ତ୍ତି ।

ସୁଭଦ୍ରାଣୀ—ବି. ତ୍ରାୟନ୍ତୀ, ଭଦଭଦଳିଆ ନାମକ ଗୁଳ୍ମ, ବନ୍ଧୁଳା ।

ସୁଭଦ୍ରାହରଣ—ବି. ଅର୍ଜୁନଙ୍କ ଦ୍ୱାରା ବିବାହ ନିମନ୍ତେ ଶ୍ରୀକୃଷ୍ଣଙ୍କ ପରାମର୍ଶରେ ସୁଭଦ୍ରାଙ୍କର ସ୍ଥାନାନ୍ତରୀକରଣ ।

ସୁଭଦ୍ରେଶ—ବି. (୬ତତ୍; ସୁଭଦ୍ରା + ଈଶ) ଅର୍ଜୁନ ।

ସୁଭୟଙ୍କର—ବି°. ଅତି ଭୟାନକ ।

ସୁଭୟାନକ—ବି°. ଅତିଭୀଷଣ, ଅତି-

ଉସ୍ଥାନକ ।
ସୁଭଜ—ବିଂ. ଉତ୍ତମ ଜନ୍ମଯୁକ୍ତ, ଶୁଭଜନ୍ମ ବିଶିଷ୍ଟ ।
ସୁଭସଉଗ—ସ୍ତ୍ରୀ. ବ. ସୁଭଗା ସ୍ତ୍ରୀ ।
ସୁଭା—ଇଉପ୍ରେଡ୍‌ସ୍ ନଦୀର ପୂର୍ବ କୂଳ ବାସୀ ଏକ ବେଦୈ‌ନିକଜାତି ।
ସୁଭାଗ—ପୁଂ.ବିଂ ଭାଗ୍ୟବାନ୍ (ସ୍ତ୍ରୀ ସୁଭାଗା
ସୁଭାଗୀ—ସ୍ତ୍ରୀ. ବ. ସୁଭଗା ସ୍ତ୍ରୀ, ( ଗ୍ରା.ସ୍ତ୍ରୀ. ବିଂ.ସଂ-ସୁଭଗା) ସୌଭାଗ୍ୟବତୀ, (ଗ୍ରା. ବିଂ. ପୁଂ) ସୌଭାଗ୍ୟବାନ୍ ।
ସୁଭାଗ୍ୟ—ବ. ଉତ୍ତମ ଭାଗ୍ୟ, (ପୁଂ.ବିଂ. ବ.ଗ୍ରା) ଖୁବ୍ ଭାଗ୍ୟବାନ୍. ସ୍ତ୍ରୀ ସୁଭାଗ୍ୟା ।
ସୁଭାଞ୍ଜନ—ବ. ଶୋଭାଞ୍ଜନବୃକ୍ଷ, ସଜନା ।
ସୁଭାନୁ—ବିଂ. ଉତ୍ତମ ଭାନୁଯୁକ୍ତ, (ବ) ଚତୁର୍ଥ ବୃତ୍ତାସନାମକ ଯୁଗର ଦ୍ୱିତୀୟ ବର୍ଷର ନାମ, ଶ୍ରୀକୃଷ୍ଣଙ୍କର ପୁତ୍ରବିଶେଷ, ରାଜାଭେଦ ।
ସୁଭାବିତ—ବିଂ. ଉତ୍ତମରୂପେ ଭାବିତ, ଯେଉଁ ଔଷଧ ଉତ୍ତମରୂପେ ଭାବନା ଦିଆହୋଇଅଛି ।
ସୁଭାଷଣ—କ୍ଳୀ.ବ. (ସୁ + ଭାଷ୍ + ଅନ) ସୁବାକ୍ୟ କଥନ, ସୁନ୍ଦର ଭାଷଣ ।
ସୁଭାଷିତ—ବିଂ. ( ସୁ + ଭାଷ୍ + ତ ) ସୁନ୍ଦରରୂପେ କଥିତ, (ବ) ସୁବାକ୍ୟ, ସୁନ୍ଦର କଥା, ବୁଦ୍ଧଭେଦ ।
ସୁଭାଷୀ—ପୁଂ. ବିଂ. (ସୁ + ଭାଷ୍ + କ. ଇନ୍) ମଧୁରଭାଷୀ, (ସ୍ତ୍ରୀ)ସୁଭାଷିଣୀ ।
ସୁଭାସ—ବିଂ. ବିଶେଷ ପ୍ରକାଶମାନ,(ସ୍ତ୍ରୀ) ସୁଭାସା ।
ସୁଭିକ୍ଷ—ବ. ( ସୁ + ଭିକ୍ଷ୍ + ଅଧି.ଅ ) ଯେଉଁ କାଳରେ ଭିକ୍ଷୁକର ଭିକ୍ଷା ସୁଲଭ, ସୁଲଭ ଭୈକ୍ଷ୍ୟଦ୍ରବ୍ୟ, ଯେଉଁ କାଳରେ ଦେଶରେ ଶସ୍ୟାଦି ଖାଦ୍ୟ ପ୍ରଚୁର ପରିମାଣରେ ମିଳେ ।
ସୁଭିକ୍ଷା—ସ୍ତ୍ରୀ.ବ. (ସୁ + ଭିକ୍ଷ୍ + ଅ + ଆ) ଧାତୁପୁଷ୍ପିକା, ଧାଇଫୁଲ, ଉତ୍ତମ ଭିକ୍ଷା
ସୁଭୀତ—ବିଂ. (ସୁ + ଭୀ + ତ, ଅତିଶୟ ଭୀତ, ଯେ ଅତିଶୟ ଭୟ ପାଇଅଛି ।
ସୁଭୀମ—ବିଂ.ଅତି ଭୀଷଣ, (ସ୍ତ୍ରୀ)ସୁଭୀମା—କୃଷ୍ଣଙ୍କର ପତ୍ନୀବିଶେଷ ।
ସୁଭୀରକ—ବ. ପଲାଶବୃକ୍ଷ ।
ସୁଭୀରୁ—ବିଂ. ଅତିଶୟ ଭୀରୁ, ଅତ୍ୟନ୍ତ ଭୟଶୀଳ ।
ସୁଭୁକ୍ତ—ବିଂ.(ସୁ + ଭୁଜ୍ + ତ)ଉତ୍ତମ-ରୂପେ ଭୁକ୍ତ, ଉତ୍ତମ ରୂପେ ଭୋଜନ କରିଥିବା ।
ସୁଭୁଜ—ପୁଂ. ବିଂ. ( ବ.ଗ୍ରା ) ସୁନ୍ଦର ବାହୁବିଶିଷ୍ଟ, (ସ୍ତ୍ରୀ) ସୁଭୁଜା ।
ସୁଭୂ—ବ. (ସୁ + ଭୂ + କ.କ୍ୱିପ୍)ଉତ୍କୃଷ୍ଟ ଭୂମି, (ବିଂ) ଉତ୍କୃଷ୍ଟ ଭୂମି ସମ୍ବନ୍ଧୀୟ ସୁଜନ୍ମା ।
ସୁଭୂତ—ବ. (ସୁ + ଭୂ + ଭା.ତ) ଉତ୍ତମ ହେବା, ସାଧୁହେବା ।
ସୁଭୂତି—ବ. କୁଶଳ, କ୍ଷେମ, ମଙ୍ଗଳ, ଉନ୍ନତି ।
ସୁଭୂତିକ—ବ. (ସୁ + ଭୂତି + କ) ବିଲ୍ୱ-ବୃକ୍ଷ, ବେଲଗଛ ।
ସୁଭୂମ-ବ.ଜୈନମାନଙ୍କ ଅଷ୍ଟମ ଚକ୍ରବର୍ତ୍ତୀ କାର୍ତ୍ତିବୀର୍ଯ୍ୟ ।
ସୁଭୂମି—ସ୍ତ୍ରୀ.ବ. ଉତ୍କୃଷ୍ଟ ଭୂମି, (ବିଂ) ଉତ୍ତମ ଭୂମିବିଶିଷ୍ଟ ।
ସୁଭୂମିକ—ବ. ସରସ୍ୱତୀ ନଦୀ ତୀରସ୍ଥ ଜନପଦବିଶେଷ ।
ସୁଭୂମିପ—ବିଂ. ଉତ୍କୃଷ୍ଟ ଭୂମିରକ୍ଷକ, ଉତ୍କୃଷ୍ଟ ଭୂମିପତି ।
ସୁଭୂଷଣ-ବ.ସୁନ୍ଦର ଅଳଙ୍କାର,(ପୁଂ.ବିଂ) ବ.ଗ୍ରା; ସୁନ୍ଦର ଅଳଙ୍କାରରେ ଭୂଷିତ, (ସ୍ତ୍ରୀ) ସୁଭୂଷଣା ।
ସୁଭୃତ—ବିଂ. ଉତ୍ତମରୂପେ ଅନ୍ନବସ୍ତ୍ରାଦି-ଦ୍ୱାରା ଯାହାକୁ ଭରଣ କରାଯାଏ
ସୁଭୃଶ-ଷ—ବିଂ ର ବିଂ ଓ କ୍ରି.ବିଂ, ଅତିଶୟ (ବିଂ) ସମଧିକ ।
ସୁଭୈକ୍ଷ—ଗ୍ରା.ବ. (ସଂ ସୁଭିକ୍ଷ)ସୁସମୟ ସୁକାଳ
ସୁଭୋଗ୍ୟ—ବିଂ. ଉତ୍ତମରୂପେ ଭୋଗ କରିହେବା ଯୋଗ୍ୟ, (ସ୍ତ୍ରୀ) ସୁଭୋଗ୍ୟା ।
ସୁଭୋଜନ—ବିଂ. ଉତ୍ତମରୂପ ଭୋଜନ ।
ସୁଭୌମ—ବ.ଜୈନଙ୍କ ଚକ୍ରବର୍ତ୍ତୀ କାର୍ତ୍ତ-ବୀର୍ଯ୍ୟଙ୍କ ପୁତ୍ର ।
ସୁଭ୍ରୂ—ସ୍ତ୍ରୀ ବିଂ. ( ସୁ + ଭ୍ରୂ. ବ.ଗ୍ରା ) ସୁନ୍ଦର ଭ୍ରୂଯୁକ୍ତା ନାରୀ, ( ସ୍ତ୍ରୀ.ବ ) ସୁନ୍ଦରୀ ନାରୀ, ନାରୀ, ସ୍ତ୍ରୀ ।
ସୁମଦ୍ଧା—ପ୍ରା.(ସମ୍ବ)ବ. ପନାରୀଦଉଡ଼ା ।
ସୁମ—ବ. (ବ.ଗ୍ରା) ପୁଷ୍ପ, ଫୁଲ, ଚନ୍ଦ୍ର, ଆକାଶ, ଗଗନ, (ଗ୍ରା.ବିଂ-ସଂ-ଶେଷ) କୃପଣ, (ଯା.ବ) ଘୋଡ଼ାଆଦି ପଶୁଙ୍କ ନଖ ।
ସୁମଖୋର—ଯା. ବ. ଯେଉଁ ଘୋଡ଼ାର ଗୋଟିଏ ଆଖିର ପୁଅ ଖରାପ ହୋଇ-ଥାଏ ।
ସୁମଙ୍ଗଳ—ବ.ଅତ୍ୟନ୍ତ ମଙ୍ଗଳ ବା ଶୁଭ, ଏକପ୍ରକାର ବିଷ,(ବିଂ)ଅତି ଶୁଭସୂଚକ, ଅତି କ୍ଷେମଯୁକ୍ତ, (ସ୍ତ୍ରୀ) ସୁମଙ୍ଗଳା ।
ସୁମଙ୍ଗଳା—ସ୍ତ୍ରୀ. ବିଂ. (ସୁମଙ୍ଗଳ + ଆ) ସୁମଙ୍ଗଳର ସ୍ତ୍ରୀଲିଙ୍ଗ,(ବ) ବାଘୁଯୋଲୀ, ଏ ପ୍ରକାର ଘାସ,ମକଡ଼ାଘାସ,କାମାଖ୍ୟା ଦେଶୀୟ ନଦୀବିଶେଷ, ଅର୍ହନ୍ତମାତା ।
ସୁମଣୀ—ବିଂ. ଉତ୍ତମ ମଣିବିଶିଷ୍ଟ, (ବ) ସ୍କନ୍ଦାନୁଚର ଭେଦ, ଉତ୍ତମ ମଣି ।
ସୁମତ—ବିଂ. ( ସୁ + ମନ୍ + ମି.ତ ) ସୁବୁଦ୍ଧିଶାଳୀ, ବନ୍ଧୁତ୍ୱବିଶିଷ୍ଟ, ପ୍ରିୟ,(ସ୍ତ୍ରୀ) ସୁମତା ।
ସୁମତରାଶ—ଯା.ବ.ଘୋଡ଼ାଙ୍କ ନଖ କାଟି-ବାର ଛୁରୀ ।
ସୁମତି—ବ. (କ.ଧା) ସୁବୁଦ୍ଧି, ଦୟା, ଅନୁଗ୍ରହ, ଭକ୍ତି,(ବ.ଗ୍ରା) ମଇନା, ସାରି ପକ୍ଷୀ, ମେଳ, (ପୁଂ) ବର୍ତ୍ତମାନ କଳ୍ପର ପଞ୍ଚମ ଜୈନମୁନି,ଭୂତକଳ୍ପର ଜୈନ-ମୁନିବିଶେଷ, ଭରତଙ୍କର ଏକ ପୁତ୍ର, ଜନମେଜୟଙ୍କ ଏକ ପୁତ୍ର,ସୂତଙ୍କ ଏକ ପୁତ୍ର ବା ଶିଷ୍ୟଙ୍କ ନାମ,(ସ୍ତ୍ରୀ)କଳ୍କିଯୁଗର ବିଷ୍ଣୁଅବତାରଙ୍କ ମାତା, କଳ୍କିମାତା, ବିଷ୍ଣୁଦତ୍ତୋନୃପତିଙ୍କ ପତ୍ନୀ, ଶ୍ରୀକୃଷ୍ଣଙ୍କ ପରମଭକ୍ତ ସୁଦାମା ବ୍ରାହ୍ମଣଙ୍କ ସ୍ତ୍ରୀଙ୍କ ନାମ, ଷାଠିଏହଜାର ପୁତ୍ରଙ୍କ ଜନନୀ ସଗର ରାଜପତ୍ନୀ, (ବିଂ,ବ.ଗ୍ରା) ସୁନ୍ଦର ମତଯୁକ୍ତ, ସୁବୁଦ୍ଧିଯୁକ୍ତ, ସୁନ୍ଦର ବୁଦ୍ଧି-ଯୁକ୍ତ ।

ସୁମଣ୍ଡପ୍ରସ୍ଥ—ପୁଂ. ବି. ବିଷ୍ଣୁ ।

ସୁମଣ୍ଡମେରୁ—ବି. ହଳର ଅଂଶବିଶେଷ, ଲଙ୍ଗଳର ଏକଭାଗ ।

ସୁମଣ୍ଡରେଣୁ—ପୁଂ. ବି. ଯକ୍ଷଭେଦ ।

ସୁମଦଂଶୁ—ବି. ଅତି ଦୀର୍ଘାବୟବ ।

ସୁମଦ—ପୁଂ. ବିଂ. (ବ.ଗ୍ରା) ମଦୋନ୍ମତ୍ତ, ମତୁଆଲ, (ପୁଂ ବି) ରାମଚନ୍ଦ୍ରଙ୍କ ବାନର ସେନାପତିବିଶେଷ, (ସ୍ତ୍ରୀ) ସୁମଦା ।

ସୁମଦନ—ବି. ( ସୁ+ମଦ+ଣିଚ୍+ ଅନ) ଆମ୍ରବୃକ୍ଷ ।

ସୁମଦାତ୍ମଜା—ବି.ଅପ୍ସରା, ସ୍ୱର୍ଗବେଶ୍ୟା ।

ସୁମଦ୍ରଥ—ବିଂ.ସୁନ୍ଦର ରଥବିଶିଷ୍ଟ ସୁନ୍ଦର ରଥଯୁକ୍ତ ।

ସୁମଧୁର—ବିଂ. ଅତ୍ୟନ୍ତ ମଧୁର,ରସଯୁକ୍ତ (ବି)ଅତି ମଧୁର ବାକ୍ୟ,ଜୀବଶାକ,ଜୀବନ୍ତୀ (ସ୍ତ୍ରୀ) ସୁମଧୁରା ।

ସୁମଧ୍ୟ(ମ)—ପୁଂ. ବିଂ. (ବ.ଗ୍ରା) ସୁନ୍ଦର ବା ସରୁ କଟିବିଶିଷ୍ଟ, (ସ୍ତ୍ରୀ) ସୁମଧ୍ୟମା ।

ସୁମଧ୍ୟମା(ମଧ୍ୟା)—ସ୍ତ୍ରୀ. ବିଂ. (ସୁମଧ୍ୟମ+ ଆ) ସୁମଧ୍ୟମର ସ୍ତ୍ରୀଲିଙ୍ଗ,(ବି) କ୍ଷୀଣକଟି ସ୍ତ୍ରୀ.ସୁନ୍ଦରୀ ସ୍ତ୍ରୀ,୧୬ବର୍ଷ ବୟସ୍କା କନ୍ୟା ।

ସୁମନ—ବି.(ସୁ+ମନ୍+ ମିଁ ଅ)ଗୋଧୂମ, ଗହମ, ଧୁସ୍ତୁର, ଧାତୁରି, (ବିଂ) ଅତି ମନୋହର, (ଗ୍ରା.ବି,ସଂ ସୁମନ,ସୁମନାଃ) ପୁଷ୍ପ,ଫୁଲ,ଉତ୍ତମ ମନ,ପଣ୍ଡିତ,ଦେବତା, (ବିଂ) ରସିକ, ସରସମନେ ଯୁକ୍ତ, ହୃଷ୍ଟ, ଆନନ୍ଦିତ, ପ୍ରସନ୍ନଚେତାଃ ।

ସୁମନଃ—ବି.(ସୁମନସ୍ ଶବ୍ଦ,କ.ଧା) ସରସ ମନ, ପ୍ରସନ୍ନ ମନ, (ଗ୍ରା.ବି) ପୁଷ୍ପ,ଫୁଲ, ପଣ୍ଡିତ, ଦେବତା ।

ସୁମନଃପତ୍ର(ପତ୍ରିକା)—ବି. ଜାତିପତ୍ରିକା, ଜାଇତ୍ରି ।

ସୁମନଃପ୍ରଧାନ—ବି. ଜାତିଫୁଲର ଶାଖା, ଜାତିପଲ୍ଲବ ।

ସୁମନଃଫଳ—ବି.ଜାତିଫଳ, ଜାଇଫଳ, କପିତ୍ଥ ବୃକ୍ଷ ।

ସୁମନଃଶର—ବି. (ବ.ଗ୍ରା) ପୁଷ୍ପଧନ୍ୱା, କାମ, କନ୍ଦର୍ପ ।

ସୁମନଦ୍ୱୀପ—ଗ୍ରା. ବି. ଦେବଦ୍ୱୀପ ଦେଖ ।

ସୁମନସ୍—ବି. ସୁମନଃ ଦେଖ ।

ସୁମନସ—ଗ୍ରା. ବି. (ସଂ ସୁମନସ୍) ପୁଷ୍ପସମୂହ, ଦେବତା, ପଣ୍ଡିତ, ପ୍ରସନ୍ନଚିତ୍ତ, ଉତ୍ତମ ମନ ।

ସୁମନସପଙ୍କ୍ତି—ଗ୍ରା.ବି. (ସଂ-ସୁମନସ୍= ଦେବତା+ପଙ୍କ୍ତି=ମାର୍ଗ)ନକ୍ଷତ୍ରଚକ୍ର (ସଂ-ସୁମନସ୍=ଫୁଲ+ପଙ୍କ୍ତି=ଶ୍ରେଣୀ) ପୁଷ୍ପମାଳା ।

ସୁମନସ୍କ—ପୁଂ.ବିଂ. (ସୁ+ମନସ୍+କ. ବ.ଗ୍ରା) ପ୍ରସନ୍ନ, ହୃଷ୍ଟ, ସୁଖୀ ।

ସୁମନା—ବି. ଜାଇଫୁଲ, (ଗ୍ରା.ବି) (ସଂ- ସୁମନସ୍) ସୁମନାଃ ଦେଖ, (ଗ୍ରା.ବିଂ) ସୁମନାଃ ଦେଖ ।

ସୁମନାଃ—ସ୍ତ୍ରୀ.ପୁଂ. ବିଂ. (ବ.ଗ୍ରା-ସୁ+ ମନସ୍) ମହାମନା, ଉଦାରଚେତା, ଆନନ୍ଦଯୁକ୍ତ, ହୃଷ୍ଟ ପ୍ରୀତିଯୁକ୍ତ,ସୁନ୍ଦର, (ବି) ଦେବତା, ପଣ୍ଡିତ, ପୂତିକରଞ୍ଜ, ଜାତିପୁଷ୍ପବୃକ୍ଷ, ଜାଇଫୀଗଛ, ଜମ୍ବୁ, ସେବତୀ, ଶତପତ୍ରୀ, ମହାକରଞ୍ଜ, ଗୋଧୂମ, ଗହମ, ପୁଷ୍ପ, ମାଳତୀଫୁଲ, କବରୀ ଗୋ,ଚମରୀ ଗୋ,କୈକେୟୀଙ୍କ ବାସ୍ତବିକ ନାମ, ଦମଘୋଷଙ୍କ ପତ୍ନୀ, ମଧୁଙ୍କ ପତ୍ନୀ ଓ ବୀରବ୍ରତଙ୍କ ମାତା, ଜାଇଫୁଲ, ପ୍ରିୟା ।

ସୁମନାମୁଖ—ବିଂ. ସୁନ୍ଦର ମୁଖବିଶିଷ୍ଟ ।

ସୁମନା.ସୁମନା-ଗ୍ରା.ବି. ଦେବପୁଷ୍ପ,ଲବଙ୍ଗ

ସୁମନାସ୍ୟ—ପୁଂ.ବି. ଯକ୍ଷଭେଦ ।

ସୁମନୋଜ୍ଞ—ପୁଂ. ବିଂ. ଅତି ସୁନ୍ଦର, (ସ୍ତ୍ରୀ) ସୁମନୋଜ୍ଞା ।

ସୁମନୋଜ୍ଞଘୋଷ—ପୁଂ. ବି. ବୁଦ୍ଧଦେବ

ସୁମନୋତ୍ତରା—ସ୍ତ୍ରୀ. ବି. ରାଜାମାନଙ୍କ ଅନ୍ତଃପୁରସ୍ଥା ସ୍ତ୍ରୀ ।

ସୁମନୋମୁକୁଳ—ବି.ଜାତିଫୁଲର କଢ଼ି ।

ସୁମନୋମୁଖ—ପୁଂ.ବି. ଯକ୍ଷଭେଦ ।

ସୁମନୋରଜଃ—ବି. (୬ତତ୍ପୁ) (ସୁମନସ୍ +ରଜସ୍) ପୁଷ୍ପପରାଗ ।

ସୁମନୋହର—ବିଂ. ଅତିଶୟ ମନୋହର, ଅତିଶୟ ମନୋଜ୍ଞ ।

ସୁମନୌକା—ବି. (୬ତତ୍ପୁ) (ସୁମନ୍+ ଓକସ୍) ସ୍ୱର୍ଗ ।

ସୁମନ୍ତ୍ରପଞ୍ଚକାୟୁକ—ଗ୍ରା.ବି. (ସଂ ସୁମନ୍ତ୍ର) ଗଡ଼ଜାତର ରାଜାଙ୍କଦ୍ୱାରା କରଣଙ୍କୁ ପ୍ରଦତ୍ତ ଉପାଧିବିଶେଷ ।

ସୁମନ୍ତୁ—ବି.ଅଥର୍ବ ବେଦର ଶାଖ ପ୍ରବର୍ତ୍ତକ ଓ ସୂତ୍ର ପ୍ରଣେତା ମୁନିବିଶେଷ, ଜହ୍ନୁଙ୍କର ଏକ ପୁତ୍ର, କ୍ଲିଷ୍ଟ ଉପଦେଶକ, (ବିଂ ସୁ=ଅତି+ମନ୍ତୁ= ଅପରାଧ ଯାହାର) ଅତ୍ୟପରାଧୀ, ଅତି ନିନ୍ଦନୀୟ, (ସୁ+ମନ୍+କାତୁ) ଉତ୍ତମ ଉପଦେଶକାରୀ ।

ସୁମନ୍ତ୍ର—ବି.ବିଷ୍ଣୁଙ୍କ କଳ୍କି ଅବତାରରେ କଳ୍କିଦେବଙ୍କର ଜ୍ୟେଷ୍ଠଭ୍ରାତା ତିନି ଜଣଙ୍କ ମଧ୍ୟରୁ ଜଣେ,ଦଶରଥଙ୍କ ମନ୍ତ୍ରୀବିଶେଷ ଓ ସାରଥି, ଅନ୍ତରୀକ୍ଷଙ୍କର ଏକ ପୁତ୍ର, (ଗ୍ରା.ବିଂ) ବଗୁରବାନ୍ ।

ସୁମନ୍ତ୍ରକ—ପୁଂ.ବି.କଳ୍କିଙ୍କ ଜ୍ୟେଷ୍ଠଭ୍ରାତା ସୁମନ୍ତ୍ର ଦେଖ ।

ସୁମନ୍ତ୍ରିତ—ବିଂ. ଉତ୍ତମରୂପେ ମନ୍ତ୍ରିତ, ଯାହା ସମ୍ବନ୍ଧରେ ଉତ୍ତମରୂପେ ମନ୍ତ୍ରଣା କରାହୋଇଅଛି ।

ସୁମନ୍ତ୍ରୀ—ପୁଂ. ବିଂ. ଉତ୍ତମ ମନ୍ତ୍ରୀ,ମନ୍ତ୍ରଣାକୁଶଳ, ଯେଉଁ ମନ୍ତ୍ରୀର ସହିତ ମନ୍ତ୍ରଣା କରି କାର୍ଯ୍ୟ କଲେ ବିପଦରେ ପଡ଼ିବାକୁ ହୁଏନାହିଁ ।

ସୁମନ୍ଥନ—ବି. (କ.ଧା) ଉତ୍ତମ ମନ୍ଥନ, (ବ.ଗ୍ରା) ମନ୍ଦର ପର୍ବତ ।

ସୁମନ୍ଦ—ବିଂ. ଅତି ମୃଦୁ ।

ସୁମନ୍ଦବୁଦ୍ଧି—ବିଂ. ଅତିଶୟ ମନ୍ଦବୁଦ୍ଧି, ଅତି ଦୁର୍ବୁଦ୍ଧି ।

ସୁମନ୍ଦା—ସ୍ତ୍ରୀ. ବି. ଶକ୍ତିଭେଦ ।

ସୁମନ୍ଦ୍ର—ବିଂ. ସୁମଧୁର (ଧ୍ୱନି) ।

ସୁମନ୍ମା—ବିଂ. ଉତ୍ତମ ବୁଦ୍ଧି ବିଶିଷ୍ଟ, ଶୋଭନମତି ।

ସୁମନ୍ୟୁ—ବି.ପରଶୁରାମଙ୍କ ଶିଷ୍ୟବିଶେଷ, ଗନ୍ଧର୍ବବିଶେଷ, (ବିଂ) ଅତିକ୍ରୋଧୀ ।

ସୁମଫାଟ(ଫାଟ)—ଗ୍ରା. ବି. ଘୋଡାଙ୍କ ଖୁରା ଫାଟିଯିବା ରୋଗବିଶେଷ ।

ସୁମର—ବି. ( ସୁ+ମୃ+ଅ ) ବାୟୁ,

ସହଜ ମୃତ୍ୟୁ ।
ସୁମରଣ—ବି.ସୁନ୍ଦର ବା ସୁଖମୟ ମୃତ୍ୟୁ. ଯେଉଁ ମୃତ୍ୟୁରେ ମୃତବ୍ୟକ୍ତି ଦୁଃଖପାଏ ନାହିଁ ।
ସୁମରଣା—ଗ୍ରା.(ପଦ୍ୟ)କ୍ରି. (ସଂ-ସ୍ମରଣ) ସ୍ମରଣ ଦେଖ ।
ସୁମରଣୀ—ଗ୍ରା. ବିଂ. ( ସଂ-ସ୍ମରଣୀୟ ) ସ୍ମରଣୀୟ ଦେଖ, (ଗ୍ରା.ବି) ଦେବତାଙ୍କ ନାମ ଜପିବା ପାଇଁ ବ୍ୟବହୃତ ୨୭ଟି ଦାନା ଥିବା ଜପମାଳା ।
ସୁମରି—ଗ୍ରା. ବି. (ସଂ-ସ୍ମୃ ଧାତୁ) ସ୍ମରଣ ।
ସୁମରା(ରେ)ଇବା-ଗ୍ରା.କ୍ରି. ସ୍ମରଣକରାଇବା
ସୁମରିବା—ଗ୍ରା.କ୍ରି. ସ୍ମରଣକରିବା, ମନେକରିବା ।
ସୁମଶାୟକ—ବି. (କ.ଧା) ପୁଷ୍ପରଚିତ ଧନୁ, (ବ.ବ୍ରୀ) ପୁଷ୍ପଧନ୍ୱା, କାମଦେବ ।
ସୁମଶୁଖା-ଗ୍ରା.ବି. ଘୋଡ଼ାଙ୍କ ଖୁରା ଫାଟିଯିବା ରୋଗବିଶେଷ ।
ସୁମହତ୍—ବିଂ.ଅତିମହତ୍, ବିପୁଳ, ଅନେକ
ସୁମହାତପାଃ—ବିଂ, ଅତି ତପସ୍ୱୀ ।
ସୁମହାତ୍ମା—ବିଂ.ଅତିମହାତ୍ମା, ଅତିମହାଶୟ
ସୁମହାତ୍ୟୟ—ବିଂ. ଅତି ବିନାଶଯୁକ୍ତ (ଯୁଦ୍ଧ), ଅତିଶୟ ନାଶବିଶିଷ୍ଟ ।
ସୁମହାବଳ—ପୁଂ, ବିଂ. ଅତି ବଳବାନ୍, ଅତିଶୟ ବଳଶାଳୀ ।
ସୁମହାବାହୁ—ବିଂ.(ବ.ବ୍ରୀ) ସୁଦୀର୍ଘବାହୁ, ଆଜାନୁଲମ୍ବିତ ଭୁଜ ।
ସୁମହାମନାଃ—ବିଂ, ମନସ୍ୱୀ, ପ୍ରଶସ୍ତ ମନୋଯୁକ୍ତ ।
ସୁମହାରଥ—ପୁଂ.ବି. ଅତିଶୟ ବୀରପୁରୁଷ
ସୁମହାସତ୍ତ୍ୱ—ବିଂ(ବ.ବ୍ରୀ)ଅତି ବଳଶାଳୀ
ସୁମା—ଗ୍ରା. ବି. କୁସୁମ, ପୁଷ୍ପ ।
ସୁମାଗଧା—ସ୍ତ୍ରୀ.ବି. ଅନାଥପିଣ୍ଡିକର କନ୍ୟା
ସୁମାଗଧୀ—ସ୍ତ୍ରୀ.ବି.ମଗଧ ପ୍ରବାହିତ ନଦୀଭେଦ ।
ସୁମାତ୍ରା—ଗ୍ରା. ବି. ପୂର୍ବ ଭାରତୀୟ ବା ମାଳୟ ଦ୍ୱୀପପୁଞ୍ଜ ମଧ୍ୟରୁ ଏକ ଦ୍ୱୀପ ।
ସୁମାନସ—ପୁଂ.ବିଂ (ସୁ+ମାନସ)ବ.ବ୍ରୀ. ହୃଷ୍ଟହୃଦୟ, (ସ୍ତ୍ରୀ) ସୁମାନସା ।

ସୁମାନିକା—ବି. ପ୍ରତ୍ୟେକ ଚରଣରେ ସାତ ଅକ୍ଷରଥିବା ବୃତ୍ତବିଶେଷ ।
ସୁମାନୀ—ପୁଂ. ବିଂ. ଅତି ଅଭିମାନୀ, (ସ୍ତ୍ରୀ) ସୁମାନିନୀ ।
ସୁମାୟ—ପୁଂ, ବିଂ. ( ସୁ + ମାୟା + ଅ ) ଅତ୍ୟନ୍ତ ବୁଦ୍ଧିମାନ୍, ମାୟାଯୁକ୍ତ, (ସ୍ତ୍ରୀ) ସୁମାୟା, (ବି-ବ.ବ୍ରୀ)ଅସୁର,ବିଦ୍ୟାଧର
ସୁମାର(ରି)—ଯା. ବି. ସଂଖ୍ୟା, ଗଣନା ।
ସୁମାଳିନୀ—ସ୍ତ୍ରୀ.ବି.ପ୍ରତି ଚରଣରେ ଛଅଟି ବର୍ଣ୍ଣଥିବା ବୃତ୍ତବିଶେଷ,ଗନ୍ଧର୍ବୀବିଶେଷ
ସୁମାଳୀ—ବି. ସୁକେଶ ନାମକ ଧର୍ମଶୀଳ ରାକ୍ଷସଙ୍କ ପୁତ୍ର, ରାବଣଙ୍କ ମାତାମହ, ବାନରବିଶେଷ ।
ସୁମାଲି—ଯା. ବି. ସୋମାଲି, ଆଫ୍ରିକାର ଉତ୍ତରପୂର୍ବ ଉପକୂଳରେ ଓ ଏଡ଼େନ୍‌ରେ ବାସ କରୁଥିବା କୃଷ୍ଣକାୟ ଆରବ ଜାତିବିଶେଷ ।
ସୁମାଲିଲାଣ୍ଡ—ଯା.ବି. ଆଫ୍ରିକାର ଉତ୍ତର ପୂର୍ବ ଉପକୂଳରେ ସୋମାଲି ଜାତିଙ୍କ ଅଧ୍ୟୁଷିତ ଅଞ୍ଚଳ ।
ସୁମାଲ୍ୟ—ପୁଂ. ବି. ନନ୍ଦଙ୍କର ପୁତ୍ର ରାଜଭେଦ,(ବି)ଉତ୍ତମ ମାଲ୍ୟ, (ବିଂ)ଉତ୍ତମ ମାଲାଧାରୀ ।
ସୁମିତ୍ର—ବି. ଉତ୍ତମ ବା ଉପକାରୀ ମିତ୍ର, ଇକ୍ଷ୍ୱାକୁ ବଂଶୀୟ ଅନ୍ତିମ ରାଜା ସୁରଥଙ୍କ ପୁତ୍ର, ବର୍ତ୍ତମାନ ଯୁଗର ବଂଶ ଅର୍ହତ ସୁବ୍ରତଙ୍କ ପିତା,ଶ୍ରୀକୃଷ୍ଣଙ୍କର ଏକପୁତ୍ର, ଅଭିମନ୍ୟୁଙ୍କ ସାରଥି, ବୃଷ୍ଣିଙ୍କର ଏକ ପୁତ୍ର,ମେବାର ରାଣା ବଂଶର ସ୍ଥାପୟିତା, (ପୁଂ. ବିଂ) ଉତ୍ତମ ମିତ୍ରବିଶିଷ୍ଟ ।
ସୁମିତ୍ରଭୂ—ବି.ସଗର ନାମକ ଜୈନମାନଙ୍କ ଜନୈକ ଚକ୍ରବର୍ତ୍ତୀ, ବର୍ତ୍ତମାନ ଅବସର୍ପିଣୀର ବଂଶ ଅର୍ହତ ।
ସୁମିତ୍ରା—ସ୍ତ୍ରୀ. ବି. ( ସୁ + ମିତ୍ର + ଆ ) ଦଶରଥଙ୍କ ତୃତୀୟା ରାଣୀ, ଶତ୍ରୁଘ୍ନ ଓ ଲକ୍ଷ୍ମଣଙ୍କ ମାତା, ମାର୍କଣ୍ଡେୟଙ୍କ ମାତା ।
ସୁମିତ୍ର୍ୟ—ପୁଂ.ବିଂ. (ସୁମିତ୍ର + ଯ)ଉତ୍ତମ ମିତ୍ରବିଶିଷ୍ଟ, (ସ୍ତ୍ରୀ) ସୁମିତ୍ର୍ୟା ।
ସୁମିଷ୍ଟ—ବିଂ. ଅତିଶୟ ମିଷ୍ଟ, ଅତି ମଧୁର, ଖୁବ୍ ମିଠା ।

ସୁମୁଖ—ବି.(କ.ଧା)ସୁନ୍ଦର ମୁଖ,(ବ,ବ୍ରୀ) ରତ୍ନଶାସ୍ତ୍ର ବର୍ଣ୍ଣିତ ନଖକ୍ଷତବିଶେଷ, ଗରୁଡ଼ଙ୍କର ଏକପୁତ୍ର, ଗଣେଶ, ଶାକଭେଦ, ନାଗଭେଦ, ପଣ୍ଡିତ,ହିତାର୍ଥକ, ବନବର୍ବରିକା, ଶିବ,ଦ୍ରୋଣଙ୍କର ଏକପୁତ୍ର, କିନ୍ନରମାନଙ୍କ ରାଜା, ଜଳପକ୍ଷିବିଶେଷ, ବଜ୍ରଦର୍ଷିତ, ରାଇସୋରିଷ, (ବିଂ) ଯହିଁର ମୁଖ ବା ବହିର୍ଗମନ ପଥ ବା ସାମନା ସୁନ୍ଦର, ( ପୁଂ-ବ.ବ୍ରୀ ) ସୁନ୍ଦର ମୁଖବିଶିଷ୍ଟ, ସୁନ୍ଦର, ପ୍ରସନ୍ନ, ଅନୁକୂଳ, କୃପାଳୁ, (ସ୍ତ୍ରୀ)ସୁମୁଖା(ଖୀ) ।
ସୁମୁଖସୂ—ସ୍ତ୍ରୀ. ବି. ଗରୁଡ଼, ଉତ୍ତମାନନ୍ଦ ପିତା ।
ସୁମୁଖା—ସ୍ତ୍ରୀ.ବିଂ. (ସୁ ମୁଖ+ଆ)ସୁନ୍ଦର ଆନନଯୁକ୍ତା, ଚନ୍ଦ୍ରମୁଖୀ, ( ସ୍ତ୍ରୀ.ବି ) ସୁନ୍ଦରୀନାରୀ, ଦର୍ପଣ ।
ସୁମୁଖୀ—ସ୍ତ୍ରୀ. ବି. ସୁମୁଖା, ସୁନ୍ଦରୀ ସ୍ତ୍ରୀ, ଏକାଦଶାକ୍ଷର ଛନ୍ଦୋବିଶେଷ, ସଙ୍ଗୀତରେ ଏକପ୍ରକାର ମୂର୍ଚ୍ଛନା, ଅପ୍ସରାବିଶେଷ, ନୀଳ ଅପରାଜିତା, ଶଙ୍ଖପୁଷ୍ପୀ, (ସ୍ତ୍ରୀ.ବିଂ-ବ.ବ୍ରୀ) ସୁନ୍ଦର ମୁଖଯୁକ୍ତା ।
ସୁମୁରା—ପ୍ରା. ( ଉତ୍ତର ବାଲେଶ୍ୱର ) ହାଣ୍ଡିଫୁଟା ଦେଖ ।
ସୁମୁରିକରିବା—ପ୍ରା.(ଉତ୍ତର ବାଲେଶ୍ୱର) କ୍ରି. ସନ୍ତୋଳିବା ।
ସୁମୃତି—ଗ୍ରା. ବି. (ସଂ-ସ୍ମୃତି) ସ୍ମୃତିଶାସ୍ତ୍ର, ହିନ୍ଦୁଶାସ୍ତ୍ର, ଧର୍ମଶାସ୍ତ୍ର, ସଂସ୍କୃତ ଶ୍ଳୋକ, (ସଂ-ସୁମୂର୍ତ୍ତି) ସୁନ୍ଦର ରୂପ, ( ବିଂ ) ସୁମୂର୍ତ୍ତି, ସୁନ୍ଦର ରୂପବିଶିଷ୍ଟ ।
ସୁମୁଷ୍ଟି—ବି. ବିଷମୁଷ୍ଟି କ୍ଷୁପ, ମହାନିମ୍ବ, (ବିଂ) ଦୃଢ଼ମୁଷ୍ଟି, ଉତ୍ତମ ମୁଷ୍ଟିଯୁକ୍ତ ।
ସୁମୁହାଁ—ଗ୍ରା. ସ୍ତ୍ରୀ. ବିଂ.ସୁମୁଖୀ, ସୁନ୍ଦରୀ, (ବି) ସୁନ୍ଦରୀ ସ୍ତ୍ରୀ ।
ସୁମୁହୂର୍ତ୍ତ—ବି. ଶୁଭମୁହୂର୍ତ୍ତ, ଉତ୍ତମ ସମୟ ।
ସୁମୂର୍ତ୍ତି—ବି. ( କ.ଧା ) ସୁନ୍ଦର ମୂର୍ତ୍ତି, ଶିବଙ୍କର ଏକଗଣ,(ବିଂ-ବ.ବ୍ରୀ)ସୁନ୍ଦର ମୂର୍ତ୍ତିଯୁକ୍ତ,(ଗ୍ରା.ବି—ସଂ-ସ୍ମୃତି) ସ୍ମୃତିଶାସ୍ତ୍ର ।

ସୁମୂଳ—ବି. (ବ.ଗ୍ରୀ)ଶ୍ରେଷ୍ଠଶିଗ୍ରୁ,ଉତ୍ତମ ମୂଳ, (ବିଂ-ବ.ଗ୍ରୀ) ସୁନ୍ଦର ମୂଳଯୁକ୍ତ, (ସ୍ତ୍ରୀ) ସୁମୂଳା ।

ସୁମୂଳକ—ବି. ଗର୍ଜ୍ଜର, ଗାଜର ।

ସୁମୂଳା—ସ୍ତ୍ରୀ. ବିଂ, (ସୁମୂଳ+ଆ) ସୁମୂଳର ସ୍ତ୍ରୀଲିଙ୍ଗ, (ବି) ଶାଳପର୍ଣ୍ଣୀ, ପୃଶ୍ନିପର୍ଣ୍ଣୀ ।

ସୁମୃଗ—କ୍ଲୀ. ବି. ମୃଗୟାର୍ଥ ଭୂମି ।

ସୁମୃଡୀକ—ବିଂ. ଅତିଶୟ ସୁଖୀ, ଅତି ସୁଖଯୁକ୍ତ ।

ସୁମୃଖ—ବିଂ. ଉତ୍ତମ ମୁଖଯୁକ୍ତ, (ବି) ଉତ୍ତମ ମୁଖ ।

ସୁମୃଷ୍ଟ—ବିଂ. (ସୁ+ମୃଜ୍+ତ)ସୁପରି- [ଷ୍କୃତ ।

ସୁମେଖଳ—ବିଂ(ବ.ଗ୍ରୀ)ସୁନ୍ଦର ମେଖଳାଯୁକ୍ତ, (ସ୍ତ୍ରୀ) ସୁମେଖଳା,(ବି)ମୁଞ୍ଜତୃଣ ।

ସୁମେଚକ—ବି. ଶ୍ୟାମ ମେଘ, କଳାବାଦଲ ।

ସୁମେଧାଃ—ବିଂ. (ବ.ଗ୍ରୀ-ସୁ+ମେଧସ୍) ସୁନ୍ଦର ମେଧା ବା ବୁଦ୍ଧିବିଶିଷ୍ଟ,ବୁଦ୍ଧିମାନ୍, (ସ୍ତ୍ରୀ) ସୁମେଧସୀ, (ବି) ଚାକ୍ଷୁଷ ମନ୍ୱନ୍ତରର ଏକଋଷି,ପଞ୍ଚମ ମନ୍ୱନ୍ତରର ବିଶିଷ୍ଟ ଦେବତା, ପିତୃଲୋକଙ୍କ ଗଣବିଶେଷ, ଜ୍ୟୋତିଷ୍ମତୀ ଲତା ।

ସୁମେଧ—ବିଂ. ସୁପବିତ୍ର, ଅତି ପବିତ୍ର, (ସ୍ତ୍ରୀ) ସୁମେଧ୍ୟା ।

ସୁମେରୁ—ବି.ପୁରାଣୋକ୍ତ ଭୂମଧ୍ୟସ୍ଥ ପର୍ବତବିଶେଷ,ମେରୁଗିରି,(ଭୂଗୋଳ)ପୃଥିବୀର ଉତ୍ତର କେନ୍ଦ୍ର, ଉତ୍ତରମେରୁ, ଉତ୍ତରଧ୍ରୁବ,ଜପମାଳର ମଧ୍ୟସ୍ଥଗୁଟିକା,ମେରୁ, ଶିବ, ବିଦ୍ୟାଧରବିଶେଷ, (ବିଂ) ଅତି ସୁନ୍ଦର, ସର୍ବଶ୍ରେଷ୍ଠ ।

ସୁମେରୁଜା—ସ୍ତ୍ରୀ.ବି. (ସୁମେରୁ+ଜନ୍+ଅ+ଆ) ସୁମେରୁ ପର୍ବତରୁ ନିଃସୃତା ନଦୀ ।

ସୁମେରୁବୃତ୍ତ—ଗ୍ରା. ବି. (ଭୂଗୋଳ)ପୃଥିବୀର ଉତ୍ତର କେନ୍ଦ୍ରଠାରୁ ଅକ୍ଷାଂଶ ୨୩½ ଡିଗ୍ରୀ ଦୂରରେ ଗୋଲକର ପୃଷ୍ଠଭାଗରେ ବେଢ଼ିଥିବା କଳ୍ପିତ ବୃତ୍ତ ।

ସୁମେରୁଶୃଙ୍ଗ—ବି. ପୁରାଣୋକ୍ତ ସୁମେରୁ ପର୍ବତର ତିନିଗୋଟି ଶୃଙ୍ଗ (ଯହିଁରେ ଦେବତାମାନେ ବିହାର କରନ୍ତି) ।

ସୁମେରୁମହାସାଗର—ଗ୍ରା. ବି. ଉତ୍ତର ମେରୁକୁ ବେଢ଼ିଥିବା ମହାସାଗର,ଉତ୍ତର ମେରୁ ମହାସାଗର ।

ସୁମ୍ପିଲଣ—ବି. କର୍ପୂର ।

ସୁମ୍ବ—ପ୍ରା. (ଗଡ଼ଜାତ)ବି. କାଶତୃଣ ।

ସୁହ୍ମ—ବି. ଦେଶବିଶେଷ, ସୁହ୍ମ ଦେଶବାସୀ ବ୍ୟକ୍ତି ।

ସୁଯଜ୍ଞ—ପୁଂ,ବିଂ.(ବ.ଗ୍ରୀ) ଉତ୍ତମତା ବା ଦକ୍ଷତା ସହକାରେ ଯଜ୍ଞ ସମ୍ପାଦନକାରୀ, (ବି-ବ.ଗ୍ରୀ) ଆକୂତି ଗର୍ଭଜାତ ରୁଚି ପ୍ରଜାପତିଙ୍କ ପୁତ୍ର, ବଶିଷ୍ଠଙ୍କ ଏକ ପୁତ୍ର, ଧ୍ରୁବଙ୍କର ଏକପୁତ୍ର, ଉଶୀନରର ଏକ ରାଜା, (କ.ଧା) ଉତ୍ତମ ଯଜ୍ଞ ।

ସୁଯତ—ବିଂ.(ସୁ+ଯମ୍+ତ)ଅତିଶୟ ସଂଯତ, ଜିତେନ୍ଦ୍ରିୟ ।

ସୁଯତାତ୍ମବାନ୍—ପୁଂ. ବି. ଋଷି ।

ସୁଯନ୍ତ୍ରିତ—ବିଂ. ସୁନିୟମିତ, ଉତ୍ତମ ବାଦ୍ୟ ଧ୍ୱନିଯୁକ୍ତ ।

ସୁଯମ—ବିଂ.ଶୋଭନ ନିୟମନ, ଲୋକନିୟ ସଂଜ୍ଞାସ୍ତ,(ପୁଂ.ବି)ଦେବଗଣବିଶେଷ

ସୁଯଷ୍ଟବ୍ୟ—ପୁଂ. ବି. ରୈବତ ମନୁର ପୁତ୍ର, (ବିଂ) ଉତ୍ତମ ରୂପେ ଯାଗ କରିବାର ଯୋଗ୍ୟ ।

ସୁଯାତ—ପୁଂ.ବି. ନହୁଷର ପୁତ୍ରଭେଦ

ସୁଯୁଷା-ସ୍ତ୍ରୀ.ବି.ସ୍ନେହ(ଗ୍ରା.ସ୍ତ୍ରୀ.)ବିଂ ସୋହାଗିନୀ, ପ୍ରିୟା, ଆଦରଣୀ ।

ସୁଯାନ—ବିଂ. (ସୁ+ଯାନା+ଅ)ବ.ଗ୍ରୀ; ମନୋହର ଗନ୍ଧବିଶିଷ୍ଟ, (ସ୍ତ୍ରୀ)ସୁଯାନା, (ବି) ସୂର୍ଯ୍ୟ ।

ସୁଯାନା—ସ୍ତ୍ରୀ. ବିଂ. (ବ.ଗ୍ରୀ) ମନୋହର ଗନ୍ଧଯୁକ୍ତା, (ସ୍ତ୍ରୀ.ବି-କ.ଧା) ଶୁଭଯାତ୍ରା, ମଙ୍ଗଳଜନକ ଗମନ ।

ସୁଯାମ—ବିଂ. ଅତିଶୟ ବିସ୍ତୃତ, (ପୁଂ.ବି) ଦେବପୁତ୍ରଭେଦ ।

ସୁଯାମୁନ—ବି.(ସୁ+ଯମୁନା+ଅ)ବିଷ୍ଣୁ, ବିଷ୍ଣୁ ସହସ୍ର ନାମୋକ୍ତ ବିଷ୍ଣୁଙ୍କର ନାମ, ବତ୍ସରାଜ, ରାଜପ୍ରାସାଦ, ଅଦ୍ରିବିଶେଷ, ମେଘବିଶେଷ ।

ସୁଯଶସ୍ତରା—ସ୍ତ୍ରୀ. ବିଂ. ଅତିଶୟ ସୁନ୍ଦର ମୁଖଯୁକ୍ତା ବା ଅତିଶୟ ଶୋଭନ ପୁତ୍ରବିଶିଷ୍ଟା ।

ସୁଯୁକ୍ତ—ବିଂ. (ସୁ+ଯୁଜ୍+ତ) ଉତ୍ତମ ରୂପେ ଯୁକ୍ତ, ଉତ୍ତମ ରୂପେ ମିଳିତ ।

ସୁଯୁକ୍ତି—ବି. (ସୁ+ଯୁଜ୍+ତି) କ.ଧା; ଉତ୍ତମଯୁକ୍ତି, ଉତ୍ତମ ମନ୍ତ୍ରଣା, ସୁପରାମର୍ଶ

ସୁଯୁଦ୍ଧ--ବି.ଧର୍ମଯୁଦ୍ଧ,ନ୍ୟାୟସମ୍ମତ ଯୁଦ୍ଧ ।

ସୁୟୋ—ଗ୍ରା. ସ୍ତ୍ରୀ. ବିଂ. ସୌଭାଗ୍ୟବତୀ, ଯଥା—ସୁୟୋରାଣୀ ।

ସୁଯୋଗ—ବି. (କ.ଧା) ଉତ୍ତମ ଯୋଗ, ଶୁଭକର ଯୋଗ, ଉତ୍ତମ ଅବସର, ଉପଯୁକ୍ତ ଅବସର, ସୌଭାଗ୍ୟ,ମଙ୍ଗଳକର, ସାହଚର୍ଯ୍ୟ, ଶୁଭକର ମିଳନ ବା ସଙ୍ଗ ।

ସୁଯୋଗକ୍ରମେ—ଗ୍ରା.କ୍ରି.ବିଂ.ସୌଭାଗ୍ୟ କ୍ରମେ, ସୁଯୋଗକ୍ରମେ ।

ସୁଯୋଗ୍ୟ—ପୁଂ. ବିଂ.ଅତିଶୟ ଉପଯୁକ୍ତ, (ସ୍ତ୍ରୀ) ସୁଯୋଗ୍ୟା, (ବି)ସୁଯୋଗ୍ୟତା ।

ସୁଯୋଧନ—ପୁଂ. ବି. (ସୁ+ଯୁଧ୍+ଣିଚ୍+ଅନ) ଧୃତରାଷ୍ଟ୍ରଙ୍କର ଜ୍ୟେଷ୍ଠପୁତ୍ର, କୁରୁରାଜ, ଦୁର୍ଯ୍ୟୋଧନ ।

ସୁର୍—(ଧାତୁ) ଦୀପ୍ତିପାଇବା, ଶୋଭାପାଇବା, ଐଶ୍ୱର୍ଯ୍ୟଯୁକ୍ତ ହେବା,ଆଧିପତ୍ୟ କରିବା ।

ସୁର୍—ଗ୍ରା. ବି. (ଫା-ସ୍ୱର) ଶବ୍ଦ, ଧ୍ୱନି, ସଙ୍ଗୀତର ରାଗ ବା ତାନ, ବଙ୍ଗୀୟ ବଂଶୋପାଧିବିଶେଷ, (ଯା.ବ) ହୋସ୍, ଚେତନା, ଆରମ୍ଭ ।

ସୁରୁକ(ଖି)—ଯା. ବି. ସୁରୁକ ଦେଖ ।

ସୁର୍କିବା—ପ୍ରା. (ସମ୍ବ.କ୍ରି) ଶୋଷିବା, ସୋଡ଼କିବା ।

ସୁର୍କୁଟିବା—ଗ୍ରା. କ୍ରି. ଶୁଙ୍ଘିବା ।

ସୁର୍ଖୁର୍—ଗ୍ରା.ବିଂ ଓ କ୍ରି,ବିଂ. ସରୁଖୁର୍ ଦେଖ ।

ସୁର୍ଖୁରଆ—ଗ୍ରା.ବିଂ. ଶାନ୍ତଶିଷ୍ଟ, (ସ୍ତ୍ରୀ) ସୁର୍ଖୁରେଇ ।

ସୁର୍ଗୁନା—ପ୍ରା. (ସମ୍ବଲ) ବି. ଶାଗୁଣା ।

ସୁର୍ଗୁଜା—ଗ୍ରା. ବି. ମଧ୍ୟପ୍ରଦେଶର

ବର୍ତ୍ତମାନ ଇଷ୍ଟର୍ଣ୍ଣଷ୍ଟେଟସ୍ ଏଜେନ୍‌ସିର ଅନ୍ତର୍ଗତ ଗୋଟିଏ ଦେଶୀୟ ରାଜ୍ୟ, ସର୍‌ଗୁଜା, ଜାଶପୁର,ଉଦୟପୁର ଆଦି ଅଞ୍ଚଳରେ ପ୍ରଚଳିତ ଛତିଶଗଡ଼ୀ ଭାଷାର ଉପଭାଷା ।

ସୁର୍‌କୁନା—ପ୍ରା. (ସମ୍ବଲ) ବି. ସର୍ଜନ ।

ସୁର୍‌ତା—ପ୍ରା. (ଜାଶପୁର) ବି. ଚେତା ।

ସୁର୍‌ଦାସ—ଗ୍ରା. ବି. (ଫ-ସୁର୍+ଦାସ) ସୁରଦାସ ଦେଖ ।

ସୁର୍‌ମା—ଯା. ବି. ସୁରୁମା ଦେଖ ।

ସୁର୍‌ସିବା—ପ୍ରା. (ପାଟଣା) କ୍ରି. ଶୀଘ୍ର ବା ତ୍ରସ୍ତଭାବରେ ଖାଇବା ।

ସୁର୍(ରୁ)ସାର୍—ଗ୍ରା.ବି. (ଫ-ସ୍ୱରସହିତ ନିରର୍ଥକ ସହଚର) ସୋରଶବ୍ଦ,ସାଡ଼ାଶବ୍ଦ, କୌଣସି ପ୍ରକାରର ଧ୍ୱନି, (ବି°) ସର୍ବତ୍ର ପ୍ରକାଶିତ, ପ୍ରଚାରିତ, ପ୍ରଘଟ-ହୋଇଥିବା ।

ସୁର୍(ରୁ)ସାରକରିବା—ଗ୍ରା. କ୍ରି. ଶବ୍ଦ-କରିବା,କୌଣସି ଗୁପ୍ତବିଷୟକୁ ସାଧାରଣରେ ପ୍ରକାଶ କରିବା ।

ସୁର—ପୁଂ.ବି. (ସୁ+କ.ର କିମ୍ବା ସୁର୍ +କ.ଅ) ଦେବ, ସୂର୍ଯ୍ୟ, ସୁଧୀ ଜନ, ପଣ୍ଡିତ,ମୁନି, ଋଷି,(ସ୍ତ୍ରୀ) ସୁରା,(ଗ୍ରା.ବି-ଫ-ସୁର୍)କଣ୍ଠସ୍ୱର.ରବ,ଧ୍ୱନି,ସଙ୍ଗୀତର ସ୍ୱର,ସୁରଲୋକ, ଦେବଲୋକ,(ଯା.ବି) ସୁର୍ ଦେଖ, ( ପ୍ରା. ଛତିଶଗଡ଼. ବି ) ଘୁଷୁରି ।

ସୁରକ—ବି.ସୁରବର୍ଣ୍ଣ,ସୁରପ୍ରକାର,ସୁରା ।

ସୁରକରୀ—ବି.(୬ତତ୍ପୁ) ଦେବତାମାନଙ୍କ ହସ୍ତୀ, ଐରାବତ ଗଜ ।

ସୁରକସ୍ୱାନ୍ତଦର୍ପାପହା—ସ୍ତ୍ରୀ. ବି. ଗଙ୍ଗା ।

ସୁରକାମିନୀ—ସ୍ତ୍ରୀ. ବି. ଅପ୍ସରାଭେଦ ।

ସୁରକାରୁ—ବି. (କ.ଧା) ବିଶ୍ୱକର୍ମା ।

ସୁରକାର୍ମୁକ—ବି. ଇନ୍ଦ୍ରଧନୁ ।

ସୁରକାଷ୍ଠ—ବି. ଦେବକାଷ୍ଠ,ଦେବଦାରୁ ।

ସୁରକୁଳ—ବି. ଦେବତାମାନଙ୍କର ବଂଶ ।

ସୁରକୁତ୍ସ—ପୁଂ. ବି.ବିଶ୍ୱାମିତ୍ରଙ୍କର ପୁତ୍ର-ବିଶେଷ ।    [ ସ୍ଥିତ ।

ସୁରକୃତ—ବି°. ଦେବଗଣ କର୍ତ୍ତୃକ ଅନୁ-

ସୁରକୃତା—ସ୍ତ୍ରୀ. ବି. ଗୁଡ଼ୂଚୀ ।

ସୁରକେତୁ—ପୁଂ. ବି. ଇନ୍ଦ୍ରଧ୍ୱଜ,ଶକ୍ରଧ୍ୱଜ

ସୁରକ୍ତ—ବି°. (ସୁ+ରକ୍ତ) ଉତ୍ତମରୂପ ରଞ୍ଜିତ, ସୁନ୍ଦର ରକ୍ତବର୍ଣ୍ଣବିଶିଷ୍ଟ,ଅତିଶୟ ଅନୁରକ୍ତ, ସୁମଧୁର, ସୁଶ୍ରାବ୍ୟ, ଶ୍ରବଣସୁଖକର, ଯାହାର କଣ୍ଠଧ୍ୱନି ମଧୁର, (ସ୍ତ୍ରୀ) ସୁରକ୍ତା ।

ସୁରକ୍ତକ—ବି. କୋଷାମ୍ର, କ୍ଷୁଦ୍ରାମ୍ରଗଛ, ସ୍ୱର୍ଣ୍ଣଗୈରିକ ।

ସୁରକ୍ଷ—ବି. ଋଷିଭେଦ, ପର୍ବତଭେଦ, ଉତ୍ତମରୂପେରକ୍ଷଣ,(ବି°)ଉତ୍ତମରକ୍ଷାଯୁକ୍ତ

ସୁରକ୍ଷିତ—ବି°.(ସୁ+ରକ୍ଷ୍+ତ)ଉତ୍ତମ-ରୂପେ ରକ୍ଷିତ, ଯାହାବିଶେଷ ସାବଧାନ ସହକାରେ ରକ୍ଷା କରାହୋଇଅଛି ।

ସୁରଖଣ୍ଡନିକା(ମଣ୍ଡଳିକା)—ବି.(ସୁର+ଖଣ୍ଡ+ଅନ+ଅକ+ଆ)ବୀଣାଭେଦ

ସୁରଗଜ—ବି. ଦେବହସ୍ତୀ.ଐରାବତହସ୍ତୀ

ସୁରଗଣ୍ଡ—ବି. ବ୍ରଣରୋଗବିଶେଷ ।

ସୁରଗନ୍ଧ—ବି. ଦୈବଗନ୍ଧ, ଅଦୃଷ୍ଟ ।

ସୁରଗାୟକ—ବି. ଦେବତାମାନଙ୍କର ଗାୟକ, ଗନ୍ଧର୍ବ ।

ସୁରଗିରି—ପୁଂ. ବି. ( ୬ତତ୍ପୁ ) ସୁମେରୁ ପର୍ବତ ।

ସୁରଗୁରୁ—ବି(୬ତତ୍ପୁ)ବୃହସ୍ପତି,ଦେବତାମାନଙ୍କ ଗୁରୁ, ବୃହସ୍ପତି ଗ୍ରହ ।

ସୁରଗୁରୁଦିବସ—ବି. (୬ତତ୍ପୁ) ବୃହସ୍ପତି-ବାର, ଗୁରୁବାର ।

ସୁରଗୃହ—ବି. ଦେବଗୃହ, ମନ୍ଦିର ।

ସୁରଗ୍ରାମଣୀ—ପୁଂ.ବି. (ସୁର+ଗ୍ରାମଣୀ) ଇନ୍ଦ୍ର, ଦେବରାଜ ।

ସୁରଙ୍ଗ—ବି. (ସୁ+ରଙ୍ଗ) ନାଗରଙ୍ଗ, ନାରଙ୍ଗ, ବବର, ସୁନ୍ଦରଙ୍ଗ, ଲମ୍ବଗର୍ତ୍ତ, ଭୂମି ତଳେ ତଳେ ଖୋଳାଯିବା ପଥଶ୍ରେଣୀ, ହିଙ୍ଗୁଳ, ପତଙ୍ଗ, ବକମକାଠ, ସୁନ୍ଦର ରଙ୍ଗ,ସିନ୍ଧିଗାତ, ପିତ୍ତଳ, (ବି°)ସୁରକ୍ତ, ସୁନ୍ଦର ରକ୍ତବର୍ଣ୍ଣବିଶିଷ୍ଟ, ସୁରଞ୍ଜିତ, (ଗ୍ରା.ବି°) ଅତ୍ୟନ୍ତ ଛଟକଯୁକ୍ତ ।

ସୁରଙ୍ଗଦା—ବି.(ସୁରଙ୍ଗ+ଦା+କ.ଅ) ପିତଙ୍ଗ, ବକମକାଠ ।

ସୁରଙ୍ଗଧାତୁ—ବି. ଗୈରିକ,ଗେରୁମାଟି ।

ସୁରଙ୍ଗଯୁକ୍—ବି.(ସୁରଙ୍ଗ+ଯୁଜ୍+କ. କ୍ୱିପ୍) ଯେଉଁ ବ୍ୟକ୍ତି ସିନ୍ଧିକରି ଚୋରି କରେ, ସିନ୍ଧିଆଚୋର ।

ସୁରଙ୍ଗରେ—ଗ୍ରା.କ୍ରି.ବି°.କୌତୁକରେ ।

ସୁରଙ୍ଗା—ବି.(ସୁରଙ୍ଗ+ଆ) ସିନ୍ଧିଗାତ, କୈବର୍ତ୍ତିକା, କେଉଟିଆ ମୁଥା ।

ସୁରଙ୍ଗି—ଗ୍ରା.ବି.ଗଞ୍ଜାମଜିଲ୍ଲାର ଜମିଦାରୀ ବିଶେଷ, (ବି°) ସୁରକ୍ତ ଦେଖ ।

ସୁରଙ୍ଗିକା—ସ୍ତ୍ରୀ. ବି. (ସୁରଙ୍ଗ+କ+ଆ) ମୂର୍ବା, ଉପୋଦକା, ପୁଇଶାକ, ଶ୍ୱେତ କାକମାଚୀ ।

ସୁରଙ୍ଗୀ—ବି. (ସୁରଙ୍ଗ+ଇନ୍) କାକନାସ, କଇଞ୍ଚକାକୁଡ଼ି ପରି ଫଳଯୁକ୍ତ ଲତା, ରକ୍ତଶୋଭାଞ୍ଜନ, ଜଳସଜନା, ପୁନ୍ନାଗ, କାକମାଚୀ ।

ସୁରଚାପ—ବି. ଇନ୍ଦ୍ରଧନୁ ।

ସୁରଜ୍—ପ୍ରା. (ଭିତରଭାଷା) ସୂର୍ଯ୍ୟ ।

ସୁରଜଃଫଳ—ବି. ବି.ଗ୍ରୀ; (ସୁରଜସ୍+ଫଳ) ପନସ ବୃକ୍ଷ ।

ସୁରଜନୀ—ବି. (ସୁ+ରଜନୀ) ସୁନ୍ଦର ରାତ୍ରି, ରାତ୍ରି ।

ସୁରଜା—ସ୍ତ୍ରୀ. ବି. ଅପ୍ସରାଭେଦ ।

ସୁରଜ୍ୟେଷ୍ଠ—ବି. (୬ତତ୍ପୁ) ବ୍ରହ୍ମା ।

ସୁରଞ୍ଜନ—ବି. (ସୁ+ରଞ୍ଜନ) ଗୁବାକ ବୃକ୍ଷ, ଗୁଆଗଛ ।

ସୁରଞ୍ଜିତ—ବି°.(ସୁ+ରଞ୍ଜିତ)ସୁନ୍ଦର ରଙ୍ଗରେ ରଞ୍ଜିତ ।

ସୁରଟ—ଗ୍ରା. ବି. (ସୁରଟ ବା ସୌରାଷ୍ଟ୍ର ଦେଶର ନାମରୁ) ରାଗିଣୀବିଶେଷ ।

ସୁରତ(ଥ୍)—ଯା. ବି. ରୀତି, ପ୍ରଣାଳୀ, ଦେହର ଚେହେରା,ମୁଖଭଙ୍ଗୀ,ଅବସ୍ଥା, ଆକୃତି,(ବି°) ମିଷ୍ଟ, ମଧୁର, ସୁନ୍ଦର, ମନୋଜ୍ଞ, କାରଣ, (ଗ୍ରା. କ୍ରି. ବି°) ଭକ୍ତିଭାବରେ, କାରଣରୁ ।

ସୁରତ୍ନହବମ—ଯା. ବି°. ଯେଉଁ ବ୍ୟକ୍ତି ଦେଖିବାକୁ ସୁନ୍ଦର କିନ୍ତୁ ଅନ୍ତରରେ କ୍ରୂର, ବିଷକୁମ୍ଭପୟୋମୁଖ ସଦୃଶ କପଟୀ ।

ସୁରତ୍ହାଲ୍ ଯା.ବି.ମୃତବ୍ୟକ୍ତିର ଦେହର ବା ଶବର ଅବସ୍ଥା, ସରଜମିନ୍ ତଦନ୍ତ ।

ସୁରତ—ବି.(ସୁ+ରମ୍+ଭା.ତ)ନିଧୁବନ, ମୈଥୁନ, ସ୍ତ୍ରୀପୁରୁଷ ସଙ୍ଗମ, (ପୁଂ.ବିଂ-ସୁ+ରମ୍+କ.ତ)ଅତ୍ୟନ୍ତ ଅନୁରକ୍ତ, ଦୟାଳୁ, ଅତି କୃପାଳୁ, (ଗ୍ରା.ବିଂ-ସଂ ସ୍ଫୂର୍ତ୍ତି) ବଳିଷ୍ଠତା, ବଳବନ୍ତପଣିଆ, (ଯା.ବି) ସୁରତ୍ ଦେଖ,(ସ୍ତ୍ରୀ) ସୁରତା ।

ସୁରତଗୋପନା—ସ୍ତ୍ରୀ.ବି ଓ ବିଂ.ସୁରତ-ଗୋପନା ଦେଖ ।

ସୁରତତାଳୀ—ସ୍ତ୍ରୀ. ବି. ଦୂତୀ, ଶିରସ୍ରକ୍, ଶିରଃସ୍ଥିତ ମାଳା ।

ସୁରତପ୍ରସଙ୍ଗ—ବି. ରତିକ୍ରିୟା, ରତି-ସମ୍ବନ୍ଧେ ଗଳ୍ପ ।

ସୁରତ(ତି)ବନ୍ଧନା—ସ୍ତ୍ରୀ. ବି. (କ.ଷ୍ଠ) (ସୁରତ+ବନ୍ଧନ+ଆ) ଗ୍ରନ୍ଥପ୍ରକାର ମଧ୍ୟା ନାୟିକା ମଧ୍ୟରୁ ଏକପ୍ରକାର ନାୟିକା, ଯେଉଁ ମଧ୍ୟା ନାୟିକାଙ୍କ ରତିକ୍ରିୟା ବନ୍ଧନ ଅଛି, (ସ୍ତ୍ରୀ.ବିଂ) ବନ୍ଧନ-ରତିକ୍ରୀଡ଼ାକାରିଣୀ (ସ୍ତ୍ରୀ) ।

ସୁରତମଞ୍ଜରୀ—ସ୍ତ୍ରୀ.ବି. ବିଦ୍ୟାଧରମତଙ୍ଗ ଦେବଙ୍କ କନ୍ୟା ।

ସୁରତରଙ୍ଗିଣୀ—ବି.(୬ତତ୍) ଗଙ୍ଗାନଦୀ, ସୁରତ କ୍ରୀଡ଼ାର ସଙ୍ଗିନୀ ।

ସୁରତରୁ—ବି (ସୁର+ତରୁ)ଦେବତରୁ, ସ୍ୱର୍ଗର କଳ୍ପତରୁ, ପୁନ୍ନାଗ,(ଦ୍ରଃ-କଳ୍ପ-ତରୁ, ମନ୍ଦାର, ପାରିଜାତ, ସନ୍ତାନ ଓ ହରିଚନ୍ଦନ, ଏମାନେ ନନ୍ଦନକାନନର ତରୁ ଅଟନ୍ତି) ।

ସୁରତଶ୍ରମ—ବି. (କ.ଧା) ରମଣଜନିତ ପରିଶ୍ରମ ।

ସୁରତସୁଖ—ବି(କ.ଧା)ରତିଜନିତ ଆନନ୍ଦ

ସୁରତସ୍ୱେଦ—ବି. (କ.ଧା) ରତିଶ୍ରମ-ଜନିତ ଘର୍ମ ।

ସୁରତା—ସ୍ତ୍ରୀ.ବିଂ. (ସୁରତ+ଆ)ଅତ-ନ୍ତ ଅନୁରକ୍ତା, (ବି-ସୁର+ଭା.ତା) ଦେବତ୍ୱ, (ସମୂହାର୍ଥେ—ତା) ସୁର ବା ଦେବସମୂହ, ଅପ୍ସରାବିଶେଷ ।

ସୁରତା(ରୁ)ଙ୍ଗ—ବି. ସୁରପୁନ୍ନାଗ ବୃକ୍ଷ ।

ସୁରତାନ୍ତ—ବି. (ସୁରତ+ଅନ୍ତ)୬ତତ୍; ରତିର ଶେଷ ।

ସୁରତି—ବି. (ସୁ+ରମ୍+ଭା.ତି) ରତି, ସୁରତ, ମୈଥୁନ,(ଯା.ବି) ସୁର୍ତ୍ତି ଦେଖ, (ଗ୍ରା.ବି) ସୁରୁତି ଦେଖ ।

ସୁରତିଗୋପନା—ସ୍ତ୍ରୀ. ବି. ବିଂ. ଯେଉଁ ନାୟିକା ନାୟକ ସଙ୍ଗେ କୃତରତି-କ୍ରୀଡ଼ା ବିଷୟ ଆପଣା ସଖୀମାନଙ୍କଠାରୁ ଲଗ୍ନଏ ।

ସୁରତୋଷକ—ବିଂ. ଦେବତାମାନଙ୍କର ପ୍ରୀତିକାରକ, (ସ୍ତ୍ରୀ) ସୁରତୋଷିକା, (ବି) କୌସ୍ତୁଭମଣି ।

ସୁରତ୍ନ—ବି. ଉତ୍ତମରତ୍ନ, ସ୍ୱର୍ଣ୍ଣ, ମାଣିକ୍ୟ, (ବିଂ) ସର୍ବଶ୍ରେଷ୍ଠ, ଉତ୍ତମ ରତ୍ନଯୁକ୍ତ ।

ସୁରଥ—ବି. ( ସୁ ଅଛି ରଥ ଯାହାର ) ଚୈତ୍ରବଂଶ ସମ୍ଭୂତ ଚନ୍ଦ୍ରବଂଶୀୟ ରାଜା, ଦ୍ରୁପଦଙ୍କ ଏକପୁତ୍ର, ଜୟଦ୍ରଥଙ୍କ ଏକ-ପୁତ୍ର, ଜନମେଜୟଙ୍କ ଏକପୁତ୍ର,ଚମ୍ପକ-ପୁରୀର ରାଜା ହଂସଧ୍ୱଜଙ୍କ ପୁତ୍ର, (ବିଂ) ସୁନ୍ଦର ରଥବିଶିଷ୍ଟ ।

ସୁରଥାକାର—ବି. ବର୍ଷଭେଦ ।

ସୁରଦାରୁ—ବି(୬ତତ୍)ଦେବଦାରୁ ବୃକ୍ଷ ।

ସୁରଦାସ—ଗ୍ରା. ବି. ଅନ୍ଧ, କଣା, ପ୍ରସିଦ୍ଧ ସ୍ୱର୍ଗୀୟ ହିନ୍ଦି କବି, ଶ୍ରୀମଦ୍ବୋଭଙ୍କର ଗୁରୁଦତ୍ତ ନାମ । [ ସ୍ୱର୍ଗଙ୍ଗା ।

ସୁରଦୀର୍ଘିକା—ସ୍ତ୍ରୀ. ବି. (୬ତତ୍)ମନ୍ଦାକିନୀ,

ସୁରଦୁନ୍ଦୁଭି—ବି.ଦେବତାମାନଙ୍କ ଦୁନ୍ଦୁଭି ବାଦ୍ୟ, ତୁଳସୀ ଗୁଳ୍ମ ।

ସୁରଦ୍ୱିଟ୍—ପୁଂ.ବିଂ (ସୁର+ଦ୍ୱିଷ୍+କ. କ୍ୱିପ୍) ଦେବଦ୍ୱେଷୀ, (ପୁଂ.ବି) ଅସୁର, ଦେବାରି ।

ସୁରଦ୍ୱିପ-ବି.(୬ତତ୍)ଦେବହସ୍ତୀ, ଐରାବତ

ସୁରଦ୍ରୁ(ମ)—ବି. ସୁରତରୁ ଦେଖ, ଦେବନଳ ।

ସୁରଧନୁଃ—ବି(୬ତତ୍)ଇନ୍ଦ୍ରଧନୁ,ରାମଧନୁ

ସୁରଧାମ(ନଗର)—ବି. (୬ତତ୍)ଦେବ-ଲୋକ, ସ୍ୱର୍ଗ ।

ସୁରଧୁନୀ—ସ୍ତ୍ରୀ. ବି. (୬ତତ୍) ଗଙ୍ଗାନଦୀ, ସ୍ୱର୍ଗଙ୍ଗା ।

ସୁରଧୂପ—ବି. ରାଳ, ଝୁଣା ।

ସୁରଧ୍ୱଜ—ବି. (୬ତତ୍) ଇନ୍ଦ୍ରଧନୁ ।

ସୁରଧେନୁ—ସ୍ତ୍ରୀ.ବି.(୬ତତ୍)କାମଧେନୁ ।

ସୁରନଦୀ—ସ୍ତ୍ରୀ.ବି. (୬ତତ୍) ଗଙ୍ଗାନଦୀ ।

ସୁରନନ୍ଦା—ବି. ନଦୀବିଶେଷ ।

ସୁରନାଥ(ନାୟକ)—ବି.(୬ତତ୍)ଇନ୍ଦ୍ର ।

ସୁରନାଳ—ବି. ଦେବନଳ ।

ସୁରନିମ୍ନଗା—ସ୍ତ୍ରୀ.ବି. ଗଙ୍ଗା,ଦେବନଦୀ ।

ସୁରନିର୍ଗନ୍ଧ—ବି. ପତ୍ରକ, ତେଜପତ୍ର ।

ସୁରନିଳୟ—ବି.(୬ତତ୍)ସୁମେରୁ ପର୍ବତ

ସୁରପ୍—ଗ୍ରା.(ଲଗିଆ) ବି ଓ ବିଂ.ପୋଷ, ପାତୀକୃତ କରତଳରେ ସମ୍ଭାଇବା ପୃଷ୍ଠ ପରିମାଣ ।

ସୁରପତି—ବି.(୬ତତ୍)ଦେବରାଜ,ଇନ୍ଦ୍ର ।

ସୁରପତିଗୁରୁ—ବି. (୬ତତ୍) ଇନ୍ଦ୍ରଗୁରୁ, ବୃହସ୍ପତି ।

ସୁରପତିଚାପ—ବି. (୬ତତ୍) ଇନ୍ଦ୍ରଧନୁ ।

ସୁରପତିତ୍ୱ—ବି. ଇନ୍ଦ୍ରତ୍ୱ,ଇନ୍ଦ୍ରର କାର୍ଯ୍ୟ

ସୁରପର୍ଣ୍ଣୀ—ବି.ସୁଗନ୍ଧ ପତ୍ରଶାକବିଶେଷ, ଦେବପର୍ଣ୍ଣୀ, ଖୀରପର୍ଣ୍ଣୀ ।

ସୁରପର୍ଣ୍ଣ—ବି. ସୁରପର୍ଣ୍ଣୀ ଦେଖ ।

ସୁରପର୍ଣ୍ଣିକ—ବି. ସୁରପୁନ୍ନାଗ,କୁରଅନା ।

ସୁରପର୍ଣ୍ଣିକା—ବି. ପୁନ୍ନାଗ ବୃକ୍ଷ ।

ସୁରପର୍ଣ୍ଣୀ—ସ୍ତ୍ରୀ. ବି. ପଲାସୀ ।

ସୁରପର୍ବତ—ବି. ସୁମେରୁ ପର୍ବତ ।

ସୁରପା—ଗ୍ରା. (ଲଗିଆ,ବି)ସୋଲ୍ଲକା ।

ସୁରପାଦପ—ବି ସୁରତରୁ ଦେଖ ।

ସୁରପୁନ୍ନାଗ—ବି. କୁରଅନା ଗଛ ।

ସୁରପୁର(ପୁରୀ)—ବି.ଅମରାବତୀ,ଇନ୍ଦ୍ରପୁରୀ

ସୁରପୁରୋଧା—ବି. (୬ତତ୍) ବୃହସ୍ପତି, ସୁରଗୁରୁ ।

ସୁରପ୍ରତିଷ୍ଠା—ବି. ଦେବପ୍ରତିଷ୍ଠା ।

ସୁରପ୍ରଗାର-ବି.ତପସର ପୁତ୍ର ଅଗ୍ନି ଭେଦ

ସୁରପ୍ରିୟ—ପୁଂ. ବିଂ. ଦେବତାମାନଙ୍କ ପ୍ରିୟ, ଯେ ଦେବତାମାନଙ୍କୁ ସ୍ନେହ କରେ, (ସ୍ତ୍ରୀ) ସୁରପ୍ରିୟା, (ବି)ଅଗସ୍ତ୍ୟ ବୃକ୍ଷ, କଦମ୍ବନ, ଇନ୍ଦ୍ର, ବୃହସ୍ପତି ।

ସୁରପ୍ରିୟା—ସ୍ତ୍ରୀ.ବିଂ.ସୁରପ୍ରିୟର ସ୍ତ୍ରୀଲିଙ୍ଗ (ବି)ଜାତୀପୁଷ୍ପ,ଚମ୍ପାକଦଳୀ, ଅପ୍ସରା ।

ସୁରବଧୂ(ବନିତା,ଲଳନା)ବି. ଦେବ ସ୍ତ୍ରୀ, ଅପ୍ସରା ।
ସୁରବର—ବି. (୬ତତ୍) ଇନ୍ଦ୍ର ।
ସୁରବର୍ତ୍ମ—ବି. ( ୬ତତ୍ ) ଦେବପଥ, ଆକାଶ ।
ସୁରବଲ୍ଲଭା—ବି. ଶ୍ୱେତ ଦୂର୍ବା ।
ସୁରବଲ୍ଲୀ—ବି. ତୁଳସୀ ।
ସୁରବସ୍ତ୍ର—ବି. ବଲ୍କଲ ନିର୍ମିତ ବସ୍ତ୍ର ।
ସୁରବାଣ—ବି. ଗଙ୍ଗା ।
ସୁରବାହିନୀ—ବି. ଗଙ୍ଗା ।
ସୁରବୀଥୀ—ବି. ନକ୍ଷତ୍ରମାର୍ଗ ।
ସୁରବାଳା—ବି. ଦେବବାଳା, ଦେବସ୍ତ୍ରୀ, ଅପସରା ।
ସୁରବୀର—ଗ୍ରା. ବିଂ. (ସ୍ୱ-ଶୂର=ବୀର) ବଳୁଆ, ସାହସୀ, ଯେ ନିଜର ବଳ ଦେଖାଏ, (ବି,୬ତତ୍) ଇନ୍ଦ୍ର ।
ସୁରବୃକ୍ଷ—ବି. କଳ୍ପତରୁ ।
ସୁରବେଳା—ସ୍ତ୍ରୀ. ବି. ନଦୀଭେଦ ।
ସୁରବେଶ୍ମ—ବି. (ସୁର ବେଶ୍ମନ୍)ସ୍ୱର୍ଗ ।
ସୁରବୈରୀ(ରିପୁ)—ବି. (୬ତତ୍)ଅସୁର ।
ସୁରଭବନ—ବି. ଦେବଭବନ, ଦେବମନ୍ଦିର, ସୁରପୁରୀ, ଅମରାବତୀ ।
ସୁରଭାବ—ବି. ଦେବଭାବ, ଦେବଭାବ ବ୍ୟଞ୍ଜକ ।
ସୁରଭି—ବି.(ସୁ+ରଭ୍+ଇ)ସୌରଭ, ସୁଗନ୍ଧ, ଚମ୍ପକ, ବସନ୍ତ ଋତୁ, ଜାତୀଫଳବୃକ୍ଷ,ଶମୀବୃକ୍ଷ,କଦମ୍ବବୃକ୍ଷ,ଗୁଗ୍ଗୁଳ, ଗନ୍ଧତୃଣ, ବକୁଳବୃକ୍ଷ, ରାଳ, ଝୁଣା, ଚୈତ୍ରମାସ, ଧୀର, ପଣ୍ଡିତ, ଗନ୍ଧଫଳ, ବର୍ବରଚନ୍ଦନ, ସୁରା,ମୁରାମାଂସୀ, ଲଣ୍ଡାବଗୁଲି, ଶଲ୍ଲକୀ, ବନମଲ୍ଲିକା, ତୁଳସୀପାଚୀ, ଲତାବିଶେଷ,ରୁଦ୍ର ଜଟା, ସ୍ୱର୍ଣ୍ଣ, ଗନ୍ଧାଶ୍ମ, ଟଙ୍କଣ, ପୃଥିବୀ, ଧରଣୀ, ଗୋରୁ, ଗୋମାତା, ଗୋରୁମାନଙ୍କର ଆଦ୍ୟମାତା, କାର୍ତ୍ତିକେୟଙ୍କ ମାତୃକାବିଶେଷ,ସୁରା,ମଦ୍ୟ,ସୁଗନ୍ଧ ଦ୍ରବ୍ୟ,କ୍ଷୀର, ଏଲବାଳୁକ,ମହାଭକ୍ଷ ବର୍ଗ, ଯଜ୍ଞଯୂପର ସ୍ଥାପନା ସମୟରେ ପ୍ରଜ୍ୱଳିତ, ଅଗ୍ନି, (ବିଂ) ସୁଗନ୍ଧବିଶିଷ୍ଟ, ପ୍ରିୟ, ବିଦ୍ୱାନ୍, ପଣ୍ଡିତ, ମନୋହର, ବିଖ୍ୟାତ,ଧାର୍ମିକ, ଉତ୍ତମ, ଶ୍ରେଷ୍ଠ, ଗୁଣବାନ୍ ।
ସୁରଭିକନ୍ଦର—ବି. ପର୍ବତଭେଦ ।
ସୁରଭିକା—ବି. ( ସୁରଭି+କ+ଆ ) ସ୍ୱର୍ଣ୍ଣକଦଳୀ, ଚମ୍ପାକଦଳୀ ।
ସୁରଭିକାନ୍ତା—ବି. ବାସନ୍ତୀ ପୁଷ୍ପ ବୃକ୍ଷ, ନିଆଳି ।
ସୁରଭିଗନ୍ଧ—ବିଂ.(ବ.ବ୍ରୀ) ସୁବାସବିଶିଷ୍ଟ, (ବି) ତେଜପତ୍ର ।
ସୁରଭିଗନ୍ଧା—ସ୍ତ୍ରୀ. ବି. ଜାତୀପୁଷ୍ପ ବୃକ୍ଷ, ଜାଇଫୁଲ । [ ଗନ୍ଧଯୁକ୍ତ ।
ସୁରଭିଗନ୍ଧୀ—ବିଂ. (ବ.ବ୍ରୀ) ମନୋହର
ସୁରଭିଚୂର୍ଣ୍ଣ—ବି. ସୁଗନ୍ଧି ଚୂର୍ଣ୍ଣ ।
ସୁରଭିଚ୍ଛଦ—ବି. (ବ.ବ୍ରୀ)କପିତ୍ଥବୃକ୍ଷ ।
ସୁରଭିତ—ବିଂ. (ସୁରଭି + ଇତ, ଅଥବା ସୁ+ରଭ୍+ମି.ତ ) ସୌରଭଯୁକ୍ତ, ସୁଗନ୍ଧବିଶିଷ୍ଟ, ପ୍ରସିଦ୍ଧ, ଖ୍ୟାତ, (ସ୍ତ୍ରୀ) ସୁରଭିତା ।
ସୁରଭିତନୟ(ପୁତ୍ର)—ବି.ଅଣ୍ଡିରା ଗୋରୁ, ଷଣ୍ଢ, (ସ୍ତ୍ରୀ) ସୁରଭିତନୟା ।
ସୁରଭିତା—ସ୍ତ୍ରୀ.ବିଂ.(ସୁରଭି + ଇତ + ଆ) ସୁଗନ୍ଧତା, ଖ୍ୟାତା, (ସୁରଭି+ ଭା.ତା) ସୌରଭ, ସୁଗନ୍ଧ ।
ସୁରଭିତ୍ୱକ୍—ବି. (ସୁରଭି + ତ୍ୱଚ୍) ବୃହଦେଲା, ବଡ଼ ଅଳାଇଚ ।
ସୁରଭିତ୍ରିଫଳା—ବି. ସୁଗନ୍ଧିତ୍ରିଫଳା ।
ସୁରଭିଦତ୍ତା—ସ୍ତ୍ରୀ. ବି. ଅପ୍ସରାଭେଦ ।
ସୁରଭିଦାରୁ(କ)—ବି.(ବ.ବ୍ରୀ)ସରଳବୃକ୍ଷ, ଦେବଦାରୁ ।
ସୁରଭିନିମ୍ବୁ—ବି.ସୁଗନ୍ଧି ଲେମ୍ବୁବିଶେଷ ।
ସୁରଭିପତ୍ରା—ବି. (ବ.ବ୍ରୀ) ଜମ୍ବୁବୃକ୍ଷ, ମହାଜମ୍ବୁ, ରାଜଜମ୍ବୁ, ଗୋଲାପଜାମୁ ।
ସୁରଭିପୁତ୍ର—ବି. ସୁରଭି ତନୟ,ଅଣ୍ଡିରା ଗୋରୁ ।
ସୁରଭିବର—ଗ୍ରା.ବି.ବୃଷଭ,ଜାଇଫଳବୃକ୍ଷ
ସୁରଭିବଲ୍କଳ—ବି. (ବ.ବ୍ରୀ) ଗୁଡ଼ତ୍ୱକ୍, ଡାଲଚିନି ।
ସୁରଭିବାଣ—ବି. (ବ.ବ୍ରୀ) କାମଦେବ ।
ସୁରଭିମଞ୍ଜରୀ—ବି.(ବ.ବ୍ରୀ)ଶ୍ୱେତତୁଳସୀ
ସୁରଭିମାସ—ବି. ଚୈତ୍ରମାସ ।
ସୁରଭିମୁଖ—ବି.(୬ତତ୍)ବସନ୍ତ ଋତୁର ଆରମ୍ଭ ।
ସୁରଭିସମୟ—ବି. ବସନ୍ତକାଳ ।
ସୁରଭିସ୍ରବା—ବି. ଶଲ୍ଲକୀ, ଲୋବାନ୍ ।
ସୁରଭୀ—ବି. (ସୁରଭି+ଈ) ସୁଗନ୍ଧ, ସୌରଭ, ଗାଈ,କପିକଚ୍ଛୁ,ବନତୁଳସୀ, ରୁଦ୍ରଜଟା, ଏଲବାଳୁକ, ମାଚିକାଶାକ, ସୁଗନ୍ଧିତ ଶାଳିଧାନ୍ୟ, ବାସମତୀ ଧାନ, ମୁରାମାଂସୀ, ସୁରା, ଚନ୍ଦନ, ଶଲ୍ଲକୀ, ଲୋବାନ୍, ଗୋମାତା, ଗୋ ଜାତିର ଆଦ୍ୟମାତା ।
ସୁରଭୀଗୋତ୍ର—ବି. ସୁରଭିତନୟ,ଗାଈ
ସୁରଭୀପଟ୍ଟନ—ବି. ନଗର ଭେଦ ।
ସୁରଭୀମୂତ୍ର—ବି.ଗୋମୂତ୍ର, ସୁରଭୀଜଳ ।
ସୁରଭୀରସା—ବି. ଶଲ୍ଲକୀ ବୃକ୍ଷ ।
ସୁରଭୂମି—ସ୍ତ୍ରୀ. ବି. (୬ତତ୍)ଦେବଲୋକ, ସ୍ୱର୍ଗ, ପ୍ଲକ୍ଷାଦି ଦ୍ୱୀପ । [ ତରୁ ।
ସୁରଭୂରୁହ—ବି. ଦେବଦାରୁ ବୃକ୍ଷ କଳ୍ପ-
ସୁରଭୂଷଣ—ବି. ଦେବପ୍ରତିମାଙ୍କ ପାଇଁ ୪ହାତ ଲମ୍ବ ଓ ୧୦୦୮ ଦାନାଥିବା ମୋତିହାର ।
ସୁରଭୋଗ—ବି. (୬ତତ୍) ଅମୃତ ।
ସୁରଭୋଗ୍ୟ—ବିଂ. ଦେବଭୋଗ୍ୟ,ଦେବତାଙ୍କ ଭୋଗପାଇଁ ଉପଯୁକ୍ତ ।
ସୁରମ—ବିଂ. (ସୁ+ରମ୍+କ.ଅ)ଅତି ରମଣୀୟ, (ସ୍ତ୍ରୀ) ସୁରମା ।
ସୁରମଣୀୟ—ବିଂ. (ସୁ+ରମ୍+ଅନୀୟ) ଅତି ରମଣୀୟ, ଅତି ମନୋଜ୍ଞ, (ସ୍ତ୍ରୀ) ସୁରମଣୀୟା ।
ସୁରମଣ୍ୟ—ବିଂ. ଅତି ସୁନ୍ଦର ।
ସୁରମଚୁ—ଗ୍ରା. ବି. ଆଖିରେ ସୁରମା ଲଗାଇବା ପାଇଁ ବ୍ୟବହୃତ କାଠି ।
ସୁରମଣ୍ଡଳ—ବି. (୬ତତ୍) ଦେବତାମାନଙ୍କର ମଣ୍ଡଳ, ବୀଣାଭେଦ ।
ସୁରମନ୍ତ୍ରୀ—ବି. (୬ତତ୍) ବୃହସ୍ପତି ।
ସୁରମନ୍ଦିର—ବି. (୬ତତ୍) ଦେବମନ୍ଦିର ।
ସୁରମା—ସ୍ତ୍ରୀ. ବିଂ. ( ସୁ+ରମ୍+କ.ଅ +ଆ)ଅତିରମଣୀୟା,ସାତିଶୟ ମନୋ-

ହସ୍ତ, (ଯା.ବ) ରସାଞ୍ଜନ, ସୁରୁମା ।
ସୁରମାନୀ—ପୁଂ. ବିଂ (ସୁର+ମନ୍+ କ.ଇନ୍) ଯେ ଆପଣାକୁ ଦେବତା ଜ୍ଞାନକରେ, (ସ୍ତ୍ରୀ) ସୁରମାନିନୀ ।
ସୁରମୃତ୍ତିକା—ବି. ସୌରାଷ୍ଟ୍ରୀ, ସୌରାଷ୍ଟ୍ର-ମୃତ୍ତିକା, ଗୋପୀଚନ୍ଦନ ।
ସୁରମେଦା—ବି. ମହାମେଦା ।
ସୁରମ୍ୟ—ବିଂ.(ସୁ+ରମ୍ୟ)ଅତିରମଣୀୟ, (ସ୍ତ୍ରୀ) ସୁରମ୍ୟା ।
ସୁରଯାନ—ବି. ଦେବତାମାନଙ୍କର ବ୍ୟବହୃତ ରଥ ।
ସୁରେଯା(ୟା)ନ—ଯା. ବି. ପଠାଣମାନଙ୍କ ଉପାଧିବିଶେଷ ।
ସୁରଯୁବତୀ(ଯୋଷିତ୍) ସ୍ତ୍ରୀ.ବି.ଅପ୍ସରା ।
ସୁରେଇନ୍ଦ୍ରରାଏ(ୟ) ଗ୍ରା.ବି.(ସଂ ସୁରରାଜ)
ସୁରରାଜ୍(ଜ)—ବି. (୬ତତ୍)ଦେବରାଜ, ଇନ୍ଦ୍ର ।
ସୁରରାଜଗୁରୁ—ବି. ଇନ୍ଦ୍ରଗୁରୁ,ବୃହସ୍ପତି ।
ସୁରରାଜବୃକ୍ଷ—ବି. ପାରିଜାତ ବୃକ୍ଷ ।
ସୁରରିପୁ—ବି. (୬ତତ୍) ଅସୁର ।
ସୁରର୍ଷଭ—ବି. ୭ତତ୍;(ସୁର+ଋଷଭ) ଇନ୍ଦ୍ର, ମହାଦେବ ।
ସୁରର୍ଷି—ବି. (ସୁର+ଋଷି) ଦେବର୍ଷି, ନାରଦାଦି ।
ସୁରଲକ୍ଷ୍ମୀ—ବି. (୬ତତ୍) ସୁରଶ୍ରୀ ।
ସୁରଲତା—ବି. ମହାଜ୍ୟୋତିଷ୍ମତୀ ।
ସୁରଲା—ବି. (ସୁର+ଲା+ମଂ.ଅ+ ଆ) ଗଙ୍ଗାନଦୀ, ନଦୀବିଶେଷ ।
ସୁରଲାସିକା—ବି. (୬ତତ୍) ବଂଶୀଧ୍ୱନି, (ବ.ଗ୍ରା) ବଂଶୀ ।
ସୁରଲୋକ-ବି.(କ.ଧା)ଦେବଲୋକ,ସ୍ୱର୍ଗ ।
ସୁରଲୋକସୁନ୍ଦରୀ—ସ୍ତ୍ରୀ. ବି. ଅପ୍ସରା ।
ସୁରଶତ୍ରୁ—ବି. (୬ତତ୍) ଅସୁର ।
ସୁରଶତ୍ରୁହା—ପୁଂ.ବି.ଅସୁରନାଶକ ଶିବ ।
ସୁରଶୟନୀ—ବି.ଆଷାଢ଼ ଶୁକ୍ଳ ଏକାଦଶୀ, ବିଷ୍ଣୁଙ୍କ ଶୟନ ଏକାଦଶୀ ।
ସୁରଶାଖୀ—ବି. ଦେବତରୁ, କଳ୍ପବୃକ୍ଷ ।
ସୁରଶିଖ—ଗ୍ରା. ବି. ଇନ୍ଦ୍ର ।
ସୁରଶିଳ୍ପୀ—ବି. ବିଶ୍ୱକର୍ମା ।
ସୁରଶୈବଳିନୀ—ବି. ସୁରଧୁନୀ, ଗଙ୍ଗା ।
ସୁରଶ୍ରୀ—ବି. ( ୬ତତ୍ ) ସୁରଲକ୍ଷ୍ମୀ, ଦେବତାଙ୍କ ସୌଭାଗ୍ୟ ।
ସୁରଶ୍ରେଷ୍ଠ—ବି. (୭ତତ୍) ସୁରଜ୍ୟେଷ୍ଠ. ବ୍ରହ୍ମା, ବିଷ୍ଣୁ, ଶିବ, ଗଣେଶ, ଇନ୍ଦ୍ର ।
ସୁରଶ୍ରେଷ୍ଠା—ସ୍ତ୍ରୀ.ବି. (ସୁରଶ୍ରେଷ୍ଠ + ଆ) ବ୍ରାହ୍ମୀ ।
ସୁରଷ୍—ପ୍ରା. (ପାଠଣା) ବି. ସୋରିଷ ।
ସୁରସ—ବିଂ. (ବ ବ୍ରୀ) ସୁସ୍ୱାଦ, ମଧୁର, ମିଷ୍ଟ, ( କାବ୍ୟ ) ରସଯୁକ୍ତ, ରସମୟ, ସୁନ୍ଦର, ମନୋହର,(ସ୍ତ୍ରୀ)ସୁରସା,(ବି) ବୋଲ, ଗନ୍ଧବୋଲ, ଗୁଡ଼ତ୍ୱକ୍,ଡାଲଚିନି, ଗନ୍ଧତୃଣ, ବଲ୍କଲ, ନାଲ୍କର ଗୁଳ, ତୁଳସୀ, ଶ୍ୱେତପୁଷ୍ପ ତୁଳସୀବିଶେଷ, ସିନ୍ଧୁବାର, ବେଗୁନିଆ, ମୋଚରସ, ଶିମିଳିଅଠା, ତେଜପତ୍ର, ପୀତଶାଳ, (ଗ୍ରା.ବି) ଅମୃତ, ପ୍ରୀତି, ଶୃଙ୍ଗାରରସ ।
ସୁରସଖ—ପୁଂ. ବି. ଦେବତାମାନଙ୍କର ସଖା, ଇନ୍ଦ୍ର ।
ସୁରସଦନ(ସଦ୍ମ)—ବି. (୬ତତ୍) ଦେବଗୃହ, ସ୍ୱର୍ଗ ।
ସୁରସମିଧ୍—ବି.ଦେବଦାରୁ,ଦେବକାଷ୍ଠ ।
ସୁରସମ୍ଭବା—ବି. ଆଦିତ୍ୟଭକ୍ତା ।
ସୁରସରଣୀ—ବି. ( ୬ତତ୍ ) ଆକାଶ, ଗଗନ ।
ସୁରସରିତ୍—ବି. (୬ତତ୍) ଗଙ୍ଗା ।
ସୁରସର୍ଷପକ—ବି. ଦେବସର୍ଷପ ।
ସୁରସା—ସ୍ତ୍ରୀ. ବିଂ. (ବ.ବ୍ରୀ) ଉତ୍ତମ ରସଯୁକ୍ତା, ଉତ୍ତମ ସ୍ୱାଦବିଶିଷ୍ଟ,ମଧୁରା, (ବି) ପଞ୍ଚାଙ୍ଗୁଳ,ଶ୍ୱେତପୁଷ୍ପଯୁକ୍ତ ତୁଳସୀ,ତୁଳସୀ, ମେଦନୀ, ପୃଥ୍ୱୀ, ଯୂଇଫୁଲ ଓ ଗୁଳ୍ମ, ନାଗମାତା, ମିଶ୍ରେୟା, ପାନମହୁରୀ, ଚନ୍ଦ୍ରିକା, ଚନ୍ଦ୍ରଶୂର, ହାଲିମ୍, ବ୍ରାହ୍ମୀ, ଛନ୍ଦୋବିଶେଷ, ମହାଶତାବରୀ, ଦୁର୍ଗା, ଭାଗବତ ପଞ୍ଚମସ୍କନ୍ଧୋକ୍ତ ନଦୀଭେଦ, ଲଣ୍ଡାବଗୁଲି, ରାସ୍ନା, ଅପ୍ସରୋବିଶେଷ, ଶ୍ୱେତନିର୍ଗୁଣ୍ଡି, ଶଲ୍ଲକୀ,ନାଗୁଣ୍ଡୀ,ବୃହତୀ, କଣ୍ଟକାରୀ,ଅଙ୍କୁଶର ନିମ୍ନରେ ଥିବା ମୁନିଆ ଅଂଶ, ରାକ୍ଷସୀବିଶେଷ, (ଗ୍ରା.-ସ୍ତ୍ରୀ. ବିଂ) ସୁରସିକା ।
ସୁରସାର—କ୍ଳୀ. ବି. ସିନ୍ଧୁବାରମଞ୍ଜରୀ, ନିର୍ଗୁଣ୍ଡିମଞ୍ଜରୀ । [ତୁଳସୀ ।
ସୁରସାଗ୍ରଜ—ବି. ସୁରସାଗ୍ରଣୀ, ଶ୍ୱେତ
ସୁରସାଦିବର୍ଗ—ବି. ସୁରସାଆଦି ଔଷଧଗଣବିଶେଷ ।
ସୁରସାଳ—ବିଂ. ଉତ୍ତମ ରସଯୁକ୍ତ, ଅତି ମଧୁର ରସପୂର୍ଣ୍ଣ ।
ସୁରସାଷ୍ଟ—ବି.(ସୁରସ+ଅଷ୍ଟ) ବୈଦ୍ୟଶାସ୍ତ୍ରୋକ୍ତ ବୃକ୍ଷମାନଙ୍କ ଗଣବିଶେଷ, (ଯଥା:-ସିନ୍ଧୁବାରଦ୍ୱୟ,ତୁଳସୀ,ବ୍ରାହ୍ମୀ, ବୃହତୀଦ୍ୱୟ, କଣ୍ଟକାରିକା, ପୁନର୍ନବା ।
ସୁରସିକ—ପୁଂ. ବିଂ. ଉତ୍ତମ ରସଜ୍ଞ, ଉତ୍ତମ ରସଗ୍ରାହୀ, ମଧୁରାଳାପୀ, ଅତ୍ୟନ୍ତ ରସିକ, (ସ୍ତ୍ରୀ) ସୁରସିକା ।
ସୁରସିଂ(ହ)—ଗ୍ରା.ବି.(ସଂ-ଶୂର ଓ ସିଂହ) ଗଡ଼ଜାତର କରଣ ଓ ପାଇକମାନଙ୍କର ରାଜଦତ୍ତ ଉପାଧିବିଶେଷ ।
ସୁରସିନ୍ଧୁ—ବି. ସୁରଧୁନୀ, ଗଙ୍ଗା
ସୁରସୀ—ଗ୍ରା.ବିଂ.ସୁରସିକ,ଉତ୍ତମ ରସଜ୍ଞ
ସୁରସୁନ୍ଦର—ପୁଂ. ବିଂ. ଦେବତାଙ୍କ ପରି ଅତି ସୁନ୍ଦର, ଅତି ମନୋଜ୍ଞ ।
ସୁରସୁନ୍ଦରୀ-ସ୍ତ୍ରୀ.ବି.(୬ତତ୍)ଦେବକନ୍ୟା, ଦେବୀ, ସ୍ୱର୍ବେଶ୍ୟା, ଅପ୍ସରା, ଦୁର୍ଗା, (ତନ୍ତ୍ର) ଯୋଗିନୀବିଶେଷ, ତ୍ରିପୁରସୁନ୍ଦରୀ, ବିଦ୍ୟୁତ୍, ଏକପ୍ରକାର ମାଛ ।
ସୁରସେନା—ପୁଂ.ବି. ଦେବତାମାନଙ୍କର ସେନା ।
ସୁରସ୍କନ୍ଦ—ପୁଂ. ବି. ଅସୁର ।
ସୁରସ୍ତ୍ରୀ—ସ୍ତ୍ରୀ. ବି. ଅପ୍ସରା ।
ସୁରସ୍ତ୍ରୀଶ—ପୁଂ. ବି. ଇନ୍ଦ୍ର ।
ସୁରସ୍ଥାନ—ବି. ସ୍ୱର୍ଗ, ଦେବଲୋକ ।
ସୁରା—ବି. ( ସୁର+କ.ଅ+ଆ, କିମ୍ବା ସୁ+କ.ର+ଆ) ମଦିରା,ମଦ୍ୟ,ମଦ୍ୟପାନ ପାତ୍ର, ସର୍ପିଣୀ, ଜଳ, ସର୍ପ, (ବିଂ- ସୁ=ଶୋଭନ+ରା=ଧନ ଯାହାର ଅଛି) ଧନବାନ୍, ଧନୀ, (ଯା.ବି)ମୁସଲମାନ ଧର୍ମଗ୍ରନ୍ଥ କୋରାନର ଶ୍ଳୋକ ବା ଶ୍ଳୋକ ।

ସୁରାଇ—ଯା.ବ. ସୋରେଇ, ଲମ୍ବ ମୁଖ-ଯୁକ୍ତ ଗୋଲ ଜଳପାତ୍ର ।
ସୁରା(ରେ)ଇବା—ଗ୍ରା.କ୍ରି. ସୁରୁରୁବା, ସୁହୁବା-ଯୁକ୍ତହେବା, ଲାଳାୟିତ ହେବା ।
ସୁରାକ(ଖ)—ଯା. ବ. ଅନୁସନ୍ଧାନ କରା-ଯାଉଥିବା କୌଣସି ବିଷୟର ସୂତ୍ର, ପତ୍ତା, ଅନୁସନ୍ଧାନ, ଇସାରା, ଆଭାସ ।
ସୁରାକସନ୍ଧାନ—ଗ୍ରା.ବ.କୌଣସି ବିଷୟର ସନ୍ଧାନ ବା ସୂତ୍ର ।
ସୁରାକତ୍ତ--ଯା.ବ.ସମ୍ପର୍କ,ଯୋଗ,ସଂଯୋଗ
ସୁରାକର—ବ. (ସୁରା+କୃ+ଅଧି.ଅ) ମଦ୍ୟୋତ୍ପତ୍ତି ସ୍ଥାନ, ଯେଉଁ ବସ୍ତୁରୁ ମଦ୍ୟ ପ୍ରସ୍ତୁତ ହୁଏ, ନାରକେଳ ବୃକ୍ଷ ।
ସୁରାକି—ଯା.ବିଂ. ଅନୁସନ୍ଧାନ ବିଷୟରେ ଦକ୍ଷ । [ ରଙ୍ଗ ।
ସୁରାଗ—ବ.(କ.ଧା) ସୁନ୍ଦରବର୍ଣ୍ଣ,ସୁନ୍ଦର
ସୁରାଗରଞ୍ଜିତ—ବିଂ. (୩ତତ୍ପୁ) ଉତ୍ତମ ବର୍ଣ୍ଣରେ ରଞ୍ଜିତ, ସୁନ୍ଦର ରଙ୍ଗରେ ଅନୁଲିପ୍ତ, (ସ୍ତ୍ରୀ) ସୁରାଗରଞ୍ଜିତା ।
ସୁରାଗାର—ବ.(ସୁର+ଆଗାର)ଦେବ-ମନ୍ଦିର,(ସୁରା+ଆଗାର)ସରବଖାନା ।
ସୁରାଗୃହ—ବ. ସୁରାଗାର ।
ସୁରାଗନ୍ଧ—ବ. (ସୁରା+ଗନ୍ଧ+ଅଧି.ଅ) ମଦ୍ୟପାତ୍ର ।
ସୁରାଙ୍ଗନା—ବ. (୬ତତ୍ପୁ) ଦେବାଙ୍ଗନା, ଅପ୍ସରା, ଦେବତାମାନଙ୍କ ସ୍ତ୍ରୀ ।
ସୁରାଚାର୍ଯ୍ୟ—ବ(ସୁର+ଆଚାର୍ଯ୍ୟ)୬ତତ୍ପୁ, ସୁରଗୁରୁ, ବୃହସ୍ପତି ।
ସୁରାଜକ—ବ. ଭୃଙ୍ଗରାଜ ।
ସୁରାଜା—ବ. (ସୁ+ରାଜନ୍)ଉତ୍ତମ ରାଜା, (ବିଂ) ସୁନ୍ଦର ନୃପତିଯୁକ୍ତ (ଦେଶାଦି), ଯେଉଁ ଦେଶର ରାଜା ଅତି ଉତ୍ତମ ।
ସୁରାଜି—ଗ୍ରା.ବ. ସ୍ୱେଚ୍ଛା, ନିଜର ସ୍ୱାଧୀନ ଇଚ୍ଛା ।
ସୁରାଜୀବ—ବ.(ସୁରା+ଆଜୀବ)ଶୌଣ୍ଡିକ, ଶୁଣ୍ଡି, ବିଷ୍ଣୁ ।
ସୁରାଜୀବୀ—ବ. (ସୁରା+ଜୀବ୍+କ.ଇନ୍) ଶୌଣ୍ଡିକ, ଶୁଣ୍ଡି ।
ସୁରାଜ୍ୟ—ବ. ଉତ୍ତମ ରାଜ୍ୟ, ଯେଉଁ ରାଜ୍ୟରେ ପ୍ରଜାଙ୍କ ହିତପ୍ରତି ଦୃଷ୍ଟି ରଖାଯାଏ ଓ ଯେଉଁଠାରେ ସୁଖ ଓ ଶାନ୍ତି ବିରାଜୁଥାଏ ।
ସୁରାଟ୍—ଗ୍ରା. ବ. (ସଂ·ସୌରାଷ୍ଟ୍ର)ଭାରତର ପଶ୍ଚିମ ଉପକୂଳସ୍ଥ ଗୋଟିଏ ଜିଲ୍ଲା ନଗର ଓ ବନ୍ଦର, ସୁରଟ ।
ସୁରାଟୀ—ଗ୍ରା.ବିଂ. ସୁରଟ ଦେଶୀୟ,(ବ) ସୁରାଟମହ୍ଲାର,ରାଗିଣୀବିଶେଷ ।
ସୁରାଦ୍ରବ୍ୟ—ବ. ଶୌଣ୍ଡିକାଳୟ, ମଦର ଦୋକାନ ।
ସୁରାଦ୍ରି—ବ. (୬ତତ୍ପୁ)ସୁମେରୁପର୍ବତ ।
ସୁରାଧ—ପୁଂ. ବ. ଅସୁରଭେଦ ।
ସୁରାଧମ—ବିଂ. ସୁରୋତ୍ତମ,ସୁରଶ୍ରେଷ୍ଠ ।
ସୁରାଧାମ—ବ. (ସୁରା+ଆଧାମ) ସୁରା ରଖାଯିବାର ଝୋଟ କଳସ, ଓର ।
ସୁରାଧୀପ(ଶ)—ବ. (୬ତତ୍ପୁ) ଇନ୍ଦ୍ର ।
ସୁରାଧ୍ୟକ୍ଷ—ବ. ୬ତତ୍ପୁ; (ସୁର+ଅଧ୍ୟକ୍ଷ) ବ୍ରହ୍ମା, ଶିବ, ଶ୍ରୀକୃଷ୍ଣ ।
ସୁରାଧ୍ୱଜ—ବ. (୬ତତ୍ପୁ) ମଦ୍ୟପାନକାରୀ ବ୍ୟକ୍ତିର କପାଳରେ ପ୍ରାଚୀନକାଳରେ ତାତଲାଲୁହାରେ ଦାଗ ଦିଆଯାଉଥିବା ମଦ୍ୟପାତ୍ରର ଚିହ୍ନ ।
ସୁରାନକ—ବ. ୬ତତ୍ପୁ;(ସୁର+ଆନକ) ଦେବତାମାନଙ୍କ ନାଗରା ।
ସୁରାନୀକ—ବ. ୬ତତ୍ପୁ, (ସୁର+ଅନୀକ) ଦେବସେନା ।
ସୁରାନ୍ତ—ପୁଂ. ବ. ରାକ୍ଷସ ।
ସୁରାପ—ପୁଂ. ବ. (ସୁରା+ପା+କ.ଅ) ସୁରାପାୟୀ ବ୍ୟକ୍ତି,ମଦୁଆ ବ୍ୟକ୍ତି,ମଦ୍ୟ-ରକ୍ଷକ, (ପୁଂ.ବିଂ) ମଦ୍ୟପାୟୀ, ମଦୁଆ, ବୁଦ୍ଧିମାନ୍, ମନସ୍ୱୀ, (ସ୍ତ୍ରୀ) ସୁରାପା ।
ସୁରାପଗା—ସ୍ତ୍ରୀ. ବ. ( ସୁର+ଆପଗା ) ସୁରଧୁନୀ, ଗଙ୍ଗା ।
ସୁରାପାତ୍ର—ବ. ମଦଭାଣ୍ଡ, ମଦ୍ୟପାତ୍ର ।
ସୁରାପାଣ(ନ)—ବ.(୬ତତ୍ପୁ) ମଦ୍ୟପାନ, ମଦ ପିଇବା, ଅବଦଂଶ, ଗୃହ୍ ।
ସୁରାପାନୋଦ୍ଦୀପ୍ତ—ପୁଂ.ବିଂ. (୬ତତ୍ପୁ ଓ ୩ତତ୍ପୁ)ସୁରାପାନ ଯୋଗୁଁ ଉତ୍ତେଜିତ, (ସ୍ତ୍ରୀ) ସୁରାପାନୋଦ୍ଦୀପ୍ତା ।
ସୁରାପାୟୀ—ପୁଂ. ବିଂ. (ସୁରା+ପା+କ.ଇନ୍) ମଦ୍ୟପାନକର୍ତ୍ତା, ମଦ ପିଇବାରେ ଅଭ୍ୟସ୍ତ, (ସ୍ତ୍ରୀ) ସୁରାପାୟିନୀ ।
ସୁରାପୀତ—ପୁଂ. ବିଂ. ବ.ବ୍ରୀ; (ସୁରା+ପା+କ.ତ) ମଦ୍ୟପାନକାରୀ, (ସ୍ତ୍ରୀ) ସୁରାପୀତା ।
ସୁରାପୀଥ—ବ. ସୁରାପାନ ।
ସୁରାବଳି—ବ. ଯଜ୍ଞରେ ସୁରା ଉତ୍ସର୍ଗ ।
ସୁରାବ୍ଧି—ବ. (କ.ଧା) ପୌରାଣିକ ସାତି ସମୁଦ୍ର ମଧ୍ୟରୁ ଷଷ୍ଠସ୍ଥ ସମୁଦ୍ର ।
ସୁରାଭାଗ—ବ.(୬ତତ୍ପୁ)ସୁରାମଣ୍ଡ,ସୁରାର ଅଗ୍ରଭାଗ ବା ସର, ସୁରାଭାଣ୍ଡ ।
ସୁରାଭାଣ୍ଡ—ବ. ( ୬ତତ୍ପୁ ) ମଦ୍ୟଭାଣ୍ଡ, ସୁରାପାତ୍ର ।
ସୁରାମଣ୍ଡ—ବ. ସୁରାର ଅଗ୍ରଭାଗ, ସୁରା ଉପରେ ପଡ଼ିଥିବା ସର ।
ସୁରାମତ୍ତ—ପୁଂ. ବିଂ. (୩ତତ୍ପୁ) ମାତାଲ, (ସ୍ତ୍ରୀ) ସୁରାମତ୍ତା ।
ସୁରାମେହ—ବ. ଏକପ୍ରକାର ମେହରୋଗ ।
ସୁରାମେହୀ—ପୁଂ. ବିଂ. (ସୁରାମେହ+ଇନ୍) ସୁରାମେହ ରୋଗବିଶିଷ୍ଟ, (ସ୍ତ୍ରୀ) ସୁରାମେହିନୀ ।
ସୁରାୟୁଧ-ବ.ଦେବତାମାନଙ୍କର ଆୟୁଧ ।
ସୁରାରାଣୀ—ସ୍ତ୍ରୀ.ବ.ଦେବମାତା,ଅଦିତି ।
ସୁରାରାତି—ବ.(ସୁର+ଅରାତି)୬ତତ୍ପୁ; ଦେବତାମାନଙ୍କର ଅରି, ଅସୁର ।
ସୁରାରି—ବ. (ସୁର+ଅରି) ୬ତତ୍ପୁ, ଦେବଶତ୍ରୁ, ଅସୁର ।
ସୁରାରିଘ୍ନ—ପୁଂ. ବ. (ସୁର+ଅରି+ହନ୍+ଅ) ଅସୁରହନ୍ତା, ବିଷ୍ଣୁ ।
ସୁରାରିହନ୍ତା—ବ. (୬ତତ୍ପୁ) ଦୈତ୍ୟାରି, ବିଷ୍ଣୁ ।
ସୁରାର୍ଦ୍ଦନ—ବ.(ସୁର+ଅର୍ଦ୍ଦନ)ଅସୁର ।
ସୁରାର୍ହ—ବ.(୬ତତ୍ପୁ) ହରିଚନ୍ଦନ,ସ୍ୱର୍ଣ୍ଣ, କୁଙ୍କୁମାଗୁରୁ, ଚନ୍ଦନ ।
ସୁରାର୍ହକ—ବ. ବର୍ବରକ, ଦେବଜୃମ୍ଭା, ତୁଳସୀ ।
ସୁରାଳ—ବ. ଶ୍ୱେତସର୍ଜରସ, ଉତ୍ତମ ଧୁନା, ଧୂନା ।

ସୁରାଳୟ—ବି. (ଷତତ୍) ସୁମେରୁପର୍ବତ, (ସୁର+ଆଳୟ) ଦେବତାମାନଙ୍କ ଗୃହ, ଦେବମନ୍ଦିର, (ସୁରା+ଆଳୟ) ମଦ୍ୟଶାଳା, ମଦଦୋକାନ ।

ସୁରାଙ୍କିକା—ବି. ସପ୍ତଲାନାମକ ବନ୍ୟଲତା

ସୁରାଟ—ବି. ଉଚ୍ଚୈଃଶ୍ରବା, ଏକପ୍ରକାର ଘୋଡ଼ା ।

ସୁରାଟକେ—ବି. ଦେବମାତା, ଅଦିତି, ପୃଥିବୀ

ସୁରାବାରି—ବି. ସୁରା ସମୁଦ୍ର ।

ସୁରାବାସ—ବି. (ଷତତ୍) ସୁର+ଆବାସ) ସୁମେରୁ ପର୍ବତ ।

ସୁରାବୃତ୍ତ—ବି. ସୂର୍ଯ୍ୟ ।

ସୁରାଶ୍ରୟ—ବି. (ଷତତ୍) ସୁମେରୁପର୍ବତ ।

ସୁରାଷ୍ଟ୍ର—ବି. (ସୁ+ରାଷ୍ଟ୍ର) ଦେଶବିଶେଷ, ସୁରାଟ ଦେଶ, ରାଜା ଦଶରଥଙ୍କ ଏକ ମନ୍ତ୍ରୀ ।

ସୁରାଷ୍ଟ୍ରଜ—ବଂ. (ସୁରାଷ୍ଟ୍ର+ଜନ୍+ଡ.ଅ) ସୁରାଷ୍ଟ୍ର ଦେଶଜାତ, (ସ୍ତ୍ରୀ) ସୁରାଷ୍ଟ୍ରଜା (ବି) ଭୁବରକା, ବନତୁଳସୀ, କୃଷ୍ଣମୁଦ୍ଗ, ଗୋପୀଚନ୍ଦନ, ସୌରାଷ୍ଟ୍ର ମୃତ୍ତିକା, କାଳକୋଳଥ, ଏକପ୍ରକାର ବିଷ ।

ସୁରାଷ୍ଟ୍ରଜା—ସ୍ତ୍ରୀ ବଂ. ସୁରାଷ୍ଟ୍ରଜର ସ୍ତ୍ରୀଲିଙ୍ଗ (ସ୍ତ୍ରୀ, ବି) ଭୁବରି, ଲଣ୍ଡବଗୁଳି, ସୌରାଷ୍ଟ୍ରୀ, ସୌରାଷ୍ଟ୍ର ମୃତ୍ତିକା ।

ସୁରାସ୍ତୋଭବା—ବି. ଫିଟିକିରି ।

ସୁରାସନ୍ଧାନ—ବି. (ଷତତ୍) ସଢ଼ାଯାଇଥିବା ଦ୍ରବ୍ୟରୁ ବକଯନ୍ତ୍ର ସାହାଯ୍ୟରେ ସୁରା ବାହାର କରିବା କ୍ରିୟା ।

ସୁରାସବ—ବି. ଗୁଡ଼ଜଳ ସିଝା ଇତ୍ୟାଦିରୁ ବକଯନ୍ତ୍ର ଦ୍ୱାରା ଚୁଆଁ ହୋଇ ବାହାର କରାଯିବା ମଦ, ଅରିଷ୍ଟ, ସୁରାପ୍ରାଣ ଉତ୍କ୍ର ମାଦକତା ଶକ୍ତିଯୁକ୍ତ ଆସବ ବା ଅରିଷ୍ଟବିଶେଷ ।

ସୁରାସମୁଦ୍ର—ବି. ସପ୍ତସମୁଦ୍ର ମଧ୍ୟରୁ ସମୁଦ୍ରବିଶେଷ ।

ସୁରାସାର—ବି. ପ୍ରାପ୍ତ ଜଳଗନ୍ଧ ଓ ଗନ୍ଧ ବର୍ଜିତଶୂନ୍ୟ ଶୋଧିତ ସୁରା, ସ୍ପିରିଟ୍ ।

ସୁରାସୁର—ବି. (ସୁର+ଅସୁର) ଦ୍ୱନ୍ଦ୍ୱ, ଦେବତା ଓ ଦାନବ ।

ସୁରାସୁରମୟ—ବଂ. ଦେବ ଦାନବମୟ, ଦେବତା ଓ ଦୈତ୍ୟ ସ୍ୱରୂପ ।

ସୁରାସେବନ—ବି. (ଷତତ୍) ସୁରାପାନ ।

ସୁରାସେବୀ—ପୁଂ. ବଂ. (ସୁରା+ସେବ୍+କ.ଇନ୍) ସୁରାପାୟୀ, (ସ୍ତ୍ରୀ) ସେବନୀ ।

ସୁରାସ୍ପଦ—ବି. ଦେବମନ୍ଦିର, ଦେବଗୃହ ।

ସୁରାହା—ଗ୍ରା. ବି. ସୁପଥ, ସୁମାର୍ଗ, ସତ୍ପଥ, ସୁବିଧା, ଶୁଭଲକ୍ଷଣ ।

ସୁରାହି—ଯା. ବି. ଲମ୍ବ ମୁଖଯୁକ୍ତ ଗୋଲାକାର ଜଳପାତ୍ର ।

ସୁରାହ୍ୱ—ବି. (ସୁର+ଆ+ହ୍ୱେ+ଡ.ଅ) ଦେବଦାରୁ, ଦାରୁହରିଦ୍ରା, ମରୁବକ, ମରୁଆ ଗୁଳ୍ମ ।

ସୁରାହ୍ୱୟ—ବି. ସୁରାହ୍ୱ ଦେଖ ।

ସୁରାହ୍ୱା—ସ୍ତ୍ରୀ. ବି. ରୁଦ୍ରଜଟା ।

ସୁରି—ବଂ. (ସୁ+ରା+ଇ) ଶୁଦ୍ଧଧୀ ।

ସୁରୀ—ବି. (ସୁରା+ଈ କିମ୍ବା ସୁର+କ.ଈ) ସୁରା ଦେଖ, (ସ୍ତ୍ରୀ, ସୁର+ଈ) ଦେବପତ୍ନୀ ।

ସୁରୁ—ଯା. ବି. ସୂତ୍ରପାତ, ଆରମ୍ଭ, ଆଦି, ପ୍ରଥମଭାଗ, (ପ୍ରା. ସମ୍ବଲ, ବଲାଙ୍ଗିର ପାଟଣା) ସାନ ଟିକି ପିଲା ।

ସୁରୁଆ—ଯା. ବି. ମାଂସର ଝୋଳ, କ୍ୱାଥ, ମାଂସର ଅଣ ।

ସୁରୁକ—ଯା. ବି. ସୁନ ।

ସୁରୁକା—ଯା. ବି. ସରୋକା, ସମ୍ପର୍କ ।

ସୁରୁକି(ଖି)—ଯା. ବି. ଚୂନ ସଙ୍ଗେ ମିଶାଯିବା ପାଇଁ ଚୂର୍ଣ୍ଣ କରାଯିବା ଇଟା, ଇଷ୍ଟକ ଚୂର୍ଣ୍ଣ ।

ସୁରୁକୁଟା—ଗ୍ରା. ପୁଂ. ବଂ. (ଫ-ଶୁଷ୍କୀକୃତ) କ୍ଷୀଣଗାତ୍ର, ଶୀର୍ଣ୍ଣ, (ସ୍ତ୍ରୀ) ସୁରୁକୁଟୀ, ସୁରୁକୁଟେଇ ।

ସୁରୁକୁଟାମୁରୁକୁଟା—ଗ୍ରା. ବଂ. (ଫ-ଶୁଷ୍କ ଓ ମର୍କଟ) ଜୀର୍ଣ୍ଣଶୀର୍ଣ୍ଣ ।

ସୁରୁକୁଟି—ଗ୍ରା. ବି. ଜଳଜ ଶାକବିଶେଷ ।

ସୁରୁକୁଟେଇବା—ଗ୍ରା. କ୍ରି. ଜୀର୍ଣ୍ଣଶୀର୍ଣ୍ଣ ହେବା ।

ସୁରୁଖୁରୁ(ରୁ)—ଗ୍ରା. ବଂ, (ଫ-ସୁଗୁରୁ) ବିଘ୍ନରହିତ, ନିର୍ଦ୍ଦ୍ୱନ୍ଦ୍ୱ, ଗୋଲମାଲରହିତ, ଶାନ୍ତ, ସୁଶୀଳ, ସୁନ୍ଦର, ସୁଦୃଶ୍ୟ, ସହଜ, (କ୍ରି. ବଂ) ସୁଗୁରୁରୂପେ, ସୁନ୍ଦରରୂପେ, ନିର୍ଦ୍ଦ୍ୱନ୍ଦ୍ୱରେ, ନିର୍ବିଘ୍ନରେ ।

ସୁରୁଖରିଆ—ଗ୍ରା. ପୁଂ. ଓ ସ୍ତ୍ରୀ. ବଂ ଶାନ୍ତ ଓ ସୁଶୀଳ, ଯେ ଦୁଷ୍ଟ ନୁହେଁ, (ସ୍ତ୍ରୀ) ସୁରୁଖୁରୀ । [ ଦେଖ ।

ସୁରୁଖୁରୁରେ—ଗ୍ରା. କ୍ରି. ବଂ. ସୁରୁଖୁରୁ

ସୁରୁଗୁଡ଼ା—ଗ୍ରା. ପୁଂ. ଓ ସ୍ତ୍ରୀ. ବଂ (ଫ—ଶୀର୍ଣ୍ଣକାୟ) ଅତି କ୍ଷୀଣକାୟ, ଶୀର୍ଣ୍ଣ, ହ୍ରସ୍ୱଶରୀରଯୁକ୍ତ, ବାମନ, (ସ୍ତ୍ରୀ) ସୁରୁଗୁଡ଼ୀ ।

ସୁରୁଗୁଲି—ପ୍ରା. (ଗଞ୍ଜାମ) ବି. ସୁରୁବୁଲି ଦେଖ ।

ସୁରୁଙ୍ଗ—ବି. ଶୋଭାଞ୍ଜନ, ଶଜନା ।

ସୁରୁଙ୍ଗା—ବି. ରନ୍ଧ୍ର, ସୁଡ଼ଙ୍ଗ, (ଗ୍ରା. ବି) ଚକଡ଼ାହ୍ରଦରେ ମିଳୁଥିବା ଏକପ୍ରକାର ମାଛ ।

ସୁରୁଙ୍ଗାହି—ବି. (ସୁରୁଙ୍ଗା+ଅହି) ସିନ୍ଧିଆ ଚୋର, କୁଜମ୍ଭିଳ ।

ସୁରୁଚ—ବି. ଉଜ୍ଜ୍ୱଳପ୍ରକାଶ, ଦୀପ୍ତି, (ବଂ) ସୁନ୍ଦର ପ୍ରକାଶବିଶିଷ୍ଟ ।

ସୁରୁଚି—ବି. (କ, ଧା) ଶୋଭନରୁଚି, ଅଶ୍ଳୀଳତା ବର୍ଜିତ ରୁଚି, ଅତ୍ୟନ୍ତ ପ୍ରସନ୍ନତା, ଗନ୍ଧର୍ବ ରାଜବିଶେଷ, ଯକ୍ଷବିଶେଷ, (ସ୍ତ୍ରୀ) ଧ୍ରୁବଙ୍କ ବିମାତା, (ବଂ) ଶୋଭନ ରୁଚିବିଶିଷ୍ଟ, ରୁଚିକର, ସୁନ୍ଦର ।

ସୁରୁଚିମାନ୍—ବଂ. (ସୁରୁଚି+ମତ୍) ଶୋଭନ ରୁଚିସମ୍ପନ୍ନ ।

ସୁରୁଚିର—ବଂ. ମନୋହର, ଦୀପ୍ତିଶାଳୀ, ଉଜ୍ଜ୍ୱଳ, (ସ୍ତ୍ରୀ) ସୁରୁଚିରା ।

ସୁରୁଚିସଙ୍ଗ(ମ୍ମ)ତ—ବଂ. (ଓତତ୍) ସୁରୁଚିର ଅନୁମୋଦିତ, ଶ୍ଳୀଳତାଯୁକ୍ତ, ରୁଚିବିଶିଷ୍ଟ । [ ପୀଡ଼ିତ ।

ସୁରୁଜ—ପୁଂ. ବଂ. (ବ. ଗ୍ରା) ରୁଗ୍ଣ,

ସୁରୁଟି—ଗ୍ରା. ବି. (ବଣିଆ ଦେ) ରଜା ବା ଠାକୁରଙ୍କ ଆଗରେ ରଖିବାପାଇଁ ବ୍ୟବହୃତ ଭ୍ରମର ମୁଠିପର ମୟୂର ପୁଚ୍ଛଗୁଚ୍ଛ ବିଶିଷ୍ଟ ରୂପାର ବାଡ଼ି ।

ସୁରୁଣ—ପ୍ରା. (ବଲାଙ୍ଗିରପାଟଣା) କ୍ରି. ସ୍ମରଣ । [ ସ୍ୱାଦ ।

ସୁରୁତ—ପ୍ରା.(ବଲାଙ୍ଗିରପାଟଣା)ବି ଓ ବିଂ.

ସୁରୁତା—ପ୍ରା. (ବଲାଙ୍ଗିରପାଟଣା) ଘୁଆ-କାଳି, ସ୍ମରଣ ।

ସୁରୁତି—ଯା. ବି. ଭାରତୀୟପତ୍ରଷ୍ଠାନବିଶେଷ, ସୁଙ୍ଘି, ଲଟଣି, (ଗ୍ରା.ବି) ପାନସଙ୍ଗେ ଖିଆଯିବାପାଇଁ କାଶୀ,ଗୁଜରାଟ,ବମ୍ବେ, କଲିକତା ଆଦିରେ ପ୍ରସ୍ତୁତ ଏକପ୍ରକାର ତମାଖୁର ଚୂର୍ଣ୍ଣ ।

ସୁରୁଦ୍ରୁ—ବି. ଶତଦ୍ରୁ ନଦୀର ଏକନାମ ।

ସୁରୁନୂମି—ପ୍ରା. (ସମ୍ବଲ) ବି. ସାନଝିଅ, ସାନଟୋକି ।

ସୁରୁପୁଅ—ପ୍ରା.(ସମ୍ବଲ)ବି. କୋଡ଼ପୋଛା ପୁଅ,ଦୁଗ୍ଧପୋଷ୍ୟ ବାଳକ, ଶିଶୁବାଳକ ।

ସୁରୁବୁଲି—ଗ୍ରା. ବି. (ସଂ-ଚିରବଲ୍ଲୀ ବା କ୍ଷିରବଲ୍ଲୀ)ଲୁଗା ବା ସୂତାରଙ୍ଗାଇବାରେ ବ୍ୟବହୃତ ଆଛୁ କାଣ୍ଡ ବର୍ଗର କ୍ଷେତ-ପାପଡ଼ା ପରି ଗୁଳ୍ମବିଶେଷ,ଚିଲିକାମଧ୍ୟସ୍ଥ ଟାପୁରେ ମିଳିବା ଏକପ୍ରକାର ଘାସ (ଏଥିର ଚେରକୁ ସିଝାଇଲେ ନାଲିରଙ୍ଗ ବାହାରେ) ଏକପ୍ରକାର ଧଳା ଶଢ଼ୀ ।

ସୁରୁବେଲି—ପ୍ରା. (ଚିଲିକା ଅଞ୍ଚଳ) ବି. ଏକପ୍ରକାର ସିପ ।

ସୁରୁମା—ଯା. ବି. ଆଖିରେ ଅଞ୍ଜନାର୍ଥ ବ୍ୟବହୃତ କଳାଚୂର୍ଣ୍ଣବିଶେଷ,ରସାଞ୍ଜନ ।

ସୁରୁମାସଫେଦ—ଯା. ବି. ଏକପ୍ରକାର ଖଣିଜ ପଦାର୍ଥ, ଫିଟିକିରି ପରି ଧଳା ଖଣିଜପଦାର୍ଥବିଶେଷ ।

ସୁରୁଷୋ—ପ୍ରା. ( ବଲାଙ୍ଗିରପାଟଣା ) ବି. ସୋରିଷ ।

ସୁରୁସୁରୁ—ଗ୍ରା.ଅ.(ଧ୍ୱନ୍ୟନୁକରଣ)ଜଳର ଅତି କ୍ଷୀଣ ଭାବରେ ରେଖା କ୍ରମେ ପତନ ହେବାର ଶବ୍ଦ, ସଲୁସୁଲୁ, (ପ୍ରା: ପାଟଣା.ବିଂ) ସାନସାନ ।

ସୁରୂପ—ବିଂ. (ବ.ବ୍ରୀ) ଶୋଭନ ରୂପ-ବିଶିଷ୍ଟ, ରୂପବାନ୍, ବୁଦ୍ଧିମାନ୍, ପଣ୍ଡିତ, (ସ୍ତ୍ରୀ) ସୁରୂପା, (ବି) ଶୋଭନରୂପ, ଭୂଲାପଦ୍ମ, ଶିବ, କାର୍ପାସ, ପରିଷାଶୁଣ୍ଡି, କାମଦେବ, ଅଶ୍ୱିନୀକୁମାରଦ୍ୱୟ, ନକୁଳ, ପାଣ୍ଡବ, ପରୂରବା, ନଳକୂବର, ଶାମ୍ବ ।

ସୁରୂପକ—ବିଂ. ସୁନ୍ଦର ରୂପଯୁକ୍ତ,ସୁରୂପ ଦେଖ ।

ସୁରୂପା—ସ୍ତ୍ରୀ.ବିଂ (ସୁରୂପ+ଆ)ସୁରୂପର ସ୍ତ୍ରୀଲିଙ୍ଗ, ସୁନ୍ଦରୀ,(ବି) ଶାଲପର୍ଣ୍ଣୀ,ଭାର୍ଗୀ, ସୁନ୍ଦରୀ ସ୍ତ୍ରୀ, ରୂପା, ସେବତୀ, ବାର୍ଷିକୀ ମଲ୍ଲିକା ।

ସୁରୂହକ—ବି. ( ସୁ + ରୂହ + କ.ଅକ ) ଗର୍ଦ୍ଦଭ, ଘୋଡ଼ା ।

ସୁରେଇ—ଯା.ବି. ଦୀର୍ଘଗ୍ରୀବାବିଶିଷ୍ଟ ଜଳ-ପାତ୍ର, (ପ୍ରା.ଗଞ୍ଜାମ.ବି) ଝର ।

ସୁରେଖ—ବିଂ. (ସୁ+ରେଖା) ସୁନ୍ଦର ରେଖାଯୁକ୍ତ, ସୁନ୍ଦର, (ସ୍ତ୍ରୀ)ସୁରେଖା, (ଗ୍ରା.ବି) ଗଞ୍ଜପାସାରର ସୂର୍ଯ୍ୟରଙ୍ଗ ।

ସୁରେଖା—ସ୍ତ୍ରୀ.ବିଂ. ସୁରେଖର ସ୍ତ୍ରୀଲିଙ୍ଗ, (ବି ସୁନ୍ଦର ରେଖା, ହାତ ଗୋଡ଼ରେ-ଥିବା ଶୁଭସୂଚକ ରେଖା ।

ସୁରେଖିତ—ଗ୍ରା.ବିଂ.ଉତ୍ତମରୂପେ ରେଖା ଟଣାଯାଇଥିବା ।

ସୁରେଜ୍ୟ—ପୁଂ.ବି. ( ସୁର+ଇଜ୍ୟ= ପୂଜ୍ୟ) ସୁରଗୁରୁ, ବୃହସ୍ପତି, (ପୁଂ.ବିଂ-ଷତତ୍ପୁ)ଦେବତାମାନଙ୍କ ପୂଜ୍ୟ,ଦେବ-ପୂଜ୍ୟ, (ସ୍ତ୍ରୀ) ସୁରେଜ୍ୟା ।

ସୁରେଜ୍ୟା-ସ୍ତ୍ରୀ.ବିଂ. ସୁରେଜ୍ୟର ସ୍ତ୍ରୀଲିଙ୍ଗ, (ବି) ତୁଳସୀ, ବ୍ରାହ୍ମୀ ।

ସୁରେଣୁ—ପୁଂ. ବି. (କ.ଧା) ତ୍ରସରେଣୁ, ଆଲୋକ ରଶ୍ମିରେ ଦୃଶ୍ୟମାନ ଧୂଳି-କଣା, ଛଅ ପରମାଣୁ, (ସ୍ତ୍ରୀ.ବି)ତ୍ୱାଷ୍ଟ୍ରୀଙ୍କ କନ୍ୟା ଓ ବିବସ୍ୱାନଙ୍କ ପତ୍ନୀ,ପୌରାଣିକ ନଦୀବିଶେଷ । [ ଭେଦ ।

ସୁରେଣୁପୁଷ୍ପଧ୍ୱଜ—ପୁଂ. ବି. କନ୍ଦରରାଜ-

ସୁରେତର—ବି(ସୁର + ଇତର)ଷତତ୍, ଅସୁର ।

ସୁରେତା—ବିଂ. (ସୁ+ରେତସ୍)ବ.ବ୍ରୀ, ବହୁ ବୀର୍ଯ୍ୟବାନ୍ ବା ସାମର୍ଥ୍ୟବାନ୍ ।

ସୁରେନ୍ଦ୍ର—ପୁଂ.ବି (ସୁର+ଇନ୍ଦ୍ର)ଷତତ୍; ଦେବରାଜ, ଇନ୍ଦ୍ର,ଲୋକପାଳ, ରାଜା ।

ସୁରେନ୍ଦ୍ରକ(ନ୍ଦ)—ବି.କଣ୍ଟକିରଣବିଶେଷ, ଜଙ୍ଗଲୀ ଓଲୁଅ । [ ପୁତ୍ର ।

ସୁରେନ୍ଦ୍ରକୁମାର—ପୁଂ.ବି.(ଷତତ୍)ଇନ୍ଦ୍ରଙ୍କ

ସୁରେନ୍ଦ୍ରଗୋପ—ବି.ଇନ୍ଦ୍ରଗୋପ ପୋକ ।

ସୁରେନ୍ଦ୍ରଚାପ—ବି. ଇନ୍ଦ୍ରଧନୁ ।

ସୁରେନ୍ଦ୍ରଜିତ—ବି.(ସୁରେନ୍ଦ୍ର+ଜି+କ, କ୍ୱିପ୍) ଇନ୍ଦ୍ରଜିତ୍, ମେଘନାଦ, ଗରୁଡ଼ ।

ସୁରେନ୍ଦ୍ରତା—ସ୍ତ୍ରୀ.ବି.(ସୁରେନ୍ଦ୍ର+ଭା.ତା) ଇନ୍ଦ୍ରତ୍ୱ, ଇନ୍ଦ୍ରଙ୍କର ଭାବ ବା ଧର୍ମ,ସୁର-ରାଜ୍ୟର ଆଧିପତ୍ୟ ।

ସୁରେନ୍ଦ୍ରପୂଜ୍ୟ—ପୁଂ.ବିଂ. (ଷତତ୍)ଇନ୍ଦ୍ରଙ୍କ ପୂଜନୀୟ, (ବି) ବୃହସ୍ପତି ।

ସୁରେନ୍ଦ୍ରବଲ୍ଲୀ—ବି. ବର୍ଣ୍ଣ ବୃକ୍ଷବିଶେଷ, ଇନ୍ଦ୍ରବଲ୍ଲୀ ।

ସୁରେନ୍ଦ୍ରବନ୍ତା—ସ୍ତ୍ରୀ.ବି. ଶଚୀ, ଇନ୍ଦ୍ରାଣୀ ।

ସୁରେନ୍ଦ୍ରବୃନ୍ତ—ବି ରାମପୂଗ, ଏକପ୍ରକାର ଗୁଆ । [ ଦେବହସ୍ତୀ ।

ସୁରେଭ—ବି. ରଙ୍ଗ ନାମକ ଧାତୁ,

ସୁରେଶ—ବି. ( ସୁର + ଈଶ ) ଷତତ୍; ସୁରେନ୍ଦ୍ର, ଶିବ, ବିଷ୍ଣୁ, ଲୋକପାଳ ।

ସୁରେଶଲୋକ—ବି. ଇନ୍ଦ୍ରଲୋକ ।

ସୁରେଶୀ—ସ୍ତ୍ରୀ. ବି.(ସୁର + ଈଶୀ)ଦୁର୍ଗା ।

ସୁରେଶ୍ୱର—ପୁଂ. ବି.(ଷତତ୍) ସୁରେନ୍ଦ୍ର ଦେଖ, ମହାଦେବ, ଶିବ, ବ୍ରହ୍ମା ।

ସୁରେଶ୍ୱରରତ୍ନ—ପୁଂ. ବି. ( ଷତତ୍ ) ଇନ୍ଦ୍ରନୀଳମଣି ।

ସୁରେଶ୍ୱରୀ—ବି. (ଷତତ୍) ଦୁର୍ଗା, ସ୍ୱର୍ଗଙ୍ଗା, ଲକ୍ଷ୍ମୀ, ରାଧା ।

ସୁରେଷ୍ଟ—ବି. (ଷତତ୍)ଅଗସ୍ତି ବୃକ୍ଷ, ଶାଳ, ସୁରପୁନ୍ନାଗ, ଶିବ ମଲ୍ଲୀ, ବଡ଼ ବକୁଳ ଫୁଲର ଗଛ ।

ସୁରେଷ୍ଟା-ସ୍ତ୍ରୀ. ବି.(ସୁରେଷ୍ଟ+ଆ)ବ୍ରାହ୍ମୀ ।

ସୁରେସୁରେ—ପ୍ରା. ( ବଲାଙ୍ଗିରପାଟଣା ) କ୍ରି.ବିଂ. ଅଳ୍ପ ଦୂରରେ ।

ସୁରେହା—ଗ୍ରା. ବି. (ସଂ-ସ୍ପୃହା) ସ୍ପୃହା, ଲାଳସା, (ବିଂ) ସୁରେହ ଦେଖ ।

ସୁରେହ—ଗ୍ରା. ପୁଂ. ବିଂ. (ସ୍ପୃହା) ସ୍ପୃହା-ଯୁକ୍ତ, ଲାଳାୟିତ, ଅନୁରାଗଯୁକ୍ତ ।

ସୁରୈ—ବିଂ.(ସୁ+ରୈ) ଐଶ୍ୱର୍ଯ୍ୟଶାଳୀ, ଧନୀ ।

ସୁରେଚନା—ସ୍ତ୍ରୀ. ବ. କାର୍ତ୍ତିକେୟଙ୍କର ଏକ ମାତୃକା ।

ସୁରୋତ୍ତମ—ବିଂ. (ସୁର+ଉତ୍ତମ)୭ତତ୍; ଦେବତାମାନଙ୍କ ମଧ୍ୟରେ ଉତ୍ତମ ବା ଶ୍ରେଷ୍ଠ, (ବ) ସୂର୍ଯ୍ୟ, ବିଷ୍ଣୁ ।

ସୁରୋତ୍ତର-ବ.(ସୁର+ଉତ୍ତର) ଚନ୍ଦନ ।

ସୁରୋଦ—ବ. (ସୁରା+ଉଦ) ସୁରାଶୋଭ୍ର ସୁରା ସମୁଦ୍ର, ସୁରୋଦଧି ।

ସୁରୋମା—ବିଂ.ପୁଂ ଓ ସ୍ତ୍ରୀ.(ସୁ+ରୋମନ୍) ଉତ୍ତମ ବା ସୁନ୍ଦର ଲୋମବିଶିଷ୍ଟ, (ବ) ସର୍ପବିଶେଷ ।

ସୁରୋହଷ—ବ. ସୁଗନ୍ଧ ରୋହିଷତୃଣ, ବଡ ସୁଗନ୍ଧତୃଣ ।

ସୁରୌକା—ବ. ୬ତତ୍; (ସୁର+ଓକସ୍) ସ୍ୱର୍ଗ, ଦେବମନ୍ଦିର ।

ସୁର୍କା(ର୍ଖା)—ଯା. ବ.ନାଲିରଙ୍ଗର ପାଗ ।

ସୁର୍ଖୀ—ଯା. ବ. ଲାଲଗୁଣ୍ଡ, ଇଟାଗୁଣ୍ଡ ।

ସୁର୍ତ୍ତି—ପ୍ରା. (ପାଟଣା)ବ. ଗୁଆକାତି ।

ସୁର୍ତ୍ତି(ର୍ତ୍ତୀ)-ଯା.ବ.ଗୃହାଦିରେ ଜୁଆଖେଳିବା ନା ଭାଗ୍ୟପରୀକ୍ଷାବିଶେଷ ।

ସୁର୍ମା—ଯା.ବ.ରସାଞ୍ଜନ, ସ୍ରୋତୋଞ୍ଜନ, ଆଣ୍ଟିମନି ନାମକ ଧାତୁ ଓ ଗନ୍ଧକ ଯୋଗେ ଖଣିଜବିଶେଷ (ଏହାର ଚୂର୍ଣ୍ଣରେ ଚକ୍ଷୁର ଅଞ୍ଜନ ହୁଏ) ।

ସୁର୍ପି—ଗ୍ରା. ବ. ( ସଂ-ସୂର୍ପର ) କୁହୁଣ୍ଡା, କବାଟର ଶିକୁଳିକୁ ଚଉକାଠରେ ଅଟକାଇବା ପାଇଁ ବ୍ୟବହୃତ ଅର୍ଦ୍ଧଚନ୍ଦ୍ରାକୃତି ଲୌହ ।

ସୁର୍ଷିଆମାଳ—ଗ୍ରା.ବ.ସୋରିଷପରି ଶ୍ରେଷ୍ଠ ଦାନାଯୁକ୍ତ ହାର ।

ସୁର୍ଷୋ—ପ୍ରା. ( ବଲାଙ୍ଗିରପାଟଣା) ବ. ସୋରିଷତେଲ, ସୋରିଷ ।

ସୁଲ୍କି—ପ୍ରା. ( ସମ୍ବ.ବ ) ସଙ୍କୀର୍ଣ୍ଣସ୍ଥାନ, ଦୁଇଘରର ମଝିରେ ଥିବା ଗଳିବାଟ ବା ସନ୍ଧି ।

ସୁଲ୍ତାନ୍—ଯା. ବ. ସୁଲତାନ୍ ଦେଖ ।

ସୁଲ୍ତାନା—ଯା.ବ. ସୁଲତାନା ଦେଖ ।

ସୁଲ୍ସୁଲ୍—ଗ୍ରା. ଅ. ସୁଲୁସୁଲୁ ଦେଖ ।

ସୁଲ୍ସୁଲି—ପ୍ରା. (ସମ୍ବ.ବ)ସଙ୍କୀର୍ଣ୍ଣପଥ ।

ସୁଲ୍ସୁଲେଇବା—ପ୍ରା. (ସମ୍ବ) କ୍ରି. କୁଟେଇବା ।

ସୁଲ—ଗ୍ରା. ବ. ସୋଲ ।

ସୁଲକ୍ଷଣ—ବ. ( କ.ଧା )ଉତ୍ତମ ଲକ୍ଷଣ, ଶୁଭସୂଚକ ଲକ୍ଷଣ, (ପୁଂ.ବିଂ.ବ.ବ୍ରୀ) ଶୁଭ ବା ଉତ୍ତମଯୁକ୍ତ, ଭାଗ୍ୟବାନ୍,(ସ୍ତ୍ରୀ) ସୁଲକ୍ଷଣା ।

ସୁଲକ୍ଷଣା—ସ୍ତ୍ରୀ. ବିଂ. (ସୁଲକ୍ଷଣ + ଅ) ସୁଲକ୍ଷଣର ସ୍ତ୍ରୀଲିଙ୍ଗ, (ସ୍ତ୍ରୀ.ବ)ଉମାଙ୍କର ସଖୀବିଶେଷ ।

ସୁଲକ୍ଷଣାକ୍ରାନ୍ତ—ବିଂ (୩ତତ୍)ସୁଲକ୍ଷଣ ଦ୍ୱାରା ଯୁକ୍ତ, (ସ୍ତ୍ରୀ) ସୁଲକ୍ଷଣାକ୍ରାନ୍ତା ।

ସୁଲକ୍ଷଣୀ—ଗ୍ରା.ସ୍ତ୍ରୀ. ବିଂ. (ସଂ-ସୁଲକ୍ଷଣା) ସୁଲକ୍ଷଣଯୁକ୍ତା, (ସ୍ତ୍ରୀ)ସୌଭାଗ୍ୟବତୀ ।

ସୁଲକ୍ଷିତ—ବିଂ(ସୁ+ଲକ୍ଷ+ତ)ଉତ୍ତମ ରୂପେ ଲକ୍ଷିତ ।

ସୁଲକ୍ଷ୍ମୀ—ଗ୍ରା.ସ୍ତ୍ରୀ.ବିଂ. ସୌଭାଗ୍ୟବତୀ ।

ସୁଲଗ୍ନ—ବ.ଉତ୍ତମ ବା ଶୁଭଲଗ୍ନ, (ବିଂ-ବ.ବ୍ରୀ) ଉତ୍ତମ ଲଗ୍ନଯୁକ୍ତ, ଅତି ଦୃଢ଼ ରୂପେ ଲଗ୍ନ ବା ସଂଯୁକ୍ତ ।

ସୁଲତାନ୍—ଯା. ପୁଂ, ବ. ମୁସଲମାନ ସମ୍ରାଟ୍, ବାଦଶାହା, ମୁସଲମାନମାନଙ୍କ ନାମବିଶେଷ, (ସ୍ତ୍ରୀ) ସୁଲତାନା ।

ସୁଲତାନତ୍—ଯା. ବ. ସୁଲତାନଙ୍କ ଅଧିକାର ବା ଅବସ୍ଥା ବା ପଣ, ସାମ୍ରାଜ୍ୟ ।

ସୁଲତାନା—ଯା, ସ୍ତ୍ରୀ. ବ. ସମ୍ରାଟପତ୍ନୀ, ସାମ୍ରାଜ୍ଞୀ ।

ସୁଲତାନି—ଯା. ବ. ସୁଲତାନଙ୍କ କର୍ମ ବା ରାଜତ୍ୱ, (ବିଂ)ସୁଲତାନସମ୍ବନ୍ଧୀୟ, ସୁଲତାନଙ୍କ ଯୋଗ୍ୟ ।

ସୁଲତାନଚମ୍ପା—ଗ୍ରା. ବ. ସୁରପୁନ୍ନାଗ ବୃକ୍ଷ ଓ ଫୁଲ, ଛୁରିଅନା, ପୁନ୍ନାଗ ।

ସୁଲଫା—ଯା. ବ. ଯେଉଁ ଧୂଆଁପତ୍ରକୁ ଗଞ୍ଜେଇ ପରି ଦଳିକରି ଚିଲମରେ ଭରି ଧୂମପାନ କରାଯାଏ ।

ସୁଲଭ—ବିଂ. ( ସୁ+ଲଭ୍+ମି.ଅ ) ଅନାୟାସ ଲଭ୍ୟ, ସହଜପ୍ରାପ୍ୟ, ସସ୍ତା, ଅସହଜ ସିଦ୍ଧ, ସହଜ, (ଗ୍ରା.ବିଂ) ଶୁଭସୂଚକ, ସୌଭାଗ୍ୟମୟ, ସୁଖକର, ସୁଖଦାୟକ, (ବ) ସୌନ୍ଦର୍ଯ୍ୟ, ଶୋଭା, ସୁଖ ।

ସୁଲଭତ୍ୱ—ବ. ସୁଖରେ ଲାଭ ।

ସୁଲଭା—ବ. (ସୁଲଭ+ଆ) ତୁଳସୀ, ମାଷପର୍ଣ୍ଣୀ, ଧୂମ୍ରପତ୍ରା, ଭୂମାଖୁ, ମଲ୍ଲିଫୁଲ, ବୈଦିକ କାଳର ଏକ ବ୍ରହ୍ମବାଦିନୀ ସ୍ତ୍ରୀ,(ବିଂ.ସ୍ତ୍ରୀ) ସୁଲଭର ସ୍ତ୍ରୀଲିଙ୍ଗ ।

ସୁଲଭେତର—ବିଂ. ଦୁର୍ଲଭ, କଠିନ, ମହାର୍ଘ ।

ସୁଲଭ୍ୟ—ବିଂ. ( ସୁ+ଲଭ୍+ମି.ଯ ) ସୁଲଭ, (ସ୍ତ୍ରୀ) ସୁଲଭ୍ୟା ।

ସୁଲଲାଟ—ବିଂ.(ବ.ବ୍ରୀ)ଶୋଭନ ଲଲାଟଯୁକ୍ତ, (ବ) ସୁପ୍ରଶସ୍ତ ଲଲାଟ ।

ସୁଲଳିତ—ବିଂ.ଅତି ସୁନ୍ଦର,ଅତିମଧୁର, ଅତି କୋମଳ, ଅତ୍ୟନ୍ତ ଶ୍ରୁତିମଧୁର, (ସ୍ତ୍ରୀ) ସୁଲଳିତା ।

ସୁଲବଣ—ବିଂ. ଅତିଶୟ ଲବଣବିଶିଷ୍ଟ ।

ସୁଲା—ଯା.ବ,ବିବାଦର ଆପୋସ ମୀମାଂସା, ଦୁଇ ରାଜାଙ୍କ ମଧ୍ୟରେ ସନ୍ଧି ।

ସୁଲାଗ—ଗ୍ରା. ବ.ଭଲଦ୍ରବ୍ୟ,ପ୍ରୟୋଜନୀୟ ଦ୍ରବ୍ୟ ।

ସୁଲାନାମା—ଯା.ବ.ସନ୍ଧିନାମା,ସନ୍ଧିପତ୍ର ।

ସୁଲାମାଉଁସ—ପ୍ରା.(ବଲାଙ୍ଗିରପାଟଣା) ଶୁଖା ହୋଇଥିବା ମାଂସ ।

ସୁଲିଆ-ଗ୍ରା.ବ. ଓଡ଼ିଶାର ପର୍ବତବିଶେଷ ।

ସୁଲିଖିତ—ବିଂ. ଉତ୍ତମରୂପେ ଲିଖିତ, ବୈଦ୍ୟକୋକ୍ତ ଲେଖନ ଗୁଣବିଶିଷ୍ଟ ।

ସୁଲୁଆ-ପ୍ରା.(ବୌଦ୍ଧ)-ବ.ଶୃଙ୍ଖଳା ବାଇଗଣ

ସୁଲୁକାଇବା—ଗ୍ରା. କ୍ରି. କାନ ମଧ୍ୟରେ କୁଟା ପୂରାଇ ସଲ ସଲ କରିବା,କୌଣସି କଥାର ପ୍ରସଙ୍ଗକୁ ଉତ୍ଥାପନ କରିବା, ଗୋପନରେ ଉତ୍ତେଜିତ କରିବା,କାଠ ଆଦିରେ ନିଆଁ ଧରାଇବା ।

ସୁଲୁକିବା—ଗ୍ରା. କ୍ରି. (କାନଭିତରେ)ସଲ ସଲ ହେବା,ଉତ୍ତେଜିତ ହେବା,ଜଳିବା

ସୁଲୁଙ୍ଗା—ଗ୍ରା. ବିଂ. ଫୁଲୁକା, ଶୋଥରେ ଫୁଲିବାପରି (ମୁହଁ) ।

ସୁଲୁପୀ—ଗ୍ରା.ବ.ଦେବୀବିଶେଷ, ଯୋଗିନୀ-ବିଶେଷ ।

ସୁଲୁସୁଲୁ—ଗ୍ରା.ଅ(ଧ୍ୱନ୍ୟନୁକରଣ)ପବନର ଧୀରଭାବରେ ବହିବାର ଅବସ୍ଥା ଓ ଶବ୍ଦ,

ସଲସଲ ।

ସୁଲୁସୁଲିଆ—ଗ୍ରା. ବିଂ. ଧୀରଭାବରେ ବହୁଥିବା (ପବନ) ।

ସୁଲୂ—ପୁଂ. ଓ ସ୍ତ୍ରୀ. ବିଂ (ସୁ+ଲୂ+କ୍ୱିପ୍) ଉତ୍କୃଷ୍ଟରୂପେ ଛେଦନକାରୀ ।

ସୁଲେ—ଯା. ବି. ବିବାଦର ଆପୋଷ ମୀମାଂସା, ଦୁଇରାଜାଙ୍କ ମଧ୍ୟରେ ସନ୍ଧି ।

ସୁଲେଇ—ଗ୍ରା. ବି. ଏକପ୍ରକାର ଜଳଚର ବିଷାକ୍ତ ଜୀବ ।

ସୁଲେଖ—ବିଂ. (ସୁ+ଲେଖା) ସୁନ୍ଦର ରେଖାଯୁକ୍ତ, ସୁନ୍ଦର ରେଖାବିଶିଷ୍ଟ ।

ସୁଲେଖକ—ପୁଂ. ବି. ଶ୍ରେଷ୍ଠ ଲିପିକର, ଉତ୍କୃଷ୍ଟ ପ୍ରବନ୍ଧ ରଚୟିତା, ଉତ୍ତମ ଲେଖକ, (ସ୍ତ୍ରୀ) ସୁଲେଖିକା ।

ସୁଲେନାମା—ଯା. ବି. ରଫାନାମା, ଦୁଇଜଣଙ୍କ ବିବାଦର ଆପୋଷରେ ନିଷ୍ପତ୍ତି ହେବାର ନିଦର୍ଶନସ୍ୱରୂପ ଲେଖାଯିବା ଦଲିଲ, ସନ୍ଧିପତ୍ର ।

ସୁଲେମାନ୍—ଯା. ବି. ମୁସଲମାନୀ ନାମ ଇହୁଦୀମାନଙ୍କର ଏକ ପ୍ରାଚୀନ ସମ୍ରାଟ, ବେଲୁଚିସ୍ଥାନ ଓ ପଞ୍ଜାବ ମଧ୍ୟରେ ଥିବା ଏକ ପର୍ବତଶ୍ରେଣୀ ।

ସୁଲେମାନୀ—ଯା. ବିଂ. ସୁଲେମାନ ସମ୍ବନ୍ଧୀୟ, (ବି) ଧଳାଆଖିଥିବା ଘୋଡ଼ା, ଅଂଶତଃ ଧଳା ଓ ଅଂଶତଃ କଳା ଏକପ୍ରକାର ରତ୍ନ ।

ସୁଲେମାନୀଲୁଣ—ଯା. ବି. (ଆରବୀ ବୈଦ୍ୟଶାସ୍ତ୍ରରେ ବ୍ୟବହୃତ) ଏକପ୍ରକାର ଔଷଧ ଲବଣ ।

ସୁଲୋକ—ବି. ସ୍ୱର୍ଗ ।

ସୁଲୋଚନ—ପୁଂ. ବିଂ. (ବ. ବ୍ରୀ) ସୁନେତ୍ର, ସୁନ୍ଦର ନୟନବିଶିଷ୍ଟ. (ସ୍ତ୍ରୀ) ସୁଲୋଚନା, (ବି) ମୃଗ, ହରିଣ, ଦୁର୍ଯ୍ୟୋଧନ, ଚକୋର, ରୁକ୍ମିଣୀଙ୍କ ପିତା, (ପ୍ରା. ଗ୍ରାମ୍ୟ. ବି) ପ୍ରଚକ୍ଷୁ ।

ସୁଲୋଚନା—ସ୍ତ୍ରୀ. ବିଂ. (ସୁଲୋଚନ+ଆ) ସୁଲୋଚନର ସ୍ତ୍ରୀଲିଙ୍ଗ, (ବି) ପଦ୍ମପୁରାଣୋକ୍ତ ମାଧବରାଜ ପତ୍ନୀ, ଅପ୍ସରାବିଶେଷ, ବାସୁକୀଙ୍କ କନ୍ୟା ଓ ମେଘନାଦଙ୍କ ସ୍ତ୍ରୀ, ହରିଣୀ, ସୁନୟନା ସ୍ତ୍ରୀ ।

ସୁଲୋଚନାଦେଈ—ଗ୍ରା. ବି. ସ୍ତ୍ରୀ. (ନାମ) ବାମଣ୍ଡାଷ୍ଟେଟର ଜଣେ ଜୀବନ୍ତ ନାଟ୍ୟକବି ଓ ଲେଖିକା ।

ସୁଲୋମଶା—ବି. କାକଜଙ୍ଘା, ଏକପ୍ରକାର ପୋକଶୁଙ୍ଘା ।

ସୁଲୋମା—ବି. ତାମ୍ରବଲ୍ଲୀ, ମାଂସଚ୍ଛଦା ।

ସୁଲୋହକ—ବି. (ସୁ+ଲୋହ+କ) ପିତ୍ତଳ ।

ସୁଲୋହିତ—ବିଂ. (ସୁ+ଲୋହିତ) ମନୋହର ରକ୍ତବର୍ଣ୍ଣବିଶିଷ୍ଟ, (ସ୍ତ୍ରୀ) ସୁଲୋହିତା, (ବି) ସୁନ୍ଦର ରକ୍ତବର୍ଣ୍ଣ ।

ସୁଲୋହିତା—ସ୍ତ୍ରୀ. ବିଂ. ସୁଲୋହିତର ସ୍ତ୍ରୀଲିଙ୍ଗ, (ସ୍ତ୍ରୀ. ବି) ଅଗ୍ନିଙ୍କ ସପ୍ତଜିହ୍ୱା ମଧ୍ୟରୁ ଏକ ।

ସୁଶଂସ-ବିଂ. ଉତ୍ତମରୂପେ ସ୍ତୁତିର ଯୋଗ୍ୟ

ସୁଶଂସୀ—ବିଂ. (ସୁ+ଶଂସ+ଇନ୍) ସୁନ୍ଦର ସ୍ତବବିଶିଷ୍ଟ ।

ସୁଶକ(କ୍ୟ)—ବିଂ. (ସୁ+ଶକ୍+ମି. ଅ. ଯ) ସୁକର, ସୁନ୍ଦରରୂପେ କରିବାକୁ ସମର୍ଥ ।

ସୁଶକୁନ—ବି. ଶୁଭସୂଚକ ଚିହ୍ନ ।

ସୁଶକ୍ତ—ବିଂ. (ସୁ+ଶକ୍+ତ) ଅତି ସମର୍ଥ ଏବଂ ଶକ୍ତିଶାଳୀ, (ସ୍ତ୍ରୀ) ସୁଶକ୍ତା ।

ସୁଶକ୍ତି—ସ୍ତ୍ରୀ. ବି. (କ. ଧା) ଉତ୍ତମଶକ୍ତି, (ବିଂ) ଉତ୍ତମଶକ୍ତିବିଶିଷ୍ଟ ।

ସୁଶବୀ—ବି. କଳାଜୀରା, କଳରା, କରଞ୍ଜି ।

ସୁଶବ୍ଦ—ବି. ମନୋହର ଶବ୍ଦ. (ବିଂ) ମନୋହର ଧ୍ୱନିକାରୀ, (ସ୍ତ୍ରୀ) ସୁଶବ୍ଦା ।

ସୁଶରଣ—ବିଂ. ଉତ୍ତମ ରକ୍ଷକଯୁକ୍ତ ।

ସୁଶରଣ୍ୟ—ବି. ମହାଦେବ, ଶିବ ।

ସୁଶରୀର—ବି. ଉତ୍ତମ ବା ସୁନ୍ଦର ଦେହ, (ବିଂ. ବ. ବ୍ରୀ) ସୁନ୍ଦର ଶରୀରବିଶିଷ୍ଟ, (ସ୍ତ୍ରୀ) ସୁଶରୀରା ।

ସୁଶର୍ମା—ପୁଂ. ଓ ସ୍ତ୍ରୀ ବିଂ. (ସୁ+ଶର୍ମନ୍) ଶୋଭନ ସୁଖବିଶିଷ୍ଟ, ଅତ୍ୟନ୍ତ ସୁଖୀ, (ବି) ବୈଦିକ ବ୍ରାହ୍ମଣବିଶେଷ, ବେଦଜ୍ଞ କୁଟକର୍ମୀ ବ୍ରାହ୍ମଣବଂଶରେ ଯେଉଁ ବ୍ରାହ୍ମଣ ଜନ୍ମଗ୍ରହଣ କରେ ତାହାର ନାମ ସୁଶର୍ମା, ରାଜାବିଶେଷ, ପ୍ରାଚୀନ ତ୍ରିଗର୍ତ୍ତ ଦେଶର ରାଜା ।

ସୁଶଲ୍ୟ—ବି. ଖଦିର, ଖଇର ।

ସୁଶାକ—ବି. ଆର୍ଦ୍ରକ, ଅଦା, ଚଞ୍ଚୁ, ରକ୍ତ ଏରଣ୍ଡ, ଭେଣ୍ଡୀ, ତଣ୍ଡୁଳୀୟ, ଲେଉଟିଆ ଶାଗ ।

ସୁଶାଚ—ବି. ଚଞ୍ଚୁ, ଅଦା । [ ସୁଶାନ୍ତା ।

ସୁଶାନ୍ତ—ପୁଂ. ବିଂ. ଅତି ଶାନ୍ତ, (ସ୍ତ୍ରୀ)

ସୁଶାନ୍ତା—ସ୍ତ୍ରୀ. ବି. ଶଶିଧ୍ୱଜ ରାଜପତ୍ନୀ, (ବିଂ. ସ୍ତ୍ରୀ) ସୁଶାନ୍ତର ସ୍ତ୍ରୀଲିଙ୍ଗ ।

ସୁଶାନ୍ତି—ବି. ଉତ୍ତମ ଶାନ୍ତି, (ପୁଂ) ତୃତୀୟ ମନ୍ୱନ୍ତରର ଇନ୍ଦ୍ରଭେଦ, ଅଜମୀଢ଼ଙ୍କର ପୁତ୍ରବିଶେଷ, ଶାନ୍ତିର ପୁତ୍ରଭେଦ ।

ସୁଶାସନ—ବି. (କ. ଧା) ଉତ୍ତମରୂପେ ଦମନ, ନ୍ୟାୟସଙ୍ଗତ ଭାବରେ ରକ୍ଷଣାବେକ୍ଷଣ ।

ସୁଶାସିତ—ବିଂ. ନ୍ୟାୟମାର୍ଗରେ ଶାସିତ, ସୁଚାରୁରୂପେ ଦମିତ, (ସ୍ତ୍ରୀ) ସୁଶାସିତା ।

ସୁଶାସ୍ୟ—ବିଂ. ସହଜରେ ଶାସନୀୟ, ସୁଶାସନୀୟ, (ସ୍ତ୍ରୀ) ସୁଶାସ୍ୟା ।

ସୁଶିକ୍ଷା—ବି. (କ. ଧା) ଉତ୍ତମ ଉପଦେଶ, ଉତ୍ତମ ଅଧ୍ୟୟନ, ସୁନ୍ଦର ଅଭ୍ୟାସ ।

ସୁଶିକ୍ଷିତ—ବିଂ. ଉତ୍ତମରୂପେ ଶିକ୍ଷାପ୍ରାପ୍ତ, (ସ୍ତ୍ରୀ) ସୁଶିକ୍ଷିତା ।

ସୁଶିଖ—ବିଂ. (ବ. ବ୍ରୀ) ଉତ୍ତମ ଶିଖାଯୁକ୍ତ, (ସ୍ତ୍ରୀ) ସୁଶିଖା, (ବି) ଅଗ୍ନି, ଚନ୍ଦନବିଶେଷ ।

ସୁଶିଖା—ବି. ମୟୂରଶିଖା, ମୟୂରଶିଖାଗୁଳ୍ମ, ସୁନ୍ଦରକେଶ, (ବିଂ. ସ୍ତ୍ରୀ) ସୁଶିଖର ସ୍ତ୍ରୀଲିଙ୍ଗ ।

ସୁଶିଥିଳ—ବିଂ. ଅତି ଶିଥିଳ ।

ସୁଶିଥିଳୀକୃତ—ବିଂ. (ସୁ+ଶିଥିଳ+ଚ୍ୱି+କୃ+ତ) ଯାହା ପୂର୍ବେ ଶିଥିଳ ନ ଥିଲା ତାହା ବର୍ତ୍ତମାନ ଶିଥିଳ କରାଯାଇଥିବା । [ ଶିଷ୍ଟ ।

ସୁଶିଷ୍ଟ—ବିଂ. (ସୁ+ଶାସ୍+ତ) ଅତ୍ୟନ୍ତ

ସୁଶୀତ-ବିଂ. ଅତ୍ୟନ୍ତ ଶୀତଳ ବା ଥଣ୍ଡା, (ବି) ପୀତଚନ୍ଦନ, ପ୍ଲକ୍ଷ, ଜଳ-

ବେତସ, ଭେଣ୍ଡୀ ।
ସୁଶୀତଳ—ବି. ଗନ୍ଧତୃଣ, ନାଗଦମନୀ, ଶ୍ୱେତଚନ୍ଦନ, (ବିଂ) ସୁଶୀତ ଦେଓ୍ୱ, (ସ୍ତ୍ରୀ) ସୁଶୀତଳା ।
ସୁଶୀତଳା—ସ୍ତ୍ରୀ. ବିଂ. ସୁଶୀତଳର ସ୍ତ୍ରୀଲିଙ୍ଗ, (ବି) ହ୍ରସ୍ୱଫପୁଷଲତା, କାକୁଡ଼ି
ସୁଶୀତା—ବି. ଶତପତ୍ରୀ, ସେବତୀଫୁଲ, ସ୍ଥଳକମଳ । [ କନ୍ଦ ।
ସୁଶୀବକା—ବି. କନ୍ଦବିଶେଷ, ବାରାହୀ-
ସୁଶୀମ—ବି. ଶୀତଗୁଣ, ଶୈତ୍ୟ, ଶୀତଳତା, ଚନ୍ଦ୍ରକାନ୍ତମଣି, ଏକପ୍ରକାର-ସର୍ପ (ବିଂ) ଶୀତଳ, ମନୋଜ୍ଞ ।
ସୁଶୀମକାମା—ବିଂ. ଅତ୍ୟନ୍ତ କାମାଭିଳାପନ୍ନା ।
ସୁଶୀଳ—ପୁଂ. ବିଂ. (ବ.ବ୍ରୀ) ସଚ୍ଚରିତ, ସତ୍ସ୍ୱଭାବବିଶିଷ୍ଟ, ବିନୀତ, ନମ୍ର, (ସ୍ତ୍ରୀ) ସୁଶୀଳା, (ପୁଂ. ବି.) ପଦ୍ମପୁରାଣୋକ୍ତ କଳିଙ୍ଗର ପୁଣ୍ୟଶୀଳ ବିଷ୍ଣୁଭକ୍ତ ରାଜା, ଶୈଳରାଜା, (ଗ୍ରା.ବିଂ.)ଅତି ଟାଣୁଆ, ଅତି କଠିନ ।
ସୁଶୀଳତା—ବି. (ସୁଶୀଳ + ଭା.ତା) ସଚ୍ଚରିତ୍ରତା, ବିନୟ, ନମ୍ରତା ।
ସୁଶୀଳା—ସ୍ତ୍ରୀ. ବିଂ. ସୁଶୀଳର ସ୍ତ୍ରୀଲିଙ୍ଗ, (ବି-ନାମ) ଶ୍ରୀକୃଷ୍ଣଙ୍କର ଅଷ୍ଟମହିଷୀଙ୍କ ମଧ୍ୟରୁ ଏକତମା, ଯମ ଭାର୍ଯ୍ୟା, ରାଧାଙ୍କର ଏକ ଅନୁଚରୀ ।
ସୁଶୀଳୀ—ପୁଂ. ବିଂ. (ସୁ + ଶୀଳ + ଇନ୍) ଉତ୍ତମ ସ୍ୱଭାବସମ୍ପନ୍ନ ।
ସୁଶୃଙ୍ଖଳ—ବିଂ. ବ.ବ୍ରୀ; (ସୁ + ଶୃଙ୍ଖଳା + ଅ) ସୁନିୟମିତ, ଉତ୍ତମରୂପେ ବ୍ୟବସ୍ଥିତ, ସୁସଜ୍ଜିତ, (ସ୍ତ୍ରୀ) ସୁଶୃଙ୍ଖଳା ।
ସୁଶୃଙ୍ଖଳତା(ସୁଶୃଙ୍ଖଳା)—ବି. (କ.ଧା) ଉତ୍ତମ ବନ୍ଦୋବସ୍ତ ବା ବ୍ୟବସ୍ଥା, ଉତ୍ତମ ନିୟମ, (ସ୍ତ୍ରୀ.ବିଂ-ବ.ବ୍ରୀ) ସୁନିୟମିତା, ସୁନ୍ଦରଭାବରେ ବ୍ୟବସ୍ଥିତା ।
ସୁଶୃଙ୍ଗ—ପୁଂ. ବିଂ. ( ବ.ବ୍ରୀ ) ସୁନ୍ଦର ଶୃଙ୍ଗବିଶିଷ୍ଟ, (ସ୍ତ୍ରୀ) ସୁଶୃଙ୍ଗା ।
ସୁଶୃତ—ବିଂ. ଅତି ତପ୍ତ ।
ସୁଶେକ୍—ଗ୍ରା. (ଲଡ଼ଆ) ବି. (ଧ୍ୱନ୍ୟନୁକରଣ) ସକାକାନ୍ଦଣା, ସକେଇହୋଇ କାନ୍ଦିବା ।
ସୁଶେରୁ—ପୁଂ. ବି. ବାଲୁକାର କଙ୍କର ।
ସୁଶୋଣ—ବିଂ. ଅତିଶୟ ରକ୍ତବର୍ଣ୍ଣ, ଅତିଶୟ ଅରୁଣବର୍ଣ୍ଣ ।
ସୁଶୋଭନ—ବିଂ. ଅତିଶୟ ଶୋଭାଯୁକ୍ତ, ଅତି ସୁନ୍ଦର, (ସ୍ତ୍ରୀ) ସୁଶୋଭନା, (ବି) ଅତି ଶୋଭନ ।
ସୁଶୋଭିତ—ବିଂ. ଅତିଶୟ ଶୋଭାଯୁକ୍ତ. ସୁସଜ୍ଜିତ, ସୁନ୍ଦରରୂପେ ପ୍ରକାଶିତ. ଶୋଭାନ୍ୱିତ, (ଗ୍ରା.ବି) ସୌନ୍ଦର୍ଯ୍ୟ ।
ସୁଶୋଷିତ—ବିଂ. ଉତ୍ତମରୂପେ ଶୋଷିତ ।
ସୁଶ୍ରମ—ପୁଂ. ବି. ଧର୍ମଙ୍କର ପୁତ୍ରବିଶେଷ, (ବିଂ) ଅତିଶୟ ଶ୍ରମବିଶିଷ୍ଟ ।
ସୁଶ୍ରାନ୍ତ—ବିଂ(ସୁ + ଶ୍ରମ୍ + ତ)ଅତିଶୟ ଶ୍ରାନ୍ତ, ଅତ୍ୟନ୍ତ ପରିଶ୍ରମବିଶିଷ୍ଟ ।
ସୁଶ୍ରାବ୍ୟ—ବିଂ. (ସୁ + ଶ୍ରୁ + ମି.ଯ) ଉତ୍ତମରୂପେ ଶ୍ରବଣଯୋଗ୍ୟ, ଶୁଣିବାକୁ ମଧୁର ।
ସୁଶ୍ରୀ—ବିଂ. (ବ.ବ୍ରୀ) ସୁନ୍ଦର, ସ୍ୱରୂପ, ଶ୍ରୀଯୁକ୍ତ, ଶ୍ରୀମାନ୍. (ସ୍ତ୍ରୀ.ବି-କ.ଧା)ସୁନ୍ଦର କାନ୍ତି, ମନୋରମ, ସୌନ୍ଦର୍ଯ୍ୟ ।
ସୁଶ୍ରୀକ—ବିଂ. (ବ.ବ୍ରୀ) ସୁନ୍ଦର କାନ୍ତିଯୁକ୍ତ, ଅତିଶୟ ଶୋଭାବିଶିଷ୍ଟ, ( ସ୍ତ୍ରୀ ) ସୁଶ୍ରୀକା ।
ସୁଶ୍ରୀକତା—ସ୍ତ୍ରୀ. ବି. (ସୁଶ୍ରୀକ + ଭା.ତା) ସୁରୂପତା, ମନୋହର ସୌନ୍ଦର୍ଯ୍ୟ ।
ସୁଶ୍ରୀକା—ସ୍ତ୍ରୀ. ବି. ଶଲ୍ଲକୀ, (ବିଂ) ସୁନ୍ଦର ଶ୍ରୀଯୁକ୍ତା ।
ସୁଶ୍ରୁତ—ବିଂ. ( ସୁ + ଶ୍ରୁତ ) ବ.ବ୍ରୀ; ବେଦରେ ପାରଙ୍ଗମ, ବେଦବିଶାରଦ, ଉତ୍ତମରୂପେ ଶୁଣାଯାଇଥିବା, ପ୍ରସିଦ୍ଧ, (ବି) ହିନ୍ଦୁ ଚିକିତ୍ସାଶାସ୍ତ୍ର ପ୍ରଣେତା ଓ ବିଶ୍ୱାମିତ୍ରମୁନିଙ୍କ ପୁତ୍ର, (ଦ୍ୱାପରଯୁଗରେ) ସୁଶ୍ରୁତଋଷିଙ୍କ ପ୍ରଣୀତ ଶ୍ରୁତସଂହିତା ନାମକ ଚିକିତ୍ସାଗ୍ରନ୍ଥବିଶେଷ, ଗୋଷ୍ଠୀଶ୍ରାଦ୍ଧେ ତୃପ୍ତିପ୍ରଶ୍ନ । [ ଶ୍ରବଣ ।
ସୁଶ୍ରୁତି—ସ୍ତ୍ରୀ. ବି. ଉତ୍ତମ ଶ୍ରୁତି, ଉତ୍ତମ
ସୁଶ୍ରୂମ—ପୁଂ. ବି. ଧର୍ମଙ୍କର ଏକ ପୁତ୍ର ।
ସୁଶ୍ରୋଣି—ସ୍ତ୍ରୀ.ବିଂ.ସୁନ୍ଦର ନିତମ୍ବବତୀ ।
ସୁଶ୍ଲିଷ୍ଟ—ବିଂ. ଦୃଢ଼ରୂପେ ସଂଯୁକ୍ତ, ଉତ୍ତମରୂପେ ଲଗ୍ନ ବା ଯୁକ୍ତ ।
ସୁଶ୍ଲୋକ—ପୁଂ. ବିଂ. (ବ.ବ୍ରୀ) ପୁଣ୍ୟଶ୍ଲୋକ, ପୁଣ୍ୟକୀର୍ତ୍ତି, ସୁପ୍ରସିଦ୍ଧ, (ସ୍ତ୍ରୀ) ସୁଶ୍ଲୋକା ।
ସୁଶ୍ଲୋକ୍ୟ—ବି. ଉତ୍ତମ ଶ୍ଲୋକକଥନ ।
ସୁଶ୍ୱ—ବିଂ. (ବ.ବ୍ରୀ) ଆଗାମୀକାଲି ଯାହାରି ପକ୍ଷେ ଶୁଭ ।
ସୁଷବୀ—ବି. (ସୁ + ସୁ + ମି.ଅ + ଈ) କାଳବେଲି, କଲରା, କୃଷ୍ଣଜୀରକ, କଳାଜୀରା, ଚୁପିକଲରା ।
ସୁଷମ—ବିଂ. (ସୁ + ଷମ) ଅତି ସମାନ, ତୁଲ୍ୟ, ସଦୃଶ, ସୁନ୍ଦର, (ସ୍ତ୍ରୀ) ସୁଷମା, (ବି) ଛନ୍ଦୋଭେଦ, (ଗ୍ରା.ବି-ପଦ୍ୟ) ସୁଷମା, ଶୋଭା, ସୌନ୍ଦର୍ଯ୍ୟ ।
ସୁଷମଦୁଃଷମା—ସ୍ତ୍ରୀ. ବି. ଜୈନମତରେ ତୃତୀୟ ଅବସର୍ପିଣୀ ଓ ଚତୁର୍ଥ ଉତ୍ସର୍ପିଣୀର କଥା ।
ସୁଷମା—ବି. ( କ.ଧା ) ପରମଶୋଭା, ସୌନ୍ଦର୍ଯ୍ୟ, ସୁନ୍ଦର ସମତା, ପ୍ରତି ଚରଣରେ ୧୦ଟି ଅକ୍ଷର ଥିବା ବର୍ଣ୍ଣବୃତ୍ତବିଶେଷ, ( ସ୍ତ୍ରୀ.ବି ) ଅତି ସମାନା, ସୁନ୍ଦରୀ ।
ସୁଷମାମୟ—ବିଂ. ( ସୁଷମା + ମୟ ) ସାତିଶୟ ଶୋଭାମୟ ଅତିଶୟ ଶୋଭାଯୁକ୍ତ, (ସ୍ତ୍ରୀ) ସୁଷମାମୟୀ ।
ସୁଷାଢ଼—ପୁଂ. ବି. ଶିବ ।
ସୁଷି—ବି. ଶୁଷି, ମୁଣ୍ଡିକାଠ ମଧ୍ୟରେ ଥିବା ଲମ୍ବଛିଦ୍ର, ଛିଦ୍ର, ଗର୍ତ୍ତ, ବଂଶୀବିଶେଷ, (ପ୍ରା.ବଲାଙ୍ଗିରପାଟଣା.ବି)ଗଛର ମଜ୍ଜା ।
ସୁଷିକ—ବି. ଶୀତଳତା, (ବିଂ) ଶୀତଳ ।
ସୁଷିକ୍ତ—ବିଂ. ଉତ୍ତମରୂପେ ସିକ୍ତ ।
ସୁଷିବା—ଗ୍ରା. କ୍ରି. ଶୋଷିବା ।
ସୁଷିର—ବି. (ସୁଷି + ର + କ.ଅ) ଛିଦ୍ର, ବାଉଁଶ, ବେତ, ଅଗ୍ନି, ମୂଷିକ, ବାୟୁପୂରିତ ସଙ୍ଗୀତ ଯନ୍ତ୍ର, ବାୟୁମଣ୍ଡଳ, ଲବଙ୍ଗ, କାଠ, (ବିଂ) ଛିଦ୍ରଯୁକ୍ତ ।
ସୁଷିରା—ବି. (ବୈଦ୍ୟକ) ନଳିକାନାମକ ରକ୍ତାଭ ଗନ୍ଧଦ୍ରବ୍ୟ ଓ ତାହାର ଲତା, ବିଦ୍ରୁମ ଲତା, ନଦୀ ।

ସୁଷୀମ—ବି°. ଶୀତଗୁଣଯୁକ୍ତ, ମନୋଜ୍ଞ, (ବି) ଚନ୍ଦ୍ରକାନ୍ତମଣି, ସର୍ପବିଶେଷ,ସ୍ୱର୍ଣ୍ଣ, ସୁନା, (ସ୍ତ୍ରୀ) ସୁଷୀମା ।

ସୁଷୁ—ବି. (ଧ୍ୱନ୍ୟନୁକାରୀ) ଅବ୍ୟକ୍ତ ଶବ୍ଦ ।

ସୁଷୁପ୍ସୁ—ବି°.(ସ୍ୱପ୍+ସନ୍+ଉସ୍)ଶୋଇବାକୁ ଇଚ୍ଛୁକ, ନିଦ୍ରାତୁର ।

ସୁଷୁପ୍ତ—ବି°.(ସୁ+ସ୍ୱପ୍+କ.ତ)ଗଭୀର ନିଦ୍ରାଗ୍ରସ୍ତ, ଅଜ୍ଞ, ଆତ୍ମବୋଧଶୂନ୍ୟ,(ସ୍ତ୍ରୀ) ସୁଷୁପ୍ତା, (ବି-ଭା.ତ) ସୁଷୁପ୍ତି,ଗଭୀର ନିଦ୍ରା ।

ସୁଷୁପ୍ତି—ବି.(ସୁ+ସ୍ୱପ୍+ଭା.ତି)ସୁନିଦ୍ରା, ଗଭୀରନିଦ୍ରା,ସୂକ୍ଷ୍ମତର ନାଡ଼ୀରେ ମନଃସଂଯୋଗଜନିତ ଗଭୀରନିଦ୍ରା (ଏହି ଅବସ୍ଥାରେ କୌଣସି ସ୍ୱପ୍ନାଦି ଦର୍ଶନ ହୁଏ ନାହିଁ ।

ସୁଷୁପ୍ସ(ପ୍ସୁ)—ବି°. (ସ୍ୱପ୍+ସନ୍+ଅ.ଉ) ଶୋଇବାକୁ ଇଚ୍ଛୁକ ।

ସୁଷୁପ୍ସା—ବି.(ସ୍ୱପ୍+ସନ୍+ଆ)ଶୋଇବାକୁ ଇଚ୍ଛା ।

ସୁଷୁମ୍ନା(ମ୍ଣା)—ବି. (ସୁଷୁ+ମ୍ନା+କ.ଅ+ଆ) ଯୋଗଶାସ୍ତ୍ର,ମେରୁଦଣ୍ଡରେ ଥିବା ଇଡ଼ା ଓ ପିଙ୍ଗଳା ନାଡ଼ୀ ମଧ୍ୟସ୍ଥ ନାଡ଼ୀବିଶେଷ, (ବୈଦ୍ୟକ) ନାଭିର ମଧ୍ୟସ୍ଥ ଓ ଶରୀରର ଅନ୍ୟ ନାଡ଼ୀମାନଙ୍କ ଦ୍ୱାରା ବେଷ୍ଟିତ ନାଡ଼ୀବିଶେଷ, ସୂର୍ଯ୍ୟରଶ୍ମି ।

ସୁଷୁସ୍ତ—ଗ୍ରା. ବି.(ସଂ-ସୁଷିର)ଏକପ୍ରକାର ବଂଶୀ, ସିଟିମାରିବା ଯନ୍ତ୍ର ।

ସୁଷେଣ—ବି. ବ.ବ୍ରୀ; (ସୁ+ସେନା) ବିଷ୍ଣୁ, ମର୍କଟବିଶେଷ, ବାଳୀରାଜାଙ୍କ ଶ୍ୱଶୁର, ତାରାଙ୍କ ପିତା, କରମର୍ଦ୍ଦକ, କରନ୍ଦାକୋଳି ଗଛ, ବେତସ ଲତା, ଶ୍ରୀକୃଷ୍ଣଙ୍କର ଏକ ପୁତ୍ର, ପରୀକ୍ଷିତଙ୍କର ଏକ ପୁତ୍ର, ବସୁଦେବଙ୍କର ଏକ ପୁତ୍ର, ଶମ୍ବରର ଏକ ପୁତ୍ର, ଦ୍ୱିତୀୟ ମନୁଙ୍କ ଏକ ପୁତ୍ର, ଗନ୍ଧର୍ବବିଶେଷ, ଯକ୍ଷବିଶେଷ, ନାଗାସୁରବିଶେଷ, ଚିକିତ୍ସକ ।

ସୁଷେଣିକା-ବି.କୃଷ୍ଣନିବୃତା,କଳାତିହୁଡ଼ି ।

ସୁଷେଣୀ—ବି. ନିବୃତ୍, ତିହୁଡ଼ି ।

ସୁଷୋମା—ବି. ନଦୀବିଶେଷ (ଭାଗବତ) ।

ସୁଷ୍ଠୁ—ଅ.(ସୁ+ସ୍ଥା+କ.ଉ) ସୁନ୍ଦରରୂପେ, ସତ୍ୟ, ଶ୍ରେଷ୍ଠ, ଅତିଶୟ, ଯଥାଯୋଗ୍ୟ, ସୁନ୍ଦର ।

ସୁଷ୍ଠୁତା(ତ୍ୱ)—ବି. ( ସୁଷ୍ଠୁ+ଭା.ତା ) ମଙ୍ଗଳ, କଲ୍ୟାଣ, ସୌଭାଗ୍ୟ, ସୁନ୍ଦରତା ।

ସୁଷ୍ମ—ବି. ରଜ୍ଜୁ, ବେତସ, କରମର୍ଦ୍ଦକ, କରନ୍ଦାକୋଳି ।

ସୁସ୍ତା—ପ୍ରା. (ଲିଗଥା) କ୍ରି. ବି°.ଧୀରେ ଧୀରେ ।

ସୁଁସୁଁ—ଗ୍ରା. ଅ. (ଧ୍ୱନ୍ୟନୁକରଣ) ଶର୍ଦ୍ଦିଯୋଗୁଁ ନାକରୁ ବାହାରିବା ଅନୁନାସିକ ଶବ୍ଦ, ଶିକେଇକରି କାନ୍ଦିବାର ଶବ୍ଦ ।

ସୁସଂବାଦ—ବି. ( କ.ଧା ) ଶୁଭବାର୍ତ୍ତା, ସୁସମାଚାର ।

ସୁସଂଯତ—ବି°.(ସୁ+ସମ୍+ଯମ୍+ମି. ତ) ଦୃଢ଼ବଦ୍ଧ, ଯଥାବିଧି, ନିୟମିତ. ଯଥାବିଧି ସଂଯମବିଶିଷ୍ଟ,(ସ୍ତ୍ରୀ)ସୁସଂଯତା ।

ସୁସଂଯୁକ୍ତ—ବି°.(ସୁ+ସମ୍+ଯୁଜ୍+ତ) ଉତ୍ତମରୂପେ ସଂଯୁକ୍ତ, ଉତ୍ତମରୂପେ ମିଳିତ ।

ସୁସଂଯୁତ—ବି°.(ସୁ+ସମ୍+ଯୁ+ତ) ସୁସଂମିଶ୍ରିତ, ଉତ୍ତମରୂପେ ମିଳିତ ।

ସୁସଂରବ୍ଧ—ବି°.(ସୁ+ସମ୍+ରଭ୍+ତ) ଉତ୍ତମରୂପେ ସଂରବ୍ଧ,ଯାହା ଭଲରୂପେ ଆରମ୍ଭ କରାହୋଇଅଛି ।

ସୁସଂବୃତ—ବି°. (ସୁ+ସମ୍+ବୃ+ତ) ଉତ୍ତମରୂପେ ଆଚ୍ଛାଦିତ, ଯାହା ଭଲ ହୋଇ ଘୋଡ଼ାଆ ହୋଇଅଛି ।

ସୁସଂବୃଦ୍ଧ—ବି°.(ସୁ+ସମ୍+ବୃଧ୍+ତ) ଅତିଶୟ ବୃଦ୍ଧିବିଶିଷ୍ଟ ।

ସୁସଂସୃଷ୍ଟ—ବି°.(ସୁ+ସମ୍+ସୃଜ୍+ତ) ଉତ୍ତମରୂପେ ସଂସୃଷ୍ଟ, ଉତ୍ତମରୂପେ ଜଡ଼ିତ ।

ସୁସଂସ୍କୃତ—ବି°(ସୁ+ସମ୍+କୃ+ତ) ଉତ୍ତମରୂପେ ପକ୍ୱ ବା ସିକ୍ତ,ଘୃତାଦି ଦ୍ୱାରା ପ୍ରସ୍ତୁତ ସଂସ୍କୃତ ( ବ୍ୟଞ୍ଜନାଦି ), ଯାହାର ଉତ୍ତମରୂପେ ସଂସ୍କାର କରାଯାଇଅଛି ।

ସୁସଂସ୍ଥିତ—ବି°. (ସୁ+ସମ୍+ସ୍ଥା+ତ) ଉତ୍ତମରୂପେ ସଂସ୍ଥିତ, ସମ୍ୟକ୍ ସ୍ଥିତିବିଶିଷ୍ଟ ।

ସୁସଂହତ—ବି°. (ସୁ+ସମ୍+ହନ୍+ତ) ଅତିଶୟ ସଂହତ, ବିଶେଷରୂପେ ମିଳିତ,ଅତି ଦୃଢ଼,ସମ୍ୟକ୍‌ପ୍ରକାରେ ହତ ।

ସୁସଂହୃଷ୍ଟ-ବି°. (ସୁ+ସମ୍+ହୃଷ୍+ତ) ଅତିଶୟ ସଂହୃଷ୍ଟ,ଅତିଶୟ ଆହ୍ଲାଦିତ ।

ସୁସଙ୍କାଶ—ବି°. ଅତିଶୟ ପ୍ରକାଶମାନ ।

ସୁସଙ୍କୁଳ—ପୁଂ. କ୍ଲୀ. ବି°. ଅତି ସଙ୍କୁଳ, ଘୋରତରଯୁକ୍ତ,ଅତି ସଙ୍କୀର୍ଣ୍ଣ,ଅତିଶୟ ଲୋକାଦି ଦ୍ୱାରା ନିରବକାଶ ।

ସୁସଙ୍କ୍ରୁଦ୍ଧ—ବି°. (ସୁ+ସମ୍+କ୍ରୁଧ୍+ତ) ଅତିଶୟ କ୍ରୋଧବିଶିଷ୍ଟ ।

ସୁସଙ୍ଗ—ବି. ଉତ୍ତମ ସଙ୍ଗ,ସାଧୁଙ୍କ ସଙ୍ଗ ।

ସୁସଙ୍ଗତ—ବି°. (ସୁ+ସଙ୍ଗତ)ଉତ୍ତମରୂପେ ଯୁକ୍ତିଯୁକ୍ତ,ସୁଯୋଗ୍ୟ,ନିତ୍ୟ,ଅତି ଉଚିତ, (ସ୍ତ୍ରୀ) ସୁସଙ୍ଗତା ।

ସୁସଙ୍ଗୃହୀତ—ବି°. (ସୁ+ସମ୍+ଗ୍ରହ+ତ)ଉତ୍ତମରୂପେ ସଂଗୃହୀତ,ଉତ୍ତମରୂପେ ସଂରକ୍ଷିତ ।

ସୁସଙ୍ଗ୍ରହ—ବି. (ସୁ+ସମ୍+ଗ୍ରହ+ଅ) ଉତ୍ତମରୂପେ ସଂଗ୍ରହ,ଯାହା ଅନାୟାସରେ ସଂଗ୍ରହ କରାଯାଏ ।

ସୁସଜ୍ଜ—ବି°. ବ.ବ୍ରୀ, (ସୁ+ସଜ୍ଜ+ଅ) ଉତ୍ତମରୂପେ ସଜ୍ଜିତ ବା ଅଳଂକୃତ, (ସ୍ତ୍ରୀ) ସୁସଜ୍ଜା ।

ସୁସଜ୍ଜା—ସ୍ତ୍ରୀ.ବି°. (ସୁସଜ୍ଜ+ଆ) ଉତ୍ତମରୂପେ ସଜ୍ଜିତା, (ସ୍ତ୍ରୀ.ବି-କ.ଧା) ଉତ୍ତମ ସଜ୍ଜା ।

ସୁସଜ୍ଜିତ—ବି°. ଉତ୍ତମରୂପେ ସଜ୍ଜିତ, ସୁବିନ୍ୟସ୍ତ, (ସ୍ତ୍ରୀ) ସୁସଜ୍ଜିତା ।

ସୁସଜ୍ଜୀକୃତ—ପୁଂ.ବି°. (ସୁ+ସଜ୍ଜୀକୃତ) ଯାହା ଉତ୍ତମରୂପେ ସଜ୍ଜିତ ବା ଅଳଙ୍କୃତ କରାଯାଇଅଛି, (ସ୍ତ୍ରୀ) ସୁସଜ୍ଜୀକୃତା ।

ସୁସଜ୍ଜୀଭୂତ—ପୁଂ.ବି°. (ସୁ+ସଜ୍ଜୀଭୂତ) ଯାହା ବା ଯେ ପୂର୍ବେ ସୁସଜ୍ଜିତ ନ ଥିଲା ଓ ବର୍ତ୍ତମାନ ନିଜେ ସୁସଜ୍ଜିତ ହୋଇଅଛି, (ସ୍ତ୍ରୀ) ସୁସଜ୍ଜୀଭୂତା ।

ସୁସଞ୍ଚ—ଗ୍ରା. ବି°. (ସଂ-ସୁସଜ୍ଜ) ଅତି ସୁନ୍ଦର, ସଜ୍ଜିତ, ପ୍ରସ୍ତୁତ ।

ସୁସଞ୍ଚିତ—ବି°. ଉତ୍ତମରୂପେ ବା ଯତ୍ନ-ପୂର୍ବକ ସାଇତା ହୋଇଥିବା, (ବି) ସୁସଞ୍ଚୟ ।

ସୁସଞ୍ଚିବା—ଗ୍ରା. କ୍ରି. ଯତ୍ନପୂର୍ବକ ବା ଉତ୍ତମ-ରୂପେ ସଞ୍ଚୟ କରିବା ।

ସୁସତ୍କୃତ—ବି°. ଅତି ସତ୍କୃତ, ଅତି-ଶୟ ପୂଜିତ ।

ସୁସତ୍ୟା—ସ୍ତ୍ରୀ. ବି. ଜନକ ରାଜାଙ୍କର ଏକ ଭାର୍ଯ୍ୟା ।

ସୁସନ—ପୁ°. ବି°. ଦସ୍ତାନ୍ତ ।

ସୁସନ୍ତୁଷ୍ଟ—ବି°. (ସୁ+ସମ୍+ତୁଷ୍+ତ) ଅତିଶୟ ସନ୍ତୁଷ୍ଟ, ଅତିଶୟ ଆହ୍ଲାଦିତ ।

ସୁସନ୍ତୋଷ—ବି°. ଅତି ସନ୍ତୁଷ୍ଟ, (ବି) ଅତି ସନ୍ତୋଷ ।

ସୁସନ୍ନଦ୍ଧ—ବି°. (ସୁ+ସମ୍+ନହ୍+ତ) ଅତି ସନ୍ନଦ୍ଧ, ଅତିଶୟ ଖ୍ୟାତ ।

ସୁସନ୍ଧି—ବି°. ସତ୍ୟସନ୍ଧି, ସତ୍ୟପ୍ରତିଜ୍ଞ ।

ସୁସନ୍ନତ—ବି°. (ସୁ+ସମ୍+ନମ୍+ତ) ଅତି ସନ୍ନତ, ଅତିଶୟ ନତ ।

ସୁସଖୀ—ବି. ସୁଷଖୀ ଦେଖ ।

ସୁସମୟ—ବି. (କ.ଧା) ଉତ୍ତମ ସମୟ, ସମ୍ପତ୍ତିର କାଳ, ସୁଦିନ, ସୁଖର ଅବସ୍ଥା ।

ସୁସମାଚାର—ବି. ସୁସମ୍ବାଦ, ଉତ୍ତମ ସମ୍ବାଦ, ଶୁଭଖବର ।

ସୁସମାପ୍ତ—ବି°. ଯାହା ଉତ୍ତମରୂପେ ସମାପନ ହୋଇଅଛି ।

ସୁସମାହିତ—ବି°. (ସୁ+ସମ୍+ଧା+ତ) ସୁସମାଧାନବିଶିଷ୍ଟ, ଅତିଶୟ ଏକାଗ୍ର-ଚିତ୍ତ ।

ସୁସମିଦ୍ଧ—ବି°. ଅତି ପ୍ରଜ୍ୱଳିତ, (ବି) ଅଗ୍ନିଙ୍କର ନାମବିଶେଷ ।

ସୁସମୁଦ୍ଧ—ବି°. ଯେ ସକଳ ଅଙ୍ଗ ଉତ୍ତମ-ରୂପେ ସଙ୍କୁଚିତ କରିଅଛି ।

ସୁସମୃଦ୍ଧ—ବି°. ଅତ୍ୟନ୍ତ ସମୃଦ୍ଧିଶାଳୀ, ଅତିଶୟ ସମ୍ପତ୍ତିଶାଳୀ ।

ସୁସମେ—ଗ୍ରା. ଅ. (ସଂ-ସୁସମ) ସମାନ, ସଦୃଶ ।

ସୁସମ୍ପତ୍(ଦ୍)—ବି. ସୌଭାଗ୍ୟ ।

ସୁସମ୍ପନ୍ନ—ବି°. ଉତ୍ତମରୂପେ ନିଷ୍ପନ୍ନ, ଅତି ଧନାଢ଼୍ୟ, ଅତିଶୟ ସମୃଦ୍ଧିଶାଳୀ, ସମ୍ୟକ୍ ସାଧିତ, ଲକ୍ଷଣ ସଙ୍ଗତିପନ୍ନ, (ସ୍ତ୍ରୀ) ସୁସମ୍ପନ୍ନା, (ବି) ସୁସମ୍ପାଦନ ।

ସୁସମ୍ପିଷ୍ଟ—ବି°. (ସୁ+ସମ୍+ପିଷ୍+ତ) ଉତ୍ତମରୂପେ ଚୂର୍ଣ୍ଣିତ, ଯାହା ଉତ୍ତମ-ରୂପେ ପେଷଣ କରାହୋଇଅଛି ।

ସୁସମ୍ପ୍ରୀତ—ବି°. ଅତିଶୟ ସନ୍ତୁଷ୍ଟ, ଅତି-ଶୟ ପ୍ରଣୟବିଶିଷ୍ଟ ।

ସୁସମ୍ପୂର୍ଣ୍ଣ—ବି°. (ସୁ+ସମ୍+ପୃ+ତ) ଉତ୍ତମରୂପେ ସମ୍ପୂର୍ଣ୍ଣ, ଯାହା ଭଲରୂପେ ଶେଷ ହୋଇଅଛି ।

ସୁସମ୍ବଦ୍ଧ—ବି°. ଉତ୍ତମରୂପେ ବଦ୍ଧ, ଉତ୍ତମ-ରୂପେ ମିଳିତ ।

ସୁସମ୍ବାଦ—ବି. ଆନନ୍ଦଜନକ ଖବର ।

ସୁସମ୍ମତ—ବି°. (ସୁ+ସମ୍+ମନ୍+ତ) ଅତିଶୟ ସମ୍ମତ ।

ସୁସଲିଳ—ବି°. ଉତ୍ତମ ସଲିଳଯୁକ୍ତ, (ବି) ଉତ୍ତମ ଜଳ ।

ସୁସହ—ବି°. (ସୁ+ସହ୍+ମି.ଅ) ଅନାୟାସରେ ସହନୀୟ, ସୁଖସହ୍ୟ, (ସ୍ତ୍ରୀ) ସୁସହା, (ବି) ଶିବ ।

ସୁସହାୟ—ବି°. ଉତ୍ତମ ସହାୟବିଶିଷ୍ଟ ।

ସୁସାଧନ—ବି°. ଉତ୍ତମ ସାଧନବିଶିଷ୍ଟ, (ବି) ଉତ୍ତମ ସାଧନ । [ ସୁସମ୍ପନ୍ନ ।

ସୁସାଧିତ—ବି°. ଉତ୍ତମରୂପେ ସାଧିତ.

ସୁସାଧ୍ୟ—ବି°. (ସୁ+ସାଧ୍+ମି.ଯ) ସୁକର, ଅନାୟାସେ ସାଧ୍ୟ, ସହଜରେ ସାଧନୀୟ ।

ସୁସାର—ବି°. ବି.ଗ୍ରା; (ସୁ+ସାର) ଶ୍ରେଷ୍ଠ, ସର୍ବୋତ୍କୃଷ୍ଟ, ଅତ୍ୟନ୍ତ ସାର-ବିଶିଷ୍ଟ, ସୁଦୃଢ଼, (ବି) ଉତ୍ତମ ସାର. ପାରଗତା, (ବି.ଗ୍ରା) ରକ୍ତଖଦିର, ଇନ୍ଦ୍ର-ନୀଳମଣି, (ଗ୍ରା.ବି°) ପ୍ରଚୁର, ଯଥେଷ୍ଟ, ଅତ୍ୟନ୍ତ ଆଦରଯୁକ୍ତ, ଉତ୍ତମ, ସହଜ, ସଚରିତ୍ର, ଦୋଷମୁକ୍ତ, ସୁସ୍ଥ, ହୃଷ୍ଟତା-ଯୁକ୍ତ (ଶରୀର), ରୋଗମୁକ୍ତ (ଦେହ), ମରାମତି କରାଯାଇ ସଜଡ଼ାଯାଇଥିବା ।

ସୁସାରବଚନ—ଗ୍ରା. ବି. ମିଠାକଥା, ସତ-କଥା ।

ସୁସାରନେତ୍ର—ବି. ସ୍ଫଟିକ ।

ସୁସାରିବା—ଗ୍ରା. କ୍ରି. ଅସୁସ୍ଥ ଦେହକୁ ସୁସ୍ଥାବସ୍ଥାକୁ ଆଣିବା, ଦୋଷମୁକ୍ତ କରିବା ।

ସୁସାରେରେ—ଗ୍ରା. କ୍ରି. ବି°. ଉତ୍ତମରୂପେ, ନିର୍ଦ୍ଦୋଷରୂପେ, ଅତ୍ୟନ୍ତ ଆଦରସହ-କାରେ, ବିନା ଆପତ୍ତିରେ ।

ସୁସିକତା—ବି. (ସୁ+ସିକତା) ଉତ୍ତମ ବାଲୁକା, ଶର୍କରା, ଚିନି ।

ସୁସିକ୍ତ—ବି°. ଉତ୍ତମରୂପେ ସିକ୍ତ ।

ସୁସିତ—ବି°. ଉତ୍ତମ ବର୍ଣ୍ଣବିଶିଷ୍ଟ ।

ସୁସିଦ୍ଧ—ବି°. ଉତ୍ତମରୂପେ ସିଦ୍ଧ ବା ପକ୍ୱ (ଅନ୍ନାଦି), ଉତ୍ତମରୂପେ ସଫଳ (ଉଦ୍ଦେଶ୍ୟ, କର୍ମ), ବିଦ୍ୟା, ତପସ୍ୟା, ଯୋଗସାଧନା-ଦିରେ ଉତ୍ତମରୂପେ ସିଦ୍ଧିଲାଭ କରି-ଥିବା (ବ୍ୟକ୍ତି) ।

ସୁସିଦ୍ଧାର୍ଥ—ବି°. ସୁସିଦ୍ଧ ଅର୍ଥବିଶିଷ୍ଟ ।

ସୁସିଦ୍ଧି-ବି. ସାହିତ୍ୟର ଅଳଂକାରବିଶେଷ ।

ସୁସିର—ବି. ବାଗ୍‌ଭଟ ଅନୁସାରେ ଦାନ୍ତ-ମୂଳର ସଢ଼ସା ରୋଗ ।

ସୁସୀତା—ବି. ଶତପଦୀ, ସେବତୀ ।

ସୁସୀମା—ବି. (ନାମ) ବୃତ୍ରହନ୍ତାତା, ଷଷ୍ଠ-ଜିନଙ୍କ ଜନନୀ, ଉତ୍ତମ ସୀମା ।

ସୁସୁ—ଗ୍ରା. ଅ. (ଧ୍ୱନ୍ୟନୁକରଣ) ପବନର ଜୋରରେ ବହିବାର ଶବ୍ଦ, ସର୍ପ ଗର୍ଜିବାର ଶବ୍ଦ, ଓଠଦ୍ୱାରା ସିଟିମାରିବାର ଶବ୍ଦ ।

ସୁସୁଖ—ବି°. (ବି.ଗ୍ରା) ଉତ୍ତମ ସୁଖବିଶିଷ୍ଟ ।

ସୁସୁଖୀ—ବି°. (ସୁ+ସୁଖ+ଇନ୍) ଉତ୍ତମ ସୁଖ, ଅତି ସୁଖୀ ।

ସୁସୁନ(ନି)—ପ୍ରାଦେ. (ମେଦିନୀପୁର ଓ ବାଲେଶ୍ୱର) ସୁନୁସୁନିଆ ଶାଗ ।

ସୁସୁରପ୍ରିୟା—ବି. କାଶପୁଷ୍ପ ।

ସୁସୂକ୍ଷ୍ମ—ବି°. ଅତି ସୂକ୍ଷ୍ମ, (ବି) ପରମାଣୁ ।

ସୁସୂକ୍ଷ୍ମପତ୍ରା—ବି. ଜଟାମାଂସୀ ।

ସୁସେବିତ—ବି°. (ସୁ+ସେବ୍+ତ) ଉତ୍ତମରୂପେ ସେବିତ, ବିଶେଷଭାବରେ ପୂଜିତ ।

ସୁସେବ୍ୟ—ବିଂ. ( ସୁ+ସେବ୍+ଯ ) ସୁଖସେବ୍ୟ, ଉତ୍ତମରୂପେ ସେବନୀୟ ।

ସୁସୈନ୍ଧବୀ—ସ୍ତ୍ରୀ. ବି. ସିନ୍ଧୁଦେଶଜାତ ଉତ୍କୃଷ୍ଟ ଘୋଟକୀ ।

ସୁସୌଭଗ—ବି. ଦାମ୍ପତ୍ୟସୁଖ ।

ସୁସ୍କନ୍ଦନ—ବି. ବର୍ବର ବୃକ୍ଷ ।

ସୁସ୍କନ୍ଧ—ବିଂ. ଉତ୍ତମ ସ୍କନ୍ଧଯୁକ୍ତ, ଉତ୍ତମ ସ୍କନ୍ଧବିଶିଷ୍ଟ ।

ସୁସ୍କିବା—ପ୍ରା. ( ଲଶଆ ) କ୍ରି. ସକେଇ ସକେଇ କାନ୍ଦିବା ।

ସୁସ୍ତ—ଗ୍ରା. ବିଂ. (ସଂ-ସୁସ୍ଥ) ସୁସ୍ଥ, ନିଶ୍ଚିନ୍ତ, ଚିନ୍ତାଶୂନ୍ୟ, (ବି) ସୁସ୍ଥତା, ସୁଖ, ସ୍ୱଚ୍ଛନ୍ଦତା, (ଯା.ବିଂ) ଦୁର୍ବଳ, ଚିନ୍ତା ବା ଲଜ୍ଜାଆଦି ଯୋଗୁଁ ନିଷ୍ପ୍ରଭ ବା ନିସ୍ତେଜ, ଯାହାର ବେଗ ପ୍ରବଳତା ଗତି ଆଦି ମନ୍ଦହୋଇ ଯାଇଅଛି, ମାନ୍ଦା, ଅଳସ, ଆଳସ୍ୟପରିପୂର୍ଣ୍ଣ, ମଠୁଆ, ଶିଥିଳ, ଦୀର୍ଘସୂତ୍ରୀ ।

ସୁସ୍ତନା—ସ୍ତ୍ରୀ. ବି ଓ ବିଂ. ବ.ବ୍ରୀ; (ସୁ+ସ୍ତନ+ଆ) ସୁନ୍ଦର ସ୍ତନବିଶିଷ୍ଟା ନାରୀ. ପ୍ରଥମଥର ରଜସ୍ୱଳା ହୋଇଥିବା ସ୍ତ୍ରୀ ।

ସୁସ୍ତା—ପ୍ରା. (ବାଲେ) ବି. କ୍ଷୁଦ୍ର ମତ୍ସ୍ୟବିଶେଷ ।

ସୁସ୍ତାଇବା—ପ୍ରା. ( ଲଶଆ ) କ୍ରି. ଥକା ମାରିବା, ଶ୍ରମ ମେଣ୍ଟାଇବା ।

ସୁସ୍ତି—ଯା. ବିଂ. ଅଳସୁଆ, ଦୀର୍ଘସୂତ୍ରୀ, ମଠୁଆ, ଶିଥିଳ, (ବି) ବିଶ୍ରାମ, ମଠୁଆପଣ, ଶିଥିଳତା, ଦୀର୍ଘସୂତ୍ରିତା ।

ସୁସ୍ତ୍ରୀ—ସ୍ତ୍ରୀ. ବି.ଉତ୍ତମନାରୀ, ସୁନ୍ଦରୀ ସ୍ତ୍ରୀ ।

ସୁସ୍ଥ—ପୁଂ. ବିଂ. ( ସୁ+ସ୍ଥା+କ.ଅ ) ସ୍ୱାସ୍ଥ୍ୟଯୁକ୍ତ, ନୀରୋଗ, ସୁସ୍ଥିର, ସ୍ୱଚ୍ଛନ୍ଦ, ସୁଖୀ, ନିଶ୍ଚିନ୍ତ, ସୁନ୍ଦର, ଉତ୍ତମରୂପେ ସ୍ଥିତ, (ସ୍ତ୍ରୀ) ସୁସ୍ଥା ।

ସୁସ୍ଥକାୟ—ବି. (କ.ଧା)ନୀରୋଗଶରୀର, (ବିଂ-ବ.ବ୍ରୀ) ନୀରୋଗ ଶରୀରବିଶିଷ୍ଟ, ସ୍ୱଚ୍ଛନ୍ଦ, (ସ୍ତ୍ରୀ) ସୁସ୍ଥକାୟା ।

ସୁସ୍ଥଚିତ୍ତ—ପୁଂ. ବିଂ.(ବ.ବ୍ରୀ)ପ୍ରସନ୍ନଚିତ୍ତ, ସୁଖୀ, (ସ୍ତ୍ରୀ) ସୁସ୍ଥଚିତ୍ତା, ( ବି-କ.ଧା ) ସ୍ଥିରମନଃ, ନିଶ୍ଚିନ୍ତ ଅନ୍ତଃକରଣ ।

ସୁସ୍ଥତା(ତ୍ୱ)—ବି. ( ସୁସ୍ଥ+ଭା.ତା ) ନୀରୋଗତା, ସ୍ୱଚ୍ଛନ୍ଦତା, ସୁଖ, ସୁସ୍ଥିରତା, କୁଶଳ, କ୍ଷେମ, ଆନନ୍ଦ ।

ସୁସ୍ଥାନ-ବି.ଉତ୍ତମ ସ୍ଥାନ,ସୁଖକର ଜାଗା ।

ସୁସ୍ଥି—ଯା. ବି ଓ ବିଂ. ସୁସ୍ତ ଦେଖ ।

ସୁସ୍ଥିତ—ପୁଂ.ବିଂ. ଉତ୍ତମରୂପେ ଅବସ୍ଥିତ ସୁସ୍ଥ, ଭାଗ୍ୟବାନ୍, ପ୍ରସନ୍ନ, ଆନନ୍ଦିତ, (ସ୍ତ୍ରୀ) ସୁସ୍ଥିତା, ( ବି ) ଯେଉଁ ବାସ୍ତୁର ବା ଘରର ଚତୁଃପାର୍ଶ୍ୱରେ ରାସ୍ତା ବା ମାର୍ଗ ଥାଏ. ଘୋଡାଙ୍କର ଏକ ରୋଗ. ଜୈନ ତୀର୍ଥଙ୍କର ବିଶେଷ । [ନବୃତ୍ତ ।

ସୁସ୍ଥିତତ୍ୱ—ବି. ସୁଖରେ ଅବସ୍ଥାନ,

ସୁସ୍ଥିତି—ସ୍ତ୍ରୀ. ବି. ( ସୁ+ସ୍ଥା+ତି ) ଶୋଭନସ୍ଥିତି, ଉତ୍ତମରୂପେ ଅବସ୍ଥାନ, ସୁଖରେ ଅବସ୍ଥାନ ।

ସୁସ୍ଥିର—ପୁଂ.ବିଂ.ଅତି ସ୍ଥିର.ଅବଚଳିତ. ଦୃଢ, ସୁନିଶ୍ଚିତ, (ସ୍ତ୍ରୀ) ସୁସ୍ଥିରା ।

ସୁସ୍ଥିରା—ସ୍ତ୍ରୀ. ବିଂ. ସୁସ୍ଥିରର ସ୍ତ୍ରୀଲିଙ୍ଗ, (ବି) ରକ୍ତବାହିନୀ ଶିରା ।

ସୁସ୍ଥୀ—ଗ୍ରା.ବିଂ. ଅଳସୁଆ,ମଠୁଆ,ସୁଖୀ ।

ସୁସ୍ନା—ବି.(ସୁ+ସ୍ନା+କ୍ୱିପ୍)ଶମୀଧାନ୍ୟ ଭେଦ, ଖେସାରି ।

ସୁସ୍ନାତ—ପୁଂ. ବିଂ. (ସୁ+ସ୍ନାତ) ଯଜ୍ଞ ଶେଷରେ ସ୍ନାନକାରୀ, ସୁନ୍ଦରରୂପେ କୃତ ସ୍ନାନ,ମାଙ୍ଗଳିକଦ୍ରବ୍ୟ ବା ସର୍ବୌଷଧି ମିଶ୍ରିତ ଜଳଦ୍ୱାରା କୃତ ସ୍ନାନ, ( ସ୍ତ୍ରୀ ) ସୁସ୍ନାତା, ( ବି-ସୁ+ସ୍ନା+ଭା.ତ ) ସୁସ୍ନାନ ।

ସୁସ୍ନାନ—ବି. ଉତ୍ତମସ୍ନାନ,ଯଜ୍ଞାନ୍ତସ୍ନାନ, ଆବଭୃଥ,ସର୍ବୌଷଧି ମିଶ୍ରିତ ଜଳରେ ସ୍ନାନ ।

ସୁସ୍ନିଗ୍ଧ—ବିଂ. ଅତି ସ୍ନିଗ୍ଧ,ଅତି ମୃଦୁ, ଅତି ମଧୁର, ସୁଶୀତଳ ।

ସୁସ୍ନେହା—ଗ୍ରା. ସ୍ତ୍ରୀ. ବିଂ. ଉତ୍ତମ ସ୍ନେହବିଶିଷ୍ଟା, ସ୍ନେହକର୍ତ୍ତ୍ରୀ ।

ସୁସ୍ପର୍ଶ—ବିଂ. ସୁଖସ୍ପର୍ଶ ।

ସୁସ୍ପଷ୍ଟ—ବିଂ. ଅତିଶୟ ସ୍ପଷ୍ଟ, ସୁବ୍ୟକ୍ତ, (ବି) ସୁସ୍ପଷ୍ଟତା ।

ସୁସ୍ୱଧା—ବି. କଲ୍ୟାଣ,ମଙ୍ଗଳ,ସୌଭାଗ୍ୟ ।

ସୁସ୍ୱନ—ବିଂ. (ବ.ବ୍ରୀ) ଉତ୍ତମ ବା ମଧୁର ଧ୍ୱନିଯୁକ୍ତ, ଖୁବ୍ ଉଚ୍ଚ, ସୁନ୍ଦର, (ବି) ଶଙ୍ଖ ।

ସୁସ୍ୱପ୍ନ—ବି. ଶୁଭସୂଚକ ସ୍ୱପ୍ନ, ଆନନ୍ଦଦାୟକ ସ୍ୱପ୍ନ, ଶିବ ।

ସୁସ୍ୱର—ବି.ମଧୁରସ୍ୱର,ମଧୁର କଣ୍ଠସ୍ୱର, ଉଚ୍ଚ ଓ ସ୍ପଷ୍ଟ ସ୍ୱର, ( ପୁଂ.ବିଂ-ବ.ବ୍ରୀ ) ସୁନ୍ଦରସ୍ୱର ଉତ୍ପାଦନକାରୀ (ଯନ୍ତ୍ର), ମଧୁର କଣ୍ଠସ୍ୱରବିଶିଷ୍ଟ,ସୁକଣ୍ଠ,ଉଚ୍ଚସ୍ୱର ବିଶିଷ୍ଟ, (ସ୍ତ୍ରୀ) ସୁସ୍ୱରା ।

ସୁସ୍ୱରୀ—ଗ୍ରା. ବି. (ସଂ-ସୁସ୍ୱର) ମୁଖବାଦିତ ବାଦ୍ୟବିଶେଷ ।

ସୁସ୍ୱାଦ—ବିଂ. (ବ.ବ୍ରୀ) ସୁସ୍ୱାଦୁ, ଉତ୍ତମ ସ୍ୱାଦୁଯୁକ୍ତ, ( ପୁଂ.ବି-କ.ଧା ) ଉତ୍ତମ ସ୍ୱାଦ ବା ମିଷ୍ଟତା ।

ସୁସ୍ୱାଦୁ—ବିଂ. ଉତ୍ତମ ସ୍ୱାଦବିଶିଷ୍ଟ ।

ସୁସ୍ୱାପ—ପୁଂ. ବି. ସୁନିଦ୍ରା ।

ସୁସ୍ୱିନ୍ନ—ବିଂ.ବିଶେଷରୂପେ ପକ୍ୱ,ଉତ୍ତମରୂପେ ପାଚିଥିବା ।

ସୁସ୍ମିତ—ପୁଂ. ବିଂ. (ବ.ବ୍ରୀ) ସୁନ୍ଦର ଈଷଦ୍ଧାସ୍ୟଯୁକ୍ତ, ହସକୁଳା, ( ସ୍ତ୍ରୀ ) ସୁସ୍ମିତା ।

ସୁସ୍ମିତା—ସ୍ତ୍ରୀ. ବିଂ. (ବ.ବ୍ରୀ) ସୁନ୍ଦର ଈଷତ୍ ହାସ ଯୁକ୍ତା,(ସ୍ତ୍ରୀ.ବି)ସ୍ତ୍ରୀବିଶେଷ ।

ସୁହତ—ବିଂ.(ସୁ+ହନ୍+ତ)ଉତ୍ତମରୂପେ ହତ ।

ସୁହନୁ—ପୁଂ. ବି. ଅସୁରବିଶେଷ ।

ସୁହସ୍ତ—ବି. ସୁନ୍ଦର ହାତ, ଦାନଶୀଳ ହସ୍ତ, ଶୁଭସୂଚକ ହସ୍ତ, (ନାମ) ଧୃତରାଷ୍ଟ୍ରଙ୍କର ଏକ ପୁତ୍ର, (ପୁଂ.ବିଂ-ବ.ବ୍ରୀ) ସୁନ୍ଦର ହସ୍ତବିଶିଷ୍ଟ, ଶୁଭସୂଚକ ହସ୍ତବିଶିଷ୍ଟ, (ସ୍ତ୍ରୀ) ସୁହସ୍ତା ।

ସୁହସ୍ତି(ସ୍ତୀ)—ବି.(ନାମ)ବୌଦ୍ଧବିଶେଷ, ଜୈନାଚାର୍ଯ୍ୟବିଶେଷ ।

ସୁହା—ଗ୍ରା. ବି. (ସଂ-ସହ୍ ଧାତୁ) ସହ୍ୟ କରିବା ।

ସୁହାଇବା—ଗ୍ରା. କ୍ରି. ସହିବା କ୍ରିୟାର ଣିଜନ୍ତରୂପ. ସହ୍ୟହେବା,ସୁହାଯିବା ।

ସୁହାଗ—ଗ୍ରା. ବି. (ସଂ-ସୌଭାଗ୍ୟ) ଅଙ୍ଗ

ସ୍ନେହ, ସ୍ତ୍ରୀର ସୌଭାଗ୍ୟ ବା ପତିପ୍ରିୟା ହେବା ଅବସ୍ଥା । [ ଟାଙ୍ଗଣା ।

ସୁହାଗା—ଗ୍ରା. ବି. (ସଂ-ସୁଭଗ) ଟଙ୍କଣ.

ସୁହାଗାଖଇ—ଗ୍ରା.ବି.ନିଆଁରେ ପୋଡ଼ା ହିବା ଯୋଗୁଁ ଖଇ ପରି ଫୁଲିଥିବା ଟାଙ୍ଗଣା । [ ଦେଖ ।

ସୁହାଗିଆ(ହା)—ଗ୍ରା.ପୁଂ.ବିଂ. ସୁହାଗୀ

ସୁହାଗିନୀ—ଗ୍ରା. ସ୍ତ୍ରୀ. ବିଂ. ସ୍ନେହଶୀଳା, ଅତିରିକ୍ତ ସ୍ନେହଶୀଳା, (ଗ୍ରା. ସ୍ତ୍ରୀ. ବି) ସୁଭଗା ସ୍ତ୍ରୀ, ପତିବିଶିଷ୍ଟା ସ୍ତ୍ରୀ ।

ସୁହାଗୀ—ଗ୍ରା.ପୁଂ. ଓ ସ୍ତ୍ରୀ. ବିଂ ଯାହାକୁ ଅତିରିକ୍ତ ସ୍ନେହ କରାଯାଏ, ସ୍ନେହ-ପାତ୍ର, ଯେ ଅତି ସ୍ନେହକରେ,ସ୍ନେହ-ଶୀଳ, ସୌଭାଗ୍ୟବନ୍ତ ।

ସୁହାସି(ହେ)ବା—ଗ୍ରା. କ୍ରି. ସହିବାର କର୍ମବାଚ୍ୟରୂପ, ସହ୍ୟହେବା ।

ସୁହାସ(ସ୍ୟ)—ବି.ମଧୁରହାସ୍ୟ,ମୃଦୁହାସ. (ପୁଂ.ବିଂ) ମଧୁରହାସ୍ୟଯୁକ୍ତ, ( ସ୍ତ୍ରୀ ) ସୁହାସା(ସ୍ୟା) ।

ସୁହାସିନୀ—ସ୍ତ୍ରୀ. ବିଂ. (ସୁ+ହାସ+ଇନ୍+ଈ)ସୁନ୍ଦର ହାସ୍ୟଯୁକ୍ତା,ପ୍ରସନ୍ନ-ବଦନା, ମୃଦୁହାସ୍ୟକାରିଣୀ ।

ସୁହାସୀ—ପୁଂ.ବିଂ.(ସୁହାସ + ଇନ୍)ସୁହା-ସିନୀର ପୁଂଲିଙ୍ଗ, (ଗ୍ରା.ସ୍ତ୍ରୀ.ବିଂ)ସୁହାସିନୀ ଦେଖ ।

ସୁହିତ—ବିଂ. (ସୁ + ଧା + କ.ତ) ତୃପ୍ତ, ସନ୍ତୁଷ୍ଟ, ଅତିହିତ,ସାଧିତ, କୃତ, ଉପ-ଯୋଗୀ, (ମଂ.ତ) ସନ୍ତୁଷ୍ଟ ।

ସୁହିତା—ବି. ଅଗ୍ନିଙ୍କର ସପ୍ତଜିହ୍ୱା ମଧ୍ୟରୁ ଏକତମ, ରୁଦ୍ରଜଟା ।

ସୁହିରଣ୍ୟ—ବିଂ. ସୁନ୍ଦର ହିରଣ୍ୟଯୁକ୍ତ, ଅତି ରମଣୀୟ ଧନବିଶିଷ୍ଟ । [ସହିଜେ ।

ସୁହୁଜେ—ପ୍ରା. (ଲିତିଆ) କ୍ରି. ବିଂ.

ସୁହୃତ୍(ଦ୍)—ବି. ବ.ବ୍ରୀ; (ସୁ+ହୃତ୍) ମିତ୍ର, ସଦାନୁମତ ସଙ୍ଗୀ, ପ୍ରକୃତ ବନ୍ଧୁ, ସଖା, ଅନ୍ତରଙ୍ଗ ବନ୍ଧୁ, (ଜ୍ୟୋତିଷ) ଲଗ୍ନର ଚତୁର୍ଥ ବା ମିତ୍ର ସ୍ଥାନ, ( ବିଂ ) ଉତ୍ତମ ହୃଦୟବିଶିଷ୍ଟ ।

ସୁହୃଦୟ—ପୁଂ.ବିଂ(ବ.ବ୍ରୀ )ହୃଦୟାଳୁ. ପ୍ରଶସ୍ତମନାଃ,ସହୃଦୟ,ଉଦାରଚେତାଃ, ଶୁଦ୍ଧଚିତ୍ତ, ସ୍ନେହଶୀଳ, (ସ୍ତ୍ରୀ) ଦୟା ।

ସୁହୃଦ୍ବର—ପୁଂ.ବିଂ. ୬ତତ୍; (ସୁହୃଦ୍+ବର)ବନ୍ଧୁଶ୍ରେଷ୍ଠ,ଅତି ଉତ୍ତମ ବନ୍ଧୁ, (ସ୍ତ୍ରୀ) ସୁହୃଦ୍ବରା ।

ସୁହୃଦ୍ବଳ—ବି. ( କ.ଧା ) ମିତ୍ରରୂପ ସୈନ୍ୟ, ସୁହୃଦ୍ରୂପ ବଳ, (୬ତତ୍) ମିତ୍ରଦେଶ ।

ସୁହୋତା—ପୁଂ. ବି ଓ ବିଂ. ଉତ୍ତମ-ରୂପେ ହବନକାରୀ, (ସ୍ତ୍ରୀ) ସୁହୋତ୍ରୀ ।

ସୁହୋତ୍ର—ପୁଂ.ବି. (ନାମ) ଚନ୍ଦ୍ରବଂଶୀୟ ବୃହଦ୍ଧନୁରାଜାଙ୍କର ପୁତ୍ର, ସହଦେବଙ୍କ ଏକ ପୁତ୍ର.ଧୃତରାଷ୍ଟ୍ରଙ୍କ ଏକ ପୁତ୍ର,ବୈଦିକ ଋଷିବିଶେଷ, ଦୈତ୍ୟବିଶେଷ ।

ସୁହ୍ମ—ବି. (ସୁନ୍ଭ୍ + କ.ଥ) ପ୍ରାଚୀନ ଦେଶବିଶେଷ. ସୁହ୍ମଦେଶବାସୀ ପ୍ରାଚୀନ ଯବନ ଜାତିବିଶେଷ ।

ସୂ—(ଧାତୁ) ପ୍ରସବ କରିବା, ପୀଡ଼ନ କରିବା, ଉତ୍ପନ୍ନ ହେବା ।

ସୂ—ବି. (ସୁ + ଭା.କ୍ୱିପ୍) ସୂତି, ପ୍ରସବ. କ୍ଷେପ, ପ୍ରେରଣ, ଉତ୍ପାଦନ,(ବିଂ-ସୂ+କ.କ୍ୱିପ୍) ପ୍ରସୂ, ଯେ ପ୍ରସବ କରେ. ଉତ୍ପାଦକ ।

ସୂକ—ବି. (ସୂ+କ.କ୍ୱିପ୍+କ)ବାଣ, ବାତ, ପବନ, ଉତ୍ପଳ, ପଦ୍ମ ।

ସୂକର—ବି. ବାଣ,ବାତ,ଉତ୍ପଳ,ବରାହ, ଶୂକର, କୁମ୍ଭକାର, ମୃଗଭେଦ, ଧଳା-ଧାନ, ନରକବିଶେଷ,(ସ୍ତ୍ରୀ) ସୂକରୀ ।

ସୂକରକନ୍ଦ—ବି. ବାରାହୀକନ୍ଦ, ଭୂଇଁ-କଖାରୁ ।

ସୂକରକ୍ଷେତ୍ର—ବି.ମଥୁରାଜିଲ୍ଲାରେ ଆଜି କାଲି ସୋରୋ ନାମରେ ପ୍ରସିଦ୍ଧ ହିନ୍ଦୁ-ମାନଙ୍କ ତୀର୍ଥବିଶେଷ ।

ସୂକରଦଂଷ୍ଟ୍ର-ପୁଂ. ବି.କ୍ଷୁଦ୍ରରୋଗବିଶେଷ. ଏହା ଏକପ୍ରକାର ଗୁହ୍ୟଭ୍ରଂଶ ରୋଗ ।

ସୂକରନୟନ—ବି.କାଷ୍ଠର ଛିଦ୍ରବିଶେଷ. ଯେଉଁ କାଷ୍ଠ ଛିଦ୍ର ବିଷମ, ବିବର୍ଣ୍ଣ ଅଧିକ ଓ ପର୍ବପରିମାଣ ଦୀର୍ଘ ତାହା ସୂକର ନୟନ ନାମରେ ଖ୍ୟାତ, ସୂକର ଚକ୍ଷୁ । [ ଶିମ୍ବ ।

ସୂକରପାଦିକା—ବି.କପିକଚ୍ଛୁ,ବାଇଡ଼ଙ୍ଗ,

ସୂକରମୁଖ—ବି.ନରକବିଶେଷ ।

ସୂକରାକ୍ରାନ୍ତା—ସ୍ତ୍ରୀ.ବି.ବରାହାକ୍ରାନ୍ତା ।

ସୂକରାକ୍ଷିତା—ବି. ଶୂକରପରି ଅଧୋ-ଦୃଷ୍ଟି ବିଶିଷ୍ଟ । [ ବାରାହୀ ।

ସୂକରାସ୍ୟା—ସ୍ତ୍ରୀ. ବି. ଦେବୀବିଶେଷ,

ସୂକରାହ୍ୱୟ—ବି. ତ୍ରୁଟିପର୍ଣ୍ଣୀ ବୃକ୍ଷ ।

ସୂକରିକା—ବି. ଲତାଭେଦ ।

ସୂକରୀ—ବି. (ସୂକର + ଈ)-ମାଷ୍ଟୁଷୁରି, ବରାହାକ୍ରାନ୍ତା, ବାରାହୀ କନ୍ଦ, ବରାହୀ, ଦେବୀବିଶେଷ, ପକ୍ଷିବିଶେଷ ।

ସୂକରେଷ୍ଟ—ବି. ପକ୍ଷିବିଶେଷ, କସେରୁ, (ବିଂ) ଶୂକରପ୍ରିୟ ଦ୍ରବ୍ୟମାତ୍ର ।

ସୂକା—ସ୍ତ୍ରୀ.ବି. ଶାରିକା ପକ୍ଷିଣୀ ।

ସୂକ୍ତ—ବି.(ସୁ + ଉକ୍ତ)ବେଦୋକ୍ତ ସ୍ତୋତ୍ର ମନ୍ତ୍ରାଦି, ଉତ୍ତମଭାଷଣ, ସଦ୍ବଚନ, ମହା ପୁରୁଷମାନଙ୍କ ବାକ୍ୟ, ( ବିଂ ) ଉତ୍ତମ ରୂପେ କଥିତ ।

ସୂକ୍ତବାକ୍ୟ—କ୍ଲୀ. ବି. ଯଥୋଚିତବାକ୍ୟ, ସୁଷ୍ଠୁରୂପ ଉକ୍ତ ବାକ୍ୟ, ବୈଦିକ ସ୍ତୋତ୍ରାଦିରୂପ ବାକ୍ୟ ।

ସୂକ୍ତା—ବି. (ସୁ+ଉକ୍ତ+ଆ) ଶାରିକା, ମଇନା ।

ସୂକ୍ତାନୁକ୍ରମଣୀ—ବି.ବୈଦିକସୂକ୍ତ ସମୂହର ଅନୁକ୍ରମଣିକା ।

ସୂକ୍ତି—ବି.(ସୁ + ଉକ୍ତି) ସୂକ୍ତ ଦେଖ ।

ସୂକ୍ତିକ—ବି. ଏକପ୍ରକାର ଝାଞ୍ଜ ବା କରତାଳ ।

ସୂକ୍ତୋକ୍ତି—ବି. ବେଦୋକ୍ତ ସ୍ତୋତ୍ର ବାକ୍ୟ, ସୂକ୍ତ ବାକ୍ୟ ।

ସୂକ୍ଷ୍ମ—ବିଂ.(ସୂଚ୍ + ମଁ.ମନ୍) ଅତି ଅଳ୍ପ, କ୍ଷୁଦ୍ର, ହ୍ରସ୍ୱ, କ୍ଷୀଣ, ସରୁ, ପତଳା, ସଂକୀର୍ଣ୍ଣ, ଅତୀନ୍ଦ୍ରିୟ, ଇନ୍ଦ୍ରିୟମାନଙ୍କର ଅଗୋଚର, ଅଭିନିବେଶଯୁକ୍ତ, ପ୍ରକୃତ, ସତ୍ୟ, ସୁବିଗ୍ରହଯୁକ୍ତ, (ସ୍ତ୍ରୀ)ସୂକ୍ଷ୍ମା, (ବି) ଅଣୁ, କତକ ବୃକ୍ଷ, ନିର୍ମଳୀଗଛ ଅଧ୍ୟାତ୍ମବସ୍ତୁ, ପରଂବ୍ରହ୍ମ, ଅଧ୍ୟାତ୍ମବିଦ୍ୟା, କାପଟ୍ୟ, ଛଳ, କୈତବ, କାବ୍ୟାଳ-ଙ୍କାରବିଶେଷ, ଲିଙ୍ଗଶରୀର, ଶିବ, ଦାନବବିଶେଷ, ଜୀରକ, ଜୀରା, ଅରି-ଷ୍ଟକ, ରିଠା, ପୂଗ, ଗୁଆ, ରୋମ କୂପ-ବାଟେ ଶରୀରରେ ପ୍ରବେଶ କରିବା ଔଷଧ ।

ସୂକ୍ଷ୍ମକଳା—ବି. ( ଆଧୁନିକପ୍ରୟୋଗ ) ଅନୁଧ୍ୟାନ ଯୋଗ୍ୟ ସୁନ୍ଦର କଳା,

(ଯଥା—ସଙ୍ଗୀତ, ନୃତ୍ୟ, ଚତୁଃଷଷ୍ଟିକଳା-ଆଦି) ।

ସୂକ୍ଷ୍ମକୃଷ୍ଣଫଳା—ବି. କ୍ଷୁଦ୍ର ଜମ୍ବୁ ବୃକ୍ଷ, ବଣ ଜାମୁ ।

ସୂକ୍ଷ୍ମକୋଣ—ବି. (ଜ୍ୟାମିତି) ସମକୋଣ ଠାରୁ ୯୦ ଡିଗ୍ରୀରୁ କମ୍ କୋଣ ।

ସୂକ୍ଷ୍ମକୋଣୀ—ଗ୍ରା. ବିଂ. (ଜ୍ୟାମିତି) ସୂକ୍ଷ୍ମ-କୋଣବିଶିଷ୍ଟ ।

ସୂକ୍ଷ୍ମଘଣ୍ଟିକା—ବି. କ୍ଷୁଦ୍ର ଶଣପୁଷ୍ପିକା, ଶଣଗଛ ।

ସୂକ୍ଷ୍ମତଣ୍ଡୁଳ-ବି. ସରୁ ବା ବାରିକ ଚାଉଳ, ପୋସ୍ତକଦାନା, ଝୁଣା । [ ଝୁଣା ।

ସୂକ୍ଷ୍ମତଣ୍ଡୁଳା—ବି. (ବ.ଗ୍ରା) ପିପ୍ପଳୀ.

ସୂକ୍ଷ୍ମତା—ବି. (ସୂକ୍ଷ୍ମ + ତ + ଆ) ସୂକ୍ଷ୍ମତ୍ୱ, ଅଣୁତ୍ୱ, କ୍ଷୁଦ୍ରତା ।

ସୂକ୍ଷ୍ମତୁଣ୍ଡ—ବି. କୀଟଭେଦ (ସୁଶ୍ରୁତ) ।

ସୂକ୍ଷ୍ମଦର୍ଶନ—ବି. ଅଭିନିବେଶ ଯୁକ୍ତ ଦୃଷ୍ଟି, (ଗ୍ରା. ବି.) ଅତିକ୍ଷୁଦ୍ର ବସ୍ତୁର ଦର୍ଶନ ।

ସୂକ୍ଷ୍ମଦର୍ଶନ(କ)ଯନ୍ତ୍ର—ବି. ଅଣୁବୀକ୍ଷଣ-ଯନ୍ତ୍ର, ଯେଉଁ ଯନ୍ତ୍ରଦ୍ୱାରା ଚକ୍ଷୁର ଅଗୋଚର ସୂକ୍ଷ୍ମବସ୍ତୁ ଦର୍ଶନ କରାଯାଏ ।

ସୂକ୍ଷ୍ମଦର୍ଶିତା—ବି. (ସୂକ୍ଷ୍ମଦର୍ଶିନ୍ + ଭା. ତା) ଅତି ସୂକ୍ଷ୍ମ ଦର୍ଶନ, ସୂକ୍ଷ୍ମଦର୍ଶୀର ଭାବ, ଅତିଶୟ ବୁଦ୍ଧିମତ୍ତା, ବିଚକ୍ଷଣତା ।

ସୂକ୍ଷ୍ମଦର୍ଶୀ—ପୁଂ. ବିଂ. (ସୂକ୍ଷ୍ମ + ଦୃଶ୍ + କ. ଇନ୍) ବିଚକ୍ଷଣ, ଅତିଶୟ ବୁଦ୍ଧିମାନ୍, କୁଶାଗ୍ରୀୟ ମତି, ତତ୍ତ୍ୱଜ୍ଞାନଧୀ, ତୀକ୍ଷ୍ଣ-ବୁଦ୍ଧିମନ୍ତ, (ସ୍ତ୍ରୀ) ସୂକ୍ଷ୍ମଦର୍ଶିନୀ ।

ସୂକ୍ଷ୍ମଦଳ—ବି. ଦେବଶିରୀଷ ।

ସୂକ୍ଷ୍ମଦଳା—ବି. ଦୁରାଳଭା ।

ସୂକ୍ଷ୍ମଦାରୁ—କ୍ଲୀ. ବି. ତନୁକାଷ୍ଠ, ସୂକ୍ଷ୍ମ-କାଷ୍ଠ, ଫଳକ, କଣ୍ଡାଳ ।

ସୂକ୍ଷ୍ମଦୃଷ୍ଟି—ବି. ଅତିସୂକ୍ଷ୍ମ ବିଷୟ ପ୍ରତି ଦୃଷ୍ଟି ବା ଅଭିନିବେଶ, (ପୁଂ. ଓ ସ୍ତ୍ରୀ. ବିଂ.) ସୂକ୍ଷ୍ମଦୃଷ୍ଟି ବିଶିଷ୍ଟ ।

ସୂକ୍ଷ୍ମଦେହୀ—ଗ୍ରା. ବିଂ. ଅଣୁବୀକ୍ଷଣ ଯନ୍ତ୍ର ବିନା ଦେଖା ନ ଯିବା କ୍ଷୁଦ୍ର (ଜୀବ), (ବି) ଅତି ସୂକ୍ଷ୍ମ ଜୀବ, ପରମାଣୁ ।

ସୂକ୍ଷ୍ମନାଭ—ପୁଂ. ବି. ବିଷ୍ଣୁ ।

ସୂକ୍ଷ୍ମପତ୍ର—ବି. ବ. ଗ୍ରା, ଧନ୍ୟାକ, ଧନିଆ, ବନ ଜୀରକ, ବବୁର ଗଛ, ବନ-ବର୍ବର, ଲଣ୍ଡାବଗୁଲି, ଦେବସର୍ଷପ, ଲଘୁବଦର, ସୁରପର୍ଣ୍ଣି, କ୍ଷୁଦ୍ରଜାମ୍ବୁ, ବଣଜାମୁ, ଲୋହିତେକ୍ଷୁ, କୁକୁରଦା, ଦୁରାଳଭା, ମାଷ, ବ୍ରୀହି, ଅର୍କପର୍ଣ୍ଣୀ ।

ସୂକ୍ଷ୍ମପତ୍ରକ—ବି. କ୍ଷେତପାପଡ଼ା, ମୁର୍ପଟକ, ସୁଗନ୍ଧାର୍ଜକ ।

ସୂକ୍ଷ୍ମପତ୍ରା—ବି. ବୃଦ୍ଧଦାରକ ବିଶେଷ, କ୍ଷୁଦ୍ରଜମ୍ବୁ, ଶତମୂଳୀ, ବୃହତୀ, ସୂକ୍ଷ୍ମ-ବଲ୍ଲୀଲଭା, ଅପରାଜିତା, ଚକ୍ରାପରା-ଜିତା, ଜୀରକ କ୍ଷୁପ, କ୍ଷୁଦ୍ରୋପଦକା ।

ସୂକ୍ଷ୍ମପତ୍ରିକା—ବି. ଶତପୁଷ୍ପା, ଶତପ, ଶତାବରୀ, ଲଘୁ ବ୍ରାହ୍ମୀ, କ୍ଷୁଦ୍ରପୋଦକୀ ମାଳ ପୋଇ, ଦୁରାଳଭା, ଆକାଶମାଂସୀ

ସୂକ୍ଷ୍ମପର୍ଣ୍ଣା—ବି. ଜୀର୍ଣ୍ଣପଣ୍ଣୀ, ଜୀବନ୍ତୀ, ଗୁଡ଼ୁଚୀ, ବୃଦ୍ଧଦାରକ, ବୃହତୀ ।

ସୂକ୍ଷ୍ମପର୍ଣ୍ଣୀ—ବି. ରାମଦୂତୀବୃକ୍ଷ, ଗୁଡ଼ୁଚୀ ।

ସୂକ୍ଷ୍ମପିପ୍ପଳୀ—ବି. ବନପିପ୍ପଳୀ ।

ସୂକ୍ଷ୍ମପୁଷ୍ପ(ଷ୍ପୀ)—ବି. (ବୈଦ୍ୟକ) ଯବ-ତିକ୍ତ, ଭୂଇଁନିମ୍ବ, ଶ୍ୱେତ ବନବନା, ଏକପ୍ରକାର ଚଢ଼େଇତା । [ ଦାରୁ ।

ସୂକ୍ଷ୍ମଫଳ—ବି. ସୂକ୍ଷ୍ମବଦର, ଭୂକର୍ବୁ-

ସୂକ୍ଷ୍ମଫଳା—ବି. ଭୂମ୍ୟାମଳକୀ, ଭୂଇଁ-ଅଁଳା, ତାଳଶପତ୍ର, ମହା-ଜ୍ୟୋତିଷ୍ମତୀ ଲତା ।

ସୂକ୍ଷ୍ମବଦରୀ—ବି. ଭୂବଦରୀ, ଭୂଇଁ ବରକୋଳି ।

ସୂକ୍ଷ୍ମବଲ୍ଲୀ—ବି. ତାମ୍ରବଲ୍ଲୀ, ଜତୁକା, ପର୍ପଟୀ, ଲଘୁ କାରବେଲ, ଝୁସିକଲରା ।

ସୂକ୍ଷ୍ମବସ୍ତ୍ର—ବି. ପତଳା ଲୁଗା, ସରୁ ଲୁଗା ।

ସୂକ୍ଷ୍ମବିଗ୍ରହ—ବି. ଅଭିନିବେଶଯୁକ୍ତ ବିଗ୍ରହ, ନ୍ୟାଜ୍ୟ ବିଗ୍ରହ ।

ସୂକ୍ଷ୍ମବୀଜ—ବି. ପୋସ୍ତଦାନା ।

ସୂକ୍ଷ୍ମବୁଦ୍ଧି(ମତି)—ବି. (କ. ଧା) ତୀକ୍ଷ୍ଣ-ବୁଦ୍ଧି, (ବିଂ, ପୁଂ. ଓ ସ୍ତ୍ରୀ. ବ. ଗ୍ରା) ତୀକ୍ଷ୍ଣଧୀ

ସୂକ୍ଷ୍ମଭୂତ—ବି. ଆକାଶାଦି ପଞ୍ଚ ସ୍ଥୂଳ ମହାଭୂତର ସୂକ୍ଷ୍ମାଂଶ, ଅପଞ୍ଚୀକୃତ ଆକାଶାଦି ଭୂତ ।

ସୂକ୍ଷ୍ମମକ୍ଷିକ—ବି. ମଶକ, ମଶା, (ସ୍ତ୍ରୀ) ସୂକ୍ଷ୍ମମକ୍ଷିକା ।

ସୂକ୍ଷ୍ମମୂଳା—ବି. ଜୟନ୍ତୀ, ବ୍ରାହ୍ମୀ ।

ସୂକ୍ଷ୍ମଶରୀର-ବି. ପଞ୍ଚପ୍ରାଣ, ପଞ୍ଚଜ୍ଞାନେନ୍ଦ୍ରିୟ, ପଞ୍ଚକର୍ମେନ୍ଦ୍ରିୟ, ମନ ଓ ବୁଦ୍ଧି, ଆତ୍ମାର ଭୋଗସାଧନ ଏହି ସପ୍ତଦଶ ତତ୍ତ୍ୱର ସମୂହ, ଆତ୍ମାର ସତରଗୋଟି ଅବୟବ, ଲିଙ୍ଗ. ଦେହ ।

ସୂକ୍ଷ୍ମଶର୍କରା—ବି. ବାଲୁକା ।

ସୂକ୍ଷ୍ମଶାଳି—ବି. ସରୁଚାଉଳ ଧାନ, ଅଣୁ-ଧାନ୍ୟବିଶେଷ । [ ଚମଡ଼କୁଣୀ ।

ସୂକ୍ଷ୍ମଷଟ୍‌ଚରଣ—ବି. ପକ୍ଷ୍ମଯୁକ, ଆଖିପତାର

ସୂକ୍ଷ୍ମା—ବିଂ. (ସୂକ୍ଷ୍ମ + ଆ) ଅଳ୍ପ, କ୍ଷୁଦ୍ର, ସରୁ, ଅତୀନ୍ଦ୍ରିୟା, (ବି) ଯୂଥିକା, ଜୁଇ-ଫୁଲ, ମଲ୍ଲିକା, ମଲ୍ଲିଫୁଲ, କ୍ଷୁଦ୍ରୈଳା, ଗୁଜରାଟ, ଶବ୍ଦପ୍ରବୃତ୍ତିବିଶେଷ, ଶବ୍ଦର ପ୍ରଚ୍ଛନ୍ନାର୍ଥ, ମୂଷଲୀ, ତାଳମୂଳୀ, ଜଟା-ମାଂସୀ, ବିଷ୍ଣୁଙ୍କର ଏକ ଶକ୍ତି ।

ସୂକ୍ଷ୍ମାଂଶ—ବି. (କ. ଧା) ଅତି ସରୁ ଅଂଶ ।

ସୂକ୍ଷ୍ମାଗ୍ର—ବି. (କ. ଧା) ଅତି ତୀକ୍ଷ୍ଣ ଅଗ୍ରଭାଗ, ଅସ୍ତ୍ରାଦିର ମୁନିଆଁ ଧାର, ମୁନ, (ବିଂ. ବ. ଗ୍ରା) ମୁନିଆଁ (ଅସ୍ତ୍ରାଦି) ।

ସୂକ୍ଷ୍ମାନୁ(ତି)ସୂକ୍ଷ୍ମ—ବିଂ. (୬ ତତ୍ପୁ) ପୁଙ୍ଖାନୁ-ପୁଙ୍ଖ, ଅତି ସୂକ୍ଷ୍ମ ।

ସୂକ୍ଷ୍ମାହ୍ୱା—ସ୍ତ୍ରୀ. ବି. ମହାମେଦା ।

ସୂକ୍ଷ୍ମେକ୍ଷିକା—ସ୍ତ୍ରୀ. ବି. ସୂକ୍ଷ୍ମଦୃଷ୍ଟି ।

ସୂକ୍ଷ୍ମୈଳା—ବି. ଗ୍ରେଟ୍ଅଲାଇଚ, ଗୁଜରାଟ ।

ସୂଖର—ପୁଂ. ବି. ଶୈବସମ୍ପ୍ରଦାୟବିଶେଷ ।

ସୂଚ—(ଧାତୁ) ଜ୍ଞାପନ କରିବା, କହିବା, ସୂଚନା କରିବା, ସଙ୍କେତ କରିବା, ହିଂସନ କରିବା, ଆବିଷ୍କାର କରିବା, ଅଭିନୟ କରିବା, ଦୋଷ ଦେଖାଇବା ।

ସୂଚ—ପୁଂ. ବି. କୁଶାଙ୍କୁର ।

ସୂଚକ—ପୁଂ. ବିଂ. (ସୂଚ + ଣିଚ୍ + କ. ଅକ) ଯାହା କୌଣସି ବିଷୟର ସୂଚନା କରେ, ବୋଧକ, ଜ୍ଞାପକ, ଯାହା ଦ୍ୱାରା କୌଣସି ବିଷୟର ସୂଚନା କରେ, (ବି) ପିଶୁନ, ଚୁଗୁଲିଆ, କର୍ଣ୍ଣେଜପ, ଚର-ବିଶେଷ, ନାଟ୍ୟସୂତ୍ରଧର, ସୀବନକର୍ତ୍ତା ସୂଚୀ, ବୁଦ୍ଧ, କୁକୁର, ବିଡ଼ାଳ, କାକ, ସୂତ୍ରଧର, ବଢ଼େଇ, ପିଶାଚ, ସିଦ୍ଧ, ବୁଦ୍ଧ, କଥକ,

ସୂକ୍ଷ୍ମଶାଳୀ, ଦଳପତ୍ର ବାଲୁଆ, ବରଣ୍ଡା, ଅଲଗଡ଼ା, ରେଲଙ୍ଗ ଦ୍ୱାରା ବେଷ୍ଟିତ ସ୍ଥଳ, ଦରଜୀ, ଖଳବ୍ୟକ୍ତି, ଉଚ୍ଚ କାନ୍ଥ, ଅଯୋଗବ ମାତା ଓ ଛନ୍ଦିସ୍ୱ ପିତାଙ୍କଠାରୁ ଉତ୍ପନ୍ନ ପୁତ୍ର, (ସ୍ତ୍ରୀ) ସୂଚିକା।

ସୂଚନ(ନା)—ବି. ( ସୂଚ+ଭା.ଅନ ) ଜ୍ଞାପନ,ସଙ୍କେତ ବା ଚିହ୍ନଦ୍ୱାରା ଜଣେଇବା, କଥନ, ହିଂସନ, ଅଭିନୟ, ଦୋଷ ଆବିଷ୍କରଣ, ଦୋଷ ଦେଖାଇବା, ବିଦ୍ଧକରିବା,ଫୋଡ଼ିବା,ବେଧନ, ସୂତ୍ରଧାରର କର୍ମ,କୌଣସି ବିଷୟର ପୂର୍ବାଭାଷ, ବିଜ୍ଞାପନ, ହିଂସା।

ସୂଚନୀୟ—ବିଂ. ( ସୂଚ+ମି.ଅନୀୟ ) ସୂଚିତହେବାର ଯୋଗ୍ୟ, ଜ୍ଞାପନୀୟ, କଥନୀୟ।

ସୂଚୟିତବ୍ୟ—ବିଂ. (ସୂଚୀ+ତବ୍ୟ) ସୂଚନାର୍ହ।

ସୂଚ(ଚେ)ଇବା—ଗ୍ରା.କ୍ରି.ସୂଚିବାକ୍ରିୟାର ଣିଜନ୍ତରୂପ, ସୂଚିବା ଦେଖ।

ସୂଚି—ବି. ( ସିବ+ଣ.ଚି ) ବେଧନୀ, ସୀବନୀ, ଛୁଞ୍ଚି, ନୃତ୍ୟଭେଦ,ଏକପ୍ରକାର ନୃତ୍ୟ, ସୂକ୍ଷ୍ମଅଗ୍ରଭାଗ, ଶିଖା, ନର୍ତ୍ତକମାନଙ୍କର କର ଓ ଅଙ୍ଗାଦିଦ୍ୱାରା ଅଭିନୟ, ପାରକା, କେତକୀଫୁଲ,ସୈନ୍ୟବ୍ୟୂହବିଶେଷ, କାଠଗଡ଼ା, ଅଲଗଡ଼ା, କବାଟର ଛିଟକଣି, ନିଷାଦ ପିତା ଓ ବୈଶ୍ୟାମାତାଙ୍କଠାରୁ ଜାତ ସନ୍ତାନ, ମୈଥୁନବିଶେଷ, ଶୂର୍ପକାର,କୁଣା,ଦୃଷ୍ଟି, (ସୂଚ୍+ଣ.ଇ) ପୁସ୍ତକସ୍ଥ ବିଷୟର ପୂର୍ବାଭାଷଜ୍ଞାପନୀ, ତାଲିକା।

ସୂଚକ—ପୁଂ, ବିଂ. (ସୂଚ+ଜ୍ଞାପକାର୍ଥେ. କ) ସୂଚକର୍ମକାରୀ, ଦରଜୀ, ( ସ୍ତ୍ରୀ ) ସୂଚିକା।

ସୂଚକର୍ମ—ବି. ସିଲାଇକାମ,ବସ୍ତ୍ରଉପରେ କଲିଯିବା କାରୁକାର୍ଯ୍ୟ।

ସୂଚକା—ସ୍ତ୍ରୀ,ବିଂ.(ସୂଚକ+ଆ)ଜ୍ଞାପିକା, ପ୍ରକାଶିକା,(ସ୍ତ୍ରୀ.ବି-ସୂଚକ+ଆ) ଦରଜିଆଣୀ।

ସୂଚିକା—ବି. (ସୂଚି+କ+ଆ) ଛୁଞ୍ଚି, ସୂଚି, ହାତୀର ଶୁଣ୍ଢ,କେତକୀ,ଅପ୍ସରାବିଶେଷ।

ସୂଚିକାଧର—ଗ୍ରା. କ୍ରି. (ସୂଚିକା ଅଟେ ଅଧର ଯାହାର) ହସ୍ତୀ।

ସୂଚିକାପୁଷ୍ପ—ବି. ସୂଚିପୁଷ୍ପ ଦେଖ।

ସୂଚିକାଭରଣ—ବି. (ବି.ଗ୍ରା) ସୂଚ୍ୟଗ୍ର ପରିମିତ ସେବ୍ୟ ଆୟୁର୍ବେଦୀୟ ଔଷଧବିଶେଷ।

ସୂଚିକାମୁଖ—ବି. (ବି.ଗ୍ରା) ଶଙ୍ଖ,ଚୁଚୁନ୍ଦ୍ରା, ମୂଷିକ, ମୂଷା, (୬ତତ୍ପୁ) ଛୁଞ୍ଚିର ମୁହଁ, ଛୁଞ୍ଚିର କଣା।

ସୂଚିପନ—ଗ୍ରା. ବିଂ. ଲମ୍ବା ଓ ମୁନିଆ, ଗୋଜିଆ, ଚୂଳିଆ।

ସୂଚିତ—ବିଂ. (ସୂଚ୍+ଣିଚ୍+ମି.ତ) ଜ୍ଞାପିତ, ପ୍ରସ୍ତାବିତ, ସଙ୍କେତାଦି ଦ୍ୱାରା ଜ୍ଞାପିତ,କଥିତ,ହିଂସିତ,ଖୁବ୍ ଉପଯୁକ୍ତ।

ସୂଚିତବ୍ୟ—ବିଂ. ( ସୂଚ୍+ମି.ତବ୍ୟ ) ସୂଚିତହେବାର ଯୋଗ୍ୟ।

ସୂଚିତାର୍ଥ—ବି. (କ.ଧା) ବ୍ୟଞ୍ଜନା ଦ୍ୱାରା ପ୍ରକାଶିତ ଶବ୍ଦାର୍ଥ।

ସୂଚିଦଳ(ପତ୍ର,ପତ୍ରକ)—ବି. ଶିରିବାର, ସୁନିଷର୍ଣ୍ଣିକ, ସୁନୁସୁନିଆ ଶାଗ, ଏକପ୍ରକାର ଆଖୁ, ସୂଚୀପତ୍ର ଦେଖ।

ସୂଚିପାଶ—ବି. (୬ତତ୍ପୁ) ଛୁଞ୍ଚିର କଣା।

ସୂଚିପୁଷ୍ପ—ବି. କେତକୀ ବୃକ୍ଷ,କିଆଗଛ, (ବି-କ.ଧା) କିଆଫୁଲ।

ସୂଚିବ(ର)ଦନ—ବି. (ବି.ଗ୍ରା) ନକୁଳ, ନେଉଳ, ମଶକ, ମଶା, ମୂଷିକ।

ସୂଚିବା—ଗ୍ରା. କ୍ରି. ( ପଦ୍ୟ ) ସୂଚନା କରିବା, ସଙ୍କେତାଦି ଦ୍ୱାରା ଜ୍ଞାପନ କରିବା,ଗୋପନରେ କୌଣସି ବିଷୟ କହିବା,(ମନ୍ଦାର୍ଥ)କାନରେ କହିଦେବା, ଫୋଡ଼ିଦେବା।

ସୂଚିବାନ୍—ପୁଂ, ବି. ( ସୂଚି+ବତ୍ ) ଗରୁଡ଼।

ସୂଚିଭେଦ୍ୟ—ବିଂ. ( ୬ତତ୍ପୁ ) ଯାହା ସୂଚିଦ୍ୱାରା ଭେଦନ କରାଯାଇପାରେ, ଘନ, ଗାଢ଼ (ଅନ୍ଧକାର)।

ସୂଚିଭେଦ୍ୟଅନ୍ଧକାର-ବି.ଘନ ଅନ୍ଧକାର।

ସୂଚିମଲ୍ଲିକା—ବି.ନବମଲ୍ଲିକା,ନିଆଳିଫୁଲ।

ସୂଚିମାତ୍ରପରୀକ୍ଷ(କ୍ଷା)—ଗ୍ରା.କ୍ରି. ତନ୍ନ ତନ୍ନ କରି ପରୀକ୍ଷା।

ସୂଚିମୁଖ—ବି.(ବି.ଗ୍ରା) ହୀରକ,ସିତକୁଶ, ଧଳାକୁଶ, ସୂଚ୍ୟାସ୍ୟ, ମୂଷିକ,ଚୁଚୁନ୍ଦ୍ରା, ବ୍ୟୂହବିଶେଷ, ଛୁଞ୍ଚିର ଛିଦ୍ର।

ସୂଚିରୋମା—ବି. ବି.ଗ୍ରା; (ସୂଚି+ରୋମନ୍) ଶୂକର, ବରାହ,(ପୁଂ. ଓ ସ୍ତ୍ରୀ. ବିଂ) ଛୁଞ୍ଚିପରି ଲୋମବିଶିଷ୍ଟ।

ସୂଚିଶାଳି—ବି. ଖୁବ୍ ସରୁ ସାରଧାନ।

ସୂଚିଶିଖା—ବି. (୬ତତ୍ପୁ) ଛୁଞ୍ଚିର ମୁନ।

ସୂଚିସୂତ୍ର—ବି. (କ.ଧା) ଛୁଞ୍ଚିର ଛିଦ୍ରରେ ପୂରାଯାଇଥିବା ସୂତା, (ଦ୍ୱନ୍ଦ୍ୱ) ଛୁଞ୍ଚି ଓ ସୂତା।

ସୂଚୀ—ବି. (ସୂଚି+ଈ) ସୂଚି ଦେଖ, (ହିନ୍ଦୁସ୍ମୃତି) ଯେଉଁ ସାକ୍ଷୀ ବିନା ସମନରେ ଆସି ସାକ୍ଷ୍ୟ ଦିଏ, ( ସୁଶ୍ରୁତ ) ଶରୀରର କ୍ଷତ ସ୍ଥାନକୁ ସିଲାଇକରିବା ପାଇଁ ବ୍ୟବହୃତ ଛୁଞ୍ଚି, (ଫ-ସୂଚନ୍) ଚର, ଭେଦୁଆ, (ପୁଂ) ପିଶୁନ,ଚୁଗୁଲିଆ ବ୍ୟକ୍ତି,ଖଳ ବ୍ୟକ୍ତି,ଦୁଷ୍ଟ ବ୍ୟକ୍ତି,(ପୁଂ,ବିଂ) ସୂଚନାକାରୀ, ଚୁଗୁଲିଆ, ଖଳ।

ସୂଚୀକ—ପୁଂ. ବି. ସୂଚିସଦୃଶ ପୁଷ୍ଟ ଓ ରୋମାଦିଯୁକ୍ତ କୃମିକୀଟାଦି।

ସୂଚୀକଟାହନ୍ୟାୟ—ପ୍ରଥମେ ସ୍ୱଳ୍ପାୟାସ ସାଧ୍ୟ ସୂଚୀ ନିର୍ମାଣକରିସାରି ପରେ ବହ୍ୱାୟାସ ସାଧ୍ୟ କଟାହ ନିର୍ମାଣକରିବା ନ୍ୟାୟ, ବହୁ ଶ୍ରମସାଧ୍ୟ କାର୍ଯ୍ୟ ସ୍ଥଗିତ ରଖି ଅଳ୍ପ ଶ୍ରମସାଧ୍ୟ କାର୍ଯ୍ୟ କରିବା ନ୍ୟାୟ।

ସୂଚୀକର୍ମ—ବି. ସୂଚିକର୍ମ ଦେଖ।

ସୂଚୀଜୀବୀ—ପୁଂ. ବି. (ସୂଚୀ+ଜୀବ୍+କ.ଇନ୍) ଦରଜୀ, ସୀବନ କାର୍ଯ୍ୟଦ୍ୱାରା ଜୀବିକା ନିର୍ବାହକାରୀ, (ସ୍ତ୍ରୀ) ଜୀବିନୀ।

ସୂଚୀଦଳ—ବି. ସୂଚିଦଳ ଦେଖ।

ସୂଚୀପତ୍ର(କ)—ବି. ସୂଚିଦଳ ଦେଖ, ପୁସ୍ତକଗତ ବିଷୟର ସଂକ୍ଷିପ୍ତ ସୂଚନା ବା ତାଲିକା ଯେଉଁ ପୃଷ୍ଠାରେ ଲେଖାହୋଇଥାଏ, ବ୍ୟବସାୟୀଙ୍କ ଦୋକାନ-

ନିରେ ଥିବା ଜିନିଷଆଦିର ନାମ ବିବରଣ ଓ ମୂଲ୍ୟର ତାଲିକା ଯେଉଁ ବହିରେ ଥାଏ ।
ସୂଚୀପତ୍ରା—ବି. ଗଣ୍ଡଦୂର୍ବା ।
ସୂଚୀପଦ୍ମ—ବି. ବ୍ୟୂହ ବିଶେଷ ।
ସୂଚୀପାଶ—ବି.ଛୁଞ୍ଚିର ଛିଦ୍ର ।
ସୂଚୀପୁଷ୍ପ—ବି. ସୂଚପୁଷ୍ପ ଦେଖ ।
ସୂଚୀବକ୍ତ୍ର—ବି. (ନାମ) ସ୍କନ୍ଦଙ୍କ ଅନୁଚର ବିଶେଷ, ଅସୁର ବିଶେଷ, (ପୁଂ. ବିଂ. ବି.ଗ୍ରା) ଛୁଞ୍ଚିପରି ମୁହଁ ବା ପାଟି ଯାହାର ।
ସୂଚୀବକ୍ତ୍ରା—ବିଂ. ସ୍ତ୍ରୀ. ସୂଚୀବକ୍ତ୍ରର ସ୍ତ୍ରୀଲିଙ୍ଗ, (ବି) ବୈଦ୍ୟକ ମତରେ ୨୦ ପ୍ରକାର ଯୋନି ରୋଗରୁ ଏକତମ ଦ୍ୱାରା ଆକ୍ରାନ୍ତ ଅତି ସୂକ୍ଷ୍ମମୁଖ ଯୋନି (ଯାହା ପୁରୁଷ ସଙ୍ଗମାର୍ଥ ଏକାନ୍ତ ଅଯୋଗ୍ୟ) ।
ସୂଚୀବଦନ—ବି. ସୂଚିବଦନ ଦେଖ ।
ସୂଚୀଭେଦ୍ୟ—ବିଂ. ସୂଚିଭେଦ୍ୟ ଦେଖ ।
ସୂଚୀମୁଖ—ବି. ସୂଚିମୁଖ ଦେଖ, ନରକ ବିଶେଷ, ସ୍ୱରକ । [ ଦେଖ ।
ସୂଚୀରୋମା—ବି. ଓ ବିଂ. ସୂଚିରୋମା
ସୂଚୀଶିଳ୍ପ—ବି. (କ. ଧା) ସୀବନଦ୍ୱାରା ସମ୍ପାଦିତ କାରୁକାର୍ଯ୍ୟ ।
ସୂଚ୍ଛିତ—ବିଂ. ସମୁନ୍ନତ, ଅତିଶୟ ଉଚ୍ଛ୍ରିତ । [ ଦେଖ ।
ସୂଚ୍ୟ—ବିଂ. (ସୂଚ୍+ମି. ଯ) ସୂଚିତବ୍ୟ
ସୂଚ୍ୟଗ୍ର—ବି. (୬ତତ୍ପୁ) ଛୁଞ୍ଚିର ଅଗ, କୁଶ ।
ସୂଚ୍ୟଗ୍ର ପରିମିତ—ବିଂ. ଛୁଞ୍ଚିର ଅଗଦ୍ୱାରା ଯେତିକି ସ୍ଥାନ ଅଧିକୃତ ହୋଇ ପାରେ ।
ସୂଚ୍ୟଗ୍ରବତ୍—ବିଂ. ଛୁଞ୍ଚିର ଅଗପରି ।
ସୂଚ୍ୟଗ୍ରସ୍ତମ୍ଭ—ବି. ମୀନାର ମୁନିଆ ଗମ୍ବୁଜ
ସୂଚ୍ୟଗ୍ରସ୍ଥୂଳକ—ବି. ତୃଣବିଶେଷ, କୁଶ ଘାସ, ଦଉଡ଼ି, କୁଣ୍ଡଘାସ ।
ସୂଚ୍ୟର୍ଥ—ବି. କ.ଧା; (ସୂଚୀ+ଅର୍ଥ) ଶବ୍ଦର ବ୍ୟଞ୍ଜନା ଶକ୍ତିଦ୍ୱାରା ଜ୍ଞେୟ ଅର୍ଥ ।
ସୂଚ୍ୟାକାର—ବିଂ. (ବି.ଗ୍ରା)ଛୁଞ୍ଚିପରି ଲମ୍ବ ସରୁ ଓ ମୁନିଆ ।
ସୂଚ୍ୟାସ୍ୟ—ବି. ବି.ଗ୍ରା; (ସୂଚୀ+ଆସ୍ୟ) ସୂଚିମୁଖ ଦେଖ ।
ସୂଚ୍ୟାହ୍ୱ—ବି. ସୁନିଷନ୍ନକ ଶାକ ।
ସୂତ୍କାର—ବି. (ସୂତ୍+କାର) ସୀତ୍କାର, ଅନୁକରଣ ଶବ୍ଦ ବିଶେଷ ।
ସୂତ୍ପର—ବି. ପୁରାସନ୍ଧାନ ।
ସୂତ—ବିଂ. (ସୂ+କ.ତ) ପ୍ରସୂତ, ଉତ୍ପାଦିତ, ପ୍ରେରିତ, (ସ୍ତ୍ରୀ)ସୂତା,(ବି)ସାରଥି, ସୂର୍ଯ୍ୟ, ପାରଦ, ସ୍ତୁତିପାଠକ, ବନ୍ଦୀ, ମାଗଧ, ଭାଟ, ସଙ୍କର ଜାତି ବିଶେଷ, ବ୍ରାହ୍ମଣୀ ଗର୍ଭରୁ କ୍ଷତ୍ରିୟଙ୍କ ଔରସ ଜାତ ସନ୍ତାନ,ରଥକାର ବା ସୂତ୍ରଧର, (ନାମ) ନୈମିଷାରଣ୍ୟବାସୀ ପୁରାଣ ବକ୍ତା ଜନୈକ ମୁନି, ପୁରାଣବକ୍ତା, ପୌରାଣିକ ।
ସୂତକ—ବି. (ସୂତ+କ) ଜନ୍ମ, ଜନନାଶୌଚ, ଛୁତିକିଆ,ପାରଦ, ମରଣାଶୌଚ, ସୂର୍ଯ୍ୟର ବା ଚନ୍ଦ୍ରର ଗ୍ରହଣ ।
ସୂତକା—ବି. (ସୂତକ+ଆ) ସୂତିକା ଦେଖ ।
ସୂତକାଗାର—ବି. ସୂତିକାଗୃହ ଦେଖ ।
ସୂତକାନ୍ନ—ବି. ଜନନାଶୌଚ, ଦୂଷିତ ବ୍ୟକ୍ତିର ବା ଉକ୍ତ ପରିବାରଙ୍କ ପକ୍ୱାନ୍ନ
ସୂତକାଶୌଚ—ବି. (କ.ଧା) ଜନନାଶୌଚ, ସନ୍ତାନ ଜନ୍ମହେତୁ ଅଶୌଚ, (କନ୍ୟା ବା ପୁତ୍ର ଜନ୍ମ ହେଲେ ପିତାଦି ସପିଣ୍ଡବର୍ଗର ସ୍ୱଜାତ୍ୟୁକ୍ତ ସମ୍ପୂର୍ଣ୍ଣ ଅଶୌଚ ହୁଏ, ପୁତ୍ର ଜନ୍ମରେ ବିପ୍ର ପ୍ରସୂତିର ବଂଶଧନ ଏବଂ କନ୍ୟା ଜନ୍ମରେ ଏକମାସ ଅଶୌଚ ହୁଏ, ଶୂଦ୍ରାର କନ୍ୟା ପୁତ୍ର ଜନ୍ମ ହେଲେ ଏକମାସ ଅଶୌଚ ହୁଏ ।
ସୂତକୀ—ପୁଂ. ବିଂ. ( ସୂତକ+ଇନ୍ ) ଜନନାଶୌଚ ଯୋଗୁଁ ଅଶୁଚ (ବ୍ୟକ୍ତି ବା ପରିବାର), ମରଣାଶୌଚ ଯୋଗୁଁ ଅଶୁଚ (ବ୍ୟକ୍ତି ବା ପରିବାର), (ସ୍ତ୍ରୀ) ସୂତକିନୀ । [ ବ୍ୟକ୍ତି ।
ସୂତଗ୍ରାମଣୀ—ପୁଂ. ବି. ଗ୍ରାମର ମୁଖ୍ୟ
ସୂତଗୃହ—ଗ୍ରା. ବି. ସୂତିକାଗୃହ ଦେଖ ।
ସୂତତନୟ(ପୁତ୍ର, ପୁତ୍ରକ,ନନ୍ଦନ)—ବି. କର୍ଣ୍ଣ, କୀଚକ ।
ସୂତତା—ବି. ସୂତର ଭାବ ବା ଧର୍ମ, ସୂତତ୍ୱ, ସୂତର କାର୍ଯ୍ୟ ।
ସୂତଦୁହିତା—ବି. ସ୍ତ୍ରୀ. ସୂତକନ୍ୟା, ସୂତପୁତ୍ରୀ ।
ସୂତବଶା—ବି. ଗାଈ, ଗାଈ ।
ସୂତସଠ୍—ବି. ପାରଦ ।
ସୂତା—ବିଂ. ସ୍ତ୍ରୀ. (ସୂତ+ଆ) ସୂତର ସ୍ତ୍ରୀଲିଙ୍ଗ,ପ୍ରସୂତା (ସ୍ତ୍ରୀ),(ବି.ସ୍ତ୍ରୀ.) ନବ ପ୍ରସୂତା ସ୍ତ୍ରୀ (ଯାହାର ପ୍ରସବଠାରୁ ୧୦ ଦିନ ଗତ ହୋଇ ନାହିଁ),ସୂତିକା ରୋଗ, (ଗ୍ରା. ବି. ସ—ସୂତ୍ର) ସୂତ୍ର, ଅଣ୍ଟା ସୂତା, ସରୁ ଦଉଡ଼ି, ଏକଇଞ୍ଚର ଆଠଭାଗରୁ ଏକଭାଗ, ତୁଳାରୁ ବଳା ଯାଇଥିବା ସୂତ୍ର, ରାଜମିସ୍ତ୍ରୀଙ୍କ ବ୍ୟବହୃତ ଓଳମ ସୂତା ।
ସୂତାଆଳୁ—ପ୍ରା. (ଗଡ଼ଜାତ) ବି. ଏକ ପ୍ରକାର ବନ୍ୟ ସରୁ ମୂଳବିଶିଷ୍ଟ ଆଳୁ ।
ସୂତାଏ—ଗ୍ରା. କ୍ରି. ବିଂ. ସୂତା ପରିମାଣରେ, ସୂତାପରି ଖୁବ ସରୁଭାବେ, ଅତି ମୃଦୁଭାବରେ, ସାମାନ୍ୟ ମାତ୍ର, (ଗ୍ରା.ବିଂ.)ଏକସୂତା ପରିମିତ, (ଗ୍ରା.ବି.) ଏକସୂତା ପରିମାଣ ।
ସୂତାକଟା—ଗ୍ରା. ବି. ତୁଳାରୁ ସୂତା ବଳିବା ।
ସୂତାକଣ୍ଡା (କାଣ୍ଡିଆ)—ଗ୍ରା. ତ. (ସଂ. ସୂତ୍ର ଓ କର୍ତ୍ତନ) ତନ୍ତରେ ବୁଣିବା ପାଇଁ ନାଟିରେ ଗୁଡ଼ାଆ ହୋଇଥିବା ସୂତାର ବଡ଼ା ।
ସୂତା କାଟିବା—ଗ୍ରା. କ୍ରି. ତୁଳାକୁ ଭିଣି ସେଥିରୁ ବଳଣା କରି ଅରଟ ବା ତାକୁଡ଼ି ସାହାଯ୍ୟରେ ତୁଳାର ସୂକ୍ଷ୍ମ ତନ୍ତୁମାନଙ୍କରୁ ସୂତ୍ର ପ୍ରସ୍ତୁତ କରିବା ।
ସୂତାଖିଅ—ଗ୍ରା. ବି. ସୂତାର ଗୋଟିଏ ସିଅ ।
ସୂତାଗାଣ୍ଠି—ଗ୍ରା. ବି. ବହୁତ ସୂତା

ଏକାନ୍ତ ବନ୍ଧା ହୋଇଥିବା ବଡ଼ ବଡ଼ା ।
ସୂତାନାଗ—ଗ୍ରା. ବି. ସୂତାପରି ଲମ୍ବ ଓ କାନବିସ୍ତୁ ପରି ସରୁ ଏକଜାତୀୟ ସର୍ପ ।
ସୂତାର୍—ପ୍ରା. (ମେଦିନୀପୁର, ବାଲେଶ୍ୱର) ବଢ଼େଇ, (ପ୍ରା. ସମ୍ବଲପୁର ବି.) ଝିକାଦିଆ । [ ଦିଆ ।
ସୂତାସି—ପ୍ରା. (ସମ୍ବଲପୁର) ବି. ଝିକା
ସୂତି—ବି. (ସୂ+ଭା ତି) ଜନନ, ଜନ୍ମ, (ସଂ.ତି) ସନ୍ତାନ, (ସିବ୍+ଭା. ତି) ସୀବନ, ସିଇଁବା, ସୂଚୀକାର୍ଯ୍ୟ, (ଅପ୍.ତି) ଉତ୍ପତ୍ତିର ସ୍ଥାନ ବା କାରଣ, (ଭା ତି) ଫଳର ବା ଫସଲର ଉତ୍ପତ୍ତି, ନକ୍ଷାର୍ଥ ସୋମରସ ବାହାର କରିବା କର୍ମ, ହଂସ, (ନାମ) ବିଶ୍ୱାମିତ୍ରଙ୍କର ଏକପୁତ୍ର, (ଗ୍ରା. ବିଂ. ସଂ ସୂତ୍ର) ସୂତ୍ର ନିର୍ମିତ, କପାସୂତା ନିର୍ମିତ ।
ସୂତିଆ—ଗ୍ରା. ବି. (ସଂ-ସୂତ୍ର) ନାଆ ଭିଡ଼ିବା, ଡଙ୍ଗାକୁ ଓଟାରି କରିନେବା ପାଇଁ ବ୍ୟବହୃତ ଲମ୍ବ ଦଉଡ଼ି ।
ସୂତିକା—ବି. (ସୂତକ+ଆ) ନବପ୍ରସୂତା ସ୍ତ୍ରୀ, ପୋଖଡ଼ିଆଳୀ ସ୍ତ୍ରୀ, ସୂତିକା ରୋଗ, ନବପ୍ରସୂତା ରୋଗୀ, ମାତୃକାଗ୍ରହ ବିଶେଷ ।
ସୂତିକାଗାର—ବି. (ସୂତିକା+ଆଗାର) ପ୍ରସବଗୃହ, ଏନ୍ତୁଡ଼ିଶାଳ । [ଶାଳ ।
ସୂତିକାଗୃହ—ବି. ପ୍ରସବଗୃହ, ଏନ୍ତୁଡ଼ି-
ସୂତିକାଗେହ—ବି. ପ୍ରସବଗୃହ ।
ସୂତିକାଗ୍ରହଣୀ—ବି. ସୂତିକା ରୋଗ ଜନିତ ନବ ପ୍ରସୂତାର ଗ୍ରହଣୀ ରୋଗ ।
ସୂତିକା ଜ୍ୱର—ବି. ପ୍ରସବ କାଳରେ ବ୍ୟବହୃତ ବସ୍ତ୍ର ଆଦି ମଇଳା ଥିବାରୁ ପ୍ରସୂତିର ଗର୍ଭରେ ବିଷ ପ୍ରବେଶ କରିବା ଯୋଗୁଁ ପ୍ରସବର ୩୨ ଦିନ ମଧ୍ୟରେ ପ୍ରସୂତିଙ୍କୁ ଯେଉଁ ମାରାତ୍ମକ କମ୍ପଜ୍ୱର ହୁଏ ।
ସୂତିକ ରୋଗ—ବି. ନବପ୍ରସୂତା ସ୍ତ୍ରୀଙ୍କର ବ୍ୟାଧିବିଶେଷ ।

ସୂତିକାଳ (ବେଳ)—ବି. ସନ୍ତାନ ଜନ୍ମ ହେବାର ସମୟ ବା ମୁହୂର୍ତ୍ତ ।
ସୂତିକାଷଷ୍ଠୀ—ବି. ସୂତିକାଗାରରେ ନବଜାତ ସନ୍ତାନର ଜନ୍ମର ଷଷ୍ଠଦିବସରେ ପୂଜିତା ଦେବୀ ବିଶେଷ, ଷଷ୍ଠୀ ଦେବୀ, ଷଷ୍ଠୀ ଦୁଆସେଇଁ, ଷଠୀଘର, ଜନ୍ମର ଷଷ୍ଠଦିନ କରାଯିବା ଉତ୍ସବ ।
ସୂତିଗୃହ (ଭବନ, ଶାଳା, ବାସ)—ବି. ସୂତିକାଗାର (ଦେଖ) ।
ସୂତିମାରୁତ (ବାତ)—ବି. ପ୍ରସବବେଦନା ପ୍ରସବକାଳୀନ ଶୂଳ ।
ସୂତିମାସ—ବି. (ଏଥିର ନାମାନ୍ତର ବୈଜନନ) ପ୍ରସବ ମାସ, ଗର୍ଭାଧାନର ନବମ ବା ଦଶମ ମାସ ।
ସୂତୀ—ବି. ସ୍ତ୍ରୀ. (ସୂତ+ଈ) ସୂତପତ୍ନୀ ।
ସୂତ୍ତର—ବିଂ. (ସୁ+ଉତ୍ତର) ଖୁବ୍ ଶ୍ରେଷ୍ଠ, (ତ.) ଉତ୍ତମ ବା ଯୋଗ୍ୟ ଉତ୍ତର
ସୂତ୍ତୀ—ଗ୍ରା. ବି. ବନସୀରେ ମାଛଧରିବା ପାଇଁ ବ୍ୟବହୃତ ଖୋଳ୍ ମୋଟ ଏବଂ ଶକ୍ତ ସୂତାର ତିଆରି ଲମ୍ବା ଡୋର ।
ସୂତ୍ଥାନ—ବି. (ସୁ+ଉତ୍ଥାନ) ସୁନ୍ଦର ଉତ୍ଥାନ, (ବିଂ. ବିଗ୍ର) ଚତୁର, କର୍ମଦକ୍ଷ, ପଟୁ ।
ସୂତ୍ୟଶୌଚ—ବି. (କ.ଧା) ସୂତିକା ଶୌଚ ଦେଖ ।
ସୂତ୍ୟା—ବି. (ସୂ+ଭା. ଯ+ଆ) ଯଜ୍ଞାନ୍ତ ସ୍ନାନ, ସୋମରସ ପାନ, ସୋମରସ ବାହାର କରିବା କର୍ମ ।
ସୂତ୍ର—(ଧାତୁ) ଗ୍ରନ୍ଥନ କରିବା, ଗୁନ୍ଥିବା ।
ସୂତ୍ର—ବି. (ସିବ୍+ଣ, ଜ. କମ୍ପା ସୂତ୍ର+ଣ,ଅ) ସରୁ ବା ସୂକ୍ଷ୍ମ ରଜ୍ଜୁ, ସୂତା, ତନ୍ତୁ, ଯାହାଦ୍ୱାରା ଲୁଗା ବୁଣା ଯାଏ, ବସ୍ତ୍ରାରମ୍ଭକ, ଡୋରି, ସରୁସୂତା, ବ୍ୟବସ୍ଥାର ଓ ଶାସ୍ତ୍ରାଦିର ସୂଚନାଗ୍ରନ୍ଥ, ବ୍ୟବସ୍ଥା, ବ୍ୟାକରଣ, ଦର୍ଶନାଦି ଶାସ୍ତ୍ର ପ୍ରଣେତାଙ୍କର ପ୍ରଥମ ପ୍ରଣୀତ ସଂକ୍ଷିପ୍ତ ବାକ୍ୟ, ସାରଗର୍ଭିତ ସଂକ୍ଷିପ୍ତ ପଦ, ବିଷୟ ନିର୍ଦ୍ଦେଶ, ନାଟ୍ୟ ଶାସ୍ତ୍ରର ଉପକ୍ରମ, ନାଟକର ପ୍ରସ୍ତାବନା, ବିଜ୍ଞାନ

ବା ଶାସ୍ତ୍ର ବିଷୟକ ସଂକ୍ଷିପ୍ତ ନିୟମ, ଯଜ୍ଞସୂତ୍ର, ପଇତା, ପ୍ରାଚୀନ କାଳର ମାନବିଶେଷ, ରେଖା, କରଧନି, କଟିଭୂଷଣ, କାରଣ, ନିମିତ୍ତ, ମୂଳ, ପତ୍ରି, ସୂଚକ, ବୁଡ଼ିଆଣୀ ସୂତା, ତାର, (ସ୍ୱଳ୍ପାକ୍ଷରମ୍ ଅସନ୍ଦିଗ୍ଧଂ ସାରବତ୍ ବିଶ୍ୱତୋମୁଖମ୍, ଅସ୍ତୋଭମନ ବଦ୍ୟଞ୍ଚ ସୂତ୍ରଂ ସୂତ୍ର ବିଦୋ ବିଦୁଃ, ଅର୍ଥାତ୍ ସ୍ୱଳ୍ପାକ୍ଷର ବିଶିଷ୍ଟ ସନ୍ଦେହଶୂନ୍ୟ ସାରବାନ୍ ସର୍ବତୋଗାମୀ ସଫଳ ଏବଂ ନିର୍ଦ୍ଦୋଷ ବାକ୍ୟଇ ସୂତ୍ର) (ଗ୍ରା. ବି. ଓ ବିଂ) ସୁତର (ଦେଖ) ।
ସୂତ୍ରକ—ବି. (ସୂତ୍ର+କ) ସୂତ୍ର ଦେଖ, ଅଟାରେ ବା ମଇଦାରେ ତିଆରି ସରୁ ସୂତା ଭଳି ଖାଦ୍ୟ ।
ସୂତ୍ରକଣ୍ଠ—ପୁଂ. ବି. (ବ.ଗ୍ରୀ) ବିପ୍ର, ବ୍ରାହ୍ମଣ, ଖଞ୍ଜରୀଟ,ଖଞ୍ଜନପକ୍ଷୀ,କପୋତ ।
ସୂତ୍ରକର୍ତ୍ତା—ପୁଂ. ବିଂ. ସୂତ୍ର ରଚୟିତା, ସୂତ୍ର ପ୍ରଣେତା ।
ସୂତ୍ରକର୍ମ—ବି. (ସୂତ୍ର+କର୍ମନ୍)ବଢ଼େଇ କାମ, ରାଜକାମ ।
ସୂତ୍ରକାର (କୃତ୍)—ବି. ସୂତ୍ରର ପ୍ରଣୟନକର୍ତ୍ତା, ସୂତ୍ର ରଚୟିତା, ବଢ଼େଇ, ତନ୍ତି, ବୁଡ଼ିଆଣୀ ।
ସୂତ୍ରକୋଣ—ବି. (ବ.ଗ୍ରୀ) ବାଦ୍ୟ ଯନ୍ତ୍ର ବିଶେଷ, ଡମରୁ ।
ସୂତ୍ରକୋଣକ—ବି. (ବ.ଗ୍ରୀ) ଡମ୍ବରୁ ।
ସୂତ୍ରକ୍ରୀଡ଼ା—ବି. ସୂତା ସାହାଯ୍ୟରେ କରାଯିବା ୬୪ କଳାର ଅନ୍ତର୍ଗତ କ୍ରୀଡ଼ା ବିଶେଷ ।
ସୂତ୍ରଗଣ୍ଡ—ଗ୍ରା. ପୁଂ. ବି. କୌଣସି କୁକର୍ମର ଅନୁଷ୍ଠାନକାରୀ ବ୍ୟକ୍ତି ।
ସୂତ୍ରଗଣ୍ଡମୋଦକ—ବି. ଖଣ୍ଡଲଡ଼ୁର ବିଶେଷ ।
ସୂତ୍ରଗଣ୍ଡିକା—ବି. ତନ୍ତୁବାୟର ଉପକରଣ ବିଶେଷ, ଏଷଣୀ, ମକୁ ।
ସୂତ୍ରଗ୍ରନ୍ଥ—ପୁଂ. ବି. ମୂଳସୂତ୍ରରୂପ ଗ୍ରନ୍ଥ, ସାଂଖ୍ୟ ବେଦାଦି ମୂଳ ସକଳ ସୂତ୍ର ଗ୍ରନ୍ଥ ନାମରେ ଅଭିହିତ ।

ସୂତ୍ରଗ୍ରହ—ବିଂ. (ସୂତ୍ର+ଗ୍ରହ+କ.ଅ) ଯେ ସୂତ୍ରଧାରଣ ବା ଗ୍ରହଣ କରେ ।

ସୂତ୍ରଣ—ବି. ( ସୂତ୍ର+ଭା.ଅନ ) ସୂତ୍ର ରଚନ କରିବା କର୍ମ, ସୂତାକାଟିବା କର୍ମ, ଗୁନ୍ଥିବା ।

ସୂତ୍ରତନ୍ତୁ—ବି. ସୂତ୍ର, ସୂତା ।

ସୂତ୍ରତର୍କୁଟୀ—ବି.ସୂତାତାକୁଡ଼ି ।

ସୂତ୍ରଦରିଦ୍ର—ବି. ସୂତ୍ରହୀନ ବସ୍ତ୍ର, ଯେଉଁ ବସ୍ତ୍ରରେ ସୂତା କମ ଥାଏ ।

ସୂତ୍ରଧର(ଧାର)—ବି. (ସୂତ୍ର+ଧୃ+କ.ଅ) ନାଟକାଭିନୟ ଆରମ୍ଭ ହେବା ପୂର୍ବରୁ ଯେଉଁ ନାଟ୍ୟକାର ରଙ୍ଗଭୂମିକୁ ଆସି ଦର୍ଶକମାନଙ୍କୁ ନାଟକୀୟ କଥାର ସୂଚନା ଦିଅନ୍ତି, ନାଟ୍ୟପ୍ରସ୍ତାବକ; ବଢ଼େଇ, ଶଚୀପତି, ଇନ୍ଦ୍ର, ସୂତ୍ରକାର ଦେଖ ।

ସୂତ୍ରଧାରୀ-ପୁଂ.ବିଂ. ଯଜ୍ଞୋପବୀତ ଧାରଣକାରୀ, (ବି) ଅଭିନୟର ସୂତ୍ରଧର ।

ସୂତ୍ରଧୃକ୍—ପୁଂ. ବି. ସୂତ୍ରଧାର ଦେଖ ।

ସୂତ୍ରପାତ—ବି.ମାପିବା ସୂତାଦ୍ୱାରା ମାପ କରିବା, (ଗ୍ରା.ବି) କୌଣସି ବିଷୟର ଆରମ୍ଭ, କାର୍ଯ୍ୟାରମ୍ଭ,କାର୍ଯ୍ୟର ପ୍ରାଥମିକ ସୂଚନା ।

ସୂତ୍ରପତ୍ରକର—ବି. ଟିନ ।

ସୂତ୍ରପତ୍ରୀ—ବି. ପିତ୍ତଳ, ପିତଳ ।

ସୂତ୍ରପିଟକ—ବି.ବୌଦ୍ଧମାନଙ୍କର ପିଟକତ୍ରୟର ମଧ୍ୟରେ ପିଟକଗ୍ରନ୍ଥବିଶେଷ ।

ସୂତ୍ରପୁଷ୍ପ—ବି. କାର୍ପାସ, କପା ।

ସୂତ୍ରପ୍ରୋତ—ବିଂ. (୩ତତ୍) ସୂତାଦ୍ୱାରା ଗୁନ୍ଥା ବା ସଂଲଗ୍ନ ।

ସୂତ୍ରବାପ—ବି.(୬ତତ୍)ବୟନ ଲୁଗାଆଦି ବୁଣିବା କର୍ମ ।

ସୂତ୍ରବୀଣା—ବି. ପ୍ରାଚୀନ ବୀଣାଭେଦ, ଲମ୍ବୁକା ।

ସୂତ୍ରବେଷ୍ଟନ—ବି. ( ବ.ବ୍ରୀ ) ତନ୍ତୁବାୟୋପକରଣ, ତାସଣ,ତସର,ମାକୁ, (୩ତତ୍) ବୟନ, (ବ.ବ୍ରୀ) ତନ୍ତ୍ର ।

ସୂତ୍ରଭିତ୍(ଦ୍)—ବି.(ସୂତ୍ର+ଭିଦ୍+କ. କ୍ୱିପ୍) ସୌଚିକ, ଦରଜୀ ।

ସୂତ୍ରମଧ୍ୟଭୂ—ବି. ଯକ୍ଷଧୂପ,ଶଲ୍ଲକୀନିର୍ଯ୍ୟାସ ।

ସୂତ୍ରମୟ—ବିଂ. ସୂତ୍ରସ୍ୱରୂପ ।

ସୂତ୍ରଯନ୍ତ୍ର—ବି.ସୂତ୍ରବେଷ୍ଟନ କାଷ୍ଠ,ତନ୍ତ୍ର ।

ସୂତ୍ରଲା—(ସୂତ୍ର+ଲା+କ.ଅ) ତର୍କୁଟୀ, ତାକୁଡ଼ି, ତୁଳାର ବଳଣା ।

ସୂତ୍ରଶାଖ—ବି. (ବ.ବ୍ରୀ) ଶରୀର ।

ସୂତ୍ରସ୍ଥାନ—ବି. ସୁଶ୍ରୁତୋକ୍ତ ପ୍ରଥମସ୍ଥାନ, ଏହି ସ୍ଥାନରେ ଆୟୁର୍ବେଦର ସୂତ୍ର ସୂଚିତ ହୋଇଅଛି ବୋଲି ଏହାର ନାମ ସୂତ୍ରସ୍ଥାନ ।

ସୂତ୍ରାଙ୍ଗ—ବି. ଉତ୍ତମ କଂସା ।

ସୂତ୍ରାମା—ବି.(ସୁ+ତ୍ରୈ+କ.ମନ୍) ଇନ୍ଦ୍ର ।

ସୂତ୍ରାଲଙ୍କାର—ବି. ବୌଦ୍ଧଗ୍ରନ୍ଥବିଶେଷ, ସୂତ୍ରଦ୍ୱାରା ଗ୍ରଥିତ ଅଳଙ୍କାର ।

ସୂତ୍ରାଳୀ—ବି. (ସୂତ୍ର+ଆଳୀ)ଗଳସୂତ୍ର ଗଳମେଖଳ, ମାଳା ।

ସୂତ୍ରିତ—ବିଂ. (ସୂତ୍ର+ମି.ତ) ଗୁନ୍ଥା-ହୋଇଥିବା, ବ୍ୟବସ୍ଥିତ, ସୂତ୍ରରୂପେ ଲିଖିତ ବା କଥିତ ।

ସୂତ୍ରୀ—ବିଂ. (ସୂତ୍ର+ଇନ୍)ସୂତ୍ରବିଶିଷ୍ଟ, (ବି) କାକ ।

ସୂତ୍ରୀୟ—ବିଂ. (ସୂତ୍ର+ଈୟ) ସୂତ୍ର-ସମ୍ବନ୍ଧୀୟ ।

ସୂତ୍ରେ—ଗ୍ରା. କ୍ରି. ବିଂ. କୌଶଳରେ ।

ସୂତ୍ରେଇବା—ଗ୍ରା. କ୍ରି. ସୂତରଇବା ଦେଖ ।

ସୂତ୍ରେସୂତ୍ରେ—ଗ୍ରା. କ୍ରି. ବିଂ.ସୁତ୍ରେସୁତ୍ରେ ଦେଖ ।

ସୂଦ—(ଧାତୁ)ବଧ କରିବା,ନାଶକରିବା, ହିଂସା କରିବା ।

ସୂଦ—ବି. (ସୂଦ୍+ଣିଚ୍+କ.ଅ)ସୁପକାର, ପାଚକ, (ମି.ଅ)ବ୍ୟଞ୍ଜନ,ଝୋଳ, ସୂପ, ସାରଥ୍ୟ, ଅପରାଧ,ଦୋଷ,ପାପ, ଲୋଧ୍ର ।

ସୂଦନ—ବି. (ସୂଦ୍+ଭା.ଅନ) ହନନ, ମାରଣ, ନିକ୍ଷେପଣ,ଅଙ୍ଗୀକରଣ,(ବିଂ.-କ.ଅନ) ନାଶକାରୀ, ମାରକ, ହତ୍ୟାକାରୀ, (ସ୍ତ୍ରୀ) ସୂଦନା, (ଗ୍ରା.ବି) ପାନ, ଭକ୍ଷଣ ।

ସୂଦଶାଳା—ବି. ପାକଶାଳା ।

ସୂଦଶାସ୍ତ୍ର—ବି. ପାକଶାସ୍ତ୍ର,ଯେଉଁ ଶାସ୍ତ୍ରରେ ପାକପ୍ରଣାଳୀ ସକଳ ବିଶେଷ ଭାବରେ ବର୍ଣ୍ଣିତ ଅଛି ।

ସୂଦାଧ୍ୟକ୍ଷ—ପୁଂ.ବି. ପାକଶାଳାର ଅଧ୍ୟକ୍ଷ ।

ସୂଦିତ—ବିଂ. (ସୂଦ୍+ମି.ତ) ଆହତ, ବିନଷ୍ଟ, ନିହତ । [ ପାକକର୍ତ୍ତା ।

ସୂଦିତା—ବିଂ. ( ସୂଦ୍+ତୃ ) ପାଚକ,

ସୂନ—ବି. (ସୂ+ଭା.ତ) ପ୍ରସବ,ଉତ୍ପତ୍ତି, (ମି.ତ) ପୁଷ୍ପ,(ବିଂ) ବିକସିତ,ପ୍ରସ୍ଫୁଟିତ, ଜାତ, ଶୂନ୍ୟ, ଖାଲି, ରିକ୍ତ ।

ସୂନବାନ୍—ପୁଂ.ବିଂ. (ସୂ+କ.ତବତ୍) ଜାତ, (ସ୍ତ୍ରୀ) ସୂନବତୀ ।

ସୂନଶର—ବି. କୁସୁମଶର,କାମଦେବଙ୍କ ଧନୁ, (ବ.ବ୍ରୀ) କାମଦେବ ।

ସୂନା—ବି. (ସୁ+ମି.ନ+ଆ) ପୁତ୍ର, କନ୍ୟା,(ଅଧି.ଅ) ବଧସ୍ଥାନ,ଗଳଶୁଣ୍ଡିକା, ଘଣ୍ଟିକା, ମୃଗମାଂସ ବିକ୍ରୟ,ମୃଗ, ପକ୍ଷି-ବଧସ୍ଥାନ,କଂସେଇଖାନା,ମାଂସବିକ୍ରୟ, ପ୍ରାଣୀହତ୍ୟାର ବା ଜୀବହିଂସାର ଉପକରଣ; ଗୃହସ୍ଥର ନିତ୍ୟବ୍ୟବହାର୍ଯ୍ୟ ୫ଟି ବସ୍ତୁ, (ଯଥା:—କଣ୍ଡନୀ, ପେଷଣୀ, ଚୁଲ୍ଲୀ, ଉଦକୁମ୍ଭୀଚ ମାର୍ଜନୀ, ପଞ୍ଚସୂନା ଗୃହସ୍ଥସ୍ୟ ତାଭିଃ ସ୍ୱର୍ଗଂ ନ ବିନ୍ଦତି) ହତ୍ୟା, ଆଘାତକରଣ, କଟିବନ୍ଧନ, କିରଣ, (ସ୍ତ୍ରୀ.ବିଂ-ସୂନ+ଆ) ଜାତା ।

ସୂନାବାନ୍—ପୁଂ. ବି. ( ସୂନା+ବତ୍ ) ମାଂସବିକ୍ରୟୀ, ବ୍ୟାଧ ।

ସୂନିକ—ବି. (ସୂନା+ଇକ) ମାଂସବିକ୍ରୟକାରୀ ବ୍ୟକ୍ତି, ବ୍ୟାଧ,କଂସେଇ ।

ସୂନୀ—ପୁଂ. ବି. (ସୂନ+ଇନ୍) ବ୍ୟାଧ, ମାଂସବିକ୍ରୟୀ କଂସେଇ ।

ସୂନୁ—ପୁଂ.ବି.(ସୂ+ନୁ)ପୁତ୍ର,ଦୌହିତ୍ର, କନିଷ୍ଠଭ୍ରାତା, ଅନୁଜ,ସୂର୍ଯ୍ୟ,ଅର୍କବୃକ୍ଷ ।

ସୂନୂ—ସ୍ତ୍ରୀ. ବି.(ସୂ+ନୁ+ଊ) କନ୍ୟା, ତନୟା ।

ସୂନୃତ—ବି. (ସୁ+ନୃତ୍+କ.ଅ) ସତ୍ୟ ଅଥଚ ପ୍ରିୟବାକ୍ୟ, ଶୁଭ, ମଙ୍ଗଳ,(ବିଂ) ସୂନୃତବିଶିଷ୍ଟ, ସତ୍ୟ, ପ୍ରିୟ, ଶୁଭଗ,

ସତ୍ୟ ଓ ପ୍ରିୟଭାଷୀ ।
ସୂନ୍ମଦ—ବି. ( ସୁ+ଉନ୍ମଦ ) ଉନ୍ମତ୍ତ, ଉନ୍ମଦଗ୍ରସ୍ତ, ପାଗଳ ।
ସୂନ୍ମାଦ—ବିଂ. (ବ.ବ୍ରୀ) ପାଗଳ,ଉନ୍ମାଦ-ବେଗବଶିଷ୍ଟ ।
ସୂପ—ବି. (ସୁ+ମଂ.ପ)ଝୋଳ,ଡିଅଣର ଅଣ,ମୁଗ,ମସୁରଆଦିର ଡାଲି,ବ୍ୟଞ୍ଜନ-ବିଶେଷ, ସୂପକାର, ଭାଣ୍ଡ, ବାସନ, ବାଣ, ଶାମୁକ, ପାଚକ, ଡାଲିଆଦିର ପାଣି ବା ଅଣ, (ବିଂ.କ.ପ) ରନ୍ଧନ-କର୍ତ୍ତା ।
ସୂପକାର—ପୁଂ. ବି. (ସୂପ+କୃ+କ.ଅ) ପାଚକ, ଶୂଦ୍ରପାକୋପଜୀବୀ, ( ସ୍ତ୍ରୀ ) ସୂପକାରୀ ।
ସୂପକୃତ୍—ପୁଂ.ବି. (ସୂପ+କୃ+କ୍ୱିପ୍ ପାଚକ, ସୂପକାର ।
ସୂପଧୂପକ(ନ)—ବି. ହିଙ୍ଗୁ ।
ସୂପପର୍ଣ୍ଣୀ—ବି. ମୁଦ୍ଗପର୍ଣ୍ଣୀ ।
ସୂପବିଷ୍ଟ—ବିଂ.ସୁଖୋପବିଷ୍ଟ,ଯେ ସୁଖରେ ବସିଅଛି ।
ସୂପଶାସ୍ତ୍ର—ବି. ପାକ ଶାସ୍ତ୍ର ।
ସୂପଶ୍ରେଷ୍ଠ—ବି. ମୁଦ୍ଗ, ମୁଗ ।
ସୂପସ୍ଥାନ—ବି. ପାକଶାଳା ।
ସୂପସଂସ୍କୃତ—ବିଂ. ଉତ୍ତମରୂପେ ସଂସ୍କାର-ବିଶିଷ୍ଟ ।
ସୂପାଙ୍ଗ—ବି. (୬ତତ୍) ହିଙ୍ଗୁ ।
ସୂପାୟ—ବିଂ.ସଦୁପାୟ,ଉତ୍ତମ ଉପାୟ-ଯୁକ୍ତ । [ ବିଶିଷ୍ଟ ।
ସୂପାବସାନ—ବିଂ. ଉତ୍ତମ ବିଶ୍ରାମସ୍ଥାନ-
ସୂପିକ—ବିଂ.ସୂପ, ସୂପକାର,ପାଚକ ।
ସୂପ୍ୟ—ବିଂ. ସୂପୀୟ, ସୂପସମ୍ବନ୍ଧୀୟ ।
ସୂପୋଦନ—ବି. ଦ୍ୱନ୍ଦ୍ୱ; (ସୂପ+ଓଦନ ଡାଲି ଓ ଭାତ ।
ସୂମ—ବି. (ସୁ+କ.ମ) କ୍ଷୀର, ଦୁଗ୍ଧ, ଆକାଶ, ଜଳ, ସ୍ୱର୍ଗ, (ବିଂ. ) ଗତ, (ଯା.ବିଂ) କୃପଣ ।
ସୂଯ୍ଟ—ବି. (ସୁ+ଭା. ଅ) ସୋମରସ ବାହାର କରିବା କର୍ମ, ଯଜ୍ଞ ।
ସୂର—(ଧାତୁ) ବଧ କରିବା, ସ୍ଥମ୍ଭିତ କରିବା ।
ସୂର—ବି. (ସୁ+କ.ର) ସୂର୍ଯ୍ୟ, ଅର୍କ ବୃକ୍ଷ, ବର୍ତ୍ତମାନ ଅବସର୍ପିଣୀର ସପ୍ତଦଶ ଅର୍ହତ କୁନ୍ଥୁଙ୍କ ପିତା, (ସୁ+ର+କ.ଅ) ପଣ୍ଡିତ, ଶୂର, ବୀର, ମସୁର ।
ସୂରକନ୍ଦ—ବି. କନ୍ଦ ବିଶେଷ, ଶୂରଣ, ଓଲୁଅ । [ ବିଶେଷ ।
ସୂରକୃତ—ପୁଂ. ବି. ବିଶ୍ୱାମିତ୍ରଙ୍କ ପୁତ୍ର-
ସୂରଜ୍—ପ୍ରା.(ଭଞ୍ଜ ଭାଷା) ବି. ସୂର୍ଯ୍ୟ ।
ସୂରଜଫୁଲ—ପ୍ରା. (ପାଟଣା, ବଲାଙ୍ଗିର) ସୂର୍ଯ୍ୟମୁଖୀ ଫୁଲ ।
ସୂରଞ୍ଜାନ୍—ଯା.ବି. ଔଷଧରେ ବ୍ୟବ-ହୃତ ଗୁଳ୍ମବିଶେଷ ।
ସୂରଣ—ବି. (ସୂର + କ.ଅନ ) ଶୂରଣ, ଓଲୁଅ, ବେଣାମୂଳ ।
ସୂରତ—ପୁଂ. ବିଂ.(ସୁ + ରମ + କ.ତ) ଅତି କୃପାଳୁ, ସ୍ଥିର, ନିଶ୍ଚଳ, ସ୍ନିଗ୍ଧ, ସ୍ନିଗ୍ଧ, (ସ୍ତ୍ରୀ) ସୂରତା ।
ସୂରଦାସ—ବି. (୬ତତ୍) ପଣ୍ଡିତମାନଙ୍କ ଭୃତ୍ୟ, ଗ୍ରା. ବି. (କବି ସୁରଦାସ ଅନ୍ଧ ଥିବାରୁ) ଅନ୍ଧବ୍ୟକ୍ତି, ଅନ୍ଧଗାୟକ, ( ନାମ ) ଉତ୍ତର ଭାରତର ପ୍ରସିଦ୍ଧ ସ୍ୱର୍ଗୀୟ କୃଷ୍ଣଭକ୍ତ କବି ।
ସୂରମୁଖୀ—ବି. ସୂର୍ଯ୍ୟମୁଖୀ କାଚ, ସୂର୍ଯ୍ୟ କାନ୍ତମଣି,ସୂର୍ଯ୍ୟମୁଖୀ ଫୁଲ । [ସୁଗ୍ରୀବ ।
ସୂରସୁତ—ପୁଂ. ବି' (୬ତତ୍) ଶନିଗ୍ରହ,
ସୂରସୁତା—ବି. ସ୍ତ୍ରୀ. (୬ତତ୍) ଯମୁନା ।
ସୂରସୂତ—ବି. (୬ତତ୍) ସୂର୍ଯ୍ୟ ସାରଥି, ଅରୁଣ । [ ପ୍ରକରଣ ।
ସୂତ୍ର—ଯା. ବି. କୋରାନର ଶ୍ଳୋକ ବା
ସୂରି—ବି. ( ସୂର+କ.ଇ ) ପଣ୍ଡିତ, ସୂର୍ଯ୍ୟ, କବି, ଯାଦବ ବିଶେଷ, କୃଷ୍ଣ, ଜୈନଗୁରୁ ବିଶେଷ,ବୃହସ୍ପତି,ବିଚକ୍ଷଣ ।
ସୂରୀ—ପୁଂ. ବି. (ସୂର+ଇନ) ଜ୍ଞାନୀ ବ୍ୟକ୍ତି, ପଣ୍ଡିତ, (ସ୍ତ୍ରୀ) ବିଦୁଷୀ,ପଣ୍ଡିତା, କୁନ୍ତୀ, ରାଜସର୍ଷପ, ରାଇସୋରିଷ, ପୁରୋହିତ, ଜୈନ ପଣ୍ଡିତଙ୍କୁ ଦିଆଯିବା ଉପାଧି, ( ବିଂ. ପୁଂ ଓ ସ୍ତ୍ରୀ ) ଜ୍ଞାନୀ, ବିଦ୍ୱାନ୍ ।
ସୂରୁଜ୍—ପ୍ରା. (ସମ୍ବଲପୁର) ବି. ସୂର୍ଯ୍ୟ ।
ସୂର୍କି—ବି. ଇଟାଦିର ଗୁଣ୍ଡ ।
ସୂର୍କ୍ଷ (କ୍ଷ୍ୟ) (ଧାତୁ)—ଅନାଦର କରିବା, ଈର୍ଷା କରିବା, ସମ୍ମାନ କରିବା ।
ସୂର୍କ୍ଷ (କ୍ଷ୍ୟ) ଣ—ବି. ( ସୂର୍କ୍ଷ + ଭା.ଅନ ) ଅନାଦର, ଘୃଣା ।
ସୂର୍କ୍ଷ୍ୟ—ବି. ମାଷ, ବ୍ରୀହି ।
ସୂର୍ପ—ବି. ତଣ୍ଡୁଳାଦି ପରିଷ୍କରଣ ପାତ୍ର, କୁଲା, କୁମ୍ଭ ପରିମାଣ, ଦୁଇଦ୍ରୋଣ ପରିମାଣ ।
ସୂର୍ପନ(ଣ)ଖା—ବି. ସ୍ତ୍ରୀ. (ସୂର୍ପ+ନଖ) ରାବଣର ଭଗିନୀ, କୁଲାପରି ଯାହାର ନଖ ।
ସୂର୍ପାକ୍ଷ—ପୁଂ. ବି. ରାକ୍ଷସବିଶେଷ ।
ସୂର୍ପାରକ-ବି. ପଶ୍ଚିମ ଭାରତ ସମୁଦ୍ରୋପ-କୂଳବର୍ତ୍ତୀ ଗୋଟିଏ ପ୍ରାଚୀନ ବନ୍ଦର ।
ସୂର୍ପୀ—ବି. ସ୍ତ୍ରୀ. ଶୂର୍ପୀ, କୁଲେଇ, ଛୋଟ କୁଲା ।
ସୂର୍ମି (ର୍ମୀ)—ବି. ଲୌହର ବା ଧାତୁର ମୂର୍ତ୍ତି, ଲୌହନିର୍ମିତ ସ୍ତ୍ରୀମୂର୍ତ୍ତି, ଘରର ଖୁମ୍ବ, ସ୍ତମ୍ଭ, ପାଣିର କଳ, ଔଜ୍ଜ୍ୱଲ୍ୟ, ଅଗ୍ନିର ବା ଆଲୋକର ଶିଖା ।
ସୂର୍ମୀଯନ୍ତ୍ର—ବି. କୃଷ୍ଣ ଯଜୁର୍ବେଦୋକ୍ତ ନାଳିକାସ୍ତ୍ର ବିଶେଷ,ଏକପ୍ରକାର ବନ୍ଧୁକ ।
ସୂର୍ଯ୍ୟ (ର୍ଯ୍ୟ)—ପୁଂ.ବି. (ସୃ+କ.ଯ, ବା ସୂର+ସ୍ୱାର୍ଥେ.ଯ) ରବି, ଦିବାକର, ତାମ୍ର, ବାରସଂଖ୍ୟା, ଅର୍କଗୁଳ୍ମ, ସୂର୍ଯ୍ୟ-ବର୍ତ୍ତ ବୃକ୍ଷ, ସୁବର୍ଣ୍ଣ,ବଳିଙ୍କର ଏକପୁତ୍ର, ଅଙ୍ଗଦ, (ଗ୍ରା. ବି.) ଏକକଡ଼ା କଉଡ଼ିର ବାରଭାଗରୁ ଏକ ଭାଗ ।
ସୂର୍ଯ୍ୟଉଇଁବା—ଗ୍ରା. ବି. ସୂର୍ଯ୍ୟୋଦୟ ହେବା ।
ସୂର୍ଯ୍ୟଉଦିବା—ପ୍ରା. (ସମ୍ବଲପୁର) ବି. ସୂର୍ଯ୍ୟୋଦୟ ହେବା ।
ସୂର୍ଯ୍ୟକମଳ—ବି. ସୂର୍ଯ୍ୟମୁଖୀ ଫୁଲ ।
ସୂର୍ଯ୍ୟକର-ବି. (୬ତତ୍) ସୂର୍ଯ୍ୟଙ୍କ କିରଣ, ଖରା ।
ସୂର୍ଯ୍ୟକାନ୍ତ—ବି. (ବ.ବ୍ରୀ) ମଣିବିଶେଷ, ଆତସମଣି, ଦ୍ୱିକୁବ୍ଜବିଶିଷ୍ଟ କାଚ,

ସ୍ଫଟିକ,ଆଦିତ୍ୟପର୍ଣ୍ଣୀ, ପୁଷ୍ପବୃକ୍ଷବିଶେଷ, ସୂର୍ଯ୍ୟଗ୍ରହଣ ।

ସୂର୍ଯ୍ୟକାନ୍ତି—ବି. ସ୍ତ୍ରୀ. ପୁଷ୍ପବିଶେଷ,ସୂର୍ଯ୍ୟଙ୍କର ଦୀପ୍ତି ।

ସୂର୍ଯ୍ୟକାଳ—ବି. ଦିବସ, ଦିନ ।

ସୂର୍ଯ୍ୟକାଳାନଳଚକ୍ର—ବି. ( ଫଳିତ ଜ୍ୟୋତିଷ ) ନରମାନଙ୍କ ଶୁଭାଶୁଭ ଜ୍ଞାନାର୍ଥ ନକ୍ଷତ୍ର ଘଟିତ ଚକ୍ରବିଶେଷ ।

ସୂର୍ଯ୍ୟକେତୁ—ବି°. ସୂର୍ଯ୍ୟଚିହ୍ନିତ ଧ୍ୱଜ ଯୁକ୍ତ,(ପୁଂ.ବି.)ରାଜାବିଶେଷ । [ କାନ୍ତ ।

ସୂର୍ଯ୍ୟକାନ୍ତ—ବି.ଜନପଦ ବିଶେଷ,ରଥ-

ସୂର୍ଯ୍ୟକ୍ଷୟ—ବି. ସୂର୍ଯ୍ୟୋମଣ୍ଡଳ ।

ସୂର୍ଯ୍ୟଗ୍ରହ—ପୁଂ. ବି. ନବଗ୍ରହ ମଧ୍ୟରୁ ପ୍ରଥମ ଗ୍ରହ, ସୂର୍ଯ୍ୟ, ସୂର୍ଯ୍ୟଗ୍ରହଣ, ରାହୁ, କେତୁ, କଳସୀର ତଳଭାଗ ।

ସୂର୍ଯ୍ୟଗ୍ରହଣ—ବି.ସୂର୍ଯ୍ୟୋପରାଗ ।

ସୂର୍ଯ୍ୟଘଡ଼ି—ଗ୍ରା. ବି. ସୂର୍ଯ୍ୟ କିରଣରେ ରକ୍ଷିତ ଫଳକାଦିର ଛାୟାପାତ ଦ୍ୱାରା ସମୟ ନିରୂପକ ଯନ୍ତ୍ର ।

ସୂର୍ଯ୍ୟଜ—ପୁଂ. ବି. (୬ତତ୍, ସୂର୍ଯ୍ୟ+ ଜନ୍+ଅ) ସୁଗ୍ରୀବ ବାନର, ଶନିଗ୍ରହ, ଯମ, କର୍ଣ୍ଣରାଜା, ସାବର୍ଣ୍ଣି ମନୁ ।

ସୂର୍ଯ୍ୟଜା—ବି. ସ୍ତ୍ରୀ. (୬ତତ୍) ଯମୁନା, ତପତୀ, ବିଦ୍ୟୁତ୍ ।

ସୂର୍ଯ୍ୟତନୟ(ନନ୍ଦନ)—ପୁଂ.ବି.(୬ତତ୍) ଶନିଗ୍ରହ, ସାବର୍ଣ୍ଣି ମନୁ, ଯମ, କର୍ଣ୍ଣ ରାଜା, ସୁଗ୍ରୀବ, ଅଶ୍ୱିନୀକୁମାର ଦ୍ୱୟ, ବରୁଣ ।

ସୂର୍ଯ୍ୟତନୟା(ନନ୍ଦନା)—ବି. ସ୍ତ୍ରୀ. ଯମୁନା, ତପତୀ, ବିଦ୍ୟୁତ୍ ।

ସୂର୍ଯ୍ୟତପାଃ—ପୁଂ. ବି. ମୁନିବିଶେଷ ।

ସୂର୍ଯ୍ୟତେଜାଃ—ବି°.ସୂର୍ଯ୍ୟଙ୍କତୁଲ୍ୟ ତେଜ ସମ୍ପନ୍ନ, ମହା ତେଜସ୍ୱୀ । [ ସୂର୍ଯ୍ୟ ।

ସୂର୍ଯ୍ୟଦେବ—ପୁଂ. ବି. ଭଗବାନ ଶ୍ରୀ

ସୂର୍ଯ୍ୟଧ୍ୱଜ—ପୁଂ. ବି. ସୂର୍ଯ୍ୟକେତୁ,ମହାଭାରତୋକ୍ତ ପ୍ରସିଦ୍ଧ ରାଜବିଶେଷ,(ବି°) ସୂର୍ଯ୍ୟଚିହ୍ନିତ ଧ୍ୱଜଯୁକ୍ତ ।

ସୂର୍ଯ୍ୟଧ୍ୱଜପତାକୀ—ପୁଂ. ବି. ଶିବ,(ବି°) ସୂର୍ଯ୍ୟଧ୍ୱଜଚିହ୍ନିତ ପତାକାଯୁକ୍ତ ।

ସୂର୍ଯ୍ୟନକ୍ଷତ୍ର—ବି. ସୂର୍ଯ୍ୟଙ୍କ ସହିତ ନକ୍ଷତ୍ରର ଯୋଗ ।

ସୂର୍ଯ୍ୟନଗର—କାଶ୍ମୀର ରାଜ୍ୟର ରାଜଧାନୀ ଶ୍ରୀନଗରର ଅପର ନାମ ।

ସୂର୍ଯ୍ୟନାଡ଼ୀ—ବି. ଇଡ଼ା ନାଡ଼ୀ ।

ସୂର୍ଯ୍ୟନେତ୍ର—ପୁଂ.ବି. ଗରୁଡ଼ଙ୍କର ପୁତ୍ରବିଶେଷ ।

ସୂର୍ଯ୍ୟପକ୍ୱ—ବି°. (୩ତତ୍ ବା କ. ଧା) ସୂର୍ଯ୍ୟପାଗୀ ଦେଖ ।

ସୂର୍ଯ୍ୟପତ୍ର—ବି. ଅଣସୋରିଷିଆ ଗୁଳ୍ମ, ଆଦିତ୍ୟପତ୍ରା, ଅର୍କଗୁଳ୍ମ ।

ସୂର୍ଯ୍ୟପତ୍ନୀ—ବି. ସ୍ତ୍ରୀ. ସୂର୍ଯ୍ୟଦେବତା ବିଶିଷ୍ଟ, ସଂଜ୍ଞା, ଛାୟା ।

ସୂର୍ଯ୍ୟପର୍ଣ୍ଣୀ—ବି. ମୁଦ୍ଗପର୍ଣ୍ଣୀ, ମାଷପର୍ଣ୍ଣୀ, ଈଶ୍ୱରମୂଳ ।

ସୂର୍ଯ୍ୟପର୍ବ—ବି. ସୂର୍ଯ୍ୟଙ୍କର ଏକ ନୂଆ ରାଶିରେ ପ୍ରବେଶ କରିବା ସମୟ ।

ସୂର୍ଯ୍ୟପାଗୀ—ଗ୍ରା. ବି°. (ସଂ.-ସୂର୍ଯ୍ୟପକ୍ୱ) ଖରାରେ ଚିନ୍ତାଜଳ ରଖାଯାଇ ପାକ କରାଯାଇଥିବା ।

ସୂର୍ଯ୍ୟପାଦ—ବି. (୬ତତ୍)ସୂର୍ଯ୍ୟକିରଣ ।

ସୂର୍ଯ୍ୟପୁତ୍ର(ସୁତ)—ପୁ. ବି. (୬ତତ୍) ବରୁଣ, ଶନି, ଯମ, ଅଶ୍ୱିନୀକୁମାର ଦ୍ୱୟ ।

ସୂର୍ଯ୍ୟପୁତ୍ରୀ(ସୁତା)—ବି. ସ୍ତ୍ରୀ. (୬ତତ୍) ଯମୁନା, ବିଦ୍ୟୁତ୍ ।

ସୂର୍ଯ୍ୟପୁରାଣ— ବି. ସୌର ପୁରାଣ, ସୂର୍ଯ୍ୟ ମାହାତ୍ମ୍ୟ ଜ୍ଞାପକ ଉପପୁରାଣ ବିଶେଷ ।

ସୂର୍ଯ୍ୟପୂଜକ—ବି. ସୂର୍ଯ୍ୟୋପାସକ ।

ସୂର୍ଯ୍ୟପୂଜା—ବି.ସୂର୍ଯ୍ୟଦେବଙ୍କ ଉପାସନା, ସୂର୍ଯ୍ୟଙ୍କର ଅର୍ଚ୍ଚନା ।

ସୂର୍ଯ୍ୟପ୍ରଭ—ପୁଂ. ବି°. ବ.ବ୍ରୀ. (ସୂର୍ଯ୍ୟ+ ପ୍ରଭା) ସୂର୍ଯ୍ୟଙ୍କ ପରି ଜ୍ୟୋତିଷ୍ମାନ୍,(ସ୍ତ୍ରୀ) ସୂର୍ଯ୍ୟପ୍ରଭା ।

ସୂର୍ଯ୍ୟପ୍ରଭବ—ପୁଂ. ବି°. ସୂର୍ଯ୍ୟଙ୍କଠାରୁ ଜାତ. (ସ୍ତ୍ରୀ) ସୂର୍ଯ୍ୟପ୍ରଭବା ।

ସୂର୍ଯ୍ୟଫଣିଚକ୍ର—ବି. ସବକାର୍ଯ୍ୟ ଶୁଭାଶୁଭ ଜ୍ଞାପକ ଜ୍ୟୋତିଷୋକ୍ତ ଚକ୍ରବିଶେଷ ।

ସୂର୍ଯ୍ୟବଂଶ—ବି. ସୂର୍ଯ୍ୟଙ୍କଠାରୁ ଜାତ ସନ୍ତାନ ପରମ୍ପରାକ୍ରମ ବଂଶ ।

ସୂର୍ଯ୍ୟବଂଶିକ—ଗ୍ରା. ବି°. ସୂର୍ଯ୍ୟବଂଶ ସମ୍ବନ୍ଧୀୟ, ସୂର୍ଯ୍ୟ ବଂଶୋଦ୍ଭବ ।

ସୂର୍ଯ୍ୟବଂଶୀ (ବଂଶୀୟ, ବଂଶ୍ୟ)-ପୁଂ. ବି°. ସୂର୍ଯ୍ୟବଂଶିକ ଦେଖ, (ସ୍ତ୍ରୀ)ସୂର୍ଯ୍ୟବଂଶିନୀ ।

ସୂର୍ଯ୍ୟବକ୍ଷ—ପୁଂ. ବି. ସୂର୍ଯ୍ୟମୁଖ ।

ସୂର୍ଯ୍ୟବନ୍ଧୁ—ଗ୍ରା. ବି. ମହାପ୍ରସାଦ ବନ୍ଧୁ, ଧର୍ମବନ୍ଧୁ ।

ସୂର୍ଯ୍ୟବର୍ଣ୍ଣ—ବି°. ସୂର୍ଯ୍ୟଙ୍କ ତୁଲ୍ୟ ବର୍ଣ୍ଣବିଶିଷ୍ଟ । [ ପଦ୍ମିନୀ ।

ସୂର୍ଯ୍ୟବଲ୍ଲଭା—ବି. ସ୍ତ୍ରୀ. ଆଦିତ୍ୟଭକ୍ତା,

ସୂର୍ଯ୍ୟବଲ୍ଲୀ—ବି. ଅର୍କପୁଷ୍ପିକା ବୃକ୍ଷ, ସୂର୍ଯ୍ୟମୁଖୀ ଫୁଲ ।

ସୂର୍ଯ୍ୟବାଉଳି—ଗ୍ରା. ବି. (ବଣିଆଶବ୍ଦ) ତଳ କାନରେ ପିନ୍ଧାଯିବା ସୁନାର ଅଳଂକାର ବିଶେଷ ।

ସୂର୍ଯ୍ୟବାର(ବାସର)—ବି. ରବିବାର ।

ସୂର୍ଯ୍ୟବିକାସୀ—ବି°. ପ୍ରସ୍ଫୁଟିତ, ସୂର୍ଯ୍ୟାଲୋକରେ ବିକଶିତ ।

ସୂର୍ଯ୍ୟବିନ୍ଦୁ—ବି. ପୁଂ. ବିଷ୍ଣୁ । [ମଣ୍ଡଳ ।

ସୂର୍ଯ୍ୟବିମ୍ବ—ବି. (୬ତତ୍) ସୂର୍ଯ୍ୟଙ୍କ

ସୂର୍ଯ୍ୟବିଲୋକନ—ବି. ଶିଶୁର ଚତୁର୍ଥ ମାସ ବୟସରେ ପ୍ରଥମ ସୂର୍ଯ୍ୟ ଦର୍ଶନ ରୂପ ମାଙ୍ଗଳିକ କର୍ମ । ଦେବା ।

ସୂର୍ଯ୍ୟବୁଡ଼ିବା—ଗ୍ରା.ବି. ସୂର୍ଯ୍ୟଙ୍କର ଅସ୍ତ

ସୂର୍ଯ୍ୟବୃକ୍ଷ— ବି. ଅର୍କ ଗଛ, ଅରଖ ଗଛ ।

ସୂର୍ଯ୍ୟବେଷ୍ଟ—ବି. ( ୬ତତ୍ ) ସୂର୍ଯ୍ୟ ମଣ୍ଡଳ ।

ସୂର୍ଯ୍ୟ ବ୍ରତ— ବି. ସୂର୍ଯ୍ୟ ପୂଜାରୂପ ବ୍ରତ, ସୋମନାଥ ବ୍ରତ ଦେଖ ।

ସୂର୍ଯ୍ୟଭକ୍ତ—ବି. ପୁଂ. ସୂର୍ଯ୍ୟୋପାସକ, ବନ୍ଧୁକ ପୁଷ୍ପ, ଦିପହରିଆ ଫୁଲ,ବନ୍ଧୁଳି-ଫୁଲ ।

ସୂର୍ଯ୍ୟଭକ୍ତକ—ପୁଂ.ବି. ବନ୍ଧୁକ ପୁଷ୍ପବୃକ୍ଷ, ସୂର୍ଯ୍ୟ ପୂଜକ ।

ସୂର୍ଯ୍ୟଭକ୍ତା—ବି. ସୁବର୍ଚ୍ଚଳା, ସୂର୍ଯ୍ୟମୁଖୀ ଗଛ, ଅଣସୋରିଷିଆ ଗୁଳ୍ମ ।

ସୂର୍ଯ୍ୟଭଗା—ବି. ସ୍ତ୍ରୀ. ନଦୀବିଶେଷ ।

ସୂର୍ଯ୍ୟଭାନୁ—ବି. ପୁଂ. ଯକ୍ଷ ଭେଦ ।

ସୂର୍ଯ୍ୟମଣି—ବି.ପୁଂ. ସୂର୍ଯ୍ୟକାନ୍ତ ମଣି, ପୁଷ୍ପ ବୃକ୍ଷ ବିଶେଷ, ସ୍ୱନାମଖ୍ୟାତ ପୁଷ୍ପ ।

ସୂର୍ଯ୍ୟମଣିଫୁଲ—ଗ୍ରା. ବି. ବଧୁଲି ଫୁଲ ।

ସୂର୍ଯ୍ୟମଣ୍ଡଳ—ବି. (୬ତତ୍) ସୂର୍ଯ୍ୟଙ୍କ ପରିବେଶ ବା ପରିଧି ।

ସୂର୍ଯ୍ୟମନ୍ଦିର-ବି.ସୂର୍ଯ୍ୟଦେବଙ୍କର ମନ୍ଦିର, ଭାରତବର୍ଷର ନାନା ସ୍ଥାନରେ ସୂର୍ଯ୍ୟ ମନ୍ଦିର ଅଛି, ତନ୍ମଧ୍ୟେ ମୁଲତାନ, କୋଣାର୍କ ଓ ଭିନମାଲର ସୂର୍ଯ୍ୟ-ମନ୍ଦିର ପ୍ରଧାନ ଓ ପ୍ରସିଦ୍ଧ ।

ସୂର୍ଯ୍ୟମାଲ—ବି. ପୁଂ. ଶିବ (ଭାରତ ଶିବସହସ୍ର)

ସୂର୍ଯ୍ୟମାସ—ବି. ସୌର ମାସ

ସୂର୍ଯ୍ୟମୁଖୀ—ବି. ଅଣ ସୋରିଷିଆ, ବନ୍ୟ ଶାକ ବିଶେଷ, (ଗ୍ରା.ବି.) ଏକ ପ୍ରକାର ହଳଦିଆ ଫୁଲ ଓ ତହିଁର ଗଛ ।

ସୂର୍ଯ୍ୟରଶ୍ମି—ବି. (୬ତତ୍) ସୂର୍ଯ୍ୟଙ୍କ କିରଣ ।

ସୂର୍ଯ୍ୟର୍କ୍ଷ—ବି. କ୍ଳୀ. ସୂର୍ଯ୍ୟ ନକ୍ଷତ୍ର, ସୂର୍ଯ୍ୟ ଭୋଗ୍ୟ ନକ୍ଷତ୍ର, ସୂର୍ଯ୍ୟ ଯେଉଁ ନକ୍ଷତ୍ରରେ ଅବସ୍ଥାନ କରନ୍ତି ।

ସୂର୍ଯ୍ୟର୍ଚ୍ଚ—ବି. ସ୍ତ୍ରୀ. ସୂର୍ଯ୍ୟ ପ୍ରକାଶିକା ଋକ୍, ସୂର୍ଯ୍ୟ ପ୍ରକାଶକ ଋକମନ୍ତ୍ର ।

ସୂର୍ଯ୍ୟ ଲତା—ବି. ଆଦିତ୍ୟଭକ୍ତା, ଅଣ-ସୋରିଷିଆ, ସୂର୍ଯ୍ୟମୁଖୀ ଦେଖ ।

ସୂର୍ଯ୍ୟଲୋକ—ବି. ସୌର ଭୁବନ, ସୂର୍ଯ୍ୟ ଭକ୍ତ ପୁଣ୍ୟଶୀଳ ଓ ଯୁଦ୍ଧରେ ମୃତ ବ୍ୟକ୍ତିମାନଙ୍କର ପୁରାଣୋକ୍ତ ପର-ଲୌକିକ ବାସସ୍ଥାନ, ସୌର ଜଗତ୍ ।

ସୂର୍ଯ୍ୟଶିଷ୍ୟ—ପୁଂ. ବି. ଯାଜ୍ଞବଲ୍କ୍ୟ ଋଷି, ଜନକ ରାଜର୍ଷି ।

ସୂର୍ଯ୍ୟଶୋଭା—ସ୍ତ୍ରୀ. ବି. ପୁଷ୍ପବିଶେଷ ।

ସୂର୍ଯ୍ୟଶ୍ରୀ—ପୁଂ. ବି. ବିଶ୍ୱେଦେବ ଭେଦ (ଭାରତ) ।

ସୂର୍ଯ୍ୟସଂକ୍ରମଣ (ସଂକ୍ରାନ୍ତି)—ସୂର୍ଯ୍ୟଙ୍କର ଏକ ରାଶିରୁ ଅନ୍ୟ ରାଶିକୁ ଗମନ ।

ସୂର୍ଯ୍ୟସଂଜ୍ଞ—ବି. (ସୂର୍ଯ୍ୟ+ସଂଜ୍ଞା) ବି.ବ୍ରୀ; କୁଙ୍କୁମ, ଅର୍କଗୁଳ୍ମ, ତାମ୍ର, ଏକ ପ୍ରକାର ମାଣିକ୍ୟ ।

ସୂର୍ଯ୍ୟସଦୃଶ—ବିଂ. ସୂର୍ଯ୍ୟ ତୁଲ୍ୟ, ସୂର୍ଯ୍ୟଙ୍କ ପରି ତେଜସ୍ୱୀ, ସୂର୍ଯ୍ୟସମ ।

ସୂର୍ଯ୍ୟସାବର୍ଣ୍ଣି—ବି. ମାର୍କଣ୍ଡେୟ ପୁରାଣ ଅନୁସାରେ ଅଷ୍ଟମ ମନୁଙ୍କ ନାମ ।

ସୂର୍ଯ୍ୟସାରଥି—ବି. (୬ତତ୍) ଅରୁଣ ।

ସୂର୍ଯ୍ୟସିଦ୍ଧାନ୍ତ—ବି. ହିନ୍ଦୁଜ୍ୟୋତିଷଙ୍କର ପ୍ରଧାନ ଗ୍ରନ୍ଥ ।

ସୂର୍ଯ୍ୟସୂକ୍ତ—ବି. ସୂର୍ଯ୍ୟଦେବଙ୍କ ସ୍ତୁତି ସମ୍ବଳିତ ଋଗ୍ବେଦର ସୂକ୍ତବିଶେଷ ।

ସୂର୍ଯ୍ୟସ୍ତବରାଜ—ବି. ଶାମ୍ବ ପୁରାଣୋକ୍ତ ସୂର୍ଯ୍ୟଙ୍କର ଏକବିଂଶ ନାମ ସମ୍ବଳିତ ସ୍ତୋତ୍ର । [ସ୍ତବ ।

ସୂର୍ଯ୍ୟସ୍ତୁତି (ସ୍ତୋତ୍ର)—ବି. ସୂର୍ଯ୍ୟଙ୍କର

ସୂର୍ଯ୍ୟସ୍ୱର—ଗ୍ରା. ବି. ଶରୀରରେ ଥିବା ବାୟୁ ବିଶେଷ (ଏ ପୁରୁଷ ଓ ଏହାର ବର୍ଣ୍ଣ ଶ୍ୱେତ ଅଟେ, ସୂର୍ଯ୍ୟନାଡ଼ୀ ଦେଖ)

ସୂର୍ଯ୍ୟହାର—ଗ୍ରା. ବି. (ବଣିଆଶବ୍ଦ) ଅଣ୍ଟାରେ ପିନ୍ଧାଯିବା ପାଇଁ ସୁନାର ବା ରୁପାର ଏକ ପ୍ରକାର ତାରକଶି ଅଳଙ୍କାର ।

ସୂର୍ଯ୍ୟହୃଦୟ—ବି. ଆଦିତ୍ୟ ହୃଦୟ, ସୂର୍ଯ୍ୟ ଦେବଙ୍କ ସ୍ତବବିଶେଷ ।

ସୂର୍ଯ୍ୟା (ର୍ଯା)—ବି.(ସୂର୍ଯ୍ୟ+ଆ) ସୂର୍ଯ୍ୟ ପତ୍ନୀ ସଂଜ୍ଞା, ଇନ୍ଦ୍ରବାରୁଣୀ, ମହାକାଳ ଲତା, ନବୋଢ଼ା, ନବବଧୂ, ସୂର୍ଯ୍ୟଙ୍କ କନ୍ୟା, ଔଷଧ, ସୂର୍ଯ୍ୟଙ୍କ ବିବାହ ସମ୍ବନ୍ଧୀୟ ସ୍ତୋତ୍ର ବିଶେଷ, ବାକ୍ୟ ତକ୍ତଲାଉ

ସୂର୍ଯ୍ୟା (ର୍ଯା) ଣୀ—ବି. ସ୍ତ୍ରୀ. (ସୂର୍ଯ୍ୟ+ଆନୀ) ସୂର୍ଯ୍ୟପତ୍ନୀ, ସଂଜ୍ଞା ।

ସୂର୍ଯ୍ୟାତପ—ବି. (୬ତତ୍) ଖରା ।

ସୂର୍ଯ୍ୟାତ୍ମଜ—ପୁଂ.ବି. (୬ତତ୍) ସୂର୍ଯ୍ୟ ତନୟ ଦେଖ ।

ସୂର୍ଯ୍ୟାତ୍ମଜା—ସ୍ତ୍ରୀ. ବି. (୬ତତ୍) ସୂର୍ଯ୍ୟ ତନୟା ଦେଖ । [ପୁତ୍ର ।

ସୂର୍ଯ୍ୟାପୀଡ଼—ବି. (ନାମ) ପରୀକ୍ଷିତଙ୍କ

ସୂର୍ଯ୍ୟାବର୍ତ୍ତି(ର୍ତ୍ତୀ)—ବି. (ସୂର୍ଯ୍ୟ+ଆ+ବୃତ୍+କ.ଅ+ଆ) ସୂର୍ଯ୍ୟମୁଖୀ ଫୁଲ, ଅଣସୋରିଷିଆ ଗୁଳ୍ମ, ଗଜପିପ୍ପଳୀ, ଅଧା-କପାଳ ବଥା ରୋଗ ।

ସୂର୍ଯ୍ୟାସ୍ତମ-ବି. (୬ତତ୍) ସୂର୍ଯ୍ୟାସ୍ତ ସମୟ ।

ସୂର୍ଯ୍ୟାର୍ଘ୍ୟ—ବି. (କ.ଧା) ସୂର୍ଯ୍ୟଦେବଙ୍କ ଉଦ୍ଦେଶ୍ୟରେ ମନ୍ତ୍ରପାଠ ପୂର୍ବକ ଦିଆ-ଯିବା ଜଳ ।

ସୂର୍ଯ୍ୟାଲୋକ—ବି. (ସୂର୍ଯ୍ୟ+ଆଲୋକ) ସୂର୍ଯ୍ୟଙ୍କର ଆଲୋକ, ଖରା ।

ସୂର୍ଯ୍ୟାବର୍ତ୍ତରସ—ବି.ଶ୍ୱାସରୋଗାଧିକାରର ରସୌଷଧବିଶେଷ ।

ସୂର୍ଯ୍ୟାବର୍ତ୍ତୀ—ବି. (ସୂର୍ଯ୍ୟ+ଆ+ବୃତ୍+ଅ+ଆ) ଆଦିତ୍ୟଭକ୍ତା ।

ସୂର୍ଯ୍ୟାଶ୍ମା—ବି. (ସୂର୍ଯ୍ୟ+ଅଶ୍ମନ୍) ସୂର୍ଯ୍ୟ-କାନ୍ତମଣି, ପୁଷ୍ପବୃକ୍ଷବିଶେଷ ।

ସୂର୍ଯ୍ୟାଶ୍ୱ—ବି. ସୂର୍ଯ୍ୟଙ୍କ ରଥରେ ଲଗି-ଥିବା ୭ଗୋଟି ଘୋଡ଼ା ।

ସୂର୍ଯ୍ୟାସୂକ୍ତ—ବି. ସୂର୍ଯ୍ୟଙ୍କ ସ୍ତୋତ୍ରରୂପ ବୈଦିକ ମନ୍ତ୍ର ।

ସୂର୍ଯ୍ୟାସ୍ତ—ବି.(୬ତତ୍) ସୂର୍ଯ୍ୟଙ୍କର ପଶ୍ଚିମ ଦିଗରେ ବୁଡ଼ିଯିବା, ସୂର୍ଯ୍ୟଙ୍କର ଅସ୍ତ-ଗମନ ।

ସୂର୍ଯ୍ୟାହ୍ୱ—ବିଂ. (ସୂର୍ଯ୍ୟ+ଆହ୍ୱା) ବି.ବ୍ରୀ; ସୂର୍ଯ୍ୟନାମଧାରୀ, (ବି) ତାମ୍ର, ଅର୍କଗୁଳ୍ମ, ମହେନ୍ଦ୍ରବାରୁଣୀ । [ମହାକାଳ ।

ସୂର୍ଯ୍ୟାହ୍ୱା—ସ୍ତ୍ରୀ.ବି.ମହେନ୍ଦ୍ରବାରୁଣୀ ଲତା,

ସୂର୍ଯ୍ୟେନ୍ଦୁସଙ୍ଗମ—ବି. (ଦ୍ୱନ୍ଦ୍ୱ-୬ତତ୍) ସୂର୍ଯ୍ୟ ଓ ଚନ୍ଦ୍ରଙ୍କର ମେଳନ, ଅମାବାସ୍ୟା, (ଯେଉଁ ତିଥିରେ ସୂର୍ଯ୍ୟ ଓ ଚନ୍ଦ୍ର ଏକ-ରାଶିରେ ଥାଆନ୍ତି) ।

ସୂର୍ଯ୍ୟୋଢ଼—ବି. (ସୂର୍ଯ୍ୟ+ବହ୍+ର୍ମି.ତ) ସୂର୍ଯ୍ୟାସ୍ତକାଳରେ ଆଗତ ଅତିଥି, ଯେଉଁ ଅତିଥି ସୂର୍ଯ୍ୟାସ୍ତପରେ ଆସି କୌଣସି ଗୃହସ୍ଥଙ୍କ ଘରେ ପହଞ୍ଚନ୍ତି, ଅସ୍ତଗତ ସୂର୍ଯ୍ୟ, ସୂର୍ଯ୍ୟାସ୍ତ ସମୟ ।

ସୂର୍ଯ୍ୟୋତ୍ଥାନ—ବି.(୬ତତ୍) ସୂର୍ଯ୍ୟୋଦୟ, (ମଧ୍ୟାହ୍ନ ପୂର୍ବରୁ) ସୂର୍ଯ୍ୟଙ୍କର ଆକାଶ-ମାର୍ଗରେ କ୍ରମଶଃ ଉପରକୁ ଉଠିବା ।

ସୂର୍ଯ୍ୟୋଦୟ—ବି. (୬ତତ୍) ପୂର୍ବଦିଗରେ ସୂର୍ଯ୍ୟଙ୍କର ପ୍ରକାଶ, ସୂର୍ଯ୍ୟଙ୍କର ଉଦୟ ସମୟ । [ଚଳ ।

ସୂର୍ଯ୍ୟୋଦୟଗିରି—ବି.(୬ତତ୍) ଉଦୟା-

ସୂର୍ଯ୍ୟୋଦ୍ୟାନ—ବି. ସୂର୍ଯ୍ୟବନ ।
ସୂର୍ଯ୍ୟୋପରାଗ—ବି.(୬ତତ୍ପୁ)ସୂର୍ଯ୍ୟଗ୍ରହଣ, କେତୁଦ୍ୱାରା ସୂର୍ଯ୍ୟଙ୍କ ଗ୍ରାସ ।
ସୂର୍ଯ୍ୟୋପସ୍ଥାନ—ବି.(କ.ଧା)ପ୍ରାତଃକାଳ, ମଧ୍ୟାହ୍ନ ଓ ସୂର୍ଯ୍ୟାସ୍ତ କାଳରେ ସୂର୍ଯ୍ୟଙ୍କ ଆଡ଼କୁ ମୁହଁକରିଲାଇ ଏକ ଗୋଡ଼ରେ ଦଣ୍ଡାୟମାନ ଭକ୍ତଙ୍କ ଦ୍ୱାରା ସୂର୍ଯ୍ୟଦେବଙ୍କର ଉପାସନା ।
ସୂର୍ଯ୍ୟୋପାସକ—ପୁଂ.ବି.(୬ତତ୍ପୁ)ସୂର୍ଯ୍ୟପୂଜକ, (ସ୍ତ୍ରୀ) ସୂର୍ଯ୍ୟୋପାସିକା ।
ସୂର୍ଯ୍ୟୋପାସନ(ନା)—ବି.(୬ତତ୍ପୁ)ସୂର୍ଯ୍ୟଦେବଙ୍କର ଉପାସନା ବା ପୂଜା ।
ସୃଷ—(ଧାତୁ) ପ୍ରସବ କରିବା । [ ମାତା ।
ସୃଷଣା—ସ୍ତ୍ରୀ. ବି. (ସୃଷ + କ.ଅନ + ଆ)
ସୃଷ୍ୟନ୍ତୀ—ସ୍ତ୍ରୀ.ବି(ସୃଷ୍ + କ.ଯନ୍ତୃ + ଈ) ଆସନ୍ନପ୍ରସବା ସ୍ତ୍ରୀ ।
ସୃ—(ଧାତୁ) ଗତି କରିବା, ଦଉଡ଼ିବା, ଆକ୍ରମଣ କରିବାକୁ ଅଗ୍ରସର ହେବା, (ପବନ, ଜଳ) ବହିବା ।
ସୃକ୍(ଗ୍,ଟ୍,ଡ଼୍)—ପୁଂ.ବି. (ସୃଜ୍ + କ୍ୱିପ୍) ସୃଷ୍ଟିକର୍ତ୍ତା ।
ସୃକ—ବି. (ସୃ + କ.କ) କୈରବ,କଇଁଫୁଲ,ବାଣ,ପଦ୍ମ, ବାୟୁ,ଶୃଗାଳ, ଭଲ୍ଲୁକ, ବଜ୍ର, (ବିଂ) ସରଣଶୀଳ ।
ସୃକଣ୍ଡୁ—ବି. କଣ୍ଡୁରୋଗ,କାଛୁକୁଣ୍ଡିଆ ।
ସୃକାଳ—ବି. ( ସୃ + କ.କାଲ )ଶୃଗାଳ, ଶିଆଳ ।
ସୃକ୍କ—ବି.(ସୃଜ୍ + କ.କ)ସୃକ୍କଣୀ ଦେଖ ।
ସୃକ୍କଣୀ—ବି. (ସୃଜ୍ + କ.କନନ୍ + ଈ) ଦୁଇଓଷ୍ଠର ପ୍ରାନ୍ତଭାଗ,ଓଷ୍ଠଦ୍ୱୟର ବାମ ଓ ଦକ୍ଷିଣପ୍ରାନ୍ତ । [ ଦେଖ ।
ସୃକ୍କନ—ଗ୍ରା. ବି. (ସଂ-ସୃକ୍କଣୀ) ସୃକ୍କଣୀ
ସୃକ୍କ(କ୍କୀ)—ବି. (ସୃଜ୍ + କ.କ.କନ୍ ) ସୃକ୍କଣୀ ଦେଖ ।
ସୃକ୍କଣୀ—ବି. (ସୃଜ୍ + କ.କ୍କନ୍ + ଈ) ସୃକ୍କଣୀ ଦେଖ ।
ସୃକ୍କା—ସ୍ତ୍ରୀ. ବି. ଶ୍ୟାମା, ଅନନ୍ତମୂଳ ।
ସୃକ୍ୱ—ବି.(ସୃଜ୍ + କ.ବ)ସୃକ୍କଣୀ ଦେଖ ।
ସୃକ୍ୱ(କ୍ୱ)ଣୀ—ବି. (ସୃଜ୍ + ବନନ୍ + ଈ) ସୃକ୍କଣୀ ଦେଖ ।
ସୃକ୍ୱ(କ୍ୱୀ)—ବି. ( ସୃଜ୍ + କ.ବ + ଈ ) ସୃକ୍କଣୀ ଦେଖ ।
ସୃଗ—ବି. ( ସୃ + କ.ଗ ) ଭିନ୍ଦିପାଲ, କ୍ଷେପଣୀୟ ଅସ୍ତ୍ରବିଶେଷ, ଖଟବାଣ ।
ସୃଗାଲ—ପୁଂ.ବି.(ସୃ + କ.କାଲ)ଶୃଗାଲ ବିଲୁଆ, (ସ୍ତ୍ରୀ) ସୃଗାଲୀ ।
ସୃଗାଲକଣ୍ଟକ—ବି.କଣ୍ଟକଯୁକ୍ତ କ୍ଷୁଦ୍ର ଗୁଳ୍ମ ।
ସୃଗାଲକୋଲ—ବି. କ୍ଷୁଦ୍ର କୋଳିବୃକ୍ଷବିଶେଷ ।
ସୃଗାଲଘଣ୍ଟୀ—ବି. କୋକିଳାକ୍ଷ ଗୁଳ୍ମ ।
ସୃଗାଲଜମ୍ବୁ—ବି.ଗୋମୁଖ,ଗୋଡୁମ୍ବା ।
ସୃଗାଲବଦନ—ପୁଂ. ବି.ଅସୁରବିଶେଷ ।
ସୃଗାଲବୃନ୍ତା—ସ୍ତ୍ରୀ. ବି. ପୃଶ୍ନିପର୍ଣ୍ଣୀ ।
ସୃଗାଲିକା—ସ୍ତ୍ରୀ. ବି. (ସୃଗାଲ + କ + ଆ) ମାଈବିଲୁଆ, ଭୂଇଁକଖାରୁ,ପଳାୟନ, ଦଙ୍ଗାଫିସାଦ,ହଙ୍ଗାମ ।
ସୃଗାଲୀ—ସ୍ତ୍ରୀ. ବି. ମାଈବିଲୁଆ,ଶୃଗାଲପତ୍ନୀ, କୋକିଳାକ୍ଷ, ବିଦାରୀ ।
ସୃଙ୍କା—ସ୍ତ୍ରୀ.ବି.ଦେହଯୁକ୍ତା ରତ୍ନମୟୀ ମାଳା ।
ସୃଜ୍—(ଧାତୁ)ସୃଷ୍ଟିକରିବା,ସନ୍ତାନ ଜନ୍ମ କରିବା, ମୁକ୍ତ କରିବା, ଉପରେ ଲଗାଇବା, ବୋଳିବା, ତ୍ୟାଗ କରିବା, ଫିଙ୍ଗିବା, ନିକ୍ଷେପକରିବା, ତ୍ୟାଗକରି ଚାଲିଯିବା ।
ସୃଜକାକ୍ଷାର—ବି. ସର୍ଜିକାକ୍ଷାର ।
ସୃଜନ—ଗ୍ରା. ବି. (ସଂ-ସର୍ଜନ) ସର୍ଜନ, ସୃଷ୍ଟି ।
ସୃଜୟ—ବି. ପକ୍ଷିବିଶେଷ ।
ସୃଜୟା—ବି. ନୀଳମକ୍ଷିକା ।
ସୃଜିକାକ୍ଷାର—ବି. ସାଜିମାଟି ।
ସୃଜିବା—ଗ୍ରା. କ୍ରି. (ପଦ୍ୟ) ସୃଷ୍ଟିକରିବା ।
ସୃଜ୍ୟ—ବିଂ. (ସୃଜ୍ + ମି.ଯ)ସୃଷ୍ଟିଯୋଗ୍ୟ, ସର୍ଜନୀୟ ।
ସୃଞ୍ଜୟ—ବି. (ନାମ) ଶ୍ୱିତ୍ରନାମକ ରାଜାଙ୍କ ପୁତ୍ର, ମନୁଙ୍କର ଏକପୁତ୍ର, ଏକ ପୌରାଣିକ ରାଜବଂଶ, ଯହିଁରେ ଧୃଷ୍ଟଦ୍ୟୁମ୍ନ ଜନ୍ମିଥିଲେ, ଯଯାତିବଂଶୀୟ କାଳନର ଏକ ପୁତ୍ର ।
ସୃଣି—ବି. (ସୃ + କ.ନି) ଅଙ୍କୁଶ, ଶତ୍ରୁ, ଚନ୍ଦ୍ର ।
ସୃଣିକ—ବି. (ସୃଣି + କ) ସୃଣି ଦେଖ ।
ସୃଣିକା—ବି.(ସୃ + ମି.ଣିକ + ଆ)ଲାଳ, ଛେପ, ଥୁକ ।
ସୃଣୀ—ବି. (ସୃଣି + ଈ) ଅଙ୍କୁଶ ।
ସୃଣୀକ—ବି.(ସୃ + କ.ଣୀ + କ) ବାୟୁ, ଅଗ୍ନି, ବଜ୍ର, (ପୁଂ) ଉନ୍ମତ୍ତ ବ୍ୟକ୍ତି,(ସ୍ତ୍ରୀ) ସୃଣୀକା ।
ସୃଣୀକା—ବି. (ସୃଣୀ + କ + ଆ) ଲାଳ, (ସ୍ତ୍ରୀ) ଉନ୍ମତ୍ତ ସ୍ତ୍ରୀ ।
ସୃତ—ବିଂ. (ସୃ + କ.ତ) ଗତ, ବିଗତ, ଅପଗତ, (ସ୍ତ୍ରୀ) ସୃତା ।
ସୃତଞ୍ଜୟ—ବି. ଶାନ୍ତନୁବଂଶୀୟ ରାଜବିଶେଷ, ରାଜା କର୍ମଜିତଙ୍କ ପୁତ୍ର ।
ସୃତା—ବି. ଗମନ କରିବା, ପଳାୟନ ।
ସୃତି—ବି. (ସୃ + ଭା.ତି) ଗମନ,ଆଘାତକରଣ, ଧ୍ୱଂସନ,(ଅଧି.ତି)ମାର୍ଗ,(ଣ.ତି) ଜନ୍ମ ।
ସୃତ୍ୟ—କ୍ଳୀ. ବି. ସ୍ରୋତ, ସରଣ ।
ସୃତ୍ୱର—ବିଂ.(ସୃ + କ.ତ୍ୱର)ଗମନକାରୀ, ଗତିଶୀଳ ।
ସୃତ୍ୱରୀ—ସ୍ତ୍ରୀ. ବିଂ. (ସୃତ୍ୱର + ଈ) ସୃତ୍ୱରର ସ୍ତ୍ରୀଲିଙ୍ଗ, (ସ୍ତ୍ରୀ.ବି) ମାତା, ନଦୀ ।
ସୃତ୍ୱା—ପୁଂ. ବି. (ସୃ + ତ୍ୱନ୍) ବିସର୍ପ, ବୁଦ୍ଧି, ପ୍ରଜାପତି । [ ସୂର୍ଯ୍ୟ ।
ସୃଦର—ବି. ( ସୃ + କ. ଦର ) ସର୍ପ,
ସୃଦାକୁ—ପୁଂ. ବି. (ସୃ + କ. ଆକୁ) ବାୟୁ, ବଜ୍ର, ଅଗ୍ନି, ପ୍ରଚଣ୍ଡସୂର୍ଯ୍ୟକ, ସୂର୍ଯ୍ୟମଣ୍ଡଳ, ମୃଗ, ବନାଗ୍ନି, (ସ୍ତ୍ରୀ) ନଦୀ, ଗୋଧି ।
ସୃପ୍—(ଧାତୁ) ଗତି କରିବା, ଧୀରେ ଧୀରେ ଗତି କରିବା, ଗଡ଼ି ଗଡ଼ି ଗତି କରିବା ।
ସୃପ—ଗ୍ରା. ବି. (ସଂ.ସୂର୍ପ) କୁଲା ।
ସୃପମା—ବି. (ସୃପ୍ + କ. ଅମନ୍) ସର୍ପ, ଶିଶୁ, ତପସ୍ୱୀ ।
ସୃପାଟ(ଟୀ)—ବି. (ସୃପ୍ + କ. ଅଟ,ଈ) ପରିମାଣଭେଦ, ଚକ୍ରାଧାର ଫୁଲର

ତଳେ ଥିବା କ୍ଷୁଦ୍ର ପତ୍ର ।
ସୃପାଟିକା—ବି.(ସୃ+ପାଟ୍+ଣ. କ+ଆ) ଚଞ୍ଚୁ, ଥଣ୍ଟ ।
ସୃପ୍ତ—ବିଂ. (ସୃପ୍+ତ) ଗତ,ପ୍ରସ୍ଥିତ ।
ସୃପ୍ର—ବି. (ସୃପ୍+କ.ର) ଚନ୍ଦ୍ର, ମଧୁ, (ବିଂ) ଚିକ୍କଣ, ସ୍ନିଗ୍ଧ, ଖସଡ଼ା ।
ସୃମର—ବି. (ସୃ+ମର) ପଶୁବିଶେଷ, ବାଲମୃଗ, ଅସୁରବିଶେଷ, ମତ୍ସ୍ୟାକାର ମହାଶଙ୍କର, (ପୁଂ.ବିଂ.) ଗମନଶୀଳ ।
ସୃଷ୍ଟ—ବିଂ. (ସୃଜ୍+ର୍ମ. ତ) ରଚିତ, ନିର୍ମିତ, କୃତ, ଯୁକ୍ତ, ବହୁଳ, ନିର୍ଣ୍ଣୀତ, ତ୍ୟକ୍ତ, ଭୂଷିତ, ଉତ୍ପନ୍ନ, ବର୍ଦ୍ଧିତ, ଉତ୍ସୃଷ୍ଟ, ଢିଲା ହେବା, କଢ଼ାହେବା, ମୁକ୍ତ, ନିକ୍ଷିପ୍ତ, (କ୍ଳୀ) ତିନ୍ଦୁକ, କେନ୍ଦୁ, (ସ୍ତ୍ରୀ) ଋଦ୍ଧି, ପର୍ପଟକ, କ୍ଷେତପାପଡ଼ା ।
ସୃଷ୍ଟମାରୁତ—ବିଂ. (ବ.ବ୍ରୀ) (ସୁଶ୍ରୁତ) ଯେଉଁ ଔଷଧଦ୍ୱାରା ଉଦରସ୍ଥ ବାୟୁ ବାହାରି ଯାଏ ।
ସୃଷ୍ଟି—ବି. (ସୃଜ୍+ଭା.ତି) ନିର୍ମାଣ, ରଚନା, ନିସର୍ଗ, ସ୍ୱଭାବ,ଦାନଶୀଳତା, ମୋଚନ, ଦାନ, (ର୍ମ.ତି) ବ୍ରହ୍ମାଣ୍ଡ, ବିଶ୍ୱ, ଜଗତ, ଶିଳ୍ପ, ଗମ୍ଭାରଗଛ, ଯଜ୍ଞବେଦୀ ନିର୍ମାଣାର୍ଥ ବ୍ୟବହୃତ ଏକ ପ୍ରକାର ଇଷ୍ଟକ, (ଗ୍ରା.ବି.)—ପ୍ରାଚୀନ ସାହିତ୍ୟ ସମୂହ, ସମାଜ, ସାମାଜିକ ସ୍ୱାଭିମତ ।
ସୃଷ୍ଟିକର୍ତ୍ତା—ପୁଂ. ବି. ଜଗତ ନିର୍ମାତା, ବ୍ରହ୍ମା, ପରମେଶ୍ୱର, (ପୁଂ.ବିଂ. ୬ତତ୍) ନିର୍ମାତା, ରଚୟିତା ।
ସୃଷ୍ଟିକୃତ୍—ବି. ସୃଷ୍ଟିକର୍ତ୍ତା, ବ୍ରହ୍ମା, କ୍ଷେତ୍ରପାପଡ଼ା । [ ଦେଖ ।
ସୃଷ୍ଟିକୌଶଳ—ବି(୬ତତ୍)ସୃଷ୍ଟିଚାତୁର୍ଯ୍ୟ
ସୃଷ୍ଟିକ୍ରମ—ବି. (୬ତତ୍) ଜଗତର କ୍ରମ-ପ୍ରକାଶ ।
ସୃଷ୍ଟିକ୍ରିୟା—ସ୍ତ୍ରୀ. ବି. (କ.ଧା) ରଚନା-କାର୍ଯ୍ୟ, ବିଶ୍ୱନିର୍ମାଣକ୍ରିୟା ।
ସୃଷ୍ଟିଚାତୁର୍ଯ୍ୟ—ବି.(୬ତତ୍)ନିର୍ମାଣକୌଶଳ, ବିଶ୍ୱସୃଷ୍ଟି କରିବାର ନୈପୁଣ୍ୟ ।
ସୃଷ୍ଟିଛଡ଼ା—ଗ୍ରା. ବିଂ. (ମନ୍ଦାର୍ଥ) ନୂଆଆରୁ ବହିର୍ଭୂତ, ଅଲୌକିକ, ଅସ୍ୱାଭାବିକ ।
ସୃଷ୍ଟିତତ୍ତ୍ୱ—ବି. ସୃଷ୍ଟିର ବିଷୟ ।
ସୃଷ୍ଟିଦା—ବି. ଋଦ୍ଧି ନାମକ ଔଷଧି ।
ସୃଷ୍ଟିନାଶ—ବି. (୬ତତ୍) ବିଶ୍ୱର ଧ୍ୱଂସ ।
ସୃଷ୍ଟିନୈପୁଣ୍ୟ—ବି. ( ୭ତତ୍ ) ସୃଷ୍ଟି-ଚାତୁର୍ଯ୍ୟ ଦେଖ ।
ସୃଷ୍ଟିପତ୍ତନ—ବି. ପଞ୍ଚରତ୍ନ ବର୍ଣ୍ଣିତ ଇନ୍ଦ୍ର-ଜାଲବିଶେଷ ।
ସୃଷ୍ଟିପ୍ରକ୍ରିୟା—ବି. (୬ତତ୍) ସୃଷ୍ଟିପ୍ରକ-ରଣ, ବିଶ୍ୱସୃଷ୍ଟିର ପ୍ରକାର ।
ସୃଷ୍ଟିପ୍ରଦା—ବି. ଗର୍ଭଦାତ୍ରୀ କ୍ଷୁପ, ପୁତ୍ର-ଜୀବ ବୃକ୍ଷ ।
ସୃଷ୍ଟିପ୍ରଳୟ—ବି.(୬ତତ୍) ସୃଷ୍ଟିନାଶ ।
ସୃଷ୍ଟିବାହାର—ଗ୍ରା. ବିଂ. ସୃଷ୍ଟିଛଡ଼ା ଦେଖ ।
ସୃଷ୍ଟିବୁଡ଼ା—ଗ୍ରା. ବିଂ. ସର୍ବନାଶକାରୀ, ସମାଜ ବିପ୍ଳବକାରୀ ।
ସୃଷ୍ଟିବୁଡ଼ିବା—ଗ୍ରା.କି.ସର୍ବନାଶ ଘଟିବା, ସମାଜରେ ଭୟଙ୍କର ବିପ୍ଳବ ଉପସ୍ଥିତ ହେବା, କୁଳଧର୍ମର ଲୋପ ।
ସୃଷ୍ଟିରକ୍ଷଣ(ରକ୍ଷା)—ବି.(୬ତତ୍)ଜଗତର ରକ୍ଷା ବା ପାଳନ ।
ସୃଷ୍ଟିସଂହାର—ବି.(୬ତତ୍) ସୃଷ୍ଟିନାଶ ।
ସୃଷ୍ଟିସ୍ଥିତି—ସ୍ତ୍ରୀ. ବି. (ଦ୍ୱନ୍ଦ୍ୱ) ଉତ୍ପତ୍ତି ଓ ଅବସ୍ଥାନ, ନିର୍ମାଣ ଓ ପାଳନ ।
ସୃଷ୍ଟିସ୍ଥିତିପ୍ରଳୟ—ପୁଂ. ବି. ( ଦ୍ୱନ୍ଦ୍ୱ ) ନିର୍ମାଣ ରକ୍ଷା ଓ ସଂହାର,ବିଶ୍ୱର ଉତ୍ପତ୍ତି ଅବସ୍ଥାନ ଓ ବିନାଶ ।
ସେ—ଗ୍ରା. ସର୍ବ.ପୁଂ. ସ୍ତ୍ରୀ. ଓ କ୍ଳୀ. ତାହା, ସେହି, ନିର୍ଦ୍ଦିଷ୍ଟ ବସ୍ତୁ ବା ବ୍ୟକ୍ତି, ଅନୁପ-ସ୍ଥିତ ବ୍ୟକ୍ତି ବା ବସ୍ତୁ ।
ସେଅବଧି—ଗ୍ରା. ଅବ୍ୟ. ତଦବଧି, ସେହି ସମୟ ଠାରୁ ।
ସେଇ—ଗ୍ରା.ସର୍ବ. (ସଂ-ତତ୍ ଓ ହି)ସେ, ସେହି, ନିର୍ଦ୍ଦିଷ୍ଟ ବ୍ୟକ୍ତି ବା ବସ୍ତୁ,(ଗ୍ରା.ବି) ସ୍ୟାଇ, କାଳି, ମସି । [ ଦେହିତା ।
ସେଇଆ(ୟା)—ଗ୍ରା. ସର୍ବ. ତାହାହିଁ,
ସେଇକ୍ଷଣି—ଗ୍ରା. ଅ. ( ସଂ-ତତ୍କ୍ଷଣଂ ) ତତ୍କ୍ଷଣାତ୍, ସେହି ସମୟରେହିଁ ।
ସେଇଟା—ଗ୍ରା. ସର୍ବ. ସେହି ଗୋଟାକ, ସେହି ବ୍ୟକ୍ତି ବା ବସ୍ତୁଟା ।
ସେଇଟି—ଗ୍ରା. ସର୍ବ. ସେହି ବସ୍ତୁ ବା ବ୍ୟକ୍ତିଟି, ସେଇଟା, ତାହାହିଁ ।
ସେଇଠଉଁ—ଗ୍ରା. ଅ. ସେଇଠୁଁ ଦେଖ ।
ସେଇଠା—ଗ୍ରା. ସର୍ବ.(ସଂ-ତତ୍ ଓ ସ୍ଥାନ) ସେହିସ୍ଥାନ । [ ସ୍ଥାନକୁ ।
ସେଇଠାକୁ—ଗ୍ରା. ଅବ୍ୟ. ସେଠାକୁ, ସେ
ସେଇଠାରୁ—ଗ୍ରା. ଅବ୍ୟ. ସେହି ସ୍ଥାନରୁ, ସେହି କାଳରୁ ।
ସେଇଠାରେ—ଗ୍ରା. ଅବ୍ୟ. ସେଠାରେ, ସେ ସ୍ଥାନରେ ।
ସେଇଠି(ଠିଁ)—ଗ୍ରା. ଅ. ସେହିସ୍ଥାନରେ, ସେହିଠାରେ । [ ତନ୍ନତ୍ୟ ।
ସେଇଠିକା—ଗ୍ରା. ବିଂ. ସେହି ସ୍ଥାନର,
ସେଇଠିକି—ଗ୍ରା. ଅବ୍ୟ. ସେଠାକୁ,ସେହି ସ୍ଥାନକୁ ।
ସେଇଠୁ(ଠୁଁ)—ଗ୍ରା. ଅ. ସେଠାରୁ,ସେହି ସ୍ଥାନରୁ, ତତ୍ପରେ ।
ସେଇତ—ଗ୍ରା.ସର୍ବ. ସେ ନିଶ୍ଚୟ,ସେହି ।
ସେଇତା—ଗ୍ରା. ସର୍ବ. ତାହାହିଁ ।
ସେଇଥିକି—ଗ୍ରା. ଅ. ସେହି ନିମନ୍ତେ, ସେଇ କାରଣରୁ ।
ସେଇଥି(ଥୁ)ରୁ—ଗ୍ରା.ଅ.ସେଇ କାରଣରୁ, ତତ୍ପରେ, ତହିଁରୁ ।
ସେଇଥିରେ—ଗ୍ରା.ଅ.ସେଥିରେ,ତହିଁରେ
ସେଇଥିଲାଗି—ଗ୍ରା. ଅବ୍ୟ. ସେଇଯୋଗୁଁ ଦେଖ ।
ସେଇପରି—ଗ୍ରା. ବିଂ. ତତ୍ସଦୃଶ ।
ସେଇଯୋଗୁଁ—ଗ୍ରା.ଅ.ସେହି କାରଣରୁ ।
ସେଇଲାଗେ—ଗ୍ରା.ଅ. (ସଂ-ତତ୍ ଓ ଲଗ୍ନ) ତତ୍କ୍ଷଣାତ୍, ସେହିକ୍ଷଣରେ ।
ସେଉ(ଓ)—ଗ୍ରା. ବି. (ସଂ-ସେବ) ସିଓ-ଫଳ, କାଶ୍ମୀରଦେଶଜାତ ଖାଦ୍ୟଫଳବି-ଶେଷ । [ ବସ୍ତୁଟା ।
ସେଉଟା—ଗ୍ରା. ସର୍ବ. ସେହି ବ୍ୟକ୍ତି ବା
ସେଁ—ଗ୍ରା. ଅ. (ଧ୍ୱନ୍ୟନୁକରଣ) ତାତିଲା ଧାତୁ ଉପରେ ପାଣି ପଡ଼ିଲେ ଯେଉଁ ଶବ୍ଦ ଜାତ ହୁଏ, ମନ୍ଦଅଗ୍ନି ଉପରେ

ବହୁକ୍ଷଣ ଜଳକୁ ଗରମ କଲେ ତହିଁରୁ ଜାତ ଶବ୍ଦ,ନଆଁ ଉପରେ ଜଳ ଫୁଟିବା ପୂର୍ବରୁ ହେବା କ୍ଷୀଣ ଶବ୍ଦ,ସୁଁ ସୁଁ ଶବ୍ଦଠାରୁ ଉଚ୍ଚତର ଶବ୍ଦ ।

ସେଁଇଁ(ଇ)ବା—ଗ୍ରା. କ୍ରି. (ସଂ-ସିକ୍‌ଧାତୁ) ସିଝାଇ କରିବା ।

ସେଁଠର(ରେ)—ପ୍ରା.(ଭଦ୍ରକ)ସେଥିରେ, ତହିଁରେ । [ ଦେଖ ।

ସେଁତା—ପ୍ରା. (ସମ୍ବଲ) ସର୍ବ. ସେନ୍ତା

ସେଁପୁଚ—ଗ୍ରା. ବି. ଦୀର୍ଘଶ୍ୱାସ ।

ସେଁରି—ପ୍ରା. (ବଲାଙ୍ଗିରପାଟଣା) ବିଂ. ନିର୍ଲଜ୍ଜ ।

ସେଁସୁରକୁଟି—ପ୍ରା. (ଯାଜପୁର) ବି. ଜଳୀୟ ଔଷଧିବୃକ୍ଷବିଶେଷ ।

ସେଁସେଁଇଁଯାଁ—ଗ୍ରା.ପୁଂ. ବିଂ. ସେଁସେଁ ଶବ୍ଦ କରୁଥିବା ।

ସେକ୍(ଖ୍)—ଯା. ବି.ମୁସଲମାନମାନଙ୍କର ସାମାଜିକ ଶାଖାଗତ ଉପାଧିବିଶେଷ, ମୁସଲମାନ ସାମନ୍ତ ନୃପତି ବା ଜମିଦାର ବା ଧନୀମାନଙ୍କ ଉପାଧି ।

ସେକ୍—(ଧାତୁ) ଗତି କରିବା ।

ସେକ—ବି. ( ସିଚ୍+ଭା.ଅ ) ସେଚନ, ଜଳଆଦି ଛିଞ୍ଚିବା,ବୈଦ୍ୟକୋକ୍ତ ସ୍ନେହାଦି ଦ୍ୱାରା ନେତ୍ରପରିଷେକ, ନେତ୍ରରେ ତୈଳାଦି ସେଚନ,(ଗ୍ରା.ବି.ସଂ-ସ୍ୱିଦ୍‌ଧାତୁ କିମ୍ବା ଶ୍ଳେଷଧାତୁ)ଦେହଆଦିରେ ଅନ୍ୟ ଉତ୍ତପ୍ତବସ୍ତୁ ସାହାଯ୍ୟରେ ଉତ୍ତାପ ପ୍ରୟୋଗ କରିବା,ସ୍ୱେଦନ,ସେକବାକର୍ମ,ଉତ୍ତପ୍ତକରଣ ।

ସେକ(କେ)ଣ୍ଡ—ଯା. ବି. ଏକ ମିନଟର ୬୦ଅଂଶରୁ ଏକଅଂଶ,ଏକ ସମକୋଣର ୩୨୪୦୦୦ ଭାଗରୁ ଏକ ଭାଗ, (ବିଂ) ଦ୍ୱିତୀୟ ।

ସେକଦେବା—ଗ୍ରା. କ୍ରି. ସେକିବା ।

ସେକନ୍ଦର୍—ଯା. ବି. ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ଭାରତକୁ ଆକ୍ରମଣ କରିଥିବା ଗ୍ରୀସଦେଶର ମହାବୀର ରାଜା ଆଲେକ୍‌ଜାଣ୍ଡର ।

ସେକନ୍ଦରସାହ(ହା)—ଗ୍ରା. ବି. (ନାମ) ଖ୍ରୀଷ୍ଟୀୟ ଚତୁର୍ଦ୍ଦଶ ଶତାବ୍ଦୀର ବଙ୍ଗର ଜନୈକ ସ୍ୱାଧୀନ ମୁସଲମାନ ରାଜା ।

ସେକନ୍ଦରାବାଦ୍—ଗ୍ରା. ବି. (ନାମ)ସେକନ୍ଦରଙ୍କ ନାମରେ ନାମକରଣ ହୋଇଥିବା ପଞ୍ଜାବର ଗୋଟିଏ ନଗର ।

ସେକନ୍ଦରି—ଗ୍ରା. ବିଂ. ସେକନ୍ଦର ବାଦସାହଙ୍କ ରାଜତ୍ୱକାଳୀନ ।

ସେକପାତ୍ର(ଭାଜନ)—ବି.ସେଚନୀ,ସେଣା, କ୍ଷେତକୁ ପାଣି ବୁହାଇବାପାଇଁ ବ୍ୟବହୃତ ପାତ୍ର ।

ସେକମିଶ୍ରାନ୍ନ—ବି. ଦଧିମିଶ୍ରିତ ଅନ୍ନ ।

ସେକର—ପ୍ରା. (ବାଲେଶ୍ୱର ଓ ମେଦିନୀପୁର) ବି. (ସଂ-ସ୍ୱର୍ଣ୍ଣକାର) ସ୍ୱର୍ଣ୍ଣକାର, ବଣିଆ ।

ସେକା—ଗ୍ରା. ବି. (ସଂ-ସ୍ୱିଦ୍‌ଧାତୁ) ସେକ, ସେକବାକ୍ରିୟା, ( ବିଂ ) ସେକ ଦ୍ୱାରା ଉତ୍ତପ୍ତ କରାଯାଇଥିବା ।

ସେକାଇବା—ଗ୍ରା. କ୍ରି. ସେକିବାକ୍ରିୟାର ଣିଜନ୍ତରୂପ ।

ସେକାଳ—ଗ୍ରା. ବି. (ସଂ-ତତ୍‌କାଳ) ସେ ସମୟ, ପୂର୍ବକାଳ, ଅତୀତକାଳ, ବହୁପୂର୍ବର କାଳ, (ବିଂ) ସେକାଳର,ପୂର୍ବକାଳର, ପୂର୍ବକାଳୀନ ।

ସେକାଳର—ଗ୍ରା. ବିଂ. ସେହି ସମୟର, ପୂର୍ବକାଳର, ଅତୀତକାଳର, ପ୍ରାଚୀନ, ପୁରାତନ, ମରହଟ୍ଟିଆ ।

ସେକାଯି(ହୋ)ବା—ଗ୍ରା. କ୍ରି. ସେକିବାର କର୍ମବାଚ୍ୟ ।

ସେକିବା—ଗ୍ରା. କ୍ରି. (ସଂ-ସ୍ୱିଦ୍‌ଧାତୁ, ସଂ-ଶ୍ଳେଷଣ) ନିଆଁ ଦ୍ୱାରା ତାପ ପ୍ରୟୋଗ କରିବା, ଦେହରେ ଉତ୍ତପ୍ତ ଜଳ ବା ବସ୍ତ୍ରାଦି ଦ୍ୱାରା ତାପ ପ୍ରୟୋଗ କରିବା ।

ସେକମ୍—ଯା. ବିଂ. ସିକମ୍ ଦେଖ ।

ସେକିମ—ବି. (ସିକ୍+ମଁ.ଇମ) ମୂଳକ, ମୂଳା, (ବିଂ)ସିକ୍ତ,ସେଚିତ ହୋଇଥିବା, ଓଦା ହୋଇଥିବା ।

ସେକିହେବା—ଗ୍ରା. କ୍ରି. ନିଜେ ନିଜେ ଅଗ୍ନିଆଦିର ଉତ୍ତାପ ଦ୍ୱାରା ନିଜର ଦେହରେ ତାପ ଲଗାଇବା ।

ସେକ୍ତା(ଣୀ)—ଗ୍ରା. ବି. ସେକପଣିଆ, ଭଦ୍ରତା, ଭଦ୍ରବଂଶୀୟତା, ଧନବତ୍ତା, ବଡ଼ଲୋକୀ ।

ସେକେସେକା—ଗ୍ରା. ବି. ଓଦା, ସନ୍ତସନ୍ତିଆ ଜାଗା, ( ଗ୍ରା. ବିଂ ) ସେକେସେକିଆ, ଓଦାଳିଆ (ବସ୍ତ୍ରାଦି) ।

ସେକେସେକେ—ଗ୍ରା. ଅ. ଥରେ ଥରେ, ଲାଗେ ଲାଗେ ।

ସେକ୍ତବ୍ୟ—ବିଂ. (ସିଚ୍+ତବ୍ୟ) ସେଚନୀୟ, ସେକର ଉପଯୁକ୍ତ ।

ସେକ୍ତା—ପୁଂ. ବିଂ. ( ସିଚ୍+ମଁ. ତୃ ) ସେଚନକାରୀ, ନିଷେକକାରୀ, (ସ୍ତ୍ରୀ) ସେକ୍ତ୍ରୀ, (ପୁଂ. ବି.) ଭର୍ତ୍ତା, ସ୍ୱାମୀ ।

ସେକ୍ତ୍ର—ବି. (ସିଚ୍+ଣ.ତ୍ର) ସେଚନପାତ୍ର, ସେଣା ।

ସେକ୍ଷଣ(ଣି)—ଗ୍ରା.କ୍ରି.ବିଂ.(ସଂ-ତତ୍‌କ୍ଷଣ) ସେହିକ୍ଷଣି, ତତ୍‌କ୍ଷଣାତ୍ ।

ସେକ୍ରେଟା(ଟେ)ରି—ଯା. ବି. ସଭାଆଦିର ସମ୍ପାଦକ, ସଚିବ, ଶାସନଆଦି ବିଭାଗର ଉପରିସ୍ଥ କର୍ମଚାରୀ, ରାଜା ଓ ଉଚ୍ଚପଦସ୍ଥ ବ୍ୟକ୍ତିଙ୍କ ଆଦେଶ ଅନୁସାରେ ପତ୍ରାଦି ବ୍ୟବହାରକରିବା ପାଇଁ ନିଯୁକ୍ତ କର୍ମଚାରୀ ।

ସେଖ—ଯା.ବି.ବୃଦ୍ଧ ବ୍ୟକ୍ତି,ପ୍ରଧାନ ବ୍ୟକ୍ତି, ମହମ୍ମଦୀୟ ପୁରୋହିତ, ମୁସଲମାନ ଶ୍ରେଣୀବିଶେଷ ।

ସେଖୁତେ—ପ୍ରା. (ବଲାଙ୍ଗିରପାଟଣା) ଅ. ସେପାଖରେ ।

ସେଗବ—ବି. କଙ୍କଡ଼ାଛୁଆ ।

ସେଘେନ—ଗ୍ରା. ଅ. ସେଥିପାଇଁ ।

ସେଙ୍କ୍(ଙ୍ଖ୍)—ଗ୍ରା.ବି. ସେଙ୍କଚାଲି ଦେଖ, (ବିଂ) ସେଙ୍କଚାଲିଆ ଦେଖ ।

ସେଙ୍କ(ଙ୍ଖ)ଚାଲି— ଗ୍ରା. ବି. ଧୂର୍ତ୍ତତା, ଚତୁରତା, ଗୁଲାମୀ, ଫାଜିଲପଣ, (ପୁଂ ଓ ସ୍ତ୍ରୀ.ବିଂ.) ସେଙ୍କଚାଲିଆ ଦେଖ ।

ସେଙ୍କ(ଙ୍ଖ)ଚାଲିଆ—ଗ୍ରା. ପୁଂ ଓ ସ୍ତ୍ରୀ.ବିଂ. ଧୂର୍ତ୍ତ, ଚତୁର, ଫାଜିଲ ।

ସେଙ୍କା—ଗ୍ରା. ବି. (ସଂ-ଶଙ୍କା) ଶଙ୍କା ଦେଖ,(ସଂ-ସଙ୍କୋଚ)ସଙ୍କୋଚ ଦେଖ ।

ସେଙ୍କା(ଙ୍କେ)ଇବା—ଗ୍ରା.କ୍ରି. ସେଙ୍କିବାର ଣିଜନ୍ତ ରୂପ, ଶଙ୍କିତ କରାଇବା, ଶଙ୍କା ଦେବା, ଡେଙ୍ଗାଇବା, ଉତ୍ପୀଡ଼ିତ କରିବା ।

ସେଙ୍କିବା—ଗ୍ରା. କ୍ରି. (ସଂ-ଶଙ୍କା) ଶଙ୍କିତ ହେବା, ( ସଂ-ସଙ୍କୋଚ ) କୌଣସି କାର୍ଯ୍ୟ କରିବାକୁ ପଶ୍ଚାତ୍ପଦ ହେବା ।

ସେଙ୍ଗର—ପୁଂ. ବି. ଶୃଙ୍ଗିବେର ରାଜବଂଶ, ଏମାନେ ଋଷ୍ୟଶୃଙ୍ଗଙ୍କ ବଂଶ ବୋଲି ପରିଚିତ । [ ଛୁଇଁ ।

ସେଙ୍ଗା—ପ୍ରା. (ବଲାଙ୍ଗିରପାଟଣା) ବି.

ସେଙ୍ଗେଲ୍—ପ୍ରା. ( ବଲାଙ୍ଗିରପାଟଣା, କୋଲ୍ହଭାଷା) କଥାଁ । [ ସେକ ।

ସେଚ୍—ପୁଂ. ବି. ( ସିଚ୍+ଭା.ଅ ) ଜଳ

ସେଚକ—ପୁଂ. ବି. ( ସିଚ୍+କ. ଅକ ) ସେଚନକାରୀ ବ୍ୟକ୍ତି, ମେଘ, (ପୁଂ ବିଂ) ସେଚନକାରୀ, (ସ୍ତ୍ରୀ) ସେଚିକା ।

ସେଚନ—ବି. (ସିଚ୍+ଭା.ଅନ) ସେକ, ପାଣିଆଦି ଛିଞ୍ଚିବା, କ୍ଷେତରେ ପାଣି ମଡ଼ାଇବା, କ୍ଷରଣ, ଅଭିଷେକ, ଧାତୁକୁ ଢାଳିବା କାମ, (କ. ଅନ) ନୌକା ଭିତରୁ ଜଳକ୍ଷେପଣ କରିବା ପାତ୍ର, ସେଣା,ଜଳସେଚନ କରାଯିବା ବାଲଟି ।

ସେଚନକ—ବି. (ସେଚନ+କ) ଅଭିଷେକ, ସେଚନ ଦେଖ ।

ସେଚନଘଟ—ବି. ( କ. ଧା ) ଯେଉଁ ଘଟରେ ଥିବା ପାଣି ଘଟର ମୁହଁବାଟେ ଛିଞ୍ଚାଯାଏ ।

ସେଚନୀ—ବି. ସ୍ତ୍ରୀ. ( ସେଚନ+ଈ ) ସେଚନ କରାଯିବା ପାତ୍ର, ସେଣା ।

ସେଚନୀୟ—ବିଂ. (ସିଚ୍+ମି. ଅନୀୟ) ସେଚନ କରିବା ଯୋଗ୍ୟ ।

ସେଜ୍‌କେ—ପ୍ରା. (ପାଟଣା) ଅ. ସେଠାକୁ

ସେଜ—ଗ୍ରା. ବି. (ସଂ-ଶଯ୍ୟା) ଶଯ୍ୟା, ଶେଜ ।

ସେଜାଇବା—ଗ୍ରା.କ୍ରି. (ସଂ-ଶଯ୍ୟା,ସଜ୍ଜିତ) ଶଯ୍ୟାକୁ ସଜ୍ଜିତ କରିବା,ସଜ୍ଜିତକରିବା, ଶେଜାଇବା ।

ସେଜା—ପ୍ରା. (ଗଞ୍ଜାମ) ବି. (ସଂ ସଜ୍ଜାମ) ଗୃହଘରର ଗୃହରେ ପଡ଼ିବା ରୁଅଆଦି ଗୃହଘରର ଡାଲିମ ।

ସେଟ୍—ଯା. ବି. ବହୁଅଳଙ୍କାରର ସଜ ବା ମେଳ, ଅସ୍ତ୍ର ଯନ୍ତ୍ରାଦିର ସଜ, ପୋଷାକର ସଜ, ବହୁଖଣ୍ଡ ବା ଭାଗ ବିଶିଷ୍ଟ ଗ୍ରନ୍ଥର ଏକସାର, (ଯା. ବିଂ) ଉତ୍ତମରୂପେ ବସାଯାଇଥିବା ବା ଖଞ୍ଜା ଯାଇଥିବା (ଯନ୍ତ୍ରାଦି) । [ ମାନ ।

ସେଟ—ବି. ଏକ ପ୍ରାଚୀନ ଓଜନ ବା

ସେଟଲ୍—ଯା. ବିଂ. ଚୁକ୍ତିଦ୍ୱାରା ସ୍ଥିରୀକୃତ, ନିର୍ଦ୍ଧାରିତ ।

ସେଟଲ୍‌ମେଣ୍ଟ-ଯା.ବି.ଭୂରାଜସ୍ୱବନ୍ଦୋବସ୍ତ, ଭୂରାଜସ୍ୱ ସ୍ଥିରୀକରଣାର୍ଥ ଜମିଦାର ଓ ପ୍ରଜାଙ୍କ ଜମି ଜମା ସମ୍ପର୍କ ଓ ବାଧବାଧକତା ଓ ସ୍ୱତ୍ୱ ଲିପିବଦ୍ଧକରିବା ପାଇଁ ସରକାରଙ୍କ ଅବଲମ୍ବିତ ଅନୁସନ୍ଧାନ ପ୍ରଣାଳୀ ।

ସେଟଲ୍‌ମେଣ୍ଟିଆ—ଗ୍ରା. ବିଂ. ସେଟଲ-ମେଣ୍ଟ ବିଭାଗରେ କର୍ମ କରୁଥିବା କର୍ମଚାରୀ,ସେଟଲମେଣ୍ଟ ସମ୍ବନ୍ଧୀୟ ।

ସେଟା—ଗ୍ରା. ସର୍ବ. ସେଇଟା, (ପ୍ରା. ପାଟଣା, ଅ) ସେଇଆ । [ ଦେଖ ।

ସେଟି—ଗ୍ରା. ସର୍ବ. (ଆଦରାର୍ଥକ)ସେଇଟି

ସେଟିକୁ—ପ୍ରା. (ବାଲେ) ଅ. ସେଠାକୁ ।

ସେଟୁ—ବି.(ସିଟ୍+ଉ)ତରଭୁଜ ଫଳ ।

ସେଠ—ଗ୍ରା. ବି. (ସଂ-ଶ୍ରେଷ୍ଠୀ) ଶେଠ ଦେଖ ।

ସେଠଉଁ—ଗ୍ରା. ସର୍ବ. (ସଂ-ତତ୍‌ସ୍ଥାନାତ୍) ସେହିସ୍ଥାନରୁ, (ଗ୍ରା.ଅ) ତାପରେ ।

ସେଠା—ଗ୍ରା. ସର୍ବ. (ସଂ-ତତ୍ ଓ ସ୍ଥାନ) ସେହିସ୍ଥାନ, (ବିଂ) ସେ ସ୍ଥାନର ।

ସେଠାଇଁ (ଏଁ)—ଗ୍ରା. ଅ. ( ସଂ-ତତ୍-ସ୍ଥାନେ) ସେ ସ୍ଥାନରେ, ତାଙ୍କଠାରେ, ତାଙ୍କ ନିକଟରେ ।

ସେଠାକା(ର)—ଗ୍ରା. ବିଂ.ସେହି ସ୍ଥାନର, ସେହି ଦେଶର ।

ସେଠାକୁ—ଗ୍ରା. ସର୍ବ. ସେ ସ୍ଥାନକୁ ।

ସେଠାନେ—ପ୍ରା. (ସମ୍ବଲପୁର) ସର୍ବ. (ସଂ-ତତ୍ର ଓ ସ୍ଥାନେ)ସେଠାରେ, ତତ୍ର, ସେଠାକୁ ।

ସେଠାବେଣ—ଗ୍ରା. ସର୍ବ. ( ପ୍ରାଚୀନ ପ୍ରୟୋଗ, ପଦ୍ୟ) ସେଠାରେ ।

ସେଠାରୁ—ଗ୍ରା. ସର୍ବ. ସେ ସ୍ଥାନରୁ, ତାପରେ ।

ସେଠାରେ—ଗ୍ରା. ସର୍ବ. ସେ ସ୍ଥାନରେ ।

ସେଠି (ଠିଁ)—ଗ୍ରା. ଅ. ସେହି ସ୍ଥାନରେ, (ଗ୍ରା.ବି) ଧୋବାଜାତିର ଉପାଧି ।

ସେଠିକା—ଗ୍ରା. ବିଂ. ସେହି ସ୍ଥାନର ।

ସେଠିକି—ଗ୍ରା. ସର୍ବ. ସେଠାକୁ, ସେ ସ୍ଥାନକୁ । [ ତତ୍ପରେ ।

ସେଠୁ (ଠୁଁ)—ଗ୍ରା. ସର୍ବ. ସେହିସ୍ଥାନରୁ,

ସେଠେଇ—ଗ୍ରା. ସର୍ବ. ସେହିସ୍ଥାନରେ ।

ସେଡ଼(ଢ଼)—ଯା. ବି. (ଜାହାଜିଆ ଶବ୍ଦ) ଜାହାଜର ପାଲ ।

ସେଢ଼—ଗ୍ରା.ବି. ଡଙ୍ଗାରୁ ତଳକୁ ଓ ତଳୁ ଡଙ୍ଗା ଉପରକୁ ଯିବାପାଇଁ ପକାଯିବା ପଟା ।

ସେଢ଼କ—ଗ୍ରା. ଅ. ତେଢ଼କ, ତେତେ ବଡ଼, ସେହିପରି, ସେହି ପ୍ରକାରେ, ତେତେ ଉଚ୍ଚ ।

ସେଢ଼ୁ(ଡ଼ୁ) ଅ—ଗ୍ରା. ବି. (ସଂ-ସେଚନ, ସେକ୍ସ) ଶ୍ରେଷ୍ଠ ଶେଣା ।

ସେଢ଼ୁ(ଡ଼ୁ)ଆ—ଗ୍ରା. ବିଂ. ସିଢ଼ିପରି ସରୁଆ, (ବି.ନାମ) କାଠଯୋଡ଼ି ନଦୀରୁ କଟକର ଏକମାଇଲ ପୂର୍ବରେ ବାହାରି ଥିବା ନଦୀ ।

ସେଢ଼ୁଟାଏ—ଗ୍ରା. ବିଂ. ଓ ସର୍ବ. ତେତେ ବଡ଼, ତେତେ ଉଚ୍ଚ ।

ସେଢ଼େ—ଗ୍ରା. ବିଂ. କ୍ରି. ବିଂ.ବିଂ.ର ବିଂ. ସେତେ ବଡ଼, ସେଢ଼େ ଉଚ୍ଚ, ସେତେ ପରିମିତ ।

ସେଢ଼େଟାଏ—ଗ୍ରା.ବିଂ. ଓ ସର୍ବ. ତେତେ ବଡ଼, ତେତେ ଉଚ୍ଚ ।

ସେଢ଼େବଡ଼—ଗ୍ରା. ବିଂ. ତେଢ଼େ ବଡ଼, ତାହାପରି ଉଚ୍ଚ ।

ସେଣ—ଗ୍ରା. ସର୍ବ. (ସଂ-ତତ୍ ଓ ସ୍ଥାନ) ସେହି ସ୍ଥାନ,ତେଣ, ସେହି ଦିଗ, (ବିଂ) ସେହି ସ୍ଥାନର, ତେଣର, (ବି. ସଂ-

ସେନ) ଉତ୍କଳବାସୀ ବଙ୍ଗାଳିତନ୍ତ୍ରୀଙ୍କ ବଂଶୋପାଧିବିଶେଷ ।

**ସେଣକା**—ଗ୍ରା.ବଂ. (ସଂ-ତତ୍ର ଓ ସ୍ଥାନ) ସେସ୍ଥାନର,ସେହି ଦାଗର ।

**ସେଣା**—ଗ୍ରା. ବି. (ସଂ-ଶ୍ୟେନ) ଚିଲ୍ହାଣ ପକ୍ଷୀ, ( ସଂ-ସେଚନୀ ) ବାଉଁଶ ପାତିଆରେ ନିର୍ମିତ ଏକପ୍ରକାର ଜଳବାହୀ ଯନ୍ତ୍ର ।

**ସେଣିକି**—ଗ୍ରା. ଅ. ତେଣିକି, ସେହି ଆଡକୁ,ସେହି ସ୍ଥାନକୁ, ସେହି ଦାଗକୁ, ସେହି ଦାଗରେ, ତାପରେ ।

**ସେଣୁ**—ଗ୍ରା. ସର୍ବ. ସେହିସ୍ଥାନରୁ,ତେଣୁ, ସେହି ଦାଗରୁ, ସେହି ଆଡ଼ୁ, ସେହି ଯୋଗୁଁ ।

**ସେଣେ**—ଗ୍ରା. ଅ. ସେଠାରେ, ସେହି ସ୍ଥାନରେ, ସେହି ଆଡ଼ରେ, ସେହି ଦାଗରେ, କପାଳର ଦାଗରେ, ପକ୍ଷାନ୍ତରରେ, ନିର୍ଦ୍ଦିଷ୍ଟବ୍ୟକ୍ତିଙ୍କ ଅନୁପସ୍ଥିତିରେ

**ସେଣ୍ଟ୍**— ବି. ସାଧୁବ୍ୟକ୍ତି, ମହାତ୍ମା, ଖ୍ରୀଷ୍ଟାନ ଶାସ୍ତ୍ରଲିଖିତ ଧର୍ମପ୍ରାଣ ବ୍ୟକ୍ତି, (ଲାଟିନ ସେଣ୍ଟ-ଶତ) ସିଂହଳ ଆଦି ଦେଶ ପ୍ରଚଳିତ ରୌପ୍ୟମୁଦ୍ରାର ଶତାଂଶ ମୂଲ୍ୟର ତାମ୍ର ମୁଦ୍ରା, ଆମେରିକା ଇଉନାଇଟେଡ୍ ଷ୍ଟେଟସ୍ ବା ଯୁକ୍ତ ରାଜ୍ୟରେ ପ୍ରଚଳିତ ମୁଦ୍ରାବିଶେଷ, ଶତ,ଶହେ,(ପ୍ରା.ଗଞ୍ଜାମ) ଏକଏକରର $\frac{୧}{୧୦୦}$ ଅଂଶ ଜମି,ଏକ ଡ଼େସିମିଲ(ଜମି)

**ସେଣ୍ଟ୍‌ପିଟର**—ଯା. ବି. (ରୁଷନାମ) ରୁଷିଆର ରକ୍ଷାକର୍ତ୍ତା ଜଣେ ପୌରାଣିକ ମହାତ୍ମା ।

**ସେଣ୍ଟ୍‌ହେଲେନା**—ଗ୍ରା.ବି. (ନାମ)ଦକ୍ଷିଣ ଆଫ୍ରିକାର ପଶ୍ଚିମରେ ଦକ୍ଷିଣ ଆଟଲାଣ୍ଟିକ ମହାସାଗରସ୍ଥ ବ୍ରିଟିଶ ଅଧିକୃତ ଦ୍ୱୀପ ବିଶେଷ ।

**ସେଣ୍ଟର**— ଯା. ବି. ବୃତ୍ତର କେନ୍ଦ୍ର, ବହୁସ୍ଥାନର ପରୀକ୍ଷାର୍ଥୀଙ୍କର ପରୀକ୍ଷା ଦେବାପାଇଁ ନିର୍ବାଚିତ କେନ୍ଦ୍ରସ୍ଥଳ ।

**ସେଣ୍ଟିଗ୍ରେଡ୍**—ଯା.ବି. ୧୦୦ ବିଭାଗରେ ବିଭକ୍ତ ଥର୍ମମିଟର ବା ଶରୀରର ତାପମାନ ଯନ୍ତ୍ର ।

**ସେଣ୍ଟିମେଟର**—ବି. ଫ୍ରେଞ୍ଚ ଲମ୍ବ ମାପର ପରିମାଣବିଶେଷ ।

**ସେଣ୍ଟୀ**—ଗ୍ରା. ବି. (ଅଶ୍ଳୀଳ) (ସଂ-ଶିଶ୍ନ ଶବ୍ଦୋତ୍ପନ୍ନ-ଶିଶ୍ନିକା) ସ୍ତ୍ରୀ ଜନନେନ୍ଦ୍ରିୟ ମଧ୍ୟସ୍ଥ କୋମଳ ମାଂସପିଣ୍ଡ, ଯୋନ୍ୟଙ୍କୁର (ଯାହା ସାମାନ୍ୟ ପରିମାଣରେ ଉପରକୁ ଉଠିଥାଏ ।

**ସେଣ୍ଟୁ**—ପ୍ରା. (ଗଞ୍ଜାମ) ବି. ଏକଏକର ଭୂମିର ଡେସିମିଲ ବା ଶତାଂଶ ।

**ସେଣ୍ଟୁଲୁ**—ପ୍ରା. (ଗଞ୍ଜାମ) ବି. ସେଣ୍ଟ, ଡ଼େସିମିଲ (ଜମି) ।

**ସେଣ୍ଟ୍ରେ(ଣ୍ଟ୍ରୋ)ଲ୍**— ଯା. ବିଂ. କୈନ୍ଦ୍ରିକ

**ସେଣ୍ଡ**—ଗ୍ରା. ବି. ଶକ୍ତି, ବଳ, ସାମର୍ଥ୍ୟ ।

**ସେଣ୍ଡ(ଣ୍ଡୁ)**—ଗ୍ରା. ବି.ଷେଣ୍ଡ଼ ଦେଖ ।

**ସେଣ୍ଡା (ଣ୍ଡା)**—ଗ୍ରା. ବି. ବେକମୁଣ୍ଡା, ବେକର ପୃଷ୍ଠଭାଗ ।

**ସେତ୍‌ଖାନା**—ଯା ବି. ପାଇଖାନା ।

**ସେତକ**—ଗ୍ରା. ସର୍ବ. ସେହି ପରିମାଣ ବା ସଂଖ୍ୟା । [ ତାହାଙ୍କ ।

**ସେତାଙ୍କ**—ପ୍ରା. (ସମ୍ବଲପୁର) ସର୍ବ.

**ସେତାର**—ଯା. ବି. ବାଦ୍ୟଯନ୍ତ୍ରବିଶେଷ ।

**ସେତାରା**—ଗ୍ରା. ବି. (ପ୍ରାଚୀନ ଓଡ଼ିଆ) ତମ୍ବୁ (ମାଦଳାପାଞ୍ଜି) ।

**ସେତାରୀ**—ଯା. ବି. ସିତାରବଜାଇବାରେ ଦକ୍ଷ ବ୍ୟକ୍ତି ।

**ସେତି**—ଗ୍ରା. ସର୍ବ. ସେଠି, ସେଇଠି ।

**ସେତିକର୍ତ୍ତବ୍ୟତାକ**— ବିଂ. ଇତିକର୍ତ୍ତବ୍ୟତାର ସହିତ ବର୍ତ୍ତମାନ ।

**ସେତିକା**—ବି. ସ୍ତ୍ରୀ. ଅଯୋଧ୍ୟା (ଭୂତଶୁଦ୍ଧି ତନ୍ତ୍ର) ।

**ସେତିକି**—ଗ୍ରା. ସର୍ବ. ସେହି ପରିମାଣ, ତେତିକି, ତେତେ ପରିମାଣ, (ବିଂ) ସେହି ପରିମିତ ।

**ସେତିକିବେଳ**—ଗ୍ରା.ବି. ସେହି ସମୟ, ତେତିକିବେଳ । [ ସୁଦ୍ଧା ।

**ସେତିକିବେଳକୁ**—ଗ୍ରା.ଅ. ସେହି ସମୟ

**ସେତିକିବେଳୁଁ**—ଗ୍ରା.ଅ.ସେହିସମୟରୁ ।

**ସେତିକିବେଳେ**—ଗ୍ରା.ଅ. ସେହିସମୟରେ

**ସେତୁ**—ବି.(ସି+ଣ.ତୁ) ଜଳ ବନ୍ଧାଇବା ପାଇଁ ନିର୍ମିତ ବନ୍ଧ, ହୁଡ଼ା,ଆଡ଼ି ବନ୍ଧ, ପୋଲ, ଘାଟ, ନଦୀ ପାରି ହେବା ପାଇଁ ନିର୍ମିତ ବନ୍ଧ, କ୍ଷେତର ହିଡ଼, ଆଳି, ମର୍ଯ୍ୟାଦା,ସୀମା,ପ୍ରଣବ ଓଁକାର, ଟୀକା, ବ୍ୟାଖ୍ୟା, ବରୁଣବୃକ୍ଷ ।

**ସେତୁକ**—ବି. (ସି+କ.ତୁ+କ)ବରୁଣ ବୃକ୍ଷ, ବନ୍ଧ, ପୋଲ ।

**ସେତୁକର**—ପୁଂ. ବି. ସେତୁ ନିର୍ମାତା, ଯେ ସେତୁ ନିର୍ମାଣ କରେ ।

**ସେତୁକୃତ**—ଗ୍ରା. ବିଂ. (ସଂ-ସେତୁକୃତ୍) ସେତୁବନ୍ଧନକାରୀ ।

**ସେତୁଖଣ୍ଡ**—ବି. ପଦ୍ମପୁରାଣର ଅନ୍ତର୍ଗତ ଗୋଟିଏ ପ୍ରକରଣବିଶେଷ, ପଦ୍ମ ପୁରାଣରେ ପାତାଳଖଣ୍ଡ, ସେତୁଖଣ୍ଡ ପ୍ରଭୃତି କେତୋଟି ପ୍ରକରଣ ଅଛି ।

**ସେତୁପତି**—ଗ୍ରା. ବି. ଦାକ୍ଷିଣାତ୍ୟର ମଦୁରା ଜିଲ୍ଲାର ଅନ୍ତର୍ଗତ ରାମନାଦ ରାଜ୍ୟର ରାଜାଙ୍କ ବଂଶାନୁଗତ ଉପାଧି । [ନ୍ତର ।

**ସେତୁପ୍ରଦ**—ପୁଂ. ବି. କୃଷ୍ଣଙ୍କର ନାମା-

**ସେତୁବନ୍ଧ**—ବି. ନଦୀ ବା ସମୁଦ୍ର ପାରି ହେବାପାଇଁ ପଥରରେ ବା ମାଟିରେ ନିର୍ମିତ ବନ୍ଧ, ସେତୁ ଦେଖ, (ବି.ଗ୍ରା) ସେତୁ ହୋଇଅଛି ବନ୍ଧ ଯାହାର,ଭାରତର ଦକ୍ଷିଣ ପୂର୍ବ କୋଣ ରାମେଶ୍ୱରଠାରୁ ଲଙ୍କାର ଉତ୍ତର ପଶ୍ଚିମ କୋଣ ମାନ୍ନାର ପର୍ଯ୍ୟନ୍ତ ଲମ୍ବିଥିବା ମାନ୍ନାର ଉପସାଗରରେ ଥିବା ପ୍ରାଚୀନ ବନ୍ଧର ଭଗ୍ନାବଶିଷ୍ଟ ଆକାରର ଖଣ୍ଡ ଖଣ୍ଡ ପାହାଡ଼ଶ୍ରେଣୀ, ସୀତାଙ୍କ ଉଦ୍ଧାରାର୍ଥ ରାମଚନ୍ଦ୍ରଙ୍କ ଆଦେଶରେ ଭାରତବର୍ଷରୁ ଲଙ୍କାକୁ ପାରିହୋଇଯିବା ନିମନ୍ତେ ରଚିତ ରାମାୟଣ ବର୍ଣ୍ଣିତ ପଥରର ଭାସମାନ ପୋଲ ।

**ସେତୁବନ୍ଧ**—ବି. (୬ତତ୍) ନଦୀ ବା ସମୁଦ୍ର ଉପରେ ବନ୍ଧ ବା ପୋଲ ବାନ୍ଧିବା ।

**ସେତୁବନ୍ଧରମେଶ୍ୱର**—ଗ୍ରା.ବି.ତୀର୍ଥବିଶେଷ, ରାମାୟଣ ବର୍ଣ୍ଣିତ ପଥରର ଭାସମାନ ପୋଲ ।

**ସେତୁବୃକ୍ଷ**—ବି. ବରୁଣ ବୃକ୍ଷ ।

ସେତୁଭେଦ(ଭଙ୍ଗ)—ବି.(୬ତତ୍)ତିଆରି ହୋଇଥିବା ପୋଲ ଭାଙ୍ଗିଯିବା ।

ସେତୁଭେଦୀ—ବି. ଦନ୍ତୀ ବୃକ୍ଷ ।

ସେତୁଶୈଳ—ବି. ଦୁଇଦେଶର ବା ରାଜ୍ୟର ସୀମାରେ ଥିବା ପର୍ବତବିଶେଷ ।

ସେତେ—ଗ୍ରା. ସର୍ବ. ଅବ୍ୟ. ସେହି ପର୍ଯ୍ୟନ୍ତ ।

ସେତ୍ର—ବି.(ସି + ଣ.ନ) ନିଗଡ଼,ବେଡ଼ି, ଲୌହଶୃଙ୍ଖଳ ।

ସେଥର—ଗ୍ରା.ଅ.ଆଗଥର ।

ସେଥିକି(କୁ)—ଗ୍ରା. ସର୍ବ. ସେହି ବିଷୟକୁ ବା ପ୍ରତି, ତନ୍ନିମିତ୍ତ ।

ସେଥିପା(ପେ)ଇଁ(ଲାଗି)—ଗ୍ରା. ସର୍ବ. ତନ୍ନିବନ୍ଧନ,ତନ୍ନିମିତ୍ତ,ସେହି କାରଣରୁ

ସେଥିରଲାଗି—ପ୍ରା. (ସମ୍ବଲ) ଅ. ସେଥି-ପାଇଁ ଦେଖ ।

ସେଥି(ଥୁ)ରୁ—ଗ୍ରା. ସର୍ବ. ତହିଁରୁ, ସେହି କାରଣରୁ, ତତ୍ପରେ ।

ସେଥିରେ—ଗ୍ରା. ସର୍ବ. ତହିଁରେ, ସେହି ବିଷୟରେ ।

ସେଥୁ—ପ୍ରା. (ଲରିଆ) ଅ. ଆଗଥର ।

ସେଦ୍ଧବ୍ୟ—ବିଂ.(ସିଧ୍ + ର୍ମ.ତବ୍ୟ)ନିବାରିତ ହେବାର ଯୋଗ୍ୟ,ଯାହା ନିବାରିତ ବା ନିଷେଧ ହେବ । [ ନିବାରଣ ।

ସେଧ—ବି. (ସିଧ୍+ଭା.ଅ) ନିଷେଧ,

ସେଧକ—ପୁଂ. ବିଂ. ( ସିଧ୍+ କ.ଅକ ) ନିବାରଣକାରୀ, ପ୍ରତିରୋଧକ, ( ସ୍ତ୍ରୀ ) ସେଧିକା ।

ସେଧା—ବି. ଝିଙ୍କ ।

ସେନ୍—ପ୍ରା.(ସମ୍ବଲ)ସର୍ବ. ତେଣେ,ସେ ଦିଗରେ,ତହିଁ,(ଗ୍ରା.ବି)ବଙ୍ଗୀୟ କାୟସ୍ଥ ଓ ବୈଦ୍ୟଙ୍କର ବଂଶୋପାଧିବିଶେଷ ।

ସେନ୍‌କେ—ପ୍ରା.(ବଲାଙ୍ଗିରପାଟଣା)ସର୍ବ. ସେଠାକୁ ।

ସେନ୍ତା—ପ୍ରା. (ସମ୍ବଲ) ଅ. ସେହିପରି, ତଥା, ତାଦୃଶ,ତାହାହିଁ ।

ସେନ—ବି. (ସି + କ.ନ) ବୀର, ଶୂର, ଦଳପତି, ଅଧିନାୟକ, ନାୟକ,ଦଳର ପ୍ରଧାନ ବ୍ୟକ୍ତି, ରାଜା, ଭୂପତି, (ର୍ମ.ନ) ଶରୀର, ଜୀବନ, (ବିଂ) ସନାଥ,ଆଶ୍ରିତ, ଅଧୀନ, (ଗ୍ରା.ବି) ବଙ୍ଗଦେଶର ବୈଦ୍ୟ ଓ କାୟସ୍ଥଜାତିଙ୍କ ବଂଶୋପାଧିବିଶେଷ, ବଙ୍ଗରେ ଖ୍ରୀଷ୍ଟୀୟ ୧୧ଶ ଠାରୁ ୧୪ଶ ଶତାବ୍ଦୀ ପର୍ଯ୍ୟନ୍ତ ରାଜତ୍ୱ କରିଥିବା ପ୍ରାଚୀନ ରାଜବଂଶବିଶେଷ,ବଙ୍ଗଦେଶରେ କେତେକ ତନ୍ତୀଙ୍କ ବଂଶୋପାଧି ।

ସେନଗୁପ୍ତ—ଗ୍ରା. ବି. ବଙ୍ଗୀୟ ବୈଦ୍ୟ-ମାନଙ୍କର ବଂଶୋପାଧିବିଶେଷ ।

ସେନବଂଶ—ବି. ଖ୍ରୀଷ୍ଟୀୟ ୧୧ଶ ଶତାବ୍ଦୀ ଠାରୁ ୧୪ଶ ଶତାବ୍ଦୀ ପର୍ଯ୍ୟନ୍ତ ବଙ୍ଗରେ ରାଜତ୍ୱ କରୁଥିବା ରାଜାମାନଙ୍କ ବଂଶ ।

ସେନା—ସ୍ତ୍ରୀ. ବି. (ସି + କ.ନ+ଆ କିମ୍ବା ସ+ଇନ) ସୈନ୍ୟ,ସୈନ୍ୟଦଳ,ଦେଶରକ୍ଷା ରାଜ୍ୟରକ୍ଷା ଓ ଶତ୍ରୁଙ୍କୁ ଆକ୍ରମଣ କରିବା ପାଇଁ ସଜ୍ଜିତ ଓ ଶିକ୍ଷିତ ଯୋଦ୍ଧୃଦଳ, ପଲଟଣ,ବର୍ତ୍ତମାନ ଅବସର୍ପିଣୀର ତୃତୀୟ ଅର୍ହତ ଶଂଭବଙ୍କ ମାତା ଭଲ୍ଲାସ୍ତ୍ର,ବର୍ଚ୍ଛା, ଇନ୍ଦ୍ରଙ୍କ ବଜ୍ର, ଇନ୍ଦ୍ରାଣୀ ।

ସେନାକକ୍ଷ—ବି. ( ୬ତତ୍ ) ସେନାର ପାର୍ଶ୍ୱ ବା କଡ଼ ।

ସେନାକ୍ଷ—ବି. ( ୬ତତ୍ ) ସେନାର ରକ୍ଷକ ବା ପରିଚାଳକବିଶେଷଙ୍କ ଉପାଧି

ସେନାଗ୍ର—ବି. (୬ତତ୍) ସେନାଗ୍ରଭାଗ, ସେନାର ଆଗରେ ଥିବା ସୈନ୍ୟଦଳ ।

ସେନାଙ୍ଗ—ବି.(୬ତତ୍)ସେନାମାନଙ୍କର ଅବୟବ ହସ୍ତୀ,ଅଶ୍ୱ, ରଥ ଓ ପଦାତି ଏହି ଚାରିପ୍ରକାର ।

ସେନାଚର—ବିଂ.(ସେନା+ଚର୍ + କ. ଅ) ସେନାଙ୍କର ଅଗ୍ରଗାମୀ, ସୈନ୍ୟସହ ଗମନକରୁଥିବା,(ବି)ସୈନ୍ୟଯୁକ୍ତ ବ୍ୟକ୍ତି ।

ସେନାଜୀବ(ବୀ)—ବି. (ସେନା + ଜୀବ୍ + କ.ଅ + ଇନ୍)ସୈନିକ,ସିପାହି,ଯୋଦ୍ଧା ।

ସେନାଧିନାଥ—ପୁଂ. ବି. (ସେନା+ଅଧି-ନାଥ) ସେନାନାୟକ, ସେନାନୀ ।

ସେନାଧିପ—ପୁଂ. ବି. ୬ତତ୍; (ସେନା +ଅଧିପ) ସେନାପତି ।

ସେନାଧିପତି—ପୁଂ.ବି. (୬ତତ୍)ସେନା-ମାନଙ୍କର ଅଧିପତି ।

ସେନାଧ୍ୟକ୍ଷ—ପୁଂ.ବି.(୬ତତ୍)ସେନାପତି, ସେନାମାନଙ୍କର ଅଧ୍ୟକ୍ଷ ।

ସେନାନାୟକ—ବି.(୬ତତ୍)ସେନାପତି, ବାହିନୀପତି, (ଗ୍ରା.ବି) ଭାରତୀୟ ପଦାତିକ ସେନାଦଳର ସର୍ଦ୍ଦାର, ନାୟକ ।

ସେନାନିବାସ(ନିବେଶ)—ବି. (୬ତତ୍) ସୈନ୍ୟମାନଙ୍କ ରହିବା ସ୍ଥାନ, ଛାଉଣି, କ୍ୟାମ୍ପ ।

ସେନାନୀ—ବି.(ସେନା+ନୀ+କ.କ୍ୱିପ୍) ସେନାପତି, ସେନାଧ୍ୟକ୍ଷ, କାର୍ତ୍ତିକେୟ, (ନାମ) ଏକରୁଦ୍ରଙ୍କ ନାମ, ଧୃତରାଷ୍ଟ୍ରଙ୍କ ଏକ ପୁତ୍ର, ଶମ୍ବରଦୈତ୍ୟର ଏକ ପୁତ୍ର, ଏକପ୍ରକାର ପଶାଖେଳ ।

ସେନାପଟା—ଗ୍ରା.ବି.ଜଗନ୍ନାଥମହାପ୍ରଭୁଙ୍କ ପ୍ରତିମାର ପୃଷ୍ଠଭାଗରେ ନିବଦ୍ଧ କାଠର ପଟା ।

ସେନାପତି—ବି. (୬ତତ୍) ସେନାନୀ, ସୈନ୍ୟାଧ୍ୟକ୍ଷ, କାର୍ତ୍ତିକେୟ, (ଗ୍ରା.ବି) ଖଣ୍ଡାଏତଙ୍କ ବଂଶୋପାଧିବିଶେଷ,ବଳ-ଭଦ୍ରଗୋତ୍ରୀ ବା ମାସ୍ତାନ ବ୍ରାହ୍ମଣଙ୍କର ବଂଶୋପାଧିବିଶେଷ ।

ସେନାପତିତ୍ୱ—ବି.ସେନାପତିର କାର୍ଯ୍ୟ ।

ସେନାପତିପତି—ପୁଂ. ବି. ସର୍ବପ୍ରଧାନ ସୈନ୍ୟାଧ୍ୟକ୍ଷ ।

ସେନାପତ୍ୟ—ବି. ( ସେନାପତି+ଯ ) ସେନାପତିଙ୍କ କର୍ମ ବା ଅଧିକାର ।

ସେନାପାଳ—ପୁଂ. ବି. ସୈନ୍ୟପାଳକ, ସୈନାଧ୍ୟକ୍ଷ, ସେନାପତି ।

ସେନାପୃଷ୍ଠ—ବି. ( ୬ତତ୍ ) ସେନାର ପଛଭାଗ ।

ସେନାବାସ—ବି. (୬ତତ୍) ସେନାନିବାସ ଦେଖ, ଡେରା, ତମ୍ବୁ ।

ସେନାବାହ—ବି.(ସେନା+ବହ୍+କ. ଅ) ସେନାପତି ।

ସେନାବ୍ୟୂହ(ବିନ୍ୟାସ,ସଜ୍ଜା)—ବି.(୬ତତ୍) ଯୁଦ୍ଧପାଇଁ ଭିନ୍ନ ଭିନ୍ନ ସ୍ଥାନରେ ଓ ଦାଉଯାଗାମାନଙ୍କରେ ସେନାର ଭିନ୍ନ ଭିନ୍ନ ଅଙ୍ଗର ବା ଅଂଶର କୌଶଳପୂର୍ଣ୍ଣ ସ୍ଥାପନ ।

ସେନାମୁଖ—ବି. (୬ତତ୍ପୁ) ସେନାର ଅଗ୍ରଭାଗ, ୩ହସ୍ତୀ, ୯ଅଶ୍ୱ, ୩ରଥ ଓ ୧୫ ପଦାତି ଏପରି ୩୦ ଜଣ ସମ୍ମିଳିତ ସେନାଦଳ, ପଙ୍‌କ୍ତିର ୩ଗୁଣ ବା ୧୬୫ ଜଣ ପଦାତିକ ସୈନ୍ୟ, ପୁରଦ୍ୱାରର ସମ୍ମୁଖବର୍ତ୍ତୀ ଉଚ୍ଚ ପଥ ।

ସେନାମୁଖୀ—ସ୍ତ୍ରୀ. ବି. ଦେଶୀବିଶେଷ ।

ସେନାରକ୍ଷ(କ)—ବି. ସୈନ୍ୟମାନଙ୍କୁ ଜଗିବା ପ୍ରହରୀ, ସୈନିକ ।

ସେନୀୟ—ବିଂ. ସେନା ସମ୍ବନ୍ଧୀୟ ।

ସେନୁ—ପ୍ରା. (ବୌଦ୍ଧଗ୍ରନ୍ଥ ଓ ପାଠଣା) ଅବ୍ୟ. ସେଠାରୁ ।　[ ସେହୁ ।

ସେନେ—ପ୍ରା. (ବୌଦ୍ଧ, ପାଠଣା) ଅବ୍ୟ.

ସେନେଁ—ପ୍ରା. (ବୌଦ୍ଧ ଓ ପାଠଣା) ଅ. ସେଠାରେ ।

ସେନେହ—ଗ୍ରା. (ପଦ୍ୟ) ବି.(ସଂ-ସ୍ନେହ) ସ୍ନେହ ଦେଖ ।　[ ସ୍ନେହ ।

ସେନୋ—ପ୍ରା. (ବଲାଙ୍ଗିରପାଠଣା) ବି.

ସେନ୍ତ୍ରଖାନା—ଯା.ବି.ସେନ୍ତ୍ରଖାନା ଦେଖ

ସେନ୍ତାଲେନ୍ତା—ଗ୍ରା. ବି. ଲାଳନପାଳନ, ଭରଣପୋଷଣ ।

ସେନ୍ତ୍ରି— ଯା. ବି. ସନ୍ତ୍ରି, ପହରାଦେଉଥିବା ସଶସ୍ତ୍ର ସୈନିକ ।

ସେନ୍ଦୁର୍—ପ୍ରା.(ବଲାଙ୍ଗିରପାଠଣା) ସିନ୍ଦୁର ।

ସେନ୍ଦ୍ରିୟ—ବିଂ. ବ.ବ୍ରୀ; (ସ+ଇନ୍ଦ୍ରିୟ) ଇନ୍ଦ୍ରିୟସମ୍ପନ୍ନ, ପୁଂସ୍ତ୍ୱବିଶିଷ୍ଟ ।

ସେନ୍ସସ୍—ଯା. ବି. ଜନସୁମାରି, ସରକାରଙ୍କ ଦ୍ୱାରା କରାଯିବା ରାଜ୍ୟର ଲୋକସଂଖ୍ୟା ଗଣନାକ୍ରିୟା ।

ସେପ୍‌ଟେମ୍ବର—ଯା. ବି. ପାଶ୍ଚାତ୍ୟମାସ ଗଣନାରେ ନବମ ମାସ, ଅଗଷ୍ଟମାସର ପରବର୍ତ୍ତୀ ଓ ଅକ୍ଟୋବର ମାସର ପୂର୍ବବର୍ତ୍ତୀ ମାସ, ଓଡ଼ିଆ ଭାଦ୍ରବ ଓ ଆଶ୍ୱିନ ମାସ ।　[ ସପେଟା ।

ସେପଟା—ଯା.ବି. ସୁସ୍ୱାଦ୍ୟ ଫଳବିଶେଷ,

ସେପଉନ୍—ଗ୍ରା. ବି. ଦରପଉନଦାର ଠାରୁ ଗୃହୀତ ପଉନ ।

ସେପଉନଦାର୍—ଗ୍ରା. ବି. ଦରପଉନ ଅଧୀନ ପଉନଦାର ।

ସେପରି-ଗ୍ରା. ବିଂ. ତଦ୍ରୂପ, ସେପ୍ରକାରର, ତାହାର ପରି, ଅତି ଉତ୍କୃଷ୍ଟ, ଅତୁଳନୀୟ, (ଅ) ସେପରି, ସେହିପରି ।

ସେପରେ—ଗ୍ରା. ଅ. ତଦ୍ରୂପ, ସେହିପ୍ରକାରେ ।

ସେପାୟା(ହ୍ୟା)—ଯା. ବି. ତିପାୟା, ତିନିଗୋଡ଼ିଆ କାଷ୍ଠାସନ ।

ସେପୁର(ଶ)—ଗ୍ରା. ବି. ଯମପୁର ।

ସେଫ୍‌ଟିରେଜର୍—ଯା. ବି. ଯେଉଁ ଖୁର ଦ୍ୱାରା ନିରାପଦ ଭାବରେ କ୍ଷୌରକର୍ମ ସମାହିତ ହୁଏ ।

ସେଫ—ବି. (ସି + କ.ଫ) ଶିଶ୍ନ, ଲିଙ୍ଗ ।

ସେଫାଳିକା—ବି. ଶେଫାଳିକା ଦେଖ ।

ସେବ୍—(ଧାତୁ) ସେବନ କରିବା, ଭୋଗ କରିବା, ଖାଇବା, ପରିଚର୍ଯ୍ୟା କରିବା, ବ୍ୟବହାର କରିବା, ଭୋଗ କରିବା, ସମ୍ଭୋଗ କରିବା, ବାସ କରିବା, ବିହାର କରିବା, ଚର୍ଚ୍ଚା ବା ଅଧ୍ୟୟନ କରିବା, ଜଗିବା ।

ସେବ—ବି. (ସେବ୍ + ମ.ଅ) ସେଉଫଳ, (ଭା.ଅ) ସେବା, ପରିଚର୍ଯ୍ୟା ।

ସେବକ—ପୁଂ. ବିଂ. (ସେବ୍ + କ.ଅକ) ସେବାକାରୀ, ପରିଚର୍ଯ୍ୟାକାରୀ, ଧାରାମତେ କୌଣସି କର୍ମାବଲମ୍ବନକାରୀ, ଭୋଗକାରୀ, (ସ୍ତ୍ରୀ) ସେବ(ବି)କା, (ବି) ପ୍ରସେବକ, ବୀଣାପ୍ରାନ୍ତସ୍ଥ ବକ୍ରକାଷ୍ଠ, ବୀଣାସ୍ଥିତ ଅଲାବୁଫଳକ, ଧୋକଡ଼ି, ମୁଣି, (ସୀବ୍ + କ.ଅକ) ସୀବନକର୍ତ୍ତା, ଦରଜି, ପରିଚାରକ, ଦାସ, ଭୃତ୍ୟ, ପରିଚର୍ଯ୍ୟାକାରୀ ବ୍ୟକ୍ତି, ଭକ୍ତ, ଉପାସକ, ଆରାଧକ, (କୌଣସି ବସ୍ତୁର) ବ୍ୟବହାରକାରୀ ବ୍ୟକ୍ତି, ଧାରାବାହିକରୂପେ କୌଣସି କର୍ମ ଅବଲମ୍ବନକାରୀ ବ୍ୟକ୍ତି, (ମ.ଅକ) ବୋରା, ବସ୍ତା, (ସେବ୍ + କ.ଅକ) ଦେବତାଙ୍କ ପୂଜାଆଦି କରିବା ବ୍ୟକ୍ତି, ପୂଜାହାରୀ ।

ସେବକଜଯୋଗ—ଗ୍ରା. ବି. ଭିନ୍ନ ଭିନ୍ନ ଶ୍ରେଣୀର ସେବକମାନଙ୍କର ଗୋଷ୍ଠୀ ବା ସମାଜ ।

ସେବକବ୍ରାହ୍ମଣ—ବି. ଦେଉଳିଆ ବା ପଣ୍ଡା ବ୍ରାହ୍ମଣ, ନିକୃଷ୍ଟଶ୍ରେଣୀର ବ୍ରାହ୍ମଣ ।

ସେବକା—ସ୍ତ୍ରୀ. ବି. ( ସେବକ + ଆ ) ସେବକର ସ୍ତ୍ରୀଲିଙ୍ଗ ।

ସେବକାଧମ—ପୁଂ. ବି. ( ୭ତତ୍ପୁ ) (ବିନୟୋକ୍ତି) ଅଧମ ସେବକ, ( ସ୍ତ୍ରୀ ) ସେବକାଧମା ।

ସେବକାନ୍—ଗ୍ରା. ବି. ( ବହୁବଚନ ) ସେବକମାନେ ।

ସେବକାନୁସେବକ—ବି. ଅତି ହୀନ ବ୍ୟକ୍ତି, (ଯେ ଆପଣଙ୍କର ସେବକର ସେବକ ହେବାର ଉପଯୁକ୍ତ) ।

ସେବକାର—ଗ୍ରା. ବିଂ. ସେହି ସମୟର, ଅତୀତକାଳର, ଅତି ପୁରାତନ ।

ସେବକାଳୁ—ବି. ଜଣାଭଙ୍ଗା ବୃକ୍ଷ, ଦୁଗ୍ଧ ପେୟା ବୃକ୍ଷ, ଦୁଧିଆମେଣ୍ଟି ଲତା, ଦୁଗ୍ଧିକା ।

ସେବକୀ—ଗ୍ରା. ସ୍ତ୍ରୀ. ବି. ସେବକା ଦେଖ ।

ସେବତି—ବି. ଶତପତ୍ରୀ, ପୀତବର୍ଣ୍ଣ ପୁଷ୍ପବିଶେଷ ।

ସେବଧି—ବି. ( ସେବ୍ + ଧା + କ.ଇ ) କୁବେରଙ୍କ ନିଧି, ରତ୍ନ, ଶଙ୍ଖ, ପଦ୍ମାଦି ।

ସେବନ—ବି. (ସୀବ୍ + ଭା.ଅନ) ବସ୍ତ୍ରାଦି ସୀବନ, ସିଲାଇ କରିବା, (ସେବ୍ + ଭା. ଅନ) ସେବା କରିବା, ପରିଚର୍ଯ୍ୟା, ଆରାଧନ, ଉପାସନା, ପୂଜନ, ଉପଭୋଗ, ଭୋଜନ, ଚର୍ଚ୍ଚା, ଅଭ୍ୟସନ, ସଂଭୋଗ, ବାସ କରିବା, ବିହାର, ( ମ.ଅନ ) ବୋରା, ବସ୍ତା ।

ସେବନା—ବି. (ସେବନ + ଆ) ଉପାସନା ।

ସେବନୀ—ବି. ( ସିବ୍ + ଣ.ଅନ + ଈ ) ସୂଚୀ, ଛୁଞ୍ଚି ।

ସେବନୀୟ—ବିଂ. (ସେବ୍ + ମ.ଅନୀୟ) ସେବନ ଯୋଗ୍ୟ, ଭୋଗ୍ୟ, ଉପାସ୍ୟ ।

ସେବମାନ—ବିଂ. ( ସେବ୍ + କ.ଆନ ) ଯେ ସେବା କରୁଅଛି, ଶୁଶ୍ରୂଷାପରାୟଣ, (ସ୍ତ୍ରୀ) ସେବମାନା ।

ସେବା—ବି. ( ସେବ୍ + ଭା.ଅ + ଆ ) ପରିଚର୍ଯ୍ୟା, ଦାସ୍ୟ, ଆରାଧନା, ଧାରାବାହିକ ଚର୍ଚ୍ଚା, (କୌଣସି କାର୍ଯ୍ୟପ୍ରତି) ଅନୁରକ୍ତି,

(କୌଣସି ସ୍ଥାନରେ) ବାସ ବା ବିହାର, ସମ୍ଭୋଗ, (ଣ.ଅ + ଆ) ଗୃହ୍ଣୁ-ବାକ୍ୟ ।

ସେବାଇତ—ଗ୍ରା. ବି. ( ସଂ-ସେବିତା ) ସେବକ, ଦେବତାଙ୍କ ସେବାକାରୀ, ମନ୍ଦିରର ସେବକ, ଭୃତ୍ୟ, ସେବାକାରୀ ଧୋବା ଭଣ୍ଡାରୀ ଆଦି ।

ସେବାଇତି-ଗ୍ରା.ବି.ସେବାଇତର କାର୍ଯ୍ୟ ।

ସେବାଏ(ୟ)—ଯା. ଅ. ଛଡ଼ା, ବ୍ୟତୀତ ।

ସେବାକାକୁ—ବି. (କ.ଧା) ସେବାକରିବା ସମୟରେ ସେବକଙ୍କ କଣ୍ଠସ୍ୱରର ପରିବର୍ତ୍ତନ ।

ସେବାକାରୀ—ପୁଂ. ବି. ଓ ବିଂ. ସେବକ ଦେଖ, (ସ୍ତ୍ରୀ) ସେବାକାରିଣୀ ।

ସେବାକାର୍ଯ୍ୟ—ବି.(ଷତତ୍) ପରିଚର୍ଯ୍ୟାର କର୍ମ, ଚାକରର କାର୍ଯ୍ୟ ।

ସେବାଦାସୀ—ସ୍ତ୍ରୀ. ବି. (କ.ଧା) ପରିଚର୍ଯ୍ୟା ନିମିତ୍ତ ରକ୍ଷିତା ଦାସୀ, ଏକ-ସମ୍ପ୍ରଦାୟ ବୈଷ୍ଣବର ରକ୍ଷିତା ରମଣୀ ।

ସେବାଧର୍ମ—ବି.(ରୂପକ)ଅବଶ୍ୟ କର୍ତ୍ତବ୍ୟ-ରୂପେ ଗୃହୀତ ସେବାକର୍ମ, ସେବକର କର୍ତ୍ତବ୍ୟ କର୍ମ ।

ସେବାବୃତ୍ତି—ବି. (ରୂପକ) ଜୀବିକାର୍ଥ ଗୃହୀତ ସେବାକର୍ମ, (ପୁଂ. ଓ ସ୍ତ୍ରୀ. ବି. ବ.ବ୍ରୀ) ଚାକିରି ଯାହାର ଜୀବିକା ।

ସେବାବ୍ରତ—ବି. ପରୋପକାର ଓ ପରି-ଚର୍ଯ୍ୟାରୂପ ନିୟମ,(ବିଂ-ବ.ବ୍ରୀ)ସେବା-ରୂପ ନିୟମ ପାଳନକାରୀ,ପରିଚର୍ଯ୍ୟାରୂପ ପୁଣ୍ୟକର୍ମରେ ରତ ।

ସେବାମନ୍ଦିର—ଗ୍ରା.ବି.ସେବାଶ୍ରମ ଦେଖ ।

ସେବାଯୂଥ—ଗ୍ରା. ବି. ସେବା ନିମନ୍ତେ ଆବଶ୍ୟକ ଦ୍ରବ୍ୟଚୟ ।

ସେବାର୍ହ—ବିଂ. (ସେବା+ଅର୍ହ+କ.ଅ) ସେବିତହେବାର ଯୋଗ୍ୟ, ( ସ୍ତ୍ରୀ ) ସେବାର୍ହା ।

ସେବାଶ୍ରମ—ବି. ଯେଉଁ ଆଶ୍ରମରେ ସେବକମାନେ ନାନାପ୍ରକାରେ ଦେଶ-ସେବା ଓ ଦରିଦ୍ରସେବା କରନ୍ତି ।

ସେବାସଙ୍ଘ—ବି. (କ.ଧା) ଦେଶସେବା ପାଇଁ ଗଢ଼ା ସମାଜ ।

ସେବାଶୁଶ୍ରୂଷା—ବି.(ଏକାର୍ଥକ ସହଚର) କୌଣସି ବ୍ୟକ୍ତିଙ୍କର ବା ରୋଗୀର ପରିଚର୍ଯ୍ୟା ।

ସେବାସମର୍ପଣ—ବି.ଦେବଅର୍ଚ୍ଚନାଦି ପରି-ଚାଳନ କରିବାପାଇଁ କୌଣସି ବ୍ୟକ୍ତିଙ୍କ ହସ୍ତରେ ଦେବତାଙ୍କ ସେବାର ଅର୍ପଣ ।

ସେବାସି—ଗ୍ରା. ବି. ସେବକ ଦେଖ ।

ସେବି—ବି. ସେଉଫଳ, ବଦରଫଳ, ବରକୋଳି ।

ସେବିକା—ସ୍ତ୍ରୀ. ବି. ପକ୍ୱାନ୍ନବିଶେଷ, ସିମେଇ, (ଗ୍ରା. ସ୍ତ୍ରୀ. ବିଂ. ସଂ-ସେବକା) ସେବକର ସ୍ତ୍ରୀଲିଙ୍ଗ ।

ସେବି(ଭି)ଙ୍ଗ୍—ଯା. ବି. ବ୍ୟୟରୁ ଉଦ୍ବୃତ୍ତ ଧନର ସଞ୍ଚୟ ।

ସେବିତ—ବିଂ.(ସେବ୍+ମ.କ୍ତ) ସମ୍ପାଦିତ, ଆରାଧିତ, ପୂଜିତ, ଉପଭୁକ୍ତ, ଅଧ୍ୟୁଷିତ, ଆଶ୍ରିତ, ରକ୍ଷିତ, ଅଭ୍ୟସ୍ତ, ବ୍ୟବହୃତ, ଯାହାଙ୍କର ସେବା ବା ପରି-ଚର୍ଯ୍ୟା କରାଯାଇଅଛି, (ସ୍ତ୍ରୀ) ସେବିତା, (ବି) ସେବି ଦେଖ ।

ସେବିତବ୍ୟ—ବିଂ. (ସେବ୍+ମ.ତବ୍ୟ) ସେବିତହେବା ଯୋଗ୍ୟ, (ସିବ୍+ମ. ତବ୍ୟ) ସିଲାଇ କରାଯିବା ଯୋଗ୍ୟ,(ସ୍ତ୍ରୀ) ସେବିତବ୍ୟା ।

ସେବିତା—ସ୍ତ୍ରୀ. ବିଂ. ( ସେବିତ+ଆ ) ସେବିତର ସ୍ତ୍ରୀଲିଙ୍ଗ, (ପୁଂ-ସେବ+କ. ତୃ) ସେବାକାରୀ,(ସ୍ତ୍ରୀ)ସେବିତ୍ରୀ,(ପୁଂ.ବି) ସେବକ ଦେଖ,(କ୍ଲୀ-ସେବନ୍+ଭା.ତା) ସେବକର କର୍ମ ।

ସେବିବା—ଗ୍ରା.କ୍ରି.(ସଂ-ସେବ୍ଧାତୁ)ପଦ୍ୟ. ସେବା କରିବା, ଖଟିବା, (ତୀର୍ଥାଦିକୁ) ଯିବା ।

ସେବୀ—ପୁଂ. ବିଂ. ( ସେବ୍+କ.ଇନ୍ ) ଯେ ସେବାକରେ,ସେବକ ଦେଖ,(ସ୍ତ୍ରୀ) ସେବିନୀ ।

ସେବ୍ୟ—ବିଂ.(ସେବ୍+ମ.ଯ)ସେବନୀୟ, ସେବାର୍ହ, ଉପାସନୀୟ, ଆରାଧ୍ୟ, ଉପ-ଭୋଗ୍ୟ, (ସ୍ତ୍ରୀ) ସେବ୍ୟା, (ବି) ଶାରୁଣ-ମୂଳ, ବେଣାଚେର,ଅଶ୍ୱତ୍ଥ ବୃକ୍ଷ,ହିଜ୍ଜଳ ବୃକ୍ଷ, ସେବକର ପ୍ରଭୁ, ଲାମଜ୍ଜକ ତୃଣ, ରକ୍ତଚନ୍ଦନ, ସୁଗନ୍ଧବଳା, କୁରୁବେଲି, ସାମୁଦ୍ରଲବଣ, ଜଳ,ଜଳପକ୍ଷୀବିଶେଷ ।

ସେବ୍ୟକ—ଗ୍ରା.ବି.(ସଂ—ସେବ୍ୟ)ବେଣା-ଚେର ।

ସେବ୍ୟସେବକ—ପୁଂ. ବି. ( ଦ୍ୱିବଚନ ) ପ୍ରଭୁ ଓ ଭୃତ୍ୟ,(ସ୍ତ୍ରୀ) ସେବ୍ୟାସେବିକା ।

ସେବ୍ୟମାନ୍—ବିଂ. ( ସେବ୍+ମ.ଆନ ) ଆରାଧମାନ, ଯାହାକୁ ସେବାକରାଯାଏ, (ସ୍ତ୍ରୀ)ସେବ୍ୟମାନା ।

ସେବ୍ୟା—ସ୍ତ୍ରୀ. ବି. (ସେବ+ଯ+ଆ) ବନ୍ଦାବୃକ୍ଷ, ବନ୍ଦାକ, ମଲ୍ଲିଙ୍ଗ, ଅଁଳା, ଆମଳକୀ, ଏକପ୍ରକାର ଜଙ୍ଗଲି ଧାନ, (ସ୍ତ୍ରୀ.ବିଂ) ସେବ୍ୟର ସ୍ତ୍ରୀଲିଙ୍ଗ ।

ସେଭଳି—ଗ୍ରା. ଅବ୍ୟ. ସେହିପ୍ରକାରର, ସେପରି, ତାହାଁର ସମାନ । [ ଛେଳି ।

ସେମଏ-ଯା.ବି.ଏକପ୍ରକାର ଇଉରୋପୀୟ

ସେମଟା—ଗ୍ରା.ବିଂ. (ସଂ-ଶୀର୍ଣ୍ଣ କମ୍ବା ଶିମ୍ବ) ଶୁଖିଯାଇ କ୍ଷୀଣ ବା ଶୀର୍ଣ୍ଣ ହୋଇଥିବା, ଜୀର୍ଣ୍ଣଶୀର୍ଣ୍ଣ, କ୍ଷୀଣକାୟ, (ସ୍ତ୍ରୀ) ସେମଟୀ ।

ସେମ(ମି)ତି—ଗ୍ରା. ଅ. ସେପରି, ତେମନ୍ତ, ସେହିପରି, ତତ୍ସଦୃଶ, ସେହିପ୍ରକାରେ ।

ସେମ(ମି)ତିକା—ଗ୍ରା.ଅ.ତେମତ,ତେମନ୍ତ, ସେହିପ୍ରକାରର ।

ସେମାଦ୍ୱାରେ—ଗ୍ରା. ଅ. ସେହିଯୋଗୁଁ, ସେହିହେତୁରୁ, ସେହି ସମ୍ପର୍କରେ ।

ସେମାନେ—ଗ୍ରା. ସର୍ବ. ( ସଂ ତତ୍ଗଣ ) ନିର୍ଦ୍ଦିଷ୍ଟ ବ୍ୟକ୍ତିମାନେ । [ ତିନିମାସ କାଳ

ସେମାସ୍ତି—ଯା. ବିଂ. ତ୍ରୈମାସିକ, (ବି)

ସେମି—ଯା. ବିଂ. ଅର୍ଦ୍ଧ ।

ସେମିକୋଲନ—ଯା. ବି. ରଚନାରେ ଭାବପ୍ରକାଶର ସମାପ୍ତି ହୋଇ ନ ଥିବା ବାକ୍ୟପରେ ବ୍ୟବହୃତ ଚିହ୍ନ, ; ।

ସେମିଟିକ୍—ଯା. ବିଂ. (ହେବ୍ରୁ ସେମ ନାମରୁ) ହେବ୍ରୁ ଜାତୀୟ ସେମ୍ ନାମକ ବ୍ୟକ୍ତିଙ୍କ ବଂଶଧର ଓ ସେମାନଙ୍କ ଭାଷା ସମ୍ବନ୍ଧୀୟ, (ବି) ମନୁଷ୍ୟମାନଙ୍କର ଆଧୁନିକ ବର୍ଣ୍ଣର ଶାଖାବିଶେଷ, ଉପର୍ଯ୍ୟୁକ୍ତ ବର୍ଣ୍ଣର ବ୍ୟକ୍ତିମାନଙ୍କ କଥିତ ଭାଷାମାନ ।

ସେମୀ—ପ୍ରା. (ଗଡ଼ଜାତ) ବି. ଶିମ୍ବ ।
ସେମୁର—ପ୍ରା.(ବସ୍ତର)ବି.ପାଳଧୂଆ ଗଛ
ସେମ୍ବି—ପ୍ରା. (ସମ୍ବଲ) ବି. ଶିମ୍ବ ।
ସେୟା—ଗ୍ରା. ସର୍ବ. ସେଇଆ ଦେଖ ।
ସେର—ଯା.ବି. ମୁସଲମାନମାନଙ୍କ ନାମ ପୂର୍ବରେ ବସିବା ସାହସବ୍ୟଞ୍ଜକ ଉପାଧିବିଶେଷ ।
ସେରଅ(ଆ)ଲ୍ଲୀ—ଗ୍ରା. ବି. (ନାମ) ଆଫଗାନିସ୍ଥାନବାସୀ ଜନୈକ ଆତତାୟୀ ।
ସେରନା-ପ୍ରା.(ସମ୍ବଲ)ବି.ସେରଣାମାଛ ।
ସେରପେଟିବା—ପାଦେ, (ପାଟଣା) କ୍ରି. ଛପିଯିବା, ଲୁଚିଯିବା ।
ସେରବବର—ଯା. ବି. ସିଂହ ।
ସେରଷ—ପ୍ରା. (ଝଡ଼ୁଆଲ)ବି. ସୋରିଷ ।
ସେରଷି—ପ୍ରା. (ଲରିଆ)ବି.ସୋରିଷ ।
ସେରସାହା—ଗ୍ରା. ବି. ଭାରତର ପଠାଣ ସାମ୍ରାଜ୍ୟର ପୁନଃ ସ୍ଥାପନକର୍ତ୍ତା ।
ସେରସେଟା—ପ୍ରା. (ଲରିଆ) ବି. ଶୁଖିଯାଉଥିବା ଘାଆ ଉପରେ ଖୋଳପା ।
ସେର—ଗ୍ରା.ବି. ଗୃହ ପା ବା ୧୬ଛଟାଙ୍କି ପରିମାଣ ।
ସେରକେ—ପ୍ରା. (ବଲାଙ୍ଗିରପାଟଣା) କ୍ରି. ବିଂ. ପୂର୍ବପ୍ରକାରେ, (ଗ୍ରା.ଅବ୍ୟ) ସେ ପ୍ରକାରେ ।
ସେରଡ଼ା—ଗ୍ରା. ବି. ଚିଲିକାହ୍ରଦର ଏକପ୍ରକାର ଲୁଣିମାଛ ।
ସେର(ରେ)ଣା—ଗ୍ରା. ବି. (ସଂ-ଶରଣ) ସେରେଣା ମାଛ ।
ସେରନ୍ଧା—ଗ୍ରା. ପୁଂ. ଓ ସ୍ତ୍ରୀ. ବିଂ (ସଂ-ସ୍ନେହ, ସ୍ନେହବର୍ଦ୍ଧିତ)ଗେହ୍ଲା,ଅତ୍ୟଧିକ ଆଦରରେ ଲାଳିତପାଳିତ (ସନ୍ତାନ) ।
(ତାର)ସେରପୂରିଲା—ଗ୍ରା. (ବାକ୍ୟ) ନିର୍ଦ୍ଧାରିତ ଆୟୁଷ୍କାଳ ଶେଷ ହେଲା, ମରଣ ସମୟ ଉପସ୍ଥିତ ହେଲା ।
ସେବ—ପ୍ରା. (ସମ୍ବଲପୁର ଓ ଗଡ଼ଜାତ) ବିଂ. ସେହିଗୁଡ଼ିକ, (ପ୍ରା. ସିଂହଭୂମ.ବି) ୨୫ ଠାରୁ ୩୦ ତୋଳା ଓଜନ ।
ସେରଲ—ବି.ଫିକା ହଳଦିଆ ବର୍ଣ୍ଣ,(ବିଂ) ଫିକା ହଳଦିଆ ।
ସେରହ—ବି. ଦୁଧଧଳ ଧଳାଘୋଡ଼ା ।
ସେରୁ—ବିଂ. (ସି + ରୁ) ବନ୍ଧନକାରୀ ।
ସେରୁଗହ—ବି. ଯେଉଁ ଧଳାଘୋଡ଼ାର ମୁଣ୍ଡରେ ଦାଗ ଥାଏ ।
ସେରେ—ଗ୍ରା. ବି. ଓ ବିଂ. ଏକସେର ପରିମାଣ । [ ବର୍ତ୍ତମାନ ।
ସେର୍ଷ୍ୟ—ବିଂ. ଈର୍ଷାଯୁକ୍ତ, ଈର୍ଷାରସନ
ସେଲଗେ—ପ୍ରା. (ବଲାଙ୍ଗିରପାଟଣା) ଅ. ସେହି ସ୍ଥାନରେ ।
ସେଲମ୍—ଗ୍ରା. ବି. (ସଂ-ଚେଲମ) ଦାକ୍ଷିଣାତ୍ୟରେ ନିର୍ମିତ ଚନ୍ଦ୍ରବୁଣା ଅତି ସୂକ୍ଷ୍ମ କାର୍ପାସ ବସ୍ତ୍ର ।
ସେଲା—ପ୍ରା. (ଲରିଆ) ସର୍ବ. ସେହିଟା ।
ସେଲଥି—ଗ୍ରା. ଅ. ସେଥିପାଇଁ, ସେଥିଯୋଗୁଁ । [ ସିପାହୀ ।
ସେଲାବରଦାର୍—ଯା. ବି. ଅସ୍ତ୍ରବାହକ
ସେଲ୍ଲା—ଗ୍ରା. ବି. (ସଂ-ଚେଲ) ସୂକ୍ଷ୍ମବସ୍ତ୍ର ବା ପୋଷାକବିଶେଷ ।
ସେଲିମ୍—ଯା. ବି. ସେରସାହଙ୍କ ଦ୍ୱିତୀୟ ପୁତ୍ର, ମୋଗଲସମ୍ରାଟ ଆକବରଙ୍କ ଜ୍ୟେଷ୍ଠପୁତ୍ରଙ୍କର ପ୍ରଥମ ନାମ ।
ସେଲୁ—ବି. ବୃକ୍ଷବିଶେଷ, ଶ୍ଳେଷ୍ମାନ୍ତକ ।
ସେଲୁ(ଲ୍ୟୁ)କସ୍—ଯା.ବି. (ନାମ) ଭାରତ ବିଜୟୀ ମହାବୀର ସିକନ୍ଦରଙ୍କ ସେନାପତି ।
ସେଲେଖାନା—ଯା. ବି. ଅସ୍ତ୍ରାଗାର ।
ସେଶନ୍—ଯା. ବି. ସେଶନ୍ସ ଦେଖ, ବିଦ୍ୟାଳୟର ପାଠବର୍ଷ,ଲାଟସଭାଆଦିର ବୈଠକ ।
ସେଶନ୍ସ—ଯା.ବି. ଗୁରୁତର ଫଉଜଦାରୀ ମାମଲାମାନଙ୍କ ବିଚାର କରିବା ପାଇଁ ପ୍ରତିଷ୍ଠିତ ଅଦାଲତ,ଦଉରା ।
ସେସର—ଗ୍ରା. ଅ. ସେ ପର୍ଯ୍ୟନ୍ତ, ସେ ଅବସ୍ଥା ।
ସେହା—ଯା. ବି, ପ୍ରକାର ଟଙ୍କା ଆଦାୟର ଦୈନିକ ହିସାବ,ଦୈ ହିସାବ ଦୈ ।
ସେହାନବିସ୍—ଯା. ବି. ହିସାବରକ୍ଷକ ଉପାଧିବିଶେଷ ।
ସେହି—ଗ୍ରା. ସର୍ବ. (ସଂ ତତ୍ ଶବ୍ଦଜ)ସେ, ସେହି, (ସଂ-ତଦ୍ଧି) ନିର୍ଦ୍ଦିଷ୍ଟ ବସ୍ତୁ ବା ବ୍ୟକ୍ତି, ସେ ଏକା, ନିଷ୍ଟସ୍ଥ ସେ ବା ତାହା, ଅନୁପସ୍ଥିତ ବ୍ୟକ୍ତି ବା ବସ୍ତୁ ।
ସେହିଟନ୍—ପ୍ରା. (ଲରିଆ) କ୍ରି. ବିଂ. ସେହିକ୍ଷଣି ।
ସେହିସନ୍ଧରେ—ଗ୍ରା.କ୍ରି.ବିଂ.ତତ୍‌କ୍ଷଣାତ୍, ଅଲକ୍ଷିତ ପ୍ରଣାଳୀରେ ।
ସେହୁ—ଗ୍ରା. ସର୍ବ. (ପଦ୍ୟ) ପୁଂ ଓ ସ୍ତ୍ରୀ. ନିର୍ଦ୍ଦିଷ୍ଟ ବ୍ୟକ୍ତି, (ବି) ଶରୀରସ୍ଥ ଯନ୍ତ୍ରବିଶେଷ ।
ସେହୁଣ୍ଡ—ବି. ପତରସିଝୁ,ମନସାସିଝୁ ।
ସେହୁଲ—ପ୍ରା. (ସମ୍ବଲ) ବି. ସେଉଳମାଛ ।
ସେହେଲୀ—ପ୍ରା. (ଲରିଆ)ସର୍ବ.ସେହିଟା ।
ସେନ୍ଧା—ଗ୍ରା. ବି. (ସଂ-ସନ୍ନାହ) କବଚ, ସାଞ୍ଜୁ, (ସଂ-ସ୍ନେହ) ସ୍ନେହ, ସହାୟ, (ବିଂ) ସ୍ନେହୀ ।
ସୈଂହ—ବିଂ. (ସିଂହ+ଅ) ସିଂହ ସମ୍ବନ୍ଧୀୟ, ସିଂହ ସଦୃଶ, (ସ୍ତ୍ରୀ) ସୈଂହୀ ।
ସୈଂହକର୍ଣ୍ଣି—ବିଂ.ସିଂହକର୍ଣ୍ଣ ସମ୍ବନ୍ଧୀୟ ।
ସୈଂହଲ—ବିଂ. (ସିଂହଲ+ଅ) ସିଂହଲ ଦ୍ୱୀପ ସମ୍ବନ୍ଧୀୟ, ସିଂହଲ ଦ୍ୱୀପ ଜାତ, (ସ୍ତ୍ରୀ) ସୈଂହଲୀ ।
ସୈଂହଲୀ—ସ୍ତ୍ରୀ.ବି.(ସିଂହଲ+ଅ+ଈ) ସିଂହପିପ୍ପଳୀ, ସର୍ପଦଣ୍ଡା ।
ସୈଂହାଦ୍ରିକ—ପୁଂ. ବି. ସିଂହାଚଳ ପର୍ବତଭେଦ ।
ସୈଂହିକ—ପୁଂ. ବି. (ସିଂହିକା+ଅ) ସିଂହିକାପୁତ୍ର, ରାହୁଗ୍ରହ ।
ସୈଂହିକେୟ—ପୁଂ. ବି. (ସିଂହିକା+ଏୟ) ରାହୁଗ୍ରହ ।
ସୈକ—ବିଂ. ଏକର ସହିତ ବର୍ତ୍ତମାନ, ଏକଯୁକ୍ତ ।
ସୈକତ—ବିଂ. (ସିକତା+ଅ) ସିକତାବହୁଳ, ବାଲୁକାମୟ (ସ୍ଥାନ),ବାଲିରେ ଉଠିଥିବା, (ବି) ନଦୀର ବା ସମୁଦ୍ରର ବାଲୁକାମୟ ତଟ,ପୁଳିନ,ବାଲୁଆମାଟି ।
ସୈକତଚର—ପୁଂ. ବି. (ସୈକତ + ଚର + କ.ଅ) ସୈକତରେ ବିଚରଣ

ନାସ୍ତ, (ସ୍ତ୍ରୀ) ସୈକତତରସ୍ତା ।

ସୈକତପୁଳନ—ବି.(କ.ଧା) ନଦ୍ୟାଦିର ଜଳ ସନ୍ନିହିତ ବାଲୁକାମୟ ତଟ ।

ସୈକତବାହିନୀ—ସ୍ତ୍ରୀ. ବି°. ବାଲୁକାମୟ ଭୂମିର ମଧ୍ୟଦେଇ ପ୍ରବାହିତା ନଦୀ ।

ସୈକତଭୂମି—ବି. ବାଲୁକାମୟ ଭୂମି, ବାଲୁକାମୟ ତଟ ।

ସୈକତିକ—ପୁଂ. ବି°. (ସିକତା+ଇକ) ଭ୍ରମଜୀବୀ, ସନ୍ଦେହଜୀବୀ, ସନ୍ଦିହାନ. ସିକତା ସମ୍ବନ୍ଧୀୟ, ସୈକତ ସମ୍ବନ୍ଧୀୟ, (ସ୍ତ୍ରୀ) ସୈକତିକା,(ବି) କ୍ଷପଣକ,ଯାତ୍ରା-କାଳରେ ହାତରେ ବନ୍ଧାଯିବା ମଙ୍ଗଳ ସୂତ୍ର, ସାଧୁ, ସନ୍ନ୍ୟାସୀ ।

ସୈକତିଲ—ବି°.(ସିକତା+ଇଲ ଅଥବା ସିକତିଲ+ଅ) ସିକତାମୟ, ବାଲୁକାମୟ ।

ସୈକତୀ—ପୁଂ. ବି°. (ସିକତା+ଇନ୍) ସିକତାଯୁକ୍ତ, ବାଲୁକାମୟ (କୂଳ),(ସ୍ତ୍ରୀ) ସୈକତିନୀ ।

ସୈକତେଷ୍ଟ—ବି. (ସୈକତ+ଇଷ୍ଟ) ବି.ସ୍ତ୍ରୀ; ଆର୍ଦ୍ରକ, ଅଦା, (ବି°)ବାଲୁକାମୟ ସ୍ଥାନ ଯାହାକୁ ସୁଖକର ବୋଧ ହୁଏ ।

ସୈକ୍ୟ—ବି°. ଏକତାର ସହିତ ବର୍ତ୍ତମାନ, ଏକତାଯୁକ୍ତ, ଐକ୍ୟବିଶିଷ୍ଟ,ଏକମତାବଲମ୍ବୀ, (ବି) ଶୋଣିପିତ୍ତଳ ।

ସୈକ୍ଷବ—ବି°. ଇକ୍ଷୁସହିତଯୁକ୍ତ ।

ସୈଗୋ—ପ୍ରା. (ବସ୍ତ୍ର) ବି°. ଅଖଣ୍ଡ ।

ସୈତବ—ବି°. (ସେତୁ+ଅ) ସେତୁ ସମ୍ବନ୍ଧୀୟ ।

ସୈତବାହିନୀ—ବି.(ସିତ+ବହ୍+ଇନ୍+ଈ) ବାହୁଦା, ନଦୀବିଶେଷ ।

ସୈକମ୍ବା(ମ୍ଭା)—ପ୍ରା. (ସିଂହଭୂମି) ବି. ସିନ୍ଦୁରୁ ।

ସୈତାନ୍—ଯା. ବି. ସଇତାନ ଦେଖ ।

ସୈଁ(ସୈଁ)ତରିଶ—ଗ୍ରା.ବି. ଓ ବି°.(ସ-ସପ୍ତତ୍ରିଂଶତ୍) ସପ୍ତତ୍ରିଂଶ, ୩୭ ।

ସୈଦ୍ଧାନ୍ତିକ—ବି°. ସିଦ୍ଧାନ୍ତଜ୍ଞ, ତାନ୍ତ୍ରିକ ।

ସୈନାନୀକ—ବି°, ଯୋଦ୍ଧୃସେନାଯୁକ୍ତ ।

ସୈନାନ୍ୟ—ବି. (ସେନାନୀ+ଷ୍ଣ. ଯ) ସୈନାପତ୍ୟ ।

ସୈନାପତ୍ୟ—ବି°. (ସେନାପତି+ଯ) ସେନାପତି ସମ୍ବନ୍ଧୀୟ, (ବି-ଭା ଓ ମୈ.ଯ) ସେନାଧ୍ୟକ୍ଷତା ।

ସୈନିକ—ବି. (ସେନା+ଇକ) ସୈନ୍ୟ-ଦଳଭୁକ୍ତ ବ୍ୟକ୍ତି, ଯୋଦ୍ଧୃପୁରୁଷ,ପ୍ରହରୀ. ସେନାରକ୍ଷକ, ସେନାଶ୍ରେଣୀ, ମିଳିତ ହସ୍ତ୍ୟାଶ୍ୱ ରଥ ପଦାତି,କୌଣସି ପ୍ରାଣୀକୁ ବଧ କରିବାପାଇଁ ନିଯୁକ୍ତ ବ୍ୟକ୍ତି,(ନାମ) ଶମ୍ବରାସୁର ଦୈତ୍ୟର ଏକ ପୁତ୍ର,(ବି°) ସେନା ସମ୍ବନ୍ଧୀୟ, (ସ୍ତ୍ରୀ) ସୈନିକୀ ।

ସୈନିକପୁରୁଷ—ବି. ଯୋଦ୍ଧା, ଯୋଦ୍ଧୃ-ପୁରୁଷ ।

ସୈନିକବେଶ—ବି.(କ.ଧା)ଯୋଦ୍ଧାବେଶ, ଯୋଦ୍ଧାଙ୍କ ପରିଚ୍ଛଦ ।

ସୈନ୍ଦୂର—ବି°. (ସିନ୍ଦୂର+ଅ) ସିନ୍ଦୂର-ରଞ୍ଜିତ, ସିନ୍ଦୂରପରି ବର୍ଣ୍ଣବିଶିଷ୍ଟ ।

ସୈନ୍ଧବ—ବି°. (ସିନ୍ଧୁ+ଅ) ସମୁଦ୍ରଜାତ, ସିନ୍ଧୁଦେଶଜାତ, ସିନ୍ଧୁ ସମ୍ବନ୍ଧୀୟ, (ବି) ସିନ୍ଧୁଦେଶଜାତ ଉତ୍କୃଷ୍ଟ ଅଶ୍ୱ, ସିନ୍ଧୁନଦ ନିକଟସ୍ଥ ଦେଶରୁ ଉତ୍ପନ୍ନ ଲବଣ-ବିଶେଷ ।

ସୈନ୍ଧବଲବଣ—ବି.ସିନ୍ଧୁଦେଶର ପର୍ବତ ଜାତ ଲବଣବିଶେଷ ।

ସୈନ୍ଧବାରଣ୍ୟ—ବି. ମହାଭାରତର ପ୍ରସିଦ୍ଧ ବନବିଶେଷ ।

ସୈନ୍ଧବୀ—ସ୍ତ୍ରୀ.ବି. ରାଗିଣୀବିଶେଷ, (ସ୍ତ୍ରୀ. ବି°-ସୈନ୍ଧବ+ଈ) ସିନ୍ଧୁ ସମ୍ବନ୍ଧୀୟା, ସାମୁଦ୍ରିକୀ ।

ସୈନ୍ଧୀ—ବି. (ସିନ୍ଧୁ+ଈ)ତାଳାଦିରସ-ନିର୍ଯ୍ୟାସ, ତାଡ଼ି ।

ସୈନ୍ୟ—ବି. (ସେନା+ଯ) ଯୁଦ୍ଧକାମୀ ଅସ୍ତ୍ରଧାରୀ ବ୍ୟକ୍ତି, ଯୋଦ୍ଧା, ସିପାହୀ, ସେନାଦଳ, ପଲଟଣ, ପ୍ରହରୀ,ଶିବିର, ଛାଉଣୀ, ଶ୍ରେଣୀବଦ୍ଧ ଯୋଦ୍ଧୃବୃନ୍ଦ, ସମବେତ ସେନା, ମିଳିତ ହସ୍ତୀ ଅଶ୍ୱ ରଥ ଓ ପଦାତି ରୂପ ସେନା, (ମୌଳ, ଭୃତ୍ୟ, ସୁହୃତ୍, ଶ୍ରେଣୀ, ଦ୍ୱିଷତ୍, ବନ୍ୟ ଏହି ଛଅପ୍ରକାର), (ବି°) ସେନା ସମ୍ବ-ନ୍ଧୀୟ ।

ସୈନ୍ୟକକ୍ଷ—ବି.(୬ତତ୍)ସେନାର ପାର୍ଶ୍ୱ ।

ସୈନ୍ୟକ୍ଷୋଭ—ବି. (୬ତତ୍ ବା ୭ତତ୍) ସେନାଙ୍କ ବିଦ୍ରୋହ ।

ସୈନ୍ୟଚାଳନ—ବି. (୬ତତ୍) ଯୁଦ୍ଧାର୍ଥ ସଜ୍ଜିତ ସୈନ୍ୟମାନଙ୍କ ଗତିବିଧିର ନିୟ-ନ୍ତ୍ରଣ, ସେନାଙ୍କୁ ଆଗକୁ ବା ପଛକୁ ଚଳାଇବା । [ ସମାବେଶ ।

ସୈନ୍ୟଦଳ—ବି.ସୈନ୍ୟମାନଙ୍କର ଏକତ୍ର

ସୈନ୍ୟନାୟକ(ପତି,ପାଳ)—ପୁଂ. ବି. ସେନାପତି । [ ଦେଖ ।

ସୈନ୍ୟପରିଚାଳନ—ବି. ସୈନ୍ୟଚାଳନ

ସୈନ୍ୟପୃଷ୍ଠ—ବି. (୬ତତ୍) ସମ୍ମିଳିତ ସୈନ୍ୟମାନଙ୍କର ପଶ୍ଚାଦ୍‌ଭାଗ (ଯେଉଁ-ଠାରେ ରାଜା ନିଜେ ଥାଇ ଆଦେଶଦ୍ୱାରା ସେନାଚାଳନ କରନ୍ତି) ।

ସୈନ୍ୟବଳ—ବି.(ରାଜାଙ୍କର)ସୈନ୍ୟରୂପ ଶକ୍ତି ବା କ୍ଷମତା, (ଏକାର୍ଥକ ସହଚର) ସମ୍ମିଳିତ ସୈନିକଦଳ ।

ସୈନ୍ୟବାସ(ନିବାସ)—ବି. (୬ତତ୍) ଶିବିର, ଛାଉଣୀ ।

ସୈନ୍ୟବିଭାଗ—ବି. (୬ତତ୍) ରାଜକୀୟ ବିଭାଗବିଶେଷ,ସୈନ୍ୟମାନଙ୍କର ଯାବତୀୟ କାର୍ଯ୍ୟର ତତ୍ତ୍ୱ ଯେଉଁ ବିଭାଗ ନିଏ ।

ସୈନ୍ୟବ୍ୟୂହ—ବି.(୬ତତ୍)ଯୁଦ୍ଧାର୍ଥ ସଜ୍ଜିତ ଓ ନିର୍ଦ୍ଦିଷ୍ଟ ପ୍ରଣାଳୀରେ ସମାବେଶିତ ସୈନ୍ୟଦଳ ।

ସୈନ୍ୟସଞ୍ଚାଳନ—ବି.(୬ତତ୍) ସୈନ୍ୟ-ଚାଳନ ଦେଖ ।

ସୈନ୍ୟସମାବେଶ—ବି. (୬ତତ୍) ଯୁଦ୍ଧ ବା ଅନ୍ୟ ଉଦ୍ଦେଶ୍ୟରେ ସୈନ୍ୟମାନଙ୍କର ସମ୍ମିଳନ, ସୈନ୍ୟବ୍ୟୂହ ।

ସୈନ୍ୟସାମନ୍ତ—ବି. (ଦ୍ୱନ୍ଦ୍ୱ) ସେନାଦଳ ଓ ସମୀପବର୍ତ୍ତୀ ଅନୁଗତ ରାଜଗଣ ବା ଶ୍ରେଷ୍ଠ ପ୍ରଜାବୃନ୍ଦ ।

ସୈନ୍ୟହନ୍ତା—ବି. ଶମ୍ବରର ପୁତ୍ରବିଶେଷ, (ବି°) ସୈନ୍ୟ ହନନକାରୀ ।

ସୈନ୍ୟାଗ୍ର—ବି. (୬ତତ୍) ସମ୍ମିଳିତ

ସେନାଦଳର ଆଗପାଖ ।

ସୈନ୍ୟାଧ୍ୟକ୍ଷ—ବି. (୬ତତ୍ପୁ) ସେନାପତି, ସେନାନାୟକ ।

ସୈବାଳ—ବି.(ସେବା+ଅଲ୍+କ.ଅ) ଶୈବାଳ, ଶିଉଳ ।

ସୈମନ୍ତକ—ବିଂ.(ସୀମନ୍ତ+ଇକ)ସୀମନ୍ତ ସମ୍ବନ୍ଧୀୟ, (ବି) ସିନ୍ଦୂର ।

ସୈୟଦ୍—ଯା.ବି. ମୁସଲମାନ ଧର୍ମପ୍ରବର୍ତ୍ତକ ହଜରତ୍ ମହମ୍ମଦଙ୍କ ଦୌହିତ୍ର ଅଲିଙ୍କ ପୁତ୍ର ହୁସେନଙ୍କ ବଂଶଧରମାନଙ୍କର ବଂଶୋପାଧି,ସବିଶେଷ ମାନ୍ୟ ବ୍ୟକ୍ତି ।

ସୈର—ବି. (ସୀର+ଅ) ସୀରସମୂହ, ଲଙ୍ଗଳସମୂହ ।

ସୈର(ରି)ନ୍ଧ୍ର—ପୁଂ. ବି. (ସ୍ୱୈର+ଧୃ+କ.ଅ କିମ୍ବା ସୀର+ଧୃ+କ.ଅ) କୃଷକ, ଚଷା, ଗୃହଦାସ, ଗୃହକର୍ମକାରୀ ଭୃତ୍ୟ,ଦସ୍ୟୁପିତା ଓ ଅଯୋଗବ ଜାତୀୟା ମାତାଙ୍କ ଠାରୁ ଉତ୍ପନ୍ନ ସଙ୍କର ଜାତିବିଶେଷ ।

ସୈର(ରି)ନ୍ଧ୍ରୀ—ସ୍ତ୍ରୀ. ବି. (ସୈରନ୍ଧ୍ର, ସୈରିନ୍ଧ୍ର+ଈ) ଶିଳ୍ପକର୍ମ ଓ ବେଶଭୂଷା କର୍ମରେ ଦକ୍ଷା, ପରଗୃହସ୍ଥିତା ସ୍ୱବଶାଭୃତ୍ୟା, ଆୟା, ଅନ୍ୟଗୃହସ୍ଥିତା ସ୍ୱତନ୍ତ୍ରା ଶିଳ୍ପଜୀବିନୀ,ଶୁଶ୍ରୂଣୀ,ବର୍ଣ୍ଣସଙ୍କର ସୈରନ୍ଧ୍ରଜାତୀୟା ସ୍ତ୍ରୀ,ଦ୍ରୌପଦୀ, ଅନ୍ତଃପୁର ପରିଚାରିକା, ମହଲ୍ଲିକା,ବର୍ଣ୍ଣସଙ୍କର ସମ୍ଭୂତା ସ୍ତ୍ରୀ, ଜନ୍ମଯନ୍ତ୍ରୀ ।

ସୈରିକ—ବିଂ. (ସୀର+ଇକ) ଲଙ୍ଗଳ ସମ୍ବନ୍ଧୀୟ, (ବି) ହଳୁଆ, ହଳିଆ,ଚଷା, କୃଷକ, ଗୋରୁ, ଆକାଶ ।

ସୈରିଭ—ପୁଂ. ବି. ( ସୀର+ଇଭ ) ମହିଷ, ସ୍ୱର୍ଗ, (ସ୍ତ୍ରୀ) ସୈରିଭୀ ।

ସୈରିଷ୍ଟ—ବି. ଜନପଦବିଶେଷ ।

ସୈରିୟ—ବି. (ସ୍ୱୈର+ଇୟ) ଝିଣ୍ଟୀ, ଦାସକେରେଣ୍ଡା ।

ସୈରିୟକ—ବି.(ସୈରିୟ+କ)ସୈରିୟ ଦେଖ ।

ସୈରେୟ—ବି. ( ସ୍ୱୈର+ଏୟ ) ସୈରିୟ ଦେଖ ।

ସୈର୍ଯ୍ୟ—ବି. ତୃଣବିଶେଷ, ତଣ୍ଟାକାଦି ପ୍ରାନ୍ତଭବ,ଏକପ୍ରକାର ତୃଣ,ଅଶ୍ୱବାଳ ।

ସୈଲଗ—ବି. ଡକାଏତ ।

ସୈଲବ—ପ୍ରା.(ବାଲେ) ବି. ଅନେକଦିନ ବ୍ୟାପୀ ହେବା ବର୍ଷା,ଝଡ଼ ଓ ତୋଫାନ ।

ସୈଣ—ଯା. ବି. ସଇଣ ଦେଖ ।

ସୈସା—ବିଂ. ( ସୀସ + ଆ ) ସୀସାଧାତୁ ସମ୍ବନ୍ଧୀୟ ।

ସୋ—(ଧାତୁ) ବିନାଶ କରିବା, ମାରିବା, ସମାପ୍ତ କରିବା ।

ସୋଃ-ସ୍ତ୍ରୀ.ବି.(ସୋ+କ୍ୱିପ୍)ପାର୍ବତୀ,ଦୁର୍ଗା ।

ସୋଆଗା-ଗ୍ରା.ବି.ସୋହାଗା,ଟଙ୍କଣକ୍ଷାର ।

ସୋଆର-ଯା.ବି.ଅଶ୍ୱାଦିରେ ଆରୋହଣ ।

ସୋଆରି—ଯା. ବି.ଶୁଷ୍କ ଖର୍ଜୁର,ଖାଦ୍ୟଦ୍ରବ୍ୟବିଶେଷ ।

ସୋଇ—ଗ୍ରା.ବି. ଏକପ୍ରକାର ରୋହିମ ଛ, ( ସ୍ତ୍ରୀ ) କାହାଣୀ ବର୍ଣ୍ଣିତ ରାଜାଙ୍କର ଦ୍ୱିତୀୟା ରାଣୀ ।

ସୋଇଁ—ଗ୍ରା. ବି. (ଫ-ସ୍ୱାମୀ) ସୁଆଇଁ, କେତେକ ଚଷା ଶୂଦ୍ର ଓ ମାସ୍ତାନ ବ୍ରାହ୍ମଣଙ୍କର ବଂଶୋପାଧିବିଶେଷ ।

ସୋଇଲ୍—ଗ୍ରା. ବି. ( ଜାହାଜିଆ ଶବ୍ଦ ) ଦକ୍ଷିଣ ଦିଗ ।

ସୋଁ—ଗ୍ରା. (ଧ୍ୱନ୍ୟନୁକରଣ) ଅ. ପବନ ବହିବାର ବା ଜୋରରେ ନିଶ୍ୱାସ ମାରିବାର ଶବ୍ଦ ।

ସୋଁଟା—ପ୍ରା. (ମେଦିନୀପୁର)ବି.ସୋଟା ।

ସୋଁଠା—ଗ୍ରା. ବି. (ଫ-ଶୁଣ୍ଟ) ସୁନା ବା ରୁପାର ଏକପ୍ରକାର ଲମ୍ବ ଓ ମୋଟ ବାଡ଼ି ।

ସୋଖ୍ତା—ଗ୍ରା. ବି. ( ଫ-ଶୋଷକ ) ବ୍ଲଟିଙ୍ଗକାଗଜ ।

ସୋଗତ—ଗ୍ରା. ବି. (ଫ-ସ୍ୱଗୋତ୍ର କିମ୍ବା ସ୍ୱାଗତ) ସ୍ନେହ, ଆପଣାଗୋତ୍ର, (ବିଂ) ସ୍ନେହୀ ।

ସୋଗଲରେଖା—ପ୍ରା. ( ଗଞ୍ଜାମ ) ବି. କାନର ଅଳଙ୍କାରବିଶେଷ ।

ସୋଗା—ପ୍ରା. (ଜୟପୁର) ବି. ଗ୍ରୀବା ।

ସୋଚଲ(ଲ)—ଗ୍ରା. ବି. (ଫ-ସୋବର୍ଚ୍ଚଲ) ସୋବର୍ଚ୍ଚଲ, ଖାରଲୁଣ ।

ସୋଚ୍ଛଇବା—ଗ୍ରା. କ୍ରି. ସୂଚିବା,ଶୋକାନ୍ୱିତ କରାଇବା ।

ସୋଚବା—ଗ୍ରା. କ୍ରି. ସୂଚିବା, ଶୋକ କରିବା, ପସ୍ତାଇବା ।

ସୋଜ୍—ପ୍ରା. (ସମ୍ବଲ) କ୍ରି. ବିଂ. ବୃଥା ।

ସୋଜ—ପୁଂ.ବି. (ସୋ+ଜନ୍+କ.ଅ) ଗଣେଶ ।

ସୋଜା—ଗ୍ରା. ବିଂ. (ସଂ-ସହଜ କିମ୍ବା ଶୁଦ୍ଧ କିମ୍ବା ଋଜୁ) ସରଳ, ସିଧା,ସଳଖ, ସହଜ, ନିଷ୍କପଟ ।

ସୋଜାସୁ(ସୋ)ଜା—ଗ୍ରା. କ୍ରି. ବିଂ. ସିଧାଏ ସିଧାଏ ।

ସୋଞ୍ଜା—ପ୍ରା. (ଗଞ୍ଜାମ) ବି. ସୁଞ୍ଜା ।

ସୋଟ(ଠ)—ଗ୍ରା. ବିଂ. ମୋଟ, ଶ୍ରେଷ୍ଠ, ସ୍ଥୂଳକାୟ ।

ସୋଟା(ଠା)—ଗ୍ରା. ବିଂ. ମୋଟା, ସ୍ଥୂଳକାୟ, ମୂର୍ଖ, (ବି) ଲାଠି, ଠେଙ୍ଗା, ସ୍ଥୂଳଦଣ୍ଡ, ରାଜଦଣ୍ଡ ।

ସୋଢ଼କା—ଗ୍ରା. ବି. ( ଧ୍ୱନ୍ୟନୁକରଣ ) ହାପୁରିବା,ପାଣିଆ ଖାଦ୍ୟକୁ ଶବ୍ଦପୂର୍ବକ ଶୋଷିବା, ଅଧରେ ହାପୁରିବା ଦ୍ୱାରା ଯେତେପରିମିତ ପାନୀୟ ଖାଦ୍ୟ ପାଟି ଭିତରକୁ ଯିବ, ତୋଡ଼ପା, (ପୁଂ.ବିଂ) ଯେ ସୋଢ଼କା ପ୍ରଣାଳୀରେ ଖାଦ୍ୟ ଖାଏ, ଯେ ପାଟି ବା ନାକଦ୍ୱାରା ସଡ଼ସଡ଼ ଶବ୍ଦ କରେ ।

ସୋଢ଼କା(କେ)ଇବା—ଗ୍ରା.କ୍ରି. ହାପୁରିବା, ପାନୀୟ ଦ୍ରବ୍ୟକୁ ସଡ଼ ସଡ଼ ଶବ୍ଦପୂର୍ବକ ପାଟିମଧ୍ୟକୁ ଶୋଷିବା, ନାକ ବା ତଣ୍ଟି ଦ୍ୱାରା ସଡ଼ ସଡ଼ ଶବ୍ଦ କରିବା ।

ସୋଢ଼କାଏ—ଗ୍ରା. ବି ଓ ବିଂ ଓ କ୍ରି.ବିଂ. ଅଧରେ ସୋଢ଼କିବା ପାଇଁ ଉପଯୁକ୍ତ ପରିମାଣର ( ପାନୀୟ ଖାଦ୍ୟ ), ତୋଡ଼ପାଏ ।

ସୋଢ଼କିବା—ଗ୍ରା.କ୍ରି.ହାପୁରିବା,ପାନୀୟ ଦ୍ରବ୍ୟକୁ ସଡ଼ ସଡ଼ ଶବ୍ଦପୂର୍ବକ ପାଟିମଧ୍ୟକୁ ଶୋଷିବା ।

ସୋଢ଼କ୍କା—ଗ୍ରା. ସ୍ତ୍ରୀ. ବିଂ. ଯେ କୌଣସି ପାନୀୟ ବସ୍ତୁକୁ ସୋଢ଼କାଇକରି ଖାଏ,

ଯେ ସଡ଼ ସଡ଼ ଶବ୍ଦ କରେ ।

ସୋଡ଼ା—ଯା,ବି.ସଜିକାକ୍ଷାର,ଯବକ୍ଷାର ।

ସୋଡ଼ିଅମ—ଯା, ବି. ପଦାର୍ଥ ବିଜ୍ଞାନ ଅନୁସାରେ ମୌଳିକ ଦ୍ରବ୍ୟବିଶେଷ ।

ସୋଡ଼ୁଅ—ଗ୍ରା.ବି. ଶସ୍ୟାଦିକୁ ପାଣିବନ୍ଧିବାର ନୌକାକାର ପାତ୍ର ।

ସୋଢ଼—ପୁଂ.ବିଂ. (ସହ୍ + ର୍ମ.ତ) ଯାହା ସହ୍ୟ କରାଯାଇଅଛି, କ୍ଷାନ୍ତ, କ୍ଷମାଶୀଳ. ଦୁଃଖାଦି ସହନଶୀଳ, (ସ୍ତ୍ରୀ) ସୋଢ଼ା ।

ସୋଢ଼ବ୍ୟ—ବିଂ. ( ସହ୍ + ର୍ମ.ତବ୍ୟ ) ସହ୍ୟ, ସହନୀୟ ।

ସୋଢ଼ା—ପୁଂ. ବିଂ. ( ସହ୍ + କ.ତୃ ) କ୍ଷମାଯୁକ୍ତ, କ୍ଷମାଶୀଳ,ସହନଶୀଳ,ଶକ୍ତ. ସମର୍ଥ, (ସ୍ତ୍ରୀ) ସୋଢ଼୍ରୀ ।

ସୋତ୍କ-ପୁଂ.ବିଂ.(ସ+ଉତ୍କ)ଉତ୍କଣ୍ଠାପୂର୍ଣ୍ଣ ।

ସୋତ୍କଣ୍ଠ—ପୁଂ. ବିଂ. ବ.ବ୍ରୀ; (ସ + ଉତ୍କଣ୍ଠା)ଉଦ୍‌ବିଗ୍ନ,ଉତ୍କଣ୍ଠାଯୁକ୍ତ,ଉନ୍ମନାଃ, (ସ୍ତ୍ରୀ) ସୋତ୍କଣ୍ଠା । [ ଉତ୍କୃଷ୍ଟ ।

ସୋତ୍କର୍ଷ—ବିଂ. (ବ.ବ୍ରୀ) ଉତ୍କର୍ଷଯୁକ୍ତ,

ସୋତ୍ପ୍ରାସ—ବି.ବ.ବ୍ରୀ;(ସ + ଉତ୍ପ୍ରାସ) ସଶବ୍ଦହାସ୍ୟ, ପ୍ରିୟବାକ୍ୟ, ଚୁଟ୍କୁ ,ଈଷଦ୍ଧାସ୍ୟଯୁକ୍ତ ବାକ୍ୟ, ଶ୍ଳେଷବାକ୍ୟ, (ବିଂ) ବୁଦ୍ଧିଯୁକ୍ତ, ପରିହାସଯୁକ୍ତ, ଅତିରଞ୍ଜିତ, ବ୍ୟଙ୍ଗ୍ୟଯୁକ୍ତ ।

ସୋତ୍ସଙ୍ଗ—ପୁଂ.ବିଂ. (ସ + ଉତ୍ସଙ୍ଗ) ଶୋକାକୁଳ, (ସ୍ତ୍ରୀ) ସୋତ୍ସଙ୍ଗା ।

ସୋତ୍ସବ—ପୁଂ. ବିଂ. ( ସ + ଉତ୍ସବ ) ଉତ୍ସବଯୁକ୍ତ,ପ୍ରଫୁଲ୍ଲ, (ସ୍ତ୍ରୀ) ସୋତ୍ସବା ।

ସୋତ୍ସାହ—ବିଂ.(ବ.ବ୍ରୀ) ଉତ୍ସାହଯୁକ୍ତ, ଉଦ୍ୟମଯୁକ୍ତ ।

ସୋତ୍ସାହତା—ସ୍ତ୍ରୀ.ବି.ସୋତ୍ସାହର ଭାବ, ଉଦ୍ୟମ, ଉତ୍ସାହ ।

ସୋତ୍ସାହେ—କ୍ରି. ବିଂ. (ବ.ବ୍ରୀ)ଉତ୍ସାହର ସହିତ, ଉଦ୍ୟମ ସହକାରେ ।

ସୋତ୍ସୁକ—ବିଂ. ଉତ୍କଣ୍ଠିତ,ଅନୁତପ୍ତ, ଝୁରୁଥିବା, ଶୋକାକୁଳ, (ସ୍ତ୍ରୀ) ସୋତ୍ସୁକା ।

ସୋତ୍ସେକ—ପୁଂ. ବିଂ. (ସ + ଉତ୍ସେକ) ଗର୍ବୀ, (ସ୍ତ୍ରୀ) ସୋତ୍ସେକା ।

ସୋତ୍ସେଧ—ବିଂ. ବ.ବ୍ରୀ; (ସ + ଉତ୍ସେଧ) ଉନ୍ନତ ।

ସୋତ—ପ୍ରା. (ସିଂହଭୂମି)ବି.(ସଂ-ସ୍ରୋତ) ବର୍ଷାପାଣି ବୋହିଯିବାପାଇଁ କଟାଯାଇଥିବା ନାଳ ।

ସୋଦକ—ବିଂ.ଉଦକଯୁକ୍ତ,ଜଳବିଶିଷ୍ଟ ।

ସୋଦଧିଲ—ବିଂ. ଲଘୁ , ଅଳ୍ପ ।

ସୋଦୟ—ବିଂ.(ସ + ଉଦୟ)ବୃଦ୍ଧିଯୁକ୍ତ, ସୁଧସମେତ ।

ସୋଦର—ପୁଂ.ବି. ବ.ବ୍ରୀ;(ସ + ଉଦର) ସହୋଦର,ଭାଇ, ଏକଗର୍ଭଜାତ ସନ୍ତାନ, (ଲ.ଅର୍ଥ ଭାଇପରି)ଉପକାରୀ ବା ସହାୟକ ବ୍ୟକ୍ତି, ଯାତା, ଆଶ୍ରୟଦାତା, (ପୁଂ.ବିଂ) ଏକଗର୍ଭୋତ୍ପନ୍ନ, ( ଗ୍ରା.ବିଂ ) ବତ୍ସଳ, ଆତ୍ମୀୟବନ୍ଧୁ , ସମାନ, ଭଲ, (ସ୍ତ୍ରୀ) ସୋଦରା(ରୀ) ।

ସୋଦରିମା—ବି.(ସୋଦର + ଷ୍ଣ.ଇମନ୍) ସୋଦରର ଭାବ, ଭାଇପଣିଆଁ ।

ସୋଦରୀୟ—ପୁଂ. ବି. ସୋଦର୍ଯ୍ୟ, ସହୋଦର ।

ସୋଦର୍ଯ୍ୟ—ପୁଂ. ବି. ( ସୋଦର + ଯ) ସୋଦର ଦେଖ, (ସ୍ତ୍ରୀ) ସୋଦର୍ଯ୍ୟା ।

ସୋଦର୍ଯ୍ୟବାନ୍—ବିଂ. (ସୋଦର୍ଯ୍ୟ + ବତ୍) ସହୋଦରଯୁକ୍ତ ।

ସୋଦ୍ଗାର—ବିଂ.ଉଦ୍ଗାରସହ ବର୍ତ୍ତମାନ, ଉଦ୍ଗାରଯୁକ୍ତ । [ ଯୁକ୍ତ ।

ସୋଦ୍ୟୋଗ—ବିଂ.ଉଦ୍‌ଯୋଗୀ,ଉଦ୍ୟୋଗ-

ସୋଦ୍ୟମ—ବିଂ. ଉଦ୍ୟମଯୁକ୍ତ, ଉଦ୍ୟମବିଶିଷ୍ଟ ।

ସୋଦ୍‌ବେଗ—ପୁଂ. ବିଂ. ବ.ବ୍ରୀ; (ସ + ଉଦ୍‌ବେଗ) ଉଦ୍‌ବିଗ୍ନ,(ସ୍ତ୍ରୀ)ସୋଦ୍‌ବେଗା ।

ସୋଧୂଅ—ଗ୍ରା. ବି. ବିରି ଓ ଚାଉଳ ବଟା ଦ୍ୱାରା ପ୍ରସ୍ତୁତ ଏକପ୍ରକାର ପିଠା, ପିଠଉକୁ ପାଣିପାଣିଆ କରି କାଳୁଆଦରେ ଚଟାଦେବାପାଇଁ ବ୍ୟବହୃତ ଜଳୀୟ ପଦାର୍ଥବିଶେଷ, ପିଠଉ ।

ସୋନ୍—ଗ୍ରା.ବି.ଅଳଙ୍କାରରେ ବସାଯିବା ସୁନାର ବା ରୂପାର ଶ୍ରେଷ୍ଠ ଗୁଆ, (ପ୍ରା. ଛତିଶଗଡ଼. ବି) ସ୍ୱର୍ଣ୍ଣ ।

ସୋନପୁର—ଗ୍ରା. ବି. (ସଂ-ସ୍ୱର୍ଣ୍ଣ ଓ ପୁର) ଉତ୍କଳର ପଶ୍ଚିମାଞ୍ଚଳସ୍ଥ ଗୋଟିଏ ଦେଶୀୟ ରାଜ୍ୟ ଓ ତହିଁର ରାଜଧାନୀ ।

ସୋନଭଦ୍ରା—ଗ୍ରା.ବି.ଶୋଣନଦୀ,ଗଙ୍ଗାର ଉପନଦୀବିଶେଷ ।

ସୋନହ—ବି. ଲସୁନ, ରସଣ ।

ସୋନାରଙ୍ଗ-ଗ୍ରା.ବି.ଅରଣ୍ୟ ବୃକ୍ଷବିଶେଷ ।

ସୋନ୍ନା—ପ୍ରା. (ମେଦିନୀପୁର) ବି. (ସଂ-ସନ୍ଦଂଶ) ସଣ୍ଡୁଆସି, ବଣିଆର ଚିମୁଟା ।

ସୋନ୍ମାଦ—ବିଂ. ବ.ବ୍ରୀ; (ସ + ଉନ୍ମାଦ) ଉନ୍ମାଦଗ୍ରସ୍ତ, ଉନ୍ମତ୍ତ , କ୍ଷିପ୍ତ, (ସ୍ତ୍ରୀ) ସୋନ୍ମାଦା ।

ସୋପ୍—ଯା. ବି. ସାବୁନ ।

ସୋପ୍‌ଷ୍ଟୋନ୍—ପ୍ରା. (କେନ୍ଦୁଝର) ବି. ଖଡ଼ିପଥର ।

ସୋପକରଣ—ବିଂ. ବ.ବ୍ରୀ; (ସ + ଉପକରଣ) ଉପକରଣବିଶିଷ୍ଟ, ଉପକରଣଯୁକ୍ତ, ଉପଗୃହୀତ, ବ୍ୟଞ୍ଜନାଦିଯୁକ୍ତ ।

ସୋପକାର—ବିଂ.ବ.ବ୍ରୀ;(ସ + ଉପକାର) ଉପକାରଯୁକ୍ତ ।

ସୋପକ୍ରମ—ବିଂ. ଉପକ୍ରମଯୁକ୍ତ, ଉପକ୍ରମବିଶିଷ୍ଟ । [ ବିଶିଷ୍ଟ ।

ସୋପଚୟ—ବିଂ. ଉପଚୟଯୁକ୍ତ, ବୃଦ୍ଧି-

ସୋପଗୃର—ବିଂ. ଉପଗୃରଯୁକ୍ତ, ଉପଗୃରବିଶିଷ୍ଟ । [ ଦ୍ରବବିଶିଷ୍ଟ ।

ସୋପଦ୍ରବ—ବିଂ. ଉପଦ୍ରବଯୁକ୍ତ, ଉପ-

ସୋପଧ—ବି.(ସ + ଉପଧା) ସଚ୍ଛଦ୍ମଦାନ, ଅନ୍ୟଲୋକକୁ ଶୁଣାଇକରି ଲୋକସମ୍ଭାବନାର୍ଥ କରାଯିବା ଦାନ, ଶବ୍ଦର ଅନ୍ତ୍ୟବର୍ଣ୍ଣର ସମୀପବର୍ତ୍ତୀ ଯେଉଁବର୍ଣ୍ଣ ତାହାର ନାମ ଉପଧା, ଏହି ଉପଧାଯୁକ୍ତକୁ ସୋପଧ କହନ୍ତି ।

ସୋପପତ୍ତିକ—ବିଂ. ଉପପତ୍ତିଯୁକ୍ତ,ଉପପତ୍ତିବିଶିଷ୍ଟ,ଉପପତ୍ତିର ସହିତ ବର୍ତ୍ତମାନ

ସୋପପଦ—ବିଂ. ଉପପଦଯୁକ୍ତ,ଉପପଦ ସମାସଯୁକ୍ତ ।

ସୋପପ୍ଲବ—ବିଂ. ବ.ବ୍ରୀ; (ସ + ଉପପ୍ଲବ) ରାହୁଗ୍ରସ୍ତ (ଚନ୍ଦ୍ର ବା ସୂର୍ଯ୍ୟ) ।

ସୋପବାସ—ପୁଂ. ବିଂ. ବ.ବ୍ରୀ; (ସ +

ଉପବାସ) ଉପବାସଯୁକ୍ତ, ଉପବାସୀ, (ସ୍ତ୍ରୀ) ସୋପବାସା ।
ସୋପବୀତ—ପୁଂ. ବିଂ. ବ.ଗ୍ରା; (ସ+ଉପବୀତ) ପଇତା ପରିହିତ ।
ସୋପସର୍ଗ—ବିଂ.ଉପସର୍ଗସହ ବର୍ତ୍ତମାନ, ଉପସର୍ଗଯୁକ୍ତ ।
ସୋପହାସ—ବିଂ. ଉପହାସଯୁକ୍ତ, ଉପହାସବିଶିଷ୍ଟ ।
ସୋପାକ—ପୁଂ. ବ. ଶ୍ୱପାକ, ଚଣ୍ଡାଳ, ବର୍ଣ୍ଣସଙ୍କର ଅନ୍ତ୍ୟଜ ଜାତିବିଶେଷ, ପୁକ୍କଶୀର ଗର୍ଭରେ ଚଣ୍ଡାଳର ଔରସଜାତ ବ୍ୟକ୍ତି ।
ସୋପାଖ୍ୟ—ବିଂ. ଉପନାମଯୁକ୍ତ ।
ସୋପାଦାନ—ବିଂ.ଉପାଦାନଯୁକ୍ତ,ଉପାଦାନ କାରଣବିଶିଷ୍ଟ ।
ସୋପାଧି—ବିଂ. (ସ+ଉପାଧି) ଉପାଧିଯୁକ୍ତ,ପ୍ରତଲଭେଚ୍ଛା ପ୍ରଣୋଦିତ(ଦାନାଦି)
ସୋପାଧିକ—ବିଂ. ( ସୋପାଧି+କ ) ଉପାଧିଯୁକ୍ତ, ଉପାଧିବିଶିଷ୍ଟ ।
ସୋପାନ—ବ. (ସହ+ଉପ+ଅନ+ଣ.ଅ) ଆରୋହଣୀ, ସିଡ଼ୀ, ପାବଚ୍ଛ, କ୍ରମଶଃ ଉଚ୍ଚ ବା ନିମ୍ନକୁ ଥିବା ସ୍ତରମାନ, (ଗ୍ରା.ବିଂ) ସୁଲଭ, ଅନୁକୂଳ ।
ସୋପାନପରମ୍ପରା(ଶ୍ରେଣୀ)—ବ. ବହୁପାବଚ୍ଛଯୁକ୍ତ ଆରୋହଣୀ ।
ସୋପାଲମ୍ଭ—ବିଂ. ଉପାଲମ୍ଭଯୁକ୍ତ,ଉପାଲମ୍ଭବିଶିଷ୍ଟ ।
ସୋପାଶ୍ରୟ—ବିଂ. ଉପାଶ୍ରୟଯୁକ୍ତ,ଉପାଶ୍ରୟବିଶିଷ୍ଟ । [ ରୂପେ ।
ସୋଫ(ଫେ)ଦ୍—ଗ୍ରା.ବିଂ.ର ବିଂ.ସମ୍ପୂର୍ଣ୍ଣ-
ସୋବତ—ଯା. ବ. ସହବାସ, ସଂସର୍ଗ, ସଙ୍ଗ, ବନ୍ଧୁତା, ମୈଥୁନ, ବନ୍ଧୁଜନଙ୍କ ଉପଦ୍ରବ ବା ଚକ୍ଷୁଲଜ୍ଜା ।
ସୋବାକ—ବ. ସୁହାଗା ।
ସୋବାଲ—ବିଂ. ଧୂମ୍ରବର୍ଣ୍ଣବିଶିଷ୍ଟ ।
ସୋଭଞ୍ଜନ—ବ.ଶୋଭାଞ୍ଜନ ବୃକ୍ଷ,ସଜନା ।
ସୋଭିଏଟ୍—ଯା.ବ.ରୁଷିଆମହାଦେଶରେ ଜାରଙ୍କ ରାଜତ୍ୱ ପରେ ପ୍ରଚଳିତ ସାଧାରଣତନ୍ତ୍ରଶାସନ ।

ସୋମ—ବ. (ସୂ+କ.ମ) ପୁଂ. ଚନ୍ଦ୍ର, କର୍ପୂର, ବାନର,କୁବେର, ଯମ,ବାୟୁ, ବସୁଭେଦ, ଜଳ, ସୋମଲତା, ଶିବ, ବିଧିତ, କିରଣ, ଦିବ୍ୟୌଷଧି, ସୋମଲତାର ରସ, ଅମୃତ, ପର୍ବତବିଶେଷ, ସୋମଗିରି, ବୈଦିକକାଳରେ ଆରାଧିତ ଦେବବିଶେଷ, ସୋମବାର, ଯଜ୍ଞାର୍ଥ ସୋମରସ ଚମୁଣ୍ଡିକାର ବାହାରକରିବା ଦିନ, ସୋମଯଜ୍ଞ, ଯେଉଁ ଯଜ୍ଞରେ ସୋମରସ ଆହୁତି ଦିଆଯାଏ, ପିତୃମାନଙ୍କର ଏକ ବର୍ଗ, ପେଜ, ରାଗିଣୀବିଶେଷ, ବିବାହିତ ପତି, ଯଜ୍ଞସାମଗ୍ରୀ, ସ୍ତ୍ରୀରୋଗବିଶେଷ, ସୋମରୋଗ ଦେଖ, (କ୍ଲୀ) ସ୍ୱର୍ଗ, କାଞ୍ଜିକ, (ବିଂ)ଶ୍ୱେତ,ଧଳା, ମନୋହର, ସୁନ୍ଦର, ( ସ୍ତ୍ରୀ ) ସୋମା, (ଗ୍ରା.ବ) ଉତ୍ତରଦିଗ, ଶୁଆଁଳିଇ, (ଯା. ବିଂ) କୃପଣ, କାମ୍ପି ।
ସୋମକଳ୍ପ—ପୁଂ. ସୋମସଦୃଶ, ସୋମତୁଲ୍ୟ, ଏକବିଂଶ କଳ୍ପବିଶେଷ ।
ସୋମକାନ୍ତ—ବ. ଚନ୍ଦ୍ରକାନ୍ତମଣି ।
ସୋମକୁଲ୍ୟା—ସ୍ତ୍ରୀ.ବ. ନଦୀବିଶେଷ,ଯେଉଁ ନଦୀ ମହେନ୍ଦ୍ରପର୍ବତରୁ ବାହାରିଅଛି ।
ସୋମକେଶ୍ୱର—ପୁଂ. ବ. ସୋମକ ଦେଶାଧିପତି, ଭରଦ୍ୱାଜଶିଷ୍ୟ,ରାଜର୍ଷିବିଶେଷ ।
ସୋମକ୍ଷୟ—ବ. (ଜ୍ୟୋତ) ଅମାବାସ୍ୟା ।
ସୋମକ୍ଷୀରୀ(ରା)—ବ.ସୋମଲତା,ସୋମରାଜୀ ଦେଖ ।
ସୋମଖଣ୍ଡା—ବ. ସୋମରାଜୀ ଦେଖ ।
ସୋମଗନ୍ଧକ—ବ. ରକ୍ତପଦ୍ମ ।
ସୋମଗର୍ଭ—ପୁଂ. ବ. (ସୋମ+ଗର୍ଭ) ବ.ଗ୍ରା; ବିଷ୍ଣୁ, ନାରାୟଣ ।
ସୋମଗା—ବ. ସୋମରାଜୀ ଦେଖ ।
ସୋମଗିରି—ବ. ଉତ୍ତର ସମୁଦ୍ର ସ୍ଥିତ ଦେବଗଣଙ୍କର ଅଗମ୍ୟ ଓ ଅଲଙ୍ଘ୍ୟ ପୁରାଣୋକ୍ତ ପର୍ବତ, ସୁମେରୁସ୍ଥ ଚର ପ୍ରତିଫଳିତ ଚନ୍ଦ୍ରାଲୋକ,ମେରୁଜ୍ୟୋତି, ପୃଥିବୀର ଉତ୍ତର ସୀମାନ୍ତରେ ଅବସ୍ଥିତ ପର୍ବତବିଶେଷ ।

ସୋମଗୁଣ୍ଡିକା—ବ. କୁଷ୍ମାଣ୍ଡଲତା ।
ସୋମଗୋପା—ପୁଂ. ବ. ଅଗ୍ନି ।
ସୋମଗ୍ରହ—ବ. ଚନ୍ଦ୍ରଗ୍ରହ, ଚନ୍ଦ୍ରଗ୍ରହଣ, ଅଶ୍ୱମେଧଗ୍ରହବିଶେଷ ।
ସୋମଗ୍ରହଣ—ବ.ଚନ୍ଦ୍ରଗ୍ରହଣ ।
ସୋମଘୃତ—ବ. ସ୍ତ୍ରୀରୋଗ ଓ ରେତୋଦୋଷ ପ୍ରଶମକ ଘୃତୌଷଧବିଶେଷ ।
ସୋମଚମସ—ବ. ସୋମରସ ପାନ କରିବା ପାତ୍ର ।
ସୋମଜ—ବିଂ. (ସୋମ+ଜନ୍+କ.ଅ) ଚନ୍ଦ୍ରଠାରୁ ଜାତ, (ବ) ଦୁଗ୍ଧ, ଗଞ୍ଜ, ବୁଧଗ୍ରହ ।
ସୋମତୀର୍ଥ—ବ. ପ୍ରଭାସତୀର୍ଥ, ଭାରତର ପଶ୍ଚିମ ପ୍ରଦେଶସ୍ଥ ତୀର୍ଥବିଶେଷ ।
ସୋମତ୍ତ—ଗ୍ରା.ବିଂ.(ଫ-ସମର୍ଥ) ଯୌବନ ବତୀ, ବଢ଼ିଲା(କନ୍ୟା), ଗୃହଯୋଗ୍ୟା (କନ୍ୟା),(ପୁଂ ଓ ସ୍ତ୍ରୀ)ହୃଷ୍ଟପୁଷ୍ଟ ଯୁବା ।
ସୋମଦତ୍ତ—ବ. ମହାଭାରତୋକ୍ତପ୍ରାଚୀନ ଭାରତର ଜନୈକ ରାଜା ।
ସୋମଦା—ବ.ଗନ୍ଧର୍ବୀ,ଗନ୍ଧର୍ବବିଶେଷ ।
ସୋମଦେବ—ପୁଂ. ବ. ଚନ୍ଦ୍ରଦେବ, ଚନ୍ଦ୍ର ।
ସୋମଦୈ(ଦୈ)ବତ—ବିଂ. ଯାହାର ଅଧିଷ୍ଠାତ୍ରୀ ଦେବତା ସୋମ,(ବ)ମୃଗଶିରା ନକ୍ଷତ୍ର ।
ସୋମଧାରା—ବ. ଆକାଶ ।
ସୋମନାଥ—ବ. ଗୁଜରାଟ ପ୍ରଦେଶର ନଗର ବିଶେଷ, ସେଠାରେ ପ୍ରତିଷ୍ଠିତ ଶିବଲିଙ୍ଗଙ୍କ ନାମ ।
ସୋମନାଥବ୍ରତ—ବ. ଭାଦ୍ର ଶୁକ୍ଳ ଅଷ୍ଟମୀ ଠାରୁ ଆଶ୍ୱିନ ଶୁକ୍ଳ ଦଶମୀ ମଧ୍ୟରେ ପଡ଼ିବା ପ୍ରତି ସୋମବାର ଦିନ ସୂର୍ଯ୍ୟ ପୂଜାରୂପ ବ୍ରତ ।
ସୋମନାଥସିଂହଭୂପ—ଗ୍ରା.ବ. ପ୍ରାଚୀନ ଉତ୍କଳର କବିବିଶେଷ ।
ସୋମନାଥ—ପ୍ରା.(କେନ୍ଦୁଝର),କେନ୍ଦୁଝରର ଅନାର୍ଯ୍ୟଜାତି ପୂଜିତ ଦେବତାବିଶେଷ ।
ସୋମପ(ପା)—ପୁଂ. ବ. (ସୋମ+ପା+

କ.ଅ,କ୍ୱିପ୍) ଯିଏ ଯଜ୍ଞରେ ସୋମରସ ପାନ କାରୀ ବ୍ରାହ୍ମଣ, ସୋମରସ ପାନକର୍ତ୍ତା ପିତୃ ବିଶେଷ । [ ଇନ୍ଦ୍ର ।
ସୋମପତି—ବି. ସକଳ ସୋମପାଳଙ୍କ,
ସୋମପତ୍ର—ବି.ତୃଣବିଶେଷ, ଉଲୁଖଡ଼ି ।
ସୋମପାୟୀ—ପୁଂ.ବିଂ.ସୋମପାନକାରୀ, ଯେ ସୋମରସ ପାନ କରେ, (ସ୍ତ୍ରୀ) ପାୟିନୀ ।
ସୋମପୀତୀ—ବି. (ସୋମ+ପା+ଭା. କ୍ତ+ଇନ୍) ସୋମପାନକାରୀ, ସୋମପା
ସୋମପୀଥୀ—ବିଂ. (ସୋମ+ପା+ ଇନ୍.ନିପାତନ)ସୋମରସପାନକାରୀ ।
ସୋମପ୍ରଦୋଷ—ବି. ସୋମବାର ବ୍ରତ ଦେଖ ।
ସୋମପ୍ରଭ—ପୁଂ. ବିଂ. (ସୋମ+ପ୍ରଭା) ବି.ସ୍ତ୍ରୀ; ଚନ୍ଦ୍ରଙ୍କପରି କାନ୍ତିବିଶିଷ୍ଟ ।
ସୋମବନ୍ଧୁ—ପୁଂ. ବି.କୁମୁଦ,ସୂର୍ଯ୍ୟ, ବୁଧ ।
ସୋମଭୂଃ—ବି. ବି.ସ୍ତ୍ରୀ, ସୋମପୁତ୍ର, ବୁଧଗ୍ରହ, ଜିନରାଜଭେଦ, (ବିଂ) ସୋମ ବଂଶୋଦ୍ଭବ । [ ମଣି ।
ସୋମମଣି-ବି.(ମଧ୍ୟ-କ.ଧା) ଚନ୍ଦ୍ରକାନ୍ତ-
ସୋମଯାଗ—ବି. ସୋମଲତାରସ ପାନାଙ୍ଗଙ୍କ ତ୍ରୈବାର୍ଷିକ ଯଜ୍ଞବିଶେଷ ।
ସୋମଯାଜୀ—ପୁଂ. ବି. (ସୋମ+ଯଜ୍ +କ.ଇନ) ସୋମଯାଗକର୍ତ୍ତା ।
ସୋମଯୋନି—ବି.ଚନ୍ଦନବିଶେଷ, ପୀତ ଚନ୍ଦନ, ଦେବତା,ବ୍ରାହ୍ମଣ । [ ରସ ।
ସୋମରସ—ବି. (ଦେଶଜ) ସୋମଲତାର
ସୋମରଜ—ସ୍ତ୍ରୀ. ବି. ସୋମରାଜୀ ଦେଖ
ସୋମରାଜିକା—ବି. ସୋମରାଜୀ ଦେଖ ।
ସୋମରାଜୀ—ବି. (ସୋମ+ରାଜ+ଇନ୍) ଔଷଧିବିଶେଷ, ବାକୁଚି ।
ସୋମରୋଗ—ବି. ସ୍ତ୍ରୀରୋଗବିଶେଷ, ସ୍ତ୍ରୀ-ମାନଙ୍କର ମୂତ୍ରାତିସାର ରୋଗ ।
ସୋମଲତା—ବି. ଅର୍କାଦିବର୍ଗର ବନ୍ୟ କ୍ଷୀରଯୁକ୍ତ ପତ୍ରହୀନ ଲତା, ଗୁଡ଼ୁଚୀ, ବ୍ରାହ୍ମୀ କ୍ଷୁପ, (ଗ୍ରା.ବି) ଶୁଆଁଲଇ ।
ସୋମଲତିକା—ବି.ଗୁଡ଼ୁଚୀ,ସୋମଲତା ।
ସୋମବଂଶ—ବି. ପ୍ରାଚୀନ ଭାରତର ରାଜ-ବଂଶ ବିଶେଷ, ଚନ୍ଦ୍ରବଂଶ ।
ସୋମବଂଶୀୟ—ବିଂ. ଚନ୍ଦ୍ରବଂଶସମ୍ବନ୍ଧୀୟ, ଚନ୍ଦ୍ରବଂଶୋଦ୍ଭବ ।
ସୋମବଂଶ୍ୟ—ବିଂ. ( ସୋମବଂଶ+ଯ ) ସୋମବଂଶୋଦ୍ଭବ ।
ସୋମବଲ୍କ—ବି. ଶ୍ୱେତ (ପାକଡ଼ା)ଖଦିର, କଟ୍‌ଫଳ, କାଙ୍ଗଡ଼, କରଞ୍ଜ, ରଠା-କରଞ୍ଜ, ବବୁରଗଛ ।
ସୋମବଲ୍ଲରୀ—ବି. ସୋମଲତା ଦେଖ, ବ୍ରାହ୍ମୀଶାକ ଦେଖ ।
ସୋମବଲ୍ଲିକା—ବି. ସୋମଲତା ଦେଖ, ସୋମରାଜୀ ଦେଖ ।
ସୋମବଲ୍ଲୀ—ବି. ଗୁଡୁଚୀ, ସୋମଲତା, ସୋମରାଜୀ, ବାକୁଚି, ପାତାଳଗରୁଡ଼ୀ, ବ୍ରାହ୍ମୀ, ଶ୍ୱେତଖଦିର, ଆଲକୁଶି, ସୁଦର୍ଶନା=ପଦ୍ମଗୁଳଞ୍ଚ, ଗଜପିପ୍ପଳୀ, ବନକାର୍ପାସୀ ।
ସୋମବାର(ବାସର)—ବି. ଚନ୍ଦ୍ରବାସର, ସୋମଗ୍ରହଙ୍କ ଭୋଗ୍ୟଦିବସ, ରବିବାରର ପରବର୍ତ୍ତୀ ଦିବସ, ଦ୍ୱିତୀୟବାର, (ଗ୍ରା. ବି) ସୋମବାର ବ୍ରତ ।
ସୋମବାରବ୍ରତ— ବି. ସୋମବାରରେ କର୍ତ୍ତବ୍ୟ ଶିବଦୁର୍ଗା ପୂଜାରୂପ ଉପବାସ ବ୍ରତବିଶେଷ ।
ସୋମବାରିଆ—ଗ୍ରା. ବିଂ. ସୋମବାର ବ୍ରତପାଳନକାରୀ ( ବ୍ୟକ୍ତି ), ସୋମ-ବାରରେ ଜନ୍ମ ହେବା (ବ୍ୟକ୍ତି), ସୋମ ବାର ସମ୍ବନ୍ଧୀୟ,(ସ୍ତ୍ରୀ)ସୋମବାରିଆଣୀ ।
ସୋମବାସର—ବି. ସୋମବାର ଦେଖ ।
ସୋମବିକ୍ରୟୀ—ପୁଂ. ବି. ସୋମଲତା ରସ ବିକ୍ରୟକାରୀ ।
ସୋମବୃକ୍ଷ—ବି. କଟ୍‌ଫଳ ବୃକ୍ଷ, କାଙ୍ଗଡ଼ ଗଛ, ପାଣ୍ଡୁର ଖଇର ।
ସୋମଶକଲା—ବି. ଶଶାଣ୍ଡୁଲୀ, ଏକ ପ୍ରକାର କାକୁଡ଼ି ।
ସୋମସଂଜ୍ଞ—ବି. (ବି.ସ୍ତ୍ରୀ) କର୍ପୂର ।
ସୋମସାର—ବି.ଶ୍ୱେତ(ପାକଡ଼ା)ଖଦିର, ବବୁରଗଛ ।
ସୋମସିଦ୍ଧାନ୍ତ—ବି. ବୁଦ୍ଧବିଶେଷ, ବୁଦ୍ଧ ଜ୍ୟୋତିଷର ପଞ୍ଚ ସିଦ୍ଧାନ୍ତ ( ସୂର୍ଯ୍ୟ ସିଦ୍ଧାନ୍ତ,ସୋମସିଃ,ଆର୍ଯ୍ୟସିଃ,ଲୋମଶସିଃ, ବ୍ରହ୍ମସିଃ) ମଧ୍ୟରୁ ଏକତମ, (ସ+ ଉମା+ଅ) ମହାଦେବବର୍ଣ୍ଣିତ ତନ୍ତ୍ରଶାସ୍ତ୍ର ବିଶେଷ, ଶୈବମତାବଲମ୍ବୀ ପଣ୍ଡିତ ବିଶେଷ, ଶ୍ରୀକୃଷ୍ଣମିଶ୍ରକୃତ ପ୍ରବୋଧ-ଚନ୍ଦ୍ରୋଦୟ ନାଟକର କାପାଳିକ ବେଶଧାରୀ ଅଭିନେତା । [ ବେତ୍ତା ।
ସୋମସିଦ୍ଧାନ୍ତୀ—ପୁଂ.ବିଂ. ସୋମସିଦ୍ଧାନ୍ତ
ସୋମସିନ୍ଧୁ—ପୁଂ. ବି. ବିଷ୍ଣୁ ।
ସୋମସୁତ୍(ତ)—ବି. ଯେଉଁ ବ୍ୟକ୍ତି ଯଜ୍ଞରେ ସୋମରସ ଆହୁତ ଦିଅନ୍ତି ।
ସୋମସୁତ—ପୁଂ. ବି.(ଦେଶଜ) ବୁଧଗ୍ରହ ।
ସୋମସୁତା—ସ୍ତ୍ରୀ.ବି. ରେବା ବା ନର୍ମଦା ନଦୀ ।
ସୋମସୁତି(ତ୍ୟା)— ବି. ସୋମଲତାକୁ ଚିପୁଡ଼ି ଯଜ୍ଞାର୍ଥ ରସ ବାହାର କରିବା କ୍ରିୟା ।
ସୋମସୂତ୍ର—ବି. ପ୍ରଣାଳୀ, ଶିବଲିଙ୍ଗ ସମୀପସ୍ଥ ଜଳନିଃସରଣ ମାର୍ଗ ବା ନାଳ, ପାଣ୍ଡୁଜନଳା ।
ସୋମା—ବି. (ସୋମ+ଆ) ସୋମଲତା, ଅପ୍ସରାବିଶେଷ, ନଦୀବିଶେଷ (ମା.ପୁ)
ସୋମାଖ୍ୟ—ବି. (ସୋମ+ଆଖ୍ୟା+ଅ) ରକ୍ତକୈରବ, ଲାଲ କଇଁ ।
ସୋମାଭା—ସ୍ତ୍ରୀ. ବି. (ବି.ସ୍ତ୍ରୀ) ଚନ୍ଦ୍ରାବଳୀ, (ଦେଶଜ) ଚନ୍ଦ୍ରକିରଣ ।
ସୋମାୟନ—ବି. ୨୭ ଦିନ ଗୋଦୁଗ୍ଧ ପାନ ଓ ୩ଦିନ ଉପବାସ କରାଯିବା ମାସବ୍ୟାପୀ ବ୍ରତ ବିଶେଷ ।
ସୋମାରୁଦ୍ର—ବି. ସୋମଦେବତା ଓ ରୁଦ୍ରଦେବତା ।
ସୋମାର୍ଦ୍ଧ—ବି. (ଦେଶଜ) ଅର୍ଦ୍ଧଚନ୍ଦ୍ର ।
ସୋମାର୍ଦ୍ଧଧାରୀ—ପୁଂବିଂ. ମସ୍ତକରେ ଅର୍ଦ୍ଧ ଚନ୍ଦ୍ରଧାରଣକାରୀ, (ପୁଂ.ବି) ଶିବ ।
ସୋମାଳ—ବିଂ. (ସୋମ+ଅଳ୍+କ.ଅ) କୋମଳ ।
ସୋମାଳକ—ବି. ପୁଷ୍ପରାଗମଣି ।
ସୋମାଶ୍ରମ—ବି. ହିମାଳୟ ନିକଟସ୍ଥ

ଆଶ୍ରମବିଶେଷ ।
**ସୋମାଶ୍ରସ୍ୟାସ୍ୱଣ**-ବି. ମହାଦେବଙ୍କ ସ୍ଥାନ ।
**ସୋମାଷ୍ଟମୀ**—ବି. ସୋମବାର ଦିନ ଅଷ୍ଟମୀ ତିଥି ହେଲେ କରଯିବା ବ୍ରତ ।
**ସୋମାହ**—ବି.(ସୋମ + ଅହନ୍) ସୋମବାର ।
**ସୋମାହୁତ**—ବି. ଭାର୍ଗବଋଷି, ସୋମରସଦ୍ୱାରା ଆହୁତ ।
**ସୋମାହ୍ୱା**—ବି. ମହାସୋମଲତା ।
**ସୋମେଶ୍ୱର**—ବି. କାଶୀରେ ପ୍ରତିଷ୍ଠିତ ଶିବଲିଙ୍ଗବିଶେଷ, ଶ୍ରୀକୃଷ୍ଣଙ୍କର ଏକ-ନାମ, ସୋମନାଥ ଦେଖ ।
**ସୋମୋଦ୍ଭବ**—ବିଂ. ବି. ଗ୍ରା, ସୋମଙ୍କ ଠାରୁ ଜାତ, (ବି) ବୁଧଗ୍ରହ, ଶ୍ରୀକୃଷ୍ଣ ।
**ସୋମୋଦ୍ର**—ଗ୍ରା. ବି. (ମାଦଳାପାଞ୍ଜି) ସମୁଦ୍ର ।
**ସୌମ୍ୟ**—ବି. ( ସୋମ+ଯ ) ସୋମ ସମ୍ବନ୍ଧୀୟ, ସୋମଯୁକ୍ତ, ସୋମପାନର ଯୋଗ୍ୟ, ସୋମରସ ଆହୁତ ଦେବା ବ୍ୟକ୍ତି ।
**ସୋୟମ୍**—ଯା. ବିଂ. ତୃତୀୟ, ତୃତୀୟ ଶ୍ରେଣୀର (ଜମି) ।
**ସୋର୍**—ଯା. ବି. କୋଳାହଳ, ସମୁଦ୍ର ଆଦିର ତଟ, ଚେତନାବସ୍ଥା ।
**ସୋର୍‌ଶବଦ**—ଗ୍ରା. ବି. କୌଣସି ପ୍ରକାରର ଶବ୍ଦ ।
**ସୋର**—ଗ୍ରା.ବି. ସ୍ୱର, ଶବ୍ଦ, ବାଦ୍ୟାଦିର ଶବ୍ଦ, ଗଣ୍ଡଗୋଳ, ସ୍ମରଣ, (ଯା. ବି) ହୋସ୍, ଚେତ୍ନା,ଜ୍ଞାନ, (ଫ-ବି) ସୋରା ।
**ସୋରକ**—ବି. ସୋରା ଦେଖ ।
**ସୋରଟମଲ୍ଲାର**—ଗ୍ରା.ବି. ସମ୍ପୂର୍ଣ୍ଣଜାତିର ରାଗବିଶେଷ ।
**ସୋରଡ଼ା**—ପ୍ରା. ଗଞ୍ଜାମ, ବି. ଓ ବିଂ. ସୋଡ଼କା ଦେଖ ।
**ସୋରଡ଼ିବା**—ପ୍ରା. ଗଞ୍ଜାମ, କ୍ରି. ସୋଡ଼କିବା ଦେଖ ।
**ସୋରଣ**—ବିଂ. ଈଷତ୍‌କଷା, ମିଠା,ଖଟା ଓ ଲୁଣିଆ ହେବାରୁ ରୁଚିକର ।
**ସୋରଣା**—ଗ୍ରା. ବି. ପାନ ସଣ୍ଡୁଆସୀ, ପାନଚମ୍ପା, ନାକୁଆସି ।
ସୋରା—ଯା. ବି. ଯବକ୍ଷାର, ଭୂପୃଷ୍ଠରୁ ଜାତ କ୍ଷାରବିଶେଷ, ସୋଡ଼ା ଦେଖ, ହାରଆଦିର ସର, ଜମିଆଦିର ଲମ୍ବ ପଟି, ଆମ୍ବଆଦିର ଚରୁଡ଼ା, (ପ୍ରା. ଯା) ସ୍ମରଣ ।
ସୋରାଇ—ଯା.ବି. ସୁରାଇ ଦେଖ ।
ସୋରାଇବା—ଗ୍ରା.କ୍ରି. ସୁରାଇବା ଦେଖ ।
ସୋରାକ୍—ଯା.ବି. ସୁରାକ୍ ଦେଖ ।
ସୋରାକ୍ଷାର—ବି. ଯବକ୍ଷାର, ସୋଡ଼ା ।
ସୋରାଜନ୍-ଗ୍ରା.ବି.ଯବକ୍ଷାର ଜାତବାଷ୍ପ ।
ସୋରାଣ୍ଟିଲକା—ପ୍ରା. ଗଞ୍ଜାମ, ବି. ଉପର କାନର ଫାସିଆ ।
ସୋରାବାସ—ବି. ଲୁଣ ମିଶା ଯାଇ ନ ଥିବା ମାଂସର ସୋରୁଆ ।
ସୋରାଷ୍ଟ୍ରିକ—ବି. ସୌରାଷ୍ଟ୍ରିକ ଦେଖ ।
ସୋରି—ଗ୍ରା.ବି. ହାରଆଦିର ସର ।
ସୋରିଷ—ଗ୍ରା. ବି. (ଫ-ସର୍ଷପ) ସର୍ଷପ, ତୈଳବୀଜବିଶେଷ ।
ସୋରିଷତେଲ—ଗ୍ରା.ବି. ସର୍ଷପ ତୈଳ ।
ସୋରିଷା (ଷିଆ)—ଗ୍ରା. ବିଂ. ସୋରିଷ ପରି ଆକୃତିବିଶିଷ୍ଟ, ସୋରିଷର ବର୍ଣ୍ଣବିଶିଷ୍ଟ, (ବି)ଗ୍ରେଟଦାନା ସୁନାର କଣ୍ଠି, କବାଟର କୁହୁଣ୍ଡା, ଯହିଁରେ ସିଙ୍କୁଳି ଲଗାନ୍ତି ।
ସୋରିଷିଆଗୋଧି—ଗ୍ରା. ବି. ହଳଦିଆ ସୋରିଷ ପରି ଫୁଟିଫୁଟିକା ଚମଡ଼ାଯୁକ୍ତ ଏକପ୍ରକାର ଗୋଧିଶାପ ।
ସୋରୁଅ—ଗ୍ରା. ବି. ପାଚିଲା ପଣସ ଆମ୍ବ-ଆଦିର ଚକଟା ରସ ।
ସୋରୁଆ—ଗ୍ରା. ବି. ମାଂସର ଝୋଳ ।
ସୋରେହା—ଗ୍ରା.ବି. (ଫ-ସ୍ପୃହା)ଆଗ୍ରହ, ଲାଳସା, ଶ୍ରଦ୍ଧା, (ବିଂ) ସ୍ପୃହାଯୁକ୍ତ ।
ସୋର୍ଣ୍ଣ—ବିଂ. ( ସ+ଉର୍ଣ୍ଣା ) ବି.ଗ୍ରା; ଉର୍ଣ୍ଣାବିଶିଷ୍ଟ ।
ସୋର୍ଣ୍ଣଭ୍ରୂ—ପୁଂ ଓ ସ୍ତ୍ରୀ. ବିଂ. ( ବି.ଗ୍ରା ) ଯେଉଁ ବ୍ୟକ୍ତିର ଦୁଇ ଭ୍ରୂଲତା ମଧ୍ୟରେ ଲୋମ ବା ଲୋମର ଭଉଁରି ଥାଏ ।
ସୋର୍ମି—ବିଂ. ( ସ+ଉର୍ମି ) ଉର୍ମି ବା ଲହରୀବିଶିଷ୍ଟ ।
ସୋଲ୍(ହ୍ଲ)—ଗ୍ରା. ବି. ସୋଲ ଦେଖ ।
ସୋଲ—ବି. ଶୀତଳତା,ଅଣ୍ଡାପଣ,ସ୍ୱାଦ, (ବିଂ) ଅଣ୍ଡା, ସ୍ୱାଦବିଶିଷ୍ଟ ।
ସୋଲ(ଲା)ଙ୍କି—ଗ୍ରା. ବି. ଉତ୍ତରଭାରତର ରାଜପୁତାନାର ପ୍ରସିଦ୍ଧ ରାଜପୁତ ରାଜବଂଶ ।
ସୋଲ(ଲୁ)ପ—ଯା. ବି. ( ଇଂ-ସ୍ଲୁପ୍ ) ଗ୍ରେଟ ଜାହାଜ ।
ସୋଲର—ଗ୍ରା. ବି. ଚଲିକାହ୍ରଦ ତୀରବର୍ତ୍ତୀ ଗୋଟିଏ ପାହାଡ଼ ।
ସୋଲ—ଗ୍ରା. ବି. ବୁଟ, ଚଣା, (ପ୍ରାଦେ. ଗଞ୍ଜାମ) ଶସ୍ୟ ଓ ତୈଳାଦିର ମାପ-ବିଶେଷ, ୧୬ତୋଳା ଓଜନ ।
ସୋଲ୍ଲାସ—ପୁଂ. ବିଂ. (ବି.ଗ୍ରା) ଉଲ୍ଲାସ-ଯୁକ୍ତ, ଆନନ୍ଦିତ ।
ସୋଲ୍ଲୁଣ୍ଠ—ପୁଂ. ବିଂ. ( ସ+ଉଲ୍ଲୁଣ୍ଠ ) ବି.ଗ୍ରା; ପାର୍ଶ୍ୱପରିବର୍ତ୍ତିନାଦଯୁକ୍ତ, ପରି-ହାସଯୁକ୍ତ, (ସ୍ତ୍ରୀ) ଲୁଣ୍ଠା,(ବି) ଲୁଣ୍ଠନ ।
ସୋଲ୍ଲୁଣ୍ଠନ—ବି. ପରିହାସଯୁକ୍ତ ବାକ୍ୟ, ବ୍ୟାଜ ସ୍ତୁତି, ବ୍ୟାଙ୍ଗ୍ୟ, ସ୍ତୁତିପୂର୍ବକ ନିନ୍ଦାବାଦ ।
ସୋଲ୍ଲୁଣ୍ଠୋକ୍ତି-ବି.ବ୍ୟାଜୋକ୍ତି,ବ୍ୟଙ୍ଗୋକ୍ତି
ସୋଷ—ବି. କ୍ଷାରମୃତ୍ତିକା, (ବିଂ) କ୍ଷାର-ମୃତ୍ତିକାବିଶିଷ୍ଟ ।
ସୋଷ୍ଣୀଷ—ବିଂ. ଉଷ୍ଣୀଷଯୁକ୍ତ, ( ବି ) ବାସ୍ତୁବିଶେଷ ।
ସୋଷ୍ମା—ପୁଂ.ବିଂ. ଉଷ୍ମଯୁକ୍ତ,ଉଷ୍ମବିଶିଷ୍ଟ ।
ସୋସିର(ର)—ଗ୍ରା. ବିଂ. ସରି, ସଦୃଶ, ସରସା, ସମାନ ।
ସୋସାଇଟ୍—ଯା. ବି. ସମାଜ, ବ୍ରହ୍ମ-ବିଦ୍ୟା ସମିତି ।
ସୋହଡ଼-ଗ୍ରା.ବିଂ.ସୁଗଠିତ,ସୌଷ୍ଠବଯୁକ୍ତ ।
ସୋହତ—ଗ୍ରା. ବି. (ପ୍ରାଚୀନ ପ୍ରୟୋଗ) (ଫ-ସରତ୍ପତ) ସମୁଦ୍ର, ସୌଭାଗ୍ୟ, ସ୍ରୋତ ।
ସୋହନ—ଗ୍ରା. ବି. ସମୁଦ୍ର । [ ଦେଖ ।
ସୋହଦ୍ର—ଗ୍ରା. ବି. ସମୁଦ୍ର, ସହୋଦ୍ର,
ସୋହରତ୍—ଯା. ବି. ଘୋଷଣା,ନାଗରା

ବଜାଇ କରିବା ଘୋଷଣା ।

ସୋହାଗା—ଗ୍ରା. ବି. ସୁହାଗା ଦେଖ ।

ସୋହ୍ନମ—ଗ୍ରା. ବି. ରାଗିଣୀବିଶେଷ ।

ସୋହୋଡ଼—ଗ୍ରା. ବିଂ. ଶୋଭନ ।

ସୋହୋଦ୍ର—ଗ୍ରା. ବି. ସହୋଦର, ଏକ-ଗର୍ଭଜାତ ଭ୍ରାତା, (ବିଂ) ସୁହୃଦ୍ ସମ୍ବନ୍ଧୀୟ, ସୁହୃଦ୍ ସମ୍ବନ୍ଧରେ ସମ୍ପର୍କିତ ।

ସୋହୋର—ପ୍ରା. (ଜୟପୁର) ବି. ଚୂଡ଼ା, ମୁଢ଼ି, ଲିଆଆଦି ତିଆରି କରିବା ଶୂଦ୍ର-ଜାତିବିଶେଷ ।

ସୋହ୍ଲା—ଗ୍ରା.ବିଂ. ଶୋଳପଣ ହାଲୁକା, (ବି) ସୋଲ. ବୁଟ, ଶୋହ୍ଲକ ।

ସୌକନ୍ୟ—ବିଂ. ( ସୁକନ୍ୟା+ଅ ) ସୁକନ୍ୟା ସମ୍ବନ୍ଧୀୟ ।

ସୌକର—ବି. ( ସୁକର+ଅ ) ସୂକର ସମ୍ବନ୍ଧୀୟ । [ ଶିକାରି ।

ସୌକରିକ—ବି.(ସୂକର+ଇକ)ବ୍ୟାଧ,

ସୌକର୍ଯ୍ୟ—ବି. (ସୁକର + ଭା.ଯ)ଅନା-ୟାସ, ସୁସାଧ୍ୟତା, କୌଶଳ, ସୂକରତ୍ୱ ।

ସୌକୁମାରକ—ବି. ସୁକୁମାରର ଭାବ, ସୁକୁମାରତା ।

ସୌକୁମାର୍ଯ୍ୟ—ବି. (ସୁକୁମାର + ଭା.ଯ) ମୃଦୁତା, କୋମଳତା, ଯୌବନ,ସୁକୁ-ମାରତା ଗୁଣ ।

ସୌକ୍ଷ୍ମ୍ୟ—ବି. (ସୂକ୍ଷ୍ମ + ଭା.ଯ) ସୂକ୍ଷ୍ମତା ।

ସୌଖଶାୟନକ—ପୁଂ. ବି. ବୈତାଳିକ, ସ୍ତୁତିପାଠକ, (ବିଂ) ସୁଖଶୟନଜିଜ୍ଞାସୁ ।

ସୌଖଶାୟିକ—ବି. ବୈତାଳିକ, ସ୍ତୁତି ପାଠକ ।

ସୌଖସୁପ୍ତିକ—ବି. ବୈତାଳିକ ।

ସୌଖିକ—ବିଂ. ( ସୁଖ + ଇକ ) ସୁଖ ସମ୍ବନ୍ଧୀୟ, ସୁଖମୟ, ସୁଖଜନକ ।

ସୌଖୀନ—ପୁଂ. ବିଂ. ( ସୁଖ+ଈନ ) ସୁଖାର୍ଥୀ, ସୁଖେଚ୍ଛୁ, ବିଳାସୀ, ସୁଖ-ଭୋଗପରାୟଣ, ମନୋହର, ( ସ୍ତ୍ରୀ ) ସୌଖୀନା ।

ସୌଖୀନତା—ବି.ବିଳାସିତା,ବାବୁଗିରି ।

ସୌଖ୍ୟ—ବି.(ସୁଖ+ଭା.ଯ)ସୁଖ,ଆନନ୍ଦ, ସୁଖସମୂହ, (ଗ୍ରା.ବିଂ) ସୁସ୍ଥ ।

ସୌଖ୍ୟଦାୟକ—ବି. ମୁଦ୍ଗ, ମୁଗ ।

ସୌଗତ—ବି(ସୁଗତ+ଅ)ବୁଦ୍ଧବିଶେଷ, ବୌଦ୍ଧ,ଶୂନ୍ୟବାଦୀ,ବୌଦ୍ଧସମ୍ପ୍ରଦାୟ-ବିଶେଷ, ନାସ୍ତିକ ବ୍ୟକ୍ତି ।

ସୌଗତିକ—ବି. (ସୁଗତ + ଇକ) ବୁଦ୍ଧ-ବିଶେଷ, ବୌଦ୍ଧସନ୍ନ୍ୟାସୀ, ସନ୍ନ୍ୟାସୀ, ବ୍ରାହ୍ମଣ, ସନ୍ଦେହ, ନାସ୍ତିକତା,ବୌଦ୍ଧ-ସମ୍ପ୍ରଦାୟବିଶେଷ ।

ସୌଗନ୍ଧ—ବି. (ସୁଗନ୍ଧ+ଅ) କତ୍ତୃଣ. ଏକପ୍ରକାର ସୁଗନ୍ଧତୃଣ, ଧନସିଁ,ସୁଗନ୍ଧି ହେବାର ଅବସ୍ଥା, ସୌରଭ, ସୁଗନ୍ଧ, (ବିଂ) ଶୋଭନ ଗନ୍ଧବିଶିଷ୍ଟ ।

ସୌଗନ୍ଧିକ—ବିଂ. ( ସୁଗନ୍ଧ + ଇକ ) ସୌଗନ୍ଧ ଦେଖ, ( ବି ) ସୌଗନ୍ଧ, କତ୍ତୃଣ, ଗନ୍ଧକ,ଶୀତାଂଶୁତୈଳ,ଧଳା-କଇଁ, ପୋକଳବଣିଆଁ, ନୀଳୋତ୍ପଳ, ପଦ୍ମରାଗମଣି, ରାମକର୍ପୂର,ରକ୍ତକମଳ ।

ସୌଗନ୍ଧିକା—ବି. ( ସୌଗନ୍ଧିକ+ଆ ) ପଦ୍ମବିଶେଷ ।

ସୌଗନ୍ଧିପନ୍ଦକ—ବି. ଶ୍ୱେତାର୍କକ ।

ସୌଗନ୍ଧ୍ୟ—ବି. (ସୁଗନ୍ଧି+ଯ) ସୁଗନ୍ଧ-ଯୁକ୍ତ ଅବସ୍ଥା, ସୁଗନ୍ଧ, ସୌରଭ ।

ସୌଗମ୍ୟ—ବି. (ସୁଗମ + ଯ) ସୁଗମତା, ସହଜତା । [ ଦେଖ ।

ସୌଚି—ପୁଂ.ବି. (ସୂଚୀ+ଇ)ସୌଚିକ

ସୌଚିକ—ପୁଂ. ବି. ( ସୂଚୀ + ଇକ ) ସୂଚୀକର୍ମୋପଜୀବୀ, ଦରଜି । [ କର୍ମ ।

ସୌଚିକ୍ୟ—ବି.ଦରଜିର କାର୍ଯ୍ୟ,ସିଲେଇ-

ସୌଜନ୍ୟ—ବି. (ସୁଜନ+ଭା.ଯ) ସୁଜ-ନତା, ଭଦ୍ରତା, ଶିଷ୍ଟାଚାର, ସଦ୍-ବ୍ୟବହାର । [ ଉତ୍କର୍ଷ ।

ସୌଜାତ୍ୟ—ବି. (ସୁଜାତ + ଯ) ଜନ୍ମର

ସୌଜାତ୍ୟବିଦ୍ୟା—ବି. (କ.ଧା) ଉତ୍କୃଷ୍ଟ ସନ୍ତାନ ଉତ୍ପାଦନ ବିଷୟର ବିଦ୍ୟା, ଜନ୍ମୋତ୍କର୍ଷତତ୍ତ୍ୱ ।

ସୌଣ୍ଡୀ—ବି. ପିପ୍ପଳୀ ।

ସୌତ—ବିଂ. ସୂତଋଷିଙ୍କଠାରୁ ଉତ୍ପନ୍ନ, ସୂତ ସମ୍ବନ୍ଧୀୟ ।

ସୌତଖାଇ—ପ୍ରା.(ବସ୍ତର)ବି.ସାବତଖାଇ

ସୌତି—ବି. ( ସୂତ+ଇ ) ସୂତପୁତ୍ର, ଲୋମହର୍ଷଣ ।

ସୌତୁଣୀ—ଗ୍ରା.ସ୍ତ୍ରୀ.ବି. ସଉତୁଣୀ ଦେଖ ।

ସୌତ୍ୟ—ବି. ( ସୂତ+ଯ ) ସାରଥ୍ୟ, ସାରଥିପଣ ।

ସୌତ୍ର—ବିଂ. (ସୂତ୍ର+ଅ)ସୂତ୍ରସମ୍ବନ୍ଧୀୟ, ସୂତ୍ରାନୁଯାୟୀ, (ବି)ବ୍ରାହ୍ମଣ,ସୌତ୍ରଧାତୁ ଦେଖ ।

ସୌତ୍ରଧାତୁ—ବି. (ବ୍ୟାକରଣ) ଅପ୍ରଯୁକ୍ତ ପ୍ରୟୋଗାଭାବ ଧାତୁର ଗଣବିଶେଷ, ଗଣପାଠଧୃତ ଧାତୁପରି ଯେଉଁ ଧାତୁର ପ୍ରୟୋଗ ଦେଖାଯାଏ ନାହିଁ କିନ୍ତୁ ଶବ୍ଦ ବିଶେଷର ସାଧନାର୍ଥ ସ୍ୱୀକୃତ ବ୍ୟାକରଣସୂତ୍ରାନୁସାରେ ଗଢ଼ା ଧାତୁ ।

ସୌତ୍ରାନ୍ତିକ—ବି. ବୌଦ୍ଧସମ୍ପ୍ରଦାୟ-ବିଶେଷ ।

ସୌତ୍ରାମଣି—ବି. ଯଜ୍ଞବିଶେଷ, ଏହି ଯାଗରେ ମନ୍ତ୍ରପାଠ ପୂର୍ବକ ସୁରାସନ୍ଧାନ କରାଯାଉଥିବାରୁ ପ୍ରୋକ୍ତ ଯାଗରେ ବ୍ରାହ୍ମଣ ସୁରାପାନ କଲେ ପତିତ ହୁଏ ନାହିଁ ।

ସୌତ୍ରିକ—ବି.(ସୂତ୍ର+ଇକ) ତନ୍ତୁବାୟ, ତନ୍ତ୍ରୀ, ବୁଣାହୋଇଥିବା ବସ୍ତ୍ର ।

ସୌଦର୍ଯ୍ୟ—ବିଂ.(ସୋଦର+ଯ)ସହୋ-ଦର ସମ୍ବନ୍ଧୀୟ ।

ସୌଦା—ଯା. ବି. ସଉଦା ଦେଖ ।

ସୌଦାଗର—ଯା.ବି.ସଉଦାଗର ଦେଖ ।

ସୌଦାମନୀ—ବି.(ସୁଦାମନ୍+ଅ+ଈ) ବିଦ୍ୟୁତ୍, ବିଜୁଳି, ଅପ୍ସରାବିଶେଷ, ଏକପ୍ରକାର ବିଜୁଳି,ମାଳାକାର ବିଜୁଳି ।

ସୌଦାମିନୀ—ସ୍ତ୍ରୀ.ବି.ସୌଦାମନୀ ଦେଖ, ଦେଶବିଶେଷ ।

ସୌଦାୟିକ—(ସୁ+ଦାୟ+ଇକ)ପିତୃ-ମାତୃ ଭର୍ତ୍ତୃକୁଳରୁ ପ୍ରାପ୍ତ ସ୍ତ୍ରୀ ସମ୍ପତ୍ତି ।

ସୌଦାସ—ବି. ( ନାମ-ସୁଦାସ + ଅ ) ଇକ୍ଷ୍ୱାକୁବଂଶୀୟ ଅଯୋଧ୍ୟାର ରାଜବିଶେଷ ।

ସୌଧ—ବିଂ. (ସୁଧା + ଅ)ସୁଧାସମ୍ବନ୍ଧୀୟ, ଚୂନନିର୍ମିତ ବା ଧଉଳାତ,(ବି)ସୁଧା=ଚୂନ ଧବଳିତ ଗୃହ, କୋଠା, ଅଟ୍ଟାଳିକା,

ରାଜଭବନ, ଚୈତ୍ୟ, ଦୁର୍ଗପାଷାଣ ନିର୍ମିତଗୃହ, ଅଟ୍ଟାଳିକା, ଚୂନଲିପା କୋଠାଘର ।
ସୌଧକାର—ବି. ରାଜମିସ୍ତ୍ରୀ ।
ସୌଧକିରୀଟୀ—ବିଂ. ସୌଧମାନ ଯେଉଁ ନଗରର କିରୀଟ ବା ମୁକୁଟରୂପେ ଶୋଭା ପାଉଥାଏ,(ସ୍ତ୍ରୀ)ସୌଧକିରୀଟିନୀ ।
ସୌଧଚୂଡ଼ା—ବି. କୋଠାର ଅଗ୍ରଭାଗ ।
ସୌଧପୃଷ୍ଠ—ବି. କୋଠାର ଉପର, କୋଠାର ଛାତ ।
ସୌଧବାସ-ବି.ଅଟ୍ଟାଳିକା,ହର୍ମ୍ମ୍ୟ,କୋଠା
ସୌଧମୟ—ବିଂ. କୋଠାମାନଙ୍କରେ ପୂର୍ଣ୍ଣ, (ସ୍ତ୍ରୀ) ସୌଧମୟୀ ।
ସୌଧମାଳା—ବି. ପ୍ରାସାଦଶ୍ରେଣୀ, ସୁଧାଧବଳିତ ଗୃହଶ୍ରେଣୀ ।
ସୌଧାକର—ବିଂ. (ସୁଧାକର+ଅ)ଚନ୍ଦ୍ର ସମ୍ବନ୍ଧୀୟ ।
ସୌଧାତ—ବି. ବ୍ରାତ୍ୟ ବ୍ରାହ୍ମଣ ଓ ବ୍ରାହ୍ମଣୀଠାରୁ ଉତ୍ପନ୍ନ ଭୂର୍ଜକଣ୍ଟ ଜାତୀୟା ସ୍ତ୍ରୀ ଓ ବ୍ରାହ୍ମଣପୁରୁଷ ଜାତ ସନ୍ତାନ ।
ସୌଧାର—ବି. ନାଟକର ଚତୁର୍ଦ୍ଦଶ ଭାଗରୁ ଏକ ଭାଗ ।
ସୌଧାରୂଢ଼—ପୁଂ. ବିଂ. କୋଠା ଉପରେ ଚଢ଼ିଥିବା, (ସ୍ତ୍ରୀ) ରୂଢ଼ା ।
ସୌଧାଲ—ବି. (ସୌଧ+ଆଲ) ଶିବ ମନ୍ଦିର ।
ସୌନ—ବିଂ. ( ସୂନା+ଅ ) ବଧଭୂମି ସମ୍ବନ୍ଧୀୟ, ଜୀବବଧ ସମ୍ବନ୍ଧୀୟ, (ବି) କଂସେଇ ଦ୍ୱାରା ହତ ଜୀବର ମାଂସ ।
ସୌନଧର୍ମ୍ୟ—ବି. ଉଭୟଙ୍କର ଶତ୍ରୁତା ।
ସୌନନ୍ଦ—ବି.(ସୁନନ୍ଦ+ଅ)ବଳଦେବଙ୍କ ମୂଷଳ ।
ସୌନନ୍ଦୀ—ପୁଂ. ବି. (ସୌନନ୍ଦ+ଇନ୍) ବଳଦେବ ।
ସୌନିକ—ପୁଂ. ବି. ( ସୂନା+ଇକ ) କଂସେଇ,ପଶୁପକ୍ଷୀ ମାରି ମାଂସ ବିକ୍ରୟକରିବା ବ୍ୟକ୍ତି । [ ରାକ୍ଷସ ।
ସୌନ୍ଦ—ପୁଂ. ବି. (ସୁନ୍ଦ+ଅ) ମାରୀଚ
ସୌନ୍ଦର୍ଯ୍ୟ—ବି. (ସୁନ୍ଦର+ଷ୍ୟ.ଯ)ସୁନ୍ଦରତା, ସୁଢଳପଣ,ଅଙ୍ଗପ୍ରତ୍ୟଙ୍ଗମାନଙ୍କର ସୁଆଚରିତ ସନ୍ନିବେଶଜନିତ ଶୋଭା, ସୁଶ୍ରୀନତା, ସୁରୂପତା ।
ସୌନ୍ଦର୍ଯ୍ୟଗର୍ବ—ବି. ନିଜର ସୌନ୍ଦର୍ଯ୍ୟ ଯୋଗୁଁ ମନରେ ଜନ୍ମିବା ଅହଙ୍କାର ।
ସୌନ୍ଦର୍ଯ୍ୟଗର୍ବିତ—ପୁଂ. ବିଂ. ନିଜର ସୌନ୍ଦର୍ଯ୍ୟ ଯୋଗୁଁ ଅହଙ୍କାରୀ, ( ସ୍ତ୍ରୀ ) ସୌନ୍ଦର୍ଯ୍ୟଗର୍ବିତା ।
ସୌନ୍ଦର୍ଯ୍ୟପୂର୍ଣ୍ଣ-ବିଂ.ସୌନ୍ଦର୍ଯ୍ୟମୟ ଦେଖ ।
ସୌନ୍ଦର୍ଯ୍ୟପ୍ରିୟ—ପୁଂ. ବିଂ. ( ବି.ଗ୍ରା ) ଯେ ସୌନ୍ଦର୍ଯ୍ୟକୁ ଭଲପାଏ ।
ସୌନ୍ଦର୍ଯ୍ୟପ୍ରିୟତା—ବି. ସୁନ୍ଦରପଣ ଦେଖିବାପାଇଁ ଔତ୍ସୁକ୍ୟ ।
ସୌନ୍ଦର୍ଯ୍ୟମୟ—ବିଂ.ଶୋଭାମୟ,ସର୍ବାଙ୍ଗ ସୁନ୍ଦର, (ସ୍ତ୍ରୀ) ସୌନ୍ଦର୍ଯ୍ୟମୟୀ ।
ସୌନ୍ଦର୍ଯ୍ୟାଧାର—ବି. (ଷତତ୍ପୁ)ଶୋଭାର ଆଧାର. ( ବିଂ ) ଅତି ସୁନ୍ଦର, ଅତି ଶୋଭାମୟ ।
ସୌପର୍ଣ୍ଣ—ବି. (ସୁପର୍ଣ୍ଣ+ଅ) ମରକତମଣି, ଶୁଣ୍ଠୀ, ( ସୁପର୍ଣ୍ଣୀ+ଅ ) ଗରୁଡ଼, ଗରୁଡ଼ପୁରାଣ, (ବିଂ) ସୁପର୍ଣ୍ଣ ସମ୍ବନ୍ଧୀୟ, (ସ୍ତ୍ରୀ) ସୌପର୍ଣ୍ଣୀ ।
ସୌପର୍ଣ୍ଣାଂଶୁ—ବି.(ନ,ଗ୍ରା)ମରକତମଣି ।
ସୌପର୍ଣ୍ଣୀ—ବି. ପାତାଳଗରୁଡ଼ ଲତା ।
ସୌପର୍ଣ୍ଣେୟ—ପୁଂ.ବି. (ସୁପର୍ଣ୍ଣୀ+ଏୟ) ଗରୁଡ଼.ଗାୟତ୍ର୍ୟାଦ ଛନ୍ଦୋଗଣ ।
ସୌପ୍ତିକ—ବି.(ସୁପ୍ତ + ଇକ) ରାତ୍ରିଯୁଦ୍ଧ, ରାତ୍ରିମାରଣ, ଶୋଇଥିବା ବ୍ୟକ୍ତିମାନଙ୍କୁ ରାତ୍ରିରେ ଆକ୍ରମଣ,ମହାଭାରତର ପର୍ବବିଶେଷ, (ବିଂ) ସୁପ୍ତି ସମ୍ବନ୍ଧୀୟ ।
ସୌଭ—ବି.ହରିଶ୍ଚନ୍ଦ୍ରପୁର,କାମଗ୍ରାମପୁର, ହରିଶ୍ଚନ୍ଦ୍ର ରାଜାଙ୍କ ରାଜଧାନୀ ।
ସୌଭଗ—ବି. ( ସୁଭଗ+ଅ ) ସୁଖ, ସୁଖଶ୍ରେଷ୍ଠ, ସୌଭାଗ୍ୟ ।
ସୌଭଦ୍ର—ପୁଂ. ବି. ( ସୁଭଦ୍ରା+ଅ ) ସୁଭଦ୍ରାଙ୍କପୁତ୍ର,ଅଭିମନ୍ୟୁ, (ବିଂ)ସୁଭଦ୍ରା ସମ୍ବନ୍ଧୀୟ ।
ସୌଭଦ୍ରେୟ—ପୁଂ.ବି.(ସୁଭଦ୍ରା + ଏୟ) ସୁଭଦ୍ରାପୁତ୍ର, ଅଭିମନ୍ୟୁ,ବାହ୍ଲୀକାଗଛ ।
ସୌଭାଗିନେୟ—ପୁଂ. ବି. (ସୁଭଗା + ଏୟ) ସୌଭାଗ୍ୟବତୀ ସ୍ତ୍ରୀଙ୍କ ପୁତ୍ର, (ସ୍ତ୍ରୀ) ସୌଭାଗିନେୟୀ ।
ସୌଭାଗୀ—ଗ୍ରା. ସ୍ତ୍ରୀ. ବିଂ. ସୁଭଗା, ଭାଗ୍ୟବତୀ (ସ୍ତ୍ରୀ) ।
ସୌଭାଗ୍ୟ—ବି. (ସୁଭଗ+ଷ୍ୟ.ଯ) ଶୁଭାଦୃଷ୍ଟ, ମନୋହରତ୍ୱ, ସୌନ୍ଦର୍ଯ୍ୟ, ସିନ୍ଦୂର, କଙ୍କଣ, ପ୍ରିୟତ୍ୱ, ମଙ୍ଗଳ, ମହିମା, ସ୍ନେହ, ଅନୁଗ୍ରହ,ଅଭିବାଦନ, ସଧବାପଣ, ଜ୍ୟୋତିଷୋକ୍ତ ଶୁଭଯୋଗ ବିଶେଷ, ସୌଭାଗ୍ୟବ୍ରତ, ବଳ୍ପଭତ୍ୱ, ରକ୍ତସୀସକ ।
ସୌଭାଗ୍ୟକର୍ମେ—ଗ୍ରା. କ୍ରି. ବିଂ. ଶୁଭାଦୃଷ୍ଟର ଫଳରେ, କପାଳ ବଳିଆ ହେଉ ।
ସୌଭାଗ୍ୟଚିହ୍ନ-ବି. (ଷତତ୍ପୁ) ଶୁଭାଦୃଷ୍ଟର ଲକ୍ଷଣ, ସଧବାର ଚିହ୍ନ ।
ସୌଭାଗ୍ୟଜନ୍ମା--ପୁଂ. ବିଂ.ଯେ ସୌଭାଗ୍ୟ ଯୋଗରେ ଜନ୍ମ ହୋଇଥାଏ ।
ସୌଭାଗ୍ୟତନ୍ତୁ(ସୂତ୍ର)-ବି. ବିବାହବେଳେ ବରକନ୍ୟାଙ୍କ ଗଳାରେ ଯେଉଁ ମଙ୍ଗଳ ସୂତ୍ର ବାନ୍ଧି ଦିଅନ୍ତି ଓ ଯାହା ବିଧବା ହେବା ପର୍ଯ୍ୟନ୍ତ ସ୍ତ୍ରୀ ଧାରଣ କରେ ।
ସୌଭାଗ୍ୟତୃତୀୟା—ବି.ଭାଦ୍ରଶୁକ୍ଳ ତୃତୀୟା, ବାଳିତୃତୀୟା ।
ସୌଭାଗ୍ୟଦେବତା—ବି. ଇଷ୍ଟଦେବତା
ସୌଭାଗ୍ୟପତି—ବି. ମହାଦେବ ।
ସୌଭାଗ୍ୟବତୀ—ସ୍ତ୍ରୀ. ବିଂ. ସୁଭଗା, ସଧବା, ଅବ୍ୟ ।
ସୌଭାଗ୍ୟବାନ୍—ପୁଂ. ବିଂ. (ସୌଭାଗ୍ୟ +ବତ୍) ସୌଭାଗ୍ୟଶାଳୀ ଦେଖ, (ସ୍ତ୍ରୀ) ସୌଭାଗ୍ୟବତୀ ।
ସୌଭାଗ୍ୟବ୍ରତ-ବି.ବ୍ରତବିଶେଷ, ସୌଭାଗ୍ୟ ତୃତୀୟା (ବାଳିତୃତୀୟା)ରେ କର୍ତ୍ତବ୍ୟ ବ୍ରତ,ନରସିଂହ ପୁରାଣୋକ୍ତ ବ୍ରତବିଶେଷ ।
ସୌଭାଗ୍ୟଲକ୍ଷ୍ମୀ—ବି. ଶୁଭାଦୃଷ୍ଟର ଅଧିଷ୍ଠାତ୍ରୀ ଦେବୀ.ଶୁଭାଦୃଷ୍ଟରୂପିଣୀ,ଶୋଭା ।
ସୌଭାଗ୍ୟଶାଳୀ—ପୁଂ. ବିଂ.(ସୌଭାଗ୍ୟ+ ଶାଳିନ୍) କପାଳିଆ, ସୁଭଗ, ଧାର୍ମ୍ମା

ଭାଗ୍ୟ ଭଲ, (ସ୍ତ୍ରୀ)ଶାକିନୀ ।
ସୌଭାଗ୍ୟଷଣ୍ଠି—ବି, ସ୍ତ୍ରୀରୋଗର ମୋଦକୌଷଧି ବିଶେଷ ।
ସୌଭାଗ୍ୟସୂର୍ଯ୍ୟ—ବି. (ଉପ.କଧା)ସୂର୍ଯ୍ୟଙ୍କ ସଙ୍ଗେ ତୁଳନାକରାଯିବା ସୌଭାଗ୍ୟ ।
ସୌଭାଗ୍ୟସ୍ଥାନ—ପୁଂ. ବିଂ, ସ୍ଥାନକପାଳଅ
ସୌଭାଞ୍ଜନ—ବି, ଶୋଭାଞ୍ଜନବୃକ୍ଷ,ସଜନା ଗଛ ।
ସୌଭସିକ—ବିଂ, (ସୁ+ଭସ+ଇକ) ସମୁଜ୍ଜ୍ୱଳ ଦେଖ ।
ସୌଭିକ—ବି. ଇନ୍ଦ୍ରଜାଲିକ ।
ସୌଭିକ୍ଷ—ବିଂ (ସୁଭିକ୍ଷ+ଅ) ସୁଭିକ୍ଷା ବା ସୁସମୟ ଆନୟନକାରୀ ।
ସୌଭିକ୍ଷ୍ୟ—ବି, (ସୁଭିକ୍ଷ+ଯ) ସୁକାଳ, ଖାଦ୍ୟପଦାର୍ଥର ପ୍ରଚୁରତା ।
ସୌଭ୍ରାତ୍ର—ବିଂ, (ସୁଭ୍ରାତୃ+ଅ) ଭ୍ରାତୃମାନଙ୍କ ମଧ୍ୟରେ ପରସ୍ପରର ପ୍ରୀତି, ସୁଭ୍ରାତୃତ୍ୱ ।
ସୌମନସ—ବିଂ. (ସୁମନସ୍+ଅ) ପୁଷ୍ପ ସମ୍ବନ୍ଧୀୟ, ମନୋହର,ରୁଚିକର, (ବି) ପ୍ରଫୁଲ୍ଲତା, ଆହ୍ଲାଦ, ଦୟା, ଅନୁଗ୍ରହ. ଆନନ୍ଦ, ସନ୍ତୋଷ, ପଶ୍ଚିମଦିଗର ଗଜ (ହାତୀ), ଜାତିଫଳ, ଅସ୍ତ୍ର ସଂହାରବିଶେଷ, ପର୍ବତବିଶେଷ, (ସ୍ତ୍ରୀ)ମନସା, ମନସ୍ୱୀ ।
ସୌମନସା—ବି. (ସୁମନସ୍+ଆ) ଜାତୀପତ୍ରୀ, ନଦୀବିଶେଷ (ରାମାୟଣ) ।
ସୌମନସାୟନୀ—ସ୍ତ୍ରୀ. ବି. ଜାତିପତ୍ରୀ, ଜାଇଫୁଲ ।
ସୌମନସ୍ୟ—ବି. (ସୁମନସ୍+ଷ୍ୟ. ଯ) ମନର ପ୍ରସନ୍ନତା, ସନ୍ତୋଷ, ପ୍ରୀତି, ମେନ୍ଦ, ପିଣ୍ଡଦାନପରେ ଶ୍ରାଦ୍ଧବ୍ରାହ୍ମଣଙ୍କ ହସ୍ତରେ ପୁଷ୍ପଦାନ ଓ ଚନ୍ଦନ ।
ସୌମନସାୟନୀ—ବି. ମାଲତୀପୁଷ୍ପ ।
ସୌମନା—ବି. ଉଦୟ ପର୍ବତର ଏକ ଶୃଙ୍ଗ, ଫୁଲ,କଳିକା,ଦିବ୍ୟାସ୍ତ୍ରବିଶେଷ ।
ସୌମାୟନ—ପୁଂ.ବି.(ସୋମ+ଆୟନ) ଚନ୍ଦ୍ରପୁତ୍ର ବୁଧଗ୍ରହ ।
ସୌମିକ—ବିଂ,(ସୋମ+ଇକ) ଚନ୍ଦ୍ର ସମ୍ବନ୍ଧୀୟ, ସୋମରସ ସମ୍ବନ୍ଧୀୟ, ସୋମଯଜ୍ଞ ସମ୍ବନ୍ଧୀୟ, ଚାନ୍ଦ୍ରାୟଣବ୍ରତକାରୀ (ବ୍ୟକ୍ତି) ।
ସୌମିକୀ—ବି. ଦୀକ୍ଷଣୀୟ ଇଷ୍ଟି, ଯାଗ ବିଶେଷ, ଯଜ୍ଞାର୍ଥ ସୋମରସ ଉପୁଡ଼ିବା କର୍ମ ।
ସୌମିତ୍ର(ତ୍ରି)—ପୁଂ. ବି. (ସୁମିତ୍ରା+ଅ. ଇ) ରାମାନୁଜ, ଲକ୍ଷ୍ମଣ, ଶତ୍ରୁଘ୍ନ ।
ସୌମୀ—ବି. ଚନ୍ଦ୍ରକିରଣ ।
ସୌମେଚକ—ବି. (ସୁମେଚକ+ଅ) ସୁନା,ସୁବର୍ଣ୍ଣ ।
ସୌମେଧିକ—ବିଂ. (ସୁମେଧା+ଇକ) ପ୍ରଖରବୁଦ୍ଧି ସମ୍ପନ୍ନ, ଦିବ୍ୟଜ୍ଞାନସମ୍ପନ୍ନ, ଶୋଭନମେଧା ସମ୍ବନ୍ଧୀୟ, (ବି) ସିଦ୍ଧ ତାପସ ।
ସୌମେରୁକ-ବିଂ.ସୁମେରୁ ସମ୍ବନ୍ଧୀୟ, (ବି) [ ସୁବର୍ଣ୍ଣ ।
ସୌମ୍ୟ—ବି. (ସୋମ+ଯ) ବୁଧଗ୍ରହ. ବ୍ରାହ୍ମଣ, ସୋମଯଜ୍ଞ,ଡିମିରଗଛ, ବୃଷ. ମର୍କଟ. କନ୍ୟା, ବୃଶ୍ଚିକ, ମକର ଓ ମୀନରାଶିଗଣ, ଯଜ୍ଞର ଯୂପକାଷ୍ଠର ନିମ୍ନରେ ୧୫ ଅଙ୍ଗୁଳି ପରିମିତ ଭୂଖଣ୍ଡ. ସୌମ୍ୟକୃଚ୍ଛ୍ରବ୍ରତ, ମୃଗଶିର ନକ୍ଷତ୍ର, ଉପାସକ, ଭକ୍ତ, ବାମହସ୍ତ, ରକ୍ତ ବର୍ଣ୍ଣରେ ପରିଣତ ହେବାପୂର୍ବରୁ ରକ୍ତର ଅବସ୍ଥା, ରସ, ପିତ୍ତ, ମାର୍ଗଶିର ମାସ, ବାମନେତ୍ର, କରତଳର ମଧ୍ୟଭାଗ, ପିତୃଗଣବିଶେଷ, ଜ୍ୟୋତିଷୋକ୍ତ ୬୦ ବର୍ଷ ମଧ୍ୟରୁ ଏକ, ପୌରାଣିକ ଦ୍ୱୀପବିଶେଷ, ଶୁଭଗ୍ରହ, (ବିଂ) ମୃଦୁ, ଅନୁଗ୍ରହ, ପ୍ରସନ୍ନ, ଶାନ୍ତମୂର୍ତ୍ତି, ମନୋଜ୍ଞ, ନିପୁଣ, ସୋମଦୈବତ, ଶୁଭ,ଉଜ୍ଜ୍ୱଳ, ସୋମସମ୍ବନ୍ଧୀୟ, (ସ୍ତ୍ରୀ) ସୌମ୍ୟା, (ବି) ସୌମ୍ୟତା ।
ସୌମ୍ୟକୃଚ୍ଛ୍ରବ୍ରତ—ବି. ପ୍ରାୟଶ୍ଚିତ୍ତ ବା ବ୍ରତବିଶେଷ ।
ସୌମ୍ୟଗନ୍ଧ (ନ୍ଧୀ)—ବି. ଶତପତ୍ରୀ, ସେବତୀଫୁଲ ।
ସୌମ୍ୟଗ୍ରହ—ବି. ଶୁଭଗ୍ରହ ।
ସୌମ୍ୟଜ୍ୱର—ବି. ବାତପିତ୍ତ ବା ବାତକଫର ପ୍ରକୋପଜନିତ ଜ୍ୱର ।
ସୌମ୍ୟତରା—ସ୍ତ୍ରୀ. ବି. ଦୁର୍ଗାଙ୍କର ନାମବିଶେଷ ।
ସୌମ୍ୟଦର୍ଶନ—ପୁଂ.ବିଂ. (ବ.ବ୍ରୀ) ପ୍ରିୟଦର୍ଶନ, ପ୍ରଶାନ୍ତମୂର୍ତ୍ତି, (ସ୍ତ୍ରୀ) ଦର୍ଶନା ।
ସୌମ୍ୟଧାତୁ—ବି, କଫ ।
ସୌମ୍ୟଧ୍ରୁବ—ବି. ଉତ୍ତରମେରୁ ଉପରେ ଥିବା ଧ୍ରୁବତାରା ।
ସୌମ୍ୟବାର(ବାସର)—ବି. ବୁଧବାର ।
ସୌମ୍ୟଭାବ—ବି. (କ.ଧା) ଶାନ୍ତଭାବ, ସାଧୁଭାବ ।
ସୌମ୍ୟମୂର୍ତ୍ତି—ବି. (କ.ଧା) ସୁନ୍ଦରରୂପ, ଶାନ୍ତମୂର୍ତ୍ତି,(ବିଂ-ବ,ବ୍ରୀ)ଶାନ୍ତ ବା ସୁନ୍ଦର ଆକୃତିବିଶିଷ୍ଟ ।
ସୌମ୍ୟା—ସ୍ତ୍ରୀ. ବିଂ. ( ସୌମ୍ୟ+ଆ ) ସୌମ୍ୟର ସ୍ତ୍ରୀଲିଙ୍ଗ, (ବି)ଦୁର୍ଗା,ମହେନ୍ଦ୍ରବାରୁଣୀ, ରୁଦ୍ରଜଟା, ମହାଜ୍ୟୋତିଷ୍ମତୀ, ପାତାଳଗରୁଡ଼ୀ ଲତା, କାଇଞ୍ଚ, ଶାଳପର୍ଣ୍ଣୀ, ମଲ୍ଲିକା, ବ୍ରାହ୍ମୀ, ଶଟି, ମୃଗଶିରା ନକ୍ଷତ୍ର, ମୁକ୍ତା ।
ସୌମ୍ୟାକୃତି—ସ୍ତ୍ରୀ, ବି. (କ.ଧା) ଶାନ୍ତଆକୃତି, ସୁନ୍ଦରଆକାର, (ବିଂ-ବ.ବ୍ରୀ) ଶାନ୍ତଆକୃତିବିଶିଷ୍ଟ, ସୁଦୃଶ୍ୟବପୁଃ ।
ସୌଯବସ—ବି. ତୃଣର ପ୍ରଚୁରତା ।
ସୌର—ବି. (ସୁର+ଅ) ଶନୈଶ୍ଚର, ଯମ, ବୈବସ୍ୱତମନୁ, ରାଜା କର୍ଣ୍ଣ,ବାଲି ଓ ସୁଗ୍ରୀବ, ତୁମ୍ବୁରୁ ବୃକ୍ଷ, ସୂର୍ଯ୍ୟେକରାଶି ଭୋଗାବଚ୍ଛିନ୍ନ କାଳ ବା ମାସ, ସୌରମାସ, ସୂର୍ଯ୍ୟୋପାସକ, ତନ୍ତ୍ରୋକ୍ତ ଗୁରୁବିଶେଷ, ମଗବ୍ରାହ୍ମଣ, ଦକ୍ଷିଣଚକ୍ଷୁ, ଧନିଆ, ଏକ ସାଗର ନାମ,ବଂଶକାଳିଆ, (ବିଂ) ସୂର୍ଯ୍ୟ ସମ୍ବନ୍ଧୀୟ, ସୂର୍ଯ୍ୟଙ୍କଠାରୁ ଉତ୍ପନ୍ନ, (ସ୍ତ୍ରୀ) ସୌରୀ ।
ସୌରକର—ବି. (କ.ଧା) ସୂର୍ଯ୍ୟକିରଣ, ରୌଦ୍ର ।
ସୌରକରଲେଖା—ବି.(୬ତତ୍)ସୂର୍ଯ୍ୟଙ୍କ କିରଣମାଳା ।
ସୌରକରୋଦ୍ଭାସିତ—ବିଂ.(୩ତତ୍)ସୂର୍ଯ୍ୟକିରଣରେ ପ୍ରକାଶିତ,ସୂର୍ଯ୍ୟଙ୍କ କିରଣରେ

ସମୁଜ୍ଜ୍ୱଳ ।

ଶୌରଗଣନା—ବି. ( କ.ଧା ) ସୂର୍ଯ୍ୟଙ୍କ ଗତି ବା ଅବସ୍ଥିତି ଅନୁସାରେ କରାଯିବା ଗଣନା ।

ଶୌରିକେ—ବିଂ.(ଶୌର + ଜନ୍ + କ.ଅ) ଶୌଠୋରୁ ଜାତ, (ବି) ଭୂମ୍ବୁରୁ ବୃକ୍ଷ, ଧନିଆଁ ।

ଶୌରଜଗତ୍—ବି.ଏକସୂର୍ଯ୍ୟ ଓ ତାହାର ଚାରିଆଡ଼େ ଘୂରୁଥିବା ଗ୍ରହ ଓ ଉପଗ୍ରହାଦିର ମଣ୍ଡଳ ।

ଶୌରଣ—ବି.ବିଂ. (ସୂରଣ+ଅ)ସୂରଣ ବା ଓଲୁଅ ସମ୍ବନ୍ଧୀୟ ।

ଶୌରତ—ବିଂ. (ସୁରତ+ଅ) ସୁରତ ବା ରତିକ୍ରୀଡ଼ା ସମ୍ବନ୍ଧୀୟ ।

ଶୌରତ୍ୟ—ବି. (ସୁରତ+ଯ)ରତିସୁଖ, ସମ୍ଭୋଗ ।

ଶୌରଦିନ(ଦିବସ)—ବି. ରବିଭୁକ୍ତାଂଶାଧିକ ଷଷ୍ଟିଦଣ୍ଡାତ୍ମକ ଦିନ, ଏକସୂର୍ଯ୍ୟୋଦୟରୁ ଅପର ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ ଚବିଶଘଣ୍ଟା ବା ୬୦ଦଣ୍ଡ କାଳ ।

ଶୌରଧ୍ରୀ—ବି. ଏକପ୍ରକାର ତମ୍ବୁରା ବା ସିତାର ।

ଶୌରନକ୍ତ—ବି. ବ୍ରତବିଶେଷ (ହସ୍ତାନକ୍ଷତ୍ରଯୁକ୍ତ ରବିବାରରେ ଏ ବ୍ରତ କରନ୍ତି) ।

ଶୌରପଥ—ବି. ସୂର୍ଯ୍ୟୋପାସକ ।

ଶୌରପରିକର—ବି. (କ.ଧା) ଶୌରଜଗତ୍ ଦେଖ ।

ଶୌରବତ୍ସର(ବର୍ଷ)—ବି.(କ.ଧା)ଯେଉଁ ସମୟ ମଧ୍ୟରେ ପୃଥିବୀ ଥରେ ସୂର୍ଯ୍ୟର ଚାରିପାଖେ ବୁଲି ଆସିପାରେ, ସୂର୍ଯ୍ୟର ଦ୍ୱାଦଶରାଶିକୁ ଥରେ ଭୋଗ କରିବାର ଅଚ୍ଛିନ୍ନ କାଳ, ୩୬୫ଦିନ ଓ ୬ଘଣ୍ଟା କାଳବିଶିଷ୍ଟ ବର୍ଷ ।

ଶୌରଭ—ବି. (ସୁରଭି+ଷ୍ଣ.ଅ) ସୁଗନ୍ଧ, ସୁବାସ, ସୌଗନ୍ଧ୍ୟ, ସୌନ୍ଦର୍ଯ୍ୟ,କୁଙ୍କୁମ, ନାଗକେଶର, ଗୁଣଗୌରବ,ଝୁଣା, ତୁମ୍ବୁରୁ ବୃକ୍ଷ ଓ ତଜ୍ଜାତ ଗନ୍ଧଦ୍ରବ୍ୟ, ଆମ୍ବ, ଧନିଆ, ସାମବିଶେଷ, ( ବିଂ ) ସୁଗନ୍ଧିତ, ସୁରଭି ଗାଈଠାରୁ ଉତ୍ପନ୍ନ ।

ସୌରଭକ—ବି.(ସୌରଭ+କ)ସୌରଭ ଦେଖ, ବର୍ଣ୍ଣବୃତ୍ତବିଶେଷ ।

ସୌରଭମୟ—ବିଂ.ସଦ୍‌ଗନ୍ଧପୂର୍ଣ୍ଣ,ସୁବାସ ବିଶିଷ୍ଟ, (ସ୍ତ୍ରୀ) ସୌରଭମୟୀ ।

ସୌରଭରାଶି—ବି. ( ଷତତ୍ପୁ ) ପ୍ରଚୁର ସୁଗନ୍ଧ ।

ସୌରଭଶାଳୀ—ବିଂ.ସୌରଭମୟଦେଖ (ସ୍ତ୍ରୀ) ସୌରଭଶାଳିନୀ ।

ସୌରଭସମ୍ଭାର—ବି. (ଷତତ୍ପୁ) ସୁବାସସମୂହ, ସୌରଭରାଶି ।

ସୌରଭାନ୍ୱିତ—ବିଂ.(ଙତତ୍ପୁ)ସୌରଭଯୁକ୍ତ, ସୁବାସିତ ।

ସୌରଭିତ-ବିଂ.ସୌରଭଯୁକ୍ତ,ସୁବାସିତ ।

ସୌରଭେୟ—ବିଂ. (ସୁରଭି+ଏୟ) ସୁରଭି ସମ୍ବନ୍ଧୀୟ, (ବି) ବୃଷ, ଷଣ୍ଢ. (ସ୍ତ୍ରୀ) ସୌରଭେୟୀ ।

ସୌରଭେୟୀ—ସ୍ତ୍ରୀ. ବି. (ସୌରଭେୟ+ଈ) ଗାଭୀ, ଗାଈ, ସୁରଭିଗାଈର କନ୍ୟା, (ସ୍ତ୍ରୀ,ବିଂ) ସୁରଭି ସମ୍ବନ୍ଧୀୟା, (ବି) ଅପ୍ସରାବିଶେଷ ।

ସୌରଭ୍ୟ—ବି.(ସୁରଭି+ଷ୍ଣ.ଯ)ସୁବାସ, ସୁଗନ୍ଧ, ସୌଗନ୍ଧ୍ୟ, ସୌନ୍ଦର୍ଯ୍ୟ,ମନୋଜ୍ଞତା, ଗୁଣଗୌରବ, କୁବେର,ପ୍ରସିଦ୍ଧି ।

ସୌରମଣ୍ଡଳ—ବି. ସୂର୍ଯ୍ୟମଣ୍ଡଳ,ସୌରଜଗତ୍, ସୂର୍ଯ୍ୟଙ୍କର ପରିବେଶ ।

ସୌରମାନ—ବିଂ. ସୌରଗଣନା ବା ସୂର୍ଯ୍ୟଙ୍କ ଗତିଦ୍ୱାରା ପରିମିତ (ମାସ. ବର୍ଷ, ଦିବସ ।

ସୌରମାସ—ବି. ସୂର୍ଯ୍ୟଙ୍କର ଏକରାଶିକୁ ଭୋଗ କରିବାର ଅବଚ୍ଛିନ୍ନ କାଳ ।

ସୌରସମ୍ବତ୍ସର—ବି. ସୌରବତ୍ସର ଦେଖ ।

ସୌରସିଦ୍ଧାନ୍ତ—ବି.ସୂର୍ଯ୍ୟସିଦ୍ଧାନ୍ତ ଦେଖ ।

ସୌରସେନ—ବି. ସ୍କନ୍ଦ, କାର୍ତ୍ତିକେୟ ।

ସୌରସେନୀ—ସ୍ତ୍ରୀ.ବିଂ.ମଥୁରାଞ୍ଚଳବାସୀ ।

ସୌରସେୟ—ପୁଂ.ବି. (ସୁରସା+ଏୟ) ସ୍କନ୍ଦ, କାର୍ତ୍ତିକେୟ ।

ସୌରସୈନ୍ଧବ—ବି. ( ସୁରସିନ୍ଧୁ+ଅ ) ଗଙ୍ଗାପୁତ୍ର,ଭୀଷ୍ମ, ସୂର୍ଯ୍ୟଙ୍କର ଘୋଟକ, (ବିଂ) ଗଙ୍ଗା ସମ୍ବନ୍ଧୀୟ ।

ସୌରସ୍ୟ—ବି. (ସୁରସ+ଯ) ସୁରସତା ।

ସୌରାଜ୍ୟ—ବି. (ସୁ + ରାଜନ୍+ଷ୍ଣ.ଯ) ସାଧୁରାଜାଙ୍କ ଯୁକ୍ତ ହୋଇଥିବା(ଦେଶର) ଅବସ୍ଥା, ସୁଶାସନପୂର୍ଣ୍ଣ ରାଜତ୍ୱ, ଉତ୍ତମ ରାଜତ୍ୱ ବା ସୁଶାସନ ।

ସୌରାଜ୍ୟସୁଖ—ବି. (କ.ଧା) ସୁଶାସନପୂର୍ଣ୍ଣ ରାଜତ୍ୱଜନିତ ସୁଖ ।

ସୌରାବ—ବି. ଲୁଣିଆ ସୋରୁଆ ।

ସୌରାଷ୍ଟ୍ର—ବି. (ସୁରାଷ୍ଟ୍ର+ଅ) ସୁରାଷ୍ଟ୍ରଦେଶ (ଆଧୁନିକ କାଠିଆବାଡ଼),ସୁରାଷ୍ଟ୍ରଦେଶୀୟ ଲୋକ, କୁନ୍ଦୁରକ, କୁନ୍ଦୁରୁଖୋଟି, ଶଲ୍ଲକୀନିର୍ଯ୍ୟାସ, ଲୋବାନ୍, କାଂସ୍ୟ, କଂସା, ବର୍ଣ୍ଣବୃତ୍ତବିଶେଷ, (ବିଂ) ସୁରାଷ୍ଟ୍ରଦେଶଜାତ,ସୁରାଷ୍ଟ୍ର ଦେଶ ସମ୍ବନ୍ଧୀୟ, (ସ୍ତ୍ରୀ) ସୌରାଷ୍ଟ୍ରୀ ।

ସୌରାଷ୍ଟ୍ରକ—ବି. ପଞ୍ଚଲୌହ (ଯଥା:— ସୁନା, ରୁପା, ତମ୍ବା, ରଙ୍ଗ, ସୀସା), ବିଷବିଶେଷ, ( ବିଂ ) ସୁରାଷ୍ଟ୍ରଦେଶ ସମ୍ବନ୍ଧୀୟ । [ଦେଖ ।

ସୌରାଷ୍ଟ୍ରମୃତ୍ତିକା—ସ୍ତ୍ରୀ. ବି. ସୌରାଷ୍ଟ୍ରୀ

ସୌରାଷ୍ଟ୍ରା—ବି.ତୁବରୀ,ହରଡ଼,ସୌରାଷ୍ଟ୍ରୀ ଦେଖ, ବଟଙ୍ଗ, ବଣରୁଲସୀ, ଲଣ୍ଡାବାଗୁଲି ।

ସୌରାଷ୍ଟ୍ରିକ—ବିଂ.(ସୁରାଷ୍ଟ୍ର+ଇକ)ସୁରାଷ୍ଟ୍ର ଦେଶୀୟ, (ବି) ବିଷଭେଦ ।

ସୌରାଷ୍ଟ୍ରୀ—ବିଂ. (ସୁରାଷ୍ଟ୍ର + ଈ)ସୌରାଷ୍ଟ୍ରର ସ୍ତ୍ରୀଲୋକ, (ବି) ସୌରାଷ୍ଟ୍ରଦେଶୀୟ ସୁଗନ୍ଧମୃତ୍ତିକା, ଗୋପୀଚନ୍ଦନ, ଫଟକିମାଟି ।

ସୌରାସ୍ତ୍ର—ବି.(କ.ଧା) ଦିବ୍ୟାସ୍ତ୍ରବିଶେଷ ।

ସୌରି—ବି. (ସୁର+ଇ) ଯମ, ଶନି, ଅଶନବୃକ୍ଷ, ଆଦିତ୍ୟଭକ୍ତା, ଅଶସୋରିଷିଆ, ରାଜା କର୍ଣ୍ଣ,କୃଷ୍ଣ, ସୁଗ୍ରୀବ, (ବିଂ) ସୂର୍ଯ୍ୟ ସମ୍ବନ୍ଧୀୟ ।

ସୌରିକ—ବି. (ସୁର+ଇକ)ସ୍ୱର୍ଗ, (ସୁରା+ଇକ) ସୁରା ବିକ୍ରୟକାରୀ, ଶୁଣ୍ଡି, ( ସୌରି+ ସ୍ୱାର୍ଥେ.କ ) ଶନି. ( ବିଂ )

ସ୍ୱର୍ଗୀୟ, ସୁର ସମ୍ବନ୍ଧୀୟ, ମଦ୍ୟପାନାର୍ଥ କରଯାଇଥିବା ଋଣ ।
ସୌରବାସର—ବି. ଶନିବାର ।
ସୌରମଣି(ରତ୍ନ)—ବି.(ଶନିଗ୍ରହଙ୍କ ପ୍ରିୟ-ରତ୍ନ) ନୀଳମଣି ।
ସୌରା—ସ୍ତ୍ରୀ. ବି. (ସୁର+ଅ+ସ୍ତ୍ରୀ.ଈ) ସୂର୍ଯ୍ୟଙ୍କ କନ୍ୟା, ଯମୁନା, ସୂର୍ଯ୍ୟଙ୍କ ସ୍ତ୍ରୀ, ତାପତୀ,କୁରୁଙ୍କ ମାତା,ଗାଈ, ଆଦିତ୍ୟ-ଭକ୍ତା, ଅଶ୍ୱସୋବଷା ।
ସୌରୀୟ—ବିଂ. (ସୌର + ଈୟ) ସୂର୍ଯ୍ୟ ସମ୍ବନ୍ଧୀୟ, ସୂର୍ଯ୍ୟଙ୍କର ହିତକର, (ବି) କଷାକ୍ତନିର୍ଯ୍ୟାସ, ସ୍ରାବୀବୃକ୍ଷବିଶେଷ,ଉକ୍ତ ବୃକ୍ଷରୁ ନିର୍ଗତ କଷାକ୍ତ ଅଠା ।
ସୌରେୟ—ବି. ଧଳାଫୁଲଯୁକ୍ତ ଦାସ-କେରେଣ୍ଟା ଗୁଳ୍ମ, ଶ୍ୱେତଝିଣ୍ଟୀ ।
ସୌର୍ଯ୍ୟ(ର୍ଯ୍ୟ)—ବିଂ. ( ସୂର୍ଯ୍ୟ,ର୍ଯ୍ୟ+ଅ ) ସୂର୍ଯ୍ୟ ସମ୍ବନ୍ଧୀୟ, (ବି) ଶନିଗ୍ରହ, ହିମାଳୟର ଦୁଇଟି ଶୃଙ୍ଗର ନାମ, ସମ୍ବତ୍ସରବିଶେଷ ।
ସୌର୍ଯ୍ୟପ୍ରଭ—ବିଂ. ସୂର୍ଯ୍ୟପ୍ରଭାସମ୍ଭୂତ ।
ସୌର୍ଯ୍ୟୀ—ବି. (ସୌର୍ଯ୍ୟ+ଈନ୍)ହିମା-ଳୟ ପର୍ବତ । [ ସମ୍ବନ୍ଧୀୟ ।
ସୌର୍ଯ୍ୟୋଦୟିକ—ବିଂ. ସୂର୍ଯ୍ୟୋଦୟ
ସୌଲକ୍ଷଣ୍ୟ—ବି. ( ସୁଲକ୍ଷଣ + ଯ ) ସୁଲକ୍ଷଣତା ।
ସୌଲଭ୍ୟ—ବି.(ସୁଲଭ+ଯ)ସୁଲଭତା, ଅନାୟାସଲଭ୍ୟତା ।
ସୌଲଭ—ବିଂ.ସୁଲଭଲଭ୍ୟ,ସହଜପ୍ରାପ୍ତ ।
ସୌଲ୍ୱିକ—ବି. ତାମ୍ରକୁଟ୍ଟକ, ଅଟାର ।
ସୌବ—ବିଂ. (ସ୍ୱ+ଅ) ସ୍ୱୀୟ, ସ୍ୱକୀୟ, ସ୍ୱ ସମ୍ବନ୍ଧୀୟ, ସ୍ୱର୍ଗରେ ଭବ, ( ବି ) ରାଜ୍ୟଶାସନ, ରାଜାଜ୍ଞା, ଘୋଷଣାପତ୍ର ।
ସୌବଗ୍ରାମିକ—ବିଂ. ( ସ୍ୱଗ୍ରାମ+ଇକ ) ସ୍ୱଗ୍ରାମୋଦ୍ଭବ(ବସ୍ତୁ) । [ ନ୍ଧୀୟ ।
ସୌବର—ବିଂ. (ସ୍ୱର+ଅ) ସ୍ୱର ସମ୍ବ-
ସୌବର୍ଗ—ବି.(ସ୍ୱର୍ଗ+ଅ) ସ୍ୱର୍ଗୀୟ, (ବି) ସୁର, ଦେବତା ।
ସୌବର୍ଚ୍ଚଳ—ବି. (ସୁବର୍ଚ୍ଚଳ+ଅ) ପଞ୍ଚ-ଲବଣ ମଧ୍ୟରୁ ଏକତମ, ସଚଳଲବଣ, ସାଜିମାଟି ।
ସୌବର୍ଣ୍ଣ—ବିଂ. (ସୁବର୍ଣ୍ଣ+ଅ) ସୁବର୍ଣ୍ଣ ସମ୍ବନ୍ଧୀୟ, ସୁବର୍ଣ୍ଣ ବର୍ଣ୍ଣଯୁକ୍ତ, କର୍ଷ ବା ୧୬ମଷା ପରିମିତ, ସୁବର୍ଣ୍ଣ ସମ୍ବନ୍ଧୀୟ, ସ୍ୱର୍ଣ୍ଣନିର୍ମିତ, (ବି)ସୁବର୍ଣ୍ଣ,ସୁନା,ଏକକର୍ଷ ବା ୧୬ମଷା ପରିମିତ ସୁନା,ସ୍ୱର୍ଣ୍ଣନିର୍ମିତ କର୍ଣ୍ଣାଲଙ୍କାର, ମେଘ, ପର୍ବତ, ( ସ୍ତ୍ରୀ ) ସୌବର୍ଣ୍ଣୀ ।
ସୌବର୍ଣ୍ଣଭେଦନୀ—ବି. ପ୍ରିୟଙ୍ଗୁ ।
ସୌବର୍ଣ୍ଣିକ—ବି. (ସୁବର୍ଣ୍ଣ+ଇକ) ସ୍ୱର୍ଣ୍ଣ-କାର, ବଣିଆଁ, (ବିଂ)ଏକକର୍ଷ ବା ୧୬ ମଷା ଓଜନର ।
ସୌବଲ—ପୁଂ.ବି. (ସୁବଲ+ଅ)ଶକୁନି, ଦୁର୍ଯ୍ୟୋଧନଙ୍କ ମାମୁ ।
ସୌବଲୀ—ସ୍ତ୍ରୀ. ବି. (ସୁବଲ+ଅ+ଈ) ଧୃତରାଷ୍ଟ୍ରଙ୍କ ସ୍ତ୍ରୀ,ଗାନ୍ଧାରୀ,ସୌବଲେୟୀ ।
ସୌବଶ୍ୟ—ବି. ଘୋଡ଼ାଦୌଡ଼ ।
ସୌବସ୍ତିକ—ବିଂ. (ସ୍ୱସ୍ତି + ଇକ) ସ୍ୱସ୍ତି ସମ୍ବନ୍ଧୀୟ, ଆଶୀର୍ବାଦ ସମ୍ବନ୍ଧୀୟ, (ବି) ପୁରୋହିତ, ସ୍ୱସ୍ତିବାଚକ ।
ସୌବାଧ୍ୟାୟିକ—ପୁଂ. ବିଂ. (ସ୍ୱାଧ୍ୟାୟ + ଇକ) ସ୍ୱାଧ୍ୟାୟୀ,ବେଦପାଠନିରତ,(ସ୍ତ୍ରୀ) ସୌବାଧ୍ୟାୟିକା ।
ସୌବାସ୍ତବ—ବିଂ. (ସୁବାସ୍ତୁ+ଅ)ସୁନ୍ଦର ବାସ୍ତୁ ସମ୍ବନ୍ଧୀୟ, ଉତ୍ତମ ବାସ୍ତୁ ଉପରେ ନିର୍ମିତ (ଗୃହାଦି), (ସ୍ତ୍ରୀ) ସୌବାସ୍ତବୀ ।
ସୌବିଦ—ପୁଂ.ବି. (ସୁ+ବିଦ୍+କ.ଅ) ଅନ୍ତଃପୁର ରକ୍ଷକ ଭୃତ୍ୟ, କଞ୍ଚୁକୀ ।
ସୌବିଦଲ୍ଲ—ପୁଂ. ବି. (ସୁ+ବିଦ୍+କ. ଅ=ସୁବିଦ୍+ଅତ୍ର+କ୍ୱିପ୍=ସୁବିଦତ୍ର +ଲ+କ.ଅ) ଅନ୍ତଃପୁର ରକ୍ଷକ, କଞ୍ଚୁକୀ,ବହିଃପଞ୍ଜରଣକାରଣୀ ସ୍ତ୍ରୀମାନଙ୍କ ପ୍ରେକ୍ଷକ ବେତ୍ରଧାରୀ ଭୃତ୍ୟ ।
ସୌବିଦଲ୍ଲକ—ପୁଂ.ବି.ସୌବିଦଲ୍ଲ ଦେଖ
ସୌବୀର—ବି. (ସୁବୀର+ଅ) ବଦର, ବରକୋଳି, ସୌବୀରକ, କାଞ୍ଜିକା, ସ୍ରୋତୋଞ୍ଜନ, ସିନ୍ଧୁନଦ ସନ୍ନିକଟସ୍ଥ ଦେଶବିଶେଷ, ସୁବୀର ପ୍ରଦେଶବାସୀ ବ୍ୟକ୍ତି, ସୁବୀର ପ୍ରଦେଶର ରାଜା ।
ସୌବୀରକ—ବି. କାଞ୍ଜିକାବିଶେଷ,ଯୁଆ-ଗହମ, ଯବ ଓ ଗହମରୁ ପ୍ରସ୍ତୁତ କାଞ୍ଜି, ବରକୋଳି ଗଛ,ସୌବୀରାଞ୍ଜନ ଦେଖ, ଜୟଦ୍ରଥଙ୍କର ଏକ ନାମ । [ ବିଶେଷ ।
ସୌବୀରପାଷାଣ-ବି.(ବୈଦ୍ୟକ)ପାଷାଣ-
ସୌବୀରବଦର—ବି. ମିଠା ଓ ବଡ଼ ବରକୋଳି, ପାଟଣାଇ ବରକୋଳି ।
ସୌବୀରସାର—ବି.ସୌବୀରାଞ୍ଜନ ଦେଖ ।
ସୌବୀରାଞ୍ଜନ – ବି. ଶୁକ୍ଳ ସ୍ରୋତାଞ୍ଜନ, ଔଷଧରୂପେ ପ୍ରଯୁଜ୍ୟ ଅଞ୍ଜନବିଶେଷ, ଶ୍ୱେତସୁରୁମା ।
ସୌବୀରାମ୍ଳ-ବି.ଯବର ବା ଗହମର କାଞ୍ଜି ।
ସୌବୀରକ—ବି. ବରକୋଳି ଗଛ ଓ ତାହାର ଫଳ, କୋଳି ।
ସୌବୀରୀ—ବି.ସଙ୍ଗୀତର ମୂର୍ଚ୍ଛନାବିଶେଷ, ସୌବୀରରାଜକୁମାରୀ ।
ସୌବୀର୍ଯ୍ୟ—ବି. (ସୁବୀର+ଭା.ଯ) ସୁବୀ-ରତା,(ସୌବୀର+ଯ)ସୌବୀରଦେଶର ରାଜା ।
ସୌବ୍ରତ୍ୟ—ବି.(ସୁବ୍ରତ+ଯ) ଏକନିଷ୍ଠା ଭକ୍ତି, ଆଜ୍ଞାପାଳନ ।
ସୌଶବ୍ଦ୍ୟ—ବି.(ସୁଶବ୍ଦ+ଯ)ସୁଶବ୍ଦର ଭାବ
ସୌଶମ୍ୟ—ବି. ସୁସମତା, ସାଧୁତା ।
ସୌଶଲ୍ୟ—ବି. ଜନପଦବିଶେଷ ।
ସୌଶୀଲ୍ୟ—ବି. (ସୁଶୀଲ+ଭା.ଯ)ସୁଶୀ-ଳତା, ସାଧୁତା, ସଚ୍ଚରିତ୍ରତା ।
ସୌଶ୍ରବସ—ବି. (ସୁଶ୍ରବସ୍ + ଅ)ସୁଯଶଃ, ସୁକୀର୍ତ୍ତି ।
ସୌଶ୍ରୀୟ—ବି. ( ସୁଶ୍ରୀ+ଅ ) ଐଶ୍ୱର୍ଯ୍ୟ, ବୈଭବ ।
ସୌଷିର—ବି.(ସୁଷିର+ଅ)ଦାନ୍ତପାଟିର ରୋଗବିଶେଷ, ବାୟୁବାଦିତ ଯନ୍ତ୍ର (ବଂଶୀ, ତୁରୀଇତ୍ୟାଦି) । [ ବିଶିଷ୍ଟତା ।
ସୌଷିର୍ଯ୍ୟ—ବି. ( ସୁଷିର + ଯ ) ଛିଦ୍ର-
ସୌଷ୍ଠବ—ବି. (ସୁଷ୍ଠୁ + ଭା.ଅ) ଆଧିକ୍ୟ, ଆତିଶଯ୍ୟ, ସ୍ୱରୂପତା, ସୌନ୍ଦର୍ଯ୍ୟ, ଉତ୍କୃଷ୍ଟତା, ପ୍ରଶଂସନୀୟତ୍ୱ, ନାଟକାଙ୍ଗ-ବିଶେଷ, ଲଘୁତା, ଶିପ୍ରତା, ଶରୀରର ନୃତ୍ୟକାଳୀନ ମୁଦ୍ରାବିଶେଷ ।

**ସୌସାଦୃଶ୍ୟ**—ବି. ( ସୁସଦୃଶ+ଷ୍ଣ.ଯ ) ସମ୍ପୂର୍ଣ୍ଣ ସାଦୃଶ୍ୟ, ଉତ୍ତମ ମେଳ ।
**ସୌସୁରାଦ**-ବି.ବର୍ଷାରେ ଜନ୍ମିବା ପୋକ, ପ୍ରବର୍ଷଣଜାତ କୃମିବିଶେଷ ।
**ସୌସ୍ଥିତ୍ୟ**—ବି. (ସୁସ୍ଥିତ+ଷ୍ଣ.ଯ)ସୁସ୍ଥିତ, ଗ୍ରହମାନଙ୍କର ଶୁଭଅବସ୍ଥିତି, ଉତ୍ତମ-ସ୍ଥାନରେ ସ୍ଥିତି ।
**ସୌସ୍ଥିର୍ଯ୍ୟ**-ବି. (ସୁସ୍ଥିର+ଯ)ସୁସ୍ଥିରତା ।
**ସୌସ୍ଥ୍ୟ**—ବି°. (ସୁସ୍ଥ+ଯ)ସୁସ୍ଥର ଭାବ, ସ୍ୱାସ୍ଥ୍ୟ, ସ୍ୱଚ୍ଛନ୍ଦତା ।
**ସୌସ୍ନାତିକ**—ପୁଂ. ବି°. ଯଜ୍ଞାନ୍ତ ସ୍ନାନକାରୀ
**ସୌସ୍ନାତିକ**—ବି.(ସୁସ୍ନାନ+ଇକ)ଯଜ୍ଞାନ୍ତ ସ୍ନାନ ସଫଳ ହେଲା କି ନାହିଁ ଏବଂଭୂତ ପ୍ରଶ୍ନ ।
**ସୌସ୍ୱର୍ଯ୍ୟ**—ବି. (ସୁସ୍ୱର+ଯ)ସୁସ୍ୱରତା ।
**ସୌହାର୍ଦ୍ଦ**—ବି. (ସୁହୃଦ୍+ଅ) ବନ୍ଧୁତା, ସୌଜନ୍ୟ, ପ୍ରଣୟ, ସୁହୃତ୍ପୁତ୍ର, ମିତ୍ରଙ୍କ ପୁଅ, ସୌହାର୍ଦ୍ଦ୍ୟ ଦେଖ ।
**ସୌହାର୍ଦ୍ଦ୍ୟ**—ବି. (ସୁହୃଦ୍+ଷ୍ଣ.ଯ)ସଖ୍ୟ, ମୈତ୍ରୀ, ଘନିଷ୍ଠବନ୍ଧୁତା, ସ୍ନେହ ।
**ସୌହିତ୍ୟ**—ବି. (ସୁହିତ+ଯ) ତୃପ୍ତି, ସନ୍ତୋଷ, ପର୍ଯ୍ୟାପ୍ତ ଓ ତୃପ୍ତିକର ଭୋଜନ, ପୂର୍ଣ୍ଣତା, ବନ୍ଧୁତା ।
**ସୌହୃଦ(ଦ୍ୟ)**-ବି ( ସୁହୃଦ୍+ଷ୍ଣ.ଅ.ଯ ) ସୌହାର୍ଦ୍ଦ୍ୟ ଦେଖ ।
**ସ୍କଟ୍**—ଯା. ବି. ସ୍କଟ୍‌ଲଣ୍ଡ ଦେଶୀୟଲୋକ. ବ୍ରିଟେନର ଜଣେ ପ୍ରଧାନ କବି ଓ ଉପନ୍ୟାସ ଲେଖକ ।
**ସ୍କଟ୍‌ଲଣ୍ଡ**—ଯା. ବି. (ନାମ) ଇଂଲଣ୍ଡର ଉତ୍ତରକୁ ଲାଗିଥିବା ଦେଶ ।
**ସ୍କନ୍ଦ**—ପୁଂ. ବି. (ସ୍କନ୍ଦ୍+ଷ୍ଣ.ଅ) ଗତି, (କ.ଅ) ଶିବଙ୍କପୁତ୍ର କାର୍ତ୍ତିକେୟ, ଶରୀର, ନୃପତି, ନଦୀତଟ, ପାରଦ, ପଣ୍ଡିତ, କ୍ରୂରବାଲଗ୍ରହବିଶେଷ, ଶିବ, ଚତୁରବ୍ୟକ୍ତି, ଦେବୀଙ୍କ ଦ୍ୱାରପାଳ-ବିଶେଷ ।
**ସ୍କନ୍ଦଅପସ୍ମାର**—ବି. ବାଲରୋଗବିଶେଷ, ପିତୃଡ଼ାରୋଗ ।
**ସ୍କନ୍ଦକ**—ବି. ଓ ବି°. (ସ୍କନ୍ଦ୍+କ.ଅକ) ଲମ୍ଫକାରୀ, ସୈନ୍ୟ ।
**ସ୍କନ୍ଦଗ୍ରହ**—ବି. କ୍ରୂରବାଲଗ୍ରହବିଶେଷ ।
**ସ୍କନ୍ଦଗୁରୁ**—ବି. (୬ତତ୍ପୁ) ଶିବ ।
**ସ୍କନ୍ଦନ**—ବି. (ସ୍କନ୍ଦ୍+ଭ୍ର.ଅନ)ରେଚନ. ଗମନ, କ୍ଷରଣ, ଶୋଷଣ, ଶୀତଳ ପ୍ରୟୋଗଦ୍ୱାରା ରକ୍ତକ୍ଷରଣ ବନ୍ଦକରିବା. କୋଷ୍ଠତାରଲ୍ୟ, ଶୁଖିଯିବା ।
**ସ୍କନ୍ଦପୁତ୍ର**—ବି. ଚୋର ।
**ସ୍କନ୍ଦପୁରାଣ**—ବି. ପୁରାଣବିଶେଷ ।
**ସ୍କନ୍ଦଫଳା**—ବି. ଖଜୁରିଗଛ ।
**ସ୍କନ୍ଦମାତା**—ସ୍ତ୍ରୀ.ବି. ଦୁର୍ଗା, ପାର୍ବତୀ ।
**ସ୍କନ୍ଦଷଷ୍ଠୀ**—ବି. ଚୈତ୍ରମାସ ଶୁକ୍ଳ ଷଷ୍ଠୀ (ଏ ଦିନ କାର୍ତ୍ତିକେୟ ବ୍ରହ୍ମାଙ୍କ ଦ୍ୱାରା ଦେବତାମାନଙ୍କ ସେନାପତି ପଦରେ ଅଭିଷିକ୍ତ ହୋଇଥିଲେ) ।
**ସ୍କନ୍ଦାଂଶକ**—ବି. ପାରଦ ।
**ସ୍କନ୍ଦିତ**—ବି°. (ସ୍କନ୍ଦ୍+କ.ତ) ପତିତ, ସ୍ଖଳିତ, ଉଡ଼ିଯାଇଥିବା ।
**ସ୍କନ୍ଦୋଲ**—ବି°. ଅଣ୍ଡା, ଶୀତଳ, (ବି) ଶୀତଳତା ।
**ସ୍କନ୍ଧ**—ବି. (କଂ=ମସ୍ତକକୁ+ଧା+କ. ଅ) କାନ୍ଧ, ବେକର ତଳ,ବୃକ୍ଷର ଗଣ୍ଡି, ବୃକ୍ଷର କାଣ୍ଡ, ସେନାଧ୍ୟକ୍ଷ, ନୃପତି, ଯୁଦ୍ଧ, ବ୍ୟୂହ, ପଥ, ଛନ୍ଦୋବିଶେଷ, ଗ୍ରନ୍ଥପରିଚ୍ଛେଦ, ଖଣ୍ଡର ଚୂଳ, ସେନା ବିଭାଗ, ଅଭିଷେକ ସାମଗ୍ରୀ, ବକ, ବୃନ୍ଦ, ସମୂହ, ନିର୍ଦ୍ଦିଷ୍ଟ କାର୍ଯ୍ୟ, ପ୍ରାଚୀନ ବିଜ୍ଞ ମନୁଷ୍ୟ, ପଣ୍ଡିତ, ଶିକ୍ଷକ, ପଞ୍ଚ ଇନ୍ଦ୍ରିୟର ପଞ୍ଚବିଷୟ (ରୂପ,ରସ,ଗନ୍ଧ, ସ୍ପର୍ଶ ଓ ଶବ୍ଦ), ଶାଖା, ଡ଼ାଳ, ରାଜ୍ୟା-ଭିଷେକର ଉପଯୋଗୀ ବସ୍ତୁ, ସନ୍ଧି, ରାଜନାମା, କଙ୍କପକ୍ଷୀ, ଧଳାଚିଲ, ବୌଦ୍ଧମତେ ଜ୍ଞାନର ୫ଟି ଅଂଶ(ଯଥା-ରୂପସ୍କନ୍ଧ=ବିଷୟ ପ୍ରପଞ୍ଚ, ବେଦନା-ସ୍କନ୍ଧ=ବିଷୟଜ୍ଞାନପ୍ରପଞ୍ଚ, ବିଜ୍ଞାନସ୍କନ୍ଧ= ଆଲୟ ଜ୍ଞାନ ପ୍ରପଞ୍ଚ, ସଂଜ୍ଞାସ୍କନ୍ଧ=ନାମ ପ୍ରପଞ୍ଚ, ସଂସ୍କାରସ୍କନ୍ଧ=ବାସନା ପ୍ରପଞ୍ଚ) ଆର୍ଯ୍ୟାଛନ୍ଦର ଏକପ୍ରକାର ।
**ସ୍କନ୍ଧକୂପ**—ବି. ବିହଙ୍ଗିକା, ବଂଶାଦିନିର୍ମିତ ଶିକ୍ୟାଧାର, ବାହୁଙ୍ଗୀ ।
**ସ୍କନ୍ଧଜ**—ବି. ଶଲ୍ଲକି, ଝୁଣା, ବଟବୃକ୍ଷ ।
**ସ୍କନ୍ଧତରୁ**—ବି. ନାରିକେଳ ବୃକ୍ଷ, ଉଦୁମ୍ବର ବୃକ୍ଷ ।
**ସ୍କନ୍ଧଦେଶ(ପ୍ରଦେଶ)**—ବି. କାନ୍ଧ, ଅଂସ, ହାତୀର କାନ୍ଧ, ବଳଦଆଦିଙ୍କ କାନ୍ଧ ।
**ସ୍କନ୍ଧପଞ୍ଚନିର୍ବାଣ**—ବି. ବୌଦ୍ଧ ମତେ ଶରୀରର ୫ଗୋଟି ସ୍କନ୍ଧର ନାଶ,ମୁକ୍ତି ।
**ସ୍କନ୍ଧପୀଠ**—ବି. କାନ୍ଧର ହାଡ଼ ।
**ସ୍କନ୍ଧଫଲ**—ବି.(ବ.ବ୍ରୀ) ନାରିକେଳବୃକ୍ଷ, ଉଦୁମ୍ବରବୃକ୍ଷ ।
**ସ୍କନ୍ଧଫଳା**—ବି. ଖର୍ଜୁର, ଖଜୁରୀ ।
**ସ୍କନ୍ଧବନ୍ଧନା**—ବି. ମଧୁରିକା,ପାଣିମଧୁରୀ ।
**ସ୍କନ୍ଧବାହ**—ବି. (ସ୍କନ୍ଧ+ବହ୍+କ.ଅ) ସ୍କନ୍ଧଦ୍ୱାରା ଶକଟାଦି ବହନକାରୀ ବଳଦ, (ବି°) ଭାରବହନକାରୀ ।
**ସ୍କନ୍ଧବାହକ**—ବି. ଓ ବି°.ସ୍କନ୍ଧବାହ ଦେଖ ।
**ସ୍କନ୍ଧମଲ୍ଲକ**—ବି. କଙ୍କପକ୍ଷୀ ।
**ସ୍କନ୍ଧରୁହ**—ବି. (ସ୍କନ୍ଧ+ରୁହ୍+କ.ଅ) ବଟବୃକ୍ଷ ।
**ସ୍କନ୍ଧଶାଖା**—ବି. ବୃକ୍ଷର ପ୍ରଧାନ ଶାଖା ।
**ସ୍କନ୍ଧଶୃଙ୍ଗ**—ବି. ମହିଷ । [ ଲତା ।
**ସ୍କନ୍ଧା**—ବି. (ସ୍କନ୍ଧ+ଆ) ଶାଖା, ଡ଼ାଳ,
**ସ୍କନ୍ଧାଗ୍ନି**—ବି. ବଡ଼ କାଠ ଗଣ୍ଡିଦ୍ୱାରା ଜାତ ଅଗ୍ନି ।
**ସ୍କନ୍ଧାନଳ**—ବି. ସ୍କନ୍ଧାଗ୍ନି ଦେଖ ।
**ସ୍କନ୍ଧାବାର**—ବି. (ସ୍କନ୍ଧ+ଆ+ବୃ+କ.ଅ) ସେନା, ପଲ୍ଟଣ, ରାଜଧାନୀ, ନଗର, କଟକ, ଶିବିର, ସେନାନିବାସ,ରାଜାଙ୍କ ଶିବିର, ତମ୍ବୁ ।
**ସ୍କନ୍ଧିକ**—ବି. (ସ୍କନ୍ଧ+ଇକ) ସ୍କନ୍ଧବାହନ, ଶଗଡ଼ଆଦିଟଣା, ବଳଦ, ବୃଷ ।
**ସ୍କନ୍ଧୀ**—ବି. ( ସ୍କନ୍ଧ+ଇନ୍ ) ସ୍କନ୍ଧବିଶିଷ୍ଟ, (ବି) ବୃକ୍ଷ ।
**ସ୍କନ୍ଧେମୁଖ**—ପୁଂ. ବି°. କାନ୍ଧ ଉପରେ ଯାହାର ମୁଖ ଅବସ୍ଥିତ, (ବି) ସ୍କନ୍ଧାନୁଚରବିଶେଷ ।
**ସ୍କନ୍ଧ୍ୟ**—ବି°.(ସ୍କନ୍ଧ+ଯ) ସ୍କନ୍ଧସମ୍ବନ୍ଧୀୟ, ସ୍କନ୍ଧର ସମାନ ।

ସ୍କନ୍ନ—ବିଂ. (ସ୍କନ୍ଦ୍ + କ.ତ) ସ୍ଖଳିତ, ଚ୍ୟୁତ, ଶୁଷ୍କ, କ୍ଷରିତ, ଗତ ।
ସ୍କବ୍ଧ—ବିଂ. (ସ୍କମ୍ଭ୍ + କ.ତ) ସ୍ତଗିତ, ଟେକା ଯାଇଥିବା ।
ସ୍କଭନ—ବି. (ସ୍କଭ୍ + ଣ.ଅନ) ଶବ୍ଦ ।
ସ୍କମ୍ଭ—ବି. (ସ୍କମ୍ଭ + କ.ଅ) ସ୍ତମ୍ଭ, ଖୁମ୍ବ, ଠେକ, ପରମେଶ୍ୱର ।
ସ୍କମ୍ଭନ—ବି. (ସ୍କମ୍ଭ + ଭା.ଅନ) ଟେକି ଧରିବା, (କ.ଅନ) ଠେକ ।
ସ୍କମ୍ଭଦର୍ଜନୀ—ବି. ବାକୁଲି, ବଳଦଗାଡ଼ିର ଯୁଆଳିର ଦୁଇମୁଣ୍ଡରେ ଥିବା କୀଳ ଯୋଗୁଁ ବଳଦଙ୍କ କାନ୍ଧ ଏଣେତେଣେ ଘୁଞ୍ଚି ଯାଇ ପାରେ ନାହିଁ ।
ସ୍କାଉଟ୍—ଯା. ବି. ବାଳଚର, ବଏ-ସ୍କାଉଟ୍ ଦେଖ ।
ସ୍କାନ୍ଦ—ବି. (ସ୍କନ୍ଦ + ଅ) ସ୍କନ୍ଦପୁରାଣ ।
ସ୍କୁଲ୍—ଯା.ବି. ବିଦ୍ୟାଳୟ, ପାଠଶାଳା ।
ସ୍କେଲ—ଯା.ବି.କ୍ଷେତ୍ରଆଦିକୁ ନକ୍ସାରେ ଛୋଟାଇବାରେ ବ୍ୟବହୃତ ଆନୁପାତିକ ପରିମାଣ, ଯେଉଁ ଫଳକ ବା ଯନ୍ତ୍ର ଦ୍ୱାରା ନକ୍ସାରେ କ୍ଷେତ୍ରକୁ ମାପ କରାଯାଏ, କ୍ରମପଦ୍ଧତି, କ୍ରମୋଚ୍ଚ ବା କ୍ରମନିମ୍ନ ରେଟ୍ । [ପକ୍ଷୀ ।
ସ୍କୋଟିକା—ବି. ପକ୍ଷିବିଶେଷ, ଖଞ୍ଜନିକା
ସ୍ଖଦନ—ବି. (ସ୍ଖଦ୍ + ଭା.ଅନ) ବିଦାରଣ, ଫାଡ଼ିବା, କାଟିବା, ସ୍ଥୈର୍ଯ୍ୟ, ହିଂସନ, କଷ୍ଟଦେବା, ଉତ୍ପୀଡ଼ନ ।
ସ୍ଖଳନ—ବି. (ସ୍ଖଲ୍ + ଭା.ଅନ) ବିଚ୍ୟୁତି, ପତନ, ଗୋଡ଼ଖସଡ଼ି ପଡ଼ିଯିବା, ଝୁଣ୍ଟି ପଡ଼ିଯିବା, ଚଳିତପାତ, ଧକ୍କା, ଅର୍ଦ୍ଧୋଚ୍ଚାରଣ, ସ୍ଥାନଚ୍ୟୁତ, ଭ୍ରମ ହେବା, ବିକଳ ହେବା, ବିକୃତ, ଅନୁଦ୍ଦିଷ୍ଟ ବାକ୍ୟକଥନ, ନିୟମଲଙ୍ଘନ, ବିରୁଦ୍ଧାଚରଣ, ନ୍ୟାୟରୁ, ଧର୍ମରୁ ବା ନୀତିମାର୍ଗରୁ ଚ୍ୟୁତ, ବିଫଳହେବା, କ୍ଷୋଭ, ଆଘାତଦ୍ୱାରା ଶୃଙ୍ଖଳ୍ୟ, ଭ୍ରଂଶ, ମୋଚନ ।
ସ୍ଖଳିତ—ବିଂ. (ସ୍ଖଲ୍ + କ.ତ) ପତିତ, ମୁକ୍ତ, ଭ୍ରଷ୍ଟ, ଚ୍ୟୁତ, ବିଚଳିତ, ସ୍ଥାନଚ୍ୟୁତ, ଗୋଡ଼ଖସିଯାଇ ପଡ଼ି ଯାଇଥିବା, ବିଫଳୀକୃତ, କୁଣ୍ଠିତ, ଅର୍ଦ୍ଧୋଚ୍ଚାରିତ, ପ୍ରତିହତ, ବିକୃତ, ମତ୍ତ, ଝୁଣ୍ଟିକରି ପଡ଼ିଯାଇଥିବା, (ବି. ଭା.ତ) କୂଟଯୁଦ୍ଧାଦିଦ୍ୱାରା ଯୁଦ୍ଧମର୍ଯ୍ୟାଦାରୁ ସ୍ଖଳନ. ଛଳ, ସ୍ଖଳନ, ଭୁଲ, ଭ୍ରାନ୍ତି, ଉଚ୍ଚାରଣରେ ଭ୍ରାନ୍ତି, (ସ୍ତ୍ରୀ) ସ୍ଖଳିତା ।
ସ୍ଖଳିତବଚନ—ବି. (କ.ଧା) ଅର୍ଦ୍ଧୋଚ୍ଚାରିତ ବଚନ, (ପୁଂ.ବିଂ) ଖନା ।
ସ୍ତକ୍—(ଧାତୁ) ପ୍ରତିଘାତ କରିବା ।
ସ୍ତଙ୍କୁ—ବି. ପ୍ରାଚୀନ କାଳରେ ବ୍ୟବହୃତ ଏକପ୍ରକାର ଆନଦ୍ଧବାଦ୍ୟ ।
ସ୍ତନ୍ଭ୍—ଧାତୁ) ସ୍ତମ୍ଭନ କରିବା ।
ସ୍ତନ୍—(ଧାତୁ) ଶବ୍ଦ କରିବା, ଗର୍ଜ୍ଜନ କରିବା ।
ସ୍ତନ-ବି.(ସ୍ତନ୍ + କ.ଅ) ଅବୟବବିଶେଷ, କୁଚ, ପୟୋଧର, ଚୁଚୁକା, ଉଧ, (ଗ୍ରା. ବି) ଦୁଧ, ସ୍ତନନିଃସୃତ କ୍ଷୀର, ସ୍ତନ୍ୟ ।
ସ୍ତନକୀଳ—ବି. ସ୍ତନବିଦ୍ରଧି, ସ୍ତ୍ରୀମାନଙ୍କ ସ୍ତନରେ ହେବା ଏକପ୍ରକାର ବ୍ରଣ ।
ସ୍ତନଚୂଚୁକ—ବି. (ଷତତ୍ପୁ) ସ୍ତନର ବର୍ତ୍ତୁଳାକାର ଅଗ୍ର, ସ୍ତନର ଭୁଣ୍ଡି ।
ସ୍ତନଥୁ(ଥ)—ବି. (ସ୍ତନ୍ + ଭା.ଅଥୁ,ଅଥ) ଗର୍ଜନ ।
ସ୍ତନଧାରୀ—ସ୍ତ୍ରୀ. ବି. ଦୁଗ୍ଧପାନାର୍ଥ ସ୍ତନ ଦାନ କରୁଥିବା ସ୍ତ୍ରୀ ।
ସ୍ତନନ—ବି. (ସ୍ତନ + ଭା.ଅନ) ରବ, ଧ୍ୱନି, ମେଘଧ୍ୱନି, କ୍ରନ୍ଦନଧ୍ୱନି, ଆର୍ତ୍ତିଧ୍ୱନି ।
ସ୍ତନନ୍ଧୟ—ପୁଂ.ବି. (ସ୍ତନଂ + ଧେ + କ. ଅ) ସ୍ତନ୍ୟପାୟୀ, ଦୁଗ୍ଧପୋଷ୍ୟ, ଅତି ଶିଶୁ, (ବି) ସ୍ତନଂଜୀବୀ ଶିଶୁ, ଯେଉଁ ଶିଶୁ ଦୁଧ ଛାଡ଼ି ନ ଥାଏ, ବାଛୁରି, (ସ୍ତ୍ରୀ) ସ୍ତନନ୍ଧୟୀ । [ (ସ୍ତ୍ରୀ ସ୍ତନପା ।
ସ୍ତନପ-ପୁଂ.ବି. ଓ ବିଂ. ସ୍ତନନ୍ଧୟ ଦେଖ,
ସ୍ତନପାନ—ବି. ସ୍ତନ୍ୟପାନ, ସ୍ତନରୁ ଦୁଧ ପିଇବା ।
ସ୍ତନପାୟିକା—ସ୍ତ୍ରୀ.ବି.ଓବିଂ. ସ୍ତନନ୍ଧୟୀ, ଅତିଶିଶୁ ବା ଦୁଗ୍ଧପୋଷ୍ୟ ବାଳିକା ।
ସ୍ତନପାୟୀ—ପୁଂ. ବି. ଓ ବିଂ. (ସ୍ତନନ୍ଧୟ ଦେଖ, (ସ୍ତ୍ରୀ)ପାୟିନୀ ।
ସ୍ତନବିଦ୍ରଧି—ବି. ସ୍ତନରୋଗ ଦେଖ ।
ସ୍ତନବୃନ୍ତ—ବି.(ଷତତ୍ପୁ) ସ୍ତନମୁଖ ଦେଖ ।
ସ୍ତନଭବ—ବିଂ. ସ୍ତନଜାତ, (ବି) ରତି ବନ୍ଧବିଶେଷ ।
ସ୍ତନଭର—ପୁଂ. ବିଂ. ସ୍ତ୍ରୀମାନଙ୍କ ପରି ସ୍ଥୂଳସ୍ତନବିଶିଷ୍ଟ (ପୁରୁଷ), (ବି) ସ୍ଥୂଳ ସ୍ତନ, ସ୍ତ୍ରୀଙ୍କ ପରି ପୃଥୁଳସ୍ତନବିଶିଷ୍ଟ ପୁରୁଷ ।
ସ୍ତନଭରି-ଗ୍ରା.ବିଂ. ସ୍ତନଭରଦ୍ୱାରା ଆକ୍ରାନ୍ତ
ସ୍ତନଭାର—ବି. (ଷତତ୍ପୁ) ସ୍ଥୂଳ ସ୍ତନର ବୋଝ ।
ସ୍ତନଭାରନମ୍ର(ତ)—ବିଂ ସ୍ତନର ଭାର ଯୋଗୁଁ ଆଗକୁ ଝୁଙ୍କି ପଡ଼ିଥିବା(ଦେହ)
ସ୍ତନମଣ୍ଡଳ—ବି. ସ୍ତନର ପରିଧି ବା ତଳଡ଼ା । [ ସ୍ତନାନ୍ତର ।
ସ୍ତନମଧ୍ୟ—ବି. ଦୁଇ ସ୍ତନର ମଧ୍ୟସ୍ଥାନ,
ସ୍ତନମୁଖ—ବି. (ଷତତ୍ପୁ) ସ୍ତନାଗ୍ର, ଚୁଚୁକ, ଦୁଧର ଭୁଣ୍ଡି ।
ସ୍ତନୟିତ୍ନୁ—ବି. ( ସ୍ତନ୍ + କ. ଇତ୍ନୁ ) ମେଘ, ମୁଥା, ମେଘଗର୍ଜନ, ବିଦ୍ୟୁତ୍, ମୃତ୍ୟୁ, ରୋଗ, ପୀଡ଼ା ।
ସ୍ତନରୋଗ—ବି. ସ୍ତନରେ ଜାତହେବା ରୋଗ, ଥନହରା ।
ସ୍ତନରୋହିତ—ବି. ସ୍ତନର ଅଗ୍ରଭାଗର ଉପରଆଡ଼େ ଦୁଇଆଙ୍ଗୁଳ ପରିମିତ ଅଂଶ
ସ୍ତନଶିଖା—ବି.(ଷତତ୍ପୁ)ସ୍ତନମୁଖ ଦେଖ ।
ସ୍ତନଶୋଷ—ବି. ଏକପ୍ରକାର ରୋଗ, ଯହିଁରେ ସ୍ତନ ଶୁଖିଯାଏ ।
ସ୍ତନହରା—ଗ୍ରା.ବି. (ସଂ-ସ୍ତନାହାରା) ସ୍ତନ ରୋଗ ଦେଖ ।
ସ୍ତନାଗ୍ର—ବି. (ଷତତ୍ପୁ) ସ୍ତନମୁଖ ଦେଖ ।
ସ୍ତନାନ୍ତର—ବି. (ଷତତ୍ପୁ) ସ୍ତନଦ୍ୱୟର ମଧ୍ୟବର୍ତ୍ତୀ ସ୍ଥାନ, ହୃଦୟ, ସ୍ତନଦ୍ୱୟର ମଧ୍ୟସ୍ଥଳସ୍ଥିତ ସମତଳ ଚିହ୍ନ ବିଶେଷ (ଯାହାଥିଲେ ସ୍ତ୍ରୀ ବିଧବା ହୁଏ), ଅପର ସ୍ତନ ।
ସ୍ତନାଭୁଜ—ବି. ଓ. ବିଂ. (ସ୍ତନ + ଆ + ଭୁଜ୍ + କ.ଅ) ସ୍ତନ୍ୟପାୟୀ ଜୀବ ।

ସ୍ତନାଭୋଗ—ବି. (ସ୍ତନ + ଆଭୋଗ) ସ୍ତନଭର ଦେଖ ।

ସ୍ତନିତ—ବି. ( ସ୍ତନ୍ + ଣିଚ୍ + ଭା. ତ ) ମେଘଗର୍ଜନ, ବଜ୍ରଧ୍ୱନି, ଘଡ଼ଘଡ଼ିଶବ୍ଦ, କରତାଳିଶବ୍ଦ, ରତିଶବ୍ଦ, (ବିଂ.ର୍ମ.ତ) ଶବ୍ଦିତ, (କ.ତ) ଶବ୍ଦକାରକ, ଗର୍ଜନକାରୀ ।

ସ୍ତନିତକୁମାର— ବି. ଜୈନମାନଙ୍କର ଭୁବନାଧୀଶ ନାମରେ ଖ୍ୟାତ ଦେବଗଣ

ସ୍ତନିତଫଳ—ବି, ବିକଙ୍କତବୃକ୍ଷ, ଭୁଇଁଚଗଛ ।

ସ୍ତନ୍ୟ—ବି. (ସ୍ତନ + ଯ) ସ୍ତନର ଜାତ ଦୁଗ୍ଧ, (ବିଂ) ସ୍ତନ ସମ୍ବନ୍ଧୀୟ ।

ସ୍ତନ୍ୟଜୀବୀ—ପୁଂ. ବିଂ. (ସ୍ତନ୍ୟ + ଜୀବ୍ + କ.ଇନ୍) ଯେ ବା ଯାହା ଶୈଶବ କାଳରେ ମାତାର ସ୍ତନଦୁଗ୍ଧ ପାନ କରି ବଞ୍ଚିଥାଏ, (ସ୍ତ୍ରୀ) ଜୀବିନୀ ।

ସ୍ତନ୍ୟଦା—ସ୍ତ୍ରୀ.ବିଂ. ଯେଉଁ ସ୍ତ୍ରୀର ସ୍ତନରୁ ଦୁଗ୍ଧ ବାହାରେ, ଯେ ପିଲାଙ୍କୁ ଦୁଧ ପିଆଉଥାଏ ।

ସ୍ତନ୍ୟପ—ପୁଂ.ବି.ଓ ବିଂ. ସ୍ତନପ ଦେଖ, (ସ୍ତ୍ରୀ) ସ୍ତନ୍ୟପା ।

ସ୍ତନ୍ୟପାୟୀ—ପୁଂ.ବିଂ.(ସ୍ତନ୍ୟ + ପା + କ.ଇନ୍ )ସ୍ତନ ଜୀବୀ ଦେଖ,(ସ୍ତ୍ରୀ)ପାୟିନୀ ।

ସ୍ତନ୍ୟା—ସ୍ତ୍ରୀ.ବିଂ. (ସ୍ତନ୍ୟ + ଆ) ସ୍ତନ୍ୟର ସ୍ତ୍ରୀଲିଙ୍ଗ, (ବି) କଳମଶାଗ ।

ସ୍ତଭ—ବି. ( ସ୍ତନଭ୍ + କ. ଅ ) ଛାଗ, ଛେଳି ।

ସ୍ତମ୍ବ—ବି. (ସ୍ଥା + କ.ଅମ୍ବ) ଗୁଚ୍ଛ, ତୃଣାଦିର ଗୁଚ୍ଛ, ତୃଣ, କାଣ୍ଡରହିତ ବୃକ୍ଷ, ଗୁଳ୍ମ, ବିଟପ, ଶାଖା, ସ୍ତମ୍ଭ ଦେଖ, (ଣ.ଅ) ହସ୍ତିବନ୍ଧନ ସ୍ତମ୍ଭ, (ଭା.ଅ) ଅଜ୍ଞାନଅବସ୍ଥା, ଲୁଦା, ପର୍ବତ, ରୋହିତକ ବୃକ୍ଷ, ପର୍ବତବିଶେଷ ।

ସ୍ତମ୍ବକ—ବି. (ସ୍ତମ୍ବ + କ) ସ୍ତମ୍ବଶବ୍ଦାର୍ଥ, କ୍ଷବକବୃକ୍ଷ । [ ଶଯ୍ୟ ।

ସ୍ତମ୍ବକରି-ବି.(ସ୍ତମ୍ବ + କୃ + କ.ଇ)ଧାନ୍ୟ,

ସ୍ତମ୍ବକାର—ବିଂ, (ସ୍ତମ୍ବ + କୃ + ଅ) ଗୁଚ୍ଛକାରକ, ଯେ ଗୋଛାକରେ ବା ବାନ୍ଧେ

ସ୍ତମ୍ବଘନ—ବି. ( ସ୍ତମ୍ବ + ହନ୍ + କ.ଅ ) ତୃଣାଦିଚ୍ଛେଦନ କରିବା ଅସ୍ତ୍ର, ଦାଆ ପ୍ରଭୃତି, ଖୁରୁପି, ବଢ଼ା ।

ସ୍ତମ୍ବପୂ—ବି. ପୁଷ୍ପଭେଦ, ତାମ୍ରଳପ୍ତ, ତମଲୁକ୍ ।

ସ୍ତମ୍ବେରମ୍—ବି. (ସ୍ତମ୍ବେ + ରମ୍ + କ.ଅ) ହସ୍ତୀ, ହାତୀ ।

ସ୍ତମ୍ଭ—ବି. (ସ୍ତମ୍ଭ୍ + ଭା.ଅ) ଜଡ଼ଭାବ, ଖୁଣ୍ଟପରି ନିଶ୍ଚଳ ଭାବରେ ଅବସ୍ଥାନ, ନିଷ୍ପନ୍ଦଭାବ, ନିଶ୍ଚେଷ୍ଟତା, (କ.ଅ) ଖମ୍ବ, ଖୁଣ୍ଟ, ଦେହର ନିଶ୍ଚେଷ୍ଟତାରୂପ ବିକାରବିଶେଷ, ଗଛର ଗଣ୍ଡି,ରୋଗାଦି ହେତୁ ଜ୍ଞାନଶୂନ୍ୟାବସ୍ଥା, (ଭା.ଅ) ଇନ୍ଦ୍ରିୟଜାଲଦ୍ୱାରା ଚେଷ୍ଟାରୋଧ, ପ୍ରତିବନ୍ଧ, ପ୍ରତିଭାଶୂନ୍ୟତା, (ଣ.ଅ) ଠେକ, ନିର୍ବୋଧପଣ ।

ସ୍ତମ୍ଭକ—ପୁଂ. ବିଂ. (ସ୍ତମ୍ଭ୍ + କ,ଅକ) ସ୍ତମ୍ଭକର ଦେଖ, (ବି) ଶିବ ।

ସ୍ତମ୍ଭକର—ପୁଂ.ବିଂ. (ସ୍ତମ୍ଭ୍ + କୃ + ଅ) ରୋଧକ, ଯେ ଜଡ଼ କରେ, ଯାହା ସ୍ତମ୍ଭ କରେ, ବୀର୍ଯ୍ୟସ୍ତମ୍ଭକ (ଔଷଧ), ମଳାବରୋଧକାରୀ । [ ବିଶେଷ ।

ସ୍ତମ୍ଭକୀ—ବି. ପ୍ରାଚୀନ ଆନଦ୍ଧବାଦ୍ୟଯନ୍ତ୍ର-

ସ୍ତମ୍ଭନ—ବି. (ସ୍ତମ୍ଭ୍ + ଭା.ଅନ) ଜଡ଼ୀକରଣ, ତନ୍ତ୍ରୋକ୍ତ ଷଟ୍‌କର୍ମାନ୍ତର୍ଗତ ଅଭିଚାରକର୍ମ, ଅବରୋଧ, ଅଟକାହୋଇ ରହିବା, ସ୍ଥିରୀକରଣ, ନିବାରଣ, ରକ୍ତ ପ୍ରବାହର ଗତିରୋଧ, ଜଡ଼ୀକରଣ ସାଧନ, ମନ୍ତ୍ରାଦିଦ୍ୱାରା ଶକ୍ତିହୀନ ଓ ନିଶ୍ଚଳକରଣ, ଦୃଢ଼ୀକରଣ. (କ.ଅନ) କାମଦେବଙ୍କ ପଞ୍ଚବାଣ ମଧ୍ୟରୁ ଏକତମ, (ଣ.ଅନ) ଠେକ, (ଭା.ଅନ) ବୀର୍ଯ୍ୟ ସ୍ଖଳନର ରୋଧ, (ଣ.ଅନ) ବିଳମ୍ବରେ ବୀର୍ଯ୍ୟସ୍ଖଳନ କରାଇବା ଔଷଧ, ମଳାବରୋଧକ ଔଷଧ ।

ସ୍ତମ୍ଭନୀ—ବି. (ସ୍ତମ୍ଭନ + ଈ) ଏକପ୍ରକାର ଇନ୍ଦ୍ରଜାଲ ।

ସ୍ତମ୍ଭନୀୟ—ବିଂ. (ସ୍ତମ୍ଭ + ର୍ମ. ଅନୀୟ) ସ୍ତମ୍ଭିତ ହେବା ଯୋଗ୍ୟ, ସ୍ତମ୍ଭାର୍ହ ।

ସ୍ତମ୍ଭବୃତ୍ତି—ବି.ପ୍ରାଣାୟାମର ଅଙ୍ଗବିଶେଷ, କୁମ୍ଭକ ।

ସ୍ତମ୍ଭି—ବି. (ସ୍ତମ୍ଭ + କ.ଇ) ସମୁଦ୍ର ।

ସ୍ତମ୍ଭିକା—ବି.(ସ୍ତମ୍ଭ + କ. ଆ)ଖଟଆଦିର ଗୋଡ଼ ବା ଖୁରା, ଖୁଣ୍ଟି, ଛୋଟଖମ୍ବ ।

ସ୍ତମ୍ଭିତ—ବିଂ. (ସ୍ତମ୍ଭ୍ + ଣିଚ + ର୍ମ.ତ) ଜଡ଼ୀକୃତ, ନିବାରିତ, ରୁଦ୍ଧ, ସ୍ଥଗିତ, ଦୃଢ଼ୀକୃତ, ନିଷ୍ପନ୍ଦୀକୃତ, ସ୍ଥିରୀକୃତ ।

ସ୍ତମ୍ଭିନୀ—ସ୍ତ୍ରୀ.ବିଂ.(ସ୍ତମ୍ଭିନ୍ + ଈ) ସ୍ତମ୍ଭୀର ସ୍ତ୍ରୀଲିଙ୍ଗ, (ବି) ଯୋଗଶାସ୍ତ୍ରାନୁସାରେ ୫ ଗୋଟି ଧାରଣା ମଧ୍ୟରୁ ଏକତମ ।

ସ୍ତମ୍ଭୀ—ପୁଂ.ବିଂ. (ସ୍ତମ୍ଭ + ଇନ୍) ସ୍ତମ୍ଭଯୁକ୍ତ, ସ୍ତମ୍ଭକର ଦେଖ, (ବି) ସମୁଦ୍ର, (ଗ୍ରା.ବିଂ) ଜଡ଼, ସ୍ଥିର, ନିଶ୍ଚଳ ।

ସ୍ତମ୍ଭୀଭୂତ-ବିଂ.(ସ୍ତମ୍ଭ୍ + ଭୂ + ଚ୍ୱି + କ.ତ) ଜଡ଼ୀଭୂତ, ନିଶ୍ଚଳ ।

ସ୍ତର—ବି. (ସ୍ତୃ + ର୍ମ.ଅ) ଥାକ, ଭୂମି ଆଦିର ଉପର୍ଯ୍ୟୁପରି ନିହିତ ପରସ୍ତ, ଶଯ୍ୟା, ତଳ୍ପ ।

ସ୍ତରଣ—ବି. (ସ୍ତୃ + ଭା.ଅନ) ବିସ୍ତାରିବା ବା ବିଛାଇବା କର୍ମ, (ର୍ମ.ଅନ) ଶଯ୍ୟା, ବିଛଣା ।

ସ୍ତରଣୀୟ—ବିଂ. ( ସ୍ତୃ + ର୍ମ.ଅନୀୟ ) ବିସ୍ତୃତ ହେବା ଯୋଗ୍ୟ, ସ୍ତର୍ଯ୍ୟ ।

ସ୍ତରି(ରୀ)ମା—ବି.(ସ୍ତୃ + କ.ଇମନ୍)ତଳ୍ପ, ଶଯ୍ୟା ।

ସ୍ତରୀ—ବି. (ସ୍ତୃ + କ.ଇନ୍) ଧୂମ, ଧୂଆଁ ।

ସ୍ତରୁ—ବି. (ସ୍ତୃ + କ.ଉ) ଶତ୍ରୁ ।

ସ୍ତବ—ବି. (ସ୍ତୁ + ଭା.ଅ) ପ୍ରଶଂସା, ଗୁଣ ବର୍ଣ୍ଣନ, ସ୍ତୁତି, ଗୁଣଖ୍ୟାପନ, ଗୁଣ ପ୍ରାର୍ଥନା, ସ୍ତୋତ୍ର ।

ସ୍ତବକ—ବି. (ସ୍ତୁ + କ.ଅବକ) ଫୁଲ ଆଦିର ପେଣ୍ଡା, ସମୂହ,ଗ୍ରନ୍ଥପରିଚ୍ଛେଦ, (ର୍ମ.ଅକ) ସ୍ତବ ଦେଖ, (ପୁଂ.ବିଂ) ସ୍ତବକାରକ ।

ସ୍ତବକରିବା—କ୍ରି. କି. ଗୁଣଗାନପୂର୍ବକ ପ୍ରାର୍ଥନା କରିବା, ପ୍ରଶଂସାଗାନକରିବା, ଖୋସାମଦ କରିବା ।

ସ୍ତବକସ୍ତନ—ବି. ସ୍ତନ ସଙ୍ଗେ ତୁଳନା

କରାଯିବା(ଅଶୋକ)ପୁଷ୍ପାଦିର ପେଣ୍ଡା ।
ସ୍ତବକିତ—ବିଂ. (ସ୍ତବକ+ଇତ) ଗୁଚ୍ଛୀକୃତ, ତୋଡ଼ାବନ୍ଧା ଯାଇଥିବା ।
ସ୍ତବକୀର୍ତ୍ତନ—ବି. ମହିମା କଥନ ବା ପ୍ରଶଂସାଗାନ । [ ଦେଖ ।
ସ୍ତବଗାନ—ବି (ଷତତ୍) ସ୍ତବକୀର୍ତ୍ତନ
ସ୍ତବଥ—ବି. (ସ୍ତୁ+ଭା.ଅଥ) ସ୍ତୁତି, ସ୍ତବ ।
ସ୍ତବଦ(ଧ)—ବିଂ. (ପଦ୍ୟ)ସ୍ତବ୍ଧ, ନିଶ୍ଚଳ, ନିଃଶବ୍ଦ ।
ସ୍ତବନ—ବି. (ସ୍ତୁ+ଭା.ଅନ) ସ୍ତବକରଣ, ଗାନ, ସ୍ତୁତି କରିବା ।
ସ୍ତବନୀୟ—ବିଂ. (ସ୍ତୁ+ର୍ମି.ଅନୀୟ)ଯାହାଙ୍କୁ ସ୍ତବ କରିବା ଉଚିତ, (ସ୍ତ୍ରୀ)ସ୍ତବନୀୟା ।
ସ୍ତବପ୍ରିୟ—ବିଂ.(ବ.ବ୍ରୀ)ଯେ ସ୍ତୁତହେବାକୁ ସୁଖ ପାଆନ୍ତି, (ବି) ବିଷ୍ଣୁଙ୍କ ନାମ ।
ସ୍ତବରକ—ପୁଂ. ବିଂ.ଆବରକ,ବେଷ୍ଟନୀ ।
ସ୍ତବରାଜ—ବି. ( ଷତତ୍ ) ଶ୍ରେଷ୍ଠ ସ୍ତବ, ଉତ୍ତମ ସ୍ତବ, ସୂର୍ଯ୍ୟସ୍ତବ ।
ସ୍ତବସ୍ତୁତି—ବି. ପ୍ରାର୍ଥନା ଓ ଗୁଣଗାନ ।
ସ୍ତବାବଳି—ବି.ବହୁ ସ୍ତବ,ଅନେକ ସ୍ତବ ।
ସ୍ତବିତବ୍ୟ—ବିଂ. (ସ୍ତୁ+ର୍ମି.ତବ୍ୟ) ସ୍ତୁତହେବା ଯୋଗ୍ୟ, ପ୍ରଶଂସନୀୟ ।
ସ୍ତବିତା—ବି. ଓ ବିଂ. (ସ୍ତୁ+କ.ତୃ) ସ୍ତବକାରୀ, ପ୍ରଶଂସାକାରୀ, (ସ୍ତ୍ରୀ) ସ୍ତବିତ୍ରୀ ।
ସ୍ତବିବା—ଗ୍ରା. କ୍ରି. ସ୍ତବ କରିବା ।
ସ୍ତବେଷ୍ୟ(ଷ୍ୟ)-ବି.(ସ୍ତୁ+ର୍ମି.ଏଷ୍ୟ,ଇଷ୍ୟ) ଇନ୍ଦ୍ର ।
ସ୍ତବ୍ଧ—ବିଂ. (ସ୍ତମ୍ଭ୍+କ.ତ) ନିଷ୍ପନ୍ଦ, ନିଶ୍ଚଳ, ଜଡ଼ୀଭୂତ, ସ୍ତମ୍ଭିତ, ଅନମ୍ର, ଅବଶୀକୃତ, ଦୃଢ଼ୀକୃତ,ମୂର୍ଚ୍ଛିତ,ବଧିର, କାଲ, ଗର୍ବିତ, ସ୍ଥିର, ଦୃଢ଼, ଅଳସ, ଦୁରବସ୍ଥ, ମନ୍ଦା, (ସ୍ତ୍ରୀ) ସ୍ତବ୍ଧା, ( ବି ) ବଂଶୀର ଛଅଗୋଟି ଦୋଷମଧ୍ୟରୁ ଏକ ।
ସ୍ତବ୍ଧକର୍ଣ୍ଣ—ବି. ସ୍ଥିରଊର୍ଦ୍ଧ୍ୱକର୍ଣ୍ଣ,(ପୁଂ.ବିଂ) ସ୍ଥିରଊର୍ଦ୍ଧ୍ୱକର୍ଣ୍ଣବିଶିଷ୍ଟ, (ସ୍ତ୍ରୀ) ସ୍ତବ୍ଧକର୍ଣ୍ଣା ।
ସ୍ତବ୍ଧତା—ବି. (ସ୍ତବ୍ଧ+ତ+ଆ)ସ୍ତବ୍ଧତ୍ୱ, ବଧିରତା, ଦୃଢ଼ତା, ସ୍ପନ୍ଦହୀନତା, ନିଶ୍ଚଳତା ।
ସ୍ତବ୍ଧପାଦ—ପୁଂ. ବିଂ. ( ବ.ବ୍ରୀ ) ଖଞ୍ଜ, ପଙ୍ଗୁ, ଟେଣ୍ଟା, ଲେଙ୍ଗଡ଼ା, ( ସ୍ତ୍ରୀ ) ସ୍ତବ୍ଧପାଦା ।
ସ୍ତବ୍ଧମତି(ବୁଦ୍ଧି)—ବି. (କ.ଧା) ମନ୍ଦବୁଦ୍ଧି, ନିର୍ବୋଧତା, (ପୁଂ. ଓ ସ୍ତ୍ରୀ. ବିଂ) ମନ୍ଦବୁଦ୍ଧିବିଶିଷ୍ଟ । [ ନପୁଂସକ ।
ସ୍ତବ୍ଧମେଢ୍ର—ପୁଂ. ବିଂ. (ବ.ବ୍ରୀ) କ୍ଳୀବ,
ସ୍ତବ୍ଧରୋମା—ବି.(ବ.ବ୍ରୀ) ବରାହ,ଶୂକର, (ବିଂ)ଯାହାର ରୋମ ଠିଆହୋଇଥାଏ ।
ସ୍ତବ୍ଧୀଭୂତ-ବିଂ.(ସ୍ତବ୍ଧ+ଚ୍ୱି+ଭୂ+କ.ତ) ନିଷ୍ପନ୍ଦୀଭୂତ, ଜଡ଼ତ୍ୱପ୍ରାପ୍ତ, ( ସ୍ତ୍ରୀ ) ସ୍ତବ୍ଧୀଭୂତା, (ବି) ସ୍ତବ୍ଧୀଭାବ ।
ସ୍ତବ୍ୟ—ପୁଂ. ବିଂ. (ସ୍ତୁ+ର୍ମି.ଯ)ସ୍ତବନୀୟ, ପ୍ରଶଂସ୍ୟ, (ସ୍ତ୍ରୀ) ସ୍ତବ୍ୟା, (ବି) ବିଷ୍ଣୁସହସ୍ରନାମ ମଧ୍ୟରୁ ଏକତମ ।
ସ୍ତାବ—ବି. ( ସ୍ତୁ+ଭା.ଅ ) ସ୍ତବ ଦେଖ, (ବିଂ) ସ୍ତାବକ ଦେଖ ।
ସ୍ତାବକ—ପୁଂ ବିଂ. (ସ୍ତୁ+କ.ଅକ)ସ୍ତବକାରୀ, (ବି) ସ୍ତୁତିପାଠକ ଲୋକ ।
ସ୍ତାବ୍ୟ—ବିଂ. ( ସ୍ତୁ+ର୍ମି.ଯ ) ସ୍ତବନୀୟ, ସ୍ତବାର୍ହ ।
ସ୍ତିଭି—ପୁଂ. ବି. ସମୁଦ୍ର, ସ୍ତବକ ।
ସ୍ତିଭିନୀ—ସ୍ତ୍ରୀ. ସ୍ତିଭି, ସ୍ତବକ ।
ସ୍ତିମ୍(ଧାତୁ)—ଆର୍ଦ୍ରହେବା,କ୍ଳିନ୍ନହେବା ।
ସ୍ତିମି—ବି.(ସ୍ତିମ୍+କ.ଇ)ପୁଷ୍ପଗୁଚ୍ଛ,ସ୍ତବକ, ସମୁଦ୍ର, ପ୍ରତିବନ୍ଧ, ଅବରୋଧ ।
ସ୍ତିମିତ—ବିଂ(ସ୍ତିମ୍+କ.ତ) ଆର୍ଦ୍ର, ସିକ୍ତ, ସ୍ଥିର, ନିଶ୍ଚଳ, ଶାନ୍ତ, ପ୍ରସନ୍ନ, ସନ୍ତୁଷ୍ଟ, (ବି-ଭା.ତ)ଜଡ଼ତା,ନିଶ୍ଚଳତା, ଆର୍ଦ୍ରତା ।
ସ୍ତିମିତଦୃଷ୍ଟି—ବି. ଏକଦୃଷ୍ଟି, ଏକାଗ୍ରଦୃଷ୍ଟି, ନିଶ୍ଚଳଦୃଷ୍ଟି, (ପୁଂ. ଓ ସ୍ତ୍ରୀ.ବିଂ) ସ୍ତିମିତନୟନ ଦେଖ ।
ସ୍ତିମିତନୟନ—ବି.(କ.ଧା)ଏକଦୃଷ୍ଟିଯୁକ୍ତ, ଚକ୍ଷୁ, ସ୍ଥିରଚକ୍ଷୁ, (ପୁଂ.ବିଂ-ବ.ବ୍ରୀ)ସ୍ଥିରଦୃଷ୍ଟିଯୁକ୍ତ, (ସ୍ତ୍ରୀ) ସ୍ତିମିତନୟନା ।
ସ୍ତୀଭି—ବି ( ସ୍ତୁ+କ.ଇ) ନଭଃ,ଆକାଶ, ରୁଧିର, ତୃଣ, ଅଧ୍ୱର୍ଯ୍ୟୁ, ଯଜୁର୍ବେଦଜ୍ଞ ଋତ୍ୱିକ୍,ଜଳ,ଶତ୍ରୁ ଶରୀର,ଭସ୍ମ,ଇନ୍ଦ୍ର ।
ସ୍ତୀମ—ବିଂ. ଅଳସ । [ ହୋଇଥିବା ।
ସ୍ତୀର୍ଣ୍ଣ—ବିଂ. (ସ୍ତୃ+ତ) ବିସ୍ତୃତ, ବିଛା-
ସ୍ତୁ—(ଧାତୁ) ସ୍ତବକରିବା,ପ୍ରଶଂସା କରିବା ।
ସ୍ତୁକ-ପୁଂ.ବି.(ସ୍ତୁ+ର୍ମି.କ)ସନ୍ତାନ,ଅପତ୍ୟ, (ସ୍ତ୍ରୀ) ସ୍ତୁକା । [ ପ୍ରଶଂସା କରିବା ।
ସ୍ତୁଚ୍(ଧାତୁ)—ପ୍ରସନ୍ନ କରିବା,ସ୍ତବ କରିବା,
ସ୍ତୁଟି—ବି. ଭରଦ୍ୱାଜ ପକ୍ଷୀ ।
ସ୍ତୁତ—ବିଂ.(ସ୍ତୁ+ର୍ମି.ତ)ପ୍ରଶଂସିତ,ଯାହାକୁ ସ୍ତୁତି କରାଯାଉଥାଏ, ସ୍ତୁତି କରୁଥିବା, (ସ୍ତ୍ରୀ) ସ୍ତୁତା, (ବି-ଭା.ତ) ସ୍ତବ,ସ୍ତୁତି,ମହାଦେବ, ପ୍ରଶଂସା । [ ସ୍ତୁତସ୍ତୋମା ।
ସ୍ତୁତସ୍ତୋମ—ପୁଂ. ବିଂ. ପ୍ରଶଂସିତ, (ସ୍ତ୍ରୀ)
ସ୍ତୁତି—ବି. (ସ୍ତୁ+ଣି.ତି) ସ୍ତବ, (ଭା.ତି) ପ୍ରଶଂସା, ଗୁଣକୀର୍ତ୍ତନ, ( ର୍ମି.ତି-ପୁଂ ) ସହସ୍ରନାମୋକ୍ତ ବିଷ୍ଣୁଙ୍କର ନାମ, (ସ୍ତ୍ରୀ) ଦୁର୍ଗା ।
ସ୍ତୁତିଗୀତକ-ପୁଂ.ବିଂ. ପ୍ରଶଂସାଗାନକାରୀ ।
ସ୍ତୁତିପାଠ—ବି. (ଷତତ୍) ପ୍ରଶଂସାଗାନ ।
ସ୍ତୁତିପାଠକ—ପୁଂ.ବି.ଭାଟ, ବନ୍ଦୀ,ମାଗଧ, ଯେଉଁମାନେ ରାଜାଙ୍କ ନିକଟରେ ତାଙ୍କର ଯଶୋଗାନ କରନ୍ତି ।
ସ୍ତୁତିପ୍ରିୟ—ପୁଂ. ବିଂ. (ବ.ବ୍ରୀ)ଯେ ନିଜର ପ୍ରଶଂସା ଶୁଣି ଖୁସି ହୁଅନ୍ତି,(ସ୍ତ୍ରୀ)ସ୍ତୁତିପ୍ରିୟା
ସ୍ତୁତିବାକ୍ୟ(ଗୀ)-ବି.(କ.ଧା)ପ୍ରଶଂସାବାକ୍ୟ ।
ସ୍ତୁତିବାଦ—ବି. (ଷତତ୍) ପ୍ରଶଂସାସୂଚକ ବାକ୍ୟ, ଗୁଣଗାନ, ଚାଟୁବାକ୍ୟ ।
ସ୍ତୁତିବାଦକ—ପୁଂ. ବିଂ. (ସ୍ତୁତି+ବଦ୍+କ.ଅକ) ପ୍ରଶଂସାକାରୀ,ଚାଟୁକାରୀ, (ସ୍ତ୍ରୀ) ସ୍ତୁତିବାଦିକା । [ ଭାଟ ।
ସ୍ତୁତିବ୍ରତ—ପୁଂ.ବି. (ବ.ବ୍ରୀ) ସ୍ତୁତିପାଠକ,
ସ୍ତୁତ୍ୟ—ବିଂ.(ସ୍ତୁ+ର୍ମି.ଯ) ସ୍ତବର ଯୋଗ୍ୟ, ସ୍ତବନୀୟ, ପ୍ରଶଂସନୀୟ ।
ସ୍ତୁନକ—ବି. ଛାଗ ।
ସ୍ତୁନ୍ଭ୍—(ଧାତୁ)(ସଂ-ସୌତ୍ରଧାତୁ)ରୋଧନ କରିବା, ଆବରଣ କରିବା ।
ସ୍ତୁବ—ବିଂ.(ସ୍ତୁ+କ.ବ)ସ୍ତବକାରୀ,ସ୍ତାବକ, ଉପାସକ, ପୂଜକ, (ଅଧି.ବ) ଗଣ୍ଡ ।
ସ୍ତୁବେଯ୍ୟ—ପୁଂ. ବି. ଇନ୍ଦ୍ର ।
ସ୍ତୁଭ—(ଧାତୁ) ରୋଧ କରିବା । [ ସ୍ତୁଭା ।
ସ୍ତୁଭ—ପୁଂ. ବି. ଛାଗ, ଅଗ୍ନିବିଶେଷ,(ସ୍ତ୍ରୀ)
ସ୍ତୁଷେୟ୍ୟ-ବିଂ.ସ୍ତୁତ୍ୟ,ପ୍ରଶଂସନୀୟ, ଉତ୍ତମ ।

ସ୍ତୂପ—(ଧାତୁ) ଗଦା କରିବା ।

ସ୍ତୂପ—ବି. (ସ୍ତୂପ୍+ମି.ଅ) ମାଟିର ବା ଅନ୍ୟଦ୍ରବ୍ୟର ଗଦା, ରାଶୀକୃତ ମୃତ୍ତିକାଦି, ମାଟିର ଢିପ, ସଙ୍ଘାତ, ବଳ, ସୈନ୍ୟ, କଷ୍ଟସ୍ତୋଜନତା, ମାଟି.ପଥର, ଇଟାଆଦିରେ ନିର୍ମିତ ଢିପ, ଯହିଁତଳେ ବୁଦ୍ଧଦେବଙ୍କର ବା କୌଣସି ବୌଦ୍ଧ ମହାତ୍ମାଙ୍କ ଅସ୍ଥି, ଦନ୍ତ, କେଶଆଦି ସ୍ମୃତିଚିହ୍ନ ରକ୍ଷିତ ହୋଇଥାଏ ।

ସ୍ତୂପାକାର—ବିଂ. (ବ.ବ୍ରୀ) ରାଶୀକୃତ ଗଦାହୋଇଥିବା ।

ସ୍ତୂପୀକୃତ—ବିଂ. (ସ୍ତୂପୀ+କୃ+ମି.ତ) ରାଶୀକୃତ, ଗଦାହୋଇଥିବା ।

ସ୍ତୂୟମାନ—ପୁଂ. ବିଂ. (ସ୍ତୁ+ମି.ଆନ) ଯାହାଙ୍କୁ ସ୍ତବ କରାଯାଉଅଛି, (ସ୍ତ୍ରୀ) ସ୍ତୂୟମାନା ।

ସ୍ତୃ—(ଧାତୁ) ବିସ୍ତୃତକରିବା, ଆଚ୍ଛାଦନ କରିବା ।

ସ୍ତୃକ୍ଷ—(ଧାତୁ) ଗତି କରିବା ।

ସ୍ତୃତ—ବିଂ. ( ସ୍ତୃ+ମି.ତ ) ଆଚ୍ଛାଦିତ, ବିସ୍ତୃତ ।

ସ୍ତୃତି—ବି. (ସ୍ତୃ+ଭା.ତି) ବିସ୍ତୃତି, ଆଚ୍ଛାଦନ ।

ସ୍ତୃନ—(ଧାତୁ) ପ୍ରୀତିଚେଷ୍ଟା କରିବା ।

ସ୍ତୃହ—(ଧାତୁ) ବଧ କରିବା ।

ସ୍ତେନ—(ଧାତୁ) ଚୋରି କରିବା ।

ସ୍ତେନ—ବି. ( ସ୍ତେନ+ଭା.ଅ ) ସ୍ତେୟ, ଚୌର୍ଯ୍ୟ, ଚୋରି, ପରସ୍ୱାପହରଣ, (କ.ଅ) ତସ୍କର, ଚୋର, ପରଦ୍ରବ୍ୟାପହାରକ, ଦେବତାଙ୍କୁ ନିବେଦନ ନ କରି ଯେ ଅନ୍ନାଦି ଭୋଜନ କରେ, ଚୋରନାମକ ଗନ୍ଧଦ୍ରବ୍ୟ ।

ସ୍ତେପ—(ଧାତୁ) କ୍ଷେପଣକରିବା, ଝରିବା ।

ସ୍ତେମ—ବି. (ସ୍ତିମ୍+ଭା.ଅ) ଆର୍ଦ୍ରୀଭାବ ।

ସ୍ତେୟ—ବି. (ସ୍ତେନ୍+ଭା.ଯ) ଚୌର୍ଯ୍ୟ, ଚୋରି, ପରଦ୍ରବ୍ୟାପହରଣ, (ବିଂ-ମି.ଯ) ଅପହୃତ (ଦ୍ରବ୍ୟ), ଅପହରଣୀୟ ।

ସ୍ତେୟକୃତ୍—ବିଂ. ଚୋର, ସ୍ତେୟକାରୀ ।

ସ୍ତେୟୀ—ପୁଂ.ବି.(ସ୍ତେୟ+ଇନ୍)ଚୋର, ସ୍ୱର୍ଣ୍ଣକାର, ବଣିଆ, କନ୍ୟମୂଷିକ, (ସ୍ତ୍ରୀ) ସ୍ତେୟିନୀ ।

ସ୍ତୈନ—ବି. (ସ୍ତେନ+ଭା.ଅ) ଚୌର୍ଯ୍ୟ, ଚୋରି, (ସ୍ତେନ+କ.ଅ) ଚୋର ।

ସ୍ତୈନନିଗ୍ରହ—ବି. ( ୬ତତ୍ ) ଚୋରମାନଙ୍କୁ ଦଣ୍ଡଦେବା, ଚୋର ଅପରାଧ ବନ୍ଦ କରିବା ।

ସ୍ତୈନ୍ୟ—ବି. (ସ୍ତେନ+ଯ) ଚୋର, (ଭା.ଅ) ଚୌର୍ଯ୍ୟ ।

ସ୍ତୈମିତ୍ୟ—ବି.(ସ୍ତିମିତ+ଭା.ଯ)ଜଡ଼ତା ।

ସ୍ତୋକ—ବିଂ. ( ସ୍ତୁଚ୍+ମି.ଅ ) ଅଳ୍ପ, ଈଷତ୍, ଅତି ସାମାନ୍ୟ, କ୍ଷୁଦ୍ର, ଅଳ୍ପସଂଖ୍ୟକ, ନୀଚ, (କ୍ରି.ବିଂ)ଅଳ୍ପେ ଅଳ୍ପେ, (ବି) ଚାତକପକ୍ଷୀ, ଜଳବିନ୍ଦୁ, ଟିକିଏମାତ୍ର, (ସ୍ତ୍ରୀ) ସ୍ତୋକା ।

ସ୍ତୋକକ—ବି.(ସ୍ତୋକ+କ)ଚାତକପକ୍ଷୀ ।

ସ୍ତୋକକାୟ—ପୁଂ. ବିଂ. (ବ.ବ୍ରୀ) କ୍ଷୁଦ୍ରଶରୀରବିଶିଷ୍ଟ, ଗେଡ଼ା, (ସ୍ତ୍ରୀ) ସ୍ତୋକକାୟା ।

ସ୍ତୋକକୃଷ୍ଣ—ଗ୍ରା. ବି. ଗୋପରେ ଥିବା କୃଷ୍ଣଙ୍କର ସଙ୍ଗାତ ।

ସ୍ତୋକବାକ୍ୟ—ଗ୍ରା. ବି. ପ୍ରଶଂସାବାଚକ ବା ଖୋସାମତିଆ କଥା, ଭୁଲାଣିଆ କଥା ।

ସ୍ତୋକମାତ୍ର—ଗ୍ରା. ବି. ଓ ବିଂ. ସାମାନ୍ୟ ମାତ୍ର, ଅଳ୍ପମାତ୍ର ।

ସ୍ତୋକରଟ—ବି. (୬ତତ୍) ଚାତକଧ୍ୱନି ।

ସ୍ତୋତକ—ବି. ଚାତକ, ବତ୍ସନାଗବିଷ ।

ସ୍ତୋତବ୍ୟ—ବି. (ସ୍ତୁ+ମି.ତବ୍ୟ) ସ୍ତୁତ୍ୟ, ସ୍ତବଯୋଗ୍ୟ ।

ସ୍ତୋତା—ପୁଂ.ବିଂ. (ସ୍ତୁ+କ.ତୃ) ସ୍ତୁତିକାରକ, ସ୍ତବକାରକ, (ସ୍ତ୍ରୀ) ସ୍ତୋତ୍ରୀ, (ବି) ସହସ୍ରନାମୋକ୍ତ ବିଷ୍ଣୁଙ୍କ ନାମ ।

ସ୍ତୋତ୍ର—ବି. (ସ୍ତୁ+ଭା.ବା ଣି.ତ୍ର) ସ୍ତବ, ଦେବୋଦ୍ଦେଶ୍ୟରେ ପଠିତ ସ୍ତବ, ଗୁଣଗାନ ।

ସ୍ତୋତ୍ରଗୀତ—ବି. (୬ତତ୍) ସ୍ତବଗାନ, ସ୍ତୁତିସଙ୍ଗୀତ ।

ସ୍ତୋତ୍ରପାଠ—ବି.(୬ତତ୍) ସ୍ତବରଆବୃତ୍ତି, ସ୍ତବପାଠ ।

ସ୍ତୋତ୍ରପାଠକ—ପୁଂ.ବି. ଯେ ସ୍ତବପାଠ କରେ, (ସ୍ତ୍ରୀ) ସ୍ତୋତ୍ରପାଠିକା ।

ସ୍ତୋତ୍ରପ୍ରଣେତା—ପୁଂ.ବି. (୬ତତ୍) ଯେ ସ୍ତବ ରଚନା କରନ୍ତି, (ସ୍ତ୍ରୀ) ସ୍ତୋତ୍ରପ୍ରଣେତ୍ରୀ । [ ସ୍ତବ ।

ସ୍ତୋତ୍ରରଚନା—ବି. (୬ତତ୍) ସ୍ତୁତି ପ୍ରଣ-

ସ୍ତୋତ୍ରି(ତ୍ରୀ)ୟ—ବିଂ.ସ୍ତୋତ୍ରସମ୍ବନ୍ଧୀୟ ।

ସ୍ତୋଭ—ବି. (ସ୍ତୁଭ+ଭା.ଅ) ସ୍ତମ୍ଭନ ଦେଖ, ହେଳନ, ଅଗୌରବ, ବାଧାଦାନ, ସ୍ତବ, ସାମାବୟବବିଶେଷ, ଗୀତାଳାପ ପୂରଣାର୍ଥ ନିରର୍ଥକ ଶବ୍ଦ ବା ଅକ୍ଷର, ଚିରସ୍ମରଣ ।

ସ୍ତୋମ୍—(ଧାତୁ) ଶ୍ଲାଘା କରିବା ।

ସ୍ତୋମ——ବି. (ସ୍ତୋମ+ମି.ଅ) ରାଶି, ସମୂହ, ଯଜ୍ଞ, ଧନ, ମସ୍ତକ, ଶସ୍ୟ, ଲୌହାଗ୍ର ଦଣ୍ଡ, ସଂଘାଟ, ଗୃହ ଆଦିର ଭଉଁ, ଦଶ ଧନ୍ୱନ୍ତର ବା ୪୦ ହାତର ଏକମାପ, ଯଜ୍ଞକାରୀ ବ୍ୟକ୍ତି, (ଭା.ଅ) ସ୍ତବ, ସ୍ତୁତି, (ବିଂ) ନତ, ବକ୍ର ।

ସ୍ତୋମଭାଗିକ—ବିଂ. ସ୍ତୋମଭାଗାର୍ହ, ଯେ ଯଜ୍ଞ ଭାଗ ପାଇବାର ଉପଯୁକ୍ତ, ସ୍ତୋମ ଭାଗସମ୍ବନ୍ଧୀୟ ।

ସ୍ତୋମାୟନ—ବି. ସ୍ତୋମଯଜ୍ଞ ।

ସ୍ତୋମୀୟ—ବିଂ. ସ୍ତୋମଯୁକ୍ତ ।

ସ୍ତୋମ୍ୟ—ବିଂ. (ସ୍ତୋମ+ମି.ଯ) ସ୍ତୁତ୍ୟ, ସ୍ତୁତିର ଯୋଗ୍ୟ ।

ସ୍ତୌପିକ—ବି. (ସ୍ତୂପ+ଇକ) ବୌଦ୍ଧ ସ୍ତୂପ ମଧ୍ୟରେ ରକ୍ଷିତ ଅସ୍ଥି, ନଖ ଆଦି ସ୍ମୃତିଚିହ୍ନ, ଜୈନ ଯତିଙ୍କ ପାଖରେ ରଖାଯିବା ମର୍କ୍ଷନୀ ।

ସ୍ତୌଭ—ବିଂ. (ସ୍ତୋଭ+ଅ) ସ୍ତୋଭ ସମ୍ବନ୍ଧୀୟ ।

ସ୍ତ୍ୟାନ—ବିଂ.(ସ୍ତ୍ୟୈ+କ.ତ) ଧ୍ୱନିକାରକ, ସଂହତକର୍ତ୍ତା, (ମି.ତ) ନିବିଡ଼, ଘନ, ସଂହତ, ମିଳିତ, ଆଶ୍ୟାନ, ଟିକ୍କା ଓ ଚଟଚଟିଆ, ମସୃଣ, ସ୍ନିଗ୍ଧ, ସ୍ଥୂଳ, ଧ୍ୱନିତ, ଶବ୍ଦିତ, (ବି.ଭା.ତ) ଶବ୍ଦ, ନିବିଡ଼ତ୍ୱ, ଘନତ୍ୱ, ଆଳସ୍ୟ, ପ୍ରତିଧ୍ୱନି, ଅମୃତ ।

ସ୍ତ୍ୟାୟନ—ବି. (ସ୍ତ୍ୟୈ+କ.ଅନ) ଜନ ସମୂହ ।

ସ୍ତ୍ୟେନ—ବି. (ସ୍ତ୍ୟେନ୍+କ.ଅ) ଚୋର,

ତସ୍କର,ଅମୃତ । [ (ବଂ) ଅଲ୍ପ ।
ସ୍ତ୍ରୈଣ—ବି. (ସ୍ତେନ+କ.ଅ)ଚୌର,
ସ୍ତ୍ରିୟମ୍ମନ୍ୟ—ପୁ. ବଂ. (ସ୍ତ୍ରିୟଂ+ମନ୍+କ.ଯ) ଯେଉଁ ପୁରୁଷ ଆପଣାକୁ ସ୍ତ୍ରୀ ବୋଲି ଜ୍ଞାନ କରେ ।
ସ୍ତ୍ରୀ—ବି. ସ୍ତ୍ରୀ.(ସ୍ତ୍ୟୈ+ମି.ର+ଈ)ନାରୀ, ପୁରୁଷର ବିପରୀତ ଲିଙ୍ଗ ଓ ଲକ୍ଷଣ (ସ୍ତନ ଓ ଯୋନ୍ୟାଦି) ବିଶିଷ୍ଟ ବ୍ୟକ୍ତି. ପୁରୁଷର ବିପରୀତଜାତୀୟ ଜୀବ,ଭାର୍ଯ୍ୟା, ପତ୍ନୀ ।
ସ୍ତ୍ରୀଆଚାର—ଗ୍ରା.ବି. ସ୍ତ୍ରୀଲୋକମାନଙ୍କଦ୍ୱାରା ବିବାହକାଳୀନ ମଙ୍ଗଳସୂଚକ ଅନୁଷ୍ଠାନ-ବିଶେଷ ।
ସ୍ତ୍ରୀକରଣ—ବି. କ୍ଲୀ. ସ୍ତ୍ରୀବନ୍ଧ ।
ସ୍ତ୍ରୀକାମ—ପୁଂ.ବଂ. (ସ୍ତ୍ରୀ+କମ୍+କ.ଅ) ସ୍ତ୍ରୀକୁ କାମନା ବା ଇଚ୍ଛା କରୁଥିବା (ବ୍ୟକ୍ତି) ।
ସ୍ତ୍ରୀକୋଶ—ବି. ଖଡ୍ଗ ।
ସ୍ତ୍ରୀକ୍ଷୀର—ବି.ସ୍ତ୍ରୀଙ୍କ ସ୍ତନରୁ ଉତ୍ପନ୍ନଦୁଗ୍ଧ ।
ସ୍ତ୍ରୀକ୍ଷେତ୍ର—ବି.କ୍ଲୀ. ସ୍ତ୍ରୀରୂପ କ୍ଷେତ୍ର ।
ସ୍ତ୍ରୀଗ—ବଂ. (ସ୍ତ୍ରୀ+ଗମ୍+ଅ) ସ୍ତ୍ରୀଗାମୀ, ସ୍ତ୍ରୀଗମନକାରୀ ।
ସ୍ତ୍ରୀଗମନ—ବି. ସ୍ତ୍ରୀସଂସର୍ଗ, ମୈଥୁନ ।
ସ୍ତ୍ରୀଗବୀ—ବି. ଧେନୁ, ଗାଈ । [ ଦେଶୀ ।
ସ୍ତ୍ରୀଗୁରୁ—ବି. ଦୀକ୍ଷାଦାତ୍ରୀ, ମନ୍ତ୍ରୋପଦେଷ୍ଟ୍ରୀ
ସ୍ତ୍ରୀଗ୍ରହ—ବି. ଜ୍ୟୋତିଷ ମତରେ ବୁଧ, ଚନ୍ଦ୍ର ଓ ଶୁକ୍ର । [ ହତ୍ୟାକରେ ।
ସ୍ତ୍ରୀଘାତକ—ବଂ.ସ୍ତ୍ରୀ ହତ୍ୟାକାରୀ,ଯେ ସ୍ତ୍ରୀ
ସ୍ତ୍ରୀଘୋଷ—ବି. ବ.ବ୍ରୀ; ପ୍ରତ୍ୟୁଷ ।
ସ୍ତ୍ରୀଘ୍ନ—ବଂ. (ସ୍ତ୍ରୀ+ହନ୍+ଅ)ସ୍ତ୍ରୀଘାତକ, ସ୍ତ୍ରୀହତ୍ୟାକାରୀ । [ ଲମ୍ପଟ ।
ସ୍ତ୍ରୀଚଞ୍ଚଳ—ପୁଂ. ବଂ (ଷତତ୍) କାମୀ,
ସ୍ତ୍ରୀଚରିତ୍ର—ବି. (ଷତତ୍)ନାରୀର ଚରିତ୍ର, ସ୍ତ୍ରୀଜାତିର ପ୍ରକୃତି ।
ସ୍ତ୍ରୀଚିତ୍ତହାରୀ—ବି. ଶୋଭାଞ୍ଜନ,(ପୁଂ.ବଂ) (ସ୍ତ୍ରୀଚିତ୍ତ+ହୃ+ଇନ୍) ସ୍ତ୍ରୀମାନଙ୍କ ଚିତ୍ତ ହରଣକାରୀ ।
ସ୍ତ୍ରୀଚିହ୍ନ—ବି. (ଷତତ୍) ଯୋନି, ଭଗ, ନାରୀର ଲକ୍ଷଣ ।

ସ୍ତ୍ରୀଚୌର—ପୁଂ.ବି.କାମୁକ, ରତହିଣ୍ଡକ, ପରସ୍ତ୍ରୀରମଣକାରୀ, ପରସ୍ତ୍ରୀ ଅପହାରକ
ସ୍ତ୍ରୀଚୌର୍ଯ୍ୟ—ବି.ସ୍ତ୍ରୀକୁ ବଳପୂର୍ବକ ଅପହରଣ, ପରସ୍ତ୍ରୀରମଣ, ସ୍ତ୍ରୀକୁ ବଳପୂର୍ବକ ମୈଥୁନ କରିବା ।
ସ୍ତ୍ରୀଜନ—ବି. ସ୍ତ୍ରୀଲୋକ ।
ସ୍ତ୍ରୀଜନନୀ—ବି. ସ୍ତ୍ରୀ. କେବଳ କନ୍ୟା ପ୍ରସବିନୀ ସ୍ତ୍ରୀ ।
ସ୍ତ୍ରୀଜାତକ—ବି. ଗ୍ରନ୍ଥବିଶେଷ, ଏଥିରେ ସ୍ତ୍ରୀଲୋକମାନଙ୍କର ଶୁଭାଶୁଭ ନିର୍ଣ୍ଣୀତ ହୋଇଅଛି । [ ନାରୀଗଣ ।
ସ୍ତ୍ରୀଜାତି—ବି. ନାରୀ ସମ୍ପ୍ରଦାୟ,ପୃଥିବୀର
ସ୍ତ୍ରୀଜିତ(ନିର୍ଜିତ,ବିଜିତ)-ପୁଂ.ବଂ.(ଅତତ୍) ସ୍ତ୍ରୀ ବଶୀଭୂତ, ସ୍ତ୍ରୈଣ ।
ସ୍ତ୍ରୀତା(ତ୍ୱ)—ବି. (ସ୍ତ୍ରୀ+ଭା.ତା,ତ୍ୱ) ସ୍ତ୍ରୀର ଭାବ, ସ୍ତ୍ରୀଧର୍ମ ଦେଖ, (ବ୍ୟାକରଣ) ସ୍ତ୍ରୀଲିଙ୍ଗ ସୂଚକ ପ୍ରତ୍ୟୟ ।
ସ୍ତ୍ରୀତ୍ୱପ୍ରାପ୍ତି—ବି. (ଷତତ୍) ପ୍ରଥମ ରଜୋଦର୍ଶନ ।
ସ୍ତ୍ରୀଦେହାର୍ଦ୍ଧ—ପୁଂ.ବି.(ବ.ବ୍ରୀ) ଶିବ ।
ସ୍ତ୍ରୀଦ୍ୱିଟ୍—ବଂ. (ସ୍ତ୍ରୀ+ଦ୍ୱିଷ+କ୍ୱିପ୍) ସ୍ତ୍ରୀଦ୍ୱେଷକାରୀ ।
ସ୍ତ୍ରୀଧନ—ବି. (ହିନ୍ଦୁସ୍ମୃତି) ସ୍ତ୍ରୀଙ୍କ ସ୍ୱତ୍ୱ ପ୍ରବର୍ତ୍ତିବା ଧନବିଶେଷ, ସ୍ତ୍ରୀଙ୍କର ସ୍ୱତନ୍ତ୍ର ଧନ ।
ସ୍ତ୍ରୀଧବ—ବି. (ଷତତ୍) ପୁରୁଷ ।
ସ୍ତ୍ରୀଧର୍ମ—ବି. ସ୍ତ୍ରୀର ଋତୁ, ରଜୋଦର୍ଶନ, ସ୍ତ୍ରୀ ହେବାର ଅବସ୍ଥା, ମୈଥୁନ, ସ୍ତ୍ରୀର କର୍ତ୍ତବ୍ୟ, ସ୍ତ୍ରୀ ସମ୍ବନ୍ଧୀୟ ବିଧାନ ।
ସ୍ତ୍ରୀଧର୍ମିଣୀ—ବଂ. ସ୍ତ୍ରୀ. (ସ୍ତ୍ରୀଧର୍ମ+ଇନ୍+ଈ) ଋତୁମତୀ ।
ସ୍ତ୍ରୀଧୂର୍ତ୍ତି—ପୁଂ. ବି. ଅସତ୍ ଉଦ୍ଦେଶ୍ୟରେ ସ୍ତ୍ରୀକୁ ଫୁସୁଲାଇବା ପୁରୁଷ ।
ସ୍ତ୍ରୀଧ୍ୱଜ—ପୁଂ. ବଂ. (ବ.ବ୍ରୀ) ସ୍ତ୍ରୀ ଚିହ୍ନ ବିଶିଷ୍ଟ, (ବି) ହାତୀ ।
ସ୍ତ୍ରୀନାମା—ବଂ. ବ.ବ୍ରୀ; (ସ୍ତ୍ରୀ+ନାମନ୍) ସ୍ତ୍ରୀନାମଧାରୀ, ସ୍ତ୍ରୀବାଚକ ନାମଧାରୀ ।
ସ୍ତ୍ରୀନାୟକ—ବଂ. (ବ.ବ୍ରୀ) ଯେଉଁ ଅନୁଷ୍ଠାନ ଆଦିରେ ସ୍ତ୍ରୀ ନେତ୍ରୀ ଅଟନ୍ତି ।

ସ୍ତ୍ରୀନାୟକତା(ତ୍ୱ)—ବି. ଜଣେ ବା ବହୁ ସ୍ତ୍ରୀଙ୍କ ନେତୃତ୍ୱ । [ ଅଧିଷ୍ଠିତା ସ୍ତ୍ରୀ ।
ସ୍ତ୍ରୀନାୟିକା(ନେତ୍ରୀ)—ବି. ନେତୃତ୍ୱରେ
ସ୍ତ୍ରୀନିବନ୍ଧନ—ବି. ସ୍ତ୍ରୀମାନଙ୍କ ଦ୍ୱାରା କୃତ ଗୃହକର୍ମ ।
ସ୍ତ୍ରୀପଣ୍ୟୋପଜୀବୀ—ପୁଂ. ବି ଓ ବଂ. ସମ୍ଭୋଗାର୍ଥ ଆପଣା ସ୍ତ୍ରୀକୁ ପରପୁରୁଷଙ୍କୁ ଦେଇ ପରପୁରୁଷଙ୍କଠାରୁ ପ୍ରାପ୍ତଧନ ଯେ ଭୋଗକରେ,ଭଡ଼ାଖିଆ,ବେଶ୍ୟାଙ୍କ ଅର୍ଜନଦ୍ୱାରା ଜୀବିକା ନିର୍ବାହକାରୀ ବ୍ୟକ୍ତି ।
ସ୍ତ୍ରୀପର—ପୁଂ. ବ. (ସ୍ତ୍ରୀ+ପର) ୭ତତ୍; ସ୍ତ୍ରୀଲୁବ୍ଧ. କାମୁକ ବ୍ୟକ୍ତି, (ବଂ) କାମୁକ, ଲମ୍ପଟ ।
ସ୍ତ୍ରୀପୁଂଧର୍ମ—ବି.(ଦ୍ୱନ୍ଦ୍ୱ ଓ ୬ତତ୍)ସ୍ତ୍ରୀଙ୍କର ଓ ପୁରୁଷଙ୍କର ବ୍ୟବହାର,(ହିନ୍ଦୁସ୍ମୃତି) ମନୁସଂହିତା ଅଷ୍ଟମ ଓ ନବମ ଅଧ୍ୟାୟରେ ବର୍ଣ୍ଣିତ ଅଷ୍ଟାଦଶ ବିବାଦ ପଦାନ୍ତର୍ଗତ ବିବାଦମୀମାଂସା ଓ ନିରୂପଣବିଶେଷ ।
ସ୍ତ୍ରୀପୁଂସ-ଗ୍ରା.ବି.(ସଂ-ସ୍ତ୍ରୀପୁଂସୌ-ଦ୍ୱିବଚନ) ଦମ୍ପତି,ମିଥୁନ, ଦ୍ୱନ୍ଦ୍ୱ,ପତିପତ୍ନୀ ।
ସ୍ତ୍ରୀପୁଂସଲକ୍ଷଣା—ସ୍ତ୍ରୀ.ବଂ. କେତେକ ସ୍ତ୍ରୀଲକ୍ଷଣ(ଯଥା-ଯୋନି,ସ୍ତନ) ଓ କେତେକ ପୁରୁଷଲକ୍ଷଣ (ଯଥା-ଶ୍ମଶ୍ରୁ, ଅଣ୍ଡକୋଷ) ଯୁକ୍ତା (ସ୍ତ୍ରୀ) ।
ସ୍ତ୍ରୀପୁର—ବି. (୬ତତ୍) ଅନ୍ତଃପୁର ।
ସ୍ତ୍ରୀପୁଷ୍ପ—ବି. (୬ତତ୍) ଆର୍ତ୍ତବ, ରଜଃ, (ଉଦ୍ଭିଦ୍ ବିଜ୍ଞାନ) ମାଈଫୁଲ, ଯେଉଁ ଫୁଲରୁ ଫଳ ହୁଏ ।
ସ୍ତ୍ରୀପୂର୍ବ—ପୁଂ.ବଂ.(ବ.ବ୍ରୀ)ସ୍ତ୍ରୀଜିତ,ସ୍ତ୍ରୈଣ ।
ସ୍ତ୍ରୀପ୍ରଧାନ—ବଂ.ଯେଉଁଠାରେ ସ୍ତ୍ରୀଲୋକପ୍ରଧାନ
ସ୍ତ୍ରୀପ୍ରସଙ୍ଗ(ଭୋଗ)—ବି. (୬ତତ୍) ସୁରତ, ରତି ।
ସ୍ତ୍ରୀପ୍ରିୟ—ପୁଂ. ବଂ. (ବ.ବ୍ରୀ) ନାରୀପ୍ରିୟ (ଲୋକ),(ବି.୬ତତ୍)ନାରୀଙ୍କ ପ୍ରିୟଦ୍ରବ୍ୟ, ଆମ୍ରବୃକ୍ଷ ।
ସ୍ତ୍ରୀବଧ—ବି. ୬ତତ୍;ସ୍ତ୍ରୀହତ୍ୟା, ଶାସ୍ତ୍ରାନୁସାରେ ନାରୀ ଅବଧ୍ୟ ।
ସ୍ତ୍ରୀବନ୍ଧ—ବି.(୬ତତ୍)ମୈଥୁନ । [ ସ୍ତ୍ରୈଣ ।
ସ୍ତ୍ରୀବଶ(ବଶ୍ୟ)—ପୁଂ. ବଂ. ସ୍ତ୍ରୀଜିତ,

ସ୍ତ୍ରୀବାର(ବାସର)—ବି. (ସୋମ ବୁଧ ଓ ଶୁକ୍ର ସ୍ତ୍ରୀଗ୍ରହରୂପେ ଗଣ୍ୟହେଉଥିବାରୁ) ସୋମବାର, ବୁଧବାର ଓ ଶୁକ୍ରବାର ।
ସ୍ତ୍ରୀବାସଃ—ବି.(କ.ଧା) ସ୍ତ୍ରୀସମ୍ଭୋଗ ପାଇଁ ଉପଯୁକ୍ତ ବସ୍ତ୍ର । [ ପୁରୁଷ ।
ସ୍ତ୍ରୀବିଜିତ-ପୁଂ. ବି.ସ୍ତ୍ରୈଣ,ସ୍ତ୍ରୀର ବଶୀଭୂ
ସ୍ତ୍ରୀବିତ୍ତ—ବି.ସ୍ତ୍ରୀଧନ,ବିବାହାଦି ଯୌତୁକ ଲବ୍ଧ ନାରୀମାନଙ୍କରସମ୍ପତ୍ତି ।
ସ୍ତ୍ରୀବିଷୟ--ବି.(୬ତତ୍)ସମ୍ଭୋଗ,ମୈଥୁନ ।
ସ୍ତ୍ରୀବୀର୍ଯ୍ୟ—ବି. (୬ତତ୍) ନାରୀର ବଳ, ସ୍ତ୍ରୀର ରଜଃ ।
ସ୍ତ୍ରୀବ୍ୟଞ୍ଜନା—ବି.(୬ତତ୍)ସ୍ତ୍ରୀସୂଚକ ଚିହ୍ନ, (ଯଥା :—ସ୍ତନ, କୋମଳ ସ୍ୱର) ।
ସ୍ତ୍ରୀବ୍ରଣ—ବି. ଭଗ, ଯୋନି ।
ସ୍ତ୍ରୀବ୍ରତ—ବି. ଏକପତ୍ନୀ ବ୍ରତ, ସ୍ତ୍ରୀ-ପରାୟଣତା । [ ଧର୍ମ ।
ସ୍ତ୍ରୀଭବ—କ୍ଲୀ. ବି. ସ୍ତ୍ରୀତ୍ୱ, ସ୍ତ୍ରୀର ଭାବ ବା
ସ୍ତ୍ରୀଭୂଷଣ—ବି. (୬ତତ୍) ସ୍ତ୍ରୀଙ୍କ ପରିଧେୟ ଅଳଙ୍କାରାଦି, କେତକୀ ଫୁଲ ।
ସ୍ତ୍ରୀଭୋଗ—ବି. (୬ତତ୍) ମୈଥୁନ ।
ସ୍ତ୍ରୀମନ୍ତ୍ର—ବି. ଯେଉଁ ମନ୍ତ୍ରର ଶେଷରେ ସ୍ୱାହା ଥାଏ ।
ସ୍ତ୍ରୀମହଲ(ଲ)—ଗ୍ରା. ବି. ନାରୀସମାଜ, ଅନ୍ତଃପୁର । [ ବକୁଳ ।
ସ୍ତ୍ରୀମୁଖପ—ବି. (ସ୍ତ୍ରୀମୁଖ+ପା+କ.ଅ)
ସ୍ତ୍ରୀମୁଖମଧୁଦୋହଦ—ବି. ବକୁଳବୃକ୍ଷ ।
ସ୍ତ୍ରୀମୂର୍ତ୍ତି—ବି. ୬ତତ୍;ନାରୀମୂର୍ତ୍ତି ସ୍ତ୍ରୀଲୋକର ଆକୃତି ।
ସ୍ତ୍ରୀମ୍ମନ୍ୟ-ପୁଂ.ବିଂ.ଯେ ଆପଣାକୁ ସ୍ତ୍ରୀବୋଲି ମନେକରେ ।
ସ୍ତ୍ରୀରଜଃ—ବି. ସ୍ତ୍ରୀମାନଙ୍କର ରଜଃ, ସ୍ତ୍ରୀ-ମାନଙ୍କର ପୁଷ୍ପୋଦ୍ଗମ ।
ସ୍ତ୍ରୀରଞ୍ଜନ-ବି.(ସ୍ତ୍ରୀ+ରଞ୍ଜ+ଅନ)ତାମ୍ବୂଳ
ସ୍ତ୍ରୀରତ୍ନ--ବି.(୬ତତ୍)ନାରୀରତ୍ନ,ଶ୍ରେଷ୍ଠା ସ୍ତ୍ରୀ. ଲକ୍ଷ୍ମୀ,ଜାତିରେ ଯାହା ଉତ୍କୃଷ୍ଟ ତାହା ରତ୍ନନାମେ କଥିତ ।
ସ୍ତ୍ରୀରୋଗ—ବି.ସ୍ତ୍ରୀମାନଙ୍କର ବିଶିଷ୍ଟ ରୋଗ (ଯଥା:--ପ୍ରଦର.ସୂତିକାତ୍ତି,ଯୋନିବ୍ୟାପ. ସ୍ତନ୍ୟାଭାବ) ।
ସ୍ତ୍ରୀଲକ୍ଷଣ—ବି. (୬ତତ୍) ସ୍ତ୍ରୀଚିହ୍ନ,ଯୋନି, ସ୍ତ୍ରୀଙ୍କର ବିଶିଷ୍ଟ ଲକ୍ଷଣ ।
ସ୍ତ୍ରୀଲମ୍ପଟ(ଲୋଲ)—ପୁଂ. ବିଂ. (୬ତତ୍) କାମୁକ, ସର୍ବଦା ସ୍ତ୍ରୀସଙ୍ଗାଭିଳାଷୀ ।
ସ୍ତ୍ରୀଲାଭ—ଭାର୍ଯ୍ୟାପ୍ରାପ୍ତି, ବିବାହ ।
ସ୍ତ୍ରୀଲିଙ୍ଗ—ବି. ସ୍ତ୍ରୀଚିହ୍ନ,ଯୋନି, ବ୍ୟାକରଣ ସଂସ୍କାରଯୁକ୍ତ ସ୍ତ୍ରୀବାଚକ ଭେଦ,ସ୍ତ୍ରୀଜାତି ।
ସ୍ତ୍ରୀଲୋକ—ସ୍ତ୍ରୀ. ବି. ସ୍ତ୍ରୀଜାତିସ୍ଥ ବ୍ୟକ୍ତି, ସ୍ତ୍ରୀଜାତି ।
ସ୍ତ୍ରୀଶିକ୍ଷା—ବି. ( ୬ତତ୍ ) ସ୍ତ୍ରୀଲୋକଙ୍କର ଶିକ୍ଷା ବା ଅଧ୍ୟୟନଜନିତ ଜ୍ଞାନ ।
ସ୍ତ୍ରୀଶୌଣ୍ଡ—ପୁଂ. ବିଂ. ( ୭ତତ୍ ) ଅତି କାମୁକ, ଅତି କାମାତୁର ।
ସ୍ତ୍ରୀସଂସର୍ଗ(ସମାଗମ)—ବି(୬ତତ୍)ମୈଥୁନ ।
ସ୍ତ୍ରୀସଙ୍ଗ(ସଙ୍ଗମ,ସହବାସ,ସମ୍ଭୋଗ)—ବି. (୬ତତ୍)ପୁରୁଷର ସ୍ତ୍ରୀକୁ ରମଣକରିବା, ମୈଥୁନ ।
ସ୍ତ୍ରୀସଙ୍ଗ୍ରହଣ—ବି. (୬ତତ୍) ବଳାତ୍କାର ପୂର୍ବକ ସ୍ତ୍ରୀସମ୍ଭୋଗ, ବ୍ୟଭିଚାର ।
ସ୍ତ୍ରୀସଭ—ବି. (ସ୍ତ୍ରୀ+ସଭା) ସ୍ତ୍ରୀମାନଙ୍କର ସଭା, ମାଇପିସଭା ।
ସ୍ତ୍ରୀସୁଖ—ବି. ( ମଧ-କ.ଧା ) ମୈଥୁନ, (ବ.ବ୍ରୀ) ଶୋଭାଞ୍ଜନ ।
ସ୍ତ୍ରୀସୁଲଭ—ବିଂ. ନାରୀଜନୋଚିତ, ସ୍ତ୍ରୀ-ସ୍ୱଭାବସମ୍ମତ ।
ସ୍ତ୍ରୀସେବନ—ବି. (୬ତତ୍) ମୈଥୁନ ।
ସ୍ତ୍ରୀସେବା—ବି. ସ୍ତ୍ରୀସଂସର୍ଗ,ମୈଥୁନ ।
ସ୍ତ୍ରୀସ୍ୱଭାବ—ବି. (୬ତତ୍) ସ୍ତ୍ରୀଲୋକଙ୍କର ଚରିତ୍ର, ( ବ.ବ୍ରୀ ) ଅନ୍ତଃପୁର ରକ୍ଷକ, ମଣ୍ଡିକ, ନପୁଂସକ ବ୍ୟକ୍ତି ।
ସ୍ତ୍ରୀସ୍ୱାଧୀନତା-ବି.ପୁରୁଷଙ୍କ ପରି ନାରୀମାନଙ୍କର ସ୍ୱାଧୀନ ଭାବେ ସର୍ବତ୍ର ଗମନାଗମନ ଓ କାର୍ଯ୍ୟାନୁଷ୍ଠାନ ଶକ୍ତି ।
ସ୍ତ୍ରୀହତ୍ୟା—ସ୍ତ୍ରୀ.ବି.ସ୍ତ୍ରୀବଧ ସ୍ତ୍ରୀଲୋକ ହତ୍ୟା
ସ୍ତ୍ରୈଣ—ପୁଂ. ବିଂ. (ସ୍ତ୍ରୀ + ଅ) ସ୍ତ୍ରୀ ସମ୍ବନ୍ଧୀୟ, ସ୍ତ୍ରୀଜାତ, ଅତିରକ୍ତରୂପେ ସ୍ତ୍ରୀଙ୍କ ଠାରେ ଆସକ୍ତ,ସ୍ତ୍ରୀଯୋଗ୍ୟ,(ବି-ଭା.ତ)ସ୍ତ୍ରୀତ୍ୱ ସ୍ତ୍ରୀସ୍ୱଭାବ,ଅନ୍ତଃପୁର ରକ୍ଷକ,ସ୍ତ୍ରୀସମୂହ ।
ସ୍ତ୍ରୈଣତା(ତ୍ୱ)—ବି. ସ୍ତ୍ରୀବଶତା, ସ୍ତ୍ରୀବଶ ହେବାର ଅବସ୍ଥା । [ ଦେଖ ।
ସ୍ତ୍ରୈଣ୍ୟ—ବି.(ସ୍ତ୍ରୈଣ+ଭା.ଯ)ସ୍ତ୍ରୈଣତା
ସ୍ତ୍ରୈଷୂୟ—କ୍ଲୀ.ବି.ସ୍ତ୍ରୀଜାତକ, ସ୍ତ୍ରୀଜନ୍ମ ।
ସ୍ତ୍ର୍ୟଗାର—ବି.(୬ତତ୍) ଅନ୍ତଃପୁର ।
ସ୍ତ୍ର୍ୟଧ୍ୟକ୍ଷ—ପୁଂ. ବି. (୬ତତ୍) ଅନ୍ତଃପୁରର ପଧାନ ଅଧିକାରୀ ।
ସ୍ତ୍ର୍ୟନୁଜ—ପୁଂ. ବି ଓ ବିଂ. ( ୬ତତ୍ ) ଭଉଣୀ ପରେ ଜନ୍ମ ଲଭିଥିବା ଭାଇ ।
ସ୍ତ୍ର୍ୟାଖ୍ୟା—ବି. (ବ.ବ୍ରୀ) ପ୍ରିୟଙ୍ଗୁ ଦେଖ ।
ସ୍ତ୍ର୍ୟାଗୃର—ବି.ସ୍ତ୍ରୀଆଗୃର ଦେଖ ।
ସ୍ତ୍ର୍ୟାଜୀବ—ପୁଂ. ବି ଓ ବିଂ. ସ୍ତ୍ରୀପଣ୍ୟୋପ-ଜୀବୀ ଦେଖ ।
ସ୍ଥ—ପୁଂ. ବିଂ. ଅନ୍ୟ ଶବ୍ଦପରେ ଯୁକ୍ତ ପ୍ରତ୍ୟୟ,(ସ୍ଥା+କ.ଅ--ଯଥା:—ସ୍ୱର୍ଗସ୍ଥ, ସଭାସ୍ଥ) ଅମୁକରେ ସ୍ଥିତ, ବିଦ୍ୟମାନ, ବର୍ତ୍ତମାନ । [ ଦେଖ ।
ସ୍ଥକିତ—ଗ୍ରା. ବିଂ. (ସଂ-ସ୍ଥଗିତ) ସ୍ଥଗିତ
ସ୍ଥଗ୍—(ଧାତୁ)ସଂବରଣ କରିବା,ଆଚ୍ଛାଦନ କରିବା, ବନ୍ଦ କରିବା ।
ସ୍ଥଗ—ପୁଂ. ବିଂ. (ସ୍ଥଗ୍+କ.ଅ) ଧୂର୍ତ୍ତ, ପ୍ରବଞ୍ଚକ,ନିର୍ଲଜ୍ଜ.(ସ୍ତ୍ରୀ)ସ୍ଥଗା । [ ପୃଥିବୀ ।
ସ୍ଥଗଣା—ବି. ( ସ୍ଥଗ୍ + କ.ଅନ + ଆ )
ସ୍ଥଗନ—ବି. (ସ୍ଥଗ୍+ଭା.ଅନ)ଗୋପନ, ଲୁଚାଇବା, ଆଚ୍ଛାଦନ ।
ସ୍ଥଗର—ବି. ତଗର ଦେଖ ।
ସ୍ଥଗିକା—ବି: ( ସ୍ଥଗ୍ + ର୍ମ.ଇକ + ଆ ) ତାମ୍ବୂଳକରଙ୍କ, ପାନଡ଼ିବା, (ଣ.ଇକ +ଆ) ଆଙ୍ଗୁଠି ଓ ଲିଙ୍ଗଆଦିର ଅଗ୍ର-ଭାଗର କ୍ଷତ ଉପରେ ବନ୍ଧାଯିବା ପଟି ।
ସ୍ଥଗିତ—ବିଂ. (ସ୍ଥଗ୍+ର୍ମ.ତ) ଆଚ୍ଛାଦିତ, ଆବୃତ, ତିରୋହିତ, ନିବର୍ତ୍ତିତ, ଅପ-ବାରିତ, ବନ୍ଦକରାଯାଇଥିବା, ସଙ୍ଗୋ-ପିତ, ଅବରୁଦ୍ଧ, କିଛି ସମୟ ପାଇଁ ବନ୍ଦକରାଯାଇଥିବା, ମୁଲତବି ।
ସ୍ଥଗିବା—ଗ୍ରା. କ୍ରି. (ପଦ୍ୟ) ବନ୍ଦକରିବା, ସ୍ଥଗିତ ରଖିବା । [ ପାନବଟା ।
ସ୍ଥଗୀ—ବି. (ସ୍ଥଗ୍+ର୍ମ.ଇ)ତାମ୍ବୂଳପାତ୍ର,
ସ୍ଥଗୁ—ବି. (ସ୍ଥଗ୍+ଣ ଉ) ଗଡ଼ୁ,ପାଣିର ଘଟ,(କ.ଉ)ପିଠି ଉପରେ ଥିବା କୁଜ ।
ସ୍ଥଣ୍ଡିଳ—ବି. (ସ୍ଥା+ଅଧି. ଅଣ୍ଡିଳ କିମ୍ବା ସ୍ଥଲ୍+ଅଧି.ଇଲ) ଚତ୍ୱର, ଅଗଣା, ଯଜ୍ଞାର୍ଥ ପରିଷ୍କୃତ ଭୂମି, ବାଲୁକାଦିଦ୍ୱାରା ପ୍ରସ୍ତୁତ ହୋମାର୍ଥ ମଣ୍ଡଳବିଶେଷ, ଯଜ୍ଞ-ବେଦୀର ଚାରିପାଖର ପରିଷ୍କୃତ ଭୂମି, ସୀମା, ସରହଦ, ମାଟିଗଦା,ଜମି, ଭୂମି,

ପ୍ରାଚୀନ ଋଷିବିଶେଷ ।

ସ୍ଥଣ୍ଡିଳଶଯ୍ୟା-ବି. ବ୍ରତାଦି ଯୋଗୁଁ ବ୍ରତାଗ୍ରସ୍ତଙ୍କର ଭୂମିଶୟନ ।

ସ୍ଥଣ୍ଡିଳଶାୟୀ—ପୁଂ. ବିଂ. (ସ୍ଥଣ୍ଡିଳ+ଶୀ +କ.ଇନ୍) ଯେଉଁ ବ୍ୟକ୍ତି ବ୍ରତପାଳନ କରୁଥିବା ଯୋଗୁଁ ସ୍ଥଣ୍ଡିଳରେ ବା ଭୂମିରେ ଶୋଇଥାଆନ୍ତି, (ସ୍ତ୍ରୀ) ସ୍ଥଣ୍ଡିଳଶାୟିନୀ ।

ସ୍ଥଣ୍ଡିଳସଂବେଶନ—ବି. ସ୍ଥଣ୍ଡିଳଶଯ୍ୟା, ଭୂମିଶୟନ ।

ସ୍ଥଣ୍ଡିଳସିତ—ବି. ଯଜ୍ଞବେଦୀ ।

ସ୍ଥଣ୍ଡିଳେଶୟ—ପୁଂ. ବିଂ. (ସ୍ଥଣ୍ଡିଳେ+ଶୀ+କ.ଅ) ସ୍ଥଣ୍ଡିଳଶାୟୀ ଦେଖ, (ବି) ପ୍ରାଚୀନ ଋଷିବିଶେଷ ।

ସ୍ଥପତି—ବି. (ସ୍ଥ+ପତି) କ.ଧା;କଞ୍ଚୁକୀ. ଅନ୍ତଃପୁର ରକ୍ଷକ, ରାଜମିସ୍ତ୍ରୀ, ଶିଳ୍ପୀବିଶେଷ, ବାସ୍ତୁବିଦ୍ୟା ବିଧାନକ ଲଘୁହସ୍ତ ଶିଳ୍ପୀ, ବାସ୍ତୁଶିଳ୍ପୀ, ବଢ଼େଇ.ସୂତ୍ରଧର, ବାର୍ହସ୍ପତ୍ୟ ଯଜ୍ଞକର୍ତ୍ତା, ଗୀଷ୍ପତିଷ୍ଟିଯଜ୍ୱା, ମନ୍ତ୍ରୀ, ବୃହସ୍ପତି, କୁବେର, ରାଜା,ଉଚ୍ଚରାଜକର୍ମଚାରୀ, (ନାମ) ରାମଚନ୍ଦ୍ରଙ୍କର ସଖା,ଗୁହକଶବର, ସାରଥି,(ବିଂ)ପ୍ରଧାନ, ଉତ୍ତମ, ଶ୍ରେଷ୍ଠ ।

ସ୍ଥପତିବିଜ୍ଞାନ—ବି.ଗୃହନିର୍ମାଣ ସମ୍ବନ୍ଧୀୟ ଶିଳ୍ପବିଜ୍ଞାନ,ସୂତ୍ରଧର ସମ୍ବନ୍ଧୀୟ ବିଜ୍ଞାନ ।

ସ୍ଥପତିଶାଳା—ବି. (୬ତତ୍ପୁ) ସୂତ୍ରଧରର କାର୍ଯ୍ୟାଳୟ ।

ସ୍ଥପନୀ-ବି.ଦୁଇଭ୍ରୂଲତାର ମଧ୍ୟବର୍ତ୍ତୀ ସ୍ଥାନ ।

ସ୍ଥପା(ପୋ)ଇବା—ଗ୍ରା. କ୍ରି. ଅନ୍ୟଦ୍ୱାରା ସ୍ଥାପିତ କରାଇବା ।

ସ୍ଥପିତକରିବା—ଗ୍ରା.କ୍ରି.(ପଦ୍ୟ)ହୃଦୟରେ ଲୁଚାଇ ରଖିବା ।

ସ୍ଥପୁଟ—ବି. (ସ୍ଥ+ପୁଟ୍+କ.ଅ) ଅସ୍ଥିର, ସନ୍ଧିସ୍ଥାନ, ଉଚ୍ଚାବଚସ୍ଥାନ, ବିଷମସ୍ଥାନ, ସଂଗୃହଜୀବ, (ବିଂ) ବିଷମୋନ୍ନତ,ପୀଡ଼ା ବା ଦୁଃଖାଦିରେ କୁବ୍ଜୀକୃତ,ବିପନ୍ନ,କୁବ୍ଜ, କୁଜା ।

ସ୍ଥପୁଟିତ—ବିଂ. ଅତିଶୟ ଉନ୍ନତ ।

ସ୍ଥବି—ବିଂ. (ସ୍ଥା+କ.ଇ) ଜଙ୍ଗମ, (ବି) ତନ୍ତୁବାୟ, ସ୍ୱର୍ଗ, ଜଙ୍ଗମପଦାର୍ଥ, ଅଗ୍ନି, ଅଗ୍ନି, ଫଳ ।

ସ୍ଥବିର—ବିଂ. (ସ୍ଥା+କ.ଇର) ବୃଦ୍ଧ, ଅଚଳ, ବୃଦ୍ଧ ଓ ପୂଜ୍ୟ, (ସ୍ତ୍ରୀ) ସ୍ଥବିରା, (ବି) ବ୍ରହ୍ମା, ଶୈଳେୟ ଦେଖ, ବୃଦ୍ଧ ଦାରକ, ବୃଦ୍ଧ ଓ ପୂଜ୍ୟ ବୌଦ୍ଧଯତି. ବୌଦ୍ଧସମ୍ପ୍ରଦାୟବିଶେଷ ।

ସ୍ଥବିରତା(ତ୍ୱ)—ବି. (ସ୍ଥବିର+ଭା.ତା) ବାର୍ଦ୍ଧକ୍ୟ ।

ସ୍ଥବିରଦାରୁ-ବି.ବୃଦ୍ଧଦାରକ,ଶାଳତାଡ଼କ ।

ସ୍ଥବିରଲଗୁଡ଼ନ୍ୟାୟ-ବି. ସ୍ଥବିରର(ବୁଢ଼ାର) ହସ୍ତସ୍ଥିତ ଯଷ୍ଟି ଯେପରି କେତେବେଳେ ଲକ୍ଷ୍ୟ ସ୍ଥାନରେ ପଡ଼େ କେତେବେଳେ ବା ପଡ଼େ ନାହିଁ ସେପରି ଯେଉଁ ବିଷୟ ଦ୍ୱାରା କୌଣସି ସମୟରେ କାର୍ଯ୍ୟସିଦ୍ଧ ହୁଏ ବା କେତେବେଳେ ହୁଏନାହିଁ ଏହିପରି ଘଟନାକୁ ସ୍ଥବିରଲଗୁଡ଼ନ୍ୟାୟ କୁହାଯାଏ ।

ସ୍ଥବିରା—ସ୍ତ୍ରୀ.ବିଂ.(ସ୍ଥବିର+ଆ)ବୃଦ୍ଧା,ବୃଦ୍ଧା ଓ ପୂଜ୍ୟା, (ସ୍ତ୍ରୀ.ବି) ମହାଶ୍ରାବଣିକା, ବୃଦ୍ଧା ସ୍ତ୍ରୀ ।

ସ୍ଥବିଷ୍ଠ—ପୁଂ. ବିଂ. (ସ୍ଥୂଳ+ଇଷ୍ଠ) ଅତି ସ୍ଥୂଳ, (ସ୍ତ୍ରୀ) ସ୍ଥବିଷ୍ଠା ।

ସ୍ଥବୀୟାନ୍—ପୁଂ. ବିଂ. (ସ୍ଥୂଳ+ଈୟସ୍) ଅତି ମୋଟା, (ସ୍ତ୍ରୀ) ସ୍ଥବୀୟସୀ ।

ସ୍ଥଲ୍—(ଧାତୁ) ଥିବା, ଅବସ୍ଥାନ କରିବା, ରହିବା ।

ସ୍ଥଳ—ବି. (ସ୍ଥଲ+କ.ଅ) ଅକୃତ୍ରିମଭୂମି, ପ୍ରଦେଶ, ସ୍ଥାନ, ପାତ୍ର, ଥାଳ, ଥାଳୀ, ତମ୍ବୁ, ପଟ୍ଟବାସ, ଶୁଖିଲାସ୍ଥାନ, ଜଳଶୂନ୍ୟ ଭୂଭାଗ,ଅବସ୍ଥିତି,ବିଷୟ,ଅବସର, ଛିପଜାଗା, ପୁସ୍ତକର ଏକଅଂଶ ବା ପରିଚ୍ଛେଦ ।

ସ୍ଥଳକନ୍ଦ—ବି. ଅଗ୍ରାମ୍ୟକନ୍ଦ,ବଣଓଲୁଅ ।

ସ୍ଥଳକମଳ—ବି. (କ.ଧା) ସ୍ଥଳପଦ୍ମ ।

ସ୍ଥଳକମଳିନୀ—ସ୍ତ୍ରୀ. ବି. ସ୍ଥଳପଦ୍ମିନୀ ।

ସ୍ଥଳକାଳୀ—ସ୍ତ୍ରୀ. ବି. ଦୁର୍ଗା ଦେଖ ।

ସ୍ଥଳକୁମୁଦ—ବି. (କ.ଧା) କରବୀର ।

ସ୍ଥଳକୂଳ—ଗ୍ରା. ବି. କୌଣସି ବିଷୟର କିନାରା, ଆଶ୍ରୟ, ଆଶ୍ରୟନେବା ସ୍ଥାନ ।

ସ୍ଥଳଗ—ବିଂ. ସ୍ଥଳଗାମୀ,ସ୍ଥଳଚର ।

ସ୍ଥଳଚର—ପୁଂ. ବିଂ. (ସ୍ଥଳ+ଚର୍+କ.ଅ ଯେଉଁ ଜୀବ ସ୍ଥଳରେ ବିଚରଣ କରେ, (ସ୍ତ୍ରୀ) ସ୍ଥଳଚରୀ ।

ସ୍ଥଳଜ—ବିଂ. (ସ୍ଥଳ+ଜନ୍+ଅ) ସ୍ଥଳଜାତ ମାତ୍ର, ଯାହା ଭୂମିରେ ହୁଏ ।

ସ୍ଥଳନଳିନୀ—ବି. ସ୍ଥଳପଦ୍ମ ।

ସ୍ଥଳନୀରଜ—ବି. ସ୍ଥଳପଦ୍ମ ।

ସ୍ଥଳପଥ—ବି. (୭ତତ୍ପୁ) ଭୂମିଉପରେ ଯିବା ପଥ ।

ସ୍ଥଳପଦ୍ମ—ବି. ସ୍ଥଳକମଳ, ମାଣକ, ମାଣସାରୁ ।

ସ୍ଥଳପିଣ୍ଡା—ବି. ପିଣ୍ଡୀଖର୍ଜୂରିକା ।

ସ୍ଥଳକୂର୍ମା—ସ୍ତ୍ରୀ. ବି. ଶ୍ୱେତ କଚ୍ଛପ ।

ସ୍ଥଳଭଣ୍ଡା—ବି. ବୃହତ୍‌ଢକା, ବରୁଡ଼ ।

ସ୍ଥଳଭାଗ—ବି. ଭୂଭାଗ ।

ସ୍ଥଳମଞ୍ଜରୀ—ବି. ଅପାମାର୍ଗ ।

ସ୍ଥଳମର୍କଟ—ବି. କରମର୍ଦ୍ଦକ ।

ସ୍ଥଳଯୁଦ୍ଧ(ବିଗ୍ରହ)—ସ୍ଥଳଭାଗ ଅର୍ଥାତ୍ ଭୂଭାଗ ଉପରେ ଥାଇ ଦୁଇପକ୍ଷଙ୍କ ମଧ୍ୟରେ ଯୁଦ୍ଧ ।

ସ୍ଥଳରୁହା—ବି.(ସ୍ଥଳ+ରୁହ+କ.ଅ+ଆ) ସ୍ଥଳକମଳ ।

ସ୍ଥଳବାଣିଜ୍ୟ—ବି. (କ.ଧା) ସ୍ଥଳପଥରେ ବ୍ୟବସାୟ କାର୍ଯ୍ୟ ।

ସ୍ଥଳବିହଙ୍ଗ—ବି. ସ୍ଥଳଚରପକ୍ଷୀ,ଯେଉଁସବୁ ପକ୍ଷୀ ସ୍ଥଳରେ ବିଚରଣ କରନ୍ତି ।

ସ୍ଥଳଶୃଙ୍ଗାଟ(କ)—ବି. ଗୋକ୍ଷୁର ଗୁଳ୍ମ, ଗୋଖରା ।

ସ୍ଥଳସଙ୍କଟ—ବି. ଗ୍ରା. ଯୋଜକ, ଯେଉଁ ସଂକୀର୍ଣ୍ଣ ଭୂଭାଗ ଦୁଇଟି ବୃହତ୍ ଭୂଭାଗକୁ ଯୋଗ କରିଥାଏ ।

ସ୍ଥଳସୀମା—ବି. (ସ୍ଥଳ+ସୀମନ୍) ସ୍ଥଣ୍ଡିଳ ଦେଖ, ଦୁଇଦେଶର ସୀମା ।

ସ୍ଥଳସ୍ଥ—ବିଂ. ସ୍ଥଳସ୍ଥିତ ମାତ୍ର, ଯାହା ସ୍ଥଳରେ ଥାଏ, ସ୍ଥଳରେ ଅବସ୍ଥିତ ।

ସ୍ଥଳୀ—ବି.ସ୍ତ୍ରୀ. (ସ୍ଥଳ+ଆ) ଜଳଶୂନ୍ୟ କୃତ୍ରିମ ଭୂମି, ଜଳଶୂନ୍ୟ ଭୂଭାଗ ।

ସ୍ଥଳାଭିଷିକ୍ତ—ପୁଂ.ବିଂ. ଅନ୍ୟ ବ୍ୟକ୍ତିର

ପ୍ରତିବନ୍ଧି, ଅନ୍ୟ ବ୍ୟକ୍ତିଙ୍କ ଜାଗାରେ ପ୍ରତିଷ୍ଠିତ (ବ୍ୟକ୍ତି),(ସ୍ତ୍ରୀ).ସ୍ଥଳାଭିଷିକ୍ତା ।
ସ୍ଥଳୀ—ବି.ସ୍ତ୍ରୀ. (ସ୍ଥଳ+ଈ) ସ୍ଥଳ ଦେଖ. ଜଳଶୂନ୍ୟ ଅକୃତ୍ରିମ ଭୂମି, ମୁଣ୍ଡି, ଦୃଢ଼ ଭୂମି, ସ୍ଥଳଦେବତା, ସ୍ଥଳାଧିପତି ଦେବତା । [ ଦେବତା ।
ସ୍ଥଳୀଦେବତା—ବି. ଗ୍ରାମଦେବତା, ବନ
ସ୍ଥଳୀୟ—ବିଂ. (ସ୍ଥଳ+ଈୟ) ସ୍ଥାନୀୟ, ସ୍ଥଳସମ୍ବନ୍ଧୀୟ । [ ବିଶେଷ ।
ସ୍ଥଲେୟୁ—ପୁଂ. ବି. ରୌଦ୍ରାଶ୍ୱର ପୁତ୍ର-
ସ୍ଥଲେରୁହା—ବି. ( ସ୍ଥଲେ+ରୁହ+କ. ଅ+ଆ) ଗୃହକୁମାରୀ, ଘୃତକୁମାରୀ, ଦଗ୍‌ଧାବୃକ୍ଷ, ଚଡ଼ାକୁଟୀଗୁଳ୍ମ, (ବିଂ) ସ୍ଥଳଜାତ (ବୃକ୍ଷାଦି) ।
ସ୍ଥଲେଶୟ—ବିଂ. (ସ୍ଥଲେ+ଶୀ+କ.ଅ) ଶୁଖିଲା ଭୂମିରେ ଶୋଉଥିବା, (ବିଂ) ରୁରୁ, କୁରଙ୍ଗାଦି ପଶୁ ।
ସ୍ଥଲୌକା—ବି. ବି.ସ୍ତ୍ରୀ; (ସ୍ଥଲ+ଓକସ୍) ସ୍ଥଳଚର ଜୀବ ।
ସ୍ଥା—(ଧାତୁ) ଥିବା,ସ୍ଥିତହେବା, ରହିବା ।
ସ୍ଥା—ବିଂ.ସ୍ତ୍ରୀ. (ସ୍ଥର ସ୍ତ୍ରୀଲିଙ୍ଗ) ଅବସ୍ଥିତା, ସ୍ଥିତା, (ବି) ଅବସ୍ଥାନ, ସ୍ଥାନ ।
ସ୍ଥାଗ—ବି. ଶବ, ଶିବାନୁଚର ବିଶେଷ ।
ସ୍ଥାଣବୀୟ—ବିଂ. (ସ୍ଥାଣୁ+ଈୟ) ସ୍ଥାଣୁ ସମ୍ବନ୍ଧୀୟ, ଶିବ ସମ୍ବନ୍ଧୀୟ ।
ସ୍ଥାଣୁ—ବିଂ. (ସ୍ଥା+କ.ନୁ) ଅଚଳ,ସ୍ଥିର, ସ୍ଥବିର ଦେଖ, (ବି) ନିଃଶାଖ ବୃକ୍ଷ, ଥୁଣ୍ଟା ଗଛ, ଶିବ, ସ୍ତମ୍ଭ, ଖୁଣ୍ଟ, କୀଳ, ଜୀବକ ନାମକ ଗନ୍ଧଦ୍ରବ୍ୟ, ଅସ୍ତ୍ରଭେଦ. ଉଇହୁଙ୍କା,ଏକପ୍ରକାର ବରଛା. ହଳର ଅଂଶବିଶେଷ, ସୂର୍ଯ୍ୟଘଡ଼ିର କଣ୍ଟା, ସ୍ଥାବର ପଦାର୍ଥ, (ନାମ)ନାଗବିଶେଷ. ଏଗାରରୁଦ୍ର ମଧ୍ୟରୁ ଏକ, ରାକ୍ଷସ ବିଶେଷ, ପ୍ରଜାପତିବିଶେଷ ।
ସ୍ଥାଣୁକର୍ଣ୍ଣୀ—ବି. ମହେନ୍ଦ୍ରବାରୁଣୀ ଲତା, ବଡ଼ ମହାକାଳ ।
ସ୍ଥାଣୁତୀର୍ଥ—ବି.ଥାନେଶ୍ୱର ନାମକ ସ୍ଥାନ ।
ସ୍ଥାଣୁବଟ—ବି. ମହାଭାରତୋକ୍ତ ତୀର୍ଥ ସ୍ଥାନବିଶେଷ ।
ସ୍ଥାଣୁବକ୍ତ୍ର—ଅ. ଥୁଣ୍ଟାଗଛ ପରି ।
ସ୍ଥାଣୁରୋଗ—ବି. ଘୋଡ଼ାଙ୍କ ଜଙ୍ଘରେ ହେବା ଦୁରାରୋଗ୍ୟ ବ୍ରଣରୋଗବିଶେଷ ।
ସ୍ଥାଣ୍ଡିଲ—ପୁଂ. ବିଂ. (ସ୍ଥଣ୍ଡିଲ+ଅ) ସ୍ଥଣ୍ଡିଲଶାୟୀ ଦେଖ, (ସ୍ତ୍ରୀ) ସ୍ଥାଣ୍ଡିଲା ।
ସ୍ଥାଣ୍ୱାଶ୍ରମ—ବି. ହିମାଚଳସ୍ଥିତ ଶିବଙ୍କର ତପସ୍ୟାଚରଣ ସ୍ଥାନବିଶେଷ ।
ସ୍ଥାଣ୍ୱୀଶ୍ୱର—ବି. ଥାନେଶ୍ୱର, ସ୍ଥାଣୁତୀର୍ଥଙ୍କ ଶିବଲିଙ୍ଗ ।
ସ୍ଥାତବ୍ୟ—ବିଂ. (ସ୍ଥା+ଅଧି.ତବ୍ୟ) ରହି-ବାର ଉପଯୁକ୍ତ ବା ଉଚିତ, ଅବସ୍ଥିତି ଯୋଗ୍ୟ (ସ୍ଥାନ) ।
ସ୍ଥାନ—ବି.(ସ୍ଥା+ଅଧି.ଅନ) ସ୍ଥଳ,ଜାଗା, ନିର୍ଦ୍ଦିଷ୍ଟଅଞ୍ଚଳ, ଦେଶ, ଭାଜନ, ପାତ୍ର, ଆଧାର, ବିଷୟ, ଅବକାଶ, ଫାଙ୍କ, ଗ୍ରନ୍ଥଖଣ୍ଡ, ପରିଚ୍ଛେଦ, ବ୍ୟବସାୟ, ପେଶା, ଗୃହ, ବସତି, ସ୍ଥିତି.ଅବସ୍ଥିତି, ସ୍ଥୈର୍ଯ୍ୟ,ସନ୍ନିବେଶ,ସାଦୃଶ୍ୟ,ନୀତିବେତ୍ତା-ମାନଙ୍କର ତ୍ରିବର୍ଗାନ୍ତର୍ଗତ ବର୍ଗବିଶେଷ, ଯହିଁରେ ରାଜ୍ୟର ଅଷ୍ଟବର୍ଗର କ୍ଷୟ ବା ବୃଦ୍ଧି ନ ଥାଏ, ଅବସ୍ଥାନ କରିବାର ଉପଯୁକ୍ତ, ଅବସ୍ଥାନ କରିବାର ଜାଗା, ପଦ,କର୍ମ, ପଦ, ପଦସ୍ଥ, (ବ୍ୟାକରଣ) ମୁଖଗହ୍ୱରସ୍ଥ ଯେଉଁ ଅଂଶରୁ କୌଣସି ବର୍ଣ୍ଣ ଉଚ୍ଚାରିତ(ହୁଏ),ଉଚ୍ଚାରଣ ସ୍ଥାନ, ରାଜ୍ୟ, ଦେଶ,ମନ୍ଦିର,ଦେବାଳୟ,ଗଡ଼, ଦୁର୍ଗ, ସେନାଙ୍କର ଆତ୍ମରକ୍ଷା ନିମନ୍ତେ କୌଣସିଠାରେ ସ୍ଥିରରୂପେ ଅବସ୍ଥିତି, ଆଖେଟରେ ଶରୀରର ଏକପ୍ରକାର ମୁଦ୍ରା, ଅବସର, ଅବସ୍ଥା, ଦଶା,କାରଣ, ଉଦ୍ଦେଶ୍ୟ, କୌଣସି ଅଭିନେତାଙ୍କ ଅଭିନୟ ବା ଅଭିନୟଗତ ଚରିତ, ବେଦୀ, ଗ୍ରମାୟଣୋକ୍ତ ଗନ୍ଧର୍ବରାଜ-ବିଶେଷ, (ଗ୍ରା.ବି) ଭୋଜନ ନିମନ୍ତେ ପରିଷ୍କୃତ ସ୍ଥାନ, ଦେହର ଅଂଶ ।
ସ୍ଥାନଅସ୍ଥାନ—ଗ୍ରା. ବି. ଉପଯୁକ୍ତ ସ୍ଥାନ ଓ ଅନୁପଯୁକ୍ତ ସ୍ଥାନ, ଦେହର ପ୍ରକାଶ୍ୟ ଅଂଶ ଓ ଗୋପନୀୟ ଅଂଶ ।
ସ୍ଥାନକ—ବି. (ସ୍ଥାନ+କ) ଆଲବାଲ, ଗଛମୂଳରେ ପାଣିରହିବା ପାଇଁ କରା-ଯାଇଥିବା ମଳା, ନଗର, ଫେନ,ବୁଦ୍‌ବୁଦ, ନୃତ୍ୟର ମୁଦ୍ରାବିଶେଷ ।
ସ୍ଥାନଚମ୍ପଲା—ବି. ବଙ୍ଗସ୍ଥ ବୃକ୍ଷ, ବନ-ତୁଳସୀ ।
ସ୍ଥାନଚଲକ—ବି.ସେନାପାଇଁ ଶ୍ରୁଦ୍ଧଶୀର ବ୍ୟବସ୍ଥା କରିବା କର୍ମଚାରୀ ।
ସ୍ଥାନଚ୍ୟୁତ—ବିଂ. (୫ତତ୍) ସ୍ଥାନଭ୍ରଷ୍ଟ, ପଦଚ୍ୟୁତ ।
ସ୍ଥାନତ୍ୟାଗ—ବି.(୬ତତ୍)କୌଣସି ସ୍ଥାନ ବା ଅଞ୍ଚଳ ଛାଡ଼ି ଚାଲିଯିବା ।
ସ୍ଥାନତ୍ୟାଗୀ—ପୁଂ. ବିଂ. ଯେ କୌଣସି ସ୍ଥାନ ତ୍ୟାଗକରେ,(ସ୍ତ୍ରୀ)ସ୍ଥାନତ୍ୟାଗିନୀ ।
ସ୍ଥାନଦାତା—ବିଂ.ଯେ ସ୍ଥାନ ବା କୌଣସି ଆଶ୍ରୟ ଦାନ କରନ୍ତି ।
ସ୍ଥାନଦାନ—ବି. ( ୬ତତ୍ ) କୌଣସି ବ୍ୟକ୍ତିକୁ ବା ବସ୍ତୁକୁ ଅବସ୍ଥିତି ପାଇଁ ଆଶ୍ରୟ ଦେବା ।
ସ୍ଥାନପାଳ—ବି.(ସ୍ଥାନ+ପାଲ+କ.ଅ) ସ୍ଥାନରକ୍ଷକ, ସ୍ଥାନିକ, ଯେ କୌଣସି ସ୍ଥାନକୁ ଜଗେ, ଚୌକିଦାର୍, ପ୍ରଧାନ ନିରୀକ୍ଷକ ।
ସ୍ଥାନପ୍ରଚ୍ୟୁତ-ବିଂ.ସ୍ଥାନଚ୍ୟୁତ,ସ୍ଥାନଭ୍ରଷ୍ଟ ।
ସ୍ଥାନବିଦ୍—ବିଂ. (ସ୍ଥାନ+ବିଦ୍+କ୍ୱିପ୍) ସ୍ଥାନଜ୍ଞ,ଯେ ସ୍ଥାନର ସମସ୍ତ ବିଷୟ ଜାଣେ ।
ସ୍ଥାନବ୍ୟାପକତା-ବି. ସ୍ଥାନାବରୋଧକତା ।
ସ୍ଥାନଭଙ୍ଗ—ବି. ଧ୍ୱଂସ,(ବିଂ) ସ୍ଥାନଚ୍ୟୁତ ।
ସ୍ଥାନଭ୍ରଂଶ—ବି. ସ୍ଥାନ ନାଶ ।
ସ୍ଥାନଭ୍ରଷ୍ଟ—ବିଂ. ( ୫ତତ୍ ) ସ୍ୱସ୍ଥାନରୁ ଚ୍ୟୁତ, ପଦଭ୍ରଷ୍ଟ,ଉଚିତ ସ୍ଥାନରୁ ଚ୍ୟୁତ, ସ୍ଥାନାନ୍ତରିତ, ନିଜ ସ୍ଥାନରୁ ଖସିଯାଇ-ଥିବା, (ସ୍ତ୍ରୀ) ସ୍ଥାନଭ୍ରଷ୍ଟା ।
ସ୍ଥାନମୃଗ—ବି. କଙ୍କଡ଼ା, ମାଛ, କଚ୍ଛପ, ମଗର, ମକର ।
ସ୍ଥାନଯୋଗ-ବି. ସ୍ଥାନ ଓ ତାହାର ପରସ୍ପର ସଂଯୋଗ ବିଷୟକ ଜ୍ଞାନ ।
ସ୍ଥାନରକ୍ଷକ—ପୁଂ.ବି.ସ୍ଥାନପାଳ,କୌଣସି ସ୍ଥାନକୁ ଜଗିବାର ଭାରପ୍ରାପ୍ତ ବ୍ୟକ୍ତି ।
ସ୍ଥାନରେ—ଗ୍ରା. ଅ. ବିନିମୟରେ, ବଦ-

ଳରେ, ସ୍ଥଳାଭିଷିକ୍ତରୂପେ, ଠାରେ, ଜାଗାରେ ।

ସ୍ଥାନସଙ୍କୁଳନ -ବି.ଥାନ ଅଣ୍ଟିବା, ଅବସ୍ଥାନ କରିବା ପାଇଁ ସ୍ଥାନର ଯଥେଷ୍ଟତା, ସ୍ଥାନର ସଙ୍କୀର୍ଣ୍ଣତା, ସ୍ଥାନ ନ ଅଣ୍ଟିବା ।

ସ୍ଥାନସନ୍ନିବେଶ—ବି. ସ୍ଥାନନିର୍ଣ୍ଣୟ ଓ ତାହାର ସୀମାଦି ନିରୂପଣ ।

ସ୍ଥାନସ୍ଥ—ବିଂ. ସ୍ୱସ୍ଥାନସ୍ଥିତ,ନିଜ ସ୍ଥାନରେ ଥିବା,ଯେ ନିଜ ପଦରେ ଅଧିଷ୍ଠିତ ଅଛି ।

ସ୍ଥାନସ୍ଥିତ—ବିଂ. ନିଜ ସ୍ଥାନରେ ବା ଉପଯୁକ୍ତ ସ୍ଥାନରେ ଅବସ୍ଥିତ, ବିଶିଷ୍ଟ ସ୍ଥାନରେ ଅବସ୍ଥିତ ।

ସ୍ଥାନାଧିପ—ବି. (୬ତତ୍ପୁ) ସ୍ଥାନରକ୍ଷକ, ଥାନାଦାର୍,ଥାନପତି,କୌଣସି ସ୍ଥାନର ମାଲିକ ।

ସ୍ଥାନାଧ୍ୟକ୍ଷ—ପୁଂ.ବି.ସ୍ଥାନରକ୍ଷକ,ସ୍ଥାନିକ ।

ସ୍ଥାନାନ୍ତର—ବି. (କ.ଧା) ଅନ୍ୟ ସ୍ଥାନ, ବିଭିନ୍ନ ସ୍ଥାନ, (ଗ୍ରା.ବି) ସ୍ଥାନାନ୍ତରିତ ହେବାର ଅବସ୍ଥା ।

ସ୍ଥାନାନ୍ତରିତ—ବିଂ. (ସ୍ଥାନାନ୍ତର+ଇତ) ଏକସ୍ଥାନରୁ ଅନ୍ୟସ୍ଥାନକୁ ନୀତ ବା ପ୍ରେରିତ, ବିଭିନ୍ନ ସ୍ଥାନରେ ରକ୍ଷିତ ।

ସ୍ଥାନାପତ୍ତି—ସ୍ତ୍ରୀ. ବି. ସ୍ଥାନପ୍ରାପ୍ତି ।

ସ୍ଥାନାପନ୍ନ—ବିଂ. (୨ତତ୍ପୁ) ଅନ୍ୟବ୍ୟକ୍ତିଙ୍କ ସ୍ଥାନରେ ଅସ୍ଥାୟୀଭାବରେ କାର୍ଯ୍ୟକରିବା (ବ୍ୟକ୍ତି) ।

ସ୍ଥାନାବରୋଧ—ବି. (୬ତତ୍ପୁ) ଏକସ୍ଥାନ ମାଡ଼ି ବସିବା ।

ସ୍ଥାନାବରୋଧକତା—ବି(ବିଜ୍ଞାନ ପରିଭାଷା) ଜଡ଼ ପଦାର୍ଥର ଗୁଣବିଶେଷ, ଯେଉଁ ଗୁଣଯୋଗୁଁ ଜଡ ପଦାର୍ଥ ଗୋଟିଏ ସ୍ଥାନକୁ ବ୍ୟାପିକରି ରହେ ।

ସ୍ଥାନାଭାବ—ବି.(୬ତତ୍ପୁ) ସ୍ଥାନର ଅଭାବ, ସ୍ଥାନର ଅନାଟନ ।

ସ୍ଥାନିକ—ବିଂ. (ସ୍ଥାନ + ଇକ) ସ୍ଥାନୀୟ, ସ୍ଥାନ ସମ୍ବନ୍ଧୀୟ, (ପୁଂ.ବି) ସ୍ଥାନାଧ୍ୟକ୍ଷ, ସ୍ଥାନରକ୍ଷକ, ମନ୍ଦିରର ପ୍ରବନ୍ଧକ, (ସ୍ତ୍ରୀ) ସ୍ଥାନିକା ।

ସ୍ଥାନୀ—ବିଂ. (ସ୍ଥାନ+ଇନ୍) ସ୍ଥାନବିଶିଷ୍ଟ, ସ୍ଥିତିଶୀଳ, ସ୍ଥାୟୀ, ଉଚିତ, ଉପଯୁକ୍ତ, (ସ୍ତ୍ରୀ) ସ୍ଥାନିନୀ, (ଗ୍ରା.ବି-ପଦ୍ୟ) ଅନ୍ୟଶବ୍ଦ ପରେ ଯୁକ୍ତ, (ଅମୁକର)ସ୍ଥାନ, ବିଷୟ, ପାତ୍ର ।

ସ୍ଥାନୀୟ—ବିଂ.(ସ୍ଥା+ଅଧି ଅନୀୟ)ସ୍ଥାତବ୍ୟ, ସ୍ଥାନ ସମ୍ବନ୍ଧୀୟ, ନିର୍ଦ୍ଦିଷ୍ଟ ଅଞ୍ଚଳ ସମ୍ବନ୍ଧୀୟ,(ଅନ୍ୟ ଶବ୍ଦପରେ ଯୁକ୍ତ)ଅମୁକର; ସଦୃଶ,କଳ୍ପ,ସମାନ,ସମ୍ପର୍କୀୟ(ବ୍ୟକ୍ତି), (ବି) ନଗର, (ଗ୍ରା.ବିଂ)କୌଣସି ଅଞ୍ଚଳ ଉପରେ ଅଧିକାରଯୁକ୍ତ ।

ସ୍ଥାନେ—ଅ. ଯୋଗ୍ୟ, ଉଚିତ, ଯୁକ୍ତ, ସମାନ,ସଦୃଶ,ସତ୍ୟ,ସୁତରାଂ,ଫଳତଃ, କାରଣରୁ, ବଦଳରେ, ବିନିମୟରେ, ମଧ୍ୟରେ, ବିଶିଷ୍ଟ ସ୍ଥାନରେ ।

ସ୍ଥାନେଶ୍ୱର—ବି. ସ୍ଥାନାଧିପ ଦେବ, ଥାନେଶ୍ୱର ନାମକ ପ୍ରାଚୀନ ତୀର୍ଥ ।

ସ୍ଥାନେସ୍ଥାନେ—ଗ୍ରା. ଅବ୍ୟ. ଭିନ୍ନ ଭିନ୍ନ ସ୍ଥାନରେ,ଅନେକ ସ୍ଥାନରେ,କେତେକ ସ୍ଥାନରେ ।

ସ୍ଥାପକ—ବିଂ.(ସ୍ଥାପି+ଅକ)ସ୍ଥାପନକର୍ତ୍ତା, ଯେ ପ୍ରତିଷ୍ଠା କରେ, ସଂସ୍ଥାପକ, ପ୍ରତିଷ୍ଠାତା, ନାଟ୍ୟ ସମ୍ପାଦକ, ଦେବପ୍ରତିମା ନିର୍ମାତା, ଅମାନତ୍‌କାରୀ (ବ୍ୟକ୍ତି), (ସ୍ତ୍ରୀ) ସ୍ଥାପିକା ।

ସ୍ଥାପତ୍ୟ—ବି. (ସ୍ଥପତି+ଯ) ରାଜକାମ, ସ୍ଥପତିର କାର୍ଯ୍ୟ, ସ୍ଥପତିବିଦ୍ୟା, ଗୃହାଦିର ଶିଳ୍ପ, ଅନ୍ତଃପୁର ରକ୍ଷକ, ସ୍ଥାନରକ୍ଷକଙ୍କ ପଦ ।

ସ୍ଥାପତ୍ୟବେଦ—ବି.ବାସ୍ତୁଶିଳ୍ପ ବା ଭବନ ନିର୍ମାଣ ବିଷୟକ ଉପବେଦ ।

ସ୍ଥାପନ(ନା)—ବି.(ସ୍ଥା+ଣିଚ୍+ଭା.ଅନ +ଆ) ନିବେଶନ,ରଖିବା,ଖୋଲିବା, ପ୍ରତିଷ୍ଠାକରିବା,ଥାପିବା,ଅର୍ପଣ,ନିୟୋଗକରଣ, ପୁଂସବନ, ହିନ୍ଦୁଙ୍କର ଦ୍ୱିତୀୟସଂସ୍କାର, ସମାଧି, କୌଣସି ନୂଆକାମ କରିବା, ପ୍ରତିପାଦନ, ପ୍ରମାଣିତକରଣ, ଶରୀରର ରକ୍ଷାର ବା ଆୟୁବୃଦ୍ଧିର ଉପାୟ, (ରକ୍ତସ୍ରାବ) ରୋଧ କରିବା ଉପାୟ, ଆଳୟ, ଆବାସ, ଗୃହ, ଅନୁଗଣି,ନିରୂପଣ ।

ସ୍ଥାପନନିକ୍ଷେପ-ବି. ଅର୍ହତଙ୍କମୂର୍ତ୍ତିର ପୂଜା ।

ସ୍ଥାପନାଲିଙ୍ଗ—ଗ୍ରା.ବି. ଯେଉଁ ଶିବଲିଙ୍ଗ ସ୍ୱୟମ୍ଭୂ ନୁହନ୍ତି ଅର୍ଥାତ୍ ଯାହାଙ୍କୁ ଲୋକେ ଆଣି କୌଣସି ସ୍ଥାନରେ ସ୍ଥାପନ କରନ୍ତି ବା ବସାନ୍ତି ।

ସ୍ଥାପନାସତ୍ୟ—ବି. କୌଣସି ବସ୍ତୁର ବା ବ୍ୟକ୍ତିଙ୍କ ପ୍ରତିମାରେ ବା ଚିତ୍ରରେ ସ୍ୱୟଂ ଉକ୍ତ ବସ୍ତୁର ବା ବ୍ୟକ୍ତିଙ୍କର ଆରୋପ ।

ସ୍ଥାପନିକ—ବି.(ସ୍ଥାପନ+ଇକ)ଅମାନତ୍ କରାଯାଇଥିବା (ଧନ ବା ବସ୍ତୁ) ।

ସ୍ଥାପନୀ—ବି. ( ସ୍ଥାପନ+ଈ ) ପାଠା, ଅକାନବନ୍ଧି ଗୁଳ୍ମ ।

ସ୍ଥାପନୀୟ—ବିଂ.(ସ୍ଥାପି+ମିଂ.ଅନୀୟ)ସ୍ଥାପିତ ହେବାର ଯୋଗ୍ୟ ।

ସ୍ଥାପୟିତା—ପୁଂ. ବିଂ. ( ସ୍ଥାପି+କ.ତୃ) ସଂସ୍ଥାପକ, ସ୍ଥାପକ, (ସ୍ତ୍ରୀ) ସ୍ଥାପୟିତ୍ରୀ ।

ସ୍ଥାପି—(ଧାତୁ) ରଖାଇବା, ଥୋଇବା, ବସାଇବା ।

ସ୍ଥାପିକା—ସ୍ତ୍ରୀ.ବିଂ. (ସ୍ଥାପକ+ଆ) ସ୍ଥାପକର ସ୍ତ୍ରୀଲିଙ୍ଗ ।

ସ୍ଥାପିତ—ବିଂ.(ସ୍ଥାପି+ମିଂ.ତ)ନିବେଶିତ, ରଖାଯାଇଥିବା,ନ୍ୟସ୍ତ,ରୋପିତ,ଆରମ୍ଭ କରାଯାଇଥିବା, ନିଶ୍ଚିତ, ଅମାନତ୍, ରଖାଯାଇଥିବା,ନିର୍ଦ୍ଦିଷ୍ଟ,ଦୃଢ଼, ବିବାହିତ, (ସ୍ତ୍ରୀ) ସ୍ଥାପିତା ।

ସ୍ଥାପୟିତା—ବିଂ. ( ସ୍ଥା+ଣିଚ୍+ତୃ ) ସ୍ଥାପନକର୍ତ୍ତା ।

ସ୍ଥାପିବା—ଗ୍ରା. କ୍ରି. ସ୍ଥାପନ କରିବା, ଥୋଇବା, ରଖିବା, ନିବେଶିବା,ଅନ୍ୟ ଦ୍ୱାରା ରଖାଇବା ।

ସ୍ଥାପୀ—ପୁଂ. ବିଂ. ( ସ୍ଥାପି + କ.ଇନ୍ ) ପ୍ରତିମା ନିର୍ମାଣକାରୀ (ବ୍ୟକ୍ତି), (ସ୍ତ୍ରୀ) ସ୍ଥାପିନୀ ।

ସ୍ଥାପ୍ୟ—ବିଂ. (ସ୍ଥାପ୍ୟ+ମିଂ.ଯ)ସ୍ଥାପନୀୟ, (ବି)ଦେବପ୍ରତିମା,ଅମାନତ୍,ଉପାଚାଟ ।

ସ୍ଥାବର—ବିଂ. (ସ୍ଥା+କ.ବର) ଅଚଳ, ଚିରସ୍ଥାୟୀ, ସ୍ଥାୟୀ, ସ୍ଥିତିଶୀଳ, ସ୍ଥାବରସମ୍ପତ୍ତି ସମ୍ବନ୍ଧୀୟ, (ସ୍ତ୍ରୀ) ସ୍ଥାବରୀ, (ବି)

ପର୍ବତ, ଧନୁର୍ଗୁଣ, ବୃକ୍ଷ, ଭୂସମ୍ପତ୍ତି, ପ୍ରତ୍ୟୁଷାନୁକ୍ରମେ ପରିବାରରେ ରକ୍ଷିତ ହେବା ସମ୍ପତ୍ତି ।

ସ୍ଥାବରଜଙ୍ଗମ—ବି°.(ଦ୍ୱନ୍ଦ୍ୱ) ସ୍ଥିତିଶୀଳ ଓ ଗତିଶୀଳ,ଚଳ ଏବଂ ଅଚଳ,ଚରାଚର, (କ୍ଲୀ.ବି) ସ୍ଥିତିଶୀଳ ଓ ଗତିଶୀଳ ପଦାର୍ଥ, ମନୁଷ୍ୟ ପଶ୍ୱାଦି ପ୍ରାଣୀ ଓ ବୃକ୍ଷ ଭୂମ୍ୟାଦି ପଦାର୍ଥ ।

ସ୍ଥାବରଜଙ୍ଗମାତ୍ମକ—ବି°.(ବ.ବ୍ରୀ) ସ୍ଥିତିଶୀଳ ଓ ଗତିଶୀଳ ମନୁଷ୍ୟ ପଶ୍ୱାଦି ଓ ବୃକ୍ଷ ଭୂମ୍ୟାଦି ସମନ୍ୱିତ ।

ସ୍ଥାବରତା—ବି. ( ସ୍ଥାବର+ତ+ଆ ) ସ୍ଥାବରତ୍ୱ. ସ୍ଥିତିଶୀଳତା ।

ସ୍ଥାବରବିଷ—ବି. ସୁଶ୍ରୁତ ଅନୁସାରେ ଯେଉଁ ବିଷବୃକ୍ଷ ମୂଳ,ପତ୍ର,ଫଳ,ଫୁଲ, ଦୁଧ, ସାର, ଅଠା,ଚେର ଓ ଧାତୁରେ ମିଳେ,ସ୍ଥାବର ପଦାର୍ଥରେ ଥିବା ଜହର ।

ସ୍ଥାବରରାଜ—ବି. ( ୬ତତ୍ ) ଗିରିରାଜ, ହିମାଳୟ ପର୍ବତ ।

ସ୍ଥାବରସମ୍ପତ୍ତି—ସ୍ତ୍ରୀ. ବି. (କ.ଧା) ବୃକ୍ଷ ଭୂମି ଗୃହାଦିରୂପ ସମ୍ପତ୍ତି, ଯେଉଁ ସମ୍ପତ୍ତିକୁ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ନେଇଯାଇ ହୁଏ ନାହିଁ ।

ସ୍ଥାବରାଦି—ବି. ବତ୍ସନାଭ ବିଷ, ମହୁରା, (ପୁଂ) ସ୍ଥାବର ଭେଦ ବସ୍ତୁ ।

ସ୍ଥାବରାସ୍ଥାବରସମ୍ପତ୍ତି—ବି. ଅଚଳନ୍ତ ଓ ଚଳନ୍ତ ସମ୍ପତ୍ତି ।

ସ୍ଥାବିର(ର୍ଯ୍ୟ)—ବି. (ସ୍ଥବିର+ଷ୍ଣ.ଅ,ଯ) ସ୍ଥବିରତା, ବାର୍ଦ୍ଧକ୍ୟ, ପୁରୁଷ ପକ୍ଷରେ ୭୦ ଓ ସ୍ତ୍ରୀ ପକ୍ଷରେ ୫୦ ବର୍ଷ ଟପିବା ଅବସ୍ଥା ।

ସ୍ଥାମ—ବି.(ସ୍ଥା+ଣ.ମନ୍) ସାମର୍ଥ୍ୟ,ଶକ୍ତି, ଅଶ୍ୱଘୋଷ, ଘୋଡ଼ାର ହେଁ ହେଁ ରବ, (ଅଧି.ମନ୍) ସ୍ଥାନ, ଜାଗା ।

ସ୍ଥାୟ—ବି.(ସ୍ଥା+ଅଧି.ଅ)ଆଧାର,ପାତ୍ର ।

ସ୍ଥାୟା—ବି. (ସ୍ଥା+ଅଧି.ଆ) ପୃଥିବୀ ।

ସ୍ଥାୟିତା(ତ୍ୱ)—ବି. (ସ୍ଥାୟିନ୍+ଷ୍ଣ.ତା,ତ୍ୱ) ସ୍ଥିରତା, ସ୍ଥାୟୀହେବାର ଭାବ ।

ସ୍ଥାୟିଭାବ—ବି. (ସ୍ଥାୟିନ+ଭାବ) ଶୃଙ୍ଗାରାଦି ରସର ଦ୍ୱିବିଧ ଭାବର ଅନ୍ତର୍ଗତ ଭାବବିଶେଷ, ରତି, ହାସ, ଶୋକ, କ୍ରୋଧ,ଉତ୍ସାହ,ଭୟ,ଜୁଗୁପ୍ସା, ବିସ୍ମୟ, ଶମ ଏହି ନଅଟି ରସର ଅବସ୍ଥିତିକାଳ ପର୍ଯ୍ୟନ୍ତ ଏମାନେ ଥାଆନ୍ତି ବୋଲି ଏମାନଙ୍କର ନାମ ସ୍ଥାୟିଭାବ, ଭାରମଧ୍ୟ ସହିତ ବିମ୍ବଭାବର ସଂଯୋଗ ଥିବା ।

ସ୍ଥାୟୀ—ପୁଂ. ବି°. (ସ୍ଥା+କ.ଇନ୍)ଚିର. ସ୍ଥିତିଶୀଳ, ଅଚଳ, ବହୁକାଳ ସ୍ଥାୟୀ, ଅପରିବର୍ତ୍ତନଶୀଳ, ବିଶ୍ୱାସ କରିବା ଯୋଗ୍ୟ, (ସ୍ତ୍ରୀ) ସ୍ଥାୟିନୀ,(ବି)ସ୍ଥାୟୀଭାବ ।

ସ୍ଥାୟୁକ—ବି°. ( ସ୍ଥା + କ.ଉକ ) ଏକଗ୍ରାମରେ ନିଯୋଜିତ, ସ୍ଥାୟୀ, (ପୁଂ.ବି) ଗ୍ରାମର ମଣ୍ଡଳ, ଗ୍ରାମାଧିପତି ।

ସ୍ଥାଲ—ବି. (ସ୍ଥା+ଅଧି.ଅଲ କିମ୍ବା ସ୍ଥଳ +କ.ଅ) ସ୍ଥାଲୀ ଦେଖ,ଥାଳ,ଭୋଜନପାତ୍ର, ଥାଳି,ତାଟକା ଭୋଜନ ପାତ୍ର. ପାତ୍ର, ଆଧାର, ଦାନ୍ତର ତଳେ ଦାନ୍ତପାଟିର ଭିତର ଅଂଶ ।

ସ୍ଥାଲକ—ବି. ( ସ୍ଥାଲ+କ ) ପିଠିର ଗୋଟିଏ ହାଡ଼ ।

ସ୍ଥାଲିକ—ବି. ମଳର ଦୁର୍ଗନ୍ଧ ।

ସ୍ଥାଲିକା—ବି. ଏକପ୍ରକାର ମାଛ ।

ସ୍ଥାଲିକାସ୍ଥି—ବି. ଅର୍ବୁଦାକାର ଅସ୍ଥି ।

ସ୍ଥାଲୀ(ଳୀ)—ବି. ( ସ୍ଥାଲ+ଈ ) ପାକପାତ୍ରବିଶେଷ, ହାଣ୍ଡି, ଥାଳି. ତାଟକା ଭୋଜନପାତ୍ର, କୁଣ୍ଡ, ମାଟିର ଆଳଆ, ସୋମରସ ତିଆରି କରିବାର ବ୍ୟବହୃତ ପାତ୍ରବିଶେଷ, ପାଟଳା ।

ସ୍ଥାଲୀପକ୍ୱ—ବି°.(୭ତତ୍)ହାଣ୍ଡିରେ ପାକ କରାଯାଇଥିବା ।

ସ୍ଥାଲୀପାକ—ବି. ହାଣ୍ଡିରେ ପାକ କରିବା. ହାଣ୍ଡିରେ ପାକ କରାଯାଇଥିବା ଅନ୍ନାଦି, ଆହୁତି ଦିଆଯିବା ପାଇଁ ଦୁଗ୍ଧରେ ପାକ କରାଯାଇଥିବା ଚାଉଳ ବା ଯବ, ଚରୁବିଶେଷ, ବୈଦ୍ୟକୋକ୍ତ ଭାନୁପାକ ପରି ଲୁହାଥାଳରେ ପାକ ବିଧି ।

ସ୍ଥାଲୀପାକୀୟ-ବି°.ସ୍ଥାଲୀପାକ ସମ୍ବନ୍ଧୀୟ ।

ସ୍ଥାଲୀପୁଲାକ-ବି.(ନ୍ୟାୟବିଶେଷ)ହାଣ୍ଡିରେ ଥିବା ସମସ୍ତ ଚାଉଳ ଯେଉଁପରି ଏକ ସମୟରେ ସିଝେ, ଅର୍ଥାତ୍ ଗୋଟିଏ ଚାଉଳ ସିଝିଲେ ସବୁ ଚାଉଳ ସିଝିଥିବା ଜଣାଯାଏ,ସେହିପରି ଗୋଟିଏ ବିଷୟକୁ ଅନୁଭବକରି ସେହିଶ୍ରେଣୀର ସମସ୍ତ ବିଷୟ ସମ୍ବନ୍ଧେ ଅନୁମାନରୂପକ ନ୍ୟାୟ ।

ସ୍ଥାଲୀବିଲ—ବି. (୬ତତ୍) ପାକପାତ୍ରର ଅଭ୍ୟନ୍ତର ।

ସ୍ଥାଲୀବିଲୀୟ,ସ୍ଥାଲୀବିଲ୍ୟ-ବି°. ପାକଯୋଗ୍ୟ (ତଣ୍ଡୁଳାଦି) ।

ସ୍ଥାଲୀବୃକ୍ଷ(ଦ୍ରୁମ)—ବି. ଅଶ୍ୱତ୍ଥ ଭେଦ, ନନ୍ଦୀବୃକ୍ଷ ।

ସ୍ଥାସକ—ବି. (ସ୍ଥା+କ.ସକ) ଚର୍ଚ୍ଚିକ୍ୟ, ଭୂଷାର୍ଥ ଚୂର୍ଣ୍ଣବିଶେଷ, ଜଳବୁଦ୍‌ବୁଦ, ଗନ୍ଧଚୂର୍ଣ୍ଣ, ଧୂପ,ମୁଦ,ଶରୀରକୁ ଚନ୍ଦନାଦିରେ ଚର୍ଚ୍ଚିତ ବା ସୁଗନ୍ଧିତକରଣ, ଘୋଡ଼ା ଜିନର ଏକ ଅଲଙ୍କାର ।

ସ୍ଥାସୁ—ବି.(ସ୍ଥା + ଣ.ସୁ) ଶାରୀରିକ ବଳ ।

ସ୍ଥାସ୍ନୁ—ବି°. (ସ୍ଥା + କ.ସ୍ନୁ) ସ୍ଥିତିଶୀଳ, ସ୍ଥାୟୀ, ସ୍ଥିରତର, ଶାଶ୍ୱତ,(ବି) ବୃକ୍ଷ ।

ସ୍ଥିକ—ବି. (ସ୍ଥା + ଣ.ଇକ) କଟିପ୍ରୋଥ, ପିଚ୍ଛ ।

ସ୍ଥିତ—ବି°. (ସ୍ଥା+କ.ତ) ରହିଥିବା, ଅବସ୍ଥିତ, କୃତାବସ୍ଥାନ,ଆସୀନ,ସ୍ଥିର, ନିଶ୍ଚଳ,ବର୍ତ୍ତମାନ,ଉପସ୍ଥିତ,ବିଦ୍ୟମାନ, ଅଚଳ,ଅପରିବର୍ତ୍ତନଶୀଳ,ଦଣ୍ଡାୟମାନ, ପ୍ରତିଜ୍ଞାବିଶିଷ୍ଟ, ଦୃଢ଼ପ୍ରତିଜ୍ଞ,(ଅମୁକରେ) ବାସ କରୁଥିବା, (ସ୍ତ୍ରୀ) ସ୍ଥିତା, (ବି°ସ୍ଥା +ଭା.ତ) ଅବସ୍ଥାନ, କୁଳମର୍ଯ୍ୟାଦା ।

ସ୍ଥିତତା—ବି. (ସ୍ଥିତ+ତ+ଆ)ସ୍ଥିତତ୍ୱ, ଅବସ୍ଥାନ, ସ୍ଥିତି ।

ସ୍ଥିତଧୀ—ପୁଂ ଓ ସ୍ତ୍ରୀ.ବି°.(ବ.ବ୍ରୀ)ସ୍ଥିତବୁଦ୍ଧି(ବ୍ୟକ୍ତି), ଦୁଃଖରେ ଅନୁଦ୍‌ବିଗ୍ନମନା, ସୁଖରେ ବିଗତସ୍ପୃହ, ବୀତରାଗଭୟକ୍ରୋଧ (ବ୍ୟକ୍ତି) ।

ସ୍ଥିତପ୍ରଜ୍ଞ—ପୁଂ, ବି°. ( ବ.ବ୍ରୀ ) ଯେଉଁ ବ୍ୟକ୍ତି ମନୋଗତ ସମସ୍ତ ବାସନାକୁ ତ୍ୟାଗକରି ସର୍ବଦା ତୁଷ୍ଟ ଥାଆନ୍ତି, ମନୋବିକାରରହିତ, (ସ୍ତ୍ରୀ) ସ୍ଥିତପ୍ରଜ୍ଞା ।

ସ୍ଥିତପ୍ରେମା—ପୁଂ. ବି. ସ୍ଥିରତର ବନ୍ଧୁ, ଚିରବନ୍ଧୁ ।

ସ୍ଥିତବୁଦ୍ଧିଦତ୍ତ—ବି. ବୁଦ୍ଧଦେବଙ୍କର ଏକ ନାମ ।

ସ୍ଥିତି-ବି.(ସ୍ଥା + ଭା.ତି)ଅବସ୍ଥାନ ରହିବା, (ଅଧି.ତି) ସୀମା, ମର୍ଯ୍ୟାଦା, ନ୍ୟାଯ୍ୟ-ପଥରେ ଅବସ୍ଥାନ, ସଂସ୍ଥିତି, କୌଣସି ଅବସ୍ଥାରେ କିଛିକାଳ ରହିବା,ସ୍ଥିରତା, ସ୍ଥାୟିତ୍ୱ. ପାଳନ, ସ୍ଥାନ, (ବିଜ୍ଞାନ)ଜଡ଼-ପଦାର୍ଥର ବା ଦ୍ରବ୍ୟର ଗୁଣବିଶେଷ, ଯେଉଁ ଗୁଣ ଯୋଗୁଁ ଜଡ଼ପଦାର୍ଥ ଏକ-ସ୍ଥାନରେ ସ୍ଥିରହୋଇ ରହେ, ଅବସ୍ଥା, ଅସ୍ତିତ୍ୱ,ଢଙ୍ଗ,ଆକାର,ଆକୃତି,ସଂଯୋଗ, ସୁଯୋଗ, (ଶ.ତ)ସଂସ୍ଥାନ,ନିର୍ଦ୍ଧାରଣ, ଜୀବିକା, ବିଶ୍ରାମ, ଅବଧାରଣ, ସିଦ୍ଧାନ୍ତ, ଏକସ୍ଥାନରେ ବନ୍ଦହେବା, ନିବୃତ୍ତି, ଅଟକିଯିବା ।

ସ୍ଥିତିକ୍ରିୟା—ବି. (କ.ଧା) ଅବସ୍ଥାନରୂପ କାର୍ଯ୍ୟ, ପାଳନ କାର୍ଯ୍ୟ ।

ସ୍ଥିତିନିଷେଧ—ବି. (୬ତତ୍ପୁ) ରହିବାକୁ ନିଷେଧ ।

ସ୍ଥିତିବାନ୍—ଗ୍ରା.ବି.(ସଂ-ସ୍ଥିତିମାନ୍)ରଇତି ବୃତ୍ତିରେ ୧୨ ବର୍ଷରୁ ଊର୍ଦ୍ଧ୍ୱ ଦଖଲ କରୁଥିବା ପ୍ରଜା ।

ସ୍ଥିତିବିଜ୍ଞାନ—ବି.ଜଡ଼ପଦାର୍ଥର ଅବସ୍ଥିତି ବିଷୟକ ଗଣନା ସମ୍ବନ୍ଧୀୟ ବିଜ୍ଞାନ ।

ସ୍ଥିତିବିରୋଧ-ବି.ଦୁଇଟି ପରସ୍ପର ବିରୋଧୀ ବସ୍ତୁର ଏକସ୍ଥାନରେ ଓ ଏକକାଳରେ ଅନବସ୍ଥାନ ।

ସ୍ଥିତିସ୍ଥାପକ—ପୁଂ. ବି. ଗୁଣବିଶେଷ, ପୂର୍ବସ୍ଥାନ ସ୍ଥାପନକାରୀ ଗୁଣ, ଆକୁଞ୍ଚନ, ପ୍ରସାରଣ ଓ ଅଭିଘାତାଦି କଲେହେଁ ବସ୍ତୁମାନେ ଯେଉଁ ନୈସର୍ଗିକ ଗୁଣପ୍ରଭା-ବରେ ପୁନର୍ବାର ପୂର୍ବଭାବ ପ୍ରାପ୍ତ ହୁଅନ୍ତି

ସ୍ଥିତିସ୍ଥାପକତା—ସ୍ତ୍ରୀ. ବି. (ସ୍ଥିତିସ୍ଥାପକ + ଭା.ତା) ଗୁଣବିଶେଷ, ଯେଉଁ ଗୁଣ ପ୍ରଭାବରେ କୌଣସି ପଦାର୍ଥ ସଙ୍କୁଚିତ ହେଲେ ମଧ୍ୟ ପ୍ରସାରିତ ହୁଏ ଏବଂ ପ୍ରସାରିତ ହେଲେ ମଧ୍ୟ ସଙ୍କୁଚିତହୋଇ ପୁନର୍ବାର ପୂର୍ବାବସ୍ଥା ପ୍ରାପ୍ତ ହୁଏ ।

ସ୍ଥିର—ବିଂ. ( ସ୍ଥା+କ.ଇର ) ସ୍ଥାବର, ଅଚଳ, ନିଶ୍ଚଳ,ସ୍ଥାୟୀ,ନିରତ, ନିଶ୍ଚିତ, ଗତିଶୂନ୍ୟ,କଠିନ,ଦୃଢ଼,ଅପରବର୍ତ୍ତନୀୟ. ସ୍ଥିରୀକୃତ, ମୀମାଂସିତ, ନିର୍ଦ୍ଧାରିତ, ବିଶ୍ୱାସନୀୟ,(ସ୍ତ୍ରୀ) ସ୍ଥିରା,(ବି)ଦେବତା, ପର୍ବତ, କାର୍ତ୍ତିକେୟ, ବୃକ୍ଷ, ଶନିଗ୍ରହ, ମୋକ୍ଷ, ଅନଡ୍ୱାନ୍,ଅଣ୍ଡିର ବାକୁଚୀ.ଧବ ବୃକ୍ଷ, ଧଅ ଗଛ,(ଜ୍ୟୋତିଷ)ବୃଷ,ସିଂହ, ବୃଶ୍ଚିକ ଓ କୁମ୍ଭରାଶି,ଶିବ,ଜ୍ୟୋତିଷୋକ୍ତ ଯୋଗବିଶେଷ, ସ୍କନ୍ଦାନୁଚରବିଶେଷ, ବୃଷ, ଶସ୍ତ୍ର, ଅଭିମନ୍ତ୍ରିତ କରିବା ମନ୍ତ୍ର-ବିଶେଷ, (ଗ୍ରା.ବି) ବିଶ୍ରାମ, ସ୍ଥିରତା, (ପ୍ରା. ଗଞ୍ଜାମ. ବି) ସ୍ଥାବର ସମ୍ପତ୍ତି ।

ସ୍ଥିରକ—ବି. ଶାକବୃକ୍ଷ,ଶାଗୁଆନ ଗଛ ।

ସ୍ଥିରକରିବା—ଗ୍ରା. କ୍ରି. ନିଶ୍ଚୟ କରିବା, ଥୟ କରିବା, ଅବଧାରଣ କରିବା, ମୀମାଂସା କରିବା, ପ୍ରତିଜ୍ଞା କରିବା, (ମନକୁ) ଅଚଞ୍ଚଳ କରିବା ।

ସ୍ଥିରକର୍ମା—ବିଂ.ବ.ବ୍ରୀ; (ସ୍ଥିର+କର୍ମନ୍) ସ୍ଥିରତା ବା ଦୃଢ଼ତା ସହିତ କର୍ମକାରୀ ।

ସ୍ଥିରକୁସୁମ—ବି. ବକୁଳ ବୃକ୍ଷ ।

ସ୍ଥିରଗନ୍ଧ—ବି. (କ.ଧା) ବହୁକାଳସ୍ଥାୟୀ ଗନ୍ଧ, (ବ.ବ୍ରୀ) ଚମ୍ପକ ବୃକ୍ଷ, ( ବିଂ ) ଚିରସ୍ଥାୟୀ ସୌରଭଯୁକ୍ତ, ସ୍ଥାୟୀଗନ୍ଧ-ଯୁକ୍ତ, (ସ୍ତ୍ରୀ) ସ୍ଥିରଗନ୍ଧା ।

ସ୍ଥିରଗନ୍ଧା—ବି. ପାଟଳା, ପାଟଳି ଗଛ, କେତକୀ ।

ସ୍ଥିରଚକ୍ର—ବି. ଜିନବିଶେଷ ।

ସ୍ଥିରଚିତ୍ତ—ପୁଂ. ବି ଓ ବିଂ. ସ୍ଥିରବୁଦ୍ଧି ଦେଖ, (ସ୍ତ୍ରୀ) ସ୍ଥିରଚିତ୍ତା ।

ସ୍ଥିରଚେତାଃ—ବିଂ. ବ.ବ୍ରୀ; (ସ୍ଥିର+ଚେତସ୍) ସ୍ଥିରବୁଦ୍ଧି ଦେଖ ।

ସ୍ଥିରଚ୍ଛଦ—ବି. ବ.ବ୍ରୀ; (ସ୍ଥିର+ଛଦ) ଭୂର୍ଜପତ୍ର ।

ସ୍ଥିରଚ୍ଛାୟ—ବି. (ସ୍ଥିର+ଛାୟା)ବ.ବ୍ରୀ; ବୃକ୍ଷ, ଛାୟାପ୍ରଧାନ ବୃକ୍ଷ, ଛାୟାତରୁ, (ବିଂ) ନିଶ୍ଚଳ ।

ସ୍ଥିରଜିହ୍ୱ ବି.(ସ୍ଥିର+ଜିହ୍ୱା)ବ.ବ୍ରୀ;ମତ୍ସ୍ୟ ।

ସ୍ଥିରଜୀବିତା—ବି. ଶାଲ୍ମଳି ବୃକ୍ଷ ।

ସ୍ଥିରଜୀବୀ—ପୁଂ. ବିଂ. ଯେ ବହୁକାଳ ବଞ୍ଚେ, (ବି) କୁଆ, (ସ୍ତ୍ରୀ) ସ୍ଥିରଜୀବିନୀ ।

ସ୍ଥିରତର—ବିଂ. (ସ୍ଥିର+ତର) ଅତ୍ୟ-ଶୟ ସ୍ଥିର, ସୁନିଶ୍ଚିତ ।

ସ୍ଥିରତା(ତ୍ୱ)—ବି. (ସ୍ଥିର+ଭା.ତା.ତ୍ୱ) ସ୍ଥିରହେବାର ଭାବ, ସ୍ଥୈର୍ଯ୍ୟ, ନିଶ୍ଚୟ, ଅବଧାରଣ ।

ସ୍ଥିରଦଂଷ୍ଟ୍ର—ବି. (ବ.ବ୍ରୀ) ସର୍ପ, ବରାହ-ରୂପୀ ବିଷ୍ଣୁ, ଧ୍ୱନି ।

ସ୍ଥିରଦୃଷ୍ଟି—ବି. (କ.ଧା) ଅଚଞ୍ଚଳ ଦୃଷ୍ଟି, ( ବିଂ.ବ.ବ୍ରୀ ) ଅଚଞ୍ଚଳ ଦୃଷ୍ଟିଯୁକ୍ତ, ଅନିମେଷ ନେତ୍ରରେ ଦର୍ଶନକାରୀ ।

ସ୍ଥିରଧୀ—ପୁଂ ଓ ସ୍ତ୍ରୀ. ବିଂ. ( ବ.ବ୍ରୀ ) ଦୃଢ଼ଚିତ୍ତ ।

ସ୍ଥିରନିଶ୍ଚୟ—ବି. (ବ.ବ୍ରୀ) ଦୃଢ଼ସଙ୍କଳ୍ପ, (ପୁଂ.ବିଂ) ଦୃଢ଼ପ୍ରତିଜ୍ଞ, ( ସ୍ତ୍ରୀ ) ସ୍ଥିର-ନିଶ୍ଚୟା ।

ସ୍ଥିରପତ୍ର—ବି.(ବ.ବ୍ରୀ)ହିନ୍ତାଳ,ଶ୍ରୀତାଳ ।

ସ୍ଥିରପୁଷ୍ପ—ବି.ଚମ୍ପକ ବୃକ୍ଷ,ବକୁଳ ବୃକ୍ଷ, ତିଳକପୁଷ୍ପ ବୃକ୍ଷ ।

ସ୍ଥିରପୁଷ୍ପୀ—ବି. ତିଳକପୁଷ୍ପ ବୃକ୍ଷ ।

ସ୍ଥିରପ୍ରତିଜ୍ଞ—ପୁଂ. ବିଂ. ବ.ବ୍ରୀ; (ସ୍ଥିର + ପ୍ରତିଜ୍ଞା) ଦୃଢ଼ପ୍ରତିଜ୍ଞ, ସ୍ଥିରସଙ୍କଳ୍ପ, (ସ୍ତ୍ରୀ) ସ୍ଥିରପ୍ରତିଜ୍ଞା ।

ସ୍ଥିରପ୍ରତିଜ୍ଞା—ବି. (କ.ଧା) ଦୃଢ଼ପ୍ରତିଜ୍ଞା ।

ସ୍ଥିରପ୍ରେମା—ବିଂ. ନିଶ୍ଚଳ ପ୍ରେମବିଶିଷ୍ଟ ।

ସ୍ଥିରଫଳା—ସ୍ତ୍ରୀ. ବି. କୁଷ୍ମାଣ୍ଡ ଲତା, କୁମ୍ଭଡ଼ା ଗଛ ।

ସ୍ଥିରବୁଦ୍ଧି—ବି. (କ.ଧା) ଅବିଚଳିତ ବୁଦ୍ଧି ବା ମତି, ( ପୁଂ ଓ ସ୍ତ୍ରୀ. ବିଂ ) ବ.ବ୍ରୀ; ଯାହାର ଚିତ୍ତ ଅବିଚଳିତ,ଦୃଢ଼ପ୍ରତିଜ୍ଞ, ସୁବିଗ୍ରହଯୁକ୍ତ, କାମକ୍ରୋଧାଦି ଦ୍ୱାରା ଅବିଚଳିତ ।

ସ୍ଥିରମତି—ବି. ସ୍ଥିରଧୀ, ନିଶ୍ଚଳବୁଦ୍ଧି, (ବିଂ-ବ.ବ୍ରୀ) ସ୍ଥିରବୁଦ୍ଧିବିଶିଷ୍ଟ, ଧୀର ।

ସ୍ଥିରମଦ—ବି. (ବ.ବ୍ରୀ) ମୟୂର ।

ସ୍ଥିରମୁଦ୍ଗା—ବି. ନାଲକୋଳଥ ।

ସ୍ଥିରଯୋନି—ବି. ସର୍ବଦା ଛାୟାପ୍ରଦ ବୃକ୍ଷ ।

ସ୍ଥିରଯୌବନ—ପୁଂ.ବିଂ.(ବ.ବ୍ରୀ)ଯାହାର ତରୁଣାବସ୍ଥା ଚିରସ୍ଥାୟୀ, (ସ୍ତ୍ରୀ) ସ୍ଥିର-ଯୌବନା,(ପୁଂ.ବି)ବିଦ୍ୟାଧର,ଦେବ-ଯୋନିବିଶେଷ, (କ.ଧା ) ଚିରସ୍ଥାୟୀ ତରୁଣାବସ୍ଥା ।

ସ୍ଥିରଯୌବନା—ସ୍ତ୍ରୀ.ବିଂ. ସ୍ଥିରଯୌବନ-ବିଶିଷ୍ଟା; (ବି) ଅପ୍‌ସରା, ଯେଉଁ ସ୍ତ୍ରୀର ଯୌବନୋଚିତ ରୂପଲାବଣ୍ୟ ଶୀଘ୍ର ନଷ୍ଟ ହୁଏ ନାହିଁ ।

ସ୍ଥିରଯୌବନୀ—ଗ୍ରା. ସ୍ତ୍ରୀ. ବିଂ. ଚିର-ଯୌବନୀ ।

ସ୍ଥିରଗଙ୍ଗା—ବି. ନୀଳୀଗୁଳ୍ମ ।

ସ୍ଥିରରାଗ—ବିଂ. ନିଶ୍ଚଳ ପ୍ରେମବିଶିଷ୍ଟ, ସ୍ଥିରତର ଅନୁରାଗଯୁକ୍ତ ।

ସ୍ଥିରରାଗା—ସ୍ତ୍ରୀ. ବି. ( ସ୍ଥିରରାଗ + ଆ ) ଦାରୁହରିଦ୍ରା ।

ସ୍ଥିରଶ୍ରୀ—ପୁଂ ଓ ସ୍ତ୍ରୀ. ବିଂ. ( ବ.ବ୍ରୀ ) ଯେଉଁ ବ୍ୟକ୍ତିର ଲକ୍ଷ୍ମୀ ବା ସମ୍ପଦ ଅଚଳ ରହେ ।

ସ୍ଥିରସାଧନକ—ବି. ସିନ୍ଧୁବାର ବୃକ୍ଷ, ବେଗୁନିଆ ଗଛ ।

ସ୍ଥିରସାର—ବି. ଶାକବୃକ୍ଷ,ଶାଗୁଆନ ଗଛ ।

ସ୍ଥିରସିଦ୍ଧାନ୍ତ—ବି. ନିଶ୍ଚିତ ମୀମାଂସା ।

ସ୍ଥିରା—ସ୍ତ୍ରୀ. ବିଂ. (ସ୍ଥିର+ଆ) ସ୍ଥାୟିନୀ, ଦୃଢ଼ା, ନିଶ୍ଚଳା, (ବି)ପୃଥିବୀ,ଶାଳପର୍ଣ୍ଣୀ, କାକୋଲୀ,ଶାଳ୍ମଳୀ ବୃକ୍ଷ, ଦୃଢ଼ଚିତ୍ତା ସ୍ତ୍ରୀ, ବନମୁଦ୍‌ଗ, ମାଷପର୍ଣ୍ଣୀ, ମୂଷାକାଣ୍ଣୀ ।

ସ୍ଥିରାଙ୍ଘ୍ରିପ—ବି. ହିନ୍ତାଳ ବୃକ୍ଷ ।

ସ୍ଥିରାଚନ୍ଦ୍ର—ବି. ସାମ୍ପମଣ୍ଡପ ।

ସ୍ଥିରାଦ୍ୱୟ—କ୍ଲୀ. ବି. ଶାଳପର୍ଣ୍ଣୀ ଓ ପୃଶ୍ନିପର୍ଣ୍ଣୀ ।

ସ୍ଥିରାୟୁଃ—ବିଂ. (ସ୍ଥିର+ଆୟୁସ୍) ଚିର-ଜୀବୀ,ଚିରାୟୁଃ,ଅମର,(ବି)ଶାଳ୍ମଳୀବୃକ୍ଷ ।

ସ୍ଥିରସ୍ତି—ପ୍ରା. (ଗଞ୍ଜାମ) ବି. ଭୂସମ୍ପତ୍ତି, ସ୍ଥାବର ସମ୍ପତ୍ତି, ଜମିବାଡ଼ି ।

ସ୍ଥିରୀକରଣ—ବି. (ସ୍ଥିର + ଚ୍ୱି + କୃ + ଭା,ଅନ) ଅବଧାରଣ, ନିର୍ଣ୍ଣୟକରଣ, ପୁଷ୍ଟିସମର୍ଥନ ।

ସ୍ଥିରୀକୃତ—ବିଂ. (ସ୍ଥିର + ଚ୍ୱି + କୃ + ମ.ତ) ଅବଧାରିତ,ନିର୍ଣ୍ଣୀତ,ଦୃଢ଼ୀକୃତ, ମୀମାଂସିତ, ପ୍ରତିଜ୍ଞାତ ।

ସ୍ଥୁରକା—ବି. ସ୍ତ୍ରୀ. ଛୁରିକା ।

ସ୍ଥୁରୀ—ପୁଂ. ବି. ଘୋଟକ, ଖର ବୃଷଭ ଅଳ ପୃଷ୍ଠଦେଶରେ ଭାରବାହୀ ଅଶ୍ୱ ।

ସ୍ଥୂଲ—ବି. ଏକପ୍ରକାର ଲମ୍ବ ତମ୍ବୁ ବା ପଟ୍ଟବାସ ।

ସ୍ଥୂଡ଼୍—(ଧାତୁ) ବରଣ କରିବା ।

ସ୍ଥୂଣା—ବି. (ସ୍ଥା + ଅଧି.ଉନ + ଆ)ଗୃହ-ସ୍ତମ୍ଭ, ଖୁଣ୍ଟ, ଶୂର୍ମୀ, କମାରର ନେହି, ଲୌହପ୍ରତିମା, ଥୁଣ୍ଟାଗଛ ।

ସ୍ଥୂଣାକର୍ଣ୍ଣ—ପୁଂ. ବି. ଋଷିବିଶେଷ ।

ସ୍ଥୂଣାପକ୍ଷ—ପୁଂ.ବି. ବ୍ୟୂହବିଶେଷ ।

ସ୍ଥୂଣାରାଜ—ପୁଂ.ବି. ପ୍ରଧାନ ସ୍ତମ୍ଭ, ବଡ଼ ଖୁଣ୍ଟ ।

ସ୍ଥୂମ—ବି. (ସ୍ଥା + କ.ମେ) ଦୀପ୍ତି, ଚନ୍ଦ୍ର, ଆଲୋକ ।

ସ୍ଥୂର—ବି.(ସ୍ଥା + କ.ଉର) ବୃଷ,ଓଡ଼ିଆ ବଳଦ ବା ପଶୁ, ମନୁଷ୍ୟ, ଘୋଡ଼ା ବଳଦଙ୍କ ପିଠିରେ ବୁହାଯିବା ବୋଝ, (ବିଂ) (ସ୍ଥା + ଣ୍ୱ,ଉର) ଭାରବାହକ (ବୃଷାଦି) ।

ସ୍ଥୂରୀ—ବି.(ସ୍ଥୂର + ଇନ୍)ଓଡ଼ିଆ ବଳଦ, ଘୋଟକ, ଭାରବାହକ ଅଶ୍ୱ ।

ସ୍ଥୂରପୃଷ୍ଠ—ବି. (ବ.ବ୍ରୀ)ନବାରୂଢ଼ ଅଶ୍ୱ ।

ସ୍ଥୂଲ—(ଧାତୁ) ବୃଂହଣ ବା ଗର୍ଜନ କରିବା, ବୃଦ୍ଧି ପାଇବା, ମୋଟା ହେବା

ସ୍ଥୂଳ—ବିଂ. ସ୍ଥୂଲ + କ.ଅ) ପୀନ, ଉପଚିତାବୟବ, ମୋଟା, ପୀବର, ପୁଷ୍ଟ, ଇନ୍ଦ୍ରିୟଗ୍ରାହ୍ୟ, ବୋଧବିଶିଷ୍ଟ, ମୂର୍ଖ, ଜଡ଼ବୁଦ୍ଧି, ସହଜରେ ବୁଝା ଯାଉଥିବା, ଅସୂକ୍ଷ୍ମ, ପ୍ରକାଣ୍ଡ, (ସ୍ତ୍ରୀ) ସ୍ଥୂଳା,(ବି) କୂଟ, ସମୂହ, ପଟଳ, ଟେଣ୍ଟୁ. ପ୍ରିୟଙ୍ଗୁ, ଏକ ପ୍ରକାର କଦମ୍ବ, ଶିବଙ୍କ ଗଣବିଶେଷ, ଅନ୍ନମୟ କୋଷ, ସ୍ଥୂଳଶରୀର, ଅଞ୍ଜୁ, ତୁତଗଛ ।

ସ୍ଥୂଳକ—ବିଂ. (ସ୍ଥୂଳ + କ) ସ୍ଥୂଳ ଦେଖ, (ବି) ତୃଣବିଶେଷ, ଉଲୁଚଡ଼ ।

ସ୍ଥୂଳକଙ୍ଗୁ—ବି. ବରକଧାନ୍ୟ, ଏକ ପ୍ରକାର ଚନା ।

ସ୍ଥୂଳକଟୀ—ବି. (କ.ଧା) ମୋଟ ଅଣ୍ଟା, (ସ୍ତ୍ରୀ.ବିଂ.ବ.ବ୍ରୀ) ଯାହାର ଅଣ୍ଟା ମୋଟ ।

ସ୍ଥୂଳକଣା—ବି. ସ୍ଥୂଳଜୀରକ ।

ସ୍ଥୂଳକଣ୍ଟକ—ବି. ଜାଲବର୍ବୁର (ଗଛ)

ସ୍ଥୂଳକଣ୍ଟକିକା—ବି. ଶାଳ୍ମଳୀବୃକ୍ଷ ।

ସ୍ଥୂଳକଣ୍ଠା—ବି. ବୃହତୀ, ଭେଜିବାଇଗଣ

ସ୍ଥୂଳକନ୍ଦ—ବି. ରକ୍ତ ଲଶୁନ, ଶୂରଣ, ଓଲୁଅ, ହସ୍ତିକନ୍ଦ, ମାଣକନ୍ଦ, ମାଣସାରୁ

ସ୍ଥୂଳକନ୍ଦକ—ବି. ( ସ୍ଥୂଳ + କନ୍ଦ + କ ) ସ୍ଥୂଳକନ୍ଦ ଦେଖ ।

ସ୍ଥୂଳକାୟ—ପୁଂ.ବିଂ. ବ. ବ୍ରୀ; (ସ୍ଥୂଳ + କାୟ) ଯାହାର ଶରୀର ମୋଟା, ପୃଥୁଳ ଶରୀରବିଶିଷ୍ଟ(ସ୍ତ୍ରୀ)ସ୍ଥୂଳକାୟା,(ବି,କ.ଧା) ପୀବର ତନୁ, ମୋଟା ଦେହ ।

ସ୍ଥୂଳକାଷ୍ଠଦଗ୍ଧ—ବି.ବଡ଼ କାଠର ନିଆଁ ।

ସ୍ଥୂଳକାଷ୍ଠାଗ୍ନି—ବଡ଼ କାଠର ନିଆଁ

ସ୍ଥୂଳକୁମୁଦ—ବି. ଶ୍ୱେତକରବୀର ।

ସ୍ଥୂଳକେଶ—ପୁଂ. ବି. ଋଷିବିଶେଷ ।

ସ୍ଥୂଳକୋଣ—ବି. (କ.ଧା. ଜ୍ୟାମିତି) ଏକ ସମକୋଣଠାରୁ ବଡ଼, ମାତ୍ର ଦୁଇ ସମ କୋଣଠାରୁ ସାନକୋଣ ।

ସ୍ଥୂଳକୋଣୀ—ବିଂ. ସ୍ଥୂଳକୋଣବିଶିଷ୍ଟ ।

ସ୍ଥୂଳକୋଣୀତ୍ରିଭୁଜ—ବି.(ଜ୍ୟାମିତି) ଯେଉଁ ତ୍ରିଭୁଜର ଗୋଟିଏ କୋଣ ସ୍ଥୂଳକୋଣ

ସ୍ଥୂଳକ୍ଷ୍ୱେଡ଼—ବି. (ସ୍ଥୂଳ + କ୍ଷ୍ୱେଡ଼) ବାଣ, ଶର ।

ସ୍ଥୂଳଗ୍ରନ୍ଥି—ବି. ମହାଭରୀ ବଚ ।

ସ୍ଥୂଳଚଞ୍ଚୁ—ବି. ମହାଚଞ୍ଚୁ ଶାକ ।

ସ୍ଥୂଳଚମ୍ପକ—ବି. ଧଳା ଚମ୍ପା ।

ସ୍ଥୂଳଚର୍ମ—ବି. (କ.ଧା) ମୋଟ ଚମଡ଼ା ।

ସ୍ଥୂଳଚର୍ମା—ବିଂ.(ସ୍ଥୂଳଚର୍ମନ୍ ଶବ୍ଦ,ବ.ବ୍ରୀ) ଯେଉଁ ଜୀବମାନଙ୍କର ଶରୀର ମୋଟା ଚର୍ମରେ ଆବୃତ ଥାଏ ।

ସ୍ଥୂଳଚର୍ମୀ—ପୁଂ.ବି. ( ସ୍ଥୂଳଚର୍ମ + ଇନ୍) ଯେଉଁ ସବୁ ପ୍ରାଣିର ଦେହ ସ୍ଥୂଳ ଚର୍ମରେ ଆବୃତ ଥାଏ, ଯଥା—ହସ୍ତୀ, ଖଡ୍ଗୀ, ଶୂକର ପ୍ରଭୃତି ।

ସ୍ଥୂଳଗ୍ରୂପ—ବି. ଗୁଳାଭିଣା ଧନୁ, ଗୁଳା

ସ୍ତୂପ, ତୁଳା ପରିଷ୍କାର କରିବାପାଇଁ ବ୍ୟବହୃତ ଧନୁ ।
ସ୍ଥୂଳଚୂଡ଼—ବିଂ. ମୋଟା ଚୂଡ଼ାଯୁକ୍ତ ।
ସ୍ଥୂଳଜଙ୍ଘ—ପୁଂ.ବି. ରାକ୍ଷସବିଶେଷ ।
ସ୍ଥୂଳଜଙ୍ଘା—ବି.ସ୍ତ୍ରୀ. ସମିଦ୍‌ଭେଦ ।
ସ୍ଥୂଳଜିହ୍ୱ—ବିଂ. ମୋଟା ଜିହ୍ୱାଯୁକ୍ତ,(ପୁଂ. ବି) ଭୂତଭେଦ ।
ସ୍ଥୂଳଜୀରକ—ବି. ଜୀରକଭେଦ, ବୃହତ୍‌ଜୀରକ, କଳାଜୀରା ।
ସ୍ଥୂଳତଣ୍ଡୁଳ—ବି. ସ୍ଥୂଳଶାଳୀ, ମୋଟଧାନ
ସ୍ଥୂଳତନୁ—ବି. (କ.ଧା) ମୋଟା ଦେହ, (ବିଂ. ବ.ବ୍ରୀ) ପୃଥୁଳ ଶରୀରବିଶିଷ୍ଟ ।
ସ୍ଥୂଳତା(ତ୍ୱ)—ବି. (ସ୍ଥୂଳ+ଭା. ତା. ତ୍ୱ) ସ୍ଥୂଳଭାବ, ପୀନତା, ଆଧିକ୍ୟ, ବୃହତ୍ତ୍ୱ, (ଜ୍ୟୋତିଷ) ତାରାମାନଙ୍କ ଉଜ୍ଜ୍ୱଳତାର ପରିମାଣ ।
ସ୍ଥୂଳତାଳ—ବି. ହିନ୍ତାଳ ।
ସ୍ଥୂଳତନ୍ତୁଜ—ବି. ଅଲେସ୍ (କାଠ)
ସ୍ଥୂଳତିକ୍ତା—ବି. ଦାରୁହଳଦୀ ।
ସ୍ଥୂଳତଃ—ଗ୍ରା.କ୍ରି.ବିଂ. ମୋଟାମୋଟି ।
ସ୍ଥୂଳତ୍ୱକ୍—ବିଂ. ସ୍ଥୂଳଚର୍ମା ଦେଖ ।
ସ୍ଥୂଳତ୍ୱଗୃ—ବି. କାଶ୍ମରୀ. ଗମ୍ଭାରୀଗଛ ।
ସ୍ଥୂଳଦଣ୍ଡ—ବି. ଦେବନଳ, (ପୁଂ. ବିଂ. ବ.ବ୍ରୀ) ସ୍ଥୂଳଦଣ୍ଡବିଶିଷ୍ଟ,(ସ୍ତ୍ରୀ)ସ୍ଥୂଳଦଣ୍ଡା ।
ସ୍ଥୂଳଦର୍ଭ(ର୍ଭା)—ବି. ମୁଞ୍ଜତୃଣ ।
ସ୍ଥୂଳଦର୍ଶକ—ବି. ଅଣୁବୀକ୍ଷଣ ଯନ୍ତ୍ର, ଯେଉଁ ଯନ୍ତ୍ରଦ୍ୱାରା ସୂକ୍ଷ୍ମବସ୍ତୁ ସ୍ଥୂଳ ଦେଖାଯାଏ ।
ସ୍ଥୂଳଦଳ—ବି. (କ.ଧା) ମୋଟା ପତ୍ର, (ପୁଂ.ବିଂ.ବ.ବ୍ରୀ) ମୋଟା ପତ୍ରବିଶିଷ୍ଟ. (ସ୍ତ୍ରୀ) ସ୍ଥୂଳଦଳା ।
ସ୍ଥୂଳଦଳା—ବି. ସ୍ତ୍ରୀ. ଗୃହକନ୍ୟା, ଘୃତକୁମାରୀ ।
ସ୍ଥୂଳଦେହ—ବି. (କ.ଧା) ସ୍ଥୂଳକାୟା, ମୋଟା ଶରୀର,ଜଡ଼ ଶରୀର,(ପୁଂ.ବିଂ) ସ୍ଥୂଳକାୟ, (ସ୍ତ୍ରୀ) ସ୍ଥୂଳଦେହା ।
ସ୍ଥୂଳନାଳ—ଢେଙ୍କାନାଳ ।
ସ୍ଥୂଳନାସ—ପୁଂ.ବିଂ.(ବ.ବ୍ରୀ)ପୀନନାସାଯୁକ୍ତ, (ସ୍ତ୍ରୀ) ସ୍ଥୂଳନାସା, (ବି) ଶୂକର, ବରାହ ।
ସ୍ଥୂଳନାସିକ—ପୁଂ.ବିଂ. (ବ.ବ୍ରୀ) ପୀନ ନାସାଯୁକ୍ତ, (ସ୍ତ୍ରୀ) ସ୍ଥୂଳନାସିକା, (ବି) ଶୂକର, ବରାହ ।
ସ୍ଥୂଳନିମ୍ବୁ—ବି. ମହାନିମ୍ବୁ, ବଡ଼ଲେମ୍ବୁ ।
ସ୍ଥୂଳନୀଲ—ବି. ବାଜପକ୍ଷୀ, ରଣଗୃଧ୍ର ।
ସ୍ଥୂଳପଟ—ପୁଂ.ବିଂ.(ବ.ବ୍ରୀ) ପୀବରବସ୍ତ୍ରଯୁକ୍ତ, (ସ୍ତ୍ରୀ) ସ୍ଥୂଳପଟା, (ବି) ମୋଟା ଲୁଗା ।
ସ୍ଥୂଳପଟ—ବି. କାର୍ପାସ ।
ସ୍ଥୂଳପଟାକ—ବି. ମୋଟାଲୁଗା ।
ସ୍ଥୂଳପତ୍ର—ବି.(କ.ଧା)ମୋଟାପତ୍ର.(ବ.ବ୍ରୀ) ଦମନକ, ଦଅଣାଗଛ. ଛଡଆନା ଟଙ୍କ. (ବିଂ) ମୋଟ ପତ୍ରବିଶିଷ୍ଟ ।
ସ୍ଥୂଳପର୍ଣ୍ଣୀ—ବି.ସ୍ତ୍ରୀ. ସପ୍ତପର୍ଣ୍ଣୀବୃକ୍ଷ. ଛତିଆନା ଗଛ ।
ସ୍ଥୂଳପାଦ—ପୁଂ.ବିଂ. (ବ.ବ୍ରୀ) ଶୋଥରୋଗ ମୋଟା ଗୋଡ଼ବିଶିଷ୍ଟ, ଶ୍ଳୀପଦୀ. (ସ୍ତ୍ରୀ) ସ୍ଥୂଳପାଦା । [ ଫୁଲ ।
ସ୍ଥୂଳପୁଷ୍ପ—ବି. (ବ.ବ୍ରୀ) ବକବୃକ୍ଷ.ମୋଟ
ସ୍ଥୂଳପୁଷ୍ପା—ବି. ପର୍ବତଜାତ ଅପରାଜିତା ମୃଗରାମଲ୍ଲୀ, ହାପରମାଳୀ ।
ସ୍ଥୂଳପୃଷ୍ଠୀ—ବି. ଯବତିକ୍ତା, ଶ୍ୱେତ ବନବଳା, ଭୂଇଁ ନିମ୍ବ ।
ସ୍ଥୂଳପିଯ୍ୟଙ୍ଗୁ—ବି. ବରକଧାନ୍ୟ ଚନା ଶସ୍ୟ । [ ବୃକ୍ଷ ।
ସ୍ଥୂଳଫଳ—ବି. ଶାଲ୍ମଳୀବୃକ୍ଷ, ମହାନିମ୍ବ
ସ୍ଥୂଳଫଳା—ବି. ଶଣପୁଷ୍ପୀ, ବନ୍ୟଛଣପଟ ଶାଲ୍ମଳୀ ।
ସ୍ଥୂଳବଣ୍ଠିକୁତ୍—ବି. ବ୍ରାହ୍ମଣଯଷ୍ଟୀ.ଭାର୍ଗୀ
ସ୍ଥୂଳବର୍ବୂରିକା—ବି. ମହାବର୍ବୂର ବୃକ୍ଷ, ବଳା ଗଛ ।
ସ୍ଥୂଳବଲ୍କଲ—ବି. ରକ୍ତଲୋଧ୍ର ।
ସ୍ଥୂଳବାଲୁକା—ବି. ମହାଭାରତୋକ୍ତ ନଦୀ ବିଶେଷ ।
ସ୍ଥୂଳବୁଦ୍ଧି—ବି. (କ.ଧା) ମୋଟାବୁଦ୍ଧି, ବିଷୟ ବୋଧରେ ଅସମର୍ଥଧୀ, (ବିଂ. ବ.ବ୍ରୀ) ମୋଟା ବୁଦ୍ଧିବିଶିଷ୍ଟ, ମୋଟାବୁଦ୍ଧିଆ ।
ସ୍ଥୂଳବୃକ୍ଷ—ବି. ବକୁଳବୃକ୍ଷ ।
ସ୍ଥୂଳବୃକ୍ଷଫଳ—ବି. ସ୍ନିଗ୍ଧ ପିଣ୍ଡିତକ, ମଦନଫଳ ।
ସ୍ଥୂଳବୈଦେହୀ—ବି. ଗଜପିପ୍ପଳୀ ।
ସ୍ଥୂଳଭଦ୍ର—ବି. ଶ୍ରୁତକେବଳ ନାମକ ଜୈନଭେଦ ।
ସ୍ଥୂଳଭାବ—ବି. ସ୍ଥୂଳବିଷୟ ।
ସ୍ଥୂଳଭୁଜ—ପୁଂ. ବି. ବିଦ୍ୟାଧରବିଶେଷ ।
ସ୍ଥୂଳଭୂତ—ବି. ପଞ୍ଚୀକୃତ ଆକାଶାଦିଭୂତ, ପଞ୍ଚଭୂତ ।
ସ୍ଥୂଳମଞ୍ଜରୀ—ବି. (ବ.ବ୍ରୀ) ଅପାମାର୍ଗ ।
ସ୍ଥୂଳମରିଚ—ବି.କକ୍କୋଳ,କାଙ୍କୁଲନାମକ ସୁଗନ୍ଧିଦ୍ରବ୍ୟ,ଶୀତଳଚିନି,କବାବଚିନି ।
ସ୍ଥୂଳମୂଳ(କ)—ବି. ବଡ଼ ମୂଳା ।
ସ୍ଥୂଳରୂପ—ବି. ସ୍ଥୂଳଦେହ ।
ସ୍ଥୂଳରୋଗ—ବି. ମେଦୋବୃଦ୍ଧି ରୋଗ ।
ସ୍ଥୂଳଲକ୍ଷ(କ୍ଷ୍ୟ,କ୍ଷୀ)—ପୁଂ. ବିଂ. (ବ.ବ୍ରୀ) ଅତି ଦାନଶୀଳ, କୃତବିଦ୍ୟ, ବିଦ୍ୱାନ୍, କୃତଜ୍ଞ, (ସ୍ତ୍ରୀ) ସ୍ଥୂଳଲକ୍ଷା ।
ସ୍ଥୂଳଶର(ଶାଯ୍ୟକ)—ବି. ରାମଶର, ଶର ତୃଣବିଶେଷ । [ ଦେଖ ।
ସ୍ଥୂଳଶରୀର—ପୁଂ. ବି ଓ ବିଂ. ସ୍ଥୂଳଦେହ
ସ୍ଥୂଳଶାଟକ(କା)—ବି. ମୋଟଲୁଗା ।
ସ୍ଥୂଳଶାଳି—ବି. ବଡ଼ଧାନ, ଶାଳିଧାନ୍ୟ ଭେଦ, ମୋଟ ଶାରଦ ଧାନ ।
ସ୍ଥୂଳଶିମ୍ବ—ବି. ଶିମ୍ବବିଶେଷ, ଅଗ୍ନିଶିମ୍ବୀ ।
ସ୍ଥୂଳଶିମ୍ବୀ—ବି. ସାଦାଶିମ୍ବ,ଶ୍ୱେତନିଷ୍ପାବ ।
ସ୍ଥୂଳଶିରଃ—ବି. (ସ୍ଥୂଳଶିରସ୍ ଶବ୍ଦ)ବୃହତ୍‌ମୁଣ୍ଡ, (ବିଂ-ବ.ବ୍ରୀ) ବୃହନ୍ମସ୍ତକ ।
ସ୍ଥୂଳଶିକ୍ଷିକା—ବି. କ୍ଷୁଦ୍ରପିପୀଲିକା, (ବିଂ) ବୃହନ୍ମସ୍ତକ । [ ପ୍ରକାର ଓଲୁଅ ।
ସ୍ଥୂଳଶୂରଣ—ବି. ଶୂରଣବିଶେଷ, ଏକ-
ସ୍ଥୂଳଷଟ୍‌ପଦ—ବି. ବରେଳ, ବରୁଡ଼ି ।
ସ୍ଥୂଳଶାୟକ—ବି. ରାମଶର, ଭଦ୍ରମୁଞ୍ଜ ।
ସ୍ଥୂଳସ୍କନ୍ଧ—ବି.(ବ.ବ୍ରୀ) ଲକୁଚ,ଜେଉଟ ।
ସ୍ଥୂଳସ୍ତନ—ବି. (କ.ଧା) ପୀବରସ୍ତନ ।
ସ୍ଥୂଳସ୍ତନା—ସ୍ତ୍ରୀ. ବିଂ. ବ.ବ୍ରୀ; (ସ୍ଥୂଳ+ସ୍ତନ+ଆ) ପୀବର ସ୍ତନଯୁକ୍ତା (ସ୍ତ୍ରୀ) ।
ସ୍ଥୂଳହସ୍ତ—ବି. (କ.ଧା)ପୀନଭୁଜ,ହସ୍ତିଶୁଣ୍ଡ ।

**ସ୍ଥୂଳା**—ସ୍ତ୍ରୀ. ବଂ. (ସ୍ଥୂଳ+ଆ) ସ୍ଥୂଳର ସ୍ତ୍ରୀଲିଙ୍ଗ, (ସ୍ତ୍ରୀ.ବି) ଗଜପିପ୍ପଳୀ, ଏଳାରୁ, ଫୁଟି, ସ୍ଥୂଳୈଳା ।

**ସ୍ଥୂଳାଂଶା**—ବି. ଗନ୍ଧପତ୍ରା ।

**ସ୍ଥୂଳାଙ୍ଗ**—ବି. (କ.ଧା) ମୋଟା ଦେହ, ଏକପ୍ରକାର ଚାଉଳ, (ବଂ-ବ.ବ୍ରୀ) ପୃଥୁଳ ଦେହବିଶିଷ୍ଟ, (ସ୍ତ୍ରୀ) ସ୍ଥୂଳାଙ୍ଗୀ ।

**ସ୍ଥୂଳାଜାଜୀ**—ସ୍ତ୍ରୀ. ବି. ସ୍ଥୂଳଜୀରକ, ମୋଟା ଜୀରା ।

**ସ୍ଥୂଳାଦ୍ୟ**—ପୁଂ. ବି. ରାକ୍ଷସବିଶେଷ, (ରାମାୟଣ), ଋଷିବିଶେଷ (ଭାରତ) ।

**ସ୍ଥୂଳାମ୍ର**—ବି. ମହାରାଜଚୂତ, ଉତ୍କୃଷ୍ଟ ଆମ୍ରବିଶେଷ, କଲମୀ ଆମ୍ବ ।

**ସ୍ଥୂଳାସ୍ୟ**—ପୁଂ. ବଂ. (ବ.ବ୍ରୀ) ବୃହନ୍ମୁଖ, (ସ୍ତ୍ରୀ) ସ୍ଥୂଳାସ୍ୟା, (ବି) ସର୍ପ ।

**ସ୍ଥୂଳୀ**—ବି. (ସ୍ଥୂଳ+ଇନ୍) ଉଷ୍ଟ୍ର ।

**ସ୍ଥୂଳୈରଣ୍ଡ**—ବି. ବୃହତ୍ ଏରଣ୍ଡ ବୃକ୍ଷ, ବଡ଼ ଜଡ଼ା ।

**ସ୍ଥୂଳୈଳା**—ବି. (କ.ଧା) ବଡ଼ଅଳାଇଚ ।

**ସ୍ଥୂଳୋଚ୍ଚୟ**—ବି. ହସ୍ତୀର ମଧ୍ୟମ ଗତି, ଗଣ୍ଡୋପଳ, ଗଣ୍ଡଶୈଳ, ଅସମ୍ପୂର୍ଣ୍ଣତା, ବିରଣ୍ଡ, ବ୍ରଣ, ହସ୍ତିଦନ୍ତ ମଧ୍ୟସ୍ଥ ରନ୍ଧ୍ର ।

**ସ୍ଥୂଳୋଦର**—ବି. (କ.ଧା) ବଡ଼ପେଟ, (ପୁଂ.ବଂ-ବ.ବ୍ରୀ) ବଡ଼ପେଟୁଆ, ଅନ୍ତଲପେଟା, (ସ୍ତ୍ରୀ) ସ୍ଥୂଳୋଦରୀ ।

**ସ୍ଥେମା**—ବି. ଉତ୍ସବକାଳ ।

**ସ୍ଥେୟ**—ବଂ. (ସ୍ଥା+ଅଧି.ଯ) ସ୍ଥିରତର, ସ୍ଥାପନୀୟ, (ବି) ବିବାଦପକ୍ଷର ନିର୍ଣ୍ଣେତା, ମଧ୍ୟସ୍ଥ, ପୁରୋହିତ ।

**ସ୍ଥେୟାନ୍**—ପୁଂ. ବଂ. (ସ୍ଥିର+ଈୟସ୍) ଅତି ସ୍ଥିର, ଶ୍ରେଷ୍ଠ, ଶାଶ୍ୱତ, (ସ୍ତ୍ରୀ) ସ୍ଥେୟସୀ । [ ସ୍ଥିର ।

**ସ୍ଥେରଷ୍ଠ**—ବଂ. (ସ୍ଥିର+ଇଷ୍ଠ) ଅତିଶୟ

**ସ୍ଥେଷ୍ଠ**—ପୁଂ. ବଂ. (ସ୍ଥିର+ଇଷ୍ଠ) ଅତି ସ୍ଥିର, ଦୃଢ଼ତର, (ସ୍ତ୍ରୀ) ସ୍ଥେଷ୍ଠା ।

**ସ୍ଥୈର୍ଯ୍ୟ**—ବି. (ସ୍ଥିର+ଭା.ଯ) ସ୍ଥିରତା, ସ୍ଥିରତ୍ୱ, ନିଶ୍ଚଳତା, ଦୃଢ଼ତା, ଅବଧାରଣ ।

**ସ୍ଥୈର୍ଯ୍ୟବାନ୍**—ବଂ. ସ୍ଥୈର୍ଯ୍ୟବିଶିଷ୍ଟ, ସ୍ଥିରତାଯୁକ୍ତ ।

**ସ୍ଥୋ(ସ୍ଥୌ)ଣ**—ବି. (ସ୍ଥୋରିନ୍ ଶବ୍ଦ) ଘୋଡ଼ା ବୋହିବା ପଶୁ, ଘୋଡ଼ାଆଦିବଳଦ ।

**ସ୍ଥୌଣେୟ**—ବି. ଗ୍ରନ୍ଥିପର୍ଣ୍ଣୀ ନାମକ ଗନ୍ଧଦ୍ରବ୍ୟ, ଗଣ୍ଠିଅନା ।

**ସ୍ଥୌର**—ବି. ପଶୁଙ୍କ ପିଠିରେ ବାହିତ ଭାର, ଘୋଡ଼ା ।

**ସ୍ଥୌଲଶୀର୍ଷ**—ପୁଂ. ବଂ. (ସ୍ଥୂଳଶୀର୍ଷ+ଅ) ବୃହନ୍ମସ୍ତକଯୁକ୍ତ, (ସ୍ତ୍ରୀ) ସ୍ଥୌଲଶୀର୍ଷୀ ।

**ସ୍ଥୌଲ୍ୟ**—ବି. (ସ୍ଥୂଳ+ଭା.ଯ) ସ୍ଥୂଳତା, ମେଦୋବୃଦ୍ଧି ରୋଗ ।

**ସ୍ନ**—ଗ୍ରା.ବି. 'ସ୍ନନ'ର ସାଙ୍କେତିକରୂପ ।

**ସ୍ନପନ**—ବି. (ସ୍ନା+ଣିଚ୍+ଭା.ଅନ) ସ୍ନାନ କରାଇବା, ଗାଧୋଇ ଦେବା, ଧୋଇବା, ଆର୍ଦ୍ରୀକରଣ, ଅଭିଷେକ କରଣ, ଅଭିଷେଚନ, ସ୍ନାନ ।

**ସ୍ନପିତ**—ବଂ. (ସ୍ନାପି+ର୍ମ.ତ) କୃତସ୍ନାନ, ସ୍ନାତ, ଧୌତ, ଆର୍ଦ୍ରୀକୃତ, ଅଭିଷେଚିତ, କ୍ଷାଳିତ, ବ୍ୟାପ୍ତ ।

**ସ୍ନବ**—ବି. (ସ୍ନୁ+ଭା.ଅ) ସ୍ରବଣ, କ୍ଷରଣ, ଗଳନ ।

**ସ୍ନସା**—ସ୍ତ୍ରୀ. ବି. ସ୍ନାୟୁ ।

**ସ୍ନା**—(ଧାତୁ) ଗାଧୋଇବା, ଧୋଇବା ।

**ସ୍ନାତ**—ବଂ. (ସ୍ନା+କ.ତ) କୃତସ୍ନାନ, (ର୍ମ.ତ) ଧୌତ, ଆର୍ଦ୍ରୀକୃତ, (ସ୍ତ୍ରୀ) ସ୍ନାତା ।

**ସ୍ନାତକ**—ବି. (ସ୍ନାତ+କ) ଯେ ବ୍ରହ୍ମଚର୍ଯ୍ୟାନୁଷ୍ଠାନର ପର ସ୍ନାନକରି ଗୃହସ୍ଥାଶ୍ରମ ଗ୍ରହଣ କରିଅଛି, ବ୍ରହ୍ମଚର୍ଯ୍ୟ ସାଧନ ପୂର୍ବକ ଗୃହସ୍ଥାଶ୍ରମରେ ପ୍ରବିଷ୍ଟ ବ୍ୟକ୍ତି,

**ସ୍ନାତକବ୍ରତ**—ବି. ସ୍ନାତକଙ୍କ କର୍ତ୍ତବ୍ୟ ବ୍ରତବିଶେଷ ।

**ସ୍ନାତବ୍ୟ**—ବଂ. ସ୍ନାନର ଯୋଗ୍ୟ, ସ୍ନାନାର୍ହ ।

**ସ୍ନାତାନୁଲିପ୍ତ**—ପୁଂ.ବଂ. (କ.ଧା) ସ୍ନାନସାରି ଯେ ଦେହରେ ଚନ୍ଦନାଦି ଲଗାଇ ଅଛି, (ସ୍ତ୍ରୀ) ସ୍ନାତାନୁଲିପ୍ତା ।

**ସ୍ନାନ**—ବି. (ସ୍ନା+ଭା.ଅନ) ଗାଧୋଇବା, ଅବଗାହନ, ସର୍ବାଙ୍ଗ କ୍ଷାଳନ, ମଜ୍ଜନ, ସ୍ନାନସାଧନ ବସ୍ତୁ (ତୈଳ, ହରିଦ୍ରା, ଗନ୍ଧ, ଚନ୍ଦନାଦି), ସ୍ନାନ ସାତପ୍ରକାର (ଯଥା—ମାନ୍ତ୍ର, ଭୌମ, ଆଗ୍ନେୟ, ବାୟବ୍ୟ, ଦିବ୍ୟ, ବାରୁଣ ଏବଂ ମାନସ) ୧—ମନ୍ତ୍ରସ୍ନାନ—ମନ୍ତ୍ରପାଠ ପୂର୍ବକ କାଳ୍ପନିକ ବା ପ୍ରକୃତ ସ୍ନାନ, ୨ ବାୟୁସ୍ନାନ—ବାୟୁ ଦ୍ୱାରା ଶରୀର କ୍ଷାଳନ, ୩ ଭୌମସ୍ନାନ—ଦେହରେ ମାଟି ବୋଳି ଗାଧୋଇବା, ୪ ଆଗ୍ନେୟସ୍ନାନ—ଧୂଆଁ ଦ୍ୱାରା ଦେହ ଧୂପନ କିମ୍ବା ଦେହରେ ଭସ୍ମ ବୋଳିହେବା, ୫ ଦିବ୍ୟ ବା ଆତପସ୍ନାନ—ସୂର୍ଯ୍ୟାଲୋକରେ ସ୍ନାନ, ୬ ବାରୁଣସ୍ନାନ—ଧୂଳି ଦ୍ୱାରା ବା ଗୋରଜ ଦ୍ୱାରା ଶରୀର କ୍ଷାଳନ, ୭ ମାନସସ୍ନାନ—କାଳ୍ପନିକ ସ୍ନାନ ।

**ସ୍ନାନକରିବା**—ଗ୍ରା.କ୍ରି. ଗାଧୋଇବା, ମୁଣ୍ଡ ବୁଡ଼ାଇ ଗାଧୋଇବା ।

**ସ୍ନାନକଳସ(ଘଟ)**—ବି. (କ.ଧା) ଯେଉଁ କୁମ୍ଭରେ ସ୍ନାନାର୍ଥ ଜଳ ରହିଥାଏ ।

**ସ୍ନାନଗୃହ**—ବି. ସ୍ନାନାଗାର ଦେଖ ।

**ସ୍ନାନତୃଣ**—ବି. କୁଶ ।

**ସ୍ନାନଦାନ**—ବି. ସ୍ନାନାନ୍ତେ ବ୍ରାହ୍ମଣଙ୍କୁ ଧନାଦିର ଦାନ, ସ୍ନାନ ଓ ବ୍ରାହ୍ମଣଙ୍କୁ ଧନାଦି ଦାନ ।

**ସ୍ନାନଦ୍ରୋଣୀ**—ସ୍ତ୍ରୀ. ବି. ସ୍ନାନପାତ୍ର, ଗାଧୋଇବାର ମାଠିଆ ।

**ସ୍ନାନପୂର୍ଣ୍ଣିମା**—ବି. ଜ୍ୟେଷ୍ଠପୂର୍ଣ୍ଣିମା, ଯେଉଁଦିନ ବିଷ୍ଣୁ ପ୍ରତିମାଙ୍କର ସ୍ନାନମଣ୍ଡପରେ ସ୍ନାନବିଧି ସମ୍ପାଦିତ ହୁଏ ।

**ସ୍ନାନପ୍ରକାର**—ଗ୍ରା.ବି.(ନିରର୍ଥକ ସହଚର) ଗାଧୁଆପାଧୁଆ ।

**ସ୍ନାନବସ୍ତ୍ର**—ବି. ଯେଉଁ ଲୁଗାପିନ୍ଧି ଗାଧୋଇବାକୁ ହୁଏ । [ ଦେଖ ।

**ସ୍ନାନବେଦୀ(ବେଦିକା)**—ବି. ସ୍ନାନମଣ୍ଡପ

**ସ୍ନାନଭୋଜନ**—ବି. ସ୍ନାନାନ୍ତେ ଭୋଜନ ।

**ସ୍ନାନମଣ୍ଡପ**—ବି. ଯେଉଁ ମଣ୍ଡପରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ପ୍ରତିମାମାନଙ୍କର ଜ୍ୟେଷ୍ଠପୂର୍ଣ୍ଣିମା ଦିନ ସ୍ନାନକାର୍ଯ୍ୟ ସମ୍ପାଦନ କରାଯାଏ ।

**ସ୍ନାନଯାତ୍ରା**—ବି. ଜ୍ୟେଷ୍ଠପୂର୍ଣ୍ଣିମା ଦିନ ଶ୍ରୀ ଜଗନ୍ନାଥଙ୍କର ମହାସ୍ନାନରୂପ ଉତ୍ସବ ।

ସ୍ନାନଶାଟୀ—ବି. ସ୍ନାନବସ୍ତ୍ର ଦେଖ ।
ସ୍ନାନଶାଳା—ବି. ସ୍ନାନାଗାର ଦେଖ ।
ସ୍ନାନଶୀଳ—ପୁଂ. ବିଂ ବେଶୀ ଗାଧୋଇବା ଯାହାର ଅଭ୍ୟାସ, (ସ୍ତ୍ରୀ) ଶୀଳା ।
ସ୍ନାନାଗାର—ବି. (କ.ଧା) ଯେଉଁ ଘରେ ସ୍ନାନ କରାଯାଏ, ଗାଧୁଆ ଘର ।
ସ୍ନାନାହାର—ବି. ପ୍ରଥମେ ସ୍ନାନ ଓ ପରେ ଭୋଜନ ।
ସ୍ନାନିବା—ଗ୍ରା. କ୍ରି. ( ପଦ୍ୟ, ସଂ-ସ୍ନାନ ) ସ୍ନାନ କରିବା ।
ସ୍ନାନୀୟ—ବିଂ. ( ସ୍ନାନ+ଈୟ ) ସ୍ନାତ ହେବାର ଯୋଗ୍ୟ, ସ୍ନାନ ସମ୍ବନ୍ଧୀୟ, ସ୍ନାନୋପଯୋଗୀ, (ବି) ସ୍ନାନସାଧନ, ସ୍ନାନ ସମ୍ପାଦକ ଦ୍ରବ୍ୟ ।
ସ୍ନାନୋପକରଣ—ବି. (୬ତତ୍) ସ୍ନାନର ଉପକରଣ ଦ୍ରବ୍ୟ, ତୈଳ, ଜଳପ୍ରଭୃତି ସ୍ନାନୀୟ ଦ୍ରବ୍ୟ ।
ସ୍ନାନୋତ୍ସବ—ବି. ସ୍ନାନଯାତ୍ରା ଦେଖ ।
ସ୍ନାପକ—ବିଂ. (ସ୍ନା+ଣିଚ୍+କ.ଅକ) ଯେ ସ୍ନାନ କରାଏ, (ସ୍ତ୍ରୀ) ସ୍ନାପିକା ।
ସ୍ନାପନ—ବି.(ସ୍ନା+ଣିଚ୍+ଭା.ଅନ)ସ୍ନାନ ।
ସ୍ନାବ—ବି. ସ୍ନାୟୁ ଦେଖ ।
ସ୍ନାୟନ—ବି. ସ୍ନାନ ।
ସ୍ନାୟବିକ—ବିଂ, (ସ୍ନାୟୁ+ଇକ) ସ୍ନାୟୁ ସମ୍ବନ୍ଧୀୟ ।
ସ୍ନାୟବିକଦୁର୍ବଳତା—ବି.ସ୍ନାୟୁର ଦୋଷଜନିତ ଶକ୍ତିହୀନତା ।
ସ୍ନାୟବୀୟ—ବିଂ. ( ସ୍ନାୟୁ+ଈୟ ) ସ୍ନାୟୁ ସମ୍ବନ୍ଧୀୟ, (ବି) କର୍ମେନ୍ଦ୍ରିୟ ।
ସ୍ନାୟୀ—ପୁଂ.ବିଂ. (ସ୍ନା+କ.ଇନ୍)ସ୍ନାନକର୍ତ୍ତା, (ସ୍ତ୍ରୀ) ସ୍ନାୟିନୀ ।
ସ୍ନାୟୁ—ବି. (ସ୍ନା+କ.ଉ)ଶରୀର ବନ୍ଧନ; ସର୍ବଦେହବ୍ୟାପୀ ସୂତ୍ରବତ୍ ଅସ୍ଥି ବନ୍ଧନୀ ନାଡ଼ୀଗଣ, ପେଶୀବନ୍ଧନୀ ନାଡ଼ୀ,ବାୟୁବାହିନୀ ନାଡ଼ୀ, ସୂକ୍ଷ୍ମ ଶିରା ।
ସ୍ନାୟୁମଣ୍ଡଳ—ବି.(୬ତତ୍) ସର୍ବଶରୀରରେ ପରିବ୍ୟାପ୍ତ ସ୍ନାୟୁସମୂହ ।
ସ୍ନାୟୁମର୍ମ—ବି. ଆଣି, ବିଟପ, କକ୍ଷଧର, କୂର୍ଚ୍ଚ, କୂର୍ଚ୍ଚଶିର, ବସ୍ତି, କ୍ଷିପ୍ର ଅଂସ, ବିଧୁର ଓ ଉତ୍କ୍ଷେପ ଏହିଗୁଡ଼ିକ ସ୍ନାୟୁମର୍ମ ।
ସ୍ନାୟୁଶୂଳ—ବି.ଶୂଳରୋଗବିଶେଷ,ସ୍ନାୟୁର ତୀବ୍ରବ୍ୟଥା ରୋଗ ।
ସ୍ନାୟୁର୍ମ—ବି. (ସ୍ନାୟୁ+ଅର୍ମନ୍) ନେତ୍ରରୋଗବିଶେଷ ।
ସ୍ନାହାନ—ଗ୍ରା.ବି.(ସଂ-ସ୍ନାନ)ଗାଧୁଆ,ସ୍ନାନ ।
ସ୍ନିଗ୍ଧ—ପୁଂ. ବିଂ. (ସ୍ନିହ୍+ମଁ.ତ)ସ୍ନେହଯୁକ୍ତ, ତେଲିଆ, ଚକଚକିଆ, ଚିକ୍କଣ, ମସୃଣ, ପ୍ରିୟ,ସ୍ନେହପାତ୍ର,ବତ୍ସଳ,ସ୍ନେହୀ, ସୁଶ୍ରାବ୍ୟ, ଶ୍ରୁତିମଧୁର, ସୁଖକର ଓ ଶୀତଳ, ନରମ, କୋମଳ, ଶୀତଳତାକାରକ, ରମ୍ୟ, ରମଣୀୟ, ସୁସ୍ପର୍ଶ, (ସ୍ତ୍ରୀ) ସ୍ନିଗ୍ଧା, (ବି) ଶିକ୍ଥକ, ମହଣ, ବୟସ୍ୟ, ସଖା, ରକ୍ତୈରଣ୍ଡ,ସରଳବୃକ୍ଷ, ଦୁଧସର, ସୋମ, ପ୍ରଭା, ତେଜଃ,ଭକ୍ତମଣ୍ଡ, ବେଧ, (ସ୍ତ୍ରୀ) ମଜ୍ଜା ।
ସ୍ନିଗ୍ଧକନ୍ଦା—ବି. କଦଳୀ, ପଦ୍ମଶାକ ।
ସ୍ନିଗ୍ଧକରଞ୍ଜକ—ବି. ଗୁଚ୍ଛକରଞ୍ଜ ।
ସ୍ନିଗ୍ଧକର—ବିଂ. (ସ୍ନିଗ୍ଧ+କୃ+କ.ଅ) ଶୀତଳତାଜନକ, ତୃପ୍ତିଦାୟକ, (ସ୍ତ୍ରୀ) ସ୍ନିଗ୍ଧକରୀ ।
ସ୍ନିଗ୍ଧକାନ୍ତ—ବିଂ. ( ବ.ବ୍ରୀ ) ରମଣୀୟ, କାନ୍ତିଯୁକ୍ତ, (ସ୍ତ୍ରୀ.-ବି-କ.ଧା)ମନୋରମକାନ୍ତି, ରମଣୀୟ ଲାବଣ୍ୟ ।
ସ୍ନିଗ୍ଧଗମ୍ଭୀର—ପୁଂ.ବିଂ. ରମଣୀୟ ଅଥଚ ଗମ୍ଭୀର, (ସ୍ତ୍ରୀ) ସ୍ନିଗ୍ଧଗମ୍ଭୀରା ।
ସ୍ନିଗ୍ଧଗାମ୍ଭୀର୍ଯ୍ୟ—ବି. (କ.ଧା) ମନୋରମ ଗମ୍ଭୀରଭାବ ।
ସ୍ନିଗ୍ଧଚ୍ଛଦ—ବି. (ବ.ବ୍ରୀ) ବରଗଛ,(ବିଂ) ମସୃଣ ପତ୍ରବିଶିଷ୍ଟ ।
ସ୍ନିଗ୍ଧଚ୍ଛଦା—ସ୍ତ୍ରୀ.ବିଂ.ସ୍ନିଗ୍ଧଚ୍ଛଦର ସ୍ତ୍ରୀଲିଙ୍ଗ. (ବି) ବରକୋଳି ଗଛ ।
ସ୍ନିଗ୍ଧଜୀରକ—ବି. ଇସବଗୋଲ ।
ସ୍ନିଗ୍ଧତଣ୍ଡୁଳ—ବି. ଷଷ୍ଟିଶାଳି, ଲଘୁଧାନ, ଷାଠିକାଧାନ ।
ସ୍ନିଗ୍ଧତା(ତ୍ୱ)—ବି. ( ସ୍ନିଗ୍ଧ+ଭା.ତା ) ସ୍ନିଗ୍ଧଭାବ, ସ୍ନେହ,ଶୀତଳତା,କୋମଳତା, ପ୍ରିୟତା, ତେଲ ।
ସ୍ନିଗ୍ଧଦାରୁ—ବି. ( ବ.ବ୍ରୀ ) ସରଳ ବୃକ୍ଷ, ଦେବଦାରୁ, ଶାଳଗଛ ।
ସ୍ନିଗ୍ଧଦୃଷ୍ଟି—ବି. (କ.ଧା) ମଧୁରଦୃଷ୍ଟି. କୋମଳଦୃଷ୍ଟି, (ବିଂ-ବ.ବ୍ରୀ) କୋମଳ ଦୃଷ୍ଟିସମ୍ପନ୍ନ ।
ସ୍ନିଗ୍ଧନିର୍ମଳ—ବିଂ.ଚିକ୍କଣ ଓ ସଫା, (ବି) କଂସାଧାତୁ ।
ସ୍ନିଗ୍ଧପତ୍ରକ—ବି.ଗଜେରତୃଣ,ଗୁଚ୍ଛକରଞ୍ଜ, ଘୃତକରଞ୍ଜ, ଆବର୍ତ୍ତକୀ ଲତା ।
ସ୍ନିଗ୍ଧପତ୍ରା—ବି. ବଦରୀ,ପାଲଙ୍କା,ପାଲଙ୍କଶାଗ, ଗମ୍ଭାରୀ, ପୁନ୍ନପୁନ୍ନଆଶାଗ ।
ସ୍ନିଗ୍ଧପର୍ଣ୍ଣିକା(ପର୍ଣ୍ଣୀ)—ସ୍ତ୍ରୀ. ବି. ମୂର୍ବା, ପୃଶ୍ନିପର୍ଣ୍ଣୀ ।
ସ୍ନିଗ୍ଧପିଣ୍ଡୀତକ—ବି.ମଦନ ବୃକ୍ଷବିଶେଷ ।
ସ୍ନିଗ୍ଧଫଳ—ବି. ଗୁଚ୍ଛକରଞ୍ଜ ।
ସ୍ନିଗ୍ଧଫଳା—ସ୍ତ୍ରୀ. ବି. ନାକୁଳୀ, ରାସ୍ନା, ବାଳୁକ, କର୍କଟିକା, ଫୁଟିକାକୁଡ଼ି ।
ସ୍ନିଗ୍ଧବୀଜ—ବି. (ବ.ବ୍ରୀ) ଇସବଗୋଲ, ଚିକ୍କଣମଞ୍ଜି ।
ସ୍ନିଗ୍ଧମଜ୍ଜକ—ବି. ବାଦାମ୍ ।
ସ୍ନିଗ୍ଧରାଜି—ବି. ସର୍ପବିଶେଷ ।
ସ୍ନିଗ୍ଧଶ୍ୟାମଳ—ବିଂ. (କ.ଧା) ମନୋରମ ଶ୍ୟାମବର୍ଣ୍ଣବିଶିଷ୍ଟ, (ସ୍ତ୍ରୀ) ସ୍ନିଗ୍ଧଶ୍ୟାମଳା ।
ସ୍ନିଗ୍ଧସୌରଭ—ବି. (କ.ଧା) କୋମଳ ସଦ୍‌ଗନ୍ଧ, ଅତୀବ ସୁବାସ ।
ସ୍ନିଗ୍ଧା—ସ୍ତ୍ରୀ. ବିଂ. 'ସ୍ନିଗ୍ଧ'ର ସ୍ତ୍ରୀଲିଙ୍ଗ,(ବି) ମେଦୋ, ମଜ୍ଜା, ଅସ୍ଥିସାର, ବକକଣ୍ଟ, ଭୁଇଁଚ ।
ସ୍ନିଗ୍ଧୋଜ୍ଜ୍ୱଳ—ବିଂ. ( କ.ଧା ) କୋମଳ ଦୀପ୍ତିଶାଳୀ,ମଧୁର ଦୀପ୍ତିବିଶିଷ୍ଟ,ରମଣୀୟ ଅଥଚ ଶୋଭାମୟ, (ସ୍ତ୍ରୀ) ସ୍ନିଗ୍ଧୋଜ୍ଜ୍ୱଳା ।
ସ୍ନିହ୍—(ଧାତୁ) ସ୍ନେହ କରିବା ।
ସ୍ନିହ୍ନ—(ଧାତୁ) ସ୍ନେହ କରିବା,ତୈଳାକ୍ତ କରିବା, ମସୃଣ କରିବା ।
ସ୍ନୁ—(ଧାତୁ) କ୍ଷରିତ ହେବା ।
ସ୍ନୁ—ବି.ସାନୁ,ପର୍ବତୋପରିସ୍ଥ ସମଭୂଭାଗ, ସ୍ନାୟୁ ।
ସ୍ନୁକ୍—ବି. (ସ୍ନୁହ୍+କ୍ୱିପ୍)ସ୍ନୁହୀବୃକ୍ଷ, ସିଝୁଗଛ ।

ସ୍ନୁକ୍ଛଦ—ବ.କ୍ଷୀରକଞ୍ଚୁକୀବୃକ୍ଷ,କ୍ଷୀରବୃକ୍ଷ।

ସ୍ନୁକ୍ଛଦୋପମ-ବ.ବାରାହୀକନ୍ଦ,ବାରହାକନ୍ଦା ।

ସ୍ନୁତ—ବଂ.(ସ୍ନୁ+କ.ତ)ଗଳିତ,କ୍ଷରିତ, ପତିତ, (ସ୍ତ୍ରୀ) ସ୍ନୁତା ।

ସ୍ନୁଷା—ସ୍ତ୍ରୀ. ବ. ( ସ୍ନୁ+କ.ଷ+ଆ ) ପୁତ୍ରବଧୂ, ସ୍ନୁହୀବୃକ୍ଷ, ସିଝୁଗଛ ।

ସ୍ନୁହ—(ଧାତୁ) ବମନ କରିବା ।

ସ୍ନୁହା(ହି,ହୀ)—ବ.(ସ୍ନୁ+କ.ହ+ଆ.ଇ. ଈ) ସିଝୁଗଛ ।

ସ୍ନୁହ୍ୟ—ବ. ଉତ୍ପଳ, କଇଁ ।

ସ୍ନେୟ—ବଂ. (ସ୍ନା+କ.ଯ) ସ୍ନାନକରିବା ଯୋଗ୍ୟ,ଯେ ସ୍ନାନ କରିବାକୁ ଯାଉଅଛି

ସ୍ନେହ—ବ.(ସ୍ନିହ+ଭା.ଅ)ପ୍ରେମ,ବାତ୍ସଲ୍ୟ ନିଜ ଅପେକ୍ଷା ନିମ୍ନତର ବ୍ୟକ୍ତିଙ୍କ ପ୍ରତି ଗୁରୁଜନଙ୍କର ପ୍ରେମ, ତୈଳ,ଘୃତ,ଚର୍ବି ଆଦି ଚିକ୍କଣିଆ ପଦାର୍ଥ,ତୈଳାଦି ରସୋଦ୍ଭବ, ଚିକ୍କଣତା, ( ନ୍ୟାୟଦର୍ଶନ ) ଗୁଣବିଶେଷ, ଜଳୀୟ ପରମାଣୁରେ ସର୍ବଦା ଉପସ୍ଥିତ ଗୁଣ, କୋମଳତା, ହନୁମାନଙ୍କ ମତରେ ହିନ୍ଦୋଳ ରାଗର ପୁତ୍ର ରାଗବିଶେଷ, ସୋହାଗ, ଦୁଧସର. ପ୍ରିୟବସ୍ତୁ, (ଗ୍ରା.ବ) କୌଣସି ଦ୍ରବ୍ୟପ୍ରତି ଆଦର, ଆଗ୍ରହ ।

ସେହକ—ବଂ. ସ୍ନେହଯୁକ୍ତ ।

ସ୍ନେହକର—ବ. ଶାଳବୃକ୍ଷ ।

ସ୍ନେହକରିବା—ଗ୍ରା. କ୍ରି. ସୁଖପାଇବା, ବାତ୍ସଲ୍ୟ ଦେଖାଇବା ।

ସ୍ନେହକର୍ତ୍ତା—ପୁଂ. ବଂ. ସ୍ନେହକାରୀ, ଯେ ସ୍ନେହକରେ, (ସ୍ତ୍ରୀ) ସ୍ନେହକର୍ତ୍ତ୍ରୀ ।

ସ୍ନେହକ୍ରୀତ—ପୁଂ ବଂ. (୩ତତ୍)ଲ.ଅର୍ଥ; ସ୍ନେହଦ୍ୱାରା କିଣାହେବାପରି ବଶୀଭୂତ ।

ସ୍ନେହଗର୍ଭ—ବଂ. (ବ.ବ୍ରୀ) ସ୍ନେହପୂର୍ଣ୍ଣ, ସ୍ନେହଜଡ଼ିତ, (ବ) ତିଳ ।

ସ୍ନେହଚତୁଷ୍ଟୟ—ବ. ଚାରିପ୍ରକାର ସ୍ନେହ ପଦାର୍ଥ, ଘୃତ, ତୈଳ, ବସା ଓ ମଜ୍ଜା।

ସ୍ନେହତୁଟ—ଗ୍ରା.ବଂ.ପୂର୍ବର ସ୍ନେହ ତୁଟିଯାଇଥିବା, ( ଗ୍ରା.ବ ) ପୂର୍ବସ୍ନେହର ଊଣାହେବା, ସ୍ନେହବନ୍ଧନର ଛେଦ ।

ସ୍ନେହନ—ବ. (ସ୍ନିହ+ଭା.ଅନ) ସ୍ନେହ କରିବା, ତୈଳମର୍ଦ୍ଦନ, ଚିକ୍କଣତା ଉତ୍ପାଦନ, କଫ, ଶ୍ଲେଷ୍ମା, ନବନୀତ, (ବଂ) ସ୍ନିଗ୍ଧକାରକ, (ସ୍ତ୍ରୀ) ସ୍ନେହନୀ ।

ସ୍ନେହନୀୟ—ବଂ.(ସ୍ନିହ+ଅନୀୟ)ସ୍ନେହଯୋଗ୍ୟ, ସ୍ନେହର ଉପଯୁକ୍ତ ।

ସ୍ନେହପତ୍ର—ବ.(କ.ଧା) ସ୍ନେହପୂର୍ଣ୍ଣ ପତ୍ର, ସ୍ନେହମୟ ଲେଖ ।

ସ୍ନେହପଦାର୍ଥ—ବ.(କ.ଧା)ତୈଳାଦିବସ୍ତୁ ।

ସ୍ନେହପରାୟଣ—ପୁଂ. ବଂ. ( ବ.ବ୍ରୀ ) ସ୍ନେହଶୀଳ, (ସ୍ତ୍ରୀ) ସ୍ନେହପରାୟଣା ।

ସ୍ନେହପରିପ୍ଲୁତ—ପୁଂ. ବଂ. ( ୩ତତ୍ ) ସ୍ନେହଦ୍ୱାରା ବ୍ୟାପ୍ତ, ସ୍ନେହଦ୍ୱାରା ପୂର୍ଣ୍ଣ, (ସ୍ତ୍ରୀ) ସ୍ନେହପରିପ୍ଲୁତା ।

ସ୍ନେହପାତ୍ର—ବ. (୬ତତ୍) ସ୍ନେହଭାଜନ ବ୍ୟକ୍ତି, ଯାହାକୁ ସ୍ନେହ କରାଯାଏ ।

ସ୍ନେହପାନ—ବ. (୬ତତ୍) ରୋଗ ନିବାରଣାର୍ଥ ତୈଳ, ଘୃତ, ଚର୍ବିଆଦିର ପାନ ।

ସ୍ନେହପାଳିତ—ପୁଂ.ବଂ.(୩ତତ୍) ବାତ୍ସଲ୍ୟ ସହକାରେ ଲାଳିତ, (ସ୍ତ୍ରୀ) ପାଳିତା ।

ସ୍ନେହପିଣ୍ଡୀତକ—ବ. ମଦନଫଳ ।

ସ୍ନେହପୁତ୍ତଳ—ବ. ( ୬ତତ୍ ) ଅତିଶୟ ସ୍ନେହର ପାତ୍ର ।

ସ୍ନେହପୂର(ଫଳ)—ବ. ତିଳ ।

ସ୍ନେହପ୍ରଣୋଦିତ—ପୁଂ. ବଂ. ( ୩ତତ୍ ) ସ୍ନେହଦ୍ୱାରା ସୂଚିତ ବା ଉଦିତ, ( ସ୍ତ୍ରୀ ) ସ୍ନେହପ୍ରଣୋଦିତା ।

ସ୍ନେହପ୍ରଫୁଲ୍ଲ—ବଂ(୩ତତ୍)ବାତ୍ସଲ୍ୟହେତୁ ବିକଶିତ, (ସ୍ତ୍ରୀ) ସ୍ନେହପ୍ରଫୁଲ୍ଲା ।

ସ୍ନେହପ୍ରବଣ—ବଂ. (୭ତତ୍) ବାତ୍ସଲ୍ୟର ଅନୁରାଗୀ, ଅତି ସ୍ନେହଶୀଳ, ( ସ୍ତ୍ରୀ ) ସ୍ନେହପ୍ରବଣା ।

ସ୍ନେହପ୍ରବଳା—ଗ୍ରା.ସ୍ତ୍ରୀ. ବଂ. (ସଂ-ସ୍ନେହପ୍ରବଣା) ସ୍ନେହମୟୀ ।

ସ୍ନେହପ୍ରିୟ—ବ. (ବ.ବ୍ରୀ) ପ୍ରଦୀପ, (ବଂ) ତୈଳପ୍ରିୟ, ଅତ୍ୟନ୍ତ ସ୍ନେହୀ ।

ସ୍ନେହବତୀ—ବ. ମେଦା, ( ସ୍ତ୍ରୀ.ବଂ ) ସ୍ନେହମୟୀ ।

ସ୍ନେହବନ୍ଧ(ନ)—ବ. (୬ତତ୍ ବା ରୂପକ କ.ଧା) ସ୍ନେହଜନିତ ମମତା, ବନ୍ଧନରୂପ ସ୍ନେହ ।

ସ୍ନେହବନ୍ଧୁ—ବ. ସ୍ନେହବନ୍ଧନ ଦ୍ୱାରା ହୋଇଥିବା, ବନ୍ଧୁ ପ୍ରୀତିବନ୍ଧୁ ।

ସ୍ନେହବନ୍ଧୁତା—ବ. (ଗ୍ରାମ୍ୟ ବ୍ୟବହାର) ସ୍ନେହଦ୍ୱାରା ସୃଷ୍ଟ ବନ୍ଧୁତା ।

ସ୍ନେହବଳିବା—ଗ୍ରା. ବ. ଆଗ୍ରହାତିଶଯ୍ୟ ହେବା ।

ସ୍ନେହବସ୍ତି—ବ. ଅନୁବାସନ ବସ୍ତି ତେଲ -ଦ୍ୱାର ଗୁହ୍ୟଦ୍ୱାରବାଟେ ଦିଆଯିବା ପିଚକାରୀ ।

ସ୍ନେହବାନ୍—ପୁଂ. ବଂ. (ସ୍ନେହ+ବତ୍) ସ୍ନେହୀ, ସ୍ନେହମୟ, ସ୍ନେହବିଶିଷ୍ଟ, (ସ୍ତ୍ରୀ) ସ୍ନେହବତୀ ।

ସ୍ନେହବିଦ୍ଧ—ବ. ଦେବଦାରୁ ।

ସ୍ନେହବୀଜ—ବ. (ରୂପକ) ବୀଜସଙ୍ଗେ ତୁଳନା କରାଯିବା ସ୍ନେହ, କିଆରିରେ ବୀଜ ବୁଣାଯିବା ପରି ହୃଦୟରେ ବୁଣାଯିବା ସ୍ନେହ, ସ୍ନେହର ପ୍ରଥମ ପ୍ରକାଶ, ସ୍ନେହର କାରଣ, ପିୟାଲ ବୃକ୍ଷ ।

ସ୍ନେହବୋଳା—ଗ୍ରା.ବଂ.(ଲ.ଅର୍ଥ)ସ୍ନେହର ପ୍ରୀତିପୂର୍ଣ୍ଣ,ବାତ୍ସଲ୍ୟମୟ,ସ୍ନେହପୂର୍ଣ୍ଣ ପ୍ରୀତିମଧୁର ।

ସ୍ନେହଭରେ—ଗ୍ରା. କ୍ରି. ବଂ. ଅତ୍ୟନ୍ତ ସ୍ନେହରେ, (ଗ୍ରା.ବଂ-ବହୁବଚନ)ପ୍ରୀତିଭାଜନ ପ୍ରିୟ ।

ସ୍ନେହଭାଜନ—ପୁଂ ଓ ସ୍ତ୍ରୀ.ବଂ. (୬ତତ୍) ସ୍ନେହପାତ୍ର,ଯାହାକୁ ସ୍ନେହ କରାଯାଏ ।

ସ୍ନେହଭୂ—ବ. ସ୍ନିଗ୍ଧଭୂମି, ଶ୍ଲେଷ୍ମା, (ବଂ) ସ୍ନିଗ୍ଧଭୂମିବିଶିଷ୍ଟ ।

ସ୍ନେହମୟ—ପୁଂ. ବଂ. (ସ୍ନେହ+ମୟ) ବାତ୍ସଲ୍ୟମୟ, ସ୍ନେହପୂର୍ଣ୍ଣ, ସ୍ନେହଯୁକ୍ତ, ବତ୍ସଳ, ସ୍ନେହୀ, ସ୍ନେହଶୀଳ,ତୈଳଯୁକ୍ତ, ତେଲିଆ, (ସ୍ତ୍ରୀ) ସ୍ନେହମୟୀ ।

ସ୍ନେହରଙ୍ଗ—ବ.(ସ୍ନିହ+ରଞ୍ଜ+ଅ)ତିଳ ।

ସ୍ନେହରସ—ବ. ବାତ୍ସଲ୍ୟରୂପ ରସ ।

ସ୍ନେହରେକଭୂ—ପୁଂ. ବ. ଚନ୍ଦ୍ର ।

ସ୍ନେହଲ—ବଂ. ସ୍ନେହବିଶିଷ୍ଟ,ସ୍ନେହଯୁକ୍ତ ।

ସ୍ନେହଶାଳୀ—ପୁଂ.ବଂ.(ସ୍ନେହ+ଶାଳିନ୍)

ବାତ୍ସଲ୍ୟବିଶିଷ୍ଟ, ସ୍ନେହପୂର୍ଣ୍ଣ, (ସ୍ତ୍ରୀ) ସ୍ନେହଶାଳିନୀ ।

ସ୍ନେହଶୀଳ—ପୁଂ. ବିଂ. (ବ.ବ୍ରୀ)ବାତ୍ସଲ୍ୟପରାୟଣ, ସ୍ନେହମୟ, ବତ୍ସଳପ୍ରକୃତିବିଶିଷ୍ଟ, (ସ୍ତ୍ରୀ) ସ୍ନେହଶୀଳା । [ ଦେଖ ।

ସ୍ନେହସଞ୍ଚାର—ବି.(୬ତତ୍ପୁ)ସ୍ନେହୋଦ୍ରେକ

ସ୍ନେହସାର—ବି. ଅସ୍ଥିସାର, ମଜ୍ଜା ।

ସ୍ନେହସିକ୍ତ—ବିଂ. ( ୩ତତ୍ପୁ ) ଲ.ଅର୍ଥ; ସ୍ନେହାର୍ଦ୍ର, ସ୍ନେହବୋଳା ।

ସ୍ନେହସିନ୍ଧୁ—ବି. (ରୂପ-କ.ଧା) ପ୍ରଗାଢ଼ ସ୍ନେହ, ସମୁଦ୍ର ସଙ୍ଗେ ତୁଳନା କରାଯିବା ସ୍ନେହ । [ ଅମୃତ ।

ସ୍ନେହସୁଧା—ବି. (ରୂପ-କ.ଧା)ସ୍ନେହରୂପ

ସ୍ନେହହୀନ—ବିଂ. (୩ତତ୍ପୁ) ସ୍ନେହଶୂନ୍ୟ, ବାତ୍ସଲ୍ୟବର୍ଜିତ, (ସ୍ତ୍ରୀ) ସ୍ନେହହୀନା ।

ସ୍ନେହା—ବି.(ସ୍ନିହ+ଅନ୍,ସ୍ନେହନ୍ ଶବ୍ଦ) ରୋଗବିଶେଷ, ବନ୍ଧୁ, ଚନ୍ଦ୍ର, (ଗ୍ରା.ବି) ସ୍ନେହ, (ଗ୍ରା.ବିଂ) ସ୍ନେହୀ, ଅନୁରକ୍ତ ।

ସ୍ନେହାକୃଷ୍ଟ—ବିଂ. ୩ତତ୍ପୁ; (ସ୍ନେହ+ଆକୃଷ୍ଟ) ଯାହାର ସ୍ନେହ ଦ୍ୱାରା ସ୍ନେହୀ ବ୍ୟକ୍ତି ଆକୃଷ୍ଟ ହୁଏ ।

ସ୍ନେହାର୍ଦ୍ର—ବିଂ. (୩ତତ୍ପୁ) ସ୍ନେହବୋଳା ଦେଖ । [ ପ୍ରଦୀପ ।

ସ୍ନେହାଶ—ବି. (ସେହ+ଅଶ୍+କ.ଅ)

ସ୍ନେହାସ୍ପଦ—ବି. (୬ତତ୍ପୁ) ସ୍ନେହପାତ୍ର, ସ୍ନେହଭାଜନ ।

ସ୍ନେହିତ—ବିଂ. (ସ୍ନେହ+ଇତ) ସ୍ନେହଯୁକ୍ତ, ସ୍ନେହମ୍ରକ୍ଷିତ, ସ୍ନେହାସ୍ପଦ, (ବି) ବନ୍ଧୁ ।

ସ୍ନେହୀ—ପୁଂ. ବିଂ. (ସ୍ନେହ+ଇନ୍)ସ୍ନେହଶୀଳ,ସ୍ନେହଯୁକ୍ତ.ଆଦରକାରୀ,ତେଲିଆ, (ସ୍ତ୍ରୀ) ସ୍ନେହିନୀ, ( ପୁଂ.ବି ) ଚିତ୍ରକର, ବୟସ୍ୟ,ମିତ୍ର,ସ୍ନେହପାତ୍ର ।

ସ୍ନେହୁ—ବି.(ସ୍ନିହ+କ.ଉ)ସ୍ନେହା ରୋଗବିଶେଷ, ରୋଗ, ଚନ୍ଦ୍ର ।

ସ୍ନେହୋତ୍ତମ—ବି. (୭ତତ୍ପୁ) ତିଳତେଲ ।

ସ୍ନେହୋଦ୍ରେକ—ବି. ( ୬ତତ୍ପୁ ) ସ୍ନେହସଞ୍ଚାର, ମନରେ ସ୍ନେହଜାତ ହେବା ।

ସ୍ନେହୋପହାର—ବି. (କ.ଧା) ସ୍ନେହସହକାରେ ପ୍ରଦତ୍ତ ଉପଢୌକନ, ସ୍ନେହପୂର୍ଣ୍ଣ ଯୌତୁକ ।

ସ୍ନେହୋପହୃତ—ବିଂ. ସ୍ନେହଦ୍ୱାରା ଉପହାର ଦିଆଯାଇଥିବା

ସ୍ନେହ୍ୟ—ପୁଂ. ବିଂ. ( ସ୍ନିହ+ର୍ମ.ଯ ) ସ୍ନେହ କରାଯିବାର ଯୋଗ୍ୟ, ( ସ୍ତ୍ରୀ ) ସ୍ନେହ୍ୟା ।

ସ୍ନୈଗ୍ଧ୍ୟ—ବି. (ସ୍ନିଗ୍ଧ+ଭା.ଯ)ସ୍ନିଗ୍ଧତା, ମାଧୁର୍ଯ୍ୟ ।

ସ୍ନୈହିକ—ବିଂ. (ସ୍ନେହ+ଇକ୍) ସ୍ନେହସମ୍ବନ୍ଧୀୟ,ତୈଳାକ୍ତ,ଶୀତଳତାକାରକ ।

ସ୍ପଦ(ନ୍ଦ)—(ଧାତୁ) ଈଷତ୍ କମ୍ପିବା.ସ୍ପନ୍ଦିତ ହେବା ।

ସ୍ପନ୍ଦ—ବି. (ସ୍ପନ୍ଦ୍+ଭା.ଅ)ଈଷତ୍ କମ୍ପନ, ପ୍ରସ୍ଫୁରଣ,ଚକ୍ଷୁର ଓ ଶରୀରର ଅନ୍ୟାନ୍ୟ ଅଙ୍ଗର ସ୍ଫୁରଣ, ଡେଇଁବା, ଚଳନ, (ହୃତ ବା ନାଡ଼ୀ) ଦମ୍‌ଦମ୍ ହେବା ।

ସ୍ପନ୍ଦନ—ବି.(ସ୍ପନ୍ଦ୍+ଭା.ଅନ)ସ୍ପନ୍ଦ ଦେଖ ।

ସ୍ପନ୍ଦନରହିତ—ବିଂ. ( ୩ତତ୍ପୁ ) ନିସ୍ପନ୍ଦ, କମ୍ପନହୀନ, ସ୍ଥିର ।

ସ୍ପନ୍ଦନପ୍ରବାହ—ଯେଉଁ ଶକ୍ତି ଦ୍ୱାରା ରକ୍ତ ହୃତ୍‌ପିଣ୍ଡ ଏବଂ ହସ୍ତପାଦାଦି ଅଙ୍ଗପ୍ରତ୍ୟଙ୍ଗ ସବୁ ଚଳିତ ହୁଏ ।

ସ୍ପନ୍ଦନଶୂନ୍ୟ—ବିଂ. ( ୩ତତ୍ପୁ ) ସ୍ପନ୍ଦହୀନ, ହଲଚଲ ହେଉ ନ ଥିବା ।

ସ୍ପନ୍ଦିତ—ବିଂ. (ସ୍ପନ୍ଦ+ତ)କମ୍ପିତ,ସ୍ଫୁରିତ, ଚଳିତ, (ସ୍ତ୍ରୀ) ସ୍ପନ୍ଦିତା,(କ୍ଲୀ.ବି) ସ୍ପନ୍ଦନ, କମ୍ପନ ।

ସ୍ପନ୍ଦିନୀ—ସ୍ତ୍ରୀ. ବିଂ. (ସ୍ପନ୍ଦନ୍+ଈ) ସ୍ପନ୍ଦୀର ସ୍ତ୍ରୀଲିଙ୍ଗ, ( ଗ୍ରା.ସ୍ତ୍ରୀ.ବି ) ରଜସ୍ୱଳା ସ୍ତ୍ରୀ, କାମଧେନୁ, ସଦା ଦୁଗ୍ଧବତୀ ଗାଈ ।

ସ୍ପନ୍ଦୀ—ପୁଂ. ବିଂ. (ସ୍ପନ୍ଦ୍+ଇନ୍) ସ୍ପନ୍ଦନଯୁକ୍ତ, ସ୍ପନ୍ଦନବିଶିଷ୍ଟ, (ସ୍ତ୍ରୀ) ସ୍ପନ୍ଦିନୀ ।

ସ୍ପରଶ—ଗ୍ର . ବି. ( ପଦ୍ୟ-ସଂ-ସ୍ପର୍ଶ ) ସ୍ପର୍ଶ, ଛୁଇଁବା ।

ସ୍ପରଶନ—ଗ୍ରା. ବି. ( ପଦ୍ୟ-ସଂ-ସ୍ପର୍ଶନ ) ସ୍ପର୍ଶନ, ଛୁଇଁବା ।

ସ୍ପରଶିବା—ଗ୍ରା. କ୍ରି. (ସଂ-ସ୍ପୃଶ୍‌ଧାତୁ) ସ୍ପର୍ଶ କରିବା, ଛୁଇଁବା ।

ସ୍ପରଶିବା—ଗ୍ରା. କ୍ରି.(ସଂ-ସ୍ପୃଶ୍‌ଧାତୁ) ସ୍ପର୍ଶକରିବା, ଛୁଇଁବା ।

ସ୍ପରିତା—ବିଂ.(ସ୍ପୃ+କ.ତୃ)ଦୁଃଖୋତ୍ପାଦକ ।

ସ୍ପରଶ—ବି. (ସ୍ପୃଶ୍+ଭା.ଅ) ସ୍ପର୍ଶ ।

ସ୍ପର୍ଦ୍ଧ—(ଧାତୁ) ସଂଘର୍ଷ ହେବା,ବେଖାତିର କରିବା,ଆସ୍ଫାଳନ କରିବା, ପ୍ରତିଯୋଗୀ ହେବା, ଯୁଦ୍ଧକୁ ଆହ୍ୱାନ କରିବା ।

ସ୍ପର୍ଦ୍ଧନ(ନା)—ବି. (ସ୍ପର୍ଦ୍ଧ+ଭା.ଅନ)ମତ୍ସରତା, ପ୍ରତିଯୋଗିତା,ଆସ୍ଫାଳନ, ଅହଙ୍କାର, ବଡ଼ାଇ, ସାଦୃଶ୍ୟ, ନିମୋନ୍ନତ, ସଂଘର୍ଷ, ସଦୃଶୀକରଣ, ଭିଡ଼, ଈର୍ଷା, ଦ୍ୱେଷ ।

ସ୍ପର୍ଦ୍ଧନୀୟ—ବିଂ.(ସ୍ପର୍ଦ୍ଧ+ର୍ମ.ଅନୀୟ)ଯାହା ସଙ୍ଗେ ସ୍ପର୍ଦ୍ଧା କରାଯାଇପାରେ,ସଂଘର୍ଷଣୀୟ । [ ଦେଖ ।

ସ୍ପର୍ଦ୍ଧା—ବି. (ସ୍ପର୍ଦ୍ଧ+ଭା.ଅ+ଆ)ସ୍ପର୍ଦ୍ଧନ

ସ୍ପର୍ଦ୍ଧିତ—ପୁଂ. ବିଂ. ( ସ୍ପର୍ଦ୍ଧା+ଇତ ) ସ୍ପର୍ଦ୍ଧାଯୁକ୍ତ.ଅନ୍ୟକୁ ପରାଭୂତକରିବାଇଚ୍ଛୁ, (ସ୍ତ୍ରୀ) ସ୍ପର୍ଦ୍ଧିତା ।

ସ୍ପର୍ଦ୍ଧୀ—ପୁଂ. ବିଂ. ( ସ୍ପର୍ଦ୍ଧ+କ.ଇନ୍ ) ସ୍ପର୍ଦ୍ଧାକାରୀ, ଆସ୍ଫାଳନକାରୀ, ବଡ଼ାଇ କରୁଥିବା, ସଦୃଶ, (ସ୍ତ୍ରୀ) ସ୍ପର୍ଦ୍ଧିନୀ, (ଜ୍ୟାମିତି) ଯେଉଁ କୋଣ ଏକ ନିର୍ଦ୍ଦିଷ୍ଟ କୋଣ ସଙ୍ଗେ ମିଶିଲେ ଦୁହେଁ ମିଶି ଦୁଇ ସମକୋଣ ବା ୧୮୦ ଡିଗ୍ରୀ ହୁଏ ।

ସ୍ପର୍ଶ—(ଧାତୁ) ଛୁଇଁବା, ଗ୍ରହଣ କରିବା, ଆଶ୍ଳେଷ କରିବା ।

ସ୍ପର୍ଶ—ବି. ( ସ୍ପର୍ଶ+ଭା.ଅ ) ଛୁଇଁବା, ତ୍ୱଗିନ୍ଦ୍ରିୟଗ୍ରାହ୍ୟଗୁଣ,ରୁଜା,ରୋଗ,ଦାନ, ବାୟୁ. (କ.ଅ) ବର୍ଗ୍ୟବର୍ଣ୍ଣ, ବର୍ଗାକ୍ଷର, 'କ' ଠାରୁ 'ମ' ପର୍ଯ୍ୟନ୍ତ ୨୫ଟି ବର୍ଗ୍ୟବର୍ଣ୍ଣ, ରତିବନ୍ଧବିଶେଷ,ଯୋଗ,ପଦାର୍ଥ, ପ୍ରଣିଧି, ଦୂତ, ଗ୍ରହଣ ବା ଉପରାଗରେ ସୂର୍ଯ୍ୟ ବା ଚନ୍ଦ୍ରଙ୍କ ଉପରେ ଗ୍ରାସ ପାତର ଆରମ୍ଭ, ( ସଙ୍ଗୀତ ) କୌଣସି ସ୍ୱର ଉଚ୍ଚାରିତ ହେବା ପୂର୍ବେ ବା ପରେ ଅନ୍ୟ ପୂର୍ବବର୍ତ୍ତୀ ସ୍ୱରର ନାମ ମାତ୍ର ଉଚ୍ଚାରଣ ଯୋଗୁଁ ପ୍ରଧାନ ସ୍ୱରର ଅଙ୍ଗରୂପେ ବ୍ୟବହାର ।

ସ୍ପର୍ଶକ—ପୁଂ. ବିଂ. ( ସ୍ପୃଶ୍+କ.ଅକ ) ସ୍ପର୍ଶକାରୀ, ଛୁଇଁବା ଲୋକ । (ସ୍ତ୍ରୀ) ସ୍ପର୍ଶିକା ।

ସ୍ପର୍ଶକୋଣ—ବି. ( ଜ୍ୟାମିତି ) ବୃତ୍ତ ଓ ସ୍ପର୍ଶଜ୍ୟାର ମଧ୍ୟସ୍ଥ କୋଣ ।

ସ୍ପର୍ଶଜନ୍ୟ(ଜନିତ)—ବିଂ. ( ଚିକିତ୍ସା ) ସଂକ୍ରାମକ ରୋଗ ।

ସ୍ପର୍ଶଜ୍ୟା—ବି.(ଜ୍ୟାମିତି)ବୃତ୍ତସ୍ପର୍ଶୀ ରେଖା, ସ୍ପର୍ଶିନୀ ।

ସ୍ପର୍ଶଜ୍ଞାନ—ବି. (କ.ଧା) ସ୍ପର୍ଶଜନିତ ଜ୍ଞାନ ।

ସ୍ପର୍ଶତନ୍ମାତ୍ର-ବି.ବାୟୁର ଉପାଦାନକାରଣ, ସୂକ୍ଷ୍ମଭୂତବିଶେଷ ।

ସ୍ପର୍ଶତା—ସ୍ତ୍ରୀ.ବି.(ସ୍ପର୍ଶ+ତ+ଆ)ସ୍ପର୍ଶତ୍ୱ, ସ୍ପର୍ଶର ଭାବ ବା ଧର୍ମ ।

ସ୍ପର୍ଶଦଶା—ବି. ଚନ୍ଦ୍ରଙ୍କର ବା ସୂର୍ଯ୍ୟଙ୍କର ଯେଉଁଦିଗରୁ ଗ୍ରହଣର ଗ୍ରାସ୍ୟାପାତ ଆରମ୍ଭ ହୁଏ ।

ସ୍ପର୍ଶନ—ବି.(ସ୍ପର୍ଶ+ଭା.ଅନ)ସ୍ପର୍ଶ,ଛୁଇଁବା, ଦାନ, ବିତରଣ, ଗ୍ରହଣ, ବାୟୁ ।

ସ୍ପର୍ଶନୀୟ—ବିଂ.(ସ୍ପର୍ଶ+ମଂ.ଅନୀୟ)ଯାହାକୁ ଛୁଆଁଯାଇପାରେ, ସ୍ପୃଶ୍ୟ ।

ସ୍ପର୍ଶନେନ୍ଦ୍ରିୟ—ବି. ସ୍ପର୍ଶେନ୍ଦ୍ରିୟ, ଚର୍ମ ।

ସ୍ପର୍ଶପ୍ରସ୍ତର—ବି. ସ୍ପର୍ଶମଣି ଦେଖ ।

ସ୍ପର୍ଶବକ୍ରା—ସ୍ତ୍ରୀ.ବି. ବୌଦ୍ଧଦେବୀବିଶେଷ ।

ସ୍ପର୍ଶବର୍ଣ୍ଣ—ବି. (ବ୍ୟାକରଣ) କ ଠାରୁ ମ ପର୍ଯ୍ୟନ୍ତ ୨୫ଟି ବର୍ଗ୍ୟବର୍ଣ୍ଣ ।

ସ୍ପର୍ଶମଣି—ବି. ଯେଉଁ ପଥର ଲାଗିଲେ ମାତ୍ରେ ଲୁହାଦି ବସ୍ତୁ ସୁନା ହୋଇଯାଏ, ପରଶୁ ପଥର ।

ସ୍ପର୍ଶମଣିପ୍ରଭବ—ବି. ସ୍ୱର୍ଣ୍ଣ, ସୁନା ।

ସ୍ପର୍ଶଯଜ୍ଞ—ବି. ଯଜ୍ଞୀୟ ଦ୍ରବ୍ୟ ସ୍ପର୍ଶ ପୂର୍ବକ ନିବେଦନ ।

ସ୍ପର୍ଶରସିକ—ପୁଂ. ବିଂ. କାମୁକ, ପାପୀ ।

ସ୍ପର୍ଶରେଖା—ବି. ( ଜ୍ୟାମିତି ) ସ୍ପର୍ଶଜ୍ୟା ଦେଖ ।

ସ୍ପର୍ଶଲଜ୍ଜା-ବି.ଲଜ୍ଜାଳୁଲତା,ଲାଜକୁଳୀ ଲତା ।

ସ୍ପର୍ଶବାନ୍—ବିଂ.(ସ୍ପର୍ଶ+ବତ୍)ସ୍ପର୍ଶବିଶିଷ୍ଟ, ସ୍ପର୍ଶଯୁକ୍ତ, ସୁଖସ୍ପର୍ଶ, କୋମଳ ।

ସ୍ପର୍ଶଶକ୍ତି—ବି. ଛୁଇଁବା ଦ୍ୱାରା ଅନୁଭୂତ ହେବା ଶକ୍ତି ।

ସ୍ପର୍ଶସୁଖା—ବି. ଶତମୂଳୀ, ଶତାବରୀ ।

ସ୍ପର୍ଶସଙ୍କୋଚ—ବି. ଲଜ୍ଜାଳୁଲତା ।

ସ୍ପର୍ଶସଙ୍କୋଚୀ—ବି. ରୋମାଳୁ, ପିଣ୍ଡାଳୁ, ହାତୀଖୋଜା ।

ସ୍ପର୍ଶସଞ୍ଚାର—ବି. ଶୂକଦୋଷବିଶେଷ ।

ସ୍ପର୍ଶସୁଖ—ବି. ସ୍ପର୍ଶଜନିତ ସୁଖ, ସ୍ପର୍ଶଜାତ ଆନନ୍ଦ ।

ସ୍ପର୍ଶସ୍ୟନ୍ଦ—ବି. (ସ୍ପର୍ଶ+ସ୍ୟନ୍ଦ୍+କ.ଅ) ଭେକ, ବେଙ୍ଗ ।

ସ୍ପର୍ଶହାନି(ଲୋପ)—ବି. କେତେକ ରୋଗ ଆଦି ଯୋଗୁଁ ଚମଡ଼ାର ସ୍ପର୍ଶଶକ୍ତିର ଲୋପ ।

ସ୍ପର୍ଶା—ବି. (ସ୍ପର୍ଶ+ଆ)ବେଶ୍ୟା,କୁଳଟା ।

ସ୍ପର୍ଶାକ୍ରାମକ—ବିଂ. ( ସ୍ପର୍ଶ+ଆକ୍ରାମକ ) ସଂକ୍ରାମକ (ରୋଗ) ।

ସ୍ପର୍ଶାଜ୍ଞ—ବିଂ. ସ୍ପର୍ଶଜ୍ଞାନହୀନ ।

ସ୍ପର୍ଶାନନ୍ଦା—ସ୍ତ୍ରୀ. ବି. ଅପ୍ସରା,ସ୍ୱର୍ବେଶ୍ୟା ।

ସ୍ପର୍ଶାସ୍ପର୍ଶ—ବି.କୌଣସି ବ୍ୟକ୍ତିକୁ ଛୁଇଁବା ବା କୌଣସି ବ୍ୟକ୍ତିକୁ ନ ଛୁଇଁବା ଭାବ ବା ବିଚାର ।

ସ୍ପର୍ଶିକ—ବିଂ. ( ସ୍ପୃଶ୍+କ.ଇକ ) ସ୍ପର୍ଶକାରୀ, (ବି) ବାୟୁ ।

ସ୍ପର୍ଶିନୀ—ବି. (ଜ୍ୟାମିତି) ସ୍ପର୍ଶଜ୍ୟା ଦେଖ. (ସ୍ତ୍ରୀ.ବିଂ) ସ୍ପର୍ଶୀର ସ୍ତ୍ରୀଲିଙ୍ଗ ।

ସ୍ପର୍ଶୀ—ପୁଂ. ବିଂ. (ସ୍ପୃଶ୍+କ.ଇନ୍)ସ୍ପର୍ଶକାରୀ, ଯାହା ସ୍ପର୍ଶ କରଥାଏ, (ସ୍ତ୍ରୀ) ସ୍ପର୍ଶିନୀ ।

ସ୍ପର୍ଶେନ୍ଦ୍ରିୟ—ବି. ତ୍ୱଗିନ୍ଦ୍ରିୟ, ଯାହା ଦ୍ୱାରା ସ୍ପର୍ଶଜ୍ଞାନ ଜନ୍ମେ ।

ସ୍ପର୍ଶୋପଲ—ବି. ପରଶୁ ପଥର ।

ସ୍ପର୍ଷ୍ଟା—ବିଂ. (ସ୍ପୃଶ୍+କ.ତୃ) ଉପତାପକ ମାନ୍ଦ,ରୋଗ ।

ସ୍ପଶ୍—(ଧାତୁ)ବ୍ୟକ୍ତକରିବା,ବାଧାଦେବା ।

ସ୍ପଶ—ବି.(ସ୍ପଶ+କ.ଅ)ଚର,ଗୂଢ଼ପୁରୁଷ, ଗୁଇନ୍ଦା, (ଅଧି.ଅ) ଅଭିସର,ଯୁଦ୍ଧ,ଯେ ପ୍ରାଣ ନିରପେକ୍ଷ ହୋଇ ଯୁଦ୍ଧ କରେ ।

ସ୍ପଷ୍ଟ—ବିଂ.(ସ୍ପୃଶ୍+ମଂ.ତ) ବ୍ୟକ୍ତ,ଦଫା, ସ୍ଫୁଟ, ପ୍ରକାଶିତ,ପ୍ରକଟିତ,ଜ୍ଞାନେନ୍ଦ୍ରିୟ-ଗୋଚର, ଉଦ୍ଭୁକ୍ତ, (ବି) ଜ୍ୟୋତିଷ ମତରେ ଗ୍ରହମାନଙ୍କର ସ୍ଫୁଟସାଧନ, (ବ୍ୟାକରଣ) କେତେକ ବର୍ଣ୍ଣର ଉଚ୍ଚାରଣରେ ଏକପ୍ରକାର ପ୍ରଯତ୍ନ, ଯହିଁରେ ଦୁଇଓଠ ପରସ୍ପର ଛୁଆଁ ହୋଇ ରୁହେ, (ସ୍ତ୍ରୀ) ସ୍ପଷ୍ଟା ।

ସ୍ପଷ୍ଟକଥନ—ବି. (ବ୍ୟାକରଣ) କଥକଙ୍କ କଥିତବାକ୍ୟ ତାଙ୍କ କହିବା ଅନୁସାରେ ଅନ୍ୟ ବ୍ୟକ୍ତିଙ୍କ ଦ୍ୱାରା କଥନ ।

ସ୍ପଷ୍ଟକଥା—ଗ୍ରା. ବି.ସରଳ ସ୍ଫୁଟ ବାକ୍ୟ ।

ସ୍ପଷ୍ଟତଃ—କ୍ରି. ବିଂ. ସ୍ପଷ୍ଟଭାବରେ,ସ୍ପଷ୍ଟତା ସହକାରେ । [ ସ୍ପଷ୍ଟଭାବ ।

ସ୍ପଷ୍ଟତା(ତ୍ୱ)—ବି. ( ସ୍ପଷ୍ଟ+ଭା.ତା.ତ୍ୱ )

ସ୍ପଷ୍ଟପ୍ରଯତ୍ନ—ବି.(ବ୍ୟାକରଣ) ଦୁଇଓଠର ପରସ୍ପର ଛୁଇଁବା ଦ୍ୱାରା ଉଚ୍ଚାରଣ କରାଯିବା କେତେକ ଓଷ୍ଠ୍ୟ ବର୍ଣ୍ଣର ଉଚ୍ଚାରଣରେ ପ୍ରଯତ୍ନ ।

ସ୍ପଷ୍ଟବକ୍ତା-ପୁଂ.ବିଂ.ଯେ ସଫା କଥା କହେ, ଯେ କାହାର ମନରକ୍ଷା କରିବା ପ୍ରତି ଦୃଷ୍ଟି ନ ଦେଇ ସ୍ୱୀୟ ମନୋଗତଭାବ ପ୍ରକାଶ କରେ, (ସ୍ତ୍ରୀ) ସ୍ପଷ୍ଟବକ୍ତ୍ରୀ ।

ସ୍ପଷ୍ଟବାଦିତା(ତ୍ୱ)—ବି.(ସ୍ପଷ୍ଟବାଦିନ୍+ତା, ତ୍ୱ) ସ୍ପଷ୍ଟବାକ୍ୟ କଥନ ।

ସ୍ପଷ୍ଟବାଦୀ—ପୁଂ. ବିଂ. (ସ୍ପଷ୍ଟ+ବଦ୍+କ.ଇନ୍) ଯେ ସ୍ପଷ୍ଟକଥା କହେ, (ସ୍ତ୍ରୀ) ସ୍ପଷ୍ଟବାଦିନୀ ।

ସ୍ପଷ୍ଟଭାଷୀ—ପୁଂ. ବିଂ. (ସ୍ପଷ୍ଟ+ଭାଷ୍+କ.ଇନ୍) ସ୍ପଷ୍ଟବକ୍ତା ଦେଖ, (ସ୍ତ୍ରୀ) ସ୍ପଷ୍ଟଭାଷିଣୀ ।

ସ୍ପଷ୍ଟଶ୍ରୁତ—ବିଂ.ସ୍ଫୁଟଭାବରେ ଶୁଣାଯିବା, (ସ୍ତ୍ରୀ) ସ୍ପଷ୍ଟଶ୍ରୁତା ।

ସ୍ପଷ୍ଟସ୍ଥିତି—ବି. (ଫଳିତ ଜ୍ୟୋତିଷ)ଶିଶୁର ଜନ୍ମକାଳରେ ରାଶିମାନଙ୍କର ଅଂଶ, କଳା, ବିକଳା ଆଦି ଦ୍ୱାରା ପ୍ରଦର୍ଶିତ ଗ୍ରହମାନଙ୍କର ସ୍ପଷ୍ଟ ଅବସ୍ଥାନ ।

ସ୍ପଷ୍ଟାକ୍ଷର—ବି. (କ.ଧା) ବ୍ୟକ୍ତ ଭାବରେ ଲିଖିତ ଅକ୍ଷର, ବଡ଼ୋଲ ହସ୍ତାକ୍ଷର, ସ୍ପଷ୍ଟବାକ୍ୟ ।

ସ୍ପଷ୍ଟାର୍ଥ—ବି. (କ.ଧା) ବ୍ୟକ୍ତୀକୃତ ଅର୍ଥ, (ବିଂ-ବ.ବ୍ରୀ) ବୋଧଗମ୍ୟ ।

ସ୍ପଷ୍ଟୀକରଣ—ବି. ବ୍ୟକ୍ତୀକରଣ, ସ୍ଫୁଟୀକରଣ, ପୂର୍ବରେ ଯାହା ଅବ୍ୟକ୍ତ ବା ଅସ୍ଫୁଟ ଥିଲା ତାହାର ପ୍ରକାଶକରଣ ।

ସ୍ପଷ୍ଟୀକୃତ—ବିଂ. (ସ୍ପଷ୍ଟ + ଚ୍ୱି + କୃ + ର୍ମି. ତ) ବ୍ୟକ୍ତୀକୃତ, ପ୍ରକାଶୀକୃତ ।

ସ୍ପଷ୍ଟୀକ୍ରିୟା—ବି. (ଜ୍ୟୋତିଷ) ଯେଉଁକ୍ରିୟା ବା ଗଣନାପଦ୍ଧତିଦ୍ୱାରା କୌଣସି ନିର୍ଦ୍ଦିଷ୍ଟ ମୁହୂର୍ତ୍ତରେ କୌଣସି ଗ୍ରହର କେଉଁ ରାଶିର କେତେ ଅଂଶ, କେତେ କଳା ଓ କେତେ ବିକଳାରେ ଅବସ୍ଥିତ ହୋଇଥାଏ ଏହା ସ୍ପଷ୍ଟରୂପେ ଜଣାପଡ଼େ ।

ସ୍ପଷ୍ଟୀଭୂତ—ବିଂ. (ସ୍ପଷ୍ଟ + ଚ୍ୱି + ଭୂ + କ. ତ) ଯାହା ପୂର୍ବେ ସ୍ପଷ୍ଟହୋଇ ନ ଥିଲା ବର୍ତ୍ତମାନ ସ୍ପଷ୍ଟ ହୋଇଅଛି ।

ସ୍ପଷ୍ଟେତର—ବିଂ. ଅସ୍ପଷ୍ଟ, ଅବ୍ୟକ୍ତ ।

ସ୍ପା—ଯା. ବି. ଧାତୁମିଶ୍ରିତ ସ୍ୱାସ୍ଥ୍ୟପ୍ରଦ ଜଳପୂର୍ଣ୍ଣ ନିର୍ଝରଣୀ ଥିବା ସ୍ଥାନ ।

ସ୍ପାର୍ଟା—ଗ୍ରା. ବି. (ନାମ) ପ୍ରାଚୀନ ଗ୍ରୀସର ଗୋଟିଏ ନଗର ।

ସ୍ପିରଟ୍—ଯା. ବି. ଉଗ୍ରସୁରା, ଅରଖି, ସୁରାସାର, ମନର ସ୍ଫୂର୍ତ୍ତି, ଦମ୍ଭ, ଉତ୍ତେଜନା, ଜୀବନଶକ୍ତି, ଆତ୍ମା, ଭୂତ, ଶରୀରସ୍ଥ ଆତ୍ମା, ସୂକ୍ଷ୍ମଶରୀରର ମୃତ୍ୟୁପରେ ସ୍ଥୂଳଶରୀରରୁ ବାହାରି ଯେଉଁ ଶରୀର ଶୂନ୍ୟରେ ବିଚରଣ କରେ ।

ସ୍ପୃ—(ଧାତୁ) ପ୍ରୀତି ବା ସ୍ନେହ କରିବା, ରକ୍ଷା କରିବା, ପାଳନ କରିବା ।

ସ୍ପୃକ୍—ପୁଂ. ସ୍ତ୍ରୀ ଓ ବିଂ. (ସ୍ପୃଶ୍ + କ. କ୍ୱିପ୍) ସ୍ପର୍ଶୀ, (ବି-ସ୍ପୃଶ୍ + ଭା. କ୍ୱିପ୍) ସ୍ପର୍ଶ, ଛୁଇଁବା ।

ସ୍ପୃକ୍କା—ବି. (ସ୍ପୃଶ୍ + ର୍ମି. କ + ଆ) ପୃକ୍କା, ପିଡ଼ଙ୍ଗଶାଗ, ଲଜ୍ଜାକୁଳିତା, ଶତପଦୀ, ସେବତୀ ।

ସ୍ପୃଶ୍(ଶି)—(ଧାତୁ) ଛୁଇଁବା ।

ସ୍ପୃଶା—ବି. (ସ୍ପୃଶ୍ + ଭା. ଅ + ଆ) ସ୍ପର୍ଶ, (ର୍ମି. ଅ + ଆ) ସର୍ପାକ୍ଷୀ, ଭୁଜଙ୍ଗଘାତିନୀ ବୃକ୍ଷ, କଙ୍କାଳିକା ଗୁଳ୍ମ, କଣ୍ଟକାରୀ ।

ସ୍ପୃଶି—ପୁଂ. ବିଂ. ବିଷୟାଭିଳାଷୀ ।

ସ୍ପୃଶୀ—ବି. (ସ୍ପୃଶ୍ + ର୍ମି. ଅ + ଈ) କଣ୍ଟକାରୀ ।

ସ୍ପୃଶ୍ୟ—ପୁଂ. ବିଂ. (ସ୍ପୃଶ୍ + ର୍ମି. ଯ) ସ୍ପର୍ଶ କରିବାର ଯୋଗ୍ୟ, (ସ୍ତ୍ରୀ) ସ୍ପୃଶ୍ୟା ।

ସ୍ପୃଷ୍ଟ—ପୁଂ. ବିଂ. (ସ୍ପୃଶ୍ + ର୍ମି. ତ) କୃତସ୍ପର୍ଶ, ଯାହା ଛୁଆଁ ଯାଇଅଛି, ଛୁଆଁ, ଅସ୍ପୃଶ୍ୟ ବସ୍ତୁର ସ୍ପର୍ଶଯୋଗୁଁ ଦୂଷିତ, (ସ୍ତ୍ରୀ) ସ୍ପୃଷ୍ଟା, (କ୍ଲୀ. ବି—ସ୍ପୃଶ୍ + ଭା. ତ) ସ୍ପର୍ଶ ।

ସ୍ପୃଷ୍ଟକ—ବି. (ସ୍ପୃଶ୍ + ଭା. ତ + କ) ଗାଢ଼ ସ୍ପର୍ଶ ପୂର୍ବକ ଆଲିଙ୍ଗନ ।

ସ୍ପୃଷ୍ଟବୈଦଳିକା—ବି. ଲଜ୍ଜାକୁଳିତା ।

ସ୍ପୃଷ୍ଟାସ୍ପୃଷ୍ଟ(ଷ୍ଟି)—ଅବ୍ୟ. ପରସ୍ପର ସ୍ପର୍ଶନ, ଛୁଆଁ ଛୁଇଁ ।

ସ୍ପୃଷ୍ଟି—ବି. (ସ୍ପୃଶ୍ + ଭା. ତି) ସ୍ପର୍ଶ ।

ସ୍ପୃଷ୍ଟିକା—ବି. ସ୍ପର୍ଶ ।

ସ୍ପୃହ—(ଧାତୁ) କୌଣସି ବସ୍ତୁପାଇଁ ଇଚ୍ଛା କରିବା, ଆକାଂକ୍ଷା କରିବା ।

ସ୍ପୃହଣ—ବି. (ସ୍ପୃହ୍ + ଭା. ଅନ) ଇଚ୍ଛା, ଅଭିଳାଷ ।

ସ୍ପୃହଣୀୟ—ପୁଂ. ବିଂ. (ସ୍ପୃହ + ଣିଚ୍ + ର୍ମି. ଅନୀୟ) ବାଞ୍ଛନୀୟ, ଲୋଭନୀୟ, ଯାହା ଲୋଭକରିବାର ଉପଯୁକ୍ତ, ଶ୍ଳାଘ୍ୟ, ଆଶ୍ଚର୍ଯ୍ୟ, ଗୌରବ ପାଇବାର ଯୋଗ୍ୟ, (ସ୍ତ୍ରୀ) ସ୍ପୃହଣୀୟା ।

ସ୍ପୃହୟାଳୁ—ବିଂ. (ସ୍ପୃହ + କ. ଆଳୁ) ସ୍ପୃହାଶୀଳ, ଆକାଙ୍କ୍ଷଯୁକ୍ତ, ଲୋଭୀ ।

ସ୍ପୃହା—ବି. (ସ୍ପୃହ + ଣିଚ୍ + ଭା. ଅ + ଆ) ଇଚ୍ଛା, ଆକାଂକ୍ଷା, ଅଭିଳାଷ, ଗ୍ରହଣେଚ୍ଛା, ଲୋଭ, ଗଣନା, (ନ୍ୟାୟଦର୍ଶନ) କୌଣସି ବସ୍ତୁର ପ୍ରାପ୍ତିପାଇଁ ଧର୍ମାନୁକୂଳ କାମନା ।

ସ୍ପୃହୀ—ପୁଂ. ବିଂ. (ସ୍ପୃହ + କ. ଇନ୍) ସ୍ପୃହାକାରୀ, ଅଭିଳାଷୀ, (ସ୍ତ୍ରୀ) ସ୍ପୃହଣୀ ।

ସ୍ପୃହ୍ୟ—ବିଂ. (ସ୍ପୃହ + ର୍ମି. ଯ) ଯାହା ପାଇବା ପାଇଁ ଇଚ୍ଛା କରାଯାଏ, ବାଞ୍ଛନୀୟ, (ସ୍ତ୍ରୀ) ସ୍ପୃହ୍ୟା, (ବି) ରାଜପୁର, ଟଭା ।

ସ୍ପେଆରକପି—ଯା. ବି. କୌଣସି ପୁସ୍ତକର ବା ଲେଖାର ଅତିରିକ୍ତ ବା ଅଧିକାଖଣ୍ଡ ।

ସ୍ପେନ୍—ଯା. ବି. (ନାମ) ଇଉରୋପର ଦକ୍ଷିଣପଶ୍ଚିମସ୍ଥ ରାଜ୍ୟ । [ ଦନାନ ।

ସ୍ପେଲିଙ୍ଗ୍—ଯା. ବି. ଶବ୍ଦର ବା ବାକ୍ୟର

ସ୍ପ୍ରଷ୍ଟବ୍ୟ—ବିଂ. (ସ୍ପୃଶ୍ + ତବ୍ୟ) ସ୍ପର୍ଶନ ଯୋଗ୍ୟ, ସ୍ପର୍ଶ କରିବାର ଉପଯୁକ୍ତ ।

ସ୍ପ୍ରଷ୍ଟା—ବି. (ସ୍ପୃଶ୍ + କ. ତୃ) ଉପତାପକ ମାନ୍ଦ, ରୋଗ ।

ସ୍ଫଟ—(ଧାତୁ) ଶୀର୍ଣ୍ଣହେବା, ସ୍ଫୀତକରିବା ।

ସ୍ଫଟ(ଟା)—ବି. (ସ୍ଫଟ୍ + ର୍ମି. ଅ + ଆ) ସର୍ପର ଫଣା ।

ସ୍ଫଟି(ଟୀ)—ବି. (ସ୍ଫଟ୍ + ର୍ମି. ଇ, ଈ) ଫିଟିକିରି

ସ୍ଫଟି(ଟୀ)କ—ବି. (ସ୍ଫଟ୍ + କ. ଇକ ବା ସ୍ଫଟି + କ) ଶୁଭ୍ରସ୍ୱଚ୍ଛ ପ୍ରସ୍ତର, ସୂର୍ଯ୍ୟକାନ୍ତମଣି, କାଚ, ଫିଟିକିରି, କର୍ପୂର, (ଗ୍ରା. ବିଂ) ସ୍ଫଟିକପରି ସ୍ୱଚ୍ଛ ।

ସ୍ଫଟିକକ୍ଷାର—ଗ୍ରା. ବି. ଟାଙ୍ଗଣା ।

ସ୍ଫଟିକନନ୍ଦନ—ବିଂ. (ବ. ବ୍ରୀ) ସ୍ଫଟିକ ଅପେକ୍ଷା ସ୍ୱଚ୍ଛ ।

ସ୍ଫଟିକନନ୍ଦୀ-ବିଂ. ସ୍ଫଟିକ ଅପେକ୍ଷା ସ୍ୱଚ୍ଛତର ।

ସ୍ଫଟିକବର୍ଷି—ବି. ଦାରୁମୁଷି ।

ସ୍ଫଟିକମୟ—ବିଂ. ସ୍ଫଟିକ ନିର୍ମିତ, ସ୍ଫଟିକ ସ୍ୱରୂପ ।

ସ୍ଫଟିକଯଶାଃ-ପୁଂ. ବି. ବିଦ୍ୟାଧରବିଶେଷ ।

ସ୍ଫଟିକା—ବି. ସ୍ଫଟିକାରି, ଫିଟିକିରି ।

ସ୍ଫଟିକାଚଳ—ବି. କୈଳାସ ପର୍ବତ ।

ସ୍ଫଟିକାତ୍ମା—ବି. (ସ୍ଫଟିକ + ଆତ୍ମନ୍) ସ୍ଫଟିକ

ସ୍ଫଟିକାଦ୍ରିଭିଦ୍—ବି. (ସ୍ଫଟିକାଦ୍ରି + ଭିଦ୍ + କ. କ୍ୱିପ୍) କର୍ପୂର ।

ସ୍ଫଟିକାଧାର—ପୁଂ. ବି. (କ. ଧା) ସ୍ଫଟିକନିର୍ମିତ ପାତ୍ର, ସ୍ଫଟିକ ପଥରର ଆବରଣ ।

ସ୍ଫଟିକାଭ୍ର—ପୁଂ. ବି. କର୍ପୂର ।

ସ୍ଫଟିକାରି(ରୀ)—ବି. ଫିଟିକିରି ।

ସ୍ଫଟିକୀ—ବି. ଟାଙ୍ଗଣା ।

ସ୍ଫଟିକୋପମ—ବିଂ. (ବ. ବ୍ରୀ) ସ୍ଫଟିକସଙ୍ଗେ ତୁଳନୀୟ, (ସ୍ତ୍ରୀ) ସ୍ଫଟିକୋପମା, (ବି) କର୍ପୂର, ଦନ୍ତଧାତୁ, ଚନ୍ଦ୍ରକାନ୍ତମଣି ।

ସ୍ଫଟୀ—ବି. (ସ୍ଫଟ + ଈ) ଫିଟିକିରି ।

ସ୍ଫଡ଼—(ଧାତୁ) ପରିହାସ କରିବା ।

ସ୍ଫର—(ଧାତୁ) ସ୍ଫୁରଣ କରିବା, ଚଳିବା ।

ସ୍ଫରଣ—ବି. (ସ୍ଫର + ଭା. ଅନ) ସ୍ଫୁରଣ ଦେଖ ।

ସ୍ଫଲ(ଲ)—(ଧାତୁ) ସ୍ଫୁରଣ କରିବା ।

ସ୍ଫାଟକ—ବି. ( ସ୍ଫଟ୍+କ.ଅକ ) ସ୍ଫଟିକ, ଜଳବିନ୍ଦୁ ।
ସ୍ଫାଟିକ—ବିଂ. ( ସ୍ଫଟିକ+ଅ ) ସ୍ଫଟିକ ସମ୍ବନ୍ଧୀୟ, (ସ୍ତ୍ରୀ) ସ୍ଫାଟିକୀ, (ବି) ସ୍ଫଟିକ ।
ସ୍ଫାଟିକୋପଲ—ବି. ସ୍ଫଟିକ, ସ୍ଫଟିକମଣି ।
ସ୍ଫାତ—ବିଂ. (ସ୍ଫାର+କ.ତ) ବୃଦ୍ଧିପ୍ରାପ୍ତ, ସ୍ଫୀତ ।
ସ୍ଫାତି—ବି.(ସ୍ଫାୟ୍+ଭା.ତି) ବୃଦ୍ଧି, ଉନ୍ନତି
ସ୍ଫାୟ୍—(ଧାତୁ) ବୃଦ୍ଧିପାଇବା, ଉନ୍ନତିଯୁକ୍ତ ହେବା, ଫୁଲିବା ।
ସ୍ଫାର—ବିଂ. (ସ୍ଫାୟ୍+କ.ର) ବୃଦ୍ଧିପ୍ରାପ୍ତ, ବିସ୍ତୃତ, ପ୍ରଚୁର, ବିପୁଳ,ବୃହତ୍, ବିକଟ, (ବି) ସ୍ଫୁରଣ,ବିକାଶ,କନକାଦି ଧାତୁର ବୁଦ୍‌ବୁଦ ।
ସ୍ଫାରଣ—ବି. ( ସ୍ଫର+ଣିଚ୍+ଭା. ଅନ ) ବଢ଼ାଇବା, ବିସ୍ତାରକରଣ, ସ୍ଫୁରଣ ଦେଖ ।
ସ୍ଫାରଦର୍ପଣ—ବି. ବଡ଼ ଆରଶି ।
ସ୍ଫାରିତ—ବିଂ. (ସ୍ଫାର+ଣିଚ୍+ର୍ମ.ତ) ବିସ୍ଫାରିତ, ବିସ୍ତାରିତ ।
ସ୍ଫାଲ—ବି. (ସ୍ଫଲ୍+ଭା.ଅ) ସ୍ଫୁର୍ତ୍ତି, ସ୍ଫୁରଣ, ଆସ୍ଫାଳନ, ବିକାଶ ।
ସ୍ଫିଚ୍—ବି. (ସ୍ଫାୟ୍+କ.ଇଚ୍) ପିଚ୍ଛ,କଟି-ପ୍ରୋଥ, କଟିଦେଶସ୍ଥ ମାଂସପିଣ୍ଡ ।
ସ୍ଫିକ୍‌ତାଡ଼ନକ—ବି. କଟଫଳ, କାଫଡ଼ ।
ସ୍ଫିକ୍‌ସ୍ରାବ—ପୁଂ. ବି. ରକ୍ତଆମାଶୟ ।
ସ୍ଫିଟ୍—(ଧାତୁ) ରତ କରିବା ।
ସ୍ଫିର—ବିଂ. ( ସ୍ଫାୟ୍+କ.ଇର ) ପ୍ରଚୁର, ବିପୁଳ ।
ସ୍ଫିରଧନ—ପୁଂ. ବି. ( ବ.ବ୍ରୀ ) ଯାହାର ବହୁଧନ ଅଛି, (ସ୍ତ୍ରୀ) ସ୍ଫିରଧନା ।
ସ୍ଫୀତ—ବିଂ. ( ସ୍ଫାୟ୍+କ.ତ ) ପ୍ରବୃଦ୍ଧ, ବଢ଼ିଥିବା, ବର୍ଦ୍ଧିତ, ସମୃଦ୍ଧ, ଫୁଲିଥିବା, ପୈତୃକ ରୋଗରେ ଆକ୍ରାନ୍ତ, ହୃଷ୍ଟ, ଫମ୍ପା, କୃତକାର୍ଯ୍ୟ ।
ସ୍ଫୀତତା—ବି.(ସ୍ଫୀତ+ତ+ଆ) ସ୍ଫୀତର ଭାବ ବା ଧର୍ମ ।
ସ୍ଫୀତଦଇଃ—ବି.(କ.ଧା) ଫୁଲିଥିବା ଗୁଡ଼, ଗର୍ବୋନ୍ନତ ଗୁଡ଼, (ବିଂ-ବ.ବ୍ରୀ) ହର୍ଷ ବା ଗର୍ବଦ୍ୱାରା ଯାହାର ଗୁଡ଼ ଫୁଲିଉଠି-ଅଛି, ଉର୍ଦ୍ଧୋତ୍ଫୁଲ୍ଲ ବା ଗର୍ବୋତ୍ଫୁଲ୍ଲ ।
ସ୍ଫୀତି—ବି. ( ସ୍ଫାୟ୍+ଭା.ତି ) ପ୍ରବୃଦ୍ଧି, ଶୋଥ, ଫୁଲା, ଉନ୍ନତି, ହର୍ଷ ।
ସ୍ଫୀତୋଦର—ବି. (କ.ଧା) ଫୁଲାପେଟ, (ନ.ବ୍ରୀ) ପେଟଫମ୍ପା ରୋଗ, (ପୁଂ.ବିଂ-ବ.ବ୍ରୀ) ଯାହାର ପେଟ ଫାମ୍ପିଛି, (ସ୍ତ୍ରୀ) ସ୍ଫୀତୋଦରା ।
ସ୍ଫୁଟ୍—(ଧାତୁ)ବିକଶିତ ହେବା,ପରିହାସ କରିବା,ବ୍ୟକ୍ତହେବା, ଫୁଟାଇବା,ଭେଦ କରିବା, ବିଦୀର୍ଣ୍ଣ ହେବା, ଫାଟିଯିବା ।
ସ୍ଫୁଟ—ବିଂ. ( ସ୍ଫୁଟ୍+କ.ଅ )ପ୍ରସ୍ଫୁଟିତ, ବିକସିତ, ପ୍ରଫୁଲ୍ଲ, ବ୍ୟକ୍ତ, ସ୍ପଷ୍ଟ,ବିଶଦ, ପରିପ୍ଳୁତ, ବିଦୀର୍ଣ୍ଣ,ଭିନ୍ନ, ଫାଟିଯାଇଥିବା, ନିଷ୍ଠିତ, ଶୁକ୍ଳ, ଶୁଭ୍ର, ରକ୍ତଯୁକ୍ତ, ଫୁଟା, ସ୍ୱତନ୍ତ୍ର, ଜ୍ଞାତ, ସାମାନ୍ୟତଃ ପ୍ରତୀୟମାନ, ( ବି ) ସର୍ପର ଫଣା, ଉତ୍ପ୍ରେକ୍ଷାର ଦ୍ୟୋତକ, ଗ୍ରହସ୍ଫୁଟ, ଗ୍ରହମାନଙ୍କର ପ୍ରକାଶୀକରଣ ।
ସ୍ଫୁଟକ—ବି. ଜ୍ୟୋତିଷ୍ମତୀ ଲତା ।
ସ୍ଫୁଟଗଣନା—ବି. (ଜ୍ୟୋତିଷ)ଗ୍ରହମାନ-ଙ୍କର ଦୃଶ୍ୟମାନ ଗତି ବା ସ୍ଥିତି ଛଡ଼ା ପ୍ରକୃତ ଅବସ୍ଥିତି ସ୍ଥିରକରିବା ରୂପ ଗଣନା ।
ସ୍ଫୁଟଗତି—ବି.(ଜ୍ୟୋତିଷ)ଗ୍ରହମାନଙ୍କର ପ୍ରକୃତ ଗତି ।
ସ୍ଫୁଟଗ୍ରହ—ବି. (ଜ୍ୟୋତିଷ)ଗ୍ରହମାନଙ୍କର ଦୃଶ୍ୟମାନ ଅବସ୍ଥିତିର ନିର୍ଣ୍ଣୟ ।
ସ୍ଫୁଟତା(ତ୍ୱ)—ବି. ( ସ୍ଫୁଟ+ଭା.ତା,ତ୍ୱ ) ସ୍ପଷ୍ଟତା, ଶୁଭ୍ରତା ।
ସ୍ଫୁଟତ୍ୱଗ୍—ବି. ଜ୍ୟୋତିଷ୍ମତୀ ।
ସ୍ଫୁଟଧ୍ୱନ—ବି. ଧଳା କପୋତ ।
ସ୍ଫୁଟନ—ବି.(ସ୍ଫୁଟ+ଭା ଅନ)(ପୁଷ୍ପାଦିର) ବିକସନ,ଫୁଟିବା,ବିକସିବା,ଫାଟିଯିବା, ବିଦାରଣ, ଫୁଟିଯିବା, ଛିଦ୍ରଯୁକ୍ତହେବା, ଫୁଟାଇବା, ବେଧନ, ଭେଦନ, ବ୍ୟକ୍ତ ହେବା, (ଗା.ବି-ଆଙ୍ଗୁଠିଆଦି) ଫୁଟୁକି ଫୁଟାଇବା ।
ସ୍ଫୁଟନୋନ୍ମୁଖ—ବିଂ.(ତତ୍ପୁ) ପ୍ରକାଶୋ-ଦ୍ୟତ, ଅର୍ଦ୍ଧବିକସିତ ।
ସ୍ଫୁଟଫଳ—ବି. (ବ.ବ୍ରୀ) ତୁମ୍ବୁରୁ, ଏକ-ପ୍ରକାର ନାରଙ୍ଗ, ତାମ୍ବୁଲ ।
ସ୍ଫୁଟବନ୍ଧନୀ(ନୀ)—ବି. ଜ୍ୟୋତିଷ୍ମତୀ, ପାରାବତପଦୀ, ଫୁଟିଫୁଟିକା, କଟଭୀ ।
ସ୍ଫୁଟବାକ୍—ବିଂ. (ବ.ବ୍ରୀ) ଯାହାର କଥା ପ୍ରକାଶିତ ହୋଇଅଛି ।
ସ୍ଫୁଟଭବ—ବି. (ଜ୍ୟୋତିଷ) ଜନ୍ମ କୁଣ୍ଡ-ଳୀରେ ଗ୍ରହମାନଙ୍କର ପ୍ରକୃତ ଅବସ୍ଥିତିର ଗଣନା ।
ସ୍ଫୁଟରଙ୍ଗିଣୀ-ସ୍ତ୍ରୀ.ବି.ଔଷଧିଲତାବିଶେଷ ।
ସ୍ଫୁଟବଲ୍ଲରୀ—ବି. ଜ୍ୟୋତିଷ୍ମତୀ ।
ସ୍ଫୁଟା—ବି. (ସ୍ଫୁଟ+ର୍ମ.ଅ+ଆ) ଫଟା, ଫଣା ।
ସ୍ଫୁଟାର୍ଥ—ବିଂ. ପ୍ରକାଶିତ, ଯାହାର ଅର୍ଥ ପରିସ୍ଫୁଟ ହୋଇଅଛି ।
ସ୍ଫୁଟି(ଟୀ)—ବି. (ସ୍ଫୁଟ+ଣ,ଇ,ଈ)ପାଦ-ସ୍ଫୋଟ ରୋଗ, ଗୋଡ଼ଫଟା ରୋଗ, ଫୁଟିକାକୁଡ଼, ନିର୍ଭିନ୍ନକର୍କଟୀ ଫଳ ।
ସ୍ଫୁଟିକା—ବି. ଫୁଟିକାକୁଡ଼, ଫିଟିକିରି ।
ସ୍ଫୁଟିତ—ବିଂ. (ସ୍ଫୁଟ+କ.ତ) ବିକସିତ, ପରିହସିତ, ବ୍ୟକ୍ତୀକୃତ, ପ୍ରକଟିତ, ଫାଟିଯାଇଥିବା, ଭିନ୍ନ, ଫୁଟିଯାଇଥିବା, କଣାହୋଇଥିବା, ନିଷ୍ଠିତ, ଶୁଭ୍ରୀକୃତ ।
ସ୍ଫୁଟିତକାଣ୍ଡଭଙ୍ଗ—ବି.(ବୈଦ୍ୟକ) ହାଡ଼ ଛିକଛିକ ହୋଇ ଭାଙ୍ଗିଯିବା ।
ସ୍ଫୁଟୀକରଣ—ବି.(ସ୍ଫୁଟ+ଚ୍ୱି+କରଣ) ଅସ୍ଫୁଟ ବା ଅସ୍ପଷ୍ଟ ବସ୍ତୁର ବ୍ୟକ୍ତୀକରଣ ।
ସ୍ଫୁଠ—(ଧାତୁ) ଅନାଦର କରିବା ।
ସ୍ଫୁଡ଼—(ଧାତୁ) ପରିହାସ କରିବା, ବିକଶିତ ହେବା, ବରଣ କରିବା ।
ସ୍ଫୁତ୍—ଅ. ଅନୁକରଣ ଶବ୍ଦ, ଫୁତ୍କାର, ଫୁଙ୍କିବା ଶବ୍ଦ ।
ସ୍ଫୁତ୍କର—ବି.(ସ୍ଫୁତ୍+କୃ+କ.ଅ)ଅଗ୍ନି ।
ସ୍ଫୁତ୍କାର—ବି. ( ସ୍ଫୁତ୍+କୃ+ଭା.ଅ ) ଫୁତ୍କାର, ମୁହଁରେ ଫୁଙ୍କିବା ଶବ୍ଦ ।
ସ୍ଫୁର୍—(ଧାତୁ)ଚଞ୍ଚଳ ହେବା, ଇତସ୍ତତଃ ଇଷତ୍ ଚଳିବା,(ଅଙ୍ଗର ଚର୍ମ)ଡେଇଁବା, ପ୍ରକାଶିତ ହେବା, କମ୍ପିବା ।

ସ୍ଫୁର—ବି.(ସ୍ଫୁର+କ.ଅ)ଫଳକ,ପଟା, (ଭା.ଅ) ସ୍ଫୁରଣ ଦେଖ, ବାୟୁ ।

ସ୍ଫୁରଣ—ବି. (ସ୍ଫୁର+ଭା.ଅନ) କମ୍ପନ, କିଞ୍ଚିତ୍ ଚଳନ, ଇତସ୍ତତଃ ଗ୍ଭଳନ, ସ୍ଫୂର୍ତ୍ତି, ବିକସନ, ଦୀପ୍ତି, ପ୍ରତିବିମ୍ବିତ ହେବା, ଉଦ୍ରେକ, ଅଙ୍ଗଆଦି ସ୍ଫୁରିବା ।

ସ୍ଫୁରତ୍—ପୁଂ.ବିଂ. (ସ୍ଫୁର+ଅତ୍)କମ୍ପନଯୁକ୍ତ, ସ୍ଫୂର୍ତ୍ତିଯୁକ୍ତ, ଦୀପ୍ୟମାନ, ( ସ୍ତ୍ରୀ ) ସ୍ଫୁରନ୍ତୀ ।

ସ୍ଫୁରା(ରେ)ଇବା—ଗ୍ରା. କ୍ରି. ସ୍ଫୁରିବାର ଣିଜନ୍ତରୂପ ।

ସ୍ଫୁରିତ—ବିଂ. (ସ୍ଫୁର+କ.ତ) କମ୍ପିତ, ସ୍ଫୁରଣବିଶିଷ୍ଟ,ପ୍ରତିବିମ୍ବିତ, ସ୍ଫୂର୍ତ୍ତିବିଶିଷ୍ଟ, ସ୍ଫୂର୍ତ୍ତିପ୍ରାପ୍ତ, (ବି) ସ୍ଫୁରଣ ଦେଖ, (ଗ୍ରା. ବିଂ) ଉଚ୍ଚାରିତ, ପ୍ରକଟିତ ।

ସ୍ଫୁରିତାଧର-ପୁଂ,ବିଂ(ବି.ବ୍ରୀ) କ୍ରୋଧରେ ଯାହାର ଓଠ ଥରୁଅଛି, କମ୍ପିତୋଷ୍ଠ, (ସ୍ତ୍ରୀ) ସ୍ଫୁରିତାଧରା, (ବି-କ.ଧା) କମ୍ପୁଥିବା ଓଠ ।

ସ୍ଫୁରିବା—ଗ୍ରା.କ୍ରି.(ସଂ-ସ୍ଫୁରଧାତୁ)କମ୍ପିବା, ଝେଲିବା, ପଇଟିବା,ପ୍ରକାଶିତହେବା, ବାହାରି ପଡ଼ିବା, ଉଚ୍ଚାରିତ ହେବା, ପ୍ରକଟିତ ହେବା ।

ସ୍ଫୁର୍ଚ୍ଛ—(ଧାତୁ) ବିସ୍ମୃତ ହେବା ।

ସ୍ଫୁର୍ଜ(ର୍ଜ୍ଜ)—(ଧାତୁ)ବଜ୍ର ନିର୍ଘୋଷକରିବା

ସ୍ଫୁର୍ଜ(ର୍ଜ୍ଜ)କ—ବି.(ସ୍ଫୁର୍ଜ+କ,ଅକ)ତିନ୍ଦୁକବୃକ୍ଷ, କେନ୍ଦୁଗଛ ।

ସ୍ଫୁର୍ଜ(ର୍ଜ୍ଜ)ଥୁ—ବି. (ସ୍ଫୁର୍ଜ+ଭା.ଅଥୁ) ବଜ୍ରପତନ ଶବ୍ଦ ।

ସ୍ଫୁଲ—(ଧାତୁ) ସ୍ଫୁରଧାତୁ ଦେଖ,ସ୍ଫୁରଣ କରିବା, ସ୍ଖଳିତ ହେବା,ସଞ୍ଚୟକରିବା ।

ସ୍ଫୁଲ—ବି. (ସ୍ଫୁଲ+କ.ଅ) ବସ୍ତ୍ରବେଶ୍ମ, ତମ୍ବୁ, ସ୍ଫୂର୍ତ୍ତି । [ ଦେଖ ।

ସ୍ଫୁଲନ—ବି. (ସ୍ଫୁଲ+ଭା.ଅନ) ସ୍ଫୁରଣ

ସ୍ଫୁଲମଞ୍ଜରୀ—ବି, ହୁତହୁତିଆ ଗଛ ।

ସ୍ଫୁଲିଙ୍ଗ—ବି. (ସ୍ଫୁଲ୍+ଲିଙ୍ଗ୍+କ.ଅ) ଅଗ୍ନିକଣା,ନିଆଁରୁ ଉଠୁଥିବା ଅଗ୍ନିଚୂର୍ଣ୍ଣ ।

ସ୍ଫୁଲିଙ୍ଗିନୀ—ବି. (ସ୍ଫୁଲିଙ୍ଗ+ଇନ୍+ଈ) ଅଗ୍ନିଙ୍କ ସପ୍ତଜିହ୍ୱା ମଧ୍ୟରୁ ଗୋଟିଏ ।

ସ୍ଫୁର୍ଜ( ର୍ଜି )—(ଧାତୁ) ସ୍ଫୁର୍ଜଧାତୁ ଦେଖ ।

ସ୍ଫୁର୍ଜ(ର୍ଜ୍ଜ)କ—ବି. ( ସ୍ଫୁର୍ଜ+ଭା.ଅକ ) ସ୍ଫୁର୍ଜକ ଦେଖ, ଶ୍ୟୋଣାକ, ଫଣଫଣା ଗଛ ।

ସ୍ଫୁର୍ଜ(ର୍ଜ୍ଜ)ଥୁ—ବି. (ସ୍ଫୁର୍ଜ+ଅଥୁ) ବଜ୍ରପତନ ଶବ୍ଦ, ତଣ୍ଡୁଲୀୟ, କାଣ୍ଟିଲେଉଟିଆ ଶାଗ ।

ସ୍ଫୂର୍ତ୍ତି— ବି. ( ସ୍ଫୁର+ଭା.ତି. ) ସ୍ଫୁରଣ ଦେଖ, ସ୍ପନ୍ଦନ, ଉଲ୍ଲାସ, ହର୍ଷ, ପ୍ରତିଭା, ପ୍ରଭା, ( ଗ୍ରା.ବି ) ହର୍ଷଜନିତ ମତ୍ତତା, ଆମୋଦ,ଆନନ୍ଦଜନିତ ମନର ଉତ୍ତେଜନା ବା ଶରୀରରେ ପ୍ରକାଶିତ ଚଞ୍ଚଳତା, ଉତ୍ତେଜନା,ମନର ଗୃଞ୍ଚଳ, ଫୁର୍ତ୍ତି, ହଗ, (ଗ୍ରା.ବିଂ) ଚଞ୍ଚଳ ।

ସ୍ଫୂର୍ତ୍ତିଜନକ-ବିଂ.(ଷତତ୍)ହର୍ଷୋତ୍ପାଦକ, ଆମୋଦଜନକ, ଉତ୍ସାହଜନକ ।

ସ୍ଫୂର୍ତ୍ତିବାଜ୍—ଗ୍ରା. ବିଂ. ସ୍ଫୂର୍ତ୍ତିମାନ୍ ଦେଖ, ପ୍ରଫୁଲ୍ଲମନାଃ, ଚଞ୍ଚଳ । [ ଅବସ୍ଥା ।

ସ୍ଫୂର୍ତ୍ତିବାଜି—ଗ୍ରା. ବି. ସ୍ଫୂର୍ତ୍ତିବାଜ୍ ହେବା

ସ୍ଫୂର୍ତ୍ତିବ୍ୟଞ୍ଜକ—ବିଂ. ଯାହା ସ୍ଫୂର୍ତ୍ତିସୂଚନା କରେ, ଉଲ୍ଲାସସୂଚକ ।

ସ୍ଫୂର୍ତ୍ତିମାନ୍—ପୁଂ. ବିଂ. (ସ୍ଫୂର୍ତ୍ତି+ମତ୍) ସ୍ଫୂର୍ତ୍ତିବିଶିଷ୍ଟ, ବିକଶିତ ହେଉଥିବା, କମ୍ପମାନ,ଚଞ୍ଚଳ, (ସ୍ତ୍ରୀ) ସ୍ଫୂର୍ତ୍ତିମତୀ,(ବି) ପାଣ୍ଡୁପତ୍ର ।

ସ୍ଫୂର୍ତ୍ତିଲାଭ—ପୁଂ. ବି. (ଷତତ୍)ହର୍ଷପ୍ରାପ୍ତି, ଆମୋଦପ୍ରାପ୍ତି, ବିକାଶଲାଭ ।

ସ୍ଫେୟାନ୍—ପୁଂ. ବିଂ. (ସ୍ଫିର+ଈୟସ୍) ଅତି ପ୍ରଚୁର, ଅତ୍ୟଧିକ, ଅତିଶୟ,(ସ୍ତ୍ରୀ) ସ୍ଫେୟସୀ । [ ଅତ୍ୟଧିକ ।

ସ୍ଫେଷ୍ଠ—ବିଂ.(ସ୍ଫିର+ଇଷ୍ଠ)ଅତି ପ୍ରଚୁର,

ସ୍ଫୋଟ—ବି. ( ସ୍ଫୁଟ+ଅ ) ସ୍ଫୋଟକ, ଫୋଟକା, ବ୍ରଣ, ବିସ୍ଫୋଟକ, ମୋତି, ମୁକ୍ତା,(ଭା.ଅ)ବହିରାବରଣକୁ ଭେଦକରି ଅନ୍ତଃସ୍ଥ ବସ୍ତୁର ବହିର୍ଗମନ, ଫୁଟିବାର ବାହାରି ପଡ଼ିବା, ଦେହ ଓ ହସ୍ତଦ୍ୱାରା ଆଘାତଜନିତ ଶବ୍ଦ,ଫୁଟ୍କା,(ବ୍ୟାକରଣ) ପୂର୍ବ ପୂର୍ବ ବର୍ଣ୍ଣର ଅନୁଭବ ସହିତ ଚରମବର୍ଣ୍ଣ ବ୍ୟଙ୍ଗ୍ୟ ଅଖଣ୍ଡ ନିତ୍ୟ ଶବ୍ଦବିଶେଷ, ନିତ୍ୟ ଶବ୍ଦ ।

ସ୍ଫୋଟକ-ବି.(ସ୍ଫୁଟ+କ.ଅକ)ଫୋଟକା, ବ୍ରଣ, ବଥ,ବିସ୍ଫୋଟକ,ଆବୁ,ଭଲ୍ଲାତକ, ଭାଲିଆ, (ବିଂ) ଭେଦକ, ପରିହାସକ, (ସ୍ତ୍ରୀ) ସ୍ଫୋଟିକା ।

ସ୍ଫୋଟକର-ବି.ଭଲ୍ଲାତକବୃକ୍ଷ,ଭାଲିଆଗଛ ।

ସ୍ଫୋଟନ—ବି. (ସ୍ଫୁଟ୍+ଣିଚ୍+ଭା.ଅନ) ବିଦାରଣ, ଫାଡ଼ିବା, ପ୍ରକାଶନ, ଫୁଟାଇବା, ଫୋଡ଼ିବା, ଶବ୍ଦ, ସୁଶ୍ରୁତ ଅନୁସାରେ ବାୟୁପ୍ରକୋପରୁ ବ୍ରଣର ପୀଡ଼ାବିଶେଷ, ଯହିଁ ହେତୁ ବ୍ରଣ ଫାଟିଗଲାଭଳି ଜଣାଯାଏ, (ବିଂ) ଭେଦକ ।

ସ୍ଫୋଟନୀ—ବି. (ସ୍ଫୋଟି+ଣ.ଅନ+ଈ) ବେଧନୀ, ଫୋଡ଼ଣୀ, ଭଅଁର ।

ସ୍ଫୋଟନୀୟ—ବିଂ. (ସ୍ଫୋଟି+ର୍ମ.ଅନୀୟ) ଫୋଡ଼ାହେବାର ଉପଯୁକ୍ତ ।

ସ୍ଫୋଟଲତା—ବି. କର୍ଣ୍ଣସ୍ଫୋଟା ଲତା ।

ସ୍ଫୋଟବୀଜକ—ବି. ଭଲ୍ଲାତକ, ଭାଲିଆ ।

ସ୍ଫୋଟହେତୁକ—ବି. ଭଲ୍ଲାତକ,ଭାଲିଆ ।

ସ୍ଫୋଟା—ବି.(ସ୍ଫୁଟ୍+କ.ଅ+ଆ)ସର୍ପର ଫଣା,ଶୁକ୍ଳ ଶାରିବା, ଧଳା ଅନନ୍ତମୂଳ ।

ସ୍ଫୋଟାୟ(ଦ)ନ—ବି.ମୁନିବିଶେଷ,କକ୍ଷୀବାନ୍ । [ ଆଦି କର୍ମ ।

ସ୍ଫୋଟିକ-ବି.ପ୍ରସ୍ତରମୟ ଭୂମିକୁ ଖୋଳିବା

ସ୍ଫୋଟିକା—ବି. ପକ୍ଷୀବିଶେଷ,ହାପୁଡ଼ିକା, ଛୋଟ ବ୍ରଣ । [ କାକୁଡ଼ି ।

ସ୍ଫୋଟିନୀ—ବି. ( ସ୍ଫୁଟ+କ.ଇନ୍+ଈ )

ସ୍ଫୋତା—ବି.ଶାରିବା,ଅନନ୍ତମୂଳ,ଶ୍ୱେତଅର୍କ ଗୁଳ୍ମ ।

ସ୍ଫୋରଣ-ବି.ସ୍ଫାର,ପ୍ରଚୁର,ବିକଟ,ବିପୁଳ ।

ସ୍ଫୋଲନ—କ୍ଲୀ. ବି. ସ୍ଫାଳ, ସ୍ଫୂର୍ତ୍ତି ।

ସ୍ଫ୍ୟ—ବି. ଖଦିରକାଷ୍ଠ ନିର୍ମିତ ଖଡ୍ଗାକାର ଯଜ୍ଞକାଷ୍ଠ ।

ସ୍ୱ—ସର୍ବ. (ସ୍ୱନ୍+କ.ଅ) ଆତ୍ମା, ସ୍ୱୟଂ, (ବି) ଧନ, ଜ୍ଞାତି, ଜୀବାତ୍ମା, ( ବିଂ ) ସ୍ୱକୀୟ, ନିଜର ।

ସ୍ୱଆୟତ—ପ୍ରା.(ଟଞ୍ଚାମ)ଅ.ଦରଆରେ ।

ସ୍ୱଇରଣୀ—ଗ୍ରା. ସ୍ତ୍ରୀ. ବିଂ. (ପଦ୍ୟ, ସଂ-ସ୍ୱୈରିଣୀ) ସ୍ୱୈରିଣୀ ।

ସ୍ୱଃ—ଅ.(ସ୍ୱନ୍+ଅଧି.କ୍ୱିପ୍)ସ୍ୱର୍ଗ,ଆକାଶ, ନିତ୍ୟସୁଖ,ନିରବଚ୍ଛିନ୍ନ ସୁଖ,ପରଲୋକ, ଜ୍ୟୋତିଃ, ପ୍ରଭା, ସପ୍ତଲୋକ ମଧ୍ୟରୁ ଏକତମ, ସୂର୍ଯ୍ୟଲୋକ ଓ ଧ୍ରୁବଲୋକର ମଧ୍ୟସ୍ଥାନ ।

ସ୍ୱଃପଥ—ବି. (୬ତତ୍) ମୃତ୍ୟୁ,ସ୍ୱର୍ଗର ପଥ ।

ସ୍ୱଃପାଳ—ବି. (ସ୍ୱ+ପାଳି+ଅ) ସ୍ୱର୍ଗପାଳକ, ସ୍ୱର୍ଗପତି ।

ସ୍ୱଃସରିତ୍—ବି. (୬ତତ୍) ସ୍ୱର୍ଗଗଙ୍ଗା ।

ସ୍ୱଃସୁନ୍ଦରୀ—ବି. ଅପ୍ସରା ।

ସ୍ୱକ—ପୁଂ. ବିଂ. (ସ୍ୱ+କ)ସ୍ୱକୀୟ,ସ୍ୱୀୟ, ନିଜର, ଆତ୍ମୀୟ, ଆତ୍ମା ସମ୍ବନ୍ଧୀୟ,(ସ୍ତ୍ରୀ) ସ୍ୱକା ।

ସ୍ୱକମ୍ପନ—ବି. (ବ.ବ୍ରୀ) ବାୟୁ ।

ସ୍ୱକରଣ—ବି. ସ୍ୱୀକାର, ନିଜ କାର୍ଯ୍ୟ ।

ସ୍ୱକର୍ମ—ବି. (୬ତତ୍) ନିଜ କୃତକାର୍ଯ୍ୟ ।

ସ୍ୱକର୍ମକୃତ୍—ବିଂ. ନିଜକାର୍ଯ୍ୟକାରୀ ।

ସ୍ୱକାମୀ—ବିଂ. ନିଜପାଇଁ କାମନାକାରୀ ।

ସ୍ୱକାଳ—ବି.ସ୍ୱୀୟକାଳ,କୌଣସି କାର୍ଯ୍ୟର ନିର୍ଦ୍ଦିଷ୍ଟ କାଳ ।

ସ୍ୱକୀୟ—ପୁଂ. ବିଂ. (ସ୍ୱ+ଈୟ) ସ୍ୱକ, ସ୍ୱୀୟ, ନିଜର, ନିଜ ସମ୍ବନ୍ଧୀୟ, (ସ୍ତ୍ରୀ) ସ୍ୱକୀୟା । [ ନିଜତ୍ୱ ।

ସ୍ୱକୀୟତ୍ୱ—ବି. ସ୍ୱକୀୟର ଭାବ ବା ଧର୍ମ,

ସ୍ୱକୀୟା—ସ୍ତ୍ରୀ.ବି. ସ୍ୱୀୟା ଦେଖ, ( ବିଂ ) ସ୍ୱକୀୟର ସ୍ତ୍ରୀଲିଙ୍ଗ ।

ସ୍ୱକୀୟାପ୍ରୀତି—ବି.ନିଜ ସ୍ତ୍ରୀଙ୍କ ପ୍ରତି ସ୍ୱାମୀର ପ୍ରେମ,ନିଜ ସ୍ୱାମୀଙ୍କ ପ୍ରତି ସ୍ତ୍ରୀଙ୍କର ପ୍ରେମ ।

ସ୍ୱକୁଳ—ବି. (୬ତତ୍) ନିଜର ବଂଶ ।

ସ୍ୱକୁଳକ୍ଷୟ—ବି. (୬ତତ୍) ନିଜ ବଂଶର ନାଶ,(ବ.ବ୍ରୀ)ମତ୍ସ୍ୟ, (ବିଂ) ନିଜ ବଂଶର ବିନାଶକ ।

ସ୍ୱକୁଳ୍ୟ—ବିଂ.(ସ୍ୱକୁଳ+ଯ)ନିଜବଂଶୀୟ ।

ସ୍ୱକୃତ—ବିଂ.(୩ତତ୍) ନିଜ କୃତ,ନିଜେ କରିଥିବା, (ସ୍ତ୍ରୀ) ସ୍ୱକୃତା ।

ସ୍ୱକୃତଭଙ୍ଗ—ବିଂ. କୁଳୀନବଂଶରେ ଯେ ପ୍ରଥମେ କୁଳପ୍ରଥା ଭଙ୍ଗ କରିଅଛି,ସ୍ୱୟଂ କୁଳପ୍ରଥା ଲଙ୍ଘନକାରୀ କୁଳୀନ ।

ସ୍ୱକ୍ଷ—ବିଂ. ସୁନ୍ଦର ଅକ୍ଷଯୁକ୍ତ ରଥ ।

ସ୍ୱଖାତ—ବିଂ. (୩ତତ୍) ନିଜର ଖନିତ, ନିଜ କର୍ତ୍ତୃକ ଖୋଲା ହୋଇଥିବା (ଜଳାଶୟ), (ସ୍ତ୍ରୀ) ସ୍ୱଖାତା ।

ସ୍ୱଖାତସଲିଲ—କ୍ଳୀ. ବି. (୬ତତ୍) ନିଜ କର୍ତ୍ତୃକ ଖନିତ ଜଳାଶୟର ଜଳ ।

ସ୍ୱଗ୍—(ଧାତୁ) ଚଳିବା ।

ସ୍ୱଗତ—ବିଂ. ୨ତତ୍; ( ସ୍ୱ+ଗତ ) ଆତ୍ମଗତ, ମନୋଗତ, କହିବା ଲୋକ ଛଡ଼ା ଅନ୍ୟ କାହାକୁ ଯେଉଁକଥା ଶୁଣାଯାଏନାହିଁ, ( କ୍ଳୀ.ବି ) ମନେ ମନେ ଆଲାପମାତ୍ର ବ୍ୟକ୍ତି ଛଡ଼ା ରଙ୍ଗଭୂମିସ୍ଥ ଜନମାନଙ୍କର ଶ୍ରବଣ ଯୋଗ୍ୟ ବାକ୍ୟ, ଅଭିନୟ କାଳରେ କୌଣସି ନଟ ସନ୍ନିହିତ ବ୍ୟକ୍ତିମାନଙ୍କ ନିକଟରେ ଗୋପନ କରିବା ନିମିତ୍ତ ବିଷୟ ବିଶେଷର ମନେ ମନେ ଯେ ଆନ୍ଦୋଳନ କରେ ତାହାର ନାମ 'ସ୍ୱଗତ' ।

ସ୍ୱଗତକଥନ—ବି. ନାଟକାଭିନୟରେ ପାତ୍ର ନିଜେ ନିଜେ କଥା କହିବା ।

ସ୍ୱଗୁପ୍ତା—ବି. ଶୂକଶିମ୍ବୀ, ବାଇଡ଼ଙ୍କ, ଲାଜକୁଳୀ ଲତା ।

ସ୍ୱଗୃହ—ବି. ( ୬ତତ୍ ) ନିଜର ଘର, (ଜ୍ୟୋତିଷ) ଗ୍ରହମାନଙ୍କର ନିଜନିଜର ଭବନ, କଳିକାର ପକ୍ଷୀ ।

ସ୍ୱଗ୍ରହ—ପୁଂ. ବି. ବାଳରୋଗବିଶେଷ ।

ସ୍ୱଗ୍ରାମ—ବି.ନିଜର ଗ୍ରାମ,ଯେଉଁ ଗ୍ରାମରେ ଯେ ବାସକରେ, ସେହି ଗ୍ରାମ ତାହାର ସ୍ୱଗ୍ରାମ ।

ସ୍ୱଙ୍ଗ—ବି. କ.ଧା; (ସ୍ୱ+ଅଙ୍ଗ) ସୁନ୍ଦର ଅବୟବ, (ବିଂ-ବ.ବ୍ରୀ) ସୁନ୍ଦର ଅଙ୍ଗବିଶିଷ୍ଟ, (ସ୍ତ୍ରୀ) ସ୍ୱଙ୍ଗୀ ।

ସ୍ୱଚକ୍ଷୁରେ—କ୍ରି. ବି. ବିଂ. ନିଜ ଆଖିରେ (ଦେଖିବା) ।

ସ୍ୱଚ୍ଛ—ବିଂ. ( ସୁ+ଅଚ୍ଛ ) ଅତି ନିର୍ମଳ, ପ୍ରତିବିମ୍ବ ଧାରଣକ୍ଷମ,ଶୁକ୍ଳ, ଶୁଭ୍ର,ରୋଗ ବିମୁକ୍ତ, ନିଷ୍କପଟ, ନିର୍ମଳ ଚରିତ୍ର, ନିର୍ଦ୍ଦୋଷ ସ୍ୱଭାବ,(ପୁଂ.ବି)ସ୍ଫଟିକ,ବଦର, (କ୍ଳୀ.ବି) ରୌପ୍ୟମାକ୍ଷିକ, ମୁକ୍ତା, ଅଭ୍ର, କର୍ପୂର, ସ୍ୱର୍ଣ୍ଣମାକ୍ଷିକ, ବିମଳ ଉପରସ, ( ଗ୍ରା.ବି ) ମନର ପ୍ରସନ୍ନତା, ମନର ଅକୁଣ୍ଠିତ ଭାବ,(ଗ୍ରା.ବିଂ)ଉଚିତ,ଯଥାର୍ଥ, କୁଣ୍ଠାରହିତ ।

ସ୍ୱଚ୍ଛତା(ତ୍ୱ)—ବି. (ସ୍ୱଚ୍ଛ+ଭା.ତା) ନିର୍ମଳତା,ପ୍ରତିବିମ୍ବଧାରଣ କ୍ଷମତା,ଶୁଭ୍ରତା ।

ସ୍ୱଚ୍ଛନ୍ଦ—ପୁଂ. ବିଂ. ବ.ବ୍ରୀ; (ସ୍ୱ+ଛନ୍ଦ) ସ୍ୱେଚ୍ଛାଗାମୀ, ସ୍ୱେଚ୍ଛାନୁବର୍ତ୍ତୀ, ସ୍ୱତନ୍ତ୍ର, ସ୍ୱାଧୀନ, ବାଧାଶୂନ୍ୟ, ଅନିୟନ୍ତ୍ରିତ,ନିରଙ୍କୁଶ, ସୁଖୀ, ସନ୍ତୁଷ୍ଟ, ଅଯତ୍ନଜାତ,ବିନା ଚେଷ୍ଟାରେ ଉତ୍ପନ୍ନ, ମନକୁ ଉଠିଥିବା (ଗଛ), ସୁସ୍ଥ, ଅନାୟାସଲଭ୍ୟ, (ବି-୬ତତ୍)ସ୍ୱେଚ୍ଛା,ଅନ୍ୟଦ୍ୱାରା ଅନିୟନ୍ତ୍ରିତ ନିଜର ଇଚ୍ଛା, ସ୍ୱାଧୀନତା,ସ୍ୱେଚ୍ଛାଚାର ।

ସ୍ୱଚ୍ଛନ୍ଦଗତି—ବି. (କ.ଧା) ସ୍ୱେଚ୍ଛାକ୍ରମେ ଯିବା, (ପୁଂ. ସ୍ତ୍ରୀ ଓ ବିଂ-ବ.ବ୍ରୀ) ଯେ ସ୍ୱେଚ୍ଛାକ୍ରମେ ଗତି କରେ ।

ସ୍ୱଚ୍ଛନ୍ଦଚର—ପୁଂ. ବିଂ. (ସ୍ୱଚ୍ଛନ୍ଦ+ଚର୍ +କ.ଅ) ସ୍ୱଚ୍ଛନ୍ଦଗାମୀ ଦେଖ, ( ସ୍ତ୍ରୀ ) ସ୍ୱଚ୍ଛନ୍ଦଗାମୀ ।

ସ୍ୱଚ୍ଛନ୍ଦଚାରିଣୀ—ସ୍ତ୍ରୀ. ବିଂ. (ସ୍ୱଚ୍ଛନ୍ଦଚରନ୍ +ଈ) ସ୍ୱଚ୍ଛନ୍ଦଗାମୀର ସ୍ତ୍ରୀଲିଙ୍ଗ,(ସ୍ତ୍ରୀ.ବି) ବେଶ୍ୟା ।

ସ୍ୱଚ୍ଛନ୍ଦଗାମୀ—ପୁଂ.ବିଂ. ଯେ ଇଚ୍ଛାନୁସାରେ ବିଚରଣ କରେ, ସ୍ୱେଚ୍ଛାବିହାରୀ, (ସ୍ତ୍ରୀ) ସ୍ୱଚ୍ଛନ୍ଦଚାରିଣୀ ।

ସ୍ୱଚ୍ଛନ୍ଦଚିତ୍ତ—ବି. ( କ.ଧା ) ନିଶ୍ଚିନ୍ତମନ, ସ୍ୱାଧୀନମନ, (ପୁଂ.ବିଂ-ବ.ବ୍ରୀ) ସୁସ୍ଥଚେତାଃ,ନିଶ୍ଚିନ୍ତମନାଃ, ସ୍ୱାଧୀନଚେତାଃ, (ସ୍ତ୍ରୀ) ସ୍ୱଚ୍ଛନ୍ଦଚିତ୍ତା ।

ସ୍ୱଚ୍ଛନ୍ଦତା(ତ୍ୱ)—ବି. ( ସ୍ୱଚ୍ଛନ୍ଦ+ଭା.ତା ) ସ୍ୱାଧୀନତା,ସ୍ୱାତନ୍ତ୍ର୍ୟ,ବାଧାଶୂନ୍ୟ ଅବସ୍ଥା, ଅଯତ୍ନଜାତ ଅବସ୍ଥା, ସୁଖ, ସନ୍ତୋଷ, ସୁସ୍ଥତା, ନିଶ୍ଚିନ୍ତତା ।

ସ୍ୱଚ୍ଛନ୍ଦବିହାର—ବି. ନିଜ ଇଚ୍ଛାନୁସାରେ ବୁଲିବା, ସ୍ୱଚ୍ଛନ୍ଦଗତି । [ ଇଚ୍ଛାମୃତ୍ୟୁ ।

ସ୍ୱଚ୍ଛନ୍ଦମରଣ—ଗ୍ରା. ବି. ଇଚ୍ଛାମରଣ,

ସ୍ୱଚ୍ଛନ୍ଦରେ—କ୍ରି. ବି. ବିଂ. ସ୍ୱେଚ୍ଛାକ୍ରମେ, ଅନାୟାସରେ,ସ୍ୱାଧୀନରୂପେ,ଅଯତ୍ନରେ, ବାଧାରହିତ ଭାବରେ ।

ସ୍ୱଚ୍ଛନ୍ଦାଚାର—ବି. (କ.ଧା) ସ୍ୱେଚ୍ଛାଚାର, ଅପରାଧୀନତା, (ପୁଂ.ବିଂ-ବ.ବ୍ରୀ) ସ୍ୱେଚ୍ଛାଚାରୀ, (ସ୍ତ୍ରୀ) ସ୍ୱଚ୍ଛନ୍ଦାଚାରା ।

ସ୍ୱଚ୍ଛନ୍ଦାନୁବର୍ତ୍ତିତା—ବି. (ସ୍ୱଚ୍ଛନ୍ଦାନୁବର୍ତ୍ତିନ୍ + ଭା.ତା) ସ୍ୱେଚ୍ଛାଚାରିତା, ନିଜର ବ୍ୟକ୍ତିତ୍ୱ ।

ସ୍ୱଚ୍ଛନ୍ଦାନୁବର୍ତ୍ତୀ—ପୁଂ. ବିଂ. (ସ୍ୱଚ୍ଛନ୍ଦ୍ + ଅନୁବର୍ତ୍ତିନ୍) ସ୍ୱେଚ୍ଛାଚାରୀ, (ସ୍ତ୍ରୀ) ସ୍ୱଚ୍ଛନ୍ଦାନୁବର୍ତ୍ତିନୀ ।

ସ୍ୱଚ୍ଛପତ୍ର—ବି. (ବ.ବ୍ରୀ) ଅଭ୍ରକ ।

ସ୍ୱଚ୍ଛବାଳୁକ—ବି.(କ.ଧା)ନିର୍ମଳ ଉପରସ, ବିମଳ ନାମକ ଉପଧାତୁ ।

ସ୍ୱଚ୍ଛମଣି—ବି. (କ.ଧା) ସ୍ଫଟିକ ।

ସ୍ୱଚ୍ଛମନ—ଗ୍ରା.ବି.ନିର୍ମଳ ବା ସରଳ ମନ, ଅସନ୍ଦିଗ୍ଧ ହୃଦୟ, ସ୍ୱେଚ୍ଛା ।

ସ୍ୱଚ୍ଛସଲିଳ—ବି. (କ.ଧା) ନିର୍ମଳ ଜଳ, (ବ.ବ୍ରୀ) ନିର୍ମଳ ଜଳବିଶିଷ୍ଟ, (ସ୍ତ୍ରୀ) ସ୍ୱଚ୍ଛସଲିଳା ।

ସ୍ୱଚ୍ଛା—ସ୍ତ୍ରୀ. ବିଂ. ସ୍ୱଚ୍ଛର ସ୍ତ୍ରୀଲିଙ୍ଗ, (ବି) ଶ୍ୱେତଦୂର୍ବା ।

ସ୍ୱଚ୍ଛେ—ଗ୍ରା. କ୍ରି. ବିଂ. ସ୍ପଷ୍ଟରୂପେ ।

ସ୍ୱଜ—ପୁଂ. ବିଂ. (ସ୍ୱ + ଜନ୍ + କ.ଅ) ଆତ୍ମଜାତ, ଶରୀରରୁ ଜାତ, (ସ୍ତ୍ରୀ) ସ୍ୱଜା, (ବି) ରକ୍ତପୁତ୍ର, ସ୍ୱେଦ, ଝାଳ, ଘର୍ମ ।

ସ୍ୱଜନ—ପୁଂ. ବି. (ସ୍ୱ + ଜନ) ଆତ୍ମୀୟବ୍ୟକ୍ତି, ମିତ୍ର, ବନ୍ଧୁବାନ୍ଧବ, ଜ୍ଞାତି, କୁଟୁମ୍ବ, ନିଜର ଲୋକ, ଆପଣା ପରିବାରସ୍ଥ ବ୍ୟକ୍ତି

ସ୍ୱଜନତା(ତ୍ୱ)—ବି. (ସ୍ୱଜନ + ଭା.ତା) ସ୍ୱଜନ ହେବାର ଅବସ୍ଥା, ଆତ୍ମୀୟତା ।

ସ୍ୱଜନତ୍ୟାଗ—ବି. (୬ତତ୍ପୁ) ଆତ୍ମୀୟମାନଙ୍କୁ ପରିତ୍ୟାଗ ।

ସ୍ୱଜନପ୍ରୀତି—ବି. (୬ତତ୍ପୁ) ଆତ୍ମୀୟମାନଙ୍କୁ ଭଲ ପାଇବା ।

ସ୍ୱଜନବିନାଶ—ବି. (୬ତତ୍ପୁ) ନିଜର ଆତ୍ମୀୟବ୍ୟକ୍ତିଙ୍କ କ୍ଷୟ ।

ସ୍ୱଜନବିରୋଧ—ବି. (୬ତତ୍ପୁ) ଆତ୍ମୀୟବ୍ୟକ୍ତିମାନଙ୍କ ସଙ୍ଗେ ବିବାଦ ।

ସ୍ୱଜନୀ—ସ୍ତ୍ରୀ. ବିଂ (ସ୍ୱଜନ + ଈ) ସଜନୀ, ସ୍ତ୍ରୀ ସଙ୍ଗିନୀ ।

ସ୍ୱଜନ୍ମା—ପୁଂ ଓ ସ୍ତ୍ରୀ. ବିଂ. ବ.ବ୍ରୀ; (ସ୍ୱ + ଜନ୍ମନ୍) ସ୍ୱୟଂଭୂ, ନିଜଠାରୁ ଜାତ, ଅନନ୍ୟଜନ୍ମା ।

ସ୍ୱଜା—ସ୍ତ୍ରୀ. ବିଂ. (ସ୍ୱଜ + ଆ) ସ୍ୱଜର ସ୍ତ୍ରୀଲିଙ୍ଗ, (ବି) କନ୍ୟା, ଝିଅ ।

ସ୍ୱଜାତ—ପୁଂ. ବି ଓ ବିଂ. (ସ୍ୱ + ଜାତ) ୫ତତ୍; ସ୍ୱଜ ଦେଖ, (ସ୍ତ୍ରୀ) ସ୍ୱଜାତା ।

ସ୍ୱଜାତି—ବି. (୬ତତ୍ପୁ) ନିଜର ଜାତି ବା ଶ୍ରେଣୀ ।

ସ୍ୱଜାତିଦ୍ୱିଷ—ପୁଂ ଓ ସ୍ତ୍ରୀ. ବିଂ. (ସ୍ୱଜାତି + ଦ୍ୱିଷ୍ + କ.କ୍ୱିପ୍) ନିଜର ଜାତି ପ୍ରତି ବିଦ୍ୱେଷୀ ।

ସ୍ୱଜାତିବିଦ୍ରୋହ(ବିଦ୍ୱେଷ)—ବି. ସ୍ୱଜାତିବିରୋଧ ଦେଖ ।

ସ୍ୱଜାତିଦ୍ରୋହୀ—ପୁଂ. ବିଂ. (୬ତତ୍ପୁ)ନିଜ ଜାତିର ବିରୁଦ୍ଧାଚାରୀ ବା ଅନିଷ୍ଟସାଧକ, (ସ୍ତ୍ରୀ) ସ୍ୱଜାତିଦ୍ରୋହିଣୀ ।

ସ୍ୱଜାତିପ୍ରିୟ—ପୁଂ. ବିଂ. (ବ.ବ୍ରୀ)ଯେଉଁ ବ୍ୟକ୍ତି ଆପଣା ଜାତିକୁ ସ୍ନେହ କରେ, (୬ତତ୍ପୁ) ସ୍ୱଜାତୀୟମାନଙ୍କ ଅନୁରାଗଭାଜନ, (ସ୍ତ୍ରୀ) ସ୍ୱଜାତିପ୍ରିୟା ।

ସ୍ୱଜାତିପ୍ରୀତି(ପ୍ରେମ)—ବି. ନିଜର ଜାତି ପ୍ରତି ଅନୁରାଗ ।

ସ୍ୱଜାତିବିରୋଧ(ବିଦ୍ରୋହ)—ବି. ସ୍ୱଜାତି ପ୍ରତି ଦ୍ରୋହ, ନିଜ ଜାତି ସଙ୍ଗେ ବିବାଦ ।

ସ୍ୱଜାତିବିରୋଧୀ(ବିଦ୍ରୋହୀ)—ପୁଂ. ବିଂ. ନିଜ ଜାତି ପ୍ରତି ବିଦ୍ରୋହାଚରଣକାରୀ, (ସ୍ତ୍ରୀ) ସ୍ୱଜାତିବିରୋଧିନୀ, ସ୍ୱଜାତିବିଦ୍ରୋହିଣୀ ।

ସ୍ୱଜାତିସୁଲଭ—ବିଂ.(୭ତତ୍ପୁ)ନିଜ ଜାତିର ସ୍ୱାଭାବିକ, ଯାହା ସ୍ୱଶ୍ରେଣୀରେ ସଚରାଚର ବା ଅଧିକ ଦେଖାଯାଏ ।

ସ୍ୱଜାତୀୟ—ପୁଂ.ବିଂ.(ସ୍ୱ + ଜାତି + ଈୟ) ସ୍ୱଜାତି ସମ୍ବନ୍ଧୀୟ, ସ୍ୱଜାତିଭୁକ୍ତ, ନିଜ ଶ୍ରେଣୀର, (ସ୍ତ୍ରୀ) ସ୍ୱଜାତୀୟା ।

ସ୍ୱଜାତ୍ୟ—ବିଂ.(ସ୍ୱଜାତି + ଯ)ସ୍ୱଜାତୀୟ ।

ସ୍ୱଜାୟା(ଦାର)—ବି. (୬ତତ୍ପୁ) ସ୍ୱପତ୍ନୀ, ନିଜର ବିବାହିତା ସ୍ତ୍ରୀ ।

ସ୍ୱକୃତ—ବିଂ. ଆପଣା କର୍ତ୍ତୃକ କୃତ ।

ସ୍ୱତଃ—ଅ. (ସ୍ୱ + ତସ୍) ଆପେ ଆପେ, ନିଜେ, ସ୍ୱୟଂ, ସ୍ୱେଚ୍ଛାକ୍ରମେ, ନିଜର ଇଚ୍ଛାନୁସାରେ, ସ୍ୱାଧୀନ ଭାବରେ, ନିଜଠାରୁ, ଅନ୍ୟର ବିନା ମନ୍ତ୍ରଣାରେ, ଧନରୁ ।

ସ୍ୱତଃପରତଃ—ଅ.ନିଜଠାରୁ ଓ ପରଠାରୁ, ନିଜ ପକ୍ଷରେ ଓ ଅନ୍ୟପକ୍ଷରେ ।

ସ୍ୱତଃପ୍ରବୃତ୍ତ—ପୁଂ, ବିଂ. ସ୍ୱୟଂ ପ୍ରବୃତ୍ତ, ସ୍ୱେଚ୍ଛାନୁସାରେ କୌଣସି କାର୍ଯ୍ୟରେ ବ୍ୟାପୃତ, (ସ୍ତ୍ରୀ) ସ୍ୱତଃପ୍ରବୃତ୍ତା ।

ସ୍ୱତଃସିଦ୍ଧ—ବିଂ.ଯାହା କୌଣସି ପ୍ରମାଣସାପେକ୍ଷ ନୁହେ କିନ୍ତୁ ଆପଣା ଠାରୁ ସିଦ୍ଧ ହୁଏ, (ସ୍ତ୍ରୀ) ସ୍ୱତଃସିଦ୍ଧା ।

ସ୍ୱତନ୍ତ୍ର—ପୁଂ. ବିଂ. (ବ.ବ୍ରୀ) ସ୍ୱାଧୀନ, ସ୍ୱେଚ୍ଛାଚାରୀ, ନିରର୍ଗଳ, ନିରଙ୍କୁଶ, ଅନ୍ୟମାନଙ୍କଠାରୁ ପୃଥକ୍, ବିଶିଷ୍ଟ କାର୍ଯ୍ୟପାଇଁ ବା ପୃଥକ୍‌ରୂପେ ଉଦ୍ଦିଷ୍ଟ, (ସ୍ତ୍ରୀ)ସ୍ୱତନ୍ତ୍ରା ।

ସ୍ୱତନ୍ତ୍ରତା(ତ୍ୱ)—ବି. (ସ୍ୱତନ୍ତ୍ର + ଭା.ତା) ସ୍ୱାଧୀନତା, ସ୍ୱେଚ୍ଛାଚାରିତା, ବିଶିଷ୍ଟତା, ବ୍ୟକ୍ତିତ୍ୱ, ଅନ୍ୟମାନଙ୍କଠାରୁ ପୃଥକ୍ ହେବା ଅବସ୍ଥା ।

ସ୍ୱତନ୍ତ୍ରା—ସ୍ତ୍ରୀ.ବିଂ. (ସ୍ୱତନ୍ତ୍ର + ଆ)ସ୍ୱତନ୍ତ୍ରର ସ୍ତ୍ରୀଲିଙ୍ଗ, (ବି) ସ୍ୱୈରିଣୀ ସ୍ତ୍ରୀ, ଯେଉଁ ସ୍ତ୍ରୀ ନିଜ ଇଚ୍ଛାନୁସାରେ ଆଚରଣ କରେ । [ ଦେଖ ।

ସ୍ୱତନ୍ତ୍ରାଚାର—ପୁଂ.ବି ଓ ବିଂ. ସ୍ୱେଚ୍ଛାଚାର

ସ୍ୱତନ୍ତ୍ରୀ—ପୁଂ.ବିଂ.(ସ୍ୱ + ତନ୍ତ୍ରିନ୍)ସ୍ୱାଧୀନ, (ସ୍ତ୍ରୀ) ସ୍ୱତନ୍ତ୍ରିଣୀ ।

ସ୍ୱତୁଲ୍ୟ(ସଦୃଶ)—ପୁଂ. ବିଂ. (୬ତତ୍ପୁ) ନିଜପରି, (ସ୍ତ୍ରୀ) ସ୍ୱତୁଲ୍ୟା ।

ସ୍ୱତୋବିରୋଧ—ବି. (ସ୍ୱତଃ + ବିରୋଧ) ନିଜଠାରୁ ଉଠିବା ବିରୋଧ, ନିଜଦ୍ୱାରା ସ୍ୱମତର ଖଣ୍ଡନ ।

ସ୍ୱତୋବିରୋଧୀ—ପୁଂ. ବିଂ. (ସ୍ୱତୋବିରୋଧିନ୍) ନିଜର ବିରୋଧୀ, ସ୍ୱମତର ବିରୋଧବାଦୀ ବା ଖଣ୍ଡନକାରୀ, (ସ୍ତ୍ରୀ) ସ୍ୱତୋବିରୋଧିନୀ ।

ସ୍ୱତ୍ୱ—ବି. (ସ୍ୱ + ଭା.ତ୍ୱ) ସ୍ୱାତନ୍ତ୍ର୍ୟ, ଶାସ୍ତ୍ରସଙ୍ଗତ ଯଥେଷ୍ଟ ବିନିଯୋଗାର୍ହତ୍ୱ, ସ୍ୱାମିତ୍ୱ, କୌଣସି ସମ୍ପତ୍ତିରେ ପ୍ରଭୁତ୍ୱ, ସମ୍ପତ୍ତିରେ

ଅଧିକାର, ଦ୍ରବ୍ୟର ସ୍ୱତ୍ୱବିଶିଷ୍ଟାଧିକାରୀ, (ଗ୍ରା.ବି) ସମ୍ପତ୍ତିକୁ ଦଖଲ କରିବାର ଅଧିକାର ।

ସ୍ୱତ୍ୱୋପସ୍ୱତ୍ୱ—ଗ୍ରା. ବି. ସମ୍ପତ୍ତିରେ ଥିବା ସବୁପ୍ରକାରର ସ୍ୱମିତ୍ୱ ଓ ଅଧିକାର, ସମ୍ପତ୍ତିରେ ପୂର୍ଣ୍ଣସ୍ୱାମିତ୍ୱ ଓ ସମ୍ପତ୍ତିର ଆୟକୁ ମାତ୍ର ଭୋଗକରିବାର ଅଧିକାର ।

ସ୍ୱତ୍ୱତ୍ୟାଗ—ବି. କୌଣସି ସମ୍ପତ୍ତିରୁ ସ୍ୱାମିତ୍ୱ ବା ଅଧିକାର ଛାଡ଼ିଦେବା, ନିଜର ଦଖଲକୁ ଛାଡ଼ିଦେବା ।

ସ୍ୱତ୍ୱନିବୃତ୍ତି—ବି. କୌଣସି ସମ୍ପତ୍ତିରୁ ସ୍ୱାମିତ୍ୱ ଲୁପ୍ତ ହେବା ।

ସ୍ୱତ୍ୱନିର୍ଦ୍ଧାରଣ-ଗ୍ରା.ବି.କୌଣସି ସମ୍ପତ୍ତିରେ କୌଣସି ବ୍ୟକ୍ତିଙ୍କର ଥିବା ସ୍ୱତ୍ୱର ସ୍ଥିରୀକରଣ ।

ସ୍ୱତ୍ୱପ୍ରଚାର—ଗ୍ରା.ବି.କୌଣସି ସମ୍ପତ୍ତିରେ କୌଣସି ବ୍ୟକ୍ତିଙ୍କ ସ୍ୱମିତ୍ୱ ଥିବା ବିଷୟ ଅଦାଲତଙ୍କ ଦ୍ୱାରା ଘୋଷଣା ।

ସ୍ୱତ୍ୱଭୋଗ—ବି. କୌଣସି ସମ୍ପତ୍ତିରେ ସ୍ୱମିତ୍ୱର ଦଖଲ ।

ସ୍ୱତ୍ୱଭୋଗୀ—ବିଂ.ଯେଉଁ ବ୍ୟକ୍ତି ସମ୍ପତ୍ତିରେ ମାଲିକରୂପେ ଦଖଲକାର ଥାଏ ।

ସ୍ୱତ୍ୱଲୋପ—ବି.ସମ୍ପତ୍ତିରେ ଅଧିକାର ଲୁପ୍ତ ହେବା, ସ୍ୱତ୍ୱନାଶ, ସ୍ୱତ୍ୱ ନିବୃତ୍ତି ।

ସ୍ୱତ୍ୱସାବ୍ୟସ୍ତ—ଗ୍ରା.ବି.କୌଣସି ସମ୍ପତ୍ତିରେ କୌଣସି ବ୍ୟକ୍ତିଙ୍କ ସ୍ୱତ୍ୱଥିବା ବିଷୟର ଅଦାଲତଙ୍କ ଦ୍ୱାରା ସ୍ଥିରୀକରଣ ଓ ଘୋଷଣା ।

ସ୍ୱତ୍ୱସ୍ୱାମିତ୍ୱ-ବି.ସମ୍ପତ୍ତିରେ ଥିବା ଅଧିକାର ।

ସ୍ୱତ୍ୱହାନି—ବି.ସ୍ୱତ୍ୱଲୋପ ଦେଖ, ସ୍ୱତ୍ୱରେ ବାଧା ।

ସ୍ୱତ୍ୱାଧିକାର—ବି. ସମ୍ପତ୍ତିରେ ସ୍ୱାମିତ୍ୱ ଓ ଦଖଲ, ସମ୍ପତ୍ତିରେ ସମ୍ପୂର୍ଣ୍ଣ ଅଧିକାର ।

ସ୍ୱତ୍ୱାଧିକାରୀ—ପୁଂ. ବିଂ. ସମ୍ପତ୍ତିରେ ପୂର୍ଣ୍ଣ ସ୍ୱାମିତ୍ୱପ୍ରାପ୍ତ(ବ୍ୟକ୍ତି), ଦାନ ବିକ୍ରୟାଦିର ଅଧିକାରବିଶିଷ୍ଟ (ବ୍ୟକ୍ତି), ଯାହାର ସମ୍ପତ୍ତିରେ ସ୍ୱତ୍ୱ ଓ ଦଖଲ ଥାଏ ।

ସ୍ୱନ୍ଧ—ପୁଂ. ବିଂ. ଅନ୍ଧ ।

ସ୍ୱଦ୍—(ଧାତୁ) ବି. ଆସ୍ୱାଦନ କରିବା, ଚାଖିବା, ଅନୁଭବ କରିବା, ଛେଦନ କରିବା ।

ସ୍ୱଦନ—ବି. (ସ୍ୱଦ୍+ଭା.ଅନ) ଆସ୍ୱାଦନ, ଚାଖିବା, (ସୁ+ଅଦନ) ଭୋଜନ, ଭକ୍ଷଣ, ଲେହ୍ୟ, ଲେହ୍ୟ, ଲୁହା ।

ସ୍ୱଦଳ(ପକ୍ଷ)—ବି. ନିଜର ଦଳ ।

ସ୍ୱଦାର—ବି.(ଷତତ୍) ନିଜର ବିବାହିତା ସ୍ତ୍ରୀ, ସ୍ୱପତ୍ନୀ ।

ସ୍ୱଦାରାଭିଗମନ—ବି. ନିଜର ବିବାହିତା ଭାର୍ଯ୍ୟାଙ୍କ ସହବାସ ।

ସ୍ୱଦିତ—ବିଂ. (ସୁ+ଅଦ୍+କ.ତ) ଉତ୍ତମରୂପେ ଭୋଜନ କରିଥିବା(ବ୍ୟକ୍ତି) ।

ସ୍ୱଦୃଷ୍ଟ—ବିଂ.ଆପଣା କର୍ତ୍ତୃକ ଦୃଷ୍ଟ, ଉତ୍ତମ ଅଦୃଷ୍ଟବିଶିଷ୍ଟ. ସୌଭାଗ୍ୟଶାଳୀ ।

ସ୍ୱଦେଶ—ବି. (ଷତତ୍)ମାତୃଭୂମି, ନିଜର ଜନ୍ମଭୂମି ।

ସ୍ୱଦେଶଜାତ—ବିଂ. (ଷତତ୍) ନିଜ ଦେଶରେ ଉତ୍ପନ୍ନ ।

ସ୍ୱଦେଶଦ୍ରୋହ—ବି.(ଷତତ୍) ଜନ୍ମଭୂମିର ଅମଙ୍ଗଳଜନକ ଆଚରଣ ।

ସ୍ୱଦେଶଦ୍ରୋହୀ—ପୁଂ. ବିଂ. ସ୍ୱଦେଶ ବା ମାତୃଭୂମିର ବିରୁଦ୍ଧାଚାରୀ,(ସ୍ତ୍ରୀ)ସ୍ୱଦେଶ ଦ୍ରୋହିଣୀ ।

ସ୍ୱଦେଶପ୍ରିୟ—ପୁଂ. ବିଂ. (ବ.ବ୍ରୀ) ନିଜ ଦେଶ ପ୍ରତି ଅନୁରକ୍ତ, (ସ୍ତ୍ରୀ) ପ୍ରିୟା ।

ସ୍ୱଦେଶପ୍ରୀତି(ପ୍ରେମ)—ବି. ମାତୃଭୂମି ପ୍ରତି ମମତା, ସ୍ୱଦେଶାନୁରାଗ ।

ସ୍ୱଦେଶପ୍ରେମିକ—ପୁଂ.ବିଂ.ସ୍ୱଦେଶବତ୍ସଳ. (ସ୍ତ୍ରୀ) ସ୍ୱଦେଶପ୍ରେମିକା ।

ସ୍ୱଦେଶବତ୍ସଳ—ପୁଂ. ବିଂ ସ୍ୱଦେଶ ପ୍ରତି ଅନୁରାଗୀ, (ସ୍ତ୍ରୀ) ସ୍ୱଦେଶବତ୍ସଳା ।

ସ୍ୱଦେଶଭକ୍ତ—ପୁଂ. ବିଂ. (ଷତତ୍) ସ୍ୱଦେଶାନୁରାଗୀ, (ସ୍ତ୍ରୀ) ସ୍ୱଦେଶଭକ୍ତା ।

ସ୍ୱଦେଶସେବକ—ପୁଂ. ବିଂ. (ଷତତ୍) ନିଜ ଦେଶର ସେବାକାରୀ, ଜନ୍ମଭୂମିର ଉନ୍ନତି ଲାଗି ଚେଷ୍ଟିତ, (ସ୍ତ୍ରୀ) ସେବିକା ।

ସ୍ୱଦେଶସେବୀ—ପୁଂ. ବିଂ. (ସ୍ୱଦେଶ+ସେବ୍+କ.ଇନ୍) ସ୍ୱଦେଶସେବକ, ନିଜ ଦେଶର ହିତାର୍ଥୀ,(ସ୍ତ୍ରୀ)ସେବିନୀ ।

ସ୍ୱଦେଶହିତୈଷୀ—ପୁଂ. ବିଂ. (ଷତତ୍) ନିଜ ଦେଶର ମଙ୍ଗଳାକାଂକ୍ଷୀ, (ସ୍ତ୍ରୀ) ସ୍ୱଦେଶହିତୈଷିଣୀ ।

ସ୍ୱଦେଶାନୁରକ୍ତ—ପୁଂ. ବିଂ. (ଷତତ୍) ସ୍ୱଦେଶଭକ୍ତ, ସ୍ୱଦେଶ ପ୍ରେମିକ, (ସ୍ତ୍ରୀ) ସ୍ୱଦେଶାନୁରକ୍ତା ।

ସ୍ୱଦେଶାନୁରକ୍ତି-ବି.(ଷତତ୍)ସ୍ୱଦେଶ ପ୍ରୀତି ।

ସ୍ୱଦେଶାନୁରାଗ—ବି. ନିଜ ଦେଶକୁ ଭଲ ପାଇବା ।

ସ୍ୱଦେଶାନୁରାଗୀ—ପୁଂ. ବିଂ. ସ୍ୱଦେଶ-ପ୍ରେମିକ, (ସ୍ତ୍ରୀ) ସ୍ୱଦେଶାନୁରାଗିଣୀ ।

ସ୍ୱଦେଶୀ—ଗ୍ରା. ପୁଂ. ବିଂ. ସ୍ୱଦେଶରେ ନିର୍ମିତ, ସ୍ୱଦେଶରେ ଜାତ, ସ୍ୱଦେଶ ସମ୍ବନ୍ଧୀୟ, ସ୍ୱଦେଶବାସୀ, (ସ୍ତ୍ରୀ) ଶିନୀ ।

ସ୍ୱଦେଶୀଆନ୍ଦୋଳନ—ଗ୍ରା.ବି.(ଆଧୁନିକ) ବିଦେଶୀୟ ଦ୍ରବ୍ୟର ବ୍ୟବହାର ବର୍ଜନ ପୂର୍ବକ ସ୍ୱଦେଶୋତ୍ପନ୍ନ ବସ୍ତ୍ରାଦି ବ୍ୟବହାର କରିବା ପାଇଁ ବଙ୍ଗଦେଶରେ ଓ ପରେ ସମଗ୍ର ଭାରତରେ ପରିବ୍ୟାପ୍ତ ଆନ୍ଦୋଳନ ।

ସ୍ୱଦେଶୀୟ—ପୁଂ. ବିଂ. (ସ୍ୱଦେଶ+ଈୟ) ସ୍ୱଦେଶ ସମ୍ବନ୍ଧୀୟ, ସ୍ୱଦେଶରେ ପ୍ରସ୍ତୁତ, ସ୍ୱଦେଶରେ ଉତ୍ପନ୍ନ, ସ୍ୱଦେଶବାସୀ, (ସ୍ତ୍ରୀ) ସ୍ୱଦେଶୀୟା । [ ସହିତ ।

ସ୍ୱଦେହରେ—ଗ୍ରା.କ୍ରି. ବିଂ. ନିଜର ଶରୀର

ସ୍ୱଧର୍ମ—ବି. (ଷତତ୍) ନିଜର ଜାତିର ବା ବର୍ଣ୍ଣର ଅନୁଷ୍ଠେୟ ଧର୍ମ, ନିଜର ବର୍ଣ୍ଣାଶ୍ରମ ଧର୍ମ, କୌଣସି ବ୍ୟକ୍ତି ନିଜେ ଯେଉଁ କୁଳରେ ବା ସମାଜରେ ଜନ୍ମଲାଭ କରି-ଅଛନ୍ତି ସେହି କୁଳର ଧର୍ମ, ନିଜର ଧର୍ମ, ନିଜର କର୍ତ୍ତବ୍ୟକର୍ମ, ନିଜର ଗୁଣ ବା ଲକ୍ଷଣ, ସ୍ୱଭାବ, ପ୍ରକୃତି, ବେଦବିହିତ ଆଚାର ବା ଧର୍ମ, ସ୍ୱବର୍ଣ୍ଣାଚାର, (ଯୋଗ-ଶାସ୍ତ୍ର) ପ୍ରାଣାୟାମ ।

ସ୍ୱଧର୍ମତ୍ୟାଗ—ବି. (ଷତତ୍)ନିଜର ଧର୍ମକୁ ବା ଜାତିକୁ ଛାଡ଼ିବା, ନିଜର କର୍ତ୍ତବ୍ୟ-ପାଳନ ନ କରିବା ।

ସ୍ୱଧର୍ମତ୍ୟାଗୀ—ପୁଂ. ବିଂ. (ସ୍ୱଧର୍ମ+ତ୍ୟଜ୍+କ.ଇନ୍)ନିଜଧର୍ମ ବର୍ଜନକାରୀ, ନିଜର

ଧର୍ମ ଛାଡ଼ି ଅନ୍ୟଧର୍ମର ଉପାସକ, (ସ୍ତ୍ରୀ) ସ୍ୱଧର୍ମତ୍ୟାଗିନୀ ।

ସ୍ୱଧର୍ମନିରତ—ପୁଂ. ବିଂ. (୭ତତ୍ପୁ)ସ୍ୱଧର୍ମର ପାଳନରେ ସର୍ବଦା ରତ, (ସ୍ତ୍ରୀ)ସ୍ୱଧର୍ମନିରତା ।

ସ୍ୱଧର୍ମପାଳନ—ବି.(୬ତତ୍ପୁ)ନିଜର ଧର୍ମର ବା କର୍ତ୍ତବ୍ୟର ଅନୁଷ୍ଠାନ ।

ସ୍ୱଧର୍ମଭ୍ରଷ୍ଟ—ପୁଂ. ବିଂ. ( ୫ତତ୍ପୁ ) ନିଜ ଧର୍ମରୁ ବିଚ୍ୟୁତ, ନିଜ ଜାତୀୟଧର୍ମ ତ୍ୟାଗକାରୀ, (ସ୍ତ୍ରୀ) ସ୍ୱଧର୍ମଭ୍ରଷ୍ଟା ।

ସ୍ୱଧା—ଅ. (ସ୍ୱଦ୍+ର୍ମ.ଅ+ଆ) ଦେବତାଙ୍କୁ ହବିର୍ଦାନ କରିବାବେଳେ ଉଚ୍ଚାରିତ ମନ୍ତ୍ରବିଶେଷ, ପିତୃଙ୍କୁ ପିଣ୍ଡ ଓ ତିଳ ଜଳ ଦେବା ସମୟରେ ଉଚ୍ଚାରିତ ମନ୍ତ୍ର, (ସ୍ତ୍ରୀ.ବି)ଶ୍ରାଦ୍ଧର ଅଧିଷ୍ଠାତ୍ରୀଦେବୀ, ମାତୃକାଦେବୀବିଶେଷ, ପିତୃଲୋକଙ୍କ ପତ୍ନୀ, ପିତୃଲୋକଙ୍କୁ ପ୍ରଦତ୍ତ ଅନ୍ନ ବା ପିଣ୍ଡ, ଅଗ୍ନି ପତ୍ନୀ, ଗୌରୀ୍ୟାଦି ଷୋଡ଼ଶ ମାତୃକାଭେଦ ।

ସ୍ୱଧାକର—ପୁଂ. ବିଂ. ଶ୍ରାଦ୍ଧ କରିବାର ଅଧିକାରୀ (ବ୍ୟକ୍ତି) ।

ସ୍ୱଧାକାର—ବି. ( ସ୍ୱଧା+କୃ+ଭା.ଅ ) ଶ୍ରାଦ୍ଧାଦିରେ ସ୍ୱଧା ଶବ୍ଦର ଉଚ୍ଚାରଣ ।

ସ୍ୱଧାଧିପ—ବି. (୬ତତ୍ପୁ) ଅଗ୍ନି ।

ସ୍ୱଧାପ୍ରିୟ—ବି. ଅଗ୍ନି, କୃଷ୍ଣତିଳ ।

ସ୍ୱଧାଭୁକ୍(ଭୋଜୀ)—ବି. (ସ୍ୱଧା+ଭୁଜ୍+କ.କ୍ୱିପ୍)ପିତୃଗଣ,ପୂର୍ବପୁରୁଷ,ଦେବତା

ସ୍ୱଧାମୟ—ବିଂ.(ସ୍ୱଧା+ମୟ)ସ୍ୱଧାସ୍ୱରୂପ ।

ସ୍ୱଧାମୃତମୟ—ବିଂ.ଶ୍ରାଦ୍ଧ,ଏହା ସ୍ୱଧାରୂପ ଅମୃତସ୍ୱରୂପ ।

ସ୍ୱଧାଶନ—ବି. ପିତୃଗଣ, ଦେବତା ।

ସ୍ୱଧିଚରଣ—ବିଂ. ସୁନ୍ଦର ବିଚରଣ ।

ସ୍ୱଧିତ(ତି)—ବି. (ସ୍ୱିଦ୍+ଣ.ତ)କୁଠାର, ପରଶୁ ।

ସ୍ୱଧିତହେତକ—ବି.ପରଶୁଧାରୀ ଯୋଦ୍ଧା ।

ସ୍ୱଧିଷ୍ଠାନ—ବି. ବସିବାର ଉତ୍ତମ ସ୍ଥାନଯୁକ୍ତ ରଥାଦି ।

ସ୍ୱଧିଷ୍ଠିତ—ବିଂ. (ସୁ+ଅଧିଷ୍ଠିତ) ଉତ୍ତମରୂପେ ଅବସ୍ଥିତ, ହସ୍ତ୍ୟାଦି ପୃଷ୍ଠରେ ଆସନ ଜମାଇ ବସିଥିବା ।

ସ୍ୱଧୀତ—ବି. ( ସୁ+ଅଧୀତ ) ସ୍ୱାଧ୍ୟାୟ, ବେଦାଦି ପାଠ, ( ବିଂ ) ଉତ୍ତମରୂପେ ପଠିତ ।

ସ୍ୱଧୀତୀ(ତି)—ବିଂ. ବ.ବ୍ରୀ; (ସୁ+ଅଧୀତ, ସ୍ୱଧୀତ+ଇନ୍) ସ୍ୱାଧ୍ୟାୟଯୁକ୍ତ, ବେଦପାଠନିରତ ।

ସ୍ୱନ୍—(ଧାତୁ)ଶବ୍ଦକରିବା,ଭୂଷଣକରିବା ।

ସ୍ୱନ—ବି. ( ସ୍ୱନ୍+ଭା.ଅ ) ଶବ୍ଦ, ଧ୍ୱନି, ପ୍ରାଣୀମାନଙ୍କର ମୁଖାଦିକୃତ ଶବ୍ଦ ।

ସ୍ୱନକ୍ଷତ୍ର—ବି. (ଜ୍ୟୋତିଷ) ନିଜର ଜନ୍ମ ନକ୍ଷତ୍ର, ନିଜର ବାର୍ଷିକ ଜନ୍ମଦିନ ।

ସ୍ୱନଚକ୍ର—ବି. ରତିବନ୍ଧବିଶେଷ ।

ସ୍ୱନନ୍ଦା—ବି. ଦୁର୍ଗା ।

ସ୍ୱନାମ—ବି. ନିଜର ନାମ, (ବିଂ) ଆପଣାର ନାମଯୁକ୍ତ ।

ସ୍ୱନାମଖ୍ୟାତ—ପୁଂ. ବିଂ. (ସ୍ୱର ନାମ= ସ୍ୱନାମ.୬ତତ୍ପୁ; ତଦ୍ଦ୍ୱାରା ଖ୍ୟାତ;୩ତତ୍ପୁ) ନିଜ ନାମରେ ପ୍ରସିଦ୍ଧ, ନିଜ ନାମରେ ସର୍ବତ୍ର ପରିଚିତ, (ସ୍ତ୍ରୀ) ସ୍ୱନାମଖ୍ୟାତା ।

ସ୍ୱନାମଧନ୍ୟ—ପୁଂ. ବିଂ. (ସ୍ୱର ନାମ= ସ୍ୱନାମ. ୬ତତ୍ପୁ;ତଦ୍ଦ୍ୱାରା ଧନ୍ୟ;୩ତତ୍ପୁ) ନିଜ ନାମରେ ପ୍ରଶଂସନୀୟ, ପିତାଦିଙ୍କ ନାମରେ ସାହାଯ୍ୟ ନିରପେକ୍ଷ ହୋଇ ନିଜର ଉଦ୍ୟମରେ ପ୍ରଶଂସାପ୍ରାପ୍ତ, (ସ୍ତ୍ରୀ) ସ୍ୱନାମଧନ୍ୟା ।

ସ୍ୱନାମମିତ୍ର—ବି.ମିତ୍ର,ମିତ,ନିଜ ନାମରେ ସୌସାଦୃଶ୍ୟ ଯୋଗୁଁ ଯେଉଁ ବ୍ୟକ୍ତିଙ୍କ ସଙ୍ଗେ ମିତ୍ରତା ସ୍ଥାପିତ ହୁଏ ।

ସ୍ୱନାମା—ପୁଂ.ବିଂ.(ସ୍ୱ+ନାମନ୍)ବ.ବ୍ରୀ; ସ୍ୱନାମଧନ୍ୟ ଦେଖ ।

ସ୍ୱନାମୀ—ଗ୍ରା. ବିଂ. (ଫ-ସ୍ୱ+ନାମୀୟ) ନିଜର ନାମରେ କ୍ରୀତ ହୋଇଥିବା (ସମ୍ପତ୍ତି), ନିଜର ନାମରେ ବା ନିଜର ସ୍ୱାକ୍ଷରରେ ପ୍ରକାଶିତ (ପତ୍ରାଦି) ।

ସ୍ୱନି—ବି. ( ସ୍ୱନ୍+ଭା.ଇ ) ସ୍ୱନ, ଧ୍ୱନି, (କ.ଇ) ଅଗ୍ନି ।

ସ୍ୱନିତ—ବିଂ. ( ସ୍ୱନ୍+ର୍ମ.ତ ) ଧ୍ୱନିତ, (କ.ତ) ଗର୍ଜିତ, ( ଭା-ଭ.ତ ) ମେଘଗର୍ଜନ ।

ସ୍ୱନିତାହ୍ୱୟ—ବି. (ସ୍ୱନିତ+ଆ+ହ୍ୱେ+ଅ) ତଣ୍ଡୁଲୀୟ, ଲେଉଟିଆ ଶାଗ ।

ସ୍ୱନିବା—ଗ୍ରା. କ୍ରି. (ପଦ୍ୟ) ସ୍ୱନ କରିବା ।

ସ୍ୱନିଷ୍ଠ—ବିଂ. ସ୍ୱକର୍ମା, ନିଜ କର୍ମଶୀଳ ।

ସ୍ୱନୁଗୁପ୍ତ—ବିଂ. ଆତ୍ମଗୁପ୍ତ, ଆତ୍ମରକ୍ଷିତ ।

ସ୍ୱନୁରକ୍ତ—ବିଂ. ଅତଶୟ ଅନୁରକ୍ତ, ଅତ୍ୟନ୍ତ ଅନୁରାଗବିଶିଷ୍ଟ ।

ସ୍ୱନୁଷ୍ଠିତ—ବିଂ. (ସୁ+ଅନୁ+ସ୍ଥା+ତ) ଉତ୍ତମରୂପେ ଅନୁଷ୍ଠିତ ।

ସ୍ୱନୋତ୍ସାହ—ବି.(ବ.ବ୍ରୀ)ଗଣ୍ଡକ,ଗଣ୍ଡା ।

ସ୍ୱନ୍ତ—ବିଂ. (ବ.ବ୍ରୀ) ଶୁଭୋଦର୍କ,ଯାହାର ପରିଣାମ ଭଲ, (ସ୍ତ୍ରୀ) ସ୍ୱନ୍ତା ।

ସ୍ୱନ୍ନ—କ୍ଲୀ. ବି. ଶୋଭନାନ୍ନ ।

ସ୍ୱପ୍—(ଧାତୁ) ଶୋଇବା ।

ସ୍ୱପକ୍ଷ—ପୁଂ. ବି. (୬ତତ୍ପୁ) ନିଜର ଦଳ, ନିଜର ପାଖ, (ବିଂ) ନିଜପକ୍ଷୀୟ, (ସ୍ତ୍ରୀ) ସ୍ୱପକ୍ଷା ।

ସ୍ୱପକ୍ଷସମର୍ଥନ—ବି. ( ୬ତତ୍ପୁ ) ନିଜ ପକ୍ଷର ଅନୁମୋଦନ ।

ସ୍ୱପକ୍ଷୀୟ—ପୁଂ. ବିଂ. ( ସ୍ୱପକ୍ଷ+ଈୟ ) ନିଜର ଦଳ ସମ୍ବନ୍ଧୀୟ, ନିଜର ଦଳଭୁକ୍ତ (ସ୍ତ୍ରୀ) ସ୍ୱପକ୍ଷୀୟା ।

ସ୍ୱପତି—ବି. ( ୬ତତ୍ପୁ ) ନିଜର ସ୍ୱାମୀ, ସମ୍ପତ୍ତିର ସ୍ୱାମୀ ।

ସ୍ୱପଠିତ—ବିଂ. ଆପଣାଠାରୁ ପଠିତ ।

ସ୍ୱପତ୍ୟ—ବିଂ. ଉତ୍ତମ ଅପତ୍ୟଯୁକ୍ତ ।

ସ୍ୱପତ୍ନୀ—ସ୍ତ୍ରୀ. ବି. ନିଜର ବିବାହିତା ସ୍ତ୍ରୀ ।

ସ୍ୱପନ—ବି. ( ସ୍ୱପ୍+ଭା.ଅନ ) ନିଦ୍ରା, ସ୍ୱପନ, ସୁନୁସୁନିଆଣିଆ ।

ସ୍ୱପନକଥା—ଗ୍ରା. ବି. ସ୍ୱପ୍ନଦୃଷ୍ଟ ବିଷୟ ।

ସ୍ୱପନସୁନ୍ଦରୀ—ଗ୍ରା. ସ୍ତ୍ରୀ. ବି. ସ୍ୱପ୍ନାବତୀ ଦେଖ ।

ସ୍ୱପନା—ଗ୍ରା. ସ୍ତ୍ରୀ. ବି. ସ୍ୱପ୍ନାବତୀ ଦେଖ ।

ସ୍ୱପନାଇବା—ଗ୍ରା.କ୍ରି.ସ୍ୱପ୍ନାଇବା ଦେଖ ।

ସ୍ୱପନାବତୀ—ଗ୍ରା.ସ୍ତ୍ରୀ.ବି.ସ୍ୱପ୍ନାବତୀ ଦେଖ ।

ସ୍ୱପନୀୟ—ବିଂ. ( ସ୍ୱପ୍+ର୍ମ.ଅନୀୟ ) ନିଦ୍ରାର ଯୋଗ୍ୟ, ସ୍ୱପ୍ତବ୍ୟ ।

ସ୍ୱପିଣ୍ଡା—ସ୍ତ୍ରୀ. ବି. ପିଣ୍ଡଖର୍ଜୁରୀ ।

ସ୍ୱପିତକର୍ମା—ପୁଂ, ବିଂ. ଶୟନକର୍ତ୍ତା ।
ସ୍ୱପୁର—ବି. ନିଜ ପୁର ।
ସ୍ୱପୁରଃ—ଅ. ନିଜର ସମ୍ମୁଖ ।
ସ୍ୱପ୍ତବ୍ୟ—ବିଂ. (ସ୍ୱପ୍+ତବ୍ୟ) ନିଦ୍ରାର୍ହ, ନିଦ୍ରାର ଉପଯୁକ୍ତ ।
ସ୍ୱପ୍ନ—ବି. (ସ୍ୱପ୍+ଭା.ନ) ନିଦା, ନିଦ୍ରାବସ୍ଥାରେ ବିଷୟାନୁଭବ, (ଲ.ଅର୍ଥ) ବୃଥାକଳ୍ପନା ବା ଆଶା, (ଗ୍ରା.ବି ଓ ବିଂ) ନିଦ୍ରାବସ୍ଥାରେ ମନୁଷ୍ୟଙ୍କୁ ଦେବତାଙ୍କ ଆଦେଶପ୍ରାପ୍ତି. ସ୍ୱପ୍ନଦୃଷ୍ଟ ବସ୍ତୁପରି ଅପ୍ରାପ୍ୟ, ଅଲଭ୍ୟ, ଅନୁପସ୍ଥିତ ।
ସ୍ୱପ୍ନକ—ବିଂ. (ସ୍ୱପ୍+କ.ଅକ) ନିଦ୍ରିତ, ନିଦ୍ରାଶୀଳ, ଶୟନଶୀଳ ।
ସ୍ୱପ୍ନକାରକ—ବିଂ, ନିଦ୍ରାକାରକ, ଯାହା ସ୍ୱପ୍ନ ଘଟାଏ ।
ସ୍ୱପ୍ନକୃତ୍—ବିଂ. (ସ୍ୱପ୍ନ+କୃ+କ.କ୍ୱିପ୍) ସ୍ୱପ୍ନକାରକ ଦେଖ, (ବି) ଘୁଲୁଘୁଲିଆ-ଶାଗ ।
ସ୍ୱପ୍ନଗୃହ—ବି. (କ.ଧା) ଶୋଇବା ଘର ।
ସ୍ୱପ୍ନଜାଲ—ବି. (ରୂପକ) ଜଟିଳ ବା ଅବୋଧ ସ୍ୱପ୍ନ ।
ସ୍ୱପ୍ନଜାଲ—ବି. (୬ତତ୍) ସ୍ୱପ୍ନସମୂହ ।
ସ୍ୱପ୍ନଜ୍ଞାନ—ବି. ସ୍ୱପ୍ନର ଜ୍ଞାନ, ସ୍ୱପ୍ନର ଶୁଭାଶୁଭ ବିଷୟକ ଜ୍ଞାନ ।
ସ୍ୱପ୍ନତତ୍ତ୍ୱ—ବି. (୬ତତ୍ ବା କ.ଧା) ସ୍ୱପ୍ନ ବିଷୟକ ରହସ୍ୟର ଉଦଘାଟନ ।
ସ୍ୱପ୍ନଦର୍ଶନ—ବି. ସ୍ୱପ୍ନ ଦେଖିବା, ସ୍ୱପ୍ନରେ କୌଣସି ବ୍ୟକ୍ତିଙ୍କର ଦେଖାଦେବା ।
ସ୍ୱପ୍ନଦର୍ଶୀ—ପୁଂ. ବିଂ. (ସ୍ୱପ୍ନଦର୍ଶିନ୍) ଯେ ସ୍ୱପ୍ନ ଦେଖେ, (ସ୍ତ୍ରୀ) ସ୍ୱପ୍ନଦର୍ଶିନୀ ।
ସ୍ୱପ୍ନଦୃଷ୍ଟ—ବିଂ. (୭ତତ୍) ସ୍ୱପ୍ନରେ ପ୍ରତ୍ୟକ୍ଷୀକୃତ ।
ସ୍ୱପ୍ନଦେଖା(ଖେ)ଇବା—ଗ୍ରା. କ୍ରି. ସ୍ୱପ୍ନାଇବା ଦେଖ ।
ସ୍ୱପ୍ନଦେଖିବା—ଗ୍ରା. କ୍ରି. ନିଦ୍ରାବସ୍ଥାରେ କେତେକ ବିଷୟ ପ୍ରତ୍ୟକ୍ଷ କରିବା, ବୃଥାକଳ୍ପନା କରିବା, ସତ୍ୟ ଘଟନାକୁ ସ୍ୱପ୍ନ ଦେଖିଲି ପରି ବୋଧକରି ସେଥିରେ ବିଶ୍ୱାସ ନ କରିବା ।
ସ୍ୱପ୍ନଦେଖା—ବି. ଦେଖାରୂପେ କଳ୍ପିତ ସ୍ୱପ୍ନ. ସ୍ୱପ୍ନାବସ୍ଥା ଦେଖ ।
ସ୍ୱପ୍ନଦୋଷ—ବି. (୭ତତ୍) ସ୍ୱପ୍ନରେ ଭୟଙ୍କର ବିଷୟ ଦେଖିବା, ଦୁଃସ୍ୱପ୍ନ, ସ୍ୱପ୍ନରେ ଦୃଷ୍ଟ କାମୋଦ୍ଦୀପକ ଦୃଶ୍ୟର ବା ସ୍ତ୍ରୀପ୍ରସଙ୍ଗର ଫଳରେ ରେତଃସ୍ଖଳନ ।
ସ୍ୱପ୍ନନିକେତନ—ବି. ଶୋଇବା ଘର, ଶୟନାଗାର ।
ସ୍ୱପ୍ନପ୍ରାପ୍ତ—ବିଂ. ସ୍ୱପ୍ନଲବ୍ଧ ଦେଖ ।
ସ୍ୱପ୍ନଫଳ—ବି. (୬ତତ୍) ସ୍ୱପ୍ନାଧ୍ୟାୟ ଇତ୍ୟାଦି ଗ୍ରନ୍ଥବର୍ଣ୍ଣିତ ବିଭିନ୍ନ ସ୍ୱପ୍ନର ବିଭିନ୍ନ ଫଳମାନ । [ ଅସାର ।
ସ୍ୱପ୍ନବତ୍—ଅ. ସ୍ୱପ୍ନପରି, (ବିଂ) ଅବାସ୍ତବ,
ସ୍ୱପ୍ନବିଚାର—ବି.ସ୍ୱପ୍ନର ଶୁଭାଶୁଭ ଫଳର ଆଲୋଚନା ।
ସ୍ୱପ୍ନବିଚାରକ—ପୁଂ. ବିଂ. ଶୁଭାଶୁଭ ସ୍ୱପ୍ନର ବ୍ୟାଖ୍ୟାକାରୀ ।
ସ୍ୱପ୍ନବିଦ୍—ବିଂ. (ସ୍ୱପ୍ନ+ବିଦ୍+କ.କ୍ୱିପ୍) ସ୍ୱପ୍ନର ଫଳାଫଳ ନିର୍ଣ୍ଣୟ କରିବା ବିଷୟରେ ଅଭିଜ୍ଞ ।
ସ୍ୱପ୍ନବିବରଣ(ବୃତ୍ତାନ୍ତ)—ବି. ସ୍ୱପ୍ନରେ ଦେଖାଯାଇଥିବା ବିଷୟର ବର୍ଣ୍ଣନା ।
ସ୍ୱପ୍ନଭାଷିତ—ବିଂ. (୭ତତ୍) ସ୍ୱପ୍ନକାଳରେ କଥିତ (ବାକ୍ୟ) ।
ସ୍ୱପ୍ନମୂଳକ—ବିଂ. (ବ.ବ୍ରୀ) ସ୍ୱପ୍ନରେ ଦେଖାଯାଇଥିବା, କାଳ୍ପନିକ, ସ୍ୱପ୍ନ ଉପରେ ପ୍ରତିଷ୍ଠିତ ।
ସ୍ୱପ୍ନରାଜ୍ୟ—ବି. (କ.ଧା) ସ୍ୱପ୍ନରେ କଳ୍ପିତ ରାଜ୍ୟ, ଅମୂଳକ କଳ୍ପନା ।
ସ୍ୱପ୍ନରେ ସୁଦ୍ଧାବିଚାର(ଭାବ)ନଥିବା—ଗ୍ରା.କ୍ରି. କଳ୍ପନାରେ ସୁଦ୍ଧା ବିଚାର କରି ନ ଥିବା ।
ସ୍ୱପ୍ନଲବ୍ଧ—ବିଂ. (୩ତତ୍) ସ୍ୱପ୍ନଦର୍ଶନ କାଳରେ ପ୍ରାପ୍ତ, ନିଦ୍ରାବସ୍ଥାରେ ପ୍ରାପ୍ତ ।
ସ୍ୱପ୍ନସୁନ୍ଦରୀ—ଗ୍ରା.ସ୍ତ୍ରୀ.ବି.ସ୍ୱପ୍ନାବସ୍ଥା ଦେଖ ।
ସ୍ୱପ୍ନସ୍ଥାନ—ବି. ନିଦ୍ରାସ୍ଥାନ, ନିଦ୍ରାଗୃହ ।
ସ୍ୱପ୍ନହେବା—ଗ୍ରା.କ୍ରି. ନ ମିଳିବା, ଦୁଷ୍ପ୍ରାପ୍ୟ ହେବା ।
ସ୍ୱପ୍ନା(ପ୍ନେ)ଇବା—ଗ୍ରା. କ୍ରି. ସପନାଇବା, (ଦେବତା) ନିଦ୍ରିତ ବ୍ୟକ୍ତିଙ୍କୁ ସ୍ୱପ୍ନରେ ଦେଖା ଦେବା ଓ କୌଣସି ଆଦେଶ କରିବା ।
ସ୍ୱପ୍ନାୟନ—ବି. (୭ତତ୍) ରୋଗବିଶେଷ, ନିଦ୍ରିତ ଅବସ୍ଥାରେ ବୁଲାବୁଲି କରିବା ।
ସ୍ୱପ୍ନାଦେଶ—ବି. (କ.ଧା) ସ୍ୱପ୍ନକାଳରେ ପ୍ରାପ୍ତ ଆଦେଶ ।
ସ୍ୱପ୍ନାଧ୍ୟାୟ—ବି. ପୁରାଣାଦିରେ ସ୍ୱପ୍ନର ଫଳାଫଳର ବିଚାର ।
ସ୍ୱପ୍ନାନ୍ତ—ବି. ପ୍ରବୋଧ, ଜାଗରଣ, ନିଦ୍ରାବସାନ ।
ସ୍ୱପ୍ନାନ୍ତିକ—ବି. ସ୍ୱପ୍ନଗୃହ, ନିଦ୍ରାସ୍ଥାନ ।
ସ୍ୱପ୍ନାବତୀ—ଗ୍ରା.ସ୍ତ୍ରୀ.ବି. ସ୍ୱପ୍ନର ଅଧିଷ୍ଠାତ୍ରୀ ଦେବତା ବା ଠାକୁରାଣୀ ।
ସ୍ୱପ୍ନାବସ୍ଥା—ସ୍ତ୍ରୀ. ବି. (୬ତତ୍) ନିଦ୍ରିତ ଅବସ୍ଥା, ସ୍ୱପ୍ନଦର୍ଶନର କାଳ ।
ସ୍ୱପ୍ନାବିର୍ଭୂତ—ବିଂ. (୭ତତ୍) ସ୍ୱପ୍ନରେ ପ୍ରକାଶିତ ।
ସ୍ୱପ୍ନାବିଷ୍ଟ—ବିଂ. (୩ତତ୍) ସ୍ୱପ୍ନରେ ଅଭିଭୂତ, ସ୍ୱପ୍ନାବସ୍ଥାଯୁକ୍ତ, (ସ୍ତ୍ରୀ) ସ୍ୱପ୍ନାବିଷ୍ଟା ।
ସ୍ୱପ୍ନାବେଶ—ବି.(୬ତତ୍)ସ୍ୱପ୍ନର ଆବିର୍ଭାବ, ସ୍ୱପ୍ନ ଦେଖିବା ଅବସ୍ଥା ।
ସ୍ୱପ୍ନାଳୁ—ବିଂ. (ସ୍ୱପ୍ନ+ଆଳୁ) ନିଦ୍ରାଳୁ ।
ସ୍ୱପ୍ନେଶ୍ୱର—ଗ୍ରା. ବି. ଏକ ଶିବଲିଙ୍ଗଙ୍କ ନାମ ।
ସ୍ୱପ୍ନୋତ୍ଥିତ—ବିଂ. (୫ତତ୍) ସ୍ୱପ୍ନଦର୍ଶନ ପରେ ଜାଗରିତ, ନିଦ୍ରୋତ୍ଥିତ, (ସ୍ତ୍ରୀ) ସ୍ୱପ୍ନୋତ୍ଥିତା ।
ସ୍ୱପ୍ରକାଶ—ବିଂ.ସ୍ୱୀୟ ଶକ୍ତିଦ୍ୱାରା ପ୍ରକାଶିତ, ଅନ୍ୟର ବିନା ସାହାଯ୍ୟରେ ପ୍ରକାଶିତ ବା ଦୃଷ୍ଟ, ନିଜ ଆଲୋକରେ ଦୃଷ୍ଟ, ସ୍ୱତଃସିଦ୍ଧ(ଏକ ବ୍ରହ୍ମ ହିଁ ସ୍ୱପ୍ରକାଶ ।
ସ୍ୱପ୍ରତିକର—ବିଂ. ସମାନ କର୍ମକାରୀ ।
ସ୍ୱପ୍ରଧାନ—ବିଂ, ଆତ୍ମ ନିର୍ଭରଶାଳୀ ।
ସ୍ୱବଶ—ପୁଂ. ବିଂ. (୬ତତ୍) ଆତ୍ମବଶ, ସ୍ୱାଧୀନ, (ସ୍ତ୍ରୀ) ସ୍ୱବଶା ।
ସ୍ୱବଶତା—ସ୍ତ୍ରୀ.ବି. ଆତ୍ମବଶତା, ସ୍ୱବଶର ଭାବ ବା ଧର୍ମ ।
ସ୍ୱବଶିମ୍ନ—ବି. ବୈଦିକ ଛନ୍ଦୋବିଶେଷ ।

ସ୍ୱବଶ୍ୟ—ବିଂ. ନିଜର ବଶ୍ୟ, ନିଜର ବଶୀଭୂତ ।

ସ୍ୱବାସିନୀ—ସ୍ତ୍ରୀ.ବି. (ସ୍ୱ+ବସ୍+ଇନ୍+ଈ) ଚିରଣ୍ଟୀ, ଆଜନ୍ମ ପିତୃଗୃହବାସିନୀ (ବିବାହିତା ବା ଅବିବାହିତା) କନ୍ୟା ।

ସ୍ୱବିଗ୍ରହ-ବି.ନିଜର ବିଗ୍ରହ,ନିଜର ଶରୀର ।

ସ୍ୱବଧ—ବି. ସ୍ୱୀୟ ବଧ ।

ସ୍ୱବିଷୟ-ବି.ନିଜର ବିଷୟ,ନିଜ ଦେଶ ।

ସ୍ୱବୀଜ—ବି. ଆତ୍ମା, ନିଜ କାରଣ,ନିଜର ବୀର୍ଯ୍ୟ ।

ସ୍ୱବୀର୍ଯ୍ୟ—ବି.ନିଜର ବୀର୍ଯ୍ୟ,ନିଜର ବଳ ।

ସ୍ୱବୀର୍ଯ୍ୟଗୁପ୍ତ—ପୁଂ.ବିଂ.(୩ତତ୍) ନିଜର ବଳ ଦ୍ୱାରା ଯେ ଆପଣାକୁ ରକ୍ଷାକରେ, (ସ୍ତ୍ରୀ) ସ୍ୱବୀର୍ଯ୍ୟଗୁପ୍ତା ।

ସ୍ୱବୃତ୍ତି-ବି.ନିଜର ବୃତ୍ତି,ନିଜର ଜୀବିକା ।

ସ୍ୱଭଦ୍ରା—ବି. ଗମ୍ଭାରୀ ବୃକ୍ଷ ।

ସ୍ୱଭାଗ୍ୟ—ବି. ନିଜର ଭାଗ୍ୟ ।

ସ୍ୱଭଜନ—ବି. (ସ୍ୱ+ଭଜନ)ଆନନ୍ଦନ, ଆପ୍ୟାୟନ, ସୌଜନ୍ୟ, ନିଜର ପାତ୍ର ।

ସ୍ୱଭାବ—ବି.(ସ୍ୱ+ଭାବ)ପ୍ରକୃତି,ପ୍ରାଣୀର ସଙ୍ଗେ ଜନ୍ମହୋଇଥିବା ଗୁଣ,ଆତ୍ମଭାବ, ବସ୍ତୁର ସହଜ ଗୁଣ, ଚରିତ୍ର,ଅଭିପ୍ରାୟ, ଉଦ୍ଦେଶ୍ୟ, ସ୍ୱାଭାବିକ ଅବସ୍ଥା, ନିସର୍ଗ, (ଗ୍ରା.ବି) ନୀଚକୂଳରେ ବିବାହାଦି ଦ୍ୱାରା ବ୍ରାହ୍ମଣର ନୀଚତାପ୍ରାପ୍ତ ହୋଇ ନ ଥିବା ଅବସ୍ଥା, ଅଭଙ୍ଗକୌଳିନ୍ୟ, ଅଭ୍ୟାସ ।

ସ୍ୱଭାବକୁଲୀନ—ବିଂ. ଯେଉଁ କୁଲୀନ ବଂଶରେ କୁଳପ୍ରଥା ଯଥାଯଥ ପ୍ରତିପାଳିତ ହୋଇ ଆସିଥାଏ,କେବେହେଁ ତାହାର ଲଙ୍ଘନ ହୋଇ ନ ଥାଏ ।

ସ୍ୱଭାବକୃପଣ—ବିଂ. ସ୍ୱାଭାବିକ କୃପଣ ।

ସ୍ୱଭାବଗତ—ବିଂ. (୨ତତ୍) ପ୍ରକୃତିଗତ, ସ୍ୱାଭାବିକ,ସ୍ୱାଭାବିକଅବସ୍ଥାପ୍ରାପ୍ତ, (ସ୍ତ୍ରୀ) ସ୍ୱଭାବଗତା ।

ସ୍ୱଭାବଗୁଣ—ପୁଂ. ବି.(୬ତତ୍)ପ୍ରାକୃତିକ ଗୁଣ, ସ୍ୱଭାବର ଉତ୍କର୍ଷ ।

ସ୍ୱଭାବଚରିତ୍ର—ଗ୍ରା.ବି.(ସହଚର) ପ୍ରକୃତି ଓ ଚାଲିଚଳନ, ପ୍ରକୃତି ଓ ଆଚରଣ, ରୀତିନୀତି ।

ସ୍ୱଭାବଚିକିତ୍ସା—ବି.(ଆଧୁନିକ ପ୍ରୟୋଗ) ଭିନ୍ନ ଭିନ୍ନ ରୋଗଗ୍ରସ୍ତ ବ୍ୟକ୍ତିଙ୍କୁ କ୍ଷିତି, ଅପ୍, ତେଜଃ, ମରୁତ୍, ବ୍ୟୋମ ଏହି ପଞ୍ଚଭୂତର ଭିନ୍ନ ଭିନ୍ନ ପ୍ରୟୋଗ ଦ୍ୱାରା ଚିକିତ୍ସା କରିବାର ବର୍ତ୍ତମାନ ଯୁଗରେ ଆବିଷ୍କୃତ ଚିକିତ୍ସା ପ୍ରଣାଳୀ ।

ସ୍ୱଭାବଜ—ବିଂ.(ସ୍ୱଭାବ+ଜନ୍+କ.ଅ) ସ୍ୱାଭାବିକ, ସହଜ,ପ୍ରକୃତିଗତ,ସ୍ୱଭାବସିଦ୍ଧ, (ସ୍ତ୍ରୀ) ସ୍ୱଭାବଜା ।

ସ୍ୱଭାବଜାତ—ବିଂ. (୫ତତ୍) ପ୍ରକୃତିଜାତ, ସ୍ୱଭାବରୁ ଉତ୍ପନ୍ନ, ସ୍ୱାଭାବିକ ।

ସ୍ୱଭାବତଃ—ଅ.(ସ୍ୱଭାବ+ତସ୍)ପ୍ରକୃତି ବଶତଃ,ପ୍ରକୃତିବଶରୁ,ସ୍ୱାଭାବିକରୂପେ ।

ସ୍ୱଭାବପ୍ରକୃତି—ଗ୍ରା.ବି.ସ୍ୱଭାବ ବା ପ୍ରକୃତି, ସ୍ୱଭାବଚରିତ୍ର ।

ସ୍ୱଭାବବିରୁଦ୍ଧ(ବିରୋଧୀ)—ବିଂ. (୬ତତ୍) ଅସ୍ୱାଭାବିକ, ପ୍ରକୃତିର ବିରୁଦ୍ଧ ।

ସ୍ୱଭାବଶୋଭା—ବି. (୬ତତ୍) ପ୍ରକୃତିର ସୌନ୍ଦର୍ଯ୍ୟ, ଅକୃତ୍ରିମ ସୌନ୍ଦର୍ଯ୍ୟ, ନୈସର୍ଗିକ ଶୋଭା ।

ସ୍ୱଭାବସଙ୍ଗତ—ବିଂ. (୬ତତ୍) ସ୍ୱଭାବର ଅନୁକୂଳ, ସ୍ୱଭାବଗତ, ସ୍ୱାଭାବିକ ।

ସ୍ୱଭାବସରଳ—ବିଂ. (୩ତତ୍) ସ୍ୱଭାବତଃ ଅକପଟ ।

ସ୍ୱଭାବସିଦ୍ଧ—ବିଂ.(୩ତତ୍) ପ୍ରକୃତିସିଦ୍ଧ, ନିଜ ଦ୍ୱାରା ନିଷ୍ପନ୍ନ ।

ସ୍ୱଭାବସୁନ୍ଦର—ବିଂ.(୩ତତ୍) ସ୍ୱଭାବତଃ ମନୋହର ।

ସ୍ୱଭାବସୁଲଭ—ବିଂ.(୭ତତ୍) ସ୍ୱଭାବତଃ ସହଜ ପ୍ରାପ୍ୟ, ପ୍ରକୃତି ସୁଲଭ, ସ୍ୱଭାବଜାତ ।

ସ୍ୱଭାବସୌନ୍ଦର୍ଯ୍ୟ-ବି.ସ୍ୱଭାବଶୋଭା ଦେଖ ।

ସ୍ୱଭାବା—ଗ୍ରା. ବି. (ପ୍ରାଚୀନ ପଦ୍ୟ) ପ୍ରକୃତିଦତ୍ତ ଗୁଣ ।

ସ୍ୱଭାବେ—ଗ୍ରା. କ୍ରି. ବିଂ. ସହଜେ,ସ୍ୱଭାବତଃ, ଫଳତଃ, ପ୍ରକୃତରେ, ସ୍ୱତଃ ।

ସ୍ୱଭାବୋକ୍ତି—ବି. (୬ତତ୍) ଅର୍ଥାଲଙ୍କାର ବିଶେଷ, ଦ୍ରବ୍ୟାଦିର ସ୍ୱଭାବ ବର୍ଣ୍ଣନ ରୂପ ଅଲଙ୍କାର । [ ଦେଖ ।

ସ୍ୱଭୂ—ବି. (ସ+ଭୂ+କ.କ୍ୱିପ୍) ସ୍ୱୟମ୍ଭୂ

ସ୍ୱଭୂତି—ପୁଂ. ବି. ବାୟୁ ।

ସ୍ୱଭୂମି—ବି. ନିଜର ଭୂମି, (ପୁଂ.ବି) ଉଗ୍ରସେନଙ୍କ ପୁତ୍ରବିଶେଷ ।

ସ୍ୱଭ୍ୟକ୍ତ—ବିଂ. ସମ୍ୟକ୍‌ରୂପେ ଅଭିଷିକ୍ତ ।

ସ୍ୱମେକ—ବି. ସମ୍ବତ୍ସର, ବର୍ଷ ।

ସ୍ୱୟଏତ-ପ୍ରା.(ଗଞ୍ଜାମ) ଅ.(ସଂ-ସ୍ୱାୟତ୍ତ) ଜରିଆରେ ।

ସ୍ୱୟଂ—ଅ. (ସୁ+ଅୟଂ) ସ୍ୱୟଂ, ଆପେ, ନିଜେ, ସାମର୍ଥ୍ୟ ।

ସ୍ୱୟଂକୃତ—ବିଂ. ଆତ୍ମକୃତ ।

ସ୍ୱୟଂଗୁପ୍ତା—ବି.ଶୂକଶିମ୍ବିକା,ବାଇଡ଼ଙ୍କ ।

ସ୍ୱୟଂଜ୍ୟୋତିଃ—ପୁଂ. ବି. (ବ.ବ୍ରୀ) ପରମେଶ୍ୱର ।

ସ୍ୱୟଂଦତ୍ତ—ବି. ମୃତଶାସ୍ତ୍ରୋକ୍ତ ଦ୍ୱାଦଶବିଧ ପୁତ୍ରାନ୍ତର୍ଗତ ପୁତ୍ରବିଶେଷ ।

ସ୍ୱୟଂଦୂତ—ପୁଂ. ବି. ଯେଉଁ ନାୟକ ନାୟିକାଙ୍କଠାକୁ ଅନ୍ୟ ଦୂତକୁ ବା ଦୂତୀକୁ ନ ପଠାଇ ନିଜେ ନାୟିକାଙ୍କ ନିକଟରେ ପ୍ରଣୟପ୍ରାର୍ଥନା କରନ୍ତି ।

ସ୍ୱୟଂଦୂତୀ—ସ୍ତ୍ରୀ. ବି. ଯେଉଁ ପରକୀୟା ନାୟିକା କୌଣସି ଦୂତ ବା ଦୂତୀଙ୍କ ବିନା ସାହାଯ୍ୟରେ ନାୟକଙ୍କ ନିକଟରେ ନିଜର ପ୍ରେମ ପ୍ରକାଶ କରନ୍ତି ।

ସ୍ୱୟଂପତିତ—ନିଜେ ବା ସ୍ୱୟଂ ଖସି ପଡ଼ିବା । [ ଦେଖ ।

ସ୍ୱୟଂପ୍ରକାଶ—ବିଂ. (ବ.ବ୍ରୀ) ସ୍ୱପ୍ରକାଶ

ସ୍ୱୟଂପ୍ରଭ—ପୁଂ. ବିଂ. (ସ୍ୱୟଂ+ପ୍ରଭା) ବ.ବ୍ରୀ; ସ୍ୱପ୍ରକାଶ ଦେଖ,(ସ୍ତ୍ରୀ) ସ୍ୱୟଂପ୍ରଭା, (ବି) ଜୈନମାନଙ୍କର ଶାସ୍ତ୍ରଲିଖିତ ଭାବୀ ୨୪ ଜଣ ଅର୍ହତଙ୍କ ମଧ୍ୟରୁ ୪ର୍ଥ ଅର୍ହତ ।

ସ୍ୱୟଂପ୍ରଭା—ସ୍ତ୍ରୀ.ବି. ମେରୁସାବର୍ଣ୍ଣିଋଷିଙ୍କ କନ୍ୟା,ମୟଦାନବର ପ୍ରଣୟିନୀ,ହେମାଅପସରାର ପ୍ରିୟସଖୀ ।

ସ୍ୱୟଂପ୍ରମାଣ—ବିଂ. (ବ.ବ୍ରୀ) ଅନ୍ୟ କୌଣସି ପ୍ରମାଣର ନିରପେକ୍ଷ ହୋଇ

ଯାହା ପ୍ରମାଣିତ ହୁଏ ।
ସ୍ୱୟଂଫଳ—ବିଂ. (ବ.ଗ୍ରୀ) ଯାହା ଅନ୍ୟ କୌଣସି କାରଣରୁ ଉତ୍ପନ୍ନ ନ ହୋଇ ନିଜେହିଁ ନିଜର କାରଣ ହୋଇଥାଏ ।
ସ୍ୱୟଂବର—ବି. (ସ୍ୱୟଂ+ବୃ+ଭା.ଅ) କନ୍ୟାଙ୍କ ଦ୍ୱାରା ସ୍ୱକୀୟ ନିର୍ବାଚନରେ ପତିଗ୍ରହଣ ରୂପ ବିବାହ,ଯେଉଁ ବିବାହରେ ନିମନ୍ତ୍ରିତ ବ୍ୟକ୍ତିମାନଙ୍କ ମଧ୍ୟରୁ କନ୍ୟା ନିଜର ସ୍ୱାମୀଙ୍କୁ ବରଣ କରନ୍ତି, ସ୍ୱୟମ୍ବର ସଭା,ଯେଉଁଠାରେ କନ୍ୟାଙ୍କ ପାଣିଗ୍ରହଣାର୍ଥ ବରମାନେ ଏକତ୍ର ହୋଇଥିଲେ ।
ସ୍ୱୟଂବରଣ—ବି.(ସ୍ୱୟଂ+ବୃ+ଅନ) ଇଚ୍ଛାନୁରୂପ ପତିମନୋନୟନ, ନିଜେ ପତିଙ୍କୁ ବରଣ କରିବା ।
ସ୍ୱୟଂବରା—ସ୍ତ୍ରୀ. ବି. (ସ୍ୱୟଂ+ବୃ+କ.ଅ+ଆ)ସ୍ୱେଚ୍ଛାମତ ପତ୍ୟନ୍ୱେଷିଣୀ ସ୍ତ୍ରୀ, ଯେଉଁସକଳ ସ୍ତ୍ରୀ ପିତାମାତା ପ୍ରଭୃତିଙ୍କୁ ଅପେକ୍ଷା ନ କରି ନିଜେ ପତିଙ୍କୁ ବରଣ କରନ୍ତି ।
ସ୍ୱୟଂବଶ—ବିଂ. ନିଜେ ବଶୀଭୂତ ।
ସ୍ୱୟଂବହ—ପୁଂ. ବିଂ. (ସ୍ୱୟଂ+ବହ+କ.ଅ) ଯେ ସ୍ୱୟଂ ବା ନିଜେ ଅର୍ଥାତ୍ ଅନ୍ୟର ବିନା ସାହାଯ୍ୟରେ ବହେ ।
ସ୍ୱୟଂବହଯନ୍ତ୍ର-ବି.ସମୟଜ୍ଞାପକ ଜ୍ୟୋତିଷିକ ଯନ୍ତ୍ରବିଶେଷ ।
ସ୍ୱୟଂବାଦ—ବି. ନିଜର ଉକ୍ତି ।
ସ୍ୱୟଂବିକ୍ରୀତ—ପୁଂ. ବିଂ. ଯେ ନିଜକୁ ଦାସରୂପେ ଅନ୍ୟଠାରେ ବିକି ଦେଇଥାଏ, (ସ୍ତ୍ରୀ) ସ୍ୱୟଂବିକ୍ରୀତା ।
ସ୍ୱୟଂଭୂ(ଭୁ)—ବି. (ସ୍ୱୟଂ+ଭୂ+କ.କ୍ୱିପ୍) ବ୍ରହ୍ମା, ବିଷ୍ଣୁ, ମହାଦେବ,କାମଦେବ, କାଳ, ସମୟ, ମାଷପର୍ଣ୍ଣୀ, ଲିଙ୍ଗିନୀ, ଲତାବିଶେଷ,ଜିନ ଚକ୍ରବର୍ତ୍ତୀବିଶେଷ, (ବିଂ) ଯେ ଅନ୍ୟ କାହାଠାରୁ ଜାତହୋଇ ନାହାନ୍ତି, ଅନନ୍ତକାଳରୁ ବିରାଜମାନ ।
ସ୍ୱୟଂଭୁବ—ବି. (ସ୍ୱୟମ୍ଭୂ+ସ୍ୱାର୍ଥେ.ଅ) ବ୍ରହ୍ମା, ( ସ୍ୱୟଂଭୂ+ଅପତ୍ୟାର୍ଥେ.ଅ ) ବ୍ରହ୍ମାଙ୍କ ପୁତ୍ର, ପ୍ରଥମ ମନୁ, ବନମୁଦ୍ଗ, ବଣମୁଗ ।
ସ୍ୱୟଂଭୁବା—ସ୍ତ୍ରୀ.ବି.ଧୂମ୍ରପତ୍ର,ଧୂଆଁପତ୍ର, ଶିବଲିଙ୍ଗୀ ଲତା, ମାଷପର୍ଣ୍ଣୀ ।
ସ୍ୱୟଂଭୂଲିଙ୍ଗ—ବି. ଯେଉଁ ଶିବଲିଙ୍ଗଙ୍କୁ କେହି ସ୍ଥାପନାକରି ନାହିଁ, ସ୍ୱୟଂଉଦ୍ଭୂତ ଶିବଲିଙ୍ଗ ।
ସ୍ୱୟଂଭୋଜ—ବି. (ନାମ) ଶିନିରାଜାଙ୍କର ଏକ ପୁତ୍ର ।
ସ୍ୱୟଂଶ୍ରେଷ୍ଠ—ପୁଂ. ବି. ଶିବ ।
ସ୍ୱୟଂସିଦ୍ଧ—ବିଂ. ନିଜର ଚେଷ୍ଟା ଦ୍ୱାରା ସିଦ୍ଧିପ୍ରାପ୍ତ, ସ୍ୱତଃସିଦ୍ଧ ।
ସ୍ୱୟଂସେବକ—ପୁଂ.ବି. ସ୍ୱେଚ୍ଛାସେବକ ଦେଖ, (ସ୍ତ୍ରୀ) ସ୍ୱୟଂସେବିକା ।
ସ୍ୱୟଂହାରକରୀ(ହାରିକା)—ସ୍ତ୍ରୀ. ବି. ପୁରାଣବର୍ଣ୍ଣିତା ଜଣେ ସ୍ତ୍ରୀ, ବ୍ରହ୍ମମାନସପୁତ୍ର ଦୁଃସହଙ୍କ ଔରସରେ ତତ୍ପତ୍ନୀ ନିର୍ମାଷ୍ଟିଙ୍କ ଗର୍ଭଜାତ ଆଠ କୁମାର ଓ ଆଠ କନ୍ୟାଙ୍କ ମଧ୍ୟରୁ ଏକତମା କନ୍ୟା ।
ସ୍ୱୟଙ୍କୃତ—ବିଂ. ସ୍ୱୟଂକୃତ ଦେଖ ।
ସ୍ୱୟଙ୍ଗୁପ୍ତା—ବି. ସ୍ୱୟଂଗୁପ୍ତା ଦେଖ ।
ସ୍ୱୟନ୍ଦତ୍ତ—ବି. ସ୍ୱୟଂଦତ୍ତ ଦେଖ ।
ସ୍ୱୟମ୍—ଅ. ସ୍ୱୟଂ ଦେଖ ।
ସ୍ୱୟମଧିଗତ—ବିଂ. (ସ୍ୱୟଂ+ଅଧି+ଗମ୍+ତ) ସ୍ୱୟଂପ୍ରାପ୍ତ ଦେଖ ।
ସ୍ୱୟମନୁଷ୍ଠାନ—ବି. ସ୍ୱୟଂ ଅନୁଷ୍ଠାନ, ନିଜେ ଯାହାର ଅନୁଷ୍ଠାନ କରାହୁଏ ।
ସ୍ୱୟମର୍ଜିତ—ବିଂ. ( ସ୍ୱୟଂ+ଅର୍ଜିତ ) ଆପଣା ଦ୍ୱାରା ଅର୍ଜନ କରାଯାଇଥିବା ।
ସ୍ୱୟମବଦୀର୍ଣ୍ଣ—ବିଂ. ଯେ ନିଜେ ମୃତ୍ତିକା ଭେଦକରି ଉଠେ ।
ସ୍ୱୟମାଗତ—ପୁଂ.ବିଂ.(ସ୍ୱୟଂ+ଆଗତ) ଯେ ନିଜେ ଆସି ଉପସ୍ଥିତ ହୁଏ, (ସ୍ତ୍ରୀ) ସ୍ୱୟମାଗତା ।
ସ୍ୱୟମାସନଢୌକନ—କ୍ଲୀ.ବି. ଯୋଗାସନବିଶେଷ ।
ସ୍ୱୟମାହୃତ—ବିଂ. (ସ୍ୱୟଂ+ଆ+ହୃ+କ) ନିଜେ ଯାହା ଆହରଣ କରାହୋଇଅଛି ।
ସ୍ୱୟମିନ୍ଦ୍ରିୟମୋଚନ—ବି.କ୍ଲୀ. ସ୍ୱୟଂସିଦ୍ଧି ।
ସ୍ୱୟମୀଶ୍ୱର—ବି.ପରମେଶ୍ୱର, ପରମାତ୍ମା ।
ସ୍ୱୟମୀହିତଲବ୍ଧ—ବିଂ. ନିଜର ଚେଷ୍ଟା ଦ୍ୱାରା ଲବ୍ଧ,ନିଜର ଚେଷ୍ଟାରେ ଯାହା ମିଳେ ।
ସ୍ୱୟମୁକ୍ତି—ବି. (ସ୍ୱୟଂ+ଉକ୍ତି) ସ୍ମୃତିଶାସ୍ତ୍ରୋକ୍ତ ପାଞ୍ଚ ପ୍ରକାର ସାକ୍ଷୀ ମଧ୍ୟରୁ ଏକ, ଯେଉଁ ସାକ୍ଷୀ କୌଣସି ପକ୍ଷଦ୍ୱାରା ଆହୂତ ନ ହୋଇ ନିଜେ ଆସି ଧର୍ମାଧିକରଣରେ ସାକ୍ଷ୍ୟ ଦିଏ ।
ସ୍ୱୟମୁଜ୍ଜ୍ୱଳ—ବିଂ. ଯାହା ନିଜେ ଉଜ୍ଜ୍ୱଳ ।
ସ୍ୱୟମୁଦିତ—ବିଂ.ସ୍ୱଭାବତଃ ପ୍ରକାଶିତ ।
ସ୍ୱୟମୁଦ୍ଘାଟିତ—ବିଂ.ସ୍ୱୟଂ ଉଦ୍ଘାଟିତ, ନିଜେ ଯାହା ଉଦ୍ଘାଟନ କରାହୋଇଅଛି ।
ସ୍ୱୟମୁପସ୍ଥିତ—ବିଂ. ସ୍ୱୟଂଆଗତ, ଯେ ନିଜେ ଆଗମନ କରେ ।
ସ୍ୱୟମୁପାର୍ତ୍ତ—ବିଂ. ( ସ୍ୱୟଂ+ଉପାର୍ତ୍ତ ) ସ୍ୱୋପାର୍ଜିତ ଦେଖ ।
ସ୍ୱୟମୁପେତ—ବିଂ.(ସ୍ୱୟଂ+ଉପ+ଇ+ତ) ସ୍ୱୟମୁପଗତ ।
ସ୍ୱୟଂପତିତ—ବିଂ.ସ୍ୱୟଂଶୀର୍ଣ୍ଣ, ଯେଉଁ ଫଳାଦି ନିଜେ ନିଜେ ପଡ଼ନ୍ତି ।
ସ୍ୱୟମ୍ପ୍ରକାଶ—ବିଂ.ସ୍ୱୟଂପ୍ରକାଶ ଦେଖ ।
ସ୍ୱୟମ୍ପ୍ରଭ—ପୁଂ.ବିଂ.ସ୍ୱୟଂପ୍ରଭ ଦେଖ ।
ସ୍ୱୟମ୍ପ୍ରଭା—ପୁଂ.ବିଂ. ସ୍ୱୟଂପ୍ରଭା ଦେଖ ।
ସ୍ୱୟମ୍ପ୍ରଶୀର୍ଣ୍ଣ—ବିଂ.ନିଜେ କ୍ଷୀଣ ହୋଇଥିବା । [ ହୋଇଅଛି ।
ସ୍ୱୟମ୍ପ୍ରସୂତ—ବିଂ. ଯାହା ନିଜେ ପ୍ରସୂତ
ସ୍ୱୟମ୍ବର—ବି.ସ୍ୱୟଂବର ଦେଖ ।
ସ୍ୱୟମ୍ବରା—ସ୍ତ୍ରୀ.ବି. ସ୍ୱୟଂବରା ଦେଖ ।
ସ୍ୱୟମ୍ବହ—ବିଂ.ସ୍ୱୟଂବହ ଦେଖ ।
ସ୍ୱୟମ୍ଭୂ(ଭୂ)—ବି. ସ୍ୱୟଂଭୂ ଦେଖ ।
ସ୍ୱୟମ୍ଭୁବ—ବି.ସ୍ୱୟଂଭୁବ ଦେଖ ।
ସ୍ୱୟମ୍ଭୁବା—ସ୍ତ୍ରୀ.ବି.ସ୍ୱୟଂଭୁବା ଦେଖ ।
ସ୍ୱୟମ୍ଭୂତ—ବିଂ.ଯାହା ନିଜେ ଉତ୍ପନ୍ନ ହୋଇଅଛି ।
ସ୍ୱୟମ୍ଭ୍ରମି—ବି. ସ୍ୱତନ୍ତ୍ର ଭ୍ରମଣସ୍ୱଭାବ ।
ସ୍ୱୟମ୍ମଥିତ—ବିଂ,ଯାହା ନିଜେ ମନ୍ଥନ

କରା ହୋଇଅଛି ।
ସ୍ୱଯୋନ—ବି.(୬ତତ୍) ନିଜର ଉତ୍ପତ୍ତି-ସ୍ଥାନ, (ବ.ଗ୍ରୀ)ନିଜର ଉତ୍ପତ୍ତିର କାରଣ ।
ସ୍ୱର୍(ଧାତୁ)—ଆକ୍ଷେପକରିବା, ଉଚ୍ଚାରଣ କରିବା, ଶବ୍ଦକରିବା, ଶବ୍ଦାୟମାନ ହେବା ।
ସ୍ୱର୍—ଅ. ସ୍ୱର୍ଗ, ସୁରଲୋକ, ଆକାଶ, ପ୍ରଭା, ସୌନ୍ଦର୍ଯ୍ୟ, ସୂର୍ଯ୍ୟ ଓ ଧ୍ରୁବ-ନକ୍ଷତ୍ରର ମଧ୍ୟସ୍ଥାନ, ପରଲୋକ, ନିରବଚ୍ଛିନ୍ନ ସୁଖ, ବ୍ୟାହୃତିବିଶେଷ ।
ସ୍ୱର—ବି.(ସ୍ୱର୍+ଭା.ଅ)(ବେଦ)ଉଦାତ୍ତ ଅନୁଦାତ୍ତ ଓ ସ୍ୱରିତ ଏହି ତିନି ପ୍ରକାରର କଣ୍ଠଧ୍ୱନି, (ସଙ୍ଗୀତ) ତନ୍ତ୍ରି କଣ୍ଠୋଦ୍ଭୂତ ସପ୍ତଧ୍ୱନି, ଷଡ଼ଜ,ଋଷଭ, ଗାନ୍ଧାର, ମଧ୍ୟମ, ପଞ୍ଚମ, ଧୈବତ, ନିଷାଦ, ଏହି ସପ୍ତବିଧ ଗାନାଙ୍ଗଧ୍ୱନି, (ବ୍ୟାକରଣ) ବ୍ୟଞ୍ଜନ ବର୍ଣ୍ଣର ବିନା ସାହାଯ୍ୟରେ ଉଚ୍ଚାରିତ ହେବା ୧୪ ଗୋଟି ବର୍ଣ୍ଣ (ଅ ଆ ଇ ଈ ଉ ଊ ଋ ୠ ଌ ୡ ଏ ଐ ଓ ଔ),(ତନ୍ତ୍ରମତେ) ପ୍ରାଣାଦି ବାୟୁର ବ୍ୟାପାର ବିଶେଷ, ନାସାବାୟୁ ନାକ ପୁଡ଼ାବାଟେ ଯିବା ଆସିବା ଶ୍ୱାସବାୟୁ,(ଜ୍ୟୋତିଷ)ଶୁଭାଶୁଭ ନିର୍ଣ୍ଣୟାର୍ଥ ପାତିତ ଚକ୍ରରେ ସ୍ଥାପିତ କରାଯିବା ନିର୍ଦ୍ଦିଷ୍ଟ ସ୍ୱରବର୍ଣ୍ଣ ସ୍ଥଳରେ କଳ୍ପନା କରାଯାଇଥିବା ରାଶି, ଗ୍ରହ ଓ ନକ୍ଷତ୍ରଗଣ, ଶୁଭାଶୁଭ ନିର୍ଣ୍ଣାୟକ ପକ୍ଷିସ୍ୱର,କାକାଦି ପକ୍ଷୀଙ୍କ ଧ୍ୱନି ।
ସ୍ୱରକର—ବିଂ, (ସ୍ୱର+କୃ+କ,ଅ) ଯେଉଁ ପଦାର୍ଥର ସେବନରେ ବା ବ୍ୟବହାରରେ ଗଳାର ସ୍ୱର ଭଦ୍ର ଓ ସ୍ପଷ୍ଟ ବା ମଧୁର ହୁଏ ।
ସ୍ୱରକ୍ଷୟ—ବି. (୬ତତ୍) ସ୍ୱର କ୍ଷୀଣ-ରୋଗ, ସ୍ୱରଭଙ୍ଗ ।
ସ୍ୱରକ୍ଷୁ—ବି.ପୁରାଣାନୁସାରେ ମେରୁ ପର୍ବତର ପଶ୍ଚିମ ଭାଗରେ ବହୁଥିବା ଗଙ୍ଗା-ନଦୀର ଏକ ଧାରାର ନାମ ।
ସ୍ୱରଗ—ଗ୍ରା. (ପଦ୍ୟ) ବି. (ସ୍ୱ-ସ୍ୱର୍ଗ) ସ୍ୱର୍ଗ, ଆକାଶ, ଶୂନ୍ୟ ।
ସ୍ୱରଗତ(ତା)—ଗ୍ରା.(ପଦ୍ୟ)ବିଂ.ସ୍ୱର୍ଗତ ଦେଖ ।
ସ୍ୱରଗପଥର—ଗ୍ରା. ବି. କୁଆପଥର ।
ସ୍ୱରଗ୍ରାମ—ବି. (୬ତତ୍) ସଙ୍ଗୀତର ସପ୍ତସ୍ୱର ।
ସ୍ୱରଘ୍ନ—ବି. ସ୍ୱରନାଶକ ଗଳରୋଗ-ବିଶେଷ, (ବିଂ-ସ୍ୱର+ହନ୍+କ.ଅ) ସ୍ୱରନାଶକାରୀ ।
ସ୍ୱରଙ୍କୃତ—ବିଂ. ସ୍ୱଳଙ୍କୃତ, ଉଚ୍ଚାରଣ ସୌଷ୍ଠବାଦି ଦ୍ୱାରା ସୁଷ୍ଠୁ ସମ୍ପାଦିତ ।
ସ୍ୱରଚିତ—ବିଂ. (୩ତତ୍) ନିଜ ପ୍ରଣୀତ, ଆପଣା କର୍ତ୍ତୃକ ଲିଖିତ ।
ସ୍ୱରଜ୍ଞ—ପୁଂ.ବିଂ. (ସ୍ୱର+ଜ୍ଞା+କ.ଅ) ଯାହାର ସ୍ୱରବୋଧ ଅଛି,(ସ୍ତ୍ରୀ)ସ୍ୱରଜ୍ଞା ।
ସ୍ୱରଜ୍ଞାନ—ବି. (୬ତତ୍) ସ୍ୱର ସମ୍ବନ୍ଧେ ଜ୍ଞାନ ।
ସ୍ୱରଧରଯନ୍ତ୍ର—କ୍ଲୀ. ବି. ସ୍ୱରଧାରଣକାରୀ ଯନ୍ତ୍ରବିଶେଷ,ଯେଉଁଯନ୍ତ୍ରରେ ମନୁଷ୍ୟାଦିର ସ୍ୱର ଅବିକଳ ଗୃହୀତ ଓ ବାଦିତ ହୁଏ, ଗ୍ରାମୋଫୋନ ।
ସ୍ୱରନାଗୀ—ବି. ମୁହଁରେ ଫୁଙ୍କାଯାଇ ବଜାଯିବା ବାଦ୍ୟ ।
ସ୍ୱରନାଭି—ବି.ମୁହଁରେ ଫୁଙ୍କାଯାଇ ବଜାଯିବା ପ୍ରାଚୀନକାଳରେ ବ୍ୟବହୃତ ଏକପ୍ରକାର ବାଜା ।
ସ୍ୱରନାମା—ଗ୍ରା. ବି. କନ୍ଦର୍ପ ।
ସ୍ୱରନାଳୀ—ବି. ଗଳା ମଧ୍ୟରେ ଯେଉଁ ନାଳୀବାଟେ କଣ୍ଠସ୍ୱର ବାହାରେ ।
ସ୍ୱରପଡ଼ିବା—ଗ୍ରା.ବି. କଣ୍ଠସ୍ୱରର ଉଚ୍ଚତା ଲୋପହେବା ।
ସ୍ୱରପତ୍ତନ—ବି. (୬ତତ୍) ସାମବେଦ ।
ସ୍ୱରବଦ୍ଧ—ବିଂ. (୩ତତ୍) ସ୍ୱରରେ ବନ୍ଧା ହୋଇଥିବା (ଗୀତଆଦି), ନିର୍ଦ୍ଦିଷ୍ଟ ସ୍ୱର ଅନୁସାରେ ରଚିତ (ସଙ୍ଗୀତ) ।
ସ୍ୱରବନ୍ଦ—ବି. (୬ତତ୍) ଗଳାର ସ୍ୱର ବନ୍ଦହୋଇଯିବା,କଣ୍ଠ ପଡ଼ିଯିବା ରୋଗ ।
ସ୍ୱରବର୍ଣ୍ଣ—ବି. ବର୍ଣ୍ଣମାଳା ମଧ୍ୟରୁ ଯେଉଁ ବର୍ଣ୍ଣମାନଙ୍କୁ ଉଚ୍ଚାରଣ କରିବାକୁ ବ୍ୟଞ୍ଜନ-ବର୍ଣ୍ଣ ଲୋଡ଼ା ହୁଏନାହିଁ (ଅ ଠାରୁ ଔ ପର୍ଯ୍ୟନ୍ତ) ।
ସ୍ୱରବାଦ୍ୟ—ବିଂ.ଯେଉଁ ବାଦ୍ୟରୁ କେବଳ ସ୍ୱର ବାହାରେ କିନ୍ତୁ ତାଳଆଦି ସୂଚିତ ହୁଏ ନାହିଁ ।
ସ୍ୱରବିକାର(ବିକୃତି)—ବି. (୬ତତ୍) କଣ୍ଠସ୍ୱର ବିକୃତି, କଣ୍ଠ ବସିଯିବା ।
ସ୍ୱରବିଜ୍ଞାନ—ବି.(୬ତତ୍) ସ୍ୱରବିଷୟରେ ବିଶିଷ୍ଟ ଜ୍ଞାନ, ଯେଉଁ ବିଦ୍ୟା ଦ୍ୱାରା ସ୍ୱର ସମ୍ବନ୍ଧରେ ବିଶିଷ୍ଟ ଜ୍ଞାନ ଜନ୍ମେ ।
ସ୍ୱରବିବର୍ତ୍ତ—ବି. (୬ତତ୍) ସ୍ୱରର ପରି-ବର୍ତ୍ତନ,କଣ୍ଠଧ୍ୱନିର ପରିବର୍ତ୍ତନ,ସ୍ୱରର କମ୍ପନ ।
ସ୍ୱରବୋଧ—ବି. ସ୍ୱରଜ୍ଞାନ, ସଙ୍ଗୀତର ସ୍ୱର ସମ୍ବନ୍ଧେ ଅଭିଜ୍ଞତା ।
ସ୍ୱରଭକ୍ତି—ସ୍ତ୍ରୀ. ବି. ସ୍ୱରବିଭାଗ ।
ସ୍ୱରଭଙ୍ଗ—ବି. କଣ୍ଠ ବସିଯିବା ରୋଗ, ସ୍ୱର ବିକୃତିକର ରୋଗବିଶେଷ,ଗଳାର ରୋଗବିଶେଷ, ସ୍ୱରଭେଦ, କଥା କହିବାବେଳେ ଦୁର୍ବଳତା, ବାର୍ଦ୍ଧକ୍ୟ ବା ରୋଗ ଯୋଗୁଁ ସ୍ୱରର କମ୍ପନ, ଉତ୍କଣ୍ଠିତ ପ୍ରେମିକ ପ୍ରେମିକାଙ୍କଠାରେ ଲକ୍ଷିତ ଅଷ୍ଟବିଧସାତ୍ତ୍ୱିକ ବିକାର ମଧ୍ୟରୁ ଏକତମ ।
ସ୍ୱରଭଙ୍ଗୀ—ବି. ପକ୍ଷିବିଶେଷ, ସ୍ୱରଭଙ୍ଗ ଦେଖ, ସ୍ୱରର ବିଶେଷତ୍ୱ, (ପୁଂ.ବିଂ) ସ୍ୱରଭଙ୍ଗ ରୋଗଗ୍ରସ୍ତ (ବ୍ୟକ୍ତି), (ସ୍ତ୍ରୀ) ସ୍ୱରଭଙ୍ଗିନୀ ।
ସ୍ୱରଭାନୁ—ବି. (ନାମ) ସତ୍ୟଭାମାଙ୍କ ଗର୍ଭଜାତ ଶ୍ରୀକୃଷ୍ଣଙ୍କ ଦଶପୁତ୍ର ମଧ୍ୟରୁ ଜଣେ ।
ସ୍ୱରଭାବ—ବି. କେବଳ ସ୍ୱର ଦ୍ୱାରା ମନୋଭାବ ପ୍ରକାଶକରିବାରୂପ ସଙ୍ଗୀତର ଗୃଢ଼ଭାବ ମଧ୍ୟରୁ ଗୋଟିଏ ।
ସ୍ୱରଭେଦ—ବି. ସ୍ୱରଭଙ୍ଗ ଦେଖ ।
ସ୍ୱରମଣ୍ଡଳ—ବି. ବୀଣାବିଶେଷ ।
ସ୍ୱରମଣ୍ଡଳିକା—ବି. ପ୍ରାଚୀନ କାଳର ଏକପ୍ରକାର ବୀଣା ।
ସ୍ୱରମାଧୁରୀ(ମାଧୁର୍ଯ୍ୟ)—ବି. (୬ତତ୍) ସ୍ୱରର ମଧୁରତା, ଶ୍ରୁତିମଧୁରତା ।
ସ୍ୱରସ୍—ପ୍ରା. (ବସ୍ତ୍ରର) ବି. ସୂର୍ଯ୍ୟ ।

ସ୍ୱରଯୋଗ—ବି. ସଙ୍ଗୀତରେ ବାଦ୍ୟଯନ୍ତ୍ରର ସ୍ୱରସଙ୍ଗେ କଣ୍ଠସ୍ୱରର ସଂଯୋଗ, ଲୟ ।

ସ୍ୱରଲମ୍ବା(ମ୍ବେ)ଇବା—ଗ୍ରା. କ୍ରି. ଉଚ୍ଚ ସ୍ୱରାଧରି ଗୀତ ବୋଲିବା ବା କାନ୍ଦିବା ।

ସ୍ୱରଲହରୀ—ସ୍ତ୍ରୀ.ବି.(୬ତତ୍)ସ୍ୱରତରଙ୍ଗ, ଢେଉପରି କମ୍ପିବା ସ୍ୱର ।

ସ୍ୱରଲାସିକା—ବି.(ସ୍ୱର+ଲସ୍+କ. ଅକ+ଆ) ବଂଶୀ ।

ସ୍ୱରଲିପି—ସ୍ତ୍ରୀ. ବି. (ସଙ୍ଗୀତରେ) ସୁର, ତାଳ,ମାନ, ଲୟ ପ୍ରଭୃତିର ନିଦର୍ଶକ ସାଙ୍କେତିକ ଲିପି ବା ଲିଖନ ।

ସ୍ୱରଶାସ୍ତ୍ର—ବି. ସ୍ୱରୋଦୟ ଦେଖ ।

ସ୍ୱରସ—ବି. (୬ତତ୍) ନିଜର ଇଚ୍ଛା, ସ୍ୱେଚ୍ଛା, (ବୈଦ୍ୟକ) ଶିଳାରେ ଛେଚି ହୋଇ ଚିପୁଡ଼ା ଯାଇଥିବା ରସ,(ବୃକ୍ଷ-ଲତା, ପତ୍ରାଦିର) ଶିଳାପିଷ୍ଟ ପୀଡ଼ିତ ରସ, ସଦ୍ୟସଂଗୃହୀତ ଶତାବରୀ ଓ ଶ୍ୱେତପୁରୁଣୀ ପ୍ରଭୃତି କେତେକ ଉଦ୍ଭିଜ୍ଜର ମୂଳ ଏବଂ ଆବଶ୍ୟକ ଦ୍ରବ୍ୟର ପତ୍ର ପ୍ରଭୃତି କୁଟି ବାହାର କରାଯିବା ରସ ।

ସ୍ୱରସନ୍ଧି—ବି. (ବ୍ୟାକରଣ) ପୂର୍ବପଦର ପ୍ରାନ୍ତସ୍ଥ ଓ ପରବର୍ତ୍ତୀ ପଦର ଆଦ୍ୟସ୍ଥ ଦୁଇଟି ସ୍ୱରବର୍ଣ୍ଣର ମିଳନ ଦ୍ୱାରା ଉଭୟ ବର୍ଣ୍ଣର ଏକବର୍ଣ୍ଣରେ ପରିଣତ ହେବାର ଅବସ୍ଥା ଓ ସେ ସମ୍ବନ୍ଧୀୟ ବ୍ୟାକରଣର ନିୟମ ।

ସ୍ୱରସମୁଦ୍ର—ବି. ପ୍ରାଚୀନକାଳର ତନ୍ତ୍ରୀ ବାଦ୍ୟବିଶେଷ ।

ସ୍ୱରସମ୍ପନ୍ନ—ବିଂ. ସ୍ୱରଯୁକ୍ତ, ଯାହାର ସ୍ୱର ଉତ୍ତମ ।

ସ୍ୱରସା—ବି. କପିତ୍ଥପତ୍ରକ ନାମକ ଔଷଧ, ଲାକ୍ଷା ।

ସ୍ୱରସାଦ-ବି.ଗଳା ବସିଯିବା,ସ୍ୱରଭଙ୍ଗ ।

ସ୍ୱରସାଦ—ବି. କଷାୟ, କେତେକ ଔଷଧଦ୍ରବ୍ୟ ପାଣିରେ ଆଉଟା ହୋଇ ପ୍ରସ୍ତୁତ କରାଯିବା ପାଚନ ।

ସ୍ୱରହା—ବିଂ. ସ୍ୱରଘ୍ନ, ସ୍ୱରନାଶକ ।

ସ୍ୱରା—ବି. (ସ୍ୱର+ଆ)ବ୍ରହ୍ମାଙ୍କ ଜ୍ୟେଷ୍ଠା ପତ୍ନୀ, ଗାୟତ୍ରୀଙ୍କ ସପତ୍ନୀ ।

ସ୍ୱରାଂଶ—ବି. (୬ତତ୍) ସ୍ୱରର ଅର୍ଦ୍ଧ ବା ପାଦ ।

ସ୍ୱରାଜ(ଜ)—ଗ୍ରା. ବି. (ସଂ-ସ୍ୱରାଜ୍ୟ) ସ୍ୱରାଜ୍ୟବାସୀ ବା ସ୍ୱଦେଶବାସୀଙ୍କଦ୍ୱାରା ରାଜ୍ୟଶାସନ ପ୍ରଣାଳୀ, ସ୍ୱାୟତ୍ତଶାସନ ।

ସ୍ୱରାଜଦଳ—ଗ୍ରା. ବି. ଭାରତ ସ୍ୱରାଜ୍ୟଲାଭ କରିବ ଏହି ଦାବୀଉପରେ ପ୍ରତିଷ୍ଠିତ ରାଜନୀତିକଦଳ ।

ସ୍ୱରାଜ(ଜୀ)—ଗ୍ରା. ବି. ନିଜର ରାଜ୍ୟ ବା ସମ୍ପତ୍ତି, ନିଜର ସ୍ୱାଧୀନ ସମ୍ପତ୍ତି ।

ସ୍ୱରାଜିଆ—ଗ୍ରା. ବି. ସ୍ୱରାଜଦଳ ସମ୍ବନ୍ଧୀୟ, ସ୍ୱରାଜଦଳଭୁକ୍ତ ।

ସ୍ୱରାଜ୍ୟ—ବି. ନିଜର ରାଜ୍ୟ, ନିଜର ଦେଶ, ମାତୃଭୂମି, ସ୍ୱଦେଶ, (ଗ୍ରା.ବି) ସ୍ୱଦେଶବାସୀଙ୍କ ଦ୍ୱାରା ଶାସିତ ରାଜ୍ୟ, ସ୍ୱାୟତ୍ତଶାସନ, ସ୍ୱରୂପରେ ସ୍ଥିତ ବା ଅବସ୍ଥାନ ।

ସ୍ୱରାଜ୍ୟଦଳ—ବି. (ଆଧୁନିକ ପ୍ରୟୋଗ) ଭାରତର ରାଜନୀତିକ ଦଳବିଶେଷ ।

ସ୍ୱରାଟ୍—ବିଂ. (ସ୍ୱ+ରାଜ୍+କ.କ୍ୱିପ୍) ସ୍ୱୟଂପ୍ରକାଶ, ସ୍ୱପ୍ରକାଶ, (ବି) ଈଶ୍ୱର, ବ୍ରହ୍ମା, ବୈଦିକ ଛନ୍ଦୋବିଶେଷ, ଯେଉଁ ଛନ୍ଦର ପ୍ରତ୍ୟେକ ଦୁଇପାଦରେ ଅଷ୍ଟାକ୍ଷର ଓ ଏକପାଦରେ ଦଶାକ୍ଷର ଥାଏ,ସ୍ୱରାଜ୍ୟ ଶାସନପ୍ରଣାଳୀ ପ୍ରଚଳିତ ଥିବା ରାଜ୍ୟର ରାଜା ।

ସ୍ୱରାନୁକରଣ—ବି. (୬ତତ୍) କଣ୍ଠଧ୍ୱନିର ଅନୁକରଣ ।

ସ୍ୱରାନୁଭବକତା-ବି.ସ୍ୱରବୋଧଜନକ ବୃତ୍ତି

ସ୍ୱରାପଗା—ବି.୬ତତ୍ (ସ୍ୱଃ+ଆପଗା)। ସ୍ୱର୍ଗଙ୍ଗା, ମନ୍ଦାକିନୀ ।

ସ୍ୱରାମକ—ବି. ଆକ୍ଷୋଟ ଗଛ ।

ସ୍ୱରାଳୁ—ବି. ବଗ୍ର ।

ସ୍ୱରାଷ୍ଟକ-ବି.ବଙ୍ଗାଳୀ,ଭୈରବ,ଗାନ୍ଧାର, ପଞ୍ଚମ ଓ ଗୁର୍ଜରୀ ରାଗର ମେଳରେ ରଚିତ ସଙ୍କର ରାଗ ।

ସ୍ୱରାଷ୍ଟ୍ର-ବି.ରାଜାଙ୍କର ନିଜ ରାଜ୍ୟ,ପ୍ରାଚୀନ ସୌରାଷ୍ଟ୍ରଦେଶର ଏକ ନାମ, ତାମସମନୁଙ୍କ ପିତାଙ୍କ ନାମ ।

ସ୍ୱରାଷ୍ଟ୍ରସଚିବ—ବି. ଯେଉଁ ମନ୍ତ୍ରୀ ରାଜ୍ୟର ଆଭ୍ୟନ୍ତରୀଣ ଶାନନାଦି ବିଭାଗର କାର୍ଯ୍ୟ ବୁଝନ୍ତି ।

ସ୍ୱରିତ—ବିଂ.(ସ୍ୱର+ଇତ) ସ୍ୱରଯୁକ୍ତ, ଉଚ୍ଚାରିତ,(ସ୍ୱର+ମିଂ.ତ) ଆକ୍ଷିପ୍ତ,(ବି) ଉଦାତ୍ତ ଓ ଅନୁଦାତ୍ତର ମଧ୍ୟବର୍ତ୍ତୀ ସ୍ୱର, ମଧ୍ୟମରୂପେ ଉଚ୍ଚାରିତ ସ୍ୱର ।

ସ୍ୱରିତତ୍ୱ—ବି. ସ୍ୱରିତର ଭାବ, ସ୍ୱରିତ ସ୍ୱରର ଉଚ୍ଚାରଣ ।

ସ୍ୱରିତା—ବିଂ. ଶବ୍ଦୟିତା, ଶବ୍ଦକାରକ ।

ସ୍ୱରୀଶ୍ୱର—ପୁଂ.ବି.୬ତତ୍ (ସ୍ୱର+ଈଶ୍ୱର) ସୁରପତି, ଇନ୍ଦ୍ର ।

ସ୍ୱରୁ—ବି. (ସ୍ୱୃ+କ.ଉ) ବଜ୍ର,ଯୂପଖଣ୍ଡ, (ଅଧି.ଉ) ଯଜ୍ଞ,ବେଧନାସ୍ତ୍ର, ଶର,ବାଣ, ସୂର୍ଯ୍ୟରଶ୍ମି, ଖର, ବୃଶ୍ଚିକ ଭେଦ ।

ସ୍ୱରୁଃ—ବି. (ସ୍ୱୃ+କ.ଉସ୍) ବଜ୍ର ।

ସ୍ୱରୁଚି—ବି. (୬ତତ୍) ସ୍ୱେଚ୍ଛା, ନିଜର ରୁଚି,(ପୁଂ ଓ ସ୍ତ୍ରୀ. ବିଂ. ବ.ବ୍ରୀ)ସ୍ୱେଚ୍ଛାଚାରୀ, ସ୍ୱୈର, ସ୍ୱତନ୍ତ୍ର ।

ସ୍ୱରୂପ—ବି.(୬ତତ୍)ନିଜର ପ୍ରକୃତ ରୂପ, ସ୍ୱଭାବ, ପ୍ରକୃତି, ସ୍ୱାଭାବିକ ଅବସ୍ଥା, ପଣ୍ଡିତ, କୌଣସି ବସ୍ତୁର ବା ବ୍ୟକ୍ତିର ମୂର୍ତ୍ତି ବା ଚିତ୍ର, ଦେବତାଆଦିଙ୍କ ଧୃତରୂପ, ଆତ୍ମା, (ବିଂ) ପଣ୍ଡିତ, ମନୋଜ୍ଞ, ସୁନ୍ଦର, ଅଭିରୂପ, ଅବିକଳ, ପ୍ରକୃତ, ଯଥାର୍ଥ,ସଦୃଶ,ତୁଲ୍ୟ, (ଗ୍ରା.ବି) ବାସ୍ତବିକ ଘଟଣା ବା ଅବସ୍ଥା, (ସଂ-ରୂପ) ରୂପ, (ସ୍ତ୍ରୀ) ସ୍ୱରୂପା ।

ସ୍ୱରୂପକ—ବି.(ସ୍ୱରୂପ+କ)ସ୍ୱରୂପ ଦେଖ ।

ସ୍ୱରୂପଚିନ୍ତା—ସ୍ତ୍ରୀ. ବି. (୬ତତ୍) ପ୍ରକୃତରୂପ ଧ୍ୟାନ, ଯଥାର୍ଥର ମନନ ।

ସ୍ୱରୂପତଃ—ଅ. (ସ୍ୱରୂପ+ତସ୍) ଯଥାର୍ଥ୍ୟତଃ, ପ୍ରକୃତପକ୍ଷେ ।

ସ୍ୱରୂପତା(ତ୍ୱ)—ବି. (ସ୍ୱରୂପ+ଭା.ତା,ତ୍ୱ) ଅନନ୍ୟତା, ସାଦୃଶ୍ୟ ।

ସ୍ୱରୂପନିରୂପଣ(ନିର୍ଣ୍ଣୟ)—ବି. ପ୍ରକୃତ ଅବସ୍ଥାର ବା ରୂପର ନିର୍ଦ୍ଧାରଣ ।

ସ୍ୱରୂପଯୋଗ୍ୟ—ବି°. (୬ତତ୍) କାର୍ଯ୍ୟସାଧନ ଯୋଗ୍ୟ,କାର୍ଯ୍ୟସିଦ୍ଧିର ଉପଯୁକ୍ତ ।

ସ୍ୱରୂପଯୋଗ୍ୟତା—ସ୍ତ୍ରୀ.ବି. କାର୍ଯ୍ୟସାଧନ ଯୋଗ୍ୟତା, ସିଦ୍ଧି କରିବାର କ୍ଷମତା ।

ସ୍ୱରୂପସମ୍ବନ୍ଧ—ବି. ଅଭିନ୍ନ ସମ୍ବନ୍ଧ, ଅନ୍ୟ ବ୍ୟକ୍ତିର ବା ବସ୍ତୁର ଅନୁରୂପତାଜନିତ ସମ୍ବନ୍ଧ ।

ସ୍ୱରୂପାଖ୍ୟାନ—ବି. (୬ତତ୍) ପ୍ରାକୃତିକ ଅବସ୍ଥାର ବର୍ଣ୍ଣନା ।

ସ୍ୱରୂପାନନ୍ଦ—ଗ୍ରା, ବି. କଟକ ଜିଲ୍ଲାର ନେମ୍ବାଳଗାଦିର ପ୍ରତିଷ୍ଠାତା ଅଚ୍ୟୁତାନନ୍ଦଙ୍କ ବଂଶଧରଙ୍କ ନାମବିଶେଷ ।

ସ୍ୱରୂପାତ୍ମକ—ପୁଂ,ବି°. (ସ୍ୱରୂପ + ଆତ୍ମନ୍ + କ) ସାଦୃଶ୍ୟଜ୍ଞାପକ, ସାଦୃଶ୍ୟାତ୍ମକ, ଯଦ୍ଦ୍ୱାରା ମୌଳିକ ବସ୍ତୁର ସ୍ୱରୂପ ଦେଖାଯାଏ ବା ଜଣାଯାଏ,(ସ୍ତ୍ରୀ)ସ୍ୱରୂପାତ୍ମିକା ।

ସ୍ୱରୂପୀ—ଗ୍ରା. ସ୍ତ୍ରୀ. ବି°. ନିଜର ପ୍ରକୃତ ରୂପବିଶିଷ୍ଟା, (ପୁଂ.ବି°-ସ୍ୱରୂପ+ଇନ୍) ସ୍ୱରୂପବିଶିଷ୍ଟ, ସ୍ୱରୂପଧାରୀ, (ସ୍ତ୍ରୀ) ସ୍ୱରୂପିଣୀ ।

ସ୍ୱରୂପୋତ୍ପ୍ରେକ୍ଷା—ବି. (ଅଳଙ୍କାର ଶାସ୍ତ୍ର) ଉତ୍ପ୍ରେକ୍ଷା ଅଳଙ୍କାରର ପ୍ରକାର ଭେଦ ।

ସ୍ୱରୂପୋପନିଷଦ୍—ବି. ବେଦାନ୍ତ ଗ୍ରନ୍ଥବିଶେଷ, ଉପନିଷଦ୍ ବିଶେଷ ।

ସ୍ୱରେ'ଅ'—ଗ୍ରା. (ବାକ୍ୟ)ସ୍ୱରବର୍ଣ୍ଣ ମଧ୍ୟର ପ୍ରଥମ ବର୍ଣ୍ଣ । [ ବର୍ଣ୍ଣ 'ଆ' ।

ସ୍ୱରେ'ଆ'—ଗ୍ରା. ବି. ସ୍ୱରବର୍ଣ୍ଣର ଦ୍ୱିତୀୟ

ସ୍ୱରେଣୁ—ବି. (ନାମ) ସୂର୍ଯ୍ୟପତ୍ନୀ, ସଂଜ୍ଞା ।

ସ୍ୱରେହା—ଗ୍ରା.ବି. କୁମାର,ବାଳ,ନନ୍ଦନ, (ଅମୁକ କୁଳର) ସନ୍ତାନ ।

ସ୍ୱରୋଚସ୍-ବି.ଦ୍ୱିତୀୟମନୁ,ଅଗ୍ନିଙ୍କର ପୁତ୍ର

ସ୍ୱରୋଦୟ—ବି. (୬ତତ୍) ନାସାବାୟୁର ଉଦୟ, ନିଶ୍ୱାସପ୍ରଶ୍ୱାସ, (ଯୋଗଶାସ୍ତ୍ର) ନାସିକାର ବାୟୁଦ୍ୱାର ଇଡ଼ା, ପିଙ୍ଗଳା ଓ ସୁଷୁମ୍ନା ନାଡ଼ୀମାନଙ୍କର ଗତିପର୍ଯ୍ୟବେକ୍ଷଣ କରି ଯାତ୍ରା,ଭୋଜନ,ଶୟନାଦି କର୍ମ କରିବା ପାଇଁ ଉପଦେଶ ଯେଉଁ ଶାସ୍ତ୍ରରେ ଅଛି, (ଜ୍ୟୋତିଷ) ରାଶି,ଗ୍ରହ, ନକ୍ଷତ୍ରମାନ ସନ୍ନିବେଶିତ ହୋଇ ଅଙ୍କିତ ହୋଇଥିବା ଚକ୍ରରୁ ଶୁଭାଶୁଭଜ୍ଞାପକ ଶାସ୍ତ୍ର ।

ସ୍ୱର୍ଗ—ବି. (ସ୍ୱର+ଗୈ+ର୍ମ.ଅ ଅଥବା ସୁ+ଋଜ୍+ର୍ମ.ଅ) ଦେବତାମାନଙ୍କର ଆଳୟ, ଦେବଗଣଙ୍କର ବସତିସ୍ଥାନ, ଭୂ, ଭୁବଃ, ସ୍ୱଃ, ମହଃ, ଜନ, ତପଃ, ସତ୍ୟ ଏହି ସାତଲୋକ,ନିରବଚ୍ଛିନ୍ନ ସୁଖ. ଅବିମିଶ୍ର ଆନନ୍ଦ, ( ଗ୍ରା.ବି ) ଆକାଶ, (ଲ.ଅର୍ଥ) ସର୍ବସୁଖମୟ ସ୍ଥାନ ।

ସ୍ୱର୍ଗକାମ—ପୁଂ. ବି°. ( ବ,ବ୍ରୀ ) ସ୍ୱର୍ଗାଭିଳାଷୀ, (ସ୍ତ୍ରୀ) ସ୍ୱର୍ଗକାମା ।

ସ୍ୱର୍ଗକାମନା—ବି. ସ୍ୱର୍ଗଲାଭ କରିବା ପାଇଁ ବାସନା ।

ସ୍ୱର୍ଗକାମୀ—ପୁଂ. ବି°. (ସ୍ୱର୍ଗ + କାମ + ଇନ୍)ସ୍ୱର୍ଗାଭିଳାଷୀ,(ସ୍ତ୍ରୀ)ସ୍ୱର୍ଗକାମିନୀ ।

ସ୍ୱର୍ଗକୁଉଠା(ଠେ)ଇବା—ଗ୍ରା.କ୍ରି.(ଲ.ଅର୍ଥ କୌଣସି ବ୍ୟକ୍ତିକୁ ଅତ୍ୟନ୍ତ ପ୍ରଶଂସା କରିବା, କୌଣସି ବ୍ୟକ୍ତିର ଉନ୍ନତି କରିବା,ମୋକ୍ଷଲାଭରେ ସହାୟ ହେବା ।

ସ୍ୱର୍ଗକୁଉଠିବା—ଗ୍ରା. କ୍ରି. (ଲ.ଅର୍ଥ) ମନେ ମନେ ବାହାଦୁର ବନିବା,ନିଜକୁ ଭାଗ୍ୟବାନ୍ ବୋଲି ମନେ କରିବା,ମୋକ୍ଷଲାଭ କରିବା ।

ସ୍ୱର୍ଗକୁନିଶୁଣିନାହିଁ—ଗ୍ରା. (ପ୍ରବଚନାଂଶ) ସ୍ୱର୍ଗକୁ ବା ଆକାଶକୁ ଉଠିବା ପାଇଁ ଶିଢ଼ୀ ନାହିଁ ।

ସ୍ୱର୍ଗଖଣ୍ଡ—ବି. ପଦ୍ମପୁରାଣର ଖଣ୍ଡ ବା ବିଭାଗବିଶେଷର ନାମ ।

ସ୍ୱର୍ଗଗଙ୍ଗା—ବି- ସ୍ୱର୍ଗଙ୍ଗା ଦେଖ ।

ସ୍ୱର୍ଗଗଣିକା—ବି. ସ୍ୱର୍ଗଣିକା ଦେଖ ।

ସ୍ୱର୍ଗଗତ—ପୁଂ. ବି°. (୨ତତ୍) ମୃତ,(ସ୍ତ୍ରୀ) ସ୍ୱର୍ଗଗତା ।

ସ୍ୱର୍ଗଗତି(ଗମନ)—ବି.ସ୍ୱର୍ଗକୁ ଯିବା,ମୃତ୍ୟୁ ।

ସ୍ୱର୍ଗଗାମୀ—ପୁଂ. ବି°. (ସ୍ୱର୍ଗ+ଗମ୍+କ.ଇନ୍) ମୃତ, ସ୍ୱର୍ଗଗମନକର୍ତ୍ତା, (ସ୍ତ୍ରୀ) ସ୍ୱର୍ଗଗାମିନୀ ।

ସ୍ୱର୍ଗଗିରି—ବି. (୬ତତ୍) ସୁମେରୁ ଦେଖ ।

ସ୍ୱର୍ଗଙ୍ଗା—ବି. (୬ତତ୍ ବା କ.ଧା) ସୁରନଦୀ, ମନ୍ଦାକିନୀ, ଆକାଶରେ ପଡ଼ିଥିବା ଅସଂଖ୍ୟ ନକ୍ଷତ୍ର ଖଚିତ ଶ୍ୱେତପଥ ।

ସ୍ୱର୍ଗଜିତ୍—ପୁଂ ଓ ସ୍ତ୍ରୀ. ବି°. (ସ୍ୱର୍ଗ+ଜି+କ.କ୍ୱିପ୍)ଯେ ସ୍ୱର୍ଗକୁ ବା ଦେବତାମାନଙ୍କୁ ଜୟ କରନ୍ତି ।

ସ୍ୱର୍ଗଣିକା—ବି. ( ୬ତତ୍ ) ସ୍ୱର୍ବେଶ୍ୟା, ଅପ୍ସରମାନେ ।

ସ୍ୱର୍ଗତ—ପୁଂ. ବି°. (୨ତତ୍) ପରଲୋକଗତ, ମୃତ, (ସ୍ତ୍ରୀ) ସ୍ୱର୍ଗତା ।

ସ୍ୱର୍ଗତରଙ୍ଗିଣୀ-ବି.(୬ତତ୍)ସ୍ୱର୍ଗଙ୍ଗା ଦେଖ ।

ସ୍ୱର୍ଗତରୁ—ବି. (କ,ଧା) ସ୍ୱର୍ଗରେ ଜାତ ବୃକ୍ଷ, କଳ୍ପତରୁ, ପାରିଜାତ ବୃକ୍ଷ ।

ସ୍ୱର୍ଗତି—ବି, ସ୍ୱର୍ଗଗମନ, ମୃତ୍ୟୁ, ପାରଲୌକିକ ସୁଖ ।

ସ୍ୱର୍ଗଦ୍ୱାର—ବି. ( ୬ତତ୍ ) ପୁରାଣୋକ୍ତ ସ୍ୱର୍ଗକୁ ଯିବାର କବାଟ,ସ୍ୱର୍ଗପ୍ରଦେଶର ପଥ, (ଗ୍ରା.ବି-ନାମ) ପୁରୀର ସମୁଦ୍ରକୂଳସ୍ଥ ତୀର୍ଥବିଶେଷ,ଅଯୋଧ୍ୟାରେ ସରଯୂ ନଦୀର ଗୋଟିଏ ସ୍ନାନଘାଟର ନାମ ।

ସ୍ୱର୍ଗଦ—ପୁଂ.ବି°. (ସ୍ୱର୍ଗ+ଦା+କ.ଅ) ଯେ ବା ଯାହା ସ୍ୱର୍ଗଲାଭ କରାଏ, (ସ୍ତ୍ରୀ) ସ୍ୱର୍ଗଦା ।

ସ୍ୱର୍ଗଧାମ—ବି. କ.ଧା; (ସ୍ୱର୍ଗ + ଧାମନ୍) ସ୍ୱର୍ଗରୂପ ବାସସ୍ଥାନ, ସ୍ୱର୍ଗଲୋକ ।

ସ୍ୱର୍ଗଧେନୁ—ବି. (୬ତତ୍) କାମଧେନୁ ।

ସ୍ୱର୍ଗନଦୀ—ବି.(୬ତତ୍) ସ୍ୱର୍ଗଙ୍ଗା ଦେଖ ।

ସ୍ୱର୍ଗପତି—ବି.(୬ତତ୍)ଦେବରାଜ,ଇନ୍ଦ୍ର ।

ସ୍ୱର୍ଗପୁର(ରୀ)—ବି. ଇନ୍ଦ୍ରଙ୍କ ରାଜଧାନୀ, ଅମରାବତୀ ।

ସ୍ୱର୍ଗପୁଷ୍ପ—ବି. (୬ତତ୍)ସ୍ୱର୍ଗସ୍ଥ ପୁଷ୍ପବୃକ୍ଷର ଫୁଲ, ଲବଙ୍ଗ ।

ସ୍ୱର୍ଗପ୍ରାପ୍ତି—ବି. ସ୍ୱର୍ଗଲାଭ ଦେଖ ।

ସ୍ୱର୍ଗବଧୂ—ବି. ( ୬ତତ୍ ) ସୁରାଙ୍ଗନା, ଅପ୍ସରା । [ ଶୂନ୍ୟବାଣୀ ।

ସ୍ୱର୍ଗବାଣୀ—ବି. (କ.ଧା) ଆକାଶବାଣୀ,

ସ୍ୱର୍ଗବାସ-ବି.(୭ତତ୍)ସ୍ୱର୍ଗରେ ରହିବା,ମୃତ୍ୟୁ

ସ୍ୱର୍ଗବାସୀ—ପୁଂ, ବି°. (ସ୍ୱର୍ଗ + ବସ୍ + କ.ଇନ୍) ଯେ ସ୍ୱର୍ଗରେ ବାସକରେ, ମୃତ,ସ୍ୱର୍ଗତ, (ସ୍ତ୍ରୀ) ସ୍ୱର୍ଗବାସିନୀ, (ବି) ଦେବତା ।

ସ୍ୱର୍ଗବେଶ୍ୟା—ବି. (୬ତତ୍) ଅପ୍ସରା ।

ସ୍ୱର୍ଗଭୁତ—ବି. ସ୍ୱର୍ଗସମ୍ପତ୍ତି ଦେଖ ।
ସ୍ୱର୍ଗଭୂମି—ବି.(ନାମ) ବାରାଣସୀର ପଶ୍ଚିମସ୍ଥ ପ୍ରାଚୀନ ଜନପଦବିଶେଷ ।
ସ୍ୱର୍ଗଭୋଗ—ବି. (୬ତତ୍) ସ୍ୱର୍ଗର ସୁଖ ଉପଭୋଗ, ଦିବ୍ୟସୁଖ ଭୋଗ ।
ସ୍ୱର୍ଗମନ—ବି. ସ୍ୱର୍ଗକୁ ଦେଖ ।
ସ୍ୱର୍ଗରାଜ୍ୟ—ବି. ସ୍ୱର୍ଗଲୋକ, ପୁଣ୍ୟାତ୍ମା ବ୍ୟକ୍ତିମାନଙ୍କ ପରଲୋକ ।
ସ୍ୱର୍ଗଯୋନି—ସ୍ତ୍ରୀ. ବି. ସ୍ୱର୍ଗର କାରଣ, ଯାଗଯଜ୍ଞାଦି ଶୁଭକର୍ମ ଦ୍ୱାରା ସ୍ୱର୍ଗଗତି ହୁଏ, ଏହି ହେତୁରୁ ଶୁଭକର୍ମକୁ ସ୍ୱର୍ଗଯୋନି କହନ୍ତି, ସ୍ୱର୍ଗଗମନର କାରଣ ।
ସ୍ୱର୍ଗଲାଭ—ବି. (୬ତତ୍) ପୁଣ୍ୟବଳରେ ସ୍ୱର୍ଗବାସ, ମୃତ୍ୟୁ ।
ସ୍ୱର୍ଗଲୋକ-ବି.(ପୁରାଣ)ଦେବଲୋକ,ସ୍ୱର୍ଗ ।
ସ୍ୱର୍ଗଲୋକେଶ—ବି.(୬ତତ୍)ଇନ୍ଦ୍ର,ଶରୀର, ତନୁ ।
ସ୍ୱର୍ଗଶିରୀ—ଗ୍ରା. ବି. (ସଂ-ସ୍ୱର୍ଗଶ୍ରୀ) ସ୍ୱର୍ଗସମ୍ପତ୍ତି ଦେଖ ।
ସ୍ୱର୍ଗସଦ୍—ପୁଂ.ବି.ସ୍ୱର୍ଗବାସୀ ଦେବଗଣ ।
ସ୍ୱର୍ଗସମ୍ପତ୍ତି—ବି. ସ୍ୱର୍ଗଲାଭ କରିବାରୂପ ଐଶ୍ୱର୍ଯ୍ୟ ବା ବିଭବ,ସୁଖର ପରାକାଷ୍ଠା, ସ୍ୱର୍ଗସୁଖ ଦେଖ ।
ସ୍ୱର୍ଗସରିଦ୍ବରା—ବି. (୬ତତ୍) ଗଙ୍ଗା ।
ସ୍ୱର୍ଗସୁଖ—କ୍ଳୀ.ବି. (କ.ଧା)ସ୍ୱର୍ଗର ସୁଖ, ଦୁଃଖଲେଶଶୂନ୍ୟ ସୁଖ,ସୁବିମଳ ଆନନ୍ଦ ।
ସ୍ୱର୍ଗସ୍ତ୍ରୀ—ବି. (୬ତତ୍) ଅପ୍ସରାଗଣ ।
ସ୍ୱର୍ଗସ୍ଥ—ପୁଂ. ବିଂ. ( ୭ତତ୍ ) ସ୍ୱର୍ଗରେ ଅବସ୍ଥିତ, ସ୍ୱର୍ଗତ, ମୃତ,(ସ୍ତ୍ରୀ) ସ୍ୱର୍ଗସ୍ଥା ।
ସ୍ୱର୍ଗାଚଳ—ବି.(୬ତତ୍) ସୁମେରୁପର୍ବତ ।
ସ୍ୱର୍ଗାପଗା—ବି.(୬ତତ୍)ଗଙ୍ଗା,ମନ୍ଦାକିନୀ ।
ସ୍ୱର୍ଗାମୀ—ପୁଂ.ବିଂ. (ସ୍ୱର୍ଗ+ଗମ୍+ଇନ୍) ସ୍ୱର୍ଗଗାମୀ, ଯେ ସ୍ୱର୍ଗ ଗମନ କରେ, (ସ୍ତ୍ରୀ) ସ୍ୱର୍ଗମିନୀ ।
ସ୍ୱର୍ଗାରୂଢ଼—ବିଂ. (୨ତତ୍) ଯେ ସ୍ୱର୍ଗକୁ ଆରୋହଣ କରିଅଛନ୍ତି, ସ୍ୱର୍ଗତ, ମୃତ, (ସ୍ତ୍ରୀ) ସ୍ୱର୍ଗାରୂଢ଼ା ।
ସ୍ୱର୍ଗାରୋହଣ—ବି. (୭ତତ୍) ସ୍ୱର୍ଗଗମନ, ଦେବଲୋକକୁ ଯିବା, ମୃତ୍ୟୁ, ମହାଭାରତର ୧୮ଶ ପର୍ବରୁ ଶେଷପର୍ବ ।
ସ୍ୱର୍ଗାବାସ—ପୁଂ. ବି. ସ୍ୱର୍ଗବାସୀ, ଯେଉଁମାନେ ସ୍ୱର୍ଗରେ ବାସ କରନ୍ତି ।
ସ୍ୱର୍ଗିରି—ବି. (୬ତତ୍) ସ୍ୱର୍ଗଗିରି,ସୁମେରୁ ପର୍ବତ ।
ସ୍ୱର୍ଗୀ—ପୁଂ.ବି. (ସ୍ୱର୍ଗ+ଇନ୍)ଦେବତା, (ପୁଂ.ବିଂ) ସ୍ୱର୍ଗତ, ମୃତ, ସ୍ୱର୍ଗବାସୀ, ଦୟାଶୀଳ, ସତ୍ୟବାନ୍, ଗୁରୁଦେବ ପୂଜକ ଓ ସାଧୁସଙ୍ଗମକାରୀ (ବ୍ୟକ୍ତି), (ସ୍ତ୍ରୀ) ସ୍ୱର୍ଗିଣୀ ।
ସ୍ୱର୍ଗୀୟ—ପୁଂ. ବିଂ. (ସ୍ୱର୍ଗ+ଈୟ)ସ୍ୱର୍ଗ ସମ୍ବନ୍ଧୀୟ, ସ୍ୱର୍ଗ ସମ୍ବନ୍ଧୀୟ ଗୁଣପୂର୍ଣ୍ଣ, ଯାହା ସ୍ୱର୍ଗସୁଖ ଦିଏ, ସ୍ୱର୍ଗସ୍ଥ, ସ୍ୱର୍ଗତ, ମୃତ, (ସ୍ତ୍ରୀ) ସ୍ୱର୍ଗୀୟା ।
ସ୍ୱର୍ଗୌକାଃ—ବି. (ବ.ବ୍ରୀ) ଦେବତା ।
ସ୍ୱର୍ଗ୍ୟ—ବିଂ.(ସ୍ୱର୍ଗ+ଯ) ସ୍ୱର୍ଗୀୟ,ଯେଉଁ କାର୍ଯ୍ୟଦ୍ୱାରା ଲୋକ ସ୍ୱର୍ଗ ଭୋଗକରେ ।
ସ୍ୱର୍ଚକ୍ଷା—ବି. ସବ ଦର୍ଶନ ।
ସ୍ୱର୍ଚ୍ଚ(ର୍ଚ୍ଚି)ନ—ବି. ଯେଉଁ ଅଗ୍ନିରୁ ସୁନ୍ଦର ଜ୍ୱାଳା ବହିର୍ଗତ ହୋଇଥାଏ ।
ସ୍ୱର୍ଜକ୍ଷାର—ବି. ସର୍ଜିକ୍ଷାର, ସାଜିମାଟି ।
ସ୍ୱର୍ଜି(ର୍ଜ୍ଜି)କ—ବି.( ସୁ+ଅର୍ଜ+ଇକ ) ସର୍ଜିକାକ୍ଷାର, ସାଜିମାଟି, ଯବକ୍ଷାର ।
ସ୍ୱର୍ଜିକାକ୍ଷାର—ବି. ସ୍ୱର୍ଜିକ୍ଷାର,ସାଜିମାଟି ।
ସ୍ୱର୍ଜିକାପାକ୍ୟ—ବି. ସ୍ୱର୍ଜିକ୍ଷାର ।
ସ୍ୱର୍ଜୀ—ବି.(ସୁ+ଅର୍ଜ+ଇନ୍)ସ୍ୱର୍ଜିକ୍ଷାର, ଯବକ୍ଷାର ।
ସ୍ୱର୍ଣ୍ଣ—ବି.(ସୁ+ଋଣ+କ.ଅ କିମ୍ବା ସୁ= ସୁନ୍ଦର ଅଟେ ଅର୍ଣ୍ଣ=ବର୍ଣ୍ଣ ଯାହାର) ସୁନା, ଧାତୁବିଶେଷ, ଧୁସ୍ତୁର, ଗୌରସୁବର୍ଣ୍ଣ ଶାକ, ନାଗକେଶର,ପୌରାଣିକ ନଦୀବିଶେଷ ।
ସ୍ୱର୍ଣ୍ଣକ—କ୍ଳୀ. ବି. ( ସ୍ୱର୍ଣ୍ଣ+ସ୍ୱାର୍ଥେ.କ ) ସ୍ୱର୍ଣ୍ଣଶବ୍ଦାର୍ଥ, ଧୁସ୍ତୁରଫଳ ।
ସ୍ୱର୍ଣ୍ଣକଣ—ବି. (୬ତତ୍) ସୁବର୍ଣ୍ଣର ରେଣୁ, (ବ.ବ୍ରୀ) କଣଗୁଗ୍ଗୁଲୁ ।
ସ୍ୱର୍ଣ୍ଣକଣା(କଣିକା)—ବି. (୬ତତ୍) ସୁବର୍ଣ୍ଣର ରେଣୁ ।
ସ୍ୱର୍ଣ୍ଣକୁଣ୍ଡ—ବି. ଧୂନା,ଝୁଣା,ରଙ୍ଗକରିବା ।
ସ୍ୱର୍ଣ୍ଣକଦଳୀ—ବି. ସ୍ୱର୍ଣ୍ଣଫଳା, ଚମ୍ପାକଦଳୀ ।
ସ୍ୱର୍ଣ୍ଣକମଳ—ବି. ରକ୍ତପଦ୍ମ ।
ସ୍ୱର୍ଣ୍ଣକାୟ—ବି.ସ୍ୱର୍ଣ୍ଣମୟ ଶରୀର,ଗରୁଡ଼, (ପୁଂ.ବିଂ) ସ୍ୱର୍ଣ୍ଣବର୍ଣ୍ଣଯୁକ୍ତ ଦେହବିଶିଷ୍ଟ, (ସ୍ତ୍ରୀ) ସ୍ୱର୍ଣ୍ଣକାୟା ।
ସ୍ୱର୍ଣ୍ଣକାର—ବି. ( ସ୍ୱର୍ଣ୍ଣ+କୃ+କ.ଅ ) ସୁନାରିବଣିଆ, ଜାତିବିଶେଷ ।
ସ୍ୱର୍ଣ୍ଣକୁମାରୀ—ଗ୍ରା. ସ୍ତ୍ରୀ. ବି. ରାଜସ୍ଥାନର ଜନୈକ କ୍ଷତ୍ରିୟ ରମଣୀ,ବଙ୍ଗର ସ୍ୱର୍ଗୀୟ ସାହିତ୍ୟପ୍ରେମିକା ସ୍ୱର୍ଣ୍ଣକୁମାରୀ ଦେବୀ ।
ସ୍ୱର୍ଣ୍ଣକୂଟ—ବି.ହିମାଳୟର ଶୃଙ୍ଗବିଶେଷ ।
ସ୍ୱର୍ଣ୍ଣକୃତ୍—ବିଂ. (ସ୍ୱର୍ଣ୍ଣ+କୃ+କ.କ୍ୱିପ୍) ସୁବର୍ଣ୍ଣ ପ୍ରସ୍ତୁତକାରୀ,(ପୁଂ.ବି)ସ୍ୱର୍ଣ୍ଣକାର, ବଣିଆଜାତି । [ କେତକୀ ।
ସ୍ୱର୍ଣ୍ଣକେତକୀ—ବି. ହଳଦିଆ ବର୍ଣ୍ଣର
ସ୍ୱର୍ଣ୍ଣକୋଣ—ଭବିଷ୍ୟ ବ୍ରହ୍ମଖଣ୍ଡ ବର୍ଣ୍ଣିତ ପୂର୍ବବଙ୍ଗରେ ପ୍ରବାହିତ ଗୋଟିଏ ନଦୀ ।
ସ୍ୱର୍ଣ୍ଣକ୍ଷିରିଣୀ(କ୍ଷୀରୀ)—ବି. କଟୁପର୍ଣ୍ଣୀ,ଅଗସ୍ତି ଗୁଳ୍ମ ।
ସ୍ୱର୍ଣ୍ଣଖଚିତ-ବିଂ. (୩ତତ୍) ସୁବର୍ଣ୍ଣମଣ୍ଡିତ ।
ସ୍ୱର୍ଣ୍ଣଗର୍ଭାଚଳ—ବି. ହିମବତ୍‌ଖଣ୍ଡ ବର୍ଣ୍ଣିତ ହିମାଳୟ ଶୃଙ୍ଗବିଶେଷ ।
ସ୍ୱର୍ଣ୍ଣଗିରି—ବି. ସୁମେରୁ ପର୍ବତ ।
ସ୍ୱର୍ଣ୍ଣଗୈରିକ—ବି. ସୁବର୍ଣ୍ଣ ଗୈରିକ, ବନମାଟି ।
ସ୍ୱର୍ଣ୍ଣଗ୍ରୀବ—ବି. ସ୍କନ୍ଦାନୁଚରବିଶେଷ ।
ସ୍ୱର୍ଣ୍ଣଗ୍ରୀବା—ବି.କାଳିକା ପୁରାଣରେ ଉକ୍ତ ନାଟକଶୈଳର ପୂର୍ବଭାଗରୁ ନିଃସୃତ ନଦୀବିଶେଷ ।
ସ୍ୱର୍ଣ୍ଣଘଟିତ—ବିଂ. ( ୩ତତ୍ ) ଯେଉଁ ଔଷଧରେ ସ୍ୱର୍ଣ୍ଣ ମିଳିତ ହୋଇଥାଏ ବା ବ୍ୟବହୃତ ହୋଇଥାଏ ।
ସ୍ୱର୍ଣ୍ଣଘର୍ମ—ବି. ବୈଦିକ ଅନୁବାଦ ମନ୍ତ୍ରବିଶେଷ ।
ସ୍ୱର୍ଣ୍ଣଚୂଡ଼(ଳ)—ପୁଂ.ବିଂ.(ବ.ବ୍ରୀ)ଯାହାର ଚୂଡ଼ାରେ ସ୍ୱର୍ଣ୍ଣଅଛି, ଯାହାର ମସ୍ତକ ସ୍ୱର୍ଣ୍ଣାଭ, (ବି) ପକ୍ଷିବିଶେଷ, ନୀଳକଣ୍ଠ ପକ୍ଷୀ, ( ଗ୍ରା.ବି ) ଓଡ଼ିଶାର ନୀଳଗିରି

ସ୍ୱର୍ଗୀୟ ରାଜଧାନୀ ସନ୍ନିହିତ ପର୍ବତର ନାମ, ସୁନଚଟ ପର୍ବତ;(ସ୍ତ୍ରୀ)ସ୍ୱର୍ଣ୍ଣଚୂଡ଼ା ।
ସ୍ୱର୍ଣ୍ଣଜ—ବିଂ. ( ସ୍ୱର୍ଣ୍ଣ+ଜନ୍+କ.ଅ ) ସ୍ୱର୍ଣ୍ଣରୁ ଜାତ;(ବି)ଟିଣଧାତୁ,ରଙ୍ଗଧାତୁ ।
ସ୍ୱର୍ଣ୍ଣଜାତି(ତୀ)—ବି.ପୀତବର୍ଣ୍ଣ ଜାଇଫୁଲ, ପୀତଜାତି ।
ସ୍ୱର୍ଣ୍ଣଜୀବନ୍ତୀ—ବି.ଗୁଳ୍ମବିଶେଷ,ହେମାହ୍ୱା ।
ସ୍ୱର୍ଣ୍ଣଜୀବା—ବି. ସ୍ୱର୍ଣ୍ଣଜୀବନ୍ତୀ ।
ସ୍ୱର୍ଣ୍ଣଜୀବୀ—ବିଂ.ସ୍ୱର୍ଣ୍ଣଅଲଙ୍କାରାଦି ନିର୍ମାଣ କରି ଯେ ଜୀବିକା ନିର୍ବାହ କରେ ।
ସ୍ୱର୍ଣ୍ଣଦ—ପୁଂ. ବିଂ.(ସ୍ୱର୍ଣ୍ଣ+ଦା+କ.ଅ) ସ୍ୱର୍ଣ୍ଣଦାନକାରୀ, ସ୍ୱର୍ଣ୍ଣଦାତା ।
ସ୍ୱର୍ଣ୍ଣଦୀ—ବି. ( ସ୍ୱଃ+ନଦୀ ) ୬ତତ୍; ସ୍ୱର୍ଗଙ୍ଗା,ମନ୍ଦାକିନୀ,ସିତଗଙ୍ଗା,ଆସାମ-ଦେଶର କାମାଖ୍ୟାର ପୂର୍ବଭାଗରେ ବହୁଥିବା ନଦୀ, ବୃଷ୍ଟିକାଳୀ, ବହୁଆଡ ।
ସ୍ୱର୍ଣ୍ଣଦୀଧିତି—ବି.ବ.ବ୍ରୀ; (ସ୍ୱର୍ଣ୍ଣ+ଦୀଧିତି) ଅଗ୍ନି ।
ସ୍ୱର୍ଣ୍ଣଦୁଗ୍ଧା—ସ୍ତ୍ରୀ. ବି. ସ୍ୱର୍ଣ୍ଣକ୍ଷିରିକା ।
ସ୍ୱର୍ଣ୍ଣଦ୍ରୁ—ବି. ଆରଗ୍ୱଧ, ସୁନାରି ଗଛ ।
ସ୍ୱର୍ଣ୍ଣଧାତୁ—ବି. ସ୍ୱର୍ଣ୍ଣଗୈରିକ, ଗେରୁ-ମାଟି, ସୁବର୍ଣ୍ଣ ।
ସ୍ୱର୍ଣ୍ଣନଦୀ—ସ୍ତ୍ରୀ. ବି. ହିମବତ୍‌ଖଣ୍ଡ ବର୍ଣ୍ଣିତ ହିମାଳୟରେ ପ୍ରବାହିତ ନଦୀବିଶେଷ ।
ସ୍ୱର୍ଣ୍ଣନାଭ—ବି. ଶାଳଗ୍ରାମବିଶେଷ ।
ସ୍ୱର୍ଣ୍ଣନିଭ—କ୍ଲୀ. ବି. ସ୍ୱର୍ଣ୍ଣଗୈରିକ, (ବିଂ) ସ୍ୱର୍ଣ୍ଣସଦୃଶ, ସ୍ୱର୍ଣ୍ଣତୁଲ୍ୟ ।
ସ୍ୱର୍ଣ୍ଣପକ୍ଷ—ପୁଂ.ବିଂ. (ବ.ବ୍ରୀ) ସୁବର୍ଣ୍ଣପକ୍ଷ-ବିଶିଷ୍ଟ, (ବି) ଗରୁଡ଼, (ସ୍ତ୍ରୀ) ସ୍ୱର୍ଣ୍ଣପକ୍ଷା ।
ସ୍ୱର୍ଣ୍ଣପତ୍ର-ବି.ସୁବର୍ଣ୍ଣ ପତ୍ର,ସୁନାର ପାତଆ ।
ସ୍ୱର୍ଣ୍ଣପତ୍ରିକା-ବି.ସୁନାମକେଇ,ସୁନାମୁଖୀ ।
ସ୍ୱର୍ଣ୍ଣପର୍ଣ୍ଣୀ(ମୁଖୀ) —ବି. ସୁନାମକେଇ, ସୁନାମୁଖୀ ।
ସ୍ୱର୍ଣ୍ଣପଦ୍ମ—ବି. ସ୍ୱର୍ଣ୍ଣବର୍ଣ୍ଣବିଶିଷ୍ଟ ପଦ୍ମଫୁଲ, (ଏହା ସ୍ୱର୍ଗଙ୍ଗାରେ ଫୁଟେ) ।
ସ୍ୱର୍ଣ୍ଣପଦ୍ମା—ବି. ସ୍ୱର୍ଗଙ୍ଗା, ମନ୍ଦାକିନୀ ।
ସ୍ୱର୍ଣ୍ଣପର୍ଣ୍ଣୀ—ବି. ସ୍ୱର୍ଣ୍ଣଜୀବନ୍ତୀ ।
ସ୍ୱର୍ଣ୍ଣପାଟକ—ବି. ଟଙ୍କଣ, ଟାଙ୍କଣା ।
ସ୍ୱର୍ଣ୍ଣପାରେବତ—କ୍ଲୀ. ବି. ଦ୍ୱୀପାନ୍ତର ଖର୍ଜୁର, ମହାପାରେବତ ଫଳ ।
ସ୍ୱର୍ଣ୍ଣପିଞ୍ଜର—ବି.ସୁନାରେ ତିଆରି ପିଞ୍ଜୁରି ।
ସ୍ୱର୍ଣ୍ଣପୁର—ବି.(କ.ଧା)ସ୍ୱର୍ଣ୍ଣନିର୍ମିତ ନଗର, ସୁନାରେ ତିଆରି ଘର, ( ଗ୍ରା.ବି ) ସୋନପୁର ।
ସ୍ୱର୍ଣ୍ଣପୁଷ୍ପ—ବି. ( ବ.ବ୍ରୀ ) ଚମ୍ପକ ବୃକ୍ଷ, ଆରଗ୍ୱଧ ବା ସୁନାରି ଗଛ, ବରୁର ବା କଣ୍ଟାକୁସୁମ, କପିତ୍ଥ, ପାଣିକଖାରୁ, (କ.ଧା)ସୁନାରେ ତିଆରି ଫୁଲ ।
ସ୍ୱର୍ଣ୍ଣପୁଷ୍ପଧ୍ୱଜା—ବି.ସ୍ୱର୍ଣ୍ଣାଲୀ ବୃକ୍ଷ, ସୁନାରି ଗଛ ।
ସ୍ୱର୍ଣ୍ଣପୁଷ୍ପା—ବି. ମେଣ୍ଢାଶିଙ୍ଗା,ମହୁରୀ, କଷ-ଲଙ୍କୁଳିଆ, ସୁନାରି ଗଛ,ସାତଲା,ସ୍ୱର୍ଣ୍ଣ-କେତକୀ ।
ସ୍ୱର୍ଣ୍ଣପୁଷ୍ପୀ—ବି.ସୁନାରି ଗଛ,ସ୍ୱର୍ଣ୍ଣକେତକୀ, କଷଲଙ୍କୁଳିଆ ।
ସ୍ୱର୍ଣ୍ଣପ୍ରତିମା—ସ୍ତ୍ରୀ.ବି. (କ.ଧା)ସ୍ୱର୍ଣ୍ଣନିର୍ମିତ ପ୍ରତିକୃତି, ସୁନାର ପ୍ରତିମା ।
ସ୍ୱର୍ଣ୍ଣପ୍ରଭ—ପୁଂ.ବିଂ.(ସ୍ୱର୍ଣ୍ଣ+ପ୍ରଭା)ବ.ବ୍ରୀ; ସ୍ୱର୍ଣ୍ଣପରି ଆଭାବିଶିଷ୍ଟ, (ସ୍ତ୍ରୀ) ସ୍ୱର୍ଣ୍ଣପ୍ରଭା ।
ସ୍ୱର୍ଣ୍ଣପ୍ରସୂ—ସ୍ତ୍ରୀ. ବିଂ. ସ୍ୱର୍ଣ୍ଣପ୍ରସବକାରିଣୀ, ସ୍ୱର୍ଣ୍ଣୋତ୍ପାଦିକା (ଭୂମି) ।
ସ୍ୱର୍ଣ୍ଣପ୍ରସ୍ଥ—ବି. ଜମ୍ବୁଦ୍ୱୀପର ମଧ୍ୟରେ ଥିବା ଉପଦ୍ୱୀପବିଶେଷ ।
ସ୍ୱର୍ଣ୍ଣଫଳ—ବି. (ବ.ବ୍ରୀ) ଧାତୁରା ।
ସ୍ୱର୍ଣ୍ଣଫଳା—ସ୍ତ୍ରୀ. ବି. ପୀତରମ୍ଭା, ଚମ୍ପା-କଦଳୀ ।
ସ୍ୱର୍ଣ୍ଣବଣିକ୍(ସ୍ୱର୍ଣ୍ଣବଣିଜ୍)—ବି. ସ୍ୱର୍ଣ୍ଣକାର, ସୁନାରି ବଣିଆ ।
ସ୍ୱର୍ଣ୍ଣବର୍ଣ୍ଣ—ବି. (୬ତତ୍) ସୁନାର ରଙ୍ଗ, (ପୁଂ.ବିଂ-ବ.ବ୍ରୀ)ସୁବର୍ଣ୍ଣପରି ବର୍ଣ୍ଣବିଶିଷ୍ଟ, ସୁନାପରି ଗୌର, ( ସ୍ତ୍ରୀ ) ସ୍ୱର୍ଣ୍ଣବର୍ଣ୍ଣା, (ଗ୍ରା.ବି)ସ୍ୱର୍ଣ୍ଣାକ୍ଷର ଦେଖ,କଣଗୁଗୁଳ, ହରତାଳ, ସ୍ୱର୍ଣ୍ଣଗୈରିକ,ଦାରୁହଳଦୀ ।
ସ୍ୱର୍ଣ୍ଣବର୍ଣ୍ଣା—ସ୍ତ୍ରୀ. ବି. ହରିଦ୍ରା, ହଳଦୀ, (ସ୍ତ୍ରୀ.ବିଂ) ସ୍ୱର୍ଣ୍ଣପରି ବର୍ଣ୍ଣବିଶିଷ୍ଟା ।
ସ୍ୱର୍ଣ୍ଣବର୍ଣ୍ଣାକ—ବି. ମୂର୍ଦ୍ଧାରଶଙ୍ଖ,କଂକୁଷ୍ଠ ।
ସ୍ୱର୍ଣ୍ଣବର୍ଣ୍ଣାଭା—ସ୍ତ୍ରୀ. ବି. ଜୀବନ୍ତୀ ।
ସ୍ୱର୍ଣ୍ଣବଳୟ—ବି. ( କ.ଧା ) ସ୍ୱର୍ଣ୍ଣନିର୍ମିତ ହାତଖଡୁ ।
ସ୍ୱର୍ଣ୍ଣବଲ୍କଲ-ବି.ଶ୍ୟୋଣାକବୃକ୍ଷ,ଫଣଫଣା ।
ସ୍ୱର୍ଣ୍ଣବଲ୍ଲୀ—ବି. ଲତାବିଶେଷ, କାକବଲ୍ଲୀ, ଆରଗ୍ୱଧ, ସୁନାରି ଗଛ ।
ସ୍ୱର୍ଣ୍ଣବାଲୁକା—ବି. (କ.ଧା) ସ୍ୱର୍ଣ୍ଣରେଣୁ ମିଶ୍ରିତ ବାଲି, ସ୍ୱର୍ଣ୍ଣରେଣୁ ।
ସ୍ୱର୍ଣ୍ଣବିନ୍ଦୁ—ବି. ସ୍ୱର୍ଣ୍ଣରେଣୁ, ସ୍ୱର୍ଣ୍ଣକଣା, ବିଷ୍ଣୁଙ୍କର ନାମ ।
ସ୍ୱର୍ଣ୍ଣବୀଜ—ବି. ଧାତୁରାମଞ୍ଜି ।
ସ୍ୱର୍ଣ୍ଣଭସ୍ମ—ବି.ଆୟୁର୍ବେଦୋକ୍ତ ବୈଜ୍ଞାନିକ ପ୍ରକ୍ରିୟାରେ ପାଉଁଶରୂପେ ପରିଣତ ସ୍ୱର୍ଣ୍ଣ ।
ସ୍ୱର୍ଣ୍ଣଭାକ୍—ପୁଂ. ବି. ସୂର୍ଯ୍ୟ ।
ସ୍ୱର୍ଣ୍ଣଭୂମି—ବି. (କ.ଧା) ସ୍ୱର୍ଣ୍ଣପ୍ରସୂ ଭୂମି, ଅତି ଉର୍ବରା ବା ଫଳପ୍ରସୂ ଭୂମି, ସ୍ୱର୍ଣ୍ଣ-ଖଣିଯୁକ୍ତ ଭୂମି, ଗୁଡ଼ତ୍ୱକ୍, ଦାରୁଚିନି ।
ସ୍ୱର୍ଣ୍ଣଭୂଷଣ—ବି. ( କ.ଧା ) ସ୍ୱର୍ଣ୍ଣନିର୍ମିତ ଅଳଙ୍କାର, ଆରଗ୍ୱଧ, ସୁନାରି ଗଛ, ସ୍ୱର୍ଣ୍ଣଗୈରିକ ।
ସ୍ୱର୍ଣ୍ଣଭୃଙ୍ଗରାଜ—ବି. ଏକପ୍ରକାର ଭୃଙ୍ଗ-ରାଜ ଗୁଳ୍ମ ।
ସ୍ୱର୍ଣ୍ଣଭୃଙ୍ଗାର—ବି. (କ.ଧା) ସ୍ୱର୍ଣ୍ଣନିର୍ମିତ ଝରି, ସ୍ୱର୍ଣ୍ଣଭୃଙ୍ଗରାଜ ।
ସ୍ୱର୍ଣ୍ଣମଣ୍ଡଳ—ବି. ସ୍ୱର୍ଣ୍ଣଗୈରିକ ।
ସ୍ୱର୍ଣ୍ଣମଣ୍ଡିତ—ବିଂ. (୩ତତ୍) ସୁନା ଦ୍ୱାରା ଭୂଷିତ, ସ୍ୱର୍ଣ୍ଣଖଚିତ ।
ସ୍ୱର୍ଣ୍ଣମୟ—ବିଂ. (ସ୍ୱର୍ଣ୍ଣ+ମୟ) ସ୍ୱର୍ଣ୍ଣ-ନିର୍ମିତ,ସ୍ୱର୍ଣ୍ଣରେ ପୂର୍ଣ୍ଣ,(ସ୍ତ୍ରୀ)ସ୍ୱର୍ଣ୍ଣମୟୀ ।
ସ୍ୱର୍ଣ୍ଣମୟୀ(ମହାରାଣୀ)—ସ୍ତ୍ରୀ. ବି. ( ନାମ ) ବଙ୍ଗପ୍ରଦେଶର କାଶିମ ବଜାରର ସ୍ୱର୍ଗତା ଦାନଶୀଳା ଭୂମ୍ୟଧିକାରିଣୀ ।
ସ୍ୱର୍ଣ୍ଣମହା—ବି.(ନାମ)କାଳିକା ପୁରାଣୋକ୍ତ ନଦୀବିଶେଷ ।
ସ୍ୱର୍ଣ୍ଣମାକ୍ଷିକ—ବି. ଉପଧାତୁବିଶେଷ, ଦେଖିବାକୁ ସୁନାପରି ଈଷତ୍ କୃଷ୍ଣବର୍ଣ୍ଣ ଭାଙ୍ଗିଲେ ମଧ୍ୟଭାଗରେ ସ୍ୱର୍ଣ୍ଣର ଆଭା ଦେଖାଯାଏ ।
ସ୍ୱର୍ଣ୍ଣମାତୃ—ସ୍ତ୍ରୀ. ବି. ମହାଜମ୍ବୁ, ସ୍ୱର୍ଣ୍ଣ-ମାଳା, ହିମାଳୟସ୍ଥ କ୍ଷୁଦ୍ର ନଦୀବିଶେଷ ।
ସ୍ୱର୍ଣ୍ଣମାରଣ—ବି. ବୈଦ୍ୟଶାସ୍ତ୍ରୋକ୍ତ ବିଧି

ଦ୍ୱାରା ସ୍ୱର୍ଣ୍ଣକୁ ଶୋଧନ କରିବା,ଦ୍ରବ୍ୟ ସଂଯୋଗ ଦ୍ୱାରା ଅନ୍ୟ ଧାତୁକୁ ସୁନାରେ ପରିବର୍ତ୍ତନ କରିବା ।

ସ୍ୱର୍ଣ୍ଣମୁଖୀ—ବି.ସ୍ୱର୍ଣ୍ଣପର୍ଣ୍ଣୀ,ସୁନାମୁକେଇ ।

ସ୍ୱର୍ଣ୍ଣମୁଦ୍ରା—ବି.ଅସରଫୀ,ସୁନାମୋହର ।

ସ୍ୱର୍ଣ୍ଣମୂଳ—କଥାସରିତ୍ସାଗରୋକ୍ତ ଶୈଳବିଶେଷ ।

ସ୍ୱର୍ଣ୍ଣମୃଗ—ପୁଂ. ବି. (କ.ଧା) ସୀତାହରଣ ଉଦ୍ଦେଶ୍ୟରେ ରାମଚନ୍ଦ୍ରଙ୍କୁ ପ୍ରଲୋଭିତ କରି ଦୂରସ୍ଥ ଅରଣ୍ୟରୁ ନେଇଯିବା ପାଇଁ ରାବଣର ଆଦେଶକ୍ରମେ ଧାରଣ କରିଥିବା ମାରୀଚ ରାକ୍ଷସର ସ୍ୱର୍ଣ୍ଣାଭିଜ୍ଞାପକ ମୃଗମୂର୍ତ୍ତି ।

ସ୍ୱର୍ଣ୍ଣଯୂଥିକା(ଯୂଥୀ)-ବି.ପୀତବର୍ଣ୍ଣ ଯୂଇଫୁଲ ।

ସ୍ୱର୍ଣ୍ଣରମ୍ଭା—ବି. ସ୍ୱର୍ଣ୍ଣକଦଳୀ, ଚମ୍ପାକଦଳୀ ।

ସ୍ୱର୍ଣ୍ଣରଥ—ବି. ରାଜପିଇଲ ।

ସ୍ୱର୍ଣ୍ଣରେଖା—ସ୍ତ୍ରୀ.ବି.ସୁବର୍ଣ୍ଣରେଖା ନଦୀ, ସୁବର୍ଣ୍ଣର ରେଖା, ବଦ୍ୟାଧରୀବିଶେଷ ।

ସ୍ୱର୍ଣ୍ଣରେଣୁ—ବି. ସୁନାର ଚୂନା ।

ସ୍ୱର୍ଣ୍ଣରେତାଃ—ପୁଂ. ବି. ସୂର୍ଯ୍ୟ ।

ସ୍ୱର୍ଣ୍ଣଲତା—ବି.ଜ୍ୟୋତିଷ୍ମତୀ,ଫୁଟିଫୁଟିକା ଗୁଳ୍ମ, ସ୍ୱର୍ଣ୍ଣଜୀବନ୍ତୀ, (ଲ.ଅର୍ଥ) କ୍ଷୀଣଦେହା ସୁନ୍ଦରୀ ସ୍ତ୍ରୀ !

ସ୍ୱର୍ଣ୍ଣଲୀ–ସ୍ତ୍ରୀ.ବି.ସ୍ୱର୍ଣ୍ଣପୁଷ୍ପୀ,ସୁନାରିଗଛ ।

ସ୍ୱର୍ଣ୍ଣଶିଖ—ବି. ନୀଳକଣ୍ଠ ପକ୍ଷୀ ।

ସ୍ୱର୍ଣ୍ଣଶୀର୍ଷ—ବିଂ.(ବ.ବ୍ରୀ)ସ୍ୱର୍ଣ୍ଣବର୍ଣ୍ଣ ମସ୍ତକବିଶିଷ୍ଟ, ଯାହାର ମସ୍ତକ ସୁନାପରି ।

ସ୍ୱର୍ଣ୍ଣଶେଫାଳିକା—ବି.ଆରଗ୍ବଧ,ସୁନାରି ଗଛ, ପୀତଶେଫାଳିକା ।

ସ୍ୱର୍ଣ୍ଣସିନ୍ଦୂର—ବି.(ବୈଦ୍ୟକ)ରସସିନ୍ଦୂର, ପାରଦ ଓ ଗନ୍ଧକ ମିଶ୍ରିତ ପୁଟପାକଶୋଧିତ ସ୍ୱର୍ଣ୍ଣଘଟିତ ଔଷଧବିଶେଷ ।

ସ୍ୱର୍ଣ୍ଣସୁଯୋଗ—ଗ୍ରା. ବି. ସ୍ୱର୍ଣ୍ଣପରି ମୂଲ୍ୟବାନ୍ ବା ଶ୍ରେଷ୍ଠସୁଯୋଗ,ଶ୍ରେଷ୍ଠସୁଯୋଗ ବା ଅବସର ।

ସ୍ୱର୍ଣ୍ଣସୂ—ସ୍ତ୍ରୀ. ବିଂ. ସ୍ୱର୍ଣ୍ଣପ୍ରସବକାରୀ, ସ୍ୱର୍ଣ୍ଣପ୍ରସବକାରିଣୀ ।

ସ୍ୱର୍ଣ୍ଣସ୍ତେନ—ବି. (ଷତତ୍) ସୁନାଚୋର, ଯେ ସୁନା ଚୋରିକରେ ।

ସ୍ୱର୍ଣ୍ଣସ୍ତେୟ—ବି. (ଷତତ୍) ସୁନା ଚୋରି କରିବାରୂପ ପାପ ।

ସ୍ୱର୍ଣ୍ଣହାଲି—ବି.ଆରଗ୍ବଧ,ସୁନାରିଗଛ ।

ସ୍ୱର୍ଣ୍ଣାକର—ବି.(ଷତତ୍) ସୁନାର ଖଣି, ଯେଉଁ ଖଣିରୁ ସୁନା ବାହାରେ ।

ସ୍ୱର୍ଣ୍ଣାକ୍ଷର—ବି. ( କ.ଧା ) ସ୍ୱର୍ଣ୍ଣରଚିତ ଅକ୍ଷର,ସ୍ୱର୍ଣ୍ଣପରି ଉଜ୍ଜ୍ୱଳ ଓ ଚିରସ୍ଥାୟୀ ଅକ୍ଷର,ଯେଉଁ ଅକ୍ଷର ସହଜରେ ଲିଭିଯାଏନାହିଁ ।

ସ୍ୱର୍ଣ୍ଣାଙ୍ଗ—ବି. ଆରଗ୍ବଧ,ସୁନାରି ଗଛ ।

ସ୍ୱର୍ଣ୍ଣାଙ୍ଗୁରୀୟ(କ)—ବି.(କ.ଧା)ସ୍ୱର୍ଣ୍ଣନିର୍ମିତ ଅଙ୍ଗୁରୀୟ, ସୁନାମୁଦି ।

ସ୍ୱର୍ଣ୍ଣାଦ୍ରି—ବି. (କ.ଧା) ସ୍ୱର୍ଣ୍ଣମୟ ପର୍ବତ, ସୁମେରୁ ପର୍ବତ, ସ୍ୱର୍ଣ୍ଣାଭ ପର୍ବତ, ପୁରୀଜିଲ୍ଲାର ଭୁବନେଶ୍ୱର ତୀର୍ଥର ପୌରାଣିକ ନାମାନ୍ତର ।

ସ୍ୱର୍ଣ୍ଣାଦ୍ରିମହୋଦୟ-ବି.(ନାମ)ଭୁବନେଶ୍ୱର ତୀର୍ଥର ମାହାତ୍ମ୍ୟ ଓ ସେଠାରେ ପ୍ରତିଷ୍ଠିତ ଲିଙ୍ଗମାନଙ୍କ ବର୍ଣ୍ଣନାତ୍ମକ ପୌରାଣିକ ଗ୍ରନ୍ଥ ।

ସ୍ୱର୍ଣ୍ଣାଭ—ବିଂ. (ସ୍ୱର୍ଣ୍ଣ + ଆଭା) ବ.ବ୍ରୀ, ସ୍ୱର୍ଣ୍ଣର ପ୍ରଭାଯୁକ୍ତ, (ସ୍ତ୍ରୀ) ସ୍ୱର୍ଣ୍ଣାଭା, (ବି) ହରିତାଳ ।

ସ୍ୱର୍ଣ୍ଣାଭରଣ—ବି. (କ.ଧା) ସ୍ୱର୍ଣ୍ଣଭୂଷଣ, ସ୍ୱର୍ଣ୍ଣନିର୍ମିତ ଗହଣା ।

ସ୍ୱର୍ଣ୍ଣାଭା—ସ୍ତ୍ରୀ. ବି. ପୀତପୁଷ୍ପା,ଯୂଥିକା ।

ସ୍ୱର୍ଣ୍ଣାଲଙ୍କାର—ପୁଂ. ବି. (କ.ଧା) ସ୍ୱର୍ଣ୍ଣଭୂଷଣ,ସୁବର୍ଣ୍ଣ ନିର୍ମିତ ଆଭରଣ,ସୁନାର ଗହଣା ।

ସ୍ୱର୍ଣ୍ଣାରି—ବି. (ଷତତ୍) ଗନ୍ଧକ, ସୀସକ ।

ସ୍ୱର୍ଣ୍ଣାରୀ—ବି. ଷତତ୍ଃ ( ସ୍ୱଃ+ନାରୀ ) ସ୍ୱର୍ଗଣିକା ଦେଖ ।

ସ୍ୱର୍ଣ୍ଣାଳୁ—ବି. ସ୍ୱର୍ଣ୍ଣୁଲୀ ଦେଖ ।

ସ୍ୱର୍ଣ୍ଣାହ୍ୱା—ସ୍ତ୍ରୀ. ବି. ସ୍ୱର୍ଣ୍ଣକ୍ଷୀରୀ ଦେଖ ।

ସ୍ୱର୍ଣ୍ଣିକା—ବି. ଧନିଆ ।

ସ୍ୱର୍ଣ୍ଣୁଲୀ-ବି.ସ୍ୱର୍ଣ୍ଣଲୀ,ଆରଗ୍ବଧ,ସୁନାରି ।

ସ୍ୱର୍ଣ୍ଣେତା—ପୁଂ. ବି. ସ୍ୱର୍ଗାଧିପତି,ସ୍ୱର୍ଗର ନେତା ।

ସ୍ୱର୍ଣ୍ଣୋପଧାତୁ—ବି.ସ୍ୱର୍ଣ୍ଣମାକ୍ଷିକ ଦେଖ ।

ସ୍ୱର୍ତ୍ତି—(ଧାତୁ) ଗତି କରିବା, ଦୁଃଖରେ ଜୀବନ ଧାରଣ କରିବା, ଆତଙ୍କଯୁକ୍ତ ହେବା ।

ସ୍ୱର୍ଦ—(ଧାତୁ) ପ୍ରୀତି କରିବା,ରସାସ୍ୱାଦନ କରିବା, ଖୁଣ୍ଟିବା ।

ସ୍ୱର୍ଧୂନୀ—ବି.(ସ୍ୱଃ+ଧୁନୀ)ଗଙ୍ଗା,ସୁରଧୁନୀ ।

ସ୍ୱର୍ନଗରୀ—ବି. (ଷତତ୍) ଅମରାବତୀ ।

ସ୍ୱର୍ନଦୀ—ବି. (ଷତତ୍) ସ୍ୱର୍ଗଙ୍ଗା, ସ୍ୱର୍ଣ୍ଣଦୀ ।

ସ୍ୱର୍ପତି—ପୁଂ. ବି. (ଷତତ୍) ଦେବରାଜ, ଇନ୍ଦ୍ର ।

ସ୍ୱର୍ବଧୂ—ସ୍ତ୍ରୀ.ବି.ସ୍ୱର୍ଗୀୟା ସ୍ତ୍ରୀ,ଅପ୍ସରାମାନେ ।

ସ୍ୱର୍ବାପୀ—ବି. ଗଙ୍ଗାନଦୀ ।

ସ୍ୱର୍ବେଶ୍ୟା—ବି. ଅପ୍ସରା ।

ସ୍ୱର୍ବୈଦ୍ୟ—ବି. ( ଷତତ୍ ) ସ୍ୱର୍ଗରେ ଦେବତାମାନଙ୍କ ଚିକିତ୍ସକ, ଅଶ୍ୱିନୀକୁମାର ଦ୍ୱୟ ।

ସ୍ୱର୍ଭାନବ—ବି. ଗୋମେଦକ ମଣି ।

ସ୍ୱର୍ଭାନୁ—ବି. ( ସ୍ୱଃ+ଭାନୁ ) ରାହୁ, ସତ୍ୟଭାମାଙ୍କ ଗର୍ଭଜାତ ଶ୍ରୀକୃଷ୍ଣଙ୍କର ଏକ ପୁତ୍ର ।

ସ୍ୱର୍ଭାନୁସୂଦନ—ପୁଂ. ବି. ସୂର୍ଯ୍ୟ ।

ସ୍ୱର୍ଯାତ—ପୁଂ. ବିଂ. (ସ୍ୱ + ଯା + କ୍ତ) ସ୍ୱର୍ଗଗତ, ପରଲୋକଗତ, ମୃତ, (ସ୍ତ୍ରୀ) ସ୍ୱର୍ଯାତା ।

ସ୍ୱର୍ଯାଣ—ବି. ସ୍ୱର୍ଗଗମନ,ସ୍ୱର୍ଗପ୍ରୟାଣ ।

ସ୍ୱର୍ଲୋକ—ବି.ସ୍ୱର୍ଗଲୋକ, ଦେବଲୋକ, ସ୍ୱର୍ଗ ।

ସ୍ୱର୍ହଣ—ବି.(ସ୍ୱ + ଅର୍ହ + ଅନ)ସୁଷ୍ଠୁ ପୂଜା ।

ସ୍ୱର୍ହତମ—ବିଂ.ଅତିଶୟ ପୂଜ୍ୟ,ପୂଜ୍ୟତମ ।

ସ୍ୱଲକ୍ଷଣ—ବିଂ. ନିଜ ଲକ୍ଷଣଯୁକ୍ତ ।

ସ୍ୱଲଙ୍କୃତ—ବିଂ. ଉତ୍ତମରୂପେ ଅଲଙ୍କୃତ, ଉତ୍ତମରୂପେ ଶୋଭିତ ।

ସ୍ୱଲିଙ୍ଗ—ବି. ସ୍ୱୀୟଲିଙ୍ଗ, ନିଜ ଚିହ୍ନ, (ବିଂ) ସ୍ୱୀୟ ଚିହ୍ନବିଶିଷ୍ଟ ।

ସ୍ୱଲୀନ—ପୁଂ. ବି. ଦାନବବିଶେଷ ।

ସ୍ୱଳ୍ପ—ବିଂ.(ସୁ + ଅଳ୍ପ)ଟିକିଏ, ଅତ୍ୟଳ୍ପ, ଅତି କ୍ଷୁଦ୍ର, ଅତି ସାମାନ୍ୟ,(ସ୍ତ୍ରୀ)ସ୍ୱଳ୍ପା ।

ସ୍ୱଳ୍ପକ—ବିଂ.(ସ୍ୱଳ୍ପ+କ)ସ୍ୱଳ୍ପଶବ୍ଦାର୍ଥ ।

ସ୍ୱଳ୍ପକନ୍ଦ—ବି. (ବ.ଗ୍ରା) କଶେରୁ ।
ସ୍ୱଳ୍ପକାଷ୍ଠ—ବି. ( ବ.ଗ୍ରା ) ଶଙ୍ଖଆଳୁ, ଶ୍ୱେତବର୍ଣ୍ଣ ଆଳୁ ।
ସ୍ୱଳ୍ପକେଶ—ବି. (କ.ଧା) ଅତି ସ୍ୱଳ୍ପ-ବାଳ, (ପୁଂ.ବିଂ-ବ.ଗ୍ରା) ସ୍ୱଳ୍ପକେଶୀ ଦେଖ, (ସ୍ତ୍ରୀ) ସ୍ୱଳ୍ପକେଶା ।
ସ୍ୱଳ୍ପକେଶର(ଗ୍ରା)—ବି.(ସ୍ୱଳ୍ପ+କେଶର +ଇନ୍)କୋବଦାରବୃକ୍ଷ,କାଞ୍ଚନଗଛ ।
ସ୍ୱଳ୍ପକେଶିନୀ—ସ୍ତ୍ରୀ. ବିଂ. (ସ୍ୱଳ୍ପ+କେଶ +ଇନ୍+ଈ) ଅତ୍ୟଳ୍ପ କେଶବିଶିଷ୍ଟା (ସ୍ତ୍ରୀ) ।
ସ୍ୱଳ୍ପକେଶୀ—ବି. ଭୂତକେଶ ନାମକ ଘାସ, ଶ୍ୱେତଦୂବା, ଗୋଲୋମୀ, ବଚ, (ପୁଂ.ବିଂ.) ସ୍ୱଳ୍ପକେଶିନୀର ପୁଂଲିଙ୍ଗ ।
ସ୍ୱଳ୍ପଘଣ୍ଟା—ସ୍ତ୍ରୀ. ବି. ଆରଣ୍ୟ ଶଣ ବୃକ୍ଷ, ବନ ଶଣ ।
ସ୍ୱଳ୍ପଚଟକ—ବି. ବାସ୍ତୁଚଢ଼େଇ ।
ସ୍ୱଳ୍ପଜମ୍ବୁକ—ବି. କୋକିଶିଆଳ ।
ସ୍ୱଳ୍ପତରୁ(କ୍ଷୁପ)—ବି. କେମୁକ,ଉତ୍ତର ଦେଶଜାତ ବୃକ୍ଷବିଶେଷ ।
ସ୍ୱଳ୍ପଦୃଷ୍ଟି—ପୁଂ ଓ ସ୍ତ୍ରୀ. ବିଂ. ( ବ.ଗ୍ରା ) କ୍ଷୀଣଦୃଷ୍ଟି, ଯାହାର ଦୃଷ୍ଟିଶକ୍ତି କ୍ଷୀଣ ।
ସ୍ୱଳ୍ପପତ୍ରକ—ବି. (ସ୍ୱଳ୍ପ+ପତ୍ର+କ) ଗୌରଶାକ, ମିଧୁକଭେଦ ।
ସ୍ୱଳ୍ପପର୍ଣ୍ଣୀ—ବି. (ସ୍ୱଳ୍ପ+ପର୍ଣ୍ଣ+ଇନ୍) ମେଦା ନାମକ ଅଷ୍ଟବର୍ଗୀୟ ଔଷଧି ।
ସ୍ୱଳ୍ପଫଳା-ବି. ହପୁଷାଭେଦ, ମତ୍ସ୍ୟାକୃତ ଫଳବିଶିଷ୍ଟ ଗୁଳ୍ମବିଶେଷ ।
ସ୍ୱଳ୍ପବର୍ତ୍ତୁଳ—ବି. ମଟର ।
ସ୍ୱଳ୍ପବଲ୍ଲୀ-ବି.(ବ.ଗ୍ରା)ତେଜବତୀ ବୃକ୍ଷ ।
ସ୍ୱଳ୍ପବିରାମଜ୍ୱର—ବି. ଯେଉଁ ଜ୍ୱରରେ ମଝିରେ ମଝିରେ ଅଳ୍ପକାଳ ପାଇଁ ଦେହର ତାପ କମିଯାଇ ପୁଣି ବଢ଼େ ।
ସ୍ୱଳ୍ପଭାଷୀ—ପୁଂ.ବିଂ. (ସ୍ୱଳ୍ପ+ଭାଷ୍+ କ.ଇନ୍) ଅତି ଅଳ୍ପ ବାକ୍ୟଳାପୀ,ଯେ ଖୁବ୍ କମ୍ କଥା କହେ,(ସ୍ତ୍ରୀ)ସ୍ୱଳ୍ପଭାଷିଣୀ ।
ସ୍ୱଳ୍ପମାତ୍ର—ପୁଂ. ବି ଓ ବିଂ ଓ କ୍ରି. ବିଂ. (ସ୍ୱଳ୍ପ+ମାତ୍ରା)ବ.ଗ୍ରା;ଅତି ଅଳ୍ପମାତ୍ରା-ବିଶିଷ୍ଟ, ଅତି ଅଳ୍ପ, (ସ୍ତ୍ରୀ) ସ୍ୱଳ୍ପମାତ୍ରା ।
ସ୍ୱଳ୍ପମାତ୍ରା—ବି. (କ.ଧା) ଅତି ଅଳ୍ପ-ପରିମାଣ,(ସ୍ତ୍ରୀ.ବିଂ)ସ୍ୱଳ୍ପମାତ୍ରର ସ୍ତ୍ରୀଲିଙ୍ଗ
ସ୍ୱଳ୍ପଶବ୍ଦବାଚ୍ୟଦୋଷ—ବି. ରସଦୋଷ-ବିଶେଷ ।
ସ୍ୱଳ୍ପଶଣ୍ଡା—ବି. ଶଣପୁଷ୍ପୀ ।
ସ୍ୱଳ୍ପଶରୀର—ବିଂ. କ୍ଷୁଦ୍ରକାୟ, କ୍ଷୁଦ୍ର-ଦେହବିଶିଷ୍ଟ ।
ସ୍ୱଳ୍ପଶୃଗାଳ—ବି. ଶେହଡକ ମୃଗ, ବନରେହା ।
ସ୍ୱଳ୍ପସଂଘାତବୀର୍ଯ୍ୟ—ବି. ପକ୍ଷିବିଶେଷ, ଶରମଳୁସ୍ୱା ପକ୍ଷୀ ।
ସ୍ୱଳ୍ପେଚ୍ଛୁ—ବିଂ. ଅତ୍ୟଳ୍ପ ଇଚ୍ଛାଯୁକ୍ତ, ଅତିଶୟ ଅଳ୍ପାଭିଲାଷବିଶିଷ୍ଟ ।
ସ୍ୱଶ୍ଳାଘା—ସ୍ତ୍ରୀ.ବି.ଆତ୍ମଶ୍ଳାଘା,ନିଜର ଶ୍ଳାଘା ମହାପାପ ଏହି ହେତୁରୁ ସର୍ବତୋ-ଭାବରେ ଏହା ପରିତ୍ୟାଗ କରିବା ବିଧେୟ
ସ୍ୱସଂବଦ୍—ବିଂ. ଅଗୋଚର, ଯେ ଇନ୍ଦ୍ରି-ୟର ବିଷୟୀଭୂତ ନୁହନ୍ତି, (ବି) ନିଜର ପକ୍ଷ ।
ସ୍ୱସଂବୃତ—ବିଂ. ଆପଣା କର୍ତ୍ତୃକ ରକ୍ଷିତ ।
ସ୍ୱସଂବେଦନ—ବି. ଆପଣାର ଅନୁଭବ ।
ସ୍ୱସଂବେଦ୍ୟ-ବିଂ.ଆପଣା କର୍ତ୍ତୃକ ସଂବେଦ୍ୟ ।
ସ୍ୱସଦୃଶ-ବିଂ.ଆପଣାର ସଦୃଶ,ନିଜତୁଲ୍ୟ ।
ସ୍ୱସମାନ—ବିଂ. ସ୍ୱସଦୃଶ, ନିଜତୁଲ୍ୟ, ଆତ୍ମାନୁରୂପ ।
ସ୍ୱସମୁତ୍ଥ-ବିଂ.ସ୍ୱାଭାବିକ,ନିଜଠାରୁ ଜାତ ।
ସ୍ୱସମ୍ଭବ—ବି. ଆତ୍ମସମ୍ଭବ, ଆତ୍ମାଠାରୁ ଯାହାର ଉତ୍ପତ୍ତି ହୁଏ ।
ସ୍ୱସମ୍ଭୂତ—ବିଂ. ସ୍ୱୟମ୍ଭୂତ ।
ସ୍ୱସର—ବି. ଗୃହ, ଘର, ଦିନ ।
ସ୍ୱସର୍ବ—କ୍ଲୀ. ବି. ସର୍ବସ୍ୱ ।
ସ୍ୱସା—ସ୍ତ୍ରୀ. ବି. ( ସୁ+ଅସ୍+କ.ର୍ ) ଭଗିନୀ, ଭଉଣୀ, ତେଜବତୀ ।
ସ୍ୱସିତ—ବି. ଅତିଶୟ କୃଷ୍ଣବର୍ଣ୍ଣ ।
ସ୍ୱସ୍କ—(ଧାତୁ) ଗତି କରିବା ।
ସ୍ୱସ୍ଥର—ବି. ନିଜସ୍ଥାନ ।
ସ୍ୱସ୍ତି—(ସୁ+ଅସ୍+କ୍ତି.ତି) (ଆଶୀର୍ବାଦ, ମଙ୍ଗଳକାମନାଆଦି ଉଦ୍ଦେଶ୍ୟରେ ବ୍ୟବହୃତ ଅବ୍ୟୟ ଶବ୍ଦ,ତୁମ୍ଭର ମଙ୍ଗଳ ହେଉ) ବି. ଆଶୀର୍ବାଦ, ପୁଣ୍ୟ,କଲ୍ୟାଣ, ଶୁଭ, ମଙ୍ଗଳ,ସ୍ୱୀକାର,ତୃପ୍ତି ସନ୍ତୋଷ, ଶାନ୍ତି, ବ୍ରହ୍ମାଙ୍କର ସ୍ତ୍ରୀଙ୍କ ମଧ୍ୟରୁ ଜଣେ, (ଅ)ଆଶୀର୍ବାଦ ଓ ମଙ୍ଗଳକାମନାବେଳେ ବ୍ୟବହୃତ ଶବ୍ଦ,ତୁମ୍ଭର କଲ୍ୟାଣ ହେଉ, ମଙ୍ଗଳକର୍ମରେ ସ୍ୱସ୍ତି ଶବ୍ଦଯୁକ୍ତ ମନ୍ତ୍ର, ଦାନ, ସ୍ୱୀକାର ମନ୍ତ୍ର, (ଗ୍ରା.ବି) ମଙ୍ଗଳ, ମନର ଶାନ୍ତି,ଉଦ୍‌ବେଗହୀନତା,ସ୍ୱଚ୍ଛନ୍ଦତା, ସନ୍ତୋଷ, ସୁଖ ଓ ଶାନ୍ତିମୟ ଅବସ୍ଥା, ମଙ୍ଗଳସୂଚକ ଶବ୍ଦ ।
ସ୍ୱସ୍ତିକ—ବି. (ସ୍ୱସ୍ତି+କ) ମଙ୍ଗଳଦ୍ରବ୍ୟ, ପିଠଉ ବା ଗୁଣ୍ଡଲଚୂନା ନିର୍ମିତ ଏକ-ପ୍ରକାର ଅଧିବାସ ଦ୍ରବ୍ୟ, ଚତୁଷ୍ପଥ,ଛକ, ଚଉକ, ଚତୁଷ୍କ, ସମ୍ମୁଖ ବାରଣ୍ଡା ବା ଗୃହଦ୍ୱାରଯୁକ୍ତ ଗୃହ,ପିଷ୍ଟକବିକାର ପିଠଉ, (ପୁଂ) ରକ୍ତତାଳକ, ଷିଡ୍ର, ବୁଦ୍ଧଦେବଙ୍କର ଚରଣର ଗ୍ରୁପ, ବୌଦ୍ଧମାନଙ୍କର ଚତୁର୍ବିଂଶତି ଚିହ୍ନାନ୍ତର୍ଗତ ଚିହ୍ନ ବା ଧ୍ୱଜବିଶେଷ, ସିତାବର ଶାକ, ସୁନୁ-ସୁନିଆଁ ଶାଗ,ସ୍ୱସ୍ତିକାସନ,ଯୋଗାଙ୍ଗା-ସନବିଶେଷ, ସର୍ପଫଣା, ସର୍ପଫଣାକୃତି ଅଞ୍ଜଳି, ଯନ୍ତ୍ରବିଶେଷ, ଶଲ୍ୟୋଦ୍ଧାରଣ ଯନ୍ତ୍ର, ଶୁଭସୂଚକ ବଜ୍ରଚିହ୍ନବିଶେଷ, ରସୋନ,ରସୁଣ,ରକ୍ତାଳୁ,ମୂଳା, (ସାମୁ-ଦ୍ରିକ)କେତେକ ଲୋକଙ୍କର ଶରୀରରେ ପ୍ରକାଶିତ ଶୁଭକର ସ୍ୱସ୍ତିକ ଚିହ୍ନ,ଘୋଡ଼ା ଓ ବଥଆଦି ବନ୍ଧାଯିବା ଏକପ୍ରକାର ପଟି, ସର୍ପଫଣା ଉପରେ ଥିବା ନୀଳବର୍ଣ୍ଣ ରେଖା, ପ୍ରାଚୀନକାଳରେ ରାଜାଙ୍କ ବ୍ୟବହାର୍ଯ୍ୟ ଉତ୍କୃଷ୍ଟ ନୌକା ।
ସ୍ୱସ୍ତିକଯନ୍ତ୍ର—ବି. ଯନ୍ତ୍ରବିଶେଷ, ଶଲ୍ୟୋ-ଦ୍ଧାରଣ ଯନ୍ତ୍ର ।
ସ୍ୱସ୍ତିକର୍ମ—ବି. ମଙ୍ଗଳଜନକ କର୍ମ ।
ସ୍ୱସ୍ତିକୃତ—ପୁଂ ଓ ସ୍ତ୍ରୀ. ବିଂ. (ସ୍ୱସ୍ତି+କୃ +କ.କ୍ୱିପ୍) କଲ୍ୟାଣକାରୀ, (ବି) ଶିବ ।
ସ୍ୱସ୍ତିଘୋଷ—ବି.ଦକ୍ଷିଣା ପାଇବା ବ୍ରାହ୍ମଣ-ମାନଙ୍କର ସ୍ୱସ୍ତିଶବ୍ଦ ଉଚ୍ଚାରଣ ।
ସ୍ୱସ୍ତିଦ—ପୁଂ. ବି. ( ସ୍ୱସ୍ତି+ଦା+ଅ ) ଶିବ, (ବିଂ) ମଙ୍ଗଳଦାୟି ମାତ୍ର ।

ସ୍ୱସ୍ତିବାଚ—ସ୍ତ୍ରୀ.ବି.ସ୍ୱସ୍ତିବାକ୍ୟ,'ଶୁଭହେଉ' ଏହିରୂପ ବାକ୍ୟ ।
ସ୍ୱସ୍ତିବାଚନ—ବି. ମାଙ୍ଗଳିକ କର୍ମାରମ୍ଭରେ 'ସ୍ୱସ୍ତି ! ସ୍ୱସ୍ତି !'ମନ୍ତ୍ର ଉଚ୍ଚାରଣ ପୂର୍ବକ ଅକ୍ଷତବିକୀରଣ ଓ ଦେବତାଙ୍କର ଆଶୀର୍ବାଦ ପ୍ରାର୍ଥନା ।
ସ୍ୱସ୍ତିବାଚନିକ—ବିଂ. ( ସ୍ୱସ୍ତିବାଚନ+ଇକ) ସ୍ୱସ୍ତିବାଚନ ସମ୍ବନ୍ଧୀୟ, ସ୍ୱସ୍ତିବାଚନ ଉଚ୍ଚାରଣକାରୀ ।
ସ୍ୱସ୍ତିମୁଖ—ବି. (ବି.ଗ୍ରା) ବ୍ରାହ୍ମଣ, ଭାଟ, ବନ୍ଦୀ, ଲିପି, ଲେଖ, ପତ୍ର ।
ସ୍ୱସ୍ତ୍ୟୟନ—ବି. ବି.ଗ୍ରା;(ସ୍ୱସ୍ତି+ଆ+ଇ +ଭା.ଅନ) କୁଗ୍ରହଙ୍କ ଶାନ୍ତି କରିବା ପାଇଁ ଅନୁଷ୍ଠିତ ହୋମାଦି ମଙ୍ଗଳକର୍ମ, ଗ୍ରହଯାଗ, ଦାନଗ୍ରହୀତା, ବ୍ରାହ୍ମଣମାନଙ୍କ ଦ୍ୱାରା ସ୍ୱସ୍ତିବାଚନ ପୂର୍ବକ ଆଶୀର୍ବାଦ ।
ସ୍ୱସ୍ଥ—ପୁଂ.ବିଂ.(ସ୍ୱ+ସ୍ଥା+କ.ଅ) ସୁସ୍ଥ. ସମଦୋଷଧାତ୍ୱଗ୍ନି, ନିରୁଦ୍ୱିଗ୍ନ, ପ୍ରକୃତିସ୍ଥ, ସ୍ଥିର,ନୀରୋଗ,ସ୍ୱର୍ଗସ୍ଥ, ମୃତ, (ସ୍ତ୍ରୀ) ସ୍ୱସ୍ଥା
ସ୍ୱସ୍ଥଚିତ୍ତ--ପୁଂ. ବିଂ. ଯାହାର ଚିତ୍ତ ସୁସ୍ଥ ବା ଶାନ୍ତ ହୋଇଅଛି,(ସ୍ତ୍ରୀ) ସ୍ୱସ୍ଥଚିତ୍ତା ।
ସ୍ୱସ୍ଥତା—ସ୍ତ୍ରୀ.ବି. (ସୁସ୍ଥ+ତ+ଆ)ସ୍ୱସ୍ଥର ଭାବ ବା ଧର୍ମ, ସ୍ୱାସ୍ଥ୍ୟ, ସୁସ୍ଥତା ।
ସ୍ୱସ୍ଥବୃତ୍ତ—କ୍ଲୀ. ବି. ସୁସ୍ଥର ଆଚରଣ ଯେଉଁ ବିଧି ଆଚରଣ କଲେ ଶରୀର ସୁସ୍ଥ ଥାଏ ।
ସ୍ୱସ୍ଥାନ—ବି.(୬ତତ୍)ଆପଣାର ଅଧିକୃତ ସ୍ଥାନ, ନିଜସ୍ଥାନ, ନିଜର ପଦ ।
ସ୍ୱସ୍ଥାବସ୍ଥ—ବି.ଅଶ୍ୱର ମୁଖଚନ୍ଦ୍ର ।
ସ୍ୱସ୍ୱ—(ବିଶେଷଣୀୟ ସର୍ବନାମ)ନିଜନିଜ, ପୃଥକ୍ ପୃଥକ୍ ।
ସ୍ୱସ୍ରୀୟ—ପୁଂ. ବି. (ସ୍ୱସୃ+ଈୟ) ଭଗିନେୟ, ଭଣଜା, ବିଂ-ଭଗିନୀ ସମ୍ବନ୍ଧୀୟ (ସ୍ତ୍ରୀ) ସ୍ୱସ୍ରୀୟା । [ ବୋହୂ ।
ସ୍ୱସ୍ରୀୟବଧୂ—ସ୍ତ୍ରୀ. ବି. (୬ତତ୍) ଭଣଜା-
ସ୍ୱସ୍ରୀୟା—ସ୍ତ୍ରୀ. ବି. (ସ୍ୱସ୍ରୀୟ+ଆ) ଭଗିନେୟୀ, ଭଣଜୀ ।
ସ୍ୱହସ୍ତ—ବି. (୬ତତ୍) ନିଜର ହାତ ।
ସ୍ୱହସ୍ତପାକ—ବି. (୬ତତ୍) ନିଜ ହାତର ରନ୍ଧଣା ।
ସ୍ୱହସ୍ତଲିପି(ଲେଖ)—ବି. (୬ତତ୍)ନିଜର ହସ୍ତାକ୍ଷର ।
ସ୍ୱହସ୍ତାଙ୍କିତ—ବିଂ.(୩ତତ୍)ନିଜର ହାତଦ୍ୱାରା ଲେଖା ।
ସ୍ୱହିତ—ବି. (୬ତତ୍) ନିଜର ମଙ୍ଗଳ ।
ସ୍ୱାଇ—ଗ୍ରା. ବି. (ସଂ-ସପାଦ) ପୂଆଇ, କରଜ ଦିଆଯିବା ଧାନ ଉପରେ ଆଦାୟ କରାଯିବା ¼—ପରିମିତ ସୁଧ, ଏକ ଚତୁର୍ଥାଂଶ ।
ସ୍ୱାଇଁ—ଗ୍ରା. ବି. (ସଂ-ସ୍ୱାମୀ) କେତେକ କୃଷକ ଓ ବଳରାମଗୋତ୍ରୀ ବ୍ରାହ୍ମଣଙ୍କ ବଂଶୋପାଧି । [ ଆକାର ।
ସ୍ୱାକାର—ବି. ସ୍ୱାଭାବିକରୂପ, ସ୍ୱୀୟ
ସ୍ୱାକ୍ତ—କ୍ଲୀ.ବି.ସୁନ୍ଦର ଅଞ୍ଜନ ।
ସ୍ୱାକ୍ଷପାଦ—ବି.(ସ୍ୱ+ଅକ୍ଷପାଦ) ନୈୟାୟିକ, ତାର୍କିକ ।
ସ୍ୱାକ୍ଷର—ବି. (୬ତତ୍) ଦସ୍ତଖତ, ସହି, ନିଜର ହସ୍ତାକ୍ଷର ।
ସ୍ୱାକ୍ଷରକାରୀ—ପୁଂ. ବିଂ. କୌଣସି ଲେଖାରେ ଯେ ସ୍ୱାକ୍ଷର କରି ଅଛନ୍ତି. (ସ୍ତ୍ରୀ.) ସ୍ୱାକ୍ଷରକାରିଣୀ ।
ସ୍ୱାକ୍ଷରିତ—ବିଂ.(ସ୍ୱାକ୍ଷର+ଇତ)ସ୍ୱାକ୍ଷରଯୁକ୍ତ, ଦସ୍ତଖତ ।
ସ୍ୱାଖ୍ୟାତ—ବିଂ.ଉତ୍ତମରୂପେ କଥିତ ।
ସ୍ୱାଗତ—ବି. (ସୁ+ଆଗତ) ସୁଖରେ ଆସି ପହଞ୍ଚିବା, ଶୁଭାଗମନ, କୁଶଳ, ଆଗନ୍ତୁକ ବିଶିଷ୍ଟ ବ୍ୟକ୍ତିଙ୍କୁ କରାଯିବା ଅଭିନନ୍ଦନ, ଅଭ୍ୟର୍ଥନା, ପୁଂ. ବିଂ. କୁଶଳରେ ଆଗତ, (ସ୍ତ୍ରୀ) ସ୍ୱାଗତା ।
ସ୍ୱାଗତଜିଜ୍ଞାସା(ପ୍ରଶ୍ନ)—ବି. ( ୬ତତ୍ ) ସୁଖରେ ଆସିଛ କି ନାହିଁ ପଚାରିବା, କୁଶଳ ଜିଜ୍ଞାସା ।
ସ୍ୱାଗତପତିକା(ଭର୍ତ୍ତୃକା)—ସ୍ତ୍ରୀ.ବି.(ବି.ଗ୍ରା, ସ୍ୱାଗତ+ପତି+କ+ଆ)ଏକଶ୍ରେଣୀର ନାୟିକା, ଆପଣାର ପତି ବିଦେଶରୁ ଫେରି ଆସିବା ସମୟରେ ତାଙ୍କୁ ପ୍ରସନ୍ନଚିତ୍ତରେ ଅଭ୍ୟର୍ଥନାକାରିଣୀ ନାୟିକା ।
ସ୍ୱାଗତପ୍ରିୟା—ପୁଂ.ବି. (ବି.ଗ୍ରା, ସ୍ୱାଗତ+ପ୍ରିୟା) ଏକ ଶ୍ରେଣୀର ନାୟକ, ବିଦେଶରୁ ଫେରିଆସି ପତ୍ନୀଙ୍କ ପ୍ରତି ପ୍ରସନ୍ନ ନାୟକ ।
ସ୍ୱାଗତସମ୍ଭାଷଣ—ବି. ଆଗନ୍ତୁକ ବ୍ୟକ୍ତିଙ୍କୁ ଭେଟିଲାବେଳେ ସ୍ୱାଗତ ଜିଜ୍ଞାସାପୂର୍ବକ ଅଭିନନ୍ଦନ ।
ସ୍ୱାଗତା—ସ୍ତ୍ରୀ.ବି. ଛନ୍ଦୋବିଶେଷ, ଏହି ଛନ୍ଦର ପ୍ରତି ଚରଣରେ ଏଗାରଟି କରି ଅକ୍ଷର ଥାଏ—ତନ୍ମଧ୍ୟରୁ ୧,୩,୭, ୧୦ ଅକ୍ଷର ଗୁରୁ, ଏହାଭିନ୍ନ ଅକ୍ଷର ସକଳ ଲଘୁ ।
ସ୍ୱାଗତିକ—ପୁଂ. ବିଂ. (ସ୍ୱାଗତ+ଇକ) ସ୍ୱାଗତକାରୀ,ସମାଗତ ବ୍ୟକ୍ତିଙ୍କୁ ସାଦର ସମ୍ଭାଷଣକାରୀ, (ସ୍ତ୍ରୀ) ସ୍ୱାଗତିକା ।
ସ୍ୱାଗମ—ବି.(ସୁ+ଆଗମ) ସ୍ୱାଗତ ଦେଖ
ସ୍ୱାଙ୍କିକ—ବି. (ସ୍ୱ+ଅଙ୍କ+ଇକ) ମାର୍ଦ୍ଦଙ୍ଗିକ, ଯେଉଁ ବ୍ୟକ୍ତି ମୃଦଙ୍ଗ ବଜାନ୍ତି, (ସ୍ତ୍ରୀ) ସ୍ୱାଙ୍କିକା ।
ସ୍ୱାଙ୍ଗ—ବି.(ସ୍ୱ+ଅଙ୍ଗ) ନିଜର ଅଙ୍ଗ ।
ସ୍ୱାଚ୍ଛନ୍ଦ୍ୟ—ବି.(ସ୍ୱଚ୍ଛନ୍ଦ+ଭା,ଯ)ସ୍ୱଚ୍ଛନ୍ଦତା, ଆରାମ, ସ୍ୱାସ୍ଥ୍ୟ, ସ୍ୱାଧୀନତା ।
ସ୍ୱାଜନ୍ୟ—ବି.(ସ୍ୱଜନ+ଭା.ଯ)ସ୍ୱଜନତା
ସ୍ୱାଜୀବ(ବ୍ୟ)--ବିଂ.(ବି.ଗ୍ରା, ସୁ+ଆଜୀବ) ଯେଉଁ ସ୍ଥାନରେ ବା ଦେଶରେ କୃଷି ବାଣିଜ୍ୟାଦି ଜୀବିକା ସୁଲଭ ଅଟେ ।
ସ୍ୱାଞ୍ଜଲ୍ୟକ—ବି.ଉତ୍ତମରୂପେ ଅଞ୍ଜଳିବଦ୍ଧ ହୋଇ ଅବସ୍ଥାନ ।
ସ୍ୱାଢ୍ୟଙ୍କରଣ—ବି. ଅତିଶୟ ସମୃଦ୍ଧିସାଧନ, ବୃଦ୍ଧିସମ୍ପାଦନ ।
ସ୍ୱାତନ୍ତ୍ର—ବି. (ସ୍ୱତନ୍ତ୍ର+ଅ) ସ୍ୱାତନ୍ତ୍ର୍ୟ, ସ୍ୱତନ୍ତ୍ରତା, ସ୍ୱତନ୍ତ୍ରର ଭାବ ବା ଧର୍ମ ।
ସ୍ୱାତନ୍ତ୍ର୍ୟ--ବି.(ସ୍ୱତନ୍ତ୍ର+ଭା.ଯ)ସ୍ୱତନ୍ତ୍ରତା, ବ୍ୟକ୍ତିତ୍ୱ, ସ୍ୱାଧୀନତା ।
ସ୍ୱାତି(ତୀ)-ବି.(ସ୍ୱ+ଅତ୍+କ.ଇ)ସୂର୍ଯ୍ୟଙ୍କର ଏକ ପତ୍ନୀ, ଖଡ୍ଗ, ବହୁ ଶାଖତୃଣବିଶେଷ, ଜ୍ୟୋତଷୋକ୍ତ ସପ୍ତବିଂଶତି ନକ୍ଷତ୍ର ମଧ୍ୟରୁ ପଞ୍ଚଦଶ ନକ୍ଷତ୍ର, ଗ୍ରା.ବି. ଚୈତ୍ରପଣ୍ଡ ଏକପ୍ରକାର ମଧୁର ଫଳ, ଛୁଞ୍ଚି

ବର୍ଷା, ଲଗାଣ, ବତାସ ।

ସ୍ୱାତି(ତ୍ରୀ)ଯୋଗ— ବି. ( ଜ୍ୟୋତିଷ ) ଆଷାଢ଼ମାସ ଶୁକ୍ଳ ପକ୍ଷରେ ଚନ୍ଦ୍ରଙ୍କର ସ୍ୱାତି ନକ୍ଷତ୍ର ସଙ୍ଗେ ସଂଯୋଗ, ରବିବାର, ଶନିବାର ବା ମଙ୍ଗଳବାର ଦିନ ଅମାବାସ୍ୟା ହେବା ଓ ସେଦିନ ରବିଙ୍କର ସ୍ୱାତି ନକ୍ଷତ୍ରରେ ଅବସ୍ଥିତି ରୂପ ଜ୍ୟୋତିଷିକ ଯୋଗ ।

ସ୍ୱାଦ(ଧାତୁ)—ପ୍ରୀତି କରଣ, ରସୋତ୍ପାଦନ, ରସଗ୍ରହଣ ।

ସ୍ୱାଦ—ବି. (ସ୍ୱଦ୍ + ଭା.ଅ) ଆସ୍ୱାଦନ, ଜିହ୍ୱାଦ୍ୱାରା ପଦାର୍ଥର ରସଗ୍ରହଣ, ଚାଖିବା, ପ୍ରୀତିକରଣ, କାବ୍ୟାଦିର ରସ, ଆସ୍ୱାଦ, ଚାଖିବ ଦ୍ୱାରା ପଦାର୍ଥ ଖଟା କି ମିଠା; ଜିହ୍ୱାଦ୍ୱାରା ଏହି ଅନୁଭୂତ, (ଲ.ଅର୍ଥ) ଇନ୍ଦ୍ରିୟାଦି ଦ୍ୱାରା ଲବ୍ଧ ଅନୁଭୂତ, ଗା.ବିଂ. (ସଂ-ସ୍ୱାଦୁ) ମିଠାଳିଆ, ମିଠା, ସୁସ୍ୱାଦୁଯୁକ୍ତ, ମଧୁର ।

ସ୍ୱାଦଂଷ୍ଟ୍ରା—ବି. ଗୋକ୍ଷୁର, ଗୋଖରା ।

ସ୍ୱାଦକୁସୁମ—ବି. ଅରଣ୍ୟଜାତ ବୃହତ୍ ତରୁବିଶେଷ ।

ସ୍ୱାଦଗନ୍ଧ—ବି. (ଦ୍ୱନ୍ଦ୍ୱ) କୌଣସି ପଦାର୍ଥର ସ୍ୱାଦ ଓ ବାସ ।

ସ୍ୱାଦଗ୍ରହଣ—ବି. (୬ତତ୍ ) କୌଣସି ପଦାର୍ଥକୁ ଚାଖିବା ଦ୍ୱାରା ତାହାର ରସାନୁଭବ, କଥିତ ବା ଲିଖିତ ବିଷୟର ରସାନୁଭବ ।

ସ୍ୱାଦଗ୍ରାହୀ—ପୁଂ. ବିଂ. (ସ୍ୱାଦ+ଗ୍ରହ୍ + କ.ଇନ୍) ଆସ୍ୱାଦଗ୍ରହଣକାରୀ, ରସାନୁଭବକାରୀ, କାବ୍ୟାଦିର ରସଗ୍ରାହୀ, ପ୍ରୀତିଯୁକ୍ତ, ପ୍ରୀତିଶୀଳ, (ସ୍ତ୍ରୀ) ସ୍ୱାଦଗ୍ରାହିଣୀ ।

ସ୍ୱାଦନ—ବି. (ସ୍ୱଦ + ଭା.ଅନ) ରସାନୁଭବ, ଚାଖିବା, ରସଗ୍ରହଣ, ପ୍ରୀତିକରଣ, (ମି.ଅନ) ରସ, ମିଠା କରାଇବା, ମିଷ୍ଟୀକରଣ ।

ସ୍ୱାଦନୀୟ—ବିଂ.(ସ୍ୱଦ+ ମି.ଅନୀୟ)ଚଖା ହେବାର ଯୋଗ୍ୟ, ଯାହାର ରସ ଅନୁଭବକରିବା ଯୋଗ୍ୟ, ସୁସ୍ୱାଦୁ ।

ସ୍ୱାଦର—ବିଂ. ଅତିଶୟ ଆଦରଯୁକ୍ତ, ( ପୁଂ ) ଉତ୍ତମରୂପେ ଆଦର, ଅତ୍ୟୁଗୌରବ ।

ସ୍ୱାଦି—ଗା. ବିଂ. ( ସଂ-ସ୍ୱାଦୁ ) ସୁସ୍ୱାଦୁ, ମଧୁର, ସୁଆଦିଆ ।

ସ୍ୱାଦିଆ—ଗା. ବିଂ. ସୁସ୍ୱାଦୁ ।

ସ୍ୱାଦିତ—ବିଂ.(ସ୍ୱଦ୍+ମି.ତ)ଆସ୍ୱାଦିତ, ଗୃହୀତ, ସ୍ୱାଦ, ଚଖା ଯାଇଥିବା, ପ୍ରୀତ, ଭକ୍ଷିତ, ମିଷ୍ଟକୃତ, (ସ୍ତ୍ରୀ) ସ୍ୱାଦିତା ।

ସ୍ୱାଦିତା(ତ୍ୱ)—ବି. ( ସ୍ୱାଦିନ୍ + ଭା.ତା ) ସ୍ୱାଦୀ ହେବାର ଭାବ ।

ସ୍ୱାଦିମା—ବି. ( ସ୍ୱାଦ + ଇମନ୍ ) ରସମାଧୁର୍ଯ୍ୟ, ମିଠାପଣ ।

ସ୍ୱାଦିଷ୍ଠ—ବିଂ. (ସ୍ୱାଦ+ ଇଷ୍ଠ) ସୁସ୍ୱାଦୁ, ଅତି ମିଠା, ମଧୁରତମ ।

ସ୍ୱାଦୀ—ପୁଂ. ବିଂ. ( ସ୍ୱଦ + କ.ଇନ୍ ) ଆସ୍ୱାଦନକାରୀ, ଯେ ଚାଖେ, ରସୋପଭୋଗକାରୀ, (ସ୍ତ୍ରୀ) ସ୍ୱାଦିନୀ, ( ପୁଂ.ବି ) ରସିକ ବ୍ୟକ୍ତି ।

ସ୍ୱାଦୀୟାନ୍—ପୁଂ. ବିଂ. (ସ୍ୱାଦ+ ଈୟସ୍) ଦୁଇବସ୍ତୁ ମଧ୍ୟରେ ବେଶି ମିଠା, ମଧୁରତର, (ସ୍ତ୍ରୀ) ସ୍ୱାଦୀୟସୀ ।

ସ୍ୱାଦୁ—ବି. (ସ୍ୱଦ୍ + ମି.ଉ) ମଧୁର ରସ, ମିଠାପଣ, ଗୁଡ଼, ଜୀବକ ନାମକ ଔଷଧି, ସୁଗନ୍ଧଦ୍ରବ୍ୟ ଭେଦ, ଏକପ୍ରକାର ଚୂର୍ଣ୍ଣ, ଦ୍ରାକ୍ଷା, ମଧୂକ ବୃକ୍ଷ, ପିୟାଲ ବୃକ୍ଷ, ଦାଡ଼ିମ୍ବ ବୃକ୍ଷ, ମାତୁଲୁଙ୍ଗ ବୃକ୍ଷ, କମଳାଲେମ୍ବୁ, କାଶତୃଣ, ବଦର, ଦୁଗ୍ଧ, ସୈନ୍ଧବଲବଣ, (ପୁଂ ଓ ସ୍ତ୍ରୀ. ବିଂ) ମିଷ୍ଟ, ମଧୁର, ମନୋଜ୍ଞ, ଇଷ୍ଟ, (ସ୍ତ୍ରୀ) ସ୍ୱାଦ୍ୱୀ ।

ସ୍ୱାଦୁକଣ୍ଟକ—ବି. ବିକଙ୍କତ ବୃକ୍ଷ, ଭୁଇଁଚ ଗଛ, ଗୋକ୍ଷୁରକ, ଗୋଖରା ।

ସ୍ୱାଦୁକନ୍ଦକ—ବି. ଶକରକନ୍ଦ, ପିଣ୍ଡାଳୁ, ଧଳା ଆଳୁ, ଭଲ୍‌କୋବି, ଭୂମିକୁଷ୍ମାଣ୍ଡ ।

ସ୍ୱାଦୁକନ୍ଦା—ବି. ବିଦାରୀ, ଭୁଇଁ କଖାରୁ, ବାରାହୀକନ୍ଦ ।

ସ୍ୱାଦୁକର—ବିଂ.ସ୍ୱାଦୁକାରକ, ଯାହାଦ୍ୱାରା ସ୍ୱାଦୁ ହୁଏ, ( ବି ) ମହାଭାରତରେ ଉଲ୍ଲିଖିତ ବର୍ଣ୍ଣସଙ୍କର ଜାତିବିଶେଷ ।

ସ୍ୱାଦୁକା—ସ୍ତ୍ରୀ.ବି. ନାଗଦନ୍ତୀ, ବଡ଼ୁଆତି ।

ସ୍ୱାଦୁକାମ—ବିଂ. ମଧୁର ରସକାମୀ, ଯେ ସ୍ୱାଦୁବସ୍ତୁ କାମନା କରେ ।

ସ୍ୱାଦୁକୋଷାତକୀ—ସ୍ତ୍ରୀ.ବି.ମଧୁର କୋଷାତକୀ

ସ୍ୱାଦୁକ୍ଷୀର—ପୁଂ. ବିଂ. (ବ.ବ୍ରୀ) ଯାହାର କ୍ଷୀର ମିଠା, (ସ୍ତ୍ରୀ) ସ୍ୱାଦୁକ୍ଷୀରା ।

ସ୍ୱାଦୁଖଣ୍ଡ—ବି. ଗୁଡ଼, କୌଣସି ମିଠା ବସ୍ତୁର ଖଣ୍ଡ, ମଧୁର ଭାଗ ।

ସ୍ୱାଦୁଗନ୍ଧଚ୍ଛଦା—ସ୍ତ୍ରୀ. ବି. କୃଷ୍ଣତୁଳସୀ ।

ସ୍ୱାଦୁଗନ୍ଧା—ବି.ଭୂମିକୁଷ୍ମାଣ୍ଡ, ଭୁଇଁ କଖାରୁ, ରକ୍ତଶୋଭାଞ୍ଜନ, ନାଲିସଜନା ।

ସ୍ୱାଦୁଗନ୍ଧି—ବି. ରକ୍ତଶିଗ୍ରୁ, ନାଲିସଜନା ।

ସ୍ୱାଦୁଜାତି—ଗା. ବି. ସ୍ୱାଦୁଗୁଣ, ଉତ୍ତମଜାତି ।

ସ୍ୱାଦୁତା—ସ୍ତ୍ରୀ.ବି.ସ୍ୱାଦୁର ଭାବ ବା ଧର୍ମ ।

ସ୍ୱାଦୁତିକ୍ତ—ବିଂ. ମିଠା ଓ ପିତା, ( ବି ) ପିଲୁଫଳ ।

ସ୍ୱାଦୁତିକ୍ତଫଳ—ବି. (ବ.ବ୍ରୀ) ଐରାବତୀ ବୃକ୍ଷ, ଲେମ୍ବୁ ଗଛ ।

ସ୍ୱାଦୁଧନ୍ୱା—ପୁଂ. ବି. (ସ୍ୱାଦୁ + ଧନୁସ୍) ବ.ବ୍ରୀ; କାମଦେବ, ମଦନ ।

ସ୍ୱାଦୁପଟୋଳିକା(ପତ୍ର)-ବି.ପଟୋଳ ଲତା ।

ସ୍ୱାଦୁପର୍ଣ୍ଣୀ(ପୁଷ୍ପିକା)—ବି. ଦୁଗ୍ଧିକା, ଚଡ଼ାକୁଟୀ ଗୁଳ୍ମ, ଦଦସ୍ୱା ଗୁଳ୍ମ ।

ସ୍ୱାଦୁପାକ—ବିଂ. ସ୍ୱାଦୁପାକବିଶିଷ୍ଟ ।

ସ୍ୱାଦୁପାକଫଳା—ସ୍ତ୍ରୀ.ବି. କାକମାଚିକା ।

ସ୍ୱାଦୁପାକା—ବି. କାକମାଚୀ, ନୁଣୁନୁଣିଆ ଗୁଳ୍ମ ।

ସ୍ୱାଦୁପିଣ୍ଡା—ବି. ପିଣ୍ଡଖର୍ଜୁରୀ ।

ସ୍ୱାଦୁପୁଷ୍ପ(ଷ୍ପୀ)-ବି.କଦମ୍ବ, କଣ୍ଟାଶିରିଷଗଛ ।

ସ୍ୱାଦୁପୁଷ୍ପିକା—ସ୍ତ୍ରୀ.ବି. ଦୁଗ୍ଧିକା, ଖିରୁଇ ।

ସ୍ୱାଦୁଫଳ—ବି.ବଦରଫଳ, ବରକୋଳି, ଧନ୍ୱନ ବୃକ୍ଷ, ଧାମଣ ଗଛ ।

ସ୍ୱାଦୁଫଳା—ବି. ଦ୍ରାକ୍ଷା, ବରକୋଳି, ଖଜୁରୀ ଗଛ, କଦଳୀ ଗଛ, କପିଳ ଦ୍ରାକ୍ଷା, ମୁନକ୍କା ।

ସ୍ୱାଦୁବୀଜ—ବି. (ବ.ବ୍ରୀ) ଅଶ୍ୱତ୍ଥ ଗଛ ।

ସ୍ୱାଦୁମଜ୍ଜ(ଜ୍ଜା)—ବି. ପର୍ବତଜ ପୀଲୁବୃକ୍ଷ, ଗୁଚ୍ଛଫଳ ।

ସ୍ୱାଦୁମସ୍ତକା—ସ୍ତ୍ରୀ.ବି.କ୍ଷୁଦ୍ର ଲେମ୍ବୁ ଗଛ ।

ସ୍ୱାଦୁମାଂସୀ—ସ୍ତ୍ରୀ. ବି. କାକୋଲି ।
ସ୍ୱାଦୁମାଷା—ସ୍ତ୍ରୀ. ବି. ମାଷପର୍ଣ୍ଣୀ ।
ସ୍ୱାଦୁମୂଳ—ବି. ଗର୍ଜ୍ଜର, ଗାଜର ।
ସ୍ୱାଦୁରସା—ବି. କାକୋଲୀ, ଦ୍ରାକ୍ଷା, ଆମ୍ରାତକ ଫଳ, ଆମୃତା, ମଦ୍ୟ, ଦ୍ରାକ୍ଷାଜାତ ସୁରା, ଶତାବରୀ,ମୂର୍ବା,(ବିଂ) ସ୍ୱାଦୁରସବିଶିଷ୍ଟ ।
ସ୍ୱାଦୁଲ—ପୁଂ. ବି. କ୍ଷୀରମୂର୍ବା ।
ସ୍ୱାଦୁଲତା—ବି. ବିଦାରୀ, ଭୂଇଁକଖାରୁ, ବାରାହୀକନ୍ଦ ।
ସ୍ୱାଦୁଲୁଙ୍ଗୀ—ସ୍ତ୍ରୀ. ବି. ମଧୁକର୍କଟିକା,ଶରବତୀ ଲେମ୍ବୁ, ସ୍ୱାଦୁମାତୁଲୁଙ୍ଗ ।
ସ୍ୱାଦୁବାରି—ବି.ସ୍ୱାଦୁଜଳବିଶିଷ୍ଟ ସମୁଦ୍ର ।
ସ୍ୱାଦୁଶୁଣ୍ଠି—ବି. ସଫେଦ, କଟଖୀ ।
ସ୍ୱାଦୁସ୍କନ୍ଧ—ବି.ସୈନ୍ଧବଲବଣ,ସାମୁଦ୍ରଲବଣ ।
ସ୍ୱାଦୁସିଞ୍ଚିତକାଫଳ—ବି.କାବୁଲଦେଶୀୟ ଫଳ, ସେଉ ଫଳ ।
ସ୍ୱାଦୂଦକ—ବି.ସ୍ୱାଦୁଉଦକଯୁକ୍ତ ସମୁଦ୍ର ।
ସ୍ୱାଦ୍ୱଗୁରୁ—ବି. ଏକପ୍ରକାର ମଧୁର ରସଯୁକ୍ତ ଅଗୁରୁ ।
ସ୍ୱାଦ୍ୱନ୍ନ—ବି. ମିଷ୍ଟାନ୍ନ, (ବୈଦ୍ୟକ)ମଧୁର ରସମିଶ୍ରିତ ମିଷ୍ଟସ୍ୱାଦ ଅନ୍ନବିଶେଷ ।
ସ୍ୱାଦ୍ୱମ୍ଳ—ବିଂ.ମିଠା ଓ ଖଟା,(ବି)ଡାଳିମ୍ବ ବୃକ୍ଷ,ମଧୁର ଓ ଅମ୍ଳରସ, ନାରଙ୍ଗ ଗଛ, କଦମ୍ବ ଗଛ ।
ସ୍ୱାଦ୍ୱୀ—ବିଂ. ( ସ୍ୱାଦୁ + ଈ ) ସ୍ୱାଦୁର ସ୍ତ୍ରୀଲିଙ୍ଗ, (ବି) ଦ୍ରାକ୍ଷା, କ୍ଷୁଦ୍ର ଖର୍ଜୁରୀ, ଛୁଆରା, ଖଜୁରୀ ଗଛ, କପିଳଦ୍ରାକ୍ଷା, ଚର୍ଭଟିକା, ଫୁଟିକାକୁଣ୍ଡ ।
ସ୍ୱାଦ୍ୟ—ବିଂ. (ସ୍ୱାଦ୍+ର୍ଣି.ଯ) ଚାଖିବାର ଯୋଗ୍ୟ ।
ସ୍ୱାଧିକାର—ବି.ଷଃତତ୍;(ସ୍ୱ+ଅଧିକାର) ନିଜ ଅଧିକାର, ନିଜ ପଦ, ନିଜର ଦଖଲ, ଆପଣାର କର୍ତ୍ତବ୍ୟ ।
ସ୍ୱାଧିକୃତ—ବିଂ. ( ୩ତତ୍ ) ନିଜ ଦ୍ୱାରା ଦଖଲ କରାଯାଇଥିବା ।
ସ୍ୱାଧିଷ୍ଠାନ—ବି. (ଯୋଗଶାସ୍ତ୍ର)ଶରୀରାଭ୍ୟନ୍ତରେର ଲିଙ୍ଗମୂଳସ୍ଥ ସୁଷୁମ୍ନା ନାଡ଼ୀର ଅନ୍ତର୍ଗତ ଷଡ଼ଦଳ ପଦ୍ମ ।
ସ୍ୱାଧୀନ—ବିଂ. (୬ତତ୍) ସ୍ୱତନ୍ତ୍ର,ଅପରାଧୀନ, ଆତ୍ମବଶ; ସ୍ୱେଚ୍ଛାଗୃହୀ, ସ୍ୱଦେଶୀୟ ବ୍ୟକ୍ତିମାନଙ୍କଦ୍ୱାରା ଶାସିତ,ନିଜର ଅଧୀନ, (ସ୍ତ୍ରୀ) ସ୍ୱାଧୀନା ।
ସ୍ୱାଧୀନତନ୍ତ୍ର—ଗ୍ରା. ବି. ସ୍ୱରାଜ ଦେଖ, ପ୍ରଜାମାନଙ୍କ ନିର୍ବାଚିତ ପ୍ରତିନିଧିଙ୍କ ଦ୍ୱାରା ପରିଚାଳିତ ଶାସନତନ୍ତ୍ର ।
ସ୍ୱାଧୀନତା(ତ୍ୱ)—ବି. (ସ୍ୱାଧୀନ+ଭା.ତା) ସ୍ୱାତନ୍ତ୍ର୍ୟ, ଆତ୍ମବଶତା ।
ସ୍ୱାଧୀନତାଦାନ-ବି.ପରାଧୀନତା ମୋଚନ ପୂର୍ବକ କୌଣସି ବ୍ୟକ୍ତିକୁ ସ୍ୱାଧୀନତା ଦେବା ।
ସ୍ୱାଧୀନତାପ୍ରିୟ—ପୁଂ. ବିଂ. ସ୍ୱାଧୀନ ହେବାପାଇଁ ଇଚ୍ଛୁକ ।
ସ୍ୱାଧୀନତାଲୋପ—ବି. (୬ତତ୍) ସ୍ୱବଶତାର ବିନାଶ ।
ସ୍ୱାଧୀନଦେଶ—ଗ୍ରା. ବି. ଯେଉଁ ଦେଶ ପରାଧୀନ ନୁହେ, ଅର୍ଥାତ୍ ଅନ୍ୟଜାତି ଦ୍ୱାରା ଶାସିତ ନୁହେ ।
ସ୍ୱାଧୀନପତିକା(ଭର୍ତ୍ତୃକା)-ସ୍ତ୍ରୀ.ବିଂ. (ସ୍ୱାଧୀନ +ପତି+କ+ଆ) ବ.ବ୍ରୀ; ଯେଉଁ ସ୍ତ୍ରୀଙ୍କ ସ୍ୱାମୀ ବଶ ହୋଇଥାଆନ୍ତି, (ସ୍ତ୍ରୀ. ବି—କାମଶାସ୍ତ୍ରୋକ୍ତ) ନାୟିକାବିଶେଷ, ଯେଉଁ ନାୟିକାଙ୍କ ନାୟକ ନାୟିକାବଶହୋଇ ସର୍ବଦା ନାୟିକାଙ୍କ ପାର୍ଶ୍ୱଚର ଓ ଆଜ୍ଞାବହ ହୋଇ ଅବସ୍ଥାନ କରନ୍ତି ।
ସ୍ୱାଧୀନଭାବରେ(ଭାବେ)—ଗ୍ରା. କ୍ରି. ବିଂ. ପରାଧୀନ ନ ହୋଇ, ସ୍ୱେଚ୍ଛାକ୍ରମେ ।
ସ୍ୱାଧୀନମତ—ଗ୍ରା.ବି. ପରଦ୍ୱାରା ପ୍ରଣୋଦିତ ନ ହୋଇ ନିଜର ଇଚ୍ଛାରେ ଗଠିତ ବା ପ୍ରକାଶିତ ମତ ।
ସ୍ୱାଧ୍ୟାୟ—ବି. ( ସୁ+ଆ+ଅଧ୍ୟାୟ ) ବେଦାଧ୍ୟୟନ, ବେଦପାଠ, ଆବୃତ୍ତି ପୂର୍ବକ ବେଦପାଠ, ଜପ,ପାଠ ନ କରି ବେଦମନ୍ତ୍ର ପାଠ, ବେଦ, ବେଦାଂଶବିଶେଷ,ବିଧିପୂର୍ବକ ଶାସ୍ତ୍ରାଧ୍ୟୟନ,ଯୋଗସାଧନ, ତପସ୍ୟା ।
ସ୍ୱାଧ୍ୟାୟନ-ବି.ପ୍ରବରବିଶେଷ,ବେଦାଧ୍ୟୟନ ।
ସ୍ୱାଧ୍ୟାୟନିରତ—ପୁଂ. ବିଂ. ( ୭ତତ୍ ) ବେଦାଭ୍ୟାସରେ ସର୍ବଦା ରତ ।
ସ୍ୱାଧ୍ୟାୟବାନ୍—ପୁଂ. ବିଂ. (ସ୍ୱାଧ୍ୟାୟ+ବତ୍) ସ୍ୱାଧ୍ୟାୟକାରୀ, ବେଦାଧ୍ୟୟନକାରୀ, ବେଦାଭ୍ୟାସରେ ସର୍ବଦା ରତ ।
ସ୍ୱାଧ୍ୟାୟସେବା—ବି. ବେଦାଭ୍ୟାସ, ନିୟମିତରୂପେ ବେଦପାଠ ।
ସ୍ୱାଧ୍ୟାୟୀ—ପୁଂ. ବିଂ. (ସ୍ୱାଧ୍ୟାୟ + ଇନ୍) ସ୍ୱାଧ୍ୟାୟବାନ୍, ବେଦପାଠକ, (ପୁଂ.ବି) ପଣ୍ଡିତବଣିକ୍ ।
ସ୍ୱାଧ୍ୱରକ—ପୁଂ. ବି. ସୁଯାଜ୍ଞିକ ।
ସ୍ୱାନ—ବି. (ସ୍ୱନ+ଭା.ଅ) ସ୍ୱନ, ଧ୍ୱନି, ରବ, ଶବ୍ଦ ।
ସ୍ୱାନୁଭବ—ପୁଂ. ବି. ଆତ୍ମାନୁଭବ, ଆପଣାର ଅନୁଭବ ।
ସ୍ୱାନୁଭୂତ—ବି. ଆତ୍ମଜ୍ଞାନ, ନିଜର ଜୀବନ ସମ୍ବନ୍ଧେ ଅନୁଭୂତ ।
ସ୍ୱାନୁରୂପ—ବିଂ.ଆପଣାର ଅନୁରୂପ,ନିଜତୁଲ୍ୟ, ନିଜ ସଦୃଶ ।
ସ୍ୱାନ୍ତ—ବିଂ. ( ସ୍ୱନ୍+ର୍ମ.ତ ) ଶବ୍ଦିତ, (ବି-କ.ତ) ଅନ୍ତଃକରଣ,ମନ, ଗହ୍ୱର, ଆପଣାର ଅନ୍ତ ବା ମୃତ୍ୟୁ, ଆପଣାର ରାଜ୍ୟ ବା ପ୍ରଦେଶ ।
ସ୍ୱାନ୍ତଜ—ପୁଂ.ବିଂ. (ସ୍ୱାନ୍ତ+ଜନ୍+ଅ) ମନୋଜ,ଗହ୍ୱର ଜାତ,(ବି)କାମଦେବ, ପ୍ରେମ ।
ସ୍ୱାନ୍ତସ୍ଥ—ବିଂ. ( ସ୍ୱାନ୍ତ+ସ୍ଥା+ଅ ) ମନଃସ୍ଥିତ ବା ଆପଣାର ଅନ୍ତର ସ୍ଥିତ ।
ସ୍ୱାପ—ବି. (ସ୍ୱପ୍+ଭା.ଅ) ନିଦ୍ରା,ଶୟନ, ନିଷ୍ପନ୍ଦତା, ଅଚେତନ୍ୟ, ଅଜ୍ଞାନ, ପକ୍ଷାଘାତ, ସ୍ପର୍ଶଶକ୍ତିରାହିତ୍ୟ, ସ୍ୱପ୍ନ, ରୋଗ ।
ସ୍ୱାପକ—ପୁଂ. ବିଂ. (ସ୍ୱପ୍+ଣିଚ୍+କ. ଅକ) ନିଦ୍ରାକାରକ, (ସ୍ତ୍ରୀ) ସ୍ୱାପିକା ।
ସ୍ୱାପତେୟ—ବି. ( ସ୍ୱ+ପତି+ଏୟ ) ଧନ, ସମ୍ପତ୍ତି ।
ସ୍ୱାପଦ-ବି.ଶ୍ୱାପଦ,ବନ୍ୟଜନ୍ତୁ,ହିଂସ୍ରକଜନ୍ତୁ
ସ୍ୱାପନ—ବିଂ. (ସ୍ୱପ୍+ଣିଚ୍+କ.ଅନ) ନିଦ୍ରାକାରକ, (ବି) ନିଦ୍ରାକାରକ ଦ୍ରବ୍ୟ, ନିଦ୍ରାକାରକ ପ୍ରାଚୀନ ଅସ୍ତ୍ରବିଶେଷ ।

ସ୍ୱାପିକ—ବି. ଉଷ୍ଟ୍ରବିଶେଷ ।
ସ୍ୱାପ୍ତ—ବିଂ. (ସୁ+ଆପ୍+ତ) ଉତ୍ତମ-ରୂପେ ପ୍ରାପ୍ତ ।
ସ୍ୱାପ୍ନ—ବିଂ.(ସ୍ୱପ୍ନ+ଅ) ସ୍ୱପ୍ନ ସମ୍ବନ୍ଧୀୟ, ସ୍ୱପ୍ନକଳ୍ପିତ ।
ସ୍ୱାପ୍ୟସ୍—ବି. ସ୍ୱପ୍ନ, ସୁଷୁପ୍ତି ।
ସ୍ୱାବମାନନ—କ୍ଲୀ. ବି. ସ୍ୱାବମାନନା, ନିଜର ଅବମାନନା ।
ସ୍ୱାବଲମ୍ବନ—ବି. ( ସ୍ୱ+ଅବଲମ୍ବନ ) ନିଜର ଶକ୍ତିର ଉପର ନିର୍ଭର, ପର-ପ୍ରତ୍ୟାଶୀ ନହୋଇ ନିଜେ କାର୍ଯ୍ୟସାଧନ ଚେଷ୍ଟା ।
ସ୍ୱାବଲମ୍ବନଶୀଳ—ପୁଂ.ବିଂ.ନିଜ ଉପରେ ନିର୍ଭରକାରୀ, (ସ୍ତ୍ରୀ) ସ୍ୱାବଲମ୍ବନଶୀଳା ।
ସ୍ୱାବଲମ୍ବୀ—ପୁଂ.ବିଂ.(ସ୍ୱ+ଅବ+ଲମ୍ବ୍ +କ.ଇନ୍) ସ୍ୱାବଲମ୍ବନଶୀଳ, ନିଜର ଶକ୍ତିର ଉପର ନିର୍ଭରକାରୀ,(ସ୍ତ୍ରୀ)ସ୍ୱାବ-ଲମ୍ବିନୀ ।
ସ୍ୱାବଶ୍ୟ—କ୍ଲୀ. ବି. ( ସ୍ୱବଶ+ଯ ) ସ୍ୱବଶତା, ଆତ୍ମବଶତା ।
ସ୍ୱାଭାବ—ପୁଂ. ବି. ନିଜର ଅଭାବ ।
ସ୍ୱାଭାବିକ—ବିଂ.(ସ୍ୱଭାବ+ଇକ)ସ୍ୱଭାବ-ସିଦ୍ଧ, ପ୍ରାକୃତିକ, ନୈସର୍ଗିକ, ଯାହା କୃତ୍ରିମ ନୁହେ,ସ୍ୱଭାବତଃ ଉତ୍ପନ୍ନ,ସହଜ, (ସ୍ତ୍ରୀ) ସ୍ୱାଭାବିକୀ ।
ସ୍ୱାଭାବ୍ୟ—ବିଂ. (ସ୍ୱଭାବ+ଯ) ସ୍ୱଭାବରୁ ଉତ୍ପନ୍ନ, ସ୍ୱୟଂ ଉତ୍ପନ୍ନ ।
ସ୍ୱାଭୀଷ୍ଟ—ବିଂ. (ସ୍ୱ+ଅଭି+ଇଷ୍+ତ) ନିଜର ଅଭୀଷ୍ଟ, ଆପଣାର ଅଭିଳଷିତ ।
ସ୍ୱାମିକ—ବିଂ.(ସ୍ୱାମିନ୍+କ) ସ୍ୱାମିଯୁକ୍ତ, ଯାହାର ସ୍ୱାମୀ ବା ମାଲିକ ଅଛନ୍ତି,(ସ୍ତ୍ରୀ) ସ୍ୱାମିକା ।
ସ୍ୱାମିକାର୍ଯ୍ୟ-କ୍ଲୀ.ବି.ପ୍ରଭୁ ବା ରାଜାର କାର୍ଯ୍ୟ ।
ସ୍ୱାମିଜଙ୍ଘୀ—ପୁଂ. ବି. (ସ୍ୱାମିନ୍+ଜଙ୍ଘ +ଇନ୍) ପରଶୁରାମ ।
ସ୍ୱାମିଜୀ—ଗ୍ରା. ବି. ସ୍ୱାମୀ ଉପାଧିଧାରୀ ବ୍ୟକ୍ତିଙ୍କ ସମ୍ମାନାର୍ଥକ ସମ୍ବୋଧନ ।
ସ୍ୱାମିତ୍ୱ—ବି. (ସ୍ୱାମିନ୍+ଭା.ତ୍ୱ) କର୍ତ୍ତୃତ୍ୱ, ଅଧିକାର, ସ୍ୱତ୍ୱ,ଭର୍ତ୍ତୃତ୍ୱ,ଗୋରସ୍ତପଣ ।
ସ୍ୱାମିନୀ—ସ୍ତ୍ରୀ.ବିଂ.(ସ୍ୱାମିନ୍+ଈ) ସ୍ୱାମୀର ସ୍ତ୍ରୀଲିଙ୍ଗ,ଅଧିକାରଣୀ,ସାଆନ୍ତାଣୀ,ଗୃହିଣୀ ।
ସ୍ୱାମିପାଲ—ପୁଂ. ବି. ଗୋମହିଷାଦିର ଅଧିକାରୀ ଓ ପ୍ରତିପାଳକ ।
ସ୍ୱାମିଭକ୍ତ—ପୁଂ. ବିଂ. (୭ତତ୍) ସ୍ୱାମୀଙ୍କ ପ୍ରତି ଭକ୍ତିଯୁକ୍ତ, (ସ୍ତ୍ରୀ) ସ୍ୱାମିଭକ୍ତା,(ପୁଂ. ବିଂ) ସ୍ୱାମୀଙ୍କର ଭକ୍ତ ।
ସ୍ୱାମିଭକ୍ତା—ସ୍ତ୍ରୀ. ବିଂ. ପତିଙ୍କ ପ୍ରତି ଭକ୍ତି-ବିଶିଷ୍ଟା, (ବି) ସାଧ୍ୱୀ, ସତୀ ।
ସ୍ୱାମିଭକ୍ତି—ବି.(୭ତତ୍) ପତିଭକ୍ତି,ପ୍ରଭୁଙ୍କ ପ୍ରତି ଭକ୍ତି ।
ସ୍ୱାମିଶୂଳ—ବି. ନିଜ ପ୍ରଭୁଙ୍କ ବୈରୀ, ରକ୍ଷକଙ୍କ ବୈରୀ, ପତିଙ୍କ ପ୍ରତି ବୈର-ଭାବାପନ୍ନା ସ୍ତ୍ରୀ ।
ସ୍ୱାମିସହଗମନ(ମରଣ)—ବି. ( ୭ତତ୍ ) ସହଗମନ ।
ସ୍ୱାମିସହବାସ-ବି.ସ୍ୱାମୀଙ୍କ ସଙ୍ଗେ(ସ୍ତ୍ରୀଙ୍କର) ଏକତ୍ର ବାସ, ସ୍ୱାମୀଙ୍କ ସଙ୍ଗେ ରତି ।
ସ୍ୱାମିସେବା—ବି. (୬ତତ୍) ସ୍ୱାମିଙ୍କ, ପରିଚର୍ଯ୍ୟା, ପତିସେବା, ପାତିବ୍ରତ୍ୟ, ପ୍ରଭୁଙ୍କ ପ୍ରତି ଭକ୍ତି, ପ୍ରଭୁଙ୍କ କାର୍ଯ୍ୟ ।
ସ୍ୱାମୀ—ପୁଂ.ବିଂ.(ସ୍ୱ+ମିନ୍) (ଭୃତ୍ୟର) ପ୍ରଭୁ, ଖାମିନ୍ଦ, (ବ୍ୟକ୍ତିର ବା ଜୀବର) ପାଳକ, ରକ୍ଷକ, ଅନ୍ନଦାତା, (ଦ୍ରବ୍ୟା-ଦିର) ଅଧିକାରୀ, ମାଲିକ, (ସ୍ତ୍ରୀଙ୍କ) ପତି, ଭର୍ତ୍ତା,(ରାଜ୍ୟର)ରାଜା, ଅଧିପତି, (ଦଳର) ଦଳପତି, ନେତା , ନାୟକ, (ଶିଷ୍ୟର) ଗୁରୁ ସନ୍ନ୍ୟାସୀ ବା ପରମ-ହଂସବ୍ରତଧାରୀ ବ୍ୟକ୍ତିଙ୍କ ଉପାଧି, ବନ୍ଧୁ, ଈଶ୍ୱର, ହର, ବିଷ୍ଣୁ,ହର,ଶିବ, ମହା-ଦେବ,ବାତ୍ସାୟନମୁନି, ଗରୁଡ଼, ଅତୀତ କଳ୍ପୀୟ ଅର୍ହତ ଭେଦ, ଗତ ଉତ୍ସ-ର୍ପିଣୀର ଏକାଦଶ ଅର୍ହତ, ପଣ୍ଡିତ, ବ୍ରାହ୍ମଣ, ସେନାପତି, କାର୍ତ୍ତିକେୟ, ପୁଂ. ବିଂ. ସ୍ୱତ୍ୱବିଶିଷ୍ଟ, ଅଧିକାରୀ, ପ୍ରଭୁ, ପାଳକ, (ସ୍ତ୍ରୀ) ସ୍ୱାମିନୀ,(ଗ୍ରା. ଅ. ସଂ-ସ୍ୱାମିନ୍) ହେ ମହାଶୟ !
ସ୍ୱାମ୍ୟ—ବି.(ସ୍ୱାମିନ୍+ଭା.ଯ) ସ୍ୱାମିତ୍ୱ ।
ସ୍ୱାମ୍ୟମାତ୍ୟ—ବି.(ଦ୍ୱନ୍ଦ୍ୱ)ରାଜା ଓ ମନ୍ତ୍ରୀ ।
ସ୍ୱାମ୍ୟମାତ୍ୟ ସୁହୃତ୍କୋଷ ରାଷ୍ଟ୍ରଦୁର୍ଗବଳ-ବି. (ଦ୍ୱନ୍ଦ୍ୱ) ନୀତି ଶାସ୍ତ୍ରମତେ ରାଜ୍ୟର ୭ ଟି ଅଙ୍ଗ, (ସ୍ୱାମୀ,ଅମାତ୍ୟ, ସୁହୃତ୍, କୋଷ, ରାଷ୍ଟ୍ର, ଦୁର୍ଗ ଓ ବଳ) ।
ସ୍ୱାମ୍ୟପକାରକ—ପୁଂ. ବିଂ. ସ୍ୱାମୀଙ୍କର ବା ପ୍ରଭୁଙ୍କର ଉପକାରୀ, ପୁଂ.ବିଂ.ଅଶ୍ୱ ।
ସ୍ୱାୟତ୍ତ—ବିଂ. (୭ତତ୍) ନିଜର ବଶୀ-ଭୂତ, ସ୍ୱାଧୀନ ।
ସ୍ୱାୟତ୍ତଶାସନ—କ୍ଲୀ.ବି.(କ.ଧା) ନିଜର ଇଚ୍ଛାଧୀନରେ ଶାସନ କାର୍ଯ୍ୟ ନିର୍ବାହ, ବିଜେତା ସରକାର ଅଧୀନରେ ନିଜର ପ୍ରବର୍ତ୍ତିତ ବିଧାନରେ ଦେଶର ଶାସନ-କାର୍ଯ୍ୟ ନିର୍ବାହ କରିବା ।
ସ୍ୱାୟତ୍ତୀକରଣ—କ୍ଲୀ.ବି. (ସ୍ୱାୟତ୍ତ+ଚ୍ୱି +କୃ+ଭା.ଅନ) ନିଜର ବଶକୁ ଆନୟନ ।
ସ୍ୱାୟତ୍ତୀକୃତ—ବିଂ. (ସ୍ୱାୟତ୍ତ+ଈ+କୃତ) ନିଜର ବଶକୁ ଆଣୀତ ।
ସ୍ୱାୟମ୍ଭୁବ—ବିଂ. (ସ୍ୱୟମ୍ଭୂ+ଅ) ସ୍ୱୟମ୍ଭୂ ସମ୍ବନ୍ଧୀୟ, (ସ୍ତ୍ରୀ) ସ୍ୱାୟମ୍ଭୁବୀ, ପୁଂ.ବି. ବ୍ରହ୍ମାଙ୍କ ପୁତ୍ର ପ୍ରଥମ ମନୁ ।
ସ୍ୱାୟମ୍ଭୁବମନୁ—ବି. ପ୍ରଥମ ମନୁ ।
ସ୍ୱାୟମ୍ଭୁବୀ—ସ୍ତ୍ରୀ. ବି. (ସ୍ୱାୟମ୍ଭୁବ+ଈ) ବ୍ରାହ୍ମୀ ।
ସ୍ୱାରବ୍ଧ—ବିଂ. ଆପଣା କର୍ତ୍ତୃକ ଆରବ୍ଧ, ଆପଣା କର୍ତ୍ତୃକ କୃତ ।
ସ୍ୱାରମ୍ଭକ—ବିଂ. ସ୍ୱକୃତ ।
ସ୍ୱାରସ୍ୟ—ବି. (ସ୍ୱରସ+ଯ)ସ୍ୱରସତା, ରସୁଆଳପଣ, ସ୍ୱାଭାବିକତା ।
ସ୍ୱାରାଜ୍ୟ—ବି.(ସ୍ୱରାଜ+ଭା.ଯ) ସ୍ୱର୍ଗ-ରାଜ୍ୟ, ଈଶ୍ୱରତ୍ୱ, ଇନ୍ଦ୍ରତ୍ୱ, ସ୍ୱର୍ଗର ଆଧିପତ୍ୟ, ସ୍ୱାୟତ୍ତଶାସନ ତନ୍ତ୍ରପରି-ଚାଳିତ ରାଜ୍ୟ ।
ସ୍ୱାରାଟ୍—ବିଂ. ( ସ୍ୱ+ରାଜ+କ୍ୱିପ୍ ) ଇନ୍ଦ୍ର, ଦେବରାଜ ।
ସ୍ୱାରାମ—ବିଂ. ଆତ୍ମାରାମ, ଆପଣାକୁ ଯେ ରମଣ କରେ ।
ସ୍ୱାରୂଢ଼—ବିଂ. ଆପଣା କର୍ତ୍ତୃକ ଆରୂଢ଼ ।
ସ୍ୱାରୋଚିଷ—ପୁଂ.ବିଂ.(ସ୍ୱରୋଚିସ୍=ଅଗ୍ନି

+ଅ) ଦ୍ୱିତୀୟ ମନୁ ।
ସ୍ୱାର୍ଜନ—ବି°.(୬ତତ୍ରୁ)ନିଜର ଉପାର୍ଜନ
ସ୍ୱାର୍ଜିତ—ବି°. ( ୩ତତ୍ରୁ ) ନିଜଦ୍ୱାରା ଉପାର୍ଜିତ, ସ୍ୱୟଂଲବ୍ଧ ।
ସ୍ୱାର୍ଥ—ବି.(୬ତତ୍ରୁ) ନିଜର ପ୍ରୟୋଜନ ଆତ୍ମପ୍ରୟୋଜନ, ନିଜକାର୍ଯ୍ୟ, ସ୍ୱକାର୍ଯ୍ୟସାଧନ, ନିଜର ଅର୍ଥ, ସ୍ୱୀୟ ବସ୍ତୁ, ନିଜର ଉଦ୍ଦିଷ୍ଟ ବିଷୟ, ନିଜର ବ୍ୟକ୍ତିଗତ ଉଦ୍ଦେଶ୍ୟ, ( ବ୍ୟାକରଣ ) ଲିଙ୍ଗାର୍ଥ-ବିଶେଷ,ଶବ୍ଦର ସ୍ୱାଭାବିକ ବା ସହଜ-ଅର୍ଥ, ନିବୃତ୍ତି ।
ସ୍ୱାର୍ଥଚିନ୍ତା—ବି. ( ୬ତତ୍ରୁ ) ଆତ୍ମକାର୍ଯ୍ୟ ଚିନ୍ତା, ନିଜ ଇଷ୍ଟସିଦ୍ଧିର ଭାବନା ।
ସ୍ୱାର୍ଥତ୍ୟାଗ—ପୁଂ.ବି.(୬ତତ୍ରୁ) ଆତ୍ମକାର୍ଯ୍ୟ ପରିତ୍ୟାଗ, ନିଜର ଇଷ୍ଟ ଛାଡ଼ିଦେବା ।
ସ୍ୱାର୍ଥତ୍ୟାଗୀ—ପୁଂ.ବି°. ଆତ୍ମକାର୍ଯ୍ୟତ୍ୟାଗକାରୀ, ପରର ଉପକାରାର୍ଥ ଯେ ନିଜର ଇଷ୍ଟ ତ୍ୟାଗକରେ, (ସ୍ତ୍ରୀ)ସ୍ୱାର୍ଥତ୍ୟାଗିନୀ ।
ସ୍ୱାର୍ଥନାଶ—ବି. ନିଜର ଅଭୀଷ୍ଟ ଥିବା ଉଦ୍ଦେଶ୍ୟର ବିନାଶ, ସ୍ୱାର୍ଥରେ ବାଧା ।
ସ୍ୱାର୍ଥପଣ୍ଡିତ—ପୁଂ.ବି°. ସ୍ୱାର୍ଥସାଧନ ବିଷୟରେ ଚତୁର, (ସ୍ତ୍ରୀ) ସ୍ୱାର୍ଥପଣ୍ଡିତା ।
ସ୍ୱାର୍ଥପର—ପୁଂ. ବି°. (୬ତତ୍ରୁ) ସ୍ୱାର୍ଥପରାୟଣ, ନିଜର ପ୍ରୟୋଜନ ସିଦ୍ଧି ବିଷୟରେ ବ୍ୟଗ୍ର,ଅନ୍ୟର ପ୍ରୟୋଜନର ପ୍ରତି ଉପେକ୍ଷା ପ୍ରଦର୍ଶନ ପୂର୍ବକ କେବଳ ନିଜ ପ୍ରୟୋଜନ ସିଦ୍ଧି ବିଷୟରେ ଯତ୍ନବାନ୍, (ସ୍ତ୍ରୀ) ସ୍ୱାର୍ଥପରା ।
ସ୍ୱାର୍ଥପରତା—ସ୍ତ୍ରୀ. ବି. ସ୍ୱାର୍ଥପରର ଭାବ ବା ଧର୍ମ, ସ୍ୱାର୍ଥପରତ୍ୱ, ସ୍ୱାର୍ଥପରର କାର୍ଯ୍ୟ ।
ସ୍ୱାର୍ଥପରାୟଣ—ବି°. (୬ତତ୍ରୁ) ସ୍ୱାର୍ଥପର ଦେଖ, (ସ୍ତ୍ରୀ) ସ୍ୱାର୍ଥପରାୟଣା ।
ସ୍ୱାର୍ଥବଳି—ବି. (୬ତତ୍ରୁ) ପରର ମଙ୍ଗଳ ପାଇଁ ନିଜର ପ୍ରୟୋଜନକୁ ତ୍ୟାଗ କରିବା ।
ସ୍ୱାର୍ଥବୁଦ୍ଧି—ବି.(କ.ଧା)ନିଜର ପ୍ରୟୋଜନ ସିଦ୍ଧି ଲୋଡ଼ିବା ବୁଦ୍ଧି; (ପୁଂ. ସ୍ତ୍ରୀ. ବି°-ବ.ବ୍ରୀ) ସ୍ୱାର୍ଥପର ।
ସ୍ୱାର୍ଥଲାଭ-ବି.(୬ତତ୍ରୁ)ସ୍ୱାର୍ଥସାଧନଦେଖ ।
ସ୍ୱାର୍ଥସାଧକ—ପୁଂ. ବି°. ଯେ ନିଜର ପ୍ରୟୋଜନ ସାଧନ କରେ, (ସ୍ତ୍ରୀ) ସ୍ୱାର୍ଥସାଧିକା ।
ସ୍ୱାର୍ଥସାଧନ—ବି. ( ୬ତତ୍ରୁ ) ନିଜର ଉଦ୍ଦେଶ୍ୟ ସଫଳ କରିବା ।
ସ୍ୱାର୍ଥସିଦ୍ଧି—ସ୍ତ୍ରୀ. ବି. (୬ତତ୍ରୁ) ଆତ୍ମକାର୍ଯ୍ୟ ସିଦ୍ଧି, ନିଜ ଇଷ୍ଟସିଦ୍ଧି ।
ସ୍ୱାର୍ଥହେବା—ଗ୍ରା. କ୍ରି. ସାର୍ଥକ ହେବା, ସଫଳ ହେବା ।
ସ୍ୱାର୍ଥାନ୍ଧ—ବି°. ( ୩ତତ୍ରୁ ) ଅନ୍ଧଭାବରେ ସ୍ୱାର୍ଥସାଧନରେ ତତ୍ପର, ଅନ୍ୟର ମୁହଁକୁ ନ ଚାହିଁ ଯେ ନିଜ ଇଷ୍ଟସାଧନ କରେ, (ସ୍ତ୍ରୀ) ସ୍ୱାର୍ଥାନ୍ଧା ।
ସ୍ୱାର୍ଥାନ୍ୱେଷଣ—କ୍ଲୀ. ବି. (୬ତତ୍ରୁ) ନିଜ ଇଷ୍ଟସିଦ୍ଧିର ଉପାୟ ଅନ୍ୱେଷଣ,ଆପଣାର ଇଷ୍ଟ ଖୋଜି ବୁଲିବା ।
ସ୍ୱାର୍ଥାନ୍ୱେଷୀ—ପୁଂ. ବି°. (ସ୍ୱାର୍ଥ+ଅନୁ+ଇଷ+କ.ଇନ୍) ଯେ ନିଜର ଇଷ୍ଟ ଖୋଜି ବୁଲେ, ସ୍ୱାର୍ଥପର ।
ସ୍ୱାର୍ଥିକ—ବି°.(ସ୍ୱାର୍ଥ+ଇକ)ସ୍ୱାର୍ଥ ସମ୍ବନ୍ଧୀୟ, ସ୍ୱାର୍ଥପର,ନିଜ ଅର୍ଥଦ୍ୱାରା ସମ୍ପାଦିତ, (ସ୍ତ୍ରୀ) ସ୍ୱାର୍ଥିକା, ସ୍ୱାର୍ଥରେ ବିହିତ (ପ୍ରତ୍ୟୟ) ।
ସ୍ୱାର୍ଥୀ—ପୁଂ. ବି°. (ସ୍ୱାର୍ଥ+ଇନ୍)ସ୍ୱାର୍ଥପର, (ସ୍ତ୍ରୀ) ସ୍ୱାର୍ଥିନୀ ।
ସ୍ୱାଲକ୍ଷଣ—ବି°. ନିଜର ଦୁର୍ଦ୍ଦଶା, ନିଜେ ଯାହା ଦେଖିପାରେ ନାହିଁ, ( କ୍ଲୀ.ବି ) ନିଜର ଅଲକ୍ଷଣ, ଅମଙ୍ଗଳ ।
ସ୍ୱାଲକ୍ଷଣ୍ୟ—କ୍ଲୀ. ବି. ବ୍ୟଭିଚାରଶୀଳତ୍ୱ ।
ସ୍ୱାଲକ୍ଷ୍ୟ—ବି°. ନିଜର ଅଲକ୍ଷ୍ୟ, ନିଜେ ସହଜରେ ଯାହା ଦେଖିପାରେ ନାହିଁ ।
ସ୍ୱାଶ୍ରୟ—ପୁଂ.ବି.(୬ତତ୍ରୁ)ନିଜର ଆଶ୍ରୟ, ସ୍ୱାବଲମ୍ବନ, ନିଜର ଉପରେ ନିର୍ଭର, (ବି°-ବ.ବ୍ରୀ) ସ୍ୱୀୟ ଆଶ୍ରୟଯୁକ୍ତ,ଆତ୍ମାଶ୍ରୟବିଶିଷ୍ଟ,ଯେ ନିଜର ଉପରେ ନିର୍ଭର କରେ, (ସ୍ତ୍ରୀ) ସ୍ୱାଶ୍ରୟା ।
ସ୍ୱାସସ୍ଥ—ବି°.ସୁଖକର ଆସନରେ ଅବସ୍ଥିତ, (ଶୁକ୍ଳ ଯଜୁଂ) ।
ସ୍ୱାସୀନ—ବି°. ସୁନ୍ଦରରୂପେ ଆସୀନ, ସୁଖୋପବିଷ୍ଟ ।
ସ୍ୱାସ୍ତୀର୍ଣ୍ଣ—ବି°. ସୁନ୍ଦରରୂପେ ଆସ୍ତୀର୍ଣ୍ଣ, ଉତ୍ତମରୂପେ ବିସ୍ତୃତ ହୋଇଥିବା ।
ସ୍ୱାସ୍ଥ୍ୟ—ବି. ( ସୁସ୍ଥ+ଷ୍ଣ.ଯ ) ସୁସ୍ଥତା, ନୀରୋଗତା, ନିରାମୟତା, ଆରୋଗ୍ୟ, ସ୍ୱାଚ୍ଛନ୍ଦ୍ୟ, ସନ୍ତୋଷ, ମନର ସୁସ୍ଥତା, ଉଦ୍‌ବେଗଶୂନ୍ୟତା, ନିଶ୍ଚିନ୍ତତା, ସୁଖ,(ଗ୍ରାଃ ବି) ଦୈହିକ ଅବସ୍ଥା ।
ସ୍ୱାସ୍ଥ୍ୟକର—ବି°.(ସ୍ୱାସ୍ଥ୍ୟ+କୃ+କ.ଅ) ସୁସ୍ଥତାଜନକ, ଆରୋଗ୍ୟଦାୟକ, ସୁଖକର, (ସ୍ତ୍ରୀ) ସ୍ୱାସ୍ଥ୍ୟକରୀ ।
ସ୍ୱାସ୍ଥ୍ୟଜନକ—ବି°.(୬ତତ୍ରୁ) ସ୍ୱାସ୍ଥ୍ୟକର, ସ୍ୱାସ୍ଥ୍ୟପ୍ରଦ, (ସ୍ତ୍ରୀ) ସ୍ୱାସ୍ଥ୍ୟଜନିକା ।
ସ୍ୱାସ୍ଥ୍ୟନାଶ—ବି. (୬ତତ୍ରୁ) ନୀରୋଗତାର ନାଶ ।
ସ୍ୱାସ୍ଥ୍ୟନିବାସ(ବାସ)—ବି. (ଆଧୁନିକ ବ୍ୟବହାର)ସ୍ୱାସ୍ଥ୍ୟରକ୍ଷା ପାଇଁ ବା ନଷ୍ଟସ୍ୱାସ୍ଥ୍ୟର ପୁନରାନୟନ ପାଇଁ କୌଣସି ସ୍ୱାସ୍ଥ୍ୟକର ସ୍ଥାନରେ ବାସ ।
ସ୍ୱାସ୍ଥ୍ୟପ୍ରଦ—ବି°. (ସ୍ୱାସ୍ଥ୍ୟ+ପ୍ର+ଦା+କ.ଅ) ଆରୋଗ୍ୟଦାୟକ,ସୁସ୍ଥତାଜନକ, ସ୍ୱାସ୍ଥ୍ୟକର, ସୁଖଦ, ସ୍ୱାଚ୍ଛନ୍ଦ୍ୟଜନକ ।
ସ୍ୱାସ୍ଥ୍ୟବିଭାଗ—ଗ୍ରା. ବି. ରାଜ୍ୟବାସୀଙ୍କ ସ୍ୱାସ୍ଥ୍ୟ ପ୍ରତି ଦୃଷ୍ଟିରଖିବା ପାଇଁ ଭାରପ୍ରାପ୍ତ ରାଜକୀୟ ବିଭାଗ ।
ସ୍ୱାସ୍ଥ୍ୟଭଙ୍ଗ—ବି. ସୁସ୍ଥତାର ବିନାଶ, ରୋଗାଦିର ଆକ୍ରମଣ ।
ସ୍ୱାସ୍ଥ୍ୟରକ୍ଷା—ବି. ଯେଉଁ ଉପାୟମାନ ଅବଲମ୍ବନ କଲେ ଶରୀର ସୁସ୍ଥ ରହିବ ତାହା କରିବା ।
ସ୍ୱାସ୍ଥ୍ୟସମ୍ପନ୍ନ—ପୁଂ. ବି°. (୩ତତ୍ରୁ) ସୁସ୍ଥ, (ସ୍ତ୍ରୀ) ସ୍ୱାସ୍ଥ୍ୟସମ୍ପନ୍ନା ।
ସ୍ୱାସ୍ଥ୍ୟସୁଖ—ବି. (କ.ଧା) ସୁସ୍ଥତା ହେତୁ ସୁଖ, ନୀରୋଗତା ହେତୁ ଆନନ୍ଦ ।
ସ୍ୱାସ୍ଥ୍ୟହାନି—ସ୍ତ୍ରୀ. ବି. (୬ତତ୍ରୁ) ସ୍ୱାସ୍ଥ୍ୟଭଙ୍ଗ, ଦେହ ଅସୁସ୍ଥ ହେବା ।
ସ୍ୱାସ୍ଥ୍ୟହାନିକର—ବି°. ଯେ ବା ଯାହା ସୁସ୍ଥଲୋକକୁ ଅସୁସ୍ଥ କରେ ।

ସ୍ୱାହା—ଅ. (ସୁ+ଆ+ହ୍ୱେ+ଣ.ଅ+ଆ) ଦେବ ହବିର୍ଦାନ ମନ୍ତ୍ର,ଦେବତାଙ୍କୁ ଉଦ୍ଦେଶ୍ୟକରି ଓ ତାଙ୍କ ନାମ ଧରି ଅଗ୍ନିରେ ଆହୁତ ଦେବାର ମନ୍ତ୍ର, (ବି-ସ୍ତ୍ରୀ.ଅ+ଆ)ଅଗ୍ନି ଦେବତାଙ୍କ ପତ୍ନୀ,ଦକ୍ଷ-କନ୍ୟା(ମତାନ୍ତରେ ଏ ପ୍ରକୃତି ଦେବୀଙ୍କ ଠାରୁ ଜନ୍ମିଥିଲେ),ଅଗ୍ନିଙ୍କର ଦାହିକା-ଶକ୍ତି, ବୌଦ୍ଧଶକ୍ତିବିଶେଷ, ମାତୃକା-ବିଶେଷ, ଦୁର୍ଗା, ହୋମାଗ୍ନିରେ ଦିଆ-ଯିବା ଆହୁତି ।

ସ୍ୱାହାକରିବା—ଗ୍ରା.କ୍ରି.ମନ୍ତ୍ରସଙ୍ଗେ ସ୍ୱାହା ଉଚ୍ଚାରଣ ପୂର୍ବକ ଘିଅକୁ ନିଆଁରେ ଆହୁତି ଦେବା,(ଲ.ଅର୍ଥ-ସମ୍ପତ୍ତିଆଦିକୁ) ଅପବ୍ୟୟ ବା ନଷ୍ଟ କରିବା, ଆତ୍ମସାତ୍ କରିବା ।

ସ୍ୱାହାକରଣ—ବି. ସ୍ୱାହାକୃତି ।

ସ୍ୱାହାକାର—ବି. ସ୍ୱାହାକୃତି ।

ସ୍ୱାହାକୃତ୍—ବି.(ସ୍ୱାହା+କୃ+କ.କ୍ୱିପ୍) ଯଜ୍ଞକାରୀ, ଯଜ୍ଞକର୍ତ୍ତା ।

ସ୍ୱାହାକୃତି-ବି.ହବିରେ ଦିଆଯିବା ମନ୍ତ୍ର(ଋକ୍) ।

ସ୍ୱାହାନାଥ(ପତି,ପ୍ରିୟ,ବଲ୍ଲଭ)—ପୁଂ. ବି. (୬ତତ୍) ଅଗ୍ନିଦେବ ।

ସ୍ୱାହାଭୁକ୍—ପୁଂ.ବି. (ସ୍ୱାହା+ଭୁଜ୍+କ.କ୍ୱିପ୍) ଦେବତା ।

ସ୍ୱାହାର୍ହ—ପୁଂ.ବିଂ.ଯଜ୍ଞରେ ହବିପାଇବା ଯୋଗ୍ୟ(ଦେବ), (ସ୍ତ୍ରୀ) ସ୍ୱାହାର୍ହା ।

ସ୍ୱାହାଶନ—ପୁଂ.ବି. (ବ.ବ୍ରୀ) ଦେବତା ।

ସ୍ୱାହେୟ—ପୁଂ. ବି. କାର୍ତ୍ତିକେୟ ।

ସ୍ୱାହ୍ୟ—ବିଂ. ସ୍ୱାହା ସମ୍ବନ୍ଧୀୟ ।

ସ୍ୱିକ—ବିଂ.(ସ୍ୱ+ଇକ)ସ୍ୱକୀୟ,ସ୍ୱୀୟ ।

ସ୍ୱିତ୍—ଅ. (ସୁ+ଇ+କ.କ୍ୱିପ୍) ପ୍ରଶ୍ନ, ବିତର୍କ ଓ ପାଦ ପୂରଣରେ ବ୍ୟବହୃତ ଶବ୍ଦ ।

ସ୍ୱିଦ୍—(ଧାତୁ) ଝାଳେଇବା ।

ସ୍ୱିଦିତ—ବିଂ.(ସ୍ୱିଦ୍+ସ୍ତ୍ରୀ.ତ)ସ୍ୱେଦିତ ।

ସ୍ୱିନ୍ନ—ବିଂ. (ସ୍ୱିଦ୍+କ.ତ) ଘର୍ମଯୁକ୍ତ, ଘର୍ମାକ୍ତ, ଆର୍ଦ୍ର,ସିକ୍ତ,କ୍ଳେଦଯୁକ୍ତ,କ୍ଳିନ୍ନ, ରନ୍ଧା ହୋଇଥିବା, ପକ୍ୱ, ସିଦ୍ଧ ।

ସ୍ୱୀକ—ବିଂ. (ସ୍ୱ+ଇକ) ସ୍ୱକୀୟ ।

ସ୍ୱୀକରଣ—ବି. (ସ୍ୱ+ଚ୍ୱି+କୃ+ଭା.ଅନ) ଅଙ୍ଗୀକାର କରିବା,ରାଜିହେବା, ପ୍ରତିଜ୍ଞା କରିବା, ପତ୍ନୀଗ୍ରହଣ କରିବା, ବିବାହ କରିବା ।

ସ୍ୱୀକର୍ତ୍ତବ୍ୟ—ବିଂ. (ସ୍ୱ+ଚ୍ୱି+କୃ+ସ୍ତ୍ରୀ.ତବ୍ୟ) ସ୍ୱୀକାର୍ଯ୍ୟ ଦେଖ ।

ସ୍ୱୀକର୍ତ୍ତା—ପୁଂ.ବିଂ. ଯେ ସ୍ୱୀକାର କରେ, ସ୍ୱୀକାରକାରୀ, (ସ୍ତ୍ରୀ) ସ୍ୱୀକର୍ତ୍ତ୍ରୀ ।

ସ୍ୱୀକାର—ବି. (ସ୍ୱ+ଚ୍ୱି+କୃ+ଭା.ଅ) ଅଙ୍ଗୀକାର,ପ୍ରତିଶ୍ରୁତି,ପ୍ରତିଜ୍ଞା,ପରିଗ୍ରହ, ପ୍ରତିଗ୍ରହ, ସମ୍ମତି, ମାନିଯିବା, ଆୟତ୍ତୀ-କରଣ, ବଶୀକରଣ, (ଗ୍ରା.ବି) ବିବାହ ପୂର୍ବରୁ ବରପକ୍ଷ ଓ କନ୍ୟାପକ୍ଷଙ୍କ ମଧ୍ୟରେ ଅନୁଷ୍ଠିତ ସମ୍ମତିଜ୍ଞାପକ କାର୍ଯ୍ୟ ।

ସ୍ୱୀକାର୍ଯ୍ୟ—ବିଂ. (ସ୍ୱ+ଚ୍ୱି+କୃ+ସ୍ତ୍ରୀ.ଯ) ସ୍ୱୀକୃତହେବାର ଯୋଗ୍ୟ,(ବି-ଜ୍ୟାମିତି କ୍ଷେତ୍ରତତ୍ତ୍ୱରେ ଯେଉଁ ପ୍ରତିଜ୍ଞାମାନ ଅବଶ୍ୟ ସ୍ୱୀକାର କରିବାକୁ ହୁଏ, (ସ୍ତ୍ରୀ) ସ୍ୱୀକାର୍ଯ୍ୟା ।

ସ୍ୱୀକୃତ—ବିଂ.(ସ୍ୱ+ଚ୍ୱି+କୃ+ସ୍ତ୍ରୀ.ତ) ଯାହା ସ୍ୱୀକାର କରାଯାଇଅଛି; ଅଙ୍ଗୀ-କୃତ. ସମ୍ମତ,ଆୟତ୍ତୀକୃତ, ପରିଗୃହୀତ, ପ୍ରତିଗୃହୀତ, (ସ୍ତ୍ରୀ) ସ୍ୱୀକୃତା ।

ସ୍ୱୀକୃତି—ସ୍ତ୍ରୀ. ବି. (ସ୍ୱ+ଚ୍ୱି+କୃ+ଭା.ତି) ସ୍ୱୀକାର ଦେଖ ।

ସ୍ୱୀୟ—ବିଂ.(ସ୍ୱ+ଈୟ)ସ୍ୱକୀୟ, ନିଜର, ଆତ୍ମୀୟ, (ସ୍ତ୍ରୀ) ସ୍ୱୀୟା ।

ସ୍ୱୀୟା—ସ୍ତ୍ରୀ. ବି. ( ସ୍ୱ+ଈୟ+ଆ ) ନାୟିକାବିଶେଷ,ସ୍ୱାମୀର ପ୍ରତି ଅନୁରକ୍ତା ନାୟିକା, ପତିବ୍ରତା ସ୍ତ୍ରୀ, ( ସ୍ତ୍ରୀ.ବିଂ ) ସ୍ୱକୀୟା, ଆତ୍ମୀୟା ।

ସ୍ୱୃର୍ଚ୍ଛ—(ଧାତୁ)ବିସ୍ମୃତହେବା,ଭୁଲିଯିବା ।

ସ୍ୱୃ—(ଧାତୁ) ଶବ୍ଦ କରିବା,ପୀଡ଼ାଦେବା, ଦଣ୍ଡଦେବା ।

ସ୍ୱେକ—(ଧାତୁ) ଗତି କରିବା ।

ସ୍ୱେଚ୍ଛା—ବି. ୬ତତ୍;(ସ୍ୱ+ଇଚ୍ଛା)ନିଜର ଇଚ୍ଛା, ଯଦୃଚ୍ଛା, ସ୍ୱଚ୍ଛନ୍ଦ, ସ୍ୱାଧୀନତା ।

ସ୍ୱେଚ୍ଛାକୃତ—ବିଂ. (୩ତତ୍) ନିଜ ଇଚ୍ଛା-ନୁସାରେ ଅନୁଷ୍ଠିତ, ଆପଣାର ଇଚ୍ଛା ପୂର୍ବକ ଅନୁଷ୍ଠିତ ବା ବିହିତ ।

ସ୍ୱେଚ୍ଛାକ୍ରମେ—ଗ୍ରା. କ୍ରି. ବିଂ. ନିଜର ଇଚ୍ଛାନୁସାରେ ।

ସ୍ୱେଚ୍ଛାଚରଣ—ବି. ସ୍ୱୈରାଚାର, ଯଥେ-ଚ୍ଛାଚାର,ନିଜର ଇଚ୍ଛାନୁସାରେ ଆଚରଣ, ସ୍ୱୈରିତା ।

ସ୍ୱେଚ୍ଛାଚାର—ପୁଂ. ବି. (ସ୍ୱେଚ୍ଛା+ଚର୍+ଭା.ଅ)ନିଜଇଚ୍ଛାମତ କାର୍ଯ୍ୟକରଣ, ଅସଂଯତ ଆଚରଣ, ସ୍ୱାଧୀନତା, ଅବାଧତା ।

ସ୍ୱେଚ୍ଛାଚାରିତା—ସ୍ତ୍ରୀ. ବି. (ସ୍ୱେଚ୍ଛାଚାରିନ୍+ଭା.ତା) ସ୍ୱାଧୀନତା, ଅବାଧତା ।

ସ୍ୱେଚ୍ଛାଚାରୀ—ପୁଂ. ବିଂ. (ସ୍ୱେଚ୍ଛାଚାର+ଇନ୍) ନିଜର ଇଚ୍ଛାନୁସାରେ କାର୍ଯ୍ୟ-କାରୀ, ଯଥେଚ୍ଛାଚାରୀ,ଅବାଧ, ସ୍ୱାଧୀନ, ଉଚ୍ଛୃଙ୍ଖଳ, (ସ୍ତ୍ରୀ) ସ୍ୱେଚ୍ଛାଚାରିଣୀ ।

ସ୍ୱେଚ୍ଛାଧୀନ—ବିଂ. ( ୬ତତ୍ ) ନିଜର ଇଚ୍ଛାମତ କାର୍ଯ୍ୟକାରୀ, ନିଜ ଇଚ୍ଛାନୁ-ଯାୟୀ, (ସ୍ତ୍ରୀ) ସ୍ୱେଚ୍ଛାଧୀନା ।

ସ୍ୱେଚ୍ଛାଧୀନତା—ସ୍ତ୍ରୀ.ବି. (ସ୍ୱେଚ୍ଛାଧୀନ+ଭା.ତା) ନିଜର ଇଚ୍ଛାମତ କାର୍ଯ୍ୟକରଣ, ସ୍ୱେଚ୍ଛାଚାରିତା ।

ସ୍ୱେଚ୍ଛାନୁବର୍ତ୍ତିତା—ସ୍ତ୍ରୀ. ବି. (ସ୍ୱେଚ୍ଛାନୁ-ବର୍ତ୍ତିନ୍+ଭା.ତା)ନିଜର ଇଚ୍ଛାର ଅନୁ-ସରଣ, ସ୍ୱେଚ୍ଛାଚାର ।

ସ୍ୱେଚ୍ଛାନୁବର୍ତ୍ତୀ—ପୁଂ. ବିଂ. ( ୬ତତ୍ ) ସ୍ୱେଚ୍ଛାଚାର, ଅବାଧ, ସ୍ୱାଧୀନ, (ସ୍ତ୍ରୀ) ସ୍ୱେଚ୍ଛାନୁବର୍ତ୍ତିନୀ ।

ସ୍ୱେଚ୍ଛାପ୍ରଣୋଦିତ—ବିଂ. (୩ତତ୍) ନିଜ ଇଚ୍ଛାଦ୍ୱାରା ପ୍ରେରିତ, ( ସ୍ତ୍ରୀ ) ସ୍ୱେଚ୍ଛା-ପ୍ରଣୋଦିତା ।

ସ୍ୱେଚ୍ଛାପ୍ରବୃତ୍ତ—ବିଂ.(୩ତତ୍) ନିଜ ଇଚ୍ଛାରେ ନିଯୁକ୍ତ ।

ସ୍ୱେଚ୍ଛାବିହାରୀ—ପୁଂ.ବିଂ. ଯଦୃଚ୍ଛାବିହାରୀ, ଯେ ସ୍ୱେଚ୍ଛାକ୍ରମେ ବିହାର କରେ,(ସ୍ତ୍ରୀ) ସ୍ୱେଚ୍ଛାବିହାରିଣୀ ।

ସ୍ୱେଚ୍ଛାମରଣ(ମୃତ୍ୟୁ)—ପୁଂ. ବି. (୩ତତ୍) ନିଜର ଇଚ୍ଛାନୁସାରେ ମରଣ, ଆପଣା ଇଚ୍ଛାରେ ଦେହତ୍ୟାଗ, (କ୍ରିଂ-ବ.ବ୍ରୀ)

ନିଜ ଇଚ୍ଛାନୁସାରେ ଦେହତ୍ୟାଗକାରୀ, ନିଜ ଇଚ୍ଛାରେ ଯେ ମରେ, (ପୁଂ.ବି ବ.ବ୍ରୀ) ଭୀଷ୍ମ ।

ସ୍ୱେଚ୍ଛାସେବକ—ବିଂ (କ.ଧା) ନିଜ ଇଚ୍ଛାକ୍ରମେ ବିନା ବେତନରେ ପରିଚର୍ଯ୍ୟାକାରୀ, କାହାରି ବିନା ଆଦେଶରେ ନିଜର ଇଚ୍ଛାରେ ଆର୍ତ୍ତର ସେବାକାରୀ, (ପୁଂ.ବି) ସମ୍ପ୍ରଦାୟବିଶେଷ, (ସ୍ତ୍ରୀ) ସେବିକା ।

ସ୍ୱେଦ—ବି. (ସ୍ୱିଦ୍+ଘ.ଅ) ଘର୍ମ, ଝାଳ, ବାଷ୍ପ, ବାମ୍ଫ, ଉଷ୍ମ, ତାପ, ସ୍ୱେଦନ, ବାମ୍ଫଆଣି ଦେବା, (ଣି.ଅ) ଝାଳବୁହାଇବା ଔଷଧ, ଜଳୀୟ କଣା, (ବୈଦ୍ୟକ) ସେକିବା, ଉତ୍କଣ୍ଠିତ ପ୍ରେମିକ ପ୍ରେମିକାଙ୍କର ଅଷ୍ଟଦଶା ମଧ୍ୟରୁ ଏକତମ, (ବିଂ) ଘର୍ମୋତ୍ପାଦକ ।

ସ୍ୱେଦକ—ବି. (ସ୍ୱିଦ୍+କ.ଅକ) କାନ୍ତଲୌହ, (ବିଂ) ଘର୍ମୋତ୍ପାଦକ ।

ସ୍ୱେଦଗଞ୍ଜନ—ଗ୍ରା. ବି. ଝାଳ ମାରିବା ।

ସ୍ୱେଦଚୂଷକ—ବି. (ସ୍ୱେଦ+ଚୂଷ୍+କ.ଅକ) ଶୀତଳ ବାୟୁ ।

ସ୍ୱେଦଜ—ବିଂ. (ସ୍ୱେଦ+ଜନ୍+କ.ଅ) ଘର୍ମରୁ ଜାତ, ଉଷ୍ମଜାତ (କ୍ରିମି ଦଂଶ ମଶକାଦି) ।

ସ୍ୱେଦଜଳ(ବାରି)—ବି. ଦେହରୁ ବୋହିବା [ଝାଳ ।

ସ୍ୱେଦଜଶାକ—ବି. ଛତାକ, ଛତୁ ।

ସ୍ୱେଦନ—ବି. (ସ୍ୱିଦ୍+ଣିଚ୍+ଘ.ଅନ) ଦେହରେ ତାପ ପ୍ରୟୋଗ ପୂର୍ବକ ଝାଳ ବୁହାଇବା, ସେକିବା, ସ୍ୱେଦୋତ୍ପତ୍ତି, ଝାଳ ବୋହିବା, ବାମ୍ଫଆଣି ଦେବା, ଅଥାର ଦ୍ୱାରା ସିଝାଇବା, ଔଷଧ ଶୋଧନ କରିବାପାଇଁ ବୈଦ୍ୟମାନଙ୍କ ବ୍ୟବହୃତ ଯନ୍ତ୍ରବିଶେଷ ଓ ଉକ୍ତ ପ୍ରକ୍ରିୟା ।

ସ୍ୱେଦନଯନ୍ତ୍ର—ବି. ବୈଦ୍ୟଶାସ୍ତ୍ରୋକ୍ତ ଦୋଳାଯନ୍ତ୍ର, ଔଷଧର ପୁଡ଼ାକୁ ହାଣ୍ଡିରେ ପୂରାଇ ନିଆଁ ଉପରେ ବସିଥିବା କାଞ୍ଜିପାଣି ମଧ୍ୟରେ ଝୁଲାଇ ରଖି ଔଷଧକୁ ସିଝାଇବା ଯନ୍ତ୍ର ।

ସ୍ୱେଦନାଶ—ବି. (ବ.ବ୍ରୀ) ବାୟୁ, ପବନ ।

ସ୍ୱେଦନିକା—ବି. (ସ୍ୱେଦନୀ+କ+ଆ) କନ୍ଦୁ, ଭର୍ଜନ ପାତ୍ର, ଲୁହାକରେଇ, ତାଉଆ, ଭର୍ଜନଶାଳା, ଅର୍ଣ୍ଣୀମଦ ବାହାର କରାଯିବା ପାତ୍ର, ଭ୍ରାଷ୍ଟି ।

ସ୍ୱେଦନିର୍ଗମ—ବି. (ଷ.ତତ୍) ଦେହରୁ ଝାଳ ବୋହିବା ।

ସ୍ୱେଦନୀ—ବି. (ସ୍ୱିଦ୍+ଣି.ଅନ+ଈ) ସ୍ୱେଦନିକା, ଭାଜିବାର ପାତ୍ର, କରେଇ, ତାଉଆ ।

ସ୍ୱେଦନୀୟ—ବିଂ. (ସ୍ୱିଦ୍+ର୍ମ.ଅନୀୟ) ସ୍ୱେଦ୍ୟ ଦେଖ ।

ସ୍ୱେଦବିନ୍ଦୁ(ବିପ୍ରୁଟ୍)—ବି. (ଷ.ତତ୍) ଘର୍ମବିନ୍ଦୁ, ଝାଳର ଟୋପା ।

ସ୍ୱେଦମଲୋଜ୍ଝିତଦେହ—ବି. ଯେଉଁ ଦେହ ସ୍ୱେଦଯୁକ୍ତ ଓ ମଳଯୁକ୍ତ ହେବାରୁ ତ୍ୟକ୍ତ ହୋଇଅଛି, ସର୍ବକାଳୀୟ ଜ୍ଞାନୋତ୍ତମ, (ପୁଂ.ବିଂ) ଯେଉଁ ବ୍ୟକ୍ତିର ଶରୀରରୁ ସ୍ୱେଦ ଓ ମଳ ବହିର୍ଗତ ହେଉଅଛି, (ସ୍ତ୍ରୀ) ସ୍ୱେଦମଲୋଜ୍ଝିତଦେହା ।

ସ୍ୱେଦମାତା—ସ୍ତ୍ରୀ.ବି. ଶରୀରସ୍ଥ ରସଧାତୁ ।

ସ୍ୱେଦସ୍ରାବ—ପୁଂ. ବି. (ଷ.ତତ୍) ଘର୍ମନିଃସରଣ, ଝାଳ ବାହାରି ପଡ଼ିବା, ପିତ୍ତଜ ରୋଗ ।

ସ୍ୱେଦସ୍ରୁତି—ସ୍ତ୍ରୀ. ବି. (ଷ.ତତ୍) ଘର୍ମନିଃସରଣ, ଝାଳ ବାହାରି ହେବା ।

ସ୍ୱେଦାକ୍ତ—ବିଂ. (ତୃ.ତତ୍) ସ୍ୱେଦଯୁକ୍ତ, ଘର୍ମାକ୍ତ, ଝାଳଦ୍ୱାରା ଭିଜିଥିବା ।

ସ୍ୱେଦାପ୍ଲୁତ—ବିଂ. (ତୃ.ତତ୍) ଘର୍ମାପ୍ଲୁତ, ଝାଳଦ୍ୱାରା ଭିଜିଥିବା ।

ସ୍ୱେଦାମ୍ବୁ—କ୍ଲୀ.ବି. ସ୍ୱେଦଜଳ, ଘର୍ମଜଳ ।

ସ୍ୱେଦାୟନ—ବି. (ଷ.ତତ୍) ସ୍ୱେଦନିର୍ଗମନ ପଥ, ଲୋମକୂପ ।

ସ୍ୱେଦିତ—ବିଂ. (ସ୍ୱେଦ+ଇତ) ସ୍ୱେଦନ କରାଯାଇଥିବା, ସେକା ଯାଇଥିବା, ସ୍ୱେଦଯୁକ୍ତ, ତାପିତ ।

ସ୍ୱେଦୀ—ପୁଂ. ବିଂ. (ସ୍ୱିଦ୍+କ.ଇନ୍) ଘର୍ମକାରକ, (ସ୍ତ୍ରୀ) ସ୍ୱେଦିନୀ ।

ସ୍ୱେଦୋଦ୍ଗମ—ବି. (ଷ.ତତ୍) ଦେହରୁ ଝାଳ ବୋହିବା ।

ସ୍ୱେଦ୍ୟ—ବିଂ. (ସ୍ୱିଦ୍+ର୍ମ.ଯ) ସ୍ୱେଦନୀୟ, ଯାହାକୁ ସ୍ୱେଦନ କରିବା ଉଚିତ, ଯାହାକୁ ତୃପ୍ତିକରିବା ଉଚିତ, ସ୍ୱେଦଜନକ ।

ସ୍ୱେଷ୍ଟ-ବିଂ. ନିଜର ଇଷ୍ଟ, ନିଜର ଅଭିଳଷିତ

ସ୍ୱେଷ୍ଟଦେବତା—ସ୍ତ୍ରୀ. ବି. ନିଜର ଇଷ୍ଟଦେବତା, ଯେ ଯେଉଁ ଦେବତାର ମନ୍ତ୍ରଗ୍ରହଣ କରିଥାଏ, ସେହି ଦେବତା ତାହାର ଇଷ୍ଟଦେବତା ।

ସ୍ୱୈର—ବି. (ସ୍ୱ+ଈର+ଘ.ଅ) ସ୍ୱେଚ୍ଛାଚାର, ସ୍ୱାଧୀନତା, ଅବାଧ୍ୟତା, (ପୁଂ.ବିଂ-କ.ଅ) ସ୍ୱଚ୍ଛନ୍ଦ, ସ୍ୱବଶ, ସ୍ୱେଚ୍ଛାଚାରୀ (ବ୍ୟକ୍ତି), ଧୀମା, ମାନ୍ଦା, ଯଥେଚ୍ଛା (କର୍ମ), (ସ୍ତ୍ରୀ) ସ୍ୱୈରୀ ।

ସ୍ୱୈରଗତି—ବି. (କ.ଧା) ସ୍ୱଚ୍ଛନ୍ଦଗତି, (ପୁଂ ଓ ସ୍ତ୍ରୀ.ବିଂ-ବ.ବ୍ରୀ) ସ୍ୱେଚ୍ଛାବିହାରୀ ।

ସ୍ୱୈରଚାର—ପୁଂ. ବି. (ସ୍ୱୈର+ଚର୍+ଘ.ଅ) ସ୍ୱେଚ୍ଛାଚାର, ଯଥେଚ୍ଛ ବ୍ୟବହାର ।

ସ୍ୱୈରଚାରିଣୀ—ସ୍ତ୍ରୀ. ବି. (ସ୍ୱୈର+ଚର୍+କ.ଇନ୍+ଈ) ବ୍ୟଭିଚାରିଣୀ ସ୍ତ୍ରୀ, (ସ୍ତ୍ରୀ. ବିଂ) ସ୍ୱେଚ୍ଛାଚାରିଣୀ, ଯଥେଚ୍ଛାଚାରିଣୀ, ବ୍ୟଭିଚାରିଣୀ ।

ସ୍ୱୈରଚାରିତା—ସ୍ତ୍ରୀ.ବି. (ସ୍ୱୈରଚାରିନ୍+ଘ.ତା) ସ୍ୱେଚ୍ଛାଚାରିତା, ବ୍ୟଭିଚାର ।

ସ୍ୱୈରଚାରୀ—ପୁଂ. ବିଂ. (ସ୍ୱୈର+ଚର୍+କ.ଇନ୍) ସ୍ୱେଚ୍ଛାଚାରୀ, ଯଥେଚ୍ଛାଚାରୀ, ବ୍ୟଭିଚାରୀ, (ପୁଂ.ବି) ବ୍ୟଭିଚାରୀ ପୁରୁଷ, (ସ୍ତ୍ରୀ) ସ୍ୱୈରଚାରିଣୀ ।

ସ୍ୱୈର(ରି)ତା-ବି. (ସ୍ୱୈର+ତା, ସ୍ୱୈରିନ୍+ତା) ସ୍ୱେଚ୍ଛାଚାରିତା, ଅବାଧତା, ବ୍ୟଭିଚାରିତା ।

ସ୍ୱୈର(ରି)ଣ୍ଧ୍ରୀ—ସ୍ତ୍ରୀ. ବି. (ସ୍ୱୈର+ଧୃ+କ.ଅ+ଈ) ସ୍ୱାଧୀନବୃତ୍ତି ରମଣୀ, ଦ୍ରୌପଦୀ, ପରବେଶ୍ମସ୍ଥା ସ୍ୱବଶା ଶିଳ୍ପକାରିଣୀ ସ୍ତ୍ରୀ ।

ସ୍ୱୈରପେଶୀ—ଗ୍ରା. ବି. ହୃଦୟର ଓ ପାକଯନ୍ତ୍ରର ପେଶୀ ।

ସ୍ୱୈରବର୍ତ୍ତୀ—ପୁଂ. ବିଂ. (ସ୍ୱୈର+ବୃତ୍+କ.ଇନ୍) ସ୍ୱେଚ୍ଛାଚାରୀ, ସ୍ୱାଧୀନ, (ସ୍ତ୍ରୀ) ସ୍ୱୈରବର୍ତ୍ତିନୀ ।

ସ୍ୱୈରବୃତ୍ତ—ପୁଂ. ବିଂ. ସ୍ୱାଧୀନଭାବରେ ଆଚରଣକାରୀ, ସ୍ୱାଧୀନ ।

ସ୍ୱୈରବୃତ୍ତି-ବି. ସ୍ୱାଧୀନବୃତ୍ତି; ସ୍ୱେଚ୍ଛାଚାର ।

ସ୍ୱୈରସ୍ଥ—ବିଂ. ( ସ୍ୱୈର+ସ୍ଥା+ଅ ) ସ୍ୱାଧୀନଭାବରେ ଅବସ୍ଥିତ ।

ସ୍ୱୈରାଚାର-ବି.(କ.ଧା)ସ୍ୱୈରାଚାର ଦେଖ ।

ସ୍ୱୈରିଣୀ—ସ୍ତ୍ରୀ. ବି. ବ୍ୟଭିଚାରିଣୀ ସ୍ତ୍ରୀ, କୁଳଟା, ଯେଉଁ ସ୍ତ୍ରୀ କାମପରବଶ ହୋଇ ସ୍ୱେଚ୍ଛାକ୍ରମେ ସବର୍ଣ୍ଣ ପୁରୁଷକୁ ଆଶ୍ରୟ କରେ ।

ସ୍ୱୈରିତା—ବି. ( ସ୍ୱୈରିନ୍+ତା ) ସ୍ୱୈରତା ଦେଖ ।

ସ୍ୱୈରିନ୍ଧ୍ରୀ—ସ୍ତ୍ରୀ.ବି. (ସ୍ୱୈର+ଧୃ+କ.ଅ +ଈ) ସୈରିନ୍ଧ୍ରୀ ଦେଖ ।

ସ୍ୱୈରୀ—ପୁଂ. ବିଂ. ( ସ୍ୱୈର+ଇନ୍ ) ସ୍ୱୈରଚାରୀ ଦେଖ,(ବି)ବ୍ୟଭିଚାରୀ ବ୍ୟକ୍ତି

ସ୍ୱୋଚିତ—ବିଂ. ଆପଣାର ଉପଯୁକ୍ତ ।

ସ୍ୱୋତ୍ଥ—ବିଂ. ସ୍ୱୋତ୍ଥିତ, ଆପଣାଠାରୁ ଉତ୍ଥିତ ।

ସ୍ୱୋଦରପୂରକ—ବିଂ. ଆପଣାର ଉଦର ପୂରକ, ଯେ ଆପଣାର ଉଦର ପୂରଣ କରେ ।

ସ୍ୱୋପାୟ—ବି.(୬ତତ୍) ନିଜର ଉପାୟ ।

ସ୍ୱୋପାର୍ଜନ—ବି.(୬ତତ୍)ନିଜର ଅର୍ଜନ, ନିଜର ରୋଜଗାର । [ ଅର୍ଜିତ ।

ସ୍ୱୋପାର୍ଜିତ—ବିଂ. (୩ତତ୍) ନିଜ ଦ୍ୱାରା

ସ୍ୱୋପାର୍ଜିତସମ୍ପତ୍ତି—ବି. ନିଜ ଦ୍ୱାରା ଅର୍ଜିତ ସମ୍ପତ୍ତି ।

ସ୍ୱୋବଶୀୟ-ବି.(ଶ୍ୱଃ+ଈୟ)କଲ୍ୟାଣ,ଶୁଭ

ସ୍ୱୌରସ—ବି. ସ୍ୱରସ,ଶିଳାପିଷ୍ଟ କଳ୍କ ।

ସ୍ୱୌଜଃ—କ୍ଲୀ. ବି. ନିଜର ତେଜ,ନିଜର ଓଜଃ ।

ସ୍ମୟ—ବି. (ସ୍ମି + ଭା.ଅ) ଗର୍ବ, ବିସ୍ମୟ, ଆଶ୍ଚର୍ଯ୍ୟ,(ବିଂ) ଅଦ୍ଭୁତ ।

ସ୍ମୟନ—ବି. (ସ୍ମି + ଅନ) ଗର୍ବ ।

ସ୍ମର—ବି.(ସ୍ମୃ+ମି.ଅ)କାମଦେବ,ମଦନ, କନ୍ଦର୍ପ, ( କ.ଅ ) ବେଦବ୍ୟାଖ୍ୟାତ, (+ଭା.ଅ) ସ୍ମରଣ,ସ୍ମୃତି, (ବିଂ) ସ୍ମରଣକାରୀ ।

ସ୍ମରକଥା—ବି. (କ.ଧା) କାମୋଦ୍ଦୀପକ ଆଳାପ, ସ୍ତ୍ରୀଲୋକ ସମ୍ବନ୍ଧୀୟ ରହସ୍ୟାଳାପ ।

ସ୍ମରକାର—ବିଂ. (ସ୍ମର+କୃ+ଣିଚ୍+ କ.ଅ) କାମୋଦ୍ଦୀପକ ।

ସ୍ମରକୂପ(କ.କୂପିକା)—ବି.ସ୍ତ୍ରୀଚିହ୍ନ, ଯୋନି

ସ୍ମରଗୁରୁ—ପୁଂ. ବି. ( ୬ତତ୍ ) କାମଦେବଙ୍କ ପିତା, ଶ୍ରୀକୃଷ୍ଣ, କାମ ଶିକ୍ଷାର ଗୁରୁ ।

ସ୍ମରଗୃହ—ବି. (ସ୍ମର+ଗୃହ) ଯୋନି ।

ସ୍ମରଚକ୍ର—ବି. ରତିବନ୍ଧବିଶେଷ ।

ସ୍ମରଚନ୍ଦ୍ର—ପୁଂ. ବି. ସ୍ମରଦୀପିକାବର୍ଣ୍ଣିତ କାମକେଳି ଭେଦ ।

ସ୍ମରଚ୍ଛତ୍ର—ବି.(ସ୍ମର+ଛତ୍ର) ଯୋନି ।

ସ୍ମରଚ୍ଛଦ—ବି. ଯୋନି ।

ସ୍ମରଣ—ବି. ( ସ୍ମୃ+ଭା.ଅନ ) ସ୍ମୃତି, ମନେ ମନେ ପୂର୍ବାନୁଭୂତ ପୂର୍ବଶ୍ରୁତ ବା ପୂର୍ବଦୃଷ୍ଟ ବିଷୟର ଆବୃତ୍ତି, ପୂର୍ବାନୁଭୂତ ବିଷୟର ଚିନ୍ତା, ଧ୍ୟାନ, ଦେବତାଙ୍କ ନାମ ଜପ, ଅର୍ଥାଲଙ୍କାର ବିଶେଷ, ସ୍ମରଣାଲଙ୍କାର, ଗ୍ରା. ବି. ଦେବତାଙ୍କୁ ବା ସମାଜକୁ ଦିଆଯିବା ଉପଢ଼ୌକନ ବା ସଲାମୀ ।

ସ୍ମରଣଚିହ୍ନ—ବି.ସ୍ମୃତିଚିହ୍ନ ଦେଖ ।

ସ୍ମରଣପଟ୍ଟ—ବି. (ରୂପକ) ସ୍ମୃତିରୂପପଟ୍ଟ, ସ୍ମୃତିରୂପ ଆଲେଖ୍ୟ ।

ସ୍ମରଣପତ୍ର(ପତ୍ରିକା, ଲେଖ, ଲିପି)—ବି. (କ.ଧା) ସ୍ମାରକଲେଖା, ଯାଦଦସ୍ତ ।

ସ୍ମରଣପଥ—ବି. (୬ତତ୍) ସ୍ମୃତିର ପଥ, ସ୍ମୃତିର ବିଷୟ ।

ସ୍ମରଣଯୋଗ୍ୟ—ବିଂ.ସ୍ମରଣୀୟ ଦେଖ ।

ସ୍ମରଣଶକ୍ତି—ସ୍ତ୍ରୀ.ବି.(୬ତତ୍) ସ୍ମୃତିଶକ୍ତି, ମନେ ରଖିବାର କ୍ଷମତା ।

ସ୍ମରଣସୂଚକ—ବିଂ.ସ୍ମରଣାର୍ଥକ ଦେଖ ।

ସ୍ମରଣାତୀତ—ବିଂ. (୫ତତ୍) ବହୁ ପୂର୍ବବର୍ତ୍ତୀ (ସମୟ), ଯେଉଁ କାଳର ବିଷୟ କାହାରି ମନେ ନାହିଁ ।

ସ୍ମରଣାତୀତକାଳ—ବି. ବହୁ ପୂର୍ବକାଳ

ସ୍ମରଣାପତ୍ୟତର୍ପକ—ବି. କଚ୍ଛପ ।

ସ୍ମରଣାର୍ଥ—ଗ୍ରା.କ୍ରି.ବିଂ. (ସଂ-ସ୍ମରଣାର୍ଥଂ) ସ୍ମୃତ୍ୟୁଦ୍ରେକ ହେବାହେତୁ କୌଣସି କଥା ମନେପଡ଼ିବ ବୋଲି ।

ସ୍ମରଣାର୍ଥକ—ବିଂ.ଯାହା ମନେ କରାଇ-ଦିଏ । [ ବିଶେଷ ।

ସ୍ମରଣାଲଂକାର—ବି. ଅର୍ଥାଲଂକାର-

ସ୍ମରଣୀୟ—ବିଂ.(ସ୍ମୃ + ମି.ଅନୀୟ) ମନେ ରହିବାର ଯୋଗ୍ୟ, ସ୍ମର୍ତ୍ତବ୍ୟ ।

ସ୍ମରଦଶା—ବି. କାମଦଶା, କାମାତୁର ବ୍ୟକ୍ତିର କାମନାର ପୂର୍ତ୍ତି ନହେବାରୁ ଅନୁଭୂତ ଅବସ୍ଥାମାନ (ଯଥା—ନୟନପ୍ରୀତି, ଚିତ୍ତାସଙ୍ଗ, ସଂକଳ୍ପ,ନିଦ୍ରାଚ୍ଛେଦ, ତନୁତା, ବିଷୟନିବୃତ୍ତି, ତ୍ରପାନାଶ, ଉନ୍ମାଦ, ମୂର୍ଚ୍ଛା, ମୃତ୍ୟୁ), ବିରହାବସ୍ଥା ।

ସ୍ମରଦହନ—ବି. (୬ତତ୍) ମହାଦେବଙ୍କ କ୍ରୋଧାଗ୍ନି ଦ୍ୱାରା କାମଦେବଙ୍କର ଭସ୍ମରେ ପରିଣତ, (ବ.ବ୍ରୀ) ମହାଦେବ, ଶିବ ।

ସ୍ମରଦୀପନ—ବି. (୬ତତ୍) କାମପ୍ରବୃତ୍ତିର ଉଦ୍ଦୀପନ, ପୁଂ. ବିଂ. (ବ.ବ୍ରୀ) କାମୋଦ୍ଦୀପକ ।

ସ୍ମରଦୀପିକା—ବି. (ନାମ) ରତି ବିଷୟକ ଗ୍ରନ୍ଥବିଶେଷ ।

ସ୍ମରଧ୍ୱଜ—ବି. ( ସ୍ମର+ଧ୍ୱଜ ) ବ.ବ୍ରୀ; ଯୋନି, ଲିଙ୍ଗ, ବାଦ୍ୟ, (୬ତତ୍)କାମଦେବଙ୍କ ରଥର ଧ୍ୱଜ ବା ପତାକା, ( କାମଦେବଙ୍କ ରଥଧ୍ୱଜରେ ଅଙ୍କିତ ) ମତ୍ସ୍ୟ । [ କଳ୍ପବୃକ୍ଷ ।

ସ୍ମରଧ୍ୱଜା—ବି. ଜ୍ୟୋତ୍ସ୍ନାମୟୀ ରଜନୀ,

ସ୍ମରପୁର—ବି. ଭଗ, ଯୋନି ।

ସ୍ମରପ୍ରିୟା(ବଧୂ,ଦୟିତା)—ସ୍ତ୍ରୀ.ବି.(୬ତତ୍) ରତିଦେବୀ, କାମଦେବଙ୍କ ପତ୍ନୀ ।

ସ୍ମରବଲ୍ଲଭ-ପୁଂ.ବି.ଅନିରୁଦ୍ଧ,ପ୍ରଦ୍ୟୁମ୍ନଙ୍କ ପୁତ୍ର

ସ୍ମରବାନ୍—ପୁଂ. ବିଂ. କାମବିଶିଷ୍ଟ, (ସ୍ତ୍ରୀ) ସ୍ମରବତୀ=କାମୁକୀ ସ୍ତ୍ରୀ ।

ସ୍ମରବୀଥିକା—ବି. ୬ତତ୍; (ସ୍ମର+ବୀଥି +କ+ଆ) ବେଶ୍ୟା, ଗଣିକା ।

ସ୍ମରବୃଦ୍ଧି—ବି. କାମବୃଦ୍ଧି କ୍ଷୁପ,କାମବୃଦ୍ଧି ।

ସ୍ମରବୃଦ୍ଧିସଞ୍ଜ୍ଞ—ବି. କାମବୃଦ୍ଧି କ୍ଷୁପ ।

ସ୍ମରମନ୍ଦିର—ବି. ସ୍ମରପୁର, ଯୋନି ।
ସ୍ମରଲେଖନୀ—ବି. ସାରିକା ପକ୍ଷୀ ।
ସ୍ମରଶତ୍ରୁ(ରିପୁ)—ବି. ( ୬ତତ୍ପୁ ) ଶିବ, ମହାଦେବ ।
ସ୍ମରଶାସ୍ତ୍ର-ବି.(କ.ଧା)କାମଶାସ୍ତ୍ର,ରତିଶାସ୍ତ୍ର ।
ସ୍ମରସଖ—ବି. ( ବ.ବ୍ରୀ ) ସ୍ମରର ସଖା, କନ୍ଦର୍ପର ବନ୍ଧୁ, ଚନ୍ଦ୍ର, ବସନ୍ତ ।
ସ୍ମରସ୍ତମ୍ଭ—ବି. ଉପସ୍ଥ, ପୁରୁଷେନ୍ଦ୍ରିୟ ।
ସ୍ମରସ୍ମର—ବି. ସେବତୀ ଫୁଲ ।
ସ୍ମରସ୍ମର୍ଯ୍ୟ—ବି. ଗର୍ଦ୍ଦଭ, ଗଧ ।
ସ୍ମରହର—ପୁଂ.ବି.(ସ୍ମର+ହୃ+କ.ଅ) କାମାନ୍ତକ, ମହାଦେବ ।
ସ୍ମରାଗାର—ବି. (୬ତତ୍ପୁ) ଭଗ, ଯୋନି ।
ସ୍ମରାଙ୍କୁଶ—ବି. ( ସ୍ମର + ଅଙ୍କୁଶ ) ନଖ, ଲମ୍ପଟ ବ୍ୟକ୍ତି, ପୁରୁଷେନ୍ଦ୍ରିୟ, ଲିଙ୍ଗ ।
ସ୍ମରାଧିବାସ—ବି. ଅଶୋକ ବୃକ୍ଷ ।
ସ୍ମରାନ୍ତକ—ବି. (୬ତତ୍ପୁ) ଶିବ ।
ସ୍ମରାମ୍ର—ବି. ରାଜାମ୍ର, କଲମି ଆମ୍ବ ।
ସ୍ମରାରି—ବି. (୬ତତ୍ପୁ) ଶିବ,ମହାଦେବ ।
ସ୍ମରାସବ—ବି.(ସ୍ମର + ଆସବ)ସୁଖାମୃତ, ମୁଖନିସୃତ ଲାଳ, ତାଳଗଛରୁ ଉତ୍ପନ୍ନ ତାଡ଼ି ।
ସ୍ମରିବା—ଗ୍ରା. କ୍ରି. (ପଦ୍ୟ)ମନେ କରିବା, ସ୍ମରଣକରିବା,ମନେରଖିବା,ସୁମରିବା ।
ସ୍ମରୋଦ୍ଦୀପନ—ବିଂ. କାମୋଦ୍ଦୀପନକାରୀ, ଯଦ୍ଦ୍ୱାରେ କାମୋଦ୍ଦୀପିତ ହୁଏ, ( ବି ) ଜ୍ୟୋତ୍ସ୍ନା, ଯୁବତୀ ସ୍ତ୍ରୀ, ସୁଗନ୍ଧ ବସ୍ତୁ ପ୍ରଭୃତି ।
ସ୍ମର୍ତ୍ତବ୍ୟ—ବିଂ.(ସ୍ମୃ+ର୍ମ.ତବ୍ୟ)ସ୍ମରଣୀୟ, ଦେଖ, (ସ୍ତ୍ରୀ) ସ୍ମର୍ତ୍ତବ୍ୟା ।
ସ୍ମର୍ତ୍ତା—ପୁଂ.ବିଂ. (ସ୍ମୃ + କ.ତୃ)ସ୍ମରଣ-କାରୀ, (ସ୍ତ୍ରୀ) ସ୍ମର୍ତ୍ତ୍ରୀ ।
ସ୍ମର୍ଯ୍ୟ—ବିଂ. (ସ୍ମୃ+ର୍ମ.ଯ) ସ୍ମରଣୀୟ ।
ସ୍ମାପ୍ୟ—ବିଂ. ଗୂଢ଼ ହସିତ ।
ସ୍ମାର—ବି.(ସ୍ମୃ+ଭା.ଅ)ସ୍ମରଣ,ଚିନ୍ତନ
ସ୍ମାରକ—ବିଂ. (ସ୍ମୃ+ଣିଚ୍+କ.ଅକ) ଯେ ବା ଯାହା ସ୍ମରଣ କରାଇ ଦିଏ, ସ୍ମୃତିର ଉଦ୍‌ବୋଧକ, ସ୍ମୃତିଜନକ, (ସ୍ତ୍ରୀ) ସ୍ମାରିକା ।
ସ୍ମାରକଗୃହ—ବି. କୌଣସି ବିଷୟର ବା ଘଟନାର ବା ବ୍ୟକ୍ତିଙ୍କ ସ୍ମରଣାର୍ଥ ନିର୍ମିତ ଗୃହ ।
ସ୍ମାରକଚିହ୍ନ—ବି.ଯେଉଁ ଚିହ୍ନ ଦେଖିଲେ କୌଣସି ବ୍ୟକ୍ତିଙ୍କର ବା ଘଟନାର ବିଷୟ ମନେପଡ଼େ, ଅଭିଜ୍ଞାନ ।
ସ୍ମାରକଲିପି—ବି. ସ୍ମୃତିଉଦ୍‌ବୋଧକ ଲେଖା ।
ସ୍ମାରଣ—କ୍ଳୀ. ବି. (ସ୍ମୃ+ଣିଚ୍+ଭା. ଅନ) ସ୍ମରଣକରଣ, ମନେ କରିବା ।
ସ୍ମାରଣୀ—ସ୍ତ୍ରୀ. ବି. ବ୍ରାହ୍ମୀଶାକ ।
ସ୍ମାରୀ—ବିଂ. (ସ୍ମୃ+ଇନ୍)ସ୍ମରଣକାରୀ ।
ସ୍ମାର୍ତ୍ତ—ବିଂ. (ସ୍ମୃତି+ଅ) ସ୍ମୃତିଶାସ୍ତ୍ର ସମ୍ବନ୍ଧୀୟ,ସ୍ମୃତିଶାସ୍ତ୍ରଜ୍ଞ,ସ୍ମୃତିଶାସ୍ତ୍ରୋକ୍ତ ସ୍ମୃତିଶାସ୍ତ୍ରର ବିଧାନ ଅନୁସାରେ କାର୍ଯ୍ୟକାରୀ, (ସ୍ତ୍ରୀ)ସ୍ମାର୍ତ୍ତୀ, (ବି) ସ୍ମୃତି-ଶାସ୍ତ୍ରଜ୍ଞ ପଣ୍ଡିତ, (ଗ୍ରା.ବି) ଏକଶ୍ରେଣୀର ଆଧୁନିକ ବ୍ରାହ୍ମଣ ।
ସ୍ମାର୍ତ୍ତିକ—ବିଂ. ସ୍ମାର୍ତ୍ତ, ସ୍ମୃତିସମ୍ବନ୍ଧୀୟ, ସ୍ମୃତ୍ୟୁକ୍ତ, (ସ୍ତ୍ରୀ) ସ୍ମାର୍ତ୍ତିକୀ ।
ସ୍ମାର୍ଯ୍ୟ—ବିଂ.(ସ୍ମୃ+ଣିଚ୍+ଯ)ସ୍ମରଣ କରାଇବାର ଉପଯୁକ୍ତ ।
ସ୍ମି—(ଧାତୁ) ଅନାଦର କରିବା, ଈଷତ୍ ହାସ୍ୟ କରିବା ।
ସ୍ମିଟ୍—(ଧାତୁ) ଅନାଦର କରିବା ।
ସ୍ମିତ—ବିଂ. ( ସ୍ମି + କ.ତ ) ବିକସିତ, ଉଦ୍ଭାସିତ, ପ୍ରସ୍ଫୁଟିତ, ଈଷତ୍ ହସିତ, ବିସ୍ମିତ, (ସ୍ତ୍ରୀ) ସ୍ମିତା, ( ବି-ଭା.ତ ) ଈଷଦ୍ଧାସ୍ୟ ।
ସ୍ମିତମୁଖ—ବି. (କ.ଧା) ଈଷଦ୍ଧାସ୍ୟଯୁକ୍ତ ମୁଖ, ( ପୁଂ.ବିଂ-ବ.ବ୍ରୀ ) ସ୍ମେରମୁଖ, ଯାହାର ମୁଖ ଈଷଦ୍ଧାସ୍ୟଯୁକ୍ତ, ( ସ୍ତ୍ରୀ ) ସ୍ମିତମୁଖୀ ।
ସ୍ମିତହାସ—ବି. ମୃଦୁହାସ, ( ପୁଂ.ବିଂ ) ମୃଦୁହାସ୍ୟଯୁକ୍ତ, (ସ୍ତ୍ରୀ) ସ୍ମିତହାସା ।
ସ୍ମିତହାସୀ—ଗ୍ରା. ସ୍ତ୍ରୀ. ବିଂ. (ସଂ-ସ୍ମିତ-ହାସା) ଈଷତ୍ ହାସ୍ୟଯୁକ୍ତା (ସ୍ତ୍ରୀ) ।
ସ୍ମିତହାସ୍ୟ—ବି. ମୃଦୁହାସ୍ୟ,ଈଷଦ୍ଧାସ୍ୟ, (ପୁଂ.ବିଂ-ବ.ବ୍ରୀ) ଈଷଦ୍ଧାସ୍ୟକାରୀ,(ସ୍ତ୍ରୀ) ସ୍ମିତହାସ୍ୟା ।
ସ୍ମିଲ—(ଧାତୁ) ନିମେଷଣ କରିବା,ଆଖିର ପିଛୁଡ଼ା ପଡ଼ିବା ।
ସ୍ମୃ—(ଧାତୁ) ଉତ୍କଣ୍ଠିତ ହେବା, ସ୍ମରଣ କରିବା ।
ସ୍ମୃତ—ବିଂ.(ସ୍ମୃ+ର୍ମ.ତ)ଯାହାକୁ ସ୍ମରଣ କରାଯାଉଅଛି, ସ୍ମରଣର ବିଷୟୀଭୂତ, (ସ୍ତ୍ରୀ) ସ୍ମୃତା ।
ସ୍ମୃତି—ସ୍ତ୍ରୀ. ବି. ( ସ୍ମୃ+ଭା.ତି ) ସ୍ମରଣ, ପୂର୍ବାନୁଭୂତ ବିଷୟର ଜ୍ଞାନ,ମନ୍ୱାଦିମୁନିଙ୍କ ପ୍ରଣୀତ ଧର୍ମଶାସ୍ତ୍ର, ଖାଦ୍ୟାଖାଦ୍ୟ, ବ୍ରତ-ପୂଜାଦିର ନିୟମ, ପ୍ରାୟଶ୍ଚିତ୍ତ,ଦାୟଭାଗ ଓ ଅପରାଧାଦିର ଦଣ୍ଡାଦି ବିଷୟ ସମ୍ବ-ଳିତ ହିନ୍ଦୁଶାସ୍ତ୍ରବିଶେଷ, ଚିନ୍ତନ, ଧ୍ୟାନ, ଇଚ୍ଛା, କାମନା, ବୁଦ୍ଧି, ଛନ୍ଦୋବିଶେଷ, (ଧର୍ମଶାସ୍ତ୍ରର ସଂଖ୍ୟା ୧୮ ଥିବାରୁ) ୧୮ ସଂଖ୍ୟା,(ନାମ)ଦକ୍ଷକନ୍ୟା ଅଙ୍ଗିରାପତ୍ନୀଙ୍କ ଗର୍ଭରୁ ଉତ୍ପନ୍ନା କନ୍ୟା ।
ସ୍ମୃତିକାର—ପୁଂ.ବି. ସ୍ମୃତିଗ୍ରନ୍ଥର ରଚନା-କାରୀ ବ୍ୟକ୍ତି ।
ସ୍ମୃତିକାରକ—ବିଂ. ସ୍ମୃତିଶକ୍ତି ବର୍ଦ୍ଧକ (ଔଷଧ), ସ୍ମୃତିଶାସ୍ତ୍ର ପ୍ରଣେତା,ଧର୍ମଶାସ୍ତ୍ର ପ୍ରଣେତା (ମନ୍ୱାଦି ଋଷି) ।
ସ୍ମୃତିକାରୀ—ବିଂ. (ସ୍ମୃତି+କୃ+ଇନ୍) ସ୍ମରଣଶକ୍ତିକାରକ, ସ୍ମୃତିଶାସ୍ତ୍ରକର୍ତ୍ତା ।
ସ୍ମୃତିଗୋଚର—ବିଂ. ସ୍ମୃତିପଥାରୂଢ଼, ମନେ ପଡ଼ିବା (କଥା) ।
ସ୍ମୃତିଚିହ୍ନ—ବି. ସ୍ମରଣଚିହ୍ନ, ସ୍ମୃତିଜନକ ଚିହ୍ନ.ଯାହା ଦେଖିଲେ କୌଣସି ବିଷୟ ମନେ ପଡ଼େ ।
ସ୍ମୃତିଧର—ପୁଂ.ବିଂ. (ସ୍ମୃତି+ଧୃ+କ.ଅ) ସ୍ମୃତିଶକ୍ତିସମ୍ପନ୍ନ, ବିଦ୍ୱାନ୍, (ସ୍ତ୍ରୀ) ସ୍ମୃତିଧରା ।
ସ୍ମୃତିନିଦର୍ଶନ—ବି. (କ.ଧା) ସ୍ମରଣଚିହ୍ନ, ଯାହା ପୂର୍ବକଥା ସ୍ମରଣ କରାଇଦିଏ, ଅଭିଜ୍ଞାନ ।
ସ୍ମୃତିପଟ—ପୁଂ.ବି. (ରୂପକ) ସ୍ମରଣପଟ, ସ୍ମରଣରୂପ ଆଲେଖ୍ୟ ।
ସ୍ମୃତିପଥ—ବି. (ରୂପକ) ସ୍ମରଣପଥ,

ପଥ ସଙ୍ଗେ ତୁଳନା କରାଯିବା ସ୍ମୃତି, ସ୍ମରଣର ବିଷୟ ।

ସ୍ମୃତିପଥାରୂଢ଼—ବିଂ. ସ୍ମୃତିଗୋଚର, ଯାହା ମନେ ପଡ଼ୁଯାଏ ।

ସ୍ମୃତିପାଠକ—ବିଂ. ସ୍ମୃତିପାଠକାରୀ, ସ୍ମୃତିଶାସ୍ତ୍ରାଧ୍ୟେତା ।

ସ୍ମୃତିବର୍ଦ୍ଧକ—ପୁଂ, ବିଂ. (ସ୍ମୃତି+ବୃଧ୍+କ.ଅକ) ସ୍ମୃତିଶକ୍ତିର ବର୍ଦ୍ଧନକାରୀ. (ସ୍ତ୍ରୀ) ସ୍ମୃତିବର୍ଦ୍ଧିକା ।

ସ୍ମୃତିବର୍ଦ୍ଧନୀ-ବି. ବ୍ରାହ୍ମୀଶାକ (ଏହା ସେବନ କଲେ ପ୍ରଖର ସ୍ମରଣଶକ୍ତି ହୁଏ) ।

ସ୍ମୃତିବିଭ୍ରମ—ବି. ସ୍ମୃତିଶକ୍ତିର ବିଚଳନ, ସ୍ମରଣଶକ୍ତିର ବିପର୍ଯ୍ୟୟ ।

ସ୍ମୃତିବିରୁଦ୍ଧ—ବିଂ. ଧର୍ମଶାସ୍ତ୍ରର ବିପରୀତ, ଧର୍ମଶାସ୍ତ୍ର ବିରୁଦ୍ଧ ।

ସ୍ମୃତିଭୂ—ପୁଂ. ବି. କାମଦେବବିଶେଷ ।

ସ୍ମୃତିଭ୍ରଂଶ—ବି. ସ୍ମୃତିଶକ୍ତିର ନାଶ ।

ସ୍ମୃତିମାନ୍—ପୁଂ, ବିଂ. (ସ୍ମୃତି+ମତୁ) ମେଧାବୀ, ସ୍ମରଣଶକ୍ତିବିଶିଷ୍ଟ, (ସ୍ତ୍ରୀ) ସ୍ମୃତିମତୀ ।

ସ୍ମୃତିରକ୍ଷା—ବି. (୭ତତ୍) ସ୍ମରଣସୂଚକ ବସ୍ତୁ ସ୍ଥାପନା ।

ସ୍ମୃତିରତ୍ନ—ଗ୍ରା.ବି. ସ୍ମୃତିଶାସ୍ତ୍ରଜ୍ଞ ପଣ୍ଡିତଙ୍କ ଉପାଧିବିଶେଷ ।

ସ୍ମୃତିଶକ୍ତି—ସ୍ତ୍ରୀ.ବି. (୬ତତ୍) ସ୍ମରଣଶକ୍ତି, ମନେ ରଖିବାର କ୍ଷମତା ।

ସ୍ମୃତିଶାସ୍ତ୍ର—ବି. ମନ୍ୱାଦି କୃତ ଧର୍ମଶାସ୍ତ୍ର, ଧର୍ମସଂହିତା ।

ସ୍ମୃତିଶେଷ—ବିଂ. ସ୍ମୃତ୍ୟବଶେଷବିଶିଷ୍ଟ, ଯାହାର ସ୍ମୃତି ମାତ୍ର ଅଛି ।

ସ୍ମୃତିସମ୍ମତ—ବିଂ. ସ୍ମୃତିଶାସ୍ତ୍ରାନୁମୋଦିତ, ସ୍ମୃତିଶାସ୍ତ୍ରର ସହିତ ଯେଉଁ ମତର ବିରୋଧ ନାହିଁ ।

ସ୍ମୃତିସ୍ତମ୍ଭ—ପୁଂ. ବି. (କ.ଧା) ସ୍ମରଣସୂଚକ ସ୍ତମ୍ଭ, ମୃତବ୍ୟକ୍ତିର ସ୍ମରଣାର୍ଥରେ ନିର୍ମିତ ସ୍ତମ୍ଭ ।

ସ୍ମୃତିହର—ବିଂ. (ସ୍ମୃତି+ହୃ+ଅ) ସ୍ମୃତିନାଶକ ।

ସ୍ମୃତିହରା—ସ୍ତ୍ରୀ. ବି. ଶଙ୍ଖପୁଷ୍ପୀ ଲତା, ଶ୍ୱେତାପରାଜିତା ଲତା ।

ସ୍ମୃତିହେତୁ—ବି ସ୍ମରଣର କାରଣ, ବାସନା, ସଂସ୍କାର, ଭାବନା ।

ସ୍ମୃତ୍ୟପେତ—ବିଂ. ସ୍ମୃତିବିରୁଦ୍ଧ ।

ସ୍ମେର—ବିଂ.(ସ୍ମି+କ.ର) ସ୍ମିତ, ଈଷତ୍ହାସ୍ୟଯୁକ୍ତ, ବିକଶିତ, ସ୍ଫୁଟ ।

ସ୍ମେରବିଷ୍କିର—ପୁଂ.ବି. (ସ୍ମେର+ବିଷ୍କିର) ମୟୂର ।

ସ୍ମେରମୁଖ—ବି. (କ.ଧା) ଈଷଦ୍ଧାସ୍ୟଯୁକ୍ତ ମୁଖ, (ପୁଂ.ବିଂ-ବ.ବ୍ରୀ) ଈଷଦ୍ଧାସ୍ୟ ମୁଖଯୁକ୍ତ, (ସ୍ତ୍ରୀ) ସ୍ମେରମୁଖୀ ।

ସ୍ମେରାନନ—ବି ଓ ବିଂ. ସ୍ମେରମୁଖ ଦେଖ, (ସ୍ତ୍ରୀ) ସ୍ମେରାନନା ।

ସ୍ୟଦ-ବି.(ସ୍ୟନ୍ଦ୍+ଭା.ଅ) ବେଗ, ଶୀଘ୍ରତା ।

ସ୍ୟନ୍ଦ୍-(ଧାତୁ) ସ୍ରବିବା, ବୋହିବା, କ୍ଷରିବା, ଗମନ କରିବା, ଗତି କରିବା ।

ସ୍ୟନ୍ଦ—ବି. (ସ୍ୟନ୍ଦ୍+ଭା.ଅ) ଗତି, ଗମନ, ବେଗ, କ୍ଷରଣ, ତରଳିଯିବା, ପାଣି ହୋଇଯିବା, ଝାଳ ବୋହିବା, ସ୍ୱେଦୋଦ୍ଗମ, (ଣ.ଅ) ସ୍ୟନ୍ଦନ, ରଥ, (ଅଧି.ଅ) ନେତ୍ରରୋଗବିଶେଷ, (କ.ଅ) ଚନ୍ଦ୍ରମା ।

ସ୍ୟନ୍ଦକି—ବି. ତିନ୍ଦୁକ ବୃକ୍ଷ, କେନ୍ଦୁ ଗଛ ।

ସ୍ୟନ୍ଦନ—ବି.(ସ୍ୟନ୍ଦ୍+ଣ.ଅନ) ଚକ୍ରଯୁକ୍ତ ଯାନ, (ଭା.ଅନ)ଗତି, ବେଗ, କ୍ଷରଣ, ଗମନ, (କ.ଅନ) ଜଳ, ତିନିଶ ବୃକ୍ଷ, ବାନ୍ଧଣ ଗଛ, ବାୟୁ, ବୃଷ୍ଟାର୍ହତବିଶେଷ, ପାଣି ହୋଇଯିବା, ତରଳିଯିବା, ରଥ, ଘୋଡ଼ା, ତିନ୍ଦୁକ, କେନ୍ଦୁଗଛ, ଅସ୍ତ୍ର, ଅଭିମନ୍ତ୍ରିତ କରାଯିବା ମନ୍ତ୍ରବିଶେଷ, (ବିଂ) ଶୀଘ୍ର, ସ୍ୟନ୍ଦକ, କ୍ଷରଣକାରୀ ।

ସ୍ୟନ୍ଦନଦ୍ରୁମ—ବି. (କ.ଧା) ତିନିଶ ବୃକ୍ଷ, ବାନ୍ଧଣ ଗଛ ।

ସ୍ୟନ୍ଦନବର—ବି.(୬ତତ୍) ଉତ୍କୃଷ୍ଟ ରଥ ।

ସ୍ୟନ୍ଦନାରୋହ—ବି.(ବ.ବ୍ରୀ) ରଥାରୋହୀ ଯୋଦ୍ଧା ।

ସ୍ୟନ୍ଦନାରୋହଣ—ବି.(୭ତତ୍) ରଥରେ [ ଚଢ଼ିବା ।

ସ୍ୟନ୍ଦନାରୋହୀ—ପୁଂ. ବିଂ. ରଥରେ ଚଢ଼ିଥିବା (ବ୍ୟକ୍ତି), (ସ୍ତ୍ରୀ)ସ୍ୟନ୍ଦନାରୋହିଣୀ ।

ସ୍ୟନ୍ଦନାହ୍ୱ-ବି. ତିନିଶ ବୃକ୍ଷ, ବାନ୍ଧଣ ଗଛ ।

ସ୍ୟନ୍ଦନି—ବି. (ସ୍ୟନ୍ଦନ+ଇ) ତିନିଶ ବୃକ୍ଷ, ସ୍ୟନ୍ଦନୀ ଦେଖ ।

ସ୍ୟନ୍ଦନିକା—ବି. ଶ୍ରେଷ୍ଠ ନଦୀ ଜଳର ବିନ୍ଦୁ ।

ସ୍ୟନ୍ଦନୀ—ବି. (ସ୍ୟନ୍ଦ+କ.ଅନ+ଈ) ଲାଳା, ଅଧରାମୃତ, ଛେପ, (ଣ.ଅନ+ଈ) ମୂତ୍ରନାଳୀ ।

ସ୍ୟନ୍ଦିନୀ—ସ୍ତ୍ରୀ. ବିଂ. (ସ୍ୟନ୍ଦିନ୍+ଈ) ସ୍ୟନ୍ଦୀର ସ୍ତ୍ରୀଲିଙ୍ଗ, (ବି) ଲାଳ, ଛେପ, ଗାଈ, ଯେ ଯମଜ ବତ୍ସ ପ୍ରସବ କରେ ।

ସ୍ୟନ୍ଦୀ—ପୁଂ. ବିଂ. (ସ୍ୟନ୍ଦ୍+କ.ଇନ୍) ଯାହା ସ୍ରବୁ ଥାଏ, କ୍ଷରଣଶୀଳ, ଗମନଶୀଳ, ସ୍ରାବକ, (ସ୍ତ୍ରୀ) ସ୍ୟନ୍ଦିନୀ ।

ସ୍ୟନ୍ଦୋଳିକା—ବି. ଦୋଳାବଲମ୍ବ ।

ସ୍ୟନ୍ନ—ବିଂ. (ସ୍ୟନ୍ଦ୍+କ.ତ) ଝରୁଥିବା, ସ୍ରବୁଥିବା ।

ସ୍ୟନ୍ନବାଣ—ପୁଂ. ବିଂ. ସ୍ଥୂଳ, (ସ୍ତ୍ରୀ) ବାଣା ।

ସ୍ୟମ୍—(ଧାତୁ) ଧ୍ୱନିକରିବା. ବିତର୍କକରିବା ।

ସ୍ୟମନ୍ତକ—ବି. ମଣିବିଶେଷ, ଶ୍ରୀକୃଷ୍ଣଙ୍କ ହସ୍ତସ୍ଥିତ ମଣି ।

ସ୍ୟମନ୍ତପଞ୍ଚକ—ବି. (ନାମ) କ୍ଷତ୍ରିୟମାନଙ୍କ ରକ୍ତରେ ପିତୃଲୋକଙ୍କ ଉଦ୍ଦେଶ୍ୟରେ ପରଶୁରାମ ତର୍ପଣ କରିଥିବା ତୀର୍ଥ ବିଶେଷ ।

ସ୍ୟମିକ—ବି. (ସ୍ୟମ+ଇକ) ବଲ୍ମୀକ, ଉଇହୁଙ୍କା, ବୃକ୍ଷବିଶେଷ ।

ସ୍ୟମୀକ—ବି. (ସ୍ୟମ+ଈକ) ବଲ୍ମୀକ, ଉଇହୁଙ୍କା, ବୃକ୍ଷବିଶେଷ, ମେଘ, କାଳ, ଜଳ, ପ୍ରାଚୀନ ରାଜବଂଶବିଶେଷ ।

ସ୍ୟମୀକା—ବି. (ସ୍ୟମୀକ+ଆ) ନୀଳିକା, ଏକପ୍ରକାର ପୋକ ।

ସ୍ୟାଡ଼—ଗ୍ରା. ସର୍ବ. ସେ ଆଡ଼, ସେ ଅଞ୍ଚଳ, ସେ ଦିଗ, ସେ ପକ୍ଷ ।

ସ୍ୟାଡ଼କା—ଗ୍ରା. ସର୍ବ. ସେ ଅଞ୍ଚଳର, ସେହି ଆଡ଼ର ।

ସ୍ୟାଡ଼କୁ—ଗ୍ରା. ସର୍ବ. ସେହି ଅଞ୍ଚଳରୁ, ସେଠାରୁ, ସେହି ଦିଗରୁ, ତତ୍ପରେ ।

ସ୍ୟାଡ଼ୁ—ଗ୍ରା.ସର୍ବ. ସେଠାରୁ.ସେହିଦିଗରୁ ।

ସ୍ୟାଡ଼େ-ଗ୍ରା.ସର୍ବ. ସେଠାରେ, ସେଦିଗରେ ।

ସ୍ୟାତ୍—ଗ୍ରା.ଅ. (ସ୍ର-ଅସ୍ ଧାତୁ, ତର୍କଶା-

ର୍ଥକ) କେଳାଣି, କେଙ୍କାଣି ଅବା,ଯନ୍ଦ, ଯନ୍ଦସ୍ୟାନ୍ତୁ ।

ସ୍ୟାଲ—ପୁଂ. ବ. ଶ୍ୟାଲିକ, ଶାଳି ।

ସ୍ୟାଲକ—ପୁଂ. ବ. ଶ୍ୟାଲକ, ଶଳା ।

ସ୍ୟାଲକା—ସ୍ତ୍ରୀ. ବ. ଶ୍ୟାଲକା, ପତ୍ନୀଙ୍କ ସାନ ଭଉଣୀ ।

ସ୍ୟୂହ—ବ. ଆହ୍ଲାଦ ।

ସ୍ୟୁମ୍ନ—ବ. ଆହ୍ଲାଦ ।

ସ୍ୟୂ—ବ. (ସିବ୍+ଣ.ଉ) ସୂତ୍ର,ସୂତା ।

ସ୍ୟୂତ—ବି. ( ସିବ୍+ମି.ତ ) ପ୍ରୋତ, ଉତ,ସନ୍ଧିତ,ସୂତାଦ୍ୱାରା ବୁଣାହୋଇଥିବା, ସିଲାଇ କରାଯାଇଥିବା, ରଫୁ କରାଯାଇଥିବା, (ବ) ସୂତ୍ରନିର୍ମିତ ଖଣ୍ଡ, ବସ୍ତ୍ରନିର୍ମିତ ମୁଣି ।

ସ୍ୟୂତସନ୍ଧ—ବ. ଯେଉଁମାନଙ୍କର ସନ୍ଧିସ୍ଥଳ ସିଲାଇ ହୋଇଥାଏ, ମସ୍ତକର ଅସ୍ଥିଗୁଡ଼ିକ ଏରୂପ ସମ୍ବନ୍ଧ ଯେ ଦେଖିଲେ ବୋଧହୁଏ ଯେମନ୍ତ ସେଗୁଡ଼ିକ ସିଲାଇ କରାହୋଇଅଛି ଏଥି ସକାଶେ ସେମାନଙ୍କର ସଂଯୋଗ ସ୍ଥଳକୁ ସ୍ୟୂତସନ୍ଧି କହନ୍ତି ।

ସ୍ୟୂତି—ବ. ( ସିବ୍+ଭି.ତି ) ସୀବନ, ଛୁଞ୍ଚିଦ୍ୱାରା ଲୁଗାଆଦି ସିଇଁବା, ରଫୁ କରିବା, ବୁଣିବା, ବୟନ, ( ମି.ତି ) ତନ୍ତୁସନ୍ତାନ, ତନ୍ତୁରେ ନିର୍ମିତ ବସ୍ତ୍ର, ଲୁଗାର ଅଳ, ସନ୍ତାନ, ସନ୍ତତି ।

ସ୍ୟୂନ--ବ.(ସିବ୍+ମି.ନ)ସୂତ୍ର,ଧୋକଡ଼ ମୁଣି । [ କଳ ।

ସ୍ୟୂମ—ବ.(ସିବ୍+ଣ.ମ) ରଶ୍ମି, କିରଣ,

ସ୍ୟୋତ—ବ. ( ସିବ୍+ମି.ତ ) ସ୍ୟୂତ ଧୋକଡ଼ ।

ସ୍ୟୋନ—ବ. ( ସିବ୍+ମି.ନ ) ସ୍ୟୂତ, ଧୋକଡ଼, ଯୌତକଟ, (କ.ନ) ସୂର୍ଯ୍ୟ ସୁଖ, ଆନନ୍ଦ ।

ସ୍ୟୋନାକ—ବ. ଶ୍ୟୋନାକ ।

ସ୍ରଂସ—ବ.(ସ୍ରଂସ+ଅ) ସ୍ରଂସନ, ଭ୍ରଂଶ, ଚ୍ୟୁତ ।

ସ୍ରଂସନ(ନା)—ବ. (ସ୍ରନସ୍+ଭା.ଅନ+ଆ) ସ୍ଖଳନ, ଅଧଃପତନ, ଖସିବା, ପଡ଼ିଯିବା, ଭ୍ରଂଶ, ବିଚ୍ୟୁତ, ଦେହସ୍ଥ, ଊର୍ଦ୍ଧ୍ୱଗତ ଦୋଷକୁ ଅଧୋ ଦେଶକୁ ଆଣିବା, ( ଣ.ଅନ ) ମଳଭେଦକ ଔଷଧ, ( ଭା.ଅନ ) ଗର୍ଭପାତ, ଗର୍ଭସ୍ରାବ, (ବି) ଅଧଃପତନ କାରକ, ମଳ ଭେଦକ ।

ସ୍ରଂସିନୀ—ସ୍ତ୍ରୀ.ବି.(ସ୍ରଂସିନ୍+ଈ)ସ୍ରଂସୀର ସ୍ତ୍ରୀଲିଙ୍ଗ, ବି-ପ୍ରସଂଶିନୀ, ଯୋନିରୋଗବିଶେଷ,ଯହିଁରେ ପଦ୍ମ ଖସିପଡ଼େ ।

ସ୍ରଂସିନୀଫଳ—ବ. ଶିରୀଷ ବୃକ୍ଷ ।

ସ୍ରଂସୀ—ବି.(ସ୍ରନସ୍+କ.ଇନ୍)ଅଧଃପତନଶୀଳ, ଭ୍ରଷ୍ଟ,ଚ୍ୟୁତ, ଅସମୟରେ ପତିତ ବା ଭ୍ରଷ୍ଟ (ଭ୍ରୂଣ);(ସ୍ତ୍ରୀ)ସ୍ରଂସିନୀ, (ବି) ପୀଲୁବୃକ୍ଷ, ଗୁଆଗଛ ।

ସ୍ରକ୍—(ଧାତୁ) ଗତି କରିବା ।

ସ୍ରକ(ଗ୍)—ବ.(ସୃଜ୍+ମି.କ୍ୱିପ୍) ମାଲ, ମାଳା,ହାର, ମୁଣ୍ଡରେ ପିନ୍ଧାଯିବା ପୁଷ୍ପଦାମ, ଫୁଲର ମାଳ ବା ହାର, ବର୍ଣ୍ଣବୃତ୍ତବିଶେଷ, ବୃକ୍ଷବିଶେଷ, ଜ୍ୟୋତିଷୋକ୍ତ ଯୋଗବିଶେଷ ।

ସ୍ରକ୍‌ଚନ୍ଦନ—ବ. (ଦ୍ୱନ୍ଦ୍ୱ) ମାଳା ଓ ଚନ୍ଦନ । [ମନ୍ତ୍ର ।

ସ୍ରଗଣୁ—ପୁଂ.ବ.(ସ୍ରକ୍+ଅଣୁ) ମାଳା-

ସ୍ରଗାବଳି—ବ.୬ତତ୍;(ସ୍ରକ୍+ଆବଳି) ପୁଷ୍ପର ପାଖ ତାମାନଙ୍କର ସମଷ୍ଟି ।

ସଗ୍ଧର—ପୁଂ. ବି. (ସ୍ରଜ୍+ଧୃ+କ.ଅ) ମାଳାଧାରୀ,(ସ୍ତ୍ରୀ)ସ୍ରଗ୍‌ଧରା ।

ସ୍ରଗ୍ଧରା—ବ. ଏକବିଂଶତି ଅକ୍ଷରବିଶିଷ୍ଟ ସଂସ୍କୃତ ଛନ୍ଦୋବିଶେଷ, ବୌଦ୍ଧଦେବୀବିଶେଷ, (ସ୍ତ୍ରୀ. ବି—ସ୍ରଗ୍‌ଧର+ଆ) ମାଲ୍ୟଧାରିଣୀ ।

ସଗ୍ୱାନ୍—ପୁଂ.ବି.(ସ୍ରଜ୍+ବତୁ) ମାଳାଯୁକ୍ତ, ମାଲ୍ୟଭୂଷିତ, (ସ୍ତ୍ରୀ.) ସ୍ରଗ୍ୱତୀ ।

ସ୍ରଗ୍ୱିଣୀ—ସ୍ତ୍ରୀ.ବି.(ସ୍ରଗ୍ୱିନ୍+ଈ)ମାଲ୍ୟଧାରିଣୀ (ସ୍ତ୍ରୀ), (ବ) ପ୍ରତି ଚରଣରେ ଗୁରୁର ଗଣ ଥିବା ବୃତ୍ତବିଶେଷ,ଦେବୀବିଶେଷ ।

ସ୍ରଗ୍ୱୀ—ପୁଂ.ବି.(ସ୍ରଜ୍+ଇନ୍) ମାଳାଧାରୀ, (ସ୍ତ୍ରୀ) ସ୍ରଗ୍ୱିଣୀ ।

ସ୍ରଜିଷ୍ଠ—ପୁଂ:ବି.(ସ୍ରଜ୍+ଇଷ୍ଠ) ମାଲ୍ୟବିଶିଷ୍ଟ, (ସ୍ତ୍ରୀ) ସ୍ରଜିଷ୍ଠା ।

ସ୍ରଜୀୟାନ୍—ବି. (ସ୍ରଜ୍+ଈୟସ୍) ମାଲ୍ୟବିଶିଷ୍ଟ,(ସ୍ତ୍ରୀ) ସ୍ରଜୀୟସୀ ।

ସ୍ରଜ୍ୱା—ବ.(ସୃଜ୍+କ.ବନ୍) ପ୍ରଜାପତି, (ସ୍ରଜ୍+ବନ୍) ରଜ୍ଜୁ, ତନ୍ତୁପଟ ସଙ୍ଗାଡ଼ି, ବଳାହୋଇଥିବା ଦଉଡ଼ି,(ସ୍ରଜ୍+ବତୁ) ମାଳାକାର ।

ସ୍ରଦ୍ଧ—ବ. (ଶୃଧ୍+ଭି.ର) ବାତକର୍ମ, ଅପାନବାୟୁ ନିଃସରଣ ।

ସ୍ରନ୍ଭ—(ଧାତୁ) ପ୍ରମାଦଗ୍ରସ୍ତ ହେବା, ପ୍ରମତ୍ତହେବା, ବିଶ୍ୱାସ କରିବା ।

ସ୍ରନ୍ସ୍—(ଧାତୁ) ଭ୍ରଂଶହେବା, ଖସିଯିବା, ତଳକୁ ପଡ଼ିଯିବା, ପ୍ରସନ୍ନ ହେବା ।

ସ୍ରବ—ବ. (ସ୍ରୁ+ଭି.ଅ) ସ୍ରାବ ଦେଖ, ସ୍ରବଣ ଦେଖ ।

ସ୍ରବଣ—ବ. (ସ୍ରୁ+କ.ଅନ ) ପ୍ରସ୍ରାବ, ମୂତ୍ର, ଘର୍ମ, ଉସ୍ର, ପ୍ରସ୍ରବଣ, ପ୍ରବାହ, ଗର୍ଭସ୍ରାବ, (ଭା.ଅନ) ଝରିବା,କ୍ଷରଣ ।

ସ୍ରବଣ୍ଡୋସ୍ପ୍ରା—ବ. ରୁଦନ୍ତୀ ବୃକ୍ଷ ।

ସ୍ରବଦ୍‌ଗର୍ଭା—ସ୍ତ୍ରୀ. ବି. (ସ୍ରବତ୍=ସ୍ଖଳିତ ହୋଇଅଛି ଗର୍ଭ ଯାହାର) ଯେଉଁ ସ୍ତ୍ରୀର ଦୈବବଶରୁ ଗର୍ଭପାତ ହୋଇଅଛି, ଗର୍ଭକୁ ପକାଇଥିବା (ସ୍ତ୍ରୀ), ( ସ୍ତ୍ରୀ.ବି ) ଅବତୋକା, ଦୈବବଶରୁ ପତିତଗର୍ଭା ଗୋ ।

ସ୍ରବଦ୍ରଙ୍ଗ—ବ.ପଣ୍ୟଗ୍ରନ୍ଥି,ମେଳା,ପ୍ରଦର୍ଶନୀ ।

ସ୍ରବନ୍—ପୁଂ. ବି. ( ସ୍ରୁ+କ.ଅତ୍ର ) କ୍ଷରଣବିଶିଷ୍ଟ, ଝରୁଥିବା, କ୍ଷରଣଶୀଳ, (ସ୍ତ୍ରୀ) ସ୍ରବନ୍ତୀ ।

ସ୍ରବନ୍ତୀ—ବ.(ସ୍ରୁ+କ.ଅତ୍+ଈ)ନଦୀ, ବନସ୍ପତିବିଶେଷ,ଔଷଧି ଭେଦ,(ସ୍ତ୍ରୀ.ବି) କ୍ଷରଣଶୀଳା ।

ସ୍ରବା—ବ. (ସ୍ରୁ+କ.ଅ+ଆ ) ମୁର୍ଙ୍ଗା, ମୁରୁଗା ଘାସ, ଜୀବନ୍ତୀ ।

ସ୍ରବିବା—ଗ୍ରା. କ୍ରି.(ପଦ୍ୟ) କ୍ଷରିତହେବା, ଧାରକ୍ରମେ ବୋହିବା ।

ସ୍ରଷ୍ଟବ୍ୟ—ବି. (ସୃଜ୍+ମି.ତବ୍ୟ) ସୃଷ୍ଟ ହେବାର ଯୋଗ୍ୟ ।

ସ୍ରଷ୍ଟା—ପୁଂ. ବିଂ. ( ସୃଜ୍+କ.ତୃ ) ଯେ ସର୍ଜନା କରେ, ସୃଷ୍ଟିକର୍ତ୍ତା, (ସ୍ତ୍ରୀ) ସ୍ରଷ୍ଟ୍ରୀ, (ବି) ନିର୍ମାତା,ଉଦ୍ଭାବନ କର୍ତ୍ତା, ବିଧାତା, ବ୍ରହ୍ମା, ଶିବ, ଈଶ୍ୱରଙ୍କର ସୃଷ୍ଟିକାରୀ ରୂପ, ବିଷ୍ଣୁ ।

ସ୍ରଷ୍ଟୃତା(ତ୍ୱ)—ବି. (ସ୍ରଷ୍ଟୃନ୍+ଭା.ତା) ସୃଷ୍ଟିକର୍ମ, ସ୍ରଷ୍ଟାହେବାର ଅବସ୍ଥା ।

ସ୍ରସ୍ତ—ବିଂ. (ସ୍ରନ୍ସ+କ.ତ) ସ୍ଖଳିତ, ତଳକୁ ଖସିପଡ଼ିଥିବା, ଚ୍ୟୁତ, ଭ୍ରଷ୍ଟ, ଝୁଲିପଡ଼ିଥିବା, ବିଗଳିତ, ଶିଥିଳ, ଢିଲା ହୋଇଥିବା, (ସ୍ତ୍ରୀ) ସ୍ରସ୍ତା ।

ସ୍ରସ୍ତର—ବି.(ସ୍ରନ୍ସ୍+ମି.ତର) ସଂସ୍ତର, ଆସନ, ଶଯ୍ୟା ।

ସ୍ରସ୍ତି—ବି. (ସ୍ରସ୍+ତି) ଚ୍ୟୁତି, ସ୍ଖଳନ ।

ସ୍ରାକ୍—ଅବ୍ୟ. ଦ୍ରୁତ ।

ସ୍ରାକ୍ସମିସ୍—ଯା. ବି. କେନ୍ଦୁଝର ଜିଲ୍ଲାରେ ମିଳୁଥିବା ଏକପ୍ରକାର ଫିକା ବାଇଗଣୀ ରଙ୍ଗର ଅଙ୍କୁର, ଯାହାକୁ ଶୁଖାଇକରି କ୍ସମିସ୍ କରାଯାଏ ।

ସ୍ରାଗ—ଗ୍ରା. ବି. ( ଯଦ୍ୟ, ସଂ-ସରାଗ ) ସ୍ନେହ, ଅନୁରାଗ, ସୁହାଗ ।

ସ୍ରାବ—ବି.(ସ୍ରୁ+ଭା.ଅ) ସ୍ରବ, କ୍ଷରଣ, ବୋହିବା, ପତନ, ଭ୍ରଂଶ, ବିଚ୍ୟୁତି, ପ୍ରସବ ପରେ ୩।୪ଦିନ ପର୍ଯ୍ୟନ୍ତ ପ୍ରସୂତିଙ୍କ ଜନନେନ୍ଦ୍ରିୟରୁ ବାହାରିବା ନାଲି-ରଙ୍ଗର ଜଳୀୟ ବସ୍ତୁ,ଗର୍ଭପାତ,(କ.ଅ) ନିର୍ଯ୍ୟାସ, ବହୁଥିବା ରସ, ନେତ୍ର-ରୋଗାନ୍ତର୍ଗତ ସନ୍ଧିଗତ ରୋଗବିଶେଷ ।

ସ୍ରାବକ—ପୁଂ. ବିଂ. ( ସ୍ରୁ+କ.ଅକ ) କ୍ଷରଣଶୀଳ, କ୍ଷରକ, (ସ୍ତ୍ରୀ) ସ୍ରାବିକା, (ବି) ମରିଚ ।

ସ୍ରାବଣ—କ୍ଳୀ. ବି. (ସ୍ରୁ+ଣିଚ୍+ଅନ) କ୍ଷରଣ, ରକ୍ତାଦି କ୍ଷରଣ,(ବିଂ)କ୍ଷାରକ ।

ସ୍ରାବଣିକରଣୀ-ଗ୍ରା.ବି.ମହୌଷଧିବିଶେଷ ।

ସ୍ରାବଣୀ—ବି. ଋଦ୍ଧି ନାମକ ମହୌଷଧି ବୃକ୍ଷ ।

ସ୍ରାବିତ—ବିଂ. ( ସ୍ରୁ+ଣିଚ୍+ମି.ତ ) ଦୁହାଁଇ କରି ବାହାର କରାଯାଇଥିବା (ରସ) ।

ସ୍ରାବୀ—ପୁଂ. ବିଂ. (ସ୍ରୁ+ଣିଚ୍+କ. ଇନ୍) ଯାହା ସ୍ରାବ କରାଏ, ଯହିଁରୁ ଝରୁଥାଏ, (ସ୍ତ୍ରୀ) ସ୍ରାବିଣୀ ।

ସ୍ରାବ୍ୟ—ବିଂ. ( ସ୍ରୁ+ଣିଚ୍+ମି.ଯ ) କ୍ଷରିତ କରାଯିବା ଯୋଗ୍ୟ, କ୍ଷରଣାର୍ହ ।

ସ୍ରିଜିବା—ଗ୍ରା. କ୍ରି. (ପ୍ରାଚୀନ ପ୍ରୟୋଗ) ସର୍ଜନା କରିବା ।

ସ୍ରିନ୍ଭ—(ଧାତୁ) ହିଂସା କରିବା ।

ସ୍ରିଧ-(ଧାତୁ)ଶୋଷଣ କରିବା,ଶୁଖାଇବା, ଗଢ଼ କରିବା ।

ସ୍ରିଭ—(ଧାତୁ) ହିଂସା କରିବା ।

ସ୍ରୁ—(ଧାତୁ) ଗଢ଼ କରିବା, ସ୍ରବିବା, କ୍ଷରିତ ହେବା ।

ସ୍ରୁକ୍(ଗ୍)—ବି, (ସ୍ରୁ+ଣ,କ୍ୱିପ୍) କାଷ୍ଠ ନିର୍ମିତ ଯଜ୍ଞପାତ୍ରବିଶେଷ, ଏକପ୍ରକାର ସ୍ରୁବ ।

ସ୍ରୁଗ୍ଦାରୁ—ବି.ବ୍ୟାଘ୍ରପାଦ ଗୁଳ୍ମ,ଉଇଁଚ-କୋଳି ଗୁଳ୍ମ ।

ସ୍ରୁଘ୍ନୀ—ବି.(ସ୍ରୁ+ହନ୍+କ.ଅ+ଈ) ସର୍ଜିକାକ୍ଷାର, ସାଜିମାଟି ।

ସ୍ରୁଚ୍—ପୁଂ.ବି.ସ୍ରୁକ୍ ଦେଖ,(ସ୍ତ୍ରୀ)ସ୍ରୁଗ୍ର ।

ସ୍ରୁଚ—ଗ୍ରା.ବି.(ସଂ-ସ୍ରୁଚ୍)ସ୍ରୁକ୍ ଦେଖ ।

ସ୍ରୁଚ୍ୟ—ବିଂ. ସ୍ରୁକ୍ ଯୋଗ୍ୟ ।

ସ୍ରୁତ୍—ବିଂ.(ସ୍ରୁ+ତ+କ୍ୱିପ୍)ସ୍ରବଣ-କାରୀ, କ୍ଷରଣକାରୀ ।

ସ୍ରୁତ—ବିଂ. ( ସ୍ରୁ+କ.ତ ) କ୍ଷରିତ, ପତିତ, ଗଳିତ ।

ସ୍ରୁତା—ବି. ହିଙ୍ଗୁପତ୍ରୀ ।

ସ୍ରୁତି—ବି. (ସ୍ରୁ+ଭା.ତି)କ୍ଷରଣ,ପତନ, ବୋହି ପଡ଼ିବା ।

ସ୍ରୁତ୍ୟ—ବିଂ. କ୍ଷରଣ ଯୋଗ୍ୟ ।

ସ୍ରୁବ—ବି. (ସ୍ରୁ+ଣ.ଅ) କାଷ୍ଠନିର୍ମିତ ଯଜ୍ଞପାତ୍ରବିଶେଷ, ( ଗ୍ରା.ବି—ଲ.ଅର୍ଥ ) ଲିଙ୍ଗ,ମେଢ୍ର ।

ସ୍ରୁବତରୁ-ବି.ବିକଙ୍କତବୃକ୍ଷ,ଭୁଇଁଚଗଛ ।

ସ୍ରୁବରୁଡ଼ା(ଡ଼େ)ଇବା—ଗ୍ରା.କ୍ରି.(ଲ.ଅର୍ଥ) ସ୍ତ୍ରୀସଙ୍ଗମ କରିବା ।

ସ୍ରୁବସ୍ରୁଚ—ଗ୍ରା.ବି.ହୋମପାଇଁ ଲେଉଡ଼ା ଯଜ୍ଞପାତ୍ର, ସ୍ରୁବ ଓ ସ୍ରୁକ୍ ।

ସ୍ରୁବା—ବି. (ସ୍ରୁ+ଣ.ଅ+ଆ)ଶଲ୍ଲକୀ, ଲେବାନ୍‌ପରି ଏକପ୍ରକାର ସୁଗନ୍ଧ ଝୁଣା, ମୂର୍ଚ୍ଛା, ମୁରୁଗା ଘାସ, ସ୍ରୁବ ।

ସ୍ରୁବାବୃକ୍ଷ—ବି.ବିକଙ୍କତ,ଭୁଇଁଚଗଛ ।

ସ୍ରୂ—ବି, ( ସ୍ରୁ+ଣ,ଊ ) ସ୍ରୁବ ଦେଖ, (କ.ଊ) ନିର୍ଝର, ଝରଣା ।

ସ୍ରୈ—(ଧାତୁ) ପାକ କରିବା, ରାନ୍ଧିବା ।

ସ୍ରୋତ(ତଃ)—ବି. (ସ୍ରୁ+କ.ତ,ତସ୍) ଜଳପ୍ରବାହ, ଜଳଧାରା, ପ୍ରବାହ,ଜଳର ନିଜ ମନକୁ ବେଗରେ ବୋହିଯିବା, ସ୍ୱତଃ ଅନୁସରଣ, (ଭା.ତ.ତସ୍) ମନୁ-ଷ୍ୟଙ୍କର ଦେହର ସପ୍ତସ୍ଥାନରୁ ମଦକ୍ଷରଣ, (ଅପା. ତସ୍ ବା ଅସ୍)ମନୁଷ୍ୟଦେହର ନବବିଧ ଇନ୍ଦ୍ରିୟପଥ ବା ନଅ ଛିଦ୍ର, ନଦୀ, ବଂଶପରମ୍ପରା, କୁଳଧାରା ।

ସ୍ରୋତଃଶୂନ୍ୟ—ବିଂ.ସ୍ରୋତଃହୀନ ଦେଖ ।

ସ୍ରୋତଆପତ୍ତି—ବି. ବୌଦ୍ଧଶାସ୍ତ୍ର ଅନୁ-ସାରେ ନିର୍ବାଣ ସାଧନର ପ୍ରଥମ ଅବସ୍ଥା, ଯହିଁରେ ସାଧକଙ୍କର ସଂସାର ବନ୍ଧନ ଶିଥିଳ ହେବା ଆରମ୍ଭ ହୁଏ, ( ବିଂ ) ସ୍ରୋତଆପନ୍ନ ।

ସ୍ରୋତଈଶ—ବି. ୬ତତ୍; (ସ୍ରୋତଃ+ଈଶ) ସମୁଦ୍ର । [ ସ୍ରୋତ ଦେଖ ।

ସ୍ରୋତସ୍—(ଶବ୍ଦ) ( ସ୍ରୁ+କ.ତସ୍ )

ସ୍ରୋତସୋଽଞ୍ଜନ—ବି. (ସ୍ରୋତସଃ+ଅଞ୍ଜନ) ସ୍ରୋତୋଞ୍ଜନ ଦେଖ ।

ସ୍ରୋତସ୍ୱତୀ—ବି. (ସ୍ରୋତସ୍+ବତ୍+ଈ) ନଦୀ ।

ସ୍ରୋତସ୍ୱାନ୍—ପୁଂ. ବିଂ. (ସ୍ରୋତସ୍+ବତ୍) ସ୍ରୋତବିଶିଷ୍ଟ, ସ୍ରୋତଯୁକ୍ତ,(ସ୍ତ୍ରୀ) ସ୍ରୋତସ୍ୱତୀ ।

ସ୍ରୋତସ୍ୱିନୀ—ବି. (ସ୍ରୋତସ୍+ବିନ୍+ଈ) ନଦୀ, (ସ୍ତ୍ରୀ.ବିଂ) ସ୍ରୋତଯୁକ୍ତା ।

ସ୍ରୋତସ୍ୱୀ—ପୁଂ. ବିଂ. (ସ୍ରୋତସ୍+ବିନ୍) ସ୍ରୋତସ୍ୱାନ୍ ଦେଖ, ( ସ୍ତ୍ରୀ ) ସ୍ରୋତସ୍ୱିନୀ ଦେଖ ।

ସ୍ରୋତସ୍ୟ—ବି. (ସ୍ରୋତସ୍+ଯ) ଶିବ, ମହାଦେବ, ଚୋର, (ବିଂ) ସ୍ରୋତୋ-ଭବ ।

ସ୍ରୋତୋଜ—ବି. (ସ୍ରୋତସ୍+ଜନ୍+କ.ଅ) ସ୍ରୋତୋଞ୍ଜନ ଦେଖ ।

ସ୍ରୋତୋଜଲ—ବି. (ସ୍ରୋତ୍ର+ଜଳ) ସ୍ରୋତଃଯୁକ୍ତ ବା ପ୍ରବାହବିଶିଷ୍ଟ ଜଳ ।

ସ୍ରୋତୋଞ୍ଜନ—ବି. କ.ଧ; (ସ୍ରୋତଃ+ଅଞ୍ଜନ) କଳା ସୁରମା, କୃଷ୍ଣବର୍ଣ୍ଣ ସୌଗନ୍ଧାଞ୍ଜନ, ସୁବୀରଦେଶ ବା ଯମୁନା ନଦୀ ନିକଟସ୍ଥ ଦେଶରେ ଜାତ ଅଞ୍ଜନବିଶେଷ ।

ସ୍ରୋତୋଭବ—କ୍ଲୀ.ବି. ସ୍ରୋତୋଞ୍ଜନ ।

ସ୍ରୋତୋନଦୀଭବ-କ୍ଲୀ.ବି.ସ୍ରୋତୋଞ୍ଜନ ।

ସ୍ରୋତୋବହ (ହ)—ବି. (ସ୍ରୋତସଃ+ବହ+କ.କ୍ୱିପ୍.ଅ) ନଦୀ ।

ସ୍ରୋତୋବହା—ସ୍ତ୍ରୀ.ବି. (ସ୍ରୋତୋବହ+ଆ) ନଦୀ ।

ସ୍ରୋତୋବାହିତ—ବିଂ. (୭ତତ୍ର) ସ୍ରୋତଦ୍ୱାରା ଚାଳିତ,(ସ୍ତ୍ରୀ) ସ୍ରୋତୋବାହିତା ।

ସ୍ରୋତୋବେଗ—ବି.(୬ତତ୍ର) ସ୍ରୋତର କ୍ଷିପ୍ରଗତି, ସ୍ରୋତର ପ୍ରାବଲ୍ୟ ।

ସ୍ରୋତୋହୀନ—ବିଂ. (୩ତତ୍ର) ପ୍ରବାହରହିତ (ଜଳ), ସ୍ଥିର (ଜଳ) ।

ସ୍ରୋହା—ଗ୍ରା.ବି.(ଫ-ସୂହା) ସ୍ତୁହା ଦେଖ ।

ସ୍ରୌଘ୍ନିକା—ବି. ସର୍ଜିକାକ୍ଷାର ।

ସ୍ରୌଘ୍ନିକ—ବିଂ. (ସ୍ରୋଘ୍ନ+ଇକ) ଶିପ, ଶୁକ୍ତି ।

ସ୍ଲାଇଡ଼ିଙ୍ଗ୍‌ସ୍କେଲ—ଯା.ବି. ଅଙ୍କିମ ଚଢ଼ାଇ ଆଦି ବିଚାର କରିବାର କମକମ ନିରୂପିତ ଦର ।

ସ୍ଲିପ୍—ଯା. ବି. କାଗଜର ଲମ୍ବ ଟୁକୁରା ବା ଖଣ୍ଡ ।

ସ୍ଲିପର—ଯା. ବି. (ଇଂ-ସ୍ଲିପର) ସ୍ଲିପର ଦେଖ, (ଗ୍ରା.ବିଂ) ସ୍ଲିପଟିଆ ଦେଖ ।

ସ୍ଲିପଟିଆ—ଗ୍ରା. ବିଂ. ପତଳା, ପ୍ରଲମ୍ବକୁଚ ବା ଉଚ୍ଚ ସ୍ତନଶୂନ୍ୟା (ସ୍ତ୍ରୀମାନଙ୍କ ବକ୍ଷସ୍ଥଳ) ମର୍କଟସ୍ତନା (ନାରୀ) ।

ସ୍ଲିପର—ଯା. ବି. ରେଲଲାଇନ ତଳେ ଆଡ଼ବାଗେ ପକାଯିବା ପତଳା କାଠର କଡ଼ି, ଚଟାଁ କାଠ ।

ସ୍ଲେଟ୍—ଯା.ବି. ପେନ୍‌ସିଲ‌ରେ ଲେଖିବା ପାଇଁ ମାଟିର ବା ପଥରର ପଟା, ଏକପ୍ରକାର କଳା ପଥର ।

# ହ

ହ—ବ୍ୟଞ୍ଜନବର୍ଣ୍ଣ ମାଳାର ତ୍ରୟସ୍ତ୍ରିଂଶତ୍ର ବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ କଣ୍ଠ ଏହା 'ଅ' ସ୍ୱରର ମହା ପ୍ରାଣ ବର୍ଣ୍ଣ, ଏହୁ 'ହ' ରେ 'ହଲନ୍ତ' ଯୁକ୍ତହେଲେ ଏହା ବିସର୍ଗର ଆକାର ଧାରଣ କରେ । ( ହନ୍‌ଧାତୁ=ବଧ କରିବା, ବା ହାଧାତୁ=ତ୍ୟାଗକରିବା+କ.ଅ ) ଶିବ, ବିଷ୍ଣୁ, ସୂର୍ଯ୍ୟ, ହଂସ, ପୁରୁଷଲିଙ୍ଗ, ନାଗଲୋକ, ଚନ୍ଦ୍ର, ଜଳ, ଆକାଶ, ରକ୍ତ, ଜଗତ୍ପ୍ରାଣ, ସ୍ୱାମୀ, ଯୁଦ୍ଧ, କପିଳା ଗୌର ମଲ, ପରମାତ୍ମା, ରୋମାଞ୍ଚ, ଗର୍ବ, ଆତ୍ମଜ, ଚକ୍ରାସ୍ତ୍ରକ, ଜୀବ, କାରଣ, ଶୁଭସୂଚକତା, ଅଙ୍ଗନ, ଉଦ୍ଦେଶ୍ୟ, ମୃଗ, ଆହ୍ୱାନ, ଭସ୍ମ, ଅସ୍ତ୍ର,ଶସ୍ତ୍ର, ବୈକୁଣ୍ଠ,ମଣିର ପ୍ରଭା, ସ୍ଥାଣୁ, ଗୀତର ଧ୍ୱନି, ସ୍ୱର୍ଗ, କୂପ, ଶୁଖିଥିବା, ଲକ୍ଷ୍ମୀ, ମହାଲକ୍ଷ୍ମୀ, ପରମେଶ୍ୱରୀ, ଲଲାଟଜ ପ୍ରାଣଶକ୍ତି, ଚୈତନ୍ୟ, ଭସ୍ମ, ମୃତ୍ୟୁ, ଘୋଟକ, ଅଂଶ, ଧ୍ୟାନ, ଶାହାଡ଼ାଗଛ, ମଙ୍ଗଳ, ସୋମମଣ୍ଡଳ, ଶୂନ୍ୟ, ମହାଶୂନ୍ୟ, ଶୁଦ୍ଧ, ଆନନ୍ଦ, ଜ୍ଞାନ, (ବିଂ) ଉଚ୍ଚହସିତ, ଶାନ୍ତିଦ, ମତ୍ତ, ସୁରାମତ୍ତ, ( ଅବ୍ୟ — ହା+ଡ, ଅ ) ପାଦପୂରଣାର୍ଥକ, ସମ୍ବୋଧନାର୍ଥ ବ୍ୟବହୃତ ହେ, ଅହୋ, କୋପ ବା ବିନିଗ୍ରହାର୍ଥକ,ବିଯୋଗାର୍ଥକ, କୁତ୍ସାର୍ଥକ, କ୍ଷେପାର୍ଥକ, ଉପଦେଶାର୍ଥକ, ଧାରଣାର୍ଥକ, ଚଳନାର୍ଥକ, ( ଗ୍ରା.ଅ ) ଶଗଡ଼ ଆଦିରେ ଯୋଗୁ ବଳଦଙ୍କୁ ଠିଆ କରାଇବା ପାଇଁ ବ୍ୟବହୃତ ଡାକ, ଯୋଗୁ ବଳଦ ଚାଲିବା ନିମିତ୍ତ ଅଡ଼ାଇବା ଶବ୍ଦ, ପାଦପୂରଣାର୍ଥ କ୍ରିୟାପଦରେ ବ୍ୟବହୃତ, (ଗ୍ରା-କ୍ରି) ହଅ, ଅନାଦରାର୍ଥକ, ତୁଚ୍ଛ ଭାବକ କ୍ରିୟାର ଅନୁଜ୍ଞାର୍ଥକ ଏକବଚନ ରୂପ, ହଅ ଦେଖ, ( ଗ୍ରା-ପୁଷ )—ଅ ହଁ, ହୋ ଦେଖ ।

ହଅ—ଗ୍ରା. କ୍ରି. ଅନାଦରାର୍ଥକ 'ହେବା' କ୍ରିୟାର ଗ୍ରାମ୍ୟରୂପ, 'ହବା' କ୍ରିୟାର ମଧ୍ୟମ ପୁରୁଷ ଅନୁଜ୍ଞା 'ତୁ' କର୍ତ୍ତା ସଙ୍ଗେ ଲାଗିବା ଆକାର, ଯଥା—ତୁ ହଅ ମନ୍ତ୍ରୀ,ମୁଁ ହେବି ରଜା (ଇତ୍ୟାଦି ପିଲାଙ୍କ ଖେଳରେ),(ପ୍ରା ପୁଷ—ଅ)ହଁ ।

ହଅକରିବା—ଗ୍ରା. କ୍ରି. ଯୋଗୁ ହଳକୁ ଠିଆ କରିବା ବା ଚଳାଇବାର (ଡାକ),

ହଇ—ଗ୍ରା. ଅ. (ଫ-ହ) (ସମ୍ମତସୂଚକ) ହଁ, ( କୌଣସି ବ୍ୟକ୍ତିକୁ ଡାକିବାରେ ବ୍ୟବହୃତ) ହେ, ବକ୍ତାଙ୍କ କଥାକୁ ଶ୍ରୋତା ଶୁଣୁଅଛୁ, ଏଥିର ସୂଚନାର୍ଥକ ହଁ ମାରିବାରେ ବ୍ୟବହୃତ ଶବ୍ଦ, ପ୍ରହରୀ ଓ ବୁଲାବିକାମାନଙ୍କଦ୍ୱାରା ସାଧାରଣଙ୍କ ଦୃଷ୍ଟି ଆକର୍ଷଣାର୍ଥେ ବ୍ୟବହୃତ ଲୁହାଟ, ( ଗ୍ରା-ବି)ସମ୍ମତ, ହଁ ।

ହଇଆତ୍ର—ଗ୍ରା. ବି. ହୟାତ୍ର, ଜୀବିତକାଳ, ପ୍ରାଣ, ଜୀବନ, [ ଦେଖ ।

ହଇଆନ୍ତ ( ନ୍ତ )—ଗ୍ରା. ବିଂ. ହୟାନ୍ତ୍ର,

ହଇଏ (ହେ)—ଗ୍ରା. ଅ. ମାନ୍ୟ ବ୍ୟକ୍ତିଙ୍କ ମନୋଯୋଗ ଆକର୍ଷଣ କରିବା ଓ ତାଙ୍କୁ ଡାକିବା ପାଇଁ ବ୍ୟବହୃତ ଶବ୍ଦ ।

ହଇଁଚଇଁ—ଗ୍ରା. ଅ. ହଁ ଚଁ ଦେଖ ।

ହଇକତ—ଯା. ବି. ( ଫା-ହକିକତ ) ବୃତ୍ତାନ୍ତ, ବିବରଣ ।

ହଇକରିବା—ଗ୍ରା. କ୍ରି. ହଁ କରିବା, ସ୍ୱୀକୃତ ହେବା ।

ହଇକିବେ—ଗ୍ରା. ଅ. (ଘୃଣାର୍ଥକ ବା ଅତି ନୀଚ ବ୍ୟକ୍ତି ପ୍ରତି) ରେ,ପ୍ରଶ୍ନାର୍ଥକ ।

ହଇକିରେ—ଗ୍ରା.ଅ. (ନିଜଠାରୁ ନିମ୍ନତମ ପୁରୁଷବ୍ୟକ୍ତି ପ୍ରତି)ରେ,ପ୍ରଶ୍ନାର୍ଥକ,(ଯଥା-ହଇକିରେ ତୁ କୁଆଡ଼େ ଯାଇଥିଲୁ) ।

ସ୍ରୋତୋଜ—ବି. (ସ୍ରୋତସ୍+ଜନ୍+ଡ.ଅ) ସ୍ରୋତୋଞ୍ଜନ ଦେଖ ।

ସ୍ରୋତୋଜଳ—ବି. (ସ୍ରୋତ୍+ଜଳ) ସ୍ରୋତଃଯୁକ୍ତ ବା ପ୍ରବାହବିଶିଷ୍ଟ ଜଳ ।

ସ୍ରୋତୋଞ୍ଜନ—ବି. କ.ଧା; (ସ୍ରୋତଃ+ଅଞ୍ଜନ) କଳା ସୁରମା, କୃଷ୍ଣବର୍ଣ୍ଣ ସୌବୀରାଞ୍ଜନ, ସୁବୀରଦେଶ ବା ଯମୁନା ନଦୀ ନିକଟସ୍ଥ ଦେଶରେ ଜାତ ଅଞ୍ଜନ-ବିଶେଷ ।

ସ୍ରୋତୋଦ୍ଭବ—କ୍ଲୀ.ବି. ସ୍ରୋତୋଞ୍ଜନ ।

ସ୍ରୋତୋନଦୀଭବ-କ୍ଲୀ.ବି.ସ୍ରୋତୋଞ୍ଜନ ।

ସ୍ରୋତୋବହ(ହା)—ବି. (ସ୍ରୋତସଃ+ବହ+କ.କ୍ୱିପ୍.ଅ) ନଦୀ ।

ସ୍ରୋତୋବହା—ସ୍ତ୍ରୀ.ବି. (ସ୍ରୋତୋବହ+ଆ) ନଦୀ ।

ସ୍ରୋତୋବାହିତ—ବିଂ. (୭ତତ୍ର) ସ୍ରୋତଦ୍ୱାରା ଚାଳିତ,(ସ୍ତ୍ରୀ) ସ୍ରୋତୋବାହିତା ।

ସ୍ରୋତୋବେଗ—ବି.(୬ତତ୍ର) ସ୍ରୋତର କ୍ଷିପ୍ରଗତି, ସ୍ରୋତର ପ୍ରାବଲ୍ୟ ।

ସ୍ରୋତୋହୀନ—ବିଂ. (୩ତତ୍ର) ପ୍ରବାହରହିତ (ଜଳ), ସ୍ଥିର (ଜଳ) ।

ସ୍ରୋହା—ଗ୍ରା.ବି.(ସଂ-ସ୍ୱାହା) ସ୍ୱାହା ଦେଖ ।

ସୌତ୍ରିକା—ବି. ସର୍ଜିକାକ୍ଷାର ।

ସୌତ୍ରିକ—ବି. (ସ୍ରୋତ+ଇକ) ସୀପ, ଶୁକ୍ତି ।

ସ୍ଲାଇଡିଙ୍ଗସ୍କେଲ—ଯା.ବି. ଅଙ୍କିମ ଚଷ୍ଟାଇ ଆଦି ବିଷୟ କରିବାର ଡମନମ୍ବ ଚିରୁପିତ ଦର ।

ସ୍ଲିପ୍—ଯା. ବି. କାଗଜର ଲମ୍ବ ଟୁକୁରା ବା ଖଣ୍ଡ ।

ସ୍ଲିପର—ଯା. ବି. (ଇଂ-ସ୍ଲିପର) ସ୍ଲିପର ଦେଖ, (ଗ୍ରା.ବିଂ) ସ୍ଲିପଟିଆ ଦେଖ ।

ସ୍ଲିପଟିଆ—ଗ୍ରା. ବିଂ. ପତଳା, ପ୍ରଲମ୍ବ-କୁଚ ବା ଉଚ୍ଚ ସ୍ତନଶୂନ୍ୟା (ସ୍ତ୍ରୀମାନଙ୍କ ବକ୍ଷସ୍ଥଳ) ମର୍କଟସ୍ତନା (ନାରୀ) ।

ସ୍ଲିପର—ଯା. ବି. ରେଲଲାଇନ ତଳେ ଆଡ଼ବାଗେ ପକାଯିବା ପତଳା କାଠର କଡ଼ି, ଚଟାଣ କାଠ ।

ସ୍ଲେଟ୍—ଯା.ବି. ପେନସିଲରେ ଲେଖିବା ପାଇଁ ମାଟିର ବା ପଥରର ପଟା,ଏକ-ପ୍ରକାର କଳା ପଥର ।

# ହ

ହ—ବ୍ୟଞ୍ଜନବର୍ଣ୍ଣ ମାଳାର ତ୍ରୟସ୍ତ୍ରିଂଶତ୍ତମ ବର୍ଣ୍ଣ,ଏହାର ଉଚ୍ଚାରଣ ସ୍ଥାନ କଣ୍ଠ ଏହା 'ଅ' ସ୍ୱରର ମହା ପ୍ରାଣ ବର୍ଣ୍ଣ, ଏହି 'ହ' ରେ 'ହଲନ୍ତ' ଯୁକ୍ତହେଲେ ଏହା ବିସର୍ଗର ଆକାର ଧାରଣ କରେ । ( ହନ୍‌ଧାତୁ=ବଧ କରିବା, ବା ହାଧାତୁ=ତ୍ୟାଗକରିବା+କ.ଅ ) ଶିବ, ବିଷ୍ଣୁ, ସୂର୍ଯ୍ୟ, ହଂସ, ପୁରୁଷ-ଲିଙ୍ଗ, ନାଗଲୋକ, ଚନ୍ଦ୍ର, ଜଳ, ଆକାଶ, ରକ୍ତ, ଜଗତ୍‌ପ୍ରାଣ, ସ୍ୱାମୀ, ଯୁଦ୍ଧ, କପିଳା ଗୌର ମଲ, ପରମାତ୍ମା, ରୋମାଞ୍ଚ, ଗର୍ବ, ଆତ୍ମଜ, ଚକ୍ଷୁସ୍କ, ଜୀବ, କାରଣ, ଶୁଭସୂଚକତା, ଅଙ୍ଗନ, ଉଦ୍ଦେଶ୍ୟ, ମୃଗ, ଆହ୍ୱାନ, ଭସ୍ମ, ଅସ୍ତ୍ର,ଶସ୍ତ୍ର, ବୈକୁଣ୍ଠ,ମଣିର ପ୍ରଭା, ସ୍ଥାଣୁ, ଶୀଶାର ଧ୍ୱନି, ସ୍ୱର୍ଗ, କୂପ, ଶୁଖି-ଯିବା, ଲକ୍ଷ୍ମୀ, ମହାଲକ୍ଷ୍ମୀ, ପରମେଶ୍ୱରୀ, ଲଲାଟଜ ପ୍ରାଣଶକ୍ତି, ଚୈତନ୍ୟ, ଭସ୍ମ, ମୃତ୍ୟୁ, ଘୋଟକ, ଅଂଶ, ଧାନ, ଶାହାଡ଼ାଗଛ, ମଙ୍ଗଳ, ସୋମମଣ୍ଡଳ, ଶୂନ୍ୟ, ମହାଶୂନ୍ୟ, ଶୁଦ୍ଧ, ଆନନ୍ଦ, ଜ୍ଞାନ, (ବିଂ) ଉଚ୍ଛ୍ୱସିତ, ଶାନ୍ତିଦ, ମତ୍ତ, ସୁରାମତ୍ତ, ( ଅବ୍ୟ — ହା+ଡ, ଅ ) ପାଦପୂରଣାର୍ଥକ, ସମ୍ବୋଧ-ନାର୍ଥବ୍ୟବହୃତ ହେ, ଅହୋ, କୋପ ବା ବିନିଗ୍ରହାର୍ଥକ,ବିୟୋଗାର୍ଥକ, କୁତ୍ସା-ର୍ଥକ, କ୍ଷେପାର୍ଥକ, ଉପଦେଶାର୍ଥକ, ଧାରଣାର୍ଥକ, ଚନ୍ଦ୍ରନାର୍ଥକ, ( ଗ୍ରା.ଅ ) ଶଗଡ଼ ଆଦିରେ ଯୋଚି ବଳଦଙ୍କୁ ଠିଆ କରାଇବା ପାଇଁ ବ୍ୟବହୃତ ଡାକ, ଯୋଚା ବଳଦ ଚଳିବା ନିମିତ୍ତ ଅଡ଼ା-ଇବା ଶବ୍ଦ, ପାଦପୂରଣାର୍ଥ କ୍ରିୟାପରେ ବ୍ୟବହୃତ, ( ଗ୍ରା-କ୍ରି ) ହଅ, ଅନାଦରାର୍ଥକ, ତୁଚ୍ଛ ଭାବକ କ୍ରିୟାର ଅନୁଜ୍ଞାର୍ଥକ ଏକବଚନ ରୂପ, ହଅ ଦେଖ, ( ଗ୍ରା-ପୁଗ )—ଅ ହଁ, ହୋ ଦେଖ ।

ହଅ—ଗ୍ରା. କ୍ରି. ଅନାଦରାର୍ଥକ 'ହେବା' କ୍ରିୟାର ଗ୍ରାମ୍ୟରୂପ, 'ହବା' କ୍ରିୟାର ମଧ୍ୟମ ପୁରୁଷ ଅନୁଜ୍ଞା 'ତୁ' କର୍ତ୍ତା ସଙ୍ଗେ ଲାଗିବା ଆକାର, ଯଥା—ତୁ ହଅ ମନ୍ତ୍ରୀ,ମୁଁ ହେବି ରଜା (ଇତ୍ୟାଦି ପିଲାଙ୍କ ଖେଳରେ),(ଗ୍ରା ପୁଗ—ଅ) ହଁ ।

ହଅକରିବା—ଗ୍ରା. କ୍ରି. ଯୋଚା ହଳକୁ ଠିଆ କରିବା ବା ଚଳାଇବାର (ଡାକ),

ହଇ—ଗ୍ରା. ଅ. (ସଂ-ହ) (ସମ୍ମତସୂଚକ) ହଁ, ( କୌଣସି ବ୍ୟକ୍ତିକୁ ଡାକିବାରେ ବ୍ୟବହୃତ) ହେ, ବକ୍ତାଙ୍କ କଥାକୁ ଶ୍ରୋତା ଶୁଣୁଅଛି, ଏଥିର ସୂଚନାର୍ଥକ ହଁ ମାରିବାରେ ବ୍ୟବହୃତ ଶବ୍ଦ, ପ୍ରହରୀ ଓ ବୃଦ୍ଧବକାମାନଙ୍କଦ୍ୱାରା ସାଧାରଣଙ୍କ ଦୃଷ୍ଟି ଆକର୍ଷଣାର୍ଥେ ବ୍ୟବହୃତ କୁହାଟ, ( ଗ୍ରା-ବ)ସମ୍ମତ, ହଁ ।

ହଇଆତ୍ର—ଗ୍ରା. ବି. ହସ୍ତାତ୍ର, ଜୀବିତ-କାଳ, ପ୍ରାଣ, ଜୀବନ, [ ଦେଖ ।

ହଇଆନ୍ତ ( ନ୍ତ )—ଗ୍ରା. ବିଂ. ହସ୍ତାନ୍ତ ।

ହଇଏ (ହେ)—ଗ୍ରା. ଅ. ମାନ୍ୟ ବ୍ୟକ୍ତିଙ୍କ ମନୋଯୋଗ ଆକର୍ଷଣ କରିବା ଓ ତାଙ୍କୁ ଡାକିବା ପାଇଁ ବ୍ୟବହୃତ ଶବ୍ଦ ।

ହଇଁଚଇଁ—ଗ୍ରା. ଅ. ହଁ ଚଁ ଦେଖ ।

ହଇକତ—ଯା. ବି. ( ଫା-ହକିକତ ) ବୃତ୍ତାନ୍ତ, ବିବରଣ ।

ହଇକରିବା—ଗ୍ରା. କ୍ରି. ହଁ କରିବା, ସ୍ୱୀକୃତ ହେବା ।

ହଇକିରେ—ଗ୍ରା. ଅ. (ଘୃଣାର୍ଥକ ବା ଅତି ନୀଚ ବ୍ୟକ୍ତି ପ୍ରତି) ରେ,ପ୍ରଶ୍ନାର୍ଥକ ।

ହଇକିରେ—ଗ୍ରା.ଅ. (ନିଜଠାରୁ ନିମ୍ନତମ ପୁରୁଷବ୍ୟକ୍ତି ପ୍ରତି)ରେ,ପ୍ରଶ୍ନାର୍ଥକ,(ଯଥା-ହଇକିରେ ତୁ କୁଆଡ଼େ ଯାଇଥିଲୁ) ।

ହଇକଲେ—ଗ୍ରା. ଅ. (ସ୍ତ୍ରୀବ୍ୟକ୍ତିଙ୍କ ପ୍ରତି) ହେ, ପ୍ରଶ୍ନାର୍ଥକ ।

ହଇକଏହେ)-ଗ୍ରା.ଅ. (ସମ୍ମାନାର୍ହ ବ୍ୟକ୍ତିଙ୍କ ପ୍ରତି) ହେ, ପ୍ରଶ୍ନାର୍ଥକ ।

ହଇକିହୋ—ଗ୍ରା. ଅ. (ସଙ୍ଗୀ ସମ୍ମାନାର୍ହ ଏକ ବା ବହୁବ୍ୟକ୍ତିଙ୍କ ପ୍ରତି) ହେ, ପ୍ରଶ୍ନାର୍ଥକ ।

ହଇଗୋ—ଗ୍ରା. ଅବ୍ୟ. (ମାନ୍ୟ ନାରୀଙ୍କୁ ସମ୍ବୋଧନ କରିବାରେ ବ୍ୟବହୃତ)ହେ ।

ହଇଚଇ—ଗ୍ରା.ବି ଓ ବଂ.ହୈଚୈ ଦେଖ ।

ହଇଜା—ଯା.ବି.ଝାଡ଼ାବାନ୍ତି, ଝାଡ଼ାକଇ, ବିସୂଚିକା ରୋଗ ।

ହଇଜାଲଗିବା—ଗ୍ରା.ବି. କୌଣସି ଅଞ୍ଚଳରେ ହଇଜା ରୋଗ ପ୍ରବଳ ହେବା ।

ହଇଉଁ—ପ୍ରା. (କୋରାପୁଟ) କ୍ରି. ହୁଅନ୍ତୁ ।

ହଇବେ—ଗ୍ରା. ଅ. (ଘୃଣା ଓ ଅନାଦରାର୍ଥକ)ହେ,(ଗ୍ରା-ପ୍ରାଚୀନ.କ୍ରି)'ହେବେ'ର ବିକଳ୍ପରୂପ, 'ହୋଇବେ' ର ବିକଳ୍ପରୂପ ।

ହଇବୋ—ପ୍ରା. (ବାମଣ୍ଡା) ହଇହେ ।

ହଇରାଣ-ଯା.ବଂ.(ଆ-ହୈରାନ୍)ଉତ୍ପୀଡ଼ିତ, ଉତ୍ୟକ୍ତ, (ବି) କଷ୍ଟ, ଦହଗଞ୍ଜ ହେବା ଅବସ୍ଥା ।

ହଇରାଣକରିବା—ଗ୍ରା. କ୍ରି. କଷ୍ଟଦେବା, ଉତ୍ପୀଡ଼ନ କରିବା ।

ହଇରାଣ ହରକତ—ଯା. ବି. (ଏକାର୍ଥକ ସହଚର) ନାନାପ୍ରକାର କଷ୍ଟ, (ବଂ) ବ୍ୟାକୁଳ ଓ କଷ୍ଟପ୍ରାପ୍ତ,

ହଇରାଣ ହେବା—ଗ୍ରା. କ୍ରି. କଷ୍ଟ ଭୋଗକରିବା ।

ହଇରାଣି—ଯା. ବି. ( ଆ—ହୈରାନ ) ଉତ୍ପୀଡ଼ନ, କଷ୍ଟଯୁକ୍ତ ଅବସ୍ଥା ।

ହଇରାଣିଆଁ—ଗ୍ରା. ବଂ. କଷ୍ଟପ୍ରଦ, ଯେ ହଇରାଣ କରେ, ଉତ୍ପୀଡ଼କ ।

ହଇରେ—ଗ୍ରା. ଅବ୍ୟ ( ଆପଣାଠାରୁ ନିମ୍ନତର ବ୍ୟକ୍ତି ପ୍ରତି ବ୍ୟବହୃତ)ରେ ।

ହଇରେକ୍—ଯା. ଅବ୍ୟ. ପ୍ରତିଦିନ ।

ହଇଲେ—ଗ୍ରା. ଅବ୍ୟ. ( ନୀଚ ବା ସମାନସ୍କନ୍ଧା ବା ଘନିଷ୍ଠ ସମ୍ପର୍କୀୟା ସ୍ତ୍ରୀ ପ୍ରତି ) ହେ, ପ୍ରଶ୍ନାର୍ଥକ ।

ହଇହଇ—ଗ୍ରା. ଅବ୍ୟ. ହଇ ଦେଖ, (ବି) ସମ୍ମତି, ସମ୍ମତିପ୍ରକାଶ ।

ହଇହେ—ଗ୍ରା. ଅବ୍ୟ. (ସମ୍ମାନାର୍ହ ନରନାରୀଙ୍କ ପ୍ରତି) ହେ ! ପ୍ରଶ୍ନାର୍ଥକ ।

ହଇ ହୋ—ଗ୍ରା. ଅବ୍ୟ. ହଇହେ, ପ୍ରଶ୍ନାର୍ଥକ ।

ହଉ—ଗ୍ରା. ଅବ୍ୟ. (ସମ୍ମତିସୂଚକ ଅବ୍ୟୟ) ହଁ, ହେଉ,ଆପଣାର ଭାଗ୍ୟରେ ସନ୍ତୁଷ୍ଟ ରହିବା ମନର ଭାବଜ୍ଞାପକ ଅବ୍ୟୟ ।

ହଉଦା—ପ୍ରା.(ଖଡ଼ିଆଳ)-ବି- ଅମାରି ହାତୀର ହାଉଦା ।

ହଉପଛକେ (ପଛେ)—ଗ୍ରା. ଅବ୍ୟ(ଅନନ୍ୟୋପାୟ ହୋଇ ସମ୍ମତି କରିବା ସ୍ଥଳରେ) ଏହା ସେପରି ଘଟୁ ।

ହଉସେ—ପ୍ରା. (ପାଟଣା) କ୍ରି. ହେଉଛି ।

ହଏ—ପ୍ରା. କ୍ରି. (ସେ ବା ତାହା) ହୁଏ, (ପ୍ରା-ବଲାଙ୍ଗିରପାଟଣା)ଅବ୍ୟ.—ହଁ ।

ହଏଜା—ଯା. ବି. ବିସୂଚିକା ରୋଗ ।

ହଏତ—ଗ୍ରା. ଅବ୍ୟ. ସମ୍ଭବତଃ, ଏହା ବୋଧହୁଏ ଯେ, ଏହା ହୋଇପାରେ ଯେ ।

ହଏବୋ—ପ୍ରା. ( ବଲାଙ୍ଗିରପାଟଣା ) ଅନ୍ୟ—ହୋ । [ ହଇରାଣ ଦେଖ ।

ହଏରାନ୍—ପ୍ରା. ଖଡ଼ିଆଳ—ବି ଓ ବଂ-

ହଂ—ସଂ-ଅବ୍ୟ. ରୂକ୍ଷୋକ୍ତି, ଅନୁନୟ, ହଂ ଶାକ, ହଂସମନ୍ତ୍ରର ବୀଜାକ୍ଷର, ଅଜପା ମନ୍ତ୍ରର ପ୍ରଥମାଂଶ ।

ହଂକଂ—ଚିନ୍ ଦେଶର କାଣ୍ଟନ୍ ନଗରର ଦକ୍ଷିଣରେ ବ୍ରିଟିଶ୍ ଅଧିକୃତ ଦ୍ୱୀପ ଓ ବନ୍ଦର ।

ହଂକା—ଗ୍ରା. ବି. ହଙ୍କା ଦେଖ, (ପ୍ରା. ସମ୍ବ) ବି-କୁଲ୍ ।

ହଂଗା ( ଗେ )ରି—ଯା. ବି. ( ନାମ ) ଇଉରୋପର ଯୁଗୋସ୍ଲୋଭିଆର ଉତ୍ତରସ୍ଥ ରାଜ୍ୟବିଶେଷ ।

ହଂଗୋରି—ଗ୍ରା. ବି. ଦାର୍ଜିଲିଙ୍ଗ ପାହାଡ଼ରେ ଜନ୍ମୁଥିବା ଏକପ୍ରକାର କାଠଗଛ ।

ହଂଜ—ବି. ଛୁଙ୍କ (ହ୍ୱ-ଣ) ।

ହଂନ୍ତ—ଅବ୍ୟ ( ଖେଦସୂଚକ ଅବ୍ୟୟ ) ଆହା, ( ହ୍ୱ,ଣ ) ।

ହଂବା—ଗ୍ରା. ବି. ( ଧ୍ୱ-ହଂଭା ) ଗୋରୁମାନଙ୍କ ହମ୍ବାଳି ବା ଶବ୍ଦ ।

ହଂମ୍ବ-ବି.ଗୋରୁମାନଙ୍କ ହମ୍ବାଳିବା ଶବ୍ଦ ।

ହଂସ୍‌ଲିହାଡ଼—ପ୍ରା. (ସିଂହଭୂମ) ବି— କାନ୍ଧ ଓ କଣ୍ଠକୁ ଲାଗିଥିବା ହାଡ଼ ।

ହଂସ—ବି. (ହନ୍+କ.ସ) ଜଳଚର ପକ୍ଷି ବିଶେଷ (ରାଜହଂସ ଓ କୂଜହଂସ ଭେଦରେ ଦୁଇପ୍ରକାର ), ବିଷ୍ଣୁ, ଜୀବାତ୍ମା, ପରଂବ୍ରହ୍ମ, ସୂର୍ଯ୍ୟ, ବ୍ରହ୍ମା, ଶିବ, ଅଜପା ମନ୍ତ୍ର, (ନିଶ୍ୱାସ ଓ ପ୍ରଶ୍ୱାସ ଛାଡ଼ିବା ଓ ଗ୍ରହଣ କରିବାବେଳେ 'ହଂସ' ଏହି ଶବ୍ଦ ଅନୁଭୂତ ହୁଏ, ପ୍ରତିଦିନ ଜୀବ ଏହି ଅଜପା ମନ୍ତ୍ରକୁ ୨୧୬୦୦ଥର ଜପୁଛି ଅର୍ଥାତ୍ ଏତେଥର ନିଶ୍ୱାସ ମାରୁଛି ), ନିର୍ଲୋଭ ରାଜା, ମେରୁର ଉତ୍ତରସ୍ଥ ପୌରାଣିକ ପର୍ବତବିଶେଷ ମନ୍ତ୍ରବିଶେଷ, ହଂସମନ୍ତ୍ର ଦେଖ, ମାତ୍ସର୍ଯ୍ୟ, ଅବଧୂତ,ଯୋଗିଭେଦ,ପ୍ରାଣବାୟୁ, ମହିଷ, ଅଶ୍ୱବିଶେଷ, ନରପତି, ଦୀକ୍ଷାଗୁରୁ, ଶ୍ୱେତବର୍ଣ୍ଣ ପିଙ୍ଗଳଚକ୍ଷୁ ତାମ୍ରବର୍ଣ୍ଣ ଶୃଙ୍ଗ ଓ ବୃହତ୍ ମୁଖବିଶିଷ୍ଟ ଗାଈ, ପର୍ବତ, କାମଦେବ, ନୃତ୍ୟବିଶେଷ, ହଂସାକାରରେ ନିର୍ମିତ ଏକପ୍ରକାର ଶୃଙ୍ଗବିଶିଷ୍ଟ ପ୍ରାସାଦ, କୃଷ୍ଣଙ୍କ ଦ୍ୱାରା ନିହତ ଜନୈକ ଦୁଷ୍ଟ କ୍ଷତ୍ରିୟ ରାଜା, ( ବଂ ) ଅଗ୍ରତଃସ୍ଥିତ, ମତ୍ସର, ଶ୍ରେଷ୍ଠ, ବିଶୁଦ୍ଧ, (ପ୍ରା. କଟକ. ବି) ହସ ।

ହଂସ(ସା)ଉଡ଼ିଯିବା—ଗ୍ରା.ବି.ମୃତ୍ୟୁଘଟିବା; ପ୍ରାଣବାୟୁ ବାହାରିଯିବା ।

ହଂସକ—ବି. (ହଂସ+ସ୍ୱାର୍ଥେ.କ) ରାଜହଂସ,(ହଂସ+କୈ+କ.ଅ)ହଂସାକୃତି ନାଦଯୁକ୍ତ ପାଦଭୂଷଣ, ହଂସାକୃତି ରବଶୂନ୍ୟ ଚରଣଭୂଷଣ, ପାଦବଳୟ ବାଲା, ତାଳଭେଦ, ଗୋଡ଼ଆଙ୍ଗୁଳିରେ ପିନ୍ଧାଯିବା ମୁଦ୍ରିକାବିଶିଷ୍ଟ ଗହଣା ।

ହଂସକଲମ—ଗ୍ରା. ବି. ହଂସପକ୍ଷର ମୂଳ

କଟାଯାଇ କରାଯିବା କଲମ ।
ହଂସକାଳୀତନୟ—ବି. ମହିଷ ।
ହଂସକାଲକ—ବି. ରତିବନ୍ଧବିଶେଷ ।
ହଂସକୁମର—ଗ୍ରା. ବି. ଯମ ।
ହଂସକୂଟ—ବି. କକୁଦ୍, ବୃଷଭର କୂଜ, ପୌରାଣିକ ପର୍ବତବିଶେଷ ।
ହଂସକେଲ—ଗ୍ରା. ବି. ପିଷ୍ଟକବିଶେଷ ।
ହଂସଗତି—ବି. (୬ତତ୍) ହଂସପରି ଧୀର ଗତି, ବ୍ରହ୍ମତ୍ୱପ୍ରାପ୍ତି, କୋଣ୍ଡ ଏମାନଙ୍କ ଛନ୍ଦବିଶେଷ, (ବିଂ) ହଂସର ଗତି ପରି ମନ୍ଥର ଗତିବିଶିଷ୍ଟ ।
ହଂସଗ—ବି. (ହଂସ+ଗମ୍+ଅ) ହଂସବାହନ ବ୍ରହ୍ମା, (ବିଂ) ହଂସଗାମୀ ମାତ୍ର ।
ହଂସଗଦା—ସ୍ତ୍ରୀ. ବି. (ହଂସ+ଗଦ୍+ଅ+ଆ) ମଧୁରଭାଷିଣୀ ସ୍ତ୍ରୀ, ମଧୁରକଣ୍ଠସ୍ୱନା ସ୍ତ୍ରୀ ।
ହଂସଗଦ୍ଗଦା—ସ୍ତ୍ରୀ. ବିଂ. (ହଂସ+ଗଦ୍ଗଦ+ଆ) ମଧୁରଭାଷିଣୀ, ମଧୁରକଣ୍ଠସ୍ୱନା ।
ହଂସଗମନ—ବି.(୬ତତ୍)ହଂସପରି ଗତି, ହଂସର ଗତି, (ବିଂ-ବ.ବ୍ରୀ)ଯେ ହଂସପରି ଚାଲେ, (ସ୍ତ୍ରୀ) ହଂସଗମନା ।
ହଂସଗମନା—ସ୍ତ୍ରୀ. ବିଂ. (ବ.ବ୍ରୀ) ହଂସଗାମିନୀ ଦେଖ ।
ହଂସଗମନୀ-ଗ୍ରା.ସ୍ତ୍ରୀ.ବିଂ.ହଂସଗାମିନୀ ଦେଖ
ହଂସଗାମିନୀ—ସ୍ତ୍ରୀ.ବିଂ. (ହଂସ+ଗମ୍+କ.ଇନ୍.ଈ)ଯେଉଁ ସ୍ତ୍ରୀ ହଂସପରି ମନ୍ଥରଗତିରେ ଚାଲେ, (ବି) ହଂସପରି ଗତିଶୀଳା ସ୍ତ୍ରୀ, ବ୍ରହ୍ମାଣୀ ଦେଖ ।
ହଂସଗୁଣା—ଗ୍ରା.ବି. ହଂସ ବସାଯାଇଥିବା ନାକର ଗୁଣା ବା ଅଳଙ୍କାରବିଶେଷ ।
ହଂସଗୁହ୍ୟ—ବି. ସ୍ତୋତ୍ରବିଶେଷ, ହଂସଗୁହ୍ୟାଖ୍ୟ ସ୍ତୋତ୍ର ।
ହଂସଚୂଡ଼—ପୁଂ. ବି. ଯକ୍ଷ ।
ହଂସଜ—ପୁଂ. ବି. ସ୍କନ୍ଦାନୁଚରବିଶେଷ, ଯମ, ଶନି ।
ହଂସଜା—ବି. (ହଂସ+ଜନ୍+କ.ଅ+ଆ) ଯମୁନା ନଦୀ ।
ହଂସଡିମ୍ବ—ବି. ହଂସର ଅଣ୍ଡା ।
ହଂସତୁଲ—ଗ୍ରା.ବି. ହଂସତୁଲତୁଲ ଦେଖ ।

ହଂସତୀର୍ଥ—ବି. ପୁଣ୍ୟତୀର୍ଥବିଶେଷ ।
ହଂସଦାହନ—ବି. ଅଗୁରୁ, ଗୁଗ୍ଗୁଳ ।
ହଂସଦ୍ୱୀପ—ବି.କଥାସରିତ୍ସାଗର ବର୍ଣ୍ଣିତ ଦ୍ୱୀପବିଶେଷ ।
ହଂସନାଥ—ଗ୍ରା. ବି. ଶିବଲିଙ୍ଗର ନାମ, କଟକ ଜିଲ୍ଲାରେ କାଠଯୋଡ଼ୀ କୂଳରେ ଅବସ୍ଥିତ ଶିବଲିଙ୍ଗବିଶେଷ ।
ହଂସନାଦ—ବି. (୬ତତ୍)ହଂସର ଶବ୍ଦ ।
ହଂସନାଦନୀ—ସ୍ତ୍ରୀ. ବିଂ. ହଂସପରି ନାଦ କରୁଥିବା ସ୍ତ୍ରୀ, (ବି) ମନୋରମା ସ୍ତ୍ରୀ ।
ହଂସନାଦୀ—ପୁଂ. ବିଂ. (ହଂସ+ନଦ୍+କ.ଇନ୍) ହଂସତୁଲ୍ୟ ନାଦକାରୀ, (ସ୍ତ୍ରୀ) ହଂସନାଦିନୀ ।
ହଂସନାଭ—ବି.ମାର୍କଣ୍ଡେୟ ପୁରାଣାନ୍ତର୍ଗତ ପର୍ବତବିଶେଷ ।
ହଂସପକ୍ଷ—ବି. (ସାମୁଦ୍ରିକ) ଶୁଭସୂଚକ ହସ୍ତରେଖାବିଶେଷ, ହଂସର ପକ୍ଷ ।
ହଂସପକ୍ଷୀ—ବି. ହଂସ ନାମକ ପକ୍ଷୀ,(ଗ୍ରା. ବି) ହଂସର ପକ୍ଷ ।
ହଂସପଥ—ବି. ହଂସମାର୍ଗ, ଆକାଶମାର୍ଗ ।
ହଂସପଦ—ବି. (୬ତତ୍) ହଂସର ପାଦ, ହଂସପଦ ପରି ଛନ୍ଦା ଅଙ୍ଗୁଠିଯୁକ୍ତ ପଦ, ଏକକର୍ଷ ବା ଦୁଇତୋଳା,(ବିଂ-ବ.ବ୍ରୀ) ଯେଉଁ ବ୍ୟକ୍ତିର ପାଦର ଆଙ୍ଗୁଳିମାନ ପରସ୍ପର ଲଗିଥାଏ ।
ହଂସପଦିକା—ସ୍ତ୍ରୀ.ବି. ରାଜା ଦୁଷ୍ମନ୍ତଙ୍କର ପତ୍ନୀଭେଦ, ନାମାନ୍ତର ହଂସବତୀ ।
ହଂସପଦୀ—ବି. ଗୋଧାପଦୀ,ଗୁଆଳଲଟା, ଏକପ୍ରକାର ଦୀର୍ଘଶାଖ ଲତା ।
ହଂସପର—ଗ୍ରା. ବି. ହଂସର ବେକରେ ଓ ଦେହରେ ଥିବା କୋମଳ ସୂକ୍ଷ୍ମପକ୍ଷ ବା ରୋମ ।
ହଂସପାକଯନ୍ତ୍ର—ବି.ଔଷଧ ପାକାର୍ଥ ବ୍ୟବହୃତ ଯନ୍ତ୍ରବିଶେଷ ।
ହଂସପାକାଗ୍ନି—ବି. ହଂସପାକ ଯନ୍ତ୍ରରେ ପାକଯୋଗ୍ୟ ଅଗ୍ନି ।
ହଂସପାତାଳ—ଗ୍ରା. ବି. ହସ୍ପିଟାଲ, ଡାକ୍ତରଖାନା ।
ହଂସପାଦ—ବି. ହଂସର ପାଦ, ହିଙ୍ଗୁଳ, ହଂସପାଦପରି ପତ୍ରବିଶିଷ୍ଟ ଲତାବିଶେଷ ।
ହଂସପାଦା(ପାଦଆ)—ଗ୍ରା. ବିଂ. ଯାହାର ପାଦ ହଂସପାଦ ପରି ସମସ୍ତ ପାଦ ଭୂଇଁରେ ଲାଗେ, (ସଂ-ବି) ଗୁଆଳିଆ ଲତା ।
ହଂସପାଦିକା—ସ୍ତ୍ରୀ.ବି.ହଂସପଦୀ ଦେଖ ।
ହଂସପାଦୀ—ବି.ହଂସପଦୀ ନାମ୍ନୀ ଲତାବିଶେଷ ।
ହଂସପୁର—ଗ୍ରା. ବି. ରାଜପରିବାରସ୍ଥ ସ୍ତ୍ରୀମାନେ ରହିବା ଘର, ଅନ୍ତଃପୁର, ଆଧୁନିକ ମୂଲତାନ ।
ହଂସପ୍ରପତନ—ବି. ତୀର୍ଥବିଶେଷ,ଭବିଷ୍ୟ ବ୍ରହ୍ମଖଣ୍ଡ ମତରେ ଏହି ସ୍ଥାନ ଖେଳଦେଶର ଅନ୍ତର୍ଗତ ।
ହଂସମଣି—ଗ୍ରା.ବି.କଟକ ଜିଲ୍ଲାର ପରମହଂସନାଥ ମହାଦେବଙ୍କ ଡାକନାମ ।
ହଂସମନ୍ତ୍ର—ଗ୍ରା. ବି. ବ୍ରହ୍ମଜ୍ଞାନ ସମ୍ପର୍କୀୟ ମନ୍ତ୍ରବିଶେଷ, ସୋହଂ, ଅଜପାମନ୍ତ୍ର ।
ହଂସମାଳା—ବି. (୬ତତ୍) ହଂସଶ୍ରେଣୀ, ହଂସସମୂହ,ପାତିହଂସ,କର୍ଣ୍ଣିଚୂଡ଼ବିଶେଷ ।
ହଂସମାଷା—ବି. ମାଷପର୍ଣ୍ଣୀ, ବଣବିରି ।
ହଂସଯୋଷିତ୍—ସ୍ତ୍ରୀ. ବି. ହଂସୀ ।
ହଂସଯାନ—ପୁଂ. ବି. (ବ.ବ୍ରୀ) ବ୍ରହ୍ମା, ହଂସବାହନ ଯାହାର ।
ହଂସଯାନା—ସ୍ତ୍ରୀ. ବି. ସରସ୍ୱତୀ ।
ହଂସରଥ—ପୁଂ. ବି. (ବ.ବ୍ରୀ) ବ୍ରହ୍ମା ।
ହଂସରାଜ—ଗ୍ରା. ବି. ଅପୁଷ୍ପକ ପୁଷ୍ପାଙ୍ଗବିଶେଷ,(ସଂ-ବି)ଶ୍ରେଷ୍ଠହଂସ,ରାଜହଂସ, ଫଳପୁଷ୍ପହୀନ ଉଦ୍ଭିଦବିଶେଷ ।
ହଂସରାଳି(ଳ)—ଗ୍ରା.ବି. ଏକପ୍ରକାର କ୍ଷୁଦ୍ର ହଂସଜାତୀୟ ଜଳଚର ପକ୍ଷୀ,କଳହଂସ ।
ହଂସରୁତ—ବି. (୬ତତ୍) ହଂସର ରବ ବା ଧ୍ୱନି, ସଂସ୍କୃତ ଛନ୍ଦୋବିଶେଷ ।
ହଂସରୁତା(ତି)—ସ୍ତ୍ରୀ. ବିଂ. ହଂସପରି କଳନାଦିନୀ (ସ୍ତ୍ରୀ) ।
ହଂସଲ—ଗ୍ରା. ବି. ରୂପା ବା ସୁନାର ଅର୍ଦ୍ଧଚନ୍ଦ୍ରାକୃତି କଣ୍ଠର ଅଳଙ୍କାରବିଶେଷ, ହଂସୁଲି ଦେଖ, ହଂସୁଲି ହାଡ଼ ।
ହଂସଲୋମଶ—ବି. କାସୀସ, ହୀରାକସ ।

ହଂସଲେହକ—ବି. ପିତ୍ତଳ ।
ହଂସବତୀ—ସ୍ତ୍ରୀ. ବି. ହଂସପଦୀ ଲତା, ରକ୍ତ କୃଷ୍ଣକ୍ରାନ୍ତ ପର୍ଣ୍ଣୀଭେଦ ।
ହଂସବାହ—ପୁଂ. ବି. (ହଂସ+ବହ+ଅ) ବ୍ରହ୍ମା ।
ହଂସବାହନ—ପୁଂ. ବି. (ହଂସ+ବହ+ଅନ) ବ୍ରହ୍ମା ।
ହଂସବାହିନୀ—ସ୍ତ୍ରୀ. ବି. (ହଂସ+ବହ+ଣିଚ୍.କ.ଇନ୍+ଈ)ବାଗ୍‌ଦେବୀ,ସରସ୍ୱତୀ ।
ହଂସଗାଙ୍କ—ବି. ହଂସର ଡିମ୍ବ ।
ହଂସଘାତ—ପୁଂ. ବି. ପକ୍ଷିବିଶେଷ ।
ହଂସସୁତ(ତନୟ)—ପୁଂ.ବି.(ଷତତ୍ପୁ)ଯମ ।
ହଂସସୁତା(ତନୟା)—ସ୍ତ୍ରୀ. ବି. (ଷତତ୍ପୁ) ଯମୁନା ନଦୀ ।
ହଂସା—ଗ୍ରା. ବି. ପ୍ରାଣ, ସାହସ, ଧୈର୍ଯ୍ୟ, ପ୍ରାଣବାୟୁ, ଫାଙ୍କିସି, (ପ୍ରାଦେ.ବସ୍ତର) ମୃଦଙ୍ଗ ।
ହଂସା(ସେ)ଇବା—ପ୍ରା. (କଟକ) କ୍ରି. ହସାଇବା ।
ହଂସାଉଡ଼ା—ଗ୍ରା. ବି. ଯହିଁରେ ହଂସା ଉଡ଼ଯାଏ, ଅତ୍ୟନ୍ତ କ୍ଳାନ୍ତିଜନକ ।
ହଂସାଉଡ଼ିବା—ଗ୍ରା.ବି. କ୍ଷୁଧା ଓ ତୃଷାରେ କଣ୍ଠାଗତପ୍ରାଣ ହେବା, ଅତ୍ୟନ୍ତ ଶୋଷ ହେବା,ଧୈର୍ଯ୍ୟ ସାହସ ଉଡ଼ିଯିବା,ଶ୍ୱାସନିଃଶ୍ୱାସ ହେବା ।
ହଂସାଙ୍ଘ୍ରି—ବି. ହିଙ୍ଗୁଳ, ହଂସପାଦ ।
ହଂସାଣ୍ଡ—ବି. ହଂସର ଡିମ୍ବ ।
ହଂସାଧରା—ପ୍ରା.(ସମ୍ବ.ବି)କୁସ୍ତି,କସରତ ।
ହଂସାଧରିବା—ପ୍ରା. (ସମ୍ବ) କୁସ୍ତିକରିବା ।
ହଂସାଧିରୂଢ଼—ପୁଂ. ବି. ବ୍ରହ୍ମା, (ସ୍ତ୍ରୀ) ହଂସାଧିରୂଢ଼ା=ବ୍ରହ୍ମାଣୀ ।
ହଂସାବଳୀ—ବି. (ଷତତ୍ପୁ) ହଂସଶ୍ରେଣୀ, ହଂସମାଳା ।
ହଂସାଭିଖ୍ୟ—ବି.(ହଂସ+ଅଭିଖ୍ୟା) ରୁପା, ରୌପ୍ୟ, ରଜତ ।
ହଂସାମୁଣ୍ଡି—ପ୍ରା. (ଚକ୍ରାମ) ବି. ଶଗଡ଼ର ଦଣ୍ଡାର ଅଗମୁଣ୍ଡକୁ ଯୋଡ଼ିବା କାଠଖଣ୍ଡ, ଯହିଁରେ ଜୁଆଳି ବନ୍ଧାଯାଏ ।
ହଂସାରୂଢ଼—ପୁଂ. ବି. (୨ତତ୍ପୁ) ବ୍ରହ୍ମା, (ବିଂ) ହଂସ ଉପରେ ଚଢ଼ିଥିବା ।
ହଂସାରୂଢ଼ା—ସ୍ତ୍ରୀ. ବି. ସରସ୍ୱତୀ,ବ୍ରହ୍ମାଣୀ ।
ହଂସାଳ—ବି. (ଷତତ୍ପୁ) ହଂସସମୂହ,୩୭ ମାତ୍ରାବିଶିଷ୍ଟ ଛନ୍ଦୋବିଶେଷ ।
ହଂସାସ୍ୟ—ବି. (ସାମୁଦ୍ରିକ) ହସ୍ତର ଶୁଭଚିହ୍ନବିଶେଷ ।
ହଂହି—ଗ୍ରା. ବି. ଏକପ୍ରକାର ତନ୍ତ୍ରଜାଲ ।
ହଂସିଆ—ଗ୍ରା.ବି. ଅର୍ଦ୍ଧଚନ୍ଦ୍ରାକାର ଦାଢ଼ୁଆ ଦାଆ,କଞ୍ଚାମାଟିକୁ କାଟିବାପାଇଁ ବ୍ୟବହୃତ କୁମ୍ଭାରଙ୍କର ଅର୍ଦ୍ଧଚନ୍ଦ୍ରାକୃତି କଟୁରି, ଚମଡ଼ାକୁ ଛେଲି ଚିକ୍କଣ କରିବାରେ ବ୍ୟବହୃତ ମୋଚିଙ୍କର କଟୁରି, ହାତୀର ଅଙ୍କୁଶର ମୁହାଁଆ ଅଗ ସଙ୍ଗେ ଲାଗିଥିବା ବଙ୍କା ଅଂଶ ।
ହଂସିକା—ସ୍ତ୍ରୀ. ବି. (ହଂସ+ସ୍ୱାର୍ଥେ.କ+ଆ) ହଂସୀ ।
ହଂସିର—ବି. ମୂଷିକବିଶେଷ ।
ହଂସିବା—ପ୍ରା. (କଟକ) କ୍ରି. ହସିବା, ହାସ୍ୟ କରିବା, ଉପହାସ କରିବା,ଥଟ୍ଟା କରିବା ।
ହଂସୀ—ସ୍ତ୍ରୀ. ବି. (ହଂସ+ଈ)ମାଈହଂସ, ୨୨ ଅକ୍ଷର ପାଦ ଛନ୍ଦୋବିଶେଷ ।
ହଂସୁଆ—ପ୍ରା.(କଟକ) ବି. କଟକଜିଲ୍ଲାର ପ୍ରାକୃତିକ ଜଳଧାରାକୁ ବଙ୍ଗୋପସାଗରରେ ପକାଉ ଥିବା ଏକ ନୈସର୍ଗିକ ନାଳ ।
ହଂସୁଲି—ଗ୍ରା. ବି. ହଂଶୁଲି, ବେକର ଅଳଙ୍କାରବିଶେଷ, ହଂସଲୋମ ନିର୍ମିତ ଶେଯ ।
ହଂସୁଲିତୁଳି—ଗ୍ରା.ବି. ତୁଳାପରି କୋମଳ ହଂସଲୋମ, ହଂସଲୋମ ପୂରିତ ଶେଯ ।
ହଂସୁଲିହାଡ଼—ଗ୍ରା. ବି. ବେକର ଦୁଇପାଖରେ କାନ୍ଧତଳେ ସାମନାରେ ଥିବା ଦୁଇପାଖର ଧନୁାକାର ହାଡ଼ ।
ହଂସୋଦକ—ବି. (କ.ଧା) ନିର୍ମଳ ଜଳ, ଘଷାଜଳ, ପାଣିଆ ଜଳ ।
ହଂହୋ—ଅବ୍ୟ. ସମ୍ବୋଧନ, ହଇହେ, ଆହେ, ହୋ ।
ହଃ—ଗ୍ରା. ଅ. ଗୋରୁବଳଦଙ୍କୁ ଠିଆକରାଇବା ଲାଗି ଓ ଚଲାଇବା ଲାଗି ଉଚ୍ଚାରିତ ଡାକ, (ପ୍ରା. ପୁରୀ) ହିଁ ।
ହିଁ—ଗ୍ରା. ଅ. ପ୍ରଶ୍ନର ଉତ୍ତର ବା ଅନୁମୋଦନସୂଚକ ଉତ୍ତର, ବକ୍ତାଙ୍କର କଥାକୁ ଶ୍ରୋତା ଶୁଣୁଅଛନ୍ତି ଓ ବକ୍ତା ଯେଉଁ କଥା କହୁଅଛନ୍ତି ତାହା କହନ୍ତୁ ଏହା ବକ୍ତାଙ୍କୁ ଜଣାଇବାପାଇଁ ଶ୍ରୋତାଙ୍କ ଦ୍ୱାରା ଉକ୍ତ ଶବ୍ଦ, ହିଁ ଡାକୁଥିବା ବ୍ୟକ୍ତିଙ୍କୁ ଜବାବ ଦେବାରେ ବ୍ୟବହୃତ ପଦ, କେତେକ ସମୟ ପୂର୍ବରେ ବୋଲାଯାଇଥିବା କଥାକୁ ପୁଣି ଆରମ୍ଭ କରିବା ସମୟରେ ବ୍ୟବହୃତ ପଦ,ପ୍ରଶ୍ନୋତ୍ତର, ଆଜ୍ଞାପାଳନ, ସମ୍ମତି, ସ୍ୱୀକାର, ପ୍ରତିଜ୍ଞା, ଅନୁମୋଦନସୂଚକ ଶବ୍ଦ, କଥାକହିବା ସମୟରେ କଥିତ ବାକ୍ୟର ଶେଷରେ ପ୍ରଯୁକ୍ତ ଧମକାଣ, ବକ୍ତାଙ୍କର ପୂର୍ବବିସ୍ମୃତ ବିଷୟକୁ ଉଦ୍‌ଭାପନ କରିବା ଉପଲକ୍ଷରେ ବ୍ୟବହୃତ ଶବ୍ଦ, ଅନ୍ୟର ଦୃଷ୍ଟି ଆକର୍ଷଣ କରିବାରେ ବ୍ୟବହୃତ ଶବ୍ଦ ।
ହିଁକ୍—ପ୍ରା. (ଖଡ଼ିଆଳ) ବି—ଈର୍ଷା, ନଜର, ଦୃଷ୍ଟି ।
ହିଁ କରିବା—ଗ୍ରା.କ୍ରି. ରାଜିହେବା, ସମ୍ମତହେବା, ଜବାବ ଦେବା ।
ହିଁକସ୍—ପ୍ରା. (ଖଡ଼ିଆଳ) ବି—ଈର୍ଷା, ଅକସ ।
ହିଁଚିଁ—ଗ୍ରା.ଅବ୍ୟ.ହିଁଚୁଁ,ଉଁଚୁଁ,ଇତସ୍ତତଃ ଗଡ଼କରିବା, ଉତ୍ତରଦେବା, ଆପତ୍ତି କରିବା, ଇତସ୍ତତଃ ।
ହିଁଡ଼ା—ପ୍ରା. ଖଡ଼ିଆଳ—ବି—ଭୂମିରେ ପୋତା ହୋଇଥିବା ଧାନ ।
ହିଁତା—ପ୍ରା. ସମ୍ବ. (ସର୍ବ) ଏହା, ତାହା, ସେହି ବସ୍ତୁ, ସେହିଆ, ଏହିଟା ।
ହିଁ ଭରିବା—ଗ୍ରା. କ୍ରି. ହିଁ କରିବା ।
ହିଁ ମାରିବା—ଗ୍ରା.କ୍ରି. ହିଁ କରିବା ଦେଖ ।
ହିଁଯେ—ଗ୍ରା. ଅବ୍ୟ. ହିଁ, କିନ୍ତୁ, ହିଁ ମଧ୍ୟ ।
ହିଁସୂ—ପ୍ରା. (ଭତଗଭାଷା) ସର୍ବ.ସେଠା
ହିଁସୂଠାନେ—ପ୍ରା. (ଭତଗଭାଷା) ସର୍ବ. ସେଠାରେ ।
ହିଁସୂଭତର—ପ୍ରା. (ଭତଡ଼ାଭାଷା) ସର୍ବ.

ସେମାନଙ୍କ ଭିତରୁ ।
ହଁସୁମନ୍—ପ୍ରା. (ଉତ୍ତରୀଭାଷା) ସର୍ବ. ସେମାନେ ।
ହଁରେ—ଗ୍ରା. ଅ. ହଇରେ ଦେଖ ।
ହଁଲେ—ଗ୍ରା.ଅ. ହଇଲେ ଦେଖ ।
ହଁସ୍‌ରା—ପ୍ରା. (ଛତିଶଗଡ଼) ବି. ହାତୁଡ଼ି ।
ହଁସ—ଗ୍ରା. ବି. ହଂସ ଦେଖ ।
ହଁସଗେଲ୍—ପ୍ରା. (ଖଡ଼ିଆଲ) ବି. କ୍ରୀଡ଼ା କୌତୁକ ।
ହଁସରା—ପ୍ରା. (ଖଡ଼ିଆଲ) ବିଂ. ଯେ ସର୍ବଦା ବା ବେଶି ହସେ, ହସୁରା ।
ହଁସରେଲ୍—ପ୍ରା. (ଖଡ଼ିଆଲ) ବି. ହଂସରାଜ ।    [ ହାସ୍ୟ ।
ହଁସା (ସି)—ପ୍ରା. ଖଡ଼ିଆଲ—ବି. ହସ,
ହଁସାଧରା—ପ୍ରା. (ସମ୍ବ) ବି. କୁସ୍ତି, କସରତ୍‌, ବ୍ୟାୟାମ ।
ହଁସିବା—ପ୍ରା. (କଟକ) କ୍ରି. (ଇତର-ଭାଷା) ହସିବା ।
ହଁହଁ—ଗ୍ରା. ଅ. ସମ୍ମତିସୂଚକ ଶବ୍ଦ, ନିଷେଧାତ୍ମକ ଶବ୍ଦ ।
ହକ୍—ଯା. ବି. ସମ୍ପତ୍ତିଆଦିରେ ସ୍ୱତ୍ୱ, ପ୍ରାପ୍ୟ ଅଧିକାର, କର୍ତ୍ତବ୍ୟ କାର୍ଯ୍ୟ, ନ୍ୟାଯ୍ୟ କଥା, ଉଚିତ ବିଷୟ, (ବିଂ) ନ୍ୟାଯ୍ୟ, ନ୍ୟାୟସଙ୍ଗତ, ପ୍ରକୃତ, ଉଚିତ ।
ହକ୍‌କଥା—ଗ୍ରା. ବି. ନ୍ୟାଯ୍ୟସଙ୍ଗତ ବାକ୍ୟ, ଉଚିତ କଥା, ଉଚିତ ବିଷୟ ।
ହକ୍ କହିବା—ଗ୍ରା. କ୍ରି. ଉଚିତ କଥା କହିବା ।
ହକ୍‌ଚକ୍—ଗ୍ରା. ବି. କଳିକଜିଆ, ଉକ୍ତି-ପ୍ରତ୍ୟୁକ୍ତି, ବିକା କିଣାବେଳେ ଦର ସମ୍ବନ୍ଧେ ବହୁତ କଥା କହିବା, ଧକ୍‌ଚକ୍, (ବିଂ) ହକ୍‌ଚକିଆ ।
ହକ୍‌ଚକିଆ—ଗ୍ରା. ବିଂ. ଧକ୍‌ଚକିଆ, ଖେଣ୍ଡା, ଯେ କିଣାବିକାବେଳେ ବହୁତ ଅଯଥା ଦର ଦସ୍ତୁର କରେ, ବାବଦୂକ, ଯେ ଇତସ୍ତତଃ କରେ ।
ହକ୍‌ଟାହକଟି—ପ୍ରା. (ଖଡ଼ିଆଲ) ବି. ଟଣାଟଣି ।
ହକ୍‌ଦାବି—ଯା. ବି. ନ୍ୟାୟସଙ୍ଗତ ଦାବି, ନିଜର ସ୍ୱତ୍ୱକୁ ଦାବି କରିବା ।
ହକ୍‌ଦାର୍—ଯା. ବିଂ. ପାଇବାର ଅଧିକାରୀ, ବି. ନ୍ୟାୟସଙ୍ଗତ ଦାବିଦାର୍ ।
ହକ୍ ନାହକ୍‌ପରସ୍ତ—ଗ୍ରା. ବିଂ. ଯେ ନ୍ୟାୟ ଓ ଅନ୍ୟାୟ ସ୍ଥଳରେ ମନ୍ତବ୍ୟ ଦିଏ, ପରର କାର୍ଯ୍ୟରେ ଅଯଥା ହସ୍ତକ୍ଷେପକାରୀ ।
ହକନାହକେ—ଗ୍ରା. କ୍ରି.ବିଂ. ଅକାରଣରେ ନ୍ୟାୟରେ ଅନ୍ୟାୟରେ, ଔଚିତ୍ୟ ଅନୌଚିତ୍ୟ ବିଚାର ନ କରି, ନିଷ୍ପ୍ରୟୋଜନରେ ।
ହକ୍‌ନାହକ୍—ଯା. ବି. ନ୍ୟାଯ୍ୟ କଥା ଓ ଅନ୍ୟାୟ ବିଷୟ, ଭଲମନ୍ଦ, ନ୍ୟାୟ ଓ ଅନ୍ୟାୟ, ବିଂ. ନ୍ୟାଯ୍ୟ ଓ ଅନ୍ୟାଯ୍ୟ, ଉଚିତାନୁଚିତ ।
ହକ୍‌ପାଉଣା—ଗ୍ରା. ବି. ନ୍ୟାଯ୍ୟ ପ୍ରାପ୍ୟ ବସ୍ତୁ ବା ପଦାର୍ଥ ।
ହକ୍‌ବକ୍—ଯା. ବି. ନ୍ୟାୟାନ୍ୟାୟ ।
ହକ୍‌ବାତ୍—ଯା. ବି. ହକ୍ କଥା ।
ହକ୍‌ମାଲିକାନା—ଯା. ବି. କୌଣସି ବସ୍ତୁରେ ବା ସମ୍ପତ୍ତିରେ ସ୍ୱାମୀଙ୍କ ସ୍ୱତ୍ୱ ।    [ ସ୍ୱମିତ୍ୱ ।
ହକ୍‌ମିଲ୍‌କିଅତ୍—ଯା. ବି. ସ୍ୱତ୍ୱ ଓ
ହକ୍ ମୌରସୀ—ଯା. ବି. ପିତୃପୈତାମହଙ୍କ ସ୍ୱତ୍ୱ ।
ହକରା—ଗ୍ରା. ବି. ଇତସ୍ତତଃ କରି ଧୁଆଧୋଇ, ଟଣାଟଣି ।
ହକରହକର୍—ଗ୍ରା. ବି. ଉପରୁ ତଳକୁ ଉଠିବା ପଡ଼ିବା, କାନ୍ଧେଇଥିବା ସବାରର ଦୋହଲି ଯୋଗୁଁ ନାଚଲଭଲ ହେବା ଅବସ୍ଥା, ଭାରବୋହିବା ବାହୁଙ୍ଗି କାନ୍ଧଉପରେ ଥାଇ ଚାଲୁବେଳେ ନାଚଲଭଲ ହେବା ଅବସ୍ଥା ଇତ୍ୟାଦି ।
ହକରା—ଗ୍ରା. ବି. (ଫ. ହକ୍କାର) ଆହ୍ୱାନ, ଡାକିବା. ଡାକରା, ବ୍ରାହ୍ମଣ ଶାସନମାନଙ୍କରେ ଗହ୍ମାପୂର୍ଣ୍ଣିମା, ଦଶହରା ଓ ଦୋଳ ପୂର୍ଣ୍ଣିମାଆଦିରେ ଗ୍ରାମର ପଞ୍ଚ ରୀତି ଅନୁସାରେ ଭୋଗ, ପ୍ରସାଦ ମହାଜନମାନଙ୍କ ମଧ୍ୟରେ ବଣ୍ଟନ କରାଯିବା ରୀତି, ବ୍ରାହ୍ମଣ ସମାଜରେ ନବବଧୂକୁ ପହିଲିପାଳି ଡାକିବେଳେ ଶ୍ୱଶୁର ଘରୁ ପଠାଯାଇଥିବା ମିଠାଇ ମନୋହର ଆଦି ସାମଗ୍ରୀ ଓ ମହାଜନମାନଙ୍କ ପ୍ରତିଘରେ ଉକ୍ତ ସାମଗ୍ରୀ ବଣ୍ଟନ କରିବା ରୀତି ।    [ ଇବା ।
ହକରାଇବା—ଗ୍ରା. କ୍ରି. ଡକାଇବା, ଅଣା-
ହକରାକନ୍ଦା—ଗ୍ରା.ବି. ଔଷଧ ମୂଳବିଶେଷ ।
ହକରାଡ଼(ଡ଼ା)କରା—ଗ୍ରା.ବି. ଡାକହାକ ।
ହ-କରିବା—ଗ୍ରା. କ୍ରି. ଯୋଚା ବଳଦ ଚାଲୁଥିବାବେଳେ ଗତି ବନ୍ଦ କରିବା ।
ହକଲା—ଗ୍ରା. ବିଂ. (ବସ୍ତ୍ରାଦି) ଧୌତ, (ବି) ଲୁଗା ଆଦି ଧୋଇବା ।
ହକଲାହକଲି—ଗ୍ରା.ବି. ଧୁଆଧୋଇ, ବସ୍ତ୍ର ବସ୍ତୁର ବା ବହୁକାଳ ଧୋଇବା କର୍ମ ।
ହକଶଫା—ଗ୍ରା. ବି. ବିକ୍ରେତାର ଇଚ୍ଛାନୁରୂପ ମୂଲ୍ୟରେ କିଣିବା ।
ହକସ୍—ପ୍ରା. (ଗଞ୍ଜାମ) ବି. ଈର୍ଷ୍ୟା, ଅବଜ୍ଞା, ଅକସ ।
ହକସ୍ କରିବା—ପ୍ରା. (ଗଞ୍ଜାମ) କ୍ରି. ବଳ ଦେଖାଇବା ପାଇଁ ପ୍ରତିଯୋଗିତାକାରୀଙ୍କ ମଧ୍ୟରେ ହାରଜିତ୍ ବା ପଣ ।
ହକହକହେବା—ଗ୍ରା. କ୍ରି. ହକର ହକର ହେବା, ଉଦବେଇଟବେଇ ହେବା ।
ହକା—ଗ୍ରା. ବି. (ସଂ-ହକ୍କାର) ହାକ, ଆହ୍ୱାନ ।    [ କରିବା ।
ହ-କା—ଗ୍ରା.ବି. ଯୋଚା ବଳଦଙ୍କୁ ଠିଆ
ହକାରିବା—କ୍ରି. ଆହ୍ୱାନକରିବା, ଡାକିବା, (ଜାହାଜଆ) ପାଲଟାଣିବା, ପତାକା ଉଠାଇବା ।
ହକାଳିବା—ଗ୍ରା.କ୍ରି. ଧୋଇବା ।
ହକାଳିବା—ପ୍ରା. (ଖଡ଼ିଆଲ) କ୍ରି. ତଡ଼ିବା, ଗାଡ଼ିରେ ଲାଗିଥିବା ବଳଦଙ୍କୁ ଚଳାଇବା ।
ହକାହକ—ଗ୍ରା.ବି. ଡାକହାକ, ପରସ୍ପରକୁ ଡାକିବା, ବହୁଥର ଆହ୍ୱାନ ।
ହକ୍କି—ଯା, ଏକପ୍ରକାର ଖେଳ ।

ହକଅତ୍ର - ଯା.ବ. ସ୍ୱତ୍ୱ, ସମ୍ପତ୍ତିରେ ଅଧିକାର, ଭୂସମ୍ପତ୍ତିରେ ସ୍ୱତ୍ୱ, ବିଷୟ ସମ୍ପତ୍ତି ।

ହକଅଣ—ଯା.ବ.ଭୂସମ୍ପତ୍ତି, ସମ୍ପତ୍ତି ।

ହକଅଣମକଦମା—ଯା. ବ. ପକ୍ଷଦୁହିଁଙ୍କ ମଧ୍ୟରୁ ସମ୍ପତ୍ତିରେ କାହାର ସ୍ୱତ୍ୱ ଅଛି ଏହା ବିଚାର ଲାଗି ଉପସ୍ଥାପିତ ମକଦମା ।

ହକକତ୍—ଯା.ବ.ବୃତ୍ତାନ୍ତ, ପ୍ରକୃତ ତଥ୍ୟ, ସବିଶେଷ ବୃତ୍ତାନ୍ତ, ଠିକ ବିବରଣ ।

ହକିକତ୍‌ନାମା—ଯା. ବ. ବିବରଣପତ୍ର. ରିପୋର୍ଟ ।

ହକିଗତ୍—ପ୍ରା ସମ୍ବ. ବଂ. ପ୍ରକୃତ ।

ହକିମ୍—ଯା. ବ. ମୁସଲମାନବୈଦ୍ୟ, ୟୁନାନୀମତରେ ରୋଗ ଚିକିତ୍ସକ ।

ହକିମି—ଯା.ବ. ହକିମ୍ ବୃତ୍ତି, ଇଉନାନି ଚିକିତ୍ସାପ୍ରଣାଳୀ (ବଂ) ହକିମ୍ ସମ୍ବନ୍ଧୀୟ ।

ହକେ—ପ୍ରା. ( ଭତ୍ରଲୀଭାଷା ) ସର୍ବ ତାହାକୁ ସେ ବ୍ୟକ୍ତିକୁ, ଏହାକୁ. ଏ ବ୍ୟକ୍ତିକୁ ।

ହକ୍କ—ବ. ଜନସମ୍ବୋଧନ. ହାତୀର ଡାକ, ହାତୀକୁ ଡାକିବା । [ ଡାକିବା ।

ହକ୍କାର—ବ. ଆହ୍ୱାନ, ଉଚ୍ଚୈଃସ୍ୱରରେ

ହକ୍କତ୍ (ତ)—ଯା. ବ. ହକଅତ୍ର ଦେଖ ।

ହଗୁରି(ରୁ)—ପ୍ରା. (ଖଡ଼ିଆଲ) ହଗୁରା,ଯେ ବେଶୀ ବା ବାରମ୍ବାର ହଗେ ।

ହଗ୍‌ହଗ୍—ପ୍ରା. (ଖଡ଼ିଆଲ)ମଳତ୍ୟାଗାର୍ଥ ଉଦ୍‌ବେଗ ।

ହଗ—ଗ୍ରା. ବ. (ସଂ ହଦଧାତୁ=ବିଷ୍ଠୋତ୍ସର୍ଗ କରିବା, ସଂ-ହଦନ) ବିଷ୍ଠାତ୍ୟାଗ, ହଗିବା ।

ହଗଣା-ଗ୍ରା.ବ.ଝାଡ଼ାଫେରିବା,ହଗାରୋଗ ।

ହଗମଡ଼େଇବା(ମାଡ଼ିବା)—ଗ୍ରା. ବ. ମଳବେଗ ଅନୁଭୂତ ହେବା ।

ହଗମୂତ—ଗ୍ରା. ବ. ହଗିବା ଓ ମୂତିବା, ମଳତ୍ୟାଗ ଓ ପ୍ରସ୍ରାବ ତ୍ୟାଗ ।

ହଗ(ଗୁ)ରା-ଗ୍ରା.ବ ତିର ଅତିସାର ରୋଗ, ହଗା ରୋଗ,ଗ୍ରହଣୀଆଦି,ଅପତ୍ନିଆଣୀଙ୍କୁ ଦିଆଯିବା ନାମ, (ବଂ) ତିର ଅତିସାର ରୋଗୀ, ଯେ ପୁନଃ ପୁନଃ ହଗେ, ଯେ ହଗେ ବା ହଗିଥାଏ,ଯାହାର ବାରମ୍ବାର ହଗିବାର ଅଭ୍ୟାସ, ଛେରୁଆ, ଅତି ଭୟାଳୁ ।

ହଗା—ଗ୍ରା.ବ.ମଳୋତ୍ସର୍ଗ,ଝାଡ଼ାଫେରିବା, ଅତିସାର, ବହୁବାର ଝାଡ଼ାଫେରିବା ରୋଗ, (ବଂ)ଝାଡ଼ାରୋଗାକ୍ରାନ୍ତ(ବ୍ୟକ୍ତି), ଯେ ହଗିଥାଏ, ହଗୁରା, (ପ୍ରା.ବଲାଙ୍ଗିର ପାଟଣା) ହଇରେ (ଅନାଦରାର୍ଥରେ) ।

ହଗା(ଗେ)ଇଦେବା—ଗ୍ରା. କ୍ରି. କୌଣସି ବ୍ୟକ୍ତିକୁ ପ୍ରହାର ଆଦି ଦେବା ଦ୍ୱାରା ବିନା ପ୍ରେରଣାରେ ତାଠାରୁ ମଳନିଃସାରଣ କରାଇବା,କୌଣସି ବ୍ୟକ୍ତିକୁ ଭୟ ଦେଖାଇ ଅତର୍କ୍ଷ କରିବା ଦ୍ୱାରା ଅନିଚ୍ଛାକ୍ରମେ ମଳନିଃସୃତ କରାଇବା,(ଲ.ଅର୍ଥ) କୌଣସି ବ୍ୟକ୍ତିକୁ ଅତର୍କ୍ଷ କରାଇବା, ବେକାଏ ମାଡ଼ଦେବା, ବହୁତ କୋଷ ଲଗାଦେବା,କାର୍ଯ୍ୟ କରିବାକୁ ଅତିଶୟ ହତବୁଦ୍ଧି କରିବା ।

ହଗା(ଗେ)ଇନେବା—ଗ୍ରା. କ୍ରି. ହଗିବାକୁ ଯିବା ବ୍ୟକ୍ତିର ସଙ୍ଗରେ ଯିବା ।

ହଗା(ଗେ)ଇପକା(କେ)ଇବା—ଗ୍ରା. କ୍ରି. ହଗାଇଦେବା ଦେଖ ।

ହଗା(ଗେ)ଇବା—ଗ୍ରା.କ୍ରି.କୌଣସି ବ୍ୟକ୍ତିକୁ ମଳତ୍ୟାଗରେ ସାହାଯ୍ୟ କରି (ଯଥା:- ଶିଶୁମାନଙ୍କୁ ଆପଣା ଦୁଇଗୋଡ଼ର ବଳାଗଣ୍ଠି ଉପରେ ବସାଇ) ଝାଡ଼ାଫେରାଇବା, ହଗାଇଦେବା ଦେଖ ।

ହଗା(ଗେ)ଇବାମୂତା(ତେ)ଇବା—ଗ୍ରା.କ୍ରି. (ଲ.ଅର୍ଥ) କୌଣସି ବ୍ୟକ୍ତିକୁ ମାଡ ବା ଭୟପ୍ରଦର୍ଶନ ବା ଅତ୍ୟନ୍ତ ବୋଝଦେବା ଦ୍ୱାରା ଅନିଚ୍ଛାକ୍ରମେ ହଗିବା ଓ ମୂତିବାର କାରଣ ହେବା ।

ହଗାଉଷୁଆ(ଔଷଧ)—ଗ୍ରା.ବ. ହଗା ବନ୍ଦ ହେବାର ଔଷଧ, ଭେଦୀ, ଜୁଲପ୍ ।

ହଗାମୂତା—ଗ୍ରା. ବ. (ସହଚର) ଝାଡ଼ାଫେରିବା ଓ ପ୍ରସ୍ରାବ କରିବା,(ଲ.ଅର୍ଥ) ମାଡ଼ଭୟ ଓ ଅତିଶୟ ବୋଝଦେବା ଦ୍ୱାରା ହଗିମୂତି ପକାଇବା ।

ହଗାରୋଗ—ଗ୍ରା. ବ. ଉଦରାମୟ, ଆମାଶୟ, ଅତିସାରାଦି ରୋଗ ।

ହଗାଲଗା—ଗ୍ରା. ବଂ. ଭୟଙ୍କର ଶବ୍ଦରେ ପ୍ରହାରିତ, ଅତି ଆକ୍ରାନ୍ତ ।

ହଗିଦେବା—ଗ୍ରା. କ୍ରି. ହଗିପକାଇବା, ହଠାତ୍ ମଳୋତ୍ସର୍ଗ କରିବା ।

ହଗିପକା ( କେ ) ଇବା—ଗ୍ରା. କ୍ରି. ଅତର୍କିତ ଭାବରେ ଝାଡ଼ା ଫେରିବା, ( ଲ.ଅର୍ଥ ) ବହୁତ ମାଡ ବା ଅତ୍ୟନ୍ତ ଭୟ ବା ଅତ୍ୟଧିକ ବୋଝ ଫଳରେ ଅନିଚ୍ଛାକ୍ରମେ ଝାଡ଼ାହେବା ।

ହଗିବସି ନାଆଁ ପକାଇବା—ଗ୍ରା. (ନ୍ୟାୟ) ଶ୍ଳେଷ ବା ଲଜ୍ଜାଜନକ କାର୍ଯ୍ୟ କରିବା ଦ୍ୱାରା ନିନ୍ଦା ଅର୍ଜିବା ।

ହଗିବା—ଗ୍ରା. କ୍ରି. ଝାଡ଼ାଫେରିବା, ମଳୋତ୍ସର୍ଗକରିବା, (ଲ. ଅର୍ଥ) ଶକ୍ତିର ଅସାଧ୍ୟ ଥିବାରୁ କୌଣସି କାର୍ଯ୍ୟ କରିବାକୁ ଅସମର୍ଥ ହେବା, ହଗିପକାଇବା ଦେଖ ।

ହଗି ମୂତିପକାଇବା—ଗ୍ରା. କ୍ରି. ଏକସମୟରେ ମଳ ଓ ପ୍ରସ୍ରାବ ତ୍ୟାଗକରିବା, ଭୟରେ ଅତର୍କ୍ଷହେବା, ଅତ୍ୟନ୍ତ ମାଡ଼ ଭୟାଦି ଦ୍ୱାରା ବିନା ଇଚ୍ଛାରେ ଝାଡ଼ା ଓ ପ୍ରସ୍ରାବ କରିବା ।

ହଗିମୂତି ପଳାଇବା—ଗ୍ରା. କ୍ରି. ଅତି ସନ୍ତ୍ରସ୍ତ ହୋଇ ପଳାଇଯିବା ।

ହଗିଯିବା—ଗ୍ରା. କ୍ରି. ମଳତ୍ୟାଗ କରିବା ପାଇଁ ସ୍ଥାନାନ୍ତରକୁ ଯିବା ।

ହଗୁରା—ପ୍ରା. (ସମ୍ବ) ହଗ(ଗୁ)ରା ଦେଖ ।

ହଙ୍କା—ଗ୍ରା. ବ. ଗାଈଇତ୍ୟାଦିର ଗୃଳନ ।

ହଙ୍କା(ଙ୍କେ)ଇଦେବା—ଗ୍ରା. କ୍ରି. ଧମକ ଦେଇ କୌଣସି ବ୍ୟକ୍ତିକୁ ତଡ଼ିଦେବା ।

ହଙ୍କା ( ଙ୍କେ )ଇବା—ଗ୍ରା. କ୍ରି, ଗାଈ ଗରିଆଦିକୁ ହାଙ୍କିବା ବା ଚଳାଇବା, ତଡ଼ିଦେବା ।

ହଙ୍ଗାମା—ଯା. ବ. ଅନର୍ଥ, କଳହ, କଲିକଜିଆ ପୂର୍ବକ ବିବାଦ, ଶାନ୍ତିଭଙ୍ଗ,

ଗୋଲମାଲ, ମାରପିଟ ପୂର୍ବକ କଳି ।
ହଙ୍ଗାମାଦାର୍ (ବାଜ୍)—ଯା.ବିଂ. କଳହପ୍ରିୟ, ବେଆଇନ ବଳ ପ୍ରୟୋଗକାରୀ ।
ହଚ୍‌ପଟ୍‌କୁ ଅଣିବା—ଯା. (ଇଂ—କଚଣ୍ଆ) ବଣରେ ମକଦ୍ଦମାରେ ପକ୍ଷମାନଙ୍କର ଯାବତୀୟ ସମ୍ପତ୍ତିକୁ ଏକଜଣ ଦାୟୀଭୁକ୍ତ କରିବା ।
ହଚକେଇଯିବା—ଗ୍ରା. କ୍ରି. କିଂକର୍ତ୍ତବ୍ୟବିମୂଢ଼ ହେବା ।
ହଜ୍—ଯା. ବି. ମୁସଲମାନମାନଙ୍କ ମକ୍କା ତୀର୍ଥ ଦର୍ଶନ ଓ ତୀର୍ଥକୃତ୍ୟ ସମ୍ପାଦନ ।
ହଜ୍‌କରିବା—ଗ୍ରା.କ୍ରି.ମକ୍କାତୀର୍ଥ ଦର୍ଶନାଦି କରିବା ।
ହଜ୍‌ଗ ( ବ ) ଜ୍—ଗ୍ରା. ଅ. ହାଉଯାଉ ଦେଖ, ବହୁ ପଦାର୍ଥର ଇତସ୍ତତଃ ବିକ୍ଷିପ୍ତ ହେବା ଅବସ୍ଥା, ନିଶ୍ଚିତ କଥା ନ କହି ଇତସ୍ତତଃ କରିବା, ଗୋଳମାଳ, (ପୋକଆଦି) କୌଣସିସ୍ଥାନରେ ସାଲୁ ସାଲୁ ହେବା ।
ହଜ୍‌ଗଜ୍‌ଗଜ୍—ପ୍ରା. (ଖଣ୍ଡିଆଲ) ବି. ଆନନ୍ଦର ଗହଳଚହଳ, ଆନନ୍ଦମୟ କୋଳାହଳ ।
ହଜ୍‌ଗ (ବ)ଜିଆ—ଗ୍ରା. ବିଂ. ଯେ ନିଶ୍ଚିତ କଥା ନ କହି ଇତସ୍ତତଃ କରେ ।
ହଜ୍‌ବାଣ୍ଡା—ଗ୍ରା. ବି. ହାଉବାଣ୍ଡା, ହାଉ ଜଙ୍ଗପରି ବଡ଼ ଫଳବିଶିଷ୍ଟ ବୃକ୍ଷ ।
ହଜ୍‌ମି—ଯା. ବିଂ. ହଜମି, ଯାହା ହଜମ କରାଏ, ପରିପାକ କ୍ରିୟାର ସାହାଯ୍ୟକାରୀ ।
ହଜ୍‌ରତ୍—ଯା. ବି. ହଜରତ୍ ଦେଖ ।
ହଜ୍‌ରତ୍ ମହମ୍ମଦ୍—ଯା. ବି. ସମ୍ମାନନୀୟ ପୟଗମ୍ବର ମହମ୍ମଦ ।
ହଜରି—ପ୍ରା. ( ଖଣ୍ଡିଆଲ ) ପୁଂ. ବିଂ. ଅସନ୍ତୁଷ୍ଟ ।
ହଜ୍‌ରିବା—ପ୍ରା. ( ଖଣ୍ଡିଆଲ ) କ୍ରି. ଅସନ୍ତୁଷ୍ଟ ହେବା ।
ହଜ୍‌ହଜିଆ—ପ୍ରା. (ସମ୍ବ) ବିଂ. ଖଜବଜିଆ (ପିଲା), ଅସ୍ଥିର ।
ହଜ—ପ୍ରା. (ପୁରୀ, ଭୁବନେଶ୍ୱର ଅଞ୍ଚଳ) ବି. ବଡ଼ ଜଳାଶୟ ।
ହଜତ୍—ଯା. ବି. ହକ୍କତ୍ ଦେଖ ।
ହଜମ—ଯା. ବି. ଭୁକ୍ତଦ୍ରବ୍ୟର ପରିପାକ, (ଲ.ଅର୍ଥ) କୌଣସି ଦ୍ରବ୍ୟକୁ ଆତ୍ମସାତ୍ କରିବା ।
ହଜମ କରିବା—ଗ୍ରା. କ୍ରି. ଖାଦ୍ୟଦ୍ରବ୍ୟ ଜୀର୍ଣ୍ଣ କରିବା, ( ଲ.ଅର୍ଥ) ଆତ୍ମସାତ୍ କରିବା, ଗୁରୁତର ଦଣ୍ଡ ବା ଆଘାତକୁ ସମ୍ଭାଳି ନେବା, ପାପାଦି ଅନିୟମମାନ କରି ସମାଜରେ ଦଣ୍ଡିତ ବା ନିନ୍ଦିତ ନ ହେବା, ବୁଝିପାରିବା ।
ହଜମ ପାଇବା ( ହେବା )—ଗ୍ରା. କ୍ରି. (ଖାଦ୍ୟଦ୍ରବ୍ୟାଦି) ଜୀର୍ଣ୍ଣ ହେବା ।
ହଜମି—ଯା. ବିଂ. ପରିପାକକାରକ, ପାଚକ, ଯଦ୍ଦ୍ୱାରା ପରିପାକ ହୁଏ, (ବି) ପାଚକ ଔଷଧ ।
ହଜରତ୍—ଯା. ବି. ପ୍ରଭୁ, ମହାତ୍ମାବ୍ୟକ୍ତି, ମହାଶୟ, ସାଧୁ ଓ ମହାପୁରୁଷ, (ବିଂ) ଶ୍ରୀଯୁକ୍ତ, ସମ୍ମାନାସ୍ପଦ ।
ହଜରତ୍ ମହମ୍ମଦ୍—ଯା. ବି. ମୁସଲମାନଙ୍କ ଧର୍ମପ୍ରବର୍ତ୍ତକ ମାନନୀୟ ମହମ୍ମଦ୍ ।
ହଜା—ଗ୍ରା. ବି. ହଜିବା ଦେଖ, ହଜାଇବା ଦେଖ, ବିଂ. ହଜିଯାଇଥିବା ।
ହଜା(କେ)ଇବା—ଗ୍ରା. କ୍ରି. (ସଂ-ହୁଧାତୁ) କୌଣସି ବସ୍ତୁକୁ ହରାଇବା, ହଜିବାକ୍ରିୟାର ଣିଜନ୍ତ ରୂପ, ହଜିବାର ଉପାୟ କରିବା, ନଷ୍ଟ କରିବା ।
ହଜାମ୍—ଯା. ବି. ଭଣ୍ଡାରି, ନାପିତ ।
ହଜାମତ୍—ଯା. ବି. କ୍ଷୌରକର୍ମ ।
ହଜାମନ୍—ପ୍ରା. (ଯାଜପୁର) ବି. ହଜାମତ୍, ଭଣ୍ଡାରି ।
ହଜାର (ର)—ଯା. ବି. ସହସ୍ର(ସଂଖ୍ୟା), ଅସଂଖ୍ୟ ବସ୍ତୁ. (ବିଂ) ସହସ୍ରସଂଖ୍ୟକ, ଅସଂଖ୍ୟ, ବହୁ ।
ହଜାର୍‌ମାରୁ—ଗ୍ରା. ବିଂ. ଯେ ଅସଂଖ୍ୟ ଜୀବ ହତ୍ୟାକରେ ।
ହଜାରକ—ଗ୍ରା. ( ବିଂ ଓ ବି ) ଏକହଜାର ମାତ୍ର ।
ହଜାରକିଆ—ଗ୍ରା. ବିଂ. ଏକ ଗଦାରେ ହଜାରେ ଲେଖାଏଁ ରଖାଯାଇଥିବା (ବସ୍ତୁ),ହଜାରଟଙ୍କାରେ କିଣା, ହଜାର ଟଙ୍କା ମୂଲ୍ୟର ।
ହଜାରକେ—ଗ୍ରା. ଅବ୍ୟ ହଜାର ସଂଖ୍ୟା ପୂର୍ଣ୍ଣହେଲେ, ଏକହଜାର ସଂଖ୍ୟାର ମଧ୍ୟରେ ।
ହଜାରମଣୀ—ଗ୍ରା. ବି. ଭୁଇଁଅଁଳାପରି ବର୍ଷାୟୁଃ କ୍ଷୁଦ୍ର ଶାକ ବିଶେଷ ।
ହଜାର (ରୁ)ହଜାର—ଗ୍ରା. ବି ଓ ବିଂ. ଅସଂଖ୍ୟ ।
ହଜାରି—ଗ୍ରା. ବି. ହରଗଉରି, କୁସୁମ୍ଭ ଫୁଲର ଆକୃତି ବିଶିଷ୍ଟ ଏକପ୍ରକାର ଫୁଲ
ହଜାରିଆ—ଗ୍ରା. ବି. ଧନୀଲୋକ, ହଜାରେ ଟଙ୍କାର ଅଧିକାରୀ ବ୍ୟକ୍ତି, ବିଂ. ହଜାର ସଂଖ୍ୟା ସମ୍ବନ୍ଧୀୟ ।
ହଜାରିବାଗ୍—ଗ୍ରା. ବି. ଛୋଟନାଗପୁର ବିଭାଗର ଗୋଟିଏ ଜିଲ୍ଲା ଓ ତହିଁର ସଦର ମହକୁମାର ନାମ ।
ହଜାରୀ—ପ୍ରା. (ଖଣ୍ଡିଆଲ) ବି. ଗଛରେ ପାଣିଦେବା ପାଇଁ ଛିଦ୍ରମୟ ଝାରି ।
ହଜାରୁ(ରୁ)ହଜାର—ଗ୍ରା.ବିଂ. ଅସଂଖ୍ୟ ।
ହଜାରେ—ଗ୍ରା. ବି. ଏକସହସ୍ର ସଂଖ୍ୟା, (ବିଂ) ଏକସହସ୍ର ସଂଖ୍ୟକ, ଅସଂଖ୍ୟ, ବହୁତ, (କ୍ରି.ବିଂ) ବହୁପ୍ରକାରେ,ନାନାସ୍ଥାନରେ, ଅସଂଖ୍ୟଥର ।
ହଜିବା—ଗ୍ରା. କ୍ରି. (ସଂ-ହୃଧାତୁ) ନଷ୍ଟହେବା, ନମିଳିବା, ଅଜ୍ଞାତସାରେ ପଡ଼ିଯିବା, ଦୃଷ୍ଟ ନ ହେବା, ହୃତହେବା ।
ହଜୁର୍—ଯା. ବି. ପ୍ରଭୁଙ୍କ ସାନ୍ନିଧ୍ୟ ବା ଗୃହ, ପ୍ରଭୁ, ହାକିମ, (ଅବ୍ୟ) ତୁମ୍ଭେ ! ପ୍ରଭୋ ! ।
ହଜୁର୍ ! ଖୋଦାବନ୍ଦ୍ ! ଖାମିନ୍ଦ୍ !—ଯା.ଅ. ଆପଣ ମୋର ପ୍ରଭୁ ଅଟନ୍ତି ।
ହଜୁର୍‌ସିରସ୍ତାଦାର୍—ପ୍ରା. (ଗଞ୍ଜାମ) ବି. କଲେକ୍ଟର ସାହେବଙ୍କ ପ୍ରଧାନ କିରାଣି ।
ହଜୁର୍‌କ୍ଲର୍କ—ପ୍ରା.(ଗଞ୍ଜାମ)ହଜୁରଗୁମାସ୍ତା, ରାଜାଙ୍କ ପାଖରେ ସର୍ବଦା ଥିବା କିରାନି ।
ହଜୁର୍‌ସବାର—ଯା. ବି. ହଜୁର୍ ସ୍ୱୟଂ, ଆପଣ ।

ହଜୁର—ଗ୍ରା. ବ. ରାଜପ୍ରଦତ୍ତ ଉପାଧିବିଶେଷ. ( ବି° ) ହଜୁର ସମ୍ବନ୍ଧୀୟ, ସ୍ୱୟଂ ରାଜାଙ୍କ ପାଖରେ କାର୍ଯ୍ୟକରୁଥିବା(ଭୃତ୍ୟ),ପୁରୀ ଜଗନ୍ନାଥଙ୍କ ପଣ୍ଡାଙ୍କ ପଦତ୍ତ ଉପାଧିବିଶେଷ ।

ହଜୁରକିଆ—ଗ୍ରା.ବି°.(ପାନବରଜା ଭାଷା) ଅତି ଶ୍ରେଷ୍ଠ ବା ରାଶି (ପାନ) ।

ହଜ୍ଜତ୍—ଯା.ବ. ହୁଜ୍ଜତ୍,ଝଗଡ଼ା,ଗୋଳମାଳ, ତର୍କବିତର୍କ ।

ହଜ୍ଜତି—ଗ୍ରା. ବି°. କଳହପ୍ରିୟ, ଗୋଳମାଳପ୍ରିୟ ।

ହଞ୍ଜା(ଞ୍ଜେ)—ଅ. ଦାସୀ ପ୍ରତି ସ୍ତ୍ରୀଲୋକର ସମ୍ବୋଧନ, ହଇଲୋ !

ହଞ୍ଜାନ୍—ଗ୍ରା.ବି°(ସଂ-ଭୟାନକ)ହୟାନ୍. ଭୟାନକ, ଅତି ବୃହତ୍, ଅତି ଉଚ୍ଚ ।

ହଞ୍ଜି—ବ. କ୍ଷୁତ୍, କ୍ଷୁଧା ।

ହଞ୍ଜିକା—ବ. ଭାର୍ଗୀ, ବ୍ରାହ୍ମଣଯଷ୍ଟି ।

ହଟ୍—ଗ୍ରା. ଅ. ଯୋଡ଼ାଆଦିଙ୍କୁ ପଛକୁ ହଟିବା ପାଇଁ ସମ୍ବୋଧନ, (ଗ୍ରା.କ୍ରି.) ଦୂର୍ହ୍, ଦରତ ହୁଅ ( ତୁମ୍ଭେ ), (ପ୍ରା. ଖଡ଼ିଆଳ—ବ) ଜିଦ୍. ଜଗର ।

ହଟ୍କ(କା)ର(ନ)—ଗ୍ରା. ଅବ୍ୟ. ହଠାତ୍, ଅତିଶୀଘ୍ର ।

ହଟ୍କାହଟ୍କି—ପ୍ରା. ( ଖଡ଼ିଆଳ ) ବ. ହକ୍ଟାହକ୍ଟି ଦେଖ ।

ହଟ୍ବା—ପ୍ରା.(ସମ୍ବ) କ୍ରି. ହଟିବା ଦେଖ ।

ହଟ୍ଲି—ପ୍ରା. (କଳାହାଣ୍ଡି) ଶ୍ରେଷ୍ଠହାଟ, (ପ୍ରା. ସମ୍ବ) ପ୍ରତ୍ୟହ ବସୁଥିବା ହାଟ, ଗୁରୁହାଟ ।

ହଟ୍କିବା—ପ୍ରା. (ସମ୍ବ) କ୍ରି. ଅଟକିବା ।

ହଟ—ଗ୍ରା. ବ. (ସଂ-ହଠ) ଗୁରୁଙ୍ଗ,ଛଳ. କୌତୁକ, ହୁନ୍ଦର, ତାମସା,କାର୍ଯ୍ୟତଃ ଥଟ୍ଟା, କୁହୁକ, ଗାରଡ଼ି,କୌଶଳ,ଅଳି, କଟାଳ, ଅପଟା,ଜଗର,ପ୍ରତିଯୋଗିତା, ହଟହଟା, ରୁଷା ।

ହଟକରିବା—ଗ୍ରା. କ୍ରି. ତାମସାକୌତୁକ କରିବା, ଅଳିହ ଲଗାଇବା, କଟାଳ କରିବା, ଥଟ୍ଟା କରିବା, ପ୍ରତିଯୋଗିତା କରିବା, ହଟହଟା କରିବା, ରୁଷିବା, କୁହୁକ ଦେଖାଇବା ।

ହଟକୂଟ—ଗ୍ରା. ବ. ହଟ,କୌତୁକ,ଥଟ୍ଟା, ତାମସା, ହୁନ୍ଦର ।

ହଟକେଶ୍ୱର—ପ୍ରା. ( ପୁରୀ ) ପୁରୀଜିଲ୍ଲା ଖୋର୍ଦ୍ଧା ଅନ୍ତର୍ଗତ ଅତ୍ରୀଗ୍ରାମରେ ଥିବା ଉଷ୍ଣପ୍ରସ୍ରବଣ ଓ ତନ୍ନିକଟବର୍ତ୍ତୀ ଶିବଲିଙ୍ଗଙ୍କ ନାମ ।

ହଟଚ(ଷ୍ଟ)ମଟ—ଗ୍ରା.ବ.କୁହୁକ,କୌଶଳ, ଲୋକଙ୍କ ଦେଖିବା ପାଇଁ କରାଯିବା ଦୃଶ୍ୟ, କୌତୁକ, ଇନ୍ଦ୍ରଜାଲ ।

ହଟତରଣ୍ଡ—ପ୍ରାଦେ. ( ଗଞ୍ଜାମ ) ବି°. ଅବାଧ, ଦୁଷ୍ଟ ।

ହଟନ(ନା)ଟ—ଗ୍ରା.ବ. ହଟ, କୌତୁକ, ହୁନ୍ଦର, ଥଟ୍ଟା ।

ହଟନାଗର-ଗ୍ରା.ବ.ହଟିଆନାଗର ଦେଖ ।

ହଟପଟ—ଗ୍ରା.ବି°. ବ୍ୟତିବ୍ୟସ୍ତ,ଲଟପଟ, ଗୋଳମାଳରେ ଜଡ଼ିତ ।

ହଟରପଟର—ଗ୍ରା.ବି°.ହଟପଟ ଦେଖ ।

ହଟପର୍ଣ୍ଣୀ—ବ. ଶୈବାଳ, ଶିଉଳି ।

ହଟପାଟକୀ—ଗ୍ରା. ବି°. (ସ୍ତ୍ରୀ ପ୍ରତି ଗାଳି) ହଟହଟେଇ ।

ହଟଲି—ପ୍ରା. (ସମ୍ବ) ବ. (ସଂ-ହଟ୍ଟ)ଶ୍ରେଷ୍ଠ ହାଟ, ହୋଟେଲ ଦେଖ, ପ୍ରତିଦିନ ବସୁଥିବା ହାଟ ।

ହଟହଟା—ଗ୍ରା.ବ. କୁଆକୁଟା,ଲୋକହସା, ଅପକୀର୍ତ୍ତି, ହରକତ ହେବା ଅବସ୍ଥା, ଲୋକାପବାଦ, ସର୍ବସାଧାରଣଙ୍କ ଉପହାସ,ଲଜ୍ଜା, (ବି°) ଯେ ଲୋକହସାରେ ପଡ଼ିଥାଏ,କଷ୍ଟ ବା ଦୁର୍ଦ୍ଦଶାରେ ପଡ଼ିତ, ଅପବାଦଜନକ ।

ହଟହଟାକରିବା—ଗ୍ରା. କ୍ରି. ଅନ୍ୟକୁ ଉପହାସ କରିବା ।

ହଟହଟାରେ ପଡ଼ିବା-ଗ୍ରା.କ୍ରି.ସାଧାରଣରେ ହାସ୍ୟାସ୍ପଦ ହେବା ।

ହଟହଟିଆ—ଗ୍ରା.ପୁଂ. ବି°. ହଇରାଣିଆଁ, ଯେ ଅନ୍ୟକୁ ଲଜ୍ଜାରେ ପକାଏ, ଯେ ନିଜକାର୍ଯ୍ୟ ଯୋଗୁଁ ହାସ୍ୟାସ୍ପଦ ହୁଏ, ଯେ ପରନିନ୍ଦା କରାଏ, ଯେ ଅନ୍ୟକୁ ହାସ୍ୟାସ୍ପଦ କରାଏ ।

ହଟା—ଗ୍ରା. ବ. ହଟହଟା, ଲୋକହସା, ଲୋକାପବାଦ, ଅଳି,ଅପଟା, କଟାଳ, ହାଟ, କୌଣସି ବିଷୟ ସାଧାରଣରେ ପ୍ରକଟିତ ହେବା, (ତୁ,ତାକୁ) ହଟାଅ, ପଛକୁ ଘୁଞ୍ଚାଅ ।

ହଟା(ଟେ)ଇବା—ଗ୍ରା.କ୍ରି. ପଛକୁ ଘୁଞ୍ଚାଇବା,ପରାସ୍ତ କରିବା,(ରୋଗକୁ)ନିବୃତ୍ତ କରାଇବା ।

ହଟାକରିବା—ଗ୍ରା.କ୍ରି. ଦୁର୍ନାମ କରାଇବା, ଅପବାଦ ଦେବା, ପ୍ରଘଟ କରିବା,ଅଳି କରିବା, ଲୋକହସା କରାଇବା ।

ହଟାଣ—ଗ୍ରା.ବ.ହଟାଇବା,ପରାସ୍ତକରଣ ।

ହଟାତ୍—ଗ୍ରା. ଅ. (ସଂ-ହଠାତ୍) ହଠାତ୍ ଦେଖ ।

ହଟାପସରା—ପ୍ରା. (ଖଡ଼ିଆଳ) ଅପବାଦ ।

ହଟାବସା(ସେ)ଇବା—ଗ୍ରା. କ୍ରି. ସାଧାରଣରେ କୌଣସି ବ୍ୟକ୍ତିର ଦୁର୍ନାମ କରିବା ।

ହଟାଳି—ଗ୍ରା.ବ.ଯେ ହାଟକୁ ପଣ୍ୟଦ୍ରବ୍ୟ ନେଇ ବିକିକରେ ।

ହଟାହଟି—ଗ୍ରା.ବ.ପରସ୍ପରକୁ ହଟାଇବା ।

ହଟି—ଗ୍ରା. ବ. ହଟ ଦେଖ ।

ହଟିଆ—ଗ୍ରା. ପୁଂ. ବି°. ଯେ ଜଗର ବା ଅଳି କରେ, ରଙ୍ଗିଆ, ହୁନ୍ଦରିଆ, କୌତୁକପ୍ରିୟ, ଏକବାଗିଆ,(ଅନାଦରାର୍ଥକ ) ଲୋକଙ୍କୁ ଡାକିବା ନାମ ।

ହଟିଆନାଗର—ଗ୍ରା. ପୁଂ. ବ. ରଙ୍ଗିଆ ବା କୌତୁକପ୍ରିୟ ବ୍ୟକ୍ତି, ନାଟଗୁରୁ, ଶ୍ରୀକୃଷ୍ଣ ।

ହଟିକରିକହିବା—ଗ୍ରା.କ୍ରି. ରୁଟିକରି କଥା କହିବା ।

ହଟିଗୁହିଁବା—ଗ୍ରା. କ୍ରି. ପଛଆଡ଼କୁ ମୁହଁ ବୁଲାଇ ଗୁହିଁବା ।

ହଟିବସିବା—ଗ୍ରା.କ୍ରି. ପଛକୁ ଘୁଞ୍ଚିବସିବା, ଜଗର କରିବା, ଏକଜିଦ ଧରିବା ।

ହଟିବା—ଗ୍ରା.କ୍ରି. ପଛକୁ ଘୁଞ୍ଚିବା,ପଛେଇବା, ନ ପାରିବା,ଅଳି କରିବା,କୁଣ୍ଠିତ ହେବା,ପରାସ୍ତ ହେବା,ରଣଭଙ୍ଗଦେବା, ନିବୃତ୍ତ ହେବା,କମିବା,ରହିତହେବା ।

ହଟିଯିବା—ଗ୍ରା. କ୍ରି. ପଛକୁ ଘୁଞ୍ଚିଯିବା, ପରାସ୍ତ ହେବା, ଗୁଡ଼ ଗୁଡ଼ିଯିବା, ରଣଭଙ୍ଗଦେବା ।

ହଟୁଆ—ଗ୍ରା. ପୁଂ. ବିଂ. ହଟିଆ ଦେଖ, (ସ୍ତ୍ରୀ) ହଟୋଇ ।

ହଟକି— ପ୍ରା. (କଳାହାଣ୍ଡି) ବ. ହାକୁଟି ।

ହଟ୍ଟ(ଣ୍ଟ)—ଗ୍ରା. କ୍ରି. ବିଂ. ଦୈବାତ୍, ଅକସ୍ମାତ୍, ହଠାତ୍, ପୁନଃପୁନଃ, ନିଷେଧସତ୍ତ୍ୱେ, ଉପେକ୍ଷା ପ୍ରଦର୍ଶନ ପୂର୍ବକ, ହଟକରି, ଇଚ୍ଛାବଶତଃ ।

ହଟ୍ଟ—ବ. ( ହଟ୍ଧାତୁ + କ.ଟ ) ହାଟ, ପଣ୍ୟ ଦ୍ରବ୍ୟବିକ୍ରୟର ମୁକ୍ତସ୍ଥାନ ।

ହଟ୍ଟଗୋଳ—ଗ୍ରା. ବ. ଗଣ୍ଡଗୋଳ ।

ହଟ୍ଟଚୌ(ଚୋ)ରକ—ପୁଂ. ବ. ଯେଉଁ ଚୋର ହାଟବାଟ ଆଦି ପ୍ରକାଶ୍ୟସ୍ଥାନରେ ଚୋରି କରେ ।

ହଟ୍ଟବିଳାସିନୀ—ସ୍ତ୍ରୀ. ବ. (ହଟ୍ଟ+ବି+ଲସ୍+ଇନ୍+ଈ) ଗନ୍ଧଦ୍ରବ୍ୟବିଶେଷ, ନଖୀ, ହରିଦ୍ରା, ହଳଦୀ, ବାରାଙ୍ଗନା, ବେଶ୍ୟା ।

ହଟ୍ଟମଣ୍ଡପ(ମନ୍ଦିର)—ବ. ହାଟଘର, ଯେଉଁ ଘରେ ବସି ହାଟୁଆମାନେ ବିକ୍ରୟ କରନ୍ତି

ହଟ୍ଟାଧ୍ୟକ୍ଷ—ବ. ହାଟର ଅଧ୍ୟକ୍ଷ ।

ହଟ୍ଟୀ—ବ. ଶ୍ରେଷ୍ଠ ହାଟ ।

ହଠ୍—ଗ୍ରା. ଅ. ହଟ୍ ଦେଖ ।

ହଠ—ବ. ( ହଠ୍ + ଭା.ଅ ) କୁମ୍ଭିକା, ବୋଲଝାଙ୍କି, ବଳାତ୍କାର, ବଳପ୍ରଦର୍ଶନ, ଲୁଟି, ପଶ୍ଚାତ୍ପଦହେବା, ପଛକୁ ହଟିବା, ପରାଜୟ, ଅବିବେଚନା, ଏକଜିଦ, କଟାଳ, ଅଳି, ଅତ୍ୟାଚାର, ହଠାତ୍ ଦେଖ ।

ହଠକାରିଣୀ-ସ୍ତ୍ରୀ.ବିଂ.ହଠକାରୀର ସ୍ତ୍ରୀଲିଙ୍ଗ ।

ହଠକାରିତା—ସ୍ତ୍ରୀ. ବ. (ହଠକାରିନ୍+ଭା.ତା) ଅବିବେଚନା, ବଳାତ୍କାର, ଅନ୍ୟାୟ କରିବା, ଅଭଦ୍ରତା, ଅତ୍ୟାଚାର, ଲୁଟତରାଜ, ହଠାତ୍ କାର୍ଯ୍ୟକରଣ ।

ହଠକାରୀ—ପୁଂ. ବିଂ. (ହଠ+କୃ+କ. ଇନ୍) ଅବିବେଚକ, ଅଭଦ୍ର, ବଳପ୍ରକାଶକାରୀ, ଅନ୍ୟାୟକାରୀ, ଅତ୍ୟାଚାରୀ, ହଠାତ୍ କାର୍ଯ୍ୟକାରୀ ।

ହଠଧର୍ମୀ—ପୁଂ. ବିଂ. ବିଶ୍ୱାସଘାତକ, ଅଧର୍ମୀ. (ସ୍ତ୍ରୀ) ହଠଧର୍ମିଣୀ ।

ହଠପର୍ଣ୍ଣୀ—ବ. ଶୈବାଳ, ଶିଉଳୀ ।

ହଠଯୋଗ—ବ. ତନ୍ତ୍ରୋକ୍ତ ଯୋଗବିଶେଷ. ପ୍ରାଣାୟାମ ନେତି ଧୌତି ପ୍ରଭୃତି ଶାରୀରିକ କୃଚ୍ଛ୍ର ସାଧନ ରୂପ କୌଶଳବିଶେଷ ।

ହଠସାଧକ—ବ ଓ ବିଂ. ଯେ ହଠଯୋଗ ସାଧନ କରେ ।

ହଠାତ୍—କ୍ରି. ବିଂ. ଅବ୍ୟ. ଦୈବାତ୍, ଅକସ୍ମାତ୍, ସହସା, ଅତର୍କିତ ଭାବରେ ।

ହଠାତ୍କାର—ବ. ହଠକାରିତା ଦେଖ ।

ହଠାତ୍ବାବୁ—ଗ୍ରା. ବ. ଯେ ହଠାତ୍ ଗୁଡ଼ିଏ ଧନ ପାଇ ବା ଅଭିଭାବକଶୂନ୍ୟ ହୋଇ ବାବୁ ବନିଯାଏ ।

ହଠାଳୁ-ବ. କୁମ୍ଭିକା, ବାରିପର୍ଣ୍ଣୀ, ବୋଲଝାଙ୍କି

ହଠୀ—ବ. ବାରିପର୍ଣ୍ଣୀ, ବୋଲଝାଙ୍କି ।

ହଠେ—ଗ୍ରା. କ୍ରି. ବିଂ. ବଳପୂର୍ବକ, ବଳାତ୍କାରକରି ।

ହଡ୍ସନ୍—ପା. ବ. ( ନାମ ) ଉତ୍ତର ଆମେରିକାର ନଗର, ନଦୀ, ଉପସାଗର ଓ ପ୍ରଣାଳୀର ନାମ ।

ହଡ଼କମ୍ପ—ଗ୍ରା. ବ. (ସଂ-ହୃତ୍କମ୍ପ) ଭୟଯୋଗୁଁ ଦେହ ଥରିବା, (ବିଂ) ଭୀତତ୍ରସ୍ତ ।

ହଡ଼କମ୍ପା—ଗ୍ରା. ପୁଂ. ବିଂ. ଯେ ଭୀତତ୍ରସ୍ତ ହୋଇ ଥରେ, ଡରୁଆ ।

ହଡ଼କା—ଗ୍ରା. ବ. ( ସଂ-ହଠ ) ହଠାତ୍ ଆକର୍ଷଣ ବା ଧକ୍କା ।

ହଡ଼ପ—ଗ୍ରା. ବ. ତାମ୍ବୂଳସାମଗ୍ରୀ, ପାନଖିଲର ଉପକରଣ ଥିବା ଡବା, ପାନବଟା, ପାନଡବା ।

ହଡ଼ପନାଏ(ୟ)କ—ଗ୍ରା. ପୁଂ. ବ. ରାଜା ଓ ଦେବତାଙ୍କୁ ପାନ ଖଞ୍ଜି ଦେବା ସେବକ ।

ହଡ଼ପମୁଣା—ଗ୍ରା. ବ. ପାନବଟୁଆ ।

ହଡ଼ପରହି-ଗ୍ରା.ବ.ପାନ ଦେବା ସେବକଙ୍କ ରାଜପ୍ରଦତ୍ତ ଉପାଧି ।

ହଡ଼ବଡ଼—ଗ୍ରା. ବିଂ. ଘାବର, ଭୟରେ ଅସ୍ଥିର, ଭୀତ ଓ ତ୍ରସ୍ତ, କିଂକର୍ତ୍ତବ୍ୟବିମୂଢ଼ ।

ହଡ଼ବଡ଼ହେବା—ଗ୍ରା. କ୍ରି. ଘାବରେଇବା, ଭୟତ୍ରସ୍ତ ହେବା, ଭୟରେ ଅସ୍ଥିରହେବା ।

ହଡ଼ବଡ଼ା—ଗ୍ରା. ପୁଂ. ବିଂ. ସ୍ୱଭାବତଃ ଭୀତ, ଯେ ଭୟରେ କମ୍ପେ ।

ହଡ଼ବଡ଼ି—ଗ୍ରା. ବ. ଗୋଳ, ଧୁମ୍‌ଧାମ୍, କିଂକର୍ତ୍ତବ୍ୟବିମୂଢ଼ତା, ଘାବର ଅବସ୍ଥା ।

ହଡ଼ର୍—ଗ୍ରା. ବ. ହରଡ଼ ।

ହଡ଼ରବଡ଼ର—ଗ୍ରା. ବ. ଉଚ୍ଚୈଃସ୍ୱରରେ ଏଣୁତେଣୁ କଥା କହି ଗୋଳମାଳକରିବା ।

ହଡ଼ବଡ଼େଇବା—ଗ୍ରା. କ୍ରି. ତ୍ରସ୍ତହେବା, ଭୟରେ ଅସ୍ଥିର ହେବା, କିଂକର୍ତ୍ତବ୍ୟବିମୂଢ଼ ହେବା ।

ହଡ଼ହଡ଼ା(ଡ଼େ)ଇବା—ଗ୍ରା. କ୍ରି. ହଡ଼ବଡ଼େଇବା ଦେଖ ।

ହଡ଼ହଡ଼ଘାଟ-କଟକସହର କାଠଯୋଡ଼ୀ ନଦୀର ଗୋଟିଏ ସ୍ନାନଘାଟ (ଏଠାରେ ହର ଓ ହରଙ୍କମୂର୍ତ୍ତି ଅଛନ୍ତି) ।

ହଡ଼ା—ଗ୍ରା. ବ. ବୁଢ଼ାବଳଦ, ବଳଦ, ହାଡ଼ରୁ ବାହାରିଥିବା ଏକପ୍ରକାର ବଥ, (ବିଂ) ବୁଢ଼ା, ଅସ୍ଥିକଙ୍କାଳଯୁକ୍ତ, ଶୀର୍ଣ୍ଣକାୟ, ଯାହା ଦେହରେ କେବଳ ହାଡ଼ ଚମ ଥାଏ, ହାଡ଼ୁଆ ।

ହଡ଼ାଖିଆ—ଗ୍ରା. ବିଂ. ଗୋମାଂସଭୋଜୀ, (ବ) ଶ୍ୱପଚ, ଚଣ୍ଡାଳ, ହାଡ଼ିଜାତ, (ସ୍ତ୍ରୀ) ହଡ଼ାଖାଇ ।

ହଡ଼ାଗାଣ୍ଡି—ଗ୍ରା. ବ. ଭୂଇଁରେ ଛକ କଟାଯାଇ ଗୋଡ଼ି ଓ ଖପରାରେ ଖେଳାଯିବା ଏକପ୍ରକାର ଖେଳ ।

ହଡ଼ାବଳଦ—ଗ୍ରା. ବ. ବୃଦ୍ଧ ଓ ହାଡ଼ ବାହାରି ପଡ଼ିଥିବା ବଳଦ ।

ହଡ଼ାବୁଢ଼ା—ଗ୍ରା. ବିଂ. ବୃଦ୍ଧ ଓ ଅସ୍ଥିମୟ ଶରୀରଯୁକ୍ତ ।

ହଡ଼ାବେଦନା—ଗ୍ରା. ବ. ହଡ଼ାବଳଦର ବାର୍ଦ୍ଧକ୍ୟଜନିତ କଷ୍ଟ ।

ହଡ଼ାବେପାର—ଗ୍ରା. ବ. (ମନ୍ଦାର୍ଥ) ଗାଈ ବଳଦ କିଣି କଂସାଇଠାରେ ବିକିବା ବ୍ୟବସାୟ, ( ଲ.ଅର୍ଥ ) ଅତି ଜଘନ୍ୟ

ବା ନିକୃଷ୍ଟ ବ୍ୟବସାୟ ।

ହଡ଼ାବେପାଶ୍ରି—ଗ୍ରା.ପୁଂ.ବିଂ.ଯେ ବଳଦ କିଣି କଂସାଇଠାରେ ବିକେ,(ଲ.ଅର୍ଥ) ଅତି କୃପଣ(ବ୍ୟକ୍ତି),ଲାଭର ସମ୍ଭାବନା ନ ଥିଲେ ଯେ ପଇସାଏ ଖରଚ କରେ ନାହିଁ ।

ହଡ଼ାଲି—ପ୍ରା. (ସମ୍ବ) ବିଂ. ହାଡ଼ୁଆ ।

ହଡ଼ାଳିଆ—ଗ୍ରା. ବିଂ. ଯେଉଁ ବଳଦ ବଡ଼େ,ବୁଢ଼ା ନୁହେଁ,ମଧ୍ୟବୟସ୍କ(ବଳଦ) ।

ହଡ଼ହଡ଼—ଗ୍ରା. ବି. ଏକାଧିକ ବଳଦ, (ବୁଢ଼ା ଓ ଦାମୁଡ଼ି) ।

ହଡ଼ି—ଗ୍ରା. ବି. ହାଡ଼,ପ୍ରତିବନ୍ଧକ,ବାଧା, ହରକ ଠ, (ସଂ-ବି, ହଡ଼୍+ଅଧି.ଇ) ହରକାଠ, ହାଡ଼,(ପ୍ରା. ସମ୍ବ) କୁକୁର ।

ହା ! ଡ଼ା ! ଡ଼ !—ଗ୍ରା.ଅ. ଯୋତ୍ର ବଳଦଙ୍କୁ ଚଳାଇବା ବୁଲାଇବା ଓ ଠିଆକରିବାରେ ବ୍ୟବହୃତ ଶବ୍ଦ ।

ହଡ଼ିକ—ପୁଂ. ବି. ହାଡ଼ି, ମଇଳା ସଫା କରିବା ଅସ୍ପୃଶ୍ୟ ଜାତିବିଶେଷ,ଝାଡ଼ୁଦାର୍

ହଡ଼ିକାଠ—ଗ୍ରା. ବି. ପଶୁବଳି ଦେବାର ଯୂପକାଠ, ହରକାଠ ।

ହଡ଼ି—ବି. (ହଡ଼୍+କ.ତ) ଅସ୍ଥି, ହାଡ଼ ।

ହଡ଼ିକ—ପୁଂ. ବି. ହାଡ଼ିଜାତି, ( ସ୍ତ୍ରୀ ) ହଡ଼ିକା ।

ହଡ଼ିଜ—ବି. (ହଡ଼ି+ଜନ୍+କ.ଅ) ହାଡ଼-ମଧ୍ୟସ୍ଥ କୋମଳ ପଦାର୍ଥ, ମଜ୍ଜା ।

ହଡ଼ି—ଗ୍ରା. ବି. ହଡ଼ି ଦେଖ, (ସଂ-ବି) ହାଡ଼ି, ମଇଳା ସଫା କରିବା ଜାତି ।

ହଡ଼ିକ(ପ)—ବି. ହାଡ଼ି, ଚଣ୍ଡାଳଜାତି ।

ହଣା—ଗ୍ରା.ବି. (ସଂ-ହନ୍‌ଧାତୁ) ହାଣିବା-କ୍ରିୟା,ଖଡ୍ଗାଦିଦ୍ୱାରା ଛେଦନ,(ଗ୍ରା.ବିଂ) ଯେ ହାଣିଲା ପରି କର୍କଶ ବଚନ କହେ, ହାଣୁଆ, କର୍ତ୍ତିତ, ଶସ୍ତ୍ରଦ୍ୱାରା ଛେଦିତ, କଟା ହୋଇଥିବା,ଅସ୍ତ୍ରାଘାତରେ ଛିନ୍ନ ।

ହଣ(ଣେ)ଇବା—ଗ୍ରା. କ୍ରି. (ହାଣିବା କ୍ରିୟାର ଣିଜନ୍ତ ରୂପ) ଅନ୍ୟ ଦ୍ୱାରା ହାଣିବାକ୍ରିୟା କରାଇବା ।

ହଣାକଟା—ଗ୍ରା. ବି. ହାଣକାଟ,ଶସ୍ତ୍ରଦ୍ୱାରା ହାଣିବା ଓ କାଟିବା ।

ହଣାଖାଇବା—ଗ୍ରା. କ୍ରି. ହାଣଖାଇବା, ଅନ୍ୟଦ୍ୱାରା ଅସ୍ତ୍ରରେ ହତହେବା ।

ହଣାଘା(ଘାଆ)—ଗ୍ରା. ବି. ଅସ୍ତ୍ରାଘାତରେ ଜନ୍ମିବା କ୍ଷତ ।

ହଣାମରା—ଗ୍ରା.ବି. (ସହଚର)ହାଣମାର. ହାଣିବା ଓ ଆଘାତ କରିବା, ପଡ଼ିଆ-ଜମିକୁ ଖୋଳାକୋଞ୍ଚା କରି ସମତୁଲ କରିବା,ପଡିତଜମିକୁ ଆବାଦକରିବା ।

ହଣାହଣି—ଗ୍ରା. ବି. ପରସ୍ପର ହାଣିବା ।

ହଣ୍ଡର(ରା)—ଗ୍ରା. ବି. ବାଘ, ସିଂହ ଓ ଷଣ୍ଢର ଗର୍ଜ୍ଜନ ଶବ୍ଦ ।

ହଣ୍ଡା(ଣ୍ଡେ)ଇବା—ଗ୍ରା. କ୍ରି. ଅଣ୍ଡାଇବା, ବୁଲାଇବା, ଚଳାଇବା ।

ହଣ୍ଡାଳ(ଳି)ବା—ଗ୍ରା.କ୍ରି.ଗର୍ଜନକରିବା ।

ହଣ୍ଟପା—ଗ୍ରା. ବି. ଆଧୁନିକ ଗଡ଼ଜାତ ଆଠମଲ୍ଲିକର ପ୍ରାଚୀନ ନାମ ।

ହଣ୍ଡଲ୍—ଯା. ବି. ନିବ୍ ଲଗାଇ ଲେଖିବା କଲମ ।

ହଣ୍ଡଲ୍—ପ୍ରା. (ସମ୍ବ) ବି. ପିତ୍ତଳର ବଡ଼ ହାଣ୍ଡି, ହଣ୍ଡା ।

ହଣ୍ଡା—ଅ. (ନାଟ୍ୟୋକ୍ତିରେ ଦାସୀପ୍ରତି ସମ୍ବୋଧନ) ହଇଲେ, ଆଲୋ, ( ବି ) (ହଣ୍ଡ୍+ଅ+ଆ) ବଡ଼ ମାଟିହାଣ୍ଡି,(ଗ୍ରା. ବି) ଧାତୁ ନିର୍ମିତ ବଡ଼ ହାଣ୍ଡି,ମହମବତୀ ଜାଳିବା ପାଇଁ କାଚର ହାଣ୍ଡି,(ଲ.ଅର୍ଥ ପେଟ,(ପ୍ରା.ଗଞ୍ଜାମ—ଲ.ଅର୍ଥ) ଗୁଣ୍ଡିଆ, ଧୈର୍ଯ୍ୟ ।

ହଣ୍ଡା ଗରମ—ଗ୍ରା.ବି. ଊର୍ଦ୍ଧ୍ୱଶ୍ଳେଷ୍ମ ଓ ଉଦର ଗରମ ହେବା ଅବସ୍ଥା, କ୍ଷୁଧା-ତୁର ଅବସ୍ଥା ।

ହଣ୍ଡାଫାଟିଯିବା—ପ୍ରା. (ଗଞ୍ଜାମ)କ୍ରି. ପେଟ ଫାଟିଯିବା ।

ହଣ୍ଡିକା—ବି. ହାଣ୍ଡି, ପାକାର୍ଥ ବ୍ୟବହୃତ ଅନାବୃତମୁଖ ଗୋଲକାର ମୃତ୍ପାତ୍ର

ହଣ୍ଡିକାସୁତ—ବି. ଶ୍ରେଷ୍ଠହାଣ୍ଡି, କୃଶନ ।

ହଣ୍ଡୀ—ବି. ( ହଣ୍ଡ+କ.ଅ+ଈ) ବଡ଼ ହାଣ୍ଡି ।

ହଣ୍ଡୁଆ—ଗ୍ରା. ବି. ବାଉଁଶର ଶୃଙ୍ଖଳ କରଡ଼ ବା କରଡ଼ି ।

ହଣ୍ଡେ—ଅ. (ନାଟ୍ୟୋକ୍ତିରେ ଦାସୀ ବା ନୀଚସ୍ତ୍ରୀ ପ୍ରତି ସମ୍ବୋଧନ) ହଇଲୋ, ଆଲୋ, । [ ଧାତୁ ।

ହତ୍—ଗ୍ରା. ଅ. ( ନିଷେଧାର୍ଥକ ) ହାତ୍,

ହତ୍ଲାମାରିବା—ପ୍ରା. (ବଲାଙ୍ଗିର ପାଟଣା) କ୍ରି. ବେଶି ଘେନି ଯିବା ।

ହତ୍ଲିବା—ପ୍ରା. (ଖଡ଼ିଆଳ) କ୍ରି. ସମ୍ମୁ-ଖାଯୁରୁ ଖଣ୍ଡେ ଟାଣି ଆଣିବା ।

ହତ୍ଶା—ଗ୍ରା. ବି. ଟେବୁଲ୍ ଆଦିର ଡ୍ରୟ-ରକୁ ହାତଦ୍ୱାରା ଟାଣିବା ଓ ବାକ୍ସକୁ ହାତରେ ଉଠାଇବାପାଇଁ ଲାଗିଥିବା କଡ଼ା ।

ହତ—ବିଂ ( ହନ୍+ମି.ତ ) ବଧପ୍ରାପ୍ତ, ନାଶିତ, ନଷ୍ଟ, ନିରାଶ, ନିର୍ବାପିତ, ମୃତ, ଗୁଣିତ, ମନ୍ଦ, କୁତ୍ସିତ, ଭଗ୍ନ, ବ୍ୟାହତ, ବିଫଳୀକୃତ, ତୁଚ୍ଛ, ହେୟ, ଦଗ୍ଧ, ବିଗତ,ଅନ୍ତର୍ହିତ, (ବି-ଭା.ତ)ନୈରାଶ୍ୟ, ହନନ, ଗୁଣନ, (ଗ୍ରା.ବି)ମୃତ୍ୟୁ, ମରଣ ।

ହତକ—ପୁଂ.ବିଂ. (ହତ+କ) ନଷ୍ଟପ୍ରାୟ, ଭୀରୁ, କାପୁରୁଷ,ନୀଚ, ହତଭାଗ୍ୟ,ମୃତ, ଦୁର୍ଦ୍ଦଶାଗ୍ରସ୍ତ, (ବି)ନୀଚଲୋକ,ଭୀରୁବ୍ୟକ୍ତି, (ପ୍ରା. ଖଡ଼ିଆଳ) ଅପମାନ ।

ହତକଣ୍ଟକ—ପୁଂ. ବିଂ. ଯାହାର ଶତ୍ରୁ ବା କଣ୍ଟକ ବା ବାଧାନଷ୍ଟ ହୋଇଅଛି ।

ହତକର—ଗ୍ରା. ପୁଂ. ବିଂ. ଘାତକ ।

ହତକରିବା—ଗ୍ରା. କ୍ରି. ମାରିପକାଇବା, ପରାଜିତ କରିବା, ଲୁପ୍ତକରିବା, ବୁଡ଼ା-ଇବା, ହଜାଇବା ।

ହତକର୍ମା—ପୁଂ. ବିଂ. (ବ ବ୍ରୀ)ମନ୍ଦକର୍ମା, ହତଭାଗା ।

ହତକଲ୍ମଷ—ପୁଂ.ବିଂ.(ବ.ବ୍ରୀ)ପାପମୁକ୍ତ ।

ହତଚିତ୍ତ—ବିଂ. ଭଗ୍ନମନାଃ,ନିରାଶ,ହତ-ବୁଦ୍ଧି, କ୍ଷୁଣ୍ଣଅନ୍ତଃକରଣ, କିଂ କର୍ତ୍ତବ୍ୟ-ବିମୂଢ଼ ।

ହତଚେତ—ଗ୍ରା.ବି.ହତଚେତନ ଦେଖ ।

ହତଚେତନ—ପୁଂ. ବିଂ. (ବ.ବ୍ରୀ)ଲୁପ୍ତ-ସଂଜ୍ଞ, ଚେତନାଶୂନ୍ୟ, ମୂର୍ଚ୍ଛିତ ।

ହତଚେତା—ପୁଂ. ବିଂ. ଲୁପ୍ତସଂଜ୍ଞ, କିଂ କର୍ତ୍ତବ୍ୟବିମୂଢ଼, ମୁଗ୍ଧ ।

ହତଚୂର୍ଣ୍ଣକ—ବି. ସୋମଲତା ।

ହତଚ୍ଛାୟ—ପୁଂ.ବିଂ.(ବ.ବ୍ରୀ)ସୌନ୍ଦର୍ଯ୍ୟ-ବର୍ଜିତ,ଯାହାର କାନ୍ତି କମିଯାଇଅଛି, (ସ୍ତ୍ରୀ) ହତଚ୍ଛାୟା ।

ହତଜଲ୍ପିତ-ବି.(କ.ଧା)ଅନାବଶ୍ୟକ ଗଳ୍ପ ।

ହତଜୀବନ(ଜୀବିତ)—ପୁଂ. ବିଂ. (ବ.ବ୍ରୀ) ଗତାୟୁ, ମୃତ, ମାରିତ, ନୈରାଶ୍ୟଜର୍ଜରିତ, (ବି-କ.ଧା) ଜୀବନକୁ ଆଶା ଛାଡ଼, ଦୁର୍ଦଶାଗ୍ରସ୍ତ ଜୀବନ ।

ହତଜ୍ଞାନ—ପୁଂ.ବିଂ. ହତଚେତନ ଦେଖ, ହତବୁଦ୍ଧି, ନିର୍ବୋଧ, (ଗ୍ରା.ବି) ଅବଜ୍ଞା, ଅନାଦର ।

ହତଜ୍ୟୋତିଃ—ବିଂ. ( ବ.ବ୍ରୀ ) ଯାହାର ଆଭା ବା କାନ୍ତି ଲୁପ୍ତ ହୋଇଅଛି ।

ହତଜ୍ୟୋତିର୍ନିଶୀଥ—ବି.ଚନ୍ଦ୍ର ଓ ନକ୍ଷତ୍ର-ବିହୀନ ରାତ୍ର, ଅନ୍ଧକାରମୟ ରଜନୀ ।

ହତତ୍ୱିଷ୍(ଟ୍)—ପୁଂ ଓ ସ୍ତ୍ରୀ. (ହତ+ତ୍ୱିଷ୍) ବ.ବ୍ରୀ; କାନ୍ତି ବା ଶୋଭାବିହୀନ ।

ହତତାପ—ପୁଂ.ବିଂ. (ବ.ବ୍ରୀ)ତାପମୁକ୍ତ ଶୀତଳୀକୃତ ।

ହତତ୍ରପ—ପୁଂ. ବିଂ. ( ବ.ବ୍ରୀ ) ଲଜ୍ଜା ଶୂନ୍ୟ, ନିର୍ଲଜ୍ଜ ।

ହତଦୈବ—ପୁଂ.ବିଂ.(ବ.ବ୍ରୀ)ହତଭାଗ୍ୟ, ଅଭାଗା, ଭାଗ୍ୟହୀନ ।

ହତଦ୍ୱିଷ୍—ପୁଂ ଓ ସ୍ତ୍ରୀ. ବିଂ. ( ବ.ବ୍ରୀ ) ଯେ ଶତ୍ରୁକୁ ନଷ୍ଟ କରିଅଛି ।

ହତଧୀ—ପୁଂ ଓ ସ୍ତ୍ରୀ. ବିଂ. (ବ.ବ୍ରୀ) ହତଚିତ୍ତ ଦେଖ, ଅଜ୍ଞାନ ।

ହତଧ୍ୱାନ୍ତ—ବିଂ.(ବ.ବ୍ରୀ) ଅନ୍ଧକାରମୁକ୍ତ, (ସ୍ତ୍ରୀ) ହତଧ୍ୱାନ୍ତା ।

ହତପତି(ପତିକା)—ସ୍ତ୍ରୀ. ବିଂ. ( ବ.ବ୍ରୀ ) ଯେଉଁ ସ୍ତ୍ରୀର ସ୍ୱାମୀ ମରିଅଛି ।

ହତପାଠ—ଗ୍ରା. ବି. ହତବାକ୍ୟ, (ମାଦଳା ପାଞ୍ଜି) ବିଂ; ହତବାକ୍ୟ ।

ହତପିତୃ(ପିତୃକ)—ପୁଂ. ବିଂ. ( ବ.ବ୍ରୀ ) ଯାହାର ପିତା ହତ ବା ମରିଅଛି, (ସ୍ତ୍ରୀ) ହତପିତୃକା ।

ହତପୁତ୍ର—ପୁଂ. ବିଂ. (ବ.ବ୍ରୀ) ଯାହାର ପୁଅ ହତ ବା ମରିଅଛି,(ସ୍ତ୍ରୀ)ହତପୁତ୍ରା ।

ହତପ୍ରଭ—ପୁଂ. ବିଂ. (ବ.ବ୍ରୀ) ପ୍ରଭାହୀନ, କାନ୍ତିରହିତ, (ସ୍ତ୍ରୀ) ହତପ୍ରଭା ।

ହତପ୍ରଭାବ—ପୁଂ. ବିଂ. (ବ.ବ୍ରୀ) ଯାହାର ପ୍ରଭାବ ଲୁପ୍ତ ହୋଇଅଛି ।

ହତପ୍ରାୟ—ବିଂ. ନଷ୍ଟପ୍ରାୟ, ମୃତପ୍ରାୟ, ମୁମୂର୍ଷୁ ।

ହତଭାଗ—ପୁଂ.ବିଂ. (ବ.ବ୍ରୀ) ହତଭାଗ୍ୟ, ଅଭାଗା, (ସ୍ତ୍ରୀ) ହତଭାଗା ।

ହତଭାଗା(ଭାଗୀ)—ଗ୍ରା. ପୁଂ. ବିଂ. ହତଭାଗ୍ୟ, ଅଭାଗା, ହୀନକପାଳିଆ ।

ହତଭାଗ୍ୟ—ପୁଂ.ବିଂ. (ବ.ବ୍ରୀ)ଭାଗ୍ୟହୀନ, ମନ୍ଦଭାଗ୍ୟ, ଅଭାଗା, (ବି) ମନ୍ଦଭାଗ୍ୟ ।

ହତମାନ—ପୁଂ. ବିଂ. (ବ.ବ୍ରୀ) ଯାହାର ସମ୍ମାନ ନଷ୍ଟ ହୋଇଅଛି, ଅବମାନିତ, ଗର୍ବହୀନ, ଗର୍ବଶୂନ୍ୟ ।

ହତମାନସ—ପୁଂ.ବିଂ.(ବ.ବ୍ରୀ) ହତଚିତ୍ତ [ ଦେଖ ।

ହତମାନ୍ୟ—ଗ୍ରା. ପୁଂ ଓ ସ୍ତ୍ରୀ. ବିଂ. ଅବମାନିତ, ଅପମାନପ୍ରାପ୍ତ ।

ହତମୂର୍ଖ—ବିଂ. ଅତିମୂର୍ଖ,ଗଜମୂର୍ଖ, (ବି) ଗଜମୂର୍ଖ ବ୍ୟକ୍ତି, ( ସ୍ତ୍ରୀ ) ହତମୂର୍ଖା ।

ହତମୃମ୍ପ(ନ୍ପ,ସ୍ପ)—ଗ୍ରା. ବିଂ. ହତବୁଦ୍ଧି, କିଂ କର୍ତ୍ତବ୍ୟବିମୂଢ଼ ।

ହତଯୁଦ୍ଧ—ପୁଂ. ବିଂ. (ବ.ବ୍ରୀ) ଯୁଦ୍ଧକରିବାରେ ପ୍ରବୃତ୍ତିରହିତ ।

ହତରଥ—ବି. (କ.ଧା) ଯେଉଁ ରଥର ସାରଥି ଓ ଅଶ୍ୱାଦି ହତ ହୋଇଅଛନ୍ତି ।

ହତଲକ୍ଷଣ—ପୁଂ.ବିଂ. (ବ.ବ୍ରୀ) ସୁଲକ୍ଷଣ ବିବର୍ଜିତ, ହତଭାଗ୍ୟ, ଅଲକ୍ଷଣ, (ସ୍ତ୍ରୀ) ହତଲକ୍ଷଣା ।

ହତଲକ୍ଷ୍ମା(ଲକ୍ଷ୍ମିଆ)—ଗ୍ରା. ପୁଂ. ବିଂ. (ସଂ-ହତଲକ୍ଷ୍ମୀକ) ନଷ୍ଟଶ୍ରୀ, ହତଶ୍ରୀ, ଅତି ଅସୁନ୍ଦର, ଲକ୍ଷ୍ମୀହୀନ, ଅତି ଗରିବ ।

ହତଲକ୍ଷ୍ମୀକ—ପୁଂ. ବିଂ. (ହତ+ଲକ୍ଷ୍ମୀ+କ) ହତଶ୍ରୀ, ଶୋଭାହୀନ,ଅତି ଅସୁନ୍ଦର; ଲକ୍ଷ୍ମୀହୀନ,ଅତି ଗରିବ, ଯେ ଲକ୍ଷ୍ମୀବନ୍ତ ଥିଲା ବର୍ତ୍ତମାନ ଲକ୍ଷ୍ମୀହୀନ ହୋଇଅଛି ।

ହତବଳ—ପୁଂ. ବିଂ. (ବ.ବ୍ରୀ) ଯାହାର ଶକ୍ତି ନଷ୍ଟ ହୋଇଅଛି, ସୈନ୍ୟକ୍ଷୟ ଘଟିଥିବା,ଦୁର୍ବଳ,(ବି-କ.ଧା)ନଷ୍ଟଶକ୍ତି ।

ହତବିକ୍ରମ—ପୁଂ. ବିଂ. (ବ.ବ୍ରୀ)ପରାକ୍ରମ ରହିତ, ଦୁର୍ବଳ, ଲୁପ୍ତବଳ ।

ହତବିଧି—ପୁଂ ଓ ସ୍ତ୍ରୀ. ବିଂ. ( ବ.ବ୍ରୀ ) ଦୁର୍ଭାଗ୍ୟ, ଭାଗ୍ୟହୀନ ।

ହତବର୍ଚ୍ଚାଃ—ପୁଂ.ବିଂ. (ବ.ବ୍ରୀ)ତେଜୋହୀନ,ଯାହାର ତେଜ ନଷ୍ଟ ହୋଇଅଛି ।

ହତବୀର୍ଯ୍ୟ—ପୁଂ.ବିଂ. (ବ.ବ୍ରୀ)ହତଶକ୍ତି, ଶକ୍ତିହୀନ, (ସ୍ତ୍ରୀ) ହତବୀର୍ଯ୍ୟା ।

ହତବୁଦ୍ଧି—ପୁଂ.ବିଂ. କିଂ କର୍ତ୍ତବ୍ୟ ବିମୂଢ଼, ନିର୍ବୋଧ, ମୂର୍ଖ, ଜ୍ଞାନ ହରାଇଥିବା ।

ହତବୃତ୍ତ—ବିଂ. ( ବ.ବ୍ରୀ ) ଛନ୍ଦୋହୀନ, (ବି) କାବ୍ୟର ଦୋଷବିଶେଷ ।

ହତବେଗ—ପୁଂ. ବିଂ. ଯାହାର ବେଗ ପ୍ରତିହତ ହୋଇଅଛି ।

ହତଶକ୍ତି—ପୁଂ ଓ ସ୍ତ୍ରୀ. ବିଂ. ( ବ.ବ୍ରୀ ) ଯାହାର ଶକ୍ତି ବା କ୍ଷମତା ନଷ୍ଟ ହୋଇଅଛି ।

ହତଶିରୀ(ଶିରିଆ)—ଗ୍ରା. ପୁଂ. ବିଂ. ହତଶ୍ରୀ ଦେଖ, ଲକ୍ଷ୍ମୀହୀନ, ଅତି ଅସୁନ୍ଦର,(ବି) ଲକ୍ଷ୍ମୀହୀନତା, ଦାରିଦ୍ର୍ୟ,ଶୋଭାହୀନତା ।

ହତଶିଷ୍ଟ—ପୁଂ.ବିଂ.(ହତ+ଶିଷ୍ଟ)ଷତତ୍ପୁ; ହତବ୍ୟକ୍ତିଙ୍କ ମଧ୍ୟରୁ ଜୀଅନ୍ତା ରହିଥିବା ।

ହତଶିଷ୍ଟଜନ—ପୁଂ ଓ ସ୍ତ୍ରୀ. ବି. ଆହତମାନଙ୍କ ମଧ୍ୟରୁ ଜୀଅନ୍ତା ରହିଥିବା ବ୍ୟକ୍ତି ।

ହତଶେଷ—ପୁଂ. ବିଂ. (ଷତତ୍ପୁ)ହତଶିଷ୍ଟ ଦେଖ ।

ହତଶ୍ୱାସ—ପୁଂ. ବିଂ. (ବ.ବ୍ରୀ) ବେଦମ୍, ରୁଦ୍ଧଶ୍ୱାସ,ଯାହାର ଶ୍ୱାସ ରୁଦ୍ଧ ହୋଇଅଛି ।

ହତଶ୍ରଦ୍ଧ—ପୁଂ. ବିଂ. (ବ.ବ୍ରୀ) ଯାହାର ଶ୍ରଦ୍ଧା ଛାଡ଼ିଯାଇଅଛି, (ସ୍ତ୍ରୀ) ହତଶ୍ରଦ୍ଧା ।

ହତଶ୍ରଦ୍ଧା—ବି.(କ.ଧା)ଅନାଦର,ଅବଜ୍ଞା, ଅସମ୍ମାନ ।

ହତଶ୍ରୀ—ପୁଂ ଓ ସ୍ତ୍ରୀ. ବିଂ. (ବ.ବ୍ରୀ)ହତଲକ୍ଷ୍ମୀକ ଦେଖ ।

ହତଶ୍ରୀକ—ପୁଂ. ବିଂ. (ହତ+ଶ୍ରୀ+କ) ହତଶ୍ରୀ ଦେଖ ।

ହତସଂଜ୍ଞ—ପୁଂ. ବିଂ. ( ବ.ବ୍ରୀ ) ହତଚେତନ ଦେଖ, (ସ୍ତ୍ରୀ) ହତସଂଜ୍ଞା ।

ହତଫସଦ-ସ୍ତ୍ରୀ.ବି°.ହତଲକ୍ଷ୍ମୀକ ଦେଖ ।
ହତସମ୍ପଦ—ପୁଂ. ବି°. (ବ.ବ୍ରୀ) ଯାହାର ଆନନ୍ଦ ଧ୍ୱସ୍ତ ହୋଇଅଛି ।
ହତସର୍ବଯୋଧ—ପୁଂ. ବି°. ଯାହାଙ୍କର ସବୁ ଯୋଦ୍ଧାମାନେ ହତ ହୋଇଅଛନ୍ତି ।
ହତସର୍ବସ୍ୱ—ପୁଂ. ବି°. (ବ.ବ୍ରୀ) ଯାହାର ସର୍ବସ୍ୱ ନଷ୍ଟ ହୋଇଅଛି, (ସ୍ତ୍ରୀ) ହତ-ସର୍ବସ୍ୱା ।
ହତସାଧ୍ୱସ—ପୁଂ.ବି°. (ବ.ବ୍ରୀ)ଭୟମୁକ୍ତ, ନିର୍ଭୀକ, (ସ୍ତ୍ରୀ) ହତସାଧ୍ୱସା ।
ହତସାରଥି(ସୂତ)—ଯେଉଁ ଯୋଦ୍ଧାଙ୍କର ସାରଥି ଯୁଦ୍ଧରେ ହତ ହୋଇଅଛି ।
ହତସ୍ତ୍ରୀକ—ପୁଂ. ବି°. ନାରୀଘାତକ, ସ୍ତ୍ରୀହତ୍ୟାକାରୀ ।
ହତସ୍ୱ—ସ୍ତ୍ରୀ.ପୁଂ.ବି°.ହତସର୍ବସ୍ୱ ଦେଖ ।
ହତସ୍ୱର—ପୁଂ. ବି°. ( ବ.ବ୍ରୀ ) ଯାହାର ଗଳା ପଡ଼ିଯାଇଅଛି ।
ହତସ୍ୱସୃ—ବି°. (ହତ+ସ୍ୱସୃ) ଯାହାର ଭଉଣୀ (ଭଗିନୀ) ମରିଯାଇଅଛି ।
ହତସ୍ୱାମିକ—ପୁଂ. ବି°. (ବ.ବ୍ରୀ) ଯାହାର ପ୍ରଭୁ ହତ ହୋଇଅଛି, (ସ୍ତ୍ରୀ)ସ୍ୱାମିକା ।
ହତସ୍ୱାମିକା—ସ୍ତ୍ରୀ. ବି°. (ବ.ବ୍ରୀ) ଯାହାର କର୍ତ୍ତା ହତ ହୋଇଅଛି, ବିଧବା ।
ହତସ୍ମର—ବି. ( ହତ+ସ୍ମର ) ବ.ବ୍ରୀ; ମହାଦେବ, ସ୍ମରହର, ଶିବ ।
ହତହୃଦୟ—ବି. (କ.ଧା) ନୈରାଶ୍ୟପୂର୍ଣ୍ଣ ମନ, (ବି°) ନୈରାଶ୍ୟପୂର୍ଣ୍ଣ, ନିରାଶ, (ସ୍ତ୍ରୀ) ହତ ହୃଦୟା ।
ହତା—ଗ୍ରା. ବି. (ସଂ. ହସ୍ତକ) କରଚୁଲି, ଚଟୁ, ଅସ୍ତ୍ରଶସ୍ତ୍ରର ମୁଠା, ଆବୁଇଭୁଖଣ୍ଡ, ଧନୁର ଦୁଇକୋଟି, ଧନୁର ମଧ୍ୟସ୍ଥଳରୁ ଦୁଇଦିଗକୁ ବାହାରିଥିବା ବକ୍ର ଅଂଶ, କରତଳ ବା ପାପୁଲିରେ ଏକଥରକେ ଯେତେ ପଦାର୍ଥ ଧରେ, ଚଟୁଆଦିର ବେଣ୍ଟ, ଗୃହପାଖ ବେଢ଼ା, କୌଣସି ବ୍ୟକ୍ତିର ଆବାଦ ଜମି, ଘରବାଡ଼ି, ବାସ୍ତୁ, ରାଜକୀୟ ପ୍ରଦେଶ ବା ଶାସନ-ବିଭାଗର ସୀମା, କୌଣସି ପ୍ରଦେଶ, ଏକସ୍ଥାନରୁ ଅନ୍ୟସ୍ଥାନକୁ ପାଣି ଯିବାର ବା ପାଣି ନେବାର ନାଳ, ସଂ. ବି° (ହତ+ଆ) ହତର ସ୍ତ୍ରୀଲିଙ୍ଗ, ବ୍ୟଭି-ଚାରିଣୀ, (ଗ୍ରା-ବି°) ଏକ କରତଳ ବା ବା ଆଙ୍ଗୁଳ ପରିମିତ, ହସ୍ତବିଶିଷ୍ଟ, (ଯଥା—ବିଷହତା,) ଏତେହାତ ଲମ୍ବ ବିଶିଷ୍ଟ (ଯଥା—ପଞ୍ଚ ହତା) ।
ହତାଦର—ବି°. ( ହତ+ଆଦର ) ବ.ବ୍ରୀ. ଅପମାନିତ, ଉପେକ୍ଷିତ, ଅନାଦୃତ,(ବି.କ.ଧା)ଆଦରର ଅଭାବ, ଅନାଦର, ବେଖାତିର, ଅପମାନ, ଗ୍ରା. ବି. ଅଯତ୍ନ ।
ହତାବ୍ୟଂଶସ—ବି° ପକ୍ଷି ବିଶେଷ ।
ହତାଧିମନ୍ଥ—ବି. ସର୍ବଗତ ଅକ୍ଷିରୋଗ-ବିଶେଷ, ଯେଉଁ ରୋଗରେ ଚକ୍ଷୁ ଉତ୍ପାଟିତ ଓ ମଥିତ ହେଲାପରି ବୋଧ-ହୁଏ ଏବଂ ଅଧକପାଳି ମୁଣ୍ଡବ୍ୟଥା ହୁଏ ।
ହତାଧ୍ୱର—ବି. (ହତ + ଅଧ୍ୱର) ମହା-ଦେବ, ଶିବ ( ଏ ଦକ୍ଷଯଜ୍ଞ ବିନାଶ କରିଥିଲେ ) ।
ହତାପାର (ଶ)—ଗ୍ରା. ବି. ଗୃହସୀମାରୁ ବାହାରିଯିବା, ହତାବାହାର ।
ହତାବାହାର—ଗ୍ରା. ବି. ଗୃହର ଚତୁଃ-ସୀମାରୁ ବହିଷ୍କରଣ, (ବି°) ଗୃହର ଚତୁଃସୀମାରୁ ବହିର୍ଭୁତ ।
ହତାଭ—ପୁଂ. ବି°. ( ହତ+ଆଭା ) ବ.ବ୍ରୀ. ହତପ୍ରଭ, କାନ୍ତିହୀନ ।
ହତାର—ପ୍ରା. (ହିନ୍ଦି) ବି.ଅଥାର ଦେଖ ।
ହତାଲ-ପ୍ରା.(ଖଡ଼ିଆଲ)ବି°.ଏକହାତରେ ଯେତେ ପରିମାଣରେ ଧରିହୁଏ ।
ହତାଶ—ପୁଂ. ବି°. ( ହତ+ଆଶା ) ବ. ବ୍ରୀ. ନିରାଶ, ଯାହାର ଆଶା ବିଫଳ ହୋଇଅଛି, ନିଷ୍ଫଳ, ବନ୍ଧ୍ୟ, ଅବସନ୍ନ, ପିଶୁନ, ନିଷ୍ଠୁର, ନିର୍ଲଜ୍ଜ, ଦୁଷ୍ଟ, ଦୁର୍ବଳ, ।
ହତାଶା—ସ୍ତ୍ରୀ. ବି°. ( ବ. ବ୍ରୀ ) ଆଶା-ଶୂନ୍ୟା, ( ବି. କ. ଧା ) ଆଶାହାନି, ନୈରାଶ୍ୟ ।
ହତାଶିଆ—ଗ୍ରା.ପୁଂ ଓ ସ୍ତ୍ରୀ. ବି°. ହତାଶ, ଯାହାର ଆଶା ବିଫଳ ହୋଇଅଛି ।
ହତାଶିବା—ପ୍ରା. (ଖଡ଼ିଆଲ) କ୍ରି. ନିରାଶ କରିବା, ହତାଶ କରିବା ।
ହତାଶ୍ୱ—ବି°. ପୁଂ. (ବ.ବ୍ରୀ.) ଯେଉଁ ରଥୀଙ୍କର ବା ଅଶ୍ୱାରୋହୀଙ୍କର ଅଶ୍ୱ ହତ ହୋଇଅଛି ।
ହତାଶ୍ୱାସ—ବି°. ( ହତ + ଆଶ୍ୱାସ ) ହତାଶ ଦେଖ, ବି. (କ.ଧା) ନୈରାଶ୍ୟ ।
ହତାସ୍ମି—ଅବ୍ୟ (ସ୍ତ୍ରୀଙ୍କ ବ୍ୟବହୃତ ଶବ୍ଦ) ହତୋଽସ୍ମି ଦେଖ ।
ହତାହତ—ବି°. ହତ ଓ ଆହତ (ବ୍ୟକ୍ତି), ମାରିତ ଓ ଆଘାତପ୍ରାପ୍ତ (ବ୍ୟକ୍ତିଗଣ) ।
ହତାହତି—ଗ୍ରା. ବି. ( ସଂ-ହସ୍ତାହସ୍ତି ) ହାତାହାତି, ପରସ୍ପର ହସ୍ତଦ୍ୱାରା ଆକ୍ର-ମଣ, ହାତେହାତେ, ଏକହାତରୁ ଅନ୍ୟ ହାତକୁ କୌଣସି ଦ୍ରବ୍ୟର ହସ୍ତାନ୍ତର ।
ହତାହଂ—ଅବ୍ୟ. (ସ୍ତ୍ରୀଙ୍କଦ୍ୱାରା ବ୍ୟବହୃତ) ହତୋଽହଂ ଦେଖ ।
ହତି—ବି. (ହନ୍+ତି) ହତ୍ୟା, ବଧ, ଅପକର୍ଷ, ହାନତା, ଜଘନ୍ୟତା, ବ୍ୟାଘାତ, ଗୁଣନ ।
ହତିଆ—ଗ୍ରା. ବି. ( ସଂ-ହତ୍ୟା ) ହତ୍ୟା ଦେଖ, ଅଧା, ଦେବତାଙ୍କ ନିକଟରେ ମନୋବାଞ୍ଛା ପୂରଣ ହେବା ପର୍ଯ୍ୟନ୍ତ ଧାରଣାଦେଇ ପଡ଼ିରହିବା ।
ହତିଆର—ଗ୍ରା. ବି. ଅସ୍ତ୍ରଶସ୍ତ୍ର, ଶିଳ୍ପ-କାର୍ଯ୍ୟର ସାଧନ ଶସ୍ତ୍ରାଦି, ଡାକ୍ତରଙ୍କ ଶସ୍ତ୍ର, ( ଲ.ଅର୍ଥ—ଇତରବ୍ୟବହୃତ ) ପୁରୁଷର ଲିଙ୍ଗ ।
ହତିଆର ଗୁଲିବା—ଗ୍ରା. ବି. କାର୍ଯ୍ୟ-କ୍ଷେତ୍ରରେ ଅସ୍ତ୍ର ଶସ୍ତ୍ରର ବ୍ୟବହାର ।
ହତିଆରବନ୍ଧା—ଗ୍ରା. ପୁଂ. ବି°. ଅସ୍ତ୍ର-ଶସ୍ତ୍ରାଦିଦ୍ୱାରା ନିଜର ଦେହକୁ ଯେ ସଜ୍ଜିତ କରିଥାଏ ।
ହତିଆ ଲଗିବା—ଗ୍ରା. ବି. ହତ୍ୟାଜନିତ ପାପରେ ଲିପ୍ତ ହେବା ।
ହତ୍ତି—ପ୍ରା. ( ଖଡ଼ିଆଲ ) ଅବ୍ୟ. କିନ୍ତୁ, (ପ୍ରା.ପାଟଣା) ଅବ୍ୟ. ଏପରି ।

**ହତୁ (ତୂ)**—ଗ୍ରା. ଅବ୍ୟ. ହନ୍ତୁ ଦେଖ, (ସଂ. ବି.) ଶୀତକାଳ ।

**ହତୋତ୍ସାହ**—ପୁଂ. ବି. ଯାହାର ଉତ୍ସାହ ଭାଙ୍ଗିଯାଇଅଛି, ନିରୁତ୍ସାହ, ବି. ଉତ୍ସାହର ଲୋପ ।

**ହତୋଦ୍ୟମ**—ପୁଂ. ବି. (କ.ଧା) ବିନଷ୍ଟ ଉତ୍ସାହ, (ପୁଂ. ବିଂ—ବ.ବ୍ରୀ) ଉଦ୍ୟମହୀନ. ନିରୁତ୍ସାହ ।

**ହତୋଽସ୍ମି**—ଅବ୍ୟ ( ହତଃ+ଅସ୍ମି ) ଆହା ମୁଁ ମଲି, ମୋ କଥା ସରିଗଲା, ଆହା ।

**ହତୋଽହଂ**—ଅବ୍ୟ ( ହତଃ+ଅହଂ ) ଖେଦୋକ୍ତି ସୂଚକ, ମୁ ମଲି ।

**ହତୌଜାଃ**—ବିଂ. ( ହତ+ଓଜସ୍ ) ନଷ୍ଟତେଜସ୍କ, ଶକ୍ତିବିହୀନ, ଦୁର୍ବଳ ।

**ହତ୍ତେରି**—ଗ୍ରା. ଅବ୍ୟ. ହତ୍ତୁ ଦେଖ ।

**ହତ୍ନୁ**—ବି. ( ହନ୍+କ.ତ୍ନୁ ) ବ୍ୟାଧି, (ଶ୍ତ୍ନୁ) ଅସ୍ତ୍ରଶସ୍ତ୍ର, (ବିଂ) ହନନଶୀଳ ।

**ହତ୍ୟା**—ବି. ( ହନ୍+ଭା. ଯ+ଆ ) ପ୍ରାଣନାଶ, ହନନ, ବଧ, (ବିଂ) ହତ, ହନ୍ତା, (ଗ୍ରା. ବି.) ଅଡ଼ୀ, ଧାରଣା ଦେବା, ହତ୍ୟାଜନିତ ପାପ ବା ଅପରାଧ, ପାପଭାର ।

**ହତ୍ୟାକରିବା**—ଗ୍ରା. କ୍ରି. ଜୀବନରେ ମାରିପକାଇବା, ପ୍ରାଣ ନାଶକରିବା ।

**ହତ୍ୟାକାଣ୍ଡ**—ବି. ( ଷତତ୍ପୁ ) ହତ୍ୟା କରିବାର ବ୍ୟାପାର, ବଧ ବିଷୟକ ଘଟଣା ।

**ହତ୍ୟାକାରୀ**—ବି.(ହତ୍ୟା+କୃ+ଇନ୍ ) ବଧକାରୀ, ଘାତକ, ଯେ ହତ୍ୟାକରିଥାଏ ।

**ହତ୍ୟାଦଣ୍ଡ**—ବି. ହତ୍ୟାପରାଧପାଇଁ ହତ୍ୟାକାରୀକୁ ପ୍ରଦତ୍ତ ଦଣ୍ଡ ।

**ହତ୍ୟାପରାଧ**—ବି. ହତ୍ୟାଜନିତ ପାପ, ହତ୍ୟାକାରୀର ଅପରାଧ ।

**ହତ୍ୟାପରାଧୀ**—ପୁଂ. ବିଂ. ଓ ବି. ଯେ ହତ୍ୟା କରିଥିବା ଅପରାଧରେ ଅଭିଯୁକ୍ତ, ଯେ ହତ୍ୟା ଅପରାଧ ବା ପାପକରିଅଛି, (ସ୍ତ୍ରୀ)ହତ୍ୟାପରାଧିନୀ ।

**ହତ୍ୟାପାଇବା**—ଗ୍ରା. କ୍ରି. ହତ୍ୟାଦୋଷରେ ଭାଗୀ ହେବା ।

**ହତ୍ୟାର**—ଗ୍ରା.ବି. ହତିଆରଦେଖ ।

**ହତ୍ୟାଲାଗିବା**—ଗ୍ରା.ବି. ହତ୍ୟା ଦୋଷରେ ବା ପାପରେ ଭାଗୀ ହେବା ।

**ହଦ୍ଦକସ୍ତ**—ଗ୍ରା. କ୍ରି. ବିଂ. ଯେନତେନ ପ୍ରକାରେ, ଯେ କୌଣସିପ୍ରକାରେ, ଅତିକଷ୍ଟରେ ।

**ହଥ**—ପୁଂ. ବିଂ. ବିଷଣ୍ଣ, ଭଗ୍ନୋତ୍ସାହ ( ପୁରୁଷ ) ।

**ହଦ୍**—ଗ୍ରା.ଅବ୍ୟ.ବିଂ. ବିଂ. ହଦ୍ (ଦେଖ) (ପ୍ରା.—ସମ୍ବ) ବଡଗାଡ, (ପ୍ରା.-ଲରିଆ, ବଲାଙ୍ଗିର) କାଦୁଅ, ପଙ୍କ ।

**ହଦ**—ଗ୍ରା.ବି. କାଦୁଅ, ଜଳାଶୟ, ହ୍ରଦ, ଗଭୀର ଓ ବିସ୍ତୃତ ଜଳାଶୟ, ଗଭୀର-ଜଳ, ଦହ, ଦଳ ଓ ଲତାପତ୍ର ମାଡ଼ିଥିବା ଯୋଗୁଁ ବଦ୍ଧଜଳାଶୟ, (ଗ୍ରା.ବିଂ.) ଗଭୀର, ଦଳ ଓ ଲତା ପତ୍ରାଦି ଦ୍ୱାରା ଆବଦ୍ଧ (ଜଳାଶୟ), (ପ୍ରା.-ଖଡ଼ିଆଳ, ବଲାଙ୍ଗିର) ପଙ୍କ, ସୀମା ।

**ହଦନ**—ବି. (ହଦ୍+ଅନ) ମଳତ୍ୟାଗ, ହଗିବା ।

**ହଦରଙ୍କିଆ**—ପ୍ରା. (ସମ୍ବ—ବିଂ) ଅଧୀର, ଧୈର୍ଯ୍ୟହୀନ । [ ସୁଆ ।

**ହଦରା**—ପ୍ରା. (ବଲାଙ୍ଗିର—ବିଂ)ଅଳ-

**ହଦି(ଦୀ)ସ୍**—ଯା.ବି.ସୁନ୍ନତ୍, ମୁସଲମାନଙ୍କ ସ୍ମୃତିଶାସ୍ତ୍ର, ହଜରତ୍, ମୁସଲମାନ-ମାନଙ୍କର ଇତିହାସ. ଧର୍ମଶାସ୍ତ୍ର, ବ୍ୟବସ୍ଥା, ପରମ୍ପରାଗତ ମହମ୍ମଦଙ୍କ କାର୍ଯ୍ୟ ଓ ଉପଦେଶ ଉକ୍ତି ସମ୍ବନ୍ଧେ କହାଣୀ ।

**ହଦ୍**—ଯା.ବି.ସୀମା, ଊର୍ଦ୍ଧ୍ୱସୀମା, ଅନ୍ତ, ଶେଷ,ଆଶ୍ଚର୍ଯ୍ୟ, ଚୂଡ଼ାନ୍ତ, ଚରମ,(ବିଂ) ସର୍ବଶେଷ, ଅନ୍ତ୍ୟ, ଶେଷସୀମାରେ ଉପସ୍ଥିତ, କିଂ କର୍ତ୍ତବ୍ୟବିମୂଢ଼, (କ୍ରି-ବିଂ) ପର୍ଯ୍ୟନ୍ତ, ଊର୍ଦ୍ଧ୍ୱସୀମା-ଧରିଲେ ମଧ୍ୟ, ଅତି ଅଧିକ ହେଲେ ମଧ୍ୟ, ବଡ଼ଯୋର । [ କଥା ।

**ହଦ୍କଥା**—ଗ୍ରା.ବି. ଅତି ଆଶ୍ଚର୍ଯ୍ୟ ଜନକ

**ହଦ୍କରିବା**—ଗ୍ରା. କ୍ରି. କିଂ କର୍ତ୍ତବ୍ୟବିମୂଢ଼ କରିବା ।

**ହଦ୍‌ବନିବା** (ମଣିବା,ମାନିବା ହେବା)—ଆଶ୍ଚର୍ଯ୍ୟାନ୍ୱିତହେବା, ପରାକ୍ରମ ବା ବୁଦ୍ଧିର ଶେଷ ସୀମାରେ ପହୁଞ୍ଚିବା, କିଂକର୍ତ୍ତବ୍ୟବିମୂଢ଼ ହେବା ।

**ହଦମ୍**—ଯା.କ୍ରି.ବିଂ. ହର୍ଦମ ଦେଖ ।

**ହଦା**—ବି.(ଜ୍ୟୋତିଷ) ମେଷାଦି ଦ୍ୱାଦଶ ଲଗ୍ନମାନଙ୍କର ତ୍ରିଂଶତ୍ ଅଂଶ ।

**ହଦି**—ଯା.ବି. ସୀମା ।

**ହଦ୍ରା**—ପ୍ରା. ସମ୍ବ. (ବିଂ) ଭୀରୁ, ଡରୁଆ ।

**ହଦ୍ରିଆ**— ପ୍ରା. ସମ୍ବ. (ବିଂ) ଈର୍ଷୀ ।

**ହାଦ୍ରିବା**—ପ୍ରା. ( ବଲାଙ୍ଗିର ) କ୍ରି, ହଟିଯିବା ।

**ହନ୍‌ବାଲ**—ଗ୍ରା.ବି. ସୁନ୍ନୀ ସମ୍ପ୍ରଦାୟଭୁକ୍ତ ମୁସଲମାନଙ୍କର ଚାରିଗୋଟି ଶାଖା-ମଧ୍ୟରୁ ଏକତମ ।

**ହନ**—ବିଂ. (ହନ୍+କ.ଅ) ହନନକାରୀ, (ବି) ହତ୍ୟାକାରୀ ବ୍ୟକ୍ତି ।

**ହନନ**—ବି. ( ହନ୍+ଅନ ) ମାରଣ, ପ୍ରାଣନାଶ କର୍ମ, ହତ୍ୟା, (ଅଙ୍କ ଶାସ୍ତ୍ର) ଗୁଣନ ।

**ହନନୀୟ**—ବିଂ ( ହନ୍+ର୍ମ.ଅନୀୟ ) ହତ ହେବାର ଯୋଗ୍ୟ ।

**ହନଲୁଲୁ**—ଯା.ବି. (ନାମ) ପ୍ରଶାନ୍ତ ମହା-ସାଗରର ଗୋଟିଏ ଦ୍ୱୀପ, ଇଂରେଜ-ମାନଙ୍କର ଜାହାଜରେ କୋଇଲା ନେବା ସ୍ଥାନ ।

**ହନା(ନେ)ଇବା**-ପ୍ରା.(ଖୋରଧା—ଇତର ବ୍ୟବହୃତ) କ୍ରି. ଅନାଇବା, ଗୁହିଁବା ।

**ହନାଫୀ**—ଯା, ବି. ସୁନ୍ନୀସମ୍ପ୍ରଦାୟଭୁକ୍ତ ମୁସଲମାନଙ୍କର ୪ଗୋଟି ଶାଖା ମଧ୍ୟରୁ ଏକ ।

**ହନିଲ**—ବି. କେତକୀ (ରତ୍ନମାଳା) ।

**ହନୁ**—ବି. (ହନ୍+କ.ଉ) ଗଣ୍ଡଦେଶର ଉପରଭାଗ, ଉପର ଗାଲପାଟି ହାଡ଼, ଦାନ୍ତପାଟିର କଡ଼ଜା, ହଟ୍ଟବିଳାସିନୀ, ବେଶ୍ୟା, ରୋଗ, ମୃତ୍ୟୁ, ନଖୀ ନାମକ ଗନ୍ଧଦ୍ରବ୍ୟ, ଶୁଣ୍ଠି,ହରିଦ୍ରା, ଅସ୍ତ୍ର,(ଗ୍ରା,ବି) ହନୁମାନ୍, ମାଙ୍କଡ଼ ।

ହନୁକମ୍ପ—ବି. ଗଲପାଟିର ହାଡ଼ (ହନୁହାଡ଼) କମ୍ପିବା ରୋଗ ।

ହନୁଆ—ଗ୍ରା. ବି. ଲୁହାଆଙ୍କୁଡ଼ିଆ କାଇର କଳବିଶେଷ. ଯାହା ସାହାଯ୍ୟରେ ଖାଇର ଦଣ୍ଡା ଓ ଖାଇର ଘୁଆ ଲଗାଯାଇ ଝୁଲାଇବାକୁ ହୁଏ ।

ହନୁକା—ବି. (ହନୁ+କ+ଆ) ହନୁହାଡ଼, ଦାନ୍ତପାଟିର କବଜା ।

ହନୁଗ୍ରହ—ବି. ( ହନୁ + ଗ୍ରହ + କ.ଅ ) ରୋଗବିଶେଷ, ଦାନ୍ତପାଟିର କବଜା ଅଚଳହେବା ରୋଗ, ଅଶ୍ୱର ବାତରୋଗବିଶେଷ ।

ହନୁଡାର୍ଯ୍ୟା—ଗ୍ରା. ବିଂ. (ସଂ-ଅନ୍ଧବାର୍ଯ୍ୟ) ଅତି ଦୁଷ୍ଟ, ଉଦ୍ଦଣ୍ଡ ।

ହନୁଭେଦ—ବି. (ଚିକିତ୍ସା) ହନୁଦ୍ୱୟର ବୋରଣ, ଦାନ୍ତପାଟିର କବଜା ଖୋଲିଯିବା ।

ହନୁମନ୍ତ—ପୁଂ. ବି. (ହନୁ ଅଛି ଅର୍ଥରେ ମତ୍) ହନୁମାନ ଦେଖ ।

ହନୁମନ୍ତ—ଗ୍ରା. ବି. ମାଙ୍କଡ଼, ହନୁମାନ୍‌ର ଡାକନାମ, ହନୁମାନ ଦେଖ ।

ହନୁମନ୍ତଆ—ଗ୍ରା. ବିଂ. ହନୁମାନ୍‌ ପରି ପ୍ରକାଣ୍ଡ ବା ବଡ଼ ।

ହନୁମାଙ୍କଡ—ଗ୍ରା. ବି. କଳାମୁହାଁ ଏକପ୍ରକାର ମାଙ୍କଡ଼ ।

ହନୁମାନ୍—ପୁଂ. ବି. (ହନୁ+ଅଛି ଅର୍ଥରେ ମତ୍) ଶ୍ରୀ ରାମଚନ୍ଦ୍ରଙ୍କ ଦୂତ, ବାନର. ଅଞ୍ଜନାଗର୍ଭରୁ ପବନ ଦେବତାଙ୍କ ଔରସରେ ଜାତ ବାନରବିଶେଷ, (ଗ୍ରା. ବି) ସଂସ୍କୃତ କାବ୍ୟ ମହାନାଟକର ରଚୟିତା ହନୁମାନମିଶ୍ର (ଏ ଉତ୍କଳୀୟ ଥିଲେ), ହନୁମାଙ୍କଡ଼, ହନୁମାଙ୍କଡ଼ ପରି ଅସୁନ୍ଦରମୁହାଁ ବ୍ୟକ୍ତି ।

ହନୁମୁହାଁ—ଗ୍ରା. ବିଂ. ହନୁମାଙ୍କଡ଼ ପରି ଅସୁନ୍ଦର ମୁଖଯୁକ୍ତ ବ୍ୟକ୍ତି, ( ସ୍ତ୍ରୀ ) ହନୁମୁହିଁ ।

ହନୁମୂଳବନ୍ଧନାସ୍ଥି—ବି, ଅସ୍ଥିବିଶେଷ, ଯେଉଁ ଅସ୍ଥି ହନୁଦେଶରେ ମୂଳବନ୍ଧନ କରିଅଛି ।

ହନୁମୋକ୍ଷ—ବି. ଦାନ୍ତପାଟିର ରୋଗବିଶେଷ ।

ହନୁଳ—ପୁଂ. ବିଂ. (ହନୁ+ଲ) ଦୃଢ଼ହନୁବିଶିଷ୍ଟ ।

ହନୁସ୍ତମ୍ଭ—ବି. ବାତବ୍ୟାଧିବିଶେଷ (ଏହି ରୋଗରେ ଦାନ୍ତପାଟିର ଜାବ ପଡ଼ିଯାଏ)

ହନୁହାଡ଼—ଗ୍ରା. ବି. ଦାନ୍ତପାଟିର ଉପରିସ୍ଥ ଅସ୍ଥି ।

ହନୂ (ଇତ୍ୟାଦି)—ବି. ( ହନ୍+କ.ଉ ) ହନୁ ଇତ୍ୟାଦି ଦେଖ ।

ହନୂମାନ୍—ବି. ହନୁମାନ୍ ଦେଖ ।

ହନୂଷ—ବି. (ହନ୍+କ.ଊଷ) ରାକ୍ଷସ ।

ହନ୍ତ—ଅ. (ହନ୍+ଭା.ତ) ହର୍ଷ, ଅନୁକମ୍ପା, ବାକ୍ୟାରମ୍ଭ, ବିଷାଦ, ବାଦ, ସମ୍ଭ୍ରମ ଓ ଖେଦରେ ବ୍ୟବହୃତ, ଆହା; ତର୍ପଣ ଶ୍ରାଦ୍ଧାଦିରେ ସନକାଦି ସପ୍ତ ମନୁଷ୍ୟଙ୍କ ଠାରେ ସମ୍ବୋଧନ ବାକ୍ୟ ଶେଷରେ ବ୍ୟବହୃତ, (ଗ୍ରା. ବି) ପୀଡ଼ନ ।

ହନ୍ତକ—ଗ୍ରା. ବିଂ, ହତ୍ୟାକାରୀ, ଘାତକ ।

ହନ୍ତକାର—ବି. ( ହନ୍ତ + କୃ+କ.ଅ ) ଅତିଥିମାନଙ୍କୁ ଦେୟ ତଣ୍ଡୁଳ(ଚାଉଳ), ଷୋଡ଼ଶ ( ଷୋହଳ ) ଗ୍ରାସ ( ଗୁଣ୍ଡା ) ପରିମିତ ଭିକ୍ଷାନ୍ନ ।

ହନ୍ତକାର(ରୁ)—ଗ୍ରା. ବିଂ. (ସଂ· ହନ୍ତା) ହନ୍ତକ ଦେଖ, ସର୍ବପ୍ରଧାନ, ଶ୍ରେଷ୍ଠ, ବଳିଷ୍ଠ ।

ହନ୍ତବ୍ୟ—ବିଂ. (ହନ୍+କ.ତବ୍ୟ) ହନନଯୋଗ୍ୟ, ବଧ୍ୟ, ଯାହାକୁ ମାରିପକାଇବା ଉଚିତ ।

ହନ୍ତସନ୍ତ—ଗ୍ରା. ବିଂ. ଅସନ୍ତୁଷ୍ଟ, ପ୍ରପୀଡ଼ିତ, ଦହଗଞ୍ଜ, ବ୍ୟତିବ୍ୟସ୍ତ, ବିବ୍ରତ ।

ହନ୍ତସନ୍ତକରିବା—ଗ୍ରା. କ୍ରି. ଅତି ଦହଗଞ୍ଜ କରିବା, କଷ୍ଟଦେବା, ଉତ୍ପୀଡ଼ନକରିବା ।

ହନ୍ତସନ୍ତହେବା—ଗ୍ରା. ଦହଗଞ୍ଜ ହେବା, କଷ୍ଟପାଇବା, ଉତ୍ପୀଡ଼ିତ ହେବା ।

ହନ୍ତସନ୍ତଆ—ଗ୍ରା. ବିଂ. ଯେ ସର୍ବଦା ବ୍ୟସ୍ତ ହୁଏ, ଅସନ୍ତୁଷ୍ଟ, ବ୍ୟତିବ୍ୟସ୍ତ ।

ହନ୍ତା—ପୁଂ. ବିଂ. (ହନ୍+କ.ତୃ) ଘାତକ, ନାଶକ, ବଧକର୍ତ୍ତା, (ସ୍ତ୍ରୀ) ହନ୍ତ୍ରୀ, (ପ୍ରା. ଆଠମଲ୍ଲିକ. ହବ) ଅମୁକ, ନିରର୍ଥକ କାବ୍ୟାଳଙ୍କାରବିଶେଷ, (ପ୍ରା. ବଲାଙ୍ଗିର) ସେଇଟା ।

ହନ୍ତାପଡ଼ିବା—ପ୍ରାଦେ. (ବାଲେଶ୍ୱର) କ୍ରି. ପଶିଯିବା, ଭିତରକୁ ପଶିଯିବା ।

ହନ୍ତାଳିବା—ପ୍ରା. (ସମ୍ବଲପୁର) କ୍ରି. (ବାଘଆଦି) ହୁଙ୍କାରିବା, ହୁଙ୍କାରିବା ।

ହନ୍ତୁ—ବି. (ହନ୍ + ଭା.ତୁ) ମୃତ୍ୟୁ, ବିନାଶ, (କ.ତୁ) ବୃଷ ।

ହନ୍ତୁକ—ଗ୍ରା. ବିଂ. ଘାତକ, ହିଂସ୍ର, ନିଷ୍ଠୁର ।

ହନ୍ତୁହନ୍ତୁ—ଗ୍ରା. ବିଂ. ହନ୍ତସନ୍ତ ଦେଖ ।

ହନ୍ତୃ—ପୁଂ. ବିଂ. (ହନ୍ + କ.ତୃ) ଯେ ହତ୍ୟାକରେ, (ବି) ଘାତକ ବ୍ୟକ୍ତି, (ସ୍ତ୍ରୀ) ହନ୍ତ୍ରୀ ।

ହନ୍ତୋକ୍ତି—ବି. ଅନୁକମ୍ପୋକ୍ତି ।

ହନ୍ତ୍ୱ—ପୁଂ. ବିଂ. (ହନ୍+ତ୍ୱା) ବଧଯୋଗ୍ୟ

ହନ୍ଦର—ଯା. ଇଉରୋପ ପ୍ରଚଳିତ ପଦାର୍ଥର ମାପ ଓ ଓଜନର ପରିମାଣବିଶେଷ ।

ହନ୍ଦାଳିବା—ଗ୍ରା. କ୍ରି. ତନ୍ନ ତନ୍ନ କରି ଖୋଜିବା, ଅଣ୍ଡାଳିବା, ଦରଣ୍ଡିବା, ରନ୍ଧାଳିବା ।

ହନ୍ଦର(ଳ)ହେବା—ପ୍ରା. (ବଲାଙ୍ଗିର) କ୍ରି. ଧାଣ୍ଡିହେବା, ହଇରାଣ ହେବା ।

ହନ୍ଦସନ୍ଧ—ଗ୍ରା. ବି, ଅନ୍ଧସନ୍ଧି ଦେଖ ।

ହନ୍ଦେ—ଗ୍ରା. ଅବ୍ୟ. (ପ୍ରାଚୀନ) ହେତୁରୁ, ଯୋଗୁଁ ।

ହନ୍ନ—ପୁଂ. ବିଂ. (ହଦ୍+କ.ତ) କୃତପୁରୀଷୋତ୍ସର୍ଗ, ଯେ ହଗି ସାରିଅଛି ।

ହନନ୍—କ୍ଲୀ. ବି. ଯାହା ଦ୍ୱାରା ହତ୍ୟା କରାଯାଏ, ହନନସାଧନ ।

ହନ୍ୟ—ବିଂ. ( ହନ୍+ମ୍ଁ.ଯ ) ହନ୍ତବ୍ୟ, (ସ୍ତ୍ରୀ) ହନ୍ୟା ।

ହନ୍ୟମାନ—ପୁଂ. ବିଂ. (ହନ୍+ମ୍ଁ.ଆନ) ଯାହାକୁ ହଣାଯାଉଅଛି, ଯାହାକୁ ବର୍ତ୍ତମାନ ବଧ କରାଯାଉଅଛି, (ସ୍ତ୍ରୀ) ମାନା ।

ହପ୍‌କା—ଗ୍ରା. ବି. ହଠାତ୍ ଉପସ୍ଥିତ ଭୟ, ଭୟ, ହପ୍ପା ।

ହପ୍‌ତରଙ୍ଗ-ପ୍ରା. (ପୁରୀ) ବି. ହଠାତ୍ ଦେଖାଇବା ଧପାବାଜି, ଫାଙ୍କି ।

ହପା(ପ୍ପା)—ଗ୍ରା. ବି. ହଠାତ୍ ଉପସ୍ଥିତ

ଜୁଆର, ବର୍ଷା, କ୍ରୋଧ,ଆକ୍ରମଣ,ଗାଳି, ମାଡ଼ଆଦିର ତୋଡ଼ ବା ଥର ବା ଝୁଙ୍କ, କ୍ଷୁଧା, ଉତ୍କଣ୍ଠା, ଜ୍ୱର,ଆବେଗ, କ୍ଷଣିକ-ଆବେଗ,ଭୟଙ୍କରତା ।

ହପାଲ୍ଲି—ଗ୍ରା. ବି. ହାତୀର ଦ୍ରୁତଗତି ।

ହପାଲିଆ—ଗ୍ରା. ବିଂ. ଦ୍ରୁତଗତିବିଶିଷ୍ଟ (ହାତୀ), ଦ୍ରୁତ (ଗତି) । [ ଗୁଲିବା ।

ହପାଲିବା—ଗ୍ରା.କ୍ରି.(ହାତୀ) ଦ୍ରୁତଗତିରେ

ହପା(ପେ)ଇବା—ଗ୍ରା. କ୍ରି. ଧପେଇବା, ଆକ୍ରମଣ କରିବାକୁ ପ୍ରସ୍ତୁତ ହେବା ।

ହପ୍ତନ୍(ମ)—ଯା. ବିଂ. ସପ୍ତମ,(ବି)ସପ୍ତମ ଶ୍ରେଣୀର ନିକୃଷ୍ଟ ଜମି ।

ହପ୍ତନ୍(ମ)ଆଇନ୍(କାନୁନ୍—ଗ୍ରା. ବି. (କଚେରୀଆ) ରାଜସ୍ୱ ସଂକ୍ରାନ୍ତ ୧୭୯୯ ସାଲର ୭ ଆଇନ ।

ହପ୍ତା—ଯା.ବି.ସପ୍ତାହ,ସାପ୍ତାହିକ ମଜୁରି ।

ହପ୍ତାଏ—ଗ୍ରା. ବି. ଏକ ସପ୍ତାହ ।

ହପ୍ତାକ—ଗ୍ରା. ବି. ଏକହପ୍ତା ମାତ୍ର ।

ହପ୍ତାକେ—ଗ୍ରା.କ୍ରି.ବିଂ. ଏକହପ୍ତା ମଧ୍ୟରେ, ପ୍ରତି ସପ୍ତାହରେ ।

ହପ୍ପା—ଗ୍ରା. ବି. ହପା ଦେଖ ।

ହପ୍ପାଉଠିବା—ଗ୍ରା. ବି. ଆତିଶଯ୍ୟ ପ୍ରକାଶିତ ହେବା, ଢେଉ ଉଠିବା ।

ହପ୍ପାକୁହପ୍ପା—ଗ୍ରା. କ୍ରି. ବିଂ. ଏକତୋଡ଼ ପରେ ଅନ୍ୟ ତୋଡ଼, ଥରକୁଥର ।

ହପ୍ପାଧରି—ପ୍ରା. (ସମ୍ବ) ବି. କୁସ୍ତି କରିବା, ବ୍ୟାୟାମ, ମାରଧର ।

ହପ୍ପାଲିଆ—ଗ୍ରା. ପୁଂ. ବିଂ. ଯେଉଁବ୍ୟକ୍ତି କ୍ଷଣିକ ଆବେଗରେ ବଶବର୍ତ୍ତୀ ହୁଏ ।

ହପ୍ରମକଥା—ଗ୍ରା. ବି. ପାଦ୍ରୀବର୍ଡ଼ଙ୍କ ସାହେବଙ୍କ ସଙ୍କଳିତ ସାନ୍ତାଳମାନଙ୍କ ପ୍ରଚଳିତ ପ୍ରଥା ପ୍ରବାଦଆଦି ବର୍ଣ୍ଣିତ ହୋଇଥିବା ଗୋଟିଏ ଇଂରେଜୀ ଗ୍ରନ୍ଥ ।

ହ(ହୋ)ବ୍କା—ପ୍ରା. (ସମ୍ବ) ବି. ହାବୁକା ଦେଖ ।

ହବ୍କାହବ୍କା—ପ୍ରା.(ଝାଡ଼)ଧମକଚମକ ।

ହବ୍କାହେବା—ପ୍ରା. (ବାଲେ)କ୍ରି.ହଠାତ୍ ଗୁଡ଼(ଚେଲର)ଅନେକଗୁଡ଼ିଏ ସୂତା ଏକ ସାଙ୍ଗରେ ଗୁଡ଼ିହେବା, ତରଙ୍ଗ ଉଠାଇବା ।

ହବ୍କୋଡ଼ାବ୍କୋ—ପ୍ରା. (ସମ୍ବଲ) ବିଂ. ବନ୍ଧୁର, ଉଚ୍ଚାବଚ, ବିଷମ (ଭୂମି) ।

ହବ୍ଡ଼ାଇବା—ପ୍ରା. (ସମ୍ବଲ) କ୍ରି. ଝୁଣ୍ଟି ପଡ଼ିବା ।

ହବ୍ଡ଼ାଇହେବା—ପ୍ରା. (ବଲାଙ୍ଗିର) କ୍ରି. ବଳାତ୍କାରରେ ପ୍ରବେଶ କରିବା ।

ହବ୍ଦାଏ—ପ୍ରା. (ସମ୍ବ)କ୍ରି. ବିଂ. ଥରେ ।

ହବ୍ଲି—ପ୍ରା.(ସମ୍ବ)ବି.ହବେଲି,ପ୍ରାସାଦ ।

ହମ୍—ଅ. (ହା+ମିଂ.ଅମ୍) ରୋଷଭାଷଣ, କ୍ରୋଧୋକ୍ତି, ଅନୁଶୟ, ଅନୁନୟସୂଚକ ଅବ୍ୟୟ ।

ହମ୍କାଲି—ଗ୍ରା. ବିଂ. (କଚେରିଆ) ହାମ-କାଲି ଦେଖ, ଏକସ ବିଚାର ହେବା (ମକଦ୍ଦମା) ।

ହମ୍ରାଇ—ଗ୍ରା. ବି. ହାମରାଇ ଦେଖ, ରାଜାଆଦିଙ୍କ ଗହଣ, ( ଯା. କ୍ରି. ବିଂ ) ଜରିଆରେ, ଜିମ୍ମାଦାରରେ ।

ହମ୍ସୁଆର—ଯା.ବିଂ.ହାମ୍ସୁଆର ଦେଖ ।

ହମ୍ହମ୍—ଗ୍ରା. ଅ. ହମହମ ଦେଖ ।

ହମର—ପ୍ରା. (ଭତରିଭାଷା) ସର୍ବ. ଆମ୍ଭ-ମାନଙ୍କର ।

ହମହମ—ଗ୍ରା. ଅ. (ସଂ ହମ୍ବା) ଗୋରୁଙ୍କ ହମ୍ବାରବ,(ବି,ସଂ-ଅହମହମିକା)ଅତ୍ୟନ୍ତ ଉଦ୍‌ଗ୍ରୀବ ବା ଉତ୍କଣ୍ଠିତ ହେବା,ଉଦ୍ୟତ ହେବା, ( ବିଂ ) ଲାଳାୟିତ, ଅତିଶୟ ଉଲ୍ଲାସ ପ୍ରକାଶ କରୁଥିବା ( ବ୍ୟକ୍ତି ), ପ୍ରକାଶ କରିବା (ବ୍ୟକ୍ତି) ।

ହମହମହେବା—ଗ୍ରା. କ୍ରି. କୌଣସି କାର୍ଯ୍ୟ କରିବାକୁ ଆଗ ଆଗ ହେବା, ଲାଳାୟିତ ହେବା ।

ହମହମିଆ—ଗ୍ରା. ବିଂ. ଯେ ଅତ୍ୟନ୍ତ ଉତ୍କଣ୍ଠା ପ୍ରକାଶ କରେ, ଲାଳାୟିତ, (ସ୍ତ୍ରୀ.) ହମେଇ ।

ହମା( ମ୍ବା )—ଗ୍ରା. ବି. ଗୋରୁଙ୍କ ବୋବାଳି,ଗୋଧ୍ୱନି,(ପ୍ରା.ଖଡ଼ିଆଳ) ବି. ଲଙ୍ଗିବାର ଭଙ୍ଗି ।

ହମାଗୁଡ଼—ଗ୍ରା. ବି. ଦୁଇହାତକୁ ଓ ଦୁଇ ଆଣ୍ଠୁକୁ ଭୂଇଁରେ ଲଗାଇ ଚତୁଷ୍ପଦଙ୍କପରି ଗୁରୁଣ୍ଡିବା, ହାମୁଡ଼େଇ-କରି ଗତି ।

ହମାଡ଼ିବା—ପ୍ରା. (ଝାଡ଼) କ୍ରି. ଆଣ୍ଠୁ ଓ ହାତ ସାହାଯ୍ୟରେ ଚାଲିବା, ଗୁରୁଣ୍ଡିବା

ହ(ହ୍ମ)ମାନ୍(ମ୍)ଦ(ଦ)ସ୍ତା—ଗ୍ରା. ବି. ଶୁଷ୍କ ଦ୍ରବ୍ୟକୁ ଛେଚି ଗୁଣ୍ଡ କରିବାପାଇଁ ଲୁହାର ଉଦୂଖଳ ଭାଣ୍ଡ ଓ ମୁଷଳ, ହେମଦସ୍ତା ।

ହମାର—ପ୍ରା. (ଗଞ୍ଜା) ବି. ଅମାର, ଧାନ ରଖିବାର କୋଠି, ଧାନକୋଠି ।

ହମାରଡ଼(ବ)—ଗ୍ରା. ବି. ଗୋରୁମାନଙ୍କ ଧ୍ୱନି ।

ହମରିବା—ପ୍ରା. (ଖଡ଼ିଆଳ) କ୍ରି. ହମ୍ବା-ରବ କରିବା, ସ୍ନେହ କରିବା ।

ହମାଳି—ଗ୍ରା. ବି. ପ୍ରବଳ ବତାସ, ତୋଫାନ ।

ହ(ହେ)ମାଳିଆ—ଗ୍ରା. ପୁଂ. ବି. ଯେଉଁ-ଠାରେ ଶିଷ୍ଟାଚାର ଓ ସୁବିଚାର ନାହିଁ ।

ହମାଳିବା—ଗ୍ରା.ବି. (ଗୋରୁ) ହମ୍ବାଳିବା ରଡ଼ିବା ।

ହମାହେବା—ପ୍ରା, ( ବଲାଙ୍ଗିର ) କ୍ରି. ଆଣ୍ଠେଇପଡ଼ିବା । [ ମାନେ ।

ହମି—ପ୍ରା. (ଭତଡ଼ିଭାଷା) ସର୍ବ. ଆମ୍ଭେ-

ହମି(ମେ)ଶା—ଯା. କ୍ରି, ବିଂ. ସର୍ବଦା, ହରମେଶ । [ ଦେଖ ।

ହମ୍ପାଲ ( ଳି )—ଗ୍ରା. ବି. ହାମ୍ପୋଲି

ହମ୍ପାଲିବା—ଗ୍ରା. କ୍ରି. ହାମ୍ପୋଲି ମାରିବା, ଦୀର୍ଘନିଶ୍ୱାସ ପକାଇବା ।

ହମ୍ବା—ବି. ( ଧ୍ୱନ୍ୟନୁକରଣ ଶବ୍ଦ ) ଗୋରୁଙ୍କ ରାବ, ମୁହଁ ମାଡ଼ିହୋଇ ପଡ଼ିବା ଅବସ୍ଥା । [ ଶବ୍ଦ ।

ହମ୍ବାରଡ଼—ଗ୍ରା. ବି. ହମ୍ବାରାବ, ଗୋରୁର

ହମ୍ବାରବ—ଗ୍ରା. ବି. ହମ୍ବାରଡ଼,ଗୋଧ୍ୱନି, ଗୋରୁଙ୍କ ଧ୍ୱନି ବା ଶବ୍ଦ ।

ହମ୍ବାଲ (ଳି) ଛାଡ଼ିବା— ଗ୍ରା. କ୍ରି. ହମ୍ବାରବ କରିବା । [ ଦେଖ ।

ହମ୍ବା—ବି. ( ଧ୍ୱନ୍ୟନୁକରଣ ) ହମ୍ବା

ହଯବରଲ—ଗ୍ରା. ବିଂ ବିପର୍ଯ୍ୟସ୍ତ, ଅବ୍ୟ-ବସ୍ଥିତ, ନୟନସ୍ଥାନ, ଗୋଳମାଳିଆ ।

ହୟ--ପୁଂ.ବି. (ହୟ+କ.ଅ) ଘୋଟକ, ଘୋଡ଼ା, ଇନ୍ଦ୍ର, ସାତସଂଖ୍ୟା ।
ହୟକାତରୀ(କାତରିକା)— ବି. ଔଷଧ ବୃକ୍ଷବିଶେଷ ।
ହୟଗନ୍ଧ—ବି. (ହୟ+ଗନ୍ଧ) ବ.ଗ୍ରା. କାଚଲବଣ । [ ମୋଦା ।
ହୟଗନ୍ଧା—ବି. ଅଶ୍ୱଗନ୍ଧା ବୃକ୍ଷ, ଅଜ-
ହୟଗର୍ଦ୍ଦଭ—ପୁଂ. ବି. ଶିବ ।
ହୟଗ୍ରୀବ—ପୁଂ. ବି. ( ହୟ+ଗ୍ରୀବା ) ବ.ବ୍ରୀ. ଶାଳଗ୍ରାମବିଶେଷ, ଦୈତ୍ୟ-ବିଶେଷ, ବିଷ୍ଣୁଙ୍କ ଅବତାରବିଶେଷ, ରାଜର୍ଷି ବିଶେଷ, (ବିଂ) ଯାହାର ବେକ ଘୋଡ଼ାର ବେକପରି ଲମ୍ବା ।
ହୟଗ୍ରୀବହା—ପୁଂ. ବି. ( ହୟଗ୍ରୀବ+ ହନ୍+କ. କ୍ୱିପ୍ ) ବିଷ୍ଣୁ ।
ହୟଗ୍ରୀବା—ସ୍ତ୍ରୀ. ବିଂ. (ହୟଗ୍ରୀବ+ଆ) ହୟଗ୍ରୀବର ସ୍ତ୍ରୀଲିଙ୍ଗ (ବି) ଦୁର୍ଗା ।
ହୟଘ୍ନ—ପୁଂ. ବି. କରବୀର ବୃକ୍ଷ ।
ହୟଘ୍ନୀ—ସ୍ତ୍ରୀ. ବି. ତେଜବଳ, ତେଜୋବତୀ ।
ହୟଙ୍କଷ—ବି. (ହୟଂ+କଷ୍+କ.ଅ) ଇନ୍ଦ୍ରଙ୍କ ସାରଥି, ମାତଲି, ସାରଥି ।
ହୟଙ୍ଗବୀନ—ଗ୍ରା.ବି.(ସଂ,ହୈୟଙ୍ଗବୀନ) ସଦ୍ୟୋଜାତ ଘୃତ, ସଜଘିଅ ।
ହୟଜ୍ଞ—ବି. ( ହୟ+ଜ୍ଞା+କ. ଅ ) ଅଶ୍ୱାୟୁର୍ବେଦଜ୍ଞ, ଅଶ୍ୱଶାସ୍ତ୍ରବେତ୍ତା, ଅଶ୍ୱ-ଚିକିତ୍ସାଭିଜ୍ଞ, ଅଶ୍ୱପାଳ, ସଇସ ।
ହୟତ୍—ଗ୍ରା. ଅବ୍ୟ. ସମ୍ଭବତଃ ।
ହୟତନ୍ତ୍ର—ବି. ଅଶ୍ୱବିଷୟକ ତନ୍ତ୍ର. ଅଶ୍ୱଶାସ୍ତ୍ର ।
ହୟଦାନବ--ପୁଂ. ବି. ଦାନବ (ଅସୁର)-ବିଶେଷ ।
ହୟଦ୍ୱିଟ୍—ପୁଂ. ବି. ( ହୟ+ଦ୍ୱିଷ୍+ କ. କ୍ୱିପ୍ ) ମହିଷ, ମଇଁଷି ।
ହୟନ—ବି. (ହୟ+ଭା. ଅନ) କର୍ଣ୍ଣୀ-ରଥ, ଆଚ୍ଛାଦିତ ଶକଟ, ଡାଟଗାଡ଼ି ।
ହୟପୁଚ୍ଛିକା (ପୁଚ୍ଛୀ)—ବି. ମାଷପର୍ଣ୍ଣୀ ।
ହୟପ୍ରିୟ--ବି. (୬ତତ୍) ଯବ, ଯବଧାନ ।
ହୟପ୍ରିୟା—ବି. ଅଶ୍ୱଗନ୍ଧା, ଖର୍ଜ୍ଜୁରୀ ।

ହୟମାର (ମାରକ)—ବି. କରବୀର ।
ହୟମାରଣ—ବି. ଅଶ୍ୱତ୍ଥବୃକ୍ଷ ।
ହୟମୁଖ—ବି. ( ବ.ଗ୍ରା ) ଘୋଡ଼ାମୁହାଁ ରାକ୍ଷସବିଶେଷ, ହୟଗ୍ରୀବଦାନବ, ବିଂ. ଘୋଡ଼ାମୁହାଁ, ଅଶ୍ୱମୁଖବିଶିଷ୍ଟ ।
ହୟମେଧ—ବି. ଅଶ୍ୱମେଧ ।
ହୟରାଣ—ଯା. ବି. ଓ ବିଂ. ହଇରାଣ, କ୍ଳାନ୍ତ, କଷ୍ଟଯୁକ୍ତ ।
ହୟବରପ୍ରିୟ—ବି. କଦମ୍ବବୃକ୍ଷ ।
ହୟବାହନ—ପୁଂ. ବି. (ବ.ଗ୍ରା) ସୂର୍ଯ୍ୟ-ପୁତ୍ର, ରେବନ୍ତ, କୁବେର ।
ହୟବାହନଶଙ୍କର—ବି.ରକ୍ତ କାଞ୍ଚନବୃକ୍ଷ
ହୟବିଦ୍ୟା—ବି. ହୟ ବିଷୟକ ବିଦ୍ୟା, ଅଶ୍ୱବିଦ୍ୟା ।
ହୟବୈରୀ—ପୁଂ. ବି. ମହିଷ ।
ହୟଶାଳା—ବି. ଅଶ୍ୱଶାଳା, ଘୋଡ଼ା-ଶାଳ ।
ହୟଶାସ୍ତ୍ର—ବି. ଅଶ୍ୱଶାସ୍ତ୍ର, ଯେଉଁ ଶାସ୍ତ୍ର-ଦ୍ୱାରା ଅଶ୍ୱ ଲକ୍ଷଣ ଓ ରୋଗାଦି ନିର୍ଣ୍ଣୟ କରନ୍ତୁଏ ।
ହୟଶିକ୍ଷା—ବି. ଅଶ୍ୱମାନଙ୍କର ଶିକ୍ଷା, ଘୋଡ଼ାକୁ ମଣ କରିବା ।
ହୟଶିରଃ—ପୁଂ. ବି. (ବ.ବ୍ରୀ) ବିଷ୍ଣୁ ।
ହୟଶିରା—ସ୍ତ୍ରୀ. ବି. ବୈଶ୍ୱାନରଙ୍କ କନ୍ୟା ।
ହୟଶୀର୍ଷ—ପୁଂ. ବି. ବିଷ୍ଣୁ, ନାରାୟଣ, ଶାଳଗ୍ରାମମୂର୍ତ୍ତିବିଶେଷ (ବିଂ) ବ.ବ୍ରୀ, ହୟର ମସ୍ତକପରି ମସ୍ତକ ଯାହାର ।
ହୟସ୍କନ୍ଧ—ବି. ହୟଗ୍ରୀବ, ହୟଶୀର୍ଷ ।
ହୟା—ସ୍ତ୍ରୀ. ବି. ( ହୟ+ଆ ) ଅଶ୍ୱିନୀ, ଘୋଡ଼ୀ, ଅଶ୍ୱଗନ୍ଧା ।
ହୟାଙ୍ଗ—ବିଂ. ଅଶ୍ୱାଙ୍ଗବିଶିଷ୍ଟ ।
ହୟାଗାର—ବି. ( ହୟ+ଆଗାର ) ଅଶ୍ୱଶାଳା, ଘୋଡ଼ାଶାଳ ।
ହୟାତ୍—ଗ୍ରା. ବି. ଜୀବିତକାଳ ।
ହୟାଧ୍ୟକ୍ଷ—ପୁଂ. ବି. (୬ତତ୍) ଅଶ୍ୱାଧ୍ୟକ୍ଷ, ସଇସମାନଙ୍କ ସର୍ଦ୍ଦାର ।
ହୟାନନ୍ଦ—ବି. ଦୁର୍ଗା, ମୁଦ୍ଗ, ମୁଗ ।
ହୟାୟୁର୍ବେଦ—ବି. ଅଶ୍ୱଚିକିତ୍ସା ଶାସ୍ତ୍ର, ଅଶ୍ୱବୈଦ୍ୟକ ।
ହୟାରି—ବି. କରବୀର ।
ହୟାରୋହ—ବି. ଅଶ୍ୱାରୋହୀ ।
ହୟାଳୟ—ବି. ( ୬ତତ୍ ) ଅଶ୍ୱଶାଳା, ଘୋଡ଼ାଶାଳା ।
ହୟାଶନା—ବି. ଶଲ୍ଲକୀ ବୃକ୍ଷ
ହୟାସ୍ୟ—ପୁଂ. ବି. ବିଷ୍ଣୁ, ନାରାୟଣ, ହୟଗ୍ରୀବ, ହୟଶିରଃ ।
ହୟାହ୍ୱୟା—ସ୍ତ୍ରୀ. ବି. ଅଶ୍ୱଗନ୍ଧା ।
ହୟୀ—ପୁଂ. ବିଂ. (ହୟ+ଇନ୍) ଅଶ୍ୱ-ବିଶିଷ୍ଟ, ହୟଯୁକ୍ତ ।
ହୟୀ-ସ୍ତ୍ରୀ.ବି.(ହୟ+ଈ)ଘୋଟକୀ,ଘୋଡ଼ୀ ।
ହୟେଷ୍ଟ—ବି. ଯବ ।
ହୟୋତ୍ତମ-ବି.କୁଳୀନାଶ୍ୱ,ଶ୍ରେଷ୍ଠ ଘୋଟକ ।
ହର୍—ଯା. ବିଂ. ପ୍ରତି, ପ୍ରତ୍ୟେକ,ସମସ୍ତ, ସବୁ, ନାନା, ଅନେକ,ଅନେକରକମ ।
ହର୍‌କତ୍—ଯା. ବି. କଷ୍ଟ, ବିଘ୍ନ,ଅସୁବିଧା, ମନ୍ଦ ଓ ଅଭାବଗ୍ରସ୍ତ ଅବସ୍ଥା, (ବିଂ)ଅସୁ-ବିଧାଗ୍ରସ୍ତ, ଅଭାବଗ୍ରସ୍ତ, (ପ୍ରା. ସମ୍ପ୍ର. ବିଂ) ବିରକ୍ତ ।
ହର୍‌କତ୍‌କରିବା—ଗ୍ରା. କ୍ରି. କଷ୍ଟଦେବା, କଷ୍ଟରେ ପକାଇବା,ଅସୁବିଧାରେ ପକା-ଇବା, (ପ୍ରା. ସମ୍ପ୍ର. କ୍ରି) ବିରକ୍ତକରିବା ।
ହର୍‌କତ୍‌ରେ ପଡ଼ିବା—ଗ୍ରା.କ୍ରି.ଅସୁବିଧା-ଗ୍ରସ୍ତ ବା ଅଭାବଗ୍ରସ୍ତ ଅବସ୍ଥାରେ ପଡ଼ନ୍ତ ହେବା ।
ହର୍‌କତ୍‌ହେବା—ଗ୍ରା.କ୍ରି.ଅସୁବିଧା ଭୋଗ କରିବା, ଅଭାବଗ୍ରସ୍ତ ହେବା ।
ହର୍‌କତିଆ—ଗ୍ରା. ବିଂ. ଅସୁବିଧାଯୁକ୍ତ, କଷ୍ଟଜନକ, ଯେ ହର୍‌କତ୍ ହୁଏ, ଯେ ହର୍‌କତ୍ କରେ ।
ହର୍‌କରା—ଯା. ବି. ସମ୍ବାଦବାହକ,ପ୍ରତି-ହାରୀ, ଚପରାଶି, ଦୂତ,ଡାକବାଲା,ପତ୍ର-ବାହକ ।
ହର୍‌କିସମ୍—ଯା.ବି. ସବୁପ୍ରକାର, ନାନା-ପ୍ରକାର, (ବିଂ) ସବୁପ୍ରକାରର, ନାନା-ପ୍ରକାରର ।
ହର୍‌ଖନ୍—ପ୍ରା. (ସମ୍ପ୍ର) ଅ. ଅନୁକ୍ଷଣ ।
ହର୍‌ଗିଜ୍—ଯା. ଅ. ଆଦୌ, କଦାପି ।

ହର୍‌ଘଣ୍ଟ—ଗ୍ରା.ଅ.ପ୍ରତିମୁହୂର୍ତ୍ତରେ,ସଦା, ସର୍ବଦା, ପୁନଃପୁନଃ ।

ହର୍‌ଡ଼୍ଗା—ପ୍ରା. (ଝଡ଼ଆଲ) ବି. ହଡ଼ଗା ।

ହର୍ ରଂତନ୍—ଗ୍ରା. ବି. ତାସଖେଳରେ ନାଲପାନ ରଙ୍ଗ ।

ହର୍‌ତରଫ—ଯା. ବି. ନାନାଦଗ, ସବୁଆଡ଼, ପ୍ରତ୍ୟେକଦଗ ।

ହର୍‌ତାଲ—ଗ୍ରା. ବି. (ସଂ-ହଟ୍ଟ=ହାଟ ଓ ତାଲକ=ଗୃହ)ବଳୁଆ ହାକିମଙ୍କ କାର୍ଯ୍ୟପ୍ରତି ଅଭିମାନ ପ୍ରଦର୍ଶନ ପୂର୍ବକ ଦୋକାନ ବନ୍ଦ କରିବା ସ୍ଥିତ, ଧର୍ମଘଟ ।

ହର୍‌ଦମ୍—ଯା.ଅ.ହରଘଡ଼ି,ସବୁବେଳେ, ଅଜସ୍ର, ଅବଶ୍ରାନ୍ତଭାବରେ, ( ବଂ ) ଅବଶ୍ରାନ୍ତ ।

ହର୍‌ଦମ୍‌ପେଲ—ଗ୍ରା. ପୁଂ. ବଂ.(ଅଶ୍ଳୀଳ) ଯେ ସର୍ବଦା କାମପ୍ରବୃତ୍ତି ଚରିତାର୍ଥକରିବାରେ ରତ, ଅତିକାମୁକ (ବ୍ୟକ୍ତି), (ସ୍ତ୍ରୀ) ହର୍‌ଦମ୍ ପେଲ୍ନି, ପେଲେଇ ।

ହର୍‌ଦର୍—ଯା.ବି.ବହୁବସ୍ତୁର ହାରାହାରି ମୂଲ୍ୟ, (ବଂ) ହାରାହାରି ।

ହର୍‌ନବାଗୀ—ଗ୍ରା. ବଂ. ବଡ଼ଲୋକିଆ, ନବାବଙ୍କ ଉପଯୁକ୍ତ ( କାର୍ଯ୍ୟକଳାପ ), ଯେଉଁ ସମ୍ପତ୍ତିର ସମସ୍ତ ଆୟ ରାଜ୍ୟର ନବାବଙ୍କ ବ୍ୟକ୍ତିଗତ ଖରଚରେ ଲାଗେ, (ବି) ନବାବ ବା ବଡ଼ଲୋକଙ୍କ ଉପଯୁକ୍ତ ଚାଲିଚଳନ, ନବାବଙ୍କ ନିଜର ବ୍ୟକ୍ତିଗତ ଖରଚରେ ଲାଗିବାପାଇଁ ନିର୍ଦ୍ଦିଷ୍ଟ ଭୂସମ୍ପତ୍ତି ।

ହର୍‌ନଆ—ଗ୍ରା.ବି. ଅନ୍ତ୍ରକୋଷ ରୋଗ ।

ହର୍‌ଫସଲ—ଯା. ବି. ପ୍ରତ୍ୟେକ ଫସଲ, ସମସ୍ତପ୍ରକାର ଫସଲ ।

ହର୍‌ଫସଲି—ଯା. ବଂ. ଯେଉଁ ଜମିରେ ଏକାଧିକ ଫସଲ ହୁଏ ।

ହର୍‌ବକ(ଖ)ତ—ଯା. ଅବ୍ୟ. ସର୍ବଦା ।

ହର୍‌ବର୍—ଗ୍ରା.ବି. ହଇରାଣ ଦେଖ,(ବଂ) ହଇରାଣରେ ପଡ଼ିଥିବା, (ପ୍ରା.ସମ୍ବ.ବଂ) ବ୍ୟସ୍ତ, ବରକ୍ତ, ତରତର ।

ହର୍‌ବର୍‌କରିବା—ଗ୍ରା.କ୍ରି.ହଇରାଣକରିବା, ହରକତ୍ କରିବା ଦେଖ ।

ହର୍‌ବର୍‌ହେବା—ଗ୍ରା. କ୍ରି. ହଇରାଣହେବା ଦେଖ ।

ହର୍‌ବରିଆ—ଗ୍ରା.ବଂ.ହରକତିଆ ଦେଖ ହର୍‌ବର୍ ଦେଖ, (ପ୍ରା. ସମ୍ବଲ) ତରତରିଆ ।

ହର୍‌ବା—ପ୍ରା. (ସମ୍ବଲ) କ୍ରି. ହରିବା ।

ହର୍‌ବୋଲ—ଯା. ବି. ହରିବା ଦେଖ, ( ଗ୍ରା.ବଂ ) ଯେ ଅନ୍ୟସବୁ ପ୍ରାଣୀଙ୍କର ଅନୁସରଣ କରେ, ଯେ ସବୁ ଭାଷାରେ କହିପାରେ ।

ହର୍‌ମଉ(ହୁ)ସୁଲ୍—ଯା.ବଂ.ଯେଉଁ ଜମିରେ ଏକାଧିକ ଫସଲ ହୁଏ ।

ହର୍‌ମି(ଶି)ଶା—ଗ୍ରା. ଅବ୍ୟ. ସର୍ବଦା ।

ହର୍‌ଯ(ଯା)—ଯା. ହରଜ୍ ଦେଖ ।

ହର୍‌ରଙ୍ଗ—ଗ୍ରା. ବି. ସବୁପ୍ରକାର ରଙ୍ଗ, ଅନେକ ରଙ୍ଗ, ନବରଙ୍ଗ,କୌତୁକ ।

ହର୍‌ରଙ୍ଗି(ଆ)—ଗ୍ରା.ବଂ.ନାନାପ୍ରକାରର ନାନାବର୍ଣ୍ଣବିଶିଷ୍ଟ,ନବରଙ୍ଗିଆ,କୌତୁକପ୍ରିୟ, ସର୍ବଦା ପରବର୍ତ୍ତନପ୍ରିୟ ।

ହର୍‌ସା—ଗ୍ରା.ବି.ହରିଦ୍‌ବର୍ଣ୍ଣ, ଶାଗୁଆବର୍ଣ୍ଣ, (ବଂ) ଶାଗୁଆବର୍ଣ୍ଣର ।

ହର୍‌ରୋଜ—ଯା. ଅବ୍ୟ. ପ୍ରତିଦିନ ।

ହର୍‌ଶାଲ୍—ଯା. ଅ. ପ୍ରତିସନ,ପ୍ରତିବର୍ଷ ।

ହର୍‌ହର୍—ପ୍ରା. (ବଲାଙ୍ଗିରପାଟଣା) ବି. ହରଡ଼, (ପ୍ରା. ଖଡ଼ିଆଲ. ବଂ) ଅସ୍ଥିର ।

ହର—ବି. (ହୃ+କ.ଅ)ଶିବ,ମହାଦେବ, ଅଗ୍ନି, ଗର୍ଦ୍ଦଭ, ଗଧ, (ମଁ.ଅ)ଭାଗ,ଅଂଶ, (ଭା.ଅ-ଗଣିତ), ହରଣ, ଏକସଂଖ୍ୟାର ବିଭାଜକ ଅଙ୍କ, ହରଣ, ହେର, (ବଂ) ହରଣକର୍ତ୍ତା,ବାହକ,ବହନକାରୀ, ଯାହା ନାଶକରେ, ନାଶକାରକ, ଚିତ୍ତମୁଗ୍ଧକାରକ,(ଗ୍ରା.କ୍ରି--ଭୁମ୍ଭେ) ହରଣ କର ।

ହରକ—ପୁଂ. ବି. (ହୃ+କ.ଅକ) ଶିବ, ଚୌର, ଅଗ୍ନି, ଗର୍ଦ୍ଦଭ, ହରଣ, (ବଂ) ହରଣକର୍ତ୍ତା, ଖଳ ।

ହରକଙ୍କାଲ—ଗ୍ରା. ବି. ବଣମଲ୍ଲିକା ।

ହରକତ୍(ଇତ୍ୟାଦି)—ଯା. ହର୍‌କତ୍ (ଇତ୍ୟାଦି) ଦେଖ, (ପ୍ରା. ଝଡ଼ିଆଲ. ବି) କ୍ଷତି, ଲୋକସାନ୍ ।

ହରକୁମାର—ପୁଂ.ବି.(ଷତତ୍ପୁ)କାର୍ତ୍ତିକେୟ, ଶିବଙ୍କ ପୁଅ ।

ହରକୁମାରଠାକୁର-ଗ୍ରା.(ନାମ)କଲିକତାର ପ୍ରସିଦ୍ଧ ଜମିଦାର ଠାକୁର ବଂଶ ଭବ ପ୍ରସିଦ୍ଧ ପଣ୍ଡିତ ।

ହରକେଶ —ବି. ହରକେଶ ଦେଖ ।

ହରକୋପାନଳ-ବି.(ଷତତ୍ପୁ)ମହାଦେବଙ୍କ କୋପ ହେଉଥିବୁ ତାଙ୍କ କପାଳ ନେତ୍ରରୁ ବାହାରିଥିବା ଅଗ୍ନି ।

ହରକ୍ଷେତ୍ର—ବି. ମହାଦେବଙ୍କର କ୍ଷେତ୍ର, ମହାଦେବଙ୍କର ସ୍ଥାନ ।

ହରଗୌରୀ—ଗ୍ରା. ବି. ହର ଓ ପାର୍ବତୀ, ଶିବଙ୍କର ଅର୍ଦ୍ଧ ନାରୀଶ୍ୱର ରୂପ, (ସ-ନାମଦ୍ୱ ପକ୍ଷୀ), ହଳାର ଫୁଲ ଓ ତାହାର ଗଛ,ମେଞ୍ଜାତି ଫୁଲ ଓ ତାହାର ଗଛ ।

ହରଗଉରୀ—ଗ୍ରା. ବି. (ସଂ-ହରଗୌରୀ) ଶିବ ଓ ପାର୍ବତୀ ।

ହରଗୁଣ—ଗ୍ରା. ବି. ହରଣ ଓ ଗୁଣନ ।

ହରଗୁଣପୋଥି—ଗ୍ରା.ବି. ଯେଉଁ ବିଷୟକୁ ସର୍ବଦା ଝୁରିବାକୁ ହୁଏ ବା ଘୋଷିବାକୁ ବା ସୁମରିବାକୁ ହୁଏ ।

ହରଗୋବିନ୍ଦ—ଗ୍ରା. ବି. ଶିବ ଓ ବିଷ୍ଣୁ ।

ହରଗୌରୀ-ଗ୍ରା. ବି. ହରଗଉରୀ ଦେଖ, ହରଗୌରୀ ଦେଖ ।

ହରଗୌରୀ—ବି. ଶିବପାର୍ବତୀ, ଶିବଙ୍କର ଅର୍ଦ୍ଧନାରୀଶ୍ୱର ରୂପ ।

ହରଘଡ଼ି—ଗ୍ରା. ଅ. ହର୍‌ଘଡ଼ି ଦେଖ ।

ହରଚଣ୍ଡୀ—ଗ୍ରା.ବି. ପୁରୀସହରର ଦକ୍ଷିଣ ପଶ୍ଚିମରେ ପ୍ରାୟ ଗୃହକୋଶ ଦୂରରେ ସମୁଦ୍ର ବାଲିରେ ପ୍ରତିଷ୍ଠିତ ଦେବୀମୂର୍ତ୍ତି ।

ହରଚୂଡ଼ାମଣି—ବି. ( ମହାଦେବଙ୍କର ଶିରୋଭୂଷଣ ) ଚନ୍ଦ୍ର ।

ହରଜ୍(ଜା)—ଯା. ବି. ବାଧା, ଅସୁବିଧା, ହରକତ, କ୍ଷତି, ହାନି ।

ହରଜା—ପ୍ରା. (ସମ୍ବ,ଖଡ଼ିଆଲ)ବି. କ୍ଷତି, ବିବାହାଦିର ଖର୍ଚ୍ଚ ।

ହରଜାୟା—ସ୍ତ୍ରୀ. ବି. (ଷତତ୍ପୁ) ପାର୍ବତୀ ।

ହରଜିଆ—ଗ୍ରା. ବଂ. ହର୍‌କତିଆ ଦେଖ ।

ହରଡ଼—ଗ୍ରା.ବି. (ସଂ-ହରେଣୁ=ଆଢ଼କୀ)

ଶିମ୍ବାଦିବର୍ଗର ଶସ୍ୟବିଶେଷ, ଦେଶୀ-
ହରଡ଼. କାଙ୍ଗୁହରଡ଼, ପକ୍ଷିବିଶେଷ ।
ହରଡ଼କା—ପ୍ରାଦେ. ( ଖଡ୍ଡିଆଲ ) ବି°.
ଦରପୋଡ଼ା ।
ହରଡ଼ଘଷା—ଗ୍ରା.ବି. (ଲ.ଅର୍ଥ)କୌଣସି
ବ୍ୟକ୍ତିକୁ କଷ୍ଟ ବା ଦଣ୍ଡ ଦେବାପାଇଁ
ତା ପ୍ରତି ପ୍ରୟୋଗ କରାଯିବା ଉପାୟ,
ବିନା ଫଳରେ କରାଯିବା ପରିଶ୍ରମ ।
ହରଡ଼ଘଷାରେପକାଇବା-ଗ୍ରା.କ୍ରି.କୌଣସି
ବ୍ୟକ୍ତିକୁ ଅନର୍ଥକ ଉତ୍ପୀଡ଼ନ କରିବା ।
ହରଡ଼ଘୁମା—ଗ୍ରା. ବି. ଘୁଣ୍ଟୁ ଘୁଘୁମା, ଏକ-
ପ୍ରକାର ପକ୍ଷୀ ।
ହରଡ଼ଚଢ଼େଇ—ଗ୍ରା.ବି. ପାରାବତ ବର୍ଗର
୧୬।୧୭ ଆଙ୍ଗୁଳ ଦୀର୍ଘ ଏକପ୍ରକାର ପକ୍ଷୀ
ହରଡ଼ଝିଟା(ଢ଼ାଙ୍ଗି)—ଗ୍ରା. ବି. ହରଡ଼ଗଛ
କଟାହୋଇ ତହିଁରୁ ଛୁଇଁ ପତ୍ର ଝଡ଼ିଗଲା
ପରେ ଯେଉଁ କାଷ୍ଠମୟ ଓ ପତ୍ରଶୂନ୍ୟ
ଅଂଶ ରହେ ।
ହରଡ଼ଜାଇ—ଗ୍ରା. ବି. ରଗଡ଼ା ହୋଇ
ଚୋପା ବାହାର କରାଯାଇଥିବା ହରଡ଼-
ଫାଳ ।
ହରଡ଼ଜାଲି—ଗ୍ରା.ବି.ହରଡ଼ଜାଇ ଦେଖ,
ଭଙ୍ଗାହରଡ଼ ଡାଲି ।
ହରଡ଼ଫାଳ—ଗ୍ରା. ବି. ରଗଡ଼ା ହୋଇ
ଦୁଇଭାଗରେ ବିଭକ୍ତ ହରଡ଼, ( ବି° )
ହରଡ଼ଫାଳିଆ ଦେଖ ।
ହରଡ଼ଫାଳିଆ—ଗ୍ରା. ବି°. ହରଡ଼ଫାଳ
ଭଳି ଆକୃତିରେ ଚେପ୍ଟା ( ସୁନାର
ଖିଲମାଳ ) ।
ହରଡ଼ବେଙ୍ଗା—ଗ୍ରା. ଅ. କେଳାମାନେ
"ହାବୁଡ଼ାଖେଳ" ରେ ଉଚ୍ଚାରଣ-
କରିବା ନିରର୍ଥକ ବାକ୍ୟ ।
ହରଣ—ବି.(ହୃ+ଭା.ଅନ)ହୃତ,କୌଣସି
ଦ୍ରବ୍ୟକୁ ବଳପୂର୍ବକ ଗ୍ରହଣ, ଲୁଣ୍ଠନ,
ଚୋର, ଅପହରଣ, ଆକର୍ଷଣ, ଠକି
କୌଣସି ପଦାର୍ଥ ନେବା,ଗ୍ରହଣ,ଲୋପ,
ବହନ, ଯୋଦ୍ଧୃତ କରିବା, ( ଗଣିତ )
ଭାଗକରଣ, (କାଳ)କ୍ଷେପଣ, (ମି.ଅନ)
ଯୌତୁକଦ୍ରବ୍ୟ, ଭିକ୍ଷାଦାନ, ଭୁଜ,
ବାହୁ, ଗୁରୁଦକ୍ଷିଣା,ଶୁଳ୍କ,ସ୍ୱର୍ଣ୍ଣ,କପର୍ଦ୍ଦକ,
କଉଡ଼ି,ଉଷ୍ଣୋଦକ,ଗରମପାଣି,(ଗ୍ରା.ଅ)
ବଳପୂର୍ବକ ପରସ୍ତ୍ରୀ ସହବାସ, ଯେଉଁ
ସ୍ତ୍ରୀଙ୍କ ସହବାସ ନିଷିଦ୍ଧ ତାଙ୍କ ସଙ୍ଗେ
ସହବାସ ।
ହରଣକରିବା—ଗ୍ରା. କ୍ରି. ହରିବା, ଚୋରି
କରିବା, କୌଣସି ରାଶିକୁ ଅନ୍ୟ ରାଶି-
ଦ୍ୱାରା ଭାଗକରିବା ନିଷିଦ୍ଧ ସ୍ତ୍ରୀଆଦିଙ୍କ ସହ
ସଙ୍ଗମ କରିବା,ଜବରଦସ୍ତି ନେଇଯିବା,
ପରସ୍ତ୍ରୀଙ୍କୁ ବଳପୂର୍ବକ ନେଇଯିବା ଓ
ସଙ୍ଗମ କରିବା ।
ହରଣଗୁଣନ—ବି. (ଗଣିତ) ଭାଗକରଣ
ଓ ଗୁଣକରଣ, ହରିବା ଓ ଗୁଣିବା ।
ହରଣଚୂଳ—ଗ୍ରା.ବି. ଅବକ୍ଷରଣ, ଚୋର-
କର ଯେଉଁ ଚୂଲିଯିବା ।
ହରଣବାଡ଼ି—ଗ୍ରା. ବି. କଲିକତାର
ଆଲିପୁରରେ ଥିବା ବଡ଼ ଜେଲଖାନା,
କଇଦଖାନା ।
ହରଣୀ—ଗ୍ରା. ବି. ହରିଣୀ ଦେଖ ।
ହରଦର—ଗ୍ରା. ଅ. ହର୍‌ଦର୍ ଦେଖ,
ମୋଟାମୋଟି ।
ହରଦାସ—ଗ୍ରା. ବି. ଜଣେ ଉତ୍କଳୀୟ
କବିଙ୍କ ନାମ, ଏ ହରଦାସମାଳିକା
ରଚନା କରିଥିଲେ ।
ହରତାଳ—ଯା.ବି.ଏକମେଳରେ ସମସ୍ତ
କାର୍ଯ୍ୟ ବନ୍ଦକରିବା, ଧର୍ମଘଟ ।
ହରତେଜଃ—ବି.(ତନ୍ତ୍ର) ପାରଦ,ପାରା,
ଶିବବୀର୍ଯ୍ୟ ।
ହରଦଗ୍ଧମୂର୍ତ୍ତି—ବି. କାମ, କନ୍ଦର୍ପ ।
ହରତାଡ଼(ଳ)—ଗ୍ରା. ବି. ତାଳଜାତୀୟ
୧୦।୧୨ ଫୁଟ ଉଚ୍ଚ ବନ୍ୟବୃକ୍ଷବିଶେଷ ।
ହରନାରାୟଣ—ବି. ଶିବ ଓ ବିଷ୍ଣୁ ।
ହରନ୍ଧ—ଗ୍ରା. (ସମ୍ବ) ବି. ଗ୍ରୀଷ୍ମଋତୁରେ
ନଦୀରେ ଡଙ୍ଗା ଯିବାକୁ ପାଣି ଯଥେଷ୍ଟ
ନ ଥିଲେ ନଦୀଗର୍ଭରେ ଖୋଳାଯିବା
ନାଳୀ ।
ହରନେତ୍ର—ବି. ଶିବଙ୍କର ଚକ୍ଷୁତ୍ରୟ,
(ଜ୍ୟୋତିଷ)ତିନ, ୩ ସଂଖ୍ୟା ।
ହରନେତ୍ରଜନ୍ମା—ବି°.(ବି.ଗ୍ରା) ଶିବଙ୍କର
ଚକ୍ଷୁରୁ ଜାତ ।
ହରନ୍ତା—ଗ୍ରା. ବି. ବଧ, ନିଧନ, ( ବି° )
ହରଣକାରୀ ।
ହରପ୍ (ଫ୍)—ଯା.ବି. ବର୍ଣ୍ଣମାଳାର ଅକ୍ଷର,
ବର୍ଣ୍ଣ, ହସ୍ତାକ୍ଷର, ପଦାତିକ ।
ହରପ—ପ୍ରା. (ବଲାଙ୍ଗିର)ବି. ବିଶୃଙ୍ଖଳା ।
ହରପର—ବି. କାମ, କନ୍ଦର୍ପ, ମଦନ ।
ହରପା—ପ୍ରା. (ସମ୍ବ) ବି. ଚଟିଯୋତା ।
ହରପାର୍ବତୀ—ବି. ଶିବ ଓ ପାର୍ବତୀ ।
ହରପ୍ଲା—ଗ୍ରା.ବି.ପଞ୍ଜାବର ସ୍ଥାନବିଶେଷ ।
ହରପ୍ରସାଦ—ବି. ମହାଦେବଙ୍କର ଅନୁ-
ଗ୍ରହ, ଶିବଙ୍କୁ ନୈବେଦ୍ୟ ଖାଦ୍ୟଦ୍ରବ୍ୟ ।
ହରପ୍ରିୟ—ବି. କରବୀର ଫୁଲ, ଧାରୁଆ
ଗଛ, ଧୁସ୍ତୁର ବୃକ୍ଷ ।
ହରପ୍ରିୟା—ସ୍ତ୍ରୀ. ବି. (ତନ୍ତ୍ର) ପାର୍ବତୀ ।
ହରଫସଲ—ଗ୍ରା.ବି.ହର୍‌ଫସଲ ଦେଖ ।
ହରବର—ବି.(ମଧ୍ୟ-କା.ଧା)ଶିବଙ୍କ ପ୍ରଦତ୍ତ
ବର,(ଗ୍ରା.ବି)ହଇରାଣ,ହରକତ,ବିପଦ,
ଅନିଷ୍ଟ,ହର୍‌ବର ଦେଖ,(ବି°)ବ୍ୟାକୁଳ,
ହଇରାଣ ।
ହରବରିଆ—ଗ୍ରା.ବି°.ହରବର,କଷ୍ଟପ୍ରାପ୍ତ,
(ପ୍ରା. ସମ୍ବ. ବି°) ଅସ୍ଥିରମନା ।
ହରବଲ୍ଲଭ—ବି. ସଙ୍ଗୀତ ଦାମୋଦର
ମତରେ ୭୦ ତାଳରୁ ଗୋଟିଏ ।
ହରବା(କା)—ଗ୍ରା. ବି. ଶାଖାଶ୍ରୟୀବର୍ଗର
ହରିଦ୍‌ବର୍ଣ୍ଣ(ଶାଗୁଆ) ୮।୧୦ ଆଙ୍ଗୁଳ
ଦୀର୍ଘ ପକ୍ଷୀ ।
ହରବାହନ—ବି. (ତନ୍ତ୍ର) ଷଣ୍ଢ, ବୃଷ ।
ହରବିଳାସିନୀ—ବି. ହରିଦ୍ରା, ହଳଦୀ ।
ହରବୀଜ—ବି. (ତନ୍ତ୍ର) ପାରଦ, ଶିବଙ୍କ
ବୀର୍ଯ୍ୟ ।
ହରବୋଲି—ଯା.ବି. ଅନ୍ୟ ପକ୍ଷିର ସ୍ୱରକୁ
ଅନୁକରଣ କରି ଗାନ କରିପାରୁଥିବା
ଏକପ୍ରକାର ପକ୍ଷୀ, ଅନ୍ୟର ସ୍ୱର ଅନୁ-
କରଣପଟୁ ବ୍ୟକ୍ତି, ଅନ୍ୟ ସ୍ୱରର
ଅନୁକରଣ କରିବା କୌଶଳ ।
ହରମୁହାଁ—ପ୍ରା. (ସମ୍ବ)ବି°.ଯେ ଉପରୋଧ
ନ ରଖି ଯାହା ଇଚ୍ଛା ତାହା କହେ ।
ହରରଥ—ବି. (ତନ୍ତ୍ର) ପୃଥିବୀ ।

ହରଶତ୍ରୁ—ବି.(୬ତତ୍ପୁ)ମଦନ,କାମଦେବ।
ହରରୂପ—ବି. ଶିବ, ମହାଦେବ।
ହରଲ୍—ପ୍ରା. (ଖଡ଼ିଆଳି) ବି. ହରଡ଼-ଚଢ଼େଇ।
ହରଲୀ-ପ୍ରା.(ଖଡ଼ିଆଳ)ବି.କାନ୍ଦବୋବାଳି
ହରଲୋଚନ—ବି. (୬ତତ୍ପୁ) ହରନେତ୍ର ଦେଖ।
ହରଶିରା—ଗ୍ରା.ବି.ଶିବଙ୍କ ଶୋଭା,(ଲ.ଅର୍ଥ ନଗ୍ନଅବସ୍ଥା, ଦିଗମ୍ବରତ୍ୱ।
ହରଶେଖରା—ସ୍ତ୍ରୀ.ବି.ଗଙ୍ଗାନଦୀ,ଜାହ୍ନବୀ. ଭଗୀରଥୀ।
ହରଷ-ଗ୍ରା.ବି.(ପଦ୍ୟ.ସଂ-ହର୍ଷ)ହର୍ଷ ଦେଖ।
ହରଷିତ—ଗ୍ରା. ବି°. ହୃଷ୍ଟ, ଆନନ୍ଦିତ. ହର୍ଷଯୁକ୍ତ।
ହରଷେ—ଗ୍ରା. କ୍ରି. ବି°. ଆନନ୍ଦରେ।
ହରସୂନୁ—ବି.(୬ତତ୍ପୁ)କାର୍ତ୍ତିକେୟ,ସ୍କନ୍ଦ
ହରସ୍ତାପ୍—ଗ୍ରା. ଅବ୍ୟ.ବରାବର. ମୂଳରୁ. ଆଦୌ, ଜମାରୁ।
ହରସ୍ୱାନ୍-ପୁଂ.ବି°.ବେଗବାନ୍,ବେଗବିଶିଷ୍ଟ
ହରହରବମ୍ବମ୍—ଗ୍ରା. ଅ. ମହାଦେବଙ୍କ ନିକଟରେ ଉପସ୍ଥିତ ଭକ୍ତଙ୍କ ଡାକ।
ହରହର—ବି. ଶିବ ଓ ବିଷ୍ଣୁ।
ହରହାର—ବି.(ହର+ହାର)୬ତତ୍ପୁ;ସର୍ପ
ହରହରା—ବି. ହାଡ଼ହରା,ଦ୍ରାକ୍ଷା,ଅଙ୍ଗୁର।
ହରା—ସ୍ତ୍ରୀ. ବି°. ଶୋକହରା, ଦୁଃଖହରା, (ଗ୍ରା.ବି)ହରଣ ଦେଖ.ହଜିବା,ହାରିବା. ପରାଜୟ, ହରିଦ୍ୱର୍ଣ୍ଣ, (ଗ୍ରା.ବି°) ହୃତ, ହରଣକାରୀ,ଯେ ହଜାଇ ଥାଏ,ପରାସ୍ତ. (ପ୍ରା. ବଲାଙ୍ଗିର. ବି) ଶିଶୁ, (ପ୍ରା. ଖଡ଼ିଆଳି,ବି°)ପରାଜିତ,ଶାଗୁଆ(ବର୍ଣ୍ଣ)।
ହରା(ରେ)ଇବା—ଗ୍ରା.କ୍ରି. ହାରିବାକ୍ରିୟାର ଣିଜନ୍ତ ରୂପ,ହଜାଇବା,ପରାସ୍ତକରିବା. ଜୁର କରିବା, ହରିବା ଦେଖ, ଚ୍ୟୁତ-ହେବା, ନଷ୍ଟ କରିବା,ଜ୍ୱରାକ୍ରାନ୍ତ ବୋଧ କରିବା, ଜିଣିବା, ପଣ ଜୁଆଆଦି ଖେଳରେ ପରାସ୍ତହୋଇ ରଖିତ ପଣକୁ ଅପରପକ୍ଷର ହସ୍ତଗତ ହେବାର କାରଣ ହେବା। [ ହାରଜିତ।
ହରାଉଜା—ପ୍ରାଦେ. ( ଖଡ଼ିଆଳ ) ବି. ହରାଣ—ଗ୍ରା.ବି.ହରଣ ଦେଖ,ହଜାଇବା, ଚ୍ୟୁତ ହେବା, ( ଗଣିତ ) ଭାଗକରଣ, ହରାଇବା, ପରାଜୟକରଣ।
ହରାଦଳ—ପ୍ରା. (ସମ୍ବଲ) ପରାଜିତ ଦଳ ବା ପକ୍ଷ।
ହରାଦ୍ରି-ବି.(ହର+ଅଦ୍ରି)କୈଳାସପର୍ବତ।
ହରାବଲ(ଲ୍)—ସ୍ତ୍ରୀ. ବି. ସେନାଦଳର ଅଗ୍ରବର୍ତ୍ତୀ ଦଳ, ଠଗ ବା ଡକାୟତ-ମାନଙ୍କର ନେତା ବା ସରଦାର।
ହରାମ୍—ଯା. ବି°. ନିଷିଦ୍ଧ, ଅନୁଚିତ, ପାପଜନକ, (ବି) ନିଷିଦ୍ଧ ଖାଦ୍ୟଦ୍ରବ୍ୟ, ନିଷିଦ୍ଧକର୍ମ,ବେଇମାନୀ.ଅଧର୍ମ, ବିଶ୍ୱାସ-ଘାତକତା, ପାପ, ବ୍ୟଭିଚାର।
ହରାମ୍ଖୋର—ଯା. ବି°. ନିଷିଦ୍ଧଖାଦ୍ୟ ଖାଦକ,ନିଷିଦ୍ଧ ବା ପାପଜନକ ଭାବରେ ଅର୍ଜିତ ଧନରେ ଜୀବିକା ନିର୍ବାହକାରୀ।
ହରାମ୍ଖୋରି—ଯା. ବି. ହରାମଖୋରର କର୍ମ ବା ଅବସ୍ଥା।
ହରାମ୍ଜାଦ୍ଗୀ—ଯା.ବି.ହରାମଜାଦାପଣ।
ହରାମ୍ଜାଦା—ଯା.ବି°.ବ୍ୟଭିଚାରରୁ ଉତ୍ପନ୍ନ, (ଗାଳି) ପାଜି, ଦୁଷ୍ଟ, ବର୍ଣ୍ଣସଙ୍କର,(ସ୍ତ୍ରୀ) ହରାମ୍ଜାଦୀ।
ହରାମି—ଯା. ବି. ହରାମ୍ହେବା ଅବସ୍ଥା।
ହରାରଙ୍ଗ—ଗ୍ରା. ବି. (ସଂ-ହରିତ୍+ରଙ୍ଗ) ହରିଦ୍ୱର୍ଣ୍ଣ।
ହରାରାତି—ବି. (ହର+ଅରାତି) ୬ତତ୍ପୁ; କାମ, କନ୍ଦର୍ପ।
ହରାବାସ—ବି. ଶିବଙ୍କର ବସତି ସ୍ଥାନ, କୈଳାସ ପର୍ବତ।
ହରାହରି-ଗ୍ରା. ବି ଓ ବି°.ହାରହାରି ଦେଖ, ମୋଟଉପରେ ହିସାବ, ମୋଟାମୋଟି, ହରଣଆଦି କାର୍ଯ୍ୟ,ହାରିବା ଓ ଜିତିବା, ଜୟ ଓ ପରାଜୟ,ଏକପ୍ରକାର ଶାକଗୁଳ୍ମ
ହରାହେ(ଯି)ବା—ପ୍ରା. (ମେଦିନୀପୁର)କ୍ରି. ହଜିବା।
ହରି—ବି.(ହୃ+କ.ଇ) ଭଗବାନ୍,ବିଷ୍ଣୁ, ଶ୍ରୀକୃଷ୍ଣ, ବ୍ରହ୍ମା, ଶିବ, ସିଂହ, ବାନର, ଭେକ, ବେଙ୍ଗ, ସର୍ପ, ଶୁକପକ୍ଷୀ, ଶୁଆ, ଚନ୍ଦ୍ର, ସୂର୍ଯ୍ୟ, ବାୟୁ, ଆକାଶ,ଅଶ୍ୱ,ଯମ, କିରଣ, ଇନ୍ଦ୍ର, ଦେଶବିଶେଷ(ପୁରାଣ), ମୟୂର,କୋକିଳ,ହଂସ,ଅଗ୍ନି. ଭର୍ତ୍ତୃହରି (ରାଜା ଓ କବିବିଶେଷ), ଶାଗୁଆବର୍ଣ୍ଣ, ପିଙ୍ଗଳବର୍ଣ୍ଣ. କପିଳବର୍ଣ୍ଣ, କହରା ରଙ୍ଗ, ପୀତବର୍ଣ୍ଣ. ସିଂହରାଶି, ଗରୁଡ଼ଙ୍କର ଏକ ପୁତ୍ର, ପୌରାଣିକ ପର୍ବତବିଶେଷ. ୧୮ ଅକ୍ଷରବିଶିଷ୍ଟ ଛନ୍ଦ, ବୌଦ୍ଧଶାସ୍ତ୍ର ଲିଖିତ ଖୁବ୍ ବଡ଼ସଂଖ୍ୟା,(ବି°) ହରିତ୍,ପିଙ୍ଗଳ, ହଳଦିଆ, କହରା, ( ବି ) ଜଗନ୍ନାଥ-ମହାପ୍ରଭୁ।
ହରିଆ—ଗ୍ରା.ପୁଂ.ବି.ହରିନାମଧାରୀ ବ୍ୟକ୍ତିର ଅନାଦରାର୍ଥକ ଡାକନାମ, (ପ୍ରା.ଖଡ଼ି.ବି) ଲୋକ, ବ୍ୟବସାୟୀ, (ଯଥା:—ଦହି-ହରିଆ)।
ହରିଉଡ଼ିଯିବେ—ଗ୍ରା. ଅ. ଏକଥାକୁ ମୁଁ ଭାଜନ ଶୁଣେ,ଏକଥାକୁ ମୁଁ କରିପାରିବି ନାହିଁ।
ହରିଏଲ୍ଡ଼ଆଁସ—ପ୍ରା. (ଖଡ଼ିଆଳ) ବି, ଶ୍ରାବଣ ଅମାବାସ୍ୟା।
ହରିଏଲ୍ଡ଼ଲ୍—ପ୍ରା. (ଖଡ଼ିଆଳ) ବି, ଶତାବରୀ ଗୁଳ୍ମ।
ହରିକ—ବି. ( ହୃ+ଇକ ) ଅକ୍ଷକ୍ରୀଡ଼କ, ପଶାଖେଳାଳି, ପୀତହରିଦ୍ୱର୍ଣ୍ଣ ଅଶ୍ୱ, ଚୋର।
ହରିକଥା—ବି. ଭଗବାନଙ୍କ ସମ୍ବନ୍ଧେ ଆଲୋଚନା ବା କଥାବାର୍ତ୍ତା,ଧର୍ମ ସମ୍ବନ୍ଧୀୟ ଆଲୋଚନା, (ଗ୍ରା.ବି)ପୌରାଣିକ ଉପାଖ୍ୟାନ, ଜଣେ ବ୍ୟକ୍ତିଙ୍କ ଦ୍ୱାରା ରସମୟ ଗଦ୍ୟରେ ଓ ପଦ୍ୟରେ ପୌରାଣିକ ଉପାଖ୍ୟାନର ଆବୃତ୍ତିସହ ଅଭିନୟ,(ଦ୍ରାବିଡ଼-ତେଲଗୁ ଭାଷାରେ'ହରିକଥା'ବହୁକାଳରୁ ପ୍ରଚଳିତ, ଓଡ଼ିଆରେ ଏ ରୀତି ପୂର୍ବେ ନ ଥିଲା, ବର୍ତ୍ତମାନ ପାରଳାଖେମୁଣ୍ଡିର ଶ୍ରୀଯୁକ୍ତ କରୁଣାନିଧି ପଟ୍ଟନାୟକ ଓଡ଼ିଶାରେ 'ହରିକଥା' ର ଆରମ୍ଭ କରିଅଛନ୍ତି, ଏଥିରେ କଥକ ପୋଷାକପିନ୍ଧି ଠିଆ ହୋଇ କୌଣସି ପୌରାଣିକ ଉପାଖ୍ୟାନକୁ ଅବଲମ୍ବନ କରି ତାହାର ଗଦ୍ୟରେ ଅର୍ଥସୂଚନା ଦିଅନ୍ତି ଓ ମଝେ

ମଧ୍ୟେ ଛନ୍ଦୋବଦ୍ଧ ସଙ୍ଗୀତ ଗାନ ଏବଂ ତିଶ୍ରମ୍ଭେ କଥୋପକଥନ କରନ୍ତି) ।
ହରକର୍ମ—ବି. ଯଜ୍ଞ ।
ହରକା—ଗ୍ରା. ଅ. ହେଉଛି, ଇତ୍ୟାଦି, ଫିରେର ।
ହରକାଠ—ସ୍ତ୍ରୀ.ବି.ଅର୍ଗଳବିଶେଷ,ଏଥିରେ ପୂର୍ବେ ଦଣ୍ଡ୍ୟ ବ୍ୟକ୍ତିର ପଦଦ୍ୱୟକୁ ଭରି ତାକୁ ଦଣ୍ଡ ଦିଆଯାଉଥିଲା,ହଣ୍ଡିକାଠ ଦେଖ ।
ହରକୀର୍ତ୍ତନ—ବି. ହରିନାମ କୀର୍ତ୍ତନ, ଗୀତବାଦ୍ୟସହ ହରିନାମ ଗାନ ।
ହରକୃଷ୍ଣ—ବି. ବିଷ୍ଣୁଙ୍କର ନାମଦ୍ୱୟ, ଲୋକଙ୍କୁ ଡକାଯିବା ନାମ ।
ହରକୃଷ୍ଣମହାପାତ୍ର—ଗ୍ରା.ପୁଂ.ବି.'ରୁକ୍ମିଣୀ-ବିଳାସ' ନାମକ ଗ୍ରନ୍ଥର ପ୍ରଣେତା ।
ହରକେଳୀୟ—ବି. ବଙ୍ଗଦେଶ, (ବିଂ) ବଙ୍ଗୀୟ, ବଙ୍ଗଦେଶୀୟ ।
ହରକେଶ—ବି.(ହର+କ+ଈଶ)ଶିବ, ଯକ୍ଷବିଶେଷ, ସୂର୍ଯ୍ୟଙ୍କର ପ୍ରଧାନ ସାତ-ଜଣ ମଧ୍ୟରୁ ଏକ, ଶ୍ୟାମଳ ନାମକ ଯାଦବଙ୍କ ପୁତ୍ର, (ବିଂ) କହ୍ଲରା କେଶ-ବିଶିଷ୍ଟ ।
ହରକାନ୍ତ—ବି. ଘୋଟକ ।
ହରକାନ୍ତା—ସ୍ତ୍ରୀ. ବି. ବହ୍ନୁକାନ୍ତା ।
ହରକ୍ଷେତ୍ର—ବି. ହରିହରକ୍ଷେତ୍ର ଦେଖ ।
ହରଖ—ପ୍ରା. (ଭତଡ଼ଙ୍କଖୀ) ବି. ହର୍ଷ, ଆନନ୍ଦ ।
ହରଗନ୍ଧ—ବି. ହଳଦିଆ ଚନ୍ଦନ,କୁଙ୍କୁମା-ଗୁରୁ ଚନ୍ଦନ ।
ହରଗୁଣ—ବି. ହରିଙ୍କର ଗୁଣ, ହରିନାମ ସଙ୍କୀର୍ତ୍ତନ, (ଗ୍ରା.ବି) ହରଣ ଓ ଗୁଣନ ।
ହରଗୃହ—ବି. ( ଵତନ୍ତ୍ର ) ବିଷ୍ଣୁମନ୍ଦିର, ମହାଭାରତୋକ୍ତ ନଗରବିଶେଷ, ଏକ-ଚକ୍ର, ଶୂନ୍ୟପୁରୀ ।
ହରଗୋବିନ୍ଦ—ହରିଙ୍କର ଦୁଇଟି ନାମ ।
ହରଗୋବିନ୍ଦମୁଣି-ଗ୍ରା.ବି. ହରିନାମ ଭଜନ ପୂର୍ବକ ଭିକ୍ଷାକର ତଣ୍ଡୁଳପଲ୍ଲବ ଭିକ୍ଷାନ୍ନ ଯେଉଁ ମୁଣିରେ ରଖନ୍ତି ।
ହରଚନ୍ଦନ-ବି.ଦେବତରୁବିଶେଷ, ପୀତ-ଚନ୍ଦନ,କଦମ୍ବ,ପଦ୍ମକେଶର,ଜ୍ୟୋତ୍ସ୍ନା, କୁଙ୍କୁମ, ସାରଚନ୍ଦନ,ଗୋଶୀର୍ଷ.(ଗ୍ରା.ବି) କ୍ଷତ୍ରିୟ ଓ ରାଜାମାନଙ୍କର ବଂଶୋପାଧି-ବିଶେଷ,ତାଳଚେର ରାଜାଙ୍କ ବଂଶୋପାଧି ।
ହରଚନ୍ଦନଦେବ—ଗ୍ରା. ବି. ଲୀଳାବତୀ କାବ୍ୟ ରଚୟିତା ଜନୈକ ଗଡ଼ଜାତ ରାଜା ।
ହରଚରଣ-ବି(ଵତନ୍ତ୍ର)ଭଗବାନଙ୍କର ପାଦ ।
ହରଚର୍ମ—ବି. ( ଵତନ୍ତ୍ର ) ବ୍ୟାଘ୍ରଚର୍ମ ବାଘଚମଡ଼ା ।
ହରଚାପ—ବି. (ଵତନ୍ତ୍ର) ଇନ୍ଦ୍ରଚାପ ।
ହରଜ—ପୁଂ.ବି. (ହର+ଜନ୍+କ.ଅ) ହରିଙ୍କର ପୁତ୍ର,(ବିଂ)ହରିଙ୍କଠାରୁ ଜାତ ।
ହରଜଟା—ସ୍ତ୍ରୀ. ବି. ରାମାୟଣୋକ୍ତ ଜଣେ ରାକ୍ଷସୀ ।
ହରଜନ—ବି.(ଵତନ୍ତ୍ର)ଭଗବାନଙ୍କ ଭକ୍ତ, ବିଷ୍ଣୁଭକ୍ତ, (ଗ୍ରା.ବି-ଆଧୁନିକ)ହିନ୍ଦୁସମା-ଜର ତଥାକଥିତ ଅସ୍ପୃଶ୍ୟ ଜାତିଭୁକ୍ତ ବ୍ୟକ୍ତିମାନେ ।
ହରଜନମ—ଗ୍ରା. ବି. ହରଜନ୍ମ ଦେଖ ।
ହରଜନ୍ମ-ବି.(ଵତନ୍ତ୍ର) ବିଷ୍ଣୁଙ୍କର ପୃଥିବୀରେ ଅବତାର, ଭାଦ୍ର କୃଷ୍ଣ ଅଷ୍ଟମୀ ଦିନରେ ଶ୍ରୀକୃଷ୍ଣଙ୍କର ଜନ୍ମ, ଜନ୍ମାଷ୍ଟମୀରେ କରା-ଯିବା ବ୍ରତ ଓ ଉତ୍ସବ ।
ହରଜନ୍ମାଷ୍ଟମୀ—ବି. ଶ୍ରୀକୃଷ୍ଣଙ୍କ ଜନ୍ମଦିଅ (ଭାଦ୍ର କୃଷ୍ଣ ଅଷ୍ଟମୀ) ଓ ଏଦିନ କରାଯିବା ବ୍ରତ ଓ ମହୋତ୍ସବ ।
ହରଜତମଧ୍ୟା-ସ୍ତ୍ରୀ. ବିଂ. ସିଂହକଟିବିଶିଷ୍ଟା, କ୍ଷୀଣକଟିବିଶିଷ୍ଟା (ସ୍ତ୍ରୀ) ।
ହରଜୀବନ—ବି. ଚଣକ ବୃକ୍ଷ ।
ହରଡ଼ା—ଗ୍ରା. ବି. ହରିତକୀ ଦେଖ, ହରଡ଼ା ଆକୃତିର ସୁନାର କଣ୍ଠି ।
ହରଡ଼ାକଣ୍ଠୀ—ଗ୍ରା. ବି. ହରଡ଼ା ଫଳ ଆକାରର ସୁନାର କଣ୍ଠାଭରଣର ଦାନା ।
ହରଡ଼ାଖଣ୍ଡି—ଗ୍ରା. ବି. ଗଞ୍ଜାମ ବ୍ରହ୍ମପୁର ସହରର ଉପକଣ୍ଠରେ ଥିବା ପ୍ରସିଦ୍ଧ ବୈଷ୍ଣବ ମଠ ।
ହରଣ—ପୁଂ. ବି. (ହୃ+କ.ଇନ) ମୃଗ, ମିରଗ, ଶିବ, ବିଷ୍ଣୁ, ସୂର୍ଯ୍ୟ, ହଂସ, ଶୁକ୍ଳବର୍ଣ୍ଣ,ପାଣ୍ଡୁବର୍ଣ୍ଣ, ଐରାବତ ବଂଶୋ-ଦ୍ଭୂତ ହସ୍ତୀବିଶେଷ,ମୃଗଜାତୀୟ ପୁରୁଷ, (ବିଂ) ପାଣ୍ଡୁର, କହ୍ଲରା, (ସ୍ତ୍ରୀ)ହରିଣୀ ।
ହରଣକ—ପୁଂ.ବି.(ହରଣ+କ)ହରିଣ-ଶିଶୁ, ହରଣ ଶବ୍ଦର ଅର୍ଥ ।
ହରଣକଲଙ୍କ—ପୁଂ. ବି. ମୃଗାଙ୍କ,ଚନ୍ଦ୍ର ।
ହରଣଦୃଶା-ସ୍ତ୍ରୀ.ବିଂ.(ବ.ବ୍ରୀ) ଏଣୀନୟନା, ଯେଉଁ ସ୍ତ୍ରୀର ଚକ୍ଷୁ ମୃଗନେତ୍ର ପରି ଲମ୍ବ ସରୁ ଓ ମନୋହର ।
ହରଣଧାମା—ପୁଂ. ବି. ଚନ୍ଦ୍ର ।
ହରଣନୟନା-ସ୍ତ୍ରୀ.ବି.ହରଣଦୃଶା ଦେଖ ।
ହରଣନର୍ତ୍ତକ—ବି.କିନ୍ନର,ସ୍ୱର୍ଗଗାୟକ ।
ହରଣ(ଣୀ)ପ୍ଲୁତା—ବି. ବୃତ୍ତବିଶେଷ, ୧ମ ଓ ୩ୟ ପାଦରେ ୧୧ ଏବଂ ୨ୟ ଓ ୪ର୍ଥ ପାଦରେ ୧୨ ଅକ୍ଷର ଥାଏ ।
ହରଣଲକ୍ଷଣ—ବି. ମୃଗାଙ୍କ, ଚନ୍ଦ୍ର ।
ହରଣହୃଦୟ—ପୁଂ. ବିଂ. (ବ.ବ୍ରୀ) ଭୀରୁ ଡରକୁଳା(ଳୀ), ଡରୁଆ (ବ୍ୟକ୍ତି),ଭୀତ ।
ହରଣଶୃଙ୍ଗ—ବି. ମିରିଗ ଶିଙ୍ଗ ।
ହରଣାକ୍ରୀଡ଼ନ—ବି. ମୃଗୟା ।
ହରଣାକ୍ଷ—ପୁଂ. ବିଂ. (ବ.ବ୍ରୀ) ମୃଗପରି ଚକ୍ଷୁବିଶିଷ୍ଟ, (ସ୍ତ୍ରୀ) ହରଣାକ୍ଷୀ ।
ହରଣାକ୍ଷୀ—ସ୍ତ୍ରୀ.(ହରଣ+ଅକ୍ଷି+ଅ+ଈ) ହରଣଦୃଶା ଦେଖ ।
ହରଣାଙ୍କ—ପୁଂ. ବି. ଚନ୍ଦ୍ର, ମୃଗାଙ୍କ ।
ହରଣାଶ୍ୱ-ବି. (ବ.ବ୍ରୀ)ମୃଗବାହନ,ବାୟୁ ।
ହରଣିଆଗନ୍ଧ—ଗ୍ରା. ବି. ଏକପ୍ରକାର ଅପ୍ରୀତିକର ଗନ୍ଧ ।
ହରଣମଣି—ପୁଂ.ବି.(କ.ଧା)ମରକତମଣି ।
ହରଣୀ—ସ୍ତ୍ରୀ. ବି. ( ହରଣ+ଈ ) ମୃଗୀ,ମାଈମିରଗ,ପଦ୍ମିନୀଆଦି ୪ପ୍ରକାର ସ୍ତ୍ରୀମଧ୍ୟରୁ ଏକତମା,ଚିତ୍ରିଣୀ ସ୍ତ୍ରୀ,ତରୁଣୀ, ବରନାରୀ, ଶ୍ରେଷ୍ଠା ସ୍ତ୍ରୀ, ଚମ୍ପକଗୌରୀ ସ୍ତ୍ରୀ, ଲକ୍ଷ୍ମୀ,ପିଙ୍ଗ,ସୁବର୍ଣ୍ଣପ୍ରତିମା,ଅପ୍ସରୋ-ବିଶେଷ ୧୭ ଅକ୍ଷର ବିଶିଷ୍ଟ ଛନ୍ଦୋ-ବିଶେଷ.ମଞ୍ଜିଷ୍ଠା,ବଜୟା,ସିଦ୍ଧି,ସ୍ୱର୍ଣ୍ଣଯୂଥୀ, ହରଡ଼ା ।
ହରିତ୍—ବି.(ହୃ+କ.ଇତ୍)ଶାଗୁଆ ବର୍ଣ୍ଣ, ଶ୍ୟାମପୀତ ମିଶ୍ରିତ ବର୍ଣ୍ଣ, ଶ୍ୟାମବର୍ଣ୍ଣ, ନୀଳପୀତ ମିଶ୍ରିତ ବର୍ଣ୍ଣ, ଅଶ୍ୱବିଶେଷ,

ତୃଣ, ମୁଦ୍ଗ, ମୁଗ, ସୂର୍ଯ୍ୟ, ସିଂହ, ବିଷ୍ଣୁ, ଭେକ, ହରିଡ଼ା, ହଳଦିଆ ବର୍ଣ୍ଣ,ବାଦାମୀ ରଙ୍ଗ, (ବିଂ) ହରିଦ୍ବର୍ଣ୍ଣବିଶିଷ୍ଟ ।

ହରିତ୍ରଖଣ୍ଡ—ଗ୍ରା. ବି. ରବିଫସଲ ।

ହରିତ୍ରପର୍ଣ୍ଣ—ବିଂ. (ବି.ସ୍ତ୍ରୀ) ହରିଦ୍ବର୍ଣ୍ଣ ପତ୍ରଯୁକ୍ତ, (ବି) ମୂଳା, ମୂଳକ ।

ହରିତ—ବି. ( ହୃ + କ.ଇତ ) ହରିତ୍, ହରିଦ୍ବର୍ଣ୍ଣ, ସିଂହ,ସ୍ଯୌଣେୟକ ଦେଖ. ଗ୍ରନ୍ଥିପର୍ଣ୍ଣ=ଗଣ୍ଠିଅନା, ହରିତପକ୍ଷୀ= ହରିଡ଼ଚଢ଼େଇ, ସୂର୍ଯ୍ୟବଂଶୀୟ ହରିଶ୍ଚନ୍ଦ୍ର ରାଜାଙ୍କ ନାତି, ରୋହିତାଶ୍ୱଙ୍କ ପୁଅ, କଶ୍ୟପଙ୍କ ଏକପୁତ୍ର,ଯଦୁଙ୍କର ଏକପୁତ୍ର, ଯୁବନାଶ୍ୱଙ୍କ ଏକପୁତ୍ର,ସେନା,ଶାକଭାଜି, ସବୁଜ,(ବିଂ)ହରିଦ୍ବର୍ଣ୍ଣବିଶିଷ୍ଟ,ଶାଗୁଆ, ହଳଦିଆ, ବାଦାମୀ, ( ଗ୍ରା.ବି ) ଭେକ, ସବୁଜବର୍ଣ୍ଣ ତୃଣପଦାର୍ଥ, ଆଡ଼,ଘାସ ।

ହରିତକ—ବି.(ହରିତ+କ) ହରିଦ୍ବର୍ଣ୍ଣ ତୃଣ, ଶାକ, ଶାଗ, ବୃକ୍ଷର ପତ୍ରାଦି, ( ଆଧୁନିକ--ବୈଜ୍ଞାନିକ ପରିଭାଷା ) କ୍ଲୋରାଇନ୍ ନାମକ ଉପଧାତୁବିଶେଷ ।

ହରିତକପିଶ—ପୁଂବିଂ.ଶାଗୁଆ ଓ ମାଟିଆ ମିଶା ବର୍ଣ୍ଣବିଶିଷ୍ଟ ।

ହରିତକୀ—ବି. (ହରିତକ + ଈ) ସ୍ବନାମ ପ୍ରସିଦ୍ଧ ଫଳବିଶେଷ, ହରିଡ଼ା ।

ହରିତଗୋମୟ—ବି. ( କ.ଧା ) ଟଟକା ଗୋବର (ଗୋଭିଲ ଗୃହ୍ୟସୂତ୍ର) ।

ହରିତଚ୍ଛଦ--ବି.ଶ୍ୱେତସଜନା,ଶ୍ୱେତସିଗ୍ରୁ ।

ହରିତନେତ୍ର—ବି. ଉଲୂକ,ପେଚା,ଶାକବିଶେଷ, ଗନ୍ଧାପତ୍ରୀ, କର୍ପୂରଶାଗ ।

ହରିତପକ୍ଷୀ—ବି. ହରିଡ଼ଚଢ଼େଇ ।

ହରିତପତ୍ରିକା—ବି. ପାଚୀ, ହରିଦ୍ବର୍ଣ୍ଣ ଲତାବିଶେଷ ।

ହରିତମଣି—ବି. ମରକତମଣି ।

ହରିତଲତା—ବି. ହରିତପତ୍ରିକା ଦେଖ ।

ହରିତବସନ-କ୍ଲୀ.ବି.ଶାଗୁଆବର୍ଣ୍ଣର ଲୁଗା ।

ହରିତଶାକ—ବି. ଶିଗ୍ରୁ, ସଜନା ।

ହରିତା—ସ୍ତ୍ରୀ.ବିଂ.(ହରିତ + ଆ)ହରିତର ସ୍ତ୍ରୀଲିଙ୍ଗ, (ବି) ଦୂବ, ଜୟନ୍ତୀ,ହରିଦ୍ରା, କପିଲଦ୍ରାକ୍ଷା, ପାଚୀ, ନୀଳଦୂବ,କପିଳା ଗୌ, ହରିପର୍ଣ, ବିଷ୍ଣୁଗୁଣ ।

ହରିତାୟମାନ—ବିଂ. ହରିଦ୍ବର୍ଣ୍ଣବିଶିଷ୍ଟ, ଯାହା ହରିଦ୍ବର୍ଣ୍ଣ ଦେଖାଯାଉଅଛି,(ସ୍ତ୍ରୀ) ହରିତାୟମାନା ।

ହରିତାଳ—ବି.(ହରିତ + ଅଲ + କ.ଅ) ପାରଦଗର୍ଭକ ପୀତବର୍ଣ୍ଣ ବିଷାକ୍ତ ଉପଧାତୁବିଶେଷ (ଏହା ପତ୍ର ହରିତାଳ ଓ ପିଣ୍ଡ ହରିତାଳ ଭେଦରେ ଦୁଇପ୍ରକାର), ହରିଡ଼ଚଢ଼େଇ ।

ହରିତାଳକ—ବି. (ହରିତାଳ + କ)ହରିତାଳ ଦେଖ, ଅଭିନେତା ଆଦିଙ୍କର ଦେହରେ ବୋଳାଯିବା ରଙ୍ଗ,(ହେ,ଶ) ।

ହରିତାଳି—ଗ୍ରା.ବିଂ.ହରିତାଳ ସମ୍ବନ୍ଧୀୟ, ହରିତାଳ ପରି ରଙ୍ଗବିଶିଷ୍ଟ, ହରିତାଳ ଚର୍ଚ୍ଚିତ ।

ହରିତାଳିକା—ବି. ଭାଦ୍ର ଶୁକ୍ଳ ଚତୁର୍ଥୀ, (ମତାନ୍ତରରେ) ଭାଦ୍ର ଶୁକ୍ଳ ତୃତୀୟା (ଏଦିନ ଚନ୍ଦ୍ରଦର୍ଶନ ନିଷେଧ) ଦର୍ଶନ କଲେ ପାପ ହୁଏ, ଦୂବ, ଦକ୍ଷିଣରୁ ଉତ୍ତରକୁ ପଡ଼ିଥିବା ଛାୟାପଥ ବା ନକ୍ଷତ୍ରରେଖା ।

ହରିତାଳିକାଗଜ—ଗ୍ରା.ବି. (ଏହାର ବର୍ଣ୍ଣ ଈଷତ୍ ହଳଦିଆ ଥିବାରୁ) ପୂର୍ବେ ଓଡ଼ିଶାର କଟକଜିଲ୍ଲା ପଦ୍ମପୁର ଅଞ୍ଚଳରେ ମୁସଲମାନମାନେ ହାତ ଦ୍ୱାରା ପ୍ରସ୍ତୁତ କରୁଥିବା ଏକପ୍ରକାର ହଳଦିଆ କାଗଜ ।

ହରିତାଳୀ—ସ୍ତ୍ରୀ.ବି. ( ହରିତାଳ + ଈ ) ଦୂବ,ଦୁବ, ଦକ୍ଷିଣରୁ ଉତ୍ତରକୁ ବ୍ୟାପିଥିବା ଛାୟାପଥ ବା ନକ୍ଷତ୍ରପୁଞ୍ଜଯୁକ୍ତ କ୍ଷୀଣାଲୋକବିଶିଷ୍ଟ ରେଖା, ଭାଦ୍ର ଶୁକ୍ଳ ଚତୁର୍ଥୀ, ଖଡ୍ଗର ତୀକ୍ଷ୍ଣଅଂଶ,ଖଡ୍ଗଲତା, ବାୟୁ,ଆକାଶରେ ମେଘଆଦିର ପତଳା ରେଖା,ଜ୍ୟୋତିଷ୍ମତୀ,ଫୁଟିଫୁଟିକା ଗୁଳ୍ମ ।

ହରିତାଳୁକ—ବି. ( ହରିତ + ଆଳୁକ ) ହରିଡ଼ଚଢ଼େଇ ।

ହରିତାଶ୍ମ—ବି. (ହରିତ+ଅଶ୍ମନ୍) ତୁତ୍ଥ, ତୁତିଆ, ମହରଗିରିଆ, ନୀଳାଭ ହରିଦ୍ବର୍ଣ୍ଣ ରତ୍ନବିଶେଷ, ଫିରୋଜମଣି ।

ହରିତାଶ୍ୱ—ପୁଂ. ବି. ସୁଦ୍ୟୁମ୍ନଙ୍କ ପୁଅ ।

ହରିତୀକୃତ—ବିଂ.(ହରିତ + ଚ୍ୱି + କୃତ) ଯେଉଁ ବସ୍ତୁ ବର୍ତ୍ତମାନ ହରିଦ୍ବର୍ଣ୍ଣବିଶିଷ୍ଟ କରାଯାଇଅଛି ।

ହରିତୋପଲ—ବି. ମରକତ ମଣି, ମରକତଶିଳା ।

ହରିତ୍ରପର୍ଣ୍ଣ—ବି. (ବି.ସ୍ତ୍ରୀ) ମୂଳା,ମୂଳକ ।

ହରିଦ୍‌ଦର୍ଭ—ବି. (ବି.ସ୍ତ୍ରୀ)ହରିଦ୍ବର୍ଣ୍ଣ କୁଶ ।

ହରିଦର୍ଭ-ବି. ହରିଦର୍ଭ ଦେଖ, ଶାଗୁଆବର୍ଣ୍ଣର ଘୋଡ଼ା, ସୂର୍ଯ୍ୟ ।

ହରିଦଶ୍ୱ—ପୁଂ.ବି.(ହରିତ୍ + ଅଶ୍ୱ)ବି.ବ୍ରୀ; ସୂର୍ଯ୍ୟ, ଅର୍କବୃକ୍ଷ ।

ହରିଦାସ—ପୁଂ. ବି. ହରିଙ୍କ ସେବକ, ବୈଷ୍ଣବ, ବିଷ୍ଣୁଭକ୍ତ ବ୍ୟକ୍ତି ।

ହରିଦାସସ୍ୱାମୀ—ଗ୍ରା.ବି.ସମ୍ରାଟ୍ ଆକବରଙ୍କ ରାଜସଭାର ପ୍ରଧାନ ଗାୟକ,ତାନ୍‌ସେନଙ୍କ ସଙ୍ଗୀତଗୁରୁ ।

ହରିଦାସୀ—ସ୍ତ୍ରୀ.ବି.ହରିଭକ୍ତିପରାୟଣା ସ୍ତ୍ରୀ ।

ହରିଦିନ(ଦିବସ)—ବି. ଏକାଦଶୀ ।

ହରିଦିକ୍(ଶା)—ବି.(ହରି ବା ଇନ୍ଦ୍ରଙ୍କଦ୍ୱାରା ପାଳିତ ଦିଗ) ପୂର୍ବଦିଗ ।

ହରିଦେବ—ବି. ଶ୍ରବଣାନକ୍ଷତ୍ର, ହରି ଯାହାର ଏକମାତ୍ର ଦେବ ଅର୍ଥାତ୍ ବିଷ୍ଣୁଭକ୍ତିପରାୟଣ ବ୍ୟକ୍ତି ।

ହରିଦେବା—ଗ୍ରା.କ୍ରି. ହରଣ କରିଦେବା, ଏକରାଶିକୁ ଅନ୍ୟ ରାଶି ଦ୍ୱାରା ଭାଗକରିଦେବା ।

ହରିଦ୍ଦର୍ଭ—ବି. ହରିଦ୍ବର୍ଣ୍ଣକୁଶବିଶେଷ ।

ହରିଦ୍ବର୍ଣ୍ଣ—ବି. ହରିଦ୍ବର୍ଣ୍ଣ ଦେଖ ।

ହରିଦ୍ରୁ—ବି.ହ ଳଦିଆ ଚନ୍ଦନ,ହଳଦୀଗଛ ।

ହରିଦ୍ରୁକ—ବି.(ହରିଦ୍ରୁ + କ)ହରିଦ୍ରାବୃକ୍ଷ, ହଳଦୀ ଗଛ ।

ହରିଦ୍ରୁତ୍ତମା—ସ୍ତ୍ରୀ. ବି. ହରିଦ୍ରା, ହଳଦୀ ।

ହରିଦ୍ରବ—ବି. ନାଗକେଶର ଚୂର୍ଣ୍ଣ, ନାଗେଶ୍ୱର ପୁଷ୍ପ ରେଣୁ ।

ହରିଦ୍ରା—ବି. (ହରି + ଦ୍ରୁ + କ.ଅ + ଆ) ହଳଦୀ,ନିଶା,ରଜନି,(ବୈଦ୍ୟଶାସ୍ତ୍ର ମତରେ ହରିଦ୍ରା ଚାରିପ୍ରକାର) ସାଧାରଣ ହରିଦ୍ରା, କର୍ପୂର ହରିଦ୍ରା,ବନହରିଦ୍ରା,ଦାରୁହରିଦ୍ରା ।

ହରିଦ୍ରାଙ୍ଗ—ବି.ପ୍ରଧାନ ଉପାଦାନ ରୂପେ

ବ୍ୟବହୃତ ହଳଦୀ ଦ୍ୱାରା ତିଆରି ଔଷଧବିଶେଷ ।

ହରିଦ୍ରାଗଣପତି—ପୁଂ.ବି.ମନ୍ତ୍ରପାଠ ପୂର୍ବକ ମୂର୍ତ୍ତି ଉପରେ ହଳଦୀ ଚଢ଼ାଯିବା ଗଣେଶଙ୍କ ମୂର୍ତ୍ତିବିଶେଷ, ତନ୍ତ୍ରୋକ୍ତ ବିଧିରେ ଏକାକ୍ଷର ମହାମନ୍ତ୍ର ଜପ ପୂର୍ବକ ପୂଜା କରାଯିବା ଗଣେଶମୂର୍ତ୍ତି ।

ହରିଦ୍ରାଙ୍ଗ—ବି. ହରିଡ଼ଚଢ଼େଇ,ହଳଦିଆବର୍ଣ୍ଣ ପକ୍ଷୀ, ଏକପ୍ରକାର ପାରା ।

ହରିଦ୍ରାଦିବର୍ଗ—ବି.ହରିଦ୍ରା,ଦାରୁହରିଦ୍ରା, ଯଷ୍ଟ୍ୟାହ୍ୱ. ପୃଶ୍ନିପର୍ଣ୍ଣୀ ଓ କୁଟଜୋଦ୍ଭବ ଦ୍ରବ୍ୟ ।

ହରିଦ୍ରାଦ୍ୱୟ—ବି.ହଳଦୀ ଓ ଦାରୁହଳଦୀ ।

ହରିଦ୍ରାପଞ୍ଚକ-ବି.ପଞ୍ଚବିଧ ହରିଦ୍ରା,(ଯଥା:-ହରିଦ୍ରା, ଦାରୁହରିଦ୍ରା,ଆମ୍ରହରିଦ୍ରା, ଶୁଣ୍ଠି ଓ ବିକଙ୍କତ(ଭୂଇଁଚ) । [ ହରିଦ୍ରା ।

ହରିଦ୍ରାପତ୍ରକଣ୍ଟକା—ବି. ଦାର୍ବୀ, ଦାରୁ-

ହରିଦ୍ରାପ୍ରମେହ(ମେହ)—ବି. ହଳଦୀବର୍ଣ୍ଣ ପ୍ରସ୍ରାବ ଓ ଜ୍ୱାଳାସମନ୍ୱିତ ଏକପ୍ରକାର ମେହ ରୋଗ ।

ହରିଦ୍ରାଭ—ବିଂ.(ହରିଦ୍ରା+ଆଭା)ବ.ବ୍ରୀ; ହଳଦିଆ ରଙ୍ଗବିଶିଷ୍ଟ. (ବି) ପୀତଶାଳ, ପିଆଶାଲ,କର୍ପୂରକ,ଗନ୍ଧକର୍ଣ୍ଣି,ହଳଦିଆ ରଙ୍ଗ ।

ହରିଦ୍ରାରଞ୍ଜିତ—ବିଂ. ( ୩ତତ୍ପୁ ) ହଳଦୀ ଦ୍ୱାରା ରଙ୍ଗ କରାଯାଇଥିବା ।

ହରିଦ୍ରାରାଗ—ବି. ହଳଦିଆ ରଙ୍ଗ,ହଳଦୀ ବୋଲାହେବା ଯୋଗୁଁ ଉତ୍ପନ୍ନ ରଙ୍ଗ, ସାହିତ୍ୟରେ ପୂର୍ବରାଗର ଏକଭେଦ, ଯହିଁରେ ପ୍ରଣୟୀ ଓ ପ୍ରଣୟିନୀଙ୍କର ପ୍ରେମ ହଳଦୀବର୍ଣ୍ଣ ପରି କ୍ଷଣସ୍ଥାୟୀ ହୁଏ, ଅସ୍ଥିରସୌହୃଦ୍ୟ,(ବିଂ)ଅସ୍ଥିରସୌହୃଦ, କ୍ଷଣମାତ୍ରାନୁରାଗୀ ।

ହରିଦ୍ରାବର୍ଷ—ବି. ଏକପ୍ରକାର ଗଛର ବିଷାକ୍ତ ମୂଳ, ଯାହା ହଳଦୀ ପରି ଦେଖାଯାଏ ।

ହରିଦ୍ରୁ—ବି. (ହରି+ଦ୍ରୁ+ଅଧି.କ୍ୱିପ୍) ବୃକ୍ଷ, ଦାରୁହରିଦ୍ରା, ପୀତଦାରୁ ।

ହରିଦ୍ରୁକ—ବିଂ, ଦାରୁହରିଦ୍ରାଯୁକ୍ତ ।

ହରିଦ୍ୱାର—ବି. ଉତ୍ତର ଭାରତର ଯୁକ୍ତ-ରାଜ୍ୟ ପ୍ରଦେଶରେ ଅବସ୍ଥିତ ପ୍ରସିଦ୍ଧ ନଗର ଓ ତୀର୍ଥ, ରାଜପ୍ରାସାଦର ବା ମନ୍ଦିରର ସିଂହଦ୍ୱାର, ବୈକୁଣ୍ଠ ଯିବାର ପଥ, ହିମାଳୟପୃଷ୍ଠସ୍ଥ ନଗରବିଶେଷ, ତୀର୍ଥସ୍ଥାନ, ଏହି ସ୍ଥାନରୁ ଗଙ୍ଗାନଦୀର ଉତ୍ପତ୍ତି ।

ହରିଦ୍ୱାରମେଳା—ଗ୍ରା. ବି. ବାରବର୍ଷରେ ଥରେ ହରିଦ୍ୱାରଠାରେ ଗଙ୍ଗାସ୍ନାନପାଇଁ ଉପସ୍ଥିତ ବହୁଲକ୍ଷ ଯାତ୍ରୀଙ୍କର ସମାଗମ ।

ହରିଧନ—ବି. (ରୂପକ)ଭକ୍ତର ହରିରୂପ ଧନ ।

ହରିଧନୁଷ— ବି. ଇନ୍ଦ୍ରଧନୁ ।

ହରିଧାମ-ବି(୬ତତ୍ପୁ)ବୈକୁଣ୍ଠ,ବିଷ୍ଣୁଲୋକ ।

ହରିଧୂନ—ଗ୍ରା. ବି. ହରିଧ୍ୱନି ଦେଖ ।

ହରିଧ୍ୱନି—ବି. (ଭକ୍ତର ହରିନାମ ଉଚ୍ଚାରଣଜନିତ ଉଚ୍ଚୈଃସ୍ୱର)ହରିହରି ଶବ୍ଦ ।

ହରିନାମ—ବି. (୬ତତ୍ପୁ) ଭଗବାନଙ୍କର ନାମ, ଶ୍ରୀହରିଙ୍କର ଉପାଖ୍ୟାନ ।

ହରିନାମକୀର୍ତ୍ତନ-ବି.ହରିନାମର ବାରମ୍ବାର ଉଚ୍ଚାରଣ ।

ହରିନାମମାହାତ୍ମ୍ୟ—ବି.(୬ତତ୍ପୁ)ହରିନାମ ଉଚ୍ଚାରଣର ମହତ୍ତ୍ୱ ।

ହରିନାମରସାମୃତ-ବି.ହରିନାମ ଉଚ୍ଚାରଣ ରୂପ ରସରୁ ଭକ୍ତ ପାନକରୁଥିବା ଅମୃତ

ହରିନାମା—ବି. ମୁଦ୍ଗ, ମୁଗ ।

ହରିନାରାୟଣ—ବି. ହରିଙ୍କର ଦୁଇଟି ନାମ,ମିଥିଳାର ଜଣେ ପ୍ରସିଦ୍ଧ ଶାସ୍ତ୍ରାନୁରାଗୀ ରାଜା ।

ହରିନୀଲ—ପୁଂ, ବି. ଇନ୍ଦ୍ରନୀଲମଣି ।

ହରିନେତ୍ର—ବି. ଶ୍ୱେତପଦ୍ମ, ( ବି.ସ୍ତ୍ରୀ ) ପେଚକ, ପେଚା ।

ହରିନେବା—ଗ୍ରା. କ୍ରି. ଅପହରଣ କରି ନେବା, ( ଲ.ଅର୍ଥ ) ତୁଷ୍ଟ କରିବା, ମୋହିତ କରିବା ।

ହରିନ୍ମଣି—ବି. (ହରିତ୍+ମଣି) କ.ଧା; ମରକତମଣି,ସବୁଜବର୍ଣ୍ଣ ପ୍ରସ୍ତରବିଶିଷ୍ଟ ।

ହରିନ୍ମୃଗ—ବି. ଚାରିଦ୍ଦ ମୃଗ, ଶାଗୁଆବର୍ଣ୍ଣର ମୃଗ ।

ହରିପଞ୍ଚକବ୍ରତ-ବି.ଶ୍ରୀହରିଙ୍କ ଉଦ୍ଦେଶ୍ୟରେ କରାଯିବା ବ୍ରତବିଶେଷ ।

ହରିପଦ—ବି. ଅୟନ ମଣ୍ଡଳର ପଶ୍ଚିମ ବିଭାଗ ଯେଉଁଠାରେ ବିଷୁବରେଖା ସହିତ ମିଳିତ ହୋଇଅଛି, ଶାରଦ-ବିଷୁପଦୀ ସଂକ୍ରାନ୍ତି ।

ହରିପର୍ଣ୍ଣୀ—ବି. କୃଷ୍ଣଚନ୍ଦନ, ମୂଳକ,ମୂଳା, ହରିତ୍ପର୍ଣ୍ଣୀ ।

ହରିପୁର—ଗ୍ରା.ବି. ମୟୂରଭଞ୍ଜର ପ୍ରାଚୀନ ରାଜଧାନୀ ।

ହରିପ୍ରବୋଧ—ବି.(୬ତତ୍ପୁ)କାର୍ତ୍ତିକ ଶୁକ୍ଳ ଏକାଦଶୀ, ବିଷ୍ଣୁଙ୍କର ଉତ୍ଥାନ ବା ଜାଗରଣ ।

ହରିପ୍ରସାଦ—ବି. ଶ୍ରୀହରିଙ୍କର ଅନୁଗ୍ରହ, ବିଷ୍ଣୁଙ୍କୁ ନିବେଦିତ ଖାଦ୍ୟଦ୍ରବ୍ୟ,ଭୋଗ ।

ହରିପ୍ରସ୍ଥ—ବି. ଇନ୍ଦ୍ରପ୍ରସ୍ଥ, ଯୁଧିଷ୍ଠିରଙ୍କର ରାଜଧାନୀ ।

ହରିପ୍ରିୟ —ବି.ହରିଚନ୍ଦନ=ପୀତଚନ୍ଦନ, କୃଷ୍ଣଚନ୍ଦନ = କାଳୀୟକ, ଉଶୀର, ବେଣାଚେର, କଦମ୍ବବୃକ୍ଷ, ପୀତଭୃଙ୍ଗରାଜ, ବିଷ୍ଣୁକନ୍ଦ,କରବୀର,ଶଙ୍ଖ, ବଧୂଲି ଫୁଲ, ବନ୍ଧୁକ. ଶ୍ୟାମାଧାନ,ଶୁଆଁ,ଶିବ, ବାତୁଳ, କଞ୍ଚୁକ, ( ବିଂ ) ହରିଙ୍କର ଭକ୍ତ, (ସ୍ତ୍ରୀ) ହରିପ୍ରିୟା ।

ହରିପ୍ରିୟା—ସ୍ତ୍ରୀ.ବି.ଲକ୍ଷ୍ମୀ,ତୁଳସୀ,ଦ୍ୱାଦଶୀ ତିଥି.ପୃଥିବୀ,(ବିଂ)ହରିପ୍ରିୟର ସ୍ତ୍ରୀଲିଙ୍ଗ ।

ହରିପ୍ରେମ—ବି.(୬ତତ୍ପୁ)ହରିଭକ୍ତି,ବିଷ୍ଣୁଙ୍କ ପ୍ରତି ଅନୁରାଗ ।

ହରିପ୍ରେମିକ—ପୁଂ, ବି. ହରିଭକ୍ତ ।

ହରିଭକ୍ତ—ପୁଂ. ବିଂ. (୭ତତ୍ପୁ) ବିଷ୍ଣୁଙ୍କଠାରେ ଭକ୍ତିଯୁକ୍ତ,(ବି) ସର୍ବତ୍ର ସମଦୃଷ୍ଟି ପୂର୍ବକ ହରିସେବକ ।

ହରିଭକ୍ତି—ବି. ( ୭ତତ୍ପୁ ) ହରିଙ୍କ ପ୍ରତି ଶ୍ରଦ୍ଧାଯୁକ୍ତଅନୁରାଗ,ବିଷ୍ଣୁଙ୍କ ଠାରେ ଭକ୍ତି

ହରିଭକ୍ତିପ୍ରଦ—ବିଂ. ଯାହା ହୃଦୟରେ ହରିଭକ୍ତିର ଉଦ୍ରେକ କରେ ।

ହରିଭକ୍ତିବିଳାସ—ବି. ହରିଭଜନ ଓ ବୈଷ୍ଣବଙ୍କ କର୍ତ୍ତବ୍ୟ ଏବଂ ପାଳନୀୟ ବ୍ରତ ଉପବାସାଦି ନିର୍ଣ୍ଣାୟକ ଗ୍ରନ୍ଥବିଶେଷ

ସଂସ୍କୃତ ଗ୍ରନ୍ଥବିଶେଷ ।
ହରିଭଜନ—ବି.(ଷତତ୍ପୁ) ସର୍ବଦା ହରିଙ୍କ ନାମ ସ୍ମରଣ ଓ କୀର୍ତ୍ତନ, ହରିନାମଯୁକ୍ତ ସ୍ତବ ବା ଗାନ ।
ହରିଭଜିବା—ଗ୍ରା.କ୍ରି.ହରିଙ୍କ ନାମ ଉଚ୍ଚାରଣ କରିବା.ଭକ୍ତିପୂର୍ବକ ହରିଙ୍କଠାରେ ଶରଣ ନେବା ।
ହରିଭଦ୍ର—ବି. ହରିବାଲୁକ ଦେଖ ।
ହରିଭଦ୍ରକ—ବି. କୁଷ୍ଠୌଷଧ, କୁଡ଼ ।
ହରିଭାବୀ—ପୁଂ. ବିଂ. (ହରି+ଭାବ+କ.ଇନ୍) ଯେ ହରିଙ୍କ ବିଷୟ ସର୍ବଦା ଭାବୁଥାଏ,ହରିଙ୍କ ସମ୍ବନ୍ଧେ ଭାବନାଶୀଳ,
ହରିଭାବିନୀ—ସ୍ତ୍ରୀ. ବିଂ. ହରିଙ୍କ ସମ୍ବନ୍ଧେ ଭାବନାଶୀଳା (ସ୍ତ୍ରୀ) ।
ହରିଭୁକ୍—ବି. (ହରି + ଭୁଜ୍ + କ.କ୍ୱିପ୍) ସର୍ପ, ଭୁଜଙ୍ଗ ।
ହରିମନ୍ଥ—ବି. ଗଣିକାରିକା, ଅଗିବଥୁ, ଚଣକ, ଚଣା, ଦେଶବିଶେଷ ।
ହରିମନ୍ଥକ(ଜ)—ଚଣକ, ବୁଟ, କୃଷ୍ଣମୁଦ୍ଗ, କଳାମୁଗ ।
ହରିମନ୍ଦିର—ବି. (ଷତତ୍ପୁ) ବିଷ୍ଣୁମନ୍ଦିର, ଯେଉଁ ମନ୍ଦିରରେ ବିଷ୍ଣୁଙ୍କର ବିଗ୍ରହ ପୂଜିତ ଓ ପ୍ରତିଷ୍ଠିତ ହୁଅନ୍ତି, ତିଳକବିଶେଷ ।
ହରିମନ୍ଦିରତିଳକ—ବି. ବୈଷ୍ଣବମାନଙ୍କ କପାଳରେ ଅଙ୍କିତ ତିଳକ ରେଖାବିଶେଷ ।
ହରିମନ୍ଦିରକାଟିବା—ଗ୍ରା. କ୍ରି. କପାଳରେ ହରିମନ୍ଦିର ତିଳକ ଅଙ୍କିତ କରିବା, (ଲ.ଅର୍ଥ)ଚନ୍ଦାକାଟିବା,କୌଣସି ବ୍ୟକ୍ତିକୁ ଠକିବା ।
ହରିମା—ବି. ସମୟ, କାଳ ।
ହରିମୁଦ୍ଗ—ବି.ଏକପ୍ରକାର ମୁଦ୍ଗ,କଳାମୁଗ ।
ହରିମୂଳା—ବି. ଶାଳପର୍ଣ୍ଣୀ ।
ହରିମେଧ—ବି. ଅଶ୍ୱମେଧ ଯଜ୍ଞ ।
ହରିମେଧା—ପୁଂ. ବି. ବିଷ୍ଣୁ ।
ହରିୟ—ବି. ପୀତବର୍ଣ୍ଣ ଘୋଟକ ।
ହରିଯାନ(ବାହନ)—ବି.(ଷତତ୍ପୁ)ଗରୁଡ଼ ।
ହରିୟୂପୀୟା—ବି.ବେଦୋକ୍ତ ମହାଦେଶବିଶେଷ, ମାନବଙ୍କର ଆଦିଜନ୍ମଭୂମି ।
ହରିଯୋନି—ବି. ବିଷ୍ଣୁ,ହରି ବା ବିଷ୍ଣୁଙ୍କଠାରୁ ଜାତ ।
ହରିରପୁ—ବି. କରବୀର ବୃକ୍ଷ, ବାଙ୍ଗଶନୁ ।
ହରିରୁଦ୍ର—ବି. ବିଷ୍ଣୁ ଏବଂ ଶିବ, ହରି ଓ ରୁଦ୍ର ।
ହରିରୋମ—ବିଂ. ଅଶ୍ୱରୋମଯୁକ୍ତ ।
ହରିଲୁଟ୍(ଠ)-ଗ୍ରା. ବି ଉତ୍ସବ ବିଶେଷ, ହରି ସଂକୀର୍ତ୍ତନ ପରେ ହରିଙ୍କ ଉଦ୍ଦେଶ୍ୟରେ ନିବେଦିତ ପ୍ରସାଦ ଭୂମିରେ ବୁଣି ଭକ୍ତମାନେ ଆନନ୍ଦ କୋଳାହଳ କରି ଓ ହରିବୋଲ ପକାଇ ଗୋଟାଇ ପରସ୍ପର ଉପରେ ପଡ଼ି ଛଡ଼ାଛଡ଼ି ହୋଇ ଭୂମିରେ ପଡ଼ିଥିବା ପ୍ରସାଦ ଗ୍ରହଣକରିବା ରୂପ ଉତ୍ସବ ।
ହରିଲେ—ଅ. ନାଟ୍ୟୋକ୍ତିରେ ଦାସୀପ୍ରତି ସମ୍ବୋଧନ ଶବ୍ଦ ।
ହରିଲୋକ—ବି. (ଷତତ୍ପୁ) ବିଷ୍ଣୁଲୋକ, ବୈକୁଣ୍ଠ ।
ହରିଲୋଚନ—ପୁଂ.ବିଂ. ( ବ.ବ୍ରୀ )ଟଳା ଆଖିଆ, (ବି) କଙ୍କଡ଼ା, ପେଚା, କାକ ।
ହରିବର୍ଷ—ବି.ପୁରାଣମତେ ଜମ୍ବୁଦ୍ୱୀପର ନବବର୍ଷ ବା ମହାଦେଶ ମଧ୍ୟରୁ ଏକତମ, ପ୍ରାଚୀନ ସାଇବେରିଆ ଦେଶ ।
ହରିବଂଶ—ବି.ହରି ବା ଶ୍ରୀକୃଷ୍ଣଙ୍କର ବଂଶ, ଶ୍ରୀକୃଷ୍ଣଙ୍କର ସନ୍ତାନ. ଶ୍ରୀକୃଷ୍ଣଙ୍କର ବଂଶର ବିବରଣ ବିଷୟକ ବ୍ୟାସନିର୍ମିତ ଗ୍ରନ୍ଥବିଶେଷ ।
ହରିବଲ୍ଲଭ-ପୁଂ.ବିଂ. ହରିପ୍ରିୟ, ହରିଙ୍କ ପ୍ରୀତିପାତ୍ର, (ବି) ମୁଚୁକୁନ୍ଦ ବୃକ୍ଷ ।
ହରିବଲ୍ଲଭା-ସ୍ତ୍ରୀ.ବିଂ. ହରିବଲ୍ଲଭର ସ୍ତ୍ରୀଲିଙ୍ଗ (ବି) ହରିପ୍ରିୟା, ତୁଳସୀ, ଜୟା, ଅଗ୍ନିମନ୍ଥ, ଅଗିବଥୁ,ଲକ୍ଷ୍ମୀ ।
ହରିବଲ୍ଲଭୀ—ସ୍ତ୍ରୀ.ବି. ଲକ୍ଷ୍ମୀ, ଶ୍ରୀ ହ୍ରୀ ।
ହରିବା—ଗ୍ରା.କ୍ରି ( ସଂ-ହୃଧାତୁ ) ହରଣ କରିବା, ଚୋରି କରିବା, ଜବରଦସ୍ତି ଛଡ଼ାଇନେବା, ନାଶକରିବା, ଲୋପକରିବା, ନିଷିଦ୍ଧ ସମ୍ପର୍କୀୟା ସ୍ତ୍ରୀକୁ ବା ପତ୍ନୀକୁ ରମଣକରିବା, (କାଳ)କ୍ଷେପଣ କରିବା, ନେବା, ତ୍ୟାଗକରିବା, ଦୂରକରିବା, ( ମନକୁ )ମୁଗ୍ଧ କରିବା, ଏକ ରାଶିକୁ ଅନ୍ୟରାଶିଦ୍ୱାରା ଭାଗକରିବା, ସମ୍ଭାଳିବା,ଏଡ଼ିବା,ନମେଳିବା, ହାରିବା ।
ହରିବାଟ—ପ୍ରା.( ଖଣ୍ଡିଆଳ ) ସଙ୍କୀର୍ଣ୍ଣପଥ, ବନପଥ, ଲୋକଚଲା ବାଟ, ଡଗରରାସ୍ତା ।
ହରିବାନ୍—ପୁଂ.ବି.(ହରି+ବନ୍ତୁ) ଇନ୍ଦ୍ର, ବାସବ ।
ହରିବାଲୁକ—ବି. ଏଲବାଲୁକ ।
ହରିବାସ—ବି. ଅଶ୍ୱତ୍ଥ ବୃକ୍ଷ, ପୀତଭୃଙ୍ଗରାଜ, ପୀତପୁଷ୍ପ ।
ହରିବାସର—ବି. (ଷତତ୍ପୁ) ଏକାଦଶୀ ତିଥି,ଏକାଦଶୀ ଯୁକ୍ତା ତିଥି ଦ୍ୱାଦଶୀର ପ୍ରଥମ ପାଦ ।
ହରିବାହନ—ବି. (ଷତତ୍ପୁ) ଗରୁଡ଼ ।
ହରିବୀଜ—ବି. ହରିତାଳ (ଦେଖ)
ହରିବୃକ୍ଷ—ବି. ହରିବର୍ଷ (ଦେଖ), ଦାରୁହରିଦ୍ରା, ହରିଦ୍ରୁ ।
ହରିବୃଷ—ବି. ହରିବର୍ଷ (ଦେଖ) ।
ହରିବୋଲ—ଗ୍ରା.ବି. ହରିହରିଧ୍ୱନି,ହରିନାମ ଉଚ୍ଚାରଣ, ଶ୍ମଶାନକୁ ଶବନୟନକାଳୀନ ଧ୍ୱନି ।
ହରିବୋଲଦେବା(ପକାଇବା)—ଗ୍ରା. କ୍ରି. ବାରମ୍ବାର ହରିବୋଲ ଶବ୍ଦ ଉଚ୍ଚାରଣ କରିବା ।
ହରିବୋଲିଆ—ଗ୍ରା. ବିଂ. ଯେ ସର୍ବଦା ମୁଖରେ ହରିନାମ ଉଚ୍ଚାରଣ କରନ୍ତି, (ଲ.ଅର୍ଥ) ଯେଉଁବ୍ୟକ୍ତି ସବୁ କାର୍ଯ୍ୟରେ ଗୋଳମାଳକୁ ଭଲପାଏ,ଗୋଳମାଳିଆ, ଯେ ବିଶୃଙ୍ଖଳ ଭାବରେ କାର୍ଯ୍ୟ କରେ ।
ହରିବ୍ୟାସି—ଗ୍ରା. ବି.'ନିମ୍ବାର୍କ'ଗୋସ୍ୱାମୀଙ୍କର ବୈଷ୍ଣବ ସମ୍ପ୍ରଦାୟର ଅନ୍ତର୍ଗତ ହରିବ୍ୟାସ ନାମକ ଜଣେ ବୈଷ୍ଣବଙ୍କ ପ୍ରବର୍ତ୍ତିତ ଉପସମ୍ପ୍ରଦାୟବିଶେଷ ।
ହରିଶଙ୍କର—ବି.ବିଷ୍ଣୁ ଓ ଶିବ, ହରିହର ।
ହରିଶବ୍ଦ—ଗ୍ରା.ବି.ହରିଧ୍ୱନି, ହରିବୋଲ, ହରିଙ୍କ ନାମ ଉଚ୍ଚାରଣ ।
ହରିଶୟନ—ବି. ( ଷତତ୍ପୁ ) ବିଷ୍ଣୁ ବା ଶ୍ରୀହରିଙ୍କର ନିଦ୍ରା, ଆଷାଢ଼ମାସର ଶୁକ୍ଳ ଦ୍ୱାଦଶୀଠାରୁ କାର୍ତ୍ତିକ ଶୁକ୍ଳ ଦ୍ୱାଦଶୀ

ପର୍ଯ୍ୟନ୍ତ ଚାରିମାସ କାଳ ।

ହରିଶୟନଏକାଦଶୀ—ବି. ଆଷାଢ଼ ଶୁକ୍ଳ ଏକାଦଶୀ ।

ହରିଶୟନଯାତ୍ରା—ଗ୍ରା.ବି.ପୁରୀ ଜଗନ୍ନାଥ ଦେବଙ୍କର ଆଷାଢ଼ ଶୁକ୍ଳ ଏକାଦଶୀଦିନ କରାଯିବା ଯାତ୍ରା ।

ହରିଶରଃ—ପୁଂ.ବି.(ବ.ବ୍ରୀ)ଶିବ,ମହାଦେବ. ହରି ହୋଇଥିଲେ ଶର ଯାହାଙ୍କର ।

ହରିଶରଣ—ଗ୍ରା. ବି. ଘରୋଇ ପତ୍ରର ଶିରୋଦେଶରେ ଲେଖାଯିବା ବାକ୍ୟ ।

ହରିଶାଣ—ଗ୍ରା. ବି. ଆତଗଛ ପରି ଏକପ୍ରକାର ନାତିଦୀର୍ଘ ବନ୍ୟବୃକ୍ଷ ।

ହରିଶିପ୍ର—ବିଂ. ହରିଦ୍‌ବର୍ଣ୍ଣ ନାସିକାଯୁକ୍ତ ବା ହରିଦ୍‌ବର୍ଣ୍ଣ ହନୁ ।

ହରିଶ୍ଚନ୍ଦ୍ର—ବି. (ନାମ=ହରିଃ+ଚନ୍ଦ୍ର, ଏ ହରିଙ୍କ ପରି ଚନ୍ଦ୍ର ବା ରମଣୀୟ ଥିବାରୁ) ତ୍ରିଶଙ୍କୁଙ୍କ ପୁତ୍ର ରାଜାବିଶେଷ, ତ୍ରେତାଯୁଗର ସୂର୍ଯ୍ୟବଂଶୀୟ ଅଷ୍ଟବିଂଶ ରାଜା ।

ହରିଶ୍ଚନ୍ଦ୍ରପୁର—ବି. (ଦେଶଜ) ରାଜା ହରିଶ୍ଚନ୍ଦ୍ରଙ୍କ ରାଜଧାନୀ, ଶୋଭାପୁର ।

ହରିଶ୍ଚନ୍ଦ୍ରି—ଗ୍ରା.ବି.ରାଜା ହରିଶ୍ଚନ୍ଦ୍ରଙ୍କ ଭକ୍ତ ସମ୍ପ୍ରଦାୟବିଶେଷ ।

ହରିଶ୍ମଶ୍ରୁ—ପୁଂ.ବି.ଦାନବବିଶେଷ,(ବିଂ) ହରିଦ୍‌ବର୍ଣ୍ଣ ଶ୍ମଶ୍ରୁବିଶିଷ୍ଟ ।

ହରିଷେଣ—ପୁଂ.ବି.ଇକ୍ଷ୍ୱାକୁବଂଶୀୟ ଜିନଚକ୍ରବର୍ତ୍ତୀବିଶେଷ, ଜଣେ ବିଖ୍ୟାତ ଜୈନ ପଣ୍ଡିତ, ବାରାଣସୀବାସୀ ଜଣେ ରାଜନୀତିଜ୍ଞ ପଣ୍ଡିତ ।

ହରିସଭା—ଗ୍ରା. ବି. ହରିନାମ ସଂକୀର୍ତ୍ତନ ଓ ହରିଭକ୍ତିର ପ୍ରଚାର ଏବଂ ଆଲୋଚନାର୍ଥ ବୈଷ୍ଣବମାନଙ୍କ ସଭା ।

ହରିସଂକୀର୍ତ୍ତନ—ବି. ବହୁବାର ହରିନାମ ଗାନ, ଖୋଳ କରତାଳ (ଝାଞ୍ଜମୃଦଙ୍ଗ) ବାଦନ ସହକାରେ ବହୁଲୋକଙ୍କ ଦ୍ୱାରା ହରିନାମ ଗାନ ।

ହରିସୁତ-ବି.ହରିଙ୍କପୁତ୍ର,ହରିଷେଣ ରାଜା ।

ହରିସ୍ତବ(ସ୍ତୁତି,ସ୍ତୋତ୍ର)—ବି. ଶ୍ରୀହରିଙ୍କ ଉଦ୍ଦେଶ୍ୟରେ କୃତାଞ୍ଜଳି ବା ଅନୁଷ୍ଠିତ ପ୍ରାର୍ଥନା ।

ହରିହଟା—ଗ୍ରା. ବି. ହରିହାଟ ଦେଖ, (ଲ.ଅର୍ଥ) ଘୋଡ଼ଘାଅ, ଗୋଳମାଳ, କୋଳାହଳ ।

ହରିହୟ—ବି. (ହରି+ହୟ) ବ.ବ୍ରୀ; ଇନ୍ଦ୍ର, ସୂର୍ଯ୍ୟ, କାର୍ତ୍ତିକେୟ, ଗଣେଶ ।

ହରିହର—ବି, (ହରି+ହର) ହରି ଓ ଶିବ, ସଂଯୁକ୍ତ ବିଷ୍ଣୁ ଓ ଶିବମୂର୍ତ୍ତି ।

ହରିହରଆତ୍ମା—ଗ୍ରା. ବି. ଦୁଇଜଣଙ୍କର ଅଭିନ୍ନ ପ୍ରଣୟ, ଅଭେଦ୍ୟ ପ୍ରୀତି, ଏକାତ୍ମ୍ୟ ।

ହରିହରକବି—ଗ୍ରା. ବି. ସୁନନ୍ଦ ରାମାୟଣ ନାମକ ଓଡ଼ିଆ ଗ୍ରନ୍ଥ ରଚୟିତା ପ୍ରସିଦ୍ଧ କବି ।

ହରିହରକ୍ଷେତ୍ର—ବି. ପାଟଳୀପୁତ୍ର (ଆଧୁନିକ ନାମ ପାଟନା) ନଗର ନିକଟସ୍ଥ ଭାଗୀରଥୀର ଉତ୍ତର କୂଳରେ ଅବସ୍ଥିତ ତୀର୍ଥ ବିଶେଷ ।

ହରିହରଗଞ୍ଜ—ଶାହାବାଦ ଜିଲାସ୍ଥ ଗୋଟିଏ ସହର, ଏଠାରେ ହାଟବଜାର ଓ ବହୁଲୋକଙ୍କର ବାସ ଅଛି ।

ହରିହରଛତ୍ର—ଗ୍ରା. ବି (ସଂ.ହରିହରକ୍ଷେତ୍ର) ବେହାରର ପାଟନା ନିକଟସ୍ଥ ଗଙ୍ଗାନଦୀର ଅପର ପାରରେ ସୋନପୁର ନାମକ ସ୍ଥାନରେ ବର୍ଷକେ ଥରେ କାର୍ତ୍ତିକ ପୂର୍ଣ୍ଣିମାଠାରୁ ଦଶଦିନ କାଳ ବସୁଥିବା ମେଳା ତୀର୍ଥବିଶେଷ, (ଏଠାରେ ହରିହରନାଥ ମହାଦେବଙ୍କର ମନ୍ଦିର ଅଛି, ଏହି ନାମାନୁସାରେ ହରିହର ଛତ୍ର ନାମ ହୋଇଅଛି) ।

ହରିହରପୁର—ଗ୍ରା. ବି. ମୟୂରଭଞ୍ଜର ପ୍ରାଚୀନ ରାଜଧାନୀ, ଓ ଅନ୍ୟାନ୍ୟ କେତେକ ଗ୍ରାମର ନାମ ।

ହରିହରଭେଟ—ଗ୍ରା. ବି. ବିଷ୍ଣୁଙ୍କସହିତ ଶିବଙ୍କର ଭେଟ, (ଫାଲ୍ଗୁନ କୃଷ୍ଣଚତୁର୍ଦ୍ଦଶୀ) ଶିବରାତ୍ରିର ରାତ୍ରି ଶେଷରେ ମହାଦେବଙ୍କ ପ୍ରତିମା ଓ ବିଷ୍ଣୁଙ୍କପ୍ରତିମା ଦୁହିଙ୍କର ପରସ୍ପର ଭେଟହେବା ରୂପ ଉତ୍ସବ ।

ହରିହରମର୍ଦ୍ଦରାଜଦେବ—(ନାମ) ଗଞ୍ଜାମ-ଜିଲ୍ଲାର ଖଲିକୋଟ ଆଠଗଡ଼ର ସ୍ୱର୍ଗତଃ ରାଜା ।

ହରିହରରଥ—(ନାମ) ପୁରୀସହର ନିବାସୀ ଜଣେକ ସ୍ୱର୍ଗତଃ ପଣ୍ଡିତ, ଏ ମହାଶୟ ବେଣୀସଂହାର ଓ ଶକୁନ୍ତଳା ପ୍ରଭୃତି କେତେକ ସଂସ୍କୃତ ନାଟକକୁ ଓଡ଼ିଆରେ ଅନୁବାଦ କରିଥିଲେ ଓ କେତେକ ଓଡ଼ିଆ ନାଟକ ରଚନା କରିଥିଲେ ।

ହରିହରାତ୍ମକ—ବି. ହରିହରକ୍ଷେତ୍ର ଦେଖ, ଗରୁଡ଼, ଶିବବାହନ ବୃଷ,(ବିଂ) ଯାହାଙ୍କ ଆତ୍ମାରେ ହରି ଓ ହର ବିଦ୍ୟମାନ । [ ଦେଖ ।

ହରିହରାତ୍ମା—ଗ୍ରା, ବି. ହରିହରଆତ୍ମା

ହରିହାଟ—ଗ୍ରା. ବି. ଖୋଳ କରତାଳ ସହିତ ବହୁଜନଙ୍କ ସମବେତ ହରିନାମ ସଂକୀର୍ତ୍ତନବିଶିଷ୍ଟ ଉତ୍ସବ, ଚଡ଼କାତ ହିନ୍ଦୋଳ ଗଣ୍ଡରେ ବୈଶାଖ ପୂର୍ଣ୍ଣିମାଦିନ ହେଉଥିବା ଉତ୍ସବ, ଏ ଉତ୍ସବରେ ନାନାସ୍ଥାନରୁ ସଂକୀର୍ତ୍ତନମଣ୍ଡଳୀ ଓ ବହୁଲୋକ ଜମା ହୁଅନ୍ତି ।

ହରିହେତି—ବି, (ହରି+ହେତି) ବିଷ୍ଣୁଙ୍କ ଆୟୁଧ ।

ହରିହେତିହୂତି—ବି. ଚକ୍ରବାକ ।

ହରୀତକୀ—ବି, (ହରି+ଇ+କ+ଈ) ବା (ହୃ ଧାତୁ+କ.ଇ+ତକୀ) କିଂବା (ହରି=ଶିବ+ଇତ=ହରିତ =ଶିବଙ୍କ ଭବନ କୈଳାସରେ ଜାତ +କ.ଈ) ହରିଡ଼ା ନାମକ ବୃକ୍ଷ ଓ ଫଳ, (ହରୀତକୀ ୭ପ୍ରକାର) ଯଥା—ବିଜୟା, ରୋହିଣୀ, ପୂତନା, ଅମୃତା, ଅଭୟା, ଜୀବନ୍ତୀ ଓ ଚେତକୀ । ୧ ବିଜୟା—ଏ ଫଳର ଆକୃତି ଲାଉପରି ଗୋଲ ଏହା ସବୁ ହରିଡ଼ାମଧ୍ୟରେ ଶ୍ରେଷ୍ଠ, ଏହା ସୁଖସେବ୍ୟ, ସୁଲଭ୍ୟ ଓ ସର୍ବରୋଗରେ ହିତକର, ଏହା ଆହରଣ ପୀତବର୍ଣ୍ଣ, ୨ ରୋହିଣୀ—ଏ ଫଳର ଆକୃତି ସମ୍ପୂର୍ଣ୍ଣ ଗୋଲ, ଏ ବ୍ରଣରୋଗରେ ଉପକାରକ, ୩ ପୂତନା

—ଏହାର ଆକୃତି ସୂକ୍ଷ୍ମ ଓ ମଞ୍ଜି ବଡ଼, ପ୍ରଲେପ କାର୍ଯ୍ୟରେ ପ୍ରଯୁଜ୍ୟ, ୪ ଅମୃତା—ଏହା ମାଂସଳ; ଏହାର ମଞ୍ଜି ସାନ, ଭେଦ ଓ କୋଷ୍ଠ ପରିଷ୍କାର କାର୍ଯ୍ୟରେ ପ୍ରଯୁଜ୍ୟ, ୫ ଅଭୟା—ଏ ଫଳ ୫ଗୋଟି ରେଖା ବିଶିଷ୍ଟ, ନେତ୍ରରୋଗରେ ପ୍ରଶସ୍ତ, ୬ ଜୀବନ୍ତୀ—ଏହା ସ୍ୱର୍ଣ୍ଣବର୍ଣ୍ଣ—ସର୍ବରୋଗ ବିନାଶକ, ୭ ଚେତକୀ—ଏହା ୩ଗୋଟି ରେଖା-ବିଶିଷ୍ଟ, ଏହା ଚୂର୍ଣ୍ଣାର୍ଥ ବ୍ୟବହାର୍ଯ୍ୟ, ଏହା ଅତି ଭେଦକ, ଚେତକୀ ଶୁକ୍ଳ କୃଷ୍ଣ-ଭେଦରେ ଦୁଇପ୍ରକାର, ଶୁକ୍ଳବର୍ଣ୍ଣ ଚେତକୀ ଦୁଇଆଙ୍ଗୁଳ ପରିମିତ ଓ କୃଷ୍ଣ ଚେତକୀ ଏକଆଙ୍ଗୁଳ ପରିମିତ, ମନୁଷ୍ୟ ପଶୁପକ୍ଷୀଆଦି କେହି ଏ ଗଛ-ମୂଳକୁ ଆସିଲେ ମଳ ତ୍ୟାଗକରି-ପକାନ୍ତି, ଏହି ହରିଡ଼ାକୁ ହାତରେ ଧଇଲେ ଝାଡ଼ା ହୋଇଯାଏ ।

ହରିତକୀଖଣ୍ଡ—ବି. ଶୂଳରୋଗର ଔଷଧ-ବିଶେଷ ।

ହରିତକୀରସାୟନ—ବି. ଚରକୋକ୍ତ ରସାୟନ ଔଷଧ ବିଶେଷ ।

ହରିତକୀବୀଜ—ବି, ହରିଡ଼ା ମଞ୍ଜି, ହରିତକୀର ଅସ୍ଥି ।

ହରିଦ୍ରବୈଶେଷିକା—ବି. ରେଣୁକା, ନିର୍ଗୁଣ୍ଡୀ, କମଲାଗୁଣ୍ଡୀ, କମ୍ପିଲ୍ଲକ ।

ହରିଷା—ବି. ( ହୃ+ମି. ଇଷ୍+ଆ ) ମାଂସବ୍ୟଞ୍ଜନ ବିଶେଷ ।

ହରିଗଂ—ଯା. ବିଂ. ଚତୁର, ଦକ୍ଷ, ପ୍ରତିଦ୍ୱନ୍ଦୀ, ସଙ୍ଗୀ ।

ହରୁଆ—ଗ୍ରା. ବିଂ. ଯେ ହରଏ, ଯେ ହରଣକରେ, ହାରକ, ହରଣକାରୀ, ପ୍ରା. ( ଖଡ଼ିଆଳ ) ବି. ପଶୁମାନଙ୍କର ରଙ୍ଗ । [ ଗରୁ ।

ହରୁଆଁ—ପ୍ରା. ( ବଣାଇଗଡ଼ଜାତ ) ବି.

ହରୁହରଦମ୍—ପ୍ରା. (ସମ୍ବ)ଅବ୍ୟ.ସର୍ବଦା, ଅବିଶ୍ରାନ୍ତ ଭାବରେ ।

ହରେ—ଅବ୍ୟ (ହରିଶବ୍ଦର ସମ୍ବୋଧନ) ହେ ହରି, ହରଣକରିର ।

ହରେକ—ଯା. ସର୍ବ ଓ ବିଂ. ପ୍ରତ୍ୟେକ, ବିଭିନ୍ନ, ନାନା, ସମସ୍ତେ, ଅନେକ ।

ହରେକକିସମ୍ ( ରକମ୍ )—ଯା. ବି. ପ୍ରତ୍ୟେକପ୍ରକାର, ନାନାପ୍ରକାର, ବିଭିନ୍ନ-ପ୍ରକାର, (ବିଂ) ପ୍ରତ୍ୟେକପ୍ରକାରର, ନାନାପ୍ରକାରର, ବିଭିନ୍ନପ୍ରକାରର ।

ହରେକୃଷ୍ଣ—ଅବ୍ୟ. (ହରି ଓ କୃଷ୍ଣ ଦୁଇ ଶବ୍ଦର ସମ୍ବୋଧନ)ହେ ହରି ! ହେ କୃଷ୍ଣ ! ହରିଙ୍କୁ ସମ୍ବୋଧନ, ହରିଙ୍କର ଦୁଇଟି ବିଭିନ୍ନ ନାମ ଉଚ୍ଚାରଣ ପୂର୍ବକ ଡାକ, ପାପକଥା ବା ମନ୍ଦକଥା ଶ୍ରବଣଜନିତ ପାପକ୍ଷାଳନାର୍ଥ ବ୍ୟବହୃତ ଶବ୍ଦ, ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ, କଳିଯୁଗରେ ତାରକବ୍ରହ୍ମ ନାମ ।

ହରେଣୁ—ସ୍ତ୍ରୀ. ବି. (ହୃ+ଏଣୁ) ରେଣୁକା ନାମକ ଗନ୍ଧଦ୍ରବ୍ୟ, ତାମ୍ରବର୍ଣ୍ଣା ମୃଗୀ, କୁଳ ସ୍ତ୍ରୀ, ଗ୍ରାମର ସୀମା ବିଚ୍ଛିନ୍ନକାରିଣୀ ଲତା, (ପୁଂ.ବି) ସତିଳ, କଳାୟ, ଡାଲି, ବଡ଼ଚଣା, ମଟର, ଲଙ୍କାଦ୍ୱୀପ ।

ହରେଣୁକ—ବି. (ହରେଣୁ+କ) ମଟର, ବଡ଼ଚଣା, ବିରି, କ୍ଷେତଗୋପଡ଼ା, ପର୍ପଟକ, ରେଣୁକା ନାମକ ଗନ୍ଧଦ୍ରବ୍ୟ ।

ହରେଣୁକା—ସ୍ତ୍ରୀ. ବି. ରେଣୁକା ନାମକ ଗନ୍ଧଦ୍ରବ୍ୟ ।

ହରେରାମ୍(ମ)—ଗ୍ରା. ଅବ୍ୟ. ହରି ଓ ରାମ ଶବ୍ଦଦ୍ୱୟର ସମ୍ବୋଧନ ଆକାର, ପାପ-କଥା ବା ମନ୍ଦକଥା ଶ୍ରବଣଜନିତ ପାପକ୍ଷାଳନାର୍ଥ ବୋଲାଯିବା ପଦଦ୍ୱୟ ।

ହରେହରେ—ଅ.ହେ ହରି ! ହେ ହରି ! ହରିଙ୍କ ନାମର ଦୁଇଥର ଉଚ୍ଚାରଣ ପୂର୍ବକ ଡାକ ।

ହରେବଟେ—ପ୍ରା.(ବଲାଙ୍ଗିରପାଟଣା)ବି. ଓ ବିଂ. ହରବର ।

ହରେଉରେ—ପ୍ରା. (ସମ୍ବ) ବିଂ. ବିରକ୍ତ ।

ହର୍ତ୍ତା—ପୁଂ. ବିଂ. (ହୃ+କ.ତୃ) ହରଣ-କର୍ତ୍ତା, ଅପହାରକ, ଗ୍ରହଣକାରୀ, ସଂହା-ରକ, ବିନାଶକ, ବହନକାରୀ, (ବି) ସୂର୍ଯ୍ୟ, ଚୋର, (ସ୍ତ୍ରୀ) ହର୍ତ୍ତ୍ରୀ ।

ହର୍ତ୍ତାକର୍ତ୍ତାବିଧାତା—ବି ଓ ବିଂ. ବିନାଶକାରୀ, ରକ୍ଷଣକାରୀ ଓ ସୃଷ୍ଟିକାରୀ କର୍ତ୍ତା ବା ପ୍ରଭୁ, ସର୍ବେସର୍ବା ।

ହର୍ମ(ର୍ମ୍ମ)-ବି. ହୃ+କ.ଅର୍ମନ୍) ଜୃମ୍ଭଣ, ହାଇ

ହର୍ମିତ—ବି.(ହର୍ମ+ଇତ) ଜୃମ୍ଭିତ, ହାଇ-ମାରୁଥିବା, ଦଗ୍ଧ, କ୍ଷିପ୍ତ ।

ହର୍ମୁଟ—ବି. ( ହର୍ମ+ଉଟ ) ସୂର୍ଯ୍ୟ, କଚ୍ଛପ, କଇଁଛ ।

ହର୍ମ୍ୟ(ର୍ମ୍ମ୍ୟ)—ବି. (ହୃ+କ.ଯ.ମ ଆଗମ) ପ୍ରାସାଦ, ଅଟ୍ଟାଳିକା, ବଡ଼ କୋଠାଘର, ପ୍ରସ୍ତର ଇଷ୍ଟକାଦି ନିର୍ମିତ ଧନୀମାନଙ୍କର ବାସଭବନ ।

ହର୍ମ୍ମ୍ୟତଳ—ବି. (୬ତତ୍) କୋଠାଘରର ମେଜିଆ, ହର୍ମ୍ମ୍ୟର ତଳଭାଗ ।

ହର୍ମ୍ମ୍ୟପୃଷ୍ଠ—ବି.(୬ତତ୍)କୋଠାର ଛାତ ।

ହର୍ମ୍ମ୍ୟଶିଖର—ବି.କୋଠାର ଶିରୋଦେଶ ।

ହର୍ମ୍ମ୍ୟାରୂଢ଼—ବିଂ. କୋଠା ଉପରେ ଚଢ଼ିଥିବା, (ସ୍ତ୍ରୀ) ହର୍ମ୍ମ୍ୟାରୂଢ଼ା ।

ହର୍ମ୍ମ୍ୟୋପରି—ଅବ୍ୟ. (ହର୍ମ୍ମ୍ୟ+ଉପରି) କୋଠା ଉପରେ । [ ଅବସ୍ଥିତ ।

ହର୍ମ୍ମ୍ୟୋପରିସ୍ଥ—ବିଂ. କୋଠା ଉପରେ

ହର୍ଯ୍ୟକ୍ଷ—ବି. (ହରି+ଅକ୍ଷି)ବ.ବ୍ରୀ; ସିଂହ, କେଶରୀ, କୁବେର, ପୃଥୁଙ୍କ ପୁତ୍ର, ଅସୁର-ବିଶେଷ, ହରିଣୀ, ( ବିଂ ) ପିଙ୍ଗଳ ନେତ୍ରବିଶିଷ୍ଟ ।

ହର୍ଯ୍ୟତ—ବି. (ହୃ+କ.ଅତ)ଘୋଟକ, ଘୋଡ଼ା, ଅଶ୍ୱମେଧୀୟ ଅଶ୍ୱ ।

ହର୍ଯ୍ୟବନ—ପୁଂ.ବି. କୁବେରଙ୍କର ପୁତ୍ର, ( ଭାଗବତ ) ।

ହର୍ଯ୍ୟଶ୍ୱ—ପୁଂ. ବି. (ହରି+ଅଶ୍ୱ)ବ.ବ୍ରୀ; ଇନ୍ଦ୍ର, ପଞ୍ଚାଳର ଜନୈକ ନୃପ, ଦିବୋ-ଦାସଙ୍କର ପିତାମହ, ଇକ୍ଷ୍ୱାକୁବଂଶୀୟ ଜନୈକ ରାଜା, ଦକ୍ଷଙ୍କର ପୁତ୍ରଗଣ, ଧୃଷ୍ଟକେତୁଙ୍କ ପୁତ୍ର ।

ହର୍ଯ୍ୟଶ୍ୱଚାପ—ବି. (୬ତତ୍) ଇନ୍ଦ୍ରଧନୁ ।

ହର୍ଯ୍ୟଶ୍ୱତ—ବି.କୃତଙ୍କ ପୁତ୍ର(ହରିବଂଶ) ।

ହର୍ଯ୍ୟାତ୍ମା—ପୁଂ. ବି. ଉତ୍ତମ ମନ୍ୱନ୍ତରର ବ୍ୟାସ (ବିଷ୍ଣୁପୁରାଣ) ।

ହର୍ଷ—ବି. (ହୃଷ୍+ଭା.ଅ)ଆନନ୍ଦ, ଆହ୍ଲାଦ, ଇଷ୍ଟଶ୍ରବଣହେତୁ ଆନନ୍ଦ, ସୁଖ, କନ୍ଦର୍ପଙ୍କ

ପିତା ( ବାମନ ପୁରାଣ ), ମଦନ ବୃଷ, ଗୀତଗୋବିନ୍ଦ ଟୀକା ରଚୟିତା ।

ହର୍ଷକ—ପୁଂ. ବିଂ. ( ହୃଷ୍+କ.ଅକ ) ହର୍ଷକାରକ, ଆନନ୍ଦଜନକ, ( ସ୍ତ୍ରୀ ) ହର୍ଷିକା ।

ହର୍ଷକର—ବିଂ. (ହୃଷ୍+କୃ+ଅ) ସୁଖଜନକ, ଆନନ୍ଦକର ।

ହର୍ଷକୀଲକ-ବି. ରତିବନ୍ଧବିଶେଷ, (ଯଥାଃ "ନାରୀପଦ ଦ୍ୱୟଂ ଧୃତ୍ୱା କାନ୍ତସ୍ୟୋରୁ- ଯୁଗୋପରି, କଟିମାନ୍ଦୋଳୟେଦ୍‌ବାଶୁ ବନ୍ଧୋଽୟଂ ହର୍ଷକୀଲକଃ" ।

ହର୍ଷଚରିତ—ବି. ବାଣଭଟ୍ଟ ରଚିତ ହର୍ଷବର୍ଦ୍ଧନଙ୍କର ଚରିତାଖ୍ୟାୟିକା ।

ହର୍ଷଣ—ବି. ( ହୃଷ୍+ଭା.ଅନ ) ହର୍ଷ, ଆହ୍ଲାଦ, ପୁଲକ, ଶୁଙ୍କଧାତୁ, (ହୃଷ୍+ଣିଚ୍+ଭା.ଅନ) ଆହ୍ଲାଦ ଜନ୍ମାଇବା, (କ.ଅନ-ଜ୍ୟୋତିଷ) ବିଷ୍କୁମ୍ଭାଦି ସପ୍ତବିଂଶତି ଯୋଗାନ୍ତର୍ଗତ ଚତୁର୍ଦ୍ଦଶ ଯୋଗ, ଚକ୍ଷୁରୋଗବିଶେଷ, ଶ୍ରାଦ୍ଧବିଶେଷ, ଶ୍ରାଦ୍ଧଦେବ, (ପୁଂ.ବିଂ) ଆହ୍ଲାଦଉତ୍ପାଦକ, ଆନନ୍ଦଜନକ ।

ହର୍ଷଣୀ—ସ୍ତ୍ରୀ. ବି. ହର୍ଷଣର ସ୍ତ୍ରୀଲିଙ୍ଗ, (ବି) ଭଙ୍ଗ, ସିଦ୍ଧି, କପିକଚ୍ଛୁ, ବାଇଡଙ୍ଗ ।

ହର୍ଷଦେବ—ଗ୍ରା.ବି. କାଶ୍ମୀରର ଜନୈକ ରାଜା, ପ୍ରସିଦ୍ଧ ଭାରତ ସମ୍ରାଟ୍ ।

ହର୍ଷନାଦ—ବି. ଆନନ୍ଦଧ୍ୱନି, ହର୍ଷନିଃସ୍ୱନ, ଆନନ୍ଦସୂଚକ ଶବ୍ଦ ।

ହର୍ଷପ୍ରକାଶ—ବି.(୬ତତ୍ପୁ)ଆନନ୍ଦପ୍ରକାଶ ।

ହର୍ଷପ୍ରଫୁଲ୍ଲ-ପୁଂ.ବିଂ. ଆନନ୍ଦରେ ଉତ୍ଫୁଲ୍ଲ, ହର୍ଷୋତ୍ଫୁଲ୍ଲ ଦେଖ ।

ହର୍ଷମୟ—ବିଂ. ଆନନ୍ଦସ୍ୱରୂପ, ସୁଖମୟ ।

ହର୍ଷମଲ୍ଲ—ପୁଂ. ବି. ହର୍ଷଦେବ ଦେଖ ।

ହର୍ଷମାଣ—ପୁଂ. ବିଂ. (ହୃଷ୍+କ.ଆନ) ହୃଷ୍ଟମାନସ, ହର୍ଷଯୁକ୍ତ, ପ୍ରୀତମାନସ, (ସ୍ତ୍ରୀ) ହର୍ଷମାଣା ।

ହର୍ଷୟିତ୍ନୁ—ବିଂ. ( ହୃଷ୍+କ.ଇତ୍ନୁ ) ହର୍ଷଶୀଳ, ଯାହା ଆନନ୍ଦ ଦିଏ, ( ବି ) ପୁତ୍ର, ସ୍ୱର୍ଣ୍ଣ ।

ହର୍ଷବର୍ଦ୍ଧକ—ପୁଂ. ବିଂ. ଯାହା ଆନନ୍ଦ ବଢ଼ାଏ, (ସ୍ତ୍ରୀ) ହର୍ଷବର୍ଦ୍ଧିକା ।

ହର୍ଷବର୍ଦ୍ଧନ—ବି. ( ୬ତତ୍ପୁ ) ଆହ୍ଲାଦର ବୃଦ୍ଧି ପାଇବା, ଶିଳାଦିତ୍ୟ ରାଜା, (ବିଂ) ଯାହା ହର୍ଷବୃଦ୍ଧି କରାଏ ।

ହର୍ଷବିକସିତ—ବିଂ. (୩ତତ୍ପୁ) ହର୍ଷୋତ୍ଫୁଲ୍ଲ ଦେଖ, (ସ୍ତ୍ରୀ) ହର୍ଷବିକସିତା ।

ହର୍ଷବିକାଶ—ବି. ହର୍ଷଜନିତ ପ୍ରଫୁଲ୍ଲତା, ଆନନ୍ଦର ବିକାଶ ।

ହର୍ଷସମ୍ପୁଟ—ବି. ରତିବନ୍ଧବିଶେଷ, ଲକ୍ଷଣ ଯଥାଃ— " କାମିନ୍ୟାଶ୍ଚୋରୁଯୁଗଂ ଧୃତ୍ୱା କରାଭ୍ୟାଂ ପୀଡ଼ୟେତ୍ତୁ ପୁନଃ କାମୟେନ୍ନିର୍ଭୟଃ କାମୀ ବନ୍ଧୋଽୟଂ ହର୍ଷସମ୍ପୁଟଃ " ।

ହର୍ଷସୂଚକ—ବି. (୬ତତ୍ପୁ)ଆନନ୍ଦସୂଚକ, ଯାହା ଦ୍ୱାରା ହର୍ଷସୂଚିତ ହୁଏ । [ନାଦ

ହର୍ଷସ୍ୱନ—ବି. ଆନନ୍ଦ ଧ୍ୱନି, କିଳିକିଳା-

ହର୍ଷାର୍ଣ୍ଣବ-.ବି. ସମୁଦ୍ରପରି ଅସୀମ ଆନନ୍ଦ ।

ହର୍ଷାନ୍ୱିତ—ବିଂ, ଆନନ୍ଦଯୁକ୍ତ, ଆହ୍ଲାଦିତ ।

ହର୍ଷିଣୀ—ସ୍ତ୍ରୀ. ବି. (ହର୍ଷ+ଇନ୍+ସ୍ତ୍ରୀ-ଈ) ସଂବିଦାମଞ୍ଜରୀ, ଗଞ୍ଜେଇ କଳି, ଗଞ୍ଜେଇ, ବିଜୟା, ସିଦ୍ଧି (ବିଂ) ହୃଷ୍ଟା ।

ହର୍ଷିତ—ବିଂ. (ହୃଷ୍+ମଁ.ତ) ତୋଷିତ, ଆନନ୍ଦପ୍ରାପିତ, (ହର୍ଷ+ଇତ) ଆନନ୍ଦିତ, ହୃଷ୍ଟ, (ସ୍ତ୍ରୀ) ହର୍ଷିତା ।

ହର୍ଷୀ—ପୁଂ. ବିଂ. (ହୃଷ୍+ଇନ୍) ଆନନ୍ଦଯୁକ୍ତ, ହୃଷ୍ଟ, ହର୍ଷବିଶିଷ୍ଟ, (ସ୍ତ୍ରୀ)ହର୍ଷିଣୀ ।

ହର୍ଷୁଳ—ପୁଂ. ବିଂ. ( ହୃଷ୍+କ. ଉଳ) ହର୍ଷଶୀଳ, ପୁଂ.ବି. ମୃଗ, କାମୁକ ବ୍ୟକ୍ତି ।

ହର୍ଷୁଳା—ସ୍ତ୍ରୀ. ବିଂ. ( ହର୍ଷୁଳ+ଆ ) ହର୍ଷୁଳର ସ୍ତ୍ରୀଲିଙ୍ଗ, (ବି) ଯେଉଁ ସ୍ତ୍ରୀର ଓଠରେ ଦାଢ଼ୀ ଉଠିଥାଏ ।

ହର୍ଷୋଚ୍ଛ୍ୱାସ—ବି. ( ହର୍ଷ+ଉଚ୍ଛ୍ୱାସ ) ହର୍ଷଜନିତ ଆନନ୍ଦପ୍ରବାହ ।

ହର୍ଷୋତ୍ଫୁଲ୍ଲ—ପୁଂ. ବିଂ. ( ୩ ତତ୍ପୁ ) ଆହ୍ଲାଦିତ, ଆନନ୍ଦରୁ ବିକସିତ, (ସ୍ତ୍ରୀ) ହର୍ଷୋତ୍ଫୁଲ୍ଲା ।

ହର୍ଷୋଦୟ—ବି. ( ୬ତତ୍ପୁ ) ଆନନ୍ଦର ଆବିର୍ଭାବ, ଆହ୍ଲାଦର ସଞ୍ଚାର ।

ହଲ୍—ବି. ସ୍ୱରହୀନ ବ୍ୟଞ୍ଜନବର୍ଣ୍ଣ, ଶୁଦ୍ଧ ବ୍ୟଞ୍ଜନବର୍ଣ୍ଣ ।

ହଲ୍‌କରା-ପ୍ରା.(ଖଡ଼ିଆଳି)ବି.ଡାକବାହକ, ଡାକବାଲା, ହରକରା, ।

ହଳ୍କା—ପ୍ରା. (ଖଡ଼ିଆଳି) ବି. ଲିହରି, (ବିଂ) ହାଲୁକା, ଉଣାପିଆ, ନ୍ୟୂନ, ଯା. ବି. ରାଜକର୍ମଚାରୀ ବା ଶାସନବିଭାଗର ଅଧୀନ ଇଲାକା । [ ଦେଖ ।

ହଲ୍‌ଚଲ୍—ଗ୍ରା. ବି ଓ ବିଂ. ହଲିଚଳି

ହଲ୍‌ବା—ପ୍ରା. ( ସମ୍ବ ) କ୍ରି. ହଲିବା, ଦୋହଲିବା ।

ହଲ୍‌ବା (ୱା)ଇ—ପ୍ରା. ( ଖଡ଼ିଆଳି ) ବି. ହାଲୁଆ, ଗୁଡ଼ଆ, ଯେ ମିଠାଇ ତିଆରକର ବନ୍ଧେ ।

ହଲ୍‌ଚଲାଇବା—ପ୍ରା. (ସମ୍ବ) କ୍ରି. ଦୋହଲାଇବା, ହଲାଇବା ।

ହଲ୍‌ବେଠି (ବେଟ୍ଠି)—ପ୍ରା.(ସମ୍ବ).ପ୍ରତିବର୍ଷ ମାଫିଦାରଙ୍କ ବା ଗଉନ୍ତିଆଙ୍କ ଜମି ଚାଷ କରିବା ପାଇଁ ପ୍ରଜାର ଗୋଟିଏ ହଳ ମାଗଣା ଯୋଗାଇବା ବେଠି ।

ହଲ୍‌ଵା—ପ୍ରା. (ଖଡ଼ିଆଳି) ବି. ଏକପ୍ରକାର ମହୁରି ଭୋଗ ।

ହଲ୍ଲବା—ପ୍ରା. (ପାଟଣା) କ୍ରି. ଗୋଳମାଳ କରିବା, ଗୋଳିଆ କରିବା ।

ହଲ୍‌ହଲ୍—ପ୍ରା. (ସମ୍ବ) ବିଂ. ଗରମ ।

ହଲହଲିବା—ପ୍ରା. ( ଖଡ଼ିଆଳି ) କ୍ରି. ହଲିବା (ଅକର୍ମକ) ।

ହଳ—ବି. (ହଲ୍+ଣ.ଅ) ଭୂମିକର୍ଷଣଯନ୍ତ୍ର. ଲଙ୍ଗଳ, ( ଗ୍ରା. ବି.ବଳଦଆଦି) ପଶୁଙ୍କ ଯୁଗ୍ମ, ଏକଯୋଡ଼ା, ଦୁଇସଂଖ୍ୟା, ପଶୁଦମ୍ପତି, ପଶୁଦମ୍ପତିଙ୍କ ଯୌନମିଳନ. ହଳାହଳ, ବିଷ. ( ଗ୍ରା.ବିଂ ) ଯୁଗ୍ମ, ଦୁଇ ସଂଖ୍ୟକ, (ପ୍ରା.ବା ମନ୍ତ୍ରୀ ଆଦି) ବଳଦ ।

ହଳ—ପ୍ରା. (ଖଡ଼ିଆଳି)ବି. ହଳ, ଯୋଡ଼ି, ଏକତ୍ର ବନ୍ଧା ହୋଇଥିବା ଦୁଇଗୋଟି ବଳଦ ବା ପୋଢ଼ୁଅ ।

ହଳଓଡ଼—ଗ୍ରା. ବି. ଏକଓଡ଼ ବା ଏକଥର ଭୂମିକୁ ହଳଦ୍ୱାରା କର୍ଷଣ ।

ହଲକ୍—ଗ୍ରା. ବି. ସାହସ, ଧୈର୍ଯ୍ୟ, ଯା. ବି. ଗଳାର ନାଳୀ ।

(ଅମୁକର)ହଲକ୍‌ଟୁଶିଗିବା—ଗ୍ରା. ବି. ସାହସ ଲୁପ୍ତହେବା, ଧୈର୍ଯ୍ୟଚ୍ୟୁତ ।

ହଲକ—ଗ୍ରା. ବି. ହଳେ, ହଳଏ, ଏକହଳ ବା ଏକଯୋଡ଼ା ମାତ୍ର,(ବିଂ)ଦୁଇସଂଖ୍ୟକ ।

ହଲକକୁଦ୍—ବି. (ତନ୍ତ୍ର) ଲଙ୍ଗଳମୁଣ୍ଡା, ଲଙ୍ଗଳର ପନି ।

ହଲକମା(ମେ)ଇ—ଗ୍ରା. ବି. ହଳିଆର ଏକଦିନ ପାଇଁ ଅନୁପସ୍ଥିତି, ହଳବୁଲାଇବା ଲୋକ ହଳ ବୁଲାଇବା କାର୍ଯ୍ୟରେ ଯେଉଁଦିନ ଅନୁପସ୍ଥିତ ହୁଏ ।

ହଲକର—ଗ୍ରା. ବି. ପ୍ରତ୍ୟେକ ଲଙ୍ଗଳ ଉପରେ ବସାଯିବା ଟିକସ, (ବିଂ) ଏକ ହଳରେ ଯେତେ ଚାଷ ହୋଇପାରେ ( ଜମି )

ହଲକରିବା—ଗ୍ରା.କ୍ରି. ହଳକୁ ବୁଲାଇବା. ଲଙ୍ଗଳଦ୍ୱାରା ଚାଷକରିବା ।

ହଲକର୍ମ—ବି. (ହଳ+କର୍ମ) କୃଷିକର୍ମ, କ୍ଷେତ୍ରରେ କୃଷି କରିବା କାର୍ଯ୍ୟ ।

ହଲ୍‌କା—ଯା. ବି. ଶାସନ ଶୃଙ୍ଖଳାରେ ହେବା ନିମିତ୍ତ ନିର୍ଦ୍ଦିଷ୍ଟ ଏକ କର୍ମଚାରୀଙ୍କ ଅଧୀନ ଇଲାକା, ହାତୀପଲ, ଅଶ୍ୱାଦିଙ୍କର ଗଳବେଷ୍ଟନୀ, ସେନାଦଳ,(ପ୍ରା,ପାଟଣା) ମାଛ ପାଣିଭିତରୁ ଶୂନ୍ୟକୁ ଡେଇଁଲାବେଳେ ସୃଷ୍ଟି କରିବା ବୃତ୍ତାକାର ଲହରୀ ।

ହଲକାବନ୍ଦି—ଯା. ବି. ପୃଥକ୍ ପୃଥକ୍ ତାଲୁକା ବା ହଲକା ଗଠନ ।

ହଲକାମ—ଗ୍ରା. ବି. ହଳକର୍ମ, ହଳଚାଷକର୍ମ ।

ହଲକା(କୁ)ହଲ—ଗ୍ରା. କ୍ରି. ବିଂ. ହଳହଳ କରି, ଏକହଳ ଲେଖାଏଁ ।

ହଲଗ୍ରାହୀ—ପୁଂ. ବି. (ହଳ+ଗ୍ରହ+କ. ଇନ୍) ଯେଉଁ ବ୍ୟକ୍ତି ହଳ ବୁଲାଇବାପାଇଁ କଣ୍ଟିକୁ ଅପଣା ମୁଠାଦ୍ୱାରା ଧରିରେ ।

ହଲଚଲ୍—ଗ୍ରା. ବିଂ. ଇତସ୍ତତଃ ସଞ୍ଚାଳିତ. ଇତସ୍ତତଃ ଚାଳିତ, ଅସ୍ଥିର, ଖଜଜଜ, (ଲ.ଅର୍ଥ ନିର୍ଦ୍ଦିଷ୍ଟ ସୀମାର ବା ସ୍ଥାନର ବା ନିୟମର ବ୍ୟତିକ୍ରମ କରିବା (ବ୍ୟକ୍ତି), (ଗ୍ରା.ବି) ଅସ୍ଥିରତା. ନିର୍ଦ୍ଦିଷ୍ଟ ନିୟମର ବ୍ୟତିକ୍ରମ, ବିଚଳନ ।

ହଲଚଲ୍‌ହେବା—ଗ୍ରା. କ୍ରି. ଅସ୍ଥିରହେବା, ମନକୁ ସ୍ଥିର ନ ରଖିବା, ଇତସ୍ତତଃଚାଳିତହେବ, ବିଚଳିତ ହେବା. ଚଗଲବଗଲ ହେବା,(ଲ.ଅର୍ଥ) ନିର୍ଦ୍ଦିଷ୍ଟ ସୀମାକୁ ବା ସ୍ଥାନକୁ ବା ନିୟମକୁ ବ୍ୟତିକ୍ରମ କରିବା ।

ହଲଚଲିଆ—ଗ୍ରା. ପୁଂ. ବିଂ. ସ୍ୱଭାବତଃ ଅସ୍ଥିର, ଯେଉଁ ବ୍ୟକ୍ତି ନିଜର ସତ୍ୟରୁ ବା ପ୍ରତିଜ୍ଞାରୁ ବିଚଳିତ ହୁଏ, ଅସ୍ଥିରମନା, ଚଞ୍ଚଳିଆ, ପରିବର୍ତ୍ତନଶୀଳ, (ସ୍ତ୍ରୀ.) ହଲଚଲେଇ ।

ହଲଚନା—ଗ୍ରା. ବି. ହଳକର, ପ୍ରତ୍ୟେକ ଲଙ୍ଗଳଉପରେ ବସାଯିବା ଟିକସ ।

ହଲଜୀବୀ—ପୁଂ. ବିଂ. ହଳଦ୍ୱାରା ଜୀବିକା ନିର୍ବାହକାରୀ (ବ୍ୟକ୍ତି,) କୃଷକ, (ସ୍ତ୍ରୀ.) ଜୀବିନୀ ।

ହଲଟହଲ—ଗ୍ରା.ବି. ଯାଆସ, ଇତସ୍ତତଃ ଭ୍ରମଣ କରିବା, ଲଙ୍ଗରପଙ୍ଗର ହେବା ।

ହଲଟହଲିଆ—ଗ୍ରା. ପୁଂ. ବିଂ. ବୃଥା ଇତସ୍ତତଃ ଯା ଆସ କରୁଥିବା, ବିନା ପ୍ରୟୋଜନରେ ଇତସ୍ତତଃ ଯାଉଥିବା ଆସୁଥିବା ।

ହଲଣା—ପ୍ରା. (ସିଂହଭୂମ) ବି.ବଡପଲମ, ଯେଉଁ ହାଣ୍ଡିରେ ମୁଢ଼ିପାଇଁ ଚାଉଳକୁ ଲୁଣପାଣିରେ ବତୁରାଇ ଉବୁଟନ୍ତି ।

ହଲ(ଲ୍ଲ)ଣ୍ଡ—ଗ୍ରା. ବି. ଇଉରୋପର ରାଜ୍ୟବିଶେଷ ।

ହଲଦଣ୍ଡ—ବି. (ତନ୍ତ୍ର) ଈଷ ।

ହଲଦା—ଗ୍ରା. ବି. ହଳଦିଆବର୍ଣ୍ଣର କାଷ୍ଠବିଶିଷ୍ଟ ନାତିବୃହତ୍ ଅରଣ୍ୟ ତରୁ ।

ହଲଦା(ଦେ)ଇବା—ଗ୍ରା. ବି. ହଳଦିଆରଙ୍ଗରେ ରଞ୍ଜିତ କରିବା ।

ହଲଦ(ଦୀ)—ଗ୍ରା.ବି. (ସଂ-ହରିଦ୍ରା)ହରିଦ୍ରା ଦେଖ ।

ହଲ(ଲ୍)ଦ—ପ୍ରା. (ସମ୍ବଲ) ବି. ହଳଦ, (ଗ୍ରା.ବି) ମେଦିନୀପୁରର ନଦୀବିଶେଷ ।

ହଲଦିଆ—ଗ୍ରା. ବିଂ. ( ସଂ ହରିଦ୍ରାଭ ) ହରିଦ୍ରାବର୍ଣ୍ଣବିଶିଷ୍ଟ,ହରିଦ୍ରାରଞ୍ଜିତ, ହଳଦିରଙ୍ଗ କରାଯାଇଥିବା (ବସ୍ତ୍ରାଦି), ହଳଦିସ୍ୱାଦଯୁକ୍ତ, ପରିମାଣାଧିକ୍ୟ ହଳଦି ପକାଯାଇଥିବା (ତିଅଣଆଦି), (ସଂ-ହଳ+ଦାଧାତୁ) ଯେଉଁ ଜମିରେ ହଳ କରାଯାଇଥାଏ, ହଳଦ୍ୱାରା କର୍ଷିତ,(ଗ୍ରା. ବି) ପିତ୍ତକାମଳ ରୋଗ, ଖୋରଧାର ଗୋଟିଏ ଗ୍ରାମ, (ପ୍ରା. ପୁରୀ) ଓଲାଉଠା, ବସନ୍ତ ଦେଖ । [ ଦେଖ ]

ହ'ଲ୍'ଲଦିଆ—ପ୍ରା. (ସମ୍ବ)ବିଂ. ହଳଦିଆ

ହଲଦିଆଗଛ—ଗ୍ରା, ବି. ହଳଦି ଚାଷକାରୀ କନ୍ଧଜାତି (ଏମାନଙ୍କର ପ୍ରଧାନ ଜୀବିକା ହଳଦି ଚାଷ) ।

ହଲଦିଆନଗର—ପ୍ରା. (ସମ୍ବଲ) ବିଂ. ହଳଦିଗଉନର ଦେଖ ।

ହଲଦିଆଜୁଆର—ଗ୍ରା.ବି. ବସନ୍ତଋତୁରେ ଚଳିକାରେ ହେବା ଅନୁଚ୍ଚ ଜୁଆର ।

ହଲଦିଆଜୁଇ—ଗ୍ରା.ବି.(ସଂ-ହେମପୁଷ୍ପିକା) ହଳଦିରଙ୍ଗର ଜୁଇଫୁଲ ।

ହଲଦିଆତେଲି—ଗ୍ରା. ବି. ତେଲିଜାତିର ଶାଖାବିଶେଷ ( ଏମାନେ ହଳଦି ବ୍ୟବସାୟ କରନ୍ତି ) ।

ହଲଦିଆପତ୍ର—ଗ୍ରା. ବି. (ସଂ ହରିଦ୍ରା+ପତ୍ର) ବାଲ୍ୟ ବିବାହିତା କନ୍ୟାର ପିତୃଗୃହରେ ପ୍ରଥମ ରଜୋଦର୍ଶନ ହେଲେ ଏ ସମ୍ବାଦ ସ୍ୱାମୀଙ୍କ ଗୃହକୁ ଯେଉଁ ହଳଦି ବୋଳା ତାଳପତ୍ରରେ ପ୍ରେରିତ ହୁଏ, (ପଠାଯାଏ) ।

ହଲଦିଆପତ୍ରପଠାଯିବା(ହେବା)—ଗ୍ରା.ବି. ବାଲ୍ୟବିବାହିତା କନ୍ୟାର ପିତୃଗୃହରୁ ପ୍ରଥମ ରଜୋଦର୍ଶନ ସମ୍ବାଦ ହଳଦିଲଗା ପତ୍ରରେ ଲେଖାହୋଇ ପିତୃଗୃହରୁ ସ୍ୱାମୀଙ୍କ ଗୃହକୁ ପ୍ରେରିତହେବା ।

ହଲଦିଆବସନ୍ତ—ଗ୍ରା. ବି. ହଳଦିବସନ୍ତ

ଦେଖ, ବର୍ଷାସ୍ଥ ଶ୍ରେଷ୍ଠ ଶାକବିଶେଷ ।

ହଳଦିଆଦେବମାରି(ରୋଗ)—ଗ୍ରା. ବି. ପିତ୍ତଜାମଲ ରୋଗ ।

ହଳଦିଆଭଞ୍ଜ—ଗ୍ରା. ବି. ଖୋରଧାର ହଳଦିଆଗ୍ରାମବାସୀ ଭଞ୍ଜ ଉପାଧିଧାରୀ କ୍ଷତ୍ରିୟ । [ ବିଶେଷ ।

ହଳଦିଆମାଗୁର—ଗ୍ରା.ବି. ମୋଟା ଧାନ୍ୟ-

ହଳଦିଆଶାଳ-ଗ୍ରା. ବି. ହଳଦିଆବର୍ଣ୍ଣର ଶକଳୀ ମତ୍ସ୍ୟ ।

ହଳଦିକାଠୁଆ—ଗ୍ରା.ବି.ବଟାହଳଦି ରଖିବାର କାଠର ବା ପିତ୍ତଳର ପାତ୍ର, (ନାମ) ଭୁବନେଶ୍ୱରସ୍ଥ କେଦାରଗୌରୀ ନାମକ ଜଳକୁଣ୍ଡର ଉତ୍ତରପାଖରେ ଥିବା ଈଷତ୍ ହଳଦିଆ ଜଳବିଶିଷ୍ଟ ଗୋଟିଏ କୁଣ୍ଡ ।

ହଳଦିକୋଞ୍ଚ—ଗ୍ରା.ବି. ହଳଦି କୋଶିବା ଏକଇଞ୍ଚ ପ୍ରସ୍ଥବିଶିଷ୍ଟ କାଙ୍କ ।

ହଳଦିଗରଗର—ଗ୍ରା.ବିଂ.ଅତ୍ୟନ୍ତ ହଳଦିଆ ଦେଖାଯାଉଥିବା (ଦେହ), ହଳଦିଆ ରଙ୍ଗରେ ବିଶେଷଭାବରେ ରଞ୍ଜିତ ।

ହଳଦିଗୁଣ୍ଡା—ଗ୍ରା. ବି. ଫେଡ଼ା ହଳଦିକୁ ଛେଚା ବା କୁଟି କରାଯାଇଥିବା ଚୂନା, (ପ୍ରା. ଖଡ଼ିଆଳ) ବିବାହାଦିରେ ବନ୍ଧୁମାନଙ୍କୁ ପ୍ରେରିତ ନିମନ୍ତ୍ରଣରେ ଗୁଆସହିତ ଦିଆଯିବା ହଳଦି ଗୁଣ୍ଡା, ଗୁଆଗୁଣ୍ଡା ।

ହଳଦିଗୁଣ୍ଡି—ଗ୍ରା. ବି. ହଳଦିଆ ଧାନ୍ୟବିଶେଷ, ଧାନଗଛରେ ଲାଗିବା ହଳଦି ବର୍ଣ୍ଣର ଶ୍ରେଷ୍ଠ ପୋକ ।

ହଳଦିଘାଟ—ଗ୍ରା.ବି. ରାଜପୁତାନାନ୍ତର୍ଗତ ମେବାରର ପ୍ରସିଦ୍ଧ ଗିରିପଥ ଓ ଯୁଦ୍ଧକ୍ଷେତ୍ର ।

ହଳଦିଛେଚିବା(ଚେପିବା)—ଗ୍ରା. କ୍ରି. ହଳଦିକୁ ବାଟିବା ବା ଗୁଣ୍ଡ କରିବା ।

ହଳଦିତେଲ—ଗ୍ରା. ବି. ହଳଦି ମାଲିପା, ଦେହରେ ଲଗାଯିବା ତେଲମିଶା ହଳଦି ।

ହଳଦିପାଣି—ଗ୍ରା.ବି. ବଟାହଳଦି ମିଶ୍ରିତ ଜଳ, ଚନ୍ଦନଯାତ୍ରାର ଶେଷଦିନ ଲୋକଙ୍କର ହଳଦି ମିଶା ପାଣିରେ ସ୍ନାନ ଓ ଖେଳରୂପ ଉତ୍ସବ, କ୍ଷତ୍ରିୟମାନଙ୍କ ବିବାହ ଉତ୍ସବରେ ବରକନ୍ୟା ଉଭୟ ପକ୍ଷର ଲୋକମାନଙ୍କର ହଳଦି ମିଶା ପାଣିରେ ସ୍ନାନଉତ୍ସବ ।

ହଳଦିପାଣିଦେବା—ଗ୍ରା.କ୍ରି. ଘରଛୁଆଁସି ଶେଷରେ ଘରର ଚୂଲରେ ହଳଦିପାଣି ଛିଞ୍ଚିବା, ଅର୍ଥାତ୍ ଆମ୍ବଡ଼ାଳକୁ ହଳଦିପାଣିରେ ବୁଡ଼ାଇ ଚୂଲଉପରେ ଛିଞ୍ଚିବା ଓ ସେହି ଆମ୍ବଡ଼ାଳକୁ ଚୂଲରେ ଖୋସିବା ପରେ ବାକି ପାଣିକୁ ଚୂଲଉପରେ ଗ୍ରଣ୍ଠିଦେବା ।

ହଳଦିପାଣିରେଗୋଡ଼ଧୋଇବା—ଗ୍ରା.କ୍ରି. ମୃତବ୍ୟକ୍ତିଙ୍କ ଦଶାହଦିନ ଆତ୍ମୀୟ କୁଟୁମ୍ବଙ୍କର ଘରୁ ଆସି ଦାଣ୍ଡଦ୍ୱାରରେ ହଳଦି ମିଶା ପାଣିରେ ଗୋଡ଼ ଧୋଇବା (ପ୍ରା. ଗଞ୍ଜାମ) ଜୋଇଁ ସର୍ବପ୍ରଥମେ ନିମନ୍ତ୍ରିତ ହୋଇ ଶ୍ୱଶୁର ଘରକୁ ଯିବା, (ସେତେବେଳେ ତାଙ୍କ ଗୋଡ଼ଧୁଆ ହଳଦିପାଣିରେ ହେଉଥିବାରୁ) ବିବାହରେ ବରର ଗୋଡ଼କୁ ହଳଦି ମିଶା ପାଣିରେ କନ୍ୟାପକ୍ଷରୁ ଧୋଇଦେବା ରୂପ କର୍ମ ।

ହଳଦିବଟା—ଗ୍ରା. ବି. ଫେଡ଼ା ହଳଦିକୁ ପାଣି ମିଶାଇ ବାଟିବା ।

ହଳଦିବସନ୍ତ—ଗ୍ରା. ବି. ହଳଦିଆରଙ୍ଗର ପାଟ ଖିଅ, ବଣିଜାତୀୟ ଶାଖାଚର ବର୍ଗର ହଳଦିଆ ପକ୍ଷିବିଶେଷ

ହଳଦିବାଟିବା—ଗ୍ରା. କ୍ରି. ଖଣ୍ଡ ହଳଦିକୁ ଶିଳରେ ଛେଚି ପାଣିମିଶାଇ ଲେପ ପ୍ରସ୍ତୁତ କରିବା ।

ହଳଦିବେସର—ଗ୍ରା. ବି. ତିଅଣରେ ପକାଇବାପାଇଁ ବ୍ୟବହୃତ ବଟା ହଳଦି ଓ ବଟା ବେସର ।

ହଳଦିବୋଳିବା—ଗ୍ରା.କ୍ରି. ବାହୁଳିଆଙ୍କ ଦେହରେ ହଳଦି ଲଗାଇବା ।

ହଳଦିମଳକୁଟି—ଗ୍ରା. ବି. (ସଂ-ହରିଦ୍ରା+ମଳ+କୀଟ)ଦେହରେ ବୋଳାହୋଇଥିବା ବଟାହଳଦି ଟିକିଏ ଶୁଖିଗଲେ ହାତରେ ଘଷିବା ପରେ ଦେହରୁ ଖସି ପଡ଼ିବା ମଳମିଶ୍ରିତ ହଳଦି ।

ହଳଦିମାଲିପା—ଗ୍ରା.ବି.(ସହଚର)ହଳଦିତେଲ, ଦେହରେ ଲଗାଯିବା ତେଲମିଶା ହଳଦି ।

ହଳଦିମୁକୁଟି—ପ୍ରା. (ଗଞ୍ଜାମ) ବି. ହଳଦିମଳକୁଟି ଦେଖ ।

ହଳଦିମୁଣ୍ଡି—ପ୍ରା. (ଖଡ଼ିଆଳ) ବି. ହଳଦିଗଣ୍ଠି ।

ହଳଦିଲଗା(ଗେ)ଇବା—ଗ୍ରା. କ୍ରି. ବଟାହଳଦିକୁ ପତଳା କରି ଦେହରେ ବୋଳିବା ।

ହଳଦେବା—ଗ୍ରା. କ୍ରି. ବିଲକୁ ହଳ ଦ୍ୱାରା ଚାଷ କରିବା ।

ହଳଦେଇବା—ଗ୍ରା. କ୍ରି. ହଳଦି ରଙ୍ଗରେ ରଞ୍ଜିତ କରିବା ।

ହଳଦୀ—ବି.(ହଲଡ୍ +ଦେ+ମି.ଅ+ଈ) ହରିଦ୍ରା, ହଳଦି ।

ହଳଧର—ବି.(ହଳ+ଧୃ+କ.ଅ)ହଳୀ, ବଳରାମ, କୃଷକ, ହାଳିକ, ହଳିଆ ।

ହଳଧରଦାସ—ଗ୍ରା. ବି. (ନାମ) ଜଣେ ସଂସ୍କୃତଜ୍ଞ ଓଡ଼ିଆ ପଣ୍ଡିତ (ଏ ଜାତିରେ କରଣ, ଏହାଙ୍କର ଜନ୍ମ ପୁରୁଷୋତ୍ତମକ୍ଷେତ୍ରରେ, ଏ ସଂସ୍କୃତରେ ହଳଧରକାରିକା ନାମକ ଖଣ୍ଡିଏ ଗ୍ରନ୍ଥ ରଚନା କରିଥିଲେ ଓ ମୂଳସଂସ୍କୃତରୁ ଓଡ଼ିଆରେ ଅଧ୍ୟାତ୍ମରାମାୟଣ ଲେଖି ଅଛନ୍ତି) ।

ହଳନ୍ତ—ବି. ବ୍ୟଞ୍ଜନବର୍ଣ୍ଣ,(ବିଂ)ବ୍ୟଞ୍ଜନବର୍ଣ୍ଣାନ୍ତ,ହସନ୍ତଯୁକ୍ତ,ସ୍ୱରହୀନ(ବ୍ୟଞ୍ଜନ) ।

ହଳନ୍ତଚିହ୍ନ—ବି. ବ୍ୟଞ୍ଜନବର୍ଣ୍ଣ ତଳେ ଗୋଟିଏ ତିର୍ଯ୍ୟକ୍ ଗାର, (ଯଥା—' ୍ ')

ହଳପ୍—ଯା. ବି. ଶପଥ, କିରୂମ ।

ହଳପ୍‌କରିବା—ଗ୍ରା. କ୍ରି. ଶପଥ କରିବା, ସୁକୃତପରମ ଣେ କହିବା ।

ହଳପଟାଏ—ଗ୍ରା. ବି. କ୍ଷେତ୍ରରେ ଏକଓଡ଼ ଚାଷ ।

ହଳପ(ନ୍ ନା)ଇ(ଏ)ଜାହାର—ଯା. ବି. ଅଦାଲତରେ ଶପଥ ପୂର୍ବକ କହିବା କଥା ।

ହଳ(ଳା)ପୁ(ପୋ)ଡ଼—ପ୍ରା.(ଜୟପୁର)ବି. ଦୋଳପୂର୍ଣ୍ଣିମାର ପୂର୍ବଦିନ, ଅଗ୍ନିଉତ୍ସବ,

ଅନ୍ନ୍ୟୁତ୍ସବ ।

ହଳଫିଟା—ଗ୍ରା.ବି.କ୍ଷେତର କର୍ଷଣ ପରେ ବଳଦଙ୍କୁ ବା ପୋଢ଼ୁଅଙ୍କୁ ଜୁଆଳରୁ ମୁକ୍ତ କରିବା ।

ହଳଫିଟ(ଟେ)ଇବା—ଗ୍ରା. କ୍ରି. ହଳକୁ ଜୁଆଳରୁ ମୁକ୍ତ କରିବା ।

ହଳଫିଟାବେଳ—ଗ୍ରା.ବି. ଦ୍ୱିପ୍ରହର ସମୟ, (ଯେଉଁ ସମୟରେ କୃଷି କର୍ଷଣକର୍ମ ସ୍ଥଗିତ କରି ହଳଫିଟାଏ) ।

ହଳବଳଦ—ଗ୍ରା. ବି. (ସମୂହବାଚକ) କୃଷି-କରିବାର ପ୍ରଧାନ ଉପାଦାନ ହଳ ଓ ବଳଦ ।

ହଳବଳିଆ—ଗ୍ରା. ପୁଂ. ବିଂ. ଅସ୍ଥିର, ଚଞ୍ଚଳମନା(ବ୍ୟକ୍ତି),(ସ୍ତ୍ରୀ)ହଳବଳେଇ ।

ହଳବା—ପ୍ରା.(ବସ୍ତର)ବି, (ସଂ-ହଳବାହ) ବସ୍ତର ରାଜ୍ୟର ଅଧିବାସୀ କୃଷକଜାତି ।

ହଳବୀ—ପ୍ରା, (ବସ୍ତର) ବି, ବସ୍ତରଅଞ୍ଚଳର ହଳବାମାନଙ୍କ କଥିତ ମରହଟ୍ଟି ଭାଷାର ଶାଖା ।

ହଳବୁଲ—ଗ୍ରା. ବି. କ୍ଷେତରେ ହଳଦ୍ୱାରା କରାଯିବା କୃଷିକର୍ମ ।

ହଳବୁଲ(ଲେ)ଇବା—ଗ୍ରା. କ୍ରି. କ୍ଷେତକୁ ହଳଦ୍ୱାରା ଚଷିବା ।

ହଳବୁଲିବା—ଗ୍ରା. ବି, ହଳଦ୍ୱାରା କ୍ଷେତ କର୍ଷଣ ହେଉଥିବା ।

ହଳଭୂତି—ବି, ( ହଳ+ଭୂ+ଭା.ତି ) କୃଷିକର୍ମ, ଶଙ୍କରାଚାର୍ଯ୍ୟଙ୍କ ଏକନାମ ।

ହଳଭୃତ୍—ବି. (ହଳ+ଭୃ+କ.କ୍ୱିପ୍) ହଳଧର ଦେଖ ।

ହଳଭେରାଏ-ଗ୍ରା.ବି.ହଳପଟାଏ,ହଳଓଡ଼େ ।

ହଳମଜୁରି(ରୂଳ)—ଗ୍ରା. ବି. ହଳଭଡ଼ା ।

ହଳମୁଚୀ—ବି. ଢ଼ିଙ୍ଗିମିରି ଦେଖ ।

ହଳମୁଷଳ—ବି. ( ହଳ+ମୁଷଳ ) ବଳଦେବଙ୍କର ଦୁଇଟି ଶସ୍ତ୍ର, ଲଙ୍ଗଳ ଓ ଠେଙ୍ଗା ।

ହଳରହଳର—ଗ୍ରା. ବିଂ. ଶିଥିଳବନ୍ଧନ, ହୁଗୁଳା ହୋଇ ହଲୁଥିବା, ଯାହା ଛିଦ୍ରରେ ଦୃଢ଼ରୂପେ ନ ରହି ହୁଗୁଳା ବା ଇତସ୍ତତଃ ଚାଳିତ ହୁଏ ।

ହଳରିଷ—ବି.ଆହୁଲ୍ୟ,କ୍ଷୁଦ୍ର ବୃକ୍ଷବିଶେଷ ।

ହଳସାଇଁ-ଗ୍ରା.ପୁଂ.ବି.ବଳରାମ,ହଳଧର ।

ହଳସି—ପ୍ରା. (ଖଡ଼ିଆଳ) ବି. ଲଙ୍ଗଳର ଈଷ ।

ହଳହଡ଼ା—ଗ୍ରା. ବି. ହଳ ଓ ହଳର ପ୍ରୟୋଜନୀୟ ବଳଦ ପ୍ରଭୃତି ।

ହଳହଳ—ବି, ( ହଲ୍+ଅ ) ହଳାହଳ ଦେଖ, ( ଗ୍ରା. କ୍ରି. ବିଂ ) ହଳକୁହଳ, ଯୋଡ଼ା ଯୋଡ଼ା ହୋଇ, ବହୁଯୋଡ଼ା, ହଳେ ଲେଖାଏଁ, ବହୁପରିମାଣରେ ।

ହଲହଲ—ଗ୍ରା. ବିଂ. ଶ୍ଳଥବନ୍ଧନ,ହୁଗୁଳା, କମ୍ପିତ, ଇତସ୍ତତଃ ଚଳିତ,ଲହଲହ ।

ହଲହଲା—ବି. ଆନନ୍ଦ କୋଳାହଳ, ହଲାହଲ, ଉତ୍ସବ ।

ହଳହଳିଆ—ଗ୍ରା. ବି. ହଳ, ବଳଦ ଓ ହଳକୁ ବୁଲାଇବା ଚାକର,(ପ୍ରା.ମେଦିନୀ) ମାଟିବରଡ଼ିଆ ସାପ ।

ହଲହଲିଆ—ଗ୍ରା.ବିଂ. ହୁଗୁଳା,ବିଚଳିତ, କମ୍ପିତ,ଲହକା, (ପୁଂ.ବିଂ) ଟିକଟିକିଆ, ଯେ ବାରମ୍ବାର କିଛୁନା କିଛୁ ଖାଇବାକୁ ଇଚ୍ଛାକରେ ବା ଖାଏ, ଚଳବଳିଆ, ଆଗତକୁହା, ଅସ୍ଥିରମନା, ( ଗ୍ରା.ବି ) ଲହକା ବସ୍ତୁ ।

ହଲା—ଅବ୍ୟ. (ହ୍ୱା+ଲା+କ.ଅ+ଆ) ସଖୀପ୍ରତି ସ୍ତ୍ରୀଲୋକର ସମ୍ବୋଧନ ସୂଚକ ଶବ୍ଦ, ହଇଲୋ !, ( ବି ) ସଖୀ, ମଦ୍ୟ, ପୃଥିବୀ, ଜଳ, ଲଙ୍ଗଳୀ, (ଗ୍ରା.ବି) କଟା ଧାନଗଛର ବିଡ଼ା,କଳେଇ,ଧାନବିଡ଼ା ।

ହଲି—ଗ୍ରା. ବି. ହଲ୍ଲି ଦେଖ, ହଲିଇବା, ଦୋହୋଲାଇବା,ଚାଳନ,ହଲିବା,(ବିଂ) ଚାଳିତ, ହଲୁଥିବା, (ପ୍ରା.ବଲାଙ୍ଗିର.କ୍ରି) ଥିଲା, (କ୍ରି) ହେବା କ୍ରିୟାର ବର୍ତ୍ତମାନ ସାମୀପ୍ୟ ଅତୀତକାଳ ତୃତୀୟ ପୁରୁଷ ଏକବଚନ, ହେଲା, ହୋଇଲା, (ସଂ-ବି ଓ ଅବ୍ୟ) ହଲା ଦେଖ ।

ହଲା(ଲେ)ଇବା-ଗ୍ରା.କ୍ରି.ଦୋହୋଲାଇବା, ଇତସ୍ତତଃ ଚାଳିତ କରିବା,ଦୃଢ଼ପଦାର୍ଥକୁ ଏପାଖ ସେପାଖ କରି ଶ୍ଳଥକରିବା, (ଲ.ଅର୍ଥ) ଧମକାଇବା, ଚହଲେଇବା ।

ହଲା(ଲେ)ଇହେବା—ଗ୍ରା. କ୍ରି. ଅଙ୍ଗାଦିକୁ ନକେ ସଞ୍ଚାଳନ କରିବା, ଅଙ୍ଗଚାଳନ ଓ ଆସ୍ଫାଳନ ପୂର୍ବକ କଥା କହିବା ।

ହଲ୍ଲକନ୍—ଯା. ବି. ଧ୍ୱଂସ, ନାଶ, ମୃତ୍ୟୁ, କଷ୍ଟ,ହରବର,ବ୍ୟତିବ୍ୟସ୍ତ,(ବିଂ)ଶ୍ରାନ୍ତ ।

ହଲ୍‌ଚଲ୍-ଗ୍ରା.ବି ଓ ବିଂ.ହଲ୍‌ଚଲ୍ ଦେଖ ।

ହଲ୍ଲଟୁଲ୍ଲକରିବା—ପ୍ରା. ( ଖଡ଼ିଆଳ ) କ୍ରି. ବ୍ୟତିବ୍ୟସ୍ତ କରିବା ।

ହଲ୍ଲଟୁଲ୍ଲହେବା—ପ୍ରା. ( ଖଡ଼ିଆଳ ) କ୍ରି. ବ୍ୟତିବ୍ୟସ୍ତ ହେବା, ବଡ଼ା କାମରେ ହଇହଲ୍‌ମହଲ୍ ହେବା ।

ହଲ୍ଲପଟା—ଗ୍ରା. ବିଂ. ହରବର ବା ହଇ-ରାଣରେ ପଡ଼ିଥିବା, ( ବି ) ହଟହଟା, ହଇରାଣ, ହରବର, ଟଣାଓଟରା ।

ହଲ୍ଲପଟିଆ—ଗ୍ରା.ବିଂ. କଷ୍ଟକର (କାର୍ଯ୍ୟ), ଯେ ଅନ୍ୟକୁ ହଇରାଣ କରେ ।

ହଳାବଧା(ର)ବାନ୍ଧିଆ—ଗ୍ରା. ବି, କଟା ଧାନବିଡ଼ାର ଗଦା ।

ହଳାବାନ୍ଧିବା—ଗ୍ରା. କ୍ରି. କ୍ଷେତରୁ କଟା-ଧାନକୁ ବିଡ଼ା ବାନ୍ଧିବା ।

ହଳାମୂଲ(ଲା)—ଗ୍ରା. ବି. ଧାନକାଟିବା ମୂଲିଆମାନେ କ୍ଷେତସ୍ୱାମୀଠାରୁ ପାଇବା ପାରିଶ୍ରମିକ ଧାନବିଡ଼ା ।

ହଳାୟୁଧ—ପୁଂ. ବି. ( ହଳ+ଆୟୁଧ ) ବ.ବ୍ରୀ; ବଳରାମ, ବଳଦେବ, (ଗ୍ରା.ବ୍ୟ-ନାମ) ବ୍ରାହ୍ମଣସର୍ବସ୍ୱ ଓ ପଣ୍ଡିତସର୍ବସ୍ୱ ଗ୍ରନ୍ଥର ସଙ୍କଳୟିତା ।

ହଲାର୍(ଲ୍)—ଯା. ବି. ମୁସଲମାନମାନଙ୍କ ଦ୍ୱାରା କୋରାନ୍ ଲିଖିତ ମନ୍ତ୍ରୋଚ୍ଚାରଣ ପୂର୍ବକ ପଶୁପକ୍ଷୀ ଆଦିଙ୍କ କଣ୍ଠକାଟିବା ରୂପ ବଳିଦାନ, ହଲାଲ୍ ପଶୁ ଓ ପକ୍ଷୀର ମାଂସ, ମୁସଲମାନ ଧର୍ମଶାସ୍ତ୍ରାନୁସାରେ ଈଶ୍ୱରଙ୍କୁ ବଳିଦେଇ ଖାଇବା ପାଇଁ ପ୍ରସ୍ତୁତ ପଶୁ ଓ ପକ୍ଷୀ, (ବିଂ) ମୁସଲମାନ ଶାସ୍ତ୍ରାନୁସାରେ ବଳିଦେବା ଓ ଖାଦ୍ୟ ନିମନ୍ତେ ପ୍ରସ୍ତୁତ (ପଶୁ ଓ ପକ୍ଷୀ),ମୁସଲ-ମାନ ଧର୍ମଶାସ୍ତ୍ରାନୁସାରେ ଉଚିତ(କର୍ମ), (ବିପରୀତ-ହରାମ୍) ।

ହଲାର୍(ଲ୍)ଖୋର୍—ଯା,ବିଂ, ମୁସଲମାନ୍

ଶାସ୍ତ୍ରମତରେ ପବିତ୍ର ଓ ନିର୍ମଳ କରା-
ଯାଇଥିବା ପଶୁପକ୍ଷୀଙ୍କ ମାଂଶାହାରୀ
(ବ୍ୟକ୍ତି), (ବି) ହିନ୍ଦୁମାନଙ୍କ ମ୍ୟେଚ୍ଛତ୍ଵ,
ମୁସଲମାନ୍ । [ ଘୋଡ଼ା ।
ହଲାହ୍ଵ—ବି. ଚିତ୍ରିତାଶ୍ଵ, ଛିପଛିପିକିଆ
ହଲାହଳ—ବି. (ହଲ୍+ଆ+ହଲ୍+ଅ)
କାଳକୂଟ ବିଷ, ବ୍ରହ୍ମସର୍ପ, ଅଞ୍ଜନା, ବୃକ୍ଷ-
ବିଶେଷ, ମାରାତ୍ମକ ବିଷ, ତାଳପତ୍ରପରି
ପତ୍ରବିଶିଷ୍ଟ ବିଷାକ୍ତ ବୃକ୍ଷବିଶେଷ, ହଳା-
ହଳ ପରି ଅଗ୍ରାହ୍ୟ ବସ୍ତୁ ।
ହଲ୍ଲାହଲି—ଗ୍ରା. ବି. ବନ୍ଧୁବାର ହଲାଇବା,
ବନ୍ଧୁବାର ଶିଥିଳ କରିବା କର୍ମ ।
ହଳି—ପୁଂ. ବି. (ହଲ୍+ମିଂ.ଇ) ହଳକୃତ
ରେଖା, ଲଙ୍ଗଳଗାର, (ସ୍ତ୍ରୀ.ଈ) କୃଷି,
ଚାଷ, (ଶ.ଈ) ବୃହତ୍ ହଳ, ବଡ଼ ଲଙ୍ଗଳ ।
ହଳିଆ—ଗ୍ରା. ବି. ହଳକାମରେ ନିଯୁକ୍ତ
ଗୁହ୍ଲାର, ହାଳିକ, ଚଷା, (ବିଂ) ଯେ
ହଳକାମରେ ନିଯୁକ୍ତଥାଏ, ହଳକାର୍ଯ୍ୟ
ସମ୍ବନ୍ଧୀୟ, ଚଷାଟିଆ, ଚଷାପରି
ଅଖାଡୁଆ, (ବି) ହଳକାମରେ ନିଯୁକ୍ତ
ବଳଦ ।
ହଳିଆ—ପ୍ରା. ( ଖଡ଼ିଆଳ ) ପୁଂ. ବି.
କୃଷିକାମ ପାଇଁ ନିଯୁକ୍ତ ଅସ୍ଥାୟୀ
ନୌକର ।
ହଳିଆବର୍ତ୍ତନ(ବରତନ)—ଗ୍ରା.ବି. ହଳିଆକୁ
ଦିଆଯିବା ନିର୍ଦ୍ଧାରିତ ବାର୍ଷିକ ଦରମା ।
ହଳିଆବ୍ରାହ୍ମଣ—ଗ୍ରା. ବି. ମାସ୍ତାନବ୍ରାହ୍ମଣ ।
ହଳିଏ—ଗ୍ରା. ବି ଓ ବିଂ. (ଆଦରାର୍ଥକ)
ଏକହଳ ବା ଏକଯୋଡ଼ା ମାତ୍ର, ଯୋଡ଼ିଏ
ମାତ୍ର ।
ହଳିକ—ଗ୍ରା. ବି ଓ ବିଂ. ହଳିଏ ଦେଖ ।
ହଳିନୀ—ସ୍ତ୍ରୀ.ବି.(ହଳିନ୍+ସ୍ତ୍ରୀ.ଈ) ଗୃହଚୁଲ୍ଲୀ
ଲଙ୍ଗଳୀ, ଲାଙ୍ଗଳିଗୁଲିଆ ଚୁଲ୍ଲୀ, କଳିକାରୀ
କ୍ଷୁପ, ବିଶଲ୍ୟକରଣୀ କ୍ଷୁପ ।
ହଳପ୍ରିୟ—ବି. ( ହଳ+ପ୍ରିୟ ) ୬ତତ୍; 
କଦମ୍ବ ବୃକ୍ଷ ।
ହଳପ୍ରିୟା—ସ୍ତ୍ରୀ. ବି. (୬ତତ୍) ରେବତୀ
ବଳଦେବଙ୍କ ସ୍ତ୍ରୀ, ମଦିରା, ମଦ୍ୟ,
ମଦ୍ୟ ।

ହଲିବା—ଗ୍ରା. କ୍ରିଂ ଇତସ୍ତତଃ ଚାଳିତ-
ହେବା, ଦୋହୋଲିବା, ଶ୍ଳଥହେବା,
ଝୁଲିବା ।
ହଲିଲା(ବା)ପାଣିକୁ ଗୋଡ଼ନବଢ଼ାଇବା—
ଗ୍ରା. କ୍ରି. ( ଲ.ଅର୍ଥ ) ସାମାନ୍ୟ ମାତ୍ର
ଅଶାନ୍ତ ବା ଗୋଳମାଳରେ ସମ୍ପର୍କ ନ
ରଖିବା ।
ହଳିମା—ବି, ସ୍କନ୍ଦଙ୍କ ମାତୃବିଶେଷ ।
ହଲିଲୁ-ଗ୍ରା,ବିଂ.ଦୋହୁଲୁଥିବା, ହଲୁଥିବା
ହଲିହଲିଆ—ପ୍ରା. ( ଯାଜପୁର ) ବିଂ.
ଢିଲମଢିଲ୍ଲ ।
ହଳିହଳିକା—ଗ୍ରା, ବି. ଝୋଟିକୁଟା ।
ହଳୀ—ପୁଂ. ବି. ( ହଲ୍+କ. ଇନ୍ )
ବଳରାମ, କୃଷକ, ଚଷା, କଳିକାରଗୁଳ୍ମ,
ନାହଲିଙ୍ଗଳିଆ, ବିଶଲ୍ୟକରଣୀ କ୍ଷୁପ,
(ସ୍ତ୍ରୀ—ହଲ୍+ଈ) । [ ଗଛ ।
ହଲୀନ—ବି. ଶାକବିଶେଷ, ଶାଗୁଆନ
ହଲୀନକ—ବି. କ୍ଷୀର ବୃକ୍ଷ, (ଦେଖ) ।
ହଲୀମ—ବି. କେତକୀ ।
ହଲୀମକ—ବି. ରୋଗବିଶେଷ, ପାଣ୍ଡୁ
ରୋଗ ବୃଦ୍ଧିଜନିତ ରୋଗବିଶେଷ.
କାମଲରୋଗ ।
ହଲୀଶା(ଷା)—ବି. ( ୬ତତ୍ ) ଲଙ୍ଗଳ-
ଦଣ୍ଡ, ଲଙ୍ଗଳର ଈଶ ।
ହଲୀଶାଲଙ୍ଗଳୀଶା—ବି. ଲଙ୍ଗଳର ଈଶ,
(ଗ୍ରା.ବି) (ଲ.ଅର୍ଥ) ସାଧାରଣ ନିୟମର
ବ୍ୟତିକ୍ରମ ବା ନିପାତନଜନିତ ଘଟନା ।
ହଳୁଆ—ଗ୍ରା. ବିଂ. (ସଂ. ହାଳିକ) ହଳିଆ
ଦେଖ, ହଳସମ୍ବନ୍ଧୀୟ, କୃଷିସମ୍ବନ୍ଧୀୟ,
ଋତୁମତୀ (ଗାଈ), ଚଷାଟିଆ, ଅଖାଡୁଆ,
(ବି) ହଳିଆ ଗାଈର ଋତୁ, କୃଷକ,
ଚଷା, ଗୋରୁମାନଙ୍କ କାମୋନ୍ମତ୍ତ
ଅବସ୍ଥା, (ପ୍ରା. ଖଡ଼ିଆଳ) ବ୍ରାହ୍ମଣଜାତି-
ବିଶେଷ, ମାସ୍ତାନ ବ୍ରାହ୍ମଣ ।
ହଳୁଆପଡ଼ିବା—ଗ୍ରା. କ୍ରି. (ଗାଈ) ଋତୁମତୀ
ହେବା, (ପଶୁପ୍ରାଣୀମିଥୁନ) ସଙ୍ଗମରେ
ରତ ହେବା ।
ହଳୁଆବ୍ରାହ୍ମଣ—ପ୍ରା. ( ଗଞ୍ଜାମ ) ବି.
ହଳବାହଗୋଷ୍ଠୀ ବ୍ରାହ୍ମଣ, ମାସ୍ତାନ ବ୍ରାହ୍ମଣ

ହଲୁହାର—ବି. ଯେଉଁ ଘୋଡ଼ାର
ଅଣ୍ଡକୋଷ କଳା ଓ ମୁଣ୍ଡରେ ଦାଗ
ଥାଏ ।
ହଳେ—ଗ୍ରା. ବି ଓ ବିଂ. ଏକହଳ ମାତ୍ର ।
ଯୋଡ଼ାଏମାତ୍ର ।
ହଳେ—ପ୍ରା. ( ଖଡ଼ିଆଳ ) ବି ଓ ବିଂ.
ଏକଯୋଡ଼ା ।
ହଲେଫସୋ—ପ୍ରା. (ସମ୍ବ) ବିଂ. ଢିଲ୍ଲ ।
ହଲ୍‌ଦ—ପ୍ରା.(ମେଦିନୀ)ବି.ହଳଦୀ ।
ହଲ୍ୟ—ବିଂ. (ହଲ୍+ଯ) ହଳସମ୍ବନ୍ଧୀୟ,
କୃଷିସମ୍ବନ୍ଧୀୟ, ଲଙ୍ଗଳଦ୍ଵାରା କର୍ଷିତ,
(ବି) କୃଷିକ୍ଷେତ୍ର, ବୈରୂପ୍ୟ, ବିରୂପତା ।
ହଲ୍ୟା—ସ୍ତ୍ରୀ. ବି. (ହଲ୍+ଯ+ଆ) ହଳ-
ସମୂହ, ଲଙ୍ଗଳସମୂହ ।
ହଲ୍ଲକ—ବି. ରକ୍ତୋତ୍ପଳ, ନାଲିକଇଁ,
ରକ୍ତପଦ୍ମ, କୋଠୋଧାକ୍ତି ।
ହଲ୍ଲକ—ବି. ପ୍ରଚଳାୟିତ, ଚାଳନ, କମ୍ପି-
ଲେଉଟାଇବା ।
ହଲ୍ଲା—ଗ୍ରା. ବି. ଆର୍ତ୍ତନାଦ, ଘୋଓଘାଆ,
ଚିତ୍କାର, କୋଳାହଳ, ଗଣ୍ଡଗୋଳ,
ଗୋଳମାଳ, ହାଲହୁଲ, ଯୁଦ୍ଧସମୟର
ଉଚ୍ଚ ଡାକ, ହୁଳିଆ ।
ହଲ୍ଲାକରିବା—ଗ୍ରା. କ୍ରି. ଚିତ୍କାରକରିବା,
ଗୋଳମାଲ କରିବା; ଆର୍ତ୍ତନାଦ-
କରିବା, ଘୋଷଣା କରିବା ।
ହଲ୍ଲୀଷ(ସ)—ବି. (ହେଲା+ଲସ୍+ଅ)
ସ୍ତ୍ରୀମାନଙ୍କ ସହ ନୃତ୍ୟ, ଜଣେ ପୁରୁଷର
ଚାରିପାଖେ ବେଢ଼ି ଆଠଜଣ ସ୍ତ୍ରୀ କରିବା
ଏକପ୍ରକାର ନୃତ୍ୟ, ଗୀତ ନର୍ତ୍ତନବହୁଳ
ଏକାଙ୍କଯୁକ୍ତ ଉପରୂପକ (ନାଟକ) ।
ହଲ୍ଲୀଷ(ସ)କ—ବି.(ହଲ୍ଲୀଷ+ସ୍ଵାର୍ଥେ କ)
ସ୍ତ୍ରୀଲୋକମାନଙ୍କର ମଣ୍ଡଳାକାର ନୃତ୍ୟ,
ଏକପୁରୁଷ ସହିତ ବହୁ ସ୍ତ୍ରୀମାନଙ୍କର
ମଣ୍ଡଳାକାର ନୃତ୍ୟ, ରାସକ୍ରୀଡ଼ା ।
ହକ୍‌କା—ପ୍ରା. (ସମ୍ବ) ବି. ହାବୁକା ଦେଖ
ହକ୍‌କାଦକ୍‌କା—ପ୍ରା. ( ଖଡ଼ିଆଳ ) ବି.
ଧମକଚମକ ।
ହକ୍‌କାଦେବା—ପ୍ରା. (ବାଲେଶ୍ଵର) କ୍ରି.
ହଠାତ୍ କୁଢ଼ର ଅନେକଟୁକୁଏ ନୁଆ

ଏ ଢଙ୍ଗରେ ଗୁଡ଼ଇଦେବା, ତରଙ୍ଗ ଉଠାଇବା ।
ହନ୍‌କୋଚକକୋ—ପ୍ରା. (ସମ୍ବ) ବିଂ. ଆବଡ଼ ଖାବୁଡ଼ା, ବନ୍ଧୁର, ଉଚ୍ଚାବଚ (ଭୂମି), ବିଷମ ।
ହନ୍‌ଡ଼ାଇବା—ପ୍ରା. (ସମ୍ବ) ଝିଣ୍ଟିପଡ଼ିବା ।
ହନ୍‌ଡାଇହେବା—ପ୍ରା. ବଲାଙ୍ଗିର କ୍ରି. ଚଳାଙ୍କୁ ଉପରେ ପ୍ରବେଶକରିବା ।
ହନ୍‌କାଏ—ପ୍ରା. (ସମ୍ବ) (କ୍ରି.ବିଂ.) ଥରେ ।
ହବ୍‌ଲି—ପ୍ରା. (ସମ୍ବ) ବି. ହବେଲି, ପ୍ରାସାଦ ।
ହବ—ବି. (ହୁ+ଭା.ଅ) ହୋମ, ଯଜ୍ଞ (ଅଧି.ଅ)ଅଗ୍ନି,( ହ୍ୱେ+ଭା.ଅ ) ଆଜ୍ଞା, ଆହ୍ୱାନ,(ପ୍ରା.କ୍ରି—କୌଣସିକାର୍ଯ୍ୟାଦ ) ହେବ । [ ହାଗୁଡ଼ା ।
ହବକ୍—ପ୍ରା. ( ବଲାଙ୍ଗିର ) ବି. ଧକ୍କା,
ହବଙ୍ଗ—ବି. କାଂସ୍ୟପାତ୍ରରେ ଦଧି-ମିଶ୍ରିତ ଅନ୍ନ ଭକ୍ଷଣ ।
ହବନ—ବି. (ହୁ+ଅଧି.ଅନ) ହୋମ. ହୋମକୁଣ୍ଡ, ଅଗ୍ନି. (କ.ଅନ) ସ୍ରୁବ ।
ହବନାୟୁଃ—ବି. (ହବନ+ଆୟୁଃ)ଅଗ୍ନି, ଅନଳ । [ ହୋମକୁଣ୍ଡ ।
ହବନୀ—ବି. ( ହୁ+ଅ.ଅନ+ଈ )
ହବନୀୟ—ବିଂ. ( ହୁ+ର୍ମ.ଅନୀୟ ) ହୋମକରିବା ଯୋଗ୍ୟ, ହୋମରେ ଆବଶ୍ୟକ,(ବି—କ.ଅନୀୟ ) ହୋମୀୟ ଦ୍ରବ୍ୟ ।
ହବା—ଯା. ବି. (କଟକଆ) ହବା ଦେଖ ଗ୍ରା. ବିଂ. ହବ୍ଧା ଦେଖ, (ଗ୍ରା.କ୍ରି)ଘଟିବା, ହେବା, (ପ୍ରା. ଖଡ଼ିଆଲ) ବି. ପବନ, ହାୱା ।
ହବାକଥାନୁହେଁ—ଗ୍ରା. ( ବାକ୍ୟ ) ଅତି ଆଶ୍ଚର୍ଯ୍ୟଜନକ ଘଟଣା, ଦେଖାଶୁଣା-ନୁହେଁ. ଆଉ ଏସଂସାରରେ ରହିବ କଥା ହେବନାହିଁ ।
ହବାଚନ୍ଦ୍ର—ଗ୍ରା. ବିଂ. ଓଲୁ, ଅବୁଝାମଣା, (ବି) ଓଲୁଲୋକ, ଅବୁଝାମଣା ବ୍ୟକ୍ତି ।
ହବାନହେବା—ଗ୍ରା. ବି. ଘଟିବା ବା ନ ଘଟିବା, ହେବା ନ ହେବା, ଥିବା ନ ଥିବା, ହଁ କି ନାହିଁ, ସ୍ୱୀକାର ବା ଅସ୍ୱୀକାର ।
ହବାନାମା—ଯା. ବି. (କଟକଆ) ହାବା-ନାମା ଦେଖ ।
ହବାଲ୍—ଯା. ବି. ହୁଆଲ୍ ଦେଖ ।
ହବାଲ୍‌ଦାର୍—ଯା. ବି. ଜୁଆଲ୍‌ଦାର୍ ଦେଖ ।
ହବାଲତ୍—ଯା. ବି. ହୁଆଲତ ଦେଖ ।
ହବାଲତି—ଯା. ବିଂ. ହୁଆଲତି ଦେଖ ।
ହବାଲା—ଯା. ( ପ୍ରା. ଖଡ଼ିଆଲ ) ବି. ଉଦାହରଣ ଦୃଷ୍ଟାନ୍ତ ।
ହବାଲତ୍—ଯା. ବି. ନଜରବନ୍ଦୀ. ହାଜତ୍, ଅଭିଯୁକ୍ତ ବିଚାରାଧୀନ ବ୍ୟକ୍ତିକୁ ବନ୍ଦୀକରି ରଖାଯିବା ।
ହବାଲି—ଯା.ବି.ଏକପ୍ରକାର ବନ୍ୟବୃକ୍ଷ ।
ହବାସ୍—ଯା. ବି. ଚେତନା, ସଂଜ୍ଞା ।
ହବିଃ—ବି. (ହୁ + କ.ଇସ୍) ଆଜ୍ୟ,ଘୃତ, ଜଳ, ହବନୀୟ ଦ୍ରବ୍ୟ, ହୋମ, ବିଷ୍ଣୁ, ଶିବ ।
ହବିଧାନୀ—ବି. (ହୁ+ଅ.ଇସ+ସ୍ତ୍ରୀ.ଈ ) ହୋମକୁଣ୍ଡ ।
ହବିରଦ୍—ପୁଂ. ବିଂ. (ହବିଃ+ଅଦ୍+କ୍ୱିପ୍)ଭକ୍ଷଣ ଯୋଗ୍ୟ,ହବିର୍ଭୋଜନକାରୀ ।
ହବିରଦ୍ୟ—ବି. ଭକ୍ଷଣଯୋଗ୍ୟ ହବିଃ ।
ହବିରନ୍ତରଣ—ବି. ଯଜ୍ଞୀୟଘୃତର ଅନ୍ତର-କରଣ ।
ହବିରଶନ—ବି.(ବ.ବ୍ରୀ) ଅଗ୍ନି,(ଷତତ୍) ହବିର୍ଭୋଜନ,ଅନ୍ନସଙ୍ଗେ ଘୃତଭୋଜନ, (ବିଂ) ହବିର୍ଭୋଜନକାରୀ. ହବିର୍ଭୋକ୍ତା ।
ହବିରାହୁତ—ବି. ଘୃତାହୁତ ।
ହବିରୁଚ୍ଛିଷ୍ଟ—ବି. ହୋମାବଶେଷ ।
ହବିର୍ଗନ୍ଧ—ବି.(ଷତତ୍)ହୋମରେ ପୋଡ଼ା ଯାଉଥିବା ଘୃତର ବାସନା ।
ହବିର୍ଗନ୍ଧା—ବି. (ବ.ବ୍ରୀ) ଶମୀବୃକ୍ଷ ।
ହବିର୍ଗୃହ(ର୍ଗେହ)—ବି. ହୋମଗୃହ. ହୋମଦ୍ରବ୍ୟ ପ୍ରଭୃତି ରଖାଯିବାର ଘର ।
ହବିର୍ଗ୍ରହଣୀ—ବି. ଯଜ୍ଞୀୟ ଘୃତପାତ୍ର ।
ହବିର୍ଦାନ-ବି.ଯଜ୍ଞରେ ଘୃତାଦିର ଆହୁତି ।
ହବିର୍ଧାନ—ପୁଂ.ବି. ଋଷିବିଶେଷ,ବ୍ରୀହିର ଧାରକ ବା ପେଷକ,ଯଜ୍ଞୀୟପାତ୍ରଭେଦ ।
ହବିର୍ଧାନୀ—ବି. (ହବିଃ+ଧା+କ.ଅନ +ଈ) କାମଧେନୁ, ସୁରଭି, ହବିର୍ଧାନର ସ୍ତ୍ରୀ ।
ହବିର୍ଭାଗ—ବି. (ଷତତ୍) ଦେବତାମାନଙ୍କ ନାମଧରି ହୋମାଗ୍ନିରେ ଆହୁତି ଦିଆଯିବା ଘୃତର ଅଂଶ ।
ହବିର୍ଭୁକ୍—ପୁଂ. ବି. (ହବିସ୍+ଭୁଜ୍+କ.କ୍ୱିପ୍) ଦେବତା, ଅଗ୍ନି, ଶିବ ।
ହବିର୍ଭୁଜ—ଗ୍ରା. ବି. ( ସଂ-ହବିର୍ଭୁଜ୍ ) ହବିର୍ଭୁକ୍ ଦେଖ ।
ହବିର୍ଭୂ—ବି. (ହବିସ୍ + ଭୂ) ହୋମଭୂମି, ଯଜ୍ଞୀୟ ହବିଃପାତ୍ର,କର୍ଦ୍ଦମଋଷିଙ୍କ କନ୍ୟା ଓ ପୁଲସ୍ତ୍ୟମୁନିଙ୍କ ସ୍ତ୍ରୀ ।
ହବିର୍ମନ୍ଥ—ବି. (ହବିସ୍+ମନ୍ଥ+ର୍ମ.ଅ) ଅଗ୍ନିମନ୍ଥ ବୃକ୍ଷ, ଅଗବଥୁ ଗଛ ।
ହବିର୍ଯଜ୍ଞ—ବି.ହବିଃଦ୍ୱାରା ଅନୁଷ୍ଠିତ ଯଜ୍ଞ, ଗୌତମ ମତରେ ଅଗ୍ନ୍ୟାଧେୟ, ଅଗ୍ନି-ହୋତ୍ର, ଦର୍ଶ ଓ ପୌର୍ଣ୍ଣମାସ,ଚାତୁର୍ମାସ୍ୟ, ଆଗ୍ରୟଣେଷ୍ଟି, ନିରୂଢ଼, ପଶୁବନ୍ଧ ଓ ସୌତ୍ରାମଣି ଏହିମାନେ ହବିର୍ଯଜ୍ଞ ।
ହବିର୍ଯଜ୍ଞର୍ତ୍ୱିକ୍—ବି.ହବିର୍ଯଜ୍ଞକାରୀ ଋତ୍ୱିକ୍, (କାତ୍ୟାୟନଶ୍ରୌତ ସୂତ୍ରେ ବ୍ରହ୍ମା, ହୋତା,ଅଧ୍ୱର୍ଯ୍ୟୁ,ମୈତ୍ରାବରୁଣ ଓ ଅଗ୍ନୀଧ୍ର ଏହିମାନେ ହବିର୍ଯଜ୍ଞର୍ତ୍ୱିକ୍ ବୋଲି ଅଭିହିତ) ।
ହବିର୍ବହ—ବିଂ. (ହବିଃ+ବହ+କ୍ୱିପ୍) ଯେ ଦେବଗଣଙ୍କ ପାଇଁ ହବିର୍ବହନ କରେ ।
ହବିର୍ହୁତ—ବି. ଘୃତାହୁତ ।
ହବିଃଶ୍ରବାଃ—ପୁଂ. ବି. ଧୃତରାଷ୍ଟ୍ରଙ୍କ ପୁତ୍ର-ବିଶେଷ ।
ହବିଷ୍କରଣ—ବି. ହବିର୍ଦାନ ।
ହବିଷ୍କୃତ୍—ବିଂ. ( ହବିଃ+କୃ+କ୍ୱିପ୍ ) ହବିର୍ଦାତା ।
ହବିଷ—ଗ୍ରା. ବି. (ସଂ-ହବିଷ୍ୟ) କାର୍ତ୍ତିକ, ମାଘ ଓ ବୈଶାଖ ମାସରେ ହିନ୍ଦୁଙ୍କର ( ବିଶେଷରେ ବିଧବାମାନଙ୍କର ) ଓ କୌଣସି ଦୈବାନୁଷ୍ଠାନ ସମୟରେ

ଦିନରେ ଥରେ ମାତ୍ର ହବିର୍ମିଷ ଅରୁଆ ଅନ୍ନ ଖାଇବାରୂପ ବ୍ରତ ।
ହବିଷଦୋର୍ଷ(ଖର)—ଗ୍ରା.ବି.ହବିଷ୍ୟବ୍ରତ କରୁଥିବା ବ୍ୟକ୍ତିମାନଙ୍କ ନିକଟକୁ କାର୍ତ୍ତିକ ମାସରେ ବନ୍ଧୁମାନେ ପଠାଇବା ହବିଷ୍ୟ ସାମଗ୍ରୀ ।
ହବିଷମାସ—ଗ୍ରା. ବି. କାର୍ତ୍ତିକ ମାସ ।
ହବିଷ୍ୟ—ଗ୍ରା. ବି. ( ସଂ-ହବିଷ୍ୟ ) ହବିଷ ଦେଖ ।
ହବିଷ୍ଠ—ପୁଂ. ବି. ଦାନବବିଶେଷ ।
ହବିଷ୍ଠ—ପୁଂ. ବି. ଯଜମାନ ।
ହବିଷ୍ଟ—ପୁଂ. ବିଂ. ହବିଃପାନକର୍ତ୍ତା ।
ହବିଷ୍ପାତ୍ର—ବି. ଯଜ୍ଞୀୟ ହବିଃ (ଘୃତାଦି) ରଖିବାର ପାତ୍ର ।
ହବିଷ୍ମତୀ –ସ୍ତ୍ରୀ. ବି. (ହବିଷ୍ + ମତ୍ + ଈ) କାମଧେନୁ ।
ହବିଷ୍ମନ୍—ପୁଂ. ବିଂ. ( ହବିଃ + ମତ୍ ) ହବିର୍ଯୁକ୍ତ (ଯଜମାନ),ହବିବିଶିଷ୍ଟ,(ବି) ଋଷିବିଶେଷ ।
ହବିଷ୍ୟ—ବି. (ହବିସ୍+ସ୍ୱା ଯ) ଘୃତାନ୍ନ. ହବିଷ୍ୟାନ୍ନ ଦେଖ, ଆମିଷବର୍ଜିତ ଘୃତ-ମିଶ୍ରିତ ଅନ୍ନପାନ, ଦେବତାଙ୍କ ଉଦ୍ଦେଶ୍ୟରେ ହୋମାଗ୍ନିରେ ଅର୍ପିତ ଦ୍ରବ୍ୟ. (ହବିସ୍+ସ୍ୱାର୍ଥେ.ଯ) ଘୃତ,(ବିଂ)ହୋମ କରାଯିବା ଯୋଗ୍ୟ, ହବନୀୟ, ଯାହାଙ୍କୁ ଆହୁତି ଦିଆଯିବା ଉଚିତ ।
ହବିଷ୍ୟନ୍ଦ—ପୁଂ.ବି. ବିଶ୍ୱାମିତ୍ରଙ୍କର ପୁତ୍ର ବିଶେଷ (ରାମାୟଣ) ।
ହବିଷ୍ୟାନ୍ନ—ବି. କାର୍ତ୍ତିକ ବ୍ରତାଦିରେ ଭକ୍ଷଣୀୟ ଘୃତମିଶ୍ରିତ ନିରାମିଷ ଅନ୍ନପାନ ।
ହବିଷ୍ୟାଶୀ—ପୁଂ. ବିଂ. (ହବିଷ୍ୟ+ଅଶ୍ +କ.ଇନ୍) ହବିଷ୍ୟାନ୍ନ ଭୋଜନକାରୀ, ଯେଉଁମାନେ ହବିଷ୍ୟାନ୍ନ ଭୋଜନ କରି ବ୍ରତ ପାଳନ କରନ୍ତି,(ସ୍ତ୍ରୀ) ହବିଷ୍ୟାଶିନୀ ।
ହବୁଷା—ବି. ବନ୍ୟବୃକ୍ଷ ବିଶେଷର ଫଳ, ଶୁଷ୍କ ଅମ୍ଳମୁକୁଳ ।
ହବେଇ—ଯା. ବି. ହାବଇ ଦେଖ ।
ହବେଇଛେ—ଯା.ବି.ଏକପ୍ରକାର ବାଣ, ଯହିଁରେ ନିଆଁ ଲଗାଇଲେ ତହିଁରୁ ଅନେକଟୁକୁଡ଼ା ହାବଇ ଆକାଶକୁ ଉଠିଯାଏ ।
ହବେଲି—ଗ୍ରା. ବି. ରାଜପ୍ରାସାଦର ଝରକା ଓ ହତାପାଚିରି,ପ୍ରାସାଦ ।
ହବ୍ଲକ୍—(ଇଂରେଜୀ ନାମ)ଓଡ଼ିଶାପ୍ରଦେଶର ପ୍ରଥମ ଗଭର୍ଣ୍ଣର ।
ହବ୍ୟ—ବି. ( ହୁ+କରଣ.ଯ ) ହବନୀୟ ଦ୍ରବ୍ୟ,ଘୃତ,ଆହୁତିସାଧନ ଦ୍ରବ୍ୟ,(ଭା.ଯ) ହୋମ, ଚରୁ, ଦୈବାନ୍ନ, (କ.ଯ)ଶାକଦ୍ୱୀପାଧିପତି,(ବିଂ ମି.ଯ)ହୋମଯୋଗ୍ୟ, ଯଜ୍ଞୀୟ ।
ହବ୍ୟକବ୍ୟ—ବି. ହୋମପାଇଁ ପ୍ରୟୋଜନୀୟ ଦ୍ରବ୍ୟ ଓ ପିତୃଶ୍ରାଦ୍ଧପାଇଁ ପ୍ରୟୋଜନୀୟ ଦ୍ରବ୍ୟ, ହବ୍ୟ ଓ କବ୍ୟ, ଯଜ୍ଞୀୟ ଘୃତ ।
ହବ୍ୟପାକ—ବି. (ହବ୍ୟ+ପଚ୍+ମି.ଅ) ଚରୁ, (ଅଧି.ଅ) ଚରୁପାକସ୍ଥାଳୀ ।
ହବ୍ୟଲେହୀ—ପୁଂ. ବିଂ. ଯଜ୍ଞୀୟ ଘୃତଲେହନକାରୀ, (ପୁଂ.ବି) ଅଗ୍ନି ।
ହବ୍ୟବାଟ୍—ବି.(ହବ୍ୟ+ବହ୍ +କ.କ୍ୱିପ୍) ହବ୍ୟବାହ, ଅଗ୍ନି ।
ହବ୍ୟବହ୍—ବି. (ହବ୍ୟ+ବହ୍+କ୍ୱିପ୍) ହବ୍ୟବାହ, ଅଗ୍ନି ।
ହବ୍ୟବାହ(ବାହନ)—ପୁଂ. ବି. (ହବ୍ୟ+ +ବହ+ଣିଚ୍ + ଅନ) ଅଗ୍ନି, (ଅଗ୍ନି ଦେବତାମାନଙ୍କର ହବ୍ୟ ବହନକରନ୍ତି. ଅଗ୍ନିରେ ଦେବତାଙ୍କର ଉଦ୍ଦେଶ୍ୟରେ ହୋମକଲେ ଦେବଗଣ ପ୍ରାପ୍ତହୁଅନ୍ତି, ଯେହେତୁ ଅଗ୍ନିମୁଖା ବୈ ଦେବାଃ) ।
ହବ୍ୟାଶ—ବି. ( ହବ୍ୟ+ଅଶ୍+କ.ଅ ) ହୁତାଶନ, ଅଗ୍ନି ।
ହବ୍ୟାଶନ—ବି. ( ହବ୍ୟ+ଅଶ୍+କ. ଅନ ) ଅଗ୍ନି ।
ହସ୍—(ଧାତୁ) ହସିବା, ହାସ୍ୟ କରିବା, ଉପହାସ କରିବା, ପ୍ରସ୍ଫୁଟିତ ହେବା, ପ୍ରକାଶିତ ହେବା ।
ହସ୍‌ପାତାଲ—ଗ୍ରା. ବି. ସାଧାରଣ ଡାକ୍ତରଖାନା ।
ହସୁଁଚା—ପ୍ରା. (ପାଟଣା ସମ୍ବଲପୁର ଅଞ୍ଚଳ) କ୍ରି. ହସିବା ।
ହସ୍‌ଲିଆ—ପ୍ରା.(ପାଟଣା କଳାହାଣ୍ଡି ଅଞ୍ଚଳର ପ୍ରଚଳିତ ଭାଷା) କ୍ରି. (ସେ) ହସିଲା ।
ହସ—ବି. (ହସ୍+ଭା.ଅ)ହାସ୍ୟ,(ଗ୍ରା.ବି) ହାସ୍ୟ କରିବା କର୍ମ ।
ହସକ—ପୁଂ. ବିଂ. ( ହସ୍+କ.ଅକ ) ହାସ୍ୟକାରୀ, (ସ୍ତ୍ରୀ) ହସିକା ।
ହସକଉତୁକ-ଗ୍ରା.ବି.ହାସ୍ୟ ଓ କୌତୁକ ।
ହସକଉତୁକି କିଆ)—ଗ୍ରା. ପୁଂ. ବିଂ. ଯେ ସର୍ବଦା ହାସ୍ୟରେ ଓ କୌତୁକରେ ରତ ।
ହସକଥା-ଗ୍ରା.ବି. ହାସ୍ୟୋଦ୍ଦୀପକ ବିଷୟ, ଯେଉଁ କଥା ଶୁଣିଲେ ହସମାଡ଼େ ।
ହସକାନ୍ଦ(କାନ୍ଦଣା)—ଗ୍ରା.ବି.ଆନନ୍ଦଜନିତ ହାସ୍ୟ ଓ ଦୁଃଖଜନିତ କ୍ରନ୍ଦନ, ପ୍ରଥମେ ହସିବା ଓ ପରେ କାନ୍ଦିବା ଓ ପୁଣିରେ ହସିବା କର୍ମ ।
ହସକୁରି(ଲା)-ଗ୍ରା.ପୁଂ.ବିଂ.(ସଂ-ହର୍ଷାକୁଳ) ଯେ ସବୁବେଳେ ହସେ, ହସୁରା,ହର୍ଷଯୁକ୍ତ, ଆନନ୍ଦିତ,କୌତୁକପ୍ରିୟ,ସର୍ବଦା ଈଷଦ୍ଧାସ୍ୟଯୁକ୍ତ ।
ହସଖୁସି—ଗ୍ରା. ବି. ଆନନ୍ଦ ଓ ଆନନ୍ଦଜନିତ ହାସ୍ୟ ।
ହସଖେଳ—ଗ୍ରା. ବି. ହାସ୍ୟ ଓ କ୍ରୀଡ଼ା ।
ହସଗପ(ଳ୍ପ)—ବି. ହସ ଓ ଗଳ୍ପ, ହାସ୍ୟୋଦ୍ଦୀପକ ଗଳ୍ପ ।
ହସଛେ—ପ୍ରା. (ପାଟଣା କଳାହାଣ୍ଡି ଅଞ୍ଚଳ) କ୍ରି. ହସୁଅଛି ।
ହସନ୍—ପୁଂ. ବିଂ. ( ହସ୍ + କ.ଅତ୍ ) ହାସ୍ୟକାରୀ,ହାସ୍ୟଯୁକ୍ତ, ଯେ ହସୁଥାଏ, (ସ୍ତ୍ରୀ) ହସନ୍ତୀ ।
ହସନ୍‌ହେନା—ଗ୍ରା.ବି.ଫୁଲଗଛବିଶେଷ ।
ହସନ—ବି. ( ହସ + ଭା ଅନ ) ହାସ୍ୟ, ହସିବା ।
ହସନୀ—ସ୍ତ୍ରୀ. ବି. (ହସ୍+କ.ଅନ+ଈ) ଅଗ୍ନି ରଖିବାର ପାତ୍ର, ଉମ୍ନେଇ ।
ହସନୀମଣି—ପୁଂ. ବି. ଅଗ୍ନି, ଅନଳ ।
ହସନ୍ତ—ବି ଓ ବିଂ. ହଳନ୍ତ ଦେଖ ।
ହସନ୍ତିକା—ବି. ହଳନ୍ତିକା ଦେଖ ।

ହସନ୍ତିକା—ସ୍ତ୍ରୀ.ବ. (ହସନ୍ତୀ+କ+ଆ) ଅଙ୍ଗାରଧାନୀ,ଉମ୍ନେଇ,ମଲ୍ଲିକାବିଶେଷ ।
ହସନ୍ତୀ—ସ୍ତ୍ରୀ. ବିଂ. (ହସନ୍ତ+ଈ) ହାସ୍ୟକାରିଣୀ, ( ବି ) ଅଗ୍ନିପାତ୍ର, ଉମ୍ନେଇ, ମଲ୍ଲିକାବିଶେଷ, ଶାକିନୀବିଶେଷ ।
ହସମାଡ଼ିବା—ଗ୍ରା. କ୍ରି. ହସିବା ପାଇଁ ମନ ହେବା ।
ହସମୁହଁ—ଗ୍ରା. ବି. ସହାସ୍ୟ ବଦନ ।
ହସମୁହାଁ—ଗ୍ରା.ପୁଂ.ବିଂ. ସହାସ୍ୟମୁଖଯୁକ୍ତ (ବ୍ୟକ୍ତି), (ସ୍ତ୍ରୀ) ହସମୁହିଁ ।
ହସରେଉଡ଼ା(ଡ଼େ)ଇବା—ଗ୍ରା.କ୍ରି. ଉପହାସ କରି ବକ୍ତାର କଥାକୁ ଅଗ୍ରାହ୍ୟ କରିବା ।
ହସଲ—ପ୍ରା. (ଗଞ୍ଜାମ)ବି ଓ ବିଂ.ଅସଲ ।
ହସଲଗିବା—ଗ୍ରା.ବ.ଏକତ୍ର ବହୁଲୋକଙ୍କ ମଧ୍ୟରେ ହାସ୍ୟର ରୋଳ ଉଠିବା, ହସମାଡ଼ିବା ।
ହସହସ-ଗ୍ରା,ବିଂ.(ସଂ-ସହାସ୍ୟ) ହାସ୍ୟଯୁକ୍ତ, ଈଷଦ୍ଧାସ୍ୟଯୁକ୍ତ ।
ହସା--ଗ୍ରା.ବି. ହାସ୍ୟ,ହସିବା,ଈଷଦ୍ଧାସ୍ୟ, ଉପହାସ, ଲୋକହସା ।
ହସା(ସେ)ଇବା—ଗ୍ରା. କ୍ରି. ହସିବାପାଇଁ ବାଧ୍ୟକରିବା, ହସକଥା ବା ଅଙ୍ଗବିକୃତ ଆଦି କରିବା ଦ୍ୱାରା ଅନ୍ୟ ବ୍ୟକ୍ତି ବାଧ୍ୟ ହୋଇ ହସିବା ।
ହସା(ସେ)ଇ ରସା(ସେ)ଇ—ଗ୍ରା.(ଅସମାପିକା କ୍ରିୟା)ମୁଗ୍ଧକରି,ପ୍ରସନ୍ନତା ଉତ୍ପାଦନ ପୂର୍ବକ ।
ହସା(ସେ)ଇମାରିବା-ଗ୍ରା.କ୍ରି. ହାସ୍ୟୋଦ୍ଦୀପକ କଥା ଦ୍ୱାରା ଅତିରିକ୍ତ ରୂପେ ହସାଇବା ।
ହସାହସି—ଗ୍ରା. ବି ଓ ବିଂ. ସମବେତ ବହୁବ୍ୟକ୍ତିଙ୍କର ହାସ୍ୟ,ବହୁବାର ହସିବା କ୍ରିୟା,ପରସ୍ପର ମଧ୍ୟରେ ହସକୌତୁକଯୁକ୍ତ କଥୋପକଥନ ।
ହସିଆ—ଗ୍ରା.ବିଂ. (ଆଧୁନିକ) ହାସ୍ୟଯୁକ୍ତ, ହାସ୍ୟମୟ ।
ହସିଉଠିବା—ଗ୍ରା.କ୍ରି.ହଠାତ୍ ହସିଦେବା, (ଲ.ଅର୍ଥ) ଉଲ୍ଲସିତ ହେବା, ବିକଶିତ ହେବା,ଶାଜସଜ୍ଜା ଓ ଆଲୋକାଦି ଦ୍ୱାରା ଅତ୍ୟନ୍ତ ଶୋଭାଯୁକ୍ତ ହେବା ।
ହସିକ—ପୁଂ. ତ. (ହସ+ଇକ) ହାସ୍ୟକର୍ତ୍ତା, ହାସ୍ୟଯୁକ୍ତ, (ସ୍ତ୍ରୀ) ହସିକା ।
ହସିଖୁସି—ଗ୍ରା. ବ. ହସକଉତୁକ, ହସଖେଳ, ହାସ୍ୟ ଓ ଆନନ୍ଦ ।
ହସିଖୁସି(ଖେଳ)ହୋଇକାର୍ଯ୍ୟ କରିବା—ଗ୍ରା.କ୍ରି. ମନର ସ୍ଫୁର୍ତ୍ତି ଓ ଆହ୍ଲାଦସହିତ କାମ କରିବା ।
ହସିତ—ପୁଂ. ବିଂ. (ହସ୍+କ.ତ)କୃତହାସ, ସହାସ, ହାସ୍ୟଯୁକ୍ତ, ସସ୍ମିତ. ଫୁଲ୍ଲ, ବିକସିତ,(ମି.ତ) ଲୋକ ଯାହାକୁ ଉପହାସ କରନ୍ତି, (ବି-ଭା.ତ) ହାସ୍ୟ, ଉପହାସ, ଅଳ୍ପମାତ୍ର ହସ, ଯହିଁରେ ଅଳ୍ପମାତ୍ର ଦାନ୍ତ ଦେଖାଯାଏ ।
ହସିବା—ଗ୍ରା. କ୍ରି. (ସଂ-ହସ୍ ଧାତୁ) ହାସ୍ୟ କରିବା, ମନର ଆନନ୍ଦକୁ ମୁଖଭଙ୍ଗୀ ଦ୍ୱାରା ପ୍ରକାଶ କରିବା,ଉପହାସକରିବା, ପ୍ରସ୍ଫୁଟିତ ହେବା, ଫୁଟିବା, ( ଲ.ଅର୍ଥ ) ଉଜ୍ଜ୍ୱଳ ଦେଖାଯିବା,ଶୋଭାଯୁକ୍ତହେବା, ଦୀପ୍ତହେବା. ପ୍ରଦୀପର ବଳିତାଫୁଲ ବା ଗୁଳଯୁକ୍ତ ହେବା ।
ହସିଲହସିଲ—ଗ୍ରା. ବିଂ. ଦରହାସଯୁକ୍ତ, ହସହସ, ଈଷଦ୍ଧାସ୍ୟଯୁକ୍ତ ।
ହସିହସିନୋ(ଲୋ)ତରିକୋତରିହେବା—ଗ୍ରା. ବ. ଅତିରିକ୍ତ ପରିମାଣରେ ହସିବା ଦ୍ୱାରା ଆକ୍ରାନ୍ତ ବା ଅସମ୍ଭାଳ ହେବା ।
ହସିହସିଗଡ଼ିଯିବା—ଗ୍ରା. କ୍ରି. ହସି ହସି ନୋତରିକୋତରି ହେବା ଦେଖ ।
ହସୁଆ—ଗ୍ରା.ପୁଂ.ବିଂ. ହସ(ସୁ)ରା ଦେଖ, (ସ୍ତ୍ରୀ) ହସେଇ ।
ହସୁରା—ଗ୍ରା. ପୁଂ. ବିଂ. ଅତ୍ୟନ୍ତ ହାସ୍ୟରତ, ଯେ ସର୍ବଦା ହସୁଥାଏ,ହାସ୍ୟଯୁକ୍ତ ।
ହସୁରମୁହଁ—ଗ୍ରା. ବ. ସସ୍ମିତ ବଦନ, ସହାସ୍ୟମୁଖ ।
ହସୁରମୁହାଁ—ଗ୍ରା. ପୁଂ ବିଂ. ସସ୍ମିତବଦନବିଶିଷ୍ଟ,ସରସମୁହଁ,(ସ୍ତ୍ରୀ) ମୁହିଁ ।
ହସ୍ତ—ବି. (ହସ୍+ତ) ହାତ, କହୁଣିଠାରୁ ଆଙ୍ଗୁଠିର ଅଗ୍ରପର୍ଯ୍ୟନ୍ତ ଅଙ୍ଗ, ହାତର ଶୁଣ୍ଢ, ୨୪ଅଙ୍ଗୁଳ ପରିମିତ ଦୈର୍ଘ୍ୟ, ହସ୍ତାନକ୍ଷତ୍ର; ଗୁଚ୍ଛ (କେଶଶବ୍ଦର ପରବର୍ତ୍ତୀ ହେଲେ) ।
ହସ୍ତକ—ଗ୍ରା.ବ. ହସ୍ତାଦିର ଭଙ୍ଗୀଦ୍ୱାରା ନାଟୁଆର ଗୀତର ଭାବପ୍ରକାଶ, ହାତ ।
ହସ୍ତକୀତ—ପୁଂ. ବିଂ. (ହସ୍ତକ+ଇତ) ହସ୍ତଯୁକ୍ତ, (ସ୍ତ୍ରୀ) ହସ୍ତକୀତା ।
ହସ୍ତକଣ୍ଡୂୟନ—ବି. ( ୬ତତ୍ପୁ ) ହାତ ଗଲୁ କରିବା, ହାତକୁ କୁଣ୍ଡେଇବା ।
ହସ୍ତକୃତ—ବିଂ. ( ୩ତତ୍ପୁ ) ହସ୍ତଦ୍ୱାରା କରାଯାଇଥିବା, ହସ୍ତଗତ ।
ହସ୍ତକୌଶଳ—ବ. ( ୬ତତ୍ପୁ ) ହସ୍ତଚାଳନାର ନୈପୁଣ୍ୟ, ହାତସଫେଇ ।
ହସ୍ତକ୍ଷେପ (କ୍ଷେପଣ)—ବି. ( ୬ତତ୍ପୁ ) ହସ୍ତାର୍ପଣ, ହାତଦେବା, କୌଣସି କାର୍ଯ୍ୟକୁ ଆରମ୍ଭ କରିବା, କୌଣସି କାର୍ଯ୍ୟରେ ଯୋଗଦାନ ବା ବାଧା ପ୍ରଦାନ, ହସ୍ତଚାଳନା, (ଲ.ଅର୍ଥ)ଅନ୍ୟକୃତକାର୍ଯ୍ୟରେ ହାତ ଚଳାଇବା ବା ଚର୍ଚ୍ଚାକରିବା ।
ହସ୍ତଗ—ବିଂ. ( ହସ୍ତ + ଗମ୍+କ.ଅ ) ହସ୍ତଗତ ଦେଖ ।
ହସ୍ତଗତ—ବିଂ. ( ୭ତତ୍ପୁ ) ଆପଣାର ଅଧିକାରକୁ ଆଗତ, ଅଧିକୃତ, ପ୍ରାପ୍ତ, ହସ୍ତରେ ପ୍ରାପ୍ତ, (ଲ.ଅର୍ଥ) କରାୟତ୍ତ, ଅନ୍ୟଆର କରାୟତ୍ତଇଥିବା ।
ହସ୍ତଶିଳ୍ପ—ସଂ. ବିଂ. ହସ୍ତକୁଶଳ ।
ହସ୍ତଗାମୀ—ପୁଂ. ବିଂ. (ହସ୍ତ+ଗମ୍+ଣିନ୍) ହସ୍ତଗତ, ହସ୍ତଗମନଶୀଳ, (ସ୍ତ୍ରୀ) ହସ୍ତଗାମିନୀ ।
ହସ୍ତଗ୍ରନ୍ଥି—ବି. ବିବାହରେ ବରକନ୍ୟାଙ୍କର ଦୁଇହାତକୁ ଏକତ୍ର ବନ୍ଧନ କରାଯିବା ପାଇଁ ଦିଆଯିବା କୁଶର ଗଣ୍ଠି ।
ହସ୍ତଗ୍ରହ(ଗ୍ରହଣ)—ବି. (୬ତତ୍ପୁ) ଅନ୍ୟର ହସ୍ତକୁ ଧରିବା ।
ହସ୍ତଗ୍ରାହ୍ୟ—ବିଂ. ( ୩ତତ୍ପୁ ) ହସ୍ତଦ୍ୱାରା ଗ୍ରହଣୀୟ ।
ହସ୍ତଗ୍ରାହ—ବି. ପାଣିଗ୍ରହଣ, ବିବାହ,

(ବି°) ହସ୍ତଗ୍ରହଣକାରୀ ।
ହସ୍ତଗ୍ରାହକ—ବି°. ହସ୍ତଗ୍ରହଣକାରୀ, ହସ୍ତଧାରଣକାରୀ ।
ହସ୍ତଗ୍ରାହଂ—ଅବ୍ୟ. ହସ୍ତ ଗ୍ରହଣକରି, ହାତ ଧରି ।
ହସ୍ତଘ୍ନ—ବି°. (ହସ୍ତ+ହନ୍+ଅ) ହସ୍ତନାଶକ, ହସ୍ତ ଚ୍ଛେଦକାରୀ ।
ହସ୍ତଚାଳନ(ନା)—ବି. (୬ତତ୍) ହାତକୁ ଏଣେତେଣେ ଚଳାଇବା ।
ହସ୍ତଚ୍ୟୁତ—ବି°. (୫ତତ୍) ହସ୍ତରୁ ବିଚ୍ୟୁତ, ହସ୍ତରୁ ଭ୍ରଷ୍ଟ, (ଲ.ଅର୍ଥ) ଅଧିକାରଚ୍ୟୁତ ।
ହସ୍ତଚ୍ୟୁତି—ବି. (୫ତତ୍) ହସ୍ତରୁ ପତନ, ହସ୍ତରୁ ସ୍ଖଳନ ।
ହସ୍ତଜ୍ୟୋତି—ବି. କରଜ୍ୟୋତି ଗୁଳ୍ମ, ସ୍ୱନାମପ୍ରସିଦ୍ଧ ମହାକନ୍ଦ ଶାକ ।
ହସ୍ତତାଳ—ବି. ହାତତାଳି, ହାତରେ ତାଳମାରିବା ।
ହସ୍ତତ୍ର—ବି. (ହସ୍ତ+ତ୍ରୈ+କ.ଅ) ହସ୍ତାନା, କରତ୍ରାଣ ।
ହସ୍ତଦକ୍ଷିଣ—ବି°. ଦକ୍ଷିଣହସ୍ତଯୁକ୍ତ ।
ହସ୍ତଦୀପ(ପ୍ରଦୀପ)—ବି. ହାତରେ ଧରିଥିବା ବତୀ, ଲଣ୍ଠନ ଡିବିରିପ୍ରଭୃତି ।
ହସ୍ତଧାରଣ—ବି. (୬ତତ୍) ହାତଧରିବା, କରଗ୍ରହଣ, ନିବାରଣ,ପରିତ୍ରାଣ ।
ହସ୍ତନୈପୁଣ୍ୟ—ବି. (୬ତତ୍) ହସ୍ତଚାଳନାରେ ଦକ୍ଷତା, ହାତକାରିଗିରି, ହସ୍ତଲାଘବ ।
ହସ୍ତପକ୍ଷ—ବି. ଯେଉଁମାନଙ୍କର ହସ୍ତ ପକ୍ଷରୂପେ ପରିଣତ, ବାଦୁଡ଼ି ପ୍ରଭୃତି ।
ହସ୍ତପତ୍ର—ଗ୍ରା. ବି. ବିଜ୍ଞାପନ ।
ହସ୍ତପଦ୍ମ—ଗ୍ରା. ବି. (ବଣିଆଁ ଶବ୍ଦ) ରତ୍ନଚୂଡ଼ା ଦେଖ ।
ହସ୍ତପାଦ—ବି. ହାତଦ୍ୱୟ ଓ ପାଦଦ୍ୱୟ ।
ହସ୍ତପର୍ଣ୍ଣୀ—ବି. ରକ୍ତେରଣ୍ଡ, ନାଲି ଜଡ଼ାଗଛ ।
ହସ୍ତପୁଚ୍ଛ—ବି. ହସ୍ତାବୟବବିଶେଷ, କୋରକାକୃତ ହସ୍ତର ଅଙ୍ଗୁଳିଗଣ ।
ହସ୍ତପୃଷ୍ଠ—ବି. ହାତ ପାପୁଲି, କରତଳର ପିଠିପାଖ ।
ହସ୍ତପ୍ରଦ—ବି°. (ହସ୍ତ+ପ୍ର+ଦା+ଅ) ହସ୍ତପ୍ରଦାତା, ହସ୍ତ ପ୍ରଦାନକାରୀ ।
ହସ୍ତପ୍ରସାରଣ—ବି. (୬ତତ୍) ହାତକୁ ମେଲାଇବା, ହସ୍ତର ବିସ୍ତୃତିକରଣ, ହାତ ବଢ଼ାଇବା । [ ଦେଖ ।
ହସ୍ତପ୍ରାପ୍ତ—ବି°. (୭ତତ୍) ହସ୍ତଗତ
ହସ୍ତପ୍ରାପ୍ୟ—ବି. (୩ତତ୍) ହସ୍ତଦ୍ୱାରା ପ୍ରାପଣୀୟ, ହାତପାଆନ୍ତା ।
ହସ୍ତମୈଥୁନ—ବି. ହସ୍ତଦ୍ୱାରା ଲିଙ୍ଗଚାଳନ ପୂର୍ବକ ରେତଃପାତନ ।
ହସ୍ତଯନ୍ତ୍ର—ବି. ହସ୍ତଦ୍ୱାରା ବ୍ୟବହୃତ ପୂର୍ବକାଳର ଯୁଦ୍ଧାସ୍ତ୍ରବିଶେଷ ।
ହସ୍ତଯୋଗ—ବି. ହସ୍ତାନକ୍ଷତ୍ର ସହିତ ମିଳନ, ହସ୍ତ ସହିତ ଯୋଗ ।
ହସ୍ତରେ—ଗ୍ରା. ଅବ୍ୟ. ହସ୍ତେଦେଖ ।
ହସ୍ତରେଖା—ବି. କରତଳରେ ଦେଖାଯିବା ଶୁଭାଶୁଭଜ୍ଞାପକ ରେଖାମାନ ।
ହସ୍ତଲଘୁତା(ଲାଘବ)—ବି. (୬ତତ୍) ହସ୍ତ ଚାଳନାରେ ଦକ୍ଷତା ବା ନୈପୁଣ୍ୟ ।
ହସ୍ତଲିଖିତ—ବି°. (୩ତତ୍) ହାତଦ୍ୱାରା ଲେଖାଯାଇଥିବା, (ବିପ) ମୁଦ୍ରିତ ।
ହସ୍ତଲିଖିତପୁସ୍ତକ—ବି. ହାତଲେଖା ବହି ବା ପୋଥି ।
ହସ୍ତଲିପି—ବି. (୬ତତ୍) ହସ୍ତାକ୍ଷର, ହାତଦ୍ୱାରା ଲେଖା ଚିଠି ବା ପତ୍ର, ହାତର ଲେଖା ।
ହସ୍ତଲେଖ—ବି. ହସ୍ତଲିପି ଦେଖ, ଅଭ୍ୟାସ ନିମିତ୍ତ ଲେଖନ । [ ଖଡ଼ୁ ।
ହସ୍ତବଳୟ—ବି. ହାତରେ ପିନ୍ଧାଯିବା
ହସ୍ତବଳା—ଗ୍ରା. ବି ଓ ବି°. ହାତବଳା, ଗୋଟିଏ ଦ୍ରବ୍ୟ ଗଢ଼ିବା ପୂର୍ବରୁ ହସ୍ତ କୁଶଳତା ପାଇଁ କାରିଗର ପ୍ରଥମେ ଯେଉଁ ବସ୍ତୁକୁ ଗଢ଼େ । [ ଦେଖ ।
ହସ୍ତବଳିବା—ଗ୍ରା. କ୍ରି. ହାତବଳିବା
ହସ୍ତବଲ୍ଲୀ—ବି. (୬ତତ୍) ଆଙ୍ଗୁଠି ।
ହସ୍ତବାନ୍—ପୁଂ. ବି°. (ହସ୍ତ+ବତ୍) ଯାହାର ହାତ ଅଛି, ଲଘୁହସ୍ତ, (ବି) କିତବ, ଦ୍ୟୁତକର ।
ହସ୍ତବାମ—ପୁଂ. ବି°. ବାମହସ୍ତଯୁକ୍ତ ।
ହସ୍ତବାରଣ—ବି. (୩ତତ୍) କରଚାଳନଦ୍ୱାରା ନିଷେଧ, କରଦ୍ୱାରା ନିବାରଣରୂପ ସଙ୍କେତ, ମାରଣୋଦ୍ୟତ ବ୍ୟକ୍ତିକୁ ହାତଦ୍ୱାରା ବାଧାପ୍ରଦାନ ।
ହସ୍ତବିମ୍ବ—ବି. ସ୍ଥାସକ, ଚନ୍ଦନାଦିଦ୍ୱାରା ଦେହ ବିଲେପନବିଶେଷ, ଗନ୍ଧଦ୍ରବ୍ୟଚୂର୍ଣ୍ଣବିଶେଷ, କରର ପ୍ରତିବିମ୍ବ ।
ହସ୍ତବିନ୍ୟାସ-ବି. କରସ୍ଥାପନ, କରନ୍ୟାସ ।
ହସ୍ତବୁଦ୍(ହସ୍ତବୁଦ)—ପା.ବି. ବର୍ତ୍ତିମାନର ଓ ପୂର୍ବର ହିସାବ, ଆଦାୟ ହେବା ଅସ୍ଥାୟୀ ଜମା,ଜମିଦାରୀର ମୋଟଆୟ ।
ହସ୍ତବୁଦ୍‌ଜମିଦାରୀ(ମାହାଲ)-ଗ୍ରା.ବି.ଯେଉଁ ଜମିଦାରୀରେ ମକଦ୍ଦମ ବା ସର୍ବରାକାର ନ ଥାଇ ନିଜେ ଜମିଦାର ବା ତାଙ୍କ ପକ୍ଷର ତହସିଲଦାର ପ୍ରଜାଙ୍କ ଠାରୁ ଖଜଣା ଅସୁଲ କରନ୍ତି ।
ହସ୍ତସିଦ୍ଧି—ବି. କରଦ୍ୱାରା ସାଧନ, ହସ୍ତନୈପୁଣ୍ୟ, ବେତନ, ଦରମା, ମୂଲ ।
ହସ୍ତସୂତ୍ର—ବି. (୬ତତ୍) ବଳୟ, ହାତିଖଡ଼ୁ, କୌତୁକସୂତ୍ର, ବିବାହରେ ବରକନ୍ୟାଙ୍କ ହାତରେ ବନ୍ଧାଯିବା ମଙ୍ଗଳସୂତ୍ର ।
ହସ୍ତସ୍ଥ—ବି°. (ହସ୍ତ+ସ୍ଥା+ଅ) ହସ୍ତରେ ସ୍ଥିତ, ହାତରେ ଥିବା ।
ହସ୍ତହୋମ—ବି. ହସ୍ତଦ୍ୱାରା ହୋମ,ସ୍ରୁବ ପରିବର୍ତ୍ତେ ହାତଦ୍ୱାରା ଅଗ୍ନିରେ ଆହୁତିଦାନ ।
ହସ୍ତା—ସ୍ତ୍ରୀ. ବି. (ହସ୍ତ+ଆ)୨୭ ନକ୍ଷତ୍ର ମଧ୍ୟରୁ ତ୍ରୟୋଦଶ ନକ୍ଷତ୍ର ।
ହସ୍ତାଏକ୍—ପ୍ରା. (ସମ୍ବ) ହଂସଜାତି ପକ୍ଷୀ ।
ହସ୍ତାକ୍ଷର—ବି. (ମଧ୍ୟ-କ.ଧା)ହାତଲେଖା ଅକ୍ଷର, ହସ୍ତଲିପି, (ବି°)ହସ୍ତାକ୍ଷରବିଶିଷ୍ଟ ।
ହସ୍ତାଙ୍ଗୁଳି—ବି. (୬ତତ୍) କରଶାଖା, ହାତର ଆଙ୍ଗୁଠି ।
ହସ୍ତାଙ୍କନ—ବି. ପଞ୍ଚୋଟିଆ ବୃକ୍ଷ ।
ହସ୍ତାନା—ଗ୍ରା. ବି. ଦସ୍ତାନା ।
ହସ୍ତାନ୍ତର—ବି. (କ.ଧା) ଅନ୍ୟବ୍ୟକ୍ତିର ହାତ, ଅନ୍ୟବ୍ୟକ୍ତିର ଅଧିକାର, ଅଧି-

କାରର ପରିବର୍ତ୍ତନ ।

ହସ୍ତାନ୍ତରକରିବା—ସ୍ତ୍ରା. କ୍ରି. ସମ୍ପତ୍ତିକୁ ବିକି ଦାନ ବା ପଟ୍ଟା ଦ୍ୱାରା ଅନ୍ୟବ୍ୟକ୍ତିର ଅଧିକାରକୁ ନେବା ।

ହସ୍ତାନ୍ତରଯୋଗ୍ୟ—ସ୍ତ୍ରା, ବିଂ. ଯେଉଁ ସମ୍ପତ୍ତି ବା ସ୍ୱତ୍ତ୍ୱ ଆଇନ ଅନୁସାରେ ହସ୍ତାନ୍ତରିତ କରାଯାଇପାରେ ।

ହସ୍ତାନ୍ତରିତ—ବିଂ. (ହସ୍ତାନ୍ତର + ଇତ) ଅପରର ଅଧିକାରକୁ ପ୍ରଦତ୍ତ (ସମ୍ପତ୍ତି), ଅନ୍ୟର ହସ୍ତଗତ ।

ହସ୍ତାଭରଣ—ବି. ( ୬ତତ୍ପୁ ) ହାତରେ ପିନ୍ଧାଯିବା ଗହଣା ।

ହସ୍ତାମଲକ—ବି. ( ମଧ୍ୟ-କ,ଧା ) ଆପଣା ହାତରେ ଧରାଯାଇଥିବା ଅଁଳାଫଳ, କରସ୍ଥିତ ବସ୍ତୁ, ସହଜରେ ବୋଧଗମ୍ୟ ବା ଦର୍ଶନୀୟ ବିଷୟ, ପ୍ରତ୍ୟକ୍ଷ ବିଷୟ, ଶଙ୍କରାଚାର୍ଯ୍ୟଙ୍କ କୃତ ଅଦ୍ୱୈତବାଦ ବିଷୟକ ଗ୍ରନ୍ଥବିଶେଷ ।

ହସ୍ତାର୍ପଣ—ବି. ନିଜର ହାତକୁ ଅନ୍ୟର ଉପରେ ରଖିବା, କାର୍ଯ୍ୟର ଆରମ୍ଭ, କୌଣସି ବସ୍ତୁକୁ ଅନ୍ୟର ହସ୍ତରେ ଦେବା ।

ହସ୍ତାଲିଙ୍ଗନ—ବି. (୩ତତ୍ପୁ) କରମର୍ଦ୍ଦନ ।

ହସ୍ତାବନେଜନ—ବି, ହସ୍ତଧୌତ ଜଳବିଶେଷ ।

ହସ୍ତାବର୍ତ୍ତନ—ବି. ହସ୍ତଦ୍ୱାରା ସ୍ପର୍ଶ, ହାତ ବୁଲାଇବା, ହାତଦ୍ୱାରା ଆଲୋଡ଼ନ ବା ଘାଣ୍ଟିବା ।

ହସ୍ତାବଲମ୍ବ(ଲମ୍ବନ)—ବି. ହସ୍ତଗ୍ରହଣ, ଅନ୍ୟର ହାତକୁ ଧରିବା, କରମର୍ଦ୍ଦନ ।

ହସ୍ତାବାପ—ବି. (୬ତତ୍ପୁ) ଧନୁ ମାରିବା ଲୋକଙ୍କ ଅଙ୍ଗୁଳିକୁ ରକ୍ଷା କରିବାପାଇଁ ବ୍ୟବହୃତ ଚମଡ଼ାର ଖୋଳ ।

ହସ୍ତାହସ୍ତି ଅବ୍ୟ.ହସ୍ତଦ୍ୱାରା ପ୍ରହାର ପୂର୍ବକ ଦୁଇଜଣଙ୍କ ମଧ୍ୟରେ ହେବା ଯୁଦ୍ଧ, ହାତାହାତି ।

ହସ୍ତି—ବି,କଦଳୀଗଛ,ଗଜ,ଅଜମୋଦା ।

ହସ୍ତିକ—ବି. (ହସ୍ତିନ୍+କ) ହସ୍ତିସମୂହ ।

ହସ୍ତିକକ୍ଷ—ବି.ଏକପ୍ରକାର ବିଷାକ୍ତ କୀଟ, କଣଭ ନାମକ କୀଟ । [ ବ୍ୟାଘ୍ର ।

ହସ୍ତିକକ୍ଷ୍ୟ—ବି. (ହସ୍ତିକକ୍ଷ + ଯ) ସିଂହ,

ହସ୍ତିକନ୍ଦ(ପନ୍ଦ)-ବି.(ବୈଦ୍ୟକ)କୋଙ୍କଣଦେଶ ପ୍ରସିଦ୍ଧ ସ୍ଥାନମଖ୍ୟାତ ମହାକନ୍ଦ ଶାକ ।

ହସ୍ତିକରଞ୍ଜ—ବି.ବଡ଼କରଞ୍ଜ,ମହାକରଞ୍ଜ ।

ହସ୍ତିକର୍ଣ୍ଣ—ବି. (୬ତତ୍ପୁ) ହାତୀର କାନ, ଏରଣ୍ଡ, ପଳାଶଭେଦ, ଭୂପଳାଶ, ଗଣଦେବତାଭେଦ,ହସ୍ତିକନ୍ଦ,ରକ୍ତୈରଣ୍ଡ, କଚୁ, ସାରୁ ।

ହସ୍ତିକର୍ଣ୍ଣକ--ବି.ପଳାଶଭେଦ,ଭୂ ପଳାଶ, ଲଅ ପଳାଶ ।

ହସ୍ତିକର୍ଣ୍ଣଦଳ—ବି. ପଳାଶଭେଦ ।

ହସ୍ତିକର୍ଣ୍ଣପଳାଶ—ବି. ପଳାଶଭେଦ, ଭୂ ପଳାଶ,ଲଅ ପଳାଶ ।

ହସ୍ତିକା-ବି.ପ୍ରାଚୀନ ତର୍କୀବାଦ୍ୟବିଶେଷ ।

ହସ୍ତିକାରଶୀ—ବି. ଅଜମୋଦା, ବନଯୁଆଣୀ ।

ହସ୍ତିକୁମ୍ଭ-ବି.ହସ୍ତିର କୁମ୍ଭସ୍ଥଳ,କରିକୁମ୍ଭ ।

ହସ୍ତିକୃଷ୍ଣା—ବି, ଗଜପିପ୍ପଳୀ ।

ହସ୍ତିକୋଲ—ବି. ବଦରୀଭେଦ, ଏକପ୍ରକାର କୋଳି ।

ହସ୍ତିକୋଷାତକୀ—ବି.ମହାକୋଷାତକୀ, ବଡ଼ ତରଡ଼ା, ବଡ଼ ଦୁଡ଼ୁକା ।

ହସ୍ତିଗିରି—ବି. (ନାମ) କାଞ୍ଚିଦେଶ ।

ହସ୍ତିଘୋଷା(ଘୋଷାତକୀ,ପର୍ଣ୍ଣୀ,ପର୍ଣ୍ଣିକା)—ବି, ମହାକୋଷାତକୀ, ବଡ଼ ତରଡ଼ା, ମଧୁରତରଡ଼ା, ଦୁଡ଼ୁକା ।

ହସ୍ତିଘ୍ନ—ବି, ନର, ମନୁଷ୍ୟ, ( ବିଂ ) ହସ୍ତିନାଶକ ।

ହସ୍ତିଚର୍ମ—ବି. ହାତୀର ଚମଡ଼ା ।

ହସ୍ତିଚାରଣୀ—ବି.ହସ୍ତିକରଞ୍ଜ,ମହାକରଞ୍ଜ, ବଡ଼କରଞ୍ଜ ।

ହସ୍ତିଚାଳକ—ବି. ମାହୁନ୍ତ ।

ହସ୍ତିଚାଳନ—ବି. ହାତୀକୁ ( ମାହୁନ୍ତର୍‌ଯ୍ୟ ) ଚଳାଇବା ।

ହସ୍ତିଜିହ୍ୱା-ବି, ଶରୀରସ୍ଥ ଦଶନାଡ଼ୀ ମଧ୍ୟରୁ ଗୋଟିଏ ନାଡ଼ୀ ।

ହସ୍ତିଜୀବୀ—ପୁଂ. ବିଂ, ଯେ ହସ୍ତୀ ଦ୍ୱାରା ଜୀବିକା ନିର୍ବାହ କରେ, ହସ୍ତ୍ୟାଜୀବ ।

ହସ୍ତିଦନ୍ତ—ବି, ( ୬ତତ୍ପୁ ) ହାତୀଦାନ୍ତ, ମୂଳକ, ମୂଳା, ଦ୍ରବ୍ୟରକ୍ଷାର୍ଥ ଭିତ୍ତିସ୍ଥିତ କୀଳକ, ଜିନିଷ ରଖିବାପାଇଁ କାନ୍ଥରେ ମରାଯାଇଥିବା କୀଳା, ନାଗଦନ୍ତକାଠି ।

ହସ୍ତିଦନ୍ତକ—ବି, ମୂଳକ, ମୂଳା ।

ହସ୍ତିଦନ୍ତଫଳା-ବି.ଏଙ୍କାରୁ,ଫୁଟିକାକୁଡ଼ି ।

ହସ୍ତିଦନ୍ତୀ-ବି. ମହେନ୍ଦ୍ରବାରୁଣୀ,ହସ୍ତିଦନ୍ତୀ, ନାଗଦନ୍ତୀ, ହାତିଶୁଣ୍ଢୀ ।

ହସ୍ତିଦ୍ୱୟସ—ବି.(ହସ୍ତି + ଦ୍ୱୟସ)ହାତୀପରିମାଣ, (ବିଂ). ହସ୍ତିପରିମିତ, ହାତୀବୁଡ଼ିଯିବାଭଳି (ପାଣିଆଦି) ।

ହସ୍ତିନଖ—ବି. ନମୋନ୍ନତ ମୃତ୍ତିକୁଟ ବା ମାଟିଗଦା, ବୁରୁଜ, ହାତୀର ନଖ ।

ହସ୍ତିନ—ବି, ( ହସ୍ତିନ୍ + ଅ ) ହସ୍ତିନା ଦେଖ ।

ହସ୍ତିନ(ନା)ପୁର—ବି. ହସ୍ତିନା ଦେଖ ।

ହସ୍ତିନା—ବି,(ନାମ) ଚନ୍ଦ୍ରବଂଶୀୟ ହସ୍ତୀ ନାମକ ନରପତିଙ୍କ ନିର୍ମିତ ରାଜଧାନୀ, କୁରୁପାଣ୍ଡବଙ୍କ ରାଜଧାନୀ, ଆଧୁନିକ ଦିଲ୍ଲୀର ପ୍ରାଚୀନ ନାମ, ପଶ୍ଚିମୋତ୍ତରଗଡ଼ ।

ହସ୍ତିନାପୁର—ବି. ହସ୍ତିନା ଦେଖ ।

ହସ୍ତିନାଗ—ବି, ପାଟହାତୀ ।

ହସ୍ତିନାବାରୁଣୀ—ସ୍ତ୍ରୀ. ବି. ଅତୁଳବିଭବ ବା ଐଶ୍ୱର୍ଯ୍ୟ,ହସ୍ତିନାପୁର ବା ବାରୁଣାବନ୍ତ ପରି ସମୃଦ୍ଧ ସାମ୍ରାଜ୍ୟ ବା ନଗରୀ ।

ହସ୍ତିନାସା—ବି. ହାତୀର ଶୁଣ୍ଢ ।

ହସ୍ତିନୀ—ସ୍ତ୍ରୀ. ବି. କରିଣୀ, ମାଈ ହାତୀ, ହାତୁଣୀ, ଚତୁର୍ବିଧା ସ୍ତ୍ରୀଜାତି ମଧ୍ୟରୁ ଏକତମା, ହଟ୍ଟବିଳାସିନୀ, ସୁଗନ୍ଧିତ ଦ୍ରବ୍ୟବିଶେଷ, ହସ୍ତିଶୁଣ୍ଢୀ ବୃକ୍ଷ ।

ହସ୍ତିନୀପୁର—ବି. ହସ୍ତିନା ଦେଖ ।

ହସ୍ତିପ—ପୁଂ.ବି.(ହସ୍ତିନ୍ + ପା + କ.ଅ) ମାହୁନ୍ତ, ହସ୍ତିଚାଳକ, ହାତୀଆଳ, ଗଜାରୋହୀ ଯୋଦ୍ଧା ।

ହସ୍ତିପକ—ପୁଂ.ବି.(ହସ୍ତିପ + ସ୍ୱାର୍ଥେ.କ) ହସ୍ତିପ ଦେଖ ।

ହସ୍ତିପକା—ସ୍ତ୍ରୀ.ବି. ଗଜାରୋହୀ ଯୋଦ୍ଧା ।

ହସ୍ତିପଦ—ବି. ହାତୀର ପାଦ,ହାତୀପାଦ-

ଚହ୍ନ, (ଙ୍ଗ°) ହସ୍ତିପାଦଯୁକ୍ତ ।
ହସ୍ତିପର୍ଣ୍ଣିକା—ବି. ରାଜକୋଷାତକୀ ।
ହସ୍ତିପର୍ଣ୍ଣୀ—ବି. ମୋରଟା ଲତା,କର୍କଟୀ, କାକୁଡ଼ି, ମୂର୍ବା, ଅଲାବୁବିଶେଷ ।
ହସ୍ତିପାଦ—ବି. ପିଣ୍ଡାଳୁ ।
ହସ୍ତିପାଳ(କ)—ବି.ହସ୍ତୀରକ୍ଷକ,ମାହୁନ୍ତ ।
ହସ୍ତିପିପ୍ପଳୀ—ବି. ଗଜପିପ୍ପଳୀ ।
ହସ୍ତିପୃଷ୍ଠକ—ବି. (୬ତତ୍) ହାତୀର ପିଠି, ହସ୍ତୀର ପୃଷ୍ଠଦେଶ । [ ରୋଗ ।
ହସ୍ତିପ୍ରମେହ(ମେହ)—ବି. ଏକ ପ୍ରମେହ
ହସ୍ତିମଦ—ବି. ( ମଧ୍ୟ-କ.ଧା ) କାମମତ୍ତ ହସ୍ତୀର ଶୁଣ୍ଡର ଛିଦ୍ର ଗଣ୍ଡଦ୍ୱୟ ଶିଶ୍ନ ଓ ଚକ୍ଷୁର୍ଦ୍ୱୟ ଏହି ସପ୍ତସ୍ଥାନରୁ ବୋହିବା ଉତ୍କଟ ଗନ୍ଧଯୁକ୍ତ ଜଳୀୟ ରସ ।
ହସ୍ତିମଲ୍ଲ—ବି.(ହସ୍ତିନ୍ + ମଲ୍ଲ)ରଣହସ୍ତୀ, ଐରାବତ ହସ୍ତୀ, ଗଣେଶ,ପାତାଳବାସୀ ଶଙ୍ଖନାଗ, ମହାମଲ୍ଲ, ଭଗ୍ନସ୍ତୂପ, ଧୂଳି-ବର୍ଷଣ, ଭସ୍ମସ୍ତୂପ, ପାଉଁଶଗଦା ।
ହସ୍ତିମାଂସ—ବି.(୬ତତ୍) ହାତୀର ମାଂସ ।
ହସ୍ତିମୁଖ—ବି. (୬ତତ୍) ହାତୀର ମୁହଁ, (ବ.ବ୍ରୀ) ଗଜାନନ, ଗଣେଶ, ( ବି° ) ହସ୍ତୀର ତୁଲ୍ୟ ମୁଖବିଶିଷ୍ଟ ।
ହସ୍ତିମୂର୍ଖ—ଗ୍ରା. ବି ଓ ବି°. ମହାମୂର୍ଖ, ଗଜମୂର୍ଖ, ଅତି ନିର୍ବୋଧ (ବ୍ୟକ୍ତି) ।
ହସ୍ତିମୂତ୍ର—ବି. (୬ତତ୍) ହାତୀର ମୂତ୍ର ।
ହସ୍ତିଯୂଥ—ବି. (୬ତତ୍) ହାତୀପଲ୍ଲ ।
ହସ୍ତିରୋହଣକ—ବି. ହସ୍ତିକରଞ୍ଜ,ମହା-କରଞ୍ଜ, ବଡ଼କରଞ୍ଜ ।
ହସ୍ତିରୋ(ଲୋ)ଧ୍ରକ—ବି. ଲୋଧ୍ର ଦେଖ ।
ହସ୍ତିବାରୁଣୀ—ବି. କରଞ୍ଜୀ, ଗିଲ(ଗୁଳ୍ମ) ।
ହସ୍ତିବାହ—ବି.(ହସ୍ତିନ୍ + ବହ + ଣ.ଅ) ହାତୀ ଆଙ୍କୁଶ, ଗଜଚାଳନ ଦଣ୍ଡ ବା ଅଙ୍କୁଶ ।
ହସ୍ତିବିଷାଣୀ—ବି. କଦଳୀ ଗଛ ।
ହସ୍ତିଶାଳା—ବି. ( ୬ତତ୍ ) ହାତୀଶାଳ, ପିଲ୍‌ଖାନା, ଯେଉଁ ଘରେ ହାତୀ ବନ୍ଧା ହୁଅନ୍ତି ।
ହସ୍ତିଶିକ୍ଷା—ବି. ଗଜଶିକ୍ଷା,ଯେଉଁ ଶାସ୍ତ୍ରରେ ହସ୍ତୀମାନଙ୍କୁ କିରୂପେ ଚଲାଇବାକୁ ହୁଏ ତାହାର ଶୁଭାଶୁଭ ଲକ୍ଷଣ ପ୍ରଭୃତି ଲେଖାଅଛି ତାହାକୁ ହସ୍ତିଶିକ୍ଷା କହନ୍ତି ।
ହସ୍ତିଶୁଣ୍ଡ—ବି. (୬ତତ୍) ହାତୀର ଶୁଣ୍ଡ ବା ଥୋରପାହାର ।
ହସ୍ତିଶୁଣ୍ଡା(ଣ୍ଡୀ)—ବି. ହାତୀଶୁଣ୍ଡା ଗୁଳ୍ମ ।
ହସ୍ତିଶ୍ୟାମାକ-ବି. ଶସ୍ୟବିଶେଷ,ହାତୀଆ-ଶୁଆଁ, ବଡ଼ଶୁଆଁ ଧାନ, ବାଜରାଶସ୍ୟ ।
ହସ୍ତିଷଡ଼୍‌ଗବ—ବି. (୬ତତ୍) ଏକତ୍ର-ବନ୍ଧିତ ୬ଗୋଟି ହାତୀ ।
ହସ୍ତିସୂତ୍ର—ବି.ହାତୀ ଚଳାଇବା ବିଦ୍ୟା ।
ହସ୍ତୀ—ପୁଂ. ବି. (ହସ୍ତ+ଅସ୍ତି ଅର୍ଥରେ ଇନ୍) କରୀ, ଗଜ, ହାତୀ, ଚନ୍ଦ୍ରବଂଶୀୟ ଜୈନକ ନୃପ, ହସ୍ତିନାପୁରର ନିର୍ମାତା, ଅଜମୋଢ଼, ଦଣ୍ଡକୁଆଁରୀ, ଧୃତରାଷ୍ଟ୍ରଙ୍କ ଏକପୁତ୍ର ।
ହସ୍ତେ—ଅବ୍ୟ. ସ୍ୱୀକାର ସୂଚକ, ଗ୍ରା. ଅବ୍ୟ. ନିରଆଙ୍କର, ଦ୍ୱାରା, ଦେହ, ନିକଟରେ ଠାରେ, ଅଧିକାରରେ ହାତରେ ।
ହସ୍ତେକରଣ—ବି. ପାଣିଗ୍ରହଣ,ବିବାହ ।
ହସ୍ତୋଦକ—ବି. (ମଧ୍ୟ.କ.ଧା) ହାତରେ ଧରାହୋଇଥିବା ଜଳ ।
ହସ୍ତ୍ୟ—ବି°. ( ହସ୍ତ+ଯ ) ହସ୍ତଦ୍ୱାରା ପ୍ରସ୍ତୁତ, ହସ୍ତଦ୍ୱାରା ଦତ୍ତ, ହସ୍ତଦ୍ୱାରା କୃତ ।
ହସ୍ତ୍ୟଧ୍ୟକ୍ଷ—ବି. ( ୬ତତ୍ ) ଗଜାଧ୍ୟକ୍ଷ, ହାତୀମାନଙ୍କ ତତ୍ତ୍ୱାବଧାରକ ।
ହସ୍ତ୍ୟଶନ—ବି. ଲୋବାନ୍ ଗଛ ।
ହସ୍ତ୍ୟଶ୍ୱ—ବି. ହାତୀ ଓ ଘୋଡ଼ା ।
ହସ୍ତ୍ୟାଜୀବ—ବି°. (ଉ.ସ୍ତ୍ରୀ) ହସ୍ତି ବ୍ୟବ-ସାୟୀ, ଯେ ହାତୀଧରି ବା ବିକିକିଣି ଜୀବିକା ନିର୍ବାହ କରେ ।
ହସ୍ତ୍ୟାୟୁର୍ବେଦ—ବି. ହସ୍ତିଚିକିତ୍ସା ଶାସ୍ତ୍ର ।
ହସ୍ତ୍ୟାରୋହ—ବି. (ହସ୍ତିନ୍ + ଆରୋହ) ହସ୍ତିପକ, ମାହୁନ୍ତ ।
ହସ୍ତ୍ୟାରୋହୀ—ବି. ହାତୀ ଚଢ଼ିଥିବା ବ୍ୟକ୍ତି, ମାହୁନ୍ତ, ଗଜାରୋହୀ ସୈନ୍ୟ, (ସ୍ତ୍ରୀ) ହସ୍ତ୍ୟାରୋହିଣୀ ।
ହସ୍ତ୍ୟାଳୁ—ବି. ଗଜାଳୁ, ଆଳୁବିଶେଷ ।
ହସ୍ନହାନା—ଗ୍ରା. ବି. ଗୁଳ୍ମବିଶେଷ ।
ହସ୍ପାତାଳ—ଗ୍ରା. ବି. ( ଇଂ. ହସ୍ପିଟାଲ୍ ) ଡାକ୍ତରଖାନା ।
ହସ୍ୟାନ୍ନ(ର୍ଣ୍ଣ)ବ—ଗ୍ରା.ବି.ହସ୍ୟାର୍ଣ୍ଣବ ଦେଖ ।
ହସ୍ର—ବି°. (ହସ୍+ମି.ର) ମୂର୍ଖ, ମୂଢ଼ ।
ହହ—ଗ୍ରା. ଅବ୍ୟ. 'ହ'ର ଦ୍ୱିରୁକ୍ତି, ବଳଦକୁ ଅଡ଼ାଇବାର ଡାକ ।
ହହଲ—ବି. ହଲାହଲ ।
ହହା—ବି. ହାହା ନାମକ ଗନ୍ଧର୍ବ ।
ହହଏ—ଗ୍ରା. ଅବ୍ୟ. ହଇହେ ଦେଖ ।
ହା—ଅବ୍ୟ ( ସଂ.ହା; ଅହୋ ) ବିଷାଦ ସୂଚକ, ଯନ୍ତ୍ରଣା ବା ଆର୍ତ୍ତିସୂଚକ, ଶୋକସୂଚକ, ନିନ୍ଦା ବା କୁତ୍ସା ସୂଚକ, (ଗ୍ରା.ଅବ୍ୟ) ଆନନ୍ଦସୂଚକ, ହାଇମାର-ବାର ଶବ୍ଦ, (ପ୍ରା—ଖଡ଼ିଆଳ)ବି. କଟୁ ଆସ୍ୱାଦ, କଡ଼ା ରାଗ ଆସ୍ୱାଦ ।
ହାଅନ୍ନହାଅନ୍ନକରିବା(ହେବା)—ଗ୍ରା. କ୍ରି. ନିରାହାର ବ୍ୟକ୍ତି ଖାଦ୍ୟପାଇଁ ବ୍ୟାକୁଳ ହେବା ।
ହାଆ—ଗ୍ରା. ଅବ୍ୟ ଆହା, ହାୟ ଦେଖ ।
ହାଆଟି—ଗ୍ରା. ଅବ୍ୟ ( ନିର୍ଦ୍ଦେଶାର୍ଥକ ) ହେଇଟି ।
ହାଇ—ଗ୍ରା. ବି. (ସଂ.ହାଫିକା) ଜୃମ୍ଭା, ଶୋକଜନିତ ଦୀର୍ଘନିଃଶ୍ୱାସ, ( ଗ୍ରା ) ଆହା, ହାୟ ।
ହାଇସ୍କୁଲ—ଗ୍ରା. ବି. ଉଚ୍ଚଶ୍ରେଣୀର ଇଂରାଜୀ ବିଦ୍ୟାଳୟ ।
ହାଇଆସିବା(ଉଠିବା)—ଗ୍ରା. ଉପର୍ଯ୍ୟୁ-ପରି ହାଇର ଉଦ୍ରେକ ।
ହାଇଏ—ଗ୍ରା. ବି. ଗୋଟିଏମାନ ହାଇ ।
ହାଇଁ—ପ୍ରା. (ବଲାଙ୍ଗିର) ସବୁ, ସେଠି ।
ହାଇଁଠାନେ—ପ୍ରା.(ବଲାଙ୍ଗିର—କ୍ରି.ବି°) ସେଠାରେ ।
ହାଇଁ(ପାଇଁ)ହାଇଁ—ଗ୍ରା. ବି°. ଆକୁଳ, ବ୍ୟଗ୍ର, ବ୍ୟଥିତ, ( ବି ) ବ୍ୟଗ୍ରତା, ଉଦ୍‌ବିଗ୍ନତା, କ୍ଷିପ୍ରତା, ଅତି ବେଗେ, ଅତି ଶ୍ରମ ବା ଶ୍ୱାସରୋଗ ହେତୁ ଅତି-ମାତ୍ର ଶ୍ୱାସତ୍ୟାଗ ।
ହାଇକାଇଁ—ଗ୍ରା. ବି. ଉତ୍ପଳତା,

ଅସ୍ଥିରତା ପ୍ରକାଶ, ଗୃପଲ୍ଲା, ( ବଂ ) ଚଞ୍ଚଳ, ଅସ୍ଥିର, ବ୍ୟସ୍ତ, ବ୍ୟାକୁଳ ।

ହାଇକୋର୍ଟ—ସା. (ଇଂ)ବି. ପ୍ରାଦେଶିକ ସର୍ବୋଚ୍ଚ ବିଚାରାଳୟ, ବଡ଼ ଅଦାଲତ ।

ହାଇଗୁଇ—ଗ୍ରା. ବି. ସୁଖଦୁଃଖ, ଭଲ-ମନ୍ଦ ।

ହାଇଗୁଡ଼ିବା—ଗ୍ରା. କ୍ରି. ହାଇମାରିବା ।

ହାଇଜା—ଗ୍ରା. ବି. ହଇଜା. ଝାଡ଼ାବାନ୍ତି, ବିସୂଚିକା । [ ନାମ ।

ହାଇଦର୍—ସା. ବି. ମୁସଲମାନମାନଙ୍କ

ହାଇଦରାବାଦ୍—ସା. ବି. ଦକ୍ଷିଣାତ୍ୟର ମୁସଲ୍‌ମାନ୍‌ନବାବମାନଙ୍କ ଶାସିତ ମିତ୍ରରାଜ୍ୟ ଓ ତହିଁର ରାଜଧାନୀ ।

ହାଇପାରିବା—ପ୍ରା. (ସମ୍ବ) କ୍ରି. ହାଇ-ମାରିବା ।

ହାଇପିଟାଇପ୍‌ହେବା—ଗ୍ରା. କ୍ରି. କୃତ ବା ଅତୀତ କାର୍ଯ୍ୟପାଇଁ ବିଶେଷ ଅନୁଶୋଚନା କରିବା, ହାଇଁପାଇଁ ହେବା, ଅପ୍ରାପ୍ତ ବସ୍ତୁ ପାଇବାପାଇଁ ଲାଳାୟିତ ହେବା ।

ହାଇଫରଫର—ଗ୍ରା. ଅବ୍ୟ ଅତ୍ୟଧିକ ହାଇ ହେବା ।

ହାଇବାଇହେବା—ଗ୍ରା. କ୍ରି. ହାଇଁ-ପାଇଁ ହେବା ।

ହାଇମରିଚ—ପ୍ରା. (ବାଲେଶ୍ୱ ବି. ଗୁଣ୍ଡ-ପୋଡ଼ା ଗୁଳ୍ମ ।

ହାଇମାରିବା—ଗ୍ରା, କ୍ରି. ଜୃମ୍ଭଣକରିବା, ପାଟି ମେଲାକରି ପାଟିପଟେ ନିଶ୍ୱାସ ଛାଡ଼ିବା, ( ଲ.ଅର୍ଥ ) ପରଶ୍ରୀକାତର ହେବା, ପ୍ରବଳ ପରାକ୍ରମୀର ଅତ୍ୟା-ଚାରକୁ ଦମନ କରିବାକୁ ସମର୍ଥ ନହୋଇ ଧର୍ମକୁ ସାକ୍ଷୀ ରଖି ଦୀର୍ଘନିଶ୍ୱାସ ତ୍ୟାଗ କରିବା ।

ହାଇରେ—ଗ୍ରା. ଅବ୍ୟ. ଶୋକାର୍ଥକ ଅବ୍ୟୟ, (ଯଥା—ହାଇରେ ବିଧାତା) ।

ହାଇରେକପାଳ(ବିଧାତା)—ଗ୍ରା. ଅବ୍ୟ. ଖେଦରେ ବା ଶୋକରେ ବିଧାତାକୁ ବା କପାଳକୁ ନିନ୍ଦାକରି ଉଚ୍ଚାରଣ କରିବା ପଦ ।

ହାଇ(ଇଁ)ସାହସ—ଗ୍ରା. ବି. ଦୁଃସାହସ ।

ହାଇହାଇକରିବା—ଗ୍ରା. କ୍ରି. ହାୟ୍-ହାୟ୍ କରିବା, ଶୋକ କରିବା, (ଲ.ଅର୍ଥ) ନଷ୍ଟପ୍ରାୟହେବା ।

ହାଉ—ଗ୍ରା. ଅବ୍ୟ (ଫ.ହା, ହାହାକାର) ରୁନିଆ ବା ଭୀତ ବ୍ୟକ୍ତିର ଡାକ, ହଠାତ୍ ବିପନ୍ନ ଓ କିଂକର୍ତ୍ତବ୍ୟବିମୂଢ଼ ବ୍ୟକ୍ତିର ନିରର୍ଥକ ଧ୍ୱନି, (ଗ୍ରା,କ୍ରି,ବିଂ) ହଠାତ୍, ଅତି ତୀବ୍ର ଭାବରେ, (ଯଥା—ହାଉକିନା ନିଆଁ ଲାଗିଗଲା), (ଗ୍ରା.ବି) ଶୋକଜନିତ ହାହାକାର, ବା ତୈଳ, ଉତ୍ତପ୍ତ ପଦାର୍ଥରେ ପାଣି ଛିଞ୍ଚିଲେ ସେଥିରୁ ଉଠିବା ଉତ୍ତପ୍ତ ବାଷ୍ପ, ରୁନିଆ ବା ଉଦ୍‌ବେଗ, ଶୋକଜନିତ ଦୀର୍ଘନିଶ୍ୱାସ, ହାଉଆ ଦେଖ ।

ହାଉଆ—ଗ୍ରା. ବି. (ଫା.ହାଓ୍ୱା) ପବନ, ବାୟୁ, ଜଳବାୟୁ (ଲ.ଅର୍ଥ) ପ୍ରଭାବ ।

ହାଉଆକଥା—ଗ୍ରା.ବି. ଅମୂଳକ ବିବରଣ, ଶୁଣା କଥା ।

ହାଉଆକରିବା—ଗ୍ରା. କ୍ରି. ବିଞ୍ଚିବା ।

ହାଉଆଖାଇବା—ଗ୍ରା. କ୍ରି. ବାୟୁ ସେବନ କରିବା,ଉନ୍ମୁକ୍ତ ବାୟୁ ବହୁ-ଥିବା ସ୍ଥାନରେ ବସିବା ବା ବୁଲିବା ।

ହାଉଆଗାଡ଼ି—ଗ୍ରା. ବି. ପବନଦ୍ୱାରା ଚାଳିତ ଗାଡ଼ି, ସାଇକେଲ, ମଟର-ଗାଡ଼ି ।

ହାଉଆଚକି—ଗ୍ରା.ବି.ପବନଦ୍ୱାରା ଚାଳିତ ଅଟାପେଶା କଳ, କାଗଜର ଗୁଡ଼ି ।

ହାଉଆଗୁଡ଼ିବା—ଗ୍ରା. କ୍ରି. ବାୟୁ ଗମନା-ଗମନ ପଥରୁ ଅବରୋଧ ଦୂରକରି ଉନ୍ମୁକ୍ତ କରିବା ।

ହାଉଆଜାହାଜ—ଗ୍ରା.ବି. ଆକାଶପୋତ, ବ୍ୟୋମଯାନ ।

ହାଉଆଦାର୍—ସା. ବି. ଯହିଁରେ ପବନ ଚଳାଚଳ ହୁଏ ।

ହାଉଆବନ୍ଧୁକ—ସା. ବି. ପବନର ବେଗଦ୍ୱାରା ଚାଳିତ ବନ୍ଧୁକ ।

ହାଉଁ—ଗ୍ରା. ଅବ୍ୟ. ( ଧ୍ୱନ୍ୟନୁକରଣ ) ଖାଇବାପାଇଁ ହିଂସ୍ରଜନ୍ତୁର ମୁଖବ୍ୟାଦାନ, ଆଁ,(ଶିଶୁରଞ୍ଜନବାକ୍ୟ)ଭୋଜନ ।

ହାଉଁକରି(ହାଁକ)—ଗ୍ରା.କ୍ରି. ବିଂ. ହାଉଁକରି ଦେଖ ।

ହାଉଁକରିବା-ଗ୍ରା.କ୍ରି.ହାଉଁକରିବା ଦେଖ ।

ହାଉଖସିବା(ପଶିବା)-ଗ୍ରା.କ୍ରି. ହୃଦୟରେ ଧକା ପଶିବା, ଉଦ୍‌ବେଗ ବା ରୁନିଆଁ ଜାତ ହେବା ।

ହାଉଜ(ହାଉଦା)—ଗ୍ରା. ବି. ପାଣିସଞ୍ଚୟ କରି ରଖିବା ପାଇଁ ପକ୍କାର କୁଣ୍ଡ, ଚହଵଚ୍ଚ ।

ହାଉକାଉ—ଗ୍ରା. ବି. ଗଣ୍ଡଗୋଳ, ହଟ୍ଟ-ଗୋଳ, ଯୋଓପାଆ, (ବିଂ) ବହୁତ, ଅନେକ, ସାଲୁସାଲୁ, ବେଶି ସଂଖ୍ୟାରେ ଇତସ୍ତତଃ ଚାଳିତ ବା ବିକ୍ଷିପ୍ତ,ଅସ୍ତବ୍ୟସ୍ତ, ବ୍ୟତବ୍ୟସ୍ତ, (ଲ.ଅର୍ଥ) ସମ୍ପର୍କ ।

ହାଉଡ଼ା—ଗ୍ରା. ବି. ( ନାମ ) ହାବୁଡ଼ା, କଲିକତାର ବିପରୀତ ପାଖରେ ଗଙ୍ଗା-କୂଳରେ ଥିବା ନଗର ଓ ଜିଲ୍ଲା, (ଗ୍ରା. ପୁଂ. ବିଂ) ବୋକା, ଖନା, ଓଲୁ, ନିବୁଦ୍ଧିଆ ।

ହାଉଦା—ସା. ବି. (ଫ-କରଣ୍ଡକ) ହାତୀ ପିଠିରେ ମନୁଷ୍ୟ ବସିବା ପାଇଁ ବନ୍ଧା-ଯିବା ଗଦି ବା ବିମାନଯୁକ୍ତ ଆସନ ।

ହାଉଦାକଷିବା—ଗ୍ରା. କ୍ରି. ହାତୀପିଠିରେ ହାଉଦାକୁ ପକାଇ ତାକୁ ଦଉଡ଼ି ଆଦି ଦ୍ୱାରା ଦୃଢ଼ସଂଲଗ୍ନ କରିବା ।

ହାଉପଶିବା—ଗ୍ରା. ବି. ଆକସ୍ମିକ ବିପଦ ଯୋଗୁଁ ଭବିଷ୍ୟତକୁ ମନରେ ଗୋଟାଏ ରୁନିଆଁ ପଶିଯିବା ।

ହାଉପୂରି(ରେ)ଇବା—ଗ୍ରା.କ୍ରି.ଆକସ୍ମିକ ବିପଦ ଘଟିବା ପରେ ଆପଣାମନକୁ ରୁନିଆଁ କରିବା,କୌଣସି ଶୋକଜନକ ଘଟଣା ଘଟିବା ପରେ ଆପଣା ମନରେ ସର୍ବଦା ସେହି ହାହାକାର ବା ଦୀର୍ଘ-ନିଃଶ୍ୱାସକୁ ସ୍ଥାନଦେବା ।

ହାଉମରିଚିଆ—ଗ୍ରା.ବି.ଗୁଣ୍ଡପୋଡ଼ା ଗୁଳ୍ମ ।

ହାଉର୍‌ହାଉର୍‌ହେବା—ପ୍ରା. (ସମ୍ବ) କ୍ରି, ଆହାର ଖାଇବାକୁ ଦେଉ ବୋଲି ବାରମ୍ବା-

ସ୍ମାର ମାଗିବା, ଝକଝକ ହେବା ।
ହାଉଳଗୁ(ଫା,ବା,ମା)ଉଳହେବା-ଗ୍ରା.କ୍ରି. (ଫ-ଆକୁଳ) ବ୍ୟଗ୍ର ଓ ବ୍ୟସ୍ତତା ସହ ଶୋକହେବା, ଧନ୍ଦହେବା, ଉଦ୍ବେଗବକଳ ହେବା, ଉଦ୍ଦେଶ୍ୟହୀନ ଭାବରେ ଇତ-ସ୍ତତଃ ଗୁଳତ ହେବା ।
ହାଉଳା—ଗ୍ରା. ପୁଂ. ବିଂ. (ଫ-ବାଉଳ) ଯେ ସବୁକଥା ପାଶୋରି ପକାଏ, ଯେ ଶୀଘ୍ର ପୂର୍ବକଥା ଭୁଲିଯାଏ, କାର୍ଯ୍ୟ-କଳାପରେ ଅଙ୍ଗହତ, (ସ୍ତ୍ରୀ) ହାଉଳୀ ।
ହାଉଳୀ—ଯା.ବି.ବ୍ରହ୍ମଦେଶ, ବଙ୍ଗଦେଶର ବା ସେଣ୍ଟଗଞ୍ଜ ଜିଲାରେ ପତିତଭୂମିକୁ ଆବାଦ କରିବା ପାଇଁ ଅବାଦକାରୀଙ୍କୁ ଯହା ଦିଆଯିବା ତାଲୁକ ବା ମଧ୍ୟସତ୍ୱ, ନୌକାର ଆଧୁଳି ।
ହାଉଲ(ଲେ)ଇବା—ଗ୍ରା. କ୍ରି. ଡଙ୍ଗାକୁ ଚଳାଇବା ପାଇଁ ଆହୁଲା ପକାଇବା, କୌଣସି କାର୍ଯ୍ୟର ଗତି ବା ବେଗକୁ କମାଇବା ।
ହାଉଲତ୍—ଯା.ବି. ଅଲଦେନପାଇଁ ବିନା ସୁଧରେ ଦିଆଯିବା ଋଣ, ଶୁକ୍ରଆଦିଙ୍କୁ ଦରମା ମିଳିବା ପୂର୍ବରୁ ଆବଶ୍ୟକମତେ ଦିଆଯିବା ଉଧାର ଧନ, ଭାରପ୍ରାପ୍ତ କର୍ମଚାରୀଙ୍କୁ ଆବଶ୍ୟକ ସରକାରୀ ବ୍ୟୟ ଚଳାଇବାପାଇଁ ଦିଆଯିବା ଟଙ୍କା, ଡିପୋଜିଟ୍, ନ୍ୟାସ, ହାଜତ୍, ହାଜତଘର, ନଜରବନ୍ଦୀ ।
ହାଉଲତି—ଯା.ବିଂ.ହାଉଲତ୍ ବା ଉଧାର କରାଯାଇଥିବା ।
ହାଉଲାବାଉଳା—ଗ୍ରା.ପୁଂ.ବିଂ. ବାଉଳ, ବାଉଳପ୍ରାପ୍ତ ।
ହାଉଳି—ଗ୍ରା. ବି. ଚମ୍ପେଇନେଉଳ, ଏକପ୍ରକାର ସରୀସୃପ, ନିଦ୍ରା ଭଙ୍ଗି ନ ଥିବା ଅବସ୍ଥାରେ କଞ୍ଚା ନିଦରୁ ଉଠି ହଠାତ୍ ଭୀତହୋଇ ଦବଣ୍ଡି ହେବା ବା ବାଉଳେଇ ହେବା, ଅଗ୍ନିର ଉତ୍ତାପ, ବଣ୍ଡଗୋଳ, ମୁଖଶବ, ଭୟହେତୁରୁ ବା ଅକସ୍ମାତ୍ ହଠାତ୍ ଦୁର୍ଘଟଣାବଶତଃ ଚମକି ମୁଖଶବ କରିବା, (ବିଂ)ନାନା-ଶ୍ରେଣୀର ବା ପ୍ରକାରର ମିଶା (ଧାନ, ଗୁଉଳ) ।
ହାଉଳଆ—ଗ୍ରା. ( ଯାଜପୁର ) ବିଂ. ଅବ୍ୟବସ୍ଥିତ ।
ହାଉଳିଖାଇବା—ଗ୍ରା. କ୍ରି. କଞ୍ଚାନିଦରୁ ଉଠି ହଠାତ୍ ଭୀତ ହୋଇ ବା କାଉ-ଳେଇ ହୋଇ ବିଛଣାରେ ବା ଭୂମିରେ ଦବଣ୍ଡିହେବା, ଦଳି ଦଳି ହୋଇ ଇତସ୍ତତଃ ବୁଲିବା, ଭୟରେ କାଉ-ଳେଇ ବା ଅସ୍ଥିର ହେବା ।
ହାଉଳିଗୁଉଳ—ଗ୍ରା. ବି. ନାନାପ୍ରକାର ମିଶା (ଖାଦ୍ୟ) ଗୁଉଳ ।
ହାଉଳିବାସନ—ଗ୍ରା. ବି. ମାଳେଇ-ଦାସନ, ଯେଉଁ ବାସନ ଏକକାଉଁଶର ହାତର କମ୍ପା ଫରମାସି ବା ଉତ୍କୃଷ୍ଟ-ଧରଣ ନୁହେ ।
ହାଉଲେ—ଗ୍ରା. କ୍ରି. ବିଂ. ଆସ୍ତେ, ଧୀରେ, ଧୀରଭାବରେ, ଲଘୁଭାବରେ ।
ହାଉସ୍—ଯା. ଇଂ. ବି. ଘର, ବାସସ୍ଥାନ, ବଡ଼ବଡ଼ ମହାଜନମାନଙ୍କ କାରବାର ଦୋକାନର ଗଦି ।
ହାଉସ—ପ୍ରା. (ପୁରୀ) ବି. ଉତ୍ସାହ ।
ହାଉହାଉ—ଗ୍ରା. ଅବ୍ୟ ବହୁଲୋକଙ୍କ ଏକତ୍ର ପାଟିକରିବା ବା ଘୋଘା କରିବା, ଉଚ୍ଚସ୍ୱରରେ ଅର୍ଥହୀନ ରବ, ହଠାତ୍ ସମ୍ମୁଖରେ ବିପଦ ଉପସ୍ଥିତ ହେଲେ ବିପନ୍ନ ଲୋକଙ୍କ ପାଟି ଖଣମାରିଥିବା ଯୋଗୁଁ ସେମାନଙ୍କ କରିବା ଶବ୍ଦ, ହାଉକିନା, ଖୁବ୍ ଶୀଘ୍ର ଦାହ୍ୟପଦାର୍ଥରେ ନିଆଁ ଲାଗିଯିବା ପ୍ରକାରେ, ନିଆଁ ଭୟଙ୍କର ରୂପେ ଓ ଶିଖା ସହିତ ଜଳିବା ପ୍ରକାରେ, କଞ୍ଚା ଲଙ୍କାମରିଚ ଜିଭରେ ଲାଗିବା ମାତ୍ରକେ କମ୍ପା ନିଆଁ ଆଦି ଦେହରେ ଲାଗିଲେ ଅନୁ-ଭୂତ ହେବା ଜଳାପୋଡ଼ା, ( ବି ) ଲଙ୍କାମରିଚ ।
ହାଉହାଉଆ—ଗ୍ରା. ପୁଂ. ବିଂ. ଯେ ଖୁବ୍ ପାଟିକରି କଥା କହେ, ବଡ଼ପାଟିଆ ।
ହାଉହାଉ ହେବା—ଗ୍ରା. କ୍ରି. ବହୁଲୋକ ଘୋଘା କରିବା, ବହୁଲୋକ ବୃଥା ବାକ୍ୟ ବ୍ୟୟକରିବା, ଭୟରେ କିଂ କର୍ତ୍ତବ୍ୟବିମୂଢ଼ ହୋଇ ଶବ୍ଦ କରିବା ।
ହାଏ—ଗ୍ରା. ଅବ୍ୟ (ଫ.ହା) ହା, ହାୟ, ହାଇ. (ପ୍ରା,ସମ୍ବ,ଅବ୍ୟ) ହାତ୍, ହେତ୍ ।
ହାଏଁଡ଼—ପ୍ରା. (ସମ୍ବ) ବି. ହାଣ୍ଡି ।
ହାଏଁଡ଼ଫେର୍—ପ୍ରା. (ସମ୍ବ) ବି. ଘରଂ ତିଆରି ପିଠା । [ ହାଣ୍ଡି ।
ହାଏଣ୍ଡ—ପ୍ରା. (ଜଲଙ୍ଗିର ପାଠଣୀ) ବି.
ହାଏରଗୁହାର୍—ପ୍ରା. (ସମ୍ବ) ବି. ହାରିଂ ଗୁହାରି ଦେଖ । [ ଗୁଲ ।
ହାଏଲହୁଲୁମ୍—ପ୍ରା. (ସମ୍ବ) ବି. ହାଲିଂ
ହାଃ—ଗ୍ରା. ଅବ୍ୟ. ବିସ୍ମୟ, ଖେଦ, ଶୋକ ବା ଯାତନାସୂଚକ ଧ୍ୱନି, ହର୍ଷ-ସୂଚକ ଧ୍ୱନି ଘୃଣାର୍ଥକ, (ବି) ହାକର, ହାକିସ ବା 'ହାଲ'ର ସାଙ୍କେତିକ ।
ହାଁ—ଗ୍ରା. ଅବ୍ୟ ହିନ୍ଦୀଭାଷାରେ ହାଁର ଆକାର, ହଁ, ସାବଧାନ ବା ନିଷେଧା-ର୍ଥକ, ସମ୍ବୋଧନ, ବାକ୍ୟ ଶେଷରେ ବକ୍ତାଙ୍କ ଧମକାଣ, ସ୍ଥଗିତ ରହିଥିବା କଥାର ସ୍ରୋତକୁ ପୁନର୍ବାର ଚଳାଇ-ବାର ଆଦ୍ୟରେ ବ୍ୟବହୃତ ଧ୍ୱନି, ଆକ୍ରମଣକାରୀଙ୍କୁ ନିବୃତ୍ତ ରହିବା ପାଇଁ ସଙ୍କେତ, (ପ୍ରା. ଖଲ୍ଲିଆଲ) କ୍ରୋଧ ଓ ସ୍ୱୀକାରସୂଚକ ଶବ୍ଦ ।
ହାଁଇଁଆଁ—ଗ୍ରା. ବିଂ. ଯେଉଁ ବ୍ୟକ୍ତି ଖାଇବାପାଇଁ ହାଇଁପାଇଁ ବା ଲାଳା-ୟିତ ହୁଏ, ବଡ଼ପାଟିଆ ।
ହାଇଁଆଁପାଟି—ଗ୍ରା. ବି. ବଡ଼ପାଟି, ଉଚ୍ଚୈଃସ୍ୱର, ସୁବିଶାଳ ବ୍ୟାଦାନଯୁକ୍ତ ମୁଖ, (ପୁଂ—ବିଂ) ହାଇଁଆଁ ପାଟିଆ, (ସ୍ତ୍ରୀ.)ପାଟେଇ ।
ହାଇଁଖାଇବା—ଗ୍ରା. ବି. ସର୍ବଦା ଅତୃପ୍ତ ହୋଇ ଖାଇବାରେ ମନ ବଳାଇବା ।
ହାଇଁପାଇଁ—ଗ୍ରା. ବି. କାମକରିବାକୁ ବା ଖାଇବାକୁ ଲାଳସା, (ବିଂ) କାମ କରିବାକୁ ବା ଖାଇବାକୁ ଲାଳାୟିତ, କାର୍ଯ୍ୟ ନ କରିପାରି ଦୁଃଖିତ ।
ହାଇଁପାଇଁଆଁ—ଗ୍ରା. ବିଂ. ଲାଳାୟିତ ।

ହାଁଇଁସାହାସ୍ତ—ଗ୍ରା. ବ. ଦୁଃସାହସ ।

ହାଁଇଁସାହାସା(ସିଆ)—ଗ୍ରା. ଣ°. ଦୁଃସାହସଯୁକ୍ତ (କାର୍ଯ୍ୟ), ଦୁଃସାହସିକ (ବ୍ୟକ୍ତି) । [ ଦେଖ ।

ହାଁଇଁହାଁଇଁ—ଗ୍ରା. ଅବ୍ୟ ହାଁଇଁପାଇଁ

ହାଁଉଁ—ଗ୍ରା. ଅବ୍ୟ.( ଶିଶୁବାକ୍ୟ ) ଶିଶୁମାନଙ୍କଦ୍ୱାରା ବ୍ୟାଘ୍ରଆଦିଙ୍କର ଧ୍ୱନିର ଅନୁକରଣ, ଖାଇବା, ଭୋଜନ ।

ହାଁଉଁଆଁ—ଗ୍ରା. ବି°. ବଡ଼ପାଟିଆ, ଆଁ କରିଥିବା ମୁଖବିଶିଷ୍ଟ ।

ହାଁଉଁଆଁଗୁଣ୍ଡା—ଗ୍ରା. ବି. ବଡ଼ଗୁଣ୍ଡା ।

ହାଁଉଁଆଁପାଟି—ଗ୍ରା.ବି.ବଡ଼ପାଟି,ଉଚ୍ଚୈଃସ୍ୱର, ବୃହତ୍ ମୁଖ ।

ହାଁଉଁକିନା(କରି,କିନି)—ଗ୍ରା. ଯଥା—ଟାଉକରି, ଶୀଘ୍ର ଆହାରକୁ ମାଡ଼ିବସି ଆଗ୍ରହ ସହିତ ଖାଇବାପ୍ରକାରେ ।

ହାଁଉଁକରିବା—ଗ୍ରା. କ୍ରି. ( ଶିଶୁବଚନ ) ଖାଇବା ।

ହାଁକୁ—ପ୍ରା. (ବଲାଙ୍ଗିରପାଟଣା ଜନ୍ଦାନ-ପ୍ରଚଳିତଭାଷା) ସେ ପାଖକୁ ।

ହାଁଜି—ଯା.ଅବ୍ୟ. ହଁ କରିବା ।

ହାଁଟୁ(ଟୁ)—ପ୍ରା. (ସିଂହଭୂମ) ବ. ଆଣ୍ଠୁ ।

ହାଁଡ଼ୁଆ—ଗ୍ରା.ବି. ବାଉଁଶ କରଡ଼ଦ୍ୱାରା ପ୍ରସ୍ତୁତ ଆଗର ।

ହାଁଣି—ପ୍ରା. (ବଲାଙ୍ଗିର—ବଂଶୀଲଭାଷା) ବି. ହାଣ୍ଡି ।

ହାଁଥି—ପ୍ରା. (ସମ୍ବ) ବି. ହାତୀ, (ସ୍ତ୍ରୀ)-ହାଁଥେନ୍, ହାଁଥିନ୍ ।

ହାଁଥିଧରସା—ପ୍ରା. (ସମ୍ବ) ବି. ହାତୀଦାଣ୍ଡି, ଛୁପ୍ପାପଥ, ଜଙ୍ଗଲରେ ହାତୀମାନଙ୍କ ପଥ । [ ଆଲେ !

ହାଁଦେରେ—ପ୍ରା. (ବଲାଙ୍ଗିର) ଅବ୍ୟ.

ହାଁଟୂଲ୍—ପ୍ରା. (ସମ୍ବ) ବି. ହାତୁଡ଼ି ।

ହାଁପଣ—ଗ୍ରା. ବି. କୁଲା, ସୂର୍ପ ।

ହାଁପିବା—ଗ୍ରା. କ୍ରି.ବେଦମ୍‌ହେବା, ବହୁ-ପରିଶ୍ରମହେତୁଁ ଘନ ଘନ ନିଃଶ୍ୱାସ ମାରିବା ।

ହାଁପାନି—ଗ୍ରା. ବି. ନିଃଶ୍ୱାସର ବ୍ୟଗ୍ରତା, ଶ୍ୱାସରୋଗ ।

ହାଁପୁଡ଼୍—ପ୍ରା. (ସମ୍ବଲ) ବ. ହାପୁରା ।

ହାଁରେ—ଗ୍ରା. ଅବ୍ୟ. ( ପୁରୁଷଙ୍କପ୍ରତି ) ହଇରେ ଦେଖ ।

ହାଁସ୍—ପ୍ରା. (ଉତ୍ତରଭାଗ) ବ. ହଂସ ।

ହାଁସପାତାଲ—ଗ୍ରା. ବ. (ସଂ-ଆସପତାଲ) ଡାକ୍ତରଖାନା ।

ହାଁହାଁ—ଗ୍ରା. ଅବ୍ୟ ସାବଧାନ, ହୁସିଆର, ବନ୍ଦକର, ଥାଉ ( ନିଷେଧାର୍ଥକ ) ( ଔତ୍ସୁକ୍ୟ ସହିତ ଜବାବ ) ହଁହଁ, (ଉତ୍ସାହାର୍ଥକ) କାମରେ ଲଗ,ସମ୍ଭୋଗ କାଳରେ କାମୋନ୍ମତ୍ତା ସ୍ତ୍ରୀମାନଙ୍କର ଉଚ୍ଚାରିତ ଅର୍ଦ୍ଧସ୍ଫୁଟ ଧ୍ୱନିବିଶେଷ ।

ହାକ୍‌ଟି—ପ୍ରା. (ଝଡ଼ିଆଲ) ବ. ହାକୁଟି ।

ହାକ୍‌ବା—ପ୍ରା. (ସମ୍ବଲ-ବଲାଙ୍ଗିର) କ୍ରି, ଡାକିବା ।

ହାକ—ଗ୍ରା. ବି. (ସଂ-ହକାର) ହାକରା, ନିମନ୍ତ୍ରଣ, ଡାକ, ଡାକରା, ଆହ୍ୱାନ ।

ହାକଣା—ପ୍ରା. (ଗଞ୍ଜାମ—ବ) ଡାକ, ଧ୍ୱନି, ଆହ୍ୱାନଡାକ ବା ଧ୍ୱନି ।

ହାକଣ୍ଡ—ଗ୍ରା.ବ. (ସଂ-ଆକନ୍ଦ) ଦାରୁଣ-ଯୁକ୍ତ । [ ଡାକିବା ।

ହାକଦେଲ୍ଲା—ପ୍ରା. (ବଲାଙ୍ଗିର) କ୍ରି.

ହାକରା—ଗ୍ରା.ବି. (ସଂ-ହକ୍କାର) ହକରା (ଦେଖ), ଡାକ, (ପ୍ରା.-ଯାଜପୁର,ବ.) କନ୍ୟା ଘରଯୋଗ୍ୟା ପରେ ଗଣାପୋଗ୍ରୁ ସରିବା ଉତ୍ତାରେ ବରଘରୁ କନ୍ୟା ନିକଟକୁ ପଠାଯିବା ସଙ୍କେତ ।

ହାକା—ଗ୍ରା.ବି. ଅଡ଼ି, ଘାଟରେ ବା ମଞ୍ଚାରେ ବା ମଞ୍ଚାରେ ଧନୁ ବା ବନ୍ଧୁକ ଧରି ଜଗିବସିଥିବା ବାଣୁଆଁ-ମାନଙ୍କ ପାଖକୁ ବନ୍ୟଜନ୍ତୁମାନଙ୍କୁ ଗୁହାଆଡ଼ୁ ହୁରୁଡ଼ାଇ ଆଣିବା ଶବ୍ଦ, (ପ୍ରା-ବଲାଙ୍ଗିର) ବି. ପାରିଧି ଦେଖ ।

ହାକାକରିନା—(ପ୍ରା.-ବାମଣ୍ଡା) କ୍ରି ଖେଡ଼ି ଚିହ୍ନାଲିଇବା ଦେଖ ।

ହାକାଣ୍ଡି—ପ୍ରା.(ଉତ୍ତର ବାଲେଶ୍ୱର) ବି. ଠାକୁରଙ୍କ ପୋଷଣା ।

ହାକାର—ଗ୍ରା. ବି. ଉଚ୍ଚୈଃସ୍ୱରରେ ଦେବତାଙ୍କ ନାମରେ ଜୈଜୈକାର ।

ହାକି(କିଂ)ବା—ଗ୍ରା. କ୍ରି. ଡାକିବା, ନିମନ୍ତ୍ରଣକରିବା, ବକିବା, ଗାଳିଦେବା, ପ୍ରକାଶ୍ୟରେ କହିବା ।

ହାକନୀ—ସ୍ତ୍ରୀ. ବି. ଯୋଗିନୀବିଶେଷ, ଦୁର୍ଗାଙ୍କ ଅନୁଚରୀ ।

ହାକିନୀଶକ୍ତି—ବି. ତନ୍ତ୍ର ବା ଯୋଗ-ଶାସ୍ତ୍ରୋକ୍ତ ଶରୀରସ୍ଥ ଷଟ୍‌ଚକ୍ର ମଧ୍ୟରେ ଥିବା ଶକ୍ତିବିଶେଷ ।

ହାକିମ—ଯା.ବି.ହକିମ (ଦେଖ),ବିଚାରପତି, ଶାସନକର୍ତ୍ତା, ନ୍ୟାୟାଧୀଶ, କର୍ତ୍ତୃପକ୍ଷ, ଉଚ୍ଚପଦସ୍ଥ କର୍ମଚାରୀ, ସରକାରୀକର୍ମଚାରୀ, ପ୍ରଭୁ, ସ୍ୱାମୀ ।

ହାକିମଟିପ—ପ୍ରା. (ଗଞ୍ଜାମ) ବି. ଗିଞ୍ଜିପା ବା ତାସ୍‌ଖେଳର ରଜା ତାସ ।

ହାକିମହୁକୁମା—ଗ୍ରା. ବି. (ନିରର୍ଥକ ୨ୟ ସହଚର ଶବ୍ଦ)ନାନାଶ୍ରେଣୀର ହାକିମ-ମାନେ ।

ହାକିମାତ୍—ଯା. ବି. ହାକିମମାନେ ।

ହାକିମି—ଯା. ବି. ହାକିମଙ୍କ କର୍ମ ବା ଅଧିକାର, ପ୍ରଭୁତ୍ୱ, କର୍ତ୍ତୃତ୍ୱ, ଶାସନ, ହକିମୀ, ଚିକିତ୍ସକତ୍ୱ, ( ବି° ) ହାକିମ ସମ୍ବନ୍ଧୀୟ, ହକିମ ସମ୍ବନ୍ଧୀୟ ।

ହାକୁ—ପ୍ରା. (ପାଟଣା) ଅ. ସେ ଆଡ଼କୁ ।

ହାକୁଆ—ଗ୍ରା.ପୁଂ.ବି°.ଡାକୁଆ(ଗୁକର) ।

ହାକୁଚ(ଚ)କଣ୍ଟା—ଗ୍ରା. ବି. ବାସକାଦି-ବର୍ଗର ବନ୍ୟ କଣ୍ଟକମୟ କ୍ଷୁପ ।

ହାକୁଚମଞ୍ଜି—ଗ୍ରା.ବ.(ସଂ-ବାକୁଚ)ବାକୁଚି ଦେଖ ।

ହାକୁଟି—ଗ୍ରା. ବି. ( ସଂ-ହିକ୍କା ) ଉଦ୍ଗାର, ଏଉଡ଼ି,(ଭୋଜନ ପରେ)ଗର୍ଭସ୍ଥ ବାୟୁର ସଶବ୍ଦରେ ବହିର୍ନିଃସାରଣ ।

ହାକୁଟିମାରିବା—ଗ୍ରା. କ୍ରି. ମୁଖ ଦ୍ୱାରା ଉଦ୍ଗାର ବା ଗର୍ଭସ୍ଥ ବାୟୁକୁ ଛାଡ଼ିବା, (ଲ.ଅର୍ଥ) ଭୋଜନାନ୍ତେ ନିଶ୍ଚିନ୍ତହୋଇ କାଳଯାପନ କରିବା ।

ହାକୁଡ଼ି—ପ୍ରା.(ବାଲେଶ୍ୱର)ବ.(ସଂ-କକୁଦ୍) ଗୋରୁଙ୍କ କାନ୍ଧ ଉପରେ ଥିବା ଚୂଳ, କକୁଦ୍ ।

ହାକୁଡ଼ିଖାଇବା—ଗ୍ରା. କ୍ରି. (ଷଣ୍ଢ) କୁଣ୍ଡା-

ଣବା, (ନଈ) ବୃଦ୍ଧିପାଇ ଦୁଇକୂଳକୁ ପାଣି ଛଡୁଳାଇବା ।

ହାକୁହାକୁ—ଗ୍ରା.ବ.କ୍ଷତାଦ ବା କାଷ୍ଠାଦର ଜ୍ୱଳନ, ହାଉହାଉ ଦେଖ, ଚର୍ମରେ ଲଙ୍କାମରଚ ଆଦ ଲଗି ପୋଡ଼ବାର ଜ୍ୱାଳା ।

ହାକେଣୀ—ଗ୍ରା.ବ. ସ୍ତ୍ରୀ. ହାକମା ଦେଖ, ଗ୍ରାମଦେବୀବଶେଷ ।

ହାଗା—ଗ୍ରା. (ବସ୍ତ୍ରର) ବ. ହଗା,ଝାଡ଼ା ।

ହାଗିବା-ପ୍ରା.(ପାଟଣା)କ୍ରି.ଝାଡ଼ାଫେରବା ।

ହାଙ୍କ—ଗ୍ରା. ବି. (ହୁଙ୍କାର ଶବ୍ଦଜ) ହାକ, ଉଚ୍ଚୈଃସ୍ୱରରେ ଡାକ,ଚକ୍କାର,ହୁଙ୍କାର ଦେଖ,ପ୍ରତଜ୍ଞା, ପାରୁ ନ ପାରୁ କୌଣସି କାର୍ଯ୍ୟାଦ କରବାକୁ ପ୍ରତଜ୍ଞା କରବା, (ଗ୍ରା. ଉତ୍ତର ବାଲେଶ୍ୱର) ଉଚ୍ଚସ୍ୱର ।

ହାଙ୍କଛଡ଼(ଡ୍ରି)ସିବା-ଗ୍ରା.ବ. ଦୁଇଜଣଙ୍କର ଉଚ୍ଚୈଃସ୍ୱରରେ ବାଦାନୁବାଦ ।

ହାଙ୍କପାଙ୍କ—ଗ୍ରା. ବ. ବ୍ୟାକୁଳତା, ଅତ ବ୍ୟସ୍ତତା, (ବଂ) ଅତବ୍ୟସ୍ତ,ବ୍ୟାକୁଳ ।

ହାଙ୍କା—ଗ୍ରା.ବ. ହୁଙ୍କାର ଦେଖ, ହାଙ୍କିବା ଦେଖ ।

ହାଙ୍କିବା—ଗ୍ରା. କ୍ରି. ଗାଡ଼ ବା ବଗିର ଅଶ୍ୱାଦକୁ ଗୃଳତକରବା,ଉଚ୍ଚୈଃସ୍ୱରରେ କହବା, ଉଚ୍ଚୈଃସ୍ୱରରେ ଗାଳଦେବା, ତାଡ଼ନାକରବା,ଉଚ୍ଚୈଃସ୍ୱରରେ ଚକ୍କାର କର ଡାକବା,ଧମକାଇ କର ବା ମାଡ଼ ଦେଇ ତଡ଼ଦେବା,କୌଣସି କାର୍ଯ୍ୟାଦ କରବାକୁ ପ୍ରତଜ୍ଞା କରବା, (ପ୍ରା.-ସିଂହଭୂମ୍) ଠେଲଦେବା, ମୁହେଁ ମୁହେଁ ଅମାନ୍ୟ କରବା,(ଭୃତ୍ୟ)ସ୍ୱାମୀଙ୍କୁ ଜବାବ ଦେବା ।

ହାଙ୍କୁଡ଼(ର)—ପ୍ରାଦେ. (ଯାଜପୁର) ବ. କ୍ଷୌରର ଚୂଲ ।

ହାଙ୍କୁଡ଼ାଇବା—ପ୍ରା. (ଯାଜପୁର) କ୍ରି. (କ୍ଷୌର) ହୁଣ୍ଡାରବା ।

ହାଙ୍କୁଡ଼ିବା—ପ୍ରା. (ଉତ୍ତର ବାଲେଶ୍ୱର) କ୍ରି. ଗୁରୁଣିବା ।

ହାଙ୍ଗଣୀ—ପ୍ରା.(ଜୟପୁର)ବ.ଗୁହ୍ୟଦ୍ୱାର ।

ହାଙ୍ଗା(ଙ୍ଗା)ମା—ଯା. ବ୍ର. ବବାଦ,କଳହ, ଡକରାର,ଗୋଳମାଲ,ଉତ୍ପାତ,ଉପଦ୍ରବ ।

ହାଙ୍ଗମାକରବା—ଗ୍ରା.କ୍ରି.ବବାଦକରବା, କଳି କରବା, ଅପରାଧସୂଚକ ଗୋଳ-ମାଳ କରବା, ଅଜସ୍ର ହୋଇ ଅଳ କରବା ।

ହାଙ୍ଗମାବାଜ୍—ଯା. ବଂ. କଳହପ୍ରିୟ, ଗୋଳମାଲପ୍ରିୟ, ବବାଦପ୍ରିୟ ।

ହାଙ୍ଗର—ବ. ( ହାଁ+ଗୃ+କ.ଅ ) (ମୁଖବସ୍ତାର ପୂର୍ବକ ଶବ୍ଦ କର ଅନ୍ୟ ଜନ୍ତୁକୁ ଗ୍ରାସକରୁଥିବାରୁ)ମଗର,ବାଲଆ-କାରାସ୍ତ ତୀକ୍ଷ୍ଣଦନ୍ତ ବୃହଦାକାର ସମୁଦ୍ର-ଚାରୀ ହିଂସ୍ର ମତ୍ସ୍ୟବଶେଷ ।

ହାଙ୍ଗାମ୍(ମା)—ଯା. ବ. ହାଙ୍ଗମା ଦେଖ ।

ହାଙ୍ଗମି—ଯା.ପୁଂ ଓ ସ୍ତ୍ରୀ. ବଂ. ହାଙ୍ଗମା-ବାଜ୍ ଦେଖ ।

ହାଚ୍‌କିବା—ପ୍ରା. (ଖଡ଼.) କ୍ରି. ଝିଙ୍କିବା ।

ହାଚ୍‌କାହାଚ୍‌କିବା—ପ୍ରା. (ଖଡ଼.) କ୍ରି. ଟଣାଓଟରା କରବା ।

ହାଚ୍‌କାକଗୁଡ଼ହେବା—ପ୍ରା. (ସମ୍ବ) କ୍ରି. ଛେଚକୁଟି ହେବା,ଝୁଣ୍ଟିବା ଓ କଚଡ଼ା ଖାଇବା ।

ହାଁଛୁ(ଛୂ)—ଗ୍ରା. ଅବ୍ୟ. ଛୁଙ୍କିବାର ଅନୁକରଣ ଶବ୍ଦ ।

ହାଜତ୍—ଯା. ବ. ବଚାରଶେଷ ପୂର୍ବରୁ ଅଭିଯୁକ୍ତ ବ୍ୟକ୍ତିକୁ ଅଟକାଇ ରଖାଯିବା କାରାଗୃହ, ବଚାରାଧୀନ ମୁଦ୍ଦାଲାର କାରାବାସ ।

ହାଜତଘର—ଗ୍ରା.ବ.ବଚାର ଶେଷ ପୂର୍ବରୁ ଆସାମୀକୁ ଯେଉଁ ଘରେ ଅବରୁଦ୍ଧ କର ରଖାଯାଏ ।

ହାଜତଦେବା—ଗ୍ରା. କ୍ରି. ବଚାର ଶେଷ ନ ହେବାଯାଏ ଆସାମୀକୁ ହାଜତରେ ରହିବାକୁ ଆଦେଶ ଦେବା ।

ହାଜତୀ—ଯା. ବଂ. ହାଜତ ସମ୍ବନ୍ଧୀୟ, ହାଜତରେ ଅବରୁଦ୍ଧ ।

ହାଜର୍—ଯା. ବଂ. ଉପସ୍ଥିତ, ଅବସ୍ଥିତ, ବର୍ତ୍ତମାନ, ପ୍ରସ୍ତୁତ, ଇଚ୍ଛୁକ ।

ହାଜର୍‌କରାଇବା—ଗ୍ରା. କ୍ରି. କୌଣସି ବସ୍ତୁକୁ ବା ଲୋକକୁ ଉପସ୍ଥାପିତ କରବା ।

ହାଜର୍‌ଜବାବ—ଯା.ବଂ. ଉତ୍ତର ଦେବାକୁ ପ୍ରସ୍ତୁତ, ଉପସ୍ଥିତ ବୁଦ୍ଧିବିଶିଷ୍ଟ,ପ୍ରତ୍ୟୁତ୍ପନ୍ନ-ମତ,ସଙ୍ଗେ ସଙ୍ଗେ ଉତ୍ତର ଦେବାରେ ନିପୁଣ ।

ହାଜର୍‌ପା(ବା)ଶ୍—ଯା. ବଂ. କଗବର ନକଟରେ ଉପସ୍ଥିତ (ବ୍ୟକ୍ତି),ମନୁଷ୍ୟଙ୍କ ସଙ୍ଗେ ସବୁବେଳେ ଯାଇ ମେଳ ହେଉଥିବା (ବ୍ୟକ୍ତି) ।

ହାଜରପା(ବା)ଶୀ—ଯା. ବ. ସର୍ବଦା କୌଣସି ବ୍ୟକ୍ତିଙ୍କ ନକଟରେ ଉପସ୍ଥିତ, ଲୋକଙ୍କ ସଙ୍ଗେ ସର୍ବଦା ମିଳାମିଶି ରହିବା ।

ହାଜରହେ !—ଯା. ଅବ୍ୟ. (କଚରଆ) ଆସାମୀ ବା ପକ୍ଷର ନାମଧର ଚପରାଶୀର ଡାକ ।

ହାଜରହେବା—ଗ୍ରା.କ୍ରି.ଉପସ୍ଥିତହେବା, ସ୍ୱୟଂ ଉପସ୍ଥିତ ହେବା ।

ହାଜରା—ଯା. ବଂ. ଉପସ୍ଥିତ, ହାଜର ହୋଇଥିବା, ( ବ ) ହାଜରୀ ଦେଖ, ବଙ୍ଗଦେଶରେ ପ୍ରଚଳିତ ବଂଶୋପାଧି-ବିଶେଷ ।

ହାଜରାପୁସ୍ତକ(ବହି)—ଗ୍ରା. ବ. ଯେଉଁ ବହିରେ ସମ୍ପର୍କୀୟ ବ୍ୟକ୍ତି ବା କୁଲି ବା ଗ୍ରାହମାନଙ୍କ ନାମ ଲେଖାଯାଇ ପ୍ରତଦନ ହାଜରୀ ନଆଯାଏ ।

ହାଜରି—ପ୍ରା. (ଖଡ଼ିଆଳ) ବ. ଉପସ୍ଥିତ ।

ହାଜିର(ର)—ଯା. ବଂ. ଉପସ୍ଥିତ, ( ବ ) କର୍ମକ୍ଷେତ୍ରରେ ଉପସ୍ଥିତ ।

ହାଜିରା—ଯା. ବ. ଉପସ୍ଥିତ, (ବ) କର୍ମ-କ୍ଷେତ୍ରରେ ଉପସ୍ଥିତ,ହାଜରାବହି, ବଙ୍ଗ-ଦେଶରେ ପ୍ରଚଳିତ ବଂଶୋପାଧିବଶେଷ ।

ହାଜିରୀ—ଯା. ବ. ହାଜର, ଉପସ୍ଥିତ, ସାହେବମାନଙ୍କ ଜଳଯୋଗ, ହାଜରା-ବହିରେ ଲକ୍ଷିତ ଉପସ୍ଥାନର ଚହ୍ନ,(ବଂ) ଉପସ୍ଥିତ ।

ହାଜି—ଯା.ବ.ଯେଉଁ ମୁସଲମାନ ମକ୍କାକୁ ଯାଇ ସେଠାରେ ହଜ୍ ବା ତୀର୍ଥୋଚତ କର୍ତ୍ତବ୍ୟ ସମ୍ପନ୍ନ କରଥାଆନ୍ତି ।

ହାଷ୍ଟି—ପ୍ରା. (ମେଦନୀପୁର) ବ. ଛୁଙ୍କ ।

ହାଟ—ଗ୍ରା. ବି. (ସଂ-ହଟ୍ଟ) ହଟ୍ଟ, ପଣ୍ୟ-ଦ୍ରବ୍ୟ କ୍ରୟବିକ୍ରୟ ପାଇଁ ନାନାସ୍ଥାନରୁ ଅନେକ ଅନେକ ବେପାରୀ ଓ କ୍ରେତାଙ୍କର ଏକତ୍ର ହେବା ସ୍ଥାନ, ସାମୟିକ ବଜାର, ଗଞ୍ଜ, (ଲ.ଅର୍ଥ) ଗୁପ୍ତବିଷୟର ସାଧାରଣରେ ପ୍ରକାଶ, ହଟା, ଘୋଓ-ଘାଆ, ଗୋଳମାଳ, ଯେଉଁଠାରେ ବହୁଲୋକ ବା ଦ୍ରବ୍ୟ ସମବେତ ହୁଅନ୍ତି ।

ହାଟକ—ବି.(ହଟ୍+କ.ଅକ)ସ୍ୱର୍ଣ୍ଣ,ସୁନା, ଧୁସ୍ତୂର, ମହାଭାରତର ସଭାପର୍ବୋକ୍ତ ଗୁହ୍ୟକର ବାସସ୍ଥାନ ନଗର ଓ ଦେଶ-ବିଶେଷ,(ବିଂ)ସ୍ୱର୍ଣ୍ଣମୟ,ହାଟକନିର୍ମିତ ।

ହାଟକମୟ—ବିଂ. ( ହାଟକ+ମୟ ) ସ୍ୱର୍ଣ୍ଣମୟ ।

ହାଟକଲୋଚନ—ବି. ହିରଣ୍ୟାକ୍ଷ ଦୈତ୍ୟ ।

ହାଟକରିବା-ଗ୍ରା.କ୍ରି.ହାଟରୁ ପ୍ରୟୋଜନୀୟ ପଣ୍ୟଦ୍ରବ୍ୟ କିଣିବା,ପଣ୍ୟଦ୍ରବ୍ୟ ବିକିବା, ନୂତନହାଟ ପ୍ରତିଷ୍ଠିତ କରିବା,ବ୍ୟବସାୟ କରିବାକୁ ହାଟକୁ ଯିବା, ( ଲ.ଅର୍ଥ ) ଗୁପ୍ତବିଷୟ ପ୍ରଘଟ କରିବା, ଗୋଳମାଳ କରିବା ।

ହାଟକୀୟ—ବିଂ. ସ୍ୱର୍ଣ୍ଣନିର୍ମିତ ।

ହାଟକେଶ-ବି.ଶିବ,ହାଟକେଶ୍ୱର ଦେଖ ।

ହାଟକେଶ୍ୱର—ବି. ଗୋଦାବରୀତୀରସ୍ଥ ଶିବଲିଙ୍ଗବିଶେଷ, (ଗ୍ରା.ବି) ପୁରୀଜିଲ୍ଲାର ଖୋରଧାରୁ ୫କୋଶ ଦୂରରେ ଅବସ୍ଥିତ ଉଷ୍ଣପ୍ରସ୍ରବଣବିଶିଷ୍ଟ ଅଟରୀ ଗ୍ରାମରେ ଥିବା ଶିବଲିଙ୍ଗ ଓ ଗ୍ରାମ ।

ହାଟଘାଟ—ଗ୍ରା. ବି. ବହୁଲୋକଙ୍କ ସମାଗମ ସ୍ଥାନ ।

ହାଟଝିଙ୍କା—ଗ୍ରା.ବି. ରୁଗ୍ଣ ବା ପୁଅରୋଗ-ଗ୍ରସ୍ତ ପିଲାଙ୍କୁ ଗାଧୋଇଦେବା ପାଣିରେ ମିଶାଇବାପାଇଁ ପୋଟଳିବଣିଆମାନେ ସେମାନଙ୍କ ହାଟ ଉଠାଇବା ବେଳେ ଭୂମିରେ ପଡ଼ିଥିବା ଯେଉଁସବୁ ଧୂଳି କାଡ଼-କୁଟିର ଗୁଣ୍ଡ ବାଲିଆଦି ସଂଗ୍ରହ କରନ୍ତି ।

ହାଟତୋଟା—ଗ୍ରା. ବି. ଯେଉଁ ଆମ୍ବଆଦି ଗଛର ତୋଟାର ଗୁମ୍ଫାରେ ହାଟବସେ ।

ହାଟପାଳି—ଗ୍ରା.ବି.ହାଟବସିବାର ନିର୍ଦ୍ଦିଷ୍ଟ ଦିବସ ।

ହାଟବଜାର—ଗ୍ରା. ବି. ( ସହଚର ଶବ୍ଦ ) ଅସ୍ଥାୟୀ ହାଟ ଓ ସ୍ଥାୟୀ ବଜାର ।

ହାଟବସା(ସେ)ଇବା—ଗ୍ରା.କ୍ରି.କୌଣସି ନୂଆକରି ଗୋଟିଏ ହାଟ ସ୍ଥାପନକରିବା, ହାଟପାଳିଦିନ ହାଟରେ କ୍ରୟବିକ୍ରୟ ଆରମ୍ଭ କରିବା, (ଲ.ଅର୍ଥ) ଗୁପ୍ତକଥାକୁ ପ୍ରକାଶ କରିବା, ବହୁଲୋକଙ୍କୁ ଏକ-ସ୍ଥାନରେ ରୁଣ୍ଡ କରିବା ।

ହାଟବସିବା—ଗ୍ରା. କ୍ରି. ବି. ନୂଆହୋଇ ହାଟ ପ୍ରତିଷ୍ଠିତ ହେବା, ( ଲ.ଅର୍ଥ ) କୌଣସି ବିଷୟ ସର୍ବସାଧାରଣରେ ରଷ୍ଟ୍ର ହେବା, ହଟା ବସିବା, କୌଣସି ପଦାର୍ଥ ବହୁସଂଖ୍ୟାରେ କୌଣସି ସ୍ଥାନରେ ରୁଣ୍ଡ ହେବା ।

ହାଟବାଟ—ଗ୍ରା. ବି. (ନିରର୍ଥକ ସହଚର ଶବ୍ଦ) ସଉଦା କ୍ରୟବିକ୍ରୟର ବଜାର ।

ହାଟବାହୁଡ଼ା—ଗ୍ରା. ବିଂ. ହାଟରୁ ଭଲ ଭଲ ଜିନିଷ ବିକିସାରେ ଅବଶିଷ୍ଟ ବଳିଥିବା କଚ୍ଚା ଜିନିଷ ଫେରି ଆସିଥିବା, (ଲ.ଅର୍ଥ) କଚ୍ଚାମାଲ, (କ୍ରି) କିଣାବିକା ପରେ ହାଟରୁ ଫେରି ଆସିବା ।

ହାଟମୁଣ୍ଡେଇ—ଗ୍ରା. ବି. (ସଂ-ହଟ୍ଟମଣ୍ଡପ) ହାଟଗୁଳି ଦେଖ ।

ହାଟଭିତରେ(ମଧ୍ୟରେ)ବ୍ରହ୍ମଜ୍ଞାନ—ଗ୍ରା. (ପ୍ରବଚନ) ବହୁଲୋକଙ୍କ ଗଣ୍ଡଗୋଳ ମଧ୍ୟରେ ଆଧ୍ୟାତ୍ମିକତତ୍ତ୍ୱ ବ୍ୟାଖ୍ୟାକରିବା ପଣ୍ଡ ପରିଶ୍ରମ, ପ୍ରକାଶ୍ୟଭାବରେ ବହୁ-ଲୋକଙ୍କ ଉପସ୍ଥିତିରେ କୌଣସି ଗୁପ୍ତ ରହସ୍ୟ ପ୍ରକାଶ କରିବା ବେଳେ ପ୍ରଯୋଜ୍ୟ ପ୍ରବଚନ ।

ହାଟରିବା—ଗ୍ରା. (ପାଟଣା) କ୍ରି. ହୁଙ୍କାର ଶବ୍ଦ କରିବା ।

ହାଟରେପଡ଼ିବା—ଗ୍ରା. କ୍ରି. (କୌଣସି କଣାପ)ପାଟକଜାତ ମଧ୍ୟରେ ମୀମାଂସାର୍ଥ ଉପସ୍ଥାପିତ ହେବା, ଗୁପ୍ତବିଷୟ ସର୍ବ-ସାଧାରଣରେ ପ୍ରକାଶିତ ବା ଘୋଷିତ ହେବା ।

ହାଟରେପଡ଼ିବାଟରେ( ଵାଣ୍ଡରେ )ଗଡ଼ା-ଗଡ଼ାଇବା—ଗ୍ରା. କ୍ରି, କୌଣସି ବିଷୟ ଦେଶତମାମ ରଷ୍ଟ୍ରହେବା ।

ହାଟୁଆ—ଗ୍ରା. ବିଂ. ହାଟ ସମ୍ବନ୍ଧୀୟ, (ପୁଂ.ବିଂ)ଯେ ପଣ୍ୟଦ୍ରବ୍ୟ ହାଟକୁ ବିକି-କରି ଆଣେ,ଯେଉଁବ୍ୟକ୍ତି ହାଟକୁ ସଉଦା କିଣିବାକୁ ଯାଆନ୍ତି,ହାଟୁଆକୁଳ ଦେଖ, (ପ୍ରା. ଗଞ୍ଜାମ. ବି) ବଡ଼, ଧାନକଳସୀ, ମୃତ୍ପାତ୍ରବିଶେଷ ।

ହାଟୁଆକୁଳ—ଗ୍ରା.ବି. ଓଡ଼ିଶାର କେତେକ ଶୂଦ୍ରଜାତି ।

ହାଟୁଆଭଣ୍ଡାରୀ—ଗ୍ରା. ବି. ଚମମୁଠିଆଙ୍କ ଠାରୁ ନିକୃଷ୍ଟ ଶ୍ରେଣୀର ଭଣ୍ଡାରି ।

ହାଟୁଆରି—ଗ୍ରା. ବି. ହାଟୁଆଜାତି ବାସ କରୁଥିବା ଗ୍ରାମ, ହାଟୁଆକୁଳ ଦେଖ, ( ବିଂ ) ହାଟ ସମ୍ବନ୍ଧୀୟ, ହାଟୁଆକୁଳ ସମ୍ବନ୍ଧୀୟ,ହାଟକୁ ଲୋକ ଓ ପଣ୍ୟଦ୍ରବ୍ୟ ବହନକାରୀ (ଡଙ୍ଗା, ଗାଡ଼ିଆଦି) ।

ହାଡ଼—ଗ୍ରା.ବି. (ସଂ-ହଡ୍ଡ) ଅସ୍ଥି,(ଲ.ଅର୍ଥ) ମନୁଷ୍ୟର ମନ ବା ହୃଦୟ ।

ହାଡ଼କଙ୍କାଳ-ଗ୍ରା.ବି.ମାଂସହୀନ ଅସ୍ଥିମାତ୍ର ।

ହାଡ଼କଙ୍କାଳମାଳ(ଳା)—ଗ୍ରା. ବି. ଅସ୍ଥି-କଙ୍କାଳଚୟ,ମାଂସହୀନ ଅସ୍ଥିକଙ୍କାଳର ଗଦା, (ବିଂ)ଦୁର୍ବଳ ବା ଅନଶନକ୍ଳିଷ୍ଟ, ଯାହାର ଦେହରେ ଅସ୍ଥିମାତ୍ର ଅବଶିଷ୍ଟ ଥାଏ ।

ହାଡ଼କଣ୍ଟ—ଗ୍ରା. ବି. ହାଡ଼ୁଚିକଣ୍ଟା ଗୁଳ୍ମ ।

ହାଡ଼କଟା—ଗ୍ରା. ବି. ହାଡ଼ ଓ ଶିଙ୍ଘଆଦି କାଟି ନାନାପ୍ରକାର ବ୍ୟବହାର୍ଯ୍ୟ ବସ୍ତୁ ( ବାଡ଼ି, କଙ୍ଗୁଆ, ଚୂଳିଆଦି ) ତିଆରି କରିବା ଶୂଦ୍ରଜାତି, କଂସେଇ ।

ହାଡ଼କଡ଼କଡ଼ହେବା—ଗ୍ରା. ବି. ହାଡ଼-ଜଳିବା ଦେଖ ।

ହାଡ଼କାଠି—ଗ୍ରା. ବି. ହାଡ଼ୁଚି କଣ୍ଟାଗୁଳ୍ମ ।

ହାଡ଼କୁମାଟିରେମିଶାଇବା-ଗ୍ରା.କ୍ରି.ଅତିରିକ୍ତ ପରିଶ୍ରମ ବା ଶ୍ରମ ସହ୍ୟ କରିବା ।

ହାଡ଼ଗଣ୍ଠି(ଜୋଡ଼)—ଗ୍ରା.ବି.ଦୁଇଟିହାଡ଼ର ଯୁକ୍ତସ୍ଥାନ ବା ଗଣ୍ଠି ।

ହାଡ଼ଗିଳା—ଗ୍ରା.ବି.ଏକପ୍ରକାର କୁଳେଇର ପକ୍ଷୀ (ଏମାନେ ମାଂସାଶୀ, ସାପଆଦିକୁ

ମନ୍ତ ଖାଆନ୍ତି) ।

ହାଡ଼ଗୁଣ୍ଡା—ଗ୍ରା. ବି. ଅସ୍ଥି ଚୂର୍ଣ୍ଣ; ଭୂମିରେ ସାର ଦିଆଯିବା ପାଇଁ ଗୁଣ୍ଡା କରାଯାଇଥିବା ହାଡ଼ ।

ହାଡ଼ଗୁଣ୍ଡାକରିବା—ଗ୍ରା. କ୍ରି. ହାଡ଼କୁ ଛେଚିବା ପେଷି ଚୂନାକରିବା, (ଲ. ଅର୍ଥ) ଅତ୍ୟନ୍ତ ପ୍ରହାର କରିବା ।

ହାଡ଼ଗୋଡ଼—ଗ୍ରା. ବି. ହସ୍ତପଦାଦି ସମସ୍ତ ଶରୀର; ଦେହର ଅସ୍ଥି ମାନ ।

ହାଡ଼ଗୋଡ଼ଚୂନାକରିବା—ଗ୍ରା. କ୍ରି. ପ୍ରହାର ଦ୍ୱାରା ଦେହର ଓ ଗୋଡ଼ର ହାଡ଼ମାନଙ୍କୁ ଭାଙ୍ଗିଦେବା, ଅତ୍ୟନ୍ତ ପ୍ରହାର ଦେବା ।

ହାଡ଼ଚମ—ଗ୍ରା. ବି. ଅସ୍ଥି ଓ ଚର୍ମ, ମାଂସ ନ ଥିବା ଚର୍ମବେଷ୍ଟିତ କଙ୍କାଳ ।

ହାଡ଼ଚଣ୍ଡୀ-ଗ୍ରା. ପୁଂ. ବିଂ. ହାଡ଼ଜଳା ଦେଖ ।

ହାଡ଼ଜଳା—ଗ୍ରା. ବିଂ. ଯେଉଁ କଥା ଦ୍ୱାରା ମନୁଷ୍ୟର ହାଡ଼ ଜଳେ, ଅତ୍ୟନ୍ତ ବିରକ୍ତି ଉତ୍ପାଦକ (ବାକ୍ୟ), ଅତ୍ୟନ୍ତ ବିରକ୍ତକାରୀ (ବ୍ୟକ୍ତି), (ସ୍ତ୍ରୀ) ହାଡ଼ଜଳେଇ ।

ହାଡ଼ଜଳିବା—ଗ୍ରା. କ୍ରି. ଅତ୍ୟନ୍ତ ବିରକ୍ତ ଓ କ୍ରୁଦ୍ଧହେବା ।

ହାଡ଼ଫୁଟି—ଗ୍ରା. ବି. ଏକପ୍ରକାର ସଂକ୍ରାମକ ବିସ୍ଫୋଟକ ବା କ୍ଷୁଦ୍ର ବସନ୍ତ ଜାତୀୟ ରୋଗ ।

ହାଡ଼ବାଇ—ଗ୍ରା. ସ୍ତ୍ରୀ. ବି. (ସଂ-ହଡ୍ଡମାଳିନୀ) ଯୋଗିନୀବିଶେଷ, ଅପଦେବତା ବା ଭୂତଯୋନିବିଶେଷ, ହାଡ଼ଫୁଟି ରୋଗର ଅଧିଷ୍ଠାତ୍ରୀ ଦେବୀ ।

(ତାକୁ) ହାଡ଼ବାଇଲଗିବା-ଗ୍ରା. ବି. (ଲ. ଅର୍ଥ) କ୍ରୋଧରେ ଉନ୍ମତ୍ତବତ୍ କ୍ଷିପ୍ତ ହେବା, ହାଡ଼ବାଇ ଠାକୁରାଣୀ କୌଣସି ବ୍ୟକ୍ତିଙ୍କ ଦେହରେ ଆବିଷ୍ଟ ହେବା ।

ହାଡ଼ଭଙ୍ଗା—ଗ୍ରା. ବି. ଆଘାତାଦି ଦ୍ୱାରା ଅସ୍ଥିଭଗ୍ନ ହେବା, ପବଅଇରି, ଚୂର-କୋଣିଆ ପବବିଶିଷ୍ଟ ବନ୍ୟଲତାବିଶେଷ

ହାଡ଼ଭଙ୍ଗାକଥା—ଗ୍ରା. ବି. (ଲ. ଅର୍ଥ) ମର୍ମଭେଦୀ ବାକ୍ୟ ।

ହାଡ଼ଭଙ୍ଗାପରିଶ୍ରମ(ମେହନ୍ତି, ମେହେନତ୍)—ଗ୍ରା. ବି. ଅତ୍ୟନ୍ତ କାୟିକ ପରିଶ୍ରମ ।

ହାଡ଼ଭଙ୍ଗାଶୀତ—ଗ୍ରା. ବି. ଅତ୍ୟନ୍ତ କ୍ଲେଶଦାୟକ ଶୀତ, ମର୍ମଭେଦୀ ଶୀତ ।

ହାଡ଼ଭାଙ୍ଗିବା—ଗ୍ରା. କ୍ରି. ହାଡ଼ଗୋଡ଼ ଚୂନା କରିବା ଦେଖ, ଅତ୍ୟନ୍ତ ପରିଶ୍ରମ କରିବା, (ବିଂ) ଆଘାତାଦି ଦ୍ୱାରା ଅସ୍ଥିଭଙ୍ଗ ।

ହାଡ଼ମାଉଁସ—ଗ୍ରା. ବି. ଅସ୍ଥି ଓ ମାଂସ ।

ହାଡ଼ମାଳ—ଗ୍ରା. ବି. ଅସ୍ଥିମାଳା, ଅସ୍ଥି-କଙ୍କାଳମାଳ, ଅତି ଜୀର୍ଣ୍ଣଶୀର୍ଣ୍ଣ ଅବସ୍ଥା ।

ହାଡ଼ରସା—ଗ୍ରା. ବି. ଅସ୍ଥି ମଧ୍ୟରେ ଥିବା ସାର ବା ମଜ୍ଜା ।

ହାଡ଼ରସାଗଳିବା—ଗ୍ରା. ବି. ଅତିସାରର ମାରସ୍ତିକ ଅବସ୍ଥାରେ ପୂଯବତ୍ ଦୁର୍ଗନ୍ଧ ଝାଡ଼ା ହେବା ।

ହାଡ଼ରି—ଗ୍ରା. ବିଂ. ଅତିଟାଣୁଆ (ମାଟିଆଦି), ବୁଢ଼ା ଓ ସ୍ୱଳ୍ପପତ୍ରଯୁକ୍ତ (ଗଛ), ହାଡ଼ୁଆ ଦେଖ ।

ହାଡ଼ରୁମାଉଁସକେଲେଇବା(ଖାଇବା)--ଗ୍ରା. କ୍ରି. ମାଂସଯୁକ୍ତ ଅସ୍ଥିରୁ ଦନ୍ତଦ୍ୱାରା ମାଂସ ପୃଥକ୍ କରି ଖାଇବା, (ଲ. ଅର୍ଥ) ଅତ୍ୟନ୍ତ କଷ୍ଟ ଦେବା, ଅତି ଉତ୍ପୀଡ଼ିତ କରିବା ।

ହାଡ଼ରୁମାଉଁସମିଳେଇଯିବା—ଗ୍ରା. କ୍ରି. ବିଂ. (ଲ. ଅର୍ଥ) ଅତ୍ୟନ୍ତ ନିର୍ଯାତନ ଭୋଗ କରିବା, କୌଣସି ଦୁଶ୍ଚିନ୍ତା ଯୋଗୁଁ କ୍ରମେ ଦୁର୍ବଳ ହୋଇଯିବା ।

ହାଡ଼ଶିଙ୍କୁଳା—ଗ୍ରା. (ଯାଜପୁର) ବି. ପବଅଇରି, ଚୂର୍କୋଣିଆ ପବବିଶିଷ୍ଟ ବନ୍ୟଲତାବିଶେଷ ।

ହାଡ଼ଶୂଳ—ଗ୍ରା. ବି. ଅସ୍ଥି ଶୂଳ, (ଲ. ଅର୍ଥ) ହାଡ଼ଜଳିବା, (ବିଂ) ମର୍ମଭେଦୀ ବାକ୍ୟ) ।

ହାଡ଼ଶୂଳିଆ-ଗ୍ରା. ପୁଂ. ବିଂ. ପରଶ୍ରୀକାତର, ଯେ ପରର ଶ୍ରୀ ଦେଖି ସହି ନ ପାରି ଈର୍ଷାରେ କଳି ଆରମ୍ଭ କରେ ।

ହାଡ଼ି—ଗ୍ରା. ପୁଂ. ବି. (ସଂ-ହଡ୍ଡିକ, ହଡ୍ଡକ) ଚଣ୍ଡାଳଜାତି, ମନୁଷ୍ୟମାନଙ୍କର ମଳ ଓ ରାସ୍ତାର ମଇଳା ପରିଷ୍କାରକାରୀ ଗୋ-ମାଂସଖାଦକ ନୀଚ ଅସ୍ପୃଶ୍ୟ ଜାତି, ମେହେନ୍ତରର ଜାତି, ମଳାପକର୍ଷୀ ଜାତି, (ସ୍ତ୍ରୀ) ହାଡ଼ିଆଣୀ, ଅତି ଜଘନ୍ୟ ଓ ଅପରିଷ୍କୃତ ବ୍ୟକ୍ତି, ଅତି ଭୀରୁ ବ୍ୟକ୍ତି, ଅପରିଷ୍କାରୀ ସ୍ତ୍ରୀ ଓ ପୁରୁଷଙ୍କ ନାମ, (ବିଂ) ଘୃଣାକର, ଡରକୁଳା ।

ହାଡ଼ିଆ—ଗ୍ରା. ପୁଂ. ବି. ହାଡ଼ିବନ୍ଧୁର ଓ ଜନକ, ହାଡ଼ିଆଗିର ଦେଖ ।

ହାଡ଼ିଆଣୀ—ଗ୍ରା. ସ୍ତ୍ରୀ. ବି. ହାଡ଼ିର ସ୍ତ୍ରୀଲିଙ୍ଗ, ହାଡ଼ିଜାତିର ସ୍ତ୍ରୀ, ମେହେନ୍ତ-ରାଣୀ, ଚଣ୍ଡାଳୁଣୀ, ପଲ୍ଲୀ, ଚିହ୍ନିଚିହ୍ନି କାହିଁକି କାମାକ୍ଷାର ପ୍ରସିଦ୍ଧା ତନ୍ତ୍ରସିଦ୍ଧ ଚଣ୍ଡାଳୁଣୀର ନାମ ।

ହାଡ଼ିଆଣୀଚଉଠି—ଗ୍ରା. ବି. ଗଣେଶ-ଚତୁର୍ଥୀ ।

ହାଡ଼ିଆଗିର—ଗ୍ରା. ବି. ଆଭିଚାରିକ ପ୍ରୟୋଗ ଦ୍ୱାରା ମନୁଷ୍ୟ ଦେହରେ ଆବିଷ୍ଟ କରାଯିବା ଭୂତର ନାମ, ବେତାଳବିଶେଷ ।

ହାଡ଼ିପରେପଶା—ଗ୍ରା. ପୁଂ. ବିଂ. ଯେ ପେଟବିକଳରେ ବା ଅନ୍ୟ ଲୋଭରେ ନିଜ ଜାତି ହରାଇ ହାଡ଼ିଜାତିରେ ବା ଇତରଜାତିରେ ପ୍ରବେଶକରେ; (ସ୍ତ୍ରୀ) ପଶୀ—ଶାଳ), ଯେ ନିଜ ଜାତି ହରାଇ ନୀଚ ଜାତିରେ ପ୍ରବେଶ କରେ ।

ହାଡ଼ିପରେପଶିବା—ଗ୍ରା. କ୍ରି. ଖାଇବା ବା ଅନ୍ୟ ଲୋଭରେ ନିଜ ଜାତି ହରାଇ ହାଡ଼ିଘରେ ଖାଇବା ବା ହାଡ଼ି-ଜାତିକରିବା ନୀଚକାର୍ଯ୍ୟକୁ କରିବା ବା ନିଜଅପେକ୍ଷା ନୀଚଜାତିରେ ପଶିବା, (ଲ. ଅର୍ଥ) ଶାଳରେ ବ୍ୟବହୃତ ।

ହାଡ଼ିପରେପଶିପେଟପୂରିଲା ନାହିଁ(ନ୍ୟାୟ)-ପେଟ ବିକଳରେ ବା ଖାଇବା ଲୋଭରେ ପଡ଼ି ହାଡ଼ିଘରେ ବା ଆପଣାଅପେକ୍ଷା ନୀଚଜାତିରେ ପଶିବା ଲୋକର ଏପରି କାର୍ଯ୍ୟ କଲେ ମଧ୍ୟ ପେଟ ନ ପୂରିଲେ ବା ସାଧ ନ ମେଣ୍ଟିଲେ ବା ଧନାଦି ଲୋଭରେ ନୀଚ କାର୍ଯ୍ୟ କରି ସୁଦ୍ଧା ଉକ୍ତ ଲୋଭ ବା ତୃଷ୍ଣା ନ ମେଣ୍ଟିଲେ ଏହି କଥା କୁହାଯାଇଥାଏ ।

ହାଡ଼ିପ(ପା)—ଗ୍ରା. ବି. (ସଂ-ହଡ୍ଡିପ)

ଗୋମାଂସଖାଦକ ନୀଚ ଅସ୍ପୃଶ୍ୟ ଚଣ୍ଡାଳ ଜାତି, ହାଡ଼ି ଦେଖ, ହାଡ଼ି ବା ନୀଚଜାତିର ବୌଦ୍ଧ ଯୋଗସାଧନବିଶେଷ, ବୌଦ୍ଧ ତାନ୍ତ୍ରିକ ସିଦ୍ଧ ପୁରୁଷବିଶେଷ ।

ହାଡ଼ିପାଣ—ଗ୍ରା. ଅବ୍ୟ. ହାଡ଼ି ଓ ପାଣ ଆଦି ନୀଚ ଅସ୍ପୃଶ୍ୟ ଜାତି, ହାଡ଼ିବାଉରୀ ମଧ୍ୟ କୁହାଯାଏ ।

ହାଡ଼ିବାଇଦ—ଗ୍ରା. ବି. ବିବାହାଦି ଉତ୍ସବରେ ହାଡ଼ିଜାତି ବଜାଇବା ବାଜା,ଢୋଲ, ନାଗରା, ମହୁରୀ ଆଦି ।

ହାଡ଼ିରେ ଯିବା—ଗ୍ରା. କ୍ରି. ହାଡ଼ିଘରେ ପଶିବା ଦେଖ ।

ହାଡ଼ୁଆ—ଗ୍ରା, ପୁଂ. ବି. ଅସ୍ଥିମୟ, ହାଡ଼ପଣ ଟାଣ, ଅସ୍ଥିସାର (ମାଂସ), କଙ୍କାଳମାତ୍ରାବଶିଷ୍ଟ, କ୍ଷୀଣକାୟ(ବ୍ୟକ୍ତି) ।

ହାଡ଼େହାଡ଼େ—ଗ୍ରା. କ୍ରି. ବିଂ. ହୃଦୟର ଅନ୍ତରତମ ପ୍ରଦେଶରେ,ମର୍ମସ୍ଥାନରେ, କାହାପ୍ରତି ମନେମନେ ବିରକ୍ତହେବା ପ୍ରକାରେ, ଦେହର ଅତି ଗୁପ୍ତସ୍ଥାନମାନଙ୍କରେ ।

ହାଡ଼େହାଡ଼େଚଢ଼ିବା(ଜଳିବା)—ଗ୍ରା. କ୍ରି. ଅତ୍ୟନ୍ତ ବିରକ୍ତହେବା ।

ହାଣ—ଗ୍ରା. ବି. ( ସଂ-ହନନ ) ହଣା, ଅସ୍ତ୍ରଶସ୍ତ୍ରଦ୍ୱାରା କଟା ହେବା, ଅସ୍ତ୍ରଶସ୍ତ୍ର ଦ୍ୱାରା କଠୋର ପ୍ରହାର, (ପ୍ରା-ବଳ୍କଙ୍ଗିରପାଟଣା) ବି. ପାରିଧି ।

ହାଣକାଟ—ଗ୍ରା. ବି. ହଣାକଟା, ଯୁଦ୍ଧରେ ଶସ୍ତ୍ରାଦିଦ୍ୱାରା ହତ୍ୟା, ବନ୍ୟ ପଶୁଆଦିଙ୍କ ହନନ ।

ହାଣକାଟମୁଣ୍ଡ—ପ୍ରା. (ଯାଜ.) ବି.ଯେଉଁ ଲୋକ ନିର୍ଭୀକଭାବରେ ଫଳପ୍ରତି ଆସ୍ଥା ନ ରଖି କାର୍ଯ୍ୟକରେ ।

ହାଣକୁନେଲପରି( ଭଳି )ହେବା—ଗ୍ରା. କୌଣସି କାର୍ଯ୍ୟ କରିବାକୁ ବା କୌଣସି ସ୍ଥାନକୁ ଯିବାକୁ ଅମଙ୍ଗ ବା ଅତ୍ୟନ୍ତ ଅନିଚ୍ଛା ପ୍ରକାଶକରିବା ବା ପଶ୍ଚାତ୍ପଦ ହେବା (ଯେପରି କୌଣସି ବ୍ୟକ୍ତିକୁ ହାଣିବାକୁ ନିଆ ଯାଉଅଛି-ବୋଲି ଜାଣିପାରିଲେ ଉକ୍ତ ବ୍ୟକ୍ତି ଯିବାକୁ ଅନିଚ୍ଛା ଦେଖାଏ ସେହିପରି) ।

ହାଣଖାଇବା—ଗ୍ରା, କ୍ରି. ଅନ୍ୟବ୍ୟକ୍ତିଦ୍ୱାରା ହଣାହୋଇ ହତହେବା । [ହନନ ।

ହାଣନ—ଗ୍ରା. ବି. (ସଂ-ହନନ) ପ୍ରହାର,

ହାଣମାର—ଗ୍ରା. ବି, ହତ୍ୟା, ହଣା ଓ ମାରଣ, ପଞ୍ଚଆଙ୍ଗିକୁ ହାଣି ସମତୁଲ କରିବା, ଯୁଦ୍ଧରେ ହଣାମରା ।

ହାଣମୁଣ୍ଡ(ହିଁ)—ଗ୍ରା. ବି ଯୁଦ୍ଧର ସମ୍ମୁଖଭୂମି, ପାଣିଛଡ଼ା ମୁଣ୍ଡ, ଯେଉଁ ସ୍ଥାନକୁ ଗଲେ ଜୀବନରେ ଫେରିବା ସମ୍ଭବ ନୁହେଁ, ସମ୍ମୁଖ ଯୁଦ୍ଧକ୍ଷେତ୍ର,( ଲ.ଅର୍ଥ ) ଅତି ବିପଦସଙ୍କୁଳ ସ୍ଥାନ, ଯେଉଁଠାକୁ ଗଲେ ମୃତ୍ୟୁ ସୁନିଶ୍ଚିତ, ଦାୟିତ୍ୱପୂର୍ଣ୍ଣ ସ୍ଥାନ ।

ହାଣମୁଣ୍ଡିଆ—ଗ୍ରା. ପୁଂ. ବିଂ. ଯେ ହଣାଖାଇ ମରିବାର କାର୍ଯ୍ୟକରେ ।

ହାଣମୁହଁକୁଦେବା--ଗ୍ରା.କ୍ରି, ଅତି ବିପଦସଙ୍କୁଳ ସ୍ଥାନକୁ ପ୍ରେରଣ କରିବା, (ଯୁଦ୍ଧକୁ) ପଠାଇବା ।

ହାଣିଦେବା( ମକାଇବା )—ଗ୍ରା. କ୍ରି. ସମ୍ପୂର୍ଣ୍ଣରୂପେ ହାଣିବା, ଶୀଘ୍ର ହାଣିବା, ହାଣିସାରିବା, ( ଲ.ଅର୍ଥ ) ହୃଦୟକୁ ବ୍ୟାକୁଳ କରିବା, ଶଗଡ଼ ପଞ୍ଚର ଦୁଇ ଦଣ୍ଡାର ମୁଣ୍ଡି ଧରି ବୁଲାଇଦେବା ।

ହାଣିବା—ଗ୍ରା. କ୍ରି, ଦାଢ଼ୁଆ ଶସ୍ତ୍ରଦ୍ୱାରା କାଟିବା,(ଲ.ଅର୍ଥ)ନିଷ୍ଠୁର କଥା କହିବା. ମୁହେଁମୁହେଁ ଅପ୍ରିୟ ସତ୍ୟ କହିବା, ସବାର ବାଉଁଶରେ ବଳ ପ୍ରୟୋଗକରି ସବାରିକୁ ଆଗକୁ ପେଲିବା, ଅତି ମାତ୍ରାରେ ଭୋଜନ କରିବା, ( ସାପ ) ଦାନ୍ତଦ୍ୱାରା ଦୃଢ଼ରୂପେ କାମୁଡ଼ିବା ।

ହାଣୁଆ—ଗ୍ରା. ପୁଂ. ବିଂ. ହତ୍ୟାକାରୀ (ବ୍ୟକ୍ତି), ଅତିମର୍ମଭେଦୀ (କଥା), ଅତି ନିଷ୍ଠୁର ( ବ୍ୟକ୍ତି ), ମର୍ମଭେଦୀ ବାକ୍ୟ ପ୍ରୟୋଗକାରୀ (ବ୍ୟକ୍ତି), ଦୁଷ୍ଟ ।

ହାଣୁହାଣୁ—ଗ୍ରା, କ୍ରି: ହାଣିବା କାର୍ଯ୍ୟ କରୁକରୁ (ଇତିମଧ୍ୟରେ) ।

ହାଣ୍ଟଣ—ଗ୍ରା. ବି. (ସଂ-ହଣ୍ଡନ) ଅତ୍ୟଧିକ ଭ୍ରମଣ, ପଦବ୍ରଜରେ ଭ୍ରମଣ, ଏଣେତେଣେ ବୁଲୁ । [ ଦେଖ ।

ହାଣ୍ଟୁଣ୍ଟୁରିବା—ଗ୍ରା. କ୍ରି. ହଣ୍ଟାଳିବା

ହାଣ୍ଡୁ—ପ୍ରା. (ଜିହ୍ନ) ବି. ଆଣ୍ଠୁ ।

ହାଣ୍ଡୁ—ପ୍ରା. (ସମ୍ବ) ବି. ଆଣ୍ଠୁ ।

ହାଣ୍ଡା—ପ୍ରା. (ମେଦ) ବି. ହାଣ୍ଡି ।

ହାଣ୍ଡି—ଗ୍ରା. ବି. ( ସଂ-ହାଣ୍ଡିକା,ହାଣ୍ଡି ) ମାଟିର ପାକପାତ୍ର, ହାଣ୍ଡି ଆକାରର ଧାତୁପାତ୍ର, ହଣ୍ଡା, ଅଶୌଚାନ୍ତେ ପାକାର୍ଥ ନୂତନ ହାଣ୍ଡି ଓ ଉଦ୍ଧିରେ ପାକ କରିଯିବା କର୍ମ,(ଲ.ଅର୍ଥ) ପେଟ, ଗାଈର ଦୁମ୍ବ ବା ମାଂସ,ପାକ,ରୋଷାଇ ।

ହାଣ୍ଡିଅଲଗା(ଭିନ୍ନ)--ଗ୍ରା. ବି. ଏକାନ୍ନବ୍ୟକ୍ତିଙ୍କ ପୃଥକାନ୍ନହେବା, ସ୍ତ୍ରୀମାନଙ୍କ ଋତୁ ପ୍ରକାଶ, (ବିଂ) ପୃଥକାନ୍ନ ହୋଇଥିବା, ଋତୁମତୀ ହୋଇଥିବା (ସ୍ତ୍ରୀ) ।

ହାଣ୍ଡିଆ—ଗ୍ରା, ବି. ମଦ୍ୟବିଶେଷ, ମସ୍ତିଷ୍କ (ବିଂ) ହାଣ୍ଡିସମ୍ବନ୍ଧୀୟ, ହାଣ୍ଡିସଦୃଶ ଆକୃତିବିଶିଷ୍ଟ(ଯଥା—କଳାହାଣ୍ଡିଆତାଳ) ।

ହାଣ୍ଡିଆଦଉଡ଼ି—ପ୍ରା. (ଆଲ) ବି. ଶସ୍ୟାନୁରୂପ ଉଳଆର ପରିଧିର ମାପ ଅନୁସାରେ ବ୍ୟବହୃତ ଦଉଡ଼ି, ହେଣ୍ଡେରା ।

ହାଣ୍ଡିଉଠାଗ୍ରେର—ଗ୍ରା. ବି. ଛୁଟିକାଗ୍ରେର ଦେଖ ।

ହାଣ୍ଡିଉଠିବା--ଗ୍ରା. ବି. ନଡ଼ିଆ ଓ ତାଳ ଆଦି ଗଛର କଣ୍ଠ ବା ବେକ ଭୁଇଁରୁ ଉଠିଯିବା ଅବସ୍ଥା ।

ହାଣ୍ଡିଏ—ଗ୍ରା. ବି. ଏକହାଣ୍ଡି ପରିମିତ, ବହୁପରିମିତ, (କ୍ରି) ଏକହାଣ୍ଡିପରିମାଣ ।

ହାଣ୍ଡିକ—ଗ୍ରା. ବିଂ. ଏକହାଣ୍ଡିପରିମିତ ।

ହାଣ୍ଡିକରିବା—ଗ୍ରା. କ୍ରି. ଅଶୌଚ ପରେ ନୂଆ ପାକ କରିବା,ନୂଆ ହାଣ୍ଡି କରିବା ।

ହାଣ୍ଡିକଳା—ଗ୍ରା. ବି. ପାକହାଣ୍ଡିର ପଛପାଖେ ଲାଗିଥିବା କ୍ଷୁଦ୍ର କ୍ଷୁଦ୍ର ଅଙ୍ଗାରକଣାମାନଙ୍କ ସ୍ତର ।

ହାଣ୍ଡିକଳାନପଡ଼ୁଣ୍ଡ—ଗ୍ରା, କ୍ରି. ବିଂ. (ଲ.ଅର୍ଥ)ଅତି ଚଞ୍ଚଳ, ଅଶୌଚାନ୍ତେ ନୂଆ ହାଣ୍ଡି କରିବାରେ ଲାଗେ ଲାଗେ ପୁଣି ଅଶୌଚ ପଡ଼ିବାରେ ବ୍ୟବହୃତ

ହାଣ୍ଡିକାହାଣ୍ଡି—ଗ୍ରା. କ୍ରି, ବି. ହାଣ୍ଡି = ହାଣ୍ଡି, ବହୁହାଣ୍ଡି ପରିମିତ, ବିହୁ-ପରିମାଣରେ, ଏକହାଣ୍ଡି ପରେ ଅନ୍ୟ ହାଣ୍ଡି ପରିମିତ ଖାଦ୍ୟାଦି ଏକାଦିକ୍ରମେ (ବି) ବହୁହାଣ୍ଡି ପରିମିତ, ପ୍ରଚୁର ।

ହାଣ୍ଡିକୁଣ୍ଡେଇ—ଗ୍ରା. ବି. ଗୃହର ସବୁ-ପ୍ରକାର ପାକପାତ୍ର, ବ୍ୟବହାରୀୟ ପାତ୍ର-ସକଳ, ( ଯଥା— ହାଣ୍ଡି ମାଠିଆ ଆଦି ) ।

ହାଣ୍ଡିଖାଇ—ଗ୍ରା. ସ୍ତ୍ରୀ. ବି.(ଗାଳି)ଯେଉଁ ସ୍ତ୍ରୀ ଲାଳସାଯୁକ୍ତ ହୋଇ ସମ୍ଭାଳି ନ ପାରି ପାକହାଣ୍ଡିରୁ ଅନ୍ନାଦି ଅନ୍ୟ ପାତ୍ରରେ ନ ବାଢ଼ି ସେହି ପାକହାଣ୍ଡିରେ ପାକ-ଦ୍ରବ୍ୟ ଆଉଁ ଆଉଁ ଲୁଚେଇ ସେଥିରୁ ଖାଇଯାଏ, ଓଲେଇ ବା ଉଲୁଇ,(ପୁଂ) ହାଣ୍ଡିଖିଆ ।

ହାଣ୍ଡିଖିଆ—ଗ୍ରା. ପୁଂ. ବି. ଯେଉଁ ପୁରୁଷ ଏପରି ପେଟୁ ଯେ ସେ ହାଣ୍ଡିରୁ ଖାଦ୍ୟ ଖାଇଯାଏ, (ବ)ହାଣ୍ଡିରେ ଥିବା ଅନ୍ନାଦିକୁ ଲୁଚେଇ ଖାଇବା ।

ହାଣ୍ଡିଗରମ—ଗ୍ରା.ବି. ମସ୍ତିଷ୍କ ଗରମ, ମଥା ଶରଦ ଓ ପେଟ ଗରମ ହେବା ଅବସ୍ଥା ।

ହାଣ୍ଡିଗିଲା—ଗ୍ରା.ପୁଂ. ବି. ଯେ ହାଣ୍ଡିଏ ଖାଦ୍ୟ ଖାଇପାରେ ।

ହାଣ୍ଡିଚଞ୍ଚା—ଗ୍ରା. ବି. ବୃକ୍ଷଚୁଷ ବର୍ଗର ପକ୍ଷିବିଶେଷ ।

ହାଣ୍ଡିଛାଡ଼—ଗ୍ରା. ବି. ସୂର୍ଯ୍ୟଗ୍ରହଣ ଓ ଚନ୍ଦ୍ରଗ୍ରହଣ ସମୟରେ ଶାସ୍ତ୍ରାନୁସାରେ ପାକକର୍ମର ରହିତ୍ୟ ଓ ଅନ୍ନାଦିଭୋଜନ ନିଷେଧ ।

ହାଣ୍ଡିଛୁଆଁ—ଗ୍ରା.ବି.ନବବଧୂ ଚଉଠୀଦିନ ପ୍ରଥମେ ପାକହାଣ୍ଡିକୁ ଛୁଇଁ ପାକ-କରିବା କର୍ମ ଓ ସେହି ପକ୍ୱାନ୍ନକୁ ବନ୍ଧୁ କୁଟୁମ୍ବମାନେ ଭୋଜନ କରିବା ରୂପ କର୍ମ, ଋତୁମତୀ ସ୍ତ୍ରୀ ଶୁଦ୍ଧସ୍ନାନ ପରେ ପାକ-କରିବା ରୂପ କର୍ମ ।

ହାଣ୍ଡି ନ ଛୁଇଁବା—ଗ୍ରା.କ୍ରି. (ସ୍ତ୍ରୀ)ଋତୁମତୀ ହେବା, ହାଣ୍ଡିବାହାର ହେବା ।

ହାଣ୍ଡିଗିଟା—ଗ୍ରା. ପୁଂ. ବି. ଅତି ଲୋଭୀ (ବ୍ୟକ୍ତି), ଅନ୍ତ୍ୟେଷ୍ଟି କ୍ରିୟାକାରୀ (ପୁରୋହିତ ବ୍ରାହ୍ମଣ) ।

ହାଣ୍ଡିଫୁଟା—ଗ୍ରା. ବି. ଢିଅଁଣ ବଗାରିବା ମସଲା,କଣ୍ଟକା ଦେଖ,ଏକପ୍ରକାର ବୃକ୍ଷ ।

ହାଣ୍ଡିବାହାର—ଗ୍ରା.ବି. ଋତୁମତୀ (ସ୍ତ୍ରୀ) ।

ହାଣ୍ଡିଭଙ୍ଗା—ଗ୍ରା.ବି. ଯଷ୍ଟି ଆଘାତ ପୂର୍ବକ ହାଣ୍ଡିକୁ ଖଣ୍ଡ ଖଣ୍ଡ କରିବା କର୍ମ,ଏକ-ପ୍ରକାର ମାଛ ।

ହାଣ୍ଡିଭିନେ(କରିବା)—ଗ୍ରା. ବି. ଅଲଗା ରୂଷେଇ (କରିବା), ପୃଥଗନ୍ନ ହେବା ।

ହାଣ୍ଡିମଙ୍ଗୁଳା—ଗ୍ରା.ବି. ବିବାହାଦିର ପୂର୍ବ-ଦିନ ବା ମଙ୍ଗଳପାକ ଦିନ ମଙ୍ଗଳପାକ ନିମନ୍ତେ ଖାଦ୍ୟ ରାନ୍ଧିବାପାଇଁ ପାକ-ଶାଳାରେ ନୂଆହାଣ୍ଡିରେ ସିନ୍ଦୂରଆଦି ଲଗାଇ ସ୍ତ୍ରୀମାନେ ପାକ ଆରମ୍ଭକରିବା ରୂପ ମଙ୍ଗଳକର୍ମ, ସ୍ତ୍ରୀଆଚାରବିଶେଷ ।

ହାଣ୍ଡିମୁହଁ—ଗ୍ରା.ବି. ହାଣ୍ଡିର ଖୋଲା ଅଂଶ, ହାଣ୍ଡି ପରି ଅସୁନ୍ଦର ମୁହଁ ।

ହାଣ୍ଡିରେଖାଇବା—ଗ୍ରା.କ୍ରି. ପାକହାଣ୍ଡିରୁ ଅନ୍ନାଦି ଅନ୍ୟ ପାତ୍ରରେ ନ ବାଢ଼ି ସେହି ହାଣ୍ଡିରୁ ଗୋପନରେ ଖାଇବା ।

(ଅମୁକର)ହାଣ୍ଡିରେଗୁଡ଼ପକାଇବା-ଗ୍ରା. କ୍ରି.(ଲ.ଅର୍ଥ)କୌଣସି ବାଳିକା କୌଣସି ପୁରୁଷ ସହ ବିବାହିତା ହେବା ପାଇଁ ପ୍ରଜାପତିଙ୍କ ଦ୍ୱାରା ପୂର୍ବରୁ ସ୍ଥିରୀକୃତ ହୋଇଥିବା ।

ହାଣ୍ଡିଶାଳ—ଗ୍ରା. ବି. ରୋଷାଇଘର, ପାକଶାଳା, ରନ୍ଧାଘର, ଖନ୍ଦାଘର ।

ହାଣ୍ଡିସରେଇ—ପ୍ରା.(ସମ୍ବ)ବି.ହାଣ୍ଡିକୁଣ୍ଡେଇ, ନାନାପ୍ରକାର ମାଟିପାତ୍ର ।

ହାଣ୍ଡିହସିବା—ଗ୍ରା. କ୍ରି. ଜଳନ୍ତା ନିଆଁ ଉପରେ ବସିଥିବା ହାଣ୍ଡିର ଗଣ୍ଡିରେ ବା ପଛପାଖେ ଲାଗିଥିବା କଳାରେ ମନ୍ଦା ମନ୍ଦା ହୋଇ ନିଆଁ ଲାଗିବା (ଯାହାଘରେ ହାଣ୍ଡି ହସିବା ଦେଖାଯାଏ ତା'ଘରେ ଶୀଘ୍ର ବିବାହାଦି ଶୁଭାନୁଷ୍ଠାନ ଘଟିବାର ଲୋକ ବିଶ୍ୱାସ) ।

ହାଣ୍ଡିହାଣ୍ଡି-ଗ୍ରା.ବି.ହାଣ୍ଡିକାହାଣ୍ଡି ଦେଖ ।

ହାଣ୍ଠୋଲା—ଗ୍ରା.ବି.ଦେବତାମାନଙ୍କ ପାଇଁ କୁମ୍ଭାରଙ୍କ ତିଆରି ପୋଡ଼ା ମାଟିର ଗ୍ରୋଷ୍ଟ ମନ୍ଦିର ।

ହାତ୍—ଗ୍ରା. ଅବ୍ୟ. (ବାରଣାର୍ଥକ) ଧତ୍, ଧାତ୍,ଅସନ୍ତୋଷସୂଚକ, (ପ୍ରା. ସମ୍ବ—ଅବଜ୍ଞାର୍ଥକ) ଧୁତ୍, ଦୂର୍ ।

ହାତ୍‌ଉପର୍—ଗ୍ରା. ବି. (ରାଧାଶ୍ୟାମ ଡ୍ରିଲ୍ ବଚନ) ହାତ ଉପରକୁ ଉଠାଅ ।

ହାତ୍‌କମର୍—ଗ୍ରା. ବି. (ରାଧାଶ୍ୟାମଙ୍କ ପ୍ରବର୍ତ୍ତିତ ଡ୍ରିଲ୍ ଆଦେଶ)କମରଉପରେ ହାତ ରଖ ।

ହାତ୍‌ଛନ୍ଦ୍—ଗ୍ରା.ବି.(ରାଧାଶ୍ୟାମଙ୍କ ପ୍ରବର୍ତ୍ତିତ ଡ୍ରିଲ୍ ଆଦେଶ) ଏକହାତକୁ ଅନ୍ୟହାତ ଦ୍ୱାରା ଛନ୍ଦିଦିଅ ।

ହାତ୍‌ଗ୍ରାଉଣ୍ଡ୍—ଗ୍ରା.ବି.(ରାଧାଶ୍ୟାମଙ୍କ ପ୍ରବର୍ତ୍ତିତ ଡ୍ରିଲ୍ ଆଦେଶ)ହାତକୁ ତଳକୁ ଝୁଲାଅ ।

ହାତ୍‌ଡ଼ି—ପ୍ରା. (ସମ୍ବ) ବି. ହାତୁଡ଼ି ।

ହାତ୍‌ତେରିକା—ଗ୍ରା. ଅବ୍ୟ. (ଅସନ୍ତୋଷ ବା ଘୃଣାର୍ଥକ) ଧତ୍‌ତେରି, ଛି ।

ହାତ୍‌ଲ—ପ୍ରା. ( ସମ୍ବଲ ) ବି. ଖଇରିଦିନେ ନଦୀରେ ଓହ୍ଲାଇବାକୁ ନଦୀଗର୍ଭ ଖୋଳିବାପାଇଁ ବ୍ୟବହୃତ କାଠର କୋଡ଼ି ବା ହତାଳି ।

ହାତ୍‌ଭୂଜା—ପ୍ରା. ( ସମ୍ବଲ ) ବି. ଓ ବି. ଛୁଟିକା ଗେରୁ ।

ହାତ୍‌ହାତ୍—ଗ୍ରା. ଅବ୍ୟ. କୁଆ କୁକୁର ବିରାଡ଼ିଆଦିଙ୍କୁ ହୁଙ୍କୁଡ଼ାଇବାର ବାରଣା-ର୍ଥକ ଧ୍ୱନି ।

ହାତ—ଗ୍ରା. ବି. (ସଂ-ହସ୍ତ) କର, ହସ୍ତ, ଭୁଜ, ୨୪ ଆଙ୍ଗୁଳ ଦୀର୍ଘ ମାପବିଶେଷ, ଶିଳ୍ପୀର କୃତହସ୍ତ, କାରୁ, ଅକ୍ତିଆର, ଶକ୍ତି, ନିପୁଣତା, ଖେଳର ଥର,ବାଜି, ଅଧିକାର, କର୍ତ୍ତୃତ୍ୱ, ଅଭ୍ୟାସ, ସମ୍ପର୍କ, ପ୍ରଭାବ, ( ବି ) ହାତରେ ତିଆରିବା ଶିଳ୍ପୀର ହାତତିଆରି (କାମ),ହାତରେ ଥିବା, ହାତ ସମ୍ବନ୍ଧୀୟ ।

ହାତଅକ୍ଷର—ଗ୍ରା.ବି. କୌଣସି ବ୍ୟକ୍ତିର ହସ୍ତାକ୍ଷର, ହାତଲେଖା ।

ହାତଉଧାର(ରି)—ଗ୍ରା.ବି.ଅଳ୍ପଦିନପାଇଁ ଅନ୍ୟଠାରୁ ମୌଖିକ କଥାବାର୍ତ୍ତାରେ

ନେବା ଋଣ, ( ବିଂ ) ଅଳ୍ପଦିନପାଇଁ ମୌଖିକ ଚୁକ୍ତିରେ ଅନ୍ୟଠାରୁ ଋଣ ନିଆଯାଇଥିବା (ଧନ) ।

ହାତକ—ଗ୍ରା.ବି.ଏକହାତ ମାପ,ଗୋଟିଏ ହସ୍ତ ମାପ, ଏକହାତ ପରିମାଣ, (ବିଂ) ଏକହାତ ପରିମିତ ।

ହାତକଟା—ଗ୍ରା. ପୁଂ. ବିଂ.ଯାହାର ହାତ କଟିଯାଇଅଛି,ଆସ୍ତିନ୍ ନ ଥିବା(କୁରୁତା), ନିଜ ହାତରେ ଅରଟ ଦ୍ୱାରା କାଟିଥିବା (ସୂତା) ।

ହାତକଡ଼ି—ଗ୍ରା. ବି. ହସ୍ତବନ୍ଧନଶୃଙ୍ଖଳ, ଅପରାଧୀର ଦୁଇହାତକୁ ଛନ୍ଦିବାପାଇଁ ବ୍ୟବହୃତ ଲୁହାର ଯନ୍ତ୍ରଶିକୁଳି ।

ହାତକଣ୍ଡୁ—ଗ୍ରା. ବି. ହାତଗଲୁ ଦେଖ ।

ହାତ(ର)କଥା—ଗ୍ରା.ବି.କୌଣସି ବ୍ୟକ୍ତିର ଆୟତ୍ତ କାର୍ଯ୍ୟ ।

ହାତକ(କୁ)ଦହାତକରିବା—ଗ୍ରା. କ୍ରି. କୌଣସି ପଦାର୍ଥକୁ ହସ୍ତାନ୍ତର କରିବା, କୌଣସି ବ୍ୟକ୍ତିକୁ ବିବାହ ବନ୍ଧନରେ ପକାଇବା ।

ହାତକନା—ପ୍ରା. (ଗଞ୍ଜାମ) ବି, ରୁମାଲ ।

ହାତକପାଳ—ଗ୍ରା.ବି. ଶିବ,ମହାଦେବ ।

ହାତକରତ—ଗ୍ରା. ବି. ଏକହାତରେ ଚଳାଇବା ଶ୍ରେଷ୍ଠ କରତ ।

ହାତକରିନେବା(କରିବା)-ଗ୍ରା.କ୍ରି.ଆୟତ୍ତକୁ ଆଣିବା, କରଗତ କରିବା, ହସ୍ତଗତ କରିବା ।

ହାତକଳ—ଗ୍ରା.ବି. ଯେଉଁ କଳକୁ ମନୁଷ୍ୟ ହାତରେ ଚଳାଇପାରେ ।

ହାତକାଟିଲେଖିବା—ଗ୍ରା. କ୍ରି. ନିଜେ ସ୍ୱାକ୍ଷର କରିବା ।

ହାତକାମ—ଗ୍ରା. ବି. କାରିଗରର ହାତ-ତିଆରି ଶିଳ୍ପକର୍ମ । [ମିଳିବା ।

ହାତକୁ ଆସିବା--ଗ୍ରା.କ୍ରି.ହସ୍ତଗତ ହେବା,

ହାତକୁଣ୍ଡାଇହେବା—ଗ୍ରା. ବି. ସ୍ୱହସ୍ତରେ କୌଣସି କାର୍ଯ୍ୟପାଇଁ ଅତ୍ୟନ୍ତ ଲାଳାୟିତ ହେବା,(ଲୌକିକ ବିଶ୍ୱାସ) ଧନପ୍ରାପ୍ତିର ଲକ୍ଷଣ ଦେଖାଯିବା ।

ହାତକୁ ହାତ—ଗ୍ରା. କ୍ରି, ବିଂ. ନଗଦ୍, ତତ୍କ୍ଷଣାତ୍, ଦସ୍ତବଦସ୍ତ ।

ହାତଖଣ୍ଡିଆ(ଖଣ୍ଡୀ)—ଗ୍ରା.ପୁଂ.ବିଂ.ଯାହାର ହାତର କେତେକ ଅଂଶ ନ ଥାଏ ।

ହାତଗଢ଼ା—ଗ୍ରା. ବିଂ. ହସ୍ତନିର୍ମିତ,ହାତତିଆରି ।

ହାତଗଣ୍ଠି—ଗ୍ରା.ବି. (ସଂ-ହସ୍ତଗ୍ରନ୍ଥି)କଟିଟି, ମଣିବନ୍ଧ, ବିବାହରେ ବରକନ୍ୟା ଉଭୟଙ୍କର ଡାହାଣହାତ ଦୁଇକୁ ଏକତ୍ର କୁଶଗଣ୍ଠି ପକାଇ ବାନ୍ଧିଦିବା ରୂପ କର୍ମ ।

ହାତଗତ—ଗ୍ରା.ବିଂ. ( ସଂ—ହସ୍ତଗତ ) ହସ୍ତଗତ,ଆୟତ୍ତ, ଅଧିକାରକୁ ଆଗତ ।

ହାତଗଲୁ—ଗ୍ରା.ବି. ହାତକଣ୍ଡୁ,କୌଣସି କାମ କରିବାକୁ ଅତ୍ୟଧିକ ଆଗ୍ରହ ବା ଉତ୍କଣ୍ଠା, ହାତରେ କରିବା ଅଯଥା କାର୍ଯ୍ୟ ।

ହାତଗୁଣ—ଗ୍ରା. ବି. ବ୍ୟକ୍ତିବିଶେଷଙ୍କ ଅମୃତହସ୍ତତା ବା ବିଷହସ୍ତତାପଣ ।

ହାତଗୋଡ଼—ଗ୍ରା, ବି. ହସ୍ତ ଓ ପଦ, ଦେହର ଅଙ୍ଗପ୍ରତ୍ୟଙ୍ଗମାନ,କଥାର ଅନ୍ତ ବା ଠିକଣା, ମୂଳ ଓ ଶେଷ ।

ହାତଗୋଡ଼କଥାକହିବା—ଗ୍ରା.ବି.ଅତ୍ୟନ୍ତ ଅସ୍ଥିରତା ପ୍ରକାଶ, ସ୍ଥିରଭାବରେ ନ ବସିବା ।

ହାତଗୋଡ଼ଚଳିବା—ଗ୍ରା.ବି.କାର୍ଯ୍ୟକରିବା ପାଇଁ ଶାରୀରିକ ସାମର୍ଥ୍ୟ ।

ହାତଗୋଡ଼ଧରା—ଗ୍ରା. ବି. ଖୋସାମଦ୍, ବିନୀତ ପ୍ରାର୍ଥନା ।

ହାତଗୋଡ଼ବନ୍ଧା—ଗ୍ରା. ବିଂ. ପରାଧୀନ, (ବି) ନିଜର ସ୍ୱାଧୀନତାରାହିତ୍ୟ ।

ହାତଘସରା(ଘଷିଆ)—ଗ୍ରା. ବିଂ. ସର୍ବଦା ବ୍ୟବହୃତ ବସ୍ତ୍ର, ସର୍ବଦା ମନୁଷ୍ୟଙ୍କ ପାଖେ ଚଳପ୍ରଚଳ ହେଉଥିବାରୁ ମନୁଷ୍ୟଙ୍କୁ ନ ଡରୁଥିବା ଜନ୍ତୁ ( ବିରାଡ଼ି, କୁକୁର ଆଦି ) ।

ହାତଚକି—ଗ୍ରା, ବି. ଲେଡ଼ି ।

ହାତଚଟୁଆ—ପ୍ରା. (ଉ. ବାଲେଶ୍ୱର) ବି. ହାତଚକି ଦେଖ ।

ହାତଚଳା—ଗ୍ରା. ବି. ଭୋଜନାରମ୍ଭ, ହସ୍ତଚାଳନ ।

ହାତଚଳାଇବା(ଚଳିବା)-ଗ୍ରା.କ୍ରି.ବ୍ରାହ୍ମଣମାନଙ୍କର ପଂକ୍ତିଭୋଜନ ଉପଲକ୍ଷ୍ୟରେ ସମସ୍ତେ ଏକାବେଳେ ଚଳୁ ଘେନିବା, ଭୋଜନାରମ୍ଭ କରିବା, କ୍ଷିପ୍ରତା ସହିତ କାର୍ଯ୍ୟ କରିବା ।

ହାତଚଳାଇବା—ଗ୍ରା. କ୍ରି. ପ୍ରହାରକରିବା, ମାରିବା ।

ହାତଚାଟିଖାଇବା—ଗ୍ରା.କ୍ରି.ପୂର୍ଣ୍ଣ ସନ୍ତୋଷ ପୂର୍ବକ ଭୋଜନ କରିବା,ସୁସ୍ୱାଦୁ ଯୋଗୁଁ ଖାଇବା ପାତ୍ରରେ ଅବଶିଷ୍ଟ ● ରହିଁ ସବୁ ଚାଟିଯିବା ।

ହାତଛଡ଼ା—ଗ୍ରା.ବିଂ.ହସ୍ତଚ୍ୟୁତ,ଅଧୀନରୁ ବାହାର, ଅଧିକାରଚ୍ୟୁତ ।

ହାତଛନ୍ଦା—ଗ୍ରା. ବି. ବିବାହ ।

ହାତଟେକା—ଗ୍ରା. ବି. ଅନୁଗ୍ରହ ପୂର୍ବକ ଦେବା ସାମାନ୍ୟ ଦାନ, ପ୍ରଣାମ, (ବିଂ) ଅନୁଗ୍ରହପ୍ରଦତ୍ତ ।

ହାତଟେକିଆ—ଗ୍ରା.ବିଂ. ପରର ଅନୁଗ୍ରହ ଦ୍ୱାରା ପ୍ରଦତ୍ତ ଧନ ଉପରେ ନିର୍ଭର କରୁଥିବା (ବ୍ୟକ୍ତି), ପର ଅନୁଗ୍ରହ କରି ଦେଉଥିବା (ଧନାଢ୍ୟ) ।

ହାତଟେକିବା—ଗ୍ରା. କ୍ରି, ହାତଯୋଡ଼ି ନମସ୍କାର କରିବା,ଭେଟ ହେଲାବେଳେ ହାତ ଉଠାଇବା, ଆଶୀର୍ବାଦ କରିବାକୁ ହସ୍ତ ଉତ୍ତୋଳନ କରିବା ।

ହାତଠାର—ଗ୍ରା. ବି. ହାତଠାର ଦ୍ୱାରା ଇଙ୍ଗିତ ବା ମନର ଭାବ ପ୍ରକାଶକରିବା

ହାତତାଳି—ଗ୍ରା. ବି. କରତାଳି, ଦୁଇ କରତଳର ପରସ୍ପର ଆଘାତ ଦ୍ୱାରା ଉତ୍ପାଦିତ ଶବ୍ଦ ।

ହାତଦୁହାଁ—ଗ୍ରା. ବି. ମନ୍ଥୁହ ଗାଈକୁ ଦୁହିଁବା, (ବିଂ) ମନ୍ଥୁହ(ଗାଈ) ।

ହାତଦେଖା—ଗ୍ରା, ବି. ନାଡ଼ିପରୀକ୍ଷା, ସାମୁଦ୍ରିକ ଶାସ୍ତ୍ରାନୁସାରେ ମନୁଷ୍ୟର ଶୁଭାଶୁଭ ଜାଣିବାପାଇଁ କରତଳସ୍ଥ ରେଖାମାନଙ୍କର ପରୀକ୍ଷା ।

ହାତଦେଖାଇବା-ଗ୍ରା.କ୍ରି.ରୋଗ ନିର୍ଣ୍ଣୟାର୍ଥ ନାଡ଼ିପରୀକ୍ଷା ପାଇଁ ବୈଦ୍ୟକୁ ହାତ ଦେଖାଇବା, ସାମୁଦ୍ରିକ ଶାସ୍ତ୍ରଜ୍ଞଙ୍କୁ

ଶୁଭାଶୁଭ ଜାଣିବାପାଇଁ ନିଜର କରତଳ ଦେଖାଇବା, ମନ୍ତ୍ରଆଦିକୁ ସ୍ୱୀକୃତ କରିବା ପାଇଁ ସଙ୍କେତ ଉଦ୍ଦେଶ୍ୟରେ ହାତ ଉଠାଇବା ।

ହାତଦେଖିବା—ଗ୍ରା. କ୍ରି. ରୋଗ ନିର୍ଣ୍ଣୟାର୍ଥ ବୈଦ୍ୟ ରୋଗୀର ହାତର ନାଡ଼ୀକୁ ପରୀକ୍ଷା କରିବା, ସାମୁଦ୍ରିକ ଶାସ୍ତ୍ରଜ୍ଞ ମନୁଷ୍ୟର ଶୁଭାଶୁଭ ପରୀକ୍ଷାର୍ଥ କରତଳର ରେଖା ଦେଖିବା ।

ହାତଦେବା—ଗ୍ରା. କ୍ରି. କୌଣସି କାର୍ଯ୍ୟ ଆରମ୍ଭ କରିବା, ହାତଦ୍ୱାରା ସ୍ପର୍ଶକରିବା, ହସ୍ତଚାଳନା ଦେବା, ଶପଥ ଉଦ୍ଦେଶ୍ୟରେ ଅନ୍ୟର ମୁଣ୍ଡଆଦିକୁ ଛୁଇଁବା ।

ହାତଧରିବା—ଗ୍ରା. କ୍ରି. ମିନତି ବା କ୍ଷମା ପ୍ରାର୍ଥନା ପାଇଁ ଅନ୍ୟର ହସ୍ତକୁ ଧରିବା, ବିବାହ କରିବା ।

ହାତଧୁଆ—ଗ୍ରା. ବି. ମଇଳା ବା ଅଇଁଠା ହାତକୁ ଧୋଇବା, ଚୋରଙ୍କ ଶବକୁ ଘରୁ ଉଠାଇ ନେବାପାଇଁ ପାଣି ହାଣ୍ଡି ଆଦିକୁ ବହିବା ପାରିଶ୍ରମିକ ।

ହାତଧୋଇବସିବା—ଗ୍ରା. କ୍ରି. (ଲ.ଅର୍ଥ) କୌଣସି କାର୍ଯ୍ୟରୁ ଆପଣାର ସମସ୍ତ ସମ୍ପର୍କ ତୁଟାଇବା, କାର୍ଯ୍ୟସାର ନିଶ୍ଚିନ୍ତ ହୋଇ ବସିବା ।

ହାତନପାଇବା—ଗ୍ରା. କ୍ରି. ଅତି ଉଚ୍ଚରେ ଥିବା ଯୋଗୁଁ କୌଣସି ବସ୍ତୁକୁ ହାତ ବଢ଼ାଇଲେ ମଧ୍ୟ ହସ୍ତଗତ ନ ହେବା, (ଲ.ଅର୍ଥ) ସାହସ ନ କୁଳିବା ।

ହାତପଇଠ(ଠି)—ଗ୍ରା. ବି. ଧନାଦି ହାତଗତ ହେବା ।

ହାତପକା(କେ)ଇବା—ଗ୍ରା. କ୍ରି. ଅନ୍ୟବ୍ୟକ୍ତିଙ୍କ ଉପରେ ହସ୍ତ ରଖିବା, (ଲ.ଅର୍ଥ) କୌଣସି ବସ୍ତୁକୁ ହାତଗତ କରିବା, ହାତଦ୍ୱାରା ଆଘାତ କରିବା ।

ହାତପଙ୍ଖା—ଗ୍ରା. ବି. ବିଚଣା, ମନୁଷ୍ୟ ନିଜେ ହାତଦ୍ୱାରା ଚାଳିତ କରି ବିଞ୍ଚି ହେବା ବିଚଣା ।

ହାତପର୍(ଚେ)ଇବା—ଗ୍ରା. କ୍ରି. ମେହେନ୍ଦି (ମେରଗଡ଼ିଆ)କୁ ବା ମେହେନ୍ଦି ପତ୍ରକୁ ବାଟି ତାହା ହାତରେ ବୋଳି କରତଳ ଓ ଆଙ୍ଗୁଠି ଆଦିକୁ ରଞ୍ଜିତ କରିବା ।

ହାତପତ୍ତର—ଗ୍ରା. ବି. ଗୁଡ଼ପତ୍ର, ସ୍ତ୍ରୀପୁରୁଷଙ୍କର ବିବାହ ବନ୍ଧନ ଛେଦନ ପତ୍ର ।

ହାତପତା(ତେ)ଇବା—ଗ୍ରା. କ୍ରି. କରତଳକୁ ପ୍ରସାରିତ କରି ମାଗିବା, (ଲ.ଅର୍ଥ) ଅତି ଦୀନ ଭାବରେ ମାଗିବା, ପ୍ରାର୍ଥନା ବା ନେହୁରା ହେବା ।

ହାତପଶୁପଶୁବାହାପଶିବା—ଗ୍ରା. କ୍ରି. ବି. (ନ୍ୟାୟ) ଅଧିକାର ନ ଥିବା ସ୍ଥାନରେ ପ୍ରଥମେ ଅଳ୍ପାଧିକାରୀ ହୋଇ କ୍ରମେ ସର୍ବାଧିକାରୀ ହେବା ।

ହାତପାଖ—ଗ୍ରା. ବି. ହାତର ପାଖ ଦେଖ ।

ହାତପାପୁଲି—ଗ୍ରା. ବି. କରପୃଷ୍ଠ ।

ହାତପାହାରୁଣି—ଗ୍ରା. ବି. ଧାନକୁଟିବାର କାଠର ବଡ଼ ହେମାମନ୍ଦିସ୍ତା, ଉଦୂଖଳ (ଏଥିରେ ହାତରେ ଗୋଟିଏ ମୁଷଳ ଧରି କୁଟନ୍ତି) ।

ହାତପୋଛ—ଗ୍ରା. ବି. ଅର୍ଥଶୂନ୍ୟହସ୍ତ, ହାତରେ ଥିବା ଧନ ସମସ୍ତ ବ୍ୟୟିତ ହେବା ଅବସ୍ଥା ।

ହାତପୋଛା—ଗ୍ରା. ବି. ଭଣ୍ଡାରୀମାନଙ୍କ ତେଲବୋଳି ହାତରୁ ଚୁଡ଼ା ମଇଳା ପୋଛିବାରେ ବ୍ୟବହୃତ ଦନ୍ତୁରି ଛୁରୀ ।

ହାତପୋଡ଼ା—ଗ୍ରା. ବି. ହସ୍ତଜ୍ୱାଳା, (ଲ.ଅର୍ଥ) ମଜୁରିଦାରମାନେ ଅନ୍ୟ କାହାଘରକୁ ମୂଲିଆ କାମକରିଗଲେ କାମସାରିବା ପରେ ସେହି କାମହେଉଥିବା ଜଣଙ୍କଘରୁ କିଯ଼ଦଂଶ ମଜୁରି ବାଦଆଣିବା (ଯଥା—ଗୁଡ଼ିଆ ଅନ୍ୟର ପିଠା ଇତ୍ୟାଦି ମଜୁରି ଅଗ୍ରବେ କରିବାକୁ ଗଲେ ଶେଷରେ ଯେଉଁ ଅଳ୍ପ ପିଠା ଇତ୍ୟାଦି ରଖେ) ।

ହାତବଢ଼ାଇବା—ଗ୍ରା. କ୍ରି. ଉଚ୍ଚରେ ଥିବା କୌଣସି ଦ୍ରବ୍ୟକୁ ଧରିବାପାଇଁ ହାତକୁ ଉର୍ଦ୍ଧ୍ୱକୁ ଟେକିବା ।

ହାତକଲା—ଗ୍ରା. ବି. ଛବିଆଦି ଆଙ୍କିବା ଅଭ୍ୟାସ, ହଠାତ୍ ଅନ୍ୟକୁ କରିବା ପ୍ରହାର ।

ହାତବଳିବା—ଗ୍ରା. କ୍ରି. ଆଗ ମାଡ଼ଆଦି କରିବାକୁ ତଆରହେବା, (ବି) ଶିଳ୍ପର ପ୍ରଥମ ଅଭ୍ୟାସ ।

ହାତବାକସ—ଗ୍ରା. ବି. ଯହିଁରେ ଲୋକର ନିତ୍ୟ ପ୍ରୟୋଜନୀୟ କାଗଜପତ୍ର ତଥା କଲମ ଆଦି ରହେ ।

ହାତବାନ୍ଧିହୋଇବସିବା—ଗ୍ରା. କ୍ରି. ନିଷ୍କର୍ମା ବା ବେକାର ହେବା ।

ହାତବାରସୀ(ବାର୍ସୀ)—ଗ୍ରା. ବି. କମିକର ଦକ୍ଷିଣହାତରେ ଧରି ଯେଉଁ ହଣଆର ଦ୍ୱାରା କାଠ ତାଛନ୍ତି, (ଲ.ଅର୍ଥ) ସାହାଯ୍ୟକାରୀ ବ୍ୟକ୍ତି, (ବ୍ୟଂ) ପ୍ରତ୍ୟକ୍ଷ ସାହାଯ୍ୟକାରୀ ।

ହାତବୁଣା—ଗ୍ରା. ବି. ହାତଦ୍ୱାରା ଲୁଗାକୁ ତନ୍ତରେ ବୁଣିବା, ହାତରେ ଫୁଲ ଆଦିର ସିଲାଇ, (ବ୍ୟଂ) ହାତଦ୍ୱାରା ବୁଣାଯାଇଥିବା (ଲୁଗାଆଦି) ।

ହାତବୁଲା(ଲେଇବା)—ଗ୍ରା. କ୍ରି. ହାତଦ୍ୱାରା ଦରାଣ୍ଡିବା, ଆଉଁସିବା, ସ୍ନେହପଦାର୍ଥକୁ ଚୋରିକରିବା, ଠକାକରି କିଛି ଧନ ନେବା, ଘରେପଶି ଚୋରିକରିବା, ସମ୍ପୂର୍ଣ୍ଣ ମନୋଯୋଗୀ ହେବା ।

ହାତବୋତାମ—ଗ୍ରା. ବି. କମିଜଆଦିର ଆସ୍ତିନର କଫ୍‌ରେ ଲଗିଥିବା ବୋତାମ ।

ହାତବୋଳିବା—ଗ୍ରା. କ୍ରି. ହାତ ପୋଛିବା, ମାଗିକରି ବା ଠକାକରି ଧନ ନେବା ।

ହାତବ୍ୟ—ବ୍ୟଂ. (ହା + ସଂ. ତବ୍ୟ) ତ୍ୟାଗ ଯୋଗ୍ୟ, ଛାଡ଼ିବାର ଉପଯୁକ୍ତ ।

ହାତଭଣ୍ଡା—ଗ୍ରା. ବି. କହୁଣୀଠାରୁ କଟି-ପର୍ଯ୍ୟନ୍ତ ହାତର ମାଂସଳ ଅଂଶ ।

ହାତଭଙ୍ଗିବା—ଗ୍ରା. କ୍ରି. ଆନନ୍ଦରେ ଉତ୍ଫୁଲ୍ଲ ହେବା, ଲାଳାୟିତ ହେବା, ଆଗ୍ରହ ସହିତ କାମନା କରିବା ।

ହାତମାଟି—ଗ୍ରା. ବି. ଝାଡ଼ାଫେରିଯାଇ ଶୌଚ ହେବାପରେ ହାତରେ ମାଟି ଲଗାଇ ଧୋଇବା କର୍ମ, ଛୁଇଁବା ପରେ ହାତକୁ ସଫା କରିବାରେ ବ୍ୟବହୃତ ମାଟି ।

ହାତମାରିବା—ଗ୍ରା. କ୍ରି. ସତର୍କ ବା ଦୃଷ୍ଟି ଆକର୍ଷଣ ଉଦ୍ଦେଶ୍ୟରେ ଅନ୍ୟକୁ

ଦେହରେ ହାତ ଲଗାଇବା, (ଲ.ଅର୍ଥ) ଶ୍ରେଷ୍ଠ ପଦାର୍ଥ ଗ୍ରହଣକରିବା; ଜଗୁଆଳର ଅନୁପସ୍ଥିତିରେ ପଦାର୍ଥ ଆତ୍ମସାତ୍ କରିବା ।

**ହାତମୁଠା**—ଗ୍ରା. ବି. ମୁଷ୍ଟିବଦ୍ଧ କରତଳ, (ଲ.ଅର୍ଥ) ନିଜର ଅଧିକାର ।

**ହାତମୁଠାମୁଠାକରିବା**-ଗ୍ରା. କ୍ରି. ଅପସ୍ମାରଆଦି ମୂର୍ଚ୍ଛାରୋଗଗ୍ରସ୍ତ ବ୍ୟକ୍ତି ଚେତନାହୀନ ହୋଇ କରତଳକୁ ବୁଜିବା, ଭୟାକ୍ରାନ୍ତ ହେବା; (ଲ.ଅର୍ଥ) କାର୍ଯ୍ୟ କରିବାକୁ ଅନିଚ୍ଛା ପ୍ରକାଶକରିବା, ଅପବ୍ୟୟ କରିବାଦ୍ୱାରା ଶେଷରେ ଧନହୀନ ହୋଇ କାତର ହେବା ।

**ହାତମୁଠାରେ**—ଗ୍ରା. ଅବ୍ୟ, ନିଜର କରାୟତ୍ତ ଅବସ୍ଥାରେ ।

**ହାତଯଶ**—ଗ୍ରା. ବି. କୌଣସି ବ୍ୟକ୍ତିଙ୍କର ସିଦ୍ଧହସ୍ତତା ସମ୍ବନ୍ଧରେ ପ୍ରସ୍ତୁତ ସୁନାମ, ଖ୍ୟାତି, ନୈପୁଣ୍ୟ, ଦକ୍ଷତା ।

**ହାତର**—ଗ୍ରା.ବି°.ଆପଣାର କର୍ତ୍ତୃତ୍ୱାଧୀନ, ନିଜକୃତ, ଶକ୍ତିଦ୍ୱାରା ସାଧମାୟ, ସାଧ୍ୟ ।

**ହାତର କଥା**—ଗ୍ରା. ବି. ନିଜର କର୍ତ୍ତୃତ୍ୱାଧୀନ ବିଷୟ, ନିଜକୃତ ବିଷୟ,ଶକ୍ତିଦ୍ୱାରା ସାଧ୍ୟ ବିଷୟାଦି ।

**ହାତର କାମ**-ଗ୍ରା.ବି. ନିଜର କୃତକାର୍ଯ୍ୟ ।

**ହାତର ଲେଖା**—ଗ୍ରା.ବି. ହସ୍ତାକ୍ଷର ।

**ହାତର ଲୋକ**—ଗ୍ରା.ବି. ନିଜର ଆୟତ୍ତାଧୀନ ବ୍ୟକ୍ତି, ଅଧସ୍ତନ ବ୍ୟକ୍ତି ।

**ହାତରୁ**—ଗ୍ରା. କ୍ରି. ବି°. ନିଜଖର୍ଚ୍ଚରେ ବା ବ୍ୟୟରେ, ନିଜର କର୍ତ୍ତୃତ୍ୱରୁ, ନିଜର ଅଧିକାରରୁ ।

**ହାତରୁ ଖସିବା**—ଗ୍ରା. କ୍ରି. ନିଜର ଅଧିକାରରୁ ଯିବା, ନିଜର ହସ୍ତରୁ ଚ୍ୟୁତ ହେବା ।

**ହାତରୁଖାଇବା**—ଗ୍ରା. କ୍ରି. ଆପଣାର ଖାଦ୍ୟ ବ୍ୟୟ ନିଜେ ଚଳାଇବା ।

**ହାତରୁ ଖାଇଘୋଡ଼ାଆଗରେଧାଇଁବା**-ଗ୍ରା. (ପ୍ରବଚନ) ନିଜର ଧନ ବ୍ୟୟକରି ପରର କାର୍ଯ୍ୟ କରିବା ସ୍ଥାନରେ ଏହିପରି ଲୋକେ କହିଥାଆନ୍ତି ।

**ହାତରେ**—ଗ୍ରା. ଅବ୍ୟ, (୭ମୀ ବା ୩ୟା ବିଭକ୍ତି) ହସ୍ତରେ, ନିଜର ଅଧିକାରରେ, ଅନ୍ୟର ପରାମର୍ଶଦ୍ୱାରା ଗୃହୀତ-ହେବା ଅବସ୍ଥାରେ, ନିଜ କର୍ତ୍ତୃତ୍ୱରେ, ନିଜର କର୍ତ୍ତୃତ୍ୱର ବଶୀଭୂତ ହୋଇ, ଦେହ. ଦ୍ୱାରା, ଜରିଆରେ, ନିକଟରେ, ତହବିଲରେ, ତୁଳନାରେ, ସମ୍ମୁଖରେ ।

**ହାତରେ ଅରଜିବା**—ଗ୍ରା କ୍ରି. (ଲ.ଅର୍ଥ) ନିଜ କୃତକାର୍ଯ୍ୟର ବା ଦୋଷର ଫଳଭୋଗକରିବା ।

**ହାତରେକାମଥିବା**—ଗ୍ରା. ବି. କେତେକ କାର୍ଯ୍ୟ ବାକିଥିବା, ନିଜେ କୌଣସି କାର୍ଯ୍ୟରେ ନିଯୁକ୍ତ ଥିବା ।

**ହାତଲେଖା**—ଗ୍ରା. ବି. (ସଂ-ହସ୍ତରେଖା) ଜନ୍ମରୁ ସନ୍ନିବିଷ୍ଟ କରତଳରେ ଦୃଷ୍ଟ ରେଖାମାନଙ୍କର ରେଖା ।

**ହାତରେଚୁଟିପଡ଼ିବା**—ଗ୍ରା. କ୍ରି. (ଲ.ଅର୍ଥ) ଆପଣାର ସମ୍ପୂର୍ଣ୍ଣ ଆୟତ୍ତ ହେବାଭଳି (କୌଣସିବ୍ୟକ୍ତି) ଅବସ୍ଥିତ ହେବା ଅବସ୍ଥା, ହାତରେ ଚୁଟି ରହିବା (ଅନ୍ୟରୂପ) ।

**ହାତରେପଡ଼ିବା**—ଗ୍ରା. କ୍ରି. କରଗତ-ହେବା, ଆପଣାର କର୍ତ୍ତୃତ୍ୱାଧୀନତାକୁ ଆସିବା ।

**ହାତରେପାଞ୍ଚ**—ଗ୍ରା. ବି. ଅବଶିଷ୍ଟ ସମ୍ବଳ, ଶେଷ ଭରସା, ତାସଖେଳାଳିକୁ ଶେଷପିଠିରେ ମିଳିବା ଭବିଷ୍ୟତ୍ ଆବଶ୍ୟକ ବା ବିପଦପାଇଁ ସଞ୍ଚିତ ଶେଷ ଉପାୟ ।

**ହାତରେସିବା**—ଗ୍ରା. କ୍ରି.(ଅଳଙ୍କାରାଦି) ହାତକୁ ଚିପିବା କଷିହେବା ।

**ହାତରେମଣି(ନି)ଷକରିବା**—ଗ୍ରା. କ୍ରି ନିଜର ଯତ୍ନ ଦ୍ୱାରା ଶିଶୁକୁ ଉତ୍ତମ ମଣିଷରେ ପରିଣତ କରିବା, ଶିଶୁକାଳରୁ ସାବାଳକ ହେବାପର୍ଯ୍ୟନ୍ତ କୌଣସି ଶିଶୁକୁ ପାଳିବା ।

**ହାତରେ ମାରିବା**—ଗ୍ରା. କ୍ରି. ହସ୍ତଦ୍ୱାରା ପ୍ରହାର କରିବା, କୌଣସି ବ୍ୟକ୍ତି ମରିବାଭଳି ଉପାୟ କରିବା ।

**ହାତରେନମାରିଭାତରେମାରିବା**-(ନ୍ୟାୟ) କୌଣସି ବ୍ୟକ୍ତିର ସାକ୍ଷାତରେ ଅନିଷ୍ଟ ନ କରି ପରୋକ୍ଷଭାବରେ ତାର ଗୁରୁତର ଅନିଷ୍ଟ କରିବା ।

**ହାତରେରଖିବା**—ଗ୍ରା. କ୍ରି. (ଧନାଦି) ନିଜ ନିକଟରେ ଗଚ୍ଛିତ ରଖିବା; ନିଜର କର୍ତ୍ତୃତ୍ୱରେ ରଖିବା ।

**ହାତରେରହିବା**—ଗ୍ରା. କ୍ରି. କର୍ତ୍ତୃତ୍ୱାଧୀନରେ ରହିବା, (ଧନ) କୌଣସି ବ୍ୟକ୍ତିପାଖରେ ସଞ୍ଚିତହେବା ।

**ହାତଲଗା(ଗେ)ଇବା**—ଗ୍ରା. କ୍ରି, କୌଣସି ବ୍ୟକ୍ତି ପ୍ରହାର କରିବାପାଇଁ ତା ଦେହରେ ହସ୍ତ ସ୍ପର୍ଶ କରିବା,ହାତଦ୍ୱାରା ସ୍ପର୍ଶକରିବା, କୌଣସି କାର୍ଯ୍ୟାରମ୍ଭ କରିବା ।

**ହାତଲଘୁପଣ**—ଗ୍ରା. ବି. ଚୌର୍ଯ୍ୟ, ଚୋରବୃତ୍ତି ।

**ହାତଲଗିବା**—ଗ୍ରା. କ୍ରି ହାତଚଳିବା ଦେଖ. ମାରିବା ।

**ହାତଲେଖା**—ଗ୍ରା. କ୍ରି. ହସ୍ତାକ୍ଷର, (ବି°) ସ୍ୱହସ୍ତଲିଖିତ, ହସ୍ତଲିଖିତ (ପୋଥିଆଦି)

**ହାତଶଙ୍ଖାଦର୍ପଣରେଦେଖିବା**-(ପ୍ରବଚନ) କୌଣସି ବିଷୟ ଜାଣିବାର ଉପାୟ ନିଜପାଖରେ ଥାଇ ଆଉ ଉପାୟାନ୍ତର ଲୋଡ଼ିବା, ଏହିପରି ସ୍ଥଳରେ ପ୍ରବଚନ ବୋଲିଥାନ୍ତି ।

**ହାତସଫା(ସଫେଇ)**-ଗ୍ରା.ବି. ସିଦ୍ଧହସ୍ତତା, ସୂକ୍ଷ୍ମ କାରୁକାର୍ଯ୍ୟ, (ବ୍ୟଙ୍ଗ୍ୟ)ଧୂର୍ତ୍ତତା, (ବି°) ଧୂର୍ତ୍ତ, ସିଦ୍ଧହସ୍ତ ।

**ହାତସା**—ଗ୍ରା. ବି. ପାନ ଓ ଟେବୁଲର ଦରଜାଆଦିକୁ ଧରିବାପାଇଁ ଅର୍ଦ୍ଧବୃତ୍ତାକାର ଧାତୁଆଦିର ବଳୟ ।

**ହାତହତିଆର**—ଗ୍ରା. ବି. (ସଂ-ହସ୍ତ ଓ ହେତି) ହାତଦ୍ୱାରା ବ୍ୟବହୃତ ଅସ୍ତ୍ରଶସ୍ତ୍ର, ଶିଳ୍ପୀର ଆବଶ୍ୟକୀୟ ଯନ୍ତ୍ରାଦି ।

**ହାତହଲା(ଲେ)ଇବା**—ଗ୍ରା. କ୍ରି. ହସ୍ତକୁ ଅସମ୍ମତି ବା ନିଷେଧ ସୂଚକ ଇତସ୍ତତଃ ସଞ୍ଚାଳନ କରିବା, ହାତ ଚଳାଇବା ।

**ହାତହେବା**—ଗ୍ରା. କ୍ରି. କର୍ତ୍ତୃତ୍ୱାଧୀନ

ହେବା, ସାକ୍ଷଆଦି ସ୍ୱପକ୍ଷପକ୍ଷର ଅକ୍ତିଆର ହେବା, ହସ୍ତଗତ ହେବା, ଅଧୀକାରଭୁକ୍ତ ହେବା ।

ହାତାହାତି—ଗ୍ରା. ବି. ଏକହାତରୁ ଅନ୍ୟ ହାତକୁ ହସ୍ତାନ୍ତର କରଣ, ହାତଦ୍ୱାରା ଯୁଦ୍ଧ ଓ ପରସ୍ପର ଆକ୍ରମଣ ଓ ପ୍ରହାର ।

ହାତ(ତ୍ତୀ)—ଗ୍ରା. ବି. (ସଂ-ହସ୍ତୀ) କରୀ, ଗଜ, ମାତଙ୍ଗ, ଅତି ବଡ଼ ଶାକଭୋଜୀ ଚତୁଷ୍ପଦ ଜନ୍ତୁ, ଶୂଦ୍ରଙ୍କ ବଂଶୋପାଧି-ବିଶେଷ, ବୃହତ୍‌କାୟ ବ୍ୟକ୍ତି, (ହାତ-ପରି) ଧୀରଗତି ବିଶିଷ୍ଟ ବ୍ୟକ୍ତି ଗୋଟିଏ ହାତୀଉପରେ ଲଦାହେବା ପରିମିତ ବୋଝ, (ହାତବେକ) ଦିଗ, ପାର୍ଶ୍ୱ ( ଯଥା—ଡାହାଣହାତ ବାଟ ) ଆସାମ ଦେଶର ବଂଶୋପାଧିବିଶେଷ, (ବିଂ) ହାତ ବହିପାରିବା ଭଳି (ବୋଝ) ହାତସମ୍ବନ୍ଧୀୟ, କୌଣସି ଦିଗରେ ଅବସ୍ଥିତ, ( ଏତେ )ହାତ ପରିମିତ, ( କ୍ରି.ବିଂ ) ବାମ ବା ଦକ୍ଷିଣହସ୍ତର ଦିଗରେ ।

ହାତିଆ—ଗ୍ରା. ବିଂ. (ଏତେ)ହାତ ଲମ୍ବ, ଏତେ ଜଣଙ୍କ ଦ୍ୱାରା ସମ୍ପାଦିତ(କାମ), ହସ୍ତଯୁକ୍ତ, ହାତିପରି ଆକାରବିଶିଷ୍ଟ, ଖୁବ୍ ବଡ଼, ହାତିପରି ସ୍ଥୂଳଚର୍ମ ଉତ୍ପାଦକ (ଯନ୍ତ୍ର) ।

ହାତିଆକାଙ୍କଡ଼—ଗ୍ରା. ବି. ( ସଂ-ବନ୍ଧ୍ୟାକର୍କୋଟକୀ) କାଙ୍କଡ଼ ପରି ଏକପ୍ରକାର ବଡ଼ ଫଳ ।

ହାତିଆଘାସ—ଗ୍ରା. ବି. ଧନୁବୀପରିପରି ଓସାରିଆ ଏକପ୍ରକାର ଘାସ ।

ହାତିଅଙ୍କୁଶ(ଶା,ଶି)—ଗ୍ରା. ବି. ଗଜବାଙ୍କ, ହାତୀକୁ ଚାଳିତ କରିବାପାଇଁ ବ୍ୟବହୃତ ବକ୍ରାଗ୍ର ଲୌହଦଣ୍ଡ, ଏକପ୍ରକାର କଣ୍ଟକଯୁକ୍ତ ଲତାଳିଆ ଗଛ ।

ହାତିଆଦା(ଯା)ଡୁ—ଗ୍ରା. ବି. ଏକପ୍ରକାର ଦୁରାରୋଗ୍ୟ ଦଦ୍ରୁ ।

ହାତିଆଳ—ଗ୍ରା. ବି. ( ସଂ-ହସ୍ତିପାଳ ) ହାତୀମାହୁନ୍ତ, ହସ୍ତିପକ । [ ଲାଉ ।

ହାତିଆଳୁଉ—ଗ୍ରା. ବି. ଲମ୍ବ ଓ ସରୁ

ହାତିଏ—ଗ୍ରା. ବିଂ. ଗୋଟିଏ ହାତୀ ବହନକରିବା ବୋଝ ପରିମିତ, ବହୁ-ପରିମିତ, ଏକହାତ ମାପ ।

ହାତିକଠଲ—ଗ୍ରା. ବି. ହାତୀ ଉପରେ ବସିବାର ଆଗପଛରେ ଲୁହାର ବାଡ଼ଯୁକ୍ତ ଆସନ ।

ହାତିକନାଗଛ—ଗ୍ରା. ବି. ହାତୀକାନପରି ପତ୍ରବିଶିଷ୍ଟ ବୃକ୍ଷବିଶେଷ ।

ହାତିକଲସଢାଳିବା—ଗ୍ରା. କ୍ରି. ହଠାତ୍ ସୌଭାଗ୍ୟୋଦୟ ହେବା ।

ହାତିକଷା—ଗ୍ରା. ବି. ହାତୀ ପିଠିରେ ଲଦନଆଦି ଭଳି ଚଢ଼ିବାପାଇଁ ପ୍ରସ୍ତୁତ କରଣ ।

ହାତିକଷିବା—ଗ୍ରା. କ୍ରି. ହାତୀ ଉପରେ ଅମାରି ବା ହାଉଦା ଭିଡ଼ିବା ।

ହାତିକାନ—ଗ୍ରା. ବି. ହସ୍ତିକର୍ଣ୍ଣ ଦେଖ ।

ହାତିକାନିଆ—ଗ୍ରା. ବିଂ. ହାତୀକାନପରି ବଡ଼, (ବି) ଏକପ୍ରକାର ଶ୍ଳେଷ୍ମ ବନ୍ୟ-ଲତା, ହାତିକାନ ଧରିବା ।

ହାତିକାନ୍ଧଉପରେବସିବା—ଗ୍ରା. କ୍ରି. ( ଲ.ଅର୍ଥ ) ମହତ୍‌ଲୋକଙ୍କ ଆଶ୍ରୟ ଧରିବା ।

ହାତିକି( କୁ )ସିରସ୍ତାକରିବା—ଗ୍ରା. କ୍ରି. ନୂଆ ହାତୀକୁ ମଣକରିବା ।

ହାତିଖେଦା—ଗ୍ରା. ବି. ବନ୍ୟହସ୍ତୀଙ୍କ ଦଳ, ବଣୁଆଁ ହାତୀଙ୍କୁ ଧରିବାପାଇଁ ଜଙ୍ଗଲମଧ୍ୟରେ କରାଯିବା ଘେରବନ୍ଧ, ବଣୁଆଁ ହାତୀଙ୍କୁ ଖେଦା ଦ୍ୱାରା ଧରିବାକାଣ୍ଡ ।

ହାତିଖୋଜ-ଗ୍ରା. ବି. ହାତୀର ପାଦଚିହ୍ନ ।

ହାତିଖୋଜଆଗଛ—ଗ୍ରା. ବି. ମଣ୍ଡୂକ-ପର୍ଣ୍ଣୀ ଦେଖ ।

ହାତିଗର୍ଜନ—ଗ୍ରା. ବି. ହାତୀର ଗମ୍ଭୀର ଗର୍ଜନ ବା ସ୍ୱର ବା ଧ୍ୱନି ।

ହାତିଗାଧୁଆନ୍ୟାୟ—ଗ୍ରା. ବି. ହାତୀ ଗାଧୋଇସାରି ପୁଣି ପରକ୍ଷଣରେ ଶୁଣ୍ଢ-ଦ୍ୱାରା ନିଜ ଦେହରେ ଧୂଳି ପକାଏ, ସେହିପରି କୌଣସି ପଣ୍ଡ ଶ୍ରମସ୍ଥଳରେ ଏହି ନ୍ୟାୟ ଲାଗେ ।

ହାତିଗିର(ଜା)ଦା—ଗ୍ରା. ବି. ବଣୁଆଁ ହାତୀକୁ ଧରିବାପାଇଁ ଜଙ୍ଗଲ ମଧ୍ୟରେ କରାଯିବା ବଡ଼ ଖୁମ୍ବଆଦିର ଘେର-ବନ୍ଧ ।

ହାତିଛୁଆ—ଗ୍ରା. ବି. ହସ୍ତୀଶାବକ ।

ହାତିଝୁଲ—ଗ୍ରା. ବି. ହାତୀ ଲଦନ-ଉପରେ ଢାଙ୍କିଥିବା ଚାରିକୋଣିଆ ମୋଟ ଆସ୍ତରଣ ।

ହାତିଝୁଲିବା—ଗ୍ରା. କ୍ରି. ଆନନ୍ଦରେ ହାତୀ କ୍ରୀଡ଼ା କରିବା ।

ହାତିଥୋଡ଼(ର)-ଗ୍ରା. ବି. ହାତୀର ଶୁଣ୍ଢ ।

ହାତିଦଣ୍ଡା(ଦାଣ୍ଡି)—ଗ୍ରା.ବି.ବଣୁଆ ହାତୀ-ମାନଙ୍କର ଜଙ୍ଗଲରେ ଗମନାଗମନ ପଥ, ହାତୀ ଖୋଜପରି ଆକାଶରେ (ଦ.ପ) କୋଣରୁ (ଉ.ପୂ) କୋଣକୁ ଲମ୍ବିହୋଇ ଦେଖାଯିବା ଧଳାମେଘର ଖଣ୍ଡମାନ, ଛାୟାପଥ ।

ହାତିଦାନ୍ତ—ଗ୍ରା.ବି. ( ସଂ-ହସ୍ତୀଦନ୍ତ ) ଅଣ୍ଡିରାହାତୀର ଗାଲପାଟିରୁ ବାହାରିଥିବା ଦୁଇଟି ଲମ୍ବଦାନ୍ତ ।

ହାତିଦାନ୍ତପଲଙ୍କ—ଗ୍ରା.ବି. ଯେଉଁ ପଲଙ୍କର ବାଡ଼ଆଦିରେ ହାତୀଦାନ୍ତର ପାଟିଆ ଲୁଆଣି ହୋଇଥାଏ ।

ହାତିଧରା—ଗ୍ରା.ବି. ବଣହାତୀଙ୍କୁ ପୋଷିବା ପାଇଁ ନାନାଉପାୟରେ ଜଙ୍ଗଲରୁ ଧରିବା । [ ଧାନ ।

ହାତିପଞ୍ଜର—ଗ୍ରା.ବି. ଏକପ୍ରକାର ବଡ଼

ହାତିପାଞ୍ଜର—ଗ୍ରା.ବି. ପାଟଣା.ବି. ବନ୍ୟ ବୃକ୍ଷ ବିଶେଷ ।

ହାତିପେଁକାଳ(ପିଙ୍କର)— ଗ୍ରା. ବି. ହାତୀର ତୂରୀବତ୍ ଧ୍ୱନି ।

ହାତିପେଟ—ଗ୍ରା.ବି. ହାତୀର ଗର୍ଭ, (ତୁଳନାର୍ଥକ)- ବଡ଼ପେଟ, ଯାହାର ଗର୍ଭରେ ବହୁତଖାଦ୍ୟ ଜିନିଷ ପଶେ, (ଲ.ଅର୍ଥ) ଯେଉଁବ୍ୟକ୍ତିର ପେଟରେ ବା ମନରେ ଅନେକ ଗୁପ୍ତକଥା ପ୍ରଘଟ ନ ହୋଇ ରହେ ।

ହାତିପୋଷିବା—ଗ୍ରା.କ୍ରି. ଗୋଟିଏ ହାତୀକୁ ପାଳି ତାହାର ଖାଦ୍ୟାଦି ଚଳାଇବା

(ଲ.ଅର୍ଥ) ବହୁବ୍ୟୟସାଧ୍ୟ ବ୍ୟକ୍ତିକୁ ଭରଣ ପୋଷଣ କରିବା,ଚୋଟିଏ ସ୍ତ୍ରୀକୁ ତାର ମନୋମତ ଚଳାଇବା ।

ହାତବଡ଼ୁଆ—ପ୍ରା. (ଆସାମ) ବି. ଆସାମ ଦେଶର ବ୍ରାହ୍ମଣଙ୍କର ବଂଶୋପାଧି ବିଶେଷ ।

ହାତବାଣ୍ଡା—ଗ୍ରା.ବି. ହାତ ଲମ୍ବପରି ବଡ଼ଲମ୍ବ ଫଳବିଶିଷ୍ଟ ଏକପ୍ରକାର ଗଛ

ହାତମାହୁନ୍ତ—ଗ୍ରା. ବି. ହାତୀଆଳ, ହସ୍ତିଶୁଳକ, ହସ୍ତୀପକ ।

ହାତମେଟ(ଣ୍ଟ)—ଗ୍ରା.ବି.ହାତୀର ଖାଇବା ଓ ଗାଧୋଇବା ଆଦିରେ ମହୁନ୍ତକୁ ସାହାଯ୍ୟକାରୀ ଭୃତ୍ୟ । [ବିଷ୍ଟା ।

ହାତମେନ୍ଦ—ଗ୍ରା.ବି. ପିଣ୍ଡାକାର ହାତୀର

ହାତରସ—ଗ୍ରା.ବି. (ସଂ-ହସ୍ତିରସ) ମଦଜଳ, ମତ୍ତହସ୍ତୀର ଗଣ୍ଡରୁ ବୋହିବା ମଦବାରି

ହାତରମ୍—ଗ୍ରା.ବି. (ବ୍ୟଙ୍ଗ୍ୟ) ହାତୀପରି ସ୍ଥୂଳକାୟ ବ୍ୟକ୍ତି, ହାତୀପରି ଗମ୍ଭୀର, ସ୍ୱଭାବତଃ ଧୀର ମନ୍ଥର ଗମନଶୀଳ ବ୍ୟକ୍ତି ।

ହାତଲଣ୍ଡ(ଲଦ,ଲେଦ)—ଗ୍ରା.ବି. ହାତୀର ପିଣ୍ଡାକାର ବିଷ୍ଟା ।

ହାତଲେଦନ—ଗ୍ରା.ବି. ଶୋଲ ଓ କୁଟା- ଆଦି ପୂର୍ଣ୍ଣ ଅଖାର ଗୁରୁ କୋଣିଆ ଗଦି ।

ହାତଶାଳ—ଗ୍ରା.ବି. ( ସଂ-ହସ୍ତିଶାଳା ) ପୋଷା ହାତୀଙ୍କର ରହିବା ବଡ଼ ଘର

ହାତଶୁଣ୍ଢ(ଣ୍ଢେ)—ଗ୍ରା.ବି.(ସଂ-ହସ୍ତିଶୁଣ୍ଡ) ହାତୀର ତୋରପାହାର ।

ହାତସର—ଗ୍ରା.ବି. ହାତିଦଣ୍ଡା, ହାତୀ- ପଲର ଜଙ୍ଗଲରେ ଯିବା ଆସିବା ରାସ୍ତା

ହାତସିରସ୍ତା—ଗ୍ରା.ବି. ଧରାହୋଇଥିବା ବଣୁଆଁ ହାତୀଙ୍କୁ ମହଣ କରିବା । [ଗଛ ।

ହାତହପାଲ—ଗ୍ରା.ବି.ହାତୀର ଦ୍ରୁତଗମ

ହାତୁ—ଗ୍ରା. ଅ. ହାତ୍ତୁ ଦେଖ (କ୍ରି.ବିଂ) ହାତରୁ ଦେଖ ।

ହାତୁଆ—ଗ୍ରା.ବି. ବିହାର ପ୍ରଦେଶର କନିଦାସ ବିଶେଷ ।

ହାତୁଁ—ଗ୍ରା.ଅ. ହାତରୁ ଦେଖ ।

ହାତୁଡ଼ା—ଗ୍ରା.ବି.(ସଂ-ହସ୍ତ) ବଡ଼ହାତୁଡ଼ି; ଯାହା ଦ୍ୱାରା କମାରମାନେ ତାତିଲା ଲୁହା ପିଟନ୍ତି ।

ହାତୁଡ଼ି—ଗ୍ରା.ବି. ଶ୍ରେଷ୍ଠ ବା ମଧ୍ୟମଭଳିଆ କମାରଙ୍କ ହାତୁଡ଼ା । [ ହାତ ।

ହାତୁଣୀ—ଗ୍ରା.ସ୍ତ୍ରୀ.ବି. (ସଂ-ହସ୍ତିନୀ) ମାଈ-

ହାତୁଲ୍—ପ୍ରା. ପାଟଣା. ବି. ହାତୁଡ଼ା ଦେଖ । [ ଦେଖ ।

ହାତୁ(ତୁଁ)ହାତ—ଗ୍ରା.କ୍ରି.ବିଂ.ହାତକୁ ହାତ

ହାତେ—ଗ୍ରା.ବିଂ. ଏକହାତ ମାପ ଦୀର୍ଘ ବା ଲମ୍ବ,(କ୍ରି.ବି.)(ଖେଳ) ଅରେମାପ, (ବି) ଏକହାତି ମାପ ଲମ୍ବ ଦୀର୍ଘ ବା ଉଚ୍ଚତା, (ଅବ୍ୟ.) ଦ୍ୱାରା, ଜରିଆରେ, ମାରଫତରେ ।

ହାତେଇବା-ଗ୍ରା. କ୍ରି. ହସ୍ତଦ୍ୱାରା ଦେଖିବା ବା ଧରିବା, ହସ୍ତଗତ ବା ଆୟତ୍ତ କରିବା । [ହାତ ମାପ ।

ହାତେଲମ୍ବ—ଗ୍ରା. ବିଂ. ଲମ୍ବରେ ଏକ-

ହାତେହାତେ—ଗ୍ରା. ବିଂ. ସଦ୍ୟପ୍ରାପ୍ତ (ଫଳ), ନଗଦ,(କ୍ରି.ବିଂ) ସଙ୍ଗେସଙ୍ଗେ, ସଦ୍ୟକ, ଏହାତରୁ ସେହାତ; ନଗଦା- ନଗଦ, ଜନେଜନେ, ସ୍ୱୟଂ, ସାକ୍ଷାତ୍, ଏକହାତ ଲେଖାଏଁ ।

ହାନ—ବି. ( ହା+ମ୍ରି.ନ ) ବେତନ, ଦରମା, ( ଣ.ନ ) ପ୍ରମଥନ, ମନ୍ଥିବା, ମାରଣ,ବଧ,(ଭ୍ରି.ନ) ମରଣ, ଆଘାତ- କରଣ, (କ.ନ) ରକ୍ଷଣ ।

ହାଥ—ଗ୍ରା. ବି. (ସଂ-ହସ୍ତ) ହାତ ।

ହାଥି—ଗ୍ରା. ବି. ହାତି ଦେଖ ।

ହାଥିଧରସା—ପ୍ରା. ( ସମ୍ବଲ. ) ବି. ହାତିଦଣ୍ଡା ଦେଖ ।

ହାଦ୍—ପ୍ରା.ଜୟପୁର—ଅବ୍ୟ. ହେଇଛି ।

ହାଦେ—ଗ୍ରା. ଅବ୍ୟ. ନିଃଶ୍ଚେ, ଶୀଘ୍ର, ହଠାତ୍, ଅକସ୍ମାତ୍, ସହଜରେ, ଅନା- ୟାସରେ ।

ହାଧିକ୍—ଅବ୍ୟ. (ନିନ୍ଦା ଓ ଘୃଣାର୍ଥକ) ଛି, ଧିକ୍, ( ଅନୁତାପାର୍ଥକ ) ଆହା ! ( ଶୋକ ଓ ଦୁଃଖାର୍ଥକ ) ହାଇରେ, ଆହା ।

ହାନ-ବି. (ହା + ଭା.ଅନ) ତ୍ୟାଗ, କ୍ଷତି, ବିକ୍ରମ, ସାହସ, ( ସାଂଖ୍ୟ ) ଦୁଃଖର ଅତ୍ୟନ୍ତ ନିବୃତ୍ତି,(ବିଂ—ମ୍ରି.ତ) ତ୍ୟକ୍ତ ।

ହାନି—ବି. ( ହା+ଭା.ତି ) ଅପକାର, ବାଧା, କ୍ଷତି, ଲୋକଶାନ, ନାଶ,କମିଯିବା, ଅପଚୟ, ଦୋଷ, ତ୍ରୁଟି, କ୍ଷତି, ଖତ ।

ହାନିକର(କାରକ)—ବିଂ. (ହାନି + କୃ + କ.ଅ) କ୍ଷତିକାରକ, ଅନିଷ୍ଟସାଧକ, କ୍ଷତିଜନକ ।

ହାନିକରିବା—ଗ୍ରା. କ୍ରି. ଅପକାରକରିବା, କ୍ଷତିକରିବା ।

ହାନିକୃତ୍—ବିଂ. (ହାନି+କୃ+କ୍ୱିପ୍) ହାନିକର ଦେଖ ।

ହାନିଜନକ—ବିଂ. ହାନିକର ଦେଖ ।

ହାନିବା—ପ୍ରା. (ସମ୍ବଲ) କ୍ରି. ହାଣିବା ।

ହାନିମନ୍—ପା. ବି. (ନାମ) ହୋମିଓପାଥି ଚିକିତ୍ସାର ପ୍ରବର୍ତ୍ତକ ସ୍ୱର୍ଗତଃ ଜଣେ ଜର୍ମାନ୍ ମହାପୁରୁଷ ।

ହାନିଲାଭ—ଗ୍ରା. ବି. କ୍ଷତି ଓ ଲାଭ ।

ହାନୁକ—ପୁଂ.ବି. ଓ ବିଂ(ହନ୍ + କ.ଉକ) ଘାତୁକ ।

ହାନ୍ଦୁଲ-ପ୍ରା. ଖଡ଼ିଆଳ, (ବି) ହାନ୍ଦୋଳ ।

ହାନ୍ଦୋଳ—ଗ୍ରା. ବି. (ସଂ-ଆନ୍ଦୋଳନ), ଗୋଳମାଳ, କଳହ, ଇତସ୍ତତଃ ସଂଚାଳନ. ଓଡ଼ିଶା ଗଡ଼ଜାତ ରାଜା- ବିଶେଷ, (ବିଂ) ବିକ୍ଷୋଭିତ, ଇତସ୍ତତଃ ସଂଚାଳିତ ।

ହାନ୍ଦୋଳା—ଗ୍ରା. ବି. (ସଂ-ଆନ୍ଦୋଳିକା) ଶିବିକା, ଦୋଳା, ମନୁଷ୍ୟବାହ୍ୟ ଯାନବିଶେଷ, (ସଂ-ଆନ୍ଦୋଳନ) ଚଳନ୍ତା, ମାନସିକ ଅସ୍ଥିରତା, କର୍ତ୍ତବ୍ୟ କାର୍ଯ୍ୟ ସ୍ଥିରକରିବାରେ ଅସାମର୍ଥ୍ୟ ।

ହାନ୍ଦୋଳି—ଗ୍ରା. ବି. ମାନସିକ ଆନ୍ଦୋ- ଳନ,(ବିଂ) ଚଳିତ, ବିଷମ ସମସ୍ୟାରେ ପତିତ ।

ହାନ୍ଦ୍ର—ବି. (ହନ୍+ଭା.ଦ୍ର) ମରଣ ।

ହାପ୍ସ୍—ପ୍ରା. (ଖଡ଼ିଆଳି) ବି. ହାପୁସ ଦେଖ ।

ହାପ୍‌ସିହେବା—ଗ୍ରା. କ୍ରି. ଯାତାୟାତ-ବେଳେ ଅନ୍ୟ ବସ୍ତୁରେ ହାବୁଡ଼ି ହେବା ।

ହାପ୍‌ସିକରିହୋଇହେବା—ପ୍ରା.(ସମ୍ବଲ.) କ୍ରି. କ୍ରୋଧରେ ବା ଦୁଃଖରେ ବାଡ଼େଇ-କଗୁଡ଼ି ହେବା ।

ହାପ—ପ୍ରା. ଗଞ୍ଜାମ, ବି. ଏକପ୍ରକାର ଡାବଲିପୁଆ ଖେଳ, (ଗ୍ରା.ବ) ଶିଶୁଙ୍କୁ ଡରଉବା ଶବ୍ଦ ।

ହାପର୍—ଗ୍ରା, ବି. ଅପସ୍ମାର ରୋଗ ।

ହାପର—ପ୍ରା.(ଉ. ବାଲେଶ୍ୱର)ବି. (ସଂ ଖର୍ପର)ସ୍ୱର୍ଣ୍ଣକାରର ଅଗ୍ନିକୁଣ୍ଡ,ଉମ୍ନେଇ, ଭସ୍ତା, ଭାଟି, ଚୂନାଆଦି ଆଉଟିବାର ପାତ୍ର, କୋଇ, ( ଗ୍ରା.ବ. ) ଅପସ୍ମାର ରୋଗ, (ଯା.ବି) କର୍ଦ୍ଦମମସ୍ତ ଗାତ ।

ହାପରମଲ୍ଲି(ଲ୍ଲି)ମାଳି—ଗ୍ରା. ବି. (ସଂ-ଭଦ୍ରବଲ୍ଲୀ) ଡଗରାଦି ବର୍ଗର ଲତାଳିଆ କ୍ଷୁପବିଶେଷ ।

ହାପର—ଗ୍ରା.ବି. ଶସ୍ୟକ୍ଷେତ୍ରରୁ ବନ୍ୟଜନ୍ତୁ ହୁରୁଡ଼ାଇବାରେ ବ୍ୟବହୃତ ଦୁଇଫାଳିଆ ଲମ୍ବ ବାଉଁଶ ।

ହାପଲ୍—ପ୍ରା. (ଗଞ୍ଜାମ) ବି. ଫୁଟୁକି, କରତଳସ୍ଫୋଟ,ଆଙ୍ଗୁଠିର ଆଘାତ ଦ୍ୱାରା ଫୁଟୁକି ।

ହାପ(ବ)ସୀ—ଯା.ବି. କାଫ୍ରୀ,ଆବିସିନିୟା ଦେଶବାସୀ କୃଷ୍ଣକାୟ ମନୁଷ୍ୟ ।

ହାପିବା—ଗ୍ରା. କ୍ରି. ଅତ୍ୟନ୍ତ ପରିଶ୍ରମ ଯୋଗୁଁ ଘନଘନ ନିଃଶ୍ୱାସ ଛାଡ଼ିବା, ହାଟଗିବା, ଷନ୍ଦରେ ପଡ଼ିବା ।

ହାପିଠିବା—ପ୍ରା.(ଯାଜ)କ୍ରି. କାମକରିବାକୁ ହୁଡ଼ିଗିବା ।

ହାପୁ—ଗ୍ରା. ବି. ହାପୁ, ଅଫିମ ।

ହାପୁଆ—ପ୍ରା. (ଖଡ଼ିଆଲ) ବିଂ. ଅଫିମ-ଖୋର, ଅଫିମା, ଆପୁଲ ।

ହାପୁଡ଼ା(ଡ଼)—ଗ୍ରା. ବି. ପାଣିଆ ଖାଦ୍ୟ (ଡାଲି, କାଞ୍ଜିଆଦି)କୁ ହାତର ପୋଷରେ ନେଇ ଦୁଇ ଓଷ୍ଠ ଦ୍ୱାରା ଶବ୍ଦ ଉତ୍ପାଦନ ପୂର୍ବକ ପାଟିରେ ଶୋଷିକରି ଖାଇବା, (ବିଂ) ଅଳେ ହାପୁଡ଼ି ହେବା ପରିମିତ (ଡାଲିଆଦି) ।

ହାପୁଡ଼ିବା—ଗ୍ରା. କ୍ରି. ପାଣିଆ ଖାଦ୍ୟକୁ ସଶବ୍ଦରେ ଶୋଷିକରି ଖାଇବା ।

ହାପୁଚିକା—ବି. ପକ୍ଷିବିଶେଷ, ଖଞ୍ଜନ-ପକ୍ଷିଣୀ ।

ହାପୁଚୀ—ସ୍ତ୍ରୀ. ବି. ଖଞ୍ଜନପକ୍ଷିଣୀ, ମାଈ ଖଞ୍ଜନପକ୍ଷୀ ।

ହାପୁଲ—ଗ୍ରା. ବିଂ. ଓସାରିଆ, ସ୍ଥୂଳ ।

ହାପୁଲେ—ପ୍ରା. (ବାଲେ.)ବିଂ. ମେଞ୍ଚାଏ. ମୁଲାଏ ।

ହାପୁହାପୁହେବା—ଗ୍ରା.କ୍ରି. ଲଙ୍କାମରିଚ-ଆଦି କଡ଼ା ଖାଦ୍ୟ ଖାଇବା ଦ୍ୱାରା ପାଟି ଜଳିବାରୁ ପାଟିକୁ ବାରମ୍ବାର ମେଲାକରି ପୁଣି ବୁଜି ହାପୁ ହାପୁ ଶବ୍ଦ କରିବା, ଅଫିମାମାନଙ୍କର ଆପୁଖିଆ ବେଳ ଗଡ଼ିଗଲେ ସେମାନେ ଯେପରି ବିକଳ ହୁଅନ୍ତି ସେପରି ହେବା,(ଲ.ଅର୍ଥ)ବିକଳ ହେବା,ବ୍ୟସ୍ତତାର ଚିହ୍ନ ପ୍ରକାଶକରିବା ।

ହାପୋଲ—ଗ୍ରା. ବି. ହାମୋଲ ଦେଖ ।

ହାପ୍ରା—ପ୍ରା. (ସମ୍ବ) ବି. ହାପୁଡ଼ା ଦେଖ ।

ହାପ୍ରିବା—ପ୍ରା. (ସମ୍ବ) କ୍ରି, ହାପୁଡ଼ିବା ଦେଖ ।

ହାଫ୍—ଯା. ବିଂ. ଅର୍ଦ୍ଧ ।

ହାଫାକରିବା—ଗ୍ରା. କ୍ରି. କନାପୁଡ଼ାକୁ ଆଁ ହୋଇଥିବା ପାଟିରୁ ନିର୍ଗତ ହେଉ-ଥିବା ନିଶ୍ୱାସରେ ମାଡ଼ି ତା'କୁ ଆଣି ଗୁଣ୍ଡଆଦି ପଡ଼ିବାରୁ ଜ୍ୱାଳା ହେଉଥିବା ଆଖିରେ ମାଡ଼ିବା ।

ହାଫିକା—ବି.(ହାଫ୍+କ+ଆ)ଜୃମ୍ଭା,ହାଇ

ହାଫିଜ୍—ଯା. ବି. ସମସ୍ତ କୋରାନ୍‌ଗ୍ରନ୍ଥକୁ କଣ୍ଠସ୍ଥ କରିଥିବା ମୁସଲମାନ,ପାରସ୍ୟ-ଦେଶୀୟ ପ୍ରଧାନ କବି ଶ୍ୟାମସୁଦ୍ଦିନ ହାଫିଜଙ୍କର ଡାକନାମ ।

ହାଫୁର—ପ୍ରା.(ସମ୍ବ.)ବି. ଅପସ୍ମାର ରୋଗ ।

ହାବ୍‌କିବା—ପ୍ରା. (ଖଡ଼ି.)କ୍ରି. କାମୁଡ଼ିବା ।

ହାବ୍‌ଡ଼ିବା—ପ୍ରା.(ସମ୍ବଲ) କ୍ରି.ହାବୁଡ଼ିବା ଦେଖ ।

ହାବ୍‌ସ—ପ୍ରା.(ଖଡ଼ିଆଲ)ବିଂ. କଚଡ଼ା ।

ହାବ୍‌ସିହେବା—ପ୍ରା. ( ପାଟଣା ) କ୍ରି. କଗୁଡ଼ି ହେବା ।

ହାବ୍‌ସିବା—ପ୍ରା. (ଖଡ଼ି)କ୍ରି. କଗୁଡ଼ିବା ।

ହାବ—ବି. ( ହ୍ୱେ+ଅଧି.ଅ ) ସ୍ତ୍ରୀମାନଙ୍କର ଶୃଙ୍ଗାରଭାବଜନିତ ବିଳାସ ବା ଲୀଳା, ସ୍ତ୍ରୀମାନଙ୍କର ଶୃଙ୍ଗାରସୂଚକ ଓ ଶୃଙ୍ଗା-ରୋଦ୍ଦୀପକ କ୍ରିୟା ବା ଚେଷ୍ଟା,ବିଳାସ, ବିଭ୍ରମ,ସ୍ତ୍ରୀମାନଙ୍କର ଛଟା (ଏହା ଦଶବିଧ ଯଥା:—ଲୀଳା,ବିଳାସ, ବିଚ୍ଛିତ୍ତି,ବିଭ୍ରମ, କିଲ, କିଞ୍ଚିତ, ମୋଟ୍ଟାୟିତ, କୁଟ୍ଟମିତ, ବିବ୍ବୋକ, ଲଳିତ, ( ହ୍ୱେ+ଭା.ଅ ) ଆହ୍ୱାନ ।

ହାବଡ଼ାଇବା—ପ୍ରା. ( ଖଡ଼ିଆଲ ) କ୍ରି. ଭେଟିବା, ହାବୁଡ଼ିବା ।

ହାବଭାବ—ଗ୍ରା. ବି. ଆକାର, ଇଙ୍ଗିତ, ଚେଷ୍ଟା, ଭାଷଣ, ନେତ୍ରବକ୍ତ୍ର ବିକାର ଦ୍ୱାରା ମନର ଭାବପ୍ରକାଶରୂପ କ୍ରିୟା, ଶୃଙ୍ଗାରସୂଚକ ଚେଷ୍ଟା ।

ହାବଲ୍ଲି—ପ୍ରା. (ସମ୍ବ) ବି. ପଶାଘର ।

ହାବା—ଗ୍ରା.ପୁଂ. ବିଂ. (ସଂ ଅବାକ୍)ମୂକ; ବାକ୍‌ଶକ୍ତିହୀନ, ନିର୍ବୋଧ,ଓଲୁ,ବୋକା, ( ବି ) ଧୂର୍ତ୍ତଲୋକ, ଅଚତୁର ବ୍ୟକ୍ତି, (ଯା.ବି) ପବନ ପରି ଦ୍ରୁତଗତି ।

ହାବିଲ୍‌ଦାର୍—ଯା. ବି. ପାଇକମାନଙ୍କ ସର୍ଦ୍ଦାର, ସୈନିକ କର୍ମଚାରୀବିଶେଷ ।

ହାବିଲି—ଯା.ବି.ଆକାଶଗାମୀ ଅଗ୍ନିବାଣ, (ଲ.ଅର୍ଥ) ହାବିଲିପରି ଦ୍ରୁତଗତିବିଶିଷ୍ଟ ଓ ଅସ୍ଥିର ବ୍ୟକ୍ତି,ରାଜା ଓ ନବାବଆଦିଙ୍କ ବାସସ୍ଥାନ, ରାଜପ୍ରାସାଦ,ରାଜପ୍ରାସାଦର ଛତା, ( ପା. ଆଲି. ବି.) ଶଗଡ଼ଆଦିର ଚକର ଅର ।

ହାବିଲିଗଞ୍ଜ—ଗ୍ରା. ବି. ଅନେକ ହାବିଲି ଗଞ୍ଜା ହୋଇଥିବା ଅଗ୍ନିବାଣ ।

ହାବସ୍—ଯା. ବି. ଉତ୍ତୋଳନ, ଉପରକୁ ଉଠାଇବା ।

ହାବୁ—ଗ୍ରା. ବି. ଓ ବିଂ. ହାବା ଦେଖ, (ପ୍ରା. ପାଟଣା. ଅବ୍ୟ) ସେ ଆଡ଼କୁ ।

ହାବୁକା—ଗ୍ରା. ବି. ବାହୁ ଓ ହାତଦ୍ୱାରା ମରାଯିବା ଧକ୍କା, ଜଳର ଲହଡ଼ି, ଅସ୍ତ୍ର-ବିଶେଷ ।

ହାବୁଗିଲା—ଗ୍ରା. ଅତର୍କ, ଭୂତ, ଡ଼ରୁଆ ।

ହାବୁଡ଼—ଗ୍ରା. ବି. (ସ-ଆବର୍ତ୍ତି) ଦୁଇଜଣଙ୍କର ଭେଟ, ଦୁଇଜଣଙ୍କର ବା ଦୁଇବସ୍ତୁର ବିପରୀତ ଦିଗରୁ ହଠାତ୍ ଭେଟ, ଅଧିକାର ।

ହାବୁଡ଼ା—ଗ୍ରା. ବି. ବିପରୀତ ଦିଗରୁ ଆସୁଥିବା ଦୁଇଟି ବସ୍ତୁର ବା ବ୍ୟକ୍ତିଙ୍କର ସଂଘର୍ଷ, ଏକବସ୍ତୁ ଅନ୍ୟ ବସ୍ତୁ ସଙ୍ଗେ ବାଜିଯାଇ ହଠାତ୍ ଅଟକିଯିବା, ଦୁଇବସ୍ତୁର ବା ବ୍ୟକ୍ତିଙ୍କର ଅପ୍ରତ୍ୟାଶିତ ମିଳନ, କେଳାମାନଙ୍କର ହାବୁଡ଼ାଖେଳ, କଲିକତାର ଅପର ପାର୍ଶ୍ୱରେ ଥିବା ହୁଗୁଲୀନଦୀର ତୀରବର୍ତ୍ତୀ ନଗର ଓ ଜିଲ୍ଲା, ସବାର ବେହେରାଙ୍କ ଡାକବିଶେଷ ।

ହାବୁଡ଼ାଇଦେବା—ଗ୍ରା. କ୍ରି. ହଠାତ୍ ଆଣି ଉପସ୍ଥିତ କରାଇ ଦେବା, ଗୋଟାଏ ବଡ଼ ବସ୍ତୁକୁ ଆଗରେ ରଖି ଅନ୍ୟ ବସ୍ତୁର ଗତିକୁ ଅଟକାଇ ଦେବା ।

ହାବୁଡ଼ା(ଡ଼େ)ଇବା—ଗ୍ରା. କ୍ରି. ଦୁଇଟିବସ୍ତୁକୁ ବା ବ୍ୟକ୍ତିଙ୍କୁ ଆଣି ଏକତ୍ର ଜୁଟାଇବା, ପହୁଞ୍ଚାଇବା, ଦୁଇଜଣଙ୍କୁ ପରସ୍ପର ସମ୍ମୁଖବର୍ତ୍ତୀ କରାଇବା, ସାମନାରେ ଗୋଟାଏବାଧାରଖି ଗତି ଅଟକାଇବା, ଟେଳା ପଥରଆଦି ଦ୍ୱାରା ମାରିବା ।

ହାବଡ଼ାଖାଇବା—ଗ୍ରା. କ୍ରି. ବିପରୀତ ଦିଗରୁ ଆସୁଥିବା ଦୁଇଟି ବ୍ୟକ୍ତି ବା ଜନ୍ତୁ ପରସ୍ପର ଜୋରରେ ଆଘାତ ଖାଇବା, ବିପରୀତ ଦିଗରୁ ଆସୁଥିବା ଦୁଇଟି ଜନ୍ତୁ ବା ବ୍ୟକ୍ତି ପରସ୍ପରକୁ ଭେଟିବା ।

ହାବୁଡ଼ାଟଙ୍କା—ଗ୍ରା. କ୍ରି. ବିଂ. ଅପ୍ରତ୍ୟାଶିତ ଭାବରେ, କଦବା, ଆକସ୍ମିକଭାବରେ, ଅନିଶ୍ଚିତ ଭାବରେ ।

ହାବୁଡ଼ାପଡ଼ିବା—ଗ୍ରା. କ୍ରି. ହାବୁଡ଼ିବା, ହଠାତ୍ ଆସି ହାବୁଡ଼ିଯିବା, ନଗ୍ରଟିଆବେଳେ ଯାଉଥିବାରୁ କୌଣସି ଭ୍ରମଣକାରିଣୀ ଯୋଗିନୀ ପିଶାଚୀ ଆଦିଙ୍କ ସମ୍ମୁଖରେ ପଡ଼ି କୌଣସି ବ୍ୟକ୍ତି ଝଙ୍ଗାବାନ୍ତ ଆଦି ହୋଇ ବିକୃତହେବା (ଲୋକଙ୍କର ବିଶ୍ୱାସ) ।

ହାବୁଡ଼ାପୋଲ—ଗ୍ରା. ବି. ହାବୁଡ଼ାଷ୍ଟେସନ ଓ କଲିକତାରେ ହାରିସନରୋଡ଼ର ମୁଣ୍ଡକୁ ଯୋଗକରିଥିବା ହୁଗୁଳି ନଦୀ ଉପରେ ନିର୍ମିତ ଭାସମାନ ପୋଲ ।

ହାବୁଡ଼ାଶର—ଗ୍ରା. ବି. ଓଡ଼ିଆଭାଷାର ପୁରାଣମାନଙ୍କରେ ଉଲ୍ଲେଖ ଥିବା ସ୍ଥୂଳାଗ୍ର ଶରବିଶେଷ ।

ହାବୁଡ଼ାହାବୁଡ଼ି—ଗ୍ରା. ବି. ଦୁଇବସ୍ତୁର ବା ବ୍ୟକ୍ତିର ବିପରୀତ ଦିଗରୁ ଆସି ପରସ୍ପର ଜୋରରେ ଘଟିବା ସଂଘର୍ଷ ।

ହାବୁଡ଼ିପଡ଼ିବା(ଯିବା)—ଗ୍ରା. କ୍ରି. ହଠାତ୍ ଆସି ଉପସ୍ଥିତ ହେବା ।

ହାବୁଡ଼ିବା-ଗ୍ରା. କ୍ରି. ଅପ୍ରତ୍ୟାଶିତ ଭାବରେ ହଠାତ୍ ଦୁଇଟି ବସ୍ତୁ ପରସ୍ପର ଜୋର୍ ଖାଇବା, ଅଟକିଯିବା, ବାଜିବା, ଲାଗିବା, ପୂର୍ବରୁ ଜଣା ନ ଯାଇ ହଠାତ୍ ଆସି ଉପସ୍ଥିତ ହେବା, ଭେଟିବା ।

ହାବୁଡ଼ୁବୁହେବା—ଗ୍ରା. କ୍ରି. ଉବେଇଟୁବେଇ ହେବା, ( ଲ.ଅର୍ଥ ) କର୍ତ୍ତବ୍ୟ ସ୍ଥିରକରି ନ ପାରି ଇତସ୍ତତଃ ହେବା ।

ହାବୁଡ଼େ—ଗ୍ରା. ଅବ୍ୟ. ସାମନାରେ, ଅଧିକାରରେ, ହାତରେ, ଦୃଷ୍ଟିରେ ।

ହାବେଲି—ଗ୍ରା. ବି. ହାବେଳି ଦେଖ ।

ହାବୋଡ଼—ଗ୍ରା. ବି. ଅକଡ଼ଆର, ଅଧିକାର, ବାଣ, ଶର, ଆଘାତ ।

ହାବୋଡ଼ିବା—ଗ୍ରା. କ୍ରି. ଦୈବାତ୍ ଭେଟିବା, ହାବୁଡ଼ିବା ଦେଖ, ସମ୍ମୁଖରେ ଉପସ୍ଥିତ ହେବା, ଧକ୍କାବାଜିବା ।

ହାମ୍‌କଲମ୍—ଯା. ବି. ବିଚ୍ଛୁର, ମକଦ୍ଦମାର ଗସ୍ତ । [ (ମକଦ୍ଦମା) ।

ହାମ୍‌କାଲ—ଯା. ବିଂ. ସମକାଳୀୟ

ହାମ୍‌ବଡ଼ା—ଯା. ବିଂ. ଅହଙ୍କାରୀ, ଗର୍ବିତ ।

ହାମ୍‌ବଡ଼ାମିଡ଼ି—ଗ୍ରା. ବି. ଆତ୍ମବଡ଼ିମା, ଅହଙ୍କାର ।

ହାମ୍‌ରାଇ(ଏ)—ଯା. ଅବ୍ୟ. ଜରିଆରେ, ମାରଫତରେ, ସଙ୍ଗରେ, ( ବିଂ ) ସାହଚର୍ଯ୍ୟ, ବଡ଼ଲୋକଙ୍କ ଗହଣ, ମାରଫତ୍, (ବିଂ) ବଡ଼ଲୋକଙ୍କ ସଙ୍ଗେ ପଠାଯିବା, ଜରିଆରେ ପଠାଯିବା ।

ହାମ୍‌ରାଏଘୋଡ଼—ଗ୍ରା. (ବାକ୍ୟ-ପ୍ରବଚନ), ଦାୟିତ୍ୱଜ୍ଞାନ ନ ଥିବା ବ୍ୟକ୍ତି ।

ହାମ୍‌ଶବାଶ—ଯା. ବିଂ. ଯେ ସର୍ବଦା ପ୍ରଭୁଙ୍କ ପାଖରେ ଉପସ୍ଥିତ ଥାଇ ବିପଦ ଆପଦରେ ସାହାଯ୍ୟ କରିବାକୁ ପ୍ରସ୍ତୁତ ଥାଏ ।

ହାମ—ପ୍ରା. (କଣ୍ଟକ) ସଙ୍ଗ. ଆମ୍ଭର ।

ହାମର—ପ୍ରା. (ସମ୍ବଲ) ସର୍ବ. ଆମ୍ଭର ।

ହାମସୁଆର—ପ୍ରା. ( ଗ୍ଲାନ. )ବି. ରକ୍ଷକ, ପାଳକ ।

ହାମାନ୍(ମ୍)—ଯା. ବି. ଲୁହାର ଖଲ ।

ହାମାନ୍(ମ୍)ଦ(ଦ)ସ୍ତା—ଯା.ବି. ଶୁଷ୍କଦ୍ରବ୍ୟ ( ମସଲାଆଦି ) ଚୂର୍ଣ୍ଣ କରିବାର ଲୁହାର ଖଲ ଓ ପୁଆ ।

ହାମାର୍—ପ୍ରା. ( ମେଦନୀ. ) ବି. ଅମାର, ଧାନକୋଠି, (ଯା.ଅବ୍ୟ) ଆମ୍ଭର ।

ହାମାଲ୍—ଯା. ବି. ଗର୍ଭସ୍ଥ ଭ୍ରୂଣ, ଗର୍ଭଧାରଣ ।

ହାମି—ଯା. ବିଂ. ସହାୟକ, ଦାବଦାର୍, ( ବି ) ଦାୟିତ୍ୱଗ୍ରହଣ କରିବାକୁ ପ୍ରସ୍ତୁତ ବ୍ୟକ୍ତି, ସହାୟକ ବ୍ୟକ୍ତି, ଦାବଦାର୍ ବ୍ୟକ୍ତି, ମୁଦେଇ, କୌଣସି ଦ୍ରବ୍ୟ ବନ୍ଧାଦେବା ।

ହାମିର୍—ଯା. ବି. ଜନୈକ ପ୍ରସିଦ୍ଧ ରାଜପୁତ ବୀର ।

ହାମୁ—ଗ୍ରା. ବି. (ଶିଶୁଭାଷା) ଅନ୍ନ, ଖାଦ୍ୟ, ଭୋଜନ କରିବା, ହାଙ୍ଗୁ ।

ହାମୁକରିବା-ଗ୍ରା.କ୍ରି.(ଶିଶୁଭାଷା)ଖାଇବା ।

ହାମୁଡ଼ା—ଗ୍ରା. ବି. ଦୁଇହାତ ଦୁଇଆଣ୍ଠୁ ଦ୍ୱାରା ପଶୁ ପରି ଚାଲିବା, ଆଣ୍ଠୁମାଡ଼ି ବସିବା ।

ହାମୁଡ଼ିପଡ଼ିବା—ଗ୍ରା.କ୍ରି. କୌଣସି କାର୍ଯ୍ୟ କରିବାପାଇଁ ସମସ୍ତଙ୍କ ଆଗରୁ ଆସି ଆବୋରିବା, ଦୁଇକରତଳ ଓ ଦୁଇଆଣ୍ଠୁ ଭୂମିରେ ଲଗିବା ଅବସ୍ଥାରେ ପତିତ ହେବା ।

ହାମୁଡ଼ିବା—ଗ୍ରା. କ୍ରି. ଦୁଇଆଣ୍ଠୁରେ ଓ ଦୁଇହାତରେ ଭରଦେଇ ଭୂମିରେ

ଅବସ୍ଥାନ ବା ଗଢ କରିବା ।
ହାମୁର୍ଣ୍ଣା—ପ୍ରା: ( ବଲାଙ୍ଗିରପାଟଣା ) ବ: ବାଲୁଙ୍ଗା ।
ହାମେ—ପ୍ରା: ( କଟକ ସିହର ) ସର୍ବ. ଆମ୍ଭେ, (ପ୍ରା. ସମ୍ବ.) ଆମ୍ଭେମାନେ ।
ହାମେଶା—ଯା. କ୍ରି. ବିଂ. ସର୍ବଦା ।
ହାମେହାଲ୍—ଯା:ବ. ସମସ୍ତ ଘଟନା ବା ଅବସ୍ଥା, ( କ୍ରି.ବିଂ ) ସବୁ ଅବସ୍ଥାରେ, ଅନବରତ ।
ହାମିଣ—ପ୍ରା. (ସମ୍ବଲ) ବ. କୁଲା ।
ହାମ୍ପିବା—ଗ୍ରା.କ୍ରି. ଧକେଇବା,ଶ୍ରମଜନିତ ଘନଘନ ନିଶ୍ୱାସ ଛାଡ଼ିବା ।
ହାମୋଡ଼ା—ଗ୍ରା.ବ.ଆଘାତ ପୂର୍ବକ ଦୂରକୁ ଫିଙ୍ଗିଦେବା ।
ହାମୋଲ(ଲା,ଲ)—ଗ୍ରା.ବ.କୌତୁକରେ ବା ସ୍ନେହରେ କରତଳ ଦ୍ୱାରା ଅନ୍ୟର ଦେହରେ ମରାଯିବା କ୍ଷୁଦ୍ର ଆଘାତ ବା ଫୁଟିକି, ପ୍ରେମସ୍ପୃଷ୍ଟ ।
ହାମୋଲବା—ଗ୍ରା.କ୍ରି. ହାମୋଲମାରିବା ଦେଖ, ବାଦ୍ୟଯନ୍ତ୍ରକୁ ବଜାଇବା ।
ହାମୋଲମାରିବା—ଗ୍ରା. କ୍ରି. ହାତଦ୍ୱାରା ଧୀରେ ଧୀରେ ସସ୍ନେହ ସ୍ପୃଷ୍ଟଦେଇବା ବା ଫୁଟିକି ମାରିବା ।
ହାମ୍ଭର—ପ୍ରା. ( ସମ୍ବଲ ) ସର୍ବ. ଆମ୍ଭର, ଆମ୍ଭମାନଙ୍କର ।
ହାମ୍ମୀ(ମ୍ବୀ)ର—ଗ୍ରା. ବ. ରାଗିଣୀବିଶେଷ, ମେବାରର ଜନୈକ ରାଣୀ ।
ହାୟ—ଗ୍ରା. ଅବ୍ୟ. ହାଇ,ଅହା, ଖେଦ-ପ୍ରକାଶକ ଶବ୍ଦ ।
ହାୟନ—ବ. ( ହା+କ.ଅନ ) ବତ୍ସର, ବର୍ଷ, ଧାନ୍ୟବିଶେଷ, ଅଗ୍ନିଶିଖା ।
ହାୟା—ଯା. ବ. ଲଜ୍ଜା, ଶରମ ।
ହାୟାଁ—ଗ୍ରା.ବିଂ.ଯେ ଖାଇବାକୁ ହିଁ ପାଇଁ ହୁଏ, ଅତି ବଡ଼, ହସ୍ତାନ୍ତ, ଭୟଙ୍କର ।
ହାୟାଙ୍କାର—ବିଂ. ଅତି ଭୟଙ୍କର ।
ହାର୍—ଗ୍ରା. ବ. ପରାଜୟ ।
ହାର୍ମ(ମେ)ନିଅମ୍—ଯା. ବ. ବାଦ୍ୟ-ଯନ୍ତ୍ରବିଶେଷ ।
ହାର୍ମା—ଯା. ପୁଂ. ବିଂ. ଦୁଷ୍ଟ, ଅସ୍ଥିର ।
ହାର—ବ. (ହୃ+କ.ଅ)ମୁକ୍ତାଦିର ମାଳା, କଣ୍ଠଲମ୍ବି ବକ୍ଷୋଭୂଷଣବିଶେଷ,ମୁକ୍ତା-ମାଳା, (ସ୍ତ୍ରୀ) ହାରୀ, ( ଅଧି.ଅ ) ଯୁଦ୍ଧ, (ଭା.ଅ) ହରଣ, ଭାଗ, (ପୁଂ.ବିଂ-ହର+ଅ) ହର ସମ୍ବନ୍ଧୀୟ, ( ହୃ+କ.ଅ ) ହାରକ, ଭାଜକ, ବାହକ, ମନୋହର, (ଗ୍ରା.ବ) ପରାଜୟ, ଅନୁପାତ, ହ୍ରାସ,ବ, ଦରିଶସ୍ୟ ତୈଳାଦିର ପରିମାଣ ପାତ୍ର, ରେଟ୍ ।
ହାରକ—ପୁଂ. ବିଂ. ( ହୃ+କ.ଅକ ) ହରଣକର୍ତ୍ତା, ବହନକର୍ତ୍ତା, ଦ୍ୟୁତକାର, (ବ) କିତବ, ଶଠ,ଚୋର,ଗଦ୍ୟଭେଦ, ବିଜ୍ଞାନବିଶେଷ, ଶାହାଡ଼ା ଗଛ, ଭାଜକ ଅଙ୍କ, ପରାଜୟ ।
ହାରକରିବା—ଗ୍ରା. କ୍ରି. ହାର ଗଢ଼ିବା, ମାଳ ଗୁନ୍ଥିବା, (ଲ.ଅର୍ଥ) ଅତି ଗେଲ-ବସର କରିବା, ଆଦର ପୂର୍ବକ ସର୍ବଦା ପାଖରେ ରଖିବା, ଆଦରସହିତ(ଉପ-ଦେଶାଦିକୁ) ଗ୍ରହଣ କରିବା, ସର୍ବଦା ଘୋଷିହେବା ବା ସ୍ମରଣ କରିବା ।
ହାରଗୁଟିକା-ବ.(ତତ୍ପୁ)ମାଳାର ଦାନା ।
ହାରପଟ(ଷ)—ଗ୍ରା. ବ. ପରାଜିତ ଦଳ ବା ପକ୍ଷ । [ ହାର ।
ହାରଫଳକ—ବ. ପାଞ୍ଚନରିଆ ବା ସରିଆ
ହାରଭୂରା—ବ. ଦ୍ରାକ୍ଷା, ଅଙ୍ଗୁର ।
ହାର(ରା)ମ୍ଜାଦ୍(ଦା)—ଯା. ପୁଂ. ବିଂ. ବ୍ୟଭିଚାରୋତ୍ପନ୍ନ, ଜାରଜ,ଜାରଜଭବ, ଦୁଷ୍ଟ, ଶାସ୍ତ୍ରନିଷିଦ୍ଧ କର୍ମକାରୀ, ( ସ୍ତ୍ରୀ ) ହାର(ରା)ମଜାଦୀ ।
ହାରମାଳ—ଗ୍ରା. ବ. (ଏକାର୍ଥ ସହଚର) ହାର ବା ମାଳ, ବହୁସଂଖ୍ୟକ ହାର ।
ହାରଯଷ୍ଟି—ବ. (ତତ୍ପୁ) ହାରର ମାଳ, ହାରଲତା ।
ହାରସ୍ଥଳ—ଗ୍ରା. ବ. ହାର ପଡ଼ିବାର ସ୍ଥାନ, ହୃଦୟ ।
ହାରହାରା-ବ.କପିଳଦ୍ରାକ୍ଷା,ହାରହୂରଙ୍କା
ହାରହୂର—ବ. ମଦ୍ୟ ।
ହାରହୂରା—ବ. ଦ୍ରାକ୍ଷା ।
ହାରା—ବିଂ. ହାରର ସ୍ତ୍ରୀଲିଙ୍ଗ, (ଗ୍ରା.ବ) ହାର,ମାଳ, (ବିଂ) ଅପହୃତ,ହଜିଥିବା ।
ହାରାଧନ—ଗ୍ରା. ବ. ଅପହୃତ ଧନ, ହଜିଥିବା ଧନ ।
ହାରାବ—ବ.ହାହାକାର,ହାସ୍ୟ ହାସ୍ୟ ଶବ୍ଦ, ଖେଦବିବ୍ରତ ଲୋକର ହାହାକାର ।
ହାରାବଲ(ଲ୍)-ଯା.ବ.ସେନାର ଅଗ୍ରଭାଗ, ସେନାଙ୍କ ଆଗରେ ରହିବା ସିପାହୀଦଳ ।
ହାରାବଳୀ—ବ.(ହାର+ଆବଳୀ)ହାର-ସମୂହ, ବହୁ ସୋରା ଥିବା ହାର, ପୁରୁଷୋତ୍ତମଙ୍କ କୃତ ଅଭିଧାନ ବା କୋଷ ।
ହାରାମ୍—ଯା.ବିଂ.କୋରାନ୍ ବିରୁଦ୍ଧ,ଶାସ୍ତ୍ର-ନିଷିଦ୍ଧ, ଅପବିତ୍ର, ( ବ ) ଶୂକର, ଧର୍ମ-ଶାସ୍ତ୍ରାନୁସାରେ ନିଷିଦ୍ଧ ବସ୍ତୁ,ବ୍ୟଭିଚାର, ଅଧର୍ମ, ମୁସଲମାନମାନଙ୍କର ଅସ୍ପୃଶ୍ୟ ଜନ୍ତୁ, ଶୂକର ।
ହାରାମ୍ଖୋର୍—ଯା. ପୁଂ. ବିଂ. ନିଷିଦ୍ଧ ଖାଦ୍ୟ ଭୋଜନକାରୀ, କୋରାନ୍ ଅନୁ-ସାରେ ନିଷିଦ୍ଧ ସୁଧ ଗ୍ରହଣକାରୀ(ବ୍ୟକ୍ତି), ପାପଲବ୍ଧ ଧନ ଅର୍ଜନକାରୀ ବା ଭୋଗ-କାରୀ, ଅଲସୁଆ ।
ହାରାମ୍ଖୋରୀ—ଯା. ବ. ନିଷିଦ୍ଧଦ୍ରବ୍ୟ ଭୋଜନ କରିବା ଅବସ୍ଥା ବା ଅଭ୍ୟାସ, ପାପାର୍ଜିତ ଧନର ଭୋଗ ।
ହାରାମ୍ଜାଦା—ଯା.ପୁଂ.ବିଂ.ହାରମଜାଦା ଦେଖ ।
ହାରାମଜାଦୀ-ଯା.ବ.ଦୁଷ୍ଟାମି,ବଦ୍ମାସଙ୍କରତ୍ୱ, (ସ୍ତ୍ରୀ.ବିଂ) ହାରାମଜାଦାର ସ୍ତ୍ରୀଲିଙ୍ଗ ।
ହାରାମି—ଯା. ବ: ଶାସ୍ତ୍ରନିଷିଦ୍ଧ କାର୍ଯ୍ୟ, (ବିଂ) ବ୍ୟଭିଚାରୋତ୍ପନ୍ନ, ପାଜି, ଦୁଷ୍ଟ ।
ହାରାହାରି-ଗ୍ରା.ବ.ମୋଟାମୋଟି,ହାରାହାରି, (ବିଂ) ମୋଟାମୋଟି ଗଣନା କରାଯିବା ଆନୁପାତିକ ।
ହାରିହେବା—ପ୍ରା. (ଉତ୍ତର ବାଲେଶ୍ୱର) କ୍ରି. ହଜିବା ।
ହାରି—ବ. (ହୃ+କ.ଇ) ପଥିକସନ୍ତାନ, ପ୍ରବାସୀ ବ୍ୟକ୍ତିର କ୍ଷେତ୍ରଜ ସନ୍ତାନ, ପଥିକଶ୍ରେଣୀ, ( ଭା.ଇ ) ଦ୍ୟୁତାଦିରେ ପରାଜୟ, (ବିଂ) ମନୋହର, (ଗ୍ରା.ବ)

ଅକୃତ କାର୍ଯ୍ୟ ହେବା, କର୍ତ୍ତିପକ୍ଷଙ୍କ ନିକଟରେ ଗୁହାରି,(ବଂ)ଜିଣା,ପରାଜିତ, (ଗ୍ରା.ଅବ୍ୟ) ହାରକ ଦେଖ, ( ଗ୍ରା.କ୍ରି ) ପରାସ୍ତହୋଇ ।

ହାରକଣ୍ଠ—ପୁଂ. ବଂ. (ବ.ବ୍ରୀ)ମନୋହର ସ୍ୱରବିଶିଷ୍ଟ,ଯାହା କଣ୍ଠରେ ହାର ପଡ଼ିଛି. (ବି) କୋକିଳ ।

ହାରକା—ସ୍ତ୍ରୀ. ବଂ. ହାରକର ସ୍ତ୍ରୀଲିଙ୍ଗ, (ଗ୍ରା.ଅବ୍ୟ) ହେରିକା,ହାରକ ଦେଖ ।

ହାରକେ—ଗ୍ରା. ଅବ୍ୟ. ଠାରୁ, ଅପେକ୍ଷା ।

ହାରଣ—ବଂ. ( ହରଣ୍+ଅ ) ହରଣ ସମ୍ବନ୍ଧୀୟ ।

ହାରଣୀ—ସ୍ତ୍ରୀ.ବଂ. (ହାରନ୍+ଈ)ହାରୀର ସ୍ତ୍ରୀଲିଙ୍ଗ ।

ହାରିତ—ବି. (ହରିତ+ଅ) ପକ୍ଷିବିଶେଷ, ହରଡ଼ଚଢ଼େଇ, ହରିଦ୍ବର୍ଣ୍ଣ, ଶୁକପକ୍ଷୀ, ହାରିତସ ଦେଖ, କଣ୍ଠିବୃତ୍ତିବିଶେଷ, (ବଂ, ହୃ + ର୍ମି.ତ) ପରାଜିତ, ଅପହୃତ, ହାରିଥିବା, ଶାଗୁଆ, ମୋହିତ, ହରଣ କରଯାଇଥିବା, (ସ୍ତ୍ରୀ) ହାରିତା ।

ହାରିତକ—ବି.(ହରିତ+ଅ + କ)ଶାକ ।

ହାରିତସ—ଗ୍ରା.ବି. (ସଂ-ହାରିତ)ବ୍ରାହ୍ମଣ-ମାନଙ୍କର ଗୋତ୍ରପ୍ରବର୍ତ୍ତିକ ମୁନିବିଶେଷ, ବ୍ରାହ୍ମଣମାନଙ୍କର ଗୋତ୍ରବିଶେଷ ।

ହାରିଦ୍ର—ବଂ. (ହରିଦ୍ରା+ଅ) ହରିଦ୍ରା-ରଞ୍ଜିତ, ହଳଦିଆ, (ବି) ହରିଦ୍ରାବର୍ଣ୍ଣ, ସୁବର୍ଣ୍ଣ, ସୁନା, କଦମ୍ବ ବୃକ୍ଷ,ହଳଦିପରି ମୂଳବିଶିଷ୍ଟ ବିଷଭେଦ ।

ହାରିଦ୍ରକ—ବଂ. ହାରିଦ୍ର ଦେଖ ।

ହାରିଦ୍ରବ—ବି. ହରିତାଳ ଦ୍ରୁମ, ହରି-ତାଳ ବର୍ଣ୍ଣ ।

ହାରଫେରାଦ—ପ୍ରା. (ଯାଜ.) ବି, ହାରି-ଗୁହାରି, ଆପତ୍ତି, ଅଭିଯୋଗ ।

ହାରିବା—ଗ୍ରା. କ୍ରି, ପରାଜିତ ହେବା, କ୍ଲାନ୍ତ ବା ଦୁର୍ବଳହୋଇ ପଡ଼ିବା,ପରାଜୟ ସ୍ୱୀକାରକରିବା,ତ୍ୟାଗକରିବା, ଅବଶାନ୍ତ କ୍ଳାନ୍ତହେବା ।

ହାରିଯିବା—ଗ୍ରା.କ୍ରି ,ପରାସ୍ତ ହେବା,ଦୁର୍ବଳ ଓ ଅତି କ୍ଷୀଣ ହୋଇ ପଡ଼ିବା, କ୍ଳାନ୍ତ ହେବା ।

ହାରୀ—ପୁଂ. ବଂ. (ହୃ+କ.ଇନ୍) ଅପ-ହାରକ, ହରଣକାରୀ, ବହନକାରୀ, ନାଶକ, ପରାଜୟକାରୀ, ଆଦାୟକାରୀ, ମନୋହର, (ହାର + ଅସ୍ତି ଅର୍ଥରେ ଇନ୍) ହାରଧାରୀ, ଯେ ହାର ପିନ୍ଧିଥାଏ, (ସ୍ତ୍ରୀ) ହାରିଣୀ, (ପ୍ରା.ପାଟଣା)ସ୍ତ୍ରୀଲୋକ ।

ହାରୀତ—ବି. ( ହରୀତ+ଅ ) ହାରିତ ଦେଖ, ସ୍ମୃତିଶାସ୍ତ୍ରକର୍ତ୍ତା ମୁନିବିଶେଷ, କୈତବ, ଶଠତା, ଚୋର, ଚୌର୍ଯ୍ୟ ।

ହାରୀତକ—ବି.ହରଡ଼ଚଢ଼େଇ,ଶୁକପକ୍ଷୀ ।

ହାରୀତବନ୍ଧ—ବି. ଛନ୍ଦୋବିଶେଷ ।

ହାରୁଆ—ଗ୍ରା. ପୁଂ. ବଂ. ପରାଜିତ, ଯେ ବରାବର ଯୁଦ୍ଧ ଖେଳଆଦିରେ ହାରେ, ହାର ପିନ୍ଧିଥିବା(ବ୍ୟକ୍ତି),(ସ୍ତ୍ରୀ)ହାରେଇ ।

ହାରୁକ—ପୁଂ.ବଂ.(ହୃ+କ.ଉକ)ହାରକ ଦେଖ, (ସ୍ତ୍ରୀ) ହାରୁକା ।

ହାରେକ୍—ପ୍ରା. (ପାଟଣା—କନ୍ଧାନଅଞ୍ଚଳ) ଅବ୍ୟ. ଥରେ ।

ହାର୍ଡିଞ୍ଜ-(ନାମ)ଭାରତର ପ୍ରଥମ ବଡ଼ଲାଟ୍ ।

ହାର୍ଦ୍ଦ(ର୍ଦ୍ଦ୍ୟ)—ବି. ( ହୃଦ୍+ଯ ) ପ୍ରଣୟ, ସ୍ନେହ, ସୌହାର୍ଦ୍ଦ୍ୟ, ପ୍ରେମ, ମମତା, କୋମଳ ହୃଦୟତା, ଦୟା, ଅଭିପ୍ରାୟ, ( ବଂ ) ହୃଦୟ ସମ୍ବନ୍ଧୀୟ, ହୃଦ୍ଗତ, ମନୋଜ୍ଞ, ମନୋରମ ।

ହାର୍ଦ୍ଦି( ର୍ଦ୍ଦି)କ—ବଂ.(ହୃଦ୍+ଇକ)ହୃଦୟ ସମ୍ବନ୍ଧୀୟ, ଆନ୍ତରିକ, ସହୃଦୟ ।

ହାର୍ଦ୍ଦିକ୍ୟ—ବି, (ହାର୍ଦ୍ଦିକ+ଭା.ଯ)ମିତ୍ରତା, ସୁହୃଦ୍‌ଭାବ, ଆନ୍ତରିକତା ।

ହାର୍ଦ୍ଦୀ—ପୁଂ. ବଂ. ( ହାର୍ଦ୍ଦ +ଇନ୍ ) ସ୍ନେହଯୁକ୍ତ, ମମତାଯୁକ୍ତ ।

ହାର୍ଯ୍ୟ—ପୁଂ. ବଂ. ( ହୃ+ର୍ମି.ଯ ) ଅପ-ହରଣୀୟ, ହରଣ କରିବାର ଯୋଗ୍ୟ. ବହନଯୋଗ୍ୟ,ଗ୍ରହଣୀୟ,ତ୍ୟାଜ୍ୟ,ଭାଜ୍ୟ, ନିବାର୍ଯ୍ୟ,(ବି) ବାହାଡ଼ା ଗଛ, ହରଣୀୟ ଅଙ୍କ, (ସ୍ତ୍ରୀ) ହାର୍ଯ୍ୟା ।

ହାର୍ଯ୍ୟା—ସ୍ତ୍ରୀ.ବଂ. ହାର୍ଯ୍ୟର ସ୍ତ୍ରୀଲିଙ୍ଗ,(ବି) ଏକପ୍ରକାର ଚନ୍ଦନ ।

ହାଲ୍—ଯା.ବି. ଘଟଣାର ବିବରଣ,ଘଟିତ, ଆଚରଣ, ଅବସ୍ଥା, ବର୍ତ୍ତମାନ ଅବସ୍ଥା, ଦଶା, ( ବଂ ) ବର୍ତ୍ତମାନ,ଇଦାନୀନ୍ତନ, ଆଧୁନିକ, ଚଳିତ(ବର୍ଷ), ଚଳିତ ସନ ସମ୍ବନ୍ଧୀୟ, ନୂତନ, ( କ୍ରି.ବି ) ଅଧୁ ଅଲ୍ପଦିନ ହେଲା, (ବନ୍ଦୋବସ୍ତ) ।

ହାଲ୍‌କା—ଗ୍ରା. ବଂ. (ସଂ-ଲଘୁକ)ଉଶ୍ୱାସ, ହାଲୁକା, ଯାହା ଭାର ନୁହେ, ସୁସ୍ଥ, ଧୈର୍ଯ୍ୟହୀନ, ପତଳା,ଦମ୍ଭହୀନ,ଡରୁଆ, ଚନ୍ତାମୁକ୍ତ,(ଯା. ବଂ)ବର୍ତ୍ତମାନ,ଆଧୁନିକ, ଅଲ୍ପଦିନର, (ବି) ହଲ୍କା, ଗ୍ରାମମଣ୍ଡଳୀ, ଶାସନ ସୁବିଧାପାଇଁ ଗଠିତ ଗ୍ରାମସମୂହ, ତାଲୁକ, ଗ୍ରାମର ବାସ୍ତୁବନ୍ଧ, ଶାସନାର୍ଥ ଗଠିତ ସୀମା, ଇଲାକା ।

ହାଲ୍‌କିବା—ପ୍ରା.(ସମ୍ବଲ.) କ୍ରି. (କୁକୁର) କାମୁଡ଼ିବା ।

ହାଲ୍‌ଚାଲ୍—ଯା.ବି. ଅବସ୍ଥା ଓ ବିବରଣ, ସବିଶେଷ ବିବରଣ, ସମ୍ବାଦ, ଆଧୁନିକ ଅବସ୍ଥା ବା ପରିସ୍ଥିତି ।

ହାଲ୍‌ପା—ଗ୍ରା.ବି. ବର୍ଷା ଓ ପବନ ହେତୁ ଶୀତ ବୋଧହେବା ପାଗ,ଶୀତର ଅନୁ-ଭୂତ, (ବଂ) ଶୀତ ଓ ବର୍ଷାଯୁକ୍ତ(ପାଗ) ।

ହାଲ୍‌ପିଛିବା—ଗ୍ରା.କ୍ରି.ଶୀତରେ ଥରିବା ।

ହାଲ୍(ଲି)ଶା—ଗ୍ରା.ବି.(ସଂ-ହଲ)ନୌକାର କର୍ଣ୍ଣ ।

ହାଲହଇ(ଉ)କତୁ—ଯା.ବି. ବିଷୟାଦିର ଉପସ୍ଥିତ,ପରିସ୍ଥିତର ସବିଶେଷ ବୃତ୍ତାନ୍ତ ।

ହାଲ୍‌ହକିକତୁ—ଯା. ବି. ହାଲହଇକତୁ ଦେଖ ।

ହାଲ୍‌ହବାଲ୍—ଯା.ବି.ହାଲ୍‌ଚାଲ୍ ଦେଖ ।

ହାଲ—ବି. ( ହଲ+ଅ ) ବଳରାମ, ଶାଳିବାହନ ରାଜା, ହଳ, ଲଙ୍ଗଳ ।

ହାଲ—ଗ୍ରା.ବି. (ସଂ-ବଳୟ)ଶଗଡ଼ଚକର ଲୌହବେଷ୍ଟନୀ,ଥାମ, ନୌକାର କର୍ଣ୍ଣ, ହୁଲର୍, କୋଳାହଳ, ଆର୍ଦ୍ରତା ।

ହାଲକ—ଗ୍ରା. ବି. (ସଂ-ହୃଦୟ) କଳିଜା, ଅନ୍ତଃକରଣ, ସାହସ, ଦମ୍ଭ, ହିମ୍ମତ ।

ହାଲକ—ବଂ. ପୀତ ହରିଦ୍‌ବର୍ଣ୍ଣ ଅଶ୍ୱ, ହରିଦ୍‌ବର୍ଣ୍ଣ ଅଶ୍ୱ ।

ହାଲକୁ—ଗ୍ରା. ଅବ୍ୟ. ବର୍ତ୍ତମାନ, ଏବେ,

ଆଜିକାଲି,ଚଳନ୍ତବର୍ଷ,ଅଳ୍ପଦିନହେଲା ।
ହାଲତ୍—ଯା.ବି. ଅବସ୍ଥା,ଦଶା,ହାଲତେ ଦେଖ ।
ହାଲତେ—ଯା.ଅ. (ଅମୁକ)ଅବସ୍ଥାରେ ।
ହାଲପ—ଗ୍ରା. ବି. ଅଳ୍ପ ଶୀତଳ ପବନ. ଝଡ଼ସଙ୍ଗେ ହେବା ଅଳ୍ପଶୀତ ପବନ, (ବିଂ) ଅଳ୍ପ ଶୀତଳ (ପବନ) ।
ହାଲ(ଳା)ହଳ—ବି. (ହଳାହଳ+ଅ) ହଳାହଳ, ଉଗ୍ରବିଷ, ଏକପ୍ରକାର ବିଷ, ଏକପ୍ରକାର କୀଟ ।
ହାଲହଲୀ—ବି. ସୁରା, ମଦ୍ୟ ।
ହାଲହାଲ—ବି. ହଲହଲା ଦେଖ ।
ହାଲହୁର(ଳ)—ଗ୍ରା. ବି. କୋଲାହଳ, ହୁଲ୍ଲା, ଗୋଲମାଲ, ବିପନ୍ନ ବ୍ୟକ୍ତିଙ୍କ ଆର୍ତ୍ତନାଦ ।
ହାଲା—ସ୍ତ୍ରୀ. ବି. (ହା+ଣି.ଅଲ+ଆ) ମଦ୍ୟ, ତାଳଆଦିର ନିର୍ଯାସ,ତାଡ଼ି,ନିଜ ସ୍ତ୍ରୀର କନିଷ୍ଠା ଭଗିନୀ, ଶାଳୀ ।
ହାଲ୍ଲାକ୍—ଯା. ବିଂ. କ୍ଳାନ୍ତ, ବିନଷ୍ଟ ।
ହାଲର୍(ଲ୍)—ଯା. ବି. ହାଲର୍ ଦେଖ, (ବିପରୀତ—ହରମ) ।
ହାଲାହ—ବି. ଚିତ୍ରବର୍ଣ୍ଣ ଘୋଟକ ।
ହାଲାହଲ—ବି. (ହଳାହଳ+ଅ)ହଳାହଳ ଦେଖ, କୀଟବିଶେଷ, ଏକପ୍ରକାର ଝିଟିପିଟି ।
ହାଲାହଲଧର—ବି. ସର୍ପ, ସାପ ।
ହାଲାହଲା—ବି. ଅଞ୍ଜଳିକା,କୀଟବିଶେଷ, ଜାହାଣୀପୋକ, କ୍ଷୁଦ୍ର ମୂଷିକ, ଚୁଟିଆ-ମୂଷା, ଗେରୁ ।
ହାଲାହଲ(ଳୀ)—ବି. ମଦିରା ।
ହାଲି—ଗ୍ରା. ବିଂ. ଖାଲି, ଜରାଗ୍ରସ୍ତ, (ବି) କାର୍ଯ୍ୟାଭାବ, ନୌକାର କର୍ଣ୍ଣ ।
ହାଲି—ଯା.ବିଂ. ନୂତନ,ଅଳ୍ପଦିନହେଲା ଜାତ ବା ଆଗତ,(ବି) ବର୍ତ୍ତମାନ କାଳ, ହାଲ୍, (ବିଂ) ଶାଗୁଆ ।
ହାଲିଆ—ଯା. ବିଂ. କ୍ଳାନ୍ତ,ଗ୍ଳାନଆ,ଭୟ-ପ୍ରାପ୍ତ,ଚକିତ, ନିଦ୍ରାଦ୍ୱାରା କ୍ଷିନ୍ନ,ଶକ୍ତିହୀନ. ଦୁର୍ବଳ, ବେହାଲ୍, ଅସ୍ତବ୍ୟସ୍ତ, କିଂ କର୍ତ୍ତବ୍ୟବିମୂଢ଼ ।
ହାଲିକ—ପୁଂ.ବି. (ହଲ+ଇକ)ହଳୁଆ, କ୍ଷେତ୍ରକର୍ଷକରେ,ଚଷା, ହଳଆ ଗୃହକର, (ବିଂ) ହଳ ସମ୍ବନ୍ଧୀୟ, ହଳ ବିଷୟକ ।
ହାଲିକବ୍ରାହ୍ମଣ—ପ୍ରାଦେ, (ଗଞ୍ଜାମ) ବି. ହଳୁଆ ବ୍ରାହ୍ମଣ, ମାସ୍ଥାନ ବ୍ରାହ୍ମଣ ।
ହାଲିକି—ଗ୍ରା. ଅବ୍ୟ, ଠାରୁ; ଅପେକ୍ଷା ।
ହାଲିନୀ—ସ୍ତ୍ରୀ. ବି. ଅଞ୍ଜନିକା, ସ୍ଥୂଳପଲ୍ଲୀ, ଏକପ୍ରକାର ଝିଟିପିଟି ।
ହାଲିମ୍—ଯା. ବି. ସର୍ଷପାଦିବର୍ଗର କୃଷି-ଜାତ ଶାକବିଶେଷ ।
ହାଲୀ—ବି. (ହା+ଅଧି.ଅଲ୍+ଈ)ସ୍ତ୍ରୀଙ୍କ ସାନଭଉଣୀ, ଶାଳୀ ।
ହାଲୁ—ବି. (ହା+ଆଲୁ)ଦନ୍ତ, ବଦନ ।
ହାଲୁଆ—ଗ୍ରା.ବିଂ.ବନ୍ଧ(ଖାଦ୍ୟର ଗୁଣ୍ଡା), (ଯା.ବି) ମହନଭୋଗ ।
ହାଲୁଆଗୁଣ୍ଡା—ଗ୍ରା. ବି. ଫାଲୁଆ ଗୁଣ୍ଡା, ବଡ଼ଗୁଣ୍ଡା ।
ହାଲୁଇ—ପ୍ରା. (ସମ୍ବଲ.) ଯା. ବି.ଗୁଡ଼ିଆ, ମିଷ୍ଟାନ୍ନକାର, ପଶ୍ଚିମା ଗୁଡ଼ିଆ ।
ହାଲୁଏ—ଗ୍ରା. ବିଂ. ଧୁଲାଏ ।
ହାଲୁକା—ଗ୍ରା. ବିଂ. ହାଲୁକା ଦେଖ ।
ହାଲୁକାରେ—ଗ୍ରା. ଅବ୍ୟ. ଧୁଲାଏ ନେଇ-ଯିବା ପ୍ରକାରେ ।
ହାଲୁର୍—ଗ୍ରା.ବି ଓ ବିଂ.ହାଲ୍ଲୋର୍ ଦେଖ ।
ହାଲୁହାଲୁ—ଗ୍ରା. ବି. ଭୟଯୋଗୁଁ ହୃତ୍କମ୍ପଯୁକ୍ତ, ଭୟକମ୍ପିତ, (ବି) ବ୍ରଣକ୍ଷତାଦିର ବ୍ୟଥା ।
ହାଲେ—ପ୍ରା. (ଖଡ଼ିଆଳ)ଅବ୍ୟ. ଆଶ୍ଚର୍ଯ୍ୟ-ସୂଚକ ଶବ୍ଦ, ଏହୁଡଣି ।
ହାଲେ—ଯା. କ୍ରି. ବିଂ. ଅଳ୍ପଦିନହେଲା, ଏବେ ।
ହାଲ୍ଲୋର(ଲ୍)—ଗ୍ରା. ବିଂ. ଆଲୋକମୟ, (ବି) ଉଜ୍ଜ୍ୱଳ ଆଲୋକରଶ୍ମି, ହାଲହୁର ।
ହାଲ୍ଲେଲ୍ମୟ—ଗ୍ରା. ବିଂ. ହାସ୍ତ୍ରିମୟ ।
ହାଲ୍ଲୋହୋଳି—ଗ୍ରା.ବି.ହାଲହୁର ଦେଖ ।
ହାଓ୍ୱା—ଯା. ବି. ହାଉଆ ଦେଖ ।
ହାଓ୍ୱାଳି—ଗ୍ରା.ବି.ଏକପ୍ରକାର ବନ୍ୟଗଛ ।
ହାସପାତାଲ—ଗ୍ରା.ବିଂ. (ଇଂ-ଅନୁକୃତ) ଡାକ୍ତରଖାନା, ଚିକିତ୍ସାଗାର ।
ହାସ—ବି. (ହସ୍+ଘ.ଅ) ହାସ୍ୟ, ହସ, ହାସ୍ୟରସ, ହସିବା କର୍ମ, ଉପହାସ ।
ହାସକ—ବି. ମୃଦୁହାସ୍ୟ, ବିଦୂଷକ,(ବିଂ) ହାସ୍ୟ ଉତ୍ପାଦନକାରୀ, ଯେ ହସାଏ, (ସ୍ତ୍ରୀ) ହାସିକା ।
ହାସକର—ପୁଂ. ବିଂ, (ହାସ+କୃ+ କ.ଅ) ଯେ ବା ଯାହା ହାସ୍ୟ ଉତ୍ପାଦନ କରେ, (ସ୍ତ୍ରୀ) ହାସକରୀ ।
ହାସନ—ବି. (ହସ୍+ଣିଚ୍=ହାସି+ଘ. ଅନ) ହସାଇବା କର୍ମ ।
ହାସନକ—ପୁଂ. ବିଂ. (ହାସନ+ଇକ) ବିନୋଦର ବା କ୍ରୀଡ଼ାର ସହଚର,(ସ୍ତ୍ରୀ) ହାସନିକା ।
ହାସଲ୍—ଯା. ବି. ପ୍ରାପ୍ତି, ପାଇବା, ଲାଭ, ଉପାର୍ଜନ,ଜମିର ଉତ୍ପନ୍ନଦ୍ରବ୍ୟ,ଫଳପ୍ରାପ୍ତି, କର୍ତ୍ତବ୍ୟ ସମ୍ପାଦନ, ଆଦାୟ, (ବିଂ) ପ୍ରାପ୍ତ, ଉପାର୍ଜିତ, ଫଳପ୍ରଦ, ଫଳନ୍ତ, ସମ୍ପନ୍ନ.ଲାଭଜନକ,ଆଦାୟ ହୋଇଥିବା
ହାସଲାତ୍—ଯା. ବିଂ. ହାସିଲାତ୍ ଦେଖ ।
ହାସଲ—ଯା. ବିଂ. ପ୍ରାପ୍ତ, ଅର୍ଜିତ, ଫଳରୂପେ ପ୍ରାପ୍ତ ।
ହାସାଃ--ପୁଂ, ବି. (ହସ+କ.ଅସ୍) ଚନ୍ଦ୍ର ।
ହାସିଆ—ଯା. ବି. ଲୁଗାଆଦିର ଧଡ଼ି, ପାଖ ବା ଧାଡ଼, ପୃଷ୍ଠାର ପାଖରେ ଲେଖିହେବା ନୋଟ, (ବିଂ) ହାସିଆ ସମ୍ବନ୍ଧୀୟ, ହାସିଆରେ ଲିଖିତ ।
ହାସିକା—ବି. (ହସ୍+ଘ.ଇକ+ଆ) ହାସ୍ୟ, ହାସ୍ୟରସ, (ସ୍ତ୍ରୀ-ହସ୍+ଣିଚ୍+ ଅକ+ଆ) ବିଦୂଷିକା, ବଚନଚାତୁର୍ଯ୍ୟ ବା ଅଙ୍ଗଭଙ୍ଗୀ ଦ୍ୱାରା ହାସ୍ୟୋଦ୍ରେକ-କାରିଣୀ ଦାସୀ, ଚନ୍ଦ୍ର, ହସକୌତୁକ ।
ହାସି—ଯା, ବିଂ. ସଫଳ, ସିଦ୍ଧ, ସମ୍ପନ୍ନ, ପ୍ରାପ୍ତ, ଆଦାୟ, କୃଷ୍ଟ, ଆବାଦ ।
ହାସିଲାତ୍—ଯା. ବିଂ. କର୍ଷଣଯୋଗ୍ୟ, ଉର୍ବର ।
ହାସୀ—ପୁଂ. ବିଂ. (ହାସ୍+କ.ଇନ୍) ହାସ୍ୟ କରୁଥିବା, ଶ୍ୱେତ, (ସ୍ତ୍ରୀ)ହାସିନୀ ।
ହାସ୍ତ-ବିଂ. (ହସ୍ତ+ଅ) ହସ୍ତ ସମ୍ବନ୍ଧୀୟ ।
ହାସ୍ତିକ—ବି, (ହସ୍ତିନ୍+କ) ହସ୍ତିସମୂହ,

ହସ୍ତିପଲ, ହସ୍ତ୍ୟାରୋହ, ହାତୀରେ ଚଢ଼ିଥିବା ବ୍ୟକ୍ତି, ମାହୁନ୍ତ, ( ବିଂ ) ହସ୍ତିସମ୍ବନ୍ଧୀୟ ।

ହାସ୍ତିନ—ବିଂ. ( ହସ୍ତିନ୍+ଅ ) ହସ୍ତିସମ୍ବନ୍ଧୀୟ,(ହସ୍ତି+ଇନ)ହସ୍ତସମ୍ବନ୍ଧୀୟ, (ବି —ହସ୍ତିନ୍+ଅ ) ଗଜପରିମାଣ, (ହସ୍ତିନ+ଅ) ହସ୍ତିନାପୁର ।

ହସ୍ତିନପୁର—ବି. ହସ୍ତିନାପୁର ।

ହାସ୍ୟ-ବି. (ହସ୍+ଣ୍ୟ) ହସ, ହସିବାକର୍ମ, କାବ୍ୟର ରସବିଶେଷ, ପରିହାସ, ଥଟ୍ଟା, ଉପହାସ । [ ବିଷୟ ।

ହାସ୍ୟକଥା—ବି. ହାସ୍ୟୋଦ୍ରେକକାରୀ

ହାସ୍ୟକର—ବିଂ. ହାସ୍ୟଜନକ, ହାସ୍ୟ ଉତ୍ପାଦକ ।

ହାସ୍ୟକାର-ପୁଂ. ବି. ଯେ ହାସ୍ୟକରେ, ଯେ ହସାଏ ।

ହାସ୍ୟକୃତ୍—ବିଂ. ( ହାସ୍ୟ+କୃ.କ୍ୱିପ୍ ) ହାସ୍ୟକାର ଦେଖ ।

ହାସ୍ୟଛଟା—ବି. ହସିବାର ଢଙ୍ଗ, ହାସ୍ୟଜନିତ ଶୋଭା,ଶୋଭାଯୁକ୍ତ ହାସ୍ୟ ।

ହାସ୍ୟଜନକ—ବିଂ. (ଷତତ୍) ଯେ ବା ଯାହା ହାସ୍ୟ ଉତ୍ପାଦନ କରେ (ସ୍ତ୍ରୀ) ହାସ୍ୟଜନକା ।

ହାସ୍ୟତରଙ୍ଗ--ବି.ଉପର୍ଯ୍ୟୁପରି ଉଠୁଥିବା ହସ, ହାସ୍ୟର ରୋଳ, ସଂସ୍କୃତ ନାଟିକା ବିଶେଷର ନାମ ।

ହାସ୍ୟଧ୍ୱନି—ବି. ଉଚ୍ଚହାସ୍ୟ ଜନିତ ଶବ୍ଦ ।

ହାସ୍ୟପରିହାସ—ବି. ହସ ଓ ଥଟ୍ଟା ।

ହାସ୍ୟପ୍ରଦୀପ୍ତ—ବିଂ.(ତୃତତ୍) ହାସ୍ୟଦ୍ୱାରା ପ୍ରକାଶିତ, ହାସ୍ୟଦ୍ୱାରା ଶୋଭମାନ ।

ହାସ୍ୟପ୍ରିୟ—ପୁଂ. ବିଂ. ( ବ.ବ୍ରୀ ) ଯେ ହସିବାକୁ ଭାରି ସୁଖ ପାଏ (ସ୍ତ୍ରୀ) ପ୍ରିୟା ।

ହାସ୍ୟବଦନ—ବି ଓ ବିଂ.( ମଧ-କ.ଧା ) ହାସ୍ୟମୁଖ ଦେଖ । [ ହାସ୍ୟମୟୀ ।

ହାସ୍ୟମୟ— ବିଂ. ହାସ୍ୟଯୁକ୍ତ, (ସ୍ତ୍ରୀ)

ହାସ୍ୟମୁଖ—ବି. ( କ.ଧା ) ହାସ୍ୟଯୁକ୍ତ ବଦନ, ହସହସ ମୁହଁ, (ବିଂ—ବ.ବ୍ରୀ) ହାସ୍ୟଯୁକ୍ତ ମୁଖବିଶିଷ୍ଟ, ହସୁରାମୁହାଁ, (ସ୍ତ୍ରୀ) ହାସ୍ୟମୁଖୀ ।

ହାସ୍ୟରଞ୍ଜିତ—ବିଂ.(ତୃତତ୍)ହାସ୍ୟପ୍ରଦୀପ୍ତ ଦେଖ ।

ହାସ୍ୟରସ—ବି. କାବ୍ୟରସ ବିଶେଷ, ଯାହା ଶୁଣିଲେ ବା ପଢ଼ିଲେ ବା ଦେଖିଲେ ନ ହସି ରହିହେବ ନାହିଁ ।

ହାସ୍ୟରସାତ୍ମକ—ବିଂ. (ବ.ବ୍ରୀ) ହାସ୍ୟରସମୟ, ଯହିଁରେ ହସର ବିଷୟ ଅଛି ।

ହାସ୍ୟରସିକ-ବିଂ. ହାସ୍ୟରସରେ ନିପୁଣ ଯେ ହସାଇପାରେ, (ସ୍ତ୍ରୀ) ରସିକା ।

ହାସ୍ୟଲହରୀ—ବି. ହାସ୍ୟର ତରଙ୍ଗ, ପ୍ରବଳ ହାସ୍ୟ ।

ହାସ୍ୟସଂବରଣ(ସମ୍ବରଣ)—ବି. ହାସ୍ୟକୁ ସଂଯତ କରିବା ।

ହାସ୍ୟାର୍ଣ୍ଣବ—ବି. ହାସ୍ୟରାଶି, ହାସ୍ୟତରଙ୍ଗ, ହାସ୍ୟୋଦ୍ଦୀପକ ସଂସ୍କୃତ ନାଟକବିଶେଷ ।

ହାସ୍ୟାଳାପ—ବି. ( କ.ଧା ) ହାସ୍ୟଯୁକ୍ତ କଥୋପକଥନ, ରସାଳାପ ।

ହାସ୍ୟାସ୍ପଦ—ବିଂ. ଯାହା ଦେଖିଲେ ହସ ମାଡ଼େ, ଉପହାସଯୋଗ୍ୟ ।

ହାସ୍ୟୋଦ୍ଦୀପକ—ବିଂ. (ଷତତ୍) ଯାହା ଶୁଣିଲେ ବା ଦେଖିଲେ ହସମାଡ଼େ, (ସ୍ତ୍ରୀ) ହାସ୍ୟୋଦ୍ଦୀପିକା । [ ନିରାଶ ।

ହାହୁତାଶ-ପ୍ରା. (ଖଡ଼ିଆଲ) ବିଂ. ଅତ୍ୟନ୍ତ

ହାହତୋଽସ୍ମି—(ପୁରୁଷପକ୍ଷରେ) ଆହା ! ମୁଁ ମଲି, ( ଖେଦ ବା ଶୋକାର୍ଥକ ବାକ୍ୟ ) ଆହା ମୋର ସର୍ବନାଶ ହେଲା, (ସ୍ତ୍ରୀପକ୍ଷରେ—ହା ହତାସ୍ମି ) ।

ହାହନ୍ତ—ଗ୍ରା. ଅବ୍ୟ. ( ବିସ୍ମୟସୂଚକ ) ଆହା ।

ହାହ(ହା)ଳ—ବି. ହଳାହଳ ଦେଖ ।

ହାହା—ଅବ୍ୟ. ହାୟ, ଆହା, ଅନୁତାପ ଜନିତ ଧ୍ୱନି, ଓହୋ, ( ବି ) ଦେବ ଗନ୍ଧର୍ବବିଶେଷ, (ଗ୍ରା·ଅବ୍ୟ) ସ୍ମରଣାର୍ଥକ ବା ବିସ୍ମୟାର୍ଥକ ବା ସନ୍ତୋଷାର୍ଥକ ଧ୍ୱନି ।

ହାହୋ—ପ୍ରା. (ସମ୍ବଲ) ଅବ୍ୟ. ଆହେ ।

ହାହାଃ—ବି. ଗନ୍ଧର୍ବବିଶେଷ ।

ହାହାକାର—ବି. (ହାହା+କୃ+ଘ.ଅ) ଶୋକଧ୍ୱନି, ଯୁଦ୍ଧକଳରବ ।

ହାହାକାରମୟ—ବିଂ. ହାହାକାରରବପୂର୍ଣ୍ଣ, ଶୋକପୂର୍ଣ୍ଣ । [ ଗନ୍ଧର୍ବ ।

ହାହାହୁହୁ—ବି. (ଦ୍ୱନ୍ଦ୍ୱ) ଦୁଇଟି ଶ୍ରେଣୀର

ହାନିମାନ୍—ଯା. ବି. ହୋମିଓପାଥିକ୍ ଚିକିତ୍ସାପ୍ରବର୍ତ୍ତକ ପ୍ରସିଦ୍ଧ ଜର୍ମାନ୍ ଡାକ୍ତର ।

ହି—(ଧାତୁ) ଗମନକରିବା,ବୃଦ୍ଧିପାଇବା, ପ୍ରେରଣକରିବା ।

ହି—ଅବ୍ୟ. (ହି+କ.ଇ) ହିଁ, ନିଶ୍ଚୟ, ଅବଧାରଣାର୍ଥକ, ହେତ୍ୱର୍ଥକ, ଅସୂୟାର୍ଥକ, ପାଦପୂରଣାର୍ଥକ,ପ୍ରଶ୍ନାର୍ଥକ,ବ୍ୟସ୍ତତାର୍ଥକ, ଶୋକାର୍ଥକ ।

ହିଆ—ଗ୍ରା. ବି. ( ସଂ-ହୃଦୟ ) ହୃଦୟ, ବକ୍ଷସ୍ଥଳ, ସାହସ,ଧୈର୍ଯ୍ୟ, (ସର୍ବ.) ଏହା, ତାହା ।

ହିଆଡେ—ଗ୍ରା. ସର୍ବ. ସେହିଆଡ଼େ ।

ହିଆଳ—ଗ୍ରା. ବିଂ. ହୃଦ୍ୟ,ଆନନ୍ଦଜନକ, ମନୋହର, (ପ୍ରା. ଉତ୍ତରବାଲେ. ଶ୍ରୀ) ହିଁଆଳ ଦେଖ ।

ହିଏ—ଗ୍ରା. କ୍ରି. ହୁଏ ।

ହିଂଗ୍—ପ୍ରା. (ସମ୍ବଲ) ବି. ହେଙ୍ଗୁ ।

ହିଂସକ—ପୁଂ. ବିଂ. (ହିନସ୍+କ.ଅକ) ହିଂସ୍ର,ହିଂସାକାରକ,ଘାତକ,ବିଦ୍ୱେଷକାରୀ,ଈର୍ଷାଯୁକ୍ତ,(ବି) ହିଂସ୍ରଜନ୍ତୁ,ଶତ୍ରୁ, ଅଥର୍ବ ବେଦବେତ୍ତା ବ୍ରାହ୍ମଣ, ( ସ୍ତ୍ରୀ ) ହିଂସିକା ।

ହିଂସନ—ବି. (ହିନସ୍+ଭା.ଅନ) ବଧ, ଘାତ, ହନନ, ପରାନିଷ୍ଟସାଧନ, ପରାନିଷ୍ଟସାଧନ ପ୍ରବୃତ୍ତି (ଏହା ଦୁଇପ୍ରକାର ଯଥା:—ପ୍ରାଣିବଧ ନିମିତ୍ତ ଓ ପ୍ରାଣିପୀଡ଼ନ ନିମିତ୍ତ) ଈର୍ଷା, ଅନିଷ୍ଟ ।

ହିଂସନୀୟ—ବିଂ.(ହିଂସ୍+ଅନୀୟ)ହିଂସାର ଯୋଗ୍ୟ, ହିଂସାର୍ହ ।

ହିଂସା—ବି. ( ହିନସ୍+ଭା.ଅ+ଆ ) ହିଂସନ ଦେଖ ।

ହିଂସାକର୍ମ-ବି.ଅଭିଚାର,ମାରଣ,ମୋହନ, ସ୍ତମ୍ଭନ, ଉଚ୍ଚାଟନ,ବଶୀକରଣ, ବିଦ୍ୱେଷଣ ଏହି ଛଅ ।

ହିଂସାପ୍ରଣୋଦିତ—ବିଂ (ଂତତ୍ପୁ) ହିଂସା ବା ବିଦ୍ଵେଷଣ ଦ୍ଵାରା ନିୟୋଜିତ ।

ହିଂସାମୂଳକ—ବିଂ.(ବ.ବ୍ରୀ)ଯେଉଁ କାର୍ଯ୍ୟର ମୂଳରେ ହିଂସା ଅଛି ।

ହିଂସାରୁ—ବି.(ହିନ୍ସ୍+କ.ଆରୁ)ବ୍ୟାଘ୍ର ।

ହିଂସାଳିଆ—ଗ୍ରା. ପୁଂ, ବିଂ. ପରଚ୍ଛିଦ୍ରା-ନ୍ଵେଷୀ, ଅହଙ୍କାରିଆ ।

ହିଂସାଳୁ—ବିଂ. (ହିନ୍ସ୍+ଆଳୁ) ହିଂସ୍ର, ଅପକାରକ, ବଧଶୀଳ, ହିଂସା କରିବା ଯାହାର ସ୍ଵଭାବ ।

ହିଂସାଳୁକ—ପୁଂ. ବିଂ.( ହିଂସାଳୁ + କ ) ହିଂସ୍ର, କୁକୁର, (ବିଂ) ହିଂସାଳୁ ଦେଖ ।

ହିଂସିତ—ବିଂ. (ହିନ୍ସ୍+ମି.ତ) ହତ, ହିଂସାପ୍ରାପ୍ତ,ଯାହାକୁ ହିଂସା କରାଯାଇ-ଅଛି ।

ହିଂସିବା—ଗ୍ରା. କ୍ରି. ହିଂସା କରିବା ।

ହିଂସୀର—ବି. ବ୍ୟାଘ୍ର ।

ହିଂସୁକ—ପୁଂ. ବିଂ. (ହିନ୍ସ୍ + କ,ଉକ) ହିଂସାଶୀଳ, ପରଶ୍ରୀକାତର ।

ହିଂସ୍ୟ—ପୁଂ.ବିଂ. (ହିନ୍ସ୍+ମି.ଯ)ବଧ୍ୟ, ହିଂସାର ଉପଯୋଗୀ ।

ହିଂସ୍ର—ପୁଂ. ବିଂ. (ହିନ୍ସ୍ + ର) ହନ୍ତା, ପ୍ରାଣଘାତୀ, ଅନିଷ୍ଟକାରକ, ନିଷ୍ଠୁର, ହିଂସାଶୀଳ,(ବି) ଶିବଙ୍କର ଘୋରରୂପ, ଶିବ, ଭୀମସେନ, ହିଂସ୍ର ପଶୁ ବ୍ୟାଘ୍ରାଦି ।

ହିଂସ୍ରକନ୍ତୁ—ବିଂ. (ହିଂସ୍ର+ସ୍ଵାର୍ଥେ.କ) ହିଂସ୍ର ଦେଖ, (ବି) ହିଂସ୍ର ପଶୁ,( ସ୍ତ୍ରୀ ) ହିଂସ୍ରିକା ।

ହିଂସ୍ରକଜନ୍ତୁ—ବି.ବ୍ୟାଘ୍ରାଦି ପ୍ରାଣଘାତକ ଜୀବ

ହିଂସ୍ରକପ୍ରକୃତ—ବି. ( କ.ଧା ) ପରର ଅନିଷ୍ଟ କରିବା ସ୍ଵଭାବ, (ପୁଂ ଓ ସ୍ତ୍ରୀ.ବିଂ-ବ.ବ୍ରୀ)ହିଂସାଶୀଳ,ଅତଏବ ହିଂସାଳିଆ ।

ହିଂସ୍ରପଶୁ—ବି. ହିଂସ୍ରଜନ୍ତୁ ଦେଖ ।

ହିଂସ୍ରା—ବି. (ହିଂସ୍ର+ଆ) ଜଟାମାଂସୀ, ଗବେଧୁକା, ଗରଗଡ଼, ନାଡ଼ୀ, ଶିରା. ଏଳବାଳୁକ, କାକାଦନୀ, କଣ୍ଟେଇ-କୋଳି, (ବିଂ) ହିଂସ୍ରର ସ୍ତ୍ରୀଲିଙ୍ଗ ।

ହିଂସ୍ରିକା—ସ୍ତ୍ରୀ. ବିଂ. ହିଂସ୍ରକର ସ୍ତ୍ରୀଲିଙ୍ଗ, (ଗ୍ରା.ପୁଂ) ହିଂସ୍ର ଦେଖ, ଈର୍ଷାଯୁକ୍ତ ।

ହିଃ—ଗ୍ରା, ଅବ୍ୟ. ଅନ୍ୟକୁ ଉପହାସ କରି ଉଡ଼ାଇଦେବାର ଶବ୍ଦ ।

ହିଁ—ଗ୍ରା. ଅବ୍ୟ. (ସଂ-ହି) ଅବଧାରଣ ବା ନିଶ୍ଚୟାର୍ଥକ; ନିଶ୍ଚେ. କେବଳ, ସୁଦ୍ଧା, ଏବଂ, ମଧ୍ୟ, ସମ୍ଭବତଃ,(ବି) ଅନୁନାସିକ ହାସ୍ୟକରିବା ଶବ୍ଦ ।

ହିଁଆଳି(ଲି)—ପ୍ରା. (ମେଦିନୀ.)ବି. ପ୍ରହେ-ଳିକା, ପହେଳି(ଡ଼ି), ଗୂଢ଼ାର୍ଥକ ପ୍ରଶ୍ନ, ସମସ୍ୟା ।

ହିଁଚୁଡ଼—ପ୍ରା.(ମେଦିନୀ.) ବି.ପଣସକଠା ।

ହିଁସ୍—ପ୍ରା. (ସମ୍ବଲ) ବି. ଈର୍ଷା ।

ହିଁସା—ଯା. ବି. ବସ୍ତୁ ବା ବ୍ୟବସାୟରେ ଅଂଶ, (ଗ୍ରା.ବି) ହିଂସନ ଦେଖ ।

ହିଁସାଦାର—ଯା.ବି.ଭାଗଦାର,ଅଂଶିଦାର ।

ହିଁସାଦାରି—ଯା. ବି. ସମ୍ପତ୍ତିରେ ବା ବ୍ୟବସାୟରେ ଭାଗଦାରି, ଭାଗଦାର ହେବା ଅବସ୍ଥା ।

ହିଁସ୍ୟା—ପ୍ରା.(ଯାଜପୁର)ବି.ହିଁସା ଦେଖ ।

ହିଁହିଁ—ଗ୍ରା.ଅବ୍ୟ.ଦାନ୍ତକୁ ଈଷତ୍ ବିକାଶ ପୂର୍ବକ ଧ୍ଵନିକରି ହସିବାର ଶବ୍ଦ ।

ହିଁହିଁଆ—ଗ୍ରା. ପୁଂ. ବିଂ. (ଅନାଦର ବା ନିନ୍ଦାସୂଚକ) ଯେ ସବୁବେଳେ ହିଁ ହିଁ ହୋଇ ହସେ ।

ହିକ୍‌ମତ୍—ଯା. ବି. ଜ୍ଞାନ,ପଟୁତା,ଚତୁରତା, ବିଦ୍ୟା, ମାନସିକ ପ୍ରଖରତା, ମାରଣାଦି ଆଭିଚାରିକ ବିଦ୍ୟା, ଅଦ୍ଭୁତ ଫଳପ୍ରଦ ମନ୍ତ୍ର, ଔଷଧ ବା ଦ୍ରବ୍ୟ ।

ହିକ୍‌ମତ୍‌ବାଜ୍—ଯା. ବିଂ. ମନ୍ତ୍ରଯନ୍ତ୍ରଜ୍ଞ, ଚତୁର, କୌଶଳୀ ।

ହିକ୍‌ମତ—ଯା.ବି. ହିକ୍‌ମତ୍ ଦେଖ,ମନ୍ତ୍ର-ଯନ୍ତ୍ରାଦିର ପ୍ରୟୋଗ, ( ବିଂ ) ହିକ୍‌ମତ୍ ସମ୍ବନ୍ଧୀୟ, ହିକ୍‌ମତ୍‌ବାଜ୍ ଦେଖ ।

ହିକମିତ୍—ଯା. ବି. ଦର୍ଶନଶାସ୍ତ୍ର ।

ହିକା—ଗ୍ରା.ବି. (ସଂ-ହିକ୍କା) ହିକ୍କା ଦେଖ ।

ହିକା(କେ)ଇବା—ଗ୍ରା. କ୍ରି, ହୃଦୟରୁ ରୁଦ୍ଧବାୟୁ ବାହାରି ଆସି ନ ପାରିବା ଯୋଗୁଁ ରୁଦ୍ଧଶ୍ଵାସ ଛାଡ଼ିବା,ହିକ୍କାମାରିବା ।

ହିକ୍କ—(ଧାତୁ) ହିଂସା କରିବା, କୂଜନ କରିବା ।

ହିକ୍କା—ବି. ( ହିକ୍କ+ଆ ) ହାକୁଟି, ରୋଗୋପସର୍ଗବିଶେଷ,ରୁଦ୍ଧ ଶ୍ଵାସବାୟୁର ସାମୟିକ ନିର୍ଗମନରୂପ ରୋଗ,ଚକ୍କାର ।

ହିକ୍କାଆସିବା—ଗ୍ରା.କ୍ରି.ଆସନ୍ନ ମୃତ୍ୟୁହେବା ବ୍ୟକ୍ତିର ମୃତ୍ୟୁ ପୂର୍ବରୁ ଅଶାନ୍ତିଶ ପବନ ଉଠିବା, ରୁଦ୍ଧବାୟୁଜନିତ ହିକ୍କା ବା ଅସମ୍ପୂର୍ଣ୍ଣ ବା ଅପରିଣତ ହାକୁଟି ଉପସ୍ଥିତ ହେବା । [ ବ୍ୟାଘ୍ର ।

ହିଙ୍କାର—ବି. (ହିଁ—ଧ୍ଵନି+କୃ+କ.ଅ)

ହିଙ୍ଗ୍‌ଡ଼ା—ଗ୍ରା. ବି. ହିଙ୍ଗୁ ସଦୃଶ—କିନ୍ତୁ ଗୁଣରେ ଗନ୍ଧରେ ନିକୃଷ୍ଟତର ନିର୍ଯ୍ୟାସ-ବିଶେଷ, (ପ୍ରା. ଗଞ୍ଜାମ. ବି) ନାଡ଼ିହିଙ୍ଗୁ ଦେଖ ।

ହିଙ୍ଗା—ଗ୍ରା. ବିଂ, ହେଙ୍ଗା, ଅକାମିକା, ଅକମିକା ଓ ଆମ୍ଭଗର୍ବୀ, (ପ୍ରା.ବଲାଙ୍ଗିର ପାଟଣା, ବି) ଗୁଳଘରର ରୁଅ ।

ହିଙ୍ଗିଡ଼ି—ଗ୍ରା. ବି, ଏକପ୍ରକାର ମେଲ ।

ହିଙ୍ଗୁ—ବି. ( ହିମ୍+ଗମ୍+କ.ଉ ) ବା (ହିନ୍+କ.ଗୁ)ନିର୍ଯ୍ୟାସବିଶେଷ,ହେଙ୍ଗୁ, ବଂଶପତ୍ରୀ, ବାଉଁଶପତର ଘାସ ।

ହିଙ୍ଗୁନାଡ଼ିକା—ବି. ନାଡ଼ିହିଙ୍ଗୁ, ଏକ-ପ୍ରକାର ହିଙ୍ଗୁ ।

ହିଙ୍ଗୁନିର୍ଯ୍ୟାସ—ବି. ହିଙ୍ଗୁଗଛର ଚେରର ରସ ବା ଅଠା, ନିମ୍ବଗଛ ।

ହିଙ୍ଗୁପତ୍ର—ବି. ଇଙ୍ଗୁଦୀ ବୃକ୍ଷ ।

ହିଙ୍ଗୁପତ୍ରୀ—ବି. ବାଉଁଶପତର ଘାସ ପରି ଏକପ୍ରକାର ଘାସ ।

ହିଙ୍ଗୁପର୍ଣ୍ଣୀ—ବି. ବଂଶପତ୍ରୀ ।

ହିଙ୍ଗୁଳ—ବି. (ହିଙ୍ଗୁ+ଲା+କ.ଅ)୧୦୧ ଭାଗ ପାରଦ ଓ ୧୬ ଭାଗ ଗନ୍ଧକ ମିଶ୍ରଣ ଦ୍ଵାରା ଉତ୍ପନ୍ନ ରଞ୍ଜନ ଦ୍ରବ୍ୟବିଶେଷ, ହେଙ୍ଗୁଳ ।

ହିଙ୍ଗୁଳଶୋଧନ—ବି.ମେଣ୍ଢୀଦୁଗ୍ଧ,ଟଭାରସ ଓ ଅଦାରସ ଦ୍ଵାରା ୨ଥର ଭାବନାଦେଇ ହେଙ୍ଗୁଳକୁ ଶୁଦ୍ଧକରିବା ।

ହିଙ୍ଗୁଳା—ସ୍ତ୍ରୀ. ବି, ବାମନ ପୁରାଣୋକ୍ତ ଦେଶବିଶେଷ, ଦେବୀବିଶେଷ (ଏହାଙ୍କର ଅଗ୍ନିର ବର୍ଣ୍ଣ ହିଙ୍ଗୁଳ ପରି ଲାଲ ଥିବାରୁ) ଓଡ଼ିଶାର ଗଡ଼ଜାତ ତାଳଚେର

ରାଜ୍ୟରେ ପୂଜିତା ଗୋପାଳପ୍ରସାଦ ଗ୍ରାମରେ ଅଧିଷ୍ଠିତା ଅଗ୍ନିରୂପଧାରଣୀ ଦେବୀବିଶେଷ, ହୁଙ୍ଗୁଳାଯାତ୍ରା ଦେଖ ।

ହୁଙ୍ଗୁଳା(ଳେ)ଇ--ଗ୍ରା.ବିଂ. ହୁଙ୍ଗୁଳା ଦେଖ (ସଂ-ହୁଙ୍ଗୁଳାକ୍ଷୀ), ଆସାମଜ୍ୱାଳାମୁଖୀ ତୀର୍ଥରେ ପୂଜିତା ଦେବୀଙ୍କ ନାମ ।

ହୁଙ୍ଗୁଳାକ୍ଷୀ—ସ୍ତ୍ରୀ. ବି. ଆସାମ ଜ୍ୱାଳାମୁଖୀ ତୀର୍ଥରେ ପୂଜିତା ଦେବୀବିଶେଷ ।

ହୁଙ୍ଗୁଳାପୀଠ-ଗ୍ରା.ବି. ତାଳଚେର ରାଜ୍ୟର ସିଙ୍ଗଡ଼ା ନଦୀ କୂଳରେ ଗୋପାଳପ୍ରସାଦ ଗ୍ରାମରେ ହୁଙ୍ଗୁଳାଠାକୁରାଣୀଙ୍କର ଅଧିଷ୍ଠିତ ସ୍ଥାନ ।

ହୁଙ୍ଗୁଳାଯାତ୍ରା—ବି. ତାଳଚେର ରାଜ୍ୟର ଗୋପାଳପ୍ରସାଦ ଗ୍ରାମରେ ଚୈତ୍ର ଶୁକ୍ଳ ଚତୁର୍ଦ୍ଦଶୀଦିନ ଅଗ୍ନିରୂପରେ ପୂଜିତା ହୁଙ୍ଗୁଳାଠାକୁରାଣୀଙ୍କର ଉତ୍ସବ, (ଏ ଉତ୍ସବ ଉତ୍କଳ ପ୍ରସିଦ୍ଧ,ଯାତ୍ରାର ୨୧ଦିନ ପୂର୍ବରୁ ହବିଷ୍ୟାଶୀ ହୋଇ ଦେହୁରି (ପଜକ) ଦେବୀଙ୍କର ଲସ୍ଥରେ ରହେ, ଯାତ୍ରା ସାତଦିନ ଆଗୁଁ ଦେହୁରିଠାରେ ସ୍ୱପ୍ନାଦେଶ ଦ୍ୱାରା ଦେବୀଙ୍କର ଉତ୍ସସ୍ଥାନ ନିର୍ଦ୍ଦିଷ୍ଟ ହୋଇଥାଏ, ଉତ୍ସସ୍ଥାନରେ ଭୂଗର୍ଭରୁ ଅଗ୍ନିରୂପରେ ଦେବୀଙ୍କର ଆବିର୍ଭାବ ହେବାର ଜଣାଯିବାରୁ ପଥର କୋଇଲା ଦିଆଯାଇ ସେହି ଅଗ୍ନିକୁ ବୃହଦାକାର କରାଯାଏ,ପ୍ରାୟ ତାଳଚେର ନିବାସୀ ଓ ଆସପାସ ରାଜ୍ୟନିବାସୀ କେତେକ ଲୋକ ନିଜ ନିଜ ଶିଶୁମାନଙ୍କର ଓ ମାନସିକ କରିଥିବା ବ୍ୟକ୍ତିମାନଙ୍କର ଚୂଡ଼ାକର୍ମ (ବାଳମଙ୍ଗା) ଉକ୍ତ ହୁଙ୍ଗୁଳାପୀଠରେ ସାଧାରଣ ସମ୍ପନ୍ନ କରାନ୍ତି ଆଉ ମଧ୍ୟ ବିପଦରୁ ଉଦ୍ଧାର ଓ ମନୋବାଞ୍ଛା ପୂରଣାର୍ଥ ବଳିଭୋଗାଦି ମାନସିକ ଦ୍ରବ୍ୟମାନ ନେଇ ନାନାସ୍ଥାନରୁ ଆସୁଥିବା ବହୁ ସଂଖ୍ୟକ ଲୋକମାନେ ଉକ୍ତ ସମସ୍ତ କାରଣରୁ ଜମା ହୁଅନ୍ତି, ହୁଙ୍ଗୁଳା ଉତ୍ସ ହୋଇଥିବା ଅଗ୍ନିରେ ଶାଢ଼ି, ପାଟ, ଖୋଟ, ଜୀବନ୍ତ କୁକୁଟ, ଗଜମୁଆଁ, କଦଳୀ, କେରା, ଗୁଡ଼,ଘିଅଆଦି ବଳିଭୋଗରୂପେ ନିକ୍ଷେପ କରିବା ଓ ପ୍ରଜା ସମସ୍ତରେ ଛାଗ, ମେଷ, ମହିଷ, ବଳିଦାନ ପ୍ରଥା ବହୁକାଳରୁ ଚାଲିଆସୁଅଛି,ପୂଜାପରେ ଅଗ୍ନିରେ ପଶୁ,ଘୃତାଦି ବହୁପରିମାଣରେ ଆହୁତି ଦିଆଯାଏ, ଯାତ୍ରାଦିନର ନଅଦିନ ପରେ ଶିରୁଳା ଯାତ୍ରା ହୁଏ,ଏ ଦିନରେ ମଧ୍ୟ ବହୁସଂଖ୍ୟକ ଲୋକ ଜମା ହୁଅନ୍ତି, ଶିରୁଳା ଯାତ୍ରା ବୈଶାଖ କୃଷ୍ଣସପ୍ତମୀରେ ହୋଇଥାଏ, ଶିରୁଳାଦିନ ଆହୁତି ପରେ ଦେବୀଙ୍କର ଅନ୍ତର୍ଦ୍ଧାନ ହୋଇଥାଏ, ଆବହମାନ କାଳରୁ ବଂଶ ପରମ୍ପରା କ୍ରମେ ସେହି ଗ୍ରାମବାସୀ ଲୋକଠାରେ ଦେବୀଙ୍କର ଆଦେଶ ହୁଏ, ତାହାଙ୍କୁ ପଡ଼ିଆରି କହନ୍ତି, କେତେକ ବର୍ଷ ତଳେ ତାର ନିକଟ ସିଙ୍ଗଡ଼ାଶୁଖା ନଦୀରେ ଠାକୁରାଣୀଙ୍କର ଉତ୍ସ ସ୍ଥାନ ନିର୍ଦ୍ଦିଷ୍ଟ ଥିଲା, ଅକସ୍ମାତ୍ ଘୋର ବର୍ଷା ହେତୁରୁ ପ୍ରୋକ୍ତ ଶୁଖା ନଦୀରେ ବହୁପରିମାଣରେ ପ୍ରଖର ସ୍ରୋତରେ ନଦୀବଢ଼ି ଥିଲା, ଏପରି ଅବସ୍ଥାରେ ମଧ୍ୟ ସ୍ରୋତ ଭେଦକରି ଠାକୁରାଣୀଙ୍କର ଅଗ୍ନିଶିଖା ଦେଦୀପ୍ୟମାନ ହୋଇ ଉଠୁଥିବାର ଦେଖାଅଛି, ଏଣୁ ଲୋକରେ ଉକ୍ତ ହୁଙ୍ଗୁଳା ଠାକୁରାଣୀଙ୍କର ପ୍ରତ୍ୟକ୍ଷତା ଅଦ୍ୟାବଧି ଅକ୍ଷୁଣ୍ଣ ରହିଅଛି ।

ହୁଙ୍ଗୁଳ—ବି. (ହୁଙ୍ଗୁ+ଲା+ଇ) ହୁଙ୍ଗୁଳ. (ବିଂ) ହୁଙ୍ଗୁଲିଆ ଦେଖ ।

ହୁଙ୍ଗୁଲିଆ-ବିଂ. ହୁଙ୍ଗୁଳସମ୍ବନ୍ଧୀୟ.ହୁଙ୍ଗୁଳ-ରଞ୍ଜିତ, ହୁଙ୍ଗୁଳ ବର୍ଣ୍ଣବିଶିଷ୍ଟ, ନାଲି ।

ହୁଙ୍ଗୁଳିକା—ବି. (ହୁଙ୍ଗୁଳ+ଇକ+ଆ) ଭେଜ୍ଯୋନାସ୍ତି ।

ହୁଙ୍ଗୁଳୀ-ବି. ତାଡ଼ୀଗ୍ରୀ, ବାଇଗଣ, ବୃହତୀ ବହ୍ନାଙ୍କୁଡ଼, ଦେବିକୋଳି ।

ହୁଙ୍ଗୁଳିପତ୍ରିକା—ବି. ବଂଶପତ୍ରୀ ତୃଣ ।

ହୁଚ୍‌କି—ପ୍ରା. (ସମ୍ବଲ) ବି. ହିକ୍କାବେଗ ।

ହୁଚ୍‌କିବା--ପ୍ରା. (ଟଙ୍କୁଆଳ) ଡରିବା, ଅମଙ୍ଗଳ ହେବା ।

ହୁଚଙ୍କିତ-ପ୍ରା. (ସମ୍ବଲ) ବିଂ. ଅପମାନିତ, ଲଜ୍ଜିତ ।

ହୁଚ୍‌ଖିଗୁଇବା-ପ୍ରା. (ସମ୍ବଲ) କ୍ରି. ଟାଣିବା,

ହୁଜରତ୍(ତ୍)-ଯା. ବି. ମକ୍କାଠାରୁ ହିଜରତ୍ ମହମ୍ମଦଙ୍କର ପ୍ରସ୍ଥାନ ଦିବସର ପରଦିନଠାରୁ ଗଣନା ଆରମ୍ଭ ହୋଇଥିବା ମୁସଲମାନଙ୍କର ଅବ୍ଦ ବା ବର୍ଷ ।

ହିଜଡ଼ା—ଗ୍ରା. ବି. ହେଞ୍ଜଡ଼, ନପୁଂସକ, ସ୍ତ୍ରୀ ଓ ପୁରୁଷ ଲକ୍ଷଣବିଶିଷ୍ଟ ପୁରୁଷ, (ଯାହାର ସ୍ତନ ଓ ଶ୍ମଶ୍ରୁ ଥାଏ) ବିଂ. ନିର୍ଲଜ୍ଜ, ହେଞ୍ଜଡ଼ା ଦେଖ ।

ହିଜରତ୍-ଯା. ବି. ପଳାୟନ, ବିଶେଷତଃ ମୁସଲମାନ ଧର୍ମ ପ୍ରବର୍ତ୍ତକ ମହମ୍ମଦଙ୍କର ମକ୍‌କାରୁ ମଦିନାକୁ ପଳାୟନ ।

ହିଜରୀ—ଯା. ବି. ମୁସଲମାନମାନଙ୍କ ସାଲ, ବର୍ଷ ।

ହିଜଲିବାଦାମ-ପ୍ରା. (ମେଦି).ବି.ଲଙ୍କାଆମ୍ବ ।

ହିଞ୍ଚି—ବି. ହିଞ୍ଚଳ ଦେଖ ।

ହିଞ୍ଜଡ଼—ଗ୍ରା.ବି ଓ ବିଂ ହିଜଡ଼ ଦେଖ ।

ହିଞ୍ଜଡ଼ା—ଗ୍ରା. ପୁଂ. ବିଂ ଓ ବି. ହିଜଡ଼ ଦେଖ, ହେରସା, ଯେ ଉଚ୍ଚହାସ୍ୟ କରେ, ନିର୍ଲଜ୍ଜ ।

ହିଞ୍ଜଡ଼ୀ-ଗ୍ରା. ସ୍ତ୍ରୀ. ବିଂ. ହିଜଡ଼ୀ, ହେଞ୍ଜଡ଼ୀ, ସ୍ତ୍ରୀଚିହ୍ନହୀନା ନାରୀ, ଯେଉଁ ସ୍ତ୍ରୀର ଋତୁ-ଆଦି ଯୌବନ ଲକ୍ଷଣ ପ୍ରକାଶିତ ହୁଏ ନାହିଁ, (ବିଂ) ନିର୍ଲଜ୍ଜୀ ।

ହିଞ୍ଚଳ—ଗ୍ରା. ବି.(ସଂ-ହିଜ୍ଜଲ, ଇଜ୍ଜଲ) ଜମ୍ବୁକାଦି ବର୍ଗର ନାତି ବୃହତ୍ ତରୁ, ନପୁଂସକ ।

ହିଞ୍ଜଡ଼ା—ଗ୍ରା.ବି ଓ ବିଂ. ହିଞ୍ଜିଡ଼ା ଦେଖ ।

ହିଞ୍ଜରିବା—ଗ୍ରା.କ୍ରି. ଝୁରିବା, ଶୁଖିଯିବା, ଶୀର୍ଣ୍ଣହେବା ।

ହିଞ୍ଜଲୀ—ଗ୍ରା. ବି. ଏକପ୍ରକାର ଧୂଆଁପତ୍ର, ବଇଗିଣୀ ଧୂଆଁପତ୍ର ।

ହିଞ୍ଜୀର୍—ବି. (ହିନ୍ତ୍+କ.ଈର+ଅ) ହସ୍ତିର ପଦବନ୍ଧନ ରଜ୍ଜୁ ବା ଶୃଙ୍ଖଳା, ହାତବନ୍ଧା ଦଉଡ଼ି ବା ଶିଙ୍କୁଳି, ଗଣ୍ଠି, ଗଣ୍ଡି ।

ହିଞ୍ଜୁଳ—ବି. ହିଞ୍ଚଳ ଦେଖ ।

ହ୍ୱିଟଲର୍—ଗ୍ରା. ବି. ପ୍ରଜାତନ୍ତ୍ର ଶାସିତ ଆଧୁନିକ ଜର୍ମାନୀର ଡିରେକ୍ଟର ବା

ଭାଗ୍ୟବିଧାତା ।
ହିଂଟା—ଗ୍ରା. ସର୍ବ, ସେହି ଟା ।
ହିଂଟାଇବା—ଗ୍ରା. କ୍ରି. ଟିଂଟାଇବା, (ଭିତ-ଭିତରୁ) ଆଣିବା, ବାହାର କରିବା ।
ହିଟିପଡ଼ିବା—ପ୍ରା: ( ବଲାଙ୍ଗିରପାଟଣା ) କ୍ରି. ପଡ଼ିଯିବା ।
ହିଟିବା—ପ୍ରା: (ପାଟଣା) କ୍ରି. ଝୁଣ୍ଟିବା, ଖସିପଡ଼ିବା, ( ପ୍ରା-ଖଡ଼ିଆଳ ) କ୍ରି. ଫିଟିବା,ମୁକ୍ତହେବା । [ କରିବା ।
ହିଡ଼୍—(ଧାତୁ) ଗତି କରିବା, ଅନାଦର
ହିଡ଼—ଗ୍ରା: ବ: (ସଂ-ଆଳି,ଲୀ) କିଆରିର ବା କ୍ଷେତର ସୀମାବନ୍ଧ, (ଏହାଦ୍ୱାରା ବିଲର ପାଣିକୁ ଅଟକାଇ ରଖାଯାଏ), ମାଟିର ଶ୍ରେଣ ବନ୍ଧ, ଦାନ୍ତ ଯେଉଁ ମାଂସମୟ ହିଡ ଉପରେ ଥାଏ,(ପ୍ରା-ଗଞ୍ଜାମ) ପୁଷ୍କରିଣୀର ଚତୁଃପାର୍ଶ୍ୱସ୍ଥ ବନ୍ଧ ବା ହିଡ଼ା ।
ହିଡ଼ଙ୍କାଉଡିଆ—ଗ୍ରା: ବଂ: ଅସମତଳ (ଜମିଆଦି), ଉଚାବଚ,ବିଷମ (ଭୂମି) ।
ହିଡ଼ମାଟିହିଡ଼ରେଲଦିବା--ଗ୍ରା: (ପ୍ରବଚନ) ଯେପରି ହିଡ଼ରୁ କ୍ରମେ ବନ୍ଧୁଆସିଥିବା ମାଟି ହିଡମୂଳରୁ ଖୋଳି ପୁଣି ହିଡ଼ରେ ଲଦାଯାଏ ସେହିପରି କୌଣସି ବିଷୟରୁ ଆଦାୟ ଧନକୁ ପୁଣି ସେହି ବିଷୟରେ ଅଧିକା ଖର୍ଚ୍ଚ ନ କରି ଲବ୍ଧ ଧନକୁ ସେହି ବିଷୟରେ ଖର୍ଚ୍ଚ କରି କାମ ମେଣ୍ଟାଇବାକୁ ବୁଝାଏ, ( ଏପରି ସ୍ଥଳରେ କୁହାଯାଇଥାଏ) ।
ହିଡ଼ମୁଣ୍ଡା—ଗ୍ରା: ବ. ହିଡ଼ର ଉପରଭାଗ ।
ହିଡମ୍ବ—ବ. ହିଡ଼ମ୍ବ ଦେଖ ।
ହିଡ଼ମ୍ବା—ବ: ସ୍ତ୍ରୀ ହିଡ଼ମ୍ବା ଦେଖ ।
ହିଡ଼ବାଡ଼—ଗ୍ରା. ବ. (ସହଚର ଅନର୍ଥକ) ହିଡ଼ ଦେଖ ।
ହିଡ଼ହିଡ଼ା—ଗ୍ରା: ପୁଂ: ବଂ: ରଙ୍କଣୀ, ମଟିଖିଆ ।
ହିଡ଼ମ୍ବ-ବ: (ହିନ୍ଡ଼୍+କ.ଇମ୍ବ) ପ୍ରସିଦ୍ଧ ରାକ୍ଷସବିଶେଷ, ଏ ଭୀମସେନଙ୍କ କର୍ତ୍ତୃକ ନିହତ ହୋଇଥିଲା ।
ହିଡ଼ମ୍ବଜିତ୍—ପୁଂ: ବ: ହିଡ଼ମ୍ବାସୁରର ନିହନ୍ତା ଭୀମସେନ, ହିଡ଼ମ୍ବନିସୂଦନ, (ଅ.ରୂ) ।
ହିଡ଼ମ୍ବଭିତ୍—ପୁଂ. ବ. ଭୀମସେନ,ମଧ୍ୟମ ପାଣ୍ଡବ ।
ହିଡ଼ମ୍ବା-ସ୍ତ୍ରୀ. ବ. ହିଡ଼ମ୍ବ ରାକ୍ଷସର ଭଉଣୀ, ଘଟୋତ୍କଚର ମାତା ।
ହିଡ଼ମ୍ବାପତି—ପୁଂ. ବ. ଭୀମସେନ, ହନୁମାନ୍ ।
ହିଡ଼ମ୍ବାରମଣ—ପୁଂ. ବ: ଭୀମସେନ, ହନୁମାନ୍ ।
ହିଣ୍ଡ୍—(ଧାତୁ) ଗମନ, ରମଣ, ଘୃଣା, ଉପହାସ କରିବାରେ ବ୍ୟବହୃତ ।
ହିଣ୍ଡକ—ପୁଂ: ବଂ. ବୁଲକ,ଭ୍ରମଣଶୀଳ ।
ହିଣ୍ଡନ—ବ: (ହିଣ୍ଡ୍+ଭା ଅନ) ଭ୍ରମଣ, ଗମନ, ରମଣ, ଲେଖନ ।
ହିଣ୍ଡିକ-ପୁଂ.ବ:ଗଣକ,ଦୈବଜ୍ଞ,ଲଗ୍ନାଗୃଯ୍ୟ, ଫଳିତଜ୍ୟୋତିଷୀ, ସ୍ତବପାଠକାଗୃଯ୍ୟ, ଭାଟମାନଙ୍କର ସରଦାର ।
ହିଣ୍ଡିବା—ପ୍ରା.(ଜୟପୁର)କ୍ରି.ଘୂରିବୁଲିବା, ଏଣେତେଣେ ବୁଲିବା ।
ହିଣ୍ଡିବାଦାମ୍—ଗ୍ରା.ବ.ଅଣ୍ଡାମାନ୍ ଦ୍ୱୀପରେ ଜାତ ଜଠ୍ୟାସ ଉତ୍ପାଦକ ବୃକ୍ଷବିଶେଷ ।
ହିଣ୍ଡିର—ବ. (ହିଣ୍ଡ୍+କ:ଇର) ହିଣ୍ଡୀର ଦେଖ ।
ହିଣ୍ଡୀ-ସ୍ତ୍ରୀ.ବ.(ହିଣ୍ଡ୍+କ:ଅ+ଈ)ଦୁର୍ଗା ।
ହିଣ୍ଡୀପ୍ରିୟତମ—ପୁଂ. ବ. (୬ତତ୍) ଶିବ, ମହାଦେବ ।
ହିଣ୍ଡୀର—ବ: (ହିଣ୍ଡ୍+କ.ଈର)ସମୁଦ୍ର-ଫେନ, ଏକପ୍ରକାର ସାମୁଦ୍ରିକ ଜୀବର ଅସ୍ଥି, ବାଇଗଣ,ପୁରୁଷ, ରୁଚକ=ବୀଜପୁର, ଟଗ, ଡାଳିମ୍ବ ଗଛ ।
ହିଣ୍ଡୁକ—ପୁଂ. ବ. ( ହିଣ୍ଡ୍+କ.ଉକ ) ମହାଦେବ, ଶିବ ।
ହିତ—ବଂ: (ଧା+ମଁ.ତ) ଉପକାରକ, ମଙ୍ଗଳସୂଚକ, ପଥ୍ୟ, ଅନୁକୂଳ,ଯୋଗ୍ୟ, ପ୍ରିୟ, ବ୍ୟବହାର୍ଯ୍ୟ,( ବ--ହି+ଭା.ତ ) ଉପକାର, ମଙ୍ଗଳ,ଶୁଭ, ଗମନ,ପ୍ରାପ୍ତି, ମିତ୍ର, ଗତ, ଜ୍ୟୋତିଷ ମତରେ ଗ୍ରହାବସ୍ଥାନ ଭେଦର ସଂଜ୍ଞାବିଶେଷ ।
ହିତକ—ପୁଂ. ବ. ( ହିତ+କ ) ଶିଶୁ, ଶିଶୁଜାତ, ପଶୁଶାବକ ।
ହିତକଥା—ବ: ( କ.ଧା ) ସତ୍ପରାମର୍ଶ, ହିତକର ଉପଦେଶ ।
ହିତକର—ବ: (ହିତ+କୃ+ଅ) ଉପକାରକ, ମଙ୍ଗଳଜନକ,ଅନୁକୂଳ,ହିତକାରୀ, ପ୍ରିୟକାରୀ, (ସ୍ତ୍ରୀ) ହିତକରୀ ।
ହିତକା—ଗ୍ରା: ବଂ: ମଙ୍ଗଳସାଧନ ।
ହିତକାମ—ପୁଂ. ବଂ. (ବ.ବ୍ରୀ) ହିତକାମୀ ଦେଖ, (ସ୍ତ୍ରୀ) ହିତକାମା ।
ହିତକାମନା—ବ: (୬ତତ୍) ମଙ୍ଗଳ ବା ଉପକାର କରିବାର ଇଚ୍ଛା, ହିତେଚ୍ଛା ।
ହିତକାମୀ—ପୁଂ.ବଂ.(ହିତକାମ+ଇନ୍) ମଙ୍ଗଳାକାଂକ୍ଷୀ,ଆଶୀର୍ବାଦକ,ହିତେଚ୍ଛୁ, (ସ୍ତ୍ରୀ) ହିତକାମିନୀ ।
ହିତକାମ୍ୟା—ବ.ହିତେଚ୍ଛା,ହିତଅଭିଳାଷ
ହିତକାରକ—ପୁ.ବଂ.ହିତକାରୀ ଦେଖ, (ସ୍ତ୍ରୀ) ହିତକାରିକା ।
ହିତକାରୀ—ପୁଂ.ବଂ.(ହିତ+କୃ+ଇନ୍) ଉପକାରକ, ଯେ ହିତକରେ, ( ସ୍ତ୍ରୀ ) ହିତକାରିଣୀ ।
ହିତତା—ବ: ଉପକାରିତା ।
ହିତପ୍ରଣୀ—ବି.(ହିତ+ପ୍ର+ଣୀ+କ୍ୱିପ୍) ଚର, ଦୂତ ।
ହିତବଚନ(ବାକ୍ୟ)—ବ:ହିତୋପଦେଶ, ହିତକଥା ଦେଖ ।
ହିତବାଦୀ—ପୁଂ. ବଂ. (ହିତ+ବଦ୍+କ.ଇନ୍ ସତ୍ପରାମର୍ଶଦାତା,ଯେ ହିତକଥା କହେ, ହିତଭାଷୀ, ( ସ୍ତ୍ରୀ ) ହିତବାଦିନୀ ।
ହିତବୁଦ୍ଧି—ବ: ଉତ୍ତମବୁଦ୍ଧି, ସଦ୍‌ବୁଦ୍ଧି, (ବଂ-ବ.ବ୍ରୀ) ଉତ୍ତମବୁଦ୍ଧିବିଶିଷ୍ଟ,ହିତକର ବୁଦ୍ଧିଯୁକ୍ତ ।
ହିତବୋଧ—ବି. ମଙ୍ଗଳ ସମ୍ବନ୍ଧେ ଜ୍ଞାନ ।
ହିତଭାଷଣ—ବି. (୬ତତ୍) ହିତବାକ୍ୟର କଥନ, ସଦୁପଦେଶ ।
ହିତଭାଷୀ—ପୁଂ. ବଂ. (ହିତ+ଭାଷ୍+କ.ଇନ୍) ହିତବାଦୀ ଦେଖ, (ସ୍ତ୍ରୀ) ହିତଭାଷିଣୀ ।

ହିତକୋହିତ—ବି, ଯାବଜ୍ଜୀବନ, ଜନଗ୍ର ।
ହିତସାଧକ—ପୁଂ, ବିଂ, ଯେ ହିତସାଧନ କରେ, ହିତକାରକ,(ସ୍ତ୍ରୀ)ହିତସାଧିକା ।
ହିତସାଧନ(ନା)—ବି. (ତତ୍ପୁ)ମଙ୍ଗଳ-ସାଧନ, ହିତ ବା ଉପକାର କରଣ ।
ହିତା—ସ୍ତ୍ରୀ. ବିଂ, ( ହିତ+ଆ ) ହିତର ସ୍ତ୍ରୀଲିଙ୍ଗ, (ବି)ରକ୍ତବାହିନୀ ଶିରାବିଶେଷ, (ଗ୍ରା.ବିଂ) ହିତକର, ପଥ୍ୟ ।
ହିତାକାଙ୍କ୍ଷା—ବି.(ତତ୍ପୁ)ମଙ୍ଗଳକାମନା ।
ହିତାକାଙ୍କ୍ଷୀ—ପୁଂ. ବିଂ, (ହିତ+ଆ+କାନ୍କ୍ଷ୍+କ.ଇନ୍) ମଙ୍ଗଳାଭିଳାଷୀ, ହିତକାମୀ, (ସ୍ତ୍ରୀ) ହିତାକାଙ୍କ୍ଷିଣୀ ।
ହିତାଧ୍ୟାୟୀ—ପୁଂ.ବିଂ.ହିତାକାଙ୍କ୍ଷୀ ଦେଖ ।
ହିତାନୁଷ୍ଠାତା—ପୁଂ. ବିଂ. (ହିତ+ଅନୁ+ସ୍ଥା+କ.ତୃ) ହିତସାଧକ ଦେଖ, (ସ୍ତ୍ରୀ) ହିତାନୁଷ୍ଠାତ୍ରୀ ।
ହିତାନୁଷ୍ଠାନ—ବି. ହିତସାଧନ, କଲ୍ୟାଣ-ସାଧନ, ହିତକର କାର୍ଯ୍ୟ ।
ହିତାବଳୀ—ବି.(ହିତ+ଆବଳୀ)ଔଷଧ-ଗୁଳ୍ମବିଶେଷ ।
ହିତାବହ—ବିଂ. ହିତକାରୀ ଦେଖ, (ସ୍ତ୍ରୀ) ହିତାବହା ।
ହିତାର୍ଥ—ବି, ମଙ୍ଗଳ ଉଦ୍ଦେଶ୍ୟ, (ବିଂ. ବ.ବ୍ରୀ) ଶୁଭଉଦ୍ଦେଶ୍ୟଯୁକ୍ତ,(ଗ୍ରା,କ୍ରି.ବିଂ) ହିତାର୍ଥେ ଦେଖ ।
ହିତାର୍ଥୀ—ପୁଂ. ବିଂ, (ହିତ+ଅର୍ଥ+ଇନ୍)ହିତକାମୀ ଦେଖ,(ସ୍ତ୍ରୀ)ହିତାର୍ଥିନୀ ।
ହିତାର୍ଥେ—ଗ୍ରା. କ୍ରି. ବିଂ, ମଙ୍ଗଳାର୍ଥେ, ମଙ୍ଗଳ ଉଦ୍ଦେଶ୍ୟରେ ।
ହିତାଶଂସା—ବି.ହିତାଭିଳାଷ,ହିତେଚ୍ଛା ।
ହିତାହିତ—ବି. (ଦ୍ୱନ୍ଦ୍ୱ) ହିତ ଓ ଅହିତ, କର୍ତ୍ତବ୍ୟାକର୍ତ୍ତବ୍ୟ, ନ୍ୟାଯ୍ୟାନ୍ୟାଯ୍ୟ,ଉପକାର ଓ ଅପକାର, ( ବିଂ ) ଭଲମନ୍ଦ, ପଥ୍ୟାପଥ୍ୟ ।
ହିତାହିତଜ୍ଞ-ପୁଂ.ବିଂ.ହିତାହିତ ବିବେଚକ, ବିବେକବାନ୍,କର୍ତ୍ତବ୍ୟାକର୍ତ୍ତବ୍ୟ ବିଚାର-ଶୀଳ, (ସ୍ତ୍ରୀ) ହିତାହିତଜ୍ଞା ।
ହିତାହିତଜ୍ଞାନ-ବି. ହିତାହିତ ବିବେଚନା ଦେଖ, କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟ ବୁଝିବାର ଦେଉଥିବା ମାନସିକ ଶକ୍ତି ।
ହିତାହିତବିବେକ—ବି.(ତତ୍ପୁ)ଭଲମନ୍ଦ କାର୍ଯ୍ୟ ସମ୍ବନ୍ଧେ ବିଚାର ।
ହିତାହିତବିବେଚକ—ପୁଂ.ବିଂ,କର୍ତ୍ତବ୍ୟା-କର୍ତ୍ତବ୍ୟ ବିଚାରଶୀଳ, ବିବେକୀ, (ସ୍ତ୍ରୀ) ହିତାହିତବିବେଚିକା ।
ହିତାହିତବିବେଚନା—ବି. କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟ ସମ୍ବନ୍ଧେ ଭେଦଜ୍ଞାନ, ଭଲ-ମନ୍ଦ ବୁଝିପାରିବାର ଈଶ୍ୱରଦତ୍ତ ଶକ୍ତି, ବିବେକ, ଭଲମନ୍ଦର ବିଚାର ।
ହିତେ—ଗ୍ରା, ଅବ୍ୟ. ସକାଶେ, ପାଇଁ ।
ହିତେଚ୍ଛା—ବି. ହିତକାମନା ଦେଖ ।
ହିତେଚ୍ଛୁ—ପୁଂ, ବିଂ. ହିତକାମୀ ଦେଖ ।
ହିତେଚ୍ଛୁକ—ପୁଂ.ବିଂ.ହିତକାମୀ ଦେଖ, (ସ୍ତ୍ରୀ) ହିତେଚ୍ଛୁକା ।
ହିତୈଷଣା—ବି.(ହିତ+ଏଷଣା)ମଙ୍ଗଳ-ସାଧନେଚ୍ଛା, ହିତକାମନା ।
ହିତୈଷିଣୀ—ସ୍ତ୍ରୀ.ବିଂ. ହିତୈଷୀର ସ୍ତ୍ରୀଲିଙ୍ଗ, ପୂର୍ବେ ବାମଣ୍ଡା ରାଜଧାନୀ ଦେବଗଡ଼ରୁ ବାହାରୁଥିବା 'ସମ୍ବଲପୁରହିତୈଷିଣୀ' ନାମରେ ଓଡ଼ିଆ ପତ୍ରିକା ।
ହିତୈଷିତା—ସ୍ତ୍ରୀ.ବି.(ହିତୈଷିନ୍+ଭା.ତା) ପରୋପକାରିତା ।
ହିତୈଷୀ—ପୁଂ. ବିଂ. (ହିତ+ଇଷ୍+କ.ଇନ୍) ପରୋପକାର ସାଧନେଚ୍ଛୁ, ହିତକାମୀ ।
ହିତୋପଦେଶ—ବି, ସତ୍ପରାମର୍ଶ, ବିଷ୍ଣୁ-ଶର୍ମାଙ୍କ କୃତ ଗଦ୍ୟପଦ୍ୟାତ୍ମକ ସଂସ୍କୃତ ଗ୍ରନ୍ଥବିଶେଷ ।
ହିତୋପଦେଷ୍ଟା—ପୁଂ.ବିଂ. ସତ୍ପରାମର୍ଶ-ଦାତା,ହିତୋପଦେଶକ,(ସ୍ତ୍ରୀ) ଦେଷ୍ଟ୍ରୀ ।
ହିଦାଏତ—ଯା.ବି.ଅବସ୍ଥା,ବିଧି,ଆଦେଶ, ନିର୍ଦ୍ଦେଶ, ପୂର୍ବର ଘଟଣା ଅବସ୍ଥା,ବିଧି-ବ୍ୟବସ୍ଥା ଲିପିବଦ୍ଧ ଥିବା ଲେଖା ।
ହିନ୍ଦବନ୍ଦ—ପ୍ରା.(ସମ୍ବଲ) ବି, ବିନୟ ନମ୍ରତା ।
ହିନ୍ଦସ୍ୱାତ୍ୱ—ଯା.ବି. ମହାରାଣ ଜାଗିର, ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କର ଭରଣ ପୋଷ-ଣାର୍ଥ ଜୀବନକାଳ ପର୍ଯ୍ୟନ୍ତ ଛଡ଼ାଯାଇ-ଥିବା ସମ୍ପତ୍ତି ।
ହିନ୍ହିନା—ପ୍ରା, ( ସମ୍ବଲ ) ବି. ଅଶ୍ୱର ହ୍ରେଷାରବ ।
ହିନିଖତ୍ରିଆ—ଗ୍ରା,ବିଂ.ଅକାମିକା,ଦୁର୍ବଳ ।
ହିନୁ—ପ୍ରା. (ବଲାଙ୍ଗିର)ସର୍ବ. ସେଠାକୁ ।
ହିନ୍ତାଳ—ବି.(ହିନ୍+ତାଳ)ତାଳାଦିବର୍ଗର ଝର୍କୁରଗଣର ବୃକ୍ଷବିଶେଷ, ହେନ୍ତାଳ ଗଛ, (ସାଡ଼ପ୍ରକାର ଭୃଣବୃକ୍ଷ ମଧ୍ୟରୁ ଏକତମ, ଏହିଗଛ ୩ ଇଞ୍ଚ ମୋଟା ଓ ଦଶ ବାର ହାତ ଲମ୍ବ ହୁଏ, ଏହା ରୁଅ ନାମରେ ପ୍ରସିଦ୍ଧ ଓ ବେଶିଦିନ ଯାଏ, ଏହା ସମୁଦ୍ର ଉପକୂଳ ବଣରେ ବିଶେଷ ଦେଖାଯାଏ) ।
ହିନ୍ଦ୍—ଯା. ବି. ଭାରତବର୍ଷ, ହିନ୍ଦୁସ୍ଥାନ ।
ହିନ୍ଦୀ—ଯା, ବିଂ. (ଫ-ସିନ୍ଧୁ ଶବ୍ଦରୁ ଜାତ) ଭାରତୀୟ ହିନ୍ଦୁସ୍ଥାନ ସମ୍ବନ୍ଧୀୟ, ( ବି ) ଉତ୍ତର ପଶ୍ଚିମ ଭାରତବାସୀ ହିନ୍ଦୁମାନଙ୍କ ବ୍ୟବହୃତ ସଂସ୍କୃତମୂଳକ ଭାଷା ।
ହିନ୍ଦୁ—ବି. (ହିନ୍+ଦୁଷ୍. ନିପାତନସିଦ୍ଧ) ଆଉ ମଧ୍ୟ (ହୀନାନ୍=ଯବନାନ୍ ମ୍ଳେଚ୍ଛାନ୍ ଦ୍ୱେଷ୍ଟୀତି=ହିନ୍ଦୁ,ଯେଉଁମାନେ ନୀଚ ଓ ଯବନମାନଙ୍କୁ ଶତ୍ରୁଚକ୍ଷୁରେ ଦେଖନ୍ତି ବା ଘୃଣା କରନ୍ତି)ବେଦମତରେ ଧର୍ମ-କର୍ମ ସାଧନ କରୁଥିବା ଭାରତୀୟ ଆର୍ଯ୍ୟଜାତି,କେହି କହନ୍ତି ହିମାଳୟ ଓ ବିନ୍ଦୁ ( ସରୋବରବିଶେଷ ) ଏହି ଦୁଇ ଶବ୍ଦର ଯଥାକ୍ରମେ ଆଦ୍ୟ ଓ ଅନ୍ତ୍ୟଅଂଶ ଗ୍ରହଣ କରି " ହିନ୍ଦୁ " ଶବ୍ଦର ଉତ୍ପତ୍ତି ହୋଇଅଛି, କାରଣ ଉତ୍ତରରେ ହିମା-ଳୟଠାରୁ ଦକ୍ଷିଣରେ ବିନ୍ଦୁସରୋବର ପର୍ଯ୍ୟନ୍ତ ତାବତ୍ ଭୂଭାଗ ହିନ୍ଦୁମାନଙ୍କର ବାସସ୍ଥାନ ।
ହିନ୍ଦୁକୁଶ—ଗ୍ରା.ବି.ଭାରତର ଉତ୍ତରପଶ୍ଚିମ ଓ ଅଫଗାନିସ୍ଥାନର ଉତ୍ତରରେ ଥିବା ପର୍ବତମାଳା ।
ହିନ୍ଦୁତ୍ୱ—ବି. ହିନ୍ଦୁଭାବ, ଆର୍ଯ୍ୟଜାତିର ସାଧାରଣ ଧର୍ମ ।
ହିନ୍ଦୁଧର୍ମ—ଗ୍ରା.ବି.ହିନ୍ଦୁମାନଙ୍କର ଆଚରିତ ବେଦୋକ୍ତ ଧର୍ମ, ଭାରତୀୟ ଆର୍ଯ୍ୟଧର୍ମ ।

ହିନ୍ଦୁମୁସଲମାନ୍—ଗ୍ରା.ବି. (ସିହ୍ନଟର ଶବ୍ଦ) ଭାରତବାସୀ ପ୍ରଧାନ ଦୁଇସମ୍ପ୍ରଦାୟ ।

ହିନ୍ଦୁରାଜ୍ୟ-ବି.ହିନ୍ଦୁରାଜାଙ୍କ ଶାସିତ ରାଜ୍ୟ ।

ହିନ୍ଦୁଶାସ୍ତ୍ର—ବି. ହିନ୍ଦୁମାନଙ୍କ ଧର୍ମଶାସ୍ତ୍ର; (ଏହା ଚାରିଭାଗରେ ବିଭକ୍ତ, ଯଥା:— ଶ୍ରୁତି=ବେଦ,ବେଦାନ୍ତ; ସ୍ମୃତି=ମନ୍ୱାଦି ସଂହିତା, ପୁରାଣ=ସୃଷ୍ଟିର ପ୍ରାଚୀନ ଇତିହାସମାନ, ତନ୍ତ୍ର=ଯୋଗସାଧନର ଉପାୟ ଥିବା ଗ୍ରନ୍ଥମାନ) ।

ହିନ୍ଦୁସମାଜ—ବି. (ଦେଶଜ) ହିନ୍ଦୁମାନଙ୍କର ସମଷ୍ଟି, ଦଳବଦ୍ଧ ଆର୍ଯ୍ୟଜାତି ।

ହିନ୍ଦୁସାମ୍ରାଜ୍ୟ—ଗ୍ରା.ବି. ପ୍ରାଚୀନ ଭାରତର ହିନ୍ଦୁରାଜାମାନଙ୍କ ଦ୍ୱାରା ପ୍ରତିଷ୍ଠିତ ସାମ୍ରାଜ୍ୟ ।

ହିନ୍ଦୁସ୍ଥାନ—ସଂ. ବି. (ଦେଶଜ) ଭାରତବର୍ଷ, ଆର୍ଯ୍ୟାବର୍ତ୍ତ, ଉତ୍ତରଭାରତ ।

ହିନ୍ଦୁସ୍ଥାନୀ—ଗ୍ରା. ବିଂ. ଭାରତବର୍ଷୀୟ, ହିନ୍ଦୁସ୍ଥାନ ସମ୍ବନ୍ଧୀୟ, ଉତ୍ତରଭାରତର ଅଧିବାସୀ, ହିନ୍ଦୁସ୍ଥାନୀମାନଙ୍କ କଥିତ (ଭାଷା) ବି. ହିନ୍ଦୁସ୍ଥାନବାସୀ ବ୍ୟକ୍ତି, ହିନ୍ଦୀଭାଷା, ଉର୍ଦ୍ଦୁଭାଷା ।

ହିନ୍ଦୋଳ—ବି. (ହି+ଦୁଲ୍+ଭା.ଅ ବା ହିଲ୍ଲୋଳ+ଭା.ବ) ଦୋଳନ, ଝୁଲିବା. ଶ୍ରାବଣଶୁକ୍ଳ ଦଶମୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ହେବା ବିଷ୍ଣୁମୂର୍ତ୍ତିଙ୍କ ଯାତ୍ରା, ଝୁଲଣ-ଯାତ୍ରା, ଦୋଳା, ହିନ୍ଦୁ ସଙ୍ଗୀତର ଛଅ ରାଗ ମଧ୍ୟରୁ ଏକ, ଦୋଳ, (ଗ୍ରା.ବି) ଓଡ଼ିଶାର ଗଡ଼ଜାତ ରାଜ୍ୟବିଶେଷ ।

ହିନ୍ଦୋଳକ—ବି. (ହିନ୍ଦୋଳ+କ)ଝୁଲୁ, ଝୁଲିବାର ଆସନ, ଦୋଳା, ଡୋଲି, ଯାନବିଶେଷ, ହାନ୍ଦୋଲା, ଦୋଳ ।

ହିପାଜ(ଜ)ତ—ଯା. ବି. ଯତ୍ନ ପୂର୍ବକ ରକ୍ଷଣାବେକ୍ଷଣ, ଯତ୍ନ, ଯତ୍ନ ପୂର୍ବକ ରଖିବାପାଇଁ ଜିମ୍ମାଦାରି, ଯତ୍ନ ପୂର୍ବକ ତତ୍ତ୍ୱ, ଆଶ୍ୱାସ,ସୁଖ,ସ୍ୱାଚ୍ଛନ୍ଦ୍ୟ,ଶୁଶ୍ରୂଷା ।

ହିପାଜ(ଜ)ତି—ଯା.ବିଂ. ଜିମାରେ ରଖା ଯାଇଥିବା, (ଗ୍ରା.ବି) ହିପାଜତ୍ ଦେଖ ।

ହିବ୍—(ଧାତୁ) ପ୍ରୀତ କରିବା ।

ହିବା—ଯା. ବି. ଦାନ, (ସ୍ତ୍ରୀ. ବି) ବାଇବେଲ୍ ଓ କୋରାନ ଲିଖିତ ବୃତ୍ତାନ୍ତ ଅନୁସାରେ ପୃଥିବୀର ଆଦିମ ନାରୀ ।

ହିବାନାମା—ଯା.ବି. ଦାନପତ୍ର,ଦତ୍ତପତ୍ର ।

ହିବୁକ—ବି. (ଜ୍ୟୋତିଷ) ଲଗ୍ନର ଚତୁର୍ଥ ସ୍ଥାନ ।

ହିବ୍ରୁ(ବ୍ରୁ)—ଯା. ବି. ଇହୁଦୀ ଜାତି, ଇହୁଦୀ ଜାତୀୟ ବ୍ୟକ୍ତି,ଇହୁଦୀମାନଙ୍କ ମାତୃଭାଷା ।

ହିମ—ବି. (ହି+ସଂଜ୍ଞାର୍ଥେ.ମ)ଶୀତକାଳ, ହେମନ୍ତକାଳ, ଶିଶିରକାଳ, କାକର, ବରଫ, ତୁଷାର, ଥଣ୍ଡା,ଶୈତ୍ୟ,ଶୀତଳତା, ଚନ୍ଦନଦ୍ରବ, ଘୋରା ଚନ୍ଦନ, ପଦ୍ମକାଷ୍ଠ, ରଙ୍ଗଧାତୁ, ମୁକ୍ତା, ଲବଣୀ, ଚନ୍ଦନ ବୃକ୍ଷ,କର୍ପୂର, ହିମାଳୟପର୍ବତ, ଚନ୍ଦ୍ର, କମଳ,ପଦ୍ମ,ପୃଥିବୀର ପୌରାଣିକ ବର୍ଷ(ଦେଶ)ମାନଙ୍କ ମଧ୍ୟରୁ ଏକ,ଥଣ୍ଡା-କ୍ୱାଥ, ଉଶୀର, ବେଣାମୂଳ, ଆକାଶ-ବାଷ୍ପ, (ବିଂ) ଶୀତଳ,ଥଣ୍ଡା,ହେମାଳିଆ, (ସ୍ତ୍ରୀ) ହିମା ।

ହିମକ—ବି. (ହିମ+କୈ+ଅ)ବିକଙ୍କତ ବୃକ୍ଷ, ଭୁଇଁଚ ଗଛ, (ହିମ+କ) ହିମ ଦେଖ, ତାଳିଶପତ୍ର ।

ହିମକଣ(ଣା)—ବି. (ଦେଶଜ) କାକର ବା ବରଫର ଅତି କ୍ଷୁଦ୍ର ବିନ୍ଦୁ ।

ହିମକଟିବନ୍ଧ—ଗ୍ରା. ବି. ଯେଉଁ କାଳ୍ପନିକ ବୃତ୍ତରେଖା ଦ୍ୱାରା ପୃଥିବୀ ବିଭକ୍ତ ହୋଇଅଛି, ତାହାରଇ ହିମପ୍ରଧାନ ଯେଉଁସ୍ଥାନ ପୃଥିବୀର କଟିବନ୍ଧସ୍ୱରୂପ ।

ହିମକର—ବି. (ବି.ଗ୍ରା) ଚନ୍ଦ୍ର; କର୍ପୂର, ଚନ୍ଦ୍ରକିରଣ,ଶୀତଳସ୍ପର୍ଶ, (ବିଂ) ଶୀତଳ-କରଣବିଶିଷ୍ଟ ।

ହିମକରତନୟ—ପୁଂ. ବି. (ଦେଶଜ) ଚନ୍ଦ୍ରଙ୍କର ପୁତ୍ର ବୁଧ ।

ହିମକରଶେଖର—ପୁଂ. ବି. (ବି.ଗ୍ରା) ଶିବ, ମହାଦେବ ।

ହିମକର୍ପୂର(କ)—ବି. ଏକପ୍ରକାର ନିକୃଷ୍ଟ କର୍ପୂର ।

ହିମକାକର—ଗ୍ରା. ବିଂ. ହେମକାକର, ଅତ୍ୟନ୍ତ ଶୀତଳ ।

ହିମକାଳ—ବି. ହେମନ୍ତ ଋତୁ ।

ହିମକିରଣ—ବି. (କ.ଧା) ଚନ୍ଦ୍ରକିରଣ ।

ହିମକୂଟ—ବି. (ବି.ଗ୍ରା) ଶିଶିର ଋତୁ, ହିମାଳୟ, ପର୍ବତବିଶେଷ ।

ହିମକ୍ଷମାଧର—ବି. ହିମାଳୟ ପର୍ବତ ।

ହିମଗିରି—ବି. ହିମାଳୟ ପର୍ବତ ।

ହିମଗିରିସୁତା—ସ୍ତ୍ରୀ.ବି. (ଦେଶଜ) ପାର୍ବତୀ, ଗଙ୍ଗାନଦୀ ।

ହିମଗୁ—ବି. (ବି.ଗ୍ରା) ଚନ୍ଦ୍ର ।

ହିମଗୃହ—ବି.(କ.ଧା)ଯେଉଁ ଗୃହ ମଧ୍ୟରେ ଖୁବ୍ ଥଣ୍ଡା ଅନୁଭୂତ ହୁଏ ।

ହିମଜ—ବିଂ.ହିମରୁ ଜାତ,ହିମଗିରୁ ଜାତ, (ପୁଂ ବି)ହିମାଳୟଗିରିର ପୁତ୍ର,ମୈନାକ-ପର୍ବତ ।

ହିମଜା—ସ୍ତ୍ରୀ.ବି. (ହିମଜ+ଆ) ହିମଜର ସ୍ତ୍ରୀଲିଙ୍ଗ, (ବି) ପାର୍ବତୀ ।

ହିମଜ୍ୟୋତିଃ—ପୁଂ.ବି.ଶୀତରଶ୍ମି,ଚନ୍ଦ୍ର ।

ହିମଝଞ୍ଜ୍ଝଟି—ବି. କୁଜ୍ଝଟିକା, କୁହୁଡ଼ି ।

ହିମତୈଳ—ବି. କର୍ପୂରତୈଳ, କର୍ପୂର ମିଶାଯାଇ ପ୍ରସ୍ତୁତ ତୈଳ ।

ହିମତ୍ୱିଟ୍—ପୁଂ. ବି. ଚନ୍ଦ୍ର ।

ହିମଦୀଧିତି—ବି. (ବି.ଗ୍ରା) ଚନ୍ଦ୍ର ।

ହିମଦୁଗ୍ଧା—ବି. କ୍ଷୀରିଣୀ ଦେଖ ।

ହିମଦୁର୍ଦ୍ଦିନ—ବି. ହିମପାତ ଦ୍ୱାରା ଦୁଃଖ-ଦାୟକ ଦିନ ।

ହିମଦ୍ୟୁତି—ପୁଂ. ବି. (ବି.ଗ୍ରା) ଚନ୍ଦ୍ର ।

ହିମଦ୍ରୁମ-ବି.ମହାନିମ୍ବ ବୃକ୍ଷ,ମାହାଳ ଗଛ ।

ହିମଧର—ବି.(ହିମ+ଧୃ+ଅ)ହିମାଳୟ-ପର୍ବତ ।

ହିମଧାତୁ—ବି.(ବି.ଗ୍ରା)ହିମାଳୟପର୍ବତ ।

ହିମନ୍ତ—ଯା. ବି. ହିମ୍ମତ ଦେଖ,(ଗ୍ରା.ବି) ହେମନ୍ତ ଋତୁ ।

ହିମନ୍ତପର୍ବତ—ଗ୍ରା. ବି. ହିମାଳୟପର୍ବତ ।

ହିମପାତ—ବି. (ଦେଶଜ) ତୁଷାର ପତନ, ବରଫ ବା କାକର ପଡ଼ିବା ।

ହିମପ୍ରସ୍ଥ—ବି.ହିମାଳୟପର୍ବତ,ହିମମଣ୍ଡଳ, ହିମକଟିବନ୍ଧ ।

ହିମଭାନୁ—ପୁଂ. ବି. (ବି.ଗ୍ରା) ଚନ୍ଦ୍ର ।

ହିମଭୂଭୃତ୍—ପୁଂ. ବି. ହିମାଳୟପର୍ବତ ।

ହିମମଣ୍ଡଳ—ବି. ହିମକଟିବନ୍ଧ ଦେଖ ।

ହିମମୟୂଖ(ରଶ୍ମି,ରୁଚି)-ବି.(ବି.ଗ୍ରା) ଚନ୍ଦ୍ର ।

ହିମନ୍ତି—ବି. ହେମନ୍ତ ଋତୁ ।
ହିମବତ୍ପୁର—ବି. ହିମାଳୟପର୍ବତ ।
ହିମବତ୍ସୁତ—ପୁଂ. ବି. ହିମାଳୟପର୍ବତର ପୁତ୍ର ମୈନାକ ପର୍ବତ ।
ହିମବତ୍ସୁତା—ସ୍ତ୍ରୀ.ବି. (୬ତତ୍)ପାର୍ବତୀ ।
ହିମବତୀ—ସ୍ତ୍ରୀ. ବିଂ. ( ହିମବତ୍ + ଈ ) ହିମବାନ୍‌ର ସ୍ତ୍ରୀଲିଙ୍ଗ, ( ସ୍ତ୍ରୀ.ବିଂ ) ହିମାଳୟର ସ୍ତ୍ରୀ ମେନା ।
ହିମବନ୍ତ—ଗ୍ରା. ବି. ହିମାଳୟପର୍ବତ, ପର୍ବତବିଶେଷ ।
ହିମବନ୍ତଦୁଲଣୀ—ଗ୍ରା. ସ୍ତ୍ରୀ. ବି. ପାର୍ବତୀ ।
ହିମବର୍ଷୀ—ବିଂ. ( ହିମ + ବୃଷ୍ + ଇନ୍ ) ତୁଷାରବର୍ଷଣକାରୀ, (ସ୍ତ୍ରୀ) ହିମବର୍ଷିଣୀ ।
ହିମବଳ—ବି. ହେମବଳ, ମୌକ୍ତିକ ।
ହିମବାନ୍—ପୁଂ. ବିଂ. ( ହିମ+ବତ୍ ) ହିମଯୁକ୍ତ,ତୁଷାରମୟ, (ବି) ହିମାଳୟ-ପର୍ବତ, (ସ୍ତ୍ରୀ) ହିମବତୀ ।
ହିମବାରି—ବି. ଶୀତଳ ଜଳ, ଥଣ୍ଡାପାଣି ।
ହିମବାଲୁକା—ବି. କର୍ପୂର ।
ହିମବୃଷ୍ଟି—ବି.ହିମବର୍ଷଣ,ତୁହିନ ବର୍ଷଣ ।
ହିମଶର୍କରା—ସ୍ତ୍ରୀ. ବି. ଯାବନାଳୀ ।
ହିମଶୀତଳ—ବିଂ. ( କ.ଧା ) ହିମସଦୃଶ ଶୀତଳ, ହିମପରି ଥଣ୍ଡା ।
ହିମଶୀର୍ଣ୍ଣ—ବିଂ.(୩ତତ୍) ହିମଦ୍ୱାରା କ୍ଷୀଣ, ହିମପାତ ଦ୍ୱାରା ଶୁଷ୍କ, (ସ୍ତ୍ରୀ) ହିମଶୀର୍ଣ୍ଣା ।
ହିମଶୈଳ—ବି.(କ.ଧା)ହିମାଳୟପର୍ବତ ।
ହିମଶୈଳଜ—ପୁଂ.ବି. (ହିମଶୈଳ+ଜନ୍ +କ.ଅ) ମୈନାକ ପର୍ବତ, ( ବିଂ ) ହିମାଳୟଜାତ, ଯାହା ହିମାଳୟପର୍ବ-ତରେ ଜନ୍ମେ, (ସ୍ତ୍ରୀ) ହିମଶୈଳଜା ।
ହିମଶୈଳଜା—ସ୍ତ୍ରୀ. ବିଂ. ହିମଶୈଳଜର ସ୍ତ୍ରୀଲିଙ୍ଗ, (ବି) ପାର୍ବତୀ ।
ହିମଶୈଳସୁତ—ପୁଂ.ବି. ମୈନାକ, (ସ୍ତ୍ରୀ) ହିମଶୈଳସୁତା=ପାର୍ବତୀ ।
ହିମସଂହତ—ବି. ( ୬ତତ୍ ) ହିମସମୂହ, ବରଫରାଶି, ଜମାଟ ତୁଷାର ।
ହିମସାଗର—ବି. ଘିଅକୁଆଁରି ପରି ଦୀର୍ଘାୟୁ ଓ ମାଂସଳ ଶାକବିଶେଷ, ପାଷାଣ-ଭେଦକ, ହିମସାଗରତୈଳ ଦେଖ ।
ହିମସାଗରତୈଳ—ବି.ତାପଦାହ ନାଶକ ତୈଳୌଷଧବିଶେଷ ।
ହିମହାସକ—ବି.ହିନ୍ତାଳ,ହେନ୍ତାଳ ଗଛ, ଏକପ୍ରକାର ଖର୍ଜୁର ।
ହିମା—ବି.(ହିମ+ଆ)ସୂକ୍ଷ୍ମୈଲା,ଗୁଜରାଠ, ରେଣୁକା, ସୁଗନ୍ଧଦ୍ରବ୍ୟବିଶେଷ, ଭଦ୍ର-ମୁଥା,ନାଗରମୁଥା,ପିଡ଼ଙ୍ଗଶାଗ,ଚଣକ, ଚଣା, ଚଣି ।
ହିମାଂଶୁ—ବି. (ବ.ବ୍ରୀ) ଶୀତରଶ୍ମି,ଚନ୍ଦ୍ର, କର୍ପୂର, ରୌପ୍ୟ ।
ହିମାଂଶୁମାଳୀ—ପୁଂ. ବି. ଚନ୍ଦ୍ର ।
ହିମାଂଶୁଭଖ୍ୟ—ବି. (ହିମାଂଶୁ+ଅଭଖ୍ୟା) ବ.ବ୍ରୀ; ( ଚନ୍ଦ୍ର ପରି ଶୋଭା ଥିବାରୁ ) ରୌପ୍ୟ ।
ହିମାଗ-ବି.(ହିମ + ଅଗ)ହିମାଳୟପର୍ବତ ।
ହିମାଗମ—ବି. ( ୬ତତ୍ ) ହେମନ୍ତକାଳ, ଶିଶିର ଶୀତକାଳ,ଶୀତଋତୁର ଆରମ୍ଭ ।
ହିମାଙ୍କ—ବି.. କର୍ପୂର ।
ହିମାଙ୍ଗ—ବି. (କ.ଧା) ଶୀତଳ ଦେହ, ତାପହୀନ ଶରୀର, ପ୍ରାଣଶୂନ୍ୟ ଦେହ, (ପୁଂ.ବିଂ-ବ.ବ୍ରୀ)ଯାହାର ଦେହ ଥଣ୍ଡା, ମୃତ । [ ପର୍ବତ ।
ହିମାଚଳ—ବି. (ହିମ+ଅଚଳ)ହିମାଳୟ
ହିମାତ୍ୟୟ—ବି. (ହିମ+ଅତ୍ୟୟ) ହିମ-କାଳର ଅପଗମ ।
ହିମାଦ୍ରି—ବି.(ମଧ୍ୟ-କ.ଧା) ହିମଯୁକ୍ତ ଅଦ୍ରି, ହିମାଳୟପର୍ବତ ।
ହିମାଦ୍ରିଜ—ପୁଂ. ବି. ମୈନାକପର୍ବତ, (ବିଂ) ହିମଶୈଳଜ ଦେଖ ।
ହିମାଦ୍ରିଜା-ସ୍ତ୍ରୀ.ବି.ପାର୍ବତୀ,କ୍ଷୀରଣୀ,ଦୁର୍ଗା ।
ହିମାଦ୍ରିତନୟା—ସ୍ତ୍ରୀ.ବି.(୬ତତ୍)ପାର୍ବତୀ. ଦୁର୍ଗା ।
ହିମାଦ୍ରିତନୟାପତି—ପୁଂ. ବି. (୬ତତ୍) ଶିବ, ମହାଦେବ ।
ହିମାନ୍ଦ(ଧ)ସ୍ତା—ଗ୍ରା. ବି. ମସଲାଆଦି ଗୁଣ୍ଡ କରିବାର ଲୁହାର ଖଲ ଓ ପୁଆ ।
ହିମାନୀ—ବି. (ହିମ+ବହ୍ୱର୍ଥେ.ଈ, ଆନ୍ ଆଗମ) ହିମସଂହତି, ବରଫ,ଯାବନାଳ ଶର୍କରା ।
ହିମାବତୀ-ବି,ଯାବନାଳ ଶର୍କରା,ସ୍ୱର୍ଣ୍ଣକ୍ଷୀରୀ, ଅଗରୁ ବା ଗାଁଧଉଡ଼ା ଗୁଳ୍ମ ।
ହିମାବ୍ଜ—ବି. ଉତ୍ପଳ, କଇଁ, ନୀଳକମଳ, ନୀଳୋତ୍ପଳ ।
ହିମାଭ୍ର—ବି. କର୍ପୂର ।
ହିମାମ୍ଭଃ—ବି. ଶୀତଳ ଜଳ,ଥଣ୍ଡାପାଣି ।
ହିମାରାତି—ବି. (ହିମ+ଅରାତି) ୬ତତ୍; ସୂର୍ଯ୍ୟ, ଅଗ୍ନି, ଚିତ୍ରକ ଗୁଳ୍ମ, ଧଳାଚିତା ଗୁଳ୍ମ, ଅର୍କବୃକ୍ଷ ।
ହିମାର୍ତ୍ତ—ପୁଂ.ବିଂ. (୩ତତ୍)ହିମକ୍ଲିଶିତ, ହିମଦ୍ୱାରା କ୍ଳେଶପ୍ରାପ୍ତ, (ସ୍ତ୍ରୀ) ହିମାର୍ତ୍ତା, (ବି) ହିମାର୍ତ୍ତି ।
ହିମାଳ—ବି. ହିମାଳୟପର୍ବତ, (ଗ୍ରା.ବିଂ) ହେମାଳ,ଅତି ଶୀତଳ,ଅତି ଶୀତସ୍ପର୍ଶ
ହିମାଳୟ—ବି. (ହିମ+ଆଳୟ) ୬ତତ୍; ଶୁକ୍ଳଖଦିର,ଭାରତର ଉତ୍ତର ସୀମାନ୍ତରେ ଅବସ୍ଥିତ ଅତ୍ୟୁଚ୍ଚ ପର୍ବତମାଳା,ପାର୍ବତୀଙ୍କ ପିତା ।
ହିମାଳୟପଥେ—ଗ୍ରା.ବି. ପଣ୍ଡିତ କୁଳମଣି ଦାଶ କାବ୍ୟତୀର୍ଥଙ୍କ ପ୍ରଣୀତ ଖଣ୍ଡିଏ ସୁଖ-ପାଠ୍ୟ ଭ୍ରମଣବୃତ୍ତାନ୍ତ ପୁସ୍ତକ ।
ହିମାଳୟସୁତା—ସ୍ତ୍ରୀ. ବି. ( ୬ତତ୍ ) ପାର୍ବତୀ, ଦୁର୍ଗା ।
ହିମାଳୟା-ବି. ଭୂଶ୍ୟାମଳକୀ,ଭୁଇଁଅଁଳା ।
ହିମାଶ୍ରୟା—ସ୍ତ୍ରୀ.ବି.(ବ.ବ୍ରୀ)ସ୍ୱର୍ଣ୍ଣଜୀବନ୍ତୀ ।
ହିମାହ୍ୱା—ବି. ( ହିମ+ଅହ୍ୱା ) ବ.ବ୍ରୀ; କର୍ପୂର, ଜମ୍ବୁଦ୍ୱୀପର ବର୍ଷ ବା ଦେଶ-ବିଶେଷ ।
ହିମାହ୍ୱୟ—ବି. (ହିମ+ଆହ୍ୱୟ)କର୍ପୂର ।
ହିମିକା—ବି.(ହିମ+କ+ଆ)ହିମକଣା, ଶିଶିର,ତୃଣପରି ପତିତ ହିମ,କୁଜ୍ଝଟିକା, କୁହୁଡ଼ି ।
ହିମେଳୁ—ବିଂ. (ହିମ+ଏଳୁ) ହିମାର୍ତ୍ତ, ହିମକ୍ଲିଶିତ ।
ହିମେଶ—ବି.(୬ତତ୍) ହିମାଳୟପର୍ବତ ।
ହିମୋତ୍ତରା—ବି. କପିଳଦ୍ରାକ୍ଷା ।
ହିମୋତ୍ପନ୍ନ—ବିଂ.(୫ତତ୍) ହିମରୁ ଜାତ, (ସ୍ତ୍ରୀ) ହିମୋତ୍ପନ୍ନା ।
ହିମୋତ୍ପନ୍ନା—ବି. ଯାବନାଳୀ ।

ହିମୋଦକ-ବି, ଶୀତଳ ଜଳ, ଥଣ୍ଡାପାଣି ।
ହିମୋଦ୍ଭବ—ବିଂ. (ବ.ବ୍ରୀ) ହିମରୁ ଜାତ, ହିମୋଦ୍ଭୂତ, (ସ୍ତ୍ରୀ) ଭବା, ଭୂତା ।
ହିମୋଦ୍ଭବା—ବି. ଶଟୀ. କ୍ଷୀରିଣୀ ।
ହିମୋପମ—ବି. ପ୍ରବାଳ, ପୋହଳା ।
ହିମ୍ମତ୍—ପା. ବି. ସାହସ, ପୌରୁଷ, ବୀରତ୍ୱ, ତେଜସ୍ୱିତା, ପ୍ରସ୍ତାବ, ସଙ୍କଳ୍ପ, ସାମର୍ଥ୍ୟ, ମନର ବଳ
ହିମ୍ମତ—ପା.ବିଂ. ପୁଂ. ଓ ସ୍ତ୍ରୀ.ସାହସିକ, ବୀର, ଦୃଢ଼ପ୍ରତିଜ୍ଞ, ଶକ୍ତିଶାଳୀ ।
ହିମ୍ୟ-ବିଂ.(ହିମ+ଯ)ହିମଜାତ, ଶୀତଳ ।
ହିର୍ଗିଡ଼ାଇବା—ପ୍ରା.(ସମ୍ବଲ)କ୍ରି.କୌଣସି ବ୍ୟକ୍ତିକୁ ଜବରଦସ୍ତି ଟିକିନେବା ।
ହିରଟିହିଣ୍ଡେଇବା—ଗ୍ରା. କ୍ରି ପଳାଇ-ଧରି ନ ଦେବା, ଅମାନିଆ ଭାବରେ ଇତସ୍ତତଃ ବୁଲିବା ।
ହିରଳ—ପ୍ରା, କସ୍ତୁର. ବି. ହରଡ଼ା ।
ହିର(ରି)ହିରେଇ—ଗ୍ରା. ବି. ହିଡ଼ିମ୍ବି ଦେଖ ।
ହିର-ଗ୍ରା, (ଇତରଭାଷା) ବି. ହିଡ଼ ଦେଖ; (ସଂ-ବି,) ଲୁଗାଆଦିର ପନ୍ତୀ ।
ହିରକାଶୀଶ—ବି. ହିରାକସ ।
ହିରଙ୍ଗ—ବି. ରାହୁଚନ୍ଦ୍ର ।
ହିରଣ(ଣ୍)—ବି. (ହୃ+ମି, ଅନ) ସ୍ୱର୍ଣ୍ଣ, ସୁନା, ରେତଃ, ବୀର୍ଯ୍ୟ, ଶୁକ୍ର, କପର୍ଦ୍ଦକ, କଉଡ଼ି ।
ହିରଣ୍ମୟ—ବିଂ. (ହିରଣ୍+ମୟ) ସ୍ୱର୍ଣ୍ଣ-ମୟ, ସ୍ୱର୍ଣ୍ଣନିର୍ମିତ, ସ୍ୱର୍ଣ୍ଣାଭ, ( ବିଂ ) ଭାରତବର୍ଷାଦି ନବମବର୍ଷ ଦେଶାନ୍ତର୍ଗତ ବର୍ଷ ବା ଦେଶବିଶେଷ, ବ୍ରହ୍ମ, ପରଂ-ବ୍ରହ୍ମ, ହିରଣ୍ମୟ ବର୍ଷର ରାଜା ଅଗ୍ନୀଧ୍ରଙ୍କ ପୁତ୍ର, (ସ୍ତ୍ରୀ) ହିରଣ୍ମୟୀ ।
ହିରଣ୍ମୟକୋଷ—ବି. ସୂକ୍ଷ୍ମଦେହବିଶେଷ, ଆତ୍ମାର ସପ୍ତ ଆବରଣ ମଧ୍ୟରୁ ଏକତମ ।
ହିରଣ୍ୟ—ବି. (ହୃ+ମି+ଅନ୍ୟ) ସ୍ୱର୍ଣ୍ଣ, ସୁନା, ଧୁସ୍ତୁର, ଧାତୁରା, ରେତ, ବୀର୍ଯ୍ୟ, କପର୍ଦ୍ଦକ, କଉଡ଼ି, ଦ୍ରବ୍ୟ, ପରିମାଣ-ବିଶେଷ, ପରଂବ୍ରହ୍ମ, ଅକୁପ୍ୟ, ରଜତ, ରୁପା, ଧନ, ସ୍ୱର୍ଣ୍ଣପାତ୍ର, ବହୁମୂଲ୍ୟ ଧାତୁ, ହିରଣ୍ମୟ ବର୍ଷ, ଜ୍ଞାନ, ଜ୍ୟୋତିଃ, ଅମୃତ ।
ହିରଣ୍ୟକ—ପୁଂ. ବି. ସ୍ୱର୍ଣ୍ଣ, ସୁନା ।
ହିରଣ୍ୟକର୍ତ୍ତା—ପୁଂ, ବି. ସ୍ୱର୍ଣ୍ଣକାର, ବଣିଆଁ ।
ହିରଣ୍ୟକଶିପୁ—ପୁଂ. ବି. (ବ.ବ୍ରୀ) ସ୍ୱର୍ଣ୍ଣ-ମୟ ତକିଆ, ଶଯ୍ୟାବିଶେଷ, ( ବିଂ ) କଶ୍ୟପମୁନିଙ୍କ ଔରସରେ ତାହାଙ୍କ ପତ୍ନୀ ଦିତିଙ୍କ ଗର୍ଭରୁ ଜାତ ଓ ନୃସିଂହ-ଅବତାରରେ ବିଷ୍ଣୁଙ୍କ ଦ୍ୱାରା ନିହତ ପ୍ରସିଦ୍ଧ ଦୈତ୍ୟରାଜ, ପ୍ରହ୍ଲାଦର ପିତା ।
ହିରଣ୍ୟକଶିପୁହା—ପୁଂ. ବି. (ହିରଣ୍ୟ-କଶିପୁ+ହନ୍+କ.କ୍ୱିପ୍) ବିଷ୍ଣୁ ।
ହିରଣ୍ୟକାମଧେନୁ—ବି. ଷୋଡ଼ଶ ମହା-ଦାନାନ୍ତର୍ଗତ ମହାଦାନବିଶେଷ ।
ହିରଣ୍ୟକୃତ୍—ବି. (ହିରଣ୍ୟ+କୃ+କ. କ୍ୱିପ୍) ସୁବର୍ଣ୍ଣକାର, ବଣିଆ, ଅଗ୍ନି ।
ହିରଣ୍ୟକୃତଚୂଡ଼—ପୁଂ. ବି. ଶିବ ।
ହିରଣ୍ୟକେଶ—ପୁଂ. ବିଂ. ( ବ.ବ୍ରୀ ) ହିରଣ୍ୟତୁଲ୍ୟ କପିଶବର୍ଣ୍ଣ କେଶବିଶିଷ୍ଟ, (ସ୍ତ୍ରୀ) କେଶୀ, (ପୁଂ.ବି) ବିଷ୍ଣୁ ।
ହିରଣ୍ୟଗର୍ଭ—ବି. ( ବ.ବ୍ରୀ ) ବ୍ରହ୍ମା, ଷୋଡ଼ଶ ଦାନାର୍ଗତ ଦ୍ୱିତୀୟ ମହାଦାନ, ବିଷ୍ଣୁ, ସୂକ୍ଷ୍ମଶରୀର ସମଷ୍ଟ୍ୟପହିତ ଚୈତନ୍ୟ, ପ୍ରାଣାତ୍ମା, ଶାଳଗ୍ରାମବିଶେଷ ।
ହିରଣ୍ୟଟର୍ଭ—ଗ୍ରା. ବି, ଲିଙ୍ଗମୂର୍ତ୍ତି ଶୂନ୍ୟ ଶିବଶକ୍ତି ।
ହିରଣ୍ୟଚକ୍ର—ବି. ହିରଣ୍ମୟଚକ୍ର ରଥ, ଯେଉଁ ରଥର ଚକ୍ର ସ୍ୱର୍ଣ୍ଣନିର୍ମିତ ।
ହିରଣ୍ୟଜ୍ୟୋତିଃ— ବିଂ. ସ୍ୱର୍ଣ୍ଣତୁଲ୍ୟ ଦୀପ୍ତିମାନ୍ ବା ଦୀପ୍ତିଶୀଳ ।
ହିରଣ୍ୟତେଜଃ—ବି. ସୁବର୍ଣ୍ଣତୁଲ୍ୟ ତେଜ ବା ଦୀପ୍ତି ।
ହିରଣ୍ୟଦ—ପୁଂ. ବିଂ. (ହିରଣ୍ୟ+ଦା+କ.ତୃ) ସୁବର୍ଣ୍ଣଦାତା, ସୁବର୍ଣ୍ଣଦାନ-କର୍ତ୍ତା, (ସ୍ତ୍ରୀ)ହିରଣ୍ୟଦା,(ବିଂ)ସମୁଦ୍ର ।
ହିରଣ୍ୟଦା—ସ୍ତ୍ରୀ. ବି. ପୃଥିବୀ, ( ବିଂ ) ହିରଣ୍ୟଦର ସ୍ତ୍ରୀଲିଙ୍ଗ ।
ହିରଣ୍ୟନାଭ—ବି, (ବ.ବ୍ରୀ) ମୈନାକ ପର୍ବତ ମୁନିବିଶେଷ ।
ହିରଣ୍ୟପତି—ବି. ଶିବ । [ ବାଯନ ।
ହିରଣ୍ୟପାତ୍ର—ବି. ସ୍ୱର୍ଣ୍ଣପାତ୍ର, ସୁନାର
ହିରଣ୍ୟବ—ବି, (ହିରଣ୍ୟ+ବ) ଦୈବିକ ଧନ, ଦେବସ୍ୱ ।
ହିରଣ୍ୟବର୍ଣ୍ଣ—ବିଂ. (ବ.ବ୍ରୀ) ସ୍ୱର୍ଣ୍ଣତୁଲ୍ୟ ବର୍ଣ୍ଣବିଶିଷ୍ଟ, (ସ୍ତ୍ରୀ) ହିରଣ୍ୟବର୍ଣ୍ଣା ।
ହିରଣ୍ୟବର୍ଣ୍ଣା—ସ୍ତ୍ରୀ. ବିଂ ହିରଣ୍ୟ ବର୍ଣ୍ଣର ସ୍ତ୍ରୀଲିଙ୍ଗ, (ବି) ନଦୀ ।
ହିରଣ୍ୟବାହ-ବି. ( ହିରଣ୍ୟ+ବହ+କ, ଅ) ଶୋଣନଦ, ଶିବ, ମହାଦେବ ।
ହିରଣ୍ୟବାହୁ—ବି. ଶୋଣନଦ, ଶିବ, ମହାଦେବ ।
ହିରଣ୍ୟବୀର୍ଯ୍ୟ—ବି. ଅଗ୍ନିରୂପ ବ୍ରହ୍ମ ।
ହିରଣ୍ୟରେତାଃ—ବି, (ବ.ବ୍ରୀ) ଅଗ୍ନି, ଚିତ୍ରକବୃକ୍ଷ, ଧଳାଚିତା, ଶିବ, ସୂର୍ଯ୍ୟ ।
ହିରଣ୍ୟଲୋମା—ବି. ଋଷିବିଶେଷ, ଭୀଷ୍ମକଙ୍କର ଅନ୍ୟନାମ ।
ହିରଣ୍ୟଶୃଙ୍ଗ—ବିଂ. ଉନ୍ନତଶିରସ୍କ, (ବି) ସୁମେରୁର ଶୃଙ୍ଗ ।
ହିରଣ୍ୟାକ୍ଷ—ବି, ହିରଣ୍ୟକଶିପୁ ନାମକ ଦୈତ୍ୟରାଜର ଭାଇ ।
ହିରଣ୍ୟାଶ୍ୱ—ବି. ତୁଳାପୁରୁଷାଦି ଷୋଡ଼ଶ ମହାଦାନର ଅନ୍ତର୍ଗତ ଦାନବିଶେଷ ।
ହିରଣ୍ୟାଶ୍ୱରଥ—ବି. ଷୋଡ଼ଶ ମହା-ଦାନାର୍ଗତ ଦାନବିଶେଷ, ସ୍ୱର୍ଣ୍ଣମୟ ଅଶ୍ୱ ସହିତ ରଥଦାନ ।
ହିରାକଶ(ଷ)—ଗ୍ରା. ବି. ଲୌହ ଓ ଗନ୍ଧକ ମିଶ୍ରିତ ଉପରସବିଶେଷ ।
ହିରୁଆଁ—ପ୍ରା, (ଲରିଆଭାଗ) କୋଳଷ୍ଟ ।
ହିଲ୍—(ଧାତୁ) ହାବ କରିବା, ଭଙ୍ଗୀ କରିବା, ଆଉଜିବା, ଦୋହୋଲିବା ।
ହିଲମୋଚକା(ମୋଚୀ)—ବି. ହିଡ଼ିମ୍ବି ଦେଖ ।
ହିଲ୍ଲ(ଲ୍ଲା)—ପା,ବି. ହଲ୍ଲା ଦେଖ, ଆଶ୍ରୟ, ଅବଲମ୍ବନ, ଉପାୟ ।
ହିଲ୍ଲ—ପ୍ରା. (ଟେଙ୍କିଆଳ) ବି. ବାହାନା ।
ହିଲ୍ଲି—ବି. ପକ୍ଷିବିଶେଷ, ଶରାରିପକ୍ଷୀ ।
ହିଲ୍ଲୋଳ-ବି. (ହିଲ୍+ଘ.ଓଲ) ଆନ୍ଦୋ-

ଳନ, ଇତସ୍ତତଃ ଦୋହଲୁଥିବା ତରଙ୍ଗ, ଢେଉ, ଦୋହଲଇବା, ସଙ୍ଗୀତର ରାଗଣୀବିଶେଷ, ରତିବନ୍ଧବିଶେଷ ।
ହିଲ୍ୱଲା—ବି. ମୃଗଶିରା ନକ୍ଷତ୍ରର ଶିରୋଦେଶରେ ଥିବା ୫ଗୋଟି କ୍ଷୁଦ୍ର ତାରା ।
ହିସା(ସ୍ସା)—ଯା. ବି. ଭାଗ, ଅଂଶ, ହିଁସା ।
ହିସାଦାର-ଯା. ବି. ହିଁସାଦାର, ଭାଗଦାର
ହିସାଦାରି—ଯା. ବି. ଭାଗଦାରି ।
ହିସାବ—ଯା. ବି. ଆୟବ୍ୟୟାଦିର ଧାରା, ବାହିକ ଗଣନା ବା ବିବରଣ, ପରିମାଣ, ଲେଖା, ଗଣନା, ଦର, ଅଙ୍କ, ଗଣିତ, ଶୃଙ୍ଖଳା, ବନ୍ଦୁର ।
ହିସାବକିତାପ୍(ବ୍)—ଯା. ବି. ହିସାବ ଲେଖାଥିବା ବହି, ଦେଣା ପାଉଣା ।
ହିସାବନବିଶ୍—ଯା. ବି. ହିସାବ ରକ୍ଷକ, ଜମା ଖରଚ ଲେଖକ ।
ହିସାବି—ଯା. ବି°. ଯେ ଭାବିଚିନ୍ତି କାର୍ଯ୍ୟ କରେ, ବିବେଚକ, ମିତବ୍ୟୟୀ, ହିସାବସମ୍ବନ୍ଧୀୟ ।
ହିହି—ଅବ୍ୟ. ଆହ୍ଲାଦଜନକ ଅନୁକରଣ ଶବ୍ଦ, (ଗ୍ରା.ଅବ୍ୟ) ହିଁହିଁ ଦେଖ ।
ହୀ—(ଧ୍ୱନ୍ୟନୁକରଣ) ଉଚ୍ଚହାସ୍ୟର ଶବ୍ଦ, ବିସ୍ମୟାର୍ଥକ, ଦୁଃଖାର୍ଥକ, ହେତ୍ୱର୍ଥକ, ବିଷାଦାର୍ଥକ, ଶୋକାର୍ଥକ ।
ହୀନ—ବି°. ( ହା+ର୍ମ.ତ ) ବିରହିତ, ପରିତ୍ୟକ୍ତ, ଶୂନ୍ୟ, ଊନ, ଊଣା, ନିନ୍ଦନୀୟ, ଅଧମ, ନୀଚ, ନିକୃଷ୍ଟ, ମନ୍ଦ, (ସ୍ତ୍ରୀ) ହୀନା ।
ହୀନଅବସ୍ଥା—ଗ୍ରା. ବି. ହୀନସ୍ଥା ଦେଖ ।
ହୀନକ—ବି°. (ହୀନ + ସ୍ୱାର୍ଥେ.କ) ହୀନ ଦେଖ ।
ହୀନକପାଳ—ଗ୍ରା. ବି. ମନ୍ଦଭାଗ୍ୟ ।
ହୀନକପାଳିଆ—ଗ୍ରା.ପୁଂ.ବି°. ମନ୍ଦଭାଗ୍ୟବିଶିଷ୍ଟ, (ସ୍ତ୍ରୀ) ହୀନକପାଳୀ ।
ହୀନକର୍ମ—ବି.(କ.ଧା) ନୀଚକର୍ମ, ନିନ୍ଦିତକାର୍ଯ୍ୟ, ମନ୍ଦଭାଗ୍ୟ ।
ହୀନକର୍ମା—ପୁଂ ବି°. ( ହୀନ + କର୍ମନ୍ ) ବ.ବ୍ରୀ) ନିନ୍ଦିତକର୍ମକାରୀ, ମନ୍ଦଭାଗ୍ୟ ।
ହୀନକୁଳ—ବି. ନୀଚକୁଳ, ନୀଚଜାତି ।
ହୀନଗନ୍ଧବର୍ଗ—ବି. କାକଡ଼ାଶୃଙ୍ଗୀ ଆଦି ୭୩ଗୋଟି ଔଷଧଦ୍ରବ୍ୟ ।
ହୀନଚେତାଃ—ପୁଂ.ବି°.(ହୀନ+ଚେତସ୍) ନୀଚମନାଃ ।
ହୀନଜ—ବି°. (ହୀନ+ଜନ୍+ଅ)ଯାହା ହୀନରୁ ଜନ୍ମେ, ନୀଚଜାତ ।
ହୀନଜାତ—ବି. ଅଧମ ବା ନୀଚଜାତ ।
ହୀନତା(ତ୍ୱ)—ବି. ( ହୀନ+ଭା.ତା.ତ୍ୱ ) କ୍ଷୁଦ୍ରତା, ନୀଚତା, ଶୂନ୍ୟତା, ଊନତା ।
ହୀନତେଜାଃ—ପୁଂ.ବି°.(ବ.ବ୍ରୀ)ହୀନପ୍ରଭ ଦେଖ, ଦୁର୍ବଳ ।
ହୀନଦୃଷ୍ଟି—ବି. ନୀଚ ନଜର, ପରଶ୍ରୀକାତରତା, କୃପଣତା, ଲୋଲୁପଦୃଷ୍ଟି ।
ହୀନଦୃଷ୍ଟିଆ—ଗ୍ରା.ପୁଂ.ବି°.ପରଶ୍ରୀକାତର, କୃପଣ, ଯେ ପରର ସାମାନ୍ୟ ପଦାର୍ଥକୁ ମଧ୍ୟ ଲୋଭ କରେ ।
ହୀନପ୍ରକୃତି—ବି°. (ବ.ବ୍ରୀ) ନୀଚସ୍ୱଭାବବିଶିଷ୍ଟ, ନୀଚାଶୟ, ନୀଚାନ୍ତଃକରଣ,(ବି-କ.ଧା) ନୀଚସ୍ୱଭାବ ।
ହୀନପ୍ରଭ—ପୁଂ.ବି°. (ହୀନ+ପ୍ରଭା)ବ.ବ୍ରୀ; କ୍ଷୀଣଜ୍ୟୋତିଃ, ସ୍ୱଳ୍ପଦୀପ୍ତିବିଶିଷ୍ଟ, ଦୀପ୍ତିହୀନ, (ସ୍ତ୍ରୀ) ହୀନପ୍ରଭା ।
ହୀନପ୍ରାଣ—ପୁଂ. ବି°. (ବ.ବ୍ରୀ) ନୀଚାନ୍ତଃକରଣ, କ୍ଷୁଦ୍ରାଶୟ, ସଙ୍କୀର୍ଣ୍ଣଚେତାଃ, ଦୁର୍ବଳ, ଶକ୍ତିହୀନ, (ସ୍ତ୍ରୀ) ହୀନପ୍ରାଣା ।
ହୀନବର୍ଣ୍ଣ—ବି.(କ.ଧା)ନୀଚଜାତି, ଅନୁଜ୍ଜ୍ୱଳ ବର୍ଣ୍ଣ, ମଳିନ ରଙ୍ଗ, (ବି°-ବ.ବ୍ରୀ)ନୀଚଜାତିବିଶିଷ୍ଟ, (ସ୍ତ୍ରୀ) ହୀନବର୍ଣ୍ଣା ।
ହୀନବଳ(ବୀର୍ଯ୍ୟ)—ବି°. (ବ.ବ୍ରୀ) କ୍ଷୀଣତେଜାଃ, ଦୁର୍ବଳ ।
ହୀନବାଦ—ବି. ( କ.ଧା ) ମିଥ୍ୟାତର୍କ, ମିଥ୍ୟାସାକ୍ଷ୍ୟ ।
ହୀନବାଦୀ—ପୁଂ. ବି°. (ହୀନ+ବଦ୍+କ.ଇନ୍) ମୂକ, ବିରୁଦ୍ଧାର୍ଥ ବାଦୀ, ମିଥ୍ୟାସାକ୍ଷୀ, ମକଦ୍ଦମାରେ ହାରିଯାଇଥିବା ମୁଦେଇ, (ସ୍ତ୍ରୀ) ହୀନବାଦିନୀ ।
ହୀନବାହୁ—ପୁଂ.ବି. ଶିବଙ୍କର ଅନୁଚର ବିଶେଷ ।
ହୀନବକ୍ଷ—ବି°.(ବ.ବ୍ରୀ)ସ୍ୱଳ୍ପଗିରଳବିଶିଷ୍ଟ, ନିର୍ବିଷ, (ସ୍ତ୍ରୀ) ହୀନବକ୍ଷା ।
ହୀନବୁଦ୍ଧି—ବି°. ( ବ.ବ୍ରୀ ) ନୀଚମନାଃ; ନିର୍ବୋଧ, କ୍ଷୀଣବୁଦ୍ଧିବିଶିଷ୍ଟ, କ୍ଷୁଦ୍ରଚେତାଃ, ( ବି—କ.ଧା ) ନୀଚମତି, ମନ୍ଦବୁଦ୍ଧି, କ୍ଷୀଣବୁଦ୍ଧି, ନିର୍ବୋଧତା ।
ହୀନବୃତ୍ତି—ବି.(କ.ଧା) ନୀଚବୃତ୍ତି, ନିନ୍ଦିତ ବ୍ୟବସାୟ, ( ବି°—ବ.ବ୍ରୀ ) ନିନ୍ଦିତ ଉପାୟରେ ଜୀବିକା ନିର୍ବାହକାରୀ, ନୀଚପ୍ରକୃତିକ ।
ହୀନବେଶ—ବି. (କ.ଧା) ମଳିନବେଶ, ଦୀନବେଶ,(ବି°-ବ.ବ୍ରୀ)ମଳିନ ପରିଚ୍ଛଦଧାରୀ, ଛିନ୍ନକନ୍ଥା ଆଦି ପିନ୍ଧିଥିବା(ବ୍ୟକ୍ତି), (ସ୍ତ୍ରୀ) ହୀନବେଶା ।
ହୀନଭାଗ୍ୟ—ବି. ( କ.ଧା ) ହୀନକପାଳ ଦେଖ, ( ବି°--ବ.ବ୍ରୀ ) ହୀନକପାଳିଆ ଦେଖ ।
ହୀନମତି—ପୁଂ. ଓ ସ୍ତ୍ରୀ. ବି. ଓ ବି°. ହୀନବୁଦ୍ଧି ଦେଖ ।
ହୀନମାନ—ଗ୍ରା.ବି°. ହୀନମାନିଆ ଦେଖ, (ବି) ଅପମାନ, ଦୁର୍ଦ୍ଦଶା, ଅପେକ୍ଷାକୃତ ନିକୃଷ୍ଟ ବ୍ୟବହାର, ଅନାଦର, ମନ୍ଦ ବ୍ୟବହାର ।
ହୀନମାନକରିବା—ଗ୍ରା.କ୍ରି. ମନ୍ଦବ୍ୟବହାର କରିବା, ଅନ୍ୟ ତୁଳନାରେ ନିକୃଷ୍ଟ ବ୍ୟବହାର କରିବା ।
ହୀନମାନହେବା—ଗ୍ରା.କ୍ରି. ମନ୍ଦବ୍ୟବହାର ପାଇବା, ଅନ୍ୟ ତୁଳନାରେ ନିକୃଷ୍ଟ ବ୍ୟବହାର ପାଇବା ।
ହୀନମାନିଆ—ଗ୍ରା. ପୁଂ.ବି°. ଦୁର୍ଦ୍ଦଶାଗ୍ରସ୍ତ, ମନ୍ଦବ୍ୟବହାର ପ୍ରାପ୍ତ, ଅପମାନିତ, ମନ୍ଦ, ନିକୃଷ୍ଟ, ହୀନଦୃଷ୍ଟିଆ ।
ହୀନମୂଲ୍ୟ—ବି. ଅଳ୍ପଦାମ (ଯାଞ୍ଚବଲ୍କ୍ୟ) ।
ହୀନଯାନ—ବି. ବୌଦ୍ଧସମ୍ପ୍ରଦାୟ ବିଶେଷ ।
ହୀନଯୋଗ—ପୁଂ.ବି°.(ବ.ବ୍ରୀ)ଯୋଗଭ୍ରଷ୍ଟ, ବି.( ଆୟୁର୍ବେଦ ) ଉଚିତ ପରିମାଣ ଅପେକ୍ଷା ଅଳ୍ପ ଉପାଦାନରେ ଔଷଧର ମିଶ୍ରଣ ।
ହୀନଯୋନି—ବି. ( କ.ଧା ) ନୀଚଜାତି, (ପୁଂ ଓ ସ୍ତ୍ରୀ. ବି°) ନୀଚଜାତୀୟ ।
ହୀନରସ—ବି. ଏକ ଭାଷାର ବିଶିଷ୍ଟ ସମ-

ସ୍ଥୁରେ ଅନ୍ୟ ବିରୁଦ୍ଧ ରସର ପ୍ରସଙ୍ଗରୂପ କାବ୍ୟର ଦୋଷବିଶେଷ ।

ହୀନଶକ୍ତି—ବି. (କ.ଧା) କ୍ଷୀଣକ୍ଷମତା ବା ସାମର୍ଥ୍ୟ, (ବିଂ-ବ.ଗ୍ରା) ହୀନବଳ ଦେଖ ।

ହୀନସଖ୍ୟ—ବି.ନୀଚବ୍ୟକ୍ତି ସହିତ ମିତ୍ରତା ।

ହୀନସେବା—ବି. ( କ.ଧା ) ନୀଚବ୍ୟକ୍ତିର ସେବା ।

ହୀନସ୍ତା—ଗ୍ରା. ବି. ଦୁର୍ଦ୍ଦଶା, (ବି ଓ ବିଂ) ହତହତା ଦେଖ ।

ହୀନସ୍ତିଆ—ଗ୍ରା, ପୁଂ. ବିଂ. ଯେ ଜଣେ ହୀନସ୍ତା ହୁଏ, ଯେ ଅନ୍ୟଙ୍କୁ ହୀନସ୍ତା କରେ ।

ହୀନା—ସ୍ତ୍ରୀ, ବିଂ. ହୀନର ସ୍ତ୍ରୀଲିଙ୍ଗ, (ଗ୍ରା. ପୁଂ ଓ ସ୍ତ୍ରୀ. ବିଂ) ହୀନବୁଦ୍ଧିଆ, ହୀନ-ଭୁଷ୍ଟିଆ, କୃପଣ, ବ୍ୟୟକୁଣ୍ଠ ।

ହୀନାଙ୍ଗ—ପୁଂ.ବିଂ. (ବ,ଗ୍ରା) ବିକଳାଙ୍ଗ, ସ୍ୱାଭାବିକ ଅଙ୍ଗହୀନ, (ସ୍ତ୍ରୀ)ହୀନାଙ୍ଗୀ,(ବି) ପିମ୍ପୁଡ଼ି ।

ହୀନାଙ୍ଗୀ—ସ୍ତ୍ରୀ.ବିଂ. ଅଙ୍ଗହୀନା (ସ୍ତ୍ରୀ),(ବି) ପିପୀଲିକା, ପିମ୍ପୁଡ଼ି ।

ହୀନାବସ୍ଥା—ବି, ( କ.ଧା ) ମନ୍ଦ ଅବସ୍ଥା, ନୀଚ ଅବସ୍ଥା, ଦରିଦ୍ରାବସ୍ଥା ।

ହୀନାର୍ଥ—ପୁଂ.ବିଂ, (ବ.ଗ୍ରା)ବ୍ୟର୍ଥମନୋରଥ, ଯାହା ଲାଭଜନକ ନୁହେ ।

ହୀନିତ—ବି.( ହୀନ+ଇତ ) ଗଣିତର, ବିୟୋଗ ଚିହ୍ନ, " — " ଏହିପ୍ରକାର ଚିହ୍ନ ।

ହୀନସ୍ତା—ପ୍ରା. (ପାଟଣା) ବି, ଅପମାନ ।

ହୀନୋପମା—ବି. (କ.ଧା) ବଡ଼ ଉପମେୟ ପାଇଁ ଖୋଜାଯିବା ଛୋଟ ଉପମାନ ।

ହୀନ୍ତାଲ—ବି. ହିନ୍ତାଲ ଦେଖ ।

ହୀୟମାନ-ବିଂ.(ହା+ମ୍ପ.ଆନ)କ୍ଷୀୟମାଣ, ଯାହା କ୍ଷୟପ୍ରାପ୍ତ ହୋଇଅଛି, ( ସ୍ତ୍ରୀ ) ହୀୟମାନା ।

ହୀର—ବି. (ହୃ+କ.ଅ) ବଜ୍ର, ଲୁକଣ, ଶିବ, ହାର, ହୀରକ, ହୀରା, ସର୍ପ, ସିଂହ, ମୋତିମାଳା, ନୈଷଧକାର ଶ୍ରୀହର୍ଷଙ୍କର ପିତା, ବର୍ଣ୍ଣବୃତ୍ତବିଶେଷ ।

ହୀରକ—ବି.(ହୀର+କ)ବହୁମୂଲ୍ୟ ଏକଜ ରତ୍ନବିଶେଷ, ହୀରା ।

ହୀରକକ୍ଷେତ୍ର—ବି. ପ୍ରଭାସଖଣ୍ଡ ବର୍ଣ୍ଣିତ ପ୍ରାଚୀନ ପୁଣ୍ୟସ୍ଥାନ ।

ହୀରକଖଚିତ—ବିଂ. ହୀରକମଣ୍ଡିତ, ହୀରା ବସାଯାଇଥିବା (ଅଳଙ୍କାରାଦି) ।

ହୀରକଖଣ୍ଡ—ବି. (୬ତତ୍) ଖଣ୍ଡେ ହୀରା, ହୀରାରୁ ଖଣ୍ଡେ ।

ହୀରକଜୁବିଲି—ଗ୍ରା, ବି. କୌଣସି ରାଜା ୫୦ବର୍ଷ ରାଜତ୍ୱ କଲେ କିମ୍ବା ୫୦ବର୍ଷ ଦାମ୍ପତ୍ୟ ଜୀବନ ଅତିବାହିତ କଲେ ସେହି ଉପଲକ୍ଷ୍ୟରେ ଅନୁଷ୍ଠିତ ଆନନ୍ଦ-ସୂଚକ ଉତ୍ସବ, (ଏହାପରେ ୨୫ବର୍ଷରେ ସିଲ୍‌ଭର ବା ରୌପ୍ୟ ଜୁବିଲି ହୋଇଥାଏ) ।

ହୀରା—ବି. ( ହୃ+କ.ଅ+ଆ ) ଲକ୍ଷ୍ମୀ, ତୈଳାମ୍ବୁକ,ଅସରପା ପୋକ,ପିପୀଲିକା, କାଞ୍ଜିଶ, ଗମ୍ଭାରୀ ଗଛ, ମତ୍ସ୍ୟବିଶେଷ, (ଗ୍ରା,ବି) ହୀରକ,ଶ୍ରେଷ୍ଠବସ୍ତୁ ବା ମନୁଷ୍ୟ ।

ହୀରାକଣୀ—ଗ୍ରା. ବି. ହୀରାର କ୍ଷୁଦ୍ର ଖଣ୍ଡ ।

ହୀରାଖଣ୍ଡ-ଗ୍ରା.ବି,ସମ୍ବଲପୁରର ନାମାନ୍ତର, ସମ୍ବଲପୁର ଜିଲ୍ଲାର ମହାନଦୀରେ ଥିବା ଗୋଟିଏ ଦ୍ୱୀପ ।

ହୀରାଙ୍ଗ—ବି. ( ହୀର+ଅଙ୍ଗ ) ବ.ଗ୍ରା; ଇନ୍ଦ୍ରଙ୍କ ବଜ୍ର ।

ହୀରାମାଳାମୋତିମାଣିକ୍ୟ-ଗ୍ରା.ବି,(ସହଚର ଶବ୍ଦଗଣ) ବହୁପ୍ରକାର ରତ୍ନ, ଅସଂଖ୍ୟ ଧନରତ୍ନ ।

ହୀରାମନ୍—ଗ୍ରା. ବି. ଶୁକପକ୍ଷୀ ଜାତୀୟ ପୂର୍ବ ଭାରତୀୟ ଦ୍ୱୀପପୁଞ୍ଜରୁ ଏ ଦେଶକୁ ଅଣାଯାଇ ପୋଷାଯାଉଥିବା ଏକପ୍ରକାର ପକ୍ଷୀ ।

ହୀଲ—ବି, ରେତଃ ।

ହୀଲୁକ—ବି. ଗୌଡ଼ୀମଦ୍ୟ ।

ହୀହୀ-ବିସ୍ମୟ,ହାସ୍ୟ,ଆହ୍ଲାଦସୂଚକ ଶବ୍ଦ ।

ହୁ—(ଧାତୁ) ହୋମ କରିବା, ଖାଇବା ।

ହୁ—ଗ୍ରା. ଅବ୍ୟ, ହଠାତ୍, ଝଟିତି, ନିଆଁ ପ୍ରବଳବେଗରେ ବ୍ୟାପିବା ପ୍ରକାରେ, ନିଶ୍ଚୟାର୍ଥକ ବା ଅବଧାରଣାର୍ଥକ, ସେ, ଯେ,କେ ଶବ୍ଦମାନଙ୍କ ପରେ ଯୁକ୍ତହୁଏ, (ଯଥା: — ସେହୁ, କେହୁ, ଯେହୁ,ଶିଶୁମାନଙ୍କୁ ଡରାଇବାର ଶବ୍ଦ,ନିଆଁ ଆଦିକୁ ନ ଛୁଇଁବା ଅର୍ଥରେ; ଅଳ୍ପିକ ଭୟ,(ପ୍ରା, ଖଡ଼ିଆଳ) କୋଳାହଳ ।

ହୁଅ—ଗ୍ରା. କ୍ରି. (ସଂ-ଭବ, ସଂ ଭୂ ଧାତୁ) ଓଡ଼ିଆ 'ହେବା' କ୍ରିୟାର ଅନୁଜ୍ଞା ମଧ୍ୟମ ପୁରୁଷ କର୍ତ୍ତା ସଙ୍ଗେ ବ୍ୟବହୃତ କ୍ରିୟାରୂପ ।

ହୁଅଇ—ଗ୍ରା. କ୍ରି. ହୁଏ ।

ହୁଅସି—ଗ୍ରା. କ୍ରି. (ସଂ-ଭବସି) 'ହୁଅ' ର ପ୍ରାଚୀନ ଆକାର ।

ହୁଆଙ୍ଗ—ଗ୍ରା.ବି.ଅନାର୍ଯ୍ୟ ବାଦ୍ୟବିଶେଷ ।

ହୁଆଲ୍—ଯା. ବି, ( ହବାଲ୍ ) ଅବସ୍ଥା, ସମ୍ବାଦ, ଜଡ଼, ବୃତ୍ତାନ୍ତ ।

ହୁଅଲ୍‌ଦାର୍-ଯା.ବି. ହାବିଲ୍‌ଦାର୍ ଦେଖ ।

ହୁଆଲତ୍—ଯା, ବି. ହାଉଲାତ୍ ଦେଖ, କରୁର ଖର୍ଚ୍ଚ ଚଳାଇବା ପାଇଁ ଖରଚର ଭାରପ୍ରାପ୍ତ କର୍ମଚାରୀଙ୍କ ଦ୍ୱାରା ତହବିଲ୍‌ରୁ ଆଗତୁରା ନିଆଯିବା ଧନ ।

ହୁଆହୁଆ—ଗ୍ରା.ଅବ୍ୟ. ଗୋଳମାଳ ଶବ୍ଦ, ବିଲୁଆମାନଙ୍କର ଶବ୍ଦ ।

ହୁଆହୁଟା—ପ୍ରା. (ଖଡ଼ିଆଳ) ବି. କଳିକଜିଆ, ଗାଳି, ଗୋଳମାଳ ।

ହୁଇହୁଟି—ପ୍ରା. (ଖଡ଼ିଆଳ) ଅବ୍ୟ,ବିଲୁଆଙ୍କ ଧ୍ୱନି, ହୁକାହୁଆ ।

ହୁଉଁହୁଉଁ—ଗ୍ରା. ଅବ୍ୟ. କୁମ୍ଭାଟୁଆ ଆଦି ପକ୍ଷୀମାନଙ୍କର ରାବ ବା ଶବ୍ଦ ।

ହୁଏ—ଗ୍ରା. କ୍ରି. ହୁଅଇ ।

ହୁଏତ—ଗ୍ରା.ଅବ୍ୟ. ସମ୍ଭବତଃ, ନଚେତ୍, ବୋଧହୁଏ ।

ହୁଏନ୍‌ସାଂ—ଯା. (ନାମ)ଜନୈକ ବିଖ୍ୟାତ ଚୀନଦେଶୀୟ ପର୍ଯ୍ୟଟକଙ୍କ ନାମ ।

ହୁଏଲ୍—ଯା. ବି. ତିମିମାଛ ।

ହୁଁ—ଗ୍ରା. ଅବ୍ୟ. (ସଂ-ହୁମ୍) ହିଁ, ସମ୍ମତିସୂଚକ, ସ୍ୱୀକାରବୋଧକ, ସନ୍ଦେହ, ପ୍ରତିଜ୍ଞା, କୋପ, ଭୀତପ୍ରଦର୍ଶକ ଶବ୍ଦ, ଅବଜ୍ଞା, ଛଡ଼ା, ବ୍ୟାଘାତ, ସ୍ମରଣାର୍ଥକ, ଠାରୁ, ଅପେକ୍ଷାସୂଚକ ଶବ୍ଦ ।

ହୁଁକର୍—ଗ୍ରା. କ୍ରି, ବିଂ, ହୁଁକାର ଉଚ୍ଚା-

ରଣ ପୂର୍ବକ ।
ହୁଁ କରିବା(ମାରିବା)—ଗ୍ରା. କ୍ରି. ଅନ୍ୟର ପ୍ରସ୍ତାବରେ ରାଜି ହେବା, କାହାଣୀ କହୁଥିବା ବ୍ୟକ୍ତିକୁ ହୁଁ ଶବ୍ଦ ଉଚ୍ଚାରଣ କରିବା ଦ୍ୱାରା ଉତ୍ସାହିତ କରିବା ।
ହୁଟ୍—ପ୍ରା. (ଭଞ୍ଜଭୂମି) ବି. ଓଠ ।
ହୁଁଡ଼ାର—ପ୍ରା.(ଖଡ଼ିଆଳ)ବି.ଗଧିଆବାଘ ।
ହୁଁହୁଁ—ଗ୍ରା. ଅବ୍ୟ. ସମ୍ମତିସୂଚକ ହୁଁ ଧ୍ୱନିର ଦ୍ୱିତ୍ୱ, ପାରା ଓ କପୋତାଦିର ରବ, ସମ୍ଭୋଗକାଳରେ ମତ୍ତତାଯୋଗୁଁ କାମୁକା ସ୍ତ୍ରୀମାନଙ୍କର ଉଚ୍ଚାରିତ ଅସ୍ପଷ୍ଟ ଶବ୍ଦବିଶେଷ ।
ହୁକ୍—ଯା. ବି. ବକ୍ରାଗ୍ର କଣ୍ଟା ।
ହୁକ(କି)ର(କନା,କିନ)—ଗ୍ରା. କ୍ରି. ବିଂ. ଶୀଘ୍ର, ହଠାତ୍, ହଠାତ୍ ଅତି ଭୀଷଣଭାବରେ (ନିଆଁ ଜଳି ଉଠି ବ୍ୟାପିବା ପ୍ରକାରେ) ।
ହୁକା—ଯା.ବି. ଗୁଡ଼ାଖୁଧୂଆଁ ପିଇବାରେ ବ୍ୟବହୃତ ନଳଯୁକ୍ତ ଯନ୍ତ୍ର, ଗୁଡ଼୍ଗୁଡ଼ି ।
ହୁକାବରଦାର୍—ଯା. ବି. ରାଜା ଆଦିଙ୍କ ହୁକାବୁହା ଚାକର ।
ହୁକୁମ୍—ଯା.ବି.ଆଜ୍ଞା,ଆଦେଶ,ମୀମାଂସା, ବିଚାରର ଫଳର ଲିପି, ଦୈବାଦେଶ, ଦେବାଦେଶପ୍ରାପ୍ତ ଔଷଧ, ତାସ ଆଦି ଖେଳରେ ରଙ୍ଗାରାଣୀ ଆଦି ବେଶୀ ଦରର ତାସ୍ ।
ହୁକୁମ୍‌ଅମାନ୍ୟ—ଗ୍ରା.ବି. ଆଦେଶ ଲଙ୍ଘନ ।
ହୁକୁମ୍‌ଚଲା(ଲେ)ଇବା—ଗ୍ରା.କ୍ରି. ଆଦେଶ ଦେବା, କରଣୀ କଟାଇବା ।
ହୁକୁମ୍‌ଜାରି—ଯା. ବି. ଆଜ୍ଞାପ୍ରଚାର, ନିଃସନ୍ଦେହରେ ସର୍ବତ୍ର ଆଜ୍ଞାନୁସାରେ କାର୍ଯ୍ୟ ହେବାର ଅବସ୍ଥା, ହାକିମଙ୍କ ପ୍ରଦତ୍ତ ଆଦେଶର ପ୍ରଚାରକରଣ ।
ହୁକୁମ୍‌ତାବେ—ଯ.ବିଂ. ଆଜ୍ଞାର ଅଧୀନ, ଅଧୀନ, ଅଧସ୍ତନ ।
ହୁକୁମ୍‌ତାମିଲ୍—ଯା.ବି. ଆଦେଶପାଳନ ।
ହୁକୁମ୍‌ଦାର—ଯା. ବି. ଆଜ୍ଞାବହ ଭୃତ୍ୟ, ଅର୍ଦ୍ଦଳି ।
ହୁକୁମ୍‌ନାମା-ଯା.ବି.ଆଜ୍ଞାପତ୍ର,ଆଦେଶଲିପି ।
ହୁକୁମତ୍(ତି)—ଯା. ବି. ରାଜତ୍ୱ, ପ୍ରଭୁତ୍ୱ, ଅଧିକାର ।
ହୁକୁମା—ଗ୍ରା. ବି. ଇତ୍ୟାଦି ଅର୍ଥରେ ହାକିମ ଶବ୍ଦର ପରେ ସହଚର ଶବ୍ଦ ରୂପେ ବ୍ୟବହୃତ ଶବ୍ଦ ।
ହୁକୁହୁକା—ଗ୍ରା.ପୁଂ.ବିଂ.କୌଣସି କାର୍ଯ୍ୟ ପ୍ରତି ଆଗ୍ରହାତିଶଯ୍ୟ ଦେଖାଉ ଥିବା (ବ୍ୟକ୍ତି) ।
ହୁକୁହୁକୁ—ଗ୍ରା.ଅବ୍ୟ.ହାଇଁପାଇଁ,କୌଣସି କାର୍ଯ୍ୟକରିବା ସକାଶେ ଆଗ୍ରହାତିଶଯ୍ୟ ପ୍ରକାଶ,ଅନଭିଜ୍ଞ ବ୍ୟକ୍ତିର କାର୍ଯ୍ୟକରିବାକୁ ଉଦ୍‌ବେଗତା ପ୍ରକାଶ, ପେଲୁରାବ ।
ହୁକେ—ଗ୍ରା.ଅବ୍ୟ.ବିଲୁଆମାନଙ୍କର ଧ୍ୱନି ।
ହୁକ୍କା—ଯା. ବି. ହୁକା ଦେଖ ।
ହୁଗଲା—ପ୍ରା. (ଖଡ଼ିଆଳ) ବିଂ. ଢିଲା ।
ହୁଗଲିବା—ପ୍ରା. (ଖଡ଼ିଆଳ) କ୍ରି. ଢିଲା ହେବା ।
ହୁଗୁଲା—ଗ୍ରା. ବିଂ. ଶିଥିଳ, ଶ୍ଳଥ, ଢିଲା. ଯାହା ହଲହଲ ହେଉଥାଏ, ଯାହା ଛିଦ୍ରରେ ଠିକ୍‌ରୂପେ ବସି ନ ଥାଏ,ଢିଲା ହେଉଥିବା(ଅଳଙ୍କାର ବା ପୋଷାକ) ।
ହୁଗୁଳି—ଗ୍ରା. ବି. (ନାମ) ଗଙ୍ଗାନଦୀର ଯେଉଁ ଶାଖା କଲିକତା ବାଟେ ବଙ୍ଗୋପସାଗରରେ ପଡ଼ିଅଛି, ବଙ୍ଗପ୍ରଦେଶର ବର୍ଦ୍ଧମାନ ବିଭାଗର ଗୋଟିଏ ଜିଲ୍ଲା ଓ ହୁଗୁଳି ନଦୀର କୂଳସ୍ଥ ନଗରର ନାମ ।
ହୁଗୁଳିବା—ଗ୍ରା.କ୍ରି. ହୁଗୁଳା ହେବା,ଶ୍ଳଥ ହେବା, ଢିଲା ହେବା, ସ୍ଥାନର ଢିଲା ଯୋଗୁଁ ଚ୍ୟୁତ ହେବା ।
ହୁଙ୍କା—ଗ୍ରା. ବି. (ସଂ-ଶଙ୍କୁ) ଉଇମାନଙ୍କ ନିର୍ମିତ ମାଟିର ସ୍ତୂପ ।
ହୁଙ୍କାପିଟା(ଭାଙ୍ଗୁଆ)—ଗ୍ରା.ବିଂ. (ଲ.ଅର୍ଥ) ଯେଉଁ ବ୍ୟକ୍ତି କୌଣସି ପ୍ରଭେଦ ନ ରଖି ସମସ୍ତଙ୍କୁ ଏକାପରି ଅତ୍ୟାଚାରକର ଶାସନ କରେ, ଅତ୍ୟାଚାରୀ, ଯାଚ୍ଛାକାର୍ଯ୍ୟକାରୀ ।
ହୁଙ୍କାମାଟି—ଗ୍ରା.ବି.ଉଇହୁଙ୍କାର ମୃତ୍ତିକା ।
ହୁଙ୍କାର—ବି. (ହୁମ୍+କୃ+ଭା.ଅ) ବଳପ୍ରକାଶ ପୂର୍ବକ ହୁଁ ଧ୍ୱନି, ବୀରର କିମ୍ବା ଯୋଦ୍ଧାର ଭୀଷଣ ଗର୍ଜନ, ବନ୍ୟବରାହର ଧ୍ୱନି, ଗର୍ଜନ, କପୋତର ହୁଁ ହୁଁ ଶବ୍ଦ, ପ୍ରତିଜ୍ଞା, ସ୍ୱୀକାର ।
ହୁଙ୍କୃତ(ତି)—ବି. (ହୁମ୍+କୃତ,କୃତି) ହୁଙ୍କାର ଦେଖ, (ବିଂ) ହୁଙ୍କାରବିଶିଷ୍ଟ, ଗର୍ଜିତ, ହୁଁ ଏହି ଶବ୍ଦଦ୍ୱାରା ଉଚ୍ଚାରିତ ।
ହୁଙ୍ଗ୍‌ଲା—ଗ୍ରା.ପୁଂ.ବିଂ. ଫାଙ୍ଗୁଲା ଦେଖ ।
ହୁଙ୍ଗ୍‌ବା—ପ୍ରା. (ସମ୍ବଲ) କ୍ରି. କାହୁଡ଼ି ମାରିବା ।
ହୁଙ୍ଗିବା—ଗ୍ରା. କ୍ରି. ଗେଣ୍ଟିବା, କଣ୍ଟା ଆଦି ଦ୍ୱାରା ଭୂଷିବା, ଭୂଷିଦେବା ।
ହୁଙ୍ଗାହୁଙ୍ଗି—ଗ୍ରା. ବି. (ପ୍ରା. ଖଡ଼ିଆଳ) ଅନ୍ୟୋନ୍ୟରେ ଭୂଷାଭୂଷି ।
ହୁଙ୍ଗୁଟି—ପ୍ରା.(ବାଲେ.)ବି.ଘୁଙ୍ଗୁଡ଼ି ଦେଖ ।
ହୁଚ୍‌କା—ପ୍ରା.(ଖଡ଼ିଆଳ) ବି.ଥର,ବାର ।
ହୁଡ଼କି-ପ୍ରା.(ଖଡ଼ିଆଳ)ବି.ହିକ୍କା,ହାକୁଟି ।
ହୁଚୁଣ୍ଡି—ପ୍ରା. (ସମ୍ବ) ବି. ବାହୁସ୍ଫୋଟ ।
ହୁଜ(ଜି)ତ୍—ଯା. ବି. ହୁଜ୍ଜତ୍ ଦେଖ ।
ହୁଜୁଡ଼—ପ୍ରା.(ଯାଜପୁର)ବି. ଅଳି ଦେଖ ।
ହୁଜ୍ଜ(ଜ୍ଜି)ତ୍-ଯା. ବି. କଳିତକରାର, ବାଗ୍‌ବିତଣ୍ଡା, ତର୍କ, ଶୁଷ୍କବାଦ ।
ହୁଜ୍ଜ(ଜ୍ଜି)ତି—ଯା. ବିଂ. କଳିହା, କଳହପ୍ରିୟ, ବାଗ୍‌ବିତଣ୍ଡାକାରୀ ।
ହୁଞ୍ଚୁଡ଼ା—ଗ୍ରା. ବି. ଝିଙ୍କି ଛଡ଼ାଇନେବା ।
ହୁଞ୍ଚୁଡ଼ିବା—ଗ୍ରା. କ୍ରି. ଅନ୍ୟଠାରୁ ବଳାତ୍କାରରେ କୌଣସି ବସ୍ତୁକୁ ଛଡ଼ାଇନେବା ।
ହୁଡ଼ହୁଡ଼—ବି. (ହୁଡ଼୍-ଦ୍ୱିତ୍ୱ+ଅ) ସଂହତ, ଜନତା, ଭିଡ଼ ।
ହୁଡ଼୍—(ଧାତୁ) ସଂହତ, ଗତି, ସଙ୍କେତ, ସଂଘାତ, ଏକତ୍ର କରିବା ଅର୍ଥରେ ।
ହୁଡ଼=ବି. (ହୁଡ଼୍+କ.ଅ) ମେଷ, ମେଣ୍ଢା, ଚୌରାଦି ନିବାରଣାର୍ଥ ଭୂମିନିହିତ ଲୌହମୟ ତୀକ୍ଷ୍ଣ ଶଙ୍କୁ, ଲୌହଦଣ୍ଡ, ଲଗୁଡ଼, ଲୁହାର ଗଦା, ସୈନ୍ୟାଶ୍ରୟସ୍ଥାନ, ବୁରୁଜ, (ମି.ଅ) ଉଥୋପରି ମଳମୂତ୍ର ତ୍ୟାଗାର୍ଥ ଗୃହ, (ଭା.ଅ) ଜନତା, ସୈନ୍ୟସଙ୍ଘ (ଗ୍ରା.ବି) ପ୍ରତିଜ୍ଞା, ପଣ, ବାଜି, ଜିଦ, ଭ୍ରମ, ଦୋଷ, ଭୁଲ, ଲୋପ,

ଅପଦେଶ୍ରଇବା, (ପ୍ରା—ଖଣ୍ଡିଆଳ) (ବ) ଖେଳରେ ହାରଜିଣ ।

ହୁଡ଼କ୍-ଗ୍ରା: ( ସିଂହଭୂମ ) ବି. କବାଟର ଉତରପାଖର କିଳଣୀ ।

ହୁଡ଼କା—ବି. ( ହୁଡ଼୍ + କ.ଅକ+ଆ ) ପରପୁରୁଷଗାମିନୀ ସ୍ତ୍ରୀ ।

ହୁଡ଼କ୍କ—ବି. (ହୁଡ଼୍ +ସଂ.ଅକ୍କ) ବାଦ୍ୟ-ବିଶେଷ, ଦାତ୍ୟୂହ, ଡାହୁକ, ଦକ୍ଷ, ମଦମତ୍ତ ବ୍ୟକ୍ତି, ଦଣ୍ଡକ, ଲୌହଦଣ୍ଡ, ଅର୍ଗଳ, କବାଟ କିଳିବାର କାଷ୍ଠ ବା ଲୌହଦଣ୍ଡ, କବାଟ କିଳିବାରେ ବ୍ୟବ-ହୃତ ବକ୍ରାଗ୍ର ଲୌହଶଲାକା, ଡିଙ୍କିଆ, ପଖାଉଜ, ଲୁହାର ସମା ଦଆଯାଇ-ଥିବା ଦଣ୍ଡା, (ପୁଂ.ବିଂ) ମଦମତ୍ତ, ମତ୍ତ, (ସ୍ତ୍ରୀ) ହୁଡ଼କ୍କା ।

ହୁଡ଼ା—ଗ୍ରା. ବି. ପୋଖରୀ ବା କିଆରିର ମାଟିର ଉଚ୍ଚ ବନ୍ଧ ( ଯାହାଦ୍ୱାରା ପାଣି ଅଟକେ ), ମାଟିର ଲମ୍ବ ସ୍ତୂପ, ଶୃଙ୍ଖଳ, ମୃତ୍ତିକାପିଣ୍ଡ, ଭର୍ତ୍ସନା, ଗାଳି, ବକା, ଠେକା, ପ୍ରତାରଣା, (ଗ୍ରା.ପୁଂ.ବିଂ) ଯେ ପରକୁ ଠକାଏ, ଯେ ପରଠାରୁ ଭୁଲି-କରି ନିଏ ।

ହୁଡ଼ା(ଡ଼େ)ଇବା—ଗ୍ରା. କ୍ରି. ( ସଂ-ହୁର୍ଚ୍ଛ୍-ଧାତୁ ) ଖେଳରେ ଧପାଇବା, ହସା-ଇରେ ଗୋଳମାଳ କରି ଭୁଲାଇବା, (ପ୍ରା—ସମ୍ବଲ), ଉଡ଼ାଇବା ।

ହୁଡ଼ାବାନ୍ଧିବା—ପ୍ରା.( ଜଃ ବାଲେ. ) କ୍ରି. ମାନସିକ କରି ଠାକୁରଙ୍କ ନିକଟରେ ଠେକା ବାନ୍ଧିବା ।

ହୁଡ଼ାହୁଡ଼ି—ଗ୍ରା. ବି. ପରସ୍ପରରେ ଗାଳି, ପରସ୍ପରରେ ଠେଲାଠେଲି, ମରାମରି ।

ହୁଡ଼ି—ଗ୍ରା. ବି. ହୁରି, ଉଚ୍ଚସ୍ୱରରେ ଡାକ, ଘୋଷା, ଗୋଳମାଳ, ଶ୍ଲେଟ ପାହାଡ଼, ହ୍ରଦ, ସମୁଦ୍ର ଉପକୂଳରେ ବାଣିଜ୍ୟ କରିବାରେ ବ୍ୟବହୃତ ଶ୍ଲେଟ ଜାହାଜ ।

ହୁଡ଼ିକରିବା—ପ୍ରା. (କାଙ୍କି) ଦୁଇଜଣଙ୍କର ଦୁଇଟି ବଳଦରେ ଯୋଗ କରି ହଳ କରିବା, ଯାଆରି କରି ଚଳିବା ।

ହୁଡ଼ିବା—ଗ୍ରା. କ୍ରି. ଭୁଲକରିବା, ଗାଳି-ଦେବା, କୁବାକ୍ୟ କହିବା, ଭୁଲରେ ଗ୍ରହଣ କରିବା, ପାଶୋରିବା, ଅପମାନ-ଦେବା, ପ୍ରତିଜ୍ଞାତ ଲଙ୍ଘିବା, ବାଜି-ମାରିବା, ଭୂମିରେ ଲୋଟିବା, କର୍ତ୍ତବ୍ୟାଦ ପାଳନ ନ କରିବା ବା ଭୁଲିଯିବା ।

ହୁଡ଼ୁକ—ଗ୍ରା. ବି. କବାଟ କିଳିବାରେ ବ୍ୟବହୃତ କାଷ୍ଠ ବା ଲୌହଦଣ୍ଡ ବା ଅର୍ଗଳ ।

ହୁଡ଼ୁକ୍କ—ବି. (ହୁଡ଼ୁକ୍+କୈ+ଅ) ହୁଡ଼କ୍କ ଦେଖ ।

ହୁଡ଼ୁତ୍—ଅବ୍ୟ. ବୃଷର ଶବ୍ଦ, ଷଣ୍ଢର ହୁଙ୍କାର । [ କୋଳ ।

ହୁଡ଼ୁପି—ପ୍ରା. (ଗଞ୍ଜାମ) ବି. କଣ୍ଢେଇ-

ହୁଡ଼ୁମା-ଗ୍ରା. ପୁଂ. ବିଂ. ଅତି ଦୁଷ୍ଟ, କାଣ୍ଡଜ୍ଞାନଶୂନ୍ୟ, ଦୁଃସାହସିକ ।

ହୁଡ଼ୁମ୍ବ—ବି. (ହୁଡ଼୍+କ.ଅମ୍ବ) ଭୃଷ୍ଟ ଚିପିଟକ, ଚୂଡ଼ାଭଜାବିଶେଷ ।

ହୁଡ଼ୁହୁଡ଼ା-ପ୍ରା. (ମେଢ) ବି. (ସଂ-ହୁର-ହୁରା) ଆଦରଣୀୟ ଭକ୍ତ, ଅଣସୋରିଷିଆ ।

ହୁଣ୍ଡ୍—( ଧାତୁ ) ଗଦାକରିବା, ଏକାଠି କରିବା ।

ହୁଣ୍ଡ—ବି. ( ହୁଣ୍ଡ୍ +କ.ଅ ) ବ୍ୟାଘ୍ର, ଗ୍ରାମ୍ୟ ଶୂକର, ଘୁଷୁରି, ମୂର୍ଖ, ରାକ୍ଷସ, ନିର୍ବୋଧ, ଶସ୍ୟର ବାଳି, ବର୍ବର ଜାତି-ବିଶେଷ ।

ହୁଣ୍ଡା—ଗ୍ରା. ପୁଂ. ବିଂ. ନିର୍ବୋଧ, ଓଲୁ, ମୂର୍ଖ, ସ୍ଥୂଳକାୟ, ନିର୍ବୁଦ୍ଧି, (ବି) ହେଟା-ବାଘ, ଆଗପଛ ନ ବିଚାରି କାର୍ଯ୍ୟକାରୀ ବ୍ୟକ୍ତି, ସ୍ଥୂଳକାୟ ଓ ନିର୍ବୋଧ ବ୍ୟକ୍ତି, (ସ୍ତ୍ରୀ) ହୁଣ୍ଡୀ ।

ହୁଣ୍ଡାପଣ-ଗ୍ରା. ବି. ମୂର୍ଖପଣ ନିର୍ବୋଧତା ।

ହୁଣ୍ଡାମି—ଗ୍ରା. ବି. ହୁଣ୍ଡାପଣ ଦେଖ ।

ହୁଣ୍ଡାଲ-ଗ୍ରା. ବି. ହେଟାବାଘ, ଚିତାବାଘ ।

ହୁଣ୍ଡାଳିଆ—ଗ୍ରା. ବିଂ. ହୁଣ୍ଡାବ୍ୟକ୍ତିର ଆଚରଣ ସୁଲଭ (କାର୍ଯ୍ୟ) ।

ହୁଣ୍ଡି—ଗ୍ରା. ବି. ବାଣିଜ୍ୟ ବ୍ୟବସାୟ ଉପଲକ୍ଷରେ ସ୍ଥାନାନ୍ତରରେ କୌଣସି ବ୍ୟକ୍ତିଙ୍କୁ ଟଙ୍କା ଦିଆଯିବାପାଇଁ ବରାଦ ଚିଠି, ଅର୍ଥସମ୍ବନ୍ଧୀୟ ଚିଠି ।

ହୁଣ୍ଡୀ—ଗ୍ରା.ବି ଓ ବିଂ.ହୁଣ୍ଡାର ସ୍ତ୍ରୀଲିଙ୍ଗ, ହୁଣ୍ଡା ଦେଖ, ହୁଣ୍ଡି ଦେଖ ।

ହୁତ୍—ଗ୍ରା. ଅବ୍ୟ, ଧୃତ୍, ନିଷେଧାର୍ଥକ, ବାରଣାର୍ଥକ, ହୁତ୍ ଦେଖ ।

ହୁତ—ବିଂ. ( ହୁ+ସଂ.ତ ) ଦେବୋ-ଦ୍ଦେଶ୍ୟରେ ମନ୍ତ୍ରୋଚ୍ଚାରଣ ପୂର୍ବକ ଅଗ୍ନିରେ ପ୍ରକ୍ଷିପ୍ତ ( ଘୃତାଦି ), ତର୍ପିତ, (ବି) ହୋମ, ହୋମାଗ୍ନି, ଶିବ, ହୋମ-ଘୃତାଦି ।

ହୁତବହ—ବି. (ହୁତ+ବହ୍+କ.ଅ) ଅଗ୍ନି । [ ଅଗ୍ନି ।

ହୁତଭକ୍ଷ—ବି. ( ହୁତ+ଭକ୍ଷ+କ.ଅ )

ହୁତଭୁକ୍-ବି. ହୁତ+ଭୁଜ୍+କ.କ୍ୱିପ୍) ଅଗ୍ନି, ଧଳାଚିତା ଗୁଳ୍ମ, ଶିବ, ବିଷ୍ଣୁ ।

ହୁତଭୁକ୍ପ୍ରିୟା-ସ୍ତ୍ରୀ. ବି. (୬ତତ୍) ଅଗ୍ନିଙ୍କ ଭାର୍ଯ୍ୟା, ସ୍ୱାହା ।

ହୁତଲ୍—ପ୍ରା. ( ଖଣ୍ଡିଆଳ ) ବି. ଓ ବିଂ. ଗୋଟିଏ ହାତରେ ଧରିହେବା ପରିମିତ ବସ୍ତୁ ।

ହୁତଶେଷ—ବି. ହୋମ ସରିବା ପରେ ବଳି ପଡ଼ିଥିବା ସାମଗ୍ରୀ ।

ହୁତାଂଶ—ବି. ହୋମରେ ଯାହା ଆହୁତି ଦିଆଯାଏ ତାହାର ଅଂଶ ।

ହୁତା—ବିଂ.(ହୁତ + ଆ)ହୁତର ସ୍ତ୍ରୀଲିଙ୍ଗ, (ଗ୍ରା.ବିଂ)କୌଣସି କାର୍ଯ୍ୟରେ ନିଯୁକ୍ତ, (ବି) ସମ୍ପର୍କ, ସମ୍ବନ୍ଧ, ଦାୟିତ୍ୱ, ତତ୍-ପରତା ।

ହୁତାଗ୍ନି—ବି. ହୋମାଗ୍ନି, (ବିଂ-ବ.ବ୍ରୀ) ଅଗ୍ନିହୋତ୍ରୀ, କୃତହୋମ ।

ହୁତାବଶିଷ୍ଟ—ବିଂ.ହୋମରୁ ବଳିପଡ଼ିଥିବା ( ଘୃତାଦି ) ।

ହୁତାବଶେଷ—ବି. ହୁତଶେଷ ଦେଖ ।

ହୁତାଶ—ପୁଂ. ବି. (ହୁତ + ଅଶ୍ + କ.ଅ) ଅଗ୍ନି, ତିନିସଂଖ୍ୟା, ଚିତକ ଗୁଳ୍ମ, ଧଳା-ଚିତା, ଭଲ୍ଲୁ, ମୁନିବିଶେଷ, ( ଗ୍ରା.ବିଂ ) ହତାଶ, କ୍ରୋଧରେ ପ୍ରଜ୍ୱଳିତ, ଆର୍ତ୍ତି-ନାଦକାରୀ, କାଣ୍ଡଜ୍ଞାନଶୂନ୍ୟ, ( ବି ) ଆର୍ତ୍ତନାଦ, ହତାଶ ଅବସ୍ଥା ।

ହୁତାଶନ—ପୁଂ. ବି. ( ହୁତ+ଅଶନ )

ବି.ସ୍ତ୍ରୀ; ଅଗ୍ନି, ଶିବ ।

ହୁତାଶନେ—ଗ୍ରା. କ୍ରି.ବିଂ. ହୁହୁ ହୋଇ ।

ହୁତାଶିଆ—ଗ୍ରା. ପୁଂ. ବିଂ. ହତାଶ, କାଣ୍ଡଜ୍ଞାନଶୂନ୍ୟ, ଅତିକ୍ରୋଧୀ ।

ହୁତାଶୀ—ପୁଂ. ବିଂ. ହୋମଘୃତଭକ୍ଷକ, (ବି) ଅଗ୍ନି, (ସ୍ତ୍ରୀ) ହୁତାଶିନୀ ।

ହୁତାହୁତ—ପ୍ରା. (ପାଟଣା) ବିଂ. କ୍ରମଶଃ, ପରବର୍ତ୍ତୀ, (କ୍ରି.ବିଂ) ପଛକୁ ପଛ, କ୍ରମଶଃ, ପରେ ପରେ ।

ହୁତାହେବା—ଗ୍ରା.କ୍ରି. କୌଣସି କାର୍ଯ୍ୟରେ ନିଜକୁ ନିଯୁକ୍ତ କରିବା ବା ଅଗ୍ରସର ହେବା, ଦାୟିତ୍ୱ ଗ୍ରହଣ କରିବା ।

ହୁତି—ବି. (ହୁ + ଭା.ତି) ହୋମ, ହବନ, (ଗ୍ରା. ବି) ହୁତା ଦେଖ, ହୋଡ଼, ହେବା-କଥା, ନିଷ୍ଟପୃତା, ଦୃଢ଼ଭାବ ।

ହୁତୁହୁଡ଼ିଆ—ଗ୍ରା.ପୁଂ.ବିଂ. ତୁରୁତୁରିଆ, ନବୁଝି ନସୁଝି କାର୍ଯ୍ୟରେ ଅଗ୍ରସର, ଅବିବେଚକ, ଯେ ପରିଣାମକୁ ଦୃଷ୍ଟି ନ ରଖି କାର୍ଯ୍ୟକରେ ।

ହୁତୁହୁତୁ—ଗ୍ରା.କ୍ରି.ବିଂ. ହମହମ ଦେଖ, (ବିଂ) ହୁମ୍‌ହୁମ୍ ଦେଖ ।

ହୁଦସ୍ତ—ଗ୍ରା. କ୍ରି. ବିଂ. ହୁକୁମ ଦେଖ ।

ହୁଦା—ଯା.ବି.ଅଧିକାର ପରିଚୟ ଚିହ୍ନ, ଅଧିକାରର ବା କାର୍ଯ୍ୟକ୍ଷେତ୍ରର ସୀମାନା, ଚପରାଶୀଆଦିଙ୍କର ପୋଷାକରେ ନିଜର ପଦବୀସୂଚକ ଧାତୁଫଳକ ବା ନିଦର୍ଶନ ବା ଚିହ୍ନ, ଅଧିକାର, ଔଚିତ୍ୟ, କାର୍ଯ୍ୟ, (ପ୍ରା. ପାଟଣା) ଦଳ, ଗୋଷ୍ଠୀ, (ପ୍ରା. ଝଡ଼ଆଲ) ବାଡ଼ିର ଅଗ୍ରଭାଗ, ବାଡ଼ିର ଅଗ୍ରଦ୍ୱାରା ଢ଼ିହ ମାରିବା କାର୍ଯ୍ୟ ବା ଖୋଞ୍ଚା ।

ହୁନ୍—ପ୍ରା. (ଭତଡ଼ାଭାଷା) ସର୍ବ. ସେ ।

ହୁନ୍‌କେ—ପ୍ରା. ( ଭତଡ଼ାଭାଷା ) ସର୍ବ. ତାହାର । [ ସେମାନେ ।

ହୁନ୍‌ମନ୍—ପ୍ରା. ( ଭତଡ଼ାଭାଷା ) ସର୍ବ.

ହୁନ—ଗ୍ରା. ବି. ଧନସମ୍ପତ୍ତି, ସଞ୍ଚିତ ଧନ, ପ୍ରାଚୀନ ସ୍ୱର୍ଣ୍ଣମୁଦ୍ରାବିଶେଷ, (ପ୍ରା.ଉତ୍ତର ବାଲେଶ୍ୱର. ବି) ଅଳ୍ପମୂଲ୍ୟର ବସ୍ତ୍ର ।

ହୁନର୍—ଯା. ବି. ହୁନର୍ ଦେଖ ।

ହୁନସ୍ତ—ଯା. ପୁଂ ଓ ସ୍ତ୍ରୀ. ବିଂ. ହୁନରିଆ ଦେଖ ।

ହୁନାଁର୍—ପ୍ରା. (ପାଟଣା-ବଙ୍ଗାଳଭାଷା) ବି. (ସଂ-ହୁଣ୍ଡ) ହେଟାବାଘ ।

ହୁନୁ—ପ୍ରା. (ପାଟଣା) ବି. ମାଙ୍କଡ଼ ।

ହୁନର—ଯା. ବିଂ. କୁଶଳତା, ଦକ୍ଷତା, କୌଶଳ, ଇନ୍ଦ୍ରଜାଲ, କୁହୁକ, ଛଇ, ରଙ୍ଗ, ସୁଆଙ୍ଗ, ଆମୋଦପ୍ରମୋଦ, ଜାଦୁ, ଆଡ଼ମ୍ବର, ଚତୁରତା ।

ହୁନରିଆ-ଗ୍ରା.ପୁଂ ଓ ସ୍ତ୍ରୀ.ବିଂ.କୌତୁକିଆ, ଛଇଲ, ସୁଆଙ୍ଗିଆ, ଜଗରିଆ, କୌଶଳୀ, ନିପୁଣ, କୁହୁକିଆ ।

ହୁପା—ପ୍ରା.(ଖଡ଼ିଆଲ)ବିଂ.ଅତି ସାହସୀ, ଅମାନିଆ, ( ଗ୍ରା.ବି ) ତରଙ୍ଗ, ଢେଉ, ଜନରବ, (ପ୍ରା.କନିକା) ମଇଁଷିଦଳଙ୍କ ଚକଟାମନ୍ଥା ହେତୁ ଭୂଇଁରେ ହୋଇ-ଥିବା ଗହ୍ୱରିଆ ଗାତମାନ ।

ହୁବ୍—ଯା. ବି. ହୋବ୍, ସ୍ମରଣ, ଖିଆଲ, ବଳ, ହେମ୍ମତ, ଆତ୍ମପ୍ରତ୍ୟୟ ।

ହୁବ୍‌ହେବା—ଗ୍ରା. କ୍ରି. ସ୍ମରଣ ହେବା, ମନରୁ ପାଶୋର ନ ଯିବା ।

ହୁବହୁ—ଯା. ବିଂ. ଅବିକଳ, ତତ୍ସଦୃଶ, ସର୍ବାଙ୍ଗରେ ସମାନ, ଆଦର୍ଶାନୁରୂପ, (ବି) ନକଲ, (କ୍ରି.ବିଂ) ଅବିକଳରୂପେ ।

ହୁବୁକା—ଗ୍ରା. ବି. ଚମକା, ହୁରୁଡ଼ା, ଉପରକୁ ଢ଼ିଆଁ ।

ହୁବେଗେ—ପ୍ରା.(ସମ୍ବଲ)କ୍ରି.ବିଂ.ହଠାତ୍, ଅତିଶୀଘ୍ର, ତତ୍କ୍ଷଣାତ୍ ।

ହୁଭୁରିବା—ପ୍ରା. ( ପାଟଣା ) କ୍ରି, ଗାଳିଦେବା ।

ହୁମ୍—ଅବ୍ୟ. ସମ୍ମତି, ସ୍ମୃତି, ଅପାକୃତ, ଅଭ୍ୟନୁଜ୍ଞା, ଅର୍ଦ୍ଧପ୍ରଶ୍ନ, ତର୍କବିତର୍କ ଆଦି ସ୍ଥଳରେ ଉଚ୍ଚାରିତ ଧ୍ୱନି, ( ଗ୍ରା.ଅବ୍ୟ ) ଭଡ଼କାମରେ ଲାଗିଥିବା ବ୍ୟକ୍ତିଙ୍କ ଉତ୍ସାହ ଧ୍ୱନି ।

ହୁମ୍‌କି—ଗ୍ରା.ବି. ଭୟପ୍ରଦର୍ଶନ, ତାଡ଼ନା ।

ହୁମ୍‌କୁଲି—ପ୍ରାଦେ. ( ଝଡ଼ିଆଲ ) ବିଂ. ସମାନସ୍କନ୍ଧ ।

ହୁମ୍‌ଡ଼ାଇବା—ପ୍ରା.(ସମ୍ବ) କ୍ରି. ହୁଙ୍କିବା ।

ହୁମ୍‌ଫଟ୍‌ସ୍ୱାହା—(ସଂ-ମନ୍ତ୍ରାଂଶ) ଦେବତା ପୂଜାଦିରେ ଉଚ୍ଚାରିତ ମନ୍ତ୍ରବିଶେଷ ।

ହୁମ୍‌ରିବା—ପ୍ରା. (ବଲାଙ୍ଗିରପାଟଣା) କ୍ରି. ଶିଶୁ ସ୍ତନ୍ୟପାନ କରିବାପାଇଁ ଆରମ୍ଭ କରିବା ।

ହୁମ୍‌ହୁମ୍—ଗ୍ରା. ବିଂ. ଅତିରିକ୍ତ ଆଗ୍ରହା-ନ୍ୱିତ, ଲାଳାୟିତ ।

ହୁମ—ଗ୍ରା. ବି. ହୋମ ଦେଖ ।

ହୁମଯୁମ୍—ପ୍ରା. (ଉତ୍ତର ବାଲେଶ୍ୱର) ବି, ଆଗୁଆ ।

ହୁମା-ଗ୍ରା.ବି.ଗଞ୍ଜାମର ଗୋଟିଏ ଜମିଦାରୀ ଓ ନଗରର ନାମ, ସମ୍ବଲପୁର ସହର ଠାରୁ ଆଠକୋଶ ଦୂରରେ ଅବସ୍ଥିତ ପ୍ରସିଦ୍ଧ ଶିବଲିଙ୍ଗବିଶିଷ୍ଟ ଗ୍ରାମ ।

ହୁମାଖଣ୍ଡ—ଗ୍ରା. ବି. ପଞ୍ଚଦଶ ଶତାବ୍ଦୀର ସମ୍ବଲପୁର ରାଜ୍ୟର ନାମ ।

ହୁମାଗୁଞ୍ଜୁ—ପ୍ରା. (ଝଡ଼ିଆଲ) ବି. ଉଲ୍ଲୁକ-ବିଶେଷ, ଏକପ୍ରକାର ପେଚା ।

ହୁମାୟୁନ—ଯା. ( ନାମ ) ଦିଲ୍ଲୀର ୨ୟ ମୋଗଲସମ୍ରାଟ୍ ବାବରଙ୍କ ପୁତ୍ର ଓ ଆକବରଙ୍କ ପିତା, ପ୍ରସିଦ୍ଧ ମୋଗଲ-ସମ୍ରାଟ୍, ମୋଗଲ ରାଜ୍ୟର ପ୍ରତିଷ୍ଠାତା ।

ହୁମାରିଆ—ପ୍ରା. (ଝଡ଼ିଆଲ) କ୍ରି. ସେହ୍ନ କରିବା ।

ହୁମୁଡ଼େ—ପ୍ରା.(ବଲାଙ୍ଗିରପାଟଣା)କ୍ରି.ବିଂ, ଦଣ୍ଡେ, କ୍ଷଣେ, ମୁହୂର୍ତ୍ତେ ମାତ୍ର ।

ହୁମୁହୁମୁହେବା—ପ୍ରା. (ଯାଜପୁର) କ୍ରି. ଅତ୍ୟନ୍ତ ଲୋଭାନ୍ୱିତ ହେବା ।

ହୁମୋ—ପ୍ରା.(ସମ୍ବ)ବି. ବାଳିକାମାନଙ୍କର ଏକପ୍ରକାର ଖେଳ ।

ହୁମ୍ମା—ଗ୍ରା. ବି. ଆଗବୋଲା, ଆଗତ-କୁହା, ଯାହା ପାଖରେ ଭଦ୍ରତା ନାହିଁ ।

ହୁର୍‌କୁଣ୍ଡିବା—ପ୍ରା. (ସମ୍ବଲ) କ୍ରି. ମୁଣ୍ଡିଆ ମାରିବା, ମୁଣ୍ଡଦ୍ୱାରା ଭୁଷିବା ।

ହୁର୍‌ଗୁଲ୍‌ବା-ପ୍ରା.(ଖଡ଼ିଆଲ)କ୍ରି.ଗୁଞ୍ଜିବା ।

ହୁର୍‌ଗୁନିବା—ପ୍ରା.(ସମ୍ବଲ)କ୍ରି.ଝୁରିବା, ଚିନ୍ତା କରିବା ।

ହୁର୍(ରୁ)ଜୁର୍—ଗ୍ରା. ବି. ଅତ୍ୟାଚାର, ସର୍ବନାଶ ଓ ଧ୍ୱଂସ ଘଟାଇବା, ଲୁଟପାଟ

ହୁରଜୁରିଆ—ଗ୍ରା. ପୁଂ. ବିଂ. ଅତ୍ୟାଗ୍ରହୀ, ଲୁଟପାଟକାରୀ, ବିଧ୍ୱଂସକାରୀ ।

ହୁର(ରୁ)ଦଙ୍ଗ(ଙ୍ଗା)-ଗ୍ରା. ପୁଂ. ବିଂ. ଅସ୍ଥିର, ହୃଷ୍ଟପୁଷ୍ଟ ଓ ସବଳ, ଦୁଷ୍ଟ, ହୁଣ୍ଡା, ଅବାଗୁରକ, ଢେଙ୍ଗା ।

ହୁରମତ୍—ଯା. ବି. ଇଜତ୍, ମହତ୍ତ୍ୱ, ସମ୍ଭ୍ରମ, ସମ୍ମାନ ।

ହୁରମତଦାବୀ—ଯା. ବି. ଇଜତଦାବୀ, ମାନହାନି ପାଇଁ ଦାବୀ ।

ହୁରମତ(ମତିଆ)—ଯା. ବିଂ. ସମ୍ଭ୍ରାନ୍ତ, ମାନ୍ୟ, ହୁରମତଦାର ।

ହୁରମୁହିଁଆ—ପ୍ରା. (ବଲାଙ୍ଗିରପାଟଣା) ବିଂ. ଅଖାଡୁଆ, ଅବଧୂତିଆ, ଯେ ଆଗପଛ ବିଚାର ନ କରି କାର୍ଯ୍ୟ କରେ ।

ହୁରରେ—ଯା. ଅ. ଆନନ୍ଦସୂଚକ ଧ୍ୱନି ।

ହୁରସିବା—ପ୍ରା. (ସମ୍ବ) କ୍ରି. ହୁଙ୍କିଦେବା, ଟେଙ୍କିଦେବା ।

ହୁରହୁତ୍—ପ୍ରା. (ବାଲେଶ୍ୱର) ଅବ୍ୟ. ଡକାୟତମାନଙ୍କ ଭୟ ଦେଖାଇବା ଧ୍ୱନି

ହୁରିହୁରିଆ-ଗ୍ରା. ପୁଂ. ବିଂ. ଚଞ୍ଚଳ ସ୍ୱଭାବବିଶିଷ୍ଟ. ହୁରୁହୁରିଆ, ଚପଳ ।

ହୁରବ—ବି. ଶୃଗାଲ, ଶିଆଳ ।

ହୁରା-ଗ୍ରା. ବି. (ଉତ୍ତର ଭାଷା) ହୁଡ଼ା ଦେଖ ।

ହୁରମାରିବା—ପ୍ରା. (ସମ୍ବଲ) କ୍ରି. ମୁନିଆଁ ବାଉଁଶ ଦ୍ୱାରା ଟେଞ୍ଚିବା ।

ହୁରି—ଗ୍ରା. ବି. ( ସଂ-ହୋଲି ) ହୋଲି-ଉତ୍ସବ; ଫାଲ୍ଗୁନ ପୂର୍ଣ୍ଣିମା ସମୟରେ ଅନୁଷ୍ଠିତ ଉତ୍ସବ, ଦୋଳଯାତ୍ରା, ମଦନ ଉତ୍ସବ, ବସନ୍ତୋତ୍ସବ, ଫଗୁଖେଳ, ( ଯା.ବି ) ହୁଲର, ଉଚ୍ଚୈଃସ୍ୱରରେ ଉପର୍ଯ୍ୟୁପରି ଡାକଛାଡ଼ିବା ।

ହୁରିଆ—ଗ୍ରା. ପୁଂ. ବିଂ. ଯେ କଟପାଟିରେ ଡାକଛାଡ଼େ, ଲୁଟିଆସ୍ତ, ରଜାଙ୍କର ପାଇକ ଚାକରବିଶେଷ. (ପ୍ରା. ସମ୍ବଲ) ପରିହାସ, (ବିଂ) ପରିହାସୀ ।

ହୁରିଆକରିବା—ପ୍ରା. (ସମ୍ବଲ) କ୍ରି. ଥଟ୍ଟା ପରିହାସ କରିବା, ଇଙ୍ଗିତକରିବା ।

ହୁରିକରିବା—ଗ୍ରା. କ୍ରି. ଉଚ୍ଚୈଃସ୍ୱରରେ ଡାକପକାଇବା ।

ହୁରିଖେଳ—ଗ୍ରା. ବି. ହୋଲିଖେଳ ଦେଖ ।

ହୁରିଜୁରି—ଗ୍ରା. ବି. ଜବରଦସ୍ତି ଗ୍ରହଣ, ଘୋଘା, ଗୋଳମାଳ ।

ହୁରିବା—ପ୍ରା. (ଖଡ଼ିଆଳ) କ୍ରି. ଗାଳିଦେବା, (ପ୍ରା. ସମ୍ବଲ. କ୍ରି) ଗାତଆଦିରେ ବାଉଁଶ ପୂରାଇବା ।

ହୁରୁକୁ—ଗ୍ରା. ବି. ମିଛକଥାରେ ଭୟ ଜନ୍ମାଇବା ।

ହୁରୁଗୁଣିବା(ହେବା)—ଗ୍ରା. କ୍ରି. ଝୁରିବା, ଚିନ୍ତାକରିବା, ନଷ୍ଟପଦାର୍ଥ ବା ଲୋକକୁ ସର୍ବଦା ମନେପକାଇ ବ୍ୟାକୁଳ ହେବା ।

ହୁରୁଣ୍ଟକ—ବି. ହାତୀର ଅଙ୍କୁଶ ।

ହୁରୁଡ଼ା—ଗ୍ରା. ବି. ହୁରୁଡ଼ାଇବା କର୍ମ, ଶବ୍ଦ ଓ ଆସ୍ଫାଳନ ପୂର୍ବକ ଜନ୍ତୁଆଦିଙ୍କୁ ତଡ଼ିବା, (ଗ୍ରା. ବିଂ) ଚମକା, ଯେ ଅତି ସାମାନ୍ୟ କାରଣରେ ଚମକି ପଡ଼େ ।

ହୁରୁଡ଼ାଇବା—ଗ୍ରା. କ୍ରି. ଫସଲଆଦିରୁ ଜନ୍ତୁଆଦିଙ୍କୁ ଶବ୍ଦ କରି ବା ବିକୃତରୂପ ସ୍ଥାପନ ଦ୍ୱାରା ଭୟ ଦେଖାଇ ଘଉଡ଼ିବା ।

ହୁରୁଡ଼ିବା—ଗ୍ରା. କ୍ରି. ଶବ୍ଦଆଦି ଦ୍ୱାରା ଭୟପାଇ ପଳାଇବା, ଚମକିବା, (ପ୍ରା. ଖଡ଼ିଆଳ) ଗାଳିଦେବା, ତଡ଼ିବା ।

ହୁରୁଦ—ଗ୍ରା. ବି. ( ସଂ-ହୃଦୟ ) ହୃଦୟ ଦେଖ ।

ହୁରୁଦବା—ପ୍ରା. (ବଲାଙ୍ଗିରପାଟଣା) କ୍ରି. କଳଙ୍କକରିବା ।

ହୁରୁପୁନିବା— ପ୍ରା. ( ପାଟଣା ) କ୍ରି. ଚିନ୍ତାକରିବା, ଝୁରିବା ।

ହୁରୁମ୍—ପ୍ରା. (ସମ୍ବ) ବି. ହୁଡ଼ୁମ୍ବ ଦେଖ ।

ହୁରୁମ—ପ୍ରା. (ଖଡ଼ିଆଳ) ବି. ଗୋଡ଼ିଭଙ୍ଗା, ଲିଆ, ପକ୍କା ସଡ଼କରେ ପକାଯିବା ମାଟି-ମିଶା କଙ୍କର ।

ହୁରୁମା—ଗ୍ରା. ପୁଂ. ବିଂ. କାଣ୍ଡଜ୍ଞାନ ଶୂନ୍ୟ, ହୁଣ୍ଡା, ଦୁଷ୍ଟ, ଖଜବଜିଆ, ଅସ୍ଥିର ।

ହୁରୁମାସ—ଗ୍ରା. ବି. କାର୍ଯ୍ୟକରଣାର୍ଥ ଆଦେଶ, ଫରମାସି ।

ହୁଲ୍କର—ପ୍ରା. (କେନ୍ଦ୍ରାପଡ଼ା) ବି. ଗଣ୍ଡଗୋଳ, ହୁଲର ।

ହୁଲୁଗୁଜିଆ-ପ୍ରା. (ଖଡ଼ିଆଳ) ବିଂ. ଅଧୀର, ଫଶଯ୍ୟୀ ।   [ ହୁଗୁଲା ।

ହୁଲଗୁଲ—ପ୍ରା. (ପାଟଣା) ବିଂ. ଢିଲା,

ହୁଲ୍—(ଧାତୁ) ଗପ କରିବା ।

ହୁଲ—ଗ୍ରା. ବି. (ସଂ-ଆଲ) ସୂକ୍ଷ୍ମାଗ୍ରଭାଗ, ମୁନ, ବରୁଡ଼ି ବିଛା ଆଦିଙ୍କ ନାହୁଡ଼ି, ଧନୁର ଅଗ୍ରଭାଗ, ଶରର ଅଗ୍ରଭାଗ ।

ହୁଲ—ପ୍ରା. (ସିନ୍ଧ,) ବି. କୁଆପଥର ।

ହୁଲକୁ—ଗ୍ରା. ବି. ଦୋଳ ସମୟରେ କେତେକ ନୀଚ ଶ୍ରେଣୀର ପୁରୁଷ ସ୍ତ୍ରୀ ମିଶି ପରସ୍ପର ଅସଭ୍ୟ ଭାଷାରେ ଗାଳି ଦିଆଦେଇ ହେବା ।

ହୁଲକୁସିବା—ପ୍ରା. (ବୌଦ୍ଧ) କ୍ରି. ଫାଲ୍ଗୁନ ମାସରେ ଅଶ୍ଳୀଳ ଗୀତ ଗାଇ ବୁଲିବା ।

ହୁଲର—ଗ୍ରା. ବି. ହୁରି, ଚିତ୍କାର, ଉଚ୍ଚଧ୍ୱନି, କୋଳାହଳ, ଘୋଘା, ବିଷୟର ଆର୍ତ୍ତି ସ୍ୱର ।

ହୁଲସ୍ଥୂଲ—ଗ୍ରା. ବି. କୋଳାହଳ, ଘୋଘା, ଗୋଳମାଳ, ଗଣ୍ଡଗୋଳ, ଆଡ଼ମ୍ବର, (ବିଂ) ଗଣ୍ଡଗୋଳପୂର୍ଣ୍ଣ ।

ହୁଳହୁଳି—ବି. ସ୍ତ୍ରୀମାନଙ୍କର ମଙ୍ଗଳ ସୂଚକ, ମୁଖବାଦ୍ୟ ।

ହୁଲହୁଲି—ପ୍ରା. (ଖଡ଼ିଆଳ) ବି. ମନ୍ଦ-ମନ୍ଦ ପବନ, ସ୍ତ୍ରୀମାନଙ୍କର ହୁହୁ ଶବ୍ଦ ।

ହୁଲହୁଲିଆ—ପ୍ରା. (ଖଡ଼ିଆଳ) ବି. ଶାକ ଗୁଳ୍ମବିଶେଷ, (ଗ୍ରା. ବିଂ) ଢିଲା, ଶିଥିଳ ।

ହୁଳହୁଳୀ-ବି. ଶୁଭକାର୍ଯ୍ୟ ଉପଲକ୍ଷରେ ସ୍ତ୍ରୀମାନଙ୍କର ଜିହ୍ୱାଦ୍ୱାରା କୃତ ମୁଖବାଦ୍ୟ, ଉଲୁଧ୍ୱନି, ଶୁଭ ବା ମାଙ୍ଗଳିକ କାର୍ଯ୍ୟ, ହବାହାଣ୍ଡି, (ବିଭ) କାନ୍ଦବୋବାଳି ।

ହୁଳା—ଗ୍ରା. ବି. ଅଗ୍ନିର ଜ୍ୱାଳା, ମସାଲି, ହିଙ୍ଗୁଡ଼ି, ତପ୍ତ ପଦାର୍ଥରୁ ଉଠୁଥିବା ଉତ୍ତାପ, ବରଡ଼ାଆଦିର କଡ଼ା ବନ୍ଧା-ହୋଇ ନିଆଁ ରଖାଯାଇଥିବା ଅଗ୍ନି-ଦଣ୍ଡ ।

ହୁଳି—ପ୍ରା. (ବଲାଙ୍ଗିର) ବି. ମଞ୍ଜା, ମଣ୍ଡା, ଆଳବାଳ, (ପ୍ରା-ଖଡ଼ିଆଳ) ଦଳ, ପଲ, ହୁଳା ଦେଖ ।

ହୁଲାଇବା—ପ୍ରା. (ସମ୍ବଲ) କ୍ରି ପରିହାସରେ ତାଳିମାରିବା ।

ହୁଲଉଠିବା—ପ୍ରା. (ଖଡ଼ିଆଳ)କ୍ରି. ଗରମବୋଧହେବା ।

ହୁଲହଲ—ପ୍ରା. (ଖଡ଼ିଆଳ) ଅବ୍ୟ. ଦଳ ଦଳ ହୋଇ ।

ହୁଲାହୁଲା—ଗ୍ରା. ଅବ୍ୟ. ଦଳ ଦଳ ହୋଇ, ବହୁସଂଖ୍ୟାରେ ।

ହୁଲାହୁଲୀ-ଗ୍ରା. ବି. ହୁଲହୁଲୀ ଦେଖ ।

ହୁଲହୁଲି-ପ୍ରା. (ସମ୍ବଲ) ବି.ହୁଲହୁଲୀ ।

ହୁଳି—ଗ୍ରା. ବି. ନଦୀଆଦିରେ ଶ୍ରେଷ୍ଠ-ଶ୍ରେଷ୍ଠ ମତ୍ସ୍ୟବିଶେଷ, ଶ୍ରେଷ୍ଠ ପାହାଡ଼ ।

ହୁଳି—ଗ୍ରା.ବି.(ସଂ-ହୋଡ଼)ଶ୍ରେଷ୍ଠ ଡଙ୍ଗା ।

ହୁଳିଆ—ଯା. ବି. ଫେରାର ଆସାମୀର ପଳାଇ ଯାଇଥିବା ଲୋକର ଆକୃତିର ବିବରଣ ବା ଦେହରେ ଥିବା ବିଶିଷ୍ଟ ଚିହ୍ନମାନ, ନିରୁଦ୍ଦିଷ୍ଟ ବ୍ୟକ୍ତିର ଅନୁସନ୍ଧାନ ନିମିତ୍ତ ସଙ୍କେତ ପତ୍ର, ପଳାତକ ବ୍ୟକ୍ତିକୁ ଖୋଜିବାପାଇଁ ପୁଲିସରେ ଦିଆଯିବା ଏତଲା ।

ହୁଲିଆଜାରି—ଯା. ବି. ପଳାତକ ବ୍ୟକ୍ତିକୁ ଧରିବା ପାଇଁ ଘୋଷଣା ପ୍ରଚାର ।

ହୁଳିକରିବା—ପ୍ରା. (ସମ୍ବଲ) କ୍ରି. ହୁରି କରିବା, ବଡ଼ପାଟିରେ ଡାକିବା ।

ହୁଲୁଗା—ପ୍ରା. (ସିଂହଭୂମ) ହୁଗୁଳା, ଢିଲା, ଶ୍ଳଥ ।

ହୁଲୁରୁହୁଲୁରୁ—ଗ୍ରା. ବିଂ. ହୁଗୁଳା, ଶ୍ଳଥ, ଢିଲା ।

ହୁଲୁରୁହୁଲୁରୁହେବା—ଗ୍ରା. କ୍ରି. ହୁଗୁଳା ହୋଇ ହଲିବା, କମ୍ପିବା ।

ହୁଲୁସା(ସୋ)ଇବା—ଗ୍ରା. କ୍ରି. ଉଲ୍ଲସିତ-କରିବା, ମାଟିକୁ ଉଖୁରାଇ ଝୁରୁ ଝୁରୁ କରିବା ।

ହୁଲୁସିବା—ଗ୍ରା. କ୍ରି. ଉଲ୍ଲସିତ ହେବା, ରୋମାଞ୍ଚିତ ହେବା ।

ହୁଲୁହୁଳିଆ—ଗ୍ରା. ବିଂ, ହୁଗୁଳିଆ, ହୁଗୁଳା, ଫସକା, ଉଣ୍ଢୁସିଆ ।

ହୁଲ୍ଲୁ—ବି. ଏକପ୍ରକାର ନୃତ୍ୟ ।

ହୁଲ୍ଲିଧୁକା—ପ୍ରା. (ସମ୍ବଲ) ବି. ଶୀତଳ ଧୀର ପବନ ।

ହୁସ୍—ଯା. ବି. ହୋସ୍, ଚୈତନ୍ୟ, ଜ୍ଞାନ, ବିସ୍ମରଣଶକ୍ତି, ସ୍ମରଣଶକ୍ତି ।

ହୁସ୍କରି(ନି)—ଗ୍ରା. ଅବ୍ୟ. ହୁକରି, ହଠାତ୍, ଭୁସ୍କିନି, ହଠାତ୍ ଜୋରରେ ଉଚ୍ଚରୁ ପତନ ଶବ୍ଦ ।

ହୁସ୍ଭର(ରି)—ଯା. କ୍ରି. ବିଂ. ଜ୍ଞାନତଃ, ଜାଣିତରେ ।

ହୁସ୍ହୁସ୍—ପ୍ରା. (ଖଡ଼ିଆଳ) ଧାନକୁଟା ବେଳେ ସ୍ତ୍ରୀମାନଙ୍କ ଉଚ୍ଚାରିତ ଧ୍ୱନି ।

ହୁସ୍ହେବା—ଗ୍ରା. କ୍ରି. ସ୍ମରଣହେବା, ମନେପଡ଼ିବା, ଚୈତନ୍ୟ ଲାଭ ହେବା ।

ହୁସିଆର୍—ଯା. ବିଂ. ସତର୍କ, ସାବଧାନ, ଜାଗ୍ରତ, ଚତୁର, ସିଆଣା, ସଂସାର କାର୍ଯ୍ୟ ଜାଣିବାକୁ ସମର୍ଥ, ବିବେଚକ, ସୁବିସ୍ମରକ, (ଅବ୍ୟ) ସାବଧାନ ହୁଅ ।

ହୁସିଆରି—ଯା. ବି. ସାବଧାନତା, ଚତୁରତା, ସତର୍କତା ।

ହୁସେର୍—ପ୍ରା. (ଖଡ଼ିଆଳ) ବିଂ. ହୁସିଆର୍ ଦେଖ ।

ହୁସ୍ରେ—ଯା. ବି. ମୁସଲମାନମାନଙ୍କର ଯୁଦ୍ଧରବ ଓ ଜୟଧ୍ୱନିବିଶେଷ ।

ହୁହବ—ବି. ନରକବିଶେଷ ।

ହୁହା-ଗ୍ରା.କ୍ରି.ବିଂ.ଅତିଶୀଘ୍ର,ବେଗରେ,ଝଟ୍ ।

ହୁହୁ—ବି. (ହ୍ୱେ+କ.ଉ)ଗନ୍ଧର୍ବବିଶେଷ (ଅବ୍ୟ) ହୁହା, ଅତିଶୀଘ୍ର, ବାୟୁ ଏବଂ ଜଳ ପ୍ରଭୃତିର ପ୍ରବାହର ଶବ୍ଦ, ନିଆଁ ଖୁବ୍ ତେଜରେ ଜଳିବା ପ୍ରକାରେ, କ୍ଲେଶାଦି ପ୍ରକାଶକ ଶବ୍ଦ, ଶୀଘ୍ର ଶୀଘ୍ର, ବେଗେ ବେଗେ ।

ହୁହୁଙ୍କାର—ଗ୍ରା. ବି. ହୁଙ୍କାର ଦେଖ, ହୁମ୍ହୁମ୍ ଶବ୍ଦକରଣ ।

ହୁହୁଜଳିବା—ଗ୍ରା.କ୍ରି.ନିଆଁ ଖୁବ୍ ପ୍ରଖରସ୍ୱରରେ ଜଳିବା ।

ହୂ—ଅବ୍ୟ. ଆହ୍ୱାନ, ଅବଜ୍ଞା,ଅହଙ୍କାର, ଶୋକ ଓ ଗର୍ବରେ ଉଚ୍ଚାରିତ ଧ୍ୱନି ।

ହୂଁ—ବି.କ୍ରୋଧବୀଜାତ୍ମକ ତନ୍ତ୍ରୋକ୍ତ ମନ୍ତ୍ରବିଶେଷ ।

ହୂଙ୍କାର—ବି.'ହୁମ୍' ରୂପକ ଭୟଙ୍କର ଧ୍ୱନି, ଭୀଷଣ କ୍ରୋଧଯୁକ୍ତ ଧ୍ୱନିବିଶେଷ ।

ହୂଡ୍—(ଧାତୁ) ଗତି କରିବା ।

ହୂଣ—ବି. ହୂନ ଦେଖ ।

ହୂତ—ବିଂ. ( ହ୍ୱେ+ମ୍ପିଂ.ତ ) ଆହୂତ, ଯାହାକୁ ଆହ୍ୱାନ କରାଯାଇଅଛି, (ସ୍ତ୍ରୀ) ହୂତା ।

ହୂତି—ବି. ( ହ୍ୱେ+ଭା.ତି ) ଆହ୍ୱାନ, ସମ୍ବୋଧନ, ଡାକିବା ।

ହୂନ—ବି. (ହ୍ୱେ+କ.ନ) ସାଧୁଆରୁର ବର୍ଜିତ ମ୍ଳେଚ୍ଛଜାତିବିଶେଷ, ମାନ୍ଦ୍ରାଜ ପ୍ରଦେଶ ପ୍ରଚଳିତ ପ୍ରାଚୀନ ସ୍ୱର୍ଣ୍ଣମୁଦ୍ରାବିଶେଷ, ଶକ ଜାତିର ଶାଖାବିଶେଷ ।

ହୂମ୍—ଅବ୍ୟ.ପ୍ରଶ୍ନ,ବିତର୍କ,ସମ୍ମତି,କ୍ରୋଧ, ଭୟ, ନିନ୍ଦା, ଅବଜ୍ଞା, ଅନୁମତିରେ ବ୍ୟବହୃତ ଧ୍ୱନି ।

ହୂୟ—ବି. ( ହ୍ୱେ+ଭା.ଅ ) ଆହ୍ୱାନ, ଆବାହନ ।

ହୂୟମାନ—ପୁଂ. ବିଂ. (ହ୍ୱେ+ମ୍ପିଂ.ଆନ) ଯାହାକୁ ଆହ୍ୱାନ କରାଯାଇଅଛି, (ସ୍ତ୍ରୀ) ହୂୟମାନା ।

ହୂରବ—ବି. (ହୂ=ଧ୍ୱନି ଅଟେ ରବ ଯାହାର) ଶୃଗାଲ, ଶିଆଳ ।

ହୂରହୂଣ-ବି.ଦେଶବିଶେଷ (ବାସବଦତ୍ତା)

ହୂର୍ଚ୍ଛ—(ଧାତୁ) କୁଟିଲ ଗମନ କରିବା ।

ହୂର୍ଚ୍ଛନ—ବି.(ହୂର୍ଚ୍ଛ+ଭା.ଅନ)କୌଟିଲ୍ୟ, ବକ୍ରତା ।

ହୂହୂ—ବି. ହୁହୁ ଦେଖ ।

ହୃ—(ଧାତୁ) ହରଣ କରିବା, ଜବରଦସ୍ତି କରିବା, ଜବରଦସ୍ତି ଛଡ଼ାଇ ନେବା, ଯୁଦ୍ଧ କରିବା ।

ହୃଚ୍ଛୟ—ପୁଂ. ବିଂ. (ହୃତ୍+ଶୀ+କ.ଅ) ହୃଦୟଶାୟୀ, ଯେ ହୃଦୟରେ ଶୟନ କରେ, (ପୁଂ.ବି) କାମଦେବ ।

ହୃଚ୍ଛୂଳ—ବି. (ହୃତ୍+ଶୂଳ)ହୃଦୟଜାତ ଶୂଳରୋଗବିଶେଷ ।

ହୃଜ୍ଜ—ବିଂ.(ହୃତ୍+ଜା+କ.ଅ)ହୃଦୟରୁ ଜାତ, ଗୁଡ଼ିରେ ଜାତ, ( ବି ) ସ୍ତନ, ସ୍ତ୍ରୀମାନଙ୍କ ସ୍ତନ ।

ହ୍ରୀଣିୟା—ବି. ହ୍ରୀଣୀୟ ଦେଖ ।

ହ୍ରୀଣୀ—(ଧାତୁ) ଲଜ୍ଜିତ ହେବା ।

ହ୍ରୀଣୀୟ(ୟା)—ବି. (ହ୍ରୀଣୀ+ଭା.ଯ+ଆ)

ଲଜ୍ଜା, ନନ୍ଦା, ତିରସ୍କାର, ଦୟା ।

ହୃତ୍—ବି. (ହୃ + କ.କ୍ୱିପ୍) ହୃଦୟ,ମନ, ବକ୍ଷସ୍ଥଳ, ଅନ୍ତର୍ଗତ ଭାବ, ଅନ୍ତଃକରଣ, ପୁଂ,ବିଂ ହରଣକାରୀ,ଯେ ହରଣ କରେ ।

ହୃତ୍କମ୍ପ—ବି.(୬ତତ୍)ହୃଦୟର କମ୍ପନ, ଅତ୍ୟନ୍ତ ଭୟ, ଗ୍ରସ୍ତ ଅବସ୍ଥା ।

ହୃତ୍ପଦ୍ମ-ବି.କମଳରୂପେ କଳ୍ପିତ ହୃଦୟ. ହୃଦୟରୂପ ପଦ୍ମ । [ ଆଧାର ।

ହୃତ୍ପିଣ୍ଡ—ବି.ହୃଦୟ ମଧ୍ୟସ୍ଥିତ ରକ୍ତାଧାର

ହୃତ୍ପିଞ୍ଜର—ବି. ହୃଦୟରୂପ ପିଞ୍ଜରା ।

ହୃତ୍ପୀଡ଼ା—ବି. ( ୬ତତ୍ ) ହୃଦୟରେ ଅନୁଭୂତ ପୀଡ଼ା, ମାନସିକ ପୀଡ଼ା ।

ହୃତ୍ପୁଣ୍ଡରୀକ—ବି. ହୃଦୟରୂପ ପଦ୍ମ ।

ହୃତ୍ପ୍ରତିଷ୍ଠ—ବିଂ. ହୃଦୟସ୍ଥିତ,ହୃଦୟରେ ଯାହାର ଅବସ୍ଥାନ ।

ହୃତପ୍ରିୟ—ବିଂ. (୬ତତ୍) ଅନ୍ତର ସହିତ ପ୍ରିୟବନ୍ଧୁ, ହୃଦୟର ବନ୍ଧୁ ।

ହୃତ୍ସ୍ତମ୍ଭ—ବି. ( ୬ତତ୍ ) ହୃତ୍ପିଣ୍ଡର ସ୍ପନ୍ଦନର ସ୍ତମ୍ଭନ ।

ହୃତ୍ସ୍ଥ—ବିଂ. ( ହୃତ୍+ସ୍ଥା+କ.ଅ ) ହୃଦୟସ୍ଥ ଦେଖ, (ସ୍ତ୍ରୀ) ହୃତ୍ସ୍ଥା ।

ହୃତ୍ସ୍ପନ୍ଦନ—ବି. (୬ତତ୍) ହୃତ୍ପିଣ୍ଡରେ ରକ୍ତର ସଞ୍ଚାଳନଜନିତ ସ୍ପନ୍ଦନ ।

ହୃତ—ବିଂ. (ହୃ+ର୍ମ.ତ) ଗୃହୀତ,ଅପହୃତ,ଛିନ୍ନ, ବଳପୂର୍ବକ ଗୃହୀତ,ଆନୀତ, ଆକୃଷ୍ଟ, ଅନ୍ୟଦ୍ୱାରା ବାହିତ ।

ହୃତସର୍ବସ୍ୱ-ବିଂ.(ବ.ବ୍ରୀ) ଯାହାର ଯାବତୀୟ ସମ୍ପତ୍ତି ଅପହୃତ ହୋଇଅଛି, ( ସ୍ତ୍ରୀ ) ହୃତସର୍ବସ୍ୱା ।

ହୃତ୍ତତ୍ତ୍ୱବିବେକ-କୌଣସି ବ୍ୟକ୍ତିର ମସ୍ତକର ଗଠନ ଦେଖି ତଦୀୟ ମନୋବୃତ୍ତି ସମୁଦାୟ ଯେଉଁ ଶାସ୍ତ୍ର ଦ୍ୱାରା ନିରୂପିତ ହୁଏ ।

ହୃଦ୍—ବି. (ହୃ+କ.କ୍ୱିପ୍) ହୃତ୍ ଦେଖ ।

ହୃଦ—ଗ୍ରା. ବି. ହୃତ୍ ଦେଖ ।

ହୃଦଙ୍ଗିଆ—ପ୍ରା. (ବାଲେ.) ବିଂ. ହୃଷ୍ଟ ।

ହୃଦପଅ—ଗ୍ରା. ବି. ଗ୍ରୀଡ଼ ।

ହୃଦମଣି—ଗ୍ରା.ବି. (ସଂ-ହୃନ୍ମଣି)ହୃଦୟର ହାରର ମଣି, (ଲ.ଅର୍ଥ)ଅତି ପ୍ରିୟଲୋକ

ହୃଦୟ—ବି. (ହୃ+କ.ଅୟ)ହୃତ୍ ଦେଖ, (ଗ୍ରା.ବି) ଦୟା ପ୍ରବଣତା, ପରଦୁଃଖକାତରତା, ଧୈର୍ଯ୍ୟ, ବିବେକ,ଅତ୍ୟନ୍ତ ପ୍ରିୟ ବ୍ୟକ୍ତି ।

ହୃଦୟକନ୍ଦର—ବି. (ରୂପକ)ଅନ୍ତଃକରଣ ରୂପ ଗହ୍ୱର, ଚିତ୍ତଗୁହା ।

ହୃଦୟଗଗନ—ବି. (ରୂପକ) ହୃଦୟାକାଶ ଦେଖ । [ ଆନ୍ତରିକ ।

ହୃଦୟଗତ—ବିଂ. (୨ତତ୍) ମନୋଗତ,

ହୃଦୟଗ୍ରନ୍ଥି—ବି. ( ୬ତତ୍ ) ହୃଦ୍‌ବନ୍ଧନ, ହୃତ୍ପିଣ୍ଡକୁ ଦେହ ମଧ୍ୟରେ ବାନ୍ଧିରଖିଥିବା କଳ୍ପିତ ଶିରା ।

ହୃଦୟଗ୍ରହ—ବି.(ହୃଦୟ+ଗ୍ରହ+କ.ଅ) କଲିଜାର ଶୂଳରୋଗ ।

ହୃଦୟଗ୍ରାହୀ—ପୁଂ. ବିଂ. ମନୋହର, ମନୋରମ, ଚିତ୍ତାକର୍ଷକ, (ସ୍ତ୍ରୀ) ହୃଦୟଗ୍ରାହିଣୀ ।

ହୃଦୟଙ୍ଗମ—ବିଂ. (ହୃଦୟଂ+ଗମ୍+କ.ଅ) ଯୁକ୍ତିଯୁକ୍ତ, ସଙ୍ଗତ, ମନୋହର, ହୃଦ୍‌ଗତ, ବୋଧଗମ୍ୟ,( ବି ) ଯୁକ୍ତିଯୁକ୍ତ ବାକ୍ୟ ।

ହୃଦୟଚୌର—ବି. ଓ ବିଂ. ଯେ ଅନ୍ୟର ମନକୁ ମୋହିତ କରିଥାଏ ।

ହୃଦୟଚ୍ଛିଦ୍—ବିଂ.(ହୃଦୟ+ଛିଦ୍+କ୍ୱିପ୍) ହୃଦୟ ବିଦାରକ,ହୃଦୟ ଛେଦକାରୀ ।

ହୃଦୟଜ—ବିଂ. ହୃଜ୍ଜ ଦେଖ ।

ହୃଦୟଜ୍ଞ—ବିଂ. ଯେ ମନୋଗତ ଭାବ ଜାଣିପାରେ ।

ହୃଦୟତନ୍ତ୍ରୀ—ବି.(ରୂପ-କ.ଧା) ହୃଦୟରୂପ ବୀଣା,ବୀଣାରୂପେ କଳ୍ପିତ ହୃଦୟ, ହୃଦୟଗ୍ରନ୍ଥି ଦେଖ ।

ହୃଦୟତୋଷୀ—ବି. (ହୃଦୟ+ତୁଷ୍+କ.ଇନ୍) ହୃଦୟାନନ୍ଦକ ଦେଖ, (ସ୍ତ୍ରୀ) ହୃଦୟତୋଷିଣୀ ।

ହୃଦୟଦର୍ପଣ—ବି. (ରୂପ-କ.ଧା)ଦର୍ପଣରୂପେ କଳ୍ପିତ ହୃଦୟ ।

ହୃଦୟଧନ(ନିଧି)—ବି.ପ୍ରାଣଧନ,ଯାହାକୁ ରହୁପରି ମନୁଷ୍ୟ ହୃଦୟ ସହିତ ସ୍ନେହ କରେ ।

ହୃଦୟନିକେତ(ନିକେତନ)—ବି.ହୃଦୟରୂପ ଗୃହ, (ବ.ବ୍ରୀ) ମନସିଜ, କାମ ।

ହୃଦୟପଟ—ବି. ( ରୂପକ ) ହୃଦୟରୂପ ଆଲେଖ୍ୟ, ଚିତ୍ତରୂପ ପଟ ବା ଛବି ।

ହୃଦୟପାଇବା—ଗ୍ରା.ବି. ବିଶ୍ୱାସ ଜନ୍ମିବା ।

ହୃଦୟପୀଡ଼ା—ବି. ହୃଦ୍‌ରୋଗ ।

ହୃଦୟପ୍ରମାଥୀ—ପୁଂ.ବିଂ. ଯେ ବା ଯାହା ମନରେ ଗୃଞ୍ଜଳ ଜନ୍ମାଏ ।

ହୃଦୟଫଳକ—ବି. ( ରୂପକ ) ଚିତ୍ତରୂପ ପଟ, ଫଳକରୂପ ହୃଦୟ ।

ହୃଦୟବତ୍ତା(ତ୍ୱ)-ବି.ହୃଦୟର ଉଦାରତା ।

ହୃଦୟବନ୍ଧୁ—ବି. ଘନିଷ୍ଠବନ୍ଧୁ ,ପ୍ରାଣବନ୍ଧୁ ।

ହୃଦୟବଳ—ବି. ମାନସିକ ବଳ ବା ସାହସ ।

ହୃଦୟବଲ୍ଲଭ-ପୁଂ.ବିଂ.(୬ତତ୍)ହୃଦୟର ଅତି ପ୍ରିୟ, (ବି) ପତି, ଭର୍ତ୍ତା, ନାୟକ, (ସ୍ତ୍ରୀ) ହୃଦୟବଲ୍ଲଭା ।

ହୃଦୟବାନ୍—ପୁଂ.ବିଂ.(ହୃଦୟ+ବତ୍) ପ୍ରଶସ୍ତଚେତାଃ, ମନସ୍ୱୀ, ସହୃଦୟ, ବଦାନ୍ୟ, ପ୍ରେମିକ,ଦୟାଳୁ,ସ୍ନେହଶୀଳ, (ସ୍ତ୍ରୀ) ହୃଦୟବତୀ ।

ହୃଦୟବିଦାରକ—ବିଂ. ମର୍ମଭେଦୀ, ଅତ୍ୟନ୍ତ ଦୁଃଖ,କରୁଣା,ଦୟା ବା ଶୋକଜନକ, (ସ୍ତ୍ରୀ) ହୃଦୟବିଦାରିକା ।

ହୃଦୟବିମ୍ବ—ବି.(ରୂପ)ହୃଦ୍‌ବିମ୍ବ ଦେଖ ।

ହୃଦୟବିହାରୀ—ପୁଂ. ବିଂ. ଯେ ସର୍ବଦା କୌଣସି ବ୍ୟକ୍ତିଙ୍କର ସ୍ନେହର ପ୍ରେମର ବା ଭାବନାର ବିଷୟୀଭୂତ ହୋଇଥାଏ, (ସ୍ତ୍ରୀ) ହୃଦୟବିହାରିଣୀ । [ ଦେଖ ।

ହୃଦୟବୀଣା—ବି. (ରୂପକ) ହୃଦୟତନ୍ତ୍ରୀ

ହୃଦୟବେଧୀ—ପୁଂ. ବିଂ. (ହୃଦୟ+ବେଧିନ୍)ହୃଦୟବିଦାରକ ଦେଖ,ମନକୁ ଅତ୍ୟନ୍ତ ମୋହିତ କରିବା(ବ୍ୟକ୍ତି),(ସ୍ତ୍ରୀ) ହୃଦୟବେଧିନୀ ।

ହୃଦୟଭାଗୀ-ପୁଂ.ବିଂ.ହୃଦୟବିହାରୀ ଦେଖ

ହୃଦୟଭେଦୀ—ପୁଂ. ବିଂ. (ହୃଦୟ+ଭେଦିନ୍) ହୃଦୟବିଦାରକ ଦେଖ, ମର୍ମାନ୍ତକ, (ସ୍ତ୍ରୀ) ହୃଦୟଭେଦିନୀ ।

ହୃଦୟମଣି—ପୁଂ. ବିଂ. ହୃଦୟର ରତ୍ନ

ସ୍ୱରୂପ, ହୃଦୟଧନ ଦେଖ ।

ହୃଦୟମନ୍ଦର—ବି. (ରୂପକ) ହୃଦୟ-ରୂପ ଗୃହ ।

ହୃଦୟରତ୍ନ—ବି. ହୃଦୟଧନ ଦେଖ ।

ହୃଦୟରାଜ୍ୟ—ବି.(ରୂପକ)ଅନ୍ତଃକରଣ-ରୂପ ରାଜ୍ୟ, ହୃଦୟରୂପ ରାଜତ୍ୱ ।

ହୃଦୟଲକ୍ଷ୍ମୀ—ସ୍ତ୍ରୀ.ବି. (ତତ୍ପୁ)ହୃଦୟର ଲକ୍ଷ୍ମୀସ୍ୱରୂପା, ଚିତ୍ତର ଶ୍ରୀରୂପିଣୀ ।

ହୃଦୟଶେଲ-ବି. (ତତ୍ପୁ) ଅନ୍ତଃକରଣର ଶେଲ ସ୍ୱରୂପ, ଅତି ଯନ୍ତ୍ରଣା ଦାୟକ ବ୍ୟାପାର ।

ହୃଦୟସହିତ—ଗ୍ରା. କ୍ରି. ବିଂ. ସର୍ବାନ୍ତଃକରଣରେ, ମନର କିଛିମାତ୍ର ଖଟକା ନ ରଖି ।

ହୃଦୟସମ୍ପଟ—ବି. ( ତତ୍ପୁ ) ହୃତ୍-ପିଣ୍ଡର ଗଢ଼ଣହିଁ ।

ହୃଦୟସ୍ଥ—ବିଂ.(ହୃଦୟ+ସ୍ଥା+କ.ଅ) ହୃଦୟରେ ସ୍ଥିତ,ସ୍ମରଣର ବଶୀ-ଭୂତ, (ସ୍ତ୍ରୀ) ହୃଦୟସ୍ଥା ।

ହୃଦୟସ୍ଥାନ—ବି. ବକ୍ଷସ୍ଥଳ, ଛାତି, ବୁକୁ ।

ହୃଦୟସ୍ପର୍ଶୀ-ପୁଂ. ବିଂ.(ହୃଦୟ+ସ୍ପୃଶ୍+କ.ଇନ୍) ମର୍ମସ୍ପର୍ଶୀ, ହୃଦୟ ବିଦାରକ, ଚିତ୍ତର ଆନନ୍ଦକର, (ସ୍ତ୍ରୀ) ସ୍ପର୍ଶିନୀ ।

ହୃଦୟହାରୀ-ପୁଂ. ବିଂ. (ହୃଦୟ+ହୃ+କ.ଇନ୍) ମନୋହାରୀ, ମନକୁ ମୋହିତ-କାରୀ, (ସ୍ତ୍ରୀ) ହାରିଣୀ ।

ହୃଦୟହୀନ—ପୁଂ. ବିଂ. (ବହୁବ୍ରୀ) ଦୟା ମାୟାଶୂନ୍ୟ,କଠୋରଚିତ୍ତ,(ସ୍ତ୍ରୀ) ହୀନା ।

ହୃଦୟାକାଶ-ବି. (ରୂପକ) ଆକାଶରୂପେ କଳ୍ପିତ ହୃଦୟ ।

ହୃଦୟାତ୍ମା—ବି. କଙ୍କପକ୍ଷୀ ।

ହୃଦୟାନନ୍ଦ-ବିଂ.(ତତ୍ପୁ)ଚିତ୍ତର ଆନନ୍ଦ-ବର୍ଦ୍ଧକ, ହୃଦୟର ଆହ୍ଲାଦଜନକ, (ବି) ହୃଦୟର ଆନନ୍ଦ, ମନର ଖୁସି ।

ହୃଦୟାନନ୍ଦକ—ପୁଂ. ବିଂ. ଯାହା ହୃଦ-ୟରେ ଆନନ୍ଦ ଜନ୍ମାଏ, (ସ୍ତ୍ରୀ) ନନ୍ଦକା ।

ହୃଦୟାନନ୍ଦନ—ପୁଂ. ବିଂ. ହୃଦୟାନନ୍ଦକ ଦେଖ, (ସ୍ତ୍ରୀ) ନନ୍ଦନା ।

ହୃଦୟାନନ୍ଦୀ—ପୁଂ. ବିଂ. ହୃଦୟାନନ୍ଦନ, ଦେଖ, (ସ୍ତ୍ରୀ) ନନ୍ଦିନୀ ।

ହୃଦୟାନୁଗ—ବିଂ. ହୃଦୟଗ୍ରାହୀ, ମର୍ମଜ୍ଞ ।

ହୃଦୟାଗମ—ବିଂ. ( ହୃଦୟ+ଆଗମ ) (ତତ୍ପୁ)ହୃଦୟାନନ୍ଦକ, (ସ୍ତ୍ରୀ) ଗମା ।

ହୃଦୟାଳୁ-ପୁଂ. ବିଂ.ହୃଦୟବାନ୍ ଦେଖ ।

ହୃଦୟିକ—ପୁଂ. ବିଂ. (ହୃଦୟ+ଇକ) ହୃଦୟବାନ୍, ପ୍ରସନ୍ନମନାଃ, ସହୃଦୟ. (ସ୍ତ୍ରୀ) ହୃଦୟିକା ।

ହୃଦୟୀ—ପୁଂ. ବିଂ. ହୃଦୟିକ ଦେଖ, (ସ୍ତ୍ରୀ) ହୃଦୟିନୀ ।

ହୃଦୟେଶ—ପୁଂ. ବି, (ତତ୍ପୁ) ପତି, ଭର୍ତ୍ତା,ସ୍ୱାମୀ,ପ୍ରେମର ପାତ୍ର,ଚିତ୍ତଚୋର ।

ହୃଦୟେଶ୍ୱର—ପୁଂ. ବିଂ. ( ତତ୍ପୁ ) ହୃଦୟେଶ ଦେଖ (ସ୍ତ୍ରୀ) ହୃଦୟେଶ୍ୱରୀ ।

ହୃଦୟୋନ୍ମାଦକ—ପୁଂ. ବିଂ. ହୃଦୟ-ପ୍ରମାଥୀ ଦେଖ, (ସ୍ତ୍ରୀ) ନ୍ମାଦକା ।

ହୃଦରେଗାରକାଟିବା—ଗ୍ରା. କ୍ରି. ମନରେ ଚିରକାଳ ରଖିବା ।

ହୃଦାକାଶ—ବି. (ରୂପକ) ଆକାଶରୂପେ କଳ୍ପିତ ହୃଦୟ ।

ହୃଦାନନ୍ଦ-ବି. ଓ ବିଂ.ହୃଦୟାନନ୍ଦ ଦେଖ ।

ହୃଦାନନ୍ଦକ—ପୁଂ. ବିଂ. ହୃଦୟାନନ୍ଦକ ଦେଖ ।

ହୃଦାମୟ—ବି. ହୃଦୟାମୟ, ହୃଦ୍ରୋଗ ।

ହୃଦାମ୍ବୁଜ—ଗ୍ରା. ବି. ହୃଦ୍‌ପଦ୍ମ ।

ହୃଦାଶୟ—(ରୂପକ) ଅନ୍ତଃକରଣ, ମନ ।

ହୃଦାସନ-ବି.(ରୂପକ)ହୃଦୟରୂପ ଆସନ, ଅନ୍ତଃକରଣ ରୂପ ଭଗବାନଙ୍କ ବସିବା ସ୍ଥାନ ।

ହୃଦି—ବି. ( ହୃଦ୍ ଓ ହୃଦ୍‌ର ୭ମୀ ) ହୃଦୟରେ; ଅନ୍ତଃକରଣରେ ।

ହୃଦିକ—ପୁଂ. ବି. (ନାମ) କୃତବର୍ମାଙ୍କ ପିତା (ଭାରତ) । [ ମାତା ।

ହୃଦିକା—ସ୍ତ୍ରୀ. ବି. (ନାମ) କୃପାଚାର୍ଯ୍ୟଙ୍କ

ହୃଦିନୀ—ସ୍ତ୍ରୀ. ବି. ହ୍ରାଦିନୀ, ନଦୀ ।

ହୃଦିପଟ—ବି. (ରୂପକ) ହୃଦୟ ପଟ ।

ହୃଦିଲଗ୍ନ—ବିଂ. (ତତ୍ପୁ) ହୃଦୟରେ ସଂଯୁକ୍ତ,ହୃଦୟରେ ମିଳିତ,(ସ୍ତ୍ରୀ) ଲଗ୍ନା ।

ହୃଦିସ୍ପୃକ୍—ବିଂ ( ହୃଦି+ସ୍ପୃଶ୍+କ. କ୍ୱିପ୍ ) ମର୍ମସ୍ପର୍ଶୀ, ହୃଦ୍ୟ, ମନୋହର ।

ହୃଦ୍ଗତ—ବିଂ. (ହୃଦ୍+ଗମ୍+କ.ତ) ମନୋଗତ,ମାନସିକ,ଆନ୍ତରିକ,ସର୍ବଦା ଚିନ୍ତାର ବିଷୟୀଭୂତ ।

ହୃଦ୍ଗଦ—ବି. (ହୃଦ୍+ଗଦ) ହୃଦ୍ରୋଗ, ହୃଦୟର ବ୍ୟାମୋହ ।

ହୃଦ୍ଗୋଳ-ବି. ପୌରାଣିକ ପର୍ବତବିଶେଷ ।

ହୃଦ୍‌ଗ୍ରନ୍ଥ—ବି. ହୃଦ୍‌ବ୍ରଣ ଦେଖ ।

ହୃଦ୍‌ଗ୍ରନ୍ଥି-ବି.ବିଦ୍ରଧିରୋଗ,ହୃଦ୍‌ବ୍ରଣ ଦେଖ

ହୃଦ୍ଦାହ—ବି. ହୃଦୟର ଜ୍ୱାଳା ।

ହୃଦ୍ଦେଶ—ବି. (ରୂପକ) ହୃଦୟରାଜ୍ୟ, ଛାତି, ବୁକୁ ।

ହୃଦ୍ଧୃଷ୍ଣକ—ବି. ଜଠର ।

ହୃଦ୍‌ବିମ୍ବ—ବି. (ରୂପକ) ବିମ୍ବ ବା ଚିତ୍ର-ରୂପେ କଳ୍ପିତ ହୃଦୟ,( ମଧ.କ.ଥା ) ହୃଦୟରେ ବା ମନରେ ଯେଉଁ ଚିତ୍ର ଅଙ୍କିତ ହୋଇ ରହିଯାଏ ।

ହୃଦ୍‌ବିଳାସୀ—ପୁଂ. ବିଂ. ହୃଦୟବିହାରୀ, ଦେଖ, (ସ୍ତ୍ରୀ) ବିଳାସିନୀ ।

ହୃଦ୍‌ବିହାରୀ—ପୁଂ. ବିଂ. ହୃଦୟବିହାରୀ, ଦେଖ, (ସ୍ତ୍ରୀ ବିହାରିଣୀ ।

ହୃଦ୍‌ବୋଧ—ବି. ( ହୃଦ୍+ବୁଧ୍+ଘ.ଅ ) ମର୍ମାବଧାରଣ, ମର୍ମ ବୁଝିବା, ମନରେ ସମସ୍ତ ସନ୍ଦେହ ନିରାକୃତ ହେବା ଦ୍ୱାରା ଆସିବା ସନ୍ତୋଷ । [ ଦେଖ ।

ହୃଦ୍‌ବ୍ୟଥା—ବି. ( ତତ୍ପୁ ) ହୃତ୍ପୀଡ଼ା

ହୃଦ୍‌ବ୍ରଣ—ବି. ହୃଦୟମଧ୍ୟରେ ଉଠିବା ମାରାତ୍ମକ ବ୍ରଣରୋଗ, ହୃଦ୍ରୋଗ ।

ହୃଦ୍ୟ—ବିଂ. (ହୃଦ୍+ଯ) ମନୋହର, ରମଣୀୟ, ରୁଚିକର, ବାଞ୍ଛିତ, କୃତଜ୍ଞ, ସୁସ୍ୱାଦୁ, ଆନ୍ତରିକ, (ବି) ଗୁଡ଼ତ୍ୱକ୍, ଦାରୁଚିନି, ଜୀରା, କପିତ୍ଥ, କଇଥ, ଦହି, ମନ୍ତ୍ର, ମଦ,ଶତ୍ରୁକୁ ବଶୀଭୂତ କରିବା-ପାଇଁ ପ୍ରଯୁକ୍ତ ମନ୍ତ୍ର, ମଧୁ, ମଦ୍ୟ ।

ହୃଦ୍ୟଗନ୍ଧ—ବି, (ବ.ବ୍ରୀ) ବେଲଗଛ, କ୍ଷୁଦ୍ର ଜୀରା, ସୌବର୍ଚ୍ଚଳ ଲବଣ, (ବିଂ) ଯାହାର ଗନ୍ଧ ମନୋହର, (ସ୍ତ୍ରୀ) ଗନ୍ଧା ।

ହୃଦ୍ୟଗନ୍ଧା—ବି. ଜାତି ପୁଷ୍ପ, ଜାଇଫୁଲ, ଅଜମୋଦା, ( ସ୍ତ୍ରୀ-ବିଂ ) ହୃଦ୍ୟଗନ୍ଧର ସ୍ତ୍ରୀଲିଙ୍ଗ ।

ହୃଦ୍ୟଗନ୍ଧ—ବି. କ୍ଷୁଦ୍ରଜୀରକ, ସାନଜୀରା ।
ହୃଦ୍ୟତା(ତ୍ୱ)—ବି. (ହୃଦ୍ୟ+ଷ୍ଣ.ତା+ତ୍ୱ) ସଦ୍ଭାବ, ପ୍ରଣୟ, ପ୍ରେମ ।
ହୃଦ୍ୟା—ସ୍ତ୍ରୀ. ବି. (ହୃଦ୍ୟ+ଆ) ହୃଦ୍ୟର ସ୍ତ୍ରୀଲିଙ୍ଗ, (ବି) ବୃଦ୍ଧିନାମକ ଔଷଧି ସଦୃଶ ବୃକ୍ଷ, ପାନଲତା, ଶତପଦୀ ବୃକ୍ଷ, ସେବତୀ ଫୁଲ, ମୃଗମାଂସୀ, ମାଇଛେଳି ।
ହୃଦ୍ୟାଂଶୁ—ବି. (କ.ଧା) ଚନ୍ଦ୍ରକିରଣ, (ବ.ବ୍ରୀ) ଚନ୍ଦ୍ର ।
ହୃଦ୍ରୋଗ—ବି. କାମବୃତ୍ତି, କାମ, କନ୍ଦର୍ପ, ଘାତାରକ କାମନା ହୃଦୟରେ ଅନୁଭୂତ ପୀଡ଼ା, ଅନ୍ତଃକରଣ ଦୁର୍ବଳତା ସମ୍ବନ୍ଧୀୟ ବ୍ୟାଧି, ଯେଉଁ ରୋଗରେ ଶ୍ୱାସ ପ୍ରଶ୍ୱାସ କ୍ରିୟା ରୁଦ୍ଧହୋଇ ଅକସ୍ମାତ୍ ମୃତ୍ୟୁ ଘଟେ ।
ହୃଦ୍ରୋଗବୈରୀ—ବି. ଅର୍ଜୁନ ବୃକ୍ଷ ।
ହୃଦ୍ରୋଗୀ— ପୁଂ ବିଂ. ହୃଦ୍ରୋଗଗ୍ରସ୍ତ (ବ୍ୟକ୍ତି), (ସ୍ତ୍ରୀ)ହୃଦ୍ରୋଗିଣୀ ।
ହୃନ୍ମୋହ—ବି. ହୃଦୟର ମୋହ, ହୃଦୟରେ ଆଘାତ ବା ତମୋଦ୍ୱାରା ଆକ୍ରାନ୍ତ ହେତୁ ହେବା ମୂର୍ଚ୍ଛାରୋଗ ।
ହୃଲ୍ଲକ୍ଷୀ—ବି. କ୍ଷୁଦ୍ର ତୁଳସୀ ।
ହୃଲ୍ଲାସ—ବି. ( ହୃଦ୍+ଲସ୍+ଣ.ଅ ) ହିକ୍କାରୋଗ, ପୀନସ, ପ୍ରତିଶ୍ୟାୟ ।
ହୃଲ୍ଲେଖ—ବି ( ହୃତ୍+ଲିଖ୍+ମି.ଅ ) ଜ୍ଞାନ, ତର୍କ, ଅନୁତାପ,ବାହ୍ୟ ସୁଖ ।
ହୃଲ୍ଲେଖା—ବି. ( ହୃ+ଲେଖ+ଆ ) ଔତ୍ସୁକ୍ୟ ।
ହୃଷ୍—(ଧାତୁ) ହୃଷ୍ଟହେବା, ଆନନ୍ଦିତ ହେବା ବା କରିବା, ମିଥ୍ୟା ପ୍ରତିପନ୍ନ କରିବା ।
ହୃଷିତ—ବିଂ. (ହୃଷ୍+କ.ତ) ପ୍ରୀତ, ଆହ୍ଲାଦିତ, ପ୍ରଫୁଲ୍ଲ, ପୁଲକିତ, ବିସ୍ମିତ, ପ୍ରଣତ, ବର୍ମିତ, ସଜ୍ଜିତ, ଚିହ୍ନିତ, (ସ୍ତ୍ରୀ) ହୃଷିତା ।
ହୃଷୀ-ପୁଂ. ବି. ଅଗ୍ନି ଓ ସୋମ ଦେବତାଦ୍ୱୟ, (ବିଂ—ହୃଷ୍+କ.ଇନ୍) ହୃଷ୍ଟକାରୀ, ଆହ୍ଲାଦକ, (ସ୍ତ୍ରୀ) ହୃଷିଣୀ ।
ହୃଷୀକ—ବି. (ହୃଷ୍+ଣ.ଈକ) ଇନ୍ଦ୍ରିୟ, ପଞ୍ଚଜ୍ଞାନେନ୍ଦ୍ରିୟ (ଯଥା—ଚକ୍ଷୁ, କର୍ଣ୍ଣ, ନାସିକା, ଜିହ୍ୱା, ତ୍ୱକ୍ ) ।
ହୃଷୀକନାଥ—ପୁଂ. ବି. ବିଷ୍ଣୁ ।
ହୃଷୀକେଶ—ପୁଂ. ବି. (୬ତତ୍ପୁ) ବିଷ୍ଣୁ, ପୌଷମାସ, ଶ୍ରୀକୃଷ୍ଣ ।
ହୃଷୀକେଶୀ—ଗ୍ରା. ବି. (ପ୍ରାଚୀନ ପଦ୍ୟ) ଶ୍ରୀକୃଷ୍ଣ । [ ବିଷ୍ଣୁ ।
ହୃଷୀକେଶ୍ୱର—ପୁଂ. ବି. (୬ତତ୍ପୁ) କୃଷ୍ଣ,
ହୃଷ୍ଟ—ବିଂ. ( ହୃଷ୍+କ.ତ ) ହୃଷ୍ଟ, ପ୍ରସନ୍ନ, ମିଥ୍ୟାବାଦୀ, (ବି) ଅଗ୍ନି, ସୂର୍ଯ୍ୟ, ଚନ୍ଦ୍ର ।
ହୃଷ୍ଟ-ବିଂ. (ହୃଷ୍+କ.ତ) ପ୍ରୀତ,ସନ୍ତୁଷ୍ଟ, ଆହ୍ଲାଦିତ, ଆନନ୍ଦିତ, ବିସ୍ମିତ, ପୁଲକିତ, ରୋମାଞ୍ଚିତ, ପ୍ରହସିତ, ପ୍ରତିହତ, (ବି—ଭା.ତ ) ହର୍ଷ,ପୁଲକ, ଆନନ୍ଦ, (ସ୍ତ୍ରୀ) ହୃଷ୍ଟା ।
ହୃଷ୍ଟଚିତ୍ତ—ବି. (କ,ଧା) ପ୍ରଫୁଲ୍ଲ ଅନ୍ତଃକରଣ, (ବିଂ—ବ.ବ୍ରୀ) ପ୍ରଫୁଲ୍ଲଚେତାଃ, ଆନନ୍ଦିତମନାଃ, (ସ୍ତ୍ରୀ) ତନ୍ତ୍ରୀ ।
ହୃଷ୍ଟଚେତାଃ—ବିଂ. (ବ.ବ୍ରୀ)ପ୍ରଫୁଲ୍ଲାନ୍ତଃକରଣ ।
ହୃଷ୍ଟପୁଷ୍ଟ—ପୁଂ. ବିଂ. (ଦ୍ୱନ୍ଦ୍ୱ) ପ୍ରଫୁଲ୍ଲ ଓ ସ୍ଥୂଳକାୟ, ମୋଟାସୋଟା, ସବଳ ଓ ପୁଷ୍ଟକାୟ, (ସ୍ତ୍ରୀ) ପୁଷ୍ଟା ।
ହୃଷ୍ଟଯୋନି—ବି. (ବ.ବ୍ରୀ) ଏକପ୍ରକାର ନପୁଂସକ ।
ହୃଷ୍ଟରୁଷ୍ଟ—ପୁଂ. ବିଂ. ପ୍ରଫୁଲ୍ଲ ଓ କ୍ରୁଦ୍ଧ, ଏକକ୍ଷଣରେ ହୃଷ୍ଟ ଓ ପରକ୍ଷଣରେ କ୍ରୁଦ୍ଧ, ଅବ୍ୟବସ୍ଥିତଚିତ୍ତ ।
ହୃଷ୍ଟରୋମା—ପୁଂ.ବିଂ. (ବଂ.ବ୍ରୀ) ରୋମାଞ୍ଚିତ, ପୁଲକଯୁକ୍ତ, ଯାହାର ରୋମ ଟାଙ୍କୁରି ଅଛି ।
ହୃଷ୍ଟି-ବି. (ହୃଷ୍+ଭା.ତି)ଆନନ୍ଦ, ହର୍ଷ, ମାନ, ଗର୍ବ, ପ୍ରଫୁଲ୍ଲତା ।
ହୃଷ୍ୟକା-ବି. ସଙ୍ଗୀତରେ ମୂର୍ଚ୍ଛନାବିଶେଷ ।
ହେ—ଅବ୍ୟ. (ହ୍ୱେ+ଅ.ଏ) ସମ୍ବୋଧନ, ଆହ୍ୱାନାର୍ଥକ, ବିସ୍ମୟାର୍ଥକ, ଆହେ ।
ହେଇ—ଗ୍ରା. ଅବ୍ୟ. କୌଣସି ବସ୍ତୁ ବା ବ୍ୟକ୍ତିକୁ ଅଙ୍ଗୁଳିନିର୍ଦ୍ଦେଶ ପୂର୍ବକ ଦେଖାଇଦେବା ଉପଲକ୍ଷରେ ବ୍ୟବହୃତ ଶବ୍ଦ, ଏହିମାତ୍ର, ଅତିଶୀଘ୍ର, ଅତି ନିକଟ ଭବିଷ୍ୟତରେ, ହେ ଦେଖ ।
ହେଇକ୍ଷିଟି(ଣି)—ଗ୍ରା. ଅବ୍ୟ. ସମ୍ମୁଖସ୍ଥ ବା ନିକଟବର୍ତ୍ତୀ ବସ୍ତୁ ବା ବ୍ୟକ୍ତିକୁ ନିର୍ଦ୍ଦେଶ ପୂର୍ବକ ଦେଖାଇବାରେ ବ୍ୟବହୃତ ଶବ୍ଦ । [ ଥାନ୍ତା ।
ହେଇଥିତା-ପ୍ରା. (ପାକ୍ଷଣା) କ୍ରି. ହୋଇ-
ହେଇଥିରେ—ଗ୍ରା. ଅବ୍ୟ. ସେଥିରେ ।
ହେଉ-ଗ୍ରା. କ୍ରି. (ହେବା ଧାତୁର ଅନୁଜ୍ଞା) କର୍ତ୍ତା ସହିତ ବ୍ୟବହୃତ, ହେଉଣୁ, (ସ୍ୱୀକାର ବା ସମ୍ମତିସୂଚକ) ତାହାହେଉ, ଘଟୁ ।
ହେଉ—ଗ୍ରା, କ୍ରି. ହେବା ଧାତୁର ବର୍ତ୍ତମାନ କାଳ ଉତ୍ତମପୁରୁଷ ସମ୍ମାନାର୍ଥକ ଏକବଚନ ଓ ବହୁବଚନ ସଙ୍ଗେ ବ୍ୟବହୃତ, ହେଉଣୁ ଦେଖ ।
ହେଉଣୁ—ଗ୍ରା. କ୍ରି. ହେବାପୂର୍ବରୁ ।
ହେଉତେବେ-ଗ୍ରା, ଅବ୍ୟ. (ଅବଧାରଣାର୍ଥକ) ହେଉ, ଆଚ୍ଛା, ( ସମ୍ମତସୂଚକ ) ତଥାପି ହେଉ ।
ହେଉଥିଲେ—ଗ୍ରା. କ୍ରି. ହେବା କ୍ରିୟାର ସମ୍ମାନାର୍ଥକ ୩ୟ ପୁରୁଷ କର୍ତ୍ତା ସଙ୍ଗେ ଅତୀତ କାଳରେ ବ୍ୟବହୃତ, (ଯଥା— ସେ ବା ସେମାନେ କଥାବାର୍ତ୍ତା ହେଉଥିଲେ ) ।
ହେଉନ୍ତୁ—ଗ୍ରା. କ୍ରି. ହେବା କ୍ରିୟାର ସମ୍ମାନାର୍ଥକ ୩ୟ ପୁରୁଷ ଓ ଅନୁଜ୍ଞା ମଧ୍ୟମ ପୁରୁଷ କର୍ତ୍ତାସଙ୍ଗେ ବର୍ତ୍ତମାନ କାଳରେ ବ୍ୟବହୃତ ।
ହେଉ(ଣି)ହେଉ(ଣି)—ଗ୍ରା, କ୍ରି. (ହେବା କ୍ରିୟାର ଅସମାପିକା ରୂପର ଦ୍ୱିତ୍ୱ)ସମାପ୍ତି ହେବା ପୂର୍ବରୁ, କରାଯାଉଥିବା ସମୟରେ, ସମାପ୍ତ ହେବାପାଇଁ ।
ହେଁ—ଗ୍ରା. ଅବ୍ୟ. ଉପହାସ, ଅସୂୟା, ସମ୍ମତିସୂଚକ ଶବ୍ଦ,(ଗ୍ରା.ବି) ଉଚ୍ଚହାସ୍ୟର ଶବ୍ଦ, ଅଶ୍ୱର ହ୍ରେଷାରବ, (ପ୍ରା. ସମ୍ବ. ସର୍ବ) ଏହା, ତାହା,ସେ, ଏହି ବ୍ୟକ୍ତି ।
ହେଁଟା—ଗ୍ରା. (ସମ୍ବ) ସର୍ବ. ଏଇଟା,ଏହି

ବସ୍ତୁ ବା ବିଷୟ ବା ବ୍ୟକ୍ତିଟା, (ପ୍ରା. ପାଟଣା. ସର୍ବ) ସେହି । [ ସେଉକି ।

ହେଁଉକି—ପ୍ରା. (ସମ୍ବଲ) ସର୍ବ. ଏତିକି,

ହେଁଥି—ପ୍ରା. (ସମ୍ବଲ) ସର୍ବ. ଏଥିରେ, ଏଠାରେ, ଏହି ବିଷୟରେ ।

ହେଁଥିରଲଗି—ପ୍ରା.(ସମ୍ବ)ଅବ୍ୟ.ଏଥିପାଇଁ, ସେଥିପାଇଁ, ଅତଏବ,ଏହି କାରଣରୁ ।

ହେଁସ—ଗ୍ରା. ବି. (ସଂ-ସଂସ୍ତର) ମୁନ୍ଦୁରା, ବଡ଼ ମସିଣା, ତୃଣାସନବିଶେଷ ।

ହେଁସକତରା—ଗ୍ରା. ବି. (ଗରିବମାନଙ୍କ ଶଯ୍ୟାର୍ଥ ବ୍ୟବହୃତ) ହେଁସ ଓ ହେଁସ ଉପରେ ବିଛାଯିବା କନ୍ଥା ବା ଶେଯ ।

ହେଁସକାନ—ଗ୍ରା. ବି. ଭୂଇଁରେ ବିଛା ହୋଇଥିବା ହେଁସର ଗୋଟିଏ ଶେଷ ଅଂଶ, (ଦ୍ରଷ୍ଟବ୍ୟଃ—ହାଟୁଆ ଜାତିଆନା ସଭାକୁ ନିମନ୍ତ୍ରିତ ଜାତଭାଇମାନେ ହେଁସ ଉପରେ ବସନ୍ତି ଏବଂ ଯେ ପତିତ ବା ଜାତିରୁ ଅଟକ ଥାଏ ସେ ଜାତଭାଇଙ୍କ ସଙ୍ଗେ ହେଁସକାନରେ ବସିବା ଅଧିକାରଚ୍ୟୁତ ହୁଏ) ।

ହେଁସକାନିଆ—ଗ୍ରା. ବିଂ. ହେଁସକାନ ସମ୍ବନ୍ଧୀୟ, ଏକ ହାଟୁଆଜାତି ସମାଜର ସଭ୍ୟରୂପେ ପରିଗଣିତ ।

ହେଁସକାନଆଜାତି—ଗ୍ରା. ବି. ଓଡ଼ିଶାର ହାଟୁଆ ପାଟକ ( ଯେଉଁମାନେ ଜାତିଆନା ସଭାରେ ହେଁସରେ ବସନ୍ତି) ।

ହେଁସକାନଅଭାଇ—ଗ୍ରା. ବି. ହାଟୁଆମାନଙ୍କ ମଧ୍ୟରେ ଏକ ସମାଜଭୁକ୍ତ ଜାତଭାଇ ।

ହେଁସକାନରୁ ଉଠାଇଦେବା—ଗ୍ରା. କ୍ରି. ହାଟୁଆ ସମାଜରେ କୌଣସି ବ୍ୟକ୍ତିକୁ ସମାଜଚ୍ୟୁତ କରିବା, ଏକଘର କରିବା ।

ହେଁସ କୁଣ୍ଢାଇ ପେଟରେ ହେବା ବା ପୁଅ ବେଇବା—ଗ୍ରା. କ୍ରି. ( ଜୀବତ୍ପତିକା ସ୍ତ୍ରୀ) ଅବୈଧ ଉପାୟରେ ଗର୍ଭିଣୀ ହେବା ବା ପୁଅ ବେଇବା ।

ହେଁସକୁଣ୍ଟ ଇଗାଇବା—ଗ୍ରା.କ୍ରି. (ଜୀବିତ ଥିବା ସ୍ୱାମୀ ବା ସ୍ତ୍ରୀ କୌଣସି କାରଣରୁ ନିଜର ସ୍ତ୍ରୀଙ୍କର ବା ସ୍ୱାମୀଙ୍କର ସହବାସରୁ ବଞ୍ଚିତ ହେବା, ସ୍ୱାମୀଙ୍କ ସଙ୍ଗେ ସ୍ତ୍ରୀ ବା ସ୍ତ୍ରୀଙ୍କ ସଙ୍ଗେ ସ୍ୱାମୀ ଏକଶଯ୍ୟାରେ ଶୟନ ନ କରିବା ।

ହେଁସାନେ( ଲେ ) ଖାରେଟେଁସା—ପ୍ରା. (ବାଲେ)ବି. ଓ ବିଂ.ବନ୍ଧୁଦୂର ସମ୍ପର୍କୀୟ ବନ୍ଧୁ, ବନ୍ଧୁର ବନ୍ଧୁ, ତାଙ୍କ ବନ୍ଧୁ, ଏହିପରି ହେବା ଲେଖାବନ୍ଧୁ ।

ହେଁୟୁଆଡ—ପ୍ରା. (ଗଞ୍ଜାମ) ବି. ଜଳଜ ତୃଣବିଶେଷ ।

ହେଁହା—ଗ୍ରା. ଅବ୍ୟ. ଉଚ୍ଚହାସ୍ୟର ଧ୍ୱନି ।

ହେଁହେଁ—ଗ୍ରା. ଅବ୍ୟ. ଉପହାସାର୍ଥକ, ଉଚ୍ଚହାସ୍ୟର ଧ୍ୱନି,(ବି)ଅଶ୍ୱର ହ୍ରେଷା

ହେଁହେଁଫେଁଫେଁ-ଗ୍ରା.ଅବ୍ୟ.ଉଚ୍ଚୈଃସ୍ୱରରେ ହସିବା ଓ କଥା କହିବା ।

ହେଁହେଁହେବା—ଗ୍ରା. କ୍ରି. ଉଚ୍ଚହାସ୍ୟ କରିବା, ଦୀର୍ଘଧ୍ୱନିରେ କାନ୍ଦିବା ।

ହେକାଇତ—ପ୍ରା.(ଯାଜପୁର)ବି. ଜବରଦସ୍ତି ଦେଖ ।

ହେକୁ—ପ୍ରା. (ପାଟଣା)ଅବ୍ୟ. ସେଇଠି ।

ହେକ୍କା—ବି.(ହେକ+କୈ+କ.ଅ.ଆ) ହିକ୍କା ଦେଖ ।

ହେଙ୍ଗ୍‌ଲା—ପ୍ରା. (ସିଂହ) ବିଂ. ହୁଗୁଲା, ଢିଲା, ଶ୍ଲଥ ।

ହେଙ୍ଗଲା—ଗ୍ରା. ବିଂ. ମୂର୍ଖ, ଅସତର୍କ, ଅସାବଧାନ ।

ହେଙ୍ଗା—ଗ୍ରା. ପୁଂ. ବିଂ. ନିକମା(ବ୍ୟକ୍ତି), (ପ୍ରା. ଯାଜପୁର. ବିଂ) ଅଯୋଗ୍ୟ, (ପ୍ରା. ସିଂହ.ବି)ମଇ,(ସ୍ତ୍ରୀ)ହେଙ୍ଗୀ,ହେଙ୍ଗେଇ ।

ହେଙ୍ଗୁ—ଗ୍ରା.ବି. (ସଂ-ହିଙ୍ଗୁ) ହିଙ୍ଗୁ ଦେଖ ।

ହେଙ୍ଗୁଳ—ଗ୍ରା. ବି. ହିଙ୍ଗୁଳ ଦେଖ ।

ହେଚ୍ଛୁଟେମେ—ପ୍ରା. (ପାଟଣା) ଅବ୍ୟ. ଅଳ୍ପ ଦୂରରେ ।

ହେଜ—ଗ୍ରା. ବି. ସ୍ମରଣ, ସ୍ମରଣଶକ୍ତି, ତର୍କଣା, ଅନୁମାନ, ପାର୍ଥକ୍ୟ, ପାର୍ଥକ୍ୟବିଚାର ।

ହେଜା—ଗ୍ରା.ବି. ସ୍ମରଣକରିବା,ଉଲ୍ଲେଖ, (ପ୍ରା. ଗଞ୍ଜାମ. ବି) ଅନୁମାନ ।

ହେଜାଲେଖା—ପ୍ରା. (ଖଡ଼ି) ବି. ହିସାବ, (ବିଂ) ଅତ୍ୟନ୍ତ ହିସାବୀ ।

ହେଜିବା—ଗ୍ରା.କ୍ରି.ସ୍ମରଣକରିବା,ଭାବିବା, ଗଣିବା, ଖାତିର କରିବା,ଧ୍ୟାନକରିବା, ଜାଣିବା,ଚିହ୍ନିବା,ପୂର୍ବବିଷୟ ସ୍ମରଣକୁ ଆଣିବାର ଚେଷ୍ଟା କରିବା,ଖୋଜିବା ।

ହେଞ୍ଜଡ଼ା—ଗ୍ରା. ପୁଂ. ବିଂ. ଚଗଲା,ନିର୍ଲଜ୍ଜ, ଉଚ୍ଚହାସ୍ୟକାରୀ, ପୁଂସ୍ତ୍ୱହୀନ ପୁରୁଷ ।

ହେଞ୍ଜଲା—ଗ୍ରା. ବି. ଓ ବିଂ. ପୁଂସ୍ତ୍ୱବର୍ଜିତ ପୁରୁଷ, (ସ୍ତ୍ରୀ) ହେଞ୍ଜଲୀ ।

ହେଟ୍—ଗ୍ରା. ଅବ୍ୟ. ବଗିର ଘୋଡ଼ାଙ୍କୁ ଚଲାଇବାବେଳେ କଚୁଆନଙ୍କ ଧ୍ୱନି ।

ହେଟ(ଠ)—ଗ୍ରା. ବିଂ. ଅବନତ,ବିମୀତ, ନିମ୍ନକୁ ନତ, (ବି) ନିମ୍ନଦେଶ, ତଳ ।

ହେଟ(ଠ)ବଦନ(ମାଥ,ମୁଖ)—ଗ୍ରା. ବିଂ. ଅବନତ ମସ୍ତକ, ଅଧୋବଦନ, (ସ୍ତ୍ରୀ) ହେଟ(ଠ)ବଦନୀ(ମୁଖୀ) ।

ହେଟା—ଗ୍ରା. ବି. ଗଧିଆବାଘ, ( ସର୍ବ ) ସେହିଟା, ଏହିଟା, ସେସ୍ଥାନ, ସେଠା, (ପ୍ରା. ଯାଜପୁର. ବିଂ) ଥେଣ୍ଟା ।

ହେଟାଗଡ଼ିଆ—ପ୍ରା.(ଯାଜ)ବିଂ. ଆବୁଡ଼ାଖାବୁଡ଼ା, ଅସମତଳ ।

ହେଟାଗୁ(ଗୋ)ଡ଼ିଆ—ପ୍ରା. (ଗଞ୍ଜାମ) ବି. ପ୍ରାଚୀନ ପ୍ରଚଳିତ ଦଣ୍ଡବିଶେଷ ।

ହେଟାଦର—ପ୍ରା.(ବାଲେ.)ବି.ହତାଦର ।

ହେଟାମୁଣ୍ଡ—ପ୍ରା. ( ଖଡ଼ିଆଳ ) ବିଂ. ନତମସ୍ତକ ।

ହେଟାର-ପ୍ରା.(ପାଟଣା)ଅବ୍ୟ.ସେଥିପାଇଁ ।

ହେଟାବୁଲିଆ—ପ୍ରା. ( ଖଡ଼ିଆଳ ) ବି. ବନ୍ୟଗୁଳ୍ମବିଶେଷ ।

ହେଟି—ଗ୍ରା. ଅବ୍ୟ. ( ନିର୍ଦ୍ଦେଶାର୍ଥକ ) ହେଇଟି, ସେଇଟି ।

ହେଠି—ଗ୍ରା. ସର୍ବ. ସେଠି, ସେଠାରେ ।

ହେଟେତେ—ପ୍ରା.(ପାଟଣା)ବିଂ. ବେଶି ।

ହେଠ୍—(ଧାତୁ) ବାଧାଦେବା, ଅବଜ୍ଞା କରିବା ।

ହେଠ—ବି.(ହେଠ୍+ଭା.ଅ)ବାଧା,କ୍ଷତି, (ଗ୍ରା.ବିଂ) ଅବନତ ।

ହେଠାନେ—ପ୍ରା.(ବଲାଙ୍ଗିରପାଟଣା)ସର୍ବ. ସେ ସ୍ଥାନରେ, ସେଠାରେ ।

ହେଠୁ(ଠୁଁ)—ଗ୍ରା.ଅବ୍ୟ.ଏହିଠାରୁ,ସେଠାରୁ ।

ହେଡ଼୍—(ଧାତୁ) ବେଷ୍ଟନ କରିବା, ବାଡ଼ ଘେରାଇବା, ଘୃଣା କରିବା, ଅବଜ୍ଞା କରିବା, (ଯା.ବି) ବିଶ୍ରାମ, ମସ୍ତିଷ୍କ, ବୁଦ୍ଧି, ମୁଣ୍ଡ, ପ୍ରଧାନ ।

ହେଡ଼୍‌ପଣ୍ଡିତ—ଗ୍ରା.ବି.ସଂସ୍କୃତ ଓ ଦେଶୀୟ ଭାଷା ଶିକ୍ଷାଦେବା ପାଇଁ ନିଯୁକ୍ତ ପଣ୍ଡିତମାନଙ୍କ ମଧ୍ୟରେ ପ୍ରଧାନ ପଣ୍ଡିତ ।

ହେଡ଼୍‌ମାଷ୍ଟର—ଯା. ବି. ବିଦ୍ୟାଳୟର ପ୍ରଧାନ ଇଂରାଜୀ ଶିକ୍ଷକ ।

ହେଡନ—ବି.(ହେଡ଼୍+ଅ.ଅନ)କ୍ରୋଧ ।

ହେଡ଼ା—ଗ୍ରା. ସର୍ବ. ସେଗୁଡ଼ାକ, (ଗ୍ରା.ବି) ହାଡ଼ଯୁକ୍ତ ମାଂସ, ଗୋମାଂସ, ନିକୃଷ୍ଟ ଜନ୍ତୁର ମାଂସ, ପଶୁମାଂସ ।

ହେଡ଼ାଖିଆ—ଗ୍ରା. ପୁଂ. ବିଂ. ଗୋମାଂସଖାଦକ, (ଗାଳି) ନିଷିଦ୍ଧ ମାଂସଭୋଜୀ ।

ହେଡ଼ାଖିଆକାମ—ଗ୍ରା. ବି. ( ଲ.ଅର୍ଥ ) ନିକୃଷ୍ଟ ଜଘନ୍ୟ ଓ ନିଷିଦ୍ଧ କାର୍ଯ୍ୟ ।

ହେଡ଼ାବୁକ୍କା—ବି.ଅଶ୍ଳୀ ବିଷୟକାରୀ ବ୍ୟକ୍ତି ।

ହେଣ୍ଡା—ଗ୍ରା. ବିଂ. ଅମାନିଆ, ଅବୋଲକରା(ଗୃହକର), ବେଖାତିରିଆ ।

ହେଣ୍ଟେଇବା--ପ୍ରା.(ଉଃ ବାଲେଶ୍ବର) କ୍ରି. ହାଣ୍ଟୁରିବା, ଗର୍ଜନ କରିବା ।

ହେଣ୍ଡ୍ରା—ଗ୍ରା. ବି. କଣ୍ଠବାଦ୍ୟ, ବାହୁର ତଳଅଂଶକୁ ପାର୍ଶ୍ବରେ ଆଘାତ କରି କରାଯିବା ଶବ୍ଦ,ନିଷ୍କର୍ମା ବ୍ୟକ୍ତି,(ପୁଂ.ବିଂ) ମୂର୍ଖ । [ ଆହ୍ଲାଦ ।

ହେଣ୍ଡ୍ରେ—ଗ୍ରା. ବି. ହେଣ୍ଡ୍ରା ଦେଖ,ଆନନ୍ଦ,

ହେଣ୍ଡ୍ରିଆ—ଗ୍ରା.ପୁଂ.ବିଂ.ଯେ ହେଣ୍ଡ୍ରିମାରେ, ପୂର୍ବେ ଶ୍ରେଷ୍ଠ ବ୍ରାହ୍ମଣ ଶାସନମାନଙ୍କର ପ୍ରାତଃକାଳରେ ହେଣ୍ଡ୍ରିମାରି ନିଦଭଙ୍ଗାଇବା ଭୃତ୍ୟ ।

ହେଣ୍ଡ୍ରିମାରିବା—ଗ୍ରା. କ୍ରି. କଣ୍ଠବାଦ୍ୟ ବଜାଇବା, ବାହୁକୁ କଡ଼ରେ ମାରି ଶବ୍ଦ କରିବା, ( ଲ.ଅର୍ଥ ) ଆନନ୍ଦ ପ୍ରକାଶ କରିବା, ନିଷ୍କର୍ମା ଓ ନିଶ୍ଚିନ୍ତ ହୋଇ ବୁଲିବା ।

ହେଣ୍ଡୁଆ—ଗ୍ରା. ବି. ବାଉଁଶ କରଡ଼ିକୁ ବା ଚଜାକୁ ସରୁ ସରୁ କରି କାଟି ଖରାରେ ଶୁଖାଇ ଓ ଗମାଇଁ ପ୍ରସ୍ତୁତ କରାଯିବା ଖାଦ୍ୟବ୍ୟଞ୍ଜନ ।

ହେଣ୍ଡ୍ରୁ—ଗ୍ରା. ବି. ହେଣ୍ଡ୍ରା ଦେଖ ।

ହେଣ୍ଡ୍ରୁମାରିବା—ଗ୍ରା. କ୍ରି. ହେଣ୍ଡ୍ରିମାରିବା ଦେଖ ।

ହେତ୍—ପ୍ରା. (ଖଡ଼ିଆଲ) ବି. ସ୍ମରଣ ।

ହେତ୍‌କି—ପ୍ରା. (ଖଡ଼ିଆଲ)ସର୍ବ.ସେତିକି, ସେହି ପରିମାଣ, (ବିଂ)ସେହି ପରିମିତ ।

ହେତ୍‌କେ—ପ୍ରା. (ପାଟଣା) ଅବ୍ୟ. ତହୁଁପରେ ।

ହେତ୍‌ଚେତ୍—ପ୍ରା. (ଖଡ଼ିଆଲ) ବି. ବୁଦ୍ଧି, ଜ୍ଞାନ, ଚେତନା ।

ହେତା—ଗ୍ରା.ବି.ପ୍ରଶସ୍ତ ଜମି,ଗ୍ରାମସେବକ ଓ କୋଠିଆଙ୍କୁ ଦିଆଯିବା ଜାଗିର, ସର୍ବରାକାରମାନଙ୍କୁ ଦିଆଯିବା ଭୁଗୁରି ବା ଜାଗିର, (ପ୍ରା. ସମ୍ବଲ.କ୍ରି)ହୁଅନ୍ତା, (ଗ୍ରା.ସର୍ବ) ଅମୁକ, ସେହିତା ।

ହେତାର୍—ପ୍ରା.(ସମ୍ବ)ସର୍ବ. (ଷଷ୍ଠୀବିଭକ୍ତି) ଏହାର, (ପ୍ରା. ଖଡ଼ିଆ)ସର୍ବ. ତାହାର ।

ହେତି—ବି. (ହନ୍ + କ୍ତି.ତି) ଅସ୍ତ୍ର, ଶସ୍ତ୍ର, ( କ.ତି ) ସୂର୍ଯ୍ୟକିରଣ, ଅଗ୍ନିଶିଖା, ତେଜୋମାନ, କାର୍ଯ୍ୟସାଧନୋପାୟ, ସାଧନ, ହେତୁ, କାରିଗରର ଯନ୍ତ୍ର, ଅସ୍ତ୍ର ଆଦିର ଚୋଟ, ଧନୁଟଙ୍କାର, ରାକ୍ଷସବିଶେଷ । [ ପରିମାଣ ।

ହେତିକି—ଗ୍ରା. ସର୍ବ. ସେତିକି, ସେହି-

ହେତିବା—ପ୍ରା. (ଖଡ଼ିଆଲ) କ୍ରି. ସ୍ମରଣ କରିବା, ଚେତିବା ।

ହେତୁ—ବି. (ହି+କ.ତୁ)କାରଣ, ବୀଜ, ପ୍ରୟୋଜନ, ମୂଳ, ଯୁକ୍ତି,କାବ୍ୟାଲଙ୍କାର ବିଶେଷ, (ନ୍ୟାୟମତେ) ପ୍ରମାଣକାରକ ବିଷୟ,ବୌଦ୍ଧଦର୍ଶନମତେ ମୂଳକାରଣ, (ତର୍କଜ୍ଞାନ) ଯେଉଁ ବିଷୟବଳରେ ଆମ୍ଭେମାନେ କୌଣସି ସିଦ୍ଧାନ୍ତରେ ଉପନୀତ ହେଉଁ,(ଗ୍ରା.ବି) ସ୍ମରଣ,ଜ୍ଞାନ, ଚୈତନ୍ୟ, ମନୋଯୋଗ, ହିତାହିତ ବିବେଚନା ।

ହେତୁକ-ବି. (ହେତୁ+କ)କାରଣ,ହେତୁ, (ବିଂ) ହେତୁ ସମ୍ବନ୍ଧୀୟ ।

ହେତୁତା(ତ୍ୱ)—ବି. (ହେତୁ+ଭ.ତା.ତ୍ୱ) ହେତୁର ଧର୍ମ, କାରଣତ୍ୱ ।

ହେତୁଦୋଷ—ବି. ହେତ୍ୱାଭାସ ଦେଖ ।

ହେତୁବାଦ—ବି. ( ୬ତତ୍ ) ହେତୁ ବା କାରଣକଥନ, ତର୍କବିଦ୍ୟା, କୁତର୍କ, ନାସ୍ତିକତା ।

ହେତୁବିଦ୍ୟା—ବି. ତର୍କଶାସ୍ତ୍ର ।

ହେତୁମାନ୍—ବିଂ.(ହେତୁ+ମତ୍)କାରଣଯୁକ୍ତ, (ସ୍ତ୍ରୀ) ହେତୁମତୀ ।

ହେତୁରୁ(ରେ)—ଗ୍ରା. ଅବ୍ୟ. କାରଣରୁ, ଯୋଗୁଁ, ପାଇଁ, ଲାଗି ।

ହେତୁଶାସ୍ତ୍ର—ବି. ତର୍କଶାସ୍ତ୍ର ।

ହେତୁହେତୁମଦ୍ଭାବ-ବି.କାର୍ଯ୍ୟକାରଣଭାବ, କାର୍ଯ୍ୟ ଓ କାରଣର ପରସ୍ପର ସମ୍ବନ୍ଧ ।

ହେତୁହେତୁମଦ୍ଭୂତକାଳ—ବି. ଭୂତ ବା ଅତୀତକାଳର ଏକ ଭେଦ, ଯହିଁରେ କାରଣରୂପେ ସୂଚିତ ବିଷୟର ଅଭାବ ଯୋଗୁଁ କାର୍ଯ୍ୟର ଅଭାବସୂଚିତ ହୁଏ ।

ହେତୂତ୍ପ୍ରେକ୍ଷା—ବି. କାବ୍ୟର ଉତ୍ପ୍ରେକ୍ଷାଳଙ୍କାର ବିଶେଷ.ଯେଉଁ ସ୍ଥଳରେ ହେତୁଦ୍ୱାରା ଉତ୍ପ୍ରେକ୍ଷା ହୁଏ ।

ହେତୂପମ—ବି. ଉପମାଳଙ୍କାରବିଶେଷ ।

ହେତେବେଳେ-ଗ୍ରା.ସର୍ବ.ସେତେବେଳେ, ସେହି ସମୟରେ ।

ହେତ୍ୱନ୍ତର—ବି. ହେତୁକଥନ, ପ୍ରକୃତ ହେତୁ କଥନ ସ୍ଥଳରେ ଯେଉଁ ବିକୃତ ହେତୁ କୁହାଯାଏ ।

ହେତ୍ୱାଭାସ—ବି.(ନ୍ୟାୟଦର୍ଶନ)ଦୁଷ୍ଟତର୍କ, କୁତର୍କ,ଅସତ୍‌ହେତୁ,ଏହା ପାଞ୍ଚପ୍ରକାର (ଯଥା—ସବ୍ୟଭିଚାର ବା ଅନୈକାନ୍ତିକ, ବିରୁଦ୍ଧ,ପ୍ରକରଣସମ,ସାଧ୍ୟସମ, କାଳାତୀତ

ହେଥା—ଗ୍ରା. ( ପ୍ରା--ପ୍ରୟୋଗ ) ଅବ୍ୟ. ଏଠାରେ । [ ସେଥି ।

ହେଥି—ପ୍ରା.(ଖଡ଼ିଆଲ)ଅବ୍ୟ. ସେଥିରେ,

ହେଥୁ—ପ୍ରା. (ସମ୍ବ) ଅବ୍ୟ. ଅତଏବ ।

ହେଦେ—ପ୍ରା.(କଳାହାଣ୍ଡି)ସର୍ବ. ଏଠାରେ, ଏହି ସ୍ଥାନରେ ।

ହେନ୍‌ତା(ତ)—ପ୍ରା.(ଖଡ଼ି)ଅବ୍ୟ.ସେପରି

ହେନ—ଗ୍ରା. ସର୍ବ. ଏହି. ଏହିପରି ।

ହେନତେନ—ପ୍ରା. (ଉ. ବାଲେ) ଅବ୍ୟ.

ଇଆଡ଼ୁ, ସିଆଡ଼ୁ ।
ହେଳସମସ୍ତେ—ଗ୍ରା.ଅବ୍ୟ.ଏହି ସମୟରେ. ଠିକ୍ ଏତିକବେଳେ ।
ହେନା—ଯା.ବ. ସୁଗନ୍ଧ ପୁଷ୍ପ ଓ ତାହାର ଗଛ, ମଞ୍ଜୁଆତି, ମେହେନ୍ଦି ।
ହେନ—ପ୍ରା. (ସମ୍ବଲ ଓ ବାଲେ.) କ୍ରି. ହେଲ ଦେଖ ।
ହେନେ—ପ୍ରା. (ସମ୍ବଲ) ଅବ୍ୟ.ସିଆଡ଼େ, ତେଣେ, ଏଣେ, ଇଆଡ଼େ, ହେଲେ, ଯଦି ହୁଏ ।
ହେନ୍ତା—ପ୍ରା. (ସମ୍ବଲ) ଅବ୍ୟ. ଏପରି, ଏହିପରି, (ସର୍ବ) ଏହି, ସେହି ।
ହେନ୍ତାଳ—ଗ୍ରା. ବ. ହନ୍ତାଳ ଦେଖ ।
ହେନ୍ତାହେନ୍ତ—ପ୍ରା. (ବଲାଙ୍ଗିରପାଟଣା) ଅବ୍ୟ. ସେହିପରି ।
ହେପା—ପ୍ରା.(ଗଞ୍ଜାମ) ବ.ସ୍ମରଣ,ଖିଆଲ, ହୋସ୍, ଜ୍ଞାନ, ମନୋଯୋଗ ।
ହେପାଜ(ଜ୍ରା)ତ୍—ଯା.ବ.ହିପାଜତ୍ ଦେଖ ।
ହେପ୍ଲାଇବା—ପ୍ରା. (ସମ୍ବ)କ୍ରି.ଠେଲିବା ।
ହେବ୍କା—ପ୍ରା.(ଖଡ଼ିଆଲ) ବ. ହାବୁକା, ଧକ୍କା ।
ହେବ୍ଲାହେବ୍ଲି—ପ୍ରା.(ଖଡ଼ିଆଲ) ବ. ଓ ବିଂ. ଅନ୍ୟୋନ୍ୟରେ ପେଲାପେଲି ।
ହେବ୍ଲିବା—ପ୍ରା. (ଖଡ଼) କ୍ରି. ଠେଲିବା, ପେଲିବା ।
ହେବ—ଗ୍ରା.କ୍ରି.(ସ-ଭୂ-ଭବିଷ୍ୟତ୍କାଳ) ହେବା କ୍ରିୟାର ଭବିଷ୍ୟତ୍ କାଳ ୩ୟ ପୁରୁଷ ଏକବଚନ (ସେ,ତାହା)କର୍ତ୍ତା ସଙ୍ଗେ ବ୍ୟବହୃତ ମଧ୍ୟମ ୨ୟ ଏକବଚନ ଓ ବହୁବଚନ(ତୁମ୍ଭେ, ତୁମ୍ଭେମାନେ) କର୍ତ୍ତାସଙ୍ଗେ ବ୍ୟବହୃତ, (ଅବ୍ୟ.) ପ୍ରାୟ ।
ହେବା—ଗ୍ରା.କ୍ରି.(କୌଣସି କର୍ମସମ୍ପନ୍ନ ହେବା, ଘଟିବା, ଫଳିବା, ପରିବର୍ତ୍ତିନ ହେବା, ପାଳନ୍ତିବା, ଆସ୍ତୁତ ହେବା, ଫାବିବା, ପହଞ୍ଚିବା, ହସ୍ତଗତ ହେବା, ସମବେତ, ଉପସ୍ଥିତ ଇତ୍ୟାଦି କାର୍ଯ୍ୟର କଷ୍ଟଣି ବିଷୟର କ୍ରିୟାରୂପେ ବୁଝାଇବା।
ହେବାକଥାନୁହେ—ଗ୍ରା. ଅବ୍ୟ. ବିସ୍ମୟ, ଖେଦସୂଚକ ।
ହେବାକୁ—ଗ୍ରା. କ୍ରି. ଘଟିବାକୁ, (ଅବ୍ୟ) ହେବାପାଇଁ, ହେବାବେଳକୁ ।
ହେବାନହେବା—ଗ୍ରା. ବ. କାର୍ଯ୍ୟରେ ସିଦ୍ଧି ବା ଅସିଦ୍ଧି, ସ୍ୱୀକୃତ ବା ଅସ୍ୱୀକୃତ ।
ହେବାରୁ(ରେ)—ଗ୍ରା. ଅ. ହେବାଯୋଗୁଁ, ହେବା ହେତୁ, (ଅମୁକ) କାରଣରୁ ।
ହେବି—ଗ୍ରା. କ୍ରି. ଭୂ ଧାତୁର ଭବିଷ୍ୟତ-କାଳ, ୧ମ(ଉତ୍ତମ) ପୁରୁଷ ଏକବଚନ ଅନାଦରାର୍ଥକ ( ମୁ ) କର୍ତ୍ତାସଙ୍ଗେ ବ୍ୟବହୃତ ରୂପ ।
ହେବୁ—ଗ୍ରା. କ୍ରି. ଭୂ ଧାତୁର ଭବିଷ୍ୟତ୍ କାଳ ୨ୟ (ମଧ୍ୟମ) ପୁରୁଷ ଏକବଚନ ଅନାଦରାର୍ଥକ(ତୁ) କର୍ତ୍ତାସଙ୍ଗେ ବ୍ୟବହୃତ ରୂପ ।
ହେବୁଁ—ଗ୍ରା. କ୍ରି. ଭୂ ଧାତୁର ଭବିଷ୍ୟତ୍କାଳ ୧ମ ( ଉତ୍ତମ) ପୁରୁଷ ମାନ୍ୟାର୍ଥକ ଏକବଚନ (ଆମ୍ଭେ) ଓ ବହୁବଚନ (ଆମ୍ଭେମାନେ) କର୍ତ୍ତା ସଙ୍ଗେ ବ୍ୟବହୃତ ରୂପ ।
ହେବେ—ଗ୍ରା. କ୍ରି. ଭୂ ଧାତୁ ଭବିଷ୍ୟତ୍ କାଳ ୨ୟ ପୁରୁଷ ଅତି ମାନ୍ୟାର୍ଥକ ଏକବଚନ(ଆପଣ) ଓ ବହୁବଚନ (ଆପଣମାନେ) ୩ୟପୁରୁଷ ମାନ୍ୟାର୍ଥକ ଏକବଚନ ( ସେ ) ଓ ବହୁବଚନ (ସେମାନେ), (ଅବ୍ୟ.) ପ୍ରାୟ ।
ହେମ—ବ. (ହି + କ.ମନ୍)ସ୍ୱର୍ଣ୍ଣ, ଧୂସ୍ତୁର, ଧାତୁସ, କେଶର, ଜାଫ୍ରାନ୍, ହେମ, କାକର, ହିମ, ହେମନ୍ତ କାଳ,ମାଷ-ପରିମାଣ,ଏକମଷା ଓଜନ, କୃଷ୍ଣବର୍ଣ୍ଣାଶ୍ୱ, ବୁଧଗ୍ରହ, ବରଫ, ସ୍ୱର୍ଣ୍ଣଖଣ୍ଡ, କପିତ୍ଥ, କଇଥ, ନାଗକେଶର, ବାଦାମୀ-ରଙ୍ଗର ଘୋଡ଼ା, ବୁଦ୍ଧଦେବ, (ପ୍ରା. ଖଡ଼ିଆଲ) ବ. ହିମ, କାକର ।
ହେମକନ୍ଦଲ—ବ. ପ୍ରବାଳ, ପୋହଳା ।
ହେମକାକର-ଗ୍ରା. ବିଂ. ହେମପରି ଅର୍ଥାତ୍ ବରଫପରି ଅତି ଥଣ୍ଡା ।
ହେମକାନ୍ତ—ବ. (୬ତତ୍) ସୁନାର ପ୍ରଭା, ( ବ.ସ୍ତ୍ରୀ ) ଦାରୁହରିଦ୍ରା, ଆମ୍ବକଶିଆ ଅଦା, ଆମ୍ବଅଦା, ବିଂ. ପୁଂ. (ବ.ସ୍ତ୍ରୀ) ସ୍ୱର୍ଣ୍ଣାଭ, ସୁବର୍ଣ୍ଣପରି କାନ୍ତିବିଶିଷ୍ଟ ।
ହେମକାର-ବ. ସ୍ୱର୍ଣ୍ଣକାର,ସୁନାରି ବଣିଆ ।
ହେମକାର୍କଣି-ଗ୍ରା.ବ. (ବୈଦ୍ୟକ) ଏକ-ପ୍ରକାର ଔଷଧି ଗୁଳ୍ମ ।
ହେମକିଞ୍ଜଲ୍କ—ବ. ନାଗକେଶର ।
ହେମକୁମ୍ଭ(କଳସ) — ବ. ସ୍ୱର୍ଣ୍ଣନିର୍ମିତ ମାଠିଆ ।
ହେମକୂଟ—ବ. (ବ.ସ୍ତ୍ରୀ) ପୁରାଣୋକ୍ତ ହିମାଳୟର ଉତ୍ତରସ୍ଥ ପର୍ବତବିଶେଷ ।
ହେମକେତକୀ—ବ. ସ୍ୱର୍ଣ୍ଣକେତକୀ, କେଉକାଫୁଲ ।
ହେମକେଦାର—ଗ୍ରା. ବ. ଏକପ୍ରକାର ଗଦ, ଫୁଟିଫୁଟିକିଆ ଗଛପରି ଦୀର୍ଘାୟୁଷ୍ଟ ଶାକବିଶେଷ ।
ହେମକେଲ—ବ. ଅଗ୍ନି ।
ହେମକେଶ—ବ. ଶିବ ।
ହେମକ୍ଷୀରୀ-ବ. ସ୍ୱର୍ଣ୍ଣକ୍ଷୀରୀ ବୃକ୍ଷ,ଅଗରଗୁଲ୍ମ
ହେମଗନ୍ଧନୀ—ବ. ରେଣୁକା ନାମକ ଗନ୍ଧ ଦ୍ରବ୍ୟ ।
ହେମଗିରି—ପୁଂ.ବ.ସୁମେରୁ ପର୍ବତ ।
ହେମଗୋଷ୍ଟ—ଗ୍ରା. ବ. ଓ ବିଂ. ସ୍ତ୍ରୀ.(ସଂ-ହେମଗୌରୀ) କନକଗୋଷ, ସୁବର୍ଣ୍ଣ-ପରି ଶରୀରକାନ୍ତିବିଶିଷ୍ଟା (ସ୍ତ୍ରୀ) ।
ହେମଗୌର-ବିଂ. ପୁଂ. ସ୍ୱର୍ଣ୍ଣପରି ଗୌର-ବର୍ଣ୍ଣ ଚର୍ମଯୁକ୍ତ, କିଙ୍କିରାତ ବୃକ୍ଷ, ବରୁର-ଗଛ ।
ହେମଗୌରାଙ୍ଗ—ପୁଂ. ବିଂ. ସ୍ୱର୍ଣ୍ଣତୁଲ୍ୟ ଗୌରବର୍ଣ୍ଣାଙ୍ଗବିଶିଷ୍ଟ, ( ସ୍ତ୍ରୀ ) ହେମ-ଗୌରାଙ୍ଗୀ ।
ହେମଘ୍ନ—ବ. (ହେମ+ହନ୍+କ.ଅ) ସୀସା ଧାତୁ ।
ହେମଘ୍ନୀ—ବ. (ହେମଘ୍ନ+ଆ) ହଳଦୀ ।
ହେମଚନ୍ଦ୍ର—ବ. ( କ.ଧା ) ସ୍ୱର୍ଣ୍ଣନିର୍ମିତ ଚନ୍ଦ୍ର, ସୁନାର ଚନ୍ଦ୍ର, ଇକ୍ଷ୍ୱାକୁ ବଂଶୀୟ ବିଶାଳ ରାଜାଙ୍କ ପୁତ୍ର ।
ହେମଚମ୍ପକ—ବ. ହଳଦିଆ ଚମ୍ପାଫୁଲ ଓ ଗଛ, ( ଗ୍ରା.ବ ) ବିଦେଶୀ ପୁଷ୍ପବୃକ୍ଷ-ବିଶେଷ ।

ହେମଜ—ବି. ରଙ୍ଗା ଧାତୁ ।

ହେମଜାଲ—ଗ୍ରା. ବି. ଲତାବିଶେଷ ।

ହେମଜୀବନ୍ତୀ—ବି. ସ୍ତ୍ରୀ. ପୀତଜୀବନ୍ତୀ । ସ୍ୱର୍ଣ୍ଣଜୀବନ୍ତୀ ।

ହେମଜ୍ୱାଳ—ବି. ବି.ଜ୍ଞ (ହେମ+ଜ୍ୱାଳା) ଅଗ୍ନି ।

ହେମଝର—ଗ୍ରା.ବି.ସ୍ୱର୍ଣ୍ଣର ଗଡ଼ୁ ବା ଝାଲ ।

ହେମତାର—ବି.ଉଡ଼ୁମ୍ବର ବୃକ୍ଷ,ତୁତିଆ ।

ହେମତାରକ—ବି. ତୁତିଆ ।

ହେମତୁର୍କୁଣୀ—ପ୍ରା. ( ଗଡ଼ଜାତ ) ବି. ବନ୍ୟଲତାବିଶେଷ ।

ହେମତୁଲା—ବି. ସ୍ୱର୍ଣ୍ଣର ତୁଳାଦାନ, ଦାତାଙ୍କ ସମାନ ଓଜନ ସୁନାର ଦାନ ।

ହେମଦନ୍ତ—ସ୍ତ୍ରୀ. ବି. ଅପ୍ସରୋଭେଦ ।

ହେମଦୀନାର-ପୁଂ.ବି.ସ୍ୱର୍ଣ୍ଣମୁଦ୍ରା,ମୋହର ।

ହେମଦୁଗ୍ଧ(କ)—ବି.ଉଡ଼ୁମ୍ବର ବୃକ୍ଷ,(ବିଂ) ପୀତବର୍ଣ୍ଣ କ୍ଷୀରଯୁକ୍ତ ।

ହେମଦୁଗ୍ଧା—ବି. ସ୍ୱର୍ଣ୍ଣକ୍ଷୀରୀ ।

ହେମଦୁଗ୍ଧୀ—ବି. ଯଜ୍ଞଉଡ଼ୁମ୍ବର ବୃକ୍ଷ, ସ୍ୱର୍ଣ୍ଣକ୍ଷୀରୀ ।

ହେମଧାନ୍ୟକ—ବି. ତିଳ, ରାଶି ।

ହେମନାଭି—ପୁଂ. ବି. ସ୍ୱର୍ଣ୍ଣନାଭି, ଯେଉଁ ରଥର ନାଭି ସ୍ୱର୍ଣ୍ଣମୟ ।

ହେମନେତ୍ର—ପୁଂ. ବି. ଯକ୍ଷ ।

ହେମନ୍ତ—ବି. (ହେମନ୍+ତ) ହିମଋତୁ, କାର୍ତ୍ତିକ ଓ ମାର୍ଗଶିର ମାସଦ୍ୱୟ, (ମତାନ୍ତରେ) ମାର୍ଗଶିର ଓ ପୌଷମାସ ଦ୍ୱୟ, (ଗ୍ରା.ବି) ହିମାଳୟ ପର୍ବତ, ହେମନ୍ତ ବେଳ ।

ହେମନ୍ତନାଥ—ବି. କପିତ୍ଥ, କଇଥ ।

ହେମନ୍ତବାଲୀ(ଭୁମାଗ୍ନି)—ଗ୍ରା. ସ୍ତ୍ରୀ. ବି. ପାଙ୍ଗଣି ।

ହେମପର୍ବତ—ବି. ସୁମେରୁଗିରି, ଦାନ ନିମିତ୍ତ ଉତ୍କୃଷ୍ଟ ବହୁ ସ୍ୱର୍ଣ୍ଣ ।

ହେମପୁଷ୍ପ—ବି.ଅଶୋକପୁଷ୍ପ,ମନ୍ଦାରଫୁଲ, ଚମ୍ପକ ବୃକ୍ଷ, ନାଗକେଶର ।

ହେମପୁଷ୍ପକ—ବି. ଚମ୍ପକ ବୃକ୍ଷ, ଲୋଧ୍ର ।

ହେମପୁଷ୍ପିକା—ବି. ସ୍ୱର୍ଣ୍ଣଯୂଥିକା ।

ହେମପୁଷ୍ପୀ—ବି. ମଞ୍ଜିଷ୍ଠା, ସ୍ୱର୍ଣ୍ଣଜୀବନ୍ତୀ, ଇନ୍ଦ୍ରବାରୁଣୀ, ସୁନାରି ଗଛ, ତାଳମୂଳୀ, କଣ୍ଟକାରୀ, ଅଙ୍କୋଲ ।

ହେମପ୍ରଭ—ବିଂ. (ବି.ବ୍ରୀ) ସୁବର୍ଣ୍ଣ ତୁଲ୍ୟ କାନ୍ତିବିଶିଷ୍ଟ,(ପୁଂ.ବି)ବିଦ୍ୟାଧରବିଶେଷ ।

ହେମଫଳା—ବି. (ବି.ବ୍ରୀ) ଚମ୍ପାକଦଳୀ, ସ୍ୱର୍ଣ୍ଣକଦଳୀ ।

ହେମବନ୍ତ—ବିଂ. (ହେମ+ବନ୍ତ) ସ୍ୱର୍ଣ୍ଣଯୁକ୍ତ, (ସ୍ତ୍ରୀ) ହେମବତୀ ।

ହେମବତୀ—ସ୍ତ୍ରୀ. ବି. (ହେମବନ୍ତ+ଈ) ସ୍ୱର୍ଣ୍ଣଜୀବନ୍ତୀ, ବଚ, ସ୍ୱର୍ଣ୍ଣକ୍ଷୀରିଣୀ ।

ହେମବପୁ-ଗ୍ରା.ପୁଂ. ଓ ସ୍ତ୍ରୀ. ହେମଗୌର ।

ହେମବର୍ଣ୍ଣ—ବିଂ.(ବି.ବ୍ରୀ)ସ୍ୱର୍ଣ୍ଣତୁଲ୍ୟ ବର୍ଣ୍ଣବିଶିଷ୍ଟ, (ବି) ଗରୁଡ଼ଙ୍କର ପୁତ୍ର, ବୃକ୍ଷବିଶେଷ ।

ହେମବର୍ଣ୍ଣବତୀ—ବି. ଦାରୁହରିଦ୍ରା ।

ହେମବଳ—ବି. ମୌକ୍ତିକ, ମୁକ୍ତା ।

ହେମବଲ୍ଲୀ—ସ୍ତ୍ରୀ. ବି.ସ୍ୱର୍ଣ୍ଣଜୀବନ୍ତୀ ।

ହେମମୟ-ବିଂ.ସୁନାରେ ତିଆରି,ସୁନେଲି, (ସ୍ତ୍ରୀ) ହେମମୟୀ ।

ହେମମାଳା—ବି.ସୁନାର ହାର,ଯମ ପତ୍ନୀ ।

ହେମମାଳୀ—ପୁଂ.ବି.(ହେମମାଳ+ଇନ୍) ସୂର୍ଯ୍ୟ, ଖର ରାକ୍ଷସର ସେନାପତି,(ବିଂ) ସ୍ୱର୍ଣ୍ଣହାରଯୁକ୍ତ, ହେମମାଳାବିଶିଷ୍ଟ, (ସ୍ତ୍ରୀ) ହେମମାଳିନୀ ।

ହେମମିତ୍ର—ବି. ଫିଟିକିରି ।

ହେମଯୂଥିକା—ବି.ସ୍ୱର୍ଣ୍ଣଯୂଥିକା,ସ୍ୱର୍ଣ୍ଣଯୁଇ ।

ହେମରାଗ—ବି. (୬ତତ୍) ସ୍ୱର୍ଣ୍ଣବର୍ଣ୍ଣ ।

ହେମରାଗିଣୀ—ବି. (ହେମରାଗ+ଇନ୍+ଈ) ହରିଦ୍ରା, ହଳଦୀ ।

ହେମରାଜ—ବି.ଧିଅକୁଆଁରି ପରି ଦୀର୍ଘାୟୁ ଓ ମାଂସଳ ଶାକବିଶେଷ ।

ହେମରେଣୁ—ବି. ସ୍ୱର୍ଣ୍ଣଧୂଳି, ତ୍ରସରେଣୁ ।

ହେମଳ-ବି.(ହେମ+ଲା+ଅ)ସ୍ୱର୍ଣ୍ଣକାର, ବଣିଆ, ଏଣ୍ଡୁଅ, ପ୍ରସ୍ତରଭେଦ,କଷଟି ପଥର, ଚମ୍ପେଇନେଉଳ, ମଧୁକସ୍ରାବ, ମହଣ ।

ହେମଲତା—ବି. ସ୍ୱର୍ଣ୍ଣଜୀବନ୍ତୀ, ସୋମଲତା, ବ୍ରାହ୍ମୀଶାକ ।

ହେମଲମ୍ବ(ଲିମ୍ବକ)—ବି. ବାର୍ହସ୍ପତ୍ୟ ଚକ୍ର ଅନ୍ତର୍ଗତ ଷଷ୍ଠିସମ୍ବତ୍ସର ମଧ୍ୟରୁ ୩୧ଶ ବର୍ଷର ନାମ ।

ହେମଶ—ବି. ମନୋଯୋଗ, ଶ୍ରଦ୍ଧା ।

ହେମଶଙ୍ଖ—ବି. (ବି.ବ୍ରୀ) ବିଷ୍ଣୁ ।

ହେମଶାକର—ବି. ଔଷଧଗୁଳ୍ମବିଶେଷ ।

ହେମଶିଖା—ବି. ସ୍ୱର୍ଣ୍ଣକ୍ଷୀରିଣୀ ।

ହେମଶୀତ—ବି. ସ୍ୱର୍ଣ୍ଣକ୍ଷୀରୀ ।

ହେମଶୃଙ୍ଗ—ବି. ବିଷ୍ଣୁ ।

ହେମସାଗର-ବି.ଧିଅକୁଆଁରି ପରି ଦୀର୍ଘାୟୁ ଓ ମାଂସଳ ଶାକବିଶେଷ, ଫଟିଫୁଟିକା ଗଛ ପରି ଦୀର୍ଘାୟୁ ଶାକବିଶେଷ ।

ହେମସାର—ବି. ତୁତ୍ଥ, ତୁତିଆ ।

ହେମସାବର୍ଣ୍ଣି—ପୁଂ. ବି. ମନୁବିଶେଷ ।

ହେମସିଂହ—ପୁଂ. ବି.ସ୍ୱର୍ଣ୍ଣସିଂହାସନ ।

ହେମସୁତା—ସ୍ତ୍ରୀ. ବି. ପାର୍ବତୀ ।

ହେମସୂତ୍ର(କ)—ବି. ସୁନାସୂତା,ଗୋପ ।

ହେମହସ୍ତିରଥ—ବି. ମହାଦାନବିଶେଷ, ଷୋଡ଼ଶ ମହାଦାନାନ୍ତର୍ଗତ ଦାନବିଶେଷ

ହେମା—ପୁଂ.ବି.(ହି+କ.ମନ୍) ବୁଧଗ୍ରହ, ସ୍ତ୍ରୀ;(ହେମ+ଆ)ସୁନ୍ଦରୀ ସ୍ତ୍ରୀ, ଅପ୍ସରାମାନେ,ଗୋରୀ,ହେମାଙ୍ଗୀ ନାରୀ,ମଞ୍ଜିଷ୍ଠା, ସ୍ୱର୍ଣ୍ଣଜୀବନ୍ତୀ ।

ହେମା—ଗ୍ରା.ଅବ୍ୟ.ମାତା ଓ ମାତୃସ୍ଥାନୀୟା ସ୍ତ୍ରୀଙ୍କୁ ସମ୍ବୋଧନ,ବିସ୍ମୟ ବା ଭୟଜନିତ ଧ୍ୱନି, ମାଆଲୋ ।

ହେମାଙ୍ଗ—ପୁଂ.ବି.(ବି.ବ୍ରୀ) ହିରଣ୍ୟଗର୍ଭ ବ୍ରହ୍ମା, ସହସ୍ରନାମୋକ୍ତ ବିଷ୍ଣୁଙ୍କ ନାମ, ଗରୁଡ଼,ସିଂହ,ହେମାଦ୍ରି,ସୁମେରୁପର୍ବତ, ଚମ୍ପକ ବୃକ୍ଷ, (କ.ଧା) ସ୍ୱର୍ଣ୍ଣନିର୍ମିତ ଅଙ୍ଗ ବା ଅବୟବ,ସୁନାପରି ଗୋରା ଦେହ, (ପୁଂ.ବିଂ-ବି.ବ୍ରୀ)ହେମଗୌର,ସୁନାପରି ଗୋରା, (ସ୍ତ୍ରୀ) ହେମାଙ୍ଗୀ ।

ହେମାଙ୍ଗଦ—ବି.(କ.ଧା) ସୁନାର ବାଜୁ, (ନାମ)ବସୁଦେବଙ୍କ ଏକପୁତ୍ର,କଳିଙ୍ଗଦେଶର ଜଣେ ରାଜା,(ପୁଂ.ବିଂ)ସୁନାର ବାଜୁ ପିନ୍ଧିଥିବା,(ସ୍ତ୍ରୀ)ହେମାଙ୍ଗଦା ।

ହେମାଙ୍ଗୀ—ପୁଂ.ବିଂ. (ହେମାଙ୍ଗ+ଇନ୍) ହେମଗୌର ଦେହ. (ସ୍ତ୍ରୀ.ବିଂ) ସୁବର୍ଣ୍ଣ ପରି ଗୌରବର୍ଣ୍ଣ ଅଙ୍ଗବିଶିଷ୍ଟା(ସ୍ତ୍ରୀ) ।

ହେମାଚଳ—ବି. ସୁମେରୁପର୍ବତ ।

ହେମାକୁ(କୋ)ଶ—ପ୍ରା. (ଯାଜପୁର) ବି. ହୃଦକୁର କଦଳୀ ।

ହେମାଦ୍ରି—ବି. ସୁମେରୁପର୍ବତ, ସ୍ୱର୍ଣ୍ଣକ୍ଷୀରୀ. ଜଣେ ଯାଦବଂଶୀୟ ରାଜା ଓ ଗ୍ରନ୍ଥକାର ।

ହେମାଦ୍ରିକା—ବି. ସ୍ୱର୍ଣ୍ଣକ୍ଷୀରୀ ।

ହେମାଦ୍ରିକରଣ—ବି. ସ୍ୱର୍ଣ୍ଣକ୍ଷୀରୀ ।

ହେମାଭ—ପୁଂ. ବିଂ, (ବ.ବ୍ରୀ) ସ୍ୱର୍ଣ୍ଣାଭ, ସ୍ୱର୍ଣ୍ଣବର୍ଣ୍ଣଯୁକ୍ତ, (ସ୍ତ୍ରୀ) ହେମାଭା ।

ହେମାମ୍ବୁଜ—ବି.ହେମପଦ୍ମ, ସୁବର୍ଣ୍ଣ ପଦ୍ମ ।

ହେମାମ୍ଭୋଜ—ବି. ସୁବର୍ଣ୍ଣପଦ୍ମ ।

ହେମାଳ—ଗ୍ରା. ବି. (ସଂ-ହିମକାଳ) ହିମକାଳ, ହେମନ୍ତ ଋତୁ, ମାର୍ଗଶିର ଓ ପୌଷମାସ, (ସଂ-ହୈମଲ) ଅତି ଅଣ୍ଡାଋତୁ, ବିଂ. (ସଂ-ହୈମଲ) ଅତିଶୀତଳ, ( ପୁଂ ) ଯାହାର ଦେହ ଅତି ଶୀତଳ ହୋଇଥାଏ, ଅତ୍ୟନ୍ତ ଶୀତସ୍ପର୍ଶ ।

ହେମାଳୟ—ଗ୍ରା. ବି. ହିମାଳୟ ।

ହେମାଳିଆ—ଗ୍ରା. ବିଂ. ଅତି ଶୀତଳ, ଅତି ଶୀତସ୍ପର୍ଶ, (ପୁଂ) ଯାହାର ଦେହ ଅତି ଶୀତଳ ଲାଗେ, ( ଗ୍ରା.ବି ) ଘୋଟଘା, ଗୋଳମାଳ, ଅରାଜକତା ଜନିତ ଗୋଳମାଳ, ସମସ୍ତେ ମିଶି ଲୁଟପାଟ କରିବା ।

ହେମାବତୀ—ସ୍ତ୍ରୀ. ବି. କାବେରୀ ନଦୀର ଗୋଟିଏ ଉପନଦୀ ।

ହେମାହ୍ୱ—ବିଂ. ହେମ ନାମରେ କଥିତ, (ବି) ବନଚମ୍ପକ, ଧୂସ୍ତୂର, ଧାତୁରା ।

ହେମାହ୍ୱା-ବିଂ,(ହେମାହ୍ୱ+ଆ)ହେମାହ୍ୱର ସ୍ତ୍ରୀଲିଙ୍ଗ, (ବି) ସ୍ୱର୍ଣ୍ଣକ୍ଷୀବନ୍ତୀ, ସ୍ୱର୍ଣ୍ଣକ୍ଷୀରୀ ।

ହେମ୍ନ—ବି. ମଙ୍ଗଳଗ୍ରହ ।

ହେମ୍ବାଲ—ପ୍ରା. (ପୁରୀ ଓ ସମ୍ବଲପୁର)ବି. ଭେକ, ମଉଛବ, ଜଞ୍ଜାଳ ।

ହେମ୍ନା—ବି. ବୁଧଗ୍ରହ ।

ହେୟ—ବିଂ. ହା+ମ ଯ)ତ୍ୟାଜ୍ୟ, ଅଗ୍ରାହ୍ୟ, ତୁଚ୍ଛ, ଅତି ନୀଚ, ଅତି ମନ୍ଦ, (ସ୍ତ୍ରୀ)ହେୟା ।

ହେୟଜ୍ଞାନ—ବି. ତୁଚ୍ଛଜ୍ଞାନ, ଘୃଣା, ନେଖାଡର ।

ହେୟତ୍ୱ—ବି. ହେୟତା, ହେୟର ଭାବ ବା ଧର୍ମ ।

ହେୟା—ଗ୍ରା. ସର୍ବ, ଏହା, ଏଇଆ, ଏଇଟା. ତାହା, ସେଇୟା, ସେଇଟା, (ସ୍ତ୍ରୀ.ବିଂ) ହେୟର ସ୍ତ୍ରୀଲିଙ୍ଗ ।

ହେୟାର୍—ଯା. ବି. କେଶ, ବାଳ ।

ହେୟାରସାହେବ—ଯା.ବି.ଭାରତବାସୀମାନଙ୍କୁ ଇଂରାଜୀଶିକ୍ଷା ଦେବାର ପ୍ରଧାନ ଉଦ୍‌ଯୋଗୀ ଓ କଲିକତା ହିନ୍ଦୁ ବା ହେୟାର ସ୍କୁଲର ସ୍ଥାପୟିତା 'ଡାଭିଡ୍ ହେୟାର' ନାମକ ଜଣେ ସ୍କଟଲାଣ୍ଡବାସୀ ସ୍ୱର୍ଗତ ସାହେବ ।

ହେୟା(ୟାଁ)ଳି—ଗ୍ରା. ବି. ଗୂଢ଼ବିଷୟ, ପ୍ରହେଳିକା, ପହେଳି ।

ହେୟେ—ଲୋକଙ୍କୁ ସାବଧାନ କରାଇବା ଧମକାଇବା ଓ ଗାଡ଼ି ଚଳାଇବାରେ ବ୍ୟବହୃତ ଧ୍ୱନି ।

ହେର—(ଧାତୁ) ବୃଦ୍ଧି କରିବା ।

ହେର୍‌କାଣ୍ଡିଆ—ଗ୍ରା. ବିଂ. ଗଡ଼ଜାତ ଓ ଉଠାଣିଆ ( ସ୍ଥାନ ), ହୁଡ଼କାଉଡ଼ିଆ, ଅସମତଳ (ସ୍ଥାନ) ।

ହେର୍‌ତେରଆ—ପ୍ରା. ( ଗଡ଼ଜାତ ) ବିଂ. ଅସ୍ପଷ୍ଟ (ବାକ୍ୟ) ।

ହେର୍‌ନା—ପ୍ରା. (ଖଡ଼ିଆଳ)ବି. ହରିଣ ।

ହେର୍‌ଫେର୍—ଗ୍ରା. ବି. ଯାଆସ, ଏଣେତେଣେ ବୁଲିବା, ଇତସ୍ତତଃ ଯାଆସ କରିବା, ଟହଲ, ନେଇଥିବା ଦ୍ରବ୍ୟାଦିକୁ ଓଲଟାଇ ଦେବା, ଅଦଳବଦଳ, ପରିବର୍ତ୍ତନ, -ବଦଳ, ମନର ପରିବର୍ତ୍ତନ, ମାନସିକ ଅବସ୍ଥାର ପରିବର୍ତ୍ତନ, ଜିନିଷର ଅଦଳବଦଳ, ( ବିଂ ) ଅଦଳବଦଳ କରାଯାଇଥିବା, ପରିବର୍ତ୍ତିତ, ଆତଯାତ, ପରିଭ୍ରମଣ କରୁଥିବା ।

ହେର୍‌ଫେର୍‌ହେବା—ଗ୍ରା. କ୍ରି. ଇତସ୍ତତଃ ଟହଲିବା, ବ୍ୟାୟାମାର୍ଥ ଦେହଗୁଳନା କରିବା ।

ହେରୁ—ବି. (ହ+ମି.ର) ଆସୁରୀମାୟା, ହରିଦ୍ରା, ହଳଦୀ, ମୁକୁଟଭେଦ, (ଗ୍ରା. ପ୍ରାଚୀନ ପ୍ରୟୋଗ. କ୍ରି)ହେରିବା କ୍ରିୟାର ଅନୁଜ୍ଞାରୂପ; (ତୁମ୍ଭେ) ଦେଖ ।

ହେରକ—ବି.ଚର, ଶିବଙ୍କ ଗଣବିଶେଷ ।

ହେରଣ(ଣା)—ଗ୍ରା.ବି.(ସଂ-ଦୃଶ୍) ଦର୍ଶନ, ଦେଖିବା ।

ହେରମ୍ବ—ବି.(ହ—ଶିବ,ରୁଦ୍ର ଏହି ଶବ୍ଦର ୭ମୀ ଏକବଚନ ହେ—ରୁଦ୍ରଙ୍କ ନିକଟରେ+ରମ୍ବ୍ ବା ରମ୍ବ ଧାତୁ—ଶବ୍ଦ କରିବା, ଚଳିବା+କ.ଅ କିମ୍ବା ହେର ଧାତୁ=ସୁଖ,ବୃଦ୍ଧିକରାଇବା+ସଙ୍ଖାର୍ଥେ, ଅମ୍ବ) ଗଣେଶ, ବିନାୟକ, ମହିଷ, ବୌଦ୍ଧବିଶେଷ ।

ହେରମ୍ବକ—ପୁଂ. ବି. ଜନପଦବିଶେଷ, (ଭାରତ ସଭାପର୍ବ) ।

ହେରମ୍ବଜନନୀ—ସ୍ତ୍ରୀ. ବି.(ତତ୍ପୁ)ଦୁର୍ଗା ।

ହେରମ୍ବନାଥ—ବି. ଗଣେଶ, ଗଣପତି, ଶିବଲିଙ୍ଗବିଶେଷ ।

ହେରମ୍ବହଟ୍ଟ—ବି.(ନାମ) ଭାରତର ଦକ୍ଷିଣ ପ୍ରଦେଶସ୍ଥ ଦେଶବିଶେଷ ।

ହେରା—ଗ୍ରା. ବି. (ସଂ-ଦୃଶ୍‌ଧାତୁ) ଦର୍ଶନ, ଦେଖା, ହେରାପଞ୍ଚମୀ, (ପ୍ରା.ସମ୍ବ. ଗଡ଼.) ସର୍ବ. ଏକଗୁଚ୍ଛିକ ।

ହେରାଇବା—ଗ୍ରା. କ୍ରି. (ପ୍ରାଚୀନ ପ୍ରୟୋଗ ଓ ପଦ୍ୟ) ହେରିବା କ୍ରିୟାର ଣିଜନ୍ତରୂପ, ଦେଖାଇବା ।

ହେରାପଞ୍ଚମୀ(ଯାତ୍ରା)—ଗ୍ରା. ବି. ଆଷାଢ଼ ଶୁକ୍ଳ ପଞ୍ଚମୀ ବା ଷଷ୍ଠୀ ଦିନ ପୁରୀ ଜଗନ୍ନାଥଙ୍କ ଯାତ୍ରାବିଶେଷ ।

ହେରିକ—ବି. ଚର, ଦୂତ, ଗୁପ୍ତଚର ।

ହେରିକା—ଗ୍ରା. ଅବ୍ୟ. (ଅନ୍ୟ ବିଶେଷ୍ୟ ପରେ ବ୍ୟବହୃତ ହୁଏ)ପ୍ରଭୃତି, ଇତ୍ୟାଦି ।

ହେରିଙ୍ଗ୍—ଯା. ବି. ( ଇଂ-ହେରିଙ୍ଗ୍ ) ପୋହଲୀ ବା ଏଣ୍ଡୁଲା ମାଛପରି ଏକପ୍ରକାର ସୁଖାଦ୍ୟ କ୍ଷୁଦ୍ର ସାମୁଦ୍ରିକ ଶଲ୍କୀ ମତ୍ସ୍ୟ ।

ହେରିଙ୍ଗୁ—ଯା. ପ୍ରା. (ଗଞ୍ଜାମ) ବି. ମକରଢମାର ଶୁଣାଣି ।

ହେରିବା—ଗ୍ରା. କ୍ରି. ଦେଖିବା, ଗୁହିଁବା ।

ହେରୁକ—ବି. ବୁଦ୍ଧଭେଦ, ବୌଦ୍ଧସନ୍ନ୍ୟାସୀବିଶେଷ, ମହାକାଳ ଶିବଗଣବିଶେଷ, ଶିବଲିଙ୍ଗବିଶେଷ, ଗଣେଶ ।

ହେରୁଛେ—ପ୍ରା. (ବଲାଙ୍ଗିର ପାଟଣା)କ୍ରି,

(ସେ) ଦେଖୁଅଛୁ ।

ହେରେସେଇବା—ଗ୍ରା. କ୍ରି. ହେଁ ହେଁ ହୋଇ ନିର୍ଲଜ୍ଜ ଭାବରେ ହସିବା, ହେଁ ହେଁ ଫେଁ ଫେଁ ହେବା ।

ହେର୍ନା(ର୍ଣ୍ଣା)—ପ୍ରା. (ବଲାଙ୍ଗିର ପାଟଣା) ବି. ହରଣ ।

ହେର୍ଷାମୀ—ଗ୍ରା. ନିର୍ଲଜ୍ଜ ।

ହେଲ୍—(ଧାତୁ) ଅବଜ୍ଞା କରିବା, ଘୃଣା କରିବା, କେଳି କରିବା ।

ହେଲ୍‌ପେଟେଇବା—ପ୍ରା.(ସିଂହଭୂମ)କ୍ରି. ଠେଲିଦେବା ।

ହେଲ୍‌ହା – ପ୍ରା. ( ସମ୍ବଲ. ) ବି. ହେଲା, ଅସାବଧାନତା ।

ହେଲ-ଗ୍ରା.ବି.(ସଂ-ହେଲା)ହେଲା ଦେଖ ।

ହେଲ—ଗ୍ରା. କ୍ରି. ହେବାକ୍ରିୟାର ବର୍ତ୍ତମାନସମୀପ ଭୂତକାଳ ମଧ୍ୟମ ପୁରୁଷ ଏକବଚନ ଆଦରାର୍ଥକ ( ତୁମ୍ଭେ )ଓ ବହୁବଚନ (ତୁମ୍ଭେମାନେ) କର୍ତ୍ତା ସଙ୍ଗେ ବ୍ୟବହୃତ ।

ହେଲଇଁ—ଗ୍ରା. କ୍ରି. (ମୁଁ) ହେଲି ।

ହେଲଉଁ-ପ୍ରା.(କଟକ)କ୍ରି.ହେବାଯୋଗୁଁ, ହେବାହେତୁ, ହେବାପରେ ।

ହେଲଉଁହେଲା—ଗ୍ରା. ବି. (ସଂ-ହେଲା) କାର୍ଯ୍ୟରେ ଟେଳେଇ କରିବା, ଅତ୍ୟନ୍ତ ଅବହେଳା, ଦୀର୍ଘସୂତ୍ରିତା, ଅତ୍ୟନ୍ତ ହେଲା, (ବିଂ) ଦୀର୍ଘସୂତ୍ରୀ, କାର୍ଯ୍ୟରେ ତ୍ରୁଟିକାରୀ ।

ହେଲକେ-ପ୍ରା.(ପାଟଣା)ଅବ୍ୟ.ନିକଟରେ ।

ହେଲଖୀ—ସ୍ତ୍ରୀ. ବି. ଢଳମୋଟକା ।

ହେଲଣ(ଣା)—ଗ୍ରା. ବି. ( ସଂ-ହେଳନ ) ଘୃଣା, ଅବଜ୍ଞା ।

ହେଲଣି—ଗ୍ରା କ୍ରି.(ତୁମ୍ଭେ,ତୁମ୍ଭେମାନେ) ହେବାକ୍ରିୟା ସମ୍ପନ୍ନ କରିସାରିଲଣି ।

ହେଲନ(ନା)- ବି. (ହେଲ+ଭା.ଅନ, ଆ) ଅବଜ୍ଞା କରିବା, କ୍ରୀଡ଼ା କରିବା, କେଳି କରିବା, ଅବମାନନା, କେଳି, ଘୃଣା, ଅବହେଳା, ଅବନତି ।

ହେଲମେଳ—ଗ୍ରା. ବି. ମିଳାମିଶା, ଘନିଷ୍ଠତା, ସଙ୍ଗ, ସାହଚର୍ଯ୍ୟ ।

ହେଲମେଳହେବା—ଗ୍ରା. କ୍ରି. କୌଣସି ବ୍ୟକ୍ତିଙ୍କ ସହିତ ସମ୍ପର୍କ ସ୍ଥାପନ ପାଇଁ ମିଳାମିଶା କରିବା ।

ହେଲୟା—କ୍ରି. ବିଂ. ( ହେଲା ଶବ୍ଦର ୩ୟା ବିଭକ୍ତି ୧ବ.) ଅବହେଳା କ୍ରମେ ଖେଳି ଖେଳି ।

ହେଲ(ଳା)ରେ-ଗ୍ରା.କ୍ରି.ବିଂ. ଅକ୍ଳେଶରେ, ସହଜରେ ।

ହେଲା-ବି. (ହେଲ+ଭା.ଅ+ଆ)ଅବଜ୍ଞା, ଦୀର୍ଘସୂତ୍ରିତା, ଅବହେଳା, କାର୍ଯ୍ୟ ବିଷୟରେ ଅଶ୍ରଦ୍ଧା,କାର୍ଯ୍ୟରେ ତ୍ରୁଟି, ଅଯତ୍ନ, ଅବହେଳା, ଖେଳ, କ୍ରୀଡ଼ା, କେଳି, କାମକ୍ରୀଡ଼ା, ଶୃଙ୍ଗାରମୂଳକ ଲୀଳା, ସ୍ତ୍ରୀମାନଙ୍କର ଶୃଙ୍ଗାରଭାବଜ କ୍ରିୟାବିଶେଷ, ସୁରତରେ ପ୍ରୋତ୍ସାହ ପ୍ରକାଶ, ସ୍ତ୍ରୀମାନଙ୍କର ଶୃଙ୍ଗାର ସୂଚକ ଭାବ ବା ଅଙ୍ଗଭଙ୍ଗୀ ବା ଚେଷ୍ଟା, ଅତି କାମାତୁର ନାୟିକାମାନଙ୍କର ସୁରତୋତ୍ସବ ପାଇଁ ପ୍ରୋତ୍ସାହ, ଚନ୍ଦ୍ରିକା, ଜ୍ୟୋତ୍ସ୍ନା,ସଙ୍ଗୀତର ରାଗରେ ବା କମ୍ପନରେ ସ୍ପନ୍ଦନ, ଅପମାନ, ଅସମ୍ମାନ, ଘୃଣା,( ଗ୍ରା.ବି ) ବିଳମ୍ବ ।

ହେଲା-ପ୍ରା. ( ଖଡ଼ିଆଳ ) ବି. ହେଳା, (ପୁଂ.ବିଂ) ଅଳସୁଆ, (ଗ୍ରା.କ୍ରି) ହେବା କ୍ରିୟାର ବର୍ତ୍ତମାନ ସମୀପ ଅତୀତକାଳ ୩ୟ ପୁରୁଷ ଅନାଦରାର୍ଥକ ଏକବଚନରେ (ସେ କର୍ତ୍ତା ସଙ୍ଗେ)ବ୍ୟବହୃତ ଆକାର, (ସେ ବା ତାହା) ଘଟିଲା,(ଗ୍ରା. ଅବ୍ୟ.—ପ୍ରଶ୍ନାର୍ଥକ) ଏହା ତୁମର ମନୋମତ ହେଲାଟି ?

ହେଲାଇବା—ପ୍ରା. (ସମ୍ବଲ) କ୍ରି. ଅନ୍ୟର ଅନିଷ୍ଟ କରିବାପାଇଁ ପ୍ରରୋଚନରେ ପ୍ରବର୍ତ୍ତାଇବା ।

ହେଲା(ଳେ)ଇବା-ଗ୍ରା. କ୍ରି. ଶିଥିଳକରିବା, କମାଇବା, କାର୍ଯ୍ୟରେ ତ୍ରୁଟି ବା ହେଳା କରିବା ।

ହେଲାକରିବା—ଗ୍ରା. କ୍ରି, କାର୍ଯ୍ୟରେ ତ୍ରୁଟି କରିବା,ଶିଥିଳକରିବା, ଭୁଲିଯାଇବା, ବିଳମ୍ବକରିବା, ଅବଜ୍ଞାକରିବା, ମନ ନ ଦେବା ।

ହେଲାଦସ୍ତି—ଗ୍ରା.ବି. ଦୀର୍ଘସୂତ୍ରିତା,ଅବହେଳା, ହେଲା, (ବିଂ) ହେଲାଦସ୍ତିଆ ।

ହେଲାଦସ୍ତିଆ- ଗ୍ରା. ବିଂ. ଦୀର୍ଘସୂତ୍ରୀ,ଯେ କାର୍ଯ୍ୟରେ ଢିଲାକରେ, ଦୀର୍ଘସୂତ୍ରିତାଯୁକ୍ତକାର୍ଯ୍ୟ ।

ହେଲାପେଲା—ପ୍ରା. (ଖଡ଼ିଆଳ) କ୍ରି. ବିଂ. ଯଥାତଥା,ଯେ କୌଣସିପ୍ରକାରେ ।

ହେଲାବୁକା—ବି, ଅଶ୍ୱବିକ୍ରୟୀ ।

ହେଲାବୁଦ୍ଧି—ଗ୍ରା. ବି. ଅବଜ୍ଞା ।

ହେଲାବୋଲିଜାଣିବା-ଗ୍ରା.କ୍ରି. (କୌଣସି ବିଷୟ ) ଅତିଶୀଘ୍ର ଘଟିବ ବୋଲି ଜ୍ଞାତହେବା ।

ହେଲାମାତ୍ରକେ(ମାତେ)—ଗ୍ରା. କ୍ରି. ବିଂ. ଅକ୍ଳେଶରେ, ଅବହେଳା କ୍ରମେ ।

ହେଲି —ବି. ( ହେଲ+କ.ଇ ) ହେଲା ଦେଖ, ହେଲୀ ଦେଖ ।

ହେଲି—ଗ୍ରା. କ୍ରି. ହେବା କ୍ରିୟାର ବର୍ତ୍ତମାନ ସମୀପ ଅତୀତ ୧ମ ପୁରୁଷ ଅନାଦରାର୍ଥକ ୧ବଚନରେ(ମୁଁ କର୍ତ୍ତା ସଙ୍ଗେ)

ହେଲିକ-ବି. ପୁଂ. (ହେଲି+କ)ହେଲି ।

ହେଲିକାସ୍ତ—ବି. (ଜ୍ୟୋତିଷ ପରିଭାଷା ) ସୂର୍ଯ୍ୟଙ୍କର ଅତି ନିକଟରେ ଥିବାରୁ ସୂର୍ଯ୍ୟଙ୍କ ତେଜଦ୍ୱାରା ଘୋଡ଼ାଇ ହୋଇ ଯାଇଥିବା ତାରାର ଅସ୍ତମିବା ଅବସ୍ଥା ।

ହେଲିକୋଦୟ-ବି. (ଜ୍ୟୋତିଷପରିଭାଷା) ସୂର୍ଯ୍ୟଙ୍କୁ ସଂକ୍ରମଣ କରିବା ଯୋଗୁଁ କେତେକ ସମୟ ଅଦୃଶ୍ୟ ହେବା ପରେ ସୂର୍ଯ୍ୟୋଦୟପୂର୍ବରୁ କୌଣସି ତାରାର ଉଦୟ ହେବାବେଳେ ଦେଖାଯିବା ଅବସ୍ଥା ।

ହେଲିଣି—ଗ୍ରା. କ୍ରି. ହେଲି ଦେଖ ।

ହେଲିତବ୍ୟ-ବିଂ,ଅବହେଳାର ଯୋଗ୍ୟ ।

ହେଲିବା—ଗ୍ରା. କ୍ରି. ହେଲା କରିବା ଦେଖ, ଅବଜ୍ଞା କରିବା ।

ହେଲିସେଲିସ୍—ଯା. ବି. (ନାମ) ଆବିସିନିଆର ସମ୍ରାଟ୍ ।

ହେଲୀ—ବି. ( ହେଡ଼୍+କ.ଈ,ହେଲ୍+କ.ଇନ୍) ସୂର୍ଯ୍ୟ, (ଭା.ଈ) ଆଲିଙ୍ଗନ, କେଳି ।

ହେଳୁ—ଗ୍ରା. ବି°. (ସଂ-ହେଳା) ଶିଥିଳୀକୃତ, ହେଳାଦଣ୍ଡିଆ, (ବ) କାର୍ଯ୍ୟ ଗତର ଧୀରତା, ହେଳା ଦେଖ, କାର୍ଯ୍ୟର ଶିଥିଳତା ।

ହେଲୁ—ଗ୍ରା. କି. ହେବା କ୍ରିୟାର ବର୍ତ୍ତିମାନସମୀପ ଭୂତକାଳ ମଧ୍ୟମ ପୁରୁଷ ଅନାଦରାର୍ଥ ଏକବଚନ (ତୁ) ।

ହେଲୁଁ—ଗ୍ରା. କି. ହେବା କ୍ରିୟାର ବର୍ତ୍ତିମାନସମୀପ ଅତୀତ କାଳ ୧ମ ପୁରୁଷ ଆଦରାର୍ଥକ(ଆମ୍ଭେ) ଓ ବହୁବଚନ (ଆମ୍ଭେମାନେ) ।

ହେଲୁଣି-ଗ୍ରା.କି. ହେଲୁ ଦେଖ, ହେଲୁଁ ଦେଖ ।

ହେଲେ—ଗ୍ରା. କି. ବି°. (ସଂ-ହେଳୟା) ଅକ୍ଳେଶରେ, ସହଜରେ, ଅବହେଳାକ୍ରମେ, ଟିକିଏମାତ୍ର, ଟିକିଏ ସୁଦ୍ଧା, ସାମାନ୍ୟ ଚେଷ୍ଟାରେ ।

ହୈଲେ-ଗ୍ରା. କି. ହେବା କ୍ରିୟାର ବର୍ତ୍ତିମାନସମୀପ ଭୂତକାଳ ମଧ୍ୟମପୁରୁଷ ଏକବଚନ ସମ୍ମାନାର୍ଥକ (ଆପଣ) ବହୁବଚନେ (ଆପଣମାନେ) ୩ୟ ପୁରୁଷ ୧କବଚନ ସମ୍ମାନାର୍ଥକ (ସେ) ଓ ବହୁବଚନ (ସେମାନେ) (ଅସମାପିକା କ୍ରିୟା) (କ) ହେବାରୁ (ଖ) ହେବାଦ୍ୱାରୁ (ଗ)ଯଦି ହୁଅନ୍ତା,ଅବ୍ୟ. ସୁଦ୍ଧା-ମଧ୍ୟ, ପଛକେ, କାଳି, ମାତ୍ର, (ପ୍ରା ଯାଜପୁର),ଅବ୍ୟ. ଅରେମାଦ ।

ହେଲେଇଁ—ଗ୍ରା. କି. ହେବା କ୍ରିୟାର ବର୍ତ୍ତିମାନ ସମୀପ ଭୂତକାଳ ୧ମ ପୁରୁଷ ଆଦରାର୍ଥକ ଏକବଚନ (ଆମ୍ଭେ) ଓ ବହୁବଚନ (ଆମ୍ଭେମାନେ) ।

ହେଲେଇତେଙ୍କେଇ—ଗ୍ରା. ବି°. ଟେଲ-ବସର ।

ହେଲେଣି—ଗ୍ରା. କି. ହେଲେ ଦେଖ ।

ହେଲେହେଁ—ଗ୍ରା. ଅବ୍ୟ. ହେଲେ ସୁଦ୍ଧା, ହୋଇଥିଲେ ସୁଦ୍ଧା ।

ହେଲ୍ହେଲେ-ଗ୍ରା. ଅବ୍ୟ. ହେ... ସୁଦ୍ଧା

ହେଲ୍ଲେଦ—ଗ୍ରା. (ବାଲଙ୍ଗିର ...) ବି. ହାଲସା ।

ହେଷ—(ଧାତୁ) (ଘୋଡ଼ା) ହ୍ରେଷାଧ୍ୱନି କରିବା, (ଗଧ) ବୋବାଇବା ।

ହେଷ(ଷା)—ବି.(ହେଷ୍+ଭା.ଅ+ଆ) ହ୍ରେଷା, ଘୋଡ଼ାଙ୍କ ହେଁ ହେଁ ରବ, ଗଧର ବୋବାଳି । [ ଘୋଡ଼ୀ ।

ହେଷିଣୀ—ବି. ସ୍ତ୍ରୀ. (ହେଷିନ୍+ଈ)

ହେଷୀ—ବି. ପୁ°. (ହେଷା+ଇନ୍) ଅଶ୍ୱିନ୍ ଘୋଡ଼ା ।

ହେଷ୍ଟିଙ୍ଗ୍ସ୍—ପ୍ରା. ବି. (ନାମ) ଓ୍ୱାରେନ ହେଷ୍ଟିଙ୍ଗସ୍, ଭାରତର ପ୍ରଥମ ଗଭର୍ଣ୍ଣର ଜେନେରଲ ଲର୍ଡ ହେଷ୍ଟିଙ୍ଗସ ,ଭାରତର ଗଭର୍ଣ୍ଣର ଜେନେରଲ ଲର୍ଡ ମଇରାଙ୍କର ଉପାଧି, ଇଂଲଣ୍ଡର ସସେକ୍ସ ନାମକ କାଉଣ୍ଟୀର ଗୋଟିଏ ବଡ଼ ଗ୍ରାମ ଓ ବନ୍ଦର ।

ହେସ୍ନେ—ପ୍ରା. (ସମ୍ବ.)ସର୍ବ.ସେମାନେ ।

ହେସୁ—ପ୍ରା. (ସମ୍ବଲପୁର) ବି. (ମାଚକାଡ଼ଙ୍କ ବ୍ୟବହୃତ ଶବ୍ଦ) ଧାନ ।

ହେହେ—ଅବ୍ୟ. ହେର ଦ୍ୱିତ୍ୱ, କଥାରେ କୋର ଦେବା ପାଇଁ ବା ଉଦ୍‌ବେଗ, ବିଷାଦ, ବିସ୍ମୟାଦି ସ୍ଥଳରେ ହେ ସମ୍ବୋଧନର ଦୁଇଥର ପ୍ରୟୋଗ ।

ହେହେ—ଅବ୍ୟ. ସମ୍ବୋଧନ, ହୂତି ବା ଆହ୍ୱାନ ।

ହୈ—ଅବ୍ୟ. (ହ୍ୱେ + ଭା.ଐ)ସମ୍ବୋଧନ, ଆହ୍ୱାନ, ନିଷେଧ, ପାଦପୂରଣ,ସତର୍କକରଣ,(ଗ୍ରା.ଅବ୍ୟ)ହଉ,(ସମ୍ମତିସୂଚକ) ନିକଟବର୍ତ୍ତୀ ଲୋକଙ୍କୁ ଡାକିବାକୁ ବା ତାଙ୍କ ଦୃଷ୍ଟି ଆକର୍ଷଣ ବା ପ୍ରଶ୍ନକରିବାକୁ ଅନ୍ୟ ଧ୍ୱନି ପୂର୍ବେ (ଯଥା—ଏ,କିହେ, ହେ,ରେ,ଲୋ,ହୋ,ହୋ) ବ୍ୟବହୃତ ।

ହୈକିଏ(ହେ)—ଗ୍ରା. ଅବ୍ୟ. ନିକଟବର୍ତ୍ତୀ ସମ୍ମାନାସ୍ପଦ ବ୍ୟକ୍ତିଙ୍କୁ ଡାକିବା, ଦୃଷ୍ଟି ଆକର୍ଷଣ କରିବା ଓ ପ୍ରଶ୍ନକରିବା ଉପଲକ୍ଷରେ ବ୍ୟବହୃତ ।

ହୈକିବେ—ଗ୍ରା.ଅବ୍ୟ. ଅବଜ୍ଞାର୍ଥକ ପ୍ରଶ୍ନସୂଚକ ସମ୍ବୋଧନ ।

ହୈକିରେ—ଗ୍ରା. ଅବ୍ୟ. ପୁରୁଷଙ୍କ ପ୍ରତି ପ୍ରଯୁକ୍ତ ଅନାଦରାର୍ଥକ ପ୍ରଶ୍ନସୂଚକ ସମ୍ବୋଧନ, (ସ୍ତ୍ରୀଙ୍କ ପ୍ରତି) ହୈକିଲୋ ।

ହୈକିଓ(ହୋ)—ଗ୍ରା.ଅବ୍ୟ. ବହୁବ୍ୟକ୍ତିଙ୍କୁ ବା ସୁପରିଚିତ ଅନ୍ୟ ବ୍ୟକ୍ତିଙ୍କ ପ୍ରତି ସମ୍ବୋଧନ । [ ବିଶେଷ ।

ହୈଗ—କର୍ଣ୍ଣାଟକବାସୀ ବ୍ରାହ୍ମଣ ଶ୍ରେଣୀ-

ହୈଗୋ—ଗ୍ରା. ଅବ୍ୟ. ସଖୀ ସମ୍ବୋଧନ ।

ହୈଜା—ଯା. ବି. ହଇଜା ଦେଖ ।

ହୈଟି—ଗ୍ରା.ଅବ୍ୟ.ସମ୍ମତି ଓ ନିଶ୍ଚୟାର୍ଥକ ହଁ, ନିଶ୍ଚେ ।

ହୈଡ଼ମ୍ବ—ପୁ°.ବି.(ହିଡ଼ମ୍ବା+ଅପତ୍ୟାର୍ଥେ ପୁଂଲିଙ୍ଗ+ଅ) ହିଡ଼ମ୍ବାରାକ୍ଷସୀ ଗର୍ଭରୁ ଭୀମଙ୍କ ଔରସପୁତ୍ର ଘଟୋତ୍କଚ ।

ହୈତ—ଗ୍ରା. ଅବ୍ୟ. (ଶବ୍ଦାନ୍ତେ 'ତ' ର ଦୀର୍ଘ ଉଚ୍ଚାରଣ; ନିଶ୍ଚୟାର୍ଥକ ଅବ୍ୟୟ) ହଁ ତ,ହଁ, ନିଶ୍ଚୟ ।

ହୈତୁକ—ପୁ°. ବି°. (ହେତୁ+ଷ୍ଣ) ସଦ୍‌ଯୁକ୍ତି ବ୍ୟବହାରୀ (ବ୍ୟକ୍ତି), ଯୁକ୍ତିଦ୍ୱାରା ସତ୍କର୍ମରେ ସନ୍ଦେହକାରୀ, ହେତୁ ବା କାରଣ ସମ୍ବନ୍ଧୀୟ,ଯୁକ୍ତି ସମ୍ବନ୍ଧୀୟ,(ସ୍ତ୍ରୀ) ହୈତୁକୀ ।

ହୈବେ-ଗ୍ରା.ଅବ୍ୟ.ଅବଜ୍ଞାର୍ଥକ ସମ୍ବୋଧନ ।

ହୈମ—ବି°. (ହିମ+ଅ) ହିମୋଦ୍ଭବ, ତୁଷାରୋଦ୍ଭବ, ତୁଷାରାଚ୍ଛାଦିତ, ଅତି ଶୀତଳ, (ହେମନ୍+ଅ) ସ୍ୱର୍ଣ୍ଣନିର୍ମିତ, ହେମଜାତ,ହେମମୟ, ହିରଣ୍ମୟ, ସ୍ୱର୍ଣ୍ଣବର୍ଣ୍ଣବିଶିଷ୍ଟ, (ବି) ଭୂନିମ୍ବ. ଭୂଇଁନିମ୍ବ, ଶିଶିର, ଶିବ,ପର୍ବତବିଶେଷ,ହିମାଳୟ ।

ହୈମ୍—ଗ୍ରା. ଅବ୍ୟ. ସୁପରିଚିତ ନିକଟବର୍ତ୍ତୀ ବ୍ୟକ୍ତିଙ୍କୁ ସମ୍ବୋଧନ କରିବା ବା ତାଙ୍କ ଦୃଷ୍ଟି ଆକର୍ଷଣକରିବା ସମ୍ବୋଧନ, ହମ୍ (ଅବଜ୍ଞାରେ ବ୍ୟବହୃତ) ।

ହୈମକିରଣ—ବି.(କ.ଧା) ସ୍ୱର୍ଣ୍ଣବର୍ଣ୍ଣଯୁକ୍ତ ରଶ୍ମି ।

ହୈମକୂଟ—ହେମକୂଟ ପର୍ବତର ଅଦୂରିଭବ ଦେଶ । [ ଦେଶ ।

ହୈମଗିରିକ—ବି. ହିମଗିରିର ଅଦୂରଭବ

ହୈମଦ୍ୟୁତି—ବି. (କ.ଧା)ସ୍ୱର୍ଣ୍ଣମୟ ପ୍ରଭା, ସ୍ୱର୍ଣ୍ଣର ଉଜ୍ଜ୍ୱଳତା ।

ହୈମନ—ବି°. (ହେମନ୍+ଅ)ସ୍ୱର୍ଣ୍ଣମୟ,

ସ୍ୱର୍ଣ୍ଣନିର୍ମିତ, ସ୍ୱର୍ଣ୍ଣ ସମ୍ବନ୍ଧୀୟ,ହିମଜାତ, ହୈମନ୍ତିକ, ହିମକାଳୋଦ୍ଭବ, (ସ୍ତ୍ରୀ) ହୈମନ୍ତୀ, (ବି) ହେମନ୍ତ ଋତୁ,ମାର୍ଗଶିର ମାସ, ହିମକାଳୋଦ୍ଭବ ଷଷ୍ଟିକ ଧାନ୍ୟ, ଷାଠିଆ ଧାନ, ଲଘୁଶାଳିଧାନ ଧାନ ।

ହୈମନ୍ତ—ବିଂ.(ହେମନ୍ତ+ଭବାର୍ଥେ.ଅ) ହେମନ୍ତ ଋତୁଜାତ,ହେମନ୍ତ ସମ୍ବନ୍ଧୀୟ, (ସ୍ତ୍ରୀ) ହୈମନ୍ତୀ, (ବି) ହେମନ୍ତ ଋତୁ, ଶୀତଋତୁ ।

ହୈମନ୍ତିକ—ବିଂ, (ହେମନ୍ତ+ଇକ) ହେମନ୍ତକାଳ ଜାତ, ହେମନ୍ତକାଳୀନ, (ସ୍ତ୍ରୀ) ହୈମନ୍ତିକା, (ବି) ଶାରଦ ଧାନ ।

ହୈମବତ—ବି.(ହିମବତ୍+ଅ)ହିମାଳୟ ସମ୍ବନ୍ଧୀୟ,(ସ୍ତ୍ରୀ)ହୈମବତୀ,(ବି) ଭାରତବର୍ଷ, ବର୍ଷଭେଦ, ମୁକ୍ତା ।

ହୈମବତବର୍ଷ-ବି,ଭାରତବର୍ଷ,ହିମାଳୟର ଦକ୍ଷିଣବର୍ତ୍ତୀ ଦେଶ ।

ହୈମବତୀ—ସ୍ତ୍ରୀ. ବିଂ. (ହୈମବତ+ଈ) ହୈମବତର ସ୍ତ୍ରୀଲିଙ୍ଗ, ବି.(ହିମବତ୍+ଅ+ଈ) ପାର୍ବତୀ, ସ୍ୱର୍ଣ୍ଣକ୍ଷୀରୀ,ହରୀତକୀ, ଶ୍ୱେତବଚ, ଗଙ୍ଗା, ରେଣୁକା ନାମକ ଗନ୍ଧଦ୍ରବ୍ୟ,କପିଳଦ୍ରାକ୍ଷା,ଅତସୀ,ହରିଦ୍ରା, ହଳଦିଆ କ୍ଷୀର ବାହାରୁଥିବା ସିଝୁ ଗଛ ।

ହୈମମୁଦ୍ରିକ—ବିଂ.(ବି,ସ୍ତ୍ରୀ)ସ୍ୱର୍ଣ୍ଣମୁଦ୍ରିକା-ବିଶିଷ୍ଟ ।

ହୈମଳ—ବି. (ହିମଳ+ଅ) ହୈମନ, ହେମନ୍ତ ଋତୁ ।

ହୈମା—ସ୍ତ୍ରୀ. ବିଂ. (ହୈମ+ଆ) ହୈମର ସ୍ତ୍ରୀଲିଙ୍ଗ, (ବି) ସ୍ୱର୍ଣ୍ଣଯୂଇଫୁଲ ।

ହୈମାଚଳ—ବି. ହିମାଳୟ ପର୍ବତ ।

ହୈୟଙ୍ଗବୀନ—ବି. (ହ୍ୟଃ=ଗତକାଲି+ଗୋ+ଉଦ୍ଭବାର୍ଥେ.ଈନ) ସଦ୍ୟଃ ଗୋଦୋହନଭବ ଘୃତ,ନବନୀତ,ଲହୁଣୀ ।

ହୈରଣ୍ୟକ—ପୁଂ. ବିଂ. ହିରଣ୍ମୟ, (ବି) ସ୍ୱର୍ଣ୍ଣକାର ।

ହୈରଣ୍ୟିକ—ବିଂ. ସୁବର୍ଣ୍ଣ ସମ୍ବନ୍ଧୀୟ, (ବି) ସ୍ୱର୍ଣ୍ଣକାର ।

ହୈରଣ୍ୱତୀ—ସ୍ତ୍ରୀ.ବି,ନଦୀଭେଦ,ଗ୍ରଣ୍ଡକୀ ।

ହୈରମ୍ବ—ବିଂ. (ହେରମ୍ବ+ଅ) ହେରମ୍ବ ସମ୍ବନ୍ଧୀୟ,ହେରମ୍ବ ଗଣେଶ ସମ୍ବନ୍ଧୀୟ ।

ହୈରିକ—ବି. (ହେର+ଇକ)ଚୌର ।

ହୈରେ—ଗ୍ରା. ଅବ୍ୟ. (ପୁରୁଷ ପ୍ରତି) ନୀଚପ୍ରତି ସମ୍ବୋଧନ ।

ହୈହୟ—ପୁଂ. ବି, (ପ୍ରାଚୀନ ଭାରତର ପଶ୍ଚିମଭାଗସ୍ଥ ଦେଶବିଶେଷ) ରାଜା କାର୍ତ୍ତବୀର୍ଯ୍ୟ,ପ୍ରାଚୀନ ଭାରତର ରାଜବଂଶ ବିଶେଷ ।

ହୈହେ—ଗ୍ରା. ଅବ୍ୟ. ମାନ୍ୟାସ୍ପଦା ସ୍ତ୍ରୀ ବା ପୁରୁଷଙ୍କ ପ୍ରତି ପ୍ରଯୁକ୍ତ ସମ୍ବୋଧନ ।

ହୈହୈ—ଗ୍ରା.ଅବ୍ୟ. ହୈର ଦ୍ୱିତ୍ୱ,ସମ୍ମତି-ସୂଚକ ।

ହୈହୋ-ଗ୍ରା.ଅବ୍ୟ.ଆପଣାଠାରୁ ମାନ୍ୟତର ଓ ସୁପରିଚିତ ବ୍ୟକ୍ତିଙ୍କ ପ୍ରତି ସମ୍ବୋଧନ, ବହୁବ୍ୟକ୍ତିଙ୍କ ପ୍ରତି ସମ୍ବୋଧନ ।

ହୋ—ଅବ୍ୟ.(ସମ୍ବୋଧନ=ହ୍ୱେ+ଣ.ଓ) ସମ୍ବୋଧନ,ଆହ୍ୱାନ,ବିସ୍ମୟ,(ଗ୍ରା.ଅବ୍ୟ.) ବହୁଦୂରରୁ କୌଣସି ବ୍ୟକ୍ତିଙ୍କୁ ଡାକିବାରେ ବ୍ୟବହୃତ ଉଚ୍ଚ ଓ ଦୀର୍ଘଧ୍ୱନି, (ଗ୍ରା,ବି) କୋହ୍ଲଜାତି ଓ ସେମାନଙ୍କର କଥିତ ଭାଷା, ଘୋଓଘା, ଗୋଲମାଳ, ଜଣେଲୋକ ଦ୍ୱାରା ଆରବ୍ଧଧ୍ୱନିରେ ବା କାର୍ଯ୍ୟରେ ମୂଳକାରଣ ନ ବୁଝି ବହୁଲୋକ ମାତିଯାଇ କରିବା ଗୋଳମାଳ, (ଗ୍ରା.କ୍ରି) ହେବାକ୍ରିୟାର ଅନୁଜ୍ଞା ମଧ୍ୟମ ପୁରୁଷ ଏକବଚନ ଅନାଦରାର୍ଥକ (ତୁ) ରୂପ ।

ହୋଅ—ଗ୍ରା. କ୍ରି, (ପ୍ରାଚୀନ ପ୍ରୟୋଗ) ହୁଅ ଦେଖ ।

ହୋଆଡ଼େ—ପ୍ରା. (ପାଟଣା) ଅବ୍ୟ. ସିଆଡ଼େ, ସେହିଆଡ଼େ ।

ହୋଇ—ଗ୍ରା.ଅବ୍ୟ,ହଁ (ସମ୍ମତିସୂଚକ) ବାଟଦେଇ, ବାଟେ, ଦିଶି, ଏକନ୍ଦ-ହୋଇ, (ଗ୍ରା.କ୍ରି) ହୋଇବା ବା ହେବା କ୍ରିୟାର ଅସମାପିକା ରୂପ ।

ହୋଇକରି—ଗ୍ରା. କ୍ରି, (ଅସମାପିକା ଓ ଅବ୍ୟ) ହୋଇ ଦେଖ ।

ହୋଇବା—ଗ୍ରା, (ପଦ୍ୟ) କ୍ରି. ପହଞ୍ଚିବା, ହେବା(କ୍ରିୟା),(ବିଂ)ଘଟିଥିବା,ହେବା ।

ହୋଇବେ—ଗ୍ରା. (ପଦ୍ୟ) କ୍ରି. ହେବା-କ୍ରିୟାର ଭବିଷ୍ୟତ୍ କାଳ ପ୍ରଥମପୁରୁଷ ସମ୍ମାନାର୍ଥକ ଏକବଚନ (ଆପଣ) ଓ ବହୁବଚନ (ଆପଣମାନେ) ହେବେ, ହେବାକ୍ରିୟାର ଭବିଷ୍ୟତ୍‌କାଳ ତୃତୀୟ ପୁରୁଷ ସମ୍ମାନାର୍ଥକ ଏକବଚନ (ସେ) ଓ ବହୁବଚନ (ସେମାନେ), (ଗ୍ରା.ଅବ୍ୟ-ଘୃଣା ଓ ଅନାଦରାର୍ଥକ) ଆବେ, ହେ ।

ହୋଇଲା—ଗ୍ରା. (ପଦ୍ୟ) କ୍ରି. ହେବା-କ୍ରିୟାର ବର୍ତ୍ତମାନ ସମୀପ ଅତୀତକାଳ ତୃତୀୟ ପୁରୁଷ ଅନାଦରାର୍ଥକ ଏକବଚନ, (ସେ, ଏହା, ତାହା) ବିଂ. ଘଟିଥିବା, ହୋଇଥିବା ।

ହୋଉ—ଗ୍ରା.ଅବ୍ୟ.ସମ୍ମତି ବା ସ୍ୱୀକାରାର୍ଥକ ଅବ୍ୟୟ, ହଉ ।

ହୋଉନ୍-ପ୍ରା.(ଭତଡ଼ାଭାଷା)କ୍ରି.ହେଉଅଛୁ ।

ହୋଏ—ଗ୍ରା. (ପଦ୍ୟ)କ୍ରି.ହେବାକ୍ରିୟାର ନିତ୍ୟ ବର୍ତ୍ତମାନ ତୃତୀୟପୁରୁଷ ଅନାଦରାର୍ଥକ ଏକବଚନ, (ସେ) ହୁଏ, ହେବାକ୍ରିୟାର ଭବିଷ୍ୟତ୍‌କାଳ ତୃତୀୟ-ପୁରୁଷ ଅନାଦରାର୍ଥକ ଏକବଚନ, (ଏ, ସେ, ଏହା, ତାହା) ହେବ, (ପ୍ରା.ଖଡ଼ି, ଅବ୍ୟ) ହଁ (ସ୍ୱୀକାର ସୂଚକ) ।

ହୋଏବା—ପ୍ରା. (ଭତଡ଼ାଭାଷା) କ୍ରି, ହେବା, ହୋଇବା ।

ହୋଏହୋ—ପ୍ରା, (ଖଡ଼ିଆଲ--ଅବ୍ୟ.ପ୍ରଶ୍ନକାରକ ସମ୍ବୋଧନ) ହଇହେ ।

ହୋଁୟବେ—ପ୍ରା, (ଭତଡ଼ାଭାଷା) କ୍ରି, ମୁଁ ହୁଅନ୍ତି ।

ହୋଗଲା-ପ୍ରା,(ମେଦିନୀ. ଓ ବାଲେ,) ବି, (ଫ-ଏରକା) ସନ୍ତରା ।

ହୋଚଟ୍—ପ୍ରା, (ମେଦିନୀ. ଓ ବାଲେ.) (ଫ-ଉଦ୍‌ଘାତ) ଠୋକର, ପାଦର ଅଗ୍ରଭାଗ ଉଚ୍ଚ ଜିନିଷରେ ବାଜିବା ।

ହୋଟ(ଟେ)ଲ—ଆ, ବି. ସାଧାରଣ ଭୋଜନାଳୟ ।

ହୋଟେଣ୍ଟଟ—ଗ୍ରା.ବି.ଆଫ୍ରିକାର ଅସଭ୍ୟ ଜାତିବିଶେଷ । [ କରିବା ।

ହୋଡ଼୍—(ଧାତୁ) ଗଦ୍ଧକରୁବା,ଅନାଦର

ହୋଡ଼—ବ. (ହୋଡ଼+ଣ.ଅ) ନୌକା-ବିଶେଷ, ହୋଲଡ଼ଙ୍ଗା, ବଡ଼ଡ଼ଙ୍ଗା, ବୋଇତ, ଭେଲା, ଦକ୍ଷିଣ ରାଢ଼ୀୟ ମୌଳିକ କାୟସ୍ଥମାନଙ୍କର ଦ୍ୱିସପ୍ତତି ପଦ୍ଧତି ଅନ୍ତର୍ଗତ ପଦ୍ଧତିବିଶେଷ, ଗୌଡ଼-ଦେଶୀୟ ଶ୍ରୋତ୍ରୀୟ ବ୍ରାହ୍ମଣମାନଙ୍କର ଉପାଧି, (ମୈ.ଅ) ଚୋରିତ ଦ୍ରବ୍ୟ, ଲୋପ୍ତ୍ର, (ଗ୍ରା.ବି) ହୁଡ଼, ପଣ, ବାଜି ରଖାଯାଇ ଖେଳାଯିବା ଖେଳ ।

ହୋଡ଼ା—ପୁଂ. ବ. ( ହୋଡ଼+କ.ତୃ ) ଚୋର, (ସ୍ତ୍ରୀ) ହୋଡ଼୍ରୀ ।

ହୋଡ଼୍—(ଧାତୁ) ହରଣ କରିବା, ଚୋରି କରିବା ।

ହୋତା-ପୁଂ.ବିଂ.(ହୁ+କ.ତୃ) ହୋମକାରୀ, (ସ୍ତ୍ରୀ) ହୋତ୍ରୀ, (ବି) ଯେ ହୋମକରେ, ହୋମକର୍ତ୍ତା ବ୍ୟକ୍ତି, ଯାଗକାରୀ ବ୍ୟକ୍ତି ଋଗ୍‌ବେଦବେତ୍ତା ବ୍ୟକ୍ତି, ବେଦଜ୍ଞ ବ୍ୟକ୍ତି, ହୋମ ବା ଯଜ୍ଞକାଳରେ ଋଗ୍‌ବେଦ ଗାନକାରୀ ପୁରୋହିତ, ପୁରୋହିତ, ମହାଦେବଙ୍କ ଅଷ୍ଟମୂର୍ତ୍ତି ମଧ୍ୟରୁ ଯଜମାନ ବା ହୋମକାରୀ ମୂର୍ତ୍ତି ବା ଅବତାର, ଯଜମାନ, ( ଗ୍ରା.ବି ) ବ୍ରାହ୍ମଣମାନଙ୍କର ବଂଶୋପାଧିବିଶେଷ, ଓଡ଼ା ।

ହୋତ-ଗ୍ରା.ବି. (କ୍ରିୟାବାଚକ,ସ ଭବତ) ହେବା, ସମ୍ପାଦିତ ହେବାକଥା, ହଁ, ସମ୍ମତ, (କ୍ରି.ବିଂ, ସ-ତନ, ତଥା) ସେଠାରେ, ତଥି ।

ହୋତଆଣୀ—ପ୍ରା.(ସମ୍ବଲ)ସ୍ତ୍ରୀ.ବି.ହୋତା ଉପାଧିଧାରୀ ବ୍ରାହ୍ମଣଙ୍କ ସ୍ତ୍ରୀ ।

ହୋତନହୋତ—ଗ୍ରା. ବ. ହେବା କିମ୍ବା ନ ହେବା କଥା, ହଁ କି ନାହିଁ ।

ହୋତ୍ର—ବି. (ହୁ+ଭା.ତ୍ର) ହୋମ, ଯଜ୍ଞ, (ଣ.ତ୍ର) ହବିଃ, ଘୃତ ।

ହୋତ୍ରକ—ବ. ହୋତା, ହୋମ ।

ହୋତ୍ରଗ—ବିଂ. ( ହୋତ୍ର+ଗମ୍+ଅ ) ହୋମଗାମୀ ।

ହୋତ୍ରବାହନ-ପୁଂ.ବି.ହବ୍ୟବାହନ, ଅଗ୍ନି ।

ହୋତ୍ରା—ବ. (ହୋତ୍ର+ଆ) ସ୍ତୁତି ।

ହୋତ୍ରୀ—ବ. ଓ ପୁଂ.ବିଂ.(ହୋତ୍ର+ଇନ୍) ହୋତ୍ରୀ ଦେଖ, (ସ୍ତ୍ରୀ)ହୋତାର ସ୍ତ୍ରୀଲିଙ୍ଗ, ଶିବଙ୍କର ଅଷ୍ଟମୂର୍ତ୍ତି ମଧ୍ୟରୁ ଗୋଟିଏ, ଯଜମାନରୂପୀ ଶିବଙ୍କ ମୂର୍ତ୍ତି ।

ହୋତ୍ରୀୟ—ବିଂ.(ହୋତ୍ର+ଈୟ) ହୋତ୍ର ବା ହୋମ ସମ୍ବନ୍ଧୀୟ, (ହୋତୃ+ଈୟ) ହୋତା ସମ୍ବନ୍ଧୀୟ, ( ବି ) ହବିର୍ଗେହ, ହୋମଶାଳା, ହବ୍ୟ ବା ଯଜ୍ଞଘୃତ ରଖିବାର ଗୃହ ।

ହୋମ—ବି. ( ହୁ+ଭା.ମ ) ଦେବଯଜ୍ଞ, ମନ୍ତ୍ରୋଚ୍ଚାରଣ ପୂର୍ବକ ଦେବତା ଓ ଗ୍ରହାଦିଙ୍କ ଉଦ୍ଦେଶ୍ୟରେ ଯଜ୍ଞାଗ୍ନିରେ ଘୃତାହୁତି ଦାନରୂପ କର୍ମ ।

ହୋମକ—ପୁଂ.ବି.(ହୁ+କ.ଅକ) ହୋତା, (ହୋମ+କ) ହୋମ ।

ହୋମକରିବା—ଗ୍ରା. କ୍ରି. ମନ୍ତ୍ରୋଚ୍ଚାରଣ ପୂର୍ବକ ଅଗ୍ନିରେ ଦେବୋଦ୍ଦେଶରେ ଆହୁତି ଦେବା ।

ହୋମକୁଣ୍ଡ—ବି. ହୋମାର୍ଥ କୁଣ୍ଡ, ହବନୀ, ଯେଉଁ କୁଣ୍ଡ ମଧ୍ୟରେ ଅଗ୍ନି ସ୍ଥାପନ ପୂର୍ବକ ଆହୁତି ଦିଆଯାଏ ।

ହୋମଘର—ପ୍ରା. ( ଯାଜପୁର ) ବି. ଆଶୀର୍ବାଦ ଘର ।

ହୋମଧାନ୍ୟ—ବି. ତିଳ ।

ହୋମଧୂମ—ବି. ( କ.ଧା ) ହୋମାଗ୍ନିରୁ ଉଠିଥିବା ଧୂଆଁ ।

ହୋମଧେନୁ—ବି. (କ.ଧା) ଯେଉଁ ଗାଈର ଦୁଧରୁ ପ୍ରସ୍ତୁତ ଘୃତ ହୋମରେ ଲାଗେ ଓ ହୋମଘିଅ ଯୋଗାଇବାପାଇଁ ଯେଉଁ ଗାଈ ରଖାଯାଇଥାଏ ।

ହୋମପାତ୍ର—ବି. ହୋମ ଉପଲକ୍ଷ୍ୟରେ ଘୃତ ଓ ଜଳଆଦି ରଖାଯିବାପାଇଁ ଓ ଆହୁତି ଦିଆଯିବାରେ ବ୍ୟବହୃତ ପାତ୍ର, (ଯଥା—ସ୍ରୁବ, ସ୍ରୁଚ) ।

ହୋମବେଦିକା(ବେଦୀ)—ବି. ମାଟିର ବା ବାଲିର ଯେଉଁ ମନ୍ତ୍ରସଂସ୍କୃତ ବେଦୀ ଉପରେ ଅଗ୍ନିସ୍ଥାପନ ପୂର୍ବକ ହୋମ କରାଯାଏ ।

ହୋମଭସ୍ମ—ବି. ହୁତଭସ୍ମ, ହୋମାଗ୍ନି ଲିଭିଯିବା ପରେ ହୋମ କୁଣ୍ଡରେ ରହିଯିବା ପାଉଁଶ ।

ହୋମସାଧନ—ବି. ହୋମପାତ୍ର ଦେଖ, ହୋମସାମଗ୍ରୀ ଦେଖ ।

ହୋମସାମଗ୍ରୀ-ବି.ହୋମ ନିମନ୍ତେ ଆବଶ୍ୟକ ସରଞ୍ଜାମ ।

ହୋମାଗ୍ନି—ବି. ଯଜ୍ଞାଗ୍ନି, ହୋମ ବା ଯଜ୍ଞପାଇଁ ସ୍ଥାପିତ ଅଗ୍ନି ।

ହୋମି—ବି.(ହୁ+ଣ.ମି) ଅଗ୍ନି, ଘୃତ, ଜଳ ।

ହୋମିଓପା(ପ୍ୟା)ଥି—ଯା. ବି. ଜର୍ମାନୀର ଡାକ୍ତର ହାନିମାନଙ୍କ ଦ୍ୱାରା ଆବିଷ୍କୃତ ଚିକିତ୍ସା ପ୍ରଣାଳୀ ।

ହୋମିଓପାଥିକ୍‌ମାତ୍ରା—ଗ୍ରା.ବି. (ଲ.ଅର୍ଥ) ଅତି ସୂକ୍ଷ୍ମମାତ୍ରା ବା ପରିମାଣ ।

ହୋମୀ—ପୁଂ. ବି. ( ହୋମ+ଇନ୍ ) ହୋତା, ହୋମକର୍ତ୍ତା । [ ସମ୍ବନ୍ଧୀୟ ।

ହୋମୀୟ—ବିଂ. (ହୋମ+ଈୟ) ହୋମ

ହୋମ୍ୟ—ବି.(ହୋମ+ଯ) ହୋମ ସାମଗ୍ରୀ, ହୋମୀୟ ଦ୍ରବ୍ୟ ।

ହୋୟ—ପ୍ରା. (ଉତ୍ତରଖଣ୍ଡ) ଅବ୍ୟ. ହଁ ।

ହୋୟଦେ—ପ୍ରା.(ଉତ୍ତରଖଣ୍ଡ) କ୍ରି.(ମୁଁ) ହୋଇପାରେ, ଥାଇପାରେ ।

ହୋୟେ—ଗ୍ରା. କ୍ରି. (ପ୍ରାଚୀନ ପ୍ରୟୋଗ) ହୁଏ ଦେଖ ।

ହୋରା—ବି. ( ହୋର୍+କ.ଅ+ଆ ) (ଜ୍ୟୋତିଷ) ଲଗ୍ନ, ରାଶ୍ୟର୍ଦ୍ଧ, ରାଶି ପରିମାଣର ଅର୍ଦ୍ଧାଂଶ, ରେଖା, ସାର୍ଦ୍ଧଦଣ୍ଡ-ଦ୍ୱୟ ପରିମିତ କାଳ, ୧ ଘଣ୍ଟା, ହିନ୍ଦୁଶାସ୍ତ୍ର-ବିଶେଷ (ଏତଦ୍ଦ୍ୱାରା ସମସ୍ତ ଗଣନା କରାଯାଏ) ।

ହୋରାବିଜ୍ଞାନ(ଶାସ୍ତ୍ର)—କାଳନିର୍ଣ୍ଣୟସୂଚକ ଜ୍ୟୋତିଷ ଶାସ୍ତ୍ର ।

ହୋରି-ଗ୍ରା.ବି. ହୁଲର, ହଲ୍ଲା, ଗୋଳମାଳ, ଘୋଷଣା, ଉଚ୍ଚଡ଼ାକ, ଦୋଳୋତ୍ସବ ।

ହୋରଆ—ପ୍ରା. (ଗଡ଼) ବି. କାହାଣୀରେ ବ୍ୟବହୃତ ଅସୁର ଜାତୀୟ ଉକାର୍ଯ୍ୟିତ ।

ହୋଲ୍—ଯା. ବି. ସମୁଦାୟ, (ପ୍ରା.ବଲାଙ୍ଗିର ପାଟଣା. ବି) ଫାଲ୍ଗୁନ ମାସ ।

ହୋଲ୍‌ଉମାମ୍-ଯା.କ୍ରି.ବିଂ.ସମୁଦାୟ ଥୋକ ।

ହୋଲ—ପ୍ରା.(ମୟୂରଭଞ୍ଜ)ବି.କୁଆପଥର ।

ହୋଲି—ଗ୍ରା.(ମେଦିନୀ. ଓ ବାଲେ.)ମୁଷ୍କ, ଅଣ୍ଡକୋଷ ।

ହୋଲିକ—ବି.ତୃଣାଗ୍ନିରେ ଦଗ୍ଧ ଅର୍ଦ୍ଧପକ୍ୱ ଶମୀଧାନ୍ୟ ।

ହୋଲକ୍କା—ବି. ହୋଲ୍ଲକା ଦେଖ ।

ହୋଲକାର—ବି. ଇନ୍ଦୋର ରାଜଧାନୀରେ ସୁପ୍ରତିଷ୍ଠିତ ଗୋଟିଏ ମରହଟ୍ଟା ରାଜବଂଶ ।

ହୋଲଗା—ଗ୍ରା. (ବାଲେ.)ବିଂ.ବୁଗୁଲା ।

ହୋଲ୍ଲ—ଗ୍ରା. ବି. କ୍ଷୁଦ୍ର ନୌକାବିଶେଷ ।

ହୋଲ୍ଲକ—ବି.(ହୋଡ଼+ଭା.ଅକ)ଧୂମସ୍ୱାନ ସହିତ ଘଷିକିଆଁକୁ ଶିଯ୍ୟାରଲେ ରଶି ଖୋଇବା ବ୍ୟକ୍ତିଙ୍କ ଦେହରେ ବସ୍ତ୍ରାବରଣ ପୂର୍ବକ ଗ୍ରହଣ କରାଯିବା ସ୍ୱେଦ ବା ସେକ ।

ହୋଲ୍ଲକା—ବି. (ହୋଡ଼+ଅଧି.ଅକ+ଆ) ହୋଲିଉତ୍ସବ, ଫାଲ୍ଗୁନ ପୂର୍ଣ୍ଣିମା ସମୟରେ ଅନୁଷ୍ଠିତ ଉତ୍ସବ, ଦୋଳଯାତ୍ରା, ମଦନ ଉତ୍ସବ, ବସନ୍ତୋତ୍ସବ, (ଗ୍ରା.ଖଡ଼ିଆଳ.ବି) ଫାଲ୍ଗୁନ ପୂର୍ଣ୍ଣିମାରେ ଜଳିବା ଅଗ୍ନି, ଫାଲ୍ଗୁନ ପୂର୍ଣ୍ଣିମାରେ ଫଗୁଖେଳ ।

ହୋଲ୍ଲକାଧିକରଣନ୍ୟାୟ—ଏକଦେଶରେ ପ୍ରଚଳିତ ଆଚାରକୁ ଅନୁକରଣ କରି ଅନ୍ୟ ଦେଶବାସୀମାନେ ତାହା କର୍ତ୍ତବ୍ୟ ବୋଲି ଜ୍ଞାନକରି ଗ୍ରହଣ ଓ ପାଳନ କରିବା ସ୍ଥଳରେ ବ୍ୟବହୃତ ନ୍ୟାୟ ।

ହୋଲି(ଲୀ)—ଗ୍ରା. ବି. (ସଂ-ହୋଲ୍ଲକା) ହୋଲ୍ଲକା ଦେଖ ।

ହୋଲକା—ବି.(ହୋଡ଼୍+ଅଧି.ଅକ+ଆ) ହୋଲ୍ଲକା ।

ହୋଲ(ର)ଖେଳ—ଗ୍ରା. ବି. ଦୋଳଯାତ୍ରା ସମୟରେ ପରସ୍ପର ପିଚକାରୀ ମାରାମାରି ଓ ଅବିର ଫୋପଡ଼ା ଫୋପଡ଼ି ହୋଇ କରାଯିବା କ୍ରୀଡ଼ାକୌତୁକ ।

ହୋଲ(ର)ଖେଳିବା—ଗ୍ରା. କ୍ରି. ହୋଲିଉତ୍ସବ ଉପଲକ୍ଷରେ ପରସ୍ପର ଅବିର ଓ ପିଚକାରୀ ମାରାମାରି ହେବା ।

ହୋଲିଗୀତ—ଗ୍ରା. ବି. ହୋଲିଉତ୍ସବ ଉପଲକ୍ଷରେ ବୋଲାଯିବା ରାଧାକୃଷ୍ଣ ବିଷୟକ ଆଦିରସାତ୍ମକ ଗାନ ।

ହୋଲେନାଡୋଲେ—ଗ୍ରା.ଅବ୍ୟ.(ତା'ର) କଷ୍ଟଯାଏ ଆସେନାହିଁ ।

ହୋଲ୍କାର—ଗ୍ରା.ବି. (ନାମ) ମଧ୍ୟଭାରତର ଇନ୍ଦୋରରେ ରାଜତ୍ୱକାରୀ ମରହଟ୍ଟା ରାଜବଂଶଙ୍କ ଉପାଧି ।

ହୋଷ୍ଟେଲ—ଯା. ବି. ଛାତ୍ରାବାସ ।

ହୋସ—ଯା. ବି. ହୁସ୍ ଦେଖ ।

ହୋସହବାସ୍—ଗ୍ରା. ( ଖଡ଼ିଆଳ ) ବି. ଚୈତନ୍ୟ, ଜ୍ଞାନ, ଚେତା ।

ହୋସଲ—ଯା.( ଗ୍ରା.—ଖଡ଼ିଆଳ ) ବି. ସାହସ ।

ହୋସେନ୍—ଯା.ବି. ମୁସଲମାନଙ୍କ ନାମ, ହଜରତ ମହମ୍ମଦଙ୍କ କନ୍ୟା ଫାତମା-ଜୋହରାଙ୍କ ସାନପୁଅ ।

ହୋସେନସା(ସାହା)—ଯା. ବି. ବଙ୍ଗର ଜନୈକ ପ୍ରାଚୀନ ମୁସଲମାନ ରାଜା ।

ହୋହା—ଗ୍ରା. ବି. (ଧ୍ୱନ୍ୟନୁକରଣ) ବହୁଲୋକଙ୍କ ମିଳିତ ଉଚ୍ଚୈଃସ୍ୱର, ଘୋଷଣା, ଗଣ୍ଡଗୋଳ, ହଟ୍ଟଗୋଳ ।

ହୋହୋ—ଗ୍ରା. ବି. ହୋହା ଦେଖ ।

ହୋହୋହେବା—ଗ୍ରା. କ୍ରି. (ବହୁଲୋକ) ବଡ଼ପାଟି କରିବା ।

ହୌ—ଅବ୍ୟ. (ସମ୍ବୋଧନ ଓ ଆହ୍ୱାନ) ହେ, (ଗ୍ରା.ଅବ୍ୟ; ସମ୍ମତସୂଚକ) ହେଉ, ତଥାସ୍ତୁ ।

ହୌଜ—ଯା. ବି. ଜଳାଧାର ।

ହୌତଭୁକ-ବି.(ହୁତଭୁକ+ଅ)ନକ୍ଷତ୍ରବର୍ଗ

ହୌତାସନ—ବିଂ. ( ହୁତାଶନ+ଅ ) ହୁତାଶନ ସମ୍ବନ୍ଧୀୟ ।

ହୌତ୍ରୁ—ପୁଂ. ବି. ଯଜମାନ ।

ହୌମ୍ୟ—ବିଂ. ( ହୋମ+ଯ ) ହୋମ ସମ୍ବନ୍ଧୀୟ, ହୋମଯୋଗ୍ୟ, ହୋମରେ ବ୍ୟବହୃତ ହେବା ଯୋଗ୍ୟ, ( ବି ) ହବନୀୟ ଘୃତ, ହୋମଘିଅ ।

ହୌମ୍ୟଧାନ୍ୟ—ବି. ହୋମଧାନ୍ୟ, ତିଳ ।

ହ୍ନୁ—(ଧାତୁ) ଗୋପନକରିବା ।

ହ୍ମଲ—(ଧାତୁ) ଚଳନ କରିବା, ହଲିବା, କମ୍ପିବା ।

ହ୍ମଲନ—ବି. (ହ୍ମଲ+ଭା.ଅନ) ହଲିବା, ଇତସ୍ତତଃ ଗତି କରିବା ।

ହ୍ୱାନ—ବି. (ହ୍ୱେ+ଭା.ଅନ) ଆହ୍ୱାନ ।

ହ୍ୱେ—(ଧାତୁ) ଆହ୍ୱାନ କରିବା, ଶବ୍ଦ କରିବା, ସ୍ପର୍ଦ୍ଧା କରିବା ।

ହ୍ୟଃ—ଅବ୍ୟ.(ହ୍ୟସ୍ ଶବ୍ଦ, ଗତ+ଅହନ୍) ଗତକାଲି ।

ହ୍ୟସ୍ତନ—ବିଂ. (ହ୍ୟଃ+ତନ)ପୂର୍ବଦିବସ ସମ୍ବନ୍ଧୀୟ, କାଲିକାର, ଗତକାଲି ଜାତ, ଗତକାଲି ପ୍ରାପ୍ତ, (ସ୍ତ୍ରୀ) ହ୍ୟସ୍ତନୀ ।

ହ୍ୟସ୍ତ୍ୟ-ବିଂ.ହ୍ୟସ୍ତନ ଦେଖ,(ସ୍ତ୍ରୀ)ହ୍ୟସ୍ତ୍ୟା ।

ହ୍ୟାଦେ—ଗ୍ରା. (ପାଟଣା)ଅବ୍ୟ.ହେଇଟି ।

ହ୍ରଗ—(ଧାତୁ)ସମ୍ବରଣକରିବା,ଲୁଚାଇବା, ଘୋଡ଼ାଇବା ।

ହ୍ରଣିୟା—ବି. ହ୍ରଣୀୟା ।

ହ୍ରଦ—ବି. (ହ୍ରାଦ+ଅଧି.ଅ) ଅକୃତ୍ରିମ ସୁବୃହତ୍ ଜଳାଶୟ,ସ୍ଥଳବେଷ୍ଟିତ ପ୍ରାକୃତିକ ଜଳଭାଗ,କାରଣ,ରଶ୍ମି,ଗଭୀରଗର୍ତ୍ତ

ହ୍ରଦଗ୍ରହ—ବି. (ହ୍ରଦ+ଗ୍ରହ+କ.ଅ) କୁମ୍ଭୀର ।

ହ୍ରଦିନୀ—ବି. ( ହ୍ରଦ+ଇନ୍+ଈ ) ନଦୀ, ବିଦ୍ୟୁତ୍ ।

ହ୍ରଦୀ—ବିଂ. ହ୍ରଦଯୁକ୍ତ, ଜଳୀୟ ।

ହ୍ରପ୍—(ଧାତୁ) କହିବା, ଶବ୍ଦ କରିବା ।

ହ୍ରସ୍—(ଧାତୁ)ରବ କରିବା,ଖର୍ବହେବା ।

ହ୍ରସିତ—ବିଂ. (ହ୍ରସ+କ.ତ) ଶବ୍ଦିତ, ଖର୍ବୀକୃତ ।

ହ୍ରସିମ—ବି. (ହ୍ରସ୍ୱ+ଇମନ୍) ଲଘୁତା, ହ୍ରସ୍ୱତା,କ୍ଷୁଦ୍ରତା,ଖର୍ବତା,ବାଙ୍ଗରପଣ ।

ହ୍ରସିଷ୍ଠ—ବିଂ. (ହ୍ରସ୍ୱ+ଇଷ୍ଠ) ଅତିଶୟ ହ୍ରସ୍ୱ, କ୍ଷୁଦ୍ରତମ, (ସ୍ତ୍ରୀ) ହ୍ରସିଷ୍ଠା ।

ହ୍ରସୀୟାନ୍—ପୁଂ. ବିଂ. (ହ୍ରସ୍ୱ+ଈୟସ୍) ଅତିକ୍ଷୁଦ୍ର, କ୍ଷୁଦ୍ରତର,(ସ୍ତ୍ରୀ) ହ୍ରସୀୟସୀ ।

ହ୍ରସ୍ୱ—ବିଂ.(ହ୍ରସ୍+କ.ବ) କ୍ଷୁଦ୍ର,ଛୋଟ, ଅନୁଚ୍ଚ, ଖେଣ୍ଡା, ବାଙ୍ଗରା, ଲଘୁ,ଏକମାତ୍ରାକାଳୋଚ୍ଚାର୍ଯ୍ୟ ସ୍ୱରଯୁକ୍ତ ବର୍ଣ୍ଣ, (ବି) ବାମନ, ପ୍ରକୃତ ପୁରୁଷ ପ୍ରମାଣରୁ ନ୍ୟୂନ ମନୁଷ୍ୟ, ଏକମାତ୍ରାକାଳୋଚ୍ଚାର୍ଯ୍ୟ ସ୍ୱର, ପରିମାଣବିଶେଷ, ମେଷ,ବୃଷ,କୁମ୍ଭ,ମୀନ

ରଶ୍ମିଗଣ, ଗନ୍ଧକ ଓ ପାରଦର ରସାତ୍ମକ ମିଶ୍ରଣବିଶେଷ, ପୁଷ୍ପକାସୀସ, ଗୌର ସୁବର୍ଣ୍ଣ ଶାକ ।

ହ୍ରସ୍ୱ ଇ—ବି. ଲଘୁପ୍ରାଣ ସ୍ୱର ଇ ।

ହ୍ରସ୍ୱ ଉ—ବି. ଲଘୁପ୍ରାଣ ସ୍ୱର ଉ ।

ହ୍ରସ୍ୱ ଋ—ବି. ଲଘୁପ୍ରାଣ ସ୍ୱର ଋ ।

ହ୍ରସ୍ୱ ଌ—ବି. ଲଘୁପ୍ରାଣ ସ୍ୱର ଌ ।

ହ୍ରସ୍ୱକ—ବି. (ହ୍ରସ୍ୱ+ସ୍ୱାର୍ଥେ.କ) ହ୍ରସ୍ୱ ଦେଖ, ଗୁଆଗଛ । [ ସାରୁ ।

ହ୍ରସ୍ୱକନ୍ଦ—ବି.ଏକପ୍ରକାର ସାରୁ,ଡେଙ୍ଗୁଣି

ହ୍ରସ୍ୱକର୍କନ୍ଧୁ—ବି. ବନବଦର, ବଣ ବରକୋଳି ।

ହ୍ରସ୍ୱକର୍ଣ୍ଣ—ପୁଂ.ବି. ରାକ୍ଷସ (ରାମାୟଣ) ।

ହ୍ରସ୍ୱକୁଶ—ବି. (କ.ଧା) ଶ୍ୱେତକୁଶ ।

ହ୍ରସ୍ୱଗର୍ଭ—ବି, (ବ.ବ୍ରୀ) କୁଶ ।

ହ୍ରସ୍ୱଗବେଧୁକା—ବି.ଗାଙ୍ଗେରୁକୀ,ନାଗବଳା,ଗୋରକ୍ଷଗୁଣ୍ଡଲ,ଗରଗଡ଼ବିଶେଷ ।

ହ୍ରସ୍ୱଜମ୍ବୁ—ବି.କ୍ଷୁଦ୍ରଜମ୍ବୁ, ଗିଳିରଜାମୁ ।

ହ୍ରସ୍ୱତଣ୍ଡୁଳ—ବି. ରାଜାନ୍ନ,ସରୁଚାଉଳ ।

ହ୍ରସ୍ୱତା(ତ୍ୱ)—ବି.(ହ୍ରସ୍ୱ+ଭା.ତା)କ୍ଷୁଦ୍ରତ୍ୱ, ସ୍ୱଳ୍ପପ୍ରାଣତା, ହ୍ରାସ ।

ହ୍ରସ୍ୱତେଜାଃ—ପୁଂ. ବିଂ. (ବ.ବ୍ରୀ) କ୍ଷୀଣତେଜାଃ,କ୍ଷୀଣଶକ୍ତିବିଶିଷ୍ଟ,ନିସ୍ତେଜ ।

ହ୍ରସ୍ୱଦର୍ଭ—ବି. ଶ୍ୱେତକୁଶ, ହ୍ରସ୍ୱକୁଶ ।

ହ୍ରସ୍ୱଦା—ବି କ୍ଲେଙ୍କି, ଲୋବାନ୍ ପରି ଏକପ୍ରକାର ସୁଗନ୍ଧ ଝୁଣା ଗଛ ।

ହ୍ରସ୍ୱଦୀର୍ଘ—ବିଂ. ଲଘୁ ଓ ଗୁରୁ, ଲଘୁପ୍ରାଣ ଓ ଦୀର୍ଘପ୍ରାଣ (ବର୍ଣ୍ଣ),ଗେଡ଼ା ଓ ଡେଙ୍ଗା ।

ହ୍ରସ୍ୱପଞ୍ଚମୂଳ—ବି, ଲଘୁପଞ୍ଚମୂଳ, ଶାଳପର୍ଣ୍ଣୀ, ପୃଶ୍ନିପର୍ଣ୍ଣୀ, ବୃହତୀ, କଣ୍ଟକାରୀ ।

ହ୍ରସ୍ୱପତ୍ରକ—ବି. ଗିରିଜ ମଧୂକ ବୃକ୍ଷ, ପାହାଡ଼ିଆ ମହୁଲ ଗଛ ।

ହ୍ରସ୍ୱପତ୍ରିକା—ବି. (ବ,ବ୍ରୀ) ଅଶ୍ୱତ୍ଥ ।

ହ୍ରସ୍ୱପର୍ଣ୍ଣ(ପ୍ଲକ୍ଷ)—ବି. କ୍ଷୁଦ୍ର ପ୍ଲକ୍ଷ ବୃକ୍ଷ ।

ହ୍ରସ୍ୱପୁଷ୍ପ—ବି. ଜଳମଧୂକ ।

ହ୍ରସ୍ୱପ୍ରବାସୀ—ପୁଂ. ବି ଓ ବିଂ. (କ.ଧା) ଅଳ୍ପସମୟ ବିଦେଶରେ ରହିବା ବ୍ୟକ୍ତି ।

ହ୍ରସ୍ୱଫଳ—ବି, ମଧୁର ନାରକେଳ, ଗ୍ରୈଷ୍ଠ ଫଳ, (ବିଂ) କ୍ଷୁଦ୍ର ଫଳବିଶିଷ୍ଟ ।

ହ୍ରସ୍ୱଫଳା—ବି. ଭୂଇଁଜାମୁ, ବଣଜାମ୍ବୁ, ଗିଳିରଜାମ୍ବୁ ।

ହ୍ରସ୍ୱବର୍ଣ୍ଣ—ବି. ହ୍ରସ୍ୱ ବା ସ୍ୱଳ୍ପପ୍ରାଣ ବର୍ଣ୍ଣ, ହ୍ରସ୍ୱସ୍ୱର ବର୍ଣ୍ଣ ଓ ହ୍ରସ୍ୱ ସ୍ୱର ବର୍ଣ୍ଣଯୁକ୍ତ ବ୍ୟଞ୍ଜନବର୍ଣ୍ଣ ।

ହ୍ରସ୍ୱବାହୁକ—ପୁଂ. ବିଂ, (ବ.ବ୍ରୀ) କ୍ଷୁଦ୍ର ବାହୁବିଶିଷ୍ଟ (ବ୍ୟକ୍ତି),(ସ୍ତ୍ରୀ) ବାହୁକା ।

ହ୍ରସ୍ୱବୃକ୍ଷ—ବି, କୁଶ, କ୍ଷୁଦ୍ର ଗଛ ।

ହ୍ରସ୍ୱମୂଳ-ବି. (ବ.ବ୍ରୀ)ରକ୍ତେକ୍ଷୁ, କୃଷ୍ଣେକ୍ଷୁ, କଳଲା ଆଖୁ ।

ହ୍ରସ୍ୱମୂଳା—ବି.ଉଷ୍ଟ୍ରକାଣ୍ଡୀ କ୍ଷୁପ ।

ହ୍ରସ୍ୱରୋମା—ବି. ବିଦେହରାଜ ଭେଦ, ସ୍ୱର୍ଣ୍ଣରୋମର ପୁତ୍ର ।

ହ୍ରସ୍ୱଶାଖା(ଖି)—ବି. (ବ,ବ୍ରୀ) ଗୁଳ୍ମ, ବୁଦା, ଗୁଗଗଛ ।

ହ୍ରସ୍ୱଶିଗ୍ରୁକ—ବି. ଶ୍ରେଷ୍ଠ ସଜନାଗଛ ।

ହ୍ରସ୍ୱସ୍ୱର—ବି. (କ.ଧା) କ୍ଷୀଣ ସ୍ୱର, ଲଘୁପ୍ରାଣ ସ୍ୱର୍ଣ୍ଣବର୍ଣ୍ଣ (ଯଥା—ଅ. ଇ. ଉ. ଋ. ଌ) ।

ହ୍ରସ୍ୱା—ବି. ହ୍ରସ୍ୱର ସ୍ତ୍ରୀଲିଙ୍ଗ, (ବି) ମୁଦ୍ଗପର୍ଣ୍ଣୀ, ନାଗବଳା, ଭୂଇଁଜାମୁ, ବାମନୀ, ବାଙ୍ଗିରି ସ୍ତ୍ରୀ, ଶ୍ୱେତାପରାଜିତା, ଅଁଳାଚିଙ୍ଗା ଗଛ ।

ହ୍ରସ୍ୱାଗ୍ନି-ପୁଂ.ବି.ଅର୍କ ବୃକ୍ଷ, ଅରଖଗଛ ।

ହ୍ରସ୍ୱାଙ୍ଗ—ପୁଂ. ବିଂ. (ବ.ବ୍ରୀ) ବୁଟା, ଗେଡ଼ା, ବାମନ, ଖର୍ବକାୟ, (ବି) ଜୀବକ, ଋଷଭକ, (ସ୍ତ୍ରୀ) ହ୍ରସ୍ୱାଙ୍ଗୀ ।

ହ୍ରାଦ୍—(ଧାତୁ) ସ୍ୱନ କରିବା ।

ହ୍ରାଦ-ବି. (ହ୍ରାଦ୍+ଭା.ଅ) ସ୍ୱନ, ରବ, ରାବ, ହିରଣ୍ୟକଶିପୁଙ୍କ ସାନପୁଅ, ମେଘଗର୍ଜନ, (ବିଂ) ଶବ୍ଦକାରକ ।

ହ୍ରାଦକ—ବିଂ. ଶବ୍ଦ ବିଷୟରେ କୁଶଳ ।

ହ୍ରାଦିନୀ—ବି. (ହ୍ରାଦିନ୍+ଈ) ବିଦ୍ୟୁତ୍, ବିଜୁଳୀ, ବଜ୍ର, ନଦୀ, ଶଲ୍ଲକୀ, (ବିଂ) ଶବ୍ଦକାରିଣୀ ।

ହ୍ରାଦୀ—ପୁଂ. ବିଂ, (ହ୍ରାଦ୍+ଇନ୍) ଶବ୍ଦବିଶିଷ୍ଟ, ଗର୍ଜନକାରୀ, (ସ୍ତ୍ରୀ) ହ୍ରାଦିନୀ ।

ହ୍ରାସ-ବି. (ହ୍ରସ୍+ଭା.ଅ) କ୍ଷୟ, ଅଳ୍ପୀଭାବ, ନ୍ୟୂନତା, ଶବ୍ଦ, କୃଷ୍ଣପକ୍ଷରେ ଚନ୍ଦ୍ରକଳାର କ୍ରମିକ କ୍ଷୟ ।

ହ୍ରାସନ—ବି. (ହ୍ରସ୍+ଣିଚ୍-ଭା.ଅନ) କମାଇବା ।

ହ୍ରାସନୀୟ-ବିଂ, (ହ୍ରାସ୍+ଅନୀୟ) ଶବ୍ଦର ଉପଯୁକ୍ତ, ହ୍ରାସର ଯୋଗ୍ୟ ।

ହ୍ରାସପ୍ରାପ୍ତ-ବିଂ.(୨ତତ୍) କ୍ଷୟିତ, ଅଳ୍ପୀଭୂତ, (ସ୍ତ୍ରୀ) ହ୍ରାସପ୍ରାପ୍ତା ।

ହ୍ରାସବୃଦ୍ଧି—ବି. (ବିପରୀତ ସହଚର) କ୍ଷୟ ଓ ବର୍ଦ୍ଧନ, କମିବା ଓ ବଢ଼ିବା ।

ହ୍ରାସ୍ୱ-ବି. (ହ୍ରସ୍ୱର ଭାବ)ହ୍ରସ୍ୱତା,ଲଘୁତା, ନୀଚତା ।

ହ୍ରୀଣୀୟା—ସ୍ତ୍ରୀ. ବି. (ହ୍ରୀ+ଭା.ଯ+ଅ +ଆ) ଲଜ୍ଜା, ଘୃଣା ।

ହ୍ରୀତ—ପୁଂ. ବିଂ. (ହ୍ରୀ+କ.ତ) ଲଜ୍ଜିତ, (ହ୍ରୁ+ର୍ମ.ତ) ବଉକ୍ତ, ନୀତ, (ସ୍ତ୍ରୀ) ହ୍ରୀତା, (ବି) ଅଂଶ ।

ହ୍ରୀତି—ବି. (ହ୍ରୁ+ଭା.ତି) ହରଣ, ହୃତ ।

ହ୍ରୀବେର—ବି. ହ୍ରୀବେର ଦେଖ ।

ହ୍ରୀ—(ଧାତୁ) ଲଜ୍ଜିତ ହେବା ।

ହ୍ରୀ—ସ୍ତ୍ରୀ. ବି. (ହ୍ରୀ+ଭା.କ୍ୱିପ୍) ଲଜ୍ଜା, ଦକ୍ଷପ୍ରଜାପତିଙ୍କ କନ୍ୟା ଓ ଧର୍ମଙ୍କ ପତ୍ନୀ ।

ହ୍ରୀଁ—ବି. ବୀଜମନ୍ତ୍ରବିଶେଷ ।

ହ୍ରୀକ—ବି. ନେଉଳ ।

ହ୍ରୀକା—ବି. (ହ୍ରୀ+ଭା.କ+ଆ) ତ୍ରାସ, ଭୟ, ଲଜ୍ଜା ।

ହ୍ରୀକୁ—ବିଂ.(ହ୍ରୀ+କ.କ+ଉ) ଲଜ୍ଜିତ, ଲାଜକୁଳା, ସଲଜ୍ଜ, (ବି) ଦସ୍ତା, ଜଷ୍ଟ, ତମ୍ବା, ଟିଣଧାତୁ, ରାଙ୍ଗା, ବିରାଡ଼ି ।

ହ୍ରୀଚ୍ଛ—(ଧାତୁ) ଲଜ୍ଜା କରିବା ।

ହ୍ରୀଜିତ—ବିଂ, (୩ତତ୍) ଲଜ୍ଜିତ, ଲଜ୍ଜାଶୀଳ, (ସ୍ତ୍ରୀ) ଜିତା ।

ହ୍ରୀଣ(ତ)—ବିଂ (ହ୍ରୀ+କ.ତ) ଲଜ୍ଜିତ ।

ହ୍ରୀତି—ବି. (ହ୍ରୀ+ଭା.ତି) ଲଜ୍ଜା ।

ହ୍ରୀବେର(ଲ)—ବି. କୁରୁବେଲ, ବାଳାନାମକ ଗନ୍ଧଦ୍ରବ୍ୟ, ସୁଗନ୍ଧବାଳା ।

ହ୍ରୀବେଲ(କ)-ବି,ହ୍ରୀବେର ଦେଖ ।

ହ୍ରୀମାନ୍—ପୁଂ. ବିଂ. (ହ୍ରୀ+ମତ୍) ଲଜ୍ଜାଶୀଳ, ଲଜ୍ଜାଯୁକ୍ତ, (ସ୍ତ୍ରୀ) ହ୍ରୀମତୀ ।

ହ୍ରୀମୂଢ଼—ପୁଂ. ବିଂ. (୩ତତ୍) ଲଜ୍ଜା-

ହେତୁରୁ କିଂକର୍ତ୍ତବ୍ୟ ବିମୂଢ଼, ( ସ୍ତ୍ରୀ ) ହ୍ରୀମୂଢ଼ା ।

ହ୍ରୁଡ଼୍—(ଧାତୁ) ଗତି କରିବା ।

ହ୍ରେପ୍—(ଧାତୁ) ଗତିକରିବା ।

ହ୍ରେପିତ—ବିଂ,(ହ୍ରୀ+ଣିଚ୍+କ୍ତ)ଲଜ୍ଜା-ପ୍ରାପିତ ।

ହ୍ରେଷ୍—(ଧାତୁ) ଘୂଞ୍ଚିବା, ଗତି କରିବା, (ଅଶ୍ୱ) ବୋବାଇବା ।

ହ୍ରେଷା—ବି. ( ହ୍ରେଷ୍+ଭା.ଅ+ଆ ) ଘୋଡ଼ାର ରବ, ଅଶ୍ୱଧ୍ୱନି ।

ହ୍ରେଷାଣ—ବି. ଗମନ, ଗତି ।

ହ୍ରେ(ହ୍ରୌ)ଡ଼୍—(ଧାତୁ)ଗତିକରିବା ।

ହ୍ଲଗ୍—(ଧାତୁ) ସମ୍ବରଣ କରିବା ।

ହ୍ଲପ୍—(ଧାତୁ) କହିବା ।

ହ୍ଲସ୍—(ଧାତୁ) ଶବ୍ଦ କରିବା ।

ହ୍ଲା—ସ୍ତ୍ରୀ, ବି. (କଟେଇଆ ସାଙ୍କେତିକ) ହାଲ୍ ।

ହ୍ଲାଦ୍—( ଧାତୁ ) ଆମୋଦିତ ହେବା, ସ୍ୱନ କରିବା ।

ହ୍ଲାଦ—ବି ( ହ୍ଲାଦ୍+ଭା,ଅ ) ଆହ୍ଲାଦ, ଆନନ୍ଦ, ହର୍ଷ, ପ୍ରମୋଦ ।

ହ୍ଲାଦକ—ପୁଂ. ବିଂ. (ହ୍ଲାଦ୍+କ.ଅକ) ଆନନ୍ଦଜନକ,(ସ୍ତ୍ରୀ)ହ୍ଲାଦକା, ଆହ୍ଲାଦ ବିଷୟରେ କୁଶଳ ।

ହ୍ଲାଦନ—ବି.(ହ୍ଲାଦ୍+ଭା.ଅନ)ଆନନ୍ଦ, ଆହ୍ଲାଦ, (ହ୍ଲାଦ୍+ଣିଚ୍=ହ୍ଲାଦି+ଅନ) ଆହ୍ଲାଦ ଜନ୍ମାଇବା, ( ପୁଂ.ବି ) ଶିବ ।

ହ୍ଲାଦନୀୟ-ବିଂ, (ହ୍ଲାଦ+ଅନୀୟ)ଆହ୍ଲାଦ-ଯୋଗ୍ୟ, ଆନନ୍ଦାର୍ହ, ଆହ୍ଲାଦର ଉପଯୁକ୍ତ, (ସ୍ତ୍ରୀ) ହ୍ଲାଦନୀୟା ।

ହ୍ଲାଦିତ—ବିଂ.(ହ୍ଲାଦ୍+ମି.କ୍ତ)ଆହ୍ଲାଦିତ, (ସ୍ତ୍ରୀ) ହ୍ଲାଦିତା ।

ହ୍ଲାଦିନୀ—ସ୍ତ୍ରୀ. ବି. ( ହ୍ଲାଦିନ୍+ଈ ) ବିଦ୍ୟୁତ୍, ବଜ୍ର, ନଦୀବିଶେଷ, ତନ୍ତ୍ରୋକ୍ତ ଶକ୍ତିବିଶେଷ ।

ହ୍ଲାଦୀ—ପୁଂ. ବିଂ. ( ହ୍ଲାଦ୍+କ.ଇନ୍ ) ଆହ୍ଲାଦଯୁକ୍ତ, ଆନନ୍ଦଜନକ, ( ସ୍ତ୍ରୀ ) ହ୍ଲାଦିନୀ ।

ହ୍ଲୀକା—ବି. (ହ୍ରୀ+ଭା.କ+ଆ) ଲଜ୍ଜା ।

ହ୍ଲୀକୁ—ବି. ହ୍ରୀକୁ ଦେଖ ।

ହ୍ଲେଷା—ବି. ହ୍ରେଷା, ଅଶ୍ୱଧ୍ୱନି ।

# କ୍ଷ

“କ୍ଷ”ବର୍ଣ୍ଣ କ ବର୍ଣ୍ଣର ଗୋଟିଏ ଯୁକ୍ତାକ୍ଷର, (କ+ଷ ଅଟେ), ଏହି ଦୃଷ୍ଟିରେ “କ” ଅକ୍ଷରାଦ୍ୟ ଶବ୍ଦମାନଙ୍କ ପରେ “ କ୍ଷ ” ଅକ୍ଷରାଦ୍ୟ ଶବ୍ଦମାନ ସନ୍ନିବେଶିତ ହୋଇଅଛି ।



ସମାପ୍ତ

Printed by Chandra Sekhar Mishra B. A, Ambika Press, Cuttack. 1942.